ଶ୍ରିଷ୍ଟିତ ବ୍ୟକ୍ତିଙ୍କ ନାମ ସଙ୍ଗେ ସଂସୃଷ୍ଟ ହୋଇଥିବା ଦୃଷ୍ଟିରେ ଅନ୍ତିମ ଖଣ୍ଡ ସମ୍ରାଟଙ୍କ ନାମରେ ଉତ୍ସୃଷ୍ଟ ହେଲେ ସୁନ୍ଦର ଦେଖାଯିବ ନାହିଁ । ଆକାଶର ପୂର୍ଣ୍ଣଚନ୍ଦ୍ରକୁ ବାମନର ହାତ ବଢ଼ାଇ ଧରିବା ଆଶା ପରି ଏ ଆଶାକୁ ମନଃକ୍ଷୋଭରେ ଅଗତ୍ୟା ପରିତ୍ୟାଗ କରିବାକୁ ପଡ଼ିଲା ।

## ଉପସଂହାର—

ଏ ବିରାଟ ଗ୍ରନ୍ଥର ମୂଲ୍ୟ ଦୃଷ୍ଟିରେ ଏହା କିଣିବା ସର୍ବସାଧାରଣଙ୍କ ଆର୍ଥିକ ଶକ୍ତିର ବହିର୍ଭୂତ ଥିବା ବିଷୟରେ ଅନେକ ବନ୍ଧୁ ଆକ୍ଷେପ କରି ଅଛନ୍ତି । ସେମାନଙ୍କୁ ସାନ୍ତ୍ୱନା ଦେବା ସକାଶେ ଜଣାଉଅଛୁ ଯେ ଭାଷାକୋଷର ଅନ୍ତିମ ଖଣ୍ଡ ପ୍ରକାଶିତ ହେବା ପରେ ଏ ଗ୍ରନ୍ଥରୁ ସାରୋଦ୍ଧାର କରି କେତେ ଗୋଟି ସୁଲଭ ଓ ସଂକ୍ଷିପ୍ତ ସଂସ୍କରଣ ( ଯଥା—ଛାତ୍ର-ବ୍ୟବହାର୍ଯ୍ୟ ସଂସ୍କରଣ, ପକେଟ୍ ସଂସ୍କରଣ, ପୌରାଣିକ ଶବ୍ଦସଂଗ୍ରହ ସଂସ୍କରଣ, ଆୟୁର୍ବେଦିକ ଶବ୍ଦ ସଂଗ୍ରହ ସଂସ୍କରଣ ) ପ୍ରକାଶ କରିବାର ବାସନା ଅଛି । ସେ ସଂସ୍କରଣମାନ ସୁଲଭ ହେବ ଓ ତାହା ସ୍ୱଳ୍ପବିତ୍ତ ଲୋକେ କିଣି ପାରିବେ । ସେ ସବୁ ସଂସ୍କରଣର ସଂକଳନରେ ବର୍ତ୍ତମାନ ମନ ଦେଲେ ମୂଳଗ୍ରନ୍ଥର ସଂକଳନ କର୍ମରେ ବାଧା ଘଟିବ ଏହି ଆଶଙ୍କାରେ ତହିଁରେ ଆଜି ପର୍ଯ୍ୟନ୍ତ ମୁଁ ହସ୍ତକ୍ଷେପ କରି ନାହିଁ । ଯେବେ କେହି ଉତ୍ସାହୀ ପ୍ରକାଶକ (ପବ୍ଲିସର) ଏ ଗ୍ରନ୍ଥରୁ ସଂକ୍ଷିପ୍ତ ସଂସ୍କରଣ ପାଇଁ ସାର ସଂଗ୍ରହ କରିବାକୁ ଆବେଦନ କରନ୍ତି, ବ୍ୟବସାୟ ଦୃଷ୍ଟିରେ ମୁଁ ସେ ପ୍ରସ୍ତାବକୁ ବିବେଚନା କରିବାକୁ ପ୍ରସ୍ତୁତ ଅଛି ।

ପରିଶେଷରେ ଯେଉଁ ପରାତ୍ପର ପରମେଶ୍ୱରଙ୍କ କରୁଣାରୁ ପୂର୍ଣ୍ଣଚନ୍ଦ୍ର ଭାଷାକୋଷର ସଂକଳନ ଓ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶର ସଂଗଠନ କର୍ମ କ୍ରମଶଃ ଅଗ୍ରସର ହୋଇ ଏ ପର୍ଯ୍ୟନ୍ତ ପ୍ରଗତି କରିଅଛି, ସେହି ବିଶ୍ୱନିୟନ୍ତାଙ୍କ କରୁଣାରୁ ସମସ୍ତ ବାଧାବିଘ୍ନ ଖଣ୍ଡିତ ହୋଇ ପୂର୍ଣ୍ଣଚନ୍ଦ୍ର ଭାଷାକୋଷ ସଂକଳନର ଓ ସ୍ୱତନ୍ତ୍ର ପ୍ରଦେଶ ଗଠନର ପୂର୍ତ୍ତି ସମସାମୟିକ ହେଉ । ଓଡ଼ିଆ ଜାତି ଓ ଓଡ଼ିଆ ଭାଷା ସ୍ୱତନ୍ତ୍ର ଜାତି ଓ ସ୍ୱତନ୍ତ୍ର ଭାଷା ରୂପେ ଜଗତରେ ପ୍ରତିଷ୍ଠା ଲାଭ କରୁ । ପ୍ରଭୁଙ୍କ ଉଦ୍ଦେଶ୍ୟ ସିଦ୍ଧ ହେଉ ।

ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ ।

ଭାଷାକୋଷ ଆଶ୍ରମ
କଟକ
୧୯୩୪ ଜୁନ୍ ମାସ

ଗୋପାଳଚନ୍ଦ୍ର ପ୍ରହରାଜ

## ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ ସଙ୍କଳନରେ ବ୍ୟବହୃତ ଅଭିଧାନଗ୍ରନ୍ଥ, ଗ୍ରନ୍ଥକାରମାନଙ୍କର ନାମ ଓ ସାଙ୍କେତିକ ଚିହ୍ନ ।

M. W —ମନିଅର୍ ୱିଲିଅମ୍‌ସ୍‌ଙ୍କ କୃତ ସଂସ୍କୃତ-ଇଂରାଜୀ ଅଭିଧାନ ।

Kirtikar—ଡକ୍ଟର୍ କୀର୍ତ୍ତିକାରଙ୍କର 'Indian Plants' (ଭାରତୀୟ ଉଦ୍ଭିଦ) ।

Apte—ପ୍ରୋଫେସର୍ ଆପ୍ଟେଙ୍କର Practical Sanskrit—English Dictionary (ସଂସ୍କୃତ-ଇଂରାଜୀ ଅଭିଧାନ) ।

Beams—Comparative Grammar of four Indo-Aryan languages (ବୀମ୍‌ସ ସାହେବଙ୍କ ଗୌରଭାଷାର ବ୍ୟାକରଣ) ।

Chambers' Twentieth Century Dictionary—ଚେମ୍ବର୍ସଙ୍କର ବିଂଶ ଶତାବ୍ଦୀର ଇଂରାଜୀ ଅଭିଧାନ ।

Haines—ହାଏନ୍‌ସ୍ ସାହେବଙ୍କ Botany of Bihar and Orissa (ବିହାର-ଓଡ଼ିଶାର ଉଦ୍ଭିଦତତ୍ତ୍ୱ) ।

Howells—ପାଦ୍ରୀ ହାଉଏଲ୍‌ସ୍ ସାହେବଙ୍କ ଅପ୍ରକାଶିତ ଓଡ଼ିଆ-ଇଂରାଜୀ ଅଭିଧାନର ପାଣ୍ଡୁଲିପି ।

Fallon—ଡକ୍ଟର୍ ଫାଲନ୍ ସାହେବଙ୍କ ହିନ୍ଦୁସ୍ଥାନୀ-ଡିକ୍‌ସ୍‌ନାରୀ ।

Sir George Greierson—Linguistic Survey of India (ଗ୍ରୀୟରସନ୍ ସାହେବଙ୍କ ଭାରତୀୟ ଭାଷାବିବରଣ) ।

Grundy—ପାଦ୍ରୀ ଗ୍ରଣ୍ଡି ସାହେବଙ୍କ ଓଡ଼ିଆ-ଇଂରାଜୀ ଅଭିଧାନ ।

Parker—Elements of Astronomy—ପାର୍କର ସାହେବଙ୍କ ଇଂରାଜୀଭାଷାର ଜ୍ୟୋତିଷ ଗ୍ରନ୍ଥ ।

Prothero—Short Primer of Indian History—ପ୍ରୋଥେରୋ ସାହେବଙ୍କ ଇଂରାଜୀ ସଂକ୍ଷିପ୍ତ ଭାରତ ଇତିହାସ ।

ଗୋପୀନାଥ ନନ୍ଦ; ନନ୍ଦେ—ଗୋପୀନାଥ ନନ୍ଦଙ୍କ ଓଡ଼ିଆ 'ଶବ୍ଦତତ୍ତ୍ୱବୋଧ' ଅଭିଧାନ ।

ଜ୍ୟୋତିଃସାର ରତ୍ନାବଳୀ—ବାଇଦୋଳ ମହାପାତ୍ରଙ୍କ ଜ୍ୟୋତିଷଗ୍ରନ୍ଥ ।

ଜ୍ଞାନେନ୍ଦ୍ର—ଜ୍ଞାନେନ୍ଦ୍ରମୋହନ ଦାସଙ୍କ ବଙ୍ଗଳାଭାଷାର ଅଭିଧାନ ।

ବିଶ୍ୱନାଥ ବାବା—ବିଶ୍ୱନାଥ ବାବାଙ୍କ ରଚିତ ମହିମାଧର୍ମ ପ୍ରତିପାଦକ ଗ୍ରନ୍ଥ ।

ବିଶ୍ୱକୋଷ—ନଗେନ୍ଦ୍ରନାଥ ବସୁଙ୍କ ପ୍ରଣୀତ ବଙ୍ଗଳା 'ବିଶ୍ୱକୋଷ' ।

ଯୋଗେଶଚନ୍ଦ୍ର—ରାୟ ବାହାଦୁର ଯୋଗେଶଚନ୍ଦ୍ର ରାୟ ବିଦ୍ୟାନିଧି ସଂକଳିତ 'ବଙ୍ଗଳା ଶବ୍ଦକୋଷ' ।

ପ୍ରକୃତିବାଦ—ଶ୍ରୀଯୁକ୍ତ ରାମକମଲ ବିଦ୍ୟାଲଙ୍କାରଙ୍କ ପ୍ରଣୀତ ସଚିତ୍ର ବଙ୍ଗଳା 'ପ୍ରକୃତିବାଦ ଅଭିଧାନ' ।

ହିନ୍ଦୀ ଶବ୍ଦସାଗର—କାଶୀ ନାଗରୀପ୍ରଚାରଣୀ ସଭାଙ୍କ ପ୍ରକାଶିତ ହିନ୍ଦୀ ଭାଷାର ବୃହତ୍ ଅଭିଧାନ ।

ସୁବଳଚନ୍ଦ୍ର—ସୁବଳଚନ୍ଦ୍ର ମିତ୍ରଙ୍କ ସରଳ ବଙ୍ଗଳା ଅଭିଧାନ ।

ଗାଙ୍ଗୁଲି—The Student's Bengali and English Dictionary (ବି. ଗାଙ୍ଗୁଲିଙ୍କ ବଙ୍ଗଳା-ଇଂରାଜୀ ଅଭିଧାନ) ।

ଦ୍ରବ୍ୟଗୁଣ—ଶ୍ରୀ ନଗେନ୍ଦ୍ରନାଥ ସେନ୍ ଗୁପ୍ତଙ୍କ ବଙ୍ଗଳା 'ଦ୍ରବ୍ୟଗୁଣ ଶିକ୍ଷା' ।

ସମର୍ଥକୋଷ—ରାଜା ରାଧାକାନ୍ତ ଦେବଙ୍କଦ୍ୱାରା ପ୍ରକାଶିତ ବଙ୍ଗଳା 'ସମର୍ଥ କୋଷ' ଅଭିଧାନ ।

ଶବ୍ଦକଳ୍ପଦ୍ରୁମ—ବଙ୍ଗାକ୍ଷରରେ ମୁଦ୍ରିତ ସଂସ୍କୃତ ଅଭିଧାନ ।

A. T. Dev—ଆଶୁତୋଷ ଦେବଙ୍କ ଇଂରାଜୀ-ବଙ୍ଗଳା ଅଭିଧାନ ।

ରାମନାରାୟଣ ଲାଲ—ଇଂରାଜୀ-ହିନ୍ଦୀ ଅଭିଧାନ ।

ଓଡ଼ିଆ ଦ୍ରବ୍ୟଗୁଣ, ହରେକୃଷ୍ଣ—କବିରାଜ ହରେକୃଷ୍ଣ ମିଶ୍ରଙ୍କ ଦ୍ରବ୍ୟଗୁଣ ।

ଓଡ଼ିଆ ଦ୍ରବ୍ୟଗୁଣକଳ୍ପଦ୍ରୁମ—ବ୍ରଜବନ୍ଧୁ ତ୍ରିପାଠୀଙ୍କ ସଙ୍କଳିତ ଗ୍ରନ୍ଥ ।

Wilson—ୱିଲ୍‌ସନ୍ ସାହେବଙ୍କ କୃତ ସଂସ୍କୃତ ଅଭିଧାନ ।

## ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷରେ ଉଦ୍ଧୃତ ଶିଷ୍ଟପ୍ରୟୋଗର ଗ୍ରନ୍ଥକାରମାନଙ୍କର ନାମ ଓ ସାଙ୍କେତିକ ଚିହ୍ନ ।

(ଦ୍ରଷ୍ଟବ୍ୟ—ଗ୍ରନ୍ଥମାନଙ୍କ ନାମ ଯଥାସ୍ଥାନରେ ଦିଆ ଯାଇଅଛି)

ଅଚ୍ୟୁତ, ଅଚ୍ୟୁତାନନ୍ଦ—କଟକ ଜିଲ୍ଲାର ନେମାଳଗାଦିର ମହନ୍ତ ସ୍ୱର୍ଗୀୟ ଅଚ୍ୟୁତାନନ୍ଦ ଦାସ ।

ଅଜୟଚନ୍ଦ୍ର—ସ୍ୱର୍ଗୀୟ ରାୟ ବାହାଦୁର ଅଜୟଚନ୍ଦ୍ର ଦାସ ।

ଅଭିମନ୍ୟୁ—ପ୍ରାଚୀନ କବି ଅଭିମନ୍ୟୁ ସାମନ୍ତସିଂହାର ।

ଉତ୍କଳ-ସାହିତ୍ୟ—ଶ୍ରୀ ବିଶ୍ୱନାଥ କରଙ୍କ ପ୍ରକାଶିତ ମାସିକ ପତ୍ର ।

ଉତ୍କଳ ସେବକ—ସମ୍ବଲପୁରରୁ ପ୍ରକାଶିତ ଓଡ଼ିଆ ସମ୍ବାଦପତ୍ର ।

କବିସୂର୍ଯ୍ୟ—ପ୍ରାଚୀନ କବି କବିସୂର୍ଯ୍ୟ ବଳଦେବ ରଥ ।

କୁନ୍ତଳା, କୁନ୍ତଳାକୁମାରୀ—ଶ୍ରୀମତୀ କୁନ୍ତଳାକୁମାରୀ ଦେବୀ ।

କୁଳମଣି—ପଣ୍ଡିତ ଶ୍ରୀ କୁଳମଣି ଦାଶ ।

କୃପାସିନ୍ଧୁ—ସ୍ୱର୍ଗୀୟ କୃପାସିନ୍ଧୁ ମିଶ୍ର ।

ଗଙ୍ଗାଧର—ସ୍ୱର୍ଗୀୟ କବି ଗଙ୍ଗାଧର ମେହେର ।

ଗଡ଼ଜାତବାସିନୀ—ତାଳଚେରରୁ ପ୍ରକାଶିତ ସାପ୍ତାହିକ ପତ୍ର ।

ଗୋପାଳକୃଷ୍ଣ—ଗଞ୍ଜାମର ପ୍ରାଚୀନ କବି ।

ଗୋଲୋକ—ଅପ୍ରକାଶିତ କାବ୍ୟ ଇନ୍ଦୁରେଖାର ଆଧୁନିକ କବି ।

ଚିକିଟି—ଗଞ୍ଜାମ ଜିଲ୍ଲାର ଚିକିଟି ରାଜ୍ୟର ରାଜାସାହେବ ।

ଚିନ୍ତାମଣି—ଶ୍ରୀଯୁକ୍ତ ଚିନ୍ତାମଣି ଆଚାର୍ଯ୍ୟ ।

ଚିନ୍ତାମଣି—କବିବର ଚିନ୍ତାମଣି ମହାନ୍ତି ।

ଜଗନ୍ନାଥ—ଭକ୍ତକବି ଜଗନ୍ନାଥ ଦାଶ ।

ଜଗବନ୍ଧୁ—ଶ୍ରୀଯୁକ୍ତ ଜଗବନ୍ଧୁ ସିଂହ ।

ତାରିଣୀ—ସ୍ୱର୍ଗୀୟ ତାରିଣୀଚରଣ ରଥ ।

ତୁଳସୀ-ବିକ୍ରମ—ଜୟପୁରର ରାଜା ବିକ୍ରମଦେବଙ୍କ କୃତ ତୁଳସୀଦାସଙ୍କ ହିନ୍ଦୀ ରାମାୟଣ ଆଦିକାଣ୍ଡର ପଦ୍ୟାନୁବାଦ ।

ଦନା (ନେ)ଇ ଦାସ—ଦନେଇ ଦାସଙ୍କ ରଚିତ ପଦାବଳୀ ।

ଦାଶରଥି—ପ୍ରାଚୀନ କବି ଦାଶରଥି ଦାସ ।

ଦୀନକୃଷ୍ଣ—ଭକ୍ତକବି ଦୀନକୃଷ୍ଣ ଦାସ ।

ଦୈନିକ ଆଶା— ବ୍ରହ୍ମପୁରରୁ ପ୍ରକାଶିତ ଦୈନିକ ପତ୍ରିକା ।
ନନ୍ଦକିଶୋର—ସ୍ୱର୍ଗୀୟ କବି ନନ୍ଦକିଶୋର ବଳ ।
ନନ୍ଦେ—ସ୍ୱର୍ଗୀୟ ଗୋପୀନାଥ ନନ୍ଦଙ୍କ ଓଡ଼ିଆ ଅଭିଧାନ ।
ନାରାୟଣ— କବି ନାରାୟଣ ଦାସ (ହରିବଂଶ)
ନୀଳକଣ୍ଠ—ଶ୍ରୀ ନୀଳକଣ୍ଠ ଦାଶ ।
ନୀଳମଣି—ଯାଜପୁରର ପଣ୍ଡିତ ନୀଳମଣିମିଶ୍ର(ଭକ୍ତିଧାରା,ପ୍ରେମତରଙ୍ଗିଣୀ)
ପଞ୍ଚାମୃତ—କଟକ ଟ୍ରେଡିଙ୍ଗ୍ କମ୍ପାନୀଙ୍କ ପ୍ରକାଶିତ ପତ୍ରିକା ।
ପୀତାମ୍ବର—କବି ପୀତାମ୍ବର ଦାସ (ନୃସିଂହ ପୁରାଣ) ।
ପୀତାମ୍ବରୀ—ଶ୍ରୀମତୀ ପୀତାମ୍ବରୀ ଦେବୀ ।
ପ୍ରତାପ—ପ୍ରାଚୀ ସମିତି ପ୍ରକାଶିତ ଶଶିଷେଣା ।
ପ୍ରାଚୀ—କଟକ ପ୍ରାଚୀସମିତି ପ୍ରକାଶିତ ଗ୍ରନ୍ଥମାଳା ।
ପ୍ୟାରୀମୋହନ— ସ୍ୱର୍ଗୀୟ ପ୍ୟାରୀମୋହନ ଆଚାର୍ଯ୍ୟ ।
ଫକୀର, ଫକୀରମୋହନ—ସ୍ୱର୍ଗୀୟ ଫକୀରମୋହନ ସେନାପତି ।
ବଳଭଦ୍ର—ବାମଣ୍ଡାର ବଡ଼କୁମାର ବଳଭଦ୍ର ଦେବ ଗ୍ରନ୍ଥାବଳୀ ।
ବଳରାମ—ପ୍ରାଚୀନ କବି ବଳରାମ ଦାସ (ରାମାୟଣ) ।
ବି. କେ. ପୁ.— ବିଷ୍ଣୁ କେଶରୀ ପୁରାଣ ।
ବିନାୟକ—ପଣ୍ଡିତ ଶ୍ରୀ ବିନାୟକ ମିଶ୍ର ।
ବିଶ୍ୱନାଥ—ପ୍ରାଚୀନ କବି ବିଶ୍ୱନାଥ ଖୁଣ୍ଟିଆ (ବିଚିତ୍ରରାମାୟଣ) ।
ବିଶ୍ୱନାଥ ବାବା—ମହିମା ଧର୍ମୀ ସନ୍ନ୍ୟାସୀ ଶ୍ରୀ ବିଶ୍ୱନାଥ ବାବା
ବିଷ୍ଣୁ କେଶରୀ ପୁରାଣ —ପ୍ରାଚୀ ଗ୍ରନ୍ଥମାଳା ।
ବ୍ରଜନାଥ—ବ୍ରଜନାଥ ବଡ଼ଜେନାଙ୍କ ପ୍ରଣୀତ ସମରତରଙ୍ଗ ।
ଭକ୍ତଦାସ, ଭକ୍ତଚରଣ—ପ୍ରାଚୀନ କବି ଭକ୍ତଚରଣ ଦାସ ।
ଭଞ୍ଜ—କବି-ସମ୍ରାଟ ଉପେନ୍ଦ୍ର ଭଞ୍ଜ ।
ଭୀମା—ଭୀମା ଧୀବର (କପଟପାଶା) ।

ଭିକାରୀଚରଣ—ରାୟ ସାହେବ ଶ୍ରୀ ଭିକାରୀଚରଣ ପଟ୍ଟନାୟକ ।
ଭୂପତି—ପ୍ରାଚୀ ଗ୍ରନ୍ଥମାଳାର କବି ଭୂପତି ପ୍ରଣୀତ ପ୍ରେମପଞ୍ଚାମୃତ ।
ମଦନମୋହନ—ଶ୍ରୀଯୁକ୍ତ ମଦନମୋହନ ପଟ୍ଟନାୟକ (ତୀର୍ଥଦର୍ଶନ) ।
ମନୁ— ମନୁସଂହିତା ।
ମହାଦେବ—ପ୍ରାଚୀନ କବି ମହାଦେବ ଦାସ (ମାର୍କଣ୍ଡେୟ ପୁରାଣ) ।
ମଧୁସୂଦନ— ଭକ୍ତ କବି ସ୍ୱର୍ଗୀୟ ମଧୁସୂଦନ ରାଓ ।
ଯଶୋବନ୍ତ—ପ୍ରାଚୀନ କବି ଯଶୋବନ୍ତ ସିଂହ ।
(ପ୍ରେମଭକ୍ତି ବ୍ରହ୍ମଗୀତା )
ରାଜକିଶୋର — ଡାକ୍ତର ଶ୍ରୀ ରାଜକିଶୋର ନନ୍ଦ ।
ରାଧାଚରଣ—ଡାକ୍ତର ରାଧାଚରଣ ପଣ୍ଡା
ରାଧାନାଥ—କବିବର ସ୍ୱର୍ଗୀୟ ରାଧାନାଥ ରାୟ ।
ରାଧାମୋହନ—ଡେଙ୍କାନାଳର ରାଜା ରାଧାମୋହନ ରାଜେନ୍ଦ୍ର ଦେବ ।
ରାମଦାସ—ପ୍ରାଚୀନ କବି ରାମଦାସ (ଦାର୍ଢ୍ୟତାଭକ୍ତି) ।
ରାମଶଙ୍କର—ସ୍ୱର୍ଗୀୟ ରାୟବାହାଦୁର ରାମଶଙ୍କର ରାୟ ।
ଶିଶୁଶଙ୍କର—ପ୍ରାଚୀନ କବି ଶିଶୁଶଙ୍କର (ଉଷା ଅଭିଳାଷ) ।
ସତ୍ୟସମାଚାର—କଟକରୁ ପ୍ରକାଶିତ ସାପ୍ତାହିକ ସମ୍ବାଦପତ୍ର ।
ସମାଜ—କଟକରୁ ପ୍ରକାଶିତ ଦୈନିକ ସମ୍ବାଦପତ୍ର ।
ସହକାର—କଟକରୁ ପ୍ରକାଶିତ ମାସିକ ପତ୍ରିକା ।
ସାରଳା —ପ୍ରାଚୀନ କବି ସାରଳା ଦାସ (ମହାଭାରତ) ।
ସୁବଳ ଦେବ —ବାମଣ୍ଡାର ରାଜା ସ୍ୱର୍ଗୀୟ ରାଜା ସର୍ ବାସୁଦେବ ସୁବଳ ଦେବ ।
ସୋନପୁର—ସୋନପୁର ମହାରାଜା ସର୍ ବୀରମିତ୍ରୋଦୟ ସିଂହ ଦେବ ।

## ଓଡ଼ିଆ ଶବ୍ଦମାନଙ୍କ ଉଚ୍ଚାରଣକୁ ଇଂରାଜୀ ଅକ୍ଷରରେ ଅକ୍ଷରାନ୍ତରୀକରଣରେ ବ୍ୟବହୃତ ବର୍ଣ୍ଣମାନଙ୍କର ପରିଚୟ ।

## LETTERS & SOUNDS USED IN THE ENGLISH TRANSLATION OF THE WORD IN THIS WOK.

| ଓଡ଼ିଆ ଅକ୍ଷର | Capital | Small |
|---|---|---|
| ଅ | A̱ | a |
| ଆ | Ā | ā |
| ଇ | I | i |
| ଈ | Ī | ī |
| ଉ | U | u |
| ଊ | Ū | ū |
| ଋ | Ṛu | ṛu |
| ୠ | Ṛū | ṛū |
| ଌ | Ḷu | ḷu |
| ଏ | E | e |
| ଐ | Ai | ai |
| ଓ | O | o |
| ଔ | Au | au |
| ଂ(ଅନୁସ୍ୱାର) | — | ṁ |
| ଃ(ବିସର୍ଗ) | — | ḥ |
| ଁ(ଚନ୍ଦ୍ରବିନ୍ଦୁ) | — | ñ |
| କ | K | k |
| କ୍ଷ | Ksh | ksh |
| ଖ | Kh | kh |
| ଗ | G | g |
| ଘ | Gh | gh |
| ଙ | N | ṅ |
| ଚ | Ch | ch |
| ଛ | Chh | chh |
| ଜ | J | j |
| ଝ | Jh | jh |
| ଞ | N | n̄ |
| ଟ | T | ṭ |
| ଠ | Th | ṭh |
| ଡ | Ḍ | ḍ |

| ଓଡ଼ିଆ ଅକ୍ଷର | Capital | Small |
|---|---|---|
| ଡ଼ | — | rd̤ |
| ଢ | Ḍh | dh |
| ଢ଼ | — | rdh |
| ଣ | N | ṇ |
| ତ | T | t |
| ଥ | Th | th |
| ଦ | D | d |
| ଧ | Dh | dh |
| ନ | N | n |
| ପ | P | p |
| ଫ | Ph | ph |
| ବ | B | b |

| ଓଡ଼ିଆ ଅକ୍ଷର | Capital | Small |
|---|---|---|
| ଭ | Bh | bh |
| ମ | M | m |
| ଯ | J̄ | j̈ |
| ୟ | Y | y |
| ର | R | r |
| ଳ | L̤ | ḻ |
| ଲ | L | l |
| ଅବର୍ଗ୍ୟ ବ ବା ୱ | W or V | w or v |
| ଶ | Ś | ś |
| ଷ | Sh | sh |
| ସ | S | s |
| ହ | H | h |

## ଏ ଗ୍ରନ୍ଥରେ ବ୍ୟବହୃତ ସାଙ୍କେତିକ ଅକ୍ଷର ଓ ଚିହ୍ନମାନଙ୍କ ପରିଚୟ ।

## ABBREVIATIONS USED IN THIS WORK WITH THEIR MEANINGS.

ଅ = ଅବ୍ୟୟ ପଦ ।
ଅଦାଲତ = ଅଦାଲତରେ ଓ ଦଲୀଲଆଦିରେ ବ୍ୟବହୃତ ଶବ୍ଦ ବା ଭାଷା
+ ଅଧିକରଣ = ଅଧିକରଣ ବାଚ୍ୟରେ ପ୍ରତ୍ୟୟ ।
ଅନ୍ୟରୂପ = ମୂଳ ଶବ୍ଦର ଭିନ୍ନ ଆକାର କିମ୍ବା ଉକ୍ତ ଅର୍ଥବାଚକ ଅନ୍ୟ ଶବ୍ଦ ।
+ ଅପାଦାନ = ଅପାଦାନ ବାଚ୍ୟରେ ପ୍ରତ୍ୟୟ ।
ଅଶୁଦ୍ଧ = କଥାବାର୍ତ୍ତାରେ ବା ଲେଖାରେ ବ୍ୟବହୃତ ଅଶୁଦ୍ଧ ଶବ୍ଦ, ବାକ୍ୟ ବା ଉଚ୍ଚାରଣ ।
ଆ = ଆରବୀ ଭାଷା ।
ଆଇନ୍ = ଆଇନ୍ ବା ସ୍ମୃତିଶାସ୍ତ୍ରରେ ବ୍ୟବହୃତ ଶବ୍ଦ
ଆସାମୀ = ଆସାମ ଦେଶର ଭାଷା ।
ଇଂ = ଇଂରାଜୀ ଭାଷା ।
ଇତର = ଇତରଜନ ବ୍ୟବହୃତ ଶବ୍ଦ, ଭାଷା ବା ଉଚ୍ଚାରଣ ।
ଇଟା (ଟେ) = ଇଟାଲୀୟ ଭାଷା ।
ଇତ୍ୟାଦି = ମୂଳ ଶବ୍ଦ ଓ ସେହି ଶବ୍ଦଯୁକ୍ତ ଅନ୍ୟ ଶବ୍ଦମାନ ।
ଉ; ଉର୍ଦ୍ଦୁ = ଉର୍ଦ୍ଦୁ ଭାଷା ।
ଓ = ଓଡ଼ିଆଭାଷା ।
କଚିଆ = କଚିରି ଆଦିରେ ଓ ଅଶିକ୍ଷିତ ଦଲୀଲ-ଲେଖାଳଙ୍କ ବ୍ୟବହୃତ ଶବ୍ଦ ବା ଭାଷା ।
କନ୍ଧ, କୁଇ = କନ୍ଧମାନଙ୍କ ବ୍ୟବହୃତ କୁଇ ଭାଷା ।
+ କରଣ = କରଣ ବାଚ୍ୟରେ ପ୍ରତ୍ୟୟ ।
+ କର୍ତ୍ତୃ = କର୍ତ୍ତୃ ବାଚ୍ୟରେ ପ୍ରତ୍ୟୟ ।
+ କର୍ମ = କର୍ମ ବାଚ୍ୟରେ ପ୍ରତ୍ୟୟ ।
କର୍ମଧା = କର୍ମଧାରୟ ସମାସ ।
କାହାଣୀ = ଦେଶପ୍ରଚଳିତ ଉପକଥା ।
କୋହ୍ଲ = କୋହ୍ଲମାନଙ୍କ ବ୍ୟବହୃତ ଭାଷା ।
କ୍ରି = କ୍ରିୟାପଦ ।
କ୍ରି. ବିଣ = କ୍ରିୟା ବିଶେଷଣ ।
ଖ୍ରୀ = ଖ୍ରୀଷ୍ଟାବ୍ଦ ।
ଖ୍ରୀ. ପୂ = ଖ୍ରୀଷ୍ଟ ଜନ୍ମର ପୂର୍ବାବ୍ଦ ।
ଗଣିତ = ଗଣିତଶାସ୍ତ୍ରରେ ବ୍ୟବହୃତ ଶବ୍ଦ ।
ଗାଳି = ଇତରଜନଙ୍କ ମଧ୍ୟରେ ଗାଳିରେ ବ୍ୟବହୃତ ଶବ୍ଦ ବା ବାକ୍ୟ
ଗୁ = ଗୁଜରାଟି ଭାଷା ।
ଗ୍ରା, ଗ୍ରାମ୍ୟ = ଗ୍ରାମ୍ୟ ବ୍ୟବହାର; ମାର୍ଜିତ ସାହିତ୍ୟରେ ପରିହାର୍ଯ୍ୟଶବ୍ଦ.
ଗ୍ରୀ, ଗ୍ରୀକ୍ = ଗ୍ରୀସ୍ ଦେଶର ଭାଷା ।
ଜଣାଣ, ଭଜନ = ପ୍ରାଚୀନ ଓଡ଼ିଆ ଲୌକିକ ଭଜନ ।
ଜର୍ମାନ୍ = ଜର୍ମାନ ଦେଶର ଭାଷା
ଜ୍ୟୋତିଷ = ଜ୍ୟୋତିଃଶାସ୍ତ୍ରରେ ବ୍ୟବହୃତ ଶବ୍ଦ ।
ଢଗ, ବଚନ, ପ୍ରବଚନ = ଲୌକିକ ପ୍ରବଚନ ବା ପ୍ରବାଦ ବାକ୍ୟ ।
ଣିଜନ୍ତରୂପ = ପୂର୍ବୋକ୍ତ କ୍ରିୟାର ଣିଜନ୍ତ ବା ପ୍ରୟୋଜକ ରୂପ ।
ତତ୍ = ତତ୍ପୁରୁଷ ସମାସ ।
ତା = ତାମିଲ ଭାଷା ।
ତୁର୍କୀ = ତୁରସ୍କଦେଶୀୟ ଭାଷା ।
ତୁଳ = ପରବର୍ତ୍ତୀ ଶବ୍ଦ ସଙ୍ଗେ ତୁଳନା କର ।
ତେ = ତେଲେଗୁ ଭାଷା ।
ଦର୍ଶନ = ଦର୍ଶନ ଶାସ୍ତ୍ରରେ ବ୍ୟବହୃତ ଶବ୍ଦ ।
ଦେ = ଦେଶଜ ଶବ୍ଦ ।
ଦେଖ = ପୂର୍ବବର୍ତ୍ତୀ ଶବ୍ଦକୁ ଏ ଭାଷାକୋଷର ଶବ୍ଦକ୍ରମରେ ଯଥାସ୍ଥାନରେ ଖୋଜ ।
ଦ୍ର = ଦ୍ରଷ୍ଟବ୍ୟ

ଦ୍ରା=ଦ୍ରାବିଡ଼ ଭାଷା ।
ଧା; ଧାତୁ=ସଂସ୍କୃତ ଧାତୁ ।
ଧ୍ୱନ୍ୟନୁକରଣ—ଧ୍ୱନିର ଅନୁକରଣରେ ଗଠିତ ବା ଉଚ୍ଚାରିତ
ବା ଅର୍ଥ ବୁଝାଉଥିବା ଶବ୍ଦ ।
ନଞ୍ ତତ୍=ନଞ୍ ତତ୍ପୁରୁଷ ସମାସ ।
ନପୁଂ.=ନପୁଂସକ ଲିଙ୍ଗ ।
ନାଟକ=ନାଟକରେ ବ୍ୟବହୃତ ଭାଷା ବା ଶବ୍ଦ ।
ନାମ=ସ୍ଥାନ ବା ବ୍ୟକ୍ତିବିଶେଷଙ୍କ ନାମ ।
ନୋଟ୍=ପୂର୍ବବର୍ତ୍ତୀ ଶବ୍ଦ ବିଷୟରେ ଟୀକା ।
ନ୍ୟାୟ=୧. ନ୍ୟାୟଶାସ୍ତ୍ର, ୨. ଦେଶପ୍ରଚଳିତ ଲୌକିକ ବଚନ ବା
ଲୋକେ କଥାପ୍ରସଙ୍ଗରେ ଉଲ୍ଲେଖ କରିବା ପ୍ରାମାଣିକ ଉକ୍ତି ।
ପଦ୍ୟ=କେବଳ ପଦ୍ୟରେ ବ୍ୟବହୃତ ଆକାର ।
ପରିଭାଷା=ବିଜ୍ଞାନାଦିରେ ବ୍ୟବହୃତ ପାରିଭାଷିକ ଶବ୍ଦ ।
ପର୍ତ୍ତୁ ( ଟ୍ଟୁ )=ପର୍ତ୍ତୁଗାଲ୍ ଦେଶର ଭାଷା ।
ପା=ପାଲି ଭାଷା ।
ପୁଂ=ପୁଲିଙ୍ଗ ।
ପ୍ରା—ପ୍ରାକୃତ ଭାଷା ।
ପ୍ରାଚୀନ=ପ୍ରାଚୀନ ଗ୍ରନ୍ଥମାନଙ୍କରେ ବ୍ୟବହୃତ; ଅଧୁନା ବିରଳ ଶବ୍ଦ ।
ପ୍ରାଦେ=ପ୍ରାଦେଶିକ ଅର୍ଥାତ୍ ଦେଶାଂଶ ବିଶେଷରେ ପ୍ରଚଳିତ
(ଓଡ଼ିଆ ଶବ୍ଦ
[ ଯେଉଁ ଯେଉଁ ଅଞ୍ଚଳରେ ଯେଉଁ ଶବ୍ଦ ବ୍ୟବହୃତ ସେ ଅଞ୍ଚଳମାନଙ୍କ
ନାମ ବନ୍ଧନୀ ମଧ୍ୟରେ ସୂଚିତ ହୋଇଅଛି । ଯଥା :— ପ୍ରାଦେ
(କଟକ)=କଟକ ଜିଲ୍ଲାରେ ବ୍ୟବହୃତ ପ୍ରାଦେଶିକ ଶବ୍ଦ ]
ଫା=ଫାରସୀ ବା ପାରସ୍ୟ ଦେଶ ପ୍ରଚଳିତ ଭାଷା ।
ଫ୍ରେ=ଫ୍ରେଞ୍ଚ୍ ବା ଫ୍ରାନ୍ସ ଦେଶ ପ୍ରଚଳିତ ଭାଷା ।
ବ=ବଚନ, ( ୧ବ=ଏକବଚନ; ୨ବ=ଦୁଇ ବଚନ;
ବହୁ ବ=ବହୁବଚନ ।
ବଂ=ବଙ୍ଗଳା ।
ବହୁ ବ=ବହୁବଚନ ।
ବି=ବିଶେଷ୍ୟ ପଦ ।
ବିଜ୍ଞାନ ପରିଭାଷା=ବିଜ୍ଞାନରେ ବ୍ୟବହୃତ ପାରିଭାଷିକ ଶବ୍ଦ ।
ବିଣ=ବିଶେଷଣ ପଦ ।
ବିଣ ର ବିଣ=ବିଶେଷଣର ବିଶେଷଣ ।
ବିପରୀତ=ପୂର୍ବୋକ୍ତ ଶବ୍ଦର ବିପରୀତାର୍ଥବୋଧକ ଶବ୍ଦ ।
ବୈଦେ=ବୈଦେଶିକ ଭାଷା ( ଯଥା—ଇଂରାଜୀ, ଆରବୀ, ଫାରସୀ,
ଫ୍ରେଞ୍ଚ୍, ଜର୍ମାନ୍ ) ରୁ ଆଗତ ଶବ୍ଦ ।
ବୈଦ୍ୟକ=ବୈଦ୍ୟକ ଗ୍ରନ୍ଥ ବା ଆୟୁର୍ବେଦରେ ବ୍ୟବହୃତ ଶବ୍ଦ ।
ଭତର; ଭତ୍ରୀ; ଭତ୍ରା=ବସ୍ତର ରାଜ୍ୟର ଉତ୍ତରପୂର୍ବ କୋଣରେ
ଥିବା ଏକ ଜାତିର କୃଷିଜୀବୀ ଲୋକଙ୍କ କଥିତ ଭାଷା ।
+ଭାବ=୧, ଭାବାର୍ଥ ପ୍ରତ୍ୟୟ;
୨. ଭାବ ବାଚ୍ୟରେ ପ୍ରତ୍ୟୟ ।
ମ=ମରହଟ୍ଟୀ ଭାଷା ।
ମ. ପ ଲୋ=ମଧ୍ୟପଦଲୋପୀ କର୍ମଧାରୟ ।
ଯଥା=ପୂର୍ବୋକ୍ତ ଶବ୍ଦର, ଅର୍ଥର ବା ପ୍ରୟୋଗର ଉଦାହରଣ ।
ଲକ୍ଷଣାର୍ଥ=ଶବ୍ଦର ଆରୋପିତ ଅର୍ଥ ।

ଲରିଆ=ସମ୍ବଲପୁର ଓ ଛତିଶଗଡ଼ ଅଞ୍ଚଳରେ ବ୍ୟବହୃତ ଉପଭାଷା ।
ଶିଶୁବଚନ, ଶିଶୁଗୀତ, ଶିଶୁରଞ୍ଜନ=ଶିଶୁମାନଙ୍କ ମନୋରଞ୍ଜନାର୍ଥ
ବୋଲାଯିବା ବା ଶିଶୁମାନଙ୍କ ଉଚ୍ଚାରିତ ବଚନ ବା ପଦ ।
ସଂ=ସଂସ୍କୃତ ଭାଷା ।
ସଙ୍ଗୀତ, ପ୍ରାଚୀନ ସଙ୍ଗୀତ—ପ୍ରାଚୀନ ଓଡ଼ିଆ ସଙ୍ଗୀତ ।
+ସଂଜ୍ଞାର୍ଥ=ସଂଜ୍ଞାର୍ଥ ପ୍ରତ୍ୟୟ ।
+ସମ୍ବନ୍ଧ=ସମ୍ବନ୍ଧାର୍ଥ ପ୍ରତ୍ୟୟ ।
ସର୍ବ=ସର୍ବନାମ ପଦ ।
ସହଚର=ମୂଳ ଶବ୍ଦର ସହଚର ଶବ୍ଦରୂପ ତାହାର ସଙ୍ଗେ ବା ପରେ
ବ୍ୟବହୃତ ଶବ୍ଦ ।
ସାନ୍ତାଳୀ=ସାନ୍ତାଳମାନଙ୍କ କଥିତ ଭାଷା ।
ସ୍ତ୍ରୀ=ସ୍ତ୍ରୀଲିଙ୍ଗ ।
+ସ୍ୱାର୍ଥେ=ଶବ୍ଦର ମୌଳିକ ଅର୍ଥରେ ଯୁକ୍ତ ପ୍ରତ୍ୟୟ ।
ହି=ହିନ୍ଦୀ ବା ହିନ୍ଦୁସ୍ଥାନୀ ଭାଷା ।
ହେବ୍ରୁ=ହେବ୍ରୁ ଭାଷା ।

| | |
|---|---|
| ୧ବ=ଏକବଚନ । | ୨ବ=ଦ୍ୱିବଚନ । |
| ୧ମ=ପ୍ରଥମ | ୨ୟ=ଦ୍ୱିତୀୟ |
| ୩ୟ=ତୃତୀୟ | ୪ର୍ଥ=ଚତୁର୍ଥ |
| ୧ମା=ପ୍ରଥମା ବିଭକ୍ତି । | ୨ୟା=ଦ୍ୱିତୀୟା ବିଭକ୍ତି । |
| ୩ୟା=ତୃତୀୟା ବିଭକ୍ତି । | ୪ର୍ଥୀ=ଚତୁର୍ଥୀ ବିଭକ୍ତି । |
| ୫ମୀ=ପଞ୍ଚମୀ ବିଭକ୍ତି । | ୬ଷ୍ଠୀ=ଷଷ୍ଠୀ ବିଭକ୍ତି । |
| ୭ମୀ=ସପ୍ତମୀ ବିଭକ୍ତି । | |

\+ (ଯୁକ୍ତ ଚିହ୍ନ)=ପରସ୍ପର ଯୁକ୍ତ ହେବା ଦୁଇ ଶବ୍ଦ ବା ଧାତୁ ଓ
ପ୍ରତ୍ୟୟ ମଧ୍ୟରେ ଥିବା ଯୁକ୍ତଚିହ୍ନ ।
= (ସମାନତାଜ୍ଞାପକ ଚିହ୍ନ)=ଧାତୁ ଓ ପ୍ରତ୍ୟୟ ମିଶି ବା ଦୁଇ ପଦ
ମିଶି ନିଷ୍ପନ୍ନ ହେବା ଶବ୍ଦ ବା ବାକ୍ୟର ଅର୍ଥ କିମ୍ବା ଧାତୁର ଅର୍ଥ ।
? (ପ୍ରଶ୍ନ ସୂଚକ ଚିହ୍ନ)=ସନ୍ଦେହ ସ୍ଥଳରେ ପ୍ରଦତ୍ତ ଚିହ୍ନ ।
— ( ଡାସ୍ )=ପରସ୍ପର ସଂବଦ୍ଧ ଦୁଇଟି ଶବ୍ଦ ବା ଶବ୍ଦ ଓ ଅର୍ଥ ବା
ଦୁଇଟି ଭାବ ମଧ୍ୟରେ ସମ୍ବନ୍ଧଜ୍ଞାପକ ଚିହ୍ନ ।
! (ବିସ୍ମୟସୂଚକ ଚିହ୍ନ)=ପୂର୍ବବର୍ତ୍ତୀ ବାକ୍ୟ, ଶବ୍ଦ ବା ବିଷୟ
ସମ୍ବନ୍ଧେ ବିସ୍ମୟ ଜ୍ଞାପନ ଓ ସଂବୋଧନ ସୂଚକ ଚିହ୍ନ ।

Etc; etc.=Please refer to the word preceding and its connected words in their proper places in alphabetical order in this Dictionary.

See=Please refer to the preceding word.

Algebra
Arithmetic
Astrology
Astronomy
Botany
Geography
Geometry
Logic
Mathematics
Medicine
Philosophy
} =Technical words used in the said sciences.

# ପୂର୍ଣ୍ଣଚନ୍ଦ୍ର

# ଓଡ଼ିଆ ଭାଷାକୋଷ ।

## ଦ

ଦ—ସଂ—ଅଷ୍ଟାଦଶ ବ୍ୟଞ୍ଜନବର୍ଣ୍ଣ, ତ ବର୍ଗର ତୃତୀୟବର୍ଣ୍ଣ । ଏହାର
Da ଉଚ୍ଚାରଣ ସ୍ଥାନ ଦନ୍ତ—The 18th consonant
द pronounced with the help of the teeth;
द corresponding to English 'th' as in 'bathe'.

[ ଦ୍ର—ଏହି ଅକ୍ଷରର ଉପର ଅଂଶ ଦହିନଉଡ଼ ଉପରେ ଯୋଡ଼ିଆ ହୋଇଥିବା ପଲମ ଆକୃତିବିଶିଷ୍ଟ ଥିବାରୁ ଅବଧାନମାନେ ପିଲାମାନଙ୍କୁ ଏହି ଅକ୍ଷରକୁ ଲେଖିବାକୁ ଶିକ୍ଷାଦେବା ସମୟରେ ଦହିନଉଡ଼ିଆ 'ଦ' ବୋଲି କହିଥାଆନ୍ତି । ]

ପୁଂ—ବିଶେଷଣବାଚକ ପ୍ରତ୍ୟୟ (ଅର୍ଥ) ଦାତା; ଯେ ଦିଏ—
(ଦା—ସ୍ତ୍ରୀ) A suffix meaning 'giver'.

[ ଦ୍ର—ଦା ଧାତୁ ନିଷ୍ପନ୍ନ ଏହି 'ଦ' ସାଧାରଣତଃ ଅନ୍ୟ ଶବ୍ଦ ପରେ ପ୍ରଯୁକ୍ତ ହୁଏ । ଯଥା—ଧନଦ, ଶରଦ, ଜଳଦ, ବାରିଦ, ନୀରଦ ଇତ୍ୟାଦି । ଏହାର ସ୍ତ୍ରୀଲିଙ୍ଗରେ ଦା ହୁଏ । ଯଥା—ଧନଦା, ବରଦା, ମୋକ୍ଷଦା ଇତ୍ୟାଦି ।]

ସଂ. ବି. ( ଦା ଧାତୁ + କର୍ତ୍ତୃ. ଅ )—୧ । ପର୍ବତ—
1. Mountain.

୨ । (+ ଭାବ. ଅ) ଦାନ—2. Gift.

୩ । ତ୍ୟାଗ—3. Act of relinquishing.

୪ । ( ଦୋ ଧାତୁ = ଛେଦନ କରିବା + ଭାବ. ଅ )—
ଛେଦନ—4. Cutting.

୫ । ଭାଗ କରିବା—5. Dividing.

୬ । ( ଦା + କର୍ତ୍ତୃ. ଅ ) ଦାତା—
6. Giver; a bounteous man.

୭ । ( ଦୋ ଧାତୁ = ଛେଦନ କରିବା + କର୍ତ୍ତୃ. ଅ )—
ପତ୍ନୀ; ଭାର୍ଯ୍ୟା—7. Wife.

ସଂ. ବିଣ. (ଦୈ ଧାତୁ = ଶୋଧନ କରିବା + କର୍ମ. ଅ)—ଶୁଦ୍ଧ—
Pure; purified.

ଦେ. ବି. ( ଶିଶୁବଚନ; ସଂ. ଦୁଗ୍ଧ; ଓଡ଼ିଆ ଦୁଧର ସଂକ୍ଷେପ )—
୧ । ମାତୃସ୍ତନ—1. Mother's breast.
୨ । ସ୍ତନ୍ୟ; ଦୁଗ୍ଧ—2. Milk from the mother's breast.
୩ । ଦଅ (ଦେଖ)—3. Da-a (See)

ଦେ. ଅ. (ଜମିଦାରୀ ଓ କଚେରୀଆ, ସାଙ୍କେତିକ)—୧ । ଦଖଲ—
1. An abbreviation used to denote possession.
୨ । ଦଖଲକାର—2. An abbreviation for a person in possession.
(ଯଥା—୨୫ ନମ୍ବର ଜମି । ଦ । ରାମ ପରିଡ଼ା ।)
୩ । ଦକ୍ଷିଣ; ଦକ୍ଷିଣରେ—3. To the south.
(ଯଥା—ଏ ଜମିର ଚତୁଃସୀମାରେ । ଦ । ମନୁ ବାବୁ ।)

ଦଅ—ଦେ. ବି—ଗଞ୍ଜପା ଓ ତାସଖେଳରେ ଦଶବିନ୍ଦୁ ଥିବା କାଗଜ—
Da-a The playing card having 10 points or
दहला दहला tips on it.
(ଦହ, ଦଅଲା, ଦହଲା—ଅନ୍ୟରୂପ)

ଦଅଡ଼—ଦେ. ବି. (ସଂ. ଦଣ୍ଡ)—ପ୍ରଧାନ ଦ୍ୱାରରକ୍ଷକ—
Da-arda The chief door-keeper.

ଗୃହଗୋଷ୍ଠ ଅଶ୍ୱ ଦୂର୍ବଳ କରି
ଦଅଡ଼ ପରିଶ ତହୁଁ ଅବୋଧି । ପ୍ରାଚୀ. ନଳଚରିତ ।

ଦଅଣ—ଦେ. ବି—ମଥାଉଡ଼ୁଁଣି ଜାଲର ଧାରରେ ବା ଅଗରେ ଯେଉଁ
Da-ana ଦଉଡ଼ାରେ ଗୋଡ଼ି, ମାଟି ବା ସୀସାଗୁଳି ମାଳପରି ବନ୍ଧା ହୋଇ ଥାଏ—A string at the fringe of a casting net in which pebbles, earthen or leaden pellets are stringed together.

ସାଧାରଣ ଲୋକେ ଅପର ପୃଷ୍ଠାରେ ପ୍ରଦତ୍ତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଚିହ୍ନର ବ୍ୟତ୍ୟସ୍ତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ଼' ନ ମିଳିଲେ 'ଗାଢ' ଖୋଜିବେ, 'ଦ୍ଵିଥ' ନ ମିଳିଲେ 'ଦ୍ଵିଥ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; 'ଅର୍ଗାଁ' ନ ପାଇଲେ 'ଅର୍ଗା' ଦେଖିବେ, 'ଅଲବଡ଼' ନ ପାଇଲେ 'ଅଲବଡ଼' ଦେଖିବେ ।

**ଦଅଣା**—ଦେ. ବି. (ସଂ. ଦମନକ)—୧ । ସୁବାସପତ୍ରବିଶିଷ୍ଟ ଶାକ-
Da-aṇā ଗୁଳ୍ମ ବିଶେଷ—1. Artemisia Indica; Artemisia
(ଦଏଣା—ଅନ୍ୟରୂପ) Chinensis; Artemisia Latifolia;
ସଂ. ଦମନ, ଗନ୍ଧୋତ୍କଟ, ବ୍ରହ୍ମଜଟା Thyme.
**दौना दवना**
ତେ ଦମନମୁ
দনা, দোনাশাক

[ଦ୍ର—ଏହାର ପତ୍ରର ପକ୍ଷ ଛିନ୍ନ, ନିମ୍ନପୃଷ୍ଠ ଲୋମଶ । ଅନ୍ୟ ଏକ ଜାତୀୟ ଗଛକୁ ଗୋରଦଅଣା ବୋଲାଯାଏ । ତାହାର ସଂସ୍କୃତ ନାମ ନାଗଦମନକ, ବଙ୍ଗଳା ନାଗଦନା,—ତାହାର ପତ୍ର ଚେପ୍ଟା ଓ ନିମ୍ନପୃଷ୍ଠ ଦୀର୍ଘଲୋମଶ, ତାହାର ଇଂରାଜୀ ନାମ— Artemisia Vulgaris]

୨ । ସେବତୀଫୁଲ ପରି ଏକପ୍ରକାର ଫୁଲ ଗଛ—
2 A kind of flower-plant like Rosa-Moschata.

୩ । ସ୍ତ୍ରୀ—ସ୍ତ୍ରୀଲୋକମାନଙ୍କର ନାମବିଶେଷ—
(ଦଅଣୀ—ଅନ୍ୟରୂପ) A name given to females.

**ଦଅଣା ଗୋରି**—ଦେ. ବି—ଚୈତ୍ର ଶୁକ୍ଳ ପକ୍ଷରେ ଅନୁଷ୍ଠିତ ବିଷ୍ଣୁଙ୍କର
Da-aṇā chori 'ଦମନକ ଚତୁର୍ଦ୍ଦଶୀ' ଯାତ୍ରା—Name of a
[ଦଅଣା ଭଙ୍ଗା(ଙ୍ଗେ)ରି—ଅନ୍ୟରୂପ] festival observed in the temples of Bishṇu on the 14th day of the lunar month of Chaitra.

[ଦ୍ର—ଶ୍ରୀକୃଷ୍ଣ ବଳରାମଙ୍କ ସହିତ ମଥୁରା ବିଜୟ କରୁଥିବା ସମୟରେ କଂସର ଉଦ୍ୟାନରେ ପଶି ଦମନକ ବା ଦଅଣା ଗଛ ଚୋରି କରିଥିବା ଉପାଖ୍ୟାନର ସ୍ମାରକ ସ୍ୱରୂପ ଏହି ଯାତ୍ରା କରାଯାଏ ଓ ସେଥିପାଇଁ ନାଗଦଅଣାକୁ ଚୋରି ଦଅଣା ବୋଲାଯାଏ । ପୁରୀ ଜିଲ୍ଲା ଉଦ୍ଧାରପୁର ଓ ଯୋରଡ଼ିଆ ଗ୍ରାମରେ ଏହିଦିନ ଖୁବ୍ ଆଡ଼ମ୍ବର ସହିତ ଏହି ଯାତ୍ରା ହୁଏ ।

ପୂର୍ବକାଳରେ ଦମନକ ନାମକ ଜଣେ ଦୈତ୍ୟ ସମୁଦ୍ର ମଧ୍ୟରେ ବିଚରଣ କରି ଲୋକଙ୍କୁ ବଡ଼ କଷ୍ଟ ଦେଉଥିଲା । ଶ୍ରୀଭଗବାନ୍ ମତ୍ସ୍ୟରୂପ ଧରି ଦୈତ୍ୟକୁ କୂଳକୁ ଟାଣି ଆଣି ସଂହାର କରିଥିଲେ । ସେଠାରେ ସୁଗନ୍ଧତୃଣ ଜାତ ହେଲା । ତହୁଁ ଭଗବାନ୍ ଏ ତୃଣକୁ ବନମାଳା ସହିତ ଧାରଣ କଲେ । ଚୈତ୍ର ଶୁକ୍ଳ ଚତୁର୍ଦ୍ଦଶୀ ଦିନ ଉକ୍ତ ଦୈତ୍ୟ ନିହତ ହୋଇଥିବାରୁ ଉକ୍ତ ଚତୁର୍ଦ୍ଦଶୀ ଦମନକ ଚତୁର୍ଦ୍ଦଶୀ ବୋଲି ଖ୍ୟାତ । ଚୈତ୍ର ଶୁକ୍ଳ ତ୍ରୟୋଦଶୀ ଦିନ ଭକ୍ତମାନେ ଉକ୍ତ ତୃଣ ଆହରଣ କରି ଶ୍ରୀଭଗବାନଙ୍କ ମସ୍ତକରେ ଅର୍ପଣ କରନ୍ତି । ଏହା ଦଅଣାଚୋରି ଯାତ୍ରା । ମଦନ ମୋହନ-ତୀର୍ଥଦର୍ଶନ ।

**ଦଅ ଦଅତୁ**—ଗ୍ରା (ଶିଶୁରଞ୍ଜନ) ଅ—ଦହ ଦହତୁ (ଦେଖ)
Da-a daatu Daha dahatu (See)

**ଦଇ**—ଗ୍ରା ବି—(ସଂ. ଦଧି; ତୁଳ. ପ୍ରା. ଦହି, ଦଇ)—୧ । ଦହି, ଦଧି—
Dai Curd.
ଦହି } —ଅନ୍ୟରୂପ
ଦଧି
दई
दही

୨ । ଦୈତ୍ୟାରି, ଦୟାନିଧି ଆଦି ନାମଧାରୀ ବ୍ୟକ୍ତିଙ୍କୁ ଡାକିବା ନାମ—2. A name by which persons of the names of Daityāri and Dayānidhi are called.

**ଦଇଆଳ**—ଦେ. ବି (ଏହାର ପେଟ ଦଧିପରି ଶୁକ୍ଳ ଥିବାରୁ)—ଶାଖାଶ୍ରୟୀ
Daiāla ବର୍ଗର ପକ୍ଷିବିଶେଷ—The Magpie robin; Copsychus Saularis; the Redstarts robin.
ଦଇୟାଳ, ଦହିଆଳ, ଦୟାଳ, ଦୟାଳୁ }—ଅନ୍ୟରୂପ
দোয়েল; दयाल

[ଦ୍ର—ଏମାନେ ୧୦।୧୨ ଆଙ୍ଗୁଳ ପର୍ଯ୍ୟନ୍ତ ଲମ୍ବ ହୁଅନ୍ତି । ଗୋଡ଼ ଲମ୍ବ; ଲାଙ୍ଗୁଡ଼ ଓ ପକ୍ଷର ଲମ୍ବ ସମାନ । ପୁଚ୍ଛ, ପକ୍ଷ ଓ ମୁଣ୍ଡ କଳା, ପେଟ ଧଳା । ଭୋର୍‌ରୁ ଏ ପକ୍ଷୀ ସରୁସ୍ୱରରେ ସିଁଠି ମାରେ; ମାଟି ଉପରେ ଦୌଡ଼ିଲା ବେଳେ ଲାଙ୍ଗୁଡ଼ ଟେକିଥାଏ, ସ୍ତ୍ରୀ ପକ୍ଷୀ ଧୂମ୍ର ବର୍ଣ୍ଣ ।]

**ଦଇଗୁଡ଼ୁ ଭାତ**—ଦେ. ବି (ସଂ. ଅବ୍ୟୂଢାନ୍ନ)—ଅବ୍ୟୂଢାନ୍ନ (ଦେଖ)
Daigurdu bhāta Abyūrdhānna (See)
আইবুড়ো ভাত
(ଦଇବୁଡ଼ୁଭାତ, ଦଇବଡ଼ୁଭାତ—ଅନ୍ୟରୂପ)

**ଦଇତ**—ଗ୍ରା. ଓ. ପଦ୍ୟ ବି—୧ । (ସଂ. ଦୈତ୍ୟ) ରାକ୍ଷସ—
Daita 1. Demon.
(ଦଇତ୍ୟ—ଅନ୍ୟରୂପ) ଏ ଲଙ୍କାଗଡରେ ଯେତେ ରହିଅଛନ୍ତି ଦଇତ
ଜୀବନେ ତାହାଙ୍କୁ ନ ରଖିବା ।
ବିଶ୍ୱନାଥ. ବିଚିତ୍ରରାମାୟଣ ।

୨ । (ସଂ. ଦୟିତ)—ପତି; ସ୍ୱାମୀ—2 Husband.
ପ୍ରଭୁଖାଦ୍ୟିତ, ରତିପାଇଁ ତ, ରୁଚ ଦଇତ ଲୋଡ଼େ—ଉପେ. ପ୍ରେମସୁଧାନିଧି ।

**ଦଇତା**—ଦେ. ବି—ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କର ସେବକବିଶେଷ—
Daitā A class of Sebaks of the Deity Jagannath.
(ଦଇତାପତି—ଅନ୍ୟରୂପ)

[ଦ୍ର—ଯେଉଁ ଶବର ଜଗନ୍ନାଥଙ୍କୁ ପ୍ରଥମେ ପୂଜା କରୁଥିଲେ ଏବଂ ଇନ୍ଦ୍ରଦ୍ୟୁମ୍ନ ମହାରାଜ ଯାହାଙ୍କଠାରୁ ଜଗନ୍ନାଥଙ୍କୁ ପୁରୀକ୍ଷେତ୍ରକୁ ଆଣିଥିଲେ, ଏମାନେ ତାହାଙ୍କ ବଂଶଧର ବୋଲି କଥିତ ।]

**ଦଇତା ପଶୁପାଳକ**—ଦେ. ବି—ଶ୍ରୀ ଜଗନ୍ନାଥମହାପ୍ରଭୁଙ୍କ ସେବକ-
Daitā pasupālaka ବିଶେଷ—A class of Sebaks of the Deity Jagannath.

**ଦଇତାରି**—ଦେ. ବି (ସଂ. ଦୈତ୍ୟାରି)—୧ । ବିଷ୍ଣୁ—
Daitāri 1. A name of Bishṇu, the enemy of the demons.
(ଦଇତ୍ୟାରି—ଅନ୍ୟରୂପ)
ଅହେ ଶଙ୍ଖଚକ୍ରଧର ମାଧବ ଦଇତାରି—କୃଷ୍ଣସିଂହ. ମହାଭାରତ. ଆଦି ।

୨ । (ନାମ) ପୁରୁଷଙ୍କୁ ଡାକିବା ନାମ—
2. A name given to males.

| ୧ | ଇ | ଊ | ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଙ | ଶ,ଷ | କ୍ଷ | ଇଥ | ଉଅ | ଞ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଉ | ରୁ | ଲୁ | ପ୍ରେ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଘ | ସ | ଗିଁ | ଇଅ | ଔ | କ୍ |

**ଦଇତୁଣୀ**—ଦେ. ବି. ସ୍ତ୍ରୀ—୧ । (ସଂ ଦୈତ୍ୟର ସ୍ତ୍ରୀଲିଙ୍ଗ ଦୈତ୍ୟା)
Daituṇi ରାକ୍ଷସୀ—1. Demoness.

କଲା ଅତି ଅପକାର ଦଇତୁଣୀ—ଗୋକୁଳ. ଉପକଣ୍ଠେଇ ।

୨ । (ସ. ଦଧି) ଦହି ବିକିବା ସ୍ତ୍ରୀ; ଦହିବାଲି—
2. A woman selling curd.

**ଦଇ ଦଇକା**—ଦେ. ବି—ଦହିଦହିକା ( ଦେଖ )—
Dai daikā Dabidahikā ( See )

**ଦଇନ(ନି)**—ଗ୍ରା (ପଦ୍ୟ) ବି (ସଂ. ଦୈନ୍ୟ)—ଦୈନ୍ୟ, ବିନୟ, ବିନୀତ
Daina (ni) ନିବେଦନ—Supplication.
[ଦୟିନ(ମା)—ଅନ୍ୟରୂପ]

ବୋଲଇ ଅତି ସ୍ନେହଭରେ,
ଦଇନ କରି କାକୁସ୍ୱରେ ।
ଯଶୋବନ୍ତ. ପ୍ରେମଭକ୍ତିଗୀତା ।

ବିଣ—୧ । ଦୈନ୍ୟଯୁକ୍ତ—1. Supplicant.

ଇନ୍ଦ୍ର ଅଗ୍ନି ବରୁଣ ଆଦି ଦେବେ ମାନ,
କରନ୍ତି ନିତି ସ୍ତୁତି ହୋଇଣ ଦୟିନ । କୃଷ୍ଣସିଂହ ମହାଭାରତ, ବନ ।

୨ । ବିନୟୀ—2 Humble.

**ଦଇନ କରିବା**—ଗ୍ରା. (ପଦ୍ୟ) କ୍ରି—ବିନୀତଭାବରେ ପ୍ରାର୍ଥନା କରିବା—
Daini kariba To supplicate; to pray.
(ଦଇନ ହେବା—ଅନ୍ୟରୂପ) ମାବ ଗୋବ ବଲ ମୋତେ ଅନେକ ଦଇନ ।
ରାଧାନାଥ. ଦୁର୍ଯୋଧନ ରକ୍ତନଦୀ ସନ୍ତରଣ ।

**ଦଇନ୍ୟ**—ଗ୍ରା (ପଦ୍ୟ) ବି (ସ. ଦୈନ୍ୟ)—ଦୈନ୍ୟ (ଦେଖ)
Dainya Dainya (See).

କର ମୃତ୍ୟୁ ଶୋକ ସେ ଦୌର୍ବଲ୍ୟ ଦଇନ୍ୟ ।
କୃଷ୍ଣସିଂହ. ମହାଭାରତ. ବନ ।

**ଦଇବ**—ଗ୍ରା. ବି. ଓ ବିଣ (ସ. ଦୈବ)—୧ । ଈଶ୍ୱର; ବିଧାତା—
Daiba 1. God; Providence
( ଦଇବା—ଅନ୍ୟରୂପ ) ୨ । ଦୈବଯୋଗ—
দৈব 2 Accident; chance
দৈব; দৈৱ ୩ । କପାଳ; ଭାଗ୍ୟ—3. Luck.

**ଦଇବକୀ**—ଗ୍ରା. (ପଦ୍ୟ) ବି. ସ୍ତ୍ରୀ (ସ. ଦେବକୀ)—ଦେବକୀ (ଦେଖ)
Daibaki Debaki (See)

**ଦଇବ ଘଟଣା**—ଦେ. ବି (ସ. ଦୈବଘଟନା)—ଦୈବଘଟନା (ଦେଖ)
Daiba ghatanā Daibaghaṭanā (See).
(ଦଇବା ଘଟନା—ଅନ୍ୟରୂପ)

**ଦଇବ ଛଡ଼ା**—ଦେ. ବିଣ—୧ । ସୃଷ୍ଟି ବହିର୍ଭୂତ; ଅସାଧାରଣ—
Daiba chhaṛdā 1. Unusual; extraordinary.
(ଦଇବା ଛଡ଼ା—ଅନ୍ୟରୂପ) ୨ । (ଗାଳିବିଶେଷ—ବିଧାତା ଯାହାର
হতচ্ছাড়া ପ୍ରତିକୂଳ ହୋଇଅଛି) ମନ୍ଦଭାଗ୍ୟ—
দৈবমারা 2. Unfortunate; unlucky.
୩ । ଦୁର୍ଭାଗ୍ୟଜନିତ—3. Due to ill luck.

ଦଇବଛଡ଼ା ସେବେ ବ୍ୟାଧି ଉପୁଜଇ
ଧନ ରତ୍ନ ଦେଇ ତା ପାରେ କେ ଘୁଞ୍ଚାଇ—କୃଷ୍ଣସିଂହ. ମହାଭାରତ. ଶାନ୍ତି ।

୪ । ଅଲକ୍ଷଣା, ଦୁର୍ଲକ୍ଷଣଯୁକ୍ତ—4 Evil-omened.

**ଦଇବ ଛାଡ଼ିବା**—ଦେ. ବି—ବିଧାତା ପ୍ରତିକୂଳ ହେବା; ଦୁର୍ଭାଗ୍ୟ ଘଟିବାର
Daiba chhāṛdibā ପୂର୍ବ ଲକ୍ଷଣ ଦେଖାଯିବା—
ভগবান বিমুখ হওয়া Being god-forsaken; irony
দৈব মারনা of fate; the fates frowning on a person.

ଚୋରଙ୍କ ରେ ଦଇବ ଅଛି ଛାଡ଼ିଲା ପାମର—ରାଧାନାଥ. ଦେଶୀସହାର ।

**ଦଇବତ**—ଦେ (ପଦ୍ୟ) ବି—ସ. (ଦୈବତ)—୧ । ଦେବ; ଦେବତା—
Daibata 1. Deity.

ବୋଇଲେ ଏହା ସତ୍ୟ ଥିଲି ଦଇବତ
ତାଙ୍କୁ ତାହାଙ୍କର ଦଶିଲା ଜଗତ—କୃଷ୍ଣସିଂହ, ମହାଭାରତ, ଆଦି ।

୨ । ଶ୍ରେଷ୍ଠ ବ୍ୟକ୍ତି—2 Chief or principal person.

ଯୋଗିଙ୍କର ପରମତତ୍ତ୍ୱ
ଯଦୁଙ୍କ କୁଳ ଦଇବତ—ପ୍ରାଚୀ. ପୂର୍ଣ୍ଣତମ ଚନ୍ଦ୍ରୋଦୟ ।

**ଦଇବରେ**—ଦେ (ପଦ୍ୟ) ଅ—ଦୈବାତ୍—Accidentally.
Daibare
দৈবাত্
(ଦଇବ ଯୋଗେ—ଅନ୍ୟରୂପ)

ନଳଙ୍କର ପ୍ରେରିତ ହଂସ ଦଇବରେ
ପଡ଼ିଲା ଦମୟନ୍ତୀ ନୟନ ଅଗରେ ।
କୃଷ୍ଣସିଂହ. ମହାଭାରତ. ବନ ।

**ଦଇବୀ**—ଦେ. ବିଣ ( ସ. ଦୈବୀ )—୧ । ଐଶ୍ୱରିକ—
Daibi 1. Providential.
୨ । ଅପ୍ରତ୍ୟାଶିତରୂପେ ଘଟିବା—2. Accidental.
ବି—୧ । ଦେବତା ପୂଜା ଆଦି ଅନୁଷ୍ଠାନ—
1. Ceremonies or rituals to propitiate the Gods.
୨ । ଦୈବଘଟନା—2. Accident; Divine visitation.
କ୍ରି. ବିଣ ( ସ. ଦୈବାତ୍ )—ଦଇବେ ( ଦେଖ )
Daibe (See).

**ଦଇବେ**—ଦେ. କ୍ରି. ବିଣ—(ସ. ଦୈବାତ୍)—୧ । ହଠାତ୍—
Daibe 1 Suddenly.
দৈবাৎ

ମଦନ ତହିଁ ମୂର୍ଚ୍ଛିତ ହୋଇଛି ଦଇବେ ବେଣୁଧ୍ୱନି ଶୁଭେ ।
ଭଞ୍ଜ. କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ।

୨ । ଅକସ୍ମାତ୍; ଦୈବାତ୍, ଅପ୍ରତ୍ୟାଶିତରୂପେ—
2 By chance; unexpectedly;

ସେ ଶଯ୍ୟା କବା ବସୁ ଲଭ
ଦଇବେ ସେ ଅବା ଘଟିବ । ଜଗନ୍ନାଥ. ଭାଗବତ ।

**ଦଇଲା**—ଦେ. ବି—ଦଅ (ଦେଖ)
Dailā Da-a (See)
(ଦହିଲା—ଅନ୍ୟରୂପ)

**ଦଉ**—ପ୍ରାଦେ. (ଗଡ଼ଜାତ) ବି. (ସ. ଦେବ)—ଦେଉ (ଦେଖ)
Dau Deu See)

**ଦଉଁରା**—ପ୍ରାଦେ. (ସମ୍ବଲପୁର). ବି—ଦଉଡ଼ା; ରଜ୍ଜୁ—
Daunrā Rope.

**ଦଉଡ଼**—ଦେ. ବି (ସଂ ଦ୍ରୁ ଧାତୁ=ପଳାୟନ; ସଂ. ଧୋରଣ)—
Daurda ୧ । ଶୀଘ୍ର ଗତି କରିବା; ଧାଇଁବା—
দৌড় 1. Running; going swiftly
**दउड़; दौड़** ୨ । ଧାଉଡ଼; ଧାଉଡ଼ି—2. Race.
୩ । ଶୀଘ୍ରଗତିରେ ଯାତାୟାତ କରିବା—
3. Swift coming to and going back from a place.

ଘୋଡାରେ ଚଢ଼େ ମର୍ଦ୍ଦ, ଅକ୍ତୋ ଦୁର୍ଦ୍ଦମରୁ ନକ୍ଷ ଦଉଡ଼କୁ ରଖିଲୁରେ ।
କବିସୂର୍ଯ୍ୟ. କଣୋପକଷ୍ଣ ସ ଗୀତ ।

୪ । ଦଉଡ଼ିବା ବେଳେ ପାଦଦ୍ୱୟର ଗତି ପରି ପାଦଗୁଳନସ୍ନ ବିଶିଷ୍ଟ ଏକପ୍ରକାର ବ୍ୟାୟାମ—4. A kind of physical exercise in which the legs are moved swiftly.
୫ । ଶେଷ ସୀମା—5. Limit.
(ଯଥା— ତା ବୁଦ୍ଧିର ଦଉଡ଼ କେତେ, ବର୍ତ୍ତମାନ ଦେଖାଯିବ ।)
୬ । ପୁନଃପୁନଃ ଚେଷ୍ଟା—6. Striving; repeated endeavour.

**ଦଉଡ଼ ଧାପଡ଼**—ଦେ. ବି. (ସଂ. ଦ୍ରୁତ ଧାବନ)—୧ । ଇତସ୍ତତଃ
Daurda dhāparda ଦଉଡ଼ିବା; ଧାଁ ଧପଡ଼, ବେଗରେ ଗତି
(ଦଉଡ଼ା ଦଉଡ଼ି—ଅନ୍ୟରୂପ) କରିବା—1. Race; running
দৌড়ঝাপ about; running hither and
**दौड़धूप, दाड़धापड़** thither.
୨ । ଅନବରତ ଶ୍ରମ ଓ ଅଙ୍ଗଚାଳନସାଧ୍ୟ କର୍ମ—
2. Engagement in a toilsome task or a task necessitating constant movements.

**ଦଉଡ଼ ଧାପଡ଼ କରିବା**—ଦେ. କ୍ରି—୧ । ଏଆଡ଼େ ସେଆଡ଼େ ଧାଇଁବା—
Daurda dhāparda kariba 1. To run hither and
দৌড়ধাপ করা thither.
**दौड़धूप करना** ୨ । ଅନବରତ ବା ଅକ୍ଲାନ୍ତରୂପେ କର୍ମ କରିବା—
2. To toil ceaselessly.
୩ । କୌଣସି କାର୍ଯ୍ୟ ପାଇଁ ଯୋଗାଡ଼ ଓ ପରିଶ୍ରମ କରିବା—
3. To actively engage in making preliminary arrangements for any thing.

**ଦଉଡ଼ ବତି**—ଦେ. ବି—ବାଣରେ ନିଆଁ ଲଗାଇବା ପାଇଁ ବାହାରେ ଖଞ୍ଜା
Daurda bati ହୋଇଥିବା ବାରୁଦପୂର୍ଣ୍ଣ ଏକପ୍ରକାର ଲମ୍ବ ବଳିତା—
পলতে A long fuse attached to fireworks
**फलीता** [ ଦ୍ର—ବାଣରେ ଦଉଡ଼ ନିଆଁ ଲଗି ତାହା ଫୁଟିଲେ ବା ନିଆଁ ଧରିଲେ ପାଖରେ ଥିବା ଲୋକ ପୋଡ଼ି ହୋଇ ମରିବ, ଏଥିପାଇଁ ବାଣରେ ଦଉଡ଼ବତି ଖଞ୍ଜା ଥାଏ । ବାଣୁଆଁ ସେ ବତିରେ ନିଆଁ ଲଗାଇ ଦେଇ ବାଣ ନିକଟରୁ ଦଉଡ଼ି କରି ଦୂରକୁ ପଳାଏ ଓ ଉକ୍ତ ବତି ଜଳି ଜଳି ବାଣରେ ନିଆଁ ଧରି ବାଣ ଫୁଟିଲା ବେଳକୁ ବାଣୁଆଁ ଖଣ୍ଡଦୂରରେ ଛିଡ଼ା ହୋଇ ନିରାପଦ ହୁଏ । ]

**ଦଉଡ଼ ଲଗା(ଗେ)ଇବା**—ଦେ. କ୍ରି—୧ । କ୍ରମାଗତ ଧାଇଁବା—
Daurda lagā(ge)ibā 1. To continue to run.

ଦଉଡ଼ ମାରିବା } ଅନ୍ୟରୂପ ୨ । କୌଣସି ସ୍ଥାନକୁ ଘନଘନ
ଦଉଡ଼ ଦେବା } ଯାତାୟାତ କରିବା—
দৌড়দেওয়া 2. To visit a place very often.
**दौड़मारना** ୩ । ଦଉଡ଼ିବା; ଧାଇଁବା—3. To run

**ଦଉଡ଼ା**—ଦେ ବି—୧ । (ସଂ. ଦ୍ରୁ ଧାତୁ) ଧାଇଁବା, ଧାବନ—
Daurdā 1. Race; running.
দৌড় ୨ । (ସଂ. ଡୋରକ, ଦୋରକ) ରଜ୍ଜୁ—
**दौड़** 2. Rope; string.
দড়া, দড়ী ୩ । ଫାଶି ଲଗାଇବା ଦଉଡ଼ି—
**डोरी, रस्सी** 3. A rope for hanging a person.
দোবরা ଗ୍ରା—୧ ( ସଂ ଦ୍ୱିବାର ) ଦୋଓଡ଼ା, ଦିନରେ ଦ୍ୱିତୀୟ ବାର
**दोबारा** ଭୋଜନ—1. Second or afternoon meal during the day.
୨ । ଦୋଓଡ଼; ଦ୍ୱିତୀୟ ବାର—2. Second time.
୩ । ଦୁଇଥର, ଦୋବାର—3. Twice; two times.
ପ୍ରାଦେ. (ସମ୍ବଲପୁର ଓ ଗଡ଼ଜାତ) ବି.—ଯୁଆଳିରେ ଈଶ ବା ଦଣ୍ଡାକୁ ବାନ୍ଧିବା ଦଉଡ଼ି, ଲଙ୍ଗଳଦଉଡ଼ା—A rope for tying the shaft of a plough or cart with the yoke.

**ଦଉଡ଼ା(ଡ଼େ)ଇବା**—ଦେ. କ୍ରି.—(ଦଉଡ଼ିବା କ୍ରିୟାର ଣିଜନ୍ତ ରୂପ—
Daurdā(rde)ibā The causative form of
দৌড়ান Daurdibā),
**दौड़ाना** ୧ । ଅନ୍ୟକୁ ଦଉଡ଼ିବାକୁ ଉପାୟ କରିବା—
1. To cause another to run.
୨ । ଘୋଡ଼ାରେ ବସି ଘୋଡ଼ାକୁ ଶୀଘ୍ରଗତି କରାଇବା—
2. To run a horse.
୩ । ସ୍ଥାନାନ୍ତରକୁ କୌଣସି ବ୍ୟକ୍ତି ଦଉଡ଼ି ଯାଇ ସେଠାରୁ କୌଣସି ସମ୍ବାଦ ଆଣିବା ପାଇଁ ଲୋକ ପଠାଇବା—
3. To send a man to run to a place to fetch something or some news.
୪ । କୌଣସି ବ୍ୟକ୍ତିକୁ ଏକ ସ୍ଥାନକୁ ବାରମ୍ବାର ଯିବା ଆସିବା ପାଇଁ କହି ବିରକ୍ତ କରିବା—4. To harass a person by asking him to come and go repeatedly.
(ଯଥା—ମୋତେ ମୋ ପାଉଣାଟଙ୍କ ଦେବେ ବୋଲି କହି ସାଆନ୍ତ ମୋତେ ମାସେ ହେଲା ଏଠାକୁ ଦଉଡ଼ାଉଛନ୍ତି; କିନ୍ତୁ ମୋ ପାଉଣା ଆଜଯାଏ ଦେଉନାହାନ୍ତି ।)

**ଦଉଡ଼ା ଦେବା**—ଦେ. କ୍ରି.—ଆପଣା ବେକରେ ଫାଶି ଦେବା—
Daurdā debā To hang one's self by a rope.
গলায় দড়ি দেওয়া **गलामें रस्सी लगाना**.
[ଦଉଡ଼ା ଲଗା(ଗେ)ଇବା, ଦଉଡ଼ ଦେବା—ଅନ୍ୟରୂପ]

**ଦଉଡ଼ି**—ଦେ. ବି. (ସଂ. ଡୋରକ, ଦୋରକ)—ଦୌଡ଼ା; ରଜ୍ଜୁ—
Daurdi Rope.
দড়ী ଦଉଡ଼ିରେ ବନ୍ଧା ହେବା ପରକକେ ।
**रस्सी, डोरी** କୃଷ୍ଣସିଂ. ମହାଭାରତ. ସଭା ।

ଦଉଡ଼ିଆ—ଦେ. ବିଣ.—୧ । ରଜ୍ଜୁନିର୍ମିତ (ଯଥା, ଦଉଡ଼ିଆ ଖଟ)—
Daurdiā 1. Made of rope.
ଦଡିବ ୨ । ତନ୍ତୁମୟ—
रस्सोका 2 Fibrous.
छुटेएस ୩ । ଦଉଡ଼ି ପରି ଟେମଡ଼ା—
दौड़कर आओ 3. Tenacious like a rope.
(ଦଉଡ଼ି ଯା—ବିପରୀତ) କ୍ରି. (ଅନାଦରାର୍ଥକ)—ଧାଇଁ ଆସ—
(ଦଉଡ଼ି ଆସ—ଆଦରାର୍ଥକ) (you) Come running.

ଦଉଡି ଗଣ୍ଠି—ପ୍ରାଦେ. (ଗଡ଼ଜାତ)—ବି—(ସଂ. ଡୋରକ+ଗ୍ରନ୍ଥି)—
Daurdi ganthi ଗଡ଼ଜାତରେ କନ୍ଧ ବା ଭୂୟାଁମାନଙ୍କୁ ଏକତ୍ର କରିବା ପାଇଁ ଦିବସ ସଂଖ୍ୟା ନିର୍ଦ୍ଦେଶକ ଏକ ପ୍ରକାର ଗଣ୍ଠିଆ ଦଉଡ଼ି—A string with a number of knots which is sent from village to village amongst the Kandhas or Bhūyāñs, as a signal that they should assemble at a particular place on the expiry of as many days as there are knots.

[ଦ୍ର—ଭୂୟାଁ ଓ କନ୍ଧମାନଙ୍କୁ କୌଣସି ସ୍ଥଳରେ ଏକତ୍ରିତ କରିବାକୁ ହେଲେ ଯେତେଦିନ ପରେ ମେଳ ହେବ, ଖଣ୍ଡିଏ ଦଉଡ଼ିରେ ସେତିକିଟି ଗଣ୍ଠି ପକାଇ ରାଜ୍ୟ ତମାମ ତାହା ଗ୍ରାମରୁ ଗ୍ରାମାନ୍ତରକୁ ପଠାଯାଏ । ଗୋଟିଏ ଗ୍ରାମରେ ସେ ଦଉଡ଼ି ପହଞ୍ଚିଲେ ସେ ଗ୍ରାମର ଲୋକେ ତାହାର ମର୍ମ ବୁଝି ସାରି ସେ ଗଣ୍ଠିକୁ ଅନ୍ୟଗ୍ରାମକୁ ପଠାଇ ଦିଅନ୍ତି । ଏହାକୁ ଗଣ୍ଠି ଫେରାଇବା କହନ୍ତି ।]

ଦଉଡ଼ି ଦଉଡ଼ି—ଦେ. କ୍ରି. ବିଣ ଓ ଅସମାପିକା କ୍ରି.—ଧାଇଁ ଧାଇଁ କରି—
Daurdi daurdi Running; hurrying.
(ଦଉଡ଼ି ଦଉଡ଼ିକା—ଅନ୍ୟରୂପ)
छूटते छूटते दौरदौरके

ଦଉଡ଼ିବା—ଦେ. କ୍ରି—(ସଂ. ଦ୍ରୁ ଧାତୁ=ପଳାଇବା) ୧ । ଧାଇଁବା—
Daurdibā 1. To run.
दौड़ा दौड़ना; द्रवना ୨ । ଚେଷ୍ଟା କରିବା—
2. To try.

ପୁଣି ସେ ବିବିଧ ମାରଣମାନ କଲେ
ଅନ୍ୟୋନ୍ୟ ଜୀବ ନେବାପାଇଁ ଦଉଡ଼ିଲେ । କୃଷ୍ଣସିଂହ ମହାଭାରତ କର୍ଣ୍ଣ

[ଦଉଡ଼ା(ଡ଼ୋ)ଇବା—ଣିଜନ୍ତ] ୩ । (ମନ, ଚିତ୍ତ) ଲାଳାୟିତ ହେବା—
3. To be hankering after

ଚିତ୍ତ ତୋ ଯହିଁ ଦଉଡ଼ୁଥାଇ । କବିସୂର୍ଯ୍ୟ ସଙ୍ଗୀତ ।

[ଦ୍ର—ଏ କ୍ରିୟାର ଅସମାପିକାରୂପ ସଙ୍ଗେ ଆସିବା, ପଳାଇବା, ଯିବା କ୍ରିୟାମାନଙ୍କ ସମାପିକାରୂପ ଯୁକ୍ତ ହୁଏ । ]

ଦଉଡ଼ି ଭାଙ୍ଗିବା—ଦେ କ୍ରି—୧ । ଛୋଟ ଓ ସରୁ ଦଉଡ଼ିମାନଙ୍କୁ ଏକାଠି କରି
Daurdi bhāñgibā ବଳ ଗୋଟିଏ ମୋଟା ଟାଣୁଆ ରଜ୍ଜୁ ତିଆରି
ଦଡ଼ିଭାଙ୍ଗା रसीबटना କରିବା—1. To twist a strong and thick rope with many slender and weak strings

୨ । ଝୋଟ, କତା ପ୍ରଭୃତିକୁ ବଳି ଦଉଡ଼ିରେ ପରିଣତ କରିବା—
2. To twist or weave a rope from a fibrous substance.

ଦଉବାରିକ—ଗ୍ରା (ପଦ୍ୟ) ବି (ସଂ. ଦୌବାରିକ)—ଦୌବାରିକ (ଦେଖ)
Daubārika Daubārika (See)

ଅଷ୍ଟାବକ୍ର ବୋଇଲେ ହେ ଦଉବାରିକ
ନ ବୁଝି ତୁହି ମୋତେ ବୋଲୁଛୁ ବାଳକ । କୃଷ୍ଣସିଂହ.ମହାଭାରତ. ବନ ।

ଦଉରା—ଗ୍ରା. ବି (ସଂ. ଡୋରକ)—ଦଉଡ଼ା; ରଜ୍ଜୁ—
Daurā Rope.
दायबा ବୈ ଦେ. ବି (ଆ ଦୌର=ପରିଭ୍ରମଣ)—ହାଇକୋର୍ଟ ଓ
दौरा ସେସନ୍ ଜଜଙ୍କ ଦ୍ୱାରା ଗୁରୁତର ଅପରାଧମାନଙ୍କ ବିଚାର—
Sessions.

[ଦ୍ର—ଗୁରୁତର ଅପରାଧଘଟିତ ସେସନ୍ ମୋକଦ୍ଦମାମାନ ବିଚାର କରିବାପାଇଁ ସେସନ୍ ଜଜମାନେ ଅପରାଧ ଘଟିଥିବା ଅଞ୍ଚଳକୁ ଯାଇ ସେହିଠାରେ କଚେରି କରି ମକଦ୍ଦମା ବିଚାର କରନ୍ତି । ]

ପ୍ରାଦେ (ସମ୍ବଲପୁର) ବି—ଗସ୍ତ—Tour.

ଦଉରା ଅଦାଲତ—ବୈଦେ. ବି (ଆ)—ସେସନ୍ କୋର୍ଟ, ଗୁରୁତର ଅପରାଧ
Daurā adālat ବିଚାର ନିମନ୍ତେ ପ୍ରତିଷ୍ଠିତ ଜଜ କୋର୍ଟ—
ଦଉରା କୋର୍ଟ } ଅନ୍ୟରୂପ Sessions Court.
ଦଉରା କୋର୍ଟ
दायबा अदालत दौरा अदालत

ଦଉରା କେଶ୍—ବୈଦେ. ବି (ଆ ଦଉରା ଓ ଇଂ କେଶ୍)—ସେସନ୍
Daurā kes କୋର୍ଟରେ ବିଚାର କରାଯିବା ମକଦ୍ଦମା—
(ଦଉରା ମକଦ୍ଦମା—ଅନ୍ୟରୂପ) Sessions Case.
दायबा मोकदमा [ଦ୍ର—ନରହତ୍ୟା, ଭ୍ରୂଣହତ୍ୟା, ଡକାଇତି ଆଦି
दौरामुकद्दमा ଗୁରୁତର ଅପରାଧଘଟିତ ମକଦ୍ଦମାମାନଙ୍କୁ ମାଜିଷ୍ଟ୍ରେଟ୍ ଆଦି ନିମ୍ନ ଶ୍ରେଣୀର ବିଚାରକମାନେ ବିଚାର ନ କରି ସେମାନ ସେସନ୍‌କୋର୍ଟ, ହାଇକୋର୍ଟ ଆଦିଙ୍କ ଦ୍ୱାରା ବିଚାର କରାଯାଏ ।]

ଦଉରା ଜଜ୍—ବୈଦେ ବି (ଆ ଦଉରା ଓ ଇଂ. ଜଜ୍)—ଗୁରୁତର
Daurā jaj ଅପରାଧ ବିଚାରକାରୀ ଜଜ୍—Sessions Judge.
दायबा जज दौरा जज
[ଦଉରା କୋର୍ଟ (ଟ)—ଅନ୍ୟରୂପ]

ଦଉରା ବିଚାର—ଦେ. ବି(ଆ ଦୌର+ସଂ. ବିଚାର)—ସେସନ୍ ଜଜଙ୍କ
Daurā bichāra ଦ୍ୱାରା ଗୁରୁତର ଅପରାଧର ବିଚାର—
दायरा बिचार दौरा विचार Sessions trial.

ଦଉରା ସୁପର୍ଦ—ବୈଦେ. ବି (ଆ)—ଗୁରୁତର ଅପରାଧରେ ଅଭିଯୁକ୍ତ
Daurā suparda ବ୍ୟକ୍ତିକୁ ବିଚାର ନିମନ୍ତେ ମାଜିଷ୍ଟ୍ରେଟଙ୍କ ଦ୍ୱାରା
ଦଉରା ସୋପର୍ଦ } ସେସନ୍ କୋର୍ଟକୁ ପ୍ରେରଣ—Commitment
ଦଉରା ସମ୍ପର୍ଦ } ଅନ୍ୟରୂପ to Sessions.
दायरा सोपर्द दौरेसुपर्द

[ଦ୍ର—ନରହତ୍ୟାଦି ଗୁରୁତର ଅପରାଧମାନଙ୍କ ପାଇଁ ଦଣ୍ଡବିଧି ଆଇନରେ ଦୁଇବର୍ଷରୁ ଊର୍ଦ୍ଧ୍ୱ କାରାବାସଠାରୁ ଦ୍ୱୀପାନ୍ତର ଓ ଫାଶୀ ପର୍ଯ୍ୟନ୍ତ ଦଣ୍ଡର ବିଧାନ ଅଛି । ଯେଉଁ ଅପରାଧମାନଙ୍କ ପାଇଁ ଦୁଇବର୍ଷରୁ କମ ଦଣ୍ଡ ବିଧାନ ଅଛି ସେମାନ ମାଜିଷ୍ଟ୍ରେଟଙ୍କ ଦ୍ୱାରା ବିଚାର କରାଯାଏ । କିନ୍ତୁ ଗୁରୁତର ଅପରାଧମାନ ଦଉରାଜଜ୍ (ସେସନ୍ ଜଜ୍)

ବା ହାଇକୋର୍ଟଙ୍କ ଦ୍ୱାରା ବିଚାର କରାଯାଏ । ଦଉରା କେଶ୍‌ରେ ମାଜିଷ୍ଟ୍ରେଟଙ୍କ କୋର୍ଟରେ ପ୍ରଥମେ ମୁଦେଇ ପକ୍ଷରୁ ସାକ୍ଷୀ ପ୍ରମାଣ ଗୃହୀତ ହୁଏ ଓ ଯେବେ ଆସାମୀ ଉକ୍ତ ଅପରାଧ କରିବାର ପ୍ରାଥମିକ ପ୍ରମାଣ (Prima facie evidence) ମିଳେ ତେବେ ମାଜିଷ୍ଟ୍ରେଟ୍ ଉକ୍ତ ଆସାମୀକୁ ଦଉରା ସୁପର୍ଦ (Commitment to the Sessions) କରନ୍ତି ଓ ଦଉରା ଜଜଙ୍କ ପାଖେ ମୁଦେଇ ତରଫରୁ ଉପସ୍ଥାପିତ ସାକ୍ଷୀ ଓ ପ୍ରମାଣ ଏବଂ ମୁଦାଲା ତରଫରୁ ଉପସ୍ଥାପିତ ସଫେଇ ସାକ୍ଷୀ ଓ ପ୍ରମାଣ ଗୃହୀତ ହେବାଦ୍ୱାରା ଦଉରା ବିଚାର କରାଯାଏ । ଦଉରା ବିଚାରବେଳେ ଦଉରାଜଜଙ୍କ୍ ସାହାଯ୍ୟ ଓ ପରାମର୍ଶ ଦେବାପାଇଁ କେତେଜଣ ଆସେସର୍ ବା ଜୁରୀ ବସନ୍ତି । ସେମାନେ ମୁଦେଇ ଓ ମୁଦାଲା ପକ୍ଷରୁ ଉପସ୍ଥାପିତ ପ୍ରମାଣମାନ ଶୁଣି ଆସାମୀ ଦୋଷୀ ବା ନିର୍ଦ୍ଦୋଷ ବୋଲି ମତ ଦିଅନ୍ତି । ଆସେସର୍‌ମାନଙ୍କ ମତ ଜଜ୍ ଗ୍ରହଣ କରିବାକୁ ବାଧ୍ୟ ନୁହନ୍ତି; କିନ୍ତୁ ଜୁରୀମାନଙ୍କର ଘଟଣାଘଟିତ ପ୍ରମାଣ ବିଷୟକ ମତ ଗ୍ରହଣ କରିବାକୁ ଦଉରା ଜଜ୍ ବାଧ୍ୟ ଅଟନ୍ତି । ଜୁରୀଙ୍କ ମତ ସଙ୍ଗେ ଜଜଙ୍କ ମତ ନ ମିଳିଲେ ଜଜ୍ ଏହା ହାଇକୋର୍ଟକୁ ରିପୋର୍ଟ୍ କରନ୍ତି ଓ ହାଇକୋର୍ଟଙ୍କ ମୀମାଂସା ଏ କ୍ଷେତ୍ରରେ ଶେଷ ମୀମାଂସା ହୁଏ]

ଦଉରି (ଇତ୍ୟାଦି)—ଗ୍ରା (ଇତର) ବି (ସଂ ଡୋରକ)—
Dauri etc) ଦଉଡ଼ି ଇତ୍ୟାଦି (ଦେଖ) Daurdi etc (See).

ଦଉଳ—ଗ୍ରା (ଇତର) ବି (ସଂ. ଦେବାଳୟ)—ଦେଉଳ—
Daula Temple

ଦଉଲତ—ବୈଦେ. ବି —ଦୌଲତ (ଦେଖ)
Daulata Daulata (See).

ଦଏର୍—ପ୍ରାଦେ (ସମ୍ବଲପୁର) ବି (ସଂ. ଦରି; ତୁଳ. ନଏର୍=ନଗରୀ, ଖଏନ୍=ଖନି, ଗୁଏର୍=ଗୁଡ଼) ।
Daer
୧ । କେନାଲ୍—1. Canal.
୨ । ଖାଇ—2. Moat; ditch

ଦଂଶ—ସଂ. ବି (ଦନ୍‌ଶ ଧାତୁ=କାମୁଡ଼ିବା+କର୍ତ୍ତୃ. ଅ)—
Damśa ୧ । ବନମକ୍ଷିକା; ଡାଆଁଶ—1. A gadfly.
୨ । (+କରଣ. ଅ)—ଦାନ୍ତ—
2. Fang; tooth.
୩ । ସାଞ୍ଜୁ—3. Armour.
୪ । ନାହୁଡ଼—4. Sting of an insect.
୫ । ସଣ୍ଢୁଆସି—5. Pincers.
୬ । (ଭାବ. ଅ)—ଦୋଷ—6. Fault.
୭ । ଦଂଶିବା; କାମୁଡ଼ିବା; ଦଂଶନ—
7. Biting; a bite.
ସେକ୍ଷଣି ସେ ସାପ କଲା ଭାଙ୍କୁ ଦଂଶ—କୃଷ୍ଣସିଂହ. ମହାଭାରତ. ବନ ।
୮ । ଖଣ୍ଡନ—8. Cutting.
୯ । (+କର୍ତ୍ତୃ. ଅ)—କୁକୁର—9. A dog.
୧୦ । ପୋକ—10 Insect.
୧୧ । (+ଭାବ. ଅ) ନାହୁଡ଼ ମାରିବା—
11 Stinging (M W.)
୧୨ । (+କର୍ମ ଅ) କାମୁଡ଼ା ସ୍ଥାନ, ଦଷ୍ଟ ସ୍ଥାନ—
12. The place bitten (M. W.)
୧୩ । (+କର୍ତ୍ତୃ ଅ) ତୀବ୍ରସ୍ୱାଦ—
13 Pungency (M. W.)
୧୪ । (+ଭାବ. ଅ) ସାପ କାମୁଡ଼ା—
14 Snake-bite (M. W.)
୧୫ । ମଣିହୀରାଦିରେ ଲକ୍ଷିତ ଦୋଷ—
15 A flaw in a jewel (M. W.)
୧୬ । (+କର୍ତ୍ତୃ ଅ) ମଶା—16 Gnat (M W.)

ଦଂଶକ—ସଂ ବିଣ (ଦନ୍‌ଶ ଧାତୁ+କର୍ତ୍ତୃ ଅକ)—ଦଂଶନକାରୀ; ଯେ
Damśaka କାମୁଡ଼େ—Biting, stinging
ବି—୧ । ଡାଂଶ—1. Gadfly
୨ । ମଶା—2 Gnat.
୩ । ସର୍ପ—3. Snake

ଦଂଶନ—ସଂ ବି (ଦନ୍‌ଶ୍ ଧାତୁ+ଭାବ ଅନ)—୧ । ଦନ୍ତାଘାତ,
Damśana କାମୁଡ଼ା—1 Biting.
୨ । ନାହୁଡ଼ ମାରିବା—2 Stinging.
୩ । (+କରଣ. ଅନ) ବର୍ମ, ସାଞ୍ଜୁ—
3. Armour, coat of mail.

ଦଂଶ ଭୀରୁ—ସଂ. ବି (କର୍ମ ତତ୍, ଦଂଶ+ଭୀରୁ, ଯେ ଡାଆଁଶକୁ ଡରେ)
Damśa bhiru ମହିଷ—A buffaloe.

ଦଂଶମୂଳ—ସଂ. ବି (ବହୁବ୍ରୀହି, ଦଂଶ ଜନ୍ମନ୍ତି ମୂଳରେ ଯାହାର, ସଜନା
Damśamūla ଗଛରେ ବହୁତ ସମ୍ଭାଳୁଆ କୀଟ ଜନ୍ମିବାରୁ)—
ସଜନାଗଛ—Hyperathera Morunga (tree).

ଦଂଶା—ସଂ. ବି ସ୍ତ୍ରୀ—(ଦଂଶ+ସ୍ତ୍ରୀ. ଆ)—୧ । କ୍ଷୁଦ୍ର ଡାଂଶ—
Damśā 1. Small gadfly.
୨ । ମଶା—2. Gnat.
୩ । ମାଛି—3. A fly
ଦେ. ବି—ଦଂଶନ—Stinging; biting

ଦଂଶିତ—ସଂ. ବିଣ (ଦନ୍‌ଶ୍ ଧାତୁ ଣିଜନ୍ତ=ଦଂଶି ଧାତୁ+କର୍ମ. ତ)—
Damśita ୧ । ଦଷ୍ଟ; ଯାହାକୁ ଦଂଶନ କରାଯାଇଅଛି—
1. Bitten; stung.
୨ । (ଦଂଶ+ଯୁକ୍ତାର୍ଥେ ଇତ) ବର୍ମିତ, ବର୍ମବିଶିଷ୍ଟ, ସାଞ୍ଜୁପରିହିତ—Equipped with armour; mailed

ଦଂଶିବା—ଦେ. କ୍ରି (ସଂ. ଦନଶ୍, ଧାତୁ)—୧ । ଡଂଶିବା; କାମୁଡ଼ିବା—
Damśibā 1. To bite.
দংশা; দংশান ୨ । ଦାନ୍ତରେ ଆଘାତ କରିବା—
डंसना 2. To strike with the fangs.
ତକ୍ଷକ ତ ନୃପ୍ତର ବାପଙ୍କୁ ଦଂଶିଲେ—କୃଷ୍ଣସିଂହ ମହାଭାରତ. ଆଦି ।
୩ । ନାହୁଡ଼ ମାରିବା—3. To sting.

ଦଂଶୀ—ସଂ. ବି. ସ୍ତ୍ରୀ (ଦଂଶ+ସ୍ତ୍ରୀ. ଈ)—୧ । ଛୋଟ ଡାଆଁଶ—
Damśī 1. Small gadfly.
୨ । ମଶା—2. Gnat; mosquito.
୩ । ମାଛି—3 A fly.

ଦଂଷ୍ଟ୍ର—ସଂ. ବି (ଦନ୍ଶ୍ ଧାତୁ+କରଣ. ତ୍ର)—ଦାନ୍ତ—
Damshtra Tooth, tusk; fang.

ଦଂଷ୍ଟ୍ରା—ସଂ. ବି. ସ୍ତ୍ରୀ (ଦଂଷ୍ଟ୍ର+ସ୍ତ୍ରୀ ଆ)—୧ । ବଡ଼ ଦାନ୍ତ—
Damshtrā 1. Large tooth; tusk
୨ । ବିଷଦାନ୍ତ—2. Fang

ଦଂଷ୍ଟ୍ରାବନ୍ତ—ଦେ. ବିଣ (ସଂ. ଦଂଷ୍ଟ୍ରାବତ୍ ଶବ୍ଦ, ପୁଂ. ଦଂଷ୍ଟ୍ରାବାନ୍, Damshtrābanta ସ୍ତ୍ରୀ—ଦଂଷ୍ଟ୍ରାବତୀ)—ବଡ଼ ଦାନ୍ତବିଶିଷ୍ଟ—
Having large teeth or tusks
ଦେଖିଲେ ଶକଟ—ଦଂଷ୍ଟ୍ରାବନ୍ତ ଦେଖି ଧବନ୍ତକରେ—ଗୋପୀନାଥ. ଉଷା ।

ଦଂଷ୍ଟ୍ରାୟୁଧ—ସଂ. ବି (ବହୁବ୍ରୀହି, ଦଂଷ୍ଟ୍ରା+ଆୟୁଧ)—ବାଘୁ, ବରାହ—
Damshtrāyudha Wild boar.

ଦଂଷ୍ଟ୍ରାଳ—ସଂ. ବିଣ (ଦଂଷ୍ଟ୍ରା+ଅସ୍ତି ଅର୍ଥେ. ଳ)—ଦନ୍ତୀ; ବଡ଼ଦାନ୍ତ-
Damshtrāla ବିଶିଷ୍ଟ—Having large teeth or tusks.

ଦଂଷ୍ଟ୍ରୀ—ସଂ ବି (ଦଂଷ୍ଟ୍ରା+ଅସ୍ତି ଅର୍ଥେ ଇନ୍, ୧ମା ୧ବ)—୧ । ବରାହ—
Damshtrī 1. Boar.

ଦକଦକ—ଦେ. ବିଣ (ସଂ. ଦଗ୍ଧ, ଭୁଲ ଆ. ଦଗ୍‌ଦଗା=ଭୟ)—
Dakadaka ୧ । ଧକ ଧକ୍, ଦକଦକରେ ଜଳିବା (ନିଆଁ)—
ଦଗଦଗ, ଧଡପଡ, ଧୁକପୁକୁନି 1. Blazing (fire).
**ଦକ୍‌ଦକ୍, ଦଗଦଗା** ୨ । ଭୟରେ କମ୍ପିତ (ଛାତି)—
2 Palpitating (heart).
ଦକଦକ ହେଉଛି ମୋହର ହୃଦୁବ । କୃଷ୍ଣସିଂ. ମହାଭାରତ. ଆଦ ।
୩ । ଭୟତ୍ରସ୍ତ, ଭୀତ—3. Frightened; alarmed
ତାହା ଶୁଣି ପାଣ୍ଡୁସଇନ ସେନାସାକ
ମଲଇଁ ବୋଲିଣ ହୋଇଲେ ଦକଦକ । କୃଷ୍ଣସିଂହ. ମହାଭାରତ. ଶଲ୍ୟ ।
୪ । ସନ୍ଦିଗ୍ଧ—4. In doubt.
୫ । ଉଦ୍‌ବିଗ୍ନ, ଚିନ୍ତାଗ୍ରସ୍ତ; ଚିନ୍ତିତ—5. Agitated; anxious; uneasy; careworn.
ବି—୧ । ହୃଦୟର ଜ୍ୱାଳା—1. Anxiety.
ଦଗଦଗି ୨ । ଉଦ୍‌ବିଗ୍ନତା—2. Mental agitation.
୩ । ଭୀତି—3. Fright; terror.

ଦକଦକିଆ—ଦେ. ବି—୧ । ଚିନ୍ତାକୁଳିତ—
Dakadakiā 1. Anxious;
ଦକଦକେ ୨ । ହୃଦୟରେ ଭୀତି ଉତ୍ପାଦକ—2. Frightening, causing palpitation of heart.
୩ । ଯେଉଁ ଘାଆ ଅତି ବହୁତ ପୀଡ଼ାଯୁକ୍ତ ହୁଏ—
3. Fiery (ulcer)

ଦକା—ଦେ. ବି. (ସଂ ଦହ ଧାତୁ, ଭୁଲ. ଆ. ଦହ୍‌ଶତ=ଭୟ)—
Dakā ୧ । ଭୟ; ଶଙ୍କା—1. Fear; dread.
ଧୋଁକା, ଦକଦକା ଚିତ୍ତର ପାଶରେ ଦନ୍ତ ପଙ୍‌କ୍ତିକା
**ଦଗଦଗାହଟ** ଚଳାଇବାକୁ ହେବାରୁ ମୋ ଦକା । କବିସୂର୍ଯ୍ୟ. କବିତାକଲ୍ଲୋଳ ।
୨ । ଉଦ୍‌ବେଗ; ଚିନ୍ତା—2. Anxiety.
ଯେଣେ ଟେଲେ ଥାଇ ଏକା ଚୋର ଦକା । ବାଣରଥ. ବ୍ରଜବିହାର ।
୩ । ଧୋକା, ଭୟମିଶ୍ରିତ ସନ୍ଦେହ—3. Apprehension.

·ଦକା(କେ)ଇବା—ଦେ. କ୍ରି—ଭୟ ଜାତ କରାଇବା—
Dakā(ke)ibā To produce dread; to frighten.

ଯାବତାନ ପ୍ରାଣୀଙ୍କି ଦକାନ୍ତ କାନ୍ତ ଗୋପନେ ଥିଲଇ ।
**ଡରାନା** ଆନନ୍ଦଚନ୍ଦ୍ର. ଭକ୍ତ ପ୍ରହ୍ଲାଦ ।

ଦକାନ୍—ପ୍ରାଦେ. (ମେଦନୀପୁର) ବି. (ଭୁଲ. ବି. ଦୁକାନ୍)—
Dakān ଦୋକାନ—Shop.

ଦକ୍ଷ୍ (ଧାତୁ)—ସଂ—୧ । ବେଗବାନ୍ ହେବା—
Daksh (root) 1. To have speed.
୨ । ବର୍ଦ୍ଧିତ ହେବା—2. To grow; to increase.

ଦକ୍ଷ—ସଂ ବିଣ ପୁଂ (ଦକ୍ଷ୍ ଧାତୁ+କର୍ତ୍ତୃ. ଅ)—
Daksha ୧ । ସମର୍ଥ—1. Capable; able.
(ଦକ୍ଷା—ସ୍ତ୍ରୀ) ୨ । ନିପୁଣ—2 Expert; dexterous.
୩ । ପଟୁ—3. Skilful.
୪ । ଶ୍ଳାଘ୍ୟ, ଚତୁର—4 Clever
୫ । କର୍ମକୁଶଳ, ଫୁର୍ତ୍ତିବାଜ୍—5. Active; brisk,
ଦେ. ବିଣ. (ସଂ. ଦକ୍ଷିଣ)—ଦକ୍ଷିଣ, ଡାହାଣ—Right.
ଦକ୍ଷିଣ ଭୁଜ ଦକ୍ଷ ଆଖି ସ୍ଫୁରଇ ଘନ ଘନ ଦେଖି ।
ଭୂପତି. ପ୍ରେମପଞ୍ଚାମୃତ ।
ସଂ. ବି—୧ । ବ୍ରହ୍ମାଙ୍କ ପୁତ୍ର; ବ୍ରହ୍ମାଙ୍କ ଡାହାଣ ହାତର ବୃଦ୍ଧାଙ୍ଗୁଠିରୁ ଜାତ ପ୍ରଜାପତିବିଶେଷ—
1. Name of a son of Brahmā said to have been born of his right thumb
[ ଦ୍ର—ଏ ଗୋଟିଏ ପ୍ରଜାପତି, ପାର୍ବତୀ ପୂର୍ବ ଜନ୍ମରେ ସତୀ ନାମରେ ଏହାଙ୍କ କନ୍ୟା ଥିଲେ । ଦକ୍ଷକନ୍ୟା ତଳେ ନୋଟ ଦେଖ । ]
୨ । ଶିବଙ୍କ ବାହାନ ବୃଷ—2. The bull which is said to carry the God Śiba on its back.
୩ । କୁକୁଡ଼ା—3. Cock.
୪ । ବୃକ୍ଷବିଶେଷ—4. Name of a tree.

ଦକ୍ଷ କନ୍ୟା—ସଂ ବି. ସ୍ତ୍ରୀ. (୬ଷ୍ଠୀ ତତ୍, ଦକ୍ଷ+କନ୍ୟା)—
Daksha kanyā ପୂର୍ବ ଜନ୍ମରେ ଦକ୍ଷ ପ୍ରଜାପତିଙ୍କର ସତୀ ନାମ୍ନୀ କନ୍ୟା ରୂପେ ଜନ୍ମ ଗ୍ରହଣ କରିଥିବା ପାର୍ବତୀ—
Pārbatī under the name of Satī, in her previous birth.
[ଦ୍ର—ଦକ୍ଷ ଗୋଟିଏ ଯଜ୍ଞ କରି ତହିଁରୁ ଆପଣା ଜୁଆଁଇଁ ମହାଦେବଙ୍କୁ ନିମନ୍ତ୍ରଣ ନ କରିବାରୁ ଓ ମହାଦେବଙ୍କ ପ୍ରତି ଅପମାନସୂଚକ ବାକ୍ୟ ବ୍ୟବହାର କରିବାରୁ ତାଙ୍କ କନ୍ୟା ସତୀ ସ୍ୱପିତାଙ୍କ ଦ୍ୱାରା ସ୍ୱପତି ମହାଦେବଙ୍କୁ କରାଯିବା ଅପମାନ ସହି ନ ପାରି ସେହି ଯଜ୍ଞାଗ୍ନିକୁ ଡେଇଁ ପଡ଼ି ଆତ୍ମହତ୍ୟା କରିଥିଲେ । ମହାଦେବ ସତୀଙ୍କ ବିନାଶରେ କ୍ରୋଧାନ୍ଧ ହୋଇ ଉକ୍ତ ଯଜ୍ଞକୁ ନଷ୍ଟ କରି ଛାରଖାର କଲେ । ]

ଦକ୍ଷ କର—ଦେ. ବି (ସଂ. ଦକ୍ଷିଣ କର)—ଡାହାଣ ହାତ—
Daksha kara Right hand.
ଦକ୍ଷ କରେ ଧରି ମେ ହନ ଗୁରୁସି ତଳାରିତ ବେଣୁଦଣ୍ଡ ।
କବିସୂର୍ଯ୍ୟ. ସଙ୍ଗୀତ ।

ଦକ୍ଷଜା—ସଂ. ବି. ସ୍ତ୍ରୀ. (ଦକ୍ଷ+ଜନ୍ ଧାତୁ+କର୍ତ୍ତୃ. ଅ+ସ୍ତ୍ରୀ. ଆ)—
Dakshajā ୧ । ଦକ୍ଷ ପ୍ରଜାପତିଙ୍କ କନ୍ୟା, ସତୀ; ଦୁର୍ଗା—
1. Durgā.

୨ । (ଜ୍ୟୋତିଷ) ଅଶ୍ୱିନୀ, ଭରଣୀ ଆଦ ସପ୍ତବିଂଶତ ନକ୍ଷତ୍ର— 2 The 27 clusters of stars or asterisms in Hindu astronomy

୩ । ନକ୍ଷତ୍ର—3 Star.

**ଦକ୍ଷତର**—ସଂ ବିଣ—୧ । ଚଞ୍ଚଳତର—1. Very brisk.
Dakshatara ୨ । ବିଶେଷ ଚତୁର ବା ସମର୍ଥ— 2. Very active.

**ଦକ୍ଷତା**—ସଂ. ବି. (ଦକ୍ଷ+ଭାବ. ତା)—୧ । ପଟୁତା—
Dakshatā 1. Skill, dexterity.
(ଦକ୍ଷତ୍ୱ—ଅନ୍ୟରୂପ) ୨ । ଫୂର୍ତ୍ତି—2. Activity; briskness.
୩ । ଚତୁରତା—3, Cleverness

**ଦକ୍ଷ ନାଡ଼**—ଦେ. ବି—ଶରୀରସ୍ଥ କଳ୍ପିତ ନାଡ଼ିବିଶେଷ—
Daksha nārdi Name of an artery inside the human body.

ଶୁଣ ରୁ ଚାନ୍ଦଗ ଦକ୍ଷ ନାଡ଼ର କଥାର
ପ୍ରବଳ ହୋଇବ ସେବେ ସମସ୍ତ ତା ଦ୍ୱାର । ପ୍ରାଚୀ, ଶିବସ୍ୱରୋଦୟ ।

**ଦକ୍ଷ ପ୍ରଜାପତି**—ସଂ. ବି—ଦକ୍ଷ ୧ (ଦେଖ)
Daksha prajāpati Daksha 1 (See)

**ଦକ୍ଷ ଯଜ୍ଞ**—ସଂ. ବି. (ମ. ପ ଲୋ, ଦକ୍ଷ+ଯଜ୍ଞ)—ଦକ୍ଷଙ୍କ ଅନୁଷ୍ଠିତ ଯାଗ
Daksha jajña The vedic sacrifice performed by 'Daksha',
[ ଦ୍ର—ଦକ୍ଷ କନ୍ୟା ତଳେ ନୋଟ୍ ଦେଖ । ]

**ଦକ୍ଷ ସାବର୍ଣ୍ଣି**—ସଂ ବି—ନବମ ମନୁ—The 9th descendant of Daksha sābarṇṇi 'Manu' or the progenitor of mankind according to the Hindus.

ଏବେ ହୋ ବରୁଣ ନନ୍ଦନ
ଦକ୍ଷ ସାବର୍ଣ୍ଣି ସେ ନବମ । ଜଗନ୍ନାଥ· ଭାଗବତ ।

**ଦକ୍ଷା**—ସଂ. ବିଣ. ସ୍ତ୍ରୀ—ପଟୁ (ସ୍ତ୍ରୀ)—Expert; active (woman).
Dakshā ବି—ପୃଥିବୀ—The earth.
ଦେ. ବିଣ—କଲ୍ୟାଣକରଣ ପଟୁ—
Skilful in pronouncing benedictions.

ବାମଦେବ ବୋଇଲେ କରନ୍ତୁ ଚୋରେ ରକ୍ଷା
ବାର୍ତ୍ତିପୁତ୍ରଙ୍କ କଲ୍ୟାଣେ ଆସୁଅଛ ଦକ୍ଷା । ଭଞ୍ଜ. ବୈଦେହୀଶ ବିଳାସ ।

**ଦକ୍ଷିଣ**—ସଂ. ବିଣ· ପୁଂ. (ଦକ୍ଷ୍ ଧାତୁ=ବର୍ଦ୍ଧିତ ହେବା+ଅର୍ଥାର୍ଥେ କର୍ତ୍ତୃ·
Dakshiṇa ଇନ)—୧ । ବଦାନ୍ୟ—1. Generous.
(ଦକ୍ଷିଣା—ସ୍ତ୍ରୀ) ମୋକ୍ଷଦାନରେ ସେ ଦକ୍ଷିଣ ଦକ୍ଷିଣ କର୍ଣ୍ଣ ଉତ୍ଧ୍ୱ କୁହ ମରଣ ।
ଭଞ୍ଜ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।

୨ । ଉଦାର—1. Liberal.
୩ । ସରଳ—3. Frank.
୪ । ଅକପଟ—4. Sincere.
୫ । ବାମେତର; ଡାହାଣ—5. Right (side).
୬ । ସମର୍ଥ—6. Capable.
୭ । ନିପୁଣ—7. Expert; dexterous; skilful.

ବୃଷ୍ଟି ପୂର୍ବରେ ଦକ୍ଷିଣ ପ୍ରଭାତୀରେ ଭୂକ
ଚଢ଼ିତ ରଚି ଭାଗାର ଉତ୍ତରେ ସହକ । ଭଞ୍ଜ. ବୈଦେହୀଶବିଳାସ ।

୮ । ଚତୁର—8. Clever.

୯ । ଅନୁକୂଳ, ପରଚ୍ଛନ୍ଦାନୁବର୍ତ୍ତୀ—
9 Propitious, favourable.
୧୦ । ଉତ୍ତରଦିଗର ବିପରୀତ (ଦିଗ)—
10 South (direction).

[ ଦ୍ର—ପୁରାଣ ମତରେ ସୂର୍ଯ୍ୟଦେବ ଯଜ୍ଞର ଦକ୍ଷିଣା ରୂପେ ଏହି ଦିଗକୁ ତାଙ୍କ ଗୁରୁ କଶ୍ୟପଙ୍କୁ ପ୍ରଦାନ କରି ଥିବାରୁ ଏହି ଦିଗ 'ଦକ୍ଷିଣ' ଦିଗ ନାମରେ କଥିତ ହେଲା । ଅତ୍ର ମଧ୍ୟ ସୂର୍ଯ୍ୟୋଦୟ ଦେଖିବା ଦିଗକୁ ମୁହଁ କରିବା ଲୋକର ଦକ୍ଷିଣ ହସ୍ତ ଏହି ଦିଗକୁ ରହେ । ]

ବି—୧ । ଦକ୍ଷିଣ ଦିଗ—1. The South.
୨ । ଡାହାଣ ପାଖ—2. Right-hand side.
୩ । ଦକ୍ଷିଣ ଦିଗସ୍ଥ ଦେଶ—
3. The country to the South.
୪ । ଦକ୍ଷିଣାଚାର, ତନ୍ତ୍ରୋକ୍ତ ସାଧନ ବିଧିବିଶେଷ—
4. Name of a class of esoteric rites enjoined by the 'Tantras'.
୫ । ଦାକ୍ଷିଣାତ୍ୟ, ଦକ୍ଷିଣ ଭାରତ—
5. The Deccan; Southern India.
୬ । ଦକ୍ଷିଣାଗ୍ନି, ଯଜ୍ଞାଗ୍ନି ବିଶେଷ—
6. Name of one of the sacrificial fires
୭ । ନାୟକବିଶେଷ, ଯେଉଁ ନାୟକର ବହୁ ନାୟିକାଙ୍କ ପ୍ରତି ଅନୁରାଗ ଥାଏ ଅଥଚ ସବୁ ନାୟିକାଙ୍କ ପ୍ରତି ତାଙ୍କର ତୁଲ୍ୟ ଅନୁରାଗ ଥାଏ—7. A class of gallants. or lovers who show equal fondness to all his beloved ladies
୮ । ଦକ୍ଷିଣା ପବନ—8. The south wind.
୯ । ଯମ (ଦକ୍ଷିଣ ଦିଗରେ ଯମପୁର ଥିବାରୁ)—
9. Jama, the God of death
୧୦ । ଦକ୍ଷିଣା—10 Present given to a priest officiating at religious rites.

ଦେ. ବି—ଓଡ଼ିଶାର ଦକ୍ଷିଣକୁ ମାନ୍ଦ୍ରାଜ ପର୍ଯ୍ୟନ୍ତ ଦେଶ—
Madras Presidency (South of Orissa).
[ ଦ୍ର—ମେଦନୀପୁରବାସୀମାନେ ଓଡ଼ିଶାକୁ ଦକ୍ଷିଣ କହନ୍ତି । ବାଲେଶ୍ୱରବାସୀମାନେ କଟକ ଓ ପୁରୀକୁ ଦକ୍ଷିଣ କହନ୍ତି ଓ ଓଡ଼ିଶା-ବାସୀମାନେ ଗଞ୍ଜାମ ଓ ମାନ୍ଦ୍ରାଜକୁ ଦକ୍ଷିଣ କହନ୍ତି । ]
ବିଣ—ଅନୁକୂଳ—Favourable.

ବହିଲା ଦକ୍ଷିଣ ପବନ ବହିଲ ଭ୍ରମରକ କରି କ୍ଷେପଣ ।
ଭଞ୍ଜ. କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ।

**ଦକ୍ଷିଣ ଅୟନାନ୍ତ**—ସଂ. ବି. (ଜ୍ୟୋତିଷ-ପରିଭାଷା)—ବିଷୁବରେଖାଠାରୁ
Dakshiṇa ayanānta ସୂର୍ଯ୍ୟଙ୍କର ଦକ୍ଷିଣକୁ ଚଳିବା ପଥର ଶେଷ ସୀମା Southern or winter solstice.

**ଦକ୍ଷିଣ କବାଟ**—ଦେ ବି—ଖଣ୍ଡାଏତ ଓ ପାଇକମାନଙ୍କୁ ଉତ୍କଳୀୟ
Dakshiṇa kabāṭa ରାଜାମାନଙ୍କର ଦେବା ଉପାଧି—
ଦକ୍ଷିଣରାୟ }
ଦକ୍ଷିଣରାଏ } ଅନ୍ୟରୂପ A title given to the Khandayats and soldiers by the Rajas of Orissa.
दक्षिणराय

ଦକ୍ଷିଣ କାଳୀ—ସଂ. ବି ସ୍ତ୍ରୀ—ତନ୍ତ୍ରୋକ୍ତ ଦେବୀବିଶେଷ—
Dakshina kali Name of Tantric Goddess.
( ଦକ୍ଷିଣ କାଳିକା—ଅନ୍ୟରୂପ )

ଦକ୍ଷିଣ କେନ୍ଦ୍ର—ଦେ. ବି· (ଭୂଗୋଳ ପରିଭାଷା) – ଦକ୍ଷିଣ ମେରୁ (ଦେଖ)
Dakshina kendra Dakshina meru (See)

ଦକ୍ଷିଣ ଗୋଲ(ଲା)ର୍ଦ୍ଧ—ଦେ. ବି (ଭୂଗୋଳ ପରିଭାଷା)—
Dakshina golā(lā)rddha ଭୂଗୋଳକର ଦକ୍ଷିଣ ଅର୍ଦ୍ଧଭାଗ—
(geography) The southern hemisphere of the globe.

ଦକ୍ଷିଣ ଡହରା—ଦେ ବି. (ଜାହାଜିଆ ଶବ୍ଦ)—ଦକ୍ଷିଣପୂର୍ବ ଦିଗ—
Dakshina daharā (nautical) South-east point of the mariner's compass.

ଦକ୍ଷିଣତଃ—ସଂ. ଅ (ଦକ୍ଷିଣ+ତସ୍)—୧ । ଦକ୍ଷିଣ ଦିଗରେ—
Dakshinatah 1. On the south.
୨ । ଦକ୍ଷିଣ ଦେଶରେ—2. In the south.
୩ । ଡାହାଣରେ—3. On the right side

ଦକ୍ଷିଣ ଦିଗ—ଦେ. ବି—ଉତ୍ତରର ବିପରୀତ ଦିଗ —
Dakshina diga The south.

ଦକ୍ଷିଣ ଦୁଆର—ଦେ. ବି—ଗୃହ ବା ମନ୍ଦିରର ଦକ୍ଷିଣ ପାର୍ଶ୍ୱର ଦ୍ୱାର—
Dakshina duāra The southern door
(ଦକ୍ଷିଣ ଦୁଆରି—ଅନ୍ୟରୂପ)
দক্ষিণ দরোজা दक्षिन दरवाजा

ଦକ୍ଷିଣ ଦୁଆରିଆ—ଦେ. ବିଣ—ଯେଉଁ ଘରର ଦ୍ୱାର ଦକ୍ଷିଣ ଦିଗକୁ—
Dakshina duāriā Having its door to the south.
(ଦକ୍ଷିଣ ଦୁଆରି—ଅନ୍ୟରୂପ) ଦକ୍ଷିଣ ଦୁଆରିଆ ଘର, ଯେ ନ ପଶିବ ସେ
দক্ষিণ খোলা ପଶିଲେ, କାହାକୁ କହିବ ପର—ଢଗ ।

ଦକ୍ଷିଣ ଦେଶ—ସଂ. ବି—୧ । ଦକ୍ଷିଣ ଦିଗରେ ଅବସ୍ଥିତ ଦେଶ—
Dakshina desa 1. Southern country.
୨ । ଦାକ୍ଷିଣାତ୍ୟ —2. The Deccan.

ଦକ୍ଷିଣ ନାୟକ—ସଂ. ବି ପୁଂ. ( ଦକ୍ଷିଣ=ଅନୁକୂଳ+ନାୟକ )—
Dakshina nāyaka କାବ୍ୟୋକ୍ତ ନାୟକବିଶେଷ, ଯେଉଁ ନାୟକ ଅନେକ ନାୟିକାଙ୍କଠାରେ ସମାନୁରାଗୀ—
A hero of a romance who has equal attachment for more than one sweat heart.
ସାଧୁ ବନ୍ଧୁ ନାମ ଦକ୍ଷିଣ ନାୟକ ଲକ୍ଷଣ ସମ୍ପୂର୍ଣ୍ଣ ।
ଭଞ୍ଜ· କୋଟିବ୍ରହ୍ମାଣ୍ଡସୁନ୍ଦରୀ ।

ଦକ୍ଷିଣ ପଶ୍ଚିମ—ଦେ. ବି. ( ସଂ. ଦକ୍ଷିଣ ପଶ୍ଚିମା )—
Dakshina paschima ଦକ୍ଷିଣ ଓ ପଶ୍ଚିମ ଦିଗର ମଧ୍ୟବର୍ତ୍ତୀ
দক্ষিণ পশ্চিম କୋଣ, ନୈର୍ଋତ—The south-west corner.
दक्षिन पश्चिमी कोण

ଦକ୍ଷିଣ ପଶ୍ଚିମା—ସ. ବି. ( ଦକ୍ଷିଣ+ପଶ୍ଚିମ+ଆ )—
Dakshina paschimā ଦକ୍ଷିଣ ପଶ୍ଚିମ କୋଣ—
দক্ষিণ পশ্চিমা The south-west corner.
ଦେ. ବି—ଦକ୍ଷିଣ ପଶ୍ଚିମ କୋଣ ସମ୍ବନ୍ଧୀୟ—
South-westerly; south-western.

ଦକ୍ଷିଣ ପିଛୁଡ଼ି—ଦେ ବି ( ଜାହାଜିଆ ଶବ୍ଦ )—ଦକ୍ଷିଣ ପଶ୍ଚିମ ଦିଗ—
Dakshina pichhārdi (nautical) The south-west point of the mariner's compass.

ଦକ୍ଷିଣ ପୂର୍ବ—ଦେ. ବି. ( ସ ଦକ୍ଷିଣ ପୂର୍ବା )—
Dakshina pūrba ଦକ୍ଷିଣ ଓ ପୂର୍ବ ଦିଗର ମଧ୍ୟବର୍ତ୍ତୀ କୋଣ,
দক্ষিণ পূর্ব ଅଗ୍ନି କୋଣ—The south-east
दक्षिण पूरब

ଦକ୍ଷିଣ ପୂର୍ବା—ସ ବି. ( ଦକ୍ଷିଣ+ପୂର୍ବ+ଆ )—
Dakshina pūrbā ଦକ୍ଷିଣ ଓ ପୂର୍ବ ଦିଗର ମଧ୍ୟବର୍ତ୍ତୀ ଅଗ୍ନି କୋଣ—
The south-east

ଦକ୍ଷିଣ ମାନସ—ସ ବି—ଗୟାସ୍ଥ ତୀର୍ଥବିଶେଷ ( ଦ୍ର. ଶବ୍ଦସାଗର )—
Dakshina mānasa Name of a place of pilgrimage in Gaya.

ଦକ୍ଷିଣ ମୁଖ—ସ ବି. ପୁଂ—ଦକ୍ଷିଣ ଆଡ଼କୁ ମୁହଁ କରିଥିବା—
Dakshina mukha Facing south
(ଦକ୍ଷିଣ ମୁଖୀ – ସ୍ତ୍ରୀ)

ଦକ୍ଷିଣ ମୁଖା—ଦେ ବିଣ—ଦକ୍ଷିଣ ଦିଗକୁ ମୁଖ କରିଥିବା(ବ୍ୟକ୍ତି ବା ଗୃହ)—
Dakshina mukhā Facing south; with one's face towards the south
(ଦକ୍ଷିଣ ମୁହାଁ—ଅନ୍ୟରୂପ)
দক্ষিণ মুখো

ଦକ୍ଷିଣ ମେରୁ—ଦେ. ବି. ( ଭୂଗୋଳ ପରିଭାଷା )—
Dakshina meru କୁମେରୁ, ପୃଥିବୀର ଦକ୍ଷିଣତମ ପ୍ରାନ୍ତ—
The south pole.

ଦକ୍ଷିଣ ରାଢ଼—ସଂ. ବି—ମେଦିନୀପୁର ଅଞ୍ଚଳର ଦକ୍ଷିଣ ଭାଗ—
Dakshina rārdha South Midnapur.

ଦକ୍ଷିଣ ରାଢ଼ି—ଦେ. ବି—ମେଦିନୀପୁର ଅଞ୍ଚଳର ବଙ୍ଗାଳୀ କାୟସ୍ଥମାନଙ୍କର
Dakshina rārdhi ଗୋଟିଏ ଶ୍ରେଣୀ--A class of Bengalee
দক্ষিণ বাঢ়ী Kāyasthas originally coming from the Midnapur side

ଦକ୍ଷିଣ ରାଢ଼ୀୟ—ସଂ. ବିଣ.—ଦକ୍ଷିଣ ରାଢ଼ ଦେଶୀୟ—
Dakshina rārdhiya Belonging to the south Midnapur.

ଦକ୍ଷିଣ ସାଗର—ସଂ. ବି —୧ । ପୁରାଣୋକ୍ତ ଲବଣ ସମୁଦ୍ର—
Dakshina sāgara 1. The mythological salt sea.
(ଦକ୍ଷିଣ ସମୁଦ୍ର—ଅନ୍ୟରୂପ) ୨ । ପୃଥିବୀର ଦକ୍ଷିଣ ଦିଗରେ ଅବସ୍ଥିତ ସମୁଦ୍ରର ନାମ—2. The South Sea; the South Ocean; the Antarctic Ocean.

ଦକ୍ଷିଣ ସାହି—ଦେ. ବି.—୧ । ଗ୍ରାମର ଘରମାନଙ୍କ ଦକ୍ଷିଣ ଧାଡ଼ି—
Dakshina sāhi 1. The southern row of houses in a village.
(ଦକ୍ଷିଣିସାହି—ଅନ୍ୟରୂପ)

[ଦ୍ର—ସାଧାରଣତଃ ଗ୍ରାମମାନଙ୍କ ଓ ବିଶେଷତଃ ବ୍ରାହ୍ମଣ ଶାସନମାନଙ୍କ ଘରମାନ ଉତ୍ତର ଓ ଦକ୍ଷିଣ ସାହି ହୋଇ ଦୁଇ ଧାଡ଼ିରେ ତିଆରି ହୋଇ ଥାଏ ଏବଂ ଗ୍ରାମଦାଣ୍ଡ ପୂର୍ବରୁ ପଶ୍ଚିମକୁ ଲମ୍ବି ଥାଏ ।]

୬ । ଦକ୍ଷିଣ ଦିଗରେ ଥିବା ଧାଡ଼ି ବା ପଂକ୍ତି— 2. The southern row.

ଦକ୍ଷିଣ ସାହୁଆ ଦେ. ବିଣ.—ଗ୍ରାମର ଦକ୍ଷିଣ ସାହିରେ ବାସ କରୁଥିବା-
Dakshiṇa sāhiā Residing in the southern row of houses in a village.
ଦକ୍ଷିଣି ସାହୁଆ, ଦକ୍ଷିଣ ସାହ୍ୟା, ଦକ୍ଷିଣ ସାହ୍ୟା } ଅନ୍ୟରୂପ

ଦକ୍ଷିଣସାହୁଆ ରଥ—ପ୍ରାଦେ (ପୁରୀ) ବି—ପୁରୀ ଜିଲ୍ଲାର ବୈଦିକ
Dakshiṇasāhiā ratha ବ୍ରାହ୍ମଣମାନଙ୍କର ଶ୍ରେଣୀବିଶେଷ— A distinctive title of a class of Brāhmaṇas of the Puri district

ଦକ୍ଷିଣସ୍ଥ—ସଂ. ବିଣ—ଦକ୍ଷିଣ ଦିଗରେ ସ୍ଥିତ—
Dakshiṇastha Situated in the south.
ବି—ସାରଥି—A car-driver.

ଦକ୍ଷିଣ ହସ୍ତ—ସଂ ବି—୧ । ଡାହାଣ ହାତ—
Dakshiṇa hasta 1. Right hand.
୨ । (ଲକ୍ଷଣାର୍ଥ) ମନୁଷ୍ୟ ପକ୍ଷରେ ଡାହାଣ ହାତ ଯେଉଁପରି କାର୍ଯ୍ୟକାରୀ ସେହିପରି ସାହାଯ୍ୟକାରୀ ବ୍ୟକ୍ତି— 2 (figurative) Right hand man.
୩ । (ଲକ୍ଷଣାର୍ଥ) ଡାହାଣ ହାତଦ୍ୱାରା ସୂଚିତ ଦୈନିକ କ୍ରିୟା, ପାନ ଓ ଭୋଜନ— 3. (figurative) Eating and drinking.

ଦକ୍ଷିଣହସ୍ତ ବ୍ୟାପାର—ଦେ. ବି—ପାନ ଭୋଜନ—
Dakshiṇahasta byāpāra Eating and drinking.
দক্ষিণহস্তের ব্যাপার

ଦକ୍ଷିଣା—ସଂ. ବି. ସ୍ତ୍ରୀ—(ଦକ୍ଷିଣ+ସ୍ତ୍ରୀ ଆ)—୧ । ପୂଜକ, ଆଚାର୍ଯ୍ୟ
Dakshiṇā ପୁରୋହିତ ଓ ମନ୍ତ୍ରଗୁରୁ ଆଦିଙ୍କୁ ଦେୟ ଅର୍ଥ ବା ବିଦାକ—1. Present or fee given to a priest or preceptor etc; sacrificial fee.

ଏ ସମୟେ ଋତ୍ୱିକ ଦକ୍ଷିଣାକୁ ପାଇ,
ଯାଗର ସମାପତ ଦେଖନ୍ତି ବସାଇ । କୃଷ୍ଣସିଂହ, ମହାଭାରତ ଶାନ୍ତି ।

୨ । ପୁରସ୍କାର—2. Reward.
୩ । ଦକ୍ଷିଣ ଦିଗ—3. The south point of the compass.
୪ । ଦକ୍ଷିଣ ଦେଶ—4. The southern country.
୫ । ଯଜ୍ଞ ପତ୍ନୀ—5. The wife of sacrifice personified.
[ଦ୍ର—ପୁରାଣରେ ଦକ୍ଷିଣା ଯଜ୍ଞର ପତ୍ନୀରୂପେ କଳ୍ପିତା; ବ୍ରହ୍ମବୈବର୍ତ୍ତ ପୁରାଣରେ ଲେଖା ଅଛି ଯେ କାର୍ତ୍ତିକ ପୂର୍ଣ୍ଣିମା ରାତ୍ରିରେ ରାସୋତ୍ସବ ହେଉଥିବା କାଳରେ ଶ୍ରୀକୃଷ୍ଣଙ୍କ ଦକ୍ଷିଣାଂଶରୁ ଦକ୍ଷିଣାର ଉତ୍ପତ୍ତି ହୋଇଥିଲା । ହି. ଶବ୍ଦସାଗର ।]
୬ । ବ୍ରାହ୍ମଣଙ୍କୁ ଭୋଜନ କରାଇବା ପରେ ଦିଆଯିବା ଅର୍ଥ-ପୁରସ୍କାର—6. Cash present given to a Brāhmaṇa after feeding him.
୭ । ଦେବୀ ବିଶେଷ—7. Name of a Goddess
୮ । ଗୁରୁଙ୍କୁ ବିଦ୍ୟାର୍ଥୀର ଦେବା ପାରଶ୍ରମିକ—8. Schooling fees given to the teacher.
୯ । ନାୟକ ଅନ୍ୟ ନାରୀରେ ପ୍ରତି ଅନୁରକ୍ତ ଥିବାର ଜାଣି ମଧ୍ୟ ଯେଉଁ ନାୟିକା ଉକ୍ତ ନାୟକ ଉପରେ ପୂର୍ବବତ୍ ସ୍ନେହ ଓ ଅନୁରାଗ ଦେଖାଏ (ହି. ଶବ୍ଦସାଗର)— A class of heroines in fiction whose attachment to the lover remains unaltered even if he is known to be inconstant.

ସଂ. ଅ—୧ । ଦକ୍ଷିଣ ଦିଗରୁ—1. From the south.
୨ । ଦକ୍ଷିଣ ଦିଗରେ—2. In the south.

ଦେ. ବି—୧ । କୌଣସି ବ୍ୟକ୍ତିଙ୍କୁ ଦିଆଯିବା ବକ୍ସିସ୍—
দক্ষিণা 1. Perquisite given to a person.
**दक्षिणा**

ବାହ୍ମଣ ବଇଷ୍ଣବ ବଇଦ ବଡି
ଦକ୍ଷିଣା ପାଇଲେ ଯାଆନ୍ତି ଛାଡ଼ି । ଚଗ ।

୨ । ଦକ୍ଷିଣା ପବନ—2. South breeze.

ବିଣ—୧ । ଦକ୍ଷିଣ ଦିଗଭବ—1. Southern
ଦଖ୍ନେ ୨ । ଦକ୍ଷିଣ ଦେଶ ସମ୍ବନ୍ଧୀୟ— 2. Appertaining to the South.

ଦକ୍ଷିଣାଗ୍ନି—ସଂ ବି—(ମଧ୍ୟପଦଲୋପୀ ଓ କର୍ମଧା; ଦକ୍ଷିଣନାମକ ଅଗ୍ନି,
Dakshiṇāgni ଯଜ୍ଞବେଦୀର ଦକ୍ଷିଣ ଦିଗରେ ସ୍ଥାପିତ ହେଉଥିବାରୁ) ଯଜ୍ଞର ଅଗ୍ନିବିଶେଷ—Name of one of the sacrificial fires

ଦକ୍ଷିଣାଗ୍ର—ସଂ. ବିଣ (ବହୁବ୍ରୀହି, ଦକ୍ଷିଣ+ଅଗ୍ର; ଦକ୍ଷିଣଦିଗକୁ ଅଗ୍ର
Dakshiṇāgra ଯାହାର)—ଦକ୍ଷିଣଦିଗକୁ ଅଗ ବୁଲାଇ ରଖାଯିବା (କୁଶ)—(Kusa grass) Placed with its point towards the south.

ଦକ୍ଷିଣାଚଳ—ସଂ. ବି (ଷଷ୍ଠୀ ତତ୍, ଦକ୍ଷିଣ+ଅଚଳ)—ମଳୟଗିରି;
Dakshiṇāchaḷa ମାଲଗିରିପର୍ବତ—The Maḷaya hills of Southern India.
[ଦ୍ର—ଏହା ଦାକ୍ଷିଣାତ୍ୟର ପର୍ବତବିଶେଷ । ଏଥିରେ ଅନେକ ଚନ୍ଦନବୃକ୍ଷ ଅଛି । ଆମଦେଶରେ ବସନ୍ତକାଳରେ ଯେଉଁ ଦକ୍ଷିଣା ପବନ ବହେ ତାହା ଏହି ପର୍ବତରେ ଲାଗି ଆସିବାରୁ ଏହା ସୁବାସଯୁକ୍ତ ହୁଏ ବୋଲି ପ୍ରବାଦ ଅଛି ।]

ଦକ୍ଷିଣାଚାର—ଦେ. ବି—୧ । ଦକ୍ଷିଣ ନାମକ ତାନ୍ତ୍ରିକ ଆଚାର ବା
Dakshiṇāchāra କ୍ରିୟାବିଶେଷ—1. Name of certain rites enjoined in the 'Tantras'
(ବାମାଚାର—ବିପରୀତ)
[ଦ୍ର—ତନ୍ତ୍ରୋକ୍ତ ବାମାଚାର ଅନୁଷ୍ଠାନରେ ସାଧକ ପଞ୍ଚମକାର ଦ୍ୱାରା ଶକ୍ତିଙ୍କ ଉପାସନା କରେ । ଦକ୍ଷିଣାଚାରରେ ପଞ୍ଚମକାରାଦି ନାହିଁ । ଦକ୍ଷିଣାଚାରୀ ସାଧକ ଆପଣାକୁ ଶିବରୂପେ କଳ୍ପନାକରି ପଞ୍ଚତତ୍ତ୍ୱଦ୍ୱାରା ଶିବାଙ୍କ ପୂଜା କରନ୍ତି । ଏହା ବାମାଚାର ଅପେକ୍ଷା ଶ୍ରେଷ୍ଠ ଓ ବୈଦିକ ବୋଲି ପରିଗଣିତ—ହି. ଶବ୍ଦସାଗର ।]

୨ । ସଦାଗ୍ରର; ଶୁଦ୍ଧ ଓ ଉତ୍ତମ ଆଚରଣ (ହି. ଶବ୍ଦସାଗର)— 2. Good conduct; approved usage

ଦକ୍ଷିଣାଗ୍ରସ୍ତ—ଦେ. ବିଣ—୧ । ଯେଉଁ ସାଧକ ଦକ୍ଷିଣାଗ୍ରର ଦ୍ୱାର Dakshināchāri ତାନ୍ତ୍ରିକ ସାଧନା ବା ଶକ୍ତି ଆରାଧନା କରନ୍ତି—(ବାମାଗ୍ରସ୍ତ—ବିପରୀତ) 1 Following or observing the 'Dakshināchāra' rites of the 'Tantras.'

୨ । ସଦାଗ୍ରସ୍ତ—2 Observing good usages.

ଦକ୍ଷିଣାନିଳ—ସ. ବି ( ମ. ପ. ଲୋ କର୍ମଧା, ଦକ୍ଷିଣ+ଅନିଳ )— Dakshinānila ୧ । ଦକ୍ଷିଣ ଦିଗରୁ ପ୍ରବାହିତ ବାୟୁ— 1. South wind.

୨ । ମଳୟାନିଳ; ଦକ୍ଷିଣାପବନ—2. Agreeable, breeze blowing from the south.

ଦକ୍ଷିଣାନ୍ତ—ସ. ବିଣ ( ବହୁବ୍ରୀହି; ଦକ୍ଷିଣା+ଅନ୍ତ )—ଦକ୍ଷିଣାଦ୍ୱାରା Dakshinānta ପରିସମାପ୍ତ (ଅନୁଷ୍ଠାନ)--(a rite) Wound up by giving a present to the priest.

ଦକ୍ଷିଣାପଥ—ସ. ବି—( ଦକ୍ଷିଣା = ଦକ୍ଷିଣଦିଗବର୍ତ୍ତୀ + ପଥିନ୍ = Dakshināpatha ପଥ )—୧ । ଦକ୍ଷିଣଦେଶ—1. The south country.

୨ । ବିନ୍ଧ୍ୟ ପର୍ବତର ଦକ୍ଷିଣରେ ଥିବା ଭାରତବର୍ଷର ଅଂଶ, ଦାକ୍ଷିଣାତ୍ୟ—2 The Deccan.

ଦକ୍ଷିଣା ପବନ—ଦେ ବି—୧ । ମଳୟାନିଳ-- Dakshinā pabana 1. South breeze.

দখনে বাতাস ୨ । ଦକ୍ଷିଣ ଆଡ଼ୁ ବୋହୁଥିବା ପବନ—
**दक्खिना हवा** 2 Wind blowing from the south.

ଦକ୍ଷିଣା ପ୍ରବଣ—ସଂ. ବି . (୭ମୀ ତତ୍, ଦକ୍ଷିଣା=ଦକ୍ଷିଣ ଦିଗରେ+ Dakshinā prabana ପ୍ରବଣ=ନିମ୍ନ )—୧ । ଉତ୍ତର ଅଂଶ ଅପେକ୍ଷା ଦକ୍ଷିଣ ଭାଗ ନିମ୍ନତର ବା ଢାଲୁ ହୋଇଥିବା (ସ୍ଥାନ)—1. (a place) Being more sloping towards the south than towards the north.

୨ । ଯାହାର ଡାହାଣ ପାଖ ଢାଲୁ— 2. Sloped in the right hand side

ଦକ୍ଷିଣାବର୍ତ୍ତ—ସଂ. ବିଣ.—(ବହୁବ୍ରୀହି; ଦକ୍ଷିଣ ଅର୍ଥାତ୍ ଡାହାଣ ଅଡ଼କୁ Dakshinābartta ଥାଏ ଆବର୍ତ୍ତ=ଭଉଁରୀ ଯାହାର)—(ଦକ୍ଷିଣାବର୍ତ୍ତିକ—ଅନ୍ୟରୂପ) ୧ । ଡାହାଣ ଦିଗକୁ ଯାହାର ଆବର୍ତ୍ତ (ବାମାବର୍ତ୍ତ—ବିପରୀତ) ବା ଭଉଁରୀ ଥାଏ (ଶଙ୍ଖ)—Having its volute or spiral expanding towards the right hand side; with its volute running towards the right.

୨ । ଦକ୍ଷିଣ ଦିଗକୁ ଆବର୍ତ୍ତ ବିଶିଷ୍ଟ—2. Having the spiral expanding toward the south.

୩ । ଦକ୍ଷିଣ ଅଡ଼କୁ ଝୁଙ୍କି ଥିବା— 3. Inclining to the south.

୪ । ଡାହାଣ ଅଡ଼କୁ ଘୂରିବା— 4. Revolving towards the right.

ଦକ୍ଷିଣାବର୍ତ୍ତ ହୋଇଣ ବୈଶ୍ୱାନର ବୁଲିଣ ଅଗ୍ନିର ଯେବେଲେ ।
ବଳରାମ, ବଟକୃଷ୍ଣରାମାୟଣ ।

ବି·—ଡାହାଣ ଅଡ଼କୁ ଭଉଁରୀ ବୁଲିଥିବା ଶଙ୍ଖ— 1. A conch having its volute or spiral expanding towards the right hand side.

[ ଦ୍ର—ସାଧାରଣତଃ ଶଙ୍ଖମାନ ବାମାବର୍ତ୍ତ । ମାତ୍ର ଦକ୍ଷିଣାବର୍ତ୍ତ ଶଙ୍ଖ କ୍ୱଚିତ୍ ମିଳେ । ହିନ୍ଦୁମାନଙ୍କର ବିଶ୍ୱାସ ଯେ ଯାହା ଘରେ ଦକ୍ଷିଣାବର୍ତ୍ତ ଶଙ୍ଖ ଥାଏ ତାହା ପ୍ରତି ଲକ୍ଷ୍ମୀ ପ୍ରସନ୍ନା ହୁଅନ୍ତି । ]

୨ । ଦାକ୍ଷିଣାତ୍ୟ—2 The Deccan

ଦକ୍ଷିଣାବର୍ତ୍ତୀ ଶଙ୍ଖ -ଦେ. ବି ( ସ. ଦକ୍ଷିଣାବର୍ତ୍ତ+ଶଙ୍ଖ )-- Dakshinābartti sankha ଦକ୍ଷିଣ ବା ଡାହାଣ ଅଡ଼କୁ ଆବର୍ତ୍ତ ଥିବା ଶଙ୍ଖ—Right-voluted conch.
ଦକ୍ଷିଣାବର୍ତ୍ତଶଙ୍ଖ, ଦକ୍ଷିଣାବର୍ତ୍ତୀଶଙ୍ଖ } ଅନ୍ୟରୂପ
(ବାମାବର୍ତ୍ତୀଶଙ୍ଖ—ବିପରୀତ)
दक्षिणावर्त्तशांख

ଦକ୍ଷିଣାବହ—ସ ବି. ( ଦକ୍ଷିଣ+ଆ+ବହ ଧାତୁ+କର୍ତ୍ତୃ. ଅ )— Dakshinābaha ଦକ୍ଷିଣା ପବନ; ମଳୟାନିଳ— South breeze.

ଦକ୍ଷିଣାମୁଖ—ସ ବିଣ. ପୁଂ. ( ବହୁବ୍ରୀହି; ଦକ୍ଷିଣା+ମୁଖ )— Dakshināmukha ଦକ୍ଷିଣ ମୁହାଁ—Facing south; turning the face towards the south. (ଦକ୍ଷିଣାମୁଖୀ—ସ୍ତ୍ରୀ)

ଦକ୍ଷିଣାମୂର୍ତ୍ତି—ସ. ବି—ତନ୍ତ୍ର ଅନୁସାରେ ଶିବଙ୍କ ମୂର୍ତ୍ତି ବିଶେଷ— Dakshināmūrtti Name of an image of Siba according to the Tantras.

ଦକ୍ଷିଣାୟନ—ସ. ବି· (୭ମୀ ତତ୍, ଦକ୍ଷିଣା=ଦକ୍ଷିଣ ଦିଗରେ+ Dakshināyana ଅୟନ=ସୂର୍ଯ୍ୟଙ୍କ ଗତି )—(ଉତ୍ତରାୟଣ—ବିପରୀତ) ୧ । ଶ୍ରାବଣଠାରୁ ପୌଷ ପର୍ଯ୍ୟନ୍ତ ୬ ମାସ ସମୟ—1. The six months during which the sun's orbit passes towards the south ( from 27th June to 22nd December); the period between the summer solstice and winter solstice.

[ ଦ୍ର—ସୂର୍ଯ୍ୟ ୨୭ ତାରିଖ ଜୁନ୍‌ରେ କର୍କଟରେଖା ଅର୍ଥାତ୍ ଉତ୍ତରୀୟ ଅୟନ ସୀମାରେ ପହଞ୍ଚନ୍ତି । ତହୁଁରେ ସୂର୍ଯ୍ୟ ସେଠାରୁ ଦକ୍ଷିଣ ଆଡ଼କୁ ଗତି କରି ୨୨ ତାରିଖ ଡିସେମ୍ବରରେ ମକର ରେଖା ବା ଦକ୍ଷିଣ ଅୟନ ସୀମାରେ ପହଞ୍ଚନ୍ତି । ଏହି ସମୟକୁ ଦକ୍ଷିଣାୟନ ବୋଲାଯାଏ । ଏହି ସମୟରେ କୂଅ, ପୋଖରୀ, ମନ୍ଦିର, ଦେବତା ଆଦିଙ୍କ ପ୍ରତିଷ୍ଠା ଆଦି ନିଷିଦ୍ଧ । ହି. ଶବ୍ଦସାଗର । ]

୨ । ପୃଥିବୀର ମଧ୍ୟସ୍ଥ ବିଷୁବ ରେଖାଠାରୁ ସୂର୍ଯ୍ୟଙ୍କର ଦକ୍ଷିଣକୁ ଗମନ—2. The passing of the sun to the south of the equator, the south declension of the sun.

**ଦକ୍ଷିଣାୟନ ସଙ୍କ୍ରାନ୍ତି**—ସ ବି—ଯେଉଁ ସଙ୍କ୍ରାନ୍ତିରେ ସୂର୍ଯ୍ୟ ପ୍ରଥମେ Dakshiṇāyna saṁkrānti ବିଷୁବ ରେଖାର ଦକ୍ଷିଣକୁ ଗଢ କରନ୍ତି; ଶ୍ରାବଣ ମାସର ସଙ୍କ୍ରାନ୍ତି— The summer solstice.

[ ଦ୍ର—ଏ ଦିନ ହିନ୍ଦୁମାନଙ୍କ ଘରେ କବାଟରେ ଚିତା ଦିଆଯାଇ ପିଠା ଆଦି ପୂଜା ହୁଏ । ]

**ଦକ୍ଷିଣାୟନାନ୍ତ ବୃତ୍ତ**—ଦେ ବି. ( ଭୂଗୋଳ ପରିଭାଷା, ସଂସ୍କୃତପଦ- Dakshiṇāyanānta brutta କଳ୍ପିତ ଶବ୍ଦ )—ସୂର୍ଯ୍ୟଙ୍କ ଦକ୍ଷିଣ ଗତିର ସୀମାନିରୂପକ ରେଖା, ବିଷୁବ ରେଖାର ୨୩½ ଅଂଶ ଦକ୍ଷିଣସ୍ଥ ରେଖା—( geography ) The Tropic of Capricorn; the imaginary circle in the southern hemisphere limiting the sun's southward motion; i.e. which sorrounds the southern hemisphere at 23½ degrees to the south of the equator

**ଦକ୍ଷିଣାରଣ୍ୟ**—ସ. ବି. ( ୭ମୀ ତତ୍; ଦକ୍ଷିଣ+ଅରଣ୍ୟ )— Dakshiṇāranya ୧ । ଦକ୍ଷିଣ ଦିଗରେ ଥିବା ବନ— 1. A forest lying in the south.
୨ । ଦଣ୍ଡକାରଣ୍ୟ—2. The Daṇḍaka forest in the Deccan.

**ଦକ୍ଷିଣାରୁଃ**—ସ ବଣ ଓ ବି. ( ବହୁବ୍ରୀହି, ଦକ୍ଷିଣ=ଡାହାଣ+ଅରୁସ୍ Dakshiṇāruḥ =କ୍ଷତ; ବ୍ରଣ )—ଦକ୍ଷିଣେର୍ମା ( ଦେଖ ) Dakshiṇermā ( See )

**ଦକ୍ଷିଣାର୍ହ**—ସ. ବଣ. ( ଦକ୍ଷିଣା+ଅର୍ହ ଧାତୁ=ଯୋଗ୍ୟ ହେବା+ Dakshiṇārha କର୍ତ୍ତୃ ଅ )—ଦକ୍ଷିଣା ପାଇବାର ଉପଯୁକ୍ତ ( ବ୍ୟକ୍ତି )—Deserving to be given a present of 'Dakshiṇā'.

**ଦକ୍ଷିଣାଶା**—ସ ବି. ( ଦକ୍ଷିଣ+ଆଶା=ଦିଗ )—ଦକ୍ଷିଣ ଦିଗ— Dakshiṇāśā The south.

**ଦକ୍ଷିଣାଶା ପତି**—ସ. ବି—ଦକ୍ଷିଣ ଦିଗର ଦେବତା, ଯମ—Jama, Dakshiṇāśā pati the God of death, presiding over the southern point of the compass.

**ଦକ୍ଷିଣା ସଙ୍କ୍ରାନ୍ତି**—ଦେ. ବି—ଦକ୍ଷିଣାୟନ ସଙ୍କ୍ରାନ୍ତି ( ଦେଖ ) Dakshiṇā saṁkrānti Dakshiṇāyana saṁkrānti ( See )

**ଦକ୍ଷିଣାସ୍ୟ**—ସ. ବଣ. ପୁଂ. (ବହୁବ୍ରୀହି; ଦକ୍ଷିଣ+ଆସ୍ୟ)—ଦକ୍ଷିଣମୁଖା— Dakshiṇāsya Facing the south.
( ଦକ୍ଷିଣାସ୍ୟା—ସ୍ତ୍ରୀ )

**ଦକ୍ଷିଣିଆ**—ଦେ. ବଣ—ଦକ୍ଷିଣୀ ( ଦେଖ ) Dakshiṇiā Dakshiṇi ( See )
ପ୍ରାଦେ. ( ଯାଜପୁର ) ବି—ଦକ୍ଷିଣାତ୍ରୟ ( ଦେଖ ) Dakshiṇātraya ( See )

**ଦକ୍ଷିଣୀ**—ଦେ ବଣ. ( ସ. ଦକ୍ଷିଣୀୟ )—୧ । ଦକ୍ଷିଣ ଦେଶୀୟ— Dakshiṇi 1. Southern
दक्खिनी; दक्खिन्ये ୨ । ଦାକ୍ଷିଣାତ୍ୟ ଦେଶୀୟ –
**दखनी; दक्खिनी; दक्खिनहा** 2. Deccanese
୩ । ଦାକ୍ଷିଣାତ୍ୟ ପ୍ରଚଳିତ— 3. Used or found in the Deccan.
୪ । ତେଲଙ୍ଗୀ, ତୈଲଙ୍ଗ ଦେଶୀୟ—4. Telugu
( ଯଥା—ଦକ୍ଷିଣୀ ନାଟ, ଦକ୍ଷିଣୀ ଦାରି ଇତ୍ୟାଦି । )
ବି—୧ । ଦାକ୍ଷିଣାତ୍ୟ ଦେଶବାସୀ ବ୍ୟକ୍ତି— 1. A Deccanese.
୨ । ତୈଲଙ୍ଗୀୟ ବ୍ୟକ୍ତି, ତେଲଙ୍ଗା; ତେଲଙ୍ଗୀ— 2. A Telugu.
୩ । ଦକ୍ଷିଣଦେଶ, ଦାକ୍ଷିଣାତ୍ୟ—3. The Deccan.

**ଦକ୍ଷିଣୀ ଆଟୁ**—ଦେ. ବି—ଶୁଳ ଘରର ଶୁଳର ତଳେ ବାଉଁଶ ଆଦି Dakshiṇi ātu ପଡ଼ି ମାଟି ଛଟା ହୋଇଥିବା ଛାତ୍ତ ଛାତଯୁକ୍ତ ଆଁଟୁ, ଚାପାଦୋତାଳା ଏକପ୍ରକାର ଘର—A kind of thatched (ଦକ୍ଷିଣୀମାଟୁ—ଅନ୍ୟରୂପ) house within which there is an inner sloping roof made of bamboos and cemented with mud.

[ ଦ୍ର—ଏ ପ୍ରକାର ଘର ଦକ୍ଷିଣଦେଶ ଅର୍ଥାତ୍ ଗଞ୍ଜାମ ଓ ତଦକ୍ଷିଣସ୍ଥ ଅଞ୍ଚଳମାନଙ୍କ ଘରର ଅନୁକରଣରେ ନିର୍ମିତ । ]

**ଦକ୍ଷିଣୀ ଖୋଷା**—ଦେ ବି—ତେଲଙ୍ଗାଣୀମାନେ ମୁଣ୍ଡର ପଛକୁ ଡାହାଣ Dakshiṇi khoshā ଆଡ଼କୁ ବଙ୍କ କରି ବାନ୍ଧିଥିବା ଚିଗ୍ରଫାଳ
माद्राजीखोंपा ପରି ଖୋଷା ବା ଜୁଡ଼ା—
ଦକ୍ଷିଣୀ ଖୋପା } ଅନ୍ୟରୂପ
ଦକ୍ଷିଣୀ ଜୁଡ଼ା }
A peculiar chignon dressed on the right side of the back of the head by Telugu women.

[ ଦ୍ର—ମୁଣ୍ଡର ବାଳରେ ପ୍ରଥମେ ଗଣ୍ଠି ପକାଇ ସେ ଗଣ୍ଠିକୁ ତଳଆଡ଼କୁ ଲେଉଟାଇ ଆଣି ଗୋଟିଏ ପାଖରେ ବେକ ଉପରେ କେଶ ମଧ୍ୟରେ ଖୋସି ବଙ୍କିମ ଭଙ୍ଗିରେ ଏ ଖୋଷା ପକାନ୍ତି । ଓଡ଼ିଆମାନଙ୍କ ଆଖିକୁ ଏ ଖୋଷା ଅତ୍ୟନ୍ତ ସୁନ୍ଦର ଦେଖାଯାଏ । ]

**ଦକ୍ଷିଣୀ ଦାରି**—ଦେ. ବି—ଦାକ୍ଷିଣାତ୍ୟ ଦେଶୀୟ ନର୍ତ୍ତକୀ— Dakshiṇi dāri A Deccanese or Telugu dancing माद्राजी नाचवाली girl.

[ ଦ୍ର—ଦାକ୍ଷିଣାତ୍ୟ ଅଞ୍ଚଳର ବେଶଭୂଷାକୁ ଓଡ଼ିଆମାନେ ପସନ୍ଦ କରନ୍ତି । ସେଥିପାଇଁ କୌଣସି ସ୍ତ୍ରୀକୁ ବେଶି ସ୍ୱଚ୍ଛନ୍ଦ ଦେଖିଲେ ଅନ୍ୟ ସ୍ତ୍ରୀ ଲୋକମାନେ ତାକୁ 'ଦକ୍ଷିଣୀ ଦାରି' ପରି ସୁନ୍ଦର ଦିଶୁଛୁ ବୋଲି କହୁଥାଆନ୍ତି । ]

**ଦକ୍ଷିଣୀ ନାଟ**—ଦେ. ବି.—ଦାକ୍ଷିଣାତ୍ୟ ରୀତି ଅନୁସାରେ ବାଦ୍ୟ ଓ Dakshiṇi nāta ସଙ୍ଗୀତ ସହ ନୃତ୍ୟ—A dance accom- दक्खिनीनाच panied with music in the fashion prevalent in the Deccan.

**ଦକ୍ଷିଣୀ ନାଚପିଲା**—ଦେ. ବ—ଗୋଟିପୁଅ, ଦାକ୍ଷିଣାତ୍ୟପ୍ରଚଳିତ ପଦ୍ଧତି
Dakshiṇī nāṭapilā ଅନୁସାରେ ସଙ୍ଗୀତ ବୋଲି ଓ ବଙ୍କ ଭଙ୍ଗି
ଦକ୍ଷିଣୀ ନାଚୁଅପିଲା } ଅନ୍ୟରୂପ ନାଚ କରୁଥିବା ବାଳକ—
ଦକ୍ଷିଣୀ ନାଚପିଲି } A dancing boy singing and performing some bodily feats and dances in the Deccanese fashion.

[ ଦ୍ର—ଆମଦେଶରେ ରାମାୟଣ, ମହାଭାରତ ଓ ଭାଗବତ ଆଦିର ଉପାଖ୍ୟାନକୁ ଅଭିନୟ କରି ଯେଉଁ ନାଚ ହୁଏ ତାହାକୁ 'ଯାତ୍ରା ବା ଲୀଳା' ବୋଲାଯାଏ ଓ ଆଦିରସମୟ ସଙ୍ଗୀତ ବୋଲି ନାଚୁଆ ପିଲାର ନାଚ କରିବାକୁ 'ଦକ୍ଷିଣୀ ନାଚ' ବୋଲାଯାଏ । ଏ ନାଚୁଆ ପିଲାକୁ 'ଗୋଟିପୁଅ' ମଧ୍ୟ ବୋଲାଯାଏ । ଏମାନେ ଆଦିରସମୟ ସଙ୍ଗୀତ ବୋଲି ନାଚ କରନ୍ତି ଓ ସଙ୍ଗୀତର ମର୍ମଜ୍ଞାପକ ଅଭିନୟ ବା ହସ୍ତାଦିର ଭଙ୍ଗି କରନ୍ତି । ଏହି ପିଲାମାନେ ଶରୀରର ଅଙ୍ଗ ପ୍ରତ୍ୟଙ୍ଗକୁ ନାନାରୂପରେ ବଙ୍କ କରି 'ବଙ୍କ' ମଧ୍ୟ ଭାଙ୍ଗନ୍ତି । ]

**ଦକ୍ଷିଣୀୟ**—ସଂ ବିଣ. ୧ । ( ଦକ୍ଷିଣା + ଅର୍ହାର୍ଥେ ଈୟ )—
Dakshiṇīya ଦକ୍ଷିଣା ପାଇବାର ଯୋଗ୍ୟ—
1. Deserving to be presented with 'Dakshiṇā'.
୨ । ( ଦକ୍ଷିଣ + ସମ୍ବନ୍ଧାର୍ଥେ ଈୟ ) ଦକ୍ଷିଣ ( ଦିଗ ବା ପାର୍ଶ୍ୱ ) ସମ୍ବନ୍ଧୀୟ—2. Southern; right (side)

**ଦକ୍ଷିଣୀ ଲଙ୍କାମରିଚ**—ଦେ. ବ—ଦାକ୍ଷିଣାତ୍ୟରୁ ଆମଦାନି ହୋଇ
Dakshiṇī lankāmaricha ଓଡ଼ିଶାକୁ ଆସୁଥିବା ଶୁଖିଲା
ମାଦ୍ରାଜୀଲଂକା ଲଙ୍କାମରିଚ—Chillies; red pepper imported to Orissa from the Deccan

**ଦକ୍ଷିଣେତର**—ସଂ. ବିଣ. (୫ମୀ ତତ୍, ଦକ୍ଷିଣଠାରୁ ଇତର=ଅନ୍ୟ)—
Dakshiṇetara ବାମ; ବାଆଁ—Left (side).

**ଦକ୍ଷିଣେର୍ମା**—ସଂ. ବିଣ. (ବହୁବ୍ରୀହି; ଦକ୍ଷିଣ=ଡାହାଣ ଦିଗରେ + ଇର୍ମ
Dakshiṇermā =କ୍ଷତ ହୋଇଅଛି ଯାହାର)—ବ୍ୟାଧଦ୍ୱାରା ଡାହାଣଅଙ୍ଗରେ ଶରାହତ (ମୃଗ)—(a deer) Wounded by an arrow on its right side.
ବ—ଦକ୍ଷିଣ ପାର୍ଶ୍ୱରେ ଶରାହତ ମୃଗ—A stag struck with an arrow on his right side.

**ଦକ୍ଷିଣୋତ୍ତର ବୃତ୍ତ**—ଦେ. ବି. (ଭୂଗୋଳ ପରିଭାଷା)—
Dakshiṇottara brutta ୧ । ଯେଉଁ ବୃତ୍ତ ପୃଥିବୀର ବିଷୁବ-ରେଖାକୁ ପାର ହୋଇ ଉତ୍ତରରୁ ଦକ୍ଷିଣକୁ ଯାଇଅଛି—
1. The meridian circle; the path of the sun round the globe.
୨ । ସୂର୍ଯ୍ୟ ପୃଥିବୀ ଚାରିପାଖେ ବର୍ଷକଯାକ ଯେଉଁ ରେଖାରେ ବୁଲନ୍ତି – 2. The sun's ecliptic.
[ ଦ୍ର—ଏହା ଦକ୍ଷିଣାୟନ ( Tropic of Capricorn ) ଓ ଉତ୍ତରାୟଣ ବୃତ୍ତ ( Tropic of Cancer ) ମଧ୍ୟରେ ଅବସ୍ଥିତ । ]

**ଦକ୍ଷିଣ୍ୟ**—ସଂ. ବିଣ. ( ଦକ୍ଷିଣା + ଅର୍ହାର୍ଥେ ଯ )—ଦକ୍ଷିଣା ପାଇବା
Dakshiṇya ଯୋଗ୍ୟ—Fit to be presented with Dakshiṇā.

ସଂ. ବି—୧ । ଅନୁକୂଳ୍ୟ—1. Favour.
୨ । ନୈପୁଣ୍ୟ—2. Skill.
୩ । ଔଦାର୍ଯ୍ୟ—3. Liberality.

**ଦଖମା**—ବୈଦେ. ବି. (ଫା)—ଉପର ମେଲା ଓ ଚାରିଆଡ଼େ ପାଚେରି ଦିଆ
Dakhamā ସ୍ଥାନ, ଯେଉଁ ସ୍ଥାନରେ ପାର୍ଶୀମାନେ ମୁର୍ଦାର ପକାନ୍ତି—
ଦଖମା An open space sorrounded by walls where the Parsis deposit their dead.

**ଦଖଲ**—ବୈଦେ. ବି (କଚିରିଆ) ( ଆ )—୧ । ଅଧିକାର—
Dakhala 1 Possession; occupation.
ଦଖଲ ୨ । ଭୋଗ—2. Enjoyment
ଦଖଲ ୩ । ଆୟତ୍ତ—3. Proficiency; control.
୪ । ଦଖଲା (ଦେଖ)—Dakhalā (See)
ବିଣ—ଦଖଲରେ ଥିବା—In possession.
[ ଦ୍ର—ଏହି ଶବ୍ଦ 'ଭୋଗ' ଓ 'ସ୍ୱତ୍ୱ' ଶବ୍ଦ ପରେ ଅନୁଚର ଶବ୍ଦରୂପେ ବ୍ୟବହୃତ ହୁଏ । ଯଥା—ଭୋଗଦଖଲ, ସ୍ୱତ୍ୱ ଦଖଲ । ]

**ଦଖଲ ଉଚ୍ଛେଦ**—ଦେ. ବ—(କଚିରିଆ ଭାଷା, ଆ. ଦଖଲ୍ ଓ ସଂ.
Dakhala uchchheda ଉଚ୍ଛେଦ) ୧ । କୌଣସି ସମ୍ପତ୍ତିରେ
दखल उच्छेद କୌଣସି ବ୍ୟକ୍ତିର ଅଧିକାରର ରଦ୍ ବା ଲୋପ—
बेदखल 1. Extinction of the right of occupancy.
୨ । ବେଦଖଲ କରିବା – 2. Dispossession; ejectment; eviction

**ଦଖଲ କରିବା**—ଦେ କ୍ରି. (କଚିରିଆ)—୧ । କୌଣସି ସମ୍ପତ୍ତିକୁ
Dakhala karibā ଭୋଗକରିବା—1. To be in possession
दखलकरना or enjoyment of a property; to occupy.
दखलकरना ୨ । ଅଧିକାରଭୁକ୍ତ କରିବା—
2 To take possession of.

**ଦଖଲ କାଏମ୍**—ବୈଦେ. ବି. (ଆ କଚିରିଆ ଭାଷା)—
Dakhala kāem ଦଖଲ ବାହେଲ୍ (ଦେଖ)
दखलकाएम दखलकायम Dakhala bāhel (See).

**ଦଖଲକାର**—ବୈଦେ ବ ( ଆ କଚିରିଆ ଭାଷା)—ଅଧିକାରୀ;
Dakhalakāra ଭୋଗବାନ୍—Occupant; one in
दखलकार enjoyment of possessing
दखलकार (ଦଖଲିକାର—ଅନ୍ୟରୂପ)

**ଦଖଲ ଛାଡ଼ିବା**—ଦେ. କ୍ରି.—(କଚିରିଆ) କୌଣସି ସମ୍ପତ୍ତିରୁ ଆପଣାର
Dakhala chhāṛibā ଦଖଲ ତ୍ୟାଗ କରିବା—
दखलछाड़ा To give up or relinquish possession.
दखल छोड़ना (ଦଖଲ ଛଡ଼ା(ଡେ)ଇବା—ଣିଜନ୍ତ ।)

**ଦଖଲ ଦେବା**—ଦେ. କ୍ରି—(କଚିରିଆ କୌଣସି ବ୍ୟକ୍ତିକୁ କୌଣସି
Dakhala debā ସମ୍ପତ୍ତିରେ ପ୍ରଥମେ ଦଖଲକାର କରାଇବା—
दखलदेओया To give possession; to deliver possession; to admit a person into possession.
दखलदिलाना (ଦଖଲ ଦିଆଇବା—ଅନ୍ୟରୂପ)

ଦଖଲନାମା—ବୈଦେ. ବି. ( କଚେରିଆ )—କୌଣସି ବ୍ୟକ୍ତିଙ୍କୁ ଖରିଦ
Dakhalanāmā ସମ୍ପତ୍ତିରେ ଦଖଲ ଦେବା ନିମନ୍ତେ ହାକିମଙ୍କଠାରୁ
दखलनामा दखलनामा ମିଳିବା ଅଦେଶଲିପି—Writ of delivery
(ଦଖଲନାମା, ଦଖଲ ପରୁଆନା—ଅନ୍ୟରୂପ) of possession

ଦଖଲ ନେବା—ଦେ. କ୍ରି.—(କଚେରିଆ) କୌଣସି ସମ୍ପତ୍ତିକୁ ଖରିଦ
Dakhala nebā କରିବା ପରେ ତାହା ପ୍ରଥମେ ଅଧିକାର
दखल लेना କରିବା—To take possession of a
दखल करलेना thing.

ଦଖଲ ପାଇବା—ଦେ. କ୍ରି.—(କଚେରିଆ) ଅନ୍ୟ ବ୍ୟକ୍ତି ବା ଅଦାଲତ
Dakhala pāibā ସାହାଯ୍ୟରେ କୌଣସି ସମ୍ପତ୍ତିରେ ଆପଣାର
दखलपाओना ଦଖଲ ପ୍ରାପ୍ତ ହେବା ବା ଲାଭ କରିବା—
दखलपाना To be admitted into possession.

ଦଖଲ ପାଇବା ମକଦମା—ଦେ. ବି.—କୌଣସି ସମ୍ପତ୍ତିରେ ଦଖଲ
Dakhala pāibā makadamā ପ୍ରାପ୍ତି ହେବା ନିମନ୍ତେ କରା-
दखल पावाबजन्ये मकदमा ଯିବା ମକଦମା—Possessory
दखलपानेका मुकद्दमा suit; suit for possession

ଦଖଲ ବାହେଲ—ବୈଦେ. ବି. ( ଆ. କଚେରିଆ ଭାଷା )—ଅଧିକୃତ
Dakhala bāhela ବସ୍ତୁରେ ଅଦାଲତଙ୍କ ଦ୍ୱାରା ଆପଣାର ଅଧିକାରକୁ
दखल बाहेल ଦୃଢ଼ୀଭୂତ ବା ସ୍ଥାୟୀ କରିବା—Confirmation or
दखल बाहेल perpetuation of possession through court

[ବ୍ରୁ—ଯେଉଁ ସମ୍ପତ୍ତିରେ ମୋର ଦଖଲ ଅଛି ସେଥିରୁ ଭବିଷ୍ୟତରେ କାଲେ କେହି ମୋତେ ବେଦଖଲ କରିବ ଏଥିପାଇଁ ମକଦମା ଦାଏର କରି ଅଦାଲତଙ୍କ ଆଦେଶରେ ତହିଁରେ ଦଖଲ ବାହେଲ୍ ରଖାଯାଏ ।]

ଦଖଲା—ଦେ. ବିଣ ( ତୁଳ. ତା ଚକଲ=କାଦୁଅ ), ସଂ. ଦଲାଢ଼୍ୟ
Dakhalā ହି. ଶବ୍ଦସାଗର)—ପଙ୍କିଲ, କର୍ଦ୍ଦମମୟ; ଦହଲ୍ଲ (ସ୍ଥାନ)—
पेंकों, दलदले Muddy; miry (place).
दलदला ବି.—୧ । ଜମିର କାଦୁଅ ବା ପଙ୍କୁଆ ଅବସ୍ଥା—
1. Muddy condition of a land.
୨ । କାଦୁଅ; ପଙ୍କ—2 Mud.

ଦଖଲି—ଦେ. ବିଣ. (ଆ, କଚେରିଆ)—୧ । ଦଖଲ ସମ୍ବନ୍ଧୀୟ—
Dakhali 1 Relating to possession; possessory,
दखलि ୨ । ଦଖଲ କରାଯାଇଥିବା; ଅଧିକୃତ—
दखलि 2. Possessed; enjoyed.

ଦଖଲି ସତ୍ୱ ଦେ. ବି (ଆ. ଦଖଲ ଓ ସଂ. ସ୍ୱତ୍ୱ; କଚେରିଆ )—କୌଣସି
Dakhali satwa ସମ୍ପତ୍ତିକୁ ବହୁକାଳ ଭୋଗ ବା ଅଧିକାର କରିବା
ଦଖଲସତ୍ୱ } ବ୍ୟକ୍ତିର ଅଧିକୃତ ସମ୍ପତ୍ତିରେ ଜନ୍ମିବା ଅଧିକାର;
ଦଖଲସ୍ୱତ୍ୱ } ଅନ୍ୟରୂପ ଭୋଗାଧିକାର; ସ୍ଥିତିବାନ୍ ସ୍ୱତ୍ୱ—
दखलिसत्व Right of occupancy; occupancy right; a
दखलफिलहाक right over property ripened by virtue of long possession.

ଦଖଲସତ୍ୱ ଉଦ୍ଭବ ହେବା—ଦେ ବି—(କଚେରିଆ) କୌଣସି ସମ୍ପତ୍ତିରେ
Dakhalisatwa udbhaba hebā ଦଖଲ ରହିବାର ଅଧିକାର
ଜନ୍ମିବା—Accrual of right of occupancy in a property.

ଦଖଲସତ୍ୱବାନ୍ ପ୍ରଜା—ଦେ. ବି (କଚେରିଆ ) ଯେଉଁ ପ୍ରଜାର ଯୋତରେ
Dakhalisatwabān prajā ତାହାର ସ୍ଥିତିବାନ୍ ସତ୍ୱ
( ଦଖଲସତ୍ୱବିଶିଷ୍ଟ ପ୍ରଜା—ଅନ୍ୟରୂପ ) ଉଦ୍ଭବ ହୋଇଅଛି—
दखलिसत्ववानरायत An occupancy raiyat.
दखलकार

ଦଖୁଣା—ଗ୍ରା. ବିଣ (ବାଲେଶ୍ୱର) ( ସଂ ଦକ୍ଷିଣ )—ଦକ୍ଷିଣିଆ, ଦକ୍ଷିଣ-
Dakhunā ଦେଶବାସୀ—Southerner; inhabitant of the South.

ଛଡ଼ିସି ଆମ୍ଭକୁ ଦଖୁଣା ଉତ୍ତର
ନୋହିଲେ ତା ସ୍ୱର ପ ଇବ ମତ୍ତର —ଅନୁପ୍ରବନ୍ଧ. ଚୈତନ୍ୟଙ୍କୀ ।

ଦଖ୍ଲ—ଦେ. ବି—ଦଖଲ ଶବ୍ଦର କଚେରିଆ ଓ କରଣିଆ ସଂକ୍ଷିପ୍ତ ରୂପ—
Dakhla An abbreviated form used by scribes for the word dakhal.
[ ବ୍ରୁ—ଏହାର ସାଙ୍କେତିକ ଚିହ୍ନ । ଦ । ]

ଦଗଡ଼—ଦେ. ବି—୧ । ଦାମାମା, ବଡ଼ ଢୋଲ—
Dagarda 1. Big kettledrum.
दामामा ରଣବାଦ୍ୟବିଶେଷ—2. A kind of war-drum.
ବୈଦେ. ବି ( ପା )—ଦଗାବାଜିଆ ( ଦେଖ )
Dagābājiā ( See ).

ଦଗଧ—ଗ୍ରା ବିଣ ( ପଦ୍ୟ ) ( ସଂ. ଦଗ୍ଧ )—୧ । ଦଗ୍ଧ—
Dagadha 1. Burnt.
दगधा ୨ । କଲବଲ, ସନ୍ତପ୍ତ—2. Afflicted.

ଦେହ ଦୁର୍ବଳ, ଚକ୍ଷୁ କ୍ଷୀଣ
ଦଗଧ କଲୁ ପିଣ୍ଡ ପ୍ରାଣ—ପ୍ରାଚୀ. ନିର୍ଗୁଣ ମାହାତ୍ମ୍ୟ ।

ବି—୧ । ଶରୀରରେ ପିତ୍ତାଧିକ୍ୟ—
1. Excess of bile in the system.
[ ବ୍ରୁ—ଏହା ଶରୀର ମଧ୍ୟରେ ବେଶି ପରିମାଣରେ ଜାତ ହେଲେ ବାନ୍ତି ଜ୍ୱର ଓ ପାଞ୍ଚ ପିଡ଼ା ଲାଗେ ।]
୨ । ଦହନ; ପୋଡ଼ିଯିବା—2. Burning.

ସର୍ପକୁଳ ଦଗଧ ଦେଖି
ନାଗଲୋକକୁ ସେ ଉପେକ୍ଷି—ଜଗନ୍ନାଥ, ଭାଗବତ ।

୩ । ଦଗଧ ହାଣ୍ଡି ( ଦେଖ )—
3 Dagadha hāndi ( See ).

ଦଗଧନି—ଗ୍ରା. ବି (ସଂ. ଦଗ୍ଧ)—ଦହନ; ଜଳପୋଡ଼ି ମରିବା; ଦହଗଞ୍ଜ—
Dagadhani Affliction; harassment; pangs; annoyance.
ଦଗଧନ } ଅନ୍ୟରୂପ
ଦଗଧାନ }

ଦଗଧ ବାଡ଼ିଆ—ଦେ. ବି—ଦଗଧହାଣ୍ଡିକୁ ପାଣି ଉପରେ ଭସାଇ ତାକୁ
Dagadha bārdiā ଗୋଟିଏ ଠେଙ୍ଗାରେ ପିଟିବା କ୍ରିୟା—
The act of breaking the floating dagadha-hāndi.

ଦଗଧ ହାଣ୍ଡି—ଦେ. ବି—ଦଶାହଦନ ଦଶଭୁଠରେ ଯେଉଁ ହାଣ୍ଡିରେ
Dagadha hāndi ଚାଉଳ ସହିତ ତେଲ ଓ ଘିଅ ମିଶାଇ ନିଆଁ
(ଦଗଧଖପରି—ଅନ୍ୟରୂପ) ଉପରେ ରଖି ପୋଡ଼ାଯାଏ—
An earthen pot containing rice; ghee and oil and fried to charcoal and then broken with a stick after it is floated.

ଦଗଧାଇବା—ଦେ. କ୍ରି ( ସଂ ଦଗ୍ଧ )—୧ । ପୋଡ଼ିବା—
Dagadhāibā 1. To burn.
(ଦଗଧେଇବା—ଅନ୍ୟରୂପ) ୨ । ଦନ୍ଦଗଞ୍ଜ କରିବା—
ଦଗଧା ଦଗଧାନା 2. To afflict, to inflict agony.

ଦଗଧିବା—ଦେ ( ପଦ୍ୟ ) କ୍ରି—ପୋଡ଼ିବା, ଦଗ୍ଧ କରିବା—
Dagadhibā To burn.
ଦଗଧା ଏ ପୂର୍ଣ୍ଣ ସ୍ୱର୍ଣ୍ଣ ଦଗଧିଲେ
ଦଗଧନା ଏକ ହୁଅଇ ଯେପ୍ରକାରେ—ଜଗନ୍ନାଥ, ଭାଗବତ ।

ଦଗଧି ମରିବା—ଦେ. (ପଦ୍ୟ) କ୍ରି—ଦନ୍ଦଗଞ୍ଜ ହୋଇ କଷ୍ଟ ପାଇବା—
Dagadhi maribā To be sorely afflicted.
ଦଗଧେମରବା ତାଙ୍କ ପୋଷଣେ ଚିନ୍ତା କରେ
ଦଗଧି ମରେ ଦୁଃଖ ଘୋରେ । ଜଗନ୍ନାଥ. ଭାଗବତ ।

ଦଗଧି ହେବା—ଦେ. କ୍ରି—୧ । ପୋଡ଼ିଯିବା—To be burnt.
Dagadhi hebā
ଜପନ୍ତ ସ୍ୱର୍ଣ୍ଣ ପ୍ରାୟ, ଦେହ ସେ ଦଗଧି ହୁଅଇ । ଜଗନ୍ନାଥ, ଭାଗବତ ।
୨ । ଦଗଧି ମରିବା (ଦେଖ)—
2. Dagadhi maribā (See)

ଦଗଲଫସର(ଲ)—ବୈଦେ ବି (ଫା. ଦଗଲ=ଦଗା+ହି. ଫସଲ ବା
Dagalaphasara(la) ଫଁସାନା=ଫକାଇବା)—ଦଗାବାଜ (ଦେଖ)
ଦଗଲଫସଲ ଦଗଲଫସର Dagābāji (See)

ଦଗଲବାଜ୍—ବୈଦେ ବିଣ. (ଫା)—ଦଗାବାଜ୍ (ଦେଖ)
Dagalabāj Dagābāj (See)
ଦାଗାବାଜ୍ ଦଗାବାଜ
(ଦଗଲ୍‌ବାଜ୍—ଅନ୍ୟରୂପ)

ଦଗଲବାଜି—ବୈଦେ. ବି. (ଫା)—ଦଗାବାଜି (ଦେଖ)
Dagalabāji Dagābāji (See)
(ଦଗଲ୍‌ବାଜି—ଅନ୍ୟରୂପ)

ଦଗଲ(ଲେ)ଇବା—ଦେ. କ୍ରି—୧ । ଧପାଇବା—1. To cheat
Dagalā(le)ibā ୨ । ଭଣ୍ଡାଇବା—2 To cheat a man
ଠକାନ ଧାକାଦେନା by pretexts; to put off

ଦଗା—ବୈଦେ. ବି. (ଫା)—୧ । ପ୍ରବଞ୍ଚନା; ଶଠତା—
Dagā 1 Deceit.
ଦାଗା ୨ । ଠକାମି, ଠକିବା—2. Fraud; imposture.
ଦଗା ୩ । କ୍ଷତି—3. Loss.
୪ । ବିଶ୍ୱାସଘାତକତା—4. Treachery.
୫ । ବନ୍ଧୁକର ଚୋଟେ ବା ଫାଏର; ବନ୍ଧୁକ ଦାଗିବା—
5. One fire or charge with a gun.
ଦେ. ବି—ଦଗାଦଗି (ଦେଖ)—Dagādagi (See)

ଦଗାଦଗି—ଦେ. ବି—ଦାଗିବା ବା ଚିହ୍ନଦେବା ପ୍ରକ୍ରିୟା—
Dagādagi The act of branding with hot iron.
ଦାଗା; ଦାଗାଦାଗି ଦଗାଦଗି

ଦଗାଦାର—ବୈଦେ. ବି. (ଫା)—ଦଗାବାଜ୍ (ଦେଖ)
Dagādāra Dagābāj (See)
(ଦଗାଦଥା—ଅନ୍ୟରୂପ)

ଦଗା ଦେବା—ଦେ କ୍ରି—୧ । ଠକାଇବା—
Dagā debā 1. To defraud; to deceive.
ଦଗା କରିବା } ଅନ୍ୟରୂପ ଦଗାଦେବା ମନେ ଗୁପତେ ଅରଣ୍ୟେ
ଦଗାବାଜି କରିବା } ବାହାରିଲେ ବହୁ ଭୟ ।
ଦାଗାଦେଓଆ ଦଗାଦେନା; ଧୋଖାଦେନା ବ୍ରଜନାଥ. ସମରତରଙ୍ଗ ।
୨ । କ୍ଷତିଗ୍ରସ୍ତ କରିବା—2 To put to loss.

ଦଗାବାଜ୍—ବୈଦେ ବିଣ (ଫା)—୧ । ଧପାବାଜ୍—1. Swindling.
Dagābāj ୨ । ଠକ, ଶଠ—2 Cheating; deceitful.
ଦାଗାବାଜ ଦଗାବାଜ୍ ୩ । ଅବିଶ୍ୱାସୀ—3. Treacherous.

ଦଗାବାଜି—ବୈଦେ. ବି. (ଫା)—୧ । ଶଠତା—1. Deceit.
Dagābāji ୨ । ବିଶ୍ୱାସଘାତକତା—2 Treachery.
(ଦଗାଦାରି—ଅନ୍ୟରୂପ) ୩ । ଅନ୍ୟକୁ ଠକାଇବା—
ଦାଗାବାଜୀ ଦଗାବାଜୀ 3 Defrauding another.
୪ । ଅନ୍ୟଦ୍ୱାରା ଲାଳେ ଠକି ହେବା—
4 Being defrauded by another.

ଦଗାବାଜିଆ—ଦେ. ବିଣ (ଫା ଦାଗାବାଜ୍)—୧ । ପ୍ରତାରଣାପୂର୍ଣ୍ଣ—
Dagābājiā 1 Treacherous; faithless.
ଦଗାଦାର } ୨ । ବିଶ୍ୱାସଘାତକ; ଅବିଶ୍ୱାସୀ—
ଦଗାଦାରିଆ } ଅନ୍ୟରୂପ 2 Treacherous; faithless.
ଦଗାବାଜ }
ଦାଗାବାଜ ଦଗାବାଜ୍

ଦଗେଇବା—ଦେ. କ୍ରି—୧ । ଦାଗିବା କ୍ରିୟାର ଣିଜନ୍ତରୂପ—
Dageibā 1 The causative form of 'Dāgibā'.
ଦଗାଇବା } ଅନ୍ୟରୂପ ୨ । (ରୋଗ ନିବାରଣାର୍ଥ) ଅନ୍ୟ
ଦଗେଇ ହେବା } ବ୍ୟକ୍ତିଦ୍ୱାରା ଆପଣା ଦେହରେ ଚିହ୍ନ-
ଦାଗାନ ଦିଆଇବା—2 To cause one's body to be
ଦଗବାନା branded by another with a hot iron (for the purpose of being freed from some diseases).
୩ । ଅନ୍ୟ ବ୍ୟକ୍ତିଦ୍ୱାରା ଚିହ୍ନଦେବା କର୍ମ କରାଇବା—
3. To cause another to put a mark.

ଦଙ୍ଗା—ବୈଦେ. ବି. ( ଫା. ଦଙ୍ଗଲ୍=କଳି )—୧ । ଦ୍ୱନ୍ଦ୍ୱଯୁଦ୍ଧ—
Dangā 1. A duel.
ଦାଙ୍ଗା ଦଙ୍ଗା ୨ । ଠେଙ୍ଗାଠେଙ୍ଗି; ବାଡ଼ିଅବାଡ଼ି; ମାରପିଟ୍—
2. Affray; hand to hand fight.
୩ । ଉପଦ୍ରବ; ଗୋଳମାଳ—
3. A row; tumult.
୪ । ଶାନ୍ତିଭଙ୍ଗ; ଫଉଜଦାରି—
5. Breach of the peace.

ଦଙ୍ଗା କରିବା—ଦେ. କ୍ରି—ମାଡ଼ପିଟ୍ କରିବା—
Dangā karibā To commit an affray; to create a row.
ଦାଙ୍ଗାକବା ଦଙ୍ଗାକରନା

ଦଙ୍ଗା ଫିସାଦ—ବୈଦେ. ବି. ( ଫା. ଦଙ୍ଗଲ୍ ଓ ଫସାଦ୍ )—
Dangā phisāda ଦଙ୍ଗା ହେଙ୍ଗାମା ( ଦେଖ )
( ଦଙ୍ଗାଫିସାଦ—ଅନ୍ୟରୂପ ) Dangā hengāmā ( See )
ଦାଙ୍ଗା ଫেসাদ্ ଦଙ୍ଗା ଫସାଦ୍

ଦଙ୍ଗାବାଜ୍ — ବୈଦେ. ବ. ( ଫା )—୧ । ମାଡ଼ପିଟ୍ କରିବା ପ୍ରିୟ—
Dangābāj 1. Rowdy.
ଦାঙ্গাবাজ্ ୨ । କଳହପ୍ରିୟ—2. Quarrelsome.
दङ्गाबाज् ୩ । ଫୌଜଦାରୀପ୍ରିୟ—3. Riotous.

ଦଙ୍ଗା ହେଙ୍ଗାମ(ମା)—ବୈଦେ. ବ. (ଫା. ଦଙ୍ଗଲ୍ ଓ ହାଙ୍ଗାମା )—
Dangā hengāma(mā) ୧ । ଫୌଜଦାରୀ—1. Breach of the peace; riot; physical violence.
(ଦଙ୍ଗାହାଙ୍ଗାମା —ଅନ୍ୟରୂପ)
দাঙ্গাহেংগামা दङ्गा हाङ्गामा
୨ । ମାଡ଼ପିଟ୍; ଗୋଳମାଳ—
2. Row; affray, violent uproar.
୩ । ବେଆଇନ ଜନତା—3. Unlawful assembly.
୪ । କଳିକଜିଆ—4. Uproarous quarrel
୫ । ମାଡ଼ପିଟ୍ ଓ ମିଥ୍ୟା ମକଦମା ମାମଲା ଦାଏର—
5. Affray and institution of false cases.

ଦଗ୍ଧ—ସଂ. ବିଣ. (ଦହ୍ ଧାତୁ=ପୋଡ଼ିବା+କର୍ମି. ତ)—୧ । ପୋଡ଼ା—
Dagdha 1 Burnt.
( ଦଗ୍ଧା—ସ୍ତ୍ରୀ ) ୨ । ଭସ୍ମୀଭୂତ—2. Reduced to ashes.
୩ । ମଉ ଖାଇ କଳ ପଡ଼ିଥିବା—3. Withered.
୪ । ( କର୍ତ୍ତୃ ତ ) ସନ୍ତପ୍ତ—4. Afflicted.
ନହୀ ଅବୁଦେ ନାହିଁ ଦଗ୍ଧ ହୋଇ—ଉପେ. ପ୍ରେମସୁଧାନିଧି ।
ଦେ. ବ— ଦଗଧ ( ଦେଖ )—Dagadha (See)

ଦଗ୍ଧକାକ—ସଂ. ବ—ଦ୍ରୋଣକାକ; ଡାମରାକୁଆ—
Dagdhakāka Raven, rook; carrion crow.

ଦଗ୍ଧନି—ଗ୍ରା. ବ—ଦଗଧନି ( ଦେଖ )
Dagdhani Dagadhani ( See )
( ଦଗ୍ଧନି, ଦଗ୍ଧନା—ଅନ୍ୟରୂପ )

ଦଗ୍ଧପତ୍ର ନ୍ୟାୟ—ସଂ. ବ—ଗଛର ପତ୍ରମାନ ପୋଡ଼ି ଗଲେ ପତ୍ରର ପୂର୍ବ ଅବୟବ ଓ ଆକାର ଦେଖି ମଧ୍ୟ ତାହା କେହି ପତ୍ର ବୋଲି ଜ୍ଞାନ କରିଯାଏ, ଏହିପରି ନ୍ୟାୟ—
Dagdhapatra nyāya An analogy of leaves burnt to ashes still retaining their former shape and contour.

ଦଗ୍ଧବ୍ୟ—ସଂ. ବ. ( ଦହ୍ ଧାତୁ+କର୍ମି ତବ୍ୟ )—୧ । ଦାହ୍ୟ—
Dagdhabya 1. Combustible.
୨ । ଦଗ୍ଧ କରିବାର ଉପଯୁକ୍ତ—2. Fit to be burnt.

ଦଗ୍ଧମାନ—ଦେ. ବିଣ. (ପ୍ରାଚୀନ ପଦ୍ୟ) (ସଂ. ଦହ୍ୟମାନ)—
Dagdhamāna ପୋଡ଼ିଯାଉଥିବା—Burning; ablaze.
ଦୂଶାବ ଦୂତାଶନେ ଯେସନ୍ତ
ଶ୍ରୟେ ହୋଇ ଦଗ୍ଧମାନେ—ଜଗନ୍ନାଥ. ଭାଗବତ ।

ଦଗ୍ଧ ହୃଦୟ—ସଂ. ବ. (କର୍ମଧା. ଦଗ୍ଧ+ହୃଦୟ )—
Dagdha hrudaya ୧ । ଦୁଃଖଦ୍ୱାରା କ୍ଲିଶ୍ୟମାନ ହୃଦୟ—
1. An afflicted heart; sorrowfull heart.
୨ । ଅନୁତାପକ୍ଳିଷ୍ଟ ମନ—2. Penitent heart.
ସଂ. ବିଣ. ( ବହୁବ୍ରୀହି )—ଯାହାର ହୃଦୟ ଅନୁତାପରେ କ୍ଳିଷ୍ଟ ହୋଇଅଛି—Penitent.

ଦଗ୍ଧା—ସଂ ବ—ଜ୍ୟୋତିଷ ମତରେ କେତେକ ଅମଙ୍ଗଳ ତିଥି—
Dagdhā Some inauspicious lunar days according to Hindu Astrology
[ଦ୍ର - ଦଗ୍ଧା ତିଥି ୩ପ୍ରକାର ଯଥା—୧ ଦିନଦଗ୍ଧା—ସୋମବାରରେ-ଏକାଦଶୀ, ମଙ୍ଗଳରେ-ଦଶମୀ, ବୁଧରେ-ତୃତୀୟା, ଗୁରୁରେ ଷଷ୍ଠୀ, ଶୁକ୍ରରେ-ଦ୍ୱିତୀୟା, ଶନିରେ-ସପ୍ତମୀ, ରବିବାରରେ-ଦ୍ୱାଦଶୀ ତିଥି ପଡ଼ିଲେ ।
୨—ମାସଦଗ୍ଧା—ସୌର ବୈଶାଖର—ଶୁକ୍ଳାଷଷ୍ଠୀ, ଭାଦ୍ର ମାସର ଶୁକ୍ଳାଦଶମୀ, ଆଶ୍ୱିନର କୃଷ୍ଣାଷ୍ଟମୀ, କାର୍ତ୍ତିକର ଶୁକ୍ଳାଦ୍ୱାଦଶୀ, ମାର୍ଗଶିରର କୃଷ୍ଣାଦଶମୀ, ପୌଷର ଶୁକ୍ଳାଦ୍ୱିତୀୟା, ମାଘର କୃଷ୍ଣା ଦ୍ୱାଦଶୀ, ଫାଲ୍ଗୁନର ଶୁକ୍ଳା ଚତୁର୍ଥୀ, ଚୈତ୍ରର କୃଷ୍ଣା ଦ୍ୱିତୀୟା ।
୩—ଚନ୍ଦ୍ରଦଗ୍ଧା—ମେଷାଦି ରାଶିରେ ଚନ୍ଦ୍ର ଥିଲେ ଉକ୍ତ ତିଥିମାନଙ୍କୁ ଚନ୍ଦ୍ରଦଗ୍ଧା ବୋଲିଯାଏ । ]

ଦଗ୍ଧା ତିଥି—ସଂ ବ—ଦଗ୍ଧା (ଦେଖ )
Dagdhā tithi Dagdha ( See)

ଦଗ୍ଧିକା—ସଂ ବ. ( ଦଗ୍ଧ+କ+ଆ )—
Dagdhikā ପୋଡ଼ା ଭାତ—Burnt rice

ଦଗ୍ଧେଷ୍ଟକା—ସଂ. ବ. (ଦଗ୍ଧ+ଇଷ୍ଟକା)—୧ । ପୋଡ଼ା ଇଟା—
Dagdheshtakā 1. Burnt bricks.
୨ । ଝାମା ଇଟା—2. Vitrified bricks

ଦଚ୍ଛୁକ—ଦେ. ଅ—ଦତ ( ଦେଖ )—Dat ( See )
Dachchhuka (ଦଚୁକ, ଦୁଚୁକ—ଅନ୍ୟରୂପ)

ଦଛ—ଗ୍ରା. ବ ( ସଂ. ଯଶ )—ଯଶ ( ଦେଖ )—
Dachha Jaśa ( See
(ଦଚ୍ଛ—ଅନ୍ୟରୂପ)

ଦଜନ୍—ବୈଦେ. ବ. ( ଇଂ. ଡଜନ୍ )—ଡଜନ୍ ( ଦେଖ )—
Dajan Dajan ( See )
(ଦର୍ଜନ—ଅନ୍ୟରୂପ)
দর্জন, ডজন दर्जन

ଦଜ୍ଜାଲ୍—ବୈଦେ. ବିଣ. (ଆ, ଭୁଲ. ସଂ. ଦୁର୍ଜ୍ଜୟ )—୧ । ଦୁର୍ଦ୍ଦାନ୍ତ—
Dajjāl 1. Very wicked.
(ଜଞ୍ଜାଲ—ଅନ୍ୟରୂପ) ୨ । ପ୍ରବଳପ୍ରତାପୀ—
দজ্জাল दज्जाल 2. Invincible; powerful.

ଦଡ଼କାଝିଙ୍ଗା—ପ୍ରାଦେ. (ସିଂହଭୂମ) ବି—ମଧୁର ତରଡ଼ା—
Dardkājhingā The sweet variety of wild Luffa.
(ଦଡ଼କା—ଅନ୍ୟରୂପ)

ଦଡ଼ି—ପ୍ର ଦେ (କଟକ ଓ ଯାଜପୁର)—କାଦୁଅ; ପଙ୍କ—
Dardi Clay, mud; mire.

ଦଡ଼ି ଫୁଟିଯିବା—ପ୍ରାଦେ. (କଟକ, ଯାଜପୁର) କ୍ରି—
Dardi phutijibā ଅତ୍ୟନ୍ତ କାଦୁଅ ବା ଦହଲା ହେବା—To become very muddy.

ଦଢ଼—ଦେ. ବିଣ. ( ସଂ. ଦୃଢ଼; ପ୍ରା. ଦଢ଼ )—
Dardha ୧ । ଦୃଢ଼; ଶକ୍ତ; ମଜଭୁତ—
ଛିଣ୍ଡା } ଦଦରା } ବିପରୀତ 1. Strong; firm; hard.
ଯେବେ ଏ ହୃଦୟ ଦଢ଼ ହୋଇବ ।
দড় मजबुत
ପ୍ରାଚୀ. ରହସ୍ୟମଞ୍ଜରୀ ୮

୨ । ଅଛିନ୍ନ, ଅଖଣ୍ଡିତ, ଅଭଙ୍ଗା—2. Unbroken; uninjured; untorn; whole, entire, sound

ଦଣ୍ଡା(ଣ୍ଟେ)ଇବା—ଦେ କ୍ରି ( ସଂ ଦଣ୍ଡ )—
Danṭā(nṭe)ibā ୧ । କୌଣସି ବ୍ୟକ୍ତିକୁ ବେକାବୁ କରିବା, ଜବ୍ଦ କରିବା; ନାକାନ୍ତ କରିବା—1. To overpower
ডাঁটনা a person.

[ଦଣ୍ଡା(ଣ୍ଟେ)ଇବା—ଅନ୍ୟରୂପ] ୨ । କୌଣସି ବ୍ୟକ୍ତିକୁ କିଂକର୍ତ୍ତବ୍ୟବିମୂଢ଼ କରିବା —2. To corner a person, to reduce a person to straits or helplessness.

୩ । ହେମତ୍ ଦେବା—3. To encourage a person.

୪ । ଶଗଡ଼ ଦଣ୍ଡାର ଅଗକୁ ଧରି ପଛ ଆଡ଼ୁ ଶଗଡ଼ର ଗତିକୁ ନିୟନ୍ତ୍ରିତ କରିବା—4. To direct the movement of a cart by holding the ends of the poles from behind

উসকেদেওআ ୫ । ଉତ୍ତେଜିତ କରିବା—5 To instigate a person; to incite.

ଦଣ୍ଠା—ପ୍ରାଦେ. (ସମ୍ବଲପୁର) ବି (ସଂ. ଦଣ୍ଡ)—ଡାବ, ଡାବଲ—
Danṭhā A stick for playing dābalapuā

ଦଣ୍ଠାଗିଲି—ପ୍ରାଦେ. (ସମ୍ବଲପୁର) ବି (ସଂ ଦଣ୍ଡ+ଗୋଳକ)—
Danṭhāgili ଡାବଲପୁଆ ଖେଳରେ ବ୍ୟବହୃତ ଡାବଲ (ବଡ଼ ଯଷ୍ଟି) ଓ ପୁଆ (ସାନ କାଠି)—A big stick and stout wooden pin used in the game of dābalapuā.

ଦଣ୍ଡ (ଧାତୁ)—ସଂ.—ଦମନ କରିବା, ଶାସନ କରିବା—
Danda (root) To rule; to punish.

ଦଣ୍ଡ—ସଂ. ବି ( ଦଣ୍ଡ ଧାତୁ+କରଣେ. ଅ )—୧ । ଯଷ୍ଟି; ବାଡ଼ି;
Daṇḍa ଠେଙ୍ଗା, ଲଠି—1. Staff; club, stick; rod.

୨ । (+ଭାବ ଅ) ଶାସନ—2. Administration.

୩ । ସଜା; ଶାସ୍ତି; ଦମନ—
3 Punishment; chastisement.

୪ । ସରୁ ଓ ଲମ୍ବ ବାଉଁଶ ବା କାଠ—4. Thin and long pole.

୫ । ଠିଆ ହେବା—5. Standing erect

୬ । ସନ୍ନ୍ୟାସୀମାନଙ୍କର ଧରିବା ଯଷ୍ଟି—
6. An anchorite's staff.

୭ । ତୀର୍ଥଯାତ୍ରୀଙ୍କ ଧରିବା ବଙ୍କା ବାଡ଼ି—
7. Pilgrim's hooked staff

୮ । ସାମଦାନାଦି ରାଜନୀତି ମଧ୍ୟରୁ ଗୋଟିଏ—
8. One of the duties of an administrator viz, punishing the guilty.

୯ । (+ଅଧିକରଣେ. ଅ) ଯୁଦ୍ଧ—9. Fight.

୧୦ । ବ୍ୟୂହବିଶେଷ—10. Name of a battle-array.

୧୧ । ଅଶ୍ୱ—11. Horse.

୧୨ । କୋଣ—12. Angle

୧୩ । ଦହିଘୁଆ, ମନ୍ଥନଦଣ୍ଡ—
13. Churning staff or rod

୧୪ । ସୂର୍ଯ୍ୟଙ୍କ ପାରିପାର୍ଶ୍ୱିକ ଗ୍ରହବିଶେଷ—
14. Name of a planet.

୧୫ । ରାଜଦଣ୍ଡ, ରାଜଚିହ୍ନବିଶେଷ—
15. Sceptre; one of the insignia of royalty.

୧୬ । ପତାକାର ବାଉଁଶ—16 Flagstaff.

୧୭ । ଯମ—17. Jama, the God of death.

୧୮ । ସୈନ୍ୟ—18 Army
ମିଳିଲେ ଦଣ୍ଡ ସକଳକୁ
ଯୁଦ୍ଧେ ମାରନ୍ତି ନରହରି । ଜଗନ୍ନାଥ ଭାଗବତ ।

୧୯ । ୬୦ ପଳ ପରିମିତ ସମୟ; ୨୪ ମିନିଟ୍, ଦିନକର ୬୦ ଭାଗର ଏକ ଭାଗ · 19. 24 minutes of time.

୨୦ । ଦୈର୍ଘ୍ୟ ପରିମାଣବିଶେଷ, ଚାରି ହାତ—
20 A measure of 4 cubits.

୨୧ । ଯନ୍ତ୍ରାଦିର ହତା, ବେଣ୍ଟ—
21, Handle of an instrument.

୨୨ । ହଳର ଈଶ—22. The pole of a plough.

୨୩ । ନଳ; ଲଠା, ପହକା—24. Measuring rod,

୨୪ । ଦଣ୍ଡକ ରାଜା; ଇକ୍ଷ୍ୱାକୁ ରାଜପୁତ୍ର—
24, Name of a prince.
[ଦ୍ର—ଗୁରୁଙ୍କ ଅଭିଶାପରୁ ଏହାଙ୍କ ରାଜ୍ୟ ଦଣ୍ଡକାରଣ୍ୟରେ ପରିଣତ ହୋଇଥିଲା ।]

୨୫ । ଗଛ ବା ଫୁଲର ଡେମ୍ଫ—
25. The stem of a plant or flower.

୨୬ । ଅଭିମାନ—26 Sensitiveness; egotism.

୨୭ । ଆତ୍ମସମ୍ମାନ—27. Self-esteem

୨୮ । ଡଙ୍ଗାର ଆହୁଲା—28. An oar.

୨୯ । ଜାହାଜର ମାସ୍ତୁଲ—29 Mast of a ship.

୩୦ । ତରାଜୁ ବା ବଣାର କାଠି—
30. The pole or beam of a balance

ଦେ. ବି—୧ । (ବୈଶାଖ ସଂକ୍ରାନ୍ତିରେ ଗୋଟିଏ ଦଣ୍ଡ ପୋତି ସେଥିରେ ପାଟୁଆମାନେ ଅଙ୍କୁଶୀ ଲଗାଇ ଝୁଲୁ ଥିବାରୁ) ଚଡ଼କପୂଜା, ପଣାସଂକ୍ରାନ୍ତି ଉପଲକ୍ଷରେ ପାଣ ଧୋବା ଆଦି କରିବା ଯାତ୍ରା, ଝାମୁ ଯାତ୍ରା—1. A festival observed by low class people on the Panā Samkrānti day.

୨ । (ସଂ. ଦଣ୍ଡ. ତୁଳ. ହି. ଡନ୍, ଡଣ୍ଡ)—ବାରଂବାର ଭୂମିରେ ଦଣ୍ଡବତ୍ ପତିତ ହୋଇ ଉଠିବା ରୂପ ବ୍ୟାୟାମବିଶେଷ—
ডন্ ডंড 2. An athletic exercise of the body by prostrating one's self on the ground and rising again with the help of the arms.

୩ । ଅଲ୍ପ ସମୟ—3. A very brief space of time.

ବଳଭ ଯୋଉଣ କର ବଳାଧୁଚ ପ୍ରକାର ଦଣ୍ଡ ପ୍ରାପ୍ତ ଦଣ୍ଡେ ମଣ୍ଡ ଭଳ।
ଉଞ୍ଜ. ବୈଦେହୀଶବଳାସ ।

**ଦଣ୍ଡକ**—ସଂ. ବ (ଦଣ୍ଡ୍ ଧାତୁ + କର୍ତ୍ତୃ. ଅକ)—୧ । ଯେ ଦଣ୍ଡ ଦିଏ—
Daṇḍaka 1. Punisher.

୨ । ୨୬ ବର୍ଣ୍ଣରୁ ଅଧିକ ବର୍ଣ୍ଣଯୁକ୍ତ ଛନ୍ଦୋବିଶେଷ—
2. A kind of metre containing of more than 26 syllables.

୩ । ଇକ୍ଷ୍ୱାକୁ ରାଜାଙ୍କ ପୁତ୍ର—3. Name of a prince; son of 'Ikshwāku.

[ ଦ୍ର—ଏ ଶୁକ୍ରାଚାର୍ଯ୍ୟଙ୍କ ଶିଷ୍ୟ ଥିଲେ । ଏ ଥରେ ଗୁରୁକନ୍ୟାଙ୍କ କୌମାର୍ଯ୍ୟ ଭଙ୍ଗ କରିବାରୁ ଗୁରୁଙ୍କ ଶାପରେ ଏହାଙ୍କ ପୁର ଭସ୍ମ ହେଲା ଓ ଏହାଙ୍କ ରାଜ୍ୟ ଦଣ୍ଡକାରଣ୍ୟରେ ପରିଣତ ହେଲା । (ହିନ୍ଦୀ ଶବ୍ଦସାଗର) । ]

ଦେ ବ—୧ । ଏକ ଦଣ୍ଡ ସମୟ ମାତ୍ର; ୨୪ ମିନିଟ ସମୟ—
1. One 'Daṇḍa' of time.

୨ । ଅତି ଅଲ୍ପ ସମୟ—
2. A very brief space of time.

ପରଶି ବଧଲେ ସେ ଦଣ୍ଡ ଦଣ୍ଡକରେ ମହୁଷା
ଉଠି ଶଯ୍ୟାପଦେ ପ୍ରଣତ ନନ୍ଦିନୀ ସୁକେଶୀ ।
ଗୋଲକ, ଇନ୍ଦୁରେଖା ।

୩ । ଦଣ୍ଡକିରି (ଦେଖ)—3. Daṇḍakiri (See).

୪ । ଦଣ୍ଡକା (ଦେଖ)—4. Daṇḍakā (See).

ବିଣ—ମୁହୂର୍ତ୍ତିକମାତ୍ର ସ୍ଥାୟୀ—Momentary
ବାରେ ସଶୟ ଦଣ୍ଡକ ରହସେ,
ବୈକୁଣ୍ଠ ମୂର୍ତ୍ତି ଦଣ୍ଡକ ହସେ—ଉଞ୍ଜ. ବୈଦେହୀଶବିଳାସ ।

**ଦଣ୍ଡ କରିବା**—ଦେ. କ୍ରି—ଦଣ୍ଡ ପକାଇବା (ଦେଖ)
Daṇḍa karibā Daṇḍa pakāibā (See).

**ଦଣ୍ଡକା**—ସଂ. ବ—୧ । ଦାକ୍ଷିଣାତ୍ୟର ଅରଣ୍ୟବିଶେଷ—
Daṇḍakā 1. The Daṇḍakā forest (in the Deccan).

[ ଦ୍ର—ଏହା ପୂର୍ବେ ଦଣ୍ଡକ ନୃପତିଙ୍କ ଦେଶ ଥିଲା । ଗୁରୁଙ୍କ ଶାପରେ ଏହା ଅରଣ୍ୟରେ ପରିଣତ ହେଲା । ଏହା ବିନ୍ଧ୍ୟ ପର୍ବତଠାରୁ ଦକ୍ଷିଣରେ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଏଠାରେ ରାମଚନ୍ଦ୍ର ବହୁଦିନ ବନବାସ କରିଥିଲେ ଓ ବିରାଧ ଇତ୍ୟାଦି ଅସୁରଙ୍କୁ ବଧ କରିଥିଲେ । ରାମାୟଣର ଦଣ୍ଡକାରଣ୍ୟ ଉତ୍କଳଦେଶରୁ ଆରମ୍ଭ ହୋଇ ଦାକ୍ଷିଣାତ୍ୟ ଅଞ୍ଚଳ ବ୍ୟାପିଥିଲା ।
( ଭୂପାଚିତ୍ର. ଇତିହାସ ) । ]

୨ । ଦେଶବିଶେଷ—2. The name of a country.

୩ । ଜନସ୍ଥାନନାମକ ପ୍ରଦେଶ—3. The province of Janasthāna.

ଦେ. ବ-(ବର୍ଣ୍ଣିଥ ଶବ୍ଦ)—ଗୋଲାପପାଶର ଉପରିଭାଗସ୍ଥ ନଳ—
The tube of a rose-water sprinkler.

**ଦଣ୍ଡ କାକ**—ସଂ. ବ—ଡାମରକୁଆ—
Daṇḍa kāka A rook.

**ଦଣ୍ଡକାରଣ୍ୟ**—ସଂ. ବ—ଦଣ୍ଡକା ୧ (ଦେଖ)
Daṇḍakāraṇya Daṇḍakā 1 (See).

**ଦଣ୍ଡକିରି**—ଦେ. ବ (ସଂ. ଦଣ୍ଡିକ, ଦଣ୍ଡକ)—ଏକପ୍ରକାର ଅତି ଛୋଟ
Daṇḍakiri ମାଛ—A very small fresh water fish,
ଦଣ୍ଡକେରି, ଦଣ୍ଡିରି } ଅନ୍ୟରୂପ a sort of fry; minnow; Perilampus Laubuca.
दानकूनी डानकूनी डंडहरी

[ ଦ୍ର—ଏ ମାଛ ଲମ୍ବରେ ୧୦ାରୁ ୨ଇଞ୍ଚ ପର୍ଯ୍ୟନ୍ତ ବଢନ୍ତି । ମୁଣ୍ଡ ଚେପଟା, ଏମାନଙ୍କ କାନ୍ଧର ପଛି ଉପରେ ଗୋଟିଏ କଳା ଦାଗ ଥାଏ । ଏମାନଙ୍କର କାତି ଅଛି ଓ ଏମାନେ ମଧୁର ପାଣିରେ ଦଳ ଦଳ ହୋଇ ରହନ୍ତି । ]

**ଦଣ୍ଡଗୌରୀ**—ସଂ.ବ. ସ୍ତ୍ରୀ—ଅପ୍ସରାବିଶେଷ—One of the dancing
Daṇḍagauri nymphs of the heaven.

**ଦଣ୍ଡ ଗ୍ରହଣ କରିବା**—ଦେ. କ୍ରି—୧ । ସନ୍ନ୍ୟାସବ୍ରତ ଅବଲମ୍ବନ କରିବା—
Daṇḍa grahaṇa karibā 1. To resort to the anchorite's staff.
दण्ड ग्रहण करना ୨ । ଆପଣା ଉପରେ ଦିଆଯିବା ଶାସ୍ତିକୁ ନତ-
दण्डग्रहन् करना ମସ୍ତକରେ ସ୍ୱୀକାର କରିବା—2 To acquiesce in the sentence passed on one's self.

**ଦଣ୍ଡଗ୍ରାହ**—ସଂ. ବିଣ.—(ଦଣ୍ଡ + ଗ୍ରହ୍ ଧାତୁ + କର୍ତ୍ତୃ. ଅ)—
Daṇḍagrāha ଦଣ୍ଡଗ୍ରାହୀ (ଦେଖ)
Daṇḍagrāhi (See)

**ଦଣ୍ଡଗ୍ରାହୀ**—ସଂ. ବିଣ. ପୁଂ—( ଦଣ୍ଡ + ଗ୍ରହ୍ ଧାତୁ + କର୍ତ୍ତୃ. ଇନ୍ )—ଯେ
Daṇḍagrāhi ଯଷ୍ଟି ଧରେ—Holding a stick or staff
( ଦଣ୍ଡଗ୍ରାହିଣୀ—ସ୍ତ୍ରୀ )

**ଦଣ୍ଡଚକ୍ରାଦି ନ୍ୟାୟ**—ସଂ ବ.—କୁମ୍ଭକାର ଗୋଟିଏ ଘଟ ନିର୍ମାଣ
Daṇḍachakrādi nyāya କରିବା ପାଇଁ ଯେଉଁପରି ଦଣ୍ଡ, ଚକ୍ର, ସୂତ୍ର, ସଲିଳ ପ୍ରଭୃତି ବହୁ ଉପକରଣ ବା ଯନ୍ତ୍ର ଆବଶ୍ୟକ କରେ ତଦ୍ରୂପ ଗୋଟିଏ କାର୍ଯ୍ୟରେ ବହୁ କାରଣ ସ୍ୱୀକାର କରିବା ନ୍ୟାୟ—The analogy of a potter taking the help of several implements and materials in preparing a pot.

**ଦଣ୍ଡଦାତା**—ସଂ. ବ ପୁଂ—ଯେ ଦଣ୍ଡ ଦିଏ—One who inflicts or
Daṇḍadātā ( ଦଣ୍ଡଦାତ୍ରୀ—ସ୍ତ୍ରୀ ) deals punishment; punisher.

**ଦଣ୍ଡ ଦେବୀ**—ଦେ. ବ. (ନାମ)—କେନ୍ଦୁଝରର ଅଧିଷ୍ଠାତ୍ରୀ ଦେବତା—
Daṇḍa debi Name of a Goddess worshipped in the Keonjhar State of Orissa.

ଦଣ୍ଡଦେବୀ ଅଧିଷ୍ଠ ଭ ସେତୁ ଗୈଲେ ବାଲକାଷ୍ଟ କରି ଗତା ।
ରଘୁନାଥ. ପାଦଙ୍ଗା ।

**ଦଣ୍ଡଧର**—ସଂ. ବ. ପୁଂ. (ଦଣ୍ଡ + ଧୃ ଧାତୁ + କର୍ତ୍ତୃ. ଅ)—୧ । ନୃପତି,
Daṇḍadhara ରାଜା—1. King (holder of the sceptre.

୨ । (ଯେ ପାପୀଙ୍କୁ ଶାସନ କରିବା ପାଇଁ ଦଣ୍ଡଧାରଣ କରନ୍ତି)
ଯମ—2. Jama, the God of death.

୩ । (ଯେ ଚକ୍ର ଘୂରାଇବା ପାଇଁ ଦଣ୍ଡ ଧରେ) କୁମ୍ଭକାର; କୁମ୍ଭାର—3 A potter.

୪ । ଯେ ଦଣ୍ଡ ଦିଏ—4 Punisher.

୫ । ରାଜନିଯୁକ୍ତ ବିଚାରପତି—5 Judge; magistrate.

୬ । ରାଜାଜ୍ଞାରେ ଅପରାଧୀକୁ ଦଣ୍ଡ ଦେବା ନିମନ୍ତେ ବେତ୍ରଧାରୀ (ଭୃତ୍ୟ)—6 A servant carrying a rod for punishing a criminal, lictor.

ବିଣ —୧ । ଯଷ୍ଟିଧାରୀ—1. Holding a staff or rod.

୨ । ରାଜଦଣ୍ଡ ଧାରଣକାରୀ—2. Wielding the sceptre.

**ଦଣ୍ଡଧାର**—ସଂ. ବି. ଓ ବିଣ.—ଦଣ୍ଡଧର (ଦେଖ)
Dandadhāra Dandadhara (See)

**ଦଣ୍ଡଧାରୀ**—ସଂ. ବିଣ. ପୁଂ—(ଦଣ୍ଡ+ଧୃ ଧାତୁ+କର୍ତ୍ତୃ ଇନ୍)—ଯେ ଯଷ୍ଟି ଧାରଣ କରି ଥାଏ—Holding a staff
Dandadhārī
(ଦଣ୍ଡଧାରିଣୀ—ସ୍ତ୍ରୀ) ବି.—୧ । ଦଣ୍ଡୀ; ସନ୍ନ୍ୟାସୀ—1. An anchorite carring a staff

୨ । ରାଜା—2. King

ଯେଉଁଠେ ସନମାନ କରି, ଛାମୁରେ ଉଭା ଦଣ୍ଡଧାରୀ ।
ଭୂପତି, ପ୍ରେମତରଙ୍ଗିଣୀ ।

**ଦଣ୍ଡନ**—ସଂ. ବି. (ଦଣ୍ଡ୍ ଧାତୁ+ଭାବ. ଅନ)—୧ । ଶାସ୍ତି; ଦଣ୍ଡଦେବା—1 Punishment.
Dandana

୨ । ଶାସନ—3 Chastisement.

୩ । ମନ୍ଥନ—2. Churning.

**ଦଣ୍ଡନ ଦଣ୍ଡ**—ସଂ. ବି.(ମ. ପ ଲୋ, ଦଣ୍ଡନ+ଦଣ୍ଡ)—ଦଣ୍ଡଦେବା ବାଡ଼ି;
Dandana danda ଦଣ୍ଡଦେବା ନିମନ୍ତେ ବ୍ୟବହୃତ ଯଷ୍ଟି—A rod used for punishing offenders.

ଦଣ୍ଡନଦଣ୍ଡ ନିପୁନ ଉଜ୍ଜଳ ।
ଭକ୍ତ. ପ୍ରେମସୁଧାନିଧି ।

**ଦଣ୍ଡନ ମଣ୍ଡନ**—ସଂ. ବି (ବିପରୀତାର୍ଥ ସହଚର; ଦଣ୍ଡନ+ମଣ୍ଡନ)—
Dandana mandana ଅପରାଧ ପାଇଁ ଦଣ୍ଡ ଦେବା ଓ ଭଲ କାର୍ଯ୍ୟ ପାଇଁ ପୁରସ୍କାର ଦେବା—Punishment and reward

**ଦଣ୍ଡ ନାଟ**—ପ୍ରାଦେ. (ଗଞ୍ଜାମ) ବି.—୧ । ପଣାସଂକ୍ରାନ୍ତି ପରେ ବାଉରି,
Danda nāta ପାଣ, କଣ୍ଡରା ଆଦି ନିମ୍ନଶ୍ରେଣୀର ଲୋକମାନେ ପୂର୍ବରୁ ମନାସିଥିବା ଅନୁସାରେ ପାଠୁଆ, ଶବର ଶବରୁଣୀ, ଚଢ଼େୟା ଚଢ଼େୟାଣୀ ଆଦି ବେଶରେ ଗ୍ରାମେ ଗ୍ରାମେ ବୁଲି ବାଦ୍ୟସହ ନାଚିବା ଓ ଗୀତ ଗାଇବା ଯାତ୍ରା—1. Dancing performed by the low class people in Ganjam during Baisākha Samkrānti.

[ଦ୍ର—ଓଡ଼ିଶାରେ ଏହାକୁ ପାଟୁଆ ଓ ଗଡ଼ଜାତରେ ଝାମୁନାଟ କହନ୍ତି ।]

୨ । ପଣା ସଂକ୍ରାନ୍ତି ଠାରୁ ଆରମ୍ଭ କରି ଚୈତ୍ରମାସରେ ନିମ୍ନଶ୍ରେଣୀର ଲୋକମାନଙ୍କର ପାଳିବା ବ୍ରତବିଶେଷ—2. A kind of religious vow observed by low class people from Panā Samkrānti day.

[ଦ୍ର—ଏ ବ୍ରତଧାରୀ ବ୍ୟକ୍ତି ଦିବସରେ ଏକ ବେଳ ନିରାମିଷ ଭୋଜନ କଲେ ରାତ୍ରିକାଳ ଖାଆନ୍ତି । ରାତି ବେଳାରୁ ଦେହରେ କଳା, ଗେରୁ ଆଦି ରଙ୍ଗ ମଖାଇ, ମାଳ, ଟୋପି, ମୁକୁଟ, ଅଙ୍ଗା, ଶାଢ଼ୀ, କାଞ୍ଚୁଲା ଆଦି ପିନ୍ଧି ସ୍ତ୍ରୀ ଓ ପୁରୁଷ, ଶବର ଶବରୁଣୀ, ଚଢ଼େୟା ଚଢ଼େୟାଣୀ ଆଦି ବେଶ ହୋଇ ସଙ୍ଗରେ ବାଜାବାଲାଙ୍କୁ ନେଇ ଗ୍ରାମେ ଗ୍ରାମେ ବୁଲି ଗୀତ ଗାଇ ନାଚନ୍ତି । ଏମାନେ ସେ ସମୟରେ ଅନେକ ଭକ୍ତି ଗୀତ ମଧ୍ୟ ବୋଲନ୍ତି । ଆପଣାର କାମନା ପୂରଣ ହେବା ନିକାଶେ ମାନସିକ କରି କାମନା ପୂର୍ଣ୍ଣ ହେବା ପର୍ଯ୍ୟନ୍ତ ବା ପରେ ଲୋକେ ଏହି ଦଣ୍ଡବ୍ରତ କରନ୍ତି । ୧୨ ଦିନ ନାଟ କରି ଶେଷ ଦିନ ବାଳିକା ବା ସ୍ତ୍ରୀ ବେଶ ସାଜି ଗୋଟିଏ ମେଣ୍ଢା ବା ଛେଳିକୁ ବଳି ଦେଇ ତାହାର ମାଂସ ଖାଇ ଏ ବ୍ରତକୁ ଉଦ୍‌ଯାପନ କରନ୍ତି ।]

**ଦଣ୍ଡ ନାୟକ**—ସଂ. ବି.—୧ । ସେନାଧ୍ୟକ୍ଷ, ସେନାପତି—
Danda nāyaka 1. Commander-in-chief; a general, a leader of troops.

୨ । କଟୁଆଲ, ପୁଲିସର ଉଚ୍ଚପଦସ୍ଥ କର୍ମଚାରୀ—2. A police head officer; Superintendent of of police; police magistrate.

୩ । ରାଜା—3. King.

୪ । କୁଲିମାନଙ୍କ ସରଦାର; ଦଫାଦାର—4. The head cooly; Duffadar.

୫ । ଦଣ୍ଡଦାତା—5. One who inflicts punishment.

୬ । ରାଜପୁରୁଷ – 6 A Government official.

୭ । ବିଚାରପତି—7. Judge.

**ଦଣ୍ଡ ନୀତି**—ସଂ. ବି (ବହୁବ୍ରୀହି; ଦଣ୍ଡର ନୀତି=ନିୟମ ଅଛି ଯହିଁରେ)—
Danda nīti ରାଜନୀତି ଶାସ୍ତ୍ରବିଶେଷ, ରାଜ୍ୟଶାସନସମ୍ବନ୍ଧୀୟ ଯାବତୀୟ ନିୟମସମ୍ବଳିତ ନୀତିଶାସ୍ତ୍ର—Political science dealing with administration or duties of kings; science of government.

**ଦଣ୍ଡନୀୟ**—ସଂ. ବିଣ (ଦଣ୍ଡ୍ ଧାତୁ+କର୍ମ. ଅନୀୟ)—ଦଣ୍ଡ ପାଇବାର
Dandanīya ଉପଯୁକ୍ତ; ଦଣ୍ଡାର୍ହ—Punishable; fit to be punished; deserving punishment; liable to punishment.

**ଦଣ୍ଡ ପକା(କେ)ଇବା**—ଦେ. କ୍ରି—ବାରମ୍ବାର ଭୂମିରେ ଦଣ୍ଡବତ୍ ପଡ଼ିବା
Danda pakā(ke)ibā ହେବା ଓ ଉଠିବାଦ୍ୱାରା ବ୍ୟାୟାମ କରିବା—To perform a kind of athletic exercise by alternately prostrating the body and getting up horizontally.

ଦଣ୍ଡଭାଙ୍ଗିବା, ଦଣ୍ଡସାଧିବା, ଦଣ୍ଡ ପେଲିବା } ଅନ୍ୟରୂପ
ଡନପେଲା ਡੰਡ ਪੇਲਣਾ

**ଦଣ୍ଡପାଟ**—ଦେ. ବି—୧ । ରାଜ୍ୟର ଅଂଶବିଶେଷ; ଜିଲ୍ଲା ବା
Dandapāta ସବ୍‌ଡିଭିଜନ୍; ଓଡ଼ିଶାର ପୂର୍ବକାଳର ଶାସନ ବିଭାଗବିଶେଷ—A kind of an administrative division or circle in ancient Orissa.

[ ଦ୍ର—ହିନ୍ଦୁ ରାଜାମାନଙ୍କ ରାଜତ୍ୱକାଳରେ ପ୍ରାଚୀନ ଉତ୍କଳ କେତେଗୁଡ଼ିଏ ବଡ ବଡ଼ ରାଜସ୍ୱ ବା ଶାସନ ବିଭାଗରେ ବିଭକ୍ତ ହୋଇଥିଲା । ପ୍ରତ୍ୟେକର ନାମ ଦଣ୍ଡପାଟ । ଦଣ୍ଡପାଟ କେତେଗୁଡ଼ିଏ ପ୍ରଗଣାର ସମଷ୍ଟି । ଏହା ଆଧୁନିକ ସବ୍‌ଡିଭିଜନ୍ । ]

୨ । ତନ୍ତୁଜାତିବିଶେଷ—2. Name of a caste of weavers (Howells).

ପ୍ରାଦେ. (ସିଂହଭୂମ) ବି—ପ୍ରଧାନ ସେନାପତି — 3. Commander-in-chief.

**ଦଣ୍ଡପାଟ ହୋଇ ବୁଲିବା**—ଏଣେ ତେଣେ ବୁଲିବା, ଅସ୍ଥି ଦଣ୍ଡପାଟ ହୋଇ ବୁଲିବା—To roam about; to loaf about.
Dandapāta hoi buliba
टोटोकवे वेड़ान **भटकना**

**ଦଣ୍ଡ ପାଣି**—ସ. ବିଣ. (ବହୁବ୍ରୀହି; ଦଣ୍ଡ + ପାଣି)—ଦଣ୍ଡଧର—, Carrying a staff
Danda pāni

ବି—୧ । ଯମ—1. Jama.

୨ । ଶିବାନୁଚରବିଶେଷ—2. An attendant of Siba.

୩ । ରାଜା—3. King

ବଡଗ୍ରୀ ଲଭି ପାରିଲେ ଲୁଚ ଲଙ୍କା ବଡଭ ପୁରକୁ ମୃଷ୍ଣ
ଲଙ୍କା ଯେ ଦଣ୍ଡପାଣରେ ରତ ଭପ୍ର ଯେମନ୍ତ ସେ ।
ଉଞ୍ଜ. ବେଦେଶ୍ୱରଚଳାସ ।

**ଦଣ୍ଡ ପାରୁଷ୍ୟ**—ସ ବି. (୬ଷ୍ଠୀ ତତ୍; ଦଣ୍ଡ + ପାରୁଷ୍ୟ = କାଠିନ୍ୟ) —
Danda pārushya ୧ । କଠିନ ଶାରୀରିକ ଦଣ୍ଡ— 1. Rigorous bodily punishment.

୨ । (ହିନ୍ଦୁ ସ୍ମୃତି) ଅଷ୍ଟାଦଶ ବିବାଦ ଅନ୍ତର୍ଗତ ବିବାଦବିଶେଷ— 2. (Hindu law) One of the eighteen defences or disputes.

**ଦଣ୍ଡପାଳ**—ସ. ବିଣ ( ଦଣ୍ଡ + ପାଳ )—ଦଣ୍ଡପାଳକ ( ଦେଖ )
Dandapāla Dandapālaka ( See )

**ଦଣ୍ଡପାଳକ**—ସ. ବିଣ. ( ଦଣ୍ଡ + ପାଳକ = ରକ୍ଷକ )—
Dandapālaka ୧ । ଧର୍ମାଧିକରଣିକ, ବିଚାରପତି—1. Judge.

୨ । ଦୌବାରିକ, ଦ୍ୱାସ୍ଥ, ଦ୍ୱାର ରକ୍ଷକ— 2. A door-keeper; a watchman.

ବି — ୧ । ଦଣ୍ଡିଯୋଡ଼ଲା ମାଛ, କାଠିଯୋଡ଼ଲା ମାଛ—
दण्डपालक 1. A kind of fresh water fish.

[ ଦ୍ର—ଏମାନେ ଲମ୍ବରେ ୩୬ ଅଙ୍ଗୁଳ ପର୍ଯ୍ୟନ୍ତ ବଢ଼ନ୍ତି । ]

୨ । ଦଣ୍ଡକର ମାଛ—2. A kind of fry fish; Perilampus; Lambuca.

**ଦଣ୍ଡପାଶୀ**—ଦେ. ବି (ସ. ଦଣ୍ଡ + ପାଶ୍; ଲୋକଙ୍କୁ ଦଣ୍ଡଦେବା ପାଇଁ
Dandapāsi ଯାହାଙ୍କଠାରେ ଦଣ୍ଡ ଓ ପାଶ ଥାଏ )—

୧ । ରାଜା—1. King.

। ଯେଉଁ ବ୍ୟକ୍ତି ଲୋକଙ୍କୁ ବାନ୍ଧି ବାଡ଼େଇବା ପାଇଁ ଠେଙ୍ଗା ଓ ଫାଶ ଧରିଥାଏ—2. A person carrying a stick and noose to punish people.

ବାସ ପବନ ଦଣ୍ଡପାଶୀ, ବଳେ ହରଇ ବୋଲି ଦୋଷୀ ।
ଉଞ୍ଜ. ବୈଦେଶୀଶବଳାଶ ।

**ଦଣ୍ଡ ପ୍ରଣାମ**—ଦେ. ବି (ମ.ପ.ଲେ, ଦଣ୍ଡବତ୍ ପ୍ରଣାମ)—ଦଣ୍ଡବତ ଦେଖ)
Danda pranāma Dandabata ( See )

ଅର୍ଥଗ୍ରାସ୍ତ୍ର ହେଲ ।ସୀ ଦଣ୍ଡପ୍ରଣାମରେ ସନ୍ତୁଷ୍ଟ ନୁହନ୍ତି । ପ୍ରବଚନ ।

**ଦଣ୍ଡ ପ୍ରାୟେ**—ଦେ କ୍ରି ବିଣ—ଯଷ୍ଟି ପରି ସିଧା ହୋଇ—
Danda prāye Prostrate like a stick.

କୃଷ୍ଣ ଚରଣେ ଟେକ ଦେଇ
ନମଇ ଦଣ୍ଡ ପ୍ରାୟେ ହୋଇ । ଜଗନ୍ନାଥ. ଭାଗବତ ।

**ଦଣ୍ଡବତ୍**—ସ ଅ. ( ଦଣ୍ଡ = ଯଷ୍ଟି + ସାଦୃଶ୍ୟାର୍ଥେ ବତ୍ )—
Dandabat ଯଷ୍ଟି ପରି ସିଧା ଭାବରେ— Prostrate like a stick

ବି—୧ । ଦଣ୍ଡବତ (ଦେଖ)— 1. Dandbata (See).

୨ । ( ଦଣ୍ଡ + ଅସ୍ତ୍ୟର୍ଥେ. ବତ୍ )—ଦଣ୍ଡୀ, ସନ୍ନ୍ୟାସୀ— 2 A class of anchorites holding the sacred staff.

ସ. ବିଣ ( ଶବ୍ଦ ) ଯଷ୍ଟିଧାରୀ—Carrying a stick; armed with a stick.
(ଦଣ୍ଡବାନ୍-ପୁଂ; ଦଣ୍ଡବତୀ — ସ୍ତ୍ରୀ)

**ଦଣ୍ଡବତ**—ଦେ ବ (ସ. ଦଣ୍ଡବତ୍)—ଦଣ୍ଡ ପରି ଭୂମିରେ ପଡ଼ି ପ୍ର
Dandabata ସାଷ୍ଟାଙ୍ଗ ପ୍ରଣିପାତ—Making obeisance by lying prostrate on the ground.
( ଦଣ୍ଡବତ ପ୍ରଣାମ—ଅନ୍ୟରୂପ )
दण्डवत
**दण्डवत; डंडौत**

ଏହା ଶୁଣି ସେ ସାତ କନ୍ୟା ଋଷି ପାଦେ
ଦଣ୍ଡବତ କରଣ ଅତ୍ୟନ୍ତ ପ୍ରମୋଦେ ।
କୃଷ୍ଣସିଂହ. ମହାଭାରତ ଅନୁଶାସନ

ଅ— ପ୍ରଣାମ ବା ନମସ୍କାରସୂଚକ ସମ୍ବୋଧନ— ( Interjection ) A greeting indicating obeisance; I bow to thee.

[ ଦ୍ର—ଦଣ୍ଡବତ ସହସ୍ରାଣି ଖଡ଼ୀ ପତ୍ର ନଦୀୟତେ— ଅଶୁଦ୍ଧ ସଂସ୍କୃତ ବ୍ୟଙ୍ଗ ବଚନ । ଯେଉଁ ଲୋକ ମୁହଁରେ ଭକ୍ତି କରେ ମାତ୍ର ଭକ୍ତିର ନିଦର୍ଶନସ୍ୱରୂପ କିଛି ଉପହାର ନ ଦଏ ତାହାପ୍ରତି ଏହି ବ୍ୟଙ୍ଗୋକ୍ତି ପ୍ରଯୁକ୍ତ ହୁଏ । ଏଥିର ମର୍ମ ଏହି ଯେ—ସୂଚିତ ବ୍ୟକ୍ତିଙ୍କର "ଦଣ୍ଡବତରେ ସୀମା ନାହିଁ, କିନ୍ତୁ ଖଡ଼ୀ ପତ୍ର ପରି ସାମାନ୍ୟ ବସ୍ତୁ ମଧ୍ୟ ଦେବାପାଇଁ କୁଣ୍ଠିତ । ]

**ଦଣ୍ଡବତ କରିବା**—ଦେ. କ୍ରି —୧ । ସାଷ୍ଟାଙ୍ଗ ପ୍ରଣାମ କରିବା—
Dandabata kariba 1. To make obeisance by falling down prostrate at one's feet.
(ଦଣ୍ଡବତ ହେବା—ଅନ୍ୟରୂପ)
दण्डवतकरना
**डंडौतकरना**

ସଭାରେ ଦଣ୍ଡବତ କଲେ
ପ୍ରବଳ ଲକ୍ଷଣ ବୋଇଲେ । ଜଗନ୍ନାଥ, ଭାଗବତ ।

୨ । ନମସ୍କାର କରିବା—2. To make obeisance.

[ ଦ୍ର—ଦଣ୍ଡବତ କରିବାର ଅର୍ଥ ସାଷ୍ଟାଙ୍ଗ ପ୍ରଣିପାତ ହେବା; କିନ୍ତୁ ସାଧାରଣତଃ ଶୂଦ୍ରମାନେ ବ୍ରାହ୍ମଣଙ୍କୁ ଭେଟିଲେ ହାତଯୋଡ଼ି ମୁଣ୍ଡକୁ ନୁଆଇଁ ପ୍ରଣାମ କରନ୍ତି । ଭୂମିରେ ଦଣ୍ଡପରି ଶୋଇପଡ଼ି ପ୍ରଣିପାତ କରନ୍ତି ନାହିଁ; ଅଥଚ ମୁହଁରେ ଦଣ୍ଡବତ୍ ବା ଦଣ୍ଡବତ ଶବ୍ଦ ଉଚ୍ଚାରଣ କରୁଥାଆନ୍ତି ।

ଯାହାକୁ ଭୟ କରାଯାଏ ଓ ଯାହାଠାରୁ ଦୂରରେ ରହିବାକୁ ଇଚ୍ଛା ହୁଏ, କଥାରେ ବ୍ୟଙ୍ଗ ଛଳରେ 'ତାକୁ ଦଣ୍ଡବତ କରୁଛି' ବୋଲି ଲୋକେ କହିଥାଆନ୍ତି । ଯଥା—ଦୁର୍ଜନ ଲୋକକୁ ମୋର ଦଣ୍ଡବତ । ବିଦେଶକୁ ଥରେ ଯାଇ ମୁଁ ଯେଉଁ କଷ୍ଟ ଭୋଗକରି ଆସିଅଛି, ବିଦେଶ ଯିବା କଥାକୁ ମୋର କୋଟି କୋଟି ଦଣ୍ଡବତ । ବିଶେଷ ଭକ୍ତିଯୋଗ୍ୟ ବ୍ୟକ୍ତିଙ୍କୁ ମଧ୍ୟ କୋଟି କୋଟି ଦଣ୍ଡବତ କହିବାର ବୋଲାଯାଇ ଥାଏ । ]

**ଦଣ୍ଡବତି**—ପ୍ରାଦେ (ଗଞ୍ଜାମ) ବି—ସଲାମିରୂପେ ଦିଆଯିବା ଧନ, ପ୍ରଣାମୀ—
Dandabati Money paid as a token of respect during an interview.

**ଦଣ୍ଡବାନ୍**—ସଂ ବି ଓ ବିଣ—ଦଣ୍ଡବତ୍ ୨ ଓ ୩ (ଦେଖ)
Dandabān Dandabat 2 and 3 (See)

**ଦଣ୍ଡବାଲଧି**—ସଂ. ବି. (ବହୁବ୍ରୀହି, ଦଣ୍ଡ+ବାଲଧି=ପୁଚ୍ଛ)—ହସ୍ତୀ—
Dandabāladhi Elephant.

**ଦଣ୍ଡବାସୀ**—ସଂ. ବି—୧ । ଦ୍ୱାରପାଳ—
Dandabāsi 1. Door keeper.
୨ । ଚୌକିଦାର, ଦଣ୍ଡୁଆସି—2. Watchman
୩ । ଗ୍ରାମର ହାକିମ -3 Village headman.

**ଦଣ୍ଡ ବିଧି**—ସଂ. ବି—୧ । ରାଜ୍ୟର ଶାସନ ବିଧି—
Danda bidhi 1. Administrative rules of a state
୨ । ଅପରାଧୀର ଦଣ୍ଡବିଧାନ ନିମନ୍ତେ ପ୍ରଣୀତ ନିୟମାବଳୀ—
2. The Penal Code
୩ । ଫୌଜଦାରୀ କାର୍ଯ୍ୟବିଧି ଆଇନ୍—
3. Criminal Procedure Code

**ଦଣ୍ଡ ବ୍ୟୂହ**—ସଂ. ବି. (ମ. ପ ଲୋ, ଦଣ୍ଡ=ଦଣ୍ଡାକାରରେ ସଜ୍ଜିତ+ବ୍ୟୂହ,—କୌଶଳରେ ଦଣ୍ଡାକାରରେ ସଜ୍ଜିତ
Danda byūha
ଏକପ୍ରକାର ସୈନ୍ୟ ରଚନା—Name of a peculiar battle-array
[ ଦ୍ର—ଏହି ବ୍ୟୂହର ଅଗ୍ରରେ ପ୍ରଧାନ ସେନାପତି, ମଧ୍ୟରେ ରାଜା, ପଛରେ ସେନାପତି, ଦୁଇ ପାଖରେ ହସ୍ତୀ ଓ ଘୋଡ଼କ ଏବଂ ସମସ୍ତଙ୍କ ପଛରେ ପଦାତିକଗଣ ସଜ୍ଜିତ ହୋଇ ରହି ଥାଆନ୍ତି—ହି. ଶବ୍ଦସାଗର । ]

**ଦଣ୍ଡଭୃତ୍**—ସଂ ବିଣ. (ଦଣ୍ଡ+ଭୃ ଧାତୁ=ଧରିବା+କର୍ତ୍ତୃ. କ୍ୱିପ୍=ଯେ ଧାରଣ କରେ)—୧ । ଦଣ୍ଡପାଣି—
Dandabhrut 1. Carrying a staff.
ସଂ. ବି—ଦଣ୍ଡଧର ରାଜା—2. King (who holds the royal sceptre.

**ଦଣ୍ଡମଣ୍ଡ** (ଇତ୍ୟାଦି)—ଦଣ୍ଡମୁଣ୍ଡ ଇତ୍ୟାଦି (ଦେଖ)
Dandamanda (etc) Dandamunda etc (See)

**ଦଣ୍ଡ ମତ୍ସ୍ୟ**—ସଂ ବି—ବମ୍ପୀ ମାଛ (ଦେଖ)
Danda matsy amī fish (See)

**ଦଣ୍ଡ ମାନବ**—ସଂ. ବି ( ମ. ପ. ଲୋ·; ଦଣ୍ଡାର୍ହ ମାନବ )—ବାଳକ (ହି. ଶବ୍ଦସାଗର)—Boy.
Danda mānaba

**ଦଣ୍ଡମୁଣ୍ଡ**—ଦେ. ବି (ସଂ ଦଣ୍ଡ ଓ ମଣ୍ଡ ଧାତୁ )—
Dandamunda ୧ । ନାନାପ୍ରକାର ଦଣ୍ଡ—1. Various kinds of punishments or penalties.
ଦଣ୍ଡମୁଣ୍ଡ
୨ । ଦଣ୍ଡ ଓ ପୁରସ୍କାର—2. Punishment and reward.
୩ । ଅଭିଶାପ—3. Curse

**ଦଣ୍ଡମୁଣ୍ଡ କରିବା**—ଦେ କ୍ରି—୧ । ନାନାପ୍ରକାର ଦଣ୍ଡଦେବା—
Dandamunda karibā 1 To inflict various punishments.
(ଦଣ୍ଡମୁଣ୍ଡଦେବା—ଅନ୍ୟରୂପ)
୨ । ଦଣ୍ଡଦେବା ଓ ପୁରସ୍କାର ଦେବା—
2. To mete out punishment and reward.

**ଦଣ୍ଡମୁଣ୍ଡ କର୍ତ୍ତା**—ଦେ ବି—ଦଣ୍ଡଦାତା ଓ ପୁରସ୍କାର ଦାତା -
Dandamunda karttā One who can punish as well as reward.
(ଦଣ୍ଡମୁଣ୍ଡ ବିଧାତା—ଅନ୍ୟରୂପ)
ଦଣ୍ଡମୁଣ୍ଡେର କର୍ତ୍ତା

**ଦଣ୍ଡ ଯାତ୍ରା**—ସଂ. ବି—୧ । ଯୁଦ୍ଧ ଯାତ୍ରା—1. Military expedition; marching for fighting.
Danda jātrā
୨ । ଦିଗ୍ବିଜୟାର୍ଥ ଯାତ୍ରା—
2. March to conquer adjoining countries.
୩ । ଦୋଷୀଙ୍କୁ ଦଣ୍ଡଦେବା ପାଇଁ ସୈନ୍ୟଯାତ୍ରା—
3. Punitive expedition.
୪ । ବରର ଅନୁଗମନ, ବରସଙ୍ଗେ ବରଯାତ୍ରୀଙ୍କ ଯାତ୍ରା—
4. A marriage procession.
୫ । ଶୋଭାଯାତ୍ରା—5 A ceremonial procession
ଦେ. ବି—ପଣାସଂକ୍ରାନ୍ତି ସମୟରେ ପାଣ ଧୋବାଆଦିଙ୍କ ଦ୍ୱାରା ପାଳିତ ଉତ୍ସବ—A festival and dancing observed by low caste people on 'Baisākha Samkrānti.'

**ଦଣ୍ଡଯାମ**—ସଂ ବି—୧ । ଯମ—
Dandajāma 1. The Hindu God of death.
୨ । ଦିନ—2. Day.
୩ । ଅଗସ୍ତ୍ୟମୁନି—3. Sage Agastya.

**ଦଣ୍ଡ ଶାସ୍ତ୍ର**—ସଂ. ବି—ଦଣ୍ଡବିଧି (ଦେଖ)
Danda śāstra Dandabidhi (See)

**ଦଣ୍ଡ ସଂହିତା**—ସଂ. ବି—ଦଣ୍ଡବିଧି (ଦେଖ)
Danda samhitā Dandabidhi (See)

**ଦଣ୍ଡ ସହାୟ**—ସଂ. ବି—ଯେଉଁ ରାଜା ଅପରାଧୀର ଦଣ୍ଡ ବିଧାନରେ ବା ଦୁଷ୍ଟଦମନରେ ସହାୟତା କରନ୍ତି—
Danda sahāya
A king who helps in bringing the offender to justice.

**ଦଣ୍ଡସେନା**—ପ୍ରାଦେ (ଗଡ଼ଜାତ) ବି—ଓଡ଼ିଶା ଗଡ଼ଜାତରେ ପାଇକମାନଙ୍କର ଉପାଧିବିଶେଷ—A title of the Paiks of the Orissa States.
Dandasenā
(ଦଣ୍ଡସେଣା—ଅନ୍ୟରୂପ)

**ଦଣ୍ଡ ସ୍ଥାନ**—ସଂ. ବି. ( ୭ମୀ ତତ୍, ଦଣ୍ଡ+ସ୍ଥାନ )—
Danda sthāna ୧ । ଯେଉଁସ୍ଥାନରେ ଅପରାଧୀକୁ ଦଣ୍ଡ ଦିଆଯାଏ—
1. A place where an offender undergoes punishment.

୨ । ମନୁଷ୍ୟକୁ ଯେଉଁ ଯେଉଁ ଅଙ୍ଗରେ ବା ବିଷୟରେ ଦଣ୍ଡ ଦିଆ ଯାଇପାରେ—2. The limbs or items on which punishment is meted out.
[ ଦ୍ର—ମନୁସଂହିତା ମତରେ ଉପସ୍ଥ, ଉଦର, ଜିହ୍ୱା, ହସ୍ତ, ପଦ, ଆଖି, ନାକ, କାନ, ଧନ ଓ ଦେହ ଦଣ୍ଡସ୍ଥାନ—ହି ଶବ୍ଦସାଗର । ]

**ଦଣ୍ଡା**—ଦେ ବି (ସଂ ଦଣ୍ଡ)—୧ । ଶଗଡ଼ର ଲମ୍ବ ଦଣ୍ଡଦ୍ୱୟ—
Daṇḍā 1 The two long side-pieces of a bullock-cart; the poles of a cart.
दाण्डा, डाण्डा
उन्डा ୨ । ଯଷ୍ଟି; ଠେଙ୍ଗା, ଲମ୍ବା ବାଡ଼ି—
2. A long stick; a lathi; a pole; a mace.
୩ । ପଡ଼ିଆ, ପଡ଼ିଆ ଭୂମି—3. Waste land
ଯେଉଁ ସବୁ ଗ୍ରାମ ନଗ୍ର ଯୋଷର
ହୋଇ ପାଟ ଦଣ୍ଡା ହେବ ବୁ ପାର । ନନ୍ଦକିଶୋର. ନିର୍ବାଣୀ ।
୪ । ଗୋଚର ପଡ଼ିଆ—4. Pasture for the cattle of the village public; common grazing field.
୫ । ଗ୍ରାମର ରାସ୍ତା—5. A village road.
୬ । ବ୍ୟାୟାମ; ଦଣ୍ଡ ଭାଙ୍ଗିବା—6. An athletic exercise consisting of alternately lying prostrate and raising one's body with the help of the hands.
୭ । ଆଖୁଗଛର ପତ୍ରଶୂନ୍ୟ ଲମ୍ବ ଡାଙ୍ଗ ବା ଛଡ଼—
7. A leafless stem of sugarcane.
ଦେଖ ସୁନ୍ଦର ଏ ଛନ୍ଦ ନାହ
ଦଣ୍ଡାକାର ସ୍ୱାଦେ ସରସ । ନନ୍ଦକିଶୋର. ନିର୍ବାଣୀ ।
୮ । ଦାଣ୍ଡି ଅର୍ଥାତ୍ ଲମ୍ବା ସିଧା ବାଟ—
8. A long straight road
(ଯଥା—ବଣରେ ହାତୀଙ୍କ ଦଣ୍ଡା ପଡ଼ିଛି ।)
୯ । ଗୋଦଣ୍ଡା; ଗୋରୁମାନଙ୍କ ଯାତାୟାତ କରିବା ସକାଶେ ଗ୍ରାମରୁ ଗ୍ରାମାନ୍ତରକୁ ପଡ଼ିଥିବା ରାସ୍ତା—9. A road for cattle; cattle-track.
ବିଣ.—୧ । ଦଣ୍ଡପରି ଲମ୍ବ—1. Long like a bamboo.
ବିଜୟ ସଙ୍ଗେ ଧର୍ମବ୍ୟାଧ ତାଙ୍କୁ ଦେଖି
ଦଣ୍ଡା ହୋଇ ଶୋଇ ପଡ଼ିଲେ ନୋହି ଦୁଃଖୀ । କୃଷ୍ଣସିଂହ. ମହାଭାରତ ବନ.
୨ । ବାଉଁଶ ଦଣ୍ଡ ପରି ଭୂମିରେ ଲମ୍ବ ହୋଇ ପଡ଼ିଛି—
2. Lying prostrate on the ground like a bamboo pole.
( ଯଥା—ତୋତେ ମାଡ଼ରେ ଦଣ୍ଡା କରି ଦେବି । )
ଗ୍ରାଦେ. ( ଗଞ୍ଜାମ ) ବି—ଶଗଡ଼ର ଗୁଳା; ଶଗଡ଼ ଚକ ଦ୍ୱାରା ଭୂମିରେ ଚିହ୍ନିତ ରାସ୍ତା—Cart-track; rut.

**ଦଣ୍ଡା(ଣ୍ଡେ)ଇବା**—ଦେ. କ୍ରି—୧ । ଦଣ୍ଡିବା କ୍ରିୟାର ଣିଜନ୍ତ ରୂପ—
Daṇḍā(ṇḍe)ibā 1. The causative form of Daṇḍibā
दण्ड देओआना
डंड दिलाना
ସିନ ଖାନରେ ପ୍ରଭୁର ଭଣ୍ଡଙ୍କୁ, ଦିଥା କହି ଦଣ୍ଡାଇବ କାମକୁ ।
ଭକ୍ତ. ଲାବଣ୍ୟବତୀ ।
୨ । ତଣ୍ଡାଇବା (ଦେଖ)—2. Taṇḍāibā ( See )

**ଦଣ୍ଡା କରିବା**—ଦେ. କ୍ରି—ବିଶେଷ ପ୍ରହାର ଦେଇ କୌଣସି ବ୍ୟକ୍ତିକୁ ଠେଙ୍ଗା ପରି ଲମ୍ବ ଭାବରେ ଭୂମିରେ ପକାଇବା—
Daṇḍā karibā
[ଦଣ୍ଡା ବଳା(ଳେ)ଇବା]
To beat a person to prostration.
डाण्डा करना, सोटा करदेओआ

**ଦଣ୍ଡା କାଠି**—ଦେ. ବି—ଶଗଡ଼ର ଦଣ୍ଡାର ପଛର ଅଗ୍ରଭାଗ, ଯାହାକୁ ମୁଠା ଦ୍ୱାରା ଧରି ଶଗଡ଼ର ଗତିକୁ ନିୟନ୍ତ୍ରିତ କରାଯାଏ—The handles of the poles of cart ( at the back ) by holding which the motion of the cart is directed from behind.
Daṇḍā kāṭhi

**ଦଣ୍ଡାଘାତ**—ସଂ. ବି. ( ୭ମୀ ତତ୍, ଦଣ୍ଡ+ଆଘାତ )—
Daṇḍāghāta ଠେଙ୍ଗା ପ୍ରହାର—Beating with a lathi; cudgelling.

**ଦଣ୍ଡାଜିନ**—ସଂ. ବି—୧ । ପ୍ରତାରଣା, କପଟବେଶ—
Daṇḍājina Fraud; cheating; false garb.
୨ । ସନ୍ନ୍ୟାସୀଙ୍କ ବ୍ୟବହୃତ ଦଣ୍ଡ ଓ ମୃଗ ବା ବ୍ୟାଘ୍ରଛାଲ—
2 The staff and hide used by an ascetic

**ଦଣ୍ଡାଜ୍ଞା**—ସଂ. ବି. ( ୬ଷ୍ଠୀ ତତ୍, ଦଣ୍ଡ+ଆଜ୍ଞା )—
Daṇḍājñā ଅପରାଧୀର ଦଣ୍ଡ ନିମନ୍ତେ ବିଚାରପତିଙ୍କ ପ୍ରଦତ୍ତ ହୁକୁମ—Judicial sentence passed on an accused; order of conviction

**ଦଣ୍ଡା ତଡ଼ା**—ଦେ. ବିଣ—ଚାଷ କରିବା ନିମନ୍ତେ ଦଣ୍ଡା ବା ପଡ଼ିଆ ଜମିକୁ
Daṇḍā taṛdā ହଣାକଟା କରିବା ବା ତାଡ଼ିବା—
Reclamation or clearance of waste land for cultivation.

**ଦଣ୍ଡାଦଣ୍ଡି**—ସଂ. କ୍ରି. ବିଣ. ଓ ବି (ବହୁବ୍ରୀହି, ଦଣ୍ଡ+ଦଣ୍ଡ+ଇ, ବ୍ୟତିହାର)—ଠେଙ୍ଗା ଦ୍ୱାରା ପରସ୍ପର ମାଡ଼ ମରାମରି ହୋଇ (ଯେଉଁ ଯୁଦ୍ଧ କରାଯାଏ ); ଲଠାଲଠି, ଠେଙ୍ଗା ଠେଙ୍ଗି; ବାଡ଼ିଆବାଡ଼ି—A fight with sticks; mutual dealing of blows with sticks
Daṇḍādaṇḍi

**ଦଣ୍ଡା ଧରିବା**—ଦେ. କ୍ରି—ଚାଲୁଥିବା ଶଗଡ଼ର ଗତିକୁ ନିୟନ୍ତ୍ରିତ କରିବା ସକାଶେ ଶଗଡ଼ର ପଛ ଭାଗରେ ଥିବା ଦଣ୍ଡାର ମୁଠିରେ ହାତ ପକାଇବା—To hold the handles of the cart-poles in order to direct the movement of a cart from behind.
Daṇḍā dharibā

**ଦଣ୍ଡାପୂପ ନ୍ୟାୟ**—ସଂ. ବି. ( ଦଣ୍ଡ+ଅପୂପ=ପିଠା+ନ୍ୟାୟ )—
Daṇḍāpūpa nyāya ଗୋଟିଏ ପିଠାକୁ ଖଣ୍ଡିଏ ଦଣ୍ଡ ବା ବାଡ଼ିରେ ଫୋଡ଼ି ରଖିଥିବା ଅବସ୍ଥାରେ ମୂଷା ଆସି ସେ ବାଡ଼ିର ଅଗରୁ କିୟଦଂଶ ଦନ୍ତ ଦ୍ୱାରା ଖଣ୍ଡିଆ କରିଥିବାରୁ ଗୃହସ୍ଥ ବାଡ଼ିଆଂଶରେ ମୂଷାର ଦନ୍ତକ୍ଷତ ଚିହ୍ନ ଦେଖି ସ୍ଥିର କଲେ ଯେ ମୂଷା ଯେତେବେଳେ ବାଡ଼ି ପରି ଟାଣୁଆ ପଦାର୍ଥର କିୟଦଂଶ ଖାଇଛି ସେତେବେଳେ ସେ ନିଶ୍ଚୟ କୋମଳ ପିଠାକୁ ଖାଇଥିବ ଏଥିରେ ସନ୍ଦେହ ନାହିଁ ।

ଏହିପରି କୌଣସି ବୃହତ୍ତର କାର୍ଯ୍ୟର ସିଦ୍ଧିରୁ କୌଣସି ସ୍ୱଳ୍ପତର କାର୍ଯ୍ୟର ସିଦ୍ଧ ବିଷୟ ଅନୁମାନ କରିବା ସ୍ଥଳରେ ଏହି ନ୍ୟାୟ ପ୍ରଯୁକ୍ତ ହୁଏ—An argument based on the deduction of the greater possibility of a thing having occured, when a thing of lesser magnitude is found to have happened owing to the same cause

**ଦଣ୍ଡା ପେଲିବା**—ଦେ. କ୍ରି—୧ । ଦଣ୍ଡେଇବା ୪ ( ଦେଖ )
Dandā pelibā 1. Dandeibā 4 ( See )
୨ । କ୍ରି—ହାମୁଡ଼େଇବା ପୂର୍ବରୁ (ପିଲାମାନେ) ହାତ ସାହାଯ୍ୟରେ ପେଟେଇ ଗୁଞ୍ଜିବା—2 To move (said of infants) with the help of the hands and belly.

**ଦଣ୍ଡା ଭଙ୍ଗା**—ଦେ. ବିଣ - ପଡ଼ିଆ, ଗୋଚର ଓ ଶ୍ମଶାନ ଆଦି ଭାଙ୍ଗି ଯେ
Dandā bhangā ଚଷ କରେ—Reclaiming a waste or village common.
ପର ଧୁଁ ଷା ହରଣ ଯେ ଦଣ୍ଡାଭଙ୍ଗା ଚୁଷା । ପ୍ରାଚୀ ଶ୍ରୀ ଗୁରୁଭକ୍ତିଗୀତା ।
ବି—ପଡ଼ିଆ ବା ଦଣ୍ଡାକୁ କୃଷିଯୋଗ୍ୟ ଜମିରେ ପରିଣତ କରିବା—Reclamation of waste land

**ଦଣ୍ଡାମାରୁ**—ଦେ ବି—୧ । ଯେଉଁ ବ୍ୟକ୍ତି ଅନ୍ୟଙ୍କୁ ବଧ ବା ପ୍ରହାର
Dandāmāru କରିବା ନିମନ୍ତେ ଠେଙ୍ଗା ଧରି ଥାଏ; ଲଠିଆଳ—
(ଦଣ୍ଡ ମାରୁ—ଅନ୍ୟରୂପ) 1. A person armed with a
ଡାଂଡାମାର ଡଂଡାମାର cudgel to kill or beat others
୨ । ଶ୍ରମ-ପରାକ୍ରମ ବ୍ୟକ୍ତି—
2. A mighty or powerful person
୩ । ଭୟଙ୍କର ବ୍ୟକ୍ତି—3. A ferocious person.

**ଦଣ୍ଡା ମୁଠା**—ଦେ. ବି—ଶଗଡ଼ର ଦଣ୍ଡାର ପଛ ଭାଗ ଯାହାକୁ ମୁଠା ଦ୍ୱାରା
Dandā muthā ଧରି ଶଗଡ଼ର ଗତିକୁ ନିୟନ୍ତ୍ରିତ କରାଯାଏ—
(ଦଣ୍ଡାମୁଠି—ଅନ୍ୟରୂପ) The handle of the poles of a cart ( at the back ) by holding which the motion of the cart is directed.

**ଦଣ୍ଡାୟ (ଧାତୁ)**—ସଂ. (ନାମ ଧାତୁ) (ଦଣ୍ଡ ଧାତୁରେ ଆଚରଣ ଅର୍ଥରେ
Dandāya (root) 'ଆୟ' ପ୍ରତ୍ୟୟରେ ନିଷ୍ପନ୍ନ )—
ଦଣ୍ଡ ପରି ଆଚରଣ କରିବା—
To act or be like a pole.

**ଦଣ୍ଡାୟମାନ**—ସଂ. ବିଣ. ପୁଂ. ( ଦଣ୍ଡାୟ ଧାତୁ + କର୍ତ୍ତୃ. ଆନ )—
Dandāyamāna ସିଧା ହୋଇ ଠିଆ ହୋଇଥିବା—Standing
(ଦଣ୍ଡାୟମାନା—ସ୍ତ୍ରୀ) upright; standing erect.
[ ଦ୍ର—'ଦଣ୍ଡବତ୍' ଶବ୍ଦର ସଂସ୍କୃତ ଅର୍ଥ ଭୂମିରେ ଦଣ୍ଡ ବା ଯଷ୍ଟିପରି ଲମ୍ବ ହୋଇ ଶୋଇ ଦଣ୍ଡବତ୍ ପ୍ରଣାମ କରିବା; 'ଦଣ୍ଡାୟମାନର' ଅର୍ଥ ଠେଙ୍ଗା ପରି ଗୋଡ଼ରେ ସିଧା ଠିଆ ହେବା । ]

**ଦଣ୍ଡାର**—ସଂ. ବି ( ଦଣ୍ଡ + ଋ ଧାତୁ = ଗମନ କରିବା + କର୍ତ୍ତୃ. ଅ )—
Dandāra ୧ । ଦଣ୍ଡାଥିବା ଶଗଡ଼—1. A car with poles.
୨ । କୁମ୍ଭାର ଚକ—2. A potter's wheel.
୩ । ଧନୁ—3. A bow
୪ । ମତ୍ତ ହସ୍ତୀ—4. A must or restive elephant.

**ଦଣ୍ଡାର୍ତ୍ତ**—ସଂ ବିଣ. ପୁଂ (ତୃତୀୟା ତତ୍; ଦଣ୍ଡ + ଆର୍ତ୍ତ)—୧ । ଦଣ୍ଡଦ୍ୱାରା
Dandārtta ଉତ୍ପୀଡ଼ିତ ବା ଜର୍ଜରିତ—1. Overpowered
( ଦଣ୍ଡାର୍ତ୍ତା—ସ୍ତ୍ରୀ ) with punishment.
୨ । ଠେଙ୍ଗାମାଡ଼ଦ୍ୱାରା ଜର୍ଜରିତ—2 Overpowered with blows by lāthis.
ସଂ ବି—ଚମ୍ପାନଦୀ ତୀରସ୍ଥ ତୀର୍ଥବିଶେଷ—A place of pilgrimage on the Champa river.

**ଦଣ୍ଡାର୍ହ**—ସଂ ବିଣ ପୁଂ ( ଦଣ୍ଡ + ଅର୍ହ ଧାତୁ = ଯୋଗ୍ୟ ହେବା +
Dandārha କର୍ତ୍ତୃ.ଅ)—ଦଣ୍ଡ ପାଇବାର ଉପଯୁକ୍ତ—Punishable;
(ଦଣ୍ଡାର୍ହା—ସ୍ତ୍ରୀ) deserving punishment.

**ଦଣ୍ଡାଳୟ**—ସଂ. ବି (ଦଣ୍ଡ + ଆଳୟ)—୧ । ଧର୍ମାଧିକରଣ—
Dandālaya 1 Court of justice.
୨ । ଜେଲଖାନା—2. Jail; prison.
୩ । ଛନ୍ଦୋବିଶେଷ—3. Name of a metre.

**ଦଣ୍ଡାଳୁ**—ସଂ ବି—ଲମ୍ବ ଆଳୁ (ବରେନ୍ଦ୍ରକୃଷ୍ଣ. ଦ୍ରବ୍ୟଗୁଣ)—
Dandālu A kind of yam having straight long tuberous root (as distinguished from other kinds of yam with round roots).

**ଦଣ୍ଡାଶ୍ରମ**—ସଂ. ବି (ଦଣ୍ଡ + ଆଶ୍ରମ)—ତୀର୍ଥଯାତ୍ରୀର ବ୍ରତ; ତୀର୍ଥ କରିବାର
Dandāsrama ବ୍ରତ ଧାରଣ—The condition or vow of a pilgrim.

**ଦଣ୍ଡାଶ୍ରମ ଗ୍ରହଣ କରିବା**—ଦେ. କ୍ରି—ତୀର୍ଥଯାତ୍ରା କରିବାର ସଙ୍କଳ୍ପ କରି
Dandāsrama grahana karibā ଦଣ୍ଡ ଧାରଣ କରିବା—
To resort to the pilgrim's staff; to take a vow of pilgrimage.

**ଦଣ୍ଡାସି**—ଦେ ବି (ସଂ. ଦଣ୍ଡବାସୀ)—ଦଣ୍ଡୁଆସି ( ଦେଖ )—
Dandāsi Danduāsi ( See )
ପ୍ରାଦେ ( ଗଞ୍ଜାମ ) ବି—( ସଂ. ଦଣ୍ଡ, ଏମାନେ ଦଣ୍ଡ ଧରି ପହରା ଦେଉଥିବାରୁ )—ଗଞ୍ଜାମର ଗ୍ରାମ ଜଗୁଆଳ ନୀଚ ଅସ୍ପୃଶ୍ୟ ଜାତିବିଶେଷ—A caste of low caste village watchman in Ganjam

[ଦ୍ର—୧୯୧୯ ସାଲର ଜନ ଗଣନାରେ ଏମାନଙ୍କ ସଂଖ୍ୟା ଗଞ୍ଜାମରେ ୪୪ ହଜାର ଥିଲା । କେବଳ ଗଞ୍ଜାମ ଜିଲ୍ଲାରେ ଏ ଜାତି ଅଛନ୍ତି । ଏ ୪୪ ହଜାର ମଧ୍ୟରୁ ପ୍ରୌଢ଼ ବୟସର ପ୍ରାୟ ୨ ହଜାର ଚୋରି ବ୍ୟବସାୟ କରୁଥିବାର ଦେଖା ଯିବାରୁ ଏମାନଙ୍କୁ ଦାଗୀ ଜାତି ଆଇନ୍ (Criminal Tribes Act) ଅନୁସାରେ ଅପରାଧୀରୂପେ ରେଜିଷ୍ଟର କରା ଯାଇଥିଲା ଓ ଏମାନେ ପ୍ରତିଦିନ ରାତିରେ ନିକଟବର୍ତ୍ତୀ ଥାନାରେ ହାଜର ହେବାକୁ ବାଧ୍ୟ ହେଉଥିଲେ । ଏମାନେ ୧୯୨୪ ଠାରୁ ସଙ୍ଘବଦ୍ଧ ହୋଇ ତାରତାରିଣୀ ଠାକୁରାଣୀଙ୍କ ଠାରେ ଶପଥ କରି ମଦ୍ୟ, ଗୋମାଂସ ଓ ଶୂକର-ମାଂସ ଭକ୍ଷଣ ତ୍ୟାଗ କରି ଅଛନ୍ତି ଓ ଏମାନଙ୍କ ମଧ୍ୟରୁ ଚୋରି କରିବା ଲୋକଙ୍କୁ କର୍ତ୍ତୃପକ୍ଷଙ୍କଠାରେ ଧରାଇ ଦେଉ ଅଛନ୍ତି ।

ଏମାନଙ୍କର ଏହି ପରିବର୍ତ୍ତନ ଦେଖି ସରକାରୀ ହାକିମମାନେ ଜୀବିକାହୀନ ଦଣ୍ଡାସୀମାନଙ୍କୁ କୃଷି କରିବାକୁ ଜମି ଦେଇ ଛତ୍ରପୁର, ଘୁମୁସର ଆଦି ସ୍ଥାନରେ ଏମାନଙ୍କର ବସତି ପାଇଁ ଗ୍ରାମ ବସାଇ ଅଛନ୍ତି । ଦୈନିକ ଆଶା ୧-୭-୨୯]

**ଦଣ୍ଡାହତ**—ସଂ ବିଣ ( ତୃତୀୟା ତତ୍, ଦଣ୍ଡ+ଆହତ ) -- ଠେଙ୍ଗାହାରା Daṇḍāhata ତାଡ଼ିତ—Beaten with lathi

ବି—ଘୋଳଦହି—Churned curd; butter milk.

**ଦଣ୍ଡି** - ଦେ. ବି. (ସଂ ଦଣ୍ଡ) -- ୧ । ନାକ ପୁଡ଼ାର ମଧ୍ୟବର୍ତ୍ତୀ ସ୍ଥଳ, Daṇḍi ନାକଦଣ୍ଡି --1. The middle wall dividing the two nostrils
ଦାଣ୍ଡି
डंडि

୨ । ନାକଦଣ୍ଡିରେ ପିନ୍ଧାଯିବା ଅଳଙ୍କାରବିଶେଷ —
2 A nose-ring worn in a hole made on the wall between the two nostrils.

୩ । ତୁଳାଦଣ୍ଡ, କଣ୍ଟା—3. The yard or pole of a balance; scale-beam.

୪ । ଗିନା ଆଦିକୁ ଧରିବା ନିମନ୍ତେ ସେଥିରେ ଲାଗିଥିବା ନାସୀ—4. Handle of a cup or jug (Howells).

ପ୍ରାଦେ. (ଜୟପୁର) ବି.—କାଶ ତୃଣ (ଦେଖ) Kāśa truṇa (See)

**ଦଣ୍ଡିଆ**—ଦେ. ବି. (ସଂ. ଦାଣ୍ଡିକ)—୧ । ଯେଉଁ କର୍ମଚାରୀ ହାଟରେ Daṇḍiā ପଣ୍ୟବିକ୍ରେତାମାନଙ୍କଠାରୁ ଶୁଳ୍କ ବା ତୋଲା ଆଦାୟ
दणिडदार
କରେ—1, The official who realises rates or tax from stall-keepers or venders in a market.

୨ । ପଣ୍ୟ ଦ୍ରବ୍ୟାଦି ତଉଲିବା ବ୍ୟକ୍ତି —
2. Weighman.

୩ । ଦଣ୍ଡିଦାର, ଯେ ପଣ୍ୟ ବିକ୍ରେତାଙ୍କଠାରୁ ପଣ୍ୟ ଦ୍ରବ୍ୟ ମାନ ଓଜନ କରି କିଣି ନେଇ ମହାଜନମାନଙ୍କୁ ବିକି ଦିଏ ଓ ଏଥିପାଇଁ ପାଉସେରି ପାଏ; ଦଲାଲ—
3 A broker or middleman who purchases merchandise or grains from vendors and sells them to wholesale merchants on getting a commission.

ଦେ. ବିଣ ପୁଂ. (ଗାଳ)—କଳହୁଡ଼ା (ପୁରୁଷ)—
(ଦଣ୍ଡେଇ—ସ୍ତ୍ରୀ) Quarrelsome (man).

**ଦଣ୍ଡିକ**—ସଂ. ବିଣ. (ଦଣ୍ଡ+ଅସ୍ତି ଅର୍ଥରେ ଇକ)—ଦଣ୍ଡଧର—
Daṇḍika Holding a staff.

(ଦଣ୍ଡିକା—ସ୍ତ୍ରୀ) ବି· ୧ । ଆଶା ସୋଟା ଧରିବା ଲୋକ; ଛଡ଼ିବରଦାର—1 A mace-bearer·

୨ । ଦଣ୍ଡକରି (ଦେଖ)—2. Daṇḍakiri (See)

**ଦଣ୍ଡିକା**—ସଂ. ବି. ସ୍ତ୍ରୀ. (ଦଣ୍ଡିକ+ସ୍ତ୍ରୀ. ଆ)—୧ । ଦଉଡ଼ି—
Daṇḍikā 1. A rope

୨ । ହାର—2. A necklace

୩ । ଲୁହାର ଗୋଡ଼ବେଡ଼ି—
3. Shackles or chains for the leg.

**ଦଣ୍ଡିକରି**—ଦେ ବି—ଦଣ୍ଡକରି (ଦେଖ)
Daṇḍikiri Daṇḍakiri (See)
(ଦଣ୍ଡିକେର, ଦଣ୍ଡିଖିର, ଦଣ୍ଡିଖେର—ଅନ୍ୟରୂପ)

**ଦଣ୍ଡିକେଲି**—ପ୍ରାଦେ. (ଗଞ୍ଜାମ) ବି.—ଦଣ୍ଡକରି (ଦେଖ)
Daṇḍikeḷi Daṇḍakiri (See)

**ଦଣ୍ଡି ଗୁଣା**—ଦେ ବି. (ବଣିଆ ଶବ୍ଦ)—ନାକର ଅଳଙ୍କାରବିଶେଷ—
Daṇḍi guṇā An ornament for the nose

**ଦଣ୍ଡିତ**—ସଂ. ବିଣ --( ଦଣ୍ଡ ଧାତୁ+କର୍ମ. ତ )—ଦଣ୍ଡପ୍ରାପ୍ତ, ଶାସିତ —
Daṇḍita Punished; chastised, convicted.

**ଦଣ୍ଡିଦାର**—ଦେ ବି.—ଦଣ୍ଡିଆ ୩ (ଦେଖ)
Daṇḍidāra Daṇḍiā 3 (See)

ଉତ୍କଳର ସମସ୍ତ ବେପାରୀଙ୍କର ସମସ୍ତ ମାଲର ଆମଦାନି ରପ୍ତାନି ଦଣ୍ଡିଦାରଙ୍କର ହାତବାଟେ ହେଉଥିଲା । ଫକୀରମୋହନ ଗଳ୍ପସ୍ୱଳ୍ପ ।

**ଦଣ୍ଡିଦାରି**—ଦେ. ବି.—ଦଣ୍ଡିଦାରର କର୍ମ—The work of a
Daṇḍidāri 'Daṇḍidāra' or broker.

**ଦଣ୍ଡି ନାକ**—ଦେ. ବି.—ନାସିକା ରନ୍ଧ୍ର ଦ୍ୱୟର ମଧ୍ୟବର୍ତ୍ତୀ ନାକଦଣ୍ଡି,
Daṇḍi nāka (ଯେଉଁ ସ୍ଥାନରେ ଦଣ୍ଡି ପିନ୍ଧିବାକୁ ଛିଦ୍ର କରାଯାଏ)—The middle wall between the two nostrils which is bored for wearing a 'Daṇḍi'.

**ଦଣ୍ଡି ପଲା**—ଦେ. ବି. (ସଂ. ଦଣ୍ଡପାଲକ)—ତଉଲିବାର ଦଣ୍ଡ ଓ ଅଧାର-
Daṇḍi palā ଦ୍ୱୟ; କଣ୍ଟା ଓ ପଲା—The scale-beam and
(ଦଣ୍ଡିପଲ୍ଲା—ଅନ୍ୟରୂପ) pans of a balance.
दाँड़िपाला
डंडिपलड

**ଦଣ୍ଡି ପୋହଳା**—ଦେ. ବି—( ସଂ ଦଣ୍ଡୋତ୍ପଳ, ଦଣ୍ଡପାଲକ )—
Daṇḍi pohaḷā ୧ । କ୍ଷୁଦ୍ରବୃକ୍ଷବିଶେଷ; ବର୍ଷାୟୁ ଗୁଳ୍ମ, ଶାକ-
ଡାନକୁନି ବିଶେଷ—1. Canscora Decussata.
दानकोनी

[ ବୃ—ଏହାର ନାଡ଼ ଗୁରୁକୋଣିଆଁ, ଏହା ପାଣି ପାଖ ବିଲରେ ଜନ୍ମେ; ଫୁଲ ଧଳା ଓ ଚତୁର୍ଦ୍ଦଳ ଯୁକ୍ତ, ୪ ଗୋଟି କେଶର, ଫଳ ଦ୍ୱିକୋଷ; ବୀଜ କ୍ଷୁଦ୍ର ଓ ବହୁକୋଣ; ଶୀତଦିନେ ଫଳ ପାଚେ; ବର୍ଷା ଦିନେ ଫୁଲ ଫୁଟେ । ]

୨ । କାଠି ପୋହଳା ମାଛ—2. A kind of small fish.

୩ । ଶୃଙ୍ଗାର ହାର (ଦେଖ)
3. Sṛungāra hāra (See)

୪ । (ବୈଦ୍ୟକ) (ସଂ. ଦଣ୍ଡିପ୍ରବାଳ)—ବୃକ୍ଷବିଶେଷ—
4 A kind of tree.

**ଦଣ୍ଡିବା**—ଦେ. କ୍ରି ( ସଂ ଦଣ୍ଡଧାତୁ )—୧ । ଦଣ୍ଡ ଦେବା—
Daṇḍibā 1. To punish
दण्ड देओया
डंड देना

ଦଣ୍ଡିବା ଶକ୍ତି ଯାର ଥାଇ
ସେ ପୁଣି କ୍ଷମା ଆଚରଇ । ଜଗନ୍ନାଥ. ଭାଗବତ ।

୨ । ବଳି ପଡ଼ିବା—2 To exceed; to excel.

କନକ ଗିରିଶୃଙ୍ଗ ଶୋଭାକୁ ଦଣ୍ଡିଛି । କୃଷ୍ଣସିଂହ. ମହାଭାରତ. ସଭା ।

ଦଣ୍ଡିମ—ସ. ବିଣ (ଦଣ୍ଡ+ଅସ୍ତ୍ୟର୍ଥେ ଇମନ, ୧ମା ୧ବ)—ଦଣ୍ଡଧାରୀ—
Daṇḍima Holding a sceptre or staff.
ବି. ୧ । ଯମ— 1. Jama, the regent of death
୨ । ଛଡ଼ି ବରଦାର—A mace-bearer.
୩ । ଦ୍ୱାରପାଳ; ଦୁଆରୀ—3. A door-keeper
୪ । ଜୈନବିଶେଷ—4 A class of Jainas
୫ । ସନ୍ନ୍ୟାସୀ—5 A religious mendicant.
୬ । ଦମନକ ବା ଦଅଣାଗଛ—6. Name of an aromatic plant.

ଦଣ୍ଡିଲ—ଦେ. ବିଣ ପୁଂ (ସ ଉଦ୍ଦଣ୍ଡ, ବାଳକ ବାଳିକାଙ୍କ ପ୍ରତି ବ୍ୟବହୃତ)
Daṇḍila ୧ । ଦୁଷ୍ଟ—1 Wicked.
(ଦଣ୍ଡିଲୀ-ସ୍ତ୍ରୀ) ୨ । ଉଦ୍ଦଣ୍ଡ—2 Mischievous; ferocious
୩ । ଛଟପଟିଆ—3. Restless

ଦଣ୍ଡୀ—ସ. ବି ପୁଂ (ଦଣ୍ଡ+ଅସ୍ତ୍ୟର୍ଥେ. ଇନ୍; ୧ମା. ୧ବ.)—
Daṇḍī ୧ । ଦଣ୍ଡିମ ଦେଖ)
(ଦଣ୍ଡିନୀ—ସ୍ତ୍ରୀ) 1. Daṇḍima (See)
दण्डी ୨ । ଚତୁର୍ଥାଶ୍ରମ, ସନ୍ନ୍ୟାସୀ ଋଷି—
2. A mendicant who has betaken to the 4th or last stage of a Hindu's life, one who in his old age has betaken to the life of an ascetic
୩ । ଜନୈକ ପ୍ରାଚୀନ ରାଜା— 3. Name of a king of ancient India.
[ଦ୍ର—ଏ ଉର୍ବଶୀଙ୍କୁ ଘୋଟକରୂପେ ପ୍ରାପ୍ତ ହୋଇଥିଲେ ।]
୪ । (ନାମ) ଖ୍ରୀ: ଷଷ୍ଠ ଶତାବ୍ଦୀର ଜଣେ କବି, ଏ ସଂସ୍କୃତ କାବ୍ୟାଦର୍ଶ ଓ ଦଶକୁମାରଚରିତର ରଚୟିତା—4. Name of a medieval Sanscrit author and annotator of India
୫ । ସୂର୍ଯ୍ୟଙ୍କ ପାର୍ଶ୍ୱଚରବିଶେଷ—5 Name of an attendant of the Sun-God.
୬ । ଦଣ୍ଡଧାରୀ; ଶାସନକର୍ତ୍ତା—6. A ruler; a holder of the sceptre of administration; administrative head of a country.
ଦେ. ବିଣ—ଦଣ୍ଡିତ—Punished.
ଗାଇବ ଯେ ଦେଇଛ ସ୍ୱର୍ଣ୍ଣରେ ମଣ୍ଡି
ତକୁ ସୂର୍ଯ୍ୟ ଅବାରେ କୋଦେ ଯମଦଣ୍ଡୀ । କୃଷ୍ଣସିଂହ. ମହାଭାରତ.ବନ ।

ଦଣ୍ଡୁଆସି—ଦେ. ବି (ସ. ଦଣ୍ଡବାସୀ)—୧ । ଚଉକିଦାର, ଚଉକିଆ—
Daṇḍuāsi 1. A watchman.
(ଦଣ୍ଡେଇସି—ଅନ୍ୟରୂପ) ଥୋକାଏ ନୁଆ ଦଣ୍ଡୁଆସି
ହୁଇ କହନ୍ତ ଦୁହିଙ୍କଣି । ଜଗନ୍ନାଥ ଭାଗବତ ।
दण्डाश्व ୨ । (ସ. ସଂଦଂଶ) କମାରର ବଡ଼ ଚିମୁଟା; କମାରର ବଡ଼
दंड़वाशि ଦଣ୍ଡୁଆସି—2. A pair of blacksmith's tongs; pincers.

ଦଣ୍ଡୁରି—ପ୍ରାଦେ (ବାଲେଶ୍ୱର) ବି—୧ । ଖାଲୋଇ—
Daṇḍuri 1. A bag made of bamboo, cane, creeper or twigs for putting fish therein.
୨ । ପାଛିଆ—2 A small basket of bamboo or wicker-work.

ଦଣ୍ଡେଇ—ପ୍ରାଦେ (ଗଡ଼ଜାତ) ବି—ଦଣ୍ଡକିରି (ଦେଖ)
Daṇḍei Daṇḍakiri (See)
ଦେ. ବିଣ ସ୍ତ୍ରୀ (ଗାଳି)—କଳହକାରିଣୀ (ସ୍ତ୍ରୀ)—
Quarrelsome (woman).

ଦଣ୍ଡେହେଁ—ଦେ ଅ—କ୍ଷଣମାତ୍ର—
Daṇḍeheñ Even for a moment.
ଏ ବାଳକଙ୍କୁ ସ୍ୱାମୀଦ୍ରୋହୀ
ଏହାଙ୍କୁ ଦଣ୍ଡେହେଁ ନ ଥୋଇ—ଜଗନ୍ନାଥ. ଭାଗବତ ।

ଦଣ୍ଡୋତ୍ପଳ—ସ ବି—୧ । କାଠିପୋହଳା ମାଛ—
Daṇḍotpaḷa 1. A kind of small fish.
୨ । ଏକପ୍ରକାର ବର୍ଷାୟୁ ଶାକ—
2, A kind of annual plant.

ଦଣ୍ଡ୍ୟ—ସ ବିଣ. ପୁଂ (ଦଣ୍ଡ+ଯୋଗ୍ୟାର୍ଥେ ଯ)—ଦଣ୍ଡନୀୟ,
Daṇḍya ଦଣ୍ଡାର୍ହ; ଦଣ୍ଡ ପାଇବାର ଯୋଗ୍ୟ—
(ଦଣ୍ଡ୍ୟା—ସ୍ତ୍ରୀ) Punishable, deserving punishment.

ଦତ—ଦେ. ଅ (ସ. ଧିକ୍)—ଧୁତ୍ (ଦେଖ)
Dat Dhut (See)
ବି—କମାରର ବଡ଼ ହାତୁଡ଼ି—
Blacksmith's sledge-hammer.
ସ. ବି (ଦମ୍ ଧାତୁ+କରଣ. ତ)—ଦାନ୍ତ—Tooth.

ଦତ୍ତ—ଦେ. ଅ—ଧୁତ୍ (ଦେଖ)
Dat ta Dhut (See)

ଦତଆଳ—ଗ୍ରା. ବିଣ. ପୁଂ (ବ୍ୟଙ୍ଗ୍ୟୋକ୍ତି) (ସ. ଦାତା)—
Datiāḷa ଦାନଶୌଣ୍ଡ; ଦାନଶୀଳ; ଦାତା—
ଦତ୍ତଅଳ, ଦତ୍ତଆଳିଆ } ଅନ୍ୟରୂପ (ironical) Very generous;
ଦତ୍ତିଅଳ, ଦତ୍ତିଆଳିଆ } very charitable.
(ଦତ୍ତଆଳୀ—ସ୍ତ୍ରୀ)

ଦତ୍ତ—ସ. ବିଣ (ଦା ଧାତୁ=ଦେବା+କର୍ମ. ତ; ଭୂଲ. ଲାଟିନ୍ ଡେଟା,
Datta ୧ । ଯାହା ଦାନ କରାଯାଇଥାଏ;
(ଦତ୍ତା—ସ୍ତ୍ରୀ) କୃତଦାନ; ଦାନ କରାଯାଇଥିବା—
1. Given away; dedicated.
୨ । ନ୍ୟସ୍ତ; ଅର୍ପିତ—
2. Deposited; conferred; bestowed.
୩ । ଉତ୍ସୃଷ୍ଟ—3. Offered, dedicated.
୪ । ତ୍ୟକ୍ତ—4. Left; parted with.
ବି (+ଭାବ ତ)—୧ । ଦାନ—1. Gift.
୨ । ପ୍ରାଚୀନ ଭାରତର ରାଜାବିଶେଷ—
2. Name of a king of ancient India.
୩ । ବୈଶ୍ୟମାନଙ୍କ ବଂଶୋପାଧିବିଶେଷ—
3 A family-title of the Baiśyas.
୪ । ଦତ୍ତାତ୍ରେୟ, ଅତ୍ରିମୁନିଙ୍କ ପୁତ୍ର; ଭଗବାନଙ୍କର ଅବତାର ବିଶେଷ—4. Name of a son of sage Atri, said to be an incarnation of 'Bishṇu'

୫ । ପୁତ୍ରବିଶେଷ, ଦତ୍ତକପୁତ୍ର —
5. An adopted son.
'ଦେ. ବି—ଶୂଦ୍ର, ଗାମିଲୀ ଓ କାୟସ୍ଥ ବଙ୍ଗାଳଙ୍କ ଉପାଧିବିଶେଷ —
A family title of Bengalee Sūdras and Kāyasthas.

**ଦତ୍ତକ**—ସଂ ବିଣ (ଦତ୍ତ + ସ୍ୱାର୍ଥେ କ)— ୧ । ଦତ୍ତ ହୋଇଥିବା —
Dattaka 1. Given.
(ଦତ୍ତକା—ସ୍ତ୍ରୀ) ୨ । ପୋଷ୍ୟପୁତ୍ର ବା ପୋଷିଆଁ କନ୍ୟାରୂପେ ଗୃହୀତ —
2. Taken or given in adoption.
ଦତ୍ତକ ତନୟାରୂପେ ତାଙ୍କୁ ନୃପଗଣ
ବେମପାଦ ନୃପଙ୍କେ କଲେ ସମର୍ପଣ—ମଧୁସୂଦନ. ଉତ୍ତରରାମଚରିତ ।
ବି—ପୋଷ୍ୟପୁତ୍ର—Adopted son.

**ଦତ୍ତକ ଚନ୍ଦ୍ରିକା**—ସଂ ବି—ପୋଷ୍ୟପୁତ୍ର ଗ୍ରହଣ ସମ୍ବନ୍ଧୀୟ ଗୋଟିଏ
Dattaka chandrikā ଆଧୁନିକ ସଂସ୍କୃତ ସ୍ମୃତିଗ୍ରନ୍ଥ—Name of a Sanscrit compilation on adoption by Sibānanda Bhatta or, according to some, by Kubera.
[ଦ୍ର—କେହି କେହି ଏହାକୁ ଜାଲ୍ ଗ୍ରନ୍ଥ ବୋଲି କହନ୍ତି । ଏହାପରି ଦତ୍ତକ ଦୀଧିତି, ଦତ୍ତକ ନିର୍ଣ୍ଣୟ, ଦତ୍ତକ ଦର୍ପଣ, ଦତ୍ତକ କୌମୁଦୀ, ଦତ୍ତକ ତିଳକ, ଦତ୍ତକ ସିଦ୍ଧାନ୍ତମଞ୍ଜରୀ ନାମରେ କେତେଗୁଡ଼ିଏ ଆଧୁନିକ ସଂସ୍କୃତ ଗ୍ରନ୍ଥ ଅଛି ।]

**ଦତ୍ତକ ପୁତ୍ର**—ସଂ. ବି. ( କର୍ମଧା, ଦତ୍ତକ + ପୁତ୍ର )—ପୋଷ୍ୟପୁତ୍ର,
Dattaka putra ପୋଷିଆଁ ପୁଅ; ଜନ୍ମଦାତ୍ରୀ ପିତାମାତା ଯେଉଁ ପୁତ୍ରକୁ ଅନ୍ୟ ବ୍ୟକ୍ତିଙ୍କୁ ପୁତ୍ରରୂପେ ପ୍ରଦାନ କରନ୍ତି — Adopted son

**ଦତ୍ତକ ମୀମାଂସା**—ସଂ. ବି—ନନ୍ଦ ପଣ୍ଡିତଙ୍କ ସଙ୍କଳିତ ସ୍ମୃତି ଗ୍ରନ୍ଥ-
Dattaka mimāmsā ବିଶେଷ ( ଏଥିରେ ପୋଷ୍ୟପୁତ୍ର ଗ୍ରହଣ ବିଧି ବର୍ଣ୍ଣିତ ହୋଇଅଛି )—Name of a Hindu law-book on adoption
[ଦ୍ର—ବିଲାତର ପ୍ରିଭିକାଉନ୍‌ସିଲ୍ ଏ ଗ୍ରନ୍ଥକୁ ଭାରତବର୍ଷରେ ହିନ୍ଦୁମାନଙ୍କର ପୋଷ୍ୟପୁତ୍ର ସମ୍ବନ୍ଧୀୟ ପ୍ରାମାଣିକ ଗ୍ରନ୍ଥ ବୋଲି ପ୍ରକାଶ କରିଅଛନ୍ତି ।]

**ଦତ୍ତ କରିବା**—ଦେ. କ୍ରି—ଦେବା; ଦାନ କରିବା —
Datta karibā To give; to give away.
ମନୋହର ବସ୍ତୁହେଁ ଦତ୍ତ କରି କଲ ତାଙ୍କୁ ଲଙ୍କାନାଥ ହେ—
ବିଶ୍ୱନାଥ. ବିଚିତ୍ରରାମାୟଣ ।
दत्तकरा दत्तकरना

**ଦତ୍ତକ ହୋମ**—ସଂ. ବି. ( ମ. ପ ଲୋ; ଦତ୍ତକ + ହୋମ, ଦତ୍ତକ
Dattaka homa ପୁତ୍ର ଗ୍ରହଣ ସମୟରେ କର୍ତ୍ତବ୍ୟ ହୋମ )—ପୋଷ୍ୟପୁତ୍ର ଗ୍ରହଣ କରିବା ଉପଲକ୍ଷରେ ଗ୍ରହୀତା ଯେଉଁ ହୋମ ଅନୁଷ୍ଠାନ କରନ୍ତି—A sacrifice or oblation performed on the occasion of taking a boy in adoption.
(ଦତ୍ତ ହୋମ—ଅନ୍ୟରୂପ)
[ଦ୍ର—ଭାରତର ଭିନ୍ନଭିନ୍ନ ବିଚାର ଅଦାଲତରେ ଆଗେ ସ୍ଥିର ହୋଇଥିଲା ଯେ ଏ ହୋମ ହୋଇ ନଥିଲେ ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ ଜାତିମାନଙ୍କ ମଧ୍ୟରେ ପୋଷ୍ୟପୁତ୍ର ଗ୍ରହଣ ଅସିଦ୍ଧ ହୁଏ । ଫଳତଃ ଦେଖାଯାଏ ଯେ ଆମ ଦେଶରେ ବ୍ରାହ୍ମଣମାନେ ମଧ୍ୟ ସତ୍ୟନାରାୟଣ ପୂଜାଟିଏ କରି ଦେଇ ପୋଷ୍ୟପୁତ୍ର ଗ୍ରହଣ ବିଧି ସାଙ୍ଗ କରି ଥାଆନ୍ତି ଓ ଅଦାଲତରେ ପ୍ରମାଣ ଉପସ୍ଥାପିତ କରିବା ସମୟରେ ଏହି ନଜିରକୁ ମାନି ଦତ୍ତକ ହୋମ ହୋଇ ଥିବା ବିଷୟ ସାକ୍ଷୀମାନେ ହଲଫ ନେଇ ଇଜାହାର କରନ୍ତି । ଅଜକାଲି ପ୍ରିଭିକାଉନ୍‌ସିଲରେ ସ୍ଥିର ହୋଇଅଛି ଯେ ଏ ହୋମ ହୋଇଥିବାର ପ୍ରମାଣ ନ ହେଲେ ମଧ୍ୟ ପୋଷ୍ୟପୁତ୍ର ଅସିଦ୍ଧ ନୁହେଁ ।]

**ଦତ୍ତଚ୍ୟୁତାକ୍ଷର**—ସଂ. ବି.—ଶବ୍ଦାଳଙ୍କାର ବା ରଚନାଭଙ୍ଗିବିଶେଷ,
Dattachyutākshara (ଏଥିରେ ପାଦ ମଧ୍ୟରେ ଗୋଟିଏ ଅକ୍ଷର କାଟି ଆଉ ଗୋଟିଏ ଅକ୍ଷର ସେ ସ୍ଥାନରେ ନ ବସାଇଲେ ବାକ୍ୟର ଅର୍ଥ ହୃଦୟଙ୍ଗମ ହୋଇ ପାରେ ନାହିଁ )—A composition in which a letter of a word is to be deleted and another added in its place in order to make out the intended meaning.
[ଦ୍ର—ଉପେନ୍ଦ୍ରଭଞ୍ଜଙ୍କର କୋଟିବ୍ରହ୍ମାଣ୍ଡସୁନ୍ଦରୀର ୬୩।୧୭ରେ ଏହାର ଉଦାହରଣ ଅଛି । ପ୍ରେମସୁଧାନିଧି ୧୬।୭୨ରେ ଥିବା ଉଦାହରଣ ନିମ୍ନରେ ଦିଆଗଲା ।
ମଦନ ବ୍ୟାକୁଳରୁ ଜାଣିଁଲ ଯୁବାବର
ବରଦ (=ଶରଦ) କାଳେ ବସିବା ବହାଭାଗ୍ୟକର
ଋକୂପାର (=ଅକୂପାର) ପ୍ରାପ୍ତେ ବୃହନ୍ନଳାଣି ଘୋଟିଥିଲା
ଭୃଷ ହେଲ ଯେମନ୍ତ କୃଷ୍ଣ ଭବ ହେଲା ।]

**ଦତ୍ତମନାଃ**—ସଂ. ବିଣ ( ବହୁବ୍ରୀହି, ଦତ୍ତ + ମନସ୍, ୧ମା. ୧ବ)—
Dattamanāh ୧ । ମନୋଯୋଗୀ—1. Attentive.
୨ । କୌଣସି ବିଷୟରେ ଅର୍ପିତଚିତ୍ତ—2. With the heart bent upon some aim or set purpose.

**ଦତ୍ତହାରୀ** ସଂ. ବିଣ ପୁଂ. (ଦତ୍ତ + ହୃ ଧାତୁ + କର୍ତ୍ତୃ. ଇନ୍, ୧ମା ୧ବ)—
Dattahāri ଯେଉଁ ବ୍ୟକ୍ତି ଦତ୍ତ ପଦାର୍ଥକୁ ପୁନର୍ବାର ଛଡ଼ାଇନିଏ —
(ଦତ୍ତହାରିଣୀ—ସ୍ତ୍ରୀ) One who resumes a completed
(ଦତ୍ତାପହାରୀ—ଅନ୍ୟରୂପ) and long enjoyed gift.

**ଦତ୍ତ ହୋମ**—ସଂ. ବି—ଦତ୍ତକ ହୋମ ( ଦେଖ )
Datta homa Dattaka homa ( See )

**ଦତ୍ତା**—ସଂ. ବିଣ. ସ୍ତ୍ରୀ ( ଦତ୍ତ + ସ୍ତ୍ରୀ. ଆ )—୧ । ପ୍ରଦତ୍ତ ହୋଇଥିବା—
Dattā 1. Given.
୨ । ଊଢ଼ା; ପରିଣୀତା (ସ୍ତ୍ରୀ)—
2 Married; lawfully married (woman).

**ଦତ୍ତାକ୍ଷର**—ସଂ. ବି—ଶବ୍ଦାଳଙ୍କାରବିଶେଷ—A kind of metrical
Dattākshara composition in which if a letter be added to a word, a different meaning is made out.
[ଦ୍ର—ଏଥିରେ ଦିଆ ଯାଇଥିବା ଶବ୍ଦମାନଙ୍କରେ ଆଉ ଗୋଟିଏ ଲେଖାଏଁ ଅକ୍ଷର ଯୋଡ଼ିଲେ ଅନ୍ୟ ଗୋଟିଏ ଅର୍ଥ ବୁଝାଏ । ଉପେନ୍ଦ୍ର ଭଞ୍ଜଙ୍କ ପ୍ରେମସୁଧାନିଧି ୧୬।୮ରେ ଥିବା ଉଦାହରଣ ନିମ୍ନରେ ପ୍ରଦତ୍ତ ହେଲା :—

ଜଗମୋଷ୍ଟ (=ଜଗମେ ହୃଷ୍ଟ) ନୃତ୍ୟା ସ୍ୱେନ (=ଲୁଦ୍ଧେମେ) କେବେ ନ କରଇ,
ବନଦ୍ରିସ୍ଥ ଶାଳେ ( =ରସାଳେ ) ଭାବୁ କର୍ଣ୍ଣ ନୁଡ଼ୁଅଇ,
ନ ଅନାଇ ଚନ୍ଦ୍ରମାକୁ କାଶେ ( =ଅନାଗେ ) ପେଶ୍ୟ ନ ମେ,
ଏହୁପର କହୁଥାଇ ସ୍ମରଇଙ୍କ ବନେ । ]

**ଦତ୍ତାତ୍ମା** – ସଂ ବି ( ବହୁବ୍ରୀହି, ଦତ୍ତ+ଆତ୍ମନ୍ )— ନଜେ ଆସି ଅନ୍ୟର
Dattātmā ପୁତ୍ରତ୍ୱ ସ୍ୱୀକାର କରିବା ବ୍ୟକ୍ତି—A person who has given himself away as a son to another person.
ବିଣ—ଆତ୍ମସମର୍ପଣକାରୀ—Giving one's self away to another person; yielding to another person

**ଦତ୍ତାତ୍ରେୟ**—ସଂ. ବି. ( ଦତ୍ତ ନାମକ ଆତ୍ରେୟ=ଅତ୍ରିପୁତ୍ର )—
Dattātreya ଅତ୍ରିମୁନିଙ୍କ ପୁତ୍ର ( ନାରାୟଣଙ୍କ ଅବତାର )—Son of sage Atri ( said to be an incarnation of Bishnu ).

**ଦତ୍ତାପହାରୀ**—ସଂ. ବିଣ ପୁଂ. (ଦତ୍ତ—ଅପ+ହୃ ଧାତୁ+କର୍ତ୍ତୃ. ଇନ୍)—
Dattāpahārī ଦତ୍ତହାରୀ ( ଦେଖ ) Dattahārī ( See )
(ଦତ୍ତହାରୀ—ଅନ୍ୟରୂପ)
(ଦତ୍ତାପହାରିଣୀ—ସ୍ତ୍ରୀ)

**ଦତ୍ତାବଧାନ**—ସଂ. ବିଣ. ପୁଂ. ( ବହୁବ୍ରୀହି, ଦତ୍ତ+ଅବଧାନ )—
Dattābadhāna ୧ । ମନୋଯୋଗୀ—1. Attentive, mindful.
(ଦତ୍ତାବଧାନା—ସ୍ତ୍ରୀ)
୨ । ଅର୍ପିତଚିତ୍ତ—2 With the heart bent upon some fixed aim or purpose

**ଦତ୍ତି**—ସଂ. ବି ( ଦା ଧାତୁ+ଭାବ. ତି )—ଦାନ—
Datti Gift.

**ଦତ୍ତେୟ**—ସଂ. ବି. ( ଦା ଧାତୁ+କର୍ତ୍ତୃ. ତେୟ )—ଇନ୍ଦ୍ର—
Datteya A name of Indra.

**ଦତ୍ତେରି**—ଦେ. ଅ—ଧୁତ୍ ( ଦେଖ )
Datteri Dhut ( See )
(ଦତ୍ତେରିକା, ଦତ୍ତେରିକି, ଦତ୍ତେରିକେ—ଅନ୍ୟରୂପ)

**ଦତ୍ୟ**—ଗ୍ରା. ବି. ( ସଂ. ଦୈତ୍ୟ )—ଅସୁର, ରାକ୍ଷସ—
Datya A demon
ପୁଣି ବାହୁଡେ ଦତ୍ୟ ଦଣ୍ଡଧାରୀ । ପ୍ର.ଗୀ. ଶିଶୁଶଙ୍କର ଉତ୍ପତ୍ତିବିନାଶ ।

**ଦତ୍ରିମ**—ସଂ. ବିଣ. ( ଦା ଧାତୁ+କର୍ତ୍ତୃ ଓ କର୍ମ. ତ୍ରିମ )—
Datrima ୧ । ଦାନ ଦ୍ୱାରା ନିଷ୍ପନ୍ନ—1. Completed or concluded by gift.
୨ । ଦାନ କରି ଯାଇଥିବା—2. Given; given away.
ବି—ପୋଷ୍ୟ ପୁତ୍ର—Adopted son.

**ଦଦ୍** (ଧାତୁ)—ସଂ—ଦେବା—
Dad (root) To give.

**ଦଦ(ଧ)**—ଦେ. ବି. (ଶିଶୁର ଭାଷା) (ସଂ ଦୁଗ୍ଧ ପ୍ରା. ଦୁଧ )—
Dada(dha) ୧ । ମାତୃ ସ୍ତନ—1, Mamma; mother's breast.
(ଦଦ୍ଧ; ଦଦ୍ଧା—ଅନ୍ୟରୂପ)
୨ । ମାତୃ ସ୍ତନ୍ୟ—2 Mother's milk.
୩ । ଦୁଗ୍ଧ—2. Milk.

**ଦଦଇଆ**—ଗ୍ରା. ବି—ଦହିଦହିକା ( ଦେଖ )
Dadaiā Dahidahikā ( See )

**ଦଦନ**—ସଂ. ବି. ( ଦଦ୍ ଧାତୁ+କର୍ମ. ଅନ )—
Dadana ୧ । ଦାନ, ଦତ୍ତବସ୍ତୁ—1 A gift
୨ । (+ଭାବ ଅନ) ଦାନ କରିବା, ବିତରଣ—2 Act of giving or distributing.

**ଦଦରା**—ଦେ. ବିଣ. ( ସଂ ଦର୍ଦ୍ଦର )—
Dadarā ୧ । ଈଷତ୍ ଭଗ୍ନ—1 Slightly broken.
दादरा ୨ । ଫଟା—2. Cracked.
टूटा, फुटा ( ଯଥା—ଦଦରା ହାଣ୍ଡି । )
୩ । ବିକଳ—3 Deranged, out of order
୪ । ଜୀର୍ଣ୍ଣ—4 Worn; damaged
ସଙ୍ଗେ ଅଛି ଏକ ଦଦରା ବୋଇତେ । ସ୍ୱଧାଲାଠ. ବରବାର ।

**ଦଦରା ମାଛ**—ପ୍ରାଦେ. (ଗଞ୍ଜାମ) ବି—ମତ୍ସ୍ୟବିଶେଷ—
Dadarā māchha A sort of fish.

**ଦଦରା ହାଣ**—ପ୍ରାଦେ. ବି—ଚିଲିକା ହ୍ରଦରେ ଦେଖାଯିବା ଏକ ପ୍ରକାର
Dadarāhāṇa ପକ୍ଷୀ—A species of bird frequenting the Chilka lake,

**ଦଦହତୁ**—ଦେ. ଅ. (ଶିଶୁ ଭାଷା)—ଦହଦହତୁ ( ଦେଖ )
Dadahatu Dahadahatu ( See )
(ଦଅଦଅତୁ; ଦଅଦହତୁ—ଅନ୍ୟରୂପ)

**ଦଦା**—ଦେ. ବି. ( ସଂ. ତାତ. ଭୁଲ. ଇଂ ଡାଡ୍ଡୀ=ପିତା )—
Dadā ୧ । (କ୍ଷତ୍ରିୟମାନଙ୍କ ବ୍ୟବହୃତ) ବଡ଼ ଭାଇ—1. Elder-brother (amongst the Kshatriyas).
दादा
दादा ୨ । ଅଜା, ପିତାମହ—Grandfather.
( ଯଥା – ବାପ ଦଦା ଅମଳରେ ଏ କଥା ଶୁଣା ନ ଥିଲା । )
ପ୍ରାଦେ (ଗଞ୍ଜାମ) ବି—ବାପା, ପିତା—Father.

**ଦଦେଇ**—ଦେ.ବି (ସଂ ଜ୍ୟେଷ୍ଠତାତ)—ପିତାଙ୍କ ଜ୍ୟେଷ୍ଠଭ୍ରାତା;ଜ୍ୟେଷ୍ଠତାତ,
Dadei ଦେଉଳା—Father's elder brother.
(ଦଦାଇ—ଅନ୍ୟରୂପ) ପ୍ରାଦେ. ୧ । (ଗଡ଼ଜାତ) ବି. (କ୍ଷତ୍ରିୟମାନଙ୍କ ମଧ୍ୟରେ)—ପିତା—1.Father (among Kshatriyas).
୨ । (ଗଞ୍ଜାମ) ବି – ପିତା—2. Father.

**ଦଦେଇର(ରା)ଜା**—ପ୍ରାଦେ (ଗଡ଼ଜାତ) ବି—ପିତୃରାଜା, ରାଜାଙ୍କର ସ୍ୱର୍ଗୀୟ
Dadeira(rā)jā ପିତା—The late Raja who was the father of the present Raja.

**ଦଦ୍ରୁ**—ସଂ.ବି.(ଦରିଦ୍ରା ଧାତୁ=ଦୁର୍ଗତ କରିବା+କର୍ତ୍ତୃ ଉ ନିପାତନେ)—
Dadru ଦାଦୁ; ଦାଦୁ—Ringworm.
(ଦଦ୍ରୂ—ଅନ୍ୟରୂପ)

**ଦଦ୍ରୁଘ୍ନ**—ସଂ. ବିଣ. (ଦଦ୍ରୁ=ହନ୍ ଧାତୁ+କର୍ତ୍ତୃ. ଅ)—
Dadrughna ଦଦ୍ରୁରୋଗନାଶକ—Destructive of or antidote for ringworm.

ବି—ଦାଦୁଖାଇ ଗଛ; ଚକ୍ରମର୍ଦ୍ଦ ଗଛ—Cassia Tora; a tree with clustering yellow flowers, often used as an antidote for ringworm.

**ଦଦ୍ରୁଣ**—ସଂ.ବି.ପୁଂ(ଦଦ୍ରୁ+ଅସ୍ତି ଅର୍ଥେ. ଣ)—ଦଦ୍ରୁରୋଗୀ, ଦାଦୁରୁ—
Dadruṇa Suffering from ringworm
(ଦଦ୍ରୁଣ—ଅନ୍ୟରୂପ) (ଦଦ୍ରୁଣା—ସ୍ତ୍ରୀ)

**ଦଧ୍** (ଧାତୁ)—ସଂ—ଦାନ କରିବା—
Dadh (root) To give away

**ଦଧ**—ଗ୍ରା. ବି. (ଶିଶୁଭାଷା)—ଦଦ (ଦେଖ)
Dadha Dada (See)
(ଦଦ୍ଧ—ଅନ୍ୟରୂପ)

**ଦଧାନ**—ସଂ ବିଣ. (ଧା ଧାତୁ=ଧାରଣ କରିବା+କର୍ତ୍ତୃ. ଆନ)—
Dadhāna ଯେ ଧାରଣ କରେ—Holding; assuming.
(ଦଧାନା—ସ୍ତ୍ରୀ)

**ଦଧି**—ସଂ. ବି. (ଧା ଧାତୁ=ଧାରଣ କରିବା+କର୍ତ୍ତୃ. ଇ)—
Dadhi ୧ । ଦହି, ଅମ୍ଳସଂଯୋଗରେ ଗାଢ଼ କରାଯାଇ ଥିବା ଦୁଗ୍ଧ—1. Sour milk; butter milk; curdled milk; curd.
[ ଦ୍ର—ବସା ଦହିକୁ ଦଧି ଓ ଘୋଳଦହିକୁ ତକ୍ର ବୋଲାଯାଏ । ]
୨ । ଛେନା; ଅମିଷା—2. Cheese.
୩ । ଦଧିକୂର୍ଚ୍ଚିକା—3. Flakes of curd.
୪ । ବସ୍ତ୍ର (ହି. ଶବ୍ଦସାଗର)—4. Cloth.
ସଂ. ବିଣ—୧ । ଧାରଣକର୍ତ୍ତା (ପ୍ରକୃତିବାଦ)—1. Holding.
୨ । ପୋଷଣ କର୍ତ୍ତା—
2. Supporting; maintaining

**ଦଧି କୂର୍ଚ୍ଚିକା**—ସଂ. ବି. ସ୍ତ୍ରୀ—୧ । ଛେନା—
Dadhikūrchhikā 1. Cheese.
୨ । ବସାଦହିର ଥଲକା ଖଣ୍ଡମାନ—
2. Flakes of curd.

**ଦଧି ଗୁଡ଼ ଅନ୍ନ**—ଦେ. ବି—ଦହି ଗୁଡ଼ୁଭାତ (ଦେଖ)
Dadhi gurda anna Dahi gurdu bhāta (See)

**ଦଧିଚର**—ସଂ. ବି. (ଦଧି+ଚର୍ ଧାତୁ+କରଣେ. ଅ)—
Dadhichāra ଦଧିମନ୍ଥନଦଣ୍ଡ; ଖୁଆ—Churning rod; churner.

**ଦଧିଜ**—ସଂ. ବି. (ଦଧି+ଜନ୍ ଧାତୁ+କର୍ତ୍ତୃ. ଅ)—
Dadhja ୧ । ନବନୀତ; ନହୁଣୀ—1. Butter.
(ଦଧିଜାତ—ଅନ୍ୟରୂପ) ୨ । ଛେନା—2. Cheese.

**ଦଧିତ୍ଥ**—ସଂ. ବି. (ଦଧି+ସ୍ଥା ଧାତୁ+କର୍ତ୍ତୃ. ଅ; ଏହା ମୂଳରୁ ଦଧି ପରି
Dadhittha ଏକପ୍ରକାର ରସ ବାହାରୁଥିବାରୁ)—କଇଥ ଗଛ
(ଦଧିନାମା—ଅନ୍ୟରୂପ) ଓ ଫଳ—Wood-apple tree and its fruit; Feronia Elephantūm; the elephant-apple.

**ଦଧି ନଉତି**—ଦେ. ବି—ଦହିନଉତି (ଦେଖ)
Dadhi nauti Dahinauti (See)

ବହିଲି ସେଠାରୁ ଖଣ୍ଡ ଖଣ୍ଡରେ ଜଣ
ଯେସନ ଦଧିନଉତି ନୃତ୍ୟ ଦେବାଳୟ । ଚନ୍ଦ୍ରାମଣି. ବଳମାଦତ୍ୟ ।

**ଦଧିପୁଷ୍ପିକା**—ସଂ. ବି. (ଦଧି+ପୁଷ୍ପ+କ+ସ୍ତ୍ରୀ ଆ)—
Dadhipushpikā ଶ୍ୱେତ ଅପରାଜିତା ଫୁଲ ଓ ଲତା—
White Clitoris flower and creeper; Clitoria Terenta

**ଦଧି ପୂପ**—ସଂ. ବି. (ମ. ପ. ଲୋ; ଦଧିପକ୍ୱ ପୂପ=ପିଷ୍ଟକ)—ଦହିବରା—
Dadhi pūpa A cake immersed in or seasoned with curd
(ଦଧିବଟକ—ଅନ୍ୟରୂପ)

**ଦଧି ଫଳ**—ସଂ ବି—କପିତ୍ଥ, କଇଥଫଳ—
Dadhi phaḻa Wood-apple; Feronia Elephantum.
କେଉଁ ଦଧିଫଳ ଚାନ୍ଦ୍ରଭ ବର୍ଣ୍ଣ
ପିଣ୍ଡରୁ ପବନ ଯାଉଛ ଶଣି । ଭଞ୍ଜ ଲାବଣ୍ୟବତୀ ।

**ଦଧିବାବନ**—ଦେ ବି (ସଂ ଦଧିବାମନ)—ଦଧିବାମନ (ଦେଖ)
Dadhibābana Dadhibāmana ( See )

**ଦଧିବାମନ**—ସଂ ବି ( ଦଧି=ପୋଷଣକର୍ତ୍ତା=ବାମ=ଶତ୍ରୁ+ନ=
Dadhibāmana ବନ୍ଧନ, ପୋଷଣକର୍ତ୍ତା ଓ ବିପକ୍ଷର ବନ୍ଧନାଶକ, ଅଥବା ଦଧିବାହକ ବାମନ; ମ ପ ଲୋ)
୧ । ବିଷ୍ଣୁ—1 Bishṇu.
୨ । ଶାଳଗ୍ରାମ ମୂର୍ତ୍ତିବିଶେଷ—2. A species of Śāḻagrāma stone.
[ ଦ୍ର—ବାମନ ଅବତାରରେ ବିଷ୍ଣୁ ଦଧି ବହନ କରିଥିବା ପ୍ରବାଦ ପୁରାଣରେ ଅନୁସନ୍ଧେୟ । ]

**ଦଧି ମଣ୍ଡ**—ସଂ. ବି (୬ଷ୍ଠୀ ତତ୍, ଦଧି+ମଣ୍ଡ)—ଦହିର ଜଳୀୟାଂଶ—
Dadhimaṇḍa The watery portion of curd; whey.

**ଦଧିମଣ୍ଡୋଦ**—ସଂ ବି (ଦଧିମଣ୍ଡ+ଉଦ; ବହୁବ୍ରୀହି)—ଦଧ୍ୟାକର (ଦେଖ)
Dadhimaṇḍoda Dadhyākara (See)

**ଦଧି ମନ୍ଥନ**—ସଂ. ବି ( ୬ଷ୍ଠୀ ତତ୍; ଦଧି+ମନ୍ଥନ )—ଦହି ମୋହିଁବା;
Dadhi manthana ଦହିମୁହାଁ—Churning of curd to get butter.

**ଦଧି ମାଛ**—ଦେ. ବି. (ଦଧି+ମତ୍ସ୍ୟ)—ଶୁଭ ଅନୁକୂଳ, କୌଣସି କାର୍ଯ୍ୟ
Dadhi māchha ଉଦ୍ଦେଶ୍ୟରେ ଯାତ୍ରା—An auspicious starting from a place on some mission.
ତୁ ଏବେ ଦଧିମାଛ କର
ଯେ ନାଥ ହେଉଛ ଉତ୍ତର । ଭୂପତି ପ୍ରେମପଞ୍ଚାମୃତ ।
[ଦ୍ର—ଯାତ୍ରାବେଳେ ଦଧି ଓ ମତ୍ସ୍ୟ ଦର୍ଶନ ଶୁଭ ଶକୁନ ବୋଲି ପ୍ରସିଦ୍ଧ ଥିବାରୁ 'ଦଧିମାଛ' ଶବ୍ଦ ଶୁଭଯାତ୍ରାସୂଚକ; ଯାତ୍ରା କରିବା ସମୟରେ ଦହି ଓ ମାଛ ଦେଖି ଅନୁକୂଳ କଲେ ଯାତ୍ରା ଶୁଭ ହୁଏ ଓ କାର୍ଯ୍ୟ ସିଦ୍ଧ ହୁଏ ବୋଲି ଲୋକେ ବିଶ୍ୱାସ କରନ୍ତି ।]

**ଦଧିମୁଖ**—ସଂ.ବି.(ବହୁବ୍ରୀହି; ଦଧିପରି ଶୁକ୍ଳ ମୁଖ ଯାହାର)—୧ । ସୁଗ୍ରୀବଙ୍କ
Dadhimukha ଶ୍ୱଶୁର; ବାନରବିଶେଷ, ରାମଚନ୍ଦ୍ରଙ୍କ ସେନାପତି-ବିଶେଷ—1. Name of a monkey, the father-in-law of Sugriba.
୨ । ଏକଜାତୀୟ ବାନର—2 A kind of ape.
୩ । ନାଗବିଶେଷ—3. A kind of serpent; name of a mythological Nāga.

୪ । ସୁଗ୍ରୀବଙ୍କର ମଧୁବନର ଉଦ୍ୟାନପାଳ—
4. Name of a gardener of Sugrība

ବହୁଣ ଭଜନ ଗୋତ, ବଣ ଉଦ୍ୟ ଦଧିମୁଖ ।
—ଭକ୍ତ, ବେଦେଶ୍ବଶକଳାସ ।

ଦଧିସକ୍ତବ—ସଂ.ବ (ଦଧି+ସକ୍ତୁ)— ଛତୁଆ ଓ ଦହି ଚକଟା, ଦହି ଛତୁଆ—
Dadhisaktaba A food consisting of curd mixed with flour.

ଦଧି ସମୁଦ୍ର—ସଂ. ବି (୬ଷ୍ଠୀ ତତ୍, ଦଧି+ସମୁଦ୍ର)—ପୁରାଣବର୍ଣ୍ଣିତ ସାତ
Dadhi samudra ସମୁଦ୍ର ମଧ୍ୟରୁ ଏକତମ; ଦଧିପୂର୍ଣ୍ଣ ସମୁଦ୍ର—
(ଦଧିସାଗର—ଅନ୍ୟରୂପ) One of the 7 oceans of the Hindu mythology, filled with curd.

ଦଧି ସାର—ସଂ ବି (୬ଷ୍ଠୀ ତତ୍;ଦଧି+ସାର)—ଲହୁଣୀ; ନବନୀତ, ମଖନ—
Dadhi sāra Butter.

ଦଧୀଚି—ସଂ ବ (ନାମ) (ଦଧ୍ ଧାତୁ+କର୍ତ୍ତୃ. ଇଣ —ମୁନିବିଶେଷ,
Dadhīchi ଯେଉଁ ମୁନିଙ୍କ ଅସ୍ଥିରେ ବଜ୍ର ତିଆର କରି ଇନ୍ଦ୍ର
(ଦଧୀଚ—ଅନ୍ୟରୂପ) ବୃତ୍ରାସୁରକୁ ମାରିଥିଲେ—Name of a sage from whose bones Indra's thunderbolt was made to kill 'Brutrāsura.

[ ଦ୍ର—ଏ ଅଥର୍ବା ମୁନିଙ୍କ ଔରସରେ କର୍ଦ୍ଦମ ପ୍ରଜାପତିଙ୍କ କନ୍ୟା ଶାନ୍ତିଙ୍କ ଗର୍ଭଜାତ ପ୍ରସିଦ୍ଧ ମୁନି । ଏ ସ୍ୱାର୍ଥତ୍ୟାଗର ଜ୍ୱଳନ୍ତ ଉଦାହରଣ ଦେଖାଇ ବୃତ୍ରାସୁରକୁ ବଧ କରିବା ଉଦ୍ଦେଶ୍ୟରେ ବଜ୍ର ପ୍ରସ୍ତୁତ ହେବା ନିମନ୍ତେ ଆପଣା ଅସ୍ଥି ଇନ୍ଦ୍ରଙ୍କୁ ଦେଇଥିଲେ । ]

ଦଧୀଚ୍ୟସ୍ଥି—ସଂ. ବି. (୬ଷ୍ଠୀ ତତ୍; ଦଧୀଚି+ଅସ୍ଥି)—୧ । ଦଧୀଚି
Dadhīchyasthi ମୁନିଙ୍କ ହାଡ଼ (ଯହିଁରେ ବଜ୍ର ନିର୍ମିତ ହୋଇ ଥିଲା)—1 The bone of sage Dadhīchi.
୨ । ବଜ୍ର—2. Thunderbolt.
୩ । ହୀରକ, ହୀରା—3. Diamond.

ଦଧୃକ୍ (ଶ୍, ଷ୍)—ସଂ. ବିଣ—ନିଲଜ, ଅଲାଜୁକ; ବେହିୟା—
Dadhṛuk (ś, sh) Shameless; impudent

ଦଧ୍ନ—ସଂ. ବି—ଚଉଦ ଯମଙ୍କ ମଧ୍ୟରୁ ଏକତମ—
Dadhna One of the 14 Jama gods.

ଦଧ୍ୟନ୍ନ—ସଂ. ବ (ମ. ପ. ଲୋ, ଦଧିସିକ୍ତ ଅନ୍ନ)—ଦହିପଖାଳ; ଦହିଭାତ—
Dadhyanna Boiled rice mixed with curd.

ଦଧ୍ୟମ୍ଳ—ସଂ ବ (ମ. ପ. ଲୋ; ଦଧି ପ୍ରସ୍ତୁତ କରିବାରେ ବ୍ୟବହୃତ ଅମ୍ଳ)—
Dadhyamla ଦୁଧକୁ ଦହି ବସାଇବା ନିମନ୍ତେ ତହିଁରେ ପକାଯିବା
ଦମ୍ବଳ ଖଟା ଦହି; ମହି—A little sour and fermented milk mixed with milk to turn it into curd; Bulgarian milk.

ଦଧ୍ୟାକର—ସଂ. ବ ( ୬ଷ୍ଠୀ ତତ୍; ଦଧି+ଆକର=ସ୍ଥାନ )—ପୌରାଣିକ
Dadhyākara ଦଧିସମୁଦ୍ର— The mythological ocean of curd.

ଦଧ୍ୟାଣୀ—ସଂ. ବ—ମଦନମସ୍ତୁ; ସୁଦର୍ଶନ ବୃକ୍ଷ (ଦେଖ) (ହି ଶବ୍ଦସାଗର)
Dadhyāni Sudarśana tree (See)

ଦଧ୍ୟୁତ୍ତର—ସଂ. ବ (ଦଧି+ଉତ୍ତର)—୧ । ଦଧ୍ୟାକର (ଦେଖ)
Dadhyuttara 1. Dadhyākara (See).
୨ । ଦହିର ସର (ହି. ଶବ୍ଦସାଗର)—
2. Flake of thick curd

ଦଧ୍ୟୁଦ—ସଂ. ବ ( ବହୁବ୍ରୀହି; ଦଧି+ଉଦ=ଜଳ ଯହିଁରେ )—
Dadhyuda ଦଧ୍ୟାକର ( ଦେଖ ) Dadhyākara (See).

ଦନ୍‌ଶ୍ (ଧାତୁ)—ସଂ — ୧ । କାମୁଡ଼ିବା—
Dan-ś (root) 1. To bite.
୨ । ନାହୁଡ଼ ମାରିବା—2. To sting

ଦନା—ଦେ ବ ( ସଂ. ଦ୍ରୋଣୀ )—୧ । ପତ୍ରରେ ତିଆରି ଠୋଲା ବା
Danā ଚଉପଟା—1. Leaves made into a cup;
ଦୋନା a cup made by sewing leaves together.
ଦୋନା; ଦୁନା ୨ । ପଶୁମାନଙ୍କ ଯୋନି—2. The female
(ଦନୁ—ଆଦରାର୍ଥକ) organ of cattle and other beasts.
୩ । ଜନାର୍ଦ୍ଦନର ଅନାଦରାର୍ଥ ଡାକ ନାମ—
(ଦନାଇ, ଦନେଇ—ଅନ୍ୟରୂପ) 3 Name by which a person of the name of Janārddana is accosted familiarly.

ଦନା(ନେ)ଇ ଦାସ—ଦେ ବ ( ନାମ )— ଜନାର୍ଦ୍ଦନ ଦାସ ( ଦେଖ )
Danā(ne)i dāsa Janārddana dāsa (See).

ଦନା ପୁଡ଼ୁଗା—ପ୍ରାଦେ(ଗଡ଼ଜାତ) ବ—ପତରପୋଡ଼ା; ଛତୁ, ଛୋଟ ମାଛ,
Danā purdugā କଖାରୁଡ଼ଙ୍କ ପ୍ରଭୃତିକୁ ପୋଡ଼ିବା ପାଇଁ ପତରରେ ବନ୍ଧାଯିବା ପୁଡ଼ା—A packet of small fishes, mushroom etc made with leaves and put inside hot embers to be taken as curry.

ଦନାର୍ଦ୍ଦନ—ଗ୍ରା. ବ—ଜନାର୍ଦ୍ଦନର ଅଶୁଦ୍ଧ ଉଚ୍ଚାରଣ—
Danārdana Wrong pronunciation of Janārddana.

ଦନୁ—ସଂ. ବ (ନାମ)—ଦନ୍ତି; ଦକ୍ଷପ୍ରଜାପତିଙ୍କର ଗୋଟିଏ କନ୍ୟା ଓ
Danu କଶ୍ୟପଙ୍କର ଏକତମା ପତ୍ନୀ, ଯାହାଙ୍କଠାରୁ ରାକ୍ଷସମାନେ
(ଦନୂ—ଅନ୍ୟରୂପ) ଜାତ ହୋଇଥିଲେ—One of the wives of sage Kaśyapa who gave birth to demons.

[ ଦ୍ର—ଏହାଙ୍କର ୪୦ ପୁଅ; ସମସ୍ତେ ରାକ୍ଷସ; ରାକ୍ଷସମାନଙ୍କୁ ଦାନବ ବା ଦନୁଜ ବୋଲାଯାଏ । ]

ଦେ. ବ. (ଆଦରାର୍ଥକ)— ଜନାର୍ଦ୍ଦନର ଡାକନାମ—
A name for calling Janārddana.

ଦନୁଜ—ସଂ. ବ. ପୁଂ ( ଦନୁ+ଜନ୍ ଧାତୁ+କର୍ତ୍ତୃ. ଅ )—ରାକ୍ଷସ;
Danuja ଅସୁର, ଦାନବ; ଦୈତ୍ୟ—The demons.
(ଦନୁଜା—ସ୍ତ୍ରୀ) (ଦନୁସମ୍ଭବ—ଅନ୍ୟରୂପ)

ଦନୁଜାରି—ସଂ. ବ. (୬ଷ୍ଠୀ ତତ୍, ଦନୁଜ+ଅରି; ଅସୁରମାନଙ୍କ ଶତ୍ରୁ)—
Danujāri ଦେବତାଗଣ—The Gods

ଦନୁଜେନ୍ଦ୍ର(ଶ)—ସଂ. ବ, (୬ଷ୍ଠୀ ତତ୍, ଦନୁଜ+ଇନ୍ଦ୍ର (ଈଶ)—
Danujendra(śa) ୧ । ଦାନବଙ୍କ ରାଜା—
1. A king of the demons.

୨ । ରାବଣ—2. Rābaṇa.
୩ । ହିରଣ୍ୟକଶିପୁ—3. Hiraṇyakaśipu.

ଦନ୍ତ—ସଂ. ବି (ଦମ୍ ଧାତୁ=ଦମନ କରିବା+କରଣ. ତ)—
Danta ୧ । ଦାନ୍ତ—1. Tooth.
୨ । କୁଞ୍ଜ—2. A grove
୩ । ଶୈଳଶୃଙ୍ଗ—3. Mountain-peak.
ବ୍ୟାଳସମୂହକୁ ନାଶି ସହ ବ ସଇନ୍ତ ଅସି ଶୋଣ୍ଡ୍ ଦନ୍ତେ ଇଠି ସୌମିତ୍ରେସ୍ ଯେ ।
ଭଞ୍ଜ. ବୈଦେହୀଶବିଳାସ ।
୪ । ପର୍ବତଉପରସ୍ଥ ସମତଳ ଭୂମି; ଅଧିତ୍ୟକା—
4. Plateau; level land on a mountain
୫ । ସାନୁପ୍ରଦେଶ, ଗିରିନିତମ୍ବ—
5. The side of a mountain.
୬ । ଦାନ୍ତ ପରି ଶୃଙ୍ଗମାନ—6 Tooth-like peaks.
୭ । ୩୨ ସଂଖ୍ୟା—7. The number 32.
[ ଦ୍ର—କାରଣ ମନୁଷ୍ୟର ୩୨ ଗୋଟି ଦାନ୍ତ ଥାଏ । ]
ଦେ. ବି - କଉଡ଼ାକର ନଅ ଭାଗରୁ ଏକ ଭାଗ—
One ninth of a cowrie (shell-money).

ଦନ୍ତକ—ସଂ. ଭ. (ଦନ୍ତ+ସ୍ୱାର୍ଥେ ବା ସାଦୃଶ୍ୟାର୍ଥେ.କ)—୧ । ଦାନ୍ତ—
Dantaka 1. Tooth
୨ । ହାତୀ ଦାନ୍ତ—2 Tusk; ivory.
୩ । ବଡ଼ ଦାନ୍ତ—3. Big tooth.
୪ । ଦାନ୍ତ ପରି କାନ୍ଥରେ ମରା ଯାଇଥିବା କାଠି; ନାଗଦନ୍ତକ; ଦାନ୍ତ—4. A peg driven into the wall to hang articles on.
୫ । ପର୍ବତ ଦେହରୁ ବାହାରିଥିବା ତୀକ୍ଷ୍ଣାଗ୍ର ପ୍ରସ୍ତରଖଣ୍ଡ ବା ଦାନ୍ତ—5. A sharp tooth-like stone projecting from a mountain.
୬ । ପର୍ବତର ଶୃଙ୍ଗ—6. Mountain-peak.
ବିଣ—୧ । ଦାନ୍ତୁଆ, ଦନ୍ତବିଶିଷ୍ଟ—
1. Having tooth; toothed.
୨ । ଦାନ୍ତୁରୁ; ବଡ଼ ଦାନ୍ତବିଶିଷ୍ଟ—
2. Having tusks or big teeth.

ଦନ୍ତ କଡ଼ମଡ଼ି—ଦେ. ବି—ଦାନ୍ତ କଡ଼ମଡ଼ି ( ଦେଖ )
Danta kardamardi Dānta kardamardi ( See )

ଦନ୍ତ କର୍ଷଣ—ସଂ. ବି. ( ଉପପଦ; ଦନ୍ତ+କର୍ଷଣ )—ଟଭି; ଜମ୍ବୀର ଲେମ୍ବୁ—
Danta karshaṇa A kind of lemon ( very sour ).

ଦନ୍ତ କାଷ୍ଠ—ସଂ. ବି (ମ.-ପ ଲୋ; ଦନ୍ତ ମାର୍ଜନାର୍ଥ ବ୍ୟବହୃତ କାଷ୍ଠ)—
Danta-kāshṭha ଦାନ୍ତକାଠୀ—A twig used as tooth-brush.

ଦନ୍ତ କ୍ଷତ—ସଂ. ବି—ଦନ୍ତ ଘାତ (ଦେଖ)
Danta kshata Danta-ghāta ( See )

ଦନ୍ତ ଖଡ଼ିକା—ଦେ. ବି—ଦାନ୍ତ ଖୁଣ୍ଟା ( ଦେଖ )
Danta khardikā Dānta khunṭa ( See )
ଦନ୍ତ ଖଡ଼ିକା ଓଢା ବାସ
ବେଗେ ଖଞ୍ଜିଲେ ଦାସୀ ଦାସ—ଭୂପତି. ପ୍ରେମପଞ୍ଚାମୃତ ।

ଦନ୍ତ ଘର୍ଷ—ସଂ ବି—ଦାନ୍ତ ଘେରାଇବା; ଦାନ୍ତକଡ଼ମଡ଼ି—
Danta gharsha Gnashing or grinding of the teeth.

ଦନ୍ତ ଘର୍ଷଣ—ସଂ. ବି. (୬ଷ୍ଠୀ ତତ୍; ଦନ୍ତ+ଘର୍ଷଣ)—ଦାନ୍ତ ଘଷିବା—
Danta gharshaṇa Act of cleansing of the teeth.

ଦନ୍ତ ଘାତ—ଦେ. ବି · ୧ । କାମୁଡ଼ିବା; ଦନ୍ତଦ୍ୱାରା ଆଘାତ କରିବା—
Danta ghāta 1. Biting.
୨ । କାମୁଡ଼ିବା ଦାଗ—2. Mark of biting.
୩ । ସର୍ପଦଂଶନ—3. Snake-bite

ଦନ୍ତ ଚିକିତ୍ସକ—ଦେ. ବି. ( ପାରିଭାଷିକ )—ଦାନ୍ତ ବିଷୟରେ ପ୍ରବୀଣ ଡାକ୍ତର—
Danta chikitsaka Dentist; dental surgeon.

ଦନ୍ତ ଚିହ୍ନ—ସଂ ବି—ଦନ୍ତ ଘାତ ( ଦେଖ )
Danta chihna Danta ghāta ( See )

ଦନ୍ତଚ୍ଛଦ—ସଂ. ବି. (ଉପପଦ ତତ୍ପୁରୁଷ, ଦନ୍ତ+ଛଦ=ଆଚ୍ଛାଦକ)—
Dantachchhada ୧ । ଉପର ଓଷ୍ଠ—1. The upper lip.
୨ । ଓଷ୍ଠଦ୍ୱୟ—2. The two lips.

ଦନ୍ତ ଧାବନ—ସଂ. ବି. ( ଦନ୍ତ+ଧାବ୍ ଧାତୁ=ଧୋଇବା+କରଣ. ଅନ )—୧ । ଦାନ୍ତକାଠି—
Danta dhābana 1. Tooth pick; tooth brush
୨ । ଖଇର ଗଛ—
2. The catechu tree; Mimosa Catechu.
୩ । ବଉଳ ଗଛ—
3. The Bakuḷa tree; Mimusops Elengi.
୪ । (+ଭାବ. ଅନ) ଦାନ୍ତ ଘଷିବା; ଦାନ୍ତ ପରିଷ୍କାର କରିବା—
4. The act of cleansing the teeth.

ଦନ୍ତ ପଙ୍କ୍ତି—ସଂ. ବି. ( ୬ଷ୍ଠୀ ତତ୍, ଦନ୍ତ+ପଙ୍କ୍ତି )—ଦାନ୍ତର ଧାଡ଼ି; ଦନ୍ତଶ୍ରେଣୀ—
Danta paṅkti Row of teeth.

ଦନ୍ତ ପତ୍ର—ସଂ. ବି. (ଦନ୍ତ ପରି ପତ୍ରଯୁକ୍ତ )—ଏକପ୍ରକାର କୁଣ୍ଡଳ—
Danta patra A kind of ear-ring.

ଦନ୍ତପତ୍ରକ—ଦେ. ବି. ( ଦନ୍ତ+ପତ୍ର+କ )—କୁନ୍ଦଫୁଲ—
Dantapatraka A flower; Jasminum Pubescens.

ଦନ୍ତପତ୍ରିକା—ଦେ. ବି. (ଏଥିରେ ଦାନ୍ତ ପରି କଣ୍ଟା ବାହାରିଥିବାରୁ )—ପାନିଆଁ—
Dantapatrikā Comb.
ଚିକୁର ପାଶରେ ଦନ୍ତପତ୍ରିକା
ଚଳାଇବାକୁ ହେବାରୁ ମୋ ଦକ୍ଷା—ବଳଦେବ. କବିତାକଲ୍ଲୋଳ ।

ଦନ୍ତପାଟି—ଦେ. ବି. (ସଂ. ଦନ୍ତପଙ୍କ୍ତି)—ଦନ୍ତପଙ୍କ୍ତି (ଦେଖ )
Dantapāṭi Dantapaṅkti ( See )
दन्तपाटि ପ୍ରଭୁଙ୍କ ଗଣ୍ଡେ କୋପଦୃଷ୍ଟି
मसुड़ा ଓଷ୍ଠେ ଗୁଣେ ଦନ୍ତପାଟି—ଜଗନ୍ନାଥ. ଭାଗବତ ।

ଦନ୍ତ ପୁପୁଟ—ସଂ. ବି—ଦାନ୍ତମୂଳ ଫୁଲା; ଦାନ୍ତମୂଳରେ ହେବା ଫୋଟକା—
Danta pupputa Gum-boil.

ଦନ୍ତପୁର—ଦେ. ବି. (ନାମ)—୧ । ଯେଉଁ ନଗରରେ ବୁଦ୍ଧଦେବଙ୍କ ଦାନ୍ତ ରଖାଯାଇଥିଲା—
Dantapura 1. City of Buddha's tooth
୨ । କଳିଙ୍ଗର ରାଜଧାନୀ—
2. The capital of Kaliṅga.

[ ଦ୍ର - କେହି କେହି ଐତିହାସିକ ପୁରୀକୁ ଦନ୍ତପୁର ଓ କେହି କେହି ଦାନ୍ତନ୍‌କୁ ଦନ୍ତପୁର ବୋଲି କହନ୍ତି । ଏଠାରେ ବୁଦ୍ଧଦେବଙ୍କ ଦାନ୍ତ ରକ୍ଷିତ ହୋଇ ପୂଜା କରା ଯାଉଥିଲା ଓ ରଥ ଯାତ୍ରା ହେଉଥିଲା ବୋଲି ଚୀନ ପର୍ଯ୍ୟଟକ ହୁଏନସାଂ ଲେଖି ଅଛନ୍ତି ।

ଦନ୍ତପୁଷ୍ପ—ସଂ. ବି ( ଦନ୍ତବତ୍ ପୁଷ୍ପ )—୧ । କୁନ୍ଦଫୁଲ—
Dantapushpa, 1. Jasminum Pubescens.
୨ । କର୍ମିଳାଫଳ—2. The clearing nut.

ଦନ୍ତଫଳ—ସଂ. ବି—୧ । କତକ ଫଳ; କର୍ମିଳାଫଳ—
Dantaphala 1. A fruit; Strychnos Potatorum; the clearing nut.
୨ । କଇଥ—2 The wood apple; Feronia Elephantum.

ଦନ୍ତଫଳା—ସଂ ବି. ସ୍ତ୍ରୀ ( ବହୁବ୍ରୀହି; ଦନ୍ତପରି ଫଳ ଯାହାର; ଦନ୍ତ + ଫଳ + ଆ)—ପିପ୍ପଳି—Long pepper.
Dantaphala

ଦନ୍ତବକ୍ର—ସ. ବି. ( ନାମ )—ଶିଶୁପାଳଙ୍କ ଭାଇ—
Dantabakra A causin of Śiśupāla.
[ ଦ୍ର—ଏ କରୁଷ ଦେଶର ରାଜା ବୃଦ୍ଧଶର୍ମାଙ୍କ ପୁତ୍ର ଥିଲେ ଓ ଶିଶୁପାଳଙ୍କ ଭାଇ ଲେଖା ଥିଲେ । ଶ୍ରୀକୃଷ୍ଣ ଏହାଙ୍କୁ ବଧ କରିଥିଲେ । ]

ଦନ୍ତବଲ୍କ—ସ ବି—ଦାନ୍ତର ମାଢ଼ି; ଦାନ୍ତ ମୂଳରେ ଥିବା ମାଂସର ହୁଡ଼—
Dantabalka The gums

ଦନ୍ତ ବସନ—ସଂ. ବି—ଦନ୍ତବାସ, ଓଷ୍ଠ —
Danta basana Lip.
କାନ୍ତା କାନ୍ତ ଦନ୍ତବସନ ଭୁଲେ—ଗୋପୀକୃଷ୍ଣ. ରସକଲ୍ଲୋଳ ।

ଦନ୍ତ ବସ୍ତ୍ର—ସଂ. ବି—ଦନ୍ତବାସ (ଦେଖ )
Danta bastra Dantabāsa ( See )

ଦନ୍ତ ବାସ —ସ. ବି. (ଷଷ୍ଠୀ ତତ୍; ଦନ୍ତ + ବାସ = ଆଚ୍ଛାଦନ)—
Danta bāsa ଦନ୍ତଚ୍ଛଦ; ଓଠ —The lips
ଦସ୍ତା କରନ୍ତର କର ତଳ
ଦନ୍ତ ବାସେ ରଖି ଦରସ୍ମିତ । କବିସୂର୍ଯ୍ୟ . ଦଶୋଧତତ୍ତ୍ୱ ଦ. ଗୀତ ।

ଦନ୍ତବୀଜ—ସ. ବି. (ବହୁବ୍ରୀହି; ଦନ୍ତ + ବୀଜ, ଦନ୍ତ ପରି ବୀଜ ଯାହାର)—ଡାଳିମ୍ବ, Pomegranate.
Dantabija

ଦନ୍ତବେଷ୍ଟ—ଦେ. ବି—ଦାନ୍ତମୂଳ; ଦାନ୍ତମୂଳକୁ ବେଷ୍ଟନ କରିଥିବା ମାଂସ ପିଣ୍ଡ—The gums
Dantabeshta

ଦନ୍ତ ମର୍ଜନ—ସ ବି —ଦନ୍ତ ମାର୍ଜ୍ଜନ (ଦେଖ)
Danta majjana Danta mārjjana (See)

ଦନ୍ତ ମଳ—ସ. ବି (ଷଷ୍ଠୀ ତତ୍; ଦନ୍ତ + ମଳ)—
Danta mala ଦାନ୍ତଉପରେ ଓ ସନ୍ଧିରେ ପଡ଼ିବା ଛିଟଅ—
The tartar of the teeth.

ଦନ୍ତ ମାଂସ—ସଂ ବି— ଦନ୍ତବେଷ୍ଟ (ଦେଖ)
Danta māmsa Dantabeshta (See)

ଦନ୍ତ ମାର୍ଜ୍ଜନ—ସ. ବି (ଷଷ୍ଠୀ ତତ୍; ଦନ୍ତ+ମାର୍ଜ୍ଜନ)—ଦାନ୍ତ ଘଷିବା—
Danta mārjjana Act of cleansing of the teeth.

ଦନ୍ତ ମାର୍ଜ୍ଜନୀ—ସ. ବି. ସ୍ତ୍ରୀ—୧ । ଦାନ୍ତଖୁଣ୍ଟା—1. A tooth-pick.
Danta mārjjani ୨ । ଦାନ୍ତରୋଗର ଔଷଧ—2. Dentrifice.
୩ । ଦାନ୍ତଘଷା ବ୍ରସ୍—3 Tooth brush.
୪ । ଦନ୍ତକାଷ୍ଠ (ଦେଖ)—4 Dantakāshtha (See)

ଦନ୍ତ ମୂଳ—ସ. ବି—୧ । ଦାନ୍ତମୂଳ—
Danta mūla The gums; root of the teeth
୨ । ଦାନ୍ତମୂଳଧରା ରୋଗ ( ହି. ଶବ୍ଦସାଗର )—
2. Pain and swelling of the gums.

ଦନ୍ତମୂଳୀୟ—ସଂ. ବିଣ (ଦନ୍ତମୂଳ + ଭବାର୍ଥେ ଈୟ)—
Dantamūliya ଦାନ୍ତମୂଳ ସାହାଯ୍ୟରେ ଉଚ୍ଚାରିତ (ବର୍ଣ୍ଣ) —
( letters ) Pronounced with the help of the root of the teeth; dental (letters).
[ ଦ୍ର—ତ, ଥ, ଦ, ଧ, ନ, ଟ, ଲ, ସ ଏମାନଙ୍କୁ ଦନ୍ତମୂଳୀୟ ବା ଦନ୍ତ୍ୟ ବର୍ଣ୍ଣ ବୋଲାଯାଏ । ]

ଦନ୍ତ ଲେଖନ – ସ. ବି— ଦାନ୍ତ ମୂଳ ତଳ ଉହିଁରୁ ପୂଜ ଆଦି ବାହାର କରିବା ପାଇଁ ବ୍ୟବହୃତ ସୂକ୍ଷ୍ମ ତୋଳ ଅସ୍ତ୍ର ବିଶେଷ—A surgical instrument used in ancient India for oppening the gums.
Danta lekhana

ଦନ୍ତ ଶଙ୍କୁ ସଂ. ବି—ଦାନ୍ତ ଉପାଡ଼ିବା ନିମନ୍ତେ ବ୍ୟବହୃତ ସଣ୍ଡାଶି
Danta śaṅku ( ସୁଶ୍ରୁତ )—Forceps to draw out teeth.

ଦନ୍ତଶଠ ଟ)—ସଂ ବି.(ଦନ୍ତ + ଶଠ୍ ଧାତୁ = ଛେଦନ କରିବା + କର୍ତ୍ତୃ ଅ)-
Dantaśatha ( ṭa ) ୧ । ଜମ୍ବୀର ଲେମ୍ବୁ—1. A kind of very sour lemon.
୨ । କପିତ୍ଥ—2. Wood apple; Feronia Elephantum.
୩ । କରମଙ୍ଗା—3. Gooseberry; Averrhoea Carambola.
୪ । ନାଗରଙ୍ଗ; ନାରଙ୍ଗ —
4. A small variety of lemon.

ଦନ୍ତ ଶର୍କରା – ସଂ. ବି.— (ଷଷ୍ଠୀ ତତ୍. ଦନ୍ତ + ଶର୍କରା)—
Danta śarkarā ୧ । ଦନ୍ତମଳ(ଦେଖ)—1. Dantamala(See)
୨ । ଦାନ୍ତ ମୂଳେ ମଇଳା ଜମିବା ଯୋଗୁ ଜନ୍ମିବା ରୋଗ-ବିଶେଷ ( ହି. ଶବ୍ଦସାଗର ) —
2. A kind of tooth-disease.

ଦନ୍ତ ଶାଣ—ସଂ. ବି. କ୍ଲୀ.—( ଦନ୍ତ + ଶାଣ=ପରିଷ୍କାରକ )—ମିସି,
Danta śāṇa ଦାନ୍ତ ରଙ୍ଗାଇବା ପାଇଁ ବ୍ୟବହୃତ ଗୁଣ୍ଡ—
A black dentrifice.

ଦନ୍ତ ଶୂଳ—ସଂ ବି. —ଦାନ୍ତ ବିନ୍ଧିବା ରୋଗ; ଦାନ୍ତ ଫୁଲେଇ ହେବା ରୋଗ -
Danta śūla Tooth ache.

ଦନ୍ତଶୋଧକ – ସଂ ବିଣ.(ଷଷ୍ଠୀ ତତ୍)—ଯାହାଦ୍ୱାରା ଦାନ୍ତ ସଫାକରାଯାଏ -
Dantaśodhaka Dentrifice.

ଦନ୍ତଶୋଧନ—ସଂ. ବି. (ଷଷ୍ଠୀ ତତ୍)— ଦାନ୍ତ ସଫା କରିବା—
Dantaśodhana Cleansing of the teeth.
ବିଣ. (ବହୁବ୍ରୀହି)—ଦନ୍ତଶୋଧକ (ଦେଖ)—
Dantaśodhaka (See)

ଦନ୍ତ ଶୋଧନୀ—ସଂ. ବି. ସ୍ତ୍ରୀ — ଦନ୍ତମାର୍ଜନୀ (ଦେଖ)—
Danta śodhanī Dantamārjanī (See)

ଦନ୍ତ ଶୋଫ—ସ ବ—ଦାନ୍ତ ମୂଳରେ ଜନ୍ମିବା କଷ୍ଟଦାୟକ ବ୍ରଣ;
Danta śopha ଦନ୍ତାର୍ବୁଦ—Gum-boil

ଦନ୍ତସ୍ଫୁଟ-ଦେ ବ --୧ । କୌଣସି ପଦ ବା ବାକ୍ୟର ଉଚ୍ଚାରଣର ସହଜତା-
Dantasphuṭa 1. Ease or facility in pronouncing a word or sentence.
(ଯଥା—ଏ ଶ୍ଳୋକରେ ମୋର ଦନ୍ତସ୍ଫୁଟ ହେଉ ନାହିଁ ।)
୨ । (ଲକ୍ଷଣାର୍ଥ) ବୁଝିବାକୁ ସୁବୋଧତା—
2. (figurative) Legibility; the condition of a matter being easily understood; intelligibility.

ଦନ୍ତ ହର୍ଷ—ସ. ବ.— ଦନ୍ତଶୂଳ (ଦେଖ)
Danta harsha Dantaśūla (See)

ଦନ୍ତ ହର୍ଷକ—ସ. ବ — ଜମ୍ବୀର ଲେମ୍ବୁ—
Danta harshaka A species of lemon.
ସଂ. ବଣ—ଯାହା ଖାଇଲେ ଦାନ୍ତ ଟକ ମାରଯାଏ—
Causing soroness in the teeth when eaten.

ଦନ୍ତ ହର୍ଷଣ—ସ. ବ.—୧ । ଦନ୍ତହର୍ଷକ (ଦେଖ)
Danta harshaṇa 1. Dantaharshaka (See)
୨ । ଖଟା ଖାଇବା ଯୋଗୁ ଦାନ୍ତ ଟକ ମାରଯିବା—
2. Soreness in the teeth due to eating a very sour thing

ଦନ୍ତ ହୀନ—ସଂ. ବଣ. ପୁଂ—(ଷଷ୍ଠୀ ତତ୍;ଦନ୍ତ+ହୀନ) —୧ । ଦାନ୍ତ ନ
Danta hīna ଥିବା ଲୋକ; ପାକୁଆ—1. Toothless
( ଦନ୍ତହୀନା—ସ୍ତ୍ରୀ )
୨ । ଯେଉଁ ଜୀବଙ୍କର ଦାନ୍ତ ନ ଥାଏ (ପିପୀଲିକାଭୁକ୍ ପ୍ରଭୃତି)—2. Edentata; (animals) having no tooth.

ଦନ୍ତା—ଦେ. ବଣ. (ସଂ. ଦନ୍ତାଳ) - ୧ । ବଡ଼ ଦାନ୍ତଯୁକ୍ତ (ହାତୀ)—
Dantā 1. (elephant) Having big and long tusks.
दाँताल ୨ । (ଲକ୍ଷଣାର୍ଥ) ଅନେକଙ୍କ ମଧ୍ୟରେ ଉତ୍କୃଷ୍ଟ—
दंताळ; दन्तार 2. (figurative) Excellent.
୩ । ଦଳପତି ହେବାର ଉପଯୁକ୍ତ—
3. Fit to be a leader.
୪ । ବଳବତ୍ତମ—4 Strongest.
୫ । ଅତ୍ୟାଗ୍ରହୀ—5 Oppressive.
୬ । ପରାକ୍ରମଶାଳୀ; ବଳୁଆ; ବଳିଷ୍ଠ; କ୍ଷମତାଶାଳୀ—
6. Strong; powerful; influential.
(ଯଥା—ଦନ୍ତା ଜମିଦାର, ଦନ୍ତାଲୋକ; ଦନ୍ତା ହାକମ ।)
୭ । ମୁହଁ ଲୋଡ଼ୁ; ମୁଖର—
7. Having this gift of the gab.
ବ.—୧ । (ସ. ଦନ୍ତାବଳ) ବଡ଼ ଦାନ୍ତ ଥିବା ହାତୀ—
1. Anele phantvi hang big tusks.
୨ । ଅଣ୍ଡିରା ହାତୀ—
2. A tusker; a male elephant.
୩ । ହସ୍ତୀଯୂଥର ଦଳପତି —3. The leading tusker in a herd of elephants.
[ଦ୍ର—ହାତୀଙ୍କ ଯୂଥ ମଧ୍ୟରେ ସମସ୍ତଙ୍କ ଠାରୁ ବଡ଼ ଦାନ୍ତ ବିଶିଷ୍ଟ ଓ ବୃହଦବପୁର ଓ ବଳୁଆ ଅଣ୍ଡିରା ହାତୀ ଦଳପତି ବା ଦଳର ନେତା ହୁଏ ।]
୪ । ଦଳପତି; ଯୂଥପତି; ଦଳର ନେତା—
4. The leader of a herd.
ପ୍ରାଦେ ( ପୁରୀ ଓ ଗଞ୍ଜାମର ବ—
ମର୍କଟଦଳପତି; ଗୋଧ ମାଙ୍କଡ଼—
The leader of a herd of monkeys.

ଦନ୍ତାଗ୍ର—ସଂ ବି. ( ଷଷ୍ଠୀ ତତ୍, ଦନ୍ତ+ଅଗ୍ର )—
Dantāgra ଦାନ୍ତର ଅଗ ବା ମୁନ—The point of a tooth

ଦନ୍ତାଘାତ—ସ. ବ. ( ତୃତୀୟା ତତ୍, ଦନ୍ତ+ଆଘାତ )—
Dantāghāta ୧ । ଦନ୍ତ ଦ୍ୱାରା ଆଘାତ—
1 A blow with the tusk.
୨ । କାମୁଡ଼ିବା—2. Biting.
୩ । କାମୁଡ଼ା ଚିହ୍ନ—3. Biting mark.
୪ । ( ଏହା ଖାଇଲେ ଦାନ୍ତ ଟକ ମାରଯାଏ; ଜମ୍ବୀରଲେମ୍ବୁର ଅନ୍ୟ ନାମ ଦନ୍ତଶଠ ) ଲେମ୍ବୁ—4. Lemon.

ଦନ୍ତାଜ—ସଂ ବ—୧ । ଦାନ୍ତକୁ ପୀଡ଼ା ଦେବା ପୋକ (ବୃ. ଶବ୍ଦସାଗର)
Dantāja 1. Maggots attacking the teeth.
୨ । ଦାନ୍ତ ପୋକ କାଟିବା ରୋଗ ( ବୃ. ଶବ୍ଦସାଗର )—
2. A disease of the teeth due to maggots.

ଦନ୍ତା ଦନ୍ତା—ଦେ· ବଣ (ବହୁବଚନ)—ବହୁ ବଳିଷ୍ଠ (ବ୍ୟକ୍ତି—)
Dantā dantā A number of strong (persons).

ଦନ୍ତାଦନ୍ତି—ସ. ଅ. ( ଦନ୍ତ+ଦନ୍ତ+ଇ; ବହୁବ୍ରୀହି; ଦନ୍ତରେ ଦନ୍ତରେ
Dantādanti ପ୍ରହାର କରି ଯେଉଁ ଯୁଦ୍ଧ ହୁଏ; ତୁଳ. କେଶାକେଶି, ଦଣ୍ଡାଦଣ୍ଡି )—
୧ । ପରସ୍ପରକୁ ଦନ୍ତରେ ଆଘାତ କରି; ପରସ୍ପରକୁ ଦାନ୍ତ ଦ୍ୱାରା ଆଘାତ କରୁଥିବା (ହସ୍ତିଦ୍ୱୟ)—1. Striking tusks at each other (elephants).
୨ । କାମୁଡ଼ା କାମୁଡ଼ି—2. Biting each other.
ସଂ. ବ—ଉଭୟପକ୍ଷ କାମୁଡ଼ା କାମୁଡ଼ି ହୋଇ କରୁଥିବା ଯୁଦ୍ଧ—
A fighting in which both parties bite each other.

ଦନ୍ତାବକ୍ର—ଦେ ବି. ( ସ. ଦନ୍ତବକ୍ର )—ଦନ୍ତବକ୍ର ( ଦେଖ )
Dantābakra Dantabakra ( See )

ଦନ୍ତାବଳ—ସଂ. ବି. (ଦନ୍ତ+ଅସ୍ତ୍ୟର୍ଥରେ ବଳ, ବଳ ପ୍ରତ୍ୟୟ ହେଲେ ପୂର୍ବବର୍ତ୍ତୀ ଶବ୍ଦର ଶେଷ ସ୍ୱର ଦୀର୍ଘ ହୁଏ; ତୁଳ.
Dantābaḷa କୃଷୀବଳ )—ଦନ୍ତା ହାତୀ, ଅଣ୍ଡିରା ହାତୀ—
A male elephant; a tusker.

ଦନ୍ତାବଳି—ସଂ ବି. (ଦନ୍ତ+ଆବଳି=ସମୂହ) ଦନ୍ତପଙ୍କ୍ତି—
Dantābali — A row of teeth.

ଦନ୍ତାୟୁଧ—ସଂ. ବ. (ବହୁବ୍ରୀହି, ଦନ୍ତ+ଅୟୁଧ)—ବାରହା, ବରାହ, ବଣୁଆଁ ଘୁଷୁରି—A boar, a wild hog
Dantāyudha

ଦନ୍ତାରି—ପ୍ରାଦେ (ଗଡ଼ଜାତ) ବି —ଲତା ପରି ଉଙ୍କେଇବା ବୁଦା-ବିଶେଷ—Acacia Caneseens, Acacia Pennata (Haines).
Dantāri

ଦନ୍ତାର୍ବୁଦ—ସଂ. ବି (୬ଷ୍ଠୀ ତତ୍, ଦନ୍ତ+ଅର୍ବୁଦ=ଅବୁ)—
Dantārbuda — ଦାନ୍ତମୂଳ ଫୁଲା—Swelling of the gums; gum-boil.

ଦନ୍ତାଳ—ସଂ. ବିଣ. (ଦନ୍ତ+ବିଶିଷ୍ଟାର୍ଥେ.ଅଲ)—୧ । ଦନ୍ତବିଶିଷ୍ଟ, ଦନ୍ତଯୁକ୍ତ—1. Having teeth or tusks.
Dantāla
(ଦନ୍ତାଳୀ—ସ୍ତ୍ରୀ) ୨ । ବଡ଼ଦାନ୍ତଯୁକ୍ତ; ଦାନ୍ତୁରି—
2. Having prominent teeth.
ସଂ. ବି—ହସ୍ତୀ; ଅଣ୍ଡିରା ହାତୀ ( ହି ଶବ୍ଦସାଗର )—
A tusker.

ଦନ୍ତାଳିଆ—ଦେ. ବଣ. (ସ.ଦନ୍ତୁର)—ଦାନ୍ତୁରା, ବଡ଼ ଦାନ୍ତବିଶିଷ୍ଟ—
Dantāliā — Having large teeth or tusks.

ଦନ୍ତାଳିକା—ସ. ବ ସ୍ତ୍ରୀ. ( ଦନ୍ତାଳୀ+ସ୍ୱାର୍ଥେ. କ+ଆ )—
Dantālikā — ୧ । ଲଗାମ—1 A bridle; reins.
୨ । ଘୋଡ଼ାର କଡ଼ିଆଳି—2. A horse's bit

ଦନ୍ତାଳୀ—ସ. ବ ସ୍ତ୍ରୀ ( ଦନ୍ତ+ଅଲ ଧାତୁ=ଭୂଷିତ କରିବା+କର୍ତ୍ତୃ. ଅ+ସ୍ତ୍ରୀ. ଈ )—ଦନ୍ତାଳିକା ( ଦେଖ )
Dantālī — Dantālikā ( See )

ଦନ୍ତା ଲୋକ—ଦେ. ବ—ଯୋଗ୍ୟ ବା ପରାକ୍ରମଶାଳୀ ବ୍ୟକ୍ତି—
Dantā loka — A powerful or very influential person.

ଦନ୍ତିଆ ମୂଷା—ପ୍ରାଦେ. ( ଗଡ଼ଜାତ ) ବ—ବଡ଼ ବଡ଼ ଦାନ୍ତ ଥିବା ଛୋଟ ପାର୍ବତ୍ୟ ମୂଷା—A small hilly rat having large teeth
Dantiā mūshā
( ଦାନ୍ତିଆ ମୂଷା—ଅନ୍ୟରୂପ )

ଦନ୍ତିକା—ସ. ବ. ସ୍ତ୍ରୀ ( ଦନ୍ତ+କ+ସ୍ତ୍ରୀ ଆ )—ଦନ୍ତୀ ( ଦେଖ )
ntikā — Dantī ( See )

ଦନ୍ତିନୀ—ସ ବ. ସ୍ତ୍ରୀ ( ଦନ୍ତ+ଇନ୍+ସ୍ତ୍ରୀ ଈ )—ଦନ୍ତୀ ( ଦେଖ )
Dantinī — Dantī ( See )

ଦନ୍ତୀ—ସ. ବଣ. ( ଦନ୍ତ+ଇନ୍ )—ଦନ୍ତବିଶିଷ୍ଟ, ଦନ୍ତଯୁକ୍ତ—
Dantī — Having teeth; dentate.
( ଦନ୍ତିନୀ—ସ୍ତ୍ରୀ ) ବି—୧ । ହସ୍ତୀ—1 Elephant.
ସଂ ଉଦୁମ୍ବରପର୍ଣ୍ଣୀ, ଦନ୍ତିକା, ଏରଣ୍ଡଫଳା, ଏରଣ୍ଡପତ୍ରିକା
ଦନ୍ତୀ; ହକୁନ; ହକୁମ
**दन्ती; हकुन; हकुम**
ତେ. ଦନ୍ତୀ
୨ । ସ୍ନୁହି ( ସିଜୁ ) ଆଦି ବର୍ଗର ଗୁଳ୍ମ କ୍ଷୁପବିଶେଷ—2. A medicinal plant; Baliospermum Amillara, Croton Polyandrum.
[ ଦ୍ର—ଏହାର ପତ୍ର ଅଣ୍ଡାକାର, ଦନ୍ତୁର, ଉପରେ ଲୋମଶ ଓ ତ୍ରିଶିର; ପତ୍ରର ମୂଳରେ ଦୁଇଟି ଅବୁ ଥାଏ । ଫଳ ଝିକମଞ୍ଜିଆ । ଏ ଗଛ ଉତ୍ତର ଓ ପୂର୍ବ ବଙ୍ଗରେ ହୁଏ । ଏଥିର ଫଳ ଛଦ୍ର ଓ ବୃହତ୍ ଭେଦରେ ଏହା ଦୁଇ ପ୍ରକାର । ]

ଦନ୍ତୁର—ସଂ ବିଣ. ପୁଂ ( ଦନ୍ତ+ଅଛି ଅର୍ଥରେ ଉର )—
Dantura — ୧ । ଦନ୍ତବିଶିଷ୍ଟ—1 Having tooth; toothed; rodent.
ଦନ୍ତୁରା } ସ୍ତ୍ରୀ
ଦନ୍ତୁରୀ }
୨ । ଦାନ୍ତୁରି; ବଡଦନ୍ତବିଶିଷ୍ଟ—
2. Having prominent or big teeth.
୩ । ବନ୍ଧୁର—3. Uneven, rough
୪ । କରତ ପରି ଦନ୍ତବିଶିଷ୍ଟ—
4. Notched; serrated.
୫ । ଉଚ୍ଚନୀଚ ( ସ୍ଥାନ )—5. Undulating.
୬ । କୁଟିଳ—6. Curved.
୭ । ବିଷମାନ୍ତର—7. Having irregular and unequal spaces between the different parts.
ବି—ଦନ୍ତବିଶିଷ୍ଟ ପ୍ରାଣୀ—The rodentia.

ଦନ୍ତୁରିତ—ସଂ. ବିଣ ( ଦନ୍ତୁର ନାମ ଧାତୁ+କର୍ତ୍ତୃ. ତ )—
Danturita — ୧ । ଦାନ୍ତ ପରି ଦାନ୍ତଯୁକ୍ତ; କରତ ଦାନ୍ତ ପରି ହୋଇଥିବା—1. Toothed; notched.
୨ । ଅସମ, ଉଚ୍ଚନୀଚ—2. Uneven,
୩ । କଣ୍ଟକିତ; ଠାକୁର ଥିବା—3. Horripilated.
ବପୁ ପୁଲକଭରେ ଦନ୍ତୁରିତ
ଗତ କଳାରେ ଧରନ୍ତି ପଶ୍ଚ ତ—ପ୍ରାଚୀ ରସବାରିଧି ।

ଦନ୍ତୋଦ୍ଭବ—ସଂ. ବି ( ୬ଷ୍ଠୀ ତତ୍, ଦନ୍ତ+ଉଦ୍ଭବ )—ପିଲାର ଦାନ୍ତ ଉଠିବା—Dentition; teething,
Dantodbhaba
( ଦନ୍ତୋଦ୍ଗମ—ଅନ୍ୟରୂପ )

ଦନ୍ତୋଦ୍ଭେଦ—ସଂ. ବି ( ୬ଷ୍ଠୀ ତତ୍; ଦନ୍ତ+ଉଦ୍ଭେଦ )—
Dantodbheda — ଦନ୍ତୋଦ୍ଭବ (ଦେଖ)—Dantodbhaba (See)

ଦନ୍ତ୍ୟ—ସଂ ବିଣ ( ଦନ୍ତ+ଯ )—୧ । ଦନ୍ତସମ୍ବନ୍ଧୀୟ—
Dantya — 1. Dental.
୨ । ଦନ୍ତ ଯୋଗେ ଉଚ୍ଚାରିତ ( ବର୍ଣ୍ଣ )—2. Dental; pronounced with the help of the teeth ( letters ).
୩ । ଦନ୍ତର ଉପକାରଜନକ—
3. Beneficial to the teeth.

ଦନ୍ତ୍ୟ ବର୍ଣ୍ଣ—ସ ବ.—ଦନ୍ତ ସାହାଯ୍ୟରେ ଉଚ୍ଚାରିତ ବର୍ଣ୍ଣ—
Dantya barnna — The dental letters.
[ଦ୍ର—ତ, ଥ, ଦ, ଧ, ନ, ଲ ଓ ସ ଏମାନଙ୍କୁ ଦନ୍ତ୍ୟବର୍ଣ୍ଣ କୁହାଯାଏ ।]

ଦନ୍ତ୍ୟୌଷ୍ଠ—ସ. ବଣ (ଦନ୍ତ୍ୟ+ଓଷ୍ଠ)—ଦନ୍ତ ଓ ଓଷ୍ଠ ଯୋଗେ ଉଚ୍ଚାରିତ (ବର୍ଣ୍ଣ)—(letters) Pronounced with the help of the teeth and lip; denti-labial.
Dantyaushtha
(ଦନ୍ତ୍ୟୋଷ୍ଠ୍ୟ—ଅନ୍ୟରୂପ)
[ ଦ୍ର—ଯ ର ଲ ଓ ଅବର୍ଗ୍ୟ ବ (ୱ), ଏମାନଙ୍କୁ ଦନ୍ତ୍ୟୌଷ୍ଠ ବର୍ଣ୍ଣ ବୋଲାଯାଏ । ]

ଦନ୍ତୁଡ଼ା—ଦେ. ବଣ. (ସ. ଦନ୍ତୁର)—ଦନ୍ତୁରା (ଦେଖ)
Danthardā — Dantharā (See)

ଦନ୍ତୁରା—ଦେ ବଣ. (ସଂ. ଦନ୍ତୁରା)—୧ । ଦାନ୍ତ ନଷ୍ଟ ହୋଇଥାଇ ଥିବା;
Dantharā ଥନ୍ତୁରା—1. Blunted
ଭୋଁତା ୨ । ଦନ୍ତୁର ଦାନ୍ତଯୁକ୍ତ—
थाथरा 2 With serrated blunt edge.

ଦନ୍ଦ୍ରୋ - ଗ୍ରାଦେ. (ସମ୍ବଲପୁର) ବ—ବଡ଼ ଗର୍ତ୍ତ—
Dandro Big hole; pit

ଦନ୍ଦଶୁକ—ଦେ. ବ—ଦନ୍ଦଶୂକ (ଦେଖ)
Dandaśuka Dandaśūka (See)
ବାରେକ ପୁଣି ହଦ କହନ୍ତି ଭାଗ୍ୟହୀନ ଦନ୍ଦଶୁକ ପାଶରେ ଛନ୍ଦ ସେ ।
ଉଞ୍ଜ, ବୈଦେହୀଶବିଳାସ ।

ଦନ୍ଦଶୁକ ପାଶ—ଦେ. ବ—ନାଗ ପାଶ (ଦେଖ)
Dandaśuka pāśa Naga pāśa (See)

ଦନ୍ଦଶୂକ—ସ. ବଣ (ଦନ୍ଶ୍ ଧାତୁ=କାମୁଡ଼ିବା, ଅତିଶୟାର୍ଥେ ଯଙ୍ ଲୁକ୍
Dandaśūka ଅର୍ଥାତ୍ ଦ୍ୱିତ୍ୱ=ଦନ୍ଦଶ୍ ଧାତୁ+ଶୀଳାର୍ଥେ କର୍ତ୍ତ୍ରି. ଊକ)—୧ । ସର୍ବଦା ଦଂଶନ କରିବାକୁ ଉଦ୍ୟତ—
1 Ready to bite repeatedly or furiously.
୨ । ହିଂସ୍ର, କ୍ରୂର—2. Cruel; malignant.
ବ—୧ । ସର୍ପ—1 Serpent
୨ । ରାକ୍ଷସ—2. Demon.

ଦପଦପ—ଦେ. ଅ. (ସ. ଦୃପ୍ ଧାତୁ=ଦୀପ୍ତି ପାଇବା; ପୀଡ଼ାଦେବା) -
Dapadapa ୧ । ଦକଦକ, ଧକ୍‌ଧକ୍, ଜ୍ୟୋତି ଦୀପ୍ତି ସହିତ ଜଳିବା
दपदप ପ୍ରକାରେ, ତେଜସ୍ୱର ପଦାର୍ଥର ଦୀପ୍ତି—
1. Shining; twinkling; sparkling or flashing like fire.
୨ । ଧାପୁଡ଼ୁଧାପୁଡ଼ୁ; ପାଦକୁ ଭୂମିରେ ଜୋରରେ ପକାଇ ଦର୍ପରେ ଚାଲିବାର ଶବ୍ଦ—2. Briskly walking with resounding footsteps

ଦପଦପେ—ଦେ. କ୍ରି ବଣ—ଧକ ଧକ ହୋଇ; ଦୀପ୍ତି ସହକାରେ—
Dapadape Shiningly; lustrously.

ଦପ୍ତର୍—ବୈଦେ. ବ (ଆ. ଦଫ୍‌ତର୍)—୧ । ଖାତା କମ୍ପା ହିସାବ ବହି—
Daptar 1. Account book.
(ଦପ୍ତର—ଅନ୍ୟରୂପ) ୨ । ପ୍ରତିଦିନର ବିବରଣ ଲେଖାଯିବା ବହି—
दफ्तर दफ्तर 2. Diary; journal.
୩ । ନଥି; ସିରସ୍ତା; ଅଫିସ୍‌ର କାଗଜପତ୍ର—
3. Office papers; portfolio; records.
୪ । ଅଫିସ୍; କାର୍ଯ୍ୟାଳୟ—4 Office.

ଦପ୍ତରଖାନା—ବୈଦେ. ବ. (ଆ)—୧ । କାଗଜ ପତ୍ର ରଖିବାର ଘର—
Daptar-khana 1. Office.
(ଦପ୍ତରଖାନା—ଅନ୍ୟରୂପ) ୨ । ମହାଫିସ୍ ଖାନା—
दफ्तरखाना दफ्तरखाना 2. Record-room.
୩ । ଲାଇବ୍ରେରୀ—3. Library; book-room.
୪ । ବହି ବନ୍ଧାଯାଉଥିବା ଘର—
4. A room where books are bound.

ଦପ୍ତରୀ—ବୈଦେ. ବ. (ଆ. ଦଫ୍‌ତରୀ)—୧ । ଅଫିସ୍‌ର ଜଗୁଆଳ—
Daptari 1. An office-keeper.
(ଦପ୍ତରି—ଅନ୍ୟରୂପ) ୨ । ଯେ ଅଫିସ୍‌ର କାଗଜପତ୍ର, କାଳି, କଲମ
दफ्तरी ଆଦି ଜମା ରଖେ ଓ ପ୍ରୟୋଜନ ବେଳେ କର୍ମଚାରୀମାନଙ୍କୁ
दफ्तरी ଯୋଗାଏ—2. A duftry, a menial servant in charge of the stationary of an office
୩ । ଯେ ବହି ଓ ଖାତାମାନ ବାନ୍ଧେ—
3. Book-binder.

ଦଫା—ବୈଦେ. ବି. (ଆ; ଦଫା=ବାର, ଥର, ବିଭାଗ)—
Daphā ୧ । ଧାରା—1 Rule
दफा ୨ । ବାର; ଥର; କିସ୍ତି; ଖେପ—
दफा 2 Instalment; time; item.
୩ । ଲେଖାର ପ୍ରକରଣ; ପରିଚ୍ଛେଦ—
3 Section, paragraph of a writing.
୪ । ଆଇନର ପ୍ରକରଣ—
4 Section of a code of law
୫ । ଦଳ; ପଞ୍ଝା—5 A crowd; party; gang

ଦଫା ଉଆରି—ବୈଦେ. ଅ. (ଆ ଦଫାୱାର) (କଚିରିଆ ଭାଷା)—
Daphā uāri ଦଫାୱାର (ଦେଖ)
(ଦଫାୱାର—ଅନ୍ୟରୂପ) Daphāwāri (See)

ଦଫାଏତ୍—ବୈଦେ ବି. (ଆ)—ଜମିଦାରମାନଙ୍କର ଖଜଣା ଛଡ଼ା
Daphāet ଅନ୍ୟ ବାଜେ ଆୟ—Miscellaneous receipts
(ଦଫାୟତ୍—ଅନ୍ୟରୂପ) of a landlord.
[ ଦ୍ର—ଜଳକର, ଫଳକର, ବଣକର, ମଛୁଆ ଓ ପଡ଼ୁ ଜମିର ଖଜଣାକୁ ଦଫାଏତ୍ କହନ୍ତି । ]

ଦଫା ଦଫା—ବୈଦେ କ୍ରି. ବିଣ (ଆ)—
Daphā daphā ୧ । ଥରକୁଥର; ବାରମ୍ବାର; ଅନେକ ଥର—
ଦଫାକୁଦଫା ଦଫେଦଫେ } ଅନ୍ୟରୂପ 1. Again and again, several times, repeatedly
दफादफा ୨ । ପ୍ରତିଥର—2. Every time.
दफादफा ୩ । ପୃଥକ୍ ପୃଥକ୍ କରି—3. Separately.
୪ । ଦଳ ଦଳ ହୋଇ—4. In gangs.; in batches.

ଦଫାଦାର୍—ବୈଦେ. ବ. (ଆ)—୧ । ଅଶ୍ୱାରୋହୀମାନଙ୍କର ଜମାଦାର—
Daphādār 1. Duffadar; the Head of a company
दफादार; दफादार of cavalry.
୨ । ମୂଲିଆମାନଙ୍କ ସର୍ଦ୍ଦାର; ମେଣ୍ଟ—
2. A mate or headman of coolies.
୩ । ଗ୍ରାମ୍ୟ ଚୌକିଦାରମାନଙ୍କ ସର୍ଦ୍ଦାର—3. The Head of the village-chaukidars of a union.
[ଦ୍ର—ପ୍ରତ୍ୟେକ ଗ୍ରାମରେ ଜଣେ ଲେଖାଏଁ ଚୌକିଦାର ଥାଆନ୍ତି ଓ କେତେଗୁଡ଼ିଏ ଗ୍ରାମ ଦ୍ୱାରା ଗୋଟିଏ ଇଉନିୟନ୍ ଗଠିତ ହୁଏ । ଏକ ଇଉନିୟନ୍‌ର ଚୌକିଦାରମାନଙ୍କ ଉପରେ ଜଣେ ଦଫାଦାର୍ ନିଯୁକ୍ତ ହୁଏ ।]
୪ । ରେଲୱାଇର ଏକ ଦଫା କୁଲିଙ୍କ ସରଦାର—
4. Head of a gang of Railway coolies.

ଦଫାଦାରୀ—ବୈଦେ. ବ. (ଆ)—ଦଫାଦାରର କାର୍ଯ୍ୟ—The post
Daphādāri or duties of a Daphādār
दफादारी दफादारी

ଦଫା ରଫା —ବୈଦେ ବି. (ଆ)—୧ । କୌଣସି ବିଷୟର ଶେଷ ନିଷ୍ପତ୍ତି—
Daphā raphā 1. Final disposal of any matter.
दफाबफा ୨ । ଶେଷ; ସମାପ୍ତି— 2. Completion; finish
दफारफा ୩ । ରଫା, ଅଟପାଷିରେ ନିଷ୍ପତ୍ତି—
3. Amicable settlement
୪ । ସର୍ବନାଶ, ଲୋପ—4 Extinction, ruin.
୫ । କର୍ମକ୍ଷମତା; କାର୍ଯ୍ୟ କରିବାରେ ଅପଟୁତା—
5. Inability; incompetence.

ଦଫାରଫା ଶେଷ—ଦେ. ବି.—ଦଫା ଶେଷ (ଦେଖ)—
Dapharapha sesha Dapha sesha (See)

ଦଫାୱାରି—ବୈଦେ. ଅ (ଆ, (କଟରିଆ ଭାଷା)—୧ ଅନେକ ଥର—
Daphāwāri 1. By many instalments
दफादफा ୨ । ଥର ଥର କରି —2. Time after time
दफावार ୩ । ଭିନ୍ନ ଭିନ୍ନ ଦଫା ବା ପରିଚ୍ଛେଦରେ —
3. In successive paragraphs.

ଦଫା ଶେଷ- ଦେ. ବି. (କଟରିଆ)—୧ । ସର୍ବନାଶ —
Daphā sesha 1 Ruin, annihilation.
दफाशेष ୨ । ସମ୍ପୂର୍ଣ୍ଣ ବିନାଶ, ଲୋପ—
दफाशेष 2 Extinction, destruction.
୩ । କୌଣସି ବିଷୟର ଅବଶେଷ ନ ରହିବା; ସମାପ୍ତି—
3 End of a thing.
୪ । କର୍ମ କରିବା ଶକ୍ତିର ଲୋପ—4. Utter exhaustion.

ଦଫେ—ବୈଦେ. କ୍ରି. ବିଣ. (କଟରିଆ) (ଆ)—୧ । ଏକବାର; ଥରେ—
Daphe 1. Once; at a time.
एकबार ୨ । ଏଥିପୂର୍ବେ ଥରେ—2. Once upon a time.
एकदफे

ଦବ—ସଂ ବି (ଦୁ ଧାତୁ—ଉତ୍ତପ୍ତ କରିବା+କର୍ତ୍ତୃ ଅ)—
Dava ୧ । ବନାଗ୍ନି; ଦାବାଗ୍ନି—1 Forest-fire.
ବନାଗିଛ ଦବ ବଢ଼ଳ—ବନସ୍ପର ମୂର୍ଦ୍ଧ ଘନ କବାଶ—
କାମାନଳ ଛାପ ତହଳ । ଉଞ୍ଜ. ବୈଦେହୀଶବିଳାସ ।
୨ । ବନ—2. Forest
୩ । ସନ୍ତାପ—3 Burning heat.
୪ । ପୋଡ଼ାଜଳା; ଗାତ୍ରଦାହ —
4. Inflammation; burning sensation

ଦବଉ—ଦେ. ବିଣ—ଆଗପାଖ ଅଧିକରୁ ରୂପେ ଭାର ହେବା (ବୋଝାଇ ଶଗଡ଼); ଆଗଗରୁଆ, ଝୁଙ୍ଗ—(a cart) Having the
Dabau
(ଉଲଟ—ବପଗଡ)  front side loaded more heavily
दबाउ, दब्बु than the hind side.

ଦବକ—ଦେ. ବି (ସଂ. ଦମକ)—୧ । ଆତଙ୍କ; ଭୟ—
Dabaka 1. Fear; fright, dread.
चौंक दबक ୨ । ଛକନିଆ; ଚମକ—2. Alarm.
( ଯଥା—ମୋ ଛାତିରେ ଗୋଟାଏ ଦବକ ରହିଗଲା । )
୩ । ଶଙ୍କା—3. Apprehension.

ଦବକ ପଶିବା—ଦେ. ବି ( ଅ ଦବକ୍‌ନା )—ଛକନିଆ ହେବା, ଛାତି ଧଡ଼ ଧଡ଼ ହେବା —Startling; palpitation of heart (due to sudden fear )
Dabaka pasiba
दबका दबकना
( ଦବକ ରହିଯିବା—ଅନ୍ୟରୂପ )

ଦବକାଇବା—ଦେ. କ୍ରି —ଦବକିବା କ୍ରିୟାର ଣିଜନ୍ତରୂପ—
Dabakāibā The causative form of Dabakibā
( ଦବକେଇବା —ଅନ୍ୟରୂପ )

ଦବକିବା—ଦେ କ୍ରି —୧ । ଚମକି ପଡ଼ିବା —
Dabakibā 1. To be startled.
दबके याओया ୨ । ପଶ୍ଚାତ୍‌ପଦ ହେବା; ଶଙ୍କିଯିବା—
दबकजाना 2. To shrink back; to draw back.

ଦବଥୁ—ସଂ ବି ( ଦୁ ଧାତୁ=ଉତ୍ତପ୍ତ କରିବା+ଭାବେ ଅଥୁ )—
Dabathu ୧ । ଉଦ୍‌ବେଗ—1 Anxiety
୨ । ଶରୀରର ଜଳାପୋଡ଼ା - 2 Inflammation.
୩ । ଦୁଃଖ— 3. Sorrow; grief; affliction.
୪ । ପରିତାପ; ସନ୍ତାପ—4. Burning heat.

ଦବଦବ—ଦେ. ବି—ଛାତି ଦକଦକ ହେବା—
Dabadaba Palpitation of heart.
धड़फड धकधक

ଦବଦ୍ଦବି—ଦେ· ବି ( କୌଣସି ଅଞ୍ଚଳରେ ହଇଜା ରୋଗ ବ୍ୟାପିଲେ ଲୋକେ ଉପରେ ଅସ୍ଥିର ହେଉଥିବାରୁ )—
Dabadabi
दबदबा ୧ । ଓଲାଉଠା, ହଇଜା—1 Cholera.
୨ । ଆତଙ୍କ; ତ୍ରାସ—2. Alarm.

ଦବଦହନ—ସଂ. ବି (ଷଷ୍ଠୀ ତତ୍, ଦବ+ଦହନ)—ଦାବାନଳ—
Dabadahana Forest fire.

ଦବଲୁ—ଦେ. ବି. (ଧ୍ୱନ୍ୟନୁକରଣ)—ଦମାଲୁ (ଯାହା ଦବଦବ ବାଜେ)—
Dabalu A kind of big drum,
दामामा दमामा

ଦବା—ଗ୍ରା. କ୍ରି ( ସଂ. ଦା ଧାତୁ=ଦେବା କ୍ରିୟାର କଥ୍ୟ ରୂପ, ତୁଳ. ନବା=ନେବା )—ଦେବା; ଦାନ କରିବା—To give.
Dabā
देओया ବୈଦେ. ବି (ଆ) ଦବାଇ ( ଦେଖ )—
देना Dabāi ( See )

ଦବାଇ—ବୈଦେ. ବି (ଆ. ଦୱା)—ଔଷଧ—
Dabāi Medicine
दाओयाइ दवा
(ଦବେଇ—ଅନ୍ୟରୂପ)

ଦବାଇଖାନା—ବୈଦେ ବି (ଆ· ଦୱାଖାନା)—ଔଷଧାଳୟ—
Dabāikhānā Dispensary.
दाओयाखाना दवाखाना
(ଦବେଇଖାନା—ଅନ୍ୟରୂପ)

ଦବାଇବା—ଦେ. କ୍ରି (ସଂ. ଦମଧାତୁ) —୧ । ଦାବିବା କ୍ରିୟାର ଣିଜନ୍ତରୂପ -
Dabāibā 1. The causative form of 'Dābibā'.
(ଦବେଇବା—ଅନ୍ୟରୂପ) ମଦକଳ କଳକଣ୍ଠୀ କୁଳଙ୍କୁ ଯେ ମଧୁକାଳରେ
ଦବାଇବ—ଉଞ୍ଜ. ବୈଦେହୀଶବିଳାସ ।

୨ । ଦାକିବା (ଦେଖ)—Dākibā (See)
दावान द्वाना

ଦବାଗ୍ନି—ସ. ବ (ଦବ+ଅଗ୍ନି)—ଦାବାନଳ—
Dabāgni Forest fire.

ଦବିବା—ଦେ କ୍ରି (ସ ଦମ ଧାତୁ)—୧ । ତଳକୁ ବସିଯିବା—
Dabibā 1. To set down
दबन ୨ । ପଶ୍ଚାତ୍‌ପଦ ହେବା—2. To shrink
द्वना ୩ । ନିରସ୍ତ ହେବା; ହଟିବା—
3 To desist; to draw back; to retreat.
୪ । ଭୟରେ ଚୁପ୍ ହେବା—
4. To be silent through fear,
୫ । କମ୍ ହେବା—5. To diminish.

ଦବିଷ୍ଠ—ସ.ବଣ ପୁଂ (ଦୂର+ଅତ୍ୟର୍ଥେ ଇଷ୍ଠ)—୧ । ଅତ୍ୟନ୍ତ ଦୂରବର୍ତ୍ତୀ—
Dabishṭha 1 Very distant.
୨ । ଦୂରୀଭୂତ—2 Removed; gone.
(ଦବିଷ୍ଠା—ସ୍ତ୍ରୀ) ଦବିଷ୍ଠ ଏ କଣ୍ଠଯୋଗ ହେବ ଅଷ୍ଟବର୍ଗନାଥର ଏ ବରତର— ଇଣୋଗ୍‌ଚକ୍ଷୁ. ଦ ଗୀତ ।

ଦବୀୟାନ୍—ସ ବଣ. ପୁଂ (ଦୂର+ଅତ୍ୟର୍ଥେ ଈୟସ୍)—ଦବିଷ୍ଠ (ଦେଖ)
Dabiyān Dabishṭha (See)
(ଦବୀୟସୀ—ସ୍ତ୍ରୀ)

ଦବେଇ ରଖିବା—ଦେ. କ୍ରି—୧ । ଲୋଡ଼ାଇ ରଖିବା—
Dabei rakhibā 1. To conceal.
୨ । ଚପାଇ ରଖିବା—2. To keep pressed; to suppress.
୩ । ଶଙ୍କାନ୍ୱିତ କରି ରଖିବା—3. To keep under constant dread.
द्बकाना चापान

ଦଭ୍ର—ସ ବିଣ—(ଦନ୍ଭ ଧାତୁ=ଗର୍ବ କରିବା+କର୍ତ୍ତୃ. ର)—
Dabhra ୧ । କୃଶ—1 Weak; thin
୨ । ଅଳ୍ପ—2. A little; few; small.
ବି—ସମୁଦ୍ର—The sea.

ଦମ୍ (ଧାତୁ)—ସ—୧ । ଶାସନ କରିବା—
Dam (root) 1 To rule; to domineer.
୨ । ଶିକ୍ଷାଦେବା; ଦଣ୍ଡଦେବା—
2. To punish, to teach a lesson.
୩ । ବଶୀଭୂତ କରିବା—3. To subjugate.
୪ । ଶାନ୍ତ ହେବା—4 To be calm.

ଦମ୍—ବୈଦେ. ବ.—(ପ୍ରା)—୧ । ଜୀବନ; ପ୍ରାଣ—
Dam 1. Life.
(ବେଦମ୍—ବପରୀତ) ୨ । ନିଶ୍ୱାସ—2. Breath
दम ୩ । ନିଶ୍ୱାସ ନେବା ପାଇଁ ବିଶ୍ରାମ—
दम 3. Respite for breathing; breathing space.
୪ । ବଳ; ଜୋର—4. Strength.
୫ । ବିଶ୍ରାମ—5. Rest; respite.
୬ । ଜୀବନୀ ଶକ୍ତି—6. Vitality.
୭ । ଫୁରୁସତ; ଅବସର—7 Leisure.
୮ । ଗଞ୍ଜାଇ ଧୂଆଁ ଟାଣିବାର ଦଫା ବା ଥର—
8. Time of taking in a draft of smoke.
୯ । ଆବେଗ; ଦଫା—9. Paroxysm.
୧୦ । ଖର ନିଶ୍ୱାସ—10. Quick breathing; panting.
୧୧ । ଗାଡ଼ିର ଦମ୍ ବା କମାଣି—
11. The spring of a carriage,
୧୨ । ଇସ୍ପ୍ରିଙ୍ଗ୍, ତାର ବା ଲୁହା ପଟ୍ଟିର ସ୍ଥିତିସ୍ଥାପକ କୁଣ୍ଡଳୀ—
12. A spring.
୧୩ । ଘଣ୍ଟାର ସ୍ପ୍ରିଙ୍ଗ୍ ମୋଡ଼ା ହେବା ଯୋଗୁଁ ଘଣ୍ଟାର ଚାଲିବାର ଶକ୍ତି—13. The condition of a spring of a clock being wound up, which makes the clock go on.
୧୪ । ଗରମମସଲା ଯୋଗେ ସିଦ୍ଧ ଖୋସାଛଡ଼ା ଗୋଟାଆଳୁ, ଆଳୁର ଦମ୍—14. A curry of peeled whole potatoes boiled with sauce.
୧୫ । ମୁହୂର୍ତ୍ତ—15. Moment
୧୬ । ପ୍ରତାରଣା; ଭଣ୍ଡାଇବା—16, Deception; puting off on various pretexts,
୧୭ । ବୃଥା ଆଶା ବା ପ୍ରତାରଣାଦ୍ୱାରା ଅପେକ୍ଷା କରାଇବା—
17. Causing a person to wait by giving him false hopes.
ଦେ. ବି. (ସଂ. ଦମ) ଆପଣାର କର୍ମେନ୍ଦ୍ରିୟକୁ ନିୟନ୍ତ୍ରିତ କରିବା—
Self control, self restraint.
ପ୍ରାଦେ ( ସମ୍ବଲପୁର ) ବ—ଦମ୍ଭ ( ଦେଖ )
Dambha ( See )

ଦମ୍‌ଅଟକା—ଦେ. ବ—ଶ୍ୱାସରୋଧ—Suffocation, breathlessness.
Dam‘aṭakā
दमआटिक दमअटकना

ଦମ୍ ଅଟକା(କେ)ଇବା—ଦେ. କ୍ରି—ଦମ୍ ରଖିବା (ଦେଖ)
Dam aṭakā(ke)ibā Dam rakhibā (See)

ଦମ୍ ଅଟକିବା—ଦେ. କ୍ରି—ପବନ ଅଟକିବା ଯୋଗୁଁ ନିଶ୍ୱାସ ମାରି ନ ପାରିବା—To feel difficulty in breathing; to have one's breath restrained; to be suffocated.
Dam‘aṭakibā
(ଦମ୍‌ଅଟକିଯିବା—ଅନ୍ୟରୂପ)
दमआटिका दमअटकेयाओ्या
दमदूटना

ଦମ୍‌କଳ—ଦେ. ବ—୧ । ନଳଦ୍ୱାରା କୂପ ଅନ୍ଦରୁ ପାଣି ଟାଣି ଉପରକୁ ଉଠାଇବାର ଯନ୍ତ୍ର—1 Pumping machine; water pump ( by which water is pumped up on vacuum principle).
Damkaḷa
(ଦମକଳ—ଅନ୍ୟରୂପ)
दमकल
दमकल ୨ । କୂଅ ଅନ୍ଦରୁ ପାଣି ଉଠାଇ ପୋଡ଼ି ଯାଉଥିବା ଘରେ ନଳଦ୍ୱାରା ପାଣି ପକାଇ ନିଆଁ ଲିଭାଇବା କଳ—
2 Fire-engine.

ଦମ୍‌କଲ ବସା(ସେ)ଇବା—ଦେ. କ୍ରି—କୌଣସି ଜଳାଶୟ ବା କୂପରୁ Dam-kala basā(se)ibā ଜଳ ଉଠାଏବା ନିମନ୍ତେ ଦମ୍‌କଲ' ଦমকলবসান ଯନ୍ତ୍ର ସ୍ଥାପିତ କରିବା—To set up a pumping दमकल खड़ाकरना machine.

ଦମ୍‌କା—ବୈଦେ. ବି (ଫା ଦମୀଦା=ପବନର ଝାଙ୍କ, ଖ୍ବାକେଜ୍)—Dam-kā ୧ । ଧୁମ୍‌କା; ଧୁମ୍‌ଧୁମ୍ ହୋଇ ବର୍ଷା, ଧୁମ୍ବାକାଣି—দমকা 1. Raining cats and dogs; a very झोंका heavy shower of rain; a torrential shower of rain.

୨ । ବର୍ଷା, ତୋଫାନ, ଢେଉ ଓ ରୋଗ ପ୍ରଭୃତିର ଗୋଟିଏ ଦଫା; ତୋଡ଼; ଧମକ୍—2 Paroxysm; a violent fit, a gust; blast.

୩ । ସାଇକ୍ଲୋନ୍, ପ୍ରବଳ ଝଡ଼, ବାତ୍ୟା—3. A squall; gust of wind; cyclone

୪ । ଦମ୍ଫା; ଘନଘନ ନିଶ୍ୱାସ, ଅଣନିଶ୍ୱାସ—4. Violent gasping; threos of breathing; panting.

ବିଣ—୧ । ଧୁମ୍‌ଧୁମା; ଅତ୍ୟନ୍ତ ଭୟାନକ—1. Paroxysmal; torrential; very violent. (ଯଥା—ଦମ୍‌କା ଝଡ଼)

୨ । ଯାହା ଛାତି ଦମ୍ ଦମ୍ କରାଏ; ଛାତି-ଉଦ୍‌ବେଗକ; ଛାତି ଦମ୍‌କା—2. Causing violent palpitation of the heart

ଦମ୍ ଖାଇବା—ଦେ. କ୍ରି—ଗୁମ୍ ହେବା; ଗମ୍ ଖାଇବା, ତୁଷ୍ଣୀଂଭୂତ Dam khāibā ହେବା, ଚୁପ୍ ହେବା; ସ୍ତମ୍ଭୀଭୂତ ହେବା—দম্ খাওয়া दमखाना To be taken aback; to become silent.

ଦମ୍ ଗଦି—ବୈଦେ. ବି (ଫା)—ସ୍ଥିତିସ୍ଥାପକ ଗୁଣବିଶିଷ୍ଟ କୁଣ୍ଡଳୀକୃତ Dam gadi ମୋଡ଼ା ତାରର ଆସନ—Spring cushion; দমগদ্দি दमगद्दि spring mattress.

ଦମ୍ ଛୁଟିଯିବା—ଦେ. ବି.—୧ । ବେଦମ୍ ହେବା; ଅଣନିଶ୍ୱାସୀ Dam chhuṭijibā ହୋଇଯିବା; ନିଶ୍ୱାସରୁଦ୍ଧ ଅବସ୍ଥା ଘଟିବା; ଶ୍ୱାସରୋଧ ହେବା—1. Becoming breathless;

ଦମ୍ ଛାଡ଼ିବା / ଦମ୍ ଛାଡ଼ିଯିବା / ଦମ୍ ଛୁଟିବା } ଅନ୍ୟରୂପ

দমছুটেযাওয়া दमछूटना ୨ । ପରିଶ୍ରମ ଯୋଗୁ ଖର ଖର দমছুটা ନିଶ୍ୱାସ ମାରିବା; ହାମ୍ଫି ହେବା—दम् छुटना; दम् निकलना 2. Panting; being out of breath.

୩ । ନିଶ୍ୱାସ ବନ୍ଦ ହୋଇ ମରିଯିବା—3. Dying by suffocation.

ଦମ୍ ଟାଣିବା—ଦେ. କ୍ରି—ଏକା ନିଶ୍ୱାସକେ ଗୁଡ଼ିଏ ପବନ ବା ଧୂଆଁ Dam ṭāṇibā ପେଟ ଭିତରକୁ ନେବା—To inhale a large quantity of air or smoke at one pull or draught.

ଦମ୍ ଦମ୍—ଦେ (ଧ୍ୱନ୍ୟନୁକରଣ) ଅ—(ସଂ.ଦମ୍.ଧାତୁ=ଶବ୍ଦ କରିବା)—Dam dam ୧ । ଛାତି ଧଡ଼ଧଡ଼; ଛାତି ଦକଦକ; ବୁକୁ ଧମ୍‌ଧମ୍—1 Violent palpitation of the heart.

[ଦ୍ର—ଦକଦକ ଅପେକ୍ଷା ଧଡ଼ଧଡ଼ ଅଧିକ ଜୋରରେ ସ୍ପନ୍ଦନ ଓ ଧଡ଼ଧଡ଼ ଅପେକ୍ଷା ଦମଦମ ଅଧିକତର ଜୋରରେ ସ୍ପନ୍ଦନ ଅଟେ]

୨ । ଢୋଲ ବାଜା ବା ବନ୍ଧୁକର ଶବ୍ଦ; ଧୁମ୍ ଧୁମ୍—2. Sound of drums or of gun-firing.

ଠିକି ପଡେ ଦମ୍ ଦମ୍, ସାହାବ ଚରଣ ବଡ କଠିଣ,
ଖାଲ ବୁଢେ ଗମ୍ ଗମ୍ । ଛଗ

୩ । ଦମ୍ ବା ଶବ୍ଦପ୍ରକାଶକ ଗମନ ବା ଚାଲି; ଧୁମ୍ ଧୁମ୍ ଚାଲିବା—3 Strutting with thumping steps.

ବି—(ନାମ) କଲିକତା ନିକଟସ୍ଥ ଗୋଟିଏ କ୍ଷୁଦ୍ର ଗ୍ରାମ—Name of a small village near Calcutta; Dumdum.

[ଦ୍ର—ଏହି ସ୍ଥାନରେ ଗଭର୍ଣ୍ଣମେଣ୍ଟଙ୍କର ବାରୁଦ ଓ ଗୋଳା ପଗୁଆର କାରଖାନା ଅଛି ଓ ସୈନ୍ୟମାନେ ଲକ୍ଷ୍ୟଭେଦ ଶିଖନ୍ତି ।]

ବିଣ—ଭୟକମ୍ପିତ, ତ୍ରସ୍ତ (ଛାତି)—Trembling; palpitating through fear (said of the heart.)

ଦମ୍‌ଦମା—ବୈଦେ. ବି (ଫା)—ଲକ୍ଷ୍ୟଭେଦ ଶିକ୍ଷା କରିବା ଉଦ୍ଦେଶ୍ୟରେ Dam-damā ପ୍ରସ୍ତୁତ ମାଟିର ସ୍ତୂପ—A mound of earth intended to be used as a target for target-practice.

ବିଣ—ଯାହା ଛାତି ଦମ୍ ଦମ୍ କରାଏ, ଅତ୍ୟନ୍ତ ଛାତି ଉଦ୍‌ବେଗକ—Causing throbbings of the heart; very frightening.

ଦେ ବି—ଦମ୍ ଦମ୍ (ଦେଖ) Damdam (See)

ପ୍ରାଦେ (କଟକ) ବି—ଡାଇମନ୍ କଟା ହାତର ଚଉଡ଼ା ଚୁଡ଼ି—Broad bracelet with diamond-cut work.

ପ୍ରାଦେ (ସମ୍ବଲପୁର) ବି ୧ । ପାହାଚ; ପାବଚ୍ଛ—1. Steps.

୨ । ନିଶୁଣି, ସିଢ଼ି—2. Ladder.

ଦମ୍‌ଦମା ଗୁଳି—ଦେ. ବି (ଇଂ. ଦମ୍‌ଦମ୍ ବୁଲେଟ୍)—ବନ୍ଧୁକର Dam-damā guli ଏକପ୍ରକାର ଗୁଳି—Dumdum bullet.

[ଦ୍ର—ଏହା କୌଣସି କୋମଳ ବସ୍ତୁ ମଧ୍ୟରେ ପଶିଗଲେ ତାହାର ଅଭ୍ୟନ୍ତରରେ ଛତରେଇ ହୋଇ ବିସ୍ତାରିତ ହୁଏ । ]

ଦମ୍‌ଦାମ୍—ଦେ. କ୍ରି. ବିଣ—ଦମାଦମ୍ (ଦେଖ) Dam-dām Damādam (See).

ଦମ୍ ଦିଲାସା—ବୈଦେ. ବି (ଫା)—ଭଣ୍ଡାଇବା; ଛଳନା; ବୃଥା ଆଶା ଦେଇ Dam dilāsā ଟାଳିବା—Putting off on false hopes; দমদিলাসা, दमदिलासा deception.

ଦମ୍‌ଦିଲାସା ଦେବା—ଦେ. କ୍ରି—ବହୁବାର ମିଥ୍ୟା ଆଶା ଦେଇ Dam-dilāsā debā ଭଣ୍ଡାଇବା—To put off a person repeatedly on false hopes.

ଦମ୍ ଦେବା—ଦେ କ୍ରି—୧ । ପ୍ରତାରଣାପୂର୍ବକ ଭଣ୍ଡାଇବା—Dam debā 1. To wheedle; to put off; to deceive.

দমদেওয়া ୨ । ମିଥ୍ୟା ଆଶା ଦେଇ ଅପେକ୍ଷା କରାଇବା—दमदेना 2. To cause a person to wait by giving him false hopes.

୩ । ଘଣ୍ଟା ଓ ଘଣ୍ଟାର ସ୍ପ୍ରିଙ୍ଗକୁ ଘୁରାଇବା—
3. To wind up the spring of a clock or watch.

ଦମ୍ ଧରିବା—ଦେ. କ୍ରି—ଦମ୍ ରଖିବା (ଦେଖ)
Dam dharibā Dam rakhibā (See)

ଦମ୍ ନେବା - ଦେ. କ୍ରି—୧ । ନିଶ୍ୱାସ ନେବା—
Dam nebā 1. To take breath.
ଦମ୍‌ଲଓଯା ୨ । ବିଶ୍ରାମ କରିବା—2. To take rest.
**दमलेना** ୩ । ଦମ୍ ଟାଣିବା ( ଦେଖ )
3. Dam ṭāṇibā ( See )

ଦମ୍ ଫାଟିଯିବା—ଦେ. କ୍ରି—୧ । ଶ୍ୱାସରୁଦ୍ଧ ହେବା—
Dam phāṭijibā 1. Being suffocated.
ଦମଫାଟା ୨ । ଛାତି ଫାଟିଯିବା; ବିଶେଷ ପରିଶ୍ରମ ଯୋଗୁଁ ଶ୍ୱାସକ୍ରିୟାର
**दमछूटना** ଅତ୍ୟଧିକ ଘଟିବା—2 To have one's lungs burst owing to excessive labour.
୩ । ଅତିରିକ୍ତ ପରିଶ୍ରମ ଯୋଗୁଁ ରୁଦ୍ଧଶ୍ୱାସ ବା ଖରଶ୍ୱାସ ହୋଇ ମରିଯିବା—3. To die gasping ( through overwork ).

ଦମ୍ ବାଜ୍—ବୈଦେ. ବିଣ (ଫା)—୧ । ଭଣ୍ଡ; ଯେ ଭଣ୍ଡାଏ—
Dæm-bāj 1. Wheedling.
୨ । ପ୍ରତାରକ; ବଞ୍ଚକ, ଠକ—2 Deceiving.

ଦମ୍‌ବାଜି—ବୈଦେ. ବି ( ଫା )—୧ । ବମ୍‌ବାଜି; ତୋପବାଜି; ଉଚ୍ଚ
Dam-bāji ଶବ୍ଦକର ଫୁଟିବା ବାଣ—1 A firework which
ବୋମା **बमबाजी** produces a booming sound; bomb.
[ ଦ୍ର—ଦମ୍‌ବାଜି ଅପେକ୍ଷା ବମ୍‌ବାଜିର ଓ ବମ୍‌ବାଜି ଅପେକ୍ଷା ତୋପ୍‌ବାଜିର ଶବ୍ଦ ବେଶି । ]
୨ । ବଞ୍ଚନା; ଭଣ୍ଡାଇବା; ଭଣ୍ଡିବା—2. Deception.

ଦମ୍ ବାହାରିଯିବା—ଦେ. କ୍ରି—ଦମ୍ ଛୁଟି ଯିବା (ଦେଖ)
Dam bāhārijibā Dam chhuṭi jibā (See)
(ଦମ୍ ବାହାରିବା—ଅନ୍ୟରୂପ)

ଦମ୍ ମାରିବା—ଦେ. କ୍ରି—୧ । କଷ୍ଟସାଧ୍ୟ ପରିଶ୍ରମ କରିବା ପରେ ନିଶ୍ୱାସ
Dam māribā ମାରିବାକୁ ବିଶ୍ରାମ ନେବା—1. To rest for
ଦମମାରା **दममारना** breath after a stretch of hard work, to take respite.
୨ । ଦମ୍ ନେବା—
2, To take rest for refreshment.
୩ । ନିଶ୍ୱାସ ମାରିବା—3. To breathe.
୪ । ଦମ୍ ଟାଣିବା (ଦେଖ)—4. Dam ṭāṇibā ( See )

ଦମ୍ ରଖିବା—ଦେ. କ୍ରି—୧ । କୌଣସି ଗୁରୁତର କାର୍ଯ୍ୟ କରିବାକୁ
Dam rakhibā ଅଧିକକ୍ଷଣ ଶ୍ୱାସରୋଧ କରି ରଖିବା—
ଦମରାଖା 1. To restrain or control one's breath
**दम पकड़ना** while doing some hard work.
[ ଦ୍ର—ଦମ୍ ନ ରଖି କୌଣସି ଗୁରୁତର କାର୍ଯ୍ୟ କଲେ ଅଳ୍ପ ସମୟରେ ଦମ୍ ଛୁଟିଯାଏ ଓ ମନୁଷ୍ୟ କ୍ଲାନ୍ତ ହୋଇ ପଡ଼େ । ଦମ ରଖି କାର୍ଯ୍ୟରେ ଲାଗିଲେ ଦେହରେ ବେଶି ବଳ ସଞ୍ଚାର ହୁଏ; ଏହା ଅନୁଭବସିଦ୍ଧ । ]

୨ । ଏକା ଦମରେ ଗୀତ ବୋଲିବା ବେଳେ ଆପଣା ନିଶ୍ୱାସକୁ ନିୟନ୍ତ୍ରିତ କରିବା—
2. To control one's breath while singing a song at one stretch.

ଦମ୍ ଲଗା(ଗେ)ଇବା—ଦେ କ୍ରି—ଦମ୍ ଟାଣିବା ( ଦେଖ )
Dam lagā(ge)ibā Dam ṭāṇibā ( See )

ଦମ—ସ ବି ( ଦମ୍ ଧାତୁ+ଭାବେ. ଅ )—
Dama ୧ । ଦମନ—1. Checking
୨ । ଶାସନ, ଦଣ୍ଡ—2. Punishment.
୩ । ବଶୀକରଣ—3. Bringing under control or subjection; subjugation.
୪ । ଦମିତକରଣ—4. Controlling; subduing.
୫ । ଧୈର୍ଯ୍ୟଧାରଣ—5. Patience; forbearance.
୬ । ଇନ୍ଦ୍ରିୟ ନିଗ୍ରହ—6. Controlling one's passions; subjugation of one's appetites and feelings.
୭ । ଚିତ୍ତନିବୃତ୍ତି, ମନ ଉପରେ ଅଧିକାର ସ୍ଥାପନ; ବିକାରର କାରଣ ସତ୍ତ୍ୱେ ମନର ସ୍ଥିରତା—7. Self control, self command; self restraint.
୮ । କର୍ଦ୍ଦମ; କାଦୁଅ—8. Clay; mud.
୯ । (ନାମ) ବିଦର୍ଭ ରାଜାଙ୍କ ଜ୍ୟେଷ୍ଠ ପୁତ୍ର; ଦମୟନ୍ତୀଙ୍କ ଭ୍ରାତା—
9. The eldest son of the King of Bidarbha and brother of Damayanti.
୯ । (ନାମ) ଚନ୍ଦ୍ରବଂଶୀୟ ଶିଶୁପାଳଙ୍କ ପିତା ଚେଦିରାଜ; ଦମଘୋଷ—9. Father of Sisupāla.
ଦମ ଦାନ୍ତ ଦମନ ନାମକୁ ବହିଲେ
ବାପଙ୍କ ପର କାନ୍ତି ମଣ୍ଡରେ ଥୋଇଲେ । କୃଷ୍ଣସିଂ. ମହାଭାରତ, ବନ ।

ଦମକ—ସ. ବିଣ. ପୁଂ. ( ଦମ୍ ଧାତୁ+କର୍ତ୍ତୃ. ଅକ )—
Damaka ଦମନକାରୀ; ଶାସକ—Controlling; restraining;
(ଦମିକା—ସ୍ତ୍ରୀ) subduing.
ବି—ଶାସନକର୍ତ୍ତା—A ruler.
ପ୍ରାଦେ. (ଗଡ଼ଜାତ) ବି ଓ ବିଣ—ଦୁମୁକାଣି (ବର୍ଷା)—
Pouring (rain); downpour.
ଦେ. ବି. (ସ. ଚମତ୍କାର)—୧ । ଚମକ—1. Startling.
ଉପ୍ରକାର ଦଣ୍ଡବାସୀ ଭୃତଙ୍କୁ ଦମକ । ଜଗନ୍ନାଥ, ବେଣୀଗହ୍ୱର ।
धमक ୨ । ଛାତି ଦମ ଦମ ହେବା—2. Heart-throbbing.
**धमक** ୩ । ହଠାତ୍ ଉପସ୍ଥିତ ଭୟ—3. Sudden fright.
ବୈଦେ. ବି. ( ଫା. ଦମ୍=ଶ୍ୱାସ )—ଦମ୍କା; ଝଟ୍କା—
Paroxysm; fit; gust.
ବିଣ—ହଠାତ୍ ବେଗବାନ୍; ଝଞ୍ଜାଯୁକ୍ତ—Paroxysmal.

ଦମକର—ଦେ. ବିଣ—ଯେ ଚମକାଏ; ଭୀତି ଉତ୍ପାଦକ—
Dāmakara Frightening; terrifying.
ହିଁ ସୁରପତି ଦମକର ନୃପରେ ଧର୍ମଙ୍କ
ଉଚ୍ଚ ସଂଗ୍ରାମ ଚମକ ଦେଖେ ଶମକ । ସୈନ୍ଧବ ଉତ୍ସ. ପ୍ରେମସୁଧାନିଧି ।

ଦମକା (ଇତ୍ୟାଦି)—ଦେ. ବିଣ ଓ ବି - ଦମ୍‌କା ଇତ୍ୟାଦି ( ଦେଖ )
Damakā (etc) Dam-kā etc. ( See )

ପୁବାଇ ବୋହାଏ ଭରି ଦମକା ପବନ ବାଜେଇ ଦେଇ ।
ଫକୀରମୋହନ. ଗଳ୍ପସ୍ୱଳ୍ପ ।

ଦମକାଣି—ଦେ. ବି ଓ ବିଣ- ଦୁମୁକାଣି ( ଦେଖ )
Damakāni Dumukāni ( See )

ଦମକିବା—ଦେ. କ୍ରି—୧ । କୌଣସି କାର୍ଯ୍ୟ କରୁ କରୁ ହଠାତ୍ ଅଟକି ରହିଯିବା—1 To suddenly stop in the midst of work
Damakibā
(ଦମକିଯିବା—ଅନ୍ୟରୂପ)
ଦମକେ ଯାଓୟା ୨ । ଚମକି ପଡ଼ିବା—2 To be startled
दमदमाना ୩ । (ଛାତି) ଦମଦମ ହେବା—3 To throb; to palpitate (said of the heart).

ଦମ କୁରୁଡ଼ୁ—ଦେ ବି—କଙ୍କରମୟ ପାହାଡ଼ମାନଙ୍କ ଉପରେ ହେବା କ୍ଷୁଦ୍ର ବୃକ୍ଷ ବିଶେଷ—Gardenia Latifolia (Haines).
Dama kurur̤du

[ ଦ୍ର—ସମ୍ବଲପୁର ଅଞ୍ଚଳରେ ଏହାର କାଠରୁ ପାନିଆଁ ଓ ଫରୁଆ ତିଆରି ହୁଏ ଏବଂ ଏହାର ଫଳ ଖିଆଯାଏ । ]

ଦମ ଘୋଷ—ସଂ. ବି. (ନାମ)—ଚେଦିଦେଶର ରାଜା ଶିଶୁପାଳଙ୍କ ପିତା—
Dama ghosha Name of the father of Śiśupāla, king of Chedi.

[ ଦ୍ର—ଏ ଦମୟନ୍ତୀଙ୍କ ଭାଇ, ଏହାଙ୍କର ଅନ୍ୟ ନାମ ଶ୍ରୁତଶ୍ରବା ହି ଶବ୍ଦସାଗର । ]

ଦମଘୋଷ ନନ୍ଦନ—ସଂ. ବି (୬ଷ୍ଠୀ ତତ୍) - ଶିଶୁପାଳ—
Damaghosha nandana Siśupāla.
(ଦମଘୋଷଜ, ଦମଘୋଷସୁତ, ଦମଘୋଷାତ୍ମଜ—ଅନ୍ୟରୂପ)

ଦମ ଚୁଲା(ଲି)—ଦେ. ବି—ଏକପ୍ରକାର ଲୁହାର ଚୁଲି, ଯହିଁର ତଳେ ଲୁହାର ଜାଲି ଥାଏ ଓ ଯହିଁର ତଳେ ଥିବା ଛିଦ୍ର ବାଟେ ଭିତରକୁ ବାୟୁ ଯାଇପାରୁ ନ ଥାଏ—A kind of iron oven
Dama chulā(li)
दमचूल्हा

ଦମଦମ—ଦେ. ବି— ଦମ୍‌ଦମ୍ (ଦେଖ)
Damadama Dam-dam (See)

କର୍ଣ୍ଣ ଭୀମଙ୍କର ଦେଖିଣ ସମାଗମ
କରିଲେ ଯୋଦ୍ଧାମାନେ ହୁରୁ ଦମଦମ । କୃଷ୍ଣସିଂହ. ମହାଭାରତ ଦ୍ରୋଣ ।

ଦମଦମା—ଦେ. ବି—୧ । (ବହିଆଣାଦି) ରୁପା ତାରରେ ନିର୍ମିତ ହାତରେ ଲଗାଇବାର ଅଳଙ୍କାର; ଚୁଡ଼ି—A bracelet made of woven silver wire.
Damadamā
'ଦମଦମା
दमदमा ୨ । (ଧ୍ୱନ୍ୟନୁକରଣ) ବୋମା—2. Bomb.
ବୈଦେ —(ଆ)—ମାଟିର ଉଚ୍ଚ ଢିପ—
A high mound of earth.
୨ । (ଫା)— ଯୁଦ୍ଧ ସମୟରେ ବସ୍ତାରେ ମାଟି ବା ବାଲି ଭରିକରି ଉକ୍ତ ବସ୍ତାମାନଙ୍କୁ କାନ୍ଥ ଆକାରରେ ସଜାଇ ରଖିବା ଦ୍ୱାରା କରାଯିବା ବନ୍ଧାବନ୍ଦୀ—A ridge made by piling up gunny bags filled with earth and sand during a fighting.

ଦମଦାର୍—ବୈଦେ. ବିଣ (ଫା)—୧ । ଦୃଢ଼, ମଜ୍‌ବୁତ୍, ବଳିଷ୍ଠ—
Damadār 1. Strong.
ଦମଦାର ୨ । ଅତ୍ୟଧିକ ଜୀବନୀଶକ୍ତି ବିଶିଷ୍ଟ—
दमदार 2. Having a great vitality.

ଦମନ—ସଂ. ବି (ଦମ୍ ଧାତୁ + ଭାବ ଅନ)—୧ । ଶାସନ—
Damana 1. Restraint; check.
୨ । ଅଧୀନକୁ ଆଣିବା, ବଶୀକରଣ—
2. Bringing under control; subjugation.
୩ । ପରାଜିତ କରିବା—
3. Subduing; defeating; vanquishing.
୪ । ଇନ୍ଦ୍ରିୟ ନିଗ୍ରହ—
4. Restraining one's passions
୫ । ଚିତ୍ତବୃତ୍ତିକୁ ସଂଯତ କରିବା—
5. Self control; self restraint.
୬ । (ନାମ) ଜନୈକ ଋଷି—6. Name of a sage.
[ ଦ୍ର— ଏହାଙ୍କ ଆଶ୍ରମରେ ଦମୟନ୍ତୀ ଜନ୍ମିଥିଲେ ଓ ଭୀମସେନ ଏହାଙ୍କଠାରୁ ଶିଶୁକନ୍ୟା ଦମୟନ୍ତୀଙ୍କୁ ଆଣି ଆପଣାର କନ୍ୟାରୂପେ ପାଳିଥିଲେ । ]

ସେହି ଭୀମ ରଜାଠାରୁ ଦମନ ଋଷି;
ଅଟିଲେ ଦେଖି ଭାବୁ ହୋଇ ଅଙ୍ଗ ତୋଷି । କୃଷ୍ଣସିଂହ. ମହାଭାରତ. ବନ ।

୭ । ଭୀମସେନ ରଜାଙ୍କର ପୁତ୍ର, ଦମୟନ୍ତୀଙ୍କ ଭ୍ରାତା—
7 Son of king Bhīmasena; brother of Damayantī.

ଦମ, ଦାନ୍ତ, ଦମନ ନାମରେ ବହୁଲେ ।
କୃଷ୍ଣସିଂହ. ମହାଭାରତ. ବନ ।

୮ । ବୀର—8. Hero, valiant person.
୯ । ଦଅଣା ଗଛ—9. Da-anā plant; Artemisa Indica.
୧୦ । ଦଣ୍ଡ—10. Punishment
୧୧ । ମହାଦେବ; ଶିବ (ହି. ଶବ୍ଦସାଗର)—11. Siba.
୧୨ । ରାକ୍ଷସବିଶେଷ—12. Name of a demon.
୧୩ । ଫୁଲ (ହି. ଶବ୍ଦସାଗର)—13. A kind of flower.

ଦମନକ—ସଂ. ବି. (ଦମନ + ସ୍ୱାର୍ଥେ. କ) — ୧ । ଦଅଣା ଗୁଳ୍ମ—
Damanaka 1. Artemisa Indica.
୨ । ସଂସ୍କୃତ ଛନ୍ଦୋବିଶେଷ —
2 Name of a Sanskrit metre.
୩ । ରାକ୍ଷସବିଶେଷ — 3. Name of a demon.
ଦେ. ବି. ( ଗ୍ରୀକ୍. ଆଥ୍ୟୋନଥନ୍ )—ଯବନ—
A non-Hindu.

ଦମନକ କଥନରେ । ଦମନକ ଦୋଷ ତା ଅଙ୍ଗରେ ।
ଅଭିମନ୍ୟୁ. ବିଦଗ୍‌ଧଚିନ୍ତାମଣି ।

ଦମନକ ଚତୁର୍ଦ୍ଦଶୀ—ଦେ ବି—ଚୈତ୍ର ଶୁକ୍ଳ ଚତୁର୍ଦ୍ଦଶୀ; ଦଅଣାଲାଗି ଯାତ୍ରା; ଜଗନ୍ନାଥ ଓ ଲିଙ୍ଗରାଜ ମହାପ୍ରଭୁମାନଙ୍କର ବନ୍ଦିଶ୍ୱ ଯାତ୍ରା ମଧ୍ୟରୁ ଏକତମ—The 14th day of the bright fortnight of Chaitra.
Damanaka chaturddaśī
(ଦମନଭଞ୍ଜୀ ଚତୁର୍ଦ୍ଦଶୀ—ଅନ୍ୟରୂପ)

**ଦମନୀ**—ସଂ ଚ—ଅଗ୍ନିଦମନୀ (ବୃ. ଶବ୍ଦସାଗର) (ଦେଖ)
Damani Agni damani ( See )

**ଦମନୀୟ**—ସଂ. ବଣ ( ଦମ୍ ଧାତୁ+କର୍ମ. ଅନୀୟ )—୧ । ଦମନ କରିବାର ଯୋଗ୍ୟ—1. Fit to be subdued or checked.
Damaniya
୨ । ଶାସନୀୟ—2. Tameable
୩ । ଯାହାକୁ ବଶୀଭୂତ କରି ପାରିପାରେ—
3. Capable of being brought under control.

**ଦମନ୍ତୀ**—ଗ୍ରା. (ପ୍ରାଚୀନପଦ୍ୟ) ବି. ସ୍ତ୍ରୀ ( ସଂ. ଦମୟନ୍ତୀ )—ଦମୟନ୍ତୀ; ନଳରାଜାଙ୍କ ପତ୍ନୀ—Damayanti; wife of king Nala.
Damanti
**दमावती**
ବଚ୍ଛେଦର ଦୁଃଖ ଏକା ଜାଣନ୍ତି ଦମନ୍ତୀ—ପ୍ରାଚୀ. ପ୍ରତାପ. ଶଶିରେଖା ।

**ଦମବାଜ୍**—ବୈଦେ. ବଣ (ଫା)—୧ । ଯେ ଫୁସୁଲା ଫୁସୁଲ କରେ—1. Inveigling.
Damabaj
दमबाज ୨ । ଯେଉଁ ବ୍ୟକ୍ତି ପ୍ରତାରଣା କରେ; ଧପ୍ପାବାଜ୍—
**दमबाज** 2. Deceitful; fraudulent; wheedling.
(ଦମବାଜୀ—ବ)

**ଦମବାଜି**—ଦେ. ବ ( ଧ୍ୱନ୍ୟନୁକାରୀ )—ଦମ୍ବାଜୀ; ଘୋର ଶବ୍ଦକାରୀ ଏକପ୍ରକାର ବାଣ; ବମ୍ବାଜୀ—Bomb.
Damabaji
ବୈଦେ. ବ—ଫୁସୁଲା ଫୁସୁଲ—Inveigling.

**ଦମୟନ୍ତୀ**—ସ. ବି. ସ୍ତ୍ରୀ ( ଦମ୍ ଧାତୁ ଣିଚ୍ ଦମି ଧାତୁ=କ୍ଲେଶ ସହ୍ୟ କରିବା+କର୍ତ୍ତୃବାଚ୍ୟେ ଅଚ୍+ସ୍ତ୍ରୀ. ଈ; ଦମନ ଦମନ ଋଷିଙ୍କ ବରେ ଜନ୍ମଗ୍ରହଣ କରିଥିବାରୁ)—୧ । ନଳରାଜାଙ୍କ ପତ୍ନୀ, ବିଦର୍ଭରାଜ ଭୀମସେନଙ୍କ କନ୍ୟା—1 The queen of king Nala.
Damayanti
୨ । ଏକପ୍ରକାର ମଲ୍ଲୀଫୁଲ ଗଛ (ବୃ. ଶବ୍ଦସାଗର)—
2. A kind of flowering shrub.

**ଦମୟିତା**—ସ. ବିଣ. ପୁଂ (ଦମ୍ ଧାତୁ ଣିଚ ଦମି ଧାତୁ+କର୍ତ୍ତୃ. ତୃ, ୧ମା. ୧ବ)—୧ । ଯେ ଦମନ କରିପାରେ—
Damayita
(ଦମୟିତ୍ରୀ—ସ୍ତ୍ରୀ) 1 Capable of controlling or restraining.
୨ । ଶାସକ—2. Ruling.
୩ । ଦଣ୍ଡଦାତା—3 Punishing.

**ଦମା**—ବୈଦେ. ବି. ( ଫା. ଦମାହ୍=ଉପର୍ଯ୍ୟୁପରି ସାର୍ଦ୍ଧିକ୍ରଶ୍ୱାସ )—୧ । ହିକ୍କା—1. Panting; hiccup.
Dama
୨ । ଶ୍ୱାସରୋଗ—2. Asthma.
୩ । ବ୍ୟଗ୍ର; ଆବେଗ—
3 A fit or paroxysm; a convulsion.
୪ । ଦମା.କାଶ - 4 A coughing by fits; whooping cough.
୫ । ଦମାଲୁ (ଦେଖ)—5. Damalu (See).

**ଦମା କାଶ**—ଦେ. ବ ( ଫା. ଦମାହ୍; ଫା. ଦମ୍=ଶ୍ୱାସ+ସଂ. କାଶ)—୧ । ଏକପ୍ରକାର କାଶ, ଯେଉଁଥିରେ ସମୟ ସମୟରେ କାଶର ଜୋର ଉଠେ ଓ ରୋଗୀ କାଶିକାଶି କ୍ଳେଦଯୁକ୍ତବତ ହୋଇଯାଏ—
Dama kasa
दमाकाशि; कुंड़िकाशी
**दमा**
1. Convulsionary cough; whooping cough.
୨ । ଶ୍ୱାସରୋଗ—2. Asthma.

**ଦମାଦମ୍**—ଦେ କ୍ରି. ବଣ ( ଧ୍ୱନ୍ୟନୁକରଣ )—୧ । ଧୁମ୍ଧାମ, ଧମାଧମ୍; ଦମ୍ଦାମ୍, ଗୋଟାକ ଉପରେ ଗୋଟାଏ ଧୁମ୍ଧାମ୍ ହୋଇ, ଉପର୍ଯ୍ୟୁପରି ଛଦାମାଡ଼ ବସିବା ପରି—
Damadam
धूमधाम
**दमादम** 1. With repeated thumping sounds (said of fist blows when dealt in quick succession).
୨ । ଉପର୍ଯ୍ୟୁପରି—2. In quick succession.
(ଯଥା—ଯୁଦ୍ଧକ୍ଷେତ୍ରରେ ତୋପ ଗୁଳା ଆଦ ଦମାଦମ୍ ଗୁଳିଲା ।)

**ଦମାମା**—ବୈଦେ. ବି ( ଫା. ଦମାମାହ୍ )—
Damama
ଦମାଲୁ ( ଦେଖ )
Damalu ( See ).

**ଦମାଲୁ**—ଦେ. ବି [ ଫା. ଦମାମାହ୍; ଭୁଲ-ଅର୍ବାଚୀନ ସଂ. ଦର୍ମମ- (ଶବ୍ଦ କଳ୍ପଦ୍ରୁମ); ଢମ୍ବା ଦମ୍ ଦମ୍ ଶବ୍ଦଅନୁକରଣ ଢମ୍ବା
Damalu
ଦମା; ଦମାମା; ଦମାମି; ଦମାଳ }—ଅନ୍ୟରୂପ ସଂ. ଦମ=ଦଣ୍ଡ;କାଠି ପିଟା ଯିବାରୁ] ଏକପ୍ରକାର ବଡ଼ ନାଗରା—
दामा; दामामा, दमामा; **दमामा** A kind of big kettle-drum.
[ଦ୍ର—ଏହା କାଠର ପ୍ରାୟ ଦୁଇ ହାତ ବ୍ୟାସ ବିଶିଷ୍ଟ ବଡ଼ ହାଣ୍ଡିରେ ତିଆରି ବାଦ୍ୟ । ଏହାର ମୁହଁରେ ଚମଡ଼ା ବନ୍ଧା ହୋଇ ଚମଡ଼ାର ମଝିରେ ଖରଣ ବୋଲାଯାଇ ଥାଏ; ଏହାକୁ ଦୁଇ ଖଣ୍ଡି କାଠିରେ ଜଣେ ମନୁଷ୍ୟ ଦୁଇ ହାତରେ ପିଟିଲେ ଗମ୍ଭୀର ଦମ୍ ଦମ୍ ଶବ୍ଦ ହୁଏ ।]

**ଦମା ହାର**—ଦେ. ବି (ସଂ. ଦାମ)—ବଳା ହୋଇଥିବା ଦଉଡ଼ି ପରି ହାର ବା କଣ୍ଠଭୂଷଣ; ଗୋପ; ସୂତାହାର—
Dama hara
दड़ीहार A rope-like necklace.

**ଦମିତ**—ସ. ବଣ. ( ଦମ୍ ଧାତୁ+କର୍ମ. ତ )—
Damita ୧ । ଶାସିତ—1. Controlled, governed.
୨ । ଭର୍ତ୍ସିତ—2. Chastised; reprimanded.
୩ । ବଶୀକୃତ—3. Subjugated.
୪ । ଭାର ବହନାଦି କ୍ଲେଶସହିଷ୍ଣୁ—
4. Capable of carrying loads; painstaking.

**ଦମିବା**—ଦେ. କ୍ରି. ( ସଂସ୍କୃତ ଦମ୍ ଧାତୁ )—
Damiba ୧ । ଶାନ୍ତ ହେବା; ଶମିତ ହେବା—
(ଦମିଯିବା—ଅନ୍ୟରୂପ) 1 To be subdued.
दमा ୨ । ଶାନ୍ତ ହେବା—2 To cease; to stop.
**दबना** ଯେ ଭଜ ଗାଉ କର୍ମ କରୁ, ବନସ୍ରେ ଦମେ ସାଧ୍ୱୀ ଜାଗ ।
[ଦମା(ମେ)ଇବା—ଣିଜନ୍ତରୂପ] ଜଗନ୍ନାଥ. ସୁଗକଟ ।
୩ । ଦବ ଯିବା, ଭିତରକୁ ପଶିଯିବା—
3 To sink into; to sink down.
ଇଥାପି ଦମି ଜଗା ଅରେ ମୋ ଦର
ଅଙ୍ଗ ପୂର୍ଣ୍ଣାର ପୁରସ୍ଥାର ଉଠତ । ନନ୍ଦକିଶୋର. ନର୍ମଦଣୀ ।

**ଦମୀ**—ସ. ବ ପୁଂ. ( ଦମ୍+ଶୀଳାର୍ଥେ. କର୍ତ୍ତୃ. ଇନ୍; ୧ମା. ୧ବ )—
Dami ୨ । ଜିତେନ୍ଦ୍ରିୟ—1. One who has his passions under control.

୨ । ସଂଯମୀ—2. One who practises self-control.

୩ । ଯେ ଦମନ କରେ; ଦମନଶୀଳ—
3. Controlling; checking.

**ଦମେ**—ଦେ. କ୍ରି. ବିଣ (ଫା. ଦମ୍)—ଦୃଷ୍ଟାଏ; ଭୂବେ—
Dame — At a stretch.
একদম एकदम

**ଦମ୍ପତି**—ସଂ. ବି. ( ଜାୟା+ପତି; ଦ୍ୱନ୍ଦ୍ୱ ସମାସ; ନିପାତନସିଦ୍ଧ, ଅନ୍ୟରୂପ ଜମ୍ପତି ଓ ଜାୟାପତି )—
Dampati
୧ । ପତି ପତ୍ନୀ, ଜାୟାପତି, ବିବାହିତ ସ୍ୱାମୀସ୍ତ୍ରୀ; ସ୍ତ୍ରୀ ଓ ପୁରୁଷ—
1. A married couple; husband and wife.
୨ । ଜୀବଙ୍କର ଏକ ଯୋଡ଼ି, ଅର୍ଥାତ୍ ମାଈ ଭୁଦେଁ—
2. A couple of animals; one male and its companion female animal
ଦେ. ବିଣ—ସ୍ୱାମୀସ୍ତ୍ରୀ ଭାବରେ ମିଳିତ—
Associated as husband and wife.
ଦଅନ୍ତୁ ପତି ସ୍ୱର୍ଗ ସମ୍ପତ୍ତି ହୋଇ ଦମ୍ପତି ମୋରେ ।
ଉପେନ୍ଦ୍ର ଭଞ୍ଜ. ପ୍ରେମସୁଧାନିଧି ।
[ଦ୍ର—ହସ୍ତଲିଖିତରେ ଏ ଶବ୍ଦର ଦ୍ୱିବଚନାନ୍ତରୂପ ଦମ୍ପତୀ ବ୍ୟବହୃତ ।]

**ଦମ୍ପତି କଳହ**—ସଂ. ବି. ( ଦମ୍ପତି+କଳହ; ୬ଷ୍ଠୀ ତତ୍ )—
Dampati kalaha
୧ । ସ୍ୱାମୀ ସ୍ତ୍ରୀଙ୍କ ମଧ୍ୟରେ କଳି—
1. Quarrel between husband and wife.
୨ । ଅଳ୍ପକ୍ଷଣ ସ୍ଥାୟୀ କଳହ—
2. Short-lived quarrel.

**ଦମ୍ଭ୍** (ଧାତୁ)—ସଂ—ଗର୍ବ କରିବା—
Dambh (root) — To be proud

**ଦମ୍ଭ**—ସଂ. ବି. ( ଦମ୍ଭ୍ ଧାତୁ+ଭାବ. ଅ )—
Dambha
୧ । ଦର୍ପ, ଅହଙ୍କାର—1 Pride; arrogance, haughtiness.
୨ । ଆତ୍ମମ୍ଭରିତା—2 Selfishness.
୩ । କପଟତା—3. Hypocrisy.
୪ । ଦୁଷ୍ଟତା—4. Wickedness; wantonness.
୫ । ଶଠତା—5. Deception; fraud; deceitfulness.
୬ । ଦୈତ୍ୟବିଶେଷ—6 Name of a demon.
୭ । କପଟ; ବ୍ୟାଜ, ଛଳନା—
7. Feigning; guise.
ନିଳନ ଲଭା ଦମ୍ଭ ବନ୍ଧନ ବଦନେ ନିଶ ମାରେ ।
କବିସୂର୍ଯ୍ୟ. କଂଶୋଦ୍ଧରଣ୍ଟ. ନ ଗୀତ ।
୮ । ଲୋକଙ୍କୁ ଦେଖାଇବା ଉଦ୍ଦେଶ୍ୟରେ କରାଯିବା ବୃଥା ଆଡ଼ମ୍ବର—8. Outward show,
ଦେ. ବି—୧ । ଧୈର୍ଯ୍ୟ—1. Patience.
ରେ ବୁଝି ଧନ, ଦମ୍ଭ ଦେଖିବାକୁ ସିନା କଲି ଛନ୍ଦ ।
କବିସୂର୍ଯ୍ୟ. ବଂଶୀଗ୍ରହନ୍ତୁ. ୭ ଗୀତ ।
୨ । ସହିବାର କ୍ଷମତା—2. Fortitude; forbearance.
୩ । କଠିନତା—3. Hardness.
୪ । ଟାଣପଣ; ଦୃଢ଼ତା—4. Firmness; stiffness
ଦମ୍ଭେ ଭଗ୍ନ ହେବା ନାହିଁ ଅଣ । କବିସୂର୍ଯ୍ୟ. ବଂଶୋଗ୍ରହଣ୍ଟ ।
୫ । ଦାମ୍ଭିକତା; ଦୁଃସାହସିକତା—5. Bravado; daring.
୬ । ହିମ୍ମତ; ହେମତ୍—6 Encouragement.
୭ । ପୌରୁଷ, ତେଜ—7. Vigour; spirit.
୮ । ବିପଦରେ ନ ଟଳିବା ବା ବିଚଳିତ ନ ହେବା—
8 The state of being unshaken in danger.
ଦେ. ବିଣ—୧ । ଦୃଢ଼—1. Firm; stiff; unshaken.
୨ । ସୁସ୍ଥ—2. Refreshed; recuperated
୩ । ଟାଣ; ମଜଭୁତ୍—3. Strong.
ତାହା ପାଖରେ ଉଭା ହୋଇଛି ଦଧିମୁଖ ସଂଗ୍ରାମରେ ଅଟଇ ଦମ୍ଭ—
ଜଗନ୍ନାଥ ଦାସ ରାମାୟଣ ।
୪ । ଧୀର, ଧୈର୍ଯ୍ୟଶୀଳ—4. Patient.
୫ । ଉଚ୍ଚ ଅର୍ଥାତ୍ ଗମ୍ଭୀର ସ୍ୱରଯୁକ୍ତ—
5. High-sounding; loud
ମୁରଜ ଧନ ଦମ୍ଭ ଗରଜନ, କେ ସହିବ ନୋହି ମୋହିତ ମନ—
କବିସୂର୍ଯ୍ୟ. ସଙ୍ଗୀତ ।

**ଦମ୍ଭକ**—ସଂ ବିଣ (ଦମ୍ଭ୍ ଧାତୁ+କର୍ତ୍ତୃ. ଅକ)—୧ । ଗର୍ବୀ, ଅହଂକୃତ—
Dambhaka — 1. Arrogant; proud.
୨ । ବଞ୍ଚକ, ପ୍ରତାରକ—2. Deceitful

**ଦମ୍ଭ କରିବା**—ଦେ. କ୍ରି—୧ । ଗର୍ବ କରିବା—
Dambha kariba — 1. To be arrogant.
দম্ভকরা, দম্ভবাঁধা
୨ । ମନରେ ହେମତ୍ ବା ସାହସ ବାନ୍ଧିବା—
दंभ करना
2 To fortify one's mind with courage.
( ଦମ୍ଭ ବାନ୍ଧିବା—ଅନ୍ୟରୂପ )
୩ । ଅନ୍ୟର ସାହାଯ୍ୟ ଉପରେ ନିର୍ଭର କରିବା—
3 To depend or count upon another's help

**ଦମ୍ଭ ଦେବା**—ଦେ. କ୍ରି—୧ । ସାହସ ଦେବା; ହିମ୍ମତ୍ ଦେବା, ଉତ୍ସାହିତ କରିବା—1. To encourage; to infuse spirit into another.
Dambha deba
দম্ভ দেওয়া
हिम्मत देना
୨ । ଅଭୟବାଣୀ ଦେବା—2. To give assurance of safety, help or patronage.

**ଦମ୍ଭ ଧରା**—ଦେ ବିଣ—ଧୈର୍ଯ୍ୟଶାଳୀ; ଯେ ଧୈର୍ଯ୍ୟ ଧରି ରହିପାରେ—
Dambha dhara — Patient, forbearing.
দম্ভ ধরা हिम्मतवाला
( ଦମ୍ଭ ଘେନା, ଦମ୍ଭବାଲା—ଅନ୍ୟରୂପ )

**ଦମ୍ଭ ଧରିବା**—ଦେ. କ୍ରି—୧ । ମନରେ ସାହସ ବା ହିମ୍ମତ ବାନ୍ଧିବା—
Dambha dhariba — 1. To fortify one's mind with courage.
দম্ভ ধরা
हिम्मत करना
୨ । ଧୈର୍ଯ୍ୟ ଧରିବା; ସମ୍ଭାଳିବା—
ଦମ୍ଭ ଘେନିବା } ଅନ୍ୟରୂପ
ଦମ୍ଭ ବାନ୍ଧିବା }
2. To be patient; to wait patiently.

**ଦମ୍ଭ ପାଇବା**—ଦେ. କ୍ରି—ଅନ୍ୟ ବ୍ୟକ୍ତିଠାରୁ ବଳ, ସାହସ ବା ସାହାଯ୍ୟର
Dambha pāibā ପ୍ରତିଶ୍ରୁତି ପାଇବା—To be encouraged
ଦম্ভ পাওয়া or assured by another; to be patro-
हिम्मत पाना nised by another; to be supported by hopes of help from another.

**ଦମ୍ଭହରା**—ଦେ. ବିଣ. ସ୍ତ୍ରୀ—ଧୈର୍ଯ୍ୟହାରଣୀ—One who steals
Dambhaharā away one's patience or courage
ମୋ ସଙ୍ଗେ ଥିଲା ଦମ୍ଭହରା ରତିରେ—ଭକ୍ତ. ପ୍ରେମସୁଧାନିଧି ।

**ଦମ୍ଭିଲ**—ଦେ. ବିଣ. ( ସ ଦମ୍ଭୀ )—୧ । ଠାଣୁଆ, ଶକ୍ତ—
Dambhilā 1 Stiff; hard.
দম্ভিলা ୨ । ବଳୁଆ—2 Strong.
दंभी ୩ । ସାହସୀ—3 Bold.
୪ । ଦାମ୍ଭିକ—4 Arrogant; proud.

**ଦମ୍ଭୀ**—ସ. ବିଣ. ପୁଂ ( ଦମ୍ଭ+ଅସ୍ତି ଅର୍ଥରେ ଇନ୍; ୧ମା. ୧ବ )—
Dambhī ୧ । ଗର୍ବକାରୀ; ଅହଂକାରୀ—
( ଦମ୍ଭିନୀ—ସ୍ତ୍ରୀ ) 1. Arrogant; haughty; proud.
୨ । ଶଠ; ପ୍ରବଞ୍ଚକ; ପାଷଣ୍ଡ; ଦୁଷ୍ଟ—
2. Fraudulent; deceitful; wicked.
ଆତ୍ମୋ ଦମ୍ଭୀ ଜଳ ପ୍ରାଣୀ
ସେ ବଡ ଏ ସଂସାରେ ପୁଣି—ଜଗନ୍ନାଥ. ଭାଗବତ ।
୩ । ଦାମ୍ଭିକ—3. Boastful; blustering.

**ଦମ୍ଭୋଳି**—ସ. ବି. ( ଦମ୍ଭ=ଅହଂକାର+ଲି ଧାତୁ=ନାଶ କରିବା+
Dambholi କର୍ତ୍ତି କ୍ୱିପ୍ )—୧ । ବଜ୍ର; ଅଶନି—
1. Thunderbolt.
୨ । ଘଡ଼ଘଡ଼ି—2. Thunder.

**ଦମ୍ୟ**—ସ. ବିଣ. ( ଦମ୍ ଧାତୁ+କର୍ମ. ଯ )—
Damya ୧ । ଦମନୀୟ; ଶାସନୀୟ; ଶାସ୍ୟ—
1. Controllable; fit to be subdued or checked.
ସ. ବି—୧ । ଛୋଟ ଷଣ୍ଢ—1. A young bull.
୨ । ଅଣ୍ଡିରା ବାଛୁରୀ—2. A bull-calf.
ଦମ୍ୟ ସୁରଭୀ ଷ୍ଡ଼ଗଣ ଗୃହୀ ଶାଶ୍ୱତ ଚ ସୁନ୍ଦର ।
କବିସୂର୍ଯ୍ୟ. ସଙ୍ଗୀତ ।
୩ । ଦାମଡ଼ା—3. A young bullock; steer.

**ଦୟ୍** (ଧାତୁ)—ସ—୧ । ଅନୁଗ୍ରହ କରିବା—1. To favour.
Day (root) ୨ । ଦୟା କରିବା—
2. To be kind or merciful
୩ । ଦାନ କରିବା—3. To give.
୪ । ଗମନ କରିବା—4. To move; to go.
୫ । ଗ୍ରହଣ କରିବା—5. To accept.
୬ । ହିଂସା କରିବା (କ୍ୱଚିତ୍)—6. To injure.
୭ । ରକ୍ଷା କରିବା (କ୍ୱଚିତ୍)—7. To protect.

**ଦୟମାନ**—ସ. ବିଣ. ପୁଂ. (ଦୟ୍ ଧାତୁ+କର୍ତ୍ତି. ଶାନଚ୍ )—
Dayamāna ଯେ ପରଦୁଃଖରେ କାତର ହେଉଥାଏ—
(ଦୟମାନା—ସ୍ତ୍ରୀ) Pitying; sympathising.

**ଦୟା**—ସ. ବି. ସ୍ତ୍ରୀ. (ଦୟ୍ ଧାତୁ+ଭାବ. ଅ+ସ୍ତ୍ରୀ. ଆ)—
Dayā ୧ । ପରଦୁଃଖକାତରତା; ଅନୁକମ୍ପା—1. Compassion;
(ଦୟ—ଅନ୍ୟରୂପ) pity; commiseration; sympathy.
୨ । କୃପା, କରୁଣା—2. Kindness; mercy.
୩ । ସ୍ନେହ—3. Affection; love.
ଦୟା ନାହିଁ ଏହାର କିଛି ଚିତ୍ତ
ବନ୍ଧୁବାସେ ଯାଇଁ ଚଳନ୍ତି ତ । ଜଗନ୍ନାଥ. ଦାସ. ଭାଗବତ ।
୪ । ଅନୁଗ୍ରହ—4. Favour; grace.
ଦେ ବି (ଅନାଦରାର୍ଥକ)—୧ । ଦୈତ୍ୟାରି ଓ ଦୟାନିଧି
ନାମକ ବ୍ୟକ୍ତିଙ୍କ ଡାକ ନାମ—1. A nickname
by which Daityāri and Dayānidhi are
(ଦୟି—ଆଦରାର୍ଥକ) called.
୨ । (ସ. ଦଧିଭଦ୍ରା; ସ. ଦଧୀଚି)—ପୁରୀ ଜିଲ୍ଲାର କୁଆଖାଇ
ନଦୀର ଶାଖାନଦୀ—2. Name of a
river in the district of Puri branching
off from the Kuākhāi river.
ଧରଇ ଦର୍ପଣ ଦୟା ସ୍ରୋତସ୍ୱତୀ । ରାଧାନାଥ, ଚିଲିକା ।
[ ଦ୍ର—ଦଧୀଚି ମୁନିଙ୍କ ନାମରୁ ଦୟା ହୋଇଅଛି । ଏହାର ପ୍ରାଚୀନ ନାମ ଦଧିଭଦ୍ରାରୁ ଅପଭ୍ରଷ୍ଟ ହୋଇ ଦଧିଆ, ପରେ ଦହିଆ, ତତ୍ପରେ 'ଦୟା' ନାମ ହୋଇଥିବାର କେହିକେହି କହନ୍ତି । ଏହି ନଦୀକୂଳରେ ଦଧୀଚି ମୁନିଙ୍କ ଆଶ୍ରମ ଥିବାର ସ୍ଥାନୀୟ କିମ୍ବଦନ୍ତୀ ଅଛି । କବିବର ରାଧାନାଥ ତାଙ୍କ 'ଯାଜ୍ଞସେନୀ' ଶୀର୍ଷକ ପଦ୍ୟରେ ଏ କିମ୍ବଦନ୍ତୀ ଉଲ୍ଲେଖ କରିଅଛନ୍ତି । ଯଥା :—
ଦୟାଂଶ ମନ ଦଧୀଚି ପଦର ପ୍ରକ୍ଷାଳନେ ପୂତଗାତ୍ର ।
ବହେ ପାଦେ ଯାର ଦୟା ପ୍ରବାହିନୀ ସୁପ୍ରସନ୍ନା ସୁଗାତ୍ର ।
ରାଧାନାଥ, ଯାଜ୍ଞସେନୀ ।

**ଦୟାକର**—ସ. ବି. ( ଦୟା+ଆକର, ୬ଷ୍ଠୀ ତତ୍ )—
Dayākara ଦୟାର ଆଧାର; କରୁଣାକର—
An ocean of pity (so to say).
ବିଣ—ଦୟାମୟ—Full of kindness.

**ଦୟା କରି**—ଦେ. କ୍ରି. ବିଣ—ଅନୁଗ୍ରହ ପୂର୍ବକ; ଦୟାପ୍ରକାଶ ପୂର୍ବକ—
Dayā kari Kindly; as a matter of grace.
দয়াকরে दयाकरके

**ଦୟା କରିବା**—ଦେ. କ୍ରି—୧ । ଅନୁଗ୍ରହ କରିବା—
Dayā karibā 1. To show favour.
দয়াকরা ୨ । ଅନ୍ୟପ୍ରତି କରୁଣାର୍ଦ୍ର ହେବା—
दयाकरना 2. To take pity upon another.

**ଦୟା ଦାକ୍ଷିଣ୍ୟ**—ସ. ବି. ( ଦ୍ୱନ୍ଦ୍ୱ; ଦୟା+ଦାକ୍ଷିଣ୍ୟ )—ଅନୁଗ୍ରହ ଓ
Dayā dākshinya ସୌଜନ୍ୟ—Favour and gentle-
manly behaviour.

**ଦୟା ଦାସ**—ଦେ. ବି—ଓଡ଼ିଆ କବି, ପଞ୍ଚସଖା ଅନନ୍ତଙ୍କ ଶିଷ୍ୟ,
Dayā dāsa 'ଅନନ୍ତସାଗର ଗୀତା'ର ରଚୟିତା (ଜଗବନ୍ଧୁ. ପ୍ରାଚୀନ
ଉତ୍କଳ)—Author of Ananta-sāgaragitā;
an Oria poet.

**ଦୟା ଦୃଷ୍ଟି**—ସ. ବି.—(ମ. ପ. ଲେ; ଦୟା+ଦୃଷ୍ଟି)—ଦୟାପୂର୍ଣ୍ଣ ଦୃଷ୍ଟି;
Dayā drushti କୌଣସି ବ୍ୟକ୍ତି ପ୍ରତି କରୁଣା ବା ଅନୁଗ୍ରହପୂର୍ଣ୍ଣ ଭାବ—Kind consideration shown to a person; favourable look

**ଦୟା ଧର୍ମ**—ସ. ବି. (ଦୟା ରୂପ ଧର୍ମ; ରୂପକ)—୧ । ଦୟାରୂପ ଗୁଣ—
Dayā dharma 1. The quality of kindness.
୨ । ଦୟା—2. Kindness
୩ । (ଦ୍ୱନ୍ଦ୍ୱ) ଦୟା ଓ ଧର୍ମ—
2. Pity and piety

**ଦୟା ଧରମ**—ଦେ. ବି (ସ. ଦୟା ଧର୍ମ)—୧ । ଦାତୃତ୍ୱ—
Dayā dharama 1. Liberality.
দয়া ধৰম ୨ । ଦାନ—2. Gift.
**दयाधरम** ୩ । ଦୟା ଧର୍ମ (ଦେଖ)—
3. Dayā dharma (See)

**ଦୟା ନିଧାନ**—ସ. ବି.—( ଦୟା+ନିଧାନ; ୬ଷ୍ଠୀ ତତ୍ )—ଦୟାର
Dayā-nidhāna ଆଧାର; ଦୟାସାଗର; ଅତି ଦୟାଶୀଳ ବ୍ୟକ୍ତି—
An abode of pity; a very kind person.
ବିଣ.—ଦୟାମୟ—Full of kindness.

**ଦୟା ନିଧି**—ସ. ବି. ଓ ବିଣ. (ଦୟା+ନିଧି, ୬ଷ୍ଠୀ ତତ୍)—
Dayā nidhi ଦୟାକର (ଦେଖ)—Dayākara (See)
ଦେ. ବି. ପୁଂ.—ପୁରୁଷର ନାମ—
A name given to males.

**ଦୟା ପଡ଼ିବା**—ପ୍ରାଦେ. (ଗଞ୍ଜାମ) କ୍ରି.—ଦୟାର୍ଦ୍ର ହେବା—
Dayā pardibā To be moved with pity; to be moved to compassion.

**ଦୟା ପାଇବା**—ଦେ. କ୍ରି.—ଦୟା କରିବା, ଅନୁଗ୍ରହ କରିବା—
Dayā pāibā To favour; to be moved with pity; to show pity.
দযাকৰা
**दया करना** ଦୟା ପାଇ ତାକୁ, ନ ମାର ଉଣିଲେ ଭଟ୍ଟପଣକୁ ।
ପ୍ରାଚୀ ପ୍ରଭାତ ଶଶୀସେଣା ।

**ଦୟା ପାତ୍ର**—ସ ବିଣ. (ଦୟା+ପାତ୍ର, ୬ଷ୍ଠୀ ତତ୍)—ଦୟାର ପାତ୍ର, ଦୟାର
Dayā pātra ଯୋଗ୍ୟ—Deserving pity.
ବି.—ଅନ୍ୟଠାରୁ ଦୟା ପାଇବାର ଉପଯୁକ୍ତ ବ୍ୟକ୍ତି—
An object of pity or compassion

**ଦୟାବନ୍ତ**—ବିଣ. ପୁଂ (ସ ଦୟାବତ୍)—ଦୟାବାନ୍ (ଦେଖ)
Dayābanta (ଦୟାବନ୍ତୀ—ସ୍ତ୍ରୀ) Dayābān (See)

**ଦୟା ବସିବା**—ଦେ. ବି.—ମନରେ ଦୟାର ଉଦ୍ରେକ ହେବା; ଦୟା
Dayā basibā ଜନ୍ମିବା—Being moved to compassion.
দযা আসা (ଯଥା—ମୋ ବିପତ୍ତି ଦେଖି ତାଙ୍କ ମନରେ ଦୟା ବସୁ ନାହିଁ ।)
**दयाआना** (ଦୟା ଆସିବା, ଦୟା ଜନ୍ମିବା—ଅନ୍ୟରୂପ)

**ଦୟା ବହିବା**—ଦେ. କ୍ରି.—ଅନ୍ୟ ପ୍ରତି କରୁଣାର୍ଦ୍ର ହେବା—
Dayā bahibā To take pity; to be moved.
দয়াকৰা ଦୟା ନ ବହୁଲେ ଶୁଣି ଅବଳା ବେଦନ;
**दया करना** ସ୍ୱର୍ଣ୍ଣକାଠ. ବେଣୀ ସଂହାର ।

**ଦୟାବାନ୍**—ସ. ବିଣ. ପୁଂ. (ଦୟା+ଅଛି ଅର୍ଥରେ ବତ୍, ୧ମା. ୧ବ)—
Dayābān କରୁଣାମୟ; କୃପାଯୁକ୍ତ—Kind
(ଦୟାବତୀ—ସ୍ତ୍ରୀ) (ଦୟାବତ୍ତ୍ୱ—ବି)

**ଦୟା ବୀର**—ସ. ବି —(ଦୟା ବିଷୟରେ ବୀର ଅର୍ଥାତ୍ ଶ୍ରେଷ୍ଠ ବା ଆଦର୍ଶ;
Dayā bīra ୭ମୀ ତତ୍)—ଯେଉଁ ବ୍ୟକ୍ତି ପର ପ୍ରତି ଦୟା ଦେଖାଇବାରେ ଜଗଦ୍‌ବିଦିତ; ଯେଉଁ ବ୍ୟକ୍ତି ପରର ଦୁଃଖ ବିମୋଚନ କରିବା ପାଇଁ ଆପଣାର ପ୍ରାଣ ପର୍ଯ୍ୟନ୍ତ ଉତ୍ସର୍ଗ କରି ପାରେ—One who is ready to sacrifice his life to show pity to others.
ଦୟାବୀର ଧୀର ମୁଖାବ୍ଦ ଦର୍ଶିତ,
ଅଭିଷେକ ଫଳେ ପୂରି ଯାଉ ଗୀତ । ସ୍ୱର୍ଣ୍ଣକାଠ. ଉଲ୍କା ।

**ଦୟା ଭାଜନ**—ସ. ବିଣ (ଦୟା+ଭାଜନ, ୬ଷ୍ଠୀ ତତ୍)—ଦୟାର ପାତ୍ର;
Dayā bhājana ଦୟା ପାଇବାର ଯୋଗ୍ୟ—
Deserving pity.

**ଦୟାମୟ**—ସ ବିଣ ପୁଂ. (ଦୟା + ଅଛି, ଯାହାଠାରେ ଏହି ଅର୍ଥରେ ମୟ)—
Dayāmaya କରୁଣାମୟ, କୃପାଯୁକ୍ତ—
(ଦୟାମୟୀ—ସ୍ତ୍ରୀ) Very kind; full of kindness.
ସ. ବି.—ପରମେଶ୍ୱର; ଦୟାସାଗର ଭଗବାନ୍—
God, the Merciful.

**ଦୟା ମାୟା**—ଦେ. ବି. (ଅନୁଚର ଶବ୍ଦଦ୍ୱୟ; ଦୟା+ମାୟା)—
Dayā māyā ଦୟା ଓ ମାୟା; ଦୟା ଓ ମମତା—
দযামাযা Kindness and a feeling of attachment.
**दयामाया** [ ଦ୍ର—ଦୟା=ପରପାଇଁ ସହାନୁଭୂତି; ମାୟା—ଆପଣାର ସୁଖ ଲାଭପାଇଁ ପରପାଇଁ ସହାନୁଭୂତି; ଦୟା ନିର୍ମଳ କିନ୍ତୁ ମାୟା ଅବଳ । ଦୟା, ସ୍ନେହ, ପ୍ରେମ, କୃପା ଏମାନ ସ୍ୱର୍ଗୀୟ; ମାୟା, ମମତା ଏମାନ ପାର୍ଥିବ । ]

**ଦୟା ରତ୍ନ**—ସ. ବି. ( ଦୟା+ରତ୍ନ )—ବୌଦ୍ଧ ଧର୍ମଗ୍ରନ୍ଥବିଶେଷ—
Dayāratna A Buddhistic religious writing (Howells).

**ଦୟାର୍ଦ୍ର**—ସ ବିଣ. ପୁଂ ( ଦୟା+ଆର୍ଦ୍ର; ୩ୟା ତତ୍ )—
Dayārdra ଦୟାଦ୍ୱାରା ଦ୍ରବୀଭୂତ; ଦୟାସିକ୍ତ—
(ଦୟାର୍ଦ୍ରା—ସ୍ତ୍ରୀ) (ଦୟାର୍ଦ୍ରତା—ବି) Melted with or saturated with kindness.

**ଦୟାଳ**—ଦେ. ବି- ଦଇଆଳ (ଦେଖ)
Dayāla Daiāla (See)
দযাল ବିଣ- ଦୟାଳୁ ( ଦେଖ )
**दयाल** Dayālu ( See )
ଶ୍ରୀବତ୍ସବକ୍ଷ ବନମାଳ, ଭକତ ପରମ ଦୟାଳ ।
ଭୂପତି. ପ୍ରେମପଞ୍ଚାମୃତ ।

**ଦୟାଳୁ**—ସ. ବିଣ ( ଦୟା+ଶୀଳାର୍ଥେ ଆଳୁ )—
Dayālu ୧ । କାରୁଣିକ; ଦୟାବାନ୍—1. Kind; merciful.
(ଦୟାଳୁତା—ବି) ୨ । ସ୍ନେହବାନ୍—2. Affectionate.
୩ । ପରଦୁଃଖକାତର—
3. Compassionate; sympathetic.

୪ । ଅନୁଗ୍ରହକାରୀ—4. Showing favour

୫ । ଅନୁକୂଳ—5. Favourable.

ଦେ· ବି—ପକ୍ଷିବିଶେଷ, ଦଇଅଳ (ଦେଖ)—
A kind of bird; Daiāla (See)

ସାରି, ଶୁଆ, ଶ୍ୟାମା, ଭୃଙ୍ଗ, ଚଷାପୁଅ,
ଦୟାଳୁ ପୂର୍ଣ୍ଣ ମନ୍ମଥ । ରାଧାନାଥ ଯଯାତି ।

**ଦୟାଶିଳା**—ଦେ ବି—ପଥର ପରି ଦୟାବିହୀନ—
Dayāśilā Pitiless like stone

ଦୟାଶିଳା କୋହରୁ ହୋଇଲୁ ଦୟାଶୀଳା । ଉପେନ୍ଦ୍ର ଭଞ୍ଜ. ପ୍ରେମସୁଧାନିଧି ।

**ଦୟାଶୀଳ**—ସ. ବିଣ. ପୁଂ. (ଦୟା ଅଟେ ଶୀଳ=ସ୍ୱଭାବ ଯାହାର)—
Dayāśila ସ୍ୱଭାବତଃ ଦୟାଳୁ—Kind by nature.
(ଦୟାଶୀଳା—ସ୍ତ୍ରୀ) (ଦୟାଶୀଳତା—ବି)

**ଦୟା ସାଗର**—ସ. ବିଣ (ଦୟା+ସାଗର; ୬ଷ୍ଠୀ ତତ୍ ; ଯାହା ହୃଦୟରେ
Dayā sāgara ସାଗରପରି ଅସୀମ ଦୟା ଥାଏ)—ଅତ୍ୟନ୍ତ ଦୟାଳୁ—
Very very kind (literally ocean of kindness)

**ଦୟା ସିନ୍ଧୁ**—ସ. ବିଣ. (ଦୟା+ସିନ୍ଧୁ; ୬ଷ୍ଠୀ ତତ୍)—ଦୟାସାଗର (ଦେଖ)
Dayā sindhu Dayā sāgara (See)

**ଦୟିତ**—ସ. ବିଣ ପୁଂ. (ଦୟ୍ ଧାତୁ=ସ୍ନେହ କରିବା+କର୍ମ. ତ)—
Dayita ୧ । ପ୍ରିୟ; ସ୍ନେହପାତ୍ର—1. Dear, beloved.
(ଦୟିତା—ସ୍ତ୍ରୀ) ୨ । କମନୀୟ—2. Beautiful; charming.
ବି. ପୁଂ—୧ । ବଲ୍ଲଭ; ପ୍ରେମିକ—1. A lover.

ସୁଭଦ୍ରାର କଥା ଜଗତେ ବିଦିତ
ପ୍ରେମବଳେ ସିନା ଲଭିଲା ଦୟିତ । ରାଧାନାଥ. ନନ୍ଦିକେଶ୍ୱରୀ ।

୩ । ପତି; ସ୍ୱାମୀ—3. Husband.

ଦେ. ବି. (ସଂ. ଦୈତ୍ୟ)—ଦୈତ୍ୟ; ଅସୁର—Demon.

**ଦୟେ**—ଦେ. (ପ୍ରାଚୀନ ପଦ୍ୟ) ବି. (ସ. ଦୟା)—ଦୟା—
Daye Kindness.

ଯେଉଁ ପ୍ରଭୁ ବିପନ୍ନ ଚାହିଁ କୁ କଲେ ଦୟେ । ପ୍ରାଚୀ. ରହସ୍ୟମଞ୍ଜରୀ ।

**ଦୟେଣା**—ଦେ. ବି—ଦଅଣା ( ଦେଖ )
Dayeṇā Da-aṇā ( See )
(ଦୟଣା—ଅନ୍ୟରୂପ) ଭୃଙ୍ଗ ବର୍ଣ୍ଣର ଭୁଜଥିବା
ମଣି ନାଗେଶ୍ୱର ଦୟେଣା । ଭୂପତି. ପ୍ରେମପଞ୍ଚାମୃତ ।

**ଦର୍‌କିବା**—ଗ୍ରାଦେ. ( ସମ୍ବଲପୁର ) କ୍ରି—( ଲୁଗା ଆଦି ) ଫାଟିଯିବା ବା
Dar-kibā ଚିରିଯିବା—To be torn; to be rent.

**ଦର**—ସ. ବି. ପୁଂ. କ୍ଲୀ. ( ଦୃ ଧାତୁ=ବିଦୀର୍ଣ୍ଣ ହେବା+କର୍ତ୍ତୃ. ଅ )—
Dara ୧ । ଡର; ଭୟ—1. Fear; alarm; dread.
୨ । ( +କର୍ମ. ଅ ) ଗର୍ତ୍ତ; ଗହ୍ୱର; ଗୁମ୍ଫା—
2 Hole; cave; cavity.
୩ । କମ୍ପ—3. Quaking; trembling.
୪ । ଶଙ୍ଖ—4. Conch shell.

ଭୁଜଗ-ଅଙ୍ଗ-ଦୀପାକୁ ପୁର ଦର-ନାଦ ଦର-ଦ୍ରୁତ ହୋଇ—
ଭଞ୍ଜ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।

୫ । ବିଦାରଣ—5. Tearing.

୬ । ଫାଟ—6. A crack; fissure.

ଅବ୍ୟୟ—୧ । ଅଳ୍ପ; ସାମାନ୍ୟରେ; ଈଷତ୍—
1. Partially; partly.

ଉଦୟକରେ ଦର-ଫୁଲ୍ଲ ଅରବିନ୍ଦେ ଯେଉଁ ଅଳି କରେ କ୍ରୀଡ଼ା—
ରାଧାନାଥ. ଯଯାତି ।

[ ଦ୍ର—ଏହି 'ଦର' ଶବ୍ଦ ବିଶେଷଣ ପଦର ପୂର୍ବରେ ଯୁକ୍ତ ହୋଇ ବ୍ୟବହୃତ ହୁଏ । ଯଥା—ଦର-ହସିତ, ଦର-ମୁକୁଳିତା । ]

ଦେ ବି—୧ । ( ସ. ଦର=ଭୟ; ଅସୁରମାନେ ଭୟପ୍ରଦ ଥିବାରୁ ଏଠାରେ ଏ ଅର୍ଥ; କିମ୍ବା ଦର=ଶଙ୍ଖ ଥିବାରୁ )
ଶଙ୍ଖାସୁର—1 Śankhāsura.

ବଳ ବନର୍ଦ୍ଦନେ ଆସେ ଗୁଣଶାଳୀ
ବଧ ମୃଦେ ଦର ନାଶେ ଝଳ—ଭଞ୍ଜ. ବୈଦେହୀଶବିଳାସ ।

ଦବ ୨ । ( ସ. ଦ୍ରବ୍ୟରୁ କି ? ତୁଳନାକର ଆ. ଦର୍ )
ଦର୍ କିମତ; ମୂଲ୍ୟ; ଦାମ—2. Price; value; worth.

ମଜଲିସ ଆଗରେ ଦର ଛଣ୍ଡିଲି ଅଠେଇ ଟଙ୍କା—
ଫକୀରମୋହନ. ଛମାଣ ଆଠଗୁଣ୍ଠ ।

[ ଦ୍ର—ଏହି ଅର୍ଥରେ ଦର ଶବ୍ଦ ଆରବୀରୁ ଗୃହୀତ ।]

୩ । ଭାଉ; ମୂଲ୍ୟର ହାରଶ—
3 Rate of the price of a thing.

୪ । ବଜାର ଭାଉ—4 Market-rate.

୫ । ପ୍ରଚଳିତ ଦାମ—5. Prevailing rate.

୬ । ଶ୍ରେଣୀ; କାଟ—6. Standard; rank.
( ଯଥା—ସେ ଯେଉଁ ଦରର ଲୋକ ତା ପ୍ରତି ଶିଷ୍ଟାଚାର ଅନାବଶ୍ୟକ । )

ଦେ. ବିଣର ବିଣ. ( ଅନ୍ୟ ବିଶେଷଣ ଶବ୍ଦ ପୂର୍ବେ ବ୍ୟବହୃତ; ତୁଳ=ସ. ଅର୍ଦ୍ଧ )—୧ । ଅର୍ଦ୍ଧ—
1. A prefix meaning half.
୨ । ( ସ. ଦର ) ଅସମ୍ପୂର୍ଣ୍ଣରୂପେ—2. Incompletely.

[ ଦ୍ର—ଏହି 'ଦର' ଶବ୍ଦ ଯେପରି କେତେକ କର୍ଦ୍ଦିଷ୍ଟ ସଂସ୍କୃତ ବିଶେଷଣ ଶବ୍ଦର ପୂର୍ବରେ ଯୁକ୍ତ ହୋଇ ଈଷତ୍ ବା ଅସମ୍ପୂର୍ଣ୍ଣତା ଅର୍ଥ ବ୍ୟକ୍ତ କରେ ସେହିପରି କେତେକ ଦେଶଜ ବିଶେଷଣ ଶବ୍ଦର ପୂର୍ବପଦରୂପେ ସେହି ଅର୍ଥରେ ମଧ୍ୟ ବ୍ୟବହୃତ ହୁଏ । ଯଥା—ଦରସିଝା, ଦରଖିଆ, ଦରହଗା, ଦରଶୁଆ, ଦରପୋଡ଼ା, ଦର-ପାଚିଲା, ଦରଅଇଁଠା, ଦରଆଉଜା, ଦରହସା, ଦରଗାଣ୍ଟୁଆ, ଦରକଣ୍ଡା, ଦରଫୁଟା ଇତ୍ୟାଦି । ]

୩ । ବହୁପରିମାଣରେ; ଅଜସ୍ରଭାବରେ—
3. Profusely; copiously.
( ଯଥା—ଦରବିଗଳିତ ଅଶ୍ରୁଧାର ଝରଝର ବହେ । )

ଦର ଅଶ୍ରୁଧାର ଧାର
ବହି ଯାଇ ପଦ୍ମପଲ୍ଲବନସ୍ତନ ବକ୍ଷେ ପଡ଼େ ଝରଝର—
କବିକଲ୍ଲୋଳ. ସୀତାବନବାସ ।

**ଦରଆଉଜା**—ଦେ ବିଣ—ଅର୍ଦ୍ଧମୁଦ୍ରିତ ( ଦ୍ୱାର )—
Daraāujā Half shut ( door ).
ଆଧାଖୁଲା ଅଧଖୁଲା

**ଦରଅଉଟା**—ଦେ. ବିଣ. ( ସ. ଅର୍ଦ୍ଧ ଆବର୍ତ୍ତିତ )—ଯେଉଁ ଦୁଧ
Dara-āuṭā ସମ୍ପୂର୍ଣ୍ଣରୂପେ ଅଉଟା ହୋଇ ନ ଥାଏ—
Partially boiled ( milk ).

**ଦରକ**—ସ. ବିଣ ( ଦର+ଅଚ୍ଛ ଅର୍ଥରେ କ )—ଭୀରୁ—
Daraka Timid; cowardly.

**ଦରକଞ୍ଚା**—ଦେ. ବିଣ—୧ । ଦରପାଚିଲା ( ଦେଖ )
Darakañchā 1. Darapāchilā ( See )
দরকাঁচা, দরকোচ ୨ । ପକ୍ୱଫଳ ମଧ୍ୟରେ ରହିଯାଇ ଥିବା ଅପରିପକ୍ୱ
अधुरा (ଅଂଶ)—2.(a portion of a ripe fruit which is) Still raw
୩ । ପାକସିଦ୍ଧ ବସ୍ତୁ ମଧ୍ୟରେ ରହିଯାଇ ଥିବା ଅପରିପକ୍ୱ(ଅଂଶ)·
3 (a portion of a cooked or boiled thing which is) Still hard.

**ଦରକଣ୍ଟିକା**—ସ. ବି. ସ୍ତ୍ରୀ—ଶତାବରୀ, ଛତାରୁଣ୍ଡି—A hardy
Darakaṇṭikā thorny creeper having succulent roots; Asparagus Racemosus.

**ଦର କରିବା**—ଦେ· କ୍ରି—ମୂଲେଇବା; ଦର ଦାମ କରିବା—
Dara karibā To fix or settle the rate of an article
দরকবা दर करना to be purchased.

**ଦର କଷାକଷି**—ଦେ. ବି—କୌଣସି ଦ୍ରବ୍ୟ କଣିବା ପାଇଁ କ୍ରେତା ଓ
Dara kashākashi ବିକ୍ରେତାଙ୍କ ମଧ୍ୟରେ ମୂଲ୍ୟ ସମ୍ବନ୍ଧେ ଠେଲା
দর কষাকষি ଓଠରି କଥା—Higgling.
फेरि लगाना ଦେ. ବିଣ—କୌଣସି ଦ୍ରବ୍ୟ କଣିବା ପାଇଁ ମୂଲ୍ୟ ସମ୍ବନ୍ଧେ ଠେଲା ଓଠରି କରୁଥିବା (କ୍ରେତା ଓ ବିକ୍ରେତା)—
Higgling and haggling.

**ଦରକାଣ୍ଡିଆ**—ଦେ. ବି. (ସ ଅର୍ଦ୍ଧ+କଣ୍ଡିତ)—୧ । ଯେଉଁ ଚାଉଳ
Darakāṇḍiā ବା ଡାଲି ସମ୍ପୂର୍ଣ୍ଣରୂପେ କଣ୍ଡା ହୋଇ ନାହିଁ—
(ଦରକଣ୍ଡା—ଅନ୍ୟରୂପ) Not properly threshed rice or pulse.
আধাকাঁড়া
୨ । ଦରପନ୍ତରା (ଦେଖ)—2. Darapantarā (See)

**ଦରକାର**—ବୈଦେ. ବିଣ. ( ଫା. ଦର୍‌କାର୍ )—
Darakār ୧ । ପ୍ରୟୋଜନୀୟ; ଆବଶ୍ୟକ—1. Necessary.
দরকার ୨ । ଅପେକ୍ଷିତ; ଲୋଡ଼ା—2. Wanted.
दरकार ବୈଦେ. ବି—ପ୍ରୟୋଜନ—Necessity; need.

**ଦରକାର କରିବା**—ଦେ. କ୍ରି—ଲୋଡ଼ିବା; ଆବଶ୍ୟକ କରିବା—
Darakār karibā To want; to need; to be in need of.
দরকারকরা चाहना

**ଦରକାରୀ**—ବୈଦେ. ବିଣ (ଫା. ଦର୍‌କାର୍)—ଆବଶ୍ୟକ, ପ୍ରୟୋଜନୀୟ—
Darakārī Needful; useful; necessary; important
(ବେଦରକାରୀ—ବିପରୀତ)
দরকারী जरूरी

**ଦରଖଣ୍ଡିଆ**—ଦେ. ବିଣ. ( ସ. ଅର୍ଦ୍ଧ ଖଣ୍ଡିତ )—
Darakhaṇḍiā ଅର୍ଦ୍ଧ ସମ୍ପୂର୍ଣ୍ଣ; ଅସମ୍ପୂର୍ଣ୍ଣ (କର୍ମ); ଅସମାପ୍ତ—
আধামাধা Incomplete; half-done; unfinished.
नातमाम

**ଦରଖାସ୍ତ**—ବୈଦେ. ବି. (କଚେରିଆ) (ଫା. ଦର୍‌ଖ୍ୱାସ୍ତ୍)—
Darakhāsta ୧ । ନିବେଦନ ପତ୍ର; ଆବେଦନ ପତ୍ର—
ଦରଖାସ୍, ଦର୍ଖାସ୍ତ, ଦର୍ଖାସ୍ (ଅନ୍ୟରୂପ)
1. Petition; application.
୨ । ନିବେଦନ; ପ୍ରାର୍ଥନା—2. Representation; prayer
দরখাস্ত ୩ । ଅନୁରୋଧ—3. Request.
दरखास्त ୪ । କୌଣସି ବ୍ୟକ୍ତି ବିରୁଦ୍ଧରେ ଲିଖିତ ଅଭିଯୋଗ—
4. A written complaint.

**ଦରଖାସ୍ତକାରୀ**—ଦେ.ବି. ପୁଂ (କଚେରିଆ)(ଫା. ଦର୍‌ଖ୍ୱାସ୍ତ୍+ସ. କାରୀ)—
Darakhāstakār ୧ । ଆବେଦନକାରୀ—1. Petitioner.
(ଦରଖାସକାରୀ—ଅନ୍ୟରୂପ) ୨ । ମୁଦେଇ—2 Complainant.
(ଦରଖାସ୍ତକାରିଣୀ—ସ୍ତ୍ରୀ) ୩ । ବାଦୀ—3. Plaintiff.
দরখাস্তকারী दरखास्तकारी

**ଦରଖାସ୍ତ ଗୁଜାରିବା**—ଦେ କ୍ରି (କଚେରିଆ)—୧ । ହାକିମଙ୍କ
Darakhāsta gujāribā ନିକଟରେ ନିବେଦନ ପତ୍ର ଦାଖଲ ବା
দরখাস্ত গুজারা ଉପସ୍ଥାପିତ କରିବା—
दरखास्त गुजारना 1. To file a petition.
୨ । ହାକିମଙ୍କ ଆଗରେ କୌଣସି ବ୍ୟକ୍ତିର ଦରଖାସ୍ତ ପେଶ୍ କରିବା—2. To put up a petition before an authority.

**ଦରଖାସ୍ତ ପଡ଼ିବା**—ଦେ. ବି ( କଚେରିଆ )—୧ । କୌଣସି ବିଷୟରେ
Darakhāsta paṛibā ନିବେଦନ ପତ୍ର ହାକିମଙ୍କ ନିକଟରେ
দরখাস্তপড়া ଦିଆଯିବା—1. The filing of a petition.
दरखास्तपड़ना ୨ । ହାକିମଙ୍କ ନିକଟରେ ଦିଆଯାଇ ଥିବା ଦରଖାସ୍ତର ବିଷୟ ହାକିମଙ୍କ ଦ୍ୱାରା ଆଲୋଚିତ ହେବା—2. The coming up of a petition for consideration

**ଦର ଖିଆ**—ଦେ. ବିଣ. (ସ. ଅର୍ଦ୍ଧ+ଖାଦ୍ ଧାତୁ)—୧ । ଯେଉଁ ବ୍ୟକ୍ତିର
Dara khiā ଖାଇବା କର୍ମ ସମ୍ପୂର୍ଣ୍ଣ ହୋଇ ନ ଥାଏ—
अधचरा 1. Half-fed (person).
ଜାଣୁଛ ଦରଖିଆ ହେଲେ ଲୋକ
ଲୋକେ ରହିବାକୁ ତା ମଣନ୍ତି ଅଧିକ । କୃଷ୍ଣସିଂହ, ମହାଭାରତ ।
୨ । ଯେଉଁ ଖାଦ୍ୟ ସମ୍ପୂର୍ଣ୍ଣରୂପେ ଖିଆଯାଇ ନ ଥାଏ—
2. Half-eaten (thing).

**ଦର ଗଧର**—ପ୍ରାଦେ (ସମ୍ବଲପୁର) ବିଣ—ଅର୍ଦ୍ଧପକ୍ୱ; ଦରପାଚିଲା; ଯାହା
Dara gadhar ପୂର୍ଣ୍ଣରୂପେ ପାଚି ନାହିଁ—Half-ripe; not yet fully ripe.

**ଦର ଗଳିତ**—ସ. ବିଣ—ଦରଦର ଧାରରେ ବୋହୁଥିବା (ଯଥା—ଅଶ୍ରୁ)।
Dara galita Flowing profusely e. g. tear).
(ଦର ବିଗଳିତ, ଦରଦଳିତ—ଅନ୍ୟରୂପ)

**ଦରଗା(ଘା)**—ବୈଦେ. ବି. ( ଆ. ଦର୍‌ଗାହ୍ )—
Daragā(ghā) କୌଣସି ମୁସଲମାନ୍ ପୀର ବା ସିଦ୍ଧପୁରୁଷଙ୍କ
ଦର୍ଗା, ଦର୍ଘା, ଦରଗା (ଅନ୍ୟରୂପ) ସମାଧି ସ୍ଥାନ—Shrine or tomb of a Mahomedan saint.
[ ଦ୍ର—କଟକର କଦମରସୁଲଙ୍କ ଆସ୍ଥାନ ଥିବା

ଦବଗା ବଜାରର ନାମ ଦରଯାବଜାର । ]
दरगाह

ଦର ଛିଣ୍ଡା(ଣ୍ଡେ)ଇବା—ଦେ. କ୍ରି—କୌଣସି ବସ୍ତୁର ଭାଉ ସ୍ଥିର କରିବା—
Dara chhiṇḍā(ṇḍe)ibā To settle the price or rate of a thing
दवकरा दरकोटदेना

ଦର ଛିଣ୍ଡିବା—ଦେ. ବି—କ୍ରୟ ବିକ୍ରୟ ପୂର୍ବରୁ କୌଣସି ବସ୍ତୁର ଭାଉ ସ୍ଥିର କରାଯିବା—Fixing up or the
Dara chhiṇḍibā settlement of the price (of an article).
दव हएयाओया
दरकटी

ଦରଜ୍ କରିବା—ଦେ କ୍ରି. (କଚେରୀ) (ଫା.ଦର୍ଜ୍)—୧ । ଟିପି ରଖିବା; ଲେଖି ରଖିବା, ନୋଟ୍ କରିବା—1. To note
Daraj karibā down, to take down.
(ଦରଜ୍ ଦେବା—ଅନ୍ୟରୂପ)
दवर्जकवा ୨ । ବ୍ୟଥାଯୁକ୍ତ ହେବା (ଅଙ୍ଗ)—
दर्ज करना 2. (limb) To become painful.

ଦରଜ—ବୈଦେ. ବି—୧ । (ଫା. ଦର୍ଜ୍) ଟିପା; ଲେଖା; ଉଲ୍ଲେଖ—
Daraja 1. Note, writing; written reference.
(ଦର୍ଜ—ଅନ୍ୟରୂପ) (ଯଥା—ଏ ତାଲିକାରେ ତା ନାମର ଦରଜ ନାହିଁ ।)
दर्ज
दर्ज ୨ । (ଫା. ଦର୍ଦ୍) - ବ୍ୟଥା, ତ୍ରାସ; ବେଦନା—
दवद 2. Pain; painful sensation of any part of the body; sensitiveness to touch.
दर्द
୩ । ହୃଦୟର ବେଦନା—3. Sorrow; grief.
୪ । ମାୟା; ମମତା—4. Sympathy, attachment.
୫ । ପର ଦୁଃଖରେ ବିକଳ ହେବା; ପରଦୁଃଖକାତରତା—
5. Commiseration; compassion.
दरद . ବୈଦେ. ବଣ. ( ଫା. ଦର୍ଜ୍ )—
दरद ୧ । ଲେଖା ହୋଇଥିବା; ଟିପା ହୋଇଥିବା—
1. Written; noted.
୨ । (ଫା. ଦର୍ଦ୍) ପୀଡ଼ାଯୁକ୍ତ; ବ୍ୟଥାଯୁକ୍ତ; ଯାହା ସ୍ପର୍ଶ ହୋଇଥାଏ—2. Painful to touch.
ପ୍ରାଦେ. (ଯାଜପୁର) ବି—ଚିନ୍ତା—Anxiety.
( ଯଥା—ତା କଥା ମୋତେ ଦରଜ ଲାଗୁଛି । )

ଦରଜଗମ୍—ବୈଦେ. ବି. (ଫା)—୧ । ଦଦରା; ଭଙ୍ଗା—
Darajagam 1. Broken; cracked.
ଦରଦ୍‌ଗମ୍, ଦର୍ଜଗମ୍, ଦର୍ଦ୍ଦଗମ୍ } ଅନ୍ୟରୂପ ୨ । ବ୍ୟଥିତ—2. Afflicted; painful
दादरा दरजगम

ଦରଜବନ୍ତ - ବୈଦେ. ବଣ. ( ଫା. ଦର୍ଦ୍‌ମନ୍ଦ )—
Darajabant ୧ । ଦୟାଳୁ; ପରଦୁଃଖକାତର—
दयदमन्द 1. Compassionate; kind-hearted.
दर्दमन्द ୨ । ପୀଡ଼ିତ, ଦୁଃଖୀ—2. Afflicted.

ଦରଜା—ବୈଦେ. ବି. ( ଫା. ଦରୱାଜା )—
Darajā ୧ । ଦ୍ୱାର—1 Door.
ଦରୱାଜା, ଦରୱେଜା, ଦରୁଜା, ଦରୁଆଜା } ଅନ୍ୟରୂପ ୨ । ଫାଟକ—2. Gate; portal.
[ଦ୍ର—ସଦର ଦରଜା=ଗୃହର ପ୍ରଧାନ ଦ୍ୱାର; ବାଣ୍ଡଦ୍ୱାର । ]
୩ । (ଫା. ଦର୍ଜା) ଶ୍ରେଣୀ; କୋଷ୍ଠ; ବର୍ଗ—3. Class.
दवजा, दरोजा, दरवाजा
दर्जा

ଦରଜୀ—ବୈଦେ. ବି. ( ଫା. ଦରଜୀ )—ସୂଚୀଜୀବୀ; ସୌଚିକ—
Darajī Tailor.
(ଦର୍ଜୀ—ଅନ୍ୟରୂପ) ବୈଦେ ବଣ—ଦରଜବନ୍ତ (ଦେଖ)
(ଦରଜିଆଣୀ—ସ୍ତ୍ରୀ) Darajabanta (See)
दर्जी, दवजी दर्जि, जरदोज

ଦରଜୀଗିରି—ବୈଦେ. ବି (ଫା)—୧ । ଦରଜୀର କର୍ମ—
Darajigiri . The work of a tailor.
दवजीगिवि ୨ । ଦରଜୀର ବ୍ୟବସାୟ—
दरजीगिरी 2. The occupation of a tailor; tailoring.

ଦରଣ୍ଡା—ଦେ ବି [ସଂ. ଢୁଂଢନ=ଅନ୍ୱେଷଣ; (ହି. ଶବ୍ଦସାଗର]—
Daraṇḍā ୧ । ଅନ୍ଧାରରେ ଖୋଜିବା; ଅଣ୍ଡାଳିବା—
हाँतड़ान 1 Groping for a thing in the dark.
टंटोरना, ढूंढ़ना ୨ । ଚକ୍ଷୁରେ ଦେଖା ପଡ଼ୁ ନଥିବା ପଦାର୍ଥକୁ ହାତ ଦ୍ୱାରା ଖୋଜିବା—2 Searching after a thing; not visible to one's eyes, by the hands.
୩ । ଖୋଜାଖୋଜି; ଅନ୍ୱେଷଣ—3. Search.
( ଯଥା—ସେତେବେଳେ ଅଯଥା କେତେ ଖର୍ଚ୍ଚ କରି ଦେଲ ତନ୍ତୁ ବର୍ତ୍ତମାନ୍ ଟଙ୍କା ଦରଣ୍ଡା ପଡ଼ୁଛି । )

ଦରଣ୍ଡା(ଣ୍ଡେ)ଇବା—ଦେ. କ୍ରି—ଦରଣ୍ଡିବା କ୍ରିୟାର ଣିଜନ୍ତ ରୂପ—
Daraṇḍā(ṇḍe)ibā Causative form of Daraṇḍibā.

ଦରଣ୍ଡା ଦରଣ୍ଡି—ଦେ. ବି—ବହୁ ସ୍ଥାନ ଅଣ୍ଡାଳିବା; ଖୋଜାଖୋଜି—
Daraṇḍā daraṇḍi Groping or searching at many places.
हाँतड़ान
ढूंढ़नाढाँढ़ना

ଦରଦ—ସଂ. ବି. ( ଦୃ ଧାତୁ=ବିଦୀର୍ଣ୍ଣ ହେବା+କର୍ତ୍ତୃ. ଅଚ୍ )—
Darada ୧ । ପର୍ବତର ଉଚ୍ଚତମ ସ୍ଥାନ; ଶିଖର—
1 The peak of a mountain.
୨ । ପର୍ବତ—2. Mountain.
୩ । ଜଳ ପ୍ରପାତ; ଝରଣା—3. A waterfall.
୪ । ଚ୍ୟୁତ କ୍ଷତ୍ରିୟ ଜାତିବିଶେଷ—
4. A sect of fallen Kshatriyas.
୫ । (+କର୍ମ. ଅଚ୍) ହୃଦୟ—5. Heart.
୬ । ନଦ୍ୟାଦିର ଉପକୂଳ; ତୀର—6. Shore; bank.
୭ । କାଶ୍ମୀର ସନ୍ନିହିତ ମ୍ଳେଚ୍ଛ ଦେଶବିଶେଷ, ( ବର୍ତ୍ତମାନ ନାମ ଦର୍ଦ୍ଦିସ୍ତାନ୍ )—7. Durdistan ( to the north of Kashmere).
[ ଦ୍ର—କାଶ୍ମୀର ଓ ହିନ୍ଦୁକୁଶ ପର୍ବତ ମଧ୍ୟସ୍ଥ ଦେଶର ଏହି ନାମ ବୃହତ୍‌ସଂହିତାରେ ମିଳେ ଓ ଏହି ଦେଶବାସୀ ଦରଦ ନାମକ ମ୍ଳେଚ୍ଛ

ଜାତିର ନାମ ମନୁସ୍ମୃତି ଓ ହରିବଂଶ ଆଦିରେ ଉଲ୍ଲେଖ ଅଛି । ମନୁସ୍ମୃତିରେ ଲେଖା ଅଛି ଯେ ଦରଦମାନେ ପ୍ରଥମେ କ୍ଷତ୍ରିୟ ଥିଲେ, ପରେ ସଂସ୍କାରବିହୀନ ହୋଇ ଶୂଦ୍ରତ୍ୱ ପ୍ରାପ୍ତ ହେଲେ । ]

୮ । ଉପରୋକ୍ତ ଦେଶବାସୀ ମୁସଲମାନ୍ ଜାତିବିଶେଷ— 8. A sect of Mahomedans inhabiting the above country

୯ । (+ଭିଦ୍. ଅଦ) ଭୟ—9. Fear; terror.

୧୦ । ହିଙ୍ଗୁଳ; ସିନ୍ଦୂର—10. Vermillion

ସଂ. ବିଣ. ପୁଂ. ( ଦର+ଦା ଧାତୁ+କର୍ତ୍ତୃ. ଅ )— ଭୀତି ଉତ୍ପାଦକ—Causing fear; terrific.

(ଦରଦା—ସ୍ତ୍ରୀ) ବୈଦେ. ବି. (ଫା. ଦର୍ଦ୍)—

୧ । ଦରଜ ୨, ୩, ୪, ୫ ( ଦେଖ )
2. Daraja 2, 3, 4, 5 ( See )

ଗୋଡ଼ ଘଷି ଯେତେ ହେବାର ଦରଦ ସିଦାର ଉପାୟ କହ ।
କବିସୂର୍ଯ୍ୟ, ଲଶୋଧରରାଭୂ. ଶ ଗୀତ ।

୨ । ମମତା—2. Sympathy ;attachment.

**ଦରଦର**—ଦେ. ବିଣ—ଅଜସ୍ର (ପ୍ରବାହ)—
Daradara Continuous (flow).
दरदर
दर्दर

ଦର ଦର ଧାରେ ସଖୀ ନୟନରୁ ଗାଳ
କହୁଥିଲେ ଅବଶ୍ରାନ୍ତ ହେବେ ଦୂରବାଳ ।
ନନ୍ଦକିଶୋର ସୀତାବନବାସ ।

ଦେ. ବିଣର ବିଣ—ଅସମ୍ପୂର୍ଣ୍ଣଭାବରେ ବା ଅଧାଅଧିଭାବରେ— Partially; incompletely.

( ଯଥା—ଦରଦର ପାଚିଲା ଆମ୍ବ । )

ଦେ. କ୍ରି· ବିଣ—ଅନର୍ଗଳ, ଅବିରଳ (ବହୁଥିବା)— Continuously ( flowing).

ଦରଦର ବାରି ନୟନୁ ଝରିଲ ସରଲ ସବୁ ବାସନା—
ରାଧାନାଥ, ପାର୍ବତୀ ।

**ଦରଦର ଛୋଡ଼**—ଦେ. ବିଣ. (ସଂ. ଦାରିଦ୍ର୍ୟ+ଛୁଟ ଧାତୁ)—ବହୁ
Daradara torda ଧନ ପ୍ରାପ୍ତି ଦ୍ୱାରା ଯାହାର ଦରିଦ୍ରାବସ୍ଥା ଦୂର
ଦରଦର ଛେଡ଼ / ଦରଦ୍ରଛୋଡ଼ } ଅନ୍ୟରୂପ ହୋଇଅଛି; ଦରିଦ୍ରାବସ୍ଥାରୁ ସମ୍ପୂର୍ଣ୍ଣ ରୂପେ ମୁକ୍ତ—Having one's poverty removed by the receipt of a large amount of money; greatly relieved of want.

**ଦରଦର ଛୋଡ଼ କରିବା**—ଦେ କ୍ରି—ବହୁ ଧନ ଦାନ କରି କୌଣସି
Daradara torda karibā ବ୍ୟକ୍ତିର ଦାରିଦ୍ର୍ୟ ଘୁଞ୍ଚାଇବା— To relieve a person's poverty or want by bestowing riches on him in profusion.

**ଦରଦରିତ**—ଦେ. ବିଣ—ଅଜସ୍ର ବା ଧାରାବାହିକ ଭାବରେ ପ୍ରବାହିତ—
Daradarita Flowing unceasingly.

**ଦର ଦଲାଣ**—ବୈଦେ. ବି ( ଫା ଦର୍=ଭିତର+ଦାଲାନ୍=ବାରଣ୍ଡା, 
Dara dalāṇa ମେଲାଘର)—ଘର ଓ ବାରଣ୍ଡା ମଝିରେ ଥିବା ମେଲା
दर दालान घର; ଛାତପାଖ ଆବୃତ ଥିବା ବାରଣ୍ଡା—An open
दरदालान hall between a main room and its outer veranda; ante chamber.

**ଦର ଦସ୍ତୁର(ରି)** (ଇତ୍ୟାଦି)—ଦେ. ବି—ଦରଦାମ ଇତ୍ୟାଦି (ଦେଖ)
Dara dastur (ri) (etc) Daradāma etc (See)

**ଦର ଦାମ**—ଦେ. ବି—କୌଣସି ଦ୍ରବ୍ୟ କିଣିବା ପୂର୍ବରୁ ତହିଁର ମୂଲ୍ୟ
Dara dāma ନିରୂପଣାର୍ଥ କଥାବାର୍ତ୍ତା; ମୂଲଚୂଲ—Appraise-
दरदाम, दरदस्तुरि ment; fixing of the price of a
दर्दस्तुरी commodity before purchase

**ଦରଦାମ କରିବା**—ଦେ. କ୍ରି—ମୂଲ ଚୂଲ କରିବା; ମୂଲ୍ୟାଇବା; ଭାଉଚକା
Daradāma karibā କରିବା; ଭାଉଚକା କରିବା—To
दरदाम करा, दरदस्तुरि करा appraise; to fix the price of;
दर्दस्तुरी करना to negotiate for the purchase of a thing; to settle the rate of a thing.

**ଦରଦୀ**—ବୈଦେ. ବିଣ. ପୁଂ ( ଫା. ଦର୍ଦୀ=ଅନୁକମ୍ପାଯୁକ୍ତ)—୧ । ଟିକିଏ
Daradī କଥାରେ ଯାହାର ମର୍ମକୁ ବାଧେ—1 Sensitive.
ଦରଜିଦାର / ଦରଜିବନ୍ତ } ଅନ୍ୟରୂପ ୨ । ବ୍ୟଥିତ—2 Suffering; afflicted.
(ବେଦରଦୀ—ବିପରୀତ) ୩ । ହୃଦୟବାନ୍; ପରଦୁଃଖରେ ଦୁଃଖିତ;
दरदी ପରଦୁଃଖକାତର—Sympathetic;
दर्दी compassionate.

**ଦରଦୂର**—ଗ୍ରା (ପଦ୍ୟ) ବି (ସଂ. ଦର୍ଦ୍ଦୁର)—ବେଙ୍ଗ—
Daradūra Frog

କଟୁଳ କାମ ଦରଦୂର ନୋହୁଁ କାମେ ଦର ଦୂର ହୁଅେ—
ଉପେନ୍ଦ୍ରଭଞ୍ଜ, ବୈଦେହୀଶବିଳାସ ।

**ଦର ଦୈତ୍ୟ**—ସଂ. ବି—ଶଙ୍ଖାସୁର—
Dara daitya Śaṅkhāsura.

ବେଗେ ଦରଦୈତ୍ୟ ଦରଦାନେ ହେଲ ରତ—ଉପେନ୍ଦ୍ରଭଞ୍ଜ. ବୈଦେହୀଶବିଳାସ ।

**ଦରଧିଆ**—ଗ୍ରା. ଦେ. (ସମ୍ବଲପୁର) ବିଣ—୧ । ଅତୃପ୍ତ—
Daradhiā 1. Dissatisfied.
୨ । ଅସନ୍ତୁଷ୍ଟ—2. Discontent

**ଦରପ**—ଗ୍ରା (ପଦ୍ୟ) ବି (ସଂ. ଦର୍ପ)—ଗର୍ବ—
Darapa Pride.
दरप, दर्प

**ଦରପକା**—ଗ୍ରାଦେ. (ସମ୍ବଲପୁର) ବିଣ—ଦରପଚୁ—
Darapakā Partially ripe; partly ripe.
ଦେ. ବିଣ—(ସଂ. ଅର୍ଦ୍ଧପକ୍ୱ) ଅସମ୍ପୂର୍ଣ୍ଣଭାବେ ସିଦ୍ଧ— Incompletely cooked; parboiled.

( ଯଥା—ଦରପକା ଭାତ । )

**ଦରପଚୁ**—ଦେ. ବିଣ (ସଂ. ଅର୍ଦ୍ଧପକ୍ୱ)—୧ । ଆଂଶିକ ପକ୍ୱ—
Darapachū 1. Partly ripe.
दरपाका ୨ । ଅଜୀର୍ଣ୍ଣ; ସମ୍ପୂର୍ଣ୍ଣରୂପେ ଜୀର୍ଣ୍ଣ ନ ହୋଇଥିବା—
कच्चा 2. Incompletely digested.

( ଯଥା—ମୁଁ ଯାହା ଖାଇଥିଲି ସବୁ ଦରପଚୁ ଅବସ୍ଥାରେ ବାନ୍ତି ହୋଇଗଲା । )

**ଦରପଟ୍ଟା**—ବୈଦେ. ବି (ଫା)—ସିକିମି ଜବତ—
Darapaṭā Underlease; undertenancy.
(ଦରପଟ୍ଟା, ଦରଇଜାରା—ଅନ୍ୟରୂପ)
दरपाट्टा, दर्पट्टा

**ଦରପଟ୍ଟାଦାର୍**—ବୈଦେ. ବ ( ଫା )—୧ । ପଟ୍ଟାଦାରର ଅଧୀନସ୍ଥ ପଟ୍ଟାଦାର—1. Underlessee
Darapaṭādār

ଦରପଟ୍ଟାଦାର୍, ଦରଇଜାରାଦାର୍ } ଅନ୍ୟରୂପ
୨ । ଶିକ୍‌ମି ରୟତ—2 Under-tenant; sikmi tenant.
ଦରପାଟ୍ଟାଦାର
୩ । (କଟକ ସହର) ଲାଖରାଜଦାରଙ୍କ ଅଧୀନ ଘରବାଡ଼ିର ପ୍ରଜା—3. A homestead tenant under a Lakherajdar in Cuttack town
ଦ୍ରପଟେଦ୍ଦାର
[ଦ୍ର—ଦରପଟ୍ଟାଦାରର ଅଧୀନସ୍ଥ ପଟ୍ଟାଦାରଙ୍କୁ ସେପଟ୍ଟାଦାର ବୋଲାଯାଏ । ]

**ଦର ପଟିବା**—ଦେ. କ୍ରି—୧ । କୌଣସି ଦ୍ରବ୍ୟର ଭାଉ କ୍ରେତା ଓ ବିକ୍ରେତାଙ୍କଦ୍ୱାରା ସ୍ୱୀକୃତ ବା ମନୋମତ ହେବା ।—
Dara paṭibā
ଦର ପଟା 1. Agreement as to the price or rate of an
ଭାବ ପଟନା article between the vendor and the purchaser
୨ । କୌଣସି ଦ୍ରବ୍ୟର ଭାଉ କ୍ରେତାଙ୍କ ମନୋମତ ହେବା—
2. Approval of the price of an article by the purchaser.

**ଦରପଢ଼ା**—ଦେ ବ—୧ । ଅଧାପଢ଼ା; ବିଦ୍ୟା ଶିକ୍ଷାର ଅସମାପ୍ତି—
Daraparḍhā 1. Incomplete education.
୨ । ବାଦ୍ୟବିଶେଷ—
2. A kind of musical instrument.
କଂସାଳ, ଚଲଗାର ବାଜଇ ଦରପଢ଼ା—ପୀତାମ୍ବର. ନୃସିଂହ ଚରିତ ।
ଦେ. ବଣ—୧ । ଥୋଡ଼ାଏ ପଢ଼ା ହୋଇଥିବା—
ଆଧପଡ଼ା 1. Half-read; not read completely.
(ଦରପାଠୁଆ—ଅନ୍ୟରୂପ) ୨ । ଅଧାପାଠୁଆ; ଯାହାର ଶିକ୍ଷା ଶେଷ ନ ହୋଇଛି ସେ ପାଠପଢ଼ା ଛାଡ଼ିଥାଏ—
ଅଧବୁଧ, ଅଧକଚରା 2. Half-educated; imperfectly educated.

**ଦରପଣ**—ଦେ. ବି—୧ । ( ସ ଦର୍ପଣ )—ଆରସୀ; ଅଇନା; ମୁକୁର;
Darapaṇa ଦର୍ପଣ—1. Mirror; looking glass
ଦବପନ ବଢ଼ିଅ । ବ ବର ଦରପଣରେ ଇସା—କବଦୂର୍ଗ, ସଙ୍ଗୀତ ।
ଦ୍ରପନ ୨ । ( ସ. ଦର=ଭୟ )—ଭୟର୍ପଣ; ଭୟଗ୍ରସ୍ତ ଅବସ୍ଥା—
2. The state of a person being terrified.
ସେ ଦରପଣ ତାହ ତରପଣ—ଉପେନ୍ଦ୍ର ଭଞ୍ଜ କୋଟିବ୍ରହ୍ମାଣ୍ଡସୁନ୍ଦରୀ ।
୩ । ଦରପଣି (ଦେଖ)—3. Darapaṇi (See)

**ଦରପଣି**—ଦେ. ବି—କଟକ ଜିଲ୍ଲାର ଗୋଟିଏ ବଡ଼ଲାଜାତ ଜମିଦାରୀ—
Darapaṇi A big estate in the district of Cuttack
(ଦର୍ପଣି—ଅନ୍ୟରୂପ)
[ଦ୍ର—ଏହା କଟକ ଜିଲ୍ଲାର ଗୋଟିଏ ବଡ଼ଲାଜାତ ଜମିଦାରୀ; ଏହା ପୂର୍ବେ ମୁସଲମାନ ଜମିଦାରଙ୍କର ଥିଲା । ଅନ୍ୟୂନ ଶତବର୍ଷ ପୂର୍ବେ ଜଣେ କାଶ୍ମୀରୀ ବ୍ରାହ୍ମଣ ରାଜସ୍ୱ ନିଲାମରେ ଏହାକୁ କିଣି ତାଙ୍କର ବଂଶଧରମାନେ ଏହାକୁ ଭୋଗ କରୁଅଛନ୍ତି । ଏହି ଜିଲ୍ଲାରେ 'ମହାବିନାୟକ' ଠାକୁର ଅଛନ୍ତି । ଏହା ଚିରସ୍ଥାୟୀ ବନ୍ଦୋବସ୍ତି ମାହାଲ ଅଟେ । ]

**ଦରପଣି ଅକ୍ଷର**—ଦେ. ବି. ( ଦର୍ପଣ ସାହାଯ୍ୟରେ ଏହା ପଢ଼ାଯାଇ ପାରୁଥିବାରୁ)—ଲେଖା ଆଗରେ ଗୋଟିଏ ଦର୍ପଣ ଧଇଲେ ସେ ଦର୍ପଣରେ ଅକ୍ଷରମାନ ପ୍ରତିଫଳିତ ହୋଇ ପଢ଼ାଯାଇ ପାରିବାଭଳି ଲେଖା ହୋଇଥିବା ଓଲଟା ଅକ୍ଷର—Letters written in an inverted manner so as to be deciphered with the help of a mirror held over the writing.
Darapaṇi akshara
উলটাঅক্ষর
আঁধা হরফ
[ଦରପଣିଆ ଅକ୍ଷର—ଅନ୍ୟରୂପ]

**ଦରପତ୍ତନି**—ଦେ. ବି (ଫା ଦର୍+ସ. ପତ୍ତନି)—ପତ୍ତନିଦାରର ଅଧୀନ ମଧ୍ୟସ୍ୱତ୍ୱ—An undertenure; a tenure under another superior tenure.
Darapattani
(ଦରପତ୍ନି—ଅନ୍ୟରୂପ)
দরপত্তনী

**ଦରପତ୍ତନିଦାର୍**—ଦେ ବ—ପତ୍ତନିଦାରର ଅଧୀନ ବା କମ୍ପନିର ମଧ୍ୟସ୍ୱତ୍ୱାଧିକାରୀ—An undertenure-holder under a tenure-holder.
Darapattanidār
(ଦରପତ୍ନିଦାର୍—ଅନ୍ୟରୂପ)
দরপত্তনীদার

**ଦରପନ୍ତରା**—ଦେ. ବିଣ (ସ. ଅର୍ଦ୍ଧ+ପ୍ରାନ୍ତ)—୧ । ଦରକାଣ୍ଡିଆ (ଦେଖ)
Darapantarā 1. Darakāṇḍiā (See)
ଆଧାମাধা ୨ । ଦରଖଣ୍ଡିଆ ( ଦେଖ )—
অধকচরা 2 Darakhaṇḍiā ( See )
ଦରପନ୍ତରିଆ, ଦରପନ୍ତାରିଆ, ଦରପନ୍ତୁରିଆ } ଅନ୍ୟରୂପ
୩ । ଯେଉଁ ବ୍ୟକ୍ତି ନିର୍ଦ୍ଦିଷ୍ଟ ପଥ ବା ଦୂରତ୍ୱ ଅତିକ୍ରମ କରି ନ ଥାଏ—(a person) Who has not yet travelled the whole of the intended distance,
ଦେ· ବି—ଯେତେ ଦୂରତ୍ୱକୁ ଅତିକ୍ରମଣ କରିବାର କଥା ଥାଏ ତାହା ସମ୍ପୂର୍ଣ୍ଣରୂପେ ଅତିକ୍ରମଣ କରି ନ ଥିବା ଅବସ୍ଥା;
ଅଧବାଟ—Half way.

**ଦରପାକ(ଚି)ଲା**—ଦେ. ବଣ.—(ସ. ଅର୍ଦ୍ଧପକ୍ୱ)—ଅର୍ଦ୍ଧପକ୍ୱ; ଅପକ୍ୱ;
Darapāka(chi)lā ଅପରିପକ୍ୱ—Half ripe; unripe.
ବପাকা অধ কচরা [ଦରପାକେ(ଚେ)ଲ—ଅନ୍ୟରୂପ]

**ଦରପାଁପଡ଼ା**—ପ୍ରା. ଦେ. (ଯାଜପୁର) ବ.—ଘରପୋଡ଼ିଆ(ଗୁଳ୍ମ)—
Darapā̃parḍā A kind of medicinal plant.

**ଦରପେଲା**—ଦେ. ବଣ.—ଅଡ଼ପେଲା; ଦରଆଉଜା (ଦେଖ)
Darapelā Dara-āujā (See)

**ଦରପେସ୍**—ବୈଦେ. ବିଣ. (ଫା ଦର୍‌ପେଶ୍=ଆଗେ; ସମ୍ମୁଖରେ)—
Darapes ୧ । ଦାଏର; ଅଦାଲତଙ୍କ ସମ୍ମୁଖରେ ବିଚାରାର୍ଥ ଉପସ୍ଥାପିତ—
দরপেশ 1. Put up before a court or high official;
दर्पेश adduced or produced for consideration.
(ଦର୍ପେସ୍—ଅନ୍ୟରୂପ) ମାଜିଷ୍ଟ୍ରେଟ୍ ସାହେବଙ୍କଠାରେ ସେଇ ରିପୋର୍ଟ ଦରପେସ କରିଥିଲେ । ଫକୀରମୋହନ ଆତ୍ମଜୀବନୀ ।
୨ । ହାକମଙ୍କ ବିଚାରାଧୀନ—
2. Under consideration of an authority.

**ଦରପୋଡ଼ା**—ଦେ. ବଣ—୧ । ଅଧେ ପୋଡ଼ି ଯାଇଥିବା—
Daraporḍā 1. Half-burnt.

(ଦରପଡ଼ା – ଅନ୍ୟରୂପ)
ଦବପୋଡ଼ା ମତେ ସେତେ ମାଠିରୁ ମାଠ,
ଅଘଜଲା(ରା) ମୁ ସେହ୍ନ ଦରପୋଡା କାଠ । ଡଗ ।

ପ୍ରାଦେ. (ଯାଜପୁର) ଝଟ୍ଟା; ଅମ୍ଳ ସ୍ୱାଦବିଶିଷ୍ଟ—Having an acid taste; sour.

**ଦରବ୍**—ପ୍ରାଦେ ( ସମ୍ବଲପୁର )—ବ. (ସ ଦ୍ରବ୍ୟ)—ଦରବ; ଦ୍ରବ୍ୟ, ପଦାର୍ଥ—An article; a thing.
Darab

**ଦରବ୍ ସରବ୍**—ପ୍ରାଦେ. (ସମ୍ବଲପୁର) ବ. (ସ ଦ୍ରବ୍ୟ+ସର୍ବ )—ଗୃହର ଉପକରଣମାନ, ଅବାବସ୍ତୁ—House-hold furniture and things; house-hold articles; the fittings of a house.
Darab sarab

**ଦରବ**—ଗ୍ରା ବି. (ସ. ଦ୍ରବ୍ୟ)—୧ । ଦ୍ରବ୍ୟ; ପଦାର୍ଥ—1. Article; thing.
Daraba
ଦବବ ଅଭ ବାଙ୍କ ଦରବମାନଙ୍କୁ ବୁହାଇ ।
ଦ୍ରବ କୃଷ୍ଣସିଂହ. ମହାଭାରତ ବନ ।

୨ । ଦୌଲତ; ସମ୍ପତ୍ତି, ଧନ—2. Riches.

[ଦ୍ର—ଏହା ଧନର ସହଚରରୂପେ ବ୍ୟବହୃତ ଯଥା—ଧନ ଦରବ=ଧନ ଦୌଲତ ।]

**ଦରବର**—ସ. ବ ( ଦର=ଶଙ୍ଖ+ବର=ଶ୍ରେଷ୍ଠ ) —ବିଷ୍ଣୁଙ୍କ ଶଙ୍ଖ; ପାଞ୍ଚଜନ୍ୟ—Bishṇu's conch called Pāñchajanya.
Darabara

**ଦରବସ୍ତ**—ବୈଦେ. ଅ. (ଫା. ଦର୍‌ବସ୍ତ)—୧ । ସମଗ୍ର—1. Whole.
Darabasta
ଦବବସ୍ତ ୨ । ସମ୍ପୂର୍ଣ୍ଣରୂପେ—2 Wholly; totally; fully.
ଦ୍ରବାବସ୍ତ

**ଦରବସ୍ତ ହକୁକ୍**—ବୈଦେ. ବି – (କଚେରୀ) (ଫା. ଦରବସ୍ତ+ହକ୍କାକ୍ =ସ୍ୱତ୍ୱ) ସମଗ୍ର ସ୍ୱତ୍ୱାଧିକାର—All right and title in a thing or property
Darabasta hakuk
ଦବବସ୍ତ ହକୁକ
ଦ୍ରୋବସ୍ତ ହକାକ

**ଦରବା**—ଦେ. ବି.—ଚିରାଲୁଗା ଦୁଇଖଣ୍ଡକୁ ସିଲେଇ କରି ପିନ୍ଧା ଲୁଗା ରୂପେ ଯେଉଁ ବସ୍ତ୍ରାଂଶ ବ୍ୟବହୃତ ହୁଏ—The torn end-pieces of cloth sewn together and used as a cloth for wearing.
Darabā
ଦରବା କନା, ଦରଭା } ଅନ୍ୟରୂପ

ଦରବା ଖଣ୍ଡେ କେ ସାଉ ଘାନ ଧେଇଁ,
ଘରେ ସିନା ପିନ୍ଧି ହେବ । ଭଗାର ସାଆନ୍ତ୍ରଅ, ବାହା ।

[ଦ୍ର—ହିନ୍ଦୀ ଭାଷାରେ ମୋଟା ଧଡ଼ଦାର ଗୁଦଡ଼କୁ ଦରବ ବୋଲାଯାଏ । ପାରାଗୁଡ଼ ଓ ପକ୍ଷୀ ବସା କରିଥିବା ଗଛର କୋରଡ଼କୁ ହିନ୍ଦୀରେ ଦରବା ବୋଲୁଯାଏ — ହି. ଶବ୍ଦସାଗର ।]

**ଦରବା(ବେ)ଇବା**—ଗ୍ରା. (ପଦ୍ୟ) କ୍ରି.—(ସ ଦ୍ରବ)—ଦ୍ରବାଇବା; ଦ୍ରବ କରିବା, ତରଳ କରିବା—To melt.
Darabā(be)ibā
ଦବବାନ ଚନ୍ଦ୍ରମା ରସେ ତାକୁ ଦରବାଉଛି ।
ଦ୍ରୁତାନା ଉପେନ୍ଦ୍ରଭଞ୍ଜ, ପ୍ରେମସୁଧାନିଧି ।

**ଦରବା(ୱା)ନ**—ବୈଦେ.ବ. (ଫା ଦର୍‌ୱାନ୍, ଭୂଲ. ସ. ଦ୍ୱାରବାନ୍)—ଦ୍ୱାରରକ୍ଷକ; ଦୁଆରୀ; ଦ୍ୱାରପାଳ—, Door-keeper; gate-keeper; a durwan; a porter
Darabā(wā)n
ଦରଭୂଆନ, ଦରୁଆନ, ଦରୱୋଆନ } ଅନ୍ୟରୂପ
ଦବୋୟାନ, ଦବଓୟାନ [ଦ୍ର—ଏହା ଫାର୍ସୀ ଶବ୍ଦ ଇଂରାଜ ଭାଷାରେ ଦ୍ରବାନ, ଡୋରାଢ଼ୀଦାର ବ୍ୟବହୃତ ହେଉଅଛି ।]

**ଦରବାନୀ**—ବୈଦେ. ବ. (ଫା )—ଦ୍ୱାରପାଳର କର୍ମ—The act or post of a door-keeper.
Darabānī
ଦବୋୟାମୀ ଦ୍ରବାନୀ

**ଦରବାର**—ବୈଦେ. ବି. (ଫା. ଦର୍‌ବାର୍; ଭୂଲ—ସ ଦ୍ୱାରଂଷ=ମନ୍ତ୍ରଣା-ଗୃହ) —୧ । ସଭା—1. Meeting.
Darabāra
ଦବବାବ ୨ । ରାଜସଭା; ଯେଉଁଠାରେ ରାଜା ତାଙ୍କ ପାତ୍ର ମନ୍ତ୍ରୀ
ଦ୍ରବାର ଆଦିଙ୍କ ସଙ୍ଗେ ବସି କଚେରି କରନ୍ତି—
(ଦର୍‌ବାର—ଅନ୍ୟରୂପ) 2. A king's court; royal assembly; royal audience.

୩ । ଅଦାଲତ, ବିଗୁରାଳୟ, କଚେରୀ—
3 Cutchery; court of justice; public office.

ଦରବାରେ ହେଲୁନ ଦୋଷଶୀରେ ।
କର୍ଣ୍ଣପୂର୍ଣ୍ଣ ରତ୍ନାକର ଚମ୍ପୂ ।

୪ । ରାଜା ବା ରାଜକର୍ମଚାରୀଙ୍କ ଆହୂତ ସଭା—
4. A levee; durbar; a ceremonial function held under the order of a king or his representative.

[ଦ୍ର—ଏଥିରେ ରାଜ୍ୟର ପ୍ରଧାନ ବ୍ୟକ୍ତିଗଣ ଓ କରଦ ଓ ମିତ୍ର ରାଜାମାନେ ଉପସ୍ଥିତ ହୁଅନ୍ତି । ରାଜା ଦରବାରରେ ବିଶିଷ୍ଟ ଆଦେଶ ଘୋଷଣା କରନ୍ତି ଏବଂ ରାଜ-ସମ୍ମାନପ୍ରାପ୍ତ ବ୍ୟକ୍ତିଙ୍କୁ ଉପାଧି ଓ ଖିଲତ୍ ଦିଅନ୍ତି ।]

୫ । ଦେଶୀୟ ରାଜାଙ୍କ କଚେରୀ—
5. The office or court of an Indian Chief.

୬ । ରୁଲିଙ୍ଗ୍ ଚିଫ୍ ସ୍ୱୟଂ; ସ୍ୱୟଂ ରାଜା—
6. A Ruling Chief himself.

[ଦ୍ର—ରାଜପୁତାନା ଓ ଉତ୍ତର ଭାରତର ରାଜାମାନେ ନିଜକୁ 'ରାଜା' ବୋଲି ନ କହି 'ଦରବାର' ବୋଲି କହୁଥିବାର ସେମାନଙ୍କୁ ଦେଖି ଉତ୍କଳର ରୁଲିଙ୍ଗ୍ ଚିଫ୍ ଅନୁକରଣ କରୁଅଛନ୍ତି । ଯଥା—'ରାଜା ଦିଲ୍ଲୀକୁ ଯାଇଅଛନ୍ତି' ବୋଲି ନ କହି 'ଦରବାର ଦିଲ୍ଲୀକୁ ଯାଇଅଛନ୍ତି' ବୋଲି ଯାଉଅଛି ।]

୭ । ପଞ୍ଜାବର ଅମୃତସହରରେ ଥିବା ଶିଖମାନଙ୍କ ମନ୍ଦିର, ଯହିଁରେ ଶିଖମାନଙ୍କ ଧର୍ମଗ୍ରନ୍ଥ 'ଗ୍ରନ୍ଥ ସାହେବ' ରଖା ଯାଇଅଛି—7 The Sikh temple in Amritsar in the Punjab.

**ଦରବାରିଆ**—ବୈଦେ ବ ( ଫା. ଦରବାରୀ )—୧ । ଯେଉଁ ବ୍ୟକ୍ତି ରାଜଦରବାରକୁ ନିମନ୍ତ୍ରିତ ହୁଏ ଓ ସେଠାରେ ନିର୍ଦ୍ଦିଷ୍ଟ ଆସନ ପାଏ—1. A person invited to a durbar; one entitled to a
Darabāriā
ଦରବାରିଆ, ଦରବେରେ
ଦ୍ରବାରୀ

ଦରବାରି
ଦରବାରିଆ } ଅନ୍ୟରୂପ seat in a durbar.
ଦରବାରିଆ
୨ । କଚେରିଆ, ଯେ କଚେରୀକୁ ବହୁବାର ଯିବା ଆସିବା କରେ—
2. One who frequents courts.
୩ । ମାମଲତକାର—3. A person versed in the ways of courts or litigation.
୪ । ମାମଲାବାଜ୍ ବ୍ୟକ୍ତି—4. Litigious person
୫ । ଯେଉଁ ବ୍ୟକ୍ତି ନିଜ ଗୃହର ମାଲମକଦମା ବୁଝାସୁଝା କରେ—5. The man of business in a family.
୬ । ରାଜସଭାରେ ସଭାସଦ୍—
6. A member of a king's court, courtier
ବୈଦେ. ବିଣ—୧ । ଦରବାର ସମ୍ବନ୍ଧୀୟ—1. Relating to the durbar.
(ଯଥା— ଦରବାରିଆ ଭାଷା)
୨ । ଦରବାରରେ ବ୍ୟବହାର ଯୋଗ୍ୟ—2. Fit for being used in a durbar.
(ଯଥା—ଦରବାରିଆ ପୋଷାକ)
୩ । କଚେରୀମାନଙ୍କୁ ସବୁଦା ଯାତାୟାତ କରୁଥିବା—3. Frequenting the courts
୪ । ମକଦ୍ଦମାବାଜ୍—4 Litigious.

**ଦରବାରିଆ ପୋଷାକ**—ବୈଦେ. ବି (ଫା)—୧ । ଯେଉଁ ମୂଲ୍ୟବାନ୍ ଓ Darabāriā poshāka ଚମତ୍କାର ପୋଷାକକୁ ଦରବାରୀମାନେ दरबारी पोषाक ପିନ୍ଧି ଦରବାରକୁ ଯାଆନ୍ତି—1. Durbar-**दरबारी पोषाक** Dress
୨ । ଲୋକେ କଚେରୀକୁ ପିନ୍ଧି କରି ଯିବା ବସ୍ତ୍ର—2. Court-dress.

**ଦରବାରିଆ ଭାଷା**—ଦେ. ବି—କୋର୍ଟ୍ ବା କଚେରୀରେ ଚଳିବା ଭାଷା—Darabāriā bhāshā Court-language.
दरबारी भाषा; **दरबारी जबान**

**ଦରବିକଶି(ସି)ତ**—ସଂ. ବିଣ (ଦର=ଈଷତ୍+ବିକସିତ)—ଈଷତ୍ Darabikaśi(si)ta ପ୍ରସ୍ଫୁଟିତ—Half-blown (flower).
(ଦରମୁକୁଳିତ, ଦରବିଗଳିତ—ଅନ୍ୟରୂପ)

**ଦରବିବା**—ଗ୍ରା. (ପଦ୍ୟ) କ୍ରି—ଦ୍ରବିବା; ତରଳିବା—To melt.
Darabibā ଦରବା ଦରବ ଭୁଲୁ ଲାଗି ପ୍ରାଣେ ଲସ ।
दरबना **पिघलना** ଲଟେନ୍ତ୍ରଣ ପ୍ରେମସୁଧାନିଧି ।

**ଦରବୁଳ୍‌କିଆ**—ଗ୍ରାଦେ. (ସମ୍ବଲପୁର) ଅବ୍ୟୟ—ଅଳ୍ପଅଳ୍ପ; ଅଧାଅଧି; Darabuchkiā ସାମାନ୍ୟଭାବେ—Slightly; partly partially

**ଦରବୁଢ଼ା**—ଦେ. ବିଣ. ପୁଂ (ସଂ ଦର=ଅର୍ଦ୍ଧ+ବୃଦ୍ଧ)—ଅର୍ଦ୍ଧବୃଦ୍ଧ; Darabudhā ଅଧାବୁଢ଼ା; ପ୍ରବୀଣ; ଯେ ଅଳ୍ପବୃଦ୍ଧ ହୋଇଛି; ପ୍ରୌଢ଼; आधबूढ़ा ଯାହାର ଯୌବନ ଚାଲିଛି, ଅଥଚ ବାର୍ଦ୍ଧକ୍ୟ ପହଞ୍ଚ ନାହିଁ—दरबूढ़ा Somewhat old (male); somewhat **अधेड़** (ଦରବୁଢ଼ୀ—ସ୍ତ୍ରୀ) advanced in age.

**ଦରବେଶ**—ବୈଦେ. ବି (ଫା ଦର୍‌ବେଶ୍; ଇଂ ଡରଭିସ୍; ଫା. Darabeś ଦରବେଜା=ଭିକ୍ଷାବୃତ୍ତି; ଫା.ଦର୍=ଦ୍ୱାର+ଆବେଜ= दरवेश; **दरवेश** ଝୁଲାଇବା; ଯାହାପାଇଁ ଗୃହସ୍ଥ ନିଜଦ୍ୱାରରେ କିଛି ଭିକ୍ଷାଦ୍ରବ୍ୟ ଝୁଲାଇ ରଖିଥାଏ)—୧ । ମୁସଲମାନ ଭିକ୍ଷୁକ—
1. A Mahommedan beggar.
୨ । ଫକୀର, ମୁସଲମାନ ସାଧୁ—2. A Muslim mendicant; a dervish.

**ଦରଭ**—ଗ୍ରା (ପଦ୍ୟ) ବି—ଦର୍ଭ (ଦେଖ)—Darbha (See).
Darabha ଉରମ ରଜତ ଛପଡାରେ ଦୃଢ଼ ପ୍ରକାରେ ହାସ ଦରଭ ।
ଗୋପଲେକ, ଉଦ୍ଧରେଖା ।

**ଦରଭଙ୍ଗା**—ଦେ.ବିଣ—୧ । ଅଧାଭଙ୍ଗା—Half-broken.
Darabhaṅgā ଦେ. ବି. (ନାମ) ଦ୍ୱାରଭଙ୍ଗା (ଦେଖ)—आधाभाँगा Dwārabhaṅgā. (See).

**ଦରମର(ଲ)**—ଦେ. ବିଣ—ଅର୍ଦ୍ଧମୃତ; ଅଧାମରା, ମୃତପ୍ରାୟ—Half-Daramarā(lā) dead; almost dead.
दरमरा, आधमरा ମରମରେ ପଣି ଦରମରା କରେ ସରସ ସ୍ତନ କେ ତୁ ।
**अधमरा, अधमुआ** କବିସୂର୍ଯ୍ୟ, ସଂଗୀତ ।

**ଦରମା**—ବୈଦେ. ବି (ଫା. ଦରମାହା)—ବେତନ; ଭୃତ୍ୟର ମାସିକ Daramā ନିର୍ଦ୍ଦିଷ୍ଟ ପାରିଶ୍ରମିକ—Salary; fixed monthly दरमाहा; दरमाहि remuneration or pay.
**दरमाहा** ସେ ଦରମାରେ ତ ଗଣା ହେବ କାହିଁ
ଦରମାଇ
ଦରମାହା } ଅନ୍ୟରୂପ ଛଡ଼ ପଦ ତୋର କଷ୍ଟା ଦରମାହି ।
ଦରମାହି ସ୍ୱଧାକାଥ, ଦରବାର ।

**ଦରମା ଖିଆ**—ଦେ. ବିଣ—ବେତନ ଭୋଗୀ; ଯେ ବେତନ ପାଇ ଚାକିରି Daramā khiā କରୁଥାଏ—Salaried; paid (servant).
दरमाभोगी **तनखाहदार**

**ଦରମାଦିଆ**—ଦେ. ବିଣ—୧ । ଯେଉଁ ମାଲିକ ଭୃତ୍ୟଙ୍କୁ ଦରମା ଦେଇ Daramādiā ଚାକର ରଖନ୍ତି—1. Maintaining servants with salaries.
୨ । ଯେଉଁ ମାଲିକ ଭୃତ୍ୟଙ୍କୁ ଦରମା ଦେବା ବିଷୟରେ ନିୟମିତ—2. Regular in paying salaries to the servants

**ଦରମାନ୍**—ବୈଦେ. ବି (ଫା.ଦର୍ ମିଆନ୍=ଅନ୍ତରେ, ହୃଦୟରେ;ମଧ୍ୟ)—Daramān ୧ । ଦେବତା ଅବା ଙ୍କ ନାମ ଧରି ଶପଥ କରିବା—हलफ 1. Taking oath; swearing in the name of **दरमियान्** God or sacred things.
(ଦରମାନ୍,ଦରମିଆନ୍—ଅନ୍ୟରୂପ)
୨ । ହଲପ—2. Oath.

**ଦରମାନ୍ କରିବା**—ଦେ. କ୍ରି—ହଲପ କରିବା—To swear, to Daramān karibā take oath.
हलफकरना **दरमियान् करना**

**ଦରମାନ୍ ଦେବା**—ଦେ. କ୍ରି—ଅନ୍ୟ ବ୍ୟକ୍ତିକୁ ହଲପ ଦେବା—Daramān debā To administer oath to another.
हलफदेना; **दरमियान् देना**

ଦରମେଲା—ଦେ. ବିଣ— ସମ୍ପୂର୍ଣ୍ଣରୂପେ ଉନ୍ମୁକ୍ତ କରାଯାଇ ନ ଥିବା—
Daramelā (ଦ୍ୱାର)—Partially opened
আধখুলা; अधखुला (door)

ଦରଳା—ଦେ. ବି (ସ. ଦଳ ଧାତୁ)— ୧ । ଚକଟିବା—1. Kneading.
Daraḷā ୨ । ଘଷା ଚକଟା—2. Trampling or pressing.
দলা, दरना
୩ । ପୁଙ୍ଖାନୁପୁଙ୍ଖ ତଦନ୍ତ—3 Thorough enquiry.

ଦରଳା(ଳେ)ଇବା—ଦେ କ୍ରି—ଦଳାଇବା (ଦେଖ)
Daraḷā(ḷe)ibā Daḷāibā (See).

ଦରଳିବା—ଦେ. କ୍ରି. ସ. (ଦଳ୍ ଧାତୁ)— ୧ । ଚକଟିବା—
Daraḷibā 1. To knead.
দলা ୨ । ଦଳନ କରିବା; ଦଳିବା—
दरना; दरेरना 2. To trample; to press together into a mass.
(ଦରଳା ଦରଳ କରିବା—ଅନ୍ୟରୂପ)
୩ । ମର୍ଦ୍ଦନ କରିବା, ପେଷିବା—
3. To crush; to bruise.
୪ । ଧ୍ୱଂସ କରିବା—4. To ruin.

ଦରଳି ହେବା—ଦେ କ୍ରି.(ଦରଳିବାର କର୍ମବାଚ୍ୟରୂପ)— ୧ । ଘାଣ୍ଟି ଚକଟି
Daraḷi hebā ହେବା—1 To be trampled or pressed
୨ । ଅତ୍ୟନ୍ତ କ୍ଲିଷ୍ଟ ହେବା—
2. To be afflicted or pestered.
୩ । ଭୂମିରେ ଗଡ଼ାଗଡ଼ି ଦେବା ବା ଲୁଟିବା—
3. To roll on the ground; to wallow.

ଦରୱାଜା—ବୈଦେ. ବି.— ଦରଜା (ଦେଖ)
Darawājā Darajā (See)

ଦରଶ୍—ବୈଦେ. ବି. (ଇଂ. ଡ୍ରେସ୍)— ପୋଷାକ; କର୍ମଚାରୀ ଓ ଭୃତ୍ୟମାନଙ୍କର ନିର୍ଦ୍ଧାରିତ ପରିଧେୟ ବସ୍ତ୍ର—
Daraś
ড্রেস্ Uniform.
ड्रेस (ଦରେଶ୍—ଅନ୍ୟରୂପ)

ଦରଶ—ଗ୍ରା. (ପଦ୍ୟ) ବି.— ୧ । (ସ. ଦର୍ଶ) ଅମାବାସ୍ୟା—
Daraśa The new-moon day of a lunar month.
দরস অମାବାସ୍ୟା ହୋଇଲେ ଦରଶ ପୌର୍ଣ୍ଣମୀ
दरश ପଙ୍କ ବାରମାସ ଅଛଇ ଯାର କେମା । କୃଷ୍ଣସିଂହ. ମହାଭାରତ. ବନ ।
୨ । (ସ. ଦର୍ଶନ)—ଦରଶନ—2. Seeing
ଦରଶ ପରଶ ନରେଖା; ନ ଥିବ କଛ ମନେ ବାଞ୍ଛା ।
ଉପେନ୍ଦ୍ର—ପ୍ରେମପଞ୍ଚାମୃତ ।
[ଦ୍ର—ଦରଶ ପରଶର ସହଚର ଶବ୍ଦରୂପେ ବ୍ୟବହୃତ ।]

ଦରଶନ -ଗ୍ରା. (ପଦ୍ୟ) ( ସ. ଦର୍ଶନ )—
Daraśana ୧ । ଦର୍ଶନ; ଦେଖିବା - 1. Seeing.
দরশন ମହାବଳମନ୍ତ୍ର ଅସୁର ଦରଶନ । କୃଷ୍ଣସିଂହ. ମହାଭାରତ, ବନ ।
दरशन ୨ । ଦେବତାଙ୍କ ଦର୍ଶନ କରିବା—
2, Visiting and bowing to a Deity; paying respects to an idol
୩ । ପୁଂ—ଲୋକଙ୍କୁ ଡାକିବା ନାମ—
3. A name given to males.

ଦରଶନକ ମୋହ(ହେ)ଣୀ—ଦେ. ବି. ସ୍ତ୍ରୀ. (ସ. ଦର୍ଶକ + ମୋହନୀ)—
Daraśanaka mohi(he)ṇī ଯାହାକୁ ଦେଖିବା ଲୋକ ମୁଗ୍ଧ ହୁଏ—
Charming (woman).
ଦରଶନକ ମୋହନୀ—ଦରଶନ କଥା ତୋହର କାମରୁ ନୋହିଲେ ଥାଏ କ ମାନ ।
କବିସୂର୍ଯ୍ୟ. ଛାନ୍ଦ ଗୀତ ।

ଦରଶନ ଦେବା—ଦେ. କ୍ରି—ଦେଖା ଦେବା—
Daraśana debā To grant interview; to appear before.
দর্শন দেওয়া ମୋ ନୟନ ବେନି କ ଦେଲେ ଦରଶନ ।
दरशन देना କୃଷ୍ଣସିଂହ. ମହାଭାରତ. ବନ ।

ଦରଶନ ପାଇବା—ଦେ କ୍ରି—ଦେଖିବା—
Daraśana pāibā To see; to have a sight of.
দর্শন পাওয়া दर्शन पाना

ଦରଶନ ମିଳିବା—ଦେ ବି—କୌଣସି ବ୍ୟକ୍ତି ବା ଦେବପ୍ରତିମାଙ୍କର
Daraśana miḷibā ଦେଖା ମିଳିବା—Having an
দরশন মিলা interview with or a sight of
दरशन मिलना (a porson or idol).

ଦରଶନ ପରଶନ—ଗ୍ରା ବି—ଦରଶପରଶ (ଦେଖ)
Daraśana parasana Daraśaparaśa (See).

ଦରଶନି (ଇତ୍ୟାଦି)—ଗ୍ରା ବି—ଦର୍ଶନି ଇତ୍ୟାଦି ( ଦେଖ )
Daraśani (etc) Darśani etc. ( See )
ଗ୍ରା. ବିଣ—ମେଳା, ଉତ୍ସବ, ଦେବତା ଓ ଯାତ୍ରା ଆଦିକୁ ଯିବାବେଳେ ପିନ୍ଧିବା ଲାଗି ଗରିବ ଘରର ଲୋକେ ସାଇତି ରଖିଥିବା ଅପେକ୍ଷାକୃତ ଉଚ୍ଚ ମୂଲ୍ୟର ବା ରଙ୍ଗୀନ୍ ବା ପରିଚ୍ଛନ୍ନ (ଶାଢ଼ୀ ବା ଲୁଗା)-( a cloth ) Which is put on on occasions of visiting shrines and fairs.
( ଯଥା—ଦରଶନି ଶାଢ଼ୀ; ଦରଶନି ଲୁଗା । )

ଦରଶନିଆ(ଆଁ)—ଗ୍ରା. ବିଣ—ଦରଶନି ( ଦେଖ )
Daraśaniā(ā̃) Daraśani ( See )
ଦେ. ବି. (ଅନାଦରସୂଚକ)—ଦର୍ଶନନାମକ ବ୍ୟକ୍ତିର ଡାକ—
ନାମ—A name for calling Darasana.

ଦରଶ ପରଶ—ଗ୍ରା. ବି (ସହଚର) ୧ । (ସ. ଦର୍ଶନ + ସ୍ପର୍ଶନ)—ଦେଖା
Daraśa paraśa ଓ ଛୁଆଁ—1. Seeing and touching.
দরশনপরসন ୨ । (ଧ୍ୱନ୍ୟନୁକାରୀ ସହଚର) ଦେଖାସାକ୍ଷାତ—
दरशनपरसन 2. Interview.

ଦରଶା(ଶେ)ଇବା—ଗ୍ରା. କ୍ରି. (ପଦ୍ୟ) (ସ. ଦୃଶ୍ ଧାତୁ ଣିର୍ ଦର୍ଶି ଧାତୁ)—
Daraśā(śe)ibā ୧ । ଦର୍ଶାଇବା; ଉପସ୍ଥାପିତ କରିବା—1. To
দরশান adduce; to cite; to produce.
दरशाना (ଯଥା—ପ୍ରମାଣ ଦରଶାଇବା; କାରଣ ଦରଶାଇବା । )
୨ । ଦେଖାଇବା; ପ୍ରକଟିତ କରିବା—
2. To show; to exhibit.

ଦରଶିବା—ଗ୍ରା. ( ପଦ୍ୟ ) କ୍ରି—( ସ. ଦୃଶ ଧାତୁ )— ୧ । ଦେଖାଇବା;
Daraśibā ପ୍ରଦର୍ଶିତ କରିବା—1. To show; to exhibit.
দরশা ନାନା ବନ୍ଧେ ରଚନରେ ଦର୍ଶିଲେ
दरसना କାମକଳା କୁଶଳ ଦରଶିଲେ । ପ୍ରୀତି ଶିଶୁଙ୍କର ଭଷା ଅଛଳପେ ।
୨ । ପ୍ରକାଶିତ ହେବା; ଦେଖାଯିବା; ଦର୍ଶିବା—
2. To be seen; to appear.

**ଦରଶୀ**—ଗ୍ରା. (ପଦ୍ୟ) ବିଣ—ଦର୍ଶୀ ( ଦେଖ )
Darasi Darsi (See)
ଦରଶୀ ଭାବରେ ଯାଙ୍କ ମନ ଦୃଢ ହେବ—ପ୍ରାଚୀ ଶ୍ରୀ ଗୁରୁଭକ୍ତିଗୀତା ।

**ଦର ଶ୍ଳଥ**—ସ. ବିଣ (ଦର+ଶ୍ଳଥ)—ଦରଢ଼ିଲା—
Dara slatha Half-loosened
କର୍ଣ୍ଣମେଖଳାର କାଞ୍ଚଦାମ ଦରଶ୍ଳଥ—ପ୍ରାଚୀ· ରସବାରିଧି ।

**ଦରସଲ୍**—ପ୍ରାଦେ. ଅ (ବାଲେଶ୍ୱର)—ଆଦୌ; ଜମାରୁ—
Darasal At all.
ଆଦୌ ତାଙ୍କର ସରକରଣା ବୁଝି ଦରସଲ ନ ଥିଲା—ଫକୀରମୋହନ, ଛମାଣଆଠଗୁଣ୍ଠ ।
बिलकुल

**ଦରସିଜା (ଝା)**—ଦେ. ବି (ସ. ଅର୍ଦ୍ଧସିଦ୍ଧ)—ସମ୍ପୂର୍ଣ୍ଣରୂପେ ସିଦ୍ଧ ହୋଇ ନ ଥିବା—Half boiled
Darasija (jha)
ଘରସ ଲୋକର ଯେ ଭୋଜନ କଥା ଶୁଣି
ଅଲଣା ଦରସିଝା ବ୍ୟଞ୍ଜନ ସ୍ୱାଦୁ ମଣି । ପୀତାମ୍ବର- ନୃସିଂହପୁରାଣ ।

**ଦରସୋଦର ହାସୀ**—ଦେ.ବିଣ (ସ. ଦର+ସୋଦର+ହାସିନ୍, ଦର=ଶଙ୍ଖ, ସୋଦର=ବନ୍ଧୁ ଅର୍ଥାତ୍ ସମାନ ହାସ ଯାହାର)—ଶୁଭ୍ରହାସଯୁକ୍ତା—Laughing heartily, smiling brightly.
Darasodara hasi
ସୁନ୍ଦର ଦର-ସୋଦର-ହାସୀ କହନ୍ତି—ଉପେନ୍ଦ୍ରଭଞ୍ଜ· କୋଟିବ୍ରହ୍ମାଣ୍ଡସୁନ୍ଦରୀ ।

**ଦରସ୍ଫୁଟହାସ**—ସ. ବି—ଈଷତ୍‌ହାସ୍ୟ—
Darasphutahasa Smile
( ଦରସ୍ଫୁଟହାସା—ସ୍ତ୍ରୀ ) ସ. ବିଣ. ପୁଂ—ଈଷତ୍ ହାସ୍ୟକାରୀ—Smiling.

**ଦରସ୍ଫୁଟହାସୀ**—ଦେ. ବିଣ. ସ୍ତ୍ରୀ ( ସ. ଦରସ୍ଫୁଟହାସା)—ଈଷତ୍ ହାସ୍ୟକାରିଣୀ—Smiling.
Darasphutahasi
ମିଳଣୀ ବଧୂର ବଦନରେ ଶ୍ରୀଛପାଣି
ଲକ୍ଷ୍ୟ ହେବାରୁ ଦରସ୍ଫୁଟହାସୀ—କବିସୂର୍ଯ୍ୟ· ସଙ୍ଗୀତ ।

**ଦରହ**—ପ୍ରାଦେ ( ସମ୍ବଲପୁର ) ବି ( ସ. ହ୍ରଦର ବିପର୍ଯ୍ୟସ୍ତ ଉଚ୍ଚାରଣ ) ନଦୀ ଆଦିର ଗଭୀର ବା ଗମ୍ଭୀର ଅଂଶ—
Daraha Deep part of a river or lake.

**ଦରହସା**—ଦେ. ବିଣ ପୁଂ (ସ. ଦରହସିତ)—୧ । ( ମନ୍ଦାର୍ଥ ) ଉଚ୍ଚହାସ୍ୟକାରୀ; ଅଟ୍ଟହାସକାରୀ—1. (bad sense) Given to loud laughter.
Darahasa
( ଦରହସୁରା—ଅନ୍ୟରୂପ)
ଦରହସୀ, ଦରହସୁରୀ } ସ୍ତ୍ରୀ
୨ । ଈଷତ୍‌ହାସ୍ୟକାରୀ—2. Smiling.
୩ । ( ମନ୍ଦାର୍ଥ ) ଯେ ସାମାନ୍ୟ କଥାରେ ହସେ ( ଏପରି ହସିବା ଦ୍ୱାରା ଗାମ୍ଭୀର୍ଯ୍ୟର ଅଭାବ ସୂଚିତ ହୁଏ)—3. (bad sense) Given to laughing on slight provocation (which indicates want of seriousness).

**ଦରହସିତ**—ସ. ବିଣ. ପୁଂ (ଦର+ହସିତ)—ଈଷଦ୍ଧାସ୍ୟଯୁକ୍ତ—
Darahasita Smiling.
(ଦରହସିତା—ସ୍ତ୍ରୀ) ସ. ବି—ମୃଦୁ ହାସ—Smile.
ଏ ସୁନ୍ଦର ଦରହସିତ—କବିସୂର୍ଯ୍ୟ· ସଙ୍ଗୀତ ।

**ଦରହାମ୍**—ବୈଦେ. ବି (ଆ. ଦର୍ହମ୍; ଫା. ଦରମ୍)—ପାରସ୍ୟ, ଆରବ ଆଦି ଦେଶପ୍ରଚଳିତ ରୌପ୍ୟମୁଦ୍ରାବିଶେଷ—
Daraham
दरहाम
दरहम
A silver coin used in Persia and Arabia; dirhem; dirham.

**ଦରହାସ**—ସ. ବି. (ଦର=ଈଷତ୍+ହାସ)—୧ । ଈଷଦ୍ଧାସ୍ୟ—
Darahasa 1. Smile.
୨ । ଯେଉଁ ହସରେ ଦାନ୍ତ ଦେଖାଯାଏ—
2. Laugh by showing the teeth
ଏ ବାଣୀ ଶୁଣି ଶାରଙ୍ଗପାଣି ବୋଲନ୍ତି ଦରହାସେ ।
ଭକ୍ତଚରଣ· ମଥୁରାମଙ୍ଗଳ ।

**ଦରହାସୀ**—ଦେ.ବିଣ, ସ୍ତ୍ରୀ. (ସ. ଦରହସିତା)—ଈଷତ୍ ହାସ୍ୟଯୁକ୍ତା(ସ୍ତ୍ରୀ)-
Darahasi Smiling (woman).
ଭାଷିଲ୍ଲ ସୁନ୍ଦର ଦରହାସୀ ବ ଭଙ୍ଗୀ ରଙ୍ଗିର
ହେଉ ପଛେ ସେ ତୋଷ ରସର ହେ । ଉପେନ୍ଦ୍ରଭଞ୍ଜ· ପ୍ରେମସୁଧାନିଧି ।

**ଦରାଜ**—ବୈଦେ.ବି (ଇଂ ଡ୍ରୟର୍; ଫା. ଦରାଜ୍, ବିଣ=ମୁକ୍ତ, ବିସ୍ତୃତ, ଦୀର୍ଘ)—ଟେବଲ ବା ଆଲମାରି ଭିତରେ ଥିବା ଡାଲା, ଯାହାକୁ ପଦାକୁ ବାହାର କରାଯାଇ ପାରେ ଓ ଭିତରକୁ ଠେଲି ଯାଇ ପାରେ—Drawer of a table, cabinet or desk; sliding box which can be pulled out and pushed in.
Daraja
দেরাজ
दराज

**ଦରାଞ୍ଚି**—ଦେ. ବି. (ସ. ଦାତ୍ର)—ଉଚ୍ଚସ୍ଥାନରୁ କଣ୍ଟା ବା ଡାଳ ପ୍ରଭୃତି କାଟିବା ପାଇଁ ଯେଉଁ ଲଗି ଅଗରେ ଖଣ୍ଡିଏ ଦାଆ ଦୃଢ଼ଭାବରେ ସଂଲଗ୍ନ ହୋଇଥାଏ (ବାଲେଶ୍ୱର ଅଞ୍ଚଳରେ ଏହାର ବହୁଳ ବ୍ୟବହାର ଦେଖାଯାଏ)—A long pole with a scythe firmly attached to the top to cut branches etc from high trees
Daranchi

**ଦରାଣ୍ଡିବା**—ଦେ. କି. (ସ. ଢୁଣ୍ଢନ=ଅନ୍ୱେଷଣ, ହି. ଶବ୍ଦସାଗର)—ଅନ୍ଧାରୁଆ ବା ପାଣିଭିତରେ ହାତ ବୁଲାଇ କୌଣସି ଦ୍ରବ୍ୟକୁ ଇତସ୍ତତଃ ଖୋଜିବା; ଅଣ୍ଡାଳିବା—
Darandiba
হাঁতড়ান
टटोलना; ढिंढोरना
To search a thing in the dark or inside water; to grope for a thing in the dark or in water.
ଡହୁଁ ସେ ପାଣ୍ଡୁ ସୁତେ ହାତରେ ଦରାଣ୍ଡି ।
କୃଷ୍ଣସିଂହ· ମହାଭାରତ ବନ

**ଦରାଣ୍ଡି ହେବା**—ଦେ. କି—୧। ଅନ୍ଧାରରେ ଇତସ୍ତତଃ ଖୋଜି ହେବା—
Darandi heba 1. To be groping in the dark.
হাতড়ান
टोहना
ଦରାଣ୍ଡି ହୁଅନ୍ତି ଅହା, ମହାଘୋରତମେ ଶାନସନ୍ତେ—
ସଧାନାଥ· ମହାଯାତ୍ରା ।
୨ । ଆକୁଳ ହୋଇ ଘାଣ୍ଟି ହେବା—
2. To flounder; to be restless with affliction
୩ । କିଂକର୍ତ୍ତବ୍ୟବିମୂଢ଼ ହୋଇ ବ୍ୟସ୍ତ ହେବା—
3. To be bewildered; to be puzzled.
୪ । ଇତସ୍ତତଃ ଚଞ୍ଚଳ ହେବା—
4. To struggle to and fro.
ଦରାଣ୍ଡି ହୋଇ ଅଛି କାନ୍ତେ ଅତ ସୁତେ—କୃଷ୍ଣସିଂହ· ମହାଭାରତ· ବନ
୫ । ସାଂସାରିକ ଜଞ୍ଜାଳ ବା ଧନ୍ଦାରେ ଘାଣ୍ଟି ହେବା—
5. To be pestered by or involved in worldly entanglements.

**ଦରି**—ସ. ବି. ସ୍ତ୍ରୀ ( ଦର+ସ୍ତ୍ରୀ. ଈ )—୧ । ପର୍ବତଗୁହା—
Dari 1. Cavern; mountain-cave.

दवी ୬ । କୁତ୍ସିତା ସ୍ତ୍ରୀ ( କ୍ଷାକେନ୍ )—
**दवी** 2. An ugly woman; a hag.

( ଦଗ୍ — ଅନ୍ୟରୂପ ) ଦେ. ବ ( ସ ଧୁର )—୧ । ସତରଞ୍ଜି—
1. Satranji; durry; carpet of cotton-thread

୨ । ଛିଦ୍ରବିଶିଷ୍ଟ ଲୌହ ପିଣ୍ଡ, ଯାହା ଉପରେ କମାର ତାତଲା ଲୁହା ପକାଇ ବଣି ଛେଣିରେ ଛିଦ୍ର କରେ—
2. A block of iron with a hole on it on which black-smiths place the iron to be bored.

ଦରିଆ—ବୈଦେ ବ ( ଫା ଦର୍ଇୟା )—୧ । ସାଗର, ସମୁଦ୍ର—
Daria 1 Ocean; sea
दविआ ୨ । ସମୁଦ୍ର ପରି ବିସ୍ତୃତ ଜଳଭାଗ—2. A wide
**दरिया** expanse of water like the ocean
( ଦରୟା—ଅନ୍ୟରୂପ ) ୩ । ବଡ଼ ଚଉଡ଼ା ନଈ—
3 A broad river.

ପ୍ରାଦେ. (ସମ୍ବଲପୁର) ବ - ଖାଇ, କେନାଲ୍—Canal; moat.

ଦରିଆ ଘୋଡ଼ା—ଦେ. ବ. ( ଫା. ଦର୍ଇଆ + ସ ଘୋଟକ )—ସିନ୍ଧୁ-
Daria ghorda ଘୋଟକ—Hippopotamus
सिन्धु घोटक [ ଦ୍ର—ଏହା ଗଣ୍ଡାର ଚମଡ଼ା ପରି ମୋଟ ଚର୍ମ-
**दरियाई घोड़ा** ବିଶିଷ୍ଟ ଓ ଗଣ୍ଡା ଆକାରର ଚତୁଷ୍ପଦ ଜଳଚର ଜୀବ । ଏମାନେ ଦଳଦଳ ହୋଇ ଆଫ୍ରିକାର ନଦୀମାନଙ୍କରେ ରହନ୍ତି । ଏମାନେ ନଦୀକୂଳର ସ୍ଥଳରେ ବିଚରଣ କରି ଘାସ ଓ ଗଛପତ୍ର ଖାଆନ୍ତି ଓ ରାତିରେ ନଦୀର ଉପକୂଳସ୍ଥ କ୍ଷେତମାନଙ୍କରେ ଚରନ୍ତି; ହଠାତ୍ ମାନବ ଭୟର କାରଣ ଉପସ୍ଥିତ ହେଲେ ପାଣିକୁ ପଳାନ୍ତି । ଏମାନେ ବହୁକ୍ଷଣ ପାଣିରେ ବୁଡ଼ି ରହି ପାରନ୍ତି ନାହିଁ; ଶ୍ୱାସ ମାରିବା ପାଇଁ ପାଣି ଉପରକୁ ମୁହଁ ଉଠାନ୍ତି । ଏମାନଙ୍କ ଚମଡ଼ାରୁ ଏକପ୍ରକାର ଚାବୁକ ତିଆରି ହୁଏ । ]

ଦରିଆ ଚି(ଚୁ)ଙ୍ଗୁଡ଼ି—ପ୍ରାଦେ ( ସମ୍ବଲପୁର ) ବ—ଦରିଆ ବା ସମୁଦ୍ରର
Daria chi(chu)ngurdi ଚିଙ୍ଗୁଡ଼ି; ଲୁଣି ଚିଙ୍ଗୁଡ଼ି—
Shrimp or prawn belonging to the sea

ଦରିଆଦିଲ(ଲ)—ବୈଦେ. ବଣ (ଫା) —୧ । ଉଦାର ହୃଦୟ—
Dariadil(li) 1. Liberal-minded.
दिल दविआ ୨ । ଖୋଲାପଣ—2. Open-minded
**दरियादिल** ୩ । ଦାନଶୀଳ - 3 Liberal; generous.
[ ଦିଲ୍ ଦ(ଦା)ରିଆ—ଅନ୍ୟରୂପ ]

ଦରିଆପତ—ବୈଦେ ବ ( ଫା. ଦର୍ୟାପ୍ତ = ଜ୍ଞାତ )—
Dariapat ୧ । ବିଚାର; ବିବେଚନା—1. Consideration.
दरियाफत ୨ । ନ୍ୟାଯ୍ୟ ବିଚାର—2. Adjudication
**दरियाफत** ୩ । ଅନୁସନ୍ଧାନ—3. Investigation; enquiry.
ଦରିଆଫତ୍ }
ଦରିଆପ୍ତ } ଅନ୍ୟରୂପ ବଣ—୧ । ଜ୍ଞାତ —1. Known.
ଦରିଆପ୍ତ } ୨ । ବିବେଚିତ— 2. Considered.

ଦରିଆ ପାଇଛା—ବୈଦେ. ବି ( ଫା. ଦର୍ୟା ଓ ପାଦ୍‌ସାହାରୁ )—
Daria paichha ସମୁଦ୍ରର ରାଜା; ସମୁଦ୍ରରେ ଯେଉଁ ରାଜାଙ୍କର
**दरियाकी पादसा** ଜାହାଜମାନେ ଅବାଧରେ ଗମନାଗମନ କରେ—
King over seas.
ଦରିଆ(ୟା)ପାଛା }
ଦରିଆ ଆପାଛା } ଅନ୍ୟରୂପ ( ପଥା—ଆମ ଭାରତସମ୍ରାଟ ଦରିଆ-
ଦରିଆ ପାଇଛ } ପାଇଛ ଅଟନ୍ତି । )
[ ଦ୍ର—ଆମ ଦେଶରେ ଚଲିକା ହ୍ରଦକୁ ସ୍ଥାନୀୟ ଲୋକମାନେ 'ଦରିଆ' ନାମରେ ଡାକନ୍ତି ଓ ପାରିକୁଦର ରାଜାଙ୍କୁ 'ଦରିଆପାଇଛ' ବୋଲି କହନ୍ତି । ]

ଦରିଆ ପାରି(ରି)—ଦେ ବି ଣ—୧ । ସମୁଦ୍ରର ଅପର ପାରରେ ଅବସ୍ଥିତ-
Daria pari(ri) 1 Situated on the other shore of
दविआपाव the ocean.
**दरिया पार** ( ପଥା— ସାତ ସମୁଦ୍ର ଦରିଆପାରି ଦେଶ । )

ଦରିଆ ପାରି—ଦେ. ବି—୧ । ସମୁଦ୍ରର ଅପରପାର—
Daria pari 1 The other side across the sea.
दविया पाव ୨ । ବହୁଦୂରସ୍ଥ ଅଜ୍ଞାତ ସ୍ଥାନ, ସାତସମୁଦ୍ର ଲଙ୍ଘା ପାରି
**दरियापार** ସ୍ଥାନ; ଯେଉଁ ସ୍ଥାନକୁ ଯିବାକୁ ହେଲେ ସମୁଦ୍ର-
ଯାତ୍ରା କରିବାକୁ ହୁଏ—2. A very distant place beyond the seas, to reach which one has to take a sea-voyage.
( ପଥା—ସାହେବମାନେ ସାତ ସମୁଦ୍ର ଦରିଆପାରିରୁ ଆସି ଆମ ଦେଶରେ ରାଜତ୍ୱ କରୁଅଛନ୍ତି । )
ଦେ. ବିଣ —ଦରିଆପାର୍ ( ଦେଖ )
Dariapar ( See )

ଦରିଆ ପୀର—ବୈଦେ. ବି—( ଫା )—ସମୁଦ୍ରଯାତ୍ରୀ ମାଝିମାନଙ୍କ
Daria pira ପୂଜା କରିବା ଦେବତାବିଶେଷ—A sea-deity
दविआ पीव worshipped by the sailors.
**दरिया पीर** ଚଳେଲ – ଦରିଆପୀର୍', ଖଲସି ମାନେ,-'ଏଁ-ଶ୍ରୀ'
ଫକୀରମୋହନ. ଗଳ୍ପସ୍ୱଳ୍ପ ।

ଦରିଆ ବରାମଦ୍—ବୈଦେ. ବି ( ଫା ) - ଯେଉଁ ଜମି ପୂର୍ବେ ନଦୀ
Daria baramad ବା ସମୁଦ୍ର ଗର୍ଭରେ ଥିଲା, ବର୍ତ୍ତମାନ ପଟୁ
**दरिया बरामद** ପଡ଼ିବାରୁ କିମ୍ବା ସମୁଦ୍ର ବା ନଦୀ ଘୁଞ୍ଚି ଯିବାରୁ
( ଦରିଆ ବରାଦ୍ଦ - ଅନ୍ୟରୂପ ) ଆବାଦ ହୋଇଅଛି—Land reclaimed from the bed of a river or the sea.

ଦରିଆ ବୁର୍ଦ—ବୈଦେ ବି ( ଫା ) —ଯେଉଁ କ୍ଷେତ ବା ଜମିକୁ ନଦୀ ବା
Daria burd ସମୁଦ୍ର ଖାଇ ଯାଇଅଛି—Land washed away.
**दरियाबुर्द** by a river or by the sea

ଦରିତ—ସ. ବଣ. ( ଦର=ଭୟ+ଯୁକ୍ତାର୍ଥେ ଇତ, )—
Darita ୧ । ଭୀତ; ଶଙ୍କିତ—1. Terrified; frightened.
୨ । କମ୍ପିତ —2. Shaken.
୩ । (ଦୃ ଧାତୁ=ବିଦାର୍ଣ୍ଣ କରିବା+କର୍ମ. ତ) ବିଦାର୍ଣ୍ଣ —
3. Rent; burst.
୪ । ବିଭକ୍ତ—4. Split up; divided.
ବ. କ୍ଲୀ. (+କରଣ. ତ)—ଦୁଃଖ —Sorrow; misery.
ସୁହୃଁ ଦେବା ପରେ ଠକିଲା ନାହିଁ
ଦରିତେ ତ୍ରସ୍ତ ଦରିତ ଅଟନ୍ତି । ଉପେନ୍ଦ୍ରଭଞ୍ଜ, ଲୋକନାଥ ।

ଦରିଦ୍ର— ସଂ. ବିଣ ପୁଂ. (ଦରିଦ୍ରା ଧାତୁ=ନିର୍ଦ୍ଧନ ହେବା+କର୍ତ୍ତୃ. ଅ)—
Daridra ୧ । ଗରିବ, ଧନହୀନ; କଙ୍ଗାଳ; ରଙ୍କ—
(ଦରିଦ୍ରା—ସ୍ତ୍ରୀ) 1. Poor, poverty-stricken; indigent.
୨ । ଅଭାବଗ୍ରସ୍ତ— 2 Wanting; in need; needing; needy.
(ଯଥା—ସେ ଧନୀ ହେଲେ କଅଣ ହେବ, ଅପତ୍ୟାଦି ବିଷୟରେ ଦରିଦ୍ର ଅଟନ୍ତି ।)
୩ । କ୍ଷୀଣ—3 Wasted; lean, emaciated on account of distress; distressed.

ଦରିଦ୍ରତା— ସ. ବ (ଦରିଦ୍ର+ଭାବେ. ତା) —ଦାରିଦ୍ର୍ୟ, ଦରିଦ୍ରପଣିଆଁ—
Daridratā Poverty, indigence

ଦରିଦ୍ର ନାରାୟଣ—ସ ବ. (ରୂପକ; ଦରିଦ୍ରରୂପୀ ନାରାୟଣ)—
Daridra nārāyaṇa ନାରାୟଣରୂପେ କଳ୍ପିତ ଦରିଦ୍ର ବ୍ୟକ୍ତି—
The poor in whom God is existent and by serving whom a man is taken to serve God.

ଦରିଦ୍ର ନାରାୟଣ ସେବା—ସ. ବି—ଦରିଦ୍ରଙ୍କୁ ସାହାଯ୍ୟ କରିବାଦ୍ୱାରା
Daridra nārāyaṇa sebā ନାରାୟଣଙ୍କ ସେବା କରିବା—
The service of God through that of the poor; service of the poor which is tantamount to the service of God.

ଦରିଦ୍ର ନିଧି—ସ ବି. (ଉପମା; ଦରିଦ୍ର ପକ୍ଷରେ ନିଧି ଯେଉଁପରି ପ୍ରିୟ
Daridra nidhi ସେହିପରି ପ୍ରିୟ ବ୍ୟକ୍ତି)—ରଙ୍କରତନ; ରଙ୍କ-
ଶଂଖାଳି, ଦରିଦ୍ର ପକ୍ଷରେ ନିଧି ପରି; ପ୍ରିୟତମ ବ୍ୟକ୍ତି—
One's dearest person
ଦରିଦ୍ର ନିଧିଙ୍କ ଦୃଶ୍ୟ, ଦେଖୁଥିଲେ ଦେଖୁଥିବାକୁ ମୋ ମନ
ଥାଉଁଥାଏ ନାହିଁ ନାହିଁ । କବିସୂର୍ଯ୍ୟ, ସଙ୍ଗୀତ ।

ଦରିଦ୍ର ପଞ୍ଚାକ୍ଷର—ଦେ. ବି. (ବ୍ୟଙ୍ଗ)—'କଣ କରିବି' ଏହି ପାଞ୍ଚଟି
Daridra pañchākshara ଅକ୍ଷର—(ironical) The five
(ଦାରିଦ୍ର୍ୟ ପଞ୍ଚାକ୍ଷର—ଅନ୍ୟରୂପ) Oria letters in the phrase 'Kaṇa Karibi' which means what shall I do always repeated by a man in extreme poverty or want.
[ଦ୍ର—ଦରିଦ୍ର ଲୋକ ସର୍ବଦା ଅଭାବଗ୍ରସ୍ତ ଥିବାରୁ 'କଣ କରିବି' ବୋଲି ସର୍ବଦା ଜପ କଲା ଭଳି ଚିନ୍ତା କରୁଥାଏ ।]

ଦରିଦ୍ର ବୁଦ୍ଧି—ଦେ. ବି—ଧନ ସମ୍ବନ୍ଧେ କ୍ଷୁଦ୍ର ବୁଦ୍ଧି; ହୀନବୁଦ୍ଧି, ରଙ୍କ-
Daridra buddhi ବୁଦ୍ଧିଆଁ—Meanness in money matters; mean-mindedness where money is concerned.

ଦରିଦ୍ର ଶଙ୍ଖାଳି—ଦେ. ବି. (ସଂ. ଦରିଦ୍ର+ଶଙ୍ଖାଳ)—୧ । ଗରିବର
Daridra sankhāli ଆଶ୍ରୟ; ଦୁଃଖୀର ସମ୍ବଳ; ଗରିବର ସମ୍ପତ୍ତି—
ଦରିଦ୍ରେର ଧନ 1. The prop of the poor; the shelter, rest or stay of the poor; the treasure of the poor.
୨ । ଦରିଦ୍ରନିଧି (ଦେଖ)—2. Daridra-nidhi (See)
ଦରିଦ୍ର ଶଙ୍ଖାଳି ମୋର ଅନ୍ତର ଲକ୍ଷ୍ମୀ । ନନ୍ଦକିଶୋର, ସୀତା ବନବାସ ।

ଦରିଦ୍ରା (ଧାତୁ)— ସଂ ( ଦରିଦ୍ର ଶବ୍ଦରୁ ଗଠିତ ନାମ ଧାତୁ )—ନିର୍ଦ୍ଧନ
Daridrā (root) ହେବା— To be indigent.

ଦରିଦ୍ରା—ସଂ ବିଣ ସ୍ତ୍ରୀ. (ଦରିଦ୍ର+ସ୍ତ୍ରୀ ଆ)—ଦରିଦ୍ରର ସ୍ତ୍ରୀଲିଙ୍ଗ—
Daridrā Feminine of Daridra.
ସଂ ବିଣ. ପୁଂ (ଅନାଦରସୂଚକ ବ୍ୟବହାର, ଗାଳିରେ
(ଦରିଦ୍ରାଣୀ—ସ୍ତ୍ରୀ) ବ୍ୟବହୃତ)—୧ । ରଙ୍କାଳିଆ, ହୀନବୁଦ୍ଧିଆ—
କେଁଗାଲେ, କେଁଗଲା 1. Mean-minded in money matters.
दरिद्रा ୨ । ବାଁକଲା—2. Having inordinate hankering after petty things (like a povertystricken man).
୩ । ଅତ୍ୟନ୍ତ ଦରିଦ୍ର—3. Very poor.
କେଶବ ସେତ ଦରିଦ୍ରାଣୀ ରେଳ ଅନ କେ ଗରିବ ଏହା ।
ଗୋବିନ୍ଦ, ରସକଲ୍ଲୋଳ ।

ଦରିଦ୍ରାୟକ—ସଂ. ବିଣ—୧ । ଦରିଦ୍ରତା ଯୁକ୍ତ—
Daridrāyaka 1 Poverty-stricken.
୨ । ନିର୍ଦ୍ଧନୀକୃତ; ସମୃଦ୍ଧ ନିର୍ଧନ ହୋଇଥିବା—
2. Reduced to poverty, impoverished.

ଦରିଦ୍ରିତ—ସଂ. ବିଣ (ଦରିଦ୍ରା ଧାତୁ+କର୍ତ୍ତୃ ତ)—
Daridrita ୧ । ନିର୍ଦ୍ଧନୀକୃତ—1 Reduced to poverty; impoverished.
୨ । ଦୁର୍ଗତ—2. Distressed; in straitened circumstances.

ଦରିଦ୍ରୀକୃତ—ସଂ. ବିଣ. (ଦରିଦ୍ର+ଅଭୂତ ତଦ୍ଭାବେ (ଚ୍ୱି) ଈ+
Daridrīkṛuta କୃତ)—ନିର୍ଦ୍ଧନୀକୃତ—Reduced to poverty; impoverished.

ଦରି - ସ ବି. ( ଦର+ଇ )—ଦର ( ଦେଖ )
Dari Dari ( See )
ସଂ. ବିଣ. ପୁଂ. (ଦର+ଅସ୍ତି ଅର୍ଥରେ ଇନ୍; ୧ମା ୧ବ)—
୧ । ଭୟଯୁକ୍ତ; ଭୀତ—1. Frightened; terrified.
ବଧବା ହେବାରେ ଦରୀ ମନୋଜଦରୀ ବଚନ ଭଜାରେ ।
ଉପେନ୍ଦ୍ର ଭଞ୍ଜ. ବୈଦେହୀଶବିଳାସ ।
୨ । ବିଦାରଣଶୀଳ—2. Rending
୩ । ସକମ୍ପ—3. Trembling, tremulous.

ଦରୁଆନ୍ ବୈଦେ. ବି. (ଫା. ଦରବାନ୍)—୧ । ଦ୍ୱାରରକ୍ଷକ—
Daruān 1. Door-keeper; porter.
दरोयान ୨ । ବଡ଼ଲୋକଙ୍କ ସଦର ଦରଜାର ଜଗୁଆଳ—
दरबान 2. Gate-keeper.

ଦରୁଆନି—ବୈଦେ. ବ. (ଫା)—ଦ୍ୱାର ରକ୍ଷକର କର୍ମ ବା ବୃତ୍ତି—
Daruāni The act or post of a porter.
दरोयानी ବିଣ—୧ । ଦ୍ୱାର ରକ୍ଷକର ଉପଯୁକ୍ତ; ହୀନ (କର୍ମ)—
दरबानी 1. (act) Befitting a door-keeper; menial (work).
୨ । ନୀଚ—2. Low; mean.

ଦରୁଟି—ଦେ. ବଣ. ( ସ. ଅର୍ଦ୍ଧ ତ୍ରୁଟି ) — ଦରୋଟି ( ଦେଖ )
Daruṭi Daroṭi ( See )

(ଦରୁଟିଆ— ଅନ୍ୟରୂପ) କହର ଦରୁଟ ବଚନ, କେବଳ ଅମୃତ ସମାନ। ରସକୋଷ. ଦର୍ପଣଭାଭଙ୍କ।

ଦରେସ୍—ବୈଦେ ବ ( ଇଂ ଡ୍ରେସ୍ )—ଦରସ୍ ( ଦେଖ )
Dares Daras ( See )

ଦରୋଗ ହଲପୀ(ଫୀ)—ବୈଦେ. ବ (ଫା) (କଚରୁଆ)—
Daroga halapi(phi) ୧ । ହଲପ କରି ମିଥ୍ୟା କହିବା—
दरोगहलफो 1. Speaking falsehood on oath.
୨ । ମିଥ୍ୟା ସାକ୍ଷ୍ୟ ଦେବା ଅପରାଧ –
2 The offence of perjury.
ବିଣ (କଚରୁଆ) ମିଥ୍ୟା ସାକ୍ଷ୍ୟ ଦେବାବାଲା—Perjured.

ଦରୋଗା—ବୈଦେ. ବ—ଦାରୋଗା ( ଦେଖ )
Daroga Dāroga ( See )

ଦରୋଦର—ସ. ବ—୧ । ଯେ ଜୁଆ ଖେଳେ—
Darodara 1. A gamester.
(ଦୁରୋଦର—ଅନ୍ୟରୂପ) ୨ । ଦ୍ୟୂତ କ୍ରୀଡ଼ା, ଜୁଆ ଖେଳ—
2. Gambling.
୩ । ପଶା ଖେଳ—3. The game of dice
ଖେଳିବା ପ୍ରତ ଗ୍ରହ ବାସର କାମ ବେଳ ଦରୋଦରେ ।
କବି ସୂର୍ଯ୍ୟ. ହରିବଂଶ ।

ଦରୋଟି—ଦେ. ବିଣ. ( ସ. ଅର୍ଦ୍ଧଷ୍ଫୁଟ )—
Daroti ୧ । ଅବ୍ୟକ୍ତ; ଅସ୍ପଷ୍ଟ; ଅର୍ଦ୍ଧୋଚ୍ଚାରିତ—
(ଦରୋଟିଆ—ଅନ୍ୟରୂପ) 1. Half-lisped; indistinctly uttered.
आधआध ଶିଶୁର ଦରୋଟି ଅମୃତ ବଚନ । ମଧୁସୂଦନ. ଛନ୍ଦମାଳା ।
୨ । ଦରସିଝା—2. Parboiled; incompletely boiled.
( ଯଥା—ଦରୋଟି ଭାତ । )
୩ । ଅପରିପକ୍ୱ—3 Immature.
( ଯଥା—ସେ ଭାରି ଦରୋଟି ବୟସରୁ ସଂସାରରେ ପଶିଛି । )
୪ । ଅପକ୍ୱ—4. Raw; unripe.
୫ । ଅର୍ଦ୍ଧ ପକ୍ୱ; ଦର ପାଚିଲା—
5. Half-ripe; partially ripe.
( ଯଥା—ଦରୋଟି ଆମ୍ବ । )
କ୍ରି. ବିଣ—ସାମାନ୍ୟରେ; ଅଳ୍ପ ଅଳ୍ପ—Partly; partially.
( ଯଥା—ସେତେ ଦରୋଟି ପାଚିଲା ଆମ୍ବ ଅଛି ସବୁତକ ଗଛରୁ ତୋଳ । )

ଦରୋବସ୍ତ—ବୈଦେ ବିଣ. (କଚରୁଆ) (ଫା ଦରୁଉବସ୍ତ )—
Darobasta ସମ୍ପୂର୍ଣ୍ଣ; ସମଗ୍ର—Whole, entire.
ଦରବସ୍ତ, ଦୁରବସ୍ତ, ଦୋରବସ୍ତ, ଦୋରୋବସ୍ତ } ଅନ୍ୟରୂପ
ସର୍ବନାମ—ସମସ୍ତ, ସବୁ—All
କ୍ରି. ବିଣ—ସମ୍ପୂର୍ଣ୍ଣରୂପେ—Completely; fully, entirely.
दबोवस्त दुरोबस्त

ଦର୍କାର (ଇତ୍ୟାଦି)—ବୈଦେ. ବ—ଦରକାର ଇତ୍ୟାଦି ( ଦେଖ )
Darkāra (etc) Darakāra etc. ( See )

ଦର୍ଗା ଘା) (ଇତ୍ୟାଦି)—ବୈଦେ. ବ—ଦରଗା ଇତ୍ୟାଦି ( ଦେଖ )
Dargā(rghā) (etc) Daragā etc. ( See )

ଦର୍ଜ (ଇତ୍ୟାଦି)—ବୈଦେ. ବ ଓ ବିଣ (ଫା)—ଦରଜ ଇତ୍ୟାଦି (ଦେଖ)
Darja (etc) Daraja etc. ( See )

ଦର୍ଜନ୍—ବୈଦେ ବ—ଡଜନ୍ ( ଦେଖ )
Darjan Dajan ( See )
ଦରଜନ୍, ଡଜନ୍ } ଅନ୍ୟରୂପ
दर्जन, डजन दर्जन

ଦର୍ଜା—ବୈଦେ ବ—ଦରଜା ( ଦେଖ )
Darjā Darajā ( See )

ଦର୍ଜି—ବୈଦେ, ବ ପୁଂ -- ଦରଜି ( ଦେଖ )
Darji Daraji ( See )
(ଦର୍ଜିଆଣୀ—ସ୍ତ୍ରୀ

ଦର୍ଦ(ର୍ଦ୍ଦ) (ଇତ୍ୟାଦି)—ବୈଦେ ବ—ଦରଦ ଇତ୍ୟାଦି ( ଦେଖ )
Darda(rdda) etc. Darada etc ( See )

ଦର୍ଦ୍ଦର—ସ ବ ପୁଂ. (ସ. ଦୃ ଧାତୁ=ବିଦାରଣ କରିବା, ଦ୍ୱିତ୍ୱ=ଦର୍ଦ୍ଦର
Darddara ଧାତୁ+କର୍ତ୍ତି. ଅ)- ପର୍ବତ—Mountain.
ବିଣ- ୧ । ଦଦରା; ଈଷତ୍ ଭଙ୍ଗା—
1 Slightly broken; damaged.
୨ । ଫଟା—2. Cracked.

ଦର୍ଦ୍ଦରିକ—ସ ବ- ୧ । ଡାହୁକ ବାଜା; ଏକ ପ୍ରକାର ଆନଦ୍ଧ ବାଦ୍ୟ—
Darddarika 1 A kind of drum
୨ । ମେଘ—2 Cloud
୩ । ବେଙ୍ଗ—3 Frog.

ଦର୍ଦ୍ଦୁର- ସ ବ. ପୁଂ. କ୍ଲୀ. ( ଦୃ ଧାତୁ=ଭୀତ ହେବା, ବିଦାରଣ
Darddura କରିବା+କର୍ତ୍ତି. ସଞ୍ଜ୍ଞାର୍ଥେ. ଉର୍; ଯେ ଭୀତ ହୋଇ ବୋବାଏ ବା ଯେ ଶବ୍ଦଦ୍ୱାରା କାନକୁ ବିଦାରଣ କରେ)-
୧ । ମଣ୍ଡୂକ; ଭେକ, ବେଙ୍ଗ—1. Frog; toad.
୨ । ମେଘ 2. Cloud.
୩ । (ଦର୍ଦ୍ଦ=ଅନୁକରଣ ଧ୍ୱନି+ଅଚ୍ଛ ଅର୍ଥରେ. ଉ )—
ଡାହୁକ; ଏକ ପ୍ରକାର ଢୋଲ ବାଇଦ; ବେଙ୍ଗ ବାଇଦ; ଆନଦ୍ଧ ବାଦ୍ୟବିଶେଷ—2 A kind of drum.
୪ । ଦାକ୍ଷିଣାତ୍ୟର ପଶ୍ଚିମଘାଟ ପର୍ବତର ଅଂଶବିଶେଷ—
4. Name of a mountain in the Deccan, a part of the Western Ghats.
[ ଦ୍ର—ଏହା ମଳୟ ପର୍ବତକୁ ଲାଗିଛି । ହି. ଶବ୍ଦସାଗର । ]
୫ । ରାକ୍ଷସ; ନର ମାଂସ ଖାଦକ—
5 Demon; cannibal.
୬ । ଗ୍ରାମ ସମୂହ; ଗ୍ରାମ ସମାହାର—6. A collection or union of many villages; a village-union.
୭ । ଅଭ୍ରକ (ହି. ଶବ୍ଦସାଗର)—7. Mica; talc.

ଦର୍ଦ୍ଦୁରା—ସ. ବ. ସ୍ତ୍ରୀ ଚଣ୍ଡିକା; ଦୁର୍ଗା—
Darddurā A name of Goddess Durgā.

ଦର୍ଦ୍ରୁ (ର୍ଦ୍ରୁ)—ସ. ବ—ଦଦ୍ରୁ ରୋଗ; ଦାଦୁ—
Dardru (rdru) Ringworm.

ଦର୍ଦ୍ରୁ(ର୍ଦ୍ରୂ)ଣ—ସଂ ବିଣ. ପୁଂ—ଜାଦୁରୋଗ; ଜାଦୁଅ, ଦଦ୍ରୁଣ—
Dardru(rdrū)ṇa Suffering from ringworm.
(ଦର୍ଦ୍ରୁଣା—ସ୍ତ୍ରୀ)

ଦର୍ପ—ସଂ. ବି ( ଦୃପ୍ ଧାତୁ=ଅହଙ୍କାର କରିବା+ଭାବେ. ଅ )—
Darpa ୧ । ଗର୍ବ, ଅହଙ୍କାର, ଦମ୍ଭ—1 Impudence; pride; arrogance; haughtiness.
୨ । ( +କର୍ତ୍ତୃ. ଅ ) କସ୍ତୁରୀମୃଗ—
2. Musk-deer.
୩ । ମୁହଁ ବାଲଙ୍ଗି—3. Boasting; bragging.
୪ । ତାପ; ଉତ୍ତାପ—4 Heat.
୫ । କସ୍ତୁରୀ (ହି ଶବ୍ଦସାଗର)—5 Musk.
୬ । ଆତଙ୍କ (ହି. ଶବ୍ଦସାଗର)—6. Terror.
୭ । ମାନ, ଅହଙ୍କାର ଯୋଗୁ କୌଣସି ବ୍ୟକ୍ତିଠାରେ କୋପ (ହି ଶବ୍ଦସାଗର)—7. Anger or displeasure due to wounded vanity.
ଦେ. ବି—୧ । ଦାଉ—1. Ferocity.
୨ । ଉତ୍ପୀଡ଼ନ—2. Oppression

ଦର୍ପକ—ସଂ. ବି ( ଦୃପ୍ ଧାତୁ ଣିଚ ଦର୍ପି ଧାତୁ=ଦୀପ୍ତି କରାଇବା+କର୍ତ୍ତୃ. ଅକ )—ମଦନ; କାମଦେବ—
Darpaka Cupid; the God of love.
ବିଣ—୧ । ଉଦ୍ଦୀପକ—1. Inflammatory.
୨ । ଉତ୍ତେଜକ—2. Exciting; tending to incite.
୩ । ଯେ ମୁହଁବାଲଙ୍ଗି କରେ—3 Boastful.
୪ । ଗର୍ବିତ—4. Proud; arrogant.

ଦର୍ପ ଚୂର୍ଣ୍ଣ କରିବା—ଦେ.କ୍ରି—୧ । କୌଣସି ବ୍ୟକ୍ତିର ଗର୍ବକୁ ଅପମାନାଦି ଦ୍ୱାରା ଧ୍ୱଂସ କରିବା—
Darpa chūrṇṇa karibā
दर्पचूर्ण करना 1. To humiliate a person, to curb the
दर्प चूरन करना arrogance of a person.

ଦର୍ପଣ—ସଂ. ବି (ଦୃପ୍ ଧାତୁ=ଦୀପ୍ତି କରିବା+କର୍ତ୍ତୃ. ଅନ)—୧ । ଆରସି, ମୁକୁର—1. Mirror, looking glass.
Darpaṇa
୨ । ଚକ୍ଷୁ; ଆଖି—2 The eye.
୩ । ପର୍ବତବିଶେଷ—3 The name of a mountain.
୪ । ନଦୀବିଶେଷ--4. The name of a great river.

ଦର୍ପହର—ସଂ. ବିଣ. ପୁଂ (ଦର୍ପ+ହୃ ଧାତୁ+କର୍ତ୍ତୃ. ଅ)—ଯେ ଅନ୍ୟର ଦର୍ପ ଚୂର୍ଣ୍ଣ କରେ—Crushing or curbing the pride of another
Darpahara
(ଦର୍ପହରା—ସ୍ତ୍ରୀ)

ଦର୍ପହା—ସଂ. ବିଣ (ଦର୍ପ+ହନ୍ ଧାତୁ=ନାଶକରିବା+କର୍ତ୍ତୃ କ୍ୱିପ୍)—
Darpahā ଅନ୍ୟ ବ୍ୟକ୍ତିର ଗର୍ବନାଶକ—Crushing the pride of another.
ବି—ବିଷ୍ଣୁଙ୍କର ଏକ ନାମ—A name of Bishṇu.

ଦର୍ପହାରୀ -ସଂ.ବିଣ.ପୁଂ. (ଦର୍ପ+ହୃ ଧାତୁ+କର୍ତ୍ତୃ. ଇନ୍; ୧ମା.୧ବ)—
Darpahāri ଦର୍ପହର (ଦେଖ)
(ଦର୍ପହାରିଣୀ—ସ୍ତ୍ରୀ) Darpahara (See)

ଦର୍ପି (ଧାତୁ)—ସଂ. (ଦୃପ୍ ଧାତୁ+ଣିଚ୍)—ଦୀପ୍ତ କରାଇବା—
Darpi (causative root) To cause to shine; to illuminate

ଦର୍ପିତ—ସଂ. ବିଣ (ଦର୍ପ+ଯୁକ୍ତ ଅର୍ଥରେ, ଇତ)—ଅହଂକୃତ, ଗର୍ବିତ—
Darpita Proud; arrogant; haughty

ଦର୍ପିଷ୍ଟ(ଷ୍ଠ)—ଦେ ବିଣ (ସଂ ଦର୍ପୀ)—ଅତି ଗର୍ବିତ—
Darpishṭa(shtha) Very arrogant; very proud.

ଦର୍ପୀ—ସଂ. ବିଣ. ପୁଂ ଦର୍ପ+ଅସ୍ତି ଅର୍ଥରେ. ଇନ୍; ୧ମା ୧ବ)—
Darpī ୧ । ଅହଙ୍କାରୀ, ଦାମ୍ଭିକ; ଗର୍ବିତ—
(ଦର୍ପିଣୀ ସ୍ତ୍ରୀ) 1 Proud, arrogant; haughty.
୨ । ପ୍ରଭାବାନ୍ୱିତ; ପ୍ରତାପୀ—
2. Mighty; glorious.

ଦର୍ବ—ସଂ. ବି. ପୁଂ. (ଦୃ ଧାତୁ ବିଦାରଣ କରିବା+କର୍ତ୍ତୃ. ବ)—
Darbba ୧ । ରାକ୍ଷସ—1. A cannibal
(ଦର୍ବ—ଅନ୍ୟରୂପ) ୨ । ହିଂସ୍ରଜନ୍ତୁ—
2. Rapacious animal.
୩ । ପଞ୍ଜାବର ଉତ୍ତରରେ ଥିବା ମହାଭାରତୋକ୍ତ ଦେଶବିଶେଷ (ହି ଶବ୍ଦସାଗର)—3. Name of a country of ancent India in the north of Punjab.
୪ । ଉକ୍ତ ଦେଶବାସୀ ଜାତିବିଶେଷ (ହି ଶବ୍ଦସାଗର)—
4 Name of a class of people inhabiting the above country.
୫ । ହିଂସ୍ର ବ୍ୟକ୍ତି -
5 A mischievous or harmful person.
ଗ୍ରା. (ଇତର) ବି (ସଂ ଦ୍ରବ୍ୟ)—ଦରବ (ଦେଖ)
Daraba (See)

ଦର୍ବଟ—ସଂ ବି· ପୁଂ ୧ । ଦ୍ୱାରପାଳ, ଦ୍ୱାରୀ—
Darbbaṭa 1. A gate-keeper; a porter.
(ଦର୍ବଟ ଅନ୍ୟରୂପ) ୨ । ଗ୍ରାମ ରକ୍ଷକ, ଚଉକିଦାର—
2. A village constable (Apte).

ଦର୍ବରୀକ—ସଂ. ବି. ପୁଂ—୧ । ଇନ୍ଦ୍ର—
Darbbarīka 1 Indra.
(ଦର୍ବରୀକ—ଅନ୍ୟରୂପ) ୨ । ବାୟୁ—2. Wind.
୩ । ଆନଦ୍ଧ ବାଦ୍ୟ ବିଶେଷ—
3 A kind of drum.

ଦର୍ବାନ୍ (ଇତ୍ୟାଦି) ବୈଦେ ବି—ଦରବାନ୍ ଇତ୍ୟାଦି (ଦେଖ)
Darbban (etc) Darabān etc (See).
(ଦର୍ବାନ୍—ଅନ୍ୟରୂପ)

ଦର୍ବାର (ଇତ୍ୟାଦି)—ବୈଦେ. ବି.—ଦରବାର ଇତ୍ୟାଦି (ଦେଖ)
Darbbār (etc) Darabara etc (See).
(ଦର୍ବାର—ଅନ୍ୟରୂପ)

ଦର୍ବି(ର୍ବୀ)—ସଂ. ବି (ଦୃ ଧାତୁ+ସଂଜ୍ଞାର୍ଥେ ବି+ଈ)—୧ । କାଠର ଚଟକା ଅଗ୍ରକ; ଡଙ୍କୁ—1 A flat stick to stir boiling curry etc.
Darbbi (rbbī)
(ଦର୍ବି—ଅନ୍ୟରୂପ)
୨ । କରଛୁଲ—2. A metal spoon to stir food while it is over fire; a ladle.

୩ । ଲୁହା ଝଡ଼ିକା—3 A fire-shovel, a slice.
୪ । ଅଣକ—4 A large wooden spoon.
୫ । ସାପର ଫଣା – 5. Serpent's hood

**ଦର୍ବିକା**—ସଂ. ବ —(ଦର୍ବି+ସ୍ୱାର୍ଥେ. କ+ସ୍ତ୍ରୀ. ଆ)—
Darbbikā ୧ । ଦର୍ବି (ଦେଖ)—1 Darbbi (See)
୨ । ବନ୍ୟକୋଶି (ହି. ଶବ୍ଦସାଗର)—
(ଦର୍ବୀକା—ଅନ୍ୟରୂପ) 2. Wild cabbage.
୩ । ଘିଅସାପଟରେ ବଳି ଜଳାଇ କରି ପ୍ରସ୍ତୁତ କରାଯିବା ଆଖିର କଜ୍ଜ୍ୱଳ (ହି. ଶବ୍ଦସାଗର)—
3. A kind of collyrium prepared with lamp black.

**ଦର୍ବୀ**– ସଂ ବ. (ଦୃ ଧାତୁ+ସଂଜ୍ଞାର୍ଥେ. ଈ)—ଦର୍ବି (ଦେଖ)
Darbbī Darbbi (See)
(ଦର୍ବୀ—ଅନ୍ୟରୂପ)

**ଦର୍ବୀକର**—ସଂ. ବ.—(ବହୁବ୍ରୀହି; ଦର୍ବୀ=ଫଣା+କର)—
Darbbīkara ୧ । ସର୍ପ—Serpent; snake
(ଦର୍ବୀକର—ଅନ୍ୟରୂପ) ଦର୍ବୀକର ଏହି, ଦର୍ବୀ କରେଛନ୍ତି ପୁଷ୍ଟକୁ ବହି । ଅଭିମନ୍ୟୁ- ବଦଗ୍ଧଚନ୍ତାମଣି ।
୨ । (ଦର୍ବୀ=ଚଟୁ+କର) ଚଟୁ ନିର୍ମାଣକାରୀ ବ୍ୟକ୍ତି—
2. The maker of ladles

**ଦର୍ଭ**— ସଂ ବ. (ଦୃଭ୍ ଧାତୁ=ଗୁନ୍ଥିବା+କର୍ତ୍ତୃ. ଅ)--୧ । କୁଶ—
Darbha 1. A grass used in sacrifices and other religious ceremonies.
୨ । ତୃଣ—2. Grass.
[ଦ୍ର—ଏହା ୬ ପ୍ରକାର ଯଥା—କାଶ, ଉଶୀର, ବେନଣ, ମୌଞ୍ଜି, ଶାଦ୍ୱଳ ଓ ବଲ୍ୱଜ ।]

**ଦର୍ଭଟ**—ସଂ. ବ.—୧ । ନିର୍ଜନ ଗୃହ, ଖାସ କାମରା—
Darbhaṭa 1. A private or solitary room; chamber.
୨ । ଗୁପ୍ତ ଗୃହ, ଘରଭିତରେ ଥିବା ଗର୍ଭସ୍ଥ ଘର—
2 A secret chamber inside a room

**ଦର୍ଭ ପୁଷ୍ପ**—ସଂ, ବି.—ଏକପ୍ରକାର ସାପ (ହି ଶବ୍ଦସାଗର)—
Darbha pushpa A kind of serpent.

**ଦର୍ଭମୟ**—ସଂ. ବିଣ. ପୁଂ.—(ଦର୍ଭ+ପ୍ରାଚୁର୍ଯ୍ୟାର୍ଥେ. ମୟ)—
Darbhamaya ୧ । ତୃଣ ନିର୍ମିତ—
(ଦର୍ଭମୟୀ—ସ୍ତ୍ରୀ) 1. Made of grass;
୨ । କୁଶବ୍ୟାପ୍ତ; ତୃଣପୂର୍ଣ୍ଣ—2. Abounding in grass grassy; overgrown with grass.

**ଦର୍ଭହାସୀ**—ଦେ. ବିଣ. ସ୍ତ୍ରୀ.—(ଦର୍ଭ=ଶୁକ୍ଳ କୁଶ ପରି ଶୁଭ୍ରହାସ ଯାହାର; Darbhahāsī ସ. ଦର୍ଭହାସା)—ଶୁଭ୍ରହାସୀ; ମନୋହର ହାସ୍ୟକାରିଣୀ—Sweetly smiling (woman).
ଦର୍ଭଙ୍ଗରେ ଦର୍ଭହାସୀ ଦର୍ଶନବାଞ୍ଛା—ଉପେ. ଲାବଣ୍ୟବତୀ ।

**ଦର୍ୟ୍ୟା**—ପ୍ରାଦେ. (ମେଦିନୀପୁର) ଦେଶଜ. ବ.—ଦରିଆ (ଦେଖ)
Dai-yā Dariā (See)

**ଦର୍ଶ**—ସ ବ. (ଦୃଶ୍ ଧାତୁ=ଦେଖିବା+ଅଧିକରଣ. ଅ)—
Darśa ୧ । ଅମାବାସ୍ୟା—1. The day of the new moon; the conjunction.
[ଦ୍ର—ଏ ଦିନ ଚନ୍ଦ୍ର ଓ ସୂର୍ଯ୍ୟ ଏକତ୍ରସ୍ଥିତ ଥିବାରୁ ଚନ୍ଦ୍ର ଦେଖା ନ ଯିବାରୁ ଏହାର ନାମ ଦର୍ଶ—Apte.]
୨ । ଯାଗବିଶେଷ—2. Name of a vedic sacrifice.
୩ । (+ଭାବ. ଅ) ଦର୍ଶନ—
3. Seeing; appearance.
ବିଣ.—ଦ୍ରଷ୍ଟା—One who sees; seeing.

**ଦର୍ଶକ** - ସ. ବିଣ. ପୁଂ. (ଦୃଶ୍ ଧାତୁ+କର୍ତ୍ତୃ. ଅକ)—୧ । ଦ୍ରଷ୍ଟା; ଯେ
Darśaka ଦେଖେ, ଦର୍ଶନକାରୀ—1. Seeing; visiting.
ଦର୍ଶକା } ସ୍ତ୍ରୀ
ଦର୍ଶିକା
୨ । (ଦୃଶ୍ ଧାତୁ ଣିଚ୍ ଦର୍ଶି ଧାତୁ+ଅକ)—ଦର୍ଶୟିତା; ଯେ ଦେଖାଏ—
2. Showing a person round a place.
ବ.—୧ । ଦେଖଣାହାରୀ—1. Visitor; spectator
୨ । ଦ୍ୱାରପାଳ—2. Door-keeper; warder
୩ । କୌଣସି ବିଦ୍ୟା ବା କଳାରେ ପାରଦର୍ଶୀ ବ୍ୟକ୍ତି—
3. A person proficient in any art or science (Apte).
୪ । ଯେଉଁ ବ୍ୟକ୍ତି ଆଗନ୍ତୁକମାନଙ୍କୁ କୌଣସି ସ୍ଥାନକୁ ବୁଲାଇ ଦର୍ଶନୀୟ ବସ୍ତୁ ଆଦି ଦେଖାଏ—3. A person who takes a visitor round a place; a guide.

**ଦର୍ଶନ**—ସ. ବ (ଦୃଶ୍ ଧାତୁ+ଭାବ. ଅନ)—୧ । ଅବଲୋକନ;
Darśana ଦେଖିବା; ପରିଦର୍ଶନ—1. Visiting; seeing beholding; looking at; inspection.
୨ । ଦୃଶ୍ୟ ବସ୍ତୁଚୟ—2. View; scene.
୩ । ନିୟମ—3. Rule; code.
୪ । (+କରଣ ଅନ) ଚକ୍ଷୁ; ଆଖି—4. The eye.
୫ । ଭେଟ; ସାକ୍ଷାତ୍କାର; ମୁଲାକାତ୍—
5 Interview; visiting.
୬ । ଜ୍ଞାନ—6 Knowledge.
୭ । (+କର୍ମ ଅନ) ସ୍ୱପ୍ନ—7. Dream.
୮ । ସାଂଖ୍ୟାଦି ଶାସ୍ତ୍ର; ଜ୍ଞାନ ଶାସ୍ତ୍ର; ମନସ୍ତତ୍ତ୍ୱ ବିଦ୍ୟା; ତତ୍ତ୍ୱଜ୍ଞାନ ସମ୍ବନ୍ଧୀୟ ଶାସ୍ତ୍ର—8. Philosophy.
[ଦ୍ର—ଭାରତୀୟ ଦର୍ଶନଶାସ୍ତ୍ର ୬ ଭାଗରେ ବିଭକ୍ତ ଯଥା—କପିଳଙ୍କ ସାଂଖ୍ୟ, ପତଞ୍ଜଳଙ୍କ ଯୋଗ, ଗୌତମଙ୍କ ନ୍ୟାୟ, କଣାଦଙ୍କ ବୈଶେଷିକ, ଜୈମିନିଙ୍କ ମୀମାଂସା ଓ ବ୍ୟାସଙ୍କ ବେଦାନ୍ତ । ପ୍ରକୃତି, ଆତ୍ମା, ପରମାତ୍ମା ଓ ଜଗତର ନିୟାମକ ଧର୍ମ, ଜୀବନର ଅନ୍ତିମ ଲକ୍ଷ୍ୟ ଇତ୍ୟାଦି ଯେଉଁ ଶାସ୍ତ୍ରରେ ନିରୂପିତ ହୁଏ ତାକୁ ଦର୍ଶନ ଶାସ୍ତ୍ର ବୋଲାଯାଏ । ଇଉରୋପର ଗ୍ରୀସ୍ ଦେଶରେ ପ୍ରାଚୀନ କାଳରେ ସକ୍ରେଟିସ୍, ପ୍ଲେଟୋ, ଆରିଷ୍ଟଟଲ୍ ଆଦି ପଣ୍ଡିତମାନେ ଦର୍ଶନ ଶାସ୍ତ୍ରର ଚର୍ଚ୍ଚା କରୁଥିଲେ, ଅଧୁନିକ ଯୁଗରେ ଇଉରୋପର ଜର୍ମାନୀ, ଫ୍ରାନ୍ସ ଓ ଇଂଲଣ୍ଡରେ ଏବଂ ଆମେରିକାରେ ଦର୍ଶନଶାସ୍ତ୍ର ଚର୍ଚ୍ଚାର ବିଶେଷ ଉନ୍ନତି ହୋଇଅଛି ।]

୯ । ବୁଦ୍ଧି—9. Intellect.
୧୦ । ଦର୍ପଣ—10. Mirror.
୧୧ । ଧର୍ମ—11. Religion.
୧୨ । ଆକୃତି; ଚେହେରା—12. Appearance; form
୧୩ । ଯୋଗୀମାନଙ୍କର ପିନ୍ଧିବା ଏକ ପ୍ରକାର କୁଣ୍ଡଳ— 13. A kind of ear-ring worn by mendicants or Jogis
୧୪ । ଦେଖାଯିବା; ନୟନଗୋଚର ହେବା— 14. Becoming visible (Apte)
୧୫ । ଦେଖାଇବା—15. Showing; displaying; exhibition (Apte)
୧୬ । ଯାହା ଆଖିକୁ ଦେଖାଯାଏ—16. Semblance; aspect (Apte)
୧୭ । ଅଦାଲତ ଆଗରେ ଉପସ୍ଥିତି—17. Appearance; producing (in court) (Apte).
୧୮ । ମତ—18. Opinion (Apte)
୧୯ । ଉଦ୍ଦେଶ୍ୟ—19. Intention (Apte).
ଦେ. ବି—୧ । ଦେବପ୍ରତିମାଙ୍କୁ ଦେଖିବା—1. Paying a visit to an idol.
୨ । ପୁଂ. ଲୋକଙ୍କ ନାମ— 2. A name given to males.

**ଦର୍ଶନ କରିବା**—ଦେ. କ୍ରି—୧ । ଦେଖିବା—1. To see; to visit
Darśana karibā ୨ । ଠାକୁର ବା ରାଜାଙ୍କ ସମ୍ମୁଖକୁ ଯାଇ ତାଙ୍କୁ
ଦର୍শନକରা; **दर्शन करना** ଦେଖିବା—2 To visit an idol face to face; to have an audience with an idol or a king.

**ଦର୍ଶନ ଥୋଡ଼ା**—ଦେ. ବିଣ (ସଂ. ଦର୍ଶନ+ହି. ଥୋଡ଼ା)—ଦେଖିବାକୁ
Darśana thorḍā ସାମାନ୍ୟ—Insignificant to look at.
ନାମ ବଡ଼ା ଦର୍ଶନ ଥୋଡ଼ା—ଢଗ ।
[ଦ୍ର—ଯାହାର ନାମ ଶୁଣିଲା ବେଳକୁ ବଡ଼ ବା ଯେ ଖ୍ୟାତ କିନ୍ତୁ ଯେ କାର୍ଯ୍ୟତଃ ଅଯୋଗ୍ୟ ବା ଅପଦାର୍ଥ]

**ଦର୍ଶନ ଦେବା**—ଦେ. କ୍ରି—କୌଣସି ବ୍ୟକ୍ତିକୁ ଦେଖା ଦେବା—
Darśana debā To become visible; to grant
দর্শন দেওয়া; **दर्शन देना** interview; to grant an audience to a person (said of a king or great man).

**ଦର୍ଶନ ପାଇବା**—ଦେ. କ୍ରି—କୌଣସି ବ୍ୟକ୍ତି ବା ବସ୍ତୁକୁ ଦେଖିବାକୁ
Darśana pāibā ଅସୁବିଧା ଘଟିବା—To have a sight
(ଦର୍ଶନ ଲଭିବା—ଅନ୍ୟରୂପ) or view; to get an inter-
দর্শন পাওয়া **दर्शन पाना** view.

**ଦର୍ଶନ ପ୍ରତିଭୂ**—ସଂ ବି. (ହିନ୍ଦୁସ୍ମୃତି) (ଦର୍ଶନ କ୍ରମରେ ପ୍ରତିଭୂ=ଜାମିନ୍)—
Darśana pratibhu ହାଜର ଜାମିନ୍; କୌଣସି ବ୍ୟକ୍ତି ବା ଅସାମୀ ହାକିମଙ୍କ ନିକଟରେ ଉପସ୍ଥିତ ହେବା କ୍ରମରେ ଜାମିନ୍ ହୋଇଥିବା ଦ୍ୱିତୀୟ ବ୍ୟକ୍ତି—(Hindu Law) A surety for another person's appearance or presence before a court of justice.

**ଦର୍ଶନ ମିଳିବା**—ଦେ. କ୍ରି—କୌଣସି ବ୍ୟକ୍ତିଙ୍କର ବା ଦେବପ୍ରତିମାଙ୍କ
Darśana milibā ସାକ୍ଷାତ୍କାର ଲାଭ ହେବା—
দর্শন মিলা Having an interview with an idol or
**दर्शन मिलना** person.

**ଦର୍ଶନ ଲାଭ**—ସଂ ବି (ଷଷ୍ଠୀ ତତ୍; ଦର୍ଶନ+ଲାଭ)—ସାକ୍ଷାତ୍କାର—
Darśana lābha Interview; audience.

**ଦର୍ଶନାର୍ଥୀ**—ସଂ. ବିଣ. ପୁଂ ( ଦର୍ଶନ+ଅର୍ଥ+ଇନ୍; ୧ମା. ୧ବ )—
Darśanārthi ରାଜା ବା ଦେବତାଙ୍କୁ ଦର୍ଶନ କରିବାକୁ ଇଚ୍ଛୁକ—
(ଦର୍ଶନାର୍ଥିନୀ—ସ୍ତ୍ରୀ ) Desirous of having an interview.

**ଦର୍ଶନି**—ଦେ. ବି. ( ସଂ. ଦର୍ଶନ )—
Darśani ୧ । ଦେବତା ଓ ରାଜା ଆଦିଙ୍କୁ ଦେଖିବା ଦର୍ଶକ ଯେଉଁ
দর্শনী ଅର୍ଥ ତାଙ୍କଆଗରେ ରଖିଦିଏ; ସଲାମୀ; ପ୍ରଣାମୀ—
**दर्शनी** 1 A cash present paid by a visitor to an idol or Rājā.
ଅନେକ ଦେଖା ଦର୍ଶନି ଦଅନ୍ତି ସ୍ୱାମୀଙ୍କୁ । ସାରଳା. ମହାଭାରତ ।
୨ । ଡାକ୍ତର, ବୈଦ୍ୟ, ଜମିଦାର ଆଦିଙ୍କୁ ଦିଆଯିବା ପ୍ରଥମ ଭେଟି; ଭିଜିଟ୍—2. Visit; visiting fee; a cash present or prescribed fee paid to a doctor, pleader or Zamindar at the first interview
୩ । ଅର୍ଥ ଉପହାର, ଉପଢୌକନ — 3 Present in money; cash present.
୪ । ଦର୍ଶନ ନାମକ ବ୍ୟକ୍ତିକୁ ଡାକିବା ଆଦରାର୍ଥ ଡାକ ନାମ— 4. A name used in endearingly calling a person named Darsana.
ଦେ. ବିଣ—ଦରଶନି (ଦେଖ)—Darasani ( See )

**ଦର୍ଶନିଆ(ଆଁ)**—ଦେ. ବି—୧ । ଦର୍ଶକ; ଦେବତାଙ୍କୁ ଦର୍ଶନ କରିବାକୁ
Darśaniā(āṅ) ଆସିଥିବା ବ୍ୟକ୍ତି—A visitor to a shrine or an idol.
ଦେ. ବିଣ—୧ । ଦରଶକ (ଦେଖ)—1. Darasani (See)
୨ । ଦର୍ଶନ କରିବାକୁ ଆଗତ (ବ୍ୟକ୍ତି)— 2. ( a person ) Who has come to visit a shrine.

**ଦର୍ଶନି ହୁଣ୍ଡି**—ଦେ. ବି ( ମହାଜନୀ ସିରସ୍ତା; ସଂ. ଦର୍ଶନ )—ଯେଉଁ
Darśani hunḍi ହୁଣ୍ଡି ବା ବରାଦ ଚିଠିକୁ ଦୂର ସ୍ଥାନର କର୍ମଷ୍ଠ
দর্শনীহুণ্ডি ବ୍ୟକ୍ତି ଦେଖିବା ମାତ୍ରକେ ଦେଖାଇବା ବ୍ୟକ୍ତିକୁ ଟଙ୍କା
**दर्शनीहुँडी** ଦେବାକୁ ବାଧ୍ୟ ଅଟେ—A bill of exchange payable at sight.
[ ଦ୍ର—ହୁଣ୍ଡି ତଳେ ନୋଟ୍ ଦେଖ । ]

**ଦର୍ଶନୀୟ**—ସଂ. ବିଣ ପୁଂ. ( ଦୃଶ୍ ଧାତୁ+କର୍ମ. ଅନୀୟ )—
Darśaniya ୧ । ଦେଖିବାର ଯୋଗ୍ୟ—1. Worth seeing.
(ଦର୍ଶନୀୟା—ସ୍ତ୍ରୀ) ୨ । ଦୃଶ୍ୟ; ଯାହା ଦେଖାଯାଇ ପାରେ— 2. Visible.

୩ । ସୁନ୍ଦର; ସୁଦୃଶ୍ୟ—3. Beautiful; agreeable to sight; handsome

ଦର୍ଶ ବିପଦ୍—ସଂ. ବି ( ଦର୍ଶ=ଅମାବାସ୍ୟା ହୋଇଅଛି ବିପଦ୍ ଯାହାର; ବହୁବ୍ରୀହି )—ଚନ୍ଦ୍ର—The moon.
Darśa bipad

ଦର୍ଶ ଯାମିନୀ—ସଂ ବି (୬ଷ୍ଠୀ ତତ୍; ଦର୍ଶ+ଯାମିନୀ)—୧ । ଅନ୍ଧାରରାତ୍ରି—
Darśa jāminī 1. Dark or moonless night

୨ । ଅମାବାସ୍ୟାର ରାତ୍ରି—
2. The night of the new moon day.

ଦର୍ଶୟିତା—ସଂ ବିଣ. ପୁଂ ( ଦର୍ଶୟିତୃ ଶବ୍ଦ; ଦୃଶ୍ ଧାତୁ ଣିଚ୍, ଦର୍ଶି ଧାତୁ=ଦେଖାଇବା+କର୍ତ୍ତୃ. ତୃ; ୧ମା' ୧ବ.)—
Darśayitā
(ଦର୍ଶୟିତ୍ରୀ—ସ୍ତ୍ରୀ ) ୧ । ଯେ ଦେଖାଏ—1. One who exhibits; showing

୨ । ପ୍ରକାଶକ—2. Manifesting.

୩ । ଯେ କୌଣସି ସ୍ଥାନର ଦର୍ଶନୀୟ ବସ୍ତୁମାନଙ୍କୁ ଦର୍ଶକମାନଙ୍କୁ ବୁଲାଇକରି ଦେଖାଏ – 3 One who shows round a place to visitors.

୪ । ଯେ କୌଣସି ବସ୍ତୁ ଆଡ଼କୁ ହାତ ବଢ଼ାଇ ଅନ୍ୟକୁ ଦେଖାଇଦିଏ—4. Pointing out.

ସଂ. ବି—ଦ୍ୱାରପାଳ—A door-keeper

ଦର୍ଶା(ର୍ଶେ)ଇବା—ଦେ. କ୍ରି ( ସଂ ଦୃଶ ଧାତୁ ଣିଚ, ଦର୍ଶି ଧାତୁ )—
Darśā(rśe)ibā ୧ । ଦର୍ଶନ କରାଇବା, ଦେଖାଇବା—
दर्शाना 1 To show, to exhibit; to display; to point out
दरशाना

୨ । (କଥାରେ) ପ୍ରମାଣ ଉପସ୍ଥାପିତ କରିବା; ଦାଖଲ କରିବା—
2. To cite; to adduce; to produce

୩ । ଅନ୍ୟର ଦୃଷ୍ଟି ଆକର୍ଷଣ କରିବା—
3. To attract the attention of another.

୪ । ପ୍ରମାଣିତ କରିବା—4. To prove.

ଦର୍ଶାତ୍ୟୟ—ସଂ. ବି ( ଦର୍ଶ=ଅମାବାସ୍ୟା+ଅତ୍ୟୟ=ବିନାଶ )—
Darśātyaya ଅମାବାସ୍ୟାର ପରବର୍ତ୍ତୀ ଶୁକ୍ଳା ପ୍ରତିପଦ—
The 1st day of a bright lunar fortnight

ଦର୍ଶି ( ଧାତୁ )—(ସଂ ଦୃଶ୍ ଧାତୁ=ଦେଖିବାର ଣିଚ୍)—ଦେଖାଇବା—
Darśi (causative root) To show.

ଦର୍ଶିତ—ସଂ. ବିଣ ( ଦର୍ଶି ଧାତୁ+କର୍ମ ତ )—୧ । ଦେଖାଇଦିଆଯାଇ ଥିବା; ଯାହା ଦେଖାଇ ଦିଆଯାଇଅଛି—1. Shown.
Darśita

୨ । ପ୍ରକଟିତ; ପ୍ରକାଶିତ—
2. Exhibited; exposed to view.

ଦର୍ଶିବା—ଦେ. କ୍ରି (ସଂ. ଦୃଶ୍ ଧାତୁ)—ଦେଖାପଡ଼ିବା—
Darśibā To be seen; to be found.
दर्शी (ଯଥା—ତାଙ୍କଠାରେ ତ କିଛି ଦୋଷ ଦର୍ଶୁ ନାହିଁ ।)
दरसना

ଦର୍ଶୀ—ସଂ. ବିଣ. ପୁଂ ( ଦର୍ଶିନ୍ ଶବ୍ଦ, ଦୃଶ୍ ଧାତୁ+କର୍ତ୍ତୃ. ଇନ୍; ୧ମା. ୧ବ )—୧ । ଦ୍ରଷ୍ଟା; ଯେ ଦର୍ଶନ କରେ—
Darśī
(ଦର୍ଶିନୀ—ସ୍ତ୍ରୀ) 1. Seeing; viewing; beholding.

୨ । ଯେ ଜାଣିଥାଏ—
2. Knowing.

୩ । ଯାହାର ଦେଖିବାର ଶକ୍ତି ଅଛି; ଯେ ଦେଖି ପାରେ—
3. Having the power to see or to view, capable of seeing.

୪ । ଯେ ଅନୁଭବ କରିଥାଏ, ଅନୁଭବକାରୀ—
4. Experienced.

[ ଦ୍ର—ଏ ଶବ୍ଦର ସ୍ୱତନ୍ତ୍ର ବ୍ୟବହାର ନାହିଁ, ଅନ୍ୟ ଶବ୍ଦ ସଙ୍ଗେ ବ୍ୟବହୃତ ଯଥା—ବହୁଦର୍ଶୀ, ସୂକ୍ଷ୍ମଦର୍ଶୀ, ତତ୍ତ୍ୱଦର୍ଶୀ, ଦୋଷଦର୍ଶୀ, ଦୂରଦର୍ଶୀ ଇତ୍ୟାଦି । ]

ଦଲ୍ (ଧାତୁ)—ସଂ.—୧ । ମର୍ଦ୍ଦନ କରିବା, ଦଳିବା—
Dal (root) 1. To knead; to press together.

୨ । ଭେଦ କରିବା—2 To pierce.

୩ । ବିକାଶ ପାଇବା —
3 To be exposed to view.

୪ । ଫଟାଇବା—4. To split open; to cause to burst or crack.

୫ । ( ଫୁଲ ଆଦି ) ଫୁଟିବା—
5 To bloom; to burst ( as a flower ).

ଦଲ୍—ପ୍ରାଦେ (ସମ୍ବଲପୁର) ବି—ଦଳ (ଦେଖ)
Dal Daḷa (See).

[ଦ୍ର—ସମ୍ବଲପୁରରେ 'ଳ' ର 'ଲ' ଉଚ୍ଚାରଣ ଓ ଶେଷ ବର୍ଣ୍ଣର ହଲନ୍ତ ଉଚ୍ଚାରଣ କରାଯାଏ । ]

ଦଲ୍‌ଖା—ପ୍ରାଦେ ( ସମ୍ବଲପୁର ) ବି—ସମତଳ ସଡ଼କ ବା ବନ୍ଧରେ ଥିବା ଖାଲ ଜାଗା—
Dal-khā
Depressions or ruts or pits on a level road or embankment.

ଦଲ୍‌ଦଲ୍ ହେବା—ପ୍ରାଦେ (ସମ୍ବଲପୁର) କ୍ରି—ଶୀତରେ ଥରିବା—
Dal-dal hebā To shiver with cold.
( ଯଥା—ସେ ଖାଲିଦେହରେ ଦଲ୍‌ଦଲ୍ ହେଉଛି । )

ଦଲ୍‌ଦଲା(ଲେ)ଇବା—ଦେ. କ୍ରି—୧ । କର୍ଦ୍ଦମମୟ ହେବା; ଦଲଦଲିଆ ହେବା—1. To become muddy and yielding to treading.
Dal-dalā(le)ibā
ଦଲ୍‌ଦଲେଇବା } ଅନ୍ୟରୂପ
ଦଲ୍‌ଦଲାଇ ଯିବା }
दलदलकर्ना
दलदलाना
ଏ ବୋଲି ଗାଁଅ ମାଟି; ବରଷାରେ ଯାଏ ଦଲଦଲେଇ ଗୋ; ଖରା କଲେ ଯାଏ ଫାଟି । ତାଇସଙ୍କ ଡୁମର ଗାଁଇ ।

୨ । (ବ୍ରଣାଦି) ପୂଜ ଓ ଘାଆରେ ପୂର୍ଣ୍ଣ ହେବା; ପୂଜେଇବା; ଯେଉଁ ଉଠିବା—2. To ulcerate; to fester; to rankle.
(ଯଥା—ବଇଁଚି ଗୁଡ଼ାକ ଦଲ୍‌ଦଲେଇ ମୋତେ ବଡ଼ ଅଥୟ କରି ପକଉଛି ।)

ପ୍ରାଦେ. (ସମ୍ବଲପୁର) କ୍ରି—ଥରିବା; ଦମ୍‌ଦମ୍ ହେବା; କମ୍ପି ଉଠିବା—To throb; to palpitate.
(ଯଥା—ମେଘ ଗରଜନ ଶୁଣି ମୋ ଛାତି ଦଲ୍‌ଦଲେଇ ଗଲା ।)

**ଦଲ୍‌ଦଲିଆ**—ଦେ. ଵଣ. (ସ. ଦଲ୍ ଧାତୁ=ଦଳବା)—୧ । ପତଳା
Dal-daliā କାଦୁଅ ଯୁକ୍ତ, କୋମଳ ଓ କାଦୁଅ, କାଦୁଅ ପ୍ରାୟ
(ଦଲ୍‌ଦଲ୍—ଅନ୍ୟରୂପ) ନରମ; ଯାହାକୁ ମାଡ ଦେଲେ ନଇଁ ଯାଏ
দলদলে ଓ ଛାଡଦେଲେ ଉଠିଯାଏ; ନରମା ଓ
दलदल ସ୍ଥିତିସ୍ଥାପକ—1. Yielding like mud, soft and elastic.

୨ । ପଙ୍କୁଆ—2. Clayey; muddy.

୩ । ପୂଜ ଓ ଘାଆଦ୍ୱାରା ମାଡ ଉଠିଥିବା (ବ୍ରଣାଦି)—
3. Gangrenous; ulcerous.

**ଦଲ୍ ଦେବା**—ପ୍ରାଦେ. (ସମ୍ବଲପୁର) କ୍ରି—ଖାଇ ବସିଥିବା ବ୍ୟକ୍ତିକୁ
Dal debā ଦ୍ୱିତୀୟ ଥର ଅନ୍ନବ୍ୟଞ୍ଜନାଦି ପରସିବା—
To serve the food to a diner for the second time.

**ଦଲ୍ହ**—ପ୍ରାଦେ. (ସମ୍ବଲପୁର, ଗଡ଼ଜାତ) ବି (ସ. ହ୍ରଦର ବିପର୍ଯ୍ୟାୟ)—
Dalha ଗଣ୍ଡ (ପାଣି)—Deep portion of a river or lake

**ଦଳ**—ସ. ବି. ( ଦଲ୍ ଧାତୁ=ବିକାଶ ପାଇବା+କର୍ତ୍ତୃ. ଅ )—
Daḷa ୧ । ଗଛର ପତ୍ର—1. Leaf.

୨ । ଫୁଲର ପାଖୁଡ଼ା—2. Petal of a flower.

୩ । ଜୋଟ୍, ପଙ୍କ୍ତି; ପଲ୍; ସମୂହ; ପୁଞ୍ଜ—
3. Collection; multitude; herd.

୪ । ଖଣ୍ଡ—4. Fragment; piece.

୫ । ଗୋଷ୍ଠୀ, ସମ୍ପ୍ରଦାୟ, ମଣ୍ଡଳୀ—
5. Party; company; detachment; sect.

୬ । ରାଶି—6, Heap.

୭ । ଅସ୍ତ୍ରାଦିର ଖୋପ ବା ଖୋଳ—7. Seath.

୮ । ଅସ୍ତ୍ରାଦିର ଧାର—8. Edge of instruments.

୯ । ଅସ୍ତ୍ରଫଳକ; ଫଳା—9. Blade of a weapon

୧୦ । ଘାସର ପତ୍ରର ଫାଳ—10 Blade of grass.

୧୧ । ନାନାପ୍ରକାର ଜଳଜ ତୃଣ ( ହି ଶବ୍ଦସାଗର )—
11. Many kinds of aquatic grass.
ଜଳକୁ ଯେସନ ଦଳ ପ୍ରମାଦ—ପ୍ରାଚୀ. ପରଚେଗୀତା ।

[ ଦ୍ର—ଦଳ ନାନାପ୍ରକାର, ଯଥା—ଚୁଙ୍ଗୁଡ଼ିଆ, ବୋଲହାଞ୍ଜି, ବିଲାତି ଦଳ । ]

୧୨ । (+ଭାବ. ଅ ) ଦଳନ—12, Trampling.

୧୩ । ଚକଟିବା, ମର୍ଦ୍ଦନ; ମଳବା—13. Kneading.

୧୪ । ମୁଗ ବିରିଡ଼ି ଆଦି ଶସ୍ୟର ଫାଳ—14. The split half of leguminous seeds or pulse.

ଦେ. ବି—୧ । ଗ୍ରାମବାସୀମାନଙ୍କ ମଧ୍ୟରେ ସୃଷ୍ଟ ପ୍ରତିଦ୍ୱନ୍ଦ୍ୱୀ ଗୋଷ୍ଠୀ—1. Faction or party in a village

୨ । ଠାକୁରମାନଙ୍କୁ ଓ ସଙ୍ଗାତିନଙ୍କୁ ମେଳନ ଆଦିକୁ ନିମନ୍ତ୍ରଣ କରିବା ପାଇଁ ପ୍ରେରିତ ଫୁଲ ବା ତୁଳସୀ—
2. Flower or basil leaves sent to a Deity for inviting him to a rendezvous (ମେଳନ)-

୩ । ଆଖଡ଼ା ଓ ଯାତ୍ରା ଆଦିର ଦଳ—3. A party of musicians, dancers, singers etc.

୪ । ( ବଣିଆ ଶବ୍ଦ ) ସୁନା ବା ରୁପାର ଅଲଙ୍କାରକୁ ଝାଳିବା ସମୟରେ ସୁନା ବା ରୁପାକୁ ଆଗେ ତରଳାଇବା ପରେ ଅଳ୍ପ ଉତ୍ତାପରେ ତଳା ଯାଇ ତରଳା ସୁନା ବା ରୁପାରେ ମିଶାଯାଇଥିବା ଧାତୁ—4. Solder; a fusible alloy to unite pieces of silver or gold.

**ଦଳକରଣ**—ଦେ. ବି—୧ । ରାଜାଙ୍କ ଉଆସର ବା ଦେବାଳୟର
Daḷakaraṇa କର୍ମଚାରୀବିଶେଷ 1. A class of accountants employed in the palace of a king or in the temple of a Deity.

୨ । ପ୍ରାଚୀନ ଓଡ଼ିଶାରେ ରାଜାମାନଙ୍କ ଶ୍ରମୁକରଣ—
2. An accountant in the office of a Rājā ancient Orissa.

**ଦଳକା**—ଦେ ବି—ମାଟି ବା କାଦୁଅର ଗୋଟାଏ ଢେଲା ବା ଘୁଳା ବା
Daḷakā ମେଣ୍ଟା—A clod of clay or earth, turf;
চাপ ढेला sod.
( ଦଲକ, ଦଲ୍‌କା—ଅନ୍ୟରୂପ )

**ଦଳକା(କେ)ଇବା**—ଦେ. କ୍ରି—କାଦୁଅ ବା ମାଟି ଦଳକା ହୋଇ
Daḷakā(ke)ibā ଛାଡ଼ିଯିବା; ଦଳକା ଉଠିବା—To burst into lumps or clods.
( ଯଥା—ମାଟି ଛଟା ହୋଇଥିବା କାଛ ଶୁଖିଗଲେ ଦଲକାଏ )

**ଦଳକୋଷ**—ସ. ବି. ( ଦଳ=ପତ୍ର+କୋଷ; ବହୁବ୍ରୀହି )—କୁନ୍ଦଫୁଲ
Daḷa kosha ଗଛ—A flower plant; Jasminum Pubescens

**ଦଳଖିଆ**—ଦେ. ଵଣ—ଯେ ଦଳ ଘାସ ଖାଏ—One who lives
Daḷakhiā on aquatic grass or weeds.
দলখেকো ଘୋଡାଟି ଦଲଖିଆ ଟାଙ୍ଗୁ—ଫକୀରମୋହନ ଭ୍ରମଣ ଅଠଗଡ଼ ।

ବି—ନିକୃଷ୍ଟ ଜାତୀୟ ଦେଶୀ ଟାଙ୍ଗୁ; ଯେଉଁମାନେ ଦଳଘାସ ଖାଇ ବଞ୍ଚନ୍ତି; ଯେଉଁ ଘୋଡ଼ାଙ୍କୁ ପାଳକ ଘରେ ଦାନା ଆଦି ଖାଇବାକୁ ଦିଅନ୍ତି ନାହିଁ ଏବଂ ଯାହାର ଜୀବନ ଯାତ୍ରା ସେ ଜଙ୍ଗଲେ ବୁଲି ଚରିବାଦ୍ୱାରା ସମାହିତ ହୁଏ—
An inferior kind of country bred pony or tat.

**ଦଳ ଗଞ୍ଜନ**—ସ. ବି—ଶୂର୍ ବୀର—
Daḷa gañjana A valiant hero.

**ଦଳ ଗନ୍ଧ**—ସ. ବି—ସପ୍ତପର୍ଣ୍ଣୀ; ଛତିଆନା ଗଛ ( ଦେଖ )
Daḷa gandha Chhatiānā ( See )
( ଦଳେଗନ୍ଧ—ଅନ୍ୟରୂପ )

**ଦଳ ଛଡ଼ା(ଡ଼େ)ଇବା**—ଦେ. କ୍ରି—ଜଳ ଉପରୁ ଦଳକୁ ଛଡ଼ାଇ ଦେଇ
Daḷa chhaṛā(ṛe)ibā ଜଳାଶୟ ପରିଷ୍କାର କରି ଦେବା—
দল পরিষ্কার করা To clear away the weeds
दल साफ करना from the surface of water.

**ଦଲଦଲ**—ଦେ ଅ—ଘଲଲ୍ଲପଲ; ପଙ୍କାପଙ୍କା; ଏକ ଦଲ ପରେ ଅନ୍ୟଦଲ-
Daladala In crowds; in batches
दलेदले ଚଉଦିଗରୁଁ ପ୍ରଜାପୁଞ୍ଜ ଆସି ଦଳେ ଦଳେ ।
ঝুঁকেঝুঁক (ଦଲେଦଲେ—ଅନ୍ୟରୂପ) ଘଥାନାଥ. ମହାଯାନା ।

**ଦଲଦଲ**—ଦେ. ବିଣ. ( ସ. ଦୁଲ୍ ଧାତୁ=କମ୍ପିବା )—
Daladala ୧ । ( ବାରଂବାର ମେଘଗର୍ଜ୍ଜନ, ତୋପଶବ୍ଦ,
दलदल ଦମାଲୁଶବ୍ଦ ଆଦିଯୋଗୁଁ) ଦୁଲଦୁଲ ହୋଇ କମ୍ପିତ—
1. Shaking or vibrating violently on account of repeated booming sounds.
'ଠ' ଅକ୍ଷରଟି ହୋଇଅଛି ବାଳା ତେ.ଲ
ଶବଦରେ ଭୃବନ କମ୍ପୁଛି ଦଲଦଲ । ଗ୍ରାମୀ. ବ୍ରହ୍ମନାରୂପଣ ଗୀତା ।

୨ । ଦଲଦଲିଆ ( ଦେଖ )
2. Daladaliā ( See )

ବି—୧ । ଅନେକ ବାଦ୍ୟାଦିର ଘୋର ଶବ୍ଦ—
1. Sound produced by the violent beating of many big drums.
ଲକ୍ଷେକ ଦମାଲୁ ବାଜୁଥିବ ଦଲଦଲ । ପୀତାମ୍ବର. ନୃସିଂହପୁରାଣ ।
୨ । କମ୍ପନ—2. The quivering motion of any soft substance.

**ଦଲଦଲିଆ**—ଦେ. ବିଣ—ପଙ୍କୁଆ; କାଦୁଅ (ଜମି)—
Daladaliā Cleyey (land).
दलदले दलदला

**ଦଲନ**—ସ. ବି. ( ଦଲ୍ ଧାତୁ+ଭାବ. ଅନ )—
Dalana ୧ । ମର୍ଦ୍ଦନ, ମଳବା—1. Kneading; pestling.
୨ । ଦମନ; ଶାସନ—2 Punishing; crushing.
୩ । ନିଷ୍ପୀଡ଼ନ—3. Pressing; oppression.
୪ । ଫୁଟାଇବା; ବିଦାରଣ; ଭେଦନ—4. Piercing.
୫ । ଚୂନା କରିବା; ଚୂର୍ଣ୍ଣନ; ପେଷିବା; ରଗଡ଼ିବା—
5. Pounding; pulverising
୬ । ପେଷଣ; ବାଟିବା— 6. Grinding; bruising.
୭ । ଗୋଡ଼ରେ ଦଳିବା ବା ମଳବା—
7. Treading; trampling.
୮ । ସଂହାର—8. Destruction.
(ଦଲନୀ—ସ୍ତ୍ରୀ) ବିଣ. ପୁଂ. ( +କର୍ତ୍ତୃ ଅନ )—
( ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ ହେଲେ, ) ଦଲନକାରୀ ଅର୍ଥ ବୁଝାଏ, ବିନାଶକ—(added to another word to mean) One who punishes or crushes.
( ଯଥା—ପାଷଣ୍ଡ ଦଲନ; ଦୁଷ୍ଟ ଦଲନ; ଅରି ଦଲନ । )

**ଦଲନା**—ଦେ. ବି. ( ସ. ଦଲନ )—ଦଲବା, ମର୍ଦ୍ଦିବା—
Dalanā Kneading
ଭଲ ଲବଣୀ ସିନ୍ଦୂର ଦଲନା
କରୁଅଛି ନସି କେଉଁ ଲଳନା । ଉପେନ୍ଦ୍ର ଭଞ୍ଜ. ଲାବଣ୍ୟବତୀ ।

**ଦଲ ନିର୍ମ୍ମୋକ**—ସ. ବି. ( ବହୁବ୍ରୀହି; ଦଲ=ପତ୍ର+ନିର୍ମୋକ=ଛାଲି ଯାହାର )—ଭୂର୍ଜ ବୃକ୍ଷ—
Dala nirmmoka A tree; Betula Bhoorja.

**ଦଲନୀ**—ସ ବି ସ୍ତ୍ରୀ. ( ଦଲନ+ସ୍ତ୍ରୀ. ଈ )—
Dalanī ଲୋଷ୍ଟ୍ର; ଢେଳା; ଢେଲି—
A clod or brickbat; stones.

**ଦଲପ**—ସ. ବି ( ଦଲ+ପା ଧାତୁ+କର୍ତ୍ତୃ. ଅ )—
Dalapa ୧ । ଦଲପତି—1 Leader of a party.
୨ । ସୁନା ( ବୃ. ଶବ୍ଦସାଗର )—2. Gold.

**ଦଲ ପତି** –ସ ବି. ( ଦଲ+ପତି; ୬ଷ୍ଠୀ ତତ୍ )—
Dala pati ୧ । ଗୋଷ୍ଠୀର ନେତା—1. Leader of a party.
(ଦଲପାଲ—ଅନ୍ୟରୂପ)
୨ । ପଲର ପ୍ରଧାନ ଜନ୍ତୁ—2. The leader of a herd.
୩ । ଗ୍ରାମ୍ୟ ସମାଜର ପ୍ରଧାନ ବା ମୁଖ୍ୟବ୍ୟକ୍ତି—
3. The headman of a village community
୪ । ସେନାଧ୍ୟକ୍ଷ—4. A commander of a body or company of troops; captain of a detatchment of troops.

**ଦଲପି(ଫି)ମ୍ପି**—ଦେ ବି—ଡାହୁକ ଜାତୀୟ ଏକ ପ୍ରକାର ଜଳଚର ପକ୍ଷୀ;
Dalapi(phi)mpi ଜଲ ଫିମ୍ପି ( ଦେଖ )—A kind of aquatic bird; Jala phimpi ( See )

**ଦଲପୁଷ୍ପା(ଷ୍ପୀ)**—ସ ବି. ସ୍ତ୍ରୀ ( ଦଲ+ପୁଷ୍ପ+ସ୍ତ୍ରୀ. ଆ,ଈ, ବହୁବ୍ରୀହି )—
Dalapushpā(shpi) କିଆ; କେତକୀ— Pandanus Odoratissimus; Screwpine tree

**ଦଲ ବଲ** –ସ ବି. ( ଏକାର୍ଥ ବୋଧକ ସହଚର ଶବ୍ଦ )—
Dala bala ୧ । ଗୋଷ୍ଠୀର ସମସ୍ତ ବ୍ୟକ୍ତି—1. All persons of one's party; a body of followers and adherents.
ଏଥୁ ଅନ୍ତେ ଦଲବଲ ସେନା ଆନନ୍ଦରେ
ପ୍ରବେଶିଲେ ମହାଗ୍ରାମ ନଗର ନଗରେ । ମଧୁସୂଦନ. ବାଲ୍ମୀକିରାମାୟଣ ।
୨ । ସୈନ୍ୟଦଲ—2. Troops.
୩ । ଅନୁଚର ବର୍ଗ; ସ୍ୱପକ୍ଷୀୟ ବ୍ୟକ୍ତିଗଣ—
2. Retinue; attendants.

**ଦଲ ବାନ୍ଧିବା**—ଦେ. କ୍ରି—ଗୋଷ୍ଠୀ ବାନ୍ଧିବା; ମେଳ ବାନ୍ଧିବା; ବହୁ ବ୍ୟକ୍ତି ବା ଜୀବ ଏକତ୍ର ସମ୍ମିଳିତ କରିବା—
Dala bāndhibā To form into a group or crowd or herd; to herd together.
दलबाँधा, दलपाकान
ঝুঁড বাঁধনা

**ଦଲ ବେହେରା**—ଦେ. ବି—୧ । ପାଇକମାନଙ୍କ ସର୍ଦ୍ଦାର; ଜମାଦାର—
Dala beherā 1. Headman among Pāikas; Jamadar.
ଦବେକ ଗାନ୍ନ ମନ୍ତ୍ରୀ ସରଦାର
ଦଲବେହେରା ଯେ ଉତ୍ତମ କର । ବ୍ରଜନାଥ. ସମରତରଙ୍ଗ ।
୨ । ଗ୍ରାମର ସର୍ଦ୍ଦାର—
2. Headman of a village.
୩ । ହାଟୁଆ ଜାତିର ଅଧିକାରୀ—3. The headman of a community of the Hātuās.

୪ । ଗ୍ରାମର ରାଜସ୍ୱ ସଂକ୍ରାନ୍ତ ବିଷୟରେ ମୁଖ୍ୟ ବ୍ୟକ୍ତି—4. The headman or representative of a village in revenue matters.

[ ଦ୍ର—ମୁସଲମାନ୍ ବାଦସାହାଙ୍କ ଅମଳରେ ଏମାନଙ୍କ ଉପାଧି ଚଉଧୁରୀ ଓ ମକଦମ ଥିଲା । ]

**ଦଲମ**—ବୈଦେ. ବି. ( ଫା. ଦଲମ୍=ବୋଝ )—
Dalama ୧ । ଘର ତିଆରର ଉପକରଣ ସାମଗ୍ରୀସମୂହ—
ସରଞ୍ଜାମ 1 Materials collected for a building
सामान दलम or house; building materials.
୨ । ବୋଝ—2. Load.
ପ୍ରାଦେ. (ସମ୍ବଲପୁର) ବି—ବଡ଼ ବଡ଼ କାଠ—
Big timbers fit to be used as rafters and beams.

**ଦଲସାରିଣୀ**—ସଂ. ବି—କେମୁକ, ସାରୁ (ହି. ଶନ୍ଦସାଗର)—
Dalasāriṇī Arum.

**ଦଲ ସୂଚି(ଚୀ)**—ସଂ ବି. (ଦଲ=ପତ୍ର+ସୂଚି=ଛୁଞ୍ଚି)—
Dala sūchi (chī) ୧ । କଣ୍ଟକ; କଣ୍ଟା—1. Thorn
୨ । ଯେଉଁ ଗଛର ପତ୍ରରେ କଣ୍ଟା ଥାଏ—
2 A tree with thorny leaves.

**ଦଳା**—ଦେ. ବି. (ସଂ ଦଲ୍ ଧାତୁ)—୧ । ଦଳନ—
Dalā 1. Trampling, pressing.
दला ଦଳବେ ତାହାଙ୍କର ଗିରୁ ବିହ୍ୱଳଲା
दलना ସାରଥି ହୋଇ କର କୁରୁଙ୍କୁ ଦେଲେ ଦଳା ।
କୃଷ୍ଣସିଂହ. ମହାଭାରତ ବନ ।
୨ । ଅନ୍ୟ ବ୍ୟକ୍ତିର ବା ଘୋଡ଼ାର ଶରୀରକୁ ହାତରେ ଘଷିବା ବା ମଳିବା—2. Massage.
୩ । ଗାଈ ପ୍ରସବ କଲା ପରେ ପଡ଼ିବା ଫୁଲ—
3 The placenta of a cow.
୪ । ଘୋଡ଼ାକୁ ଅଣ୍ଡା କରିବା ନିମନ୍ତେ ତାହାର କୋଷକୁ ମଳିବା—4. Pressing and pounding of the testicles of a horse to geld or castrate him
୫ । ମଳିବା; ଚକଟିବା—5. Kneading.
ବିଣ—୧ । ଦଳିତ, ଘୋଷା ହୋଇଥିବା—1. Rubbed.
दला ଦଳା ଗୋରୋଚନାଙ୍ଗୀ କୋମଳା । କବିସୂର୍ଯ୍ୟ. ସଙ୍ଗୀତ ।
दलाहुआ ୨ । ଚକଟା ହୋଇଥିବା—2 Kneaded.
୩ । ଦଳିତ ହୋଇଥିବା—3. Pressed; trodden down; trampled.
୪ । ଯେ ଦଳେ—4. One who tramples or treads down or subjugates.
[ ଦ୍ର—ଏହା ସାଧାରଣତଃ ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ ହୋଇ ଏ ଅର୍ଥ ବ୍ୟକ୍ତ କରେ । ଯଥା—ଶତ୍ରୁଦଳା; ଚମଦଳା । ]

**ଦଳାଇ**—ଦେ. ବି. (ସଂ. ଦଳପତି)—୧ । ଶୂଦ୍ରଙ୍କ ପଦବୀବିଶେଷ—
Dalāi 1. Family-title of a class of Śūdras.
दलई ୨ । ଗ୍ରାମ ନାୟକ—2 Village headman.
ଦଳାଇ ଆସିଲେ ମୂଳରୁ ଗାଥ । ଚଗ ।
दलवाल ୩ । ଜମାଦାର; ପାଇକମାନଙ୍କର ସର୍ଦ୍ଦାର—
3. A Jamadar; a head peon; head constable

**ଦଳା(ଲେ)ଇବା**—ଦେ. କ୍ରି. (ଦଳିବାର ଣିଜନ୍ତରୂପ)—
Dalā(le)ibā ଅନ୍ୟଦ୍ୱାରା ଦଳାଦଳି କରାଇବା—
दलान To cause another person or a thing
दलवाना to be pressed or kneaded.

**ଦଳା(ଲେ)ଇ ହେବା**—ଦେ. କ୍ରି—ନିଜେ ଅନ୍ୟଦ୍ୱାରା ଦଳିତ ବା ମର୍ଦ୍ଦିତ
Dalā(le)i hebā ହେବା—To be pressed or trampled
টেপান by another; to cause another to massage one's body.
ବଳାଇ ମାନଙ୍କୁ ଦଳାଇ ହୋଇଗଲା ହୁଙ୍ଗୁଳ ବଳିବା ଗୁଡ଼ କେ ।
ଅଭିମନ୍ୟୁ. ବିଦଗ୍ଧଚିନ୍ତାମଣି ।

**ଦଳାଢକ**—ସଂ. ବି. (ଦଲ+ଆଢକ)—୧ । ଜଂଗଲୀ ଡିଲ—
Dalārdhaka 1. Wild sessamum.
୨ । ଗେରୁ—2. Red chalk.
୩ । ନାଗକେଶର—3. Mesua Ferra.
୪ । ଶିରୀଷ (ଦେଖ)—4 Sirisa (See)
୫ । କୁନ୍ଦ (ଦେଖ)—5 Kunda (See)
୬ । ଗଜକର୍ଣ୍ଣୀ; ଏକପ୍ରକାର ପଳାଶ—
6. A species of Butea Frondosa.

**ଦଲାଣ**—ବୈଦେ. ବି. ( ଫା. ଦାଲାନ୍ )—୧ । କୋଠା ଘର—
Dalāṇa 1 Building.
দলান ୨ । ପ୍ରକୋଷ୍ଠ; କୋଠରୀ—2. Room.
दालान ୩ । ଲମ୍ବା ଓ ଚଉଡ଼ା କୋଠରୀ—3. Hall.
୪ । ଲମ୍ବା ବାରଣ୍ଡା—4. Long and spacious veranda.

**ଦଳାଦଳି**—ଦେ. ବି—୧ । ପରସ୍ପର ମଧ୍ୟରେ ବିରୋଧ—
Dalādali 1. Mutual quarrel.
(ଦଳାଦଳ—ଅନ୍ୟରୂପ) ୨ । ଗ୍ରାମରେ ଦୁଇ ବିରୋଧୀ ଦଳଙ୍କ
দলাদলি ମଧ୍ୟରେ ବିବାଦ—2. Party-feeling
बलबा, हलचल or factions in a village; party-spirit.
୩ । ଦ୍ୱନ୍ଦ୍ୱ; ବିବାଦ—3. Fighting; wrangling; conflict
୪ । ଚପାଚପି; ବହୁବାର ଚିପିବା—
4. Repeated pressing.
ସେ କରରେ ଯେବେ ଘନକେଶୀ ସମସ୍ତ ସ୍ତନ,
କି କରନ୍ତ ଦଳାଦଳ ରସ ହେ । କବିସୂର୍ଯ୍ୟ. ସଙ୍ଗୀତ କଳ୍ପଲତା ।
୫ । ବହୁବାର ଦଳିବା—5. Tramplings.
୬ । ପ୍ରତିଦ୍ୱନ୍ଦ୍ୱୀ ଦଳଗଠନ—
6. Creating of rival parties.
ପଦେ ପଦେ ଦଳାଦଳି ଘରେ ଘରେ କଳହ । ଭିକାରୀ. ଗୀତଲହରୀ ।
୭ । ଦଳାମଳା (ଦେଖ)—7. Dalāmalā (See)
୮ । ପରସ୍ପରକୁ ଦଳିବା—8. Mutual pressing.

ଦଳା ମଳା—ଦେ. ବି. ( ଏକାର୍ଥ ବୋଧକ ସହଚର ଶବ୍ଦ )—
Dalā malā ଘଷାମୋଡ଼ା; ଚକଟାଚକଟ—
दलामला Massage; brisk rubbing of the body
दलमलना

ଦଲାଲ୍—ବୈଦେ. ବି. (ଫା ଦଲ୍ଲାଲ୍ )—କ୍ରୟ ବିକ୍ରୟରେ ମଧ୍ୟସ୍ଥ, ଦଳିଦାର-
Dalāl Broker; commission-agent
दालाल आड़तदार; दलाल

ଦଲାଲି—ବୈଦେ ବ (ଫା. ଦଲ୍ଲାଲି)—୧ । କ୍ରୟ ବିକ୍ରୟରେ ମଧ୍ୟସ୍ଥ—
Dalāli 1. Commission agent; tout
दालालि ୨ । ମଧ୍ୟସ୍ଥର ପ୍ରାପ୍ୟ କମିସନ୍; ପାଉସେର; ଦସ୍ତୁରି—
आड़तिया; दलाली 2. Broker's commission or percentage.
୩ । କ୍ରୟ ବିକ୍ରୟରେ ମଧ୍ୟସ୍ଥତା କାର୍ଯ୍ୟ—
3. The business of a broker.

ଦଳି—ସଂ. ବ ( ଦଲ୍ ଧାତୁ=ଭେଦ କରିବା+କର୍ତ୍ତୃ. ଇ )—
Dali ଢେଲା, ଟେକା; ମାଟିର ଢିମା—Clod of earth.

ଦଳିକ—ସଂ. ବ ( ଦଲ୍ ଧାତୁ+କର୍ମ. ଇକ )—କାଠ—
Dalika Wood.

ଦଲି(ଲୁ)ଜ୍—ପ୍ରାଦେ (ମେଦନୀପୁର) ବୈଦେ. ବ ( ଫା. ଦହଲୀଜ୍ )—
Dali(lu)j ୧ । ବୈଠକଖାନା—1. Parlour; drawing room
दलिज
दहलीज ୨ । ବାରଣ୍ଡା—2. Veranda.
୩ । ଦରବାର ଘର—3. Durbar hall.
୪ । ଦୁଆରବନ୍ଧ—4. The bottom piece of a door-frame, door-sill.

ଦଳିତ—ସଂ. ବିଣ ( ଦଲ୍ ଧାତୁ+କର୍ମ. ତ )—୧ । ଯାହା ଦଳା ହୋଇଅଛି—1. Kneaded.
Dalita
୨ । ଘୋଷା ହୋଇଥିବା; ମର୍ଦ୍ଦିତ—
2. Rubbed; bruised.
୩ । ନିଷ୍ପୀଡ଼ିତ—3. Pressed
୪ । ଖଣ୍ଡିତ—4. Broken, cut.
୫ । ପିଷ୍ଟ—5. Crushed; pounded.
୬ । ଚୂର୍ଣ୍ଣିତ—6. Powdered.
୭ । ଶାସିତ—7. Subjugated.
୮ । ଉତ୍ପୀଡ଼ିତ—8 Oppressed.
୯ । ବିଭକ୍ତ—9. Divided; split.
୧୦ । ଉଦ୍ଘାଟିତ—10. Opened.
୧୧ । ପ୍ରସ୍ଫୁଟିତ—11 Full-blown; expanded.
୧୨ । ଗୋଡ଼ରେ ମଳା ଯାଇଥିବା—
12, Trodden; trampled.
୧୩ । ବିଧ୍ୱସ୍ତ—13 Destroyed.

ଦଳିତାଞ୍ଜନ—ସଂ. ବ. (ଦଳିତ+ଅଞ୍ଜନ; କର୍ମଧା)—ଦଳା ଯାଇଥିବା
Dalitāñjana କଜ୍ଜ୍ୱଳ—Well rubbed collyrium.

ଦଳିବା—ଦେ. କ୍ରି. (ସଂ. ଦଲ ଧାତୁ)—୧ । ଚକଟିବା; 'ଦଳନ କରିବା,
Dalibā ମର୍ଦ୍ଦନ କରିବା—1. To press together; to knead.
दला
दलना ୨ । ଧ୍ୱଂସ କରିବା—
(ଦଳିଦେବା—ଅନ୍ୟରୂପ) 2. To destroy, to crush.

ମନେ କଲେ ପବନ ପାରନ୍ତି ସେ ଦଳି ।
କୃଷ୍ଣସିଂହ ମହାଭାରତ. ବନ ।

(ଲକ୍ଷଣାର୍ଥ) ୩ । (ଗର୍ବ, ଔଦ୍ଧତ୍ୟାଦ) ବିନାଶ କରିବା—
3 To destroy.

ପାତକର ପାତକ ହବ ଥିଗ ଦଳି ।
କୃଷ୍ଣସିଂହ. ମହାଭାରତ. ବନ ।

୪ । ମଳିବା; ମକଚିବା; ଚକଟିବା—
4. To bruise; to tread; to trample.

ଚରଣେ ପୁଣି ଦଳି, ପକାଇ ଦେଲୁ ଚଳି,
ଭୂ ସୁନ୍ଦର କୁସୁମ ଭୂଷାଭୂରେ । କବିସୂର୍ଯ୍ୟ. ସଙ୍ଗୀତ ।

୫ । ମନ୍ଥନ କରିବା ପରି ଶାରୀରିକ କଷ୍ଟ ଦେବା; ପୀଡ଼ା ଦେବା—
5. To press and give bodily pain.

ବନ୍ଧ ଦେବାକୁ ତାକୁ ଏବେ ସର୍ବ ଦଳି ଦେଉଥାନ୍ତି ମନେ ଛ ।
କବିସୂର୍ଯ୍ୟ. ସଙ୍ଗୀତ ।

ଦଲିଲ୍—ବୈଦେ. ବ. (କଚରୀଆ) ( ଫା. ଦଲୀଲ୍=ଯୁକ୍ତି, ତର୍କ )—
Dalil କୌଣସି ବିଷୟର ଲିଖିତ ନିଦର୍ଶନ—
दलील 1. Document; a deed; any thing in writing.
दस्तावेज
୨ । ଲିଖିତ ପ୍ରମାଣ—2. Evidence in writing; documentary evidence
[ଦ୍ର—ଏହା ସାଧା ବା ଯୋଗ୍ୟ ବା ଗର ରେଜିଷ୍ଟ୍ରର ଦଲିଲକୁ ଷ୍ଟାମ୍ପ ପଟ୍ଟା ବା ରେଜିଷ୍ଟ୍ରର ଦଲିଲକୁ ବୁଝାଏ । ]

ଦଲିଲ୍ କରିଦେବା—ଦେ କ୍ରି (କଚରୀଆ)—କୌଣସି ଦଲିଲ ବିଧିମତେ
Dalil karidebā ଲେଖା ପଢ଼ି କରି ଦସ୍ତଖତ କରିଦେବା—
दलिल करा To duly execute a document.
दस्तावेज करना
(ଦଲିଲ ସମ୍ପାଦନ କରିବା; ଦଲିଲ୍ ଦେବା—ଅନ୍ୟରୂପ)

ଦଲିଲ୍ କର୍ତ୍ତା—ଦେ. ବ ( କଚରୀଆ )—ଯେଉଁ ବ୍ୟକ୍ତି ଦଲିଲ
Dalil kartā ସମ୍ପାଦନ କରିଥାଏ—A person who executes a deed; the executant of a document.
(ଦଲିଲ ଦାତା ଅନ୍ୟରୂପ)
(ଦଲିଲ ଗ୍ରହୀତା—ବିପରୀତ)
दलिलकर्ता

ଦଲିଲ୍ ଗତ ପ୍ରମାଣ—ଦେ. ବ. (କଚରୀଆ)—ଯେଉଁ ପ୍ରମାଣ ଦଲିଲରେ
Dalil gata pramāṇa ଥାଏ—Evidence contained in documents; documentary evidence.
दलिल गत प्रमाण

ଦଲିଲ୍ ଗ୍ରହୀତା—ଦେ. ବ (କଚରୀଆ)—ଯେଉଁ ବ୍ୟକ୍ତିର ସପକ୍ଷରେ
Dalil grahitā ଦଲିଲ ସମ୍ପାଦିତ ହୋଇଥାଏ—
दलिल ग्रहीता A person in whose favour a document is executed.
(ଦଲିଲ୍ ଗ୍ରହୀତା—ଅନ୍ୟରୂପ)

**ଦଲିଲ୍ ଦସ୍ତାବଜ୍**—ବୈଦେ. ବ. ( ଫା ) ( ସହଚର ଶବ୍ଦ; କଚରଅ; Dalil dastābij ବହୁବଚନ)—ଲିଖିତ ନିଦର୍ଶନ ଆଦି— ଦଲିଲ ଦସ୍ତାବିଜ Deeds and documents; दस्तावेज title-deeds.

**ଦଲିଲ୍ ପ୍ରମାଣ**—ଦେ. ବ.—(କଚରଅ)—୧ । ଲିଖିତ ନିଦର୍ଶନଦ୍ୱାରା Dalil pramāṇa ଉପସ୍ଥାପିତ ପ୍ରମାଣ— ଦଲିଲ ପ୍ରମାନ 1. Documentary evidence.
୨ । ଲିଖିତ ନିଦର୍ଶନ—
2. Evidence in writing.

**ଦଳି ହେବା**—ଦେ. କ୍ରି. (ଦଳିବାର କର୍ମବାଚ୍ୟ)— Daḷi hebā ୧ । ଫାଟି ଯିବା; ଭଗ୍ନ ହେବା— ଦଳା ଯାଓଯା 1. To burst. दला जाना
ଦେଖିଲି ଯାହା ଶ୍ରୀଅଙ୍ଗ ଦ୍ୟୁତି,
(ଦଳି ହୋଇଯିବା—ଅନ୍ୟରୂପ) ଦଳି ତ ହୋଇଗଲା ଖ୍ୟା ଛତି ।
କବିସୂର୍ଯ୍ୟ. କଶୋରଚମ୍ପୂ. ୨ ଗୀତ ।
୨ । ମର୍ଦ୍ଦିତ ହେବା; ପେଷିତ ହେବା; ଦଳିତ ହେବା—
2. To be crushed.
ଭୀମ ବାହୁ ବଳେ ବେନି ହୋଇ ଦଳି,
କେଉଁ ରୂପେ ମଲା ବର୍ମୀର ମହାବଳ । କୃଷ୍ଣସିଂହ. ମହାଭାରତ. ବନ ।
୩ । ଅନ୍ୟଦ୍ୱାରା ଦଳାଇ ହେବା—
3. To cause to be rubbed by another.

**ଦଳୁଆ**—ଦେ. ଣ. (ସଂ. ଦଳ)—୧ । ଦଳପୂର୍ଣ୍ଣ— Daḷuā 1. Full of aquatic grass; full of water-weeds.
୨ । ଦଳ ମିଶ୍ରିତ ହେବା ଯୋଗୁଁ ବିସ୍ୱାଦ (ଜଳ)—
2. Of insipid taste; insipid (as water mixed with acquatic weed.)
୩ । ଦଳଖିଆ (ଦେଖ)—3. Daḷakhiā (See)
ପ୍ରାଦେ. ( ଗଞ୍ଜାମ ) ବ—ଏକଜାତୀୟ ଚଷା—
A class of peasants in Gañjām.

**ଦ୍ୱଲେଇ**—ଦେ. ଅ. (ହାତୀ ମାହୁନ୍ତଙ୍କର ହାତୀ ପ୍ରତି ବ୍ୟବହୃତ ଶବ୍ଦ)— Dalei ଖାଅ—Eat ( addressed by the keeper to दलई; दलै an elephant ).
( ଦଲେି—ଅନ୍ୟରୂପ )

**ଦଳେଇ**—ଦେ. ବି—ଦଳାଇ ( ଦେଖ ) Daḷei Daḷāi ( See )
( ଦଳେି—ଅନ୍ୟରୂପ )

**ଦଶ**—ସଂ. ବି. (ଦନ୍‌ଶ୍ ଧାତୁ=ଷାନ୍ତି ପାଇବା+ଅନ୍=ଦଶନ୍ ଶବ୍ଦ)— Dasa ପାଞ୍ଚର ଦୁଇ ଗୁଣ ସଂଖ୍ୟା; ୧୦ ସଂଖ୍ୟା—
The number ten.
ବିଣ—୧୦ ସଂଖ୍ୟକ—Numbering ten.
[ ଦ୍ର—'ଦଶ' ଶବ୍ଦ 'ବହୁ' ସଂଖ୍ୟକ ଅର୍ଥରେ ମଧ୍ୟ ବ୍ୟବହୃତ ହୁଏ । ଯଥା—ଦଶ ଜଣ ଯେଉଁ ବାଟରେ ଯିବେ ମୁଁ ସିନା ସେହି ବାଟରେ ଯିବି । ]
दश ଦେ. ବି—୧ । ସର୍ବସାଧାରଣ—1 The public.

**ଦଶ** ( ଯଥା—ସଂଯତ ସଂଘବଦ୍ଧଭାବେ ଆମ ଦେଶର ଯୁବକମାନେ ଦେଶ ଲାଗି ଓ ଦଶ ଲାଗି କାର୍ଯ୍ୟ କରି ପାରୁ ନାହାନ୍ତି—ଦୈନିକ ଆଶା. ତା ୨୭-୬-୧୯୨୯ । )
୨ । ମୃତ ବ୍ୟକ୍ତିର ମୃତ୍ୟୁର ୧୦ ଦିନ ପର୍ଯ୍ୟନ୍ତ ଯେଉଁ ଅନ୍ତ୍ୟେଷ୍ଟି କ୍ରିୟାମାନ କରା ଯାଏ, ତନ୍ମଧ୍ୟ ମଧ୍ୟରୁ ଦଶମ ଦିନର କର୍ତ୍ତବ୍ୟ କ୍ରିୟା—2 The funeral ceremonies or rites performed on the tenth day of a man's death.

**ଦଶ ଅବତାର**—ସଂ ବି—ଦୁଷ୍ଟ ଦଳନ ଓ ଶିଷ୍ଟପାଳନ ଓ ପୃଥିବୀକୁ Dasa abatāra ପାପରୁ ଉଦ୍ଧାରାର୍ଥ ବିଷ୍ଣୁଙ୍କର ପୃଥିବୀରେ ଦଶ ଥର ଅବତରଣ ବା ଜୀବରୂପଧାରଣ—The ten incarnations assumed by Bishṇu in coming upon the earth to deliver it from sin or oppression.
[ଦ୍ର—ଦଶ ଅବତାର ଯଥା—ମତ୍ସ୍ୟ, କଚ୍ଛପ; ବରାହ; ବାମନ; ନୃସିଂହ; ପରଶୁରାମ; ରାମ, ବଳରାମ; ବୁଦ୍ଧ, କଲ୍କୀ ।]
ଶାସ୍ତ୍ରରେ ଅଛି ଯେ ଯେତେବେଳେ ପୃଥିବୀରେ ଅନ୍ୟାୟର ମାତ୍ରା ଅତି ବେଶି ହୋଇ ଯାଏ ସେତେବେଳେ ଦୁଷ୍କୃତକାରୀ ବ୍ୟକ୍ତିଙ୍କୁ ନାଶ କରି ସୁକୃତିମାନଙ୍କୁ ଉଦ୍ଧାର କରିବା ନିମନ୍ତେ ଭଗବାନ୍ ପାର୍ଥିବରୂପ ଧାରଣ କରି ପୃଥିବୀରେ ଅବତୀର୍ଣ୍ଣ ହୋଇ ପୃଥିବୀକୁ ରକ୍ଷା କରନ୍ତି । ସାଧାରଣରେ ପ୍ରଚଳିତ ବିଶ୍ୱାସମତେ ପୂର୍ବୋକ୍ତ ୧୦ ଅବତାର ଛଡ଼ା ବିଷ୍ଣୁ ଅନ୍ୟାନ୍ୟ ଅନେକ ଅବତାର ଧରି ଥିଲେ । ପାଶ୍ଚାତ୍ୟ ବିଜ୍ଞାନର Evolution theory ବା ବିବର୍ତ୍ତନ ବାଦ ସଙ୍ଗେ ଏହି ଦଶ ଅବତାର ବାଦକୁ ତୁଳନା କରିବା କୌତୂହଳାବହ । ଡାରଉଇନ୍ (Darwin) ଙ୍କର ବିବର୍ତ୍ତନ ବାଦ Evolution theory ଅନୁସାରେ ହିନ୍ଦୁମାନଙ୍କର ଦଶଅବତାର ତୁଳନା କଲେ ଜୀବ-ସୃଷ୍ଟିରେ ବିବର୍ତ୍ତନର ଉଚ୍ଚ ଉଚ୍ଚ ଅନୁରୂପ କ୍ରମିକ ସୋପାନ ଦେଖା ଯାଏ । ଯଥା—'ମତ୍ସ୍ୟ' ପ୍ରଥମ, ପୂର୍ଣ୍ଣ ଜଳରେ । 'ମତ୍ସ୍ୟ'ରୁ ବିବର୍ତ୍ତନ ଦ୍ୱାରା ଉଭୟଚର (ବେଶି ସମୟ ଜଳରେ ଓ ଅଳ୍ପ ସମୟ ସ୍ଥଳରେ ବିଚରଣ କରୁଥିବା) 'କଚ୍ଛପ' । ତତ୍ପରେ ସ୍ଥଳଚର (ଅଧିକାଂଶ ସମୟ ସ୍ଥଳରେ ଓ ଅତି ଅଳ୍ପକାଳ ଜଳ ବା ପଙ୍କରେ ବିଚରଣକାରୀ) 'ବରାହ' (ଏତେବେଳକୁ ପଶୁ ସୃଷ୍ଟିର ଆରମ୍ଭ) । 'ବରାହ' ପରେ 'ନୃସିଂହ' (ଅର୍ଥାତ୍ ଅଧା ପଶୁ ଓ ଅଧା ମନୁଷ୍ୟ ଓ ତାହାର ଅସ୍ତ୍ର ଦନ୍ତ ଓ ନଖ) । ତତ୍ପରେ 'ବାମନ' (ଅର୍ଥାତ ସମସ୍ତ ଅଙ୍ଗବିଶିଷ୍ଟ ଓ କିନ୍ତୁ ମନୁଷ୍ୟର ପୂର୍ଣ୍ଣାକାର ପ୍ରାପ୍ତ ହୋଇ ନ ଥିବା ମନୁଷ୍ୟ) । ତତ୍ପରେ 'ପରଶୁରାମ' ( ଅର୍ଥାତ୍ ପୂର୍ଣ୍ଣ ସଭ୍ୟତା ପାଇ ନ ଥିବା ଓ ଯୁଦ୍ଧପ୍ରିୟ ଆଦିମ ଅବସ୍ଥାର ମନୁଷ୍ୟ; ତାହାର ଅସ୍ତ୍ର ଗୋଟିଏ ଲୌହମୟ କୁଠାର ) । ତତ୍ପରେ 'ଶ୍ରୀରାମ' ( ଦୟାଦାକ୍ଷିଣ୍ୟାଦି ଯୁକ୍ତ ଓ ସଦ୍‌ଗୁଣ ପୂର୍ଣ୍ଣ ଓ ସମାଜ ଏବଂ ରାଜ୍ୟ ପରିଚାଳନାରେ ଦକ୍ଷ ମନୁଷ୍ୟ, କିନ୍ତୁ କୃଷି ବ୍ୟାପାରରେ ନିପୁଣତା ଲାଭ କରି ନ ଥିବା ଅବସ୍ଥା) । ତତ୍ପରେ 'ବଳରାମ' ( କୃଷିଜୀବୀ ଓ ସଂସାରକର୍ମରତ ମନୁଷ୍ୟ ) । ତତ୍ପରେ 'ବୁଦ୍ଧ' [ ଧର୍ମପ୍ରାଣତା ଯୁକ୍ତ ଓ ଆଧ୍ୟାତ୍ମିକତା (spirituality) ଯୁକ୍ତ ମନୁଷ୍ୟ ] ଓ ତତ୍ପରେ 'କଲ୍କୀ' ଅବତାର (ଯାହା ଏ ପର୍ଯ୍ୟନ୍ତ ହୋଇନାହିଁ); ଏ ଜନ ସମାଜରେ ବିପ୍ଳବ ଓ

ଉପୃକ୍ତର ଗୋଲଯୋଗ ଓ ରକ୍ତପାତ ଘଟାଇବା ବ୍ୟକ୍ତି) । ଉକ୍ତ ଦୃଷ୍ଟିରେ ହିନ୍ଦୁମାନଙ୍କର ଏହି 'ଅବତାରବାଦ' ସଙ୍ଗେ ପାଶ୍ଚାତ୍ୟ ବିବର୍ତ୍ତନ ବାଦର ତୁଳନା ଅତ୍ୟନ୍ତ କୌତୁକାବହ ଓ ଉପଦେଶପ୍ରଦ ଅଟେ ।]

**ଦଶ ଅଙ୍ଗୁଠି** — ଦେ. ବି — ଦୁଇ ହାତର ଦଶ ଗୋଟି ଅଙ୍ଗୁଳି, ଦୁଇ ଗୋଡ଼ର ଦଶ ଗୋଟି ଅଙ୍ଗୁଳି — The ten fingers of both hands or toes of both legs
Daśa āṅguṭhi
दश आङ्गुल
(ଦଶ ଅଙ୍ଗୁଳି — ଅନ୍ୟରୂପ)
[ଦ୍ର — ହାତର ଅଙ୍ଗୁଠିର ନାମ —
ବୁଢ଼ା ଅଙ୍ଗୁଠି (ସ ଅଙ୍ଗୁଷ୍ଠ) — Thumb.
ଵର୍ଣ୍ଣି ଅଙ୍ଗୁଠି (ସ. ତର୍ଜ୍ଜନୀ) — Index; fore finger.
ମଝି ଅଙ୍ଗୁଠି (ସ. ମଧ୍ୟମା) — Middle finger.
ତାରୁ ଅଙ୍ଗୁଠି (ସ ଅନାମିକା) — Ring finger.
କାଣି ଅଙ୍ଗୁଠି (ସ. କନିଷ୍ଠା) — Little finger]

**ଦଶ ଅଙ୍ଗୁଠି ପାଟିରେ ପୂରା(ରେ)ଇବା** ଦେ. କ୍ରି — (ଲକ୍ଷଣାର୍ଥ) ଅତି ଲୋଭ-ଗ୍ରସ୍ତ ହେବା — To be very avaricious.
Daśa āṅguṭhi pātire pūrā(re)iba

**ଦଶ ଉତ(ତ)ର** — ଦେ. ବିଣ — (ସ ଦଶୋତ୍ତର) — ଯେଉଁ ଶତ ସଂଖ୍ୟାର ପରେ ଦଶ ସଂଖ୍ୟା ଥାଏ (ଯଥା ଦଶଉତରଶହେ; ଦଶଉତର ଦୁଇଶ ) — (a certain hundred) Prefixed to the number ten.
Daśa uta(tta)ra
दसोतर, दहोतर

**ଦଶକ** — ସ. ବିଣ — (ଦଶ + ପରିମାଣାର୍ଥେ. କ) — ୧ । ଦଶର ଗୁଣିତକ ବା ଦଶ ସ୍ଥାନୀୟ (ସଂଖ୍ୟା); ଏକାଧିକ ଅଙ୍କର ଦକ୍ଷିଣ ମୁଣ୍ଡରୁ ବାମ ଆଡ଼କୁ ଗଣିଲେ ଦୁଇ ସ୍ଥାନୀୟ (ଅଙ୍କ) — 1. At the tenth place; multiple of ten.
Daśaka
୨ । ଦଶ ଗୁଣିତ — 2. Tenfold
ବି — ୧ । ଦଶ ବର୍ଷ; ଦଶନ୍ଧି — 1 A decade.
୨ । ଦଶ ସଂଖ୍ୟାର ସମାହାର — 2. A unit of ten.
ଦେ ବି — ଗଣିତରେ ୧୦ ସଂଖ୍ୟାର ଧାଡ଼ି ବା ଖଡ଼ି — Multiplication table relating to ten.

**ଦଶ କଣ୍ଠ** — ସ ବି (ଦଶ + କଣ୍ଠ, ବହୁବ୍ରୀହି) — ରାବଣ — The ten-headed demon, Rābaṇa.
Daśa kaṇṭha
(ଦଶକନ୍ଧର, ଦଶଗ୍ରୀବ — ଅନ୍ୟରୂପ)

**ଦଶକତ୍** — ବୈଦେ. ବି (ଫା. ଦସ୍ତଖତ୍) — ସ୍ୱାକ୍ଷର — Signature.
Daśakat
दस्तखत, दस्तखत् (ଦସ୍ତଖତ୍, ଦସ୍ତତ — ଅନ୍ୟରୂପ)

**ଦଶ କଥା** — ଦେ. ବି — ଏଣୁ ତେଣୁ ବହୁତ ପ୍ରକାର କଥା ବା ବିଷୟ — Various matters.
Daśakathā
दशकथा; दशतरहकीबातों

**ଦଶ କନ୍ଧ** — ଦେ. ବି. (ସ. ଦଶକନ୍ଧର) — ରାବଣ — Rābaṇa; the ten-headed demon
Daśa kandha

**ଦଶ କନ୍ଧର** — ସ. ବି. (ଦଶ + କନ୍ଧର = ଗ୍ରୀବା, ବହୁବ୍ରୀହି) — ରାବଣ — Rābaṇa; the ten-headed demon
Daśa kandhara

ବଚେଳ ଦଶକନ୍ଧର ଅନନ୍ତକୁ ଅନ୍ତକର କାଳ
ଅନ୍ୟତ କଥନ ଚ୍ୟୁତ ସେ । ଉପେନ୍ଦ୍ରଭଞ୍ଜ, ବୈଦେହୀଶବିଳାସ ।

**ଦଶ କର୍ମ** — ସ ତ. (ଦଶ + କର୍ମ; କର୍ମଧା) — ଆର୍ଯ୍ୟ (ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ)ମାନଙ୍କର ଗର୍ଭାଧାନ ଆଦି ଅବଶ୍ୟକର୍ତ୍ତବ୍ୟ ଦଶ ଗୋଟି ସଂସ୍କାର — The ten prescribed rituals required to be performed by the 3 superior castes amongst the Hindus before entering the world; the ten prescribed rites or sacraments of a Hindu boy.
Daśa karma
[ ଦ୍ର — ୧୦ ସଂସ୍କାର ଯଥା — ଗର୍ଭାଧାନ, ସବନ ବା ପୁଂସବନ, ସୀମନ୍ତୋନ୍ନୟନ, ଜାତକର୍ମ; ନାମକରଣ, ନିଷ୍କ୍ରାମଣ, ଅନ୍ନପ୍ରାଶନ, ଚୂଡ଼ାକରଣ ବା କର୍ଣ୍ଣବେଧ, ଉପନୟନ, ସମାବର୍ତ୍ତନ ବା ବିବାହ, ବର୍ତ୍ତମାନ ଭାରତୀୟ ଆର୍ଯ୍ୟବଂଶଧରମାନେ ଏ ସଂସ୍କାରମାନ ଯଥାନିର୍ଦ୍ଦିଷ୍ଟ କାଳ ଓ କ୍ରମରେ ଗୋଟିଗୋଟି କରି ନ କରି ବୃତ ବେଳେ କଳ୍ପନାଶକ୍ତିଦ୍ୱାରା ଏକା ହପ୍ତାକେ ଦୁଇ ଦିନ ମଧ୍ୟରେ ବିବାହ ଛଡ଼ା ନଅ ଗୋଟି ଯାକ କର୍ମ ସମାଧା କରି ବିଧିରକ୍ଷା କରୁ ଅଛନ୍ତି । ]

**ଦଶ କାଳ** — ଦେ ବିଣ — ଅତି ବୃଦ୍ଧ — Too old, nearing the grave.
Daśa kāla
ସୁଗ୍ରୀବଙ୍କୁ ଯେବେ ଦଶକ ଳ ଯେ ବୃଦ୍ଧ
ଏମାନେ ଯୁଦ୍ଧରେ ନ କରନ୍ତି ଉଦ୍ରୋଧ । ବିଶ୍ୱନାଥ, ବିଚିତ୍ରରାମାୟଣ ।

**ଦଶକୁମାର ଚରିତ** — ସ. ବି. ( ଦଶକୁମାର + ଚରିତ, ୬ଷ୍ଠୀ ତତ୍ ) — ଦଣ୍ଡୀଙ୍କ ରଚିତ ସଂସ୍କୃତ ଉପନ୍ୟାସ, ଯହିଁରେ ଦଶଗୋଟି ରାଜପୁତ୍ରଙ୍କ ଚରିତ ବର୍ଣ୍ଣିତ ହୋଇଅଛି — Title of a Sanscrit fiction by Daṇḍī relating the adventures of ten princes.
Daśakumāra charita

**ଦଶକେ ଚୋଟ** — ପ୍ରାଦେ· (ଗଞ୍ଜାମ) ବି — ଗାତରେ ପକାଇ ଖେଳିବା ବାଟି ( କଉଡ଼ି ) ଖେଳର ଦଶମ ଆଘାତ (ନହେ) — The tenth stroke in cowry-play
Daśake choṭa

**ଦଶ କ୍ରିୟା** — ଦେ. ବି — ମୃତ୍ୟୁର ଦଶ ଦିନ ଯାକ ଯେଉଁ ଔର୍ଦ୍ଧ୍ୱଦେହିକ କ୍ରିୟା ବା ଶୁଦ୍ଧିଶ୍ରାଦ୍ଧାଦି ମୃତବ୍ୟକ୍ତିର ଆତ୍ମାର ସଦ୍‌ଗତି ନିମିତ୍ତ ସମ୍ପାଦନ କରାଯାଏ — The funeral rites performed by a man's heir during the ten days of his death.
Daśa kriyā
दशकर्म

**ଦଶ ଖପର୍** - ଦେ ବି — ୧ । ମୃତ୍ୟୁର ୧୦ ଦିନ ପର୍ଯ୍ୟନ୍ତ ଦଶକ୍ରିୟା ଧରିଥିବା ଓ ମୁଖାଗ୍ନି ଦେଇଥିବା ବ୍ୟକ୍ତି ଦଶଘାଟରେ ଯେଉଁ ଖପର୍ ବା ଛେଲୁଆରେ ଅନ୍ନ ରାନ୍ଧି ମୃତ ବ୍ୟକ୍ତିର ପ୍ରେତକୁ ପିଣ୍ଡ ଦିଏ — 1. Bits of earthen pot in which rice etc is boiled to offer Pinda (oblation cakes) at the bank of a tank to the Preta (or unreleased soul or spirit) of the deceased daily for 10 days of the funerals.
Daśa khaparā

୨ । ମୃତର ଦଶାହ ଦିନ କିମ୍ବା ଧରିବା ଲୋକ ଯେଉଁ ହାଣ୍ଡିରେ ଘିଅ ଓ ଗୁଡ଼ ଏକତ୍ର ଗରମ କରି ତହିଁରେ ଗୃହୀଙ୍କୁ ଭଜା ପୋଡ଼ାଇ ପରେ କରି ଗାଧୋଇବା ସମୟରେ ପାଣିରେ ଭସାଇ ଦେଇ ଖଣ୍ଡିଏ କାଠ-ପାଳଆରେ ବାଡ଼େଇ ଦିଏ ଓ ସେହି ସମୟରେ ନଇଁ ପାଣିରେ ବୁଡ଼ ମାରେ; ଦଗ୍ଧହାଣ୍ଡି—2. An earthen pot in which rice, ghee and molasses are fried to burning and which is made to float on water and then struck with a stick on the tenth day of the funerals

**ଦଶକ୍ରିୟା**—ଦେ ବି.—ଦଶାହ କର୍ମ—Funeral rites per-
Dasakriyā formed during the 10 days of a personary death.

**ଦଶ କ୍ଷୀର**—ସ. ବି—ସୁଶ୍ରୁତ ଅନୁସାରେ ଦଶଟି ଜୀବଙ୍କ ଦୁଧ ( ଯଥା—
Dasa kshīra ଗାଈର, ମେଣ୍ଢାର, ଓଟର, ଛେଳିର, ମଇଁଷିର, ଘୋଡ଼ୀର, ନାରୀର, ହାତୁଣୀର, ହରିଣୀର ଓ ଗଧର )—Milk from ten species of animals prescribed in the Hindu medical book Suśruta

**ଦଶ ଗାତ୍ର**—ସ. ବି—୧ । ଶରୀରର ଦଶଟି ପ୍ରଧାନ ଅଙ୍ଗ—
Dasa gātra 1 The ten chief limbs of the body.

୨ । ମୃତାହର ଦଶ ଦିନ ପର୍ଯ୍ୟନ୍ତ କରାଯିବା ପ୍ରେତ କର୍ମ ( ଶ୍ରୀ. ଶବ୍ଦସାଗର )—2. The funeral rites performed during the 10 days of a person's death.

**ଦଶଗ୍ରାମୀ**—ସ. ବି. ( ଦଶଗ୍ରାମ+ଇନ୍ )—ଦଶ ଗ୍ରାମର ଅଧିକାରୀ;
Dasagrāmī ରାଜାଙ୍କ ପକ୍ଷରୁ ନିଯୁକ୍ତ ୧୦ଟି ଗ୍ରାମର ଶାସକ—
ଦଶଗ୍ରାମପତି } ଅନ୍ୟରୂପ The holder or proprietor of
ଦଶପ } ten villages.

**ଦଶଗ୍ରୀବ**—ସ ବି. ( ଦଶ+ଗ୍ରୀବା; ବହୁବ୍ରୀହି )—ଦଶକଣ୍ଠ ( ଦେଖ )
Dasagrība Dasakantha ( See )

**ଦଶହରା**—ଗ୍ରା. ବି. (ସ. ଦଶହରା)—୧ । ଆଶ୍ୱିନ ଶୁକ୍ଳ ଦଶମୀ—
Dasaharā 1. The tenth day of the bright fortnight of the month of Āswina.
ଦଶହରା
ଦଶରା } ଅନ୍ୟରୂପ [ ଦ୍ର—ଏ ଦିନ ଦୁର୍ଗା ପ୍ରତିମାଙ୍କୁ ବିସର୍ଜନ
ଦଶହରା } କରାଯାଏ । ]

୨ । ଜ୍ୟୈଷ୍ଠ ମାସର ଶୁକ୍ଳ ଦଶମୀ—2. The tenth day of the bright fortnight of the month of Jyeshtha.

[ ଦ୍ର—ଏ ଦିନ ଗଙ୍ଗାଦେବୀଙ୍କ ଜନ୍ମଦିବସ; ଏଣୁ ଗଙ୍ଗାସ୍ନାନ ଯୋଗ ପ୍ରଶସ୍ତ । ]

**ଦଶଚନ୍ଦ୍ରମା**—ଦେ. ବି (ସ. ଦର୍ଶ+ଚନ୍ଦ୍ରମା)—୧ । ଦର୍ଶ (ଅମାବାସ୍ୟା)ର
Dasachandramā ଚନ୍ଦ୍ର—1. The moon of the new-moon day.

୨ । (ସ. ଦଶ+ଚନ୍ଦ୍ରମା) ଦଶଗୋଟି ଚନ୍ଦ୍ର—
2 Ten moons.

୩ । (ଲକ୍ଷଣାର୍ଥ; ଦୁଇ ହସ୍ତରେ ଦଶ ନଖ ଥିବାରୁ) ନଖକ୍ଷତ—
3. Scar caused by the nails

ହେମ ଚମ୍ପକ ଶୁଙ୍ଗ ମଧ୍ୟ
ଦଶ ଚନ୍ଦ୍ରମା କଲେ ଉଦେ—ଉପେନ୍ଦ୍ର. ହେମଚନ୍ଦ୍ରାମୃତ ।

**ଦଶ ଜଣ**—ଦେ. ବି—୧ । ବହୁସଂଖ୍ୟକ ବା ଅନିର୍ଦ୍ଦିଷ୍ଟ ସଂଖ୍ୟକ ବ୍ୟକ୍ତି—
Dasa jana 1 Many or an indefinite number of
दशजना persons.
दसआदमिओं (ଯଥା - ମୋ ଘରକୁ ତ ଦଶ ଜଣ ଆସୁଅଛନ୍ତି, କିଏ
(ଦଶଲୋକ—ଅନ୍ୟରୂପ) ମୋ ଧନ ଚୋରି କରି ନେଇଛି ବୋଲି ମୁଁ କାହାକୁ ଧରିବି ? )

୨ । ଦଶଟି ବ୍ୟକ୍ତି—2 Ten persons.

**ଦଶଣା**—ଗ୍ରା ବି—ଦଶ ଅଣା—
Dasanā Ten annas
दशाना [ଦ୍ର—ତୁଳନା କର—ଆଠଣା=ଆଠ ଅଣା; ପାଞ୍ଚଣା
दसआना =ପାଞ୍ଚ ଅଣା; ସାତଣା=ସାତ ଅଣା । ପୁନଶ୍ଚ ତୁଳନା କର—ଛଅଣା=ଛଅ ଅଣା; ଚାରଣା=ଚାରି ଅଣା ।]

**ଦଶତ**—ଗ୍ରା. ବୈଦେ. ( ଫା· ଦହଶତ୍ ) — ୧ । କ୍ଲେଶ—
Dasata 1 Trouble.
दहसत ୨ । ଯନ୍ତ୍ରଣା—2 Pain
दहसत ୩ । ଭୟ—3 Fear.
ଦଅଶତ
ଦହଶତ } ଅନ୍ୟରୂପ (ଯଥା—ରାତିରେ ଏକୁଟିଆ ଯିବାକୁ ମତେ ଦଶତ ହୁଏ ବା ଦଶତ ଲାଗେ । )

**ଦଶତି**—ସ. ବି. ( ଦଶ ଗୁଣିତ ଦଶ; ନିପାତନ )—ଶତ; ଶହେ—
Dasati A hundred.

**ଦଶ ତୁଠ**—ଦେ. ବି—୧ । ନଦ୍ୟାଦିର ଯେଉଁ ତୋଠରେ ଦଶ ଦିନ
Dasa tutha ପର୍ଯ୍ୟନ୍ତ ମୃତ ବ୍ୟକ୍ତିର ପ୍ରେତୋଦ୍ଦେଶ୍ୟରେ ଦଶ କ୍ରିୟା
दशाघाट କରାଯାଏ—1. The bank of a river or
ଦଶତୋଠ } ଅନ୍ୟରୂପ tank where a man offers oblation
ଦଶଘାଟ } cakes to a deceased ancestor during the 10 days of his death in performing his funerals.

୨ । ଦଶାହ ଦିନ ଦଶ ତୁଠରେ କରାଯିବା କ୍ରିୟା ଓ କ୍ରିୟା-କର୍ତ୍ତା ଏବଂ ଜ୍ଞାତି ଓ ବାନ୍ଧବମାନଙ୍କର କ୍ଷୌରପୂର୍ବକ ସ୍ନାନାଦି ଶୁଦ୍ଧି କ୍ରିୟା—2. The funeral rites performed on the 10th day of death by the heir and the sacrament acts including shaving and bath undergone by the relatives of a deceased person

**ଦଶତୁଠିଆ**—ଦେ.ବି—୧ । (ଗାଳିବିଶେଷ) ନିମ୍ନ ଶ୍ରେଣୀର ବ୍ରାହ୍ମଣ,ଯେଉଁ
Dasatuthiā ବ୍ରାହ୍ମଣ ଦଶ ତୋଠରେ ପୌରୋହିତ୍ୟ କରେ—
ଦଶତୋଠିଆ } ଅନ୍ୟରୂପ 1. (an abusive ephithet) An
ଦଶଘାଟିଆ } inferior class of Brāhmaṇas who officiates at funerals.

୨ । ଦଶ ଭୁଠରେ ପିନ୍ଧାଯିବା ଲୁଗା—
2. The cloth, worne at the Daśatutha.
ଦେ. ବିଣ.—ଅତି ନିକୃଷ୍ଟ ଓ କ୍ଷୁଦ୍ର (କଉଥ ଲୁଗା)—
Very inferior and small (cloth).
[ଦ୍ର—ସାଧାରଣତଃ ଦଶ ଭୁଠରେ ଉପସ୍ଥିତ ଜ୍ଞାତି ଓ ବନ୍ଧୁମାନଙ୍କୁ ସ୍ନାନ ପରେ ଯେଉଁ ନୂଆ ଲୁଗା ପିନ୍ଧିବାକୁ ଦିଆଯାଏ ତାହା ଅତି କ୍ଷୁଦ୍ର ହୋଇଥାଏ ।]

ଦଶ ଦଶା—ସଂ. ବି (ଦଶ+ଦଶା, କର୍ମଧା)—
Daśa daśā ୧ । ମନୁଷ୍ୟ ଜୀବନର ଦଶ ଅବସ୍ଥା—
1. Ten stages of a human life.
[ଦ୍ର—ଦଶ ଅବସ୍ଥା, ଯଥା—ଗର୍ଭବାସ, ଜନ୍ମ, ବାଲ୍ୟ, କୌମାର, ପୌଗଣ୍ଡ, ଯୌବନ, ସ୍ଥାବିର୍ଯ୍ୟ, ଜରା, ପ୍ରାଣରୋଧ ଓ ପ୍ରାଣନାଶ ।]
୨ । କାମାତୁର ବ୍ୟକ୍ତିର ଦଶ ଗୋଟି ଅବସ୍ଥା—
2. The ten stages which an unrequited lover experiences.
[ଦ୍ର—ଦଶ ଅବସ୍ଥା, ଯଥା—ଅଭିଲାଷ, ଚିନ୍ତା, ସ୍ମୃତି, ଗୁଣ କଥନ, ଉଦ୍ବେଗ, ପ୍ରଳାପ, ଉନ୍ମାଦ, ବ୍ୟାଧି, ଜଡ଼ତା ଓ ମୃତ୍ୟୁ ।]
୩ । ଭକ୍ତର ଦଶ ଗୋଟି ଅବସ୍ଥା—3. The ten stages passed by a devotee
[ଦ୍ର—ଦଶ ଅବସ୍ଥା, ଯଥା—ଶ୍ରବଣ, କୀର୍ତ୍ତନ, ସ୍ମରଣ, ଅର୍ଚ୍ଚନା, ବନ୍ଦନା, ପଦସେବନ, ଦାସ୍ୟ, ସୌଖ୍ୟ, ନିବେଦନ, ସ୍ଥିରଭାବ ।]

ଦଶ ଦାନ—ସଂ. ବି—୧ । ବୈତରଣୀ ଦାନ, ମନୁଷ୍ୟର ମୁମୂର୍ଷୁ ଅବସ୍ଥାରେ
Dasadāna କରାଯିବା ଦଶବିଧ ଦ୍ରବ୍ୟର ଦାନ—
1 The gift or present of ten specified articles offered by a man at his last stage of expiring.
[ଦ୍ର—ମଲା ପରେ ମନୁଷ୍ୟଙ୍କୁ ପ୍ରେତପୁରୀକୁ ବେଷ୍ଟନ କରିଥିବା ତପ୍ତବୈତରଣୀ ନଦୀକୁ ପାର ହେବାକୁ ପଡ଼େ ବୋଲି ହିନ୍ଦୁମାନେ ବିଶ୍ୱାସ କରନ୍ତି । ତେଣୁ ସେହି ନଦୀକୁ ନିରାପଦରେ ଉତ୍ତୀର୍ଣ୍ଣ ହୋଇ ପାରିବା ବିଶ୍ୱାସରେ ମନୁଷ୍ୟ ମରିବା ପୂର୍ବରୁ ବ୍ରାହ୍ମଣଙ୍କୁ ଦଶ ଗୋଟି ଦାନ କରେ । ଯଥା—ଗୋରୁ, ଭୂମି, ସୁନା, ବସ୍ତ୍ର, ଲୁହା ବା ଶାଳଗ୍ରାମଶିଳା, ତମ୍ବା ବା ଅନ୍ନ, ଘିଅ, ଯବ, ଜଳପାତ୍ର, ବିଞ୍ଚଣା ।]
୨ । ପଶାର ଦଶ ସଂଖ୍ୟକ ଦାନ—2. The throw of the dice resulting in the turning up of ten points.

ପଶାରେ ଯେ ଦଶ ଦାନ
ଖେଳରେ ସେ ପଡେ କାଣ । ପ୍ରାଚୀ. କଳ ଚଉତି ।

ଦଶ ଦିକ୍—ସଂ. ବି—ଉତ୍ତର, ଦକ୍ଷିଣ, ପୂର୍ବ, ପଶ୍ଚିମ, ଅଗ୍ନି, ବାୟୁ, ଈଶାନ,
Daśa dik ନୈର୍ଋତ, ଊର୍ଦ୍ଧ୍ୱ ଓ ଅଧଃ ଏହି ଦଶଟି ଦିଗ—
The 8 points of the compass and the points above and below a man; the ten directions.

ଦଶ ଦିକ୍‌ପାଳ—ସଂ ବି—ଦିକ୍‌ପାଳ (ଦେଖ)
Daśa dikpāla Dikpāla (See)

ଦଶ ଦିଗ—ଦେ. ବି. (ସଂ. ଦଶ+ଦିକ୍)—୧ । ଦଶ ଦିକ୍ (ଦେଖ)
Daśa diga 1. Daśa dik (See)
দশদিক ୨ । ସବୁ ଦିଗମାନ—
दसोदिशा 2. All the conceivable points or directions.
(ଦଶ ଦଶ—ଅନ୍ୟରୂପ)

ଦଶଦିଗ ଅନ୍ଧାର ଦିଶିବା—ଦେ. ବି—କିଂକର୍ତ୍ତବ୍ୟବିମୂଢ଼ ହେବା—
Daśadiga andhāra diśibā Being puzzled; bewilderment.
দশদিক্ অন্ধকার দেখা যাওয়া
(ଦଶଦିଗ ଶୂନ୍ୟ ଦେଖା ଯିବା—ଅନ୍ୟରୂପ)

ଦଶ ଦ୍ୱାର—ସଂ ବି—ଶରୀରସ୍ଥ ୧୦ ଗୋଟି ଛିଦ୍ର—(ଯଥା,—ଦୁଇ
Daśadwāra କାନ, ଦୁଇ ନାକ, ଦୁଇ ଆଖି, ଏକ ମୁଖ, ଏକ ଗୁହ୍ୟ, ଏକ ଲିଙ୍ଗ, ଏକ ବ୍ରହ୍ମରନ୍ଧ୍ର)—
The 10 outlets of the human body.

ଦଶଧା—ସଂ ଅ. (ଦଶ+ପ୍ରକାରାର୍ଥେ. ଧା)—୧ । ଦଶ ପ୍ରକାରେ—
Daśadhā 1. In ten ways; ten sorts of.
୨ । ଦଶଗୁଣ—2. Ten fold.
୩ । ଦଶ ଥର—3. Ten times.

ଦଶନ-ସଂ. ବି. (ଦନ୍‌ଶ ଧାତୁ=କାମୁଡ଼ିବା+କରଣ. ଅନ)—
Daśana ୧ । ଦଂଷ୍ଟ୍ରା; ଦାନ୍ତ—1. Tooth.
୨ । ପର୍ବତର ଅଗ୍ରଭାଗ—2 The peak or summit of a mountain.
୩ । ବର୍ମ; କବଚ; ସାଞ୍ଜୁ—
3. Armour; coat of a mail.
୪ । (+ଭାବ. ଅନ)—ଦଂଶନ; କାମୁଡ଼ା—2. Biting.
୫ । ପଲ ପରିମାଣ—5. Weight of one Pala.

ଦଶନପତ୍ର—ସଂ. ବି (୬ଷ୍ଠୀ ତତ୍; ଦଶନ+ପତ୍ର)—ଓଠ—
Daśana patra Lips.
(ଦଶନଚ୍ଛଦ—ଅନ୍ୟରୂପ)

ଘାର ଓଷ୍ଠ ସାଧ ବନ୍ଧୁ ଫଳ ଶ୍ୟାମ
ସୁରଙ୍ଗ ଦଶନ ପତ୍ର । ଧାନକୃଷ୍ଣ. ରସକଲ୍ଲୋଳ ।

ଦଶନ ବସନ—ସଂ. ବି. (ଦଶନ+ବସ୍ ଧାତୁ=ଆଚ୍ଛାଦନ କରିବା+ଅନ)—ଓଷ୍ଠ—Lips.
Daśana basana

ପ୍ରଖର ଶ୍ୱାସ ଶ୍ୱସବ ସ୍ଫୁଲତ ନାଶା ଦଗନ—ବସନେ ସ୍ଥିତ ଦଶନ କୃତ ଦଂଶନ ।
ଭକ୍ତ. ପ୍ରେମସୁଧାନିଧି ।

ଦଶନ ବାସ—ସଂ. ବି (ଦଶନ+ବସ ଧାତୁ+କରଣ. ଅ)—ଓଠ—
Daśana bāsa Lips.

ଦଶନ ବୀଜ—ସଂ. ବି (ବହୁବ୍ରୀହି; ଦଶନ+ବୀଜ)—ଡାଳିମ୍ବ—
Daśana bija Pomegranate.

ଦଶ ନାଡ଼ୀ—ଦେ. ବି—ଶରୀରରେ ଥିବା ଦଶସଂଖ୍ୟକ ନାଡ଼ୀ—
Daśa nārdi The ten blood-vessels said to run in the human body.

ବାୟୁସ ସପ୍ତ ନାଡୀରୁ ଦଶ ନାଡୀ ଶ୍ରେଷ୍ଠ ।
ଦଶ ନାଡୀ ମଧ୍ୟେ ତିନ ଅଟଇ ଶ୍ରେଷ୍ଠ ॥
ଇଡ଼ା ପିଙ୍ଗଳା ସୁଷୁମ୍ନା ଏହି ତିନ ।
ଏବେ ଯେ କହୁବ । ଦଶ ନାଡୀ ଭେଦ ସେନ ॥
ଚତୁର୍ଥରେ ଗାନ୍ଧାରୀ—ପଞ୍ଚମେ ହସ୍ତଜିହ୍ୱା ।
ଷଷ୍ଠେ ପୂଷା ଯଶସ୍ୱିନୀ ସପ୍ତମେ କହିବା ॥
ଅଠ ହୋଇ ଅଲମ୍ବୁଷା କୁହୁ ସେ ନବମ ।
ଶଙ୍ଖିନୀର ଅନୁରୂପେ ହୋଇଛି ଦଶମ ॥
ପ୍ରାଚୀ. ନୈମ୍ବସେଦସ୍ତୁ ।

**ଦଶନାମୀ ସନ୍ନ୍ୟାସୀ**—ଦେ. ବି—ଦଶ ଉପାଧିଯୁକ୍ତ ସନ୍ନ୍ୟାସୀମାନଙ୍କର
Dasanāmi samnyāsi ସମ୍ପ୍ରଦାୟ; ସନ୍ନ୍ୟାସୀ ତଳେ ନୋଟ୍ (ଦେଖ)
दशनामीसंन्यासी A sect of ascetics endowed
**দশনামী সন্ন্যাসী** with ten titles; notes under Sannyāsi (See).
[ ଦ୍ର—୧୦ ନାମ ଯଥା—୧ ତୀର୍ଥ, ୨ ଆଶ୍ରମ, ୩ ବନ, ୪ ଅରଣ୍ୟ, ୫ ଗିରି, ୬ ପର୍ବତ, ୭ ସାଗର, ୮ ସରସ୍ୱତୀ, ୯ ଭାରତୀ, ୧୦ ପୁରୀ । ଭଗବାନ ଶଙ୍କରାଚାର୍ଯ୍ୟ ସ୍ୱପ୍ରତିଷ୍ଠିତ ସନ୍ନ୍ୟାସି-ସମ୍ପ୍ରଦାୟକୁ ପୂର୍ବୋକ୍ତରୂପେ ଦଶ ଭାଗରେ ବିଭକ୍ତ କରି ଏମାନଙ୍କ ପାଇଁ ଭାରତର ଚତୁର୍ଦ୍ଦିଗରେ ଚାରୋଟି ମଠ ( ଯଥା—ଗୋବର୍ଦ୍ଧନ ମଠ, ଯୋଗୀ ମଠ, ଶୃଙ୍ଗେରୀ ମଠ, ଶାରଦା ମଠ ) ସ୍ଥାପନ କରି-ଥିଲେ ଏବଂ ପ୍ରତ୍ୟେକ ମଠରେ ଦେବ, ଆଚାର୍ଯ୍ୟ ଏବଂ ମଠ ସେବକ ବ୍ରହ୍ମଚାରୀ ନିଯୁକ୍ତ କରିଥିଲେ । ବ୍ରହ୍ମଚାରୀମାନେ ମଧ୍ୟ ଚାରି ଭାଗରେ ବିଭକ୍ତ ଓ ଚାରି ନାମରେ ପ୍ରସିଦ୍ଧ । ଯଥା—ସ୍ୱରୂପ, ପ୍ରକାଶ, ଚୈତନ୍ୟ ଓ ନନ୍ଦ । ବ୍ରହ୍ମଚାରୀମାନଙ୍କର କର୍ତ୍ତବ୍ୟ ଆଶ୍ରମସେବା, ଦେବସେବା, ଅତିଥିସେବା, ମଠର ଧନ ସଂରକ୍ଷଣ ଓ ବିଭାଗ ଏବଂ ସ୍ୱସ୍ୱ ମଠର ନିର୍ଦ୍ଦିଷ୍ଟ ବେଦପାଠ । (ଦୁର୍ଗାନାଥ ଘୋଷ ଵିଦ୍ୟାଭୂଷଣଙ୍କ ସ୍ୱାମୀ ସ୍ୱମାନନ୍ଦ ।) ]

**ଦଶନୀ**—ଦେ. ବିଣ. ସ୍ତ୍ରୀ ( ଅନ୍ୟ ଶବ୍ଦ ସଙ୍ଗେ ବ୍ୟବହୃତ )—ଦନ୍ତଯୁକ୍ତା; Daśani ଦନ୍ତବିଶିଷ୍ଟା—Toothed ( female ); with (ଦଶନା—ଅନ୍ୟରୂପ) tooth (female).

କୁନ୍ଦସୁନ୍ଦରଦଶନୀ ମନ୍ଦହାସୀ
ମଧୁର ନବ ପିକ-ଭାଷୀ—ଗୀତକୃଷ୍ଣ. ଜଗମୋହନ ।

**ଦଶନ୍ଧି**—ଦେ. ବି ( ସଂ. ଦଶାବ୍ଦୀ )—୧ । ଦଶ ବର୍ଷ—
Daśandhi 1 Ten years.
दसन्धि ୨ । ଦଶ ବର୍ଷକାଳର ସମଷ୍ଟି ବା ସମାହାର—
**দসোথ** 2. A decade.

**ଦଶ ପଚିଶ**—ଦେ. ବି—୧ । ଅଠପଚିଶି ଖେଳ ; ସ୍ତ୍ରୀମାନଙ୍କର ଏକପ୍ରକାର Daśa pachiśa କଉଡ଼ି ଖେଳ; କସିପାଞ୍ଚି ଖେଳ—
( ଦଶପଚିଶି—ଅନ୍ୟରୂପ ) 1. A kind of game with
दशपचिश cowries played by women
[ଦ୍ର—ଏହି ଖେଳରେ ୪ ଜଣ ଖେଳାଳୀ ୭ କଡ଼ା କଉଡ଼ିକୁ ମୁଠା କରି ଭୂଇଁରେ ପକାଇ ଖେଳନ୍ତି । ଏକ କଡ଼ା କଉଡ଼ି ଚିତ ହୋଇ ପଡ଼ିଲେ ୧୦ ଓ ପାଞ୍ଚକଡ଼ା ଚିତ ହୋଇ ପଡ଼ିଲେ ୨୫ ଗଣାଯାଏ । ଏହି ୧୦ ଓ ୨୫ କୁ ନେଇ ଏ ଖେଳର ଏପରି ନାମ କରଣ ହୋଇଛି ।]

**दशपचिश** ଦେ. ବିଣ—(ବହୁ ଅର୍ଥଜ୍ଞାପକ ସଂଖ୍ୟାବାଚକ ସହିତରେ)—
**দশবিশ** ଦଶଠାରୁ ପଚିଶ ମଧ୍ୟରେ ଅନିର୍ଦ୍ଦିଷ୍ଟ ସଂଖ୍ୟକ—
Of indefinite number between 10 and 25
[ଦ୍ର—ଠିକ୍ ସଂଖ୍ୟା ନିଶ୍ଚୟ କରି ନ ପାରିଲେ ଅନ୍ଦାଜ ଦ୍ୱାରା ଲୋକେ ଏହିପରି ବାକ୍ୟ ବ୍ୟବହାର କରିଥାନ୍ତି । ଯଥା—ସେ ସ୍ଥାନରେ ଦଶ ପଚିଶ ଜଣ ଲୋକ ଥିଲେ—ଅର୍ଥାତ୍ ୧୦ରୁ ଅଧିକ ଓ ୨୫ରୁ ନ୍ୟୂନ ଏପରି ଲୋକ ଥିଲେ । ଏହିପରି 'ଦଶ ବାର' 'ଦଶ ପନ୍ଦର' 'ଦଶ କୋଡ଼ିଏ' 'ଦଶ ତିରିଶି' ଇତ୍ୟାଦି ଶବ୍ଦର ବ୍ୟବହାର ଅଛି । ]

**ଦଶପଲ୍ଲ(ଲ୍ଲା)**—ଦେ. ବି—ଓଡ଼ିଶାର ଏକ ଗଡ଼ଜାତର ନାମ—
Daśapalā(llā) The name of a Feudatory State in Orissa.
[ଦ୍ର—ଏହା ପ୍ରଥମେ 'ବୌଦ୍ଧ' ରାଜ୍ୟ ମଧ୍ୟରେ ଗୋଟିଏ କ୍ଷୁଦ୍ର ରାଜ୍ୟ ଥିଲା । ବୌଦ୍ଧର ଜଣେ ରାଜପୁତ୍ର ୫୦୦ ବର୍ଷ ପୂର୍ବେ ଏହି ରାଜ୍ୟକୁ ସ୍ୱତନ୍ତ୍ର ଶାସନ କରିଥିଲେ । ଦଶପଲ୍ଲା ରାଜବଂଶ 'ଭଞ୍ଜ' ଉପାଧିଧାରୀ —କୃପାସିନ୍ଧୁ ଇତିହାସ । ]

**ଦଶପାରମିତାଧର**—ସଂ ବି—ବୁଦ୍ଧଦେବ ( ହି. ଶବ୍ଦସାଗର )—
Daśapāramitādhara A name of the Buddha
( ଦଶବଳ, ଦଶଭୂମିଗ, ଦଶଭୂମୀଶ—ଅନ୍ୟରୂପ )

**ଦଶ ପିଣ୍ଡ**—ଦେ. ବି—ମୃତ୍ୟୁର ୧୦ ଦିନ ମଧ୍ୟରେ ପ୍ରତିଦିନ ଦଶଭାଗରେ Daśa pinda ପ୍ରେତ ଉଦ୍ଦେଶ୍ୟରେ ଦିଆଯିବା ପିଣ୍ଡ—
The ten rice cakes offered daily by the heir of the deceased to the spirit of the deceased while performing the funeral rites during the ten days following the death.

**ଦଶ ବଦନ**—ସଂ ବି (ଦଶ+ବଦନ; ବହୁବ୍ରୀହି; ଯାହାର ଦଶଟି ମୁଣ୍ଡ Daśa badana ଅଛି )—ରାବଣ—Rābaṇa, the demon with ten heads.

**ଦଶବଳ**—ସଂ. ବି [ ଦଶ (ବୁଦ୍ଧି, କ୍ଷାନ୍ତି, ଶାର୍ଯ୍ୟାଦି )+ବଳ ଯାହାଙ୍କର, Daśabala ବହୁବ୍ରୀହି )—ବୁଦ୍ଧ—The Buddha.

**ଦଶ ବାଜୀ**—ସଂ. ବି (ଦଶ+ବାଜୀ=ଅଶ୍ୱ, ଯାହା ରଥରେ; ବହୁବ୍ରୀହି)--
Daśa bāji ଚନ୍ଦ୍ର—The Moon-god.

**ଦଶବାର୍ଷିକ**—ସଂ. ବିଣ (ଦଶବର୍ଷ+ଇକ)—୧ । ଦଶ ବର୍ଷରେ ସାଧ୍ୟ—
Daśabārshika 1 Achievable in ten years.
୨ । ଦଶ ବର୍ଷ ଅନ୍ତରରେ ଘଟିବା; ଦଶସାଲ୍ଲା—
2. Happening or taking place once in a decade.

**ଦଶ ବାହୁ**—ସଂ.ବି (ବହୁବ୍ରୀହି;ଦଶ+ବାହୁ)-ମହାଦେବ;ଶିବ (ହି.ଶବ୍ଦସାଗର)
Daśa bāhu Śiba.

**ଦଶବଧ**—ସଂ. ବି (ଦଶ+ବିଧ; ବହୁବ୍ରୀହି)—ଦଶ ପ୍ରକାର—
Daśabidha Ten sorts or kinds.
ସଂ. ବିଣ ( ସମାହାର; ବହୁବ୍ରୀହି )—ଦଶପ୍ରକାରର—
Of ten sorts or kinds.

**ଦଶବଶ**—ପ୍ରାଦେ. (ଯାଜପୁର) ବି.—ବିବାହର ୧୦ମ ଦିବସରେ
Daśabısa ଜୋଇଁର ଶ୍ଵଶୁରଘରକୁ ଯିବା—The going of the bridegroom to the bride's house in the 10th day after marriage.
[ଦ୍ର—ଚା ପୂର୍ବଦିନ ଯାତ୍ରାନ୍ତୁଥାରୁ (୪ ମଙ୍ଗଳା ଦିନ ଯାତ୍ରାନ୍ତୁଥାରୁ) କନ୍ୟାକୁ ବରଘରୁ ଅନ୍ୟର ଦୃଷ୍ଟିର ଅଗୋଚରରେ ବାପ ଘରକୁ ପଠାଇ ଦିଆଯାଏ । ମତାନ୍ତରେ ୮ ମଙ୍ଗଳା ଦିନ ବର ଘରର କେହି ଲୋକ କନ୍ୟାକୁ ଦେଖିବା ବିହିତ ନୁହେଁ ବୋଲି ବିଶ୍ଵାସ ଅଛି ।
ଜୋଇଁକୁ କାଁସିରେ ଶ୍ଵଶୁରଘରେ ନୂଆ ଗୁଡ଼ ଖାଇବାକୁ ଦିଆଯାଏ ।]

**ଦଶଭଗାରିଆ(କଥା)**—ଦେ ବିଶ.—ଭାଇ ଭଗାରିଆ (କଥା) (ଦେଖ)
Daśabhagāriā (kathā) Bhāibhagāriā (kathā) (See)
ଦଶଭାଗାବିବ

**ଦଶଭୁଜା**—ସ. ବି. ସ୍ତ୍ରୀ. (ଦଶ+ଭୁଜ ଧାତୁ, ସ୍ତ୍ରୀ. ଆ, ବହୁବ୍ରୀହି)—
Daśabhujā ଦୁର୍ଗାଦେବୀ (ଏହାଙ୍କର ୧୦ ଟି ହାତ ଥିବାରୁ)—Goddess Durgā ( represented as having ten hands with one head.)

**ଦଶମ**—ସ. ବିଶ. (ଦଶ+ପୂରଣାର୍ଥେ ମ)—ଦଶ ସଂଖ୍ୟାର ପୂରକ—
Daśama Tenth
ଦଶମ
ଦେ. ବି.—ଭାଗବତର ଦଶମସ୍କନ୍ଧ—The tenth book
ଦସଵାଁ of the Bhāgabata (Purāṇa).

**ଦଶମ ଅବତାର**—ସ. ବି.—ବିଷ୍ଣୁଙ୍କର ୧୦ ମ ବା ଶେଷ ଅବତାର,
Daśama abatāra କଲ୍କୀ ଅବତାର; ବିଷ୍ଣୁଙ୍କର କଳିଯୁଗର ଶେଷ ଅବତାର—The last or tenth incarnation of Bishṇu ( represented by a rider on a steed holding a drawn sword to purge the world of the evil doers in the course of the current 'Kali' age.
[ଦ୍ର—ଉକ୍ତ ଅଛି ଯେ—କଳିଯୁଗରେ ପାପର ମାତ୍ରା ଖୁବ୍ ବେଶୀ ହେଲେ ଭଗବାନ୍ ଘୋଡ଼ାରେ ଚଢ଼ି ହାତରେ ଖଣ୍ଡା ଧରି ପୃଥିବୀରେ ଅବତୀର୍ଣ୍ଣ ହୋଇ ଦୁଷ୍ଟ ସଂହାର କରି ପୃଥିବୀରେ ଶାନ୍ତି ପ୍ରତିଷ୍ଠା କରିବେ । ଏ ଅବତାର ଆଜିଯାଏ ପୃଥିବୀକୁ ଆସି ନାହାନ୍ତି । ଆମ ଦେଶରେ ସାଧାରଣ ଲୋକଙ୍କ ବିଶ୍ଵାସ ଯେ, 'ମାଳକା'ର ଡାକ ଅନୁସାରେ ଏହି କଲକୀ ଅବତାର ଶୀଘ୍ର ଉପସ୍ଥିତ ହୋଇ ଦୁଷ୍ଟ ସଂହାର କରିବେ ।]

**ଦଶମଉଳି**—ଦେ. ବି. (ପଦ୍ୟ) (ସ. ଦଶମୌଳି)—ରାବଣ—
Daśamauli Rābaṇa, the demon with ten heads.
ସେ ଶର ଦେଖି ଦଶମଉଳି ରାବଣ । କୃଷ୍ଣସିଂ ମ. ମହାଭାରତ ବନ ।

**ଦଶମ ଗ୍ରହ**—ସ. ବି. (ବ୍ୟଙ୍ଗୋକ୍ତି)—ନବଗ୍ରହ ରୁଷ୍ଟ ହେଲେ ଯେପରି
Daśama graha ମନୁଷ୍ୟକୁ ପୀଡ଼ା ଦିଅନ୍ତି ସେହିପରି ପୀଡ଼ା ଦେବା ବ୍ୟକ୍ତି ଦଶମ ଗ୍ରହରୂପେ କଳ୍ପିତ—One who gives much troubles.
ଜାମାତା ଦଶମୋ ଗ୍ରହଃ । ଉଦ୍ଭଟ—ଚଇ ।

**ଦଶମଥା**—ଦେ. ବି (ସ. ଦଶମସ୍ତକ)—ରାବଣ, ଦଶଶିର—
Daśamathā Rābaṇa; the demon with ten heads.
ବୃଥା କଲ ଦଶମଥା ତାଙ୍କ କଥା ଭଲ ସେହି ଭଲ ହେଲା ।
ଉପେନ୍ଦ୍ର ଭଞ୍ଜ. ବୈଦେହୀଶବିଳାସ ।

**ଦଶମ ଦଶା**—ସ ବି.—ମୃତ୍ୟୁ ପୂର୍ବର ଶେଷ ଅବସ୍ଥା, ମରଣାପନ୍ନ ଅବସ୍ଥା;
Daśama daśā ପ୍ରାଣାନ୍ତକ ଅବସ୍ଥା; ମରଣ ଅବସ୍ଥା—Last extremity before death; dying condition.
ଶଶ୍ୟାଚ ମହଥଳୀରେ ଲୋଟନ୍ତ ମଞ୍ଜୁସ୍ଥଳୀରେ କହ ଦଶାବନ ଦଶମ ଭୋଗ ।
ଉପେନ୍ଦ୍ର ଭଞ୍ଜ. ବୈଦେହୀଶବିଳାସ ।
[ଦ୍ର— ଦଶ ଦଶା ଯଥା -
ଦୃଙ୍ମନଃସଙ୍ଗସଂକଳ୍ପୋଜାଗରଃ କୃଶତା ଉତ୍ତିଃ ।
ହ୍ରୀତ୍ୟାଗୋନ୍ମାଦସମ୍ମୋହଃ ମରଣଞ୍ଚ ଦଶା ଦଶ ।]

**ଦଶମ ନ୍ୟାୟ**—ସ. ବି - ନ୍ୟାୟବିଶେଷ—
Daśama nyāya Name of an analogical argument.
[ଦ୍ର—ଦଶ ଜଣ ଲୋକ ଏକ ସଙ୍ଗେ ବିଦେଶ ଯାଉଥିଲେ । ବାଟରେ ଗୋଟିଏ ନଈ ପାର ହୋଇ ପଞ୍ଚାକଯାକ ସମସ୍ତେ ଅଛନ୍ତି କି ନାହିଁ ବୋଲି ଜାଣିବା ପାଇଁ ସେମାନେ ସମସ୍ତଙ୍କୁ ଗଣନା କରି ବସିଲେ । ପ୍ରଥମ ଗଣନାକାରୀ ଅନ୍ୟମାନଙ୍କୁ ଗଣିଲା କିନ୍ତୁ ଆପଣାକୁ ଭୁଲରେ ନ ଗଣି ଦେଖିଲା ଯେ ନଅ ଜଣ ହେଉଛନ୍ତି; ତହୁଁ ସମସ୍ତେ ଚିତ୍କାର କଲେ ଆଉ ଜଣେ କିଏ ହଜିଛି ? ତହୁଁ ଦ୍ଵିତୀୟ ଗଣନାକାରୀ ସେହିପରି ଅନ୍ୟମାନଙ୍କୁ ଗଣିଲା ଏବଂ ଆପଣାକୁ ଛାଡ଼ିଗଲା, ସେ ଦେଖିଲା ଯେ ନଅ ଜଣ ହେଉଛନ୍ତି । ଏହିପରି ପ୍ରତ୍ୟେକେ ଅନ୍ୟ ସମସ୍ତଙ୍କୁ ଗଣନ୍ତି, ମାତ୍ର ନିଜକୁ ଭୁଲରେ ଛାଡ଼ିଯାନ୍ତି । ଘରୁ ତ ଦଶ ଜଣ ବିଦେଶ କରି ବାହାରିଥିଲେ; ନଈ ପାର ହୋଇ ଗଣିଲା ବେଳକୁ ନଅ ଜଣ ହେଉଛନ୍ତି; ଆଉ ଜଣେ କିଏ ହଜିଲା ଏହି ସମସ୍ୟାରେ ପଡ଼ି ଦଶ ଜଣଯାକ ଅତି ବ୍ୟସ୍ତ ହେଉଛନ୍ତି ଏପରି ସମୟରେ ଜଣେ ଜ୍ଞାନୀ ଅଗ୍ରଦର୍ଶୀ ବ୍ୟକ୍ତି ସେଠାରେ ଉପସ୍ଥିତ ହୋଇ ସେମାନଙ୍କର ଭ୍ରାନ୍ତିମୂଳକ ଗଣନାକୁ ସେମାନଙ୍କୁ ଦର୍ଶାଇ ଦେବାରୁ ସେମାନେ ଆଶ୍ଵସ୍ତ ହେଲେ । ବିଶ୍ଵାତ୍ମା ପରମେଶ୍ଵର ସର୍ବତ୍ର ବିରାଜିତ; ମୂର୍ଖ ବ୍ୟକ୍ତି ତାଙ୍କୁ ବିସ୍ମୃତ ହୁଏ; କିନ୍ତୁ ଜ୍ଞାନୀ ଅଗ୍ରଦର୍ଶୀ ବ୍ୟକ୍ତି ବେଦାନ୍ତ ବାକ୍ୟ ଉପଦେଶ ଦ୍ଵାରା ବିଶ୍ଵାତ୍ମାକୁ ଦେଖି ପାରେ ଏହାହିଁ ଏ ନ୍ୟାୟର ପ୍ରତିପାଦ୍ୟ ବିଷୟ ।
(equivalent English idiom) To reckon without one's host, like a person omitting to reckon one's-self while counting to find out the number of persons present ].

**ଦଶ ମହାବିଦ୍ୟା**—ସ ବି. ସ୍ତ୍ରୀ—ତନ୍ତ୍ରୋକ୍ତ ମହାଶକ୍ତି ବା ଦୁର୍ଗାଙ୍କର
Daśa mahābidyā ଦଶବିଧ ମୂର୍ତ୍ତି—The Goddess Durgā in her ten manifestation as described in the Tantras (ତନ୍ତ୍ର).
[ ଦ୍ର—ଦଶବିଧ ମୂର୍ତ୍ତି, ଯଥା—କାଳୀ, ତାରା, ଷୋଡ଼ଶୀ, ଭୁବନେଶ୍ଵରୀ, ଭୈରବୀ, ଛିନ୍ନମସ୍ତା, ଧୂମାବତୀ, ବଗଳା, ମାତଙ୍ଗୀ ଓ କମଳା ବା ରାଜରାଜେଶ୍ଵରୀ ।]

**ଦଶମାଂଶ**—ସ. ବି. ( ଦଶମ+ଅଂଶ; କର୍ମଧା )—
Daśamāmśa ଦଶ ଭାଗରୁ ଏକ ଭାଗ—One tenth.

**ଦଶ ମାସ ଦଶ ଦିନ**—ଦେ. ବି—ଶାସ୍ତ୍ର ମତରେ ଭ୍ରୂଣର ଜନ୍ମ ହେବା
Daśa māsa daśa dina ପୂର୍ବରୁ ମାତୃଗର୍ଭରେ ରହିବାର ସମୟ–
**ଦଶମାସ ଦଶଦିନ** Ten months and ten days said to be the time during which a child lives in the mother's womb after conception.

[ ଦ୍ର—ଫଳତଃ ଏହା ନଅ ମାସଠାରୁ ଏଗାର ମାସ ପର୍ଯ୍ୟନ୍ତ ସମୟ । ]

ଦଶ ମାସ ଦଶ ଦିନ ଗର୍ଭରେ ଧାରଣ
କରି ମାତ ସହିଅଛୁ କେତେ ଯେ କଷଣ । ଗୋ.ଚନ୍ଦ୍ର ରଥ କବିତା ।

**ଦଶମାସିଆ**—ଦେ. ବିଣ—ଯେ ମାତୃ ଗର୍ଭରେ ଗର୍ଭବାସର ନିର୍ଦ୍ଦିଷ୍ଟ ସମୟ
Daśamāsiā ରହି ପୁଷ୍ଟି ଲାଭ କରି ଜନ୍ମ ଗ୍ରହଣ କରିଥାଏ—
**ଦଶମେସେ** One who is born after passing the
**दहमासा** full limited time in the mother's womb.

[ ଦ୍ର—ସାଧାରଣତଃ ଦେଖାଯାଏ ଯେ ଯେଉଁ ଶିଶୁ ୧୦ ମାସ ପୂର୍ବରୁ ଅର୍ଥାତ୍ ଗର୍ଭବାସର ଅଷ୍ଟମ ବା ନବମ ମାସରେ ଜନ୍ମ ହୋଇଥାଏ, ସେ ଦୁର୍ବଳ ଓ ନିର୍ବୁଦ୍ଧିଆ ହୁଏ । ଏଥିପାଇଁ ଲୋକେ ଅନ୍ୟ ବ୍ୟକ୍ତିକୁ ବ୍ୟଙ୍ଗ କରି ଏପରି ପ୍ରୟୋଗ କରି ଥାଆନ୍ତି । ଯଥା– ତୁମେ ଦଶ ମାସିଆ ହୋଇ ଜନ୍ମ ହୋଇଥିଲ, ଆମେ କଅଣ ଛ ମାସିଆ ହୋଇ ଜନ୍ମ ହୋଇଥିଲୁ କି ? ଅର୍ଥାତ୍ ତୁମ ଅପେକ୍ଷା ଆମର ବୁଦ୍ଧି, ବଳ, ଶକ୍ତି ବା ଅଧିକାର ଊଣା ନୁହେ । ]

**ଦଶମିକ**—ସ. ବି (ଦଶମ+ଇକ) (ଗଣିତ ପାରିଭାଷିକ ଶବ୍ଦ) —
Daśamika (ଗଣିତ) ଅଖଣ୍ଡ ରାଶିର ଦଶାଂଶର ଏକାଂଶ —
**दशमिक** (Arithmetic) Decimal.
**दसवाँ, दहसाला** [ ଦ୍ର—ଏହାର ଚିହ୍ନ, ସଂଖ୍ୟା ପୂର୍ବରୁ ଗୋଟିଏ ବିନ୍ଦୁ । ଯଥା—.୩ ଅର୍ଥାତ୍ ପୂର୍ଣ୍ଣ ୩ ଓ ଏକର ଦଶ ଭାଗରୁ ତିନି ଭାଗ । ]

ବିଣ—ଦଶଗୁଣୋତ୍ତର—Decimal.

**ଦଶମିକ ଭଗ୍ନାଂଶ**—ସ. ବି—ଯେଉଁ ଭଗ୍ନାଂଶ ଦଶମିକ ରାଶିର ପରିଚାୟକ--
Daśamika bhagnāmśa Decimal fraction.

**ଦଶମୀ**—ସ. ବିଣ. ସ୍ତ୍ରୀ. ( ଦଶମ+ଇନ୍; ୮ମା. ୧ବ, ଯେ ଦଶମ
Daśamī ଦଶାରେ ଉପଗତ ହୋଇଅଛି )—ଯେଉଁ ବୃଦ୍ଧ ୯୦ ବର୍ଷ ଅତିକ୍ରମ କରିଅଛି; ଅତି ବୃଦ୍ଧ— Very old; decrepit.

ବି. ସ୍ତ୍ରୀ. ( ଦଶମ+ସ୍ତ୍ରୀ. ଈ )—୧ । ତିଥିବିଶେଷ; ଚନ୍ଦ୍ରର ଦଶମ କଳାର ହ୍ରାସବୃଦ୍ଧି ଜନିତ ଦିନ—.
The 10th day of the lunar fortnight

୨ । ଜୀବନର ଅନ୍ତ୍ୟାବସ୍ଥା—
2. Extreme old age; the verge of death.

୩ । ମରଣାବସ୍ଥା ( ଦ୍ର. ଶବ୍ଦସାଗର )—3. Death.

[ ଦ୍ର—ଦଶମୀମାନଙ୍କ ମଧ୍ୟରୁ କେତେଗୁଡ଼ିଏ ଦଶମୀ ତିଥିମାନଙ୍କରେ ହିନ୍ଦୁମାନଙ୍କର ପର୍ବ ହୁଏ । ଯଥା—୧ । ଶ୍ୟାମରଦଶମୀ—ପୌଷ ମାସ ଶୁକ୍ଳ ଦଶମୀ ( ଶ୍ୟାମସ ଦଶମୀରେ ସୂର୍ଯ୍ୟପୂଜା ) ( ଯେବେ ଏ ଦଶମୀ ରବିବାର ଦିନ ପଡ଼େ ତେବେ ତାହା ପୁଣ୍ୟଶାଳୀ ହୁଏ । ) ୨ । ଫଗୁ ଦଶମୀ—ଫାଲ୍ଗୁନ ଶୁକ୍ଳ ଦଶମୀ ( ଦୋଳଯାତ୍ରାର ଆରମ୍ଭ ଦିନ; ଶ୍ରୀକୃଷ୍ଣପୂଜା ) ୩ । ଆଶ୍ୱିନ ଶୁକ୍ଳପକ୍ଷ ଦଶମୀ ବା ଦଶହରା ବା ବିଜୟା ଦଶମୀ । ୪—ବାହୁଡ଼ା ଦଶମୀ, ଆଷାଢ଼ ଶୁକ୍ଳପକ୍ଷ ଦଶମୀ । ( ଏ ଦିନ ଶ୍ରୀ ଜଗନ୍ନାଥ ମହାପ୍ରଭୁ ରଥରେ ଗୁଣ୍ଡିଚା ଘରୁ ବଡ଼ ଦେଉଳକୁ ଫେରନ୍ତି । ) ୫—ଜ୍ୟେଷ୍ଠ ଶୁକ୍ଳପକ୍ଷ ଦଶମୀ ବା ଦଶହରା ଗଙ୍ଗାସ୍ନାନ ( ଏ ଦିନ ଗଙ୍ଗାପୂଜା । ) ]

**ଦଶମୀ ଦଶା** – ସ. ବି—ମୃତ୍ୟୁ –
Daśamī daśā Death.

**ଦଶମୀଗତ**—ସ. ବିଣ. ପୁଂ. ( ଦଶମୀ=ଅନ୍ତ୍ୟାବସ୍ଥା+ଗତ=ପ୍ରାପ୍ତ;
Daśamīgata ୨ୟା ତତ୍ )—ଅତି ବୃଦ୍ଧ—Very old; (a
( ଦଶମୀଗତା—ସ୍ତ୍ରୀ ) person ) having one foot on the
( ଦଶମୀସ୍ଥ—ଅନ୍ୟରୂପ ) grave.

**ଦଶମୁକୁଟା** —ଦେ.ବି (ପଦ୍ୟ) (ସ. ଦଶ+ମୁକୁଟ; ବହୁବ୍ରୀହି)—ରାବଣ—
Daśamukuṭā Rābaṇa; the ten headed demon.

ଲଙ୍କାରେ ମାନ ଥିଲା ନାଶ ଦଶମୁକୁଟା ଯେ—
ବ୍ରଜନାଥ. ସମରତରଙ୍ଗ ।

**ଦଶମୁଖ** – ସ. ବି. ପୁଂ. ( ଦଶ+ମୁଖ; ବହୁବ୍ରୀହି )—ରାବଣ—
Daśamukha The ten headed demon; Rābaṇa.

**ଦଶମୁଣ୍ଡ**—ସ ବି ପୁଂ. ( ଦଶ+ମୁଣ୍ଡ, ବହୁବ୍ରୀହି )—ରାବଣ—
Daśamuṇḍa The ten headed demon; Rābaṇa.
( ଦଶମୂର୍ଦ୍ଧା; ଦଶଶିରଃ; ଦଶଶୀର୍ଷ—ଅନ୍ୟରୂପ )

**ଦଶମୂଳ**—ସ. ବି—ଜ୍ୱର, କାଶ ଓ ଶ୍ୱାସନାଶକ ପାଚନାର୍ଥ ବ୍ୟବହୃତ
Daśamūḷa ଆୟୁର୍ବେଦୋକ୍ତ ଦଶ ଗୋଟି ଗଛର ମୂଳ—Ten roots used for decoction as antidote against ever, cough and asthma.

[ ଦ୍ର—ଦଶମୂଳ ଯଥା—ବେଲ, ଗମ୍ଭାରି, ଫଣଫଣା, ଅଗବଥୁ, ପାଟେଲି, ଶାଳପର୍ଣ୍ଣୀ, କୃଷ୍ଣପର୍ଣ୍ଣୀ, ବୃହତୀ ( ଲଠାବେଙ୍ଗୋଳ ), ଅଙ୍କରାନ୍ତି ଓ ଗୋଖୁରା । ଗର୍ଭିଣୀ ସଙ୍କ୍ରାନ୍ତିରେ ଦଶ ଜଣ ଲୋକ ଏହି ଦଶଟି ମୂଳକୁ ପୃଥକ୍‌ରୂପେ ସଂଗ୍ରହ କରି ଆଣି ରଖିଲେ ତଦ୍ୱାରା ବିଶେଷ ଫଳ ହୁଏ ବୋଲି ଜନପ୍ରବାଦ ଅଛି । ]

**ଦଶମୂଳ ପାଚନ**—ସ. ବି—ଦଶମୂଳକୁ ପାଣିରେ ସିଝାଇ ତିଆରି କରାଯିବା
Daśamūḷa pāchana ପାଚନ—A decoction prepared out of ten roots of Daśamūḷa.

**ଦଶମୂଳୀ**—ସ. ବି. ( ସମାହାର ଦ୍ୱିଗୁ; ଦଶ+ମୂଳ+ଈ )—
Daśamūḷī ଦଶମୂଳ ( ଦେଖ )—Daśamūḷa ( See )

**ଦଶରଥ**—ସ. ବି. ( ଦଶଦିଗକୁ ରଥ ଯାଉଥିଲା ଯାହାର; ବହୁବ୍ରୀହି )—
Daśaratha ଅଯୋଧ୍ୟାର ସୂର୍ଯ୍ୟବଂଶୀୟ ରାଜା; ରାମଚନ୍ଦ୍ରଙ୍କ ପିତା—
( ଦଶସ୍ୟନ୍ଦନ—ଅନ୍ୟରୂପ ) Name of a king of Ajodhyā ( oudh ); father of king Rāmachandra.

[ ଦ୍ର—ଏ ଦେବତାମାନଙ୍କ ପକ୍ଷରେ ଯୁଦ୍ଧ କରି ଅନେକ ଥର ଅସୁରମାନଙ୍କୁ ପରାସ୍ତ କରିଥିଲେ । ]

ଦେ. ବି—କଙ୍କଡ଼ା—A crab.

**ଦଶରଥ ନନ୍ଦନ**—ସଂ. ବି. (ଷଷ୍ଠୀ ତତ୍, ଦଶରଥ+ନନ୍ଦନ)—ଦାଶରଥି; ଶ୍ରୀ ରାମଚନ୍ଦ୍ର—A name of Rāmachandra.
Daśaratha nandana
ଦଶରଥ ତନୟ } ଅନ୍ୟରୂପ
ଦଶରଥ ସୁତ }
[ ଦ୍ର—ଦଶରଥ ଶବ୍ଦ ପରେ ପୁତ୍ର ବାଚକ ଶବ୍ଦ ଯୁକ୍ତ ହେଲେ ଏହା ଶ୍ରୀ ରାମଚନ୍ଦ୍ରଙ୍କୁ ବୁଝାଏ—ହି. ଶବ୍ଦସାଗର । ]

**ଦଶରା**—ପ୍ରାଦେ. ( ସମ୍ବଲପୁର ) ବି—ଆଶ୍ୱିନ ମାସ—The month of Āświna.
Daśarā
ଦେ. ବି—ଦଶଘରା ( ଦେଖ )
Daśagharā ( See )

**ଦଶରା ମସରା**—ଦେ ବିଣ. ( ବ୍ୟଙ୍ଗ; ନ୍ୟାଯ୍ୟ )—କୌଣସି ବାକ୍ୟ ଅଶୁଦ୍ଧ ପଦବିନ୍ୟାସ କରି ଅର୍ଥାତ୍ ପୃଥକ୍ ପୃଥକ୍ ଶବ୍ଦମାନଙ୍କୁ ପୃଥକ୍ ପୃଥକ୍ ନ କରି ଲେଖିବା ଯୋଗୁଁ ଉକ୍ତିର ଅବୋଧତା—Writing words or sentences without proper punctuation.
Daśarā masarā
[ ଦ୍ର—ଜଣେ ଅନ୍ୟ ଜଣକ ନିକଟକୁ ପତ୍ର ଲେଖିଲେ 'ଦଶରା ମସରା' ପଠାଇବ । ପତ୍ର ପାଇବା ବ୍ୟକ୍ତି ଏହା ବୁଝି ପାରିଲେ ନାହିଁ, ଲେଖକ ଯଦି, 'ଦଶ-ରାମ ସରା' ଅର୍ଥାତ୍ ଦଶଗୋଟି ରାମସରା ବୋଲି ଶବ୍ଦଦ୍ୱୟକୁ ସ୍ପଷ୍ଟ କରି ପୃଥକ୍ ପୃଥକ୍ ଲେଖିଥାଆନ୍ତେ ତେବେ ପତ୍ରଗ୍ରାହୀ ଉକ୍ତିର ଅର୍ଥ ବୁଝି ପାରିବାରେ କିଛି ଗୋଳମାଳ ହୋଇ ନଥାନ୍ତା । ସେଥିପାଇଁ ଯେଉଁ ଲେଖକ ଶବ୍ଦଚ୍ଛେଦ କରି ନ ଲେଖେ, ତାହାପ୍ରତି 'ଦଶରା ମସରା କରି ଲେଖିଛି' ବୋଲି କୁହାଯାଏ । ]

**ଦଶରୂପକ**—ସଂ. ବି. (ଦଶ+ରୂପକ; ବହୁବ୍ରୀହି)—ନାଟକାଦିର ଲକ୍ଷଣ-ପ୍ରତିପାଦକ ଅଳଙ୍କାର ଗ୍ରନ୍ଥବିଶେଷ—
Daśarūpaka
A dramatic work having one of the 10 prescribed forms
[ ଦ୍ର—ଦଶଗୋଟି ରୂପକ; ଯଥା—ନାଟକ, ପ୍ରକରଣ, ଭାଣ, ବ୍ୟାୟୋଗ, ସମବକାର, ଡିମ, ଇହାମୃଗ, ଅଙ୍କ, ବୀଥି ଓ ପ୍ରହସନ । ]

**ଦଶଲୋକରେ ବସିବା**—ଦେ. କ୍ରି—ଭଦ୍ର ସମାଜରେ ବା ପ୍ରତିଷ୍ଠାଶାଳୀ-ମାନଙ୍କ ମଧ୍ୟରେ ଜଣେ ବୋଲି ଗଣିତ ହେବା—To be counted as a person (of some importance in the society) to move in high society.
Daśalokare basibā
দশজনের মধ্যে একজন হওয়া
**दशआदमीओं के बीचमें बैठना**
ଦଶରେ ବସିବା
ଦଶଜଣଙ୍କ ଭିତରେ ବସିବା } ଅନ୍ୟରୂପ
ଦଶ ପାଖରେ ବସିବା
ଦଶଲୋକରେ ବସାଉଠା କରିବା
( ଯଥା—ତୁମେ ତ ଦଶଲୋକରେ ବସିବା ଲୋକ; ତୁମକୁ କି ଏବେ ବୁଦ୍ଧି ବତେଇବି )

**ଦଶଶିର**—ଦେ. ବି—୧ । ଜହ୍ନି; ( ଏଥିରେ ସାଧାରଣତଃ ଦଶଗୋଟି ଶିରା ଥାଏ ବୋଲି )—
Daśaśira
**दशशिर** 1. Luffa Soutangula ( fruit ).
୨ । ( ସଂ. ଦଶଶିରାଃ ) ରାବଣ ( ଦଶମୁଣ୍ଡବିଶିଷ୍ଟ ବୋଲି )—
2. Rābaṇa.

୩ । ଶରୀରର ପ୍ରଧାନ ଦଶଗୋଟି ଶିର ବା ନାଡ଼ୀ—
3. The 10 veins of the body.
( ଯଥା—କଥା କହିଲାବେଳକୁ ବୁଢାର ଦଶଶିର ଦିଶୁଁ ହୋଇ ଯାଉଛି । )

**ଦଶ ସଂସ୍କାର**—ସଂ. ବି—ଦଶକର୍ମ ( ଦେଖ )
Daśa saṁskāra Daśakarma ( See )

**ଦଶ ସହସ୍ର**—ସଂ. ବି—ଦଶହଜାର ସଂଖ୍ୟା; ଏକ ଅୟୁତ—
Daśa sahasra The number ten thousand.
ବିଣ—ଦଶ ହଜାର ସଂଖ୍ୟକ—
Numbering ten thousand.

**ଦଶସାଲା**—ଦେ. ବିଣ. (ସଂ ଦଶ+ଫା. ସାଲ୍=ବର୍ଷ)—
Daśasālā ୧ । ଦଶବର୍ଷ ବ୍ୟାପୀ—2. Extending over a period of ten years.
ଦଶସାଲିଆ } ଅନ୍ୟରୂପ
ଦଶସନିଆ }
୨ । ଦଶବର୍ଷ ଅନ୍ତରରେ ଥରେ ଘଟିବା—
দশসালা; দশসনা 2. Taking place at intervals of 10 years.
**दशसाला, दहसाला**
୨ । ଦଶବର୍ଷ ମିଆଦ ପାଇଁ କରାଯିବା—
3. Having a term of ten years.
୪ । ଦଶବର୍ଷ ବୟସ୍କ—4. Aged ten years.

**ଦଶସାଲା ବନ୍ଦୋବସ୍ତ**—ଦେ ବି—୧ । ୧୦ ବର୍ଷ ମିଆଦ ପର୍ଯ୍ୟନ୍ତ କରାଯିବା ଭୂରାଜସ୍ୱ ବନ୍ଦୋବସ୍ତ—
Daśasālā bandobasta
দশসালা বন্দোবস্ত 1. Decennial settlement of land revenue, temporary settlement of revenue for a period of ten years.
**दशसाला बन्दोबस्त**
୨ । ଭାରତର ଗଭର୍ଣ୍ଣର ଲର୍ଡ଼ କର୍ଣ୍ଣୱାଲିସ୍‌ଙ୍କ ଅମଳରେ ୧୦ ବର୍ଷ ମିଆଦପାଇଁ କରାଯିବା ବଙ୍ଗଦେଶର ଭୂରାଜସ୍ୱ ବନ୍ଦୋବସ୍ତ—2. Decennial settlement of land-revenue made with the zemindars of the province of Bengal by the British Government during the reign of Lord Cornwallis, Governor General of India.
[ ଦ୍ର—ଏହି ଭୂରାଜସ୍ୱ ବନ୍ଦୋବସ୍ତ ପ୍ରଥମ ମିଆଦ ଗତ ହେବା ପରେ ବଙ୍ଗଦେଶରେ ଚିରସ୍ଥାୟୀ ବନ୍ଦୋବସ୍ତ ( Permanent settlement ) ହେଲା; କିନ୍ତୁ ଓଡ଼ିଶାରେ ଆଜଯାଏ ଏହି ଦଶସାଲା ବନ୍ଦୋବସ୍ତ ଚାଲୁଅଛି ଏବଂ ସରକାର ଦୟାକରି ୧୦ ବର୍ଷ ଅନ୍ତରରେ ଏହା ନ କରି ୨୦।୨୫।୩୦ ବର୍ଷ ଅନ୍ତରରେ ଥରେ ଲେଖାଏଁ ଓଡ଼ିଶାର ଭୂରାଜସ୍ୱ ବନ୍ଦୋବସ୍ତ କରି ଓଡ଼ିଶାବାସୀଙ୍କୁ ସମ୍ମାନ ଦେଉଛନ୍ତି । ]

**ଦଶହରା**—ସଂ. ବି. (ଦଶ=ଦଶବିଧ ପାପ+ହୃ ଧାତୁ=ହରଣ କରିବା +କର୍ତ୍ତୃ ଅ; ସ୍ତ୍ରୀ. ଆ)—ଜ୍ୟେଷ୍ଠ ଶୁକ୍ଳା ଦଶମୀ—
Daśaharā
The 10th day of the bright fortnight of the month of Jyeshṭha.
[ ଦ୍ର—ଏ ଦିନ ଗଙ୍ଗାଙ୍କ ଜନ୍ମଦିବସ ଅର୍ଥାତ୍ ଗଙ୍ଗା ପୃଥିବୀରେ ଅବତରଣ କରିଥିଲେ । ଏ ଦିନ ଗଙ୍ଗାସ୍ନାନ ବିଶେଷ ପାପନାଶକ ।

ଏ ଦିନ ଗଙ୍ଗାପୂଜା ଓ ଗଙ୍ଗାସ୍ନାନ କଲେ ନିମ୍ନଲିଖିତ ୧୦ ଗୋଟି ପାପ ନାଶ ଯାଏ, ଯଥା—୧ । ତ୍ରିବିଧ କାୟିକପାପ—ପରଦାର ଗମନ, ଅଦତ୍ତ ପରଦ୍ରବ୍ୟ ଗ୍ରହଣ ବା ଚୋରି ଓ ହିଂସା । ୨ । ଚତୁର୍ବିଧ ବାଚନିକ ପାପ—ନିଷ୍ଠୁର ବାକ୍ୟ ବା ପାରୁଷ୍ୟ; ମିଥ୍ୟା ବା ଅନୃତ, କ୍ରୂରତା ବା ପୈଶୁନ୍ୟ, ଅସମ୍ବନ୍ଧ ପ୍ରଳାପ ବା ଏଣୁ ତେଣୁ କହିବା । ୩ । ତ୍ରିବିଧ ମାନସିକ ପାପ—ପରଦ୍ରବ୍ୟ ଗ୍ରହଣେଚ୍ଛା ବା ଲୋଭ, ପରର ଅନିଷ୍ଟଚିନ୍ତା ଓ ମିଥ୍ୟା ବିଷୟରେ ଅଭିନିବେଶ ବା ଚିନ୍ତା । ]

ଦେ. ବି—ଆଶ୍ୱିନ ଶୁକ୍ଳ ଦଶମୀ, ବିଜୟାଦଶମୀ—
The tenth day of the bright fort-night of Aświna.

[ ଦ୍ର—ଏହା ଦୁର୍ଗୋତ୍ସବର ଶେଷ ଦିନ ଏବଂ ଏ ଦିନ ମହା-ସମାରୋହରେ ମୃଣ୍ମୟୀ ଦୁର୍ଗା ପ୍ରତିମାକୁ ଜଳରେ ବିସର୍ଜନ କରାଯାଏ ।]

**ଦଶହରା ଖରଚ**—ଦେ. ବି—୧ । ଦଶହରା ବା ବିଜୟାଦଶମୀ ଉତ୍ସବ
Daśaharā kharacha
ପୂଜାର ଖରଚ
**ଦସହରାଖର୍ଚ୍ଚ**
ଉପଲକ୍ଷେ ପ୍ରଭୁ ବା ଗୃହକର୍ତ୍ତାଙ୍କଠାରୁ ଭୃତ୍ୟାଦି ବା ପରିବାରର ପୁତ୍ର କନ୍ୟାଦି ଯାତ୍ରାଖରଚ କରିବା ପାଇଁ ଯେଉଁ ପାରି-ତୋଷିକ ବା ବକ୍ସିସ ପାଆନ୍ତି—1. Perquisite or tips given to servants and children of the family on the Bijayā Daśamī day festival.

୨ । ପରିବାରରେ ଦଶହରା ଉତ୍ସବ ପାଳନ ଉପଲକ୍ଷରେ କରାଯିବା ବ୍ୟୟ—2. The expenses incurred for conducting the Daśaharā festival in the family.

**ଦଶହରା ପାଉଣା**—ଦେ. ବି—ଦଶହରା ଖରଚ ୧ (ଦେଖ)
Daśaharā pāuṇā Daśaharā kharacha 1 (See)
(ଦଶହରା ବକ୍ସିସ, ଦଶହରା ଯାତ୍ରାଖରଚ—ଅନ୍ୟରୂପ)

**ଦଶହାଣ୍ଡି**—ଦେ. ବି—ବାଇଡ଼ି ହାଣ୍ଡି; ମୃତ ବ୍ୟକ୍ତିର ଘରେ ଦଶାହ ଦିନ
Daśahāṇḍi
ଯେଉଁ ହାଣ୍ଡିରେ ଅନ୍ନ ପାକ ହୁଏ ଓ ଯାହା ଉକ୍ତଦିନ ରାତିରେ ଗ୍ରାମ ମୁଣ୍ଡରେ କିମ୍ବା କୌଣସି ପତିତ ନିର୍ଜନ ସ୍ଥାନରେ ଫୋପଡ଼ା ଯାଏ—The earthen pots in which food is cooked on the 10 th day of the funerals and which are thrown away on the same night.

[ଦ୍ର—ନବମ ଦିନ ପର୍ଯ୍ୟନ୍ତ ରନ୍ଧା ହେଉଥିବା ପାକରେ ମୃତ ବ୍ୟକ୍ତିର ଜ୍ଞାତି ଓ ଗୋତ୍ରର ଲୋକମାନଙ୍କ ଭିନ୍ନ ଅନ୍ୟ କେହି ଖାଆନ୍ତି ନାହିଁ ଓ ଦଶାହ ପାକରେ ନିମନ୍ତ୍ରିତ ବନ୍ଧୁମାନେ, ଯେଉଁ-ମାନେ କି ଦଶାହ ଶୁଦ୍ଧି ଦିନ ଦଶପିଣ୍ଡା ଘାଟରେ କ୍ଷୌର ଓ ସ୍ନାନାଦି କରନ୍ତି ସେମାନେହିଁ ଖାଆନ୍ତି; ଏତଦ୍ଭିନ୍ନ ଶୁଦ୍ଧି ଉପଲକ୍ଷେ ଆଗତ ଅନ୍ୟାନ୍ୟ ବନ୍ଧୁବାନ୍ଧବ ସେହି ପାକରେ ଅନ୍ନ ଭୋଜନ କରନ୍ତି ନାହିଁ, ଶୁଦ୍ଧିଘରର ନବମ ଦିନ ପର୍ଯ୍ୟନ୍ତ ଦୁଇ ପ୍ରକାର ହାଣ୍ଡିରେ ରନ୍ଧା ଯାଏ ଓ ଯେଉଁମାନେ ହବିଷ୍ୟ କରନ୍ତି ସେମାନଙ୍କର ହାଣ୍ଡି ପ୍ରତ୍ୟହ ଫୋପାଡ଼ି ନୂଆ ହାଣ୍ଡି କରାଯାଏ । ଯେଉଁ ହାଣ୍ଡିରେ ପିତା ଭାତ (ଉକ୍ତ) ରନ୍ଧା ଯାଏ ଓ ଯେଉଁ ହାଣ୍ଡିରେ ଦଶାହଦିନ ରନ୍ଧାଯାଏ ସେ ହାଣ୍ଡିମାନଙ୍କୁ ଦଶକ୍ରିୟା ଧରିଥିବା ବ୍ୟକ୍ତି ଦଶାହ ଦିନ ରାତି ଅଧ ପରେ ନିର୍ଜନରେ ନେଇ ଗ୍ରାମ ମୁଣ୍ଡରେ ଫିଙ୍ଗି ଦେଇ ଆସନ୍ତି ।]

**ଦଶା**—ସଂ. ବି. ସ୍ତ୍ରୀ.—(ଦନ୍ଶ ଧାତୁ=କାମୁଡ଼ିବା+ଭାବ. ଅ, ସ୍ତ୍ରୀ. ଆ)
Daśā ୧ । ଅବସ୍ଥା—1 State; condition; predicament; circumstances.

୨ । (+କର୍ମ· ଅ)—ଲୁଗାର ଦଶୀ; ବସ୍ତ୍ର ପ୍ରାନ୍ତ—
2. The hem or end of a cloth.

୩ । ଦୀପର ବତି ବା ଶଳିତା—
3. Wick of a lamp

୪ । ମନୁଷ୍ୟର ଜୀବନର ଅବସ୍ଥା—4. Condition or circumstance of a man's life
Daśā daśa (See)

[ ଦ୍ର—ଏହା ଶାରୀରିକ, କାମଜ ଓ ଭକ୍ତିଜ, ଏପରି ୩ ପ୍ରକାର । 'ଦଶଦଶା' ତଳେ ନୋଟ ଦେଖ । ]

୫ । (ଫଳିତ ଜ୍ୟୋତିଷ) ଗ୍ରହମାନେ ମନୁଷ୍ୟର ଜୀବଦ୍ଦଶାର ଭିନ୍ନ ଭିନ୍ନ କାଳରେ ଭିନ୍ନ ଭିନ୍ନ ସ୍ଥାନରେ ଅବସ୍ଥାନ କରିବା ଯୋଗୁଁ ମନୁଷ୍ୟର ଯେଉଁ ଅବସ୍ଥା ଘଟାନ୍ତି, ଗ୍ରହଦଶା—5. (Astrology) The plight or condition of a man due to different aspects of the planets considered as affecting the fortunes of a man during the successive periods of his life.

[ ଦ୍ର—ଫଳିତ ଜ୍ୟୋତିଷ ମତରେ ଦଶା ଗଣନା କରିବା ସମ୍ପର୍କରେ ମନୁଷ୍ୟର ଆୟୁ ବିଂଶୋତ୍ତରଶତ (୧୨୦ବର୍ଷ) ବା ଶତ-ମଷ୍ଟୋତ୍ତର (୧୦୮ ବରଷ) ଧରାଯାଏ, ଏହାକୁ ଯଥାକ୍ରମେ ବିଂଶୋତ୍ତରୀ ଓ ଅଷ୍ଟୋତ୍ତରୀ ଦଶା ବୋଲାଯାଏ । ବିଂଶୋତ୍ତରୀ ଗଣନାକ୍ରମେ ସୂର୍ଯ୍ୟଙ୍କ ଦଶା ୬ ବର୍ଷ, ଚନ୍ଦ୍ରଙ୍କ ଦଶା ୧୦ ବର୍ଷ, ମଙ୍ଗଳ ୭, ରାହୁ ୧୮, ବୃହସ୍ପତି ୧୬, ଶନି ୧୯, ବୁଧ ୧୭, କେତୁ ୭ ଓ ଶୁକ୍ର ଦଶା ୨୦ ବର୍ଷ ଭୋଗ ହୁଏ (ଖଡ଼ିରତ୍ନ ପାଞ୍ଜି) । ଅଷ୍ଟୋତ୍ତରୀ ଗଣନାକ୍ରମେ ରବି ବା ସୂର୍ଯ୍ୟଙ୍କ ଦଶା ୬ ବର୍ଷ, ଚନ୍ଦ୍ର ୧୫ ବର୍ଷ, ମଙ୍ଗଳ ୮ ବରଷ, ବୁଧ ୧୭, ଶନି ୧୦, ବୃହସ୍ପତି ୧୬, ରାହୁ ୧୨, କେତୁ ୩ ଓ ଶୁକ୍ର ଦଶା ୨୧ ବର୍ଷ ଭୋଗ ହୁଏ ( ହି ଶବ୍ଦସାଗର ) ଉତ୍କଳ ଦେଶରେ ପ୍ରଚଳିତ କେରଳ ଦଶା ଅନୁସାରେ ମନୁଷ୍ୟର ପୂର୍ଣ୍ଣ ପରମାୟୁ ୧୨୦ ବର୍ଷ ଧରାଯାଏ । ଏହାକୁ ଗ୍ରହମାନଙ୍କର 'ମହାଦଶା' ବୋଲାଯାଏ । ପ୍ରତ୍ୟେକ ଗ୍ରହଙ୍କ ମହାଦଶା ମଧ୍ୟରେ ପୁଣି ନବଗ୍ରହଙ୍କର ଅନ୍ତର୍ଦଶା ଗଣାଯାଏ ଓ ଅନ୍ତର୍ଦଶା କାଳ ମଧ୍ୟରେ ପୁଣି ନବଗ୍ରହଙ୍କର ପ୍ରତ୍ୟନ୍ତର ଦଶା ଗଣାଯାଏ । କୃତ୍ତିକା ନକ୍ଷତ୍ରରୁ ଆରମ୍ଭ କରି ୨୭ ନକ୍ଷତ୍ରକୁ ରବି, ଚନ୍ଦ୍ର, ମଙ୍ଗଳ, ରାହୁ, ବୃହସ୍ପତି, ଶନି, ବୁଧ, କେତୁ ଓ ଶୁକ୍ର ଏହି ନବଗ୍ରହଙ୍କ ତଳେ ତିନି ଧାଡ଼ିରେ ଲେଖି ଜନ୍ମକାଳରେ ଯେଉଁ ନକ୍ଷତ୍ର ଭୋଗ ସେହି ନକ୍ଷତ୍ରର ଅଙ୍କ ଯେଉଁ ଗ୍ରହ ତଳେ ଲେଖା ହୋଇଥିବ, ଉକ୍ତ ବ୍ୟକ୍ତିର ଜନ୍ମକାଳରେ ସେହି ଦଶା ଭୋଗ ହେଉଅଛି ବୋଲି ସ୍ଥିର କରିବ—ଖଡ଼ିରତ୍ନ ପଞ୍ଜିକା । ]

ଦେ. ବ—୧ । କପାଳଦଶା; ଦୈବଦୁର୍ବିପାକ; ଦୁର୍ଦ୍ଦଶା; ଦୁରବସ୍ଥା, ଦୁରଦୃଷ୍ଟ—1. One's evil stars; evil days; misfortune; wretched condition
ଦଶା
দশা

୨ । ଭକ୍ତିଜନିତ ଭାବାବେଶ, ଦଶ ଉଭା ହେବା; ଦଶ ଲାଗିବା; ଧର୍ମୋନ୍ମାଦ—2. Religious ecstacy.

୩ । (ସଂ. ଦଶାହ) ମୃତାହଠାରୁ ୧୦ ଦିନ ମଧ୍ୟରେ କୃତ୍ୟ କ୍ରିୟା, ଦଶକ୍ରିୟା—3. Funeral rites done during the ten days after a person's death

ସେ ମଲେ କରିବୁ କିଣା ଦଶା କ୍ରିୟା ଘର—ପୀତାମ୍ବର ନୃସିଂହପୁରାଣ ।

୪ । ଅଦୃଷ୍ଟ; ଭାଗ୍ୟ—4. Fortune; luck.

୫ । (ସଂ. ଦଶ) ଦହଲା; ଦଶ ଫୁଟଯୁକ୍ତ ତାସ—5. ( in card play ) The card having 10 points on it.

ଦଶା, ଦଶ, ଦଶକ୍ରିୟା, ଦଶାକ୍ରିୟା, ଦଶାଘର, ଦଶାକ୍ରିୟାଘର } ଅନ୍ୟରୂପ

୬ । ( ସଂ. ଦଶାହ ) ମୃତ ବ୍ୟକ୍ତିର ପ୍ରେତ ଉଦ୍ଦେଶ୍ୟରେ ଦଶମ ଦିନ କରାଯିବା ଅନୁଷ୍ଠାନମାନ—6. The funeral rites performed on the 10th day of a person's death

୭ । ମୃତାହର ଦଶମ ଦିବସ—7. The tenth day of the funerals.

ପ୍ରାଦେ (ସାକ୍ଷୀଗୋପାଳ) ବ – ଶୁଧକାରଣଭାତ (ଦେଖ)—Śudhakāraṇa bhāta (See).

**ଦଶାଇଶ**—ଦେ. ବ (ସଂ. ଦଶଶୀର୍ଷ)—ରାବଣ—
Daśāisa The ten-headed demon, Rābaṇa

କଥା କହନ୍ତି କୌଶଲ୍ୟାଶିଷ
କାଲି ମାରିବାକୁ ଦଶାଇଶ । ବିଶ୍ୱନାଥ. ବିଚିତ୍ରରାମାୟଣ ।

**ଦଶାଂଶ**—ସଂ ବ (ଦଶ + ଅଂଶ)—ଦଶମିକ, ଦଶ ଭାଗରୁ ଏକ ଭାଗ—
Daśāmśa One tenth.
(ଦଶାଂଶିକ—ଅନ୍ୟରୂପ)

**ଦଶାକର୍ଷ**—ସଂ. ବ (ଦଶା+ଆ+କୃଷ ଧାତୁ+କର୍ତ୍ତୃ. ଅ)—
Daśākarsha ୧ । ପ୍ରଦୀପ; ଦୀପ—1. A lamp.
(ଦଶାକର୍ଷୀ—ଅନ୍ୟରୂପ) ୨ । (+କର୍ମ. ଅ) ଲୁଗାର କାନି; ବସ୍ତ୍ରାଞ୍ଚଳ—2. Skirt of cloth

୩ । ପଣତକାନି—3. The end of a veil; hem of a garment.

୪ । (+ଭାବ. ଅ) ଗ୍ରହଣ (ପ୍ରକୃତିବାଦ)—4. Acceptance.

**ଦଶାକର୍ଷୀ**—ସଂ. ବି ( ଦଶା+ଆ+କୃଷ ଧାତୁ+ଇନ୍ ୧ମା. ୧ବ )—
Daśākarshi ଦଶାକର୍ଷ (ଦେଖ)
Daśākarsha (See)

**ଦଶା କ୍ରିୟା**—ଦେ. ବି (ସଂ. ଦଶାହ+କ୍ରିୟା)—ମୃତାହଠାରୁ ଦଶଦିନ ପର୍ଯ୍ୟନ୍ତ କରାଯିବା ପ୍ରେତକର୍ମ—Funeral rites performed during the ten days of a person's death.
Daśā kriyā
(ଦଶାକ୍ରିୟାଘର—ଅନ୍ୟରୂପ)

**ଦଶା ଖଣ୍ଡଣ(ନ)**—ଦେ. ବି (ସଂ ଦଶା+ଖଣ୍ଡନ)—ଦୁର୍ଦ୍ଦଶା ଯାଇ ସୁଦଶା ପଡ଼ିବା—The passing of the period of misfortune (or bad days) and the dawning of one's good days.
Daśā khaṇḍaṇa(na)
ଦଶାଖଣ୍ଡିବା, ଦଶାମେଣ୍ଟିବା, ଦଶାମେଣ୍ଟଣ, ଦଶାଘୁଞ୍ଚିବା } ଅନ୍ୟରୂପ
দশাখণ্ডন

**ଦଶା ଖଣ୍ଡିବା**—ଦେ କ୍ରି—(ପ୍ରଭୁଙ୍କ ପ୍ରାର୍ଥନା କରିବାରେ ବ୍ୟବହୃତ)—କୌଣସି ବ୍ୟକ୍ତିର ଦୁର୍ଦ୍ଦଶା ଦୂର କରିବା—To cause one's misfortunes to vanish.
Daśā khaṇḍibā
ଦଶା ଖଣ୍ଡାଇବା, ଦଶା ଘୁଞ୍ଚାଇବା } ଅନ୍ୟରୂପ
দশাখণ্ডন করা ଦେ ବ—ଦଶା ଖଣ୍ଡଣ ( ଦେଖ )
দশা খণ্ডনা Daśā khaṇḍaṇa ( See )

**ଦଶାଘାଟ**—ଦେ. ବ—ଦଶଭୁଠ ୧ ( ଦେଖ )
Daśāghāṭa Daśatuṭha 1 ( See )
(ଦଶାଭୁଠ, ଦଶାତୋଠ—ଅନ୍ୟରୂପ)
দশাঘাট

**ଦଶାଘାଟିଆ**—ଦେ. ବ—ଦଶଭୁଠିଆ ( ଦେଖ )
Daśāghāṭiā Daśatuṭhiā ( See )
(ଦଶାଭୁଠିଆ—ଅନ୍ୟରୂପ)

**ଦଶାଙ୍ଗ**—ସଂ. ବ—୧ । ଦେବତା ପୂଜା ସମୟରେ ବ୍ୟବହୃତ ଦଶ ଗୋଟି ସୁଗନ୍ଧ ଦ୍ରବ୍ୟଦ୍ୱାରା ପ୍ରସ୍ତୁତ ଧୂପ—1. Incense consisting of ten ingredients offered to Deities during worship.
Daśāṅga
(ଦଶାଂଗ – ଅନ୍ୟରୂପ)

[ ଦ୍ର—ଦଶଟି ଦ୍ରବ୍ୟ ଯଥା—ଶିଳାରସ, ଗୁଗ୍ଗୁଳ, ଚନ୍ଦନ, ଜଟାମାଂସୀ, ଲୋବାନ୍, ଝୁଣା, ବେଣାଚେର, ନାଖି, ଭୀମସେନୀ କପୂର, କସ୍ତୁରୀ, ମତାନ୍ତରରେ ମହୁ; ନାଗର ମୁଥା, ଘିଅ, ଚନ୍ଦନ, ଗୁଗ୍ଗୁଳ, ଅଗର, ଶିଳାଜତୁ, ଝୁଣା, ଗୁଡ଼, ରାଇ ସୋରିଷ, ମତାନ୍ତରରେ ଗୁଗ୍ଗୁଳ, ଗନ୍ଧକ, ଚନ୍ଦନ, ଜଟାମାଂସୀ, ଖଡାବସା, ଝୁଣା, ବେଣାଚେର, ଘିଅ, କର୍ପୂର, କସ୍ତୁରୀ । ଦ୍ର. ଶବ୍ଦସାଗର । ]

୨ । ଦଶାଙ୍ଗ ପାଚନ ( ଦେଖ )
2 Daśāṅga pāchana ( See )

ସଂ. ବିଣ—ଦଶ ଗୋଟି ଅଙ୍ଗ ବା ଉପାଦାନବିଶିଷ୍ଟ—Having ten component parts

**ଦଶାଙ୍ଗ ପାଚନ**—ସଂ. ବ—ବୈଦ୍ୟ ଶାସ୍ତ୍ରୋକ୍ତ ୧୦ ଗୋଟି ପଦାର୍ଥକୁ ଜଳରେ ସିଝାଇ ତହିଁରୁ ପ୍ରସ୍ତୁତ କରାଯିବା କ୍ୱାଥ—A decoction made of ten specific ingredients boiled with water ( according to the Hindu medical treatises. )
Daśāṅga pāchana
(ଦଶାଙ୍ଗକଷାୟ—ଅନ୍ୟରୂପ)

[ ଦ୍ର—ଦଶାଙ୍ଗ ପାଚନ ଦ୍ରବ୍ୟ ଯଥା—ବାସଙ୍ଗ ଛେଲି, ଗୁଳୁଚି, ଘଇପୋଡ଼ିଆ, ନିମ୍ବ ଛେଲି, ଚେରେଇତା, ଭୃଙ୍ଗରାଜ, ହରଡ଼ା, ବାହାଡ଼ା, ଅଁଳା ଓ ପୋଟଳ ପତ୍ର ବା ମତାନ୍ତରରେ କୋଳଥ ଏ ପଦାର୍ଥ ମାନଙ୍କର କ୍ୱାଥରେ ମହୁ ମିଶାଇ ପାନ କଲେ ଅମ୍ଳପିତ୍ତ ରୋଗ ପ୍ରଶମିତ ହୁଏ । ]

ଦଶାଙ୍ଗୁଳ—ସଂ. ବି—୧ । ଦଶ ଅଙ୍ଗୁଳ ପରିମାଣ—
Daśāṅgula 1. A space of ten fingers' measure.
(ଦଶାଙ୍ଗୁଷ୍ଠ—ଅନ୍ୟରୂପ) ୨ । (ବହୁବ୍ରୀହି; ଉପର ଭାଗରେ ଅଙ୍ଗୁଳ ପରି ଦଶ ଗୋଟି ରେଖା ଥିବାରୁ) ତରଭୁଜ ଫଳ—
2. Melon.
ବିଣ—ଦଶ ଅଙ୍ଗୁଳ ପରିମିତ—Measured by the space of ten fingers of the hand.

ଦଶା ଝିଅ—ପ୍ରାଦେ. (ବାଲେଶ୍ୱର) ବି. ସ୍ତ୍ରୀ—( ଗାଳିରେ ବ୍ୟବହୃତ )
Daśā jhia ଯେଉଁ ଘରୁ ଲୋକେ ସବୁ ବେଳେ ମରନ୍ତି ସେହି ଘରର ଝିଅ, ଯେଉଁ ଝିଅ ଘରେ ଦୁର୍ଦ୍ଦଶା ସୃଷ୍ଟି କରେ—
( a term of abuse applied to woman ) The daughter of the unfortunate family in which every often death occurs.

ଦଶାଦଶ—ଦେ. ବି. ( ସଂ. ଦଶମ+ଦଶା )—ଦଶମଦଶା; ମୃତ୍ୟୁ—
Daśādaśa Death.
ବଢ଼ିତ ଏଥି ଦଶରଥ ଯେବେ ବାଣଭବ୍ୟରେ ଲଭେ ଦଶାଦଶ ସେ ।
ଉପେନ୍ଦ୍ର ଭଞ୍ଜ. ବୈଦେହୀଶବିଳାସ ।

ଦଶାଦିଆ—ଦେ ବିଣ ( ଗୃହପାଳିତ ପଶୁ ଅଦିଙ୍କ ପ୍ରତି ଗାଳିବିଶେଷ)—
Daśādiā ଅଲକ୍ଷଣା, ସ୍ୱାମୀଙ୍କୁ ବିପତ୍ତି ଘଟାଇବାର କାରଣ, ଯେଉଁ ପଶୁ ପକ୍ଷୀଙ୍କୁ ପାଳିବାଦ୍ୱାରା ଗୃହସ୍ୱାମୀର କଷ୍ଟ ଓ ଦୁର୍ଭାଗ୍ୟ ଘଟେ—(a term of abuse ) Inauspicious or troublesome ( cattle etc ); having had inauspicious marks on the body which involve the owner in misfortune or trouble ( domestic animals ) bringing troubles on the master.

ଦଶାଦୁର୍ବଳ—ଦେ. ବିଣ—ଦୈବଦୁର୍ବିପାକ; କର୍ମବାମ—
Daśādurbala Misfortune; ill-luck.
ଶ୍ରୀକର ମୁଦ୍ରକୁ ବତାଇଦେବ ସେ ଦଶାଦୁର୍ବଳ କାଳକୁ—
ଭଞ୍ଜ. ପ୍ରେମସୁଧାନିଧି ।

ଦଶାଧିପତି—ସଂ. ବି. ( ୬ଷ୍ଠୀ ତତ୍; ଦଶା+ଅଧିପତି )—୧ । ଫଳିତ
Daśādhipati ଜ୍ୟୋତିଷ ଗଣନା କ୍ରମେ ଯେଉଁ ଗ୍ରହଙ୍କ ଦଶା ମନୁଷ୍ୟ ଭୋଗ କରୁଥାଏ—1. The planet whose aspect a person is undergoing at a particular period of his life.
୨ । ଦଶ ଜଣ ସିପାହିଙ୍କ ସର୍ଦ୍ଦାର; ଜମାଦାର(ହି. ଶବ୍ଦସାଗର)—
2. A captain of soldiers.

ଦଶାନନ—ସଂ. ବି. ( ଦଶ+ଆନନ, ବହୁବ୍ରୀହି )—ରାବଣ—
Daśānana Rābaṇa; the demon with ten heads.
ବଂଶତରୁକି ଦଶାନନରେ, କି ଦଶା ଦେବ ଦେବ-ଜନରେ,
ନର-ବାଗରେ ଧରଣୀ ଅଟେ ହେଉ ଘଟନ—
ଭଞ୍ଜ. ବୈଦେହୀଶବିଳାସ ।

ଦଶାନାଥ—ସଂ. ବି. ( ୬ଷ୍ଠୀ ତତ୍; ଦଶା+ନାଥ )—
Daśānātha ଦଶାଧିପତି ୧ ( ଦେଖ )
Daśādhipati 1 ( See )

ଦଶାନିକ—ସଂ. ବି—ଜୟପାଳ; କନକାମଞ୍ଜି ( ହି. ଶବ୍ଦସାଗର )—
Daśānika Croton seed.

ଦଶାନ୍ତ—ସଂ ବି.(୬ଷ୍ଠୀ ତତ୍; ଦଶା+ଅନ୍ତ)—ବାର୍ଦ୍ଧକ୍ୟ; ବୃଦ୍ଧାବସ୍ଥା—
Daśānta ( ହି. ଶବ୍ଦସାଗର )—Old age.

ଦଶା ପଡ଼ିବା—ଦେ. କ୍ରି—ମନ୍ଦ ଭାଗ୍ୟ ଉଦୟ—The dawning of
Daśā pardibā misfortune; the falling of evil
दशापडा दशा गीरना days.

ଦଶାପବିତ୍ର—ସଂ. ବି—ଶ୍ରାଦ୍ଧ ଆଦି ଉପଲକ୍ଷରେ ଦାନ ଦିଆଯିବା ବସ୍ତ୍ରଖଣ୍ଡ
Daśāpabitra ( ହି. ଶବ୍ଦସାଗର )—A piece of cloth presented as gift on occasions of Srāddha etc.

ଦଶାବତାର—ସଂ. ବି—ଦଶ ଅବତାର ( ଦେଖ )
Daśābatāra Daśa abatāra ( See )

ଦଶାବିପର୍ଯ୍ୟୟ—ସଂ. ବି. ( ଦଶା+ବିପର୍ଯ୍ୟୟ; ୬ଷ୍ଠୀ ତତ୍ )—ଦୁରବସ୍ଥା;
Daśābiparjyaya ଦୁର୍ଭାଗ୍ୟ—Misfortune; adversity; irony of fate.

ଦଶାବିପାକ—ସଂ ବି. ( ଦଶା+ବିପାକ; ୬ଷ୍ଠୀ ତତ୍ )—ଯେତେ ଦିନ
Daśābipāka ମନୁଷ୍ୟଙ୍କୁ କୌଣସି ଦଶା ଭୋଗ କରିବାକୁ ହୁଏ, ତାହାର ଭୋଗ ହେବା—The full period or duration of any evil aspect of the planets or misfortune which befall a man.

ଦଶାବୈଗୁଣ୍ୟ—ସଂ. ବି. (ଦଶା+ବୈଗୁଣ୍ୟ; ୬ଷ୍ଠୀ ତତ୍ )—ଦୁରବସ୍ଥା,
Daśābaiguṇya ଦୁର୍ଭାଗ୍ୟ—Misfortune; adversity.
( ଦଶାବୈଷମ୍ୟ—ଅନ୍ୟରୂପ )

ଦଶାଭୋଗ—ସଂ. ବି. ( ଦଶା+ଭୋଗ, ୬ଷ୍ଠୀ ତତ୍ )—
Daśābohga ଦଶାବିପାକ ( ଦେଖ )—
Daśābipāka ( See )

ଦଶାମୁହିଁ—ପ୍ରାଦେ. ( ବାଲେଶ୍ୱର ) ବିଣ ସ୍ତ୍ରୀ—(ଗାଳିରେ ବ୍ୟବହୃତ )
Daśāmuhiṅ ଯାହାର ( ଯେ ସ୍ତ୍ରୀଲୋକର ) ମୁହଁ ନାନା ମୃତ୍ୟୁଘଟିତ ଯନ୍ତ୍ରଣାରେ ସଦା ଉମର୍ଷ ଦିଶୁଥାଏ—Pale-faced ( woman ); undergoing troubles of series of deaths in the family.

ଦଶାର୍ଣ୍ଣ—ସଂ. ବି. ( ଦଶ+ଋଣ=ଦୁର୍ଗ )—୧ । ବିନ୍ଧ୍ୟପର୍ବତର ପୂର୍ବ
Daśārṇṇa ଓ ଦକ୍ଷିଣରେ ଥିବା ଦେଶବିଶେଷ—1. Name of a country to the south east of Bindhya Hills.
[ ଦ୍ର—କାଳିଦାସଙ୍କ ମେଘଦୂତରୁ, ଦେଖାଯାଏ ଯେ ଏ ଦେଶର ରାଜଧାନୀ ବିଦିଶା ( ଆଧୁନିକ ଭିଲସା ) ଥିଲା; ପ୍ରାଚୀନ ଗ୍ରୀକ୍ ଐତିହାସିକ ଟଲେମୀ ଏ ଦେଶକୁ 'ଦୋଷାରନ୍' । ଏହି ଦେଶ ବାଟେ ଧସାନ ନଦୀ ପ୍ରବାହିତ ହେଉଅଛି ।]
୨ । ଉକ୍ତ ଦେଶବାସୀ ବ୍ୟକ୍ତି ବା ରାଜା—2. A king or resident of the above country.
୩ । ତନ୍ତ୍ରୋକ୍ତ ଦଶାକ୍ଷର ମନ୍ତ୍ରବିଶେଷ—3. Name of a Tantric formula of ten syllables.

**ଦଶାର୍ଣ୍ଣା** —ସ. ବି (ଦଶାର୍ଣ୍ଣ+ଆ)—ଧସାନ୍ ନଦୀ—
Daśārṇṇā Name of a river.
[ଦ୍ର—ଏ ନଦୀ ବିନ୍ଧ୍ୟାଚଳରୁ ବାହାରି ବୁନ୍ଦେଲଖଣ୍ଡର କେତେକ ଅଂଶ ବାଟେ ଯାଇ କାଲପୀ ନାମକ ସ୍ଥାନ ନିକଟରେ ଯମୁନାରେ ମିଳିତ ହୋଇଅଛି —ଦ୍ର. ଶବ୍ଦସାଗର ।]

**ଦଶାଲା ବନ୍ଦୋବସ୍ତ** - ଗ୍ରା. ବି—ଦଶସାଲା ବନ୍ଦୋବସ୍ତ (ଦେଖ)
Daśālā bandobasta Daśasālā bandobasta (See).
(ଚିରସ୍ଥାୟୀ ବନ୍ଦୋବସ୍ତ—ବିପରୀତ)

**ଦଶାଶ୍ୱ**—ସ ବି ( ଦଶ+ଅଶ୍ୱ ଯାହାର ରଥରେ, ବହୁବ୍ରୀହି )—ଚନ୍ଦ୍ର—
Daśāśwa The moon, said to have ten seeds yoked to her chariot.

**ଦଶାଶ୍ୱମେଧ ଘାଟ**—ସ. ବି (ନାମ)—୧ । କାଶୀର ଗଙ୍ଗାତୀରସ୍ଥ ତୀର୍ଥଘାଟ
Daśāśwamedha ghāṭa ବିଶେଷ—1. Name of
( ଦଶାଶ୍ୱମେଧ; ଦଶାଶ୍ୱମେଧିକ ଘାଟ—ଅନ୍ୟରୂପ ) sacred bathing ghat of the Ganges in Benares.
[ ଦ୍ର—କାଶୀଖଣ୍ଡରେ ଲେଖା ଅଛି ଯେ, ଏଠାରେ ବ୍ରହ୍ମା ଦିବୋଦାସ ରାଜର୍ଷିଙ୍କ ସହାୟତାରେ ଦଶଗୋଟି ଅଶ୍ୱମେଧ ଯାଗ କରିଥିଲେ । ପ୍ରଥମେ ଏ ଘାଟ ରୁଦ୍ରସରୋବର ନାମରେ ପ୍ରସିଦ୍ଧ ଥିଲା । ବ୍ରହ୍ମା ଏଠାରେ ଦଶାଶ୍ୱମେଧେଶ୍ୱର ନାମକ ଶିବଲିଙ୍ଗ ସ୍ଥାପନ କରିଥିଲେ । ଏ ତୀର୍ଥରେ ସ୍ନାନ କରି ଉକ୍ତ ଶିବଲିଙ୍ଗଙ୍କୁ ଦର୍ଶନ କଲେ ମନୁଷ୍ୟର ସମସ୍ତ ପାପ ଛାଡ଼ିଯାଏ—
ଦ୍ର. ଶବ୍ଦସାଗର ।]
୨ । ପ୍ରୟାଗ ଅନ୍ତର୍ଗତ ତ୍ରିବେଣୀ ନିକଟସ୍ଥ ତୀର୍ଥଘାଟବିଶେଷ ( ଦ୍ର. ଶବ୍ଦସାଗର )—2 Name of a sacred place at the junction of the Ganges and the Jamuna at Allahabad

**ଦଶାସ୍ୟ**—ସ. ବି ( ଦଶ+ଆସ୍ୟ=ମୁଖ ଯାହାର; ବହୁବ୍ରୀହି )—
Daśāsya ଦଶମୁଣ୍ଡ; ରାବଣ—Rābaṇa; the ten-headed demon.

**ଦଶାସ୍ୟଜଘାନ**—ଦେ. ବି ( ସ. ଦଶାସ୍ୟ=ରାବଣ+ସ. ଜଘାନ=
Daśāsyajaghāna ହତ୍ୟା କରିଥିଲେ)—ରାବଣହନ୍ତା, ଶ୍ରୀରାମଚନ୍ଦ୍ର
A name given to Rama chandra
ବଗାଳ ଜନ୍ତୁ ସେତୁବନ୍ଧ ଦଶାସ୍ୟଜଘାନ ଜଂଘାପ୍ରଭାରୁ ।
ଉପେନ୍ଦ୍ର ଭଞ୍ଜ, ବୈଦେହୀଶବିଳାସ ।

**ଦଶାହ**—ସ.ବି (ଦଶ+ଅହନ୍; ଦ୍ୱିଗୁ)—୧ । ଦଶ ଦିନବ୍ୟାପୀ କାଳ—
Daśāha 1. A period of 10 days.
୨ । ମୃତବ୍ୟକ୍ତିର ପ୍ରେତ ଉଦ୍ଦେଶ୍ୟରେ ୧୦ମ ଦିନ (ଦଶ ଦିନ ) କରାଯିବା କ୍ରିୟା—2. The funeral ceremonies and rites performed on the 10th day of a person's death
[ ଦ୍ର—ଗୃହ୍ୟସୂତ୍ରରେ ମୃତକ କର୍ମ ୩ ଦିନେ କରାଯିବାର ବ୍ୟବସ୍ଥା ଅଛି । ପ୍ରଥମ ଦିନ ଶ୍ମଶାନକୃତ୍ୟ ଓ ଅସ୍ଥିସଞ୍ଚୟ, ଦ୍ୱିତୀୟ ଦିନରୁ ରୁଦ୍ର ଯାଗ ଓ କ୍ଷୌର ଓ ତୃତୀୟ ଦିନ ସପିଣ୍ଡୀକରଣ । ସ୍ମୃତି-ମାନଙ୍କରେ ଏହି କୃତ୍ୟକୁ ୧୦ ଦିନ ପର୍ଯ୍ୟନ୍ତ ବିସ୍ତାରିତ କରାଯାଇଅଛି । ଏହି ଦଶ ଦିନରେ ପ୍ରତିଦିନ ମୃତ ବ୍ୟକ୍ତିର ଦଶାଙ୍ଗ ମଧ୍ୟରୁ ଗୋଟିଏ ଗୋଟିଏ ଅଙ୍ଗର ପୂର୍ତ୍ତି ସକାଶେ ଗୋଟିଏ ଗୋଟିଏ ପିଣ୍ଡ ଦେବାର ବ୍ୟବସ୍ଥା ହୋଇଅଛି ଓ ଏକାଦଶ ଦିନ ଶୁଦ୍ଧିଲାଭପୂର୍ବକ ଦ୍ୱିତୀୟାହ୍ନ ସକଳ ପାଠ କରାଯାଏ —
ଦ୍ର. ଶବ୍ଦସାଗର ।]
୩ । ମୃତ୍ୟୁର ଦଶମ ଦିନ—
3 The 10th day of a persons death.
ବାପାଙ୍କ ଦଶାହେ ବାପାଙ୍କ କ୍ରିୟା ପାଇଁ
ଟଙ୍କା ହାରେ ଗଲି ମୁଁ ଅତି ଦୁଃଖ ହୋଇ । କୃଷ୍ଣସିଂହ, ମହାଭାରତ ।

**ଦଶି**—ଦେ. ବି (ସ. ଦଶା)—ବସ୍ତ୍ରର ଅନ୍ତସୂତ୍ର; ଲୁଗାର ପଣତ କାନିରୁ
Daśi ଓହଳିଥିବା ସୂତାମାନ—Loose woof threads
दशी hanging from the long extraments of
दसी a cloth.

**ଦଶିଆ**—ଦେ. ବି (ସ ଦଶୀ)—ମୋଟା ସୂତାରେ ବୁଣାଯାଇଥିବା ଲୁଗା—
Daśiā A kind of course cloth woven with
दशी course woofs.
दस ମୋଟା ଦଶିଆ ଲୁଗାର ବୋହିର ବହଣା ।
ଫକୀରମୋହନ, ଛମାଣ ଆଠଗୁଣ୍ଠ ।

**ଦଶିପୋକ**—ଦେ. ବି (ସ. ଦଶା=ଲୁଗାର ପଣତରୁ ବାହାରିଥିବା ସୂତା;
Daśipoka ଏ ପୋକମାନେ ସୂତା ପରି ସରୁ ଥିବାରୁ)—ଏକପ୍ରକାର
सुकी; सुकी କୃମି, ଅତି କ୍ଷୁଦ୍ର ଏବଂ ଧଳ ଧଳ ଧଳା ସୂତା ଭଳି
कीड़ा କୃମି । ଏହି କୃମି ମନୁଷ୍ୟର ଗୁହ୍ୟଦ୍ୱାରରେ ମଳ ସଙ୍ଗେ ଦେଖାଯାଆନ୍ତି—Worms, maggots ( white and very small and slender like threads); the join worm; thread worm.
ଦଶିପୋକ ହୃଦରେ ମୁଁ ଆଉ ନରକରେ—କବି, ନାମରତ୍ନଗୀତା ।

**ଦଶିମୁସୁଳି**—ପ୍ରାଦେ (ଅଳ) ବି—ଘୁଙ୍ଗୁଡ଼ି (ଦେଖ)
Daśimusuḷi Ghungurḍi (See)

**ଦଶିଲୁଗା**—ଦେ. ବି—ଯେଉଁ ଲୁଗାର ଅଗରେ ( ଲମ୍ବ କାନିରେ ) ଦଶୀ
Daśilugā ଓହଳିଥାଏ—A cloth with loose woofs
दशीकापड़ hanging down from the extremities.
दसीकपड़ा

**ଦଶୀ** —ସ. ବିଣ (ଦଶ+ଇନ୍; ଦଶା+ଇନ୍)—୧ । ଦଶ ସଂଖ୍ୟାଯୁକ୍ତ—
Daśī 1. Numbering ten.
୨ । ଦଶାଯୁକ୍ତ (ବସ୍ତ୍ର); ଯେଉଁ ଲୁଗାର କାନିରୁ ଦଶୀ ଓହଳିଥାଏ; ଯେଉଁ ଲୁଗାର ଅଞ୍ଚଳ ଥାଏ—
2. (a piece of cloth) With loose woofs hanging at the end; hemmed (cloth).
୩ । ଶଳିତା ଥିବା (ଦୀପ)—
3. (a lamp) With wicks
ସ. ବି.—ନଖର ପାର୍ଶ୍ୱସ୍ଥ ଚର୍ମାଂଶ (ଏହା ଦଶୀ ବା ବା ସରୁ ସୂତା ପରି ଦେଖାଯିବାରୁ )—The skin round the nails.
ଦେ. ବି.—୧ । କବାଟର ଯେଉଁ କୋଣ ଚଉକାଠରେ ଭ୍ରମଣି ବା କବଜା ସଙ୍ଗେ ଲାଗି ବୁଲେ —The fringe or corner of a door which twins round a joint.

୨ । ଲୁଗାର ଧଡ଼ି—2. The hem of a cloth.
୩ । କବାଟ ମୂଳ କଣରେ ଲାଗିଥିବା କାଠଖଣ୍ଡ, ଯାହା କ ଭସଣ୍ଡି ଉପରେ ବୁଲେ—3. A plate of wood attached to the corner of a door which turns on a pevot when the door is opened or shut.
୩ । ବସ୍ତ୍ରର ଅନ୍ତସୂତ୍ର; ଲୁଗାର ପଣତ କାନରୁ ଓହଳିଥିବା ସୂତାମାନ—The loose strings or woofs hanging from the long extremity of a cloth
୪ । ମୋଟା ସୂତା—4. Course thread or woof.

**ଦଶେଇଁ**—ଗ୍ରା. ବ (ସ. ଦଶମୀ) ପକ୍ଷର ଦଶମୀତିଥିରେ—
Daseiñ The 10th day of the lunar fortnight.
दशमी दसैं

**ଦଶେନ୍ଦ୍ରିୟ**—ସ. ବ (ଦଶ+ଇନ୍ଦ୍ରିୟ; କର୍ମଧାରୟ)—ପାଞ୍ଚଗୋଟି କର୍ମେନ୍ଦ୍ରିୟ ଓ ପାଞ୍ଚଗୋଟି ଜ୍ଞାନେନ୍ଦ୍ରିୟ—Five organs of action and five organs of sense.
Daśendriya
[ଦ୍ର—ପଞ୍ଚ କର୍ମେନ୍ଦ୍ରିୟ, ଯଥା—ବାକ୍, ପାଦ, ପାଣି, ପାୟୁ, ଉପସ୍ଥ; ପଞ୍ଚ ଜ୍ଞାନେନ୍ଦ୍ରିୟ, ଯଥା :—ଚକ୍ଷୁ, କର୍ଣ୍ଣ, ନାସିକା, ଜିହ୍ବା, ତ୍ବକ୍]

**ଦଶେନ୍ଧନ**—ସ. ବ—(ଦଶା=ବଳତା+ଇନ୍ଧନ=ଜାଳ, ଯାହାର ବହ୍ନିଜ୍ୱାଳ)—ପ୍ରଦୀପ—A lamp.
Daśendhana

**ଦଶେର**—ସ. ବ. ପୁଂ (ଦଂଶ୍ ଧାତୁ+କର୍ତ୍ତୃ. ଏର)—ହିଂସ୍ରଜନ୍ତୁ—
Daśera A rapacious wild beast.

**ଦଶେରକ**—ସ. ବ (ଦଶେର+ବିଚରଣ କରିବା ସ୍ଥାନ ଅର୍ଥରେ କ)—
Daśeraka ମରୁଭୂମି—Barren land; desert.
(ଦଶେରୁକ—ଅନ୍ୟରୂପ)

**ଦଶୁଆଳ**—ଦେ. ବଣ (ପ୍ରାଚୀନ)—ଦଶମ—Tenth.
Daśuāla ଶକ୍ତି ଭକ୍ତିର ଦଶୁଆଳ ସ୍କନ୍ଧନାମ
दशई; दशवाँ ଦଶାଶ୍ ବୋଲ କହୁ ଜାଣ ନୃପୋତ୍ତମ ।
କୃଷ୍ଣସିଂହ. ମହାଭାରତ ଶାନ୍ତି ।

**ଦଷ୍ଟ**—ସ. ବଣ. (ଦଂଶ୍ ଧାତୁ+କର୍ମ. ତ)—କାମୁଡ଼ା ହୋଇଥିବା; 
Dashṭa ଦନ୍ତଦ୍ୱାରା କ୍ଷତ—Bitten; stung.
[ଦ୍ର—ଏହା ପ୍ରାୟଶଃ ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ ହୋଇ ବ୍ୟବହୃତ ହୁଏ । ଯଥା—ସର୍ପଦଷ୍ଟ; କୀଟଦଷ୍ଟ, ବୃଶ୍ଚିକଦଷ୍ଟ, ଅନୁତାପଦଷ୍ଟ, ଦୁଃଖଦଷ୍ଟ ଇତ୍ୟାଦି]

**ଦସ୍** (ଧାତୁ)—ସ.—୧ । ଉତ୍କ୍ଷେପଣ କରିବା—1. To lift up; to
Das (root) throw up.
୨ । କ୍ଷୟ କରିବା—2. To waste
ଦେ. ଅ—୧ । (ଧ୍ୱନ୍ୟର୍ଥକ ଅବ୍ୟୟ, ଅନ୍ୟ ଶବ୍ଦ ସଙ୍ଗେ ପ୍ରଯୁକ୍ତ ହୋଇ ବ୍ୟବହୃତ ହୁଏ ।—ହଠାତ୍; ଧୁପ୍; ଟାକୁ—
1. Suddenly with a sound.
(ଯଥା—ଏ ଖବର ଶୁଣି ସେ ଦସ୍ କରି ବସି ପଡ଼ିଲା)
୨ । ପ୍ରକାରେ; ରୂପେ; ଭଳି—An adverbial suffix meaning in the manner of.
(ଯଥା—ସେ ଧୁମ୍‌ଦସ୍ ମୋତେ ବିଧାଏ ମାଇଲା; ସେ ଝଟଦସ ସେଠାରୁ ଉଠି ପଳାଇଗଲା । )

**ଦସନା**—ପ୍ରାଦେ. (ଅଠମଲିକ) ବି—ବିଛଣା—Bed
Dasanā

**ଦସ୍କ(ଖ)ତ୍**—ବୈଦେ. ବ (ଫା.)—ଦସ୍ତଖତ୍ (ଦେଖ)
Daska(skha)t Dastakhat (See)

**ଦସ୍ତ୍**—ବୈଦେ. ବ (ଫା. ଦସ୍ତ୍=ହାତ)—୧ । ହାତ—
Dast 1. Hand.
दस्त; दस्त ୨ । (ଫା. ଦାସ୍ତ=ମଳତ୍ୟାଗ)—୨ । ମଳତ୍ୟାଗ; ଝାଡ଼ା—
2. Passing stools; evacuation.
୩ । ବିରେଚନ; ପତଳା ଝାଡ଼ା—3. Passing of liquid stools.
ପ୍ରାଦେ. (ଗଞ୍ଜାମ) ବ—୧ । ବସ୍ତାନି—1. Bundle.
୨ । ଗଞ୍ଜପା (ଦେଖ)—2. Ganjapā (See)

**ଦସ୍ତକ୍**—ବୈଦେ. ବି (ଫା)—୧ । ଅମଲଦସ୍ତକ୍, ଅନୁମତିପତ୍ର; ଆଦେଶ-
Dastak ପତ୍ର, ହୁକୁମନାମା; ଅମଲନାମା—
दस्तक 1. Permit; pass; order.
दस्तक ୨ । ଗିରଫଦାରି ବା ଅସୁଲି ପରୁଆନା—
2 A writ of arrest or realisation of money.

**ଦସ୍ତକ(ଖ)ତ୍**—ବୈଦେ. ବ (ଫା. ଦସ୍ତଖତ୍=ହାତଲେଖା)—୧ । ସ୍ୱାକ୍ଷର;
Dastaka(kha)t କୌଣସି ଲିଖିତ ପତ୍ରରେ ନିଜ ହାତରେ ଲେଖା
दस्तखत ହୋଇଥିବା ନିଜ ନାମ—1. One's own
दस्तखत signature in a document.
(ଦସକ (ଖ)ତ—ଅନ୍ୟରୂପ) ୨ । କୌଣସି ଦଲିଲରେ ଆପଣା ନାମ ସ୍ୱାକ୍ଷର କରିବା କର୍ମ—2. The act of signing one's name in a document.

**ଦସ୍ତଖତ କରିବା**—ଦେ. କ୍ରି—ସ୍ୱାକ୍ଷର କରିବା—
Dastakhata karibā To sign.
ଦସ୍ତକତ କରିବା; ଦସକତ ବା ଦସଖତ କରିବା } ଅନ୍ୟରୂପ
दस्तखतकरना
दस्तखत करना
[ଦ୍ର—ନିଜ ଦ୍ୱାରା ବା ଅନ୍ୟ ଦ୍ୱାରା ଲିଖିତ ଦସ୍ତାବିଜରେ ଦସ୍ତଖତ କରିବା ବ୍ୟକ୍ତି ଉକ୍ତ ଦସ୍ତାବିଜରେ ଲେଖାଥିବା ବିଷୟକୁ ସ୍ୱୀକାର କରିଥିବାର ବିବେଚିତ ହୁଏ । ]

**ଦସ୍ତଖତି**—ବୈଦେ. ବିଣ (କଚେରିଆ) (ଫା)—ଯହିଁରେ ଦସ୍ତଖତ ଥାଏ;
Dastakhati ଦସ୍ତଖତ୍ କରି ଯାଇଥିବା (ଦଲିଲ ବା ଲେଖ)—
Signeds.
ଦସ୍ତକତି; ଦସକତି; ଦସଖତି } ଅନ୍ୟରୂପ
दस्तखती, दस्तखति
(ଯଥା—ରଜାଙ୍କ ଦସ୍ତଖତି ପରୁଆନା । )

**ଦସ୍ତଗୀର୍**—ବୈଦେ ବି (ଫା) (କଚେରିଆ)—ସହାୟକ—
Dastagir Helper; colleague.
दस्तगीर, दस्तगीर

**ଦସ୍ତ ପରିଷ୍କାର**—ଦେ: ବ (ଫା ଦସ୍ତ+ସଂ. ପରିଷ୍କାର)—କୋଷ୍ଠ ଶୁଦ୍ଧି—
Dasta parishkāra Clearance of the bowls
(ଦସ୍ତ ଖୁ(ଖୋ)ଲସା; ଦସ୍ତସଫା, ଦସ୍ତସାଫ୍—ଅନ୍ୟରୂପ)

**ଦସ୍ତବଦସ୍ତ**—ବୈଦେ କ୍ରି. ଵଣ (ଫା) (କଚେରୀଆ ଭାଷା, କବାଲା ଆଦିରେ ବ୍ୟବହୃତ)—ହାତେହାତ, ହାତକୁ ହାତ; ନଗଦ—In cash; from hand to hand
Dastabadasta
दस्तबदस्त
**दस्तबदस्त**
(ଯଥା—ଏ ବାକ୍ସ ବୃତ୍ତିର ଜାରସମନ ଦଶ ଟଙ୍କା ଆମ୍ଭେ ମୁସ୍ତରଙ୍କଠାରୁ ଦସ୍ତବଦସ୍ତ ବୁଝି ପାଇଲୁଁ ।)

**ଦସ୍ତ ବରଦାର୍**—ବୈଦେ. ଵଣ. (ଫା) (କଚେରୀଆ)—ସ୍ୱଇଚ୍ଛାରେ କୌଣସି ସମ୍ପତ୍ତିରୁ ଅଧିକାର ବା ଦାବି ପରିତ୍ୟାଗ କରିଥିବା (ବ୍ୟକ୍ତି)—Relinquishing one's own right to a property.
Dasta baradār
दस्तबरदार
**दस्तबरदार**
(ଦାବିଦାର—ବିପରୀତ)

**ଦସ୍ତ ବରଦାର୍ ହେବା**—ଦେ କ୍ରି (କଚେରୀଆ)—କୌଣସି ସମ୍ପତ୍ତି ବା ସ୍ୱତ୍ୱପ୍ରତି ଆପେ ଆପେ ଅନ୍ତର ହୋଇଯିବା, ଇସ୍ତଫା ଦେବା—To give up or relinquish one's right to a matter or property.
Dasta baradār hebā
दस्त बरदार हउआ
**दस्त बरदार होना**

**ଦସ୍ତ ବରଦାରି**—ବୈଦେ ବି (କଚେରୀଆ) (ଫା)—
Dasta baradāri
दस्तबरदारी
**दस्तबरदारि**
୧ । ତ୍ୟାଗ; ଇସ୍ତଫା—1. Relinquishment.
୨ । ତ୍ୟାଗପତ୍ର—2. A deed of relinquishment.

**ଦସ୍ତବସ୍ତ**—ବୈଦେ. ବି (ଫା. ଦସ୍ତବସ୍ତହ୍)—କୃତାଞ୍ଜଳି; ଯୋଡ଼ହାତ, ପ୍ରାର୍ଥନାକାରୀଙ୍କର ଅଞ୍ଜଳୀକୃତ କରତଳ ଯୁଗ୍ମ—Folded hands; folded palms (of a suppliant person)
Dastabasta
যোড়হাত
**दस्त बस्त**
ଵଣ—କୃତାଞ୍ଜଳି; ଯେଉଁ ବ୍ୟକ୍ତି ପ୍ରାର୍ଥନା କରିବାବେଳେ ଦୁଇ ହାତକୁ ଯୋଡ଼ିଛି—(a person) With folded hands

**ଦସ୍ତ ବୁ(ବୋ)କଚ୍ଚ**—ବୈଦେ. ବି. (ଫା. ଦସ୍ତ+ଭୁର୍ଜ=ବୁକ୍‌ଚ୍ଚ)—ଯେଉଁ ପୁଡ଼ାରେ ମନୁଷ୍ୟର ନିତ୍ୟବ୍ୟବହାର୍ଯ୍ୟ ଲୁଗାପଟା ବନ୍ଧା ହୋଇ ରଖାଯାଏ—A bundle containing the dress and clothes for one's every day use.
Dasta bu(bo)kachā
दस्त बुचका; दस्त बोचका
**दस्तबुकचा**
ଦସ୍ତବୁ(ବୋ)ଚକା, ଦସ୍ତବୁଜୁଲା(କ) } ଅନ୍ୟରୂପ

**ଦସ୍ତର୍**—ବୈଦେ. ବି. (ଫା) (କଚେରୀଆ)—
Dastar
दस्तर
**दस्तर**
୧ । ପଗଡ଼ି—1. Turban.
୨ । ସରକାରୀ କାଗଜ ବଡ଼ା—2. Bundle of official papers.
ପ୍ରାଦେ. (ଗଞ୍ଜାମ) ବି—ବସ୍ତାନି—A bundle.

**ଦସ୍ତର୍‌ଖାନ୍(ନା)**—ବୈଦେ. ବି (ଫା. ଦସ୍ତର୍ ଖୋୟାନ୍)—
Dastar-khān(nā)
दस्तरखान
**दस्तरखान**
୧ । ଟେବଲ ଉପରେ ପକାଇବାର ଲୁଗା—1. Table cloth.
୨ । ମୁସଲମାନ୍ ଓ ସାହେବମାନେ ଖାଇବାବେଳେ ଟେବଲ ଉପରେ ବା ଭୂମି ଉପରେ ଯେଉଁ ଚଦର ବିଛାନ୍ତି ଓ ଯହିଁ ଉପରେ ଖାଦ୍ୟପାତ୍ରାଦି ରଖାଯାଏ—2 A cloth spread on the table or on the ground on which dinner-plates are set.

**ଦସ୍ତର୍‌ବନ୍ଦ(ନ୍ଦୀ)**—ବୈଦେ. ବି (ଫା କଚେରୀଆ)—
Dastar-band(ndi)
୧ । କୌଣସି କାଗଜପତ୍ରର ଏକତ୍ର ସଂଗ୍ରହ—1. Collection of records at one place.
୨ । ସରକାରୀ କାଗଜପତ୍ର ଯାହାଙ୍କ ଅଧୀନରେ ରହେ (ନନ୍ଦେ)—2. A keeper of public records.
ବୈଦେ. ଵଣ—ଏକତ୍ର ସଂଗୃହୀତ (କାଗଜପତ୍ର)—Collected together (records).

**ଦସ୍ତା**—ଦେ. ବି. (ସଂ ଯଶଦ; ମରହଟ୍ଟୀ. ଦସ୍ତ)—ଧାତୁବିଶେଷ—Zinc.
Dastā
दस्ता
**जस्ता**

ବୈଦେ ବି. (ଫା. ଦସ୍ତା)—ହତିଆର ଆଦିର ବେଣ୍ଟ—Handle of an implement
दस्ता
**दस्ता**

**ଦସ୍ତାନା**—ବୈଦେ. (ଫା. ଦସ୍ତ୍‌ଆନା)—
Dastānā
दस्तना
**दस्ताना**
୧ । ହାତମୋଜା; ହସ୍ତାଭରଣ—1. Gloves.
୨ । ଏକପ୍ରକାର ତରବାରି ପହିଁର ମୁଠା ଖୋଳ ପରି ହୋଇଥାଏ ଓ ଯାହାକୁ ଧରିବା ଲୋକର ହାତକଚଟି ପର୍ଯ୍ୟନ୍ତ ଉକ୍ତ ଖୋଳ ମଧ୍ୟରେ ଆବୃତ ରହେ—2. A kind of sword with a hollow handle which protects the hand of the user up to the wrist.

**ଦସ୍ତାବର୍**—ବୈଦେ. ଵଣ. (ଫା.)—ବିରେଚକ (ଔଷଧ)—Purgative; cathartic (medicine).
Dastābar
दस्तावर
**दस्तावर**

**ଦସ୍ତାବି(ବେ)ଜ୍**—ବୈଦେ. ବି (କଚେରୀଆ) (ଫା ଦସ୍ତ୍‌ଆବେଜ୍)—
Dastābi(be)j
दस्तावीज
**दस्तावेज**
୧ । ଦଲିଲ; ଲିଖିତ କାର୍ଯ୍ୟନିର୍ଦ୍ଦେଶ ପତ୍ର—1. Document; a deed in writing.
୨ । ବ୍ୟବହାର ସମ୍ବନ୍ଧୀୟ ଲେଖା—2. A deed in which business transactions are entered

**ଦସ୍ତାବିଜ୍ ଜମାନତ୍**—ବୈଦେ ବି. (କଚେରୀଆ) (ଫା)—ଜାମିନ୍ ଦଲିଲ; ଜାମିନୀ ଚୁକ୍ତିପତ୍ର; ଜାମିନ୍‌ନାମା—A bail bond; a security bond.
Dastābij jamānat
दस्ताविजजमानत
**दस्तावेजी जमानत**

**ଦସ୍ତି**—ବୈଦେ. ବି (ଫା ଦସ୍ତ୍=ହାତ; ଦସ୍ତୀ=ହାତମୁଠା ପରିମାଣ)—
Dasti
दस्ती
୧ । ହାତମୁଠା ପରିମାଣ; ପ୍ରାୟ ୪ ଇଞ୍ଚ ବା ୨ ଅଙ୍ଗୁଳି ପରିମାଣ—1 A measure of the clutched fist; (according to which land-measuring rods are cut.
[ ଦ୍ର—ଭୂମି ମାପ କରିବା ନିମନ୍ତେ ନାନାବିଧ ପଦିକା ଚଳେ; ଯଥା—୧୨, ୧୪, ୧୮, ୨୦ ଓ ୨୪ ଦସ୍ତି ପଦିକା । ୨୪ ଦସ୍ତି ପଦିକାର ପରିମାଣ=୧୦ ଫୁଟ ୪ ଇଞ୍ଚ ୧ ଯବ ବା ପ୍ରାୟ ଛଅ ହାତ । ]
୨ । ମସାଲ ଧରିବାର ମୁଠା—2 The handle of a torch.

୩ । ମସାଲ—3. Torch.
୪ । ହତିଆର ଆଦିର ଛୋଟ ବେଣ୍ଟ—
4. Small handle of an implement.

**ଦସ୍ତିଦାନି**—ଦେ. ବି. ( ସହଚର ଶବ୍ଦ ) ( ଫା. ଦସ୍ତି+ଫା. ଦାନ୍, ସ. ଆଧାନ)—ମସାଲର ବେଣ୍ଟ ବା ମୁଠା ଓ ମସାଲରେ ତେଲ ଢାଳିବା ପାଇଁ ବ୍ୟବହୃତ ତେଲ କୁମ୍ପା—
Dastidāni
दस्तीदानी
**दस्तीदानी**
The handle of a torch and the oil-bottle for pouring oil on the burning torch.

**ଦସ୍ତିଦାର**—ବୈଦେ. ବି. (ଫା)—ମସାଲଚି—
Dastidār
Torch-bearer.
दस्तिदार
ଦେ. ବି—ବଙ୍ଗଦେଶର ଶୂଦ୍ର ଓ ଭଣ୍ଡାରିଙ୍କ ବଂଶୋପାଧି -
**दस्तिदार**
A family-title of Sūdras and barbers in Bengal.

**ଦସ୍ତୁ**—ଦେ ବି—ଛୋଟ ପିନ୍ଧା ଲୁଗା ଓ ବର୍‌କାମୀ ଲୁଗା ଦେବପ୍ରତିମା ଓ ଶିଶୁମାନଙ୍କ ପିନ୍ଧା ଲୁଗା—
Dastu
बचकानी
**बचकानी**
Small cloth for wearing by children and idols

**ଦସ୍ତୁର**—ବୈଦେ. ବି. (କଚେରିଆ) (ଫା)—
Dastur
୧ । ନିୟମ; ବିଧି—1. Rule; regulation
(ବେଦସ୍ତୁର୍—ବିପରୀତ)
दस्तूर
**दस्तूर**
୨ । ସାଧାରଣଙ୍କ ଆଚରିତ ବ୍ୟବହାର —
2. Common practice.
୩ । ଲୌକିକାଚାର; ପ୍ରଥା; ରୀତି; ଚଳି—
3. Custom; usage; practice
୪ । କାଇଦା—4. Discipline;
୫ । ଆଦବ୍ କାଇଦା; ଭଦ୍ର ସମାଜର ବ୍ୟବହାର —
5. Etiquette fashion.

**ଦସ୍ତୁର ଅମଲ**—ବୈଦେ. ବି. (କଚେରିଆ) (ଆ)—ନିର୍ଦ୍ଦିଷ୍ଟ ନିୟମ—
Dastur amala
Set rules.
दस्तूरआमल **दस्तूर अमल**

**ଦସ୍ତୁର ମତେ**—ଦେ. କ୍ରି ବିଣ. (କଚେରିଆ)—
Dastur mate
୧ । ନିୟମାନୁସାରେ—1 In conformity to rules
ଦସ୍ତୁର ମାଫିକେ; ଦସ୍ତୁର ମାଫିକ; ଦସ୍ତୁର ମୁତାବକ } ଅନ୍ୟରୂପ
दस्तूरमत
**दस्तुर मुआफिक**
୨ । ପ୍ରଥା ଅନୁସାରେ—
2. According to custom

**ଦସ୍ତୁରି**—ବୈଦେ. ବି. (କଚେରିଆ) (ଫା)—
Dasturi
दस्तुरी
**दस्तुरी**
୧ । କ୍ରୟ ବିକ୍ରୟ କାଳରେ ମଧ୍ୟସ୍ଥ ବ୍ୟକ୍ତି କ୍ରେତା ଓ ବିକ୍ରେତାଠାରୁ ଯେଉଁ ଅର୍ଥ ପାଏ; କମିସନ୍; ପାଉସେରି; ଦଲାଲି -
1. Percentage or commission paid to a broker
୨ । ନିଜ ପ୍ରଭୁଙ୍କ ପାଇଁ ଦୋକାନଠାରୁ ସଉଦା କିଣିବା ଭୃତ୍ୟ ଦୋକାନଠାରୁ ଟଙ୍କାକେ ଯେଉଁ ନିର୍ଦ୍ଦିଷ୍ଟ ଧନ ( ଯଥା—ପଇସାଏ ବା ଦୁଇ ପଇସା ) ପାଏ—
2 A commissioner at a fixed rate paid to a servant by a trader who sells commodities to the master through the servant.
ପ୍ରାଦେ. (ଗଞ୍ଜାମ) ବି—ସ୍ୱାକ୍ଷର (ନିଦେ)—Signature

**ଦସ୍ମ**—ସ. ବି. ( ଦସ୍ ଧାତୁ=ଉତ୍‌କ୍ଷେପ କରିବା+କର୍ତ୍ତୃ. ମ )—
Dasma
୧ । ଦସ୍ୟୁ; ଚୋର—1. Thief.
୨ । ଅଗ୍ନି—2. Fire
୩ । ପ୍ରତାରକ, ଶଠ—3. A cheat.
୪ । ଖଳ ବ୍ୟକ୍ତି—4. A wicked person.
୫ । ଯଜମାନ—5. The principal in a vedic sacrifice.

**ଦସ୍ୟୁ**—ସ. ବି. (ଦସ୍ ଧାତୁ=ଉତ୍‌କ୍ଷେପଣ କରିବା; କ୍ଷୟ କରିବା+କର୍ତ୍ତୃ. ଯୁ )—୧ । ଚୋର—1. Thief.
Dasyu
୨ । ଡାକୁ, ଲୁଣ୍ଠକ; ଡକାଇତ; ଯେ ଜବରଦସ୍ତି ଦ୍ରବ୍ୟାଦି ଛଡ଼ାଇ ନିଏ—2. Robber; plunderer; extortioner.
୩ । ଉତ୍ପୀଡ଼ନକାରୀ ବ୍ୟକ୍ତି—3. Oppressor.
୪ । ଅନ୍ତ୍ୟଜ ଜାତିବିଶେଷ—4. Name of a low caste of untouchables
୫ । ଚକ୍ର—5 Wheel; discus.
୬ । ଶତ୍ରୁ—6. Enemy.

[ ଦ୍ର—ଦସ୍ୟୁମାନଙ୍କ ବର୍ଣ୍ଣନା ବେଦରେ ଅନେକ ସ୍ଥାନରେ ମିଳେ । ଏମାନେ ଆର୍ଯ୍ୟମାନଙ୍କ ଭାରତ ଆଗମନ ପୂର୍ବରୁ ଭାରତରେ ଥିଲେ । ଏମାନେ ଆର୍ଯ୍ୟମାନଙ୍କୁ ନାନାପ୍ରକାରରେ କଷ୍ଟ ଦେଉଥିଲେ; ସେମାନଙ୍କ ଯଜ୍ଞ ବନ୍ଦ କରୁଥିଲେ, ସେମାନଙ୍କ ଗୋମେଷାଦି ଚୋରି କରି ନେଉଥିଲେ । କମୁଚ, ଶମ୍ବର ଓ ବୃତ୍ର ଆଦି ଦସ୍ୟୁପତିଙ୍କୁ ଇନ୍ଦ୍ର ବଧ କରିଥିବାର ବେଦରେ ଲେଖାଅଛି । ବେଦରେ ଦସ୍ୟୁମାନଙ୍କ ପ୍ରତି ଦାସ ଓ ଅସୁର ଶବ୍ଦ ପ୍ରୟୋଗ କରି ଯାଇଅଛି । ମନୁସଂହିତାରେ ଅଛି ଯେ ଯେଉଁ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ମାନବ ଲୁପ୍ତ କ୍ରିୟା ଓ ଜାତିଚ୍ୟୁତ ହେଉଥିଲେ ସେମାନେ ମ୍ଲେଚ୍ଛଭାଷୀ ହୁଅନ୍ତୁ ବା ଆର୍ଯ୍ୟଭାଷୀ ହୁଅନ୍ତୁ ସେମାନଙ୍କୁ ଦସ୍ୟୁ ବୋଲି ଯାଉଥିଲା । ମହାଭାରତରେ ଅଛି ଯେ ଅର୍ଜୁନ କେତେକ ଦସ୍ୟୁଙ୍କୁ ପରାସ୍ତ କରିଥିଲେ । ଦସ୍ୟୁମାନଙ୍କ ମଧ୍ୟରେ ବାସ କରିବା ପାଇଁ ବ୍ରାହ୍ମଣମାନଙ୍କୁ ନିଷେଧ ଥିଲା । ହି. ଶବ୍ଦସାଗର । ]
ଦେ. ବି—ସୈନ୍ୟ—Soldier.
ଦାଶରଥି ସାତ୍ୟକି ପରାକ୍ରମ ଦେଖି
କହିଲେ ସେ ଦସ୍ୟୁମାନଙ୍କୁ ଶର ଯୋଖି । କୃଷ୍ଣସିଂହ ମହାଭାରତ. ଦ୍ରୋ° ।

**ଦସ୍ୟୁତା**—ସ. ବି ( ଦସ୍ୟୁ+କର୍ମାର୍ଥେ. ତା )—ଲୁଣ୍ଠନ ବୃତ୍ତି—
Dasyutā (ଦସ୍ୟୁତ୍ୱ – ଅନ୍ୟରୂପ) Robbery.

**ଦସ୍ୟୁପତି**—ସ. ବି. ( ୬ଷ୍ଠୀ ତତ୍; ଦସ୍ୟୁ+ପତି )—
Dasyu pati
ଡକାଇତଙ୍କ ସର୍ଦ୍ଦାର—
Ringleader of a gang of robbers.

**ଦସ୍ୟୁବୃତ୍ତି**—ସଂ. ବି. ( ଦସ୍ୟୁ+ବୃତ୍ତି; ୬ଷ୍ଠୀ ତତ୍ )—
Dasyu brutti ଦସ୍ୟୁର କର୍ମ ବା ବ୍ୟବସାୟ; ଲୁଣ୍ଠନ ବୃତ୍ତି—Robbery.

**ଦସ୍ୟୁ ଭୟ**—ସଂ. ବି. ( ଦସ୍ୟୁଠାରୁ ଭୟ, ୫ମୀ ତତ୍ )—
Dasyu bhaya ଡକାଇତ ଆକ୍ରମଣ କରିବା ଡର ବା ଆଶଙ୍କା—Apprehension or fear of robbers

**ଦସ୍ର**— ସଂ. ବି—୧ । ଶିଶିର ( ହି. ଶବ୍ଦସାଗର )—
Dasra 1. Dew.
୨ । ଗଧ ( ହି. ଶବ୍ଦସାଗର )—2 Ass,
୩ । ଯୋଡ଼ା, ଯୁଗ୍ମ ( ହି. ଶବ୍ଦସାଗର )—3 Pair
୪ । ଅଶ୍ୱିନୀକୁମାର ଦ୍ୱୟ ( ହି. ଶବ୍ଦସାଗର )—
4. The twin sons of Aświni

**ଦହ୍ (ଧାତୁ)**—ସଂ.—ପୋଡ଼ିବା—
Dah (root) To burn; to set fire.

**ଦହ**—ଦେ. ବି (ଫ. ଦହ=ଗର୍ତ୍ତ; କିମ୍ବା ସଂ 'ହ୍ରଦର' ଓଲଟା, ସଂ. ହ୍ରଦରୁ
Daha ହ୍ରଦ ଓ ହ୍ରଦ ବର୍ଣ୍ଣବିପର୍ଯ୍ୟୟରେ ଦହ ହୋଇଥିବାର
दह ଅନୁମିତ ହୁଏ )—୧ । ବିସ୍ତୀର୍ଣ୍ଣ ଜଳାଶୟ; ହ୍ରଦ—
दहे 1. A wide expanse of water; lake
ପକ୍ଷିଏ ଦହକୁ ପକ୍ଷୀ ଦଳେ ଦଳେ
ଉଡ଼ି ଆସୁଛନ୍ତି କରେ କୋଳାହଳେ । ରାଧାନାଥ. ନଦୀକେଶ୍ୱରୀ ।
୨ । ଅଳ୍ପ ପାଣି ଓ ବହୁତ ପଙ୍କ ଏବଂ ଜଳରେ ପୂର୍ଣ୍ଣ ଜଳାଶୟ; ପଙ୍କିଳ ଜଳାଶୟ—2. A marse, a bog; a swamp; a fen.
୩ । ଦହା (ଦେଖ)—3. Dahā ( See )
୪ । ଦହିଲା ( ଦେଖ )—4. Dahilā (See)
ବିଣ. (ସଂ. ଦଗ୍ଧ )—୧ । ପୋଡ଼ା ହୋଇଥିବା; ଦଗ୍ଧ—
1. Burnt,
୨ । ଦହନକାରୀ—2. Burning; scorching.
ଉପମନ ଦହ । ନୟନର ସମ କମ୍ପନ କହ । ଇପେନ୍ଦ୍ରଭଞ୍ଜ. ପ୍ରେମସୁଧାନିଧି ।
ପ୍ରାଦେ. (ଆଠମଲିକ) ବି—୧ । ଗଭୀର ପାଣି—
1. Deep water.
୨ । ନଦ୍ୟାଦିର ଗଭୀର ଜଳପୂର୍ଣ୍ଣ ଅଂଶ; ଗଭୀର—
2 The part of a river or lake where water is very deep.
ବିଣ—ଦହଲା ହୋଇ ଯାଇଥିବା (ସ୍ଥାନ)—Muddy place; (a place) which has become miry
[ ଦ୍ର—ବଙ୍ଗଳା ଓ ହିନ୍ଦୀରେ 'ଦହ'ର ଅର୍ଥ ନଦୀ ଆଦିର ଗଭୀରତମ ଅଂଶ । ଓଡ଼ିଆରେ ଏହି ଅର୍ଥରେ 'ହ୍ରଦ' ଶବ୍ଦ ଓ ଗଭୀର ବ୍ୟବହୃତ ହୁଏ । ]

**ଦହକ**—ଦେ. ବି ( ସଂ. ଦହ୍ ଧାତୁ କିମ୍ବା ଧୁକ୍ଷ ଧାତୁ=ସନ୍ଦୀପନ, ବା
Dahaka ସଂ. ଧଗଦ୍ଧଗତ୍)—୧ । ତାପକ; ଉତ୍ତାପ; ଜ୍ୱାଳା—
धक्‌धक् 1. Heat; blaze.
दहक ୨ । ରଡ଼; ଅଗ୍ନିର ଦାଉଦାଉ ହେବା ଅବସ୍ଥା—
2. Glowing condition of fire, (e. g. in live charcoal).
ବିଣ—୧ । ଜଳନ୍ତା, ରଡ଼—1. Blazing; glowing.
धकधके (ଯଥା—ଦହକ ନିଆଁ; ଦହକ ଚୁଲି; ଦହକ ଅଙ୍ଗାର ।)
दहकति [ ଦ୍ର—ଶିଖାଯୁକ୍ତ ହୋଇ ଜଳୁଥିବା ନିଆଁକୁ 'ଦହକ' ବୋଲାଯାଏ ନାହିଁ । କାଠଆଦି ଜଳିଯିବା ପରେ ଅଙ୍ଗାର ଦହକୁଥିବା ବା ଦାଉଦାଉ କରିବା ଅବସ୍ଥାକୁ ଦହକ ବୋଲାଯାଏ । ]

**ଦହକ ଚୁଲି**—ଦେ. ବି—ଯେଉଁ ଚୁଲିରେ ଜାଳ ଜଳିବା ପରେ ଅଙ୍ଗାର
Dahaka chuli ବା ନିଆଁ ଦହକୁ ଥାଏ—Oven with
ধকধকেউনুন glowing charcoal.
दहकता हुआ चूल्हा

**ଦହକିବା**—ଦେ. କ୍ରି (ସଂ. ଦହ ଧାତୁ, ସଂ ଧୁକ୍ଷ ଧାତୁ)—୧ । ଜଳିବା;
Dahakibā ଦାଉ ଦାଉ ହୋଇ ଦୀପ୍ତି କରିବା—1. To blaze;
ধক ধক্‌করা to glow.
दहकना ( ଯଥା—ଚୁଲିରେ ଅଙ୍ଗାରଗୁଡ଼ାକ ଭାରି ଦହକୁଛି । )
[ଦହକା (କେ)ଇବା—ଣିଜନ୍ତ] ୨ । (ଲକ୍ଷଣାର୍ଥ) କ୍ରୋଧରେ ଉତ୍ତପ୍ତ ହେବା—2 ( figurative ) To burn with rage

**ଦହଗଞ୍ଜ**—ଦେ. ବି (ସଂ. ଦହ ଧାତୁ ଓ ଗଞ୍ଜ ଧାତୁ)—ବ୍ୟତିବ୍ୟସ୍ତ ହେବା;
Dahagañja ପୀଡ଼ା—Worry; state of being troubled;
ব্যস্ত হাযরানী botheration.
हैरान् परेशान ବ୍ୟତିବ୍ୟସ୍ତ; ପ୍ରପୀଡ଼ିତ— Worried; oppress-
হায়রান हैरान ed; pestered.

**ଦହଗଞ୍ଜ ହେବା**—ଦେ. କ୍ରି—ବ୍ୟତିବ୍ୟସ୍ତ ହେବା—
Dahagañja hebā To be worried.
(ଦହଗଞ୍ଜି ହେବା—ଅନ୍ୟରୂପ)
ব্যস্তহওয়া, हैरानहोना

**ଦହଗଞ୍ଜିଆ**—ଦେ. ବିଣ—ଯାହା ଦ୍ୱାରା ବ୍ୟସ୍ତ ହେବାକୁ ହୁଏ; ପୀଡ଼ା-
Dahagañjiā ଜନକ; କଷ୍ଟଦାୟକ—Worrying;
দুখেব, কষ্টের troublesome.
हैरानीका

**ଦହଡ଼**—ଦେ. ବିଣ ( ସଂ. ଦଗ୍ଧ; ତୁଲ. ପାଲି—ଡହଡ଼ )—
Daharḍa ୧ । ତହଡ଼; ତହତହ; ତାତିଲା; ଗରମ—
তপ্ত 1, Hot; burning.
गरमागरम, तता ୨ । ଯହିଁରୁ ବାମ୍ପ ବାହାରୁଥାଏ—
2 Steaming.
ବାସ୍ନ ରଜା ଦଣ୍ଡ ପରଜା, ଦହଡ ଅମ୍ବିଲ ଶୀତଳ ଭଜା;
କହେ ଦନାଇ ଏ କାହିଁକି ମଜା ? ଉଚ ।
୩ । ଦାହଯୁକ୍ତ—3. Burning; feverish.

**ଦହଣ**—ପ୍ରାଦେ. (ମେଦିନୀପୁର) ବି—ଗହିର ମଝିରେ ଥିବା ଗୁଷ ଜମି—
Dahaṇa Cultivated fields in the midst of a wide expanse of paddy fields.

**ଦହତି**—ଦେ. ବି (ସଂ. ଦହ୍ ଧାତୁ+ତି; ସଂ. ଦାହ—ହେତି) ଅଗ୍ନି—
Dahati Fire.
ଭକତ କ୍ଷୁଧା ଘୋର ହୋଇଲୁ ବ୍ୟତି;
ଶୁଣି କରପଲ୍ଲବକୁ ଚର୍ମିଲେ ଦହତି । ପୀତାମ୍ବର. ନୃସିଂହପୁରାଣ

**ଦହଦହଉ**—ଦେ. ଅ. (ଶିଶୁରଞ୍ଜନ)—୧ । ପିଲାମାନେ କୁକୁରକୁ
Dahadahatu ଡାକିବାର ପଦ—1. An exclamation uttered by children to call dogs
୨ । ଶିଶୁରଞ୍ଜନାର୍ଥ ମାଆମାନେ ବୋଲିବା ପଦ—
2. A refrain of an infant song
ଦହଦହଉ, କଳଅ ମାଉର ପୁଅ ବହୁଉ—ଶିଶୁଗୀତ ।

**ଦହଦଇ(ହି)ଆ**—ଦେ. ବି—ଦହିଦହିକା (ଦେଖ)—
Dahadai(hi)ā Dahidabikā (See)

**ଦହନ**—ସଂ. ବି (ଦହ୍ ଧାତୁ+କର୍ତ୍ତୃ ଅନ)—
Dahana ୧ । ଅଗ୍ନି, ନିଆଁ—1. Fire.
କଉପ୍ରଦେ ପାଣବେ ଲଗାଲେ ଦହନ । କୃଷ୍ଣସିଂହ. ମହାଭାରତ. ଅଦ ।
୨ । (+ଭାବ.ଅନ) ଦାହ—2. Inflammation.
୩ । ପୋଡ଼ିଯିବା—3. Burning
୪ । (+କର୍ତ୍ତୃ.ଅନ) ଦୁଷ୍ଟଲୋକ—4. Wicked person.
୫ । ଧଳା ଚିତା ଗଛ—5. Lead wrot plumbago Zeylanica.
ବିଣ—୧ । ଦାହକ—1 Burning
ଦେ ବିଣ —ଦଗ୍ଧ—2 Burnt.
ପୁତ୍ରେଚକ ଅଦ ହୋଇଲେ ଦହନ । କୃଷ୍ଣସିଂହ. ମହାଭାରତ ଅଦ ।
ଦେ. ବି—ନାଶ—Destruction.
ଶୁଣିଲେ ମୋ ଉତ୍ତରୁ ସେ ସଂଶୟ ଦହନ । ପ୍ରାଚୀ. ଶବ. ସ୍ୱପ୍ନେଶ୍ୱର ।

**ଦହନୀୟ**—ସଂ. ବିଣ (ଦହ୍ ଧାତୁ+କର୍ମ ଅନୀୟ)—ଦାହ୍ୟ; ଯାହା
Dahanīya ପୋଡ଼ିଯାଏ—Combustible; inflammable.

**ଦହନୋପଲ**—ସଂ. ବି (ଦହନ+ଉପଲ)—୧ । ସୂର୍ଯ୍ୟକାନ୍ତ ମଣି;
Dahanopala ଆତସୀ କାଚ—1. A jem or lens through which the sun's rays are focussed and set fire to some inflammable substance put under it.
୨ । ଚକମକ ପଥର; ଚକମକି—2. Tinderstone; flint stone.

**ଦହପାଣି**—ଦେ. ବି—ଲୁଣ ସିଦ୍ଧବାବେଳେ ସିଝାଇବା ପାଇଁ ହାଣ୍ଡିକୁ
Dahapāni ଅଜାଡ଼ା ଯିବା ଲୁଣମିଶ୍ରିତ ଘନ ଜଳ—Water impregnated with salt which is powred into a pan for being evaporated (in the process of manufacturing salt)
ସେହି ଲବଣାକ୍ତ ଜଳର ନାମ ଦହପାଣି ।
ଫକୀରମୋହନ—ଗଳ୍ପସ୍ୱଳ୍ପ ।

**ଦହର**—ସଂ.ବି 'ଦହ ଧାତୁ=କ୍ଷୟ କରିବା+କର୍ତ୍ତୃ. ଅର)—୧ । ଛୋଟଇ
Dahara ମୂଷା—1. A small mouse.
୨ । ଶିଶୁ—2. Infant.
୩ । ସାନ ଭାଇ—3. Younger brother.
୪ । ଛୁଚୁନ୍ଦ୍ରୁ (ହି. ଶବ୍ଦସାଗର)—4. Mole; shrew.
୫ । ନରକ (ହି. ଶବ୍ଦସାଗର)—Hell.
୬ । ବରୁଣ (ହି. ଶବ୍ଦସାଗର)—6. The Hindu god of the ocean.
ବିଣ—୧ । ସ୍ୱଳ୍ପ; ଛୋଟ—Little; small.
୨ । ଦୁର୍ବୋଧ—2. Difficult to understand.
୩ । ସୂକ୍ଷ୍ମ (ହି. ଶବ୍ଦସାଗର)—3. Minute.

**ଦହରାକାଶ**—ସଂ. ବି—ଚିଦାକାଶ; ଈଶ୍ୱର—God.
Daharākāśa

**ଦହଲ**—ଦେ. ବି (ସଂ. ଦଲାଢ୍ୟ)—୧ । କାଦୁଅ—
Dahala 1. Mud; sludge.
କାଦା; ଦଲଦଲ ୨ । ପଙ୍କ—2. Slime; mire.
दलदल; चहला ୩ । ଦହଲ୍ଲ ବା ପଙ୍କୁଆ ଅବସ୍ଥା—3 Muddy or miry condition.
୪ । ଅଳ୍ପ ପାଣି ବେଶି ପଙ୍କ ଓ ଜଳମୟ ପୋଖରୀ—
4. A muddy tank; moor; fen; a bog.
ବିଣ—ଦହଲା (ଦେଖ)—Dahalā (See).

**ଦହଲ ଉଠିବା**—ଦେ. କ୍ରି—ଭୂମି କର୍ଦ୍ଦମମୟ ହେବା, ଦଲଦଲେଇବା—
Dahala uthibā To be full of mud.
କାଦାହଓଆ; चहलाउठना

**ଦହଲା**—ଦେ. ବିଣ—୧ । କାଦୁଆ, ପଙ୍କିଳ—1 Muddy; slimy.
Dahalā ୨ । ପଙ୍କ ଓ ଜଳମୟ; ଯହିଁରେ ଲୋକ ପଶିଗଲେ ସହଜେ ଉଠି ପାରେ ନାହିଁ—
ଦହଳ; ଦହଲିଆ, } ଅନ୍ୟରୂପ
ଦହଲା; ଦଲଦଲେ; गंदला; दलदला 2. Moory; boggy; moisty.
(ଦହଲା-ସ୍ତ୍ରୀ)
ଦେ. ବିଣ. ପୁଂ (ସଂ. ସ୍ଥୂଳକାୟ)—ମୋଟା; ସ୍ଥୂଳକାୟ—Fat (male).
ଦେ ବି—ଦହିଲା (ଦେଖ)—Dahilā (See).

**ଦହସତ**—ବୈଦେ. ବି (ଫା. ଦହଶତ୍=ଭୟ)—୧ । ଭୟ; ତ୍ରାସ—
Dahasat 1. Fear; fright.
କଷ୍ଟ, दहशत ୨ । କଠୋର ଦାୟିତ୍ୱ; ବନ୍ଧ—2. Grave responsibility.
୩ । ଦହଗଞ୍ଜ; ବାଧା; ପୀଡ଼ା—3. Worry; botheration.
୪ । ଦୁଃଖ, କଷ୍ଟ—4. Trouble.
୫ । ବିପଦ୍—5 Calamity
ବିଣ—୧ । ତ୍ରାସଜନକ—1 Frightening, causing fear.
୨ । ପୀଡ଼ିତ, ବାଧାପ୍ରାପ୍ତ, ବ୍ୟତିବ୍ୟସ୍ତ—2 Worried

**ଦହସତ୍ ଗିରିବା**—ଦେ. ବି—ଆପଦ ଗିରିବା, ବିପଦ୍ ପଡ଼ିବା—
Dahasat giribā The befalling of a calamity.
ଆପଦ ଆସା; दहसतगीरना (ଯଥା—ମୋ ଉପରେ ବର୍ତ୍ତମାନ
(ଦହସତ୍ ପଡ଼ିଥିବା—ଅନ୍ୟରୂପ) ଗୋଟାଏ ଭାରି ଦହସତ୍ ଗିରିଛି ।)

**ଦହସତ୍ ଦେବା**—ଦେ କ୍ରି—୧ । ବାଧା ଦେବା; ପୀଡ଼ା ଦେବା—
Dahasat debā 1. To worry; to pester.
କଷ୍ଟ ଦେଓଆ; दहशत देना ୨ । ଭୟ ଜନ୍ମାଇବା—2 To cause fright.
୩ । ବିପଦରେ ପକାଇବା; ବିପନ୍ନ କରିବା—
3. To cause a person to-be-involved in troubles, to afflict a person.

ଦହସତ ପାଇବା—ଦେ. କ୍ରି—୧ । ଦହଗଞ୍ଜ ହେବା—
Dahasata pāibā 1. To be worried or pestered.
(ଦହସି ହେବା—ଅନ୍ୟରୂପ) ୨ । ବିପନ୍ନ ହେବା; ବ୍ୟତିବ୍ୟସ୍ତ ହେବା—
କଷ୍ଟ ପାଓଆ 2. To be troubled.
**दहसत पाना**

ଦହସତ ଲାଗିବା—ଦେ କ୍ରି—୧ । ଭୟମାଡ଼ିବା—
Dahasata lāgibā 1. Apprehending; fearing.
କଷ୍ଟବୋଧ ହଓଆ ୨ । ହଇରାଣ ହେବା—
**दहसतलगना** 2. Being troubled.

ଦହା—ବୈଦେ ବି—(ଫା ଦହ=ଦଶ ସଂଖ୍ୟା)—୧ । ଦହଲା (ଦେଖ)
Dahā Dahalā (See).
दहा ୨ । ମୁସଲମାନଙ୍କ ମହରମ ମାସର ୧ ତାରିଖଠାରୁ ୧୦ ତାରିଖ
**दहा** (ଏ ସମୟରେ ମୁସଲମାନଙ୍କ ମହରମ ପର୍ବ ହୁଏ)—
2. The period of the 1st ten days of the Mahomedan month of Mohoram.

ଦହି—ଦେ. ବି (ସଂ. ଦଧି)—୧ । ଖାଇବା ଦୁଧ, ଦୁଗ୍ଧବିକାର—
Dahi 1. Curd.
**दहि; दई** [ଦ୍ର—ଏହା ଦୁଇ ପ୍ରକାର ଯଥା—ବସା ଦହି ଓ ଘୋଳ
**दही; दध** ଦହି । ]

[ଦ୍ର—ପ୍ରଥମେ ଆଉଟା ଦୁଧ ଶୀତଳ ହେବା ପରେ ତହିଁରେ ମହି ପକାଇ କିଛି ସମୟ ରଖିଦେଲେ ଯେଉଁ ଗାଢ଼ ଥଲଥଲିଆ ପଦାର୍ଥ ହୁଏ ତାକୁ 'ବସା ଦହି' ବୋଲାଯାଏ ଓ ବସା ଦହିରେ ପାଣି ମିଶାଇ ତାକୁ ମୁହାଇଁ ସେଥିରୁ ଲହୁଣୀ ବାହାର କଲା ପରେ ଯେଉଁ ଜଳୀୟ ପଦାର୍ଥ ହୁଏ ତାକୁ ଘୋଳ ବା ଘୋଲ ଦହି ବା ତକ୍ରା ବୋଲାଯାଏ ।

ସାଧାରଣତଃ ଦହି ଖାଦ୍ୟର ଗୋଟିଏ ଉପକରଣ । ତାଟକା ବା ସଜ ଦହି ଖାଇବାକୁ ସୁସ୍ୱାଦୁ, ମାତ୍ର ବାସି ଦହି ବା ଟଙ୍କ ଦହି ଦୁଷ୍ପାଚ୍ୟ ଓ ତାହା ଅତି ଅମ୍ଳିଳା ହୋଇ ଯାଇଥିବା ଯୋଗୁଁ ଖାଇଲେ ଦାନ୍ତ ଟଙ୍କ ମାରଯାଏ । ବୈଦ୍ୟଶାସ୍ତ୍ର ଅନୁସାରେ ଦହି ଅଗ୍ନି ଦୀପକ, ଧାରକ, ବସ୍ତିପିତ୍ତକାରକ, ବଳକାରକ, ଶୁକ୍ର ଓ କଫ ବର୍ଦ୍ଧକ ତଥା ମୂତ୍ରକୃଚ୍ଛ୍ର, ଅରୁଚି, ଅତିସାର ଓ ବିଷମ ଜ୍ୱର ନିବାରକ; ଇଉରୋପର ଡାକ୍ତରମାନେ ଦହିକୁ ଆୟୁବର୍ଦ୍ଧକ ଥିବାର ଘୋଷଣା କରିଅଛନ୍ତି । ଶୁଭକାର୍ଯ୍ୟ ନିମନ୍ତେ ଅନୁକୂଳ କରିବା ସମୟରେ ଦହି ଦେଖି କରି ଅନୁକୂଳ କଲେ ଉକ୍ତ କାର୍ଯ୍ୟ ସଫଳ ହୁଏ ବୋଲି ଲୌକିକବିଶ୍ୱାସ ଅଛି । ଦହିରେ ଅନ୍ୟ କେତେ ପଦାର୍ଥମାନ କିଛି-କାଳ ପକାଇ ରଖି ଔଷଧ ପ୍ରସ୍ତୁତ କରାଯାଏ । ଯଥା—ବଳୁଆ ଦହି, ନେଉଳ ଦହି । ]

୨ । ଦହି ପରି ଥଲଥଲିଆ ପଦାର୍ଥ—2. Soft curd-like matter; a thing like curd or jelly.

୩ । ମସ୍ତିଷ୍କ ମଧ୍ୟରେ ଥିବା ଦଧିବତ୍ ଥଲଥଲିଆ ବସ୍ତୁ—
3. The soft substance inside the brain.

ଏ କାହାରେ ବସାଇଛନ୍ତି ମସ୍ତ ଘାଇ
କହନ୍ତେ ପୁରନ୍ତ ଜଣ ସେ ଯୁଦ୍ଧ ସ୍ପର୍ଦ୍ଧି—କୃଷ୍ଣସିଂହ. ମହାଭାରତ ଦ୍ରୋଣ ।

ପ୍ରାଦେ—୧ । (ସମ୍ବଲପୁର) ବି—ବସା ଦହି—1. Curd.

୨ । (ପୁରୀ ଲୁଣ ମରାଯିବା ଅଞ୍ଚଳ) ବି—ପ୍ରଥମରେ କିଆରିରେ ସମୁଦ୍ର ପାଣିକୁ ପୂରାଇ କେତେକ ସମୟ ତାହା ସେଠାରେ ସ୍ଥିର ହୋଇ ରହିବା ପରେ ଉପର ପାଣିକୁ କିଆରିରୁ ବାହାର କରିଦେଲାରୁ ଯେଉଁ ବହଳିଆ ପାଣି ରହିଯାଏ ଏବଂ ସେ ଯେଉଁ ବହଳିଆ ପାଣିକୁ ନିଅଁରେ ବସାଇ ପଙ୍ଗା ଲୁଣ ମରାଯାଏ—The thick lower layer of sea-water which is left in the shallowpan and boilded for manufacturing salt.

ଦହିଆଳ—ଦେ. ବି—ଦଇଆଳ (ଦେଖ)
Dahiāla Daiāla (See).

ଦହିକଡ଼ି—ଦେ ବି—ଦହିରେ ଲୁଣ ମସଲା ଆଦି ଦେଇ ସିଦ୍ଧ କରି
Dahikardi ପ୍ରସ୍ତୁତ କରିବା ଏକପ୍ରକାର ବ୍ୟଞ୍ଜନ—
ଦହିକଡ଼ୁମା } ଅନ୍ୟରୂପ A curry made of curd or whey
ଦହିକର୍ଢି } being boiled after proper
दहीव अम्बल seasoning.

ପ୍ରାଦେ (ଯାଜପୁର) ବି—ମାର୍ଗଶିର ମାସ ଗୁରୁବାର ଦିନ ଲକ୍ଷ୍ମୀଙ୍କୁ ପୂଜା କରାଯିବା ଦହି ସଙ୍ଗେ ସିଦ୍ଧ ଅରୁଆ ଭାତ—The food preparation, made of sunrice boiled with curd or whey for offering to Goddess Lakshmī on the Thursday in the month of Mārgasira.

ଦହିକନ୍ଦା—ଦେ. ବି—ଏକପ୍ରକାର ଧାନ—
Dahikandā A kind of paddy

ଦହିଖୁଆ—ଦେ. ବି (ସଂ ଦଧି+କ୍ଷୁଭ୍ ଧାତୁ=ଘାଣ୍ଟିବା)—ଯେଉଁ
Dahikhuā ପିଣ୍ଡାଗ୍ର ଯଷ୍ଟିରେ ଦହିକୁ ମୋହିଁ ଲହୁଣୀ ବାହାର
मथी କରାଯାଏ, ମନ୍ଥନଦଣ୍ଡ—A churning stick; a
**मथानी** churner with which curd is churned.

ଦହିଗୁଡ଼ୁଭାତ—ଦେ ବି (ସଂ. ଅଭ୍ୟୁଦାନ, ଦଧି+ଗୁଡ଼+ଭକ୍ତ)—
Dahigurdubhāta ବିବାହର ପୂର୍ବ ଦିନ କୁମାର ବର ଓ
(ଦହିଗୁଡ଼ଭାତ, ଦହିବୁଡ଼ୁଭାତ—ଅନ୍ୟରୂପ) କୁମାରୀ କନ୍ୟା
आइबुडोभात (ଅବିବାହିତ ଅବସ୍ଥାରେ) ଦହି ଭାତ ଖାଇବାରୂପ ସ୍ତ୍ରୀଆଗ୍ର; ଅଭ୍ୟୁଦାନ—A meal (of rice mixed with curd) taken by a bride and a bridegroom respectively the last time on the previous day of marriage.

ଦହିଚୂଡ଼ା—ଦେ. ବି (ସଂ. ଦଧି ଓ ଚର୍ପଟକ; ସହଚର ଶବ୍ଦ)—୧ । ଚୂଡ଼ା
Dahichurdā ଦହି; ଚୂଡ଼ା ସଙ୍ଗେ ଦହି ଗୋଳାଇ ପ୍ରସ୍ତୁତ
ଚିଡ଼େଦହି କରାଯିବା ଖାଦ୍ୟ—1. Food prepared by
**दही चिड़वा** mixing parched rice with curds.

୨ । ଶ୍ରାଦ୍ଧ, ଶାନ୍ତି, ପ୍ରାୟଶ୍ଚିତ୍ତ ଓ ଉତ୍ସବାଦି ଉପଲକ୍ଷେ କରାଯିବା ବ୍ରାହ୍ମଣଭୋଜନ—2. Feeding of Brahmins on religious or funeral occasions.

[ଦ୍ର—ଆମ ଦେଶରେ ଅଳ୍ପକାଳ ବ୍ରାହ୍ମଣଙ୍କ ପ୍ରତି ଲୋକଙ୍କ ଭକ୍ତି ଦହିଚୂଡ଼ାରେ ପର୍ଯ୍ୟବସିତ ହୋଇଅଛି । ଶୁଖିଏ ଚୂଡ଼ା ଓ

ତାହିଁ ସଙ୍ଗେ ଛଞ୍ଚ ଦହି ଓ ତାହିଁ ସଙ୍ଗେ ବହୁକା ମାତ୍ରାରେ ଦଶୁ ଗୁଡ଼ ଦେଇ ଶାସ୍ତ୍ରୋକ୍ତ "ବ୍ରାହ୍ମଣଭୋଜନ କାର୍ଯ୍ୟ" ସମାଧା କରାଯାଏ । ]

**ଦହିଚୁଡ଼ାମେରୁ**—ପ୍ରାଦେ ( ଯାଜପୁର ) ବିଶ—ଯେଉଁ ବ୍ରାହ୍ମଣ ତାଙ୍କ Dahichur̤dāmeru ଗ୍ରାମ ନିକଟବର୍ତ୍ତୀ ଅଞ୍ଚଳର ପ୍ରାୟ ସବୁ 'ଦହି ଚୂଡ଼ା'ରେ ଯୋଗ ଦେଇ ଖୁବ୍ ଦହିଚୁଡ଼ା ଖାଏ—(a Brāhmaṇa) Who in no case fails to attend any Dahichur̤dā feast and also can eat Dahichur̤dā in much quantity.

**ଦହିଛେନା**—ଦେ. ବି ( ଦଧି ଓ ଛିନ୍ନରୁ )—ଘୋଳ-ଦହିକୁ ନିଆଁରେ Dahichhenā ସିଝାଇ ତିଆର କରାଯିବା ଛେନା—दहिछाना Cheese prepared by boiling whey. पनीर, दहिछेना

[ ଦ୍ର—ଦୁଧ ଉତୁରିବା ଅବସ୍ଥାରେ ତହିଁରେ ଖଟା ପକାଇଲେ ତାହା ଛିନ୍ନିଯାଇ ଯେଉଁ ଛେନା ହୁଏ ତାହାକୁ ଦୁଧ ଛେନା କହନ୍ତି । ଦୁଧ ଛେନାରୁ ସନ୍ଦେଶ ବା କଞ୍ଚାଗୋଲା, ରସଗୋଲା, ଲାଲମୋହନ, ଲେଡ଼ିକେନିଙ୍ଗ୍, ଚମଚମ, ଗୁପ୍‌ଚୁପ୍, ଗୋଲାପଜାମୁ ଆଦି ତିଆର ହୁଏ ।

ଦୁଧ ଛେନା ଅପେକ୍ଷା ଦହି ଛେନା ଖଟା । ଦହି ଛେନାରେ ଗୁଡ଼ ଗୋଳାଇ ଛେନାଗୁଡ଼ ଓ ପିଠାର ପୁର ତିଆରି ହୁଏ । ଏଥିରୁ ଛେନା ବଡ଼ା, ଛେନା ଭାଜୁଆ ଆଦି ତିଆରି ହୁଏ ।

ଦହି ଛେନା ଦୁଧ ଛେନା ଅପେକ୍ଷା ଦୁଷ୍ପାଚ୍ୟ । ]

**ଦହିଜ(ଯ)**—ଗ୍ରା. ବିଣ (ସଂ ଦହ୍ୟ)—୧ । ଦଗ୍ଧ—Dahija(ja) 1. Burnt.

(ଦହିଜ୍ୟ—ଅନ୍ୟରୂପ) କଲେ ସୂର୍ଯ୍ୟ ତାଙ୍କ ମଣିକି ଦହିଯ
କୋହେ କି ସେ ସୂର୍ଯ୍ୟଙ୍କର । 
ଗୋପୀକୃଷ୍ଣ. ରସକଲ୍ଲୋଳ ।

୨ । ଦହଗଞ୍ଜ, ପ୍ରପୀଡ଼ିତ—
2. Tormented; harassed.

ବି—ଦହନ—Burning

**ଦହିଜ(ଯ)କରିବା**—ଗ୍ରା. କ୍ରି—ପୋଡ଼ିବା; ଦହନ କରିବା; ଦଗ୍ଧ କରିବା—Dahaja(ja)karibā To burn down

(ଦହିଜ୍ୟ କରିବା—ଅନ୍ୟରୂପ) କାଲେ ସଂସାର କରଇ ଦହିଜ
ସେହି ପ୍ରକାରେ ନନ୍ଦର ତନୁଜ ।
ଭକ୍ତ. ମତ୍ସ୍ୟମଙ୍ଗଳ ।

**ଦହିତୋଡ଼ପା**—ଦେ. ବି—୧ । ଦହିବାଲା ଦହି ବିକ୍ରି କରିବାବେଳେ Dahitor̤dapā ଦହି ମାପିବା ପାଇଁ ବ୍ୟବହାର କରୁଥିବା (ଦହିତୋଡ଼ପୀ—ସ୍ତ୍ରୀ) ନଡ଼ିଆ ବା କଂସାନିର୍ମିତ ପାତ୍ରବିଶେଷ—
ଦହିସୋଡ଼କା, ଦହିଶୋଡ଼କା } ଅନ୍ୟରୂପ 1. A pot (made of cocoanut shell or bellmetal) used
ଦହିସୋଡ଼କୀ, ଦହିଶୋଡ଼କୀ } ସ୍ତ୍ରୀ for measuring curd while selling.

ଦେ ବି. ପୁଂ—୨ । ( ଗାଳିବିଶେଷ ) ଯେଉଁ ବ୍ୟକ୍ତି ହାପୁର କରି ଏକାଥରକେ ବହୁପରିମାଣରେ ଦହି ଖାଏ ଓ ଏପରି ଖାଇଲାବେଳେ ସଡ଼ସଡ଼ ଶବ୍ଦ କରେ—2. One who gulps a large quantity of whey down his throat with a sound.

ଚେପଟା ନାକୀ ଦହି ଶୋଡ଼କା (ଶୋଡ଼ପୀ) ଅଇଁଠା ପଇରେ ଖାଏ,
ଗୋଡରେ ଅଇଁଠା ଲାଗିଲାକ୍ଷଣେ ନଈକି ଗାଧୋଇ ଯାଏ । ଢଗ ।

**ଦହିଦହିକା**—ଦେ. ବି ( ସଂ. ନାମ ଦଧାଳୀ, ଦଧାଳୀ, ଦଧାଳିକା, Dahidahikā ସୁଦର୍ଶନା, ବୃଷକର୍ଣ୍ଣୀ, ଉତ୍କାହ୍ୱା, ସୋମବଲ୍ଲୀ, ମଧୁପର୍ଣ୍ଣିକା, ଗୁଳୁଚ)--ଏକପ୍ରକାର ବନ୍ୟ ଶାକ
ଦହିଦହିଆ, ଦହିଦହିଆ, ଦହିଦହିକା } ଅନ୍ୟରୂପ ଲତା (ଏହାର ପତ୍ରକୁ ଚକଟିଲେ ଏକପ୍ରକାର ନାଳନାଳିଆ ରସ ବାହାରେ ଓ ଏ ନାଳକୁ दधयो, पदगुलञ्छ मदनमस्त କୌଣସି ପାତ୍ରରେ ରଖିଦେଲେ ତାହା ଥଲଥଲ ହୋଇ ବସିଯାଏ)—A kind of herb growing wild, whose leaves when crushed produce juice which turns into jelly when set down for a time; Tinospora Tomentosa

**ଦହି ଦେବା**—ଦେ. କ୍ରି—୧ । ଦହନ କରିବା; ନାଶ କରିବା—Dahi debā 1. To destroy.

ରତନଶ୍ରେଣ୍ଣ ଗାରଙ୍କ ଦର୍ପ ଦେବ ଦହି—କୃଷ୍ଣସିଂହ. ମହାଭାରତ ବନ ।

୨ । ଦଳିଚକଟି ପକାଇବା—
2. To crush, to knead.

୩ । ( ଲକ୍ଷଣାର୍ଥ ) ବଳିଯିବା—
3. ( figurative ) To excel.

ଯୁଧିଷ୍ଠିରଙ୍କ କରେ ଶକ୍ତି ବର ଦେହି
ଯମ କାଳଦଣ୍ଡ ପ୍ରଭାକୁ ଦେଲା ଦହି । କୃଷ୍ଣସିଂହ. ମହାଭାରତ ଶଲ୍ୟ ।

**ଦହିନଉତି**—ଦେ. ବି—୧ । ଦେଉଳର ମୁଣ୍ଡିରେ ଉପରଭାଗେ ଥିବା Dahinauti ଦଧିଭାଣ୍ଡ ଆକାରରେ ଗୋଲାକାର ପଥର ବା ଚୂନର दधिनउति गोलक—1. The round pitcher like दहेँड़ी ball of stone or masonry put on the crown of a temple.

୨ । ଦହିପୂର୍ଣ୍ଣ ବଡ଼ ହାଣ୍ଡି—
2. A large pot full of whey.

**ଦହିନଉତିଆ**—ଦେ ବିଣ—ମୁହଁରେ ପଲମ ଯୋଡ଼ା ହୋଇଥିବା ଦହି Dahinautiā ନଉତି ପରି ଆକୃତିବିଶିଷ୍ଟ—Shaped like a whey-pot with a cover.

[ ଦ୍ର—ଥନ୍ତଲା ପେଟିଆ 'ଥ', ଦହିନଉତିଆ 'ଦ'—ଶିଶୁ. ବର୍ଣ୍ଣଶିକ୍ଷା ବଚନ । ]

**ଦହିନା**—ବୈଦେ ବି. ( ଫା. ଦହାନା )—ଘୋଡ଼ାର ପାଟି ମଧ୍ୟରେ Dahinā ଦିଆଯିବା ଲୁହାର କଡ଼େଇ—Bit; curb. दाहिना ( ଯଥା—ଏଥିର ଦୁଇପାଖରେ ଥିବା ଲୁହା କଡ଼ିରେ दहाना ଲଗାମ ବନ୍ଧାଯାଏ । )

(ଦ(ଦା)ଇନା; ଦହିନା କଡ଼େଇ; ଦାହିନା କଡ଼େଇ—ଅନ୍ୟରୂପ)

**ଦହି ପଖାଳ**—ଦେ. ବି—ଦଧ୍ୟନ୍ନ; ଭାତ ସଙ୍ଗେ ଦହି ମିଶାଇ ପ୍ରସ୍ତୁତ Dahi pakhāḷa କରାଯିବା ଏକପ୍ରକାର ରୁଚିକର ଖାଦ୍ୟ—दहिभात Boiled rice moistened with curds.

ଦହି ଭାତ, ଦହି ପଖାଳ } ଅନ୍ୟରୂପ [ ଦ୍ର—ଗ୍ରୀଷ୍ମଋତୁରେ ଏଥିରେ ଲେମ୍ବୁରସ, ଅଦାଛେଚା, କଞ୍ଚା ଲଙ୍କା ଦେଇ ଦିଅ ଓ ଖାଅ ବୋଲି ବହୁଲୋକ ଏହା ସମୟ ସମୟରେ ଅଭ୍ୟାସ କରନ୍ତି । ଏ ମନ୍ଦିର ଦେବତାମାନଙ୍କ ନିକଟରେ ଖେଚୁଡ଼ି ସଙ୍ଗେ ଦହିପଖାଳ ଭୋଗରୂପେ ଅର୍ପିତ ହୁଏ । ]

**ଦହି ବସା(ସେ)ଇବା**—ଦେ କ୍ରି—ବସାଦହି କରିବା ନିମନ୍ତେ ଈଷତ୍ Dahi basā(se)ibā ଗରମ ଦୁଧରେ ମହି ପକାଇବା—To set
दहीपाता down milk ( after putting
**दहीजमाना** some acid base in it ) for turning it into curds.

[ ଦ୍ର—ଦୁଧରୁ ବସାଦହି କରିବା ନିମନ୍ତେ କୌଶଳ ଓ ଅଭ୍ୟାସ ଲୋଡ଼ା । ସମସ୍ତଙ୍କ ଦେଇ ଭଲକୁ ଦହି ବସେ ନାହିଁ । ଦୁଧ କେତେ ଗରମ ଥାଉଁ ଥାଉଁ ସେଥିରେ ମହି ପକାଇବାକୁ ହେବ କେତେ ପରିମାଣରେ ମହି ଦିଆଯିବ ଏହା ସମସ୍ତେ ଜାଣନ୍ତି ନାହିଁ । ଏକା ଦୁଧକୁ ଦୁଇ ଜଣଙ୍କୁ ଦହି ବସାଇବାକୁ ଦେଲେ ଦେଖାଯିବ ଯେ ଦହି ବସିବା ଓ ସ୍ୱାଦରେ ଅବଶ୍ୟ ପ୍ରଭେଦ ଦେଖାଯିବ । ]

**ଦହି ବସିବା**—ଦେ କ୍ରି—ଦୁଧରେ ମହି ଦେବାଦ୍ୱାରା ତାହା ବସାଦହିରେ Dahi basibā ପରିଣତ ହେବା—( milk ) Being turned
दहीबसा **दहीजमाना** into curd.

**ଦହିବରା(ଡ଼ା)**—ଦେ. ବି. ( ସଂ ଦଧି+ବଟକ )—ଦହିରେ ବୁଡ଼ି Dahibarā(ṛdā) ଯାଇଥିବା ବରା ପିଠା—Cack immersed
दहीबरा in or saturated with curds.

**ଦହିବା**—ଦେ. କ୍ରି. ( ସଂ. ଦହ୍ ଧାତୁ )—୧ । ପୋଡ଼ି ଦେବା; ଦଗ୍ଧ Dahibā କରିବା; ନିଆଁ ଲଗାଇ ଭସ୍ମରେ ଜାଳି ଦେବା—
दहा 1. To burn; to destroy by fire.

ଦହନ(ନ) କରିବା, ଦହ୍ୟ କରିବା }ଅନ୍ୟରୂପ ସୁବର୍ଣ୍ଣଙ୍କୁ ଛୋଡ଼ିଚ, ସୁବର୍ଣ୍ଣର ସର୍ବ ନୋହିବ ଅନଳେ ଦହୁଅଛୁ ମୋ ଶରୀର—ମଧୁସୂଦନ, ଛନ୍ଦମାଳା ।

୨ । ( ଲକ୍ଷଣାର୍ଥ ) ଦହଗଞ୍ଜ କରିବା—2. (fig) to harass; to cause insense anxiety.

୩ । ପୋଡ଼ି ଦେବା—3. To be burnt.

ସଜ୍ଜନ ଦୁଃଖାଗ୍ନିରେ ଦହି
ସୁବର୍ଣ୍ଣର ତେଜରେ ଶୋଭଇ—ମଧୁସୂଦନ, ଛନ୍ଦମାଳା ।

**ଦହିବାଲି**—ଦେ. ବି. ସ୍ତ୍ରୀ - ଯେଉଁ ସ୍ତ୍ରୀ ଦହି ବିକି କରେ—
Dahibāli A female whey-seller.
दहीवाली **दहीवाली** ଦହିବାଲିକୁ ଚୁଡ଼ାବାଲି ସାକ୍ଷୀ—ଢଗ ।

( ଦହିବୁଅଲି, ଦହିବାଲି—ଅନ୍ୟରୂପ )

**ଦହି ମାଛ**—ଦେ. ବି ( ସହଚର ଶବ୍ଦ; ସଂ. ଦଧି ଓ ମତ୍ସ୍ୟ । କୌଣସି Dahi māchha ଶୁଭକାର୍ଯ୍ୟ ପାଇଁ ଅନୁକୂଳ କରିବା ସମୟରେ
दहीमाछ ଦହି ଓ ଜୀଅନ୍ତା ମାଛ ଦେଖି କରି ଗଲେ ଉକ୍ତ
**दहीमछली** କାର୍ଯ୍ୟ ସଫଳ ହୁଏ ବୋଲି ଲୋକଙ୍କର ବିଶ୍ୱାସ ଥିବାରୁ )—କୌଣସି ଶୁଭକାର୍ଯ୍ୟ ଉପଲକ୍ଷରେ ଅନୁକୂଳ କରୁଥିବା ବ୍ୟକ୍ତିକୁ ଦେଖାଇବା ଦଧି ଜୀଅନ୍ତା ମାଛ—Curd and living fish shown to a person while setting out to accomplish some thing of importance

**ଦହି ମାଛୁଆ**—ପ୍ରାଦେ. (ଯାଜପୁର) ବି—ଧୋବା—
Dahi māchhiā Washerman.

**ଦହିମୁହାଁ**—ଦେ. ବି. ( ସଂ· ଦଧିମନ୍ଥନରୁ )—ଦଧି ମନ୍ଥନ—
Dahimuhāñ Churning of curd for extracting
দই মোআন ଦେ. ବିଣ—ଦଧି ମନ୍ଥନରେ ବ୍ୟବହୃତ—
**दही मथना** Used in churning curd

**ଦହିମୁ(ମୋ)ହିଁବା**—ଦେ. କ୍ରି. ( ସଂ. ଦଧି ଓ ମଥ୍ ଧାତୁରୁ )—
Dahimu(mo)hiñbā ଘୋଳ ଦହି ତିଆରି କରିବା ପାଇଁ ବସା

ଦହି ମୁହାଁଇବା, ଦହି ଘୋଳାଇବା } ଅନ୍ୟରୂପ ଦହିକୁ କୁଣ୍ଡରେ ମନ୍ଥନ କରିବା; ଦଧି ମନ୍ଥନ କରିବା —
দই মোআন To churn curd
**दही मथना**

**ଦହିଲା**—ଦେ. ବି. ( ଫା. ଦହ୍=ଦଶ )—
Dahilā ଗଞ୍ଜପା ଓ ତାସ ଖେଳରେ ଦଶ ଚିହ୍ନ ଥିବା ତାସ—

ଦହଲା, ଦହ } ଅନ୍ୟରୂପ The playing card having ten points or tips on it.
দহলা **दहला**

**ଦହି ହାଣ୍ଡି**—ଦେ. ବି—୧ । ଯେଉଁ ହାଣ୍ଡିରେ ଦୁଧରେ ମହି ପକାଇ Dahi hāṇḍi ଦହି ବସାଯାଏ—1. A pot used for
দই হাঁড়ি curdling milk.
**दहेँड़ी** ୨ । ଯେଉଁ ହାଣ୍ଡିରେ ବସା ଦହିକୁ ମୁହାଁଯାଏ—
2. An earthen vessel used for churning curd a churning pot.

୩ । ଯେଉଁ ହାଣ୍ଡିରେ ଦହି ଥାଏ—3. The earthen pot in which curd is kept; the pot containing curd.

**ଦହି ହେବା**—ଦେ. କ୍ରି. ( ସଂ. ଦହ୍ ଧାତୁର କର୍ମବାଚ୍ୟ )—
Dahi hebā ( ଲକ୍ଷଣାର୍ଥ ) ଦହଗଞ୍ଜ ହେବା—

ଦହନ ହେବା, ଦହ୍ୟ ହେବା } ଅନ୍ୟରୂପ ( figurative ) To undergo harassment; to suffer great mental anxiety or worry.

ଦହି ହେବ ବିନା ଅପେ ଅନୁତାପେ । ରାଧାନାଥ, ମହାଯାତ୍ରା ।

**ଦହ୍ୟ**—ଦେ. ବିଣ. ( ସଂ. ଦାହ୍ୟ )—
Dahya ୧ । ପୋଡ଼ା; ଦଗ୍ଧ—1. Burnt

ଦହନ, ଦହ୍ୟ } ଅନ୍ୟରୂପ ୨ । ଦହଗଞ୍ଜ, ଦଉଡ଼ନ—2. Troubled, harassed; pestered; agitated; perturbed.

ବି—ଦଉଡ଼ନ; ଦହଗଞ୍ଜ; ଆକୁଳତା—Harassment; mental agitation; perturbation.

**ଦହ୍ୟମାନ**—ସଂ. ବିଣ. ( ଦହ୍ ଧାତୁ+କର୍ମ. ଆନ ପ୍ରତ୍ୟୟ )—
Dahyamāna ୧ । ଯାହା ଜଳୁଅଛି; ଯାହା ଦଗ୍ଧ ହେଉଅଛି, ଜଳୁଥିବା—1. Burning.

୨ । ( ଲକ୍ଷଣାର୍ଥ; ଯଥା—ହୃଦୟ ) ଦହଗଞ୍ଜ—
2. Greatly perturbed; affected; troubled.

ଦହ୍ର—ସ. ବି. ପୁଂ. ( ଦହ୍ ଧାତୁ + ସଜ୍ଞାର୍ଥେ କର୍ତ୍ତୃ ର )—
Dahra ୧ । ଅଗ୍ନି—1. Fire
୨ । ବନ ଅଗ୍ନି, ଦାବାଗ୍ନି—
2. Forest fire, conflagration.
୩ । ନରକ—3. Name of a hell
୪ । ବରୁଣ ଦେବତା—
4 The Sea-God; the Indian Neptune
୫ । ଜଠର—5. Stomach
( ଯଥା—ହୃଦାଗ୍ନି = ଜଠରାଗ୍ନି । )
୬ । ହୃଦୟାକାଶ—
6. The heart ( compared to the sky ).
୭ । ବନ—7. Forest.

ଦା (ଧାତୁ)—ସ.—ଦେବା—To give.
Dā (root)

ଦା—ସ ବି. ସ୍ତ୍ରୀ ( ଦା ଧାତୁ + ଭାବ କ୍ୱିପ୍ )—୧ । ଦାନ—
Dā 1. Gift.
୨ । ଶୋଧନ—2. Refining.
୩ । ( ଛେଦନାର୍ଥ, ଦୋଧାତୁ + କ୍ୱିପ୍ )—ଛେଦ—
3 Cutting.
୪ । ଉତ୍ତାପ; ଉପରେ ଜଣାଯିବା ଉତ୍ତାପ—
4. Superficial heat or temperature.
୫ । (ପାଳନାର୍ଥ, ଦେ ଧାତୁ + କ୍ୱିପ୍) ରକ୍ଷଣ, ପାଳନ—
5. Protecting; preservation.
ଦେ. ବି (ସ. ଦାତ୍ର)—ଦାଆ (ଦେଖ)—Dāā (See)

ଦାଆ—ଦେ. ବି (ସ. ଦାତ୍ର)—୧ । ଧାନ୍ୟାଦି କାଟିବାର କରତ ପରି
Dāā ଦାନ୍ତୁଆ କତୁରୀ, ଧାନ୍ୟକର୍ତ୍ତରୀ—1. A sickle;
दा, कास्ते; हँसि, हँसुआ scythe.
(ଯଥା—ଏ ବରଷ ଆମ ବିଲକୁ ଦାଆ ଯିବ ନାହିଁ ।)
୨ । କଟାରୀ—2. A bill-hook; chopping knife.

ଦାଆଁଡ଼—ପ୍ରାଦେ. (ସମ୍ବଲପୁର) ବି—ଦାଣ୍ଡ; ପଥ—Road
Dā-āṅrda

ଦାଆଙ୍କୁଡ଼ି—ପ୍ରାଦେ. (ଯାଜପୁର) ବି—ଉଚ୍ଚ ଗଛରୁ କଣ୍ଟା କାଟିବାପାଇଁ
Dā-āṅkurḍi ଲଗି ଅଗରେ ସଂଲଗ୍ନ ଦାଆ; ଦରାଣ୍ଡ—
A scythe attached to a long stick to cut thorny branches from high trees.

ଦାଆଣି—ଦେ ବି—ବଳଦଙ୍କ ଦେହରେ ଦାଗ ବା ବାଣୀ ଦେବାପାଇଁ
Dā āṇi ବ୍ୟବହୃତ ଲୁହା—Searing iron

ଦାଆଦାଢ଼ିଆ—ଦେ.ବିଣ—ଦାଆ ପରି ଦାନ୍ତୁର—Edged or toothed
Dā-ādārḍhiā like a scythe

ଦାଆବେଠି—ପ୍ରାଦେ (ସମ୍ବଲପୁର) ବି—ଗ୍ରାମର ଗଉନ୍ତିଆ ବା ମାଫିଦାର-
Dā-ābeṭhi ମାନଙ୍କ ଜମିରୁ ଧାନ କଟା ହେବାପାଇଁ ବିନା
(ଦାଆ ଭେଟ—ଅନ୍ୟରୂପ) ପାରିଶ୍ରମିକରେ ରଯତମାନେ ଦାଆ ଦ୍ୱାରା
ଯେଉଁ ବେଠି କରନ୍ତି—Free harvesting of paddy of the Gountia or Mafidar of a village by the royats.

ଦାଆବେଣ୍ଟ—ଦେ. ବି—ଦାଆକୁ ହାତରେ ଧରି ବ୍ୟବହାର କରିବା
Dā-ābenṭa ନିମନ୍ତେ ତା ମୂଳରେ ଥିବା କାଠର ମୁଠା—
दाएव मूठा; हँसिये का मुठ The wooden handle of a sickle
(ଦାଆ ମୁଠା, ଦାଆ ମୁଠି; ଦା ମୁଠା—ଅନ୍ୟରୂପ)

ଦାଇ—ଦେ ବି—ଦାୟ (ଦେଖ)—Dāya (See)
Dāi
ଦେ ବିଣ (ସ ଦାୟୀ)—୧ । ଦାୟୀ—1. Responsible.
(ଫା. ଦାଵା)—୨ । ଦାବାଦାର—2. Claiment.

ଦାଇଁ—ପ୍ରାଦେ (ସମ୍ବଲପୁର) ବି—ଦାଉଣୀ—
Dāiṅ A long fether which many beasts
ଦାଇଁ -ଅନ୍ୟରୂପ) are tied.

ଦାଇକା—ଦେ. ବି—୧ । ଦାଯିକା; ଦାଏକା, ଦାହକା; ଡାହୁକା;
Dāikā ଯାତ୍ରା ଓ ପାଲାବାଲାଙ୍କ ମଧ୍ୟରେ ଉତ୍ତର ପ୍ରତ୍ୟୁତ୍ତର ଛଳରେ
(ଦାଏକା—ଅନ୍ୟରୂପ) ଦୁଇ ପକ୍ଷ ପରସ୍ପରପ୍ରତି ଯେଉଁ ଛଳପୂର୍ଣ୍ଣ ଗୀତ
दाएका; धूया ବୋଲନ୍ତି—1. Ironical and satirical
ढुहा. दोहा doggerels or conplets flung at each other by antagonistic parties of dancers and singers.
୨ । ପ୍ରବଚନ—2 Proverb.
କଥା କହୁବାବେଳେ ଭାଗବତରୁ ଢେର ଢେର ପଦ ଦାଇକାଦେଇ କହେ ।
ଫକୀରମୋହନ, ଗଳ୍ପସ୍ୱଳ୍ପ ।

ଦାଇକା ପକା(କେ)ଇବା—ଦେ. କ୍ରି. ବି—ଯାତ୍ରାବାଲା ତାର ଅପର ପକ୍ଷ
Dāikā pakā(ke)ibā ପ୍ରତି ଛଳୋକ୍ତି ପ୍ରୟୋଗ କରି ଗୀତ
( ଦାଯିକା ମାରିବା—ଅନ୍ୟରୂପ ) ଗାଇବା—Singing of ironical doggerels or conplets by a dancer against his antagonistic party.

ଦାଇକା ମରାମରି—ଦେ ବି—ଯାତ୍ରାବାଲାଙ୍କ ମଧ୍ୟରେ ଉତ୍ତର ପ୍ରତ୍ୟୁତ୍ତର
Dāikā marāmari ଛଳରେ ପରସ୍ପର ବିପରୀତ ପକ୍ଷ ପ୍ରତି ଛଳୋକ୍ତି
ବ୍ୟବହାର—Mutual use of ironical or satirul doggerels or conplets by the dancing parties against each other.

ଦାଇତ୍ୱ—ଦେ. ବି. ( ସ. ଦାୟିତ୍ୱ )—ଦାୟିତ୍ୱ—
Dāitwa Responsibility.

ଦାଇଦାର୍—ପ୍ରାଦେ. ( ସମ୍ବଲପୁର ) ବି—ଦାୟିଦାର୍ ( ଦେଖ )
Dāi-dār Dāyidār ( See )
( ଦାୟିଦାର୍—ଅନ୍ୟରୂପ )

ଦାଇବା—ଦେ. କ୍ରି ( ସ ଦୋ ଧାତୁଜ; ଦାତ୍ରରୁ )—
Dāibā ୧ । ଦାଆରେ ଧାନଗଛ ଆଦିକୁ କାଟିବା; ମୂଳପୋଛ କରି
दाना ତୃଣ କାଟିବା—1. To cut paddy plants with the
काटना sickle; to mow down grass etc.
ବେଇଥିଲେ ପାଇବ, ବୁଣିଥିଲେ ଦାଇବ;
ପଡ଼ିଥା ଭୂମିରେ ଗୋଧନ ଚରାଇବ—ଚଳନ୍ତିଆ ପଣ୍ଡା ଗୀତ ।

୨ । (ଲକ୍ଷଣାର୍ଥ) ଭଗ୍ଯର ପୂର୍ବକୃତ କର୍ମଫଳ ଭୋଗ କରିବା—
2. To enjoy or suffer or reap the fruits of one's fate.
୩ । ଦାହିବା ( ଦେଖ )—3. Dāhibā ( See )

**ଦାଇ ମୁଦେଇ**—ଦେ. ବି. (ସହଚର ଶବ୍ଦ, ସ ଦାୟୀ ଓ ଫା. ମୁଦେଇ)—
Dāi mudei ୧ । କୌଣସି ଅଭିଯୋଗ ସମ୍ବନ୍ଧେ ପ୍ରକାଶ୍ୟଭାବରେ
दाईमुदई ଅଭିଯୋଗ ଉତ୍ଥାପନ କରିବା ବ୍ୟକ୍ତି—
1. A person who accuses another openly.
୨ । ଦାବିଦାର—2. Claimant.
ଦେ. ବିଣ—ଦାୟିତ୍ୱପୂର୍ଣ୍ଣ ( ଲୋକ )—
Responsible; accountable.

**ଦାଇଲ୍(ଲି)**—ଦେ. ବି. ( ସ. ଦାର୍ବୀ )—ବିଆଳି ଧାନ ବାଛିବାପାଇଁ
Dāil(li) ବ୍ୟବହୃତ ଛୋଟ ଦାଆ—A small sickle used
(ଦଇଲି—ଅନ୍ୟରୂପ) generally in weeding biali paddy
दाओलि **दाँती**

**ଦାଈ**—ଦେ. ବି ସ୍ତ୍ରୀ. (ସ. ଧାତ୍ରୀ; ପ୍ରାକୃତ. ଧାଈ)—
Dāī ୧ । ଧାତ୍ରୀ; ଉପମାତା; ଯେ ଶିଶୁକୁ ସ୍ତନ୍ୟଦାନଦ୍ୱାରା ପାଳେ —
धाई 1. Wet-nurse, nurse.
**दायी** ୨ । ସ୍ତ୍ରୀମାନଙ୍କର ଗର୍ଭାବସ୍ଥା ବା ପ୍ରସବ କରାଇବା କାର୍ଯ୍ୟରେ
(ଦାଇ ମା—ଅନ୍ୟରୂପ) ନିପୁଣା ସ୍ତ୍ରୀ—2. A midwife; a female practitioner skilled in the obstetric art.
ଦାଇକୁ ପେଟ ଲୁଚାଇବା କ୍ୟାସ୍ତ—ଢଗ ।

**ଦାଉ**—ଦେ. ବି. (ସ. ଦାବ=ଉତ୍ତାପ; ସ. ଦାନ; ଫା. ଦାଉଁ )—
Dāu ୧ । ବାଧା; ସନ୍ତାପ—
दाँव; दाँ 1. Torture; harassment.
**दाँव** ଦାଉ ପାଇ ମୁଁ ହେଉଛି ଏବେ—କବିସୂର୍ଯ୍ୟ. ସଙ୍ଗୀତ କଲ୍ପଲତା ।
( ଦାଉଁ—ଅନ୍ୟରୂପ ) ୨ । ଜୋର୍; ତେଜ; ପ୍ରତାପ—
2. Force; violence; brunt.
୩ । ଅତ୍ୟାଚାର; ଜୁଲମ—
3. Oppression; tyranny.
ଦେହରେ ନ ରଖି ସ୍ଥାନ ପୁଣି ଲାଗେ ଆଲିଙ୍ଗନ ଏତେ ଦାଉ
ପାରିବ କି ସହି ରେ—କବିସୂର୍ଯ୍ୟ. ସଙ୍ଗୀତ ।
୪ । ଜ୍ୱାଳା—4. Heat; burning pain.
୫ । ପୀଡ଼ା; ବ୍ୟଥା, ବେଦନା; ଯନ୍ତ୍ରଣା—
5. Trouble; pain; distress.
ଲଙ୍କ ଯେବେ ପାଉ କନ୍ଦା ଦାଉ
ଲଗିଲି ଆପଣଙ୍କୁ ଦେହ ଅଭ—କବିସୂର୍ଯ୍ୟ ବଳୋଧରଞ୍ଚ. ଲ-ଗୀତ ।
୬ । ମର୍ମସ୍ଥାନ; ମାଡ଼ ଦେବାର ବା ଆଘାତ କରିବାର ଉପଯୁକ୍ତ ସ୍ଥାନ—6. Tendermost part; vulnerable part where a stroke can take effect; vital part of the body.
୭ । ସୁଯୋଗ, ସୁବିଧା; ସୁବିଧା—
7. Convenience; fit opportunity.
ପାଞ୍ଚ ବାଉ ହାତ ଗୁଣ, ସେଣିକି ଅଡାଇଲେ ଟଙ୍କା, ଚେଲକାରର
ଦାଉ କଣ ଲଗେ—ଫକୀରମୋହନ. ଗଳ୍ପସ୍ୱଳ୍ପ ।
୮ । ଅବଭକ୍ତି—8. Enmity; grudge
୯ । ପ୍ରତିଶୋଧ—9. Revenge.

**ଦାଉଆ** -ବୈଦେ ବି ( ଆ. ଦାବା )—୧ । ଦାବି—
Dāuā 1. Claim.
दाओया ୨ । ଦାବା; ସ୍ୱତ୍ୱ ଦାବିପୂର୍ବକ ପ୍ରାର୍ଥନା—
**दावा** 2. Advancing a claim by petition.
୩ । ମକଦ୍ଦମା ଉପସ୍ଥାପିତ କରିବା —
3. Filing of a case or suit.
୪ । ବିବାଦ—4. Dispute; quarrel.
୫ । ମକଦ୍ଦମା—5. Case; suit
ଦେ ବିଣ—୧ । ଚତୁର—1. Skilful.
୨ । ଯେ ସୁବିଧା ଦେଖି କାର୍ଯ୍ୟ କରେ—
2. Opportunist

**ଦାଉଁଆ** ଦେ. ବିଣ. (ହି) --ଯେ ଖଞ୍ଜ ବା ସୁଯୋଗ ଉଣ୍ଡି କାମ କରେ—
Dāuñā One who acts by availing of opportunities; opportunist.
दाओँबाज
( ଦାଉଁପେଚଆ, ଦାଉଁବାଜ—ଅନ୍ୟରୂପ )

**ଦାଉଁ ଦାଉଁ**—ଦେ. ଅ ( ଧ୍ୱନ୍ୟନୁକରଣ )—
Dāuñ dāuñ ୧ । ଦୁମ୍ ଦୁମ୍; ଧମାଧମ୍ ଶବ୍ଦ କରି—
दाओँदाओँ 1 Making thumping sound.
**धमाधम** ( ଯଥା—ତା ପିଠିରେ ଦାଉଁ ଦାଉଁ କରି ବିପୁଛା ବିଧା
( ଦାଓଁ ଦାଓଁ —ଅନ୍ୟରୂପ ) ଲଦି ଦେଲା । )
୨ । ଖୁବ ଦମ୍ ଦମ୍ ହେବାର ଶବ୍ଦ—
2. Violent beating sound; palpitating sound of the heart.
୩ । ଭୟରେ ବିଶେଷ ହୃତ୍କମ୍ପଯୁକ୍ତ—3. Violently throbbing or palpitating through fright
କୃଷ୍ଣ ଅର୍ଜୁନଙ୍କ ଯୁଝିବା କଥା ଥାଉ
ଶୁଣିଲେ କର ଛୁଇ ତୁଟ ଦାଉଁଦାଉଁ—କୃଷ୍ଣସିଂହ. ମହାଭାରତ. ଅବ ।

**ଦାଉଁ ମାରିବା**—ଦେ କ୍ରି—୧ । ସୁଯୋଗ ବା ଖଞ୍ଜ ଉଣ୍ଡି କାମ କରିବା—
Dāuñ māribā 1. To avail of an opportune
(ଦାଉଁଆ ମାରିବା—ଅନ୍ୟରୂପ) time to gain one's end.
दा मावा ୨ । ଖଞ୍ଜ ଉଣ୍ଡି ବା ସୁଯୋଗ ଦେଖି ଗୁଡ଼ାଏ ଲାଭ କରିବା-
**दाँव मारना** 2. To get some money by means of fair or foul
୩ । ହଠାତ୍ କୌଣସି ବସ୍ତୁକୁ ଝାମ୍ପି କରି ନେଇଯିବା—
3. To pounce upon or take away anything tactfully.

**ଦାଉକଳ**—ଦେ. ବି. ( ଜାହାଜିଆ ଶବ୍ଦ )—
Dāukaḷa ଯେଉଁ କଳ ସାହାଯ୍ୟରେ ଲଙ୍ଗର ପାଣିରୁ ଉପରକୁ
कपिकल ଟେକାଯାଏ—(nautical) The machine or
**हाथिसकल** crane with the help of which the anchor of a ship is raised up from water; capstan.

ଦାଉକଳର ଛଅଣା ପଣା ଥର ଛଡା ହୋଇ ଅଛନ୍ତି ।
ଫକୀରମୋହନ. ଗଳ୍ପସ୍ୱଳ୍ପ ।

**ଦାଉଘାତ୍**—ଦେ. ବି—୧ । ଅତ୍ୟାଗ୍ରହ—
Dāughāt 1. Oppression.
୨ । ବିଶେଷ ଅଘାତ—2. Serious hurt.
୩ । ଅତ୍ୟନ୍ତ ଜ୍ୱାଳା ବା ପୀଡ଼ା; ବେଦନା—
3. Pain, distress; torture.
୪ । କ୍ଷତ ଆଦିର ପୀଡ଼ାଯୁକ୍ତ ଓ ଭୟାନକ ଅବସ୍ଥା—
4. Very frightful condition of a sore or wound.
( ଯଥା—ଘାଅଟା ବଡ଼ ଦାଉଘାତ୍ କରୁଛି । )
ବିଣ—ଦାଉଘାତିଆ ( ଦେଖ )
Dāughātiā ( See )

**ଦାଉଘାତିଆ**—ଦେ. ବିଣ—୧ । ପୀଡ଼ା ବା ବେଦନାଯୁକ୍ତ; ମର୍ମନ୍ତୁଦ—
Dāughātiā 1. Very distressing.
**दुखदाई** ୨ । ମର୍ମ ସ୍ଥାନରେ ଆଘାତ ଲାଗିବା ହେତୁ ବିଶେଷ କଷ୍ଟଦାୟକ 2. Torturing; very painful owing to being struck at some vital part.

**ଦାଉଘାତୀ**—ଦେ. ବିଣ. ( ଦେ. ଦାଉ + ସଂ. ଘାତୀ )—
Dāughāti ୧ । ଅନିଷ୍ଟକାରୀ—1. Harmful; mischievous.
କପଟରୁ ବାହେ୍ୟ ବଡ ନମ୍ରହ ମୂରତ
ମାତ୍ର ବଡ଼ ଦାଉଘାତୀ ଦୁର୍ମତି ଅନ୍ତରେ । ରଘୁନାଥ. ମହାଯାତ୍ରା ।
୨ । ଯେ ପ୍ରତିଶୋଧ ନେବାକୁ ଚେଷ୍ଟା କରେ—
2. Revengeful.

**ଦାଉଣି**—ଦେ. ବି. ( ସଂ. ଦାମନୀ )—
Dāuṇi ୧ । ବେଙ୍ଗଲାରେ ବଳଦମାନେ ଏକାଧିକ ପଘା ଲାଗି-
(ଦାଉଁଣୀ—ଅନ୍ୟରୂପ) ଥିବା ଯେଉଁ ଲମ୍ବ ଦଉଡ଼ିରେ ଯୋଗ୍ଯ ବୁଲୁଥାନ୍ତି-
दौंवा 1. A long rope to which bullocks are
**दामन, दाँवरी** tethered together to go round a central post while treading paddy sheaves to separate the grains from the stalks
୨ । ଗଳକମ୍ବଳ—2. Dewlap ( Howells).
୩ । ବଳଦ, ଷଣ୍ଢ ଆଦିଙ୍କଠାରେ ଦାଗ (ବାଣୀ) ଦିଆଯିବା ପାଇଁ ବ୍ୟବହୃତ ତାତିଲା ଲୁହା—3. Searing iron.
କାହିଁ ହଲଚଲ ଲଗାଅ ପଛକେ ଦେଇବ ଦାଉଣି ଗୁର୍ଦ୍ଦ ଗୁର୍ଦ୍ଦ ।
ଭୂଷାବରଣ. ଗୀତଳହରୀ ।
ପ୍ରାଦେ. (ସମ୍ବଲପୁର) ବି—ମେଇରେ ଲଗାଯିବା ବେତର ଗୋଲକ
A ratan ring put round the central post during paddy-treading opperation.

**ଦାଉଣିଆ**—ଦେ. ବିଣ—(ଦାଉଣିରୁ) କଳୁଆ—
Dāuṇiā Trickish

**ଦାଉଣିଗିରି**—ଦେ. ବି—କଳବଳରେ ପକାଇ କାର୍ଯ୍ୟ ହାସଲ କରିବା
Dāuṇigiri ବୁଦ୍ଧିରୁ—Trickishness.
(ଦାଉଣିଆଗିରି—ଅନ୍ୟରୂପ)

**ଦାଉଣ୍ଡି**—ଦେ. ବି—ଆନକ ବାଦ୍ୟବିଶେଷ—
Dāuṇḍi A kind of drum.
ଦାମଣ୍ଡି } ଅନ୍ୟରୂପ
ଦାମୁଣ୍ଡି }
ଅଗରେ ଦାଉଣ୍ଡି ଯେ ବାଜଇ ଝାଉ ଟିର
ଡୋଷାଧ୍ୟ ବୋଲଇ ଭୂମ୍ଭେ ଶୁଣ ସର୍ବ ନର ।
ବିଶ୍ୱନାଥ. ବିଚିତ୍ରରାମାୟଣ ।

**ଦାଉଣ୍ଡିଆ**—ଦେ ବିଣ—ଦାଉଣ୍ଡି ସମ୍ବନ୍ଧୀୟ—
Dāuṇḍiā Pertaining or relating to Dāuṇḍi.
ଦ ଅକ୍ଷର ହୋଇଅଛ ଦାଉଣ୍ଡିଆ ବାଦ । ପ୍ରାଚୀ. ବ୍ରହ୍ମକଳ୍ପଗୀତା ।

**ଦାଉଦ୍**—ଦେ. ବି. (ନାମ)—ଓଡ଼ିଶାର ଜନୈକ ମୋଗଲ ଶାସନକର୍ତ୍ତା—
Dāud A Mougal Governor of Orissa.
दाऊद [ ଦ୍ର—ସେ ପ୍ରଥମେ ଆକବରଙ୍କ ସଙ୍ଗେ ବିରୋଧ କରି
**दाउद्** ମୋଗଲମାନଙ୍କଠାରେ ପରାସ୍ତ ହୋଇ ବଶ୍ୟତା ସ୍ୱୀକାର କଲେ ଓ ପରେ ପୁଣି ଶାସନଭାର ପାଇଲେ ଏବଂ ପୁଣି ବିଦ୍ରୋହୀ ହୋଇ ଅଗମହଲ ଯୁଦ୍ଧ (୧୫୭୮) ରେ ନିହତ ହେଲେ । ସେହି ଦିନଠାରୁ ଓଡ଼ିଶା ମୋଗଲ ସମ୍ରାଟଙ୍କର ଖାସ୍ ଶାସନାଧୀନ ରହିଲା ।]
ବୈଦେ. ବି. (ନାମ; ଇଂ. ଡାଭିଡ଼)—ଡାଭିଡ଼; ବାଇବଲ ଲିଖିତ ଇହୁଦୀମାନଙ୍କର ସ୍ତୁତିଗାୟକ ଭବିଷ୍ୟଦ୍‌ବକ୍ତା ରାଜା—
King David the prophet King of the Bible.

**ଦାଉଦ୍‌ଖାନି**—ବୈଦେ. ବି—ଏକପ୍ରକାର ସରୁ ଚାଉଳ—
Dāudkhāni A kind of fine rice.
दादखानी **दाउदखानी**

**ଦାଉଦାଉ**—ଦେ. କ୍ରି. ବିଣ. ( ସଂ ଦାବ=ଅଗ୍ନି )—
Dāudāu ୧ । ଦୀପ୍ତିପୂର୍ବକ ( ଜଳିବା ); ଜକଜକ—
दाँउदाउ 1. Brightly.
**धगधग** ସେ ସବୁ ଏବେ ଦାଉ ଦାଉ ହୋଇ ଜଳି ଉଠିଲା ।
ନୀଳକଣ୍ଠ ଦାଶ. ପିଲାଙ୍କ ରାମାୟଣ ।
୨ । ଦାଉଁଦାଉଁ ( ଦେଖ )—2. Dāun̐dāun̐ ( See )
ବକ୍ର ସନ୍ଧରେ ଦେଖିଲେ ମୋର ବାକ୍ତ
କାହା ବୁକୁ ଜଳ ନୋହିବ ଦାଉଦାଉ । କୃଷ୍ଣସିଂହ. ମହାଭାରତ. ଶାନ୍ତି ।
ଦେ. ବିଣ—ଉଜ୍ଜ୍ୱଳ; ଜାଜ୍ଜ୍ୱଲ୍ୟମାନ; ଜକଜକ, ଦୀପ୍ତିମୟ—
Dazzling; glittering; bright; glaring.
ତା ଶିର ମୁକୁଟ ଦିଶେ ଦାଉଦାଉ ରେ । କବିସୂର୍ଯ୍ୟ. ସଙ୍ଗୀତ କଳ୍ପଲତା ।
ଦେ. ଅ. ( ଧ୍ୱନ୍ୟନୁକରଣ )—ଶବ୍ଦବିଶେଷ—
A kind of measured sound.
ଦାଉ ଦାଉ ଶବଦ କରୁଛି ମହାନାଦ । ପ୍ରାଚୀ. ବ୍ରହ୍ମକଳ୍ପଗୀତା ।

**ଦାଉଦୀ**—ବୈଦେ. ବି (ଆ. ଦାଉଦ୍)—ଏକପ୍ରକାର ଉତ୍କୃଷ୍ଟ ଗହମ—
Dāudi A kind of excellent wheat.
दाउद **दाउदी**

**ଦାଉ ନେବା**—ଦେ. କ୍ରି—ଦାଉସାଧିବା (ଦେଖ)
Dāu nebā Dāusādhibā (Sse)

**ଦାଉ ପଟିବା**—ଦେ. ବି—ସୁବିଧା ଘଟିବା—
Dāu paṭibā Being convenient for one's purpose; suiting to one's purpose.
दाउपटा
**दाँवपटना**

**ଦାଉପେଚ୍**—ବୈଦେ. ବ. (ହି)—କଳକଦର; ଖଞ୍ଜଖାଞ୍ଜ; ସୁଯୋଗ—
Dāupech — Opportunity; opportune moment.
(ଦାଉଁପେଁଚ୍, ଦାଉଁପେଞ୍ଚ୍, ଦାଉଁପେଁଚ୍—ଅନ୍ୟରୂପ)
दाउँपेंच **दाँवपेँच**

**ଦାଉରିଆ**—ଦେ. ବ—ସିଙ୍କୋଲା (ଦେଖ)
Dāuriā — Sinkolā (See)

**ଦାଉ ସାଧିବା**—ଦେ. କ୍ରି—ପ୍ରତିଶୋଧ ନେବା—
Dāu sādhibā — To retaliate; to be avenged; to feed fat one's grudge; to take grudge; to repay one in one's own coil.
दाँउ साधा
**दाँवलेना**

ତର ଦ୍ବୈମାର ଯା ମନାଧିଣ ଥିଲ
ସାଧିଲ ବଧି ସେ ଦାଉ । ରଧାନାଥ. ଯଯ ତ ।

**ଦାଏ**—ଦେ ବ—ଦାୟ (ଦେଖ)
Dāe — Dāya (See)

**ଦାଏର୍**—ବୈଦେ. ବଣ. (ଫା. ଦାୟେର୍=ବିଚାରାଧୀନ)—
Dāer — ୧ । ବିଚାରାଧୀନ—1. Under trial; pending on file.
(ଦାୟେର୍—ଅନ୍ୟରୂପ)
दायेर — ୨ । ବିଚାରାର୍ଥ ଅଦାଲତରେ ଉପସ୍ଥାପିତ—
**दायर** — 2. Filed in court; instituted; begun; initiated in a court.
ବ—ଅଦାଲତରେ (ମୋକଦ୍ଦମା) ଉପସ୍ଥାପନ—
Institution of a case in court

**ଦାଏର୍ କରିବା**—ଦେ. କ୍ରି—ଅଦାଲତରେ ଉପସ୍ଥାପିତ କରିବା—
Dāer karibā — To file in court; to institute.
(ଦାୟେର୍ କରିବା—ଅନ୍ୟରୂପ)
दायेर करा **दायर करना**

**ଦାଏରି**—ବୈଦେ. ବଣ. (ଫା. ଦାୟେରୀ)—୧ । ଅଦାଲତରେ ନାଲିସ କରାଯାଇଥିବା—1 Instituted; filed in the court.
Dāeri
(ଦାୟେରୀ—ଅନ୍ୟରୂପ)
दायेरी — ୨ । ବିଚାରାର୍ଥ ଉପସ୍ଥାପିତ ହୋଇ ଶେଷ ବିଚାର ହୋଇ ନ ଥିବା—2. Pending decision
**दायरी**

**ଦାଏଲ**—ପ୍ରାଦେ. (ସମ୍ବଲପୁର) ବ—ଡାଲି—
Dāel — Split-moong.

**ଦାଁଠ୍**—ପ୍ରାଦେ. (ସମ୍ବଲପୁର) ବ—ଖିଲାଣ—
Dānt̤ — Arch.

**ଦାଁଡ଼ି**—ପ୍ରାଦେ. (ସମ୍ବଲପୁର ଓ ସିଂହଭୂମ) ବି—ଶଗଡ଼ଦଣ୍ଡା—
Dānrdi — The long bars of a bullock-cart.

**ଦାଁତ୍**—ପ୍ରାଦେ. (ସମ୍ବଲପୁର) ବି—ଦାନ୍ତ—
Dānt — Tooth.

**ଦାଁତ୍ ଚୁବିବା**—ପ୍ରାଦେ. (ସମ୍ବଲପୁର) କ୍ରି—ଦାନ୍ତ ରଗଡ଼ିବା—
Dānt chābibā — To grind one's teeth.

**ଦାକ୍ଷାୟଣ**—ସଂ. ବି. (ଦକ୍ଷ+ଅୟନ)—୧ । ସୁନା (ହି. ଶବ୍ଦସାଗର)—
Dakshāyaṇa — 1. Gold.
୨ । ଭୂଷଣଆଦି ମନୋହର ଦ୍ରବ୍ୟ (ହି. ଶବ୍ଦସାଗର)—
2. Ornaments and other fancy things.
୩ । ସ୍ବର୍ଣ୍ଣମୁଦ୍ରା, ମୋହର (ହି. ଶବ୍ଦସାଗର)—2. Gold coin.
୪ । ଦକ୍ଷଯଜ୍ଞ (ଦେଖ)—4, Dakshajagña (See)

**ଦାକ୍ଷାୟଣୀ**—ସଂ. ବ. ସ୍ତ୍ରୀ (ଦକ୍ଷ=ପ୍ରଜାପତିବିଶେଷ+ଅପତ୍ୟାର୍ଥେ, ଅୟନ +ସ୍ତ୍ରୀ. ଈ)—୧ । ଦକ୍ଷପ୍ରଜାପତିଙ୍କ କନ୍ୟା, ସତୀ; ପାର୍ବତୀ; ଦୁର୍ଗା—
Dākshāyaṇī
(ଦାକ୍ଷାୟିଣୀ—ଅନ୍ୟରୂପ)
1. Satı; Pārbatı in her previous birth.

କେହ୍ନ ନ ବୋଲୁ ଦାକ୍ଷାୟଣୀ
ଅଃଉ ବୈର ଘରଣୀ—ଜଗନ୍ନାଥ. ଭାଗବତ ।

୨ । (ଜ୍ୟୋତିଷ) ରେବତୀ ନକ୍ଷତ୍ର—
2. The 27th lunar mansion.
୩ । ସଂ. ବହୁବଚନ—(ଜ୍ୟୋତିଷ) ଅଶ୍ବିନ୍ୟାଦି ୨୭ ନକ୍ଷତ୍ର—3. The 27 constellations or lunar mansiosns.
୪ । ରୋହିଣୀ ନକ୍ଷତ୍ର (ହି. ଶବ୍ଦସାଗର)—
4. The 4th lunar mansion.
୫ । କଶ୍ୟପଙ୍କ ସ୍ତ୍ରୀ; ଅଦିତି—
5. A wife of Kaśyapa; Aditı
ସଂ. ବଣ ଦାକ୍ଷାୟଣ+ଇନ୍)—ସ୍ବର୍ଣ୍ଣନିର୍ମିତ (ହି. ଶବ୍ଦସାଗର)—
Golden.

**ଦାକ୍ଷାୟଣୀପତି**—ସଂ. ବ. ପୁଂ (ଦାକ୍ଷାୟଣୀ+ପତି; ୬ଷ୍ଠୀ ତତ୍)—
Dākshāyaṇī patı — ୧ । ଶିବ; ମହାଦେବ—1 Śiba.
୨ । ତାରାପତି; ଚନ୍ଦ୍ର—2. The moon.

**ଦାକ୍ଷାଯ୍ୟ**—ସଂ. ବ (ଦକ୍ଷ୍=ବେଗବାନ୍ ହେବା+ଆଯ୍ୟ=ଦକ୍ଷାଯ୍ୟ+ଅପତ୍ୟାର୍ଥେ. ଅ) ୧ । ଗରୁଡ଼; ବିଷ୍ଣୁଙ୍କ ବାହନ—
Dākshājya — 1. The Garurda (king of birds).
୨ । ଶାଗୁଣା; ଗୃଧ୍ର—2. Vulture.

**ଦାକ୍ଷିଣ**—ସଂ. ବଣ—୧ । (ଦକ୍ଷିଣା+ଅ)—ଦକ୍ଷିଣାସମ୍ବନ୍ଧୀୟ—
Dākshiṇa — 1. Relating to sacrificial gifts.
୨ । (ଦକ୍ଷିଣ+ଅ)—ଦକ୍ଷିଣସମ୍ବନ୍ଧୀୟ—2. Southern.
ସଂ. ବ—ଶତପଥବ୍ରାହ୍ମଣୋକ୍ତ ହୋମବିଶେଷ—
Name of a Vedic sacrifice.

**ଦାକ୍ଷିଣାତ୍ୟ**—ସଂ. ବଣ (ଦକ୍ଷିଣ=ଦକ୍ଷିଣଦିଗ+'ସେଠାରେ ଜାତ' ଅର୍ଥରେ. ତ୍ୟ)—୧ । ଦକ୍ଷିଣଦିଗ୍‌ଭବ—
Dākshiṇātya — 1. Southern.
୨ । ଦକ୍ଷିଣରେ ଅବସ୍ଥିତ—
2. Situate in the south
୩ । ଦକ୍ଷିଣଦେଶୀୟ, ଦକ୍ଷିଣୀ—
3. Pertaining to the Deccan.
୪ । ଦକ୍ଷିଣ ଦେଶବାସୀ; ଦକ୍ଷିଣିଆ—4. Inhabiting the southern portion of Deccan
ବ—୧ । ଦକ୍ଷିଣାପଥ; ବିନ୍ଧ୍ୟାଚଳର ଦକ୍ଷିଣରୁ କୁମାରିକା ଅନ୍ତରୀପ ପର୍ଯ୍ୟନ୍ତ ଅବସ୍ଥିତ ଦେଶ—1. The Deccan; South India; the part of India to the south of the Bindhya range.

[ଦ୍ର—ଏ ଶବ୍ଦ ଏ ଅର୍ଥରେ ପ୍ରାଚୀନ ପ୍ରାମାଣିକ ସଂସ୍କୃତ ଗ୍ରନ୍ଥରେ ବ୍ୟବହୃତ ହେବାର ଦେଖାଯାଏ ନାହିଁ । କିନ୍ତୁ ଆଧୁନିକ ଅନେକ ପ୍ରସିଦ୍ଧ ସଂସ୍କୃତଜ୍ଞ, 'ଦକ୍ଷିଣାପଥ' ଅର୍ଥରେ ଏହି ଶବ୍ଦ ବ୍ୟବହାର କରିଥିବା ଦେଖାଯାଏ । ]

୬ । ନଡ଼ିଆ—2. The cocoanut.

**ଦାକ୍ଷିଣାତ୍ୟ ପ୍ରଭା**— ସଂ.ବି (ଆଧୁନିକ ପ୍ରୟୋଗ)—ବୈବସ୍ୱତ ପ୍ରଭା (ଦେଖ)
Dākshiṇātya prabhā   Baibaswatī prabhā (See).

**ଦାକ୍ଷିଣାତ୍ରୟ**—ପ୍ରାଦେ (ଯାଜପୁର) ବି—ଯାଜପୁରବାସୀ କୁଳୀନ ବ୍ରାହ୍ମଣଙ୍କ ଶାଖାବିଶେଷ—
Dākshiṇātraya
(ଦକ୍ଷିଣାତ୍ରୟ; ଦକ୍ଷିଣାତ୍ରେୟ—ଅନ୍ୟରୂପ) [ଦ୍ର—ଯଯାତିକେଶରୀ କାନ୍ୟକୁବ୍ଜରୁ ଦଶ ସହସ୍ର ବେଦଜ୍ଞ ବ୍ରାହ୍ମଣଙ୍କୁ ଆଣାଇ ଯାଜପୁରରେ ସେମାନଙ୍କଦ୍ୱାରା ଯଜ୍ଞ କରାଇ ପ୍ରଥମେ ସେଠାରେ ବ୍ରାହ୍ମଣମାନଙ୍କୁ ବସାଇଥିଲେ । ପରେ ସେଠାରୁ ଯେଉଁମାନେ ପୂର୍ବ ଅଞ୍ଚଳକୁ ଯାଇ କେତେକାଳ ରହିବା ପରେ ପୁଣି ଯାଜପୁରକୁ ଫେରିଲେ, ସେମାନେ ଦାକ୍ଷିଣାତ୍ରୟ ନାମରେ ଅଭିହିତ ହେଲେ ଓ ଯେଉଁମାନେ ପ୍ରଥମରୁ ଯାଜପୁରରେ ବାସ କରି ରହିଲେ ସେମାନେ ଯାଜପୁର-ତ୍ରୟ ନାମରେ ପରିଚିତ ହେଲେ । ]

**ଦାକ୍ଷିଣ୍ୟ**—ସଂ. ବି —(ଦକ୍ଷିଣା + ଯୋଗ୍ୟାର୍ଥେ. ଯ)—୧ । ଦୟା—
Dākshiṇya 1. Humanity; kindness; pity; generosity; milk of human kindness

୨ । ପରଚ୍ଛନ୍ଦାନୁବର୍ତ୍ତିନ, ଆନୁକୂଲ୍ୟ, ପ୍ରସନ୍ନତା—
2. Patronage, favour.

୩ । ଔଦାର୍ଯ୍ୟ; ଉଦାରତା—
3. Liberal-mindedness.

୪ । ସରଳତା—4. Frankness; sincerity; simplicity.

୫ । ଭଦ୍ରତା; ସୌଜନ୍ୟ—5. Courtesy; politeness.

୬ । ଅନ୍ୟ ବ୍ୟକ୍ତିର ଚିତ୍ତକୁ ପ୍ରସନ୍ନ କରିବାର ଭାବ—
6. Creating of a favourable impression on another's mind.

[ ଦ୍ର—ଏହା ଦୟା ସଙ୍ଗେ ସହିତର ଶବ୍ଦରୂପେ ବ୍ୟବହୃତ ହୁଏ । ]

ବିଣ.—(ଦକ୍ଷିଣା + ଯ)—ଦକ୍ଷିଣାର ଉପଯୁକ୍ତ; ଦକ୍ଷିଣାର୍ହ—
Deserving to be given a present.

**ଦାକ୍ଷୀ**— ସ. ବି. ସ୍ତ୍ରୀ. (ଦକ୍ଷ + ଈ)—୧ । ଦକ୍ଷ ପ୍ରଜାପତିଙ୍କ କନ୍ୟା—
Dākshī 1. Daughter of Daksha.

୨ । ପାଣିନିଙ୍କ ମାତାଙ୍କ ନାମ—2. Name of Pāṇini's mother.

[ଦ୍ର—ପାଣିନିଙ୍କୁ ଦାକ୍ଷୀପୁତ୍ର ବୋଲଯାଏ ।]

**ଦାକ୍ଷ୍ୟ**— ସ. ବି (ଦକ୍ଷ + ଭାବେ. ଯ)—୧ । ଦକ୍ଷତା; ପଟୁତା—
Dākshya 1. Expertness; agility; smartness.

୨ । ନୈପୁଣ୍ୟ—2. Skill; cleverness.

୩ । ସାମର୍ଥ୍ୟ; କାର୍ଯ୍ୟକୁଶଳତା—
3. Ability; competence.

ଦେ. ବି.—ଦାକ୍ଷିଣ୍ୟ, ପରଚ୍ଛନ୍ଦାନୁବର୍ତ୍ତିତ୍ୱ—Patronage.

ଯୁଧିଷ୍ଠିର ବୋଇଲେ ଦାକ୍ଷ୍ୟଦାନ ସଭ୍ୟ,
ଶୀଳ ଏ ଗୁଣକର ସେ ପର୍ଯ୍ୟବସିତ ।

କୃଷ୍ଣସିଂହ. ମହାଭାରତ. ବନ ।

**ଦା । ଖା ।**—ଦେ. (ଜମିଦାରୀ ସାଙ୍କେତିକ; ଦାଖଲ ଖଜଣା)—ଖଜଣା
Dā—khā Abbreviation denoting payment of rent.

[ଦ୍ର—ଏ ଶବ୍ଦ ପ୍ରଜାଙ୍କୁ ଦିଆଯିବା ଚାଲାଣ ବା ଟୁପା ପାଉତିରେ ବ୍ୟବହୃତ ହୁଏ ।
'ଦାଖଲ'ରୁ 'ଦା' ଏବଂ 'ଖଜଣା'ରୁ 'ଖ' ଏପରି ଦା: ଖ: ।]

**ଦାଖଲ୍**—ବୈଦେ. ବି. (କଚେରିଆ) (ଫା. ଦଖଲ୍=ଅଧିକାର, ଶବ୍ଦଜ; ଦାଖିଲ=ଅନ୍ତର୍ଭୂତ ପ୍ରବିଷ୍ଟ)—୧ । ହାଜର; ଉପସ୍ଥିତି—1. Presence.
Dākhal
ଦାଖିଲ
**ଦାଖୀଲ**
(ଦାଖିଲ୍; ଦାଖଲ—ଅନ୍ୟରୂପ)

୨ । ପହଞ୍ଚାଇବା; ଉପସ୍ଥାପିତ କରିବା—
2. Delivery; placing; producing before a person.

୩ । ଅର୍ଥ ପ୍ରେରଣ—3. Remittance of money.

୪ । ପଇଠ, ଟଙ୍କା ଦେବା—
4. Payment of money.

୫ । ଉପାଜ୍ଞି; ନ୍ୟାସ—5 Deposit

ବିଣ.—୧ । ହାଜର, ଉପସ୍ଥିତ—
2. Present; delivered

୩ । (କାଗଜପତ୍ରରେ ନାମ ଆଦି) ସନ୍ନିବିଷ୍ଟ; ଦରଜ୍ ଦିଆ ଯାଇଥିବା—3. Entered (in paper); recorded.

୪ । ଦିଆ ଯାଇଥିବା (ଧନ ବା ବସ୍ତୁ)—
4. Paid; delivered.

୫ । ପ୍ରେରିତ—5. Remitted.

୬ । ଜମାକରି କରାଯିବା—6. Deposited.

[ଦ୍ର—କଚେରିଆ ଓ ଜମିଦାରିଆ ଲେଖାରେ ଏଥିର ସାଙ୍କେତିକ 'ଦା' । ଯଥା—
। ଦା । ଖଜଣା ଗ୍ରାମସାନ୍ତ ଦିଅନ୍ତେ ପୁତ୍ର ଶ୍ୟାମ ସାନ୍ତ ଅର୍ଥାତ୍ ଗ୍ରାମସାନ୍ତ ନିମନ୍ତେ ତା ପୁଅ ଶ୍ୟାମ ଖଜଣା ଦାଖଲ କଲା ।]

**ଦାଖଲ୍ କରିବା**—ଦେ. କ୍ରି. (କଚେରିଆ)—୧ । ପଇଠ ଦେବା; ପଠାଇବା -
Dākhal kariba 1. To pay; to deliver.
ଦାଖିଲକବା
**ଦାଖିଲ୍ କରନା**

୨ । ଉପସ୍ଥାପିତ କରିବା—
2. To produce; to present; to submit; to file.

୩ । କାଗଜପତ୍ରରେ ନାମ ଆଦି ପୂରଣ କରିବା; ନାମ ଯୋଗାଇବା; ଚଢ଼ାଇବା—3. To enter on paper; to record; to add the name.

**ଦାଖଲକାରୀ**—ଦେ. ବିଣ. (କଚେରିଆ) ଯେଉଁ ବ୍ୟକ୍ତି ଅର୍ଥାଦି ଦାଖଲ କରେ=Payer; depositer; person making a payment or deposit.
Dākhal kārī

**ଦାଖଲ୍ ଖାରଜ୍**—ବୈଦେ. ବି (କଚେରିଆ) (ଫା) (ଦାଖିଲ୍=ଯୋଗ କରିବା + ଖାରଜ୍=ବିଯୋଗ କରିବା)
Dākhal khāraj
(ଦାଖିଲ୍ ଖାରଜ୍—ଅନ୍ୟରୂପ) ୧ । ଖାରଜ ଦାଖଲ; ଖାରଜ

ଦାଖିଲ ଖାରିଜ ଦାଖିଲ୍, କୌଣସି ସିରସ୍ତାରେ ଏକ ବ୍ୟକ୍ତି ବା
**ଦାଖିଲ ଖାରୀଜ** ବସ୍ତୁର ନାମ କାଟି ଅନ୍ୟର ନାମ ସେହି ସ୍ଥାନରେ ପୂରଣ କରିବା —1. Replacing an old name by a new; substituting on paper; recording the name of one person in the place of another.

( ଯଥା— ଦଶସାଲା ବନ୍ଦୋବସ୍ତରେ ୧ ଲକ୍ଷଗଣ୍ଡା ବାଯ୍ୟାପ୍ତି ମୌ ସିଦ୍ଧେଶ୍ୱରପୁର । ଖା । ଦା । ମୌ—ନୂଆଁଟାଁର ଅନ୍ତର୍ଗତ କରାଗଲା । )

୨ । ( କୌଣସି ଭୂସ୍ୱତ୍ୱ ପକ୍ଷେ ) ଜଣେ ବ୍ୟକ୍ତିର (ଯଥା— ବିକ୍ରେତା, ମୃତବ୍ୟକ୍ତି, ପୂର୍ବାଧିକାରୀର) ନାମ କାଟିଦେଇ ନୂତନ ଅଧିକାରୀଙ୍କ ( କ୍ରେତା, ଉତ୍ତରାଧିକାରୀଙ୍କ ) ନାମ ଜମିଦାରି ବା ସରକାରୀ ସିରସ୍ତାରେ ଲେଖିବା— 2 Substitution; mutation or registration of the name of a new person (e g. purchaser, heir, successor) in the place of an old or out going person (e. g vendor, deceased, predecessor) in the office papers or records

ଦାଖଲ୍ ଖାରଜ୍ କରିବା—ଦେ. କ୍ରି ( କଚରିଆ )—ସିରସ୍ତାର କାଗଜ
Dākhal khāraj karibā ଆଦିରେ ପୁରାତନ ଅଧିକାରୀର ନାମ
(ଦାଖିଲ୍ ଖାରିଜ୍ କରିବା—ଅନ୍ୟରୂପ) କାଟିଦେଇ ନୂତନ ଅଧିକାରୀ
ଦାଖିଲ ଖାରିଜ କରନା ବା ସ୍ୱତ୍ୱବାନ୍ ବ୍ୟକ୍ତିର ନାମ ଦରଜ କରିବା—
**ଦାଖିଲ ଖାରିଜ କରନା** To register the name of a successor in interest by cancelling or striking that of the predecessor.

ଦାଖଲ ଖାରଜ ମହକୁମା - ବୈଦେ. ବି ( କଚରିଆ ) (ଫା. ଦାଖିଲ୍ +
Dākhala khāraja mahakumā ଖରିଜ୍ + ମହକମା) ଯେଉଁ
ଦାଖିଲ ଖାରିଜ ମହକୁମା ସରକାରୀ କାର୍ଯ୍ୟ ବିଭାଗରେ ମୃତ ବ୍ୟକ୍ତି ବା
**ଦାଖୀଲ ଖାରିଜ ମହକୁମା** ବିକ୍ରେତାର ନାମ ପରିବର୍ତ୍ତେ ଭୂସମ୍ପତ୍ତି ପକ୍ଷେ ଯଥାକ୍ରମେ ଓ୍ୟାରିସ ଓ ଖରିଦଦାରର ନାମ ବହିରେ ପରେ ଲେଖାଯାଏ—Land registration department or court.

ଦାଖଲ ଖାରଜରୁ (ରୋ)ଷ(ଷୁ)ମ୍ —ବୈଦେ. ବି (କଚରିଆ) (ଫ) —
Dākhala khāraja ru(ro)sha(shu)m ମୃତବ୍ୟକ୍ତି ବା ବିକ୍ରେତା
ଦାଖଲ ଖାରଜ ଫିସ୍ } ଅନ୍ୟରୂପ ପ୍ରଜାର ନାମ ପରିବର୍ତ୍ତେ ଓ୍ୟାରିସ
ଦାଖଲ ଖାରଜ ସଲାମି } ବା ଖରିଦଦାରର ନାମ ରହିତ
ଦାଖିଲ ଖାରିଜ ରුସුମ ବା ମଧ୍ୟସ୍ୱତ୍ୱ ପକ୍ଷେ ଦରଜ କରିବାପାଇଁ
**ଦାଖିଲ ଖାରିଜ ରසුମ** ଜମିଦାରଙ୍କୁ ଦିଆଯିବା ଧନ—Fees paid to landlord for registration of sales or succession in the case of royaty holdings.

ଦାଖଲ ଦେବା—ଦେ. କ୍ରି (କଚରିଆ)—ନିର୍ଦ୍ଦିଷ୍ଟ ବ୍ୟକ୍ତିଙ୍କ ନିକଟରେ
Dākhala debā ଟଙ୍କା ଆଦି ପଠାଇବା ବା ଜମା ଦେବା—
ଦାଖିଲ କରନା To make payment to or deposit
**ଦାଖିଲ କରନା** with a proper person.

ଦାଖଲ ନେବା —ଦେ କ୍ରି (କଚରିଆ)—ଅନ୍ୟ ବ୍ୟକ୍ତି ଦାଖଲ କରିବା
Dākhala nebā ଟଙ୍କାକୁ ଯଥାମତେ ଗ୍ରହଣ କରିବା—To
ଦାଖିଲ ଲେଓ୍ୟା duely accept any payment or
**ଦାଖିଲ ଲେନା** deposit which another is making or going to make

ଦାଖଲ ହେବା—ଦେ କ୍ରି ( କଚରିଆ ) - ୧ । ଦରଜ୍ ହେବା, ଲେଖା
Dākhala hebā ହେବା—1. To be recorded.
ଦାଖିଲ ହୋଓ୍ୟା ୨ । ଉପସ୍ଥିତ ହେବା—2. To arrive at;
**ଦାଖିଲ ହୋନା** to attend.

(ଯଥା—ମତେ ଗାଁରେ ଖୋଜା ଲାଗିଥାଏ, ବୁଢ଼ୀଲାବେଳକୁ ମୁଁ ଆସି କଟକରେ ଦାଖଲ ହେଲିଣି । )

୩ । (ଧନ ବା ବସ୍ତୁ) ଦିଆଯିବା, ଜମା ହେବା—
3. To be paid or delivered.

ଦାଖଲ—ବୈଦେ. ବି (କଚରିଆ) (ଫା)—୧ । ଟଙ୍କା ଦେବାର ପାଉତି—
Dākhalā 1. Receipt for money paid.
(ଦାଖିଲା—ଅନ୍ୟରୂପ) ୨ । ଖଜଣା ଦାଖଲ କରିଥିବାର ନିଦର୍ଶନ
ଦାଖିଲା ପତ୍ର—2 Rent receipt.
**ଦାଖିଲା** [ ଦ୍ର—ଏହାକୁ ଚେକ୍‌ଦାଖିଲ, ଛପାଦାଖିଲା କହନ୍ତି । ଏହା ନିର୍ଦ୍ଦିଷ୍ଟ ଫାରମରେ ଛପା ହୋଇଥାଏ । ପ୍ରତ୍ୟେକର ଦୋହରି ଥାଏ ପଞ୍ଜିରୁ ଖଣ୍ଡେ ପାଉତି ଦିଆଯାଏ ଓ ଖଣ୍ଡେ ମୁଣ୍ଡା ରହେ । ]

ଦାଖଲି—ବୈଦେ. ବିଣ ( କଚରିଆ ) (ଫା—ଦାଖିଲି)—ଦାଖଲ କରା
Dakhali ଯିବା—Paid; delivered.
(ଦାଖିଲି—ଅନ୍ୟରୂପ)
ଦାଖିଲ, **ଦାଖିଲ**

ଦା । ଖା । —ଦେ. (ଜମିଦାର ଓ କଚେରିଆ ସାଙ୍କେତିକ)—'ଦାଖଲ'
Dā khā 'ଖାରଜ'ର ସାଙ୍କେତିକ ଅକ୍ଷରଦ୍ୱୟ—Abbreviation denoting 'ଦାଖଲଖାରଜ' or mutation; alteration of names.

[ ଦ୍ର—'। ଖ । ଦା ।' ମଧ୍ୟ ଏଥିର ସାଙ୍କେତିକ ରୂପେ ବ୍ୟବହୃତ ହୁଏ । ]

ଦାଖ୍ଲ —ଦେ ବି ଓ ବିଣ (କଚେରିଆ ଓ କରଣୀ ବ୍ୟବହାର)—
Dākhla ଦାଖଲ୍ ( ଦେଖ Dākhal ( See )

ଦାଖ୍ଲି —ଦେ. ବି (କଚେରିଆ ଓ କରଣୀ ବ୍ୟବହାର)—ଦାଖଲି (ଦେଖ)
Dākhli Dākhali (See)

ଦାଗ - ଦେ ବି (ଫା. ଦାଗ୍; ତୁଳନା କର—ସଂ ଦାହ; ପ୍ରା. ଦାଘ)—
Dāga ୧ । ଚିହ୍ନ —1. A mark; spot.
ଦାଗ ୨ । କୌଣସି ପଦାର୍ଥ ଅନ୍ୟ ବସ୍ତୁକୁ ମାଡ଼ି କରିବା ପରେ
**ଦାଗ** ଯେଉଁ ଚିହ୍ନ ରହିଯାଏ—2. Mark left by a thing on another.

୩ । ଚିହ୍ନ; ଚେକ୍; ମାର୍କା—
3. A distinguishing mark or symbol.

୪ । ମଳଚିହ୍ନ; କଳଙ୍କଚିହ୍ନ—
4. Taint; a stain; a blot.

୫ । କାଳୀ ଦାଗ—5. Inky stain or taint; ink-mark.

୬ । କ୍ଷତଚିହ୍ନ—6. Cicatrice; mark left by a wound on the body.

୭ । (ତୁଲ. ସଂ. ଦାହ) ଦାଣୀ; ଚିହ୍ନ; ଦେହରେ ଛେକ; ତତ୍ତ ଦାଗ—A mark made on the body with a hot iron; a brand.

୮ । ରେଖା, ଗାର—8. A line

୯ । (ଲକ୍ଷଣାର୍ଥ) ମନରେ ଜାତ ହେବା ଦୁଃଖ ବା ଦରଜ—9. (figurative) Mental wound; mark of sorrow left in the mind.

୧୦ । ଲୁଗା ବା ଅନ୍ୟ ପଣ୍ୟଦ୍ରବ୍ୟ ଉପରେ ଛପା ଯାଇଥିବା ମୂଲ୍ୟଜ୍ଞାପକ ଚିହ୍ନ—10. A mark or sign made on the body of a cloth or other commodity denoting the price of it.

୧୧ । ଫଳ ଉପରେ ଦେଖାଯିବା ସଢ଼ା ଚିହ୍ନ—11. Spot indicating the rottenness of a fruit.

୧୨ । (ଲକ୍ଷଣାର୍ଥ) ବଦନାମ; ଅପଯଶ, କଳଙ୍କ, କାଳ; ଅଖ୍ୟାତି, ଅକୀର୍ତ୍ତି—(figurative) Blot or stain on one's fair name; stigma; moral blot; candal

ଅଷ୍ଟବର୍ଗ ଭୂପତ; ବୋଲେ ହେବ ଉଚିତ, କେ ବୃଥା ଅକାରଣ ଦାଗେ ଲେ ।
କବିସୂର୍ଯ୍ୟ, ସଙ୍ଗୀତ ।

୧୩ । ବନ୍ଧୁକ ଦଗା, ବନ୍ଧୁକର ଏକ ଗୁଳି ବା ଏକଥର ଫଏର—13. One charge by gun fire; firing of a gun.

୧୪ । ପାଣିଆ ଔଷଧର ଏକ ପାନ, ଯାହା କ ବୋତଲ ଉପରେ କାଗଜ ଦାଗ ଚିହ୍ନିତ ହୋଇଥାଏ—14. One does or mark of liquid medicine kept in a bottle.

୧୫ । (ଲକ୍ଷଣାର୍ଥ) ଦୁର୍ଗୁଣ; ଦୋଷ—15. (figurative) Defect; fault.

୧୬ । ଛୋଟ ରେଖା—16. Small line.

**ଦାଗ ଉଠା(ଠେ)ଇବା**—ଦେ. କ୍ରି—କୌଣସି ବସ୍ତୁରେ ହୋଇଥିବା ମଳ ଚିହ୍ନକୁ ଲୋପ କରାଇବା—
Dāga uṭhā (ṭhe)ibā

ଦାଗ ଛଡ଼ା(ଛେ)ଇବା
ଦାଗ ଲିଭା(ଭେ)ଇବା
ଦାଗ ଲୁଚା(ଚେ)ଇବା
ଦାଗ ଢଳା(ଳେ)ଇବା } ଅନ୍ୟରୂପ — To obliterate or remove a mark, spot, blot or stain from some thing.

दागमोछा, दागतोल **दागछुटान दाग छुड़ाना**

**ଦାଗ ଉଠିବା**—ଦେ. କ୍ରି—୧ । କୌଣସି ପଦାର୍ଥରେ ହୋଇଥିବା ଚିହ୍ନ ଲୋପ ହେବା—The disappearance of a stain or blot or mark from the body of a thing.
Dāga uṭhibā
दाग ओठा; दाग छूटा **दागछुटना**

ଦାଗ ଛଡ଼ିବା
ଦାଗ ଯିବା
ଦାଗ ଲିଭିବା } ଅନ୍ୟରୂପ

୨ । ଆରୋପିତ କଳଙ୍କ ପ୍ରକ୍ଷାଳିତ ହେବା—2. The removal of a stigma from one's name

୩ । କ୍ଷତଚିହ୍ନ ଲୋପ ହେବା—3. The healing of a mark or cicatrice.

୪ । କୌଣସି ବ୍ୟକ୍ତିର କାର୍ଯ୍ୟ ଯୋଗୁଁ ମନରେ ଜାତ ହୋଇଥିବା ଦୁଃଖ ଦୂର ହେବା—4. The forgeting of some unpleasant memories or slights caused in the mind of a person.

**ଦାଗ କରିବା**—ଦେ. କ୍ରି—୧ । ଦାଗିବା; ଚିହ୍ନଦେବା—1. To mark.
Dāga karibā ୨ । ଛେକ ବା ଚିହ୍ନ ଦେବା; ତତ୍ତ ଦେବା—2. To brand.
दागकाटा; दागकरा; दागदेओया **दागदेना**

**ଦାଗ କାଟିବା**—ଦେ. କ୍ରି—କୌଣସି ବସ୍ତୁରେ ଦାଗ ବା ରେଖା ଅଙ୍କନ କରିବା—To mark or line on something.
Dāga kāṭibā
दाग काटा; **दागकाटना**

**ଦାଗ ରହିବା**—ଦେ. କ୍ରି—୧ । କୌଣସି ପଦାର୍ଥରେ ମଇଳା ଚିହ୍ନ ରହିବା—A stain being left on something.
Dāga rahibā
दागथाका; **दागरहना**

(ଦାଗ ରହିଯିବା—ଅନ୍ୟରୂପ) ୨ । କ୍ଷତଚିହ୍ନ ଦେହରେ ରହିଯିବା—2. A cicatrice being left on the body.

ଏବେ ପେଶି କରୁଣ କରିଛ ମନରେ
କଲେ ଦାଗ ରହିବ ଭ୍ରମର ଗାଲରେ । କୃଷ୍ଣସିଂହ-ମହାଭାରତ ଶଲ୍ୟ ।

**ଦାଗରାଜ(ଜି)**—ବୈଦେ ବି (ଫା ଦାଗରାଜୀ)—କୋଠା ଆଦିର ସାମାନ୍ୟ ସାମାନ୍ୟ ଆଂଶିକ ମରାମତି; ପକ୍କା କାନ୍ଥ ବା ଛାତ ବା ମେଜିଆରେ ଭଣ୍ଡିଥିବା ବା ଫାଟା ସ୍ଥାନମାନ ଚୂନ ବା ମାଟିଦ୍ୱାରା ମରାମତ ବା ସଂସ୍କାର କରିବା; ଆଂଶିକ ଜୀର୍ଣ୍ଣସଂସ୍କାର—Petty repairs done to the damaged portions of a plastered wall or concrete roof or floor.
Dāgarāj(ji)
दागवाजि; **दागराजी**

**ଦାଗ ଲଗା(ଗେ)ଇବା**—ଦେ. କ୍ରି—୧ । କୌଣସି ବସ୍ତୁରେ ମଇଳା ଚିହ୍ନ ବସାଇବା—1. To make a stain on any thing; to spoil a thing.
Dāga lagā(ge)ibā
दाग लागान; **दागलगाना**

୨ । (କୌଣସି ବ୍ୟକ୍ତିଠାରେ) କଳଙ୍କ ଆରୋପ କରିବା—2. To defame or scandalise a person; to stigmatise.

୩ । ଚିରକାଳକୁ ଦାଗୀ କରିଦେବା; ଅନ୍ୟଠାରେ ଭବିଷ୍ୟତକୁ ଦେଖାଯିବା କଳଙ୍କ ଲଗାଇବା—3. To cause a permanent blot on a person; to disgrace a person

(ଯଥା—ବୁଢ଼ିଆ, ଚୋଠେଇ ଇମିତି ଗୋଟାଏ ଦାଗ ଲଗେଇ ଦେବ ଯେ ମଲାଯାଏ ପାସୋର ଯିବ ନାହିଁ ।)

**ଦାଗ ଲାଗିବା**—ଦେ. କ୍ରି—୧ । ମଳଅ ହେବା—1. Being stained
Dāga lāgibā ୨ । କୌଣସି ବ୍ୟକ୍ତିଠାରେ କଳଙ୍କ ଲାଗିବା—2. Being stigmatised or scandalised.
दागलागा; **दागलगना**

ଦାଗିବା—ଦେ. କ୍ରି (ଫା ଦାଗ୍‌ନା)—୧ । ଛକିବା; ଚିହ୍ନ ଦେବା—
Dāgibā 1 To mark.
दागा; दागना ୨ । ଚିହ୍ନ ଦେବା; ଲକ୍ଷିବା—2 To brand
(ଦଗାଇବା—ଣିଜନ୍ତ) with a hot iron.
୩ । ବନ୍ଧୁକ ଫାଏର୍ କରିବା; ଲକ୍ଷିବା—3. To shoot; to fire a gun.
୪ । ମଇଳା ଚିହ୍ନ ଦେବା—4. To stain.

ଦାଗୀ—ବୈଦେ. ବିଣ. (ଫା)—୧ । ଦାଗ ବା ଚିହ୍ନଯୁକ୍ତ—
Dāgi 1. Marked; spotted.
दागी ୨ । କଳଙ୍କିତ—2. Stained.
दागी ୩ । ଯେ ଅପରାଧ କରି ରାଜଦ୍ଵାରରେ ପୂର୍ବେ ଦଣ୍ଡ ପାଇଅଛି—3. Convicted of an offence before
୪ । ସଢ଼ି ଯିବା ଯୋଗୁଁ ଉପରେ ଚିହ୍ନ ପଡ଼ିଥିବା (ଫଳ)—
4. Rotten (fruit).
୫ । ଚିହ୍ନ ଦିଆ ଯାଇଥିବା—5. Branded.
ବୈଦେ. ବି—ଥରେ ସଜା ପାଇଥିବା ଲୋକ—
A marked man, a previous convict.

ଦାଗୀ ଆସାମୀ—ବୈଦେ. ବି. (କଚେରିଆ) (ଫା)—ଯେଉଁ ମୁଦାଲ୍ଲ ପୂର୍ବେ ସଜା ପାଇଅଛି—A previous
Dāgi āsāmi
दागी आसामी convict (accused)
दागी आसामी

ଦାଗୀଚୋର—ଦେ. ବି—ପୂର୍ବେ ସଜା ପାଇଥିବା ଚୋର—
Dāgichora A thief who has had previous
दागीचोर convictions; previously convicted
चोरदागी thief.

ଦାଘ—ସଂ. ବି. (ଦହ ଧାତୁ+ଭାବ. ଅ)—ଗରମି; ତାପ (ହି.ଶବ୍ଦସାଗର)
Dāgha Heat.

ଦାଠାଙ୍ଗି—ଦେ. ବିଣ—ଅତିଶୟ ଚାଲାକ୍—
Dāṭhāngi Very very clever.

ଦାଡ଼କ—ସଂ. ବି. (ଦଡ଼ ଧାତୁ ବିଦାରଣ କରିବା+କର୍ତ୍ତୃ. ଅକ)—
Dārḍaka ୧ । ଦାନ୍ତ (ହି. ଶବ୍ଦସାଗର)—1. Tooth.
୨ । ହିଂସ୍ରଜନ୍ତୁ ଆଦିଙ୍କର ବଡ଼ଦାନ୍ତ—2. Tusk.

ଦାଢ଼ଘିଅ—ପ୍ରାଦେ. (ସମ୍ବଲପୁର) ବି—ଆଡ଼ଘିଅ (ଦେଖ)
Dārḍighia Ārḍaghia (See)
(ଦାଢିଘିଅ—ଅନ୍ୟରୂପ)

ଦାଢ଼ଧାନ—ପ୍ରାଦେ. (ସମ୍ବଲପୁର) ବି—ଖଇଚଢ଼ା ଧାନ; ଖଇଭଜା ହେବା ପରେ ଚଳିରୁ ଖସି ପଡ଼ିବା ଧାନର ଚୋପା—
Dārḍidhāna
(ଦାଢ଼ିଧାନ—ଅନ୍ୟରୂପ) The husks of paddy which fall out when paddy is fried.

ଦାଡ଼ିମ—ସଂ. ବି. (ଦଲ୍ ଧାତୁ=ବିଦାରଣ କରିବା+କର୍ତ୍ତୃ. ଇମ)—
Dārḍima ଡାଳିମ୍ବ ଫଳ ଓ ଗଛ—The pomegranate
(ଦାଲିମ୍ବ—ଅନ୍ୟରୂପ) (tree and fruit) Punica Granata.

ଦାଡ଼ିମପୁଷ୍ପକ—ସଂ. ବି. (ଦାଡ଼ିମପୁଷ୍ପ+କ; ଯାହାର ଫୁଲ ଡାଳିମ୍ବ ଫୁଲ
Dārḍimapushpaka ପରି)—ରୋହିତକ ବୃକ୍ଷ (ଦେଖ)
Rohitaka (See)

ଦାଡ଼ିମପ୍ରିୟ—ସଂ. ବି (ଦାଡ଼ିମ୍+ପ୍ରିୟ; ବହୁବ୍ରୀହି)—ଶୁକ; ଶୁଆ—
Dārḍima priya The parrot.

ଦାଡ଼ିମୀ—ସଂ. ବି. (ଦଲ୍ ଧାତୁ=ବିଦାରିତ କରିବା+ଇମ୍+ସ୍ତ୍ରୀ. ଈ)—
Dārḍimi ଦାଡ଼ିମ (ଦେଖ)—Dārḍima (See).
(ଦାଡ଼ିମୀସାର—ଅନ୍ୟରୂପ)

ଦାଢ଼—ଦେ. ବି. (ସଂ. ଧାର; ପ୍ରା. ଦାଢ଼ା)—ଅସ୍ତ୍ରାଦିର ତୀକ୍ଷ୍ଣ ଧାର—
Dārḍha 1. Sharp edge or blade of weapons.
दाढ़, धार ଖଣ୍ଡା ଦାଢ ପରେ କ ଗଲା ଲଢ଼ି ଗେଲ ।
डाढ़ କୃଷ୍ଣସିଂହ, ମହାଭାରତ ବନ ।
୨ । (ଲକ୍ଷଣାର୍ଥ) ସୀମା; ଅସନ୍ନବର୍ତ୍ତିତା—
2. Being on the brink of (some danger) imminent risk.
ସବୁ ପୁଣି ଦାରୁ କପଦର ଦାଢେ । ରାଧାନାଥ. ନନ୍ଦିକେଶ୍ୱରୀ ।
୩ । (ଲକ୍ଷଣାର୍ଥ) ଅହଂ; ଦମ୍ଭ; ଗାରିମା —
3 Pride; stubbornness.
ବନ୍ଧୁଁ ବେଳ ପୁଣ ଭାଗ୍ଣ ଏବେ ମହାଦରୁ ଲୋକ
ଦାଢ ଭାଙ୍ଗିବ ମୁଁ ଶକ୍ତି ଶିଳେ । ଉପେନ୍ଦ୍ରଭଞ୍ଜ. ବୈଦେହୀଶବିଳାସ ।
୪ । ଦାଢ଼ୁଆ ଅସ୍ତ୍ର—4. A sharp weapon.
କୁଡ଼ଇ ପାଷାଣ ମୁଷ୍ଟା ସମାନ
ନ ମାନେ ରାତପଣେ ଦାଢ ମୂଳ । କବିସୂର୍ଯ୍ୟ. କବିତାକଲ୍ଲୋଳ ।
୫ । ଏକକଉଡ଼ା କଉଡ଼ିର ୩୨ ଭାଗର ଏକଭାଗ ପରିମାଣ—
5. One 32th part of a cowrie or shell-money.
କଡାଦାଢ ଚଳୁଁ ଯାବ ନାହିଁ ଛଡ । ରାଧାନାଥ. ଦରବାର ।
[ ଦ୍ର—୧କଉଡ଼ା=୩୨ଦାଢ଼; ୧ଦାଢ଼=୨୦ବିଦାଢ଼ । ]
୬ । ଅତି ସାମାନ୍ୟ ଅଂଶ—
6. A very minute part.
ଲାଭେ ମୋ ପ୍ରୟୋଜନ ନାହିଁ
ମୂଳରୁ ଦାଢେ ନ ଛଡଇ—ଭୂପତି. ପ୍ରେମପଞ୍ଚାମୃତ ।
୭ । ଗର୍ତ୍ତ ବା ନଈ ପୋଖରୀର କୂଳର ନିକଟବର୍ତ୍ତୀ ଉଚ୍ଚ ଭୂଭାଗ—7. The brink of a river, lake or an abyss.
୮ । କାନ୍ଥ; ଅଟ୍ଟାଳି ଇତ୍ୟାଦିର ଧାର—
8. The edge of a wall or any high platform.
୯ । ପ୍ରତାପ, ବଳ; ତେଜ—9. Might; power
କେତେ ଲୋକ ମଙ୍ଗରାଜଙ୍କ ଦାଢରୁ ମୁକ୍ତି ପାଉଥିବାର
ଶୁଣାଯାଏ—ଫକୀରମୋହନ. ଛମାଣ ଆଠଗୁଣ୍ଠ ।
दाढ़ ୧୦ । (ସଂ. ଦଂଷ୍ଟ୍ରା, ପ୍ରା. ଡଞ୍ଚ; ସଂ. ଦାଡ଼କ)—ନାହୁଡ଼;
दाढ़ ବିଷଦାନ୍ତ—10. Sting; fangs.
୧୧ । ପଶୁ ଆଦିଙ୍କ ବଡ଼ ଦାନ୍ତ—
11. Tusk; big tooth of beasts.
ପ୍ରାଦେ. (ଗଡ଼ଜାତ) ବି—ବିଦା; କୃଷିକର୍ମର ଯନ୍ତ୍ରବିଶେଷ—
Harrow.

ଦେ. ଵଣ. ( ସ. ଦାହ ଧାତୁ ) —୧ । ଉତ୍ତପ୍ତ —1. Hot
୨ । ତୀକ୍ଷ୍ଣ—2. Sharp

**ଦାଢ କରବା**—ଦେ. କ୍ରି—ଶସ୍ତ୍ରାଦିକୁ ତୀକ୍ଷ୍ଣଧାର କରବା—
Dārdha karibā To sharpen an weapon; to whet
ধার করা **धार धरना**

**ଦାଢ କାଟିବା**—ଦେ. କ୍ରି—୧ । ପ୍ରତାପ ଅନୁଭୂତ କରବା—
Dārdha kātibā 1. Having one's might or in-
(ଦାଢ କାଟୁ କରବା—ଅନ୍ୟରୂପ) fluence felt by others.
୨ । ହୁକୁମ ଚଳବା—2. (one's order) To be in force or to obtain.
( ଯଥା—ଆଜ କାଲ ମୁଲକରେ ଗାନ୍ଧୀ ମହାତ୍ମାଙ୍କ ଦାଢ଼ ଭାର କାଟୁଛି । )

**ଦାଢ ଖାଇବା**—ଦେ. କ୍ରି—(ନଦୀ) କୂଳ ଖାଇବା; ଅଡଡ଼ା ଖାଇବା—
Dārdha khāibā (a river) To wash down the
(ଦାଢ ଖାଇଯିବା—ଅନ୍ୟରୂପ) brink, to corrode one bank.
( ଯଥା—ନଦୀଟା ଏ ବର୍ଷ ପଶ୍ଚିମ ପାଖ ଦାଢ଼ ଖାଇ ଯାଇଛି । )

**ଦାଢ ଗଲା(ଲେ)ଇବା**—ଦେ. କ୍ରି—ନାହୁଡ଼ ମାରବା ବା ଦାନ୍ତ ଗଲାଇବା
Dārdha galā(le)ibā To sting or bite

**ଦାଢ଼ଦାଢ଼ିଆ**—ପ୍ରାଦେ. ( ସମ୍ବଲପୁର ) ଵଣ—
Dārdhadārdhiā ଦାଆ ବା କରଉ ପରି ଦନ୍ତୁର—
Having the edge like a scythe

**ଦାଢ଼ ପଡ଼ିବା**—ଦେ. ବ—ତୀକ୍ଷ୍ଣାସ୍ତ୍ରର ଦାଢ଼ ଅକାମି ହୋଇଯିବା—
Dārdha pardibā (a sharp weapon) Becoming
(ଦାଢ ପଡ଼ିଯିବା—ଅନ୍ୟରୂପ) blunted.
ধাব পড়ে যাওয়া **मोथरा होना**

**ଦାଢମଇ**—ଦେ. ବ—ଚନ୍ଦ୍ରକଳା ପରି ବଙ୍କା ମଇ—
Dārdhamai A crescent-shaped lader-like-roller rolled over a ploughed field.
[ ଦ୍ର—ଏହା ଚାଷ ହୋଇଥିବା ଜମିର ଢେଲା ମାଟିକୁ ଗୋଟିଆ ଗୋଟି କରି ନେଇଯାଏ । ]

**ଦାଢ଼ା**—ସ. ବ (ଦୋ ଧାତୁ=ଛେଦନ କରବା+କରଣ. ଡ+ଆ)—
Dārdhā ୧ । ବଡ଼ ଦାନ୍ତ—1. Tusk; big tooth.
୨ । ନାହୁଡ଼—2 Sting
୩ । ବିଷଦାନ୍ତ—3 Fang.
୪ । ପ୍ରାର୍ଥନା—4. Prayer.
୫ । ସମୂହ—5. Collection.
ଦେ. ବ (ସ. ଦାଢ଼ା; ସ. ଦଂଷ୍ଟ୍ରା; ପ୍ରା. ଦାଢ଼ା) ତୀକ୍ଷ୍ଣଦାନ୍ତ—
Sharp tooth.

**ଦାଢ଼ି**—ଦେ. ବ (ସ. ଦାଢ଼ା=ଦନ୍ତୁର, ସ. ଦାଢ଼ିକା)—୧ । ଶ୍ମଶ୍ରୁ—
Dārdhi 1. Beard.
দাড়ী; দাঢ়ী ଦାଢ଼ି କରୁଣ-ବଣାର କଳା ଗୋ ।
**दाढ़ी** ଗାଗୀ. ରହସ୍ୟପଞ୍ଚକ ।
୨ । ଥୋଡ଼; ଚିବୁକ—2. Chin.

୩ । ବଳଦ ବା ଷଣ୍ଢର ତଳପାଟିର ଦାନ୍ତ—3. The row of front teeth of a bullock on the lower jaw.
୪ । ଦାଢ଼ା (ଦେଖ)—4. Dārdhā (See)

**ଦାଢ଼ିଆ**—ଦେ. ଵଣ—୧ । ଶ୍ମଶ୍ରୁଳ—1. Bearded.
Dārdhiā ୨ । ଦୀର୍ଘ ଶ୍ମଶ୍ରୁଯୁକ୍ତ—2. Having long
দাড়িআ and flowing beard
**डाढ़ियाला; डढ़ार; डढ़ियल** ବ—ମୁସଲମାନ—Mahomedan.
(ଦାଢ଼ିଆଲ—ଅନ୍ୟରୂପ) [ଦ୍ର—ଏମାନଙ୍କର ଶ୍ମଶ୍ରୁ ଥିବାରୁ; ଯଥା—ବଲ୍ଲଭଫେରନ୍ତା ବାବୁଙ୍କର ଦାଢ଼ିଆ ପୂଜାହାରି ନ ହେଲେ କାମ ଚଳେ ନାହିଁ । ]

**ଦାଢ଼ିଆଣି**—ଦେ. ବ—୧ । ଘଡ଼ିଆଲ କୁମ୍ଭୀର—1. A crocodile
Dārdhiāni with a cup on its snout.
(ଦାଢ଼ିସୁଣୀ—ଅନ୍ୟରୂପ) ୨ । ଥଣ୍ଟିଆ କୁମ୍ଭୀର—2. The long snouted alligator; gavial.
ଏଠାରେ ଗୋମହିଁ କୁମ୍ଭୀରର ଉପଦ୍ରବ ଭାରି, ଦାଢ଼ିଆଣୀ ଘଡ଼ିଆଲ ତ ପଣ ପଣ। ଫକୀରମୋହନ. ଛମାଣ ଆଠଗୁଣ୍ଠ ।

**ଦାଢ଼ିଆ ପୂଜାରି**—ଦେ. ବ ( ବ୍ୟଙ୍ଗୋକ୍ତି )—ମୁସଲମାନ ବରୁଚି ବା
Dārdhiā pūjāri ପାଚକ—A Mahomedan cook.
(ଦାଢ଼ିଆ ପୂଜାହାରି—ଅନ୍ୟରୂପ) ( ଯଥା—ଆଜକାଲିର ଶିକ୍ଷିତ ବାବୁମାନଙ୍କୁ ଦାଢ଼ିଆ ପୂଜାହାରିଙ୍କ ରନ୍ଧଣା ଭାରି ସୁଆଦିଆ ଲାଗେ । )

**ଦାଢ଼ିଉଠିବା**—ଦେ. ବ (ବୟସ ହୋଇଁ ଯୁବକର) ଶ୍ମଶ୍ରୁଦ୍ଗମ ହେବା—
Dārdhiuthibā The coming out of beards (due to
দাড়ীউঠা a youth attaining majority).
**दाढ़ीरेना**
(ଦାଢ଼ି ହେବା—ଅନ୍ୟରୂପ

**ଦାଢ଼ି କମା(ମେ)ଇବା**—ଦେ କ୍ରି—୧ । ( ଭଣ୍ଡାରି ) ଅନ୍ୟ ବ୍ୟକ୍ତିର
Dārdhikamā(me)ibā ଶ୍ମଶ୍ରୁକୁ ମୁଣ୍ଡିତ କରାଇବା—
দাড়িকমান 1. ( a barber ) To shave the beard of
**दाढ़िमुड़वाना** another.
୨ । ନିଜର ଦାଢ଼ିକୁ ଭଣ୍ଡାରିଦ୍ୱାରା ମୁଣ୍ଡିତ କରାଇବା—
2 To have one's beard shaven.
୩ । ଦାଢ଼ି ଛାଣ୍ଟିବା ( ଦେଖ )
3. Dārdhi chhāntibā ( See ).

**ଦାଢ଼ିକା**—ସ. ବ ( ଦାଢ଼ା+କ+ସ୍ତ୍ରୀ. ଆ) —ଶ୍ମଶ୍ରୁ; ଦାଢ଼ି—
Dārdhikā Beard.

**ଦାଢ଼ି ଛଣ୍ଟା(ଣ୍ଟେ)ଇବା**—ଦେ. କ୍ରି—ଭଣ୍ଡାରି ଦ୍ୱାରା ଆପଣାର ଦାଢ଼ିର
Dārdhi chhantā(nte)ibā କେତେକ ଅଂଶ କଟୁରାଇବା—
দাড়ীছাটান To have one's beard cropped by the
**डाढ़ीकटवाना** barber.

**ଦାଢ଼ି ଛାଣ୍ଟିବା**—ଦେ. କ୍ରି—୧ । ( ଭଣ୍ଡାରି ) ଅନ୍ୟ ବ୍ୟକ୍ତିର ଶ୍ମଶ୍ରୁର
Dārdhi chhāntibā କେତେକ ଅଂଶକୁ କଟୁରିରେ କାଟିବା—
দাড়ীছাটা 1. (a barber) To pair or crop the beard
**डाढ़ीकाटना** of a person.

୨ । ଦାଢ଼ି ଛଣ୍ଟାଇବା ( ଦେଖ )
2. Dārdhi chhantāiba ( See )

**ଦାଢ଼ି ପକା(କେ)ଇବା**—ଦେ. କ୍ରି—ଭଣ୍ଡାରୀଙ୍କ ଦ୍ୱାରା ଆପଣାର ଶ୍ମଶ୍ରୁକୁ
Dārdhi pakā(ke)iba ମୁଣ୍ଡିତ କରାଇବା—To have one's
[ଦାଢ଼ି ମୁଣ୍ଡା(ଣ୍ଡେ)ଇବା—ଅନ୍ୟରୂପ] beard shaven by the
দাড়ীফেলা **दाढ़ी मुड़वाना** barber.

**ଦାଢ଼ି ପାଇବା**—ଦେ. ବି—ଦାମୁଡ଼ି ବଳଦର ଦାନ୍ତ ଉଠିବା—
Dārdhi pāiba The coming out of the teeth of a steer ( adult calf ).

[ ଦ୍ର— ବଳଦ ଓ ଗାଈଙ୍କର ଦୁଇ ପାଟିରେ କଳଦାନ୍ତ ଥାଏ, କିନ୍ତୁ ତାହା ବାହାରକୁ ଦେଖାଯାଏ ନାହିଁ । କେବଳ ତଳ ପାଟିରେ ଥିବା ୮ଟି ଦାନ୍ତ ବାହାରକୁ ଦେଖାଯାଏ । ଜନ୍ମବେଳେ ବାଛୁରୀର ଦାନ୍ତ ନ ଥାଏ । କ୍ରମଶଃ ଦାନ୍ତ ଉଠିବାକୁ ଦାନ୍ତିବା ବା ଦାନ୍ତେଇବା କହନ୍ତି । ପାହାର ୨ଟା, ୪ଟା, ୬ଟା ଦାନ୍ତ ଉଠିଥାଏ ସେ ୨ଟା, ୪ଟା ବା ୬ଟା ଦାନ୍ତିଛି ବୋଲି କହନ୍ତି । ୬ଟା ଦାନ୍ତିଥିବା ବଳଦ କୃଷି ଆଦି କର୍ମ ପାଇଁ ଉପଯୁକ୍ତ । ବଳଦର ୮ଟା ଯାକ ଦାନ୍ତ ଉଠିଲେ 'ବଳଦ ଦାଢ଼ି ପାଇଲା' ବୋଲି କୁହାଯାଏ । ୬ଟା ଦାନ୍ତିଥିବା ବଳଦକୁ ହସ୍ତ ଉରେ ଷୋଡ଼ନ୍ ବୋଲାଯାଏ । ]

**ଦାଢ଼ି ରଖିବା**—ଦେ. କ୍ରି—ଶ୍ମଶ୍ରୁ ରଖିବା; ଦାଢ଼ି ବଢ଼ାଇବା; ଦାଢ଼ି
Dārdhi rakhibā କ୍ଷୌର ନ କରାଇବା—Not to shave
দাড়ীরাখা one's beard; to grow the beard.
**डाढ़ि छोड़ना**
[ଦାଢ଼ି ଛାଡ଼ିବା, ଦାଢ଼ି ବଢ଼ା(ଢେ଼)ଇବା—ଅନ୍ୟରୂପ]

**ଦାଢ଼ୁଆ**—ଦେ. ବିଣ. ( ସଂ. ଧାର )—
Dārdhuā ତୀକ୍ଷ୍ଣ ଧାରବିଶିଷ୍ଟ; ଶାଣିତ—
ধাৰাল Sharp-edged; sharp-bladed.
**नुकिला, तेज, चोखा**

**ଦାଢ଼୍ୟ**—ଗ୍ରା. ବି. ( ସଂ ଦାର୍ଢ଼୍ୟର ଅଶୁଦ୍ଧ ଉଚ୍ଚାରଣ )—
Dārdhya ଦାର୍ଢ଼୍ୟ, ଦୃଢ଼ତା; କଠୋରତା, ଅଚଳତା, ସ୍ଥିରତା—
(ଦାଢ଼୍ୟତା—ଅନ୍ୟରୂପ) Firmness

**ଦାର୍ଢ଼୍ୟତାଭକ୍ତି**—ଦେ. ବି. ( ସଂ. ଦାର୍ଢ଼୍ୟ ଓ ଭକ୍ତିରୁ )—
Dārdhyatābhakti ୧ । ଅଚଳ ଭକ୍ତି—1. Unflinching devotion.
୨ । କେତେକ ଦୃଢ଼ଭକ୍ତଙ୍କ ବିବରଣପୂର୍ଣ୍ଣ ଓଡ଼ିଆ ଗ୍ରନ୍ଥବିଶେଷ; ଦାର୍ଢ଼୍ୟତାଭକ୍ତି—2 Name of an Oriya book illustrating or mentioning the unflinching devotion of some devotees.

[ଦ୍ର—ରାମଦାସଙ୍କ ରଚିତ ଏହି ପଦ୍ୟଗ୍ରନ୍ଥ ୫୫ ଅଧ୍ୟାୟରେ ବିଭକ୍ତ । ମନ ଓ ଚୈତନ୍ୟଙ୍କ କଥୋପକଥନ ଛଳରେ 'ଚୈତନ'; 'ମନଙ୍କ' ଆଗରେ ୫୬ ଜଣ ଦୃଢ଼ ଭକ୍ତଙ୍କ କାହାଣୀ ଭାଗବତ ବୃତ୍ତରେ ବର୍ଣ୍ଣନା କରି ଅଛନ୍ତି—୧. ବାଳୀରାଜା; ୨. ହରିଶ୍ଚନ୍ଦ୍ର; ୩. କର୍ଣ୍ଣ ରାଜା; ୪. ସାନବନ୍ଧୁ ଦାସ; ୫. ଦାମୋଦର ଦାସ ୬. ବିଶ୍ୱମ୍ଭର ଦାସ; ୭. ରାମ ଦାସ; ୮. ରଘୁ ଅରକ୍ଷିତ; ୯. ନୀଳାମ୍ବର ଦାସ, ୧୦ ରଘୁ ବେହେରା; ୧୧. ଗଙ୍ଗାଧର ଦାସ; ୧୨. ବନ୍ଧୁ ମହାନ୍ତି; ୧୩. ବଳରାମ ଦାସ; ୧୪. ଜଗନ୍ନାଥ ଦାସ, ୧୫. ମାଧବାଚାର୍ଯ୍ୟ, ୧୬. କବୀର, ୧୭. ମଣି ଦାସ; ୧୮. କୃଷ୍ଣଦାସ; ୧୯. ଉଳଙ୍ଗ ମହାପାତ୍ର; ୨୦. ଅଙ୍କନା; ୨୧. ମାଧନା; ୨୨. କୀର୍ତ୍ତିଚନ୍ଦ୍ର; ୨୩. ଗଣପତି ଭଟ୍ଟ, ୨୪. ଅନନ୍ତା ଶବର; ୨୫. ମେଲଛି; ୨୬. କୁଳଶିଖର ରାଜା; ୨୭. ଲାଲବେଗ; ୨୮. ସାଲବେଗ; ୨୯. ଦାସିଆ ବାଉରି; ୩୦. ତୁଳସୀ ଦାସ; ୩୧. ସିପୁଡ଼ି, ୩୨. ନାରାୟଣ ଦାସ; ୩୩. ଗୌରଚନ୍ଦ୍ର; ୩୪. ଗୋବିନ୍ଦ ଦାସ; ୩୫. ସାନବନ୍ଧୁ ଓଡ଼ା, ୩୬. ଗୀତା ପଣ୍ଡା; ୩୭. ହରିଚନ୍ଦନ ରାଜା; ୩୮. ମଙ୍ଗଳ ଗଉଡ଼; ୩୯. ବାଳକ ରାମ ଦାସ, ୪୦. କୃପାସିନ୍ଧୁ ଦାସ; ୪୧. ନନ୍ଦ ମହାନ୍ତି; ୪୨. ମୋତି ରାମ ଦାସ ବା ରାମ ବେହେରା; ୪୩. ହଜ୍ଞାନନ୍ଦ ଦାସ, ୪୪. ରଘୁ ଦାସ; ୪୫. ପିପା ଦାସ; ୪୬. କୃଷ୍ଣପ୍ରିୟା; ୪୭. ମିଶ୍ରବାଈ, ୪୮. ଜ୍ଞାନାନନ୍ଦ ଦାସ, ୪୯. ଆନନ୍ଦା ଶବର; ୫୦. ଅଜାମିଳ ପଣ୍ଡା; ୫୧. ଗରୁଡ଼ ଦାସ, ୫୨. ଉଦ୍ଧବ; ୫୩. ବଡ଼ ବିପ୍ର, ୫୪. ଶ୍ରେଷ୍ଠ ବିପ୍ର; ୫୫ ଧନ୍ୱମଙ୍ଗଳ; ୫୬. ଜୟଦେବ ।]

**ଦାଣ୍ଟ**—ପ୍ରାଦେ. (ସମ୍ବଲପୁର) ବି—ଖିଲାଣ—
Dānt Arch.

**ଦାଣ୍ଟିବା**—ଦେ. କ୍ରି. ( ସଂ. ଦାନ୍ତ=ଦମନ, ବଶୀକରଣ )—
Dāntibā ୧ । ଅଟକାଇବା—1. To restrain; to check.
(ଦାଣ୍ଟିବା—ଅନ୍ୟରୂପ)
দাঁটা ୨ । ଆକଟ କରିବା; ଜାବଡ଼ା କରିବା—
**डाँटना** 2. To scold.
୩ । ଗାଣ୍ଠିବା; ଆକ୍ରାନ୍ତ କରିବା—3. To overpower.
( ଯଥା—ରୋଗ ତାକୁ ଭାରି ଦାଣ୍ଟିଛି । )
୪ । ଦଣ୍ଟେଇବା; ଶଗଡ଼ର ପଛ ଆଡ଼ୁ ଦଣ୍ଡା ଧରି ଶଗଡ଼ର ଗତିକୁ ନିୟନ୍ତ୍ରିତ କରିବା—4. To direct or regulate the motion of a cart by holding its beams from behind.
୫ । ଶାସନ କରିବା; ଦମନ କରିବା—5 To subject to discipline; to control; to rule.
୬ । ଧମକାଇବା; ଧଡ଼କାଇବା—
6. To threaten.
୭ । ଦଣ୍ଡ ଦେବାର ଭୟ ଦେଖାଇବା—
7. To threaten; to punish.

**ଦାଣ୍ଠି**—ଦେ. ବି. ( ସଂ. ଦଣ୍ଡ )—
Dānthi ୧ । ସଜନା ଆଦି ଗଛର ଲମ୍ବ ଛୁଇଁ—
ডাঁটা 1. The stalk-like beans of 'Sajanā'.
**डाँठ, डंठल** ୨ । ଖଡ଼ାର ଡାଙ୍ଗ—
2. The stem of Khardā plant.
୩ । ପୋଇ, ଲାଉ, କଖାରୁ ଆଦି ଲତାର ସ୍ଥୂଳ ଓ ଅପେକ୍ଷାକୃତ କଠିନ ଅଂଶ; ଡାଙ୍ଗ—
3. Hard stalks of creepers.

**ଦାଣ୍ଠିଆ(ୟା)**—ଦେ. ବିଣ—ଠାଣ୍ଡୁଆ, ଦାଢ଼ୁଆ; ଡୁଣ୍ଡିଆ—
Dānthiā(yā) Hard; abounding with stalks.
ডাঁটাল **कड़ा**

**ଦାଣ୍ଡ**—ଦେ. ବି. ( ଫ. ଦାଣ୍ଡ )—
Dāṇḍa ୧ । ରାସ୍ତା; ବାଟ; ପଥ—1. Road; way; path.
ବାସ୍ତା
**रास्ता**
କେଉଁଠାରେ ସେ ବନ୍ଧ ହୋଇଣ ବହିଲେ
କେଉଁଠାରେ ସକଳ ଦାଣ୍ଡେ ପଛ ଗଲେ ।
କୃଷ୍ଣସିଂହ. ମହାଭାରତ. ବନ ।
୨ । ରାଜଦାଣ୍ଡ; ସଡ଼କ—
2. High way, public road.
ଘନଘନ ପଦପଙ୍କେରୁହ ଯୁବେ ମଣ୍ଡେଲି କାଲେ ଦାଣ୍ଡ ।
କବିସୂର୍ଯ୍ୟ. ସଙ୍ଗୀତ
ସଦର ୩ । ଗୃହର ବହିର୍ଭାଗ—
**सदर** 3. The outside of a house.
ସଖିଏଁ ଭାଳୁର ଟେଗେ ଦାଣ୍ଡକୁ ଅଇଲା । ଜଳେ ବେ. ପ ।
୪ । ଗୃହର ସଦର ପାଖ, ଯେଉଁ ପାଖ ସର୍ବସାଧାରଣଙ୍କ ବ୍ୟବହାର୍ଯ୍ୟ—4. The sudder of a house.
ଡନ ୫ । ଏକପ୍ରକାର ବ୍ୟାୟାମ; ଦଣ୍ଡ; କୁସ୍ତି—
**डंड़** 5. A kind of athletic exercise
ପେଲିଲେ ଦାଣ୍ଡ ପାଣ୍ଡୁସୁତେ ଅନ୍ତ ଅନ୍ତେ । କୃଷ୍ଣସିଂହ. ମହାଭାରତ. ସଭା ।
ବାହିବ ୬ । ବାହାର; ବହିର୍ଭାଗ—6. The exterior.
**बाहरी**
ଘରେ ଘରେ ସଜା ହୋଇବା ଚିନ୍ତାପିଣ୍ଡ
ଦାଣ୍ଡକୁ ବାହାରିଲେ ସେ ଆମ୍ଭେ ଏକ ହୁ ।
କୃଷ୍ଣସିଂହ. ମହାଭାରତ. ବନ ।
୭ । ବ୍ୟବସାୟ; ବାଣିଜ୍ୟ—7. Business; trade
(ଯଥା—ବର୍ତ୍ତମାନ ନଡ଼ିଆଦାଣ୍ଡ ଭଲ ନାହିଁ ।)
୮ । ସର୍ବସାଧାରଣ ବା ପ୍ରକାଶ୍ୟସ୍ଥାନ—8. Public place.
ନଗର ଦାଣ୍ଡେ ପଡେ ଜାଣଯାଏ ଭଲେ । କୃଷ୍ଣସିଂହ ମହାଭାରତ ସଭା ।
ବାଜାବ ୯ । ହାଟ; ବଜାର—9. Market.
**बजार** ୧୦ । ଭାଉ—10. Market rate.
(ଯଥା—ବର୍ତ୍ତମାନ ଚାଉଳର ଦାଣ୍ଡ ଭାଉ ମାନ୍ଦା ।)

**ଦାଣ୍ଡଅଡ଼**—ଦେ. ବି—ଗୃହର ଯେଉଁ ପାଖ ରାଜଦାଣ୍ଡ ସଂଲଗ୍ନ; ଘରର
Dāṇḍa ārḍa ସଦର—The sudder or public side of
(ବାଡ଼ଆଡ଼—ବିପରୀତ) a house
ସଦବଦିଗ **सदरतरफ**

**ଦାଣ୍ଡଅଡ଼େ**—ଦେ. ଅ—ଦାଣ୍ଡ ତରଫରେ; ଗୃହର ବହିର୍ଦ୍ଦିଗରେ—
Dāṇḍaārḍe Outside the house.
ବାହିବେ ବି. (ଭଦ୍ର ପରିବାରର ସ୍ତ୍ରୀମାନଙ୍କ ବ୍ୟବହୃତ)—
୧ । ଗୃହସ୍ୱାମୀ—1. The master of the house.
୨ । ନିଜର ସ୍ୱାମୀ—2. One's husband.
[ ଦ୍ର—ଭଦ୍ର ସମାଜରେ ସ୍ତ୍ରୀମାନେ 'ମୋ ସ୍ୱାମୀ' ବୋଲି ନ କହି 'ଦାଣ୍ଡଅଡ଼େ', 'ଆମର ସେ', 'ଆମର ସେମାନେ'; 'ମିଶିପେ' ଶବ୍ଦମାନ ବ୍ୟବହାର କରନ୍ତି । ସେହି ପରି ପୁରୁଷମାନେ 'ମୋ ସ୍ତ୍ରୀ' ନ କହି 'ଭିତରଅଡ଼େ', 'ଘରେ', 'ଘରଅଡ଼େ', 'ପିଲାଏ', 'ସେମାନେ', 'ମାଇପେ', ଶବ୍ଦମାନ ବ୍ୟବହାର କରନ୍ତି । ]

**ଦାଣ୍ଡକଥା**—ଦେ. ବି—୧ । ଗୃହର ବାହାରର କଥା—
Dāṇḍa kathā 1. Outward matter; external
ଦାଣ୍ଡବିଷୟ } ଅନ୍ୟରୂପ ; affairs.
ଦାଣ୍ଡମାମଲତ }
୨ । ଯେଉଁ ବିଷୟ ଦାଣ୍ଡରେ ବା ପ୍ରକାଶ୍ୟ
ବାହିବେବ କଥା ଭାବରେ ଆଲୋଚିତ ହୁଏ—2. A matter
**उपरी बात, बाहरकी बात** discussed in public.
(ଘରକଥା—ବିପରୀତ) ୩ । ବାହାର ଲୋକଙ୍କ ସଙ୍ଗେ ସମ୍ପର୍କ ଥିବା ପାରିବାରିକ କଥା—3. Matters relating to the external affairs of a family.

**ଦାଣ୍ଡଖଞ୍ଜା**—ଦେ ବି—ଘରର ବାହାର ବା ଦାଣ୍ଡ ପାଖର ଚଉର ବା
Dāṇḍakhañjā ଅଗଣା—The outer courtyard of a
ବାହିବେବ ବାକୁଲୀ **बाहरकी अंगन** house.

**ଦାଣ୍ଡଘର**—ଦେ. ବି—ଗୃହର ଦାଣ୍ଡପାଖରେ ଅବସ୍ଥିତ କୋଠରି—
Dāṇḍaghara The room of a house adjoining the
ବାହିବେବ ଘବ public road.
**बाहरको मकान**
ଯେବେ ଓଡ଼ିଶାରେ କରିବୁ ଘର
ଦାଣ୍ଡଘର ଖଣ୍ଡି ଅଛୁଁ କର । ଭଗ ।

**ଦାଣ୍ଡ ଛୁଆଁ**—ଦେ. ବି—ଘରୁ ବାହାରକୁ ଯିବାବେଳେ ମନୁଷ୍ୟ ଅନେକ
Dāṇḍa chhuāñ ବ୍ୟକ୍ତିଙ୍କ ସଂସ୍ପର୍ଶରେ ଆସିବା ଓ ଅସ୍ପୃଶ୍ୟ ବସ୍ତୁକୁ ଛୁଇଁ ଥିବା ଯୋଗୁଁ ନିଜର ପିନ୍ଧା ଲୁଗା ଓ ଦେହରେ ଓ ଦେହର ଯେଉଁ ଅପବିତ୍ରତା ବା ଅଶୁଚିତା ହୁଏ—The impurity contracted by coming in contact with outsiders and untouchable persons and things in the case of a person who goes and stays out of the house for some time.
ଦେ ବିଣ—ଘରୁ ବାହାରକୁ ଯାଇଥିବା ଯୋଗୁଁ ଅଶୁଚ (ଶରୀର, ବସ୍ତ୍ର ବା ପଇତା)—( cloth or body ) Contaminated by the touch of outsiders.
[ ଦ୍ର—ନୈଷ୍ଠିକ ହିନ୍ଦୁମାନେ ଦାଣ୍ଡକୁ ଗଲେ ଫେରି ଦାଣ୍ଡଛୁଆଁ ଲୁଗା, ଦେହ ଓ ପଇତାକୁ ନ ଧୋଇ ଘରେ ପଶନ୍ତି ନାହିଁ । ଏହିପରି ମଧ୍ୟ ସହରରେ ଯେଉଁ ଲୁଗା ପିନ୍ଧି ସ୍ତ୍ରୀବାଳକମାନଙ୍କ ସଙ୍ଗେ ଶୁଅନ୍ତି ସେହି ସହରବାସ ଛୁଆଁଲୁଗା, ଦେହ ଓ ପଇତାକୁ ନ ଧୋଇ ଘରେ ଭଲ ଲୁଗା ଆଦି ଛୁଅନ୍ତି ନାହିଁ । ]

**ଦାଣ୍ଡଦୁଆର**—ଦେ. ବି—ଗୃହର ସଦର ଦ୍ୱାର—
Dāṇḍaduāra The sudder or outer door of
ସଦବଦୋବ a house; the front door at the
**सदर दरवाजा** entrance of a house.

**ଦାଣ୍ଡ ନିଶାପ**—ଦେ. ବି—କୌଣସି ବିଷୟରେ ପ୍ରକାଶ୍ୟ ବିଚାର—
Dāṇḍa nishāpa Public consideration of a
(ଦାଣ୍ଡନ୍ୟାୟ—ଅନ୍ୟରୂପ) matter.
ବାହିବେବ ନ୍ୟାୟ

**ଦାଣ୍ଡ ପକା(କେ)ଇବା**—ଦେ. କ୍ରି—ଦଣ୍ଡ ପକାଇବା; ବ୍ୟାୟାମ କରିବା—
Dāṇḍa pakā(ke)ibā To perform athletic
(ଦଣ୍ଡ ପେଲିବା—ଅନ୍ୟରୂପ) exercise.
ଡନଫେଲା, **डंड़पेलना**

**ଦାଣ୍ଡ ପତିଆରା**—ଦେ. ବି ( ଓ. ଦାଣ୍ଡ + ସ. ପ୍ରତ୍ୟୟ )—୧ । ବାହାରର
Dāṇḍa patiārā ଲୋକଙ୍କୁ ଦେଖାଇ ସେମାନଙ୍କ ମନରେ ଆସ୍ଥା
ବାହିବେବ ପତିୟାବା ବା ପ୍ରତ୍ୟୟ ଜନ୍ମାଇବାପାଇଁ ଗରବ ବା

**बाहरकि पातआरा** ଦେଖଦାର ଲୋକର ଅନ୍ତଃସାରଶୂନ୍ୟ ଆଡ଼ମ୍ବର—1. A false appearance or outward show set up to maintain one's credit in the eyes of the public.

ଘର ଭଣ ଭଣ ଦୁଆରେ ଛାତ୍ର
ଦାଣ୍ଡ ପଛଆଗ ଝଥ ବର୍ତ୍ତ । ଛଗ ।

୨ । କୌଣସି ବ୍ୟବସାୟୀ ବ୍ୟକ୍ତିଠାରେ ସର୍ବସାଧାରଣଙ୍କର ଥିବା ପ୍ରତ୍ୟୟ; ବ୍ୟାବସାୟିକ ପ୍ରତିପତ୍ତି—Public credit of a man of business.

**ଦାଣ୍ଡ ପହଁରା** – ଦେ. ବ—୧ । ଦାଣ୍ଡ ଓଳାଇବା—
Dāṇḍa pahaṅrā 1 Brooming or sweeping the road

୨ । ପୁଷ ମାସ ରବିବାର ଦିନ ଶୂଦ୍ରଜାତୀୟା ସ୍ତ୍ରୀମାନଙ୍କର କରିବା ଓଷା [ ଏହି ଓଷାରେ ଦାଣ୍ଡର ଅଗ୍ରବ ସ୍ଥାନ ପହଁରି (ଓଳାଇ) ଓ ଲିପି ସେଠାରେ ପୂଜା କରାଯାଏ ]—2. A festival observed by Śūdra women on the sunday of the month of Pausha

**ଦାଣ୍ଡ ପିଣ୍ଡା**—ଦେ. ବ—ଦାଣ୍ଡକୁ ଲାଗିଥିବା ଘରର ପିଣ୍ଡା—
Dāṇḍa piṇḍā The outer veranda of a house.
ବାহিবেব বক, **बाहरका बरांडा**

**ଦାଣ୍ଡ ଭାଉ**—ଦେ. ବ—ବଜାରର ପ୍ରଚଳିତ ମୂଲ୍ୟ—
Dāṇḍa bhāu Market rate; market price.
(ଦାଣ୍ଡମୂଲ—ଅନ୍ୟରୂପ)
বাজাবদব, **बजारकाभाव**

**ଦାଣ୍ଡ ମଣ(ଣି)ଷ**—ଦେ. ବ—୧ । ପରିବାରର ଆଭ୍ୟନ୍ତରୀଣ ବିଷୟ ସଙ୍ଗେ ସମ୍ପର୍କ ନ ଥିବା ବ୍ୟକ୍ତି; ଅସମ୍ପର୍କୀୟ ବ୍ୟକ୍ତି—1. A person who has no concern with the internal affairs of a family.
Dāṇḍa maṇa(ṇi)sha
ଦାଣ୍ଡମିଶିପ } ଅନ୍ୟରୂପ
ଦାଣ୍ଡଲୋକ }
বাহবেবে লোক

**बाहरी आदमी** ୨ । ବାହାରର ଲୋକ; ସାଧାରଣଙ୍କ ମଧ୍ୟରୁ କେହି ବ୍ୟକ୍ତି—2. An outsider; a member of the outside public.

୩ । ଅପରିଚିତ ବ୍ୟକ୍ତି—3. Stranger.

**ଦାଣ୍ଡମର୍ଯ୍ୟା(ର୍ଯ୍ୟା)ଦା**—ଦେ. ବ—ଲୋକସାଧାରଣଙ୍କ ମଧ୍ୟରେ କୌଣସି ବ୍ୟକ୍ତିଙ୍କର ଥିବା ପ୍ରତିଷ୍ଠା ଓ ପ୍ରତିପତ୍ତି—One's prestige or position in the eyes of the public.
Dāṇḍamarjā(jyā)dā

**ଦାଣ୍ଡର ବାଉରାଣୀ**—ଦେ. ବ. ସ୍ତ୍ରୀ—ପଥର ବାଉରାଣୀ (ଦେଖ)—
Dāṇḍara bāurāṇi Pathara bāurāṇi (See)
(ଦାଣ୍ଡର ବାଉରି—ପୁଂ)
(ଦାଣ୍ଡର ବାଡ଼ଅଣୀ—ଅନ୍ୟରୂପ)

**ଦାଣ୍ଡର ଭିକା(ଖା)ରି**—ଦେ. ବ—୧ । ସାଧାରଣ ଭିକ୍ଷୁକ—
Dandara bhikā(khā)ri 1. An ordinary beggar.
পথর ভিকাবী ୨ । ଅତି ଅଭାବଗ୍ରସ୍ତ ଓ ନିର୍ଦ୍ଧନ ବ୍ୟକ୍ତି; କାଙ୍ଗାଳ—
**बाहरका भिखारी** 2. A very poor and needy person.

**ଦାଣ୍ଡରକ୍ଷ**—ଦେ. ବ.—ଦାଣ୍ଡ ରାସ୍ତା—
Dāṇḍarāksha Village street; street way.

ଭୋରଣା ଭାଙ୍ଗ ଭଳ ଦୃଷ୍ଟେ;
ମାର୍ଜନା କଲେ ଦାଣ୍ଡରକ୍ଷେ । ଜଗନ୍ନାଥ. ଭାଗବତ ।

**ଦାଣ୍ଡରେ ପକା(କେ)ଇବା**—ଦେ. କ୍ରି—କୌଣସି ବିଷୟ ସର୍ବସାଧାରଣରେ ବିଚାରାର୍ଥ ଉପସ୍ଥାପିତ କରିବା—
Dāṇḍare pakā(ke)ibā To submit a matter to the public for decision.
বাহিবে ফেলা
**बाहरमें गिराना**

**ଦାଣ୍ଡରେ ବସିବା**—ଦେ କ୍ରି.—ଦୁରବସ୍ଥ ଓ ଗୃହହୀନ ହୋଇ ରାସ୍ତା ପର ହୋଇ ଯିବା; କଙ୍ଗାଳ ହେବା—
Dāṇḍare basibā
বাস্তায় বসা To be reduced to beggary; to become a homeless beggar.

**ଦାଣ୍ଡଲୋକେ**—ଦେ. ବ. (ବହୁବଚନ)—ସର୍ବସାଧାରଣ—
Dāṇḍa loke Outside public.
বাহিবেব লোকে **बाहरकि लोगौं**
(ଦାଣ୍ଡ ଜନେ, ଦାଣ୍ଡମିଶିପେ—ଅନ୍ୟରୂପ)

**ଦାଣ୍ଡାଜିନକ**—ସ ବଣ. ପୁଂ. (ଦଣ୍ଡ+ଅଜିନ=ଦଣ୍ଡାଜିନ+ସ୍ୱବକାର୍ଥେ ଇକ) ଯେଉଁ ବ୍ୟକ୍ତି ସାଧୁ ପରି ଦଣ୍ଡ ଓ ଅଜିନ ଧାରଣ କରି ସାଧୁବେଶରେ ଲୋକଙ୍କ ଠକାଏ)—୧ । ପ୍ରତାରକ—1. Cheating; fraudulent; deceitful.
Dāṇḍājinika
(ଦାଣ୍ଡାଜିନକା—ସ୍ତ୍ରୀ)

୨ । କୁହୁକୀ—2. Fascinating.

୩ । କପଟ ସନ୍ନ୍ୟାସୀରୂପ ଧାରଣ କରି ଯେ ଲୋକଙ୍କୁ ଠକାଏ—3. Cheating people under the guise of a saint.

**ଦାଣ୍ଡି**—ଦେ. ବ. (ସ. ଦଣ୍ଡରୁ)—୧ । ଧାଡ଼ି; ଶ୍ରେଣୀ—
Dāṇḍi 1. Row.
ফতি ୨ । ଶାଖାରାସ୍ତା; ବଡ଼ ରାସ୍ତାରୁ ବାହାରିଥିବା ସାନ ରାସ୍ତା—
**फति** 2 A bye-road; bye-lane.
লম্বা বাস্তা ୩ । ଲମ୍ବ ସିଧା ବାଟ—
**पगडन्डि** 3. A long straight road or path.

୪ । ଶଗଡ଼ର ସର—4. Cart-track.

୫ । ପଦ୍ୟ ଅକ୍ଷରର ସମତା ନ ଥାଇ ମିତ୍ରାକ୍ଷରବିଶିଷ୍ଟ ପ୍ରାଚୀନ ଓଡ଼ିଆ ପଦ୍ୟ—5. A class of classic Oria poetical composition.

[ଦ୍ର—ଏହି ବୃତ୍ତର ଭିଭିନ୍ନ ଧାଡ଼ିରେ ସମସଂଖ୍ୟକ ଅକ୍ଷର ନ ଥାଏ । ଏକ ଏକ ଧାଡ଼ିରେ ୧୪।୧୫।୧୬।୧୭।୧୮।୧୯।୨୦ ପର୍ଯ୍ୟନ୍ତ ଅକ୍ଷର ଥାଏ । ଶାରଳାଦାସଙ୍କ ମହାଭାରତ, ବଳରାମ ଦାସଙ୍କ ରାମାୟଣ ଆଦି ଅନେକ ପ୍ରାଚୀନ ଓଡ଼ିଆ ପଦ୍ୟ ଗ୍ରନ୍ଥ ଦାଣ୍ଡି ବୃତ୍ତରେ ରଚିତ; ପ୍ରତ୍ୟେକ ଦୁଇ ଧାଡ଼ିର ଶେଷ ବର୍ଣ୍ଣର ମେଳ ଥାଏ । ମିତ୍ରାକ୍ଷରକୁ ଦୃଷ୍ଟି ରଖି ଏହା ବୋଲିବାକୁ ହୁଏ ।]

ডাণ্ডি ୬ । ପାହାଡ଼ିଆ ଅଞ୍ଚଳରେ ବ୍ୟବହୃତ ମନୁଷ୍ୟ ପିଠିରେ ବୁହା ଯିବା ଚଉକି ପରି ଏକ ପ୍ରକାର ଯାନ—
**डाँड़ि, डंडी** 6. A Dandy; a kind of conveyance or chair used in the hills and carried on the backs of men.

୭ । ପହରାବାଲାଙ୍କର କୌଣସି ସ୍ଥାନରେ ଗମନାଗମନ—
7. The round of a watchman.

ପ୍ରାଦେ. (ସମ୍ବଲପୁର) ବି.—ଲଙ୍ଗଳର ଈଷ—
The shaft or pole of a plough.

ଦେ. ବିଣ.—୧ । ଲମ୍ବ ଓ ସିଧା—
1. Long and straight

୨ । ଧାଡ଼ିମୂଳଆ; ଶ୍ରେଣୀବଦ୍ଧ—
2 Arranged in rows.

**ଦାଣ୍ଡିଆ**—ଦେ. ବି. (ସଂ. ଦଣ୍ଡ)—ଚକର ଅର—
Dāṇḍiā Spoke of a wheel

ପାଖେ ଆପି ଦେ. ବିଣ.—୧ । ସିଧା; ସଳଖ—
1. Straight.

୨ । ସିଧା ଓ ଲମ୍ବ—2. Straight and long.

**ଦାଣ୍ଡିକ**—ସଂ. ବି. (ଦଣ୍ଡ+ଜୀବକାର୍ଥେ. ଇକ)—୧ । ଦଣ୍ଡିଆ; ଦଣ୍ଡୀଦାର; ଯେ ପଣ୍ୟ ଦ୍ରବ୍ୟ ଓଜନ କରି ଜୀବିକା ନିର୍ବାହ କରେ—1 A professional weigh-man.
Dāṇḍika

୨ । ଦଣ୍ଡଆସି, ଯେ ଠେଙ୍ଗା ଧରି ଜୀବିକା ନିର୍ବାହ କରେ; ଛଡ଼ିବରଦାର—2. One whose profession is to carry a staff; a mace-bearer; a watchman.

**ଦାଣ୍ଡିକିଲା**—ଦେ. ବି. (ସଂ. ଦଣ୍ଡ. ଓ କୀଲକ ଶବ୍ଦରୁ)—ଶଗଡ଼ର ଅଖ ମଝିରେ ମରାଯାଇଥିବା କିଲା—
Dāṇḍi kilā
A peg attached to the middle of the axle of a cart.

**ଦାଣ୍ଡୀ ଗୀତ**—ଦେ. ବି.—ଯେଉଁ ଦୀର୍ଘ ଧାଡ଼ିଆ ଗୀତରେ ପଦମାନଙ୍କରେ ଅକ୍ଷର ସଂଖ୍ୟା ସମାନ ନ ଥାଏ, ମାତ୍ର ମିତ୍ରାକ୍ଷର ପଦ ଶେଷ ବର୍ଣ୍ଣମାନ ମିଳୁ ଥାଏ—A poem in which the number of letters are not equal in each foot but each couplet rhymes.
Dāṇḍi gita

(ଯଥା—ବୋଲ ଜାଣୁ ଥିବା ଗାୟକଙ୍କ ମୁଖରେ ଦାଣ୍ଡିଗୀତ ବୋଲି ସୁନ୍ଦର ଶୁଣାଯାଏ ।)

**ଦାଣ୍ଡିଚା**—ଦେ. ବି (ପାନବରଜ ଭାଷା)—ନୂଆ ପାନ ବରଜରେ ପଗକୁ ପଗ କଟାଯାଇ ରୋପିତ ହେବା ପାନ ଲତା—
Dāṇḍichā
Separate stems of betel creepers planted as seedling for a new crop.

**ଦାଣ୍ଡିଛିଡ଼ିଯିବା**—ଦେ. କ୍ରି—ଶଗଡ଼ରାସ୍ତାର ଚିହ୍ନଯିବା; କୌଣସି ରାସ୍ତାରେ ଶଗଡ଼ ଗାଡ଼ି ଆଦି ଯାତାୟାତ କରିବା ଯୋଗୁଁ ଶଗଡ଼ରାସ୍ତା ଚକ ରେଖା ପଡ଼ି ଯାଇଥିବା—
Dāṇḍichhirḍijibā
The state of a road being worn, by habitual passage of carts etc into ruts or grooves

**ଦାଣ୍ଡିଦେବା**—ଦେ. କ୍ରି—୧ । ବୁଲିବା—
Dāṇḍidebā 1. To roam.

ଘୁରେବେଡ଼ାନ ମଟକନା ୨ । ନିର୍ଦ୍ଧାରିତ ସୀମାରେ ଯିବା ଆସିବା କରି ପହରା ଦେବା—2. To go one's round while keeping watch

ଭକ୍ତ ଯାଇ ପହଞ୍ଚିଲେ କଟକପୁରୀ
ଯେଉଁଠାରେ ଦେଉଛନ୍ତି ସିପାହୀ ଦାଣ୍ଡି ।

**ଦାଣ୍ଡିପୋଥି**—ଦେ. ବି—୧ । ଯେଉଁ ପୋଥିରେ ଧାଡ଼ିମୂଳଆ ଲେଖା ହୋଇଥାଏ—1. Palm leaf manuscripts in which the contents are written in continuous lines.
Dāṇḍipothi

୨ । ଯେଉଁ ପୋଥିରେ ପଦ୍ୟର ଛନ୍ଦର ନିୟମ ନ ଥାଏ—
2. A book in which the couplets do not follow any fixed metre.

**ଦାଣ୍ଡିବୃତ(ତ୍ତ)**—ଦେ. ବି—ଅକ୍ଷର ନିୟମ ରକ୍ଷା କରି ନ ଯାଇ ଲେଖା ଯାଇଥିବା ପଦ୍ୟ—A poem in which the letters are not equal.
Dāṇḍibṛuta(tta)

କହନ୍ତି ବଇଦେଶୀ ଛାଡ଼ସ୍ୱତେଜେ କର୍ଣ୍ଣ,
କେଡେ ଦାରୁଣ ଦଇବ ତୁ ମତେ କି ଦଶା ଦେଲୁ ଆଣି ।
ବଳରାମ. ରାମାୟଣ ।

**ଦାଣ୍ଡିବୋଲିବା**—ଦେ. କ୍ରି—ଯତିପାତ ବା ଛନ୍ଦକୁ ଦୃଷ୍ଟି ନ ରଖି ପଦ୍ୟକୁ ଗଦ୍ୟ ଭଳି ବୋଲିଯିବା—
Dāṇḍibolibā
To read poetry like prose without attending to metre.

**ଦାଣ୍ଡିଭାରତ**—ଦେ. ବି—ଶାରଳା ଦାସଙ୍କ ରଚିତ ମିତ୍ରାକ୍ଷରବିଶିଷ୍ଟ କିନ୍ତୁ ଅସମସଂଖ୍ୟକ ଅକ୍ଷରଯୁକ୍ତ ଓଡ଼ିଆ ମହାଭାରତ—(ଦାଣ୍ଡିମହାଭାରତ—ଅନ୍ୟରୂପ) The Oria Mahabharat of Śāralā Das.
Dāṇḍibhārata

**ଦାଣ୍ଡିମାରିବା**—ଦେ. କ୍ରି—୧ । ବହୁଦୂର ବାଟ ଲମ୍ବେ ଲମ୍ବେ ଭ୍ରମଣ କରିବା—1. To walk along to a great distance.
Dāṇḍimāribā
ଟୋଟୋକରେ ବେଡ଼ାନ ମଟକନା

୨ । ଦାଣ୍ଡରେ ବୁଲିବା—
2. To walk on a road.

(ଯଥା—ଗୋଲ୍ଲାପୁଅ ମୁଠିଏ ଭୋଜନ ମାରିଦେଇ ଗାଁଯାକ ଦାଣ୍ଡି ମାରୁଛନ୍ତି ।)

୩ । ବୃଥାରେ ଏଣେତେଣେ ବୁଲିବା—
To rove about; to loaf.

**ଦାଣ୍ଡିମାଳ**—ଦେ. ବି—ପୁରୀ ଜିଲ୍ଲା ଖୋରଧା ସବଡ଼ିଭିଜନର ଗୋଟିଏ ପ୍ରଗନା—Name of a pergunna in Killa Khurda in the district of Puri.
Dāṇḍimāḷa

[ଦ୍ର—ଖୋରଧା କିଲ୍ଲାର ପ୍ରଗନାମାନଙ୍କୁ ଦଣ୍ଡ ବୋଲାଯାଏ । ଦାଣ୍ଡିମାଳ ଏହି ଅନୁସାରେ ଗୋଟିଏ ଦଣ୍ଡ । ]

ଦାଣ୍ଡିମାଳ ଘ'ର ଶରଣ ବନ୍ଧରେ
ବୀର-ଯଶ ଲେଖା ଅକ୍ଷରେ ଅକ୍ଷରେ—ରାଧାନାଥ ଚନ୍ଦ୍ରଭାଗା ।

**ଦାଣ୍ଡିରାମାୟଣ**—ଦେ. ବି—ବଳରାମ ଦାସଙ୍କ ରଚିତ ଦାଣ୍ଡି ବୃତ୍ତର ଓଡ଼ିଆ ରାମାୟଣ—The Oria Rāmāyaṇa by Balarāma Dās.
Dāṇḍirāmāyaṇa

**ଦାଣ୍ଡି ରାସ୍ତା**—ଦେ. ବି—୧ । ଯେଉଁ ପଥ ସିଧା ହୋଇ ବହୁଦୂର ପର୍ଯ୍ୟନ୍ତ ଯାଇଥାଏ—1. A straight road running for a long distance
Dāṇḍi rāstā
(ଦାଣ୍ଡିବାଟ—ଅନ୍ୟରୂପ)
लम्बा रास्ता
पगडंडी
୨ । ଶଗଡ଼ ସବୁ ରାସ୍ତା; ଶଗଡ଼ ଗାଡ଼ି ଆଦି ଯିବାର ରାସ୍ତା—2. Cart road; cart track; carriage road.
୩ । କୌଣସି ସ୍ଥାନରୁ ଅନ୍ୟ ସ୍ଥାନକୁ ଯିବାପାଇଁ ସରଳତମ ବାଟ—3. A straight-cut road
୪ । ବଡ଼ ରାସ୍ତାରୁ ବାହାରିଥିବା ଛୋଟ ରାସ୍ତା—4 A bye-road, a path

**ଦାଣ୍ଡୁ**—ଦେ. ବି (ସଂ. ଦଣ୍ଡ)—୧ । ଗେଣ୍ଡୁ ଖେଳର ଚଟ୍ଟୁ, ବାଡ଼ି—A bat.
Dāṇḍu
डाँड़, डाँडा
डंडा
୨ । ଡାବଲପୁଆ ଖେଳର ପୁଆ—2. The stick used in the game of Dābalapuā

**ଦାଣ୍ଡେ**—ଦେ. ଅ—୧ । ନିଜର ସ୍ୱରୂପରେ—In one's own way.
Dāṇḍe
ଗୁଣ ହୃତପ୍ରେ କର୍ମଂ।ଣେ
ହୃତପଡ଼ଲେ ଯେହ୍ନ ଦାଣ୍ଡେ—ଭୂପତ. ପ୍ରେମପଞ୍ଚାମୃତ ।
୨ । ସର୍ବସାଧାରଣରେ—2. In public.
ଦାଣ୍ଡେ ବାମର ମୋର ଜୀବନ ଗଲେ ଦାଣ୍ଡେ ଜନେ ନିନ୍ଦେବେ—ବ୍ୟଙ୍ଗ ଓଡ଼ିଆ ଶ୍ଳୋକ ।

**ଦାଣ୍ଡେଇ**—ଦେ. ବିଣ ସ୍ତ୍ରୀ (ଗାଳରେ ବ୍ୟବହୃତ) (ଓ. ଦାଣ୍ଡ ଶବ୍ଦଜ)—ଯେଉଁ ବାଳିକା ବା ସ୍ତ୍ରୀ ଅଧିକାଂଶ ସମୟ ଘରେ ନ ରହି ଏଣେତେଣେ ( ବା ଦାଣ୍ଡରେ ) ବୁଲେ—( a girl or woman) Who does not stay at home but goes out and whiles away most of her time loafing or roving about.
Dāṇḍei

**ଦାତ**—ସଂ. ବିଣ—୧ । (ଦୋ ଧାତୁ=ଛେଦନ କରିବା+କର୍ମ. ତ)—ଛିନ୍ନ—1. Cut.
Dāta
୨ । (ଦୈ ଧାତୁ=ଶୁଦ୍ଧ କରିବା+କର୍ମ ତ) ·ଶୁଦ୍ଧ; ପବିତ୍ର—2 Hallowed; sacred; purified.

**ଦାତବ୍ୟ**—ସଂ ବିଣ ( ଦା ଧାତୁ+କର୍ମ. ତବ୍ୟ )—୧ । ଦେୟ; ଯାହା ଦେବାର ଉଚିତ; ଦାନଯୋଗ୍ୟ; ଯାହା ଦାନ କରି ଦିଆଯିବାର ଉପଯୁକ୍ତ—1. Suitable to be given away; fit to be given away or bestowed; payable.
Dātabya
୨ । ଯାହା ଦେବା ଆବଶ୍ୟକ—2. Necessary to be given away.
୩ । ଖଏରାତ, ଯାହା ଦାନ ସ୍ୱରୂପ ଦିଆଯାଏ—3 Given in charity
ଦେ. ବି.—୧ । ଯେଉଁଠାରେ ଦାନ ଦିଆଯାଏ—1. Where any thing is given away as charity.
୨ । ଖଏରାତ; ଦାନ—2. Charitable gift; charity.
(ଯଥା—ମତେ ଯେବେ ଏ ଘର ଖଣ୍ଡି କିଏ ଦାତବ୍ୟ କରି ଦିଅନ୍ତା ତେବେ ମୁଁ ଏଠାରେ ବସବାସ କରନ୍ତି ।)
ଦେ ବିଣ.—ଖଏରାତ କରାଯିବା, ପ୍ରଦତ୍ତ—Bestowed in charity.

**ଦାତବ୍ୟ ଔଷଧାଳୟ**—ଦେ. ବି.—ଯେଉଁ ଡାକ୍ତରଖାନାରେ ରୋଗୀ-ମାନଙ୍କୁ ବିନା ବ୍ୟୟରେ ଔଷଧ ଦାନ ଓ ପରୀକ୍ଷା କରାଯାଏ—Charitable hospital or dispensary.
Dātabya aushadhālaya
दातव्य औषधालय
(ଦାତବ୍ୟ ଚିକିତ୍ସାଳୟ—ଅନ୍ୟରୂପ)

**ଦାତବ୍ୟ କରିବା**—ଦେ. କ୍ରି.—ଦାନ କରିବା—To make a gift.
Dātabya karibā
दान करना
दान करना

**ଦାତବ୍ୟ ବିଦ୍ୟାଳୟ**—ଦେ. ବି.—ଯେଉଁ ବିଦ୍ୟାଳୟରେ ପିଲାମାନେ ଦରମା ନ ଦେଇ ପାଠ ପଢନ୍ତି—A charitable school; a free school.
Dātabya bidyālaya

**ଦାତା**—ସଂ ବିଣ ପୁଂ.—(ଦା ଧାତୁ+କର୍ତ୍ତୃ. ତୃକ୍; ଦାତୃ ଶବ୍ଦ ୧ମା. ୧ବ.)
Dātā
୧ । ଦାନକାରୀ; ଯେ ଦାନ କରେ—1. Giving; bestowing.
(ଦାତ୍ରୀ—ସ୍ତ୍ରୀ)
(ଗ୍ରହୀତା—ବିପରୀତ) [ଦ୍ର—ଏହା ଅନ୍ୟ ଶବ୍ଦ ସଙ୍ଗେ ପ୍ରଯୁକ୍ତ ହୋଇ ମଧ୍ୟ ବ୍ୟବହୃତ ହୁଏ ।]
(କୃପଣ; ଅଦାତା—ବିପରୀତ)
୨ । ଦାନଶୀଳ, ବଦାନ୍ୟ—2. Liberal; bounteous; generous munificent; open handed.
ସଂ. ବି.—ଦାନକାରୀ ବ୍ୟକ୍ତି—Doner; giver.

**ଦାତାକର୍ଣ୍ଣ**—ସଂ. ବି. (ନାମ)—କର୍ଣ୍ଣ ୨ (ଦେଖ)—Karṇṇa 2. (See)
Dātā karṇṇa
दाताकर्ण
दाताकरन
ଦେ.ବି—କର୍ଣ୍ଣ ରାଜାଙ୍କ ପରି ଅସାଧାରଣ ଦାତା ବ୍ୟକ୍ତି—A person who is generous like the king Karṇṇa of the fables.

**ଦାତାପଣ**—ଦେ. ବି.—ଦାତୃତ୍ୱ, ବଦାନ୍ୟତା—Liberality, generousity
Datāpaṇa
दातापाना
दातापन
(ଦାତାପଣିଆଁ—ଅନ୍ୟରୂପ)

**ଦାତାରାମ୍**—ବୈଦେ. ବି. (ହିନ୍ଦୀରୁ ଅନୁକୃତ)—୧ । ଅକାତରରେ ଦାନ କରିବା ବ୍ୟକ୍ତି; ବିଶେଷ ଦାନଶୀଳ ବ୍ୟକ୍ତି—1. Very generous person; a magnanimous person.
Dātārām
दाताराम
दाताराम
୨ । ଦାନଶୀଳ ରାମ ବା ଭଗବାନ—2 The All-giver god.
ଅଳଗରକୁ ଦାତାରାମ—ଚଗ ।

**ଦାତାଷଣ୍ଡ(ଣ୍ଢ)**—ଦେ. ବି.—(ସଂ. ଦାନଶୌଣ୍ଡ)—(ବ୍ୟଙ୍ଗୋକ୍ତିରେ ବ୍ୟବହୃତ)—ଅକାତରରେ ଦାନକରିବା ବ୍ୟକ୍ତି; ଦାନ କରିବାକୁ ଉତ୍କଣ୍ଠିତ; ଦାନବୀର—Very liberal or magnanimous person; a very generous person.
Dātāshaṇḍa(ṇḍha)
(ଦାତାଷେଣ୍ଡ(ଣ୍ଢ)—ଅନ୍ୟରୂପ)

**ଦାତୃଗୁଣ**—ଦେ. ବି.—(ସଂ. ଦାତୃତା)—ଦାତାପଣିଆଁ—Generosity; liberality; magnanimousness.
Dātruguṇa

ଶଣି ଭୁମ୍ଭ ଦାତୃଗଣ କରିବାକୁ ନଃ
ଅସୁ ବୋଲିବାରୁ ତହିଁ ନ୍ତେ ମୂକ୍ଷ ଯେ । ଉପେନ୍ଦ୍ର ଭଞ୍ଜ- ଲାବଣ୍ୟବତୀ ।

**ଦାତୃତା**—ସ.ବି. - (ଦାତୃନ୍‌ + ଭାବ. ତା) —ଦାତାପଣିଆଁ ; ବଦାନ୍ୟତା—
Dātṛutā Munificence; generosity;
(ଦାତୃତ୍ୱ—ଅନ୍ୟରୂପ) liberality; charitableness

**ଦାତ୍ୟୂହ**—ସ. ବି ( ଦୋ ଧାତୁ = ଛେଦନ କରିବା + ଭାବେ. କ୍ତି =
Dātyūha ଦାତି; ଦାତି = ଛେଦନ + ଉହ୍ ଧାତୁ = ତର୍କ
(ଦାତ୍ୟୌହ —ଅନ୍ୟରୂପ) କରିବା + କର୍ତ୍ତୃ.ଅ)— ୧ । ଡାହୁକପକ୍ଷୀ—
1. A kind of acquatic bird or water fowl
୨ । ଚାତକ ପକ୍ଷୀ—2 The pied crested cuckoo
୩ । ମେଘ—3 Cloud.

**ଦାତ୍ର**—ସ. ବି (ଦୋ ଧାତୁ = ଛେଦନ କରିବା + କରଣେ ତ୍ର; ଯାହାଦ୍ୱାରା
Dātra ଛେଦନ କରାଯାଏ)—୧ । ଦାଆ—1 Sickle; scythe
୨ । କାତି, କଟାରି—2. A bill-hook.

**ଦାଦ୍‌ଖାନି**—ଦେ. ବି—ଦାଉଦଖାନି ( ଦେଖ )
Dādkhāni Dāudakhāni ( See )

**ଦାଦ**—ସ. ବି (ଦଦ୍ ଧାତୁ = ଦାନ କରିବା + ଭାବ. ଅ)—ଦାନ—
Dāda Gift.
ଦାଦ ବୈଦେ. ବି — ୧ । (ଫା ନଦନ) ପ୍ରତିଶୋଧ—
दाद् 1 Revenge
୨ । (ଫା) ନ୍ୟାୟ ବିଚାର ପ୍ରାର୍ଥନା—
2. Prayer for justice
୩ । ବିଚାର—3. Adjudication of a matter.

**ଦାଦନ**—ବୈଦେ. ବି ( ଫା ଭୁଲ. ସ ଦାନ )—୧ । କୌଣସି ପଦାର୍ଥ
Dādana ପାଇବା ଆଶାରେ ବା କାର୍ଯ୍ୟ ପାଇବା ଆଶାରେ ଧନ
ଦାଦନ ଆଗଉଗ୍ର ଦେବା; ଅଗ୍ରିମ ଦାନ—1. Payment in
दादन advance; advance.
୨ । ଧନାଦି ଅଗ୍ରିମ ଦେବାର ପ୍ରଥା—
2. The system of advance payments
୩ । ଧନ ବା ଶସ୍ୟାଦି ସୁଧରେ ଖଟାଇବା; ଧାନ ଦେଢ଼ି
ଲଗାଇବା—3. Advancing paddy or grains
on loan; investment of paddy or other
grains on interest
୪ । ଲାଭ ସହିତ ଧାନ ବା ଶସ୍ୟାଦି ପାଇବା ଆଶାରେ
ଆଗଉଗ୍ର ଟଙ୍କା କାଢ଼ିଆ ଲଗାଇବା—4. Advancing money to get in return paddy or
other grains etc with a profit on some
fixed date.
୫ । ମୂଲିଆମାନେ ଭବିଷ୍ୟତରେ କାମ କରିବେ ବୋଲି ତାଙ୍କୁ
ଆଗଉଗ୍ର ଟଙ୍କା ଦେବା—5. Payment of advance wages to labourers on promise
of future service

**ଦାଦନ ଖାତା**—ଦେ. ବି— ଯେଉଁ ଖାତାରେ ଦାଦନ ଦିଆଯିବା ଧାନ ବା
Dādana khātā ଟଙ୍କା ଲେଖା ହୁଏ—Account book
(ଦାଦନ ଖାତା—ଅନ୍ୟରୂପ) showing entries of advances
दादनखाता दादनखाता made to different persons.

**ଦାଦନ ଦେବା**—ଦେ. କ୍ରି—୧ । ଭବିଷ୍ୟତରେ କାମ କରିବା ନିମନ୍ତେ
Dādana debā ଜବାବ କରିବା ମୂଲିଆଙ୍କୁ ଆଗଉଗ୍ର ଟଙ୍କା
(ଦାଦନ ଲଗା(ଗୋଇବା—ଅନ୍ୟରୂପ) ଦେବା—1. To pay advance wages to coolies on
दादन देओया, दादन लगान promise of future service
दादनदेना
୨ । ନିର୍ଦ୍ଧାରିତ ମିଆଦରେ ଦାଣ୍ଡ ପ୍ରଚଳିତ ଭାଉ ଅପେକ୍ଷା
ବେଶି ପରିମାଣରେ ଶସ୍ୟାଦି ଦେବାପାଇଁ ଯବାବ
କରିବା ବିକ୍ରେତାଙ୍କୁ ଆଗଉଗ୍ର ଟଙ୍କା ଦେବା—
2. To advance money to a seller who
promises to deliver paddy or other
grains on a certain date in a quantity
higher than the current market rate.

**ଦାଦନି**—ବୈଦେ. ବିଣ (ଫା)—୧ । ଦାଦନ ଦିଆଯିବା, ଆଗଉଗ୍ର
Dādani ଦିଆଯିବା—1. Paid in advance; advanced.
दादनी ୨ । ଅଗ୍ରିମ ଦେୟ—2 Payable in advance.
दादनी ୩ । ଦାଦନ ସମ୍ବନ୍ଧୀୟ—3. Relating to advance
payment
ବି—ଆଗଉଗ୍ର ଦିଆଯିବା ଧନ ବା ବସ୍ତୁ—An advance.

**ଦାଦପିରାଦ**—ପ୍ରାଦେ. (ଗଞ୍ଜାମ) ବି—ନଜର; ଦୃଷ୍ଟି—
Dādapirāda Sight.

ଦାଦଫିରାଦ, ଦାଦଫେରାଦ, ଦାଦଫିରିଆଦ, ଦାଦଫେରିଆଦ } ଅନ୍ୟରୂପ — ବୈଦେ. ବି (ଫା ଦାଦ୍ = ନ୍ୟାୟବିଚାର ପ୍ରାର୍ଥନା + ଫରିଅଦ୍ = ଅଭିଯୋଗ)—
ନ୍ୟାୟ ବିଚାର ପ୍ରାର୍ଥନା—
Prayer for justice.
दादफिरियाद दादफिरिआद

**ଦାଦା**—ପ୍ରାଦେ· (ମେଦିନୀପୁର; ସମ୍ବଲପୁର) (ସ ତାତ; ଭୁଲ ସ·
Dādā ଦାୟାଦ; ଭୁଲ. ଇଂ. ଡାଡ୍ଡୀ=ପିତାଙ୍କୁ ଶିଶୁର ସ୍ନେହ
(ଦଦା —ଅନ୍ୟରୂପ) ସମ୍ବୋଧନ; ଗ୍ରୀକ୍—ଡାଡା; ପ୍ରାଚୀନ ଲାଟିନ୍—
ଦାଦା ଡାଡା)—୧ । ବଡ଼ ଭାଇ; ଜ୍ୟେଷ୍ଠ ଭ୍ରାତା;
दादा ଭାଇନନା—1. Elder brother.
ଦାଦା ୨ । ପିତାମହ; ଅଜା—2. Grand father.
दादा (ଯଥା—ବାପଦାଦାଙ୍କ ଦିନକରୁ ଏ କଥା ଶୁଣା ନ ଥିଲା ।)
୩ । ଦାଦି (ଦେଖ)—3 Dādi (See)

**ଦା ଦାଢ଼ିଁଉ ଆ**—ଦେ ବିଣ—ଦାଆ ବା କରତ ଦାନ୍ତ ପରି ଦନ୍ତୁର—
Dā dārdhi(rdhu)ā Saw-edged.
(ଦାଆ ଦାଢ଼ି(ଢୁ)ଆ—ଅନ୍ୟରୂପ)

**ଦାଦାଭଟ ଦାଦାଭାଇ**—ଦେ. ବି. (ନାମ)—ପୁନାର ଜ୍ୟୋତିଷ ଗ୍ରନ୍ଥର
Dādābhaṭa dādābhāi ଟୀକାକାର ପଣ୍ଡିତ ( ଏ ଚିତ୍ପାବନ
ବ୍ରାହ୍ମଣ, ଏ ସୂର୍ଯ୍ୟ ସିଦ୍ଧାନ୍ତର ଟୀକା କରିଥିଲେ ଓ
ସାମୁଦ୍ରିକ ଗ୍ରନ୍ଥ ମଧ୍ୟ ରଚନା କରିଥିଲେ )—
A commentator of Sūrjya Siddhānta
and the author of a Sanscrit book of
palm-history.

**ଦାଦାଭାଇ ନଉରୋଜୀ**—ଦେ. ବି. (ନାମ)—ଭାରତର ପ୍ରସିଦ୍ଧ ସ୍ୱର୍ଗୀୟ
Dādābhāi nauroji ପାର୍ସୀ ଦେଶହିତୈଷୀ—Dādābhāi

ଦାଦାଭାଇ ନାଉରୋଜୀ } Naoroji.
ଦାଦାଭାଇ ନରୋଜୀ } ଅନ୍ୟରୂପ [ ବ୍ର—ଏହାଙ୍କ ଜନ୍ମସ୍ଥାନ ବମ୍ବେ ।
ଦାଦାଭାଇ ନୌରୋଜୀ } ଏ ଭାରତବର୍ଷୀୟମାନଙ୍କର
ସାମାଜିକ, ବୈଷୟିକ, ରାଜନୀତିକ ଓ ଶିକ୍ଷା ସମ୍ବନ୍ଧୀୟ ଉନ୍ନତି ପାଇଁ ନାନା ଅନୁଷ୍ଠାନ, ଆନ୍ଦୋଳନ, ସଭା, ସମ୍ବାଦପତ୍ର ପରିଚାଳନ କରିଥିଲେ । ଏ ତିନ ଥର ଭାରତୀୟ କଂଗ୍ରେସର ସଭାପତି ନିର୍ବାଚିତ ହୋଇଥିଲେ ଓ ବିଲାତ ପାର୍ଲିଆମେଣ୍ଟର ସଭ୍ୟ ହୋଇଥିଲେ । ଏହାଙ୍କର ପ୍ରସିଦ୍ଧ ଇଂରାଜୀ ଗ୍ରନ୍ଥ Poverty and unbritish Rule in Indiaରେ ଭାରତବର୍ଷର ରାଜନୀତିକ, ଆର୍ଥିକ ଓ ବୈଷୟିକ ଉନ୍ନତି ବିଷୟରେ ଅନେକ ଗବେଷଣାପୂର୍ଣ୍ଣ ତଥ୍ୟ ଓ ଉପଦେଶ ଲିପିବଦ୍ଧ କରି ଅଛନ୍ତି । ଜଗତର ପ୍ରସିଦ୍ଧ ବ୍ୟକ୍ତିଙ୍କମଧ୍ୟରେ ଏ ଜଣେ । ଏହାଙ୍କର ଜନ୍ମ ୧୮୨୫ ଓ ମୃତ୍ୟୁ ୧୯୧୦ । ]

**ଦାଦି**—ଦେ. ବି (ସ. ତାତ; ବ୍ରାହ୍ମଣେତରମାନଙ୍କ ବ୍ୟବହୃତ)—
Dādi ବାପାଙ୍କ ସାନ ଭାଇ; କନିଷ୍ଠ ପିତୃବ୍ୟ; କକେଇ; କକା—
କାକା Father's younger brother; younger paternal uncle.
**चाचा**

ବାପୁ ବଡ ବାପୁ ସେ ଦାଦିଙ୍କ ପାଖରେ । କୃଷ୍ଣସିଂହ. ମହାଭାରତ ବନ ।

ପ୍ରାଦେ. (ବସ୍ତର) ବି. (ଭୁଲ. ହି. ଦାଦା=ପିତାମହ)—
ପିତାମହ—Grand-father

**ଦାଦିପୁଅ ଭାଇ**—ଦେ. ବି. ପୁଂ—କକେଇ ପୁଅ ଭାଇ—
Dādipua bhāi One's first cousin; being the son of one's younger uncle.
(ଦାଦିପୁଅ ଭଉଣୀ—ବିପରୀତ ଲିଙ୍ଗବାଚକ ଶବ୍ଦ)

ପାଣ୍ଡବେ ଭୁଞ୍ଜିର ଦାଦିପୁଅ ଭାଇ । କୃଷ୍ଣସିଂହ. ମହାଭାରତ ସଭା ।

**ଦାଦିରି ଦାରା ଦାରା ଦାରା**—ଦେ. ବି—ତାଡର ଡାରା ଡାରା ଡାରା;
Dādiri dārā dārā dārā ସୀତାର ବଜାଇବାର ସଙ୍କେତବିଶେଷ—
दादिर दारा दारा दारा The formula for playing an air on the guitar.
**दादिर दारा दाँयां दारा**

**ଦାଦୁ**—ଦେ. ବି. (ସ. ଦଦ୍ରୁ; ପ୍ରା. ଦଦ୍ଦୁ)—୧ । ଜାଦୁ, ଦଦ୍ରୁରୋଗ—
Dādu 1. Ringworm
दाद दाद्रु [ ବ୍ର—ଏହା ଚର୍ମରୋଗ; ଚର୍ମରେ ଏକପ୍ରକାର କୀଟ ଜନ୍ମି
**दाद, दाद्रु** ଏ ରୋଗ ହୁଏ, ଦାଦୁ ଅନେକ ପ୍ରକାର ଯଥା— ଶୁଖୁଦାଦୁ; ଅଇଁଠାଦାଦୁ, କୋଡ଼ ଦାଦୁ, ଅଣ୍ଟାଦାଦୁ, ମଇଷିଆଦାଦୁ । ]
୨ । ବଡ଼ବାପ—2. Grand father.

**ଦାଦୁଆ**—ଦେ. ବିଣ. ପୁଂ. (ସ. ଦଦ୍ରୁର)—୧ । ଜାଦୁରୀ; ଦଦ୍ରୁରୋଗୀ—
Dādua ଜାନ୍ତୁ—1 Suffering from ringworm
(ଦାଦୁରୀ—ଅନ୍ୟରୂପ) ୨ । ଉପରେ ଜାଦୁ ମାଡ଼ିଲା ପରି ଦେଖାଯାଉଥିବା (ବସ୍ତୁ ବା ଚମଡ଼ା)—
दादरा
**दादवाला** 2. Spotted like ringworm; looking like a skin spread over with ringwork.
(ଦାଦେ(ଢୋ)ଇ—ସ୍ତ୍ରୀ)

**ଦାଦୁଖାଇ**—ଦେ. ବି. (ସ. ଦଦ୍ରୁମର୍ଦ୍ଦନ)—ଦାଦୁଖାଇ ଗଛ; କାଞ୍ଚନାଦି
Dādukāi ବର୍ଗର ଏକପ୍ରକାର ଗଛ; ଚକୁଣ୍ଡା ୧ (ଦେଖ)—
(ଦାଦୁମାରି—ଅନ୍ୟରୂପ) The Cassia Tora tree; Cassia
दादखाई Alata; Chākundā 1 (See)

**दादमर्दन** [ ବ୍ର—ଏହାର ଫୁଲ ହଳଦିଆ, ପତ୍ର ବଇଁଭ ଚକୁଣ୍ଡା ପରି; ଗଛ ୩/୪ ହାତ ଉଚ୍ଚ; ଏଥିର ପତ୍ର ମଳ ଜାଦୁରେ ଘଷିଲେ ଜାଦୁ କମିମାଏ କୃମି ଭାର ପୋଡ଼େ । ]

**ଦାଦୁମଲମ**—ଦେ ବି—ଜାଦୁରୋଗ ନାଶ କରିବା ପାଇଁ ବ୍ୟବହୃତ
Dādumalama ମଲମ—Ring-worm ointment.
दादेव मलम **दादकी मरहम**

**ଦାଦୁମାଡ଼ିବା**—ଦେ ବି—ଦଦ୍ରୁ ଦେହରେ ବିସ୍ତୃତ ଲାଭ କରିବା—
Dādumārdibā The ring-worm spreading on the body.
(ଦାଦୁମାଡ଼ିଯିବା—ଅନ୍ୟରୂପ)
दादमोड़े याओआ କ କରୁନ ବାବୁ ମୁଁ ଏ ଅଣ୍ଟାଜାଦୁକୁ
**दादफैलजाना** ଅଣ୍ଟାଦାଦୁ ମାଡ଼ିଗଲା ପେଟ ତଳକୁ । ଗ୍ରାମ୍ୟ ଗୀତ ।

**ଦାଦୁ ମାରିବା**—ଦେ. କ୍ରି—ଜାଦୁ ରୋଗକୁ ଔଷଧ ଦ୍ୱାରା ଲୋପ କରିବା—
Dādu māribā To destroy ringworm by applying medicine.
दादमावा
**दाद् मारना**

**ଦାଧିକ**—ସ. ବିଣ ( ଦଧି+ସଂଯୁକ୍ତାର୍ଥେ ଇକ )—
Dādhika ଦଧିଯୁକ୍ତ—Mixed with curds
ବି—ଦହି ଭାତ—Rice mixed with curd.

**ଦାନ୍**—ବୈଦେ. ବି (ଫା. ଭୁଲ. ସ ଆଧାନ; ଅନ୍ୟ ଶବ୍ଦ ସଙ୍ଗେ ବ୍ୟବହୃତ
Dān (ଯଥା—ଅତରଦାନ୍ )—
दान ୧ । ଦାନୀ; ଆଧାର—1. A receptacle.
**दान** ( ଯଥା—ଅତରଦାନ୍ )
୨ । ରଖିବାର ସ୍ଥାନ—2. A place for putting.
( ଯଥା—ପାଉଁଦାନ୍ )
ପ୍ରାଦେ (ସମ୍ବଲପୁର) ବି—ପାଦ; ଗୋଡ଼—Leg.

**ଦାନ**—ସ. ବି. ( ଦା ଧାତୁ=ଦେବା+ଭାବ. ଅନ )—
Dāna ୧ । ଅର୍ପଣ; ତ୍ୟାଗ—1. Donation.
୨ । ଦେବା—2 Giving.
୩ । ବିତରଣ—3. Distribution.
୪ । ଦତ୍ତ ବସ୍ତୁ—4. A present or gift.
୫ । (+କର୍ମ. ଅନ) ଗଜମଦ; ହସ୍ତୀର ମଦଜଳ—
5. Strongly scented fluid flowing from the temple of an elephant in rut; temple-juice; fragrant secretion from the temple of an elephant in rut.
୬ । ( ଦେ ଧାତୁ=ପାଳନ+ଭାବ. ଅନ )—
ରକ୍ଷା; ପାଳନ—6. Protection.
୭ । ( ଦୋ ଧାତୁ=ଛେଦନ+ଭାବ. ଅନ )—
ଛେଦନ, କର୍ତ୍ତନ—7. Cutting.

ବର୍ଣ୍ଣିଷ୍ଣ ବୋଇଲେ ଗ୍ରନ୍ଥ ମଙ୍ଗଳ ବୋଲାଇ
କନ୍ୟା ଦାନେ ଶାନ୍ତ ନୋହେ ଅମଙ୍ଗଳ ଦାୟୀ ।
ଉପେନ୍ଦ୍ରଭଞ୍ଜ. ବୈଦେହୀଶବିଳାସ ।

୮ । ( ଦୈ ଧାତୁ=ଶୁଦ୍ଧ କରିବା+ଭାବ. ଅନ )—
ଶୋଧନ—8. Refining; purifying.

୯ । ଗାଣ୍ଠକ ମଧୁ—9. A kind of honey collected by a kind of insect.

୧୦ । ପୁଣ୍ୟାର୍ଥ ଧନାଦି ବିତରଣ—10. Pious gift

୧୧ । ରାଜସ୍ୱ; କର—11 Revenue.

୧୨ । ରାଜନୀତିର ଚାରି ଉପାୟ ମଧ୍ୟରୁ ଏକ; ଅର୍ଥାତ୍ ଦାନପୂର୍ବକ ଶତ୍ରୁ ବିରୁଦ୍ଧରେ କାର୍ଯ୍ୟ ସାଧନ କରିବାର ରୀତି ( ହି. ଶବ୍ଦସାଗର )—12. The system of injuring one's enemy by making gift.

୧୩ । ଟିକସ; ମାହାସୁଲ—13 Tax.

ଦେ. ବି—୧ । ପଶା କାଠି ଗଡ଼ାଇଲେ ଉପରଟା କାଟିରେ ଯେଉଁ ସଂଖ୍ୟକ ବିନ୍ଦୁ ଚିହ୍ନ ହୋଇ ପଡ଼ିବାର ଦେଖାଯାଏ- 1. The number of points coming up at a throw of dice.

ବଢ଼ୋଇ ଯୋଗ ସୂକ ଦଶ ଗ୍ରହଣରେ ଦାନ କାଠି ପଡ଼ନ୍ତି ଅନୁକ୍ଷଣ ।
ଉପେନ୍ଦ୍ର ଭଞ୍ଜ, ବୈଦେହୀଶବିଳାସ ।

୨ । କଉଡ଼ି ଖେଳରେ କଉଡ଼ି ମୁଠା ଦ୍ୱାରା ପକାଇଲେ ତାହା ଭୂମିରେ ଚିତ ବା ମାଠ ହୋଇ ପଡ଼ିବା ଅନୁସାରେ ଧରାଯିବା ସଂଖ୍ୟା—2. A turn in the number of cowries during a game of cowries.

ସେ ଦାନ ପଡ଼ଇ ଯେମନ୍ତେ, କନ୍ଦୁକ ଚଳେ ସେହି ମତେ ।
ଜଗନ୍ନାଥ, ଭାଗବତ ।

୩ । ବ୍ୟୟ—3. Expenditure.

ଲୁଟିଲେ ଲଗ୍ନ ମଗ୍ନ ହୋଇ, ଝୁଟିଲେ ମଙ୍ଗଳ ଦାନରେ ରହି ।
ଉପେନ୍ଦ୍ର ଭଞ୍ଜ, ବୈଦେହୀଶବିଳାସ ।

ପ୍ରାଦେ. (ସମ୍ବଲପୁର) ବି—୧ । ଶୁଳ୍କ—1. Tax

୨ । ଚୁଙ୍ଗୀ ଟିକସ—2. Octroi.

**ଦାନକ**—ସଂ. ବି (ଦାନ+କ) କୁତ୍ସିତ ଦାନ—(ହି. ଶବ୍ଦସାଗର)—
Dānaka A bad or evil gift.

ଦାନ କରିବା—ଦେ. କ୍ରି—୧ । ଅନ୍ୟ ବ୍ୟକ୍ତିଙ୍କୁ କୌଣସି ବସ୍ତୁ ବା ଧନ ଅର୍ପଣ କରିବା—1. To give.
Dāna karibā
দান করা; দান দেওয়া

୨ । ବିତରଣ କରିବା—2. To distribute; to bestow.
(ଦାନ ଦେବା-ଅନ୍ୟରୂପ)

୩ । ଦେବା (ଦେଖ)—3. Debā (See).

[ଦ୍ର—ଦାନ କରିବା ଶବ୍ଦର ପ୍ରୟୋଗ ଇଂରାଜୀରେ To give କ୍ରିୟାର ପ୍ରୟୋଗ ଭଳି ନାନା କ୍ଷେତ୍ରରେ ନାନା ଅର୍ଥରେ ବ୍ୟବହୃତ ହୁଏ; ଯଥା—ଋଣଦାନ କରିବା = ଋଣ କରିବାକୁ କାର୍ଯ୍ୟତଃ ସୁବିଧା ଦେବା; ସନ୍ତୋଷ ଦାନ କରିବା = ସନ୍ତୁଷ୍ଟ ହେବାର ଉପାୟ ବା ବ୍ୟବସ୍ଥା କରିବା; ବିଦ୍ୟାଦାନ କରିବା = ବିଦ୍ୟାଶିକ୍ଷା କରିବାର ସୁଯୋଗ ଦେବା; ଚକ୍ଷୁଦାନ କରିବା = ଦୃଷ୍ଟିହୀନ ବ୍ୟକ୍ତିଙ୍କୁ ଦୃଷ୍ଟିଶକ୍ତି ଯୋଗାଇବା; ଆଦେଶ ଦାନ କରିବା = ଆଦେଶ ଅନ୍ୟଙ୍କୁ ଜ୍ଞାପନ କରିବା ଇତ୍ୟାଦି]

**ଦାନକୁଲ୍ୟା**—ସଂ. ବି—ହାତୀର ଗଣ୍ଡ ସ୍ଥଳରୁ ସ୍ରବିବା ଦାନବାରି—
Dānakulyā Fragrant secretion from the temple of an elephant in rut.

ଦାନ ଖଇ(ଏ)ରାତ୍—ଦେ. ବି (ଏକାର୍ଥକ ସଂ. ଓ ଆ. ଶବ୍ଦ ଦ୍ୱୟ ସହଚର)—ଦାନ—Gift; giving.
Dāna khai(e)rāt
দান খয়রাৎ; दान खयरात्

ଦାନଗଦି—ପ୍ରାଦେ. (ସମ୍ବଲପୁର) ବି (ସଂ ଦାନ+ଫା. ଗଦି)—ମୁନିସିପାଲିଟି ଏରିଆରେ ବିକ୍ରି କରିବାପାଇଁ ମଫସଲରୁ ପଣ୍ୟାଦି ଆଣୁଥିବା ବ୍ୟକ୍ତିଠାରୁ ଶୁଳ୍କ ଆଦାୟ କରାଯିବା କାର୍ଯ୍ୟାଳୟ—The office where octroi (town duty) is levied in the town of Sambalpur.
Dānagadi

[ଦ୍ର—ସମ୍ବଲପୁର ମୁନିସିପାଲିଟିରେ ଏକା ଦାନଗଦି ବିଭାଗରେ ଏହି ବରଷକ ମଧ୍ୟରେ ପ୍ରାୟ ପନ୍ଦର ହଜାର ଟଙ୍କା ଉଣା ପଡ଼ିଗଲାଣି ।
ଉତ୍କଳ ସେବକ ତା ୨୬।୭।୨୯]

ଦାନଗଦି ମାହାସୁଲ—ପ୍ରାଦେ (ସମ୍ବଲପୁର) ବି—ସହର ମଧ୍ୟକୁ ଆସିବା ପଣ୍ୟଦ୍ରବ୍ୟ ଉପରେ ମିଉନିସିପାଲିଟି ଯେଉଁ ଶୁଳ୍କ ଆଦାୟ କରେ, ଚୁଙ୍ଗୀ-ଟିକସ—Town duty; octroi.
Dānagadi māhāsula
(ଦାନଗଦି ମାସୁଲ—ଅନ୍ୟରୂପ)

**ଦାନ ଗ୍ରହଣ କରିବା**—ଦେ କ୍ରି—ଅନ୍ୟର ପ୍ରଦତ୍ତ ଦ୍ରବ୍ୟ ନେବା—
Dāna grahaṇa karibā To accept a gift.
(ଦାନ ନେବା—ଅନ୍ୟରୂପ)
দাননেওয়া

**ଦାନ-ଜଳ**—ସଂ. ବି—୧ । ମଦ ବାରି; ମଦ ଜଳ; ହସ୍ତୀର ଗଣ୍ଡସ୍ଥଳ-ଦେଇ କ୍ଷରିତ ଜଳ—The strongly scented secretion from the temples of an elephant in rut.
Dāna jala
(ଦାନବାରି—ଅନ୍ୟରୂପ)

୨ । ଦାନ ସମୟରେ ବ୍ରାହ୍ମଣ ହସ୍ତରେ ଦିଆଯିବା ଜଳ—2. The water given to the hand of the Brahman who is going to take a gift.

ବଟେର କଳଧ ସ୍ୱ ଯହିଁ ଦାନ ଜଳ—ଉପେନ୍ଦ୍ର ଭଞ୍ଜ. ବୈଦେହୀଶବିଳାସ ।

**ଦାନଧର୍ମ**—ଦେ ବି (ସହଚର)—ଦାନ ଆଦି ପୁଣ୍ୟ କାର୍ଯ୍ୟ—
Dāna dharma Gifts and other virtuous acts.
(ଦାନଧରମ—ଅନ୍ୟରୂପ)
दानधर्म, **দানধরম**

ଦାନ ପକା(କେ)ଇବା—ଦେ. କ୍ରି—ପଶାକାଠି ବା କଉଡ଼ିଙ୍କୁ ଗଡ଼ାଇବା—
Dāna pakā(ke)ibā To throw the dice or cowries in a game.
দানফেলা

ଦାନପତି—ସଂ. ବିଣ—ଅତିଶୟ ଦାତା; ମହା ଦାନୀ—
Dānapati Very generous or open handed.

ସଂ. ବି—ଅକ୍ରୂରର ଏକ ନାମ ( ଏ ସ୍ୟମନ୍ତକମଣି ପ୍ରଭାବରୁ ପ୍ରତିଦିନ ବିପୁଳ ଅର୍ଥ ଦାନ କରୁଥିଲେ—ହି. ଶବ୍ଦସାଗର)—A name of Akūrra.

ଦାନପତ୍ର—ସଂ ବି. (ଦାନ ବିଷୟକ ପତ୍ର—କର୍ମଧା)—ଦାନପତ୍ର; କୌଣସି ସମ୍ପତ୍ତି ଅନ୍ୟଙ୍କୁ ଦାନ କରିବାର ଲେଖା—
Dānapatra A deed of gift; a grant.

[ ଦ୍ର—ପୂର୍ବେ ରାଜାମାନେ ତାମ୍ର ପଟ୍ଟାରେ ଖୋଦିତ କରି ଲେଖି ଭୂମି ଆଦି ଦାନ କରୁଥିଲେ । ]

ଦାନପାତ୍ର—ସଂ. ବ ( ଦାନ+ପାତ୍ର, ୬ଷ୍ଠୀ ତତ୍ ) —ଦାନ ଗ୍ରହଣ
Dānapātra କରିବାର ଉପଯୁକ୍ତ ବ୍ୟକ୍ତି—
One worthy of receiving a gift.

ଦାନବ—ସଂ ବ. ପୁଂ. ( ଦନୁ=କଶ୍ୟପଙ୍କ ଭାର୍ଯ୍ୟା+ଅପତ୍ୟାର୍ଥେ ଅ )—
Dānaba ଦନୁଜ; ଅସୁର, ରାକ୍ଷସ —Demon.
( ଦାନବୀ - ସ୍ତ୍ରୀ )

ଦାନବଗୁରୁ—ସ ବ ( ୬ଷ୍ଠୀ ତତ୍, ଦାନବ+ଗୁରୁ )—ଶୁକ୍ରାଚାର୍ଯ୍ୟ—
Dānabaguru The sage Sukra who was the preceptor of the demons.

ଦାନବାରି—ସଂ. ବ. ( ଦାନବ+ଅରି; ୬ଷ୍ଠୀ ତତ୍ )—୧ । ଦେବତା—
Dānabāri 1. God
୨ । ବିଷ୍ଣୁ—2. Bishṇu
୩ । ( ଦାନ=ହସ୍ତୀର ମଦଜଳ+ବାରି, ରୂପକ କର୍ମଧା )—
ହସ୍ତୀର ଗଣ୍ଡସ୍ଥଳରୁ କ୍ଷରିତ ମଦଜଳ—3 Strongly scented liquid discharged from the temples of a male elephant in rut

ଦାନବୀର—ସଂ. ବଣ. ( ୭ମୀ ତତ୍, ଦାନ+ବୀର )—ଦାନପତି (ଦେଖ)
Dānabira Dānapati ( See )

ଦାନବେନ୍ଦ୍ର—ସ. ବ. ( ୬ଷ୍ଠୀ ତତ୍; ଦାନବ+ଇନ୍ଦ୍ର )—ରାଜା ବଳି
Dānabendra ( ହି. ଶବ୍ଦସାଗର )—The King Baḷi.

ଦାନଶୀଳ—ସଂ. ବଣ. ପୁଂ. ( ଦାନ ଅଟେ ଶୀଳ ଅର୍ଥାତ୍ ସ୍ୱଭାବ ଯାହାର,
Dānasiḷa ବହୁବ୍ରୀହି )—ଦାତା; ବଦାନ୍ୟ—Munificent; generous; liberal, charitable.
( ଦାନଶୀଳା—ସ୍ତ୍ରୀ )
( ଦାନଶୀଳତା—ବ )

ଦାନଶୀଳତା—ସ. ବ. ( ଦାନଶୀଳ+ଭାବେ. ତା )—ବଦାନ୍ୟତା—
Dānasiḷatā Liberality, generosity; munificence.
( ଦାନଶୀଳତ୍ୱ—ଅନ୍ୟରୂପ )

ଦାନଶୌଣ୍ଡ—ସ. ବ. (ଦାନରେ ଶୌଣ୍ଡ=ଅତ୍ୟଧିକ ଆସକ୍ତ; ୭ମୀ ତତ୍)—
Dānasauṇḍa ଅତ୍ୟନ୍ତ ବଦାନ୍ୟ—Very munificent

ଦାନସଜ୍ଜା—ସ. ବ. ( ଦାନର ସଜ୍ଜା, ୬ଷ୍ଠୀ ତତ୍ )—ଦାନ କରିବାର
Dānasajjā ଉପକରଣ—The materials for a present.
( ଦାନ ସାମଗ୍ରୀ—ଅନ୍ୟରୂପ )

ଦାନସାଗର—ସ. ବି. ( ଦାନର ସାଗର; ୬ଷ୍ଠୀ ତତ୍; ଉପକରଣାର୍ଥକ୍ୟ
Dānasāgara ଦାନର ସାଗର ପରି )—ଶ୍ରାଦ୍ଧ ଉପଲକ୍ଷରେ ବ୍ରାହ୍ମଣଙ୍କୁ ଯେଉଁ ଷୋଡ଼ଶ ଦାନ ଦିଆଯାଏ; ତାହାର ପ୍ରତ୍ୟେକର ୧୬ ସଂଖ୍ୟାବିଶିଷ୍ଟ ଦାନ; ୧୬ଗୋଟି ଷୋଡ଼ଶ--(ଷୋଡ଼ଶ ଦାନ ଦେଖ)—
The present of 16 classes of articles to Brāhmaṇs, 16 times on the occasion of a deceased ancestor; Shorḍaṣa dāna ( See ).

ଦାନା—ବୈଦେ. ବି. ( ଫା. ଦାନାହ୍=ଶସ୍ୟର ଗଜା )—୧ । ଘୋଡ଼ା;
Dānā ଗୋରୁ ଆଦିଙ୍କ ଖାଇବା ଶସ୍ୟ—1. Grains used
ଦାନା as food for domestic animals.
**दाना** ( ଯଥା—ଘୋଡ଼ା ଦାନା, ବଳଦଙ୍କ ଦାନା । )
[ ଦ୍ର—କୋଳଥ, ବିରି, ବୁଟ, ଚଣା ଅାଦି ଦାନାରୂପେ ବ୍ୟବହୃତ ହୁଏ । ]
୨ । ମଟର ପରି ଛୋଟ ଛୋଟ ଗୋଲାକାର ବୀଜ—
2. Globular small seeds (like pea)
୩ । ଛୋଟ ଛୋଟ ଗୋଲ ବସ୍ତୁ; ଗୁଆ—
3. Particles; globules; granules
୪ । ଖାଦ୍ୟ; ଅନ୍ନ; ଭୋଜ୍ୟବସ୍ତୁ—4 Food.
ପେଟକୁ ନ ମିଳେ ଦାନା, ଗାଣ୍ଡ କୁ ନ ମିଳେ କନା—ଡଗ ।
୫ । ମାଳା ଗୁନ୍ଥାଯିବା ସୂତା ଆଦିର କ୍ଷୁଦ୍ର ଗୋଲକ—
5. Bead; little ball pierced with strings.
୬ । ଅନ୍ନସଂସ୍ଥାନ, ଜୀବିକା—
6. Liveli-hood; living.
( ଯଥା—ଆଜି ଏଠାରୁ ମୋ ଦାନା ଉଠିଲା । )
**दानो** ଦେ. ବ—୧ । (ସ ଦାନବ) ରାକ୍ଷସ, ଅସୁର—1 Demon.
୨ । ଭୂତ—2 Ghost; spectre

ଦାନା କନା—ଦେ. ବ. ( ସହଚର )—ଅନ୍ନ ବସ୍ତ୍ର, ଖାଇବାକୁ ଅନ୍ନ ଓ
Dānā kanā ପିନ୍ଧିବାକୁ ବସ୍ତ୍ର—Food and clothing.
খোরাক পোষাক ଯାଙ୍କ ପୁତ ହୋଇ ପରକୁ ଅନାଇ ଅଛ ଦାନା କନା ପାଇଁ ।
**खुराक पोषाक** ଭିଖାରୀଚରଣ ଗୀତ ।

ଦାନା ଖଞ୍ଜିବା—ଦେ. କ୍ରି—୧ । କୌଣସି ବ୍ୟକ୍ତିର ଜୀବିକା ନିର୍ବାହର
Dānā khañjibā ଉପାୟ କରିବା—1. To provide
ଦାନା দেওয়া a person with his liveli-
**दाना देना** hood.
୨ । (ଈଶ୍ୱର) କୌଣସି ବ୍ୟକ୍ତିର ପୋଷି ହେବାର ଉପାୟ କରିବା—2. (God) To make provision for a person.

ଦାନାଗଡ଼ା—ଦେ. ବ. ( ବଣିଆ ଶବ୍ଦ )—ବର୍ତ୍ତୁଳାକାର ଛୋଟ ବଡ଼
Dānāgarḍā ସୁନାର ଗୁଆକୁ ସମ୍ପୂର୍ଣ୍ଣ ଗୋଲାକାର କରିବା ଲାଗି ବ୍ୟବହୃତ ହୁଇ ଫାଳିଆ ଯନ୍ତ୍ରବିଶେଷ—
A kind of goldsmith's mould for making round balls.

ଦାନା ଝଡ଼ା ଖୁଣ୍ଟି—ଦେ. ବ—ଲଡ଼୍ଡୁ ଆଦିର ଦାନା କରେଇବାରୁ ଛାଣିବା
Dānā jharḍā khunṭi ବେଳେ ଗୁଡ଼ିଆମାନେ ଦାନା ପ୍ରସ୍ତୁତ କରିବାରେ ବ୍ୟବହାର କରୁଥିବା ଜାଲି ଚଟୁକୁ ଭୂମିରେ ପୋତା ଯେଉଁ ଖୁଣ୍ଟି ଉପରେ ବାଡ଼େଇ ଝାଡ଼ି ଦିଅନ୍ତି—
A small post driven into the ground on which confectioners strike the ladle through which dough percolates and falls into the frying pan for being made into globules for Laḍḍu.

ଦାନାଦାର—ବୈଦେ. ବଣ. ( ଫା )—
Dānādar ୧ । ଦାନା ପରି ଛୋଟ ଓ ଗୋଲ ଗୁଆ ଗୁଆ—
দানাদার 1. Granulated; small globular,
**दानेदार** consisting of small globules.

୬ । ଯାହାଙ୍କ ଅଧୀନରେ କୌଣସି ମନୁଷ୍ୟ ଚାକିରି କରି ପେଟ ପୋଷି ହେଉ ଥାଏ; ଜନର ପ୍ରଭୁ ବା ପୋଷଣା-ଦାତା; ମାଲିକ—2. One's master; a person who provides for another's living.

ଦାନା ଦେବା—ଦେ. କ୍ରି—୧ । ଦାନା ଖଞ୍ଜିବା (ଦେଖ)
Dānā debā 1. Dānā khañjibā (See)
ଦାନା ଦେଓଯା ୨ । ଘା ଇତ୍ୟାଦି ରୁଆ ଦେବା (ଘା ଶୁଖିବାର ଚିହ୍ନ)-
दाना देना 2 To granulate ( said of healing sores ).

ଦାନାଧିକ୍ୟ—ଗ୍ରା. ପ୍ରାଦେ. ( ପୁରୀ ) ବି. ( ସଂ. ଦାନାଧ୍ୟକ୍ଷ )—ରାଜା
Dānādhikya ଶାସନ ସ୍ଥାପନ କରିବା ସମୟରେ ଯେଉଁ
ଦାନାଧିକ୍ୟ } ଅନ୍ୟରୂପ ବ୍ରାହ୍ମଣଙ୍କୁ ସମସ୍ତ ଦାନଗ୍ରହୀତା ବ୍ରାହ୍ମଣ-
ଦାନାଧକ୍ଷ } ମାନଙ୍କର ପ୍ରତିନିଧିରୂପେ ଭୂମି ଦାନ କରନ୍ତି; ପାଣିଗ୍ରାହୀ—The Brāhman, representing the whole body of donees of rent-free land in a Sasan village, to whose Land the Rājā of Orissa made the formal gift of the village

[ ଦ୍ର—ଏମାନଙ୍କର ସାଧାରଣ ଠିକାଦାରଙ୍କ ଅପେକ୍ଷା କେତେକ ବିଶିଷ୍ଟ ଅଧିକାର ଥାଏ । ]

ଦାନାଧକ୍ଷ—ସଂ. ବି—ଦାନାଧିକ୍ୟ ( ଦେଖ )
Dānādhyaksha Dānādhikya (See)

ଦାନା ପାଣି—ଦେ. ବି. ( ସମାହାର )—୧ । ଅହାର ଓ ପାନୀୟ;
Dānā pāni ଖିଆପିଆ—1. Food and drink; eating
ଦାନା ପାନି and drinking.
दाना पानी, दाना चारा ୨ । ଖାଇବା; ଜୀବନୋପାୟ; ଭରଣ ପୋଷଣ—2. Liveli-hood; maintenance.
୩ । ଚାକିରି—3. Service.

ଦାନା ପାଣି ଉଠିବା—ଦେ. ବି—ଚାକିରି ଯିବା—Dismissal or
Dānā pāni uthibā discharge from service.
ଦାନା ପାନୀ উঠা दाना पानी उठना

ଦାନା ପାଣି ଖଞ୍ଜିବା—ଦେ. କ୍ରି—କୌଣସି ବ୍ୟକ୍ତିଙ୍କୁ ଖାଇବାର ଉପାୟ
Dānā pāni khañjibā କରି ଦେବା—To provide a
ଦାନା ଖଞ୍ଜିବା } ଅନ୍ୟରୂପ person with a living
ଦାନା ପାଣି ଦେବା }
দানাপানি দেওয়া

ଦାନାପାଣି ଛାଡ଼ିବା—ଦେ. କ୍ରି—ରୋଗ ବା ଚିନ୍ତା ବା ଗଭୀର ମନୋ-
Dānāpāni chhārdibā ଦୁଃଖରେ ଅନ୍ନଜଳ ଗ୍ରହଣ ନ କରିବା-
ଦାନା ଛାଡ଼ିବା To give up taking
ଦାନାପାଣି ଛାଡ଼ିଦେବା food on account of
ଦାନା ନ ଛୁଇଁବା } ଅନ୍ୟରୂପ illness or grave anxiety
ଦାନା ନ ଛୋଇଁବା or grief.
(ଚାଲୁ) ଦାନା ନ ରୁଚିବା
दानापानी छोड़ना

ଦାନା ମାରିବା—ଦେ. କ୍ରି—ଅନ୍ୟ ବ୍ୟକ୍ତିର ଜୀବିକା ଚଳାଇବାର ପଥରୋଧ
Dānā māribā କରିବା—To deprive a person of his means of liveli-hood
ଦାନାରେ ଧୂଳିଦେବା } ଅନ୍ୟରୂପ
ଦାନାରେ ଧୂଳିପକାଇବା }
দানাতে ধূলাদেওয়া दानेपर धूल देना

ଦାନୀ—ସଂ. ବିଣ ପୁଂ. (ଦାନ+ଅସ୍ତ୍ୟର୍ଥରେ ଇନ୍; ଦାନିନ୍ ଶବ୍ଦ ୧ମା
Dānī ୧ବ)—୧ । ଦାତା—1. Generous.
ଦାନିନୀ—ସ୍ତ୍ରୀ) ଅଦ୍ୟ ଅମୃତ ଦାନୀ ପୃଥଦାୟକ ।
ଗୀତଲହରୀ. ଜଗମୋହନ ।
୨ । ଯେ ଦାନ ଗ୍ରହଣ କରେ—2. Receiving gifts.
(ଯଥା—ଅଗ୍ରଦାନୀ ବ୍ରାହ୍ମଣଃ ।)
ଦେ ବି. (ସଂ. ଆଧାନ)—୧ । ଆଧାର; ପାତ୍ର—
1. A receptacle, a vessel.
(ଯଥା—ନାସଦାନୀ; ପିକଦାନୀ; ଅତରଦାନୀ, ଧୂପଦାନୀ ।)
୨ । ମସାଲରେ ତେଲ ପକାଇବା ନିମନ୍ତେ ବ୍ୟବହୃତ ଆଧାର-
2 An oil pot containing oil for dropping over a torch.
୩ । ଯେଉଁ ବ୍ୟକ୍ତି ରାଜାଙ୍କ ପକ୍ଷରୁ କର ବା ଶୁଳ୍କ ଆଦାୟ କରେ—3 Collector of rent or tax; tax collector.
୪ । (ସମ୍ବଲପୁର) ବ୍ରାହ୍ମଣମାନଙ୍କର ଉପାଧିବିଶେଷ; (ବୋଧ ହୁଏ ଏମାନେ ଦାନଘାଟରେ ଆଗେ ଶୁଳ୍କ ସଂଗ୍ରହ କରୁଥିଲେ)—4. A family-title of Brahmins in Sambalpur.

ଦାନିଏଲ୍—ଦେ. ବି—ବାଇବଲଲିଖିତ ଧର୍ମବିଚାରକଙ୍କ ନାମ—
Dāniel Daniel, an upright judge.
[ ଦ୍ର—ଏହାଙ୍କ ନାମରେ ବାଇବଲର ପ୍ରାଚୀନ ଭାଗର ଗୋଟିଏ ଅଂଶ ଅଛି । ]

ଦାନୀୟ—ସଂ. ବିଣ. (ଦା ଧାତୁ+କର୍ମ ଅନୀୟ)—୧ । ଦାନଯୋଗ୍ୟ—
Dāniya 1. Fit to be given away.
୨ । ଦେୟ ବସ୍ତୁ—2. Giving thing.
୩ । (ଦା+ସମ୍ପ୍ରଦାନ ଅନୀୟ) ଦାନପାତ୍ର; ଦାନୁଆ—
3. Deserving gifts.

ଦାନୁଆ—ଦେ. ବିଣ. (ସଂ. ଦାନୀୟ)—୧ । ଦାନ କରିବାର ଯୋଗ୍ୟ;
Dānuā ଦାନ ଦେବାର ଯୋଗ୍ୟ (ବସ୍ତୁ)—1 (a thing) Fit
দুয়া; দেনো to be given away.
दानिया ୨ । ଦାନ ଗ୍ରହଣ କରିବାର ଯୋଗ୍ୟ (ବ୍ୟକ୍ତି)—
2. Worthy to receive a gift.
୩ । ଯେ ଦାନ ଗ୍ରହଣ କରେ—
3. In the habit of taking gifts.
(ଗାଳି) (ଲକ୍ଷଣାର୍ଥ)—୪ । ଅକର୍ମଣ୍ୟ—
4. Worthless; good-for-nothing.
[ ଦ୍ର—ପୂର୍ବେ ଲୋକେ ଭଲ ପଦାର୍ଥ ବ୍ରାହ୍ମଣଙ୍କୁ ଦାନ କରୁଥିଲେ; କିନ୍ତୁ ଲୋକଙ୍କ ଧର୍ମବିଶ୍ୱାସ କମିଯାଇଥିବା ସଙ୍ଗେ ସଙ୍ଗେ ଲୋକେ ନିକୃଷ୍ଟ ବସ୍ତୁକୁ ବ୍ରାହ୍ମଣଙ୍କୁ ଦାନ କରିବାର ଦେଖାଯାଏ । ଏଥିପାଇଁ 'ଦାନୁଆ' ଶବ୍ଦ ଏବେ 'ଅକର୍ମଣ୍ୟ' ଅର୍ଥରେ

ପ୍ରଯୁକ୍ତ ହେଉଅଛି । ଦାନୁଆ ଶାଢ଼ର ଅର୍ଥ ଏପରି କାଳୂଷ୍ଣ ଶାଢ଼ ଯେ ତାହା ବ୍ରାହ୍ମଣଙ୍କୁ ଦାନ କରାଯିବା ଯୋଗ୍ୟ ଅଟେ । ]

ପ୍ରାଦେ. (ଗଞ୍ଜାମ) ବି—ବୈଦିକ ବା ଶାସନୀ ବ୍ରାହ୍ମଣ, ଧର୍ମଶୀଳ ବା କଷ୍ଟାପର ବ୍ରାହ୍ମଣ, ଯାହାଙ୍କୁ ଦାନ ଦେଲେ ପୁଣ୍ୟଲାଭ ହୁଏ, ଦାନ ଗ୍ରହଣ କରିବାର ଉପଯୁକ୍ତ ବ୍ରାହ୍ମଣ—A class of high class Brahmins

[ଦ୍ର—ଗଞ୍ଜାମରେ ବୈଦିକ ବ୍ରାହ୍ମଣଙ୍କ ଦାନୁଆ ଓ ନୀଚ ଶ୍ରେଣୀକୁ ହଳୁଆ ଓ ସାରୁଆ ବୋଲାଯାଏ ।]

**ଦାନେଚ୍ଛା**—ସଂ. ବି. (ଦାନ+ଇଚ୍ଛା; ୬ଷ୍ଠୀ ତତ୍)—ଦାନ କରିବାର ଇଚ୍ଛା; ବଦାନ୍ୟତା—A desire to make gifts
Dānechhā

**ଦାନ୍ତ**—ସଂ ବିଣ.—( ଦନ୍ତ+ଭାବ ଓ ସମ୍ବନ୍ଧାର୍ଥେ ଅ )—୧ । ଦନ୍ତ ସମ୍ବନ୍ଧୀୟ—1. Dental.
Dānta

୨ । ଦନ୍ତନିର୍ମିତ—
2. Made of tooth (eg. ivory.)

୩ । (ଦମ୍ ଧାତୁ=କ୍ଲେଶ ସହିବା+କର୍ମ. ତ) ବଶୀକୃତ—
3. Subdued; brought under subjugation

୪ । ଦମିତ—4. Controlled; checked

୫ । (+କର୍ତ୍ତୃ.ତ) ତପସ୍ୟାରେ କ୍ଲେଶସହିଷ୍ଣୁ—
5. Inured to the pains of penance.

୬ । ଯେ ବାହ୍ୟେନ୍ଦ୍ରିୟ ବଶ କରିଅଛି; ଜିତେନ୍ଦ୍ରିୟ—
7. Self-controlling

୭ । ଶାନ୍ତ; ସୌମ୍ୟ—
7. Pacified; allayed; calmed; mild

୮ । ଶାସିତ—8. Ruled

୯ । (ଦ+ଅନ୍ତ; ବହୁବ୍ରୀହି) ଯେଉଁ ଶବ୍ଦର ଶେଷରେ ଦ ଅକ୍ଷର ଅଛି—9. ( a word ) Ending with the letter 'da'.

ସଂ. ବି.—(ନାମ —୧ । ଭୀମସେନ ରାଜାଙ୍କର ପୁତ୍ର; ଦମୟନ୍ତୀଙ୍କ ଭ୍ରାତା—1. The son of king Bhimasena, the brother of Damayanti.

ଦମଦାନ୍ତ ଦମନ ନାମକୁ ବହିଲେ,
ବାପାଙ୍କ ପଛ କାନ୍ଧି ମଞ୍ଚରେ ଶୋଇଲେ ।
କୃଷ୍ଣଙ୍କ ଦ. ମହାଭାରତ. ବନ ।

୨ । ଦମନ ବୃକ୍ଷ ( ଦେଖ)—2. Damana tree (See)

୩ । ମଏଣ ଫଳ (ହି. ଶବ୍ଦସାଗର) (ଦେଖ)
3. Maena phala (See)

**ଦାଁନ୍ତ** ଦେ. ବି. (ସଂ. ଦନ୍ତ)—୧ । ଦନ୍ତ—
**दाँत** 1. Tooth.

[ଦ୍ର—ଦାନ୍ତଦ୍ୱାରା କାଟିବା, ଛିଣ୍ଡାଇବା ଓ ଚୋବାଇବା କାର୍ଯ୍ୟ ହୁଏ । ଦାନ୍ତ ମନୁଷ୍ୟର ଉପର ପାଟିରେ ୧୬ ଗୋଟି ଓ ତଳ ପାଟିରେ ୧୬ ଗୋଟି; ଉପର ଓ ତଳ ପାଟିର ଏକ ଏକ ଫାଳରେ ଥିବା ୮ ଗୋଟି ଦାନ୍ତ ମଧ୍ୟରୁ କ୍ଷୁଦ୍ରଦାନ୍ତ (Incisors) ୨ଟି, ଶ୍ୱଦନ୍ତ ବା ମୁନିଆଁ ଦାନ୍ତ (canine; fucuspeds) ଗୋଟିଏ, ଦ୍ୱିଖଣ୍ଡିତ ଦନ୍ତ bicuspides or false molars ୨ଗୋଟି ଏବଂ କଳ ବା ଚକା ଦାନ୍ତ (Molars)୩ଗୋଟି । ପୂର୍ଣ୍ଣ ବୟସ୍କ ବ୍ୟକ୍ତିର ଦାନ୍ତ ୩୨ଟି । ଏଥିରୁ ୨୦ ଟି ଦାନ୍ତକୁ ଅସ୍ଥାୟୀ ବା ଦୁଧ ଦାନ୍ତ କହନ୍ତି ।

ଦୁଧଦାନ୍ତ(milk teeth)—ଶିଶୁର ଦୁଗ୍ଧପାନ ଅବସ୍ଥାରେ ଯେଉଁ ଦାନ୍ତ ଉଠେ ଓ ପରେ ଖସି ପଡ଼େ । ଏହି ଦାନ୍ତଗୁଡ଼ିକ ୬ ବର୍ଷ ପର୍ଯ୍ୟନ୍ତ ରହି ଖସି ପଡ଼ିଲେ ପୁଣି ସ୍ଥାୟୀ ଦାନ୍ତ ବାହାରେ ।

ଦୁଧଦାନ୍ତ ଉଠିବା କାଳ:—ତଳ ମଝି ବା କ୍ଷୁଦ୍ରଦାନ୍ତ ଜନ୍ମର ୬।୭ ମାସ ମଧ୍ୟରେ, ଉପର କ୍ଷୁଦ୍ରଦାନ୍ତ ୭।୮ ମାସ, ଉପର କ୍ଷୁଦ୍ରଦାନ୍ତ ପାଖର ଦାନ୍ତ ଯୋଡ଼ିକ ୭।୯ ମାସ, ତଳ କ୍ଷୁଦ୍ରଦାନ୍ତ ପାଖ ଦାନ୍ତଦ୍ୱୟ ୧୦।୧୨ ମାସ, ୧ମ ଜମ୍ବାଲି ଦାନ୍ତ ୧୨।୧୪ ମାସ, ଶ୍ୱଦାନ୍ତ ୧୭।୧୮ ମାସ, ୨ୟ ଜମ୍ବାଲ ଦାନ୍ତ ୨୪ ମାସ ବା ପରେ ।

ସ୍ଥାୟୀ ଦାନ୍ତ ବାହାରିବା କାଳ —୧ମ ଜମ୍ବାଲି ୬ ବର୍ଷ, କ୍ଷୁଦ୍ର ଦାନ୍ତ ୭ ବର୍ଷ, ମଝି ଦାନ୍ତର ପାଖ ୮ ବର୍ଷ, ଆଗର ପ୍ରଥମ ଜମ୍ବାଲି ୯ ବର୍ଷ, ଆଗର ଦ୍ୱିତୀୟ ଜମ୍ବାଲି ୧୦ବର୍ଷ, ଶ୍ୱଦାନ୍ତ ୧୧।୧୨ ବର୍ଷ ୨ୟ ଜମ୍ବାଲି ୧୨।୧୩ ବର୍ଷ । ୯ ବର୍ଷ ବାଳକ ବାଳିକାର ୧୨ ଟି, ୧୦।୧୧ ବର୍ଷର ୨୪ଟି, ୧୩।୧୪ ବର୍ଷର ୨୮ଟି ସ୍ଥାୟୀ ଦାନ୍ତ ହୋଇଥାଏ । ତତ୍ପରେ ସମୟକ୍ରମେ ଆଉ ୪ଟି ସ୍ଥାୟୀ ଦାନ୍ତ ବାହାରେ । ଏଥି ମଧ୍ୟରୁ ଜ୍ଞାନଦାନ୍ତ ସପ୍ତଦଶ ବର୍ଷରେ ଉଠେ । ଏହି ଜ୍ଞାନଦାନ୍ତକୁ 'ଅକ୍କଲ ଦାନ୍ତ' ମଧ କୁହାଯାଏ । ଏ ଦାନ୍ତ ବହୁ ଲୋକଙ୍କର ୧୭ ବର୍ଷ ଊର୍ଦ୍ଧ୍ୱରେ ଓ ୨୫ ବର୍ଷ ମଧ୍ୟରେ ଜନ୍ମେ ।

ବାହାଡ଼ାଦାନ୍ତ ବୋଲି ଆଉ ଏକ ପ୍ରକାର ଦାନ୍ତ କାହାର କାହାର ଉଠିବାର ଦେଖାଯାଏ । ଗୋଟିଏ ଦାନ୍ତ ଥାଉଁ ଥାଉଁ ତା ମୂଳରୁ ଯେଉଁ ଅତିରିକ୍ତ ଦାନ୍ତ ବଙ୍କା ହୋଇ ବାହାରି ଦାନ୍ତ ପାଟିକୁ ଅସୁନ୍ଦର କରି ପକାଏ, ତାହାକୁ ବାହାଡ଼ା ଦାନ୍ତ (Redundant tooth) କହନ୍ତି ।

ବିଷ ଦାନ୍ତ ବା ଫଣିଦାନ୍ତ—ବିଷଧର ସର୍ପର ଯେଉଁ ଯେଉଁ ଦାନ୍ତରୁ ବିଷ କ୍ଷରିତ ହୁଏ ତାହାକୁ ବିଷଦାନ୍ତ କହନ୍ତି । ସାପ ପାଟିର ଦୁଇ ପାଖର ଦୁଇ ବିଷଦାନ୍ତକୁ କାଳ ଓ ବିକାଳ ବୋଲାଯାଏ । ସାପର ଅନ୍ୟ ଦାନ୍ତମାନଙ୍କୁ ଆହାର ଦାନ୍ତ ବା ଆଧାର ଦାନ୍ତ ବୋଲାଯାଏ । ମନୁଷ୍ୟ ପାଟିର ଏକ ପ୍ରକାର ଦାନ୍ତକୁ ମଧ ବିଷଦାନ୍ତ ବା ବିଶିଦାନ୍ତ ବୋଲାଯାଏ । ଏହା ସାପର ବିଷଦାନ୍ତ ପରି ନୁହେ ସତ୍ୟ, ତେବେ କଣ୍ଟକ ବିଷାକ୍ତ ।]

୨ । ହାତୀ ଦାନ୍ତ—2. Tusk; ivory

୩ । ଦାନ୍ତ ପରି ବାହାରି ଥିବା ମୁନିଆଁ ବସ୍ତୁ—
2. Tooth-like spikes.

(ଯଥା—ପାନିଆଁର ଦାନ୍ତ; କରତର ଦାନ୍ତ ।)

**ଦାନ୍ତ ଉଠିବା**—ଦେ. କ୍ରି. —ଦନ୍ତୋଦ୍ଗମ ହେବା—Teething; dentition; the coming out or appearance of one's teeth for the Ist time; the cutting or growing of teeth
Dānta uṭhibā
दाँतउठा
**दान्त निकलना**

**ଦାନ୍ତ ଉପାଡ଼ିବା**—୧ । ଦାନ୍ତକୁ ଟାଣି ଆଣି ମୂଳୋତ୍ପାଟନ କରିବା—1. To take out a tooth.
Dānta upāṛibā
दाँत तोड़ना, दाँतभाँगा

୨ । ଗର୍ବ ଚୂର୍ଣ୍ଣ କରିବା—

**दान्त उखाड़ाना** 2 To humiliate a person; to curb the pride of.
(ଦାନ୍ତ ଓପାଡ଼ିବା, ଦାନ୍ତ ଭାଙ୍ଗିବା—ଅନ୍ୟରୂପ)
(ଯଥା—ମୋ ମୁହଁ ଉପରେ ମୋର ଏବେ ଦୁର୍ନାମ କଲେ ମୁଁ ତା ଦାନ୍ତ ଓପାଡ଼ିଦେବି ।)

ଦାନ୍ତ ଉପୁଡ଼ିବା—ଦେ. କ୍ରି—ଦାନ୍ତ ଖସି ପଡ଼ିବା—The falling of teeth.
Dānta upurdibā
দাঁত খসে পড়া ଆଗ୍ କାଲ୍ଭ ନଭାଥ ନକ।
**दान्त उखड़ना** ଦାନ୍ତ ପଡ଼ିଲେ ଉଲଙ୍କୁ ପକା । ଭଗ ।
(ଦାନ୍ତ ପଡ଼ିବା—ଅନ୍ୟରୂପ)

ଦାନ୍ତ କଟକଟ ହେବା—ଦେ ବି.—ଦାନ୍ତ ମୂଳ ବିନ୍ଧିବା; ଦାନ୍ତ ଶୂଳେଇ ହେବା—Toothache.
Dānta katakata hebā
দাঁত কন কন হওয়া; **दान्तों में कीड़ा लगना**
(ଦାନ୍ତ ପାଟି ବିନ୍ଧିବା—ଅନ୍ୟରୂପ)

ଦାନ୍ତ କଡ଼ମଡ଼ କରିବା—ଦେ. କ୍ରି ( କ୍ରୋଧ ବା ସ୍ୱପ୍ନରେ )—ଦାନ୍ତରେ ଦାନ୍ତ ଘଷି ହୋଇଯିବାରୁ ଶବ୍ଦ କରିବା; ଦାନ୍ତରେ ଦାନ୍ତକୁ ରଗଡ଼ି କଡ଼ମଡ଼ ଶବ୍ଦ କରିବା—To gnash the teeth; to grind one's jaw; to chatter.
Dānta kardamarda karibā
দাঁত কিড়মিড় করা
**दान्त पिसना; चोबाना**
**दाँतकिटकिटाना, दाँतकिचकिचाना**
ଦାନ୍ତ ଗେ଼ବା,ବେ)ଇବା; ଦାନ୍ତ ରଗଡ଼ିବା } ଅନ୍ୟରୂପ
ଦାନ୍ତ ରେକଟିବା, ଦାନ୍ତ ରେକେଟିବା

ଦାନ୍ତକଡ଼ମଡ଼ି—ଦେ ବି (ସ. ଦନ୍ତକଡ଼ମଡ଼)—ଦାନ୍ତରେ ଦାନ୍ତ ଘଷି ହୋଇ ଉତ୍ପାତ କଡ଼ କଡ଼ ଶବ୍ଦ; ଦନ୍ତଘର୍ଷ—Gnashing; gnarling.
Dānta kardamardi
দাঁত কিড়মিড়ি
**दाँतकिटकिटाना; दाँताकिटकिट**
ଦାନ୍ତ ଗେ଼ବା } ଅନ୍ୟରୂପ
ଦାନ୍ତ ରଗଡ଼ା

ଦାନ୍ତ କବାଟି—ଦେ. ବି—ହନୁସ୍ତମ୍ଭ; ହନୁଗ୍ରହ; ରୋଗ, ଉପ୍ଯାନ୍ଦରୁ ତୁଇପାଟି ଯାକ ଦାନ୍ତ ପଡ଼ିଯାଇ ଆଉ ନ ଫିଟିବା ଅବସ୍ଥା—Lock-jaw
Dānta kabāti
দাঁত কপাটী; **दाँत बैठजाना**

ଦାନ୍ତକାଠି—ଦେ. ବି (ସ. ଦନ୍ତକାଷ୍ଠ)—ଦାନ୍ତ ଘଷିବା କାଠି—A small twig used in cleansing the teeth; tooth brush.
Dānta kāthi
দাঁতন্‌কাঠি
**दतुवन, दतुन** ଜାମ, କଳାଙ୍ଗ କପାଖାଇ, ମ୍ୱାଳୁ ନ ବର ଦାନ୍ତକାଠି—ଭଗ ।
[ଦ୍ରି—ଦାନ୍ତକାଠି ବିଷୟରେ ପ୍ରବଚନ—
ଅଗମାରଙ୍ଗିଶ,ଅପାର ଗୁଣ ଉହୁଁରୁ ସଧିକ ମୁଲେ
ଭୁଷ୍ୟାହୁଥ ଅଁତେ ସର୍ବଦିହୁଁ ଉହୁଁରୁ ଘସିବ ପାଲେ
ଦନ୍ତଘଟେ ଶିଦୋଷ୍ମୀ ସେଁବ ଗର୍ତ୍ତକ ଅରଲେ ମୀ]

ଦାନ୍ତକାଠି ଗଛ—ପ୍ରାଦେ. ( ଯାଜପୁର ) ବି—ଦନ୍ତୀଗଛ—Danti (tree) (See).
Dānta kāthi gachha

ଦାନ୍ତକାଠି ପାଣି—ଦେ. ବି—ସକାଳୁ ଶଯ୍ୟାତ୍ୟାଗ ପରେ ମୁହଁ ଧୋଇବା ଓ ଦାନ୍ତ ଘଷିବାପାଇଁ ଲୋଡ଼ା ଦାନ୍ତକାଠି ଓ ଜଳ—A small twig and water required for cleansing the teeth.
Dāntakāthi pāni

ଦାନ୍ତ କୋଲମାରିଯିବା—ଦେ. ବି—ବିଶେଷ ଖଟା ଖାଇବା ଯୋଗୁଁ ଦାନ୍ତ ଦରଜ ହେବା ପର ହେବା—An uneasy and delicate sensation felt in the teeth after taking too much acid things.
Dānta kola mārijibā
দাঁত সড়ে পড়া; **दान्त सलसलाना**
ଦାନ୍ତ ମିଲେଇ ପଡ଼ିବା }
ଦାନ୍ତ ସଢ଼ ପଡ଼ିବା }

ଦାନ୍ତଖିରି—ଦେ. ବି—ପୁରୁଣା ଦେଉଳମାନଙ୍କର ପଥର ସନ୍ଧିରେ ଓ ପାହାଡ଼ଥ ଜାଗାରେ ଉଠିବା ଗୁଳ୍ମ ବିଶେଷ—A kind of weed growing on the fissures of old buildings.
Dānta khiri
**दान्तहेन्थी**
[ଦ୍ରି—ଏହାର କ୍ଷୀର କଟା ଘାରେ ଲଗାଇଲେ ଘା ଶୁଖିଯାଏ ।]

ଦାନ୍ତଖୁଣ୍ଟା—ଦେ ବି—ଯେଉଁ ସରୁ କାଠିଦ୍ୱାରା ଦାନ୍ତସନ୍ଧିରେ ଲାଗିଥିବା ଖାଦ୍ୟାଂଶ ବାହାର କରାଯାଏ—Tooth-pick.
Dāntakhuntā
দাঁতখোঁটা
**दान्तखुरेड़ी; दान्तखोदनी**

ଦାନ୍ତ ଖୁଣ୍ଟିବା—ଦେ. କ୍ରି—ଦାନ୍ତର ସନ୍ଧିରୁ ଖାଦ୍ୟଦ୍ରବ୍ୟର କଣାମାନ ମୁନିଆ ସରୁ କାଠିଦ୍ୱାରା ବାହାର କରିବା—To pick one's teeth.
Dānta khuntibā
দাঁতখোঁটা
**दांतकुरेदना, दांत खोदना**

ଦାନ୍ତ ଗଲା,(ଲେ,)ଇବା—ଦେ. କ୍ରି—କୌଣସି ପଦାର୍ଥ ମଧ୍ୟରେ ଦାନ୍ତ ପ୍ରବେଶ କରାଇ କ୍ଷତ କରିବା—To wound by the teeth.
Dānta galā le)ibā
(ଦାନ୍ତ ଫୁଟା(ଟେ)ଇବା—ଅନ୍ୟରୂପ)
দাঁত ফোটান, **दान्त लाना**

ଦାନ୍ତ ଗଳିବା—ଦେ. ବି—କୌଣସି ବିଷୟ ବୋଧଗମ୍ୟ ହେବା—Being legible or understood.
Dānta galibā
দাঁতফোটা, **दान्तगलना**

ଦାନ୍ତଘଷା—ଦେ. ବି (ସ. ଦନ୍ତଘର୍ଷଣ)—ଦାନ୍ତ ମାଜିବା; ଦନ୍ତଧାବନ—Tooth cleansing; cleansing of the teeth.
Dāntaghashā
দাঁতন
**दातुन**

ଦାନ୍ତଘଷା - ଦେ. ବି—ଦାନ୍ତ ଘଷିବାପାଇଁ ବ୍ୟବହୃତ ଏକପ୍ରକାର ଗୁଡ଼ାଖୁ—A kind of tobacco preparation with treacle, used for cleansing the teeth.
Dāntaghashā gurdākhu

ଦାନ୍ତ ଘଷିବା—ଦେ. ବି—ଦାନ୍ତ ସଫା କରିବା; ଦନ୍ତଧାବନ କରିବା—To cleanse the teeth.
Dānta ghashibā
দাঁতমাজা, **दाँतधोना, दातुनकरना**

ଦାନ୍ତଚୋବିବା—ପ୍ରାଦେ. (ସମ୍ବଲପୁର) ବି (ଭୁଲ. ଏହି ଅର୍ଥରେ ଦାଁତ ଚବାନା)—ଦାନ୍ତ ରଗଡ଼ିବା—To gnash the teeth.
Dānta chābibā

ଦାନ୍ତଚିହ୍ନ—ଦେ. ବି (ସ. ଦନ୍ତଚିହ୍ନ)—ଦାନ୍ତରେ କରାଯିବା ଦାଗ, କାମୁଡ଼ା ଦାଗ—The impression of the teeth left on a thing bitten
Dāntachihna
(ଦାନ୍ତଦାଗ—ଅନ୍ୟରୂପ)
দাঁতের দাগ, **दान्तकी निशाना**

ଦାନ୍ତ ଚୋବା(ବେ)ଇବା—ଦେ. କ୍ରି—ଦାନ୍ତ କଡ଼ମଡ଼ କରିବା (ଦେଖ)
Dānta chobā(be)ibā Dānta kardamarda karibā (See)

ଦାନ୍ତ ଛୋର୍ଡ଼ା—ଗ୍ରା. ବଣ (ଗାଳ)—ନିର୍ଲଜ୍ଜ; ଦନ୍ତହସା—Given to
Dānta chhordā loud and inordinate laughter.
ଗ୍ରା ବ (ଅଶିଷ୍ଟ) ନିର୍ଲଜ୍ଜ ଆଚରଣ; ନିର୍ଲଜ୍ଜ ହସ; ନିର୍ଲଜ୍ଜତାସୂଚକ ଉଚ୍ଚ ହାସ୍ୟ—Laugh by exhibiting the rows of teeth out of shamelessness; grinning.

ଦାନ୍ତ ଛୋର୍ଡ଼ିବା—ଗ୍ରା କ୍ରି (ଇତର ଓ ଅଶିଷ୍ଟ)—ନିର୍ଲଜ୍ଜତାସୂଚକ ଉଚ୍ଚ-
Dānta chhordibā ହାସ୍ୟ କରି ଦାନ୍ତମାନ ପ୍ରକାଶ କରିବା—
দাঁত কেলান To laugh by exhibiting the rows of
**दाँत निपोरना** teeth, to grin broadly.
[ଦାନ୍ତ ନେ(ଲେ)ଫେଡ଼ିବା—ଅନ୍ୟରୂପ]

ଦାନ୍ତ ଝାଡ଼ିଦେବା—ଦେ. କ୍ରି—ଗାଲରେ ଚଟକଣା ବା ମୁଥ ଆଦିର
Dānta jhārdidebā ଆଘାତଦ୍ୱାରା ଆହତ ବ୍ୟକ୍ତିର ଦାନ୍ତ
ଦାନ୍ତ ଖସା(ସେ)ଇ ଦେବା } ଅନ୍ୟରୂପ ଚଳକୁ ଝୁଣ୍ଡପଡ଼ିବାର
ଦାନ୍ତ ଝଡ଼ା(ଡେ)ଇ ଦେବା } ଉପାୟ କରିବା —
দাঁত ঝেড়েদেওয়া To cause a person's teeth to be
**दाँत झाड़देना** uprooted by means of slaps or fist-blows

ଦାନ୍ତ ଟକ ମାରିବା—ଦେ. କ୍ର—ଦାନ୍ତ କୋଲ ମାରିଯିବା (ଦେଖ)
Dānta ṭaka māribā Dānta kola mārijibā (See).
দাঁত টক হওআ **दाँत टीसमारना**

ଦାନ୍ତ ଠକଠକ ହେବା—ଦେ.କ୍ର—ଅତ୍ୟନ୍ତ ଶୀତ ଯୋଗୁଁ ଦାନ୍ତରେ ଦାନ୍ତ
Dānta ṭhakaṭhaka hebā ବାଜିବା—Chattering of the
দাঁত কনকনানি teeth by cold (due to shivering of
**दाँत बजना** the jaws)

ଦାନ୍ତ ଡାକ୍ତର—ଦେ. ବ—ଦନ୍ତଚିକିତ୍ସକ—
Dānta ḍāktara Dentist.
দাঁতের ডাক্তার **दाँतका डाक्टर**

ଦାନ୍ତ ଦେଖା(ଖେ)ଇବା—ଦେ. କ୍ରି—କ୍ରୋଧ ବା ବିରକ୍ତିରେ ଖିଙ୍କାରି
Dānta dekhā(khe)ibā ହେବା—To grin in anger
দাঁত দেখান, দাঁত খিঁচান or sulks.
**दान्त पीसना**

ଦାନ୍ତ ନ ଗଳିବା—ଦେ. କ୍ର—କୌଣସି ବିଷୟରେ ଦନ୍ତସ୍ଫୁଟ ନ ହେବା,
Dānta na galibā କୌଣସି ବିଷୟକୁ ବୁଝି ନ ପାରିବା—
দাঁত ন ফোটা Not being understood.
**दाँत न गड़ना**

ଦାନ୍ତ ନିକୁଟା—ଦେ. କ୍ର—ଦାନ୍ତକୁ ସାମାନ୍ୟରେ ଦେଖାଇବା; ଦନ୍ତ-
Dānta nikuṭā ବିକାଶ—To show one's teeth slight-
(ଦାନ୍ତ ନିକଟା—ଅନ୍ୟରୂପ) ly; slight grinning.
দাঁত ছিরকুটান' ଦେ. ବଣ. ପୁଂ—ଯେଉଁ ସ୍ତ୍ରୀଲୋକ କଥା କହିବା
**दाँत निकोसना** ବେଳେ ସାମାନ୍ୟରେ ଦାନ୍ତ ଦେଖାଏ—
ଦାନ୍ତ ନିକଶୀ } ଅନ୍ୟରୂପ Showing the teeth slightly
ଦାନ୍ତ ନିକୁଟୀ } while talking.

ଦାନ୍ତ ନିକୁଟିବା—ଦେ. କ୍ରି—କୌଣସି ବ୍ୟକ୍ତିଙ୍କୁ ଅନୁସରଣ ଓ ପ୍ରାର୍ଥନା
Dānta nikuṭibā କରି ନେବୁସ୍ତ ହେବା ବେଳେ ସାମାନ୍ୟରେ
ଦାନ୍ତ ନିକଟିବା } ଦାନ୍ତ ଦେଖାଇବା—To humbly
ଦାନ୍ତ ନିକଟ ହେବା } ଅନ୍ୟରୂପ beg for a thing by
ଦାନ୍ତ ନିକୁଟ ହେବା } smiling.
দাঁত দেখানো **दाँत निकासना**

ଦାନ୍ତ ନି(ନେ)ସିଡ଼ିବା—ଦେ. କ୍ରି—ଦାନ୍ତଯାକ ସମୁଦାୟ ଦେଖାଇ
Dānta ni(ne)sirdibā ଓଷ୍ଠ ଦ୍ୱୟକୁ ବିସ୍ତାର କରିବା—
ଦାନ୍ତ ନେଫେଡ଼ିବା } ଅନ୍ୟରୂପ To show the rows of
ଦାନ୍ତ ନେସେଡ଼ିବା } teeth by spreading the
দাঁত কেলান **दाँत निपोरना** upper and lower lips.

ଦାନ୍ତ ପଚ୍ଚ(ଚେ)ଇବା—ଦେ. କ୍ରି—ପାନ, ଅଳତା ଆଦିର ବୋଳ
Dānta pachā(che)ibā ଦ୍ୱାରା ଦାନ୍ତକୁ ରଞ୍ଜିତ କରିବା—
(ଦାନ୍ତ ରଙ୍ଗା(ଙ୍ଗେ)ଇବା—ଅନ୍ୟରୂପ) To have one's teeth
দাঁত রাঙান dyed with pigments (of chewn
**दान्त रङ्गाना** betel etc).

ଦାନ୍ତ ପଡ଼ିଯିବା—ଦେ. ବି—୧ । ଦାନ୍ତ ଉପୁଡ଼ିବା ( ଦେଖ )
Dānta pardijibā 1. Dānta upurdibā ( See ).
(ଦାନ୍ତ ପଡ଼ିବା—ଅନ୍ୟରୂପ) ୨ । ଦାନ୍ତ ପାଟି ପଡ଼ିଯିବା ( ଦେଖ )
দাঁত পড়া 2. Dānta pāṭi pardi jibā ( See )
**दाँत टूटना, दाँत झड़ना, दाँत गीरना**

ଦାନ୍ତ ପତର କରିବା—ଦେ. କ୍ରି. ( ସଂଜ୍ଞର )—
Dānta patara karibā ଦାନ୍ତ ଘଷିବା ଓ ମୁହଁ ଧୋଇବା—
(ଦାନ୍ତ ପତ୍ର ଘଷିବା—ଅନ୍ୟରୂପ) To cleanse the teeth and
দাস্ত ঘসা wash the face.
**दान्तुन करना**

ଦାନ୍ତ ପାଟି—ଦେ. ବି—୧ । ଦାନ୍ତର ମୂଳଭାଗସ୍ଥ ମାଂସପିଣ୍ଡ; ଦନ୍ତମାଂସ-
Dānta pāṭi 1. Gum of the teeth.
(ଦାନ୍ତ ମୂଳ—ଅନ୍ୟରୂପ) ୨ । ( ସ. ଦନ୍ତପଂକ୍ତି ) ପାଟିରେ ଥିବା
দাঁতের গোড়া, দাঁতের মাড়ি ଦାନ୍ତର ଉପର ଓ ତଳ ଧାଡ଼ି—
**मसुड़ा** 2. The jaws, rows of teeth ( upper
দাঁতের পাটি and lower ); a full set of teeth,
**दाँत पाटी** upper and lower.
[ ଦ୍ର—ଦାନ୍ତର ଉପର ପାଟି—Upper jaw.
ତଳ ପାଟି—Lower jaw. ]

ଦାନ୍ତ ପାଟି ପଚ୍ଚ(ଚେ)ଇ ଦେବା—ଦେ କ୍ରି—ଶୁଷ୍ପଡ଼ା ଆଦି ମାଡ଼
Dānta pāṭi pachā(che)i debā ଦ୍ୱାରା ଦାନ୍ତମୂଳକୁ ଦରକ
କରାଇ ଦେବା—To cause the gums
to swell and become painful
by giving blows on the
cheeks.

ଦାନ୍ତପାଟି ପଡ଼ିଯିବା—ଦେ. କ୍ର—ଦୁଇ ପାଟିର ଦାନ୍ତ ଦୃଢ଼ରୂପେ ସଲଗ୍ନ
Dāntapāṭi pardijibā ହୋଇଯିବା ବା ଜାକି ପଡ଼ିଯିବା—

(ଯଥା—ଘରଖଣ୍ଡି ୩ବରଷ ହେଲ୍ଲା ଢ଼ିଁଅଣି ନ ହେବାରୁ ଗୁଳରୁ ସବୁ ଦାନ୍ତୀ ବାହାରଛନ୍ତି ।)

୨ । ଦାନ୍ତୁଆ ୩ ( ଦେଖ )—2. Dāntiā 3 (See)

**ଦାନ୍ତୁଆଣି**—ଦେ. ବି (ସଂ. ଦନ୍ତଧାପନ, ଦନ୍ତ ପବନ. ହି. ଶବ୍ଦସାଗର)—
Dāntuāṇi ୧ । ଦାନ୍ତ ଘଷିବା; ଦନ୍ତଧାପନ କର୍ମ—
दा तन 1. Cleansing of the teeth.
दन्तून. दतुबन, दातन ୨ । ଠାକୁର ଓ ରଜାମାନଙ୍କ କାଠିକ୍ଷିଗି ଶାନ୍ତ—2. The act of cleansing of the teeth (ceremoniously so called in the cases of Rajas and Deities).

**ଦାନ୍ତୁଆଣି ବଢ଼ିବା**—ପ୍ରାଦେ (ଗଡ଼ଜାତ) ବି—ରଜାମାନଙ୍କ କାଟିକ୍ଷିଗି
Dāntuāṇi barḍhibā ଶାନ୍ତର ସମାଧାନ ହେବା—
The finishing of the tooth-cleaning operation of Rajas.

**ଦାନ୍ତୁନ୍**—ଦେ. ବି—ମେଦିନୀପୁରର ଗୋଟିଏ ସବ୍‌ଡ଼ିଭିଜନ ଓ ତନ୍ନାମକ
Dāntun କ୍ଷୁଦ୍ର ନଗର—Name of a subdivision
(ଦାନ୍ତୁଣ୍—ଅନ୍ୟରୂପ) and town of Midnapur

**ଦାନ୍ତୁରି**—ଦେ. ବିଣ. ପୁଂ.ସଂ. ଦନ୍ତୁର)—ବଡ଼ଦାନ୍ତବିଶିଷ୍ଟ, ବଡ଼ଦାନ୍ତୁଆ—
Dānturā Having prominent or bulging out teeth;
(ଦାନ୍ତୁଡ଼ା—ଅନ୍ୟରୂପ) having large teeth.
ଦାନ୍ତୁରି } ସ୍ତ୍ରୀ
ଦାନ୍ତୁଡ଼ୀ }
दाँताल; दाँतुया; दँतो दन्तीला, दँतुला

**ଦାନ୍ତେଇବା**—ଦେ. କ୍ରି ( ସଂ. ଦନ୍ତ )—୧ । ଦାନ୍ତଦ୍ୱାରା କୌଣସି
Dānteibā ପଦାର୍ଥକୁ ଧୀରେ ଧୀରେ ଖଣ୍ଡିଆ କରିବା—
दाँतान 1. To nibble; to gradually nip a thing
दाँतना with the teeth.
( ଯଥା—ବାଳକଟା ପେନ୍ସିଲଟାକୁ ଦାନ୍ତେଇ ଦାନ୍ତେଇ ଅଧେ ଖାଇସାରଲାଣି । )
୨ । ଦାନ୍ତିବା (ଦେଖ)—2. Dāntibā (See).

**ଦାନ୍ଦର**—ପ୍ରାଦେ ( ଗଡ଼ଜାତ ) ବି—ବାଉଁଶର ମୋଟ ପାତିଆ ଦ୍ୱାରା
Dāndara ବୁଣା ଯାଇଥିବା ବଡ଼ ଖଇଞ୍ଚ—
A kind of big fishing basket with a net attached across the mouth to catch fish in flowing water.
[ ଟି—ଏହାର ମୁହଁରେ ଜାଲ ଦେଇ ହୋଇ ଜାଲି ମଝିରେ ଗୋଟିଏ ଛିଦ୍ର ଥାଏ । ମୁହଁର ବ୍ୟାସ ୨୪ ହାତ ପର୍ଯ୍ୟନ୍ତ ହୁଏ । ସ୍ରୋତ ବୋହୁଥିବା ସ୍ଥାନରେ ଏହାକୁ ବସାଇଲେ ଏଥିରେ ଛୋଟ ମାଛ ଧସିପଡ଼ି ଜାଲ ଉପର କଣା ବାଟେ ଦାନ୍ଦରର ଗର୍ଭକୁ ପଶିଯାଇ ଆଉ ବାହାରି ପାରନ୍ତି ନାହିଁ । ]

**ଦାପ**—ଦେ. ବି (ସଂ. ଦର୍ପ; ସଂ. ତାପ) —୧ । ଥାପ; ପୀଡ଼ନ—
Dāpa 1. Oppression
दाप ୨ । ବେଗ—2. Force.
दाप ୩ । ଅହଙ୍କାର—3. Pride.
୪ । ବଳ—4. Strength.
୫ । ପୀଡ଼ନ; ଅତ୍ୟାଚାର—5. Oppression.

**ଦାପକ**—ସଂ. ବିଣ. ପୁଂ (ଦା ଧାତୁ ଣିଚ୍, ଦାପି ଧାତୁ = ଦିଆଇବା + କର୍ତ୍ତୃ.
Dāpaka ଅକ )—ଯେ ଦିଆଏ; ଯାହାର ପ୍ରବର୍ତ୍ତନାରେ
(ଦାପିକା—ସ୍ତ୍ରୀ) ଅନ୍ୟ ଲୋକ ଦିଏ—One who causes another to give some thing.

**ଦାପଟ**—ଦେ. ବି (ସଂ. ଦର୍ପ)—୧ । ଦମ୍—
Dāpaṭa 1. Strength.
दापट ୨ । ପ୍ରତାପ; ତେଜ—2. Might; fury.
दाप ୩ । ଗର୍ବ—3. Pride.

**ଦାପଟିଆ**—ଦେ. ବିଣ—ପ୍ରତାପୀ; ବଳୁଆ (ବ୍ୟକ୍ତି)—
Dāpaṭiā Mighty; strong.
दापक

**ଦାପନ**—ସଂ. ବି ( ଦା ଧାତୁ ଣିଚ୍, ଦାପି ଧାତୁ + ଭାବ. ଅନ )—
Dāpana ୧ । ଦିଆଇବା—1. The act of causing another to give.
୨ । ଦାବିବା; ଚିପିବା; ମର୍ଦ୍ଦନ, ଦଳନ—
2. Kneading; pressing; squeezing.

**ଦାପନୀୟ**—ସଂ. ବିଣ (ଦାପି ଧାତୁ + କର୍ମ. ଅନୀୟ) – ୧ । ଦଣ୍ଡନୀୟ—
Dāpanīya 1 Punishable.
୨ । ଅନ୍ୟଦ୍ୱାରା ଦାତବ୍ୟ—2 Fit to be caused to be given away by another.

**ଦାପି** (ଣିଜନ୍ତ ଧାତୁ)—ସଂ. ( ଦା ଧାତୁ ଣିଜନ୍ତ ) ଦିଆଇବା; ଦାନ କରାଇବା—
Dāpi (root) To cause another to give.

**ଦାପିତ**—ସଂ. ବିଣ. ( ଦାପି ଧାତୁ + କର୍ମ. ତ )—
Dāpita ୧ । ଅନ୍ୟଦ୍ୱାରା ଦିଆ ହୋଇଥିବା—
1. Caused to be given away by another
୨ । ଦଣ୍ଡିତ—2 Punished; adjudged guilty.
୩ । ଦାବି ହୋଇଥିବା; ମର୍ଦ୍ଦିତ; ଦଳିତ—
3 Pressed; kneaded; squeezed.
୪ । ଶୋଧିତ—4. Refined.
୫ । ସାଧିତ—5. Accomplished.
୬ । ଧନାଦିଦ୍ୱାରା ବଶୀକୃତ—
6. Brought under control; suborned.

**ଦାପ୍ୟ**—ସଂ. ବିଣ. ( ଦାପି ଧାତୁ + କର୍ମ. ଯ )—ଦାପନୀୟ ( ଦେଖ )
Dāpya Dāpaniya ( See )

**ଦାବ୍‌ଡ଼ି ଦେବା**—ଦେ. କ୍ରି—ଦାବୁଡ଼ି ଦେବା ( ଦେଖ )
Dāb-ṛdi debā Dāburdi debā ( See )

**ଦାବ**—ସଂ. ବି. ( ଦୁ ଧାତୁ = ତାପ ଦେବା + କର୍ତ୍ତୃ. ଅ )—
Dāba ୧ । ବନାନଳ; ଦାବାଗ୍ନି—1. Forest-fire.
୨ । ( + ଭାବ. ଅ ) ତାପ—2. Heat.
୩ । ପ୍ରତାପ; ତେଜ—3. Might; energy; ardour.
୪ । ତାଡ଼ନା; ଭର୍ତ୍ସନା - 4. Censure.
୫ । ବନ—5. Forest.

୬ । ଅଗ୍ନି—6. Fire.

ଦାବ — ଦେ. ବି. ( ସଂ. ଦାପି ଧାତୁରୁ )—୧ । ଗ୍ରହ—
**ଦାବ** 1. Pressure.
୨ । ଶାସନ, ଦମନ—
2. Chastisement; punishment.

**ଦାବ୍‌ଖର୍**—ପ୍ରାଦେ. ( ବସ୍ତର ) ବି—ଘର ଛାଉଣିରେ ବ୍ୟବହୃତ ଏକ ପ୍ରକାର ତୃଣ—A kind of grass used in thatching.
Dāb-khar

**ଦାବ ଦହନ**—ସ. ବି. ( ଦାବ+ଦହନ; ୬ଷ୍ଠୀ ତତ୍ )—ବଣପୋଡ଼—Forest fire, fire occurring in the forest.
Dāba dahana

**ଦାବା**—ବୈଦେ. ବି. ( କଚରିଆ ) ( ପା )—୧ । ମକଦ୍ଦମା, ନାଲିଶ—1. Suit; claim-case.
Dābā
दावा
**दावा**
୨ । ନାଲିଶ କରିବା—2. Suing.
୩ । ଅପରାଧର ଅଭିଯୋଗ—
3. Charge of an offence
ଦାବା ଦାବା ନ ଥିବା ଏକ ଢପୋଟ କେନ୍ଦ୍ରାଡୋ ଥାନା
ଦାସେଗା ନବଟକୁ ପଠାଇ ମାମଲା ଶଗମ କଲେ—
ଫକୀରମୋହନ- ଛମାଣ ଅଠଗୁଣ୍ଠ ।
୪ । ଦାବୀ କରିବା—4. Claiming.
୫ । ସତରଞ୍ଜି ଖେଳ, ନ୍ୟାସୁବଳ ଖେଳ—
5. The game of chess.
୬ । ସତରଞ୍ଜି ଖେଳର ମନ୍ତ୍ରୀ—
6. The queen in the game of chess.

**ଦାବାଗୀର୍**—ବୈଦେ. ବି. ( ପା. ଦାବା+ପା. ଗୀର୍ )—
Dābāgir ଦାବୀଦାର ( ଦେଖ )—Dābidār ( See )

**ଦାବାଗ୍ନି**—ସ. ବି. (ଦାବ+ଅଗ୍ନି; ୬ଷ୍ଠୀ ତତ୍)—ବଣପୋଡ଼, ବନାଗ୍ନି—
Dābāgni Forest fire.

**ଦାବା ଦରବାର୍**—ବୈଦେ. ବି. ( ପା ) ( ସହଚର ଶବ୍ଦ )—
Dābā darabār ୧ । ମାଲିମକଦ୍ଦମା—1. Claim-case; litigation claiming some thing.
दावा दरबार
**दावा दरबार** ୨ । କୌଣସି ସମ୍ପତ୍ତିରେ ସ୍ୱତ୍ୱ ବା ଅଧିକାର ପ୍ରତିଷ୍ଠା କରିବାର ଚେଷ୍ଟା—2. Claim of right and title over any property.
ଦାବା ଦାଉଥା } ଅନ୍ୟରୂପ
ଦାବୀ ଦାଉଥା }
୩ । ଅଭିଯୋଗ—3. A charge; definite accusation

**ଦାବାଦାର୍**—ବୈଦେ. ବି. ( ପା )—୧ । ଯେ ନାଲିଶ କରେ—
Dābādār 1. Suitor.
दावादार
**दावेदार** ୨ । ଦାବୀଦାର ( ଦେଖ )—
2. Dābidāra ( See ).

**ଦାବାନଳ**—ସ. ବି. ( ଦାବ+ଅନଳ; ୬ଷ୍ଠୀ ତତ୍ )—
Dābānala ବଣପୋଡ଼—Forest fire.

**ଦାବାବଡ଼ି**—ବୈଦେ. ବି. (.ପା )—
Dābābardi ସତରଞ୍ଜି ଖେଳରେ ଉପକରଣ; ପାଲି ଓ ଗୋଟି—
ଦାବା ଗୁଡ଼ି } ଅନ୍ୟରୂପ The materials or ingredients of chess play
ଦାବା ବୋଡ଼ି }
दावाबोडे **सतरंजकी तखता अउर गोटी**

**ଦାବି**—ବୈଦେ. ବି. (କଚରିଆ) (ପା.ଦାବୀ, ଆ. ଦାଆୱା; ପା ଦାବା,)—
Dābi ୧ । ଆପଣା ସ୍ୱତ୍ୱ ବା ଅଧିକାର ପ୍ରାପ୍ତି ନିମନ୍ତେ ପ୍ରାର୍ଥନା—
दावी 1. Adducing claim; demand.
**दावा, दावी** ୨ । ସ୍ୱତ୍ୱ ବା ଅଧିକାରର ପ୍ରତିଷ୍ଠା—2. Claim.
୩ । ମକଦ୍ଦମାରେ ଦାବୀ କରିବା ବିଷୟ—
3. Subject-matter of claim in a suit.
୪ । ମକଦ୍ଦମା ସମ୍ପର୍କୀୟ ବିଷୟର ପରିମାଣ, ତାଦାଦ୍—
4. The value of one's claim.
ଦେ. ବିଣ. ( କଚରିଆ ଭାଷା )—
ଦାବୀ କରାଯିବା—Claimed
[ ଦ୍ର—ଏହା ବିଶେଷଣରୂପେ କଚରିଆ ଭାଷାରେ ବ୍ୟବହୃତ ହୁଏ । ଯଥା—ଦାବି ଗୁଡ଼, ଦାବି ମକଦ୍ଦମା, ଦାବୀ ଟଙ୍କା ଇତ୍ୟାଦି । ]

**ଦାବି କରିବା**—ଦେ. କ୍ରି—୧ । ନାଲିସ କରିବା—
Dābi karibā 1. To sue.
दावीकवा ୨ । ଧର୍ମାଧିକରଣରେ ସ୍ୱତ୍ୱ ବା ଅଧିକାର ପ୍ରାର୍ଥନା କରିବା—2. To claim one's right or title in a court.
**दावी करना, दावा करना**
୩ । କର୍ତ୍ତୃପକ୍ଷଙ୍କଠାରେ ନିଜର ପ୍ରାପ୍ୟ ପାଇବା ପାଇଁ ପ୍ରାର୍ଥନା କରିବା—3. To claim one's dues before proper authorities.
୪ । ଆପଣାର ନ୍ୟାଯ୍ୟ ପ୍ରାପ୍ୟ ଉପସ୍ଥାପିତ କରିବା—
4. To lay or adduce claim to one's dues.

**ଦାବିଦାର**—ବୈଦେ. ବି. (କଚରିଆ) (ପା. ଦାବୀଦାର୍; ଦାବାଦାର୍)—
Dābidāra ୧ । ଆପଣାର ସ୍ୱତ୍ୱ ଦାବି କରିବା ( ବ୍ୟକ୍ତି ); ଅଧିକାର ପ୍ରାର୍ଥୀ—1. A claiment.
(ଦାବ୍‌ଦାର୍—ଅନ୍ୟରୂପ)
दावीदाव ୨ । ଦରଖାସ୍ତକାରୀ—
**दावादार, दावागीर** 2. Plaintiff; complainant.

**ଦାବି ପରିତ୍ୟାଗ କରିବା**—ଦେ. କ୍ରି. ( କଚରିଆ )—
Dābi parityāga karibā କୌଣସି ସମ୍ପତ୍ତିରେ ବା ମକଦ୍ଦମାରେ କରାଯାଇଥିବା ସ୍ୱତ୍ୱାଧିକାରର ପ୍ରାର୍ଥନାକୁ ଛାଡ଼ିଦେବା—To relinquish one's claim; to forego one's right claimed in a suit.
दावी परित्याग करना
**दावा तजना**

**ଦାବି ବହିର୍ଭୂତ**—ଦେ. ବିଣ. ( କଚରିଆ )—ମକଦ୍ଦମାରେ ଦାବି କରାଯାଇଥିବା ସମ୍ପତ୍ତି ବ୍ୟତୀତ—Beyond one's claim in the suit.
Dābi bahirbhūta
दावी वहिर्भूत
**दावासे वाहर**

**ଦାବିବା**—ଦେ. କ୍ରି. ( ସ. ଦୃ ଧାତୁ—ଉପତାପେ; ଦମ ଧାତୁ; ସ. ଉପ୍. ଧାତୁ ( Beams ) )—
Dābibā
दावान ୧ । ମାଡ଼ିଦେବା; ଚଳକୁ ଚିପିବା—

**दाबना, दापना** 1. To press down.
[ଦବା(ବେ)ଇବା—ଣିଜନ୍ତ] ୨ । ଗୋଡ଼ ଆଦି ଅଙ୍ଗକୁ ଚିପିବା; ମର୍ଦ୍ଦନ କରିବା—2 To press the limbs and legs for massage; to massage.
୩ । କମେଇ ଦେବା—To lessen; to decrease
୪ । ଶାସନ କରିବା; ଦମନ କରିବା—4. To quash; to control; to put down; to suppress
୫ । ମୌଖିକ ତାଡ଼ନା କରିବା—
5 To reprimand, to snub
୬ । ନିବୃତ୍ତ କରାଇବା—6. To deter or prevent a person from doing something; to check.
୭ । ପରାସ୍ତ କରିବା—7. To vanquish.
୮ । ନିଷେଧ କରିବା—8. To prohibit.

ଦାବିଭୁକ୍ତ—ଦେ. ବଣ. (କଚେରିଆ; ପା. ଦାବୀ+ସ. ଭୁକ୍ତ)—
Dābibhukta ଦାବି ମଧ୍ୟରେ ଥିବା—Included in the claim.
(ଦାବିସାମିଲ୍—ଅନ୍ୟରୂପ)
दाविभुक्त **दावीसामिल**

ଦାବି ରଖିବା—ଦେ. କ୍ରି—୧ । ଗୁପ୍ତି ଧରିବା; ଲୁଚାଇବା—
Dābi rakhibā 1 To press down; to conceal.
दाविस्राखा ୧ । କୌଣସି ବ୍ୟକ୍ତିକୁ ଶାସନାଧୀନ ରଖିବା—
**दाबकर रखना** 2. To keep (a person) under check or control.
दावी वाखा ୩ । (କଚେରିଆ) କୌଣସି ବ୍ୟକ୍ତି ଉପରେ କୌଣସି
**दावा रखना** ବିଷୟରେ ଆପଣାର ଦାବୀ ଥିବାର ପ୍ରକାଶ କରିବା—
3. (court term) To maintain one's claim against a person.

ଦାଭ୍ୟ—ସ. ବଣ—ଶାସିତ ହେବାର ଯୋଗ୍ୟ (ହି. ଶବ୍ଦସାଗର)—
Dābhya Controllable.

ଦାମ୍—ବୈଦେ. ବି. (ପା)—୧ । ମୂଲ୍ୟ; କିମତ୍; ଜରସମନ୍—
Dām 1. Price; value of a thing; consideration-money.
दाम
**दाम** ୨ । ଭାଉ; ବଜାର ଦର—2. Market-price; rate.
୩ । କିଣିବାପାଇଁ ଦ୍ରବ୍ୟକୁ ମୂଲାଇବା କର୍ମ—
3. Bargaining.
୪ । ଖରିଦ ମୂଲ୍ୟ—4. Actual purchase-price of a thing.
୫ । କୌଣସି ଦ୍ରବ୍ୟ ପ୍ରସ୍ତୁତ ହେବାପାଇଁ ଯାହା ବ୍ୟୟ ହୋଇଥାଏ—5. Cost-price.
୬ । ଧନ; ଟଙ୍କା କଉଡ଼ି—6. Money.

ଦାମ୍ ଉଠିବା—ଦେ. କ୍ରି—୧ । ବିକିବାରୁ କୌଣସି ବସ୍ତୁର ପ୍ରକୃତ ବା ଉଚିତ ମୂଲ୍ୟ ଅଦାୟ ହେବା—
Dām uthibā
दाम ओठा 1. The raising of the proper price of a thing by a sale.
**दाम उठना**
(ଯଥା—ଆଜିକାଲି ବଜାର ମାନ୍ଦା ପଡ଼ିବାରୁ ଏ ଜିନିଷ ବିକିଲେ ଲାଭ ମିଳିବା କଥା ଗାଦୋଇଯାଉ, ଏଥିର ଦାମ୍ ତ ଉଠିବ ନାହିଁ ।)
୨ । କୌଣସି ବସ୍ତୁ ପ୍ରସ୍ତୁତ ହେବାପାଇଁ ଯାହା ବ୍ୟୟ ହୋଇଥାଏ ବିକିବାରୁ ତାହା ମିଳିବା—1. The getting of the cost-price or actual cost of a thing by sale
(ଯଥା—ଏକ ସାର ଦୁର୍ଲଭଚନ୍ଦ୍ର ଭାଷାକୋଷକୁ ଟ ୫୦୦ରେ ବିକିଲେ ଏଥିର ଦାମ୍ ଉଠିବ ନାହିଁ ।)

ଦାମ୍ କରିବା—ଦେ. କ୍ରି—୧ । କୌଣସି ଦ୍ରବ୍ୟ କିଣିବା ପାଇଁ ମୂଲାଇବା—
Dām karibā 1. To bargain for a thing with a view to purchase.
दबदाम करा
**दाम करना** ୨ । ମୂଲ୍ୟ ନିରୂପଣ ବା ନିଶ୍ଚିତ କରିବା—
2. To fix or settle the price.

ଦାମ୍ ଚଢ଼ିବା—ଦେ. କ୍ରି—ମହାର୍ଘ ହେବା—
Dām chardhibā Becoming dear in price); the price of a thing going up
दामचटा **दामचढ़ना**

ଦାମୁଡ଼ୀ—ପ୍ରାଦେ (ସିଂହଭୂମ) ବି. ସ୍ତ୍ରୀ. (ଭୁଲ. ସ. ଦମ୍ୟ=ଦାମୁଡ଼ି, ଯଣ କରାଯିବାର ଉପଯୁକ୍ତ ଅଣ୍ଡିରା ବାଛୁରି)—ଛଡ଼ା, ପ୍ରସବ କରି ନ ଥିବା ମାଈ ବାଛୁରି—Cow-calf; heifer.
Dāmrdi
[ ଦ୍ର—ଓଡ଼ିଶାରେ ଦାମୁଡ଼ିର ଅର୍ଥ ବଡ଼ ଅଣ୍ଡିରା ବାଛୁରି । ]

ଦାମ୍ ଦୁପଟ୍—ଦେ. ବି. (କଚେରିଆ)—୧ । ଖାତକ ଯେତେ ଟଙ୍କା ମୂଳ କରଜ ନେଇଥାଏ, ସେତିକି ପରିମାଣ ସୁଧ ପରିଶୋଧ କରିବାର ପ୍ରଥା—
Dām dupat
(ଦାମ୍‌ଦୋପଟ୍—ଅନ୍ୟରୂପ)
दामदुपट 1 The custom of a debtor paying interest equal to the amount of the capital originally advanced by the creditor.
**दामदुपट**
[ ଦ୍ର—ଖାତକ ଉପରେ ମହାଜନର ଟଙ୍କା ବହୁଦିନ ବାକି ରହିଲେ ଓ ଖାତକ ଗରଜାସ୍ତ ହେଲେ ଅଦାଲତ ଦୟାପୂର୍ବକ ମୂଳ ଯେତିକି ସୁଧ ସେତିକି ମହାଜନକୁ ଡିକ୍ରି ଦଅନ୍ତି । ]
୨ । କୌଣସି ବସ୍ତୁର ପ୍ରକୃତ ମୂଲ୍ୟର ଦ୍ୱିଗୁଣ ଦାମ—
2 Double the actual price of an article.

ଦାମ୍ ପଟିବା—ଦେ. ବି.—କ୍ରେତା ବିକ୍ରେତା ମଧ୍ୟରେ କ୍ରୟ ବସ୍ତୁର ମୂଲ୍ୟର ସ୍ଥିରୀକରଣ—The settlement of the price of an article between the vendor and the purchaser.
Dām patibā.
दम पटा
**दाम पटना**

ଦାମ—ସ. ବି. (ଦୋ ଧାତୁ=ଛେଦନ କରିବା+କର୍ମ. ମନ୍, ଦାମନ୍ ଶବ୍ଦ ୧ମା ୧ବ.—ଭୁଲ. ଗ୍ରୀ. ଦାମ୍=ପାଶ, ଫାନ୍—ହି. ଶବ୍ଦସାଗର)—୧ । ରଜ୍ଜୁ; ଦଉଡ଼ି—
Dāma 1. Rope; cord.
୨ । ସୁତୁଲି; ସୂତ୍ର—2. String; ribbon; band.
୩ । ଦାଉଣୀ; ଶସ୍ୟ ମର୍ଦ୍ଦନାର୍ଥ ଯେଉଁ ଲମ୍ବ ଦଉଡ଼ିରେ ଅନେକ ଗୋରୁ ବନ୍ଧା ହୋଇ ବେଙ୍ଗଲା ବୁଲନ୍ତି—3. A long

tether for tying a number of bullocks for treading paddy-sheaves.

୪ । ମାଲ୍ୟ, ମାଳା, ହାର—4. Chaplet; a string of flowers; garland.

୫ । ଗୁଚ୍ଛ, ଗୋଛ—5. Cluster; bunch.

୬ । ଫିତା, ଧଡ଼ିଆ— 6. A ribbon.

୭ । ତଣବିଶେଷ - 7. A kind of grass or reed.

୮ । ସମୂହ; ରାଶି (ହି. ଶବ୍ଦସାଗର) — 8. Multitude; mass.

୯ । ଲୋକ; ଖଣ୍ଡ (ହି. ଶବ୍ଦସାଗର)— 9. The universe.

୧୦ । ପର୍ବତ; ( ପ୍ରକୃତିବାଦ )— 10. Mountain

୧୧ । ( ଦମ ଧାତୁ + ଭାବ. ଅ ) – ଇନ୍ଦ୍ରିୟ ଦମନ— (ପ୍ରକୃତିବାଦ)—11. Self-control; keeping of one's organs under control.

ସଂ. ବିଣ.—ଦେବା ବାଲା, ଦାତା (ହି. ଶବ୍ଦସାଗର)— Giving away; bestowing.

ବୈଦେ. ବି. (ଫା.) -- ଜଳ (ପ୍ରକୃତିବାଦ)—Water.

(ଦାମି—ଅନ୍ୟରୂପ) ଦେ. ବି. (ଅନାଦରାର୍ଥକ) ଦାମୋଦର ନାମଧାରୀ (ଦାମା; ଦାମିଆଁ—ଅନାଦରାର୍ଥକ) ବ୍ୟକ୍ତିଙ୍କୁ ଡାକିବାର ନାମ— A name by which a man named Dāmodar is called.

**ଦାମକ**—ସଂ. ବି. (ଦାମ + ସ୍ୱାର୍ଥ. କ)— ୧ । ଗାଡ଼ିର ଜୁଆଳରେ ବନ୍ଧା
Dāmaka ହେବା ଦଉଡ଼ି; ସଗଡ଼ ଦଉଡ଼ି (ହି. ଶବ୍ଦସାଗର)— 1. A rope which is tied to the yoke of a cart.

୨ । ଲଗାମ; ବାଗ୍‌ଡୋର (ହି. ଶବ୍ଦସାଗର)— 2 Bridle; reins.

**ଦାମଡ଼ିଆ**— ପ୍ରାଦେ. (ମେଦିନୀପୁର) ବି. (ସଂ ଦମ୍ୟ; ତୁଳ. ବଂ. ଦାମଡ଼ା)
Dāmarḍiā ଦାମୁଡ଼ି—Bull-calf; young castrated bullock; steer.

**ଦାମଦା**— ପ୍ରାଦେ. (କଳାହାଣ୍ଡି) ବି. (ସଂ. ଦମ୍ୟ = ବତ୍ସତର)—ବଳଦ,
Dāmadā ଛିନ୍ନମୁଷ୍କ ବୃଷ— Bullock; castrated bull.

**ଦାମନ ପର୍ବ**—ସଂ. ବି. (ଦମନ+ଅ+ପର୍ବ)—ଦମନକ ଚତୁର୍ଦ୍ଦଶୀ (ଦେଖ)
Dāmana parba Damanaka chaturddaśī (See)

**ଦାମନୀ**—ସଂ. ବି. ସ୍ତ୍ରୀ ( ଦାମନ୍ + ସ୍ତ୍ରୀ. ଈ )— ଦାଉଣୀ; ବେଙ୍ଗଲାରେ
Dāmanī ଅନେକ ଗୋରୁଙ୍କୁ ଯୋଚବାର ଦଉଡ଼ି— A long tether; a rope to which a number of bullocks are tethered while threshing paddy.

ଦାମନୀ ବୈଦେ. ବି. (ଫା) ଘୋଡ଼ା ପିଠି ଉପରେ ପକାଯିବା
ଦାମନୀ ଚଉଡ଼ା ଲୁଗା—A square cloth put on the back of a horse.

**ଦାମର**—ଦେ. ବି.—ଡାମର (ଦେଖ)
Dāmara Ḍāmara (See)

**ଦାମା**—ସଂ. ବି. ସ୍ତ୍ରୀ—(ଦାମ + ଆ)—ଦଉଡ଼ି—
Dāmā A rope

ଦେ ବି.— ୧ । ଏକପ୍ରକାର ଚଢ଼େଇ, ଛତରିଆ (ଦେଖ) 1. A kind of bird; chhatariā (See)

ଦାମାମା ୨ । (ସଂ. ଦମ୍ଭମ୍; ଦମ = ଦଣ୍ଡ; ଦଣ୍ଡଦ୍ୱାରା ପିଟାଯିବାରୁ;) ଫା.
ଦମାମା ଦମାମାହ୍)— ଦମାଲୁ; ଆନଦ୍ଧ ବାଦ୍ୟଯନ୍ତ୍ରବିଶେଷ; ବଡ଼ ନାଗରା—2. A kind of drum ( struck with sticks ).

୩ । ଦାମୋଦରର ଅନାଦରାର୍ଥକ ଡାକନାମ— 3. A name by which a person named Dāmodara is contemptuously called.

**ଦାମାଞ୍ଚନ**— ସଂ. ବି.—ଘୋଡ଼ାଙ୍କ ଗୋଡ଼ ବନ୍ଧାଯିବା ଦଉଡ଼ି—
Dāmāñchana Ropes with which the legs of a horse are tied to a peg.
(ଦାମାଞ୍ଚଲ—ଅନ୍ୟରୂପ)

**ଦାମାମା**—ଦେ. ବି —ଦାମା ୨ (ଦେଖ)
Dāmāmā Dāmā 2 (See)

ଜଗଝମ୍ପ, ଝରଝର, ଦାମାମା, ଦୁନ୍ଦୁଭି । ବ୍ରଧାକାଉ, ମହାଯାତ୍ରା ।

**ଦାମିଆ(କା)**—ବୈଦେ ବିଣ—(ଫା. ଦାମିକା)—ମୂଲ୍ୟବାନ୍—
Dāmiā (kā) Valuable; precious.

**ଦାମିନୀ**—ସଂ. ବି. ସ୍ତ୍ରୀ—(ଦାମ+ଇନ୍+ସ୍ତ୍ରୀ. ଈ; ଯାହାର ଏକ ଦେଶରେ
Dāmini ଦାମ ଅର୍ଥାତ୍ ପର୍ବତ ବିଦ୍ୟମାନ ଅଛି—ବିଦ୍ୟୁତ୍ ମେଘରେ ମାଳା ବା ରଜ୍ଜୁ ପରି ଛୁଟିବାରୁ) ସୌଦାମିନୀ, ବିଦ୍ୟୁତ୍—Lightning; electric flash.

**ଦାମୀ**—ବୈଦେ. ବିଣ. (ଫା. ଦାମୀ, ଦାମିକା)—ମୂଲ୍ୟବାନ୍—
Dāmi Valuable; precious
(ଦାମିକ, ଦାମିଆ—ଅନ୍ୟରୂପ)
ଦାମୀ ଦାମୀ

**ଦାମୁଡ(ର)**—ପ୍ରାଦେ. ( ସମ୍ବଲପୁର )—ବି. (ସଂ. ଦମ୍ୟ)—ଦାମୁଡ଼ି;
Dāmurḍ(r) ଯୁବା ବଳଦ—Young bullock; steer.

**ଦାମୁଡ଼ି**—ଦେ. ବି— ୧ । (ସଂ. ଦମ୍ୟ) ଛିନ୍ନମୁଷ୍କ ଶିଶୁ ବୃଷ, ଯୁବା ବଳଦ—
Dāmurḍi 1. Young bullock; steer.
ଦାମଡ଼ା; ଦାମୁଡ଼ା; ଦାମୁଡ଼ା, ଦାମୁଡ଼ି } ଅନ୍ୟରୂପ

୨ । ( ସଂ. ଦ୍ରମ୍ମ = ଧନ, ଅର୍ଥ— Fallon; ସଂ. ଦ୍ରବିଣ = ଧନ
ଦାମଡ଼ା; ଦାମଡି ହି ଶବ୍ଦସାଗର ) ପଇସାର ଏକଚତୁର୍ଥାଂଶ; ଏକ
ଦମଡ଼ୀ ଛଦାମ; ପାଞ୍ଚଗଣ୍ଡା କଉଡ଼ି—2. $\frac{1}{4}$ of a pice; 20 cowri-shells.

ପ୍ରାଦେ. (ଗଞ୍ଜାମ) ବି— ୧ । ପାହୁଲା; ପଇସାର ଏକତୃତୀୟାଂଶ— 1. One third of a pice; one pie.

୨ । ଶିଶୁ ବାଛୁରି (କନ୍ଦେ)—2. A calf.

( ସମ୍ବଲପୁର ) ବି—୩ । ତଡ଼ା; ପ୍ରସବ କରି ନ ଥିବା ମାଈ ଗୋରୁ—3. A heifer; a young cow that has not had calf.

**ଦାମୁଡ଼ିଆ**—ଦେ. ବି—ଦାମୁଡ଼ି ( ଦେଖ )
Dāmurdiā Dāmurdi ( See )
ଭୃତ୍ୟେ ଗୋଟିଏ ଦାମୁଡ଼ିଆ ବଣି ଲ—ପଥାକାଂ. ଦବେଜା ।

**ଦାମୁଲ**—ପ୍ରାଦେ (ଗଞ୍ଜାମ) ବି—ଗଞ୍ଜାମର ଶୂଦ୍ର ଜାତିବିଶେଷ—
Dāmula A sect of Śūdras in Ganjam

**ଦାମୋଦର**—ସ. ବି. ପୁଂ (ଦାମ+ଉଦର ବହୁବ୍ରୀହି; ଦାମ=ରଜ୍ଜୁଦ୍ୱାରା
Dāmodara ବନ୍ଧାଯାଇଥିଲା ଉଦର ଯାହାଙ୍କର । ଶିଶୁ କୃଷ୍ଣ ଅତି ଚଞ୍ଚଳ ପ୍ରକୃତିର ଥିବାରୁ ଯଶୋଦା ତାହାଙ୍କ ପେଟ ତଳେ ବା ଅଣ୍ଟାରେ ଦଉଡ଼ି ବାନ୍ଧି ତାଙ୍କୁ ଖଟେଇ ଦେଇ ଗୃହ କର୍ମରେ ଲାଗୁଥିଲେ; କିମ୍ବା ଦାମ=ରଜ୍ଜୁ ଉଦରରେ ଯାହାଙ୍କର; ଯଶୋଦା ଯାହାଙ୍କୁ ଦଉଡ଼ିରେ ବାନ୍ଧିବାରୁ ଯେ ଉକ୍ତ ଦଉଡ଼ିକୁ ଉଦରସାତ୍ କରିଥିଲେ, କିନ୍ତୁ ଅନ୍ୟମାନେ କହନ୍ତି, ଦାମ ଅର୍ଥାତ୍ ଇନ୍ଦ୍ରିୟଦମନ ବିଷୟରେ ଉଦାର ବୋଲି କୃଷ୍ଣଙ୍କୁ ଦାମୋଦର ବୋଲାଯାଏ, କିମ୍ବା ଦାମ=ବିଶ୍ୱ, ଉଦରରେ ଯାହାର ସେ ଦାମୋଦର । ମହାଭାରତରେ ଲେଖାଅଛି ଯେ, ସେ ଅତ୍ୟନ୍ତ ଦାନ୍ତ ଓ ଇନ୍ଦ୍ରିୟ ମଧ୍ୟରେ ସ୍ୱପ୍ରକାଶ ବୋଲି ତାଙ୍କ ନାମ ଦାମୋଦର—ପ୍ରକୃତିବାଦ ଓ ଜ୍ଞାନେନ୍ଦ୍ର)

୧ । ଶ୍ରୀକୃଷ୍ଣ—1. A name of Srikrushna.
୨ । ବିଷ୍ଣୁ—2. Bishnu.
୩ । ଶାଳଗ୍ରାମ ଶିଳାବିଶେଷ, ଶାଳଗ୍ରାମ (ଦେଖ)—
3 A kind of Sālagrāma; Sālagrāma (See)

ଦେ. ବି. (ନାମ)—୧ । ପୁରୁଷଙ୍କ ନାମ—1. A name given to males
୨ । ଭାଗୀରଥୀର ଗୋଟିଏ ଉପନଦୀ—2. Name of a tributary river of the Hooghli.

[ଦ୍ର—ଏହା ଛୋଟନାଗପୁର ପର୍ବତରୁ ବାହାରି ବର୍ତ୍ତମାନ ବାଟେ ଯାଇ ଭାଗୀରଥୀରେ ପଡ଼ିଅଛି ।]

୩ । ସାରଣୀ ନାମକ ଶାସ୍ତ୍ରର ପ୍ରଣେତା ଜଣେ କ୍ଷ ଜ୍ୟୋତିଷୀ (୧୩୩୬ ଶକାବ୍ଦ)—3. A far-renowned Astrologer of the Sake era 1336 who has written the astrological treatise Sāraṇi.

**ଦାମୋଦର ପଟ୍ଟନାୟକ**—ଦେ. ବି ( ନାମ )—ଉତ୍କଳର ସୁପରିଚିତ
Dāmodara pattanāyaka ସଙ୍ଗୀତ ସଂଗ୍ରାହକ—A well-known compiler of musical songs, of Orissa

[ଦ୍ର—'ସଙ୍ଗୀତ ସାଗର' ଏହାଙ୍କ ସଂଗୃହୀତ ଓ 'ଜାତୀୟ ସଙ୍ଗୀତ' ଏହାଙ୍କଦ୍ୱାରା ରଚିତ; ଏ ଢେଙ୍କାନାଳବାସୀ ଥିଲେ ଓ ବହୁକାଳ ଗଡ଼ଜାତର ମେନେଜର କାର୍ଯ୍ୟ କରିଥିଲେ ( ତାରଣୀ. ଉତ୍କଳ ସାହିତ୍ୟ ଇତିହାସ ) ।]

**ଦାମୋଦର ବିଦ୍ୟାବାଗୀଶ**—ଦେ. ବି. ନାମ—କଟକ ଜିଲ୍ଲାର ଯାଜପୁରର
Dāmodara Bidyābāgiśa ସ୍ୱର୍ଗୀୟ ପ୍ରସିଦ୍ଧ ପଣ୍ଡିତ—
Name of a celebrated Pandit of Jajpur.

[ ଦ୍ର—ଏ ସ୍ୱନାମଧନ୍ୟ ପଣ୍ଡିତ ଶ୍ରୀ ନୀଳମଣି ମିଶ୍ରଙ୍କର ଓ ସ୍ୱର୍ଗୀୟ ନାଟ୍ୟକାର କାମପାଳ ମିଶ୍ରଙ୍କ ପିତା ଥିଲେ ।

( ଜନ୍ମ—୧୮୩୩; ମୃତ୍ୟୁ—୧୯୧୦ ) ଏ ଯାଜପୁର ଟାଉନ ଅନ୍ତର୍ଗତ ସ୍ୱପ୍ନପୁର ଶାସନର ଏକ କୁଳୀନ ଉତ୍କଳ ବ୍ରାହ୍ମଣ ବଂଶରେ ଜନ୍ମ ଗ୍ରହଣ କରିଥିଲେ । ଏ ଜଣେ ଖ୍ୟାତନାମା ପଣ୍ଡିତ ଥିଲେ । ସଂସ୍କୃତ ବ୍ୟାକରଣ, କାବ୍ୟ, ନାଟକ, ଅଳଙ୍କାର, ସ୍ମୃତି, ପୁରାଣ, ଇତିହାସ, ବେଦାନ୍ତ, ଉପନିଷଦ୍, ଗୀତା ଓ ଭାଗବତ ପ୍ରଭୃତିରେ ଏହାଙ୍କର ବିଶେଷ ଅବଗାହ ଥିଲା । ଏ ମହାଶୟ ଅସାଧାରଣ ମେଧାବୀ ଥିଲେ । ସମୁଦାୟ ସଂକ୍ଷିପ୍ତସାର ବ୍ୟାକରଣ, ଅମରକୋଷ ଓ ନୈଷଧାଦି କାବ୍ୟ ଏହାଙ୍କର କଣ୍ଠସ୍ଥ ଥିଲା । ସୁଲଳିତ ସଂସ୍କୃତ କବିତା ରଚନାରେ ଏହାଙ୍କର ବିଶେଷ ପଟୁତା ଥିଲା । ଏହା ଛଡ଼ା କର୍ମକାଣ୍ଡରେ ମଧ୍ୟ ଏ ବଡ଼ ଧୁରନ୍ଧର ଥିଲେ ।

ଏହାଙ୍କ ତୁଲ୍ୟ ନିଷ୍ଠାବାନ୍, ଧର୍ମପରାୟଣ, ଅଗ୍ରପୂଜ୍ୟ, ଆଦର୍ଶଚରିତ୍ର ବ୍ୟକ୍ତି ଦୁର୍ଲ୍ଲଭ ।

**ଦାମ୍ନୀ**—ସ ବି ସ୍ତ୍ରୀ (ଦାମନ୍+ସ୍ତ୍ରୀ. ଈ)—ଦାମନୀ (ଦେଖ)
Dāmni Dāmani (See).

**ଦାମ୍ପତ୍ୟ**—ସ. ବିଣ (ଦମ୍ପତି+ସମ୍ବନ୍ଧାର୍ଥେ, ଯ)—୧ । ପତିପତ୍ନୀସମ୍ବନ୍ଧୀୟ—
Dāmpatya 1. Conjugal; connubial.
(ଦାଂପତ୍ୟ—ଅନ୍ୟରୂପ) ୨ । ବୈବାହିକ—2. Marital.
ସ ବି—୧ । ସ୍ତ୍ରୀ ଓ ପୁରୁଷଙ୍କ ମଧ୍ୟରେ ପ୍ରେମ ବା ବ୍ୟବହାର ( ହି. ଶବ୍ଦସାଗର )—1. Conjugal love or conduct.
୨ । ଦମ୍ପତିଙ୍କ ଦ୍ୱାରା ଅନୁଷ୍ଠେୟ ଅଗ୍ନିହୋତ୍ରାଦି କର୍ମ—( ହି. ଶବ୍ଦସାଗର )—2. Vedic sacrifices and rites performable by a married couple.

**ଦାମ୍ପତ୍ୟ କଳହ**—ସ. ବି—ପତି ପତ୍ନୀଙ୍କ ମଧ୍ୟରେ କଳି—
Dāmpatya kalaha Connubial quarrel.
(ଦାମ୍ପତ୍ୟବିବାଦ—ଅନ୍ୟରୂପ)

**ଦାମ୍ପତ୍ୟ ଜୀବନ**—ସ. ବି—ବୈବାହିକ ଜୀବନ—
Dāmpatya jibana Conjugal life.

**ଦାମ୍ପତ୍ୟ ନିର୍ବାଚନ**—ସ. ବି ( ଆଧୁନିକ ବିବର୍ତ୍ତନବାଦର ପାରିଭାଷିକ
Dāmpatya nirbāchana ଶବ୍ଦ)—ପତି ପତ୍ନୀ ପରସ୍ପର ପରସ୍ପରକୁ ବାଛିନେବା ରୂପ ଈଶ୍ୱରସୃଷ୍ଟ ବିଧି; ଯୌନ ନିର୍ବାଚନ—( evolution theory ) Sexual selection (Darwin)

**ଦାମ୍ପତ୍ୟ ପ୍ରଣୟ**—ସ. ବି—ପତି ଓ ବିବାହିତା ପତ୍ନୀଙ୍କ ମଧ୍ୟରେ ପରସ୍ପର
Dāmpatya praṇaya ସ୍ନେହ—Conjugal love.

**ଦାମ୍ପତ୍ୟ ବନ୍ଧନ**—ସ. ବି—ବିବାହ ବନ୍ଧନ—Marital tie.
Dāmpatya bandhana

**ଦାମ୍ଭିକ**—ସ. ବିଣ ପୁଂ (ଦମ୍ଭ+ଅସ୍ତି ଅର୍ଥରେ. ଇକ)—୧ । ଅହଂକାରୀ;
Dāmbhika ଦର୍ପୀ—1. Proud; imperious; haughty;
(ଦାମ୍ଭିକା—ସ୍ତ୍ରୀ) arrogant; overbearing.

| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଜ୍ଞ | ଇପ୍ | ଉଅ | ଷ୍ଣ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ଲୃ | ଲୃ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଟ୍ୟ | ଇଥ | ଭ | ନ୍ |

୨ । ଅବାଧ—2. Insubordinate.

୩ । କପଟାଗ୍ରହୀ, ବଗଭକ୍ତ ବୈଷମ—3. Hypocrete

୪ । ଧୂର୍ତ୍ତ—4. Sly; artful; cunning.

୫ । ଯେ ବାଲଙ୍ଗି ବଢାଏ, ଭୁରୁଡା —
5. Blustering; boastful; braggart.

୬ । ପ୍ରବଞ୍ଚକ —6. Fraudulent; deceitful.

୭ । ଆଡମ୍ବରକାରୀ (ହି. ଶବ୍ଦସାଗର)—7. Showy

ବି—ବକପକ୍ଷୀ; ବଗ—The Ardea Nivea, the egret (bird).

ଦାମ୍ଭିକତା—ସଂ. ବି (ଦାମ୍ଭିକ+ଭାବାର୍ଥେ. ତା)—୧ । ଧୂର୍ତ୍ତତା—
Dāmbhikatā 1. Artfulness; cunning.
(ଦାମ୍ଭିକତ୍ୱ—ଅନ୍ୟରୂପ) ୨ । ଅହଂକାର —2. Arrogance, pride; haughtiness.

୩ । ଭୁରୁଡ଼ି—3. Bluster; boastfulness.

୪ । କପଟାଚରଣ —4. Hypocricy.

ଦାମ୍ଭିକପଣ—ଦେ.ବି—ଦାମ୍ଭିକତା (ଦେଖ)—Dāmbhikatā (See)
Dāmbhika pana
(ଦାମ୍ଭିକପଣିଆଁ—ଅନ୍ୟରୂପ)

ଦାୟ—ସଂ. ବି (ଦା ଧାତୁ=ଦାନ କରିବା+କର୍ମ ଅ; ଯ ଆଗମ)—
Dāya ୧ । ପୂର୍ବ ସ୍ୱାମୀର ମୃତ୍ୟୁ ପରେ ଯେଉଁ ସମ୍ପତ୍ତିରେ ଉତ୍ତରାଧିକାରୀମାନଙ୍କର ସ୍ୱତ୍ୱ ଜନ୍ମେ;—1. Heritage; inheritance.

୨ । ଯୌତୁକାଦି ଦାନ—2 Dowery; dower; marriage-portion.

୩ । ଉତ୍ତରାଧିକାରୀ ଦ୍ୱାରା ପ୍ରାପ୍ତ ସମ୍ପତ୍ତି —
3 Inheritance; inherited property.

୪ । ପୈତୃକ ସମ୍ପତ୍ତି—4 Patrimony; ancestral property.

୫ । ବିଭାଜ୍ୟ ବସ୍ତୁ; ପୂର୍ବସ୍ୱାମୀର ସ୍ୱାମିତ୍ୱ ନାଶ ପରେ ତଦଧୀନ ଯେଉଁ ଦ୍ରବ୍ୟରେ ଅନ୍ୟମାନଙ୍କର ସ୍ୱତ୍ୱ ଜନ୍ମେ (ପ୍ରକୃତିବାଦ)—
5. Divisible property.

୬ । ଧନ (ପ୍ରକୃତିବାଦ)—6. Riches.

୭ । [+ଭାବ ଅ. (ଘଞ୍)] ଦାନ—7. Gift.

୮ । ସ୍ଥାନ, ଜୋତ—8. Place; tenure.

୯ । ଜଳ—9. Water

୧୦ । (ଦୋ ଧାତୁ=ଛେଦନ କରିବା+ଭାବ ଅ) ଛେଦନ—
10 Cutting.

୧୧ । ଜ୍ୱାଳା; ଦୁଃଖ; ବିପଦ –11. Trouble; peril; danger.

୧୨ । ଉପଦ୍ରବ;ଉତ୍ପାତ—12. Calamity; oppression

୧୩ । ସଙ୍କଟାବସ୍ଥା—13. Jeopardy; crisis.

୧୪ । (ଦୈ ଧାତୁ=ଶୋଧନ କରିବା+ଭାବ. ଅ) ଶୋଧନ—
14. Refining.

୧୫ । ଶୋକ, ମନସ୍ତାପ—15. Mental trouble;grief.

୧୬ । କ୍ଷତି—16. Injury; ravage; damage; devastation; loss.

୧୭ । ବିଲୟ;ବିନାଶ —17. Destruction; ruin.

୧୮ । ଦେଣା—18. Debt; liability.

୧୯ । କଠୋର କର୍ତ୍ତବ୍ୟ,ଦାୟିତ୍ୱ —19. Responsibility; liability; incumbrance.

୨୦ । ଗୁରୁତ୍ୱ—20. Gravity;heavy responsibility.

୨୧ । ଥଟ୍ଟା—21. Jest; joke.

୨୨ । (ଦା ଧାତୁ+କର୍ତ୍ତୃ.ଅ)ଦାତା—22. Doner; giver.

୨୩ । (ଦା ଧାତୁ+କର୍ମ. ଅ)—ଅନ୍ୟକୁ ଦେବା ଯୋଗ୍ୟ ଧନ (ହି. ଶବ୍ଦସାଗର)—23. Property which ought to be given away.

[ଦ୍ର—ହିନ୍ଦୁ ସ୍ମୃତିରେ ପୂର୍ବ ସ୍ୱାମୀଙ୍କ ସଙ୍ଗେ ସମ୍ପର୍କ ଥିବା ଯୋଗୁଁ ଉତ୍ତରାଧିକାରୀମାନେ ମୃତ ବ୍ୟକ୍ତିର ତ୍ୟକ୍ତ ଯେଉଁ ସମ୍ପତ୍ତିକୁ ପାଆନ୍ତି ତାକୁ ଦାୟ ବୋଲାଯାଏ । ମିତାକ୍ଷରା ଅନୁସାରେ ଦାୟ ଦୁଇ ପ୍ରକାର ଯଥା ଅପ୍ରତିବନ୍ଧ ଓ ସପ୍ରତିବନ୍ଧ; ଯେଉଁ ଦାୟରେ ଉତ୍ତରାଧିକାରୀ ସମ୍ପତ୍ତି ପାଇବା ବିଷୟରେ କୌଣସି ପ୍ରତିବନ୍ଧକ ନ ଥାଏ ତାକୁ ଅପ୍ରତିବନ୍ଧ ଦାୟ ବୋଲାଯାଏ । ଯଥା—ପୁତ୍ର ବା ନାତି ପକ୍ଷରେ ପିତା ବା ପିତାମହଙ୍କ ତ୍ୟକ୍ତ ସମ୍ପତ୍ତି; ଯେଉଁ ସମ୍ପତ୍ତି ନିକଟତମ ଉତ୍ତରାଧିକାରୀଙ୍କ ଅଭାବରେ ଦୂରବର୍ତ୍ତୀ ବ୍ୟକ୍ତିକୁ ମିଳେ ତାକୁ ସପ୍ରତିବନ୍ଧ ଦାୟ ବୋଲାଯାଏ । ଯଥା—ପୁତ୍ର ବା ନାତି ଅଭାବରେ ଭାଇ ଓ ପୁତ୍ରର ପକ୍ଷରେ ଭାଇର ବା ପିତୃବ୍ୟଙ୍କ ତ୍ୟକ୍ତ ସମ୍ପତ୍ତି—ହି. ଶବ୍ଦସାଗର]

ଦେ. ବି—୧ । ଗରଜ; ପ୍ରୟୋଜନ—1. Necessity; need-

୨ । ଗୁରୁ ଦାୟିତ୍ୱ ପୂର୍ଣ୍ଣ କାର୍ଯ୍ୟ;ଅବଶ୍ୟକୀୟ ଗୁରୁତର କାର୍ଯ୍ୟ—
2. An act which must be done at any cost; an act entailing heavy and unavoidable responsibility.
(ଯଥା—ଋଣଦାୟ, ପିତୃଦାୟ, ମାତୃଦାୟ, କନ୍ୟାଦାୟ ଇତ୍ୟାଦି)

୩ । ଅବଶ୍ୟ ନିବାରଣୀୟ ଜ୍ୱାଳା; ଭୟାନକ ଯନ୍ତ୍ରଣା—
3 Craving; torment or pain which must be satisfied or removed.
(ଯଥା— ଗରିବ ପେଟର ଦାୟରେ ଚୋରି କରେ ।)

୪ । ଅକଳ; ଅଶାନ୍ତିଆ ଅବସ୍ଥା—4. A queer position; difficulty.

୫ । ବିଷମ ସମସ୍ୟା—5. A dilemma.

୬ । ଦୁଃଖ—6. Trouble.

ଦାୟକ—ସଂ. ବିଣ. ପୁଂ ( ଦା ଧାତୁ+କର୍ତ୍ତୃ. ଅକ )—୧ । ଯେ ଦିଏ;
Dāyaka ଦାନକାରୀ—1. Giving; granting.

ସାଧାରଣ ଲୋକେ ଅପର ପୃଷ୍ଠାରେ ମୁଦ୍ରିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଅଭିଧାନରେ ନ ମିଳେ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ଼' ନ ମିଳିଲେ 'ଗାଢ' ଖୋଜିବେ, କୃଷ ନ ମିଳିଲେ 'କୃଶ' ଦେଖିବେ; 'ବଧୂ' ନ ପାଇଲେ 'ବଧୂ' ଦେଖିବେ; ଅର୍ଜ୍ଜା ନ ପାଇଲେ 'ଅର୍ଜ୍ଜା' ଦେଖିବେ; 'ଅଲବଡ଼' ନ ପାଇଲେ 'ଅଲ୍‌ବଡ଼' ଦେଖିବେ ।

(ଦାୟିକା—ସ୍ତ୍ରୀ) ୨ । (ପ୍ରତ୍ୟୟ ରୂପେ ପ୍ରଯୁଜ୍ୟ)—
ଉତ୍ପାଦନକାରୀ—2. (In compound) Producing
[ଦ୍ର—ଏହା ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ ହୋଇ ବ୍ୟବହୃତ ହୁଏ ଯଥା—କଷ୍ଟଦାୟକ; ଯନ୍ତ୍ରଣାଦାୟକ; ମୁକ୍ତିଦାୟକ ।]
୩ । କ୍ଷତିପୂରଣକାରୀ—3. Compensating.
୪ । (ଦୋ ଧାତୁ + କର୍ତ୍ତୃ. ଅକ) ଛେଦକ—4. Cutting.
ସଂ. ବି—୧ । ଦାତା—1. Giver; donor
୨ । (ଦାୟ + ବଦ୍ୟମାନାର୍ଥ କ) ଦାୟାଦ; କୁଟୁମ୍ବ—
2 Kinsman; lineal heir

**ଦାୟଗ୍ରସ୍ତ**—ସଂ. ବିଣ ( ଦାୟ + ଗ୍ରସ୍ତ; ତୃତୀୟା ତତ୍ )—୧ । ଗୁରୁତର କର୍ତ୍ତବ୍ୟପ୍ରପୀଡ଼ିତ—1. Involved in discharging an unavoidable duty.
Dāyagrasta
୨ । ଦାୟିତ୍ୱଯୁକ୍ତ—2. Responsible; liable.
୩ । ଗୁରୁତର ଦୁଃଖରେ ଜଡ଼ିତ—
3. Involved in great troubles.

**ଦାୟଭାଗ**—ସଂ. ବି—୧ । ପୈତୃକ ଧନର ବିଭାଗ; ଉତ୍ତରାଧିକାରୀମାନଙ୍କ ମଧ୍ୟରେ ମୃତ ବ୍ୟକ୍ତିର ତ୍ୟକ୍ତ ସମ୍ପତ୍ତିର ବଣ୍ଟନ—
Dāyabhāga
1. Partition or division of inheritance amongst the heirs of a deceased person.
୨ । ମୃତ ବ୍ୟକ୍ତିର ସମ୍ପତ୍ତି ଉତ୍ତରାଧିକାରୀମାନଙ୍କ ମଧ୍ୟରେ ବିଭାଗ କରିବାର ଆଇନ୍—2. The law of inheritance or succession
୩ । ଜୀମୂତବାହନ ନାମକ ପଣ୍ଡିତଙ୍କ କୃତ ପୈତୃକ ଧନବିଭାଗ ସମ୍ବନ୍ଧୀୟ ସଂସ୍କୃତ ସ୍ମୃତି ବା ଗ୍ରନ୍ଥ—3 Name of a Sanskrit Law book or treatise on rules of inheritance prevalent in Bengal.
[ଦ୍ର—ଏହି ଗ୍ରନ୍ଥର ବିଧି ଅନୁସାରେ ବଙ୍ଗ ଦେଶରେ ପୈତୃକ ଧନ ବଣ୍ଟନ ହୁଏ । ମାତ୍ର ଉତ୍କଳ ଦେଶରେ 'ମିତାକ୍ଷରା' ଗ୍ରନ୍ଥ ଅନୁସାରେ ତାହା ବଣ୍ଟନ ହୋଇଥାଏ । ଯାଜ୍ଞବଲ୍କ୍ୟଙ୍କ ସ୍ମୃତି ଉପରେ ବିଜ୍ଞାନେଶ୍ୱରଙ୍କ କୃତ ଟୀକାକୁ ମିତାକ୍ଷରା ବୋଲାଯାଏ । ମିତାକ୍ଷରାର ବ୍ୟବସ୍ଥା ଅନୁସାରେ ପଞ୍ଜାବ, କାଶୀ, ମିଥିଳା ଓ ଦାକ୍ଷିଣାତ୍ୟରେ ମୃତ ବ୍ୟକ୍ତିଙ୍କ ସମ୍ପତ୍ତି ବଣ୍ଟନ ହୁଏ । ଦାୟଭାଗ ଗ୍ରନ୍ଥ ଅନୁସାରେ କେବଳ ବଙ୍ଗ ଦେଶରେ ଉତ୍ତରାଧିକାରୀଙ୍କ ମଧ୍ୟରେ ସମ୍ପତ୍ତି ବିଭାଗ କରାଯାଏ ।]

**ଦାୟରା (ଇତ୍ୟାଦି)**—ବୈଦେ. ବି (ଆ)—ଦୋହରା ଇତ୍ୟାଦି (୨)(ଦେଖ)
Dāyarā (etc) Dohara (2) etc (See)

**ଦାୟରେ ପଡ଼ିବା**—ଉକ୍ତି—ଅଡ଼ଚଣରେ ପଡ଼ିବା; ବିପଦରେ ପଡ଼ିବା—
Dāyare pardibā To be hard-pressed.
(ଦାୟରେ ଠେକିବା; ଦାୟରେ ଠେକିବା—ଅନ୍ୟରୂପ)
ମଦ୍ଦିଆ, ଦାମେଁଠେକା ଦାୟମେ ମୀରୋ

**ଦାୟାଗତ**—ସଂ. ବିଣ (ଦ୍ୱିତୀୟା ତତ୍. ଢମ୍ବା ୭ମୀ ତତ୍; ଦାୟ + ଆଗତ)—
Dāyāgata
୧ । ମଉରସି ହିସାବରେ ପଡ଼ିବା (ସମ୍ପତ୍ତି)—
1. (property) Inherited.
ସଂ ବି—(ହିନ୍ଦୁ ସ୍ମୃତି)—ଯେଉଁ ଦାସ ଦାୟ ବା ପୈତୃକ ସମ୍ପତ୍ତିରୂପେ ମିଳିଅଛି ( ହି ଶବ୍ଦସାଗର )—(Hindu Law) A slave of which a person has become the owner by inheritance.
[ଦ୍ର—ହିନ୍ଦୁ ସ୍ମୃତିଲିଖିତ ୧୫ ଶ୍ରେଣୀର ଦାସ ମଧ୍ୟରୁ ଏ ଦାସ ଏକତମ ।]

**ଦାୟାଦ**—ସଂ. ବି. ପୁଂ (ଦାୟ=ପୈତୃକ ଧନ + ଆ + ଦା ଧାତୁ + କର୍ତ୍ତୃ. ଅ; ଯେ ପୈତୃକ ଧନ ଗ୍ରହଣ କରେ)—
Dāyāda
ଦାୟାଦା } ସ୍ତ୍ରୀ
ଦାୟାଦୀ }
୧ । ପୁତ୍ର—1. A son.
୨ । ବଂଶଧର—2. Lineal descendent.
୩ । ଉତ୍ତରାଧିକାରୀ—3. An heir; a successor.
ଏ ଭୂମିର ସୁତ ଉତ୍କୃଷ୍ଟକ ଅର୍ଥ୍ୟ ନାମ ଦାୟାଦ ଜଗତେ ।
ରଘୁନାଥ. ମହାଯାନ ।
୪ । କୁଟୁମ୍ବ; ସଗୋତ୍ର; ସପିଣ୍ଡ—
4 A kinsman within 7 degrees
ସଂ. ବିଣ (ଦାୟ + ଅଦ୍ ଧାତୁ=ଭୋଜନ କରିବା + କର୍ତ୍ତୃ. ଅ)—
ଧନଭାଗୀ; ମୃତ ବ୍ୟକ୍ତିର ତ୍ୟକ୍ତ ସମ୍ପତ୍ତିରେ ଉତ୍ତରାଧିକାରୀ—
Inheriting the property of a deceased

**ଦାୟାଦା**—ସଂ. ବି. ସ୍ତ୍ରୀ (ଦାୟାଦ + ସ୍ତ୍ରୀ. ଆ)—କନ୍ୟା; ଝିଅ—
Dāyādā Daughter.
(ଦାୟାଦୀ—ଅନ୍ୟରୂପ)

**ଦାୟିକ**—ସଂ. ବିଣ. ପୁଂ (ଦାୟିନ୍ + ସ୍ୱାର୍ଥେ. କ)—ଦାୟୀ—
Dāyika Responsible.
(ଦାୟିକା—ସ୍ତ୍ରୀ)

**ଦାୟିକା**—ଦେ. ବି—ଦାଇକା (ଦେଖ)
Dāyikā Dāikā (See).
(ଦାୟେକା—ଅନ୍ୟରୂପ)

**ଦାୟିତ**—ସଂ. ବିଣ ( ଦା ଧାତୁ + ଇତ )—ଯାହା ଦାନ କରାଯାଇଅଛି; ପ୍ରଦତ୍ତ—Already given away.
Dāyita

**ଦାୟିତ୍ୱ**—ଦେ. ବି (ଦାୟିନ୍ + ଭାବ. ତ୍ୱ)—୧ । ଆପଣାଠାରେ ଗୁରୁ ଭାର ଥିବା ଅବସ୍ଥା; ଜବାବଦେହୀ; ଗୁରୁ ଭାର—
Dāyitwa
1. Responsibility.
୨ । ଦେଣଦାର ହେବା ଅବସ୍ଥା—
2 Liability; indebtedness.

**ଦାୟିତ୍ୱ ଜ୍ଞାନ**—ସଂ. ବି—ନିଜ ଉପରେ ଗୋଟିଏ ଗୁରୁଭାର ନ୍ୟସ୍ତ ଅଛି, ଏହି ବୋଧ—Sense of responsibility.
Dāyitwa jnāna

**ଦାୟିତ୍ୱ ଜ୍ଞାନ ଶୂନ୍ୟ**—ସଂ. ବିଣ—ଯେ ଆପଣା ଉପରେ ଥିବା ଦାୟିତ୍ୱର ଗୁରୁତା ଅନୁଭବ କରେ ନାହିଁ—
Dāyitwa jnāna sūnya
Having no sense of responsibility.

| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଜ | ଶ,ଷ | କ୍ଷ | ଇପ୍ତ | ଉଥ | ଧ୍ଵ |
|---|---|---|---|---|---|---|---|---|---|---|---|---|---|---|
| ୧ | ଈ | ଊ | ରୁ | ଲୃ | ପ୍ରେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଘ | ଇଆ | ଈ | ନ୍ଥ |

ଦାୟିତ୍ୱହୀନ—ଦେ. ବଣ—୧ । ଯାହା ଉପରେ କୌଣସି ଦାୟିତ୍ୱ ନ
Dāyitwahīna ଥାଏ—1. Having no responsibility; irresponsible (person).

ଦାୟିତ୍ୱବିହୀନ } ଅନ୍ୟରୂପ
ଦାୟିତ୍ୱଶୂନ୍ୟ }

୨ । ଯେଉଁ କାର୍ଯ୍ୟ ପାଇଁ କାହା ଉପରେ ଦାୟିତ୍ୱ ନ ଥାଏ—2 (a work) Involving no responsibility.

ଦାୟିଦାର୍—ପ୍ରାଦେ. (ସମ୍ବଲପୁର) ବ—ଦାୟୀ—
Dāyidār Responsible

ଦାୟୀ—ସଂ. ବଣ. ପୁଂ (ଦା ଧାତୁ+କର୍ତ୍ତୃ. ଇନ୍; ଦାୟିନ୍ ଶବ୍ଦ; ଅନ୍ୟ
Dāyī ଶବ୍ଦ ସଙ୍ଗେ ଯୁକ୍ତ ହୋଇ ପ୍ରଯୁକ୍ତ ହୁଏ ।—ଯଥା ସୁଖଦାୟୀ)—
(ଦାୟିନୀ—ସ୍ତ୍ରୀ) ୧ । ଦାୟକ; ଦାନଦାତା; ଦାତା; ଦେବା ବାଲା—
1. Giving; bestowing.

୨ । ଘଟାଇବା (ବ୍ୟକ୍ତି ବା ବସ୍ତୁ)—
2 Causing; bringing about.

୩ । (ଦାୟ+ଇନ୍)—ଗୁରୁଭାରାକ୍ରାନ୍ତ; ଦାୟଗ୍ରସ୍ତ—
3 Involved in a great responsibility or liability

୪ । ଯାହା ଉପରେ ଜବାବଦେହୀ ବା ଦାୟିତ୍ୱ ରହିଥାଏ—
4. Responsible, liable

ଦେ. ବଣ—୧ । ଦାଇ ୨ (ଦେଖ)—1 Dāi 2 (See)

୨ । ଦୋଷୀ—2 Guilty.

ଦାୟେର୍ (ଇତ୍ୟାଦ)—ବୈଦେ. ବ ଓ ବଣ.—ଦାଏର୍ ଇତ୍ୟାଦ (ଦେଖ)
Dāyer (etc) Dāer etc (See)

ଦାର୍ୱିନ୍—ବୈଦେ. ବ. (ଇଂ. ନାମ)—ବିଖ୍ୟାତ ବିବର୍ତ୍ତନବାଦ
Dārwin ପ୍ରବର୍ତ୍ତକ ଇଂରାଜ ପଣ୍ଡିତ—Darwin who started the theory of Evolution and the theory of the Survival of the fittest.

ଦାରଉଇନ୍ } ଅନ୍ୟରୂପ
ଦାରୁଇନ୍ }

[ଦ୍ର—ଏହାଙ୍କର ମତ ଏହି ଯେ ଜୀବସୃଷ୍ଟି ପ୍ରଥମେ ସାପରୁ ଆରମ୍ଭ ହୋଇଅଛି; କ୍ରମେ ମାଛ, ପକ୍ଷୀ, ପଶୁ, ବାନର ଓ ମନୁଷ୍ୟ ସୃଷ୍ଟି ହୋଇଅଛି ଏବଂ ଜୀବସୃଷ୍ଟିରେ ଯେ ବଳୁଆ ଓ ଉପଯୁକ୍ତ ହେଲେ ଓ ହେବେ, ସେ ଦୁର୍ବଳ ଓ ଅକୃଷ୍ଟ ଜୀବଙ୍କୁ ନାଶ କରି ନିଜର ବଂଶ ବୃଦ୍ଧି କରିଅଛନ୍ତି ଓ କରିବେ ।]

ଦାର୍ ମଦାର୍—ବୈଦେ. ବ. (ଫା)—୧ । ସମ୍ବନ୍ଧ—
Dār madār 1. Agreement.

ଦାରମଦାର (ଯଥା—ମକଦମାକୁ ରଫା କରିବାକୁ ବାଦୀର ଦାରମଦାର ନାହିଁ ।)

୨ । ନିର୍ଭର—2. Dependence; reliance.

(ଯଥା—ଏ ବିଷୟ ନିଷ୍ପତ୍ତି କରିବାପାଇଁ ମୋର ତାଙ୍କଠାରେ ଦାରମଦାର ଅଛି ।)

୩ । ଚୁକ୍ତି—3. Contract; stipulation.

(ଯଥା—ଏ ଜିନିଷକୁ ୧୦ ଟଙ୍କାରେ ବିକ୍ରି କରିବା ପାଇଁ ବାପା ମୁ ସ୍ତ୍ରୀ ମଧ୍ୟରେ ଦାରମଦାର ହୋଇ ଯାଇଛି ।)

୪ । କୌଣସି କାର୍ଯ୍ୟର ଭାର—4. Charge of a work or matter.

୫ । ଦାୟିତ୍ୱ—5 Responsibility.

ଦାର—ସଂ. ବ (ଦୃ ଧାତୁ=ବିଦାରଣ କରିବା+କର୍ତ୍ତୃ ଅ, ଯେ ସ୍ୱାମୀର
Dāra ପୂର୍ବସ୍ନେହ ବିଦାରଣ କରେ; ଅର୍ଥାତ୍ ସ୍ୱାମୀ ଯାହାର ସ୍ନେହରେ ଆବଦ୍ଧ ହୋଇ ପୂର୍ବ ସ୍ନେହପାତ୍ରମାନଙ୍କୁ ଭୁଲି ଯାଏ; ସଂସ୍କୃତରେ ଏହା ନିତ୍ୟ ବହୁବଚନାନ୍ତ ପୁଂଲିଙ୍ଗ ଶବ୍ଦ 'ଦାରାଃ' ରୂପରେ ବ୍ୟବହୃତ ହୁଏ, କିନ୍ତୁ ଏହାର ଅର୍ଥ ସ୍ତ୍ରୀ)—୧ । ଭାର୍ଯ୍ୟା, ସ୍ତ୍ରୀ—Wife.

୨ । (+ଭାବ ଅ) ବିଦାରଣ—
2. Act of tearing or splitting.

୩ । (+କର୍ମ ଅ) କର୍ଷିତ କ୍ଷେତ୍ର—3. Ploughed field

୪ । (+କର୍ତ୍ତୃ. ଅ) କାମ—4 Cupid.

୫ । (+କର୍ମ. ଅ) ଫାଟ—5 Gap; rent.

୬ । ଛିଦ୍ର—6 Hole.

ପ୍ରାଦେ. (ବସ୍ତର) ବି—ଡାଲି—Dal; split peas; pulse.

ବୈଦେ. ପ୍ରତ୍ୟୟ (ଫା. ସଂ. ଇନ୍ ପ୍ରତ୍ୟୟ ପର; 'ଯାହାର ଥାଏ'
ଦାର ଏହିପରି ଅର୍ଥରେ)—୧ । ଅଛି ଯାହାର ଏହି ଅର୍ଥ ସୂଚକ—
ଦାର୍ 1. Having.

(ଯଥା—ଚୁଡ଼ୀଦାର; ମଜାଦାର; ଜମିଦାର, ଦଲଦାର; ବୁଟାଦାର ।)

୨ । 'ବ୍ୟବସାୟ କରେ ଯେ' ଅର୍ଥରେ—2. Living on.
(ଯଥା—ବାଜାଦାର, ଚଉକିଦାର ।)

୩ । ଧାରଣକାରୀ ଅର୍ଥରେ—3. Holding.
(ଯଥା—ଛଡ଼ିଦାର ।)

ଦାରକ—ସଂ. ବି. ପୁଂ. (ଦୃ ଧାତୁ=ବିଦାରଣ କରିବା+କର୍ତ୍ତୃ ଅକ;
Dāraka ଯେ ମାଆ ପେଟ ବିଦାରଣ କରି ଜନ୍ମ ହୁଏ)—
(ଦାରିକା—ସ୍ତ୍ରୀ) ୧ । ପୁତ୍ର—1. Son.

୨ । ଶିଶୁ; ବାଳକ—2. Boy, child.

୩ । ଜୀବଶିଶୁ—3 The young of animals.

୪ । ଗ୍ରାମ୍ୟ ଶୂକର—4. Domestic pig; village hog.

ବଣ—ବିଦାରକ; ବିଦାରଣକାରୀ—
Piercing; splitting.

ଦାର କର୍ମ—ସଂ. ବି. (ଦାର+କର୍ମ; ଷଷ୍ଠୀ ତତ୍; ଦାରାର୍ଥ କର୍ମ)—
Dāra karma (ପୁରୁଷ ପକ୍ଷରେ) ବିବାହ—Marriage in the case of a male; taking a wife.

ଦାରକ୍ରିୟା }
ଦାରଗ୍ରହ }
ଦାରଗ୍ରହଣ } ଅନ୍ୟରୂପ
ଦାରପରିଗ୍ରହ }

ଦାରକର୍ମ ନିଷ୍ଫଳ ନୁହଇ ମନ୍ତ୍ରକର ।
କୃଷ୍ଣସିଂହ- ମହାଭାରତ ଅବ ।

ସାଧାରଣ ଲୋକେ ଅପର ପୃଷ୍ଠାରେ ଦତ୍ତ ୧ ଚିହ୍ନିତ ଅକ୍ଷର ( ୯, ମା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତତ୍ତୁଲ୍ୟ ଉପଗତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ; 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ମିଳିଲେ 'ବଧୁ' ଦେଖିବେ; 'ଅଙ୍ଗିଆ' ନ ପାଇଲେ 'ଅଙ୍ଗୀ' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍‌' ଦେଖିବେ ।

**ଦାରଣ**—ସଂ. ବି. (ଦୃ ଧାତୁ ଣିଚ୍=ଦାରି ଧାତୁ+ଭାବ ଅନ)—
Dāraṇa ୧ । ବିଦାରଣ, ଫାଡ଼ିଦେବା—
1 Rending, tearing.
୨ । ଚିରିଦେବା କାର୍ଯ୍ୟ; ଫଟାଇବା—
2. Splitting; cleaving; piercing; bursting.
୩ । (+କରଣ ଅନ) ବିଦାରକ ଅସ୍ତ୍ର—
3. A splitting weapon
୪ । ନିର୍ମଳୀ ଫଳ ଓ ଗଛ—
4. Clearing nut and its tree.
୫ । ଯେଉଁ ଔଷଧ ଲେପନ କଲେ ବଥ ଫାଟିଯାଏ (ହି. ଶବ୍ଦସାଗର)—5. An appliance which makes a boil burst.
ବିଣ. (+କର୍ତ୍ତୃ. ଅନ) ବିଦାରକ; ଯେ ଚିରି ଦିଏ—
Piercing; splitting

**ଦାରଣୀ**—ସଂ. ବି. ସ୍ତ୍ରୀ. ( ଦାରଣ+ଈ )—ଦୁର୍ଗା—
Dāraṇi Durgā.

**ଦାର ତ୍ୟାଗୀ**—ସଂ. ବିଣ. ପୁଂ—ଯେଉଁ ବ୍ୟକ୍ତି ସ୍ତ୍ରୀକୁ ପରିତ୍ୟାଗ କରିଥାଏ-
Dāra tyāgi One who has deserted his wife.

**ଦାରଦ**—ସଂ. ବି. ( ଦୃ ଧାତୁ+ଅ ଦ; ବା ଦରଦ ଦେଶବିଶେଷ+ ଭବାର୍ଥେ. ଅ )—
Dārada
୧ । ପାରଦ—1 Quick-silver.
୨ । ସମୁଦ୍ର—2. Ocean.
୩ । ସିନ୍ଦୁର; ହିଙ୍ଗୁଳ—3. Vermillion (Apte).
୪ । ଦରଦ ଦେଶଜାତ ବିଷବିଶେଷ—
4. A kind of poison found in Durdistan.
ସଂ. ବିଣ. (ଦରଦ+ଅ)—୧ । ଦରଦ ଦେଶ ସମ୍ବନ୍ଧୀୟ—
1. Relating to Durdistān.
୨ । ଦରଦ ଦେଶବାସୀ—2. Residing in Durdistan.

**ଦାର ପରିଗ୍ରହ**—ସଂ. ବି. (ଦାର+ପରିଗ୍ରହ; ୭ମୀ ତତ୍)—
Dāra parigraha ଦାର କର୍ମ ( ଦେଖ )
Dāra karma ( See )

**ଦାରବ**—ସଂ. ବିଣ. ( ଦାରୁ+ବିକାରାର୍ଥେ. ଅ )—
Dāraba ୧ । କାଷ୍ଠନିର୍ମିତ—1. Wooden.
୨ । କାଷ୍ଠରୁ ଜାତ—
2. Produced from wood.

**ଦାରବଳିଭୁଜ୍**—ସଂ. ବି. ( ଯେ ସ୍ତ୍ରୀର ଅନାଭ ଆହାର ଖାଏ; ଦାର+ବଳି +ଭୁଜ୍ ଧାତୁ+କର୍ତ୍ତୃ. କ୍ୱିପ୍ )—
Dāra baḻibhuj
ସାରସ ପକ୍ଷୀ—Crane (Apte).

**ଦାରା**—ଦେ. ବି. ( ସଂରେ ବହୁବଚନ ଓ ପୁଂଲିଙ୍ଗ; ଦାରାଃ )—
Dāra ସ୍ତ୍ରୀ; ଭାର୍ଯ୍ୟା; ଦାର ( ଦେଖ )
Wife; Dāra ( See )

**ଦାରାକ୍ଷ**—ଦେ. ବି. ( ସଂ. ଦ୍ରାକ୍ଷା )—
Dārāksha ୧ । ଅଙ୍ଗୁର ଫଳର ଲତା—1. Vine
অাঁঙুর ୨ । ଅଙ୍ଗୁର ଫଳ—1. Grape.
दाख ୨ । ଖୁସ୍‌ମିସ୍—2. Raisins; dried grapes

**ଦାରି**—ସଂ. ବି ( ଦୃ ଧାତୁ+ଭାବ. ଅ )—
Dāri ୧ । ବିଦାରଣ; ଫାଡ଼ିବା, ଚିରିବା—1 Splitting: tearing.
୨ । ଭେଦ କରିବା—2. Piercing; rending.

**ଦାରିଆ**—ଦେ. ବିଣ. ପୁଂ—ବେଶ୍ୟାଠାରେ ଆସକ୍ତ—
Dāriā Attached or addicted to a prostitute
বংডীবাজ or prostitutes; intimate with prostitutes.
दारीदार

**ଦାରିଆ ଭଣ୍ଡ**—ଦେ. ବି—ଯେଉଁ ବ୍ୟକ୍ତି ନିର୍ଲଜ୍ଜ ଭାବରେ ବେଶ୍ୟାଠାରେ
Dāriā bhāṇḍa ଆସକ୍ତ ଥାଏ—One who is shamelessly addicted to prostitutes.

**ଦାରିକା**—ସଂ ବି. ସ୍ତ୍ରୀ. ( ଦାରକ+ସ୍ତ୍ରୀ. ଆ )—
Dārikā ୧ । କନ୍ୟା; ଝିଅ—1. Daughter.
୨ । ବେଶ୍ୟା—2. Harlot.
୩ । ଫାଟ—3. Rent; cleft.
୪ । ବାଳିକା—4. Girl.

**ଦାରିତ**—ସଂ. ବିଣ. ( ଦୃ ଧାତୁ ଣିଚ୍; ଦାରି ଧାତୁ=ବିଦାରଣ କରିବା +କର୍ମ. ତ )—ବିଦୀର୍ଣ୍ଣ; ବିଦାରିତ; ଚିରି ଯାଇଥିବା; ଫଟା ହୋଇଥିବା—Pierced through; split; rent; lacerated; torn.
Dārita

**ଦାରିଦ୍ର**—ସଂ. ବି. ( ଦରିଦ୍ର+ଭାବ. ଅ )—ନିର୍ଧନତା; ଦରିଦ୍ରତା—
Dāridra Poverty; indigence.

**ଦାରିଦ୍ର ଘୋଟିବା**—ଦେ. କ୍ରି. ( ଗାଳି )—
Dāridra ghotibā ୧ । ଲକ୍ଷ୍ମୀ ଛାଡ଼ିଯିବା—1. The sudden disappearance of one's prosperity.
ଦାରିଦ୍ର ଘୋଟିଯିବା, ଦାରିଦ୍ରା ଘୋଟିବା, ଦାରିଦ୍ରା ଘୋଟିଯିବା } ଅନ୍ୟରୂପ
୨ । ଅତ୍ୟନ୍ତ ଅଭାବଗ୍ରସ୍ତ ଅବସ୍ଥାରେ ପୀଡ଼ିତମାନ ହେବା—
2 Being stricken with utter want or poverty.

**ଦାରିଦ୍ରା**—ଗ୍ରା ବିଣ. ପୁଂ. ( ସଂ. ଦରିଦ୍ର )—୧ । ଅତି ଦରିଦ୍ର—
Daridrā 1. Destitute; very poor.
(ଦାରିଦ୍ରାଣୀ—ସ୍ତ୍ରୀ) ୨ । ଯାହାର ଅତି ହୀନ ଦୃଷ୍ଟି; କୃପଣ—
দরিদর, দরিদ্র 2. Miserly.
दरिद्दर, दरिद्री ୩ । (ଗାଳି) ଲାଳସିଆ; ଲାଳସା—
3. Very much hankering after something (like a very poor man).

ଦାରିଦ ଗ୍ରା. ବି. ( ସଂ. ଦାରିଦ୍ର୍ୟ )—ଦରିଦ୍ରତା, ଦାରିଦ୍ର୍ୟ — Poverty.
दारिद्र

ଦାରିଦ୍ର୍ୟ—ସଂ. ବି. ( ଦରିଦ୍ର+ଭାବ. ଯ )—
Daridrya ନିର୍ଧନତା; ଦରିଦ୍ରତା; ଦାରିଦ୍ର୍ୟ — Poverty; indigence.

ଦାରିଦ୍ର୍ୟ ପଞ୍ଚାକ୍ଷର— ଦେ. ବି. (ବ୍ୟଙ୍ଗ) (ସଂ. ଦାରିଦ୍ର୍ୟ+ପଞ୍ଚାକ୍ଷର)—
Dāridrya panchākshara ଦରିଦ୍ର ଲୋକର ନିତ୍ୟ ଯେଉଁ ପାଞ୍ଚ (ଦାରିଦ୍ର୍ୟ ପଞ୍ଚାକ୍ଷର ମନ୍ତ୍ର—ଅନ୍ୟରୂପ) ଗୋଟି ଅକ୍ଷରବିଶିଷ୍ଟ ବାକ୍ୟ 'କଣ କରିବି ?'—(witticism) A sentence of 5 Oria letters meaning 'What shall I do ?' uttered constantly by an idegent person.

ଦାରିବା—ଦେ. କ୍ରି— ( ସଂ. ଦୃ ଧାତୁ ଣିଚ ଦାରି ଧାତୁ=ବିଦାରିବା )—
Dāribā ଫାଡ଼ିବା, ଚିରିବା; ବିଦାରଣ କରିବା—To rent, to split; to pierce.

ବଣାମ ମୈନାକ ଭୃତ୍ଯ ଇର୍ଷ୍ଯଦାରି ଉଦରକୁ ସଂହୁକାର ସେ—
ଉପେନ୍ଦ୍ରଭଞ୍ଜ. ବୈଦେହୀଶବିଳାସ ।

ଦାରି —ବୈଦେ. ପ୍ରତ୍ୟୟ (ଫା)—ସାଧାରଣତଃ କର୍ମ, ଭାବ ଓ ବ୍ୟବସାୟ
Dāri ଅର୍ଥରେ ଏହି ପ୍ରତ୍ୟୟ ପ୍ରଯୁକ୍ତ ହୁଏ, ବୃତ୍ତି ବା କର୍ମବାଚକ
दारी ପ୍ରତ୍ୟୟ—A suffix meaning the act or occupation of.
दारी

( ଯଥା— ଦୋକାନଦାରି=ଦୋକାନଦାରର କର୍ମ ବା ବୃତ୍ତି, ଚଉକିଦାରି=ଚଉକିଦାରର କର୍ମ ଇତ୍ୟାଦି । )

ଦେ. ବି. ସ୍ତ୍ରୀ. ( ସଂ. ଦାରିକା, ଭୁଲ. ସଂ. ଦାର=ସ୍ତ୍ରୀ )—
दारी ୧ । ବେଶ୍ୟା; କସବି; ଗଣିକା — 1. Prostitute; whore.
दारी

୨ । ନର୍ତ୍ତକୀ—2. Nauch girl; dancing girl.

(ଗାଳି)—ନଷ୍ଟଚରିତ୍ରା ସ୍ତ୍ରୀ—3. Adulteress.

୪ । ରକ୍ଷିତା ସ୍ତ୍ରୀ, ଉପପତ୍ନୀ—4. A kept woman; a mistress; a concubine.

ଯେଉଁ ରଜାଙ୍କ ଘରେ ଦାରି ରହିଥାଏ,
ସେହି ହେଲେ ଏ ରୂପେ ଖେଳରେ ନ ବଦ । କୃଷ୍ଣସିଂହ. ମହାଭାରତ. ସଭା ।

ସଂ. ବି. (ଦୃ ଧାତୁ ଣିଚ ଦାରି ଧାତୁ+କର୍ତ୍ତୃ. ଇ)— ଗୋଡ଼ ଫାଟ ରୋଗ (ହି. ଶବ୍ଦସାଗର)—A disease consisting of cracking of the skin of the sole.

ଦାରି କରିବା— ଦେ. କ୍ରି.—(କଟକ ଓ ପୁରୀ ବେଶ୍ୟାମାନଙ୍କ ଭାଷା)—
Dāri karibā ୧ । ପ୍ରଥମ ରଜୋଦର୍ଶନ ପରେ ବେଶ୍ୟାବୃତ୍ତିରେ ପ୍ରବେଶ କରିଥିବା ବାଳିକା ସଙ୍ଗରେ (କୌଣସି ପୁରୁଷ) ପ୍ରଥମ ରାତ୍ରି ସହବାସ କରିବା—To cohabit a girl for the 1st time when she takes to prostitution.

୨ । ଦାରି ପ୍ରତି ଆସକ୍ତ ହେବା—
2. To be addicted to a prostitute or prostitute.

୩ । ପରସ୍ତ୍ରୀ ପ୍ରତି ଆସକ୍ତ ହେବା—
3. To be in love with other men's wives.

ଦାରିଘରକୁ ଯିବା —ଦେ. କ୍ରି.—ବେଶ୍ୟାଠାରେ ଆସକ୍ତ ହେବା;
Dāri gharaku jibā To visit a prostitute.

ଦାରି ଦାସୀ—ଦେ. ବି (ସଂ. ଦାରିକା+ଦାସୀ; ଏକାର୍ଥକ ସହଚର)
Dāri dāsi ୧ । ବେଶ୍ୟା ଓ ଉପପତ୍ନୀରୂପେ ରକ୍ଷିତା ସ୍ତ୍ରୀ—
दारीदासी 1 Prostitute and maid servant kept as a mistress.
दारीदासी

୨ । ବେଶ୍ୟା ଓ ରକ୍ଷିତା ସ୍ତ୍ରୀମାନଙ୍କ ପ୍ରତି ଆସକ୍ତ ହେବା—
2 Being addicted to prostitutes and concubines.

(ଯଥା—ସେ ଦାରିଦାସୀରେ ବହୁତ ପଇସା ଉଡାଇଦେଉଛି ।)

ଦାରିଦାସୀ କରିବା—ଦେ. କ୍ରି.—୧ । ବେଶ୍ୟା ଓ ରକ୍ଷିତା ଦାସୀଙ୍କ
Dāri dāsi karibā ପ୍ରତି ଅନୁରକ୍ତ ହେବା—
दारीदासी करना 1. To be addicted to prostitutes and concubines.
दारीदासी करना

୨ । ପରସ୍ତ୍ରୀ ରତ ହେବା—2. To be adulterous (in the case of a man)

ଦାରି ନଚା(ଚେ)ଇବା—ଦେ. କ୍ରି—୧ । ନର୍ତ୍ତକୀ ବେଶ୍ୟାର ପଛରେ
Dāri nachā(che)ibā ରହି ତାହାର ନୃତ୍ୟ ସଙ୍ଗେ ତାଳ ଅନୁସାରେ ବାଦ୍ୟ ବଜାଇବା—
1 To play music to the accompaniment of the dancing of a dancing girl.

୨ । ଆପଣା ଆଗରେ ବେଶ୍ୟା ନାଚିବାର ଉପାୟ କରିବା —
2. To cause a nauch-girl dance before one's self.

୩ । (ଗାଳି) (ଲକ୍ଷଣାର୍ଥ) ଅତ୍ୟନ୍ତ ନିର୍ଲଜ୍ଜରୂପେ କାର୍ଯ୍ୟ କରିବା; କୌଣସି ଲଜ୍ଜାଜନକ କାର୍ଯ୍ୟ କରିବା—
2 (figurative) To do any shameful work.

୩ । ନିଜ ଘରର ସ୍ତ୍ରୀମାନଙ୍କୁ ଅଯଥା ସ୍ୱାଧୀନତା ଦେବା—
3. To give undue liberty and freedom of movement to the female members of one's family.

ଦାରି ସାହି —ଦେ. ବି—ବେଶ୍ୟାପଡ଼ା; ଯେଉଁ ପଡ଼ାରେ ବେଶ୍ୟାମାନେ
Dāri sāhi ଥାଆନ୍ତି—A quarter of a town inhabited
वेश्यापाडा by prostitutes.

ଚଉ ଯେବେ ବଡ, ତେବେ ଦାରିସାହିରେ ଘର—ଢଗ ।

ଦାରୁ—ସଂ. ବି. ( ଦୃ ଧାତୁ ବିଦୀର୍ଣ୍ଣ ହେବା+କର୍ମ ଉ; ଯାହା ଚିରିଯାଏ;
Dāru ଭୁଲ. ଫା. ଦାର=କାଷ୍ଠ )—

୧ । କାଷ୍ଠ, କାଠ—1. Wood.

ସଂସାର ନିସ୍ତାରଣ ସାଧେ
ଅନଳ ଯେସନେ ଦାରୁ ମଧ୍ୟେ । ଜଗନ୍ନାଥ. ଭାଗବତ ।

୨ । କାଷ୍ଠ ଖଣ୍ଡ—2. Log of wood.

୩ । ଜାଳ; ଇନ୍ଧନ —3. Fuel.

୪ । ଦେବଦାରୁ ବୃକ୍ଷ—4. The cedar tree; a species of pine; Pinus Deodoras.

୫ । ପିତ୍ତଳ—5. Brass.

୬ । ଶିଳ୍ପକର; ଶିଳ୍ପୀ—6. An artist, artisan.
୭ । ବଢେଇ—7. Carpenter.
୮ । ଦାତା ବ୍ୟକ୍ତି—8. Liberal person
ବିଣ—୧ । (ଦୋ ଧାତୁ=ଛେଦନ କରିବା+କର୍ତ୍ତୃ. ରୁ)—
ବିଦାରକ—1. Piercing; rending
୨ । ଛେଦକ—2. Cutting; splitting
୩ । ( ଦା ଧାତୁ=କର୍ତ୍ତୃ. ରୁ )—ଦାନଶୀଳ—
3 Liberal; generous.
୪ । ଶୋଧକ—4 Refining, purifying.
୫ । ଖଣ୍ଡନଶୀଳ, ମସକା—5. Fragile, breakable.
ଦେ. ବି. ( ଫା. ବାରୁଦ )—
୧ । ବାରୁଦ—1 Gun powder.
କାଣ୍ଡ ଗୁଳା ଦାରୁ ଗୁଳ, ଗୃହଳ କରି କବଳୀ
ଛମାଣ୍ଟ ଲୁଣ ଆଦି ଆଗ ସେ କରିହପାଳଠାକୁ ଡେଲେ ଗୁଳ ।
ବ୍ରଜନାଥ. ସମରଇରଙ୍ଗ ।
୨ । ( ସ ଦାରୁ; ଶୁଭବାଚକ )—
ଜଗନ୍ନାଥଙ୍କ ମୂର୍ତ୍ତି ନିର୍ମାଣରେ ବ୍ୟବହୃତ ନିମ୍ବ କାଠ—
2 (euphemism)The wood of the Neem tree used in making the wooden idol of the Deity Jagannātha.
ଦେଦେ. ବି ( ଫା )—୧ । ମଦ—1. Wine; spirits; spirituous liquor.
ମদ ଆମକୁ ଦାରୁ ପିଅ ପଇସା ମିଳି ନାହିଁ ।
দারু ଫକୀରମୋହନ. ଗଳ୍ପସ୍ୱଳ୍ପ ।
ওষুধ ୨ । ଔଷଧ, ଦବାଇ—2. Medicine.
দারু ପ୍ରାଦେ. ( ମେଦିନୀପୁର ) ବି—ନିମ୍ବ ଗଛ—
The Neem tree.

ଦାରୁକ—ସ. ବି. ( ଦୃ ଧାତୁ ଣିଚ ଦାର ଧାତୁ=ବିଦୀର୍ଣ୍ଣ କରିବା+କର୍ତ୍ତୃ. ଉକ )—୧ । (ନାମ) ଶ୍ରୀକୃଷ୍ଣଙ୍କ ସାରଥି—
Dāruka
1. Name of the charioteer of Śrikrushṇa.
ଦାରୁକ ନନ୍ଦଘୋଷ ରଥେ
ଅଶ୍ୱ ଚଉଦୀ ଯେନ ହସ୍ତେ । ଜଗନ୍ନାଥ. ଭାଗବତ ।

[ ଦ୍ର—ଏ ବିଶେଷ କୃଷ୍ଣଭକ୍ତ ଥିଲେ । ସୁଭଦ୍ରାହରଣ ସମୟରେ ଏ ଅର୍ଜୁନଙ୍କୁ କହିଲେ 'ମୁଁ ଯାଦବଙ୍କ ବିପକ୍ଷରେ ରଥ ଚଳାଇ ପାରିବି ନାହିଁ, ଆପଣ ମୋତେ ବାନ୍ଧି ପକାନ୍ତୁ ଓ ଏହି ରଥରେ ସୁଭଦ୍ରାଙ୍କୁ ନେଇ ଯାଆନ୍ତୁ ।' ଶ୍ରୀକୃଷ୍ଣଙ୍କ ଦେହାନ୍ତର ସମାଚାର ଏ ପ୍ରଥମେ ଅର୍ଜୁନଙ୍କୁ ଦେଇଥିଲେ । ]
୨ । ( ଦାରୁ+ସ୍ୱାର୍ଥେ.କ )—ଦେବଦାରୁ ଗଛ—
2. The cedar tree; the pine tree.
୩ । କାଠ—3. Wood.

ଦାରୁ କଦଳୀ—ସ. ବି—୧ । ଜଙ୍ଗଲି କଦଳୀ—
Dāru kadaḷi
1. Wild banana.
୨ । କାଠିଆ କଦଳୀ—2. An inferior and hard variety of banana.

ଦାରୁକା—ସ. ବି ସ୍ତ୍ରୀ. (ଦାରୁ+କ+ସ୍ତ୍ରୀ ଆ)—୧ । କାଠର ପିତୁଲା,
Dārukā
କାଠ କଣ୍ଢେଇ—1 Wooden doll.
୨ । ପବିତ୍ର ବନବିଶେଷ, ହିନ୍ଦୁମାନଙ୍କର ତୀର୍ଥବିଶେଷ (ହି. ଶବ୍ଦସାଗର)—2. Name of a sacred forest.

ଦାରୁ ଖୁନ୍ଦା ନଳୀ—ଦେ. ବି—ଯେଉଁ ବନ୍ଧୁକର ମୁହଁ ବାଟେ ବାରୁଦ
Dāru khundā naḷi
ଖୁନ୍ଦାଯାଏ—Muzzle-loader (gun).

ଦାରୁ ଗଣ୍ଠି—ଦେ. ବି—୧ । ଘରର ଦୁଇଟି ଚେଣୀର ଯୋଡ଼ ମୁହଁ—
Dāru ganṭhi
1. The joint between two plates in a thatched house
୨ । ବାରଦ ଗଣ୍ଠି; ବାଣର ଗଣ୍ଠିରେ ଭାଗମାପ ଅନୁସାରେ ଚୁନ୍ଦା ଯାଇଥିବା ବାରୁଦର ପରିମାଣ—2. A given quantity of gunpowder which is pushed inside the hole of a firework.

ଦାରୁଗନ୍ଧା—ସ. ବି—ଗନ୍ଧବିରୋଜା (ହି. ଶବ୍ଦସାଗର)—
Dārugandhā
Galbanum.

ଦାରୁଗର୍ଭା—ସ ବି. ସ୍ତ୍ରୀ. ( ଦାରୁ+ଗର୍ଭ+ସ୍ତ୍ରୀ ଆ; ଦାରୁ ଅଛି ଗର୍ଭ ଅର୍ଥାତ
Dārugarbhā
ଉତ୍ପତ୍ତି ସ୍ଥାନ ଯାହାର)—କାଠ କଣ୍ଢେଇ—
Wooden doll.

ଦାରୁଚିନି—ଦେ ବି. (ସ. ଦାରୁ+ଫା. ଚୀନ; ଏହାର କାଠ ଚିନି ପରି
Dāruchini
ମିଠା ଥିବାରୁ)—ଡାଲଚିନି; ଗୁଡ଼ତ୍ୱକ—
(ଦାରୁଚେନି, ଦାରୁଚିଣି—ଅନ୍ୟରୂପ)
Cinnamon.
দারুচিনি दारचिनि, दारचीनि

ଦାରୁଜ—ସ. ବିଣ. (ଦାରୁ+ଜନ୍ ଧାତୁ+କର୍ତ୍ତୃ. ଅ)—
Dāruja
୧ । କାଷ୍ଠନିର୍ମିତ—1. Made of wood.
୨ । କାଷ୍ଠରୁ ଉତ୍ପନ୍ନ—2. Born of or produced from wood.
ବି—ପଖୋଳ, ପଖଉଜ; ମାଦଳ; ମର୍ଦ୍ଦଳ—
A kind of musical drum made of a hollow cylindar of wood, the two ends of which are covered with leather.

ଦାରୁଣ—ସ. ବିଣ. (ଦୃ ଧାତୁ, ଣିଚ୍ ଦାର ଧାତୁ+କର୍ତ୍ତୃ. ଉନ୍)—
Dāruṇa
୧ । ଭୟଙ୍କର; ଅତି ଭୟାନକ; ଭୀଷଣ—
(ଦାରୁଣା—ସ୍ତ୍ରୀ)
1. Awful; dreadful; horrible; frightful; awesome.
୨ । ଅତ୍ୟଧିକ, ଉତ୍କଟ, କଠୋର; ଅତ୍ୟନ୍ତ, ଉଗ୍ର; ତୀବ୍ର—
2. Intense; violent; severe; sharp.
୩ । ନୃଶଂସ; କ୍ରୂର, ନିଷ୍ଠୁର—
3. Cruel; relentless; harsh.
୪ । ନିର୍ଦ୍ଦୟ—4. Heartless; unkind.
୫ । କଠିନ—5. Hard.
୬ । କର୍କଶ—6. Harsh; rough.
୭ । କଷ୍ଟପ୍ରଦ—7. Painful; troublesome.
୮ । ମର୍ମଭେଦୀ; ମର୍ମନ୍ତୁଦ; ଦୁଃସହ—
8. Insufferable; unbearable; intolerable.

୯ । ଦୁଃଖସାଧ୍ୟ—9. Difficult.
୧୦ । ବିଦାରକ—10. Splitting; tearing; rending
ସଂ. ବି—୧ । ଚିତ୍ରକ ବା ଧଳାଚିତା ଗଛ—
1. The Leadwort plant.
୨ । ମୁରାସୁରର ଖାଳଭାଇ (ନୈକ୍ଷିତ ପୁତ୍ରଶୋକ)—
2. The brother of the demon Murā.
୩ । କ୍ରୂରତା—3. Cruelty.
୪ । କଠୋରତା—4. Harshness; severity
୫ । ସାହିତ୍ୟରେ ଭୟାନକରସ; ରୌଦ୍ରରସ—
5. The sentiment of horror in literature.
୬ । ରୌଦ୍ର ନାମକ ନକ୍ଷତ୍ର (ହି. ଶବ୍ଦସାଗର)—
6. Name of a star.
୭ । ବିଷ୍ଣୁ (ହି. ଶବ୍ଦସାଗର)—7. Bishnu.
୮ । ଶିବ (ହି. ଶବ୍ଦସାଗର)—8. Siba.
୯ । ରାକ୍ଷସ (ହି. ଶବ୍ଦସାଗର)—9. Demon.
୧୦ । ନରକ ବିଶେଷ (ହି. ଶବ୍ଦସାଗର)—
10. Name of a hell according to the Hindu mythology.

**ଦାରୁଣକ**—ସଂ. ବି. (ଦୃ ଧାତୁ=ବିଦୀର୍ଣ୍ଣ ହେବା + କର୍ତ୍ତୃ. ଉଣ + କ)—
Dāruṇaka ରୁଗ୍ଣ ରୋଗ, ମୁଣ୍ଡର ବାଳତଳର ଚମ ଶୁଖିଲା ଓ ଧଳା ହୋଇ ଝଡ଼ି ପଡ଼ିବା ରୋଗ (ହି ଶବ୍ଦସାଗର)—
Dandruff.

**ଦାରୁଣତା**—ସଂ.ବି.(ଦାରୁଣ+ଭାବେ. ତା)—ଦାରୁଣଭାବ;କଠୋରତା—
Dāruṇatā Harshness; cruelty.
(ଦାରୁଣତ୍ୱ—ଅନ୍ୟରୂପ)

**ଦାରୁଣା**—ସଂ. ବି. ସ୍ତ୍ରୀ. (ଦାରୁଣ+ଆ)—୧ । ବୈଶାଖ ଶୁକ୍ଳ ତୃତୀୟା;
Dāruṇā ଅକ୍ଷୟ ତୃତୀୟା—1. The third day of the bright fortnight of the month of Baisākha.
[ ଦ୍ର—ଏହା ଚନ୍ଦନଯାତ୍ରାର ପ୍ରଥମ ଦିନ । ]
୨ । ଦେବୀବିଶେଷ; ନର୍ମଦା ଖଣ୍ଡର ଅଧିଷ୍ଠାତ୍ରୀ ଦେବୀ—
2. Name of a Goddess.
ସଂ. ବିଣ. ସ୍ତ୍ରୀ—ଦାରୁଣର ସ୍ତ୍ରୀଲିଙ୍ଗ—
Feminine of Dāruṇa.
ଗ୍ରା. ବିଣ. (ସଂ. ଦାରୁଣ)—ଦାରୁଣ; କ୍ରୂର; କଷ୍ଟକର—Cruel
(ଯଥା—ସେ ଲୋକଟା ଦାରୁଣାଠାବ ।)

**ଦାରୁଣାରି**—ସଂ. ବି. (୬ଷ୍ଠୀ ତତ୍, ଦାରୁଣ=ରାକ୍ଷସ, କିମ୍ବା ମୁରାସୁରର
Dāruṇāri ଭାଇ+ଅରି)—ବିଷ୍ଣୁ (ହି. ଶବ୍ଦସାଗର)—Bishṇu.

**ଦାରୁଣ୍ୟ**—ସଂ. ବି. (ଦାରୁଣ+ଭାବେ. ଯ)—ଦାରୁଣଭାବ, କଠୋରତା—
Dāruṇya Harshness; cruelty.

**ଦାରୁ ଦହନ**—ସଂ. ବି. ( ୬ଷ୍ଠୀ ତତ୍; ଦାରୁ+ଦହନ )—ଦାବାନଳ
Dāru dahana (ଜ୍ଞାନେନ୍ଦ୍ର)—Forest conflagration.

**ଦାରୁ ନିଶା**—ସଂ. ବି.—ଦାରୁହଳଦୀ (ଦେଖ)
Dāru nisā Dāru haladī (See).
(ଦାରୁପୀତା—ଅନ୍ୟରୂପ)

**ଦାରୁପତ୍ରୀ**—ସଂ ବି.—ହିଙ୍ଗୁପତ୍ରୀ (ଦେଖ)
Dāru patrī Hiṅgupatrī (See)

**ଦାରୁ ପାତ୍ର**—ସଂ. ବି (୬ଷ୍ଠୀ ତତ୍, ଦାରୁପାତ୍ର)—କାଷ୍ଠପାତ୍ର, କାଠର ପାତ୍ର-
Dāru pātra A pot or utensil of wood.

**ଦାରୁ ପୁତ୍ରିକା**—ସଂ. ବି ସ୍ତ୍ରୀ (ଦାରୁ+ପୁତ୍ର+କ+ସ୍ତ୍ରୀ ଆ)—
Dāru putrikā ୧ । କାଠ ପିତୁଳା, କାଷ୍ଠର ପୁତ୍ତଳୀ—
1 Wooden image
୨ । କାଠ କଣ୍ଢେଇ—
2. Wooden doll.
ଦାରୁନର୍ତ୍ତକୀ, ଦାରୁନାରୀ, ଦାରୁଯୋଷିତ, ଦାରୁପୁତ୍ରୀ, ଦାରୁବଧୂ } ଅନ୍ୟରୂପ

**ଦାରୁ ଫଳ**—ସଂ. ବି. (ଦାରୁ ପରି କଠିନ ଫଳ)—ପିସ୍ତା—
Dāru phala — Pistachio.

**ଦାରୁ ବ୍ରହ୍ମ**—ଦେ. ବି. (ଦାରୁ ବା କାଠରେ ନିର୍ମିତ ଓ ବ୍ରହ୍ମ ସ୍ୱରୂପ)—
Dāru brahma ପୁରୀରେ ବିରାଜିତ ଜଗନ୍ନାଥ ମହାପ୍ରଭୁ—
दारुब्रह्म The wooden idol of Lord Jagannātha. of Puri.
(ଦାରୁମୂର୍ତ୍ତି, ଦାରୁରୂପ—ଅନ୍ୟରୂପ)

**ଦାରୁବ୍ରହ୍ମା**—ସଂ. ବି.—(ଦାରୁ ଜଗନ୍ନାଥ ମୂର୍ତ୍ତି+ବ୍ରହ୍ମନ୍=ସ୍ରଷ୍ଟା)—
Dārubrahmā ବିଶ୍ୱକର୍ମା (ଜ୍ଞାନେନ୍ଦ୍ର)—The heavenly architect of the Hindus.

**ଦାରୁଭୂତ**—ସଂ. ବିଣ. (ଦାରୁ+ଭୂତ=ପରିଣତ ବା ସ୍ୱରୂପ)—
Dārubhūta ୧ । କାଠ ପାଲଟି ଯାଇଥିବା—
1. Turned into wood
୨ । ସ୍ତମ୍ଭୀଭୂତ; କାଠପରି ନିଷ୍ପନ୍ଦ—
2. Skill and motionless.
୩ । ଅବାକ୍—3. Rendered speechless

**ଦାରୁଭୂତ ମୁରାରି**—ଦେ ବିଣ. (ସଂ. ଦାରୁଭୂତୋ ମୁରାରି=ବିଷ୍ଣୁ ଦାରୁ
Dārubhūta murāri ଭୂତ ହୋଇ ଅଛନ୍ତି, ଅର୍ଥାତ୍ ଜଗନ୍ନାଥଙ୍କ
(ଦାରୁଭୂତୋ ମୁରାରି—ଅନ୍ୟରୂପ) ମୂର୍ତ୍ତିରୂପେ କାଠ ପାଲଟି ଯାଇ ଅଛନ୍ତି)—୧ । କିଂକର୍ତ୍ତବ୍ୟବିମୂଢ଼—
1. Dumfounded; astonished.
୨ । କାଠରେ ପରିଣତ—2. Turned to wood
[ଦ୍ର—ଏହା କବିକଳ୍ପିତ ଶ୍ଳୋକର ଶେଷ ଧାଡ଼ିର ଶେଷ ଚରଣର ଶେଷ ଶବ୍ଦ ଦ୍ୱୟ:—ଏକା ଭାର୍ଯ୍ୟା ପ୍ରକୃତିମୁଖରା ଚଞ୍ଚଳା ଚ ଦ୍ୱିତୀୟା; ପୁତ୍ରୋପ୍ୟେକୋ ଭୁବନବିଜୟୀ ମନ୍ମଥୋ ଦୁର୍ନିବାରଃ; ଶେଷଃ ଶଯ୍ୟା ଶୟନ ମୁଦଧୌ ବାହନଂ ପନ୍ନଗାରିଃ; ସ୍ମାରଂସ୍ମାରଂ ସ୍ୱଗୃହଚରିତଂ ଦାରୁଭୂତୋ ମୁରାରିଃ ।]

**ଦାରୁମୟ**—ସଂ. ବିଣ. (ଦାରୁ+ବିକାରାର୍ଥେ. ମୟ)—କାଷ୍ଠମୟ; କାଷ୍ଠ
Dārumaya ନିର୍ମିତ—Made of wood, wooden.
(ଦାରୁମୟୀ—ସ୍ତ୍ରୀ)

**ଦାରୁମୁଷି**—ଦେ. ବି. (ସଂ. ଦାରୁବିଷ, ଦାରୁମୁଚ; ଦାରୁମୂଷା; ହି. ଶବ୍ଦ
Dārumushi ସାଗର)—ମିଠା ବିଷ; କାଠ ବିଷ; ଏକ ପ୍ରକାର
ସଂ. ବିଷା; ଅତିବିଷା; ଦାରୁମୁଚ, ଦାରୁବିଷ ସ୍ଥାବର ବିଷ; ମହୁର୍—
ଦାରୁମୂଷା; ଶୃଙ୍ଗୀ, ଅଶ୍ୱବିଷ, ଶଙ୍ଖବିଷ Aconite; Aconitum.
ତେ. ଚେଲ୍ଲି ପାଷାଣମୁ Hellebore; a kind of

ଅତିଷ, କାଠବିଷ, ମିଠାବିଷ vegetable poison used in
सामूलक्षार, आतईस medicine
[ଦ୍ର—ଏହା ହିମାଳୟ ପ୍ରଦେଶର ଉଦ୍ଭିଦବିଶେଷ; ଏହାର ଫଳ ବିଷାକ୍ତ । ଏହା ଔଷଧରେ ବ୍ୟବହୃତ ହୁଏ ।]
ଅତିବିଷା (ଦେଖ) Atibishā (See).

ଦାରୁ ଯନ୍ତ୍ର—ସଂ. ବି. (ଦାରୁ+ଯନ୍ତ୍ର; ମ. ପ. ଲୋ. କର୍ମଧା.)—
Dāru jantra ୧ । ଯନ୍ତ୍ରଚାଳିତ କାଷ୍ଠପୁତ୍ତଳି—1. Wooden doll or puppet moved by mechanism.
୨ । କାଷ୍ଠ ନିର୍ମିତ ଯନ୍ତ୍ର—2. Wooden machine.

ଦାରୁ ସାର—ସଂ. ବି.—୧ । ( ଦାରୁ=ମଧ୍ୟରେ ସାର=ଶ୍ରେଷ୍ଠ, ୭ମୀ
Dāru sāra ତତ୍) —ଚନ୍ଦନ—1. The sandal wood.
୨ । (ଦାରୁର ସାର=ସାରାଂଶ, ୬ଷ୍ଠୀ ତତ୍)—କାଠର ମଞ୍ଜ—
2. The marrow or the best and hardest part of some timber-tree. lying deep below the bark; heart-wood.

ଦାରୁ ସିତା—ସଂ. ବି—ଦାରୁଚିନି; ଡାଲଚିନି—
Dāru sitā Cinnamon bark

ଦାରୁ ହରିଦ୍ରା—ସଂ. ବି—ଦାରୁ ହଳଦୀ ( ଦେଖ )
Dāru haridrā Dāru haladi ( See )

ଦାରୁ ହଳଦୀ—ଦେ ବି. ( ସଂ. ଦାରୁହରିଦ୍ରା )—
Dāru haladi ପାର୍ବତ୍ୟ କଣ୍ଟକୀ କ୍ଷୁପବିଶେଷ—
ସଂ. ଦାର୍ବୀ, ପୀତଦାରୁ, କ୍ଳିତକମ୍ବୁ, Indian Berbery;
ଦାରୁହରିଦ୍ରା, ନିର୍ଦ୍ଦିଷ୍ଟା, କଟଙ୍କଟେରୀ, Berberis Aristata,
ସ୍ୱର୍ଣ୍ଣବର୍ଣ୍ଣ, କର୍ପୀତକ, ପୀତଦ୍ରୁ, Cascinium Fenestratum.
କାଲୀ(ଲେ)ୟକ, ପଚଂପଚ, ପର୍ଜନୀ, [ ଦ୍ର—ଏହା ପାର୍ବତ୍ୟ ନାତିଦୀର୍ଘ
କାଷ୍ଠା, ମର୍ମରୀ, ପୀତିକା, କାମିନୀ, ବୃକ୍ଷ; ହିମାଳୟର ପୂର୍ବ ଭାଗ,
ପର୍ଜନ୍ୟା, ପୀତା, ଦାରୁନିଶା, ଆସାମ, ପୂର୍ବବଙ୍ଗ, ଟେନାସେରିମ୍,
କାମବତୀ, ହେମକାନ୍ତୀ, ଦରଦ୍ରୁ, ନୀଲଗିରି, ସିମଲା ଓ ଲଙ୍କାର
दारुहल्द नାତି ଶୀତୋଷ୍ଣ ସ୍ଥାନରେ ଜନ୍ମେ ।
दारहल्दी, रसकित, कशमल ଏହା କଣ୍ଟକୀ; ଏହା ପତ୍ରଝଡ଼ା
ତେ. ମନ୍ନପସୁପୁ ହୁଏ ନାହିଁ । ଏହାର ଫଳ ଫଳା
ତା. ମରମଞ୍ଜିଲ ପାଣ୍ଡୁର ଓ କର୍କ ପର ଛିଦ୍ର ଯୁକ୍ତ ।
ଫା. ଦାରସ୍କେର୍ ଏହାର ଫଳ ତଳର ଭାଗମାନ
ଗୁ. ଦାରୁହଳଦର ହଳଦିଆ, ଡାଳ ଉଜ୍ଜ୍ୱଳ ଓ ଧୂସର ଲତାଳିଆ; ଫୁଲ ଫୋପା ହଳଦିଆ ମିଶା ନାଲି ଓ ସଫେଦ୍ । ଫୁଲ ପତ୍ର ଅପେକ୍ଷା ବଡ଼ । ଫୁଲ ପେନ୍ଥା ପେନ୍ଥା ହୋଇ ଫୁଟେ । ପତ୍ର ୨।୩ ଇଞ୍ଚ ଲମ୍ବ । ଫଳମାନ ନୀଳାଭ ଓ ସୁସ୍ୱାଦୁ । ଏଥିର ମୂଳର ଛାଲରୁ ଅତି ଉତ୍କୃଷ୍ଟ ହଳଦିଆ ରଙ୍ଗ ବାହାରେ । ଏହି ମୂଳର କ୍ୱାଥ ଜ୍ୱର, ଅର୍ଶ, ଚକ୍ଷୁରୋଗ, ଚର୍ମରୋଗ, ବ୍ରଣ, କଣ୍ଡୁ, ପାଣ୍ଡୁ, କ୍ଷତ, ଉଦରାମୟ ଇତ୍ୟାଦିରେ ଉପକାରୀ । ଏହା ତିନି ପ୍ରକାର—Berberis Aristata, Berberis Lycium, Berberis Asiatica ].

ଦାରୁ ହସ୍ତକ—ସଂ. ବି (୬ଷ୍ଠୀ ତତ୍)—୧ । କାଠର ଅଣଲ—
Dāru hastaka 1. A wooden spoon or ladle.
୨ । କାଠର ବେଣ୍ଟ—2. A wooden handle.

ଦାରୋଗା—ବୈଦେ. ବି ( ଫା. ଦାରୋଗା )—
Dāroga ୧ । ତତ୍ତ୍ୱାବଧାରକ କର୍ମଚାରୀ; କାମ
दारोग ତଦାରଖକାରୀ କର୍ମଚାରୀ; ସୁପରଭାଇଜର—
दारोगा 1 A superintendent; a supervising
( ଦାରୁଗା; ଦାରୁଗା—ଅନ୍ୟରୂପ ) officer; an overseer.
( ଯଥା—ଟିକସ ଦାରୋଗା; ଲୁଣର ବା ସଲ୍ଟ ଦାରୋଗା । )
୨ । ପୁଲିସ୍ ମୁନସୀ ବା ସବ୍‌ଇନ୍‌ସ୍‌ପେକ୍ଟରମାନଙ୍କ ଉପରସ୍ଥ କର୍ମଚାରୀ; ପୁଲିସ୍ ଇନ୍‌ସ୍‌ପେକ୍ଟର—
2. Police inspector
୩ । ପୁଲିସ ଥାନାର ଭାରପ୍ରାପ୍ତ ଉଚ୍ଚ କର୍ମଚାରୀ—
3. A police officer in charge of police station.

ଦାରୋଗା ଗିରି—ବୈଦେ.ବି. ( ଫା ) —ଦାରୋଗାଙ୍କ ପଦବୀ ବା କର୍ମ—
Dārogā giri The post or service of a Dārogā;
दारोगागिरि दारोगाई inspectorship.
( ଦାରୋଗାଇ, ଦାରୋଗେଇ—ଅନ୍ୟରୂପ )

ଦାରୋଗା ସାହେବ—ଦେ. ସମ୍ବୋଧନ ( ସମ୍ବୋଧନରେ ଦାରୋଗାଙ୍କ
Dārogā sāheba ପ୍ରତି ମାନ୍ୟାର୍ଥରେ ବ୍ୟବହୃତ )—ଦାରୋଗା
दारोगा साहिब ମହାଶୟ ।—Like the use of Mr. Inspector ( in addressing a Dārogā ).

ଦାର୍ଜିଲିଙ୍ଗ—ଦେ. ବି. ( ସ୍ଥାନର ନାମ ) ( ଏହି ସ୍ଥାନରେ ଥିବା ଦୁର୍ଜ୍ଜୟ
Dārjiling ଲିଙ୍ଗ ନାମକ ମହାଦେବଙ୍କ ନାମରୁ )—ହିମାଳୟର ଅଧିତ୍ୟକାରେ ଥିବା ଜିଲ୍ଲା ଓ ତନ୍ନାମକ ନଗର ( ଏ ନଗରରେ ବଙ୍ଗ ଲାଟଙ୍କ ଗ୍ରୀଷ୍ମବାସ ଅଛି)—
Darjeeling ( district and town ) at the foot of the Himalayas, containing the summer residence of the Governor of Bengal.

ଦାର୍ଢ୍ୟ—ସଂ. ବି. ( ଦୃଢ଼+ଭାବାର୍ଥେ ଯ )—୧ । ସ୍ଥୈର୍ଯ୍ୟ; ଦୃଢ଼ତା—
Dārrdhya 1. Firmness.
୨ । କାଠିନ୍ୟ; କଠିନତା—2. Hardness.
୩ । ଟାଣ; ଗଣ୍ଠି ଟାଣୁ ପଡ଼ିଥିବା—3. Tightness.
୪ । ଅଧ୍ୟବସାୟଯୁକ୍ତ—4. Persevering.

ଦାର୍ଢ୍ୟତା—ଦେ. ବି. ( ପ୍ରାଚୀନ ପଦ୍ୟ ) ( ସଂ. ଦାର୍ଢ୍ୟ )—ଦୃଢ଼ତା
Dārrdhyatā ଅଟଳତା; ଅଧ୍ୟବସାୟ—Perseverance; firmness; unflinching devotion.

ଦାର୍ଢ୍ୟ—ସଂ. ବି. ( ଦୃଢ଼+ଭାବାର୍ଥେ. ଯ )—୧ । ସ୍ଥିରତା—
Dārdhya 1. Firmness.
୨ । କଠିନତା—2. Hardness.

ଦାର୍ଢ୍ୟତା ଭକ୍ତି—ଦେ. ବି. ( ସଂ. ଦାର୍ଢ୍ୟ ସ୍ଥଳରେ ଅଶୁଦ୍ଧ ଦାର୍ଢ୍ୟତା+
Dārrdhyatā bhakti ଭକ୍ତି )—ରାମଦାସଙ୍କ କୃତ କେତେକ ଦୃଢ଼ ଭକ୍ତଙ୍କ କାହାଣୀ ସମ୍ବଳିତ ଓଡ଼ିଆ ପଦ୍ୟ ଗ୍ରନ୍ଥ; ଦାଢ୍ୟତା ଭକ୍ତି ( ଦେଖ )—Name of an Oriya poem containing the stories of some devotees; Dārdhyatā bhakti ( See ).

ଦାର୍ତ୍ତେୟ—ସ ବିଣ—ଚମଡ଼ା ନିର୍ମିତ ( ଗାଙ୍ଗୁଲି )—
Dārtteya Leathern; made of leather (Ganguly)

ଦାର୍ଦ୍ଦୁର—ସ. ବିଣ. ( ଦର୍ଦ୍ଦୁର+ସମ୍ବନ୍ଧାର୍ଥେ. ଅ )—ଦର୍ଦ୍ଦୁର ବା ବେଙ୍ଗ
Dārddura ସମ୍ବନ୍ଧୀୟ—Relating to frogs
ସ. ବି—୧ । ଏକପ୍ରକାର ଦକ୍ଷିଣାବର୍ତ୍ତ ଶଙ୍ଖ—
1. A kind of conch with its spiral
(ଦାଦୁର୍ର –ଅନ୍ୟରୂପ) diverging to the right hand side.
୨ । ଲାକ୍ଷା, ଲାଖ—2. Shell lac.
୩ । ଜଳ—3. Water.

ଦାଦୁର୍(ର୍ଦ୍ଦୁ)ରିକ—ସ ବି. (ଦାଦୁର୍ର+ଇକ)—କୁମ୍ଭାର (ହି. ଶବ୍ଦସାଗର)—
Dārdu(rddu)rika A potter

ଦାର୍ବ—ସ. ବିଣ. (ଦାରୁ+ବିକାରାର୍ଥେ. ଅ)—ଦାରୁନିର୍ମିତ; କାଷ୍ଠମୟ—
Dārba Wooden.
ସ. ବି—କାଶ୍ମୀରର ଅନ୍ତର୍ଗତ ପ୍ରାଚୀନ ପ୍ରଦେଶବିଶେଷ ( ହି. ଶବ୍ଦସାଗର )—Name of a province of ancient India in Kashmere.

ଦାର୍ବାଟ—ସ. ବି. ( ଦାରୁ=କାଷ୍ଠ+ଅଟ୍ ଧାତୁ=ଗମନ କରିବା+
Dārbāṭa ଅଧିକରଣ ଅ, କିମ୍ବା ଦର୍ବାଟ=ଦ୍ୱାରପାଳ+ଅ;
( ଦାବାଟ—ଅନ୍ୟରୂପ ) ଦ୍ୱାରପାଳଦ୍ୱାରା ରକ୍ଷିତ )—
୧ । ମନ୍ତ୍ରଣା କରିବାର ଗୃହ—A house of deliberation; council chamber ( guarded by sentries ).
[ ଦ୍ର—ଅଗୃଯ୍ୟ ଆପ୍ଟେଙ୍କ ମତରେ ଏ ଶବ୍ଦ ପାରସି ଭାଷାରୁ ଆଗତ; ହି. ଶବ୍ଦସାଗର ମତରେ ଦାବାଟ ଶବ୍ଦ ଫା. ଦର୍ବାର୍ ଶବ୍ଦରୁ ଆଗତ । ]
୨ । ଚିନ୍ତାଗୃହ ( ପ୍ରବୃଦ୍ଧବାଦ )—2. A room where a person retires to think out some matter undisturbed; retiring room.

ଦାର୍ବଣ୍ଡ—ସ ବି. (ବହୁବ୍ରୀହି; ଦାରୁ=କାଠ ଯାହାର ଚାଣ୍ଡିଆ ଅଣ୍ଡ ଯାହାର)—
Dārbaṇḍa ମୟୂର—Peacock.
( ଦାର୍ବଣ୍ଡୀ—ସ୍ତ୍ରୀ )

ଦାର୍ବାଘାଟ—ସ. ବି. ( ଦାରୁ=କାଠ+ଆ+ହନ୍ ଧାତୁ=ଆଘାତ
Dārbāghāṭa କରିବା+କର୍ତ୍ତୃ ଅ )—କାଠହଣା ପକ୍ଷୀ—
( ଦାବାଘାଟ—ଅନ୍ୟରୂପ ) The wood-pecker (bird).

ଦାର୍ବୀ - ସ. ବି. ସ୍ତ୍ରୀ. (ଦୃ ଧାତୁ=ବିଦୀର୍ଣ୍ଣ ହେବା+କର୍ତ୍ତୃ. ଅ+ସ୍ତ୍ରୀ ଈ)—
Dārbi ୧ । ଦାରୁହରିଦ୍ରା—1. Berberis Aristata.
୨ । ଦେବଦାରୁ ଗଛ—
2. The Deodar or cedar ( tree ).
୩ । ଗୋଜିହ୍ୱା ( ଗୁଳ୍ମ )—3. A wild plant.
୪ । ହରିଦ୍ରା; ହଳଦୀ—4 Turmeric.

ଦାର୍ଭ—ସ ବିଣ. ( ଦର୍ଭ+ବିକାରାର୍ଥେ. ଅ )—ଦର୍ଭ ବା କୁଶ ନିର୍ମିତ—
Dārbha Made of Dārbha or Kusa grass.

ଦାର୍ଶନିକ—ସ. ବିଣ. (ଦର୍ଶନ=ଶାସ୍ତ୍ର+ସମ୍ବନ୍ଧ ଓ ଜ୍ଞାନ ଅର୍ଥରେ. ଇକ)—
Dārśanika ୧ । ଦର୍ଶନ ଶାସ୍ତ୍ର ସମ୍ବନ୍ଧୀୟ—
1. Philosophical; metaphysical.
୨ । ଦର୍ଶନଶାସ୍ତ୍ରଜ୍ଞ; ଦର୍ଶନଶାସ୍ତ୍ରବେତ୍ତା—
2 Versed in philosophy.
ସ. ବି—ଦାର୍ଶନିକ ପଣ୍ଡିତ—
A metaphysician; philosopher.

ଦାର୍ଷଦ—ସ ବିଣ. ( ଦୃଷଦ=ପ୍ରସ୍ତର+ଭବାର୍ଥେ. ଅ )—
Dārshada ୧ । ପଥର ନିର୍ମିତ—1 Made of stone.
୨ । ପଥରରେ ଘୋର୍ ହୋଇଥିବା—
2. Ground on stone ( as by the mills ).
୩ । ପଥର ସମ୍ବନ୍ଧୀୟ—3. Relating to stone.
୪ । ପ୍ରସ୍ତରମୟ, ପ୍ରସ୍ତରବହୁଳ, ପଥୁରିଆ—4. Stony.

ଦାର୍ଷ୍ଟାନ୍ତ—ସ ବିଣ. ( ଦୃଷ୍ଟାନ୍ତ+ଅ )—ଦୃଷ୍ଟାନ୍ତଦ୍ୱାରା ବ୍ୟାଖ୍ୟାତ—
Dārshṭānta Explained or illustrated by examples.

ଦାର୍ଷ୍ଟାନ୍ତିକ—ସ. ବିଣ. ( ଦୃଷ୍ଟାନ୍ତ+ଯୁକ୍ତାର୍ଥେ. ଇକ )—
Dārshṭāntika ୧ । ଦୃଷ୍ଟାନ୍ତ ଘଟିତ—1. Illustrative; explained by examples or illustrations.
୨ । ଦୃଷ୍ଟାନ୍ତ ସମ୍ବନ୍ଧୀୟ—2. Relating to examples.
୩ । ଦୃଷ୍ଟାନ୍ତରୂପେ ବ୍ୟବହୃତ—
3. Examplary; treated as an example.
୪ । ଉପମେୟ—4. Comparable

ଦାଳ—ସ. ବି—୧ । (ଦଳ+ସମ୍ବନ୍ଧାର୍ଥେ. ଅ)—ଡାଳମହୁ; ଗଛଡାଳରେ
Dāḷa ମହୁମାଛିମାନେ ଯେଉଁ ମହୁ ସଞ୍ଚୟ କରନ୍ତି—
1. A kind of honey ( Apte ).
୨ । ( ଦଳ ଧାତୁ+ଭାବ. ଅ )—ଦଳନ; ଦଳିବା
2 Crushing.

ଦାଳନ—ସ. ବି—ଦାନ୍ତ ବିନ୍ଧା—
Dāḷana Tooth-ache ( Apte ).

ଦାଳବ—ସ. ବି—ଏକପ୍ରକାର ସ୍ଥାବର ବିଷ ( ହି. ଶବ୍ଦସାଗର )—
Dāḷaba A kind of vegetable poison.

ଦାଳା—ସ. ବି—ମହାକାଳ ଲତା ( ହି. ଶବ୍ଦସାଗର ) ( ଦେଖ )
Dāḷā Mahākāḷa creeper ( See )

ଦାଲି—ସ. ବି. ( ଦଳ+ଅ+ଇ )—୧ । ଡାଲି; ମୁଗ ଆଦିର ଡାଲି—
Dāli 1. Curry of split pease.
୨ । ଦେବଦାଲୀ ( ଦେଖ ) ( ହି. ଶବ୍ଦସାଗର )—
2. Debadāḷī ( See )
୩ । ଡାଳିମ୍ବ ( ଦେଖ ) ( ହି. ଶବ୍ଦସାଗର )—
3. Pomegranate.

ଦାଲି—ପ୍ରାଦେ. ( ସମ୍ବଲପୁର ) ବି. ( ସ. ଦ୍ୱିଦଳ; ସ. ଦାଲି ଭୁଲ. ଏହି ଅର୍ଥରେ ହି. ଦାଲ୍ )—
Dāli
୧ । ମୁଗ, ବିରି, ହରଡ଼, ମସୁର ଆଦିର ଛଅଣ—
1. Pulse; curry made of split pease.
୨ । ମହୁଲ ମଞ୍ଜିକୁ ଭାଙ୍ଗିଲେ ତାହା ଭିତରୁ ଯେଉଁ ଦୁଇଫାଳିଆ ଶସ ବାହାରେ—2. The split kernel inside the Mahwa seed

୩ । ଲଙ୍ଗଳମୁଣ୍ଡା; ଲଙ୍ଗଳ ତିଆର ହେବା ପାଇଁ ଦରହଣା
. କାଠମୁଣ୍ଡିଆ—3. Half-done log of wood for making plough

୪ । ଗୋରୁଙ୍କୁ କୁଣ୍ଡର ଅନ୍ଧ ଖୁଆଇବା ତମ—
4 In impervious wicker-work manger.

**ଦାଳମ**—ସ. ବି. ( ଦଲ୍ ଧାତୁ=ବିଦାରଣ କରିବା+କର୍ତ୍ତୃ ଇମ )—
Dālıma ଦାଡ଼ିମ ( ଦେଖ )—Dārdıma ( See )
( ଦାଳମୀ—ଅନ୍ୟରୂପ )

**ଦାଳମ୍ବ**—ଦେ. ବି. ( ସ. ଦାଳମ )— ଦାଡ଼ିମ ( ଦେଖ )
Dālımba Dārdima ( See )

**ଦାଳୁ**—ପ୍ରାଦେ. ( ଯାଜପୁର ) ବି—ମର୍କଟ ଦଳପତି; ଗୋଧ ମାକଡ଼;
Dālu ବୁଢା ମାକଡ଼—The leading male of a herd of monkeys

**ଦାଳୁଅ**—ଦେ. ବି. (ସ. ବୋର; ବୋରକ)—ଖରାଦିନେ ପାଣି ବହୁବା ଯାଗାରେ ଉତ୍ପାଦନ କରାଯିବା ଏକ ପ୍ରକାର ମୋଟ ଧାନ
Dālua ବୋରଧାନ, ବୋରୋଧାନ (ଧାନଉଲେ ନୋଟ ଦେଖ)—Spring-rice; marsh rice; summer paddy; paddy grown in marshy places in summer, Dhāna (See)
**ବୋରୋ**
(ଯଥା—ଏ ଧାନର ପ୍ରକାର ଯଥା—ପିଥିଆ; କାସୁଣ୍ଡା ।)

**ଦାଳୁ କନା(ନି)**—ଦେ. କ୍ରି. ବିଣ.—ଦୁଲୁ କନା; ଲଥୋ କନା, ଦୁଲ୍ ଶବ୍ଦ
Dālu kınā(ni) ଉତ୍ପାଦନ କରି (ଭୂମିରେ ପଡ଼ିବା)—
(to fall down) With a thud.

**ଦାଲ୍ମି**—ସ. ବି.—ଇନ୍ଦ୍ର (ହି. ଶବ୍ଦସାଗର)—
Dālmi God Indra.

**ଦାଶ୍ (ଧାତୁ)**—ସ—୧ । ବଧ କରିବା—
Dās (root) 1. To kill.
୨ । ଦାନ କରିବା— 2. To give.

**ଦାଶ**—ସ. ବି. ପୁଂ. (ଦାଶ୍ ଧାତୁ=ବଧ କରିବା, ଦାନ କରିବା+ ସଜ୍ଞାର୍ଥେ ଅ)—୧ । ଧୀବର; କେଉଟ—
Dāsa
(ଦାଶୀ—ସ୍ତ୍ରୀ) 1. Fisher-man.
[ଦ୍ର—ଦାଶ ବା କୈଶାଦ ପୁରୁଷ ଓ ଆୟୋଗବ ସ୍ତ୍ରୀ ଠାରୁ ଏ ଜାତି ଉତ୍ପନ୍ନ, ଏମାନେ ନୌକା ତିଆର କରନ୍ତି । (ହି. ଶବ୍ଦସାଗର)]
୨ । ଭୃତ୍ୟ—2. Servant.
୩ । (ଦାଶ୍ ଧାତୁ=ଦାନ କରିବା+ସମ୍ପ୍ରଦାନ. ଅ) ଦାନପାତ୍ର
3. A receiver of gifts.
ଦେ. ବି.—୧ । ବ୍ରାହ୍ମଣ ଓ ଶୂଦ୍ରଙ୍କ ବଂଶୋପାଧି ବିଶେଷ—
1. A family-title amongst Sūdras and Brāhmaṇas.
[ଏହା ବ୍ରାହ୍ମଣ, କରଣ, ଚଷା, ଗଉଡ଼ ଆଦିଙ୍କ ବଂଶୋପାଧି । ବ୍ରାହ୍ମଣମାନେ ଦାଶ ବୋଲି ଲେଖନ୍ତି ଏବଂ ଶୂଦ୍ରମାନେ ଦାସ ବୋଲି ଲେଖନ୍ତି । ]
(ଦାଶି, ଦାଶୁ—ଅନ୍ୟରୂପ) ୨ । (ଆଦରାର୍ଥକ) ଦାଶରଥି ନାମକ
(ଦାଶିଆ—ଅନାଦରାର୍ଥକ ରୂପ) ବ୍ୟକ୍ତିଙ୍କୁ ଡାକିବା ନାମ—
2. The name by which a person named Dāśarathi is addressed in fondness

**ଦାଶ କାଠି**—ପ୍ରାଦେ. (ଗଞ୍ଜାମ) ବି.—ସ୍ୱର ତାଳ; କାଠର ଦୁଇଖଣ୍ଡି
Dāśa kāṭhi ଝୁମୁକା ଲଗା ବାଦ୍ୟ ଯନ୍ତ୍ର—A pair of castanets or wooden clappers
[ ଦ୍ର—ଏ ଯୋଡ଼ିକୁ ଏକ ହାତରେ ଧରି ହାତକୁ ମୁଠାଇଲେ ଓ ମେଲା କଲେ ଏହା ବାଜେ ଏବଂ ଏହାର ବାଜିବା ତାଳ ଅନୁସାରେ ଗୀତ ବୋଲା ଯାଇ ଥାଏ । କେହି କେହି ଦୁଇ ହାତରେ ଦୁଇ ଯୋଡ଼ା ଦାଶକାଠି ଧରି ଏକ ସମୟରେ ତାଳ ଦେଇ ଗୀତ ବୋଲନ୍ତି ।]

**ଦାଶକାଠିଆ**—ପ୍ରାଦେ. ଗଞ୍ଜାମ) ବି.—ହାତରେ ଦାସକାଠି ବଜାଇ ଗୀତ
Dāśakāṭhia ବୋଲିବା କେତେକ ଜାତିର ଲୋକ—A class of people who earn their bread by playing music on the Dāśakāṭhi.
[ଦ୍ର—ଦାଶକାଠି ବଜାଇ ଦାଶକାଠିଆମାନେ ସଙ୍ଗୀତ, ଝୁଲା, ଚଉପଦୀ, ଚଉତିଶା, ଛାନ୍ଦ, ଆଦି ସବୁ ପ୍ରକାର ଗୀତ ବୋଲନ୍ତି । ସାଧାରଣତଃ ହାଡ଼ିଆ ବ୍ରାହ୍ମଣମାନେ ଦାଶକାଠି ବଜାନ୍ତି । ଅନ୍ୟାନ୍ୟ ଜାତିର ଲୋକଙ୍କୁ ମଧ୍ୟ ଦାଶକାଠି ବଜାଇବା ଦେଖାଯାଏ ।]

**ଦାଶନୀ**—ସ. ବିଣ. ( ଦଶନ+ସମ୍ବନ୍ଧାର୍ଥେ. ଅ+ସ୍ତ୍ରୀ. ଈ )—ଦଶନ
Dāśani ସମ୍ବନ୍ଧୀୟ; ଦନ୍ତ ସମ୍ବନ୍ଧୀୟ—
(ଦାଶନୀ - ସ୍ତ୍ରୀ) Pertaining to the teeth

**ଦାଶନୀ-ନୀତି**—ସ ବି.—( ଦାନ୍ତ ଯେଉଁପରି କଅଁଳ ପଦାର୍ଥକୁ
Dāśani-niti ଦଳେ ଓ ଜିଭକୁ ଦାବିବାକୁ ଚେଷ୍ଟା କରେ ସେହିପରି )—ସର୍ବଦା ଦୁର୍ବଳର ଅପକାର କରିବା ଉଦ୍ୟମ ବା ଧର୍ମ—Malevolence.
ପ୍ରବଳେ ସରଶୀ ନୀତି ଆଚରଣ, ଦାଶନୀ-ନୀତି ଦୁର୍ବଳେ ।
ରାଧାନାଥ. ପାର୍ବତୀ ।

**ଦାଶ ପୁର**—ସ. ବି. (ଷଷ୍ଠୀ ତତ୍; ଦାଶ+ପୁର)—କେଉଟ ସାହି—
Dāsa pura 1. A village of fishermen or boatmen.
୨ । କେଉଟିଆ ମୁଥା—
2 A large variety of bulbuous-rooted grass.

**ଦାଶରଥ**—ସ. ବି. ପୁଂ.—( ଦଶରଥ+ଅପତ୍ୟାର୍ଥେ. ଅ )—ଅଯୋଧ୍ୟାର
Dāśaratha ରାଜା ଦଶରଥଙ୍କ ପୁତ୍ର ରାମଚନ୍ଦ୍ର—
Rāmachandra, a son of Dasaratha.
ବିଣ.—ଦଶରଥ ସମ୍ବନ୍ଧୀୟ—
Pertaining to Dasaratha.

**ଦାଶରଥି**—ସ. ବି. ପୁଂ. ଓ ବିଣ – (ଦଶରଥ+ଅପତ୍ୟାର୍ଥେ. ଇ)—
Dāsarathi ଦାଶରଥ (ଦେଖ) —
Dāśaratha (See)

**ଦାଶରଥି ଦାସ**—ଦେ. ବି.—(ନାମ)—ଜଣେ ଉତ୍କଳୀୟ କବିଙ୍କର
Dāsarathi dāsa ନାମ—Name of an Oria poet.
[ଦ୍ର—ଏହାଙ୍କର ଜନ୍ମସ୍ଥାନ ପୁରୀଜିଲ୍ଲାର ବାଣପୁର । ଏ ଜାତିରେ ବ୍ରାହ୍ମଣ ଥିଲେ; 'ବ୍ରଜବିହାର' ନାମକ ପାରମାର୍ଥିକ ଗ୍ରନ୍ଥ ଏହାଙ୍କ ଦ୍ୱାରା ପ୍ରଣୀତ । ତାରିଣୀ. ଉତ୍କଳସାହିତ୍ୟର ଇତିହାସ ।]

ଦାଶରାତ୍ରିକ—ସଂ. ବିଣ. (ଦଶରାତ୍ର+ସମ୍ବନ୍ଧ ଓ କର୍ତ୍ତବ୍ୟାର୍ଥେ ଇକ)—
Dāśarātrika ୧ । ଦଶରାତ୍ରି ବ୍ୟାପୀ—1. Extending over a period of ten nights
୨ । ଦଶରାତ୍ର ସାଧ୍ୟ—
2. Performable in ten nights.

ଦାଶାର୍ଣ୍ଣ—ସ. ବ (ଦଶାର୍ଣ୍ଣ+ଅ)—୧ । ଦଶାର୍ଣ୍ଣ ଦେଶ—
Dāśārṇṇa 1 The country of Dasārṇṇa.
୨ । ଦଶାର୍ଣ୍ଣ ଦେଶବାସୀ ବ୍ୟକ୍ତି—
2. An inhabitant of Daśārṇṇa country.

ଦାଶାର୍ହ—ସ. ବିଣ (ଦଶାର୍ହ=ଯଦୁବଂଶ ବା ଦେଶବିଶେଷ+ସମ୍ବନ୍ଧ ବା
Dāśārha ଭବାର୍ଥେ. ଅ)—୧ । ଦଶାର୍ହ ଦେଶୀୟ—1. Appertaining to the country named Daśārha.
୨ । ଯଦୁବଂଶୀୟ—
2. Belonging to the race of the Jadus.
ବି—ଶ୍ରୀକୃଷ୍ଣ—Śrikṛushṇa.

ଦାଶାଶନ—ପ୍ରାଦେ (ଯାଜପୁର) ବି (ସ. ଦଶାଶ୍ୱମେଧ)—ଦଶାଶ୍ୱମେଧ ଘାଟ—
Dāśāśani Name of a holy bathing ghat of the Baitarani river in Jajpur

ଦାଶେୟ—ସ. ବିଣ (ଦାଶ+ଉତ୍ପନ୍ନାର୍ଥେ ଏୟ)—ଦାଶଠାରୁ ଉତ୍ପନ୍ନ—
Dāśeya Born of a boatman
(ଦାଶେୟୀ—ସ୍ତ୍ରୀ) ସ ବି—ଧୀବରପୁତ୍ର—Son of a boatman.

ଦାଶେର—ସ. ବି (ଦାଶୀ+ଏର)—ଧୀବରୀ ପୁତ୍ର (ହି. ଶବ୍ଦସାଗର)—
Dāśera Son of a fisher woman.

ଦାଶେରକ—ସ. ବ (ନାମ)—୧ । ମାଳବଦେଶ; ମାରୱାଡ଼ ଦେଶ—
Dāśeraka 1. The country of Mālaba or Marwar
୨ । ମାଳବଦେଶୀୟ ଲୋକ—
2. An inhabitant of Malwa.
୩ । ମରୁଦେଶ ( ହି. ଶବ୍ଦସାଗର )—
3. Desert country.

ଦାଶ୍ୱ—ସ. ବିଣ. ପୁଂ (ଦାଶ୍ ଧାତୁ=ଦାନ କରିବା+ଶୀଳାର୍ଥେ. ବ)—
Dāśwa ଦାନଶୀଳ—Munificent; bounteous.

ଦାସ୍ (ଧାତୁ)—ସ.—ଦାନ କରିବା—
Dās (root) To give.

ଦାସ—ସ. ବି. ପୁଂ ( ଦାସ୍ ଧାତୁ=ଦାନ କରିବା+ସମ୍ପ୍ରଦାନାର୍ଥେ. ଅ;
Dāsa ଯେ ଆପଣାକୁ ଅନ୍ୟର ସେବାରେ ଦେଇଅଛି)—
(ଦାସୀ—ସ୍ତ୍ରୀ) ୧ । ସେବକ, ଭୃତ୍ୟ; ଚାକର—1 Servant.
୨ । କ୍ରୀତ ଦାସ—2. Slave—
୩ । ଶୂଦ୍ର—3. A Śūdra
୪ । ଧୀବର—4. A fisherman.
୫ । ଅନୁଗତ ଜନ—5. A dependant.
୬ । ଶୂଦ୍ରର କୌଳିକ ଉପାଧି—
6. A family title of Śūdras.
୭ । ଦସ୍ୟୁ—7. A low caste of non-aryans.
୮ । ବୃତ୍ରାସୁର—8. The demon Brutra.
୯ । ଆତ୍ମଜ୍ଞାନୀ ବ୍ୟକ୍ତି (ହି. ଶବ୍ଦସାଗର)—
9 A philosopher.
[ଦ୍ର—ମନୁରେ ୭ ପ୍ରକାର ଓ ନାରଦଆଦି ସ୍ମୃତିରେ ୧୫ ପ୍ରକାର ଦାସଙ୍କର ଉଲ୍ଲେଖ ଅଛି—୧. ଗୃହଜାତ, ୨. କ୍ରୀତ, ୩. ଦାୟ ପ୍ରାପ୍ତ, ୪. ଅନାକାଳଭୃତ (ଦୁର୍ଭିକ୍ଷ ସମୟରେ ପାଳିତ), ୫. ଅହିତ (ଥରେ ଧନ ନେଇ ଯେ ସେବାଦ୍ୱାରା ତାହା ଶୁଝେ), ୬. ଋଣଦାସ, ୭. ଯୁଦ୍ଧଦାସ ( ଯୁଦ୍ଧରେ ପ୍ରାପ୍ତ ), ୮. ବାଜି ବା ଜୁଆରେ ଯାହାକୁ ଜିଣା ହୋଇଥାଏ, ୯. ସ୍ୱୟଂ ଉପଗତ; ୧୦ ପ୍ରବ୍ରଜ୍ୟାବସିତ (ଗୃହ ତ୍ୟାଗ କରି ଦାସବୃତ୍ତି ଅବଲମ୍ବନକାରୀ), ୧୧. କୃତଦାସ (କିଛିକାଳ ପାଇଁ ସ୍ୱଇଚ୍ଛାରେ ସେବାକର୍ମକାରୀ); ୧୨. ଭକ୍ତଦାସ; ୧୩. ବଡ଼ବାହୃତ (ଦାସୀକୁ ବିବାହ କରିବା ଯୋଗୁଁ ଦାସୀର ପ୍ରଭୁଙ୍କ ଠାରେ ଯେ ଦାସତ୍ୱ ସ୍ୱୀକାର କରେ); ୧୪. ଲବ୍ଧଦାସ (ଅନ୍ୟଠାରୁ ପ୍ରାପ୍ତ) ଓ ୧୫. ଆତ୍ମବିକ୍ରେତା । ସ୍ମୃତି ଅନୁସାରେ ବ୍ରାହ୍ମଣ ଦାସବୃତ୍ତି କରି ନ ପାରେ; କ୍ଷତ୍ରିୟ ଓ ବୈଶ୍ୟ ଇଚ୍ଛା କଲେ ଦାସବୃତ୍ତି କରିବେ; ଶୂଦ୍ର କଦାପି ଦାସତ୍ୱରୁ ମୁକ୍ତ ହୋଇ ନ ପାରେ—ହି. ଶବ୍ଦସାଗର ।]
ଦେ. ବି—ଦାସ (ଦେଖ)—Dāsa (See).

ଦାସ କେରେଣ୍ଟା—ଦେ ବି. (ସ. ଦାସୀ; ଦାସିକା; କୁରୁଣ୍ଟକ; ବଜ୍ରଦନ୍ତୀ)
Dāsa kerenṭā ଔଷଧ ଗୁଳ୍ମବିଶେଷ; ଝିଣ୍ଟି ( ଦେଖ )
ଦାସ କରଣ୍ଟା }
ଦାସ କେଣ୍ଟେ } ଅନ୍ୟରୂପ A medicinal plant; Jhinṭi ( See ); Barbria
କାଁଟାଝିଣ୍ଟି, କାଁଟାଦାନ୍ତୀ, ଝିଣ୍ଟି Priomties.
କ.ସରେୟା [ ଦ୍ର—ଏହା କଣ୍ଟକୀ ଗୁଳ୍ମ । ଏହାର ଫୁଲ ହଳଦିଆ ଓ ମୂଳ ଗେରଣ୍ଟା ଓ ରସ କ୍ଷୁଦ୍ରଧଣ୍ଡି । ଏହାର ପୁଷ୍ପ ବର୍ଣ୍ଣଭେଦରେ ୪ ପ୍ରକାର ଯଥା—ଶ୍ୱେତପୁଷ୍ପ ଦାସକେରେଣ୍ଟା ସ. ସୈରେୟକ, ନୀଳପୁଷ୍ପ ଦାସକେରେଣ୍ଟା ସ. ଆର୍ତ୍ତଗଳ ଓ ଦାସୀ, ପୀତପୁଷ୍ପ ଦାସ କେରେଣ୍ଟା ସ କୁରୁଣ୍ଟକ; କଙ୍କିରାତ, ରକ୍ତପୁଷ୍ପ ଦାସକେରେଣ୍ଟା ସ. କୁରୁବକ ( ଦ୍ରବ୍ୟଗୁଣ କଳ୍ପଦ୍ରୁମ । ) ]

ଦାସ ଚଇନ ବାଜପେୟୀ—ଦେ. ବି—ଉତ୍କଳର ଜଣେ ପ୍ରସିଦ୍ଧ ସ୍ମୃତିକାର—
Dāsa chaini bājapei Name of a celebrated Oria
(ଦାସ ଚଇନି ବାଜପେୟୀ—ଅନ୍ୟରୂପ) Lawgiver, the author of Suddbichandrikā.
ଏହାଙ୍କ ଦ୍ୱାରା 'ଶୁଦ୍ଧି ଚନ୍ଦ୍ରିକା' ପ୍ରଣୀତ ହୋଇଅଛି ।
ଜଗବନ୍ଧୁ · ପ୍ରାଚୀନ ଉତ୍କଳ ।

ଦାସତ୍ୱ—ସ. ବି. ( ଦାସ+ଭାବ. ତ୍ୱ )—
Dāsatwa ୧ । ଭୃତ୍ୟର ଅବସ୍ଥା; ଦାସ ବୃତ୍ତି—
(ଦାସତା—ଅନ୍ୟରୂପ) 1. Servitute.
୨ । ଗୋଲାମୀ—2 Slavery; bondage.
୩ । ଚାକରୀ; ସେବା ବୃତ୍ତି—3 Service.

ଦାସ ନନ୍ଦିନୀ—ସ. ବି. ସ୍ତ୍ରୀ. ( ୬ଷ୍ଠୀ ତତ୍; ଦାସ+ନନ୍ଦିନୀ )—
Dāsa nandini ବ୍ୟାସ ମାତା ସତ୍ୟବତୀ—
A name of Byāsa's mother.

ଦାସ ମନୋଭାବ—ସ. ବି. ( ଆଧୁନିକ ବ୍ୟବହାର )—
Dāsa manobhāba ଦାସସୁଲଭ ପରାଧୀନତାଯୁକ୍ତ ମନୋଭାବ—
Slave mentality.

ଦାସରାଜ—ସଂ. ବି. ( ଦାସ+ରାଜନ୍; ୬ଷ୍ଠୀ ତତ୍ )—
Dāsarāja ଧୀବରରାଜ; ବ୍ୟାସମାତା ସତ୍ୟବତୀଙ୍କ ପିତା (ମହାଭାରତୋକ୍ତ)—Name of a King of fishermen; father of Satyabati who was the mother of Byāsa ( Mahābhārata ).

ଦାସାନୁଦାସ—ସଂ. ବି. ( ୬ଷ୍ଠୀ ତତ୍; ଦାସର ଅନୁଦାସ; ଗୁରୁଜନ ଓ Dāsānudāsa ଶ୍ରେଷ୍ଠ ବ୍ୟକ୍ତିଙ୍କଠାରେ ନମ୍ରତା ଓ ଶିଷ୍ଟତା ଦେଖାଇବା ପାଇଁ ନିଜ ସମ୍ବନ୍ଧେ ବ୍ୟବହୃତ ଶବ୍ଦ )—ଭୃତ୍ୟର ଭୃତ୍ୟ—A servant of one's servant.

ଦାସିକା—ସଂ. ବି. ସ୍ତ୍ରୀ. ( ଦାସୀ+ସ୍ୱାର୍ଥେ. କ+ସ୍ତ୍ରୀ. ଆ )—
Dāsikā ୧ । ଭୃତ୍ୟା; ଚାକରାଣୀ; ସେବାକାରିଣୀ—
1. A maid servant.
୨ । ପୋଇଲୀ; ରକ୍ଷିତା ସ୍ତ୍ରୀ—
2. A kept woman; a concubine.
୩ । ଶୂଦ୍ରା—3 A Śūdra woman.
୪ । ଧୀବରୀ; କେଉଟୁଣୀ—4. A fisher woman.
୫ । ନୀଳାମ୍ଲାନ (ହି. ଶବ୍ଦସାଗର) ନୀଳ ବାଣ ଫୁଲ ଓ ଗଛ—
5. Nīlabāṇa flower and tree.
୬ । କାକଜଂଘା (ଦେଖ)—6. Kākajamghā (See)
୭ । ଦାସକେରେଣ୍ଟା ( ଦେଖ )
7. Dāsa kerenṭā ( See )
୮ । ବେଦୀ—8. Pulpit; a raised alter.

ଦାସୀ—ସଂ. ବି. ସ୍ତ୍ରୀ. ( ଦାସ+ସ୍ତ୍ରୀ. ଈ )—
Dāsī ୧ । ଦାସିକା ( ଦେଖ )—1. Dāsikā ( See )
୨ । ଦାସର ସ୍ତ୍ରୀଲିଙ୍ଗ ରୂପ—
2. Feminine form of Dāsa.
ପ୍ରାଦେ. (ବାଲେଶ୍ୱର) ବି. ସ୍ତ୍ରୀ.—କାଳେଶୀ; ଠାକୁରାଣୀ ଯେଉଁ ସ୍ତ୍ରୀଠାରେ ବିଜେ କରନ୍ତି—A woman who is possessed by the spirit of a Diety.

ଦାସୀ ପରିବାରି—ଦେ. ବି. ( ସହଚର )—
Dāsī paribāri ୧ । ପୋଇଲି ଓ ରକ୍ଷିତା ସ୍ତ୍ରୀ—
दासीपरिवारी; दासी लौंडि 1. Maid servant and concubine.
ଦାସୀ ଚାକରାଣୀ } ଅନ୍ୟରୂପ
ଦାସୀ ପୋଇଲି }
ଦାସୀ ପରିବାରି ଯୋଗି ହେବେ ନାଶଯାଇ । ପ୍ରାଚୀ ଶ୍ରୀଗୁରୁଭକ୍ତିଗୀତା ।
୨ । ବହୁ ସଂଖ୍ୟକ ଦାସୀ—2. A bevy of maid-servants.

ଦାସୀ ପୁଅ—ଦେ. ବି—(ସଂ. ଦାସୀପୁତ୍ର)—୧ । ଦାସୀ ଅଙ୍ଗର ପୁଅ; Dāsī pua ଦାସୀ ଜନ୍ମ କରିଥିବା ପୁଅ—1. A son born of a दासीपुत्र; लौंडीबच्चा maid servant.
୨ । ରକ୍ଷିତା ସ୍ତ୍ରୀର ଗର୍ଭଜାତ ସନ୍ତାନ—2. The son of a concubine.

ଦାସେୟ—ସଂ.ବି. ପୁଂ (ଦାସ+ଅପତ୍ୟାର୍ଥେ ଏୟ —୧ । ଚାକର; ଭୃତ୍ୟ—
Dāseya 1. A servant.
୨ । ଧୀବର—2. A fisherman.
୩ । ଦାସୀପୁତ୍ର; ଗୋଲାମ—3. Son of a female slave
(ଦାସେୟୀ—ସ୍ତ୍ରୀ)—ସଂ. ବିଣ. ପୁଂ—୧ । (ଦାସୀ+ଅପତ୍ୟାର୍ଥେ, ଏୟ+ସ୍ତ୍ରୀ. ଈ)—ଦାସୀ ବା ରକ୍ଷିତା ସ୍ତ୍ରୀଠାରୁ ଉତ୍ପନ୍ନ; ପୋଇଲା—1. Born of a slave girl or concubine.
୨ । (ଦାସ+ଅପତ୍ୟାର୍ଥେ ଏୟ)—ଧୀବର ଔରସ ଜାତ—
2. Born of a fisherman.

ଦାସେୟୀ—ସଂ. ବି. ସ୍ତ୍ରୀ ( ଦାସ+ଏୟ+ସ୍ତ୍ରୀ. ଈ )—ଦାସରାଜକନ୍ୟା
Dāseyī ସତ୍ୟବତୀ; ବ୍ୟାସଙ୍କ ମାତା—Satyabatī, the mother of Byāsa.
ବି ଓ ବିଣ—ଦାସେୟର ସ୍ତ୍ରୀଲିଙ୍ଗ—Feminine of Dāseya.

ଦାସେର—ସଂ. ବି (ଦାସ+ଏର)—୧ । ଦାସ—1 Slave
Dāsera ୨ । ( ଦାସୀ+ଏର ) ଦାସୀପୁତ୍ର—2. Son of a female slave or concubine.
୩ । ଉଷ୍ଟ୍ର; ଓଟ—3. Camel.
୪ । ଧୀବର—4. Boatman; fisherman.

ଦାସେରକ—ସଂ. ବି (ଦାସ+ଏର+କ)—ଦାସେର (ଦେଖ)
Dāseraka Dāsera (See).
ଦାସେରକ ଅଶ୍ୱା କରୁ ଉଲ୍ଲଳ
ଶ୍ରେବାଉନ୍ନ-ଗ୍ରୀବା ଟେକ ନମ୍ରପଳ—ରାଧାନାଥ. ନନ୍ଦକେଶରୀ ।

ଦାସ୍ତ—ବୈଦେ. ବି—୧ । (ଫା. ଦସ୍ତ୍)—ମଳତ୍ୟାଗ; ଝାଡ଼ା—
Dāsta 1. Motion of the bowels; stool.
दस्त ୨ । ( ଫା ଦାସ୍ତ୍ )—ପାଳନ; ପୋଷଣ; ଦେଖାଶୁଣା.
दस्त ଶୁଶ୍ରୂଷା—Maintenance; care.
दास्त दास्त

ଦାସ୍ତାନ—ବୈଦେ. ବି ( ଫା )—୧ । ବିବରଣ; ବୃତ୍ତାନ୍ତ; ବର୍ଣ୍ଣନା;
Dāstāna ହାଲ୍—1. Description.
ଗୋପାଳ ମୋହର କାହିଁକେ ପାଇବାର ଦାସ୍ତାନ ସବୁ କହୁଛ ।
ଫକୀରମୋହନ. ଗଳ୍ପସ୍ୱଳ୍ପ ।

ଦାସ୍ୟ—ସଂ. ବି (ଦାସ+ଭାବାର୍ଥେ. ଯ)—୧ । ଗୋଲାମି; ପରାଧୀନତା—
Dāsya 1. Slavery; condition of a servant; bondage; servitude
୨ । ସେବା; ନୌକରୀ—2. Service.
[ ଦ୍ର—ନବଧାଭକ୍ତି ମଧ୍ୟରୁ ଦାସ୍ୟ ଏକତମ; ଏହା ପ୍ରଭୁଙ୍କ ଅଙ୍ଗସେବା ଆଦି ଅଟେ । ]

ଦାସ୍ୟ ଭକ୍ତି—ସଂ. ବି—ଭକ୍ତ ଦାସ ବା ଭୃତ୍ୟଭାବରେ ଉପାସ୍ୟ
Dāsya bhakti ଦେବତାଙ୍କୁ ଯେଉଁ ଭକ୍ତି କରେ—
Devotion shown to one's Deity or idol by rendering personal service.

ଦାସ୍ୟ ଭାବ—ସଂ. ବି—୧ । ପ୍ରଭୁଙ୍କ ପ୍ରତି ଭୃତ୍ୟର ଅନୁରାଗ ବା ଭକ୍ତି—
Dāsya bhāba 1. Devotion of a servant to his master.
୨ । ଦାସ୍ୟ (ଦେଖ) —2. Dāsya (See).

ଦାସ୍ୟମାନ— ସଂ ବିଣ.—[ଦା ଧାତୁ+ଭବିଷ୍ୟତ୍ ବୋଧକାର୍ଥ ଅନ (ଶାନଚ୍)]— ଯାହା ଭବିଷ୍ୟତ୍‌ରେ ଦିଆଯିବ—
Dāsyamāna
That which is to be given away.

ଦାସ୍ର— ସଂ. ବି.—ଅଶ୍ୱିନୀ ନକ୍ଷତ୍ର (ହି. ଶବ୍ଦସାଗର)—
Dāsra The first lunar mansion in Hindu astrology

ଦାହ— ସଂ. ବି. (ଦହ୍ ଧାତୁ=ଦଗ୍ଧ କରିବା+ଭାବ. ଅ) —୧ । ଜାଳିବା; ଭସ୍ମୀକରଣ; ପୋଡ଼ିବା, ଦହନ—
Dāha
1 Burning; conflagration.
୨ । ଦେହାଂଶରେ ବା ବ୍ରଣାଦିରେ ଅଗ୍ନି ପ୍ରୟୋଗ—
2. Cauterization.
୩ । ଦେହର ପୋଡ଼ାଜଳା ରୋଗ—
3. A disease causing burning sensation in the body; inflammation.
[ଦ୍ର— ଏହା ପିତ୍ତ ପ୍ରକୋପରୁ ହୁଏ, ଏଥିରେ ତୃଷ୍ଣା ଶୋଷ କରେ ଓ କଣ୍ଠ ଶୁଖି ଯାଏ—ହି. ଶବ୍ଦସାଗର । ଏଥିରେ ପାଦର ତଳପା ଓ କରତଳ ବେଶି ପୋଡ଼ାଜଳା କରେ ।]
୪ । ଜ୍ୱର—4 Fever
୫ । ଜ୍ୱରଜନିତ ଦେହର ଉତ୍ତାପବୃଦ୍ଧି—5. The rise of temperature of the body, due to fever.
୬ । ତାପ, ସନ୍ତାପ—6. Heat.
୭ । ଆନ୍ତରିକ ବେଦନା, ଶୋକ; ମନୋଦୁଃଖ—
7. Sorrow; grief.
୮ । ଶବକୁ ପୋଡ଼ିବା; ଶବଦାହ—
8. Cremation, burning of a dead body.
ଦେ. ବିଣ—ଦଗ୍ଧ; ପୋଡ଼ା— Burnt; calcined.
ଦାହ ସ୍ୱର୍ଣ୍ଣ ଶରୀର, ପାର୍ଶ୍ୱେଣ ଘେନନ୍ତି କର
ମୁନିଙ୍କ କରେ ସେ ଦେଲେ, ଅଦୃଶ୍ୟ ହେଲେ ।
ବିଶ୍ୱନାଥ, ବିଚିତ୍ରରାମାୟଣ ।

ଦାହକ—ସଂ. ବିଣ. ପୁଂ. କ୍ଲୀ. (ଦହ୍ ଧାତୁ+କର୍ତ୍ତୃ. ଅକ)—
Dāhaka ୧ । ଯେ ଲୋକଙ୍କ ଘରଆଦି ପୋଡ଼ି ଦିଏ—
(ଦାହିକା—ସ୍ତ୍ରୀ) 1. Incendiary; guilty of setting houses etc on fire.
ଦାହକତା } ବି. ୨ । ଦାହକଶକ୍ତି, ଯାହା କୌଣସି ବସ୍ତୁକୁ ଦଗ୍ଧକରେ—
ଦାହକତ୍ୱ }
2 Burning; setting fire to.
୩ । ଯାହା ଜଳାପୋଡ଼ା ଉତ୍ପାଦନ କରେ—
3. Inflammatory; producing a burning sensation.
ବି—୧ । ଯେଉଁ ସ୍ୱଜାତୀୟ ବ୍ୟକ୍ତିମାନେ ମୃତବ୍ୟକ୍ତିର ଶବକୁ ପୋଡ଼ିବାକୁ ନିଅନ୍ତି, ମଡ଼ାସାଙ୍ଗିଆ ଭାଇ; ଶବକୁ ସତ୍କାର କରିବାକୁ ନେବା ବ୍ୟକ୍ତିଗଣ—1. Relatives who carry and cremate the dead body of a person; corpse-carriers; corpse-bearers.
୨ । ଚିତକ; ଚିତାଗଛ – 2. A medicinal plant; the Leadwort.
୩ । ନାଲିଚିତା ଗୁଳ୍ମ—3 The red variety of Leadwort
୪ । ଅଗ୍ନି (ହି. ଶବ୍ଦସାଗର)—4. Fire

ଦାହ କର୍ମ— ସଂ. ବି—ଶବଦାହ କାର୍ଯ୍ୟ—
Dāha karma Cremation
(ଦାହକ୍ରିୟା—ଅନ୍ୟରୂପ)

ଦାହକ ସର୍ପ—ଦେ. ବି ( ସ. ଦାହକ+ସର୍ପ )—ବଙ୍ଗଦେଶର ସୁନ୍ଦର-
Dāhaka sarpa ବଣରେ ଦେଖାଯିବା ଏକପ୍ରକାର ସାପ (ଏମାନଙ୍କର ଦଂଶନ କଥା ଦୂରେ ଥାଉ, ଏମାନଙ୍କ ଶରୀର ଯେଉଁ ଗଛ ବା ଘାସ ଆଦିରେ ଲାଗେ ତାହା ପୋଡ଼ିଯାଏ)—
A kind of very poisonous snake found in the Sunderbans of Bengal, the touch of whose body burns or withers trees, plants and grass.

ଦାହ କାଷ୍ଠ—ସ ବି. ( ମ ପ. ଲୋ; ଦାହାର୍ଥ ବ୍ୟବହୃତ କାଷ୍ଠ)—ଦାହା-
Dāha kāshtha ଗୁରୁ; ଅଗର, ଏକପ୍ରକାର କାଷ୍ଠ ଯାହାର ଧୂପ ଖୁବ୍ ସୁଗନ୍ଧ—A kind of wood which produces sweet-smelling smoke on fumigation; Agalochia; aloes wood.

ଦାହଘ୍ନ— ସ. ବିଣ ( ଦାହ+ହନ୍ ଧାତୁ+କର୍ତ୍ତୃ. ଅ )—
Dāhaghna ୧ । ଯାହା ଶରୀରର ପ୍ରଦାହ ନାଶ କରେ—
1 That which cools inflammation.
୨ । ଜ୍ୱରନାଶକ ( ଗାଙ୍ଗୁଲି )—2. Febrifuge.

ଦାହ ଜ୍ୱର—ସ. ବି. (ଦାହ+ଜ୍ୱର; ଦାହପ୍ରଧାନ ଜ୍ୱର; ମ. ପ. ଲୋ)—
Dāha jwara ଯେଉଁ ଜ୍ୱରରେ ଦେହ ପୋଡ଼ାଜଳା କରେ—
Fever attended with inflammation or burning sensation in the body; inflammatory fever.

ଦାହ ଦେବା—ଦେ. କ୍ରି—( ଦେହ ) ପୋଡ଼ା ଜଳା କରିବା—
Dāha debā To have a burning sensation.
দাহ করা ଚନ୍ଦନକନ ଦେହ ଦେଖ ଯେ ଥିବ ଦାହ ତନିକ ପ୍ରଭଞ୍ଜନ
डाह देना, दहना ବହିଲେ ଗୋ—କବିସୂର୍ଯ୍ୟ. ସଙ୍ଗୀତ ।

ଦାହନ—ସ. ବି. ( ଦହ୍ ଧାତୁ ଣିଚ୍ ଦାହି ଧାତୁ+ଭାବ. ଅନ )—
Dāhana ୧ । ପୋଡ଼ି ଦେବା; ଜଳାଇବା; ପ୍ରଜ୍ୱାଳନ—
1. Burning; setting fire to a thing.
୨ । ସନ୍ତାପନ—2. Inflaming.

ଦାହ ନିବାରଣ—ସ. ବି. ଓ ବିଣ— ଦାହ ହରଣ ( ଦେଖ )
Dāha nibāraṇa Dāha haraṇa ( See )
( ଦାହ ପ୍ରଶମନ—ଅନ୍ୟରୂପ )

ଦାହବାହ—ସ. ବିଣ. ( ଦାହ+ବହ୍ ଧାତୁ+କର୍ତ୍ତୃ. ଅ )—ଦାହାର୍ଥ
Dāhabāha ଶବକୁ ଶ୍ମଶାନକୁ ବହି ନେବା ( ବ୍ୟକ୍ତି ); ମୁର୍ଦ୍ଦାର-କଢ଼ା ( ଲୋକ ); ମଡ଼ାସାଙ୍ଗିଆ ( ଲୋକ )—
(persons) Carrying of the dead body for cremation.

ଦାହମୟ—ସଂ. ବିଣ. ( ଦାହ + ମୟ )—ପ୍ରଦାହଯୁକ୍ତ—
Dāhamaya Having inflammation.

ଦାହସର—ସଂ. ବି ( ଦାହ + ସୃ ଧାତୁ ଗମନ କରିବା + କର୍ମି. ଅ; ଯେଉଁ
Dahasara ସ୍ଥାନକୁ ଶବଦାହ କରିବାକୁ ଲୋକେ ଯାଆନ୍ତି )—
ଶବଦାହ ସ୍ଥାନ; ଶ୍ମଶାନ; ମଶାଣି—
Cremation-ground; crematory.

ଦାହସ୍ଥଳ—ସଂ. ବି. ( ଦାହ + ସ୍ଥଳ; ୬ଷ୍ଠୀ ତତ୍ )—ଦାହସର (ଦେଖ)
Dāha sthala Dāhasara ( See )

ଦାହ ହରଣ—ସଂ. ବି – ୧ । ( ବହୁବ୍ରୀହି; ଦାହ + ହରଣ; ଯାହାଦ୍ୱାରା
Dāha haraṇa ଶରୀରର ଦାହ ନିବାରିତ ହୁଏ)—ବେଣାଚେର –
1. The root of Beṇā grass.
୨ । (୬ଷ୍ଠୀ ତତ୍) ଦେହର ପୋଡ଼ାଜଳା ନିବାରଣ—
2. Abatement of burning sensation.
ବିଣ—ଦାହ ନିବାରକ—
Assuaging inflammation.

ଦାହା— ଦେ. ବି. ( ସଂ. ଦହନ )—୧ । ଦହନ—
Dāhā 1. Burning.
ଜ୍ୱାଳା ବାନର ଲଙ୍କା କରୁଛି ଦାହା
ଡାହ ବାରୁ ଦଇବ ନ କରେ କାହା—ବିଶ୍ୱନାଥ. ବିଚିତ୍ରରାମାୟଣ ।
୨ । ଶରୀରର ପ୍ରଦାହ —
2. Burning sensation of the body.

ଦାହାଗୁରୁ— ସଂ. ବି— ଦାହ କାଷ୍ଠ ( ଦେଖ )
Dāhāguru Dāha kāshṭha ( See )

ଦାହି ( ଧାତୁ )—ସଂ. ( ଦହ୍ ଧାତୁ ଣିଜନ୍ତ )—୧ । ଜଳାଇବା—
Dāhi ( root ) 1. To cause to burn.
୨ । ପୋଡ଼ିବା; ନିଆଁ ଲଗାଇବା—
2. To set fire to.
୩ । ଭସ୍ମ କରିବା—3. To reduce to ashes.

ଦାହିକା ସଂ. ବିଣ. ସ୍ତ୍ରୀ. ( ଦାହକ + ସ୍ତ୍ରୀ. ଆ )—ଦାହକର ସ୍ତ୍ରୀଲିଙ୍ଗ—
Dāhikā Feminine of Dāhaka.
ଦେ. ବି—ଦାଇକା ( ଦେଖ )—Dāikā ( See )

ଦାହିକା ଶକ୍ତି—ସଂ. ବି. ( ଦାହିକା + ଶକ୍ତି; କର୍ମଧା )—
Dāhikā śakti ୧ । ସହଜରେ ନିଆଁ ଲାଗିବାର ଶକ୍ତି—
1. Inflammability.
( ଯଥା—ପେଟ୍ରୋଲର ଦାହିକା ଶକ୍ତି ଅଛି । )
୨ । ଅନ୍ୟ ବସ୍ତୁକୁ ପୋଡ଼ିବାର ଗୁଣ—
2. Attribute of burning any other thing.
( ଯଥା—ଅଗ୍ନିର ଦାହିକା ଶକ୍ତି ଅଛି । )

ଦାହିତ—ସଂ. ବିଣ. ( ଦାହି ଧାତୁ + କର୍ମି. ତ )—ଭସ୍ମୀଭୂତ; ଜ୍ୱାଳିତ—
Dāhita Reduced to ashes; burnt down.

ଦାହିବା—ଦେ. କ୍ରି. ( ସଂ. ଦହ୍ ଧାତୁ )— ୧ । ପୋଡ଼ିଯିବା; ଅଗ୍ନିରେ
Dāhibā ଦଗ୍ଧ ହେବା—1. To be burnt.
ଦାହା ୨ । ପୋଡ଼ାଜଳା କରିବା—
[illegible] 2. To be inflamed.
୩ । ( ସଂ. ଦାହି ଧାତୁ ) ପୋଡ଼ିଦେବା; ଜଳାଇବା—
3. To burn.
୪ । ( ସଂ. ଦୋ ଧାତୁ; ଯହିଁରୁ ଦାବ ଶବ୍ଦ ହୋଇଅଛି )
ଧାନ ଆଦି ଫସଲ କାଟିବା—4. To harvest.
୫ । (ଲକ୍ଷଣାର୍ଥ) ତପସ୍ୟା ଆଦି କରି ସଫଳ ବା ସିଦ୍ଧ ହେବା—
5. ( figurative ) To succeed in one's own object after performing austerities.
ଶାବକ ମୃଗାକ୍ଷୀ କେତେ ଜନ୍ମ ତପେ ଦାହିଲା
ଶମ୍ବାସୁରମଣି ଶାମଭଜ, ମନ ମୋହିଲା—କବିସୂର୍ଯ୍ୟ ରତ୍ନାକରଚଉତିଶା ।
୬ । ନିଜର କର୍ମଫଳ ଭୋଗ କରିବା 6. To reap the fruits of one's own actions or fate
୭ । (ପୁଣ୍ୟ) ଅର୍ଜନ କରିବା—7. To earn (piety).
ନାନାପ୍ରକାରେ ପୁଣ୍ୟ ଦାହି । ଯେ ସବୁ କୃଷ୍ଣେ ସମର୍ପଇ—
ଜଗନ୍ନାଥ. ଭାଗବତ ।
୮ । କରିବା; ସାଧିବା—8. To do; to perform.
ଧର୍ମେ ପାଳନ କର ମନ୍ତ୍ରୀ
ବିଷ୍ଣୁଙ୍କୁ ପୂଜ ଯଜ୍ଞ ଦାହି । ଜଗନ୍ନାଥ. ଭାଗବତ ।
୯ । ସ୍ନାନ କରିବା – 2. To bathe.
ବାଞ୍ଛାବନ୍ତ ଭଲେ ଚଉ ସ୍ୱର୍ଗାନ୍ତ କ ଘେନ ଭ୍ରାତ ମନାଧି କାମ୍ୟକ ତୀର୍ଥେ ଦାହି ।
ଉପେନ୍ଦ୍ର ଭଞ୍ଜ, ବୈଦେହୀଶବିଳାସ ।

ଦାହୀ—ସଂ. ବିଣ. ପୁଂ. (ଦହ୍ ଧାତୁ ଣିଚ୍, ଦାହି ଧାତୁ + ଇନ୍, ୧ମା.୧ବ)—
Dāhī ୧ । ଦହନକାରୀ; ଦଗ୍ଧକାରୀ—
(ଦାହିନୀ—ସ୍ତ୍ରୀ) 1. Incendiary; burning.
୨ । ଦାହଜନକ—2. Producing inflammation; inflammatory.

ଦାହ୍ୟ—ସଂ ବିଣ. ( ଦହ ଧାତୁ ଣିଚ୍, ଦାହି ଧାତୁ + କର୍ମି. ଯ )—
Dāhya ୧ । ଦହନ ଯୋଗ୍ୟ; ପୋଡ଼ା ଯିବାର ଯୋଗ୍ୟ—
1. Fit to be burnt.
୨ । ଦାହ୍ୟୋଦ୍ଦୀପକ; ଯହିଁରେ ସହଜରେ ନିଆଁ ଧରେ—
2. Combustible; inflammable.

ଦ୍ୱି—ଦେ. ବିଣ. ( ସଂ. ଦ୍ୱି )—
Di ୧ । ଦୁଇ ସଂଖ୍ୟକ—1. Numbering two.
ଦ୍ୱଇ, ଦୁଇ } ଅନ୍ୟରୂପ (ଯଥା—ଦ୍ୱି ହଳ ବଳଦ, ଦ୍ୱି ନାବରେ ଗୋଡ଼ ଦେବା । )
ଦୁ ୨ । ଅଳ୍ପ ସଂଖ୍ୟକ—2. A few in number
ଦୌ ଦେ. ବି. ( ସଂ. ଦ୍ୱି )—ଦୁଇ ସଂଖ୍ୟା—Two.
ପ୍ରାଦେ. (ସମ୍ବଲପୁର) ଅ. (ସଂ. ଦିକ୍) (ଦ୍ୱିତୀୟା ଓ ସପ୍ତମୀ ବିଭକ୍ତି-ସୂଚକ ଚିହ୍ନ, ଅନ୍ୟ ସମ୍ବନ୍ଧ ପଦ ସଙ୍ଗେ ଲାଗେ; ଯଥା—ମୋର ଦ୍ୱି; ଆମର ଦ୍ୱି)—୧ । କୁ—1. To
୨ । ପାଖକୁ; ନିକଟକୁ—2. Near.
( ଯଥା— ମୋର ଦ୍ୱି ଆ = ମୋ ପାଖକୁ ଆ । )
୩ । ଦିଗରେ—3. In the direction of.
୪ । ଆଡ଼େ; ଆଡ଼କୁ—4. Towards.
( ଯଥା—ମୋ ଦ୍ୱି ଏଁଠ୍ରାଇ କରି କାଏଁ ଯେ ଦେଖୁଛୁ ବେ = ମୋର ଆଡ଼କୁ ତରାଟି କରି କାହିଁକି ଚାହିଁଛୁ ରେ । )

୫ । ଅଞ୍ଚଳରେ—5. In the quarter of.

( ଯଥା—ମୋର ଦ ଘୀ ନାଇ ମିଳେ=ଆମ ଅଞ୍ଚଳରେ ଘିଅ ମିଳେ ନାହିଁ । )

**ଦଅ**—ଦେ. କି. [ ସଂ. ଦା ଧାତୁ ; ଓଡ଼ିଆ ଦେବା କ୍ରିୟାର ଅନୁଜ୍ଞା, ମଧ୍ୟମ ପୁରୁଷ, ଆଦରାର୍ଥ ଏକ ବଚନ ( ତୁମ୍ଭେ ) ଓ ବହୁବଚନ (ତୁମ୍ଭେମାନେ) କର୍ତ୍ତା ସଙ୍ଗେ ଯୁକ୍ତ ଆକାର ]—
Dia
ଦାଓ
दो

୧ । (ତୁମେ ବା ତୁମ୍ଭେମାନେ) ଦାନ କର—
1. (you) Do give.

୨ । [ଦା ଧାତୁର କ୍ରିୟାପ୍ରବୃତ୍ତି ବର୍ତ୍ତମାନ କାଳ, ମଧ୍ୟମ ପୁରୁଷ, ଆଦରାର୍ଥ ଏକ ବଚନ (ତୁମ୍ଭେ) ଓ ବହୁବଚନ (ତୁମ୍ଭେମାନେ) ରେ ବ୍ୟବହୃତ ଆକାର ]—
(ତୁମ୍ଭେ ବା ତୁମ୍ଭେମାନେ) ଦେଇ ଥାଅ—
1. (you) Are in the habit of giving.

ଦେ. ଅ— ୧ । ଗୁଲ୍, ପୂର୍ତ୍ତି କର; କାର୍ଯ୍ୟ ଶେଷ କର—
1. Be up; now; well.

୨ । ଏ କଥା ଥାଉ; ଛାଡ଼ ସେ କଥା—
2. Now to other matters; let us drop the matter for the present.

( ଯଥା—ଦୁଇ ଜଣ କଥାବାର୍ତ୍ତା ହେଉ ହେଉ ଜଣେ ଯିବା ପାଇଁ ଛୁଟି କହେ 'ଦଅ ! ଆଜ ଏତିକି ଥାଉ, କାଲି ପୁଣି ଭେଟ ହେଲେ କଥା ଭାଷା ହେବ । ଦଅ ! ସେ ଗପରୁ କଅଣ ମିଳିବ ?' )

**ଦଅଁ**—ଦେ. ବ. ( ସଂ. ଦେବ, ପ୍ରା. ଦଅଁ )—
Diañ
ଦେଓ, ଦେବ
देउ

୧ । ଠାକୁର; ଦେବତା—1. Deity; Divinity.
ଯାହା ମାଗିଲେ ଦଅଁ ପୂଜ
ସେ କଥା ଅଇଲେଁ ମୁଁ ଦେଲିଁ । ଜଗନ୍ନାଥ. ଭାଗବତ ।

୨ । ପରମେଶ୍ୱର, ଭଗବାନ୍—2. God

୩ । ଦେବତାଙ୍କ ମୂର୍ତ୍ତି—3 Idol; image of a Deity.

**ଦଅଁ କରିବା**—ଦେ. କି ( ସଂ. ଦେବ+କୃ ଧାତୁ )—
Diañ kariba
କୌଣସି ବ୍ୟକ୍ତିଙ୍କୁ ଦେବତା ପରି ପୂଜା କରିବା—
To deify a person; to make a God of; to worship a person as a Deity.

ଦଅଁ ପରି କରିବା, ଦଅଁ ପରି ମୁଣ୍ଡା(ଣ୍ଡେ)ଇବା, ଦଅଁ କରି ମୁଣ୍ଡା(ଣ୍ଡେ)ଇବା } ଅନ୍ୟରୂପ

ଦେବତାକରେ ମାନା
देवता करके मानना

**ଦଅଁ ଘର**—ଦେ. ବ. ( ସ. ଦେବ+ଗୃହ )—ଠାକୁର ଘର—
Diañ ghara
A house where images of Deities are kept & worshipped
ଠାକୁବବାଡ଼ି
ठाकुरबाड़ि

**ଦଅଁ ଦେବତା**—ଦେ. ବ. ( ସଂ. ଦେବ+ଦେବତା )—
Diañ debata
(ଏକାର୍ଥବୋଧକ ସହଚର ଶବ୍ଦଦ୍ୱୟ) ଠାକୁରମାନେ-
Idols; Deities.
ठाकुरदेवता
ଦଅଁ ଦେବତା ପକ ହୋ ବୋଇଲେ । ପ୍ରାଚୀ. ପରବେ ଗୀତା ।

**ଦଅଁ ଫିଅଁ**—ଦେ. ବ. (ନିରର୍ଥକ ଦ୍ୱିତୀୟ ସହଚର ଶବ୍ଦ; ଦଅଁ ଶବ୍ଦ ସଙ୍ଗେ ଧ୍ୱନ୍ୟନୁକାରୀ ଫିଅଁ ଶବ୍ଦର ଯୋଗ; ତୁଲ. ଘିଅ ଫିଅ)—
Diañ phiañ
ଦେବତା ଟେବତା
ठाकुर ठकुर

୧ । ଠାକୁରମାନେ—1. Idols; Deities.

୨ । ଦେବତା ଆଦ—2. Deites etc.

( ଯଥା—ଆମେ ତୁମ ହିନ୍ଦୁଙ୍କ ଦଅଁ ଫିଅଁଙ୍କୁ ମାନୁଁ ନାହିଁ । )

**ଦଅଣି**—ଦେ. ବ. ( ସଂ. ଦ୍ୱି+ଆନକ )—
Diani
ଦୁଇ ଅଣାର ମୁଦ୍ରା; ଦୋଅଣୀ—
ଦୁଆନି
दोअन्नी
A two anna piece, two anna bit

**ଦଅର**—ଦେ. ବ. ( ସଂ. ଦେବର )—ସ୍ୱାମୀଙ୍କ ସାନ ଭାଇ—
Diara
Husband's younger brother
ଦେଓବ
देवर

[ ଦ୍ର—ବଡ଼ ଭାଇଙ୍କ ସ୍ତ୍ରୀଙ୍କୁ ଭାଉଜ ଓ ସ୍ୱାମୀଙ୍କ ବଡ଼ ଭାଇଙ୍କୁ ଦେଢଶୁର ବୋଲାଯାଏ, ଦଅରଙ୍କ ସ୍ତ୍ରୀଙ୍କୁ ସାନ ଜାଆ ଓ ଦେଢଶୁରଙ୍କ ସ୍ତ୍ରୀଙ୍କୁ ବଡ଼ ଜାଆ ବୋଲି ଯାଏ । ]

**ଦଆ**—ଦେ. ଵଣ ( ସଂ. ଦା ଧାତୁ )—
Dia
ଦେଓୟା
दिआहुआ

୧ । ( ସଂ. ଦତ୍ତ ) ଦତ୍ତ; ପ୍ରଦତ୍ତ—
1. Given; bestowed.
ବୈଦ୍ୟଙ୍କୁ ଯାଗ ଭାଗ କେବେ ଦଆ ନାହିଁ ।
କୃଷ୍ଣସିଂହ. ମହାଭାରତ ।

ଦୟାଲ
दयाल

୨ । ( ସଂ. ଦୟାଳୁ ) ଦୟାଳୁ; ଦୟାଶୀଳ—
ଦିଲଦାବିଆ
2. Kind-hearted.

देनहार, दिलदरिया

୩ । (ସଂ. ଦାତା) ଦାନଶୀଳ; ମୁକ୍ତହସ୍ତ—
3. Liberal; bounteous.

(ଯଥା—ସେ ଯୁ ଦଆ ଲୋକ, ତା କଥା କହିଲେ ନ ସରେ । )

ଦେଓଆ
देना

ବ— ୧ । ଦେବା—1. Giving.
(ଯଥା—ସେ ବେଶ୍ ଦଆ କଥା କରେ ।)

ଦାତା
देनेवाला

୨ । ଦେବାବାଲା ବ୍ୟକ୍ତି; ଦାତା—
2. Giver; a doner
ଦଅଙ୍କୁ ଦଅ, ଅଦଅଙ୍କୁ ଦୁଆରଦଅ । ଢଗ ।

**ଦଆଁପୋକ**—ପ୍ରାଦେ. (ସମ୍ବଲପୁର ଭୁଲ ହି. ଦୀମକ୍; ଫା. ଦୀମକ୍)—
Diañpoka
ଉଆଁ (ଦେଖ); ଉଇ—
Diañ (See); White ant.

**ଦଆଇବା**—ଦେ. କି. (ସ. ଦା ଧାତୁ ଣିଚ ଦାପି ଧାତୁ ; ଦେବା କ୍ରିୟାର ଣିଜନ୍ତରୂପ)—ଅନ୍ୟଦ୍ୱାରା ଦେବା କ୍ରିୟା କରିବା—
Diaiba
ଦେଓୟାନ
दिलाना
To cause (another) to give; to cause to be given.
ଦ୍ୱିଜଗଣେ ଉତ୍ତମ ଦଆଇ ଦଆଅ । କୃଷ୍ଣସିଂହ. ମହାଭାରତ ସଭା ।

**ଦଆକ୍**—ଦେ ଅ. ( ହିନ୍ଦୀରୁ ଅନୁକୃତ)—(ଅମୁକ) ଦ୍ୱାରା ପ୍ରଦତ୍ତ; (ଅମୁକର) ମାରଫତରେ ପ୍ରଦତ୍ତ—Paid through.
Diak
(ଦଆକେ—ଅନ୍ୟରୂପ) (ଯଥା—ଦଆକ୍ ରାମହରି ମିଶ୍ର=ରାମହରି ମିଶ୍ରଙ୍କଦ୍ୱାରା ଦତ୍ତ ।)
ମାବଫତ୍
दिआके

[ ଦ୍ର—ଏଥିର ସାଙ୍କେତିକ 'ଦ' ଲମ୍ବା କରଣୀ 'ଧ୍ର' ଲେଖାଯାଏ । ଯଥା—ଖଜଣା 'ଦ' ରାମହରି ମିଶ୍ର; ଏ ତମସୁକର ସୁଧ 'ଧ୍ର' ଖାତକଙ୍କ ପୁଅ ଗୋପାଳ ହୋତା । ]

**ଦଆକ୍ ଖୋଦ୍**—ବୈଦେ. ଅ. (ହିନ୍ଦୀରୁ ଅନୁକୃତ)—ନିଜେ ଦେବା; ସ୍ୱୟଂ ଦେଇଥିବା—Paid by one's-self.
Diak khod

ଦଆକ୍ ନିଜ, ଦଆକେ ଖୋଦ୍, ଦଆକ୍(କେ)ଆପ୍(ପେ), ଦଆକ୍(କେ) ସ୍ୱୟଂ } ଅନ୍ୟରୂପ

(ଯଥା—ଏ ତମସୁକର ସୁଧ ଭରଣାକୁ ଦଆକ୍ ଖୋଦ୍ ଖାତକ ।)

[ ଦ୍ର—ଏଥିର ସାଙ୍କେତିକ 'ଦ ଖୋଦ୍' । ]

ମାବଫତ୍ ଖୁଦ
दिआके खुद

ଦଆ ଦେଇ—ଦେ ବି—୧ । ପରସ୍ପରଙ୍କୁ ଦେବା—
Dia dei 1. Mutual giving.
୨ । ନାନା ବସ୍ତୁ ଦେବା—
2. Giving of many things.
୩ । ବହୁବାର ଦେବା—3. Giving several times.

ଦଆନ—ଦେ. ବି—ଦେୱାନ (ଦେଖ)
Diana Dewana (See)

ଦଆନି—ଦେ. ବି ଓ ବିଣ—ଦେୱାନି (ଦେଖ)
Diani Dewani (See)

ଦଆ ନିଆ—ଦେ. ବି. (ସଂ. ଦା ଧାତୁ ଓ ନୀ ଧାତୁ)—
Dia nia ୧ । ଦେବା ଓ ନେବା; ଆଦାନ ଓ ପ୍ରଦାନ—
ଦେଓୟା ଲଓୟା 1. Giving and taking; exchange.
देनालेना ୨ । କାରବାର—2. Transaction.

ଦଆ ପଣ—ଦେ. ବି. (ବ୍ୟଙ୍ଗ)—ଦାତାପଣ; ଦାତୃତ୍ୱ; ଦାନଶୀଳତା—
Dia pana (ironical) Liberality; bounteousness.
(ଦଆଳୁ ପଣ—ଅନ୍ୟରୂପ) ଦଆପଣକୁ, ଓଃାର ନଉଛ କଥବଣକୁ । ଡଗ ।
দ্যাতাপন दातापन

ଦଆର—ବୈଦେ. ବି (ଫା. ଦୟାର୍=ପ୍ରଦେଶ)—ନଈର ଧାର ଘୁଞ୍ଚିଯିବା
Diara ଯୋଗୁଁ ନଈକୂଳରେ ଯେଉଁ କୃଷିଯୋଗ୍ୟ ଜମି ଉତ୍ପନ୍ନ
दियारा ହୁଏ—Land newly formed by the bed of a river receding from the old course

ଦଆଲ୍—ଦେ. ବି. (ଅ. ଦବାଲ୍)—ଦେବାଲ୍; କାନ୍ଥ; ଦେୱାଲ୍ (ଦେଖ)
Dial Wall; Dewal (See)
দেওয়াল दिवाल

ଦଆଲ୍‌ଗିରି—ଦେ· ବି—ଦେୱାଲ୍‌ଗିରି (ଦେଖ)
Dial-giri Dewal-giri (See)

ଦଆଲି—ଦେ. ବି. (ସଂ. ଦୀପାବଳୀ)—କାର୍ତ୍ତିକ ଅମାବାସ୍ୟା—
Diali The new moon of the month of Karttika.
(ଦୟାଲୀ—ଅନ୍ୟରୂପ) ଆରେ ଛତଗ । ଦଣଗ ଗଲ; ଦଆଲ ଚଲେ
দেওয়ালী, দিবালি ବାଜ ଉହ୍ନଗଲ ବାଲସାଗର । (କଟକ ସହର ପ୍ରବଚନ)
दिवाली

ଦଆଲିଆ—ଦେ. ବି ଓ ବିଣ—ଦେୱାଲିଆ (ଦେଖ)
Dialia Dewalia (See)

ଦଆଳୁ—ଦେବି. ଣ. (ସଂ. ଦା ଧାତୁ ; ଦାନଶୀଳ)—୧ । ଦାନଶୀଳ—
Dialu 1 Munificent; liberal; bounteous
दिवैया, दिवाल ୨ । ଦାତା—2. Giving; bestowing a gift
୩ । (ସଂ. ଦୟାଳୁ; ଦୟାଶୀଳ)—ଦୟାଶୀଳ—
3. Kind-hearted.

ଦଆଶି—ପ୍ରାଦେ. (ବାଲେଶ୍ୱର) ବି. (ସଂ. ଦେବାଂଶ)—ସବଜ୍ଞ; ଭବିଷ୍ୟଦ୍-
Diasi ବକ୍ତା; ଚୋର ଯାଇଥିବା ବା ହଜି ଯାଇଥିବା ବସ୍ତୁପ୍ରରେ ଓ
ଭବିଷ୍ୟତ୍ ସମ୍ବନ୍ଧେ ଯେ ଓର ବତାଏ—
A fore-teller; prophet
ଦୁଃଶୀଲ୍କୁ ସୁଖ ହେଲେ ସେ ଦଆଶି ଦୁଆରକୁ ଯାଏ । ଡଗ ।
[ ଦ୍ର—ଦଆଶି ଘରକୁ ପ୍ରଶ୍ନ ପଚାରିବାକୁ ଯିବା ଲୋକ ଦଆଶି ଙ୍କି ସିଧା ଓ ଗୁଆ ନେଇ କରି ଯାଏ । ]

ଦଆଶଲା(ଲେ)ଇ—ଦେ. ବି. (ସଂ. ଦୀପ ଓ ଶଳାକା)—୧ । ଡଆସିଲି,
Diasala le,i ନିଆଁକାଠି, ଗନ୍ଧକାଦ ଲିପ୍ତ କ୍ଷୁଦ୍ରକ କାଠି—
ଦଆଶିଲି(ଲେ)ଇ } ଅନ୍ୟରୂପ 1 Match-stick.
ଦଆଶିଲି } ୨ । ନିଆଁପେଡ଼ି, ନିଆଁକାଠି ଥିବା
দেসলাই, দিয়াশলাই ବାକ୍ସ—2. Match box.
दियासलाइ

ଦଆଶଲାଇ କାଠି—ଦେ. ବି. (ସଂ ଦୀପଶଳାକା+କାଷ୍ଠ)—ନିଆଁକାଠି,
Diasalai kathi ଯେଉଁ କାଠିକୁ ଘଷିଦେଲେ ଜଳି ଉଠେ –
(ଦଆସିଲାଇ କାଛି—ଅନ୍ୟରୂପ) Match-stick
দিআশলাই কাঠী, দিআকাঠী, দেকাঠী दियासलाइ

ଦଆଶଲାଇ ପେଡ଼ି—ଦେ. ବି. (ସଂ. ଦୀପଶଲାକା+ପେଟିକା)—
Diasalai perdi ଯେଉଁ କାଠ ବା ଧାତୁମୟ ବାକ୍ସରେ ଦଆଶଲାଇ
ଦଆଶଲାଇ ବାକସ } କାଠି ସୁରକ୍ଷିତ ଭରିତ ହୋଇଥାଏ
ଦଆଶଲାଇ ବାକ୍ସ } ଅନ୍ୟରୂପ ଓ ଯାହାର କାନ୍ଥିରେ କାଠିର ମୁଣ୍ଡିକୁ
ଦଆଶଲାଇ ଡବା(ବ୍ବା) } ଘଷିଲେ ତାହା ଜଳି ଉଠେ—
দিআশলাইএর বাকস दिआसलाइ डिबिया Match box.

ଦଆଶଲାଇ ମାରିବା—ଦେ. କ୍ରି.—୧ । ଅଗ୍ନି ଲଗାଇବା ପାଇଁ
Diasalai mariba ଦଆସିଲି କାଠିକୁ ଘଷିବା—
শলাই মাবা 1 To rub a match-stick for lighting.
दियासलाईं घीसना ୨ । ଦଆଶଲାଇ କାଠିକୁ ଦଆଶଲାଇ ପେଡ଼ିର
ଦଆଶିଲାଇ ଘଷିବା } କାନ୍ଥିରେ ଘଷି ନିଆଁ ବା
ଦଆଶିଲାଇ ଜାଳିବା } ଅନ୍ୟରୂପ ଅଗ୍ନି କରିବା—2. To
ଦଆଶିଲାଇ ଲଗା(ଗେ)ଇବା } make a light by striking a match.

ଦଇ 'ଇତ୍ୟାଦି'—ଦି (ଇତ୍ୟାଦି) (ଦେଖ)
Di e (etc) Di (etc) (See)

ଦଉଛି—ଦେ. ବି. ସ୍ତ୍ରୀ (ସଂ. ଦ୍ୱିବତ୍ସା)—ଯେଉଁ ସ୍ତ୍ରୀର ଦୁଇ ଗୋଟି
Diuchhi ସନ୍ତାନ ଜନ୍ମ ହୋଇ ପରେ ଆଉ ଗର୍ଭ ହୁଏ ନାହିଁ—
A woman who ceases gestation after giving birth to two children only.

ଦଉଡ଼ି—ଦେ. ବି.—ଦିହୁଡ଼ି (ଦେଖ)
Diurdi Dihurdi (See)

ଦଉଡ଼ିଆ—ଦେ ବି.—ଦିହୁଡ଼ିଆ (ଦେଖ)
Diurdia Dihurdia (See)

ଦି ଉତର ଶଏ(ହେ)—ଦେ. ବି. ଓ ବିଣ—(ସଂ. ଦ୍ୱି+ଉତ୍ତର+ଶତ)
Di utara-sae(he) ଏକଶତ ଦୁଇ—
दिम् करसो একশ দুই One hundred and two.

ଦଓଠା—(ଅନାଦରାର୍ଥେ)—ଦେ. ବି. ଓ ବିଣ—୧ । ଦୁଇଗୋଟି ମାତ୍ର—
Diotha 1. Two only.
দুটা, দুটো ୨ । ଗଣ୍ଡିଏ; ଅଳ୍ପମାତ୍ର—
दोठार 2. A little; a few in number.
(ଦୁଇଠା, ଦଉଠା—ଅନ୍ୟରୂପ) (ଦଓଟି; ଦୋଓଟି—ଆଦରାର୍ଥକ)

ଦଓଟି—(ଆଦରାର୍ଥେ)—ଦେ. ବି. ଓ ବିଣ—ଦଓଠା (ଦେଖ)
Dioti Diotha (See)
দুটি दोठो

ଦିକ୍—ସ. ବି. [ଦିଶ୍ ଧାତୁ=(ଅବକାଶ) ଦାନ କରିବା+କର୍ମ. କ୍ୱିପ୍]
Dik ଦିଶ୍ ଶବ୍ଦ; ୧ମା. ୧ବ.)—୧। ପୂର୍ବାଦି ଦିଗ—
1 Quarters of the earth.

[ଦ୍ର—ପୂର୍ବ, ପଶ୍ଚିମ, ଉତ୍ତର, ଦକ୍ଷିଣ ଏହି ୪ଟି ଦିଗ ଓ ଅଗ୍ନି ବାୟୁ, ନୈର୍ଋତ ଓ ଐଶାନ୍ୟ, ଏହି ୪ଟି ବିଦିକ୍ ବା ଦିକ୍କୋଣ ଏବଂ ଊର୍ଦ୍ଧ୍ୱ ଓ ନିମ୍ନ, ଏରୂପେ ୧୦ଟି କୁ ଦିକ୍ ବା ଦିଗ ବୋଲାଯାଏ, ସୂର୍ଯ୍ୟଙ୍କର ଯେଉଁ ଦିଗରେ ଉଦୟ ହୁଏ ତାହା ପୂର୍ବ ଦିଗ। ପୂର୍ବ ଆଡ଼କୁ ମୁହଁ କରି ଠିଆ ହେଲେ ମନୁଷ୍ୟର ମୁହଁ ପୂର୍ବକୁ, ପିଠି ପଶ୍ଚିମକୁ, ଡାହାଣ ହାତ ଦକ୍ଷିଣକୁ ଓ ବାମ ହାତ ଉତ୍ତରକୁ ରହେ; ମୁଣ୍ଡ ଉପର ଆଡ଼ ଊର୍ଦ୍ଧ୍ୱ ଓ ଗୋଡ଼ତଳ ଆଡ଼ ଅଧଃ। ନକ୍ସା ଅଙ୍କର ଉପର ପାଖ ଉତ୍ତର ଦିଗ ଓ ତଳ ପାଖ ଦକ୍ଷିଣ ଦିଗ ଓ ନକ୍ସାକୁ ଚାହିଁବା ଲୋକର ଡାହାଣ ହାତ ପାଖ ନକ୍ସାର ପୂର୍ବ ଦିଗ ଓ ବାମ ହାତ ପାଖ ପଶ୍ଚିମ ଦିଗ ବୋଲି କଳ୍ପିତ ହୁଏ। ନିମ୍ନ ଲିଖିତ ଦିକ୍କୋଣ ବା ବିଦିକ୍କୁ ଠଉରାଇବା ଓ ମନେ ରଖିବା କଷ୍ଟକର ହୁଏ। ଉତ୍ତରପୂର୍ବ=ଈଶାନ ବା ଐଶାନ୍ୟ କୋଣ, ପୂର୍ବ ଦକ୍ଷିଣ =ଅଗ୍ନିକୋଣ, ଦକ୍ଷିଣ ପଶ୍ଚିମ=ନୈର୍ଋତ କୋଣ ଓ ପଶ୍ଚିମ ଉତ୍ତର=ବାୟୁ ବା ବାୟବ୍ୟ କୋଣ—ଏହା ମନେ ରଖିବା ପାଇଁ ନିମ୍ନଲିଖିତ ପଦଟି ମନ ମଧ୍ୟରେ ପଶିଥାଇ ରଖିଲେ ସୁବିଧା ହୁଏ।

ଉତ୍ତର ପୂର୍ବ ମଧ୍ୟରେ ଅଛଇ ଈଶାନ,
ପୂର୍ବ ଦକ୍ଷିଣ ମଧ୍ୟରେ ଅଛି ଅଗ୍ନି କୋଣ,
ଦକ୍ଷିଣ ପଶ୍ଚିମ ମଧ୍ୟେ ନଇର୍ଋତ ଅଛି,
ପଶ୍ଚିମ ଉତ୍ତର ମଧ୍ୟେ ବାୟୁ କୋଣ ଗଛି।

ଦିକ୍ର ଅନ୍ୟ ସଂସ୍କୃତ ପର୍ଯ୍ୟାୟ—କକୁଭ, କାଷ୍ଠା, ଆଶା, ହରିତ୍, କବେଶିମା, ଗୋ, ଦିଶ୍।]

୨। ଭାଗ; ଅଂଶ—2. Portion; part
୩। ସୀମା—3. Limit
୪। ତରଫ; ପକ୍ଷ; ଆଡ଼—4. Side; direction.
୫। ଦେଶ; ଅଞ୍ଚଳ—5. Country; locality.
୬। ପୂର୍ବ, ପଶ୍ଚିମ, ଉତ୍ତର ଓ ଦକ୍ଷିଣ ଏହି ୪ଟି ଦିଗ—
6. The four quarters of the globe; east, west, south and north points.
୭। ପୂର୍ବ, ପଶ୍ଚିମ, ଉତ୍ତର ଓ ଦକ୍ଷିଣ ଏହି ଚାରି ଦିଗ ଓ ଅଗ୍ନି, ବାୟୁ, ନୈର୍ଋତ ଓ ଐଶାନ୍ୟ ଏହି ଚାରି ବିଦିଗ, ଏପରି ୮ଟି ଦିଗ-
7. The eight points of the compass.
୮। ଦଶ ସଂଖ୍ୟା- 8. The number ten.

ଦିକ୍ ବୈଦେ. ବି. (ଆ ଦିକ୍ କତ୍)—୧। ବିରକ୍ତି—
ଦିକ 1 Vexation.
ଦ୍ଦିକ୍
୨। କଷ୍ଟ—2. Trouble
ବିଣ. (ଆ.ଦିକ୍)—ଦିକ୍ଦାର୍ (ଦେଖ)—Dikdār (See)

ଦିକ୍ଚକ୍ର—ସ. ବି. (ଦିକ୍+ଚକ୍ର; ରୂପକ କର୍ମଧା)—୧। ଦିଗ୍ବଳୟ—
Dik-chakra 1. Horizon.
୨। ଆଠ ଦିଗର ସମୂହ—
2. The eight points of the compass collectively.

ଦିକ୍ଦାର୍—ବୈଦେ. ବିଣ. (ଆ. ଦିକ୍+ଫା. ଦାର୍)—୧। ବିରକ୍ତ—
Dik-dār 1. Troubled; pestered.
দিকদার ୨। କଷ୍ଟପ୍ରାପ୍ତ—
दिक़दार 2. Afflicted.
(ଦିକ୍ଦାସ୍—ହି) ୩। ବ୍ୟସ୍ତ; ଉତ୍ତ୍ୟକ୍ତ—
3. Much annoyed.
ବାଘେଗା ମ ନସ୍ ଦିକଦାର ହେଲେଣି।
ଫକୀରମୋହନ. ଛମାଣ ଆଠଗୁଣ୍ଠ।

ଦିକ୍ଦାର୍ କରିବା—ଦେ. କ୍ରି.—୧। ବିରକ୍ତ କରିବା—
Dik-dār kariba 1. To vex; to pester
দিকদার করা ୨। ବ୍ୟସ୍ତ କରିବା, ଉତ୍ତ୍ୟକ୍ତ କରିବା—
दिक करना 2 To annoy; to bother.

ଦିକ୍ଦାରି—ବୈଦେ. ବି. (ଫା)—ବିରକ୍ତି—
Dik-dāri 1. Botheration; vexation.
দিকদারী ବିଣ.—ଦିକ୍ଦାରିଆ (ଦେଖ)
दिक़दारि Dikdāri (See)

ଦିକ୍ଦାରିଆ—ବୈଦେ. ବିଣ. (ଆ. ଦିକ୍)—ବିରକ୍ତିକର; ବିରକ୍ତିଜନକ
Dik-dāria Vexatious; troublesome.

ଦିକ୍ ଦିକ୍—ବୈଦେ. ବିଣ.—୧। ଦିକ୍ଦାର୍ (ଦେଖ)
Dik-dik 1. Dikdār (See)
୨। ଦିକି ଦିକି (ଦେଖ)—2. Diki diki (See)

ଦିକ୍ଦିକ୍ କରିବା—ଦେ କ୍ରି.—ଦିକ୍ଦାର୍ କରିବା (ଦେଖ)
Dik-dik kariba Dikdār kariba (See)

ଦିକ୍ପଟ—ସ. ବିଣ. ଓ ବି.—ଦିଗ୍ବସନ (ଦେଖ)
Dik-paṭa Dig-basana.

ଦିକ୍ପତି—ସ. ବି.—(ଦିକ୍+ପତି; ୬ଷ୍ଠୀ ତତ୍)—୧। ପୂର୍ବ ଆଦି
Dik-pati ୧୦ ଦିଗର ରକ୍ଷକ ଦେବଗଣ—1. The ten
(ଦିକ୍ସ୍ୱାମୀ—ଅନ୍ୟରୂପ) Deities presiding over or guarding the 10 points of the earth.

[ଦ୍ର—ଦଶ ଦିକ୍ପତି ଯଥା—୧। ଇନ୍ଦ୍ର—ପୂର୍ବଦିଗର, ୨। ଯମ—ଦକ୍ଷିଣର, ୩। କୁବେର—ଉତ୍ତରର, ୪। ବରୁଣ—ପଶ୍ଚିମର, ୫। ମରୁତ ବା ବାୟୁ—ବାୟୁ କୋଣର, ୬। ଈଶାନ ବା ଶିବ—ଐଶାନ୍ୟ କୋଣର, ୭। ଅଗ୍ନି—ଅଗ୍ନି କୋଣର, ୮। ନୈର୍ଋତ—ନୈର୍ଋତ କୋଣର, ୯। ବ୍ରହ୍ମା—ଊର୍ଦ୍ଧ୍ୱ ଦିଗର, ୧୦। ଅନନ୍ତ—ଅଧୋ ଦିଗର।]

୨। (ମତାନ୍ତରେ) ବ୍ରହ୍ମା ଓ ଅନନ୍ତଙ୍କୁ ଛାଡ଼ି ୮ ଦିଗର ୮ ଜଣ ଦିକ୍ପତି—2. The 8 Deities presiding over the 8 points of the compass.
୩। (ମତାନ୍ତରେ) ସୂର୍ଯ୍ୟ, ଶୁକ୍ର, ମଙ୍ଗଳ, ରାହୁ, ଶନି, ସୋମ, ବୁଧ, ବୃହସ୍ପତି—ପୂର୍ବାଦିକ୍ରମେ ଏହି ୮ଜଣ ଦିକ୍ପାଳ ଗ୍ରହ—3. Eight planets said to preside over the 8 points of the compass.

ଦିକ୍ପାଳ—ସ. ବି (ଦିକ୍+ପାଳ; ଉପପଦ ତତ୍)—
Dik-pāḷa ୧। ଦିକ୍ପତି (ଦେଖ)—
1. Dik-pati (See)

୨ । ( ଲକ୍ଷଣାର୍ଥ ) ଅସାଧାରଣ କ୍ଷମତାଶାଳୀ ବ୍ୟକ୍ତି—
2. ( figurative ) A very influential person.
( ଯଥା—ସେ ଆମଆଡ଼େ ଜଣେ ଦିକ୍‌ପାଳ । )

**ଦିକ୍‌ଶିକ୍**—ଦେ. ଅ—ବିଲ୍‌କୁଲ୍; ସମ୍ପୂର୍ଣ୍ଣରୂପେ—
Dik-śik Fully; completely; totally.
(ଦିକ୍‌ଶିକ—ଅନ୍ୟରୂପ) (ଯଥା—ଖାତକ ସେ ତମସୁକ ବାବଦ୍ ମୂଳ ଓ ସୁଧ ଦିକ୍‌ଶିକ୍ ଶୁଝିଦେଇଛି । )
ବୈଦେ. ବଣ—ଦିକ୍‌ଦାର୍ ( ଦେଖ )
Dikdār ( See ).

**ଦିକ୍‌ଶୂଳ**—ସଂ. ବି—ଫଳିତଜ୍ୟୋତିଷଶାସ୍ତ୍ର ମତରେ ବିଶେଷ ବିଶେଷ
Dik śūla ଦିଗକୁ ଯାତ୍ରା କରିବାରେ ଅଶୁଭ ବାର—
( astrology ) Particular week-days deemed inauspicious for making journeys to particular points of the compass
[ ଦ୍ର—ଶୁକ୍ର ଓ ରବିବାର ପଶ୍ଚିମକୁ, ଶନି ଓ ମଙ୍ଗଳବାର ଉତ୍ତରକୁ, ଶନି ଓ ସୋମବାର ପୂର୍ବକୁ ଏବଂ ବୁଧ ଓ ଗୁରୁବାର ଦକ୍ଷିଣକୁ ଯାତ୍ରା କରିବା ବା ଦିକ୍‌ଶୂଳ । ଜ୍ୟୋତିଷ ଗଣନାରେ ଏ ସବୁ ଦିନ ଯୋଗିନୀ ଯାତ୍ରାକାରୀର ସମ୍ମୁଖରେ ବା ଦକ୍ଷିଣ ଭାଗରେ ଥାଆନ୍ତି, ଏଣୁ ଏ ଦିନମାନ ତତ୍ତଦ୍ ଦିଗକୁ ଯାତ୍ରା କରିବା ବିଷୟରେ ଅଶୁଭ ଅଟେ । ]

**ଦିକ୍‌ସାଧନ**—ସଂ. ବି ( ୬ଷ୍ଠୀ ତତ୍; ଦିକ୍+ସାଧନ )—ଯେଉଁ ଉପାୟ
Dik-sādhana ଦ୍ୱାରା ଭିନ୍ନ ଭିନ୍ନ ଦିଗମାନଙ୍କର ଜ୍ଞାନ ଜନ୍ମେ—
The expedient by which a person derives a knowledge of the points of the compass
(ଯଥା—ସୂର୍ଯ୍ୟ ଉଦୟ ହେବା ଦିଗକୁ ମୁହଁ କରି ଠିଆହେଲେ ମନୁଷ୍ୟର ମୁହଁଆଡ଼ ପୂର୍ବ ଦିଗ, ପିଠିଆଡ଼ ପଶ୍ଚିମ ଦିଗ, ଡାହାଣଆଡ଼ ଦକ୍ଷିଣ ଦିଗ ଓ ବାମଆଡ଼ ଉତ୍ତର ଦିଗ ଅଟେ । )

**ଦିକ୍‌ସୁନ୍ଦରୀ**—ସଂ. ବି—ଦିକ୍‌କନ୍ୟା (ଦେଖ)
Dik-sundari Dikkanyā (See).

**ଦିକ**—ଦେ. ବି. ( ସଂ. ଦିକ୍ )—୧ । ପୃଥିବୀର ଭିନ୍ନ ଭିନ୍ନ ଅଞ୍ଚଳ—
Dika 1. The quarters of the globe.
दिक [ଦ୍ର—ଏହା ସଂଖ୍ୟାରେ ୧୦, ଯଥା—ପୂର୍ବ, ପଶ୍ଚିମ, ଉତ୍ତର,
दिशा ଦକ୍ଷିଣ, ଅଗ୍ନି, ବାୟୁ, ଐଶାନୀ, ନୈର୍‌ଋତ, ଊର୍ଦ୍ଧ୍ୱ ଓ ଅଧଃ । ଏ ଶବ୍ଦମାନଙ୍କର ତାହାତଥା ନାମ ପାଇଁ 'ତାହାର' ତଳେ ଦେଖ । ]
୨ । ପୃଥିବୀର ଚାରି ଦିଗ ଓ ଚାରି କୋଣ—
2. The eight points of the compass.
୩ । ପୃଥିବୀର ୪ ଦିଗ; ପୂର୍ବ, ପଶ୍ଚିମ, ଉତ୍ତର ଓ ଦକ୍ଷିଣ ଦିଗ—
3. The four cardinal points of the compass.
୪ । ଆଡ଼; ତରଫ—4. Direction.
୫ । ସୀମା—5. Boundary.
୬ । ପକ୍ଷ—6. Side; party.
୭ । ଅଞ୍ଚଳ; ଦେଶାଂଶ—7. Quarter; locality.

**ଦିକଡ଼ା**—ଦେ ବି—୧ । ଦୁଇ କଡ଼ା କଉଡ଼ି—
Dikarḍā 1. Two cowries or shell-money.
दुकडा ( ଯଥା—ଦିକଡ଼ା କାଜୁଡ ତିକଡ଼ା ଲେମ୍ବୁ, ଏକ ଏକ
डुकडा କଡ଼ାକୁ ଗୁରି ଗୁରି ଜାମୁ, ଫଳ ଦିବ କୋଡ଼ିଏ, କଉଡ଼ି ଦିବ ବୋଡ଼ିଏ—ମାନସାଙ୍କ, କୌତୁକ-ସମସ୍ୟା । )
୨ । ଦୁଇଗୋଟି (ନଡ଼ିଆ ଆଦି)—
2. Two in number (e. g cocoanuts).
ଦେ. ବଣ—ଦିକଡ଼ାର ( ଦେଖ )
Dikarḍāra ( See ).

**ଦିକଡ଼ାର**—ଦେ. ବଣ—୧ । ଦୁଇକଡ଼ା କଉଡ଼ିର ମୂଲ୍ୟବିଶିଷ୍ଟ—
Dikarḍāra 1. Worth two cowries only
दुकड़ाव; दुकड़हा ୨ । ଅତି ଅଳ୍ପମୂଲ୍ୟର—
2 Of very little value
୩ । ତୁଚ୍ଛ; ହେୟ—3. Insignificant
୪ । ଅକାମିକା—4. Worthless.
(ଯଥା—ସେ ମତେ ଦିକଡ଼ାର ମଣିଷ ବନେଇଁ ଦେଲା ।)

**ଦିକଡ଼ାର କରିଦେବା**—ଦେ. କି—୧ । ଅତି ଅଳ୍ପ ମୂଲ୍ୟବିଶିଷ୍ଟ
Dikarḍāra karideba କରିଦେବା—1. To cause to become valueless.
दुकडाव करे देओया
दोकउड़िकावात् करदेना (ଯଥା—ପିଲାଟା ପାଣଲୁଗାକୁ ମାଟିରେ
ଦିକଡ଼ାର ବନାଇଁ ଦେବା } ଘୋଷାରି ଘୋଷାରି
ଦିକଡ଼ା କରିବା } ଅନ୍ୟରୂପ ଦିକଡ଼ାର କରିଦେଲାଣି)
ଦିକଡ଼ା ବନାଇଁ ଦେବା } ୨ । ଅତି ନ୍ୟୁନ ବା ଲଘୁ କରିବା;
ତୁଚ୍ଛ କରିବା—2. To slight; to neglect.
(ଯଥା—ବାପଙ୍କ କଥାକୁ ଯେ ସବୁବେଳେ ଦିକଡ଼ାର କରିଦିଏ ତାର ଅସୁବିଧା ନ ହୋଇ ଆଉ କାହାର ହେବ ?]
୩ । ଲାଞ୍ଛିତ କରିବା; ଅପମାନିତ କରିବା; ଛି ଛି କରିବା—
3 To lay one's honour in dust; to disgrace a person.
(ଯଥା—ଯାହାତ କଲୁ କଲୁ, କଜର ଅପମାନ ପାଇବା କଥା ଦାଣ୍ଡରେ ହାଟରେ କହି ବୁଲ୍ ନାଁ, ତାହାହେଲେ ଲୋକେ ତୋତେ ଦିକଡ଼ାର କରିଦେବେଟି ।)
୪ । ଅକାମିକା କରିଦେବା—
4. To reduce to worthlessness.
(ଯଥା—ସୁରା ଆଉ ବେଶ୍ୟା, ଏ ଦୁଇଟି ମନୁଷ୍ୟର ସର୍ବନାଶର କାରଣ; ଯାଙ୍କ କବଳରେ ଯେ ପଡ଼ିଲା, ତାକୁ ସେ ଅବଶେଷରେ ଦିକଡ଼ାର କରି ଦିଅନ୍ତି । )

**ଦିକଡ଼ାର ମଣିଷ**—ଦେ. ବି—୧ । ଅତି ତୁଚ୍ଛ ବ୍ୟକ୍ତି—
Dikarḍāra manisha 1. A very insignificant person; a man of straw.
ଦିକଡ଼ାର ମନୁଷ୍ୟ } ଅନ୍ୟରୂପ
ଦିକଡ଼ାର ଲୋକ }
दुकड़ार लोक; दोकउड़िका आदमी
୨ । ଅତି ଗରିବ ଲୋକ—2. A very poor man.
୩ । ଅତି ନୀଚସ୍ଥାନୀୟ ବ୍ୟକ୍ତି—3. A man of very low position or status

ଦିକଡ଼ିଆ—ଦେ. ବିଣ—୧ । ଅତି ନୀଚ—1. Very mean; base,
Dikardiā low; despicable
ତୁକଡାବ : ଦୁକଡହା ୨ । ତୁଚ୍ଛ; ନଗଣ୍ୟ—Insignificant
୩ । ଅତି ସାମାନ୍ୟ ମୂଲ୍ୟର—3 Of very little price.

ଦିକାଟିଆ—ଦେ. ବି—ଦୁଇଖଣ୍ଡି କାଠି ମରାଯାଇ କାନ୍ଥରେ ଦ୍ରବ୍ୟାଦି
Dikāṭhiā ରକ୍ଷାର୍ଥ ଯେଉଁ ଅସ୍ଥାନ କରାଯାଇ ଥାଏ—
A place for keeping articles made on the wall by means of driving two pegs into it.

ଦିକି—ଗ୍ରା. ବୈଦେ. ବି—ଦିକ୍ (ଦେଖ)—Dik (See).
Diki

ଦିକମାଖି—ଦେ ବି—୧ । ଜିଗର—1 Importunity.
Dikimākhi ୨ । ଧିକମାକ; ବାରମ୍ବାର କହିବା ଦ୍ୱାରା ବିରକ୍ତି
(ଦିକମାକ—ଅନ୍ୟରୂପ) ଉତ୍ପାଦନ—2. Higgling and haggling.

ଦିକଶୂଳ—ଗ୍ରା. ବି (ସଂ. ଦିକଶୂଳ)—ଦିକ୍‌ଶୂଳ (ଦେଖ)—
Dikiśūḷa Dik-śūḷa (See).
ଦିଶାଶୂଳ
(ଦିକେଇ ଶୂଳ, ଦିଗିଶୂଳ, ଦିଗେଇଶୂଳ—ଅନ୍ୟରୂପ)

ଦିକସିକ—ଦେ. ଅ—ଦିକ୍‌ସିକ୍ (ଦେଖ) —Diksik (See)
Dikisiki

ଦିକସିକିଆ—ପ୍ରାଦେ. (ଯାଜପୁର) ବିଣ—୧ । ବିରକ୍ତିକର—
Dikisikiā 1. Irritating; bothersome; annoying.
୨ । ଜିଗରୁଆ—2. Importunate

ଦିକୁଳ—ଦେ. ବି. ( ସଂ. ଦ୍ୱିକୁଳ )—୧ । ପିତୃବଂଶ ଓ ମାତୃବଂଶ—
Dikuḷa 1. One's father's line and mother's line.
ଦୁକୁଳ ୨ । କୌଣସି ବ୍ୟକ୍ତିର ପୁତ୍ରର ବଂଶଧରଗଣ ଓ କନ୍ୟାର
ଦୋନୋକୁଳ ବଂଶଧରଗଣ—2. One's son's descendants and daughter's descendants
( ଯଥା—ତାର ପିଣ୍ଡ ଦେବାକୁ ଦିକୁଳରେ କେହି ନାହିଁ । )
୩ । ( ସ୍ତ୍ରୀ ପକ୍ଷରେ ) ପିତୃବଂଶ ଓ ଶ୍ୱଶୁରଙ୍କ ବଂଶ—
3 (in the case of a woman) One's father's line and father-in-law's line.

ଦିକ୍କ—ସଂ ବି ପୁଂ. ( ଦିକ୍=ଅନୁକରଣ ଶବ୍ଦ+କର୍ତ୍ତ୍ରି. କ; ଯେ ଦିକ୍‌ଦିକ୍
Dikka ଶବ୍ଦ କରେ )—ବିଂଶତି ବର୍ଷ ବୟସ୍କ କଳଭାବକ; ହାତୀ
ଛୁଆ—A calf of an elephant

ଦିକ୍କନ୍ୟା · ସଂ ବି—କନ୍ୟାରୂପେ କଳ୍ପିତ ଦିକ୍‌ସମୂହ—
Dikkanyā The ten directions personified
( ଦିକ୍କାନ୍ତା—ଅନ୍ୟରୂପ ) [ ଦ୍ର—ବହ୍ନି ପୁରାଣରେ ଲେଖାଅଛି ଯେ ବ୍ରହ୍ମା ସୃଷ୍ଟି କରିବା ସମୟରେ ତାଙ୍କ କାନରୁ ୧୦ଟି କନ୍ୟା ଉତ୍ପନ୍ନ ହେଲେ । ସେମାନେ ଗୋଟିଏ ଗୋଟିଏ ଦିଗକୁ ଗୁଳିଗଲେ । ବ୍ରହ୍ମା ୮ଟି ଦିକ୍‌ପାଳ ସୃଷ୍ଟି କରି ପ୍ରତ୍ୟେକଙ୍କୁ ଗୋଟିଏ ଲେଖାଏଁ କନ୍ୟା ପ୍ରଦାନ କଲେ, ବ୍ରହ୍ମା ସ୍ୱୟଂ ଉର୍ଦ୍ଧ୍ୱକୁ ଗଲେ ଓ ଶେଷ ବା ଜାମ୍ବକୁ ଅଧୋଦେଶରେ ରଖିଲେ—ହି. ଶବ୍ଦସାଗର । ]

ଦିକ୍କର—ସଂ. ବି. ପୁଂ. ( ଦିକ୍=ଦିଗ, ସ୍ଥାନ+କୃ ଧାତୁ+କର୍ତ୍ତ୍ରି. ଅ;
Dikkara ଯେ ସର୍ବଦା ସ୍ଥାନ ପରିବର୍ତ୍ତନ କରେ ଅର୍ଥାତ୍ ବିଭିନ୍ନ
ଦିକ୍କର / ଦିକ୍କରିକା } ଅନ୍ୟରୂପ ସ୍ଥାନରେ କର୍ମରେ ବ୍ୟାପୃତ ରହେ )—
୧ । ଯୁବକ—1 A young man.
୨ । ଶିବ—2 The God Śiba.

ଦିକ୍କରୀ—ସଂ. ବି. ( ୬ଷ୍ଠୀ ତତ୍, ଦିକ୍+କରୀନ୍ )—ଦିଗ୍‌ଗଜ ( ଦେଖ )
Dikkarī Diggaja ( See )

ଦିକ୍କୋଣ—ସଂ ବି ( ଦିକ୍+କୋଣ; ୬ଷ୍ଠୀ ତତ୍ )—ଦିଗମାନଙ୍କର
Dikkoṇa କୋଣ—The intermediate points of the compass
[ଦ୍ର—ଅଗ୍ନି, ବାୟୁ, ଈଶାନ, ନୈର୍ଋତ ଏହି ଗୁରିଟି ଦିକ୍‌କୋଣ ।]

ଦିକ୍ଷିତ—ଦେ. ବି. ( ସଂ. ଦୀକ୍ଷିତ )—ଦୀକ୍ଷିତ ( ଦେଖ )
Dikhita Dīkshita ( See )
( ଦିଗିତ—ଅନ୍ୟରୂପ )

ଦିଖୁଣ୍ଟିଆ—ଦେ. ବିଣ—ଯେଉଁ ତାମ୍ବୁରେ ଦୁଇଟି ଖୁଣ୍ଟ ଥାଏ—
Dikhuṇṭiā Double-poled ( tent ).
ଦୁଖୁଣିଆ

ଦିଗ୍—ଦେ. ବି. ( ସଂ. ଦିକ୍ )—ଦିକ୍ ( ଦେଖ )
Dig Dik ( See )

ଦିଗ୍‌ଜ୍ଞାନ—ସଂ. ବି. ( ଦିକ୍+ଜ୍ଞାନ; ୬ଷ୍ଠୀ ତତ୍ )—
Dig-jñāna ୧ । ପୃଥିବୀର ଦିଗମାନ ନିର୍ଣ୍ଣୟ କରିବାର ଜ୍ଞାନ—
1. The knowledge of the points of the compass.
୨ । ଅଳ୍ପ ମାତ୍ର ଜ୍ଞାନ; ସାମାନ୍ୟ ଜ୍ଞାନ—
2. Slight or superficial knowledge.

ଦିଗ୍‌ଦର୍ଶନ—ସଂ. ବି (ଦିକ୍+ଦର୍ଶନ )—୧ । ବହୁଦର୍ଶିତା; ଅଭିଜ୍ଞତା—
Dig-darśana 1. Experience; thorough knowledge.
୨ । ଦିଗମାନଙ୍କର ନିର୍ଣ୍ଣୟ—2. The ascertainment of the points of the compass.
୩ । ଦିକ୍ ନିର୍ଣ୍ଣୟ କରିବା ଯନ୍ତ୍ର—
3 Mariner's compass.
୪ । ସୂଚନା—4 Insinuation; indication.
୫ । ଉଦାହରଣସ୍ୱରୂପ ସୂଚିତ ବିଷୟ—
5. Any thing indicated as an illustration
୬ । ନମୁନା—6 Specimen.
ବିଣ—ଯାହାଦ୍ୱାରା ଦିଗମାନ ନିର୍ଣ୍ଣିତ ହୁଏ—Showing the directions or points of the compass.

ଦିଗ୍‌ଦର୍ଶନ ଯନ୍ତ୍ର—ସଂ.ବି—ଯେଉଁ ଯନ୍ତ୍ର ସାହାଯ୍ୟରେ ଦିଗମାନଙ୍କ ସମ୍ବନ୍ଧେ
Dig-darśana jantra ଜ୍ଞାନ ଲାଭ କରାଯାଏ—Mariner's compass,
( ଦିଗ୍‌ଦର୍ଶକ ଯନ୍ତ୍ର—ଅନ୍ୟରୂପ )

ଦିଗ୍‌ଦାର (ଇତ୍ୟାଦି)—ବୈଦେ ବିଣ—ଦିକ୍‌ଦାର୍ (ଦେଖ)
Dig-dār (etc) Dik-dār (See)

ଦିଗ୍‌ଦାହ—ସଂ. ବି. (୬ଷ୍ଠୀ ତତ୍; ଦିକ୍+ଦାହ)—ସୂର୍ଯ୍ୟାସ୍ତ ପରେ ସବୁ
Dig-dāha ଦିଗମାନ ଜଳନ୍ତ ପରି ନାଲି ଦେଖାଯିବା ଦୈବୀ

ଘଟନା—An extraordinary natural phenomenon in which the horizon looks like blazing fire after sunset

[ ଦ୍ର—ଏହା ଦେଶରେ ଆଶୁ ଯୁଦ୍ଧ, ମଡ଼କ, ଦୁର୍ଭିକ୍ଷ ଓ ମାଣ୍ଡଳିକ ଭୟର ସୂଚନା କରେ—ବୃହତ୍ ସଂହିତା । ]

ଦିଗ୍‌ଦିଗନ୍ତ—ସଂ ବି. ( ଦିକ୍+ଦିକ୍+ଅନ୍ତ )—୧ । ଦିଗମାନଙ୍କର Dig-diganta ଅନନ୍ତ ବିସ୍ତାର; ଦିଗଠାରୁ ଦିଗସୀମା ପର୍ଯ୍ୟନ୍ତ (ଦ୍ୱେ ଦିଗନ୍ତର—ଅନ୍ୟରୂପ) ବିସ୍ତାର—1. The wide expanse extending over the whole space.

୨ । ଦିକ୍‌ବିଦିକ୍, ଚତୁର୍ଦ୍ଦିଗ ଓ ଚତୁଃକୋଣ—
2. The eight points of the compass

କ୍ରି. ବିଣ—ସବୁ ଦିଗରେ—On all sides

ଦିଗ୍‌ଦେବତା—ସଂ ବି—ଦିକ୍‌ପତି (ଦେଖ)
Dig-debatā Dik-pati (See)

ଦିଗ୍‌ନାଗାଚାର୍ଯ୍ୟ—ଦେ. ବି. (ନାମ)—ଜଣେ ବୌଦ୍ଧ ଦାର୍ଶନିକ—
Dig-nāgāchārjya A Buddhistic philosopher.

[ ଦ୍ର—ଏ ପ୍ରାୟ ୫୦୦ ବର୍ଷ ପୂର୍ବେ ଉତ୍କଳର ରାଜାଙ୍କ ଆଶ୍ରୟରେ ବାସ କରୁଥିଲେ ଏବଂ ପ୍ରଧାନ ନ୍ୟାୟ ଶାସ୍ତ୍ର 'ପ୍ରମାଣ ସମୁଚ୍ଚୟ' ପ୍ରଣୟନ କରିଥିଲେ । ]

ଦିଗ୍‌ବସନ—ସଂ. ବିଣ. ପୁଂ. (ଦିକ୍+ବସନ, ଯାହାର; ବହୁବ୍ରୀହି)—
Dig-basana ଦିଗମ୍ବର; ଉଲଙ୍ଗ, ଲଙ୍ଗଳା; ନଗ୍ନ—
(ଦିଗବସ୍ତ୍ର—ଅନ୍ୟରୂପ) Naked; nude.

ବି. ପୁଂ—ମହାଦେବ—Siba.

ଦିଗ୍‌ବସନା—ସଂ. ବିଣ. ସ୍ତ୍ରୀ. (ଦିକ୍+ବସନ+ସ୍ତ୍ରୀ ଆ; ବହୁବ୍ରୀହି)—
Dig-basanā ନଗ୍ନା; ଲଙ୍ଗଳା—Naked (female).
(ଦିଗ୍‌ବସ୍ତ୍ରା—ଅନ୍ୟରୂପ) ବି. ସ୍ତ୍ରୀ—କାଳୀ—Goddess Kāli.

ଦିଗ୍‌ବାନ୍—ସଂ. ବି. ( ଦିକ୍+ବତ୍; ୧ମା. ୧ବ )—ପହରାବାଲା;
Dig-bān ଚୌକିଦାର (ହ. ଶବ୍ଦସାଗର)—Watchman.

ଦିଗ୍‌ବାରଣ—ସଂ. ବି. (ଦିକ୍+ବାରଣ)—୧ । ଦିଗମାନଙ୍କୁ ବାରିବା ବା
Dig-bāraṇa ଚିହ୍ନିବା ବା ଠଉରାଇବା—1. Distingwishing the quarters of the globe.

୨ । ଦିଗ୍‌ଗଜ (ଦେଖ)—Diggaja (See)

୩ । ଦିଗ୍‌ବାରଣ ଯନ୍ତ୍ର; ଦିଗ୍‌ଦର୍ଶନ ଯନ୍ତ୍ର—
3. Mariner's compass.

ଦିଗ୍‌ବାରଣ ଖୁଣ୍ଟ(ଣ୍ଟି)—ଦେ. ବି—୧ । ଜାହାଜର ମାସ୍ତୁଲ—
Dig-bāraṇa khunṭa(nṭi) 1. The mast of a ship.

ଦିଗ୍‌ବାରଣ ଖମ୍ବ / ଦିଗବାରଣୀ ଖୁଣ୍ଟ / ଦିଗ୍‌ବାରେଣୀ ଖୁମ୍ବ / दिगवारण खूंट } ଅନ୍ୟରୂପ. ୨ । ଯେଉଁ ଉଚ୍ଚ ଖୁଣ୍ଟ ଉପରେ ଚଢ଼ି ଦିଗ୍‌ନିର୍ଣ୍ଣୟ କରାଯାଏ—
2. A high post getting up over which people ascertain the directions of the earth

୩ । ଯେଉଁ ଉଚ୍ଚ ଖୁଣ୍ଟ ବା ମାସ୍ତୁଲ ଉପରେ ଦିଗ୍‌ନିର୍ଣ୍ଣାୟକ ଚାରି ଖଣ୍ଡି ବା ଅଠ ଖଣ୍ଡି କାଠି ଥାଏ—3. A high post or the mast of a ship on the top of which 4 or 8 pieces of sticks are fixed crosswise, pointing the directions.

ଦିଗ୍‌ବାରଣ ଯନ୍ତ୍ର—ସଂ ବି. (ଦିକ୍+ବାରଣ+ଯନ୍ତ୍ର)—
Dig-bāraṇa jantra ଦିଗ୍‌ଦର୍ଶନ ଯନ୍ତ୍ର (ଦେଖ)
Dig-darśana jantra (See)

ଦିଗ୍‌ବାସାଃ—ସଂ. ବିଣ ଓ ବି ପୁଂ. (ଦିକ୍+ବାସ୍=ବସ୍ତ୍ର, ଯାହାଙ୍କର)
Dig-bāsāh ଦିଗ୍‌ବସନ (ଦେଖ)—Dig-basana (See).

ଦିଗ୍‌ବିଜୟ—ସଂ. ବି. ( ଦିକ୍+ବିଜୟ; ୬ଷ୍ଠୀ ତତ୍ )—
Dig-bijaya ବିଦ୍ୟା, ବୁଦ୍ଧି ବା ବଳ ଦ୍ୱାରା ସବୁ ଦିଗକୁ ଅଧିକାର ବା ଜୟ କରିବା—Conquest of the world ( wherever one goes ) through one's prowess or learning.

[ ଦ୍ର—ପ୍ରାଚୀନ କାଳରେ ରାଜାମାନେ ନିଜ ନିଜର ଖ୍ୟାତି ଜଗତରେ ଘୋଷଣା କରିବା ପାଇଁ ଦେଶଦେଶାନ୍ତରକୁ ସୈନ୍ୟସହ ଯାଇ କରି ସେହି ସେହି ଦେଶର ରାଜାମାନଙ୍କ ସଙ୍ଗେ ଯୁଦ୍ଧ କରି ଜୟ ଲାଭ କରି ନିଜ ରାଜ୍ୟକୁ ଫେରି ଆସୁଥିଲେ । ]

ଦିଗ୍‌ବିଜୟୀ—ସଂ. ବିଣ. ପୁଂ. ( ଦିଗ୍ ବିଜୟ+ଅସ୍ତ୍ୟ ଇନ୍; ୧ମା. ୧ବ)—
Dig-bijayī ଯେ ପୃଥିବୀର ଯେଉଁ ଦିଗକୁ ଯାଏ ସେହି ଦିଗକୁ ଜୟ କରେ—World-conquering; invincible; of irresistible power; one who conquers wherever he goes; conquering the universe.

ଦିଗ୍‌ବିଦିଗ୍—ସଂ. ବି—ଦିଗ୍‌ବିଦିକ୍ ( ଦେଖ )
Dig-bidig Digbidik ( See )

ଦିଗ୍‌ବିଦିଗ୍ ଜ୍ଞାନଶୂନ୍ୟ—ସଂ.ବିଣ. ପୁଂ—୧ । ଯେଉଁ ଲୋକ ପୃଥିବୀର ୮ଦିଗ
Dig-bidig jñānaśūnya ଓ ୪ ବିଦିଗର ନାମ ଜାଣେ ନାହିଁ—
(ଦିଗ୍‌ବିଦିଗ୍ ଜ୍ଞାନଶୂନ୍ୟା—ସ୍ତ୍ରୀ) 1. Ignorant of the know-
(ଦିଗ୍‌ବିଦିଗ୍ ଜ୍ଞାନଶୂନ୍ୟତା—ବି) ledge of the various points of the compass.

୨ । ଭଲ ମନ୍ଦ ଜ୍ଞାନଶୂନ୍ୟ (ବ୍ୟକ୍ତି); ଗୁରୁଲଘୁଜ୍ଞାନଶୂନ୍ୟ; କର୍ତ୍ତବ୍ୟାକର୍ତ୍ତବ୍ୟ ବିଚାରଶୂନ୍ୟ—
2. Unable to distinguish right from wrong; void of discriminating power.

୩ । କୌଣସି କାର୍ଯ୍ୟର ଭବିଷ୍ୟତ୍ ଫଳାଫଳ ସମ୍ବନ୍ଧେ ବିଚାରଶୂନ୍ୟ—3. Rash; devoid of common sense.

୪ । କିଂକର୍ତ୍ତବ୍ୟ ବିମୂଢ଼—
4. Unable to settle what to do; dumfounded.

ଦିଗ୍‌ବିଭାଗ—ସଂ. ବି. ( ଦିକ୍+ବିଭାଗ )—ଦିକ୍ ( ଦେଖ )
Digbibhāga Dik ( See )
(ଦିଗ୍‌ଭାଗ—ଅନ୍ୟରୂପ)

ଦିଗ୍‌ବ୍ୟାପୀ—ସଂ. ବିଣ (ଦିକ୍+ବ୍ୟାପିନ୍; ୧ମା. ୧ବ)—ଯାହା ଦିଗମାନଙ୍କୁ
Dig-byāpī ବ୍ୟାପି ଥାଏ—Extending over the points of the compass.

ଦିଗ୍ଭ୍ରମ—ସଂ. ବି. ( ଦିକ୍+ଭ୍ରମ; ୬ଷ୍ଠୀ ତତ୍ )—
Dig-bhrama ଦିଗ ନିର୍ଣ୍ଣୟ କରିବା ସମ୍ବନ୍ଧେ ଭ୍ରାନ୍ତି—
Mistake respecting the identity of the points of the compass

ଦିଗ୍ଭ୍ରମଣ—ସଂ. ବି. ( ଦିକ୍+ଭ୍ରମଣ; ୭ମୀ ତତ୍ )—
Dig-bhramaṇa ଦିଗ୍ ବିଦିକ୍ ବୁଲିବା; ଘର ଆଡ଼େ ଛାଡ଼ିଙ୍କ ପରି ବୁଲିବା—Wandering in all directions.

ଦିଗ୍ଶିଖା—ସଂ. ବି—ପୂର୍ବ ଦିଗ ( ହି. ଶବ୍ଦସାଗର )—
Dig-śikhā The East.

ଦିଗ୍ଶୂଳ—ସଂ. ବି—ଦିକ୍ଶୂଳ ( ଦେଖ )
Dig-śūla Dik-śūla ( See )

ଦିଗ—ଦେ. ବି. ( ସଂ. ଦିକ୍ )—
Diga ୧ । ଦିକ୍—1. The points of the compass.
दिग ଦିଗ ଚାରିଆଡ଼େ କଳପଡ଼
दिशा ଅର୍ଦ୍ଧ ନା ବଢ଼ି ସୁରପଡ଼ । ଜଗନ୍ନାଥ. ଗୁଣ୍ଡିଚା ।
୨ । ଏକ କଉଡ଼ି କଉଡ଼ିର ଦଶମାଂଶ—
2. One tenth of a cowrie or shell-money.
୩ । ପକ୍ଷ—3. Side.
ବେନି ଦିଗ ମର୍ଯ୍ୟାଦ ନବର୍ତ୍ତି'ଇ । ଉପେନ୍ଦ୍ର ଭଞ୍ଜ. ବୈଦେହୀଶବିଳାସ ।

ଦିଗଂଶ—ସ. ବି. (୬ଷ୍ଠୀ ତତ୍; ଦିକ୍+ଅଂଶ) ( ଜ୍ୟୋତିଷ )—
Digaṁśa କ୍ଷିତିଜ ବୃତ୍ତର ୩୬୦ ଭାଗର ଏକଭାଗ (ହି.ଶବ୍ଦସାଗର)-
(astronomy) $\frac{1}{360}$ part of the Kshitija circle.

[ଦ୍ର—ଆକାଶରେ ଗ୍ରହ ଓ ନକ୍ଷତ୍ରାଦିଙ୍କ ସ୍ଥିତି ଜାଣିବା ପାଇଁ କ୍ଷିତିଜ ବୃତ୍ତକୁ ୩୬୦ ଅଂଶରେ ବିଭକ୍ତ କରି, ଯେଉଁ ଗ୍ରହ ବା ନକ୍ଷତ୍ରର ଦିଗଂଶ ଜାଣିବାକୁ ଥାଏ ତାହା ଉପରେ ଅଧସ୍ୱସ୍ତିକ ଓ ସ୍ୱସ୍ତିକକୁ ସ୍ପର୍ଶ କରୁଥିବା ଏକ ବୃତ୍ତ ଟଣା ଯାଏ । ଉକ୍ତ ବୃତ୍ତର ପୂର୍ବ ବିନ୍ଦୁ କ୍ଷିତିଜ ବୃତ୍ତର ଦକ୍ଷିଣ ବା ଉତ୍ତର ଯେଉଁ ଅଂଶରେ କାଟେ ଉକ୍ତ ଅଂଶକୁ ଉକ୍ତ ଗ୍ରହ ବା ନକ୍ଷତ୍ରର ଦିଗଂଶ ବୋଲିଯାଏ । ହି. ଶବ୍ଦସାଗର ]

ଦିଗଜୟ—ଦେ. ବି. (ସ. ଦିଗ୍ବିଜୟ)—ସମଗ୍ର ପୃଥିବୀକୁ ଜୟ କରିବା—
Digajaya Conquest of the whole world.
୨ । ଦିଗ୍ବିଜୟ (ଦେଖ)—2. Dig-bijaya (See)
ମଦନ ମସ୍ତକ ଦିଗଜୟ ପାଇଁ;
ବାହାର ଅଛ ସକ ଦୁର୍ଗୀକ ଆଗେହ ।
କୃଷ୍ଣସିଂହ. ମହାଭାରତ ବନ ।

ଦିଗଡ଼—ଦେ. ବି.—ଦୁଇଖଣ୍ଡ—
Digaṛa Two pieces.
ଟୁଟୁକୁରା ବିଣ—ଦୁଇଖଣ୍ଡରେ ବିଭକ୍ତ—
दोटुकड़ा Cut into two.

ଦିଗଡ଼ କରିବା—ଦେ. କି—(କୌଣସି ବସ୍ତୁକୁ) ଦୁଇଖଣ୍ଡରେ କାଟିବା—
Digaṛā karibā To cut ( a thing ) into two.
दोटुकड़ा करना ଟୁଟୁକରା କରା

ଦିଗଦହନ—ଦେ. ବିଣ. ( ସ. ଦିକ୍ଦହନ )—ଯେ ଚତୁର୍ଦ୍ଦିଗ ଜାଳି
Digadahana ...—Inflaming, who can burn all around.
[illegible]

ବି—୧ । ଚତୁର୍ଦ୍ଦିଗରେ ଜ୍ୱଳନକ୍ରିୟା—
1. Burning of all sides.
୨ । ଇନ୍ଦ୍ରଜିତଙ୍କ ଦେବଦଳନ ରଥରେ ଉଡ଼ୁଥିବା ପତାକା-ବିଶେଷ—2. The name of the flag flying on the chariot of Indrajita.
ଦଇନପ୍ରସ୍ଥୀ ଉନ୍ନ ଦିଗଦହନ ନାମ ନଭେ ଲରେ ଚଳଲେ ସେ—
ଭଞ୍ଜ ବୈଦେହୀଶବିଳାସ ।
୩ । ଦିଗ୍ଦାହ (ଦେଖ)—3. Dig-dāha ( See )

ଦିଗଦାହ—ଦେ. ବି. ( ସ. ଦିଗ+ଦାହ )—ଦିଗ୍ଦାହ ( ଦେଖ )
Digadāha Dig-dāha ( See )
ଆକାଶ ଉଲୁକା ପଡ଼ିବ କୋଟି କୋଟି
ଦିଗଦାହ ହୋଇବ ଯିବାକୁ ଯୁଗନ୍ତ—କୃଷ୍ଣସିଂହ. ମହାଭାରତ. ବନ ।

ଦିଗଦାର୍—ବୈଦେ. ବିଣ—ଦିକ୍ଦାର୍ ( ଦେଖ )
Digadār Dik-dār ( See )

ଦିଗଦିଗନ୍ତ—ଦେ. ବି—ଦିଗ୍ଦିଗନ୍ତ ( ଦେଖ )
Digadiganta Dig-diganta ( See )

ଦିଗନ୍ତ—ସ. ବି. ( ଦିକ୍+ଅନ୍ତ; ୬ଷ୍ଠୀ ତତ୍ )—
Diganta ୧ । ଦିଗର ଅନ୍ତ ବା ସୀମା—1. The end or extremity of the quarters of the earth.
୨ । ଅନନ୍ତ ବ୍ୟବଧାନ—
2. Infinite space or interval.
୩ । ବିଦିକ୍—3. The corner points of the compass.

ଦିଗନ୍ତ ବିସ୍ତାରିତ—ସ. ବିଣ. ( ଦିଗନ୍ତ+ବିସ୍ତାରିତ )—
Diganta bistārita ୧ । ଯାହା ଅନନ୍ତ ସ୍ଥାନ ବ୍ୟାପିଅଛି—
( ଦିଗନ୍ତ ବିସ୍ତୃତ—ଅନ୍ୟରୂପ ) 1. Extending over unlimited space.
୨ । ଯାହା ବହୁଦୂରକୁ ବିସ୍ତୃତ ହୋଇଅଛି—2. That which extends to a very great distance.

ଦିଗନ୍ତ ବିସ୍ତାରୀ—ସ. ବିଣ—ଦିଗନ୍ତ ବିସ୍ତାରିତ ( ଦେଖ )
Diganta bistāri Diganta bistārita ( See )

ଦିଗନ୍ତ ବ୍ୟାପୀ—ସ. ବିଣ—ଦିଗନ୍ତ ବିସ୍ତାରିତ ( ଦେଖ )
Diganta byāpi Diganta bistārita ( See )

ଦିଗନ୍ତର—ସ. ବି. ( ଅନ୍ୟ ଦିକ୍=ଦିଗନ୍ତର )—୧ । ଅନ୍ୟ ଦିଗ—
Digantara 1. Another direction.
୨ । ଦିଗମାନଙ୍କ ମଧ୍ୟରେ ଥିବା ଅବକାଶ—
2. The space between the cardinal points of the compass.
୩ । ବିଦିକ୍—3. The corner points of the compass.

ଦିଗନ୍ତ ରେଖା—ଦେ. ବି—ଚକ୍ରବାଳ—
Diganta rekhā Horizon.

ଦିଗବାରଣ ଭାଡ଼ି—ଦେ. କି—ଯେଉଁ ଉଚ୍ଚ ଭାଡ଼ିଉପରେ ଉଠି ଶତ୍ରୁର
Digabāraṇa bhāṛi ଗତିକୁ ଠଉରାଇବାକୁ ହୁଏ—
A high scaffolding from which observation is made of the enemy's movements.

ଅନ୍ଧାକାନ୍ଧାରେ ମାର ହେଲ ପଥ
ଦିଗବାରଣ ଭଲ ଗୋଷ୍ଠକୁଗୋଷ୍ଠ । ଦ୍ବଜନାଥ. ସମରତରଙ୍ଗ ।

**ଦିଗବାର ମଉସିଲ**—ପ୍ରାଦେ. ( ବାଲେଶ୍ବର ) ବି—ଖାତକ ଅଦେଙ୍କଠାରୁ
Digabāra mausila ଟଙ୍କା ଆଦାୟ ହେବା ପର୍ଯ୍ୟନ୍ତ ଖାତକ ଦ୍ବାରରେ ବସି ରହିବା ପାଇଁ ମୁତଏନ୍ ହୋଇଥିବା ପିଆଦା—
A peon deputed to sit at the house of a debter till he pays up the dues.
ଅବଧ ଖାତକ ଦ୍ବାରରେ ଦିଗବାର ମଉସିଲ ଦେଇ ଟଙ୍କା ଅସୁଲ
କରଇ ନଅର । ଫକୀରମୋହନ. ମାମୁ ।

**ଦିଗ ବିଦିଗ**—ଦେ. ବି—ଦିଗ୍ବିଦିକ୍ ( ଦେଖ )
Diga bidiga Digbidik ( See )

**ଦିଗମ୍ବର**-ସଂ ବିଣ. ପୁଂ. ( ଦିକ୍ ହୋଇଅଛି ଅମ୍ବର=ବସ୍ତ୍ର ଯାହାର, ବହୁବ୍ରୀହି )—ଲଙ୍ଗଳା; ବିବସ୍ତ୍ର; ନଗ୍ନ—
Digambara
( ଦିଗମ୍ବରୀ—ସ୍ତ୍ରୀ ) Naked; nude.
ବି. ପୁଂ—୧ । ଜୈନମାନଙ୍କ ସମ୍ପ୍ରଦାୟବିଶେଷ—
1 One of the sects of the Jainas.
[ ଦ୍ର—ଏମାନେ ଉଲଙ୍ଗ ଦେବତାଙ୍କୁ ପୂଜା କରନ୍ତି । ]
୨ । ଶିବ; ମହାଦେବ—2. Siba.
୩ । ବୌଦ୍ଧବିଶେଷ—3. A sect of Buddhists.
୪ । ଅନ୍ଧକାର—4. Darkness.
ଦେ. ବି—ଲୋକଙ୍କ ନାମ—
A name given to males.

**ଦିଗମ୍ବରତା**—ସଂ. ବି. ( ଦିଗମ୍ବର+ଭାବେ. ତା )—ନଗ୍ନ ଅବସ୍ଥା—
Digambaratā Nudity; nakedness.
( ଦିଗମ୍ବରତ୍ବ—ଅନ୍ୟରୂପ )

**ଦିଗମ୍ବରୀ**—ସଂ. ବିଣ. ସ୍ତ୍ରୀ (ଦିଗମ୍ବର+ସ୍ତ୍ରୀ. ଈ)—ବିବସ୍ତ୍ରା—
Digambari Naked ( female ).
ବି—୧ । କାଳୀ—1. Goddess Kāli.
୨ । ଜୈନମାନଙ୍କ ସମ୍ପ୍ରଦାୟବିଶେଷ, ଦିଗମ୍ବର ସଂପ୍ରଦାୟ—
2. A sect of Jainas.

**ଦିଗରି(ର) କରିଦେବା**—ଗ୍ରା. କ୍ରି. ( ଇତରଜାତି ଭାଷା )—ଦୁଇଖଣ୍ଡ କରିଦେବା; ଦୁଇଗଡ଼ କରିଦେବା—
Digari(ra) karidebā
To cut into two.
ଏବାଟ୍ଟେଟେବେ ଗାଲୁକୁ ଦିଗରି କରି ଦେବ ।
କୁନ୍ତଳାକୁମାରୀ. ନଅରୁଣୀ ।

**ଦିଗଶୂଳ**—ଦେ. ବି. ( ସଂ. ଦିକ୍ଶୂଳ )—ଦିକ୍ଶୂଳ ( ଦେଖ )
Digasūla Dik-sūla ( See )

**ଦିଗାଇ**—ଦେ. ବି. ( ଅଦରାର୍ଥକ )—ଦିଗମ୍ବର ନାମକ ବ୍ୟକ୍ତିର ଡାକ ନାମ—Name for calling a person
Digāi
( ଦିଗା—ଅନାଦରାର୍ଥକ ) named Digambāra.
( ଦିଗାମ୍ବର; ଦିଗେଇ—ଅନ୍ୟରୂପ )

**ଦିଗାନ୍ତର**—ଗ୍ରା. ବି. ( ପ୍ରାଚୀନ ପଦ୍ୟ ) ( ସଂ. ଦିଗନ୍ତର )—
Digāntara ଦିଗ୍ବିଦିକ୍ ( ଦେଖ )—Digbidik ( See )
ସେ ନାଦ ଅନ୍ତର ବାହାରେ
ସମାନ ଦଶ ଦିଗାନ୍ତରେ—ଭୂପତି. ପ୍ରେମପଞ୍ଚ ମୃତ ।

**ଦିଗାମ୍ବର**—ଗ୍ରା. ବିଣ. (ପ୍ରାଚୀନ ପଦ୍ୟ) ( ସ. ଦିଗମ୍ବର )—
Digāmbara ଦିଗମ୍ବର ( ଦେଖ )
(ଦିଗାମ୍ବରୀ—ଅନ୍ୟରୂପ) Digambara ( See )
ଜଟା ମୁକୁଟ ଦିଗାମ୍ବର, ଭସ୍ମଭୂଷଣ କଳେବର ।
ଭୂପତି. ପ୍ରେମପଞ୍ଚାମୃତ ।

**ଦିଗାମ୍ବରୀ**—ଦେ. ବି. ପୁଂ—୧ । ଋଷି, ବୈଷ୍ଣବ—
Digāmbari 1. A sage; an ascetic.
ଶୁଣ ହୋ ସବୁ ଦିଗାମ୍ବରୀ, କର୍ମର ଫଳକୁ ଅଦର ।
ଭୂପତି. ନର୍ଗୁଣ ମାହାତ୍ମ୍ୟ ।
୨ । ଦିଗମ୍ବର ଜୈନ—2. A sect of Jainas.

**ଦିଗିତ**—ଗ୍ରା. ବି. ( ସ. ଦୀକ୍ଷିତ )—ଦୀକ୍ଷିତ ( ଦେଖ )
Digita Dikshita ( See )

**ଦିଗୀଶ୍ବର**—ସ. ବି. ( ଦିକ୍+ଈଶ୍ବର; ୬ଷ୍ଠୀ ତତ୍ )—
Digiswara ୧ । ଇନ୍ଦ୍ରାଦି ଦଶ ଦିକ୍ପାଳ—
(ଦିଗୀଶ—ଅନ୍ୟରୂପ) 1. The Deities presiding over the 10 quarters of the earth.
୨ । ସୂର୍ଯ୍ୟାଦି ଗ୍ରହ—
2. The sun and the other planets.

**ଦିଗୁଣ(ଣା)**—ଗ୍ରା ବି ଓ ବିଣ. ( ଦ୍ବିଗୁଣ )—ଦୁଇ ଗୁଣ—
Diguna(nā) Two fold, double; twice.
ହିନ୍ଦୁ ଦୁଗନା

**ଦିଗୁଣେ**—ଦେ. କ୍ରି ବିଣ—ଦୁଇ ସଂଖ୍ୟାରେ ଗୁଣିଲେ—
Digune Multiplied by two.
ଦୁଗୁଣେ } ଅନ୍ୟରୂପ
ଦୁଣେ }
( ଯଥା—ତିନି ଦିଗୁଣେ ଛଅ ପଣ—ପଣିକିଆ ଡାକ । )

**ଦିଗୋଡ଼ିଆ**—ଦେ. ବିଣ—ଦ୍ବିପଦବିଶିଷ୍ଟ, ଦୁଇ ଗୋଡ଼ ଥିବା (ଜନ୍ତୁ)—
Digordiā Two-legged (animal); biped
ବି—୧ । ମନୁଷ୍ୟ—1. Man.
ଦିଗୋଡିଆଙ୍କୁ ବିଶ୍ବାସ ନାହିଁ—କାହାଣୀ, ଢଗ ।
୨ । ଗୋରୁର ସ୍ବାମୀ ନିଜର ବାଛୁରିକୁ ଅନ୍ୟ ବ୍ୟକ୍ତିକୁ ପାଳିବାକୁ ଦେବାର ଏକ ପ୍ରକାର ସର୍ତ୍ତ, ଯେଉଁ ସର୍ତ୍ତ ଅନୁସାରେ ପାଳିବାକୁ ଦେବା ସମୟରେ ବାଛୁରିର ଯାହା ମୂଲ୍ୟ ହୋଇଥିବ, ବାଛୁରିଟି ବଢ଼ି ଗଲେ ଯାହା ଦାମ ହେବ ତହିଁରୁ ଦେବା ବେଳର ମୂଲ୍ୟ କାଟି ଦେଲେ ବାକି ଯାହା ମୂଲ୍ୟ ବଳି ପଡ଼ିବ ସେଥିରୁ ଗୋସ୍ବାମୀ ଅଧେ ନେବ ଓ ପାଳନକାରୀ ବ୍ୟକ୍ତି ଅଧେ ନେବ—
2. A contract by which the profit is divided half and half between the owner of a calf and the person who brings it up to a grown up cow or bullock; a contract of half-and-half profit.

**ଦିଗୋଡ଼ିଆ ପଶୁ**—ଦେ. ବି—୧ । ପଶୁ ତୁଲ୍ୟ ପୁରୁଷ; ଅବିବେକୀ—
Digordiā pāsu 1, A person like a brute; an indiscriminate person.
୨ । ମୂର୍ଖ ଲୋକ—2. A simpleton; an idiot; halt-witted person.

ଦଗୋଡ଼ିଆ ବନ୍ଧା(ନ୍ଧେ)ଇବା—ଦେ.କ୍ରି—'ଦଗୋଡ଼ିଆ' ସର୍ତ୍ତରେ ନିଜର
Digordiā bandhā(ndhe)ibā ବାଛୁରୀକୁ ଅନ୍ୟ ବ୍ୟକ୍ତିକୁ ପାଳିବାକୁ ଦେବା—To make over a calf to another person to bring it up under the contract of 'Digordiā'.

ଦଗୋଡ଼ିଆ ବାନ୍ଧିବା—ଦେ. କ୍ରି—ଦଗୋଡ଼ିଆ ସର୍ତ୍ତରେ କୌଣସି
Digordiā bāndhibā ବ୍ୟକ୍ତିଠାରୁ ବାଛୁରୀ ଆଣି ପାଳିବା—To bring up a calf on contract of sharing half the profit with the owner after it becomes full grown.

ଦିଗ୍ଗଜ—ସଂ. ବି. ( ଦିକ୍+ଗଜ; ୬ଷ୍ଠୀ ତତ୍ )—
Diggaja ହିନ୍ଦୁ ପୁରାଣୋକ୍ତ ଯେଉଁ ଆଠ ଗୋଟି ହସ୍ତୀ ପୃଥିବୀର ଆଠ ଦିଗକୁ ରକ୍ଷା କରୁଥିବନ୍ତି—The eight elephants said to watch the eight points of the compass

[ ଦ୍ର—ପୂର୍ବାଦି କ୍ରମେ ଦିଗ୍ଗଜମାନଙ୍କ ନାମ, ଯଥା—ଐରାବତ (ପୂର୍ବର); ପୁଣ୍ଡରୀକ (ପୂର୍ବ ଦକ୍ଷିଣର), ବାମନ (ଦକ୍ଷିଣର); କୁମୁଦ (ଦକ୍ଷିଣ ପଶ୍ଚିମର); ଅଞ୍ଜନ (ପଶ୍ଚିମର); ପୁଷ୍ପଦନ୍ତ (ପଶ୍ଚିମୋତ୍ତରର); ସାର୍ବଭୌମ (ଉତ୍ତରର); ସୁପ୍ରତୀକ (ଉତ୍ତର ପୂର୍ବର) ]

ବିଣ—୧ । ମହାକାୟ—1. Huge-bodied.
୨ । ମହା ଶକ୍ତିଶାଳୀ, ଧୂରନ୍ଧର—
2. Very powerful.

दिग्गज ଦେ. (ବ୍ୟଙ୍ଗାର୍ଥ) ବିଣ—ମହାମୂର୍ଖ—(ironical) Un-
दिग्गज letterd (person); ignorant; silly.
( ଯଥା—ଦିଗ୍ଗଜ ପଣ୍ଡିତ । )
ବିଶେଷ ବିଣ—ମହା; ଅତ୍ୟନ୍ତ—Very.
( ଯଥା—ଦିଗ୍ଗଜ ବିଦ୍ୱାନ । )

ଦିଗ୍ଗଜ ପଣ୍ଡିତ—ଦେ. ବି—୧ । ମହା ବିଦ୍ୱାନ୍ ବ୍ୟକ୍ତି—
Diggaja pandita 1. A very learned person.
୨ । ( ବ୍ୟଙ୍ଗୋକ୍ତି ) ମହା ମୂର୍ଖ—
2. ( ironical ) A dunce.

ଦିଗ୍ଦାହ—ସଂ. ବି. ( ଦିକ୍+ଦାହ; ୬ଷ୍ଠୀ ତତ୍ )—
Digdāha ଦିଗ୍ବଳୟରେ ସୂର୍ଯ୍ୟାସ୍ତ ପରେ ଓ ରାତ୍ରିରେ ନିଆଁ ଲାଗିଲା ଭଳି ରକ୍ତ ବର୍ଣ୍ଣ ଦେଖାଯିବାର ଆକସ୍ମିକ ଦୃଶ୍ୟ- The preternatural redness of the horizon after sunset and during the night as if it was on fire.

[ ଦ୍ର—ଏପରି ଦୃଶ୍ୟ ଦେଖାଗଲେ ନିକଟ ଭବିଷ୍ୟତରେ ଦେଶରେ ଅମଙ୍ଗଳ ଘଟେ ବୋଲି ଶାସ୍ତ୍ରମାନଙ୍କରେ ଲେଖାଅଛି । ]

ଦିଗ୍ଧ—ସଂ. ବିଣ. (ଦିହ୍ ଧାତୁ=ଲେପନ କରିବା+କର୍ମ. ତ)—
Digdha ୧ । ଲିପ୍ତ—1. Smeared; annointed.
ବିଷ ଦିଗ୍ଧ ଶରେ ପ୍ରାୟେ ବିଦ୍ଧ ପୃଷ୍ଠ । ରାଧାନାଥ. ଚିଲିକା ।
୨ । ମିଶ୍ରିତ—2. Mixed.
( ଯଥା—ବିଷଦିଗ୍ଧ ବାଣ । )
ବି—୧ । ଅଗ୍ନି—1. Fire.
୨ । ବିଷଲିପ୍ତ ବାଣ—2. Envenomed arrow
୩ । (+କରଣ. ତ) ସ୍ନେହ; ତେଲ—3. Oil.
୪ । ପ୍ରବନ୍ଧ—4. A narrative; a composition.
୫ । (+ଭାବ. ତ) ଲେପନ—5 Smearing

ଦିଗ୍ବଳୟ—ସ. ବି. (ଦିକ୍+ବଳୟ; ରୂପକ କର୍ମଧା)—ଚକ୍ରବାଳ; ଦିକ୍-
Digbalaya ଚକ୍ର; କୌଣସି ଉଚ୍ଚସ୍ଥାନରୁ ଚାରିଆଡ଼କୁ ଚାହିଁଲେ ଯେଉଁଠାରେ ପୃଥିବୀ ଆକାଶ ସଙ୍ଗେ ମିଶିଗଲା ପରି ଦିଶେ, ପୃଥିବୀର ଚାରିପାଖରେ ଗୋଲ ହୋଇ ବୁଲିଥିବା ଭଳି ଯେଉଁ ମଣ୍ଡଳ ବା ରେଖା ମନୁଷ୍ୟକୁ ଦେଖାଯାଏ—The horizon; the circle where the earth and the heavens seem to the eye to meet.

ଦିଗ୍ବିଦିକ୍—ସ. ବି. (ଦିକ୍=ପୂର୍ବ, ପଶ୍ଚିମ, ଉତ୍ତର, ଦକ୍ଷିଣ ଦିଗ+
Digbidik ବିଦିକ୍=ଅଗ୍ନି,ବାୟୁ, ଈଶାନ ନୈର୍ଋତ କୋଣ; ଦ୍ୱନ୍ଦ୍ୱ)-
୧ । ଦିଗ ଓ ଦିକ୍କୋଣମାନ—1. The four cardinal points and the four intermediate points of the globe.
୨ । ଚାରି ଦିଗ, ଚାରି କୋଣ, ଉପର ଓ ତଳ; ୧୦ ଦିଗ—2. The ten quarters of the globe.
୩ । ଚତୁର୍ଦ୍ଦିଗ, ପୃଥିବୀର ସବୁ ତରଫ—3. All the sides of the earth; all parts of the earth.
୪ । ଅନୁକୂଳ ଓ ପ୍ରତିକୂଳ ଦିଗ; ଗୋଟିଏ ଦିଗ ଓ ତାହାର ପ୍ରତିକୂଳ ଦିଗ—4. A point of the compass and its opposite point.
୫ । (ଲକ୍ଷଣାର୍ଥ) ଲଘୁ ଗୁରୁ, ହିତ ଅହିତ, ନ୍ୟାଯ୍ୟ ଅନ୍ୟାଯ୍ୟ ବିଷୟ—5. Distinction between right and wrong.
(ଯଥା—ଦୁଃଖର କଥା, ତାହାର ଦିଗ୍ବିଦିଗ୍ ଜ୍ଞାନ ନାହିଁ ।)

ଦିଗ୍ବିଦିଗ୍ ଜ୍ଞାନଶୂନ୍ୟ—ସ. ବିଣ ପୁଂ. (ଦିକ+ବିଦିକ୍+ଜ୍ଞାନଶୂନ୍ୟ)-
Digbidig jñānaśūnya ଦିଗ୍ବିଦିଗ୍ ଜ୍ଞାନଶୂନ୍ୟ (ଦେଖ)
(ଦିଗ୍ବିଦିଗ୍ ଜ୍ଞାନଶୂନ୍ୟା—ସ୍ତ୍ରୀ) Dig-bidig-jñānaśūnya
(ଦିଗ୍ବିଦିଗ୍ ଜ୍ଞାନଶୂନ୍ୟତା—ବି) (See)

ଦିଘି—ଦେ. ବି (ସ. ଦୀର୍ଘିକା)—ବଡ଼ ପୋଖରୀ—
Dighi Big tank.
दीघी दिग्घी, डिगी

ଦିଙ୍ନାଗ—ସ. ବି. (ଦିକ୍+ନାଗ; ୬ଷ୍ଠୀ ତତ୍)—ଦିଗ୍ଗଜ (ଦେଖ)
Diṅnāga Diggaja (See)
(ଦିଙ୍ମାତଙ୍ଗ—ଅନ୍ୟରୂପ)

ଦିଙ୍ନାରୀ—ସ. ବି. (ଦିକ୍+ନାରୀ)—୧ । ବେଶ୍ୟା (ହି. ଶବ୍ଦସାଗର)—
Diṅ-nārī 1. Prostitute.
୨ । କୁଳଟା ସ୍ତ୍ରୀ—2. Dissolute or adulterous woman.

ଦିଙ୍ନିର୍ଣ୍ଣୟ—ସ. ବି. ( ଦିକ୍+ନିର୍ଣ୍ଣୟ; ୬ଷ୍ଠୀ ତତ୍ )—
Diṅ-nirṇṇaya ୧ । ଦିଗମାନଙ୍କର ସ୍ଥିରୀକରଣ—1. Ascertainment of the points of the compass.

୨ । କୌଣସି ବିଷୟର ସୂଚନା—
2. Mere indication of any matter

**ଦିଙ୍ମଣ୍ଡଳ**—ସ ବି. ( ଦିକ୍+ମଣ୍ଡଳ; ୬ଷ୍ଠୀ ତତ୍ ) —ଦିଗମାନଙ୍କର
Din-mandala ଚକ୍ରାକାର ଶେଷସୀମା, ଯାହାର ଅଶିକୁ ଦେଖାଯାଏ; ଦିକ୍‌ଚକ୍ର; ଦିଗ୍‌ବଳୟ—Horizon.

**ଦିଙ୍ମାତ୍ର**—ସ. ବି. (ଦିକ୍+ମାତ୍ର)—୧ । ଏକ ଦେଶ ମାତ୍ର—
Din-mātra 1. One quarter only.
୨ । ଏକାଂଶ; ଅଂଶମାତ୍ର—2. One part only.
୩ । କୌଣସି ବିଷୟର ସୂଚନା ମାତ୍ର – 3. Mere indication or hint of any matter.
ସ. ବିଣ—ଅଳ୍ପମାତ୍ର—A little of; a bit of

**ଦିଙ୍ମୂଢ଼**—ସ. ବିଣ. ପୁଂ. (୭ମୀ ତତ୍; ଦିଗ୍+ମୂଢ଼)—
Din-mūrdha ଦିଗ ସମ୍ବନ୍ଧେ ଭ୍ରାନ୍ତ—Bewildered or mistaken as to the identity of the points of the compass.
(ଦିଙ୍ମୂଢ଼ତା—ବି)
(ଦିଙ୍‌ମୂଢ଼ା—ସ୍ତ୍ରୀ)

**ଦି ଚଉକ**—ଦେ. ବି—ପଶାଖେଳରେ ତିନୋଟି କାଠିରେ ଚାରି ପଡ଼ିବା ଦାନ—A throw of the dice resulting in 4 points turning up on three dice-sticks
Di chauka
(ଦିଚୌକ—ଅନ୍ୟରୂପ)
ଦୁଚୌକ
[ ଦ୍ର—ଗୋଟିଏ କାଟିରେ ୨ ଏବଂ ଅନ୍ୟ ୨ କାଠିରେ ୧ ଲେଖାଏଁ ପଡ଼ିଲେ ତାହା ଦି ଚଉକ ଦାନ ହୁଏ ]

**ଦି ଚଉତ**—ଦେ. ବିଣ—ଦୁଇଥର ଭାଙ୍ଗ ହୋଇଥିବା—
Di chauta Double-folded; folded twice
(ଦିଚଉତା, ଦୋଚଉତ, ଦୋଚଉତା—ଅନ୍ୟରୂପ)
ଦୋତାରି **दोहराहुआ**

**ଦି ଚାରି**—ଦେ. ବି ଓ ବିଣ. (ସ. ଦ୍ୱି; ଚତୁର୍)—ଅଳ୍ପସଂଖ୍ୟକ—
Di chāri A few.
ଦୁଚାର [ ଦ୍ର—ଅଳ୍ପ ସଂଖ୍ୟକ ଅର୍ଥରେ ଦି ଏକ, ଦି ତିନି, ଦି ଚାରି,
**दोचार** ଇତ୍ୟାଦି ବ୍ୟବହୃତ ହୁଏ । ଯଥା :—ମୁଁ ଦି ତିନି ଦିନେ ଆସିବି, ତାଙ୍କ ସଙ୍ଗେ ଦି ଚାରି ଜଣ ଲୋକ ଥିଲେ । ]

**ଦି ଚାଳି**—ଦେ. ବି—ଯେଉଁ ଚାଳର ମଝାମଠାରୁ ଚାଳ ଦୁଇଆଡ଼କୁ ଢାଲୁ
Di chāli ହୋଇଥାଏ—Two-sloped thatch.
(ଦିଚାଳିଆ—ଅନ୍ୟରୂପ) ଦେ. ବିଣ—ଯେଉଁ ଘରର ଚାଳ ଦୁଇଆଡ଼କୁ ଢାଲୁ ହୋଇଥାଏ; ଦୁଇଚାଳିଆ—
ଦୁଚାଳା
**दोचाला, दुचाला** With the thatch sloping to both sides.

**ଦିଜ**—ଗ୍ରା. ବି. (ସଂ. ଦ୍ୱିଜ)—ବ୍ରାହ୍ମଣ—
Dija A Brāhmana.
ଦିଜ **द्विज**

**ଦିଜ ବର**—ଦେ. ବି· ( ସଂ. ଦ୍ୱିଜବର )—କର୍ମନିଷ୍ଠ ବ୍ରାହ୍ମଣ—
Dija bara A good orthodox Brāhmana.
ଦିଜବର **द्विजोत्तम**

**ଦିଟା**—ଦେ. ବି. ଓ ବିଣ (ଅନାଦରାର୍ଥକ)—(ସ. ଦ୍ୱି)—୧ । ଦୁଇଟା; ଦୁଇଗୋଟା—1 Two; the two.
Ditā
ଦୁଟା (ଯଥା—ସେ ଦିଟା ବଗିଡ଼ କାଠର ଗାଡ଼ି ଏଠାରେ ଆଣି
**दोटा** କଳ ଲଗେଇଲେ ।)
ଦୁଇଟା, ଦିଇଟା, ଦୁଇଗୋଟା, ଦୋଟା, ଦୋଓଟା, ଦିଭୁଟା, ଦଓଟା } ଅନ୍ୟରୂପ
୨ । ଅଳ୍ପସଂଖ୍ୟକ—
2 A few; a small number.
୩ । ଅଳ୍ପପରିମିତ—
3. A little; a small quantity
(ଦିଟ, ଦିଇଟ—ଅନାଦରାର୍ଥକ)

**ଦିଟି**—ଦେ. ବି. ଓ ବିଣ (ଆଦରାର୍ଥକ)—ଦିଟା (ଦେଖ)
Diti Ditā (See)
ଦୁଟି **दोटो**
(ଦୁଇଟି, ଦୁଇଗୋଟି, ଦିଇଟି, ଦୋଓଟି, ଦଓଟି, ଦିଭୁଟି—ଅନ୍ୟରୂପ)

**ଦି ଟିକି**—ଦେ. ବି.(ସ. ଦ୍ୱି+ସ୍ତୋକ)—ଅତି କ୍ଷୁଦ୍ର ଦୁଇ ଖଣ୍ଡ—
Di tiki Two very small pieces; two bits.
ଦୁଟୁକବା (ଯଥା—ସେ କଥା ଆମ୍ଭକୁ ମୋତେ ଦିଟିକି ଦେ ।)
**दोटुकड़ा** ବିଣ.—୧ । ଦୁଇ କ୍ଷୁଦ୍ର ଖଣ୍ଡବିଶିଷ୍ଟ—
(ଦିଟିକ୍—ଅନ୍ୟରୂପ) 1. Consisting of two small pieces;
(ଯଥା—ସେ ଦିଟିକି ଲେମ୍ବୁ କି ମୋତେ ଅଣ୍ଟିବ ?)
୨ । ଦ୍ୱିଖଣ୍ଡିତ; ଦ୍ୱିଧା ବିଭକ୍ତ—
2. Cut into two small bits.
(ଯଥା—ସେ ଟିକିକ ଦିଟିକି କରି ଦେ ।)

**ଦିଣ୍ଡ**—ସ. ବି.—ଏକପ୍ରକାର ନାଚ (ହି. ଶବ୍ଦସାଗର)—
Dinda A kind of dance.

**ଦିଣ୍ଡା**—ପ୍ରାଦେ. (ସମ୍ବଲପୁର, ଗଡ଼ଜାତ) ବି. ସ୍ତ୍ରୀ—ଯୁବତୀ—
Dinda Youthful lady.
ବିଣ. ପୁଂ. ଓ ସ୍ତ୍ରୀ—ବନ୍ଧା; ଅସ୍ଖଳିତ—Unloose; firm; fixed

**ଦିଣ୍ଡି**—ଦେ. ବି. (ନାଟକୀୟ) (ସ. ଦଣ୍ଡ)—ନାଟକରେ ନୃତ୍ୟ ସହ ଗୀତ
Dindi ହେବା ସଙ୍ଗୀତର ପ୍ରକାର ଭେଦ—A kind of song sung during the play of a drama.

**ଦିଣ୍ଡିମ**—ଗ୍ରା. ବି. (ସ. ଡିଣ୍ଡିମ)—ଢୋଲ; ନାଗରା—
Dindima Drum.

**ଦିଣ୍ଡିର**—ସ. ବି.—ପ୍ରାଚୀନକାଳର ଏକ ପ୍ରକାର ବାଜା; ଡିଣ୍ଡିମ;
Dindira ଢୋଲ—Drum.

**ଦିଣ୍ଡୀର**—ସ. ବି.—ସମୁଦ୍ରଫେନ (ହି. ଶବ୍ଦସାଗର)—
Dindīra The bone of the cuttle-fish.

**ଦିତ୍ସା**—ସ. ବି (ଦା ଧାତୁ+ଇଚ୍ଛାର୍ଥେ ସନ୍=ଦିତ୍ସ ଧାତୁ+ଭାବାର୍ଥେ. ଅ
Ditsā +ସ୍ତ୍ରୀ. ଆ)—ଦିତ୍ସା (ଦେଖ)—Ditsā (See)

**ଦିତ**—ସ. ବିଣ. ପୁଂ. (ଦା ଧାତୁ=ଛେଦନ କରିବା+କର୍ମ. ତ)—
Dita ୧ । ଛିନ୍ନ—1. Torn, cut asunder.
(ଦିତା—ସ୍ତ୍ରୀ ୨ । ବିଦୀର୍ଣ୍ଣ—2. Pierced.

**ଦି ତରଫା**—ଦେ. ବିଣ—୧ । ଦୁଇପକ୍ଷ ସମ୍ବନ୍ଧୀୟ—
Di taraphā 1. Relating to both sides.

ଦ୍ୱୈତରଫା ୨ । (କଚେରିଆ) ଦୁଇ ପକ୍ଷରୁ ପ୍ରମାଣ କଥା ଯାଇ
**ଦ୍ୱୈତରଫା** ବିଚାର କରା ଯାଇଥିବା (ମକଦମା)—
(ଏକତରଫା— ବିପରୀତ) 2. (case) Decided after contest.
(ଯଥା – ଦ୍ୱୈତରଫା ଡିଗ୍ରୀ ।)

**ଦିତି**—ସଂ. ବି. ସ୍ତ୍ରୀ. (ଦୋ ଧାତୁ+ଭାବ. ତି)—୧ । ଛେଦନ କରଣ;
Diti ଖଣ୍ଡନ—1. Tearing; cutting.
୨ । ବିଦାରଣ—2. Piercing.
୩ । (ନାମ)—ଦକ୍ଷ ପ୍ରଜାପତିଙ୍କ କନ୍ୟା ଓ କଶ୍ୟପ ମୁନିଙ୍କର ଏକତମା ଭାର୍ଯ୍ୟା; ଅସୁରମାନଙ୍କ ମାତା—
One of the wives of Kaśyapa, who gave birth to demons.
[ଦ୍ର—ଏହାଙ୍କ ସନ୍ତାନମାନଙ୍କୁ ଦୈତ୍ୟ ବୋଲାଯାଏ ।]

**ଦିତିଜ**— ସଂ. ବି. ପୁଂ. (ଦିତି+ଜନ ଧାତୁ+କର୍ତ୍ତୃ. ଅ)—ଦୈତ୍ୟ; ଅସୁର;
Ditija ରାକ୍ଷସ—Demon.
(ଦିତିଜା—ସ୍ତ୍ରୀ)

**ଦିତିସୁତ**—ସଂ. ବି. ପୁଂ. (ଦିତି+ସୁତ, ୬ଷ୍ଠୀ ତତ୍)— ଦୈତ୍ୟ; ଅସୁର;
Ditisuta ରାକ୍ଷସ – Demon.
(ଦିତିସୁତା—ସ୍ତ୍ରୀ)
( ଦିତି ତନୟ, ଦିତି ନନ୍ଦନ— ଅନ୍ୟରୂପ )

**ଦିତ୍ସା**—ସଂ ବି. ସ୍ତ୍ରୀ ( ଦା ଧାତୁ+ଇଚ୍ଛାର୍ଥେ, ସନ୍=ଦିତ୍ସ ଧାତୁ+ଭାବ.
Ditsā ଅ+ଆ) ଦାନେଚ୍ଛା, ଦାନ କରିବାର ଇଚ୍ଛା—
A desire to give.

**ଦିତ୍ସୁ**—ସଂ. ବିଣ. (ଦା ଧାତୁ ସନନ୍ତ=ଦିତ୍ସ ଧାତୁ+କର୍ତ୍ତୃ ଉ)—
Ditsu ଦାନ କରିବାକୁ ଇଚ୍ଛୁକ— Desirous of making a gift.

**ଦିତ୍ସ୍ୟ**—ସଂ. ବିଣ—(ଦା ଧାତୁ ସନନ୍ତ ଦିତ୍ସ ଧାତୁ+କର୍ମ. ଯ)—ଦାନ
Ditsya କରିବା ଯୋଗ୍ୟ (ହୃ. ଶବ୍ଦସାଗର)—
Fit to be given away.

**ଦିଦାଡ଼ୁଆ**- ଦେ. ବି ଣ (ସଂ. ଦ୍ୱିଧାର)—ଦୁଇପାଖରେ ଧାର ଥିବା
Di dāṛdhuā (ଅସ୍ତ୍ର)—Double-edged (weapon).
ହୁଧାରା **ଦୋଧାର**

**ଦିଦି** ପ୍ରାଦେ. (ବଙ୍ଗଳାରୁ ଅନୁକୃତ; ମେଦିନୀପୁର; ବାଲେଶ୍ୱର ଓ ବଙ୍ଗଳା
Didi ରୀତିନୀତି ଅନୁକରଣକାରୀ ଓଡ଼ିଆମାନଙ୍କ ମଧ୍ୟରେ ପ୍ରଚଳିତ)--
ବଡ଼ଭଉଣୀ; ନାନୀ—Elder sister.

**ଦିଦି ମା**—ପ୍ରାଦେ. ( ବାଲେଶ୍ୱର, ମେଦିନୀପୁର; ବଙ୍ଗଳାରୁ ଅନୁକୃତ;
Didi mā ବଙ୍ଗଳାର ରୀତି ଅନୁକରଣକାରୀ ଓଡ଼ିଆଙ୍କ ବ୍ୟବହାର)
ଜେ—ଆଇ -Maternal grand-mother.

**ଦିଦୃକ୍ଷମାଣ**—ସଂ. ବିଣ. ପୁଂ (ଦୃଶ୍ ଧାତୁ+ଇଚ୍ଛାର୍ଥେ ସନ୍=ଦିଦୃକ୍ଷ ଧାତୁ
Didṛukshamāṇa +କର୍ତ୍ତୃ. ଶାନଚ୍)—ଦର୍ଶନେଚ୍ଛୁ; ଦର୍ଶନା-
(ଦିଦୃକ୍ଷମାଣା—ସ୍ତ୍ରୀ) ଭିଳାଷୀ—Desirous of seeing.

**ଦିଦୃକ୍ଷା**—ସଂ. ବି. (ଦୃଶ୍ ଧାତୁ+ଇଚ୍ଛାର୍ଥେ ସନ୍=ଦିଦୃକ୍ଷ ଧାତୁ+ଭାବ. ଅ
Didṛukshā +ଆ)—ଦେଖିବାର ଇଚ୍ଛା; ଦର୍ଶନାଭିଳାଷ—
A desire to see.

**ଦିଦୃକ୍ଷୁ**—ସଂ. ବିଣ. (ଦୃଶ୍ ଧାତୁ+ଇଚ୍ଛାର୍ଥେ ସନ୍=ଦିଦୃକ୍ଷ ଧାତୁ+କର୍ତ୍ତୃ.
Didṛukshu ଉ.)—ଦର୍ଶନେଚ୍ଛୁ—Desirous of seeing.

**ଦିଦ୍ୟୁତ୍**—ସଂ. ବିଣ. [ଦ୍ୟୁ ଧାତୁ=ଦୀପ୍ତି ପାଇବା+କର୍ତ୍ତୃ. ଅତ୍ (ଶତୃ)]—
Didyut ଦୀପ୍ତିଶାଳୀ—Bright, dazzling; blazing.

**ଦିଧକ୍ଷମାଣ**—ସଂ. ବିଣ. ପୁଂ. (ଦହ୍ ଧାତୁ=ପୋଡ଼ିବା+ଇଚ୍ଛାର୍ଥେ ସନ୍=
Didhakshamāṇa ଦିଧକ୍ଷ ଧାତୁ+କର୍ତ୍ତୃ. ଶାନଚ୍)—ଯେ
(ଦିଧକ୍ଷମାଣା—ସ୍ତ୍ରୀ) ପୋଡ଼ିଦେବାକୁ ଇଚ୍ଛା କରୁଅଛି—
Desirous of setting on fire.

**ଦିଧକ୍ଷା**—ସଂ. ବି. (ଦହ ଧାତୁ+ଇଚ୍ଛାର୍ଥେ ସନ୍+ଭାବ. ଅ+ଆ)—
Didhakshā ଦହନେଚ୍ଛା—A desire to set on fire or burn.

**ଦିଧକ୍ଷୁ**—ସଂ. ବିଣ. (ଦହ ଧାତୁ+ଇଚ୍ଛାର୍ଥେ ସନ୍+କର୍ତ୍ତୃ. ଉ)—
Didhakshu ଦହନେଚ୍ଛୁକ—Desirous of setting on fire.

**ଦିଧି**—ସଂ. ବିଣ. (ଧା ଧାତୁ=ଧାରଣ କରିବା+ଭାବ. ଇ)—ଧୈର୍ଯ୍ୟ—
Didhi Patience.
୨ । ଧାରଣ—2 Holding.

**ଦିଧିଷୁ**—ସଂ. ବି. ପୁଂ.—(ଧିଷ୍ ଧାତୁ=ଶବ୍ଦ କରିବା+କର୍ମ. ଉ)—
Didhishu ୧ । ଦୁଇବାର ବିବାହିତ ପୁରୁଷ—
(ଦିଧିଷୂ—ସ୍ତ୍ରୀ) 1. A twice-married male.
୨ । ଦ୍ୱିତୀୟ ବିବାହ କରିଥିବା ବିଧବାର ସ୍ୱାମୀ; ଠାଣ୍ଡୁଆଁ—
2. A husband of a remarried widow.
୩ । ବର ପାତ୍ର—3. A suitor (Apte).
୪ । ସ୍ୱାମୀ; ବର—4. Husband (Apte.)
୫ । ଗର୍ଭାଧାନକାରୀ ବ୍ୟକ୍ତି (ହୃ. ଶବ୍ଦସାଗର)—
5. A man through whom a woman conceives.
ସ୍ତ୍ରୀ. – ୧ । ଦିଧିଷୂ (ଦେଖ)—1. Didhishū (See)
୨ । ବରପୂର୍ବା କନ୍ୟା—2. A girl who has already been betrothed.
୩ । ପୁନର୍ବିବାହିତା ଅକ୍ଷତଯୋନି ବିଧବା—
3. A virgin widow remarried (Apte).

**ଦିଧିଷୂ**—ସଂ. ବି. ସ୍ତ୍ରୀ—୧ । ଦୁଇବାର ବିବାହିତା ସ୍ତ୍ରୀ—
Didhishū 1. A woman twice married.
୨ । ଦ୍ୱିତୀୟ ହୋଇଥିବା ବିଧବା; ଠାଣ୍ଡୁଆଣୀ—
2. A remarried widow.
୩ । ଅଗ୍ରେଦିଧିଷୂ, ବଡ଼ ଭଉଣୀ ଅବିବାହିତା ଥାଉ ଥାଉଁ ଯେଉଁ ସାନ ଭଉଣୀ ବିବାହ କରେ । (ହୃ. ଶବ୍ଦସାଗର)
3. A girl who has been given in marriage before her elder sister.
୪ । ବିବାହିତା ସାନ ଭଉଣୀର ଅବିବାହିତା ବଡ଼ ଭଉଣୀ—
4. An unmarried elder sister of a married girl (Apte).
[ଦ୍ର—ଏପରି ବିବାହିତା ସାନ ଭଉଣୀକୁ ଅଗ୍ରେଦିଧିଷୁ କୁହା ଯାଏ ।]

**ଦିଧିଷୁପତି**—ସ ବି. ପୁଂ.— ୧ । ଠାଯ୍ଯାଁ; ଦ୍ଵିତୀୟ ହୋଇଥିବା ବିଧବାର ସ୍ୱାମୀ—1. The husband of a re-married widow.
Didhishū pati

୨ । ଯେଉଁ ଲୋକ ଭାଇର ବିଧବା ସ୍ତ୍ରୀକୁ ବିବାହ ନ କରି ପାଶବିକ ପ୍ରବୃତ୍ତି ଚରିତାର୍ଥ କରିବା ପାଇଁ ତା ସଙ୍ଗେ ପାପ ପ୍ରଣୟ କରିଥାଏ—2. A man who has sexual intercourse with the widow of his brother, (not as a sacred duty but for carnal gratification. (Apte)

**ଦିଧୀଷୁ**—ସ. ବି—ଦିଧିଷୁ ( ଦେଖ )
Didhīshu — Didhishu ( See )

**ଦିନ**—ସ. ବି. ( ଦୋ ଧାତୁ=ଛେଦନ କରିବା+କର୍ତ୍ତୃ. ଇନ; ଯାହା ଅନ୍ଧକାରକୁ ଛେଦନ କରେ )—
Dina

(ରାତ୍ରି—ବିପରୀତ) ୧ । ଦିବସ—1 Day.

୨ । ପୃଥିବୀ ନିଜର ଅକ୍ଷଦଣ୍ଡରେ ଥରେ ସୂର୍ଯ୍ୟଙ୍କ ଚାରି ଆଡ଼େ ବୁଲିବାକୁ ଯେତେ ସମୟ ଲାଗେ; ଅହୋରାତ୍ର; ସପ୍ତାହର ଗୋଟିଏ ଦିବସ—2 A week day; a day and night; the time from one sunrise to anothr sunrise, a solar day.

୩ । ୨୪ ଘଣ୍ଟା ପରିମିତ ସମୟ—
3. A period of 24 hours.
( ଯଥା—ଏଡିକ ତାର ଦିନକର ଖାଦ୍ୟ । )

୪ । ସୂର୍ଯ୍ୟାଲୋକିତ ବେଳା; ସୂର୍ଯ୍ୟୋଦୟଠାରୁ ସୂର୍ଯ୍ୟାସ୍ତ ପର୍ଯ୍ୟନ୍ତ ସମୟ—4. Day time; the time between sunrise and sunset.
( ଯଥା—ଦିନରେ କାହିଁକି ଅଇଲୁ । )

[ ଦ୍ର—ପୃଥିବୀ ଆପଣା ଅକ୍ଷରେ ଘୂରି ସୂର୍ଯ୍ୟଙ୍କ ଚାରି ପାଖେ ବୁଲୁଅଛି । ପୃଥିବୀ ଘୂରିବା ବେଳେ ପୃଥିବୀର ଯେଉଁ ଅଧିକ ସୂର୍ଯ୍ୟଙ୍କ ଆଡ଼କୁ ଥାଏ ସେ ଅଧିକରେ ଦିନ ଓ ଯେଉଁ ଅଧିକ ସୂର୍ଯ୍ୟଙ୍କ ବିପରୀତ ଦିଗରେ ଥାଏ ସେ ଅଧିକରେ ରାତି ହୁଏ । ଏହି ଅର୍ଥରେ ସୂର୍ଯ୍ୟୋଦୟଠାରୁ ସୂର୍ଯ୍ୟାସ୍ତ ପର୍ଯ୍ୟନ୍ତ ସମୟ ଦିନ ଓ ସୂର୍ଯ୍ୟାସ୍ତଠାରୁ ପରବର୍ତ୍ତୀ ସୂର୍ଯ୍ୟୋଦୟ ପର୍ଯ୍ୟନ୍ତ ରାତି ହୁଏ । ସୂର୍ଯ୍ୟ ଓ ପୃଥିବୀର ଆପେକ୍ଷିକ ଅବସ୍ଥିତି ଅନୁସାରେ ଦିନ ଓ ରାତିର ପରିମାଣ କମ୍ ବେଶି ହୁଏ । ଯେଉଁ ଦିନ ସୂର୍ଯ୍ୟ ବିଷୁବ ରେଖା ଉପରେ ଥାଆନ୍ତି ସେ ଦିନ ଦିନ ୧୨ ଘଣ୍ଟା ଓ ରାତି ୧୨ ଘଣ୍ଟା ହୁଏ, ଅର୍ଥାତ୍ ଦିନ ଓ ରାତି ସମାନ ହୁଏ; କିନ୍ତୁ ସୂର୍ଯ୍ୟଙ୍କର ଉତ୍ତରାୟଣ କାଳରେ ଦିନ ବଡ଼ ଓ ରାତି ଛୋଟ ହୁଏ ଓ ଦକ୍ଷିଣାୟନ କାଳରେ ରାତି ବଡ଼ ଓ ଦିନ ଛୋଟ ହୁଏ । ପକ୍ଷାନ୍ତରରେ ଏକ ସୂର୍ଯ୍ୟୋଦୟଠାରୁ ପରବର୍ତ୍ତୀ ସୂର୍ଯ୍ୟୋଦୟ ପର୍ଯ୍ୟନ୍ତ ୨୪ ଘଣ୍ଟା ସମୟକୁ ଦିନ ବୋଲାଯାଏ । ହିନ୍ଦୁମାନଙ୍କର ଦିନର ଗଣନା ଏକ ସୂର୍ଯ୍ୟୋଦୟଠାରୁ ପରବର୍ତ୍ତୀ ସୂର୍ଯ୍ୟୋଦୟ ପର୍ଯ୍ୟନ୍ତ କରାଯାଏ । କିନ୍ତୁ ପାଶ୍ଚାତ୍ୟମାନେ ଅର୍ଦ୍ଧରାତ୍ର ଠିକିବା ସମୟରୁ ପରବର୍ତ୍ତୀ ଅର୍ଦ୍ଧରାତ୍ର ପର୍ଯ୍ୟନ୍ତ ଏକ ଦିବସ ଗଣନା କରନ୍ତି । ]

୫ । ବେଳ; କାଳ; ସମୟ—5. Time.
ଏକ ଅବଳକ କଥାକୁ ନ କ.ଶଇ
ଉଚ୍ଛେଦ୍ୟ ହୋଇଣ ଦିନକୁ ନଥିଇ । କୃଷ୍ଣସିଂହ. ମହାଭାରତ, ବନ ।

୬ । ନିର୍ଦ୍ଦିଷ୍ଟ ସମୟ; ତାରିଖ—6 Date; fixed date
( ଯଥା— ସମନରେ ହାଜର ହେବାର ଦିନ ଲେଖା ଯାଇଛି । )

୭ । ଶୁଭ ଯୋଗ ଯୁକ୍ତ ସମୟ—
7. Auspicious time or date
( ଯଥା—ବିବାହ ପାଇଁ ପାଞ୍ଜିରୁ ଗୋଟିଏ ଦିନ ବୁଝ । )

୮ । ତିଥି—8 A lunar day.

ଦେ. ବି—୧ । ଜୀବନକାଳ—
1 Span of life; lifetime
ମୁଁ ତ ସୁବଦା ଅବଳା ମୋ ଦିନ କେ ସାରିବରେ । ସଙ୍ଗୀତ ।

୨ । ନିର୍ଦ୍ଧାରିତ ସମୟର ସୀମା; ମିଆଦ—
2 Time-limit; limitation.

୩ । ବୟସ—3. Age.
( ଯଥା—ମରିବା ଦିନକୁ ପରିବା କାଟିବା ନ୍ୟାୟ—ଚଗ )

୪ । ଋତୁ, ପାଗ—4. Season of the year; weather.
( ଯଥା—ଶୀତଦିନ, ଖରାଦିନ; ବର୍ଷାଦିନ, ମେଘୁଆଦିନ । )

୫ । ଦିନବନ୍ଧୁର ଆଦରାର୍ଥକ ଡାକ ନାମ—5. A name for calling Dinabandhu in fondness.

**ଦିନକ**—ଦେ. ଅ—ଏକ ଦିନ ମାତ୍ର—
Dinaka — One day only.
একদিন — ବିଣ—ଦିନକିଆ ( ଦେଖ )
एकरोज — Dinikiā ( See )

**ଦିନ କଟା(ଟେ)ଇବା**—ଦେ. କ୍ରି—ଦିନପାତ କରିବା; ସମୟ ଯାପନ କରିବା—To while away time; to spend time.
Dina katā(te)ibā
ଦିନ କାଟିବା, ଦିନ ବିତା(ତେ)ଇବା, ଦିନ ନେବା — ଅନ୍ୟରୂପ
দিনকাটা; দিনওযা — दिनकाटना, दिनबिताना

**ଦିନ କଟିବା**—ଦେ ବି—୧ । ଦିବସ ବା କାଳ ଅତିକ୍ରାନ୍ତ ହେବା—
Dina katibā — 1. The passing of days.
ଦିନବିତିବା; ଦିନସରିବା, ଦିନକଟିଯିବା — ଅନ୍ୟରୂପ
୨ । ନିର୍ଦ୍ଧାରିତ ସମୟ ଅତିକ୍ରାନ୍ତ ହେବା; ମିଆଦ ଫିଟିଯିବା—
দিনকেটেযাওয়া — 2. The passing away or expiry of the time-limit.
दिनकटना

**ଦିନ କଣା**—ଦେ. ବିଣ (ସ. ଦିବାନ୍ଧ)—ରୋଗ ଯୋଗୁଁ ଯାହାକୁ ଦିନରେ ଦେଖାଯାଏ ନାହିଁ, ରାତିରେ ଦେଖାଯାଏ—Blind by day.
Dina kanā
দিনকানা
दिनौंन्ह — ବି—ଦିବାନ୍ଧତା ରୋଗ—Blindness by day; a disease.
(ଅନ୍ଧାରକଣା—ବିପରୀତ)
दिनौंधी

**ଦିନକ ଯାକ**—ଦେ. ଅ.—ଏକ ଦିବସ କାଳ—
Dinaka jāka — The whole day long; throughout the whole day, extending over the period of a day.
ଦିନତମାମ, ଦିନମାନ, ଦିନଯାକ, ଦିନସାରା — ଅନ୍ୟରୂପ
দিনতমাম; দিনসারা — दिनतमाम

ଦିନକର—ସଂ. ବି (ଦିନ+କୃ ଧାତୁ+କର୍ତ୍ତୃ. ଅ; ଉପପଦ ତତ୍ପୁରୁଷ)—
Dinakara ୧ । ଦିବାକର; ସୂର୍ଯ୍ୟ—1. The sun
୨ । ଅର୍କ ଗଛ ( ଦ୍ର ଶବ୍ଦସାଗର )—
2. Arka plant ( See ).
ଦେ. ବି ( ନାମ )—ଜଣେ ଜ୍ୟୋତିଷୀ—
A name of an astrologer.
[ ଦ୍ର—ଏହାଙ୍କର ନିବାସ ପୁନା; ଏ ଦାକ୍ଷିଣାତ୍ୟନିବାସୀ । ଏ ଯନ୍ତ୍ର ଚିନ୍ତାମଣିର ଟୀକା ଏବଂ ବହୁ ସାରଣୀ ଗ୍ରନ୍ଥର ପ୍ରଣେତା । ]
ଦେ. ଅ—ଏକଦିନେ; ଦିନେ—On a certain day.
ଦେ. ବିଣ—ଦିନିକିଆ ( ଦେଖ )—
Dinikiā ( See ).

ଦିନକରାତ୍ମଜ—ସଂ. ବି. ପୁଂ ( ଦିନକର+ଆତ୍ମଜ; ୬ଷ୍ଠୀ ତତ୍; ସୂର୍ଯ୍ୟଙ୍କ ପୁତ୍ର )—୧ । ଶନି ଗ୍ରହ—
Dinakarātmaja
(ଦିନକରସୁତ—ଅନ୍ୟରୂପ) 1. The planet Saturn
୨ । ଯମ—2. The Regent of death

ଦିନକରାତ୍ମଜା—ସଂ. ବି. ସ୍ତ୍ରୀ ( ଦିନକର+ଆତ୍ମଜା; ୬ଷ୍ଠୀ ତତ୍; ସୂର୍ଯ୍ୟଙ୍କ କନ୍ୟା )—ଯମୁନା ନଦୀ—
Dinakarātmajā
(ଦିନକରକନ୍ୟା, ଦିନକରସୁତା—ଅନ୍ୟରୂପ) The river Jamunā.

ଦିନକାଳ—ଦେ. ବି—୧ । ଅସମୟ—
Dinakāla 1. Bad times.
दिन ୨ । ଉପଯୁକ୍ତ ସମୟ—2. Proper time; fit moment.
**दिन**
୩ । ବିଶେଷ ସୁବିଧା—3. Best opportunity.
୪ । ଜୀବନସମୟ—4. Lifetime.
୫ । ଅନ୍ତିମକାଳ—5 Last days of a person.
ତଳ ବରଡା ଖସୁଛି, ମଝି ବରଡା ହସୁଛି, ଉପର ବରଡା ଥାଇଁ ବୋଇଲା ତୋ ଦିନକାଳ ଅସୁଛି । ଢଗ ।

ଦିନକିଆ—ଦେ. ବିଣ—ଦିନିକିଆ (ଦେଖ)
Dinakiā Dinikiā (See).

ଦିନକୁ ଦିନ—ଦେ. ଅ—୧ । କ୍ରମଶଃ; ଏକଦିନରୁ ଅନ୍ୟ ଦିନ—
Dinaku dina 1. Gradually; from day to day; as days pass away.
दिनदिन; दिनकेदिन
**दिन पर दिन, दिनदिन** ୨ । ପ୍ରତ୍ୟହ; ନିତ୍ୟ, ପ୍ରତିଦିନ—
ଦିନ ବର ଦିନ, ଦିନୁଦିନ, ଦିନୁଦିନୁ } ଅନ୍ୟରୂପ 2. Daily; day by day.
ଦିନକୁ ଦିନ ତନୁ କ୍ଷୀଣ, ଯେସନ ପୂର୍ଣ୍ଣା ବସନ—ଜଗନ୍ନାଥ. ଭାଗବତ ।

ଦିନକୃତ୍—ସଂ. ବି. ( ଦିନ+କୃ ଧାତୁ+କର୍ତ୍ତୃ. କ୍ୱିପ୍; ଉପପଦ )—
Dinakrut ଦିବାକର, ସୂର୍ଯ୍ୟ—The sun.

ଦିନକେ—ଦେ. ଅ—୧ । ଏକଦିନ ମଧ୍ୟରେ—
Dinake 1. In the course of one day.
एक दिने ନ ଥିଲେ ଶ୍ରେଣ ସେ ଦିନକେ ସ୍ରଷ୍ଟା ରଥୀ
**एक रोजमे** ପାଣ୍ଡବ ସେନାପାଙ୍କ ବଧ କ୍ର ସେ ମଣ୍ଡ—କୃଷ୍ଣସିଂ. ମହାଭାରତ ।
(ଦିନେକେ—ଅନ୍ୟରୂପ) ୨ । (ସଂ. ଦୈନିକ) ପ୍ରତି ଦିନ—
2. Daily.

ମାସକେ କାହିଁ ଦିନ ଯାଉଛି ଦିନକେ କାହିଁ ଜୀବ
ସାତ ପଞ୍ଚଶାଳୁ ପଗ୍ରହ ଅ ଭୂ ମୋଠଇଁ ଘରଣୀ ହବ—ପ୍ରାସ୍ୟଢଗ ।

ଦିନ କ୍ଷୟ—ସଂ. ବି. ( ଦିନ+କ୍ଷୟ; ୬ଷ୍ଠୀ ତତ୍ )—ତିଥିକ୍ଷୟ; ଏକ
Dina kshaya ସୌରମାନ ଦିବସରେ ୩ ଗୋଟି ତିଥି ପଡ଼ିବା ଯୋଗୁଁ ଗୋଟିଏ ତିଥିର କ୍ଷୟ—The loss of a lunar day which takes place when 3 lunar days occur during the same solar day

ଦିନ କ୍ଷେପଣ—ସଂ ବି. ( ଦିନ+କ୍ଷେପଣ; ୬ଷ୍ଠୀ ତତ୍ )—ଦିନପାତ; କାଳ କଟାଇବା; କାଳକ୍ଷେପଣ -
Dina kshepaṇa
The passing away of one's time

ଦିନ ଗଡ଼ା(ଡ଼େ)ଇବା—ଦେ କ୍ରି—୧ । ନିର୍ଦ୍ଧାରିତ ଦିବସକୁ ଅତିକ୍ରମଣ କରିବା—1. To adjourn a matter
Dina garḍā(rḍe)ibā
दिनटाला ୨ । କାଳ କ୍ଷେପଣ କରିବା—
**दिन टालना** 2. To pass away time.
ଦିନ ମଞ୍ଚାଇବା, ଦିନ ଠାଳିବା } ଅନ୍ୟରୂପ ୩ । ଅନ୍ୟ ଦିବସକୁ କୌଣସି କାର୍ଯ୍ୟ ସ୍ଥଗିତ ରଖିବା—
3. To put off some work to some other date.
୪ । ଦିନ ଠାଳିବା ( ଦେଖ )—4. Dina ṭhāḷibā (See)

ଦିନ ଗଡ଼ିବା—ଦେ. କ୍ରି—୧ । ନିର୍ଦ୍ଦିଷ୍ଟ ତାରିଖ ଅତିକ୍ରାନ୍ତ ହେବା—
Dina garḍibā 1. The state of a matter being adjourned; the passing away of the fixed or proper time.
दिनगडा; दिनटला
**दिनधाना, दिन बसना, दिन ढलना**
(ଦିନ ଗଡ଼ାଯିବା; ଦିନ ଠେଲିବା; ଦିନ ମଞ୍ଚୁଲିବା—ଅନ୍ୟରୂପ)
୨ । ସୂର୍ଯ୍ୟଙ୍କର ଅସ୍ତାଭିମୁଖ ହେବା; ଅପରାହ୍ନ ଆସିବା—
2 The sun's passing the meridian, the coming of the afternoon.

ଦିନ ଗଣିବା—ଦେ. କ୍ରି—୧ । କୌଣସି ଘଟଣା ଆଉ କେତେ ଦିନ ରହିଲା ବୋଲି ଉତ୍କଣ୍ଠିତଭାବରେ ଗଣନା କରି ଅପେକ୍ଷା କରିବା—2. To count the days as to when an eagerly expected event will happen.
Dina gaṇibā
दिनगुना
**दिन गिनना**
( ଦିନ ଗଣା(ଣେ)ଇବା—ଣିଜନ୍ତରୂପ )
ଉତ୍ସବ ଆଶାରେ ଅଶାସ୍ତି ହୋଇଣ ବନ୍ଧୁଜନ୍ ଦିନ ଗଣି—
ରାଧାନାଥ. ପାର୍ବତୀ ।
୨ । ଶୁଭ କାର୍ଯ୍ୟାଦି ନିମନ୍ତେ ଗୋଟିଏ ଶୁଭ ଦିନ ପାଞ୍ଜିରୁ ଗଣନା କରିବା—2. To find out an auspicious day for a certain act or ceremony by astrological calculations.

ଦିନ ଗାଡ଼ି—ଦେ. ବି. ( ଏ ଦେଶରେ ରେଲ୍‌ବିସ୍ତାର ହେବାର ପରବର୍ତ୍ତୀ ସମୟର ପ୍ରୟୋଗ )—ଯେଉଁ ରେଲଗାଡ଼ି ସ୍ଥାନୀୟ ଷ୍ଟେସନରେ ଦିନବେଳେ ପହଞ୍ଚେ ବା ଷ୍ଟେସନରୁ ଦିନ ବେଳେ ଛାଡ଼େ—Day train; a train which arrives at or starts from a local station in the day time.
Dina gārḍi
दिनेबगाडि
**दिनकी गाडी**
(ସ୍ଥାନଗାଡ଼ି—ଅନ୍ୟରୂପ)

ଦିନ ଚର୍ଯ୍ୟା—ସଂ. ବି. ( ଦିନ+ଚର୍ଯ୍ୟା, ୬ଷ୍ଠୀ ତତ୍ ) - ମନୁଷ୍ୟ ପ୍ରତିଦିନ
Dina charjyā ସକାଳୁ ଉଠି ଦିନରେ ଓ ରାତିରେ ଯେଉଁ ଯେଉଁ

ନିୟମିତ କାର୍ଯ୍ୟମାନ କରେ—Daily conduct or routined duties of a person.

(ଦିନଚର୍ଯ୍ୟା; ଯଥା—ଶଯ୍ୟାତ୍ୟାଗ, ମୁଖଧାବନ, ମଳ ମୂତ୍ର ତ୍ୟାଗ, ଭୋଜନ, ସ୍ନାନ, ଜଳାଦି ପାନ, ଶୟନ ଆଦି କର୍ମ ।)

**ଦିନଚାରୀ**—ସଂ. ବ (ଦିନ+ଚର ଧାତୁ+କର୍ତ୍ତୃ ଇନ୍; ୧ମା ୧ବ)—
Dinachārī ସୂର୍ଯ୍ୟ. (ହି. ଶବ୍ଦସାଗର)—
1 The sun.

**ଦିନ ଜ୍ୟୋତିଃ**—ସଂ. ବ (ଦିନ+ଜ୍ୟୋତିଃ;୬ଷ୍ଠୀତତ୍)—ରୌଦ୍ର; ଖରା—
Dina jyotiḥ Sun's rays; sunshine.

**ଦିନ ଟାଳିବା**—ଦେ. କ୍ରି—୧ । ନିର୍ଦ୍ଦିଷ୍ଟ ସମୟକୁ ଅତିକ୍ରାନ୍ତ କରାଇବା—
Dina ṭāḷibā 1. To let the proper time pass away.

ଦିନଟଳା(ଳେ)ଇବା }
ଦିନମଟାଳିବା } ଅନ୍ୟରୂପ
ଦିନଗଡ଼ା(ଡ଼େ)ଇବା }

ଦିନଟାଳା ୨ । ଦ୍ୱିପ୍ରହରବେଳକୁ ଅତିକ୍ରାନ୍ତ କରାଇବା—
**दिनगवाना** 2 To cause the noon to pass away.

୩ । ମକଦମା ଆଦିର ଅନ୍ୟ ତାରିଖ କରିବା—
3. To adjourn (cases etc) to some future date

**ଦିନ ଦିନକର**—ଦେ. ବିଣ—୧ । ଏକ ଏକ ଦିନରେ ଘଟିଥିବା; କୌଣସି
Dina dinakara କୌଣସି ସମୟରେ ବା କୌଣସି କୌଣସି ଦିନ
(ଦିନ ଦିନକ—ଅନ୍ୟରୂପ) ଘଟିଥିବା—1. Of certain days;
এক একদিনের which has happened on certain
**दिन दिनका** days.

୨ । ପ୍ରତିଦିନର—2. Daily; of every day

**ଦିନଦିନ ରାତିରାତି**—ଦେ. ଅ ( ସଂ. ଦିନ ଓ ରାତ୍ରି )—୧ । ଅହର୍ନିଶ,
Dinadina rātirāti ଦିନ ଦିନ ରାତି; ଦିନତମାମ ଓ ରାତିତମାମ;

ଦିନନାହିଁ ରାତିନାହିଁ }
ଦିନଦିନ ରାତାରାତି } ଅନ୍ୟରୂପ
ଦିନଦିନ ରାତାରାତି }

ଦିନଯାକ ଓ ରାତିଯାକ—
1. Thoughout day and night.

दनरात ୨ । ନିରନ୍ତର; ସର୍ବଦା; ଅବିଶ୍ରାନ୍ତରୂପେ—
**दिनरात** 2 Incessantly.

**ଦିନ ଦିପହରେ**—ଦେ ଅ ( ସଂ. ଦିନ+ଦ୍ୱିପ୍ରହର )—୧ । ଦିନାର୍ଦ୍ଧ
Dina dipahare ସମୟରେ—1. At noon.

দিনদুপুরে ୨ । ପ୍ରକାଶ୍ୟରୂପେ; ଦିନରେ ଓ ସର୍ବସମକ୍ଷରେ—
**दिनदहाड़े; दिनधड़ल्ले;** 2. Publicly; in public;
**दिनदिये; दिनदोपहर** in broad daylight.

**ଦିନ ଦୁଃଖିତ**—ସଂ. ପୁ. ... (ଦିନ+ଦୁଃଖିତ; ଅସ୍ତ ଯିବାବେଳେ ହେତୁ
Dina duḥkhita ... ଦିନଶେଷରେ ଦୁଃଖିତ ଥାଏ)—ଚକ୍ରବାକ
... —The ruddy gander; Anas Casarca; (supposed to be sorry all day long for fear of impending separation from his mate at night.)

**ଦିନ ଦ୍ୟୁତି**—ସଂ. ବ (ଦିନ+ଦ୍ୟୁତି; ବହୁବ୍ରୀହି)—ସୂର୍ଯ୍ୟ—
Dina dyuti; The sun.

ଚନ୍ଦ୍ର ବାରୁଣୀକ ଦିନଦ୍ୟୁତି
ଉପଳେ ଅମ୍ବର ବରଜନ୍ତି । ବିବିଧସୂର୍ଯ୍ୟ, କଣୋଗତନ୍ତ୍ର, ଚ ଗୀତ ।

**ଦିନ ଧରିବା**—ଦେ. କ୍ରି—ଦିନ ଗଣିବା ୨ (ଦେଖ)
Dina dharibā Dina gaṇibā 2 (See)
[ଦିନଧରା(ରେ)ଇବା—ଣିଜନ୍ତରୂପ]
দিনধরা **दिनधरना**

**ଦିନ ନାଥ**—ସଂ. ବି. (ଦିନ+ନାଥ; ୬ଷ୍ଠୀ ତତ୍)—ସୂର୍ଯ୍ୟ—
Dina nātha The sun.
(ଦିନନାୟକ—ଅନ୍ୟରୂପ)

**ଦିନ ନେବା**—ଦେ. କ୍ରି—୧ । ଅନ୍ୟବ୍ୟକ୍ତିର ସଂସାରଯାତ୍ରା ନିର୍ବାହ
Dina nebā କରାଇବା—1. To cause another person to live in comfort; to cause another to get on in life or spend one's days.

ଦିନ ନବା }
ଦିନ ବିତା(ତେ)ଇବା } ଅନ୍ୟରୂପ
ଦିନ ସରା(ରେ)ଇବା }
ଦିନ ସାରିବା }

ଘୋଡ଼ା ମୁଣ୍ଡେ ପାଞ୍ଚଫୁଲ
ସତେ କି କାହିଁଆ ମୋ ଦିନ ନବ, ମନ ଯିବା ବଢ଼ୁଥିଲି ।
ଚଉଦଘୋଡ଼ା ଗୀତ ।

୨ । କାଳ ଯାପନ କରିବା —2. To pass time.

ଧନ ଅରଜନ କଥାକୁ ନ ଜାଣଇ
ତପେଜ୍ୟ ହୋଇଣ ଦିନକୁ ନିଅଇ । କୃଷ୍ଣସିଂ କୃ. ମହାଭାରତ ବନ ।

**ଦିନ ପତି**—ସଂ. ବି. (ଦିନ+ପତି; ୬ଷ୍ଠୀ ତତ୍)—୧ । ସୂର୍ଯ୍ୟ—
Dina pati 1. The sun.
(ଦିନପାଳ—ଅନ୍ୟରୂପ) ୨ । ଅରଖ ଗୁଳ୍ମ—
2. Calatropis Gigantea (plant.)

**ଦିନପାକୀ ଅଜୀର୍ଣ୍ଣ**—ସଂ. ବି—ବୈଦ୍ୟକ ଅନୁସାରେ ଏକପ୍ରକାର ଅଜୀର୍ଣ୍ଣ-
Dinapākī ajīrṇna ରୋଗ—Dyspepsia.

(ଯଥା—ଏଥିରେ ଥରେ ଭୋଜନ କଲେ ଖାଦ୍ୟଦ୍ରବ୍ୟ ୮ ପ୍ରହରରେ ଜୀର୍ଣ୍ଣ ହୁଏ ଓ ଇତିମଧ୍ୟରେ ଆଦୌ ଭୋକ କରେ ନାହିଁ ।)

**ଦିନ ପାତ**—ସଂ. ବି. ( ଦିନ+ପାତ=ଅତିବାହନ; ୬ଷ୍ଠୀ ତତ୍)—
Dina pāta ୧ । କାଳଯାପନ—1. The passing of time.

୨ । ସଂସାରଯାତ୍ରା ନିର୍ବାହ—2 Eking one's liveli-hood; going on in the world; living from day to day.

**ଦିନ ବନ୍ଧୁ**—ସଂ. ବି. (ଦିନ+ବନ୍ଧୁ; ୬ଷ୍ଠୀ ତତ୍)—୧ । ସୂର୍ଯ୍ୟ—
Dina bandhu 1. The sun.
(ଦିନବାନ୍ଧବ—ଅନ୍ୟରୂପ) ଜୀବନବନ୍ଧୁ ନାମ ଧ୍ୟାଅଇଁ ଧ୍ୟାଅଇଁ ଦିନବନ୍ଧୁ
ଦେଖା ନ ଯାଇ । ଉପେନ୍ଦ୍ର ଭଞ୍ଜ. କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ।

୨ । ଅରଖ ଗୁଳ୍ମ (ହି. ଶବ୍ଦସାଗର)—
2. Calotropis Gigantea (plant.)

**ଦିନ ବର ଦିନ**—ଦେ. ଅ—୧ । ନିତ୍ୟ; ପ୍ରତିଦିନ—1. Every day.
Dina bar din ୨ । ଦିନକୁଦିନ—2. From day to day.
দিনদিন ୩ । ଦିନେ ଛାଡ଼ି ଦିନେ—3. Day after day;
**दिनपरदिन** every alternate day.

**ଦିନ ବାନ୍ଧବ**—ସଂ. ବୃ. ( ଦିନ+ବାନ୍ଧବ; ୬ଷ୍ଠୀ ତତ୍ )—ସୂର୍ଯ୍ୟ—
Dina bāndhaba The sun.

ଦିନ ବିତା(ତେ)ଇବା—ଦେ. କ୍ରି—ଦିନ କଟାଇବା ( ଦେଖ )
Dina bitā(te)ibā Dina kaṭāibā ( See )

ଦିନ ବିତିବା—ଦେ. କ୍ରି—ଦିନ କଟିବା ( ଦେଖ )
Dina bitibā Dina kaṭibā ( See )

ଦିନ ବୁଡ଼ିବା—ଦେ. କ୍ରି—ସୂର୍ଯ୍ୟାସ୍ତ ସମୟ ଭୋଗ; ସୂର୍ଯ୍ୟ ଅସ୍ତ ହେବା;
Dina burdibā ଦିବାର ଅବସାନ—The setting of the
বেলা যাওআ दिन मुँदना, दिन डूबन sun.

ଦିନ ବେଳ(ଳା)—ଦେ. ବି. ( ସଂ ଦିନ+ବେଳା )—ସୂର୍ଯ୍ୟୋଦୟଠାରୁ
Dina beḷa(ḷā) ସୂର୍ଯ୍ୟାସ୍ତ ପର୍ଯ୍ୟନ୍ତ କାଳ—Day time.
দিনেরবেলা दिनकावक्त

ଦିନଭର—ଦେ. କ୍ରି. ବିଣ—ସାରାଦିନ; ଦିନତମାମ—
Dinabhara Throughout the day.
দিনসারা दिनभर
( ଦିନଭରି—ଅନ୍ୟରୂପ )

ଦିନ ମଟାଳିବା—ଦେ. କ୍ରି—ଦିନ ଟାଳିବା ( ଦେଖ )
Dina maṭāḷibā Dina ṭāḷibā ( See )

ଦିନମଣି—ସଂ. ବି. ( ଦିନ+ମଣି; ୬ଷ୍ଠୀ ତତ୍, ଦିବସର ମଣି ବା ଉଜ୍ଜ୍ୱଳ
Dina maṇi ରତ୍ନସ୍ୱରୂପ )—୧ । ସୂର୍ଯ୍ୟ—1. The sun.
ଦିନମୟୁଖ; ଦିନମାଳ } ଅନ୍ୟରୂପ ୨ । ଅରଖଗଛ (ହି. ଶବ୍ଦସାଗର)—
ଦିନରତ୍ନ; ଦିନରାଜ } 2. Calotropis Gigantea.
ଦେ. ବି. ପୁଂ—ପୁରୁଷ ଲୋକଙ୍କ ନାମ—
A name given to males

ଦିନ ମଜୁରି—ଦେ. ବି. ( ସଂ. ଦିନ+ଫା. ମଜୁରି )—
Dina majuri ୧ । କୌଣସି କାର୍ଯ୍ୟ କରୁଥିବା ମୂଲିଆଙ୍କୁ ଦୈନିକ
দিন মজুরি; দিনিকা ହେତୁରେ ଦିଆ ଯିବା ପ୍ରତିଦିନର ମୂଲ—
दिनमजदूरी,दिनाती 1. Daily wages given to labourers
୨ । ଦିନ ମଜୁରିଆ ( ଦେଖ )
2. Dina majuriā ( See )

ଦିନ ମଜୁରିଆ—ଦେ. ବି—ଯେଉଁ ବ୍ୟକ୍ତି ପ୍ରତିଦିନ ମୂଲ ଲାଗେ—
Dina majuriā A day-labourer; a journeyman
দিনমজুর दिनमजदूर
( ଦିନ ମୂଲିଆ—ଅନ୍ୟରୂପ )

ଦିନମଳ—ସଂ. ବି—ମାସ ( ହି. ଶବ୍ଦସାଗର )—
Dinamaḷa Month.

ଦିନମାନ—ସଂ. ବି. ( ଦିନ+ମାନ=ପରିମାଣ; ୬ଷ୍ଠୀ ତତ୍ )—
Dinamāna ( ଜ୍ୟୋତିଷ ) କୌଣସି ଦିବସର ସୂର୍ଯ୍ୟୋଦୟଠାରୁ
ସୂର୍ଯ୍ୟାସ୍ତ ପର୍ଯ୍ୟନ୍ତ ସମୟର ପରିମାଣ—( astronomy )
The length of a day; the time between
the sunrise and the sunset of a day

[ ଦ୍ର—ସୂର୍ଯ୍ୟ ବିଷୁବରେଖା ଉପରେ ଥିବାବେଳେ ଦିନ ୧୨ ଘଣ୍ଟା ଓ ରାତି ୧୨ ଘଣ୍ଟା ହୁଏ, କିନ୍ତୁ ସୂର୍ଯ୍ୟଙ୍କ ଉତ୍ତରାୟଣ ଓ ଦକ୍ଷିଣାୟନ ଅନୁସାରେ ଦିବସର କ୍ଷୟ ବୃଦ୍ଧି ହୁଏ ଓ ଦିନ କ୍ରମଶଃ ଯଥାକ୍ରମେ କମେ ଓ ବଢ଼େ । ସୂର୍ଯ୍ୟୋଦୟଠାରୁ ସୂର୍ଯ୍ୟାସ୍ତ ପର୍ଯ୍ୟନ୍ତ କାଳ ଯେତେ ଦଣ୍ଡ ଯେତେ ଲମ୍ବା ହୁଏ ତାକୁ ଦିନମାନ ବୋଲାଯାଏ । ]

দিনতমাম ଦେ ଅ—ଦିନଭର; ଦିନତମାମ—
दिनभर Throughout the day

ଦିନ ମୁଖ—ସଂ. ବି. ( ଦିନ+ମୁଖ, ୬ଷ୍ଠୀ ତତ୍ )—
Dinamukha ୧ । ପ୍ରାତଃକାଳ; ପ୍ରଭାତ; ପ୍ରତ୍ୟୁଷ—
1. Early morning; day break; dawn.
୨ । ସୂର୍ଯ୍ୟ ( କ୍ୱଚିତ୍ )—2. The sun.
୩ । ପୂର୍ବାଦ୍ରି; ଉଦୟାଚଳ—
3. The mythologial mountain in the east from behind which the sun rises.

ଦିନ ମୂଲ—ଦେ ବି—ଦିନ ମଜୁରି ୧ ( ଦେଖ )
Dina mūla Dina majuri 1 ( See )
( ଦିନ ମହୁନା; ଦିନ ମାଇନା—ଅନ୍ୟରୂପ )

ଦିନ ଯାପନ—ସଂ. ବି. ( ଦିନ+ଯାପନ, ୬ଷ୍ଠୀ ତତ୍ )—କାଳପାତ;
Dina jāpana କାଳ କଟାଇବା; କାଳ କ୍ଷେପଣ—
The passing away of one's time; the spending of one's days.

ଦିନ ଯାମିନୀ—ସଂ ବି. ( ଦିନ+ଯାମିନୀ, ଦ୍ୱନ୍ଦ୍ୱ )—ଅହର୍ନିଶ; ଦିବାରାତ୍ର;
Dina jāmini ସର୍ବଦା—Day and night.

ଦିନ ଯିବା—ଦେ. କ୍ରି—୧ । ଜୀବିତକାଳ ବିତିବା—
Dina jibā 1. The passing away of one's life-time.
দিনযাওআ ୨ । ସମୟ ଅତୀତ ହେବା—
दिन जाना 2 The passing away of time
୩ । ଦିନ ବୁଡ଼ିବା ( ଦେଖ )
3. Dina burdibā ( See )

ଦିନ ଯୌବନ—ସଂ ବି. ( ଦିନ+ଯୌବନ; ୬ଷ୍ଠୀ ତତ୍ )—ମଧ୍ୟାହ୍ନ;
Dina jaubana ଦ୍ୱିପ୍ରହର—Noon; mid-day

ଦି ନରି—ଗ୍ରା. ବି· ଓ ବିଣ—ଦି ସରି ( ଦେଖ )
Di nari Di sari ( See )
( ଦି ଲରି—ଅନ୍ୟରୂପ )

ଦି ନରିଆ—ଗ୍ରା. ବିଣ—ଦି ସରିଆ ( ଦେଖ )
Di nariā Di sariā ( See )
( ଦି ଲରିଆ—ଅନ୍ୟରୂପ )

ଦିନ ରାତି—ଦେ. ବି. ( ବିପରୀତ ସହଚର ) ( ସଂ. ଦିନ+ରାତ୍ରି )—
Dina rāti ଦିବସ ଓ ରଜନୀ—Day and night.
দিনরাত ଅ—ଦିନ ଦିନ ରାତି ରାତି ( ଦେଖ )
दिन रात Dina dina rāti rāti ( See )

ଦିନ ରାତି ବସିବା—ଦେ. କ୍ରି—କିଛି କାମଦାମ ନ କରି ସାରାଦିନ
Dina rāti basibā ଓ ସାରାରାତି ଆଳସ୍ୟରେ କଟାଇବା—
দিন রাত বসেথাকা To spend the whole day and
दिन रात बैठरहना night without doing any thing.
( ଦିନ ରାତି ବସି ରହିବା—ଅନ୍ୟରୂପ )

ଦି ନଳିଆ—ଦେ. ବିଣ—ଦୁଇ ନଳ ଥିବା (ଦ୍ରବ୍ୟ)—
Di naḷiā Double-barrelled (article).
দুনলা ବି—ଦୁଇ ନଳ ଥିବା ବନ୍ଧୁକ—
दोनली, दोनाली Double-barrelled gun.
(ଦି ନଳୀ; ଦୋହୋଡ଼ ନଳୀ; ଦୋହରା ନଳିଆ—ଅନ୍ୟରୂପ)

**ଦିନ ସରିବା**—ଦେ. କ୍ରି—ଦିନ ଯିବା ( ଦେଖ )
Dina saribā Dina jibā ( See )

**ଦିନ ସାରିବା**—ଦେ. କ୍ରି—୧ । କାଳ କଟାଇବା—
Dina sāribā 1. To pass away time
ଦିନ କାଟାନ ୨ । କାଳ ଯାପନ କରିବାକୁ ଅନ୍ୟକୁ ସୁବିଧା
**दिन भरना, दिन पुरे करना** ଓ ସୁଯୋଗ ଦେବା—
2. To cause another to pass his or her days
ମୁଁ ତ ସୁବଗ ଅବଳା ମୋ ଦିନ କେ ସାରିବ ରେ—ସଙ୍ଗୀତ ।

**ଦିନ ହରିବା**—ଦେ. କ୍ରି—୧ । କାଳ କାଟିବା, କାଳାତିପାତ କରିବା—
Dina haribā 1. To pass time.
ଦିନ କାଟାନ ଦିନ ହରୁ ସୁମଙ୍ଗଳ କରାଇ ବରାଇ ।
**दिन कटाना** କେଶବ ଗ୍ରଂ. ସଙ୍ଗୀତ ।
୨ । ଜୀବନ ଯାପନ କରିବା—
2. To pass one's life.
ଚମ୍ପକ ତ ମହାଜନଙ୍କରେ କଲେ ସ୍ନାନ
ମହା ସୁଖେ ଦିନକୁ ହରଇ ସେ ଜନ । କୃଷ୍ଣସିଂ. ମହାଭାରତ ବନ ।
୩ । ଦିନ ସାରିବା ୨ ( ଦେଖ )
3. Dina sāribā 2 ( See )

**ଦିନ ହେବା**—ଦେ. କ୍ରି—୧ । ସକାଳ ହେବା; ସୂର୍ଯ୍ୟୋଦୟ ହେବା—
Dina hebā 1. The dawning of the day.
ଦିନ ହଓୟା ୨ । କୌଣସି ନିର୍ଦ୍ଦିଷ୍ଟ ଦିନ ନିକଟବର୍ତ୍ତୀ ହେବା—
**दिन निकलना** 2. Drawing near of any appointed day.
( ଯଥା—ବର୍ତ୍ତମାନ ଖଜଣା ଦେବାର ଦିନ ହେଲାଣି । )

**ଦିନା**—ଦେ. ବି. ( ସଂଖ୍ୟାବାଚକ ଅନ୍ୟ ଶବ୍ଦ ପୂର୍ବରେ ଲାଗେ)—
Dinā ୧ । ଦିନ—1. Day ( prefixed to words denoting number ).
( ଯଥା—ଦିନାଚାରି; ଦିନାଦୁଇ; ଦିନାକେତେ ଇତ୍ୟାଦି = ଚାରି ଦିନ, ଦୁଇ ଦିନ; କେତେ ଦିନ ଇତ୍ୟାଦି । )
(ଦିନାଇ; ଦିନେଇ, ଦିନୁ—ଅଦରାର୍ଥକ) ୨ । ଦୀନବନ୍ଧୁ ନାମକ
(ଦିନୁଆ—ଅନ୍ୟରୂପ) ବ୍ୟକ୍ତିର ଅନାଦରାର୍ଥକ ଡାକ ନାମ—
1. A name for calling Dinabandhu in familiarity.

**ଦିନାଂଶ**—ସଂ. ବି. ( ଦିନ+ଅଂଶ; ୬ଷ୍ଠୀ ତତ୍ )—
Dināṁśa ଦିବସର ପ୍ରାଧାନ ତିନି ଭାଗରୁ ଏକ—
One of the three divisions of the day, viz morning, noon and afternoon.
[ ଯଥା—ଦିନାଂଶତ୍ରୟ; ଯଥା—ପୂର୍ବାହ୍ଣ, ମଧ୍ୟାହ୍ନ ଓ ଅପରାହ୍ଣ; ପ୍ରାତଃକାଳ, ମଧ୍ୟାହ୍ନ ଓ ସାୟଂକାଳ । ]

**ଦିନା କେତେ**—ଦେ. ଅ. ( ସଂ. ଦିନ ଓ କତି )—
Dinā kete ୧ । କେତେକ ଦିନ ପାଇଁ—
(ଦିନାକେତେ—ଅନ୍ୟରୂପ) 1. For some days.
दिन कतेक ଦୁଃଖର ଦଶା ସେବେ ମୋତେ
**थोड़ा रोज** ମୋ ଘରେ ରହ ଦିନା କେତେ । ଜଗନ୍ନାଥ. ଭାଗବତ ।
୨ । ଅଳ୍ପ ଦିନ ପାଇଁ—2. For a few days.
ତୁଅ ନୁଅ ଦିନା କେତେ, ନୁଆ ଦେଖି ପୁରୁଣା ପାଶୋରି ଦେଲ
ଦୂର କରି ଦେଲ ମୋତେ—ଭଗ ।
୩ । କେତେ ଦିନ ବ୍ୟାପୀ ସମୟ, ବହୁକାଳ—
3 Days and days; for a long time.
( ଯଥା—ନୂଆ ଗାଈଟାକୁ ଦିନା କେତେ ଘୁଣ୍ଟରେ ବାନ୍ଧିଲେ ଯାଇଁ ସେ ଘର ମଣିବ । )
୪ । କେତେକ କାଳ ପାଇଁ—4. For some time.
ଦେ. ବି.—କେତେକ ଦିନ—Some days.

**ଦିନାଗମ**—ସଂ. ବି. ( ୬ଷ୍ଠୀ ତତ୍; ଦିନ+ଆଗମ )—
Dināgama ପ୍ରଭାତ, ବଡ ଭୋର—Dawn
(ଦିନାଦି—ଅନ୍ୟରୂପ)

**ଦିନାଜି**—ଦେ. ବିଣ ( ସଂ. ଦୈନିକ )—
Dināji ଦୈନିକ—Daily.
ଦେ. ଅ—ପ୍ରତିଦିନ—Daily.
( ଯଥା—ତୋର ମୂଲ ଦିନାଦି କେତେ ପଡ଼େ । )

**ଦିନାଜି ପାଞ୍ଜି**—ଦେ. ବି—ଦୈନିକ ପଞ୍ଜିକା—
Dināji pāñji Daily almanac.

**ଦିନାଣ୍ଡ**—ସଂ. ବି. ( ୬ଷ୍ଠୀ ତତ୍; ଦିନ+ଅଣ୍ଡ )—
Dinānda ଅନ୍ଧକାର; ଅନ୍ଧାର ( ଦ୍ର. ଶବ୍ଦସାଗର )—
(ଦିନାନ୍ଧକ—ଅନ୍ୟରୂପ) Darkness.

**ଦିନାଦି**—ସଂ. ବି. ( ଦିନ+ଆଦି, ୬ଷ୍ଠୀ ତତ୍ )—
Dinādi ପ୍ରାତଃକାଳ; ଦିବସର ଆଦ୍ୟ ଭାଗ—The beginning of the day; morning; dawn.
दिनाद्य
**रोज रोजका** ଦେ. ବିଣ—ଦୈନିକ—Daily.
दिने ଦେ. ଅ—ପ୍ରତ୍ୟହ; ପ୍ରତି ଦିନ—
**रोजरोज** Daily; every day.
( ଯଥା— ତାଙ୍କର ଦିନାଦି ଟ ୩ ( ଖରଚ ହୁଏ । )

**ଦିନାଧୀଶ**—ସଂ. ବି. (୬ଷ୍ଠୀ ତତ୍, ଦିନ+ଅଧୀଶ)—ଦିନପତି (ଦେଖ)
Dinādhiśa Dinapati ( See )

**ଦିନାନ୍ତ**—ସଂ. ବି. ( ଦିନ+ଅନ୍ତ; ୬ଷ୍ଠୀ ତତ୍ ) —
Dinānta ସନ୍ଧ୍ୟା; ଦିବସର ଶେଷ ଭାଗ; ସୂର୍ଯ୍ୟାସ୍ତ ସମୟ—
(ଦିନାସ୍ତ— ଅନ୍ୟରୂପ) Evening; close of the day; sunset.

**ଦିନ ନ୍ତେ**— ଦେ. ଅ —୧ । ସନ୍ଧ୍ୟା ବେଳେ—
Dinānte 1. At eve; in the evening.
(ଦିନାନ୍ତରେ—ଅନ୍ୟରୂପ) ୨ । ପ୍ରତିଦିନ—2. Daily; every day.
दिनान्ते
**दिनान्तमे** ( ଯଥା—ମତେ ଦିନାନ୍ତେ ଥରେ ମୁଠାଏ ଖାଇବାକୁ ମିଳିଲେ ତ ଭାବନା ନ ଥିଲା । )

**ଦିନାନ୍ଧ**—ସଂ. ବିଣ. ପୁଂ—୧ । ଯାହାକୁ ଦିନରେ ଦେଖାଯାଏ ନାହିଁ—
Dinandha 1. Unable to see in daylight.
(ଦିନାନ୍ଧତା—ବି) ( ଯଥା—ଚେମିଣି, ପେଚା, ବାଦୁଡି । )
୨ । ଦିବାନ୍ଧତାରୋଗଗ୍ରସ୍ତ ବ୍ୟକ୍ତି—
2. (a person) Suffering from sun-blindness

**ଦିନାବସାନ**—ସଂ. ବି ( ଦିନ+ଅବସାନ; ୬ଷ୍ଠୀ ତତ୍ )—ସନ୍ଧ୍ୟା; ସୂର୍ଯ୍ୟାସ୍ତ
Dinābasāna ସମୟ—Evening; sunset.

ଦିନାର୍—ବୈଦେ. ବି ( ଆ ଦିନାର୍, ଲାଟିନ୍. ଦିନାରିୟସ୍)—
Dinār ୧ । ଆରବ ଓ ପାରସ୍ୟଦେଶ ପ୍ରଚଳିତ ମୁଦ୍ରାବିଶେଷ—
1. A coin of Persia and Arabia
୨ । ସମ୍ରାଟ ଆକବରଙ୍କ ସମୟରେ ଭାରତପ୍ରଚଳିତ ଅଧତୋଲା ଓଜନର ସ୍ୱର୍ଣ୍ଣ ମୁଦ୍ରା—2. Name of a gold coin of half tola weight, current during the reign of Akbar the Great

ଦିନାମାର୍—ଦେ. ବି ( ଇଂ. ଡେନ୍‌ମାର୍କ୍ ଦେଶବିଶେଷ)—ଡେନ୍‌ମାର୍କ୍
Dinamār ଦେଶର ଲୋକ—The people of Denmark; the Danes.
দেনামাব **दीनामार**

ଦିନାମାର୍ ଡିଙ୍ଗା—ଦେ. ବି—ଡେନ୍‌ମାର୍କର ଅଧିକାରଭୁକ୍ତ ବାଲେଶ୍ୱର
Dinamār dingā ନଗର ଅନ୍ତର୍ଗତ ସ୍ଥାନବିଶେଷ—Name of a plot of land in the town of Balasore which belongs to the State of Denmark
দেনামাব ডাঙ্গা **दीनामार डिंगा**

ଦିନାର୍ଦ୍ଧ—ସଂ. ବି ( ୬ଷ୍ଠୀ ତତ୍; ଦିନ+ଅର୍ଦ୍ଧ )—୧ । ମଧ୍ୟାହ୍ନ—
Dinārddha 1. Midday.
୨ । (ଜ୍ୟୋତିଷ) ପୃଥିବୀର ଓ ସୂର୍ଯ୍ୟର ଅବସ୍ଥିତି ଅନୁସାରେ ସାନ ବା ବଡ଼ ହେବା ଦିବସର ଅର୍ଦ୍ଧେକ ସମୟ (ଦିନ ମାନ ଡଲେ ନୋହି ଦେଖ)—2. (astromony) Half the length of a particular day, half of the time between sunrise and sunset of a particular day.

ଦିନିଆ(ଆଁ)—ଦେ. ବିଣ ( ଅନ୍ୟ ଶବ୍ଦ ପରେ ଯୁକ୍ତ )—ଦିନରେ ଘଟିବା;
Diniā añ) ଦିନବ୍ୟାପୀ—Relating to a day; an affix meaning consisting of a day or days.
দিনেব **दिनका** (ଯଥା- ଅତେଇଦିନିଆ, ଖରାଦିନିଆ; ଗୁରୁଦିନିଆ ଇତ୍ୟାଦି ।)

ଦିନିକିଆ—ଦେ. ବିଣ (ସଂ. ଦୈନିକ)—୧ । ଏକଦିବସ ସମ୍ବନ୍ଧୀୟ—
Dinikiā 1. Pertaining to one day only.
(ଦିନକିଆ- ଅନ୍ୟରୂପ) ୨ । ଏକଦିନ ବ୍ୟାପୀ—
2. Occupying the period of one day.
୩ । ଦୈନିକ—3. Daily
୪ । ପରିବର୍ତ୍ତନଶୀଳ—4. Changing; fleeting.
୫ । ଅଚିରସ୍ଥାୟୀ—5 Temporary; that which does not last long.
୬ । ଅଳ୍ପକ୍ଷଣସ୍ଥାୟୀ; କ୍ଷଣିକ—6. Momentary.
୭ । ସାମୟିକ, ଆକସ୍ମିକ—7. Occasional.
( ଯଥା—ଦିନକିଆ ମଉଜ ପାଇଁ ଚିରଦିନିଆ ଆଶାରେ ଜଳାଞ୍ଜଳି ଦେବା ମୂର୍ଖତା ଅଟେ ।)

ଦିନୁ—ଦେ. ଅ—୧ । (ଅମୁକ) ଦିବସଠାରୁ ଆରମ୍ଭକରି—
Dinu 1. Since such a day.
(ଦିନୁଁ—ଅନ୍ୟରୂପ) (ଯଥା—ଏଠାରେ ୧୨ତାରିଖ ଦିନୁ ବର୍ଷା ହେଉଛି)
দিনথেকে ୨ । (ଅମୁକ) ସମୟରୁ—2. Since such a time.
**दिनसे** ଯେଉଁ ଦିନୁ ହେଲ ସୁବାସ ନାଶ, ସେହି ଦିନୁ ହେଲ ସୁବାସ ନାଶ, ସୁବାସ ନାଶ, ସୁବାସ ନାଶ—ଉଗ.

(ଦିନୁଆଁ—ଅନାଦରାର୍ଥକ) ଦେ. ବି ପୁଂ—ଦିନବନ୍ଧୁର ଆଦରାର୍ଥକ ଡାକନାମ—A name for calling Dinabandhu in fondness.

ଦିନୁଦିନ—ଦେ. ଅ.—୧ । ପ୍ରତିଦିନ; ନିତି—
Dinudina 1. Daily; every day.
ଦିନୁଁଦିନ; ଦିନୁଁ ଦିନୁଁ; ଦିନକୁଦିନ; ଦିନୁ ଦିନୁ; ଦିନକୁଦିନ; ଦିନୁଦିନେ, ଦିନୁଁ ଦିନେ; ଦିନବରଦିନ } ଅନ୍ୟରୂପ
ମୋହର ସେବା ଦିନଦିନେ, ଦେଖି ସନ୍ତୋଷ ହଉଜନେ । ଜଗନ୍ନାଥ, ଭାଗବତ ।
দিনদিন ୨ । ଏକ ଦିନରୁ ଅନ୍ୟ ଦିନ ସମୟ, ଯଥାକ୍ରମେ ଏକ ଦିନର
**दिन दिन** ପରେ ଅନ୍ୟ ଦିନରେ—2 Day by day; from day to day.
ଶୁକଳ ପକ୍ଷେ ଚନ୍ଦ୍ର ଯେସନେ, ବଢ଼ଇ ପୁତ୍ର ଦିନୁଦିନେ । ଜଗନ୍ନାଥ- ଭାଗବତ ।

ଦିନେ—ଦେ. ଅ.—୧ । କୌଣସି ଏକ ଦିବସରେ—
Dine 1 On any day.
একদিন (ଯଥା—ମୋ ଘରକୁ ତୁ ଦିନେ ଆସିବୁ ।)
**एकरोज** ୨ । ଥରେ ମାତ୍ର—1 Once only.
ଶ୍ରୀହସ୍ତ ଚରଣ କଣ୍ଠ ନଖ ଗଣ ଶୋଭା ଗଣି ନାହିଁ ଦିନେ । ବକସୂର୍ଯ୍ୟ. ସଙ୍ଗୀତ ।
୩ । ଭୂତେ ବା ଭବିଷ୍ୟତରେ କୌଣସି ସମୟରେ—
3 At any time (in the past or future).

ଦିନେକ—ଦେ. ଅ.—କୌଣସି ଏକ ନିର୍ଦ୍ଦିଷ୍ଟ ଦିବସରେ—
Dineka On a certain day.
ଦିନେକ ଅବଧୂତ ଗଲେ, ଯାଇ ଅରଣ୍ୟେ ବାସ କଲେ । ପ୍ରାଚୀ. ନିର୍ଗୁଣମାହାତ୍ମ୍ୟ ।

ଦିନେକେ—ଦେ. ଅ.—ଦିନକେ (ଦେଖ)
Dineke Dinake (See)

ଦିନେ କାନ୍ତର—ଦେ. ଅ.—୧ । ଏକଦିନ ବା ତହିଁରୁ କିଛି କମ୍ ବେଶି
Dine kāntara ସମୟ;-ପ୍ରାୟ ଏକ ଦିନ—
দিনদুএক 1 About a day.
**दो एक रोज** (ଯଥା—ତା ଦ୍ୱାରେ ଦିନେ କାନ୍ତର ବସି ଗଲେ ମୋ
( ଦିନେଖଣ୍ଡେ—ଅନ୍ୟରୂପ) ଟଙ୍କାଟା ଆଦାୟ ହୋଇଯିବ ।)
୨ । ଦିନେ ବା ଦୁଇଦିନ—2. A day or two.
୩ । ଅତି ଅଳ୍ପ ଦିନ—3. A few days.

ଦିନେ ଦିନେ—ଦେ. ଅ.—୧ । କୌଣସି କୌଣସି ଦିବସରେ—
Dine dine 1. On certain days.
এক এক দিন ଦିନେ ଦିନେ ଦମ୍ଭଧରି ଧରି ସଖି କର;
**एक एक रोज** ଖାଲ ଖାଲନ ନୟନେ ଲୁଚଉ ନକର । ଗୋଲୋକ, ଉଦ୍ଧବରେଖା ।
୨ । କୌଣସି କୌଣସି ସମୟରେ—2. At times.

ଦିନେ ନାଁ ଦିନେ—ଦେ. ଅ.—୧ । ନିଶ୍ଚୟ କୌଣସି ଗୋଟିଏ ଦିନରେ-
Dine nāñ dine 1. Certainly on some day or other.
একদিন না একদিন
**काई एक रोज** ୨ । ନିଶ୍ଚେ କୌଣସି ସମୟରେ—
2. Certainly at any time.

**ଦିନେଶ**—ସ. ବି. (ଦିନ+ଈଶ; ୬ଷ୍ଠୀ ତତ୍;)—୧ । ସୂର୍ଯ୍ୟ—
Dinesa 1. The sun.
(ଦିନେଶ୍ୱର—ଅନ୍ୟରୂପ) ୨ । ଅର୍କ ବୃକ୍ଷ—
2. Calotropis Gigantea.

**ଦିନେଶାତ୍ମଜ**—ସ. ବି. ପୁଂ (୬ଷ୍ଠୀ ତତ୍; ଦିନେଶ=ସୂର୍ଯ୍ୟ+ଆତ୍ମଜ=
Dinesatmaja ପୁତ୍ର)—୧ । ଯମ—1. Jama.
୨ । ରାଜା କର୍ଣ୍ଣ—2. King Karnna.
୩ । ସୁଗ୍ରୀବ—3 Sugriba.
୪ । ଶନି—4. Saturn.
୫ । ସୂର୍ଯ୍ୟ (ପ୍ରକୃତିବାଦ)—5. The sun.

**ଦିନେଶାତ୍ମଜା**—ସ. ବି. ସ୍ତ୍ରୀ. (୬ଷ୍ଠୀ ତତ୍; ଦିନେଶ+ଆତ୍ମଜା)—
Dinesatmaja ଯମୁନା ନଦୀ—The river Jamuna.

**ଦି ପଖା**—ଦେ. ବି. (ସ. ଦ୍ୱି+ପକ୍ଷ)—୧ । ଦୁଇ ଦିଗ; ଦୁଇପାର୍ଶ୍ୱ;
Di pakha ଦୁଇ ପାଖ—1. Both sides.
(ଯଥା—ଚୁଲିର ଦିପଖାରେ ଦୁଇଟି ହାଣ୍ଡି ବସାଅ ।)
୨ । ଦି ଫଡ଼ା—2. Two halves.
(ଯଥା—ଏ ନଡ଼ିଆ ବରଡ଼ାଟାକୁ ଦିପଖା କରି ଓଲଟା ବାଗରେ ଯୋଡ଼ି ଗୁନ୍ଥି ଦିଅ । ତୁ ଇମିତି କରୁଛୁ ଯେ, ଜାଣି ଥା, ମୁଁ ହାତଟା ସିଧା କଲେ ତୋତେ ଦି ପଖା କରି ଦେବି ।)
୩ । ଦୁଇ ହାତର ଦୁଇ ଡେଣା—3 The two arms.
(ଯଥା—ଭୀମ ଦୁଇ ହୁଙ୍କାରରେ ଦୁଃଶାସନର ଦି ପଖା ଛିଣ୍ଡାଇ ଫିଙ୍ଗି ଦେଲେ ।)
ବିଣ.—ଦୁଇ ପାର୍ଶ୍ୱ ବା ପଖାବିଶିଷ୍ଟ (ଚୁଲି)—Two-sided; having two openings.
(ଯଥା—ଦିପଖା ଚୁଲିଟା ଲଗାଇ ଦେ ଯେ, ଭାତ ତିଅଣ ଏକା ବେଳେକେ ହୋଇଯିବ ।)

**ଦିପଖା ଚୁଲି**—ଦେ. ବି.—ଯେଉଁ ଚୁଲିରେ ଗୋଟିଏ ମୁହଁ ଥାଇ ଦୁଇଟି
Dipakha chuli ହାଣ୍ଡି ବସିବା ଭଳି ଦୁଇଟି ଖାତ ବା ପଖା ଥାଏ;
ଦୁଆଖା ଉନାନ, ଦୁପାଖା ଉନାନ ଦୁଇଟି ପଖା ବିଶିଷ୍ଟ ଏକମୁହାଁ ଚୁଲି—
An oven with two holes ( or openings at the top to set pots on them.

**ଦି ପଟ**—ଦେ. ବି.—୧ । ଉଭୟ ପାର୍ଶ୍ୱ—
Di pata 1. Both sides.
୨ । ଯୋଡ଼ାଏ—2. A pair; two.
୩ । ଦୁଇଗୁଣ—3. Two times as much.

**ଦି ପଟା**—ଦେ. ବି.—୧ । ଦୁଇ ଥର—
Dipata 1. Two paroxysms.
(ଯଥା—ତାକୁ ମୋର୍ ଜ୍ୱର ଆଜି ଦିପଟା ଲାଗିଗଲା ।)
୨ । ଦୁଇଥର—2. Two times.
୩ । ଦୁଇପାଖ—3. Two sides.

**ଦିପଟିଆ**—ଦେ. ବି.—ଉଭୟ ପକ୍ଷକୁ ସମର୍ଥନ କରୁଥିବା—
Di patia Favouring both parties or sides.
(ଯଥା—ଏମିତି ଦିପଟିଆ ଲୋକର ସୁନାମ ଦିଶେ ନାହିଁ ।)

**ଦି ପତର**—ଦେ. ବିଣ. (ସ. ଦ୍ୱି ପତ୍ର)—୧ । ଗଜା ଅବସ୍ଥାରୁ ଉଠୁଉଠୁ
Di patara ପତ୍ର ଧରିବାକୁ ଆରମ୍ଭ କରିଥିବା (ଗଛ)—
ଦିପତ୍ର, ଦିପତରିଆ, ଦିପତୁରିଆ } ଅନ୍ୟରୂପ 1. Budding with two leaves; growing with two leaves
୨ । ଯେଉଁ ଗଛର ପତ୍ର ସବୁ ଦୁଇ ଦୁଇଟା ହୋଇ ଡେମ୍ଫରେ ଲାଗି ହୋଇଥାଏ—2 (trees) With two leaves on a stem; bifoliate.

**ଦିପଦଣ୍ଡି**—ଦେ. ବି (ସ. ଦ୍ୱୀପ ଓ ଦଣ୍ଡରୁ)—୧ । ପୋଖରୀର ମଧ୍ୟସ୍ଥଳରେ
Dipadandi ପୋତାଯିବା ବେଲକାଠର ଖୁଣ୍ଟ—1. A wooden
(ଦିପିଦଣ୍ଡି—ଅନ୍ୟରୂପ) post erected in the middle
ବଇକାଠ of a tank or lake.
୨ । ପୋଖରୀ ମଧ୍ୟସ୍ଥଳରେ ନିର୍ମିତ ମଣ୍ଡପ—
2 A raised masonry platform in the middle of a pond.
ରଥାଗ୍ରେ ମି ଧ୍ୱଜ ଦୀପଦଣ୍ଡି ଛତ୍ର, ଗଲେ ଦଦପଥ ଗାରେ । ରଘୁନାଥ ।

**ଦିପଦହି**—ଦେ. ବି. (ସ. ଦୀପ ଓ ଦଧି; ତୁଲ. ମଥା ଦହି=ତେଲ)—
Dipadahi ୧ । ତେଲ; ଜଳିବା ତେଲ—
1 Oil for lamp.
ଦିପଦୁଖା ବର୍ଜିଥିବ, ଦିପଦହି ପଡୁଥିବ । ଶିଶୁ ଗୀତ ।
୨ । ( ଦ୍ୱି+ପଦ+ହିଁ ) କେବଳ ଦୁଇ ପଦ କଥା—
2. Two sentences only.

**ଦି ପହର**—ଦେ. ବି. ( ସ. ଦ୍ୱିପ୍ରହର )—
Di pahara ୧ । ମଧ୍ୟାହ୍ନ—1. Noon
ଦୁପୁର ୨ । ମଧ୍ୟରାତ୍ର—2. Midnight.
दोपहर ୩ । ଅସମୟ—3. Bad time.
ପଡ଼ିଲେ ପଡ଼ିଲି ମାଇପୀ ଘରେ
ମାଇପୀ ମାଇଲା ଦିପହରେ । ଢଗ ।

**ଦିପହରିଆ**—ଦେ. ବି ( ସ. ଦ୍ୱିପ୍ରହର )—ଦ୍ୱିପ୍ରହର ସମ୍ବନ୍ଧୀୟ—
Dipaharia - Pertaining to noon.
ଦୁପୁରିଆ ଅକାଳରକତ, ଶୀତ ପାହାନ୍ତ, ଦି ପହରିଆଖରା
दुपहरिआ ଏଥିରେ ଯେ ଲୋକ ପୋଖରୀ ଗଲା; ବେଳ ଆଉଁ ଆଉଁ ମଲା । ଢଗ ।
ଦେ. ବି—୧ । ଦ୍ୱିପ୍ରହରବେଳ, ମଧ୍ୟାହ୍ନ; ଖରାବେଳ—
1. Midday; noon; hottest time in the sun.
ଦୁପହରିଆ; बाँधुलि ୨ । (ସ. ବନ୍ଧୁକ, ବନ୍ଧୂଲି; ଓଷ୍ଠ ପୁଷ୍ପ)—
दुपहरया ପୁଷ୍ପ ଶାଖାବିଶେଷ; ବନ୍ଧୁଲୀଫୁଲ—
2. Pentapetes Phoenicea.
[ଦ୍ରୁ—ଗଛ ପ୍ରାୟ ୧୨ ହାତ ଉଚ୍ଚ, ଫୁଲ ପାଞ୍ଚ ପାଖୁଡ଼ିଆ ଓ ଗାଢ଼ ରକ୍ତବର୍ଣ୍ଣ; ଗୋଟିଏ ଫୁଲ ସାତଦିନ ଫୁଟେ । ଦିବା ଦ୍ୱିପହର ଅର୍ଥାତ୍ ମଧ୍ୟାହ୍ନରେ ଏ ଫୁଲ ଫୁଟେ ବୋଲି ଏହାର ଏପରି ନାମକରଣ ହୋଇଛି । ଏହି ଫୁଲର ରଙ୍ଗ ସଙ୍ଗେ କବିମାନେ ନାରୀଙ୍କ ଓଠକୁ ତୁଳନା କରନ୍ତି ।]

**ଦିପହରିଆ ମାହାତମ**—ଦେ. ବି—ମୁସଲମାନମାନଙ୍କର ମହରମ ପର୍ବର
Dipaharia mahatam ଅଷ୍ଟମ ଦିନ, ଯେଉଁ ଦିନ ମହମ୍ମଦଙ୍କ ଝିଅର ପୁଅ ଇମାମ୍ ହୁସେନ୍ଙ୍କ ସଙ୍ଗେ ଏଜିଦ୍ କର୍ବଳାର

ଯୁଦ୍ଧ ଆରମ୍ଭ ହୋଇଥିଲା—The Mahomedan Mohurrum commemorating the beginning of the battle between Imam Hossan and Ejid.

**ଦୀପାବଳି ଅମାସ୍ୟା**—ଦେ. ବି (ସଂ. ଦୀପାବଳୀ ଅମାବାସ୍ୟା)—କାର୍ତ୍ତିକ
Dipābali amāsyā ମାସର ଅମାବାସ୍ୟା, ଯେଉଁ ଦିନ ଗୃହରେ
ଦିବାଳି ଏବଂ ଦେବାଳୟମାନଙ୍କରେ ଦୀପମାଳା ବସାଯାଏ ଏବଂ ପିତୃ-
**दिवाळि** ପୁରୁଷଙ୍କ ଉଦ୍ଦେଶ୍ୟରେ ଶ୍ରାଦ୍ଧଦୀପଦାନାଦି ଅନୁଷ୍ଠାନ କରାଯାଏ—
The new moon of the month of Kārttika

**ଦୀପାଳି**—ଦେ. ବି (ସଂ. ଦୀପାବଳୀ)—୧ । ମାଟିର ସାନ ଦୀପ—
Dipāli 1. Small earthen lamp.
୨ । (ଦ୍ୱି + ଓ ପାଳି)—ଦୁଇପାଳି ବା ଥର—
2. Two times; twice.

**ଦୀପାଳି ବସା(ସେ)ଇବା**—ଦେ. କ୍ରି—କୌଣସି ସ୍ଥାନକୁ ଆଲୋକିତ
Dipāli basā(se)ibā କରିବା ନିମନ୍ତେ ଜଳୁଥିବା ଦୀପ ରଖିବା—
To set earthen lamps to light up a place.

**ଦିପିଠିଆ**—ଦେ. ବିଣ (ସଂ. ଦ୍ୱି + ପୃଷ୍ଠ)—୧ । ଦୋରୁଖା; ଯେଉଁ
Di pithiā ଲୁଗାର ଦୁଇପିଠି ବା ପାଖର ରଙ୍ଗ ବା ବୁଣା ଏକପ୍ରକାର
**दुपीठ; दोपीठा** 1. (cloth) Having the same colour or texture on both sides.
୨ । ଯେଉଁ ଛପା କାଗଜର ଦୁଇ ପିଠି ବା ପାଖରେ ଛପାହୁଏ—
2. (paper) Which is printed on both sides.
୩ । ଯେଉଁ ଘୋଡ଼ା ଯାନ୍‌ସବାରି ଓ ଗାଡ଼ିଟଣା କାମରେ
ଲାଗେ—3. (horse) Which is used for both driving and riding.
୪ । ଯେଉଁ ବଳଦ ଗାଡ଼ି ଟାଣେ ଓ ହଳରେ ଲାଗେ—
4. (bullock) Which draws the cart as well as the plough.

**ଦିପିତ**—ଦେ. (ପଦ୍ୟ) ବି. (ସଂ. ଦୀପ୍ତି)—ଦୀପ୍ତି (ଦେଖ)
Dipiti (ଦିପତି—ଅନ୍ୟରୂପ) Dipti (See)
**दिपति**

**ଦିପୁର ବଟା**—ଦେ. ବିଣ—ଦୁଇ ଥର ବଟା ଯାଇଥିବା (ହଳଦୀ ଇତ୍ୟାଦି
Dipura batā ଦ୍ରବ୍ୟ)—Twice pestled (turmeric-
दुपुरबाटा paste etc).
[ଦ୍ୱି—ପ୍ରଥମ ଯୁଦ୍ଧ ହଳଦୀ ବଟାକୁ ମସୃଣ କରିବା ଓ ଦ୍ୱିତୀୟ ଥର ବଟାକୁ ଚିକ୍କଣ କରିବା କହନ୍ତି ।

**ଦିପୋଟି (ଇତ୍ୟାଦି)**—ବୈଦେ. ବି (ଇଂ)—ଡେପୁଟି ଇତ୍ୟାଦି (ଦେଖ)—
Dipoti (etc) Deputi etc (See).
କେହି ବୋଲେ ମୁହିଁ ଅଟଇ ଦିପୋଟି । ରାଧାନାଥ—ଦରବାର

**ଦି ଫାଙ୍କିଆ**—ଦେ. ବିଣ.—ଦୋଫାଙ୍କିଆ (ଦେଖ)
Di phānkiā Duphānkiā (See)

**ଦି ଫାଙ୍କୁଡ଼ିଆ**—ଦେ. ବିଣ—ଦୁଇ ଶାଖାବିଶିଷ୍ଟ; ଦୁଇ ଭାଗରେ ବିଭକ୍ତ
Di phānkurdiā ହୋଇଥିବା—Split into two; having two branches; with two connected divisions; forked.

ପଡ଼ ପଡ଼ରେ ଯେଉଁ ଦିଫାଙ୍କୁଡ଼ିଆ ବୁଢ଼ା ସାହାଡ଼ା ଗଛ ଦେଖୁଛ,
ଏହିଟା । କଣ ଜାଣ ?—ଫକୀରମୋହନ-ଗଳ୍ପ ସ୍ୱଳ୍ପ ।

**ଦି ଫାଳିଆ**—ଦେ. ବିଣ—ଦୁଇଟି ଫାଳ ବିଶିଷ୍ଟ—Bipartite; consi-
Di phāliā sting of two equal halves or folds.
दुफाल; दोफार

**ଦିବ୍ (ଧାତୁ)**—ସଂ.—୧ । ଦୀପ୍ତି ପାଇବା—1. To dazzle; to
Dib (root) glitter; to shine.
୨ । କ୍ରୀଡ଼ା କରିବା—2. To play.

**ଦିବ୍**—ସଂ. ବି (ଦିବ୍ ଧାତୁ + ଅଧିକରଣ କ୍ୱିପ୍)—୧ । ସ୍ୱର୍ଗ—
Dib 1. Heaven.
୨ । (+ କର୍ତ୍ତୃ ଅ) ଆକାଶ—2. The heavens; the sky.
୩ । ଦିନ (ହି. ଶବ୍ଦସାଗର)—3. Day.

**ଦିବ**—ସଂ. ବି (ଦିବ୍ ଧାତୁ + କର୍ତ୍ତୃ ଅ)—ଦିବ୍ (ଦେଖ)
Diba Dib (See).
ଦେ.ବି—(ଆଦରାର୍ଥକ) ଦିବ୍ୟସିଂହ ନାମକ ବ୍ୟକ୍ତିଙ୍କୁ ଡାକିବାନାମ
(ଦିବା, ଦିବିଆ—ଅନାଦରାର୍ଥକ)—A name for calling Dibyasimha.

**ଦି ବରଷିଆ**—ଦେ. ବିଣ (ସଂ. ଦ୍ୱିବାର୍ଷିକ)—ଦ୍ୱିବାର୍ଷିକ; ଯାହା ଦୁଇ ବର୍ଷରେ
Di barashiā ଥରେ ଘଟେ—Biennial.
द्विवत्सरेव **दोबरषी, दुसाला**

**ଦିବସ**—ସଂ. ବି (ଦିବ୍ ଧାତୁ + ଅଧିକରଣ ଅସ; ତୁଳ. ଇଂ. ଡେ,
Dibasa ଲାଟିନ୍. ଡିଏସ୍, ପ୍ରାକୃତ. ଦିଅହ)—୧ । ଦିନ—
1. Day.
୨ । ଦିନବେଳ—2. Day time.
ଦେ. ବି—ଶ୍ରାଦ୍ଧ ଦିବସ—The day of performing the annual Srāddha ceremony of a deceased; the anniversary of the death of a person.

**ଦିବସକର**—ସଂ. ବି (ଦିବସ + କୃ ଧାତୁ + କର୍ତ୍ତୃ. ଅ)—ସୂର୍ଯ୍ୟ—
Dibasakara The sun.
(ଦିବସନାଥ, ଦିବସମଣି, ଦିବସେଶ—ଅନ୍ୟରୂପ)

**ଦିବସ ମୁଖ**—ସଂ. ବି (୬ଷ୍ଠୀ ତତ୍; ଦିବସ + ମୁଖ)—ପ୍ରାତଃକାଳ—
Dibasa mukha Dawn.

**ଦିବସ ମୁଦା**—ସଂ. ବି.—ଏକଦିନର ବେତନ ବା ମୂଲ—
Dibasa mudrā The salary or wages due for one day.

**ଦିବସା**—ଦେ. ବି (ସଂ ଦିବସ)—ଦିବସ (ଦେଖ)
Dibasā Dibasa (See)
ଅଷ୍ଟ ଦିବସା ଶ୍ରାଦ୍ଧକାଳେ
ଅଷ୍ଟର ଭୁଞ୍ଜେ ଅସି ବଳେ । ଜଗନ୍ନାଥ- ଭାଗବତ ।

**ଦିବସାତ୍ୟୟ**—ସଂ. ବି (୬ଷ୍ଠୀ ତତ୍; ଦିବସ + ଅତ୍ୟୟ)—ସନ୍ଧ୍ୟା;
Dibasātyaya ଦିନାନ୍ତ—The close of the day.

**ଦିବସାବସାନ**—ସଂ. ବି—ସନ୍ଧ୍ୟା; ଦିନାନ୍ତ—
Dibasābasāna The close of the day.

ଦିବସାଲୋକ—ସଂ. ବି ( ଦିବସ+ଆଲୋକ; ୬ଷ୍ଠୀ ତତ୍ )—ଦିନର
Dibasāloka ଆଲୁଅ—Daylight.

ଦିବସ୍ପତି—ସଂ. ବି ( ଦିବଃ=ସ୍ୱର୍ଗର+ପତି; ୬ଷ୍ଠୀ ତତ୍)—୧ । ଇନ୍ଦ୍ର—
Dibaspati 1. Indra.

ସବୁକାଳେ ମିଳିପଣ ଥିବ, ମିଳେ ଦିବସ୍ପତି ପଦ ଦେବ—
ଉପେନ୍ଦ୍ରଭଞ୍ଜ ଲାବଣ୍ୟବତୀ ।

୨ । ସୂର୍ଯ୍ୟ—2. The sun.

ଦିବା—ସଂ. ଅ—ଦିନରେ; ଦିବସରେ—
Dibā In day time.

ସଂ. ବି— ଦିବସ, ଦିନ (ହି. ଶବ୍ଦସାଗର)—Day.

(ଦିବ; ଦିବୁ—ଆଦରାର୍ଥକରୂପ) ଦେ. ବି—୧ । ଦିବ୍ୟସିଂହର ଡାକ-
(ଦିବୁଆ—ଅନ୍ୟରୂପ) ନାମ—1. A name for calling Dibyasimha.

୨ । ଦିବାକରର ଡାକନାମ—
2. A name for calling Dibākara.

ଦିବାକର—ସଂ.ବି(ଦିବା=ଦିନରେ+କର=କିରଣ ଯାହାର, ବହୁବ୍ରୀହି;
Dibākara ଅଥବା ଦିବା+କୃ ଧାତୁ+କର୍ତ୍ତୃ. ଅ)—ସୂର୍ଯ୍ୟ—
The sun.

ଦେ. ବି. ପୁଂ—ଲୋକଙ୍କ ନାମ—A name given to (males).

ଦିବାକର ମିଶ୍ର—ଦେ.ବି(ନାମ) ଜଣେ ପ୍ରାଚୀନ ଉତ୍କଳୀୟ କବିଙ୍କ ନାମ—
Dibākara misra Name of a poet of old Orissa.
[ ଦ୍ର—'ଜଗନ୍ନାଥଚରିତାମୃତ' ଏହାଙ୍କ ରଚିତ—ଭାରଣୀ. ଉତ୍କଳସାହିତ୍ୟ. ଇତିହାସ ।]

ଦିବା କୀର୍ତ୍ତି—ସ.ବି—୧ । (ଦିବା=ଦିବସରେ+କୀର୍ତ୍ତି=ବ୍ୟାପାର ଯାହାର,
Dibākirti ବହୁବ୍ରୀହି; ଦିନରେ କ୍ଷୌର କର୍ମ କରିବ ଥିବାରୁ)—
୧ । ନାପିତ; ଭଣ୍ଡାରୀ—1. Barber.

୨ । ( ଦିବା+ଅକୀର୍ତ୍ତି; ଦିବସରେ ଅକୀର୍ତ୍ତି ଯାହାର) ପେଚକ;
ପେଚା—2 Owl.

୩ । ଚଣ୍ଡାଳ—3. A sweeper; a person of the untouchable caste.

ଦିବାଚର—ସ.ବିଣ.ପୁଂ ( ଦିବା+ଚର ଧାତୁ+କର୍ତ୍ତୃ ଅ)—ଯେ ଦିବସରେ
Dibāchara ବିଚରଣ କରେ—Walking or moving
(ଦିବାଚରୀ—ସ୍ତ୍ରୀ) about in the day time.

ସଂ. ବି—୧ । ପକ୍ଷୀ—1. Bird.

୨ । ଚଣ୍ଡାଳ—2. A man of the sweeper caste.

ଦିବାଟନ—ସ. ବି (ଦିବା+ଅଟ୍ ଧାତୁ=ଗମନ କରିବା+କର୍ତ୍ତୃ ଅନ;)—
Dibāṭana କାକ; କୁଆ—The crow.

ଦିବାତନ—ସଂ. ବିଣ ( ଦିବା+ଘଟିବା ଅର୍ଥରେ ତନ )—୧ । ଦିନରେ
Dibātana ଘଟିବା—1. Happening in the day time.
(ଦିବାତନୀ—ସ୍ତ୍ରୀ) ୨ । ଦୈନିକ—2. Daily.

ହି. ଦିନ—ଏକଦିନର ମଜୁରି (ହି. ଶବ୍ଦସାଗର)—
A days' wages.

ଦିବାନ୍—ବୈଦେ. ବି (ଅ)—ଦେୱାନ୍ (ଦେଖ)
Dibān Dewān (See)

ଦିବା ନାଥ—ସ. ବି(୬ଷ୍ଠୀ ତତ୍; ଦିବା+ନାଥ)-ସୂର୍ଯ୍ୟ (ହି. ଶବ୍ଦସାଗର)—
Dibā nātha The sun.

ଦିବାନି—ଦେ. ବି—ଦେୱାନି (ଦେଖ)
Dibāni Dewāni ( See )

ଦିବା ନିଦ୍ରା—ସ. ବି(ଦିବା+ନିଦ୍ରା;୭ମୀ ତତ୍)-ଦିନବେଳେ ଶୋଇବା—
Dibā nidrā Sleeping during the day time.

ଦିବାନିଶ—ସ. ଅ. ( ଦିବା+ନିଶି; ଦ୍ୱନ୍ଦ୍ୱ )—ଦିନରାତି; ଦିନ ଓ
Dibānisa ରାତି ବ୍ୟାପୀ; ଅହୋରାତ୍ର—Day and night continuously; continuing throughout the day and night.

ଦିବାନିଶି—ଦେ. କ୍ରି. ବିଣ—ରାତି ଦିନ, ଦିନରେ ଓ ରାତିରେ; ଅହର୍ନିଶ;
Dibānisi ସର୍ବଦା; ଅବିରତ—Day and night;
(ଦିବାରାତି; ଦିବାରାତ୍ର—ଅନ୍ୟରୂପ) incessantly.

ଦିବାନ୍ଧ—ସ. ବି. ( ଦିବା+ଅନ୍ଧ, ୭ମୀ ତତ୍ )—
Dibāndha ପେଚା—The owl

ବିଣ—ଦିନକଣା; ଯେ ଦିନରେ ଦେଖି ନ ପାରେ—
Unable to see in the day time.

ଦିବାନ୍ଧକୀ—ସ. ବି. ସ୍ତ୍ରୀ—ଛୁଞ୍ଚୁନ୍ଦ୍ରା—The mole or musk rat;
Dibāndhakī Sorex Coerulens

ଦିବା ପୃଷ୍ଠ—ସ. ବି (ବହୁବ୍ରୀହି)—ସୂର୍ଯ୍ୟ ( ହି. ଶବ୍ଦସାଗର )—
Dibā prushṭha The sun.

ଦିବା ପ୍ରଦୀପ—ସ ବି. ( ଲକ୍ଷଣାର୍ଥ )—ଦିବାରେ ଜଳାଇବା ଦୀପ ପରି
Dibā pradipa ଅନାବଶ୍ୟକ ବ୍ୟକ୍ତି ବା ବସ୍ତୁ—
(figurative) An unnecessary person or thing (like a lamp lit in day time).

ଦିବା ଭାଗ—ସ. ବି ( ୬ଷ୍ଠୀ ତତ୍; ଦିବା+ଭାଗ )—
Dibā bhāga ୧ । ଦିନ ସମୟ—1. Day time.

୨ । ସୂର୍ଯ୍ୟୋଦୟଠାରୁ ସୂର୍ଯ୍ୟାସ୍ତ କାଳ—
2 The time between sunrise and sunset.

ଦିବାଭିସାରିକା—ସ. ବି. ସ୍ତ୍ରୀ. ( ଦିବା+ଅଭିସାରିକା )—
Dibābhisārikā ଯେଉଁ ନାୟିକା ଦିନ ବେଳେ ଆପଣା ପ୍ରେମିକ ସଙ୍ଗେ ମିଳିତ ହେବା ପାଇଁ ବେଶ ହୋଇ ସଙ୍କେତ ସ୍ଥାନକୁ ଯାଏ—A lady,who goes out to meet her lover at the place of assignment in day time.

ଦିବା ଭୀତ—ସ. ବି. ( ଦିବା+ଭୀତ; ୭ମୀ ବା ୫ମୀ ତତ୍ )—
Dibā bhīta ୧ । ପେଚା—1. The owl.
୨ । ଚୋର—2. The thief.
୩ । ଚନ୍ଦ୍ର—3. The moon.

ଦିବା ମଣି—ସ. ବି. ( ୬ଷ୍ଠୀ ତତ୍; ଦିବା+ମଣି )—ଦିନମଣି ( ଦେଖ )
Dibā maṇi Dinamaṇi ( See )

ଦିବା ମଧ୍ୟ—ସ. ବି ( ୬ଷ୍ଠୀ ତତ୍; ଦିବା+ମଧ୍ୟ )—ଦ୍ୱିପ୍ରହର; ମଧ୍ୟାହ୍ନ—
Dibā madhya Noon; midday.

ଦିବାର—ଦେ. ଅ. (ସ ଦ୍ୱି + ବାର)—ଦୁଇ ଥର—
Dibāra Twice.
दुबार **दुबारा**

ଦିବାର ତିନିବାର—ଦେ ଅ.(ସ. ଦ୍ୱିବାର ତ୍ରିବାର)—ଦୁଇଥର ତିନିଥର; ବହୁବାର—Repeatedly; several times.
Dibāra tinibāra
दुबार तिनिबार **दुबारा तिबारा**

ଦିବାରାତ୍ର—ସ ଅ. (ଦିବା + ରାତ୍ରି, ଦ୍ୱନ୍ଦ୍ୱ)—ଦିବାନିଶ ( ଦେଖ )
Dibārātra Dibānisa ( See )

ଦିବାରାତ୍ରି—ଦେ. ଅ. (ସ. ଦିବାରାତ୍ର) —ଦିବାନିଶି ( ଦେଖ )
Dibārātri Dibānisi ( See )

ଦିବାଲ୍ (ଇତ୍ୟାଦି)—ବୈଦେ. ବି—ଦେବାଲ୍ ଇତ୍ୟାଦି ( ଦେଖ )
Dibāl (etc) Debāl etc. ( See )
(ଦିୱାଲ୍—ଅନ୍ୟରୂପ)

ଦିବାଲ୍‌ଗିରି—ବୈଦେ. ବି. (ଫା)—ଯେଉଁ ଦୀପ କାନ୍ଥରେ ମସ୍ତ ହୋଇ ଜଳେ -A wall lamp.
Dibāl-giri

ଦିବାଲା—ଦେ. ବିଣ. ( ସ. ଦୁର୍ବଳ )—ଦୁର୍ବଳ—
Dubāla Weak.
दुबला ଦିବାଲା ହେବାର ଦେହ ମହାସାର, ଜାଣି ଯା ହେଲା ମାନସ ମୋର ।
**दुबला** ବଳଭଦ୍ର କରୋଇଗଞ୍ଜୁ ଦ. ଗୀତ ।
ବୈଦେ. ବିଣ. ( ଫା )—ଦିବାଲିଆ ( ଦେଖ )
Dibālia ( See )

ଦିବାଲିଆ—ବୈଦେ. ବିଣ. ( ଫା )—
Dibālia ୧ । ଋଣ ପରିଶୋଧ କରିବାକୁ ଅସମର୍ଥ (ବ୍ୟକ୍ତି)—
देवालिआ 1. Insolvent (debtor).
**दिवाला, दिवालिआ** ୨ । ଅସ୍ତବ୍ୟସ୍ତ—2. Pulled down; troubled.
୩ । ଦୁଃଖଗ୍ରସ୍ତ—3. Afflicted.

ଦିବାଲି—ଦେ. ବି. ( ସ. ଦୀପାବଳୀ )—ଦୀପାବଳୀ ଅମାବାସ୍ୟା—
Dibāli The new moon in Kārttika.
दिवाली **दिवाली**

ଦିବାଶୟ—ଦେ. ବିଣ. (ଉପପଦ ତତ୍ପୁରୁଷ, ଦିବା + ଶୀ ଧାତୁ+ଅ)—
Dibāśaya ଯେ ଦିନରେ ଶୁଏ—
Given to sleeping in day time.

ଦିବି—ଦେ. ବି (ସ. ଦିବ୍ ଶବ୍ଦର ୭ମୀ ବିଭକ୍ତି ୧ବ. )—
Dibi ସ୍ୱର୍ଗ—1. Heaven.
୨ । ଆକାଶ—2. Sky.
ଏମନ୍ତ ଦିବି ମଣ୍ଡଳର;
ଲକ୍ଷଣ ଶୁଣ ନୃପବର । ଜଗନ୍ନାଥ. ଭାଗବତ ।
ସ. କ୍ର.—୧ । ଆକାଶରେ—1. In the sky
୨ । (ଦିବ୍ ଧାତୁ + କର୍ତ୍ତୃ. ଇ)—ଚାଷ ପକ୍ଷୀ (ଦେଖ)
2. Chāsha pakshi (See)

ଦିବିଷଦ୍—ସ. ବି. (ସ. ଦିବି=ସ୍ୱର୍ଗରେ + ସଦ୍ ଧାତୁ=ଯିବା + କର୍ତ୍ତୃ. କ୍ୱିପ୍)—ଦେବତା—Deity; the Gods.
Dibishad
(ଦିବିଷତ୍—ଅନ୍ୟରୂପ) ବିଣ.—ସ୍ୱର୍ଗରେ ବାସକାରୀ—
Residing in heaven.

ଦିବିଷ୍ଠ—ସ. ବିଣ. ପୁଂ. (ସ. ଦିବି=ସ୍ୱର୍ଗରେ+ସ୍ଥା ଧାତୁ+କର୍ତ୍ତୃ. ଅ)—
Dibistha ସ୍ୱର୍ଗସ୍ଥ; ସ୍ୱର୍ଗୀୟ—Heavenly.
(ଦିବିଷ୍ଠା—ସ୍ତ୍ରୀ) ସ ବି.—ଦେବତା—Deity.

ଦିବୋକସ୍—ସ. ବି. ( ଦିବ=ସ୍ୱର୍ଗ+ ଓକସ୍=ବାସସ୍ଥାନ ଯାହାଙ୍କର; ବହୁବ୍ରୀହି; ଏଥିର ପ୍ରଥମା ୧ବ. ଦିବୋକା)—
Dibokas
୧ । ଦେବତା—1 Deity; Divine beings.
୨ । ଚାତକ ପକ୍ଷୀ (ହି. ଶବ୍ଦସାଗର)—
2. The pied-crested coccyster.

ଦିବୋଦାସ—ସ. ବି. (ନାମ)—୧ । କାଶୀଖଣ୍ଡ ଓ ମହାଭାରତରେ ଉଲ୍ଲିଖିତ ଚନ୍ଦ୍ରବଂଶୀ ରାଜା (ଏ କାଶୀରେ ରାଜତ୍ୱ କରୁଥିଲେ)—1. Name of a king of the lunar dynasty of India.
Dibodāsa
୨ । ହରିବଂଶ ଅନୁସାରେ ମେନକାଙ୍କ ଗର୍ଭରୁ ଯଧ୍ୟଶ୍ୱ ଋଷିଙ୍କ ଔରସରେ ଜନ୍ମି ଥିବା ଋଷି (ଏ ଅହଲ୍ୟାଙ୍କ ଭାଇ)—
2. Name of a sage.

ଦିବୋଦ୍ଭବା—ସ. ବି. (ଦିବ + ଉଦ୍ଭବ + ଆ)—ଅଳାଇଚ
Dibodbhabā (ହି. ଶବ୍ଦସାଗର)—Cardamom

ଦିବୋଲ୍କା—ସ. ବି. (ଦିବା + ଉଲ୍କା)—ଦିନ ବେଳେ ଆକାଶରୁ ଖସିବା ଉଲ୍କା—Shooting star or incandescent mass falling from the sky in the day time.
Dibolkā

ଦିବୌକସ୍—ସ. ବି. (ପଦ)—ଦିବୋକସ୍ (ଦେଖ)
Dibaukas Dibokas (See)

ଦିବୌକା—ସ. ବି. (ଦିବୌକସ୍ ଶବ୍ଦ ୧ମା. ୧ବ.)—
Dibaukā ଦିବୋକସ୍ (ଦେଖ)—Dibokas (See)

ଦିବ୍ୟ—ସ ବିଣ. ( ଦିବ୍=ସ୍ୱର୍ଗ+ ଭବାର୍ଥେ. ଯ )—ସ୍ୱର୍ଗୀୟ—
Dibya 1. Divine; celestial.
(ଦିବ୍ୟତା, ଦିବ୍ୟତ୍ୱ—ବି) ୨ । ଐନ୍ଦ୍ରଜାଲିକ; ଅଦ୍ଭୁତ (ଘଟନା)—
(ଦିବ୍ୟା —ସ୍ତ୍ରୀ) 2. Magical; miraculous.
୩ । ଆକାଶସ୍ଥ—3. Heavenly
୪ । ଅଲୌକିକ—4. Supernatural.
୫ । (ଦିବ୍ ଧାତୁ=ଦୀପ୍ତି ପାଇବା + ଯ) ମନୋହର; ସୁନ୍ଦର—
5 Magnificent; beautiful; charming.
ଦିବ୍ୟ ପୁର ସେ ଦିବ୍ୟ ତରୁ ଉହୁଁ ଛନ୍ତି
ଦିବ୍ୟ ଆସନରେ ସେ ମନ ମୋହେ ଅତି—କୃଷ୍ଣସିଂହ. ମହାଭାରତ. ସଭା ।
୬ । ଉତ୍କୃଷ୍ଟ; ଶ୍ରେଷ୍ଠ—
6 Superior; best; excellent.
୭ । ( ସ. ଦିବ୍=ଆକାଶ + ଭବାର୍ଥେ. ଯ ) ଆକାଶରେ ଘଟୁଥିବା—7. Happening in the sky.
୮ । ସ୍ୱର୍ଗୀୟ ବା ସ୍ୱର୍ଗସୁଖ ଆନନ୍ଦଦାୟକ—
8. Giving heavenly bliss or pleasure.
ସ. ବି—୧ । ଶପଥ; ରାଣ—1 Oath
୨ । ଲବଙ୍ଗ—2. Cloves.
୩ । ଧଳାଚନ୍ଦନ—3. A kind of sandal.

୪ । ଗୁଗ୍ଗୁଳ—4. A kind of incense; bdellium.
୫ । ଯବ—5. Barley
୬ । ଅଁଳା ( ହି ଶବ୍ଦସାଗର )—
6. Embelic myrobalan.
୭ । ଶତାବରୀ ( ହି. ଶବ୍ଦସାଗର )—7. Asparagus.
୮ । ବ୍ରାହ୍ମୀଶାକ ( ହି. ଶବ୍ଦସାଗର )—
8. An aquatic pot-herb
୯ । ଧଳା ଦୁବ ( ହି ଶବ୍ଦସାଗର )—
9. The white or bleached variety of Cynoden grass.
୧୦ । ହରଡ଼ା ( ହି. ଶବ୍ଦସାଗର )—10. Myrobalan
୧୧ । ଘୁଷୁରି ( ହି. ଶବ୍ଦସାଗର )—11. Hog.
୧୨ । ତତ୍ତ୍ୱବେତ୍ତା ( ହି. ଶବ୍ଦସାଗର )—
12. A person who knows the true or essential facts; a metaphysician.
୧୩ । କପୁର କଚୁରୀ; ଅମ୍ବ ଅଦା ( ହି. ଶବ୍ଦସାଗର )—
13. Curcuma Zeodaria.
୧୪ । ଜୀରା ( ହି. ଶବ୍ଦସାଗର )—14. Cumin seed.
୧୫ । ଅଷ୍ଟବର୍ଗ ମଧ୍ୟରୁ ଏକତମ ଔଷଧ; ମହାମେଦା ( ଦେଖ ) ( ହି ଶବ୍ଦସାଗର )—15. Mahāmedā ( See )
୧୬ । ଚମେଲି ( ହି. ଶବ୍ଦସାଗର )—
16. A kind of jasmine.
୧୭ । ଖରାବେଳେ ବରଷୁଥିବା ପାଣିରେ ସ୍ନାନ (ହି.ଶବ୍ଦସାଗର)—
17. A shower-bath teken while it is raining in sunshine.
୧୮ । ପଞ୍ଚମକାର; ଶ୍ମଶାନ ଓ ଚିତାସାଧନରେ କରାଯିବା ତାନ୍ତ୍ରିକ ଅନୁଷ୍ଠାନବିଶେଷ (ହି. ଶବ୍ଦସାଗର )—18. A class of Tantrik rituals.
୧୯ । ଆକାଶରେ ଘଟିବା ଏକପ୍ରକାର ଉତ୍ପାତ (ହି.ଶବ୍ଦସାଗର)—
19 A kind of ominous heavenly phenomena.
୨୦ । ନାଟକାଦିରେ ବର୍ଣ୍ଣିତ ଅଲୌକିକ ନାୟକ, ଯଥା— ରାମଚନ୍ଦ୍ର, ଶ୍ରୀକୃଷ୍ଣ ( ହି ଶବ୍ଦସାଗର )—
20 An extraordinary hero in a fiction.
୨୧ । ପ୍ରାଚୀନକାଳରେ ନ୍ୟାୟାଳୟରେ ଅଭିଯୁକ୍ତ ବ୍ୟକ୍ତିର ଅପରାଧିତା ବିଷୟ ସିଦ୍ଧାନ୍ତ ଦେବା ପାଇଁ କରାଯିବା ପରୀକ୍ଷା; ସାକ୍ଷ୍ୟ ( ହି. ଶବ୍ଦସାଗର )—
21. A test or ordeal which an accused had to pass through during treal.
[ ଦ୍ର—ଏହା ଘଟ, ଅଗ୍ନି, ଉଦକ, ବିଷ, ତୁଳାଦଣ୍ଡ, କୋଷ, ତଣ୍ଡୁଳ, ତପ୍ତମାଷକ ଓ ଫାଳ ସାହାଯ୍ୟରେ କରା ଯାଉଥିଲା । ]
୨୨ । ଶପଥ ( ହି. ଶବ୍ଦସାଗର )—
22. Oath, solemn affirmation.
ଦେ. ବି—୧ । ସଂସ୍କୃତ ଭାଷା—The Sanskrit language. (ସଂସ୍କୃତକୁ ଦେବଭାଷା ବୋଲାଯାଏ)—

କି ଅ ଅକ୍ଷରେ ହୋଇଛି ନିଯମ
କଥା କୋହେ ଦିବ୍ୟ ଅଦିବ୍ୟ ସମ । ଯାଦୁକୃଷ୍ଣ. ରସକଲ୍ଲୋଳ ।
ଦେ.ଅ —ଅତିଶୟ—Very much.
दिवरी; दिव्री ଶୁଣି କରି ଅର୍ଜୁନ ଯେ ହୋଇ ଦିବ୍ୟ ତୋଷ । କୃଷ୍ଣସିଂହ ମହାଭାରତ

ଦିବ୍ୟ କବଚ—ସଂ. ବି.—୧ । ଦେବତାଙ୍କ ପ୍ରଦତ୍ତ ତନୁତ୍ରାଣ ବା ସାଞ୍ଜୁ— Dibya kabacha 1. A coat of mail given to a person by a Deity.
୨ । ଦେବତାଙ୍କ ସ୍ତବବିଶେଷ—2 A kind of prayer to a Deity for one's protection from evil.

ଦିବ୍ୟ ଗନ୍ଧ—ସଂ. ବି ( ଦିବ୍ୟ+ଗନ୍ଧ; କର୍ମଧା )—୧ । ସୁଗନ୍ଧ— Dibya gandha 1. Sweet smell, fragrance.
୨ । (ବହୁବ୍ରୀହି) ଲବଙ୍ଗ—2. Cloves.
୩ । ଗନ୍ଧକ—3. Sulpher.
ବିଣ—ସୁଗନ୍ଧଯୁକ୍ତ—Fragrant.

ଦିବ୍ୟ ଗାୟନ—ସଂ. ବି (ବହୁବ୍ରୀହି; ଦିବ୍ୟ ସ୍ୱର୍ଗୀୟ ଅଟେ ଗାୟନ ଯାହାର)- Dibya gāyana ଗନ୍ଧର୍ବ; ଦେବଯୋନିବିଶେଷ— A class of mythological heavenly choristers.

ଦିବ୍ୟ ଚକ୍ଷୁ—ଦେ. ବି. (ସଂ ଦିବ୍ୟ ଚକ୍ଷୁଃ)—୧ । ଜ୍ଞାନଚକ୍ଷୁ— Dibya chakshu 1. Insight into supernatural matters.
दिव्यचक्षु
दिवराचक्ष ୨ । ସୁନ୍ଦର ବା ମନୋହର ଆଖି—
2. Very charming eyes.

ଦିବ୍ୟ ଚକ୍ଷୁଃ—ସଂ ବି. ( ଦିବ୍ୟ+ଚକ୍ଷୁଃ; କର୍ମଧା )— Dibya chakshuh ୧ । ଜ୍ଞାନଚକ୍ଷୁ; ପରୋକ୍ଷ ବିଷୟ ପ୍ରତି ଦୃଷ୍ଟି; ଅଲୌକିକ ପଦାର୍ଥ ବା ବିଷୟ ବୁଝିପାରିବା ଶକ୍ତି—
2. Intellectual eye; insight into supernatural matters.
୨ । ସାଧାରଣଙ୍କୁ ଅଗୋଚର ବସ୍ତୁ ଦେଖି ପାରିବାର ଶକ୍ତି—
2. The preternatural power of seeing invisible things.
୩ । ଚଷମା; ପ୍ରତିଶ୍ରୁ ( ହି. ଶବ୍ଦସାଗର )—
3. Eyeglass, spectacles.
୪ । ମାକଡ଼ ( ହି. ଶବ୍ଦସାଗର )—4 Monkey.
୫ । ଗନ୍ଧଦ୍ରବ୍ୟବିଶେଷ ( ହି. ଶବ୍ଦସାଗର )—
5. A kind of sweet scent.
୬ । କୃଷ୍ଣ ( ପ୍ରକୃତିବାଦ )—
6 An epithet of Krushna.
ସଂ. ବିଣ. (ବହୁବ୍ରୀହି)—୧ । ପରୋକ୍ଷ ବିଷୟ ଦେଖିବାର ଶକ୍ତିଯୁକ୍ତ; ଯାହାର ଚକ୍ଷୁରେ ଅଲୌକିକ ଶକ୍ତି ଅଛି—
1. Endowed with supernatural insight
୨ । ସୁଲୋଚନ; ଉତ୍ତମଚକ୍ଷୁବିଶିଷ୍ଟ—
2. Having graceful eyes.
୩ । ଅନ୍ଧ—3 Blind.

**ଦିବ୍ୟ ଚିତ୍ତ**—ସଂ. ବି. ( ଦିବ୍ୟ+ଚିତ୍ତ, କର୍ମଧା )—ଭଲ ମନ; ଅନୁକୂଳ ଚିତ୍ତ—Favourable mentality.
Dibya chitta

ପ୍ରଭୁରେ ଦାସୀ ଶେଷ କେବେ କରିଛ ଦିବ୍ୟ ଚିତ୍ତରେ ନ ଯେବ ହେ—
ଭକ୍ତ. ପ୍ରେମସୁଧାନିଧି ।

**ଦିବ୍ୟ ଜ୍ଞାନ**—ସଂ. ବି. ( ଦିବ୍ୟ+ଜ୍ଞାନ; କର୍ମଧା )—
Dibya jñāna ୧ । ପରୋକ୍ଷଦର୍ଶନ ଜ୍ଞାନ—
1. Supernatural knowledge; faculty of seeing things invisible to the ordinary eye
୨ । ସ୍ୱର୍ଗୀୟ ଜ୍ଞାନ—2. Divine knowledge.
ସଂ. ବିଣ—( ଦିବ୍ୟ+ଜ୍ଞାନ; ବହୁବ୍ରୀହି )—ସ୍ୱର୍ଗୀୟ ଜ୍ଞାନଯୁକ୍ତ—
Possessed of divine knowledge or supernatural insight.

**ଦିବ୍ୟ ଜ୍ୟୋତିଃ**—ସଂ. ବି. ( ଦିବ୍ୟ+ଜ୍ୟୋତିଃ; କର୍ମଧା )—ସ୍ୱର୍ଗୀୟ ଆଲୋକ—A divine halo of light.
Dibya jyotiḥ

**ଦିବ୍ୟ ଦର୍ଶନ**—ସଂ. ବି. ଓ ବିଣ—ଦିବ୍ୟ ଚକ୍ଷୁଃ ୧।୨ (ଦେଖ)
Dibya darśana Dibya chakshuḥ 1 & 2 ( See )

**ଦିବ୍ୟ ଦର୍ଶୀ**—ସଂ. ବିଣ. ପୁଂ. ( ଦିବ୍ୟ+ଦୃଶ୍ ଧାତୁ+କର୍ତ୍ତୃ. ଇନ୍ ୧ମା. ୧ବ.)—ଦିବ୍ୟଦୃଷ୍ଟିଯୁକ୍ତ; ଅତୀନ୍ଦ୍ରିୟାର୍ଥ ଦର୍ଶକ—
Dibya darśi
( ଦିବ୍ୟଦର୍ଶିନୀ—ସ୍ତ୍ରୀ ) Endowed with supernatural insight.

**ଦିବ୍ୟ ଦୃଷ୍ଟି**—ସଂ. ବି. ଓ ବିଣ—ଦିବ୍ୟ ଚକ୍ଷୁଃ ୧।୨ ( ଦେଖ )
Dibya drushṭi Dibya chakshuḥ 1 & 2 ( See )

**ଦିବ୍ୟ ଦେହ**—ସଂ. ବି. (ଦିବ୍ୟ+ଦେହ; କର୍ମଧା)—୧ । ସ୍ୱର୍ଗୀୟ ଦେହ—
Dibya deha 1. Celestial body.
୨ । ସାଧାରଣ ଚକ୍ଷୁର ଅଗୋଚର ଶରୀର—
2. A body or form which is invisible to the ordinary eye.

**ଦିବ୍ୟ ଦୋହଦ**—ସଂ. ବି—କୌଣସି ବ୍ୟକ୍ତିର ଅଭ୍ୟାସସିଦ୍ଧି ପାଇଁ
Dibya dohada ଦେବତାଙ୍କୁ ଅର୍ପିତ କରାଯିବା ପୂର୍ବରୁ ଉତ୍ସୃଷ୍ଟ ପଦାର୍ଥ; ବାଞ୍ଛା ସିଦ୍ଧ ହେଲେ ଭକ୍ତ ଦେବତାଙ୍କୁ ସେହି ପଦାର୍ଥ ଅର୍ପଣ କରିବା ପାଇଁ ମନାସି ଥାଏ (ହି. ଶବ୍ଦସାଗର )—A thing which is offered to a Deity as a result of a solemn vow or dedication that the doner will give it to the Deity if his or her wish be fulfilled through the Grace of the Deity.

**ଦିବ୍ୟ ଧର୍ମୀ**—ସଂ. ବିଣ. ପୁଂ. ( ଦିବ୍ୟ+ଧର୍ମ+ଇନ୍; ୧ମା. ୧ବ )—
Dibya dharmī ୧ । ସୁଶୀଳ ( ହି. ଶବ୍ଦସାଗର )—
( ଦିବ୍ୟଧର୍ମିଣୀ—ସ୍ତ୍ରୀ ) 1. Of good conduct.
୨ । ସୁସ୍ୱଭାବ—2. Good natured.

**ଦିବ୍ୟ ଧାମ**—ସଂ. ବି. ( ଦିବ୍ୟ+ଧାମନ୍; କର୍ମଧାରୟ)—ସ୍ୱର୍ଗ—
Dibya dhāma Heaven.

ତପୋର ଧାମକୁ କଲେ ଦିବ୍ୟଧାମ ନିଜ ଦିବ୍ୟପ୍ରଭା ଚହିଁ ବସ୍ତ୍ରାର—
ନନ୍ଦକିଶୋର. କୃଷ୍ଣକୁମାର ।

**ଦିବ୍ୟ ନଦୀ**—ସଂ. ବି. ସ୍ତ୍ରୀ. ( କର୍ମଧା; ଦିବ୍ୟା+ନଦୀ )—ସ୍ୱର୍ଗଗଙ୍ଗା, ମନ୍ଦାକିନୀ—The mythological river Ganges said to flow in the heaven.
Dibya nadī
( ଦିବ୍ୟସରିତ୍—ଅନ୍ୟରୂପ )

**ଦିବ୍ୟ ନାରୀ**—ସଂ. ବି. ସ୍ତ୍ରୀ. ( କର୍ମଧା; ଦିବ୍ୟା+ନାରୀ )—ସ୍ୱର୍ଗାଙ୍ଗନା, ଅପ୍ସରା—The heavenly nymphs or dancing girls; the maidens of paradise ( according to the Hindu mythologies ).
Dibya nārī
ଦିବ୍ୟସ୍ତ୍ରୀ } ଅନ୍ୟରୂପ
ଦିବ୍ୟାଙ୍ଗନା }

**ଦିବ୍ୟ ପଞ୍ଚାମୃତ**—ସଂ. ବି. ( କର୍ମଧା; ଦିବ୍ୟ=ଉତ୍କୃଷ୍ଟ+ପଞ୍ଚାମୃତ )—
Dibya pañchāmruta ଘିଅ, ଦୁଧ, ଦହି, ଲହୁଣୀ ଓ ଚିନି ମିଶାଯାଇ ପ୍ରସ୍ତୁତ ହୋଇଥିବା ପଞ୍ଚାମୃତ—A mixture of ghee, milk, curd, butter and sugar.

**ଦିବ୍ୟ ପୁରୁଷ**—ସଂ.ବି—୧ । ଦେବପୁରୁଷ; ମନୁଷ୍ୟରୂପେ ଅବତୀର୍ଣ୍ଣ ଦେବ—
Dibya purusha 1. A divine being; a god assuming the form of a human being.
୨ । ସ୍ୱର୍ଗଦୂତ—2. An angel.

ମଧ୍ୟମ ପାଣ୍ଡବେ ଗୃହୁଁ ସେ ଦିବ୍ୟପୁରୁଷ
ବୋଇଲେ, "ହେ ବୀର, ତନ୍ତି ପାରିଲ ମୋତେ—ସାରଳାଦାସ. ମହାଭାରତ

୩ । ଅତି ସୁନ୍ଦର ମନୁଷ୍ୟ—
3. A very fine-looking man.

**ଦିବ୍ୟ ପୁଷ୍ପ**—ସଂ.ବି. (କର୍ମଧା, ଦିବ୍ୟ+ପୁଷ୍ପ)—କରବୀ (ହି.ଶବ୍ଦସାଗର)—
Dibya pushpa Oleander ( flower ).

**ଦିବ୍ୟପୁଷ୍ପା**—ସଂ. ବି. ( ବହୁବ୍ରୀହି, ଦିବ୍ୟ+ପୁଷ୍ପ+ଆ )—ବଡ଼ ଦ୍ରୋଣପୁଷ୍ପୀ; ବଡ଼ ଗୟସଫୁଲ ( ହି. ଶବ୍ଦସାଗର )—
Dibya pushpā A big variety of Gayasa flower.

**ଦିବ୍ୟ ପୁଷ୍ପିକା**—ସଂ. ବି. ( ଦିବ୍ୟ+ପୁଷ୍ପ+କ+ଆ )—ନାଲି ଅର୍କଗଛ
Dibya pushpikā ( ହି. ଶବ୍ଦସାଗର )—The red-flowered variety of Calotropis Gigantea.

**ଦିବ୍ୟ ବାକ୍ୟ**—ସଂ. ବି. (କର୍ମଧା, ଦିବ୍ୟ+ବାକ୍ୟ )—ଆକାଶବାଣୀ—
Dibya bākya A sound from the sky.
( ଦିବ୍ୟ ବାଣୀ —ଅନ୍ୟରୂପ )

**ଦିବ୍ୟ ଭୀରୁ**—ସଂ. ବି (କର୍ମଧା; ଦିବ୍ୟା+ଭୀରୁ)—ଦିବ୍ୟ ନାରୀ (ଦେଖ)
Dibya bhīru Dibya nārī ( See)

ରୂପେ ତୁଲେ ଭରିବକୁ ଭେଟଗ୍ରାମ ଦିବ୍ୟଭୀରୁ
ସେବକଲେ ଫୁଲ ଚନ୍ଦନେ ଗୋଡ଼ ଯେ । ଭକ୍ତ. ବୈଦେହୀଶବିଳାସ ।

**ଦିବ୍ୟ ଭୋଜନ**—ସଂ. ବି ( କର୍ମଧା; ଦିବ୍ୟ+ଭୋଜନ )—୧ । ସୁଭୋଜନ, ସୁସ୍ୱାଦୁ ଦ୍ରବ୍ୟର ଭୋଜନ—1. A delicious meal.
Dibya bhojana
୨ । ପୂର୍ଣ୍ଣ ଭୋଜନ—2. A bellyful.

**ଦିବ୍ୟ ରତ୍ନ**—ସଂ. ବି (କର୍ମଧା; ଦିବ୍ୟ+ରତ୍ନ)—ଚିନ୍ତାମଣି ନାମକ ରତ୍ନ; ବାଞ୍ଛିତ ଫଳଦାୟକ ରତ୍ନବିଶେଷ—A mythological gem said to possess the power of granting the wishes to the wearer.
Dibya ratna

**ଦିବ୍ୟ ରଥ**—ସଂ. ବି ( କର୍ମଧା; ଦିବ୍ୟ+ରଥ)—୧ । ଦେବଯାନ—
Dibya ratha 1. A celestial car.

୨ । ସ୍ୱର୍ଗୀୟ ଦେବତାମାନଙ୍କ ରଥ—
2. Car used by the gods.
୩ । ବ୍ୟୋମଯାନ; ଆକାଶବିହାରୀ ରଥ—
3. Balloon; areoplane.

ଦିବ୍ୟ ରସ—ସଂ. ବି (କର୍ମଧା; ଦିବ୍ୟ+ରସ)—ପାରଦ—
Dibya rasa Quick-silver.

ଦିବ୍ୟ ଲୋକ—ସଂ. ବି ( କର୍ମଧା; ଦିବ୍ୟ+ଲୋକ )—ସ୍ୱର୍ଗଲୋକ, ଯେଉଁ
Dibya loka ସ୍ଥାନରେ ଦେବତାମାନେ ବାସ କରନ୍ତି—The heaven; the abode of the Gods.

ଦିବ୍ୟ ଶ୍ରୋତ୍ର—ସଂ. ବି ( କର୍ମଧା; ଦିବ୍ୟ+ଶ୍ରୋତ୍ର )—ଯେଉଁ କାନକୁ
Dibya śrotra ଅନ୍ୟମାନଙ୍କୁ ଶୁଣା ନ ଯିବା ଶବ୍ଦ ମଧ୍ୟ ଶୁଣାଯାଏ (ହି. ଶବ୍ଦସାଗର)—An ear which can hear sounds inaudible to others.

ଦିବ୍ୟ ସାର—ସଂ. ବି (ବହୁବ୍ରୀହି, ଦିବ୍ୟ=ଉତ୍କୃଷ୍ଟ ଅଟେ ସାର=ନିର୍ଯ୍ୟାସ
Dibya sāra ଯାହାର)— ସାଲବୃକ୍ଷ (ହି. ଶବ୍ଦସାଗର)—Shorea Robusta (tree).

ଦିବ୍ୟ ସିଂହ—ଦେ. ବି. ପୁଂ—ଲୋକଙ୍କ ନାମ—
Dibya simha A name given to males.
ସଂ ବି—ବିଷ୍ଣୁଙ୍କର ନରସିଂହ ଅବତାର—The incarnation in which Bishnu is said to have assumed the form of half lion and half man (according to the Hindus).

ଦିବ୍ୟସିଂହ ଦେବ—ଦେ. ବି—ପୁରୀର ଜନୈକ ରାଜା—
Dibyasimha deba Name of a late Raja of Puri.
[ଦ୍ରି—ଏ ପୁରୀର ଭୂତପୂର୍ବ ସ୍ୱର୍ଗୀୟ ରାଜା ମୁକୁନ୍ଦଦେବଙ୍କ ପିତା; ନରହତ୍ୟା ଅଭିଯୋଗରେ ଏହାଙ୍କୁ ଇଂରାଜ ଗଭର୍ଣ୍ଣମେଣ୍ଟ ଦ୍ୱୀପାନ୍ତର ଦଣ୍ଡ ବା କଳାପାଣି ଦେଇଥିଲେ ଓ ଏ ଆଣ୍ଡାମାନ ଦ୍ୱୀପରେ ଥାଇ ଏ ଜୀବଲୀଳା ସାଙ୍ଗ କରିଥିଲେ । ]

ଦିବ୍ୟ ସୁନ୍ଦର—ସଂ. ବିଣ ( ଦିବ୍ୟ+ସୁନ୍ଦର, କର୍ମଧାରୟ; କ୍ରମ୍ଭା ଦିବ୍ୟ ଓ
Dibya sundara ସୁନ୍ଦର; ଦ୍ୱନ୍ଦ୍ୱ)—୧ । ସ୍ୱର୍ଗୀୟ ସୁନ୍ଦରତାବିଶିଷ୍ଟ—
1. Having heavenly beauty
୨ । ଉତ୍ତମ ସୁନ୍ଦର; ଖୁବ୍ ସୁନ୍ଦର; ଅତି ସୁନ୍ଦର—
2 Very fine; very beautiful.

ଦିବ୍ୟ ସୂରି—ସଂ. ବି (କର୍ମଧା; ଦିବ୍ୟ+ସୂରି)—ଶ୍ରେଷ୍ଠ ପଣ୍ଡିତ—
Dibya sūri A very learned man.
ଦେ. ବି—ରାମାନୁଜ ସମ୍ପ୍ରଦାୟର ୧୨ ଜଣ ଆଚାର୍ଯ୍ୟଙ୍କ ଉପାଧି—A title given to the 12 religious professors or teachers of the Ramanuja sect of Baishnabas.
[ଦ୍ରି—ଏମାନଙ୍କ ନାମ—୧ । କାସାର; ୨ । ଭୂତ; ୩ । ମହତ୍; ୪ । ଭକ୍ତିସାର; ୫ । ଶଠାରି; ୬ । କୁଲଶେଖର; ୭ । ବିଷ୍ଣୁଚିତ୍ତ; ୮ । ଭକ୍ତାଙ୍ଘ୍ରିରେଣୁ; ୯ । ମୁନିବାହ; ୧୦ । ଚତୁଷ୍କବୀନ୍ଦ୍ର; ୧୧ । ରାମାନୁଜ; ୧୨ । ଗୋଦାଦେବୀ ବା ମଧୁକର କବି—ହି. ଶବ୍ଦସାଗର । ]

ଦିବ୍ୟ ସ୍ତ୍ରୀ—ସଂ. ବି. ସ୍ତ୍ରୀ (କର୍ମଧା; ଦିବ୍ୟା+ସ୍ତ୍ରୀ)—ସ୍ୱର୍ଗାଙ୍ଗନା; ଅପ୍ସରା—
Dibya strī The maids of paradise (according to the Hindus).

ଦିବ୍ୟା—ସଂ. ବିଣ ସ୍ତ୍ରୀ— (ଦିବ୍ୟ+ସ୍ତ୍ରୀ. ଆ) ଦିବ୍ୟର ସ୍ତ୍ରୀଲିଙ୍ଗ—
Dibyā Feminine form of the adjective Dibya.
ସଂ ବି. ସ୍ତ୍ରୀ—ତିନି ଶ୍ରେଣୀର ନାୟିକା ମଧ୍ୟରୁ ଏକତମା; ଯେଉଁ ନାୟିକା ଦେବାଂଶସମ୍ଭୂତା; (ଯଥା ସୀତା)—A class of heroines who have divinity in them.
[ଅନ୍ୟ ଦୁଇ ଶ୍ରେଣୀ; ଅଦିବ୍ୟା=ସାଧାରଣନାରୀ; ଦିବ୍ୟାଦିବ୍ୟା—ଦେବଗୁଣସମ୍ପନ୍ନା ମାନବୀ ।]
ଦେ.ବି.ସ୍ତ୍ରୀ (କଚରିଆ) [ସଂ. ଦେବ୍ୟାଃ (=ଦେବୀଙ୍କ)ର ଅପଭ୍ରଂଶ]—ବିଧବାମାନଙ୍କର ନାମ ପରେ ଲେଖାଯିବା ଉପାଧି—Title written after the name of widows.
[ଦ୍ରି—ପୂର୍ବେ ସଂସ୍କୃତ ଭାଷାରେ ପତ୍ର ଲେଖୁଥିଲାବେଳେ 'ଅମୁକା ଦେବ୍ୟାଃ ନିବେଦନମିଦଂ'=ଅମୁକ ଦେବୀଙ୍କର ନିବେଦନ ଏହା ବୋଲି ଲେଖା ଯାଉଥିଲା । କ୍ରମଶଃ ( ଅମୁକଙ୍କ ଶ୍ରୀଚରଣ କମଳେଷୁ, ନ ମଧ୍ୟକଂ ବିଜ୍ଞବରେଷୁ, ନିବେଦନମିତି, ସବିନୟ ନିବେଦନମିଦଂ, ପ୍ରଣତିପୂର୍ବକଃସହ ନିବେଦନମିଦଂ ଆଦି ସଂସ୍କୃତ ବାକ୍ୟ ଓ ପଦାଂଶ ପରି) ଏ ପଦ ମଧ୍ୟ ଓଡ଼ିଆଭାଷାରେ ଲେଖାହେବା ପତ୍ରମାନଙ୍କରେ ଲେଖାଗଲା ଓ କ୍ରମଶଃ ଅନ୍ୟାନ୍ୟ ଦଲିଲ ଆଦିରେ ମଧ୍ୟ ସଧବାମାନଙ୍କର ନାମ 'ଶ୍ରୀମତ୍ୟା ଅମୁକା ଦେବ୍ୟା' ଏବଂ ବିଧବାମାନଙ୍କର ନାମ 'ଶ୍ରୀମତ୍ୟା ଅମୁକା ଦିବ୍ୟା' ବୋଲି ଲେଖାଗଲା । ସାଧାରଣତଃ ବ୍ରାହ୍ମଣୀ ସଧବା ସ୍ତ୍ରୀମାନଙ୍କ ନାମ ପରେ 'ଦେବୀ' ଓ ବିଧବାମାନଙ୍କ ନାମ ପରେ 'ଦିବ୍ୟା' ଲେଖା ଯାଉଥିଲା, ଓ ଶୂଦ୍ରା ସଧବା ସ୍ତ୍ରୀମାନଙ୍କ ନାମ ପରେ 'ଦେଈ' ଓ 'ଦାସୀ' ଲେଖା ଯାଉଥିଲା ଓ ବିଧବା ଶୂଦ୍ରା ସ୍ତ୍ରୀମାନଙ୍କ ନାମ ପରେ 'ଦାସୀ, ଦାସ୍ୟା ଓ ବେଵା' ଲେଖା ଯାଉଥିଲା । ବର୍ତ୍ତମାନ ବିଂଶ ଶତାବ୍ଦୀରେ ସମ୍ବାଦପତ୍ରମାନଙ୍କରେ କି ବ୍ରାହ୍ମଣୀ, କି ଶୂଦ୍ରା, କି ବିଧବା, କି ସଧବା ସବୁ ସ୍ତ୍ରୀମାନଙ୍କ ନାମ ପରେ 'ଦେବୀ' ଉପାଧି ଲେଖା ଯିବାର ଦେଖା ଯାଉଅଛି; ଏବଂ 'ଦିବ୍ୟା' 'ଦେଈ' 'ଦେବ୍ୟା' 'ବେଵା' ଆଦି ଉପାଧି କେବଳ ଦଲିଲ ଆଦିରେ ଚଳୁଅଛି ।]

ଦିବ୍ୟାଂଶୁ—ସଂ. ବି. (ବହୁବ୍ରୀହି; ଦିବ୍ୟ+ଅଂଶୁ)—ସୂର୍ଯ୍ୟ—
Dibyāmśu (ହି. ଶବ୍ଦସାଗର)—The sun

ଦିବ୍ୟାଙ୍ଗନା—ସଂ. ବି. ସ୍ତ୍ରୀ—( ଦିବ୍ୟ+ଅଙ୍ଗନା କର୍ମଧା. )—ସ୍ୱର୍ଗାଙ୍ଗନା,
Dibyāṅganā ଅପ୍ସରା—The maidens of Paradise
(ଦିବ୍ୟାଂଗନା—ଅନ୍ୟରୂପ) (according to the Hindus).

ଦିବ୍ୟାଦିବ୍ୟ—ସଂ. ବି. ପୁଂ (ଦିବ୍ୟ+ଅଦିବ୍ୟ)—ନାଟକାଦିରେ ବର୍ଣ୍ଣିତ
Dibyādibya ତିନି ଶ୍ରେଣୀର ନାୟକ ମଧ୍ୟରୁ ଏକତମ; ଯେଉଁ ନାୟକ
(ଦିବ୍ୟା ଦିବ୍ୟା—ସ୍ତ୍ରୀ) ମନୁଷ୍ୟ ହୋଇ ସୁଦ୍ଧା ଦେବତାମାନଙ୍କ ଗୁଣରେ ଅଲଙ୍କୃତ ହୋଇଥାଏ (ଯଥା—ନଳ; ଅଭିମନ୍ୟୁ; ଅର୍ଜ୍ଜୁନ)—A class of heroes of fiction who are endowed with heavenly qualities though they are human beings.

[ଦ୍ର—ନାୟକଙ୍କର ଅନ୍ୟ ଦୁଇ ଶ୍ରେଣୀ:—ଦିବ୍ୟ, ଯଥା ରାମଚନ୍ଦ୍ର, ଶ୍ରୀକୃଷ୍ଣ; ଅଦିବ୍ୟ, ଯଥା, ଦୁଷ୍ମନ୍ତ ।]

ଦିବ୍ୟାସନ—ସଂ. ବି. (ଦିବ୍ୟ+ଅସନ; କର୍ମଧା)—ଉତ୍ତମ ଆସନ; ସୁନ୍ଦର ଆସନ—A good or excellent seat.
Dibyāsana
ବସାଇଣ ହିରଣ୍ୟଗର୍ଭଙ୍କୁ ଦିବ୍ୟାସନେ ।
କୃଷ୍ଣସିଂହ. ମହାଭାରତ. ଆଦି ।

ଦିବ୍ୟାସ୍ତ୍ର—ସଂ. ବି. (କର୍ମଧା. ଦିବ୍ୟ+ଅସ୍ତ୍ର)—୧ । ବିଶିଷ୍ଟ ବ୍ୟକ୍ତିମାନଙ୍କୁ ଦେବତାମାନଙ୍କ ପ୍ରଦତ୍ତ ଅସ୍ତ୍ର—
Dibyāstra
1. Weapons given by gods to particular persons
୨ । ମନ୍ତ୍ରଦ୍ୱାରା ଚାଳିତ ଅସ୍ତ୍ର—2. A weapon which can be applied or withdrawn with the help of esoteric incantations.

ଦିବ୍ୟୋଦକ—ସଂ. ବି. (ଦିବ୍ୟ+ଉଦକ, କର୍ମଧାରୟ)—୧ । ଆକାଶରୁ ପଡ଼ିତ ଜଳ, ମେଘ ଜଳ—1. Rain-water.
Dibyodaka
୨ । କାକର, ଶିଶିର—2. Dew.

ଦିବ୍ୟୋନ୍ମାଦ—ସଂ. ବି. (ଦିବ୍ୟ+ଉନ୍ମାଦ; କର୍ମଧା.)—ଧର୍ମ ସମ୍ବନ୍ଧୀୟ ବାତୁଳତା—Religious monomania-
Dibyonmāda

ଦିବ୍ୟୋପପାଦ(ଦୁ)କ—ସଂ. ବି. (ଦିବ୍ୟ+ଉପ+ପଦ୍ ଧାତୁ=ଗମନ କରିବା+ଅକ; +ଉକ)—ମାତା-ପିତାଙ୍କ ବିନା ଉତ୍ପନ୍ନ (ଯଥା; ବ୍ରହ୍ମା, ବିଷ୍ଣୁ, ମହେଶ୍ୱର) ଦେବତା—Deity; a god.
Dibyopapāda(du)ka

ଦିବ୍ୟୌଷଧି—ସଂ. ବି. (ଦିବ୍ୟ+ଔଷଧି=କର୍ମଧା.)—୧ । ମନଃଶିଳା—
Dibyaushadhi
1. Red arsenic.
୨ । ଦେବଦତ୍ତ ଔଷଧି—
2. A drug or medicine obtained from divine beings.

ଦିଭାଗ କରିବା—ଦେ. କ୍ରି. (ସଂ. ଦ୍ୱିଭାଗ)—କୌଣସି ବସ୍ତୁକୁ ସମାନ ଦୁଇ ଅଂଶରେ ବିଭକ୍ତ କରିବା—
Dibhāga karibā
To divide; to bisect.
দুভাগকরা
**दोनो भाग करना**

ଦିମ୍‌ଦିମ୍—ଦେ. ଅ. (ଧ୍ୱନ୍ୟନୁକରଣ)—ନୃତ୍ୟ ବାଦ୍ୟାଦିର ଅନୁକରଣ ଶବ୍ଦ ବିଶେଷ—An onomatopoeic sound of dancing and drums.
Dim-dim
ଦିମିଦିମି, ଦ୍ରିମି ଦ୍ରିମି, ଦ୍ରିମ୍‌ଦ୍ରିମ୍ } ଅନ୍ୟରୂପ

ଦିମାକ୍—ବୈଦେ. ବି. (ଆ. ଦିମାଗ୍=ମସ୍ତିଷ୍କ, ବୁଦ୍ଧି, ଗର୍ବ)—
Dimak
୧ । ମସ୍ତିଷ୍କ—1. Brain.
দেমাগ
୨ । ବୁଦ୍ଧି; ବୋଧଶକ୍ତି—
**दिमाग**
2. Intelligence.
୩ । ମନ—3 Mind.
୪ । ମନୋଗତ ଭାବ—4 Mentality.
୬ । ଧୃଷ୍ଟତା; ମଗର୍‌ପଣ—
6. Arrogance; insubordination.
୭ । ଅଭିମାନ—
7. Sullenness due to displeasure.
୮ । ପ୍ରତିଭା—8. Genius.

ଦିମାକ୍‌ଚୋଟ୍ଟା—ଦେ. ବିଣ. (ଆ. ଦିମାଗ୍+ହି. ଚୋଟ୍ଟା)—୧ । ମଗର; ଧୃଷ୍ଟ (ଭୃତ୍ୟ)—1. Insubordinate servant).
Dimak-choṭṭhā
বেমাকচোঠা
**दिमागचोटा**
୨ । ଗର୍ବିତ—2. Arrogant
(ଦିମାକଚୋଠା—ଅନ୍ୟରୂପ) [ଦିମାକ୍ ଚୋଠା (ଚୋଟ୍ଟା) ଇ—ବି ]

ଦିମାକ୍‌ଦାର—ବୈଦେ ବିଣ. (ଆ. ଦିମାଗ୍+ଫା. ଦାର୍)—୧ । ଧୃଷ୍ଟ—
Dimak-dār
1 Arrogant; insubordinate.

ଦିମାକି—ବୈଦେ. ବି. (ଆ. ଦିମାଗ୍)—୧ । ପ୍ରତିଭା—
Dimāki
1. Genius.
দেমাগ্
୨ । ବୁଦ୍ଧିବୃତ୍ତି—2. Intellect; brain.
**दिमागी**
୩ । ମନର ଭାବ—3 Mental condition, mentality.
୪ । ଦର୍ପ; ଗର୍ବ; ଅହଂକାର—
4 Pride; arrogance.
୫ । ଧୃଷ୍ଟତା—5 Haughtiness; insubordination.
୬ । ଅଭିମାନ—6. Moroseness; sullenness.
ବିଣ.—ଦିମାକିଆ (ଦେଖ)—Dimākiā (See)
[ଦ୍ର—ଓଡ଼ିଆରେ ଦିମାକ୍—ମନ୍ଦ ଅର୍ଥରେ ବ୍ୟବହୃତ ହୁଏ]

ଦିମାକିଆ—ବୈଦେ. ବିଣ (ଫା ଦିମାଗୀ)—୧ । ଅହଂକାରୀ; ଗର୍ବୀ—
Dimākiā
1. Proud; haughty; arrogant.
দেমাকী, দেমাগী
୨ । ଅଭିମାନୀ—2. Sullen.
**दिमागी; दिमाकदार; दिमागदार**
୩ । ଯେଉଁ ଲୋକର ମନୋଭାବ ଅନ୍ୟ ଲୋକେ ସହଜରେ ବୁଝି ପାରନ୍ତି ନାହିଁ—3. (a person) Whose mentality or wishes are hard to understand.
୪ । ଜିଗରିଆ; ଜିଦିବାଜ୍—4. Headstrong.

ଦିମୁଣ୍ଡିଆ—ଦେ. ବିଣ. (ସଂ. ଦ୍ୱିମୁଣ୍ଡ)—ଦୋମୁଣ୍ଡିଆ; ଯେ ଉଭୟ ପକ୍ଷଙ୍କ ସଙ୍ଗେ ମମତା ରଖେ—One who espouses or is in league with both sides.
Dimundiā
দুমুখো; **दोमुहाँ**
ବି—ଏକ ପ୍ରକାର ସାପ—A kind of serpent; Amphisbaena.
[ଦ୍ର—ଏହା ଦେଖିବାକୁ ଜଅ ନାଡ଼ ପରି ଫିକା ନାଲି, ଏହାର ଆଖି ନ ଥାଏ, ଲମ୍ବରେ ୧ ଫୁଟ ପର୍ଯ୍ୟନ୍ତ ବଢ଼େ । ପ୍ରକୃତରେ ଏହାର ଗୋଟିଏ ମୁହଁ, କିନ୍ତୁ ଲାଙ୍ଗୁଡ଼ ମୁହଁ ପରି ମୋଟ ଥିବାରୁ ଲାଙ୍ଗୁଡ଼ ମୁହଁ ପରି ଦେଖାଯାଏ ଓ ଲୋକେ ଭ୍ରମରେ ଏହାର ଦୁଇ ମୁଣ୍ଡ ଥିବାର କହନ୍ତି]

ଦିମୁହାଁ—ଦେ. ବିଣ—ଦୋମୁହାଁ (ଦେଖ)
Dimuhāñ
Domuhāñ (See).
କରିବ ଝିଙ୍କ ପରି ଦିମୁହାଁ କବର । କୃଷ୍ଣସିଂହ. ମହାଭାରତ. ଆଦି ।

ଦିର୍‌ଖା—ପ୍ରାଦେ (ସମ୍ବଲପୁର) (ସଂ. ପାପରକ୍ଷା)—କାନ୍ଥକୁଣ୍ଡ; ଥାକ—
Dir-khā
A niche in the wall.

**ଦିର୍‌ହ(ହା)ମ୍**—ବୈଦେ. ବି ( ଫା. ଓ ତୁର୍କୀ. ଦର୍‌ହମ୍ )—
Dir-ha(hā)m ୧ । ମିଶରଦେଶପ୍ରଚଳିତ ରୌପ୍ୟମୁଦ୍ରାବିଶେଷ—
दरहाम A silver coin current in Egypt;
**दिरम, दिरहम** Dirham.
୨ । ମିଶରଦେଶପ୍ରଚଳିତ ଓଜନବିଶେଷ, ପ୍ରାୟ ୩୪ ମସା—
2. A standard weight current in Egypt.

**ଦିରିବ**—ଗ୍ରା. ବିଣ (ସଂ. ଦିବ୍ୟ)—ଦିବ୍ୟ; ସୁନ୍ଦର; ଉତ୍କୃଷ୍ଟ—
Diriba Good; excellent; fine.
दिव्वी **उमदा** ବି—ଦିବ୍ୟସିଂହଙ୍କର ଡାକନାମ—
(ଦିବ୍—ଅନ୍ୟରୂପ) A name for calling Dibyasimha

**ଦିରିବ ସୁନ୍ଦର**—ଗ୍ରା. ବିଣ (ସଂ. ଦିବ୍ୟ ଓ ସୁନ୍ଦର)—ଦିବ୍ୟ ସୁନ୍ଦର (ଦେଖ)
Diriba sandara Dibya sundara(See).
(ଦିବ୍‌ସୁନ୍ଦର—ଅନ୍ୟରୂପ)
दिव्यसुन्दर **उमदा**

**ଦିଲ୍**—ବୈଦେ. ବି (ଫା. ଦିଲ୍)—୧ । ଅନ୍ତଃକରଣ; ଛାତି—
Dil 1. Heart.
ଦିଲି, ଦିଲ୍ଲି } ଅନ୍ୟରୂପ— ୨ । ମନ—2. Mind.
୩ । ସାହସ—3. Courage.
**दिल** दिल ୪ । ସ୍ମରଣଶକ୍ତି—4. Power of remembering things; recollection; memory.
୫ । ଇଚ୍ଛା—5. Desire; wish.

**ଦିଲ୍ ଖୁସ୍**—ବୈଦେ. ବି (ଫା. ଦିଲ୍+ଖୁସ୍)—୧ । ମନର ପ୍ରଫୁଲ୍ଲତା—
Dil khus 1. Light-heartedness; gaity.
(ଦିଲ୍‌ଖୋସ୍—ଅନ୍ୟରୂପ) ୨ । ଆନନ୍ଦ— 2. Gladness.
दिलखोस **दिलखुस**

**ଦିଲ୍‌ଗୀ**—ଦେ. ବି—(ଫା, ଦିଲ୍+ସଂ. ଲଗ୍ନ; ହିନ୍ଦୀରୁ ଅନୁକୃତ)—
Dil-gi ୧ । ମନ ଲଗାଇବା; ମନୋଯୋଗ—1. Attention.
दिल्लिगी **दिलगी** ୨ । ମଜ୍ଜା—2. Amusement; merriment.
(ଦିଲଗୀ, ଦିଲ୍ଲିଗୀ—ଅନ୍ୟରୂପ)
୩ । ଥଟ୍ଟା ତାମସା; ପରିହାସ—3. Fun.

**ଦିଲ୍‌ଗୀବାଜ୍**—ଦେ. ବିଣ. (ହି. ଦିଲ୍ଲଗୀ+ଫା. ପ୍ରତ୍ୟୟ. ବାଜ୍)—
Dil-gi bāj ୧ । ମଜ୍ଜଳିଆ; ଆମୋଦପ୍ରିୟ—1. Fond of fun and amusement.
दिल्लिगीबाज;**दिलगीबाज**
୨ । ଥଟ୍ଟାଳିଆ—2. Jestive.

**ଦିଲ୍‌ଗିର୍**—ବୈଦେ. ବିଣ (ଫା. ଦିଲ୍‌ଗିର୍=ଶୋକାକୁଳ; ଦୁଃଖିତ; ତୁଳ. ଗୁଜୁରାଟ. ଦିଲ୍‌ଗିର୍)—୧ । ସନ୍ଦେହଯୁକ୍ତ (ମନ).
Dil-gil
(ଦିଲଗିଲ—ଅନ୍ୟରୂପ) 1. Dubious; doubtful.
दिलगिल ୨ । ବ୍ୟସ୍ତ; ବିଚଳିତ; ଉଦ୍‌ଭ୍ରାନ୍ତ ( ମନ )—
**दिलगीर** 2. Anxious; confused.
୩ । ଅସ୍ଥିର (ମନ)—3. Restless (mind).
୪ । ଶୋକାକୁଳିତ—5. Grieved; sorrowful.
ବି ୧ । ମନୋଦୁଃଖ—1. Sorrow; grief.
୨ । ସନ୍ଦେହ—2. Doubt; suspicion
୩ । ମାନସିକ ଅସ୍ଥିରତା; ଉଦ୍‌ବେଗ—3. Mental restlessness; anxiety.

**ଦିଲ୍‌ଗିଲିଆ**—ବୈଦେ. ବିଣ—ଦିଲ୍‌ଗିଲ୍ (ଦେଖ)—Dil-gil (See).
Dil-giliā

**ଦିଲ୍‌ଦାର୍**—ବୈଦେ. ବିଣ (ଫା. ଦିଲଦାର୍; ଦରିଆ ଦିଲ୍)—
Dil-dār ୧ । ପ୍ରଶସ୍ତମନା; ଉଚ୍ଚମନା; ମହାନୁଭବ; ଉଦାର—
दिलदार 1. Magnanimous: liberal-minded.
**दिलदार; दिलदरिया** ୨ । ମନୁଆ—2. Following one's
[ଦିଲ୍ (ଲ)ଦାସ—ବି] bent of mind; having one's ways
ଦିଲଦାରିଆ, ଦିଲଦାର୍; ଦିଲଦାରିଆ } ଅନ୍ୟରୂପ
୩ । ମୁକ୍ତହସ୍ତ; ଖୁବ୍ ଦାନଶୀଳ—3. Liberal; bounteous.
୪ । ରସିକ—4. Witty; humorous; funny.
୫ । ପ୍ରେମୀ—5 Loving.
୬ । ମଜ୍ଜିଆ—6. Fond of amusements

**ଦିଲାସା**—ଦେ.ବି(ହିନ୍ଦୀରୁ ଅନୁକୃତ)—୧ । ସାନ୍ତ୍ୱନା;ପ୍ରବୋଧ;ଆଶ୍ୱାସନା—
Dilāsā 1. Consolation; comfort.
୨ । ଆଶା—2 Hope.
୩ । ଦେବା ଦେବା ବୋଲି ଭଣ୍ଡିବା; ଦମ୍ ଦିଲାସା—
3. Putting off on promises of giving something in future.

**ଦିଲୀପ**—ସଂ.ବି(ନାମ)—୧ । ସୂର୍ଯ୍ୟବଂଶୀୟ ଜଣେକ ରାଜା; ରଘୁଙ୍କ ପିତା—
Dilipa 1. Name of a king belonging to the solar dynasty of ancient India; father of king Raghu.
[ଦ୍ର—ଏ ଇକ୍ଷ୍ୱାକୁ ରାଜାଙ୍କ ବଂଶ ବା ସୂର୍ଯ୍ୟବଂଶରେ ଜନ୍ମିଥିଲେ । ବାଲ୍ମୀକି ଓ ହରିବଂଶଙ୍କ ମତରେ ଏ ରାଜା ସଗରଙ୍କ ପଣନାତି (ପ୍ରପୌତ୍ର), ଭଗୀରଥଙ୍କ ପିତା ଓ ରଘୁଙ୍କର ପଣଗୋସେଇଁବାପ (ପ୍ରପିତାମହ) ଥିଲେ । କାଳିଦାସଙ୍କ କୃତ ରଘୁବଂଶ ଅନୁସାରେ ଏ ପିତା ଥିଲେ ।]
୨ । (ନାମ) ଚନ୍ଦ୍ରବଂଶୀ ରାଜା କୁରୁଙ୍କ ବଂଶଧର ଜଣେ ରାଜା (ହିନ୍ଦ. ଶବ୍ଦସାଗର)—2. Name of a king of the lunar dynasty of ancient India.

**ଦିଲୀର**—ସଂ. ବି—ଛତୁ (ହି. ଶବ୍ଦସାଗର)—Mushroom.
Dilira

**ଦିଲ୍ଲୀ**—ସଂ. ବି. ସ୍ତ୍ରୀ (ସଂ. ଦେହଲୀ)—ଦିଲ୍ଲୀ ନଗରୀ; ଯୁଧିଷ୍ଠିରଙ୍କ ରାଜଧାନୀ,
Dilli ଇନ୍ଦ୍ରପ୍ରସ୍ଥ; ହସ୍ତିନାପୁର; ମୋଗଲ ସମ୍ରାଟଙ୍କ ରାଜଧାନୀ, ବର୍ତ୍ତମାନ ବ୍ରିଟିଶ ଭାରତର ରାଜଧାନୀ; ଡିଲ୍ଲି—Delhi, the capital of India under Hindu, Moghal and British Emperors.
[ଦ୍ର—ମୋଗଲରାଜାଙ୍କ ସମୟରେ ଦିଲ୍ଲୀ ନଗରୀ ବିଶେଷ ସମୃଦ୍ଧିଶାଳୀ ଥିବାର ପ୍ରମାଣ ମିଳେ । ଏଥିପାଇଁ କଥା ଅଛି ଯେ 'ପୁରେଷୁ ମଲ୍ଲୀ ନଗରେଷୁ ଦିଲ୍ଲୀ' ।
ତୁଳ ସଂ. ଦେହଲୀ=ଦ୍ୱାର; ଏହା ଭାରତ ସାମ୍ରାଜ୍ୟର ଦେହଲୀ ବା ଦ୍ୱାର ସ୍ୱରୂପ ଥିଲା । ଏହା ଅଧିକାର କଲେ ଭାରତ ଅଧିକାର କରିବା ନିଶ୍ଚିତ ହେଉଥିଲା ବୋଲି ସମ୍ଭବତଃ ଏ ନାମ ହୋଇଅଛି ।]

[ଏହା ଯମୁନା ନଦୀ କୂଳରେ ଅବସ୍ଥିତ । ଇତିହାସରୁ ପ୍ରମାଣ ମିଳେ ଯେ ଆଧୁନିକ ଦଲ୍ଲୀ ନଗରୀର ୧୦।୧୨ ମାଇଲ ପରିସର ମଧ୍ୟରେ ଥିବା ଅଞ୍ଚଳରେ ଅନେକ ଥର ଏ ନଗରୀ ବସିଥିଲା ଓ ଭାଙ୍ଗି ଯାଇଥିଲା । ଇନ୍ଦ୍ରପ୍ରସ୍ଥର ମୟୂରବଂଶୀ ରାଜା ଦିଲୁ ଏ ନଗର ବସାଇଥିବାରୁ ଏ ନାମ ହୋଇଥିବାର କେହି କେହି କହନ୍ତି । ଏହା ମଧ୍ୟ ପ୍ରବାଦ ଅଛି ଯେ ପୃଥ୍ୱୀରାଜଙ୍କ ପିତାମହ ଅନଙ୍ଗପାଳ ଏଠାରେ ରାଜଧାନୀ କରିବାର ସଙ୍କଳ୍ପ କରିବାରୁ ଏହାଙ୍କ ପୁରୋହିତ ଭିତ୍ତି ପକାଇବା ପାଇଁ ଗୋଟିଏ ସ୍ଥାନ ସ୍ଥିର କରି ଗୋଟିଏ ଲୁହା କିଲା ପୋତିଦେଲେ ଓ ରାଜାଙ୍କୁ କହିଲେ ଯେ ଏ କିଲା ଶେଷ ନାଗଙ୍କ ମସ୍ତକ ଛୁଇଁଛି, ଅତଏବ ଆପଣଙ୍କ ରାଜବଂଶ ଚିରସ୍ଥାୟୀ ହେବ । ରାଜା ଏ କଥାରେ ବିଶ୍ୱାସ ନ କରି ସେ କିଲାକୁ ଉପାଡ଼ି ଦେବାରୁ ସେ ସ୍ଥାନରୁ ଭୂଗର୍ଭରୁ ରକ୍ତଧାର ବହିବାର ଦେଖାଗଲା । ରାଜା ପୁଣି ଉକ୍ତ କିଲାକୁ ପୋତାଇଲେ, କିନ୍ତୁ ତାହା ଠିକ ହୋଇ ନ ବସି 'ଢିଲ୍ଲ' ହେଲା । ଏହି କାରଣରୁ ଏ ସ୍ଥାନର ନାମ 'ଢିଲ୍ଲି' ହେଲା । ଏହା ହିନ୍ଦୁ ରାଜା ଅନଙ୍ଗପାଳଙ୍କ ରାଜଧାନୀ ଥିଲା ଓ ତାଙ୍କ ଦ୍ୱାରା ଏଠାରେ ବସା ଯାଇଥିବା ସ୍ତମ୍ଭ ଉପରେ ଶିଳାଲେଖ ଅଛି । ଖ୍ରୀଷ୍ଟାବ୍ଦ ୧୧୯୩ ରେ ମାହାମୁଦ୍ ଘୋରି ଏ ନଗର ହିନ୍ଦୁ ରାଜାଙ୍କ ଠାରୁ ଅଧିକାର କରିବା ପରେ ଏ ମୁସଲମାନଙ୍କ ରାଜଧାନୀ ହେଲା । ୧୩୯୮ ସାଲରେ ତୈମୁର ଏହାକୁ ଆକ୍ରମଣ କରି ଧ୍ୱଂସ କଲେ । ୧୫୨୬ରେ ବାବର ଏହା ଅଧିକାର କରିବା ପରେ ଏହା ମୋଗଲ ରାଜଧାନୀ ହେଲା । ୧୮୦୩ରେ ଏହା ଇଂରାଜଙ୍କ ହସ୍ତଗତ ହେଲା ଓ ୧୯୧୨ ସାଲଠାରୁ ଏହା ବ୍ରିଟିଶ୍ ଭାରତର ରାଜଧାନୀ ହୋଇଅଛି । ହି. ଶବ୍ଦସାଗର ।]

ଦଲ୍ଲୀକା ଲଡୁ(ଡ୍ଡୁ)—ଦେ. ବି ( ହି )—ଦେଖିବାକୁ ସୁନ୍ଦର, କିନ୍ତୁ ବସ୍ତୁତଃ କଦର୍ଯ୍ୟ ପଦାର୍ଥ; ନାମ ବଡ଼ା ଦର୍ଶନ ଥୋଡ଼ା ବସ୍ତୁ—Any thing of high repute but of little worth; any fine-looking but worthless thing.
Dillikālardu(ddu)
दिल्लीकालाड़ू
दिल्लिकालड्डु
(ଦଲ୍ଲୀର ଲଡୁ—ଅନ୍ୟରୂପ)

[ଦ୍ର—ହିନ୍ଦୀରେ ପ୍ରବାଦ ଅଛି ଯେ 'ଦିଲ୍ଲୀକାଲଡ୍ଡୁ ଯୋ ଖାୟା ଓ ପସ୍ତାୟା, ଯୋ ନେଇ ଖାୟା ଓଇ ବି ପସ୍ତାୟା' ଅର୍ଥାତ୍ ଦଲ୍ଲୀର ଲଡୁ ଯେ ଖାଇଛି ସେ ଅନୁତାପ କରୁଛି, ଯେ ନ ଖାଇଛି ସେ ମଧ୍ୟ ଅନୁତାପ କରୁଛି । ଦଲ୍ଲୀର ନାମ ଶୁଣି ଦଲ୍ଲୀର ଲଡୁ ଅତି ଉପାଦେୟ ବସ୍ତୁ ହୋଇଥିବ ବୋଲି ଅନୁମାନକରି ତାହା ନ ଖାଇଥିବା ବ୍ୟକ୍ତି ଖାଇବାପାଇଁ ହାଇଁପାଇଁ ହେଉଥାଏ; ପୁଣି ପ୍ରକୃତରେ ତାହା ସୁଖାଦ୍ୟ ହୋଇ ନ ଥିବାରୁ ଖାଇବା ଲୋକ ଅନୁଭବରୁ ବୁଝିପାରି ଦୁଃଖିତ ହୁଏ । ଏଥିପାଇଁ ଯେଉଁ କାଳ୍ପନିକ ବସ୍ତୁର ଆଶାରେ ଲୋକେ ଝୁରିମରନ୍ତି, ତାହା କିନ୍ତୁ ଫଳତଃ ସେପରି କିଛି ଉପାଦେୟ ବସ୍ତୁ ନୁହେଁ, ତହିଁପ୍ରତି 'ଦଲ୍ଲୀକାଲଡ୍ଡୁ' ଉପମା ପ୍ରୟୋଗ କରାଯାଏ ।]

ଦଲ୍ଲୀଶ୍ୱର—ସଂ. ବି ( ଦଲ୍ଲୀ+ଈଶ୍ୱର; ୬ଷ୍ଠୀ ତତ୍ )—ଦଲ୍ଲୀର ସମ୍ରାଟ, ମୋଗଲ୍ ସମ୍ରାଟ—The Moghal Emperor, having his capital at Delhi.
Dilliśwara

ଦୱାନ୍—ଦେ. ବି—ଦେୱାନ୍ ( ଦେଖ )
Diwān Dewān ( See )

ଦୱାଲ୍ ଇତ୍ୟାଦି—ଦିବାଲ୍ ଇତ୍ୟାଦି (ଦେଖ)—
Diwāl (etc) Dibāl etc ( See)

ଦୱାଲି—ଦିବାଲି ( ଦେଖ )
Diwāli Dibāli ( See )

ଦୱାଲିଆ—ଦିବାଲିଆ ( ଦେଖ )
Dewālia Dibālia ( See )

ଦଶ୍(ଧାତୁ)—ସଂ—୧ । ଦାନ କରିବା—
Diś (root) 1. To give.
୨ । କହିବା—2. To speak
୩ । ଆଜ୍ଞା କରିବା—3. To command; to order.
୪ । ଦେଖାଇବା—4. To show.

ଦଶ୍—ସଂ. ବି (ଶବ୍ଦ)—[ଦିଶ୍ ଧାତୁ=(ଅବକାଶ) ଦାନ କରିବା+କର୍ମ. କ୍ୱିପ୍=ଦିଶ୍; ଏଥିର ୧ମା. ୧ବ. ଦିକ୍]—ଦିକ୍ (ଦେଖ)
Diś Dik ( See )

ଦଶ—ଦେ. ବି (ସଂ. ଦିଶ୍ ଶବ୍ଦ)—୧ । ଦିଗ—
Diśa 1. Point of the compass.
दिग ସେ ବେନି ଅପୂର୍ବଙ୍କ ଦର୍ପେ,
दिशा ଚଳିଭୁବନ ଦିଶ କମ୍ପେ । ଜଗନ୍ନାଥ ଭାଗବତ ।
୨ । ଦିଶା; ଗୀତର ବୃତ୍ତି; ଗୀତ ବୋଲିବାର ରାଗ—
2. The tune of a song.

ଦଶହରା—ଦେ. ବିଣ ( ସଂ. ଦିଶା+ହୃ ଧାତୁ )—୧ । କିଂକର୍ତ୍ତବ୍ୟବିମୂଢ଼; ବୁଦ୍ଧିଭ୍ରଷ୍ଟ—1. Perplexed; confounded bewildered.;
Diśaharā
ଦଶହାରି } ଅନ୍ୟରୂପ
ଦଶାହାରି }
दिशाहारा
घबड़ा
୨ । ଦିଗ୍‌ଭ୍ରାନ୍ତ; ଯେ ଦିଗ ବାରିପାରେ ନାହିଁ—2. At a loss to distinguish the directions or points of the compass.

ଦଶା—ସଂ. ବି. ସ୍ତ୍ରୀ [ଦିଶ୍ ଧାତୁ=(ଅବକାଶ) ଦାନ କରିବା+କର୍ମ.ଅ+ଆ]—୧ । ଦିଗ—1. The points of the compass.
Diśā

ଦର୍ଶି ଯାହାର ଅଷ୍ଟ ଦିଶା
ଅଶ୍ୱଶାଳୁମାରେ ଯା ନାଶା । ଜଗନ୍ନାଥ. ଭାଗବତ ।

୨ । ପଦ୍ଧତି; ରୀତି—2. Order.
୩ । ଦନ୍ତକ୍ଷତ ବିଶେଷ—3. Tooth-mark.
୪ । ସନ୍ଧାନ—4. Trace.
ଦେ. ବି—୧ । ଦଶ ୨ (ଦେଖ)—1. Diśa 2 (See)
୨ । ବଡ଼ ଦେଉଳର ପାର୍ଶ୍ୱରେ ଲାଗିଥିବା ଛୋଟ ଦେଉଳ—2. A small temple attached to the side of a big temple.

दिशा ଦେ. ବି (ହିନ୍ଦିରୁ ଅନୁକୃତ)—୧ । ମଳୋତ୍ସର୍ଗ—
दिसा 1. Passing of stools.
୨ । ମଳୋଦ୍‌ବେଗ—2. Call of nature.

ଦଶା(ଶୋ)ଇବା—ଦେ. କ୍ରି (ସଂ. ଦୃଶ ଧାତୁ ଣିଚ ଦର୍ଶି ଧାତୁ—
Diśā(śo)ibā ଦେଖାଇବା—To show; to exhibit.
देखाना ସେ ରଙ୍ଗବଶେ ଯେ ହୋଇଲେ ଅଶୋକ ସୁବକ-ଭ୍ରଇଣ ଦିଶାଇ—
दिखलाना ଉପେନ୍ଦ୍ର ଭଞ୍ଜ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।

ଦ୍ୱି ଶାଖା—ଦେ. ବିଣ (ସଂ. ଦ୍ୱିଶାଖ)—୧। ଦୁଇ ବୃହତ୍ ଶାଖାବିଶିଷ୍ଟ—
Dı sākhā 1 Limited to two branches; having
দুশাখা two main branches.
दोशाखा ୨। ଯାହାର ଦୁଇଟି କନା ବାହାରିଛି—2. Forked.
(ଦ୍ୱିଶାଖିଆ—ଅନ୍ୟରୂପ)

ଦିଶା ଗଜ—ସଂ. ବି (୬ଷ୍ଠୀ ତତ୍, ଦିଶା+ଗଜ)—ଦିଗ୍ଗଜ (ଦେଖ)
Disā gaja Diggaja (See)

ଦିଶା ଦାହ—ସଂ. ବି (୬ଷ୍ଠୀ ତତ୍, ଦିଶା+ଦାହ)—ଦିଗ୍‌ଦାହ (ଦେଖ)
Disā dāha Dig-dāha (See)

ଦିଶା ପାଳ—ସଂ. ବି (୬ଷ୍ଠୀ ତତ୍; ଦିଶା+ପାଳ)—ଦିକପତି (ଦେଖ)
Disā pāla Dik-pati (See)

ଦିଶା ଫେରିବା—ଦେ. କ୍ରି—ଝାଡ଼ା ଫେରିବା—
Disā pheribā To answer the call of nature.
দিশাফিৰা, दिशाफिरना

ଦିଶା ମୁଖ—ସଂ. ବି (ଦିଶା+ମୁଖ; ୬ଷ୍ଠୀ ତତ୍)—ଦିଗମାନଙ୍କର ମୁଖ;
Disā mukha ଚତୁର୍ଦ୍ଦିଗ—All sides

ଗୁରୁ ତନ୍ତ୍ରୋଦିଷ୍ଟ ମଣ୍ଡଳ ପାଶେ
କହି ଜାଳିବ ସେବେ ଦିଶାମୁଖେ। କବିସୂର୍ଯ୍ୟ କବିତାକଲ୍ଲୋଳ।

ଦିଶି ଆସିବା—ଦେ. କ୍ରି—ଆଭାସ ଦ୍ୱାରା ଜଣା ପଡ଼ିବା—
Disi āsibā To seem or appear from indications.
দেখাযাওয়া दिखना, दिखना

ଦିଶିବା—ଦେ. କ୍ରି (ସଂ. ଦୃଶ୍ ଧାତୁ; ପ୍ରାକୃତ ଦିସ୍ ଧାତୁ)—
Disibā ୧। ଦେଖାଯିବା; ଦୃଷ୍ଟିଗୋଚର ହେବା—
দেখাযাওয়া 1. To be seen; to be visible; to come to
दिखना view; to appear.
(ଦିଶାଇବା, ଦେଖାଇବା—ଣିଜନ୍ତ) ମନୁଷ୍ୟ ପର ଦିଶୁନାହିଁ ତ ଅଦ୍ଭୁତ।
କୃଷ୍ଣସିଂହ. ମହାଭାରତ ବନ।
୨। ବୋଧହେବା; ଜଣାପଡ଼ିବା—2. To seem; to look
to be felt; to be known.
କହୁଲେହେଁ ଅନ୍ୟର ସଙ୍ଗ ତ ନ ଦିଶିଲ ରେ।
କବିସୂର୍ଯ୍ୟ. କଳୋଲତର୍ଙ୍ଗ, ଜ ଟୀକ।
୩। ଜଣାଯିବା; (ମନରେ) ଉଦୟ ହେବା—
3. To be thought; to appear (to one's
mind); to strike (one's-mind).
ତେବେ ତରୁଣ କେଶରୀ ବୋଲେ କୁରଙ୍ଗୀ କଣୋସ ଦିଶଇ କ ବଞ୍ଚିବା ଉପାୟ।
କବିସୂର୍ଯ୍ୟ. ସଙ୍ଗୀତକଲ୍ପଲତା।
୪। ପୂର୍ବରୁ ଆଭାସ ଦ୍ୱାରା ଜଣାପଡ଼ିବା—
4. To be known beforehand from
indications.
୫। ପ୍ରକାଶିତ ହେବା—
5. To be exhibited; to be manifest.
ଅଭିଷେକକ ଚାହଁଲେ ଯଶ ଚିକା ଦିଶିବ।
ଅଭିମନ୍ୟୁ ସାମନ୍ତସିଂହାର. ବିଦଗ୍ଧଚିନ୍ତାମଣି।
୬। ସୂଚିତ ହେବା—6. To be indicated.
ବଗଳିତ ସ୍ୱଚ୍ଛେ ପ୍ରସ୍ରବ ବରଷେ
ନଳ ଭଞ୍ଜଶ୍ରୀଙ୍କର ନୟନେ ଦିଶେ—ପ୍ରାଚୀ. ଉପବାରଧ।

ଦିଶି ଯିବା—ଦେ. କ୍ରି (ସଂ ଦୃଶ୍ ଧାତୁ)—୧। ହଠାତ୍ ଦେଖାଯିବା—
Disi jibā 1 To be suddenly or unexpectedly
দেখাযাওয়া seen
दिखाई देना ୨। ହଠାତ୍ ବୋଧହେବା; ଜଣାପଡ଼ିଯିବା—
2 To be suddenly felt; to come to
one's mind very suddenly; to strike
one's mind.
୩। କଳ୍ପନାଦ୍ୱାରା ପ୍ରତିଫଳିତ ବା ପ୍ରତିଭାତ ହେବା—
3. To dance before the mind's eye.
(ଯଥା—ଜନ୍ତ ତା ମୁହଁ ମତେ ଦିଶିଯାଉଛି।)

ଦିଶୁ—ଦେ. ବି (ସଂ. ଈଷତ୍)—୧। ସାମାନ୍ୟପରିମାଣ—
Disu 1. A little quantity
কিছু ୨। ଅଳ୍ପ ସଂଖ୍ୟା—
थोड़ासा 2. A few in number.
ବିଣ—୧। ସାମାନ୍ୟପରିମିତ—
1. A little; a little in quantity.
୨। ଅଳ୍ପସଂଖ୍ୟକ—2. A few.
ମାଆଙ୍କ ଗୋଇଲସରେ ସେରେ ଦୁଧ, ଦିଶୁ ଗଇ, ନବାଇ ପାଟଲକଦଳୀ ରଖାଯାଉଥାଏ।
ଫକୀରମୋହନ. ଛମାଣଆଠଗୁଣ୍ଠ।
ଅ—୧। ସାମାନ୍ୟ ପରିମାଣରେ—
1. In a small quantity.
(ଯଥା—ଦିଶୁ ସରୁ ଚୂଡ଼ା, ଦିଶୁ ବସା ଦହି, ଦିଶୁ ଗୁଡ଼,
ଦିଶୁ ପାଟଲ କଦଳୀ ହେଲେ ଏ ବାବୁଙ୍କର ଏକାଦଶୀ ବ୍ରତ ପାଳନ
ହେବ।)
୨। ଈଷତ୍—2. Slightly.
୩। କେତେକ ଅଂଶରେ—
3 In some respects.
ପ୍ରେମଗତ ବ୍ୟାକ କଳାନାଗରକ ଦିଶୁ ପର ଦିଶୁ ଦିଶିଗ।
କବିସୂର୍ଯ୍ୟ. ଚନ୍ଦ୍ରକଳା।

ଦିଷ୍ଟ—ସଂ. ବି (ଦିଶ୍ ଧାତୁ=ଦାନକରିବା, କହିବା+କର୍ମ. ତ)—
Dishta ୧। କାଳ; ସମୟ—1. Time.
୨। ଭାଗ୍ୟ; ଅଦୃଷ୍ଟ—
2. Luck; fortune; destiny.
[ ଦ୍ର—ତୁଳନାକର :—ଇଂ. Destiny ଡେଷ୍ଟିନି। ]
୩। ବୈବସ୍ୱତ ମନୁଙ୍କ ପୁତ୍ର—
3. Name of the son of Baibaswata Manu.
୪। ଉପଦେଶ (ଦ୍ର. ଶବ୍ଦସାଗର)—4. Advice.
୫। ଦାରୁ ହରିଦ୍ରା (ଦ୍ର. ଶବ୍ଦସାଗର) (ଦେଖ)
5. Dāru haridrā (See).
ବିଣ—୧। ଆଦିଷ୍ଟ—1. Ordered.
୨। ପୂର୍ବରୁ ନିରୂପିତ—2. Ordained.
୩। ଉପଦିଷ୍ଟ—3. Instructed; directed.
୪। ସ୍ଥିରୀକୃତ—4. Determined; ascertained.
୫। କଥିତ—5. Spoken.
୬। ଦତ୍ତ—6. Given.

୭ । ପ୍ରଦର୍ଶିତ—7. Shown, pointed; out indicated.
୮ । ଉପରେ ଦିଆ ଯାଇଥିବା; ନ୍ୟସ୍ତ—
8. Allotted; assigned.

ଦିଷ୍ଟାନ୍ତ—ସଂ. ବି. ( ଦିଷ୍ଟ+ଅନ୍ତ; ୬ଷ୍ଠୀ ତତ୍ ) — କାଳାନ୍ତ, ମରଣ, ମୃତ୍ୟୁ—Death.
Dishtānta

ଦିଷ୍ଟି—ସଂ. ବି. ( ଦିଶ୍ ଧାତୁ=ଦେଖାଇବା+ଭାବ. ତି )—
Dishti ୧ । ହର୍ଷ; ଆନନ୍ଦ—1. Happiness; gladness
୨ । କଥନ—2 Speaking
୩ । ( +କର୍ମ ତି ) ଭାଗ୍ୟ—3. Luck.
୪ । ଉପଦେଶ—4 Advice.
୫ । ଉତ୍ସବ—5. Festival.
୬ । ସୁଧ-- 6. Interest
୭ । ପରିମାଣଭେଦ—7. A standard of measure.

ଦିସ(ସେ)ମ୍ବର୍—ବୈଦେ. ବି. ( ଇଂ. ଡିସେମ୍ବର୍ )—ଇଂରାଜୀ ଗଣନାରେ
Disa(se)mbar ବର୍ଷର ଶେଷ ମାସ; ଡିସେମ୍ବର ମାସ—
দিসম্বর दिसंबर The month of December.

ଦି ସରା—ଦେ. ବି—୧ । ଦୁଇ ସରୁ ବା ସୂତା—
Di sarā 1. Two strings.
হুনবী ୨ । ଦୁଇ ସରୁଯୁକ୍ତ ହାର—
दोलड़ा 2. A neklace of two strings.
ଦିସରି, ଦିସୋରି, ଦିସୋରା } ଅନ୍ୟରୂପ ବିଣ—ଦୁଇସରିଆ; ଦୁଇ ସୂତ୍ରଯୁକ୍ତ ( ହାର ଇତ୍ୟାଦି)—Two-stringed ( necklace.

ଦି ସରିଆ—ଦେ. ବିଣ—ଦି ସରିଆ; ଦୁଇ ସୂତ୍ରଯୁକ୍ତ (ହାର ଇତ୍ୟାଦି)—
Disariā Two-stringed ( necklace, gar-and etc ).
হুনবী दोलड़ा
( ଦିସୋରିଆ—ଅନ୍ୟରୂପ )

ଦିସ୍ତା—ବୈଦେ. ବି—୧ । ( ଫା. ଦସ୍ତା ) କାଗଜର ୨୪ ଫର୍ଦ୍ଦର
Distā ସମାହାର—1. Quire (of paper)
দিস্তা ୨ । ୨୪ଟି ଶରର ଗାଡ଼ା—
दस्ता 2. A bundle of 24 arrows
দিস্তা ୩ । ( ଫା ) ହେମାମଦିସ୍ତାର ପୁଆ—
दस्ता 3. The pestle of a mortar
দিস্তা ୪ । (ଫା. ଦସ୍ତା=ସୂତାର ଗୋଛା; Skein of thread-କ୍ଲାନେକ୍ ) ଲୁଗାର ସୂତା ଘୁଞ୍ଚି ଯାଇ ଏକସ୍ଥାନରେ ଗୋଛା ହୋଇ ଜମା ହେବା ଓ ଅନ୍ୟ ସ୍ଥାନ ମେଞ୍ଚା ହୋଇଥିବା ଅବସ୍ଥା—3. The state of the skeins of the thread of a cloth being gathered up at one place and thinned out at another.

୫ବୈଦେ. ବିଣ—ଯେଉଁ ଲୁଗା କଚ୍ଚା ହେବା ଦୋଷରୁ ସୂତାମାନ ସ୍ୱ ସ୍ୱ ସ୍ଥାନରୁ ଘୁଞ୍ଚି ଯାଇ ଏକସ୍ଥାନରେ ଗୋଛା ହୋଇଯାଇଥାଏ—(a cloth) Of which the skeins of thread have moved away from their proper positions and gathered up at one place.

ଦିସ୍ତା ପଡ଼ିବା—ଦେ. କ୍ରି—( କୌଣସି ଲୁଗା ) ଧୁଆ ହେବାବେଳେ
Distā pardibā କଚ୍ଚା ହେବା ଦୋଷରୁ ସୂତାମାନ ସ୍ୱ ସ୍ୱ ସ୍ଥାନରୁ
দিস্তাপড়া दिस्तापड़ना ଘୁଞ୍ଚି ଯାଇ ଏକ ଏକ ସ୍ଥାନରେ ଗୋଛା ବାନ୍ଧିବା ଓ ଏକ ଏକ ସ୍ଥାନ ସରୁସରୁ ହେବା—
ଦିସ୍ତା ପଡ଼ିଯିବା, ଦିସ୍ତା ହେବା } ଅନ୍ୟରୂପ (a cloth) To become thin at one place and thick at another in texture owing to the threads having moved from their proper places and gathered into skeins on account of faulty washing.

[ଦ୍ର—ନୂଆ ଲୁଗାରେ ବୁଣା ହୋଇଥିବା ସୂତାମାନ ବସି ନ ଥାଏ । ତାହାକୁ ପ୍ରଥମେ ଦୁଇ ତିନି ଥର ପଥର ଆଦି ଉପରେ କଚ୍ଚାକଚି କରି ନ ଧୋଇ କେବଳ ସାଧାରଣଭାବରେ ଧୋଇଲେ ସେ ସୂତାମାନ ଯଥାସ୍ଥାନରେ ଦୃଢ଼ହୋଇ ବସି ଯାଏ; କିନ୍ତୁ ସୂତାମାନ ଏପରି ବସିଯାଇ ନ ଥିବା ପୂର୍ବରୁ ଯେବେ ନୂଆ ଲୁଗାକୁ ଖୁବ୍ ଜୋରରେ କଚ୍ଚା କଚ କରାଯାଏ ତେବେ ଲୁଗା ଦିସ୍ତା ପଡ଼ିଯାଏ ।]

ଦିହ୍ (ଧାତୁ)—ସଂ.—୧ । ଲେପନ କରିବା —
Dih (root) 1. To anoint
୨ । ଏକତ୍ର କରିବା—2. To gather; to collect.

ଦିହ—ଗ୍ରା. ବି. (ସଂ. ଦେହ)—୧ । ଦେହ, ଶରୀର—
Diha 1. Body.
গা, গায় ୨ । ସ୍ୱାସ୍ଥ୍ୟ—2. Health.
तन, बदन (ଯଥା—ତା ଦିହ ଭଲ ନାହିଁ ।)
୩ । ମନ; ହୃଦୟ—3. Mind; heart.
(ଯଥା—ଏତେ ଉପଦ୍ରବ ତ ଏ ଦିହ ସହୁଛି ।)
୪ । ଅମଳ; ଜୀବିତ ରହିବା କାଳ—4. Life-time.
(ଯଥା—ଏହିପରି ଘୋର ଦିନ କେତେ କାଳ କଟିବ ମୋ ଦିହକ ବଳିଯିବ ।)

ଦିହ ଇସ୍ କନା (ନି) ହେବା—ଦେ. ବି. ସାମାନ୍ୟ ଅସୁସ୍ଥତା ହେବା—
Diha is kinā (ni) hebā Feeling slightly unwell;
গা টিসটিস করা feeling out of sorts.

ଦିହ ଇସ୍ ପରା ହେବା—ଦେ. ବି.—ହଠାତ୍ ଭୀତ ଚକିତ ହେବା—
Diha is parā hebā Being startled with fear.
जीघबड़ाना

ଦିହକ—ଦେ. ବି.—ଜୀବିତ ରହିବା କାଳ; ଜୀବଦଶା—
Dihaka 1. Lifetime.
আমল ଦେ. ଅ.—ଅମଳରେ, ଜୀବିତକାଳ ମଧ୍ୟରେ—
जानदीग During the lifetime of a person.
(ଦିହକଯାକ, ଦିହକରେ, ଦିହକେ=ଅନ୍ୟରୂପ)

ଦିହ କଅଁଣ ହେବା—ଦେ. ବି.—ଶରୀର ଅସୁସ୍ଥ ବୋଧ ହେବା—
Diha ka-aṅṇa hebā Being ill; feeling of sickness
গা কেমন কেমন করা तबीयत खराब होना

ଦିହକୁ ନେବା—ଦେ. କ୍ରି.—୧ । ଆପଣା ଉପରକୁ ଦାୟିତ୍ୱ ନେବା—
Dihaku nebā 1. To take a responsibility to one's shoulders.

୨ । ଆପଣା ପ୍ରତି କୌଣସି ବ୍ୟକ୍ତି ଲକ୍ଷ କରୁଅଛି ବୋଲି ଅଭିମାନ କରିବା; ମନୋଦୁଃଖ କରିବା—
2. To take a thing to one's heart.
ତୁ ତ ଲୋକ, ତୁ କାହିଁପାଇଁ ଦିହକୁ ନଉ—ଛଗ ।

**ଦିହ ଖରାପ ହେବା**—ଦେ. ବି.—ପୀଡ଼ାଗ୍ରସ୍ତ ହେବା—
Diha kharāpa hebā Becoming ill; feeling unwell.
ଗା ଖବାପହଓୟା
**तबियत बिगड़ना**

**ଦିହ ଘଷିଆ**—ଦେ. ବଣ.—( ସ. ଦେହଘର୍ଷଣ )—୧ । ଯେ ସର୍ବଦା ପ୍ରଭୁର ସହବାସରେ ଥାଏ—1. Very familiar with one's master.
Diha ghasiā
ଗା ଘୋସାଁ
**हिलामिला**
ଦିହଘଷା } ଅନ୍ୟରୂପ
ଦିହଘସରି }
୨ । ଯେଉଁ ପଶୁ ପକ୍ଷୀ ସର୍ବଦା ମନୁଷ୍ୟ ପାଖେ ଚଲ-ଚିତଲ ହେବାରୁ ମନୁଷ୍ୟ ସଙ୍ଗେ ଚଳିବାରୁ ସେମାନଙ୍କ ମନରୁ ଭୟ ବା ସଙ୍କୋଚ ଛାଡ଼ିଯାଇ ଥାଏ—2. ( animals ) Who have become very familiar with men, having cast off their fear of man's company.

**ଦିହ ଛଞ୍ଚିବା**—ଦେ.କ୍ରି—(ସ ଦେହ ସଞ୍ଚୟ)—ଦେହକୁ ବାଧିବା ଭୟରେ କାମ ନ କରିବା—Not to labour for fear of exhaustion.
Diha chhañchibā
(ଦିହ ସଞ୍ଚିବା—ଅନ୍ୟରୂପ)
**जीचुराना**

**ଦିହ ଛାଡ଼ିବା**—ଦେ. କ୍ରି – ମରିବା—To die.
Diha chhāṛibā
जीवछाड़ा; **जी छाड़ना**

**ଦିହ ଜଗିବା**—ଦେ. କ୍ରି—୧ । ଆପଣା ଦେହରେ ଆଘାତ ନ ଲାଗିବା ପ୍ରତି ସାବଧାନ ହେବା—1. To guard one's body from hurt
Diha jagibā
୨ । ସ୍ୱାସ୍ଥ୍ୟରକ୍ଷା ପ୍ରତି ସାବଧାନ ହେବା—
2 To be watchful for preserving sound health.

**ଦିହ ଜଳିବା**—ଦେ. କ୍ରି—୧ । ଉତ୍ତାପ ଅନୁଭବ କରିବା; ପୀଡ଼ା ଅନୁଭବ କରିବା—1. Burning sensation in the body.
Diha jaḷibā
ଗା ଜ୍ଵଲା
**जीउ जलना**
୨ । ( ଲକ୍ଷଣାର୍ଥ ) ରାଗି ଉଠିବା—
2 Getting enraged.
( ଯଥା—ଏ କଥା ଶୁଣି ମୋ ଦିହ ଜଳିଲା । )

**ଦିହ ଝାଳେଇବା**—ଦେ. କ୍ରି— ୧ । ଦେହରୁ ସ୍ୱେଦୋଦ୍ଗମ ହେବା—
Diha jhāḷeibā 1. Perspiration of the body; hyper-hydrosis

**ଦିହ ଝିମ୍ ଝିମ୍ ହେବା**—ଦେ. କ୍ରି—୧ । ଅତ୍ୟନ୍ତ ଦୁର୍ବଳ ହେବୁ ଝୋଲ ମାରିଯିବା—1. A feeling of exhaustion, on account of sheer weakness.
Diha jhim jhim hebā
ଗା ঝিমঝিম করা
**बदन झुनझुनाना**
ଦିହ ଝାଇଁ ଝାଇଁ ହେବା } ଅନ୍ୟରୂପ
ଦିହ ଝାଇଁ ମାରିଯିବା }
୨ । ହାତ ଗୋଡ଼ ଆଦି ଏକ ଅବସ୍ଥାରେ ବହୁକାଳ ଅଚଳ ରହିବା ପରେ ସେହି ଅଙ୍ଗରେ ଅବଶତା ଓ ଝାଇଁ ଝାଇ ଅନୁଭୂତ ହେବା—2. A tingling sensation due to the limbs being put in one position for a long time.

**ଦିହ ଥରିବା**—ଦେ. କ୍ରି—୧ । ଶରୀର ସ୍ପନ୍ଦିତ ହେବା—
Diha tharibā 1 Throbbing of the limbs.
ଗା শিহরিআ উঠা
**जी तरसना**
୨ । ଭୟ ବା ତ୍ରାସ ଯୋଗୁଁ ଶରୀର କମ୍ପିବା—
1. Shaking of the body due to sudden alarm.

**ଦିହ ଦିହକ**—ଦେ. ଅ—୧ । ପୁରୁଷାନୁକ୍ରମେ—
Diha dihaka 1. In descending order of a family.
ଦିହ ଦିହକେ } ଅନ୍ୟରୂପ
ଦିହ ଦିହକୁ }
୨ । ପୁରୁଷଙ୍କ ଅମଳରୁ—2. Since the time of one's fore-fathers.
୩ । କେତେ ଲୋକଙ୍କ ଜୀବନକାଳ ମଧ୍ୟରେ—
3. During the life-time of some persons.

**ଦିହଦୁଖ**—ଦେ. ବି. ( ସ. ଦେହ+ଦୁଃଖ )—ଅସୁସ୍ଥତା—
Diha dukha Illness.
ଗା খাবাপ **तबीयत खराब**
( ଦିହ ଦୁଃଖ—ଅନ୍ୟରୂପ )

**ଦିହ ଦୁଖ ହେବା**—ଦେ କ୍ରି—ଶରୀର ଅସୁସ୍ଥ ହେବା—Getting diseased; getting ill; being attacked with a disease.
Diha dukha hebā
(ଦିହ ଦୁଃଖେଇବା—ଅନ୍ୟରୂପ)

**ଦିହ ଦେବା**—ଦେ. କ୍ରି—୧ । ( ସ୍ତ୍ରୀ ପକ୍ଷରେ ) ଆପଣାର ଅଙ୍ଗକୁ ଉପଭୋଗାର୍ଥ ପୁରୁଷଠାରେ ଅର୍ପଣ କରିବା—
Diha debā
ଗা দেওআ 1. To dedicate one's body to a male ( said of a female ).
**तन दिखाना**
୨ । ଦିହ ଲଗାଇ କାମ କରିବା ( ଦେଖ )
2. Diha lagāi kāma karibā ( See )

**ଦିହ ନ ସହିବା**—ଦେ. କ୍ରି—୧ । ବ୍ୟଥିତ ହେବା; ବ୍ୟାକୁଳ ହେବା; ପ୍ରାଣକୁ ବାଧିବା—1. Feeling compassion.
Diha na sahibā
ଗା नासहा
( ଯଥା—ତା ଦୁଃଖ ଶୁଣି ମୋ ଦିହ ନ ସହିଲା ଚେ ମୁଁ ଧାର ଉଧାର କରି ଆଣି କଛି ତାକୁ ଦେଲି । )
୨ । ସହ୍ୟ ନ ହେବା; ବରଦାସ୍ତ ନ ହେବା—
2. Not enduring; intollerance.
( ଯଥା—ଯେତେ ସେ ଗାଳି ଦେଲା ସେଥିରେ ସେ ଦେହ ନ ସହିଲା ମୁଁ ପଦେ ଉତ୍ତର ଦେବାକୁ ବାଧ ହେଲି । )

**ଦିହପା**—ଦେ. ବି. ( ସହରର ଶବ୍ଦ; ସ. ଦେହ ଓ ପାଦ )—
Dihapā ୧ । ଶରୀରସ୍ଥ ସମସ୍ତ ଅବୟବ; ସର୍ବାଙ୍ଗ—1. All parts of the body; the whole body.
शरीर
**बदन**
( ଯଥା—ଯା' ହ, ତୁଆଡ଼ାର ଦିହ ପା ଖୋଲ ହେଉଥିବ ଟିକଏ ଘଷି ଦେଉ )
ଦିହପାଆ }
ଦିହ ହାତ } ଅନ୍ୟରୂପ
ଦିହ ମୁଣ୍ଡ }
୨ । ସ୍ୱାସ୍ଥ୍ୟ—2. Health.
( ଯଥା—ତୁମ ଦିହପା ଭଲ ଅଛି ତ ? )

ଦିହ ପାଚିଯିବା—ଦେ. ବ—ଶରୀର ଅଡ଼ଶରୁ ପୀଡ଼ାଯୁକ୍ତ ହେବା—
Diha pāchijibā Feeling uneasy of the body.
( ଯଥା—ମାଡ଼ ଖାଇ ମୋ ଦିହ ପାଚିଗଲା । )

ଦିହପାଣି—ପ୍ରାଦେ. ( ଗଡ଼ଜାତ ) ବ—( ରାଜାଙ୍କ ) ସ୍ନାନକ୍ରିୟା—
Dihapāni The act of bathing, bath (of Rājās).
( ଯଥା—ବର୍ତ୍ତମାନ ରାଜାମାନଙ୍କର ଦିହପାଣି ହେଉଛି । )

ଦିହପାଣି ବଢ଼ିବା—ପ୍ରାଦେ. ( ଗଡ଼ଜାତ ) ବ—( ରାଜାଙ୍କ ) ସ୍ନାନକାର୍ଯ୍ୟର
Dihapāni barḍhibā ସମ୍ପାଦନ—The taking of a bath ( by a Rājā ).

ଦିହ ଫାଟ—ଦେ. ବ—ରୋଗବିଶେଷ; ଦିହର ଚମ ଉପରେ ଫାଟିଯିବାରୂପ
Diha phāṭa ରୋଗବିଶେଷ—Chapped skin (a disease).

ଦିହ ବଳ—ଦେ. ବ. ( ସଂ. ଦେହବଳ )—ଶାରୀରିକ ବଳ—
Diha baḷa Bodily strength.
ଗାଯେର ଜୋର

ଦିହବଳୁଆ—ଦେ. ବଣ—ଶାରୀରିକ ବଳରେ ବଳୀୟାନ୍—
Diha baḷuā Possessing great bodily strength.

ଦିହବଳୁଆପଣ—ଦେ. ବ—ଦୈହିକ ବଳପ୍ରୟୋଗ କାର୍ଯ୍ୟକୁଶଳତା ବା
Diha baḷuāpaṇa ବାହାଦୁରି—Credit of applying sheer bodily strength.
ଗା ଜুরী
( ଦିହବଳୁଆପଣିଆଁ—ଅନ୍ୟରୂପ )

ଦିହ ଭାରି ହେବା—ଦେ. ବ—୧ । ଗର୍ଭବତୀ ହେବା—
Diha bhāri hebā 1. Being pregnant.
(ଦିହ ଗରୁ ହେବା—ଅନ୍ୟରୂପ) ୨ । ଦେହର ଓଜନ ବଢ଼ିବା (ରୋଗ ବଶତଃ)—2. Increase of the weight of the body.
୩ । ଦେହର ଅସୁସ୍ଥତା ବୋଧ—3. A feeling of one not doing well.

ଦିହଭେଦ—ଦେ. ବ. ( ସଂ. ଦେହ ଓ ଭେଦ )—
Diha bheda ପ୍ରସବ ପୂର୍ବରୁ ସ୍ତ୍ରୀମାନଙ୍କର ମୂତ୍ରଦ୍ୱାରା ପାଣି ପାଣି ବାହାରିବା—Discharge of watery substance before child-birth

ଦିହ ମିହନ୍ତ—ଦେ. ବ. ( ସଂ. ଦେହ ଓ ପା. ମେହେନତ୍ )—
Diha mihanta ଶାରୀରିକ ପରିଶ୍ରମ—Physical labour

ଦିହ ମିହନ୍ତି—ଦେ. ବଣ—ପରିଶ୍ରମୀ—
Diha mihanti Laborious.
মেহন্তী मेहनती

ଦିହ ମୁଣ୍ଡ—ଦେ. ବ. ( ସହଚର; ସଂ. ଦେହ ଓ ମୁଣ୍ଡ )—
Diha muṇḍa ୧ । ଶରୀର; ସର୍ବାଙ୍ଗ—
1. The whole body, body.
୨ । ସ୍ୱାସ୍ଥ୍ୟ—2. Health.

ଦିହଁରଖା—ଦେ. ବଣ—ହୃଷ୍ଟପୁଷ୍ଟ ଅଥଚ ପରିଶ୍ରମକାତର (ବ୍ୟକ୍ତି)—
Diharakhā Loafing.
ଦିହଦେଖା, ଦିହରଖା, ଦିହସଖା } ଅନ୍ୟରୂପ ବ—ହୃଷ୍ଟପୁଷ୍ଟ ଅଥଚ ପରିଶ୍ରମ କାତର ବ୍ୟକ୍ତି—A loafer.

ଦିହରୁ ଛର୍ଦ୍ଦା(ର୍ଦ୍ଦେ)ଇବା—ଦେ କ୍ରି—ଦେହରୁ ଛଡ଼ାଇବା ( ଦେଖ )
Diharu chhardā(rde)ibā Deharu chhardāibā(See)

ଦିହରେ ଠିକ୍ ବସିବା—ଦେ. କ୍ରି (କୌଣସି ପୋଷାକ ବା ଅଳଙ୍କାର)—
Dihare ṭhik basibā ଶରୀରକୁ ଠିକ୍ ଖାପ ଖାଇବା—
গায়ে ঠিক হয়ে বসা To fit into the body (said of
बदनमें जमना a dress or ornament).

ଦିହରେ ନ ଲାଗିବା—ଦେ. ବ—ଦେହ ହୃଷ୍ଟପୁଷ୍ଟ ନ ହେବା—
Dihare na lāgibā Body not becoming stout and strong.
ଦେ. କ୍ରି—ଶରୀରପୁଷ୍ଟିର ଅନୁକୂଳ ନ ହେବା—
Not to suit one's constitution or health.

ଦିହରେ ମୁଣ୍ଡରେ ପାଇବା—ଦେ କ୍ରି—ଗୋଟା କେତେ ପ୍ରହାର ବା
Dihare muṇḍare pāibā ମାଡ଼ ଖାଇବା—
To get a sound thrashing.

ଦିହରେ ମୁଣ୍ଡରେ ଭୋଗିବା—ଦେ.କ୍ରି—ତତ୍ତ୍ୱଜନିତ ଯନ୍ତ୍ରଣା ଭୋଗ କରିବା.
Dihare muṇḍare bhogibā To be subjected to the attacks of diseases and the pains there of.

ଦିହରେ ମୁଣ୍ଡରେ ହେବା—ଦେ. ବ—ଯୁବତୀର ଉଦ୍ଗତ ଯୌବନ
Dihare muṇḍare hebā ଯୋଗୁଁ ଉନ୍ନତ ହେବା—
State of a girl showing the physical developments of puberty.
ଦେ. କ୍ରି—(ଯୁବତୀ) ସ୍ତନଯୌବନବିଶିଷ୍ଟ ହେବା—
( a youthful girl ) To show physical sign of maturity.

ଦିହରେ ଲାଗିବା—ଦେ. କ୍ରି—୧ । (କୌଣସି ଖାଦ୍ୟ) କୌଣସି ବ୍ୟକ୍ତିର
Dihare lāgibā ଦେହରେ ବଳ ଓ ପୁଷ୍ଟି ଉତ୍ପାଦନ କରିବା;
গায়ে লাগা ପୁଷ୍ଟି ସାଧନ କରିବା—1. (any food) To produce strength and robustness (in a person or animal).
( ଯଥା—ସେ କେତେ ଛଟାଙ୍କିଏ ଘିଅ ଓ ସେରେ ଦୁଧ ଖାଉଛି, ଅଥଚ ଏ ସବୁ ତା ଦିହରେ ଲାଗୁ ନାହିଁ । )
୨ । (କୌଣସି ବ୍ୟକ୍ତିର) ଶରୀରରେ ସଂଲଗ୍ନ ହେବା ବା ବୋଳାଯିବା—2 To touch or to be smeared over one's body.
ଦେ. ବ—ଶରୀରର ମାଂସ ବୃଦ୍ଧି ହେବା; ଦେହ ପୁଷ୍ଟ ହେବା—
গায়ে মাংস লাগা Becoming stout; adding flesh

ଦିହରେ ଯିବା—ଦେ. କ୍ରି—୧ । (କୌଣସି କୌଣସି ବ୍ୟକ୍ତିର ବସ୍ତୁ ବା
Dihare jibā ବିଷୟ) ସ୍ୱାସ୍ଥ୍ୟର ଅନୁକୂଳ ହେବା—
1. Being suited to one's body, with one's constitution; to suit one's health.
( ଯଥା—ଖଟା ମୋ ଦିହରେ ଯାଏ ନାହିଁ । )
୨ । (ଲକ୍ଷଣାର୍ଥ) (କୌଣସି ବିଷୟ) କୌଣସି ବ୍ୟକ୍ତିର ସହ୍ୟ ହେବା—2. (figurative) (any matter) To be bearable to a person.

(ଯଥା—ଆଜି କାଲିର ଶ୍ରୀମାନଙ୍କର ବଜାରବୁଲା ମରହଟ୍ଟୀ-ମାନଙ୍କ ଦିହରେ ଯାଉ ନାହିଁ । ଦିନାକେତେ ଏ ସବୁ ସମାଜରେ ଚଳିଗଲେ ତେଣିକି ଏ ସବୁ ବୁଢ଼ୀମାନଙ୍କ ଦିହରେ ବଳେ ଯିବ ଯେ ।)

ଦିହଲଗା—ଦେ. ବିଣ—୧ । ସର୍ବଦା ପ୍ରଭୁଙ୍କ ଅଙ୍ଗସେବା କରୁଥିବା
Dihalagā (ଭୃତ୍ୟ)—1. Personal (servant) rendering personal service to a master.
୨ । ଦିହରେ ଲାଗି ବା ଜଡ଼ିତ—
2. Stuck or attached to the body.

ଦିହ ଲଗା(ଗେ)ଇ କାମ କରିବା—ଦେ. କ୍ରି—ଶାରୀରିକ ଶ୍ରମସ୍ୱୀକାର
Diha lagā(ge)i kāma karibā ପୂର୍ବକ କାର୍ଯ୍ୟ କରିବା—
ଗା ଦିଏ କାଜକବା To do any work by applying
**तनमनसे काम करना** to it with labour; to work
**जी लगाकर काम करना** laboriously.

ଦିହଶୂଳା—ଦେ ବିଣ—ମାନସିକ କଷ୍ଟଦାୟକ—Painful to
Dihasūla mind.

ଦିହ ସହିବା—ଦେ. କ୍ରି. (କୌଣସି ବିଷୟ କୌଣସି ବ୍ୟକ୍ତିର)—
Diha sahibā ସହ୍ୟ ହେବା—1. Being bearable.
(ଦିହସୁହାଯିବା—ଅନ୍ୟରୂପ) (ଯଥା—ମୋ ଆଗରେ ମୋ ପୁଅକୁ
ଗାୟେ ସହା ମାଡ଼ ଦେଲେ ମୋ ଦିହ ସହିବ ନାହିଁ ।)
୨ । ଅଭ୍ୟାସଦ୍ୱାରା କୌଣସି ବିଷୟ କୌଣସି ବ୍ୟକ୍ତିର ସ୍ୱାସ୍ଥ୍ୟର ଅନୁକୂଳ ହେବା—2. (any thing) Becoming suitable to a person's constitution by habit.

ଦିହସୁହା—ଦେ. ବିଣ. (ସଂ. ଦେହ ଓ ସହ୍ୟ)—ସହଣୀୟ—
Dihasuhā Bearable.
ଗାୟସହା (ଯଥା—ସବୁବେଳେ ଗାଳି ମାଡ଼ ଖାଇ ଖାଇ ଗାଳି ମାଡ଼ ମୋର ଦିହସୁହା ହୋଇଗଲାଣି ।)

ଦିହାଁଯାକ—ଦେ. ସର୍ବ (ସଂ. ଦ୍ୱି)—୧ । ଦୁହେଁଯାକ; ଦୁଇଜଣ, ଉଭୟେ;
Dihāñjāka ଦିହିଁକି ଦିହେଁ—1. Both of them.
ଦିହେଁଯାକ, ଦିହିଁକିଯାକ, ଦିହଙ୍କାଯାକ—ଅନ୍ୟରୂପ) ୨ । ଅନ୍ୟୋନ୍ୟ—
ଦୁଜନା **दोनो** 2. Each other.

ଦିହାନ୍ତ—ଦେ. ବି. (ସଂ. ଦେହାନ୍ତ)—ଜୀବନ କାଳ—
Dihānt Life-time.
(ଯଥା—ଆମ ବାପାଙ୍କ ଦିହାନ୍ତରେ ଘରତୋଳା ଶେଷ ହୋଇ ପାରି ନ ଥିଲା ।)

ଦିହାତି—ପ୍ରାଦେ. ବି—୧ । ଜୀବନକାଳ—
Dihāti Life-time.
ଦେ. ବି—୨ । ଦେହାତି (ଦେଖ)—2. Dehāti (See)
ବିଣ—୧ । ଦିହାତିଆ (ଦେଖ)—1. Dihātiā (See)
ଅ—ଦେହରୁ; ଦେହଦ୍ୱାରା; ଦ୍ୱାରା—By.
(ଯଥା—ଏ ଲେଖାପଢ଼ି କାମ ମୋ ଦିହାତି ହୋଇ ପାରିବ ନାହିଁ ।)

ଦିହାତିଆ—ଦେ. ବିଣ. (ସଂ. ଦ୍ୱି+ହସ୍ତ)—୧ । ଦ୍ୱିହସ୍ତପରିମିତ—
Dihātiā 1. Measuring two cubits.
ଦୁହାତି ୨ । ଦୁଇହାତରେ କରାଯିବା-(କର୍ମ)—
**दुहत्था** 2. Dealt or done with both the hands.

ଦିହଙ୍କ—ଦେ. ସର୍ବ (ଦ୍ୱିବଚନ, ୬ଷ୍ଠୀ)—ଦୁଇ ଜଣଙ୍କର; ଉଭୟଙ୍କର—
Dihiṅka Of both of the two (persons).
(ଦିହଙ୍କା, ଦିହଙ୍କର—ଅନ୍ୟରୂପ)
ଦୁ'ହାର **दोनो**'का

ଦିହଙ୍କି—ଦେ. ସର୍ବ. (ଦ୍ୱିବଚନ; ଦ୍ୱିତୀୟା; ସଂ. ଦ୍ୱି)—
Dihiṅki ଦୁହଙ୍କୁ; ଦୁଇଜଣଙ୍କୁ; ଉଭୟଙ୍କୁ; ଦୁହଙ୍କି—
(ଦିହଙ୍କୁ—ଅନ୍ୟରୂପ) To both the two (persons).
ଦୁହାଁକେ **दोनों**को

ଦିହଙ୍କିଦିହେଁ—ଦେ. ସର୍ବ. (ଦ୍ୱିବଚନ; ସହଚର)—
Dihiṅkidiheñ ୧ । ଦୁହଙ୍କା ଦୁହେଁ; ଦୁଇଜଣ ଯାକ—
ଦିହଙ୍କାଦିହେଁ / ଦିହୁଁଦିହେଁ / ଦୁହଙ୍କୁଦୁହେଁ } ଅନ୍ୟରୂପ 1. Both of them.
୨ । ପରସ୍ପର; ଅନ୍ୟୋନ୍ୟରେ—
2. Each other.
ଦୁହୁଁ **दोनो**

ଦିହୁଡ଼ା—ପ୍ରାଦେ. (ଗଞ୍ଜାମ)—ଦୁହୁଡ଼ି; ମଶାଲ—
Dihurḍā Torch; hand-torch.

ଦିହୁଡ଼ି—ଦେ. ବି. (ସଂ ଦେହଳୀ)—୧ । ସଦର ଦରଜା; ସିଂହଦ୍ୱାର—
Dihurḍi 1. The chief gate or door of a mansion.
ଦେଉଡ଼ୀ ୨ । (ସଂ. ଦୀପଯଷ୍ଟି)—ଦିହୁଡ଼ା, ମଶାଲ—
**दिहुड़ी** 2 Hand-torch; torch.
ଦେଉଟୀ ପୂର୍ବ୍ୟ ଅସ୍ତ ଦେଖିଣ ଦିହୁଡ଼ି ଲଗାଇ ।
**मसाल, दीवट** କୃଷ୍ଣସିଂହ, ମହାଭାରତ ବନ ।

ଦିହୁଡ଼ିଆ—ଦେ. ବି—୧ । (ସଂ. ଦୀପଧାରକ) ଦୁହୁଡ଼ିଆ; ଯେ ମଶାଲ
Dihurḍiā ଧରିଥାଏ, ମଶାଲ ଧରିଥିବା ଲୋକ—
ଦେଉଟିଆ 1. Torch-bearer; the person who carries
**मसालची** a hand-torch.
୨ । (ସଂ. ଦେହଳୀ ରକ୍ଷକ) ସିଂହଦ୍ୱାର ରକ୍ଷକ—
2. The keeper of the main gate.
ଦେ. ବିଣ. (ଗାଳି)—ସର୍ବନାଶକାରୀ; ଯେ ବଂଶନାଶର ହେତୁ ହୁଏ—Causing ruin; bringing about the ruin of the family.
ପ୍ରାଦେ. (ଯାଜପୁର) ବିଣ—ଯେଉଁ ବଳଦର ଶିଙ୍ଘରେ ଧଳା ଚିହ୍ନ ଥାଏ—(a bullock) Having white spot on its horns.

ଦିହେଁ—ଦେ ସର୍ବ (ଦ୍ୱି ବଚନ ପ୍ରଥମା ବିଭକ୍ତି; ସଂ· ଦ୍ୱି)—
Diheñ ଦୁହେଁ; ଦୁଇଜଣଯାକ; ଉଭୟ—Both.
ଦୁହାଁ [ ଦ୍ର—ଦିହେଁ ବା ଦୁହେଁ ଶବ୍ଦର ରୂପ—୧ମା—ଦିହେଁ,
**दोनों दुओ** ଦୁହେଁ । ୨ୟା—ଦିହଙ୍କି, ଦିହଙ୍କୁ, ଦୁହଙ୍କି, ଦୁହଙ୍କୁ । ୩ୟା—ଦିହଙ୍କଦ୍ୱାରା, ଦୁହଙ୍କ ଦ୍ୱାରା । ୪ର୍ଥୀ—(୨ୟା ବିଭକ୍ତି ପରି) । ୫ମୀ—ଦିହଙ୍କଠୁଁ, ଦୁହଙ୍କଠୁଁ, ଦିହଙ୍କଠାରୁ, ଦି(ଦୁ)ହଙ୍କଠଉଁ, ଦୁହଙ୍କଠାରୁ । ୬ଷ୍ଠୀ—ଦି(ଦୁ)ହଙ୍କ (କା; କର) । ୭ମୀ—ଦି(ଦୁ)ହଙ୍କ ଠେଇଁ (ଠାଇଁ; ଠାରେ) ।]

ଦିହେ ଦିହେ ମାରିବା—ଦେ. କ୍ରି—୧ । କୌଣସି ପୀଡ଼ା ବା ରୋଗ
Dihe dihe māribā (ଯଥା—ଜ୍ୱର) ଆକ୍ରମଣ କରିଥିବା କଥା ଦେହରଙ୍ଗିଦ୍ୱାରା ବାହାରେ ପ୍ରକାଶ ନ କରିବା—

1. Not to let others know (by external signs) that one is ill.

୨ । ରୋଗର ଯନ୍ତ୍ରଣା ଅନ୍ୟମାନଙ୍କୁ ଜଣାଇବା ନାହିଁ ... ସହିବା—
2. To bear the pangs of an illness silently.

ଦୀ ( ଧାତୁ )—ପ—କ୍ଷୟ ପାଇବା—
Di (root) To decline; to decay.

ଦୀକ୍ଷ୍ ( ଧାତୁ )—ପ—୧ । ଉପଦେଶ ଦେବା—
Diksh ( root ) 1 To advise.

୨ । ଶିକ୍ଷା ଦେବା—2. To teach

୩ । କୌଣସି ଧର୍ମ ବା ବ୍ରତରେ ଦୀକ୍ଷିତ ହେବାପାଇଁ ସଙ୍କଳ୍ପ କରିବା ବା ପ୍ରସ୍ତୁତ ହେବା—3. To consecrate or prepare one self for initiation into any sacrifice or religious observance (Apte).

୪ । କୌଣସି ସଙ୍କଳ୍ପିତ କର୍ମ ପାଇଁ ଆପଣାକୁ ଉତ୍ସର୍ଗ କରିବା—
4. To dedicate oneself for any object ( Apte ).

୫ । ଦ୍ୱିଜାତୀୟ ବାଳକକୁ ବିଧିପୂର୍ବକ ଯଜ୍ଞୋପବୀତ ଧାରଣ କରାଇବା—5. To invest a boy with the sacred thread ( Apte )

୬ । ଦୀକ୍ଷା ଦେବା; ଶିଷ୍ୟକୁ ମନ୍ତ୍ର ଦେବା—
6. To initiate a disciple into the esoteric formula of a sect.

୭ । କ୍ଷୌର ହେବା; ମସ୍ତକ ମୁଣ୍ଡନ କରିବା—
7. To shave one's head ( Apte ).

୮ । ସଂଯମ ସାଧନ କରିବା—
8. To practise self-restraint ( Apte ).

ଦୀକ୍ଷକ - ସ. ବି. ପୁଂ. ( ଦୀକ୍ଷ୍ ଧାତୁ + କର୍ତ୍ତୃ. ଅକ )—
Dikshaka ୧ । ଦୀକ୍ଷାଦାତା; ଦୀକ୍ଷାଗୁରୁ—1 Spiritual guide; spiritual preceptor

୨ । ଶିକ୍ଷକ—2. Teacher, instructor

ଦୀକ୍ଷଣ—ସ. ବି. ( ଦୀକ୍ଷ ଧାତୁ + ଭାବ. ଅନ )—ଦୀକ୍ଷା ଦେବା କର୍ମ—
Dikshaṇa Initiation; consecration

ଦୀକ୍ଷଣୀୟ—ସ. ବିଣ. ପୁଂ. ( ଦୀକ୍ଷ୍ ଧାତୁ + କର୍ମ. ଅନୀୟ )—
Dikshaṇiya ଦୀକ୍ଷାଦାନର ପାତ୍ର; ଯାହାକୁ ଦୀକ୍ଷାଦାନ କରିବାକୁ
(ଦୀକ୍ଷଣୀୟା—ସ୍ତ୍ରୀ) ହେବ—Deserving initiation into spiritual teaching.

ସ. ବି—ଦୀକ୍ଷା ସାଧନ ହବିଃ, ଦୀକ୍ଷାଦାନବେଳେ ହୋମରେ ବ୍ୟବହୃତ ଘୃତ—Sacrificial ghee.

ଦୀକ୍ଷା—ସ. ବି. (ଦୀକ୍ଷ୍ ଧାତୁ + ଅ, ସ୍ତ୍ରୀ. ଆ)—୧ । ଗୁରୁଙ୍କଠାରୁ ମନ୍ତ୍ର
Dikshā ଗ୍ରହଣ; ମନ୍ତ୍ରୋପଦେଶ—1. Initiation into the esoteric mysteries and formulas of some religious sect

୨ । ଶିକ୍ଷା; ଉପଦେଶ—2. Instruction; training.

୩ । ଅର୍ଚ୍ଚନା—3. Worship.

୪ । ଯଜ୍ଞାଦିରେ ସଂସ୍କାର—4. Consecration; perfection or purity attained by vedic sacrifice.

୫ । ବ୍ରତାଦି କର୍ମ ଅନୁଷ୍ଠାନ—
5. Performance of religious rites.

୬ । ନିୟମ; ସଙ୍କଳ୍ପପୂର୍ବକ ବ୍ରତାଦିରେ ପ୍ରବୃତ୍ତ ହେବା—
6. Commencement of rites after taking a vow engaging in the accomplishment of ceremonies.

୭ । ପ୍ରବର୍ତ୍ତନା—7. Stimulation.

୮ । କୌଣସି କର୍ମ ସାଧନାର୍ଥ ଆତ୍ମୋତ୍ସର୍ଗ—
8. Dedicating one's self to a particular object, self-devotion (Apte).

ଦେ. ବି.—ତତ୍ତ୍ୱ; ରହସ୍ୟ—The secret.

ସୃଷ୍ଟି ସକଳେ ମୋର ଇଚ୍ଛା,
ଭୁ ନାଥ କହ ସୂକ୍ଷ୍ମ ଦୀକ୍ଷା । ଜଗନ୍ନାଥ. ଭାଗବତ ।

ଦୀକ୍ଷାଗୁରୁ—ସ. ବି.—(୬ଷ୍ଠୀ ତତ୍; ଦୀକ୍ଷା + ଗୁରୁ)—୧ । ମନ୍ତ୍ରଦାତା
Dikshāguru ଗୁରୁ; ମନ୍ତ୍ରୋପଦେଷ୍ଟା ଗୁରୁ—1. Spiritual guide or teacher; spiritual preceptor.

୨ । ଯେଉଁ ଧର୍ମଯାଜକ ଅନ୍ୟକୁ କୌଣସି ଧର୍ମରେ ଦୀକ୍ଷିତ କରନ୍ତି—2. Baptist.

ଦୀକ୍ଷା ଗ୍ରହଣ—ସ. ବି. (ଦୀକ୍ଷା + ଗ୍ରହଣ, ୬ଷ୍ଠୀ ତତ୍)—ଗୁରୁଙ୍କଠାରୁ ମନ୍ତ୍ର
Dikshā grahaṇa ଗ୍ରହଣ—Initiation into the sacred mysteries of a religion with the help of the preceptor.

ଦୀକ୍ଷାନ୍ତ—ସ. ବି.—( ଦୀକ୍ଷା = ଯଜ୍ଞ + ଅନ୍ତ = ସମାପନ )—ଅବଭୃଥ;
Dikshānta ସମ୍ଭାବିତ ନ୍ୟୂନତା ପୂରଣ ପାଇଁ ଯେଉଁ ଯଜ୍ଞ କରି ପ୍ରଧାନ ଯଜ୍ଞ ସମାପନ କରାଯାଏ—A supplimentary sacrific done to atone for the defects of the principal sacrifice.

ଦୀକ୍ଷାପତି—ସ. ବି. (୬ଷ୍ଠୀ ତତ୍; ଦୀକ୍ଷା + ପତି; ଯଜ୍ଞର ରକ୍ଷକ)—
Dikshā pati ସୋମ—The Deity soma.

ଦୀକ୍ଷିତ - ସ. ବିଣ. ପୁଂ. (ଦୀକ୍ଷ୍ + କର୍ମ. ତ)—୧ । ଦୀକ୍ଷାପ୍ରାପ୍ତ—
Dikshita 1. Initiated into a religious tenet.

୨ । ଶିକ୍ଷାପ୍ରାପ୍ତ—2. Instructed.

୩ । ଯଜ୍ଞାଦି କର୍ମନିମନ୍ତେ ସଙ୍କଳ୍ପିତ ବା ଉପସ୍ଥିତ—
3. Consecrated with a view to offer vedic sacrifice; prepared for a sacrifice.

୪ । ଧର୍ମଯାଜକଙ୍କ ଦ୍ୱାରା କୌଣସି ଧର୍ମରେ ଦୀକ୍ଷା ପାଇଥିବା—
4 Baptised.

ଦେ. ବି.—ଦୀକ୍ଷିତ (ଦେଖ)—Dikhite (See)

ଦୀକ୍ଷିତା—ସ. ବିଣ. ସ୍ତ୍ରୀ (ଦୀକ୍ଷିତ + ସ୍ତ୍ରୀ. ଆ)—ଦୀକ୍ଷିତର ସ୍ତ୍ରୀଲିଙ୍ଗ—
Dikshitā Feminine of Dikshita.

ସ. ବିଣ. ପୁଂ. (ଦୀକ୍ଷ୍ ଧାତୁ + କର୍ତ୍ତୃ. ତୃ; ୧ମା. ୧ବ.)—ଯେ
(ଦୀକ୍ଷିତ୍ରୀ—ସ୍ତ୍ରୀ) ଦୀକ୍ଷା ଦିଅନ୍ତି—Initiating a desciple.

ସଂ. ବି. ପୁଂ.—ମନ୍ତ୍ରଗୁରୁ—Spiritual preceptor.

**ଦୀକ୍ଷିତ**—ଦେ. ବି. (ସଂ. ଦୀକ୍ଷିତ)—୧। ଯାଜ୍ଞିକ ବ୍ରାହ୍ମଣଙ୍କ ବଂଶୋପାଧି ବିଶେଷ—1. A family title of Brahmans who or whose ancestor have performed vedic sacrifices.
Dīkhita
दीक्षित
দীক্ষিত
(ଦଖିତ—ଅନ୍ୟରୂପ) ୨। ପଣ୍ଡା (ଦେବଳକ) ମାନଙ୍କର ବଂଶୋପାଧି ବିଶେଷ—2. The family title of a sect of Paṇḍā Brāhmaṇas engaged in the service of idols.

**ଦୀଘି**—ଦେ. ବି. (ସଂ. ଦୀର୍ଘିକା)—ବଡ଼ ପୋଖରୀ—A big tank.
Dīghi
(ଦୀର୍ଘିକା—ଅନ୍ୟରୂପ)
दीघी, दीर्घी
দীঘী
କାଳୀୟ ଗୋଳନ୍ଦ ଅନେକ, ଗଙ୍ଗାର ଜଳ ଦୀଘି ପାଖ। ଜଗନ୍ନାଥ. ଭାଗବତ।

**ଦୀଧି** (ଧାତୁ)—ସଂ. ଧାତୁ—ଦୀପ୍ତି ପାଇବା—To dazzle, to glitter; to shine.
Dīdhi (root)

**ଦୀଧିତି**—ସଂ. ବି. (ଦୀଧି ଧାତୁ+ଭାବ. ତି)—୧। ରଶ୍ମି; କିରଣ—1. Ray of bright; beam.
Dīdhiti
୨। ଆଲୋକ—2. Light.
୩। ଉଜ୍ଜ୍ୱଳତା—3. Splendour; lightness.
୪। ଅଙ୍ଗୁଳି (ହି. ଶବ୍ଦସାଗର)—4. Finger.

**ଦୀଧିତିମାନ୍**—ସଂ. ବି. (ଦୀଧିତି+ଅସ୍ତି ଅର୍ଥରେ. ମତୁ; ୧ମା. ୧ବ.)—ମରୀଚିମାଳୀ; ସୂର୍ଯ୍ୟ—The sun.
Dīdhitimān
ସଂ. ବିଣ.—ଦୀପ୍ତିମାନ୍—Dazzling; shining.

**ଦୀନ୍‌ଦାର୍**—ବୈଦେ. ବିଣ. (ଆ. ଦୀନ=ଧର୍ମବିଶ୍ୱାସ)—୧। ଧର୍ମବିଶ୍ୱାସୀ—1. Devout
Din-dār
दीनदार
দীনদার
(ଦୀନ୍‌ଦାରୀ—ବି)

**ଦୀନ**—ସଂ. ବିଣ. ପୁଂ. (ଦୀ ଧାତୁ କ୍ଷୟ ପାଇବା+କର୍ତ୍ତୃ. ତ)—
Dīna ୧। ଦରିଦ୍ର; ଗରିବ; ଅର୍ଥହୀନ—1. Poor; indigent; penniless.
(ଦୀନା—ସ୍ତ୍ରୀ)
(ଦୀନତା, ଦୀନତ୍ୱ—ବି) ୨। ଅଭାବ ଗ୍ରସ୍ତ—2. Needy; destitute.
୩। କାତର Perplexed; afflicted.
ଶ୍ରମେ ଏକକାଳ ଦୀନ ନଦେ ଅଚେତନ କଳକାଣ୍ଠୀକି ଦୁଃଖଭଞ୍ଜନ ଜନ। ଉପେନ୍ଦ୍ର ଭଞ୍ଜ. ପ୍ରେମସୁଧାନିଧି।
୪। ଶୋଚ୍ୟ—4. Pitiable.
୫। ଦୁଃଖିତ; ବ୍ୟଥିତ—5. Sorry, grieved; melancholy
୬। ହୀନ—6. Deficient; wretched; lowly.
୭। କ୍ଷୁବ୍ଧ; ସନ୍ତପ୍ତ; ବ୍ୟାକୁଳ—7. Distressed; agitated.
୮। ତ୍ରସ୍ତ; ଭୀତ—8. Afraid; frightened; timid.
୯। କୃଶ—9. Thin.
୧୦। କ୍ଷୟପ୍ରାପ୍ତ—10. Decayed; fallen into decay.
୧୧। ବିନୀତ; ଅତ୍ୟନ୍ତ ନମ୍ର—11 Very humble.
ବି.—ତଗର ଫୁଲ—A kind of flower; (Tabernaemontana coronaria)
(ଦୀନୁ, ଦୀନେଇ—ଅନ୍ୟରୂପ) ଦେ. ବି.—ଦୀନବନ୍ଧୁର ଆଦରାର୍ଥକ (ଦୀନା, ଦୀନିଆ, ଦୀନୁଆ—ଅନାଦରାର୍ଥ) ଡାକ ନାମ—A name by which Dīnabandhu is called in fondness.

**ଦୀନକୃଷ୍ଣ ଦାସ**—ଦେ. ବି (ନାମ)—୧। ଓଡ଼ିଶାର ଜଣେ ପ୍ରାଚୀନ କବି—1. A classical poet of Orissa.
Dīna krushṇa dāsa

[ଦ୍ର—ଏ କବି ପୁରୀ ସହରବାସୀ ଜଣେ କରଣ ବୈଷ୍ଣବ; ରସକଲ୍ଲୋଳ, ଜଗନ୍ନାଥ ଭାଗବତ, ବାରମାସୀ କୋଇଲି ପ୍ରଭୃତି ୧୪ ଖଣ୍ଡ ପୁସ୍ତକ ଏ ରଚନା କରିଥିଲେ। ସେ ସପ୍ତଦଶ ଶତାବ୍ଦୀର ଜଣେ ପ୍ରତିଭାଶାଳୀ କବି ଥିଲେ।
ଭାରତୀ—ଉତ୍କଳସାହିତ୍ୟ ଇତିହାସ।]

୨। ଉତ୍କଳର ଆଉ ଜଣେ ପ୍ରାଚୀନ ବୈଷ୍ଣବଭକ୍ତ କବି—2. Name of another poet of Orissa.

[ଦ୍ର—ଏହାଙ୍କ ପିତାଙ୍କ ନାମ ମଧୁସୂଦନ। ଏ ଜାତିରେ ରଜପୁତ ବା ରାଜୁ। ନିବାସ, ବାଲେଶ୍ୱର ଜିଲ୍ଲା ସୁବର୍ଣ୍ଣରେଖା ନଦୀ କୂଳସ୍ଥ ଜଳେଶ୍ୱର। ଏହାଙ୍କ ଜୀବନ ଅନେକେତେ ପୁରୀରେ, ଶେଷରେ ବ୍ରାହ୍ମଣୀ କୂଳସ୍ଥ ମଧୁପୁର ନିକଟର ଏକଘରିଆ ଗ୍ରାମରେ ଅତିବାହିତ ହୋଇଥିଲା। ଶେଷ ଜୀବନରେ ପୁଣି ସେ ପୁରୀରେ ରହୁଥିଲେ। ଏହାଙ୍କର ଅନ୍ୟ ନାମ କୃଷ୍ଣ ଦାସ ଥିବା ଅନୁମିତ ହୁଏ। ଏହାଙ୍କ ରଚିତ ଗ୍ରନ୍ଥମାନଙ୍କ ନାମ ଯଥା:—ରସବିନୋଦ, ଗୁଣସାଗର, ଧର୍ମସାଗର, ଅମୃତସାଗର, ତତ୍ତ୍ୱସାଗର, ଭକ୍ତିସାଗର, ମୁକ୍ତିସାଗର, ଜ୍ଞାନସାଗର, ମହିମାସାଗର, ଭାବସମୁଦ୍ର, ନାବକେଳି, ଭୁତକେଳି, ନାମରହସ୍ୟଗୀତା, ଶରୀରଭେଦ ଭଜନ, ସ୍ତ୍ରୀପୁରୁଷଲକ୍ଷଣ, ବୈଦ୍ୟଶାସ୍ତ୍ର, ନାରକାସୁରବଧ, ଜାମ୍ବବତୀ ବିଭା, ଗୀତଗୋବିନ୍ଦ ଅର୍ଥ, କଂସ ବୋଧନ, ଜଗମୋହନ ଛାନ, ଅର୍ତ୍ତିତ୍ରାଣ ଚଉତିଶା, କମଳାକାନ୍ତ ଚଉତିଶା।]

**ଦୀନତା**—ସଂ. ବି (ଦୀନ+ଭାବାର୍ଥେ. ତା)—୧। ଦୈନ୍ୟ; ଦୀନଭାବ; ଦାରିଦ୍ର୍ୟ—1. Poverty; indigence.
Dīnatā
(ଦୀନତ୍ୱ—ଅନ୍ୟରୂପ) ୨। ସନ୍ତାପ; ଦୁଃଖ—2. Affliction; sorrow.

ବାତୁରେ କରୁ କଳନ ବୋଲୁଥାଇ ଏକା ଧନ
ବାଧି ନ ପାରେ ଦୀନତା ବଡ ଉନ୍ମତା ମୁଁ। ଉପେନ୍ଦ୍ର ଭଞ୍ଜ. ବୈଦେହୀଶବିଳାସ।

୩। କାତରତା; ବ୍ୟାକୁଳତା—3 Perturbation; distress
୪। ଅତ୍ୟନ୍ତ ବିନୟ—4. Humility.

**ଦୀନଦୟାଳ**—ଦେ. ବିଣ (ହିନ୍ଦୀରୁ ଅନୁକୃତ) (ସଂ. ଦୀନଦୟାଳୁ)—ଦୁଃଖୀ ଲୋକ ପ୍ରତି ସଦୟ (ଭଗବାନଙ୍କ ବିଶେଷଣ)—Compassionate or kind to the poor (an epithet of God)
Dīnadayāla
दीनदयाल
দীনদয়াল

**ଦୀନଦୟାଳୁ**—ସ. ବିଣ—ଯେ ଦୁଃଖୀ ଲୋକଠାରେ ଦୟା କରନ୍ତି, ଅନାଥର ସହାୟକ (ଈଶ୍ୱରଙ୍କ ବିଶେଷଣ)—Kind to the poor and distressed. (an epithet of God).
Dinadayālu

**ଦୀନଦୁଃଖୀ**—ଦେ. ବିଣ ( ଏକାର୍ଥବୋଧକ ସହଚର ଶବ୍ଦ; ସ. ଦୀନ ଓ ଦୁଃଖୀ)—ଅତି ଦୁଃଖୀ—Very poor; indigent; poverty-stricken.
Dinaduḥkhī

ଦେ. ବି (ବହୁବଚନ)—ଗରିବଗୁରୁବା—The poor.

**ଦୀନନାଥ**—ସ. ବି—( ଦୀନ+ନାଥ; ୬ଷ୍ଠୀ ତତ୍ ) —୧ । ଦୁଃଖୀଜନଙ୍କ ସ୍ୱାମୀ; ଦରିଦ୍ର ପାଳକ (ଈଶ୍ୱରଙ୍କ ପ୍ରତି ପ୍ରଯୁଜ୍ୟ)—1. Protector of the poor; shelter of the indigent (an epithet of God)
Dinanātha

୨ । ଭଗବାନ୍—2. God.

ଦେ. ବି. ପୁଂ—ଲୋକଙ୍କ ନାମ—Name given to males

**ଦୀନବନ୍ଧୁ**—ସ. ବି ଓ ଦେ. ବି—ଦୀନନାଥ ( ଦେଖ ) Dinanātha ( See )
Dinabandhu

**ଦୀନବନ୍ଧୁ ଦାଶ**—ଦେ. ବି (ନାମ)—ଉତ୍କଳର ଜଣେ ପୁରୁଣା କବି—The name of an old Oria poet.
Dinabandhu Dāsa

[ଦ୍ର—ଏ 'ଶବ୍ଦ ସୁରୁପ୍ରଭା' ନାମରେ ଖଣ୍ଡିଏ ପୁସ୍ତକ ଲେଖିଥିଲେ ଓ ଜାତିରେ ବ୍ରାହ୍ମଣ ଥିଲେ ।

ଚାରଣୀ—ଉତ୍କଳ ସାହିତ୍ୟ ଇତିହାସ । ]

**ଦୀନବନ୍ଧୁ ରାୟ**—ଦେ. ବି (ନାମ)—ଜଣେ ଗଡ଼ଜାତର ରାଜା ଓ ପ୍ରାଚୀନ କବି—A feudatory chief who was also a poet
Dinabandhu Rāya

[ଦ୍ର—ଜଣେ ଗଡ଼ଜାତ ରାଜା । 'ସୁଧାବିଳାସ' ନାମରେ ଖଣ୍ଡିଏ ଗ୍ରନ୍ଥ ଏହାଙ୍କଦ୍ୱାରା ରଚିତ ହୋଇଥିଲା । ]

ଚାରଣୀ—ଉତ୍କଳ ସାହିତ୍ୟ ଇତିହାସ । ]

**ଦୀନଭାବାପନ୍ନ**—ସ. ବିଣ. ପୁଂ (ଦୀନ+ଭାବ+ଆପନ୍ନ, ୬ଷ୍ଠୀ ଓ ୭ମୀ ତତ୍;) ଅତ୍ୟନ୍ତ କାତର ବା ସନ୍ତପ୍ତ; ଦୀନତାପ୍ରାପ୍ତ—Very much afflicted or distressed; reduced to a state of utter wretchedness
Dinabhābāpanna

**ଦୀନମନାଃ**—ସ. ବିଣ (ବହୁବ୍ରୀହି; ଦୀନ+ମନସ୍)—ଦୁଃଖିତମନାଃ—Mentally afflicted; melancholy.
Dinamanāḥ

**ଦୀନହୀନ**—ସ. ବିଣ (ଏକାର୍ଥବୋଧକ ସହଚର ଶବ୍ଦ)—ଅତ୍ୟନ୍ତ ଦୀନ—Poverty-stricken; much afflicted; poor and lowly.
Dinahina

**ଦୀନା**—ସ. ବି. ସ୍ତ୍ରୀ—ମୂଷିକା—A she-mouse.
Dinā

ସ. ବି. ସ୍ତ୍ରୀ—ଦୀନର ସ୍ତ୍ରୀଲିଙ୍ଗ; ଦୁଃଖିତା—Feminine of Dina; afflicted.

**ଦୀନାର**—ସ. ବି ( ଗୁଳ. ଗ୍ରୀକ୍ ଡିନାରିୟସ୍ ଅ. ଦୀନାର୍=ଆରବ ଦେଶୀୟ ସ୍ୱର୍ଣ୍ଣମୁଦ୍ରା; ସ. ଦୀନ+ଋ ଧାତୁ=ଯାହା ଦରିଦ୍ରକୁ ଦିଆଯାଏ; ଗମନ କରିବା+କର୍ମ. ଅ)—୧ । ସ୍ୱର୍ଣ୍ଣମୁଦ୍ରା; ମୋହର—1. A gold coin.
Dināra

୨ । ସ୍ୱର୍ଣ୍ଣଭୂଷା—2. Gold ornament

୩ । ପ୍ରାଚୀନ ଭାରତର ସ୍ୱର୍ଣ୍ଣହାର ବା ଗ୍ରୀବାଭୂଷଣବିଶେଷ (ଅମରକୋଷ)—3. A kind of necklace used in ancient times in India.

୪ । କର୍ଷ ବା ୩୨ ରତି ପରିମିତ ସ୍ୱର୍ଣ୍ଣ—4. A weight of 32 ratis.

[ ଦ୍ର—ଦୀନାର ନାମକ ସ୍ୱର୍ଣ୍ଣ ଓ ରୌପ୍ୟ ମୁଦ୍ରା ଇଉରୋପ ଓ ଆସିଆ ଖଣ୍ଡରେ ବିଶେଷଭାବରେ ଚଳୁଥିଲା । ମୁସଲମାନମାନେ ଭାରତକୁ ଆସିବା ପୂର୍ବରୁ ଦୀନାର ନାମକ ସ୍ୱର୍ଣ୍ଣମୁଦ୍ରା ଭାରତରେ ଚଳୁଥିଲା । ହରିବଂଶ, ମହାଭାରତରେ ଏବଂ ଚନ୍ଦ୍ରଗୁପ୍ତଙ୍କ ସମୟର ଶିଳାଲିପିରେ ଦୀନାର - ସ୍ୱର୍ଣ୍ଣମୁଦ୍ରାର ଉଲ୍ଲେଖ ଅଛି । ଏଥିର ଓଜନ ଥିଲା ୩୨ ରତି । ଅମରକୋଷରେ ଦୀନାରର ଓଜନ ଏକ କର୍ଷ ବା ୨ ତୋଲା, ଆକବରଙ୍କ ସମୟରେ ଭାରତରେ ଚଳୁଥିବା ଦୀନାର ସ୍ୱର୍ଣ୍ଣମୁଦ୍ରା ଅଢ଼ାଇ ଅଧତୋଲା ଓଜନର ଥିଲା । ଆରବ ଓ ପାରସ୍ୟରେ ମଧ୍ୟ ପ୍ରାଚୀନ କାଳରେ ଦୀନାର ନାମକ ମୁଦ୍ରା ଚଳୁଥିଲା । ଆରବୀ ଓ ଫାରସୀ କୋଷକାରମାନେ ଦିନାର୍ ଶବ୍ଦ ଆରବୀ ଥିବାର ଲେଖି ଅଛନ୍ତି । ପ୍ରାଚୀନ ରୋମକମାନେ ଡିନାରିୟସ୍ ନାମରେ ଏକ ସ୍ୱର୍ଣ୍ଣମୁଦ୍ରା ଚଳାଉଥିଲେ । କିନ୍ତୁ ହରିବଂଶର ପ୍ରାଚୀନତା ସ୍ୱୀକାର କଲେ ଦୀନାର ପ୍ରଥମେ ଭାରତରେ ଚଳୁଥିବାର ବୋଲାଯିବ । ହି. ଶବ୍ଦସାଗର । ]

**ଦୀନୁ**—ଦେ. ବି. (ଆଦରାର୍ଥକ)—ଦୀନବନ୍ଧୁ ନାମକ ବ୍ୟକ୍ତିଙ୍କୁ ଡାକିବା ନାମ—A name by which a person named Dinabandhu is accosted in fondness.
(ଦୀନ, ଦୀନେଇ—ଅନ୍ୟରୂପ) (ଦୀନା, ଦୀନିଆଁ, ଦିନୁଆଁ—ଅନାଦରାର୍ଥକ ରୂପ)
Dinu

**ଦୀପ୍** (ଧାତୁ)—ସ—୧ । ଦୀପ୍ତ ହେବା; ଉଜ୍ଜ୍ୱଳ ହେବା—1 To glitter; to shine.
Dip (root)

୨ । ଜ୍ୱଳିବା—2. To burn; to be lighted.

୩ । ଅଳଂକୃତ କରିବା—3. To adorn; to grace.

**ଦୀପ**—ସ. ବି. ( ଦୀପ୍ ଧାତୁ+କର୍ତ୍ତି. ଅ )—
Dipa
दीप
दीया

୧ । ଆଲୋକାଧାର; ପ୍ରଦୀପ—1. A lamp.

୨ । ଆଲୋକ—2. A light.

୩ । ତେଲ ଓ ବଳତା ସାହାଯ୍ୟରେ ଜଳାଯିବା ଆଧାର—3. An oil lamp.

୪ । ଜଳୁଥିବା ନିଆଁର ଶିଖା—4. A burning flame

୫ । (ଲକ୍ଷଣାର୍ଥ) (କୌଣସି କୁଳ ବା ଅଞ୍ଚଳରେ ପ୍ରଦୀପ ପରି) ପ୍ରଭାଶାଳୀ ବ୍ୟକ୍ତି—5. (figurative) A glorious person.

[ ଦ୍ର—ଏହି ଅର୍ଥରେ ଅନ୍ୟ ଶବ୍ଦ ସଙ୍ଗେ ମଧ୍ୟ ଏହା ବ୍ୟବହୃତ ହୁଏ । ଯଥା—ସେ ଆମ କୁଳଦୀପ । ]

(ସ. ଦ୍ୱୀପ)—ଦ୍ୱୀପ—An island.

ଜଳୁଥିବ ଦୀପେ ସେ ସରଭଣ ସବୁ ।

ଉପେନ୍ଦ୍ର ଭଞ୍ଜ. ବୈଦେହୀଶବିଳାସ ।

ସ. ବିଣ—୧ । ପ୍ରକାଶକ; ଯାହା ଉଜ୍ଜ୍ୱଳ କରେ—1. Illuminating.

୨ । (ଲକ୍ଷଣାର୍ଥ ) —ପ୍ରଭାଶାଳୀ—
2. (figurative) Glorious; brilliant; glorifying.

**ଦୀପ ଅଡ଼ିଆ ପାହାଡ଼**—ଦେ. ବ—ଚିଲିକା କୂଳବର୍ତ୍ତୀ ଗୋଟିଏ କ୍ଷୁଦ୍ର
Dipa ardia pāhārda ପାହାଡ଼—Name of a hill near Chilkā.

[ ଦ୍ର—ଏହା ଚିଲିକା ହ୍ରଦର ନିକଟରେ ଅବସ୍ଥିତ । ପୂର୍ବେ ଏହାର ଶିରୋଦେଶରେ ପଥର ଉପରେ ଗୋଟିଏ ପ୍ରକାଣ୍ଡ ପ୍ରଦୀପ ଜଳୁଥିଲା ଏବଂ ତଦ୍ଦ୍ୱାରା ସମୁଦ୍ରରେ ଯାତାୟାତ କରୁଥିବା ଜାହାଜକୁ ଆଲୋକ ଦେଖାଯାଉଥିଲା । ପ୍ରାଚୀନ ବୋଇତଆଳମାନଙ୍କୁ ଏହା ସମୁଦ୍ର ମଧ୍ୟରେ ବାଟ ଦେଖାଉଥିଲା ।

ଜଗବନ୍ଧୁ—ପ୍ରାଚୀନ ଉତ୍କଳ । ]

**ଦୀପକ**—ସଂ. ବିଣ. (ଦୀପ୍ ଧାତୁ ଣିଚ୍=ଦୀପି ଧାତୁ+କର୍ତ୍ତୃ. ଅକ)—
Dipaka ୧ । ଔଜ୍ଜ୍ୱଲ୍ୟକାରକ; ଦୀପ୍ତିକର—
1. Illuminating.
୨ । ଦାହକ; ଯାହା ଜାଳ କରଏ—2. Inflammatory.
୩ । ଶୋଭାଜନକ—3 Radiant; splendid.
୪ । ପ୍ରକାଶକ; ଉଜ୍ଜ୍ୱଳ—4. Lustrous.
୫ । ଯାହା ଆଲୁଅ ଜଳାଏ—5. Illuminating.
୬ । ଉଦ୍ଦୀପକ—6. Inflaming; irritant.
୭ । ଉତ୍ତେଜକ—7. Exciting.
୮ । ଜାଣ୍ଠିକାରକ—8 Digestive.
୯ । ଉଦାହରଣ ବା ବ୍ୟାଖ୍ୟାଦିଦ୍ୱାରା ଅର୍ଥ ପ୍ରକାଶକ—
9. Illustrating; expounding.

ବି.—୧ । କୁଙ୍କୁମ—1. Saffron.
୨ । ଯୁଆଣୀ—2. Ajwan; coraway.
୩ । କାବ୍ୟର ଅଳଙ୍କାରବିଶେଷ—3. Name of a figure in rhetoric, consisting of elegance in expression.

[ଦ୍ର—ବାକ୍ୟରେ ଏକମାତ୍ର କର୍ତ୍ତୃପଦ ସଙ୍ଗେ ଅନେକଗୁଡ଼ିଏ କ୍ରିୟାପଦର ସମ୍ବନ୍ଧ ରହିଲେ କିମ୍ବା ପ୍ରସ୍ତୁତ ଓ ଅପ୍ରସ୍ତୁତ ବିଷୟର ଏକ ଧର୍ମସମ୍ବନ୍ଧ ବର୍ଣ୍ଣିତ ହେଲେ ଦୀପକାଳଙ୍କାର ହୁଏ ।]

୪ । ପ୍ରଦୀପ—4 Lamp.
୫ । ଛଞ୍ଚାଣ; ବାଜପକ୍ଷୀ—5. Hawk; Faleo Nisus.
୬ । ବ୍ୟାଖ୍ୟା ଓ ବିବରଣ ପୁସ୍ତକମାନଙ୍କର ଉପାଧି—
6 Title of various descriptive books and commentaries.
୭ । ମୟୂରଶିଖା (ହି. ଶବ୍ଦସାଗର)—
7. The crest feathers of a peacock.
୮ । ସଙ୍ଗୀତର ରାଗବିଶେଷ—
8. Name of a tune in Hindu music.

[ଦ୍ର—ଏହା ଗ୍ରୀଷ୍ମ ଋତୁର ମଧ୍ୟାହ୍ନ ସମୟରେ ବୋଲାଯିବାର ବିଧି; କଥିତ ଅଛି ଯେ ବିଧିମତେ ଦୀପକ ରାଗ ଆଳାପ କରାଗଲେ ନିଭିଲା ଦୀପମାନ ଜଳି ଉଠେ। କଥିତ ଅଛି ଯେ ବିଖ୍ୟାତ ଗାୟକ ତାନସେନ୍ ଏହି ଦୀପକ ରାଗର ଆଳାପ କରୁ କରୁ ଅନ୍ତର୍ଦଗ୍ଧ ହୋଇ ପ୍ରାଣତ୍ୟାଗ କରିଥିଲେ । ]

ଦେ. ବି.—( ଆଟମିକ ବିଜ୍ଞାନପାରିଭାଷିକ ଶବ୍ଦ )—ଫସ୍‌ଫରସ୍ ନାମକ ଉପଧାତୁ—Phosphorus.

**ଦୀପକବୃକ୍ଷ**—ସଂ. ବି.—୧ । ଦୀପରୁଖା—
Dipaka bruksha 1. Lamp-stand.
୨ । ଝାଡ଼—2. Chandelier;

**ଦୀପକଳିକା**—ସଂ. ବି.—(୬ଷ୍ଠୀ ତତ୍; ଦୀପ+କଳିକା) ଦୀପର ଶିଖା—
Dipa kalikā The flame of a candle.
(ଦୀପକଳୀ; ଦୀପକ ସୁତ—ଅନ୍ୟରୂପ)

**ଦୀପକିଟ୍ଟ**—ସଂ. ବି.—(ଦୀପ+କିଟ୍ଟ, ତୈଳାଦି କଲ୍କ, ୬ଷ୍ଠୀ ତତ୍)—
Dipa kitta ଦୀପଶିଖାରୁ ଉତ୍ପନ୍ନ କଳା ବା କଜ୍ଜଳ କଳା—
Lamp black; soot; collyrium.

**ଦୀପକୂପୀ**—ସଂ. ବି.—ଦୀପର ବତି, ବଳିତା (ହି. ଶବ୍ଦସାଗର)—
Dipa kūpi The wick of a lamp.

**ଦୀପଜଳା**—ଦେ. ବି (ସଂ. ଦୀପ+ଜ୍ୱଳନ)—୧ । ଦୀପ ଜାଳିବା କାର୍ଯ୍ୟ—
Dipa jalā 1. The burning of a lamp or candle.
୨ । ଦୀପ ଜାଳିବା କର୍ମ—
2. The lighting of a lamp.

**ଦୀପ ଜାଳିବା**—ଦେ. କ୍ରି—୧ । ଦୀପରେ ଅଗ୍ନି ସଂଯୋଗ କରିବା—
Dipajāliba 1 To light a lamp; to kindle a lamp.
दीप जालाना ୨ । ସନ୍ଧ୍ୟାବତି ଲଗାଇବା; ଦେବତାଙ୍କ ଆଗରେ ବା
**दीपजलाना** ତୁଳସୀ ଚଉରା ମୂଳେ ବା ଦାଣ୍ଡ ଦୁଆରରେ ସନ୍ଧ୍ୟା
ଦୀପ ଜଳା(ଳେ)ଇବା } ଅନ୍ୟରୂପ ବୁଡ଼ିଲା ବେଳେ ବତି ଜାଳିବା-
ଦୀପ ଲଗା(ଗେ)ଇବା }
To light a wick before a Deity just at eve.
୩ । (ମହାଜନୀ ଭାଷା) (କୌଣସି ମହାଜନ) ଦେବାଳିଆ ବା ବେମଗ୍‌ଦୁର ହେବା ବିଷୟ ପ୍ରକାଶ କରିବା—
3. To publish the fact of a trader having become insolvent.

[ ଦ୍ର—ପୂର୍ବେ ଯେଉଁ ବିଦେଶୀ ମହାଜନମାନେ ଦେବାଳିଆ ହେଉଥିଲେ ସେମାନେ କାମ ଦାମ ବନ୍ଦ କରି ଦୋକାନରେ ଗୋଟିଏ ଚୌମୁହାଁ ଦୀପ ଜଳାଉଥିଲେ । ତାହା ଦେଖି ସର୍ବସାଧାରଣ ଜାଣି ପାରୁଥିଲେ ଯେ ସେ ଲୋକ ବେମଗ୍‌ଦୁର ହେଲାଣି । ]

**ଦୀପତ**—ଗ୍ରା. (ପଦ୍ୟ) ବି—ଦୀପ୍ତ ( ଦେଖ )
Dipata Dipta ( See )

ବୋଲେ ଚନ୍ଦନ ଦଳେ ସଂସାରକୁ ଦୀପତ କରେ ସ୍ନେହାଣ ।
ଉପେନ୍ଦ୍ର ଭଞ୍ଜ. ବୈଦେହୀଶବିଳାସ ।

**ଦୀପତରୁ**—ସଂ. ବି. ( ଦୀପ+ତରୁ; ରୂପକ କର୍ମଧାରୟ )—
Dipataru ୧ । ଦୀପରୁଖା; ଦୀପାଧାର; ପିଲ୍‌ସଜ—
(ଦୀପପାଦପ—ଅନ୍ୟରୂପ) 1. Lamp-stand.
୨ । ବହୁ ପ୍ରଦୀପ ସୁସଜ୍ଜିତ ଝାଡ଼—
2. A chandelier with several branches for setting lamps on.

ଦୀପତି—ଗ୍ରା. (ପଦ୍ୟ) ବି—ଦୀପ୍ତି ( ଦେଖ )
Dīpati Dīpti ( See )
दीपति
ଦୀପତ

ଦୀପଦଁଡ଼ି—ପ୍ରାଦେ. (ବସ୍ତର) ବି—ଦୀପଦଣ୍ଡି ( ଦେଖ )
Dīpadaṅṛdi Dīpadaṇḍi ( See )

ଦୀପଦଣ୍ଡା—ପ୍ରାଦେ. (ଯାଜପୁର) ବି—ଦୀପଦଣ୍ଡି ( ଦେଖ )
Dīpadaṇḍā Dīpadaṇḍi ( See )

ଦୀପଦଣ୍ଡି—ଦେ ବି ( ସ. ଦ୍ୱୀପ+ଦଣ୍ଡ )—ଦୀପଦଣ୍ଡି ( ଦେଖ )
Dīpadaṇḍi Dīpadaṇḍi ( See )
ଦୀପଦାଣ୍ଡି, ଦୀପିଦଣ୍ଡି, ଦୀପିଦାଣ୍ଡି — ଅନ୍ୟରୂପ
× × × ଏଥରେ ପୂର୍ବେ ଖୋଳଣା ଦୀପଦଣ୍ଡି ଥିଲା । ଫକୀରମୋହନ, ଛମାଣଆଠଗୁଣ୍ଠ ।

ଦୀପଦାନ—ସ. ବି. ( ଦୀପ+ଦାନ; ୬ଷ୍ଠୀ ତତ୍ )—
Dīpadāna ୧ । (ଦୀପାବଳୀ ବା ମାର୍ଗଶିର ଅମାବାସ୍ୟା; କାର୍ତ୍ତିକ ବ୍ରତ) ଶିବଚତୁର୍ଦ୍ଦଶୀ ଉପଲକ୍ଷରେ ଦେବତାଙ୍କ ନାମରେ ବା ପିତୃଲୋକଙ୍କ ନାମରେ ଘିଅଦୀପ ଜଳାଇ ଉତ୍ସର୍ଗ କରାଯିବା କର୍ମ—1. Ceremonial offering of lighted lamps to the Deities or manes on certain religious occasions.
୨ । କାର୍ତ୍ତିକ ମାସର ସାଇ ଦାମୋଦର ବ୍ରତ ଉପଲକ୍ଷେ ବହୁ ପ୍ରଦୀପ ଜଳାଇ ଉତ୍ସର୍ଗ କରିବା କର୍ମ—
2. The ceremonial offering of lamps during the month of Kārttika.
( ଯଥା—ଦୀପଦାନ କାର୍ତ୍ତିକରେ ପ୍ରୟାଗ ସ୍ନାନ ମକରେ ଯେଉଁ ନ କରେ । )
୩ । ମରଣାପନ୍ନ ବ୍ୟକ୍ତିର ହାତରେ ଗୁଡ଼ିଏ ଚୂନା ଉପରେ ଥୋଇ ପ୍ରସ୍ତୁତ ଦୀପ ରଖି ସଙ୍କଳ୍ପ କରାଯିବା କର୍ମ ( ହ୍ର. ଶବ୍ଦସାଗର )—3. A ritual consisting of offering a lamp held in the hands of a dying person.

ଦୀପଦାନୀ—ଦେ. ବି. ( ସ. ଦୀପ+ଅଧାନ )—ଆରତି ବା ପୂଜା ସମୟରେ ଦେବତାଙ୍କୁ ବନ୍ଦାଇବାରେ ବ୍ୟବହୃତ ଦୀପ ଯେଉଁ ପାତ୍ରରେ ରଖାଯାଇଥାଏ—A lamp-stand for holding a lamp which is waved before an idol during worship.
Dīpadānī
दीपदानी

ଦୀପଧ୍ୱଜ—ସ. ବି—ଦୀପକିଟ୍ଟ ( ଦେଖ )
Dīpadhwaja Dīpakiṭṭa ( See )

ଦୀପନ—ସ. ବି. ( ଦୀପ୍ ଧାତୁ ଣିଜନ୍ତ ଦୀପି ଧାତୁ+ଭାବ. ଅନ )—
Dīpana ୧ । ପ୍ରକାଶନ—1. Illumination; shining.
୨ । ଉତ୍ତେଜନ—2. Exciting.
୩ । ଉଦ୍ଦୀପନ; ଜଳାଇବା—
3. Igniting; setting on fire.
୪ । ତେଜପ୍ରକାଶ—4. Radiance; effulgence.
୫ । ଜଠରାଗ୍ନିକୁ ଉତ୍ତେଜିତ କରି କ୍ଷୁଧାବୃଦ୍ଧି କରାଇବା କର୍ମ—
5. Stimulating the appetite and promoting digestion.
୬ । ମୟୂରଶିଖା—6. The tuft of feathers on the head of a peacock.
୭ । ପିଆଜ—7. Onion.
୮ । ଅଗ୍ନିବର୍ଦ୍ଧକ ଔଷଧ—
8. A tonic stimulating digestion.
୯ । କାଶମର୍ଦ୍ଦ ( ଦେଖ )—
9. Kāśamardda ( See )
୧୦ । ତଗର ମୂଳ—
10. The root of the Tagara plant.
୧୧ । କୁଙ୍କୁମ—11. Saffron.
୧୨ । ମନ୍ତ୍ରର ଦଶଗୋଟି ସଂସ୍କାରରୁ ଏକତମ—12. One of the 10 consecrations of an esoteric formula.
[ ଦ୍ର—ଏହା ନ କଲେ ମନ୍ତ୍ର ସିଦ୍ଧ ହୁଏ ନାହିଁ—ହ୍ର. ଶବ୍ଦସାଗର । ]
୧୩ । (ବୈଦ୍ୟକ) ପାରଦର ସପ୍ତମ ସଂସ୍କାର (ହ୍ର. ଶବ୍ଦସାଗର)—
13. The act of purifying mercury for the seventh time for medicinal purposes.
ବିଣ—୧ । ( +କର୍ତ୍ତୃ. ଅନ ) ଉତ୍ତେଜକ; ଉଦ୍ଦୀପକ—
1. Exciting; stimulating.
୨ । ଜ୍ୱଳନକାରକ; ଦାହକ—
2. Combustible; igniting.
୩ । ଶୋଭାଜନକ—3. Beautious; lustrous.
୪ । ଅଗ୍ନିବର୍ଦ୍ଧକ; ଜୀର୍ଣ୍ଣକାରକ—4. Digestive; helping digestion; stimulating the appetite.

ଦୀପନିର୍ବାଣ—ସ. ବି. ( ଦୀପ+ନିର୍ବାଣ; ୬ଷ୍ଠୀ ତତ୍ )—ଦୀପ ଲିଭିଯିବା—
Dīpanirbāṇa A lamp being extinguished.

ଦୀପନିର୍ବାପଣ—ସ. ବି. (୬ଷ୍ଠୀ ତତ୍; ଦୀପ ନିର୍ବାପଣ)—ଦୀପ ଲିଭାଇବା—
Dīpanirbāpaṇa The act of putting out of a lamp.

ଦୀପନୀ—ସ. ବି. ସ୍ତ୍ରୀ. ( ଦୀପନ+ଈ )—୧ । ମେଥି—
Dīpanī 1. A condiment; Fenugreek; Trigonella Foenum Grecum.
୨ । ଯୁଆଣୀ—2. A caraway; the bad barley.

ଦୀପନୀୟ—ସ. ବିଣ.—(ଦୀପ୍ ଧାତୁ+କର୍ମ. ଅନୀୟ)—
Dīpanīya ୧ । ଦୀପନଯୋଗ୍ୟ—1. Fit to be lighted or ignited.
୨ । ଉତ୍ତେଜିତ ହେବା ଯୋଗ୍ୟ—
2. Fit to be stimulated or excited.
୩ । ଦାହ୍ୟ—3. Combustible.

ଦୀପନୀୟଗଣ—ସ. ବି—୧ । ଯୁଆଣୀ—
Dīpanīyagaṇa 1. The caraway, the bad barley.

**ଦୀପମଞ୍ଜରୀ**—ସଂ. ବି (ଆଧୁନିକ ପ୍ରୟୋଗ)—ଫାନସ୍ ( ଦେଖ )
Dipamañjari Phānas ( See )
ফানস, **फानुस**
ଦୀପପଞ୍ଜର } ଅନ୍ୟରୂପ ଚଳ ଚାଳକାରେ ଥକାଶେ ଉଡ଼ଇ ଦୀପ-ପଞ୍ଜର—
ଦୀପପିଞ୍ଜର } ରାଧାନାଥ ଋଷା ।

**ଦୀପପାଦପ**—ସଂ. ବି (ଦୀପ+ପାଦପ)—ଦୀପତରୁ ( ଦେଖ )
Dipapādapa Dipataru (See)

**ଦୀପପୁଞ୍ଜ**—ସଂ. ବି (ଦୀପ+ପୁଞ୍ଜ; ୬ଷ୍ଠୀ ତତ୍)—ସୁସଜ୍ଜିତ ଅନେକଗୁଡ଼ିଏ
Dipapuñja ପ୍ରଦୀପ; ଆଲୋକମାଳା—Rows of lighted lamps arranged artistically.
ଦୀପଶୃଙ୍ଖଳା } ଅନ୍ୟରୂପ
ଦୀପଶ୍ରେଣୀ }

**ଦୀପପୁଷ୍ପ**—ସଂ. ବି—ଚମ୍ପାଫୁଲ ଓ ଗଛ—
Dipapushpa The Michelia; champaka (flower and tree).

**ଦୀପପେଲା**—ଦେ. ବିଣ—୧ । (ଲକ୍ଷଣାର୍ଥ) ଖୋସାମଦିଆ (ବ୍ୟକ୍ତି)—
Dipapelā 1. Flattering (person).
ପର ଗାଇବୁହାଁ ଦୀପପେଲା, ଏ ଲୋକ ଗାଇଁ ଆଇଁ ଆଇଁ ମନ—ଡଗ ।
୨ । ଯେଉଁ ବ୍ୟକ୍ତି ଅତି ହୀନଭାବରେ ଅନ୍ୟ ବ୍ୟକ୍ତିର କଥା ଓ କର୍ମମାନ ଅନୁମୋଦନ କରେ—2. Slavishly subservient.
ବି—୧ । ଦୀପର ଶିଖାକୁ ପ୍ରଖର କରିବାପାଇଁ ଦୀପରେ ପଡ଼ିଥିବା ବଳତାକୁ ଠେଲିବା; ଦୀପଠେଲିବା—
1. Trimming of a lamp.
୨ । ଯେଉଁ କାଠିଦ୍ୱାରା ଦୀପ ଠେଲାଯାଏ—
2. Stick or pick used in trimming the wick of a lamp.
୩ । (ଲକ୍ଷଣାର୍ଥ) ଅନ୍ୟ ବ୍ୟକ୍ତିର ସବୁ କାର୍ଯ୍ୟରେ ଅନୁମୋଦନ—
3. ( figurative ) Slavishly following or approving of a person's acts and words.

**ଦୀପ ପେଲିବା**—ଦେ. କ୍ରି—ଦୀପର ଶିଖାକୁ ପ୍ରଖର କରିବାପାଇଁ ଅର୍ଥାତ
Dipa pelibā ଦୀପକୁ ଜଳାଇରଖିବା ପାଇଁ ଦୀପରେ ପଡ଼ିଥିବା
প্রদীপ সাজান ବଳତାକୁ କାଠି ବା ଅଙ୍ଗୁଠିରେ ଠେଲିବା—
**चिराग ठिक करना** To trim a lamp.
( ଦୀପ ଠେଲିବା—ଅନ୍ୟରୂପ )

**ଦୀପବୃକ୍ଷ**—ସଂ. ବି. ( ଦୀପ+ବୃକ୍ଷ )—ଦୀପତରୁ ( ଦେଖ )
Dipabruksha Dipataru ( See )

**ଦୀପମାଳା**—ସଂ. ବି. ( ଦୀପ+ମାଳା, ୬ଷ୍ଠୀ ତତ୍ )—
Dipamālā ୧ । ଦୀପପୁଞ୍ଜ ( ଦେଖ )—
( ଦୀପମାଳିକା—ଅନ୍ୟରୂପ ) 1. Dipapuñja ( See )
୨ । ଦଶାକ୍ଷର ଛନ୍ଦୋବିଶେଷ ( ଛନ୍ଦେନ୍ଦୁ )—
2. A metre of ten syllables.

**ଦୀପମୁଣ୍ଡିଆ**—ଦେ. ବି—ବାଲୁଗାଁ ନିକଟବର୍ତ୍ତୀ ଚିଲିକାକୂଳସ୍ଥ ଗୋଟିଏ
Dipamundiā ପାହାଡ଼; ଦୀପ ଥିଲା ପାହାଡ଼—A hill on the bank of Chilkā lake near Balugān
[ ଦ୍ର—ପୂର୍ବେ ଚିଲିକାରେ ବୋଇତ ଚଳିବାବେଳେ ଏହା ବତିଘରରୂପେ ବ୍ୟବହୃତ ହେଉଥିଲା । ବର୍ତ୍ତମାନ ଏ ପାହାଡ଼ ଉପରେ ଦୀପ ଆକୃତିର ଗୋଟିଏ ଗହ୍ୱର ଅଛି—ସୁଧାରଣ ପଣ୍ଡା. ଉତ୍କଳ ସାହିତ୍ୟ । ]

**ଦୀପରାଜି**—ସଂ. ବି. ( ଦୀପ+ରାଜି; ୬ଷ୍ଠୀ ତତ୍ )—ଦୀପପୁଞ୍ଜ ( ଦେଖ )
Diparāji Dipapuñja ( See )

**ଦୀପରୁଖା**—ଦେ. ବି. ( ସଂ. ଦୀପବୃକ୍ଷ; ଦ୍ରମ୍ଭା ଦୀପରକ୍ଷା )—ପ୍ରଦୀପ ରଖା
Diparukhā ଯିବାର ଆଧାର, ପିଲସଜ—Lamp-stand.
পিলসুজ **दीवट**
ଦୀପରଖା } ଅନ୍ୟରୂପ ଦୀପରୁଖା ବସିଥିବ ଦପ୍ପରୁଖା ବସିଥିବ
ଦୀପୁରୁଖା } ଦୀପବତ୍ତି ପଡ଼ିଥିବ ଦପଦହି ପଡ଼ିଥିବ—
ଶ୍ଳୋକୋକ୍ତି ଡଗ ।

**ଦୀପଶତ୍ରୁ**—ସଂ. ବି. ( ୬ଷ୍ଠୀ ତତ୍; ଦୀପ+ଶତ୍ରୁ; ଜଳନ୍ତା ଦୀପରେ ଆସି
Dipaśatru ଏମାନେ ଝାସ ଦେବାରୁ )—ପତଙ୍ଗ; ପୋକ, ଉଡ଼ାପୋକ—Flying insects; moths.

**ଦୀପଶଲାକା**—ସଂ. ବି. ( ଦୀପ+ଶଲାକା; ୬ଷ୍ଠୀ ତତ୍ ) ୧ । ଦୀପର
Dipaśalākā ବତ୍ତୀକୁ ଠେଲିବା କାଠି;ଠେଲଣାକାଠି; ଦୀପପେଲା—
1 A pick used in pushing out or trimming the wick of a lamp.
୨ । ଦିଆସିଲି—2. Match-stick.

**ଦୀପଶିଖା**—ସଂ. ବି ( ଦୀପ+ଶିଖା; ୬ଷ୍ଠୀ ତତ୍ )—
Dipaśikhā ୧ । ଜଳୁଥିବା ପ୍ରଦୀପର ଅଗ୍ନିର ଶିଖା; ଦୀପସିଁଷା—
1. The flame of a burning lamp.
୨ । ଦୀପଶିଖାରୁ ଉତ୍ଥିତ କଜ୍ଜଳ; ଦୀପକଳା—
2. Lamp-black.
୩ । ଜଳିବା ଦୀପରୁ ଉଠିବା ଧୂଆଁ ( ହି. ଶବ୍ଦସାଗର )—
3. Smoke from a burning lamp.

**ଦୀପଶୃଙ୍ଖଳା**—ସଂ. ବି. ( ଦୀପ+ଶୃଙ୍ଖଳା; ୬ଷ୍ଠୀ ତତ୍ )—
Dipaśrunkhalā ଦୀପପୁଞ୍ଜ ( ଦେଖ )—
Dipapuñja ( See ).

**ଦୀପଶ୍ରେଣୀ**—ସଂ. ବି. ( ଦୀପ+ଶ୍ରେଣୀ )—ଦୀପପୁଞ୍ଜ ( ଦେଖ )
Dipaśreni Dipapuñja ( See ).

**ଦୀପାଧାର**—ସଂ. ବି. ( ଦୀପ+ଆଧାର; ୬ଷ୍ଠୀ ତତ୍ )—ଦୀପରୁଖା—
Dipādhāra Lamp stand.

**ଦୀପାନ୍ୱିତା**—ସଂ. ବି. ( ୩ୟା ତତ୍; ଦୀପ+ଅନ୍ୱିତ+ସ୍ତ୍ରୀ. ଆ )—କାର୍ତ୍ତିକ
Dipānwitā ଅମାବାସ୍ୟା ରାତିରେ କରାଯିବା ଦୀପଦାନ ଉତ୍ସବ—The ceremony of lighting lamps on the night of the newmoon of Kārttika.

**ଦୀପାବଳି**—ସଂ. ବି. ( ଦୀପ+ଆବଳି )—୧ । ଦୀପପୁଞ୍ଜ ( ଦେଖ )
Dipābali 1. Dipapuñja ( See )
୨ । ମାର୍ଗଶିରର ଦୀପାବଳି ଅମାବାସ୍ୟା—2. The new-moon day of the month of Mārgaśira.
୩ । କାର୍ତ୍ତିକ ଅମାବାସ୍ୟା—2. The new-moon day of the month of Kārttika

**ଦୀପାବଳି ଅମାବାସ୍ୟା**—ସଂ. ବି—୧ । ମାର୍ଗଶିର ଅମାବାସ୍ୟା—
Dīpābaḻi amābāsyā 1. The new-moon day of the month of Mārgaśira
[ ଦ୍ର—ଏ ଦିନ ହିନ୍ଦୁ ଗୃହସ୍ଥମାନେ ଦେବାଳୟରେ ଦୀପାବଳୀ ପ୍ରଜ୍ୱାଳନ କରନ୍ତି ଓ ଜଗନ୍ନାଥ ମନ୍ଦିରରେ ଦୀପାବଳୀ ଉତ୍ସବ ହୁଏ । ]
୨ । କାର୍ତ୍ତିକ ଅମାବାସ୍ୟା—
2 The new-moon day of Kārttika (month)
[ ଦ୍ର—ଏହାକୁ ପ୍ରଦୀପାମାବାସ୍ୟା ବା ଦେବାଲି ଅମାବାସ୍ୟା କୁହାଯାଏ । ଏ ଦିନ ସନ୍ଧ୍ୟା ପରେ ଶ୍ରାଦ୍ଧ କରାଯାଏ ଓ ପିତୃଲୋକଙ୍କୁ ଦୀପଦାନ କରାଯାଏ ଓ ଗୃହାଦି ଦୀପାବଳିଦ୍ୱାରା ସୁଶୋଭିତ କରାଯାଏ । ଖ୍ରୀଷ୍ଟପୂର୍ବ ୫୨୭ରେ ଜୈନଗୁରୁ ମହାବୀର କାର୍ତ୍ତିକମାସ ସ୍ୱାତି ନକ୍ଷତ୍ରରେ ଅମାବାସ୍ୟା ଦିନ ରାତ୍ରି ଶେଷରେ ନିର୍ବାଣ ପ୍ରାପ୍ତ ହୋଇଥିଲେ । ଏଥିପାଇଁ ଜୈନମାନେ ମଧ୍ୟ ଏ ଦିନ ଦୀପଦାନ ଉତ୍ସବ କରନ୍ତି—ଜ୍ଞାନେନ୍ଦ୍ରଙ୍କ ଉଦ୍ଧୃତ ହରିବଂଶ । ]

**ଦୀପାଳି(ଳୀ)**—ସଂ. ବି. ( ଦୀପ + ଆଳି = ସମୂହ; ୬ଷ୍ଠୀ ତତ୍ )—
Dīpāḻi(ḻī) ଦୀପାବଳି ( ଦେଖ )
दीपाली Dīpābaḻi ( See )
**दोवाली** ଦେ. ବି—ପୋଡ଼ା ହୋଇଥିବା ମାଟିଆର ଛୋଟ ଦୀପ-
छोटि दीप A small lamp made of earth and burnt
**दियली**

**ଦୀପାଳୀ ଅମାବାସ୍ୟା**—ଦେ. ବି—କାର୍ତ୍ତିକ ଅମାବାସ୍ୟା, ଦେବାଲି ଅମାବାସ୍ୟା—
Dīpāḻī amābāsyā The new-moon of the month of Kārtika.

**ଦୀପିକା**—ସଂ. ବି. ( ଦୀପକ + ସ୍ତ୍ରୀ. ଆ )—
Dīpikā ୧ । ଟୀକା ଗ୍ରନ୍ଥବିଶେଷ—
1. A commentary; a title of annotation off various books ( e.g. Astrology Grammar ).
( ଯଥା—ଶ୍ରୀନିବାସ ଦୀପିକା । )
୨ । ଚନ୍ଦ୍ରକିରଣ; ଜ୍ୟୋସ୍ନା—2. Moon-light.
୩ । ରାଗିଣୀବିଶେଷ—
3. Name of a sub-tune in Hindu music.
୪ । ଆଲୋକ—4. Light; a torch.
୫ । ଛୋଟ ଦୀପ—5. Small lamp.
ସଂ. ବିଣ. ( ଦୀପିକ + ସ୍ତ୍ରୀ. ଆ )—ଦୀପକର ସ୍ତ୍ରୀ ଲିଙ୍ଗ—
Feminine of Dīpaka.
ନ . ବି—କଟକ ପ୍ରିଣ୍ଟିଙ୍ଗ୍ କୋମ୍ପାନୀରୁ ପ୍ରକାଶିତ ସ୍ୱର୍ଗୀୟ ରାୟ ବାହାଦୁର ଗୌରୀଶଙ୍କର ରାୟଙ୍କ ପ୍ରତିଷ୍ଠିତ ଉତ୍କଳର ପ୍ରାଚୀନତମ ସାପ୍ତାହିକ ପତ୍ରିକା; ଉତ୍କଳ ଦୀପିକା—
The Utkal Dīpikā, the oldest Oriya weekly paper published from the Cuttack Printing Company and started by the late Rai Bahadur Gouri Sankar Roy.

**ଦୀପିତ**—ସଂ. ବିଣ. ( ଦୀପ୍ ଧାତୁ ଣିଜନ୍ତ = ଦୀପି ଧାତୁ + କର୍ମ. ତ )—
Dīpita ୧ । ଜ୍ୱଳିତ—1 Ignited, kindled; set fire to, lighted; illuminated.
୨ । ଉତ୍ତେଜିତ—2. Excited; inflamed.
୩ । ପ୍ରକାଶିତ—3. Manifested.
ଦେ. ( ପଦ୍ୟ ) ବିଣ—୧ । ଶୋଭିତ—1 Adorned; decorated.
ବାରଣ ବୃଷା ଗର୍ବ ଖର୍ବ କରି ତରୁ ଦୀପିତ
ଉପେନ୍ଦ୍ର ଭଞ୍ଜ. ବୈଦେହୀଶବିଳାସ ।
୨ । ନିଯୁକ୍ତ—2 Appointed; fitted up.
ନାଡ ଜାତ ପଯ୍ରରେ ଦୀପତ ସେ ସମସ୍ତ ଯେ ।
ଉପେନ୍ଦ୍ର ଭଞ୍ଜ. ବୈଦେହୀଶବିଳାସ ।
୩ । ଉଜ୍ଜ୍ୱଳ—3. Bright; shining.
ଦୀପିତ ମଣି କଙ୍କଣ ହାର ତରଳ କାଞ୍ଚନ ।
ଦ୍ରାଚୀ. ରସବାରିଧି ।

**ଦୀପିତା**—ସଂ. ବିଣ. ପୁଂ. ( ଦୀପିତୃ; ଦୀପ୍ ଧାତୁ = ଦୀପ୍ତି କରିବା + କର୍ତ୍ତୃ. ତୃ; ୧ମା ୧ବ )—୧ । ଦୀପ୍ତିକାରକ—
Dīpitā 1 Illuminating.
( ଦୀପିତ୍ରୀ—ସ୍ତ୍ରୀ )
୨ । ପ୍ରକାଶକ—2. Illuminating; elucidating

**ଦୀପିତି**—ଗ୍ରା. ବି. (ପଦ୍ୟ) (ସଂ. ଦୀପ୍ତି)—ଦୀପ୍ତି ( ଦେଖ )
Dīpiti Dīpti ( See )
दीपति **दीपत्**

**ଦୀପିବା**—ଦେ. କ୍ରି. ( ସଂ. ଦୀପ୍ ଧାତୁ )—
Dīpibā ଦୀପ୍ତ ହେବା; ତେଜ ବା ଆଲୋକ ଦେବା—
To be ignited or lighted; to radiate heat or light.
କନକ କାନ୍ତି ଅଗ୍ନିଶିଖା ଦୀପିବେ । ରାଧାନାଥ. ମେଘଦୂତ ।

**ଦୀପ୍ତ**—ସଂ ବିଣ. ( ଦୀପ୍ ଧାତୁ + କର୍ତ୍ତୃ. ତ )—
Dīpta ୧ । ପ୍ରଜ୍ୱଳିତ; ଜଳୁଥିବା—1. Burning.
୨ । ଦହକୁଥିବା—2 Blazing.
୩ । ଦୀପ୍ତିଯୁକ୍ତ; ଉଜ୍ଜ୍ୱଳ—3. Luminous; radiant; lustrous; bright.
୪ । ଦଗ୍ଧ—4 Burnt.
ସ ବି—୧ । ସିଂହ—1 Lion.
୨ । ସ୍ୱର୍ଣ୍ଣ—2 Gold.
୩ । ହିଙ୍ଗୁଳ—3. Vermilion; cinnabar; red orpiment; sulphide of mercury.

**ଦୀପ୍ତକ**—ସଂ. ବି. ( ଦୀପ୍ତ + ସ୍ୱାର୍ଥେ. କ )—ସ୍ୱର୍ଣ୍ଣ—
Dīptaka Gold

**ଦୀପ୍ତଜିହ୍ୱା**—ସଂ ବି. ସ୍ତ୍ରୀ. ( ବହୁବ୍ରୀହି; ଦୀପ୍ତ + ଜିହ୍ୱା )—
Dīptajihwā ଉଲ୍କାମୁଖୀ; ଶୃଗାଳୀବିଶେଷ—
A she-fox said to emit light from her mouth; Ignis Fatuos.

**ଦୀପ୍ତପିଙ୍ଗଳ**—ସଂ. ବି. ପୁଂ. ( ଦୀପ୍ତ = ଉଜ୍ଜ୍ୱଳ + ପିଙ୍ଗଳ = ପିଙ୍ଗଳ ବର୍ଣ୍ଣ; ବହୁବ୍ରୀହି )—
Dīptapiṅgaḻa
୧ । (ବହୁବ୍ରୀହି) ସିଂହ—1. Lion.

୨ । (କର୍ମଧାରୟ) ଉଜ୍ଜ୍ୱଳ ପିଙ୍ଗଳବର୍ଣ୍ଣ—
2. Bright tawny colour.
ସଂ. ବିଣ—ଉଜ୍ଜ୍ୱଳ ପିଙ୍ଗଳବର୍ଣ୍ଣବିଶିଷ୍ଟ—
Of a bright tawny colour-

**ଦୀପ୍ତରସ**—ସଂ ବି. ( ଦୀପ୍ତ=ଦୀପ୍ତିଯୁକ୍ତ+ରସ )—
Diptarasa ୧ । ( ବହୁବ୍ରୀହି ) ଜିଆ, ଜିଆ ନାଡ଼—
1 Earth worm
୨ । (କର୍ମଧାରୟ) ଉଜ୍ଜ୍ୱଳ ଦୀପ୍ତିଯୁକ୍ତ ରସ—
2. Bright juice.

**ଦୀପ୍ତଲୋଚନ**—ସ. ବିଂ (ବହୁବ୍ରୀହି; ଦୀପ୍ତ ଅଟେ ଲୋଚନ ଯାହାର)—
Diptalochana ୧ । ବିରାଡ଼—1. The cat.
୨ । ବାଘ—2 The tiger.
[ ଦ୍ର—ଅନ୍ଧାର ରାତିରେ ଏମାନଙ୍କ ଆଖି ଜୁଳୁଜୁଳୁ ହୋଇ ଜଳନ୍ତା ପରି ଦେଖାଯାଉଥିବାରୁ । ]
୩ । (କର୍ମଧାରୟ) କ୍ରୋଧକଷାୟିତ ଲୋଚନ; ନାଲି ଆଖି—
3. Eye reddened with anger
ବିଣ—୧ । ( ବହୁବ୍ରୀହି ) ଉଜ୍ଜ୍ୱଳ ଚକ୍ଷୁବିଶିଷ୍ଟ—
1 Having bright eyes.
୨ । ନାଲି ଆଖିଆ, ଆରକ୍ତ ଲୋଚନବିଶିଷ୍ଟ—
2. Having reddened eyes.

**ଦୀପ୍ତଲୋହ**—ସ. ବି. ( ଦୀପ୍ତ=ଦୀପ୍ତିଯୁକ୍ତ+ଲୋହ=ଧାତୁ, କର୍ମଧାରୟ )—କଂସା; କାଂସ୍ୟ—Bellmetal (an alloy of copper and zinc).
Diptaloha

**ଦୀପ୍ତହୁତାଶ**—ସ. ବି. (ଦୀପ୍ତ+ହୁତାଶ; କର୍ମଧା)—୧ । ଦହକନିଆଁ—
Diptahutāsa 1. Blazing fire.
(ଦୀପ୍ତହୁତାଶନ—ଅନ୍ୟରୂପ) ୨ । ଜଳନ୍ତା ନିଆଁ—
2. Burning fire.

**ଦୀପ୍ତାଂଶୁ**—ସ. ବି. (ବହୁବ୍ରୀହି; ଦୀପ୍ତ+ଅଂଶୁ)—ସୂର୍ଯ୍ୟ—
Diptamśu The sun.

**ଦୀପ୍ତାକ୍ଷ**—ସ. ବି ଓ ବିଣ. (ଦୀପ୍ତ+ଅକ୍ଷି ଯାହାର, ବହୁବ୍ରୀହି; ଅକ୍ଷିସ୍ଥାନରେ ଅକ୍ଷ)—ଦୀପ୍ତଲୋଚନ (ଦେଖ)—
Diptāksha Diptalochana (See)

**ଦୀପ୍ତାଗ୍ନି**—ସ. ବି. (ଦୀପ୍ତ+ଅଗ୍ନି=ଜଠରାନଳ)—
Diptāgni ୧ । (ବହୁବ୍ରୀହି) ଅଗସ୍ତି ମୁନି—
1. The sage Agasti.
୨ । (କର୍ମଧା) ଜଳୁଥିବା ନିଆଁ—2. Blazing fire.
୩ । ତୀକ୍ଷ୍ଣ ଜଠରାନଳ—3. Sharp appetite.
ବିଣ—୧ । ତୀକ୍ଷ୍ଣ ଜଠରାନଳବିଶିଷ୍ଟ—1. Of good digestion; able to digest any food; of sharp appetite.
୨ । ଅତ୍ୟନ୍ତ କ୍ଷୁଧାର୍ତ୍ତ—2. Very hungry.

**ଦୀପ୍ତାଙ୍ଗ**—ସ. ବିଣ. (ଦୀପ୍ତ+ଅଙ୍ଗ)—୧ । (ବହୁବ୍ରୀହି) ଉଜ୍ଜ୍ୱଳ ଦେହ କାନ୍ତି ବିଶିଷ୍ଟ—Having lustrous body.
Diptānga
ବି—୧ । ମୟୂର—1. Peacock.
୨ । (କର୍ମଧା) ଉଜ୍ଜ୍ୱଳ ଦେହ—2. Shining body.

**ଦୀପ୍ତାନଳ**—ସ. ବି ଓ ବିଣ. (ଦୀପ୍ତ+ଅନଳ)—ଦୀପ୍ତାଗ୍ନି (ଦେଖ)
Diptānala Diptāgni (See)

**ଦୀପ୍ତି**—ସ. ବି. (ଦୀପ ଧାତୁ+ଭାବ. ତି)—୧ । ଜ୍ୟୋତିଃ, ତେଜଃ; ଉଜ୍ଜ୍ୱଳତା—1. Radiance; lustre; brightness, luminosity; brilliance
Dipti
୨ । ଦ୍ୟୁତି; କାନ୍ତି; ଶୋଭା—2. Beauty; loveliness
୩ । ଆଭା; ପ୍ରଭା—3. Splendour; glory
୪ । କଂସା—4. Bell-metal.
୫ । ଲାକ୍ଷା—5. Lac; shell-lac.
୬ । ଆଲୋକ—6. Light.
ଦେ. ବି—୧ । ଐଶ୍ୱର୍ଯ୍ୟ—1. Prosperity, affluence.
୨ । ସୌଭାଗ୍ୟ—2. Good fortune.

**ଦୀପ୍ତିକର**—ସ. ବିଣ. ପୁଂ. ( ଦୀପ୍ତି+କର; ଉପପଦ ତତ୍ )—
Diptikara ୧ । ଜାଜ୍ୱଲ୍ୟମାନ; ତୋଫା; ଶୋଭାନ୍ୱିତ—
(ଦୀପ୍ତିକରୀ—ସ୍ତ୍ରୀ) 1 Glittering; bright; lustrous, luminous; effulgent.
୨ । ଜାର୍ଣ୍ଣକାରକ—2. Conducive to digestion (Apte)

**ଦୀପ୍ତିମୟ**—ସ. ବିଣ. ପୁଂ. (ଦୀପ୍ତି+ପ୍ରାଚୁର୍ଯ୍ୟାର୍ଥେ ମୟ)—ଦୀପ୍ତିକର (ଦେଖ)
Diptimaya Diptikara (See)
(ଦୀପ୍ତିମୟୀ—ସ୍ତ୍ରୀ)

**ଦୀପ୍ତିମାନ୍**—ସ. ବିଣ ପୁଂ. (ଦୀପ୍ତି+ଅସ୍ତି ଅର୍ଥେ, ମତ୍; ୧ମା. ୧ବ)—
Diptimān ଦୀପ୍ତିକର (ଦେଖ)—Diptikara (See).
(ଦୀପ୍ତିମତୀ—ସ୍ତ୍ରୀ)

**ଦୀପ୍ତିଶୀଳ**—ସ. ବିଣ. ପୁଂ. (ଦୀପ୍ତି+ଯୁକ୍ତାର୍ଥେ, ଶୀଳ)—
Diptisila ଦୀପ୍ତିକର (ଦେଖ)—Diptikara (See)
(ଦୀପ୍ତିଶୀଳା—ସ୍ତ୍ରୀ)

**ଦୀପ୍ତୋପଳ**—ସ. ବି. (କର୍ମଧା; ଦୀପ୍ତ+ଉପଳ)—ଅୟସ୍କାନ୍ତ ମଣି—
Diptopala Sun-stone; crystalline lens (Apte)

**ଦୀପ୍ୟ**—ସ. ବିଣ. (ଦୀପ୍ ଧାତୁ+କର୍ମ ଯ)—୧ । ପ୍ରଜ୍ୱଳନଯୋଗ୍ୟ, ଦୀପନଯୋଗ୍ୟ—1. Fit to be ignited, inflammable
Dipya
୨ । ଜାର୍ଣ୍ଣକାରକ—2. Digestive (Apte).
ବି. ପୁଂ—୧ । ମୟୂରଶିଖା—1. The tuft feathers on the head of a peacock
୨ । ଯୁଆଣୀ—2. Caraway seed.
୩ । ଶୁଖ୍ର—3 Wite cumin seed
୪ । ରୁଦ୍ରଜଟା—4. The matted hair of Rudra (Apte).
୫ । ରୁଦ୍ରଜଟା; ଲତାବିଶେଷ—
5. A kind of creeper.

**ଦୀପ୍ୟମାନ**—ସ. ବିଣ. (ଦୀପ୍ ଧାତୁ+କର୍ତ୍ତୃ. ଶାନଚ୍)—
Dipyamāna ଶୋଭମାନ; ଦୀପ୍ତିଶୀଳ; ଜାଜ୍ୱଲ୍ୟମାନ—
(ଦୀପ୍ୟମାନା—ସ୍ତ୍ରୀ) Shining; brilliant; lustrous; radiant

**ଦୀପ୍ର**—ସ. ବଣ (ଦୀପ ଧାତୁ + କର୍ତ୍ତୃ. ର)—୧ । ଦୀପ୍ତିଶାଳୀ—
Dīpra 1. Radiant; shining.
୨ । ତୀକ୍ଷ୍ଣ—2. Pointed.
ସ. ବ—ଅଗ୍ନି—Fire.

**ଦୀୟମାନ**—ସ. ଋଣ. (ଦା ଧାତୁ + କର୍ମ. ଅନ)—ଦାହା ଦିଆ ଯାଉଅଛି—
Dīyamāna Which is given away
(ଦୀୟମାନା—ସ୍ତ୍ରୀ) (ଦୀୟମାନ—ଷ୍ଟସଂଜ୍ଞ)

**ଦୀର୍ଘ**—ସ. ବଣ. (ଦ୍ରାଘ ଧାତୁ = ଲମ୍ବା କରିବା; ଅଧିକ ହେବା + ଅ)—
Dīrgha ୧ । (ସମୟ ଓ ଆକାରରେ) ଲମ୍ବା—
1. Long; (in space and time); reaching far
୨ । ଡେଙ୍ଗା—2. Tall
୩ । ଉଚ୍ଚ—3 High; lofty
୪ । ବହୁତ; ଅଧିକ—4. Excessive
୫ । ଆୟତ; ସୁଦୂର ବିସ୍ତୃତ—
5 Extensive: extended: spacious.
୬ । ଗୁରୁ—6. Heavy
୭ । ବିସ୍ତର; ବୃହତ୍, ବଡ଼—7. Great; large, big
୮ । ବହୁକାଳବ୍ୟାପୀ—8. Extending over a long period.
୯ । ଗଭୀର (ନିଶ୍ୱାସ)—9, Deep (breath).
ବ—୧ । (ବ୍ୟାକରଣ) ଦ୍ୱିମାତ୍ରା ପରିମିତ ସ୍ୱରବର୍ଣ୍ଣ; ଗୁରୁସ୍ୱର, ଦ୍ୱିମାତ୍ର ସ୍ୱର—1. Long vowel,
(ଯଥା—ଆ, ଈ, ଊ, ୠ, ଏ, ଐ, ଓ, ଔ ।)
୨ । (ଜ୍ୟୋତିଷ) ସିଂହ, କନ୍ୟା, ତୁଳା ଓ ବୃଶ୍ଚିକ ରାଶି—
2. The names of the 4th, 6th, 7th, and 8th signs of the zodiac (lion, virgin, balance and scorpion).
୩ । ଉଷ୍ଟ୍ର, ଓଟ—3. Camel
୪ । ଦୂର ଭବିଷ୍ୟତ; ପରିଣାମ—
4. Distant future; the end; the long run.
୫ । ଲତାଶାଳ ଗଛ—5. Name of a wild tree.
ଦେ. ବି—୧ । ଦୈର୍ଘ୍ୟ—1. Length
ଇହାଁର ଆସ୍ଥାନ କେବେ ଦୀର୍ଘ ଶବ୍ଦ ଅଛେ—ବ୍ରହ୍ମନରୁପଣଗୀତା ।
୨ । ପ୍ରାଚୀନ ଜଳଯାନବିଶେଷ—
2. A kind of boat used in ancient India.
[ଦ୍ର—ଭୋଜରାଜାଙ୍କ 'ଯୁକ୍ତିକଳ୍ପତରୁ' ଗ୍ରନ୍ଥରେ ଏହାର ବିଶେଷ ବିବରଣ ଦ୍ରଷ୍ଟବ୍ୟ । ଜଗବନ୍ଧୁ—ପ୍ରାଚୀନ ଉତ୍କଳ । ]

**ଦୀର୍ଘକଣ୍ଠ**—ସ. ବିଣ. ପୁଂ ( ଦୀର୍ଘ + କଣ୍ଠ; ବହୁବ୍ରୀହି ) ଲମ୍ବ ବେକ ଥିବା (ଜନ୍ତୁ)—Long-necked (animal); having a long neck.
Dīrghakaṇṭha
ଦୀର୍ଘକଣ୍ଠକ } ଅନ୍ୟରୂପ
ଦୀର୍ଘକନ୍ଧର }
ବି—ବକ ପକ୍ଷୀ—Indian crane; Ardea Nivea (bird).

**ଦୀର୍ଘ କାଣ୍ଡ**—ସ. ବିଣ ( ଦୀର୍ଘ + କାଣ୍ଡ, ବହୁବ୍ରୀହି )—ଯାହାର କାଣ୍ଡ ବା ଶାଖା ଲମ୍ବ—Long-stemmed, having a long trunk.
Dīrgha kāṇḍa
ଦେ. ବି—୧ । ବିସ୍ତୃତ କାହାଣୀ—1. A long story.
ମହାକାଣ୍ଡ ୨ । ବୃହତ୍ ବ୍ୟାପାର; ଘଟଣାଚକ୍ର, କାରଖାନା—
2 Much ado

**ଦୀର୍ଘ କାମୋଦୀ**—ଦେ ବି—ରାଗବିଶେଷ—
Dīrgha kāmodī A tune.
[ଦ୍ର—ରାଗ ତଳେ କୋଷ୍ଟ ଦ୍ରଷ୍ଟବ୍ୟ ।]

**ଦୀର୍ଘକାୟ**—ସ. ବଣ, ପୁଂ (ଦୀର୍ଘ + କାୟ ଯାହାର; ବହୁବ୍ରୀହି) ଡେଙ୍ଗା—
Dīrghakāya Tall in stature.
(ଦୀର୍ଘକାୟା—ସ୍ତ୍ରୀ)

**ଦୀର୍ଘକାଳ**—ସ. ବ (ଦୀର୍ଘ + କାଳ; କର୍ମଧା)—ବହୁକାଳ—
Dīrghakāla Long time.

**ଦୀର୍ଘ କାଷ୍ଠ**—ସ. ବ (କର୍ମଧା, ଦୀର୍ଘ + କାଷ୍ଠ)—କଡ଼ି—
Dīrgha kāshtha Beam.

**ଦୀର୍ଘ କେଶ**—ସ. ବଣ. ପୁଂ (ଦୀର୍ଘ + କେଶ ଯାହାର, ବହୁବ୍ରୀହି)—
Dīrgha keśa ଯାହାର ବାଳ ଲମ୍ବ—Having long hairs; long-haired.
ଦୀର୍ଘକେଶୀ } ଅନ୍ୟରୂପ
ଦୀର୍ଘକେଶା }
ବ—ଭାଲୁ—Bear.

**ଦୀର୍ଘ ଗତି**—ସ. ବ (ବହୁବ୍ରୀହି; ଦୀର୍ଘ + ଗତି) ଓଟ; ଉଷ୍ଟ୍ର—
Dīrgha gati Camel.

**ଦୀର୍ଘ ଗ୍ରୀବ**—ସ ବଣ. ପୁଂ (ଦୀର୍ଘ + ଗ୍ରୀବା ଯାହାର; ବହୁବ୍ରୀହି)—
Dīrgha grība ଦୀର୍ଘ ଗ୍ରୀବାଯୁକ୍ତ—Long-necked.
(ଦୀର୍ଘଗ୍ରୀବା—ସ୍ତ୍ରୀ) (ଯଥା—ଓଟ, ଜିରାଫ୍ ।)
(ଦୀର୍ଘଘାଟିକ—ଅନ୍ୟରୂପ)
ବ—୧ । ଉଷ୍ଟ୍ର—1. The camel.
୨ । ବଗ—2. A crane.

**ଦୀର୍ଘଜିହ୍ୱ**—ସ. ବଣ. ପୁଂ (ଦୀର୍ଘ + ଜିହ୍ୱା, ବହୁବ୍ରୀହି)—ବଡ଼ ଜିଭବିଶିଷ୍ଟ—
Dīrghajihwa Long-tongued,
(ଦୀର୍ଘଜିହ୍ୱା—ସ୍ତ୍ରୀ) ବ—୧ । ସାପ—1. Serpent.
୨ । ଦାନବବିଶେଷ—2. Name of a demon.

**ଦୀର୍ଘଜିହ୍ୱା**—ସ. ବଣ. ସ୍ତ୍ରୀ (ଦୀର୍ଘଜିହ୍ୱ + ଆ)—ଦୀର୍ଘଜିହ୍ୱର ସ୍ତ୍ରୀଲିଙ୍ଗ—
Dīrghajihwā Feminine of Dīrghajihwa.
ସ. ବି. ସ୍ତ୍ରୀ—୧ । ବିରୋଚନର କନ୍ୟା ରାକ୍ଷସୀବିଶେଷ (ଏହାକୁ ଇନ୍ଦ୍ର ବଧ କରିଥିଲେ)—1. Name of a demoness
୨ । କାର୍ତ୍ତିକେୟଙ୍କ ଅନୁଚରୀ ମାତୃଗଣ ମଧ୍ୟରୁ ଏକଜଣ—
2 One of the matron Deities, a feminine companion of Kārttikeya.

**ଦୀର୍ଘଜୀବନ**—ସ. ବ (ଦୀର୍ଘ + ଜୀବନ; କର୍ମଧା)—ବହୁକାଳ ବଞ୍ଚିବା—
Dīrghajībana Longivity; long life.

**ଦୀର୍ଘଜୀବୀ**—ସ. ବଣ. ପୁଂ (ଦୀର୍ଘ + ଜୀବ + କର୍ତ୍ତୃ. ଇନ୍ ୧ମା. ଏକ)—
Dīrghajībī ଦୀର୍ଘାୟୁଃ; ଯେ ବହୁଦିନ ବଞ୍ଚେ; ଚିରଞ୍ଜୀବୀ—Long-lived.
(ଦୀର୍ଘଜୀବିନୀ—ସ୍ତ୍ରୀ)

**ଦୀର୍ଘଜଂଘ**—ସଂ. ବିଣ. ପୁଂ ( ଦୀର୍ଘ + ଜଂଘା; ବହୁବ୍ରୀହି )—ଲମ୍ବ ଜଙ୍ଘଆ-
Dīrgha jamgha ବିଶିଷ୍ଟ—Having long thighs.
(ଦୀର୍ଘଜଂଘା—ସ୍ତ୍ରୀ) ବି—୧ । ବଗ—1. Ardea.
(ଦୀର୍ଘସକ୍ଥ—ଅନ୍ୟରୂପ) ୨ । ଓଟ—2. Camel

**ଦୀର୍ଘତନୁ**—ସଂ. ବିଣ. (ଦୀର୍ଘ + ତନୁ; ବହୁବ୍ରୀହି)—ଦୀର୍ଘ ଶରୀରବିଶିଷ୍ଟ—
Dīrghatanu Having 'a long body.
ବି.— ଦୀର୍ଘତରୁ (ଦେଖ)—Dīrghataru (See)

**ଦୀର୍ଘତପାଃ**—ସଂ. ବିଣ. (ବହୁବ୍ରୀହି; ଦୀର୍ଘ—ତପସ୍; ୧ମା. ୧ବ.)—
Dīrgha tapāh ଦୀର୍ଘକାଳ ତପଃସାଧନକାରୀ —
Practising austerities for a long time
ସଂ. ବି —୧ । ଗୌତମ ଋଷି (ପ୍ରକୃତିବାଦ)—
1. A name of sage Gotama
୨ । ଭରତବଂଶୋଦ୍ଭୁ ଆୟୁ ବଂଶୀୟ ଏକ ରାଜା—(ଏ ବହୁକାଳ ତପସ୍ୟା କରିଥିଲେ)—2, Name of a king of ancient India.

**ଦୀର୍ଘତମ**—ସଂ ବିଣ. ପୁଂ. (ଦୀର୍ଘ + ଅତିଶୟାର୍ଥେ. ତମ)—
Dīrghatama ଅନେକ ବସ୍ତୁ ମଧ୍ୟରେ ସବୁଠାରୁ ଲମ୍ବା, ସବୁଠାରୁ
(ଦୀର୍ଘତମା—ସ୍ତ୍ରୀ) ଦୀର୍ଘ—Longest.

**ଦୀର୍ଘତମା**—ସଂ. ବି. ( ଦୀର୍ଘ + ତମସ୍; ୧ମା. ୧ବ )—
Dīrghatamā ୧ । ଧନ୍ୱନ୍ତରିଙ୍କ ପିତା ଓ କାଶୀରାଜାଙ୍କ ପୁତ୍ର ( ଦ୍ୱୀତେନ୍ଦ୍ର )—1 Name of the father of Dhanwantarī.
୨ । ଦେବଗୁରୁ ବୃହସ୍ପତିଙ୍କ ଜ୍ୟେଷ୍ଠ ଭ୍ରାତା ଓ ଗୌତମଙ୍କ ପିତା; ଋଷିବିଶେଷ (ଏ ଜନ୍ମାନ୍ଧ ଥିବାରୁ ଏହି ନାମ)—
2 Name of a sage; elder brother of Bṛuhaspati and father of Gautama.

[ ଦ୍ର— ଋଗ୍ବେଦର ପ୍ରଥମ ମଣ୍ଡଳରେ ଏ ଋଷିଙ୍କ ରଚିତ କେତେଗୁଡ଼ିଏ ସୂକ୍ତ ଅଛି । ମହାଭାରତରେ ଲେଖା ଅଛି ଯେ, ଉତଥ୍ୟ ନାମରେ ଜଣେ ତେଜସ୍ୱୀ ଋଷି ଥିଲେ । ତାଙ୍କ ସ୍ତ୍ରୀ ମମତା ଗର୍ଭବତୀ ଥିବା ଅବସ୍ଥାରେ ଉତଥ୍ୟଙ୍କ ସାନ ଭାଇ ବୃହସ୍ପତି ମମତାଙ୍କ ନିଷେଧସତ୍ତ୍ୱେ ତାଙ୍କ ସହବାସ କରିବାରୁ ଗର୍ଭସ୍ଥ ବାଳକ ଗର୍ଭରେ ଥାଇ ବୃହସ୍ପତିଙ୍କୁ ନିଷେଧ କଲେ ଓ ଗର୍ଭସ୍ଥ ଶିଶୁ ବୃହସ୍ପତିଙ୍କ ବୀର୍ଯ୍ୟକୁ ନିଜର ପାଦଦ୍ୱାରା ରୋକି ଦେଲେ । ଏଥିରେ ବୃହସ୍ପତି ଶିଶୁକୁ ଶାପ ଦେଲେ ଯେ, 'ତୁ ଦୀର୍ଘତମା ( ଅନ୍ଧ ) ହୋଇ ଜନ୍ମିବୁ ।' ତଦନୁସାରେ ଏ ଶିଶୁ ଜନ୍ମାନ୍ଧ ହୋଇ ଜନ୍ମିଲେ ଓ ଏହାଙ୍କ ନାମ ଦୀର୍ଘତମା ହେଲା । ଦୀର୍ଘତମା ପ୍ରଦ୍ୱେଷୀ ନାମ୍ନୀ ବ୍ରାହ୍ମଣକନ୍ୟାକୁ ବିବାହ କଲେ ଓ ତାଙ୍କ ଔରସରେ ଗୌତମ ଆଦି କେତେ ପୁତ୍ର ଜନ୍ମିଲେ । ପରେ ଦୀର୍ଘତମା କାମଧେନୁଙ୍କଠାରୁ ଗୋଧର୍ମ ଶିକ୍ଷା କରି ଶ୍ରଦ୍ଧାପୂର୍ବକ ତାଙ୍କ ସଙ୍ଗେ ମୈଥୁନ ଆଦିରେ ପ୍ରବୃତ୍ତ ହେବାରୁ ପ୍ରଦ୍ୱେଷୀ ତାଙ୍କ ଉପରେ କ୍ରୁଦ୍ଧା ହୋଇ ତାଙ୍କୁ ପୋଷିବାକୁ ମନା କଲେ । ଦୀର୍ଘତମା ଏଥିରେ କ୍ରୁଦ୍ଧ ହୋଇ ଶାପ ଦେଲେ 'ଆଜିଠାରୁ ଆମ୍ଭେ ସମାଜରେ ଏହି ମର୍ଯ୍ୟାଦା ବାନ୍ଧିଲୁଁ ଯେ ପ୍ରତ୍ୟେକ ସ୍ତ୍ରୀ ଏକମାତ୍ର ପତି ସଙ୍ଗେ ଅନୁରକ୍ତ ହେବ ଓ ପତି ଜୀଇ ଥାଉଁ ଥାଉଁ ବା ମୃତ ହେଲେମଧ୍ୟ ଅନ୍ୟ ପତି ଗ୍ରହଣ କଲେ ପତିତା ହେବ । ପ୍ରଦ୍ୱେଷୀ କ୍ରୁଦ୍ଧା ହୋଇ ତାଙ୍କୁ ଗଙ୍ଗାରେ ପକାଇ ଦେଲେ । ସେଠାରୁ ସେହି ସମୟରେ ଗାଧୋଇବାକୁ ଆସିଥିବା ବଳି ରାଜା ତାଙ୍କୁ ନେଇ ନିଜ ଘରେ ରଖିଲେ ଓ ରାଜାଙ୍କ ପ୍ରାର୍ଥନା ଅନୁସାରେ ସେ ରାଣୀ ସୁଦେଷ୍ଣାଙ୍କ ଗର୍ଭରେ ଅଙ୍ଗ, ବଙ୍ଗ, କଳିଙ୍ଗ, ପୁଣ୍ଡ୍ର ଓ ସୁମ୍ହ ନାମକ ଅତ୍ୟନ୍ତ ତେଜସ୍ୱୀ ପୁତ୍ର ଜନ୍ମାଇଲେ ଓ ଏହାଙ୍କ ଆଶୀର୍ବାଦରେ ଏହି ପୁତ୍ରମାନଙ୍କ ନାମରେ ଦେଶମାନଙ୍କ ନାମ ହେଲା । ହି. ଶବ୍ଦସାଗର ]

**ଦୀର୍ଘତର**—ସଂ. ବିଣ. ପୁଂ. (ଦୀର୍ଘ + ଅତିଶୟାର୍ଥେ. ତର)— ଦୁଇ ବସ୍ତୁ
Dīrghatara ମଧ୍ୟରେ ଲମ୍ବ—Longer.
(ଦୀର୍ଘତରା—ସ୍ତ୍ରୀ)

**ଦୀର୍ଘତରୁ**—ସଂ. ବି. (ଦୀର୍ଘ + ତରୁ; କର୍ମଧା) ;— ତାଳଗଛ—
Dīrghataru Palm tree.
(ଦୀର୍ଘଦ୍ରୁ—ଅନ୍ୟରୂପ)

**ଦୀର୍ଘତା**—ସଂ ବି. (ଦୀର୍ଘ + ଭାବେ. ତା) — ୧ । ବହୁବ୍ୟାପିତା; ଲମ୍ବିକୁ;
Dīrghatā ଲମ୍ବ—1. Length.
(ଦୀର୍ଘତ୍ୱ—ଅନ୍ୟରୂପ) ୨ । ବିସ୍ତାର—2 Extent.

**ଦୀର୍ଘଦଣ୍ଡ** - ସଂ. ବି. (ଦୀର୍ଘ + ଦଣ୍ଡ; କର୍ମଧା)—୧ । ଲମ୍ବବାଡ଼ି—
Dīrghdanda 1. A long stick; a long staff.
୨ । ଦୀର୍ଘକାଳବ୍ୟାପୀ ରାଜଦଣ୍ଡ—2. A long term of punishment; long sentence.
୩ । (ଦୀର୍ଘ + ଦଣ୍ଡ; ଯାହାର ବହୁବ୍ରୀହି) – ଗବଗଛ—
3. The castor-seed plant.
୪ । ତାଳ ଗଛ—4. The palm tree.

**ଦୀର୍ଘଦର୍ଶୀ**— ସଂ. ବିଣ. ପୁଂ (ଦୀର୍ଘ + ଦୃଶ୍ ଧାତୁ + ଇନ୍;) ୧ମା. ୧ବ )—
Dīrghadarśī ୧ । ଦୂରଦର୍ଶୀ; ପରିଣାମଦର୍ଶୀ—
(ଦୀର୍ଘଦର୍ଶିନୀ—ସ୍ତ୍ରୀ) 1. Provident; far-seeing; far-sighted;
(ଦୀର୍ଘଦର୍ଶିତା — ବି) prudent.
୨ । ପ୍ରାଜ୍ଞ; ପଣ୍ଡିତ—2. Learned; wise; sagacious.
୩ । ଯେ ବହୁଦୂର ପର୍ଯ୍ୟନ୍ତ ଦେଖି ପାରେ—
3. Long-sighted; who can look to very distant objects.
ବି.—୧ । ଶକୁନ; ଶାଗୁଣା—1. Vulture.
୨ । ଭାଲୁ—2. A bear.
୩ । ପେଚା—3 An owl.

**ଦୀର୍ଘଦ୍ରୁମ**—ସଂ. ବି.—ଶିମିଳୀ ଗଛ (ହି. ଶବ୍ଦସାଗର)—
Dīrgha drūma The silk cotton tree.

**ଦୀର୍ଘଦୃଷ୍ଟି**—ସଂ. ଙଣ. ଓ ବି. ( ଦୀର୍ଘ + ଦୃଷ୍ଟି ଯାହାର, ବହୁବ୍ରୀହି )—
Dīrghadṛushṭi ୧ । ଦୀର୍ଘଦର୍ଶୀ (ଦେଖ)
1. Dīrghadarśī (See).
୨ । ଦୂରବୀକ୍ଷଣ ଯନ୍ତ୍ର ( ପ୍ରକୃତିବାଦ )—2. Telescope.

**ଦୀର୍ଘନାଦ**—ସଂ. ବିଣ ( ବହୁବ୍ରୀହି )—ଯହିଁରୁ ଉଚ୍ଚ ଶବ୍ଦ ବାହାରେ—
Dīrghanāda Loud sounding.
ସଂ. ବି—୧ । ଶଙ୍ଖ (ହି. ଶବ୍ଦସାଗର)—1. Conch.

୨ । କୁକ୍କୁର—2. Dog (Apte)

୩ । କୁକୁଡ଼ା—3. Cock (Apte)

ଦୀର୍ଘନାସ—ସ. ବଣ ( ଦୀର୍ଘ+ନାସା ଯାହାର, ବହୁବ୍ରୀହି )—
Dirghanāsa ନାକୁଆ; ବଡ଼ନାକା—Long-nosed.
(ଦୀର୍ଘନାସିକ—ଅନ୍ୟରୂପ)

ଦୀର୍ଘ ନିଦ୍ରା - ସ. ବ (ଦୀର୍ଘ+ନିଦ୍ରା, କର୍ମଧା) ୧ । ବହୁକାଳବ୍ୟାପୀ ନିଦ୍ରା—
Dirgha nidrā 1. Long sleep.

୨ । ମହାନିଦ୍ରା; ମୃତ୍ୟୁ—2. Death; 'the sleep that knows no waking.'

ଦୀର୍ଘ ନିଶ୍ୱାସ—ସ. ବ ( ଦୀର୍ଘ+ନିଶ୍ୱାସ; କର୍ମଧା )—୧ । ଶ୍ରମ ବା ଆସନ୍ନ
Dirgha niśwāsa ମୃତ୍ୟୁପୀଡ଼ାଜନିତ ଦୀର୍ଘକାଳବ୍ୟାପୀ ନିଶ୍ୱାସ;
(ଦୀର୍ଘ ନିଃଶ୍ୱାସ—ଅନ୍ୟରୂପ) ଊର୍ଦ୍ଧ୍ୱଶ୍ୱାସ—1 Long breath; gasping.

୨ । ଦୁଃଖଜନିତ ଦୀର୍ଘକାଳସ୍ଥାୟୀ ନିଶ୍ୱାସ—
2. Sigh; long-drawn breath due to grief.

ଦୀର୍ଘ ପକ୍ଷ—ସ. ବଣ (ବହୁବ୍ରୀହି; ଦୀର୍ଘ ଅଟେ ପକ୍ଷ ଯାହାର)—ଦୀର୍ଘପକ୍ଷବିଶିଷ୍ଟ;
Dirgha paksha ଯାହାର ପକ୍ଷ ଲମ୍ବ—Long-tailed.

ସ. ବ—୧ । (ବହୁବ୍ରୀହି)—କଳିଙ୍ଗ ପକ୍ଷୀ (ହି. ଶବ୍ଦସାଗର)—
ମୁନିଆଁ ଚଢ଼େଇ—1 The forktailed- Shrike Uroloncha Malabarica (Apte; M W.)

୨ । ଲମ୍ବ ଡେଣା—2. Long wing.

ଦୀର୍ଘ ପଟୋଲିକା - ସ. ବି—ପଟୋଲ ଜାତୀୟ ଲମ୍ବ ଫଳବିଶେଷ, ମଟ୍ଟର
Dirgha paṭolikā ଭରଡ଼ା; କୁନ୍ଦୁରୁ; ଧୁନ୍ଦୁଲ; ଏକ ପ୍ରକାର
ଧୁନ୍ଦୁଲ ଲତା ଫଳ; ଭୁଡ଼ୁକା—A kind of edible fruit
**परवल, कुन्दुरकि** like Patola (longer and more slender); Luffa Aegytica

ଦୀର୍ଘ ପତ୍ର—ସ. ବିଣ (ବହୁବ୍ରୀହି; ଦୀର୍ଘ+ପତ୍ର)—ଯେଉଁ ବୃକ୍ଷ ଲତାଦିର ବଡ଼
Dirgha patra ପତ୍ର ଥାଏ—Long-leafed.

ସ. ପୁ.—୧ । (ବହୁବ୍ରୀହି)—ରକ୍ତପଲାଣ୍ଡୁ; ନାଲି ପିଆଜ;
(ହି. ଶବ୍ଦସାଗର)—1. Red onion.

୨ । (ବହୁବ୍ରୀହି) ବିଷ୍ଣୁକନ୍ଦ (ହି ଶବ୍ଦସାଗର)—
2. A bulbuous plant.

୩ । (ବହୁବ୍ରୀହି) ହରଦର୍ଭ; ଏକପ୍ରକାର କୁଶ (ହି. ଶବ୍ଦସାଗର)
3. A kind of long-leafed Kusa grass.

୪ । (ବହୁବ୍ରୀହି)—ଆଖୁ ଗଛ—
4. The sugarcane plant (Apte).

୫ । ( ବହୁବ୍ରୀହି ) ତାଳ ଗଛ—
5. The palm tree ( Apte ).

୬ । (ବହୁବ୍ରୀହି) କୋଚିଲା ଗଛ ( ହି. ଶବ୍ଦସାଗର )—
6. Strychnus Nuxvomica tree.

୭ । (କର୍ମଧା) ଲମ୍ବ ପତ୍ର—7. Long leaf.

ଦୀର୍ଘପତ୍ରକ—ସ. ବଣ (ଦୀର୍ଘପତ୍ର+କ)—ଦୀର୍ଘ ପତ୍ର (ଦେଖ)
Dirghapatraka Dirgha patra (See).

ସ. ବ—୧ । ନାଲି ରସୁଣ ( ହି. ଶବ୍ଦସାଗର )—
1. Red garlic.

୨ । ଏରଣ୍ଡ; ଗବ ଗଛ (ହି ଶବ୍ଦସାଗର)—
2. The castor-oil seed plant

୩ । ବେତସ; ବେତ ( ହି. ଶବ୍ଦସାଗର )—
3. The Ratan-cane creeper.

୪ । କସାଳ ( ହି. ଶବ୍ଦସାଗର )—
4. The Bamboo tree.

୫ । ଜଳମଧୁକ ( ହି. ଶବ୍ଦସାଗର )—5. A species of Mahwa tree growing near water.

ଦୀର୍ଘପତ୍ରା—ସ. ବଣ. ସ୍ତ୍ରୀ (ଦୀର୍ଘପତ୍ର+ସ୍ତ୍ରୀ. ଆ)—ଦୀର୍ଘପତ୍ରର ସ୍ତ୍ରୀଲିଙ୍ଗ—
Dirghapatrā Feminine of Dirghapatra.

ସ. ବ—୧ । କେତକୀ ( ହି ଶବ୍ଦସାଗର )—
1. The yellow flowered variety of screw-pine; Pandanus odoratissimus.

୨ । ବଣ ଜାମୁ ( ହି. ଶବ୍ଦସାଗର )—
2. The wild variety of Blackberry tree.

୩ । ଚକ୍ରପର୍ଣ୍ଣୀ ( ହି. ଶବ୍ଦସାଗର )—
3. A king of plant..

୪ । ଶାଳପର୍ଣ୍ଣୀ ( ଦେଖ ) ( ହି. ଶବ୍ଦସାଗର )—
4. Śālaparṇṇi ( See ).

ଦୀର୍ଘପତ୍ରିକା—ସ. ବଣ. ସ୍ତ୍ରୀ ( ଦୀର୍ଘପତ୍ରକ+ସ୍ତ୍ରୀ. ଆ )—ଦୀର୍ଘପତ୍ର (ଦେଖ)
Dirghapatrikā Dirghapatra (See).

ସ. ବ—୧ । ଧଳା ବଚ ( ହି. ଶବ୍ଦସାଗର )—
1. The white-rooted variety of Oris plant.

୨ । ଘୃତକୁମାରୀ ( ହି. ଶବ୍ଦସାଗର )—2. Aloes.

୩ । ଶ୍ୱେତ ପୁନର୍ନବା (ହି. ଶବ୍ଦସାଗର )—3. Hogweed.

୪ । ଶାଳପର୍ଣ୍ଣୀ (ହି. ଶବ୍ଦସାଗର) ( ଦେଖ )
4. Śālaparṇṇi (See).

ଦୀର୍ଘପତ୍ରୀ—ସ. ବ (ଦୀର୍ଘପତ୍ର+ଇନ୍; ୧ମା. ୧ବ)—୧ । ପଳାଶୀ ଲତା—
Dirghapatri 1 The creeping variety of Butea Frondosa.

୨ । ମହାଚଂଚୁ ଶାକ ( ହି. ଶବ୍ଦସାଗର )—2. A kind of pot herb.

ଦୀର୍ଘ ପାଦ—ସ. ବଣ (ଦୀର୍ଘ+ପାଦ; ବହୁବ୍ରୀହି)—ଯାହାର ଲମ୍ବ ଗୋଡ଼
Dirgha pāda ଅଛି; ଲମ୍ବପାଦଆ; ଡେଙ୍ଗେରଗୋଡ଼ିଆ—
ଦୀର୍ଘପାଦା } ସ୍ତ୍ରୀ Long-legged; long-footed.
ଦୀର୍ଘପାଦୀ }

ବ—୧ । ବଡ଼ି ଅକାଳ୍ପ—
1. The Adjutant bird.

୨ । ସାରସ (ହି. ଶବ୍ଦସାଗର)—2. The Crane.

ଦୀର୍ଘ ପାଦପ—ସ. ବ (ଦୀର୍ଘ+ପାଦପ; କର୍ମଧା)—୧ । ତାଳ ଗଛ—
Dirgha pādapa 1. Palm tree.

୨ । ଗୁଆ ଗଛ—2. The areca-nut tree

୩ । ନଡ଼ିଆ ଗଛ—3. The cocoanut tree (Apte).

ଦୀର୍ଘ ପୃଷ୍ଠ—ସ. ବଣ ( ଦୀର୍ଘ+ପୃଷ୍ଠ ଯାହାର; ବହୁବ୍ରୀହି )—
Dirgha prushṭha ଲମ୍ବପିଠିଆ—Long-backed.
(ଦୀର୍ଘପୃଷ୍ଠା—ସ୍ତ୍ରୀ) ସ. ବ.—ସର୍ପ—Snake.

ଦୀର୍ଘପ୍ରଜ୍ଞ—ସଂ ବିଣ. ପୁଂ (ବହୁବ୍ରୀହି; ଦୀର୍ଘ+ପ୍ରଜ୍ଞା)—ବହୁଦର୍ଶୀ—
Dirghaprajnya Far-sighted· sagacious.
(ଦୀର୍ଘପ୍ରଜ୍ଞା—ସ୍ତ୍ରୀ) ସଂ. ବି—ଦ୍ୱାପରର ରାଜା ବୃଷପର୍ବାଙ୍କ ନାମ
(ଦୀର୍ଘପ୍ରଜ୍ଞତା—ବି) (ହି. ଶବ୍ଦସାଗର)—A name of king Brushaparbā.

ଦୀର୍ଘ ପ୍ରସ୍ଥ—ଦେ. ବି (ସ. ଦୈର୍ଘ୍ୟ ଓ ପ୍ରସ୍ଥ)—(କୌଣସି ପଦାର୍ଥ ବା ଜମିର)
Dirgha prati ଲମ୍ବ ଓ ଚଉଡ଼ା—Length and breadth (of a thing or plot of land).
ଦୀର୍ଘପ୍ରସ୍ତ } ଅନ୍ୟରୂପ
ଦୀର୍ଘପ୍ରସ୍ଥ }
दीर्घ प्रस्थ, **लम्बाइ चौड़ाइ**

ଦୀର୍ଘ ଫଳ ସ. ବି (ବହୁବ୍ରୀହି; ଦୀର୍ଘ+ଫଳ; ଏହାର ଫଳ ଲମ୍ବ ଥିବାରୁ)
Dirgha phala ଆରଗ୍ୱଧ; ସୁନାରୀଗଛ (ହି. ଶବ୍ଦସାଗର) (ଦେଖ) Sunāri tree (See)
ସ. ବି.—ଦୀର୍ଘଫଳବିଶିଷ୍ଟ (ବୃକ୍ଷ)—(tree) Having long fruits.
(ଦୀର୍ଘଫଳା—ସ୍ତ୍ରୀ)

ଦୀର୍ଘଫଳକ—ସ. ବି (ଦୀର୍ଘଫଳ+କ)—ଅଗସ୍ତିଗଛ (ହି. ଶବ୍ଦସାଗର)—
Dirghaphalaka Sesbania Grandflora

ଦୀର୍ଘଫଳା—ସଂ. ବିଣ ସ୍ତ୍ରୀ (ଦୀର୍ଘଫଳ+ସ୍ତ୍ରୀ. ଆ)—ଦୀର୍ଘଫଳର ସ୍ତ୍ରୀଲିଙ୍ଗ—
Dirghaphalā Feminine of Dirghaphala.
(ଦୀର୍ଘଫଳକା—ଅନ୍ୟରୂପ) ସଂ. ବି—୧ । ଜରୁକା ଲତା (ହି. ଶ)—
1. A kind of creeper.
୨ । କପିଳ ଦ୍ରାକ୍ଷା ଲତା (ହି. ଶବ୍ଦସାଗର)—
2. A kind of vine with long grapes.

ଦୀର୍ଘବକ୍ତ୍ର—ସଂ. ବିଣ. ପୁଂ (ବହୁବ୍ରୀହି; ଦୀର୍ଘ+ବକ୍ତ୍ର)—ବଡ଼ ମୁହାଁ—
Dirghabaktra Big-faced.
(ଦୀର୍ଘବକ୍ତ୍ରା—ସ୍ତ୍ରୀ) ସଂ. ବି—ହାତୀ—Elephant

ଦୀର୍ଘବଚ୍ଛିକା—ସଂ. ବି—କୁମ୍ଭୀର (ହି. ଶବ୍ଦସାଗର)—
Dirghabachchhikā Alligator.

ଦୀର୍ଘବାଲା—ସଂ. ବିଣ. ସ୍ତ୍ରୀ (ବହୁବ୍ରୀହି; ଦୀର୍ଘ+ବାଲ+ଆ)—ଦୀର୍ଘକେଶ-
Dirghabālā ବିଶିଷ୍ଟା (ସ୍ତ୍ରୀ)—Long-haired
(ଦୀର୍ଘବାଳ—ପୁଂ) ସ ବି. ସ୍ତ୍ରୀ—ଚମରୀଗୋ—The cow yak

ଦୀର୍ଘ ମାତ୍ରା—ସଂ. ବି (ଦୀର୍ଘ+ମାତ୍ରା, କର୍ମଧା)—ଆଧୁନିକ ଗଣିତ ପରିଭାଷା)
Dirgha mātrā ୧ । ବ୍ରାକେଟ୍ ବା ବନ୍ଧନୀ ଚିହ୍ନ, (ଯଥା ( ); [ ] (ବ୍ରାକେଟ୍)—1. Bracket signs.
୨ । (ଆଧୁନିକ ଗଣିତ ପରିଭାଷା) ଏକପ୍ରକାର ବନ୍ଧନୀ ବା ବ୍ରାକେଟ୍ ଚିହ୍ନ; ରାଶିଗଣର ଊର୍ଦ୍ଧ୍ୱରେ ଟଣାଯିବା ବନ୍ଧନୀ-ଜ୍ଞାପକ ରେଖା—2. (mathematics) The sign of vinqulum; a line or link drawn over more than one number indicating or serving the purpose of a bracket.
[ଦ୍ର—ଯେଉଁ ରାଶିମାନଙ୍କ ଉପରେ ଏପରି ଚିହ୍ନ ଥାଏ ସେମାନଙ୍କୁ ପ୍ରଥମେ ଯୋଗ, ବିୟୋଗ, ଗୁଣନ, ହରଣ ଆଦି କରିବା ପରେ ତତ୍‌ପାର୍ଶ୍ୱବର୍ତ୍ତୀ ଅନ୍ୟ ରାଶିମାନଙ୍କ ସମ୍ବନ୍ଧେ ସୂଚିତ ଗାଣିତିକ କର୍ମ କରାଯାଏ । ଯଥା ($୫ \times \overline{୫ + ୫}$); ଏଠାରେ ପ୍ରଥମେ ଦ୍ୱିତୀୟ ୫ ସଙ୍ଗେ ତୃତୀୟ ୫କୁ ମିଶାଇବା ପରେ ଯୋଗଫଳକୁ ୫ରେ ଗୁଣିବାକୁ ହେବ । ($୫ \times \overline{୫ + ୫}$) ଏହି ସ୍ଥଳରେ ୨ୟ ଓ ୩ୟ ସଂଖ୍ୟା ଉପରେ ଦୀର୍ଘମାତ୍ରା ଚିହ୍ନ ଥିବାରୁ ଏଥିର ଫଳ ହେଲା ୫୦ । କିନ୍ତୁ ଯେବେ ଦୀର୍ଘମାତ୍ରା ଚିହ୍ନ ନ ରହିବ ( ୫×୫+୫ ) ତେବେ ପ୍ରଥମ ୫କୁ ଦ୍ୱିତୀୟ ୫ରେ ଗୁଣି ଗୁଣନଫଳରେ ତୃତୀୟ ୫ ଯୋଗ କରାଯିବ ଓ ତହିଁର ଫଳ ହେବ ୩୦ । ]
୩ । (ବ୍ୟାକରଣ) ବ୍ୟଞ୍ଜନ ବର୍ଣ୍ଣରେ ଯୁକ୍ତ ଦୀର୍ଘସ୍ୱର—
3. The sign of a long vowel joined to a consonant.

ଦୀର୍ଘମାତ୍ରିକ—ସ. ବିଣ ( ଦୀର୍ଘ+ମାତ୍ରା+ଇକ ) ଯେଉଁ ଛନ୍ଦରେ ଦୀର୍ଘ
Dirghamātrika ମାତ୍ରା ଥାଏ—A metre having the consonants joined to long vowels.

ଦୀର୍ଘ ମାରୁତ—ସ. ବି (ଦୀର୍ଘ+ମାରୁତ; ବହୁବ୍ରୀହି)—ହାତୀ—
Dirgha māruta Elephant.

ଦୀର୍ଘମୁଖୀ—ସ. ବିଣ. ସ୍ତ୍ରୀ (ବହୁବ୍ରୀହି, ଦୀର୍ଘ+ମୁଖ+ଈ)—ଲମ୍ବମୁହାଁ—
Dirgha mukhi Long-faced (woman).
(ଦୀର୍ଘମୁଖ—ପୁଂ) ସ. ବି.—ଛୁଚୁନ୍ଦ୍ରା—The musk rat (Apte).

ଦୀର୍ଘରଙ୍ଗା—ସ. ବି. ସ୍ତ୍ରୀ. (ବହୁବ୍ରୀହି; ଦୀର୍ଘ+ରଙ୍ଗ+ଆ; ଯାହାର ରଙ୍ଗ
Dirgha rangā ଦୀର୍ଘକାଳ ସ୍ଥାୟୀ)—ହଳଦୀ—Turmeric.

ଦୀର୍ଘ ରତ—ସ. ବି. ସ୍ତ୍ରୀ (ବହୁବ୍ରୀହି; ଦୀର୍ଘ+ରତ; ଯାହାର ରମଣ ଦୀର୍ଘକାଳ-
Dirgha rata ବ୍ୟାପୀ ଅଟେ)—ଦୀର୍ଘକାଳ ରମଣକାରୀ—
(ଦୀର୍ଘରତା—ସ୍ତ୍ରୀ) Copulating for a length of time.
ସଂ. ବି.—କୁକୁର—The dog.

ଦୀର୍ଘ ରଦ—ସଂ. ବିଣ. ପୁଂ (ଦୀର୍ଘ+ରଦ=ଦାନ୍ତ; ବହୁବ୍ରୀହି)—ବଡ଼
Dirgha rada ଦାନ୍ତବିଶିଷ୍ଟ; ଦାନ୍ତୁରି—Having protuberant teeth; having long teeth or tusks.
(ଦୀର୍ଘରଦା—ସ୍ତ୍ରୀ)
ବି.—ବାରାହା; ଶୂକର—A hog; a boar.

ଦୀର୍ଘ ରସନ—ସଂ. ବିଣ. ଓ ବି. (ଦୀର୍ଘ+ରସନା; ବହୁବ୍ରୀହି)—
Dirgha rasana ଦୀର୍ଘଜିହ୍ୱ (ଦେଖ)—
(ଦୀର୍ଘରସନା—ସ୍ତ୍ରୀ) Dirghajihwa (See)

ଦୀର୍ଘରାଗା—ସଂ. ବି. ସ୍ତ୍ରୀ—(ଦୀର୍ଘ+ରାଗ=ରଞ୍ଜନ; ବହୁବ୍ରୀହି)—
Dirgharāgā ହଳଦୀ—Turmeric.

ଦୀର୍ଘରାତ୍ର—ସଂ. ବି. (ଦୀର୍ଘ+ରାତ୍ରି; କର୍ମଧା )—ବଡ଼ ରାତ୍ର—
Dirgha rātra Long night.

ଦୀର୍ଘରୋମା—ସଂ. ବି. (ଦୀର୍ଘ+ରୋମନ୍; ୧ମା. ୧ବ.)—ଦୀର୍ଘ ଲୋମଯୁକ୍ତ
Dirgha romā Having long furs.
ବି.—୧ । ଭାଲୁ—1. Bear.
୨ । ଶିବଙ୍କ ଅନୁଚରବିଶେଷ—
2. Name of an attendant of God Siba.

ଦୀର୍ଘ ରୋହିଷ—ସଂ. ବି. (କର୍ମଧା; ଦୀର୍ଘ+ରୋହିଷ)—ଧନତ୍ରୀ ଗୁଳ୍ମ—
Dirgha rohisha Dhantri plant (See)

ଦୀର୍ଘ ଲୋଚନ—ସଂ. ବିଣ. ପୁଂ (ବହୁବ୍ରୀହି, ଦୀର୍ଘ+ଲୋଚନ)—
Dirgha lochana ଯାହାର ଚକ୍ଷୁ ଦୀର୍ଘ—
(ଦୀର୍ଘଲୋଚନା—ସ୍ତ୍ରୀ) Having long eyes.

ସଂ. ବି.—୧ । ଶିବଙ୍କ ଅନୁଚରବିଶେଷ—
1. Name of an attendant of Siba.
୨ । ଧୃତରାଷ୍ଟ୍ରଙ୍କ ଏକ ପୁତ୍ରର ନାମ—
2. Name of a son of Dhrutarāshtra.

**ଦୀର୍ଘଶୟନ**—ସଂ. ବି. (ଦୀର୍ଘ+ଶୟନ; କର୍ମଧାରୟ)—ମହାନିଦ୍ରା; ମୃତ୍ୟୁ—
Dirghasayana Death.

କଂସ ପାଇବ ଦୀର୍ଘଶୟନ ହଠାତ୍ ନଇଲେ ଯଦୁଙ୍କେଶନ ।
ଦୀନକୃଷ୍ଣ. ରସକଲ୍ଲୋଳ ।

**ଦୀର୍ଘଶ୍ୱାସ**—ସଂ ବି (ଦୀର୍ଘ+ଶ୍ୱାସ; କର୍ମଧା)—ଦୀର୍ଘ ନିଶ୍ୱାସ (ଦେଖ)
Dirgha swāsa Dirgha niswāsa (See)

**ଦୀର୍ଘଶ୍ରୁତ**—ସଂ. ବିଣ. (ଦୀର୍ଘ+ଶ୍ରୁତ) ୧ । (ଉପପଦ ତତ୍ପୁରୁଷ)—
Dirgha sruta ଯାହା ବହୁଦୂର ପର୍ଯ୍ୟନ୍ତ ଶୁଣା ଯାଏ—
1 Audible to a great distance.
୨ । (ବହୁବ୍ରୀହି)—ସୁଦୂରବିଖ୍ୟାତ—
2. Far—famed.

**ଦୀର୍ଘସତ୍ର**—ସଂ. ବି.—୧ । ମହାଭାରତୋକ୍ତ ତୀର୍ଥବିଶେଷ—
Dirgha satra 1 A place of pilgrimage.

ଦୀର୍ଘସତ୍ରେ ବ୍ରାହ୍ମଣ ସେବା କଲେ ଯାଇ,
ତହିଁ ଗଲେ ଲୋକେ ଫଳ ଲଭଇ ମହାଭାଗ । କୃଷ୍ଣସିଂହ. ମହାଭାରତ ।

୨ । (କର୍ମଧା) ଯାବଜ୍ଜୀବନ କର୍ତ୍ତବ୍ୟ ଅଗ୍ନିହୋତ୍ର କର୍ମ—
2. A vedic sacrifice performable throughout life.
୩ । (କର୍ମଧା)—ବହୁକାଳବ୍ୟାପୀ ସୋମ ଯଜ୍ଞ—
3. The Soma sacrifice of long duration.
ସଂ. ବିଣ.—(ବହୁବ୍ରୀହି)—ଯେ ଦୀର୍ଘକାଳବ୍ୟାପୀ ଯଜ୍ଞ କରେ—
Engaged in the performance of a sacrifice of long duration.

**ଦୀର୍ଘସୁରତ**—ସଂ. ବିଣ. ଓ ବି. (ଦୀର୍ଘ+ସୁରତ; ବହୁବ୍ରୀହି)—
Dirgha surata ଦୀର୍ଘ ରତ (ଦେଖ)—Dirgha rata (See)

**ଦୀର୍ଘସୂତ୍ର**—ସଂ. ବିଣ. (ଦୀର୍ଘ+ସୂତ୍ର; ବହୁବ୍ରୀହି)—୧ । ବିଳମ୍ବରେ କାର୍ଯ୍ୟକାରୀ,
Dirgha sūtra କାଳ, ଚିରକ୍ରିୟ, ହେଳାଦସ୍ତିଆ; ସବୁ କାମକୁ
(ଦୀର୍ଘସୂତ୍ରତା—ବି) ବିଳମ୍ବରେ କରିବା ଯାହାର ସ୍ୱଭାବ—
1. Dilatory; procrastinating.

ଆଳସ୍ୟକୁ ଅଙ୍ଗଦେଶରେ ଥିବ ନ ହି
କରୁଥିବ ବଶସ୍ତ ଦୀର୍ଘସୂତ୍ର ହୋଇ—କୃଷ୍ଣସିଂହ. ମହାଭାରତ. ସଭା ।

୨ । ଦୀର୍ଘତନ୍ତୁବିଶିଷ୍ଟ—
2. Having long fibres.

**ଦୀର୍ଘସୂତ୍ରୀ**—ସଂ. ବିଣ. (ଦୀର୍ଘସୂତ୍ର+ଅସ୍ତ୍ୟର୍ଥରେ ଇନ୍; ୧ମା. ୧ବ)—
Dirghasūtri ଦୀର୍ଘସୂତ୍ର (ଦେଖ)—
(ଦୀର୍ଘସୂତ୍ରିତା—ବି) Dirgahsūtra (See)

ଶତ ଅସମାହିତ ଅଳସ ପ୍ରାକୃତ
ବଶୀଭୂତ ଦୀର୍ଘସୂତ୍ରୀ କ୍ରୁଦ୍ଧ ଅସୁକର—କୃଷ୍ଣସିଂହ. ମହାଭାରତ. ସ୍ୱର୍ଗ ।

**ଦୀର୍ଘସୂତ୍ରେ**—ଦେ. କ୍ରି. ବିଣ—୧ । ବିଳମ୍ବସହକାରେ—
Dirghasūtre 1 Dilatorily.
୨ । ବହୁକାଳ ପରେ; ବହୁ ବିଳମ୍ବରେ—
2. In the long run; after a great delay

ବୋଇଲେ ଶରେ ସୂତେ ଭଣ୍ଡ କଲଲ ଦେବେ
ଦୀର୍ଘସୂତ୍ରେ ଚକନ ହୋଇ ସେ—ଭକ୍ତ. ବୈଦେହୀଶବିଳାସ ।

**ଦୀର୍ଘସ୍କନ୍ଧ**—ସଂ. ବି (ଦୀର୍ଘ+ସ୍କନ୍ଧ ଯାହାର; ବହୁବ୍ରୀହି)—ତାଳଗଛ—
Dirgha skandha The palm tree.

**ଦୀର୍ଘସ୍ୱର**—ସଂ. ବି (କର୍ମଧା, ଦୀର୍ଘ+ସ୍ୱର)—
Dirgha swara ୧ । (ବ୍ୟାକରଣ)—ଦ୍ୱିମାତ୍ରିକ ସ୍ୱରବର୍ଣ୍ଣ—
1. (grammar) Long vowel
୨ । ବହୁକାଳସ୍ଥାୟୀ ଶବ୍ଦ—
2 Long tone, a sound which lasts long.

**ଦୀର୍ଘା**—ସଂ ବିଣ. ସ୍ତ୍ରୀ (ଦୀର୍ଘ+ଆ)—ଦୀର୍ଘର ସ୍ତ୍ରୀଲିଙ୍ଗ—
Dirghā Feminine of Dirgha.
ସଂ. ବି—୧ । ପୃଶ୍ନିପର୍ଣ୍ଣୀ (ହି. ଶବ୍ଦସାଗର) (ଦେଖ)
1. Prusniparnni (See)
୨ । ଦୀର୍ଘ ପୋଖରୀ—2. A long tank.

**ଦୀର୍ଘାକାର**—ସଂ. ବିଣ. (ଦୀର୍ଘ+ଆକାର; ବହୁବ୍ରୀହି)—
Dirghākāra ୧ । ଡେଙ୍ଗା; ଦୀର୍ଘ ଆକୃତିବିଶିଷ୍ଟ—
(ଦୀର୍ଘାକୃତି—ଅନ୍ୟରୂପ) 1. Of high stature; tall.
୨ । ଲମ୍ବୁଡ଼ା—2. Oblong

**ଦୀର୍ଘାଧର**—ସଂ. ବିଣ. ପୁଂ. (ବହୁବ୍ରୀହି; ଦୀର୍ଘ+ଅଧର)—ଯାହାର
Dirghādhara ଓଠ ଦୀର୍ଘ—Long-lipped.
(ଦୀର୍ଘାଧରା—ସ୍ତ୍ରୀ) ସଂ ବି—ଓଷ୍ଟ୍ର—Camel.
(ଦୀର୍ଘାଧରତା—ବି)

**ଦୀର୍ଘାଧ୍ୱଗ**—ସଂ. ବି. ପୁଂ. (ଦୀର୍ଘ+ଅଧ୍ୱନ୍+ଗମ୍ ଧାତୁ+କର୍ତ୍ତୃ.ଅ)—
Dirghādhwaga ଯେ ଦୀର୍ଘ ପଥ ଚାଲେ ବା ଦୀର୍ଘକାଳ ବାଟ ଚାଲେ—
Travelling long distances or for long periods.
(ଦୀର୍ଘଗନ୍ତା—ଅନ୍ୟରୂପ) ସଂ. ବି—୧ । ଓଷ୍ଟ୍ର—1. Camel.
୨ । ଦୂତ—2. A messenger; an express (Apte).

**ଦୀର୍ଘାୟୁଃ**—ସଂ. ବିଣ. (ଦୀର୍ଘ+ଆୟୁଃ ଯାହାର; ବହୁବ୍ରୀହି)—ଚିରଜୀବୀ—
Dirghāyuh Long-lived.
ଦୀର୍ଘାୟୁଷ୍ୟ } ଅନ୍ୟରୂପ ବି—୧ । ଶିମିଳି ଗଛ—1. The silk-
ଦୀର୍ଘାୟୁ } cotton tree; Bombax Heptophylla.
୨ । କୁଆ—2. The crow.
୩ । ମାର୍କଣ୍ଡେୟ ମୁନି—3. The sage Mārkandeya.
୪ । (କର୍ମଧା) ବହୁକାଳବ୍ୟାପୀ ପରମାୟୁ—
4. Long life; longevity.

**ଦୀର୍ଘାୟୁଧ**—ସଂ. ବି. (କର୍ମଧା, ଦୀର୍ଘ+ଆୟୁଧ)—ବର୍ଚ୍ଛା—
Dirghāyudha Spear.

**ଦୀର୍ଘାୟୁରସ୍ତୁ**—ସଂ ବାକ୍ୟ (ଆଶୀର୍ବାଦରେ ବ୍ୟବହୃତ ବାକ୍ୟ; ସଂ. ଦୀର୍ଘାୟୁଃ+
Dirghāyurastu ଅସ୍ତୁ=ଦୀର୍ଘଜୀବନ ହେଉ)—୧ । ତୁମ୍ଭର ଦୀର୍ଘଜୀବନ ଲାଭ ହେଉ—(a sentence used by elders in blessing youngesters) May you live long.

୨ । ସେ ଦୀର୍ଘଜୀବୀ ହେଉ, ତାହାର ଦୀର୍ଘାୟୁ ହେଉ—
2. May he live long.

**ଦୀର୍ଘାସ୍ୟ**—ସ. ବଣ. ପୁଂ. ( ବହୁବ୍ରୀହି; ଦୀର୍ଘ+ଆସ୍ୟ )—
Dirghāsya ଯାହାର ମୁହଁ ଲମ୍ବ—Long-faced.
(ଦୀର୍ଘାସ୍ୟା—ସ୍ତ୍ରୀ) ସ. ବ. ( ବହୁବ୍ରୀହି )—୧ । ହାତୀ—
1. Elephant.
୨ । (କର୍ମଧା) ଲମ୍ବଡ଼ା ମୁହଁ—2. A long face.

**ଦୀର୍ଘାହ୍ନ**—ସ. ବ. ( ବହୁବ୍ରୀହି; ଦୀର୍ଘ+ଅହଃ; ଯେଉଁ ଋତୁରେ ଦିନ ବଡ଼
Dirghāhṇa ହୁଏ )—ଗ୍ରୀଷ୍ମକାଳ—Summer.
(ଦୀର୍ଘାହନ୍—ଅନ୍ୟରୂପ)

**ଦୀର୍ଘିକା**—ସ. ବ. ସ୍ତ୍ରୀ. ( ଦୀର୍ଘ+କ+ସ୍ତ୍ରୀ. ଆ )—
Dirghikā ୧ । ବଡ଼ ପୋଖରୀ; ଦୀଘୀ; ୧୨୦୦ ହାତ ଓ ତଦୂର୍ଦ୍ଧ୍ୱ ପରମିତ ଜଳାଶୟ—1. A large tank
୨ । ଲମ୍ବା ପୋଖରୀ; ଯେଉଁ ପୋଖରୀର ଦୈର୍ଘ୍ୟ ପ୍ରସ୍ଥ ଅପେକ୍ଷା ବେଶି—2. An oblong tank.
ଦେ. ବ—ପ୍ରାଚୀନ ଅର୍ଣ୍ଣବପୋତବିଶେଷ—
An ancient sea-going vessel.
[ଦ୍ର—ଭୋଜ ରାଜାଙ୍କ ପ୍ରଣୀତ 'ଯୁକ୍ତିକଳ୍ପତରୁ' ଗ୍ରନ୍ଥ ଦ୍ରଷ୍ଟବ୍ୟ—ଜଗବନ୍ଧୁ. ପ୍ରାଚୀନ ଉତ୍କଳ । ]

**ଦୀର୍ଘୀକୃତ**—ସ. ବଣ. ( ଦୀର୍ଘ+ଅଭୁତତଦ୍ଭାବେ ଚ୍ୱି+ କୃତ )—
Dirghikṛuta ଯାହାକୁ ଦୀର୍ଘ କରି ଯାଇଅଛି—
(ଦୀର୍ଘୀକରଣ—ବି) Prolonged; lengthened.

**ଦୀର୍ଘୀଭୂତ**—ସ. ବିଣ. ( ଦୀର୍ଘ+ଅଭୁତତଦ୍ଭାବେ ଚ୍ୱି+ଭୂତ )—
Dirghibhūta ଯାହା ପୂର୍ବେ ଦୀର୍ଘ ନ ଥିଲା ବର୍ତ୍ତମାନ ଦୀର୍ଘ
(ଦୀର୍ଘୀଭବ—ବି) ହୋଇଅଛି—Become long; elongated

**ଦୀର୍ଣ୍ଣ**—ସ. ବିଣ. ( ଦୃ ଧାତୁ=ବିଦାରଣ କରିବା+କର୍ମ. ତ )—
Dirṇṇa ୧ । ବିଦାରିତ—1, Pierced through; split; torn.
୨ । ଭଗ୍ନ—2. Broken.
୩ । ( ଦୃ ଧାତୁ=ଭୟ ପାଇବା+କର୍ତ୍ତୃ. ତ )—
ଭୀତ—Frightened; afraid.
ସ. ବି ( ଦୃ ଧାତୁ+ଭାବ. ତ ) ବିଦାରଣ—
Act of splitting, tearing or rending.

**ଦୁ (ଧାତୁ)**—ସ—୧ । ଉଷ୍ଣ କରିବା—
Du (root) 1. To heat.
୨ । ପୋଡ଼ି ଦେବା—2, To burn; to consume with fire.
୩ । ପୀଡ଼ା ଦେବା—3. To torment; to afflict.
୪ । ଦୁଃଖ ଦେବା—4 To pain
୫ । କଷ୍ଟ ବା ଦୁଃଖ ପାଇବା—
5. To be afflicted with pain.
୬ । ଗତି କରିବା—6 To go; to move.

**ଦୁ**—ଦେ. ବିଣ. ( ସ. ଦ୍ୱି; ଅନ୍ୟ ଶବ୍ଦ ପୂର୍ବେ ବସିଲେ 'ଦୁଇ' ଶବ୍ଦ
Du 'ଦୁ' ଉଚ୍ଚାରିତ ହୁଏ )—ଦୁଇ—Twice, two.
ହି ( ଯଥା—ଦୁଗୁଣ=ଦୁଇ ଗୁଣ; ଦୁବେଇ=ଦ୍ୱିବେଦୀ । )
**दो, दु**

**ଦୁଆ**—ଦେ. ବି. ( ସ. ଦ୍ୱି —
Duā ୧ । କଉଡ଼ି ଓ ପଶା ଖେଳର ୨ ସଂଖ୍ୟକ ଦାଉ—
ଦୋକା 1. A throw of cowries or dice resulting in two.
**दुआ, दुक्की**
୨ । ଦୁଇ ବିନ୍ଦୁ ଥିବା ତାସ୍—2. The duece at cards; the card having 2 points on it.
୩ । କାନ୍ଥ ଦେବା ସମୟରେ ଦିଆଯିବା ଏକ ପ୍ରସ୍ଥ କାଦୁଅ—
3. One course or layer of mud masonry.
୪ । ( ସ. ଦୋ ଧାତୁ=ଛେଦନ କରିବା )—( ଧାନ ଗଛ ) କଟାଯିବା—4. Harvesting (of paddy).
ବିଣ—୧ । ଦୁଇ ଥର ବଟା ହୋଇଥିବା ( ହଳଦୀ )—
1. Pestled twice ( turmeric ).
୨ । ଦୁଇ ଥର କୁଟା ହୋଇଥିବା ( ଧାନ ଆଦି )—
2. Twice-husked ( paddy )
ଦୋସରା ୩ । ଦ୍ୱିତୀୟ—3. Second.
**दुसरा** ( ଯଥା—ଦୁଆ ପହୁଆଁ । )
**धुआँ** ୫ । (ସ. ଧ୍ରୁବକ) ଗୀତରେ ପାଳିଆ ଧରିବା ବା ବୋଲିବା
**दुहराव** ପାଳି—5. Refrain or cue of a song.
୬ । କଟା ଯାଇଥିବା (ଧାନଗଛ)—
6. Harvested or cut (paddy plant).
ଦୋଆ ବୈଦେ. ବ. (ଆ. ଦୁଆ)—୧ । ଆଶୀର୍ବାଦ—
**दुआ** 1. Blessing.
୨ । ଈଶ୍ୱରଙ୍କୁ ଅନ୍ୟପାଇଁ ପ୍ରାର୍ଥନା—
2. Invoking God's blessing on another.
୩ । କୋରାନ୍‌ର ଗୋଟିଏ ମନ୍ତ୍ର—
3. A text from the Quoran.

**ଦୁଆଁ**—ଦେ. ବ. (ସ. ଦୋହନ; ଦୁହ୍ ଧାତୁ)—ଦୁହାଁ (ଦେଖ)
Duāñ Duhāñ (See)
ପ୍ରାଦେ. (ସମ୍ବଲପୁର) ବ. (ସଂ. ଦାମ)—ପଘା—Tether.

**ଦୁଆକ**—ଦେ. ବ. (ପାନବରଜ ଭାଷା)—ପାନ ଲତାର ଦୁଇଟି ପୋତକୁ
Duāka ବା କେସରକୁ ଏକତ୍ର ବାନ୍ଧିବା ପାଇଁ ପ୍ରଥମ ଗଣ୍ଠି, ଯାହାକି ଦୁଇ ପୋତର ମଝିରେ ଥାଏ—The first knot to tie together two betel creepers trained to one twig.

**ଦୁଆଡ଼**—ଦେ, ବ—ପ୍ରାଚୀନ ଓଡ଼ିଶାରେ ଯୁଦ୍ଧରେ ବ୍ୟବହୃତ ଦୁଇ କନା
Duāṛa ଥିବା ଅସ୍ତ୍ରବିଶେଷ ( ମାଦଳା ପାଞ୍ଜି )—
A two-pronged weapon.

"ଗାଧୋଇବାଠାରେ ଧରିଥାନ୍ତି କରେ
ଲୁହାଠେଙ୍ଗା ଭଲ ଦୁଆଡ଼ । ବ୍ରଜନାଥ. ସମରତରଙ୍ଗ ।

**ଦୁଆତ** —ବୈଦେ. ବ. (ଆ. ଦାବାତ)—ମସୀଧାର; କାଳିସଢ଼ି—
Duāta Inkstand; inkpot.
(ଦୁଆତଘଡ଼ି—ଅନ୍ୟରୂପ)
ଦোয়াৎ **दवात**

**ଦୁଆତ କଲମ**—ବୈଦେ. ବ. ( ସନ୍ଧିତର ଆ. ଦାବାତ୍ + କଲମ୍ )—
Duāta kalama କାଳିସଢ଼ି ଓ କଲମ; ଲେଖିବାର ଉପକରଣ—
দোয়াৎ কলম **दवात कलम** Inkstand and pen.

**ଦୁଆତ ପୂଜା**—ଦେ. ବ—ବିହାର ଅଞ୍ଚଳରେ କାର୍ତ୍ତିକ ଶୁକ୍ଳ ଦ୍ୱିତୀୟା
Duāta pūjā ଦିନ ଅନୁଷ୍ଠିତ ପର୍ବବିଶେଷ—Name of a
দোয়াত পূজা festival observed on the second day
**दवात पूजा** of the bright fortnight in the month of Kārttika in Bihar.

**ଦୁଆଦଶୀ**—ଗ୍ରା. ବ. (ସଂ. ଦ୍ୱାଦଶୀ) ଦ୍ୱାଦଶୀ ତିଥି—
Duādasī The 12th day of the lunar fortnight.
(ଦୁଆଦୁଶୀ—ଅନ୍ୟରୂପ) ମାର୍ଗଶିରମାସର ଦୁଆଦଶୀ ଦିନ
দ্বাদশী ଉପବାସ କରି ଯେ କେଶବ ପୂଜନ ।
**दुआदसी** କୃଷ୍ଣସି. ମହାଭାରତ ।

**ଦୁଆଦୁଇ**—ପ୍ରାଦେ. (ଗଞ୍ଜାମ) ବ (ସଂ. ଦୋ ଧାତୁ = ଛେଦନ) —
Duādui Harvesting of paddy.
( ଦୁଆଦୋଇ — ଅନ୍ୟରୂପ

**ଦୁଆନ୍**—ପ୍ରାଦେ. (ସିଂହଭୂମ) ବ—ଦେୱାନ —
Duān Dewan.

**ଦୁଆ ପଡ଼ୁଆଁ**—ଦେ. ବ. ( ସ. ଦ୍ୱିତୀୟ ଓ ପ୍ରଥମ)—
Duā pardhuān ୧ । ଜ୍ୟେଷ୍ଠ ସନ୍ତାନର ପରବର୍ତ୍ତୀ ଦ୍ୱିତୀୟ ସନ୍ତାନ—
( ଦୁଆ ପୋଢ଼ୁଆଁ—ଅନ୍ୟରୂପ ) 1. The second child of the parents.
୨ । ମୃତ ଜ୍ୟେଷ୍ଠ ସନ୍ତାନର ତଳଆ ଦ୍ୱିତୀୟ ସନ୍ତାନ—
2. The second child of the parents whose first child expired before the performance of Pardhuān ceremony
[ ଦ୍ର—ପ୍ରଥମ ସନ୍ତାନର ପ୍ରଥମାଷ୍ଟମୀ ( ପଢ଼ୁଆଁ ) ଉତ୍ସବ କରାଯିବା ପୂର୍ବରୁ ଯଦି ତାହାର ମୃତ୍ୟୁ ଘଟିଥାଏ ତେବେ ଗୌଣ ପକ୍ଷରେ ଦ୍ୱିତୀୟ ସନ୍ତାନର ପଢ଼ୁଆଁ ଉତ୍ସବ କରାଯାଏ ଏବଂ ଏ ସନ୍ତାନକୁ ଦୁଆ ପଢ଼ୁଆଁ କହନ୍ତି । ପ୍ରଥମ ସନ୍ତାନର ପଢ଼ୁଆଁ ଉତ୍ସବ କରାଯିବା ପରେ ସେ ମୃତ ହେଲେ ଦ୍ୱିତୀୟ ସନ୍ତାନର ପଢ଼ୁଆଁ ଉତ୍ସବ କରାଯାଏ ନାହିଁ କିମ୍ବା ତାକୁ ଦୁଆ ପଢ଼ୁଆଁ କୁହାଯାଏ ନାହିଁ । ]

**ଦୁଆପାଳି**—ଦେ. ବ—ଦୁଆରପାଳି ( ଦେଖ )
Duāpāli Duārapāla ( See )

**ଦୁଆପିକା**—ପ୍ରାଦେ. ( ଗଞ୍ଜାମ ) ବ—ଏକପ୍ରକାର କଉଡ଼ିଖେଳ —
Duāpikā A kind of indoor game with small shells
[ ଦ୍ର—ଏହି ଖେଳରେ ହାତ ମୁଠାରେ ଅଧୁଚ ( କଉଡ଼ି ) ... ଲୁଗାଇ ଖେଳନ୍ତି । ଏ ଖେଳର ଦାନ ୪ ପ୍ରକାର, ଯଥା—ପିକା = ... ୧, ... ୧୩ । ଦୁଆ = ୨, ୬, ୧୦, ୧୪ । ସତା = ୩, ୭, ୧୧, ୧୫ । ପୁଡ଼ା = ୪, ୮, ୧୨, ୧୬ । ସାତପୁଡ଼ା ଖେଳ ମଧ୍ୟ ଏହିପରି । ]

**ଦୁଆବ୍**—ବୈଦେ. ବ. ( ଫା ଦୁଆବା; ଭୂଳ. ସ. ଦ୍ୱି + ଅପ୍ = ଜଳ)—
Duāb ୧ । ଦୁଇ ନଦୀର ମଧ୍ୟବର୍ତ୍ତୀ ଦେଶ—
দোআব 1. Doab; a country between 2 rivers.
**दुआब** ୨ । ଗଙ୍ଗା ଓ ଯମୁନାର ମଧ୍ୟବର୍ତ୍ତୀ ଦେଶ—2. The tract of country between the Ganges and the Jamunā.

**ଦୁଆବଟା**—ଦେ. ବଣ ( ସ. ଦ୍ୱି + ବୃତ୍ତ )—ଦୁଇଥର ବଟା ହୋଇଥିବା
Duābaṭā ( ହଳଦୀ )—Twice pestled
দুঅবাটা ( turmeric paste ).
( ଦୁଆ ଭୁକୁଆଁ —ଅନ୍ୟରୂପ )

**ଦୁଆ ଯିବା**—ଦେ କ୍ରି. [ ସ. ଦୋ ଧାତୁ = ଛେଦନ କରିବା, ଦାଇବା
Duājibā ( ଦାଆରେ କାଟିବା )ର କର୍ମବାଚ୍ୟରୂପ ] —( ଶସ୍ୟ )
( ଦୁଆ ହେବା —ଅନ୍ୟରୂପ ) କଟାଯିବା —
(corn) To be reaped or harvested.

**ଦୁଆର**—ଦେ. ବ. ( ସ. ... ) ଡ୍ୱାର୍, ଫା.
Duāra 1. Door.
দুয়াৰ, দোৰ ସୁରଙ୍ଗ
**दुआर** ସେଇ ...ରଙ୍କଣୀ ।
୨ । ସଦର ଦ... —
2. The c...
ଉତ୍ତପର୍ଣ୍ଣ ଦୁଆ... ... ବନ ।
୩ । ଫାଟକ—
ଦୁମ୍ଭେ ଉ ...
୪ । ଦ୍ୱାର ନ...
4. A veranda adjoining the entrance to a house; balcony.
ଅର୍ଦ୍ଧଶାଳୀ ଯେଉଁ ଯେ ଆସି ଦୁଆରରୁ । କୃଷ୍ଣସିଂ. ମହାଭାରତ ସଭା ।
୫ । ପ୍ରାଙ୍ଗଣ; ଅଗଣା—5. A court-yard.
ସିଦ୍ଧି ନ ପାରି ତାହା ବୋଇଲେ ଧାଡ଼କ
ତାକଥଣ ଦୁଆରେ ଅବା ଚୁମ୍ବିସନ୍ତକ । କୃଷ୍ଣସିଂ. ମହାଭାରତ. ବନ ।
୬ । ଓଡ଼ିଶାର ସ୍ୱାଧୀନ ରାଜାଙ୍କ ସମୟରେ ଯୁଦ୍ଧରେ ବ୍ୟବହୃତ ଦୁଇ ମୁନିଆଁ ଶସ୍ତ୍ରବିଶେଷ (ଜଗବନ୍ଧୁ—ପ୍ରାଚୀନ ଉତ୍କଳ ।)—
6. A two-pronged weapon, used in the wars of Orissa in olden days.

**ଦୁଆର କିଳିବା**—ଦେ. କ୍ରି. ( ସ ଦ୍ୱାର ଓ କୀଲ୍ ଧାତୁ )—ଦ୍ୱାର ବନ୍ଦ
Duāra kiḷibā କରିବା; କବାଟ ରୁଦ୍ଧ କରିବା—
দুয়াৰ লাগাম **दरवाजा बंद करना** To shut the door.
ଦୁଆର ଦେବା, ଦୁଆର ପକା(କେ)ଇବା } ଅନ୍ୟରୂପ
ଦୁଆର ଲଗା(ଗେ)ଇବା

**ଦୁଆର ଗଡ଼ା**—ପ୍ରାଦେ. (ଯାଜପୁର) ବ—ବ୍ରତ ବିବାହରେ ସଦର ଦୁଆର
Duāra garḍā ମୁହଁରେ ଓ କାନ୍ଥରେ ଦିଆଯିବା ଚୋଷ ବା ଚିତା—
The painting on walls done on festive occasions, such as sacred thread or marriage ceremony.

**ଦୁଆର ଜଗା(ଗେ)ଇବା**—ଦେ. କ୍ରି—ଘରଭିତରେ ପ୍ରବେଶ କରିବା
Duāra jagā(ge)ibā ପରେ ଦ୍ୱାର ରକ୍ଷା କରିବା ପାଇଁ ଅନ୍ୟ ବ୍ୟକ୍ତିଙ୍କୁ ଦ୍ୱାରଦେଶରେ ନିଯୁକ୍ତ କରିବା ବା ରଖାଇବା—To set a person to guard the door; to leave a person in charge of the door ( said of a person entering a house ).

ଭୂପେ ତ ଭିତରକୁ ଗଲ । ଅମ୍ଭଙ୍କୁ ଦୁଆର ଜଗାଇଲ—ଭଗ ।

**ଦୁଆର ଜଗିଆ**—ଦେ. ବିଣ—ଯେ ଦ୍ୱାରରେ ପହରା ଦିଏ—
Duāra jagiā Watching at the door
ଦୁଆର ଜଗୁଆଳ } ଅନ୍ୟରୂପ
ଦୁଆର ଜଗୁଆଳି }
ଦେ. ବି—ଦ୍ୱାରରକ୍ଷକ; ଦ୍ୱାରୀ—Door keeper.

**ଦୁଆର ଜଗିବା**—ଦେ. କ୍ରି—ଦୁଆରମୁହଁରେ ଠିଆ ହେବା; ଦ୍ୱାର ରକ୍ଷା କରିବା—To watch or guard at the entrance or door.
Duāra jagibā

**ଦୁଆର ଦିଆ**—ଦେ. ବି—ଦୁଆର କିଳିବା—Shutting the door against a person.
Duāra diā
ଡୁୟାର୍ ଲାଗା **किवाड़ बंद्**

ଦିଆକୁ ଦିଆ, ଅଦିଆକୁ ଦୁଆର ଦିଆ—ଭଗ ।

**ଦୁଆର ଦୁଆର**—ଦେ. ଅବ୍ୟୟ—ପ୍ରତିଘର—
Duāra duāra From door to door
ଦ୍ୱାରେ ଦ୍ୱାରେ **द्वार द्वार**

**ଦୁଆର ଦୁଆର ମାଗିବା**—ଦେ. କ୍ରି—ପ୍ରତିଘର ମାଗି ବୁଲିବା—
Duāra duāra māgibā To beg from door to door.
ଦୋର ଦୋର ମାଂଗା **दरवाद्र फिरना; दरवाद्र मंगना**
ଦୁଆର ଦୁଆର ବୁଲିବା } ଅନ୍ୟରୂପ
ଦୁଆରା ଦୁଆର ମାଗି ବୁଲିବା }

**ଦୁଆର ନ ମାଡ଼ିବା**—ଦେ. କ୍ରି—କୌଣସି ବ୍ୟକ୍ତିର ଦ୍ୱାର ନିକଟକୁ ଆଉ ନ ଆସିବା; ପାଖରେ ନ ପଶିବା—Not to come near; never to approach one's door; never to set foot on one's door.
Duāra na mārdibā
ଦୋର ନ ମାଡ଼ା

**ଦୁଆର ପଡ଼ିବା**—ଦେ. କ୍ରି—୧ । ଦ୍ୱାର ବନ୍ଦ ହେବା—
Duāra pardibā 1. The shutting of a door.
ଦୋରପଡ଼ା

୨ । ( କୌଣସି ସମାଜଚ୍ୟୁତ ବା ବିପନ୍ନ ବ୍ୟକ୍ତିର ) ଘରକୁ ସମାଜର ଅନ୍ୟ କାହାରି ନ ଆସିବା ଅବସ୍ଥା—2. The state of people desisting from visiting the house of an excommunicated person or one involved in trouble

୨ । ( କୌଣସି ବ୍ୟକ୍ତିର ) ଗୃହ ବସନ୍ତିକା ଓ ମହାମାରୀ ଆଦି ରୋଗରୁ ଜନଶୂନ୍ୟ ହେବା—
2. The state of a person's house being depopulated by some scourge or divine visitation.

**ଦୁଆର ପାଳି**—ଦେ. ବି. ( ସଂ. ଦ୍ୱି + ଓ. ପାଳି; ସଂ. ଦ୍ୱିରାଗମନ )—
Duāra pāli ବିବାହିତା କନ୍ୟାର ଦ୍ୱିତୀୟଥର ଶାଶୁ ଘରକୁ ଯିବା—
(ଦୁଆ ପାଳି—ଅନ୍ୟରୂପ) The going of a grown-up girl to her husband's house for the second time.
**दुरागौन**

[ ଦ୍ର—ପ୍ରଥମ ଥର ଯିବାକୁ ପହିଲିପାଳି କହନ୍ତି; କନ୍ୟା ପହିଲିପାଳି ଶାଶୁ ଘରକୁ ଯାଇ ସେଠାରେ କିଛିକାଳ ରହି ବାପଘରକୁ ଫେରି ଆସେ; ବାପ ଘରେ କିଛି ଦିନ ରହିବା ପରେ ପୁଣି ଦ୍ୱିତୀୟ ଥର ଶାଶୁଘରକୁ ଯିବାକୁ ଦୁଆରପାଳି ବୋଲାଯାଏ । ]

**ଦୁଆର ଫିଟା(ଟେ)ଇବା**—ଦେ. କ୍ରି—୧ । ବନ୍ଦ ହୋଇଥିବା କବାଟକୁ ମୁକ୍ତ କରିବା—1. To open the door.
Duāra phitā(te)ibā
ଦୁଆର ମେଲ୍ଲା କରିବା } ଅନ୍ୟରୂପ
ଦୁଆର ମୁକୁଳା(ଳେ)ଇବା }
ଦୋବ ଖୋଲା
**किवाट खुलना**

୨ । ଗୃହ ଆଦ୍ରେ ବନ୍ଦଥିବା କୌଣସି ସ୍ଥାନକୁ ପ୍ରବେଶାର୍ଥ ଗୋଟିଏ ବାଟ ମେଲ୍ଲା କରିବା—2. To open an entrance to a closed place.

**ଦୁଆର ବନ୍ଧ**—ଦେ. ବି. ( ସଂ. ଦ୍ୱାରବନ୍ଧ )—
Duāra bandha ୧ । ଦେହଲୀ; କବାଟର ଚଉକାଠ—
ଗୋବବାଟ 1. The frame of the door; door-frame.
**देहली**

୨ । ଏରୁଣ୍ଡି ବନ୍ଧ—2. Threshold.

**ଦୁଆର ମଡ଼ା**—ଦେ. ବି—ଅନ୍ୟର ଘରକୁ ଯିବା—
Duāra mardā Going to or setting one's foot on another person's house.
( ଦୁଆର ମାଡ଼ିବା—କ୍ରି )

**ଦୁଆର ମୁହଁ**—ଦେ. ବି. ( ସଂ. ଦ୍ୱାର ମୁଖ )—
Duāra muhan ଗୃହର ପ୍ରବେଶ ମାର୍ଗ—
ଦୋବଗୋଡ଼ା Entrance to a house.

**ଦୁଆରି**—ପ୍ରାଦେ. (ଗଞ୍ଜାମ) ବି—ବୈଠକ (ବୈ. ଅଣ୍ଡା ୧୮।୧୨।୨୯)—
Duārā Sessions.

**ଦୁଆରି**—ଦେ. ବି. ( ସଂ. ଦ୍ୱାରୀ; ତୁଳ. ଫା. ଦର୍‌ବାନ୍ )—
Duāri ୧ । ଦ୍ୱାର ରକ୍ଷକ; ଦରୁଆନ; ଦ୍ୱାରପାଳ—
ଡୁୟାରୀ 1. Door-keeper; porter; durwan; gate-keeper.
**दरबान**

ତାହା ଶୁଣି ଦୁଆରି କାହାଦନ୍ତ ବେଗେ । କୃଷ୍ଣସିଂ. ମହାଭାରତ. ସଭା ।

୨ । ଗ୍ରାମ୍ୟ ଯାତ୍ରା ଦଳର ବିଦୂଷକ—
2. The jester in a dancing party.

**ଦୁଆରି ପୂଜା**—ଦେ. ବି—୧ । ଗ୍ରାମର ଠାକୁରମାନେ ଯାତ୍ରା ଉପଲକ୍ଷରେ ଗ୍ରାମ ଦାଣ୍ଡରେ ଯିବା ସମୟରେ ପ୍ରତ୍ୟେକ ଗୃହସ୍ଥର ଦ୍ୱାର ସମ୍ମୁଖରେ କିଛି ସମୟ ଅପେକ୍ଷା କରିବା ଅବସ୍ଥାରେ ଦେବତାଙ୍କୁ ଯେଉଁ ନୈବେଦ୍ୟାଦି ଗୃହସ୍ଥ ଅର୍ପଣ କରେ—
Duāri pujā
1. Offerings made to a Deity at the door of every villager when He is taken round along the village-road during festivals.

୨ । ଗ୍ରାମର ଠାକୁରମାନେ ଯାତ୍ରା ଉପଲକ୍ଷରେ ଗ୍ରାମଦାଣ୍ଡରେ ଯିବା ସମୟରେ ପ୍ରତ୍ୟେକ ଗୃହସ୍ଥ ତାଙ୍କୁ କିଜ-ଦ୍ୱାର—

ଦେଶରେ କିଛି ସମସ୍ତ ଭ୍ରଶାଇ ନାନାବିଧ ପୂଜା-ସାମଗ୍ରୀ ଦ୍ୱାରା ସେହି ପୂଜା କରେ—

2. The act of worshipping a village-Deitiy by offering sacraments at the door of each villager while the Deity is carried in procession along the village street.

ଦୁଆଳି —ଦେ. ବି (ସଂ. ଦୋ ଧାତୁ = ଛେଦନ କରିବା)—ଧାନ କଟାଳି—
Duāḷi — Paddy reaper.
(ଦୁଆଁଳି—ଅନ୍ୟରୂପ) ବିଣ — ଦୁହାଁଳି ( ଦେଖ )
Duhāñḷi ( See )

ଦୁଆଳିଆ—ବୈଦେ. ବିଣ. ( ଫା. ଦିବାଲ୍ଲ )—
Duāḷiā ୧ । ଦେବାଳିଆ; ଋଣ ପରିଶୋଧରେ ଅସମର୍ଥ—
ଦିବାଳା 1. Insolvent
**दिवाला** ୨ । ନିର୍ଦ୍ଧନ, ଗରିବ—
2. Poor; poverty-stricken
୩ । ଦାନ କରି କରି ନିଃସ୍ୱ -3. Reduced to poverty by giving away every thing.
୪ । ସର୍ବସ୍ୱାନ୍ତ—5. Exhausted to the last penny.

ଦୁଇ—ଦେ. ବି ( ସଂ. ଦ୍ୱି, ଦ୍ୱୟ, ଦ୍ୱୌ; ପ୍ରା. ଦୁଅ; ଲ୍ୟାଟି. ଗ୍ରୀ. ଡୁଓ; ଇ. ଟୁ; ଜର୍ମାନ. ଡୀଓ )—ଏକ ସଂଖ୍ୟାରେ ଏକ ସଂଖ୍ୟା ମିଶିଲେ ସେହି ସଂଖ୍ୟା ହୁଏ;
Dui
ଦୁ
**दो. दुई** ଦୁଇ ସଂଖ୍ୟା—The number two
ବିଣ—୧ । ଦ୍ୱି ସଂଖ୍ୟକ—1. Numbering two.
୨ । ଦ୍ୱିତୀୟ - 2. Second.
୩ । କେତେକ; ଅଳ୍ପ ସଂଖ୍ୟକ—2. A few; a little.
( ଯଥା—ତାଙ୍କ ସଙ୍ଗେ ମୁଁ ଦୁଇପଦ ଦୁଃଖସୁଖ ହେଲି । )
ଦେ. ଅ—(ପୁରୁଣା କାଳିଆ ଚାଟଶାଳୀରେ ପ୍ରଚଳିତ ଶବ୍ଦ) —
ବହିର୍ଦ୍ଦେଶ ଯିବାପାଇଁ ଛାତ୍ରର ଗୁରୁଙ୍କୁ ଅନୁମତି ପ୍ରାର୍ଥନା—
A term used by a student of an old-fashioned village-school in Orissa while asking permission of the teacher to go out to ease himself.
[ଦ୍ର—ପ୍ରସ୍ରାବ କରିବାକୁ ଯିବାପାଇଁ ଅନୁମତି ମାଗିଲା ବେଳେ ଛାତ୍ର 'ଏକ' ଶବ୍ଦ ଉଚ୍ଚାରଣ କରେ ।]

ଦୁଇ ଏକ—ଦେ. ବିଣ (ସଂ. ଦ୍ୱି + ଏକ)—କିଛି; କେତେକ—
Dui eka Some; a few; a little.
ଦୁଏକ (ଯଥା—ମୁଁ ଦୁଇ ଏକ କଥା କହିବି ।)
**दो-एक** [ ଦ୍ର—ଏଠି 'କିଛି' ଅର୍ଥରେ ଦୁଇ ଦିନ, ଦୁଇ ଘର ଇତ୍ୟାଦି ବ୍ୟବହୃତ ହୁଏ, ମାତ୍ର 'ଦୁଇ ଏକ' ଠାରୁ ସେ ସବୁ ପରିମାଣରେ ବା ସଂଖ୍ୟାରେ କିଛିତ୍ ଅଧିକ ବୁଝାଏ । ]

ଦୁଇକଡ଼ାର ହୋଇଯିବା—ଦେ. କି—୧ । ଅତ୍ୟନ୍ତ ହୀନ ଅବସ୍ଥାପନ୍ନ ହୋଇଯିବା—1. To be reduced to extreme poverty
Duikarḍāra hoijibā
୨ । ଅପଦାର୍ଥ ହୋଇଯିବା—2. To become worth-less.
୩ । ଅତ୍ୟନ୍ତ ଅପମାନିତ ହେବା—
3 To be awfully insulted.
(ଯଥା—ସଭାରେ ତାଙ୍କୁ ଦୋଷୀ ସାବ୍ୟସ୍ତ କରି ଦେବାରୁ ସେ ଦୁଇକଡ଼ାର ହୋଇଗଲେ ।)
୪ । ଅତି ଅକିଞ୍ଚନ ବୋଲି ପରିଗଣିତ ହେବା—
4. To be counted or regarded as a man of straw.
(ଯଥା—ଏହିପରି ନୀଚକାମ କଲେ ମନୁଷ୍ୟ କ୍ରମେ ନିଜର ମାନ ମହତ୍ତ୍ୱ ହରାଇ ସମାଜରେ ଦୁଇକଡ଼ାର ହୋଇଯାଏ ।)

ଦୁଇଗୁଣ—ଦେ. ବି ଓ ବିଣ ଓ କ୍ରିଣର ବିଣ. (ସଂ. ଦ୍ୱିଗୁଣ)—
Duiguṇa ୧ । ପୂର୍ବାପେକ୍ଷା ଅତ୍ୟନ୍ତ ବେଶୀ—
ଦୁଗୁଣ 1. Much more than before.
**दोगुना** ଲକ୍ଷ୍ମଣ ରାମଚନ୍ଦ୍ରଙ୍କୁ କରନ୍ତି ପ୍ରବୋଧ
ବୋଲେ କଣ ଶୁଣି ରାମ ଦୁଇଗୁଣ କ୍ରୋଧ । ବିଶ୍ୱନାଥ. ବଡଚମ୍ପୂରାମାୟଣ ।
୨ । ଦୋହରା, ଡବଲ, ଦୋହର—2. Double; twice.

ଦୁଇଗୋଡ଼ିଆ—ଦେ. ବିଣ ଓ ବି—୧ । ଦିଗୋଡ଼ିଆ (ଦେଖ)
Duigorḍiā 1. Digorḍiā (See)
୨ । ଦୁଇଦଳିଆ (ଦେଖ)—2 Duidaḷiā (See).

ଦୁଇଟିଆ—ଦେ. ବିଣ—୧ । ଦୁଇଜଣ ଏକତ୍ର ହୋଇଥିବା—
Duiṭiā 1. Consisting of two together.
୨ । ଦୁଇସଂଖ୍ୟା ସମନ୍ୱିତ (ରାଶି)—2. Consistring of two digits.
୩ । ଯୋଡ଼ ଯୋଡ଼ ହୋଇ—3. In pairs; in couples.

ଦୁଇଠା—ଦେ. ବି, (ସଂ. ଦ୍ୱି ସ୍ଥାନ)—ଦୁଇସ୍ଥାନ; ଦୁଇଜାଗା—
Duiṭhā Two places.
ଦୁଜାଗା ଅ—୧ । ଦୁଇ ସ୍ଥାନରେ—1. At two places.
**दोजगह** ୨ । ଦୁଇଥର—2 Twice.

ଦୁଇଦଳିଆ—ଦେ. ବିଣ. ( ସଂ. ଦ୍ୱିଦଳ )—ଯେଉଁ ବ୍ୟକ୍ତି ଦୁଇ ପକ୍ଷରେ ଯୋଗ ଦିଏ—One who espouses the cause of both the opposite sides.
Duidaḷiā
ଦୁଜଳେବ

ଦୁଇ ଦିନ—ଦେ. ବି. (ସଂ. ଦ୍ୱି + ଦିନ) (ଲକ୍ଷଣାର୍ଥ)—କେତେକ ସମୟ;
Dui dina କେତେ ଦିନମାତ୍ର—A few days only.
ଦୁଦିନ ଅନନ୍ତରେ ଅସି ଜୀବ ହସାଇ ପ୍ରବାସେ
**दोरोज** କିଆଇ ଅନନ୍ତେ ଦୁଇ ଦିନ । ଚନ୍ଦ୍ରାମଣି. ବକ୍ଷମାବତ୍ୟ ।

ଦୁଇଦିନିଆ (ଆଁ)—ଦେ. ବିଣ. ( ସଂ. ଦ୍ୱି + ଦିନ )—ଅଳ୍ପଦିନସ୍ଥାୟୀ, ଅଚିରସ୍ଥାୟୀ—Lasting for a short time.
Duidiniā (āñ)
ଦୁଦିନେବ
**दोरोजका** ବୃଥା ଲୋକ ହେଉଅଛି ଅନୁରାଗୀ
ଦୁନିଆର ଦୁଇଦିନିଆ ସୁଖପାଇ । ରାଧାନାଥ. ଚଉବାର ।

ଦୁଇନାଆ(ହା)ରେ,ଗୋଡ଼ ଦେବା—ଦେ. କି—୧ । ଦୁଇ ନାବରେ ଏକ ସମୟରେ ଗୋଡ଼ ପକାଇବା—
Duinā-a(hā)re gorḍa debā
ଦୁନାବେ ପା ଦେଓଣ 1. To set foot on two boats at a time
**दोनोनावमे पयरदेना**
୨ । (ଲକ୍ଷଣାର୍ଥ) ଏକାବେଳେକେ ଦୁଇଟି ଅବଲମ୍ବନ ଗ୍ରହଣ କରିବା—2. To take up two means or props at a time.

**ଦୁଇ ପରାଣିଆ(ଆଁ)**—ଦେ. ବ.—ଯେଉଁ ପରିବାରରେ ସ୍ୱାମୀ ସ୍ତ୍ରୀ ଛଡ଼ା Dui parāṇiā(āñ) ଅନ୍ୟ କେହି ଯଥା, ପିତାମାତା, ସନ୍ତାନ-ସନ୍ତତି) ନ ଥାନ୍ତି—A family having none but the married couple.

ଦୁଇ ପରାଣିଆ ଘର, ବାନ୍ଧ କରସ, ତଲ୍ ।

ଦେ. ବିଣ.—କେବଳ ମାତ୍ର ବିବାହିତ ଦମ୍ପତିବିଶିଷ୍ଟ (ପରିବାର)—(a family) Having none else than the married couple.

**ଦୁଇ ପରାଣି**—ଦେ. ବି (ସ. ଦ୍ୱି+ପ୍ରାଣୀ)—୧ । ସ୍ୱାମୀ ଓ ସ୍ତ୍ରୀ, ଗୃହସ୍ଥ Dui parāṇi ଓ ଭାର୍ଯ୍ୟା; ଗେରସ୍ତ ଘରଣୀ —1. The couple; the husband and the wife

୨ । ପିତୃମାତୃହୀନ ଓ ଅପତ୍ୟହୀନ ଦମ୍ପତି—A married couple owning neither parents nor-children.

ଭଗି ତାକ ଅଛ ଖାରଥ ଘରକୁ ଦୁଇ ପରାଣି ।
ଫକୀରମୋହନ. ଛମାଣଆଠଗୁଣ୍ଠ ।

**ଦୁଇ ପଲା କପାଟ**—ପ୍ରାଦେ. (ବସ୍ତୁର)—ଜାଉଁଳ କବାଟ—Dui palā kapāṭa Two-leafed door; a door having two leaves.

**ଦୁଇ ପହର**—ଦେ. ବ. (ସ. ଦ୍ୱିପ୍ରହର)—ଦିପହର (ଦେଖ) Dui pahara Dipahara (See)

**ଦୁଇପହରିଆ (ଇତ୍ୟାଦି)**—ଦେ. ବିଣ. ଓ ବ.—Dui paharia (etc) ଦିପହରିଆ ଇତ୍ୟାଦି (ଦେଖ) Dipahariā etc (See)

**ଦୁଇ ହାତିଆ**—ଦେ. ବିଣ.—ଦି ହାତିଆ (ଦେଖ) Dui hātiā Di hātiā (See)

(ଦୁଇହାତି—ଅନ୍ୟରୂପ)

**ଦୁଉଚ୍ଛି**—ଗ୍ରାମ୍ୟ (ଇତର) କି.—(ଦିଶୁଛି କିର୍ଯ୍ୟାର ରୂପାନ୍ତର)—ଦିଶୁଛି; Du-uchhi ଦେଖା ଯାଉଛି—Is seen; appears.

**ଦୁଉଣୀ**—ଦେ. ବ.—ଛୋଟ ଜାହାଜ; ସୁଲୁପ୍—Du-uṇi A sloop.

ଅଠ ସାତ ଜାହାଜର ନାମ ଦୁଉଣୀ ।
ଫକୀରମୋହନ. ଗଳ୍ପସ୍ୱଳ୍ପ ।

**ଦୁଃ**—ଦେ. ଅ—ଛି ! ଧତ୍ ! ଥୁ—Duḥ Fie.

ହୁଂ ଘତ୍

(ଦୁଚ୍; ଦୁର୍; ଦୁର୍ କର; ଦୁର୍କର—ଅନ୍ୟରୂପ)

**ଦୁଃଖ୍ (ଧାତୁ)**—ସ. ବ.—୧ । କ୍ଲେଶ ଦେବା—Duḥkh (root) 1. To afflict.

୨ । କଷ୍ଟ ପାଇବା—2. To suffer.

**ଦୁଃଖ**—ସ. ବ. (ଦୁଃଖ୍ ଧାତୁ+ଭାବ. ଅ)—୧ । କ୍ଲେଶ—Duḥkha 1. Trouble; distress; affliction; difficulty.

(ସୁଖ—ବିପରୀତ) ୨ । କଷ୍ଟ—2. Pain; misery.

୩ । ବେଦନା; ଜ୍ୱାଳା; ଯନ୍ତ୍ରଣା—3. Pang; suffering; anguish

୪ । ଦୁର୍ଦ୍ଦଶା—4. Misfortune.

୫ । ବିପଦ; ସଙ୍କଟ—5 Danger: woe.

୬ । ଅସୁଖ; ପୀଡ଼ା—6. Sickness; illness.

୭ । ମନଃପୀଡ଼ା, କ୍ଷୋଭ—7. Mental uneasiness; sorrow; grief; dejetion.

୮ । ଅଧର୍ମ ହେତୁ ଆତ୍ମାର ଗ୍ଲାନି; ଆକ୍ଷେପ—8. Regret.

୯ । ଅନୁତାପ—9. Repentance.

୧୦ । (ଦୁଃଖମୟ) ସଂସାର—10. The world (with all its troubles.)

ସ' ବିଣ.—(+କର୍ତ୍ତୃ. ଅ)—୧ । ଦୁଃଖଜନକ—1. Miserable; causing misery.

ଦେ. ବ.—୧ । ଦୁଃଖ (ଦେଖ)—1. Duḥkha (See)

**ଦୁଃଖକର**—ସ. ବିଣ.—(ଦୁଃଖ+କୃ ଧାତୁ+କର୍ତ୍ତୃ. ଅ)—Duḥkhakara କ୍ଳେଶକର; ଯାହା କଷ୍ଟ ଦିଏ—Painful, afflicting; sorrowful; troublesome.

**ଦୁଃଖ କରିବା**—ଦେ. କ୍ରି.—୧ । ଆକ୍ଷେପ କରିବା—Duḥkha karibā 1. To regret

ଦୁଖୁକବା ତାହା ଦେଖି କରି ସେ ବଡ ଦୁଃଖ କଲେ ।
**दुख करना** କୃଷ୍ଣସିଂହ. ମହାଭାରତ ବନ ।

୨ । ଅଭିମାନ କରିବା—2 To be sullen through displeasure.

୩ । ବିରକ୍ତ ହେବା—3. To be displeased.

୪ । ଦୁଖ ଧନ୍ଦା କରିବା; ମୂଲ ଲାଗିବା—4. To labour for wages.

(ଯଥା—ସେ ଆଜି କାଲି ଦୁଃଖ କରି କୁଟୁମ୍ବ ପାଳୁଛି ।)

୫ । ଆପଣାର ମନୋଦୁଃଖ ପର ଆଗେ ପ୍ରକାଶ କରିବା—5. To give vent to one's grief.

(ଯଥା—ଅପଣ ଆଜିକାଲି ତାଙ୍କ ଠାକୁ ପତ୍ର ଲେଖନ୍ତି ନାହିଁ ବୋଲି ସେ ମୋ ଆଗେ ଦୁଃଖ କରୁଥିଲେ ।)

**ଦୁଃଖ ଗ୍ରାମ**—ସଂ. ବ. (୬ଷ୍ଠୀ ତତ୍; ଦୁଖ+ଗ୍ରାମ=ସମୂହ)—Duḥkha grāma ସଂସାର (ହି. ଶବ୍ଦସାଗର)—(ଦୁଃଖଲୋକ, ଦୁଃଖାଶ୍ରୟ—ଅନ୍ୟରୂପ) The world.

**ଦୁଃଖ ଜନକ**—ସ. ବିଣ. (ଦୁଃଖ+ଜନ ଧାତୁ+କର୍ତ୍ତୃ. ଅକ)—Duḥkha janaka ଦୁଃଖକର(ଦେଖ)—Duḥkhakara (See).

**ଦୁଃଖଜୀବୀ**—ସ. ବିଣ ପୁଂ(ଦୁଃଖ+ଜୀବ୍ ଧାତୁ+କର୍ତ୍ତୃ.ଇନ୍ ୧ମା.୧ବ)—Duḥkha jibi ଯେ କଷ୍ଟରେ ଜୀବନ ଯାପନ କରେ—(ଦୁଃଖଜୀବିନୀ—ସ୍ତ୍ରୀ) Passing a miserable life; eking out a miserable existence.

**ଦୁଃଖ ତ୍ରୟ**—ସ. ବି. (ଦୁଃଖ+ତ୍ରୟ) ତ୍ରିବିଧ ସାଂସାରିକ ଦୁଃଖ; ତ୍ରିତାପ—Duḥkha traya The three kinds of worldly troubles.

[ତ୍ରିବିଧ ଦୁଃଖ ଯଥା—ଆଧ୍ୟାତ୍ମିକ, ଆଧିଦୈବିକ ଓ ଆଧିଭୌତିକ ।]

ଦୁଃଖଦ—ସଂ. ବିଣ. ପୁଂ (ଦୁଃଖ+ଦା ଧାତୁ+କର୍ତ୍ତୃ. ଅ)—୧ । ଯାହା Duḥkhada ଦୁଃଖ ଦିଏ—1. Afflicting.
(ଦୁଃଖଦା—ସ୍ତ୍ରୀ) ୨ । ଯନ୍ତ୍ରଣାଦାୟକ—2. Giving pain

ଦୁଃଖଦାୟକ—ସଂ. ବିଣ ପୁଂ (ଦୁଃଖ+ଦା ଧାତୁ+କର୍ତ୍ତୃ. ଅକ)—Duḥkhadāyaka ଯାହା ଦୁଃଖ ଦିଏ—Afflicting.
(ଦୁଃଖଦାୟିକା—ସ୍ତ୍ରୀ)
ଦୁଃଖଦାତା, ଦୁଃଖଦାୟୀ—ପୁଂ } ଅନ୍ୟରୂପ
ଦୁଃଖଦାତ୍ରୀ, ଦୁଃଖଦାୟିନୀ—ସ୍ତ୍ରୀ

ଦୁଃଖ ଦେବା—ଦେ. କ୍ରି—୧ । (ଅପରଙ୍କୁ) କଷ୍ଟ ଦେବା—Duhkha debā 1. To give pains (to others).
ଦୁଃଖ ଦେଓୟା ୨ । ପୀଡ଼ା ଦେବା—To afflict
ଦୁଃଖ ଦେନା, ଦୁଖାନା

ଦୁଃଖ ଦୋହ୍ୟା—ସଂ. ବିଣ. ସ୍ତ୍ରୀ—ଯେଉଁ ଗାଈଠାରୁ ଅତିକଷ୍ଟରେ ଦୁଧ Duḥkha dohyā ଦୁହାଁଯାଏ—(a cow) Which is milked with great difficulty.

ଦୁଃଖ ଧନ୍ଦା—ଦେ. ବି—୧ । ସଂସାରଯାତ୍ରା ନିମନ୍ତେ ଦୈନିକ ପରିଶ୍ରମ—Duhkha dhandā 1. Labour done for one's livelihood; one's daily toil, one's daily toil and trouble.
(ଦୁଃଖଧନ୍ଦା—ଅନ୍ୟରୂପ)
ଦୁଃଖଧାନ୍ଦା
୨ । ବ୍ୟବସାୟ; ଜୀବିକା—2 Livelihood.

ସେମାନେ ଧନପାଇଁ ଦୁଃଖଧନ୍ଦାରେ ଲାଗିଥାନ୍ତି, ସଞ୍ଜ ହେଲେ ମୁଠାଏ ମୁଠାଏ ଖାଇ ଶୋଇପଡନ୍ତି ।
ଫକୀରମୋହନ ଛମାଣଆଠଗୁଣ୍ଠ ।

ଦୁଃଖ ନିବହ—ସଂ. ବିଣ (ଦୁଃଖ+ନି+ବହ ଧାତୁ+କର୍ମ. ଅ)—Duhkha nibaha ଦୁଃସହ (ହି. ଶବ୍ଦସାଗର)—Unbearable; hard to bear

ଦୁଃଖ ପଡ଼ିବା—ଦେ. କ୍ରି—ଦୁଃଖ ସହିବା; କଷ୍ଟ ସହିବା; କଷ୍ଟ ପଡ଼ିବା—Duhkha paṛibā To undergo pain, troubles and hardships.

ବନରେ ବନରେ ଶୃଙ୍ଗେ ଶୃଙ୍ଗେ ଭଙ୍ଗ ଖୋଜିଗଲେ ଦୁଃଖ ପଡ଼ି ।
ଉପେନ୍ଦ୍ର ଭଞ୍ଜ. ବୈଦେହୀଶବିଳାସ ।

ଦୁଃଖପଡ଼ା ଦେ. ବି—ଦୁଃଖର ସମୟ ଉପସ୍ଥିତ ହେବା—
ଦୁଃଖ ହୁନା; ଦୁଖମେନା Being in evil days.

ଦୁଃଖ ପାଇବା—ଦେ. କ୍ରି—୧ । କଷ୍ଟ ଭୋଗକରିବା—Duḥkha pāibā 1. To suffer pains.
ଦୁଃଖପାଓୟା ୨ । ପ୍ରସବ ବେଦନା ଭୋଗକରିବା—
ଦୁଖପାନା; ଦୁଖଉଠାନା 2. To travail; to labour at child-birth; to undergo the throes of child-birth; to suffer from labour-pain.
୩ । ଦାରିଦ୍ର୍ୟ ଅବସ୍ଥା ଭୋଗ କରିବା; ବିପନ୍ନ ହେବା—3. To undergo poverty or misfortune.

ଦୁଃଖ ପାଶୋରା—ଦେ. ବିଣ (ସଂ. ଦୁଃଖ+ବିସ୍ମରଣ)—ଯାହାଦ୍ୱାରା ମନୁଷ୍ୟ Duḥkha pāsorā ଦୁଃଖ ଭୁଲିଯାଏ—Causing one to forget his own grief or misery.
(ଦୁଃଖପାଶରା—ଅନ୍ୟରୂପ)
ଦୁଃଖପାସରା
ଦୁଃଖବିସରା

ତୁ ମୋର ଦୁଃଖପାଶୋରା କି ରେ
ମୁହିଁ ବୋଲିଦ୍ୟନ୍ତେ ସ୍ନେହ ଗୀତେ ।
କବିସୂର୍ଯ୍ୟ. ସଙ୍ଗୀତ ।

ଦୁଃଖ ପ୍ରଦ—ସଂ. ବିଣ. ପୁଂ (ଦୁଃଖ+ପ୍ର+ଦା ଧାତୁ. କର୍ତ୍ତୃ. ଅ)—Duḥkha prada ଦୁଃଖଦ (ଦେଖ) Duhkhada (See).
(ଦୁଃଖପ୍ରଦା—ସ୍ତ୍ରୀ)

ଦୁଃଖ ବହୁଳ—ସଂ.ବିଣ.(ବହୁବ୍ରୀହି; ଦୁଃଖ+ବହୁଳ)—୧ । ଦୁଃଖମୟ—Duḥkha bahuḷa 1 Full of misery.
(ଦୁଃଖବହୁଳା—ସ୍ତ୍ରୀ) ୨ । ଯହିଁରେ ଦୁଃଖର ଭାଗ ବେଶି—
(ଦୁଃଖ ବହୁଳତା—ବି) 2 Abounding in misery.

ଦୁଃଖଭାଗୀ—ସଂ. ବିଣ. ପୁଂ (ଦୁଃଖ+ଭଜ୍ ଧାତୁ+କର୍ତ୍ତୃ. ଇନ୍)—Duḥkhabhāgī ୧ । ଦୁଃଖରେ ସାଥୀ—1. Partner in misery.
(ଦୁଃଖଭାଗିନୀ—ସ୍ତ୍ରୀ)
୨ । ଦୁଃଖୀ—2. Unhappy.
୩ । ଦୁଃଖ ଭୋଗକାରୀ—3. Suffering misery

ଧ୍ରୁବ ଅଙ୍ଗୁଷ୍ଠ ଅଗ୍ର ଲାଗି
ମସ୍ତ ହୋଇଲା ଦୁଃଖଭାଗୀ—ଜଗନ୍ନାଥ. ଭାଗବତ ।

ଦୁଃଖ ଭାଜନ—ଦେ. ବିଣ—ଦୁଃଖ ସହିବାକୁ ଅଭିପ୍ରେତ—Duḥkha bhājana Destined to undergo troubles and miseries.

ତୁମେ ଏକ ଧନ ଖାଲ ନାହେ ଅଟଇକ ବନଜାକ୍ଷୀ କି ଦୁଃଖଭାଜନ ଜନ ।
ଉପେନ୍ଦ୍ରଭଞ୍ଜ-ପ୍ରେମସୁଧାନିଧି ।

ଦୁଃଖ ଭୋଗ—ସଂ. ବି (୬ଷ୍ଠୀ ତତ୍, ଦୁଃଖ+ଭୋଗ)—କଷ୍ଟ ପାଇବା—Duḥkha bhoga Undergoing misery or trouble; suffering.

ଦୁଃଖମୟ—ସଂ. ବିଣ (ଦୁଃଖ+ପ୍ରାଚୁର୍ଯ୍ୟାର୍ଥେ. ମୟ)—ଦୁଃଖରେ ପୂର୍ଣ୍ଣ—Duhkhamaya Full of sorrows or miseries; miserable; sorrowful.
(ଦୁଃଖମୟୀ—ସ୍ତ୍ରୀ)

ଦୁଃଖର ବିଷୟ—ଦେ. ବି—ଦୁଃଖଜନକ ବ୍ୟାପାର—Duḥkhara bishaya A matter of regret.
ଦୁଃଖେର ବିଷୟ; ଦୁଖକୀ ବାତ୍

ଦୁଃଖର ସାଥୀ—ଦେ. ବି—ଯେଉଁ ଲୋକ ଅନ୍ୟର ଦୁଃଖ ଦେଖି ସହି Duḥkhara sāthī ନ ପାରି ତାହାର ଦୁଃଖ ମୋଚନ କରିବାକୁ ଯାଏ; ଦୁଃଖରେ ଅନ୍ୟର ସହାୟ, ବିପଦ୍‌ବନ୍ଧୁ—A person who shares the sorrows and troubles of another; a friend at the time of distress.
ଦୁଃଖେର ସାଥୀ
(ଦୁଃଖର ସିଆରି—ଅନ୍ୟରୂପ)

ଦୁଃଖ ଲବ୍ଧ—ସଂ. ବିଣ (୩ୟା ତତ୍; ଦୁଃଖ+ଲବ୍ଧ)—ଯାହା ଅତି କଷ୍ଟରେ Duḥkha labdha ମିଳିଛି—Got after a great difficulty.

ଦୁଃଖ ଲଭ୍ୟ—ସଂ.ବିଣ (୩ୟା ତତ୍; ଦୁଃଖ+ଲଭ୍ୟ)—ଯାହା ଅତି କଷ୍ଟରେ Duḥkha labhya ମିଳେ—Attainable with great difficulty.

ଦୁଃଖ ଲାଗିବା—ଦେ. କ୍ରି—ହୃଦୟରେ ଦୁଃଖ ଅନୁଭବ କରିବା—Duḥkha lāgibā The feeling of pain at heart.
କଷ୍ଟଲାଗା; ଦୁଖ ଲାଗନା
ଦେ. କ୍ରି—ଦୁଃଖମୟ ଜଣାଯିବା—To seem grievous.

ଦୁଃଖ ଲୋକ—ସଂ. ବି—ସଂସାର—(ହି. ଶବ୍ଦସାଗର)—
Duhkha-loka The world.

ଦୁଃଖ ସମୁଦ୍ର—ସଂ.ବି (ଦୁଃଖ+ସମୁଦ୍ର,ରୂପକ)—ସମୁଦ୍ରପରି ଅସୀମ ଦୁଃଖ—
Duhkha samudra Great many sorrows; ocean of troubles.
(ଦୁଃଖସାଗର—ଅନ୍ୟରୂପ)

ଦୁଃଖ ସାଧ୍ୟ—ସଂ. ଭଣ (ସପ୍ତମୀ ତତ୍; ଦୁଃଖ+ସାଧ୍ୟ)—ଦୁଃସାଧ୍ୟ; ଯାହା
Duhkhasādhya କଷ୍ଟରେ ସାଧିତ ହୋଇପାରେ—
Performable with difficulty; difficult to accomplish.

ଦୁଃଖ ସୁଖ—ସଂ ବି (ବିପରୀତାର୍ଥକ ସହଚର; ଦ୍ୱନ୍ଦ୍ୱ, ଦୁଃଖ ଓ ସୁଖ)—
Duhkha sukha ୧ । କଷ୍ଟ ଓ ଆନନ୍ଦ—1. Pleasure and pain; misery and happiness; weal and woe.
सुख दुख; दुख सुख, दुखसुख
୨ । ସାଂସାରିକ ଅନୁଭବ—2. One's worldly experience

ଦୁଃଖ ସୁଖ ହେବା—ଦେ. କ୍ରି—ନିଜ ନିଜର ଅନୁଭୂତ ସାଂସାରିକ ଦୁଃଖ ଓ
Duhkhasukha hebā ସୁଖ ବିଷୟରେ ଦୁଇ ଜଣ ପରସ୍ପର ମଧ୍ୟରେ
दुख सुख हओया; କଥାଭାଷା ହେବା—To have a mutual talk about one another's weal and woe or about one another's worldly sufferings and happiness.
सुखदुःख
ଦୁଖ ସୁଖ ହେବା } ଅନ୍ୟରୂପ
ଦୁଃଖ ସୁଖ ହେବା

ଦୁଃଖହର—ସଂ.ଭଣ.ପୁଂ—(ଦୁଃଖ+ହୃ ଧାତୁ+କର୍ତ୍ତୃ ଅ; ଉପପଦତତ୍ପୁରୁଷ)
Duhkhahara ଦୁଃଖନାଶକ, ଯାହା ଦୁଃଖ ହରଣ କରେ—
(ଦୁଃଖହରା—ସ୍ତ୍ରୀ) Which lightens sorrow; which lessens miseries.

ଦୁଃଖାଦୁଃଖୀ—ଦେ. ବି.—ପରସ୍ପର ମଧ୍ୟରେ ଥିବା ମାନ ଅଭିମାନ;
Duhkhāduhkhi ମନୋମାଳିନ୍ୟ—Mutual discordance.

ଦୁଃଖାନ୍ତ—ସଂ. ବି (ଦୁଃଖ+ଅନ୍ତ)—୧ । (ଷଷ୍ଠୀ ତତ୍, ଦୁଃଖ-ଅନ୍ତ)—
Duhkhānta ଦୁଃଖର ଶେଷ—1. The end or passing away of one's troubles or misfortune.
(ସୁଖାନ୍ତ—ବିପରୀତ)
୨ । (ବହୁବ୍ରୀହି) ଯହିଁର ପରିଣାମ ଦୁଃଖ ଅଟେ—
2. Ending in misery.
୩ । (ବହୁବ୍ରୀହି)—ଯେଉଁ ନାଟକ ବା ଉପନ୍ୟାସର ଶେଷରେ ଦୁଃଖମୟ ଘଟନା ବର୍ଣ୍ଣିତ ହୋଇଅଛି—3. Tragedy.

ଦୁଃଖାର୍ତ୍ତ—ସଂ. ଭଣ. ପୁଂ. ( ଦୁଃଖ+ଆର୍ତ୍ତ; ତୃତୀୟା ତତ୍ )—
Duhkhārtta ଦୁଃଖ ଦ୍ୱାରା ପ୍ରପୀଡ଼ିତ—Afflicted; troubled; distressed.
(ଦୁଃଖାର୍ତ୍ତା—ସ୍ତ୍ରୀ)
(ଦୁଃଖାର୍ତ୍ତିତା—ବି)

ଦୁଃଖିତ—ସଂ. ଭଣ. ପୁଂ. (ଦୁଃଖ+ସଞ୍ଜାତ ଅର୍ଥରେ ଇତ; ଅଥବା ଦୁର୍+ ଖ୍ୟା ଧାତୁ+କର୍ମ. ତ )—
Duhkhita
(ଦୁଃଖିତା—ସ୍ତ୍ରୀ) ୧ । ଦୁଃଖ ପ୍ରାପ୍ତ—1. Afflicted.

ଦରିଦ୍ର ଦୁଃଖିତ ନ ଜାଣି
ଅସୁର ଘରେ କମଳା । ଜଗନ୍ନାଥ. ଭାଗବତ ।

୨ । କ୍ଷୁବ୍ଧ, ସନ୍ତପ୍ତ—2 Sorry; grieved.
ସଂ ବି. ( ଦୁର୍+ଖ୍ୟା ଧାତୁ+ଭାବ ତ )—ଦୁଃଖ ( ଦେଖ )
Duhkha ( See )

ଦୁଃଖୀ—ସଂ. ଭଣ. ପୁଂ. ( ଦୁଃଖ+ଅସ୍ତ୍ୟର୍ଥରେ, ଇନ୍; ୧ମା. ୧ବ )—
Duhkhi ୧ । ଦୁଃଖିତ—1. Distressed; sorry; afflicted.
(ଦୁଃଖିନୀ—ସ୍ତ୍ରୀ)
ଦୁଃଖିତା } ଅନ୍ୟରୂପ
ଦୁଃଖିହ
दुखी
୨ । ଦାରିଦ୍ର୍ୟ ପୀଡ଼ିତ—2. Poverty-stricken.
୩ । ଗରିବ—3. Poor.

दुखी, दुखिया ଦେ ଭଣ—ଦୁଃଖ ଭୋଗକାରୀ—
Suffering; troubled.
ଦେ. ବି—ଦରିଦ୍ର ବ୍ୟକ୍ତି—A poor person.

ଦୁଃଖୀ ଧନ—ଦେ. ବି—ଗରିବ ଲୋକର ଧନ ଭଳି ଯେଉଁ ପରି ପ୍ରିୟ
Duhkhi dhana ସେହି ପରି ପ୍ରିୟତମ ବସ୍ତୁ ବା ବ୍ୟକ୍ତି—
दुखीका धन One's dearest thing or person (as dear as are riches to the poor ).
दुखीयाका धन

ଦୁଃଖୀ ଧନ ନୀଳମଣି । ଯଶୋଦାଙ୍କ ଶୋକ ।

ଦୁଃଖୀ ରଙ୍କି—ଦେ. ବି. ( ଏକାର୍ଥକ ସହଚର ଶବ୍ଦ ଦ୍ୱୟ; ବହୁବଚନ )—
Duhkhi ranki ଗରିବ ଓ ଦୁଃଖୀମାନେ—
दीन दुखी The poor; the needy and the distressed.
दीन दुखिया

ଦୁଃଖୀ ରତନ—ଦେ. ବି—ଦୁଃଖୀ ଧନ ( ଦେଖ )
Duhkhi ratana Duhkhi dhana ( See )
(ଦୁଃଖୀ ଶଗଳ—ଅନ୍ୟରୂପ)

ଦୁଃଶକୁନ—ସଂ. ବି. ( କର୍ମଧା; ଦୁର୍+ଶକୁନ )—ଅଶୁଭ ଲକ୍ଷଣ; ମନ୍ଦ
Duhśakūna ପୂର୍ବଲକ୍ଷଣ—Evil omen; portent; portentous pre-indication.
ସଂ. ବିଣ ( ବହୁବ୍ରୀହି ) ଅଶୁଭ ଲକ୍ଷଣବିଶିଷ୍ଟ—Portentous; ominous.

ଦୁଃଶଳ—ସଂ. ବି. ପୁଂ (ନାମ)—ଧୃତରାଷ୍ଟ୍ରଙ୍କର ଜଣେ ପୁତ୍ର—
Duhśala Name of one of the sons of Dhrutarāshtra.

ଦୁଃଶଳା—ସଂ. ବି. ସ୍ତ୍ରୀ—ଧୃତରାଷ୍ଟ୍ରଙ୍କ କନ୍ୟା ଓ ଜୟଦ୍ରଥଙ୍କ ପତ୍ନୀ—
Duhśalā The daughter of Dhrutarāshtra and wife of Jayadratha.
(ଦୁଃଶଲା—ଅନ୍ୟରୂପ)

ଏ ବାହାରେ ଦୁଃଶଳା ନାମରେ ଭୂଆସ
ଗୋଟିଏ ଜାତ କଲେକ ଗାନ୍ଧାରୀ । କୃଷ୍ଣସିଂହ. ମହାଭାରତ. ଆଦି ।

[ଦ୍ର—ଜୟଦ୍ରଥ ମହାଭାରତ ଯୁଦ୍ଧରେ ହତ ହେଲା ପରେ ଏ ଆପଣାର ଶିଶୁ ସନ୍ତାନ ସୁରଥଙ୍କୁ ସିନ୍ଧୁ ରାଜ୍ୟର ସିଂହାସନରେ ବସାଇ ବହୁକାଳ ରାଜକାର୍ଯ୍ୟ ଚଳାଇଥିଲେ ।]

ଦୁଃଶା—ଗ୍ରା. ବି—୧ । ଦୁଃଶାସନ ( ଦେଖ )
Duhśā 1. Duhśāsana ( See )

ଲେଉଥାଇ ଦୁଃଶାଳୁ ସେ ମାନ୍ତଣ ବସିଲ—ସ୍ୱାଧାନାଥ. ବେଣୀସଂହାର ।
୨ । (ଅନାଦରାର୍ଥକ) ଦୁଃଶାସନର ଡାକ ନାମ—
2. A name for calling Duḥśāsana

**ଦୁଃଶାସ**— ସଂ. ବିଣ. ପୁଂ (ଦୁର୍+ଶାସ୍ ଧାତୁ+କର୍ମ. ଅ)—ଦୁର୍ଦମ—
Duḥśāsa — Ungovernable; indomitable
(ଦୁଃଶାସା—ସ୍ତ୍ରୀ)

**ଦୁଃଶାସନ**—ସଂ. ବିଣ. ପୁଂ (ଦୁର୍+ଶାସ୍ ଧାତୁ=ଶାସନ କରିବା+କର୍ମ ଅନ; ଯାହାକୁ ଅତି କଷ୍ଟରେ ଶାସନ କରାଯାଏ)—
Duḥśāsana
(ଦୁଃଶାସନା—ସ୍ତ୍ରୀ) ଦୁର୍ଦ୍ଦମ୍ୟ—Ungovernable, intractable.
ବି—୧ । ଦୁର୍ଯ୍ୟୋଧନଙ୍କର ଏକତମ ଭ୍ରାତା—1. A brother of Durjyodhana.
[ଦ୍ର—ଏ ଦୁର୍ଯ୍ୟୋଧନଙ୍କର ସ୍ନେହପାତ୍ର ଓ ମନ୍ତ୍ରୀ ଥିଲେ ଓ ତାଙ୍କ ଆଦେଶ ଅନୁସାରେ ଦ୍ରୌପଦୀଙ୍କ କେଶ ଧରି ତାଙ୍କୁ ଅନ୍ତଃପୁରରୁ କୁରୁସଭା ମଧ୍ୟକୁ ଟାଣି ଆଣି ଉଲଗ୍ନ କରିଥିଲେ । ମହାଭାରତ ଯୁଦ୍ଧ ସମୟରେ ଭୀମ ଏହାଙ୍କ ଛାତି ଚିରି ରକ୍ତପାନ କରି ତହିଁର ପ୍ରତିଶୋଧ ନେଇଥିଲେ । ଦ୍ରୌପଦୀ ଏହାଙ୍କ ରକ୍ତରୁ ବୋଳି ନିଜର ମୁକୁଳା କେଶ ବାନ୍ଧିଥିଲେ ।]
୨ । (କର୍ମଧା, ଦୁଃ+ଶାସନ) ମନ୍ଦ ଶାସନ; କଷ୍ଟମୟ ବା କଷ୍ଟକର ଶାସନ—2 Bad rule; troublesome administration

**ଦୁଃଶୀଳ**— ସଂ. ବିଣ ପୁଂ (ବହୁବ୍ରୀହି; ଦୁର୍=ଦୁଷ୍ଟ+ଶୀଳ=ସ୍ୱଭାବ ଯାହାର)—ଦୁଷ୍ଟସ୍ୱଭାବ; ଦୁଶ୍ଚରିତ୍ର—Evil-natured; wicked
Duḥśīla
(ଦୁଃଶୀଳା—ସ୍ତ୍ରୀ)
(ଦୁଃଶୀଳତା—ବି)

**ଦୁଃଶୋଧ**—ସଂ. ବିଣ (ଦୁର୍+ଶୁଧ ଧାତୁ+କର୍ମ. ଅ)—ଯାହାକୁ ଶୋଧନ କରିବା ବା ସୁଧାରିବା ଅତି କଷ୍ଟକର—Very hard to correct, intractable.
Duḥśodha
(ଦୁଃଶୋଧ୍ୟ— ଅନ୍ୟରୂପ)

**ଦୁଃଶ୍ରବ**—ସଂ. ବିଣ (ଦୁର୍+ଶ୍ରୁ ଧାତୁ+କର୍ମ. ଅ)—୧ । ଯାହା ଶୁଣିଲେ ମନରେ କଷ୍ଟ ହୁଏ—1. Which it is sorrowful to hear
Duḥśraba
(ଦୁଃଶ୍ରବତା—ବି)
୨ । ଯାହା କଷ୍ଟରେ ଶୁଣା ଯାଇପାରେ—
2. Inaudible; not clearly audible; difficult to hear
୩ । ଅଶ୍ରାବ୍ୟ—3. Unfit to be heard.
୪ । ଶ୍ରୁତିକଟୁ—4. Harsh-sounding; cacophonous; harsh to hear
ସଂ. ବି—କାବ୍ୟର ଦୋଷବିଶେଷ; ଶ୍ରୁତିକଟୁଦୋଷ; କାବ୍ୟରେ କର୍କଶବର୍ଣ୍ଣ ବିଶିଷ୍ଟ ଶବ୍ଦମାନଙ୍କ ପ୍ରୟୋଗ ବଶତଃ ଯେଉଁ ଦୋଷ ଲକ୍ଷିତ ହୁଏ (ହି. ଶବ୍ଦସାଗର)—Cacophony, a defect in composition consisting of employing words containing harsh sounds and lettrs.

**ଦୁଃଶ୍ରାବ୍ୟ**—ସଂ. ବିଣ. (ଦୁର୍+ଶ୍ରୁ ଧାତୁ+କର୍ମ. ଯ)—
Duḥśrābya ଦୁଃଶ୍ରବ (ଦେଖ) Duḥśraba (See)
(ଦୁଃଶ୍ରାବ୍ୟତା—ବି)

**ଦୁଃଷମ**—ସଂ. ବିଣ.—(ଦୁର୍+ସମ)—ନିନ୍ଦନୀୟ—
Duḥshama — Blameable.
(ଦୁଃଷମତା—ବି)

**ଦୁଃଷେଧ**—ସଂ. ବିଣ.—(ଦୁର୍+ସିଧ ଧାତୁ+କର୍ମ ଅ)—
Duḥshedha ଦୁର୍ନିବାର (ଦେଖ)—Durnibāra (See)

**ଦୁଃସଙ୍କଳ୍ପ**—ସଂ. ବି. (କର୍ମଧା; ଦୁର୍+ସଙ୍କଳ୍ପ)—ମନ୍ଦ ସଙ୍କଳ୍ପ—
Duḥsaṅkalpa — Evil resolve
(ଦୁଃସଙ୍କଳ୍ପା—ସ୍ତ୍ରୀ) ସଂ. ବିଣ ପୁଂ. (ବହୁବ୍ରୀହି)—ମନ୍ଦସଙ୍କଳ୍ପକାରୀ—
(ଦୁଃସଙ୍କଳ୍ପ—ଅନ୍ୟରୂପ) Making evil resolve

**ଦୁଃସଙ୍ଗ**—ସଂ. ବି.—(କର୍ମଧା, ଦୁର୍+ସଙ୍ଗ)—କୁସଙ୍ଗ, ମନ୍ଦସଙ୍ଗ—
Duḥsaṅga — Evil company.
ସଂ. ବିଣ. ପୁଂ.—ମନ୍ଦ ସଙ୍ଗକାରୀ—
(ଦୁଃସଙ୍ଗା—ସ୍ତ୍ରୀ) Mixing in bad company.

**ଦୁଃସମୟ**—ସଂ. ବି.—(ଦୁର୍+ସମୟ) —୧ । ମନ୍ଦ ସମୟ—
Duḥsamaya — 1. Bad time; evil days
୨ । ଅଭାବଯୁକ୍ତ କାଳ—
2 A time of distress or scarcity.
୩ । ଦୁର୍ଭିକ୍ଷ—3. Famine.
୪ । ବିପତ୍ତି ପଡ଼ିବା କାଳ—
4. Time of adversity.

**ଦୁଃସହ**—ସଂ. ବିଣ. (ଦୁର୍+ସହ୍ ଧାତୁ+କର୍ମ. ଅ)—
Duhsaha ୧ । ଅସହନୀୟ; ଅସହ୍ୟ—1. Unbearable; intolerable
(ଦୁଃସହା—ସ୍ତ୍ରୀ)
(ଦୁଃସହତା—ବି) ୨ । ଅତି କଷ୍ଟଦାୟକ—
2. Very troublesome or painful.

**ଦୁଃସହା**—ସଂ. ବି.—ନାଗଦମନୀ (ଦେଖ) (ହି. ଶବ୍ଦସାଗର)
Duhsahā — Nāgadamanī (See)

**ଦୁଃସାଧୀ**—ସଂ. ବି. (ଦୁର୍+ସାଧ୍ ଧାତୁ=ନିଷେଧ କରିବା+କର୍ତ୍ତୃ. ଇନ୍ ୧ମ. ୧ବ)—ଦ୍ୱାସ୍ଥ; ଦ୍ୱାରପାଳ—
Duḥsādhī — Doorkeeper; porter.

**ଦୁଃସାଧ**—ସଂ. ବିଣ. (ଦୁର୍+ସାଧ)—୧ । ଯାହା କଷ୍ଟରେ ସାଧନ କରାଯାଇ ପାରେ, କଷ୍ଟସାଧ—1. Arduous; difficult to accomplish; difficult of accomplishment.
Duḥsādhya
୨ । ଯେଉଁ ରୋଗ ସହଜରେ ଭଲ ହୁଏ ନାହିଁ—
2. Hard to cure; almost incurable.
୩ । ଅସାଧ୍ୟ; ଯାହା ସଫଳ କରାଯାଇ ପାରେ ନାହିଁ—
3. Impracticable.
୪ । ଯାହାର ପ୍ରତୀକାର କରାଯାଇ ପାରେ ନାହିଁ; ଅପ୍ରତିକାର୍ଯ୍ୟ; ଅପ୍ରତିବିଧେୟ—4. Irreparable; irremediable.

**ଦୁଃସାହସ**—ସଂ. ବି. (କର୍ମଧା; ଦୁର୍+ସାହସ)—ଅତ୍ୟଧିକ ସାହସ; ଅଣାଭୁଆ ପଣ; ଅନୁଚିତ ସାହସ—
Duḥsāhasa — Foolhardiness; rashness; audacity.

(ଦୁଃସାହସା—ସ୍ତ୍ରୀ) ବିଣ. (ବହୁବ୍ରୀହି)—ଦୁଃସାହସିକ (ଦେଖ)
(ଦୁଃସାହସତା—ବି) Duhsāhasika (See)

ଦୁଃସାହସିକ—ସଂ. ବିଣ. ପୁଂ (ବହୁବ୍ରୀହି; ଦୁଃ+ସାହସ+ଇକ)—
Duhsāhasika ୧ । ନିର୍ଭୀକ; ହାଇଁସାହାସିଆ—
(ଦୁଃସାହାସିକା—ସ୍ତ୍ରୀ) 1. Foolhardy; audacious; rash.
(ଦୁଃସାହସିକତା—ବି) ୨ । ଅସମସାହସିକ; ଯେଉଁ କାର୍ଯ୍ୟରେ
(ଦୁଃସାହସୀ—ଅନ୍ୟରୂପ) ଦୁଃସାହସର ପ୍ରୟୋଜନ—
(ଦୁଃସାହସିନୀ—ସ୍ତ୍ରୀ) 2. Requiring uncommon courage;
(ଦୁଃସାହସିତା—ବି) requiring audacity to do it.

ଦୁଃସ୍ଥ - ସଂ. ବିଣ. ପୁଂ. (ଦୁର୍+ସ୍ଥା ଧାତୁ+କର୍ତ୍ତୃ. ଅ)—
Duhstha ୧ । ଦୁର୍ଦ୍ଦଶା ଗ୍ରସ୍ତ—1 Afflicted; badly off,
(ଦୁସ୍ଥ—ଅନ୍ୟରୂପ) wretched; faring ill.
(ଦୁଃସ୍ଥା—ସ୍ତ୍ରୀ) ୨ । ଦୁଃଖିତ—2. Grieved.
(ଦୁଃସ୍ଥତା—ବି) ୩ । ଦରିଦ୍ର—3 Poor.
୪ । ମୂର୍ଖ—4 Ignorant.
୫ । ଲୋଭୀ—5 Covetous.

ଦୁଃସ୍ଥିତ -ସଂ. ବିଣ (ଦୁର୍+ସ୍ଥା ଧାତୁ+କର୍ତ୍ତୃ. ତ)—
Duhsthita ଦୁଃଖରେ ପଡ଼ିତ—Distressed

ଦୁଃସ୍ଥିତି—ସଂ. ବି. (ଦୁର୍+ସ୍ଥିତି; କର୍ମଧା)—୧ । ମନ୍ଦ ଅବସ୍ଥା
Duhsthiti 1. Wretched condition.
୨ । ଅସ୍ଥିରତା—2. Unsteadiness; unstability
୩ । ଦୁଃଖରେ ଅବସ୍ଥାନ—3 Miserable existence
୪ । ଦୁର୍ଦ୍ଦଶା—4. Misfortune; adversity.

ଦୁଃସ୍ପର୍ଶ—ସଂ ବିଣ. ପୁଂ. (ଦୁର୍+ସ୍ପୃଶ୍ ଧାତୁ+କର୍ମ ଅ)—
Duhsparsa ଯାହା ଛୁଇଁଲେ କଷ୍ଟ ହୁଏ; ଦୁଃଖରେ ସ୍ପର୍ଶନୀୟ—
(ଦୁଃସ୍ପର୍ଶା—ସ୍ତ୍ରୀ) Which is painful to touch.
(ଦୁଃସ୍ପର୍ଶତା—ବି) ସଂ. ବି—୧ । କୈଞ୍ଚିକଛୁ; ବାଇଡଙ୍କ—
1. Cowhage.
୨ । ଲତାକରଞ୍ଜ (ଦେଖ)—2. Latākarañja (See)
୩ । କଣ୍ଟକାରୀ (ଦେଖ)—3. Kantakārī (See)

ଦୁଃସ୍ୱପ୍ନ—ସଂ. ବି. (କର୍ମଧା; ଦୁର୍+ସ୍ୱପ୍ନ)—୧ । ମନ୍ଦସ୍ୱପ୍ନ; ଅଶୁଭ ସ୍ୱପ୍ନ—
Duhswapna 1. Ominous dream
୨ । ଶୋଇଥିବା ଲୋକର ଖୁବ ଉଦ୍ବେଗଦାୟକ ସ୍ୱପ୍ନ—
2. Night-mare.

ଦୁଃସ୍ୱଭାବ—ସଂ. ବି. (କର୍ମଧା, ଦୁଷ୍ଟ+ସ୍ୱଭାବ)—ମନ୍ଦସ୍ୱଭାବ—
Duhswabhāba Wicked or evil disposition.
(ଦୁଃସ୍ୱଭାବା—ସ୍ତ୍ରୀ) ବିଣ: ପୁଂ. (ବହୁବ୍ରୀହି)—ମନ୍ଦ ସ୍ୱଭାବାପନ୍ନ—
Wicked; of evil disposition.

ଦୁଁଡ଼ିକିବା · ପ୍ରାଦେ. (ସିଂହଭୂମ) କି—ଉଙ୍କିମାରିବା; ଉଣ୍ଡିବା—
Duṅrd-kibā . To peep

ଦୁକ(କୁ)ଦୁକ(କୁ)—ଦେ. ଅ ( ଧ୍ୱନ୍ୟନୁକରଣ )—ଦକଦକ; ହୃତ୍ପିଣ୍ଡର
Duk(ku)-duk(ku) କମ୍ପନ ବା ସ୍ପନ୍ଦନ; ଧଡ଼ଧଡ଼—
ধুকধুক Throbbing ( of the heart );
धकधक palpitation.

ଛତି ଦୁକ୍ ଦୁକ୍ ପଡ଼ଇ, ଆଖି ଉଜ୍ଜ୍ୱଳ ହୋଇ, ପ୍ରାଣ ଯାଉ ନାହିଁ ।
ଗୋଲକଣ୍ଠ. ପିଲଙ୍କ ରାମାୟଣ ।

ବିଣ—୧ । ଭୟରେ ଅସ୍ଥିର—
1. Restless through fear
୨ । ସ୍ପନ୍ଦିତ; କମ୍ପିତ—
2. Throbbing; palpitating

ଦୁକ୍ କୁ)ଦୁକି—ଦେ. ବି ( ଯାହା ଦୁକ୍ ଦୁକ୍ ହୋଇ ଉଠୁଥାଏ ଓ
Duk(ku)duki ପଡ଼ୁଥାଏ )—୧ । ହୃଦୟ; ହୃତ୍ପିଣ୍ଡ—
ধুকধুকী 1 The heart; the palpitating
द्गद्गी heart
ଦକ ଦକ ହେଉଛି ମୋହର ଦୁକୁଦୁକି—କୃଷ୍ଣସିଂହ ମହାଭାରତ ଆଦି ।
ধুকধুকানি ୨ । ହୃଦୟର ସ୍ପନ୍ଦନ—
धकधकाहट 2. Palpitation of the heart
୩ । ଗଳାରେ ପିନ୍ଧାଯିବା ହାରବିଶେଷ—
3. A kind of necklace.

ଦୁକ(କୁ)ଦୁକି ପଡ଼ିବା— —ଦେ. କ୍ରି —ଛାତି ଦୁକ୍ ଦୁକ୍ ହେବା—
Duk(ku)duki pardibā Palpitation of the
বুক ধুকধুককরা heart
छातिधड़कना

ଦୁକ(କୁ)ତା—ପ୍ରାଦେ ( ବାଲେଶ୍ୱର ) ବି ( ତୁଳ. ବ. ଦୋକ୍ତା )—
Duk-(ku)tā ତମାଖୁ; ଚୂଆ ପତ୍ର—Tobacco.

ଦୁକା—ଦେ. ବି—ଦୋକା (ଦେଖ)
Dukā Dokā (See).

ଦୁକାନ୍—ପ୍ରାଦେ ( ସମ୍ବଲପୁର ଓ ସିଂହଭୂମ ) ବି ( ତୁଳ. ବ ଦୁକାନ୍;
Dukān ହି. ଦୁକାନ୍; ଫା. ଦୁକାନ୍ )—ଦୋକାନ—
Shop.

ଦୁକାନ—ପ୍ରାଦେ ( ବାଲେଶ୍ୱର ଓ ମେଦିନୀପୁର )—ଦୋକାନ—
Dukāna Shop.

ଦୁକୂଳ—ସଂ. ବି (ଦୁ ଧାତୁ=ଉତ୍ତପ୍ତ କରିବା+ଊଳ; ଦୂ ଆଗମ; ଯେଉଁ
Dukūla ବସ୍ତ୍ର ଉତ୍ତାପଜନକ; ବା ଦୁର୍+କୁଲ୍ ଧାତୁ+କର୍ତ୍ତୃ.ଅ)—
୧ । ପାଟଲୁଗା; ପଟ୍ଟବସ୍ତ୍ର—1. Silk cloth
୨ । ଶୁଭ୍ର ବା ଧଳା ବସ୍ତ୍ର—
2. White cloth.
୩ । ବୃକ୍ଷର ବକଳାର ତନ୍ତୁରେ ନିର୍ମିତ ସୂକ୍ଷ୍ମ ବସ୍ତ୍ର—
3. Very fine cloth made from the fine fibres of the bark of certain plants.
୪ । ସୂକ୍ଷ୍ମ ବସ୍ତ୍ର—4. Thin cloth; fine cloth.
୫ । ଉତ୍ତରୀୟ ବସ୍ତ୍ର—5. An upper sheet; scarf

ଦୁକୂଳିଆ—ଦେ. ବିଣ—ପଟ୍ଟ ବସ୍ତ୍ର ପରିଧାନକାରୀ; ଯେ ପାଟ ଲୁଗା ସର୍ବଦା
Dukūliā ପିନ୍ଧି ଥାଏ ( ଶ୍ରୀକୃଷ୍ଣ )—
দুকুলিয়া ( An epithet of Srikrushna ) Wearing silk cloth.

ଦୁଖ (ଇତ୍ୟାଦି)—ଗ୍ରା. ବି. ( ସଂ. ଦୁଃଖ )—
Dukha (etc) ୧ । ଦୁଃଖ ଇତ୍ୟାଦି ( ଦେଖ )
(ଦୁଖ୍ୟ—ଅନ୍ୟରୂପ) 1. Duhkha etc. ( See ).

ହ୍ଦୁକ୍ଖ
दुख

ସେତେ ଦୁଖ ଜଳ ବନରେ ପାଇଥିଲେ
ସବୁ ସ୍ୱାମୀ ରଜାଙ୍କ ଆଗେ ଜଣାଇଲେ ।
କୃଷ୍ଣସିଂହ, ମହାଭାରତ, ବନ ।

୨ । ରୋଗ; ପୀଡ଼ା—2. Illness; sickness.
( ଯଥା—ପେଟ ଦୁଖ, ହାତ ଦୁଖ । )
୩ । ପ୍ରସବ ବେଦନା—
3. Throes of child-birth.
୪ । (ମନର) ବିରସତା; ଅପ୍ରସନ୍ନତା—
4. Dejection ( of spirit ).
୫ । ଦୁଃଖ ଧନ୍ଦା ( ଦେଖ )
5. Duhkha dhandā ( See )
୬ । ଦୁଃଖମୟ ଘଟଣା ବା ବିଷୟ—6. A matter or description of misery.
( ଯଥା—ଦୁଖ କହିବ କି ସୁଖ କହିବ ? ଯାହା ଅଙ୍ଗେ ନିଭେଇଛି ତାହା କହିବି—ଉଗ । )
୭ । ଅଭାବ—7. Want
( ଯଥା—ରଜାଙ୍କ ଛାମୁରେ ମୁଁ ମୋ ଦୁଖ ଜଣାଇବି । )
୮ । ନିର୍ଦ୍ଧନତାଜନିତ କଷ୍ଟ—
8. Trouble due to poverty.
( ଯଥା—ସେ ବଡ଼ଲୋକଘରର ପିଲାଏ ଆଜିକାଲି ଦୁଖ ପାଇ ଗଲେ । )
ବିଣ—୧ । ଦୁଃଖମୟ; କଷ୍ଟମୟ—
1. Painful; miserable.
ମା ମା ରେ । ପାଠପଢ଼ା ବଡ ଦୁଖ
ହାତ ଗୋଡ଼ ଧୂଳ ଲଗଇ ରେ । ପାଷାଣ୍ଡେ ବଡ ସୁଖ—ଶିଶୁ ଗୀତ ।
୨ । ଦୁଃଖଜନକ—2. Causing or bringing about misery.

ଦୁଖ ଦେବା—ଦେ. କ୍ରି—ଅନ୍ୟକୁ କଷ୍ଟ ଦେବା—
Dukha debā  To give pain.
କଷ୍ଟ ଦେଓୟା  दुख देना

ଦୁଖ ପାଇବା—ଦେ. କ୍ରି—୧ । କ୍ଳେଶ ଭୋଗ କରିବା—
Dukha pāibā  1. To suffer pain.
ଦୁଖ ପାଓୟା  ୨ । ପ୍ରସବ କରିବା ପୂର୍ବରୁ (ସ୍ତ୍ରୀମାନେ ବେଦନା
दुख पाना  ଅନୁଭବ କରିବା—
2. To undergo the throes of child-birth.

ଦୁଖ ଲାଗିବା—ଦେ. କ୍ରି—ମନରେ କଷ୍ଟ ଅନୁଭୂତ ହେବା—
Dukha lāgibā  Feeling of pain in the mind
ଦୁଖ ଆସା  ( ଯଥା—ତାଙ୍କ କଥା ଶୁଣି ମତେ ଦୁଖ ଲାଗୁଛି । )
दुख लगना

ଦୁଖା—ଦେ. ବି ପୁଂ. ( ସ. ଦୁଃଖ )—
Dukhā  (ଅନାଦରାର୍ଥକ) ଅଗ୍ରଜାତ ମରିଥିବା ବାଳକର ନାମ—
(ଦୁଖାଇ, ଦୁଖୁ, ଦୁଖେଇ—ଆଦରାର୍ଥକରୂପ) A name given to a
(ଦୁଖିଆ—ଅନ୍ୟରୂପ)  baby whose elder died before he was born.

ଦୁଖାଇବା—ପ୍ରାଦେ. (ସମ୍ବଲପୁର) କ୍ରି—୧ । ପୀଡ଼ିତ ହେବା—
Dukhāibā  1. To feel sick; to ail.
(ଦୁଖେଇବା—ଅନ୍ୟରୂପ)  ୨ । ବ୍ୟଥାଯୁକ୍ତ ହେବା—
ଦୁଖା  2. To be aching.
दुखना  ଦେ. କ୍ରି—ଦୁଃଖ ଦେବା—To give pain.

ଦୁଖାଦୁଖି—ଦେ. ବି. ( ସ. ଦୁଃଖ )—ପରସ୍ପର ମଧ୍ୟରେ ଥିବା ମାନ
Dukhādukhi  ଅଭିମାନ ବା ମନୋମାଳିନ୍ୟ—
ଦୁଖାଦୁଖୀ  Mutual misunderstanding.

ଦୁଖାନ୍—ପ୍ରାଦେ. ( ସମ୍ବଲପୁର ) ବି (ସ. ଦୁଃଖ)—
Dukhān  ୧ । ପୀଡ଼ା; ଦେହ ଦୁଖ—1. Illness.
୨ । ବେଦନା; ବ୍ୟଥା; ସୋଲାବନ୍ଧା—
2. Aching pain

ଦୁଖିତ—ଗ୍ରା. ବିଣ—ଦୁଃଖିତ ( ଦେଖ )
Dukhita  Duhkhita ( See )

ଦୁଖୀ—ଗ୍ରା. ବିଣ. ପୁଂ ଓ ସ୍ତ୍ରୀ—ଦୁଃଖୀ ( ଦେଖ )
Dukhī  Duhkhī ( See )
[ ଦ୍ର—ଦେଶଜ ବ୍ୟବହାରରେ ଦୁଃଖୀ ଶବ୍ଦ ପୁଂଲିଙ୍ଗ ଓ ସ୍ତ୍ରୀଲିଙ୍ଗରେ ବ୍ୟବହୃତ ହୁଏ । ]
ପଡ଼ ଭଲସାରେ ହୋଇ ଅଛନ୍ତି ଦୁଖୀ । କୃଷ୍ଣସିଂହ, ମହାଭାରତ, ବନ ।
ଗ୍ରା. ବି. ସ୍ତ୍ରୀ—୧ । ସ୍ତ୍ରୀ ଲୋକମାନଙ୍କୁ ଡକାଯିବା ନାମ—
1. A name given to females
୨ । ପୁଂ (ଆଦରାର୍ଥକ) ଦୁଖା ନାମକ ବ୍ୟକ୍ତିର ଡାକ ନାମ—
2. A name for calling a person named Dukhā in fondness.

ଦୁଖୀ ଧନ—ଗ୍ରା. ବି—ଦୁଃଖୀ ଧନ ( ଦେଖ )
Dukhī dhana  Duhkhī dhana ( See )
(ଦୁଖୀ ରତନ, ଦୁଖୀ ଶଙ୍ଖାଳ—ଅନ୍ୟରୂପ)

ଦୁଖେ ସୁଖେ—ଦେ. ଅ—୧ । ଦୁଃଖାବସ୍ଥାରେ ଓ ସୁଖାବସ୍ଥାରେ—
Dukhe sukhe  1. In weal and woe.
ସୁଖେ ଦୁଖେ  ୨ । ସମ୍ପଦ୍ ବା ବିପଦ୍ କାଳରେ—
2. In times of prosperity or danger
୩ । ସମ୍ପଦ୍ ଥିବା ଓ ନ ଥିବା ଅବସ୍ଥାରେ—
3. In times of affluence and want.

ଦୁଗା—ଦେ. ବି—୧ । କଉଡ଼ି ଖେଳରେ ଦୁଇ ପଡ଼ିବା ଦାନ; ଲେଙ୍କା—
Dugā  1. A throw of the cowries resulting in two.
(ଦୁଗୁ—ଅନ୍ୟରୂପ)
দোকা  ୨ । ଶକଟା ଖେଳରେ ଦୁଇ ପଡ଼ିବା ଦାନ—
दुरो  2. A throw in śakatā play resulting in two.

ଦୁଗାନ—ପ୍ରାଦେ. (ସମ୍ବଲପୁର) ବି—ଦଉଲତ; ସମ୍ପଦ—
Dugāni  Riches; prosperity.

ଦୁଗୁଣ—ଦେ. ବି. ( ସ. ଦ୍ୱିଗୁଣ )—
Duguna  ୧ । ଦ୍ୱିଗୁଣ—1. Two times.
দুগুন  ୨ । ( ସ. ଦୁର୍ଗୁଣ ) ଦୁର୍ଗୁଣ; ଅପକାର—
दुगना, दुगुना  2. Detriment; mischief; injury.

୩ । କଷ୍ଟ—3. Trouble.

୪ । ଅବଗୁଣ ଗୃହିବା—4. Misunderstanding; taking to heart.

୫ । ବିରକ୍ତି; ଚିଡ଼ିବା—5 Irritability.

୧ । ବିଣ—ଅଳ୍ପ ପରିମିତ; ସାମାନ୍ୟ—1. Slight.

ଫଗୁଣ, ଶୀତ କରେ ଦୁଗୁଣ । ଢଗ ।

୨ । (ସଂ. ଦ୍ୱିଗୁଣ) ଦ୍ୱିଗୁଣିତ—Doubled; double.

ଦୁଗୁଣା—ଦେ. ବି. (ସଂ ଦ୍ୱିଗୁଣିତ)—୧ । ଡଙ୍ଗା ଉପରେ ଆଡ଼ବାଗରେ Dugunā ଦିଆ ଯାଇଥିବା କାଠ ଖଣ୍ଡମାନ—1. The beams (ଦୋଗୁଣା—ଅନ୍ୟରୂପ) laid across the edges of a boat.

୨ । ଦୁଇଗୁଣ—2. Two times; twice as much.

ଦେ. ବିଣ—ଦ୍ୱିଗୁଣିତ—Double.

ଦୁଗୁଣିଆ(ଆଁ)—ଦେ. ବିଣ. (ସଂ. ଦୁର୍ଗୁଣ)—୧ । ଅବଗୁଣିଆ ଲୋକ—Dugunia(ān) 1 Prone to take offence.

୨ । ଚିଡ଼ିଲ—2. Surly; irritable.

୩ । ଦୁର୍ଗୁଣଯୁକ୍ତ (ବ୍ୟକ୍ତି)—3. (a person) Having bad qualities.

୪ । ଯେଉଁ କାର୍ଯ୍ୟରେ ବିରକ୍ତି ବୋଧ ହୁଏ; ବିରକ୍ତିକର—4. Troublesome.

୫ । ଦୁଇଥର ପାଗ କରାଯାଇଥିବା (ଭୁଜା ଭୁଜା)—5. (fried corn) Seasoned twice.

(ଯଥା—ଦୁଗୁଣିଆ ଭୁଜା ଭୁଜା ।)

୬ । (ଦ୍ୱିଗୁଣିତ) ଦୁଇଗୁଣ ଯୁକ୍ତ; ଯାହାକୁ ଦୁଇ ସୂତ୍ରରେ ବଳା ଯାଇଥାଏ—6. Twice twisted (rope or thread.)

(ଯଥା—ଦୁଗୁଣିଆ ଦଉଡ଼ି ବା ସୂତା ।)

ଦୁଗୁଣେ—ଦେ. ଅ. (ଅମୁକ ସଂଖ୍ୟାକୁ)—ଦୁଇରେ ଗୁଣ କଲେ—Dugune Multiplied by two; into two.

ପାଣେ ପଢିଲେ ପାଠ, ଛକ ଦୁଗୁଣେ ଆଠ । ଢଗ ।

ଦୁଗୁଣେଇବା—ଦେ. କ୍ରି—୧ । (ସଂ. ଦୁର୍ଗୁଣ) ଚିଡ଼ାଇବା—Duguneibā 1. To tease; to irritate.

୨ । (ଦ୍ୱିଗୁଣିତ) ଏକ କର୍ମକୁ ପୁନଃ ପୁନଃ କରିବା—2. To do a thing over and over again.

୩ । ଦଉଡ଼ିଆଦିକୁ ଦ୍ୱିଗୁଣିତ କରିବା—3. To twist double.

ଦୁଗୁଧ—ଗ୍ରା. ବି. (ସଂ. ଦୁଗ୍ଧ)—ଦୁଧ—Dugudha Milk.

ଦୁଧ ଦୁଗ୍ଧ

ଦୁଗୁଧା—ଦେ. ବି ଓ ବିଣ—ଦୋଗଧା (ଦେଖ) Dugudhā Dogadhā (See)

(ଦୁଗ୍ଧା, ଦୁଦ୍ଧା, ଦୁଦ୍ଧ୍ଧା—ଅନ୍ୟରୂପ)

ଦୁଗ୍ଧ—ସଂ. ବି. (ଦୁହ୍ ଧାତୁ=ଦୋହିବା+କର୍ମ ତ)—୧ । ଦୁଧ; କ୍ଷୀର—Dugdha 1. Milk.

(ଦୁଗ୍ଧା—ସ୍ତ୍ରୀ) ୨ । ମାତୃସ୍ତନ୍ୟ—2. Mother's milk.

୩ । (+ଭାବ. ତ) ଦୋହନ—3. Milking.

ବିଣ—୧ । ଯାହାକୁ ଦୋହନ କରାଯାଇ ଅଛି—1. Milked.

୨ । ପୂରିତ—2. Filled with; full of.

ଦୁଗ୍ଧ କୂପିକା—ସଂ. ବି—ଦୁଧପୁଳି; ଗୁଣ୍ଡଳଚୁନାକୁ ଦୁଧରେ ବାଟି, ତହିଁରେ Dugdha kūpikā କ୍ଷୀରଭିତର ପୂର ଦେଇ ଘିଅରେ ଛଣାଯିବା ପିଠା (ଭାବ ପ୍ରକାଶ)—A kind of cake made of rice-flour kneaded with milk and fried in ghee.

[ ଦ୍ର—ଏହା ବାୟୁ ପିତ୍ତ ନାଶକ, ବଳକାରକ, ଶୁକ୍ରବର୍ଦ୍ଧକ ଓ ଦୃଷ୍ଟିବର୍ଦ୍ଧକ । ହି. ଶବ୍ଦସାଗର । ]

ଦୁଗ୍ଧତାଲୀୟ—ସଂ. ବି—୧ । ଦୁଧ ଫେଣ (ହି. ଶବ୍ଦସାଗର)—Dugdhatālīya 1. The froth or foam of milk.

୨ । କ୍ଷୀରବଡ଼ି—2. Condensed milk.

ଦୁଗ୍ଧ ପାଚନ—ସଂ. ବି. (ଦୁଗ୍ଧ+ପଚ୍ ଧାତୁ+ଅଧିକରଣ ଅନ)—Dugdha pāchana ଦୁଧ ଆଉଟିବା ହାଣ୍ଡି—An earthen pot for boiling milk; milk-pan.

ଦୁଗ୍ଧ ପାତ୍ର—ସଂ. ବି—ଦୁଗ୍ଧ ପାଚନ (ଦେଖ) Dugdha pātra Dugdha pāchna (See)

ଦୁଗ୍ଧ ପାୟୀ—ସଂ. ବିଣ. (ଦୁଗ୍ଧ+ପା ଧାତୁ=ପିଇବା+କର୍ତ୍ତୃ. ଇନ୍ Dugdha pāyī ୧ମା ୧ବ.)—ଯେ ଦୁଧ ପିଏ—Drinking milk; mammalian.

ଦୁଗ୍ଧପାୟୀ ଜନ୍ତୁ—ଦେ. ବି. (ଜୀବବିଜ୍ଞାନ ପରିଭାଷା)—ଯେଉଁ ଜନ୍ତୁମାନେ Dugdhapāyī jantu ଜନ୍ମହେଲାକ୍ଷଣି ମାତୃ ସ୍ତନ୍ୟ ପାନ କରି ବଞ୍ଚନ୍ତି—(biology) The mammals.

ଦୁଗ୍ଧ ପାଷାଣ—ସଂ. ବି—୧ । ଦୁଧଖଡ଼ି (ଦେଖ) Dugdha pāshāṇa 1. Dudhakhardi (See)

୨ । ଏକପ୍ରକାର ଗଛ (ହି. ଶବ୍ଦସାଗର)—2. A kind of tree.

ଦୁଗ୍ଧ ପୋଷ୍ୟ—ସଂ. ବିଣ. (ତୃତୀୟା ତତ୍; ଦୁଗ୍ଧ+ପୋଷ୍ୟ)—Dugdha poshya ଯେଉଁ ଶିଶୁ ଜନ୍ମାବଧି ଦୁଧ ବା ସ୍ତନ୍ୟପାନ (ଦୁଗ୍ଧପୋଷ୍ୟା—ସ୍ତ୍ରୀ) କରି ବଞ୍ଚିଅଛି—Nourished with milk; (a child or infant) subsisting on milk only.

ସଂ. ବି—ଶିଶୁ—Child.

ଦୁଗ୍ଧ ଫେନ—ସଂ. ବି. (୬ଷ୍ଠୀ ତତ୍; ଦୁଗ୍ଧ+ଫେନ)—୧ । ଦୁଧ Dugdha phena ଉତୁରିଲେ ତହିଁରୁ ଯେଉଁ ଫେଣ ବାହାରେ—1. The froth of milk.

୨ । ଏକପ୍ରକାର ଗଛ; କ୍ଷୀରଡ଼ହୁଣୀର ଗଛ (ହି. ଶବ୍ଦସାଗର)—2. A kind of tree.

ଦୁଗ୍ଧଫେନନିଭ—ସଂ. ବିଣ. (ଦୁଗ୍ଧଫେନ+ନିଭ=ସଦୃଶ)—Dugdhaphena nibha ଦୁଧ ଫେଣପରି ଶୁଭ୍ର ଓ ନରମ (ଶଯ୍ୟା)—As soft and white as the froth of milk; white and downy (bed); soft and milk-white.

ଦୁଗ୍ଧବତୀ—ସଂ. ବିଣ. ସ୍ତ୍ରୀ (ଦୁଗ୍ଧ+ବତ୍+ଈ)—ଦୁଧିଆଳୀ; ଯେଉଁ ଗାଈ
Dugdhabatī ବେଶି ଦୁଧ ଦିଏ—(cow) Giving a good quantity of milk

ଦୁଗ୍ଧବୀଜା—ସଂ. ବି. (ବହୁବ୍ରୀହି; ଦୁଗ୍ଧ+ବୀଜ+ଆ)—
Dugdhabījā ଜୁଆରି; ବାଜରା (ଦ୍ର. ଶବ୍ଦସାଗର)—Indian millet.

ଦୁଗ୍ଧ ଭାଣ୍ଡ—ସ. ବ. (ମ. ପ. ଲୋ; ଦୁଗ୍ଧ+ଭାଣ୍ଡ)—ଦୁଧ ରହିବା ପାତ୍ର—
Dugdha bhāṇḍa A pail or pot of milk.

ଦୁଗ୍ଧ ଲବଣ—ଦେ.ବ. (ବିଜ୍ଞାନ ପରିଭାଷା)—ଏକପ୍ରକାର ରାସାୟନିକ ଲବଣ—
Dugdha labaṇa Milk salt.

ଦୁଗ୍ଧ ଶର୍କରା—ଦେ. ବ. (ବିଜ୍ଞାନ ପରିଭାଷା)—ଦୁଧରୁ ବୈଜ୍ଞାନିକ ପ୍ରକ୍ରିୟା
Dugdha śarkarā ଦ୍ୱାରା ବାହାର କରା ଯାଇଥିବା ଚିନି—Sugar extracted from milk.

ଦୁଗ୍ଧ ସମୁଦ୍ର—ସ. ବ. (ମ. ପ. ଲୋ; କର୍ମଧା)—କ୍ଷୀର ସାଗର—
Dugdha samudra The mythological ocean full of milk.
(ଦୁଗ୍ଧ ସିନ୍ଧୁ; ଦୁଗ୍ଧ ସାଗର, ଦୁଗ୍ଧାବ୍ଧି—ଅନ୍ୟରୂପ)

ଦୁଗ୍ଧ ସ୍ନେହ—ସ. ବ.—[ଦୁଗ୍ଧ+ସ୍ନେହ=ଚିକ୍କଣ (ଘୃତାଦି) ଅଂଶ]—
Dugdha sneha ଦୁଧରେ ଥିବା ଚର୍ବି ଭାଗ—Milk-fat

ଦୁଗ୍ଧାବ୍ଧି—ସ. ବ.—ଦୁଗ୍ଧ ସମୁଦ୍ର (ଦେଖ)
Dugdhāb-dhi Dugdha samudra (See)

ଦୁଗ୍ଧିକା—ସ. ବ. (ଦୁଗ୍ଧ+ଇକ+ଆ)—ଦୁଧିଆ ମେଣ୍ଢି (ଦେଖ)
Dugdhikā Dudhiā meṇḍhi (See)

ଦୁଗ୍ଧୀ—ସ. ବଣ. (ଦୁଗ୍ଧ+ଇନ୍; ୧ମା. ୧ବ.)—ଦୁଗ୍ଧ ପରି ରସଯୁକ୍ତ—
Dugdhī With milk-white juice.
ସ. ବ.—କ୍ଷୀର ବୃକ୍ଷ—
A tree with milky juice.

ଦୁଜ୍‌ବର—ଦେ. ବି. ପୁଂ. (ସଂ. ଦ୍ୱି ଓ ବର)—ଦୋବେଇ ବର—
Duj-bara Remarried widower.
ଦୋଜବର ଦେ. ବିଣ.—ଦୁଇଥର ବିବାହିତ (ପୁରୁଷ)—
ଦୁଜବର, ଦୋଝା Twice married (male).

ଦୁଜା—ଦେ. ବଣ. (ସଂ. ଦ୍ୱି)—ଦ୍ୱିତୀୟ—
Dujā Second.

ସକଳ ଲୋକେ ଭୁମ୍ଭ ପୂଜା,
କ ପଶ୍ଚାତର ଦେବା ଦୁଜା । ଜଗନ୍ନାଥ. ଭାଗବତ ।

ପ୍ରାଦେ. (ବାଲେଶ୍ୱର) ବି.—ସୌର ମାସର ଦ୍ୱିତୀୟ ଦିନ, କରଂଶ ଦିବସ—The second day of a solar month.

ଦୁଜାତି—ଦେ. (ପ୍ରାଚୀନ ବ୍ୟବହାର) ବି.—ଦୁଇ ଜାତି—
Dujāti Two classes
ଦୁଜାତି ମାର ଅଗ୍ନିର ଦୁଜାତ ହୋଇଛ ଉଥଣ ।
ଦୁଜାତି ପ୍ରାଚୀ, ଚିନ୍ତାମଣିଭୂଷଣ ଗୀତା ।

ଦୁଜେ—ଦେ. କ୍ରି. ବିଣ. (ସଂ. ଦ୍ୱି)—ଦ୍ୱିତୀୟତଃ; ଦ୍ୱିତୀୟରେ—
Duje Secondly.
ଦୁଯେ ଏକେ ନବଯୁବା ଦୁଜେ ସେ କୁମାର
ଦୁସରା ରାଧାନାଥ.ଚନ୍ଦ୍ରଭାଗା ।

ଦୋସରା ବିଣ.—ଦ୍ୱିତୀୟ—
ଦୁସରା Second
ସମ ପ୍ରଭୁଲ୍ୟ କେହି ନାହିଁ
ସର୍ବକେ ଦୁଜେ ବ୍ରହ୍ମା ସେହି । ଜଗନ୍ନାଥ: ଭାଗବତ ।

ଦୁଡ୍‌ଗୁଡ୍—ଦେ. ବି.—ସନ୍ଦିଗ୍ଧ ଚିତ୍ତ—
Durd-gurd Doubtful mind; vaccilation.
(ଦୁଡ୍‌ଗୁଡ୍—ଅନ୍ୟରୂପ) ବିଣ.—ସନ୍ଦିଗ୍ଧ (ଚିତ୍ତ)—
Doubtful; vaccilating (mind).

ଦୁଡ୍‌ଗୁଡ଼ିଆ—ଦେ. ବିଣ.—ଦୁଡ୍‌ଗୁଡ୍ (ଦେଖ)
Durd-gurdiā Durdgurd (See)
(ଦୁଡ୍‌ଗୁଡ଼ିଆ—ଅନ୍ୟରୂପ)

ଦୁଡ୍ ଦୁଡ୍—ଦେ. ବି. (ଧ୍ୱନ୍ୟନୁକାରୀ)—ଭୟରେ ହୃତ୍‌କମ୍ପ—
Durd durd Palpitation of the heart due to fear; heart-throbbing.
ଧୁକୁଡ଼ ଧୁକୁଡ଼ ଦେ. ବିଣ.—ଭୟରେ କମ୍ପିତ (ହୃଦୟ)—
(ଦୁଡୁ ଦୁଡୁ—ଅନ୍ୟରୂପ) Palpitating (heart).

ଦୁଡ୍ ବିହେଇ—ପ୍ରାଦେ (ସମ୍ବଲପୁର) ବିଣ.—ଦୋବେଇ (ଦେଖ)
Durd bihei Dobei (See)
(ଦୁଡ୍‌ବେଇ—ଅନ୍ୟରୂପ)

ଦୁଡ୍ଡା ତାରକ—ଦେ. ବି.—ବୁଢ୍ଢା ତାରକ (ଦେଖ)
Durdā tāraka Burdhā tāraka (See)

ଦୁଡ୍ଡୁକ(କି)—ଦେ. ବି.—ଧୁଡ୍ଡୁକି (ଦେଖ)
Durduka(ki) Dhurduki (See)

ଦୁଡୁକା—ପ୍ରାଦେ. (ଗଡ଼ଜାତ) ବି.—ମଧୁର ତରଭୁଜା ଫଳ; ପାର୍ଶ୍ୱ-
Durdukā ପଟୋଳିକା—Luffa Aegytiaca.

ଦୁଡ୍ଡିଘର—ପ୍ରାଦେ. (ଗଞ୍ଜାମ) ବ—୧ । କାଞ୍ଜିହାଉସ୍—
Duḍḍighara 1. Pound; kine-house.
୨ । ପାଇଖାନା—2. Latrine.

ଦୁଣ୍ଡୁକ—ସ. ବଣ. (ଡୁଡ୍ ଧାତୁ=ମଗ୍ନ ହେବା+ଉକ)—
Dunḍuka ୧ । କୁଟିଳାନ୍ତଃକରଣ—1. Crooked; deceitful.
୨ । ଦୁର୍ଜ୍ଜନ; ଖଳ—2. Mischief-monger.

ଦୁଣ୍ଡୁଭ—ସ. ବ. (ଡୁଡ୍ ଧାତୁ=ମଗ୍ନ ହେବା+ଉଭ; ନିପାତନ)—
Dunḍubha ଡୁଣ୍ଡୁଭ; ପାଣିଧଣ୍ଡ ସାପ—
Water-snake; a kind of non-poisonous snake.

ଦୁତ୍—ଦେ. ଅ—୧ । (ଯେ ଅନୁଚିତ ବାକ୍ୟ କହେ ବା ଅନୁଚିତ କର୍ମ
Dut କରେ ତା ପ୍ରତି ବା ତିରସ୍କାରରେ ବ୍ୟବହୃତ ଅବ୍ୟୟ;)
ଦୁତ୍ ଧୁତ୍—1. Fie.
ଦୁତ ୨ । (ନିଷେଧାର୍ଥକ ଅବ୍ୟୟ) ନାଁ—2 No.

ଦୁତୀ—ଗ୍ରା. ବଣ. (ସ. ଦ୍ୱିତୀୟ)—ଦ୍ୱିତୀୟ—
Dutī Second.
ଦୁତୀ ସ୍ୱୟମ୍ବର କର ନାହାକୁ ପାଇଲେ । ପ୍ରାଚୀ-ପ୍ରତାପ ଶଶିରେଖା ।
ବି—ଦୂତୀ (ଦେଖ)—Dūtī (See)

**ଦୁତିଅ(ୟ)**—ଗ୍ରା. ବିଣ. ( ସଂ. ଦ୍ୱିତୀୟ )—ଦ୍ୱିତୀୟ—
Dutia(ya) Second.
ଦୁତିୟ ଦ୍ୱାଦଶ ପାବନ୍ତୁ ଗଲେ ଦୁତିଅ ପିଠରେ—ଗ୍ରାଡୀ. ବୃନ୍ଦାବନରୂପଣଗୀତା ।
दुतिय
ସେଙ୍ଗା; ସାଙ୍ଗା ବି—ଶୂଦ୍ରା ବିଧବାର ଦ୍ୱିତୀୟ ବିବାହ; ଦ୍ୱିତୀୟ ବିବାହ—
सगाई Widow marriage ( amongst the Śūdras).
[ ଦ୍ର—ଆମ ଦେଶରେ ଶୂଦ୍ର ଓ ନୀଚ କୁଳରେ ଏ ପ୍ରଥା ପ୍ରଚଳିତ ଅଛି । ]

**ଦୁତିଅ(ୟ) କରିବା**—ଦେ. କ୍ରି—୧ । ( ପ୍ରସ୍ତାବକୁ ) ସମର୍ଥନ କରିବା—
Dutia(ya) kariba 1. To second (a proposal ).
ସେଙ୍ଗା କରା ୨ । ଶୂଦ୍ରା ବିଧବାକୁ ଦ୍ୱିତୀୟବାର ବିବାହ କରିବା—
सगाई करना 2. To marry a Śūdra widow.

**ଦୁତିଅ(ୟ) ସଂସାର** ଦେ. ବି—ଦୁତିଅ ସଂସ୍ଥା (ଦେଖ)
Dutia(ya) samsāra Dutia samsthā (See)

**ଦୁତିଅ ସଂସ୍ଥା**—ପ୍ରାଦେ. ( ଗଡ଼ଜାତ ) ବି—ପୁରୁଷର ଦ୍ୱିତୀୟବାର ଦାର-
Dutia(ya) samsthā ପରିଗ୍ରହ—The second marriage
(ଦୁତିଅ ସସ୍ଥା—ଅନ୍ୟରୂପ) of a widower.

**ଦୁତିଅ(ୟ) ହେବା**—ଦେ. କ୍ରି—୧ । (ବିଧବା ସ୍ତ୍ରୀ) ଅନ୍ୟ ସ୍ୱାମୀ ଗ୍ରହଣ
Dutia(ya) hebā କରିବା—1. (a widow) To remarry.
ସାଙ୍ଗା ହଓୟା ୨ । (ପୁରୁଷ) ବିଧବା ସ୍ତ୍ରୀକୁ ବିବାହ କରିବା—
सगाई करना 2. To marry a widow.

**ଦୁତିଆ(ୟା)**—ଦେ. ବି.(ସଂ.ଦ୍ୱିତୀୟା)—ପୂର୍ଣ୍ଣିମା ଓ ଅମାବାସ୍ୟା ପରେ ହେବା
Dutiā(yā) ଦ୍ୱିତୀୟା ତିଥି—The second day after
ଦ୍ବିଜ full moon or new moon.
दुज; दुतिया

**ଦୁତିଆ ଅଷ୍ଟମୀ**—ପ୍ରାଦେ. ( ଯାଜପୁର ) ବି—ଦୁତିଆ ଓଷା ( ଦେଖ )
Dutiā ashṭami Dutiā oshā ( See )

**ଦୁତିଆ(ୟା) ଓଷା**—ଦେ. ବି. ( ସଂ. ଜୀମୂତବାହନ+ସଂ. ଉପବାସ, ପ୍ରା. ଓଷା )—ଆଶ୍ୱିନ କୃଷ୍ଣପକ୍ଷ ଅଷ୍ଟମୀ ବା
Dutiā(yā) oshā
ମୂଳାଷ୍ଟମୀ—The eighth day of the dark fortnight of Āswina.
[ ଦ୍ର—ସଧବା ସ୍ତ୍ରୀଲୋକମାନେ ଏହି ଓଷା କରନ୍ତି । ସେମାନେ ପୂର୍ବଦିନ ଉପରଓଳି ଉପବାସ (ଏକବାର) କରି ପରଦିନ ସାରାଦିନ ଓ ରାତି ନିର୍ଜଳ ରହନ୍ତି । ସନ୍ଧ୍ୟା ସମୟରେ ଗ୍ରାମର ସମସ୍ତ ସ୍ତ୍ରୀଲୋକେ ଗୋଟିଏ ପୋଖରୀରେ ଗାଧୋଇ ଗଙ୍ଗାମାତାଙ୍କୁ ପୂଜା କରନ୍ତି ଓ ସାନ ଘାଟର ବାଡ଼ରେ ନୂଆଲୁଗାମାନ ପାହାଡ଼ା ପାଇ ସଜା ସ୍ତ୍ରୀମାନଙ୍କ ପ୍ରତିଧିକୁ ସନ୍ତର୍ପଣ କରି ଭଜ ନିଜ ପିଲାଙ୍କ ମୁଣ୍ଡରେ ଅଣି ଥାଡ଼ନ୍ତି । ରାତିରେ ଜୀମୂତବାହନଙ୍କୁ ନାନାପ୍ରକାର ଫଳ ଭୋଗ ଦେଇ ଏହି ଓଷାର କଥା (ଉପାଖ୍ୟାନ) ଶୁଣନ୍ତି । ]

**ଦୁତିଆ(ୟା) ଚନ୍ଦ**—ଦେ. ବି ( ସଂ. ଦ୍ୱିତୀୟା+ଚନ୍ଦ୍ରମା )—ଦ୍ୱିତୀୟା
Dutiā(yā) chānda ତିଥି ସନ୍ଧ୍ୟାରେ ଦେଖାଯିବା ଚନ୍ଦ୍ର—
দিতিআর চাঁদ The moon seen on the second day
दुजका चान्द of the lunar fortnight.

**ଦୁତି କାମ**—ଦେ. ବି—ଦ୍ୱିତୀୟ କାମ ବା କନ୍ଦର୍ପ—
Duti kāma A second cupid.
ଜମ୍ବାଗନ୍ଧ ବଢ଼ନ୍ତସାଧ୍ୟ ତାଙ୍କ ନାମ
ସୁଭରପଣେ ଅବନୀରେ ଦୁତି କାମ । କୃଷ୍ଣସିଂହ. ମହାଭାରତ. ଆଦି ।

**ଦୁତ୍ତେରି**—ଦେ. ଅ—ଦୁତ୍ ( ଦେଖ )
Dutteri Dut ( See )
दुत्तोर
( ଦୁତ୍ତେରିକା; ଦୁତ୍ତେରିକି; ଦୁତ୍ତେରିକେ—ଅନ୍ୟରୂପ )

**ଦୁଦ୍**—ପ୍ରାଦେ. ( ସମ୍ବଲପୁର ) ବି. ( ସଂ. ଦୁଗ୍ଧ )—ଯୁବତୀର ବା ସ୍ତ୍ରୀର
Dud ସ୍ତନ—A female's or young woman's
( ଦୁଧ୍—ଅନ୍ୟରୂପ ) breast
[ ଦ୍ର—ସମ୍ବଲପୁର ଅଞ୍ଚଳରେ ମାତୃସ୍ତନକୁ 'ଟନ୍' ବା 'ବୁଁ' ବୋଲାଯାଏ । ଯୁବତୀ ସ୍ତନକୁ ଦୁଦ୍ ବା ଦୁଧ୍ ବୋଲାଯାଏ । ଓଡ଼ିଶାରେ ଦୁଧର ଅର୍ଥ ୧. ଦୁଗ୍ଧ; ୨. ସ୍ତ୍ରୀ ସ୍ତନ; ୩ ମାତୃସ୍ତନ, କିନ୍ତୁ ସମ୍ବଲପୁରରେ ଦୁଦ୍‌ର ଅର୍ଥ ସ୍ତ୍ରୀ ବା ଯୁବତୀର ସ୍ତନ; ଏବଂ ଗୁରସି (ଗୋରସ୍), ଓଖର ଓ କଳାପାଣି ଆଦି ଶବ୍ଦ ଦୁଗ୍ଧ ଅର୍ଥରେ ବ୍ୟବହୃତ ହୁଏ । ]

**ଦୁଦୁଇ**—ଦେ. ଅ( ସଂ. ଦ୍ୱି+ଦ୍ୱି )—ପ୍ରତ୍ୟେକ ବ୍ୟକ୍ତିକୁ ଦୁଇ ଦୁଇ
Dudui ଅନୁସାରରେ—Two to each.
দু দু ଏକ ଏକ ଯୁବତୀଙ୍କ ଦୁଦୁଇ ଭାତ—ପ୍ରାଚୀ, ରହସ୍ୟମଞ୍ଜରୀ ।
दो दो

**ଦୁଦୁପୁ ଦୁଦୁପୁ**—ଦେ. ( ଧ୍ୱନ୍ୟନୁକରଣ ) ଅ—ଡମରୁ ବାଜିବାର ଶବ୍ଦ—
Dudupu dudupu The sound of Ḍamaru.
দপদপ दमदम

**ଦୁଦୁରା**—ଦେ. ବି. ( ସଂ.ଧୁସ୍ତୁର )—ଧାତୁରା ( ଦେଖ )
Dudurā Dhāturā ( See )

**ଦୁଦୁରା ଫୁଲିଆ**—ଦେ. ବିଣ—ଧାତୁରା ଫୁଲ ପରି ଯାହାର ଫନ୍ଦ ବଙ୍କା
Dudurā phuliā ଓ ବିସ୍ତୃତ ହୋଇଥାଏ ( ବାସନ )—
( utensils ) Having the rims notched and foliated like the Dhāturā flower.

**ଦୁଦ୍ରୁମ**—ସଂ. ବି.—ହଳଦିଆ ପିଆଜ—
Dudruma A kind of yellow onion.

**ଦୁଧ** ଦେ. ବି. (ସଂ. ଦୁଗ୍ଧ)—୧ । କ୍ଷୀର; ଦୁଗ୍ଧ—
Dudha 1. Milk.
ଦୁଧ ଉତୁରିଲେ ଲିଭୁ ଲିରେ ପଶେ,
ମଣିଷ ଉତୁରିଲେ ଗାତରେ ପଶେ । ଢଗ ।
୨ । ମାତୃସ୍ତନ୍ୟ—2. Mother's milk.
[ଦ୍ର—ଶିଶୁମାନଙ୍କ ଚକ୍ଷୁରେ ମାତୃ ସ୍ତନ୍ୟ ଠାରୁ ପ୍ରିୟତର ପଦାର୍ଥ ଆଉ ସଂସାରରେ ନାହିଁ । ଏଥିପାଇଁ ଶିଶୁ ଓ ମାତାମାନେ ସ୍ତନ ଓ ସ୍ତନ୍ୟକୁ ଅନେକ ପ୍ରକାର ଗେଲବସରିଆ ନାମ ଦେଇ ଥାଆନ୍ତି ଯଥା;- ଦୁଧ, ଦଦ, ଦଦ୍ଦ, ଦ୍ଧ, ଦଦନ, ଦଦ୍ଦଆ, ଦଦନ, ଦଧ, ଦଧିଆ, ଦୁଧ, ଦୁଦ, ଦୁଦ୍ଦ, ଦୁଦ୍ଦଅ ଇତ୍ୟାଦି ।
ଗଡ଼ଜାତରେ ଦୁଧ କହିଲେ ଲୋକେ କେବଳ ସ୍ତ୍ରୀ ସ୍ତନ ବୋଲି ବୁଝନ୍ତି । ]
୩ । ପଣ୍ଡା—3 Udder.

୪ । ମମା, ସ୍ତନ—
4. Mamma; the breasts of the female
୫ । ଗଛର କ୍ଷୀର; ଦୁଧ ପରି ଧଳା ରସ—
5 White juice resembling milky; milky juice.

**ଦୁଧ ଅଲତା**—ଦେ. ବି—ଦୁଧରେ ଅଲତା ମିଶାଇଲେ ଯେଉଁ ଈଷତ୍ Dudha alatā ରକ୍ତିମା ରଙ୍ଗ ହୁଏ; ପାଟଳବର୍ଣ୍ଣ— ହୁଧ ଆଲତା Ruddy colour; slightly red colour (red and white)

**ଦୁଧ ଅଉଟିବା**—ଦେ. କ୍ରି—ଦୁଧକୁ ନିଆଁ ଉପରେ ରଖି ସିଝାଇବା— Dudha āutibā To boil milk. ଦୁଧେ ଜାଲ ଦେଓୟା ଦୁଧ ଜାଲନା

**ଦୁଧ ଉଚ୍ଛାଳିବା**—ଦେ. କ୍ରି—(ରୋଗ ହେତୁ ଶିଶୁ) ପିଇବା ଦୁଧକୁ Dudha uchhālibā କିଛିକ୍ଷଣ ପରେ ବମନ କରି ପକାଇବା— ହୁଧ ତୋଲା To throw up milk (said of infants). ଦୁଧ ଡାଲନା

**ଦୁଧ କଟ କଟ ହେବା**—ଦେ. ବି—ମାଆଠାରୁ ଶିଶୁ କେତେକ ସମୟ Dudha kaṭa kaṭa hebā ସ୍ତନ୍ୟ ପାନ ନ କଲେ ମାତୃ ସ୍ତନ ସ୍ତନ୍ୟପୂର୍ଣ୍ଣ ହୋଇ ବିନ୍ଧିବା—An unpleasant sensation caused by the breasts not being sucked by the child for some time, due to the breasts being overfilled with milk

[ ଦ୍ର—କୌଣସି ସ୍ତ୍ରୀ ଆପଣା ଶିଶୁକୁ ଅଧିକ ବେଳଯାଏ ଦୁଧ ନ ଦେଲେ ସ୍ତନରେ ଦୁଗ୍ଧାଧିକ୍ୟ ବଶତଃ ଯନ୍ତ୍ରଣା ହୁଏ ଓ ମାତା ଏହି ଯନ୍ତ୍ରଣାରେ ଅସ୍ଥିର ହୋଇ ପିଲାକୁ ଦୁଧ ନ ଦେବା ପର୍ଯ୍ୟନ୍ତ ସମ୍ଭାଳି ହୋଇ ରହି ପାରନ୍ତି ନାହିଁ । ]

**ଦୁଧ କଳମ**—ଦେ. ବି—ଏକପ୍ରକାର ଧାନ— Dudha kaḷama A kind of paddy (Howells.

**ଦୁଧ(ଧୁ) କୁଞ୍ଚା**—ଦେ. ବି—ଦୁଧ ଦୋହିବା ଓ ରଖିବା ନିମନ୍ତେ ବ୍ୟବହୃତ Dudha(dhu) kuñchā ଛୋଟ ଘଡ଼ି—Small pitcher for keeping milk (ଦୁଧ ଘଡ଼ି; ଦୁଧ ଠେକି—ଅନ୍ୟରୂପ)

**ଦୁଧ(ଧୁ) କୁସୁମା**—ଦେ. ବି—ବଟା ଭାଙ୍ଗ ବା ସିଦ୍ଧି ସଙ୍ଗେ ଦୁଧ Dudha(dhu) kusumā ମିଶ୍ରିତ ହୋଇ ଯେଉଁ ପାନୀୟ ପ୍ରସ୍ତୁତ ହୋଇଥାଏ—Bhāng mixed with milk. ଦୁଧକୁସମା } ଅନ୍ୟରୂପ ଦୁଧକୁସୁମ୍ଭା }

**ଦୁଧ(ଧୁ) ଖଡ଼ି**—ଦେ. ବି. (ସଂ. ଦୁଗ୍ଧ ଓ ଖଟୀ)—ଏକପ୍ରକାର ଧଳା Dudha(dhu) khaṛdi ପଥର; ଫୁଲଖଡ଼ି—A kind of white stone harder than chalk. ସଂ.ଦୁଗ୍ଧପାଷାଣ; ଗୋମେଦ-ସନ୍ନିଭ; କଳ୍ପାଭ ଫୁଲଖଡି ଦୁଧିୟା ପଥର; ଦୁଧୀ

[ ଦ୍ର—ଏହା ଚକ୍ ଖଡ଼ି ଅପେକ୍ଷା ଟାଣ । ଏଥିରେ ଶିଶୁମାନେ ପାଠ ଲେଖନ୍ତି ଓ ମୁରୁଜ ତିଆରି ହୁଏ । ବୈଦ୍ୟଶାସ୍ତ୍ର ଅନୁସାରେ ଏହା ସ୍ନିଗ୍ଧ, ଉଷ୍ଣ, ଲୁଚକର ଓ ଜ୍ୱର, ପିତ୍ତ, ହୃଦ୍ରୋଗ, କାଶ, ଶୂଳ ଓ ଆଧ୍ମାନନାଶକ । ]

**ଦୁଧ(ଧୁ) ଖିଆ ପିଲା**—ଦେ. ବି—ସ୍ତନ୍ୟପାନ କରୁଥିବା ଶିଶୁ; ସ୍ତନନ୍ଧୟ Dudha(dhu) khiā pilā ଶିଶୁ—A child in arms; an infant; a suckling. ଦୁଧେର ଛେଲେ ଦୁଧକାବଚ୍ଚା

**ଦୁଧଘଁାଟା**—ପ୍ରାଦେ· (ସିଂହଭୂମ) ବି—ସ୍ୱର୍ଚ୍ଚିଦ୍ର—Condensed Dudhaghāṅṭā milk; a preparation made of milk thickened by boiling and mixed with sugar.

**ଦୁଧ ଚିପିବା**—ଦେ କ୍ରି. (ଅଶିଷ୍ଟ)—ସ୍ତ୍ରୀର ସ୍ତନ ମର୍ଦ୍ଦନ କରିବା— Dudha chipibā To squeeze a woman's breast. ମାଇ ଟେପା ଛାତି ମସଲନା

**ଦୁଧ ଚୋରଣୀ**—ଦେ. ଗୁଣ—(ଯେଉଁ ଗାଈ) ଦୁଧ ଦୁହିଁବା ସମୟରେ Dudha chorani ଆପଣାର ପହ୍ନା ଭିତରେ ଦୁଧ ଲୁଚାଇ ରଖେ— (a cow) Which keeps back or checks the flow of her milk at the time of milking.

**ଦୁଧ ଚୋରା(ରେ)ଇବା**—ଦେ. କ୍ରି—ଦୁଧ ଦୁହିଁବା ସମୟରେ (ଗାଈ ଆଦି) Dudha chorā(re)ibā ଦୁଧ ନ ଦେଇ ଲୁଚାଇବା—To hide and restrain the milk from flowing at the time of milking. ଦୁଧ ଚଢ଼ାନ

**ଦୁଧ ଛଡ଼ା(ଡ଼େ)ଇବା**—ଦେ. କ୍ରି—ସ୍ତନ୍ୟପାନ କରୁଥିବା ଶିଶୁର ମାତୃ Dudha chhaṛdā(ṛde)ibā ସ୍ତନ୍ୟପାନ ଅଭ୍ୟାସ ବନ୍ଦ କରାଇବା— ଦୁଧ ଛାଡ଼ାନ ଦୁଧଛୁଡ଼ାନା To wean a child.

**ଦୁଧ ଛାଡ଼ିବା**—ଦେ. କ୍ରି—(ସ୍ତନନ୍ଧୟ ଶିଶୁ) ମାତୃସ୍ତନ୍ୟ ପାନ କରିବା Dudha chhāṛdibā ଅଭ୍ୟାସ ତ୍ୟାଗ କରିବା—To be weaned (said of a suckling child). ଦୁଧ ଛାଡ଼ନା ଦୁଧ ଛୁଟନା

**ଦୁଧ ଛିଣ୍ଡା(ଣ୍ଡେ)ଇବା**—ଦେ. କ୍ରି.—ଗରମ ଦୁଧରେ ଖଟା ପକାଇ ତାକୁ Dudha chhiṇḍā (ṇḍe)ibā ଛେନା କରିବା— ଦୁଧଛେଁଡା, ଦୁଧକାଟା To curdle hot milk by applying some acid or sour thing. ଦୁଧ ଫାଡ଼ନା

**ଦୁଧ ଛିଣ୍ଡିଯିବା**—ଦେ. ବି.—ଗରମ ଦୁଧରେ ଖଟା ପଡ଼ିବାରୁ ତାହା ପାଣି Dudha chhiṇḍijibā ଫାଟି ଛେନା ହୋଇ ଯିବା—The state of hot milk becoming curdled (due to admixture of some acid). ଦୁଧ ଛେଁଡ଼େ ଯାଓୟା ଦୁଧ ଫଟନା

**ଦୁଧ(ଧୁ) ଛେନା**—ଦେ. ବି.—ଗରମ ଦୁଧକୁ ଖଟା ଦେଇ ଛିଣ୍ଡାଇଲେ Dudha (dhu) chhenā ଯେଉଁ ଛେନା ପ୍ରସ୍ତୁତ ହୁଏ— Cheese made direct from milk. ଦୁଧଛାନା ଦୁଧଛେନା

[ ଦ୍ର—ଦୁଧଛେନା ଦହିଛେନା ଅପେକ୍ଷା ସୁପାଚ୍ୟ ଓ ସ୍ୱାଦୁ ଏବଂ ଏଥିରେ ସନ୍ଦେଶ, ରସଗୋଲା ଆଦି ପ୍ରସ୍ତୁତ ହୁଏ । ଦୁଧକୁ ଦହିରେ ପରିଣତ କରି ଛିଣ୍ଡିଲେ ଯେଉଁ ଛେନା ପ୍ରସ୍ତୁତ ହୁଏ ତାହାକୁ ଦହିଛେନା କହନ୍ତି । ]

**ଦୁଧ ଢୋକିବା**—ଦେ. ବି.—ଧାନ କ୍ଷୀର ଢୋକିବା; ଧାନ କେଣ୍ଡାରୁ Dudha ḍhokibā ବାହାରିବା ସମୟରେ ଧାନ ମଧ୍ୟରେ ପ୍ରଥମେ ଦୁଧ ପରି ରସ ପୂର୍ଣ୍ଣ ହେବା ଅବସ୍ଥା— ଦୁଧ ପଡ଼ନା

The condition of the grains or pods of paddy becoming filled with milky juice when they come out of the stem.

[ଦ୍ର—ଏହି ରସ କ୍ରମେ ଗାଢ଼ତର ହୋଇ ଚାଉଳରେ ପରିଣତ ହୁଏ ।]

ଦୁଧ(ଧୁ)ଦାନ୍ତ—ଦେ. ବି. (ସଂ. ଦୁଗ୍ଧ+ଦନ୍ତ)—ଶିଶୁମାନଙ୍କର ପ୍ରଥମେ ଉଠିଥିବା ଦାନ୍ତ—Milk-teeth of infants.
Dudha(dhu)dānta
ଦୁଧେ ଦାନ୍ତ [ଦ୍ର—ଏ ଦାନ୍ତମାନ ୬।୭ ବର୍ଷ ବୟସରେ ଝଡ଼ି ପଡ଼େ ଓ
दुधके दान्त ତତ୍ପରେ ଯେଉଁ ଦାନ୍ତ ଉଠେ ତାହା ବୁଢ଼ାଦିନ ପର୍ଯ୍ୟନ୍ତ ରହେ ।]

ଦୁଧ ଦୁ (ଦୋ)ହିଁବା—ଦେ. କ୍ରି.—(ସଂ. ଦୁଗ୍ଧ+ଦୁହ ଧାତୁ)—ଗାଈ ଆଦିର ପହ୍ମାରୁ ହସ୍ତଦ୍ୱାରା ଦୁଧ ବାହାର କରିବା—To milk a cow or other beast.
Dudha du (do) hiṅbā
ଦୁଧ ଦোয়া
दुध दुहना

ଦୁଧ ଦେବା—ଦେ. କ୍ରି.—(ସଂ ଦୁଗ୍ଧ+ ଦା ଧାତୁ)— ୧ । ପିଲାକୁ ସ୍ତନ୍ୟ ପାନ କରାଇବା—
Dudha debā
ଦুধ দেওয়া 1. To give suck or suckle a child.
दुध देना ୨ । (ଗୋରୁ, ମଇଁଷି ଆଦି) ଦୋହନ ଦ୍ୱାରା ଦୁଗ୍ଧ ପ୍ରଦାନ କରିବା—2. To give milk (said of milch cows etc.)

ଦୁଧ ବେଣ୍ଟ——ଦେ. ବି.—(ସଂ. ଦୁଗ୍ଧ+ବୃନ୍ତ)—ଦୁଧ ଭୁଣ୍ଡି (ଦେଖ)
Dudha beṇṭa Dudha bhuṇḍi (See)

ଦୁଧ(ଧୁ) ଭାତ—ଦେ. ବି.—(ସଂ. ଦୁଗ୍ଧ+ଭକ୍ତ)—୧ । ଦୁଧ ମିଶିତ ଅନ୍ନ; ଦୁଧଗୋଳିଆ ଭାତ—
Dudha (dhu) bhāta
ଦୁଧ ভাত 1. Boiled rice mixed with milk.
दुधभात
ବସନ୍ତ ଡାକେ ମିଥିଭ ମିଥିଇଁ;
ଦୁଧଭାତ କର ଗୁଣିଏ ଖାଇଁ । ଶିଶୁଗୀତ ।
୨ । ଶିଶୁମାନଙ୍କର ସୁଖାଦ୍ୟ ଅନ୍ନ—
2. Relished food for children.
ପଢ଼ିଲେ ଖାଇବୁ ଦୁଧଭାତ;
ନ ପଢ଼ିଲେ ଠେଙ୍ଗା ବେତ । ଶିଶୁଗୀତ ।

[ଦ୍ର—ଦୁଧ ସଙ୍ଗେ ଭାତ ଗୋଳାଇଲେ ସେ ଭାତକୁ ପିଲାମାନେ ଆନନ୍ଦରେ ଖାଆନ୍ତି । ଏଥିପାଇଁ ପିଲାଙ୍କୁ 'ଦୁଧଭାତ' ଦେବାର ଅର୍ଥ ସୁଖାଦ୍ୟ ଭୋଜନ ବା ଉତ୍ତମାନ୍ନ ଦେବା ।]

୩ । ସୁଖାଦ୍ୟ ଭୋଜନ; ବଡ଼ଲୋକଙ୍କ ଭୋଜ୍ୟ ବସ୍ତୁ—
3. Rich food; dainty meal.

ଦୁଧ ଭୁଣ୍ଡି—ଦେ. ବି.—୧ । ସ୍ତନର ଅଗ୍ରଭାଗର କ୍ଷୁଦ୍ର ଗୋଲକ, ଯାହାକୁ ମୁହଁରେ ପୂରାଇ ପିଲାମାନେ ଚୁମୁନ୍ତି; ଚୁଚୁକ—
Dudha bhuṇḍi
চুঁচি 1. Nipple of the breast.
दुधकी ୨ । ଗାଈ ପ୍ରଭୃତିର ଥନ—2. Udder of the cow.

ଦୁଧରେ ଆଞ୍ଚେ(ଞ୍ଚୋ)ଇବା—ଦେ. କ୍ରି.—(ଲକ୍ଷଣାର୍ଥ)—ଅତି ବଡ଼ଲୋକୀ ବା ସଚ୍ଛଳ ଅବସ୍ଥାରେ ଦିନପାତ
Dudhare āñche(ñcho)ibā
ଦୁଧେ আঁচান করিବা—To pass one's days in a very (ଦୁଧରେ କୁଳୁକୁଳୁ କରିବା—ଅନ୍ୟରୂପ) well-to-do condition.

[ଦ୍ର—କୌଣସି ଲୋକ ସଚ୍ଛଳ ଅବସ୍ଥାରେ ଥିଲେ ସେ ଦୁଧ ପରି ମୂଲ୍ୟବାନ୍ ପଦାର୍ଥକୁ ପାଣି ପରି ବ୍ୟବହାର କଲେ ସୁଦ୍ଧା ତାହାର କୌଣସି କ୍ଷତି ହୁଏ ନାହିଁ । ସେପରି ସ୍ଥଳରେ ଏହି ଉପମା ଦିଆଯାଇଥାଏ ।]

ଦୁଧ ଲଇ—ପ୍ରାଦେ. (ଗଞ୍ଜାମ) ବି—ଚେମଡ଼ି ଲଇ ( ଦେଖ )
Dudha lai Chemarḍi lai ( See )

ଦୁଧ ଶୁଖିଯିବା—ଦେ. କ୍ରି—ସ୍ତନରୁ ବାହାରିବା ସ୍ତନ୍ୟର ମାତ୍ରା କମିଯିବା—
Dudha śukhijibā The drying up of the mother's breast.
दुध चढ़ना

ଦୁଧ ସର—ଦେ. ବି. ( ସଂ. ଦୁଗ୍ଧ ଓ ସାର )—
Dudha sara ୧ । ଦୁଧ ସିଝାଇଲେ ତା ଉପରେ ଯେଉଁ ବହଳିଆ
ଦুধের সর ଶ୍ଲେଷ୍ମା ପରି ପ୍ରସ୍ତ ପ୍ରସ୍ତ ଘନାଂଶ ପଡ଼ି ଥାଏ—
दुधका मलाइ 1. Cream of milk.
୨ । ଘୁମୁସର ରାଜ୍ୟର ପର୍ବତବିଶେଷ
2. Name of a mountain in Ghumusar.
ଅଦ୍ଭୁତ ତାହା ଦୁଧସର ନାମେ, ସ୍ଥିତ ଘୁମୁସରେ ସେହି ।
ଚନ୍ଦ୍ରାମଣି, ଉପେନ୍ଦ୍ରଭଞ୍ଜ ।

ଦୁଧ ହାଣ୍ଡି—ଦେ. ବି. ( ସଂ ଦୁଗ୍ଧ+ହାଣ୍ଡିକା )—
Dudha hāṇḍi ଯେଉଁ ହାଣ୍ଡିରେ ଦୁଧ ଅଉଟା ଯାଏ—
ଦুধের হাঁড়ি An earthen pot for boiling milk.
दुधहँड़ि, दुधाँड़ी

ଦୁଧିଆ—ଦେ. ବିଣ—୧ । ଦୁଧସମ୍ବନ୍ଧୀୟ—
Dudhiā 1. Pertaining to milk.
দুধিয়া, দুধে ୨ । ଦୁଧ ପରି ଧଳା—2. Milky; milk-white.
दुधला, दुधिया ( ଯଥା—ଦୁଧିଆ ମାଟିରେ ଭଲ ଫସଲ ହୁଏ । )
୩ । ଦୁଧ ଆଣିଥିବା (ବ୍ୟକ୍ତି)—3. (person) Carrying milk.
( ଯଥା—ଦୁଧିଆ ବେହେରାମାନେ ସକାଳୁ ୧୦ କୋଶ ବାଟ ଦୂରରେ ଦୁଧ ନେଇ ପହଞ୍ଚ ଗଲେ । )
ବି—ଦୁଧିଆ ଗୋଖର—
A species of cobra snake.
( ସାପ ତଳେ ନୋଟ୍ ଦେଖ । )

ଦୁଧିଆ କନ୍ଦା—ଦେ. ବି—ଖଡ଼ି କନ୍ଦା ( ଦେଖ )
Dudhiā kandā Kharḍi kandā ( See )

ଦୁଧିଆ ବୋଡ଼ା—ପ୍ରାଦେ. ( ଗଡ଼ଜାତ ) ବି—
Dudhiā borḍā ଏକ ପ୍ରକାର ଜଙ୍ଗଲୀ ବୋଡ଼ା ସାପ—
A species of wild viper.

[ଦ୍ର—ଏମାନେ ୧।୧୨ ହାତ ଲମ୍ବ ହୁଅନ୍ତି, ଘୋର ଜଙ୍ଗଲରେ ବାସ କରନ୍ତି ଓ ଭେଇଁ ଭେଇଁ ଶବ୍ଦ କରନ୍ତି । ଜଙ୍ଗଲରେ ବାସ କରୁଥିବା କନ୍ଧ ପ୍ରଭୃତି ଜାତିର ସ୍ତ୍ରୀମାନେ ପିଲାମାନଙ୍କୁ ଦୁଧ ଦେଉଥିବା ସମୟରେ ଏମାନେ ପିଲାର ମୁହଁକୁ ଆଡ଼େଇ ଦେଇ ମାତୃସ୍ତନରୁ ଦୁଧ ଚୁଚୁମିକରି ପିଇ ଯାଆନ୍ତି; ମାଆ ତାହା ଜାଣି ପାରେ ନାହିଁ । ଯେଉଁ ସ୍ତନରୁ ଏମାନେ ଦୁଧ ପିଅନ୍ତି ସେ ସ୍ତନ କଦା ହୋଇଯାଏ ଏବଂ ସେଥିରୁ ଆଉ ଦୁଧ ବାହାରେ ନାହିଁ ବୋଲି ପ୍ରବାଦ ଅଛି । ]

ଦୁଧିଆ ମାଟି - ଦେ. ବି—ଦୁଧର ରଙ୍ଗ ପରି ଧଳା ମାଟି; ଗଡ଼ିଆ ମାଟି—
Dudhiā māṭi — Earth or soil having the colour of milk.
दुधे माटि
दुदधी

ଦୁଧିଆ ମେଣ୍ଢି(ଞ୍ଚି)—ଦେ. ବି. ( ସ. ଦୁଗ୍ଧିକା )—
Dudhiā meṇḍhi(ñchi) — ଏକ ପ୍ରକାର ବନ୍ୟ ଲତା (ଏହାକୁ (ଦୁଧିଆ ମେଣ୍ଢିଆ—ଅନ୍ୟରୂପ) ଭାଙ୍ଗି ଦେଲେ ଏଥିରୁ ଦୁଧ ପରି ଦୁଧିଆ ଲତା ରସ ବାହାରେ)—A kind of wild creeper with milky juice; Oxystelma Esculentum; Asclepias Rosea Roxburghii.
दुग्धी
[ଦ୍ର—ଏହା ଅର୍କାଦି ବର୍ଗର ପାର୍ଶ୍ୱାସ୍ତୁ ଲତା । ଏହାର ପତ୍ର ସରୁ, ଫୁଲ ବଡ଼ ଓ ଧଳା । ଫୁଲର ଭିତରପାଖ ଗୋଲାପୀ ରଙ୍ଗ । ଖରା ଦିନରେ ଏଥିର ପତ୍ର ଝଡ଼େ । ଏଥିର ମଞ୍ଜିରେ ତୁଳା ଥାଏ । ଏହା ବାଡ଼ ଓ ଗଛ ଆଦିରେ ମାଡ଼େ ।]

ଦୁଧିଆରି—ଦେ. ବି—ଏକପ୍ରକାର କ୍ଷୁଦ୍ର କ୍ଷୀରି ଗୁଳ୍ମ—
Dudhiāri — Name of a plant with milky juice.
[ଦ୍ର—ଏହା ଧଳା ଓ ନାଲି ଭେଦରେ ଦୁଇ ପ୍ରକାର । ଏହାର ପତ୍ର ଦ୍ୱିପର୍ଣ୍ଣ ଓ ତେଣ୍ଟ ଯଥାକ୍ରମେ ଧଳା ଓ ନାଲି । ଏହାର ମୂଳରୁ ଅନେକଗୁଡ଼ିଏ ଶାଖା ବାହାରେ । ସେ ଶାଖାକୁ ଛିଣ୍ଡାଇ ଦେଲେ ସେଥିରୁ ଦୁଧପରି ଧଳା କ୍ଷୀର ବାହାରେ । ଏହା ନାଲିରଙ୍ଗ ଝାଡ଼ାରେ ଔଷଧରୂପେ ବ୍ୟବହୃତ ହୁଏ । ଏହା ଭୂମିରେ ଓ ପାହାଡ଼ରେ ମାଡ଼େ ।]

ଦୁଧିଆ ଲତା -ଦେ. ବି—ଦୁଧିଆ ମେଣ୍ଢି ( ଦେଖ )
Dudhiā latā — Dudhiā meṇḍhi (See)

ଦୁଧିଆଳି—ଦେ. ବିଣ—୧ । ଦୁଧପରି ବର୍ଣ୍ଣବିଶିଷ୍ଟ—
Dudhiāḷi — 1. Milky; milk-white.
दुधे, दुधाल् — ୨ । ଦୁଗ୍ଧବତୀ; ଯେ ( ଗାଈ, ମଇଁଷି ଆଦି ) ବେଶି ଦୁଧ
दुधैल, दुधिया — ଦିଏ—2. Giving a good quantity of milk; milch (cow and buffalo etc).

ଦୁଧୀ—ଦେ. ବିଣ. ସ୍ତ୍ରୀ (ଅନ୍ୟ ଶବ୍ଦ ସହିତ ପ୍ରଯୁକ୍ତ)—ସ୍ତନବିଶିଷ୍ଟ—
Dudhi — Having breasts like, (a participle used with other words and equivalent to —breasted.
(ଯଥା—ଲାଉଅଦୁଧୀ, ମାକଡ଼ୀଦୁଧୀ, ପଟାଦୁଧୀ ଇତ୍ୟାଦି ।)

ଦୁନାବୁର୍ଡ଼ିଆ—ଦେ. ବିଣ (ସ. ଦ୍ୱି+ନାବ)—ଦୋନାବୁର୍ଡ଼ିଆ ( ଦେଖ )
Dunāburḍiā — Donāburḍiā ( See )

ଦୁନି—ପ୍ରାଦେ (ସମ୍ବଲପୁର) ବିଣ—ଦ୍ୱିଗୁଣ; ଡବଲ—
Duni — Double.

ଦୁନିଆ(ଆଁ)—ବୈଦେ. ବି (ଆ. ଦୁନ୍ୟା)—୧ । ବ୍ରହ୍ମାଣ୍ଡ; ବିଶ୍ୱ—
Duniā(āñ) — 1. The universe.
दुनिया — ୨ । ଧରଣୀ; ପୃଥିବୀ—
दुनिया — 2. The earth, the world.
ଏଥିପାଇଁ ପୁଣି କ ଅଣ୍ଡେ ଦୁନିଆ—ରାଧାନାଥ. ଦରବାର ।
୩ । ସମଗ୍ର ପୃଥିବୀ—3. The whole world.
୪ । ସଂସାରର ଲୋକେ—
4. The people of the world.
୫ । ସମାଜ—5. Society.

ଦୁନିଆ(ଆଁ) ଛଡ଼ା—ଦେ. ବିଣ—ଦୁନିଆ ବାହାର ( ଦେଖ )
Duniā(āñ) chharḍā — Duniā bāhāra (See)

ଦୁନିଆ(ଆଁ) ତମାମ୍—ବୈଦେ. ଅ (ଆ)—ଦୁନିଆ ଯାକ (ଦେଖ)
Duniā(āñ) tamām — Duniā jāka (See)

ଦୁନିଆ(ଆଁ) ଦଉଲତ୍—ବୈଦେ. ବି. (ଆ)—୧ । ସାଂସାରିକ ଧନ—
Duniā(āñ) daulat — 1. Worldly riches.
दुनिया दौलत — ୨ । ଆପଣାର ସ୍ତ୍ରୀ ଓ ସନ୍ତାନଗଣ—
दुनियां दौलत — 2. One's wife and children.

ଦୁନିଆ(ଆଁ)ଦାର୍—ବୈଦେ. ବିଣ (ଫା)—ସଂସାରୀ (ବ୍ୟକ୍ତି)—
Duniā(āñ)dar — Worldly (man); (a man) of the world.
दनियादार
दुनियादार

ଦୁନିଆ(ଆଁ)ଦାରି—ବୈଦେ. ବି ( ଫା )—୧ । ସାଂସାରିକ ଧର୍ମ, ଗୃହସ୍ଥ
Duniā(āñ)dāri — ଧର୍ମ—1. The duties of a householder; the condition of being a house-holder.
दुनिआदारि
दुनियादरी
୨ । ସଂସାରର ଗତି ମତି—
2 The ways of the world.

ଦୁନିଆ(ଆଁ) ଦୋରଙ୍ଗ—ବୈଦେ. (ପ୍ରବଚନ) (ଆ)—ଏ ସଂସାରରେ ସୁଖ
Duniā(āñ)doraṅg — ଓ ଦୁଃଖ (ଭଲ ମନ୍ଦ) ଉଭୟ ବିଦ୍ୟମାନ—
दुनिया दुरंगा — A proverb; the world has two
दुनिआँ दोरङ्ग — sides, viz. the good and the bad.

ଦୁନିଆ(ଆଁ)ବାହାର୍—ବୈଦେ. ବିଣ (ଆ)—୧ । ଅସାଧାରଣ—
Duniā(āñ)bāhār — 1. Extraordinary.
दुनियाबाहिर — ୨ । ସୃଷ୍ଟିଛଡ଼ା; ଅମାନୁଷିକ—
दुनिआसे बहार — 2. Uncommon; unusual.
ଚା ଦୁଆର ପୁଣି ଦୁନିଆ ବାହାର—ରାଧାନାଥ. ଦରବାର ।

ଦୁନିଆ(ଆଁ) ଯାକ—ଦେ. କ୍ରି. ବିଣ—ସଂସାର ଯାକ; ସମଗ୍ରଜଗତରେ—
Duniā(āñ) jāka — Throughout the world.
सारा दुनिआ; सारा दुनियाँ
[ ଦୁନିଆ(ଆଁ)ସାରା-ଅନ୍ୟରୂପ ]

ଦୁନିଆ(ଆଁ)ର ଖବର—ବୈଦେ. ବି (ଆ)—ଦୁନିଆର ହାଲଚାଲ (ଦେଖ)
Duniā (āñ)ra khabara — Duniāra hālachāla (See)

ଦୁନିଆ(ଆଁ)ର ରଙ୍ଗ—ଦେ. ବି—ସଂସାରର ଗତି ବା ଗତି—
Duniā(āñ)ra raṅga — The ways of the world.

ଦୁନିଆ(ଆଁ)ର ହାଲଚାଲ—ବୈଦେ ବି. (ଫା; ଦୁନିଆକା ହାଲଚାଲ)—
Duniā(āñ)ra hālachāla — ସଂସାରର ସମ୍ବାଦ—
दुनिआर हाल चाल — The news of the world.
दुनिआका हालचाल

ଦୁନି ଦର—ପ୍ରାଦେ. (ସମ୍ବଲପୁର) ବି—ଡବଲ ଭାଉ; ଦ୍ୱିଗୁଣ ଭାଉ—
Duni dara — Double rate.

ଦୁନ୍ଦରିବା—ପ୍ରାଦେ (ସିଂହଭୂମ) କ୍ରି—ଗାଳିଦେବା; ଗାଳଦେବା; ଖୋଧିବା—
Dund-ribā — To call names.

ଦୁନ୍ଦମ—ସଂ. ବି—୧ । ଦେବତାମାନଙ୍କ ବାଦ୍ୟବିଶେଷ—
Dundama A kind of drum said to be used by the Gods.
୨ । ନାଗରା (ହି. ଶବ୍ଦସାଗର)—2. Kettle-drum.

ଦୁନ୍ଦୁ—ସଂ. ବି—(ଦୁ=ଦ୍ଦୁଃଖ+ଦମ୍. ଧାତୁ+ଉ);—୧ । ବସୁଦେବ, ଶ୍ରୀକୃଷ୍ଣଙ୍କ ପିତା—1. Basudeba, the father of Srikrushna
Dundu
୨ । ଦୁନ୍ଦୁଭି ବାଦ୍ୟ—2. A kind of drum.
୩ । ନାଗରା ବାଜିବାର ଅନୁକରଣ ଶବ୍ଦ—
3 The sound of drum-beating.

ଦୁନ୍ଦୁଭି—ସଂ. ବି (ଦୁନ୍ଦୁ=ଅନୁକରଣ ଶବ୍ଦ+ଭା. ଧାତୁ=ଶୋଭା ପାଇବା ବା ଉଚ୍ଚାରଣ କରିବା+କର୍ତ୍ତୃ. ଇ)—ନାଗରା, ଢୋଲ—1. Drum; tomtom; kettle-drum.
Dundubhi
[ ଦ୍ର—ହିନ୍ଦୁପୁରାଣ ମତରେ ଏହା ଦେବତାମାନେ ବ୍ୟବହାର କରନ୍ତି ।]
ବାଦକ କଲେ ସ୍ୱର୍ଗେ ଦେବତା ଦୁନ୍ଦୁଭି—ଉଞ୍ଜ ବୈଦେହୀଶ ବିଳାସ
୨ । ଦୈତ୍ୟବିଶେଷ—2. Name of a Titan.
୩ । ବାଳି ଦ୍ୱାରା ହତ ପରାକ୍ରମଶାଳୀ ରାକ୍ଷସବିଶେଷ—
3. Name of a demon killed by Bāḷi
ବାଦ ଉଦବ କରୁଛ ଶୁଣିଲେ ଦୁନ୍ଦୁଭି—ଉଞ୍ଜ ବୈଦେହୀଶବିଳାସ ।
୪ । ବରୁଣ—4. Baruṇa, the God of the ocean
୫ । ବିଷ—5. Venom; poison.
୬ । ପଶା—6. Dice for playing.
୭ । ପଶା ଖେଳରେ ପଡ଼ିବା ଦାନ—7. The throws or points in the game of dice.
୮ । ପାର୍ଷ୍ଣି—8. The rear of an army.

ଦୁପ୍‌ଦାପ୍—ଦେ. (ଧ୍ୱନ୍ୟନୁକରଣ) ଅ—ଗୋଇଠି ଦ୍ୱାରା ଭୂମିରେ ଉତ୍ପନ୍ନ ଶବ୍ଦ—The sound of foot-steps while walking on the heels; the thud of walking foot-steps.
Dup-dāp
दपदाप; धाका
[ଦ୍ର—ଦୁପ୍‌ଦାପ୍ ଅପେକ୍ଷା ଦୁମ୍‌ଦାମ୍ ଓ ଦୁମ୍‌ଦୁମ୍ ଉଚ୍ଚତର ଶବ୍ଦ ।]

ଦୁଫୁଙ୍କା ଚୁଲି—ପ୍ରାଦେ. (ମେଦିନୀପୁର) ବି—ଦୋପଖା ଚୁଲି (ଦେଖ)
Duphunkā chuli Dopakhā chuli (See)

ଦୁବ୍‌ସା—ପ୍ରାଦେ. ସମ୍ବଲପୁର) ବି—ଦୁବ (ଦେଖ)
Dub-sā Duba (See)

ଦୁବ—ଦେ. ବି. (ସଂ. ଦୂର୍ବା)—ଦୂର୍ବା; ଲମ୍ବ, ଗଣ୍ଠି ଗଣ୍ଠିଆ ଲତା-ଘାସ—
Duba Cynodom Dactylon; the doob grass; Agrostis Linearis; Panicum Dactylon (Haines).
दूब; दूब्बा
दूब
[ ଦ୍ର—ଦୁବ, ବରକୋଳି ପତ୍ର, ଅକ୍ଷତ ପ୍ରଭୃତି ହିନ୍ଦୁଙ୍କ ପୂଜାଦିରେ ବ୍ୟବହୃତ ହୁଏ, ଦୁବ ଦୁଇ ପ୍ରକାର, ଶୁକ୍ଳ ଓ ନୀଳ । ଶୁକ୍ଳ ଦୂର୍ବା—ସଂ. ଶ୍ୱେତକାଣ୍ଡା, ଶ୍ୱେତଦୂର୍ବା, ଦର୍ମ୍ମିଣୀ । ନୀଳଦୁବ—ସଂ. ଗଣ୍ଡଦୂର୍ବା, ମାଳାଦୂର୍ବା (ଦ୍ରବ୍ୟଗୁଣ କଳ୍ପଦ୍ରୁମ) ]

୨ । (ଆଦରାର୍ଥକ) ଦିବ୍ୟସିଂହର ଡାକ ନାମ—
2. A name for calling Dibyasiṁha.
ବିଣ— ଦୁବପରି ଅତି କ୍ଷୁଦ୍ର ବା ସରୁ—
Small or slender like the doob grass.

ଦୁବ ଗଣ୍ଠି—ଦେ. ବି. (ସଂ. ଦୂର୍ବାଗ୍ରନ୍ଥି)—
Duba ganṭhi ୧ । ଦୁବଘାସରେ ବନ୍ଧା ଯିବା ଗଣ୍ଠି—
दूबेब गाँठ 1. Knot tied with doob grass.
दूबकागाँठ ୨ । ଦୁବ ଲତାର ଗ୍ରନ୍ଥି ଅଂଶ—
2. The joint of the doob-grass creeper.

ଦୁବଗଣ୍ଠି ପଡ଼ିବା—ଦେ. କ୍ରି—ବିବାହ ହେବା—
Dubaganṭhi paṛdibā Performance of marriage.
[ ଦ୍ର—ବିବାହବେଦିରେ ବର ଓ କନ୍ୟାଙ୍କ ହାତରେ ଅରଥିଆ ସୂତାରେ ଦୁବଘାସ ବନ୍ଧା ହୋଇ ସାତମଙ୍ଗଳା ପର୍ଯ୍ୟନ୍ତ ପିନ୍ଧାଯାଏ । ]

ଦୁବ ଘାସ—ଦେ. ବି—ଦୁବ (ଦେଖ)
Duba ghāsa Duba (See)

ଦୁବଚାଉଳ ପଡ଼ିବା—ଦେ. କ୍ରି—ଦ୍ୱିରାଗମନ ବା ପୁନର୍ବିବାହ ଉତ୍ସବ—
Dubachāuḷa paṛdibā The ceremony of consummation of marriage.
(ଯଥା—ଯାହା ହେଉ ଏବେ ଦିନକେ ତା ଉପରେ ଦୁବଚାଉଳ ପଡ଼ିଲା ।)

ଦୁବଝରା—ଦେ. ବି—ସ୍ତ୍ରୀ ଲୋକଙ୍କ ମୁଣ୍ଡର ଅଳଙ୍କାରବିଶେଷ—
Dubajharā A kind of ornament for the head.
ଚନ୍ଦ୍ର ଉର୍ଦ୍ଧ୍ୱ ହେମ ଦୁବଝରା ଦେବାରୁ ଦିଶିଲା ଏମନ୍ତ ପରି ।
ଉଞ୍ଜ. ଲାବଣ୍ୟବତୀ ।

ଦୁବଦୁବାଣି—ଦେ. ବି—ପିଲାମାନେ ପଡ଼ିଆରେ ଦୁବଘାସ ଉପରେ ଡେଇଁ ଡେଇଁ ଖେଳିବା ଏକପ୍ରକାର ଖେଳ—
Dubadubāṇi A kind of game played by children over grass in a field.

ଦୁବ ବରକୋଳି ପତ୍ର—ଦେ. ବି. (ସଂ. ଦୂର୍ବା, ବଦରୀ ପତ୍ର)—ମଙ୍ଗଳ କର୍ମାଦିରେ ଓ ସଂକଳ୍ପ କରିବା ସମୟରେ ବ୍ୟବହୃତ ଦୂର୍ବା ଓ ବଦରୀ ପତ୍ର—Doob grass and jejube leaf used in the performance of Hindu religious rites.
Duba barakoḷi patra
दूबकुलपाता
दूब अउर बैरका पत्ता

ଦୁବର୍ଣ୍ଣ—ଦେ. ବି. (ସଂ. ଦୁର୍ବର୍ଣ୍ଣ)—୧ । ତେଜୋହୀନ—
Dubarṇṇa 1. Lustreless; pale.
୨ । ରୂପା—2 Silver.
ଦ୍ୟବର୍ଣ୍ଣେ ତେ ଦୁବର୍ଣ୍ଣ କରି ଦେଲା ସ୍ୱବର୍ଣ୍ଣ ପାଶେ ମିଶି ଘନ ଘନ ସେ ।
ଉଞ୍ଜ. ବୈଦେହୀଶ ବିଳାସ ।

ଦୁବହଂସା—ଦେ. ବି. (ନାମ)—ଚିଲିକା ହ୍ରଦରେ ଦେଖାଯିବା ପକ୍ଷିବିଶେଷ—A species of bird found in the Chilka lake.
Dubahaṁsā

ଦୁବା—ଦେ. ବ୍ୟ—ଦିବ୍ୟସିଂହ ନାମକ ବ୍ୟକ୍ତିର ଅନାଦରାର୍ଥକ ଡାକନାମ—
Dubā A name for calling a person called Dibyasiṁha in contempt.

ଡୁବାଇ—ଦେ. ବ—ଦୁବେଇ (ଦେଖ)
Dubāi Dubei (See)

ଡୁବିଧା—ଗ୍ରା. ବ. (ସ. ଦ୍ୱିଧା)—ଦୋଗଧା (ଦେଖ)
Dubidhā Dogadhā (See)
(ଡୁବୁଧା; ଦୁବ୍ଧା—ଅନ୍ୟରୂପ)

ଡୁବୁଲା—ଦେ. ବିଣ (ସ. ଦୁର୍ବଳ)—୧ । ଦୁର୍ବଳ—
Dubulā 1. Weak.
(ଡୁବ୍ଲା—ଅନ୍ୟରୂପ) ୨ । କ୍ଷୀଣ; ଶୀର୍ଣ୍ଣ—2. Emaciated.
ପ୍ରାଦେ (ମେଦନୀପୁର) ବ—ଦୁବାଦଳ; ଦୁବଘାସ—
Creeping grass; doob grass.

ଡୁବେଇ—ଦେ. ବ. (ସ. ଦ୍ୱିବେଦୀ)—
Dubei ବ୍ରାହ୍ମଣମାନଙ୍କ ଉପାଧିବିଶେଷ —
(ଡୁବେ—ଅନ୍ୟରୂପ) The title of certain Brāhmaṇas.
ବଣ—ଦୋବେଇ ( ଦେଖ )—Dobei ( See )

ଡୁମ୍(ମୁ)କା—ଦେ. ବ—୧ । ଡୁମୁକାଣି ( ଦେଖ )
Dum-(mu)kā 1. Dumukāṇi ( See )
୨ । ଶବ୍ଦଯୁକ୍ତ ବିଧା—
2. A violent and loud fist-blow.

ଡୁମ୍‌ଗଜା—ଦେ. ବ—ଗୃହପାଳିତ ଶାରୀ ଓ ବଣି ଚଢ଼େଇଙ୍କ ଲାଞ୍ଜ ଉପରେ
Dum-gajā ଉଠିବା ବ୍ରଣ ରୋଗବିଶେଷ —
ଡୁମ୍‌ଗଜା A boil coming out at the end of the
**दुमगजा,** backbone of some domesticated
**दुमचिकि हड्डी** myna birds.
[ ଦ୍ର—ଏ ବ୍ରଣ ଉପରେ ଖଣ୍ଡ ହଳଦୀ ଚଢେଇ କରି ମାଡ଼ି ଦେଲେ ଏହା ଭଲ ହୋଇଯାଏ । ନଚେତ୍ ଏହି ବ୍ରଣ ଯୋଗୁଁ ଚଢେଇ ମରିଯାଏ । ]

ଡୁମ୍‌ଚି—ବୈଦେ. ବ. (ତୁର୍କୀ)—
Dum-chi ଘୋଡ଼ାର ସାଜବିଶେଷ; ଯେଉଁ ଚର୍ମଟିକୁ ଘୋଡ଼ାର
ଡୁମ୍‌ଚୀ ଲାଙ୍ଗୁଡ଼ ତଳ ବେଷ୍ଟନ କରି ଜିନ୍‌ର ପଛ ଆଡ଼ୁକୁ
**दुमची** ଟାଣି ଧରି ଜିନ୍‌ରେ ବନ୍ଧା ହୋଇ ଥାଏ—
The throng which goes round the tail of a horse and is attached to the saddle; a crupper.

ଡୁମ୍(ମୁ)ଡାମ୍—ଦେ. ( ଧ୍ୱନ୍ୟନୁକରଣ ) ଅ—
Dum(mu)dām ଉପର୍ଯ୍ୟୁପରି ପିଠିରେ ବିଧା ମାଡ଼ର ଶବ୍ଦ—
Repeated thumping sounds of hard fist-blows on the back.

ଡୁମ୍(ମୁ)ଡୁମ୍(ମୁ)—ଦେ. (ଧ୍ୱନ୍ୟନୁକରଣ) ଅ—
Dum(mu)dum(mu) ଜୋରରେ ଦଉଡ଼ିବାର ଶବ୍ଦବାର, ଜୋରରେ ବିଧା ମାରିବାର ଓ ଜୋରରେ ବର୍ଷା ହେବାର ଶବ୍ଦ—
ଡୁମ୍, ଡୁମ୍‌ଦାମ୍, ଡୁମୁଦାମ୍, ଡୁମ୍‌ଡିକା, ଡୁମୁଡୁମ୍ } ଅନ୍ୟରୂପ
**ঝমাঝম, ধুমধাম** Sound produced by running quickly,
**धमाधम** by dealing heavy fist-blows and while raining cats and dogs.

ଝିପି ଝିପି ମେଘ ବରଷି ଅଛିଲ ଦେଖୁଁ ଦେଖୁଁ ଡୁମ୍‌ଡୁମ୍ ।
ନନ୍ଦକିଶୋର ଜର୍ଜିଭଣୀ ।

ଡୁମ୍‌ବାଲା—ବୈଦେ ବଣ. (ଫା)—୧ । ପୁଚ୍ଛଯୁକ୍ତ—
Dum-bālā 1. Having tail.
ନେଜବାଲା ୨ । ବଡ଼ ପୁଚ୍ଛଯୁକ୍ତ—
**दुमबाला** 2. Having big tail.

ଡୁମ—ବୈଦେ. ବ. ( ଫା. ଦୁମ୍; ହିନ୍ଦିରୁ ଅନୁକୃତ )—ଲାଙ୍ଗୁଡ଼—
Duma Tail.
ଡୁମ, ନେଜ ପ୍ରାଦେ. (ଗଞ୍ଜାମ) ବ—ଉଚ୍ଚ ଜମି; ଢିପ—
**दुम** High land; mound.

ଡୁମା—ବୈଦେ. ବ—ଡୁମ୍ବା ( ଦେଖ )
Dumā Dumbā ( See )

ଡୁମାଲ—ଦେ. ବ—ସୋନପୁର ରାଜ୍ୟ ନିବାସୀ ଏକ ଶୂଦ୍ରଜାତୀୟ ଲୋକ—
Dumāḷa A caste of Śūdras inhabiting Sonepur State.
[ ଦ୍ର—ଏମାନେ ଦୁଇ ଖଣ୍ଡ କଳା କାଠ ଭୂମିରେ ପୋତି ସମ୍ଲେଶ୍ୱରୀଠାକୁରାଣୀଙ୍କୁ କଳ୍ପନା କରି ପୂଜା କରନ୍ତି । ଠାକୁରାଣୀଙ୍କ ମୁଣ୍ଡରେ ସିନ୍ଦୁର ଲଗାନ୍ତି ନାହିଁ, କି କଳା ଲୁଗା, କଳା ଭୂଷଣ ପରିଧାନ କରନ୍ତି ନାହିଁ । ଏମାନେ ହିନ୍ଦୁ ଓ ସ୍ପୃଶ୍ୟ ଜାତି—ଜଗବନ୍ଧୁ. ପ୍ରାଚୀନ ଉତ୍କଳ । ]

ଡୁମୁକା—ଦେ. ବ—ଡୁମ୍‌କା ( ଦେଖ )
Dumukā Dum-kā ( See )
ପ୍ରାଦେ. ( ସମ୍ବଲପୁର ) ବ—ସମତଳ ସଡ଼କ ବା ବନ୍ଧ ଉପରେ ଥିବା ଉଚ୍ଚା ଜମି; ଢିପ—
Protuberance on a level road or embankment.

ଡୁମୁକାଣି—ଦେ. ବ (ଧ୍ୱନ୍ୟନୁକାରୀ)—୧ । ଘୋର ବରଷା—
Dumukāṇi 1. Raining cats and dogs.
ଡୁମ୍‌କାଣି, ଡୁମୁଆଣି } ଅନ୍ୟରୂପ ୨ । ଘୋର ବରଷାର ଅସରା—
2. Torrentail shower.
**दमका बिष्टि** ଅଠ ଡୁମୁକାଣି ଷୋଳ ଅସରା, କଉଣ ଲଫଲଫି ଚଉଷଠୀ କୁଣ୍ଡାଏଗ,
**तेज बरषात्** ଚେତେ ଯାହିଁ ତଷାର ପେଟ ହୁଏ ପୂରା—କୃଷି ବଚନ ।
ପ୍ରାଦେ. (ଗଞ୍ଜାମ) ବ. ( ତେ. ଦୁମୁକୁଟ )—
ଉପରକୁ ଲମ୍ଫ ଦେବା—Jumping up.

ଡୁମୁକିବା—ପ୍ରାଦେ. (ଗଞ୍ଜାମ) କ୍ରି—ଉପରକୁ ଲମ୍ଫ ଦେବା—
Dumukibā To jump up.

ଡୁମୁଣ୍ଡି—ଦେ. ବଣ (ସ. ଦ୍ୱିମୁଣ୍ଡ)—ଦୁଇ ମୁଣ୍ଡବିଶିଷ୍ଟ—
Dumuṇḍi Having two heads; two-headed
ବ—ଦୋମୁଣ୍ଡିଆ ( ଦେଖ )—Domuṇḍiā ( See )

ଡୁମୁ(ମ୍)ଡୁମା—ଦେ. ବ—ଉଡୁମ୍‌ଡୁମା; ଗୋଟା କେତେ ଉପର୍ଯ୍ୟୁପରି
Dumu(m)dumā ବିଧା—Some repeated sound
ଧୁମ୍‌ଧୁମ୍ **धमूका** fist-blows.

ଡୁମୁ(ମ୍)ଡୁମା ବସା(ସେ)ଇବା—ଦେ. କ୍ରି—ଉପର୍ଯ୍ୟୁପରି ଗୋଟା କେତେ
Dumu(m)dumā basā(se)ibā ବିଧା ମାରିବା—
ଧୁମ୍‌ଧୁମାନ To deal some sound fist-blows
**धमूका बिठाना** repeatedly.
[ ଡୁମୁ(ମ୍)ଡୁମା ବଜା(ଜେ)ଇବା—ଅନ୍ୟରୂପ ]

ଡୁମୁଡୁମିଆ(ଆଁ)—ପ୍ରାଦେ. (ଯାଜପୁର) ବିଣ—ଉଦୁଉଦିଆ ( ଦେଖ )
Dumudumiā(ā̃) Udu-udiā ( See)
( ଯଥା—ଡୁମୁଡୁମିଆ ଖରା । )

ଦୁମ୍ବା—ବୈଦେ. ବି. ( ଫା. ଦୁମ୍ବାଲ=ପୁଚ୍ଛଯୁକ୍ତ )—ପାରସ୍ୟ,
Dumbā ଆଫଗାନସ୍ଥାନ, ତୁରସ୍କ ଓ କାଶ୍ମୀର ଦେଶୀୟ ଏକ
ଦୁମ୍ବା ପ୍ରକାର ମେଣ୍ଢା—A thick-tailed sheep of
**ଦୁମ୍ବା** Persia, Afganistan, Turkey and Kashmir; fat-tailed Turkish sheep.
[ ଦ୍ର—ଏହାର ଲାଞ୍ଜ ମୋଟା ଓ ଲମ୍ବ ପର ଓଳିତ ଓ ଗୋଲ । ଏହାକୁ କାଟି ନେଲେ ପୁଣି ବଢ଼େ । ଏହାକୁ ଲୋକେ ତରକାରୀ କରି ଖାଆନ୍ତି । ଏହି ମେଣ୍ଢାର ଲୋମରେ ଉତ୍କୃଷ୍ଟ ଶାଲ ପ୍ରସ୍ତୁତ ହୁଏ । ]

ଦୁଯା—ଦେ. (ପଦ୍ୟ) ବି—ଦ୍ୱିତୀୟ ବସ୍ତୁ—
Dujā Second thing
ଅତ ସୁନ୍ଦର ଶୀଣ ମଧ୍ୟ
କ ପଟାନ୍ତରେ ଦେବା ଦୁଯା । ଜଗନ୍ନାଥ. ଭାଗବତ ।

ଦୁୟା—ପ୍ରାଦେ. (ବାଲେଶ୍ୱର)—(ବିଣ. ଭୁଲ ବ. ଦୁହିଁ)—
Duyā ଦ୍ୱୟ; ଦୁହେଁ—Both.

ଦୁର୍—ସ. (ଉପସର୍ଗ) (ଦୋ ଧାତୁ=ଛେଦନ କରିବା+ଉର୍)—
Dur ଅବ୍ୟୟ; ନିମ୍ନଲିଖିତ ଅର୍ଥଜ୍ଞାପକ ଉପସର୍ଗ—A prefix denoting the following senses
୧ । ଦୁଃଖ—1. Affliction.
୨ । ନିନ୍ଦିତ—2. Blameable,
୩ । ମନ୍ଦ—3. Bad; evil.
୪ । ଦୁଷ୍ଟ—4. Wicked.
୫ । ନିଷିଦ୍ଧ—5. Forbidden.
୬ । କଷ୍ଟ—6. Difficulty; trouble,
୭ । ଅବନତି—7 Deterioration.
[ ଦ୍ର—ଦୁର୍ ଶବ୍ଦ ପୂର୍ବରେ ଥାଇ ଅନେକ ପଦ ନିଷ୍ପନ୍ନ ହୁଏ ଯଥା—ଦୁରଦୃଷ୍ଟ, ଦୁଷ୍କର୍ମ, ଦୁଶ୍ଚିନ୍ତା ଇତ୍ୟାଦି । ]

ଦୁର୍—ଦେ. ଅ—ଦୂର୍ (ଦେଖ)
Dur Dūr (See)

ଦୁର୍କର(ର)—ଦେ. ଅ—ଦୂର୍ (ଦେଖ)
Dur-kar(ra) Dūr (See)

ଦୁର୍ଚୁକ—ଦେ. ଅ. (ଅର୍ଥଶୂନ୍ୟ)—ଦୂର୍ (ଦେଖ)
Dur-chuka Dūr (See)

ଦୁର(ରୁ)ଦୁର(ରୁ) ଜଳିବା—ଦେ. କ୍ରି. (ଧାତୁ) ଅତି ପ୍ରଚଣ୍ଡଭାବରେ
Dur(ru)dur(ru) jaḷibā ପ୍ରଜ୍ୱଳିତ ହେବା—To burn
ଧୁଧୁଜଳା violently (said of a burning fire).

ଦୁର୍ପଳା—ଦେ. ଅ. (ସ. ଦୁର୍+ପଳାୟନ)—ଏଠାରୁ ପଳାଇ ଯା—
Dur-palā . Be off.
ମୋ କୁଞ୍ଜ ଘର ଦୁଷ୍ଟ
କହୁଣି ମାଧବ ଦୁଷ୍ଟ, ଦୁଷ୍ଟ, ଦୁର୍ପଳା ଦୁର୍ପଳା । ବାହାଣୀଗୀତ ।

ଦୁର୍ବିଛୁ—ପ୍ରାଦେ. (ଯାଜପୁର) ବିଣ—ବାଲିବିତ; ଅତ୍ୟସ୍ଥିର; ଚଞ୍ଚଳ—
Dur-bichhu Very restless.

ଦୁର୍ମୁସ୍—ଦେ. ବି—ଧୁର୍ମୁସ୍; ମୂଳରେ ଭାରି ଲୌହ ବା କାଷ୍ଠ
Dur-mus ପିଣ୍ଡ ଥିବା ଗଦାକାର ଦଣ୍ଡ, ଯାହାର ଅଗକୁ ଧରି ମୂଳକୁ
ଦୁରମୁସ ଭୂମିରେ ପିଟି ଭୂମିକୁ ସମତଳ କରାଯାଏ—
**ଦୁରମୁଟ; ଦୁରମୁସ** A rammer.

ଦୁରକୁଲି—ଦେ. ବି—ବଡ଼ ଝାମ୍ପୁଡ଼ା ବନ୍ୟ ଗୁଳ୍ମବିଶେଷ—
Durakuḷi Erycibe Paniculata.
[ ଦ୍ର—ଏହାର ଅଗ ଚୂଳିଆ । ଏ ଗୁଳ୍ମ ଧଳା ଓ ହଳଦିଆ ଫୁଲ ଧରେ । ]

ଦୁରକ୍ଷ—ସ. ବି. (ଦୁର୍+ଅକ୍ଷ=ପଶା)—୧ । କପଟ ପଶା ଖେଳ—
Duraksha 1. An unfairly played game of dice.
୨ । ଦୁଷ୍ଟ ଦ୍ୟୂତ—2. Dishonest gambling.
୩ । କୌଣସି ଓଜନଦିଆ ପଶା କାଠି—
3. A loaded or false dice
ସ. ବିଣ-(ଦୁର୍+ଅକ୍ଷି) ଦୁଷ୍ଟ ନେତ୍ରଯୁକ୍ତ—Evil-eyed; weak-eyed.

ଦୁରକ୍ଷର—ସ. ବି ଓ ବିଣ—ଦୁର୍ଲେଖ୍ୟ (ଦେଖ)
Durakshara Durllekhya (See)

ଦୁରତିକ୍ରମ—ସ. ବିଣ. (ଦୁର୍+ଅତି+କ୍ରମ୍ ଧାତୁ+ଅ)—
Duratikrama ଦୁର୍ଲଂଘ୍ୟ; ଯାହା ସହଜରେ ଲଙ୍ଘନ କରାଯାଇ
(ଦୁରତିକ୍ରମା—ସ୍ତ୍ରୀ) ନ ପାରେ—Insurmountable; unconquerable; hard to get over or
(ଦୁରତିକ୍ରମତା—ବି) overcome.
ସ. ବି—ବିଷ୍ଣୁଙ୍କର ଏକ ନାମ—A name of Bishṇu.

ଦୁରତିକ୍ରମଣ—ସ. ବି. (ଦୁର୍=ଦୁଃଖରେ+ଅତିକ୍ରମଣ)—
Duratikramaṇa ଅତି କଷ୍ଟରେ ଉତ୍ତୀର୍ଣ୍ଣ ହେବା ବା ପାରିହେବା—
Crossing or overcoming with great difficulty.

ଦୁରତିକ୍ରମଣୀୟ—ସ. ବିଣ. (ଦୁର୍+ଅତି+କ୍ରମ୍ ଧାତୁ+କର୍ମ ଅନୀୟ)—
Duratikramaṇiya ଦୁରତିକ୍ରମ (ଦେଖ)
(ଦୁରତିକ୍ରମଣୀୟା—ସ୍ତ୍ରୀ) Duratikrama (See)
(ଦୁରତିକ୍ରମଣୀୟତା—ବି)

ଦୁରତିକ୍ରମ୍ୟ—ସ. ବିଣ. (ଦୁର୍+ଅତି+କ୍ରମ୍ ଧାତୁ+କର୍ମ. ଯ)—
Duratikramya ଦୁରତିକ୍ରମ (ଦେଖ)
(ଦୁରତିକ୍ରମ୍ୟା—ସ୍ତ୍ରୀ) Duratikrama (See)
(ଦୁରତିକ୍ରମ୍ୟତା—ବି)

ଦୁରତ୍ୟୟ—ସ. ବିଣ. (ବହୁବ୍ରୀହି; ଦୁର୍=ଦୁଃଖରେ+ଅତ୍ୟୟ=ଅତିକ୍ରମ କରାଯାଏ ଯାହାକୁ)—୧ । ଦୁର୍ବିନାଶ୍ୟ—
Duratyaya
(ଦୁରତ୍ୟୟା—ସ୍ତ୍ରୀ) 1. Hard to kill.
(ଦୁରତ୍ୟୟତା—ବି) ୨ । ଦୁରତିକ୍ରମ—
2. Hard to cross over.
୩ । ଦୁସ୍ତର—3. Difficult to overcome.

ଦୁରଦୃଷ୍ଟ—ସ. ବି. (କର୍ମଧା; ଦୁର୍+ଅଦୃଷ୍ଟ)—୧ । ମନ୍ଦଭାଗ୍ୟ—
Duradrushta 1. Bad luck; misfortune; hard fate; evil destiny.

୨ । ପାପ—2. Sin.
(ଦୁରଦୃଷ୍ଟା—ସ୍ତ୍ରୀ) ବିଣ. (ବହୁବ୍ରୀହି) ହତଭାଗ୍ୟ—
(ଦୁରଦୃଷ୍ଟତା—ବି) Unfortunate; unlucky.

ଦୁରଧିଗମ—ସ. ବିଣ. (ଦୁର+ଅଧି+ଗମ୍ ଧାତୁ+କର୍ମି. ଅ)—
Duradhigama ୧ । ଦୁଷ୍ପ୍ରାପ୍ୟ; ଦୁର୍ଲଭ—
(ଦୁରଧିଗମା—ସ୍ତ୍ରୀ) 1. Difficult of attainment; rare.
(ଦୁରଧିଗମତା—ବି) ୨ । ଦୁର୍ଗମ; ଦୁଷ୍ପ୍ରବେଶ—
2. Inaccessible.
୩ । ଦୁର୍ଜ୍ଞେୟ—3. Difficult to be known; incomprehensible; hard to be studied.

ଦୁରଧିଗମ୍ୟ—ସ. ବିଣ (ଦୁର+ଅଧି+ଗମ ଧାତୁ+କର୍ମି. ଯ)—
Duradhigamya ଦୁରଧିଗମ (ଦେଖ)
(ଦୁରଧିଗମ୍ୟା—ସ୍ତ୍ରୀ) Duradhigama (See)
(ଦୁରଧିଗମ୍ୟତା—ବି)

ଦୁରଧ୍ୱ—ସ. ବି. (କର୍ମଧା; ଦୁର୍+ଅଧ୍ୱନ୍+ଅ)—୧ । ମନ୍ଦ ପଥ—
Duradhwa 1 Bad way; wrong way.
୨ । କୁପଥ; କୁମାର୍ଗ—2. Evil ways.
ବିଣ. ପୁଂ. (ବହୁବ୍ରୀହି)—କୁମାର୍ଗଗାମୀ—
(ଦୁରଧ୍ୱା—ସ୍ତ୍ରୀ) Taking to evil ways.
(ଦୁରଧ୍ୱତା—ବି)

ଦୁରଧ୍ୟବସାୟ—ସ.ବି (କର୍ମଧା, ଦୁର+ଅଧ୍ୟବସାୟ)—୧ । ମନ୍ଦ ଉପକ୍ରମ—
Duradhyabasaya 1. Bad undertaking
୨ । ମନ୍ଦ କର୍ମରେ ଅଧ୍ୟବସାୟ—
2 Perseverance in bad acts.
(ଦୁରଧ୍ୟବସାୟା—ସ୍ତ୍ରୀ) ସ ବିଣ. ପୁଂ—ମନ୍ଦ ଉପକ୍ରମକାରୀ—
(ଦୁରଧ୍ୟବସାୟତା—ବି) Persevering in bad acts.

ଦୁରଧ୍ୟୟ—ସ. ବିଣ (ଦୁର୍+ଅଧ୍ୟୟ=ଅଧ୍ୟୟନ)—
Duradhyaya ୧ । ଦୁଷ୍ପାଠ୍ୟ, ଯାହା ପାଠ କରିବାକୁ କଷ୍ଟକର—
(ଦୁରଧ୍ୟୟା—ସ୍ତ୍ରୀ) 1. Difficult to read; illegible;
(ଦୁରଧ୍ୟୟତା—ବି) difficult to be mastered.
୨ । ଯାହା ପାଇବାକୁ କଷ୍ଟକର—
2. Difficult of attainment.

ଦୁରନ୍ତ—ସ. ବିଣ. (ବହୁବ୍ରୀହି; ଦୁର+ଅନ୍ତ=ଶେଷ)—
Duranta ୧ । ଦୁର୍ଦ୍ଦାନ୍ତ; ଦୁର୍ଦ୍ଦମନୀୟ—
(ଦୁରନ୍ତା-ସ୍ତ୍ରୀ) 1. Invincible; unmanageable.
(ଦୁରନ୍ତତା—ବି)
୨ । ଦୁଷ୍ଟ; ଦୁର୍ବୃତ୍ତ—3. Wicked; naughty.
୩ । ଅବାଧ୍ୟ—3. Insubordinate; unruly.
୪ । ଦୁର୍ଗମ—4. Incomprehensible.
୫ । ଦୁର୍ଜ୍ଞେୟ—5. Knowable with difficulty.
୬ । ଦୁରତିକ୍ରମଣୀୟ; ଦୁର୍ଲଙ୍ଘ୍ୟ—6. Impassable.
୭ । ଅତି ଗମ୍ଭୀର—7. Very deep.
୮ । ଅପାର; ଅସୀମ—8. Boundless; shoreless.
୯ । ପ୍ରଚଣ୍ଡ; ଭୀଷଣ (ହି· ଶବ୍ଦସାଗର)—
9. Frightful; violent; fierce.
୧୦ । ଅଶୁଭ; ଯାହାର ପରିଣାମ ମନ୍ଦ (ହି. ଶବ୍ଦସାଗର)—
10 Evil; ominous.
୧୧ । କୁତ୍ସିତ (ହି. ଶବ୍ଦସାଗର)—11. Ugly; nasty.

ଦୁରନ୍ତପଣ—ଦେ. ବି—ଦୁଷ୍ଟପଣ—Wickedness.
Durantapana (ଦୁରନ୍ତର ଅନ୍ୟ ଅର୍ଥମାନ ଦେଖ)
ଦୁରନ୍ତପନା
[ ଦୁରନ୍ତପଣିଆ(ଆଁ)—ଅନ୍ୟରୂପ ]
ଦେ. ବି—ଦୁର୍ଦ୍ଦାନ୍ତ ବ୍ୟକ୍ତି—An invincible person.
ଅରେ ମୁହିଁ ଚନ୍ଦ୍ରଚୂଡ଼ ନନ୍ଦନ ବାହାର
ବହୁଥିଲି ଏ ଦୁରନ୍ତେ—ଜଗନ୍ନାଥ. ମହାଯାତ୍ରା ।

ଦୁରନ୍ତକ—ସ. ବି. (ଦୁର୍+ଅନ୍ତ+କ)—ଶିବ; ମହାଦେବ (ହି. ଶବ୍ଦସାଗର)—God Siba.
Durantaka

ଦୁରନ୍ଧର—ଗ୍ରା. ବିଣ—୧ । (ସ. ଦୁରନ୍ତ) ଦୁରନ୍ତ; ଉତ୍କଟ—
Durandhara Fierce: abnormal; excessive.
୨ । (ସ. ଧୁରନ୍ଧର) ଧୁରନ୍ଧର; ପରାକ୍ରମୀ; ବଳବାନ୍—
2. Strong; valiant; mighty.
୩ । କୌଣସି କାର୍ଯ୍ୟ କରିବାକୁ ପ୍ରସ୍ତୁତ—
3. Ready to do a work.
୪ । ପଟୁ—4. Skilful; expert.

ଦୁରନ୍ୱୟ—ସ. ବି (ଦୁର୍+ଅନ୍ୱୟ; କର୍ମଧା)—୧ । ଭୁଲ ନିର୍ଦ୍ଧାରଣ—
Duranwaya 1. A wrong conclusion.
୨ । ବାକ୍ୟଦୋଷବିଶେଷ—
2. A grammatical defect.
[ ଦ୍ର—ଯେଉଁ ବାକ୍ୟର ଅନ୍ୱୟ ଅର୍ଥାତ୍ କର୍ତ୍ତା କିମ୍ବା ପ୍ରଭୃତିର ଅବସ୍ଥିତିର କ୍ରମଯୋଗୁଁ ଅର୍ଥାବଗତି କଷ୍ଟସାଧ୍ୟ ହୁଏ ସେଠାରେ ଦୁରନ୍ୱୟ ଦୋଷ ହୁଏ । ନିମ୍ନଲିଖିତ ପଦ୍ୟ ଦୁରନ୍ୱୟ ଦୋଷଯୁକ୍ତ ଅଟେ ।
ସ୍ୱପ୍ନ ସମ ନିଦ୍ରା ପାଗବାରେ
କ୍ଷଣକେ ହୁଅଇ ଲୀନ ଗର୍ବଦମ୍ଭ ଅଭିମାନ
ସଂସାରର ଆଡମ୍ବର ବୁଦ୍‌ବୁଦ ଆକାରେ
ସକଳ ଗ୍ରାସଇ କାଳମୂଖ ନିର୍ଦ୍ଦୟରେ—ମଧୁସୂଦନ. ଜୀବନଚିନ୍ତା । ]
ସ. ବିଣ—୧ । ଦୁର୍ଗମ୍ୟ—1. Difficult to pass along.
୨ । ଦୁଷ୍ପ୍ରାପ୍ୟ—
2. Difficult to be attained or understood.
୩ । କାର୍ଯ୍ୟରେ ପରିଣତ ହେବାର କଷ୍ଟସାଧ୍ୟ—
3. Hard to be carried out or followed.

ଦୁରପନେୟ—ସ. ବିଣ. (ଦୁର୍+ଅପନେୟ)—୧ । ଯାହା ସହଜରେ
Durapaneya ମୋଚନ କରାଯାଇ ନ ପାରେ; ଦୁର୍ମୋଚନୀୟ—
(ଦୁରପନେୟା—ସ୍ତ୍ରୀ) 1. Difficult to relax.
(ଦୁରପନେୟତା—ବି) ୨ । ଯାହା ସହଜରେ ଲିଭାଯାଇ ନ ପାରେ—
2. Indelible.
୩ । ଯାହା ସହଜରେ ଦୂରୀକରଣ କରାଯାଇ ନ ପାରେ—
3. Difficult to remove.

ଦୁରବଗମ—ସଂ. ବିଣ. (ଦୁର୍ + ଅବଗମ = ଜ୍ଞାନ)—ଦୁର୍ବୋଧ; ଦୁର୍ଜ୍ଞେୟ—
Durabagama Difficult to understand; incomprehensible; unknowable.
( ଦୁରବଗମା—ସ୍ତ୍ରୀ )
ଦୁରବଗମତା—ବି )

ଦୁରବଗମନୀୟ—ସଂ. ବି—ଦୁରବଗମ ( ଦେଖ )
Durabagamaniya Durabagama ( See )
( ଦୁରବଗମନୀୟା—ସ୍ତ୍ରୀ ) (ଦୁରବଗମନୀୟତା-ବି)

ଦୁରବଗମ୍ୟ—ସଂ. ବିଣ—ଦୁରବଗମ ( ଦେଖ )
Durabagamya Durabagama ( See )
( ଦୁରବଗମ୍ୟା—ସ୍ତ୍ରୀ ) ( ଦୁରବଗମ୍ୟତା—ବି )

ଦୁରବଗାହ—ସଂ. ବିଣ. ( ଦୁର୍+ଅବଗାହ )—
Durabagāha ୧ । ଦୁରଧିଗମ୍ୟ; ଦୁର୍ଜ୍ଞେୟ—
( ଦୁରବଗାହା—ସ୍ତ୍ରୀ ) 1. Incomprehensible
( ଦୁରବଗାହତା—ବି ) ୨ । ଦୁଷ୍ପ୍ରବେଶ୍ୟ—2. Inaccessible.
୩ । ( ଗଭୀରତା ବା ଜଳଜନ୍ତୁ ଭୟ ଯୋଗୁଁ ) ଯେଉଁ ଜଳାଶୟରେ ଅତି କଷ୍ଟରେ ସ୍ନାନ କରିଯାଇ ପାରେ—
3. Difficult to be used for bathing purposes.

ଦୁରବଗାହ୍ୟ—ସଂ. ବେଣ—ଦୁରବଗାହ ( ଦେଖ )
Durabagāhya Durabagāha ( See )
( ଦୁରବଗାହ୍ୟା—ସ୍ତ୍ରୀ ) ( ଦୁରବଗାହ୍ୟତା—ବି )

ଦୁରବଗ୍ରହ—ସଂ. ବିଣ. ( ଦୁର୍+ଅବ+ଗ୍ରହ ଧାତୁ+କର୍ମ. ଅ )—
Durabagraha ଦୁରପନେୟ (ଦେଖ) ଜ୍ଞାନେନ୍ଦ୍ର—
(ଦୁରବଗ୍ରହତା—ବି) Durapaneya (See)

ଦୁରବସ୍ତ—ବୈଦେ. କ୍ରି. ବିଣ. (ଫା. ଦୋରବସ୍ତ)—ଦୋରବସ୍ତ (ଦେଖ)
Durabasta Dorabasta (See)

ଦୁରବସ୍ଥ—ସଂ. ବିଣ. (ବହୁବ୍ରୀହି; ଦୁର୍+ଅବସ୍ଥା)—୧ । ଦୁର୍ଦ୍ଦଶାଗ୍ରସ୍ତ—
Durabastha 1. Fallen in adversity.
(ଦୁରବସ୍ଥା—ସ୍ତ୍ରୀ) ୨ । ଅତି ଦରିଦ୍ର—
(ଦୁରବସ୍ଥତା—ବି) 2. Poverty-stricken.
୩ । ଦୁରବସ୍ଥାପନ୍ନ—3. Miserable; distressed.

ଦୁରବସ୍ଥା—ସଂ.ବି.—(କର୍ମଧା; ଦୁର୍+ଅବସ୍ଥା)—୧ । ଦୁର୍ଭାଗ୍ୟ—
Durabasthā 1. Misfortune.
୨ । ମନ୍ଦ ଦଶା; ଦୁର୍ଦ୍ଦଶା; ଦୈନ୍ୟ—
2. Adversity; misery.
୩ । ହୀନାବସ୍ଥା—3. Bad condition
୪ । ଶୋଚନୀୟ ଅବସ୍ଥା—
4. Sad or miserable plight.

ଦୁରବସ୍ଥାନ—ସଂ. ବି —(କର୍ମଧା; ଦୁର୍+ଅବସ୍ଥାନ)—କଷ୍ଟରେ ସ୍ଥିତି;
Durabasthāna କ୍ଲେଶକର ଅବସ୍ଥାନ—Miserable or inconvenient existence.

ଦୁରବସ୍ଥାପନ୍ନ—ସଂ. ବିଣ. (ଦୁର୍+ଅବସ୍ଥା+ଆପନ୍ନ)—ଦୁର୍ଦ୍ଦଶାଗ୍ରସ୍ତ—
Durabasthāpanna Miserable; overtaken by misfortune.
(ଦୁରବସ୍ଥାପନ୍ନା—ସ୍ତ୍ରୀ)

ଦୁରବାପ—ସଂ. ବିଣ.—(ଦୁର୍+ଅବ+ଆପ୍ ଧାତୁ=ପାଇବା+କର୍ମ. ଅ)—ଦୁଷ୍ପ୍ରାପ୍ୟ—Rare; difficult to get.
Durabāpa
(ଦୁରବାପା—ସ୍ତ୍ରୀ) (ଦୁରବାପତା—ବି)

ଦୁରଭିଗ୍ରହା—ସଂ. ବି.—ଦୁରାଲଭା (ଦେଖ)
Durabhigrahā Durālabhā (See)

ଦୁରଭିପ୍ରାୟ—ସଂ. ବି. (କର୍ମଧା; ଦୁର୍+ଅଭିପ୍ରାୟ)—ଦୁରଭିସନ୍ଧି (ଦେଖ)
Durabhiprāya Durabhisandhi (See).

ଦୁରଭିମାନ—ସଂ. ବି. (ଦୁର୍+ଅଭିମାନ)—ବେଜାୟ ଆତ୍ମଗର୍ବ—
Durabhimāna Vain-glory.
(ଦୁରଭିମାନା—ସ୍ତ୍ରୀ) ସଂ. ବିଣ —ଦୁରଭିମାନୀ (ଦେଖ)
(ଦୁରଭିମାନତା—ବି) Durabhimāni (See)

ଦୁରଭିମାନୀ—ସଂ. ବିଣ. ପୁଂ. (ଦୁର୍+ଅଭିମାନ+ଇନ୍; ୧ମା. ୧ବ.)—
Durabhimāni ଆତ୍ମଗର୍ବୀ, ଯାହାର ଆତ୍ମବଡ଼ିମା ବେଶି—
(ଦୁରଭିମାନିନୀ—ସ୍ତ୍ରୀ) (ଦୁରଭିମାନିତା—ବି) Vain-glorious.

ଦୁରଭିଲାଷ—ସଂ. ବି. (କର୍ମଧା; ଦୁର୍+ଅଭିଲାଷ)—୧ । ମନ୍ଦ ବାଞ୍ଛା—
Durabhilāsha 1. Evil desire or propensity.
(ଦୁରଭିଲଷିତ—ଅନ୍ୟରୂପ) ୨ । ଦୁରାକାଂକ୍ଷା (ଦେଖ)
2. Durākāmkshā (See)

ଦୁରଭିଲାଷୀ—ସଂ. ବିଣ. ପୁଂ. (ଦୁରଭିଲାଷ+ଇନ୍; ୧ମା. ୧ବ.)—
Durabhilāshi ମନ୍ଦ ବାଞ୍ଛାଯୁକ୍ତ—Having evil desires.
(ଦୁରଭିଲାଷିଣୀ—ସ୍ତ୍ରୀ) (ଦୁରଭିଲାଷିତା—ବି)

ଦୁରଭିସନ୍ଧି—ସଂ. ବି. (କର୍ମଧା; ଦୁର୍+ଅଭିସନ୍ଧି)- ମନ୍ଦ ଉଦ୍ଦେଶ୍ୟ—
Durabhisandhi Evil intention; bad motive.

ଦୁରସ୍ତ(ଇତ୍ୟାଦି)—ବୈଦେ. ବିଣ. (ଫା. ଦୁରୁସ୍ତ)—ଦୋରସ୍ତ ଇତ୍ୟାଦି
Durasta(etc) (ଦେଖ) Dorasta (See)

ଦୁରାକାଙ୍କ୍ଷ—ସଂ. ବିଣ. ପୁଂ (ବହୁବ୍ରୀହି; ଦୁର୍+ଆକାଙ୍କ୍ଷା)—
Durākānksha ୧ । ଯାହାର ଆକାଙ୍କ୍ଷାର କେବେ ହେଲେ ପୂରଣ ହୁଏ ନାହିଁ—1. Having one's desires never fulfilled.
(ଦୁରାକାଙ୍କ୍ଷୀ—ସ୍ତ୍ରୀ)
(ଦୁରାକାଙ୍କ୍ଷିତା—ବି)
୨ । ଯେ ଅସମ୍ଭାବିତ ବିଷୟର ଅଭିଲାଷ କରେ—
2. Hankering after impossible things.
୩ । ମନ୍ଦାଭିଲାଷଯୁକ୍ତ ( ଜ୍ଞାନେନ୍ଦ୍ର )—
3. Having evil desires.

ଦୁରାକାଙ୍କ୍ଷା—ସଂ. ବି. (କର୍ମଧା; ଦୁର୍+ଆକାଙ୍କ୍ଷା)—୧ । କୁତ୍ସିତ ବାସନା-
Durākānkshā 1. Evil desire.
୨ । ଯେଉଁ ବାସନାର ନିବୃତ୍ତି ନାହିଁ—
2. Insatiable desire.
୩ । ଦୁର୍ଲଭ ବସ୍ତୁପାଇଁ ଇଚ୍ଛା; ଦୁରାଶା—3. Desire for things which cannot be attained; inordinate desire.
୪ । ଅତିରିକ୍ତ ଉଚ୍ଚ ଆଶା—4. Ambition.
ବିଣ. ସ୍ତ୍ରୀ—ଦୁରାକାଙ୍କ୍ଷର ସ୍ତ୍ରୀଲିଙ୍ଗ—
The feminine of Durākānksha.

ଦୁରାକାଙ୍କ୍ଷୀ—ସଂ. ବି. ପୁଂ. (ଦୁରାକାଙ୍କ୍ଷା+ଇନ୍. ୧ମା ୧ବ.)—
Durākānkshi ୧ । ଯାହାର ଆକାଙ୍କ୍ଷା ବା ବାସନାର ନିବୃତ୍ତି
ଦୁରାକାଙ୍କ୍ଷିଣୀ—ସ୍ତ୍ରୀ) ନାହିଁ; ଦୁରାଶାଯୁକ୍ତ (ବ୍ୟକ୍ତି)—
1 Ambitious
୨ । ଦୁରଭିଳାଷୀ—2. Of evil desire.
୩ । ଅତି ଲୋଭୀ—3 Covetuous.

ଦୁରାକ୍ରମଣ—ସଂ. ବି. (କର୍ମଧା; ଦୁର୍+ଆକ୍ରମଣ)—୧ । ଅନ୍ୟାୟପୂର୍ବକ
Durākramana ଆକ୍ରମଣ—1. Unjust invasion.
୨ । ମନ୍ଦ ଅଭିପ୍ରାୟରେ ଆକ୍ରମଣ—
2. Attack with a bad motive.
ବିଣ.—ଦୁରାକ୍ରମ୍ୟ (ଦେଖ)
Durākramya (See)

ଦୁରାକ୍ରମ୍ୟ—ସଂ. ବିଣ. (କର୍ମଧା; ଦୁର୍+ଆକ୍ରମ୍ୟ)—ଯାହା ଆକ୍ରମଣ କରିବା
Durākramya କଷ୍ଟକର—Impregnable; difficult to attack.
(ଦୁରାକ୍ରମଣୀୟ—ଅନ୍ୟରୂପ)
( ଦୁରାକ୍ରମ୍ୟା—ସ୍ତ୍ରୀ ) ( ଦୁରାକ୍ରମ୍ୟତା—ବି )

ଦୁରାକ୍ରାନ୍ତ—ସଂ. ବିଣ. ( କର୍ମଧା; ଦୁର୍+ଆକ୍ରାନ୍ତ )—ଯାହାକୁ ଅତି
Durākrānta କଷ୍ଟରେ ଆକ୍ରମଣ କରି ଯାଇଅଛି—
Attacked with great difficulty.

ଦୁରାଗତ—ସଂ. ବିଣ. ପୁଂ. (ଦୁର୍+ଆଗତ)—ଅତି କଷ୍ଟରେ ଉପସ୍ଥିତ—
Durāgata Arrived after great difficulty or hardship.
( ଦୁରାଗତା—ସ୍ତ୍ରୀ )

ଦୁରାଗ୍ରହ—ସଂ. ବି ( କର୍ମଧା; ଦୁର୍+ଆଗ୍ରହ )—୧ । ଦୁଶ୍ଚେଷ୍ଟା—
Durāgraha 1. Evil endeavour.
୨ । ମନ୍ଦ ବିଷୟରେ ଅଭିନିବେଶ—2. Evil desire.
ସଂ. ବିଣ (ବହୁବ୍ରୀହି)—ମନ୍ଦ ବିଷୟରେ ଆଗ୍ରହଯୁକ୍ତ—
Having evil desire.
(ଦୁରାଗ୍ରହା-ସ୍ତ୍ରୀ)
(ଦୁରାଗ୍ରହତା-ବି)

ଦୁରାଚର—ସଂ. ବିଣ (ଦୁର୍+ଆ+ଚର ଧାତୁ+କର୍ମ. ଅ)—ଯାହା ଅତି
Durāchara କଷ୍ଟରେ ଅନୁଷ୍ଠିତ ହୁଏ, କୃଚ୍ଛ୍ରସାଧ୍ୟ—Performable with great difficulty.
(ଦୁରାଚରଣୀୟ—ଅନ୍ୟରୂପ)
(ଦୁରାଚରତା—ବି)

ଦୁରାଚରଣ—ସଂ. ବି—ଦୁରାଚାର ( ଦେଖ )
Durācharana Durāchāra ( See )

ଦୁରାଚରିତ—ସଂ. ବିଣ—ଅତି କଷ୍ଟରେ ସାଧିତ—
Durācharita Performed after a great hardship.
ସଂ. ବି—ଦୁରାଚାର (ଦେ.)—Durāchāra ( See )

ଦୁରାଚାର—ସଂ.ବି (କର୍ମଧା; ଦୁର୍+ଆଚାର)—୧ । କୁତ୍ସିତ ଆଚରଣ, ମନ୍ଦ
Durāchāra ଆଚରଣ—1. Evil conduct; profligacy.
୨ । କଦାଚାର; କୁବ୍ୟବହାର—
2. Bad behaviour; depravity.
୩ । ମନ୍ଦ ଅଭ୍ୟାସ—3. Bad habit.
(ଦୁରାଚାରା—ସ୍ତ୍ରୀ) ବିଣ—ଦୁରାଚାରୀ ( ଦେଖ )
(ଦୁରାଚାରତା—ବି) Durāchāri (See)

ଦୁରାଚାରୀ—ସଂ. ବିଣ ପୁଂ(ଦୁରାଚାର+ଇନ୍. ୧ମା.୧ବ)—୧ । କଦାଚାରୀ—
Durāchāri 1. Profligate.
(ଦୁରାଚାରିଣୀ—ସ୍ତ୍ରୀ) ୨ । ଦୁଃଶୀଳ, ଦୁର୍ବୃତ୍ତ—2. Wicked; depraved.

ଦୁରାତମା—ଦେ (ପଦ୍ୟ) ବିଣ (ସଂ. ଦୁରାତ୍ମା)—ଦୁରାତ୍ମା (ଦେଖ)
Durātamā Durātmā (See)
ଦୋଷ କଲବା ମୋର କ୍ଷମା
ସ୍ୱଭାବେ ମୁହିଁ ଦୁରାତମା । ଜଗନ୍ନାଥ, ଭାଗବତ ।

ଦୁରାତ୍ମା—ସଂ. ବିଣ (ବହୁବ୍ରୀହି, ଦୁର୍+ଆତ୍ମନ୍)—୧ । ପାପାତ୍ମା—
Durātmā 1 Sinful; profligate; depraved; evil-minded.
(ଦୁରାତ୍ମତା—ବି)
୨ । ନିଷ୍ଠୁର; ନିର୍ଦ୍ଦୟ—2. Cruel.
୩ । ନୀଚମନା—3. Mean; base.
୪ । ଦୁଷ୍ଟ; ଦୁର୍ବୃତ୍ତ—4. Wicked.
୫ । ଅତ୍ୟାଚାରୀ—5. Oppressive; tyrannical.

ଦୁରାଧନ—ସଂ. ବି (ନାମ)—ଧୃତରାଷ୍ଟ୍ରଙ୍କର ଏକ ପୁତ୍ର; ଦୁର୍ଯ୍ୟୋଧନଙ୍କର
Durādhana ଏକ ଭାଇ—The name of a brother of Durjyodhana.

ଦୁରାଧର—ସଂ. ବି (ନାମ)—ଦୁର୍ଯ୍ୟୋଧନଙ୍କର ଏକ ଭାଇ—
Durādhara The name of a brother of Durjyodhana.

ଦୁରାଧର୍ଷ—ସଂ. ବିଣ. ପୁଂ (ଦୁର୍+ଆ+ଧର୍ଷି. ଧାତୁ=ପ୍ରଗଲ୍ଭ ହେବା+
Durādharsha କର୍ମ.ଅ)—୧ । ଦୁର୍ଦ୍ଦମନୀୟ—1. Invincible; intractable; unruly; indomitable.
(ଦୁରାଧର୍ଷା—ସ୍ତ୍ରୀ)
(ଦୁରାଧର୍ଷତା-ବି) ୨ । ପ୍ରଚଣ୍ଡ—2. Fierce.
ବି.—୧ । ଧଳା ସୋରିଷ—1. White mustard.
୨ । ବିଷ୍ଣୁ—2. A name of Bishnu.

ଦୁରାଧାର—ସଂ.ବିଣ (ଦୁର୍+ଆ+ଧୃ ଧାତୁ+କର୍ମ.ଅ)—୧ । ଦୁର୍ବିଜ୍ଞେୟ—
Durādhāra 1. Difficult to comprehend.
୨ । ଯାହାର ଧାରଣ କରିବା କଷ୍ଟକର—
2 Difficult to hold.
ସଂ. ବି.—ମହାଦେବ—God Śiba.

ଦୁରାନମ—ସଂ. ବିଣ (ଦୁର୍+ଆ+ନମ୍ ଧାତୁ+କର୍ମ ଅ)—ଯାହାକୁ
Durānama ସହଜରେ ନୁଆଁ ଯାଇପାରେ ନାହିଁ—That which cannot be easily bent.

ଦୁରାନ୍ତ—ଗ୍ରା. ବି—(ସଂ.ଦୂର ଦୂରାନ୍ତ;ଦୂରଦେଶ—1. Distant place.
Duranta ୨ । ଦୂରତା—2. Distance.
ପାଶରୁ ଗଲେ ହୋଇଲ ଦୁରାନ୍ତରୁ ବଳ । ପ୍ରାଚୀ. ବ୍ରହ୍ମବୈବର୍ତ୍ତ ଗୀତା

ଦୁରାନ୍ତର—ଦେ. ବି—(ସଂ ଦୂର)—ଦୂରତା; ଦୂରତ୍ୱ—
Durāntara Distance.
କେତେ ଦୁରାନ୍ତର ଛଡ଼ା ଗଲୁଅଛ କହି । ପ୍ରାଚୀ. ବ୍ରହ୍ମବୈବର୍ତ୍ତଗୀତା
ବିଣ—ଦୂରସ୍ଥିତ; ଦୂରରେ ଥିବା—Distant; situate at a distance.
ଏତେ ବଚନ ବୋଲନ୍ତେ, ଗଲେ ସେ ଦୁରାନ୍ତର ବନ । ପ୍ରାଚୀ.ଜଳଠବନ ।

**ଦୁରାପ**—ସଂ. ବଣ. ପୁଂ ଓ କ୍ଲୀ—(ଦୁର୍+ଆପ୍ ଧାତୁ=ପାଇବା+ କର୍ମ. ଅ)—ଦୁଷ୍ପ୍ରାପ୍ୟ—Obtainable with great difficulty.
Durāpa
(ଦୁରାପା—ସ୍ତ୍ରୀ)
(ଦୁରାପତା—ବ) ପିବନ୍ତି ଚକ୍ଷୁଦ୍ୱାରେ ରୂପ
ଅକ୍ଷାନ କନକ ଦୁରାପ । ଜଗନ୍ନାଥ. ଭାଗବତ ।
ଦେ. ବ—ଦୁଃଖ; କଷ୍ଟ—Trouble
ସେ ସଙ୍ଗେ ମୋହର ଯ ତାପ
ଦର୍ଶନେ ହରବେ ଦୁରାପ । ଜଗନ୍ନାଥ. ଭାଗବତ ।

**ଦୁରାପସଦ**—ସଂ.ବଣ (ଦୁର୍+ଅପ+ସଦ୍ ଧାତୁ+ଅ)—ଦୁରାସଦ (ଦେଖ)
Durāpasada Durāsada (See)

**ଦୁରାବସ୍ଥା (ସ୍ଥା)**—ଗ୍ରା. ବ—(ସଂ. ଦୂରବସ୍ଥାର ଅଶୁଦ୍ଧ ପ୍ରୟୋଗ)—ଦୁରବସ୍ଥା (ଦେଖ)
Durābastā (sthā) Durabasthā (See)

**ଦୁରାବାଧ**—ସଂ. ବ.—ଶିବ (ହି. ଶବ୍ଦସାଗର)
Durābadha Siba

**ଦୁରାୟ**—ସଂ. ବଣ. (ଦୁର୍+ଇ ଧାତୁ+କର୍ମ. ଅ)—ଦୁର୍ଲଭ; ଦୁଷ୍ପ୍ରାପ୍ୟ—
Durāya Attainable with great difficulty.
(ଦୁରାୟା—ସ୍ତ୍ରୀ) (ଦୁରାୟତା—ବ)

**ଦୁରାରାଧ**—ସଂ ବଣ. ପୁଂ (ଦୁର୍+ଆରାଧ)—ଯାହାଙ୍କୁ ଆରାଧନା କରି ସନ୍ତୁଷ୍ଟ କରିବା ସହଜ ନୁହେଁ—Who cannot be easily satisfied with worship.
Durārādhya
(ଦୁରାରାଧା—ସ୍ତ୍ରୀ)
(ଦୁରାରାଧତା—ବ) ସଂ. ବ. ପୁଂ.—ବିଷ୍ଣୁ—A name of Bishṇu.
[ଦ୍ର—ଶିବଙ୍କୁ ଆରାଧନା କରି ସହଜରେ ସନ୍ତୁଷ୍ଟ କରାଯାଇ ପାରେ ବୋଲି ତାଙ୍କ ନାମ ଅଶୁତୋଷ]

**ଦୁରାରୁହ**—ସଂ. ବଣ (ବହୁବ୍ରୀହି; ଦୁର୍=କଷ୍ଟରେ+ଆ+ରୁହ୍ ଧାତୁ+ଅ)—ଯାହା ଉପରେ ସହଜରେ ଚଢ଼ି ହୁଏ ନାହିଁ—Which can be climbed or ridden with great difficulty.
Durāruha
(ଦୁରାରୁହା—ସ୍ତ୍ରୀ)
(ଦୁରାରୁହତା—ବ)
ସଂ. ବ—୧ । ନଡ଼ିଆଗଛ (ହି. ଶବ୍ଦସାଗର)—1. Cocoanut tree.
୨ । ବେଲ ଗଛ (ହି. ଶବ୍ଦସାଗର)—2. The Bel tree; Aegle Marmelos.

**ଦୁରାରୁହା**—ସଂ. ବ. ସ୍ତ୍ରୀ—ଖଜୁରି ଗଛ (ହି. ଶବ୍ଦସାଗର)—
Durāruhā Date palm tree.

**ଦୁରାରୋଗ୍ୟ**—ସଂ.ବଣ—ଦୁଷ୍ଚିକିତ୍ସ୍ୟ; ଯାହା ଆରୋଗ୍ୟ କରିବା କଷ୍ଟକର—
Durārogya Difficult to cure; incurable.
(ଦୁରାରୋଗ୍ୟତା—ବି)

**ଦୁରାରୋହ**—ସଂ. ବିଣ (ବହୁବ୍ରୀହି; ଦୁର୍+ଆରୋହ)—୧ । ଯାହା ଉପରେ ଅତି କଷ୍ଟରେ ଆରୋହଣ କରାଯାଇପାରେ—1. Hard or difficult to climb; insurmountable; inaccessible.
Durārohá
(ଦୁରାରୋହା-ସ୍ତ୍ରୀ)
(ଦୁରାରୋହତା-ବି)
୨ । ଅତି ଉଚ୍ଚ ଓ ଗଡ଼ାଣିଆ—2. Very high and steep.
ସଂ. ବି—ତାଳଗଛ (ହି. ଶବ୍ଦସାଗର)—Palm tree.

**ଦୁରାରୋହଣ**—ସଂ. ବି (କର୍ମଧା; ଦୁର୍+ଆରୋହଣ)—ଅତି କଷ୍ଟରେ ଆରୋହଣ—Difficult or dangerous ascent.
Durārohaṇa

**ଦୁରାରୋହା**—ସଂ. ବି. ସ୍ତ୍ରୀ—୧ । ଶିମିଳି ଗଛ—1 The silk-cotton tree.
Durārohā
୨ । ଖଜୁରି ଗଛ (ହି. ଶବ୍ଦସାଗର)—The date palm tree.

**ଦୁରାଲଭ**—ସଂ. ବିଣ—(ଦୁର୍+ଆ+ଲଭ୍ ଧାତୁ+କର୍ମ. ଅ)—ଯାହା ଅତି କଷ୍ଟରେ ମିଳେ; ଦୁର୍ଲଭ—
Durālabha Difficult to get; rare.
(ଦୁରାଲଭା—ସ୍ତ୍ରୀ)

**ଦୁରାଲଭା**—ସଂ. ବ. ସ୍ତ୍ରୀ—୧ । କ୍ଷୁଦ୍ର କଣ୍ଟକୀ ଔଷଧ ଗୁଳ୍ମବିଶେଷ—
Durālabhā 1. A medicinal thorny plant.
(ଦୁରାଲମ୍ଭା—ଅନ୍ୟରୂପ)
ସ ସମୁଦ୍ରାନ୍ତ; ରୋଦନୀ, ଗାନ୍ଧାରୀ, କଚ୍ଛୁରା, ଅନନ୍ତା, କଷାୟା, ଦୁରଭିଗ୍ରହା, ମରୁଭବା, ସୂକ୍ଷ୍ମଦଳା, ଗାଣ୍ଡୀରକଣ୍ଟକା ହବାଳଭା
ହିନ୍ଦୀ; ଧମାସା
ଫା. ଫରାକ୍‌ନୁନ୍
ଆ. ହାଜ୍
[ ଦ୍ର—ଏହା ବାତପିତ୍ତ ଜ୍ୱର ଓ ଗୁଳ୍ମରୋଗରେ ହିତକର । ବଜାରରେ ଦୁରାଲଭା ନାମରେ ଯାହା ବିକ୍ରି ହୁଏ ତାହା ଏହି ଜାତୀୟ ଯବାଶ ନାମକ ଅନ୍ୟ ଏକ ଗୁଳ୍ମର ଅଂଶ । ଦୁହିଁଙ୍କର ଏକ ଗୁଣ । ଏହା ସେବନ କଲେ ଦାହ ଓ ବିଷମଜ୍ୱର ନିବାରିତ ହୁଏ, କୋଷ୍ଠ ପରିଷ୍କାର ହୁଏ । ଏହା ତନ୍ଦ୍ରା, ଦୌର୍ବଲ୍ୟ, ଶ୍ୱାସ, ଗୁଳ୍ମ, ଅର୍ଶ, ଉଦରରୋଗ ଓ ଚକ୍ଷୁରୋଗରେ ହିତକର । ]
ଦେ. ଦୁଲଗୋଣ୍ଡି, କୋଣ୍ଡାକାସିବିକା ୨ । ଦୁର୍ଲଭା (ଦେଖ)
2. Durllabhā (See)

**ଦୁରାଲାପ**—ସଂ. ବ. (କର୍ମଧା; ଦୁର୍+ଆଲାପ=ବାକ୍ୟ)—
Durālāpa ୧ । ଦୁଷ୍ଟ ବାକ୍ୟ—1. Evil talk.
୨ । କୁବାକ୍ୟ; ଗାଳି—2. Abuse; ill names; harsh words; scurrillous language.
ବଣ. ପୁଂ—ଦୁରାଲାପୀ (ଦେଖ)—Durālāpi (See)

**ଦୁରାଲାପୀ**—ସଂ. ବଣ. ପୁଂ. (ଦୁର୍+ଆଲାପ+ଇନ୍; ୧ମା. ୧ବ.)—
Durālāpi ୧ । କଟୁଭାଷୀ—1. Speaking harsh words
(ଦୁରାଲାପିନୀ—ସ୍ତ୍ରୀ) ୨ । ଯାହା କଷ୍ଟରେ ଆଳାପ କରାଯାଏ—
(ଦୁରାଲାପିତା—ବ) 2. Difficult to sing or to be brought to tune.

**ଦୁରାଶୟ**—ସଂ. ବ. (କର୍ମଧା; ଦୁର୍+ଆଶୟ)—
Durāśaya ୧ । ମନ୍ଦ ଉଦ୍ଦେଶ୍ୟ; ଦୁରଭିସନ୍ଧି—1 Evil intention.
୨ । ଦୁରାକାଂକ୍ଷା—2. Ambition.
(ଦୁରାଶୟା—ସ୍ତ୍ରୀ) ବଣ—ଯାହାର ଉଦ୍ଦେଶ୍ୟ ମନ୍ଦ; ଦୁଷ୍ଟ ଅଭିଳାଷଯୁକ୍ତ—Evil-intentioned
(ଦୁରାଶୟତା—ବ)

**ଦୁରାଶୟୀ**—ସଂ. ବଣ. ପୁଂ. (ଦୁର୍+ଆଶୟ+ଇନ୍. ୧ମା. ୧ବ)—
Durāśayi ୧ । ଦୁଷ୍ଟ ଅଭିଳାଷୀ; ଦୁରଭିସନ୍ଧିବିଶିଷ୍ଟ—1. Evil minded; evil intentioned; malicious.
(ଦୁରାଶୟିନୀ—ସ୍ତ୍ରୀ)
(ଦୁରାଶୟିତା—ବ)

୨ । ଦୁରାକାଂକ୍ଷୀ—2. Ambitious.

ଦୁରାଶା—ସ. ବି. ( କର୍ମଧା; ଦୁର୍+ଆଶା )—୧ । ଦୁରାକାଂକ୍ଷା—
Durāśā 1. Inordinate ambition.
୨ । ଦୁଷ୍ଟାଭିଳାଷ—2. Evil intention.
୩ । ଅପ୍ରାପ୍ୟ ବିଷୟରେ ଆଶା—
3. Hope after unattainable things; vain or futile hope

ଦୁରାସଦ—ସ. ବିଣ. ( ଦୁର୍+ଆ+ସଦ୍ ଧାତୁ=ପାଇବା, ସହିବା+କର୍ମ. ଅ )—୧ । ଦୁଷ୍ପ୍ରାପ୍ୟ; ଦୁର୍ଲଭ—
Durāsada 1 Difficult of attainment.
୨ । ଦୁଃସହ—2. Insufferable
୩ । ଦୁର୍ଦ୍ଧର୍ଷ—3. Indomitable; unruly.
୪ । ଦୁଷ୍ଟ—4 Wicked
୫ । ଦୁଃସାଧ—5. Performable with difficulty.

ଦୁରିତ—ସ. ବି. ( ଦୁର୍=ନିନ୍ଦା+ଇ. ଧାତୁ=ଗମନ କରିବା, ପାଇବା +କର୍ତ୍ତୃ. ତ )—୧ । ଦୁଷ୍କୃତ; ପାପ—
Durita 1 Sin; evil deed.
୨ । ଦୁର୍ଗତି; ଅମଙ୍ଗଳ; ଅନିଷ୍ଟ—
2. Disaster; evil.
୩ । ଦୁର୍ଦ୍ଦଶା—3. Misfortune; ill luck
( ଦୁରିତା—ସ୍ତ୍ରୀ ) ବିଣ—୧ । ପାପିଷ୍ଠ—1. Sinful.
୨ । ଦୁଷ୍ଟ; ମନ୍ଦ—2. Evil; wicked.

ଏ ପଥେ ଅଛନ୍ତି ଦୁରିତ
ପ୍ରାଣୀ ଯୋକଢେ ପରପତ—ଭୂପତି. ପ୍ରେମପଞ୍ଚାମୃତ ।

ଦୁରିତ କ୍ଷୟ—ସ. ବି. ( ୬ଷ୍ଠୀ ତତ୍: ଦୁରିତ+କ୍ଷୟ )—
Durita kshaya ୧ । ପାପର ବିନାଶ—
1. Destruction of sin.
୨ । ଦୁର୍ଦ୍ଦଶାର ଅନ୍ତ—
2. The end of misfortune.

ଦୁରିତ ଦମନ—ସ. ବିଣ. ପୁଂ - ଦୁରିତ ନାଶନ ( ଦେଖ )
Durita damana Durita nāśana ( See )
(ଦୁରିତ ଦମନୀ—ସ୍ତ୍ରୀ)

ଦୁରିତ ଦମନୀ—ସ. ବି. ସ୍ତ୍ରୀ – ଶମୀ ବୃକ୍ଷ (ଦେଖ)
Durita damanī Śamī (See)

ଦୁରିତ ଦଳନ—ସ. ବିଣ. ପୁଂ—ଦୁରିତ ନାଶନ ( ଦେଖ )
Durita daḷana Durita nāśana (See)

ଦୁରିତ ନାଶ—ସ.ବି (୬ଷ୍ଠୀ ତତ୍; ଦୁରିତ+ନାଶ)—ଦୁରିତକ୍ଷୟ (ଦେଖ)
Durita nāśa Durita kshaya (See)

ଦୁରିତ ନାଶକ—ସ. ବିଣ. ପୁଂ—ଦୁରିତ ନାଶନ ( ଦେଖ )
Durita nāśaka Durita nāśana ( See )

ଦୁରିତ ନାଶନ—ସ. ବିଣ. ପୁଂ (ଦୁରିତ+ନଶ୍ ଧାତୁ+କର୍ତ୍ତୃ ଅନ)—
Durita nāśana ଯେ ବା ଯାହା ପାପ ନାଶ କରେ—That which or he who destroys sin or evil.
(ଦୁରିତ ନାଶନୀ—ସ୍ତ୍ରୀ)

ଦୁରିତହାରୀ—ସ. ବିଣ. ପୁଂ ( ଦୁରିତ+ହୃ ଧାତୁ+କର୍ତ୍ତୃ. ଇନ୍; ୧ମା ୧ବ)—ଦୁରିତ ନାଶନ ( ଦେଖ )
Durita hārī Durita nāśana ( See )
(ଦୁରିତ ହାରିଣୀ—ସ୍ତ୍ରୀ)

ଦୁରିତାପହ—ସଂ. ବିଣ. ପୁଂ—ଦୁରିତ ନାଶନ ( ଦେଖ )
Duritā paha Durita nāśana (See)
(ଦୁରିତାପହା—ସ୍ତ୍ରୀ)

ଦୁରିଷ୍ଟ—ସଂ. ବି. ( ଦୁର୍+ଇଷ୍ଟ=ଯଜ୍ଞ )—୧ । କୁତ୍ସିତ ଯଜ୍ଞ; ଅଭିଚାରାର୍ଥ ଯାଗ—1. Rituals performed for injuring others.
Durishṭa
୨ । ଦୁରିତ; ପାପ—2. Sin.

ଦୁରିଷ୍ଟି—ସଂ. ବି (ଦୁର୍+ଇଷ୍ଟି=ଯାଗ) – ୧ । ଅଶାସ୍ତ୍ରୀୟ ଯାଗ—
Durishṭi 1. Sacrifice not performed according to the Śāstras.
୨ । ଦୁରିଷ୍ଠ (ଦେଖ)—2. Durishṭha (See)

ଦୁରିଷ୍ଠ—ସଂ. ବିଣ (ଦୁର୍+ଅତି ଅର୍ଥରେ ଇଷ୍ଠ)—ଅତି ମନ୍ଦ—
Durishṭha Worst; very bad.

ଦୁରୀ - ଦେ. ବି—୧ । ଦୋକା ( ଦେଖ )
Durī 1. Dokā ( See )
ସ୍ତ୍ରୀ—୨ । ଦୁର୍ଗା ନାମ୍ନୀ ସ୍ତ୍ରୀର ଡାକ ନାମ—
2. A name for calling Durgā.

ଦୁରୀଷଣା—ସଂ. ବି (ଦୁର୍+ଈଷଣା)—୧ । ଅଭିସମ୍ପାତ, ଅଭିଶାପ; ଶାପ—1. Curse; imprecation.
Durīshaṇā
୨ । ଅହିତ କାମନା—2. Wish to harm others

ଦୁରୁକ୍ତ—ସଂ. ବି (ଦୁର୍+ବଚ୍ ଧାତୁ+ଭାବ.ତ)—୧ । ଦୁର୍ବାକ୍ୟ—
Durukta 1. Evil words.
୨ । ଗାଳି—2 Abuse.

ଦୁରୁକ୍ତି- ସଂ. ବି (ଦୁର୍+ବଚ୍ ଧାତୁ+ଭାବ. ତି)—ଦୁରୁକ୍ତ (ଦେଖ)
Durukti Durukta (See)

ଦୁରୁଗମ – ଗ୍ରା (ପଦ୍ୟ) ବିଣ—ଦୁର୍ଗମ ( ଦେଖ )
Durugama Durgama (See)
ମହା ଦୁରୁଗମ ଅଟେ ବୃନ୍ଦ ନରୂପଣ—ପ୍ରାଚୀ ବୃନ୍ଦାବନରୂପଣଗୀତା ।

ଦୁରୁଗା—ଗ୍ରା. ବି –୧ । ଦୁର୍ଗା—
Durugā 1. Goddess Durgā.
୨ । (ସ୍ତ୍ରୀ) ଦୁର୍ଗା ନାମ୍ନୀ ସ୍ତ୍ରୀର ଡାକ ନାମ—
2. A name for calling Durgā.
୩ । ପୁଂ. ଦୁର୍ଗାଦାସ ବା ଦୁର୍ଗାପଦ ବା ଦୁର୍ଗାପ୍ରସାଦ ବ୍ୟକ୍ତିର ଡାକ ନାମ—3. A name for calling persons whose names begin with Durgā.

ଦୁରୁଗୀ—ଗ୍ରା ବି. ସ୍ତ୍ରୀ – ଦୁର୍ଗା ନାମ୍ନୀ ସ୍ତ୍ରୀର ଡାକ ନାମ—
Durugī A name for calling Durgā.

ଦୁରୁଚାର—ସ. ବିଣ. (ବହୁବ୍ରୀହି;ଦୁର୍=ମନ୍ଦ, ଉଚାର=ଉଚାରଣ )—
Duruchchāra ୧ । ଅଶ୍ଳୀଳ—1. Obscene; vulgar.
(ଦୁରୁଚାର୍ଯ୍ୟ—ଅନ୍ୟରୂପ) ୨ । ଦୁର୍ବାକ୍ୟଯୁକ୍ତ—2. Abusive.
ଦୁରୁଚାରିତା } ବି
ଦୁରୁଚ୍ଚାର୍ଯ୍ୟତା }
୩ । ଯାହା କଷ୍ଟରେ ଉଚାରଣ କରଯାଏ—3. Unutterable; difficult to pronounce.

ଦୁରୁଚ୍ଛେଦ—ସ. ବଣ.—(ଦୁର୍+ଉତ୍+ଛିଦ୍ ଧାତୁ+କର୍ମ. ଅ)—
Duruchchheda ଦୁରୁଚ୍ଛେଦ୍ୟ (ଦେଖ)
(ଦୁରୁଚ୍ଛେଦତା—ବି) Duruchchhedya (See)
ସ. ବ. (+ଭାବ. ଅ)—ଦୁର୍ନିବାର (ଦେଖ)
Durnibāra (See)

ଦୁରୁଚ୍ଛେଦ୍ୟ—ସ. ବଣ.—(ଦୁର୍+ଉଚ୍ଛେଦ୍ୟ)—୧। ଯାହାର ସହଜରେ
Duruchchhedya ଉଚ୍ଛେଦ ସାଧନ କରାଯାଇ ନ ପାରେ;
(ଦୁରୁଚ୍ଛେଦ୍ୟତା—ବି) ଯାହା କଷ୍ଟରେ ଅପସାରିତ ବା ଉନ୍ମୂଳିତ
କରାଯାଏ—1. Not easily eradicable; which is difficult to eradicate.
୨। ଦୁରପନେୟ—2. Irremoveable.

ଦୁରୁଜ—ଗ୍ରା. ବି.—(ଆଦରାର୍ଥକ)—ଦୁର୍ଯ୍ୟୋଧନର ଡାକ ନାମ—
Duruja A name for calling Duryodhana.
(ଦୁରୁଜା—ଅନାଦରାର୍ଥକ)

ଦୁରୁଜନ—ଗ୍ରା. (ପଦ୍ୟ) ବି.—ଦୁର୍ଜନ (ଦେଖ)
Durujana Durjana (See)

ଦୁରୁଜୟ—ଗ୍ରା. (ପଦ୍ୟ) ବଣ. —(ସ. ଦୁର୍ଜୟ)—ଦୁର୍ଜୟ (ଦେଖ)
Durujaya Durjaya (See)

ଦୁରୁତ୍ତର—ସ. ବି. (ଦୁର୍+ଉତ୍ତର)—୧। ଅସତ୍ ଉତ୍ତର—
Duruttara 1. Bad answer
୨। ଅନୁପଯୁକ୍ତ ଉତ୍ତର—
2. Improper or unsuitable reply.
ବଣ.—(ଦୁର୍+ଉତ୍+ତୃ ଧାତୁ+ଅ)—୧। ଯାହା ପାର ହେବା କଠିନ; ଦୁସ୍ତର—1. Insurmountable, difficult to pass over.
୨। (ଦୁର୍+ଉତ୍ତର) ଯାହାର ଉତ୍ତର ଦେବା କଠିନ—
2. Difficult to answer.

ଦୁରୁଦଣ୍ଡ—ଗ୍ରା. (ପଦ୍ୟ) ବି. (ସ. ଦୁର୍ଦ୍ଦଣ୍ଡ)—
Durudanda ଦୁର୍ଦ୍ଦଣ୍ଡ (ଦେଖ)
Durddanda (See)

ଦୁରୁଦାହର—ସ. ବଣ. (ଦୁର୍+ଉଦାହର=ଉଦାହରଣ, ବହୁବ୍ରୀହି)—
Durudāhara ୧। ଯାହାର ଉଦାହରଣ ଦେବା କଠିନ—
1. Of which it is difficult to give instance or example.
୨। ଦୁରୁଚ୍ଚାର (ଦେଖ)
2. Duruchchāra (See)

ଦୁରୁଦ୍ବହ—ସ. ବଣ. (ଦୁର୍+ଉତ୍+ବହ ଧାତୁ+କର୍ମ ଅ)—
Durudbaha ୧। ଯାହା ବହନ କରିବା କଷ୍ଟକର—
1. Difficult to carry or sustain.
୨। ଦୁଃସହ; ଅସହ୍ୟ—2. Unbearable.

ଦୁରୁନଏ(ୟ)—ଗ୍ରା. (ପଦ୍ୟ) ବଣ (ସ. ଦୁର୍ଣ୍ଣୟ)—
Durunae(ya) ୧। ବିଷମ; କଠିନ; ଜଟିଳ—
1. Hard; complex; complicated.

ଦୁରୁନଏ କହିଲେ ଭେଦ ମହା ଦୁରୁନଏ। ପ୍ରାଚୀ- ବ୍ରହ୍ମାନନ୍ଦପୂର୍ଣ ଗୀତା।

୨। ଭୟଙ୍କର—2 Fierce.

ଦୁରୁପସଦ—ସ. ବଣ. (ଦୁର୍+ଉପ=ସମୀପ+ସଦ୍ ଧାତୁ=ଗମନ କରିବା+କର୍ମ. ଅ)—
Durupasada
୧। ଦୁର୍ଗମ—1. Inpassable
୨। ଦୁଷ୍ପ୍ରାପ୍ୟ—2. Available with difficulty.
୩। ଦୁଃସହ—3. Unbearable.

ଦୁରୁଭାଗ୍ୟ—ଗ୍ରା. (ପଦ୍ୟ) ବି (ସ. ଦୁର୍ଭାଗ୍ୟ)—ଦୁର୍ଭାଗ୍ୟ (ଦେଖ)
Durubhāgya Durbhāgya (See)

ଦୁରୁଭିକ୍ଷ—ଗ୍ରା. (ପଦ୍ୟ) ବି. (ସ. ଦୁର୍ଭିକ୍ଷ)—ଦୁର୍ଭିକ୍ଷ (ଦେଖ)
Durubhiksha Durbhiksha (See)

ଦୁରୁଷ୍ଟି—ଗ୍ରା. ବି. (ସ. ଦୃଷ୍ଟି)—ଦୃଷ୍ଟି (ଦେଖ)
Durushti Drushti (See)

ଦୁରୁହ—ସ. ବଣ (ଦୁର୍+ଉହ ଧାତୁ=ତର୍କ କରିବା+କର୍ମ. ଅ)—
Durūha ୧। ଦୁର୍ବୋଧ—1. Difficult to understand; abstruse; hard to comprehend.
ଦୁରୁହତା } —ବି
ଦୁରୁହତ୍ୱ }
୨। ଦୁଃସାଧ; କଷ୍ଟସାଧ; କଠିନ—
2. Difficult of accomplishment or attainment.
୩। ଦୁଃସହ—3. Unbearable.
୪। ଦୁରଧିଗମ୍ୟ—4. Inaccessible.

ଦୁରୁହରେ—ଦେ. କ୍ରି ବଣ—ଅତି ଦୁଃଖରେ—
Durūhare With great grief or pain; sorrowfully.

ଦୁର୍ବଳ ସାଳସ ଦେଖି ଗଲ, ଦୁରୁହରେ କନ୍ଥ ପଗ୍ରବଲ।
କବିସୂର୍ଯ୍ୟ- କଣୋଗ୍ରଚନ୍ଦ୍ର ଦ ଗୀତ।

ଦୁରେଇ କୋଳି—ପ୍ରାଦେ. (ଗଡ଼ଜାତ; ସମ୍ବଲପୁର ଓ ସିଂହଭୂମ) ବି—
Durei koli ଏକ ପ୍ରକାର ଗୁଳ୍ମ ଓ ତାହାର ଫଳ—
Opilia Amentacea (Haines).

ଦୁରୋଦର—ସ. ବି. (ବହୁବ୍ରୀହି; ଦୁର୍+ଆ+ଉଦର୍=ବିବାଦ)—
Durodara ୧। ପଶା ଖେଳ—1. The game of dice.
୨। ଦ୍ୟୂତକାରୀ; ଜୁଆରୀ—2. Gamester; gambler.
୩। ଜୁଆ ଖେଳ—3. Gambling.
୪। ପଣ; ବାଜି—4. A stake.
୫। ପଶା ଖେଳାଳି—5. Dice-player.

ଦୁର୍କର୍(ର)—ଦେ. ଅ—ଦୂର୍ (ଦେଖ)
Durkar(ra) Dūr (See)

ଦୁର୍ଗ—ସ. ବି. (ଦୁର୍+ଗମ ଧାତୁ+କର୍ମ. ଅ; ଯହିଁକୁ ଅତି କଷ୍ଟରେ ଗମନ କରାଯାଇ ପାରେ)—
Durga
୧। କିଲ୍ଲା; ଗଡ଼—1. A fort; fortress; stronghold; citadel.
[ଦ୍ର—ମହାଭାରତ ଓ ମନୁଙ୍କ ଅନୁସାରେ ଦୁର୍ଗ ୬ ପ୍ରକାର, ଯଥା—ଧନ୍ୱଦୁର୍ଗ, ମନୁଷ୍ୟଦୁର୍ଗ, ମୃଦ୍ଦୁର୍ଗ ବା ମହୀଦୁର୍ଗ, ଗିରିଦୁର୍ଗ, ବୃକ୍ଷଦୁର୍ଗ ବା ବନଦୁର୍ଗ, ଜଳଦୁର୍ଗ।]

୨ । ବିପଦ; ସଙ୍କଟ—
2. Danger; difficulty; calamity.
ହେ ମାଉ ସାଧ ଏହୁ ମୋର,
ହେଲେ ହରିବ ଘୋର ଦୁର୍ଗ । ଜଗନ୍ନାଥ ଭାଗବତ ।
୩ । ଦୁର୍ଗାଙ୍କଦ୍ୱାରା ନିହତ ଅସୁରବିଶେଷ—
3. Name of a demon killed by Durgā
୪ । ଭବବନ୍ଧ—
4. Worldly misery and entanglements.
୫ । ଦୁଃଖ, ଶୋକ—5. Sorrow; distress
୬ । ନରକ—6 Hell.
୭ । କୁକର୍ମ—7. Evil action
୮ । ବିଘ୍ନ—8. Obstacle
୯ । ଅମଙ୍ଗଳ—9. Misery; misfortune.
୧୦ । ମହାଭୟ—10. Great fear.
୧୧ । ପରାଧୀନତା—11. Bondage.
୧୨ । ପୁନର୍ଜନ୍ମ—12. Rebirth; birth after death.
୧୩ । ଦୁର୍ଗମ ସ୍ଥାନ—13. Impassable place
ଗଣ—୧ । ଦୁର୍ଗମ—1 Impassable; difficult to approach.
ତୋ ମେଘ୍ନ ନଶୀଥରେ ବନଦୁର୍ଗ ପଥରେ ଗୋଗଉରୁ ଥିବ ପଦେ ପଙ୍କସ ।
କବିସୂର୍ଯ୍ୟ, ସଙ୍ଗୀତ ।
୨ । ଅଗମ୍ୟ—2 Inaccessible

**ଦୁର୍ଗତ**—ସଂ. ବିଣ. (ଦୁର୍ + ଗମ୍ ଧାତୁ କର୍ତ୍ତ୍ରି. ତ)—
Durgata ୧ । ବିପଦଗ୍ରସ୍ତ; ଦୁରବସ୍ଥାଗ୍ରସ୍ତ—
(ଦୁର୍ଗତା—ସ୍ତ୍ରୀ) 1. Stricken with calamity; overtaken by danger.
୨ । ଅତି ଦରିଦ୍ର—
2 Very poor; poverty-stricken.
୩ । ଦୁଃଖୀ—3. Suffering; distressed.

**ଦୁର୍ଗତି**—ସଂ. ବି. (ଦୁର୍ + ଗତି; କର୍ମଧା;)—୧ । ଦୁର୍ଦ୍ଦଶା—
Durgati 1. Misfortune.
୨ । ଦୁରବସ୍ଥା—2. Wretched condition.
୩ । କଷ୍ଟ; କ୍ଲେଶ—3. Misery.
୪ । ଦାରିଦ୍ର୍ୟ—4. Poverty; adversity
୫ । ନରକ—5. Hell.
୬ । ପାପ—6. Sin.

**ଦୁର୍ଗତି କ୍ଷୟ**—ସଂ. ବି. (୬ଷ୍ଠୀ ତତ୍; ଦୁର୍ଗତି+କ୍ଷୟ)—ଦୁର୍ଦ୍ଦଶାର ଶେଷ—
Durgati kshaya The end of one's miseries.
(ଦୁର୍ଗତିନାଶ—ଅନ୍ୟରୂପ)

**ଦୁର୍ଗତିନାଶକ**—ସଂ. ବିଣ—ଦୁର୍ଗତି ନାଶନ (ଦେଖ)
Durgati nāśaka Durgati nāśana (See)
(ଦୁର୍ଗତିନାଶିକା—ସ୍ତ୍ରୀ)

**ଦୁର୍ଗତି ନାଶନ**—ସଂ. ବିଣ. (ଦୁର୍ଗତି=ଦୁଃଖ+ନାଶନ=ନାଶକାରୀ)—
Durgati nāśana ୧ । ଯେ ଦୁର୍ଗତି ବା ପାପକୁ ନାଶକରେ—
(ଦୁର୍ଗତିନାଶନୀ—ସ୍ତ୍ରୀ) 1. Saviour; one who eradicate sin
୨ । ଯେ ଦୁର୍ଦ୍ଦଶା ଲୋପ କରେ—
2. One who destroys adversity
୩ । ଯେ ଦୁର୍ଦ୍ଦଶାକୁ ନିବାରଣ କରେ—
3. Preventing evil.
ସଂ ବି—ଦୁର୍ଗତିର ବିନାଶ କରଣ—
Eradication of one's miseries.

**ଦୁର୍ଗତି ନିବାରକ**—ସଂ. ବିଣ—ଦୁର୍ଗତିନାଶନ (ଦେଖ)
Durgati nibāraka Durgatināśana (See)
(ଦୁର୍ଗତି ନିବାରିକା—ସ୍ତ୍ରୀ)

**ଦୁର୍ଗତି ନିବାରଣ**—ସଂ. ବିଣ ଓ ବି—ଦୁର୍ଗତିନାଶନ (ଦେଖ)
Durgati nibāraṇa Durgati nāśana (See)
(ଦୁର୍ଗତିନିବାରିଣୀ—ସ୍ତ୍ରୀ)

**ଦୁର୍ଗତି ବାରଣ**—ସଂ. ବିଣ. ( ଦୁର୍ଗତି + ବାରଣ = ନିବାରକ )—
Durgati bāraṇa ଦୁର୍ଗତି ନାଶନ ( ଦେଖ )
Durgati nāśana ( See )

**ଦୁର୍ଗତି ହର**—ସଂ. ବିଣ—ଦୁର୍ଗତି ନାଶନ ( ଦେଖ )
Durgati hara Durgati nāśana ( See )
( ଦୁର୍ଗତିହରା—ସ୍ତ୍ରୀ )

**ଦୁର୍ଗତି ହରଣ**—ସଂ. ବିଣ ( ଦୁର୍ଗତି + ହରଣ = ବିନାଶନ )—
Durgati haraṇa ଦୁର୍ଗତି ନାଶନ ( ଦେଖ )
Durgati nāśana ( See )

**ଦୁର୍ଗନ୍ଧ**—ସଂ. ବି. ( କର୍ମଧା; ଦୁର୍ + ଗନ୍ଧ )—
Durgandha ୧ । ବଦ୍‌ବୋଇ; ମନ୍ଦ ଗନ୍ଧ; ପୂତିଗନ୍ଧ—
2. Offensive smell; bad odour.
୨ । ସୌବର୍ଚ୍ଚ ଲବଣ ( ପ୍ରକୃତିବାଦ )—
2. A kind of salt.
୩ । କଳାଲୁଣ ( ହି. ଶବ୍ଦସାଗର )—3. Black salt.
୪ । ଆମ୍ବଗଛ ( ହି ଶବ୍ଦସାଗର )—4. Mango tree.
୫ । ପିଆଜ ( ହି. ଶବ୍ଦସାଗର )—5. Onion.
( ଦୁର୍ଗନ୍ଧତା—ବି ) ବିଣ. ( ବହୁବ୍ରୀହି )—ଦୁର୍ଗନ୍ଧମୟ ( ଦେଖ )
Durgandhamaya ( See )

**ଦୁର୍ଗନ୍ଧମୟ**—ସଂ. ବିଣ ( ଦୁର୍ଗନ୍ଧ + ଯୁକ୍ତାର୍ଥେ ମୟ )—୧ । ମନ୍ଦଗନ୍ଧଯୁକ୍ତ;
Durgandhamaya ଯାହା ଗନ୍ଧାଏ—1. Bad smelling; of offensive odour.
( ଦୁର୍ଗନ୍ଧଯୁକ୍ତ—ଅନ୍ୟରୂପ )
୨ । ପୂତିଗନ୍ଧଯୁକ୍ତ—2. Foetid; stinking.

**ଦୁର୍ଗନ୍ଧି**—ସଂ. ବିଣ. ( ବହୁବ୍ରୀହି. ଦୁର୍ + ଗନ୍ଧ + ଇ )—ମନ୍ଦଗନ୍ଧଯୁକ୍ତ—
Durgandhi Of offensive smell; foetid.
ଦେ. ବି. ( ସଂ. ଦୁର୍ଗନ୍ଧ )—୧ । ମନ୍ଦଗନ୍ଧ—1. Bad odour.
୨ । ବାତକର୍ମ; ଅପାନବାୟୁ—2. Breaking of wind; passing of offensive wind through the anus.

**ଦୁର୍ଗନ୍ଧିଆ**—ଦେ ବିଣ. ( ସଂ. ଦୁର୍ଗନ୍ଧି )—୧ । ଦୁର୍ଗନ୍ଧମୟ ( ଦେଖ )
Durgandhiā 1. Durgandhamaya ( See )
୨ । ଯେ ବହୁତ ପାଦ୍ରେ; ପାଦୁରା ( ଲୋକ )—
2. ( a person ) Habituated to passing offensive wind through the anus.

**ଦୁର୍ଗନ୍ଧିତ**— ସ. ବଣ. ( ଦୁର୍ଗନ୍ଧ+ଯୁକ୍ତାର୍ଥରେ ଇତ )—
Durgandhita ଦୁର୍ଗନ୍ଧମୟ ( ଦେଖ )
Durgandhamaya ( See )

**ଦୁର୍ଗନ୍ଧୀ**—ସ ବଣ. ( ଦୁର୍ଗନ୍ଧ+ଅଛି ଅର୍ଥରେ ଇନ୍; ୧ମା ୧ବ ) —
Durgandhi ଦୁର୍ଗନ୍ଧମୟ ( ଦେଖ )—
Durgandhamaya ( See )

**ଦୁର୍ଗପତି**—ସ. ବି—ଦୁର୍ଗ ରକ୍ଷକ ( ଦେଖ )
Durga.pati Durga rakshaka ( See )
( ଦୁର୍ଗପାଳ, ଦୁର୍ଗାଧ୍ୟକ୍ଷ—ଅନ୍ୟରୂପ )

**ଦୁର୍ଗମ**—ସ. ବଣ. ( ଦୁର୍+ଗମ୍ ଧାତୁ+କର୍ମ. ଅ )—
Durgama ୧ । ଯହିଁରେ ଯିବା ଆସିବା କଷ୍ଟକର—
( ଦୁର୍ଗମତା—ବି ) 1. Impassable.
୨ । ଯେଉଁଠାକୁ ଯିବା ଆସିବା ଅତି କଷ୍ଟକର—
2. Inaccessible; difficult of access.
୩ । ଦୁର୍ଭେଦ୍ୟ—3. Impenetrable
୪ । ଦୁର୍ଲଭ—4. Difficult to get; rare.
୫ । ଦୁର୍ଜ୍ଞେୟ—5. Difficult to understand.
ସ. ବି—୧ । ଅସୁରବିଶେଷ ( ଜ୍ଞାନେନ୍ଦ୍ର )—
1. Name of a demon.
୨ । ଦୁର୍ଗ; ଗଡ଼; କିଲ୍ଲା ( ହି. ଶବ୍ଦସାଗର )—2. Fort.
୩ । ବିଷ୍ଣୁ ( ହି. ଶବ୍ଦସାଗର )—
3 A name of Bishnu.
୪ । ବନ ( ହି. ଶବ୍ଦସାଗର )—4. Forest.
୫ । ସଙ୍କଟମୟ ସ୍ଥାନ ( ହି. ଶବ୍ଦସାଗର )—
5. A place of danger.
ଦେ. ବିଣ—୧ । ଯେଉଁ ଅବସ୍ଥାରେ ଗମନାଗମନ କରିବା ବା ଚଳାଚଳ ହେବା କଷ୍ଟକର—1. (condition ) In which it is difficult to walk or come out.
୨ । ଅତିରେକ; ଅତ୍ୟଧିକ—2. Excessive
( ଯଥା—ଆଜି ଦୁର୍ଗମ ବର୍ଷା ହେଉଅଛି । )
ବି—ବର୍ଷା ଓ ଝଡ଼ମୟ ପାଗ—
Rainy and windy weather.

**ଦୁର୍ଗମଣୀୟ**—ସ. ବିଣ—ଦୁର୍ଗମ ( ଦେଖ )
Durgamaniya Durgama ( See )
( ଦୁର୍ଗମଣୀୟତା—ବି )

**ଦୁର୍ଗମ୍ୟ**—ସ. ବିଣ—ଦୁର୍ଗମ ( ଦେଖ )
Durgamya Durgama ( See )
( ଦୁର୍ଗମ୍ୟତା—ବି )

**ଦୁର୍ଗ ରକ୍ଷକ**—ସ. ବି (ଷଷ୍ଠୀ ତତ୍; ଦୁର୍ଗ+ରକ୍ଷକ)—ଯେଉଁ ସେନାପତି ଦୁର୍ଗ
Durga.rakshaka ରକ୍ଷା କରନ୍ତି; କିଲ୍ଲାଦାର୍—1. The
( ଦୁର୍ଗରକ୍ଷୀ—ଅନ୍ୟରୂପ ) governor or keeper of a fort.
୨ । ଦୁର୍ଗର ଜଗୁଆଳ ସେନା—
2. The troop or sentries keeping watch in a fort.
ସ. ବିଣ—ଦୁର୍ଗର ଜଗୁଆଳ—Watching over a fort.

**ଦୁର୍ଗ ସଞ୍ଚର**—ସ. ବି. ( ବହୁବ୍ରୀହି; ଦୁର୍ଗ=ଦୁର୍ଗମ ସ୍ଥାନ+ସଞ୍ଚର=
Durga.sanchara ଗମନ) ମନୁଷ୍ୟ ଯାହାଦ୍ୱାରା ଦୁର୍ଗମ ସ୍ଥାନକୁ ଯାଇ ପାରେ —
୧ । ସେତୁ, ଶଙ୍ଖ; ପୋଲ—1. A bridge.
୨ । ଗିରିସଙ୍କଟ—
2. A narrow pass between two hills.

**ଦୁର୍ଗା**— ସ. ବି. ସ୍ତ୍ରୀ. ( ଦୁର୍+ଗମ୍ ଧାତୁ=ଜାଣିବା+କର୍ମ ଅ+ସ୍ତ୍ରୀ.
Durgā ଆ, ଯାହାଙ୍କୁ ଜାଣିବା କଠିନ ବା ଯେ ଦୁର୍ଗ ବା ସଂକଟରୁ ଉଦ୍ଧାର କରନ୍ତି; କିମ୍ବା ଯେ ଦୁର୍ଗନାମକ ଅସୁରକୁ ବଧ କରିଥିଲେ )—୧ । ଭଗବତୀ; ମହାଦେବଙ୍କ ସ୍ତ୍ରୀ, ପରମା ପ୍ରକୃତି; ଆଦ୍ୟା ଶକ୍ତି—1 Goddess Durgā; the wife of Mahādeba.

[ ଦ୍ର—ମାର୍କଣ୍ଡେୟ ପୁରାଣାନ୍ତର୍ଗତ ଦେବୀମାହାତ୍ମ୍ୟ ବା ଚଣ୍ଡୀ ପୁରାଣରେ ଦୁର୍ଗାଙ୍କର ଉତ୍ପତ୍ତି ଓ ଅସୁର ବିନାଶାର୍ଥ ଭିନ୍ନ ଭିନ୍ନ ଅବତାରର ବିଷୟ ବର୍ଣ୍ଣିତ ହୋଇଅଛି । ସେ ବିଷ୍ଣୁ, ବ୍ରହ୍ମା ଓ ଶିବ ଆଦି ଦେବତାମାନଙ୍କ ତେଜରୁ ସମ୍ଭୂତା ଏବଂ ବିଷ୍ଣୁଙ୍କର ମାୟା ଅଟନ୍ତି । ଏହି ବିଷ୍ଣୁମାୟା ସଂସାରକୁ ଚଳାଉଅଛନ୍ତି ।

ଚଣ୍ଡୀ ପୁରାଣ ଏକାଦଶ ଅଧ୍ୟାୟରେ ଦେବୀଙ୍କର ନିଜ ଉକ୍ତି ଲେଖା ଅଛି ଯେ ପୃଥିବୀରେ ଶତ ବର୍ଷ ଅନାବୃଷ୍ଟି ହେବା ସମୟରେ ଆମ୍ଭେ ଜନ୍ମ ଗ୍ରହଣ କରି ଶତାକ୍ଷୀ ନାମ ଧାରଣ କରିବୁଁ ଓ ନିଜ ଦେହ-ସମ୍ଭୂତ ପ୍ରାଣଧାରକ ଶାକ ଉତ୍ପାଦନ କରି ସମୁଦାୟ ଲୋକଙ୍କୁ ଭରଣ କରିବୁଁ ଓ ଦୁର୍ଗ ନାମକ ମହାସୁରକୁ ବଧ କରି ଆମ୍ଭେ ଦୁର୍ଗା ଦେବୀ ନାମରେ ବିଖ୍ୟାତା ହେବୁଁ । ଚଣ୍ଡୀ ୧୧।୪୬-୫୦; ଦୁର୍ଗାଙ୍କର ଭିନ୍ନ ଭିନ୍ନ ରୂପ ଯଥା—

ଧୂମାବତୀ, ବଗଳା, ଅନ୍ନପୂର୍ଣ୍ଣା, କପାଳେଶ୍ୱରୀ,ପାର୍ବତୀ, କାଳୀ, ଚଣ୍ଡୀ, କାଳିକା, କରାଳୀ, କମଳା, ଭଗବତୀ, ଜଗଦ୍ଧାତ୍ରୀ, ଶ୍ୟାମା ।

ଦୁର୍ଗାବତାରରେ ଏ ମହିଷାସୁର, ରକ୍ତବୀଜ, ଶୁମ୍ଭ, ନିଶୁମ୍ଭ ଆଦି ଅସୁରମାନଙ୍କୁ ବଧ କରିଥିଲେ । ପ୍ରଥମେ ସୁରଥ ରାଜା ଓ ପରେ ରାମଚନ୍ଦ୍ର ପୃଥିବୀରେ ଦୁର୍ଗାଙ୍କର ପୂଜା କରିଥିଲେ । ]

[ ଦୁର୍ଗାଙ୍କର ଅନ୍ୟ ନାମ—ଆଦ୍ୟାଶକ୍ତି, ଉମା, କାତ୍ୟାୟନୀ, ଗୌରୀ, କାଳୀ, ହୈମବତୀ, ଈଶ୍ୱରୀ, ଶିବା, ଭବାନୀ, ରୁଦ୍ରାଣୀ, ଶର୍ବାଣୀ, କଲ୍ୟାଣୀ, ଅପର୍ଣ୍ଣା, ପାର୍ବତୀ, ମୃଡ଼ାନୀ, ଚଣ୍ଡିକା, ଅମ୍ବିକା, ଚଣ୍ଡୀ, ଶାରଦା, ଗିରିଜା, ମଙ୍ଗଳା, ନାରାୟଣୀ, ମହାମାୟା, ବୈଷ୍ଣବୀ, ଗିରିଜା, ଗିରିକନ୍ୟକା, ହୈମୀ, କୋଟ୍ଟବୀ, ଷଷ୍ଠୀ, ମାଧବୀ, ଜୟନ୍ତୀ, ଭର୍ଗଶିଖା, ଭୀ, ସତୀ, ଭ୍ରାମରୀ, ଦକ୍ଷକନ୍ୟା, ମହିଷମର୍ଦ୍ଦିନୀ, ହେରମ୍ବଜନନୀ, ସାବିତ୍ରୀ, କୃଷ୍ଣପିଙ୍ଗଳା, ଶୂଳଧରା, ଭଗବତୀ, ଈଶାନୀ, ସନାତନୀ, ମହାକାଳୀ, ଶିବାନୀ, ଚାମୁଣ୍ଡା, ବିଧାତ୍ରୀ, ଆନନ୍ଦା, ମହାମାୟା, ଭୌମୀ, କୃଷ୍ଣା, ସର୍ବାଣୀ, ବାଣୀ, ଫଲ୍ଗୁନୀ, ମାତୃକା, ତାରା, କାଳିକା, ଛିନ୍ନମସ୍ତା, ଭୈରବୀ, ଭୁବନେଶ୍ୱରୀ, ଭୂଧରା, ମହାଲକ୍ଷ୍ମୀ, ବାଗୀଶ୍ୱରୀ, ହ୍ରୀଂଯୁଗା, ଜ୍ୱାଳାମୁଖୀ, ବଗଳାମୁଖୀ, ଅନ୍ନପୂର୍ଣ୍ଣା, ଅନ୍ନଦା, ବିଶାଳାକ୍ଷୀ, ସୁଭଗା, ଧବଳା, ସୋମା, ପ୍ରେମା, କୁଟେଶ୍ୱରୀ, କାର୍ତ୍ତିକା, ଭୂମୁଣ୍ଡା, କାମରୂପା, କୁମ୍ଭିଣୀ, ମୋହିନୀ, ଶାନ୍ତା,

ବେଦମାତା, ତ୍ରିପୁରସୁନ୍ଦରୀ, ଭାମିନୀ, ଚଣ୍ଡୀ, ଅନନ୍ତା ଇତ୍ୟାଦି ହ୍ଣ. ଶବ୍ଦସାଗର । ]

୨ । ନାଲୀ; ନାଲ ଗୁଳ୍ମ ( ହ୍ଣ. ଶବ୍ଦସାଗର )—
2 The Indigo plant.

୩ । ଶ୍ୟାମା ପକ୍ଷୀ ( ହ୍ଣ. ଶବ୍ଦସାଗର ) ( ଦେଖ )
3. Śyāmā bird ( See )

୪ । ଅପରାଜିତା ହ୍ଣ. ଶବ୍ଦସାଗର ( ଦେଖ )
4. Aparājitā ( See )

୫ । ନଅ ବର୍ଷ ବୟସ୍କା କନ୍ୟା ( ହ୍ଣ. ଶବ୍ଦସାଗର )—
5. A girl in her ninth year

୬ । ରାଗିଣୀବିଶେଷ ( ହ୍ଣ. ଶବ୍ଦସାଗର )—
6. Name of a musical tune.

ଦେ. ବି—ସ୍ତ୍ରୀ ଲୋକଙ୍କ ଦିଆଯିବା ନାମ—
A name given to females

[ ଦ୍ର—ପୁରୁଷଙ୍କ ଦୁର୍ଗା ପ୍ରସାଦ, ଦୁର୍ଗା ପ୍ରସନ୍ନ, ଦୁର୍ଗା ଦାସ, ଦୁର୍ଗା ପଦ, ଦୁର୍ଗା ଚରଣ ଆଦି ନାମ ଦିଆଯାଏ ଓ ସ୍ତ୍ରୀମାନଙ୍କୁ ଦୁର୍ଗା, ଦୁର୍ଗାବତୀ, ଦୁର୍ଗେଶ ନନ୍ଦିନୀ ଆଦି ନାମ ଦିଆଯାଏ ।

ଏହି ନାମଧାରୀ ପୁରୁଷଙ୍କୁ, ଦୁରୁଗା, ଦୁରୁସୁ, ଦୁର୍ଗା ଓ ସ୍ତ୍ରୀଙ୍କୁ ଦୁରୁଗା, ଦୁରୁଗୀ, ଦୁର୍ଗୀ, ଦୁଖି ବୋଲି ଡକାଯାଏ । ]

ଦୁର୍ଗାଧ୍ୟକ୍ଷ—ସ.ବି— (୬ଷ୍ଠୀ ତତ୍; ଦୁର୍ଗ+ଅଧ୍ୟକ୍ଷ)—୧ । ଦୁର୍ଗରକ୍ଷକ (ଦେଖ)
Durgādhyaksha 1. Durga rakshaka ( See )
(ଦୁର୍ଗାଧିପ, ଦୁର୍ଗାଧୀଶ—ଅନ୍ୟରୂପ) ୨ । ( ଦୁର୍ଗାଙ୍କ ସ୍ୱାମୀ ) ଶିବ; ମହାଦେବ—2. A name of Śiba.

ଦୁର୍ଗା ନବମୀ—ସ. ବି—କାର୍ତ୍ତିକ ଶୁକ୍ଳ ନବମୀ; ଅଁଳା ନବମୀ—
Durgā nabamī The ninth day of the bright fortnight of the month of Kārttika.
[ ଦ୍ର—ଏ ଦିନ ଜଗଦ୍ଧାତ୍ରୀ ପୂଜା ହୁଏ । ]

ଦୁର୍ଗା ପୂଜା—ସ. ବି—୧ । ଶାରଦୀୟ ଦୁର୍ଗୋତ୍ସବ—
Durgā pūjā 1. The Durgāpūjā festival in the month of Āświna

[ ଦ୍ର—ଏହା ଆଶ୍ୱିନ କୃଷ୍ଣପକ୍ଷ ଅଷ୍ଟମୀଠାରୁ ଶୁକ୍ଳପକ୍ଷ ନବମୀ ପର୍ଯ୍ୟନ୍ତ କରାଯିବା ଉତ୍ସବ । ଏହାକୁ ଶାରଦୀୟ ଦୁର୍ଗାପୂଜା ବୋଲାଯାଏ । ଆଶ୍ୱିନ ଶୁକ୍ଳ ପ୍ରତିପଦ ଦିନ ନବଦିନ ପୂଜା ଆରମ୍ଭ ହୁଏ ଏବଂ ଆଶ୍ୱିନ ଶୁକ୍ଳ ଚତୁର୍ଥୀ ଦିନ ପଞ୍ଚାହ ପୂଜା ଆରମ୍ଭ ହୁଏ । ଆଶ୍ୱିନ ଶୁକ୍ଳ ସପ୍ତମୀ ଦିନ ମୃଣ୍ମୟୀ ଓ ଘଟ ପ୍ରତିମା ସ୍ଥାପିତ ହୁଏ । ଅଷ୍ଟମୀ ଦିନ ମହାଷ୍ଟମୀ ପୂଜା ଓ ବଳିଦାନ କରାଯାଏ । ନବମୀ ଦିନ ପୂଜା ଓ ବଳିଦାନ କରାଯାଏ । ଦଶମୀଦିନ (ବିଜୟା ଦଶମୀ) ପ୍ରତିମା ଓ ଘଟ ବିସର୍ଜନକରାଯାଏ । ସାଧାରଣତଃ ସପ୍ତମୀଠାରୁ ଦଶମୀ ପର୍ଯ୍ୟନ୍ତ ପୂଜାର ଖୁବ୍ ଧୂମ୍‌ଧାମ୍ ଲାଗେ । ଏହି ସମୟରେ ଆମ ଦେଶରେ ସ୍କୁଲ ଓ କଚେରୀ ପ୍ରଭୃତି ବନ୍ଦ ହୁଏ । ]

୨ । ବାସନ୍ତିକ ଦୁର୍ଗୋତ୍ସବ—2. The Durgāpūjā festival performed in the spring season ( viz. in the month of Chaitra ).

[ ଦ୍ର—ଚୈତ୍ର ଶୁକ୍ଳ ପ୍ରତିପଦଠାରୁ ବାସନ୍ତିକ ଦଶମୀ ପର୍ଯ୍ୟନ୍ତ ନବ ଦିନ ପୂଜା ହୁଏ । ଏହାକୁ ବାସନ୍ତିକ ଦୁର୍ଗୋତ୍ସବ ବୋଲାଯାଏ । ]

ଦୁର୍ଗା ପୂଜା ଛୁଟି—ଦେ. ବି—ଦୁର୍ଗା ପୂଜା ଉପଲକ୍ଷରେ ସ୍କୁଲ କଚେରୀ
Durgā pūjā chhuṭi ଆଦିର କାର୍ଯ୍ୟ ବନ୍ଦ ହେବା; ପୂଜାଛୁଟି—
The Pūjā holidays; the Puja vacation ( in courts and schools).

ଦୁର୍ଗାଷ୍ଟମୀ—ସ. ବି—ମହାଷ୍ଟମୀ; ଆଶ୍ୱିନ ଶୁକ୍ଳ ଅଷ୍ଟମୀ—
Durgāshṭamī The eighth day of the bright fortnight of Aświna.
[ ଦ୍ର—ଏ ଦିନ ଦୁର୍ଗାଙ୍କ ନିକଟରେ ଛାଗ, ମହିଷ ଆଦି ବଳି ଦିଆଯାଏ । ]

ଦୁର୍ଗାହ୍ୟ—ସ. ବିଣ. (ଦୁର୍+ଗାହ୍ ଧାତୁ+ ୭ମୀ ଯ)—
Durgāhya ଯହିଁରେ ସ୍ନାନ କରିବା କଠିନ—
(ଦୁର୍ଗାହ୍ୟା—ସ୍ତ୍ରୀ) Difficult to bathe in.
(ଦୁର୍ଗାହ୍ୟତା—ବି)

ଦୁର୍ଗୁଣ—ସ. ବି (କର୍ମଧା; ଦୁର୍+ଗୁଣ)—ମନ୍ଦଗୁଣ—
Durguṇa Bad quality.
ଏହାଠାରେ ଘର କରିଅଛି ଦୁର୍ଗୁଣ । କୃଷ୍ଣଦାସ. ମହାଭାରତ ଆଦି ।

ଦେ. ବି.—୧ । ସାମାନ୍ୟ କଥାରେ ଅପମାନ—
1 Taking of offence at slight things.
୨ । ଅବଗୁଣ; ଅନିଷ୍ଟ—2. Injury.

ଦୁର୍ଗୁଣ ବିଚାରିବା—ଦେ. କ୍ରି.—୧ । ଅପମାନ କରିବା—
Durguṇa bichāribā 1. To take offence.
(ଦୁର୍ଗୁଣ ବୁଝିବା, ଦୁର୍ଗୁଣନେବା—ଅନ୍ୟରୂପ) ୨ । ଭଲ କଥାକୁ ମନ୍ଦ ବୁଝିବା—2. To misunderstand.

ଦୁର୍ଗୁଣିଆ(ଆଁ)—ଦେ. ବିଣ. ପୁଂ ଓ ସ୍ତ୍ରୀ—୧ । ମନ୍ଦଗୁଣଯୁକ୍ତ—
Durguṇiā(āṅ) 1. Having bad qualities.
[ଦୁର୍ଗୁଣେଇ (ଈ)—ସ୍ତ୍ରୀ] ୨ । ଯେଉଁ ଲୋକ ସାମାନ୍ୟ କଥାରେ ଅପମାନ କରେ; ଅବଗୁଣିଆ—2. Prone to take offence at slight things.

୩ । ଯେ ଭଲ କଥାକୁ ମନ୍ଦ ବୁଝେ—
3. Prone to misunderstand things.

୪ । ଯାହା ଅନିଷ୍ଟ ଘଟାଏ; ଅନିଷ୍ଟକର—
4. Injurious.

୫ । ଯାହାକୁ ଦୁଇଗୁଣ କରା ଯାଇଛି—5. Doubled.

ଦୁର୍ଗେଶ—ସ. ବି—୧ । (ଦୁର୍ଗ+ଈଶ) —ଦୁର୍ଗରକ୍ଷକ (ଦେଖ)
Durgeśa 1 Durgarakshaka (See)
୨ । (ଦୁର୍ଗା+ଈଶ) ମହାଦେବ—2. Śiba.

ଦୁର୍ଗେଶ ନନ୍ଦିନୀ—ଦେ. ବି—ବଙ୍କିମଚନ୍ଦ୍ରଙ୍କ କୃତ ବଙ୍ଗଳା ଉପନ୍ୟାସର
Durgeśa nandinī ନାୟିକା—Name of the heroine in one of the Bankim Babu's Bengalee novels.

[ ଦ୍ର—ଏହା ଇଂରାଜ କବି ସାର୍ ୱାଲ୍ଟରସ୍କଟ୍‌ଙ୍କ ଲେଡ୍ଡି ଅଫ୍ ଦି ଲେକ୍ (Sir Walter Scott's Lady of the Lake)ର ଛାୟାରେ ରଚିତ । ]

ଦୁର୍ଗୋଚ୍ଛବ—ଦେ. ବି. (ସ. ଦୁର୍ଗୋତ୍ସବ)—ଦୁର୍ଗାପୂଜା (ଦେଖ)
Durgochchhaba Durgāpūjā (See)

**ଦୁର୍ଗୋତ୍ସବ**—ସଂ. ବି—ଦୁର୍ଗାପୂଜା (ଦେଖ)
Durgotsaba Durgāpūjā (See)

**ଦୁର୍ଗୋତ୍ସବ ଚନ୍ଦ୍ରିକା**—ଦେ. ବି—ଓଡ଼ିଶାର ରାଜା ରାମଚନ୍ଦ୍ରଦେବଙ୍କ କୃତ
Durgotsaba chandrikā ସ୍ମୃତି ଶାସ୍ତ୍ରବିଶେଷ (ଜଗବନ୍ଧୁ ପ୍ରାଚୀନ ପୁସ୍ତକ)—Name of a code of Hindu Law by Rāmchandra Deba, a king of ancient Orissa.

**ଦୁର୍ଗ୍ରହ**—ସଂ ବି—୧ । (କର୍ମଧା, ଦୁର୍=ମନ୍ଦ+ଗ୍ରହ)—
Durgraha କୁଗ୍ରହ; ମନ୍ଦଗ୍ରହ—1. Evil stars.
୨ । (ଦୁର୍+ଗ୍ରହ୍ ଧାତୁ+କର୍ମ ଅ) ଅପାମାର୍ଗ (ଦେଖ)
2. Apāmārga (See)
ବିଣ. (ଦୁର୍+ଗ୍ରହ୍ ଧାତୁ+କର୍ମ. ଅ)—
(ଦୁର୍ଗ୍ରହା—ସ୍ତ୍ରୀ) ୧ । ଯାହା ଅତି କଷ୍ଟରେ ଗ୍ରହଣ କରାଯାଇ ପାରେ—
(ଦୁର୍ଗ୍ରହତା—ବି) 1. Not easy to be seized; which can be taken with difficulty.
୨ । ଦୁର୍ଜ୍ଞେୟ; ଦୁର୍ବୋଧ—2. Difficult to understand; incomprehensible,
୩ । ଦୁରଧିଗମ୍ୟ—3. Difficult of attainment.

**ଦୁର୍ଗ୍ରହଣୀୟ**—ସଂ ବିଣ (ଦୁର୍+ଗ୍ରହ୍ ଧାତୁ+କର୍ମ ଅନୀୟ)—
Durgrahaṇiya ଦୁର୍ଗ୍ରହ (ଦେଖ)
(ଦୁର୍ଗ୍ରହଣୀୟା—ସ୍ତ୍ରୀ) Durgraha (See)
(ଦୁର୍ଗ୍ରହଣୀୟତା—ବି)

**ଦୁର୍ଗ୍ରାହ୍ୟ**—ସଂ. ବିଣ. (ଦୁର୍+ଗ୍ରହ୍ ଧାତୁ+କର୍ମ. ଯ)—
Durgrāhya ଦୁର୍ଗ୍ରହ (ଦେଖ)
(ଦୁର୍ଗ୍ରାହ୍ୟା—ସ୍ତ୍ରୀ) Durgraha (See)
(ଦୁର୍ଗ୍ରାହ୍ୟତା—ବି)

**ଦୁର୍ଘଟ**—ସଂ. ବିଣ. (ଦୁର୍+ଘଟ୍ ଧାତୁ+କର୍ମ. ଅ)—
Durghaṭa ୧ । ଯାହା ସହଜରେ ଘଟେ ନାହିଁ—
1. Impractical; difficult to be brought about.
୨ । କଠିନ; ଦୁଃସାଧ୍ୟ; କଷ୍ଟସାଧ୍ୟ—2. Hard to accomplish; difficult to accomplish.
୩ । ଅସମ୍ଭବ—3. Impossible.
୪ । ଅସାଧ୍ୟ—4. Impracticable.
ପାପୀ ଲୋକ ତୀର୍ଥକୁ ଯିବାର ଦୁର୍ଘଟ । କୃଷ୍ଣସିଂହ. ମହାଭାରତ ବନ ।
ଦେ. ବିଣ—୧ । ଦୁଷ୍ପ୍ରାପ୍ୟ—1. Not easily available.
ଅହେ ସାଧୁ ତୁମ୍ଭେ ତ ଧର୍ମଅସ୍ଥା ଅଃ
କେଉଁ ଅର୍ଥ ତୁମ୍ଭକୁ ହୋଇବ ଦୁର୍ଘଟ । କୃଷ୍ଣସିଂହ. ମହାଭାରତ ବନ ।
୨ । ନିଅଣ୍ଟ; ଅନଟନ—3. Deficient; wanting.
ଦେ. ବି—ଅଭାବ—Want.

**ଦୁର୍ଘଟଣା**—ସଂ. ବି. (କର୍ମଧା; ଦୁର୍+ଘଟନା)—୧ । ଅଶୁଭ ଘଟନା—
Durghaṭanā 1. Unhappy event.
୨ । ବିପଦ୍—2. Calamity.
୩ । ଦୁର୍ଭାଗ୍ୟ—3. Misfortune.
୪ । ବିପତ୍ପାତ; ଅକସ୍ମାତ୍ ଘଟିବା ବିପଦ—
4. Accident; mishap
୫ । ମହାବିଘ୍ନ—
5. Impediment; sudden obstacle.

**ଦୁର୍ଘୋଷ**—ସଂ. ବି. (କର୍ମଧା; ଦୁର୍+ଘୋଷ)—
Durghosha ୧ । କୁତ୍ସିତ ବା ଅତିକଟୁ ଶବ୍ଦ; କର୍କଶ ରବ—
1. A disagreeable sound; harsh sound.
୨ । ଗର୍ଜନ—2. Roar.
୩ । (ବହୁବ୍ରୀହି) ଭାଲୁ—3. A bear.
ବିଣ. (ବହୁବ୍ରୀହି)—୧ । କର୍କଶ ରବ ବିଶିଷ୍ଟ—
1. Having a jarring or harsh sound; harsh sounding; uttering a harsh cry.
୨ । ଉଚ୍ଚ ଗର୍ଜନକାରୀ—2. Roaring; bellowing.

**ଦୁର୍ଘୋଷଣା**—ସଂ. ବି. (କର୍ମଧା; ଦୁର୍+ଘୋଷଣା)—ଦୁର୍ନାମ; ଅପବାଦ—
Durghoshaṇā Slander; infamy; evil rumour.

**ଦୁର୍ଜ(ର୍ଜ୍ଜ)ନ**—ସଂ. ବି. (କର୍ମଧା; ଦୁର୍+ଜନ)—୧ । ଦୁଷ୍ଟ ବ୍ୟକ୍ତି—
Durja(rjja)na 1. A wicked person; a vile person; a scoundrel
୨ । ଶଠ ବ୍ୟକ୍ତି—1. A cheat.
ବିଣ—୧ । ଖଳ—1. Wicked; wanton.
୨ । ନୃଶଂସ; କ୍ରୂର—2. Cruel.
୩ । ଅତି ମନ୍ଦ—3. Vile; very bad.

**ଦୁର୍ଜ(ର୍ଜ୍ଜ)ନତା**—ସଂ. ବି. (ଦୁର୍ଜନ+ଭାବ. ତା)—୧ । ଦୁଷ୍ଟତା—
Durja (rjja)natā 1. Wickedness.
(ଦୁର୍ଜନତ୍ୱ—ଅନ୍ୟରୂପ) ୨ । ଖଳତା—2. Vileness.
୩ । ନିଷ୍ଠୁରତା—3. Cruelty

**ଦୁର୍ଜ(ର୍ଜ୍ଜ)ୟ**—ସଂ. ବିଣ. (ଦୁର୍+ଜି ଧାତୁ=ଜୟ କରିବା+କର୍ମ ଅ)—
Durja (rjja)ya ୧ । ଯାହାକୁ ଅତି କଷ୍ଟରେ ଜୟ କରାଯାଇ ପାରେ—1. Hard to conquer; difficult to be vanquished or conquered.
୨ । ଦୁର୍ଲଂଘ୍ୟ—2 Insuperable
୩ । ଅଜେୟ—3. Invincible.

**ଦୁର୍ଜ(ର୍ଜ୍ଜ)ୟ ମାନ**—ସଂ ବି.—ଯେଉଁ ଅଭିମାନକୁ ସହଜରେ ଶାନ୍ତ କରାଯାଇ ନ ପାରେ—Oversensitiveness; sullenness which it is very difficult to propitiate.
Durja(rjja)ya māna
(ଯଥା—ଶ୍ରୀକୃଷ୍ଣ ରାଧିକାଙ୍କର ଦୁର୍ଜ୍ଜୟ ମାନ ଭାଙ୍ଗିବାକୁ ବହୁ ଚେଷ୍ଟା କରିଥିଲେ ।)

**ଦୁର୍ଜା(ର୍ଜ୍ଜା)ତ**—ସଂ. ବି. (ଦୁର୍+ଜାତ=ଜନ୍ମ ବା ଯେ ଜନ୍ମି ଅଛି)—
Durjā(rjjā)ta ୧ । ଦୁର୍ଭାଗ୍ୟ—
1. Misfortune; adversity.
୨ । ବ୍ୟସନ—2. Being addicted to vice; perverse conduct.
୩ । ବିପଦ—2. Calamity.

[ଦୁର୍ଜା(ର୍ଜ୍ଜା)ତା—ସ୍ତ୍ରୀ] ବିଣ. ପୁଂ.—୧ । ଯାହାର ଜନ୍ମ ବୃଥା— 1. Born to serve no good purpose.
୨ । ଯାହାର ନୀଚ କୁଳରେ ଜନ୍ମ; ନୀଚବଂଶସମ୍ଭୂତ— 2. Base-born.
୩ । ଅନୁଚିତ (ପ୍ରକୃତିବାଦ)—3. Improper.

ଦୁର୍ଜା(ର୍ଜ୍ଜା)ତି—ସଂ. ବି. (ଦୁର୍ + ଜାତି; କର୍ମଧା.)—ନୀଚ ଜାତି—
Durjāti(rjjā)ti Low caste.
ସଂ. ବିଣ.—ଦୁର୍ଜାତ (ଦେଖ)—Durjāta (See)

ଦୁର୍ଜୀ(ର୍ଜ୍ଜୀ)ବ—ସଂ. ବିଣ. (ଦୁର୍+ଜୀବ ବା ଜୀବନୋପାୟ ଯାହାର; ବହୁବ୍ରୀହି)—ପରଙ୍କ ଭୋଜନାଦି ଦ୍ୱାରା ଯାହାର ଜୀବିକା ନିର୍ବାହିତ ହୁଏ—A person who lives on the bounty of or food given by others.
Durjī(rjjī)ba
ସଂ. ବି.—୧ । ନିନ୍ଦିତ ଜୀବନ—1. Blameworthy life.
୨ । ମନ୍ଦ ଜୀବ—2 Evil animal.

ଦୁର୍ଜେ(ର୍ଜ୍ଜେ)ୟ—ସଂ. ବିଣ. (ଦୁର୍+ଜି ଧାତୁ+କର୍ମ. ଯ)—
Durje(rjje)ya ଦୁର୍ଜୟ (ଦେଖ)
(ଦୁର୍ଜେୟା—ସ୍ତ୍ରୀ) Durjaya (See).
(ଦୁର୍ଜେୟତା—ବି)

ଦୁର୍ଜ୍ଞେୟ—ସଂ. ବିଣ.—(ଦୁର୍+ଜ୍ଞେୟ)—୧ । ଯାହା ଜାଣିବା କଷ୍ଟକର
Durjñeya 1. Difficult to be known.
(ଦୁର୍ଜ୍ଞେୟା—ସ୍ତ୍ରୀ) ୨ । ଯାହା ସହଜରେ ବୁଝି ହୁଏ ନାହିଁ;
(ଦୁର୍ଜ୍ଞେୟତା—ବି) ଦୁର୍ବୋଧ—2. Abstruse

ଦୁର୍ଣ୍ଣୟ—ସଂ. ବି. (ଦୁର୍+ନୟ=ନୀତି)—୧ । ଦୁଷ୍ଟ ନୀତି—
Durṇṇaya 1. Bad policy.
(ଦୁର୍ନୟ—ଅନ୍ୟରୂପ) ୨ । କୁନୀତି—2. Bad morals
୩ । ମନ୍ଦ ଆଚରଣ— 3. Bad behaviour; evil conduct.
୪ । ଅନିଷ୍ଟ, ଗୋଳମାଳ— 4. Row; wicked acts; wicked conduct.
୫ । ଅନ୍ୟାୟ—5 Injustice.
୬ । ଦୁର୍ଦ୍ଦଶା—6. Ill luck, misfortune.
ବିଣ. (ବହୁବ୍ରୀହି)—୧ । କୁନୀତିପୂର୍ଣ୍ଣ— 1. Of evil character; immoral.
୨ । ମନ୍ଦାଚରଣବିଶିଷ୍ଟ—2. Of bad conduct.
ଦେ. ବିଣ.—୧ । ଦୁର୍ଗମ; ଘୋର—1. Fierce.
(ଯଥା—ନଈର ଏଥର ଦୁର୍ଣ୍ଣୟ ବଢ଼ି ହୋଇଅଛି ।)
୨ । ଅସାଧ୍ୟ—2. Impracticable.
୩ । ଅତିରେକ—3. Excessive
(ଯଥା—୩ ଦିନ ହେଲା ଦୁର୍ଣ୍ଣୟ ବର୍ଷା ହେଉଅଛି । )
୪ । ମାରାତ୍ମକ, ପ୍ରାଣାନ୍ତକ—4. Fatal; mortal.
(ଯଥା—ତା ରୋଗ ଅତି ଦୁର୍ଣ୍ଣୟ ହୋଇ ଉଠିଲା ।)
୫ । ଅସହ୍ୟ—5. Unbearable.
(ଯଥା—ତାର ଦୁର୍ଣ୍ଣୟ ଗାଳି ମୁଁ ଆଉ ସହି ପାରିବି ନାହିଁ ।)
୬ । ବିଷମ; କଠିନ; ଜଟିଳ— 6. Hard; complicated.

ବି.—ଦୁର୍ଦ୍ଦିନ—Cloudy day.

ଦୁର୍ଣ୍ଣାମା—ସଂ ବି. (ଦୁର୍+ନାମନ୍)—ଶାମୁକା ( ପ୍ରକୃତିବାଦ)—
Durṇṇāmā Oyster.

ଦୁର୍ଦ୍ଦଣ୍ଡ—ବିଣ. (ଦୁର୍+ଦଣ୍ଡ ଧାତୁ+କର୍ମ. ଅ)—୧ । ଦୁର୍ଦ୍ଧର୍ଷ—
Durddaṇḍa 1. Unassailable; hard to subdue.
(ଦୁର୍ଦଣ୍ଡ—ଅନ୍ୟରୂପ) ୨ । ଅବାଧ୍ୟ—2. Unruly.
ଏ ରବୁରେ ଦୁର୍ଦ୍ଦଣ୍ଡ କୁସୁମ କାଣ୍ଡେ ଭସ୍ମ,
କରୁ ନବ ସୃଷ୍ଟିକଗୀ ହୋଇଛ ଅଧମ୍ୟ ' ଗୋପେଶକ—ଉପେନ୍ଦ୍ରଭଞ୍ଜ ।

ଦୁର୍ଦ୍ଦଣ୍ଡ୍ୟ—ସଂ. ବିଣ. ଦୁର୍+ଦଣ୍ଡ ଧାତୁ+କର୍ମ. ଯ)—
Durddaṇḍya ଦୁର୍ଦ୍ଦଣ୍ଡ (ଦେଖ)
(ଦୁର୍ଦ୍ଦଣ୍ଡ୍ୟତା—ବି) Durddaṇḍa (See)
(ଦୁର୍ଦ୍ଦଣ୍ଡ୍ୟା—ସ୍ତ୍ରୀ) (ଦୁର୍ଦଣ୍ଡ୍ୟ—ଅନ୍ୟରୂପ)

ଦୁର୍ଦ୍ଦମ—ସଂ. ବିଣ. ପୁଂ. (ଦୁର୍+ଦମ୍ ଧାତୁ କର୍ମ+ଅ)—୧ । ଅସାଧ୍ୟ—
Durddama 1. Hard to control.
(ଦୁର୍ଦ୍ଦମା—ସ୍ତ୍ରୀ) ୨ । ଦୁରନ୍ତ—2. Irresistible.
(ଦୁର୍ଦ୍ଦମତା—ବି) ୩ । ଯାହାକୁ ସହଜରେ ଦମନ ବା ବଶୀଭୂତ
(ଦୁର୍ଦମ—ଅନ୍ୟରୂପ) କରି ପାରି ନ ପାରେ—3. Inplacable; indomitable; invincible.
୪ । ଅଶାସ୍ୟ; ଦୁଃଶାସନ—4. Untameable; uncontrollable; hard to control.
୫ । ଅବାଧ୍ୟ—5 Insolent.
୬ । ଅସଂଯତ—6. Unbridled
ସଂ. ବି (+ଭାବ. ଅ)—୧ । କଷ୍ଟରେ ଦମନ କରିବା— 1. Taming with great difficulty.
୨ । ରୋହିଣୀଗର୍ଭ ଜାତ ବସୁଦେବଙ୍କର ପୁତ୍ରବିଶେଷ— 2, Name of a son of Basudeba.

ଦୁର୍ଦ୍ଦମନୀୟ—ସଂ.ବିଣ.ପୁଂ(ଦୁର୍+ଦମ୍+କର୍ମ.ଅନୀୟ)—ଦୁର୍ଦ୍ଦମ(ଦେଖ)—
Durddamaniya Durddama (See).
(ଦୁର୍ଦ୍ଦମନୀୟା—ସ୍ତ୍ରୀ) (ଦୁର୍ଦ୍ଦମନୀୟତା—ବି.) (ଦୁର୍ଦମନୀୟ—ଅନ୍ୟରୂପ)

ଦୁର୍ଦ୍ଦମ୍ୟ - ସଂ. ବିଣ. ପୁଂ(ଦୁର୍+ଦମ୍ ଧାତୁ+କର୍ମ. ଯ)—ଦୁର୍ଦ୍ଦମ (ଦେଖ)
Durddamya Durddama (See)
(ଦୁର୍ଦ୍ଦମ୍ୟା—ସ୍ତ୍ରୀ) (ଦୁର୍ଦ୍ଦମ୍ୟତା—ବି) (ଦୁର୍ଦମ୍ୟ—ଅନ୍ୟରୂପ)

ଦୁର୍ଦ୍ଦର୍ଶ—ସଂ.ବିଣ.(ଦୁର୍+ଦୃଶ୍ ଧାତୁ+କର୍ମ. ଅ)—୧ । ଯାହାକୁ ସହଜରେ
Durddarśa ଦେଖି ହୁଏ ନାହିଁ ( ଯଥା. ସୂର୍ଯ୍ୟ )—
(ଦୁର୍ଦ୍ଦର୍ଶା—ସ୍ତ୍ରୀ) 1 Difficult to be looked at
(ଦୁର୍ଦ୍ଦର୍ଶତା—ବି.) ୨ । ଭୟଙ୍କର ରୂପବିଶିଷ୍ଟ—2. Frightful to look at
ଦୁର୍ଦର୍ଶ, ଦୁର୍ଦ୍ଦର୍ଶନ } ଅନ୍ୟରୂପ

ଦୁର୍ଦ୍ଦଶା—ସଂ. ବି (କର୍ମଧା; ଦୁର୍+ଦଶା)—୧ । ଦୁରବସ୍ଥା—
Durddaśā 1. Miserable plight; misery; distress.
(ସୁଦଶା—ବିପରୀତ) ୨ । ଦୁର୍ଭାଗ୍ୟ—2. Misfortune; adversity; hard lot; calamity.
(ଦୁର୍ଦଶା—ଅନ୍ୟରୂପ)
[ଦ୍ର—ଏଥିରୁ ଦୁର୍ଦ୍ଦଶାଗ୍ରସ୍ତ, ଦୁର୍ଦ୍ଦଶାକ୍ରାନ୍ତ, ଦୁର୍ଦ୍ଦଶାପନ୍ନ, ଆଦି ଶବ୍ଦ ଗଠିତ ହୁଏ ।]

ଦୁର୍ଦ୍ଦାନ୍ତ—ସଂ.ବଣ (ଦୁର୍+ଦମ୍ ଧାତୁ+କର୍ମ ତ)—୧ । ଦୁର୍ଦ୍ଦମ (ଦେଖ)
Durddānta Durddama (See).
ଦୁର୍ଦ୍ଦାନ୍ତା—ସ୍ତ୍ରୀ ୨ । ଅଶାନ୍ତ—2. Unsatiated.
ଦୁର୍ଦ୍ଦାନ୍ତତା—ବ ସଂ. ବ—୧ । କଳହ—(ପ୍ରକୃତିବାଦ)—Quarrel.
(ଦୁର୍ଦ୍ଦାନ୍ତ—ଅନ୍ୟରୂପ) ୨ । ଶିବ (ପ୍ରକୃତିବାଦ)—2. Siba.
୩ । ଦିନରାତ୍ରି (ପ୍ରକୃତିବାଦ)—3. Day and night.
୪ । ଅଣ୍ଡିରା ବାଛୁରି—(ହି. ଶବ୍ଦସାଗର)—A male calf.

ଦୁର୍ଦ୍ଦିନ—ସଂ. ବ (କର୍ମଧା; ଦୁର୍+ଦିନ)—୧ । ମେଘାଚ୍ଛନ୍ନ ଦିବସ—
Durddina 1. Cloudy day; dull or rainy day
(ସୁଦିନ—ବିପରୀତ)
(ଦୁର୍ଦ୍ଦିନ—ଅନ୍ୟରୂପ)
୨ । ମେଘୁଆପାଗ—2. Cloudy weather.
୩ । ବର୍ଷା ସମୟ—3. Rainy weather.
୪ । ଦୁଃସମୟ—4. Time of misery; evil days.
୫ । ବିପଦ ସମୟ—5. Calamitous time.

ଦୁର୍ଦ୍ଦୁର୍—ଦେ. ଅ—ଦୂର୍ ଦୂର୍ (ଦେଖ)
Durddur (ଦୁର୍ଦ୍ଦୁର—ଅନ୍ୟରୂପ) Dūr dūr (See).

ଦୁର୍ଦ୍ଦୁର୍ କରିବା—ଦେ.କ୍ରି—ଘୃଣା ପ୍ରକାଶ ପୂର୍ବକ ପାଖରୁ ତଡ଼ିଦେବା—
Durddur kariba To drive away with contempt
ଦୁତ୍କାରନା

ଦୁର୍ଦ୍ଦୁର୍ ଛୁର୍ଛୁର୍—ଦେ. ଅ—ଦୂର୍ ଦୂର୍ (ଦେଖ)
Durddur chhurchhur Dūrdūr (See).

ଦୁର୍ଦ୍ଦୁର୍ ମାର୍ ମାର୍—ଦେ. ଅ—ଘୃଣା ପ୍ରଯୁକ୍ତ ତାଡ଼ନା—
Durddur mār mār Driving away of a person with contempt.

ଦୁର୍ଦ୍ଦୁର୍ ମାର୍ ମାର୍ କରିବା—ଦେ. କ୍ରି—ଘୃଣା ପ୍ରକାଶପୂର୍ବକ ପାଖରୁ
Durddur mār mār kariba ତଡ଼ିଦେବା—To drive away with contempt.

ଦୁର୍ଦ୍ଦୁରୁଟ—ସଂ. ବଣ—୧ । ନାସ୍ତିକ—1. Atheistic.
Durdduruta ୨ । ଯେ ଦେବତା ଅଛି ମାନେ ନାହିଁ—
2. Infidel.
ଦୁର୍ଦ୍ଦୁରୁଡ଼
ଦୁର୍ଦ୍ଦୁରୁଟ } ଅନ୍ୟରୂପ
ଦୁର୍ଦ୍ଦୁରୁଟ
(ଦୁର୍ଦ୍ଦୁରୁଟ—ଅନ୍ୟରୂପ)
ସଂ. ବ—ଶ୍ଳୋକ ଗୁରୁ ଜ୍ଞାନ ହୀନ ଗୁରୁଙ୍କ ଉପଦେଶରେ ଶ୍ରଦ୍ଧାନ୍ୱିତ ହୋଇ ଉକ୍ତ ଗୁରୁଙ୍କର ପ୍ରଦର୍ଶିତ ଦିଗକୁ ନିଜର ବିବେକ ଶକ୍ତି ଦ୍ୱାରା ବିଚାର କରେ (ପ୍ରକୃତିବାଦ)—A pupil who does not obey his tutor without exercising his own judgment.

ଦୁର୍ଦ୍ଦୈବ—ସଂ. ବି—୧ । ଦୁର୍ଘଟଣା—1. Misfortune; calamity.
Durddaiba ୨ । ମନ୍ଦ କପାଳ—2. Bad luck.
(ଦୁର୍ଦ୍ଦୈବ—ଅନ୍ୟରୂପ) ୩ । ଦୁର୍ଘଟଣା—3. Mishap.
୪ । ପାପ—4. Sin.

ଦୁର୍ଦ୍ଧର—ସଂ. ବିଣ—(ଦୁର୍+ଧୃ ଧାତୁ+କର୍ମ. ଅ)—୧ । ଯାହା ଧରି
Durddhara ରଖିବା କଷ୍ଟକର—1. Difficult to hold.
(ଦୁର୍ଦ୍ଧର—ଅନ୍ୟରୂପ) ୨ । ଦୁଃସହ; ଅସହ୍ୟ—2. Unbearable.
୩ । ଦୁର୍ଗମ—3. Impassable.
୪ । ଦୁର୍ଦ୍ଦାନ୍ତ—4. Wicked.
୫ । ଦୁର୍ଦ୍ଦମ୍ୟ—5. Indomitable; uncontrollable; unassailable.
ସଂ. ବି—ହିନ୍ଦୁ ପୁରାଣୋକ୍ତ ୬୪ ନରକର ଏକତମ, ନରକ ବିଶେଷ—1. Name of one of the 64 hells described in the Purānas.
୨ । ପାରଦ—2. Quick-silver.
୩ । ଭଲ୍ଲାତକ; ଭଲିଆ—3, The marking nut; Semicarpus Anacardium.
୪ । ମହିଷାସୁରର ସେନାପତି; ରାକ୍ଷସବିଶେଷ—
4. Name of a general under the demon Mahishāsura.

ଦୁର୍ଦ୍ଧରଷ—ଗ୍ରା. (ପଦ୍ୟ) ବଣ (ସଂ. ଦୁର୍ଦ୍ଧର୍ଷ)—ଦୁର୍ଦ୍ଧର୍ଷ (ଦେଖ)
Durddharasha Durddharsha (See)

ଭଗୀରଥ ପରି ଅଛ ହେ ଦୁର୍ଦ୍ଧରଷ—କୃଷ୍ଣସିଂ ହ. ମହାଭାରତ ଆଦି ।

ଦୁର୍ଦ୍ଧର୍ଷ—ସଂ. ବଣ (ଦୁର୍+ଧୃଷ୍ ଧାତୁ=ପରାଜୟ କରିବା+କର୍ମ. ଅ)—
Durddharsha ୧ । ଅପରାଜେୟ—1. Difficult to overcome; invincible; undaunted.
୨ । ପ୍ରବଳପରାକ୍ରାନ୍ତ—
2. Indomitable; mighty.
୩ । ଅସହନୀୟ, ଯାହାର ତେଜୋବୀର୍ଯ୍ୟାଦି ଅସହ୍ୟ—
3. Unbearable.
୪ । ଅସୀମ ସାହସିକ—4. Daring; foolhardy.

ଦୁର୍ଦ୍ଧୀ—ସଂ. ବ (ଦୁର୍+ଧୀ=ବୁଦ୍ଧି)—ଦୁର୍ବୁଦ୍ଧି; ମନ୍ଦ ବୁଦ୍ଧି—
Durddhi Evilmindedness; bad disposition.
(ଦୁର୍ଧୀ—ଅନ୍ୟରୂପ) ସଂ. ବଣ (ବହୁବ୍ରୀହି) ମନ୍ଦବୁଦ୍ଧିଯୁକ୍ତ—
Of bad disposition.

ଦୁର୍ନୟ—ସଂ. ଓ ଦେ ବ ଓ ବଣ (ଦୁର୍+ନୟ=ନୀତି)—ଦୁର୍ଣ୍ଣୟ (ଦେଖ)
Durnaya Durṇṇaya (See)

ଦୁର୍ନାମ—ସଂ ବ (ଦୁର୍+ନାମନ୍)—୧ । ଅପଯଶ—
Durnāma 1 Bad name; obloquy.
୨ । ଅପଖ୍ୟାତି—2. Evil repute; discredit.
୩ । ନିନ୍ଦା—3. Blame; slander.
୪ । କଳଙ୍କ; ବଦ୍‌ନାମ—4. Stigma; libel.
୫ । ଅର୍ଶରୋଗ—5. Piles (disease).

ଦୁର୍ନାମ କରିବା—ଦେ. କ୍ରି—କୌଣସି ବ୍ୟକ୍ତିର କଳଙ୍କ ପ୍ରକାଶ
Durnāma kariba କରିବା—To vilify.
ଦୁର୍ନାମ ରଟନା କରିବା; ଦୁର୍ନାମ ଉଠା(ଡେ଼)ଇବା } ଅନ୍ୟରୂପ
ଦୁର୍ନାମ ରଟିବା
দুর্নাম করা বা রটান, बदनाम करना

ଦୁର୍ନାମ ରଟନା—ସଂ. ବି ( ଦୁର୍ନାମ + ରଟନା; ୬ଷ୍ଠୀ ତତ୍ )—କଳଙ୍କ ପ୍ରକଟନ—Vilification; publication of a libel.
Durnāma ratanā

ଦୁର୍ନାମ ରଟିବା—ଦେ. ବି—କଳଙ୍କ ପ୍ରକଟନ—Publication of a scandal.
Durnāma ratibā
ଦୁର୍ନାମ ବଟା

ଦୁର୍ନିବାର—ସଂ. ବିଣ ( ଦୁର୍ + ନି + ବାର ଧାତୁ + କର୍ମ. ଅ )—ଯାହା ସହଜରେ ନିବାରଣ କରାଯାଇ ନ ପାରେ—Irresistible; irremediable; not preventible; difficult to be warded off
Durnibāra

ଦୁର୍ନିମିତ୍ତ—ସଂ. ବି (କର୍ମଧା; ଦୁର୍ + ନିମିତ୍ତ)—ଅମଙ୍ଗଳକର ଚିହ୍ନ, ଅଶୁଭ ଚିହ୍ନ—An evil omen; omen.
Durnimitta

ଦୁର୍ନିରୀକ୍ଷ୍ୟ—ସଂ. ବିଣ (ଦୁର୍ + ନିରୀକ୍ଷ୍ୟ)—୧ । ଯାହାକୁ ସହଜରେ ଦେଖି ହୁଏ ନାହିଁ—1. Difficult to be looked at.
Durnirīkshya
୨ । ପ୍ରାୟ ଅଦୃଶ୍ୟ—2. Scarcely visible.

ଦୁର୍ନୀତ—ସଂ ବିଣ ( ଦୁର୍ + ନୀ ଧାତୁ + କର୍ମ. ତ )—୧ । ଯାହାର ନୀତି ମନ୍ଦ; ଉଚ୍ଛୃଙ୍ଖଳ—1. Immoral.
Durnīta
୨ । ଅସତ୍—2. Evil
୩ । ଅଶିଷ୍ଟ—3. Vulgar.
୪ । (+କର୍ତ୍ତୃ. ତ) ଦୁର୍ନୀତିଯୁକ୍ତ—
4. Of bad morals.
୫ । ସଂ. ବି (+ଭାବ ତ) ଦୁଷ୍ଟ ନୀତି—
5. Bad morality.

ଦୁର୍ନୀତି—ସଂ. ବି (କର୍ମଧା; ଦୁର୍+ନୀତି)—୧ । କୁନୀତି—1. Evil policy; evil conduct.
Durnīti
୨ । ଅନ୍ୟାୟ—2. Injustice.

ଦୁର୍ପଲା—ଦେ. ଅ—ଦୁର୍‌ପଲା ( ଦେଖ ) Dur-palā ( See )
Durpalā

ଦୁର୍ବ(ର୍ବ)ଚନ—ସଂ. ବି —ଦୁର୍ବାକ୍ୟ ( ଦେଖ )—Durbākya ( See )
Durba(rbba)chana

ଦୁର୍ବ(ର୍ବ)ର୍ଣ୍ଣ—ସଂ. ବିଣ ( ବହୁବ୍ରୀହି; ଦୁର୍ + ବର୍ଣ୍ଣ )—ମଳିନ; ଅପରିଷ୍କୃତ—Dirty; unclean.
Durba(rbba)rnna
ସଂ. ବି—ରୌପ୍ୟ—Silver.

ଦୁର୍ବ(ର୍ବ)ଳ—ସଂ. ବିଣ ( ବହୁବ୍ରୀହି; ଦୁର୍ + ବଳ )—୧ । ହୀନବଳ; ବଳଶୂନ୍ୟ; ନିର୍ବଳ; ଶକ୍ତିହୀନ—1. Powerless.
Durba(rbba)la
[ଦୁର୍ବ(ର୍ବ)ଳା—ସ୍ତ୍ରୀ]
(ଦୁର୍ବଳତା, ଦୌର୍ବଲ୍ୟ—ବି) ୨ । ଅସମର୍ଥ, ଅଶକ୍ତ—
2. Weak; impotent.
୩ । କ୍ଷୀଣ; କୃଶ; ଦୋବଳା—
3. Emaciated; feeble; lean; enfeebled.
ଦେ ବି—ଦୁର୍ବଳତା—Weakness.
ତୋ ଦୁର୍ବଳ ଦେଖି କାହିଁ ପଶିବଇଁ ମୁହିଁ—
ଅଭିମନ୍ୟୁ. ବିଦଗ୍ଧଚିନ୍ତାମଣି ।
ଦେ. ବିଣ—୧ । ପ୍ରବଳ; ଉଗ୍ର; ପ୍ରଚଣ୍ଡ—1. Terrible.
୨ । ଅତ୍ୟଧିକ—2. Excessive.
୩ । ଯାହାକୁ ବନ୍ଦ ବା ଅବରୋଧ କରିବାକୁ ମନୁଷ୍ୟର ବଳ ପାଏ ନାହିଁ—3. Which can not be stopped.
( ଯଥା—ଏ ବର୍ଷ ଦୁର୍ବଳ ବଢ଼ିରେ ଘରଦ୍ୱାର ଭାସି ଗଲା ।)
୪ । ନିକୃଷ୍ଟ—4. Inferior.
ବଳ କଲେ ହୁଅନ୍ତ ହୋଇବ ଦୁର୍ବଳ—କୃଷ୍ଣସିଂହ. ମହାଭାରତ. ବନ ।

ଦୁର୍ବଳ କର୍ମ—ଦେ. ବି—ମୃତ୍ୟୁଠାରୁ କିମ୍ବା; ମୃତ ବ୍ୟକ୍ତିର ମୃତ୍ୟୁର ୧୦ଦିନ ପର୍ଯ୍ୟନ୍ତ କରାଯିବା ପ୍ରେତକର୍ମ—Funeral rites.
Durbala karma

ଦୁର୍ବଳ ଦଶା—ଦେ. ବି—ମନ୍ଦ ଦଶା; ଦୁର୍ଦ୍ଦଶା—Ill-luck; misfortune.
Durbala dasā
ଶତ୍ରୁମାନଙ୍କର ଦୁର୍ବଳ ଦଶା ବୁଝି
ବାହାରିବ ସୈନ୍ୟ ସଙ୍ଗତେ ସେନ ଯୁଝି ।
କୃଷ୍ଣସିଂହ. ମହାଭାରତ, ଉଦ୍ୟୋଗ ।

ଦୁର୍ବଳ ବଢ଼ି—ଦେ. ବି—ପ୍ରବଳ ନଦୀବୃଦ୍ଧି—A very high or terrible flood.
Durbala bardhi

ଦୁର୍ବଳିଆ—ଦେ. ବିଣ—ଦୁର୍ବଳ ( ଦେଖ ) Durbala ( See )
Durbaliā

ଦୁର୍ବ(ର୍ବ)ହ—ସଂ. ବିଣ. (ଦୁର୍ + ବହ୍ ଧାତୁ + କର୍ମ. ଅ)—୧ । ଯାହା ସହଜରେ ବହନ କରାଯାଇ ନ ପାରେ—1. Unbearable; difficult to be borne
Durba(rbba)ha
(ଦୁର୍ବହତା—ବି)
୨ । ଅତ୍ୟନ୍ତ ଭାରି—2. Too heavy to bear.

ଦୁର୍ବା(ର୍ବା)କ୍ୟ—ସଂ. ବି. (କର୍ମଧା; ଦୁର୍ + ବାକ୍ୟ)—୧ । କଟୁବାକ୍ୟ—1. Harsh words.
Durbā(rbbā)kya
୨ । ଗାଳି—2. Abuse.
୩ । ଅଶ୍ଳୀଳ ବାକ୍ୟ—3. Obscene language.

ଦୁର୍ବା(ର୍ବା)ଚ୍ୟ—ସଂ. ବି. (ଦୁର୍ + ବାଚ୍ୟ)—୧ । ଅପବାଦ—1. Slander.
Durbā(rbbā)chya
୨ । ଅକୀର୍ତ୍ତି; ଅଖ୍ୟାତି; ଅପଯଶ—
2. Ill fame; disrepute.

ଦୁର୍ବା(ର୍ବା)ଦ—ସଂ. ବି. (କର୍ମଧା; ଦୁର୍+ବାଦ)—୧ । ଦୁର୍ବାକ୍ୟ (ଦେଖ) 1. Durbākya (See)
Durbā(rbbā)
୨ । ନିନ୍ଦା—2. Blame.
୩ । ଭର୍ତ୍ସନା—3. Reproach
ସଂ. ବିଣ. (ବହୁବ୍ରୀହି)—କଟୁଭାଷୀ—
Using harsh words.

ଦୁର୍ବା(ର୍ବା)ର—ସଂ. ବିଣ. (ଦୁର୍ + ବୃ ଧାତୁ ଣିଚ୍ ବାର ଧାତୁ = ବାରଣ କରିବା + କର୍ମ. ଅ)—ଯାହାକୁ ସହଜରେ ବାରଣ କରାଯାଇ ନ ପାରେ, ଅନିବାର୍ଯ୍ୟ; ଦୁର୍ନିବାର—Irremediable; unpreventible; irresistible; unavoidable; hard to restrain or check.
Durbā(rbbā)ra
ଦୁର୍ବାର ତୋ କେଶକାଳ ଶର
ଦେବାଙ୍କୁ ଭୁଲ ଦୁଃସହତର । ଜଗନ୍ନାଥ. କଣୋପାଖ୍ୟାନ ଗୀତ ।

ଦୁର୍ବା(ର୍ବା)ରଣ—ସଂ. ବିଣ—ଦୁର୍ବାର (ଦେଖ) Durbāra (See)
Durba(rbbā)rana

ଦୁର୍ବା(ର୍ବା)ସନା—ସ. ବି. (କର୍ମଧା; ଦୁର୍ + ବାସନା)—
Durbā(rbbā)sanā ମନ୍ଦ ଅଭିଳାଷ—Evil desire.

ଦୁର୍ବା(ର୍ବା)ସା—ସ. ବଣ. (ବହୁବ୍ରୀହି, ଦୁର୍ + ବାସସ୍; ୧ମା. ୧ବ)—
Durbā(rbbā)sā ମଳିନବସ୍ତ୍ରଧାରୀ—Wearing dirty clothes; ill-clad; wearing rags or ugly clothes

ସ. ବି—ଅନସୂୟାଙ୍କ ଗର୍ଭରେ ଶଙ୍କରଙ୍କ ଅଂଶଜାତ ଅତ୍ରିମୁନିଙ୍କ ପୁତ୍ର ମହାକୋପୀ ଋଷିବିଶେଷ—Name of an irascible sage; son of Atri.

[ଦ୍ର—ସ୍ୱଭାବତଃ କୋପୀ ବ୍ୟକ୍ତିଙ୍କୁ ଦୁର୍ବାସାଙ୍କ ସଙ୍ଗେ ତୁଳନା କରାଯାଏ ।]

ଦୁର୍ବି(ର୍ବି)ଗାହ—ସ. ବିଣ—ଦୁରବଗାହ (ଦେଖ)
Durbi(rbbi)gāha Durabagāha (See)

ଦୁର୍ବି(ର୍ବି)ଦଗ୍ଧ—ସ. ବଣ. (ଦୁର୍ + ବିଦଗ୍ଧ)—୧ । ଉଦ୍ଧତ—
Durbi(rbbi)dagdha 1. Rude; insolent.
୨ । ଅଭଦ୍ର—2. Ill-mannered; ill-bred.
୩ । ଦୁଷ୍ଟ—3. Wicked

ଦୁର୍ବି(ର୍ବି)ଧ—ସ. ବିଣ. ପୁଂ (ବହୁବ୍ରୀହି; ଦୁର୍ = ମନ୍ଦ + ବିଧ = ଆଚରଣ; ପ୍ରକାର)—୧ । ଅସଦାଚରଣ; ଦୁଷ୍ଟ—
Durbi(rbbi)dha
[ଦୁର୍ବି(ର୍ବି)ଧା—ସ୍ତ୍ରୀ] 1. Wicked.
୨ । ଅସତ୍—2. Immoral.
୩ । ଦରିଦ୍ର—3. Poor.
୪ । ମୂର୍ଖ—4. Illiterate.

ଦୁର୍ବି(ର୍ବି)ଧି—ସ. ବି. (କର୍ମଧା; ଦୁର୍ + ବିଧି)—୧ । ମନ୍ଦବିଧି; ବା ନିୟମ—
Durbi(rbbi)dhi 1. A bad rule
୨ । ମନ୍ଦ ଭାଗ୍ୟ—2. Misfortune; bad luck; evil destiny.

ଦୁର୍ବିନ୍(ନ୍ଦ)—ଦେ. ବି. (ସ. ଦୂରବୀକ୍ଷଣ)—
Durbin(nda) ଦୂରବୀକ୍ଷଣ ଯନ୍ତ୍ର—
दूरबीन Telescope.
दुर्बिन

ଦୁର୍ବି(ର୍ବି)ନୀତ—ସ. ବଣ. ପୁଂ (ଦୁର୍ + ବିନୀତ)—
Durbi(rbbi)nīta ଦୁର୍ବିଦଗ୍ଧ (ଦେଖ)
(ଦୁର୍ବି[ର୍ବି]ନୀତା—ସ୍ତ୍ରୀ) Durbidagdha (See)

ଦୁର୍ବି(ର୍ବି)ପାକ—ସ. ବି. (କର୍ମଧା; ଦୁର୍ + ବିପାକ)—୧ । ଦୁର୍ଘଟନା—
Durbi(rbbi)pāka 1. Mishap.
୨ । ମନ୍ଦଫଳ—2. Bad result; evil issue.

ସ. ବଣ. (ବହୁବ୍ରୀହି)—ପରିଣାମଦାରୁଣ—
Horrible in the end.

ଦୁର୍ବିଷ—ସ. ବି. (ଯାହାଙ୍କ ଉପରେ ବିଷର କିଛି ପ୍ରଭାବ ହେଲା ନାହିଁ)—
Durbisha ମହାଦେବ (ହି. ଶବ୍ଦସାଗର)—Siba.

ଦୁର୍ବି(ର୍ବି)ଷହ—ସ. ବଣ. (ଦୁର୍ + ବି + ସହ୍ + ଧାତୁ + କର୍ମ. ଅ)—
Durbi(rbbi)shaha ୧ । ଅସହ୍ୟ—1. Unbearble; intolerable.
୨ । ଦୁଃସହ—2. Hard to bear.
୩ । ଦୁର୍ବହ (ଦେଖ)—3. Durbaha (See)

ଦୁର୍ବୁ(ର୍ବୁ)ଦ୍ଧି—ସ. ବି. (କର୍ମଧା; ଦୁର୍ + ବୁଦ୍ଧି)—୧ । ମନ୍ଦବୁଦ୍ଧି—
Durbu(rbbu)ddhi 1. Evil intention; evil-mindedness.
୨ । ଦୁଷ୍ଟତା—2. Wickedness; wantonness.
୩ । ମନ୍ଦ ବିଷୟରେ ଏକଜିଦ—
3. Obstinacy in evil matters.
୪ । ନିର୍ବୋଧତା; ମୂର୍ଖତା—4. Stupidity; folly.

ସ. ବଣ. (ବହୁବ୍ରୀହି)—୧ । ମନ୍ଦକର୍ମରେ ଏକଜିଦିଆ—
1. Obstinate in evil affairs.
୨ । ଖଳ; ଦୁଷ୍ଟ—2. Wicked, wanton.
୩ । ମୂର୍ଖ; ନିର୍ବୋଧ—3. Stupid; silly.
୪ । ଅସଦ୍‌ବୁଦ୍ଧିବିଶିଷ୍ଟ—4. Evil-intentioned.

ଦୁର୍ବୁଦ୍ଧିଆ—ଦେ ବଣ. (ସ ଦୁର୍ବୁଦ୍ଧି)—ଦୁର୍ବୁଦ୍ଧି (ଦେଖ)
Durbuddhiā Durbuddhi (See)
(ଦୁର୍ବୁଧିଆ—ଅନ୍ୟରୂପ)

ଦୁର୍ବୃ(ର୍ବୃ)ତ୍ତ—ସ. ବଣ. (ବହୁବ୍ରୀହି; ଦୁର୍ + ବୃତ୍ତ = ଚରିତ୍ର)—
Durbṛu(rbbṛu)tta ୧ । ଦୁଶ୍ଚରିତ୍ର—1. Immoral.
(ଦୁର୍ବୃତ୍ତା—ସ୍ତ୍ରୀ) ୨ । ଦୁର୍ଜନ; ଦୁରନ୍ତ—
(ଦୁର୍ବୃତ୍ତତା—ବି) 2. Wicked, roguish.
୩ । ଦୁର୍ଦାନ୍ତ—3. Ungovernable; unruly; unmanageable.
୪ । ଧୂର୍ତ୍ତ—4. Deceptive; fraudulent
୫ । ଅବାଧ୍ୟ—5. Disobedient.
୬ । ଉଦ୍ଧତ—6. Furious; riotous.

ସ. ବି—୧ । ଠକ—1. A cheat.
୨ । ଦୁରନ୍ତଲୋକ; ପାଜି—2. A rogue.

ଦୁର୍ବୃ(ର୍ବୃ)ତ୍ତି—ସ. ବି. (କର୍ମଧା; ଦୁର୍ + ବୃତ୍ତି)—ମନ୍ଦପ୍ରବୃତ୍ତି—
Durbṛu(rbbṛu)tti Evil disposition; vile temper; vile passion

ଦୁର୍ବେ(ର୍ବେ)ଦ—ସ. ବିଣ. (ଦୁର୍ + ବିଦ୍ ଧାତୁ + କର୍ମ. ଅ)—
Durbe(rbbe)da ୧ । ଦୁର୍ଜ୍ଞେୟ; ଦୁର୍ବୋଧ—
1. Difficult to know or understand.
୨ । ବେଦପାଠବିହୀନ—
2. Not studying the Bedas.

ଦୁର୍ବୋ(ର୍ବୋ)ଧ—ସଂ. ବିଣ. (ବହୁବ୍ରୀହି; ଦୁର୍ + ବୋଧ)—
Durbo(rbbo)dha ୧ । ଜ୍ଞାନଶୂନ୍ୟ; ଅଜ୍ଞାନ—1. Ignorant.
୨ । ଦୁର୍ବୋଧ୍ୟ; ଦୁର୍ଜ୍ଞେୟ—2. Difficult to know.

ଦୁର୍ବୋ(ର୍ବୋ)ଧ୍ୟ—ସ. ବିଣ. (ଦୁର୍ + ବୋଧ)—୧ । ଦୁର୍ଜ୍ଞେୟ—
Durbo(rbbo)dhya 1. Incomprehensible;
(ଦୁର୍ବୋଧ୍ୟତା—ବି) unknowable; difficult; to know.
୨ । ଯାହା ସହଜରେ ବୁଝାଯାଇ ପାରେ ନାହିଁ—
2. Not easy to understand.
[ଦ୍ର—ଦୁର୍ବୋଧ୍ୟତା ଦୋଷ ରଚନାର ଗୋଟିଏ ଦୋଷ ।]

ଦୁର୍ବ୍ୟବସ୍ଥା—ସଂ. ବି. ( କର୍ମଧା; ଦୁର୍+ବ୍ୟବସ୍ଥା )—
Durbyabasthā ମନ୍ଦ ବନ୍ଦୋବସ୍ତ—Bad arrangement.

ଦୁର୍ବ୍ୟବହାର—ସଂ. ବି. (କର୍ମଧା; ଦୁର୍+ବ୍ୟବହାର)—
Durbyabahāra ୧ । ମନ୍ଦ ବ୍ୟବହାର—1. Bad ment.
୨ । ଦୁଷ୍ଟ ଆଚରଣ—2. Evil conduct.
୩ । (ହିନ୍ଦୁ ସ୍ମୃତି) ଯେଉଁ ମକଦମାର ମୀମାଂସା ଉତ୍କୋଚଦାନ, ଅବଇଧ ଆଦି କାରଣରୁ ଅନ୍ୟାଯ୍ୟ ହୋଇଅଛି ( ହି· ଶବ୍ଦସାଗର )—3. (Hindu Law) A case or suit, the decision of which is not just on account of the use of unfair means etc.

ଦୁର୍ବ୍ୟସନ—ସଂ. ବି. ( କର୍ମଧା, ଦୁର୍+ବ୍ୟସନ )—
Durbyasana ମନ୍ଦ ଅଭ୍ୟାସ—Bad habit.
(ଦୁର୍ବ୍ୟସନୀ—ବିଣ. ପୁଂ)

ଦୁର୍ବ୍ରତ—ସଂ. ବି. (କର୍ମଧା; ଦୁର୍+ବ୍ରତ)—
Durbrata ୧ । ମନ୍ଦ ମନୋରଥ—1. Evil wish.
୨ । ମନ୍ଦ ଆଶୟ—2. Bad intention.
୩ । ମନ୍ଦ ବ୍ରତ—3. A bad religious vow.
ଦେ. ବିଣ. ପୁଂ—୧ । ଯେ ମନ୍ଦ ବ୍ରତ ପାଳନ କରିଅଛି—
(ଦୁର୍ବ୍ରତା—ସ୍ତ୍ରୀ) 1. One who has taken a religious vow to secure an evil object.
୨ । ମନ୍ଦାଶୟ—2. Evil-intentioned.

ଦୁର୍ଭକ୍ଷ—ସଂ ବିଣ. ( ଦୁର୍+ଭକ୍ଷ୍ ଧାତୁ+କର୍ମ. ଅ )—
Durbhaksha କଷ୍ଟରେ ଭକ୍ଷଣୀୟ—
Eatable with difficulty.
ବି—ଦୁର୍ଭିକ୍ଷ—Scarcity; famine.

ଦୁର୍ଭଗ—ସଂ. ବିଣ. ପୁଂ. (ବହୁବ୍ରୀହି; ଦୁର୍+ଭଗ=ଭାଗ୍ୟ)—
Durbhaga ୧ । ମନ୍ଦଭାଗ୍ୟ; ଭାଗ୍ୟହୀନ—
(ସୁଭଗ—ବିପରୀତ) 1. Unfortunate; unlucky;
(ଦୁର୍ଭଗତା—ବି) ill-fated.
୨ । ଅପ୍ରିୟ—2. Disagreeable.

ଦୁର୍ଭଗା—ସଂ. ବିଣ. ସ୍ତ୍ରୀ (ଦୁର୍ଭଗ+ସ୍ତ୍ରୀ. ଆ)—୧ । ପତିସ୍ନେହହୀନା
Durbhagā (ଭାର୍ଯ୍ୟା)—1. Destitute of one's husband's
(ସୁଭଗା—ବିପରୀତ) attachment; (a wife) not liked by her husband; neglected (wife).
୨ । ହତଭାଗିନୀ; ଭାଗ୍ୟହୀନା—
2. Unlucky (female); ill-fated.
୩ । ବିଧବା ହୋଇଥିବା—3. Widowed.

ଦୁର୍ଭର—ସଂ. ବିଣ. ( ଦୁର୍+ଭୃ ଧାତୁ=ବହନ କରିବା+କର୍ମ. ଅ )—
Durbhara ୧ । ଦୁଃସହ—1. Insufferable; unbearable.
( ଦୁର୍ଭରତା—ବି ) ୨ । ଭାରି; ଗରୁଆ—
2. Very heavy; weighty.

ଦୁର୍ଭାଗା—ଦେ. ବିଣ ପୁଂ. (ସଂ. ଦୁର୍ଭାଗ୍ୟ)—ଭାଗ୍ୟହୀନ, ହତଭାଗା—
Durbhāgā Unfortunate; ill-fated unlucky.
हतभाग्य अभागा
( ଦୁର୍ଭାଗୀ, ଦୁର୍ଭାଗିନୀ—ସ୍ତ୍ରୀ )

ଦୁର୍ଭାଗ୍ୟ—ସଂ. ବି. ( ଦୁର୍+ଭାଗ୍ୟ, କର୍ମଧା )—
Durbhāgya ୧ । ଦୁରଦୃଷ୍ଟ; ମନ୍ଦଭାଗ୍ୟ—1. Misfortune.
୨ । ବିପଦ—2 Calamity.
୩ । ଦୁର୍ଘଟଣା—3. Mishap.
( ଦୁର୍ଭାଗ୍ୟା—ସ୍ତ୍ରୀ ) ସଂ. ବିଣ. ପୁଂ. ( ଦୁର୍+ଭାଗ୍ୟ ଯାହାର; ବହୁବ୍ରୀହି )—୧ । ହତଭାଗ୍ୟ—1. Unfortunate.
୨ । ହୀନକପାଳଆ—3 Unlucky.

ଦୁର୍ଭାବନା—ସଂ. ବି. ( ଦୁର୍+ଭାବନା; କର୍ମଧା )—ମନ୍ଦ ଭାବନା;
Durbhābanā ଦୁଶ୍ଚିନ୍ତା; ଉଦ୍ବେଗ—Anxiety; evil or bad thought.

ଦୁର୍ଭାଷା—ସଂ. ବି. ( ଦୁର୍+ଭାଷା; କର୍ମଧା )—୧ । ଦୁର୍ବାକ୍ୟ—
Durbhāshā 1. Vulgar words.
୨ । ଭର୍ତ୍ସନାର ବା ଭର୍ତ୍ସନାଯୁକ୍ତ ଭାଷା—
2. Abusive language.

ଧର୍ମ ଅର୍ଥ ବୁଝନ୍ତି କଥାରୁ କାହାର
ହୋଇ କହୁଥାଏ ଦୁର୍ଭାଷା କରପ୍ରର—କୃଷ୍ଣସିଂ. ମହାଭାରତ. ଉଦ୍ୟୋଗ ।

ଦୁର୍ଭିକ୍ଷ—ସଂ. ବି. (ଅବ୍ୟୟୀ ଭାବ; ଦୁର୍+ଭିକ୍ଷା, ଶସ୍ୟାଭାବ ଯୋଗୁଁ ଯେଉଁ
Durbhiksha ଦେଶରେ ଭିକ୍ଷାର ଅଭାବ ଘଟେ )—ଦେଶରେ ଖାଦ୍ୟ ଦ୍ରବ୍ୟର ଅଭାବ—Scarcity of food; famine; dearth of foodstuff.

ଦୁର୍ଭିକ୍ଷ ପାଣ୍ଠି—ଦେ. ବି(ସଂ. ଦୁର୍ଭିକ୍ଷ+ଦେ. ପାଣ୍ଠି)—ଦୁର୍ଭିକ୍ଷପ୍ରପୀଡ଼ିତ ବ୍ୟକ୍ତି-
Durbhiksha pānthi ମାନଙ୍କୁ ସାହାଯ୍ୟ ଦେବା ପାଇଁ ସାଧାରଣ
दुर्भीक्ष फण्ड ଚନ୍ଦା ବା ସରକାରଙ୍କଦ୍ୱାରା ଖୋଲା ଯିବା
दुर्भिक्ष फण्ड ପାଣ୍ଠି—Famine-fund; a fund
(ଦୁର୍ଭିକ୍ଷ ଫଣ୍ଡ—ଅନ୍ୟରୂପ) started for famine relief.

ଦୁର୍ଭିକ୍ଷ ପୀଡ଼ିତ—ସଂ. ବିଣ. ( ଦୁର୍ଭିକ୍ଷ+ପୀଡ଼ିତ, ୩ୟା ତତ୍ )—ଦୁର୍ଭିକ୍ଷ-
Durbhiksha pirdita ଦ୍ୱାରା ଆକ୍ରାନ୍ତ—Famine-stricken.
( ଦୁର୍ଭିକ୍ଷ ପ୍ରପୀଡ଼ିତ—ଅନ୍ୟରୂପ )

ଦୁର୍ଭେଦ୍ୟ—ସଂ. ବିଣ (ଦୁର୍+ଭିଦ୍ ଧାତୁ+କର୍ମ. ଯ)—୧ । ଅଭେଦ୍ୟ—
Durbhedya 1. Impenetrable.
(ଦୁର୍ଭେଦ୍ୟତା—ବି) ୨ । ଯାହା ଅତି କଷ୍ଟରେ ଭେଦ କରିଯାଇ ପାରେ—
2. Penetrable with difficulty.
୩ । ଅତି କଠିନ—3. Very hard or tough.
୪ । ଦୁର୍ଗମ—4. Impassable.
୫ । ଅଜ୍ଞେୟ—5. Incomprehensible.

ଦୁର୍ମତି—ସଂ. ବି. ( ଦୁର୍+ମତି; କର୍ମଧା )—
Durmati ୧ । ଦୁର୍ବୁଦ୍ଧି; ମନ୍ଦ କାର୍ଯ୍ୟରେ ମତି—
(ଦୁର୍ମ୍ମତି-ଅନ୍ୟରୂପ) 1. Evil propensity or disposition.
୨ । ମନ୍ଦ ପ୍ରକୃତି—2. Evil nature.

୩ । ( ଜ୍ୟୋତିଷ ) ୬୦ ମାନୁଷ ବର୍ଷର ସମ୍ପଳିତ ବାର୍ହସ୍ପତ୍ୟ ସମ୍ବତ୍ସରର ପଞ୍ଚପଞ୍ଚାଶତ୍ତମ ବର୍ଷ—
3. Name of the 55th year of the cycle of Bṛuhaspati which covers 60 years of the earth.

ସଂ. ବଣ—୧ । ଦୁର୍ବୁଦ୍ଧି—1. Evil-minded.
୨ । ଦୁଷ୍ଟବୁଦ୍ଧି—2. Malignant; wicked.
୩ । କୁମନ୍ତଶାଳୀ; ମନ୍ଦପ୍ରକୃତିବିଶିଷ୍ଟ—
3 Ill-natured; ill-disposed.
୪ । ମନ୍ଦ କାର୍ଯ୍ୟରେ ଏକଜିଦିଆ—
4. Obstinate in evil.

**ଦୁର୍ମଦ**—ସଂ. ବିଣ. ପୁଂ. (ଦୁର୍+ମଦ୍ ଧାତୁ=ମତ୍ତ ହେବା+କର୍ତ୍ତୃ. ଅ)—
Durmadá ୧ । ଉନ୍ମତ୍ତ—1. Maddened, intoxicated.
( ଦୁର୍ମ୍ମଦ—ଅନ୍ୟରୂପ )
( ଦୁର୍ମଦା—ସ୍ତ୍ରୀ ) ୨ । ଦୁର୍ଦ୍ଦାନ୍ତ—2. Ungovernable; unruly.

ସଂ. ବି—୧ । ଧୃତରାଷ୍ଟ୍ରଙ୍କ ପୁତ୍ରବିଶେଷ—
1. Name of a son of Dhrutarāshṭra
୨ । ରାଧିକାଙ୍କ ଦେବର—2. Name of the younger brother of Rādhikā's husband.

**ଦୁର୍ମନାଃ**—ସଂ. ବିଣ ( ଦୁର୍+ମନସ୍; ଦୁର୍ମନସ୍; ୧ମା. ୧ବ )—
Durmanāḥ ୧ । ଦୁର୍ଭାବନାଗ୍ରସ୍ତ; ଦୁଶ୍ଚିନ୍ତାଯୁକ୍ତ—
( ଦୁର୍ମ୍ମନା—ଅନ୍ୟରୂପ ) 1. Dispirited, having sad thoughts; distressed; dejected.
୨ । ଚିନ୍ତିତ—2. Troubled in mind.
୩ । ଦୁଃଖିତ—3. Saddened.
୪ । ଉଦ୍ବିଗ୍ନ—4 Anxious; in a state of mental trouble; perturbed.

**ଦୁର୍ମନାୟମାନ**—ସଂ. ବିଣ.ପୁଂ ( ଦୁର୍ମନାସ୍ ନାମ ଧାତୁ+କର୍ତ୍ତୃ. ମାନ)—
Durmanāyamāna ଦୁଶ୍ଚିନ୍ତାଗ୍ରସ୍ତ; ଦୁର୍ଭାବନାଗ୍ରସ୍ତ—
( ଦୁର୍ମନାୟମାନା—ସ୍ତ୍ରୀ ) Dejected; distracted in mind, dispirited.
(ଦୁର୍ମ୍ମନାୟମାନ—ଅନ୍ୟରୂପ)

**ଦୁର୍ମନ୍ତ୍ରଣା**—ସଂ. ବି. ( ଦୁର୍+ମନ୍ତ୍ରଣା, କର୍ମଧା )—କୁମନ୍ତ୍ରଣା, କୁପରାମର୍ଶ—Evil counsel; evil advice.
Durmantraṇā
( ଦୁର୍ମ୍ମନ୍ତ୍ରଣା—ଅନ୍ୟରୂପ ) ଦୁଷ୍ଟର ଦୁର୍ମନ୍ତ୍ରଣାବଳେ ହେ କରେଣ
ଏରୂପେ ହେଲା ଅସି ଯୁଦ୍ଧକାଳ ଶେଷ—
କୃଷ୍ଣସିଂହ, ମହାଭାରତ, କର୍ଣ୍ଣ ।

**ଦୁର୍ମନ୍ତ୍ରୀ**—ସଂ. ବ. (ଦୁର୍+ମନ୍ତ୍ରିନ୍, ୧ମା. ୧ବ.)—କୁପରାମର୍ଶଦାତା—
Durmantrī Evil counsellor.
(ଦୁର୍ମ୍ମନ୍ତ୍ରୀ—ଅନ୍ୟରୂପ) ବିଣ—ଯେଉଁ ରାଜାଙ୍କର କୁ-ମନ୍ତ୍ରୀ ଅଛନ୍ତି—
(ସୁମନ୍ତ୍ରୀ—ବିପରୀତ) (a king) Having evil counsellors.

**ଦୁର୍ମର**—ସଂ. ବିଣ. ପୁଂ. (ଦୁର୍+ମୃ ଧାତୁ+କର୍ତ୍ତୃ.ଅ)—ଯେ ସହଜରେ
Durmara ମରେ ନାହିଁ—One who does not die easily.
( ଦୁର୍ମରା—ସ୍ତ୍ରୀ )

**ଦୁର୍ମରା**—ସଂ. ବିଣ. ସ୍ତ୍ରୀ. ( ଦୁର୍ମର+ଆ )—ଦୁର୍ମରର ସ୍ତ୍ରୀଲିଙ୍ଗ—
Durmarā Feminine of Durmarā.
ସଂ. ବି—ଦୁବ—The Dooba grass.

**ଦୁର୍ମିତ୍ର**—ସଂ. ବ. ( ଦୁର୍+ମିତ୍ର; କର୍ମଧା )—
Durmitra ୧ । ଦୁଷ୍ଟ ମିତ୍ର—1. Bad or evil friend.
(ଦୁର୍ମ୍ମିତ୍ର—ଅନ୍ୟରୂପ) ୨ । ଦୁଷ୍ଟ ସଙ୍ଗୀ—
2. Bad companion.
ବଣ ( ଦୁର୍+ମିତ୍ର, ବହୁବ୍ରୀହି )—
ଯାହାର ଦୁଷ୍ଟ ମିତ୍ର ଅଛନ୍ତି—
Having bad or wicked companions.

**ଦୁର୍ମିଳ**—ଦେ. ବଣ. (ପ୍ରାଚୀନ) ( ସ. ଦୁର୍ମୂଲ୍ୟ )—
Durmiḻa ଦୁର୍ଲ୍ଲଭ—Rare.
ଲୁଚିତ ଦ୍ରବ୍ୟ ଗନ୍ଧ-ବେଣୀ ମୂଳ
କର୍ମିଲୁ ସେହି ହୋଇଛି ଦୁର୍ମିଳ । ଦୀନକୃଷ୍ଣ, ରସକଲ୍ଲୋଳ ।

**ଦୁର୍ମ୍ମୁଖ**—ସ. ବଣ. ( ଦୁର୍+ମୁଖ=ମୁହଁ ବା ବଚନ; ବହୁବ୍ରୀହି )—
Durmmukha ୧ । କଟୁଭାଷୀ—1. Scurrilous; foul-mouthed; abusive.
(ଦୁର୍ମୁଖ—ଅନ୍ୟରୂପ)
(ଦୁର୍ମୁଖତା—ବ) ୨ । କର୍କଶଭାଷୀ—
2. Having harsh utterance.
୩ । ଯାହାର ମୁଖ ଦେଖିବାକୁ କୁତ୍ସିତ—
3. Ugly-faced; hideous.
ବ—୧ । ବାନରବିଶେଷ—1. A kind of monkey.
୨ । ଅଶିକ୍ଷିତ ଅଶ୍ୱ—2. An untrained horse
୩ । ଅସୁରବିଶେଷ—3. Name of a demon.
୪ । ନାଗବିଶେଷ—4. A species of serpents.
୫ । ରାମଚନ୍ଦ୍ରଙ୍କର ଗୁପ୍ତଚର—
5. Name of a spy of Rāmchandra.

**ଦୁର୍ମ୍ମୂଲ୍ୟ**—ସ. ବ. ( ଦୁର୍+ମୂଲ୍ୟ; କର୍ମଧା )—
Durmmūlya ଅଧିକ ମୂଲ୍ୟ; ଚଢ଼ା ଦାମ୍—
(ଦୁର୍ମୂଲ୍ୟ—ଅନ୍ୟରୂପ) Exorbitant price; excessive or
(ଦୁର୍ମ୍ମୂଲ୍ୟତା—ବ) high price; high rate.
ସ. ବଣ. ( ବହୁବ୍ରୀହି )—ମହାର୍ଘ; ଅକ୍ରେୟ; ମହର୍ଗ—
Dear; high-priced; of an exorbitant price.

**ଦୁର୍ମ୍ମେଧା**—ସ. ବଣ. ( ଦୁର୍+ମେଧସ୍; ୧ମା. ୧ବ. ବହୁବ୍ରୀହି )—
Durmmedhā ୧ । ବୁଦ୍ଧିହୀନ; ମେଧାହୀନ—
(ବିପରୀତ—ସୁମେଧାଃ) 1. Stupid; unintelligent.
(ଦୁର୍ମେଧାଃ—ଅନ୍ୟରୂପ) ୨ । ମାନ୍ଦା ବୁଦ୍ଧିଆ—2. Dull-headed.
୩ । ଅବୋଧ—3. Foolish.

**ଦୁର୍ଯୋଗ**—ସ. ବ. ( ଦୁର୍+ଯୋଗ; କର୍ମଧା )—
Durjoga ୧ । ଦୁର୍ଦ୍ଦୈବ—1. Misfortune.
(ସୁଯୋଗ—ବିପରୀତ) ୨ । ଦୁଃଖର ଯୋଗ; ଦୁଃଖଜନକ ଘଟନାବଳୀର ସମାବେଶ—2. Unfavourable conjunction of circumstances.

୩ । ଅମଙ୍ଗଳସୂଚକ ଘଟନା—
3. Ominous circumstance.
୪ । ଦୁଃଖର ସମୟ—4. Bad time; crisis.
୫ । ଦୁର୍ଦ୍ଦିନ—5. Cloudy day, stormy weather; foul weather

**ଦୁର୍ଯୋଧନ**—ସଂ. ବଣ. ( ଦୁର୍+ଯୁଧ୍ ଧାତୁ+କର୍ତ୍ତୃ. ଅନ )—
Durjodhana ୧ । ଯେ ଯୁଦ୍ଧରେ ପଳାୟନ କରେ—
(ଦୁର୍ଯ୍ୟୋଧନ—ଅନ୍ୟରୂପ) 1. One who flies away from fight.
୨ । +କର୍ମ ଅନ ଯାହାକୁ ସହଜରେ ଜୟ କରି ଯାଇ ନ ପାରେ—2. Difficult to fight with; invincible.
ବି—ଧୃତରାଷ୍ଟ୍ରଙ୍କ ଜ୍ୟେଷ୍ଠ ପୁତ୍ର—
The eldest son of Dhṛutarāshṭra
[ ଦ୍ର—ମହାଭାରତ ତଳେ ନୋଟ ଦେଖ । ]
ଦେ. ବି. ପୁଂ—ଲୋକଙ୍କ ନାମ—
A name given to males.

**ଦୁର୍ଯୋନ**—ସଂ. ବିଣ. ( ଦୁର୍+ଯୋନି; ବହୁବ୍ରୀହି )—
Durjoni ନୀଚବଂଶୋଦ୍ଭବ—Base-born; of low extraction.
(ଦୁର୍ଯ୍ୟୋନ—ଅନ୍ୟରୂପ)
ସଂ. ବି—ନୀଚ ଜାତି—Low caste.

**ଦୁର୍ଲଂଘ**—ସଂ. ବିଣ. ( ଦୁର୍+ଲଂଘ୍ ଧାତୁ+କର୍ମ. ଅ )—
Durlaṁgha ୧ । ଯାହାକୁ ସହଜରେ ଲଂଘନ କରିହୁଏ ନ ପାରେ—1. Difficult to be crossed over.
ଦୁର୍ଲଂଘନୀୟ, ଦୁର୍ଲଂଘ୍ୟ } ଅନ୍ୟରୂପ
୨ । ଅଲଂଘ୍ୟ—2. Inviolable.
୩ । ଯେଉଁ ଆଦେଶ ବା ନିୟମକୁ ସହଜରେ ଲଂଘନ କରି ଯାଇ ନ ପାରେ—3. ( an order or rule ) Which cannot be transgressed.

**ଦୁର୍ଲକ୍ଷଣ**—ସଂ. ବି. ( ଦୁର୍+ଲକ୍ଷଣ; କର୍ମଧା )—
Durlakshaṇa ଅଶୁଭସୂଚକ ଚିହ୍ନ—
(ବିପରୀତ—ସୁଲକ୍ଷଣ) Evil omen; unlucky sign.
ସଂ. ବିଣ. ପୁଂ. ( ଦୁର୍+ଲକ୍ଷଣ ଯାହାର; ବହୁବ୍ରୀହି )—
(ଦୁର୍ଲକ୍ଷଣା—ସ୍ତ୍ରୀ) ମନ୍ଦ ଲକ୍ଷଣ ଯୁକ୍ତ, ଅଲକ୍ଷଣା—
Bearing inauspicious marks on the body.

**ଦୁର୍ଲକ୍ଷ୍ୟ**—ସଂ. ବିଣ. ( ଦୁର୍+ଲକ୍ଷ୍ ଧାତୁ=ଦେଖିବା, ଚିହ୍ନ କରିବା +କର୍ମ. ଯ; ବହୁବ୍ରୀହି )—
Durlaksha ଯାହା ଅତି କଷ୍ଟରେ ଦେଖାଯାଏ—Scarcely visible; extremely difficult to be seen
ବି—(କର୍ମଧା) ଅନିର୍ଦ୍ଦିଷ୍ଟ ଲକ୍ଷ୍ୟ—Uncertain aim.

**ଦୁର୍ଲଭ**—ସଂ. ବିଣ. (ଦୁର୍+ଲଭ୍ ଧାତୁ=ଲାଭ କରିବା+କର୍ମ. ଅ)—
Durlabha ୧ । ଦୁଷ୍ପ୍ରାପ୍ୟ—1. Not easily available; difficult to attain.
(ବିପରୀତ—ସୁଲଭ)
(ଦୁର୍ଲଭା—ସ୍ତ୍ରୀ) ୨ । ବହୁମୂଲ୍ୟ—2. Valuable.
(ଦୁର୍ଲ୍ଲଭ—ଅନ୍ୟରୂପ) ୩ । ବିରଳ—3. Rare.
୪ । ଅସାଧାରଣ—4. Extraordinary; uncommon.
ବହୁକାଳରେ ହେ ଦୁର୍ଲଭ ଅଶ୍ୱାନ । କୃଷ୍ଣସିଂହ, ମହାଭାରତ, ଆଦି ।
୫ । ଦୁର୍ମୂଲ୍ୟ—5. Of high price; dear.
ଦେ. ବିଣ—ଶ୍ରେଷ୍ଠ—Best; excellent.
ବର୍ଣ୍ଣିତ ମହାରଥ ମାନଙ୍କେ ଦୁର୍ଲଭ
ଗରଜିଲେ ତା ଶୁଣି ଯେସନେ ବୃଷଭ । କୃଷ୍ଣସିଂ, ମହାଭାରତ ।
ଦେ. ବି—ଅସାଧାରଣ ବିଷୟ—An uncommon matter.
ଶୀତଳ ବୋଇଲେ ଦଶରଥ ଦୁର୍ଲଭ । ପ୍ରାଚୀ. ରହସ୍ୟମଞ୍ଜରୀ ।

**ଦୁର୍ଲଭା**—ସ୍ତ୍ରୀ ବି—ଦୁରାଲଭା; ଶ୍ୱେତକଣ୍ଟକାରୀ—
Durlabhā Alhagi Maurorum.
ଦୁବାଲଭା
ଜବାସା
ସ୍ତ୍ରୀ ଦୁର୍ଲଭା; ଗିରିକର୍ଣ୍ଣିକା;
ଯବାଶ; ଦୁରାଲଭା (ଦୁର୍ଲ୍ଲଭା—ଅନ୍ୟରୂପ)
ଦେ. ବି. ( ସଂ. ଅଜଗନ୍ଧିକା; ସଂ. ଦୁରାଲଭା ଗଛ ଭିନ୍ନ ଗଛ ଅଟେ )—ଦୁଲଭା ( ଦେଖ )
(ଦୁଲଭା, ଦୁଲ୍ଲଭା—ଅନ୍ୟରୂପ) Dulabhā ( See )

**ଦୁର୍ଲଭା ତୁଳସୀ**—ପ୍ରାଦେ. (ଗଞ୍ଜାମ) ବି—ଦୁଲଭା ( ଦେଖ )
Durlabhā tuḷasī Dulabhā (See)

**ଦୁର୍ଲ୍ଲଭ୍ୟ**—ସଂ. ବିଣ, (ଦୁର୍+ଲଭ୍ ଧାତୁ+କର୍ମ ଯ)—ଦୁର୍ଲଭ (ଦେଖ)
Durllabhya Durlabha (See).
(ଦୁର୍ଲ୍ଲଭ୍ୟା-ସ୍ତ୍ରୀ)
(ଦୁର୍ଲଭ୍ୟ-ଅନ୍ୟରୂପ)

**ଦୁର୍ଲ୍ଲଳ**—ସଂ. ବିଣ (ଦୁର୍+ଲଲ୍ ଧାତୁ=ପ୍ରଶ୍ରୟ ଦେବା+କର୍ମ, ଅ)—
Durllaḷa ଅତ୍ୟନ୍ତ ପ୍ରଶ୍ରୟପ୍ରାପ୍ତ; ଗେହ୍ଲା; ଦୁଲଣା—
(ଦୁର୍ଲ୍ଲଳା-ସ୍ତ୍ରୀ) Too much fondled; dandled (child).
ସଂ. ବି—ଦୁଶ୍ଚେଷ୍ଟିତ—Evil endeavour.

**ଦୁର୍ଲ୍ଲଳିତ**—ସଂ. ବିଣ. (ଦୁର୍+ଲଲ୍ ଧାତୁ=ପ୍ରଶ୍ରୟ ଦେବା; କର୍ମ. ତ)
Durllaḷita ଦୁର୍ଲ୍ଲଳ (ଦେଖ)—Durllaḷa (See).
(ଦୁର୍ଲ୍ଲଳିତା—ସ୍ତ୍ରୀ)

**ଦୁର୍ଲ୍ଲାଳନ**—ସଂ ବି ( କର୍ମଧା; ଦୁର୍+ଲାଳନ )—ପିଲାମାନଙ୍କୁ ଅତ୍ୟଧିକ
Durllāḷana ଗେହ୍ଲାକରି କରି ବଢ଼ାଇବା—Bringing up of children with excessive fondling.

**ଦୁର୍ଲ୍ଲେଖ୍ୟ**—ସଂ. ବି (କର୍ମଧା. ଦୁର୍+ଲେଖ୍ୟ=ଦଲିଲ)—୧ । ଗର୍ହିତ
Durllekhya ଲେଖା—1. Evil writing.
୨ । ମନ୍ଦ ହସ୍ତାକ୍ଷର—2. Bad handwriting.
୩ । ଜାଲ୍ ଦଲିଲ—3. Forged document.
୪ । ଦୁର୍ବୋଧ୍ୟ ଲେଖା—4 Illegible writing.
ବିଣ. (ବହୁବ୍ରୀହି)—ଦୁରକ୍ଷର; ଯାହା ସ୍ପଷ୍ଟ ପଢ଼ି ହୁଏ ନାହିଁ—
(ଦୁର୍ଲେଖ, ଦୁର୍ଲ୍ଲେଖ, ଦୁର୍ଲେଖ୍ୟ—ଅନ୍ୟରୂପ) Illegible,

**ଦୁର୍ହୃଦ୍**—ସଂ ବି (ଦୁର୍=ମନ୍ଦ+ହୃଦ୍=ହୃଦୟ, ଯାହାର; ବହୁବ୍ରୀହି)—
Durhṛud ଶତ୍ରୁ—Enemy,
(ବିପରୀତ-ସୁହୃଦ୍)
ଉତାର ହିଁ ଲ ସ୍ତୁତି ବାଚକ କରଥ
ଦୁର୍ହୃଦଙ୍କୁ ପୀଡ଼ା ଦେବାପାଇଁ ଯାଅ । କୃଷ୍ଣସିଂହ, ମହାଭାରତ ସଭା ।

ସଂ. ବିଣ—ଦୁର୍ହୃଦୟ (ଦେଖ)—Durhṛudaya (See),

**ଦୁର୍ହୃଦୟ**—ସଂ. ବିଣ. ପୁଂ—୧ । ଦୁଷ୍ଟ ଚିତ୍ତ; ଦୁଷ୍ଟାନ୍ତଃକରଣ—
Durhṛudaya 1, Wicked.
(ଦୁର୍ହୃଦୟା—ସ୍ତ୍ରୀ) ୨ । ଶତ୍ରୁଭାବାପନ୍ନ—2. Inimical.

**ଦୁଲ୍** (ଧାତୁ)—ସଂ—୧ । ଝୁଲିବା—1 To swing,
Dul (root) ୨ । ଉତ୍କ୍ଷେପ କରିବା—2. To throw up.

**ଦୁଲ୍**—ଦେ ଅ—ଦୁମ୍ ଦୁମ୍ (ଦେଖ)
Dul Dum-dum(See);

ଦେ. ବି (ବଣିଆ ଶବ୍ଦ)—ତଳ କାନର ଅଳଙ୍କାରବିଶେଷ—
An ornament worn on the lower part of the ear,

**ଦୁଲ୍(ଲୁ)କା(କେ)ଇବା**—ଦେ. କ୍ରି—ଦୁଲ୍‌କିବାର ଣିଜନ୍ତ ରୂପ—
Dul-(lu)kā (ke)ibā Causative form of Dul-kibā.
ଝିଗର ମା ଦେହ ଦୁଲୁକେଇ କହଇ—କୁନ୍ତଳାକୁମାରୀ, ଚଅକୁଣୀ ।

**ଦୁଲ୍(ଲୁ)କି**—ଦେ. ବି.—ଘୋଡ଼ାର ଧପୁଡ଼ିବା ଗତି; ଘୋଡ଼ାର ବେଗ-
Dul-(lu)ki ଗମନ—Trotting of a horse.
**ଦୁଲକୀ** (ଯଥା—ଏ ଗତିରେ ଘୋଡ଼ା ଗୋଡ଼ ଘୋଡ଼ାକୁ ପୃଥକ୍
**ଦୁଲକୀ** ପୃଥକ୍ ଉଠାଇ ଦ୍ରୁତଗତି କରେ ।)

**ଦୁଲ୍(ଲୁ)କିବା**—ଦେ. କ୍ରି.—୧ । ବହୁଲୋକର ପଦାଘାତ ବା ବାଦ୍ୟ-
Dul-(lu)kibā ଦ୍ୱାରା ଦୁଲ୍ ଦୁଲ୍ କମ୍ପିବା—1. To resound
**ଧମ ଧମ କରା** or vibrate with the sound of many
**ଦଲକନା** drums or many steps.
୨ । (ମେଘ) ଦୁମ୍‌କାଣି ବର୍ଷା ବର୍ଷିବା—
2. To rain in torrents; to rain cats and dogs

ଘରବୁଡ଼ ପାଣି ଅଣ୍ଟୁଏ ହେଲାଣି,
କଣ ବୋଲେ ମେଘ ଦୁଲୁକୁଛ—ଉଗ ।

୩ । (ଛାତି) ଭୟରେ ଥରିବା—
3. (the heart) To palpitate through fear.

**ଦୁଲ୍‌ଠା**—ପ୍ରାଦେ. (ସମ୍ବଲପୁର) ବି.—ଅଳନ୍ଦ; ବରଣ୍ଡା; ପିଣ୍ଡା—
Dul-ṭhā Veranda; portico

**ଦୁଲ୍‌ଦା(ଦୁ)ଲ୍**—ଦେ. ଅ.—ଦୁମ୍ ଦୁମ୍ (ଦେଖ)
Dul-dā(du)l Dum dum (See)

**ଦୁଲଣା**—ଦେ. ବଣ. ପୁଂ (ସ. ଦୁର୍ଲଳିତ)—ଗେହ୍ଲା—
Dulaṇā Dandled; to much fondled or caressed;
**ଆବଦେରେ** spoiled with fondling.
**ଲାଡ଼ଲା, ଦୁଲାଲ** ଦେ. ବି. ପୁଂ ଓ ସ୍ତ୍ରୀ (ସ. ଦୁର୍ଲଳ)—
(ଦୁଲଣୀ—ସ୍ତ୍ରୀ) ୧ । ପୁତ୍ର ବା କନ୍ୟା—
1. Son or daughter.
ଉରଗ ତୋଳାରେ ନୋଳାପ୍ରିୟ କନା ବିନ୍ଦୁ ଦୁଲଣ । ଭ୍ରଥାକାଥ, ଉଷା ।
୨ । ଗେହ୍ଲା ପୁଅ ବା ଝିଅ—
2. A spoilt boy or girl.

**ଦୁଲଭ**—ଗ୍ରା. ବଣ.—ଦୁର୍ଲ୍ଲଭ (ଦେଖ)
Dulabha Durllabha (See)
**ଦୁଲଭ** [illegible]

**ଦୁଲଭା**—ଦେ. ବି. (ସ. ଦୁର୍ଲଭା; କନ୍ତୁ ଦୁର୍ଲଭା ବା ଦୁର୍ଲଭା ଉଦ୍ଭ
Dulabhā ଗଛ)—୧ । ତୁଳସୀ ଜାତୀୟ ତୀବ୍ର ସୁଗନ୍ଧଯୁକ୍ତ ଗୁଳ୍ମ
**ବାବୁଇ ତୁଲସୀ, କାଲବାବଇ** ବିଶେଷ—1. Ocimum Basilicum;
**କାଲୀବାବରୀ ବର୍ବ** Ocimum Canum(Kirtikar),
**ସ.** ନାମ—ବର୍ବରୀ, କଠିଞ୍ଜର, [ଦ୍ର—ଏହାର ସାବଳା ପତ୍ର ତୁଳସୀ
ଖରେରକ, କାଳମାଳ, କବଳ, ପତ୍ର ଅପେକ୍ଷା ବଡ଼ ଓ ମସୃଣ, ଫୁଲ
ମାଳୁକ, କୃଷ୍ଣମଲ୍ଲିକା, ତୁଳସୀର ଜନ୍ମା ପରି (ଫୁଲର କଢ଼
ସୁମୁଖ, ସୁଗନ୍ଧ, ତନ୍ଦ୍ରାଳୁ କଳା ଓ ଫୁଟିଲା ଫୁଲ ଧଳା) । ଏହାକୁ
ଶୋଫଘ୍ନାଣୀ; ଅଜକ, ମୁସଲମାନ୍‌ମାନେ ଫାତିଆ ଆଦି ଉପଲକ୍ଷ-
ଅଜଗନ୍ଧିକା, ଗର୍ମ୍ମୀର ରେ (ହିନ୍ଦୁମାନେ ତୁଳସୀପତ୍ର ବ୍ୟବହାର
କଲା ପରି) ବ୍ୟବହାର କରନ୍ତି । ଏହାର ପତ୍ରର ରସ ଓ ମୂଳର
କ୍ୱାଥ ସେବନ କଲେ କୃମି, କୁଷ୍ଠ, କଫ, ବାତ, କ୍ଷୟ, ଶ୍ୱାସ, କାଶ,
ଦୌର୍ଗନ୍ଧ୍ୟ, ମଳରୋଧ, ଆନାହ, ଶୂଳ, ଅଗ୍ନିମାନ୍ଦ୍ୟ ଓ ଚର୍ମରୋଗ
ଉପଶାନ୍ତ ହୁଏ । ହସ୍ତ ଓ ପାଦର ଶୋଥରେ ଏହାର ପତ୍ରର ପ୍ରଲେପ
ହିତକର । ଏହାର ମଞ୍ଜି ଦାହ ଓ ବେଦନା ଯୁକ୍ତ ମୂତ୍ରକୃଚ୍ଛ୍ରରେ
ପ୍ରୟୋଗ କରାଯାଏ ।]
୨ । ସ୍ତ୍ରୀଲୋକଙ୍କ ନାମ—2 A name given to females,

**ଦୁଲା**—ପ୍ରାଦେ. (ବାଲେଶ୍ୱର) ବି—ଦୋଳା—
Dulā A swing,
ଦେ ବି. ସ୍ତ୍ରୀ—ଦୁଲାଇ (ଦେଖ)—Dulāi (See)

**ଦୁଲା**—ପ୍ରାଦେ. (ପୁରୀ; ବାଣପୁର) ବି.—କୋଠାର କଡ଼ି—
Dulā Beam of the roof of a building.
ପ୍ରାଦେ. (ସମ୍ବଲପୁର) ବଣ.—ଦୁହ୍ଲା (ଦେଖ)
Duhlā (See)
ପ୍ରାଦେ. (ଗଞ୍ଜାମ) ବି—ଅଟ୍ଟୁ କରିବା ପାଇଁ ଘରର କାନ୍ଥ ଉପରେ
ପକାଯିବା ଓସ୍ତ—Cross-beams on the walls over which a clay roof is built inside a thatch.

**ଦୁଲା(ଲେ)ଇ**—ଦେ. ବି (ହି. ଦୁଲାଇ; ସ. ତୁଲ=ତୁଳା)—ପତଳା
Dulā(le)i ଶେଯ; ଦୁଇ ପରସ୍ତ କନା ମଧ୍ୟରେ ସାମାନ୍ୟ ତୁଳା ଭରି
**ଦୁଲାଇ ଦୁଲାହ୍ଁ** ଶୀତ ବସ୍ତ୍ରବିଶେଷ—A thin quilt.

**ଦୁଲାଇବା**—ପ୍ରାଦେ. (ସିଂହଭୂମ) କ୍ରି.(ସ. ଦୁଲ୍ ଧାତୁ)—ଝୁଲାଇବା—
Dulāibā To hang.

**ଦୁଲା(ଲେ)ଈ**—ଦେ. ବି. ସ୍ତ୍ରୀ—୧ । ଗ୍ରାମଦେବତାଙ୍କ ନାମ—
Dulā(le)ī 1. Name of a village goddess.
(ଦୁଲାଦେଈ—ଅନ୍ୟରୂପ) ୨ । ସ୍ତ୍ରୀଲୋକଙ୍କ ନାମ—
2. Name given to females.

**ଦୁଲାମ**—ପ୍ରାଦେ. (ଗଞ୍ଜାମ). ବି.—ଦୁଲା (ଦେଖ)
Dulāma Dulā (See)

**ଦୁଲାଲ**—ଦେ. ବି. ପୁଂ (ସ. ଦୁର୍ଲଳିତ ବା ସ. ଦ୍ୱି=ଦ୍ୱିଗୁଣିତ ଓ
Dulāla ଲାଳିତ=ସ୍ନେହବର୍ଦ୍ଧିତ)—୧ । ପୁତ୍ର—1. Son.
**ଦୁଲାର**
**ଦୁଲାର, ଦୁଲହିନ** ସାଂଖ୍ୟ ଯୋଗର ପ୍ରକାଶିକ ଯେ କପିଳ,
ଅଟନ୍ତି ସେ ତାଙ୍କର ଚତୁର୍ଥ ଦୁଲାଳ । କୃଷ୍ଣସିଂହ, ମହାଭାରତ ।

୨ । ଗେହ୍ଲା ପିଲା—2 Spoilt child.
୩ । ପାଳିତପୁତ୍ର—3. Foster son.
ନନ୍ଦ ଦୁଲାଳ ବସୁଦେବ ବାଳ, କଂସ ଜଗଣା ହରେ । ଗୀତଗୋବନ୍ଦ. ଦୁଷ୍ଟ ।
ଦେ. ବଣ—୧ । ଗେହ୍ଲା—
1 Too much fondled; petted.
୨ । ସ୍ନେହପାଳିତ—2. Darling.

ଦୁଲାଳିଆ—ଦେ. ବଣ· ପୁଂ—ଦୁଲାଳ (ଦେଖ)
Dulālia Dulāla (See)

ଦୁଳି(ଳୀ)—ସ. ବ. ସ୍ତ୍ରୀ. (ଦୁଲ୍ ଧାତୁ=ଉପରକୁ ଫୋପାଡ଼ିବା+ଇ, ଈ; ଯେ କର୍ଦ୍ଦମ ଆଦ ଉପରକୁ ଫୋପାଡ଼େ)—
Duli(li) କମଠୀ, କଚ୍ଛପୀ—A female tortoise.

ଦୁଲିଚା—ଦେ. ବ—ସୂତାର କ୍ଷୁଦ୍ର ଗାଲିଚା—
Duliohā A small carpet made of cotton thread.
ହୁଲିଚା ଦୁଲିଚା

ଦୁଲି—ଦେ. ସ୍ତ୍ରୀ—ସ୍ତ୍ରୀଲୋକଙ୍କ ନାମ—
Duli A name given to females
(ଦୁଲ୍ଲ, ଦୁଲେଇ, ଦୁଲ୍ଲଦେଇ—ଅନ୍ୟରୂପ)

ଦୁଲ୍ଲଳା—ଦେ. ବ. ସ୍ତ୍ରୀ. (ସ. ଦୁର୍ଲ୍ଲଭା)—୧ । ଝିଅ—
Dullalā 1. Daughter.
আবদেবে মেযে ୨ । ଗେହ୍ଲା ଝିଅ—
ଦୁଲାରୀ 2. Beloved daughter.

ଦୁଲ୍ହା—ପ୍ରାଦେ. (ସମ୍ବଲପୁର) ବଣ—୧ । ଲୁଲିତ; ଶ୍ଳଥ—
Dul-hā 1. Wrinkled; slackened.
୨ । ଢୁଗୁଲା—2. Loose.

ଦୁଶଳ—ଦେ. ବଣ—ଦୁଷ୍ପ୍ରାପ୍ୟ—Rare.
Dusala ଯହିଁରେ ଛତ୍ର ଅବମୂଳ, ତହିଁରେ କ ଦ୍ରବ୍ୟ ଦୁଶଳ । ପ୍ରାଚୀ. ନଦ୍ୟ ମାହାତ୍ମ୍ୟ ।

ଦୁଶା—ଗ୍ରା. ବ—ଦୁଃଶାସନର ଡାକନାମ—
Dusā Name for calling Duhsāsana.

ଦୁଶାଲ—ବୈଦେ. ବ. (ଫା. ଦୋଶାଲ୍, ଭୁଲ ସ. ଦ୍ୱିଶାଟ)—
Dusālā ଦୋଶାଲ (ଦେଖ)
হুশাল ଦୁଶାଲା Dosālā (See)

ଦୁଶାସନ—ଗ୍ରା. ବ. (ସ. ଦୁଃଶାସନ)—ଦୁଃଶାସନ (ଦେଖ)
Dusāsana Duhsāsana (See)

ଦୁଶିବା—ଦେ· କି. (ସ. ଦୃଶ୍ ଧାତୁର କର୍ମବାଚ୍ୟ)—
Dusibā ୧ । ଦେଖାଯିବା; ଦୃଷ୍ଟ ହେବା—1. To be seen.
দেখান ଦିଖନା ୨ । ଦୃଷ୍ଟିଗୋଚର ହେବା—2. To appear.

ଦୁଶ୍ଚର—ସ. ବଣ. (ଦୁର୍+ଚର୍ ଧାତୁ+କର୍ମ.ଅ)—୧ । ଯେଉଁସ୍ଥାନରେ
Duschara ଅତି କଷ୍ଟରେ ବିଚରଣ କରାଯାଏ, ଦୁର୍ଗମ—
1. Impassable.
୨ । କୃଚ୍ଛ୍ରସାଧ୍ୟ, ଯାହା ଆଚରଣ କରିବା କଠିନ; ଦୁଷ୍କର—
2. Performable with difficulty.
ସ. ବ—୧ । ଶାମୁକା (ପ୍ରକୃତିବାଦ)—1. Oyster-shell.
୨ । ଭାଲୁ (ପ୍ରକୃତିବାଦ)—2. Bear.

ଦୁଶ୍ଚରିତ(ତ୍ର)—ସ. ବ [କର୍ମଧା; ଦୁଃ+ଚରିତ(ତ୍ର)=ଆଚରଣ,ସ୍ୱଭାବ]—
Duścharita(tra) ୧ । କୁସ୍ୱଭାବ—1. Bad nature.
[ଦୁଶ୍ଚରିତା(ତ୍ରା)—ସ୍ତ୍ରୀ] ୨ । ମନ୍ଦ ଆଚରଣ; କୁଚରିତ୍ର—
2. Bad character.
୩ । ମନ୍ଦବ୍ୟବହାର—3. Ill-behaviour.
ସ. ବଣ (ବହୁବ୍ରୀହି)—୧ । ନିନ୍ଦିତପ୍ରକୃତିବିଶିଷ୍ଟ—
1. Of bad character; bad-natured; vicious; immoral.
୨ । ମନ୍ଦବ୍ୟବହାରକାରୀ—2. Ill-behaved.

ଦୁଶ୍ଚର୍ମା—ସ. ବଣ (ବହୁବ୍ରୀହି; ଦୁର୍+ଚର୍ମନ୍; ୧ମା. ୧ବ)—
Duscharmā ୧ । ମନ୍ଦଚର୍ମବିଶିଷ୍ଟ—1. Having a rough skin or hide.
(ଦୁଶ୍ଚର୍ମ୍ମା—ଅନ୍ୟରୂପ)
୨ । ଯେଉଁ ପୁରୁଷର ଲିଙ୍ଗେନ୍ଦ୍ରିୟର ମୁହଁ ଢାଙ୍କିବା ଚମଡ଼ା ଜନ୍ମକାଳରୁ ନ ଥାଏ (ହି. ଶବ୍ଦସାଗର)—
2. ( a male ) Having no foreskin on his male organ since his birth.
[ ଦ୍ର—ଧର୍ମଶାସ୍ତ୍ରର ମତ ଏହି କି ଗୁରୁତଳ୍ପଗ ବ୍ୟକ୍ତିମାନେ ଜନ୍ମାନ୍ତରରେ ଦୁଶ୍ଚର୍ମୀ ହୋଇ ଜନ୍ମନ୍ତି । ବିନା ପ୍ରାୟଶ୍ଚିତ୍ତରେ ଏପରି ଲୋକ କୌଣସି ଧର୍ମକାର୍ଯ୍ୟ କରିବାର ଅଧିକାରୀ ନୁହନ୍ତି, ଏମନ୍ତ କି ବିନା ପ୍ରାୟଶ୍ଚିତ୍ତରେ ଏମାନଙ୍କର ଦାହକର୍ମ ବା ମୃତକକର୍ମ କରାଯାଇ ନ ପାରେ—ହି. ଶବ୍ଦସାଗର । ]
ସ. ବ—ମନ୍ଦ ଚମଡ଼ା—Bad leather; bad skin.

ଦୁଶ୍ଚିକିତ୍ସା—ସ. ବ (କର୍ମଧା; ଦୁର୍+ଚିକିତ୍ସା)—୧ । ଆୟୁର୍ବେଦବିରୁଦ୍ଧ
Duśchikitsā ଚିକିତ୍ସା—1. Treatment against the dictates and rules of the Āyurbeda.
୨ । ନିନ୍ଦିତ ବା ମନ୍ଦ ଚିକିତ୍ସା—
2. Bad or careless medical treatment.
୩ । ଅନାଡ଼ି ବୈଦ୍ୟଙ୍କ ଦ୍ୱାରା ଚିକିତ୍ସା—
3 Treatment by quacks; quackery.

ଦୁଶ୍ଚିକିତ୍ସ୍ୟ—ସ. ବଣ (ଦୁର୍+ଚିକିତ୍ସ୍ୟ)—ଯେଉଁ ରୋଗ ସହଜରେ
Duśchikitsya ଚିକିତ୍ସା କରି ଯାଇ ପାରେ ନାହିଁ; ଦୁର୍ବିରୋଗ୍ୟ—
ଦୁଶ୍ଚିକିତ୍ସ } ଅନ୍ୟରୂପ Incurable; curable with
ଦୁଶ୍ଚିକିତ୍ସମାସ୍ୟ } difficulty.

ଦୁଶ୍ଚିତ୍—ସ. ବ (ଦୁର୍+ଚିତ୍)—୧ । ଚିନ୍ତା; ଆଶଙ୍କା (ହି. ଶବ୍ଦସାଗର)—
Duśchit 1. Anxiety.
୨ । କିଂକର୍ତ୍ତବ୍ୟବିମୂଢ଼ତା (ହି. ଶବ୍ଦସାଗର)—
2. Perplexity.

ଦୁଶ୍ଚିନ୍ତା—ସ. ବ (କର୍ମଧା; ଦୁର୍+ଚିନ୍ତା)—ମନ୍ଦ ଚିନ୍ତା—
Duśchintā Evil thought; malevolence.

ଦୁଶ୍ଚିନ୍ତ୍ୟ—ସ. ବଣ (ଦୁର୍+ଚିନ୍ତ୍ୟ)—ଯାହା କଠିନତା ସହକାରେ ଚିନ୍ତା
Duśchintya କରାଯାଏ—That which can be
(ଦୁଶ୍ଚିନ୍ତନୀୟ—ଅନ୍ୟରୂପ) conceived with great difficulty.

ଦୁଶ୍ଚେଷ୍ଟା—ସ. ବ (କର୍ମଧା; ଦୁର୍+ଚେଷ୍ଟା)—୧ । କୁଆଚରଣ—
Duśchestā 1. Bad conduct; perversity.

୨ । ଅସୀମସାହସିକ ଚେଷ୍ଟା—
2. Fool-hardy endeavour.

ଦୁଶ୍ଚେଷ୍ଟିତ—ସ ବ (କର୍ମଧା; ଦୁର୍+ଚେଷ୍ଟିତ=ଚେଷ୍ଟା)—
Duścheshṭita ଦୁଶ୍ଚେଷ୍ଟା (ଦେଖ)—Duścheshṭā (See).
ସ. ବିଣ—ଦୁଷ୍ଟରତ—Ill-behaved; perverse.

ଦୁଶ୍ଚ୍ୟବନ —ସ. ବ (ବହୁବ୍ରୀହି; ଦୁର୍+ଚ୍ୟବନ)—ଇନ୍ଦ୍ର; ଦେବରାଜ—
Duśchyabana Indra.
[ ଦ୍ର—ଇନ୍ଦ୍ର, ଚ୍ୟବନ ମୁନଙ୍କ ପ୍ରତି ବଜ୍ର ଉତ୍ତୋଳନ କରିବାରୁ ତାଙ୍କ ଅଭିଶାପରେ ଇନ୍ଦ୍ରଙ୍କ ହସ୍ତ ସ୍ତମ୍ଭିତ ହୋଇଥିଲା ।]
ସ. ବିଣ. ପୁଂ ( ଦୁର୍+ଚ୍ୟୁ ଧାତୁ+କର୍ତ୍ତୃ. ଅନ )—ଯେ ସହଜରେ ବିଚଳିତ ହୁଏ ନାହିଁ—
Which can be displaced with difficulty.

ଦୁଚ୍ଛେଦ୍ୟ—ସ. ବିଣ ( ଦୁର୍+ଛିଦ୍ ଧାତୁ+କର୍ମ. ଯ )—
Duśchhedya ଯାହା ସହଜରେ ଛିଣ୍ଡା ଯାଇ ନ ପାରେ—
Difficult to cut.

ଦୁଷ୍ (ଧାତୁ)—ସ—୧ । ଦୋଷ ଦେବା—1. To blame.
Dush (root) ୨ । ଦୂଷିତ କରିବା—2. To become too.

ଦୁଷୀ—ଗ୍ରାଦେ. ( ସମ୍ବଲପୁର ) ବ—ଜ୍ୟୋତିଷୀ—
Dushī Astrologer.

ଦୁଷ୍କର—ସ. ବିଣ. ( ଦୁର୍+କୃ ଧାତୁ+କର୍ମ. ଅ )—
Dushkara ୧ । ଅତି କଷ୍ଟସାଧ୍ୟ—1. Performable
(ସୁକର—ବିପରୀତ) with difficulty; hard to do.
୨ । ଅସାଧ୍ୟ; ଦୁଃସାଧ୍ୟ—2 Impracticable.
୩ । ଦୁରନ୍ତ—3. Fierce.
ସ. ବ—ଆକାଶ ( ହି. ଶବ୍ଦସାଗର )—The sky.

ଦୁଷ୍କର୍ମ—ସ. ବ. ( ଦୁର୍+କର୍ମନ୍, କର୍ମଧାରୟ )—
Dushkarma ୧ । ଅକାର୍ଯ୍ୟ; ମନ୍ଦ କାର୍ଯ୍ୟ—
1. Evil act; bad act; misdeed.
୨ । ଅପରାଧ—2. Crime; offence.
୩ । ପାପ—3. Sin.
୪ । ଦୁର୍ଭାଗ୍ୟ—4. Ill luck; misfortune.

ଦୁଷ୍କର୍ମା—ସ. ବିଣ. ( ବହୁବ୍ରୀହି; ଦୁର୍+କର୍ମନ୍; ୧ମା. ୧ବ )—
Dushkarmā ୧ । କୁକର୍ମନିରତ—1. Bent on evil.
୨ । ହତଭାଗ୍ୟ—2. Unfortunate; unlucky.
୩ । ପାପୀ—3. Sinful.

ଦୁଷ୍କର୍ମାନ୍ୱିତ—ସ. ବିଣ. ପୁଂ. ( ୩ୟା ତତ୍; ଦୁଷ୍କର୍ମ+ଅନ୍ୱିତ )—
Dushkarmānwita ଦୁଷ୍କର୍ମା (ଦେଖ)
(ଦୁଷ୍କର୍ମାନ୍ୱିତା—ସ୍ତ୍ରୀ) Dushkarmā ( See )

ଦୁଷ୍କାର୍ଯ୍ୟ—[illegible]—ଦୁଷ୍କ୍ରିୟା (ଦେଖ)
Dushkarjya [illegible] Dushkriyā ( See )

ଦୁଷ୍କାଳ—ସ. ବ. ( କର୍ମଧା; ଦୁର୍+କାଳ )—
Dushkāla ୧ । ଅକାଳ; ଦୁଃସମୟ—1. Bad times.
୨ । ଯେଉଁ କାଳରେ ଯେଉଁ କର୍ମ ବିହିତ ଅଛି ତାହାର ବ୍ୟତିକ୍ରାନ୍ତ କାଳ—2. Unsuitable time.

୩ । ଶିବ—3 Siba.

ଦୁଷ୍କୁଳ—ସ. ବ. ( କର୍ମଧା; ଦୁର୍+କୁଳ )—
Dushkula ଅକୁଳ; ନୀଚ ବଂଶ—
Low family; base family.
(ଦୁଷ୍କୁଳା—ସ୍ତ୍ରୀ) ସ. ବିଣ. ପୁଂ—ଦୁଷ୍କୁଳୀନ ( ଦେଖ )
Dushkulīna ( See )

ଦୁଷ୍କୁଳୀନ—ସ. ବିଣ. ପୁଂ. ( ଦୁଷ୍କୁଳ+ଜାତାର୍ଥରେ ଈନ )—
Dushkulīna ନୀଚବଂଶୋଦ୍ଭବ, ଅସତ୍କୁଳଜାତ—
(ଦୁଷ୍କୁଳୀନା—ସ୍ତ୍ରୀ) Of low birth; sprung from a low family; base-born

ଦୁଷ୍କୃତ—ସ. ବ. ( ଦୁର୍+କୃତ )—
Dushkṛuta ୧ । କୁକାର୍ଯ୍ୟ—1. Evil act; misdeed
(ସୁକୃତ—ବିପରୀତ) ୨ । ପାପ—2 Sin; guilt; crime.
୩ । ଦୁର ଦୃଷ୍ଟ—3. Misfortune.
(ଦୁଷ୍କୃତା—ସ୍ତ୍ରୀ) ସ ବିଣ—୧ । ଅସଦୁପାୟରେ ଅନୁଷ୍ଠିତ—
1. Brought about by foul means.
୨ । ପାପିଷ୍ଠ—2. Sinning.
୩ । ପାପଜନକ—3. Sinful.
୪ । ପାପଯୁକ୍ତ—4. Addicted to sin

ଦୁଷ୍କୃତି—ସ. ବ. (ଦୁର୍+କୃତି)—ଦୁଷ୍କୃତ ( ଦେଖ )
Dushkṛuti Dushkṛuta ( See )

ଦୁଷ୍କୃତୀ—ସ. ବିଣ. ପୁଂ. ( ଦୁଷ୍କୃତ+ଇନ୍; ୧ମା. ୧ବ )—
Dushkṛutī ପାପାଚାରୀ—Sinful; sinning.
(ଦୁଷ୍କୃତିନୀ—ସ୍ତ୍ରୀ)

ଦୁଷ୍କ୍ରମ—ସ. ବ. ( କର୍ମଧା; ଦୁର୍+କ୍ରମ)—
Dushkrama ମନ୍ଦ କ୍ରମ—Bad sequence.
ସ. ବିଣ. ( ବହୁବ୍ରୀହି )—ଯହିଁରେ କ୍ରମ ବା ଧାରାବାହିକତାର ଭଙ୍ଗ ଘଟିଅଛି—Having bad sequence.

ଦୁଷ୍କ୍ରମତା—ସ. ବ. (ଦୁଷ୍କ୍ରମ+ଭାବ. ତା)—ଅର୍ଥଦୋଷବିଶେଷ; ଯେଉଁ
Dushkramatā ଦୋଷ ଥିଲେ ଅର୍ଥକଥନରେ କ୍ରମଭଙ୍ଗ ହୁଏ—
A fault in rhetoric.
ପିଇଲେ ଭୃଥର ପଣ। ପଛରେ ପ୍ରେତ-ଅଶନ।
ମଣାପର ମ ଶ୍ର ସେବାଇଲେ ଯେ । ଭଞ୍ଜ. ଲାବଣ୍ୟବତୀ ।
[ ଦ୍ର—ଆଗେ ପିଇବା ପରେ ଖାଇବା ଏହା କ୍ରମବିପର୍ଯ୍ୟୟ । ]

ଦୁଷ୍କ୍ରିୟ—ସ. ବିଣ. ପୁଂ. (ବହୁବ୍ରୀହି; ଦୁର୍+କ୍ରିୟା)—
Dushkriya ଯେ ମନ୍ଦ କାର୍ଯ୍ୟ କରେ—Doing evil acts;
(ଦୁଷ୍କ୍ରିୟା—ସ୍ତ୍ରୀ) of bad conduct.

ଦୁଷ୍କ୍ରିୟା—ସ. ବ. (କର୍ମଧା; ଦୁର୍+କ୍ରିୟା)—ମନ୍ଦକାର୍ଯ୍ୟ; କୁକାର୍ଯ୍ୟ—
Dushkriyā Bad act.
ସ. ବିଣ. ସ୍ତ୍ରୀ. (ଦୁଷ୍କ୍ରିୟ+ସ୍ତ୍ରୀ. ଆ)—ଦୁଷ୍କ୍ରିୟର ସ୍ତ୍ରୀଲିଙ୍ଗ—
Feminine of Dushkriya.

ଦୁଷ୍କ୍ରିୟାସକ୍ତ—ସ. ବିଣ. ପୁଂ. (୭ମୀ ତତ୍; ଦୁଷ୍କ୍ରିୟା+ଆସକ୍ତ)—
Dushkriyāsakta ଦୁଷ୍କର୍ମରେ ଅନୁରକ୍ତ—
(ଦୁଷ୍କ୍ରିୟାସକ୍ତା—ସ୍ତ୍ରୀ) Addicted to evil deeds.
(ଦୁଷ୍କ୍ରିୟାରତ—ଅନ୍ୟରୂପ)

ଦୁଷ୍କ୍ରୀତ — ସ. ବଣ. (ଦୁର୍ + କ୍ରୀ ଧାତୁ + କର୍ମ. ତ)—
Dushkrita ମହର୍ଘରେ କଣା ଯାଇଥିବା—
Purchased dearly, dearly paid for; purchased at an exorbitant price.

ଦୁଷ୍କ୍ରେୟ—ସ. ବଣ. (ଦୁର୍ + କ୍ରେୟ)—ଯାହା ସହଜରେ କ୍ରୟ କରାଯାଇ
Dushkreya ନ ପାରେ; ମହର୍ଘ—Dear in price.

ଦୁଷ୍ଖଦର—ସ. ବ—ଏକପ୍ରକାର ହଳଦିଆ ବା ଫକ୍କା ଖଇର; ପାକଡ଼
Dushkhadira ଖଇର— Brown catechu
ଅନ୍ୟ ସଂ. ନାମ—କାମ୍ଭୋଜୀ: [ ଦ୍ର—ଏହାର ଗଛ କଳା ଖଇରର ଲାଲସ୍ୱନ; ଗୋରଷ୍ଠ; ଅମସ୍ୱନ; ଗଛ ଅପେକ୍ଷା ଛୋଟ; ଏହାର ଖଇର ପତ୍ରଠାରୁ; ବହୁସାର, ମହାସାର; ପାଣ୍ଡୁର ବା ହଳଦିଆ ଓ ଖାଇବାକୁ କ୍ଷୁଦ୍‌ଖଦିର କଡ଼ା ଓ କଷା ଲାଗେ । ]

ଦୁଷ୍ଟ—ସଂ. ବଣ. ପୁଂ. (ଦୁଷ୍ ଧାତୁ = ବିକୃତ ହେବା + କର୍ତ୍ତୃ. ତ)—
Dushta ୧ । ଦୋଷଯୁକ୍ତ; ଦୋଷବିଶିଷ୍ଟ—
(ଦୁଷ୍ଟା—ସ୍ତ୍ରୀ) 1. Faulty; defective.
ଦୁଷ୍ଟତା } ବି. ୨ । ଅପବିତ୍ର—2 Tainted; defiled.
ଦୁଷ୍ଟତ୍ୱ } ୩ । ଦୁର୍ଜନ, ଖଳ—
3. Wicked, depraved.
୪ । ମନ୍ଦ—4. Bad.
୫ । ନୀଚ—5. Low; mean; vile.
୬ । ଅପରାଧୀ - 6. Guilty; criminal.
୭ । ମନ୍ଦପ୍ରକୃତିକ—7 Naughty; wanton.
୮ । ଅନୁଚିତ—8. Improper.
୯ । (ବୈଦ୍ୟକ) କୁପିତ (ବାତ, ପିତ୍ତ, କଫ)—
9. (medical science) Become noxious.
ଦେ. ବ—୧ । ଦୁର୍ଜନ ବ୍ୟକ୍ତି—
1. Wicked person; a bad man.
୨ । କୁଷ୍ଠରୋଗ (ହି. ଶବ୍ଦସାଗର)—2. Leprosy.

ଦୁଷ୍ଟଚାରୀ—ସ. ବଣ. ପୁଂ (ଦୁଷ୍ଟ + ଚର୍ ଧାତୁ + କର୍ତ୍ତୃ. ଇନ୍ ୧ମା. ୧ବ) ·
Dushtachari ୧ । ଦୁଷ୍କର୍ମରେ ରତ—1. Addicted to evil acts·
(ଦୁଷ୍ଟଚାରିଣୀ-ସ୍ତ୍ରୀ)
୨ । ପାପିଷ୍ଠ —2 Sinful.
୩ । ଖଳ; ଦୁର୍ଜନ—3. Wicked.

ଦୁଷ୍ଟଚେତା(ତାଃ)—ସ. ବଣ. (ବହୁବ୍ରୀହି; ଦୁଷ୍ଟ + ଚେତସ୍; ୧ମା. ୧ବ)—
Dushtacheta(tah) ୧ । ଦୁଷ୍ଟ ବା ମନ୍ଦ ଚିନ୍ତା କରିବା(ବ୍ୟକ୍ତି)—
1. Of evil thought.
୨ । ଅହିତାକାଂକ୍ଷୀ—2. Wishing evil to others
୩ । କପଟୀ—Hypocritical.

ଦୁଷ୍ଟପଣ—ଦେ. ବ.—ଦୁଷ୍ଟତା—Mischievousness; wickedness; depravity; wantonness.
Dushtapana
ଦୁଷ୍ଟପାନା, ଦୁଷ୍ଟାମି, ଦୁଷ୍ଟୁମି; ଦୁଷ୍ଟପନା
(ଦୁଷ୍ଟପଣିଆ—ଅନ୍ୟରୂପ)

ଦୁଷ୍ଟ ପ୍ରକୃତି—ସ.ବ (କର୍ମଧା,ଦୁଷ୍ଟ + ପ୍ରକୃତି)—ମନ୍ଦପ୍ରକୃତି; ଖଳବୁଦ୍ଧି —
Dushta prakruti Wicked nature.
ସ. ବଣ (ବହୁବ୍ରୀହି)—କୁବୁଦ୍ଧି ବିଶିଷ୍ଟ —Of wicked disposition.

ଦୁଷ୍ଟ ବୁଦ୍ଧି —ସ. ବ ଓ ବଣ—ଦୁଷ୍ଟ ପ୍ରକୃତି (ଦେଖ)
Dushta buddhi Dushta prakruti (See).

ଦୁଷ୍ଟବ୍ରଣ—ସ. ବ. (କର୍ମଧା. ଦୁଷ୍ଟ + ବ୍ରଣ)—ଯେଉଁ ବ୍ରଣ ବା ଘାଆ
Dushta brana ବିଶେଷ କଷ୍ଟ ଦିଏ ଏବଂ ଶୀଘ୍ର ଭଲ ହୁଏ ନାହିଁ—
Malignant tumour, boil or sore.
[ଦ୍ର—ଏ ଘାଉରୁ ଦୁର୍ଗନ୍ଧ ବାହାରେ ଓ ଏହା ଦୁରାରୋଗ୍ୟ । ହିନ୍ଦୁ ଧର୍ମଶାସ୍ତ୍ରରେ ଏହା ପୂର୍ବଜନ୍ମ କୃତ ମହାପାତକର ଫଳ ବୋଲି ସ୍ୱୀକୃତ ହୋଇଅଛି । ବିନା ପ୍ରାୟଶ୍ଚିତ୍ତରେ ଏ ରୋଗୀ ଅସ୍ପୃଶ୍ୟ ଓ ଏହାର ଦାହକର୍ମ ଓ ମୃତକ ସଂସ୍କାର ନିଷିଦ୍ଧ । ହି ଶବ୍ଦସାଗର ।]

ଦୁଷ୍ଟ ମତି—ସଂ ବ. ଓ ବଣ—ଦୁଷ୍ଟ ପ୍ରକୃତି (ଦେଖ)
Dushta mati Dushta prakruti (See)

ଦୁଷ୍ଟସାକ୍ଷୀ—ସ. ବ (ହିନ୍ଦୁସ୍ମୃତି) ଯେଉଁ ସାକ୍ଷୀ ମିଥ୍ୟାସାକ୍ଷ୍ୟ ଦିଏ ବା
Dushta sakshi ବ୍ୟାଧିଗ୍ରସ୍ତ ବା ମହାପାତକୀ କିମ୍ବା ଯାହାର କୌଣସି ପକ୍ଷ ସଙ୍ଗେ ଅର୍ଥସମ୍ବନ୍ଧ, ମିତ୍ରତା ବା ଶତ୍ରୁତା ଅଛି—
(Hindu law) A witness who speaks falsely or is suffering from a serious malady or is interested in a party or is inimical to a party.
[ଦ୍ର—ଏପରି ସାକ୍ଷୀଠାରୁ ପ୍ରମାଣ ଗ୍ରହଣ କରାଯିବା ହିନ୍ଦୁ ସ୍ମୃତି ଶାସ୍ତ୍ରରେ ନିଷିଦ୍ଧ ।]

ଦୁଷ୍ଟ ସୀମା —ଦେ. ବିଣ—ଅତିଦୁଷ୍ଟ —
Dushta sima Very wicked.
କାଳ ଗ୍ରାସିଲେ ପ୍ରାଣୀ କହେ କରୁଣବାଣୀ
ସହକେ ତ ଏ ଦୁଷ୍ଟ ସୀମା—ଗୋଳକୃଷ୍ଣ ରସକଲ୍ଲୋଳ ।

ଦୁଷ୍ଟ ସ୍ୱଭାବ—ସଂ· ବି ଓ ବିଣ ପୁଂ—ଦୁଷ୍ଟ ପ୍ରକୃତି (ଦେଖ)
Dushta swabhaba Dushta prakruti (See)
(ଦୁଷ୍ଟ ସ୍ୱଭାବା—ସ୍ତ୍ରୀ)

ଦୁଷ୍ଟା—ସଂ. ବଣ. ସ୍ତ୍ରୀ (ଦୁଷ୍ଟ + ସ୍ତ୍ରୀ. ଆ)—୧ । ନଷ୍ଟା; ବ୍ୟଭିଚାରିଣୀ;
Dushta କୁଳଟା; ଭ୍ରଷ୍ଟା—1. Dissolute; adulterous (woman); unchaste.
୨ । ମନ୍ଦ ସ୍ୱଭାବଯୁକ୍ତା—2. Evil natured (woman).

ଦୁଷ୍ଟାଙ୍ଗି—ଗ୍ରା. ବି—ଦୁଷ୍ଟାମି; ଦୁଷ୍ଟପଣ—
Dushtangi Wickedness; villainy.

ଦୁଷ୍ଟାଚାର—ସ. ବ. (କର୍ମଧା; ଦୁଷ୍ଟ + ଆଚାର) — ମନ୍ଦ ଆଚରଣ—
Dushtachara · Bad conduct; bad character.
(ଦୁଷ୍ଟାଚରଣ—ଅନ୍ୟରୂପ)
(ଦୁଷ୍ଟାଚାରା – ସ୍ତ୍ରୀ) ସ. ବଣ (ବହୁବ୍ରୀହି) ମନ୍ଦ ଆଚରଣବିଶିଷ୍ଟ —
Of evil conduct or character.

ଦୁଷ୍ଟାଚାରୀ – ସଂ. ବଣ. ପୁଂ – ଦୁଷ୍ଟାଚାର ( ଦେଖ )
Dushtachari Dushtachara ( See )
(ଦୁଷ୍ଟାଚାରିଣୀ – ସ୍ତ୍ରୀ)

ଦୁଷ୍ଟାତ୍ମା—ସଂ. ବିଣ (ବହୁବ୍ରୀହି; ଦୁଷ୍ଟ + ଆତ୍ମନ୍; ୧ମା. ୧ବ)—
Dushtatma ୧ । ଦୁରାଶୟ—1. Evil-intentioned.
(ଦୁଷ୍ଟାତ୍ମତା—ବ ୨ । ଦୁଷ୍ଟ ପ୍ରକୃତିକ—2. Of evil nature.

ଦୁଷ୍ଟାନ୍ନ—ସଂ. ବି. (କର୍ମଧା; ଦୁଷ୍ଟ+ଅନ୍ନ)—୧ । ବଗିଡ଼ିଥିବା ଅନ୍ନ; ସଢ଼ା ବା ବାସୀ ଭାତ, ପର୍ଯ୍ୟୁଷିତାନ୍ନ—1. Stale and spoiled boiled rice.
Dushtānna

୨ । କୁତ୍ସିତ ଖାଦ୍ୟ—2. Bad food.

୩ । ପାପଦ୍ୱାରା ଅର୍ଜିତ ପ୍ରଦତ୍ତ ଅନ୍ନ—
3. Food earned by sin.

୪ । ନୀଚ ବ୍ୟକ୍ତିର ପ୍ରଦତ୍ତ ଅନ୍ନ—
4 Food given by a low or mean person.

ଦୁଷ୍ଟା ଭାର୍ଯ୍ୟା—ସଂ. ବି. ସ୍ତ୍ରୀ (କର୍ମଧା; ଦୁଷ୍ଟା+ଭାର୍ଯ୍ୟା)—୧ । ନଷ୍ଟା ସ୍ତ୍ରୀ—
Dushtā bhārjyā 1. A wife committing adultery.

୨ । ଅଣ୍ଡିରଚଣ୍ଡୀ ସ୍ତ୍ରୀ—
2. A vixen; a shrew; a virago.

ଦୁଷ୍ଟାମି—ଦେ. ବି (ବଙ୍ଗଳାରୁ ଅନୁକୃତ)—ଦୁଷ୍ଟପଣ; ଦୁଷ୍ଟତା—
Dushtāmi Wickedness; wantonness.
ଦୁଷ୍ଟାମି; ଦୁଷ୍ଟୁମି, दुष्टपना; खोटाइ

ଦୁଷ୍ଟି—ଗ୍ରା. ବି (ସଂ. ଦୃଷ୍ଟି)—ଦୃଷ୍ଟି ( ଦେଖ )
Dushti Drushti ( See )
ଦିଷ୍ଟି ସଂ. ବି—(ଦୁଷ୍ ଧାତୁ=ବିକୃତ ହେବା+ଭାବ. ତି)—
ଦ୍ରୋଠ ଦୋଷ; ବିକାର—Defect; flaw.

ଦୁଷ୍ଟୀ—ପ୍ରାଦେ. ( ବାଲେଶ୍ୱର ) ବିଣ. ସ୍ତ୍ରୀ—ଦୁଷ୍ଟର ସ୍ତ୍ରୀଲିଙ୍ଗ—
Dushtī Feminine of Dushta.
( ଯଥା—ଦୁଷ୍ଟୀ ଟୋକୀ—ବୈଷ୍ଣବଚରଣ. ମନେ ମନେ । )

ଦୁଷ୍ଟୁ—ଗ୍ରା. ବିଣ ( ସଂ. ଦୁଷ୍ଟ; ବଙ୍ଗଳାରୁ ଅନୁକୃତ )—ଦୁଷ୍ଟ—
Dushtu Wicked; naughty.
ମୋ କନ୍ହେଇ ଭାରି ଦୁଷ୍ଟୁ; କହୁଣୀ ମାରଇ ଲୁହିଲୁହି ।
ଦୁର୍‌ପଲା ଦୁର୍‌ପଲା । କାହାଣୀ ଗୀତ ।

ଦୁଷ୍ପଚ—ସଂ. ବିଣ. ( ଦୁର୍=କଷ୍ଟ ବା ଦୁଃଖରେ+ପଚ୍ ଧାତୁ+କର୍ମ. ଅ)—ଯାହା ସହଜରେ ବା ଶୀଘ୍ର ଜୀର୍ଣ୍ଣ ହୁଏ ନାହିଁ—
Dushpacha Not easily or soon digested; indigestible.

ଦୁଷ୍ପଦ—ସଂ. ବି (ଦୁର୍+ପଦ ଧାତୁ=ପାଇବା+କର୍ମ. ଅ)—ଦୁଷ୍ପ୍ରାପ୍ୟ
Dushpada ( ହି. ଶବ୍ଦସାଗର )—Not easily attainable.

ଦୁଷ୍ପରାଜୟ—ସଂ. ବିଣ (ବହୁବ୍ରୀହି; ଦୁର୍+ପରାଜୟ)—ଯାହାକୁ ସହଜରେ ପରାଜୟ କରାଯାଇ ନ ପାରେ; ଅଜେୟ; ଦୁର୍ଜୟ—
Dushparājaya Invincible; difficult to conquer.
ସଂ. ବି—ଧୃତରାଷ୍ଟ୍ରଙ୍କ ଏକ ପୁତ୍ର—
Name of a son of Dhrutarāshtra.

ଦୁଷ୍ପରିହର—ସଂ. ବିଣ. ( ଦୁର୍+ପରି+ହୃ ଧାତୁ+କର୍ମ. ଅ )—ଯାହାକୁ ସହଜରେ ପରିହାର ବା ତ୍ୟାଗ କରାଯାଇ ନ ପାରେ—Difficult to be given up; not easily avoidable.
Dushparihara

ଦୁଷ୍ପରିହରଣୀୟ—ସଂ. ବିଣ. (ଦୁର୍+ପରି+ହୃ ଧାତୁ+କର୍ମ. ଅନୀୟ)—
Dushpariharanīya ଦୁଷ୍ପରିହର ( ଦେଖ ) Dushparihara ( See )

ଦୁଷ୍ପରିହାର୍ଯ୍ୟ—ସଂ. ବିଣ—ଦୁଷ୍ପରିହର ( ଦେଖ )
Dushparihārjya Dushparihara ( See )

ଦୁଷ୍ପର୍ଶ—ସଂ. ବିଣ. ( ବହୁବ୍ରୀହି; ଦୁର୍+ସ୍ପର୍ଶ )—
Dushparśa ୧ । ଯାହାକୁ ଛୁଇଁବା କଷ୍ଟକର—
1. Touchable with difficulty.

୨ । ଦୁଷ୍ପ୍ରାପ୍ୟ (ହି. ଶବ୍ଦସାଗର)—
2. Not easily attainable

ଦୁଷ୍ପର୍ଶା—ସଂ. ବି.—ଦୁରାଲଭା (ଦେଖ) [ହରେକୃଷ୍ଣ. ଦ୍ରବ୍ୟଗୁଣ]
Dushparśā Durālabhā (See)

ଦୁଷ୍ପାଚ୍ୟ—ସଂ. ବିଣ. (ଦୁର୍+ପଚ୍ ଧାତୁ+କର୍ମ ଯ)—
Dushpāchya ଦୁଷ୍ପଚ (ଦେଖ)—Dushpacha (See)

ଦୁଷ୍ପାର—ସଂ. ବିଣ. (ଦୁର୍+ପାର)—୧ । ମନୁଷ୍ୟ ଯାହାକୁ ସହଜରେ ପାର ହୋଇ ନ ପାରେ—1. That which can not be easily crossed over.
Dushpāra

୨ । ଦୁଃସାଧ (ହି. ଶବ୍ଦସାଗର)—
2. Attainable with difficulty.

ଦୁଷ୍ପୁତ୍ର—ସଂ. ବି. (କର୍ମଧା, ଦୁର୍+ପୁତ୍ର)—କୁପୁତ୍ର—
Dushputra A bad or undutiful son.

ଦୁଷ୍ପୂର—ସଂ. ବିଣ—୧ । ଯାହା ସହଜରେ ପୂର୍ଣ୍ଣ ହୋଇ ନ ପାରେ—
Dushpūra 1 Which can not be filled up easily.
୨ । ଅନିବାର୍ଯ୍ୟ (ହି. ଶବ୍ଦସାଗର)—2. Unpreventible.

ଦୁଷ୍ପ୍ରକୃତି—ସଂ. ବି. (କର୍ମଧା;ଦୁର୍+ପ୍ରକୃତି)—ମନ୍ଦ ପ୍ରକୃତି—
Dushprakruti Evil nature.
ସଂ. ବିଣ.—ଦୁଃଶୀଳ—Of evil nature.

ଦୁଷ୍ପ୍ରଧର୍ଷ—ସଂ. ବିଣ. (ଦୁର୍+ପ୍ର+ଧୃଷ୍ ଧାତୁ+କର୍ମ. ଅ)—
Dushpradharsha ଯାହାକୁ ସହଜରେ ଆକ୍ରମଣ କରାଯାଇ ନ ପାରେ; ଅଧର୍ଷଣୀୟ; ଦୁର୍ଦ୍ଧର୍ଷ—
(ଦୁଷ୍ପ୍ରଧର୍ଷା—ସ୍ତ୍ରୀ)
(ଦୁଷ୍ପ୍ରଧର୍ଷତା—ବି) Hard to assail; unassailable.

ଦୁଷ୍ପ୍ରବୃତ୍ତି—ସଂ. ବି. (କର୍ମଧା; ଦୁର୍ ପ୍ରବୃତ୍ତି)—କୁପ୍ରବୃତ୍ତି; ମନ୍ଦ ପ୍ରବୃତ୍ତି—
Dushprabrutti Evil disposition or inclination.

ଦୁଷ୍ପ୍ରବେଶ—ସଂ. ବିଣ. (ଦୁର୍+ପ୍ର+ବିଶ୍ ଧାତୁ+କର୍ମ. ଅ)—
Dushprabeśa ଯାହା ମଧ୍ୟରେ ସହଜରେ ପ୍ରବେଶ କରାଯାଇ ନ ପାରେ—Difficult to enter; impassable.

ଦୁଷ୍ପ୍ରମେୟ—ସଂ. ବିଣ ( ଦୁର୍+ପ୍ରମେୟ )—ଅପରିମେୟ; ଯାହା ପରିମାଣ କରିବା କଷ୍ଟକର—Difficult to measure.
Dushprameya

ଦୁଷ୍ପ୍ରସହ—ସଂ. ବିଣ ( ଦୁର୍+ପ୍ର+ସହ ଧାତୁ+କର୍ମ. ଅ )—ଯାହା ସହ୍ୟ କରିବା କଷ୍ଟକର—Hard to endure; difficult to be borne.
Dushprasaha

ଦୁଷ୍ପ୍ରାପ(ପ୍ୟ)—ସଂ. ବିଣ (ଦୁର୍+ପ୍ର+ଆପ୍ ଧାତୁ+କର୍ମ. ଅ)—
Dushprāpa(pya) ଯାହା ସହଜରେ ମିଳେ ନାହିଁ; ଦୁର୍ଲଭ—
(ସୁପ୍ରାପ୍ୟ—ବିପରୀତ) Difficult to obtain; rare; scarce.

ଦୁଷ୍ପ୍ରେକ୍ଷ(କ୍ଷ୍ୟ)—ସଂ. ବିଣ (ଦୁର୍+ପ୍ର+ଈକ୍ଷ ଧାତୁ+କର୍ମ. ଅ; ଯ)—
Dushpreksha(kshya) ୧ । ଯାହାକୁ ଚାହିଁବା କଷ୍ଟକର—
1. Difficult to look at.

୨ । ଦୁର୍ଦ୍ଦର୍ଶ; ଭୀଷଣ—2. Terrific to look at.

ଦୁଷ୍ମନ୍ତ—ସଂ. ବି—(ଦୁଷ୍=ଦୋଷୀ+ମନ୍ ଧାତୁ=ବୋଧ କରିବା+ତ; Dushmanta ଶକୁନ୍ତଳାଙ୍କୁ ପରିତ୍ୟାଗ କରିଥିବାରୁ ଯେ ଆପଣାକୁ (ଦୁଷ୍ୟନ୍ତ—ଅନ୍ୟରୂପ) ଦୋଷୀ ବୋଧ କରିଥିଲେ)—ପୁରୁବଂଶୀୟ ଏକ ରାଜାଙ୍କ ପୁତ୍ର ଓ ଭରତ ରାଜାଙ୍କ ପିତା; ଶକୁନ୍ତଳାଙ୍କ ସ୍ୱାମୀ; କାଳିଦାସଙ୍କ ଅଭିଜ୍ଞାନଶକୁନ୍ତଳ ନାଟକର ନାୟକ—The father of king Bharata (the hero of Kālidāsa's drama Śakuntala.

ଦୁସ୍‌ମନ୍—ବୈଦେ. ବିଣ. (ଫା.)—୧ । ଶତ୍ରୁଭାବାପନ୍ନ— Dus-man 1. Inimical; hostile; unfriendly.
दुसमन; दुश्मन ୨ । ଦ୍ୱେଷୀ—2. Malicious.
ବି—୧ । ଶତ୍ରୁ—Enemy.
୨ । ବିପକ୍ଷ ଲୋକ—2. Adversary.

ଦୁସ୍‌ମନ୍ ବନିବା—ଦେ. କ୍ରି—ଶତ୍ରୁରୂପେ ପରିଣତ ହେବା— Dus-man baniba To turn an enemy.
दुसमन हरना; दुश्मन बनना

ଦୁସ୍‌ମନି—ବୈଦେ. ବି. (ଫା)—୧ । ଶତ୍ରୁତା—1. Enmity; Dus-mani hostility.
दुसमनि; दुश्मिमनी ୨ । ଦ୍ୱେଷ—2. Malice.

ଦୁସ୍‌ରା—ପ୍ରାଦେ (ସମ୍ବଲପୁର) ବିଣ (ହି ଦୁସରା)—୧ । ଅନ୍ୟ— Dus-ra 1. Another;
୨ । ଦ୍ୱିତୀୟ—2. Second.
୩ । ଯୁଗ୍ମ ମଧ୍ୟରୁ ଏକତର—3. Duplicate; one of a pair.

ଦୁସ୍‌ରାନେ—ପ୍ରାଦେ. (ସମ୍ବଲପୁର) ଅ—ଅନ୍ୟତ୍ର— Dusrāne Elsewhere; at any other place.

ଦୁସର୍—ପ୍ରାଦେ. (ବସ୍ତର) ବିଣ—ଦୋସର (ଦେଖ) Dusar Dosarā (See)

ଦୁସରା—ବୈଦେ. ବିଣ. (ଫା. ଦୋସର)—ଦୋସର (ଦେଖ) Dusarā Dosarā (See)
हुसरा ଦୁସରା ଙ୍କୁ ଚିଠି ଅଧିକ କରି ନେଇ ମେଦିନୀପୁର ଗଲେ ।
दोसरा ଫକୀରମୋହନ ଛମାଣଆଠଗୁଣ୍ଠ ।

ଦୁସ୍ତର—ସ. ବିଣ. (ଦୁର୍+ତୃ ଧାତୁ+କର୍ମ. ଅ)— Dustara ୧ । ମନୁଷ୍ୟ ଯାହାକୁ ସହଜରେ ପାର ହୋଇ ନ ପାରେ; (ଦୁସ୍ତରା—ସ୍ତ୍ରୀ) ଦୁରତିକ୍ରମ—1. Hard to get over; uncrossable; insurmountable; almost impassable.
୨ । ଅତି କଷ୍ଟକର—2. Very difficult.
ଦେ. ବିଣ—୧ । ଅତି କଷ୍ଟସାଧ୍ୟ—1. Impracticable; difficult of accomplishment.
୨ । ଭାରି ଦୁଷ୍ଟ; ଅତି ମନ୍ଦ— 2. Very bad; very wicked
(ଯଥା—ଏ ପିଲାଗୁଡ଼ାକ ଅତି ଦୁସ୍ତର ହେଲେଣି ।)
ଦେ. ବି—ଅତି ସଙ୍କଟାପନ୍ନ ଅବସ୍ଥା— Very critical condition.
ସମାଚାର ଶୁଣି ଜରେ ଦୁସ୍ତରୁ ଦୁସ୍ତର । ସାରଳା. ମହାଭାରତ ।

ଦୁସ୍ତରଣୀୟ—ସ. ବିଣ. (ଦୁର୍+ତୃ ଧାତୁ+କର୍ମ. ଅନୀୟ)— Dustaraniya ଦୁସ୍ତର (ଦେଖ)—Dustara (See) (ଦୁସ୍ତରଣୀୟା—ସ୍ତ୍ରୀ)

ଦୁସ୍ତର୍ଯ୍ୟ—ସ. ବିଣ. (ଦୁର୍+ତୃ ଧାତୁ+କର୍ମ. ଯ)—ଦୁସ୍ତର (ଦେଖ) Dustarjya Dustara (See) (ଦୁସ୍ତର୍ଯ୍ୟା—ସ୍ତ୍ରୀ)

ଦୁସ୍ତ୍ୟଜ—ସ. ବିଣ. (ଦୁର୍+ତ୍ୟଜ୍ ଧାତୁ+କର୍ମ. ଅ)—ଯାହାକୁ Dustyaja ସହଜରେ ତ୍ୟାଗ କରାଯାଇ ନ ପାରେ; ଦୁଷ୍ପରିହାର୍ଯ୍ୟ— (ଦୁସ୍ତ୍ୟାଜ୍ୟ—ଅନ୍ୟରୂପ) Relinquishable with difficulty.

ଦୁ(ଦୁଃ)ସ୍ଥ—ସ. ବିଣ. (ଦୁର୍+ସ୍ଥା ଧାତୁ+କର୍ତ୍ତୃ. ଅ)— Du(duh)stha ୧ । କ୍ଳେଶଯୁକ୍ତ—1. Afflicted.
(ଦୁସ୍ଥା—ସ୍ତ୍ରୀ) ୨ । ଦୁର୍ଦ୍ଦଶାଗ୍ରସ୍ତ—
2. Stricken with calamity; miserable.
୩ । ଅତି ଦରିଦ୍ର—
3. Very poor; poverty-stricken.
୪ । କଷ୍ଟରେ ପଡ଼ିଥିବା—
4. Fallen in a difficulty.
୫ । ମନ୍ଦଭାବରେ ସ୍ଥିତ—5. Badly situated.
୬ । ମୂର୍ଖ—6. Illiterate.

ଦୁ(ଦୁଃ)ସ୍ଥତା—ସ. ବି (ଦୁସ୍ଥ+ଭାବ. ତା)—୧ । ଦୁଃସ୍ଥିତାବସ୍ଥା— Du(duh)sthatā 1. Misery.
୨ । ଦରିଦ୍ରତା—2. Penury; want.
୩ । କ୍ଳେଶ—3. Hardship; difficulty.
୪ । ଶୋଚନୀୟ ଅବସ୍ଥା—4. Wretchedness.

ଦୁସ୍ସହ—ସ. ବିଣ—ଦୁଃସହ (ଦେଖ) Dussaha Duhsaha (See)

ଦୁହ୍ (ଧାତୁ)—ସ—ଦୁହିଁବା— Duh (root) To milk.

ଦୁହଣୀ—ଦେ. ବି (ସ. ଦୋହନୀ)—ଦୁଧ ଦୋହିଁବା ଠେକ—A small Duhani earthen jug used for milking a cow.
दुहनी देहनी କରି ଜାନୁଯୁଗଳେ ସଯୋଗ ଦୁହଣୀ । ଦୀନକୃଷ୍ଣ. ରସକଲ୍ଲୋଳ ।

ଦୁହା (ଇତ୍ୟାଦି)—ଦେ. ବି—ଦୁହା ଇତ୍ୟାଦି (ଦେଖ) Duhā (etc) Duhā etc (See)
ଗାଇଲେ ବଳସ୍ୟ ଦୁହା ଖଗ-ବୈତାଳକେ । ଚକ୍ରାମଣି, ବଳାମାହଦ୍ୟ ।

ଦୁହାଇ—ଦେ. ବି—୧ । ଦୁହା (ଦେଖ) Duhāi 1. Duhā (See)
दोहाई ୨ । (ସ. ଦ୍ୱି+ଆହ୍ୱାନ) ଶପଥ; ରାଣ—2. Oath.
दुहा, दुहाइ ୩ । ରାଜା ବା ଦେବତାଙ୍କ ନାମରେ କୌଣସି ବିଷୟର (ଦୋହି; ଦ୍ୱାହି—ଅନ୍ୟରୂପ) ଘୋଷଣା—3. Proclamation of any matter in the name of a Deity or the king.

**ଦୁହାଇ ଦେବା**—ଦେ କ୍ରି - କୌଣସି ଦେବତା ବା ମହାପୁରୁଷଙ୍କ ନାମରେ
Duhāi debā ଶପଥ କରିବା—1. To swear in the name
ଦୋହାଈ দেওয়া of some Deity or great personage.
**दुहाई देना** ୨ । ନିଜର ରକ୍ଷା ପାଇଁ ରାଜା ବା ଦେବତାଙ୍କ ନାମ
[ଦୁହାଇ ପକା(କେ)ଇବା—ଅନ୍ୟରୂପ] ଧରି ଆର୍ତ୍ତସ୍ୱର କରିବା—
2. To invoke the name of a Deity or king for saving one's self.

**ଦୁହାଁ**—ଦେ. ବି. ( ସଂ. ଦୁହ୍ ଧାତୁ )—୧ । ଦୋହନ; ଦୁହିଁବା—
Duhāñ 1. Milking.
দোহাঁ ପର ଗାଇ ଦୁହାଁ ମୋତେ ନ ଅସେ—ଢଗ ।
**दुहना** ୨ । ଦୁହିଁବା; ଆଙ୍ଗୁଠି ଦ୍ୱୟଦ୍ୱାରା ଚିପି କରି କୌଣସି ପଦାର୍ଥରୁ ରସଆଦି ଗୁପୁଡ଼ିବା—2 Pressing a thing downwards with the fingers as in the act of milking.
ଦେ. ବିଣ—ଯେ ଦୁଧ ଦେଉଥାଏ; ଦୁହାଁଳ—
( a cow ) Which gives milk.
ଦୁହାଁ ଗାଇ ଦୁହିଁଲ, ଦୁହା ବଳଦ ବୋହିଲ । ପ୍ରବଚନ ।
( ପଢ଼ୁଆଁ—ବ୍ୟପସର୍ଗ ) ପ୍ରାଦେ. ( ଗଞ୍ଜାମ ) ବିଣ—ଦ୍ୱିତୀୟ ସନ୍ତାନ; ଦୁଆ—The second (son or daughter).

**ଦୁହାଁ(ହେଁ)ଇବା**—ଦେ. କ୍ରି. ( ଦୁହିଁବାର ଣିଜନ୍ତରୂପ )—ଅନ୍ୟଦ୍ୱାରା
Duhāñ(heñ)ibā ଦୋହନ କରାଇବା—
দোহান To cause another to milk.
**दुहाना** କହେ ଗାଉଳର ଦୁଃଖ ହରି ହରି ଶିରେ ସୁରଭୀ ଦୁହାଁଇବି।
(ଦୁହାଇଁବା—ଅନ୍ୟରୂପ) ଭଞ୍ଜ. ପ୍ରେମସୁଧାନିଧି ।

**ଦୁହାଁ ଦୁହିଁ**—ଦେ. ବି—୧ । ଦୁହାଁ (ଦେଖ )
Duhāñ duhiñ 1. Duhāñ( See)
୨ । ବହୁବାର ଦୋହନ କର୍ମ—
2. Several acts of milking.

**ଦୁହାଁ(ହା)ଳ**—ଦେ ବିଣ. ସ୍ତ୍ରୀ ( ସଂ. ଦୋହ୍ୟମାନା )—
Duhāñ(hā)ḷa ୧ । ଦୋହ୍ୟମାନା; ଯେଉଁ ଗାଈ ଦୋହନ କରା-
[ଦୁହାଁ(ହା)ଳଥି—ଅନ୍ୟରୂପ] ଯାଉ ଥାଏ; ଯାହାଠାରୁ ଦୁଧ ଦୁହାଁ
দোহাল ଯାଉଥାଏ—1. Milch ( cow ); that which
**दोहिया, दुहेतु** is being milked.
୨ । ଦୁଗ୍ଧବତୀ; ଯେଉଁ ଗାଈ ଦୁଧ ଦିଏ ଅର୍ଥାତ୍ ବରଡ଼ି ନୁହେଁ-
2. (cow) Giving milk; not yet become dry.

**ଦୁହାଁ(ହା)ଳୀ**—ଦେ. ବିଣ. ସ୍ତ୍ରୀ—୧ । ଦୁହାଁଳ ( ଦେଖ )
Duhāñ(hā)ḷi 1. Duhāñḷa ( See )
দোহাল ଦୁହାଁଳୀ ଗାଇ ଯେ ବାଛୁରି ଭୁଲେ ଦାନ
**दुहेतू** ସେ ଦେବ ତାର ପୁଣ୍ୟ ଅଛି ଅକଥନ ।
କୃଷ୍ଣସିଂହ. ମହାଭାରତ. ବନ ।
୩ । ( ସଂ. ଦା ଧାତୁ=ଛେଦନ କରିବା ) ଧାନ କଟାଳି—
3. (person) Reaping paddy.

**ଦୁହିଁବା**—ଦେ. କ୍ରି. ( ସଂ. ଦୁହ୍ ଧାତୁ )—
Duhiñbā ୧ । ଦୋହନ କରିବା—1. To milk.
দুহা ନବମେ ପୃଥୁ ରୂପ ଧରି, ବଳେ ଦୁହିଁଲେ ବସୁନ୍ଧରା ।
**दुहना** ଜଗନ୍ନାଥ. ଭାଗବତ ।
୨ । (ଲକ୍ଷଣାର୍ଥ) ଦୁଧ ଦୁହିଁଲା ପରି କୌଣସି ବ୍ୟକ୍ତିଠାରୁ ଧନ ଆଦି ନିଃଶେଷ କରି ନେବା—
2. (figurative) To squeeze money etc from a person; to fleece a person
ହରି କହିଲେ ରାଜା ଶୁଣେ
ଭୂମିକି ଦୁହିଁ ଖାନ୍ତୁ ବଳେ । ଜଗନ୍ନାଥ. ଭାଗବତ ।
୩ । ଦୁଧ ଦୁହିଁଲା ପରି କୌଣସି ବସ୍ତୁକୁ ( ଧାନ କେଣ୍ଡାରୁ ଧାନ ଗୁଡ଼ିକ ) ଦୁଇ ଆଙ୍ଗୁଠି ଦ୍ୱାରା ଚିପି ଭିଡ଼ି ଆଣିବା—
3. To press a thing with two fingers in order to squeeze something out of it.
(ଦୁହାଁଯିବା, ଦୁହାଁହେବା—କର୍ମବାଚ୍ୟରୂପ)
ବରଜ ଅଙ୍ଗଣରେ ଧେନୁକୁ ଛଗଗଳ ଦମ୍ଭରୁ ଦରି ବୋଲି ଦୁହିଁଲ ଗୋ
କବିସୂର୍ଯ୍ୟ, ସଙ୍ଗୀତ ।

**ଦୁହିଁହେବା**—ଦେ. କ୍ରି—୧ । ଛାଣି ଓଠାରି ହେବା—
Duhiñ hebā 1. To strain; to be strained.
ଭୂଷର କଥାକୁ ମୋ ପେଟ ଦୁହିଁ ହୋଇ
ହସ ବାହାରୁଛି ନ ପାରେ ଯୋଡ଼ା ବାହି । କୃଷ୍ଣସିଂହ. ମହାଭାରତ. କର୍ଣ୍ଣ
୨ । ଦୋହନ ଯୋଗ୍ୟ ହେବା—2. To be capable of being milked or squeezed.

**ଦୁହିଙ୍କର**—ଦେ. ସର୍ବ ସଂ. ଦ୍ୱୌ )—ଉଭୟଙ୍କର—
Duhiṅkara Of both.
(ଦୁହିଙ୍କ—ଅନ୍ୟରୂପ) দুহা কাব **दोनोंका**

**ଦୁହିଙ୍କି(ଙ୍କୁ)**—ଦେ. ସର୍ବନାମ—ଦୁଇ ଜଣଙ୍କୁ; ଉଭୟଙ୍କୁ—
Duhiṅki(ṅku) To both.
দুহাঁকে **दोनोंका**

**ଦୁହିଙ୍କି ଦୁହେଁ**—ଦେ. ସର୍ବ—୧ । ଦୁଇ ଜଣଯାକ; ଦୁହେଁ ଯାକ—
Duhiṅki duheñ 1. Both of them.
(ଦୁହିଙ୍କ(ଙ୍କୁ) ଦୁହେଁ—ଅନ୍ୟରୂପ) ୨ । ଅନ୍ୟୋନ୍ୟ—2. Each other.

**ଦୁହିତ**—ଦେ. ବି. ସ୍ତ୍ରୀ. (ପଦ୍ୟ) (ସଂ. ଦୁହିତୃ)—କନ୍ୟା; ଝିଅ—
Duhita Daughter.
କ୍ଷମା କର ଦୋଷ ମୁଁ ତୁମ୍ଭର ଦୁହିତ ।
କୃଷ୍ଣସିଂହ. ମହାଭାରତ ବନ ।

**ଦୁହିତା**—ସଂ. ବି. ସ୍ତ୍ରୀ. ( ଦୁହିତୃ ଶବ୍ଦର ୧ମା. ୧ବ; ଦୁହ୍ ଧାତୁ+କର୍ତ୍ତୃ.
Duhitā ତୃ; ଯେ ଦୋହନ କରେ; ତୁଳ. ଇଂ. ଡଟର୍; ପା. ଦଖ୍‌ତର୍; ଗ୍ରୀକ୍. ଥାଇଗେଟର୍; ଜର୍ମାନ. ଡଚ୍‌ଟର୍; ସାକ୍ସନ୍—ଡୋହ୍‌ଟର )—କନ୍ୟା; ଝିଅ—Daughter.
[ ଦ୍ର—ପୂର୍ବକାଳରେ ଆର୍ଯ୍ୟ ପରିବାରରେ ଗାଈ ଦୁହିଁବା କର୍ମ କନ୍ୟା ଉପରେ ନ୍ୟସ୍ତ ଥିବାରୁ କନ୍ୟାର ନାମ ଦୁହିତା ହୋଇଅଛି ବୋଲି ପଣ୍ଡିତମାନେ କହନ୍ତି । ]

**ଦୁହିତି**—ଦେ. (ପଦ୍ୟ) ବି. ସ୍ତ୍ରୀ. (ସଂ. ଦୁହିତୃ)—
Duhiti ଦୁହିତା; କନ୍ୟା; ଝିଅ—Daughter.
ମତ୍ସ୍ୟ ଦେଶର ଯେ ବିରାଟ ନୃପତି
ଉତ୍ତରା ହୋଇ ନାମ ତାଙ୍କର ଦୁହିତି । କୃଷ୍ଣସିଂହ. ମହାଭାରତ, ବନ ।

**ଦୁହିତୃପତି**—ସଂ. ବି. (୬ଷ୍ଠୀ ତତ୍; ଦୁହିତୃ+ପତି)—ଜାମାତା; ଜ୍ୱାଇଁ—
Duhitṛu pati Son-in-law.

ଦୁହିତୃ(ତ୍ର) ସମ୍ପତ୍ତି—ଦେ. ବି. (କଟକୀଆ) (ସଂ. ଦୌହିତ୍ର+ସମ୍ପତ୍ତି)—
Duhitṛu(tra) sampatti କୌଣସି ବ୍ୟକ୍ତିର ପୁଅ ବା ପୁଅର ପୁଅ ନ ଥିଲେ ତାହାର ତ୍ୟକ୍ତ ସମ୍ପତ୍ତି ଯାହାକୁ ତାହାର କନ୍ୟାର ପୁଅ (ଦୌହିତ୍ର) ଉତ୍ତରାଧିକାରୀ ସୂତ୍ରେ ପାଏ—Property inherited by the daughter's son of a person leaving no son or son's son to inherit him.
ଦୁହିତ୍ର ସମ୍ପତ୍ତି
दुहीतरी संपत्ति

ଦୁହିତେ—ଦେ. (ପ୍ରାଚୀନ ପଦ୍ୟ) ବି—କନ୍ୟା; ଝିଅ—
Duhite Daughter.

ବସୁମତୀର ଦୁହିତେ ସେତେ ନ କହୁ ସହିତେ ଅଶ୍ରୁ କେତେ
ସବୁ ଗୃହେଁ କହି। ଉପେ. ବୈଦେହୀଶବିଳାସ।

ଦୁହୁର୍ଡ଼ା ମୁଣ୍ଡା—ଦେ. ବି—ଦୋର୍ଡ଼ା ମୁଣ୍ଡା (ଦେଖ)
Duhurḍa muṇḍā Do-orḍa muṇḍā (See)

ଦୁହୁର୍ଡ଼ି—ଦେ. ବି—ଦିହୁର୍ଡ଼ି ୨ (ଦେଖ)
Duhurḍi Dihurḍi 2 (See)

ଦୁହୁଣୀ—ଦେ ବି—୧। (ସଂ. ଦୋହନୀ) ଗାଇ ଦୁହାଁ ଲୁଣ୍ଠା ବା ଘଡ଼ି—
Duhuṇi 1. A small narrow-necked pitcher used in milking a cow.
(ଦୁହୁଁଣୀ—ଅନ୍ୟରୂପ)
दोहनी
दुहनी
୨। ଗାଈ ଦୁହିଁଲା ବେଳେ ଗାଈ ନାଡ ନ ମାରି ପାରିବା ପାଇଁ ତାହାର ଦୁଇ ଜାନୁରେ ଛନ୍ଦା ହୋଇ ଥିବା ଦଉଡ଼ି; ଛନ୍ଦଣୀ—2. A string with which both the hind legs of a vicious cow are chained together when it is milked.

ଗାଣ୍ଠେ କଠାଇ ମଗୁଣି, ଆଣ ଲୁ ଦୁଧର ଦୁହୁଣୀ।
ଜଗନ୍ନାଥ. ଭାଗବତ।

୩। ଶସ୍ୟଆଦି ମାପ କରିବାରେ ବ୍ୟବହୃତ ବେତ ବା ବାଉଁଶପାତିଆରେ ତିଆରି ମାଣ; ପାହିଲି—
3. A small measuring pot of cane or bamboo-laths used for measuring grains.

ଦୁହୁରା—ପ୍ରାଦେ. (ସମ୍ବଲପୁର) ଅ—ଦୋଓଡ଼ା, ଦ୍ଵିତୀୟ ଥର—
Duhurā Second time.

ଦୁହୁରା ଦେବା—ପ୍ରାଦେ. (ସମ୍ବଲପୁର) କ୍ରି—ଦଲ୍ ଦେବା (ଦେଖ)
Duhurā debā Dal debā (See)

ଦୁହେଁ—ଦେ. ସର୍ବ (ସଂ. ଦ୍ଵୟ; ଦ୍ଵୌ)—ଦହେଁ; ଉଭୟ ବ୍ୟକ୍ତି; ଦୁଇଜଣ ଯାକ; ଦୁହିଙ୍କି ଦୁହେଁ—Both the two persons; both; both of them
Duheṅ
(ଦୁହେଁଯାକ—ଅନ୍ୟରୂପ)
दुहूँ दोनों

ଦୁହ୍ୟ—ସଂ. ବିଣ. (ଦୁହ୍ ଧାତୁ+କର୍ମ. ଯ)—ଦୋହନ ଯୋଗ୍ୟ; ଦୋହ୍ୟ—Fit to be milked.
Duhya
(ଦୁହ୍ୟା—ସ୍ତ୍ରୀ)

ଦୁହ୍ୟମାନ—ସଂ. ବିଣ. ପୁଂ (ଦୁହ୍ ଧାତୁ+କର୍ମ. ଅନ)—
Duhyamana ଯାହାକୁ ଦୁହାଁ ଯାଉଅଛି—
(ଦୁହ୍ୟମାନା—ସ୍ତ୍ରୀ) Which is being milked.

ଦୁହ୍ୟୁ—ସଂ. ବି. (ନାମ)—ଶର୍ମିଷ୍ଠାଙ୍କ ଗର୍ଭଜାତ ଯଯାତିଙ୍କ ଏକ ପୁତ୍ର—
Duhyu Name of one of the sons of king Jajāti and his wife Śarmishṭhā.
(ଦ୍ରୁହ୍ୟୁ—ଅନ୍ୟରୂପ)

[ ଦ୍ର—ଯଯାତି ଦିଗ୍ବିଜୟ କରିବା ପରେ ପୁତ୍ରମାନଙ୍କ ମଧ୍ୟରେ ପୃଥିବୀକୁ ବାଣ୍ଟି ଦେଲେ। ପଶ୍ଚିମଦିଗର ଦେଶମାନ ଦ୍ରୁହ୍ୟୁଙ୍କୁ ଦେଲେ। ଯଯାତି ଆପଣାର ବାର୍ଦ୍ଧକ୍ୟକୁ ପୁତ୍ରମାନଙ୍କ ଯୌବନ ସଙ୍ଗେ ବଦଳ କରିବାକୁ କହିବାରୁ ଏ ମନା କଲେ। ଯଯାତି କ୍ରୁଦ୍ଧ ହୋଇ ଏଙ୍କୁ ଶାପ ଦେଲେ 'ତୋର କୌଣସି ପ୍ରିୟ ଅଭିଳାଷ ପୂର୍ଣ୍ଣ ହେବ ନାହିଁ' (ହି. ଶବ୍ଦସାଗର)। ]

ଦୂ (ଧାତୁ)—ସଂ—୧। ଦୁଃଖ ଭୋଗ କରିବା—
Dū (root) To be afflicted; to suffer pain (Apte).
୨। ଦୁଃଖିତ ହେବା—2 To be sorry (Apte).
୩। ଦୁଃଖ ବା କଷ୍ଟ ଦେବା—
3. To give or cause pain (Apte).

ଦୂତ୍—ଦେ. ଅ—ଧୂତ୍ ( ଦେଖ )
Dūt Dhut ( See )
(ଦୂତ୍‌କର; ଦୂତ୍ତେର, ଦୂତ୍ତେରିକା, ଦୂତ୍ତେରିକେ—ଅନ୍ୟରୂପ)

ଦୂତ—ସଂ. ବି. (ଦୂ ଧାତୁ=ଗମନ କରିବା+କର୍ତ୍ତୃ.ତ; ଊ ସ୍ଥାନରେ ଊ)-
Dūta ୧। ସମ୍ବାଦବାହକ; ବାର୍ତ୍ତାବହ—1. Messenger.
୨। ରାଜନୀତିକ ଚର—2. Ambassador; envoy
୩। ସ୍ଵର୍ଗର ଦୂତ—3. An angel; a divine messenger.

ଦୂତଘ୍ନୀ—ସଂ. ବି ସ୍ତ୍ରୀ.—କଦମ୍ବ ଫୁଲ—
Dūtaghni The flower of Nuclea Kadamba.

ଦୂତାବାସ—ସଂ. ବି. ( ୬ଷ୍ଠୀ ତତ୍; ଆଧୁନିକ ପ୍ରୟୋଗ )—ମିତ୍ରରାଜାଙ୍କ ସଭାରେ ନିଯୁକ୍ତ ଅନ୍ୟ ରାଜାଙ୍କ ଦୂତ ଯେଉଁଠାରେ ବସା କରି ରହନ୍ତି—Consulate; residency, the seat of an ambassador in a foreign court.
Dūtābāsa

ଦୂତି—ସଂ. ବି. (ଦୂ ଧାତୁ+କର୍ତ୍ତୃ. ତି)—ଦୂତୀ (ଦେଖ)
Dūti Dūtī (See)

ଦୂତିକା—ସଂ. ବି. ସ୍ତ୍ରୀ. (ଦୂତ+ସ୍ଵାର୍ଥେ.କ+ସ୍ତ୍ରୀ. ଆ)—ଦୂତୀ (ଦେଖ)
Dūtikā Dūtī (See)

ଦୂତି ପାଦ—ଦେ. (ପ୍ରାଚୀନ ପଦ୍ୟ)—ଦୁଇ ପାଦ—
Dūti pāda The two feet or legs.

ଦୂତି ପାଦ ନ ଚଳଇ ଅଛି ଏକ ପାଦ। ପ୍ରାଚୀ. ବ୍ରହ୍ମଣ୍ଡପୁରାଣ ଗୀତା।

ଦୂତୀ—ସଂ. ବି. ସ୍ତ୍ରୀ. (ଦୂତ+ସ୍ତ୍ରୀ ଈ; ଦୂ ଧାତୁ=ଗମନ କରିବା+ସଂଜ୍ଞାର୍ଥେ ତୀ)—୧। ବାର୍ତ୍ତାବାହିକା ସ୍ତ୍ରୀ—
Dūtī 1. A female messenger.
୨। କୁଟ୍ଟିନୀ; ଯେଉଁ ସ୍ତ୍ରୀ ପରପୁରୁଷ ନିକଟରେ ପରସ୍ତ୍ରୀ ଆଣି ଜୁଟାଏ—2. A go-between; a procuress; a bawd.

[ଦ୍ର—ଦୂତୀ ତିନିବିଧ ଯଥା—୧। ଦୂତୀ, ୨। ସ୍ଵୟଂ ଦୂତୀ, ଓ ୩। ଆପ୍ତ ଦୂତୀ (ଅଭିମନ୍ୟୁ ବିଦଗ୍ଧଚିନ୍ତାମଣି ୨। ୨ ପୃ।)

୩ । (ନାମ) ଶ୍ରୀକୃଷ୍ଣ ଓ ରାଧିକାଙ୍କ ମଧ୍ୟରେ ସମ୍ବାଦ ନେଇ ଆଣିବା କରୁଥିବା ସଖୀ—3. The name of a female companion of Rādhikā who was acting as a messenger between Śrikrushṇa and Rādhikā.

ଦେ. ବି—ସ୍ତ୍ରୀଲୋକଙ୍କୁ ଦିଆଯିବା ନାମ—A name given to females.

**ଦୂତ୍ୟ**—ସଂ. ବି (ଦୂତ+ଭାବ. ଯ)—ଦୂତର କାର୍ଯ୍ୟ; ଦୌତ୍ୟ—
Dūtya The duty or act of a messenger

**ଦୂନ**—ସଂ. ବିଣ (ଦୂ ଧାତୁ=ଖେଦ କରିବା+କର୍ତ୍ତୃ. ତ)—୧ । କ୍ଲିଷ୍ଟ—
Dūna 1. Afflicted.
୨ । ଦୁଃଖପ୍ରାପ୍ତ—2. Troubled.
୩ । କ୍ଲାନ୍ତ—3. Tired; wearied.
୪ । ଅନୁତପ୍ତ—4. Repentant.
୫ । ପଥଶ୍ରାନ୍ତ—5. Exhausted on account of travelling.

**ଦୂବ**—ଦେ. ବି—ଦୁବ ( ଦେଖ )
Dūba Duba ( See )
ଝେକଲେ ଦୂବ କରେ ତାରୁ, ଟାଣ ପଣକୁ ଭଙ୍ଗେ ମେରୁ—
କମଳଲୋଚନ ଚଉତିଶା ।

**ଦୂର୍**—ଦେ. ଅ (ଘୃଣା, ଧମକ, ଅବମାନନା ଓ ବିରକ୍ତିସୂଚକ )—
Dūr ୧ । ଛି !; ଯାଃ !; ଧୁତ୍ !—1. (interjection) Fie ! tut tut !
दूर
**दूर** ୨ । (କୌଣସି ସ୍ଥାନରୁ ଅନ୍ତର ହେବା ନିମନ୍ତେ କୌଣସି ବ୍ୟକ୍ତିକୁ ତର୍ଜନ କରିବା) ଏଠାରୁ ଚାଲି ଯା !—
2. Be off ! get out !

**ଦୂର୍‌କର(ର)**—ଦେ. ଅ—୧ । ଦୂର୍ ( ଦେଖ )
Dūr kar(ra) 1. Dūr (See)
୨ । ଛାଡ଼୍ ସେ କଥା—2. Let it pass.

**ଦୂର୍‌ଛଡ଼ା**—ଦେ. ବିଣ—୧ । କେତେକ ଦୂରରେ ଅବସ୍ଥିତ—
Dūr-chhardā 1. Situated at some distance.
दूरछाड़ा ୨ । ବହୁ ବ୍ୟବଧାନରେ ଅବସ୍ଥିତ—
(ଦୂର୍‌ଛଡ଼ିଆ—ଅନ୍ୟରୂପ) 2. Situated at a great interval

**ଦୂର୍ ଦୂର୍**—ଦେ. ଅ—ଦୂର୍ ( ଦେଖ )
Dūr dūr Dūr ( See )
दूरदूर **ବିଣ**—ଦୁଲ୍‌ଦୁଲ୍ (ବର୍ଷା)—Torrential (rain).
दुरदुर **କ୍ରି. ବିଣ**—ଦୁଲ୍‌ଦୁଲ୍ (ବର୍ଷିବା)—(raining) In torrents; cats and dogs.

**ଦୂର୍‌ଦୂର୍ କରିବା**—ଦେ. କ୍ରି—୧ । ଘୃଣା ପ୍ରକାଶପୂର୍ବକ ବା ମାରିବାର
Dūr-dūr karibā ଭୟ ଦେଖାଇ ବା ଛି ଛି କରି ତଡ଼ିଦେବା—
ଦୂର୍‌ଦୂର୍ ଛୁର୍‌ଛୁର୍ କରିବା } ଅନ୍ୟରୂପ 1. To drive away
ଦୂର୍‌ଦୂର୍ ଛି ଛି କରିବା } with contempt.
दुर् दुर् करा, दुरछाई करा ୨ । କୌଣସି ବ୍ୟକ୍ତିପ୍ରତି ଅତ୍ୟନ୍ତ
**दुरदुर करना, दुरदुराना** ଘୃଣା ପ୍ରକାଶ କରିବା—2. To treat a man with contempt; to despise.

**ଦୂର୍‌ପଳା**—ଦେ. ଅ—ଏଠାରୁ ଦୂର୍ ହୋ ! ଏଠାରୁ ପଳାୟନ କର !—
Dūr-palā (interjection) Be off !
(ଦୂର୍‌ଦୂର୍‌ପଳା—ଅନ୍ୟରୂପ) ମୋ କୁଳକୁ ଘର ଦୁଃଖ, କରୁଣୀ ମାରଇ ଭୁକୁଭୁକୁ,
दूरह ଦୂର୍‌ପଳା ଦୂର୍‌ପଳା ।
**दुरदुर** ଉତ୍କଳବାଣୀ ।

**ଦୂର୍‌ପଳା(ଲେ)ଇବା**—ଦେ. କ୍ରି ( ସଂ. ଦୂର+ପଳାୟନ )—
Dūr-palā(le)ibā ୧ । ତିରସ୍କାର, ଧିକ୍କାର ବା ଘୃଣିତ ବ୍ୟବହାର
दूरहओना ପ୍ରାପ୍ତ ହେବା ଯୋଗୁଁ ବା ଏଥିର ଭୟରେ କୌଣସି ସ୍ଥାନ
**दुरभागना** ତ୍ୟାଗ କରିବା—1. To flee away from a place through fear or insult.
୨ । ଭୟରେ ହଠାତ୍ କୌଣସି ସ୍ଥାନ ତ୍ୟାଗ କରିବା—
2. To suddenly leave a place through fright.
୩ । କୌଣସି ସ୍ଥାନରୁ ଦୂରରେ ରହିବା—
3. To keep one's self at a safe distance.

**ଦୂର୍‌ପୁ(ଫୁ)ଙ୍ଗା**—ଦେ. ବିଣ.—ଧୂର୍‌ପୁଙ୍ଗା (ଦେଖ)
Dūr-pu(phu)ṅgā Dhur-puṅgā (See)

**ଦୂର୍‌ବାଡ଼ିଆ**—ପ୍ରାଦେ. (ଯାଜପୁର ବିଣ.—ଦୂର୍ ଛଡ଼ା (ଦେଖ)
Dūr-bāṛdiā Dūr-chhardā (See)

**ଦୂର୍ ଦୂର୍ ମାର୍ ମାର୍ କରିବା**—ଦେ. କ୍ରି—ଦୂର୍ ଦୂର୍ କରିବା (ଦେଖ)
Dūr dūr mār mār karibā Dūr dūr karibā (See)

**ଦୂର୍ ହୋ**—ଦେ. ଅ.—ଦୂର୍ (ଦେଖ)
Dūr-ho Dūr (See)
दूर ह **दुर हो याओ**
(ଦୂର୍ ହ—ଅନ୍ୟରୂପ)

**ଦୂର**—ସଂ ବିଣ. (ଦୁର୍=ଦୁଃଖ+ଇ ଧାତୁ=ଗମନ କରିବା+କର୍ତ୍ତୃ.ର,
Dūra ନିପାତନ; ଭୂଲ. ଫା. ଏହି ଅର୍ଥରେ ଦୂର୍ ଶବ୍ଦ)—
(ନିକଟ—ବିପରୀତ) ୧ । ଅସମୀପ; ବ୍ୟବଧାନଯୁକ୍ତ; ଅନ୍ତରରେ
(ଦୂରତା, ଦୂରତ୍ୱ—ବି) ଅବସ୍ଥିତ—1. Remote; distant; far off.
୨ । ଦେଶ, କାଳ ବା ସମ୍ବନ୍ଧ ବିଷୟରେ ବହୁତ ଅନ୍ତରରେ ଅବସ୍ଥିତ—2. Occupying a far off position in respect of place, time or relationship.
୩ । ଛଡ଼ା; ପୃଥକ୍; ଅଲଗା—3. Separate.
୪ । ଅତ୍ୟନ୍ତ—4. Excessive.
୫ । ଗାଢ଼—5. Deep.
୬ । ଅଗୋଚର—6. Not known; not perceived.
୭ । ଦୀର୍ଘ—7. Long.
୮ । ରକ୍ତ ବା ବିବାହ ସମ୍ପର୍କରେ ବହୁତ ଅନ୍ତରରେ ଅବସ୍ଥିତ; ଯେ ନିକଟ ସମ୍ପର୍କୀୟ ନୁହେଁ—8. Distantly related; not closely related

ସଂ ବି.—ବ୍ୟବଧାନ—Interval; space.

दूर ଦେ. ବିଣ. (ସଂ ଦୂରୀକୃତ)—୧ । ବିତାଡ଼ିତ—
**दूर** 1. Driven away.

୨ । ଦୂରୀଭୂତ—2. Removed.

ଅଥ ବ୍ୟାଧ ମଧ୍ୟ ହୁଅଇ ତାର ଦୂର । କୃଷ୍ଣସିଂହ ମହାଭାରତ. ବନ ।

୩ । ଏତେ ଦୂରରେ ଅବସ୍ଥିତ—3. Situated at such and such a distance.

(ଯଥା— ପୁରୀ କଟକଠାରୁ କେତେ କୋଶ ଦୂର ।)

୩ । ଅପ୍ରାପ୍ୟ; ଅଗୋଚର— 3, Unattainable; unknown.

ଜ୍ଞାନକ ମୋରୂପ ଗୋଚର
ଅଜ୍ଞାନୀ ଜନେ ମୁହିଁ ଦୂର । ଜଗନ୍ନାଥ ଭାଗବତ

ଦେ. ବି.—୧ । ଦୂରତ୍ୱ; ଅସମୀପତା—1. Distance;

୨ । ଦୂର ଦେଶ—2. Distant land.

୩ । ଦୂର ପଥ; ବହୁତ ଲମ୍ବ ବାଟ— 3. Long way; long journey

**ଦୂର କଥା**—ଦେ. ବି.—୧ । କଷ୍ଟସାଧ୍ୟ କଥା; ଗହନ କଥା—
Dūra kathā 1. A difficult matter.
दूरेर कथा ୨ । ଦୂର ଭବିଷ୍ୟତରେ ଘଟିବା କଥା—
**दूरकी बात** 2. A thing which may happen in a distant future.

**ଦୂରକଥା କହିବା**—ଦେ. କ୍ରି.—ଚିନ୍ତା ବା ଗଣନା କରି ଭବିଷ୍ୟତରେ ଘଟିବା ବିଷୟ ପ୍ରକାଶ କରିବା—
Dūrakathā kahibā
दूरेर कथा बला To predict; to prophesy.
**दूरकी कहना**

**ଦୂର କରିବା**—ଦେ. କ୍ରି.—୧ । ବର୍ଜନ କରିବା; ତ୍ୟାଗ କରିବା—
Dūra karibā 1. To give up; to relinquish.
दूर करा ୨ । ତଡ଼ି ଦେବା—
**दूरकरना** 2. To drive away.
୩ । ସ୍ଥାନାନ୍ତର କରିବା—3. To remove.
୪ । ପୃଥକ୍ କରିବା—4. To separate.
୫ । ଲୋପ କରିବା—5 To cause to disappear.
(ଯଥା—ମନରୁ ଚିନ୍ତା ଦୂର କରିବା; କଷ୍ଟ ବା ଦୁଃଖ ଦୂର କରିବା ଇତ୍ୟାଦି ।)

**ଦୂରଗ**—ସଂ. ବିଣ. ପୁଂ— (ଦୂର+ଗମ୍ ଧାତୁ+କର୍ତ୍ତୃ. ଅ)—
Dūraga ଦୂରଗାମୀ (ଦେଖ)—Dūragāmi (See)
(ଦୂରଗା—ସ୍ତ୍ରୀ)

**ଦୂରଗାମୀ**—ସଂ. ବିଣ. ପୁଂ.—(ଦୂର+ଗମ ଧାତୁ+କର୍ତ୍ତୃ. ଇନ୍; ୧ମା. ୧ବ.)—୧ । ଯେ ଦୂରକୁ ଯାଇ ଅଛି—
Dūragāmi
(ଦୂରଗାମିନୀ—ସ୍ତ୍ରୀ) 1. Gone to a distance; removed to a distance.
୨ । ବହୁଦୂରକୁ ବିସ୍ତୃତ—2. Extending far.

**ଦୂରଛଡ଼ା**—ଦେ. ବିଣ. (ସଂ. ଦୂରସ୍ଥ; ଦୂରସ୍ଥିତ)—୧ । ଦୂରରେ ଅବସ୍ଥିତ —1. Situated at a long distance.
Dūrachhardā
दूरछाड़ा
**अलग** ୨ । ଦୂରକୁ ତଡ଼ାହୋଇଥିବା—2. Driven away to a great distance.

(ଦୂରଛଡ଼ିଆ—ଅନ୍ୟରୂପ) ୩ । ପରସ୍ପରଠାରୁ ବହୁ ବ୍ୟବଧାନରେ ଅବସ୍ଥିତ; ଅଲଗା ଅଲଗା—3. Situated far apart from one another.

(ଯଥା—ନଡ଼ିଆ ଗଛକୁ ଦୂରଛଡ଼ା କରି ଲଗାଇଲେ ଖୁବ୍ ଭଲ ଫଳ ହୁଏ ।)

**ଦୂରତର**—ସଂ. ବିଣ.—(ଦୁଇ ମଧ୍ୟରେ) ଅଧିକତର ଦୂର—
Dūratara More distant.

**ଦୂରତମ**—ସଂ. ବିଣ.—(ବହୁ ମଧ୍ୟରେ) ଅଧିକତମ ଦୂର—
Dūratama Most distant.

**ଦୂରତା**—ସଂ. ବି. (ଦୂର+ଭାବ. ତା)—୧ । ବ୍ୟବଧାନ; ଅନ୍ତର—
Dūratā 1. Distance.
(ଦୂରତ୍ୱ—ଅନ୍ୟରୂପ) ୨ । ଦୂର ହେବାର ଅବସ୍ଥା— 2. The state of being distant.

**ଦୂରତେ**—ଦେ. (ପ୍ରାଚୀନ) ଅ.—(ସଂ. ଦୂରତଃ)—୧ । ଦୂରରୁ—
Dūrate 1. From a distance; from a long way.

ତଳ୍ପ ଲୁମ୍ବେ ଦୂରତେ ମତେ ପଡଇ ମତେ ମୋତେ;
ତେଇ ହରଷ କରିବା ବସ ନାହିଁ ବରଷ ଅନ୍ତେ । ଭଞ୍ଜ ପ୍ରେମସୁଧାନିଧି ।

୨ । ଦୂରରେ—2 At a distance.

**ଦୂରତଃ**—ସଂ. ଅ.—(ଦୂର+୫ମୀ ଓ ୭ମୀ ବିଭକ୍ତିରେ ତସ୍ ପ୍ରତ୍ୟୟ)—
Dūrataḥ ୧ । ଦୂରରୁ—1. From a distance; from afar.
୨ । ଦୂରରେ—2. At a great distance; far off; far away.
୩ । ନିକଟରେ ବା ପାଖରେ ନଥିବା— 3. Not at hand.

**ଦୂରଦର୍ଶକ**—ସଂ. ବିଣ. ପୁଂ (ଦୂର+ଦୃଶ୍ ଧାତୁ+କର୍ତ୍ତୃ. ଅକ)—
Dūradarśaka ଦୂରଦର୍ଶୀ (ଦେଖ)—Dūradarśi (See).

**ଦୂରଦର୍ଶକ ଯନ୍ତ୍ର**—ସଂ. ବି (ଆଧୁନିକ ବ୍ୟବହାର)—ଦୂରବୀକ୍ଷଣ ଯନ୍ତ୍ର—
Dūradarśaka jantra Telescope.

**ଦୂରଦର୍ଶନ**—ସଂ. ବି ଓ ବିଣ—ଦୂରଦୃଷ୍ଟି (ଦେଖ)
Dūradarśana Dūradrushṭi (See).

**ଦୂରଦର୍ଶିତା**—ସଂ. ବି (ଦୂରଦର୍ଶିନ୍+ଭାବ. ତା)—୧ । ପରିଣାମଦର୍ଶିତା—
Dūradarśitā Ability to look far into the future; foresight.
୨ । ପାଣ୍ଡିତ୍ୟ; ଜ୍ଞାନ—2. Erudition; knowledge.

**ଦୂରଦର୍ଶୀ**—ସଂ. ବିଣ. ପୁଂ (ଦୂର+ଦୃଶ୍ ଧାତୁ+କର୍ତ୍ତୃ. ଇନ୍, ୧ମା. ୧ବ).
Dūradarśi
୧ । ଯେଉଁ ଲୋକ ଅନେକ ଦୂରରୁ ଦେଖିପାରେ; ଦୂରଦୃଷ୍ଟି; ସାର୍ବଦୃଷ୍ଟି—1. Far-seeing; capable of seeing from a great distance.
୨ । ଯେଉଁ ବ୍ୟକ୍ତି ନିଜର ବୁଦ୍ଧିବଳ ଓ ଅନୁଭବଦ୍ୱାରା ଭବିଷ୍ୟତ୍ ଘଟଣା ଜାଣିପାରି ତଦନୁସାରେ ଚଳେ; ପରିଣାମଦର୍ଶୀ—2. Prudent; having foresight.
୩ । ବିଜ୍ଞ; ବୋଦ୍ଧା; ଜ୍ଞାନୀ—3. Wise.
୪ । ବୁଦ୍ଧିମାନ୍—4. Intelligent.

୫ । ପଣ୍ଡିତ—5. Learned.

(ଦୂରଦର୍ଶିନୀ—ସ୍ତ୍ରୀ) ବି—ଗୃଧ୍ର; ଶାଗୁଣା—A vulture.

ବଳିଷ୍ଠପଣ ଦୂରଦର୍ଶୀ ଅଭୁତ ଖଗ ନାଗରି ପଙ୍ଗତେ ପଳ ଖଣ୍ଡନ ସହୁଁ ଯେ ।
ଉପେ. ବୈଦେହୀ.-ବଳାସ ।

**ଦୂର ଦୂରାନ୍ତ**—ଦେ. ବଣ—ବହୁଦୂର—
Dūra dūrānta Very far; very distant.
**ବହୁଦୂର** ନହାଣ ଦୂରଦୂରାନ୍ତ ବୋଲି ଭଣା ଅଧିକ ସଗୁଣ ବର୍ଷ ହେଲା ବଣ ନେଣ ଦେଣ
**बहुदूर** ବଣ—ଫକୀରମୋହନ. ଗଳ୍ପସ୍ୱଳ୍ପ ।

(ଦୂରଦୂରାନ୍ତର—ଅନ୍ୟରୂପ) ଦେ. ବି—୧ । ବହୁଦୂର ସ୍ଥାନ—
2. Very distant place.
୨ । ବହୁ ଦୂରତ୍ୱ—2. A great distance.

**ଦୂରଦୃକ୍**—ସଂ. ବଣ. ପୁଂ (ଦୂର+ଦୃଶ୍ ଧାତୁ+କର୍ତ୍ତୃ. କ୍ୱିପ୍)—
Dūradṛuk ଦୂରଦର୍ଶୀ (ଦେଖ)—Dūradarśi (See).
(ଦୂରଦୃଶା—ସ୍ତ୍ରୀ)

**ଦୂରଦୃଷ୍ଟି**—ସଂ. ବ (କର୍ମଧାରୟ; ଦୂର+ଦୃଷ୍ଟି)—୧ । ସୁଦୂରଦର୍ଶନ;
Dūradṛushṭi ବହୁ ଦୂରକୁ ଦେଖିବା—1. Seeing to a great distance; far-sight.
୨ । ବହୁଦୂରସ୍ଥ ପଦାର୍ଥ ଦେଖିବାର ଶକ୍ତି—
2. Long-sightedness.
୩ । କୌଣସି ବିଷୟର ପରିଣାମପ୍ରତି ଦୃଷ୍ଟି ରଖିବା; ଦୂରଦର୍ଶିତା—3. Prudence; foresight.
୪ । (ବହୁବ୍ରୀହି) ଶାଗୁଣା; ଶକୁନ—4. Vulture.
୫ । ଦୂରବୀକ୍ଷଣ ଯନ୍ତ୍ର—5. Telescope.
ବଣ (ବହୁବ୍ରୀହି)—୧ । ଯେ ଦୂରକୁ ଦେଖିପାରେ—
1. Far-seeing; far-sighted.
୨ । ପରିଣାମଦର୍ଶୀ—2. Prudent; provident; sagacious.
୩ । ତ୍ରିକାଳଜ୍ଞ; ଯେ ଭବିଷ୍ୟତ୍ ଜାଣେ—
3. Having insight into the future.
୪ । ବିଜ୍ଞ—4. Wise.
୫ । ପଣ୍ଡିତ—5. Learned.

**ଦୂର ଦେଶ**—ସଂ. ବି—ବହୁଦୂରରେ ଅବସ୍ଥିତ ଅଞ୍ଚଳ—
Dūra deśa A far away or distant country.

**ଦୂର ନିରୀକ୍ଷଣ**—ସଂ. ବ—ଦୂରବୀକ୍ଷଣ ଯନ୍ତ୍ର (ହି. ଶବ୍ଦସାଗର)—
Dūra nirīkshaṇa Telescope.

**ଦୂର ପଥ**—ସଂ. ବ—ବହୁତ ବାଟ—
Dūra patha A long way or distance.

**ଦୂର ପର୍ବତ**—ଦେ. ବି—୧ । ଦୂରରେ ଅବସ୍ଥିତ ପର୍ବତ—
Dūra parbata 1. A distant mountain.
୨ । ଦୂରରୁ ଦେଖାଯିବା ପର୍ବତ—
2. A mountain seen from a distant place.
[illegible]

**ଦୂର ପ୍ରାଚ୍ୟଦେଶ**—ସଂ. ବ (ଅର୍ବାଚୀନ ପ୍ରୟୋଗ)—[illegible] ଯାପାନଆଦି
Dūra prāchyadeśa ଦୂରବର୍ତ୍ତୀ ପୂର୍ବଦେଶସମୂହ—The far East (as distinguished from the near East and the middle East).

**ଦୂର ବନ୍ଧୁ**—ସଂ. ବଣ (ଦୂର+ବନ୍ଧୁ; ବହୁବ୍ରୀହି)—ଯେଉଁ ବ୍ୟକ୍ତିର ବନ୍ଧୁ
Dūra bandhu ବହୁ ଦୂରରେ ଅଛନ୍ତି—(a person) Having a friend living at a great distance.
ଦେ. ବି—ଯେଉଁ ବନ୍ଧୁବାନ୍ଧବଙ୍କ ବାସସ୍ଥାନ ଆପଣା ବାସସ୍ଥାନ ଠାରୁ ବହୁ ଦୂରରେ ଅବସ୍ଥିତ—Relations residing at a great distance from one's residence.
(ଯଥା—ଦୂର ପର୍ବତ ସୁନ୍ଦର, ଦୂର ବନ୍ଧୁ ସୁନ୍ଦର—ଢଗ ।)

**ଦୂରବର୍ତ୍ତୀ**—ସଂ. ବଣ. ପୁଂ (ଦୂର+ବୃତ୍ ଧାତୁ+କର୍ତ୍ତୃ. ଇନ୍; ୧ମା. ୧ବ)—ଯାହା ଦୂରରେ ଅଛି, ଦୂରରେ ଅବସ୍ଥିତ—
Dūrabartti Situated at a distance.
(ଦୂରବର୍ତ୍ତିନୀ—ସ୍ତ୍ରୀ)

**ଦୂରବସ୍ତ**—ବୈଦେ. କ୍ରି ବଣ.—ଦୋରବସ୍ତ (ଦେଖ)
Dūrabasta Dorabasta (See)

**ଦୂର ବାଟ**—ଦେ. ବ—ଦୂରପଥ; ବହୁ ଦୂରତା—
Dūra bāṭa A long distance; a long way.
(ଦୂରପନ୍ଥ—ଅନ୍ୟରୂପ)

**ଦୂରବୀକ୍ଷଣ**—ସଂ. ବ (ଦୂର+ବି+ଈକ୍ଷ୍ ଧାତୁ=ଦେଖିବା+କରଣ.ଅନ)
Dūrabīkshaṇa ଦୂରବୀନ୍; ଯେଉଁ ବୈଜ୍ଞାନିକ ଯନ୍ତ୍ରଦ୍ୱାରା ଦୂରସ୍ଥ ପଦାର୍ଥମାନ ନିକଟବର୍ତ୍ତୀ ପରି ଦେଖାଯାଏ—
Telescope; a spying glass.

**ଦୂରବୀନ୍**—ଦେ. ବ (ସଂ. ଦୂରବୀକ୍ଷଣ)—ଦୂରବୀକ୍ଷଣ (ଦେଖ)
Dūrabīn Dūrabīkshaṇa (See)
ଦୁର୍ବିନ୍ } ଅନ୍ୟରୂପ — ଦୂରବୀନରେ ଚାହିଁଦେଲା,
ଦୂର୍ବୀନ୍ } — ପାଖ ଲୋକଙ୍କୁ ପଚାରିଲା, ଏ କଅଣ ?
दुरबीन् ଫକୀରମୋହନ. ଗଳ୍ପସ୍ୱଳ୍ପ ।
**दूरबीन**

**ଦୂରବିନ୍ଦ କଷିବା**—ଦେ. କ୍ରି—ଦୂରବୀନ୍ ଯନ୍ତ୍ରରେ ଚାହିଁବା—
Dūrabind kashibā To see through a telescope.
दूरबीन कषा ଉପରକୁ ଉଠିଯାଇ ଦୂରବୀନ କଷି ଦେଲା ।
**दूरबीन कसना** ଫକୀରମୋହନ. ଗଳ୍ପସ୍ୱଳ୍ପ ।

**ଦୂରବେଧୀ**—ସଂ. ବଣ. ପୁଂ (ଦୂର+ବ୍ୟଧ ଧାତୁ+କର୍ତ୍ତୃ. ଇନ୍; ୧ମା. ୧ବ)—ଦୂରଭେଦୀ (ଦେଖ)
Dūrabedhī Dūrabhedī (See).

**ଦୂରଭେଦୀ**—ସଂ. ବଣ. ପୁଂ (ଦୂର+ଭିଦ୍ ଧାତୁ+କର୍ତ୍ତୃ. ଇନ୍; ୧ମା.୧ବ)
Dūrabhedī ୧ । ଦୂରସ୍ଥିତ କୌଣସି ଲକ୍ଷ୍ୟ ବସ୍ତୁକୁ ଯେ ଶସ୍ତ୍ରଆଦି ଦ୍ୱାରା ବିଦ୍ଧ କରିପାରେ—1. Able to strike at a target from a long way off; able to pierce a thing with weapons from a long distance.
୨ । ଦୂରବର୍ତ୍ତୀ ବସ୍ତୁକୁ ଭେଦ କରି ପାରୁଥିବା (ଶର)—
2. (missile) Striking at a target from far.
ବ—୧ । ଶର; ବାଣ—1. An arrow.
୨ । ବନ୍ଧୁକ—2. A gun.

**ଦୂରମୂଳ**—ସଂ. ବ (ବହୁବ୍ରୀହି; ଦୂର+ମୂଳ)—ମୁଞ୍ଜ (ଦେଖ)
Dūramūla Muñja (See)

ଦୂରଯାୟୀ—ସଂ ବିଣ (ଦୂର+ଯା ଧାତୁ+କର୍ତ୍ତୃ. ଇନ୍; ସ୍ତ୍ରୀ. ଈବ)—
Dūrajāyī ଦୂରଗାମୀ—Gone to a great distance.

ଦୂରସ୍ଥ—ସଂ. ବିଣ. ପୁଂ (ଦୂର+ସ୍ଥା ଧାତୁ+କର୍ତ୍ତୃ. ଅ)—ଦୂରରେ
Dūrastha ଅବସ୍ଥିତ—Situated or living at a
(ଦୂରସ୍ଥା—ସ୍ତ୍ରୀ) great distance; being far off.
ବୈଦେ ବଣ (ଫା)—ଦୋରସ୍ତ (ଦେଖ)
Dorasta (See)

ଦୂର ହେବା—ଦେ. କ୍ରି (ସଂ. ଦୂର+ଭୂ ଧାତୁ)—୧। ବିତାଡ଼ିତ ହେବା—
Dūra hebā 1. To be driven away.
ଦূর হওয়া; दूर होना ୨। ସ୍ଥାନାନ୍ତରିତ ହେବା—2. To be removed to a distance.
୩। ଲୋପ ପାଇବା—3. To disappear.
ଦୂର ହୋଇଛ କେତେ ସୁଖମାନ—କବିସୂର୍ଯ୍ୟ. ବଳଭାଦ୍ରଳ
୪। କୌଣସି ସ୍ଥାନ ତ୍ୟାଗ କରିବା; ଚାଲିଯିବା—
4. To be off; to go away; to retire from a place

ଦୂରାନ୍ତ—ଦେ. ବି—୧। ଦୂରତା—1. Distance.
Dūrānta ୨। ବ୍ୟବଧାନ—2. Interval, space.
କେତେ ଦୂରାନ୍ତର ଛଡ଼ା ଖଣ୍ଡିଅଛ ଚଳିଁ। ପ୍ରାଚୀ ବୃନ୍ଦାବନରୂପଣ ଗୀତା
ବିଣ—ଦୂରସ୍ଥିତ; ଦୂରରେ ଥିବା—Distant; remote.
ଏବେ କରୁଛ ବେଜନଜନ; ଗଲେ ସେ ଦୂରାନ୍ତର ବନ।
(ଦୂରାନ୍ତର—ଅନ୍ୟରୂପ) ପ୍ରାଚୀ ନର୍ଗୁଣ ମାହାତ୍ମ୍ୟ।

ଦୂରାନ୍ୱୟ—ସଂ. ବି—(ବ୍ୟାକରଣ) ଯେଉଁ ରଚନାରେ ବାକ୍ୟରେ ବିନ୍ୟସ୍ତ
Dūrānwaya ଶବ୍ଦମାନ ଦୂରବର୍ତ୍ତୀ ଶବ୍ଦମାନଙ୍କ ସଙ୍ଗେ ଅନ୍ୱିତ ହୁଏ
—(Grammar) A composition of sentences in which words related to one another are placed far off from one another.
[ଦ୍ର—ଏହା ରଚନାରେ ଗୋଟିଏ ଦୋଷ ଅଟେ।]

ଦୂରାପାତ—ସଂ. ବିଣ. (ବହୁବ୍ରୀହି; ଦୂର+ଆପାତ)—ଯେଉଁ ଅସ୍ତ୍ରକୁ ଦୂରରୁ
Dūrāpāta ଫିଙ୍ଗି ମରାଯାଏ (ହି. ଶବ୍ଦସାଗର)—(weapon) Which can be thrown from a long distance.

ଦୂରୀକରଣ—ସଂ. ବି (ଦୂର+ଅଭୂତ ତଦ୍ଭାବେ. ଚ୍ୱି+କରଣ)—
Dūrīkarana ୧। ବିତାଡ଼ନ; ବହିଷ୍କରଣ—1. Driving away.
୨। ଅପସାରଣ—2. Removal.

ଦୂରୀକୃତ—ସଂ. ବିଣ. ପୁଂ (ଦୂର+ଅଭୂତ ତଦ୍ଭାବେ ଚ୍ୱି+କୃତ)—
Dūrīkṛuta ୧। ବିତାଡ଼ିତ; ଦୂରକୁ ଅପସାରିତ—
(ଦୂରୀକୃତା—ସ୍ତ୍ରୀ) 1. Driven away; removed far away.
୨। ଅବମାନନାପୂର୍ବକ ଯାହାକୁ ଅପସାରିତ କରାଯାଇଅଛି—
2. Removed with insult or contempt.

ଦୂରୀକ୍ରିୟମାଣ—ସଂ. ବିଣ.ପୁଂ (ଦୂର+ଅଭୂତ ତଦ୍ଭାବେ.ଚ୍ୱି+କ୍ରିୟମାଣ)—
Dūrīkriyamāna ଯାହାକୁ ତଡ଼ା ଯାଉଅଛି; ବିତାଡ଼ୟମାନ—
Which or who is being driven away or removed.

ଦୂରୀଭୂତ—ସଂ. ବିଣ—(ଦୂର+ଅଭୂତ ତଦ୍ଭାବେ ଚ୍ୱି+ଭୂତ)—
Dūrībhūta ୧। ବିତାଡ଼ିତ—1. Driven away.
(ଦୂରୀଭୂତା—ସ୍ତ୍ରୀ) ୨। ଅପସାରିତ—2. Removed.
୩। ପୃଥକ୍‌କୃତ—3. Separated.
୪। ଯାହା ଦୂରବର୍ତ୍ତୀ ହୋଇଅଛି—4. Become distant.
୫। ଯେ ଦୂରକୁ ଯାଇଅଛି—5. Gone away.

ଦୂରୁ—ଦେ. କ୍ରି. ବିଣ—ଦୂରରୁ—From a distance.
Dūru ଆଲୋପ୍ରିଲ ବାସି ହେଲା ପର ଦଣ୍ଡି ପଇଛ ଦୂରୁ ଶ୍ରୀଅଙ୍ଗ।
দূরথেকে; दूरसे କବିସୂର୍ଯ୍ୟ. କଣୋର ଚନ୍ଦ୍ର ଚ. ଗୀତ।
(ଦୂରୁଁ—ଅନ୍ୟରୂପ)

ଦୂରୁକୁ ଦେଖିବା—ଦେ. କ୍ରି—୧। ଦୂରବର୍ତ୍ତୀ ସ୍ଥାନର ବସ୍ତୁକୁ ଦେଖିବା—
Dūruku dekhibā 1 To see a distant thing.
দূরে দেখা; दूरकी सूझना ୨। (ଲକ୍ଷଣା) ଗଭୀର ଚିନ୍ତାକରି ଭବିଷ୍ୟତ୍ ବିଷୟ ଜାଣିବା—2. To think deeply for knowing the future.

ଦୂରୁଛଡ଼ା (ଇତ୍ୟାଦି)—ଦୂର ଛଡ଼ା ଇତ୍ୟାଦି (ଦେଖ)
Dūruchhardā (etc) Dūra chhardā etc (See)

ଦୂରୁ ଦୂରୁ (ଇତ୍ୟାଦି)—ଦୂର୍ ଦୂର୍ ଇତ୍ୟାଦି (ଦେଖ)
Dūru dūru (etc) Dūr-dūr etc (See)

ଦୂରେଇ—ଦେ. କ୍ରି. ବିଣ—(ସଂ. ଦୂର)—ଖଣ୍ଡେଦୂର ଛାଡ଼ିକରି; ବିଚ୍ଛେ
Dūrei ବ୍ୟବଧାନ ବା ଅନ୍ତର ଛାଡ଼ିକରି—
(ଦୂରେଇ କରି—ଅନ୍ୟରୂପ) Leaving some space between.
(ଯଥା—ଭୂଇଁରେ କଉଡ଼ି ପଡ଼ିଥିଲେ ତା ବେଙ୍ଗକୁ ଦୂରେଇ କରି ନ ଧରିଲେ ହାତ ପୋଡ଼ିଯିବ।)

ଦୂରେଇବା—ଦେ. କ୍ରି (ସଂ. ଦୂର; ସଂ ଦୂରୀୟ ନାମ ଧାତୁ)—
Dūreibā ୧। ଦୂରକୁ ଘୁଞ୍ଚି ଯିବା—
1. To move or go off to a distance.

ଦୂରୋହ—ସଂ. ବି. (ଦୂର+ବହ ଧାତୁ+କର୍ତ୍ତୃ. ଅ)—
Dūroha ଆଦିତ୍ୟ ଲୋକ (ହି. ଶବ୍ଦସାଗର)—The imaginary sphere or world of the sun.

ଦୂରୋହଣ—ସଂ. ବି—ସୂର୍ଯ୍ୟ (ହି. ଶବ୍ଦସାଗର)—
Dūrohana The sun.

ଦୂର୍ବ୍ (ଧାତୁ)—ସଂ—୧। ହିଂସା କରିବା—
Dūrbb (root) 1. To envy; to have malice.
(ଦୁର୍ବ୍—ଅନ୍ୟରୂପ) ୨। ଆଘାତ କରିବା—
2 To strike; to hurt
୩। ହତ୍ୟା କରିବା—3. To kill.

ଦୂର୍ବା—ସଂ. ବି. ସ୍ତ୍ରୀ. (ଦୂର୍ବ୍ ଧାତୁ+କର୍ମ. ଅ+ଆ)—
Dūrbbā ଦୂବ ଘାସ, ପାର୍ଶ୍ୱରୁ ଲତାଳିଆ ଗଣ୍ଠିଯୁକ୍ତ ଘାସ—
(ଦୁର୍ବା—ଅନ୍ୟରୂପ) The Doob grass; Cynoden Dactylon.
[ଦ୍ର—ଏହାର ତେର ଗୋଷ୍ଠାଲସ୍ତା। ଏ ଗଛ ପଡ଼ିଆରେ ଖୁବ୍ ମାଡ଼ି ଯାଏ। ଏହା ଗୋରୁଗାଈଙ୍କ ଖାଦ୍ୟ। ହିନ୍ଦୁମାନଙ୍କ ମତରେ ଏହା ପବିତ୍ର। ଧର୍ମାନୁଷ୍ଠାନମାନଙ୍କରେ ବରିକୋଳିପତ୍ର, ଅକ୍ଷତ ଚାଉଳ ଓ ଫୁଲ ଆଦି ସହିତ ଦୂର୍ବା ପୂଜାଙ୍ଗରୂପେ ବ୍ୟବହୃତ ହୁଏ।]

ଦୁର୍ବାଦଳ—ସ. ବି. ( ୬ଷ୍ଠୀ ତତ୍; ଦୁର୍ବା+ଦଳ )—
Dūrbbādala ଦୂବ ଘାସର ପତ୍ର —The leaves or blades
(ଦୁର୍ବାଦଳ—ଅନ୍ୟରୂପ) of the Doob grass.

ଦୁର୍ବାଷ୍ଟମୀ—ସ. ବି—ଭାଦ୍ର ମାସ ଶୁକ୍ଳାଷ୍ଟମୀ; ରାଧାଷ୍ଟମୀ—
Dūrbbāshṭami The eigth day of the bright
(ଦୁବାଷ୍ଟମୀ—ଅନ୍ୟରୂପ) fortnight of the month of Bhādra.

[ ଦ୍ର—ଯେଉଁ ସ୍ତ୍ରୀ ଏ ବ୍ରତ ପାଳନ କରନ୍ତି ତାହାଙ୍କର ସାତ ପୁରୁଷ ପର୍ଯ୍ୟନ୍ତ ସନ୍ତାନ ସନ୍ତତିମାନେ ଦୂବଘାସ ଭଳି ମାଡ଼ି ଯାଆନ୍ତି, ଏ ପ୍ରବାଦ ଏ ଦେଶରେ ପ୍ରଚଳିତ ଅଛି । ]

ଦୂର୍ଯ୍ୟ—ସ. ବି. (ଦୁର+ଯା ଧାତୁ=ଗମନ କରିବା+ଯ)—ବିଷ୍ଠା—
Dūrjya Ordure; nightsoil.

ଦୁଲୀ—ସ ବି—ନୀଳଗଛ (ହି. ଶବ୍ଦସାଗର)—
Dūli The Indigo plant.

ଦୂଶ୍ୟ—ସ. ବି—ତମ୍ବୁ; ରାଉଟି (ହି. ଶବ୍ଦସାଗର)—
Dūsya Tent.

ଦୁଷ୍(ଷି) (ଧାତୁ)—ସ.—(ଦୁଷ୍ ଧାତୁର ଣିଜନ୍ତ ଆକୃତି) –
Dūsh(shi) (root) ୧ । ଦୋଷ ଦେବା—1. To blame.
୨ । ବିକୃତ ହେବା—2. To be diseased or distorted; to turn bad; to be spoiled.

ଦୂଷକ—ସ. ବିଣ ପୁଂ. (ଦୁଷ୍ ଧାତୁ+ କର୍ତ୍ତୃ. ଅକ)— ୧ । ଯେ ଅପବାଦ
Dūshaka ଦିଏ; ନିନ୍ଦକ—1. Blaspheming; blaming;
(ଦୂଷିକା—ସ୍ତ୍ରୀ) defaming.
୨ । ଦୋଷଦର୍ଶକ—2. Fault-finding.
୩ । ଦୋଷଜନକ—3. Condemnable.
୪ । ଯେ ଦୂଷିତ କରେ—4. Corrupting; defiling.
୫ । ଯେଉଁ ପୁରୁଷ କୌଣସି ବାଳକା ବା ଯୁବତୀକୁ ଅବୈଧ ଉପାୟରେ ସଙ୍ଗମ କରେ – 5. (a man) Seducing or violating a girl or woman; ravishing; deflowering.

ଦୂଷଣ—ସ. ବି. (ଦୁଷ୍ ଧାତୁ+ଭାବ ଅନ)—୧ । ଦୋଷ; ଅପରାଧ—
Dūshaṇa 1. Fault; blemish; guilt.
୨ । ପାପ—2. Sin.
୩ । ନିନ୍ଦା—3. Blame.
୪ । କଳଙ୍କ; ଅପବାଦ; ଦୋଷାରୋପ—
4. Accusation; charge, stigma.
ବଧୂ ବୋଇଲେ ମୁଁ କ ଜାଣେଁ ତା ଶାଇଲ
ଦୂଷ୍ମ କୂଳେ ଆଣି ଦୂଷଣ ଲଗାଇଲ—କୃଷ୍ଣସିଂହ, ମହାଭାରତ ବନ ।
୫ । ନଷ୍ଟ କରିବା—5. Spoiling; ruining.
୬ । ମାଇଁ କରିବା; ଅଶୁଚି କରିବା—
6. Defilement; contaminating.
୭ । ଧର୍ଷଣ—7. Rebuke; insulting.
୮ । ସ୍ତ୍ରୀକୁ ଅବୈଧଭାବରେ ହରଣ—8. Rape; violation; deflowering; ravishing.
୯ । ( +କର୍ତ୍ତୃ. ଅନ ) ରାବଣର ମାଉସୀପୁଅ ଭାଇ; ଖରର ଭାଇ; ରାକ୍ଷସବିଶେଷ—9. Name of a demon, causin of Rābaṇa.
[ ଦ୍ର—ଏ ପଞ୍ଚବଟୀରେ ସୂର୍ପଣଖାର ରକ୍ଷା ପାଇଁ ରାବଣଦ୍ୱାରା ଖର ସଙ୍ଗେ ନିଯୁକ୍ତ ହୋଇଥିଲା । ସୂର୍ପଣଖାର ନାକକାନ କଟା ହେବା ପରେ ଏ ରାମଚନ୍ଦ୍ରଙ୍କ ସହିତ ଦଣ୍ଡକାରଣ୍ୟରେ ଯୁଦ୍ଧ କରି ନିହତ ହୋଇଥିଲା । ]
ବିଣ—୧ । ( +କର୍ତ୍ତୃ. ଅନ ) ଦୋଷଜନକ—
1. Blameworthy.
୨ । ଦୂଷକ—2 Censorious; fault-finding
୩ । ଯେ ମାଇଁ କରେ—3. Defiling
୪ । ଦୋଷଯୁକ୍ତ—4. Faulty.

ଦୂଷଣ ଅରି—ଦେ. ବି. ( ସ. ଦୂଷଣାରି )—ଦୂଷଣ ରାକ୍ଷସର ବିନାଶକର୍ତ୍ତା; 
Dūshaṇa ari ରାମଚନ୍ଦ୍ର—A name of Rāmachandra.
ବଳେ ଦୂଷଣଅରି ଲକ୍ଷଣଗଣ ମାରି ଲକ୍ଷ୍ମଣ ସହିତରେ ସେ ।
ଭଞ୍ଜ; ବୈଦେହୀଶବିଳାସ ।

ଦୂଷଣାବହ—ସ. ବିଣ. ( ଦୂଷଣ+ଆ+ବହ୍ ଧାତୁ+କର୍ତ୍ତୃ. ଅ )—
Dūshaṇābaha ଦୋଷାବହ; ଦୂଷ୍ୟ—
Blameable; blameworthy.

ଦୂଷଣାରି – ସ. ବି. ( ୬ଷ୍ଠୀ ତତ୍; ଦୂଷଣ+ଅରି )—ରାମଚନ୍ଦ୍ର—
Dūshaṇāri A name of Rāmachandra.

ଦୂଷଣୀୟ—ସ. ବିଣ. ପୁଂ. (ଦୁଷ ଧାତୁ+ କର୍ମ ଅନୀୟ)—
Dūshaṇiya ୧ । ଦୋଷାବହ; ନିନ୍ଦନୀୟ—1. Culpable;
(ଦୂଷଣୀୟା—ସ୍ତ୍ରୀ) blameable; censurable; reprehensible; blameworthy.
୨ । ଯାହାକୁ ଦୋଷଯୁକ୍ତ ବା ମାଇଁ କରାଯାଇ ପାରେ—
2. Capable of being contaminated or spoilt

ଦୂଷୟିତା—ସ ବିଣ. ପୁଂ. (ଦୁଷ୍ ଧାତୁ+କର୍ତ୍ତୃ. ତୃ ୧ମା. ୧ବ.)—
Dūshayitā ୧ । ଦୂଷକ (ଦେଖ)—1. Dūshaka (See)
( ଦୂଷୟିତ୍ରୀ—ସ୍ତ୍ରୀ ) ୨ । ଅଶୁଚିକାରକ—2 Defiling.

ଦୂଷୟିତ୍ନୁ—ସ. ବିଣ ( ଦୁଷ୍ ଧାତୁ+ଶୀଳାର୍ଥେ. ଇତ୍ନୁ )—
Dūshayitnu ଦୂଷୟିତା ( ଦେଖ )—Dūshayitā ( See )

ଦୂଷି—ସ. ବି ( ଦୁଷ୍ ଧାତୁ+କର୍ତ୍ତୃ. ଇ )—ନେତ୍ର ମଳ; ଆଖିର
Dūshi ଲେଞ୍ଜେରି—Mucus matter coming out of
( ଦୂଷୀ—ଅନ୍ୟରୂପ ) the eye; rheum of the eye.

ଦୂଷିକା – ସ. ବିଣ. ( ଦୂଷକ+ସ୍ତ୍ରୀ+ଆ )—ଦୂଷଣ କାରିଣୀ—
Dūshikā A malfging ( woman ).
ବି. ( ଦୂଷି+ସ୍ୱାର୍ଥେ. କ+ଆ )—୧ । ନେତ୍ର ମଳ—
1. Rheum of the eye.
୨ । ତୂଳିକା—2. Painter's brush.

ଦୂଷିତ—ସ. ବିଣ. ( ଦୁଷ୍ ଧାତୁ=ଦୋଷଯୁକ୍ତ ହେବା+କର୍ମ. ତ )—
Dūshita ୧ । ଯାହାର ମହତ୍ତ୍ୱ ନଷ୍ଟ କରା ଯାଇଅଛି—
( ଦୂଷିତା—ସ୍ତ୍ରୀ ) 1. Dishonoured.
୨ । ଦୋଷପ୍ରାପ୍ତ; ଦୁଷ୍ଟ—2. Corrupted.
୩ । କଳୁଷିତ; କଳଙ୍କିତ—3. Spoiled; stained.

୪ । ନିନ୍ଦିତ; ଗର୍ହିତ—4. Condemnable.

୫ । ପାପିଷ୍ଠ; ପାପପୂର୍ଣ୍ଣ—5. Sinful.

୬ । ଅପବିତ୍ରୀକୃତ—6. Defiled; polluted; contaminated; tainted.

୭ । ଅପବାଦଗ୍ରସ୍ତ—
7. Calumniated, scandalised.

୮ । ମୈଥୁନାପବାଦଯୁକ୍ତ—
8 Scandalised for sexual intercourse.

**ଦୂଷିତା**—ସଂ. ବିଣ. ସ୍ତ୍ରୀ—୧ । ଯେଉଁ ସ୍ତ୍ରୀ ବା ବାଳିକାର ସତୀତ୍ୱ ନଷ୍ଟ
Dūshitā କରି ଯାଇଅଛି—1. Defiled; deflowered; violated; dishonoured ( girl ).

୨ । ପାପିଷ୍ଠା—2 Sinful.

**ଦୂଷିବା**—ଦେ. କ୍ରି—୧ । ଦୋଷାରୋପ କରିବା; ନିନ୍ଦା କରିବା—
Dūshibā 1. To accuse; to blame.

ଦୂଷା ଅଦୃଷ୍ଟ ଦୁଃଖ ସୁଖ ହିଏ
**ଦୂଷଣା** ଅନେ ଦୂଷିବା ନ ଯୋଗାଏ—ଜଗନ୍ନାଥ. ଭାଗବତ ।

୨ । କଳଙ୍କିତ କରିବା—2. To stigmatise.

**ଦୂଷୀ**—ସଂ. ବିଣ. ( ଦୂଷ୍ ଧାତୁ+କର୍ତ୍ତୃ. ଇ )—ଦୂଷି ( ଦେଖ )
Dūshi Dūshi ( See )

**ଦୂଷୀ ବିଷ**—ସଂ. ବି—ସୁଶ୍ରୁତ ଅନୁସାରେ ଦେହର ଅଭ୍ୟନ୍ତରରେ ବ୍ୟାପି
Dūshi bisha ରହିବା ଏକପ୍ରକାର ବିଷ ( ହି. ଶବ୍ଦସାଗର )—
A kind of poison which circulates in the system.

[ଦ୍ର— କୌଣସି ପ୍ରକାର ସ୍ଥାବର, ଜଙ୍ଗମ ବା କୃତ୍ରିମ ବିଷ ଶରୀରରେ ପ୍ରବେଶ କରି ତାହା ଦେହରୁ ବାହାରି ନ ଗଲେ ବା ଔଷଧ ଓ ଉପଚାରଦ୍ୱାରା ନଷ୍ଟ ନ ହେଲେ ତାହାକୁ ଦୂଷୀ ବିଷ ବା ସ୍ଥାନ ବିଷ ବୋଲଯାଏ । ଯାହା ଦେହରେ ଏ ବିଷ ରହେ, ତାହା ଦେହ ହଳଦିଆ ପଡ଼ିଯାଏ, ମଳର ରଙ୍ଗ ବଦଳିଯାଏ, ମୁହଁରୁ ଦୁର୍ଗନ୍ଧ ବାହାରେ, ଶୋଷ ଓ ମୂର୍ଚ୍ଛା ହୁଏ, କେଶ ଓ ଲୋମ ଉପୁଡ଼ି ଯାଏ, ଦେହରେ ଚେକା ଦାଗମାନ ବାହାରେ ଓ ହାତ ଗୋଡ଼ ଫୁଲିଯାଏ । ହି. ଶବ୍ଦସାଗର । ]

**ଦୂଷ୍ୟ**—ସଂ. ବିଣ ( ଦୂଷ୍ ଧାତୁ+କର୍ମ. ଯ )—୧ । ନିନ୍ଦନୀୟ; ନିନ୍ଦ୍ୟ—
Dūshya 1. Blameworthy.
( ଦୂଷ୍ୟା—ସ୍ତ୍ରୀ ) ୨ । ଦୂଷଣୀୟ—2. Condemnable.

୩ । ଯାହା ଦୂଷିତ ହୋଇ ପାରେ—
3. Liable to be spoiled or polluted.

୪ । ତ୍ୟାଜ୍ୟ—4. Fit to be deserted or given up.

୫ । ମନ୍ଦ—5. Vile; bad.

୬ । ତୁଚ୍ଛ; ହେୟ—6. Contemptible.

୭ । ରାଜ୍ୟର ହାନିକାରକ ( ବ୍ୟକ୍ତି )—
7. ( a person ) Causing injury to the realm.

ବି—୧ । ପଟ୍ଟମଣ୍ଡପ; ବସ୍ତ୍ରାବାସ; ତମ୍ବୁ—1. Tent.

୨ । ପୂଯ—2. Pus.

୩ । ଖାର୍ଯ୍ୟ—3. Matter; semen.

୪ । ବସ୍ତ୍ର; ଲୁଗା ( ହି. ଶବ୍ଦସାଗର )—4. Cloth.

**ଦୂଷ୍ୟା**—ସଂ. ବି—ହସ୍ତୀ କକ୍ଷରେ ଉଡାଯିବା ରଜ୍ଜୁ—The rope
Dūshyā which passes through the armpit of an elephant.

**ଦୂହୂ**—ଦେ. ( ଧ୍ୱନ୍ୟନୁକରଣ ) ଅ—ଧୂ ଧୂ ( ଦେଖ )
Dūhū Dhū dhū ( See)

( ଦୂହୂ ଦୂହୂ—ଅନ୍ୟରୂପ ) ଦୂହୂ ଜଳୁଅଛ ଘୋର କୃଷ୍ଣଜଳ୍ପା
କଗଳ ବଚନ କରି ବ୍ୟାପନ—ବନମାଳୀ. କୃଷ୍ଣକ୍ରୀଡା

**ଦୃ** ( ଧାତୁ )—ସଂ—ଆଦର କରିବା—
Dṛu ( root ) To fondle; to esteem.

**ଦୃକ୍**—ସଂ. ବି. ( ଦୃଶ୍ ଧାତୁ=ଦେଖିବା+କରଣ କ୍ୱିପ୍; ଦୃଶ୍ ଶବ୍ଦ; ୧ମା.
Dṛuk ୧ବ )—୧ । ଦର୍ଶନେନ୍ଦ୍ରିୟ, ଚକ୍ଷୁଃ—1. Eye.

୨ । ( +ଭାବ. କ୍ୱିପ୍ ) ଦୃଷ୍ଟି—2. Eye sight.

୩ । ଜ୍ଞାନ—3. Wisdom

୪ । ( +କର୍ତ୍ତୃ. କ୍ୱିପ୍ )—ସାକ୍ଷୀ—
4 Witness; eye-witness.

ବିଣ—୧ । ଦର୍ଶକ; ଯେ ଦେଖେ—1. Seeing.

୨ । (+କର୍ମ. କ୍ୱିପ୍) ଯାହା ( ଅମୁକ ପରି ) ଦିଶେ—
2 Looking like; appearing like.

୩ । ଯେ ଜାଣେ—
3. Knowing; having an insight into.

[ ଦ୍ର—ଏ ଶବ୍ଦର ମୂଳ ଆକାର ଦୃଶ୍, ଏହି ଶବ୍ଦ ଅନ୍ୟ ଶବ୍ଦ ପୂର୍ବେ ସମାସରେ ବ୍ୟବହୃତ ହେଲେ ବିଶେଷ୍ୟ ଅର୍ଥ ପ୍ରକାଶ କରେ । ଯଥା—ଦୃକ୍କୋଣ, ଦୃକ୍‌ପାତ ଇତ୍ୟାଦି; ଅନ୍ୟ ଶବ୍ଦ ପରେ ବ୍ୟବହୃତ ହେଲେ ବିଶେଷଣ ଅର୍ଥ ପ୍ରକାଶ କରେ । ଯଥା—ଦୋଷଦୃକ୍, ଯାଦୃକ୍, ଈଦୃକ୍, ଶାସ୍ତ୍ରଦୃକ୍ ଇତ୍ୟାଦି । ]

**ଦୃକ୍‌କର୍ଣ୍ଣ**—ସଂ. ବି. ( ଦ୍ୱନ୍ଦ୍ୱ, ଦୃକ୍+କର୍ଣ୍ଣ )—୧ । ଆଖି ଓ କାନ—
Dṛuk-karnna 1. The eye and the ear.

୨ । ଦୃଷ୍ଟି ଓ ଶ୍ରୁତି—
2. Seeing and hearing.

( ଯଥା—ଆଜି ଆପଣଙ୍କ ନିକଟରେ ଉପସ୍ଥିତ ହୋଇ ମୋର ଦୃକ୍‌କର୍ଣ୍ଣର ବିବାଦ ମୀମାଂସା ହୋଇଗଲା । ]

୩ । ( ବହୁବ୍ରୀହି ) ସାପ; ଚକ୍ଷୁଃଶ୍ରବାଃ—
3. Serpent.

[ ଦ୍ର—ସାପମାନେ ଆଖି ଦ୍ୱାରା ଶୁଣନ୍ତି ବୋଲି ପ୍ରବାଦ ଅଛି । ]

ବିଣ. ( ବହୁବ୍ରୀହି )—ଯେ ଆଖିଦ୍ୱାରା ଶୁଣେ; ଯାହାର ଆଖି କାନର କାର୍ଯ୍ୟ କରେ; ଚକ୍ଷୁଃଶ୍ରବାଃ—
Whose eyes do the part of ears; hearing; through the eyes.

**ଦୃକ୍‌କାଣ**—ସଂ. ବି—ଦ୍ରେକ୍କାଣ ( ଦେଖ )
Dṛuk-kāṇa Drekkāṇa ( See )

**ଦୃକ୍‌କୋଣ**—ସଂ. ବି. ( ୬ଷ୍ଠୀ ତତ୍; ଦୃକ୍+କୋଣ )—
Dṛuk-koṇa ଆଖିର କଣ—The corner of the eye.

ଦୃକ୍‌କ୍ଷେପ—ସଂ. ବି. ( ୬ଷ୍ଠୀ ତତ୍; ଦୃକ୍+କ୍ଷେପ )—
Dṛuk-kshepa ଦୃକ୍‌ପାତ ( ଦେଖ )
Dṛuk-pāta ( See )

ଦୃକ୍‌ପଥ—ସଂ. ବି. ( ୬ଷ୍ଠୀ ତତ୍, ଦୃକ୍+ପଥ )—
Dṛuk-patha ଦୃଷ୍ଟିପଥ; ଯେତେ ଦୂର ପର୍ଯ୍ୟନ୍ତ ଦେଖାଯାଇ ପାରେ—
Field of view; ken.

ଦୃକ୍‌ପାତ—ସଂ. ବି. ( ୬ଷ୍ଠୀ ତତ୍; ଦୃକ୍+ପାତ)—
Dṛuk-pāta ୧ । ନେତ୍ରପାତ, ଦୃଷ୍ଟିପାତ; ଆଖି ପକାଇବା; ଦେଖିବା; ଅବଲୋକନ—
1. A look; casting of a glance; seeing.
୨ । ଦର୍ଶନ—2. Sight; view; a glance.
୩ । ( ଲକ୍ଷଣାର୍ଥ ) ମନୋଯୋଗ; ଖାତିର—
3 (figurative) Care; attention.
( ଯଥା—ମୁଁ ଏତେ ଦୁଃଖ ପାଉଛି, ତଥାପି ମୋ ପୁଅର ଏଥିକି ଦୃକ୍‌ପାତ ନାହିଁ । )

ଦୃକ୍‌ପାତ କରିବା—ଦେ. କ୍ରି—୧ । ଆଖି ପକାଇବା—
Dṛuk-pāta karibā 1. To cast an eye on.
দৃকপাতকরা ୨ । ଚାହିଁବା; ଦେଖିବା – 2, To look at,
**दृकपात करना** ୩ । ମନୋଯୋଗ ଦେବା—3 To attend.

ଦୃକ୍‌ପ୍ରିୟ—ସଂ. ବିଣ —ସୁନ୍ଦର; ସୌମ୍ୟଦର୍ଶନ—
Dṛuk-priya Beautiful; graceful.
(ଦୃକ୍‌ପ୍ରିୟା—ସ୍ତ୍ରୀ) (ଦୃକ୍‌ପ୍ରିୟତା—ବି)

ଦୃକ୍‌ଶକ୍ତି—ସଂ. ବି—୧ । ଦୃଷ୍ଟି ଶକ୍ତି—
Dṛuk-śakti 1. Eyesight; power of seeing.
୨ । ଜ୍ଞାନଶକ୍ତି; ବୋଧଶକ୍ତି—2. Power or faculty of perception; insight.
୩ । ପ୍ରକାଶ ରୂପ ଚୈତନ୍ୟ ( ହି. ଶବ୍ଦସାଗର )—
3. The Divine Spirit as manifested.
୪ । ଆତ୍ମା ( ହି. ଶବ୍ଦସାଗର ) 4. Soul.

ଦୃକ୍‌ଶ୍ରୁତି—ସଂ. ବି ଓ ବିଣ —ଦୃକ୍‌କର୍ଣ୍ଣ ( ଦେଖ )
Dṛuk-śruti Dṛuk-karṇṇa ( See )

ଦୃକ୍‌ସିଦ୍ଧ—ସଂ ବିଣ. ( ୩ୟା ତତ୍; ଦୃକ୍ ଦ୍ୱାରା ସିଦ୍ଧ )—
Dṛuk-siddha ( ଜ୍ୟୋତିଷ ) ଯାହା ଦେଖିବା ଦ୍ୱାରା ସିଦ୍ଧାନ୍ତ କରା ଯାଇଅଛି—(Astronomy) Arrived at after personal observation.
( ଯଥା—ମହାମହୋପାଧ୍ୟାୟ ଚନ୍ଦ୍ରଶେଖର ସାମନ୍ତଙ୍କ ପଞ୍ଜିକା ଦୃକ୍‌ସିଦ୍ଧ ସୂକ୍ଷ୍ମଗଣିତ । )

ଦୃକ—ଦେ. ବି. ( ସଂ. ଦୃକ୍ )—ଚକ୍ଷୁ; ଆଖି—
Dṛuka Eye.
ସୀତାସ୍ମୃତି ବଦ୍ୟାସୁଧ ଅମୃତର ଦୃକ
ସାମ ଚୋଷ ଦାନେ ସମ ମହିଁ ବଳେ ଲୋକ ।
ଉପେ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।
ଦେ. ଅ—ପରି; ସଦୃଶ—Like.
ବକ ପୃଷ୍ଠମାଳା ମାଳକ; ଲକ୍ଷ୍ୟ ଶୁଙ୍ଗ,ତାଲୁ ଦେବେ ଦୃକ ।
ଉପେ. ବୈଦେହୀଶବିଳାସ ।

ଦୃକ୍କାଣ—ସଂ. ବି. ( ଜ୍ୟୋତିଷ )—ଦ୍ରେକ୍କାଣ ( ଦେଖ )
Dṛukkāṇa Drekkāṇa ( See )

ଦୃଗ୍‌ଗୋଳ—ସଂ. ବି. ( ଦୃକ୍+ଗୋଳ=ମଣ୍ଡଳ )—
Dṛug-gola ୧ । ଦୃଶ୍ୟମାନ ଦିଙ୍ମଣ୍ଡଳ—
(ଦୃଗ୍‌ବଳୟ—ଅନ୍ୟନାମ) 1. The sensible horizon.
୨ । (ଜ୍ୟୋତିଷ) ଊର୍ଦ୍ଧ୍ୱସ୍ୱସ୍ତିକ ଓ ଅଧଃସ୍ୱସ୍ତିକ ବିନ୍ଦୁ ଭେଦ କରି ଅଙ୍କିତ କରାଯିବା କଳ୍ପିତ ବୃତ୍ତ, ଯହିଁରେ ଗ୍ରହମାନଙ୍କର ଉଦୟ ଓ ସ୍ଥିତି କଳ୍ପନା କରାଯାଏ (ହି.ଶ)—
2 (Astronomy) The imaginary circle passing through the zenith and the nadir on which the planets are taken to rise move.

ଦୃଗ୍‌ବୃତ୍ତ—ସଂ. ବି. (ଦୃକ୍+ବୃତ୍ତ)—ଦୃଗ୍‌ଗୋଳ ( ଦେଖ )
Dṛug-brutta Dṛug-gola ( See )

ଦୃଗ୍‌ଭୂ—ସଂ. ବି. ( ଦୃକ୍+ଭୂ ଧାତୁ+କର୍ତ୍ତୃ. କ୍ୱିପ୍ )—
Dṛug-bhū ୧ । ବଜ୍ର ( ହି. ଶବ୍ଦସାଗର )—1. Thunder.
୨ । ସୂର୍ଯ୍ୟ ( ହି. ଶବ୍ଦସାଗର )—2. The sun.
୩ । ସର୍ପ ( ହି. ଶବ୍ଦସାଗର )—3. Serpent.

ଦୃଗଞ୍ଚଳ—ସଂ. ବି. ( ୬ଷ୍ଠୀ ତତ୍; ଦୃକ୍+ଅଞ୍ଚଳ=ପ୍ରାନ୍ତ )—
Drugañchala ୧ । କଟାକ୍ଷ; ଆଖିର ବାଙ୍କ ଚାହାଣି—
1. Side-glance.
ଚଞ୍ଚଳତର ତରଳ ଦୃଗଞ୍ଚଳ ବକ୍ଷର ବଦନେ ପଡ଼ଇ ।
ପ୍ରାଚୀ. ଶିଶୁଶଙ୍କର. ଉଷାଭିଳାଷ ।
୨ । ପଲକ—2. Glance.

ଦୃଗଧ୍ୟକ୍ଷ—ସଂ. ବି. ( ୬ଷ୍ଠୀ ତତ୍; ଦୃକ୍+ଅଧ୍ୟକ୍ଷ )—
Drugadhyaksha ସୂର୍ଯ୍ୟ—The sun

ଦୃଙ୍ମଣ୍ଡଳ—ସଂ. ବି. ( ଦୃକ୍+ମଣ୍ଡଳ )—ଦୃଗ୍‌ଗୋଳ ( ଦେଖ )
Druṅ-maṇḍaḷa Dṛug-goḷa ( See )

ଦୃଚ୍ଛନା—ଦେ. ବି. ( ସଂ. ସାଦୃଶ୍ୟ )—
Druchchhanā ୧ । ତତ୍ ସ୍ୱରୂପତା; ତତ୍‌ସମତା—
(ଦୃଛନା—ଅନ୍ୟରୂପ) 1. Semblance; likeness.
ରଙ୍ଗ ପ୍ରାପ୍ତେ ତଥେ କୋହେ ରଙ୍ଗର ଦୃଛନା ।
ପ୍ରାଚୀ. ବ୍ରହ୍ମାଣ୍ଡଭୂଗୋଳଗୀତା ।
୨ । ଉଦାହରଣ—2. Example; illustration

ଦୃଢ଼—ସଂ. ବିଣ. (ଦୃହ୍ ଧାତୁ=ବୃଦ୍ଧି ପାଇବା+କର୍ତ୍ତୃ. ତ)—
Drurdha ୧ । ଶକ୍ତ; କଠିନ; ଠାଣ—
(ଦୃଢା—ସ୍ତ୍ରୀଲିଙ୍ଗ) 1. Hard; solid; firm.
ଦୃଢତା, ଦୃଢତ୍ୱ, ଦାର୍ଢ୍ୟ } ବି.
୨ । କରଡ଼ା; ଠାଆଁସା—2. Tough.
୩ । ସବଳ; ମଜବୁତ; ସମର୍ଥ—
3. Strong; capable.
୪ । ଅଟଳ; ସ୍ଥିର; ନିଶ୍ଚଳ—4. Stable; fast; immoveable; fixed
୫ । ଅତିଶୟ—5. Excessive.
୬ । ନୀରୋଗ—6. Hale; healthy.
୭ । ଅଶିଥିଳ; ଟାଣ—7. Tight.
୮ । ଅବଭଞ୍ଜ୍ୟ; ଯାହା ସହଜରେ ଭାଙ୍ଗେ ନାହିଁ—

8 Inviolable; unbreakable.
୯ । ଜମାଟ—9. Frozen; coagulated.
୧୦ । ସ୍ଥିର; ନିଶ୍ଚିତ—10. Certain.
୧୧ । (ଗଣିତ) ଗୋଟିଏ ସାଧାରଣ ସଂଖ୍ୟାଦ୍ୱାରା ଭାଗ କରାଯାଇ ସର୍ବନିମ୍ନ ସଂଖ୍ୟାକୁ ଆଣୀତ—11. (Arithmetic) Reduced to the least term by a common divisor.
ସଂ. ବି—୧ । ଲୌହ—1 Iron.
୨ । ବିଷ୍ଣୁ—2. A name of Bishṇu.
୩ । ଧୃତରାଷ୍ଟ୍ରଙ୍କର ଏକ ପୁତ୍ରର ନାମ—
3. Name of a son of Dhṛutarāshṭra
୪ । (ଗଣିତ) ଯେଉଁ ସଂଖ୍ୟା ଅନ୍ୟ କେଉଁ ସଂଖ୍ୟାଦ୍ୱାରା ବିଭକ୍ତ ହୋଇ ନ ପାରେ (ହି. ଶବ୍ଦସାଗର)—
4 (Arithmetic) A number which is not divisible by any other number.
(ଯଥା—୧, ୩, ୫, ୭, ୧୧, ୧୩, ୧୭, ୨୩ ।)
୫ । ଦୁର୍ଗ—5 Fortress (Apte).
୬ । ତ୍ରୟୋଦଶ ମନୁ ରୁଚଙ୍କର ଏକ ପୁତ୍ର (ହି. ଶବ୍ଦସାଗର)—
6. Name of a son of the 13th Manu.
ଦେ. ବି (ପଦ୍ୟ)—ଦୃଢ଼ତା—
Inviolableness; certainty; fixity.
ବଚନର ଦୃଢ ସର୍ବେ ନ ରହିବ ଅଂଶେ । ପ୍ରାଚୀ. ଶ୍ରୀ ଗୁରୁଭକ୍ତି ଗୀତା ।

ଦୃଢ଼ ଆୟୁଷ—ଦେ. ବି—ଆୟୁବଳ—
Dṛurdha āyusha Long life; longevity.
ଦୃଢ଼ଣା ମାରେ ପଞ୍ଚ ଘଳରେ ଦୃଢ଼ ଆୟୁଷ କାଇ ।
ଭଞ୍ଜ. ବୈଦେହୀଶବିଳାସ ।

ଦୃଢ଼ କରିବା—ଦେ. କ୍ରି—୧ । ଶକ୍ତ କରିବା—
Dṛurdha kariba 1. To strengthen; to consolidate; to confirm; to make firm.
ଦୃଢ଼କବା ढृढ़ करना
୨ । (ମନରେ) ସ୍ଥିର କରିବା—
2. To be sure and certain; to settle.

ଦୃଢ଼ କରି ଧରିବା—ଦେ. କ୍ରି—୧ । ଟାଣ କରି ଧରିବା—
Dṛurdha kari dhariba 1. To hold tightly.
୨ । ସମ୍ପୂର୍ଣ୍ଣ ନିର୍ଭର କରିବା—
2. To depend entirely upon (a person).

ଦୃଢ଼ କାଣ୍ଡ—ସଂ. ବି. (ବହୁବ୍ରୀହି; ଦୃଢ଼+କାଣ୍ଡ)—୧ । ବାଉଁଶ—
Dṛurdha kāṇda 1. The bamboo.
୨ । ରୋହିସ ତୃଣ—2. A kind of grass.
ସଂ. ବିଣ—ଯାହାର କାଣ୍ଡ ଦୃଢ଼—Of strong stem.

ଦୃଢ଼ କାୟ—ସଂ. ବି. (କର୍ମଧା; ଦୃଢ଼+କାୟ)—ସବଳ ଓ କଷ୍ଟସହିଷ୍ଣୁ ଶରୀର—Strong and hardy body.
Dṛurdha kāya
(ଦୃଢ଼କାୟା—ସ୍ତ୍ରୀ) ବିଣ. ପୁଂ. (ବହୁବ୍ରୀହି)—ସବଳ ଓ ସହିଷ୍ଣୁ ଶରୀର ବିଶିଷ୍ଟ—Strongly built; having a strong physique; firm-bodied; having thick-set limbs.
(ଦୃଢ଼କାୟତା—ବି)

ଦୃଢ଼ ଗ୍ରନ୍ଥି—ସଂ. ବି. (ବହୁବ୍ରୀହି; ଦୃଢ଼+ଗ୍ରନ୍ଥି)—ବାଉଁଶ—
Dṛurdha granthi The bamboo.

ଦୃଢ଼ ଜବାବ୍—ଦେ. ବି. (ସଂ. ଦୃଢ଼; ଫା. ଜବାବ୍)—ସ୍ଥିର ଜବାବ; ଅଟଳ ଜବାବ୍—A sure promise; inviolable promise.
Dṛurdha jabāb
ଦେ ବିଣ.—ଯେଉଁ ବ୍ୟକ୍ତିର ବଚନ ଅଟଳ—
(ଦୃଢ଼ ଜବାବୀ, ଦୃଢ଼ ଜବାବିଆ—ବିଣ) Of sure promise.

ଦୃଢ଼ ଜ୍ଞାନ—ସଂ. ବି.—୧ । ନିଶ୍ଚୟାତ୍ମକ ଜ୍ଞାନ—
Dṛurdha jñāna 1. Certain knowledge; conviction,
୨ । ଆସ୍ଥା, ବିଶ୍ୱାସ—2. Confidence.

ଦୃଢ଼ ତରୁ—ସଂ. ବି.—ଧବ ବୃକ୍ଷ; ଧଅ ଗଛ—
Dṛurdha taru Anogeissus Latifolia (tree).

ଦୃଢ଼ତା—ସଂ. ବି. (ଦୃଢ଼+ଭାବ. ତା)—୧ । ଅଟଳତା; ସ୍ଥିରତା—
Dṛurdhatā 1 Certainty; sureness.
(ଦୃଢ଼ତ୍ୱ—ଅନ୍ୟରୂପ) ୨ । କାଠିନ୍ୟ; ଟାଣପଣ—
2. Tightness; firmness; hardness; toughness.

ଦୃଢ଼ ନିଶ୍ଚୟ—ସଂ. ବିଣ. ପୁଂ. (ବହୁବ୍ରୀହି; ଦୃଢ଼+ନିଶ୍ଚୟ)—୧ । ଯାହାର ସିଦ୍ଧାନ୍ତ ଅଟଳ—1. Confident; certain; firm in one's conclusions or convictions.
Dṛurdha nischaya
(ଦୃଢ଼ ନିଶ୍ଚୟା—ସ୍ତ୍ରୀ)
(ଦୃଢ଼ ଧାଦ—ଅନ୍ୟରୂପ)
୨ । ସ୍ଥିର ପ୍ରତିଜ୍ଞ—2. Of firm resolve.

ଦୃଢ଼ନିଷ୍ଠ—ସଂ. ବିଣ. ପୁଂ. (ବହୁବ୍ରୀହି; ଦୃଷ୍ଟ+ନିଷ୍ଠା ଯାହାର)—ଦୃଢ଼ ବ୍ରତ; କୌଣସି କାର୍ଯ୍ୟରେ ଏକନିଷ୍ଠ—
Dṛurdhanishṭha
(ଦୃଢ଼ନିଷ୍ଠା—ସ୍ତ୍ରୀ) Devoted to a work.

ଦୃଢ଼ନିଷ୍ଠତା—ସଂ. ବି.—ଏକନିଷ୍ଠତା—
Dṛurdhanishṭhatā Devotedness.

ଦୃଢ଼ ନିଷ୍ଠା—ସଂ. ବି. (କର୍ମଧା; ଦୃଢ଼+ନିଷ୍ଠା)—କୌଣସି କାର୍ଯ୍ୟରେ ଏକାନ୍ତ ନିଷ୍ଠା ବା ନିୟମ ପାଳନ—
Dṛurdha nishṭhā
Single-hearted devotion to a work.

ଦୃଢ଼ ନୀର—ସଂ ବି. (ବହୁବ୍ରୀହି; ଦୃଢ଼+ନୀର; ଯାହାର ଜଳୀୟ ଭାଗ ଯଥାକାଳରେ ଦୃଢ଼ତା ପ୍ରାପ୍ତ ହୁଏ)—ନଡ଼ିଆ—
Dṛurdha nira
(ଦୃଢ଼ଫଳ—ଅନ୍ୟରୂପ) Cocoanut.

ଦୃଢ଼ ପତ୍ର—ସଂ. ବି. (ବହୁବ୍ରୀହି; ଦୃଢ଼+ପତ୍ର)—ଦୃଢ଼ କାଣ୍ଡ (ଦେଖ)
Dṛurdha patra Dṛurdha kāṇda (See)

ଦୃଢ଼ପ୍ରତିଜ୍ଞ—ସଂ. ବିଣ. ପୁଂ. (ବହୁବ୍ରୀହି; ଦୃଢ଼+ପ୍ରତିଜ୍ଞା)—୧ । ସ୍ଥିର-ପ୍ରତିଜ୍ଞ; ଯାହାର ପ୍ରତିଜ୍ଞା ବା ବାକ୍ୟ ଅନ୍ୟଥା ହୁଏ ନାହିଁ—1. Faithful to one's promise; determined; resolute; true to one's promise.
Dṛurdhapratijña
(ଦୃଢ଼ ପ୍ରତିଜ୍ଞା—ସ୍ତ୍ରୀ)
(ଦୃଢ଼ପ୍ରତିଜ୍ଞତା—ବି)
୨ । ସ୍ଥିରବାକ୍ (ବ୍ୟକ୍ତି)—
2. True to one's words (person).

ଦୃଢ଼ ପ୍ରତିଜ୍ଞା—ସଂ. ବି. (କର୍ମଧା; ଦୃଢ଼+ପ୍ରତିଜ୍ଞା)—ଅଟଳ ସଂକଳ୍ପ—
Dṛurdha pratijñā Firm resolution; determination.

ଦୃଢ଼ ପ୍ରତ୍ୟୟ—ସଂ. ବି ଓ ବିଣ ( କର୍ମଧା ଓ ବହୁବ୍ରୀହି; ଦୃଢ଼ + ପ୍ରତ୍ୟୟ )—
Drurdha pratyaya ଦୃଢ଼ ବିଶ୍ୱାସ (ଦେଖ)
Drurdha biswāsa (See)

ଦୃଢ଼ ପ୍ରରୋହ—ସଂ. ବି. (ବହୁବ୍ରୀହି; ଦୃଢ଼+ପ୍ରରୋହ)—ବରଗଛ—
Drurdha praroha Baniyan tree.

ଦୃଢ଼ ବଦ୍ଧ—ସଂ. ବି.—୧ । ଦୃଢ଼ରୂପେ ବନ୍ଧା ହୋଇଥିବା—
Drurdha baddha 1. Bound tightly.
୨ । ଯାହା ଦୃଢ଼ ଭାବରେ ଧସ୍ତ ହୋଇ ଥାଏ—
2. Firmly grasped.
(ଯଥା—ଦୃଢ଼ବଦ୍ଧ ମୁଷ୍ଟି ।)

ଦୃଢ଼ ବନ୍ଧନ—ସଂ. ବି. (କର୍ମଧା. ଦୃଢ଼+ବନ୍ଧନ)—ଟାଣୁଆ ବାନ୍ଧେଣୀ;
Drurdha bandhana ଯେଉଁ ବନ୍ଧନ ଫିଟିବ ନାହିଁ—
A tight bond.
ବିଣ.—ଯାହା ଟାଣୁଆ ହୋଇ ବନ୍ଧା ହୋଇ ଥାଏ—
Firmly bound.

ଦୃଢ଼ବନ୍ଧନା—ସଂ. ବିଣ. ସ୍ତ୍ରୀ—(ବହୁବ୍ରୀହି; ଦୃଢ଼+ବନ୍ଧନ+ସ୍ତ୍ରୀ. ଆ )—
Drurdhabandhanā ଯାହା ଟାଣ କରି ବାନ୍ଧି ପାରେ—
Which can bind tightly; tenacious.
ବି.—ଶ୍ୟାମା ଲତା; ଶୁଆଁ ଲଟୀ—
A kind of tenacious creeper.

ଦୃଢ଼ ବନ୍ଧନୀ—ସ. ବି (କର୍ମଧା; ଦୃଢ଼+ବନ୍ଧନୀ)—ଦୃଢ଼ ବନ୍ଧନ ( ଦେଖ )
Drurdha bandhani Drurdha bandhana ( See )

ଦୃଢ଼ବର୍ମା—ସ. ବିଣ ( ବହୁବ୍ରୀହି; ଦୃଢ଼+ବର୍ମନ୍ )—୧ । ଯାହାର ବର୍ମ
Drurdhabarmā ବା ଅଙ୍ଗାବରଣ ଖୁବ୍ ଶକ୍ତ ବା ଅଭେଦ୍ୟ—
1. Having a hard armour or coating.
୨ । ଯେଉଁ ଜନ୍ତୁମାନଙ୍କ ଉପର ଆବରଣ ଟାଣୁଆ—
2. Of tough hide, crustaceous.

ଦୃଢ଼ବର୍ମ୍ମୀ—ସ. ବିଣ (ଦୃଢ଼ବର୍ମ୍ମା+ଅସ୍ତି ଅର୍ଥରେ ଇନ୍; ୧ମା. ୧ବ)—
Drurdhabarmmi ଦୃଢ଼ବର୍ମ୍ମା ( ଦେଖ )
Drurdhabarmmā (See)

ଦୃଢ଼ ବଲ୍କଲ-ସଂ. ବଣ. ( ବହୁବ୍ରୀହି, ଦୃଢ଼+ବଲ୍କଲ)—ଯେଉଁ ବୃକ୍ଷର
Drurdha balkala ବକଲା ଖୁବ୍ ଦୃଢ଼—(tree) Having
(ଦୃଢ଼ବଲ୍କଲା—ସ୍ତ୍ରୀ) hard bark.
ସଂ. ବି—୧ । ଗୁଆଗଛ ( ହି. ଶବ୍ଦସାଗର )—
1. Areca-nut tree.
୨ । ଲକୁଚ (ଦେଖ)—2. Lakucha (See)

ଦୃଢ଼ ବାକ୍ୟ—ସ.ବି (କର୍ମଧା; ଦୃଢ଼+ବାକ୍ୟ)—ଅଟଳ ବଚନ; ଅବିଚଳିତ
Drurdha bākya କଥା—Words or promise which
(ଦୃଢ଼ବାକ୍ୟା—ସ୍ତ୍ରୀ) will not change.
ବିଣ—ଦୃଢ଼ବାଦୀ ( ଦେଖ )—Drurdhabādi (See)

ଦୃଢ଼ବାଦୀ—ସଂ. ବଣ. ପୁଂ (ଦୃଢ଼+ବଦ୍ ଧାତୁ+ଶୀଳାର୍ଥେ ଇନ୍ ୧ମା ୧ବ)—
Drurdhabādi ଯେ ଆପଣା କଥାରୁ ବଚଳିତ ହୁଏ ନାହିଁ—
(ଦୃଢ଼ବାଦିନୀ—ସ୍ତ୍ରୀ) Who is true to his word.

ଦୃଢ଼ ବିଶ୍ୱାସ—ସ. ବି (କର୍ମଧା; ଦୃଢ଼+ବିଶ୍ୱାସ )—ଅଟଳ ବିଶ୍ୱାସ—
Drurdha biswāsa Firm faith; conviction implicit confidence.
ବିଣ. ପୁଂ(ବହୁବ୍ରୀହି)—ଯାହାର ବିଶ୍ୱାସ ଅଟଳ—Firm in
(ଦୃଢ଼ବିଶ୍ୱାସା—ସ୍ତ୍ରୀ) conviction.

ଦୃଢ଼ ବୀଜ ସ. ବଣ (ବହୁବ୍ରୀହି; ଦୃଢ଼+ବୀଜ)—ଯାହାର ବୀଜ ବା ମଞ୍ଜି
Drurdha bija ଟାଣୁଆ; କଠିନ ବୀଜଯୁକ୍ତ—Having hard seeds.
ବିଣ—୧ । (କର୍ମଧା) ଟାଣୁଆ ମଞ୍ଜି 1. Hard seed.
୨ । (ବହୁବ୍ରୀହି) ବରକୋଳି; ବଦର—
2 The jujube tree.
୩ । ଚକୁଣ୍ଡା ଗଛ—3. The Cassia Tora tree.
୪ । କଳା ତୁଳସୀ—
4. The black Holy Basil.
୫ । ବବୁର ( ଦେଖ ) ( ହି. ଶବ୍ଦସାଗର )—
5. Babura ( See )

ଦୃଢ଼ ବୋଧ—ସ. ବି—ଦୃଢ଼ବିଶ୍ୱାସ (ଦେଖ)
Drurdha bodha Drurdha biswāsa (See).

ଦୃଢ଼ବ୍ରତ—ସ. ବି ( କର୍ମଧା; ଦୃଢ଼+ବ୍ରତ )—୧ । ଯେଉଁ ବ୍ରତ ବା
Drurdha brata ପ୍ରତିଜ୍ଞା ଅଲଙ୍ଘ୍ୟ—1. Firm resolve or vow.
୨ । ଅଧ୍ୟବସାୟ—2. Perseverance.
୩ । କଠୋର ତପଃସାଧନ—
3. Inviolable penance.
ବିଣ. ପୁଂ (ବହୁବ୍ରୀହି)—୧ । ଅଧ୍ୟବସାୟବିଶିଷ୍ଟ—
(ଦୃଢ଼ବ୍ରତା—ସ୍ତ୍ରୀ) 1. Persevering.
୨ । ବ୍ରତପାଳନରେ ଅଟଳ—
2 Strictly adhering to a vow.
୩ । ଅବଲମ୍ବିତ କାର୍ଯ୍ୟସାଧନରେ ଦୃଢ଼ଯତ୍ନବିଶିଷ୍ଟ—
3 Persistent; steady and firm in executing an undertaking or carrying out a resolve or vow.
୪ । ସ୍ଥିରସଙ୍କଳ୍ପ—4. Of fixed resolve.

ଦୃଢ଼ବ୍ରତୀ—ସ. ବିଣ. ପୁଂ (ଦୃଢ଼ବ୍ରତ+ଅସ୍ତି ଅର୍ଥରେ ଇନ୍ ୧ମା. ୧ବ.)—
Drurdhabrati ଦୃଢ଼ବ୍ରତ (ଦେଖ) Drurdhabrata (See).
(ଦୃଢ଼ବ୍ରତିନୀ—ସ୍ତ୍ରୀ)

ଦୃଢ଼ ଭକ୍ତି—ସ. ବି (କର୍ମଧା, ଦୃଢ଼+ଭକ୍ତି)—ଅଟଳଭକ୍ତି—
Drurdha bhakti Unflinching devotion; firm faith.
ବିଣ (ବହୁବ୍ରୀହି)—ଅଟଳଭକ୍ତିବିଶିଷ୍ଟ—Devoted.

ଦୃଢ଼ ଭାଜକ—ସଂ. ବି ( ଗଣିତ ପରିଭାଷା )—ଯେଉଁ ସଂଖ୍ୟାଦ୍ୱାରା ଅନ୍ୟ
Drurdha bhājaka ସଂଖ୍ୟାକୁ ଭାଗ କଲାପରେ ଫଳ ବାକି ରହେ ନାହିଁ—( Arithmetic ) A number which divides another number without leaving any remainder.

ଦୃଢ଼ଭୂମି—ସ. ବ ( କର୍ମଧା; ଦୃଢ଼+ଭୂମି )—
Dṛurdha bhūmi ୧ । କଠିନ ଜମି; ଟାଣ ମାଟି—
1 Hard soil
୨ । ଯୋଗଶାସ୍ତ୍ରରେ ମନକୁ ଏକାଗ୍ର ବା ସ୍ଥିର କରିବାର ଅଭ୍ୟାସ—2. The habit of concentrating one's attention during Joga exercise.
[ ଦ୍ର—ଏହା ସାଧନ କରିବା ବ୍ୟକ୍ତିର ମନ ଅବିଚଳିତ ହୁଏ ଓ ଏ ଅବସ୍ଥା ପ୍ରାପ୍ତ ହେଲେ ଶୀଘ୍ର ବୈରାଗ୍ୟ ଜନ୍ମେ—ହି. ଶବ୍ଦସାଗର । ]

ଦୃଢ଼ମୁଷ୍ଟି—ସଂ. ବି ( କର୍ମଧା; ଦୃଢ଼ା+ମୁଷ୍ଟି )—୧ । ବଦ୍ଧମୁଷ୍ଟି;
Dṛurdha mushti ଦୃଢ଼ଭାବରେ ଅବଦ୍ଧ ବା ଉଡ଼ାହୋଇଥିବା ମୁଠା—1. Tight fist.
୨ । ( ବହୁବ୍ରୀହି ) ମୁଠାଥିବା ଅସ୍ତ୍ର—
2. Hilted weapon.
ବିଣ—୧ । ଯେ ନିଜର ମୁଠାକୁ ଟାଣ କରିଥାଏ—
1. Tight-fisted
୨ । କୃପଣ; ବ୍ୟୟକୁଣ୍ଠ—
2. Miserly, close-fisted; niggardly.
୩ । ଯେଉଁ ଅସ୍ତ୍ରାଦିକୁ ଧରିବା ନିମନ୍ତେ ମୁଠାକୁ ଟାଣ କରିବା ଦରକାର—3. Hilted (weapon); requiring to be held tightly.

ଦୃଢ଼ମୂଳ—ସ. ବିଣ ( ବହୁବ୍ରୀହି; ଦୃଢ଼+ମୂଳ )—୧ । ଯେଉଁ ବୃକ୍ଷର
Dṛurdha mūla ମୂଳ ଭୂମିରେ ଦୃଢ଼ରୂପେ ଆବଦ୍ଧ ଥାଏ—
1. (tree) With the root firmly rooted to the ground.
୨ । ଯେଉଁ ବୃକ୍ଷାଦିର ଚେର ଖୁବ ଶକ୍ତ—
2. (tree) With hard roots
ସ. ବି—୧ । ନଡ଼ିଆ ( ହି. ଶବ୍ଦସାଗର )—
1. Cocoanut.
୨ । ମନ୍ଥାନକ ନାମକ ଜଳଜ ତୃଣ ( ହି. ଶବ୍ଦସାଗର )—
2. A kind of aquatic grass.
୩ । ମୁଞ୍ଜ ( ହି. ଶବ୍ଦସାଗର )—
3. The Munja grass.

ଦୃଢ଼ରଙ୍ଗା—ସ. ବି (ବହୁବ୍ରୀହି; ଦୃଢ଼+ରଙ୍ଗ+ଆ; ଏଥିର ପ୍ରୟୋଗରେ
Dṛurdharangā ବସ୍ତ୍ରାଦିର ରଙ୍ଗ ପକ୍କା ହୁଏ)—
ଫିଟ୍‌କିରି (ହି. ଶବ୍ଦସାଗର)—Alum.

ଦୃଢ଼ରୋମ—ସ. ବି. ଓ ବିଣ—ଦୃଢ଼ଲୋମା (ଦେଖ)
Dṛurdharoma Dṛurdhalomā (See)
(ଦୃଢ଼ରୋମା ଓ ଦୃଢ଼ଲୋମ—ଅନ୍ୟରୂପ)

ଦୃଢ଼ରୋହ—ସଂ. ବି (ବହୁବ୍ରୀହି; ଦୃଢ଼+ରୋହ)—ପର୍କଟୀ (ହି. ଶ )—
Dṛurdharoha Parkaṭi

ଦୃଢ଼ଲୋମା—ସଂ. ବିଣ ( ବହୁବ୍ରୀହି; ଦୃଢ଼+ଲୋମନ୍ )—ଖରଲୋମଶ;
Dṛurdhalomā କର୍କଶ ଲୋମଯୁକ୍ତ; ଟାଆଁସା ବାଳୁଆ—
Having tough or wiry hairs.
ବି—ଶୂକର; ବରାହ; ବାରହା—Hog; pig; boar.

ଦୃଢ଼ସନ୍ଧ—ସଂ.ବିଣ. ପୁଂ (ବହୁବ୍ରୀହି, ଦୃଢ଼+ସନ୍ଧ)—ଦୃଢ଼ସନ୍ଧାନ(ଦେଖ)
Dṛurdhasandha Dṛurdhasandhāna (See)
ସଂ. ବି—ଧୃତରାଷ୍ଟ୍ରଙ୍କର ଏକ ପୁତ୍ର—
The name of a son of Dhṛutarāshṭra.

ଦୃଢ଼ସନ୍ଧାନ—ସଂ. ବିଣ ପୁଂ (ବହୁବ୍ରୀହି; ଦୃଢ଼+ସନ୍ଧାନ)--ସ୍ଥିରପ୍ରତିଜ୍ଞ—
Dṛurdha sandhāna Resolute.

ଦୃଢ଼ସନ୍ଧି—ସଂ. ବିଣ. ପୁଂ (ବହୁବ୍ରୀହି; ଦୃଢ଼+ସନ୍ଧି)—ସଂହତ; ଦୃଢ଼ରୂପେ
Dṛurdha sandhi ମିଳିତ; ଦୃଢ଼ରୂପେ ଗ୍ରଥିତ—
Compact; strongly knit; closely joined

ଦୃଢ଼ସୂତ୍ରିକା—ସଂ. ବି (ଦୃଢ଼+ସୂତ୍ର+କ+ଆ)—ମୂର୍ବା (ଦେଖ)—
Dṛurdhasūtrikā Mūrbā (See)

ଦୃଢ଼ସ୍କନ୍ଧ—ସଂ. ବିଣ (ବହୁବ୍ରୀହି; ଦୃଢ଼+ସ୍କନ୍ଧ)--ଯାହାର କାନ୍ଧ ଟାଣୁଆ—
Dṛurdha skandha Tough-shouldered.
ବି—୧ । ବଡ଼ କ୍ଷୀରଖୋଳ ଗଛ—
1. Euphorbia Pilulifera ( tree )
୨ । ପିଣ୍ଡଖର୍ଜ୍ଜୁର ( ଦେଖ )—
2 Pindakharjjūra ( See )

ଦୃଢ଼ହସ୍ତ—ସ. ବିଣ. ପୁଂ (ବହୁବ୍ରୀହି; ଦୃଢ଼+ହସ୍ତ)—ଯେଉଁ ବ୍ୟକ୍ତି
Dṛurdha hasta ହତିଆର ଆଦିକୁ ଦୃଢ଼ରୂପେ ଧରିପାରେ—
(ଦୃଢ଼ହସ୍ତା-ସ୍ତ୍ରୀ) (a person) Holding weapons with
ଦୃଢ଼ହସ୍ତତା-ବି) a tight grip.
ସଂ. ବି.—ଧୃତରାଷ୍ଟ୍ରଙ୍କ ଏକପୁତ୍ର—Name of a son of Dhṛutarāshṭra.

ଦୃଢ଼ାଙ୍ଗ—ସଂ. ବି (କର୍ମଧା; ଦୃଢ଼+ଅଙ୍ଗ)—୧ । ସବଳ ଓ ହୃଷ୍ଟପୁଷ୍ଟ
Dṛurdhānga ଏବ କଷ୍ଟସହିଷ୍ଣୁ ଶରୀର—1. Strong and hardy constitution.
୨ । (ବହୁବ୍ରୀହି) ହୀରକ, ହୀରା—2. Diamond (the hardest of all substances).
୩ । ଜୀରକ (ହି. ଶବ୍ଦସାଗର); ଜୀରା—3. Cumin seed.

ଦୃଢ଼ାଙ୍ଗୀ } ସ୍ତ୍ରୀ
ଦୃଢ଼ାଙ୍ଗା } ବିଣ. ( ବହୁବ୍ରୀହି )—ଦୃଢ଼କାୟ—Hardy; firm-bodied; having thick-set limbs.

ଦୃଢ଼ାୟୁଧ—ସ. ବିଣ (ବହୁବ୍ରୀହି; ଦୃଢ଼+ଆୟୁଧ)—ଯାହାର ଆୟୁଧ
Dṛurdhāyudha ଅଭଙ୍ଗ୍ୟ ଦୃଢ଼—Having a strong and invincible weapon.
ବି—୧ । ଶୂଳପାଣି; ପିନାକୀ; ମହାଦେବ—1. God Siba.
୨ । ଧୃତରାଷ୍ଟ୍ରଙ୍କ ଏକପୁତ୍ର—2 Name of a son of Dhṛutarāshṭra.

ଦୃଢ଼ାସ୍ତ୍ର—( ବହୁବ୍ରୀହି; ଦୃଢ଼+ଅସ୍ତ୍ର )—ଦୃଢ଼ାୟୁଧ (ଦେଖ)
Dṛurdhāstra Dṛurdhāyudha (See)

ଦୃଢ଼ାସ୍ଥିକ—ସଂ. ବିଣ. ପୁଂ( ବଜ୍ଞାନ ପରିଭାଷା ) (ବହୁବ୍ରୀହି; ଦୃଢ଼+
Dṛurdhāsthika ଅସ୍ଥି+କ)—ଦୃଢ଼ ଅସ୍ଥିଯୁକ୍ତ (ଜୀବ)—
(ଦୃଢ଼ାସ୍ଥିକା—ସ୍ତ୍ରୀ) Having hard bones; bony; osseous.

ଦୃଢ଼ୀକରଣ – ସଂ. ବି (ଦୃଢ଼+ଅଭୂତ ତଦ୍ଭାବେ ଚ୍ୱି+କରଣ) –
Dṛurdhikaraṇa ୧ । ଅଶକ୍ତଆକୁ ଠାଣୁଆ କରିବା –
Dṛurdhikaraṇa 1. Making stronger, strengthening.
୨ । ଅଟଳୀ କରଣ – 2 Making firm.

ଦୃଢ଼ୀକୃତ – ସଂ. ବିଣ (ଦୃଢ଼+ଅଭୂତ ତଦ୍ଭାବେ. ଚ୍ୱି+କୃତ) – ଯାହାକୁ
Dṛurdhikṛuta ଦୃଢ଼ କରାଯାଇ ଅଛି; କଠିନୀକୃତ –
(ଦୃଢ଼ୀକୃତା—ସ୍ତ୍ରୀ) Made firm; strengthened.

ଦୃଢ଼ୀଭୂତ–ସଂ. ବିଣ (ଦୃଢ଼+ଅଭୂତ ତଦ୍ଭାବେ ଚ୍ୱି+ଭୂତ) – ୧ । ଯାହା
Dṛurdhibhūta ଦୃଢ଼ ହୋଇଅଛି—1, Tightened; made
(ଦୃଢ଼ୀଭାବ—ବି) firm or fast; fastened.
୨ । ଯାହା ଠାଣୁଆ ପାଲଟି ଯାଏ—2, Hardened.

ଦୃଢ଼େଚ୍ଛା – ସଂ. ବି (କର୍ମଧା; ଦୃଢ଼+ଇଚ୍ଛା) – ବଳବତୀ ଇଚ୍ଛା –
Dṛurdhechchhā Strong desire; a firm resolution.

ଦୃତ – ସଂ. ବିଣ—(ଦୃ. ଧାତୁ+କର୍ମ. ତ) – ୧ । ଆଦୃତ –
Dṛuta 1. Esteemed; loved; fondled.
(ଦୃତା—ସ୍ତ୍ରୀ) ୨ । ସମ୍ମାନିତ – 2. Honoured; respected.

ଦୃତା – ସଂ. ବି. ସ୍ତ୍ରୀ (ଦୃତ+ଆ) – ଜୀରା (ହି. ଶବ୍ଦସାଗର) –
Dṛutā Cumin seed.

ଦୃତି – ସଂ. ବି (ଦୃ. ଧାତୁ=ବିଦାରଣ କରିବା+କର୍ମ. ତି) –
Dṛuti ୧ । ଚମଡ଼ାର ଭସ୍ତ୍ର – 1. Bellows made of hide.
୨ । ଚର୍ମ; ଚମଡ଼ା—2. Skin; hide; leather.
୩ । ପାଣି ବୋହିବାର ଚମ ମୁଣା; ଭିସ୍ତି—
3. A bag of leather to carry water.
୪ । ମତ୍ସ୍ୟବିଶେଷ—4. A kind of fish.
୫ । ମେଘ (ହି. ଶବ୍ଦସାଗର)—5. Cloud.
୬ । ଗଳକମ୍ବଳ (ହି. ଶବ୍ଦସାଗର)—6. Dewlap

ଦୃତିବାରକ—ସଂ. ବି—ଅକାନବିନ୍ଦୀ ପତ୍ର—The leaf of Stephania
Dṛutibāraka Hernandifolia.
(ଦୃତିଧାରକ—ଅନ୍ୟରୂପ)

ଦୃତିହରି—ସଂ. ବି (ଦୃତି=ଚର୍ମ+ହୃ. ଧାତୁ+କର୍ତ୍ତୃ. ଇ)—କୁକୁର—
Dṛutihari Dog
(ଦୃତିହର-ଅନ୍ୟରୂପ)

ଦୃତିହାର—ସଂ.ବି (ଦୃତି+ହୃ.ଧାତୁ+କର୍ତ୍ତୃ. ଅ)—୧ । ଦୃତିହରି (ଦେଖ)
Dṛutihāra 1. Dṛutihari (See).
୨ । ଭିସ୍ତିବାଲା; ଚମ ମୁଣାରେ ପାଣି ବୋହୁଥିବା ଲୋକ—
2. A vistee; one who carries water in a leathern bag.

ଦୃନ୍‌ଫ୍ (ଧାତୁ)—ସଂ. କ୍ରି—ପୀଡ଼ନ କରିବା—
Drun-ph (root) To oppress.

ଦୃନ୍‌ଭୂ—ସଂ. (ଦୃଭ୍ ଧାତୁ=ଭୀତ ହେବା+ଅପାଦାନେ ଭୂ)—
Drun-bhū ୧ । ବଜ୍ର—1. Thunder.
୨ । ସୂର୍ଯ୍ୟ—2. The sun.
୩ । ରାଜା; ଭୂପତି—3. King.
୪ । ସର୍ପ—4. Serpent; snake.
୫ । ଚକ୍ର—5. Wheel.

ଦୃପ୍ (ଧାତୁ)—ସଂ.—ଅହଙ୍କୃତ ହେବା—
Dṛup (root) To be proud.

ଦୃପ୍ତ—ସଂ ବିଣ. ପୁଂ ( ଦୃପ୍ ଧାତୁ+କର୍ତ୍ତୃ. ତ )— ୧ । ଦର୍ପଯୁକ୍ତ;
Dṛupta ଅହଙ୍କୃତ—1. Pride, arrogant.
(ଦୃପ୍ତା—ସ୍ତ୍ରୀ)
୨ । ଉଦ୍ଧତ—2. Impertent; rude.
୩ । ଉଗ୍ର; ପ୍ରଚଣ୍ଡ—3. Wrathful; violent; fierce
୪ । ଦୁର୍ବିନୀତ; ଦୁଷ୍ଟ—4, Wicked,
୫ । ପ୍ରଜ୍ଜ୍ୱଳିତ—5, Blazing; fiery,
ସଂ. ବି.–ବିଷ୍ଣୁ—The God Bishṇu,

ଦୃପ୍ର—ସଂ. ବିଣ. ପୁଂ (ଦୃପ୍ ଧାତୁ+କର୍ତ୍ତୃ. ର)—ଦୃପ୍ତ (ଦେଖ)
Dṛupra Dṛupta (See)
( ଦୃପ୍ରା—ସ୍ତ୍ରୀ )

ଦୃବ୍ଧ—ସଂ. ବିଣ (ଦୃଭ୍ ଧାତୁ=ଭୀତ ହେବା; ଗ୍ରନ୍ଥନ କରିବା+ତ)—
Dṛubdha ୧ । (କର୍ମ. ତ) ଗ୍ରଥିତ—1, Sewn; arranged in an orderly manner.
୨ । ( +କର୍ତ୍ତୃ. ତ )—ଭୀତ—2, Frightened; afraid.

ଦୃଭ୍(ଧାତୁ)—ସଂ—୧ । ଭୀତ ହେବା—
Dṛubh(root) 1. To be frightened.
୨ । ଗ୍ରନ୍ଥନ କରିବା—2. To sew through; to arrange systematically or serially.

ଦୃମ୍ଫୁ—ସଂ. ବି (ଦୃନ୍‌ଫ୍ ଧାତୁ=ପୀଡ଼ନ କରିବା+କର୍ତ୍ତୃ. ଉ)—ସର୍ପ—
Dṛumphu A snake; serpent.

ଦୃଶ୍ (ଧାତୁ)—ସଂ.— ଦେଖିବା—
Dṛuś (root) To see.

ଦୃଶ୍—ସଂ. ବି (ଦୃଶ ଧାତୁ+କ୍ୱିପ୍)—୧ । ଦର୍ଶନ; ଦେଖିବା (ହି. ଶ)—
Dṛuś 1. Seeing.
୨ । ଦୃଷ୍ଟି—2. Eye sight.
ସେ କରକର ଦୃଶେ ଅସି ଦୃଶ୍ୟ ହେଲେ—କୃଷ୍ଣସିଂହ ମହାଭାରତ ।
୩ । ନୟନ; ଆଖି—3. Eye.
୪ । ଦୁଇ ସଂଖ୍ୟା ( ହି. ଶବ୍ଦସାଗର )—
4. The number two.
୫ । ଜ୍ଞାନ (ହି. ଶବ୍ଦସାଗର)—5. Knowledge.

ଦୃଶା } ସ୍ତ୍ରୀ ସଂ. ବିଣ. ପୁଂ—୧ । ପ୍ରଦର୍ଶକ; ଦେଖାଇବାବାଲା(ହି.ଶ)—
ଦୃଶୀ } 1. Showing.
୨ । ଦେଖିବାବାଲା (ହି. ଶବ୍ଦସାଗର)—2. Seeing.
୩ । ( ଅନ୍ୟ ଶବ୍ଦ ପରେ ସମାସରେ ଯୁକ୍ତ ହୁଏ, ଯଥା—ଭବାଦୃଶ୍, ଈଦୃଶ୍, ତାଦୃଶ)—(ଅମୁକର) ସଦୃଶ, ଅମୁକ ପରି ଦେଖା ଯାଉଥିବା—Like; looking like; similar to.

ଦୃଶ—(ସ. ଦୃଶ ଧାତୁ) — ଦେ. ବିଣ—୧ । ଦୃଷ୍ଟ —
Dṛuśa 1. Seen; found.
ଏହି ସୁଲକ୍ଷଣା ଦ୍ରୁବ ଦୃଶ—ଉଞ୍ଚ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।
୨ । ଦୃଶ୍ୟ—2. Visible.
ନୋହେ ଶୁକଜେଁ ଗୋଲ କଲୁଲ
ଦୃଶ କରବ ଗଗନମଃ ସ୍ଥଳ । ଚନ୍ଦ୍ରସୂର୍ଯ୍ୟ, କବଭାବଙ୍ଗୋଲ ।

ଦୃଶଦ୍—ସ. ବି (ଦୃ ଧାତୁ=ବିଦୀର୍ଣ୍ଣହେବା+ଅଧିକରଣ. ଶଦ୍)—
Dṛuśad ୧ । ପ୍ରସ୍ତର; ପଥର, ଶିଳା—1. Stone
(ଦୃଷଦ୍—ଅନ୍ୟରୂପ) ୨ । ବିସ୍ତୃତ ଶିଳାଖଣ୍ଡ —
2 An extensive slab of stone; a rock.
୩ । ଶିଳ—3. A flat stone to grind on.
୪ । ପଥର ଚଟାଣ—
4 A pavement or surface of stone.

ଦୃଶଦ୍ବତୀ—ସଂ. ବି. ସ୍ତ୍ରୀ ( ଦୃଶଦ୍=ପଥର+ଅସ୍ତି ଅର୍ଥରେ ବତ୍+ସ୍ତ୍ରୀ.
Dṛuśadbati ଈ)—୧ । ଆର୍ଯ୍ୟାବର୍ତ୍ତର ପୂର୍ବ ସୀମାରେ କଳ୍ପିତ
(ଦୃଷଦ୍ବତୀ—ଅନ୍ୟରୂପ) ପ୍ରାଚୀନ ଭାରତର ନଦୀବିଶେଷ—
1. Name of an ancient river said to flow by the eastern boundary of Northern India
[ଦ୍ର—ଦୃଶଦ୍ବତୀ ନଦୀର ନାମ ଋଗ୍ବେଦରେ ଅଛି । ସଂଭବତଃ ଏ ନଦୀର ଆଧୁନିକ ନାମ ଘଗ୍ଗର ବା ସ୍ଵର୍ଗୀ; ଏହା ଥାନେଶ୍ବରର ୧୩ ମାଇଲ ଦକ୍ଷିଣରେ ବହୁଅଛି । ମହାଭାରତରେ ଏ ନଦୀ କୁରୁକ୍ଷେତ୍ରର ଅନ୍ତର୍ଗତ ଥିବାର ବୋଲା ଯାଇଅଛି । ମନୁସ୍ମୃତିରେ ଏହା ବ୍ରହ୍ମାବର୍ତ୍ତର ସୀମା ବୋଲି ଲେଖା ଅଛି (ହି. ଶବ୍ଦସାଗର) । ପଶ୍ଚିମରେ ସରସ୍ବତୀ ଓ ପୂର୍ବରେ ଦୃଶଦ୍ବତୀ ନଦୀ ମଧ୍ୟସ୍ଥ ଅଞ୍ଚଳକୁ ଆର୍ଯ୍ୟାବର୍ତ୍ତ ବୋଲା ଯାଉଥିଲା ।]
୨ । ଦୁର୍ଗା—2 Goddess Durgā.
୩ । ବିଶ୍ୱାମିତ୍ରଙ୍କର ଏକ ପତ୍ନୀ—
3. Name of a wife of sage Biśwāmitra.
(ଦୃଶଦ୍ବାନ୍—ପୁଂ) ବିଣ. ସ୍ତ୍ରୀ—ପ୍ରସ୍ତରମୟ—
Stony; rocky.

ଦୃଶରେ —ଦେ. କ୍ରି. ବିଣ—ଦେଖିବା ମାତ୍ରକେ—
Dṛuśare At the first sight.
ଦର୍ଶନ ମାତ୍ରେ
ଦେଖନେସେ
ବନ୍ଧ ରସ ଉରେ ଶରେ ସଦୃଶରେ ଦୃଶରେ ଲକ୍ଷଣ ହେବେ ।
ଉଞ୍ଚ. ବୈଦେହୀଶବିଳାସ ।

ଦୃଶା—ସ. ବି. ସ୍ତ୍ରୀ. ( ଦୃଶ୍ ଧାତୁ+କରଣେ. ଅ+ସ୍ତ୍ରୀ ଆ )—
Dṛuśā ଚକ୍ଷୁ—The eye.
ସ. ବ. ସ୍ତ୍ରୀ. ( ଦୃଶ୍+ଅ; ଅନ୍ୟ ଶବ୍ଦ ପରେ ସମାସରେ ଯୁକ୍ତ ହୁଏ, ଯଥା—ଈଦୃଶା, ମାଦୃଶା )—
(ଅମୁକ) ପରି ଦେଖା ଯାଉଥିବା; ସଦୃଶା—
Looking like; similar to.

ଦୃଶାକାଂକ୍ଷ—ସ. ବ. ( ଦୃଶ୍+ଆକାଂକ୍ଷା )—
Dṛuśākāmksha କମଳ; ପଦ୍ମ ( ହି. ଶବ୍ଦସାଗର )—
(ଦୃଷାକାଙ୍କ୍ଷ—ଅନ୍ୟରୂପ) Lotus.

ଦୃଶାନ—ସ. ବି. ( ଦୃଶ୍ ଧାତୁ+କର୍ମ. ଆନ )—
Dṛuśāna ୧ । ପ୍ରକାଶ; ଆଭା —1. Glamour.
୨ । (କର୍ତ୍ତୃ. ଆନ) ବିରୋଚନ ଦୈତ୍ୟ ( ହି. ଶବ୍ଦସାଗର )—
2. The demon Birochana.
୩ । ଆଚାର୍ଯ୍ୟ; ଗୁରୁ ( ହି. ଶବ୍ଦସାଗର )—3. Preceptor.
୪ । ବ୍ରାହ୍ମଣ—4. Brāhmaṇa.
୫ । ପ୍ରଜାପାଳକ ରାଜା ( ହି. ଶବ୍ଦସାଗର )—
5. A king who protects his subjects.

ଦୃଶି — ସ. ବି. ( ଦୃଶ୍ ଧାତୁ+କରଣ. ଇ )—
Dṛuśi ୧ । ଚକ୍ଷୁ—1. The eye.
(ଦୃଶୀ—ଅନ୍ୟରୂପ) ୨ । (କର୍ମ. ଇ) ଶାସ୍ତ୍ର —2. A book containing religious precepts; scripture.
୩ । (+ଭାବ. ଇ) ଦୃଷ୍ଟି ( ହି. ଶବ୍ଦସାଗର )—
3. Eyesight
୪ । ପ୍ରକାଶ ( ହି. ଶବ୍ଦସାଗର )—4. Manifestation.
୫ । ଚେତନ ପୁରୁଷ ( ହି. ଶବ୍ଦସାଗର )—
5. Sentient being.

ଦୃଶେ —ଦେ. କ୍ରି. ବିଣ—ଦୃଶରେ ( ଦେଖ )
Dṛuśe Dṛuśare ( See )
ବଶ୍ରବା ନନ୍ଦନ ଭପ ଉଦ୍ଧତ ପଙ୍କ୍ତ ରୂପ
ପ୍ରତାପ ତାବାକୁ ଲେପ ସ୍ୟନ୍ଦନ ଦୃଶେ । ଉଞ୍ଚ. ବୈଦେହୀଶବିଳାସ ।

ଦୃଶ୍ୟ — ସ. ବିଣ. ( ଦୃଶ୍ ଧାତୁ+କର୍ମ. ଯ )—
Dṛuśya ୧ । ଦେଖିବାର ଯୋଗ୍ୟ—1. Worth seeing.
(ଅଦୃଶ୍ୟ—ବିପରୀତ) ୨ । ଦର୍ଶନୀୟ; ଯାହା ଦେଖାଯାଇ ପାରେ—
2. Visible; perceptible.
୩ । ସୁନ୍ଦର; ମନୋରମ—
3. Beautiful; pleasing to the eye.
୪ । ପ୍ରକାଶ୍ୟ—4. Manifest; apparent
୫ । ଜ୍ଞେୟ ( ହି. ଶବ୍ଦସାଗର )—5. Knowable
ବି—୧ । ଦର୍ଶନୀୟ ବସ୍ତୁ—1. A thing worth seeing.
୨ । ଏକ ସମୟରେ ମନୁଷ୍ୟଙ୍କୁ ଦୂରରୁ ଆଡେ଼ ଦେଖାଯିବା ବସ୍ତୁ ଓ ସ୍ଥାନସମୂହ—2. A landscape; scenery.
୩ । ଦର୍ଶନୀୟ ସ୍ଥାନ ଓ ବିଷୟ—3. A scene.
୪ । ଦେଖାଯିବା ସ୍ଥାନ ବା ପଦାର୍ଥ—
4. A sight; a spectacle.
୫ । ଦର୍ଶନୀୟ ଘଟନା ବା ବିଷୟ—
5. A phenomenon; a prospect.
୬ । (ଦର୍ଶନ ଶାସ୍ତ୍ର) ଇନ୍ଦ୍ରିୟଗ୍ରାହ୍ୟାତ୍ମକ ଅଚେତନ ଜଡ଼ ବର୍ଗ (ହି. ଶ)—6. (philosophy) The material world perceptible to the eye.
୭ । (ଗଣିତ) କୌଣସି ଦତ୍ତ ବା ଜ୍ଞାତ ସଂଖ୍ୟା ବା ରାଶି—
7. (mathematics) A given number; a known quantity.

୮ । ଯାହା ଅଭିନୟ ଦ୍ୱାରା ଦର୍ଶକମାନଙ୍କୁ ଦେଖାଇ ହୋଇ ପାରେ (ଯଥା ଦୃଶ୍ୟକାବ୍ୟ) – 8. (a drama) Which can be shown to spectators by acting.

୯ । ତାମସା; ଦର୍ଶକମାନଙ୍କ ମନୋରଞ୍ଜନାର୍ଥ ପ୍ରଦର୍ଶିତ ନୃତ୍ୟ ଗୀତାଭିନୟାଦି -9. A show; matters exhibited to attract people.

୧୦ । ପ୍ରଦର୍ଶନୀ—10. An exhibition

ଦେ. ବି—ସମ୍ମୁଖ—Front; presence

ଏହି ସମୟରେ ପୁଲସ୍ତ୍ୟ ମହର୍ଷି
ଶ୍ରୀମୁଖର ଦୃଶ୍ୟରେ ଦୃଶ୍ୟ ହେଲେ ଆସ । କୃଷ୍ଣସିଂହ. ମହାଭାରତ ବନ ।

**ଦୃଶ୍ୟ କାବ୍ୟ**—ସଂ. ବି. (କର୍ମଧା; ଦୃଶ୍ୟ+କାବ୍ୟ)—୧ । ରଙ୍ଗାଳୟରେ
Dṛuśya kābya ନାୟକ ନାୟିକାଙ୍କଦ୍ୱାରା ଅଭିନୀତ କାବ୍ୟବିଶେଷ, ଯହିଁରେ ପାତ୍ରମାନେ ଅଙ୍ଗଭଙ୍ଗି ଆଦି ଦ୍ୱାରା ମନୋଗତ-ଭାବ ବ୍ୟକ୍ତ କରି ଅଭିନୟ କରନ୍ତି—

1. A pantomine; a drama chiefly representative in character; a drama acted by dumb show or gestures without speaking.

[ଦ୍ର—ଏହା ରୂପକ ଏବଂ ଉପରୂପକ ଭେଦରେ ବହୁବିଧ; ତହିଁ ମଧ୍ୟରୁ ନାଟକ ଏକପ୍ରକାର ଦୃଶ୍ୟ କାବ୍ୟ ଅଟେ । ]

୨ । ନାଟକ—2. Drama.

**ଦୃଶ୍ୟତା**—ସଂ. ବି. (ଦୃଶ୍ୟ+ଭାବ. ତା)—ଦର୍ଶନୀୟତା, ଦେଖାଯିବାର
Dṛuśyatā ଅବସ୍ଥା—Visibleness; visibility.
(ଦୃଶ୍ୟତ୍ୱ—ଅନ୍ୟରୂପ)

**ଦୃଶ୍ୟ ପଟ**—ସଂ. ବି—ରଙ୍ଗମଞ୍ଚର ପରଦା; ଯେଉଁ ପଟରେ ଅଭିନୟ
Dṛuśya paṭa ଦୃଶ୍ୟମାନ ଚିତ୍ରିତ ହୋଇଥାଏ—A scene; a canvass which depicts the scenes of a drama on the stage.

**ଦୃଶ୍ୟମାନ**—ସଂ. ବଣ. (ଦୃଶ୍ ଧାତୁ+କର୍ମ ଆନ)—
Dṛuśyamāna ୧ । ଯାହା ଦେଖା ଯାଉ ଅଛି—
1. Under view; being seen; manifest to one's view; visible.

୨ । ସୁନ୍ଦର; ମନୋରମ—2. Charming.

**ଦୃଶ୍ୟ ହେବା**—ଦେ. କ୍ରି—୧ । ଦେଖାଯିବା—
Dṛuśya hebā 1. To be seen; to appear.
दृश्यहओया ମାୟା ସହିତ ହେଲେ ଦୃଶ୍ୟ
दृश्यहोना ସେ ହରି ପୁରୁଷ ପ୍ରକୃଷ । ଜଗନ୍ନାଥ. ଭାଗବତ ।

୨ । ସମ୍ମୁଖରେ ଉପସ୍ଥିତ ହେବା—
2. To appear before a person.

୩ । କଳ୍ପନା ଶକ୍ତିଦ୍ୱାରା ଜଣା ପଡ଼ିବା—
3. To be known with the help of the imagination.

ଦେ. ବି—ଦୃଷ୍ଟି ଶକ୍ତି କାର୍ଯ୍ୟକାରୀ ବା ପ୍ରଖର ହେବା ଅବସ୍ଥା—
Ability to see; keenness of eyesight.
(ଯଥା—ଚୂଳଶାଯୋଗୁଁ ୪ ବରଷ ହେଲା ମୋତେ ଦୃଶ୍ୟ ହେଉ ନାହିଁ ।)

**ଦୃଶ୍ୟାଦୃଶ୍ୟ**—ସଂ. ବଣ (ଦ୍ୱନ୍ଦ୍ୱ; ଦୃଶ୍ୟ+ଅଦୃଶ୍ୟ)—
Dṛuśyādṛuśya ଯାହା ଦେଖାଯାଏ ଓ ଯାହା ଦେଖା ନ ଯାଏ—(things) Visible and invisible.

**ଦୃଷଦ୍**—ସଂ. ବି—ଦୃଶଦ୍ (ଦେଖ)
Drushad Dṛuśad (See)

**ଦୃଷଦ୍ୱତୀ**—ସଂ. ବି ଓ ବିଣ. ସ୍ତ୍ରୀ—ଦୃଶଦ୍ୱତୀ (ଦେଖ)
Dṛushadbatī Dṛuśadbatī (See)
(ଦୃଷଦ୍ୱାନ୍—ପୁଂ)

**ଦୃଷ୍ଟ**—ସଂ ବିଣ. (ଦୃଶ୍ ଧାତୁ+କର୍ମ. ତ)—
Dṛushṭa ୧ । ଯାହା ଦେଖା ଯାଇଅଛି; ଅବଲୋକିତ, ସାକ୍ଷିତ—
(ଦୃଷ୍ଟା—ସ୍ତ୍ରୀ) 1. Seen; observed.

୨ । ପ୍ରତ୍ୟକ୍ଷ; ଗୋଚର—2. Perceived by the senses.

୩ । ଜ୍ଞାତ—3. Known, apparent.

୪ । ଲୌକିକ—4. Ordinary: popular.

ବି—୧ । (+ଭାବ ତ) ଦର୍ଶନ—1. Sight.

୨ । ଜ୍ଞାନ—2 Knowledge.

୩ । (ସାଂଖ୍ୟ ଦର୍ଶନ) ପ୍ରତ୍ୟକ୍ଷ ପ୍ରମାଣ—
3. (Sāṁkhya philosophy) Direct proof

ଗ୍ରା. ବିଣ. (ସଂ. ଦୁଷ୍ଟ)—ଦୁଷ୍ଟ (ଦେଖ)
Dushta (See)

**ଦୃଷ୍ଟକୂଟ**—ସଂ. ବି.—୧ । ପ୍ରହେଳିକା (ହି. ଶବ୍ଦସାଗର)—
Dṛushṭakūṭa 1. Riddle.

୨ । ଛିଦ୍ରାଗଣ୍ଡ (ହି. ଶବ୍ଦସାଗର)
2. Double entendre.

**ଦୃଷ୍ଟ ପୃଷ୍ଠ**—ସଂ. ବିଣ ( ବହୁବ୍ରୀହି; ଦୃଷ୍ଟ+ପୃଷ୍ଠ )—୧ । ଯୁଦ୍ଧକ୍ଷେତ୍ରରେ
Dṛushṭa prushṭha ଯେ ଶତ୍ରୁଆଡ଼କୁ ପିଠି ଦେଖାଇ ପଳାଇ ଯାଏ; ସମର କ୍ଷେତ୍ରରୁ ପଳାୟମାନ (ସୈନ୍ୟ)—
1. Fugitive; runaway; one who shows his back to the enemy in the battle field.

୨ । ଭୀରୁ ସ୍ୱଭାବ—2. Cowardly.

**ଦୃଷ୍ଟବାଦ**—ସଂ. ବି. ( ମ. ପ. ଲୋ. ଦୃଷ୍ଟ+ବାଦ )—କେବଳ ପ୍ରତ୍ୟକ୍ଷ
Dṛushṭabāda ବିଷୟକୁ ସ୍ୱୀକାର କରିବା ଦାର୍ଶନିକ ସିଦ୍ଧାନ୍ତ—
The philosophical theory of admitting those matters only which are perceived by the senses.

**ଦୃଷ୍ଟରଜାଃ**—ସଂ. ବିଣ. ସ୍ତ୍ରୀ. ( ବହୁବ୍ରୀହି; ଦୃଷ୍ଟ+ରଜସ୍ )—
Dṛushṭarajāḥ ରଜସ୍ୱଳା, ଯେଉଁ ବାଳିକାର ଋତୁ ସ୍ରାବହେଲାଣି—
(ଅଦୃଷ୍ଟରଜାଃ—ବିପରୀତ) 1 Arrived at puberty; menstruated (girl).

୨ । ନବଯୁବତୀ—2. Just arrived at maturity (girl).

**ଦୃଷ୍ଟାନ୍ତ**—ସଂ. ବି. (ବହୁବ୍ରୀହି. ଦୃଷ୍ଟ+ଅନ୍ତ=ଶେଷ; ନିଶ୍ଚୟ; ପରିଚ୍ଛେଦ;
Dṛushṭānta ଅନୁଭୂତ ଆଦିର ଶେଷଫଳ ଯହିଁରେ)—
୧ । ନମୁନା—1. Model; pattern.

୨ । ନିଦର୍ଶନ; ଉଦାହରଣ—2. An example; illustration; instance.

୩ । ତୁଳନା; ଉପମା—3. Comparision

୪ । ଗଣନା; ଉଲ୍ଲେଖ—4. Enumeration; mention.

୫ । ଉପମାନ, ତୁଳନା କରାଯିବା ବସ୍ତୁ—5. An object of comparision.

୬ । (ଅଳଙ୍କାର ଶାସ୍ତ୍ର) ପରସ୍ପର ତୁଲ୍ୟଧର୍ମାବଲମ୍ବୀ ଦୁଇ ବସ୍ତୁର ସାଦୃଶ୍ୟ ନିର୍ଦ୍ଦେଶାର୍ଥକ ଅଳଙ୍କାର—2. A simile (rhetorical figure)

ଚନ୍ଦ୍ରକୁ ଚକୋର ଜଳଧରେ ଶୁଭକ, ପାଶେ ତୋଷେ କର ଆଧ ମ୍ ଅଣୀ ଅନେକ, ଧାତା ବନ୍ଧାର ପର, ଦେଖାଇବ ହର ନେଇ କନକ ଗଉସ ।
ଭଞ୍ଜ, ପ୍ରେମସୁଧାନିଧି ।

[ ଦ୍ର—ସାଧାରଣ ଧର୍ମବାଚକ ପଦ ଦ୍ୱାର୍ ଅପାତତଃ ଭିନ୍ନାର୍ଥବୋଧକ ହେଲେହେଁ, ଯେଉଁଠାରେ ସାଧାରଣ ଧର୍ମର ବିମ୍ବ ପ୍ରତିବିମ୍ବ ଭାବ ଦ୍ୱାରା ବାକ୍ୟ ଦ୍ୱୟର ଉପମାନ ଓ ଉପମେୟ ଭାବ ପରସ୍ଫୁଟ ହୁଏ ସେଠାରେ ଦୃଷ୍ଟାନ୍ତ ଅଳଙ୍କାର ହୁଏ । ତୁଳମଣି ଅଳଙ୍କାର ତରଙ୍ଗିଣୀ ।]

୭ । ନୀତି କଥା—7. A book of moral lessons; parable

୮ । ମୃତ୍ୟୁ—8. Death.

୯ । ଶାସ୍ତ୍ର—9 Scripture.

**ଦୃଷ୍ଟାନ୍ତ ଦେବା**—ଦେ କ୍ରି—ଉଦାହରଣଦ୍ୱାରା ବୁଝାଇବା—
Drushtānta debā — To exemplify; to illustrate.
দৃষ্টান্ত দেওয়া — दृष्टान्तदेना

**ଦୃଷ୍ଟାନ୍ତର**—ଗ୍ରା. ବି. (ସଂ. ଦୃଷ୍ଟାନ୍ତ)—ଦୃଷ୍ଟାନ୍ତ (ଦେଖ)
Drushtāntara — Drushtānta (See)

ଦୃଷ୍ଟାନ୍ତରକୁ 'ଗୋ' ନଇଲେ ଅଲ୍ପକୁ ବାହ୍ର । ପ୍ରାଚୀ. ରହସ୍ୟମଞ୍ଜରୀ ।

**ଦୃଷ୍ଟାର୍ଥ**—ସଂ. ବି. (କର୍ମଧା; ଦୃଷ୍ଟ+ଅର୍ଥ)—୧ । ଦର୍ଶନୀୟ ବସ୍ତୁ—
Drushtārtha — 1. An object of sight.

୨ । ଜୀବନରେ ମନୁଷ୍ୟ ଭୋଗ କରିବା ବସ୍ତୁ—2. An object of one's enjoyment in the present life.

ବିଣ. (ବହୁବ୍ରୀହି)—୧ । ଯେଉଁ ଶବ୍ଦ ବା ବାକ୍ୟର ଅର୍ଥ ବୁଝାଯାଇ ଥାଏ—1. (a word or sentence) Of which the meaning has been comprehended.

(ଅଦୃଷ୍ଟାର୍ଥ—ବିପରୀତ) ୨ । ଏପରି ଶବ୍ଦ ଯାହା ଶ୍ରବଣ କଲେ ସଂସାରରେ ଥିବା କୌଣସି ପ୍ରତ୍ୟକ୍ଷ ବସ୍ତୁ ବା ବିଷୟର ବୋଧହୁଏ (ହି. ଶବ୍ଦସାଗର)—2. (a word ) The meaning of which can be comprehended by thinking of something seen or directly perceived by the senses.

[ ଦ୍ର—'ଗଙ୍ଗା' ଏ ଶବ୍ଦ କହିଲେ ଉତ୍ତରଭାରତରେ ପ୍ରତ୍ୟକ୍ଷ ଗୋଟିଏ ଏ ନଦୀର ବୋଧ ଜନ୍ମେ, କିନ୍ତୁ ସ୍ୱର୍ଗ, ନରକ, ଅପ୍ସରାଆଦି ଶବ୍ଦ ଶୁଣିଲେ କୌଣସି ଇନ୍ଦ୍ରିୟପ୍ରତ୍ୟକ୍ଷ ବସ୍ତୁର ବୋଧ ଜନ୍ମେ ନାହିଁ —ହି. ଶବ୍ଦସାଗର । ଗଙ୍ଗା ଦୃଷ୍ଟାର୍ଥ ଶବ୍ଦ । ]

**ଦୃଷ୍ଟାର୍ଥବାଦ**—(ପାରିଭାଷିକ) ସଂ. ବି—ଇନ୍ଦ୍ରିୟମାନଙ୍କ ଦ୍ୱାରା ବୋଧ ବସ୍ତୁମାନ ପ୍ରକୃତ ଅଟେ ବୋଲି ନିର୍ଦ୍ଦେଶ କରିବା—
Drushtārthabāda — The theory of the reality of what is cognisable by the senses.

**ଦୃଷ୍ଟି**—ସଂ ବି. (ଦୃଶ୍ ଧାତୁ+କରଣ ତି)—୧ । ଚକ୍ଷୁ—
Drushti — 1. Eye

୨ । ଦେଖିବାର ଶକ୍ତି—2. Eye-sight.

୩ । (+ଭାବ. ତି) ଅବଲୋକନ, ଦର୍ଶନ—3. Seeing; observation; looking; beholding.

୪ । ଚିନ୍ତା, ମନୋଯୋଗ—4. Attention.

୫ । ଜ୍ଞାନ—5. Knowledge; notice.

୬ । ଲକ୍ଷ୍ୟ—6. Aim.

୭ । ଦୃଶ୍ୟ ବସ୍ତୁରାଜି—7. A scene; a prospect; a sight; a view.

୮ । ଆଖି ପକାଇବା—8. Glance.

ଦେ. ବି—୧ । ପର ନିମନ୍ତେ ଉଦ୍ଦିଷ୍ଟ କୌଣସି ଖାଦ୍ୟ ବା ଅନ୍ୟ ଦ୍ରବ୍ୟରେ ଲୋଲୁପ ଦୃଷ୍ଟି, ଖାଦ୍ୟଦ୍ରବ୍ୟ ପ୍ରତି ସତୃଷ୍ଣ ଦୃଷ୍ଟି—1. The casting of a longing and sinister glance on some food or other article intended for another.
দৃষ্টি, দিষ্টি — दृष्टि

୨ । ବିଷଦୃଷ୍ଟି, ସୁକୁମାର ଶିଶୁମାନଙ୍କ ଉପରେ ଡାହାଣୀମାନଙ୍କ ଦୃଷ୍ଟି; ଡାହାଣିଆଁ ଦୃଷ୍ଟି—2. The casting of sinister eye by a witch on delicate infants.

ଏ ଯେଉ ଦୃଷ୍ଟି ଉସ୍ ତାକୁ
ତଥାପ କହିଲୁ ଭୁମ୍ଭକୁ । ଉପେନ୍ଦ୍ର, ପ୍ରେମପଞ୍ଚାମୃତ ।

[ ଦ୍ର—ଏହା ଗୋଟିଏ ଲୌକିକ ବିଶ୍ୱାସ ଯେ ଡାହାଣୀ ଓ ଡାହାଣୀମାନେ ଅନ୍ୟ ବ୍ୟକ୍ତି ପାଇଁ ଉଦ୍ଦିଷ୍ଟ ଯେଉଁ ଖାଦ୍ୟରେ ଲୋଲୁପ ଦୃଷ୍ଟି ପକାନ୍ତି ଓ ସେ ଖାଦ୍ୟ ଦ୍ରବ୍ୟକୁ ଯେ ଖାଏ ତାହାର ପେଟ ଫାଟେ । ଡାହାଣୀମାନେ ସୁକୁମାର ଶିଶୁମାନଙ୍କ ଉପରେ ଦୃଷ୍ଟି ପକାଇଲେ ସେମାନେ ରୋଗି ହୋଇ ମରି ଯାଆନ୍ତି । ଡାହାଣୀ ଶବ୍ଦ ତଳେ କୋଠ ଦେଖ )

ଏହି ସଂ. ଶବ୍ଦ ଅନ୍ୟ ଶବ୍ଦମାନଙ୍କ ପରେ ଲାଗେ ଯଥା—ଶୁଭଦୃଷ୍ଟି, ସୁଦୃଷ୍ଟି, କୁଦୃଷ୍ଟି, ଲୋଭଦୃଷ୍ଟି, ଶନିଦୃଷ୍ଟି, ବକ୍ରଦୃଷ୍ଟି, କୃପାଦୃଷ୍ଟି, କ୍ଷୀରଦୃଷ୍ଟି, ଅନୁଗ୍ରହଦୃଷ୍ଟି ଇତ୍ୟାଦି । ]

**ଦୃଷ୍ଟିଆ**—ଦେ. ବିଣ—ଖାଦ୍ୟ ନିମନ୍ତେ ଉଦ୍ଦିଷ୍ଟ ଯେଉଁ ପଦାର୍ଥରେ ଡାହାଣା ଡାହାଣୀଙ୍କ ଲୋଭଦୃଷ୍ଟି ପଡ଼ିବା ଯୋଗୁଁ ତାହା ବିସ୍ୱାଦ ହୋଇଯାଏ; ଆଖିଦୃଷ୍ଟିଆ—
Drushtiā — (food) Turned bad or unpalatable owing to having been looked on by sinister eyes.

**ଦୃଷ୍ଟି କରିବା**—ଦେ. କ୍ରି—୧ । ଦେଖିବା—
Drushti karibā — 1. To see; to look at.

(ଦୃଷ୍ଟି ଦେବା —ଅନ୍ୟରୂପ) ୨ । କୌଣସି ବସ୍ତୁ ପ୍ରତି ମନୋଯୋଗ କରିବା; ନଜର ଦେବା—2. To attend to; to have an eye to.
দৃষ্টিকরা — दृष्टिकरना

୩ । କୌଣସି ଶିଶୁ ବା ସୁଖାଦ୍ୟ ପ୍ରତି ପାପଦୃଷ୍ଟି ପକାଇବା—
3. To cast an evil eye upon (a food or an infant).
୪ । ଚତୁର୍ଦ୍ଦିଗକୁ ଆଖି ବୁଲାଇବା—
4. To cast one's look around.

ଦୃଷ୍ଟି କାଚ—ସଂ. ବି. (ଆଧୁନିକ ବିଜ୍ଞାନ ପରିଭାଷା)—ଯେଉଁ ନ୍ୟୁବ୍ଜପୃଷ୍ଠ ବା
Drushti kācha ନ୍ୟୁବ୍ଜପୃଷ୍ଠ କାଚ ମଧ୍ୟ ଦେଇ ଦେଖିଲେ ଦୂରବସ୍ତୁ ନିକଟରେ ବା ନିକଟବର୍ତ୍ତୀ ବସ୍ତୁ ଦୂରରେ, ଅଥବା ସାନବସ୍ତୁ ବଡ଼ ବା ବଡ଼ ବସ୍ତୁ ସାନ ହୋଇ ଦେଖାଯାଏ—
Lens.

ଦୃଷ୍ଟି କ୍ଷେପ—ସଂ. ବି—ଦୃଷ୍ଟିପାତ (ଦେଖ)
Drushti kshepa Drushti pāta (See)
(ଦୃଷ୍ଟି କ୍ଷେପଣ—ଅନ୍ୟରୂପ)

ଦୃଷ୍ଟି ଗୋଚର—ସଂ. ବିଣ. (୬ଷ୍ଠୀ ତତ୍; ଦୃଷ୍ଟି + ଗୋଚର)—
Drushti gochara ୧ । ନୟନଗୋଚର; ଆଖିଦ୍ୱାରା ଦେଖାଯାଉଥିବା—1. Seen by the eyes; coming to view.
୨ । ଆଖିଦ୍ୱାରା ଯାହା ଦେଖା ଯାଇପାରେ—
2. Perceptible to the eye; within the range of one's vision; visible
୩ । ଜ୍ଞାତସାରରେ ଆସିଥିବା; ଜ୍ଞାନଗମ୍ୟ—
3. Which has come to one's notice.

ଦୃଷ୍ଟି ଦାନ—ସଂ. ବି. (୬ଷ୍ଠୀ ତତ୍ ପୁରୁଷ; ଦୃଷ୍ଟି+ଦାନ)—
Drushti dāna ୧ । ଦର୍ଶନ; ଦେଖିବା; ନଜର ପକାଇବା—
1. Seeing; casting one's glance.
ହେଲେ ଯେ ମନ୍ଦର ସୁନା ତୋ ସୁନ୍ଦର ଗୃହରେ କରିବ ଦୃଷ୍ଟି ଦାନ ।
ବନ୍ଦସୂର୍ଯ୍ୟ. ସଙ୍ଗୀତ ।

ଦୃଷ୍ଟି ଦେବା—ଦେ. କ୍ରି—୧ । ଦେଖିବା—
Drushti debā 1. To see.
दृष्टि देओया ୨ । କୌଣସି ବିଷୟ ପ୍ରତି ମନୋଯୋଗ ଦେବା—
दृष्टि देना 2. To give one's attention to something.
୨ । କୌଣସି ବ୍ୟକ୍ତିର କାର୍ଯ୍ୟକଳାପ ବା ଆଚରଣକୁ ଜଗିବା-
3. To watch the movements or conduct of a person.
୪ । କୌଣସି ବ୍ୟକ୍ତି ପ୍ରତି ସର୍ବଦା ଅନୁଗ୍ରହ ରଖିବା—
4. To look upon a person with favour.
୫ । କୌଣସି ବ୍ୟକ୍ତିର ବା ବିଷୟର ଯତ୍ନ ନେବା—
5. To take care of a person or thing.

ଦୃଷ୍ଟି ନିକ୍ଷେପ—ସଂ. ବି—ଦୃଷ୍ଟିପାତ (ଦେଖ)
Drushti nikshepa Drushti pāta (See)

ଦୃଷ୍ଟି ପକା(କେ)ଇବା—ଦେ. କ୍ରି—ଦୃଷ୍ଟି କରିବା (ଦେଖ)
Drushti pakā(ke)ibā Drushti karibā (See)
दृष्टि फेला दृष्टि फेंकना

ଦୃଷ୍ଟି ପଥ—ସଂ. ବି. (୬ଷ୍ଠୀ ତତ୍; ଦୃଷ୍ଟି + ପଥ)—
Drushti patha ଆପଣାର ଦୃଷ୍ଟି ଯେଉଁ ପର୍ଯ୍ୟନ୍ତ ପହଞ୍ଚେ—
Ken; range of one's vision.

ଦୃଷ୍ଟି ପାତ—ସଂ. ବି. (୬ଷ୍ଠୀ ତତ୍; ଦୃଷ୍ଟି + ପାତ)—
Drushti pāta ୧ । ଦେଖିବା; ଆଖି ପକାଇବା—
(ଦୃଷ୍ଟିନିପାତ—ଅନ୍ୟରୂପ) 1. A look; looking.
୨ । ଚାହାଣୀ—2. A glance.

ଦୃଷ୍ଟି ପଡ଼ିବା—ଦେ. ବି—ଦୃଷ୍ଟି ଗୋଚର ହେବା—
Drushti pardibā Coming to one's view or notice.
दृष्टिपड़ा दृष्टि पड़ना

ଦୃଷ୍ଟି ପଥାରୂଢ଼—ସଂ. ବିଣ. (୬ଷ୍ଠୀ ତତ୍; ୭ମୀ ତତ୍; ଦୃଷ୍ଟିର ପଥରେ
Drushti pathārūrdha ଆରୂଢ଼)—ଦୃଷ୍ଟିଗୋଚର (ଦେଖ)
Drushti gochara (See)

ଦୃଷ୍ଟି ପୂତ—ସଂ. ବିଣ. (୩ୟା ତତ୍; ଦୃଷ୍ଟି + ପୂତ=ପବିତ୍ର)—
Drushti pūta ୧ । ନିଜେ ଦେଖିବା ଦ୍ୱାରା ଜ୍ଞାତ—
1. Known by personal observation.
୨ । କୌଣସି ବ୍ୟକ୍ତିଙ୍କର ଆଖି ପଡ଼ିବା ଦ୍ୱାରା ପବିତ୍ରୀକୃତ—
2. Hallowed by being looked at by some person.
୩ । ଦେଖିବାକୁ ପବିତ୍ର—
3. Pure in the eyes of a person.
୪ । ଯାହାଙ୍କୁ ଦେଖିଲେ ଆଖି ପବିତ୍ର ହୁଏ—
4. Whose sight makes one pure.

ଦୃଷ୍ଟି ଫଳ—ସଂ. ବି. (୬ଷ୍ଠୀ ତତ୍; ଦୃଷ୍ଟି + ଫଳ)—
Drushti phala (ଫଳିତ ଜ୍ୟୋତିଷ) ଜାତକରେ ଏକ ରାଶିରେ ଥିବା ଗ୍ରହର ଅନ୍ୟ ରାଶିରେ ସ୍ଥିତ ଗ୍ରହ ପ୍ରତି ଦୃଷ୍ଟି ପଡ଼ିବା ହେତୁ ଗଣିତ ଫଳ—
(Astrology) The result of a zodiacal sign seeing another in a person's horoscope

ଦୃଷ୍ଟି ବନ୍ଧ—ସଂ. ବି. (୬ଷ୍ଠୀ ତତ୍; ଦୃଷ୍ଟି + ବନ୍ଧ)—
Drushti bandha ୧ । ଯେଉଁ ଐନ୍ଦ୍ରଜାଲିକ କ୍ରିୟା ଦ୍ୱାରା କୌଣସି
(ଦୃଷ୍ଟିବନ୍ଧନ—ଅନ୍ୟରୂପ) ବ୍ୟକ୍ତିର ବା ଜୀବର ଦୃଷ୍ଟିରେ ଭ୍ରମ ଘଟେ
—1. A magical appliance which brings illusion to one's vision.
୨ । ହସ୍ତଲାଘବ—2. Sleight of hand.

ଦୃଷ୍ଟି ବନ୍ଧୁ—ସଂ. ବି (ବହୁବ୍ରୀହି; ଦୃଷ୍ଟି+ବନ୍ଧୁ)—ଖଦ୍ୟୋତ
Drushti bandhu (ହି. ଶବ୍ଦସାଗର)—Fire fly.

ଦୃଷ୍ଟି ବାଦ—ସଂ. ବି—ଦୃଷ୍ଟାର୍ଥବାଦ (ଦେଖ)
Drushti bāda Drushtārtha bāda (See)

ଦୃଷ୍ଟି ବିକ୍ଷେପ—ସଂ. ବି. (୬ଷ୍ଠୀ ତତ୍; ଦୃଷ୍ଟି + ବିକ୍ଷେପ)—
Drushti bikshepa ୧ । ବାଙ୍କ ଚାହାଣି; ନେତ୍ରଭଙ୍ଗୀ; କଟାକ୍ଷପାତ—1. A leer; a side glance.
୨ । ଏଣେ ତେଣେ ଆଖି ବୁଲାଇବା—
2. Moving the eyes about.
୩ । ଆଖି ପକାଇବା—3. Casting of one's eyes.

ଦୃଷ୍ଟି ବିଜ୍ଞାନ—ସଂ. ବି. (ପାରିଭାଷିକ ଶବ୍ଦ; ଆଧୁନିକ ପ୍ରୟୋଗ)—
Drushti bijnāna ଯେଉଁ ବିଜ୍ଞାନ ଦ୍ୱାରା 'ଦୃଷ୍ଟି' ଶକ୍ତି ଓ ଆଲୋକ ସମ୍ବନ୍ଧୀୟ ଜ୍ଞାନ ଲାଭ ହୁଏ; ଆଲୋକ ଶାସ୍ତ୍ର—
Optics; the science of light.

**ଦୃଷ୍ଟିବିଷ**—ସଂ. ବିଣ. ( ବହୁବ୍ରୀହି; ଦୃଷ୍ଟି+ବିଷ )—
Drushti bisha ବିଷଦର୍ଶନ; ଯାହାର ଦର୍ଶନରେ ବିଷ ଥାଏ—
Having a venomous glance.
ବି—ଏକ ପ୍ରକାର ସର୍ପ—A kind of serpent whose look is said to be fatal.
[ଦ୍ର—ଏ ସାପର ଦୃଷ୍ଟି ବିଷମୟ ଫଳ ଉତ୍ପାଦନ କରେ ।]

**ଦୃଷ୍ଟିରେ ଆସିବା**—ଦେ. କ୍ରି—୧ । ଆଖି ଆଗରେ ପଡ଼ିବା—
Drushtire āsibā 1. To come to sight.
দৃষ্টিতে আসা ୨ । ଦେଖାଯିବା—2. To be seen.
दृष्टिमें आना ୩ । ଜଣର ତତ୍ତ୍ୱାବଧାନରେ ରହିବା—
3. To be under one's care
୪ । ଜ୍ଞାନଗୋଚର ହେବା—
4. To come under one's notice.

**ଦୃଷ୍ଟି ରଖିବା**—ଦେ. କ୍ରି—୧ । ନଜର ରଖିବା—
Drushti rakhibā 1. To keep an eye upon.
দৃষ্টি রাখা ୨ । ତତ୍ତ୍ୱ ବା ଯତ୍ନ ନେବା—
दृष्टि रखना 2. To take care of.
୩ । ସାବଧାନ ହେବା—
3. To be careful about.

**ଦୃଷ୍ଟି ରୋଧ**—ସଂ. ବି. ( ୬ଷ୍ଠୀ ତତ୍, ଦୃଷ୍ଟି+ରୋଧ )—
Drushti rodha ୧ । ଦୃଷ୍ଟି ଶକ୍ତିରେ ବାଧା—
1. Obstruction to one's eyesight.
୨ । କୌଣସି ଦର୍ଶନୀୟ ବସ୍ତୁର ଓ ଜଣର ଆଖିର ମଧ୍ୟସ୍ଥ ସ୍ଥାନରେ କୌଣସି ଅବରୋଧକ ବସ୍ତୁ ରହିବା ଯୋଗୁଁ ଦର୍ଶନୀୟ ବସ୍ତୁକୁ ଦେଖା ନ ଯିବା—
2. Obstruction to one's vision due to a thing intervening between the thing and one's eyes.
୩ । ବ୍ୟବଧାନ—3. Interposition; intervention.
୪ । ପରଦା—4. Screen.

**ଦୃଷ୍ଟି ଶକ୍ତି**—ସଂ. ବି.—ଦୃକ୍ ଶକ୍ତି (ଦେଖ)
Drushti śakti Druk-śakti (See)

**ଦୃଷ୍ଟେ**—ଦେ. କ୍ରି. ବିଣ.—(ବଙ୍ଗଳାରୁ ଅଧୁନାତନ ଲେଖାରେ ଅନୁକୃତ)—
Drushte ୧ । (ଅମୁକ ଅବସ୍ଥା ପ୍ରତି) ଦୃଷ୍ଟି ଦେଇ; ଏହି ଘଟଣାରେ
1. In view of; in these circumstances.
୨ । (ଅମୁକ) ଯୋଗୁଁ; କାରଣରୁ—2. In considera-tion of; on account of.

**ଦେ**—ଦେ. ବି. (ସଂ. ଦେବ)—ବଙ୍ଗୀୟ ଶୂଦ୍ର (ଡାମୁଲୀ ପ୍ରଭୃତି) ମାନଙ୍କ
De ଉପାଧିବିଶେଷ—Family-title of some Śūdras in
দে Bengal.
ଦେ. କ୍ରି.—(ଦା ଧାତୁ ୨ୟ ପୁରୁଷ, ୧ ବଚନ, ଅନାଦରାର୍ଥ;
दाओ ଅନୁଜ୍ଞା) ଦିଅ—(Thou) Do give (Imperative).
दो ବ୍ୟାଜ ନ ଚର ଶ୍ରମ ଦେ ହୃଦର । ଭଞ୍ଜ; ବୈଦେହୀଶବିଳାସ ।

**ଦେଅ**—ଦେ. (ପ୍ରାଚୀନ) କ୍ରି—(ଦା ଧାତୁ ଅନୁଜ୍ଞା ୨ୟ ପୁରୁଷ ଏକବଚନ
Dea 'ଦିଅ'ର ବିକଳ୍ପ ରୂପ)—ଦିଅ (ଦେଖ)
Dia (See)
ମଦନ ବିଷ ଖଣ୍ଡନ ମୋହର ଶିର ମଣ୍ଡନ
ଦେଅ ପାଦ ପଲ୍ଲବ କୋମଳ । ଗ୍ରାଚୀ, ରସବାରିଧି ।

**ଦେଅସି**—ଦେ. (ପ୍ରାଚୀନ) କ୍ରି. (ଦା. ଧାତୁ ଅନୁଜ୍ଞା ୨ୟ ପୁରୁଷ ଦିଅର
De-asi ପ୍ରାଚୀନ ରୂପ)—ଦିଅ (ଦେଖ)
(ଦିଅସି—ଅନ୍ୟରୂପ) Dia (See)
ଅମିୟ ଅଧର ରସ ଦେଅସି ଘମିନ ।
ପ୍ରାଚୀ. ରସବାରିଧି ।

**ଦେଇ**—ଦେ. ଅ.(ସଂ. ଦ୍ୱାରା)—୧ । ଦ୍ୱାରା—
Dei 1. By.
দিয়ে ତାହା ହେଲେ ଏମାନଙ୍କ ଦେଇ ଫଳ କଣ ?
से ମଧୁସୂଦନ, ଉତ୍ତର ରାମଚରିତ ।
राहासे ୨ । (ଅମୁକସ୍ଥାନ) ବାଟେ—2. Via.
ମଙ୍ଗ ପାଇଁ ଚଳଲେ ମୋତେ କୈଳାସ ଦେଇ ।
ତୁଳସୀ, ବଳମ ରାମାୟଣ ।

**ଦେଇ ଆସିବା**—ଦେ. କ୍ରି.—କୌଣସି ପଦାର୍ଥକୁ ସ୍ଥାନାନ୍ତରକୁ ନେଇ
Dei āsibā କୌଣସି ବ୍ୟକ୍ତିକୁ ଦେଇ ସେଠାରୁ ଫେରି ଆସିବା—
দিএ আসা To return after giving a thing to a
दे आना person who is at some distance from the sender.

**ଦେଇ ଦେବା**—ଦେ. କ୍ରି.—କୌଣସି ପଦାର୍ଥକୁ କୌଣସି ବ୍ୟକ୍ତିକୁ
Dei debā ଚିରସ୍ଥାୟୀ ରୂପେ ଦେବା—To give a thing
দিএ দেওয়া absolutely; to give away.
दे देना

**ଦେଇ ପିଣ୍ଡି**—ଦେ. ବି. (ସଂ. ଦେବ+ପୀଠ)—ଶୂଦ୍ରମାନଙ୍କ ପାକଶାଳାର
Dei piṇḍi ଈଶାନ କୋଣରେ ଗୋଟିଏ ମାଟି ଘଡ଼ିରେ ମହାପ୍ରସାଦ
(ଦେବଦେବ ପିଣ୍ଡ—ଅନରୂପ) ପୂରାଯାଇ ପୋତା ଯାଇ ତହିଁ ଉପରେ ନିର୍ମିତ ହୋଇ ଥିବା ମାଟିର ଗୋଟିଏ କ୍ଷୁଦ୍ର ସ୍ତୂପ—
A small earthen mound containing Mahāprasād and erected in the north-east corner of a Śūdra's kitchen.
[ଦ୍ର—ଓଡ଼ିଶାରେ ଶୂଦ୍ରମାନେ ସେମାନଙ୍କ ପାକଶାଳାର ଈଶାନ କୋଣରେ ଗୋଟିଏ ଘଡ଼ିରେ ପୁରୀର ଜଗନ୍ନାଥଙ୍କ ମହାପ୍ରସାଦ ପୁରାଇ ସେ ଘଡ଼ିକୁ ପୋତି ତହିଁ ଉପରେ ଗୋଟିଏ ମାଟିର ସ୍ତୂପ ନିର୍ମାଣ କରନ୍ତି । ନୂଆ ହାଣ୍ଡିରେ ପାକ ହେବା ଅନ୍ନ ପ୍ରଥମେ ଏଠାରେ ସମର୍ପିତ ହୋଇ ପରେ ଖିଆଯାଏ ।]

**ଦେଈ**—ଦେ. ବି. ସ୍ତ୍ରୀ (ସଂ. ଦେବୀ)—୧ । କ୍ଷତ୍ରିୟ ଓ କରଣ ଘରର
Deī ସଧବା ସ୍ତ୍ରୀ ଓ କନ୍ୟାମାନଙ୍କର ନାମ ପରେ ଯୁକ୍ତ ଉପାଧି—
দেবী A title added to the names of wives and
देई girls in Kshatriya and Karaṇa families of Orissa.
୨ । କନ୍ୟା—2. Daughter.
୩ । ମହାଦେଈ; ରାଣୀ—3. A Ranee.

୪ । ଜେମାଦେଈ; ରାଜକନ୍ୟା—4. A Raja's daughter.

୫ । ଭଉଣୀ—5. Sister.

ବୋଲେ ଶର ଦେଈଙ୍କ ବେ ଦେଇ ଏ ଦଶା । ଭକ୍ତ, ବୈଦେହୀଶବିଳାସ ।

ଦେଉ—ଦେ. ବି (ସଂ. ଦେବ)—୧ । ରାଜପୁତ୍ର— 1. Prince
Deu ୨ । ଯୁବରାଜ—2. Crown-prince; heir apparent
ଦେବ, ଦ୍ୱିତ

ଅ—ରାଜା ଓ ରାଜପୁତ୍ରମାନଙ୍କୁ ସମ୍ବୋଧନ—Interjection used in addressing Rajas and princes.

ଦେଉଆନ୍ (ଇତ୍ୟାଦି)—ଦେୱାନ୍ ଇତ୍ୟାଦି (ଦେଖ)
Deuān (etc) Dewān etc (See)

ଦେଉଆଣୀ (ଇତ୍ୟାଦି)—ଦେୱାଣୀ ଇତ୍ୟାଦି (ଦେଖ)
Deuānī (etc) Dewānī etc (See)

ଦେଉଆଲ୍ (ଇତ୍ୟାଦି)—ଦେୱାଲ୍ ଇତ୍ୟାଦି (ଦେଖ)
Deuāl (etc) Dewāl etc (See)

ଦେଉଆଲି (ଇତ୍ୟାଦି—ଦେୱାଲି ଇତ୍ୟାଦି (ଦେଖ)
Deuāli (etc) Dewāli etc (See)

ଦେ ଉଠାଣ—ଦେ. ବି—( ଦେବ + ଉତ୍ଥାପନ )—
De uṭhāṇa ୧ । ଉତ୍ଥାନ ଏକାଦଶୀ (ଦେଖ)
1. Utthāna ekādaśī (See).
୨ । ଉତ୍ଥାପନ ଚତୁର୍ଦ୍ଦଶୀ (ଦେଖ)
2. Utthāpana chaturddaśī (See).

ଦେଉଣିଆ—ପ୍ରାଦେ (ସିଂହଭୂମ) ବି—ଗୁଣିଆ—An enchanter; a
Deuniā person who is versed in the employment of charms.

ଦେଉରୀ—ଦେ. ବି—ଦେହୁରୀ (ଦେଖ)—Dehuri (See)
Deurī ଦେଉରୀ ବେଗ କରେ ଓ ଠାକୁରାଣୀଙ୍କ ପୂଜା କରେ ।
ଫକୀର ମୋହନ, ଛମାଣ. ଆଠଗୁଣ୍ଠ ।

ଦେଓଲ୍—ପ୍ରାଦେ (ବସ୍ତର) ବି—ଦେଉଳ (ଦେଖ)
Deul Deuḷa (See)

ଦେଉଳ—ଦେ. ବି ( ସଂ. ଦେବାଳୟ; ଦେବକୁଳ )—ଦେବ ମନ୍ଦିର;
Deuḷa देउल ଦ୍ୱିତ ଦେବାଳୟ—Temple.

[ଦ୍ର—ଦେଉଳମାନ ଗଠନଭିତ୍ତି ଅନୁସାରେ ବହୁବିଧ ଶ୍ରେଣୀରେ ବିଭକ୍ତ ଯଥା—୧ । ଏକରଥ—ଏହା ପ୍ରାଚୀନ ଶ୍ରେଷ୍ଠ ଦେଉଳ । ୨ । ତ୍ରିରଥ—ଏହା ବ୍ରାହ୍ମଣ ଜାତୀୟ । ୩ । ପଞ୍ଚରଥ—ଏହା କ୍ଷତ୍ରିୟ ଜାତୀୟ । ୪ । ସପ୍ତରଥ—ଏହା ବୈଶ୍ୟ ଜାତୀୟ । ୫ । ନବରଥ—ଏହା ଶୂଦ୍ର ଜାତୀୟ । ଜଗବନ୍ଧୁ, ପ୍ରାଚୀନ ଉତ୍କଳ । ଦେଉଳର ବିଭିନ୍ନ ଅଂଶମାନଙ୍କର ନାମ ଯଥା—୧ । କଳସ, ୨ । କର୍ପୂରୀ, ୩ । ଅଁଳା ବା ଆମଳକ, ୪ । ବେକି, ୫ ଘଣ୍ଟଶ୍ରୀ ୬ । ଦିମାକ, ୭ । ରାହାପାଗ, ୮ । ଅନର୍ଥ ପାଗ, ୯ । କନକ ପାଗ, ୧୦ । ଦ୍ୱିତୀୟ ଜଙ୍ଘା, ୧୧ । ଦ୍ୱିତୀୟ ବରଣ୍ଡୀ, ୧୨ । ବନ୍ଧନ, ୧୩ । ପ୍ରଥମ ବରଣ୍ଡୀ, ୧୪ । ପ୍ରଥମ ଜଙ୍ଘା, ୧୫ । ପୃଷ୍ଠ ବା ପୀଠ । ଉଚ୍ଚର ଅଂଶମାନ ଯଥା—୧ । କାନ୍ତି, ୨ । ଗମ୍ଭୀର, ୩ । କନକ, ୪ । ଅନର୍ଥ, ୫ । ରାହାପାଗ । ଦେଉଳର ଭଙ୍ଗ ପାଇଁ ଏ ଚତୁର୍ଥ ଖଣ୍ଡର ଶେଷରେ ପରିଶିଷ୍ଟ ଦେଖନ୍ତୁ ।

ଦେଉଳଶବ୍ଦଯୁକ୍ତ କେତେଗୁଡ଼ିଏ ପ୍ରବଚନ ଯଥା—
୧ । ଦେଉଳକୁ ମୁକ୍ତଶିଆଳ ଗିଳନ୍ତି (ବଳନ୍ତି) ନ୍ୟାୟ ।
୨ । ଦେଉଳ ଚୋଳେଇଲେ ନାଆଁ ପଡ଼େ, କଇଲେ ବାହରେ ହଗିଲେ ନାଆଁ ପଡ଼େ ।
୩ । ଧଅଁ ଗିଳ ଦେଉଳ ଗିଳିବା ନ୍ୟାୟ ।

ଦେଉଳ କରଣ—ଦେ. ବି—ଦେଉଳର କାର୍ଯ୍ୟ ଓ ହିସାବପତ୍ର ବୁଝିବା
Deuḷa karaṇa କର୍ମଚାରୀ—An officer who looks after the affairs of a temple, especially its accounts.
[ ଦ୍ର—ମନ୍ଦିରର ଆୟ ବ୍ୟୟ ଲେଖିବା ଏହାଙ୍କ କାର୍ଯ୍ୟ— ଜଗବନ୍ଧୁ, ପ୍ରାଚୀନ ଉତ୍କଳ । ]

ଦେଉଳଝର—ପ୍ରାଦେ (ଗଡ଼ଜାତ) ବି (ନାମ)—ଆଠମଲ୍ଲିକ ରାଜଧାନୀର
Deuḷajhara ପଶ୍ଚିମକୁ ୨ ମାଇଲ ଦୂରରେ ଥିବା ଗୋଟିଏ ଉଷ୍ଣ ପ୍ରସ୍ରବଣ—A hot spring 2 miles off to the west of the capital of the Athmallick State of Orissa.
[ ଦ୍ର—ଏଠାରେ ଶିବରାତ୍ରି ଦିନ ଯାତ୍ରା ହୁଏ । ଯାତ୍ରାର ବାର୍ଷୀ ଦିନ ଏବେ ଷ୍ଟେଟ୍ ତରଫରୁ ଗୋଟିଏ କୃଷିଶିଳ୍ପାଦିର ପ୍ରଦର୍ଶନୀ ଅନୁଷ୍ଠିତ ହେଉଅଛି । ]

ଦେଉଳ ବାଛ(ସ)ନ୍ଦ—ଦେ. ବି—୧ । କୌଣସି ଗର୍ହିତ କର୍ମକାରୀ ବା
Deuḷa bāchh(sa)nda ସମାଜଚ୍ୟୁତ ବା ଅପରାଧୀ ବ୍ୟକ୍ତିକୁ ବା
( ଦେଉଳମନା—ଅନ୍ୟରୂପ ) ସେବକକୁ କୌଣସି ମନ୍ଦିରର କର୍ତ୍ତୃପକ୍ଷମାନଙ୍କ ଆଦେଶରେ ମନ୍ଦିରକୁ ପ୍ରବେଶ କରିବାକୁ ନିଷେଧ କରିବା ଆଦେଶ; ଦେବଦର୍ଶନାର୍ଥ ମନ୍ଦିର ମଧ୍ୟକୁ ଯିବାପାଇଁ ଅଟକ—1. An order of the authorities of a temple passed on an offending or ostracised person or sebaka forbidding or restraining his entry into the temple.
[ ଦ୍ର—ମନ୍ଦିରର କୌଣସି ଅପରାଧୀ ସେବାଏତକୁ ସେବା କରିବାକୁ ନିଷେଧ କରିବାର ନାମ ସେବା ବାଛ(ସ)ନ୍ଦ । ]

ଦେଉଳ ଶୋଧ—ଦେ. ବି. (ସଂ. ଦେବକୁଳ + ଶୋଧନ)— ରାଣୀ ଆଦି
Deuḷa śodha ବିଶିଷ୍ଟ ଯାତ୍ରୀଙ୍କ ଦର୍ଶନ ଉପଲକ୍ଷରେ ବା ପ୍ରତିଦିନ ରାତିରେ ଠାକୁରଙ୍କ ନୀତିଶେଷରେ ଦେଉଳ ବନ୍ଦ କରିବା ଉପଲକ୍ଷରେ ଦେଉଳ ଓ ଦେଉଳର ବେଢ଼ାରୁ ସମସ୍ତ ଲୋକ ବାହାରିଯିବା—
Clearing a temple of all persons on the occasion of the visit of distinguished guests and females or after the close of the day's rituals.

ଦେଉଳିଆ—ଦେ. ବିଣ. (ସଂ. ଦେବାଳୟ)—୧ । ଦେଉଳ ପରି ଆକୃତି
Deuḷiā ବିଶିଷ୍ଟ; ଉଚ୍ଚ ଓ ଗୋଜିଆ—1. Having the
देउलिआ shape of a temple; gradually tapering to a point like a temple.
୨ । ଦେଉଳ ସମ୍ବନ୍ଧୀୟ—
2. Pertaining to a temple.

୩ । ଦେଉଳରେ ଦେବପୂଜା ଆଦି କରି ଜୀବିକା ନିର୍ବାହ କରୁଥିବା (ବ୍ୟକ୍ତି)—3. Earning livelihood by rendering service in a temple.

दिवाला; **दिवालिआ** ୪ । ଦେଣଦାର; ଦେବାଳିଆ; ଋଣ ସୁଝିବାକୁ ଅକ୍ଷମ—4. Insolvent.

୫ । ଦେଉଳରେ ବାସ କରୁଥିବା—5. Living in temples. (ଯଥା—ଦେଉଳିଆ ପାରା)

ବି—୧ । ଦେବାଳୟର ସେବକ—1. Servant of a temple.

୨ । (ସଂ. ଦେବଳକ) ପଣ୍ଡା; ଏକ ଜାତୀୟ ନିକୃଷ୍ଟ ବ୍ରାହ୍ମଣ; ଠାକୁର ପୂଜାରୀ—2. A class of inferior Brāhmaṇas serving as Paṇḍās in temples.

[ଦ୍ର—ଏମାନେ ଏକଜାତୀୟ ଅଶ୍ରୋତ୍ରୀୟ ବ୍ରାହ୍ମଣ । ଦେବସେବା ଏମାନଙ୍କର ପ୍ରଧାନ କର୍ମ । ପଣ୍ଡା, ସୂଆର, ପୂଜାରୀ ବ୍ରାହ୍ମଣମାନେ ଏମାନଙ୍କ ସଙ୍ଗେ ଏକ ଜାତୀୟ । କୃପାସିନ୍ଧୁ. ଇତିହାସ]

ପ୍ରାଦେ (ବାଲେଶ୍ୱର) ବି—ଛୋଟ ମାଠିଆ—Small water-jug.

**ଦେଉଳିଆ ଗଦା**—ପ୍ରାଦେ (ଯାଜପୁର) ବି—ଦେଉଳ ଆକାରର ଗଦା—
Deuliā gadā Temple-shaped heap.
(ବଢ଼େଇ ଗଦା—ରୂପଭେଦ)

**ଦେଉଳିଆ ପାରା**—ଦେ. ବି—ଯେଉଁ ପାରାମାନେ ଦେଉଳର ଖୋପ
Deuliā pārā ମାନଙ୍କରେ ବା ଉପରେ ବସା କରି ଥାଆନ୍ତି—
(ଦେଉଳ ପାରା—ଅନ୍ୟରୂପ) Pigeons having their nests in the niches of a temple.

**ଦେଉଳିଆ ସିଜୁ**—ଦେ. ବି—ଏକପ୍ରକାର ନାଗଫେଣିଆ ସିଜୁ ଗଛ—
Deuliā sijhu A kind of cactus, Cerens Hexagonus
তোকাঁটা মনসা; তেকাঁটা সীজ; **तिधाराथुहर** (Haines)

[ଦ୍ର—ଏହା ନାଗଫେଣିଆ ଗଛଠାରୁ ଡେଙ୍ଗା ଓ ସରୁଆ । ଏହାର ପବ ତିନ କୋଣିଆ ବା ତିନିଧାର ଏବଂ ଏହାର କଣ୍ଟା ମଧ୍ୟ ଛୋଟ । ଏହାର ପତ୍ର ନାହିଁ ।]

**ଦେଏଣ** (ଇତ୍ୟାଦି)—ଦେଣ୍ ଇତ୍ୟାଦି (ଦେଖ)
De-eṇa (etc) Deṇ etc (See)

**ଦେଏଣା** (ଇତ୍ୟାଦି)—ଦେଣା ଇତ୍ୟାଦି (ଦେଖ)
De-eṇā (etc) Deṇā etc (See)

**ଦେଏଣି**—ଦେ. ବି ଓ ବିଣ—ଦେଣି (ଦେଖ)
De-eṇi Deṇi (See)

**ଦେଏଦେଉଣୀ**—ଦେ. ବିଣ ଓ ବି—(ସଂ. ଦା ଧାତୁ)—ପୁଣ୍ୟପର୍ବାଦିରେ
De-edeuṇi ଯେଉଁ ଗରିବ ଲୋକମାନଙ୍କୁ କୌଣସି ଖାଦ୍ୟ ପଦାର୍ଥ
(ଦେଏଦେଉଣିଆଁ-ଅନ୍ୟରୂପ) ଅନୁଗ୍ରହ ସ୍ୱରୂପ ଦିଆଯାଏ;ଖାଇବାଳିଆ—
Those to whom cakes are given gratis on festive occasions.

ସାଥିଲୁକ ସବୁ ଦେଏଦେଉଣୀଏ କଣେ ଯେବେ ଫେରିବ
ଅଇ କାହିଁ ପଠିଁ ସାଅନ୍ତାଣୀ ଡାକ ପୁଣି ସେ ଆସି ଡାକିବ
ଉକାସ. ସାଥିଲୁଆ ବହା

**ଦେଏଧାନ**—ଦେ. ବି—ଦେ ଧାନ (ଦେଖ)
De-edhāna De-dhāna (See)

**ଦେଓ**—ଦେ ବି (ସଂ.ଦେବ)—କ୍ଷତ୍ରିୟ ଓ ରାଜାମାନଙ୍କର ଉପାଧିବିଶେଷ—
Deo Title amongst Rajas and Kshatriyas.

**ଦେଓଘର**—ଦେ. ବି (ନାମ)—ସାନ୍ତାଳ ପ୍ରଗନା ଅନ୍ତର୍ଗତ ବାବା
Deoghara ବୈଦ୍ୟନାଥଙ୍କ ଅଧିଷ୍ଠିତ ନଗର—Deoghar, a town in Santal Pergannas, the seat of the shrine Bābā Baidyanātha.

**ଦେଓଟି**—ଗ୍ରା. ବି—ଦୁଇଗୋଟି—Both.
Deoṭi ହୃଦୟରେ ଚାର ଦେଓଟି ଆସି ଥାଇ
छुटि; **दोठो** ଚର୍ଚ୍ଚରେ ସେ ଜଗନ୍ନାଥଙ୍କୁ ଦେଖଇ । କୃଷ୍ଣସିଂହ. ମହାଭାରତ ସ୍ୱର୍ଗ

**ଦେଖ୍**—ଦେ. ଅ (ଅନାଦରାର୍ଥକ)—୧ । ସାବଧାନ୍; ହୁସିଆର—
Dekh 1. (Interjection) Take care; be careful.!
দেখিস্; **देखो** (ଯଥା-ଦେଖ୍ ! ଖସଡ଼ାରେ ଯେପରି ତୋ ଗୋଡ଼
(ଦେଖ—ଆଦରାର୍ଥକ ରୂପ) ଖସିନ ଯାଏ]—

୨ । ହେ ସଭାରେ ଲୋକବା ଉପସ୍ଥିତ ଲୋକେ ! ଦେଖ, ଏହା କେଡ଼େ ଅଦ୍ଭୁତ ବା ହାସ୍ୟାସ୍ପଦ—
2. (Interjection); How funny ! Lo ! Look ! Behold !

ଦେଖରେ ଭାଇ । ବସନ୍ତ ବେଳନ୍ତ ମାକଡ ପିନ୍ଧି । ଭଗ

୩ । ବିଚାର କର ! ଏକଥାକୁ ଉତ୍ତମରୂପେ ବିବେଚନାକର—
3. (Interjection) Just see; think of the matter.

ଦେ. କ୍ରି—(ଦେଖିବା କ୍ରିୟାର ଅନୁଜ୍ଞା ମଧ୍ୟମ ପୁରୁଷ
দেখিস্; **देखा** ଅନାଦରାର୍ଥକ ଏକବଚନରେ ତୁ କର୍ତ୍ତା ସଙ୍ଗେ ବ୍ୟବହୃତ ଆକାର) (ତୁ) ଦେଖ—(Thou) Do look.

**ଦେଖ୍ତ ଦେଖି**—ଦେ. ଅ—ଦେଖିବା ଦେଖି (ଦେଖ)
Dekh-ta dekhi Dekhibā dekhi (See)

**ଦେଖ୍ବା**—ପ୍ରାଦେ (ସମ୍ବଲପୁର) କ୍ରି—ଦେଖିବା—
Dekh-bā To see.

**ଦେଖଣା**—ଦେ. ବି (ସଂ. ଦୃଶ୍ ଧାତୁ; ପ୍ରା. ଦେଖ୍ ଧାତୁ)—ଦେଖିବା;
Dekhaṇā ଦୃଷ୍ଟିକରିବା—Seeing.
দেখা **देखना**

**ଦେଖଣାହାରି**—ଦେ. ବି—୧ । ଦର୍ଶକ—
Dekhaṇāhāri 1. Spectator.
दर्शक ହେଲେ ନେଉଥାଇ ଦେଖଣାହାରିଙ୍କ ହୃଦୟ ହରି—ରାଧାନାଥ. ଉଷା ।
**देखनहारा, दिखहार** ୨ । ଯାହା ଆଦି ଦେଖିବା ଲୋକ—2. Sight-seer.

ମହନ୍ତବାବାଙ୍କ ଦର୍ଶନ କରି ସମସ୍ତ ଦେଖଣାହାରି ହରିବୋଲ ପକାଇ ଗୋଡତଳେ ପଡ଼ଗଲେ । ଫକୀରମୋହନ. ଗଳ୍ପସ୍ୱଳ୍ପ ।

**ଦେଖନ୍ତ**—ଦେ. ବି—୧ । ଜ୍ଞାତସାର; ଅବଗତି; ଦୃଷ୍ଟି—
Dekhanta 1. Cognisance; knowledge.
(ଯଥା—ମୋ ଦେଖନ୍ତରେ ମୁଁ ଅନ୍ୟାୟ କାର୍ଯ୍ୟ କରାଇଦେବି ନାହିଁ ।)

୨ । ଜୀବନକାଳ; ଅମଳ—2. Time; life-time.

( ଯଥା—ଆମ ବାପାଙ୍କ ଦେଖନ୍ତରୁ ଆମ ବଂଶରେ ପିଲାଶିଆ ନାହିଁ । )

**ଦେଖା**—ଦେ. ବି (ସଂ. ଦୃଶ୍; ପ୍ରା. ଦେକ୍ଖ ଧାତୁ)—୧ । ଦର୍ଶନ—
Dekhā 1. Seeing; look.
देखा ୨ । ଦୃଷ୍ଟି—2. Sight; view.
**दिखाई** ୩ । ସାକ୍ଷାତକାର; ମୁଲାକାତ୍; ଦୁଇ ଜଣଙ୍କର ମିଳନ; ଭେଟ—
2. Interview; visit; meeting of two persons.

କେତେକାଳ ହେଲା ଦେଖା ନାହିଁ ସହୁ ।
ଶେଯଯାକ ଛଇଗଲ .ଲୁହ ବହୁ—ପ୍ରାଚୀନ ସଙ୍ଗୀତ ।

୪ । ଭେଟି—4. Present.

ଦେଖା ନାହିଁ କ ସାକ୍ଷାତ ନାହିଁ
ଗଚ୍ଛାପୂର୍ବଅଁ ବନ ମଧ୍ୟଂ ମାଇଁ—ଭଗ ।

**ଣ**—୧ । ଯେ ଦେଖେ; ଦର୍ଶକ—
1. One who sees; seeing.
୨ । ଦୃଷ୍ଟ; ଯାହା ଦେଖାଯାଏ—
2. That which is seen; seen.

**ଦେଖା(ଖେ)ଇ କହିବା**—ଦେ. କ୍ରି—୧ । ଉପମାଦ୍ୱାରା ବୁଝାଇବା—
Dekhā(khe)i kahibā 1. To illustrate; to support by citing similar cases

ଏଥକୁ ପ୍ରତଲକ୍ଷ ଦେବା
ଲୋକୁତ ଦେଖାଇ କହିବା—ଜଗନ୍ନାଥ ଭାଗବତ ।

୨ । ଅପ୍ରତ୍ୟକ୍ଷ ବା ପରୋକ୍ଷଭାବରେ କହିବା—
2 To speak indirectly.
୩ । ସୂଚନା ଦେବା—3. To hint

**ଦେଖା(ଖେ)ଇବା**—ଦେ. କ୍ରି—୧ । (ସଂ. ଦୃଶ୍ ଧାତୁ ଣିଚ୍ ଦର୍ଶି ଧାତୁ)—
Dekhā(khe)ibā ଦେଖିବା କ୍ରିୟାର ଣିଜନ୍ତରୂପ—
देखाना 1. The causative form of 'Dekhibā.'
**दिखाना, देखावना, दिखलाना** ୨ । ଅନ୍ୟ ବ୍ୟକ୍ତିକୁ ଦେଖିବାର ସୁବିଧା କରାଇବା; ଅନ୍ୟ ବ୍ୟକ୍ତି ଦେଖିପାରିବା ଭଳି କରିବା—
2. To enable another to see, to show; to cause another to see

କାଗଜର ନେବ ଦର୍ଥ ଦେଖାଇବ ବୃନ୍ଦାବନେଶ୍ୱର ଦେଖିଲେ—ଭଗ ।

୩ । ସାଧାରଣରେ ପ୍ରକାଶ କରିବା; ପ୍ରଦର୍ଶିତ କରିବା—
3. To exhibit; to show in public.

ସରସ୍ୱତୀଙ୍କ ଗୁଣ ଗତେ,
ଯଗ ପ୍ରୁ ଦେଖା ମତେ—ଶିଶୁଗୀତ ।

୪ । ଅନୁଭୂତ ହେବା—4. To be felt.
(ଯଥା—ମୋତେ ଆଜି ସନ୍ଧ୍ୟାବେଳକୁ ଜର ଦେଖାଉଛି । )
୫ । ପ୍ରକଟିତ କରିବା—5. To publish.
(ଯଥା—ଆପଣା ଘରର ଛିଦ୍ରସବୁ ଆଣି ଆଉ ଦାଣ୍ଡରେ ଦେଖା ନାହିଁ । )
୬ । ଇଙ୍ଗିତ କରିବା; ସ୍ପଷ୍ଟଭାବରେ ନ କହି ପରୋକ୍ଷଭାବରେ କଥା କହିବା; ଏକ ବିଷୟକୁ ଉଦ୍ଦେଶ ଦେଇ ଅନ୍ୟ ବିଷୟ କହିବା; ଦେଖାଇ ଶିଖାଇ କହିବା—
6. To say any thing indirectly or by implication; to give a hint.

୭ । ବାଟ ଦେଖାଇବା—
7. To show the way.
( ଯଥା—କୋଡ଼ ଧରି ଦେଖାଇଲେ ଢଅସଯାକ ପାଣି ମାଡ଼ି ଯିବ । )
୮ । ନିଜର ଶରୀରକୁ ଅନ୍ୟ ବ୍ୟକ୍ତି ଦେଖି ପାରିବା ଭଳି ତାହାର ସମ୍ମୁଖରେ ଉପସ୍ଥାପିତ କରିବା—
8. To exhibit one's body before another.
( ଯଥା—ମୁଁ ଅଇଁସିଲି ବେଳେ ବାହୁରିଟି ତାହାର ଦେକ ଦେଖାଇ ଦେଇ ଭୁକ ହୋଇ ଠିଆ ହୁଏ । )
୯ । ବୈଦ୍ୟ ବା ଡାକ୍ତର ପରୀକ୍ଷା କରିବା ପାଇଁ ଦେହର କୌଣସି ଅଙ୍ଗକୁ ତାହାଙ୍କ ନିକଟରେ ଉପସ୍ଥାପିତ କରିବା—9. To let ( one's body ) to be examined by a doctor
( ଯଥା—ମୁଁ ବଇଦଙ୍କୁ ହାତ ବା ଦେହ ଦେଖାଇଲି । )
୧୦ । ଅନ୍ୟର ସମ୍ମୁଖରେ ଉପସ୍ଥାପିତ କରିବା—
10. To place before another.
(ଯଥା—ଦୋକାନି ମୋତେ ପାଞ୍ଚ ରକମର ଆମ୍ବ ଦେଖାଇଲା । )
୧୧ । ସାକ୍ଷାତ୍‌ପ୍ରମାଣ ଦ୍ୱାରା ପ୍ରମାଣିତ କରିବା—
11. To prove by visible or direct evidence.

**ଦେଖା(ଖେ)ଇ ଶିଖା(ଖେ)ଇ କହିବା**—ଦେ. କ୍ରି—ଏକ ଉଦ୍ଦେଶ୍ୟକୁ
Dekhā(khe)i sikhā(khe)i kahibā ଲକ୍ଷ୍ୟ କରି ଅନ୍ୟର କଥା କହିବା; କୌଣସି ବ୍ୟକ୍ତିର ନାମ ନ ଧରି ଅନ୍ୟ ଛଳନାରେ ସେହି ବ୍ୟକ୍ତିକୁ ଆକ୍ରମଣ କରିବା—
To attack or rebuke a person indirectly or by implication without mentioning his name.

**ଦେଖା(ଖେ)ଇ ହେବା**—ଦେ. କ୍ରି—ନିଜର ବାହାଦୁରି, ସୌନ୍ଦର୍ଯ୍ୟ,
Dekhā(khe)i hebā ପରାକ୍ରମ, ବିଭବ ଆଦି ଅନ୍ୟ ବ୍ୟକ୍ତି ଯେପରି ଦେଖିବେ ସେହିପରି କାର୍ଯ୍ୟ କରିବା—
To act with a view to show off one's excellence; to give one's self airs.
( ଯଥା—ତୁ ମୋ ଆଗରେ ସୁନ୍ଦର ପଣ କେତେ ଦେଖାଇ ହଉଛୁ ମ । )

**ଦେଖା କରିବା**—ଦେ. କ୍ରି—ସାକ୍ଷାତ୍ କରିବା—
Dekhā karibā To meet another; to pay a visit
देखा करवा to; to pay one's respects to.
**दिखाइ करना** ( ଯଥା—ରାଜାଙ୍କୁ ଗୋଟିଏ ନଜରା ନେଇ ଦେଖା କଲି । )

**ଦେଖା ଶୁଣା**—ଦେ. ବି. ( ଏକାର୍ଥକ ସହଚର ଶବ୍ଦ )—
Dekhā chahāṅ ୧ । ଦେଖା ଦର୍ଶନ ( ଦେଖ )
(ଦେଖଶୁଣା—ଅନ୍ୟରୂପ) 1. Dekhā darśana ( See )
देखा शोना ୨ । ତତ୍ତ୍ୱ ନେବା—2. Care-taking.
**देखभाल, देखरेख** ( ଯଥା—ବିଦେଶରେ ଛାତ୍ରମାନଙ୍କୁ ଦେଖା ଶୁଣା କରିବାକୁ କେହି ମୁରବି ନ ରହିଲେ ପିଲାମାନେ ବିଗିଡ଼ି ଯାଆନ୍ତି । )

୩ । ପରିଦର୍ଶନ କରିବା; ଭିତ୍ତମରୂପେ ଦେଖିବା— 3 Observation; seeing minutely.

୪ । ପରୀକ୍ଷା କରିବା—4. Examining.

୫ । ସମ୍ପତ୍ତି ଆଦିର ତଦାରଖ କରିବା— 5. Looking after a property

(ଯଥା—ମୁଁ ବିଦେଶରେ ଥିଲାବେଳେ ମୋ ଜମିଦାରିକୁ ଦେଖା ଶୁଣା କରିବା ପାଇଁ ମୋ ଭାଇକୁ କହି ଆସିଛି ।)

**ଦେଖା ଦର୍ଶନ**—ଦେ. ବି (ଏକାର୍ଥକ ସହଚର)—୧ । ଦର୍ଶନ; ଦେଖା ମିଳିବା—1. Sight
Dekhā darśana
ଦেখাসাক্ষাৎ
দিখাব

(ଯଥା—ଧନ ସମ୍ପଦର ଗଣ୍ଡଗୋଳ ଲାଗି ଏତେବେଳ ଯାଏଁ ବରଯାତ୍ରୀଙ୍କର ଦେଖାଦର୍ଶନ ନାହିଁ ।)

(ଦେଖା ସାକ୍ଷାତ୍—ଅନ୍ୟରୂପ) ୨ । ସାକ୍ଷାତ୍କାର— 2. Interview.

**ଦେଖାଦେଖି**—ଦେ. ବି. (ସହଚରଶବ୍ଦ)—୧ । ପରସ୍ପରସାକ୍ଷାତ; ମିଳନ— 1 Interview; meeting each other; seeing one another.
Dekhādekhi
দেখাদেখি
भेंट, देखादेखी

ଚାଳନା ମଝାମଝି—ସୁବର୍ଣ୍ଣରେଖା ପାରି ହେଲେ କୁଟୁମ୍ବ ଦେଖାଦେଖି । ତଗ ।

୨ । ଅନ୍ୟୋନ୍ୟ ପରାକ୍ରମ ବୁଝାବୁଝି; ବଳ କଷାକଷି— 2. Measuring of each other's strength.

(ଯଥା—ଆଜ ଯୁଦ୍ଧ ଭୂମିରେ ଭୁମୁର ଆମୃତ ପଟାଏ ଦେଖାଦେଖି ହେବ ।)

୩ । ଭିତ୍ତମରୂପେ ଦେଖିବା; ପରୀକ୍ଷା କରିବା— 3. Seeing a thing carefully, examining.

ବିଣ—୧ । ପରସ୍ପର ମିଳିତ ହୋଇ ଥିବା— 1. Meeting each other.

୨ । ଯାହାକୁ ସର୍ବଦା ଦେଖାଯାଇ ପାରେ ବା ଯାହାର ତତ୍ତ୍ୱ ନିଆ ଯାଇ ପାରେ—2. Which can be often seen or attended to.

ଦେଖାଦେଖି ଗୃହ, ଲଗାଲଗ ବାସ । ତଗ ।

କ୍ରି. ବିଣ—ଜଣକର କାର୍ଯ୍ୟକୁ ଅନୁକରଣ କରି— Following another's action.

ତୁମ୍ଭ ଦେଖାଦେଖି ଲୋକେ ଶିଖିବେ ଯେ ନର । ପ୍ରାଚୀ. ଶ୍ରୀ ମଦ୍‌ଭଗବତ୍‌ଗୀତା ।

**ଦେଖା ଦେବା**—ଦେ. କ୍ରି—କୌଣସି ବ୍ୟକ୍ତିକୁ ଆପଣାର ଦର୍ଶନ ଦେବା— To grant an interview to another; to enable a person to see you.
Dekhā debā
দেখাদেওয়া
देखादेना

ପରେ ଥିଲାବଷ୍ଟୁଙ୍କୁ ଦେଖାଦେଅ ଯାଇ । କୃଷ୍ଣସିଂ. ମହାଭାରତ ବନ ।

**ଦେଖା ପଡ଼ିବା**—ଦେ. କ୍ରି—୧ । ହଠାତ୍ ପଡ଼ିବା; ହଠାତ୍ ମିଳିବା— 1. To encounter; to come across.
Dekhā paṛibā
দেখাপড়া
देखनेमें आना

(ଯଥା—ଶତ୍ରୁ ଅନୁକୂଳ କରି ବାହାରିଲା ବେଳକୁ ପଥିକ୍ଷୁଁ ତେଲ ବାସୁଡ଼ା ଦେଖା ପଡ଼ିଲା ।

୨ । ଦେଖା ଯିବା (ଦେଖ)—2. Dekhā jibā (See)

**ଦେଖା ପାଇବା**—ଦେ. କ୍ରି—ଦର୍ଶନଲାଭ କରିବା— To be able to see; to have an interview.
Dekhā pāibā
দেখাপাওয়া
में टपाना

**ଦେଖାମଣା**—ଦେ. ବି (ସ. ଦର୍ଶନ+ମନନ)—୧ । କୌଣସି ପଦାର୍ଥକୁ ଭିତ୍ତମରୂପେ ଦେଖି ଅନ୍ୟ ବ୍ୟକ୍ତିଠାରୁ ବୁଝିନେବା— 1. Taking a thing from another after minutely examining it.
Dekhāmaṇā

୨ । ଦେଖାମଣା ସଞ୍ଜା (ଦେଖ) 2. Dekhāmaṇā sañjā (See)

**ଦେଖାମଣା ସଞ୍ଜା**—ଦେ. ବି.—ପ୍ରଜା ଧୂଳିଭାଗରେ ଆବାଦ କରିଥିବା କୌଣସି ଜମିରେ ଫସଲ ମହଜୁଦ ଥିବାବେଳେ ଜମିଦାର ଓ ପ୍ରଜା ଉଭୟେ ଉକ୍ତ ଜମିକୁ ଯାଇ ଜମିଦାରଙ୍କ ପ୍ରଜାର ଦେୟ ଅଧେ ଧାନର ପରିମାଣ ସ୍ଥିର କରିବା, ଫସଲ ଲୁଟ କରିବା—Appraisement or valuation of the produce of a raiyati holding to fix the respective shares of the landlord and of the tenant therein; estimate of the landlord's half of the produce of a Bhāg holding while the crop is standing on a field.
Dekhāmaṇā sañjā
কৃত
आँकाई

୨ । ଜମିରେ ଫସଲ ଥିବା ସମୟରେ ଲୁଟହାସ ସ୍ଥିର ହୋଇଥିବା ପ୍ରଜାର ଦେୟ ଉତ୍ପନ୍ନ ଦ୍ରବ୍ୟ—2 Produce of a land payable by a raiyat to a landlord on appraisement.

**ଦେଖାମିଳିବା**—ଦେ. କ୍ରି—ଦର୍ଶନଲାଭ ହେବା; ଭେଟ ପଡ଼ିବା; ଦୃଷ୍ଟିପଥରେ ପଡ଼ିବା—To have an interview of; to be found; to be met with.
Dekhāmiḷibā
দেখামিলা
देखामिलना

ଯେ ଜାତ ଗାଉମା ତାମ୍ରଲିପ୍ତ ଭୂମେ ଅଦ୍ୟାପି ମିଳଇ ଦେଖା । ଉକାସ. ଗୀତଲହରୀ ।

ବି—ସାକ୍ଷାତ୍କାର—Interview.

(ଯଥା—ମୁଁ ପଛରେ ଅନୁସରଣ କରି ବସିଲି କିନ୍ତୁ ତାଙ୍କର ଦେଖା ମିଳିଲା ନାହିଁ ।)

**ଦେଖା ଯିବା**—ଦେ. କ୍ରି. (ଦେଖିବା କ୍ରିୟାର କର୍ମବାଚ୍ୟ ରୂପ)—୧ । ଦୃଷ୍ଟିଗୋଚର ହେବା— 1. To come to view; to be seen.
Dekhā jibā
দেখাযাওয়া
दिखाईपाना

କସ ପୁଣି ଦେଖା ନ ପାଇ ଯେବେ ଥାଇ ଜାଳରେ । ଉକ୍ତ. ଲାବଣ୍ୟବତୀ ।

୨ । ପ୍ରମାଣିତ ହେବା; ପ୍ରକାଶିତ ହେବା; ଜଣାପଡ଼ିବା— 2. To be known; to be inferred or concluded.

(ଯଥା—କାହାର କେତେ ବଳ ଅଛି ଫଳରେ ଦେଖାଯିବ ।)

**ଦେଖାଳି**—ଦେ. ବି—୧ । ଦେଖିବା ଲୋକ— 1. An observer.
Dekhāḷi
দেখাক
दिखवैया

୨ । ବିଚାର କରିବା ଲୋକ—2. A judge; one who is proficient in judging.

୩ । ଦେଖାଇବା ଲୋକ—3. A person who takes a person round a place and shows things.

**ଦେଖାଶିଖା**—ଦେ. ଵଣ. (ସହଚର ଶବ୍ଦ)—ଅନ୍ୟର ଅନୁକରଣକାରୀ; ଅନ୍ୟ ବ୍ୟକ୍ତିର କାର୍ଯ୍ୟକଳାପ ଦେଖି ଯେ ତାହା ଅନୁକରଣ କରେ—Imitating another's actions; imitative.
Dekhāsikhā
দেখেশিখা

ଦେଖାଶିଖା ଓଡ଼ିଶା । ଠଗ ।

**ଦେଖାଶୁଣା**—ଦେ. ବ. (ସହଚର ଶବ୍ଦ)—୧ । ଦେଖିବା ଓ ଶୁଣିବା—1. Seeing and hearing.
Dekāsunā
দেখাশুনা
देखभाल, देखरेख

(ଯଥା—ଏପରି କଥା ତ କେବେ ଦେଖାଶୁଣା ନ ଥିଲା ।)

୨ । ଦେଖିବା ବା ଖବର ରଖିବା; ତତ୍ତ୍ୱ ନେବା—2. Enquiry; looking after any thing.

ସମସ୍ତଙ୍କ ଦେଖାଶୁଣା ପ୍ରଣାମ ଆଶୀର୍ବାଦରେ ଶେଷ ହୋଇ ଗଲା ।
ଗୋଲକଣ୍ଡ ଦାଶ. ପିଲାଙ୍କ ରାମାୟଣ ।

୩ । ଚିହ୍ନା ପରିଚୟ; ପରସ୍ପର ଆଳାପ ପରିଚୟ—3. Acquaintance.

(ଯଥା—ମୋର ତାଙ୍କର ଦେଖା ଶୁଣା ନାହିଁ ।)

୪ । ସେବା ଶୁଶ୍ରୂଷା କରିବା—4. Tending.

জানাশুনা ଵଣ—ସୁପରିଚିତ—Well acquainted.

(ଯଥା—ସେ ଆମର ଜଣେ ଦେଖାଶୁଣା ଲୋକ ।)

**ଦେଖାସାକ୍ଷାତ୍**—ଦେ. ବ—ଦେଖାଦର୍ଶନ (ଦେଖ)
Dekhāsākshāt Dekhādarśana (See)

ସୁଧିଷ୍ଠିର ସାନ୍ଥ କୁବେର ସାନ୍ଥ ନାମ ଶୁଣିଥିଲେ,
ଦେଖା ସାକ୍ଷାତ ନ ଥିଲା । ଫକୀରମୋହନ, ଗଳ୍ପସ୍ୱଳ୍ପ ।

**ଦେଖାସୁନ୍ଦର**—ଦେ. ଵଣ—ଦେଖିବାକୁ ସୁନ୍ଦର ଅଥଚ ନିର୍ଗୁଣ ବା ଦୁର୍ବଳ; ବାହାରକୁ ଖାପ ଚକଣ ଅଥଚ ଭିତର ଫମ୍ପା—That which is beautiful to outward appearance but actually worthless or unsubstantial.
Dekhāsundara
দেখতে সুন্দর
दिखौआ, दिखावटी

ଦେଖାସୁନ୍ଦର ପଳାସ ଫୁଲ, ବାସ ଗୁଣ ନାହିଁ ଅମୂଲ୍ୟମୂଳ । ଠଗ ।

**ଦେଖାସୁନ୍ଦର କଖାରୁବଡ଼ି**—ଦେ. ବ. (ବିଶିଷ୍ଟ ପ୍ରୟୋଗ, କଖାରୁରେ ତିଆରି ବଡ଼ି ପରି ଶୂନ୍ୟଗର୍ଭ)—ବାହାରକୁ ଖାପ ଚକଣିଆ ଅଥଚ ଭିତରେ ଫମ୍ପା ବସ୍ତୁ; ଦେଖିବାକୁ ଉଜ୍ଜ୍ୱଳ ଚାକଚକ୍ୟ ଅଥଚ ଅକାମିକା ଲୋକ—A thing or person of outward beauty but actually worthless.
Dekhāsundara kakhārubardi
दिखौआ

**ଦେଖା ହେବା**—ଦେ. କ୍ରି—୧ । ସାକ୍ଷାତ କରିବା—1. To visit.
Dekhā hebā
দেখা হওয়া
देखा होना

ଋତୁପର୍ଣ୍ଣ ଵଳା ଛଦ୍ମରେ ଦେଖା ହେଲୁଁ ।
କୃଷ୍ଣସିଂହ. ମହାଭାରତ. ବନ ।

୨ । ହଠାତ୍ ଭେଟ ହେବା; ସାକ୍ଷାତ ଲାଭ ହେବା; ଦେଖାମିଳିବା—2. To encounter; to meet; to come across.

**ଦେଖି**—ଦେ. ଅ—ଦେଖିବା ଦେଖି (ଦେଖ)
Dekhi Dekhibā dekhi (See)
দেখি देखके

দেখিয়া ଦେ. ଅ. କ୍ରିୟା—ଦର୍ଶନ କରି; ଦର୍ଶନ ସାରି—Seeing; having seen.
देखके

**ଦେଖି ଗୃହିଁ**—ଦେ. କ୍ରି. ଵଣ—୧ । ଅତି ସାବଧାନତା ବା ସତର୍କତା ସହକାରେ—1. With a great care.
Dekhi chāhiñ
দেখে শুনে
देखभाल करके

ଦେଖି ଗୃହିଁ ବରିଥିଲେ ରାଜା ଏ ଜାମାତା ।
ଜଗନ୍ନାଥ, ବନମାଳୀଦାସ ।

୨ । ଭାବିଚିନ୍ତି; ସୁବିବେଚନାପୂର୍ବକ; ଅଗ୍ର ପଶ୍ଚାତ୍ ଭାବି—2 With a good deal of consideration.

**ଦେଖିତା ଦେଖି**—ଦେ. ଅ—ଦେଖିବା ଦେଖି (ଦେଖ)
Dekhitā dekhi Dekhibā dekhi (See)
(ଦେଖିତା—ଅନ୍ୟରୂପ)
দেখব
देखेंगे

ଦେଖିତା ଦେଖି, କୋଉ ଚଢେଇର ଛନ୍ଦା ଅଛି ।
ନାଁ ନଥ ।

**ଦେଖିଦାଖି**—ଦେ. କ୍ରି—ଉତ୍ତମରୂପେ ପରୀକ୍ଷା କରି; ବୁଝି ସୁଝି; ପର୍ଯ୍ୟବେକ୍ଷଣପୂର୍ବକ—After a thorough or careful examination.
Dekhidākhi
(ଦେଖିଦୁଖି—ଅନ୍ୟରୂପ)
দেখে শুনে
देखभाल कर

(ଯଥା—ବଜାରରୁ କୌଣସି ଜିନିଷ କିଣିବାବେଳେ ଦେଖି ଦାଖି କରି ନେବା ଉଚିତ ।)

**ଦେଖି ନେବା**—ଦେ. କ୍ରି—୧ । ପରୀକ୍ଷା କରିବା—1. To test.
Dekhi nebā
দেখে নওয়া
दिख लेना

୨ । ପ୍ରତିଶୋଧ ନେବା; ଶିକ୍ଷା ଦେବା—2 To take revenge; to teach a lesson.

**ଦେଖି ପାରିବା**—ଦେ. କ୍ରି—୧ । (ଲକ୍ଷଣାର୍ଥ) ସ୍ନେହ ବା ଆଦର କରିବା—1. (figurative) To like to love.
Dekhi pāribā
দেখতে পাবা
चाहना

ସେ ମୋତେ ବଡ଼ ଦେଖି ପାରେ
ଅନାର ଭିତରେ ଚିକୁଣି ମାରେ—ଠଗ ।

[ ଦ୍ର—ଆଧୁନିକ ଓଡ଼ିଆ ଲେଖକମାନେ ବଙ୍ଗଳା 'ଭାଲ ବାସା' ଓ 'ଭାଲ ପାଓୟା' ଶବ୍ଦକୁ ଓଡ଼ିଆରେ 'ଭଲ ପାଇବା' ବୋଲି ଅନୁବାଦ କରନ୍ତି । ମାତ୍ର ଏହାର ଶୁଦ୍ଧ ଓଡ଼ିଆ ପ୍ରତିଶବ୍ଦ 'ଦେଖି ପାରିବା' ଓ 'ସୁଖ ପାଇବା' ।

ଯଥା—ସାଆନ୍ତାଣୀ ମୋତେ ଭାରି ଦେଖି ପାରନ୍ତି । ମୁଁ ମିଠେଇ ଖାଇବାକୁ ଭାରି ସୁଖ ପାଏ । ]

୨ । କୌଣସି ବ୍ୟକ୍ତିର ସୁଖ ବା ଦୁଃଖ, ଅଭ୍ୟୁଦୟ ବା କଷ୍ଟ ଆଦି ଦେଖି ସନ୍ତୁଷ୍ଟ ହେବା—2. (figurative) To be pleased with the good or bad condition of another person.

(ଯଥା—ସେ ମୋ ସୁଖ ଦେଖି ପାରୁ ନାହିଁ ।)

୩ । ଦେଖିବାକୁ ସମର୍ଥ ହେବା—3. To be able to see.

୪ । ଦୃଷ୍ଟିଶକ୍ତିକୁ ଫଳତଃ ବ୍ୟବହାର କରିବା—4. To exercise one's eye-sight.

(ଯଥା—ମତେ ଚଷମା ଧରିବାକୁ ବିନା ପ୍ରଦୀପରେ ମୁଁ ରାତିରେ ପୋଥି ଦେଖି ପାରୁ ନାହିଁ ।)

୫ । ଅନୁଭବଦ୍ୱାର ପୂର୍ବରୁ ଉପଲବ୍ଧ କରିବା—
5. To realise beforehand by experience.
( ଯଥା—ତୋର ପଢ଼ା ଢଙ୍ଗରୁ ମୁଁ ଦେଖି ପାରୁଛି ଯେ, ତୁ ଏ ବର୍ଷ କ୍ଲାସ୍ ଛୁଟିବୁ ନାହିଁ । )

**ଦେଖିବା**—ଦେ. କ୍ରି. ( ସ. ଦୃଶ୍ ଧାତୁ ; ପ୍ରା—ଦେଖ୍ ଧାତୁ )—
Dekhibā ୧ । ଦର୍ଶନ କରିବା—1. To see.
দেখা ଦେଖିଲଇଁ ନାନା ସ୍ଥାନ ଭୁଲ୍ଲରତେ ।
देखना ଜଗନ୍ନାଥ; ଚଇତା ।
(ଦେଖାଯିବା—କର୍ମବାଚ୍ୟ ରୂପ) ୨ । ସାକ୍ଷାତ କରିବା—
(ଦେଖା(ଖୋ)ଇବା—ଣିଜନ୍ତ ରୂପ) 2. To meet; to visit.
ଦେଖିଲେ କଥା ନ କହେ, ନ ଦେଖିଲେ ପାଣି ନ ପିଏ—ଢଗ ।
୩ । ବିବେଚନା କରିବା; ବିଚାର କରିବା; ଚିନ୍ତା କରିବା—
3. To think; to consider.
ଦେଖ ଏ ସଂସାର ସାଗର ଅତି ଉତ୍କଟ ଭୟଙ୍କର । ଜଗନ୍ନାଥ, ଭାଗବତ ।
୪ । ବୋଧ କରିବା; ଇନ୍ଦ୍ରିୟ ଦ୍ୱାରା ଜାଣିବା—
4. To feel; to perceive.
୫ । ଉପଲବ୍ଧି କରିବା; ଅନୁଭବ କରିବା—
5. To experience; to realise
୬ । ଜାଣିବା—୧. To know; to come to know.
ଦେଖୁଛ ଚନ୍ଦନ, ପୋଡୁଛ କାଠ—ଢଗ ।
୭ । ପରୀକ୍ଷା କରିବା; ପରିଦର୍ଶନ କରିବା—
7. To examine; to inspect; to see critically; to test.
( ଯଥା—ମାଷ୍ଟର ପିଲାଙ୍କ ଖାତା ଦେଖୁଛନ୍ତି । )
୮ । ଅନ୍ୱେଷଣ କରିବା—
8. To search after; to seek after.
ହାଟକୁ ଗଲେ କନ୍ୟା ଦେଖିବ
ବାଇଗଣ ବଢିବ ଦ କାମ କରିବ—ଢଗ ।
୯ । ମନଃ ସଂଯୋଗ କରିବା—9. To attend.
୧୦ । ସଂଶୋଧନ କରିବା ( ପ୍ରୁଫ୍ )—
10. To correct (proof).
୧୧ । ହୁସିଆର ହେବା; ସାବଧାନ ହେବା—
11. To be careful; to beware.
୧୨ । ଯତ୍ନ ନେବା; ତତ୍ତ୍ୱାବଧାରଣ କରିବା—
12. To take care; to manage.
( ଯଥା—ବିଦେଶୀ ଜମିଦାରଙ୍କ ଜମିଦାରୀକୁ ମେନେଜର ବାବୁ ଦେଖନ୍ତି । )
୧୩ । ପାଳିବା; ଖୋଜଖବର ନେବା, ତତ୍ତ୍ୱନେବା—
13. To enquire.
ରଜା ତାହାର ବଶ ହୋଇ
କ୍ଷଣେ ନ ଦେଖେ ଚାହିଁଣ । ଜଗନ୍ନାଥ, ଭାଗବତ ।
୧୪ । ପୂର୍ବରୁ ଜାଣି ପାରିବା ବା ଅନୁମାନ କରିବା—
14. To infer or realise beforehand.
(ଯଥା—ଉଭୟ ପକ୍ଷର ସାକ୍ଷୀମାନଙ୍କ ଜବାନବନ୍ଦିରୁ ମୁଁ ଦେଖୁଛି ଯେ ହାକିମ ବାଦୀର ଦାବି ଡିସମିସ୍ କରିବେ ।)
୧୫ । ଜବ୍ଦ କରିବା; ଶିକ୍ଷା ଦେବା—15. To reduce to submission; to bring one under control; to teach a lesson.
(ଯଥା—ଆଚ୍ଛା, ତୁ ଯାହା କରିବାର କରୁଥା, ମୁଁ ଫେର୍ ତତେ ଦେଖିବି ଯେ ! )
୧୬ । ପ୍ରମାଣ ବା ଶେଷଫଳଦ୍ୱାରା ଜାଣି ପାରିବା—
16. To know by the result.
୧୭ । ନିକଟରେ ଉପସ୍ଥିତ ହେବା; ପହଞ୍ଚିବା—
17. To reach.
ନଈ ନ ଦେଖୁ ଲଙ୍ଗଳା । ଢଗ ।
୧୮ । ସେବା କରିବା; ଶୁଶ୍ରୂଷା କରିବା—
18. To tend
୧୯ । ଚିକିତ୍ସା କରିବା—19. To treat.
(ଯଥା—ବାଲୁକେଶ୍ୱର କବିରାଜ ୩ ଦିନ ହେଲା ମଲ୍ଲୁଙ୍କୁ ଦେଖୁଅଛନ୍ତି ।)
୨୦ । କୃପା ଦୃଷ୍ଟି କରିବା—20. To cast a kind glance on; to be kind; to have a kind eye on.
(ଯଥା—ପ୍ରଭୁ ଦେଖିବେ ମୋ ଦୁଃଖ ଯିବ ।)
୨୧ । ପର୍ଯ୍ୟବେକ୍ଷଣ କରିବା—
21. To observe; to regard attentively.
୨୨ । ମନୋଯୋଗ ଦେବା—
22. To mind; to attend to.
[ ଦ୍ର—ଦେଖିବା କ୍ରିୟା ସଙ୍ଗେ ସହଚର ରୂପେ ଶୁଙ୍ଘିବା, ଶୁଣିବା କ୍ରିୟାମାନ ବ୍ୟବହୃତ ହୁଏ ।
ଦେଖିବାର ଅସମାପିକା ରୂପ ସଙ୍ଗେ, ଦେବା, ନେବା, ପକାଇବା, ଯିବା, ଆସିବା, ପାରିବା, ବସିବା ଇତ୍ୟାଦି କ୍ରିୟାମାନ ବ୍ୟବହୃତ ହୁଏ । ]

**ଦେଖିବାଦେଖି**—ଦେ. ଅ—୧ । ଆଚ୍ଛା ! ବୁଝାଯିବ ! ଆଚ୍ଛା ! ଫଳରେ ବୁଝିବା ଭଳି—1. All right ! let us see.
Dekhibā dekhi
দেখব
देखेंगे ବୁଦ୍ଧାବ କେ ରଖିବ ଦେଖିବା ଦେଖି । ଉତ୍କ. ବୈଦେହୀଶବିଳାସ ।
୨ । (ପ୍ରଶ୍ନାର୍ଥକ) କହିଲ ଭଲା ?—
2. (question) Will you tell me ?

**ଦେଖିବାରେ ଆସିବା**—ଦେ. କ୍ରି ( ଦେଖିବାର କର୍ମବାଚ୍ୟ )—
Dekhibāre āsibā ୧ । ଦୃଷ୍ଟିଗୋଚର ହେବା—1. To be seen.
(ଦେଖାରେ ଆସିବା—ଅନ୍ୟରୂପ)
দৃষ্টিতে আসা ୨ । ଜଣାଯିବା—2. To be known.
देखनेमेंआना ୩ । ଅନୁଭୂତ ହେବା—
3. To be experienced.

**ଦେଖିଲା କାମ କରିବା**—ଦେ. କ୍ରି (ଶିଷ୍ଟ ବାକ୍ୟ; ଧମକାଇବା ଅର୍ଥରେ, ପ୍ରୟୋଗ)—୧ । କୌଣସି ବ୍ୟକ୍ତିକୁ ପ୍ରହାର ଦେବା; ଦଣ୍ଡଦେବା—
Dekhilā kāma karibā
(ଦେଖିବା କାମ କରିବା—ଅନ୍ୟରୂପ)
1. To punish or beat a person.

୨ । କୌଣସି ବ୍ୟକ୍ତିକୁ ଦଣ୍ଡାଦି ଦ୍ୱାରା ଉତ୍ତମରୂପେ ଶିକ୍ଷା ଦେବା—2. To teach one a good lesson.

୩ । ଯାହା ମନକୁ ଆସିବ ତାହା କରିବା—3. To do anything one likes.

( ଯଥା—ମୁଁ ତାଙ୍କୁ ବାରମ୍ବାର ସତର୍କ କରାଇଲେ ସୁଦ୍ଧା ସେ ଶୁଣୁ ନାହାନ୍ତି, ଏଣିକି ମୁଁ ଦେଖିଲା କାମ କରିବି ।)

**ଦେଖିଲା ନାହିଁ**—ଦେ. ବିଣ—ଅଦୃଷ୍ଟପୂର୍ବ—
Dekhilā nāhiṅ Not seen before.
ଦେଖିଲାରେ ନାହିଁ } ଅନ୍ୟରୂପ
ଦେଖିବାରେ ନାହିଁ }
ଭୂତ ଭବିଷ୍ୟ ବର୍ତ୍ତମାନ
ଦେଖିଲା ନାହିଁ ତ୍ରିଭୁବନ ।
ଜଗନ୍ନାଥ. ଭାଗବତ ।

**ଦେଖିଶୁଣି**—ଦେ. ଅ. କ୍ରି (ସହଚର ଶବ୍ଦ)—ଆଖିରେ ଦେଖି ଓ କାନରେ
Dekhiśuṇi ଶୁଣି; ଉତ୍ତମରୂପେ ଅନୁଭବ ଦ୍ୱାରା ଉପଲବ୍ଧି କରି—
ଦେଖେସୁନେ After personal experience
देखरेखकर ( ଯଥା—ତୁ ଏ ସଂସାର ଗତି ଦେଖିଶୁଣି ସୁଦ୍ଧା ବାପ୍ପା ପରି ଅବୁଝା ହେଉଛୁ ।)

**ଦେଖୁଣି** ଦେ. ବିଣ (ସଂ. ଦର୍ଶନ; ପ୍ରା. ଦେକ୍ଖନ)—ଦର୍ଶନ; ଦେଖିବା—
Dekhuṇi Seeing.
ଦେଖନ ବୋଲେ କେମାନ୍ତ ଅଣ ଦେଖୁଣି ଅଥ—ଉପେ. ବୈଦେହୀଶବିଳାସ ।
देखनि

**ଦେଖୁଣିଆ(ଆଁ)**—ଦେ. ବିଣ—ଦେଖିବା ବ୍ୟକ୍ତି—
Dekhuṇiā(āṅ) One who sees
ବି—ରାଜାଙ୍କ ଖାଦ୍ୟକୁ ଦୃଷ୍ଟି କରି ପରୀକ୍ଷା କରିବା ନିମନ୍ତେ
दिखवैया ନିଯୁକ୍ତ ଭୃତ୍ୟ—A servant whose duty is to examine the king's food by seeing it.

**ଦେଖୁଦେଖୁ**—ଦେ. ଅ—୧ । ଯୁହୁଁ ଯୁହୁଁ; ତତ୍‌କ୍ଷଣାତ୍; ଅନତିବିଳମ୍ବରେ;
Dekhudekhu ଅତି ଅଳ୍ପ ସମୟରେ—1. Within a
ଦେଖତେ ଦେଖତେ very short time; shortly.

୨ । କୌଣସି ବ୍ୟକ୍ତିର ସାକ୍ଷାତରେ ବା ଦୃଷ୍ଟି ଉପରେ—2. Before one's own eyes.

(ଯଥା—ବାପା ଦେଖୁ ଦେଖୁ ସମସ୍ତେ ମୋତେ ଘେରକରି ମାଡ଼ ମାରିଲେ ।)

**ଦେଗ୍ଧି ହେବା** ଦେ. କ୍ରି—ଦୋଗଧି ହେବା (ଦେଖ)
Degdhi hebā Dogadhi hebā ( See )
( ଦେଗ୍ଧନ ହେବା—ଅନ୍ୟରୂପ )

**ଦେଠା**—ଗ୍ରାଃ ବି. ପୁଂ (ଶୂଦ୍ରଙ୍କ ବ୍ୟବହୃତ ଭାଷା; ସଂ. ଜ୍ୟେଷ୍ଠ ଓ ପିତୃବ୍ୟ)
Deṭhā (ଦେଠପା—ଅନ୍ୟରୂପ)
ଦେଠାଈ } ସ୍ତ୍ରୀ ଜ୍ୟେଷ୍ଠ ପିତୃବ୍ୟ—One's father's elder
ଦେଠେଇ } brother.
ଜେଠା, चाचा

**ଦେଠାଈ ଶାଶୁ**—ଦେ. ବି. ସ୍ତ୍ରୀ ( ସଂ. ଜ୍ୟେଷ୍ଠ ଓ ଶ୍ୱଶ୍ରୂ )—ନିଜର ସ୍ୱାମୀ
Deṭhāi śāśu ବା ସ୍ତ୍ରୀଙ୍କର ଦେଠେଇ—The elder paternal aunt of one's husband or wife.
(ଦେଠେଇ ଶାଶୁ—ଅନ୍ୟରୂପ)
(ଦେଢ଼ୁ ଶ୍ୱଶୁର—ପୁଂ)

**ଦେଢ଼ଶାଶୁ**—ଦେ. ବି. ସ୍ତ୍ରୀ (ସଂ. ଜ୍ୟେଷ୍ଠ ଶ୍ୱଶ୍ରୂ)—ପତ୍ନୀଙ୍କ ଜ୍ୟେଷ୍ଠା ଭଗିନୀ—
Derdaśāśu One's wife's elder sister.
(ଦେଢ଼ଶାଶୁ—ଅନ୍ୟରୂପ) [ଦ୍ର—ପତ୍ନୀଙ୍କ କନିଷ୍ଠା ଭଗିନୀକୁ ଶାଳୀ
ଜେଠ କହନ୍ତି । ଶାଳୀ ଭଣୋଇଙ୍କ ମଧ୍ୟରେ ଥଟ୍ଟା
सढ़ुबाइन ପରିହାସ ଚଳେ; କିନ୍ତୁ ଦେଢ଼ଶାଶୁ ଓ
(ଭଉଣୀଜୋଇଁ— ଭଉଣୀଜୋଇଁଙ୍କ ସମ୍ପର୍କ ସମ୍ମାନସୂଚକ । ]
ତୁଳନାତ୍ମକ ବ୍ୟପତ୍ତିତ ଲିଙ୍ଗ)

**ଦେଢ଼ଶ୍ୱଶୁର**—ଦେ. ବି. ପୁଂ (ସଂ. ଜ୍ୟେଷ୍ଠ ଓ ଶ୍ୱଶୁର)—ସ୍ୱାମୀଙ୍କ ଜ୍ୟେଷ୍ଠ
Derdaśura ଭ୍ରାତା—One's husband's elder brother.
ଦେଢ଼ୁଶୁର }
ଦେଢଶ୍ୱୁର } ଅନ୍ୟରୂପ
ଦେଢ଼ୁଶୁର }
ଦେଢଶୁର ଲାଗ ଯେ ବୋଲିବନ୍ତି ବଳୀ
ସେ ଥାଇଁ ବୁ ହୋଇଲୁ ରଣଥିଲ ବୋଳ ।
କୃଷ୍ଣସିଂହ. ମହାଭାରତ.
भाखुर [ଦ୍ର—ଆମ ଦେଶରେ ଦେଢ଼ଶ୍ୱଶୁରଙ୍କ ସଙ୍ଗେ
जेठ ଭାଇବୋହୂଙ୍କର ସାକ୍ଷାତ୍ ସମ୍ବନ୍ଧ ନାହିଁ ।
(ଭାଇବୋହୂ— ଏମନ୍ତ କି ଦେଢ଼ଶ୍ୱଶୁରଙ୍କର ଅଙ୍ଗଠାରୁ ଭାଇ
ତୁଳନାତ୍ମକବ୍ୟପତ୍ତିତ ଲିଙ୍ଗ) ବୋହୂ ସ୍ପର୍ଶ ସୁଦ୍ଧା କରନ୍ତି ନାହିଁ । ସ୍ୱାମୀଙ୍କ ସାନ ଭାଇକୁ ଦିଅର କହନ୍ତି । ]

**ଦେଢ଼ି**—ଦେ ଓ ପ୍ରାଦେ (ସମ୍ବଲପୁର) ବି—ଦେଢ଼ି (ଦେଖ)
Derdi Derdhi (See)

**ଦେଢ଼ୁଭା**—ଦେ. ବି. ପୁଂ (ସଂ. ଜ୍ୟେଷ୍ଠ ତାତ)—ପିତାଙ୍କ ଜ୍ୟେଷ୍ଠଭ୍ରାତା;
Derdutā ଜ୍ୟେଷ୍ଠ ତାତ; ଦଦେଇ—Father's elder
ଜେଠା; चचा brother.
(ଦେଢ଼ୁଭା—ଅନ୍ୟରୂପ) (ଜେଠେଇ—ସ୍ତ୍ରୀ)

**ଦେଢ଼ୁତାପୁଅ ଭାଇ**—ଦେ. ବି. ପୁଂ—ଜ୍ୟେଷ୍ଠ ତାତଙ୍କ ପୁତ୍ର ହେବା
Derdutāpuabhāi ଯୋଗୁଁ ସମ୍ପର୍କରେ ଆପଣାର ଭାଇ—
(ଦେଢ଼ୁଭାପୁଅ ଭାଇ—ଅନ୍ୟରୂପ) One's cousin brother
(ଦେଢ଼ୁତାଝିଅ ଭଉଣୀ—ସ୍ତ୍ରୀ) being the son of one's elder paternal uncle.
[ଦ୍ର—ଖୁଡ଼ିତାତଙ୍କ ପୁଅକୁ ଖୁଡ଼ୁତାପୁଅ ଭାଇ କହନ୍ତି]

**ଦେଢ଼ୁଶ୍ୱଶୁର**—ଦେ.ବି.ପୁଂ (ସଂ.ଜ୍ୟେଷ୍ଠ ଓ ଶ୍ୱଶୁର)—ଶ୍ୱଶୁରଙ୍କ ବଡ଼ଭାଇ—
Derdutāśura Father-in-law's elder brother.
(ଦେଢ଼ୁଶ୍ୱଶୁର—ଅନ୍ୟରୂପ) [ ଶ୍ୱଶୁରଙ୍କ ସାନ ଭାଇକୁ ଖୁଡ଼ୁଶ୍ୱଶୁର
(ଦେଠେଇ ଶାଶୁ—ସ୍ତ୍ରୀ) କହନ୍ତି ।]

**ଦେଢ଼**—ଦେ. ବିଣ ଓ ବି [ସଂ. ଅଧ୍ୟର୍ଦ୍ଧ; ସାର୍ଦ୍ଧ, ଦ୍ୟୁର୍ଦ୍ଧ (Beams]—
Derdha ଅର୍ଦ୍ଧ ଅଧିକ ଏକ; ଏକ ଏବଂ ଅଧେ—
ଦେଡ, डेढ़, डेओढ़ा One and a half.

**ଦେଢ଼ଗୋଡ଼ିଆ**—ଦେ. ବିଣ—୧ । ଯାହାର ଗୋଟିଏ ଗୋଡ଼ ଛୋଟ—
Derdhagordiā 1. Lame.
୨ । ଅଥିରପା;ଅସ୍ଥିର ପାଦ—2. Of unstable footing.

**ଦେଢ଼ଶ୍ୱଶୁରଭାଇବୋହୂ ଗଛ**—ପ୍ରାଦେ (ଗଡ଼ଜାତ) ବି—ଲଜକୁଳିଲତା—
Derdhaśurabhāibohu gachha The Mimosa creeper.

**ଦେଢ଼ା**—ଦେ. ବି—ଦେଢ଼ି (ଦେଖ)
Derdhā Derdhi (See)
ଦେଢ଼ି, ଦେଢ଼ା; ବିଣ—୧ । ଦେଢ଼ ଗୁଣ ପରିମିତ; ସାର୍ଦ୍ଧ ପରିମିତ—
डेढ़ा, डेओढ़ा 1. One and a half times as much.

ଦେଢାଇ } ଅନ୍ୟରୂପ
ଦେଢେଇ

୨ । ଦେଢ଼ଗୁଣରେ ହିସାବ କରାଯିବା—2 Calculated at one and a half times.

ଦେଢ଼ି—ଦେ. ବି—୧ । ଦେଢ଼ଗୁଣ—1. One and a half times.
Derdhi
डेढ़ी

୨ । ବର୍ଷକେ ମୂଳଧନର ଅଧେ ପରିମିତ ସୁଧ ମିଳିବା ପ୍ରକାରେ ଦିଆଯିବା ଧାନ ବା ଟଙ୍କାର ଋଣ—2. A loan by which the annual interest is half the amount of the principal or 50 per cent.

[ଦ୍ର—ଏ ଦେଶରେ ପୂର୍ବେ ଧାନ ଦେଢ଼ି ସୁଧରେ କରଜ ଦିଆ ଯାଉଥିଲା ଏବଂ ପ୍ରତି ବର୍ଷର ପ୍ରାପ୍ୟ ସୁଧର ପରିଶୋଧ ନ ହେଲେ ତାହା ମୂଳରେ ଭରଣା ହୋଇ ଆଗାମୀ ବର୍ଷକୁ ସୁଧ ମୂଳ ଉପରେ ପୁଣି ଚକ୍ରବୃଦ୍ଧି ହିସାବରେ କଷୋଟ କରା ଯାଉଥିଲା । କିନ୍ତୁ ଆଜି କାଲି ଦେଢ଼ି ରେଟରେ ସୁଧ କିଆ ନ ଯାଇ ସାଇ (ସଉଆ) ରେଟରେ ଧାନ କରଜ ଲଗା ଯାଉଅଛି । କିନ୍ତୁ ଚକ୍ରବୃଦ୍ଧି ପ୍ରଥା ବନ୍ଦ ହୋଇ ନାହିଁ ।]

୨ । ମୂଳଧନର ଶତକଡ଼ା ବାର୍ଷିକ ୫୦ ରେଟରେ ଗଣା ଯିବା ସୁଧ—Interest calculated at 50 % per cent per annum

୩ । ଯେଢ଼ି, କର୍ଣ୍ଣାଲଙ୍କାରବିଶେଷ—3. A kind of ear-ring.

ପ୍ରାଦେ (ସମ୍ବଲପୁର) ବି—ବିଛଣାଗୁଦର, ମାଠ—Bed sheet.

ଦେଢ଼ି ଅଢ଼ାଇ—ଦେ.ବିଣ—୧ । ଅସମାନ—1. Unequal;uneven
Derdhi ardhai
डयोढ़ा
(ଦେଢ଼ ଅଢ଼େଇ—ଅନ୍ୟରୂପ)

୨ । ଯାହା ଏକ ପାଖକୁ ଆଉଜି ଥାଏ—2. Aslant, leaning.

୩ । ଯେଉଁ ଚଉକି ଆଦିର ଗୋଡ଼ ଭୂମିରେ ସମାନଭାବରେ ବସେ ନାହିଁ—3. That whose legs do not sit evenly on the ground.

ବି.— ଅସମାନ ପାଦକ୍ଷେପବିଶିଷ୍ଟ ଏକପ୍ରକାର ନୃତ୍ୟ—A kind of dance with unequal foot-steps.

ଅ.—(ସବାସ ଗଉଡ଼ଙ୍କ ଡାକ)—ଅସମତଳ ଓ ଢାଲୁଆସ୍ଥା ଓ ସଙ୍କୀର୍ଣ୍ଣ ସ୍ଥାନସୂଚକ—Uneven, sloping and narrow road.

ଦେଢ଼ିଆ—ଦେ. ବିଣ. ଓ ଅ—ଦେଢ଼ି ଅଢ଼ାଇ (ଦେଖ)
Derdhia Derdhi ardhai (See)

ପ୍ରାଦେ. (ଗଡ଼ଜାତ) ବି.—'ଶାଆଳ ନାମକ' ଗୋରୁଙ୍କର ଏକ ପ୍ରକାର ରୋଗ, (ଏ ରୋଗ ହେଲେ ଦେଢ଼ ଦିନରେ ଗୋରୁ ମରି ଯାଆନ୍ତି)—A kind of fatal cattle disease.

ଦେଢ଼ି ଧାନ—ଦେ. ବି.—ଦେଢ଼ି ସୁଧରେ କରଜ ଦିଆଯିବା ଧାନ—
Derdhi dhana Paddy advanced with interest at 50 per cent per annum.

ଦେଢ଼ି ଲଗା(ଗେ)ଇବା—ଦେ. କ୍ରି.—୧ । ଧାନକୁ ଶତକଡ଼ା ବାର୍ଷିକ ୫୦ ସୁଧ ହିସାବରେ ଖାତକଙ୍କୁ କରଜ ଦେବା—
Derdhi laga(ge)iba To advance paddy at interest at 50 per cent per annum.

୨ । ନିର୍ଦ୍ଦିଷ୍ଟ ସୁଧରେ ଧାନ ପ୍ରଭୃତି ଋଣ ଦେବା—2. To advance paddy loan on some fixed interest.

ଦେଢ଼ି ଲଗିବା—ଦେ. ବି.—ନିର୍ଦ୍ଦିଷ୍ଟ ସୁଧରେ ଧାନ କରଜ ଦିଆଯିବା—
Derdhi lagiba Investment of paddy at 50 per cent interest.

ଦେଢ଼ି ସୁଧ—ଦେ. ବି.—ଶତକଡ଼ା ବାର୍ଷିକ ୫୦ ରେଟରେ ସୁଧ—
Derdhi sudha Interest at 50 per cent per annum.
দেড়া সুদ डेढ़ासूद

ଦେଢ଼େଇ ଯିବା—ଦେ. କ୍ରି.—୧ । ଆଡ଼ ହୋଇ କଡ଼େ କଡ଼େ ଯିବା—
Derdhei jiba 1. To go or proceed sideways
(ଦେଢ଼େଇବା—ଅନ୍ୟରୂପ) ୨ । ଢେଲିଙ୍ଗ ଯିବା; ଅସମତଳ ହେବା—2. To become warped or bent.

ଦେଣ୍—ଦେ. ବି. (କଚରିଆ) (ସଂ. ଦା ଧାତୁ; ଦାନ, ଦେୟ)—
Den ୧ । ଋଣ—1. Debt.
(ଦେବଣ—ଅନ୍ୟରୂପ) ୨ । ଦେବା—2. Giving.
দেন; দেনা ୩ । ଦେୟ ଧନଆଦି ଜମା ଦେବା—3. Debiting.
देन ୪ । ଦେୟ ଧନ—4. Amount payable.

ସେଇଠା ତ ବଡ଼ ପିଠିରୁ ଦେଣ୍ । ଫକୀରମୋହନ. ଗଳ୍ପସ୍ବଳ୍ପ ।

୫ । ପ୍ରଦତ୍ତ ବସ୍ତୁ—5. Any thing given away.

ବିଣ—ଦେୟ—Payable.

ଦେଣ୍ଦାର—ଦେ ବିଣ. (କଚରିଆ; ସଂ. ଦାନ+ଫା. ପ୍ରତ୍ୟୟ ଦାର)—
Dendar ଋଣଗ୍ରସ୍ତ—Indebted; involved in debts.
দেনাদার ବି —୧ । ଖାତକ; ଅଧମର୍ଣ୍ଣ—1. Debtor.
देनदार ୨ । ଯାହା ଉପରେ ଅନ୍ୟ ବ୍ୟକ୍ତି ଡିଗ୍ରୀ ପାଇ ଥାଏ—2 Judgment-debtor.

ଦେଣାଦାର, ଦେବଣଦାର } ଅନ୍ୟରୂପ
ଦେଣ୍ଦାରଆ

ଦେଣ୍ଦାରି—ଦେ. ବି. (କଚରିଆ, ସଂ. ଦାନ+ଫା. ପ୍ରତ୍ୟୟ ଦାର)—
Dendari ଋଣଗ୍ରସ୍ତ ଅବସ୍ଥା—Indebtedness; state of being involved in debt.
দেনদারী देनदारी
(ଦେବଣଦାରି, ଦେଣାଦାରି—ଅନ୍ୟରୂପ)

ଦେଣ୍‌ନେଣ୍—ଦେ. ବି. (କଚରିଆ)—(ବିପରୀତାର୍ଥ. ସହଚର ଶବ୍ଦ; ସଂ. ଦା ଧାତୁ ଓ ନୀ ଧାତୁ)—୧ । ଆଦାନ ପ୍ରଦାନ; ଦେବା ନେବା—1. Giving and taking.
Den nen
দেনলেন
देनलेन ୨ । କାରବାର—2. Transaction.

ଦେବଣ ନେବଣ,
ଦେବଣା ନେବଣା,
ଦେଣ ଲେଣ,
ଦେଣା ନେଣା,
ଦେଣା ଲେଣା

୩ । ପଣ୍ୟଦ୍ରବ୍ୟମାନଙ୍କ ବିନିମୟ—3. Exchange of commodities.

୪ । ଦୁଇଜଣଙ୍କ ମଧ୍ୟରେ ଖାତକ ମହାଜନ ସମ୍ବନ୍ଧ—
4. The relationship of creditor and debtor between two persons.
୫ । ମହାଜନୀ କାରବାର—5. Loan transaction between two persons.

**ଦେଣା** (ଇତ୍ୟାଦି)—ଦେ. ବି. ଓ ବିଣ—ଦେଣ୍ ଇତ୍ୟାଦି (ଦେଖ)
Deṇā (etc) Deṇ etc (See)

**ଦେଣା କରିବା**—ଦେ. କ୍ରି—ଋଣ କରିବା—To borrow; to enter into debt.
Deṇā karibā

**ଦେଣା ପାଉଣା**—ଦେ. ବି (ସହଚର ଶବ୍ଦ; ସଂ. ଦେୟ ଓ ପ୍ରାପ୍ୟ)—
Deṇā pāuṇā ୧ । ଦେୟ ଓ ପ୍ରାପ୍ୟ ଅର୍ଥ—
দেনা পাওনা; 1. Money payable and receivable.
देना पाना ୨ । ଦୁଇଜଣଙ୍କ ମଧ୍ୟରେ ହିସାବ ନିକାସି—
2. Settlement of accounts between two persons

**ଦେଣାରେ ବୁଡ଼ିବା**—ଦେ. କ୍ରି—କରଜାରେ ଡୁବି ରହିବା; ପରିଶୋଧ
Deṇāre burḍibā କରିବାର କ୍ଷମତାରୁ କରଜାର ପରିମାଣ
দেনায় ডুবা বଳ ପଡ଼ିବା—To be over head and ears
देनमे डूबना in debt.

**ଦେଣି**—ଦେ. ବିଣ—(ସଂ. ଦେୟ; ଦାନୀୟ)—୧ । ଦେୟ—
Deṇi 1. Payable.
দেনা; देना ୨ । ଅବଶ୍ୟଦେୟ—2. Unavoidably payable
(ଦେଏଣି—ଅନ୍ୟରୂପ) (ଯଥା—ଯାହା ଦେଖିବାକୁ ଅସି ମତେ ପାଞ୍ଚଟଙ୍କା ଦେଣି ପଡ଼ିଲା)
ଦେ. ବି—ଦେୟ ଅର୍ଥ—1. Dues; money payable by a person.
ପ୍ରାଦେ (ବାଲେଶ୍ୱର)ବି (କଚିତ୍‌ଥ)—୧ । ଦେଣଦାର ଖାତକ—
1. Debtor
୨ । ଅଦାଲତରେ ଯେଉଁ ଖାତକ ଉପରେ ମହାଜନର ଡିଗ୍ରୀ ହୋଇଥାଏ—2. Judgment-debtor.

**ଦେଣଦାନୀ**—ପ୍ରାଦେ (ସମ୍ବଲପୁର) ବିଣ—୧ । ଦାନଶୀଳ—
Deṇadāni 1. Liberal; open-handed.
୨ । (ବ୍ୟଙ୍ଗ)—ଅତି କୃପଣ—2. Very miserly.

**ଦେଦାର୍**—ଦେ. ବିଣ (ଫା) ଦିଲଦରିଆ—(ଷ୍ଟାନେଜ୍)—୧ । ବେଜାୟ;
Dedār ଅତ୍ୟଧିକ; ଖୁବ୍—1. Excessive; too much.
দেদার ୨ । ପ୍ରଚୁର—2. Plentiful; copious; abundant.
बहुतायत; बेजा ୩ । ପର୍ଯ୍ୟାପ୍ତ; ଯଥେଷ୍ଟ—
(ଦେଦାର—ଅନ୍ୟରୂପ) 3. Enough; more than sufficient.
୪ । ଅଶେଷ; ଅସଂଖ୍ୟ—
4. Numberless; illimitable, countless

**ଦେଦୀପ୍ୟମାନ**—ସଂ. ବିଣ ( ଦୀପ୍ ଧାତୁ=ଦୀପ୍ତି ପାଇବା+ଅତିଶୟାର୍ଥେ
Dedipyamāna ଯଙ୍, ଦେଦୀପ୍ୟ ଧାତୁ+କର୍ତ୍ତୃ('ଶାନ') ମାନ—
(ଦେଦୀପ୍ୟମାନା—ସ୍ତ୍ରୀ) ଜାଜ୍ୱଲ୍ୟମାନ; ଅତ୍ୟନ୍ତ ଦୀପ୍ତିବିଶିଷ୍ଟ; ଉଜ୍ଜ୍ୱଳ—Dazzling; refulgent; resplendent; glittering.

**ଦେଦେ**—ଦେ. ଅ—(ଦେବାକ୍ରିୟାର ଅନାଦରାର୍ଥକ ଅନୁଜ୍ଞାରୂପ 'ଦେ'ର ଦ୍ୱିତ୍ୱ)
Dede ୧ । ଦିଅ ଦିଅ—1. Give give
দাও দাও (ଯଥା—କେତେ ମୁଁ ଦେ ଦେ କହୁଥିବି ?)
दे दे ୨ । (ଦେଖ କ୍ରିୟା ସଂକ୍ଷିପ୍ତ ଆକାରର ଦ୍ୱିତ୍ୱ) ଦେଖୁ ଶୁଣ—
2. Look you.

**ଦେଧାନ**—ଦେ. ବି—୧ । ( ସଂ. ଦେବଧାନ୍ୟ ) ଅ—ମକ୍କା ବା ଅଣ୍ଡପରି
Dedhāna ଧାନ୍ୟ ଜାତୀୟ ସରୁ ଗଛ ଓ ଚହୁଁର ଶସ୍ୟ; ଡୁଆରୁ—
দেধান 1. Broom corn; Sorghun Sacharatum,
द्वारा Andropogen saccharatus.
୨ । ଯବନାଳ; ଜୁଆରୁ—2. Millet.
[ଦ୍ର—ବୈଦ୍ୟକ ମତରେ ଏହା ଶୀତଳ, ମଧୁର କଷାୟ ରସ, ସ୍ନେହତ ବର୍ଣ୍ଣି, ଶ୍ଳେଷ୍ମା ଓ ପିତ୍ତନାଶକ, ଅବୃଷ୍ୟ, ରୁକ୍ଷ, ଲଘୁ ଓ କ୍ଲେଦକାରକ । ଭାରତର ଉତ୍ତର ପଶ୍ଚିମ ଅଞ୍ଚଳରେ ଏହାର ନଡ଼ାକୁ ଗୋରୁ ଖାଆନ୍ତି ।]

**ଦେନ୍**—ପ୍ରାଦେ. (ସମ୍ବଲପୁର) ବି—ଦେଣ୍ ( ଦେଖ )
Den Deṇ ( See )

**ଦେନ୍‌ଦାର୍**—ପ୍ରାଦେ (ସମ୍ବଲପୁର) ବି—ଦେଣାଦାର—
Dendār Debtor.

**ଦେନ୍‌ମେହ(ହେ)ର**—ବୈଦେ. ବି. (ଫା. ଦେନ୍‌ମୋହର୍)—ବିବାହ
Denmeha(he)r ସମୟରେ ମୁସଲମାନ ସମାଜରେ ସ୍ୱାମୀ ସ୍ତ୍ରୀଙ୍କୁ
দেন মোহর ଭବିଷ୍ୟତ୍ ଭରଣପୋଷଣ ନିମନ୍ତେ ଦେବା ଯୌତୁକ—
देनमोहर (Mahomedan Law) A present given at the time of marriage by the husband for her future maintenance in case the marriage be dissolved.

[ଦ୍ର—ବିବାହ ସମୟରେ ମୁସଲମାନ ସ୍ୱାମୀ ସ୍ତ୍ରୀଙ୍କୁ ଯେଉଁ ନିରୂପିତ ଧନ ବା ସମ୍ପତ୍ତି ଉତ୍ସର୍ଗ କରନ୍ତି ଓ ଭବିଷ୍ୟତରେ ବିବାହ ବନ୍ଧନ ଛିନ୍ନ ହେଲେ ଯଦ୍ଦ୍ୱାରା ସ୍ତ୍ରୀ ଅନନ୍ୟାପେକ୍ଷିଣୀ ହୋଇ ନିଜର ଭରଣପୋଷଣର ବ୍ୟୟ ନିର୍ବାହ କରି ପାରିବେ ତାକୁ ଦେନ୍‌ମେହେର ବୋଲାଯାଏ । ଏହା ୨ ପ୍ରକାର ଯଥା—
୧. ଯାହା ବିବାହ ସମୟରେ ସ୍ତ୍ରୀଙ୍କୁ ଅର୍ପଣ କରାଯାଏ ଓ ୨. ଯାହା ବିବାହବନ୍ଧନ ଛେଦନ ସମୟରେ ସ୍ତ୍ରୀଙ୍କୁ ତତ୍କ୍ଷଣାତ୍ ଦେବାପାଇଁ ଉତ୍ସର୍ଗ ବା ଅଙ୍ଗୀକାର କରନ୍ତି ।]

**ଦେନ୍‌ଲେନ୍**—ପ୍ରାଦେ. (ସମ୍ବଲପୁର) ବି.—ଦେଣନେଣ (ଦେଖ)
Denlen Deṇaneṇa (See)
(ଦେନାଲେନା—ଅନ୍ୟରୂପ)

**ଦେନେୱାଲା**—ପ୍ରାଦେ (ସମ୍ବଲପୁର) ବିଣ. ପୁଂ (ଭୁଲ. ହି. ଦେନେୱାଲା)
Denewālā ଦାତା; ଅକୃପଣ—Liberal-handed.

**ଦେପଦ**—ଦେ. ବି ('ଦିଅ' ଏହି ପଦ)—ଦାନ କରିବା ନିମନ୍ତେ ପରକୁ
Depada ଉପଦେଶ—Request made to another person to give charity.

ଦେପା—ପ୍ରାଦେ ( ପୁରୀ ) ବ ( ସ. ଦେବୀପାଦହର ) —ଭୁବନେଶ୍ୱରର ଦେବୀପାଦହର ପୁଷ୍କରିଣୀର ସଂକ୍ଷିପ୍ତ ନାମ—Name by which the Debīpādaharā tank is called locally at Bhubaneśwara
Depā

ଦେପୂଜା—ପ୍ରାଦେ ( ସମ୍ବଲପୁର ) ବ—ଗ୍ରାମଦେବୀଙ୍କର ଯେଉଁ ବାର୍ଷିକ ମହୋତ୍ସବରେ ଲୋକେ ଯାଉଥିବା ଛୁଆ ବା ବୋଦା-ମାନ ବଳି ଦଅନ୍ତି—The annual festival held before a village Goddess in which victims are offered.
Depūjā
(ଦେମୂଲ୍‌ପୂଜା—ଅନ୍ୟରୂପ)

[ ଦ୍ର—ଏହି ଉତ୍ସବକୁ ଦେମୂଲ୍ ପୂଜା ବା ପୁଜେଇ କହନ୍ତି । ]

ଦେବ—ସ. ବି. ପୁଂ (ଦିବ୍ ଧାତୁ=କ୍ରୀଡ଼ାକରିବା + କର୍ତ୍ତ. ଅ; ଯେ ସର୍ବଦା କ୍ରୀଡ଼ା ବା ବିଚରଣ କରନ୍ତି; ତୁଳ. ଏହି ଅର୍ଥରେ ଫ୍ରେଞ୍ଚ—ଡେଇଓ; ସ୍ପାନିସ୍—ଡେଇଓସ୍, ଗ୍ରୀକ୍—ଡେଇଡାଡ୍; ଇଟାଲୀୟ—ଡେଇଓ; ଲାଟିନ୍—ଡେଇଟାସ୍; ଜର୍ମାନ୍—ଡେଇଡେଡ୍; ଲିଥୁଆନିଆନ୍—ଦେବସ୍; ଇଂରାଜୀ—ଡେଇଟୀ; ଫା—ଦାବର୍=ଈଶ୍ୱର; କ୍ଷୀନେଜ୍)—
Deba
(ଦେବୀ—ସ୍ତ୍ରୀ)

୧ । ଈଶ୍ୱର—1. God.

୨ । ଦେବତା; ସ୍ୱର୍ଗବାସୀ—
2. Deity; Heavenly Being; Divinity.

[ ଦ୍ର—ଦେବତା ଭଳେ କୋଟି ଦେଖ । ]

୩ । ବ୍ରାହ୍ମଣ—3. A Brāhmaṇa.

୪ । ଦେବଶର୍ମା; ବ୍ରାହ୍ମଣଙ୍କର ଉପାଧି (ଏ ଉପାଧି ସାଧାରଣତଃ ବ୍ରାହ୍ମଣଙ୍କ ନାମ ପରେ ଯୁକ୍ତ ହୁଏ, ଯଥା—ନୀଳମଣି ଦେବ)—4. A title of Brāhmaṇas.

୫ । ରାଜା—5 A king.

୬ । ଦେଓ; ରାଜାଙ୍କ ଉପାଧି—
6. Title of kings.

୭ । ପ୍ରଭୁ; ସ୍ୱାମୀ—7. Lord; master.

୮ । (ଭକ୍ତି ଓ ସମ୍ମାନସୂଚକ) ଦେବତାଙ୍କ ପରି ପୂଜ୍ୟ ବ୍ୟକ୍ତି; ଗୁରୁଜନ—8. One's elder; a revered man (e. g. one's preceptor)
(ଯଥା—ଗୁରୁଦେବ; ପିତୃଦେବ ।)

୯ । ଦୀପ୍ତି—9. Brightness

୧୦ । ପାରଦ; ପାରା—10. Mercury.

୧୧ । ଦେବର; ଦିଅର—
11 Husband's younger brother.

୧୨ । ପର୍ଜ୍ଜନ୍ୟ ଦେବ; ମେଘ—
12. The clouds deified.

ବିଣ—୧ । ପ୍ରଧାନ; ଶ୍ରେଷ୍ଠ—1. Chief; principal.

୨ । ପୂଜ୍ୟ—2. Revered.

୩ । ବିଜିଗୀଷୁ—3. Desirous of conquering.

୪ । ସ୍ୱାମୀ ବା ପ୍ରଭୁଙ୍କ ସ୍ଥାନ ଅଧିକାରକାରୀ—
4. Occupying the position of lord or master.

୧୩ । ପ୍ରଧାନ ବ୍ୟକ୍ତି; ଶ୍ରେଷ୍ଠ ବ୍ୟକ୍ତି ( ଏହି ଅର୍ଥରେ ଅନ୍ୟ ଶବ୍ଦ ସଙ୍ଗେ ପ୍ରଯୁକ୍ତ ହୁଏ । ଯଥା—ନରଦେବ )—
13. Principal; the head; chief person.

୧୪ । ( + କରଣ. ଅ )—ଇନ୍ଦ୍ରିୟ ( ପ୍ରକୃତିବାଦ ) —
14. Organ of sense.

୧୫ । ( + ଭାବ. ଅ )—କ୍ରୀଡ଼ା; ବିହାର—
15. Play; sport.

ଦେବ ଅଂଶୀ—ଦେ. ବିଣ. (ପୁଂ. ଓ ସ୍ତ୍ରୀ) (ସ. ଦେବ + ଅଂଶ)—
Deba-aṁśī
দেবঅংশী
देवअंशी

୧ । ଦେବତାଙ୍କ କଳା ଗ୍ରହଣ କରି ଜାତ (ବ୍ୟକ୍ତି)—
1. (a person) Born with some divine elements.

୨ । ଦେବତାଙ୍କ ଅବତାର ଗ୍ରହଣକାରୀ (ବ୍ୟକ୍ତି)—
2 (a person) Assuming the incarnation of a Deity.

ଦେବଆଳ—ଦେ. ବି. (ସ. ଦେବ + ଆଲୟ)—
Deba-āla
দেউল
देवल

୧ । ଦେବାଳୟ; ଦେଉଳ—
1. The temple of a Deity.

ତୋ ଲାଗି ଶୋଭା ଦେବଆଳ
ସବଦା ଭୃଷ୍ଟ ବେ ନିର୍ମଳ । ଯଶୋବନ୍ତ. ବ୍ରହ୍ମଗୀତା ।

୨ । ଭଜନାଳୟ—2. Church.

ଦେବ ଉଠାଣ—ଦେ. ବି. (ସ. ଦେବ + ଉତ୍ଥାପନ; ଦେବୋତ୍ଥାନ)—
Deba uṭhāṇa
(ଦେ ଉଠାଣ—ଅନ୍ୟରୂପ)
देवठान

୧ । ଉତ୍ଥାପନ ଏକାଦଶୀ (ଦେଖ)
1. Uthāpana ekādaśī (See)

୨ । ଉତ୍ଥାପନ ଚତୁର୍ଦ୍ଦଶୀ (ଦେଖ)
2. Uthāpana chaturddaśī (See)

କାର୍ତ୍ତିକେ ଦେବ ଉଠାଣ । ଜ୍ୟୋତିଷ. ନାୟିକଙ୍କ ପାଞ୍ଜି ।

ଦେବ ଋଣ—ସ. ବି—ମନୁଷ୍ୟ ସଂସାରରେ ଜନ୍ମଗ୍ରହଣ କରିବା ଯୋଗୁଁ ତାହାର ଦେବତାଙ୍କ ପ୍ରତି କର୍ତ୍ତବ୍ୟ କର୍ମମାନ—Acts which a man should perform as due to the Gods.
Deba ṛuṇa

[ ଦ୍ର—ଯଜ୍ଞ ଓ ହୋମାଦି ସାଧନଦ୍ୱାରା ମନୁଷ୍ୟ ଦେବଋଣରୁ ମୁକ୍ତ ହୁଏ । ]

ଦେବକ—ସ. ବି. (ନାମ) (ଦିବ୍ ଧାତୁ + କର୍ତ୍ତ. ଅକ)—
Debaka

୧ । କୃଷ୍ଣଜନନୀ ଦେବକୀଙ୍କ ପିତା—
1. Name of the father of Debakī.

[ ଦ୍ର—ଏ ଯଦୁବଂଶୀ ଥିଲେ । ଏହାଙ୍କର ସାତ କନ୍ୟାଙ୍କୁ ଏ ବସୁଦେବଙ୍କୁ ବିବାହ ଦେଇଥିଲେ । ଉଗ୍ରସେନ ଏହାଙ୍କ ବଡ଼ ଭାଇ—ହି. ଶବ୍ଦସାଗର । ]

୨ । ଦେବ (ହି. ଶବ୍ଦସାଗର)—2. Deity.

୩ । ଯୁଧିଷ୍ଠିରଙ୍କର ଏକ ପୁତ୍ର (ହି. ଶବ୍ଦସାଗର)
3. Name of a son of Judhishṭhira.

ସ. ବିଣ—କ୍ରୀଡ଼କ; କ୍ରୀଡ଼ାକାରୀ—Playing; sporting.

ଦେବ କନ୍ୟା—ସ. ବି. ସ୍ତ୍ରୀ—୧ । ଅପ୍ସରା—1. The heavenly nymphs of the Hindu mythologies.
Deba kanyā
(ଦେବ କନ୍ୟକା—ଅନ୍ୟରୂପ)

୨ । ଦେବୀ (ହି. ଶବ୍ଦସାଗର) —
2. Goddess.

**ଦେବ କର୍ଦ୍ଦମ**—ସ. ବି. (ମ. ପ. ଲୋ; ଦେବଯୋଗ୍ୟ କର୍ଦ୍ଦମ ଭୁଲ୍ୟ
Deba karddama ପଦାର୍ଥ )—ଚନ୍ଦନ, ଅଗୁରୁ, କର୍ପୂର ଓ କୁଙ୍କୁମ ମିଶ୍ରିତ ସୁଗନ୍ଧ ଦ୍ରବ୍ୟ—A scent compounded of sandal, aloeswood, camphor etc.

**ଦେବକାଞ୍ଚନ**—ସ. ବି. (ମ. ପ. ଲୋ; ଦେବତାଙ୍କ ଯୋଗ୍ୟ କାଞ୍ଚନ)—
Debakānchana ଏକପ୍ରକାର କଞ୍ଚନ ଫୁଲ—A kind of flower.

**ଦେବ କାର୍ଯ୍ୟ**—ସ. ବି. (୬ଷ୍ଠୀ ତତ ; ଦେବ+କାର୍ଯ୍ୟ)—
Deba kārjya ୧ । ଦେବତାଙ୍କ କୃତ କର୍ମ—
(ଦେବ କର୍ମ—ଅନ୍ୟରୂପ) 1. An act of God.
୨ । (ମ. ପ. ଲୋ; ଦେବତାଙ୍କ ପ୍ରସାଦାର୍ଥ ଅନୁଷ୍ଠିତ କାର୍ଯ୍ୟ) ଜପ, ଯଜ୍ଞ, ପୂଜା, ଉପାସନା ଆଦି କର୍ମ—
2. Religious rites, the worship of the Deities.
୩ । (ମ. ପ. ଲୋ) ଦେବତାଙ୍କ ପ୍ରୀତି ନିମନ୍ତେ କୃତ କର୍ମ—
3. An act done to please the Gods.

**ଦେବ କାଷ୍ଠ**—ସ. ବି—ଏକପ୍ରକାର ଦେବଦାରୁ ଗଛ—
Deba kāshṭha A kind of fir tree.

**ଦେବକିରୀ**—ସ. ବି—ସଙ୍ଗୀତ ଦାମୋଦର ମତରେ ମେଘ ରାଗର ଏକ
Deba kirī ଭାର୍ଯ୍ୟା; ରାଗିଣୀବିଶେଷ—One of the secondary airs in Hindu music.

**ଦେବକୀ**- ସ. ବି. ସ୍ତ୍ରୀ. (ଦେବକ+ଅପତ୍ୟାର୍ଥେ ଅ+ସ୍ତ୍ରୀ+ଈ)—
Debakī ଶ୍ରୀକୃଷ୍ଣଙ୍କ ଜନନୀ—Mother of Śrīkrushṇa.
[ଦ୍ର—ଏ ବସୁଦେବଙ୍କ ସ୍ତ୍ରୀ ଓ କଂସର ଭଗ୍ନୀ ଥିଲେ । ଏହାଙ୍କ ଗର୍ଭଜାତ ଶିଶୁ ଦ୍ୱାରା ନିଜର ମୃତ୍ୟୁ ହେବ ବୋଲି କଂସ ନାରଦଙ୍କ ଠାରୁ ଅବଗତ ହୋଇ ଦେବକୀ ବସୁଦେବଙ୍କୁ କାରାଗାରରେ ବନ୍ଦୀ କରି ରଖି ଦେବକୀଙ୍କ ଗର୍ଭଜାତ ୭ଗୋଟି ଶିଶୁଙ୍କୁ ହତ୍ୟାକଲା । ଅଷ୍ଟମ ଗର୍ଭରେ ଶ୍ରୀକୃଷ୍ଣ ଜାତ ହେଲେ ଓ ଯୋଗମାୟା ବଳରେ ବସୁଦେବ ସେହି ରାତି ମଧ୍ୟରେ ତାଙ୍କୁ ଗୋପପୁରକୁ ନେଇ ନନ୍ଦଙ୍କ ଭାର୍ଯ୍ୟା ଯଶୋଦାଙ୍କ କୋଳରେ ରଖି ଯଶୋଦାଙ୍କ ଗର୍ଭଜାତା ବାଳିକାକୁ ଆଣି ଶ୍ରୀକୃଷ୍ଣଙ୍କ ଅବସ୍ଥା ଶଯ୍ୟାରେ ରଖିଲେ । ଉକ୍ତ ବାଳିକାକୁ କଂସ ଧରି କଚାଡ଼ିବା ବେଳେ ସେ (ଶିଶୁ ରୂପ ଧାରିଣୀ ଦୁର୍ଗା) କଂସ ହସ୍ତରୁ ଖସି ଯାଇ ଶୂନ୍ୟରେ ମିଶି ଗଲେ ଓ ଶ୍ରୀକୃଷ୍ଣ ଗୋପପୁରରେ ବଢ଼ିଲେ ।]
ଦେ. ବି. ସ୍ତ୍ରୀ—ଲୋକମାନଙ୍କ ଡାକିବା ନାମ—
Name given to females.

**ଦେବକୀ ନନ୍ଦନ**—ସ. ବି. (୬ଷ୍ଠୀ ତତ୍; ଦେବକୀ+ନନ୍ଦନ)—ଶ୍ରୀକୃଷ୍ଣ—
Debakī nandana Śrīkrushṇa.
(ଦେବକୀସୁତ, ଦେବକୀ ପୁତ୍ର—ଅନ୍ୟରୂପ)

**ଦେବକୀୟ**—ସ. ବିଣ.—(ଦେବ+ଈୟ; କ ଆଗମ; ଭୁଲ ସ୍ୱକୀୟ;
Debakīya ପରକୀୟ)—ଦେବ ସମ୍ବନ୍ଧୀୟ (ହି. ଶବ୍ଦସାଗର)—
Relating to the Deity.

**ଦେବ କୁଣ୍ଡ**—ସ. ବି. (ମ. ପ. ଲୋ; ଦେବକୃତ କୁଣ୍ଡ)—
Deba kuṇḍa ଦେବ ଖାତ (ଦେଖ)
Deba khāta (See)

**ଦେବକୁଳ**—ସ. ବି. (ଦେବ+କୁଳ=ଆଳୟ)—ଦେଉଳ—
Debakula 1. Temple.
[ଦ୍ର—ଦେବକୁଳର ଦ୍ୱାର ଅନ୍ୟ ଦେବାଳୟମାନଙ୍କ ଦ୍ୱାର ଅପେକ୍ଷା ସାନ—ହି ଶବ୍ଦସାଗର । ]
୨ । ବଂଶ—2. Family.
୩ । ସମୂହ—3. Collection,
୪ । ଦେବଗଣ—4. A number of Deities.

**ଦେବକୁଲ୍ୟା**—ସ. ବି.—୧ । ଦେବ ନଦୀ; ଗଙ୍ଗା—
Debakulyā 1, The Ganges.
୨ । ମରୀଚି ଋଷି ଓ ପୂର୍ଣ୍ଣିମାଙ୍କ କନ୍ୟା—
2. Name of a daughter of Sage Marichi.

**ଦେବକୁସୁମ**—ସ. ବି.—(ମ. ପ. ଲୋ; ଦେବ=ଦେବତା ଯୋଗ୍ୟ+
Deba kusuma କୁସୁମ=ଫୁଲ)—ଲବଙ୍ଗ—Cloves.

**ଦେବ କୂଟ**—ସ. ବି.—୧ । ଦେବମାୟା—1. Illusion created
Deba kūṭa by the Gods.
୨ । ମହାଭାରତୋକ୍ତ ବଶିଷ୍ଠାଶ୍ରମ ସମୀପସ୍ଥ ତୀର୍ଥବିଶେଷ—
2. Name of a holy place.
୩ । କୁବେରଙ୍କ ଆଠ ପୁତ୍ର ମଧ୍ୟରୁ ଏକ—
3. Name of one of the eight sons of Kubera.
[ଦ୍ର—ଏ ଶିବ ପୂଜା ପାଇଁ ନେଉଥିବା ପଦ୍ମଫୁଲକୁ ଶୁଙ୍ଘିବାରୁ ଶିବଙ୍କ ଅଭିଶାପରୁ ଏ କଂସର ଭାଇ ହୋଇ ଜନ୍ମ ଲଭିଲେ ଓ କୃଷ୍ଣଙ୍କ ଦ୍ୱାରା ନିହତ ହୋଇ ମୋକ୍ଷ ଲାଭ କଲେ ।]

**ଦେବ କେଶର**—ସ. ବି (ବହୁବ୍ରୀହି; ଦେବ=ଶ୍ରେଷ୍ଠ ଅଟେ କେଶର
Deba keśara ଯାହାର)—ସୁରପନ୍ନାଗ; ନାଗ କେଶର—
Mesua Ferra (flower).

**ଦେବ ଖାତ**—ସ. ବି.—( ତୃତୀୟା ତତ୍; ଦେବତାଙ୍କଦ୍ୱାରା ଖାତ=
Deba khāta ଖନିତ; ଯାହାକୁ ମନୁଷ୍ୟ ଖୋଳି ନ ଥାଏ)—
ଅକୃତ୍ରିମ ଜଳାଶୟ; ପ୍ରାକୃତିକ ପୁଷ୍କରଣୀ—
A lake; a natural reservoir of water.
ଦେବ ଖାତ ପଦ୍ମ ସରସୀ ଭରି ହଂସେ ଖେଳନ୍ତି । ଗୋଲକ. ଉଦ୍ଧବରେଖା ।

**ଦେବଗଡ଼**—ଦେ. ବି. (ନାମ)—ଓଡ଼ିଶାର ଗଡ଼ଜାତ ବାମଣ୍ଡା ରାଜ୍ୟର
Debagarda ରାଜଧାନୀ—The capital of Bamra State
(ଦେଓଗଡ଼—ଅନ୍ୟନାମ) in Orissa.
[ଦ୍ର—କାଳିଦାସଙ୍କ ମେଘଦୂତବର୍ଣ୍ଣିତ 'ରାମଗିରି'କୁ ପ୍ରତ୍ନତତ୍ତ୍ୱବିତ୍‌ମାନେ ଆଧୁନିକ ଦେବଗଡ଼ ନିକଟସ୍ଥ ପର୍ବତ ବୋଲି ସ୍ଥିର କରୁଅଛନ୍ତି । ]

**ଦେବଗଣ**—ସ. ବି. (୬ଷ୍ଠୀ ତତ୍; ଦେବ+ଗଣ)—୧ । ଦେବ ସମୂହ—
Debagaṇa 1. The Gods.
୨ । (ଜ୍ୟୋତିଷ) ଦେବ ପ୍ରକୃତିରେ ଜନ୍ମ ହୋଇଥିବା ବ୍ୟକ୍ତି—
2. (Astrology) A person born with the nature of the Gods.
୩ । ଦେବତାମାନଙ୍କ ବର୍ଗ—3. A group of Deities.
[ଦ୍ର—ଏ ଦେବତାମାନଙ୍କୁ ଗଣଦେବତା ବୋଲାଯାଏ । ଗଣଦେବତା ଚଳେ ନୋଟ୍ ଦେଖ ।]

୪ । (ଫଳିତ ଜ୍ୟୋତିଷ) ନକ୍ଷତ୍ରମାନଙ୍କର ସମୂହ, ଯହିଁର, ଅଶ୍ୱିନୀ, ରେବତୀ, ପୁଷ୍ୟା, ସ୍ୱାତୀ, ହସ୍ତା, ପୁନର୍ବସୁ ଅନୁରାଧା, ମୃଗଶିରା ଓ ଶ୍ରବଣା ଅନ୍ତର୍ଗତ ଅଟନ୍ତି (ହି. ଶ)-
4. (astrology) A group of constellations consisting of the Ist. 27th, 8th, 15th, 13th, 7th, 17th, 5th. and 22nd asterisms.

୫ । କୌଣସି ଦେବତାଙ୍କ ଅନୁଚର (ହି. ଶବ୍ଦସାଗର)
5. An attendant of a Deity.

ଦେବ ଗଣିକା—ସଂ. ବି.—ଅପ୍ସରା—The heavenly nymphs
Deba ganikā of the Hindu mythology.

ଦେବ ଗତି—ସଂ. ବି.—୧ । ମୃତ୍ୟୁ ପରେ ସ୍ୱର୍ଗ ଲାଭ—
Deba gati 1. The attainment of heaven after one's death.
୨ । ମୃତ୍ୟୁ ପରେ ଦେବଯୋନି ପ୍ରାପ୍ତି (ହି. ଶବ୍ଦସାଗର)
2. Birth amongst the Gods after death.

ଦେବ ଗର୍ଜନ—ସଂ. ବି.—ଘଡ଼ଘଡ଼ି—
Deba garjjana Peal of thunder.

ଦେବ ଗର୍ଭ - ସଂ. ବଣ.—ଯେଉଁ ମନୁଷ୍ୟ କୌଣସି ଦେବତାଙ୍କ ଔରସରୁ
Deba garbha ଉତ୍ପନ୍ନ ହୁଅନ୍ତି (ଯଥା—ସୂର୍ଯ୍ୟଙ୍କ ଔରସରୁ ଉତ୍ପନ୍ନ କର୍ଣ୍ଣ)—(a person) Said to be begotton by a Deity.

ଦେବଗାନ୍ଧାର—ସଂ. ବି—ଭୈରବ ରାଗର ପୁତ୍ର; ସମ୍ପୂର୍ଣ୍ଣ ଜାତିର ରାଗ-
Debagāndhāra ବିଶେଷ—Name of a Hindu musical air.
[ ଦ୍ର—ଏଥିରେ ଋଷଭ, ଧୈବତ ଓ କୋମଳ ସ୍ୱର ଲାଗେ; ଏଥିର ସ୍ୱରଗ୍ରାମ ଗ ମ ପ ଧ ନି ସା । ]

ଦେବଗାନ୍ଧାରୀ—ସଂ. ବି—ଶିଶିର ଋତୁର ଦିନ ୨ୟ ପ୍ରହରଠାରୁ ଅର୍ଦ୍ଧରାତ୍ର
Debagāndhārī ପର୍ଯ୍ୟନ୍ତ ଗେୟ ଶ୍ରୀରାଗର ଭାର୍ଯ୍ୟା ରାଗିଣୀବିଶେଷ—Name of a secondary tune in Hindu music

ଦେବ ଗାୟକ—ସଂ. ବି—ଗନ୍ଧର୍ବ ( ଦେଖ )
Deba gāyaka Gandharba ( See )
( ଦେବଗାୟନ—ଅନ୍ୟରୂପ )

ଦେବ ଗିରି—ଦେ. ବି. ( ଷଷ୍ଠୀ ତତ୍; ଏହି ପର୍ବତରେ ବହୁ ଦେବମୂର୍ତ୍ତିଙ୍କର
Deba giri ସମାବେଶ ହେତୁ ଏହି ନାମ )—୧ । ସାନ୍ତାଳ ପ୍ରଗନା ଅନ୍ତର୍ଗତ ଦେଓଘର; ବାବା ବୈଦ୍ୟନାଥଙ୍କ ଅଧିଷ୍ଠିତ ପାହାଡ଼-
1. Deoghar; a town in the Santal Pergannahs, the seat of BābāBaidyanātha.
୨ । ମଧ୍ୟଭାରତବର୍ଷରେ ଅବସ୍ଥିତ ପର୍ବତ; କାଳିଦାସଙ୍କ ମେଘଦୂତ ବର୍ଣ୍ଣିତ ରାମଗିରି—
2. Name of a range of hills in Central India.
ହର ଶୈଳ କଥା ଦେବଗିରି ତ୍ରୟ ବଢାର ଛଳ—ପ୍ରଧାନାଥ. ଭଣ ।
[ ଦ୍ର—ଏହା କାର୍ତ୍ତିକେୟଙ୍କର ପ୍ରିୟ ବାସଭୂମି ବୋଲି ସ୍କନ୍ଦ ପୁରାଣରେ ଉଲ୍ଲିଖିତ ଅଛି । ]

୩ । ଦାକ୍ଷିଣାତ୍ୟର ଏଲୋରା ନାମକ ପାହାଡ଼—
3. The Ellorā hills in South India.
୪ । ବାଲେଶ୍ୱରର ମଙ୍ଗଳପୁର ନିକଟବର୍ତ୍ତୀ ପାହାଡ଼—
4. Name of a hill in the district of Balasore.
୫ । ଦାକ୍ଷିଣାତ୍ୟ ଦେଶରେ ନିଜାମ ରାଜ୍ୟର ଅନ୍ତର୍ଗତ ପ୍ରାଚୀନ ନଗର ଓ ଦୁର୍ଗ (ବର୍ତ୍ତମାନ ଏହାକୁ ଦୌଲତାବାଦ କହନ୍ତି । ଏହା ଯାଦବ ରାଜାମାନଙ୍କର ବହୁକାଳ ପର୍ଯ୍ୟନ୍ତ ରାଜଧାନୀ ଥିଲା—ପ୍ରତ୍ନତତ୍ତ୍ୱବାଦ )—
5. Name of an ancient town and fort in Southern India; them odern Daulatābād.
୬ । ଗୁଜୁରାଟର ରୈବତକ ପର୍ବତ; ଗିର୍ଣ୍ଣାର ପାହାଡ଼—( ହି. ଶବ୍ଦସାଗର )—
6 The Girnar hills in the Gujarāta.

ଦେବଗୁଡ଼ି—ପ୍ରାଦେ. ( ସମ୍ବଲପୁର ) ବି—ଦେବାଳୟ; ଦେଉଳ—
Debagurdi Temple of a Deity.

ଦେବ ଗୁରୁ—ସ. ବି. ( ୬ଷ୍ଠୀ ତତ୍; ଦେବ + ଗୁରୁ )—
Deba guru ୧ । ବୃହସ୍ପତି, ସୁରଗୁରୁ—1. Bṛuhaspati; the spiritual precepter of the Gods.
୨ । (ଦେବତାମାନଙ୍କ ପିତା) କଶ୍ୟପଋଷି (ହି. ଶବ୍ଦସାଗର) —
2 The sage Kaśyapa

ଦେବଗୃହ—ସ. ବି. ( ୬ଷ୍ଠୀ ତତ୍; ଦେବ + ଗୃହ )—୧ । ଦେବାଳୟ—
Debagṛuha 1. Temple.
୨ । ବାବା ବୈଦ୍ୟନାଥ ଧାମ; ଦେଓଘର—
2. Bābā Baidyanātha; Deoghara.
୩ । ସୂର୍ଯ୍ୟମଣ୍ଡଳ ଓ ଚନ୍ଦ୍ରମଣ୍ଡଳ ପ୍ରଭୃତି ( ପ୍ରତ୍ନତତ୍ତ୍ୱବାଦ )—
3. The solar and the lunar orbs.

ଦେବ ଚର୍ଯ୍ୟା—ସଂ. ବି—୧ । ଦେବ ପୂଜା ( ଦେଖ )
Deba charjyā Deba pūjā ( See )
୨ । ଦେବ ଚରିତ—2. The story of a God.

ଦେବ ଚିକିତ୍ସକ—ସ. ବି. ( ୬ଷ୍ଠୀ ତତ୍; ଦେବ + ଚିକିତ୍ସକ )—
Deba chikitsaka ୧ । ଅଶ୍ୱିନୀକୁମାର ଦ୍ୱୟ—
1. The twin sons of Aświnī said to be the physicians of the Gods.
୨ । ଧନ୍ୱନ୍ତରି ( ଦେଖ )—
2. Dhanwantarī ( See )

ଦେବ ଜଗ୍ଧ—ସ. ବି—କାତୃଣ ( ଦେଖ )
Deba jagdha Kātṛuṇa ( See )

ଦେବ ଜନ—ସ. ବି—ଦେବତୁଲ୍ୟ ବ୍ୟକ୍ତି—
Deba jana 1. A man of saintly nature.
୨ । ରାଜା—2. King.
୩ । ଗନ୍ଧର୍ବ—3. A class of divine charisters according to Hindu mythology.

ଦେବଟ—( ଦିବ୍ ଧାତୁ. କ୍ରୀଡ଼ା କରିବା + କର୍ତ୍ତୃ. ଅଟ )—ଶିଳ୍ପୀ;
Debaṭa ଶିଳ୍ପକର—Artist.

**ଦେବ ତରୁ**—ସଂ. ବି—୧ । ପାରିଜାତ ବୃକ୍ଷ—
Deba taru 1. The Pārijāta tree.
୨ । ସ୍ୱର୍ଗସ୍ଥ ବୃକ୍ଷ—2. A tree of the heaven
୩ । ଇନ୍ଦ୍ରଙ୍କ ଉଦ୍ୟାନରେ ଥିବା ୫ଗୋଟି ସ୍ୱର୍ଗୀୟ ବୃକ୍ଷ—
3. Five mythological trees said to belong to the garden of Indra in Heaven.
( ପଞ୍ଚଦେବ ତରୁ; ଯଥା—ମନ୍ଦାର, ପାରିଜାତ, ସନ୍ତାନ, କଳ୍ପବୃକ୍ଷ ଓ ହରିଚନ୍ଦନ । )
୪ । ଅଶ୍ୱତ୍ଥଗଛ—4. The holy fig tree.

**ଦେବ ତର୍ପଣ**—ସଂ. ବି. ( ୬ଷ୍ଠୀ ତତ୍; ଦେବ+ତର୍ପଣ )—ବ୍ରହ୍ମା, ବିଷ୍ଣୁ,
Deba tarapana ମହେଶ୍ୱର ଆଦିଙ୍କ ନାମ ଗ୍ରହଣପୂର୍ବକ ସେମାନଙ୍କ ଉଦ୍ଦେଶ୍ୟରେ ଜଳାଞ୍ଜଳି ଦାନ—Oblations of water offered to the Deities

**ଦେବତା**—ସଂ. ବି. ( ଦେବ+ସ୍ୱାର୍ଥେ ତା; କିମ୍ବା ଦେବ=କ୍ରୀଡ଼ା+
Debatā ତନ୍ ଧାତୁ=ବିସ୍ତାର କରିବା+କର୍ତ୍ତୃ. ଅ+ସ୍ତ୍ରୀ. ଆ; ଯେଉଁମାନେ କ୍ରୀଡ଼ା ବିସ୍ତାର କରନ୍ତି ବା ବିହାର କରନ୍ତି; ତୁଳ. ଇଂ. ଡେଇଟୀ; ଫ୍ରେଂ. ଡେଇଟେ; ସ୍ପେ. ଡେଇଡାଡ୍; ଲା. ଡେଇଟାସ୍; ଜର୍ମାନ୍. ଡେଇଟେଟ୍; ଲିଥୁନିୟ. ଡେବସ—କ୍ଷୀନେନ୍ଦ୍ର)—ଠାକୁର; ଦେବ; ସୁର—Deity.
[ଦ୍ର—ଋଗ୍ବେଦରେ ଇନ୍ଦ୍ର, ଅଗ୍ନି, ବରୁଣ, ଅଦିତି, ବାୟୁ, ପ୍ରଜାପତି, ଜଳ, ବିଷ୍ଣୁ, ସବିତା ପ୍ରଭୃତି ୩୩ ଦେବତାଙ୍କର ନାମ ଅଛି । ଅନ୍ୟ ବେଦରେ ମଧ୍ୟ ସେମାନଙ୍କ ନାମ ଅଛି । ଅଥର୍ବ ବେଦରେ ଯମ, ମୃତ୍ୟୁ, କାଳ ପ୍ରଭୃତି ଅନ୍ୟ କେତେକ ଦେବତାଙ୍କର ନାମ ଅଛି । ବୈଦିକ ଦେବତାମାନେ ପ୍ରଧାନତଃ ଦୁଇ ଶ୍ରେଣୀରେ ବିଭକ୍ତ ଯଥା—୧-ସ୍ତୋତ୍ରାଙ୍ଗ ଦେବତା, ଅର୍ଥାତ୍ ଯେଉଁମାନଙ୍କ ମହିମା ବର୍ଣ୍ଣନା କରି ସ୍ତୋତ୍ର ପାଠ କରାଯାଏ; ଏବଂ ୨-ଯାଗାଙ୍ଗ ଦେବତା ଅର୍ଥାତ୍ ଯେଉଁମାନଙ୍କ ଉଦ୍ଦେଶ୍ୟରେ ଦ୍ରବ୍ୟାଦି ଆହୁତି ପ୍ରଦାନ କରାଯାଏ । ପୁରାଣରେ ଦେବତାମାନଙ୍କ ସଂଖ୍ୟା ୩୩ କୋଟି ବୋଲି ପ୍ରସିଦ୍ଧ । ଏମାନେ ସ୍ୱର୍ଗରେ ଥାଆନ୍ତି । ଇନ୍ଦ୍ର ଦେବତାମାନଙ୍କ ମଧ୍ୟରେ ରାଜା]
ଦେ. ବି—ପନିପରିବା ବ୍ରାହ୍ମଣମାନଙ୍କ ବଂଶୋପାଧି—
family title of vegetable-growing Brāhmanas.
[ଦ୍ର—ଏହି ଉପାଧିବିଶିଷ୍ଟ କେତେକ ବ୍ରାହ୍ମଣ ପରିବାର କଟକର ଦକ୍ଷିଣ ପୂର୍ବ ଝିଙ୍କିରିଆ ଗ୍ରାମରେ ଅଛନ୍ତି । ଏମାନଙ୍କୁ ଲକ୍ଷ୍ୟ କରି ସେ ଅଞ୍ଚଳରେ ଗୋଟିଏ ଢଗ ପ୍ରଚଳିତ ଅଛି—"ଘଣ୍ଟ ନାହିଁ ମାଦଳ ନାହିଁ ଝିଙ୍କିରିଆ ଦେବତା" । ଆହୁରି ମଧ୍ୟ ପ୍ରବାଦ ଅଛି ଯେ ଏମାନଙ୍କର ପୂର୍ବ ବଂଶଧରମାନେ ଆଗେ ଘର ଛପର କରୁଥିଲେ । ସେମାନେ 'ଦେ—ବରା' ବୋଲି କହୁଥିବାରୁ ସେମାନଙ୍କର ଉପାଧି ଦେବତା ହୋଇ ଯାଇଅଛି । ]

**ଦେବତାଡ଼**—ସଂ. ବି—୧ । ସ୍ୱର୍ଭାନୁ ଗ୍ରହ—
Debatārda 1. The ascending node.
ଦେବତାଙ୍କୁ ଦ୍ୱିଜେ, ଉଦିତ ହେବ ଲଙ୍କ ଦୁର୍ଗ ଉର୍ଦ୍ଧ୍ୱେ ।
ଉ. ବୋଷ୍ଟରୁଦ୍ରାବସୁବନ୍ଧ ।
୨ । ବାର ବରଷିଆ ଗଛ ( ହି. ଶବ୍ଦସାଗର )—
2. Agave.
୩ । ମେଘ (ପ୍ରକୃତିବାଦ)—3. Cloud.
୪ । ଦେବଦାଲୀ ( ଦେଖ )—4. Debadāli ( See )
୫ । ଅଗ୍ନି (ପ୍ରକୃତିବାଦ)—5. Fire.

**ଦେବତା ଦୃଷ୍ଟି**—ସଂ. ବି—ଅପଲକ ଦୃଷ୍ଟି—
Debatā drushti Winkless eye.
ଦେବତା ଦୃଷ୍ଟି ପରି ତାଙ୍କ ଦୃଷ୍ଟି କଲା । କୃଷ୍ଣସିଂହ. ମହାଭାରତ. ବନ ।

**ଦେବତା ବୃକ୍ଷ**—ଦେ. ବି. ( ସଂ. ଦେବଦାଲୀ )—
Debatā bruksha ଦେବଦାଲୀ (ଦେଖ) (ହରେକୃଷ୍ଣ ଦ୍ରବ୍ୟଗୁଣ)
Debadāli ( See )

**ଦେବତାମଣି**—ସଂ. ବି. (ବୈଦ୍ୟକ)—ମହାମେଦା ( ଦେଖ )
Debatāmani Mahāmedā ( See )

**ଦେବତୀ**—ସଂ. ବି. ସ୍ତ୍ରୀ. ( ସଂ. ଦେବତା )—ଦେବୀ—
Debati Goddess.
ଏତେ ବୋଲି ମନେ ଭୟ ହୋଇଲେ ତାହାର
ଦେବତୀ ବସିଲେ ହୃତ୍‌ମନ୍ତ୍ର କରିବ । ସାରଳା, ମହାଭାରତ, ପୂର୍ବ ଖଣ୍ଡ ।

**ଦେବ ତୀର୍ଥ**—ସଂ. ବି—୧ । ଦେବପୂଜାପାଇଁ ଉପଯୁକ୍ତ ସମୟ (ହି ଶ)—
Deba tirtha 1. Proper time for worshipping a Deity.
୨ । ବୃଦ୍ଧାଙ୍ଗୁଳିକୁ ଛାଡ଼ି ଅନ୍ୟ ଅଙ୍ଗୁଳିମାନଙ୍କ ଅଗ୍ରଭାଗ—
2. The ends of all the fingers except the thumb.
[ ଦ୍ର—ଏହି ବାଟେ ସଙ୍କଳ୍ପ ବା ଦେବତର୍ପଣ ସମୟରେ ହାତରୁ ଜଳ ତଳକୁ ଢଳାଯାଏ । ]

**ଦେବତ୍ତ**—ସଂ. ବି—ଦେବଦତ୍ତ ( ହି. ଶବ୍ଦସାଗର ) ( ଦେଖ )
Debatta Debadatta ( See )

**ଦେବତ୍ତର** (ଇତ୍ୟାଦି)—ଦେ.ବିଣ. ଦେବୋତ୍ତର ଇତ୍ୟାଦି ( ଦେଖ )
Debattara (etc) Debottara etc. ( See )

**ଦେବତ୍ୱ**—ସଂ. ବି. ( ଦେବ+ଭାବେ. ତ୍ୱ )—
Debatwa ୧ । ଦେବଭାବ—1. Divine nature
୨ । ଦେବତାଙ୍କ ଐଶ୍ୱର୍ଯ୍ୟ—2. Divinity.

**ଦେବତ୍ର**—ସଂ. ବିଣ (ଦେବ+ତ୍ରୈ ଧାତୁ=ପାଳନ କରିବା+କର୍ତ୍ତୃ. ଅ)—
Debatra ଖଞ୍ଜା; ଦେବତାଙ୍କ ସେବା ନିମନ୍ତେ ପ୍ରଦତ୍ତ (ଭୂମି ପ୍ରଭୃତି)
Dedicated to the service of Gods.

**ଦେବତ୍ରୟୀ**—ସଂ. ବି ( ଦେବ+ତ୍ରୟୀ )—ତିନି ଦେବତାଙ୍କ ସମାହାର
Debatrayi ( ବ୍ରହ୍ମା, ବିଷ୍ଣୁ, ଓ ଶିବ )—The Hindu Trinity.

**ଦେବଦତ୍ତ**—ସଂ. ବିଣ (ଦେବ+ଦତ୍ତ)—୧ । (୩ୟା ତତ୍) ଦେବତାଙ୍କ
Debadatta ଅନୁଗ୍ରହରୁ ପ୍ରାପ୍ତ—1. Given by the Gods.
୨ । ( ୪ର୍ଥୀ ତତ୍ )—ଦେବତାଙ୍କ ଉଦ୍ଦେଶ୍ୟରେ ପ୍ରଦତ୍ତ—
2. Given or dedicated to the Gods.
୩ । ଅର୍ଜୁନଙ୍କ ଶଙ୍ଖ—
3. Name of Arjuna's conch.

ଦେବତାମାନେ ମୋତେ ଦେବାରୁ ଶଙ୍ଖ
ଦେବଦତ୍ତ ନାମ ଯାହାର କରଗିଥ—କୃଷ୍ଣଙ୍କ ମହାଭାରତ. ବନ ।

୪ । ଶରୀରସ୍ଥ ବାୟୁବିଶେଷ (ଏଥିପୋଗୁଁ ମନୁଷ୍ୟ ହାଇ ମାରେ)
4. One of the vital airs of the body

୫ । ଅଷ୍ଟକୁଳ ନାଗମାନଙ୍କ ମଧ୍ୟରୁ ଏକ—
5 Name of one of the eight mythological serpents of the quarters of the globe

୬ । ବୁଦ୍ଧଦେବଙ୍କ ଖୁଡ଼ୁତାପୁଅ ଭାଇ ରାଜକୁମାର—
6. Name of a prince, cousin of the Buddha.

[ ଦ୍ର—ଏ ବାଲ୍ୟକାଳରେ ବୁଦ୍ଧଙ୍କ ସଙ୍ଗେ ଲାଳିତପାଳିତ ହୋଇଥିଲେ । କିନ୍ତୁ ପରେ ତାଙ୍କ ପ୍ରତି ବିଶେଷ ଶତ୍ରୁତା କରି ଅକୃତକାର୍ଯ୍ୟ ହୋଇଥିଲେ—ହି. ଶବ୍ଦସାଗର । ]

**ଦେବ ଦର୍ଶନ**—ସଂ. ବି. (୬ଷ୍ଠୀ ତତ୍; ଦେବ + ଦର୍ଶନ)—
Deba darśana ୧ । ଦେବ ମୂର୍ତ୍ତିକୁ ଦେଖିବା—
1. A visit to the image of a Deity.
୨ । (ଦେବ + ଦୃଶ୍ ଧାତୁ + କର୍ତ୍ତୃ. ଅନ)—ଦେବ ଦର୍ଶକ—
2. One who goes to visit a Deity.

**ଦେବଦଳନ**—ଦେ. ବି. (ନାମ)—୧ । ଇନ୍ଦ୍ରଜିତର ରଥ—
Debadaḷana 1 Name of Indrajita's car.
କପଟଙ୍କେ ସେ ବମାନ ମାନବଗଣେ ଦେବଦଳନ ଖ୍ୟାତ ସେ ।
ଭଞ୍ଜ ବୈଦେହୀଶବଳ ସ ।

[ ଦ୍ର—ଇନ୍ଦ୍ରଜିତ ବର ପ୍ରଭାବରୁ ନିକୁମ୍ଭିଳା ବଟ ତଳେ ବସି ତପସ୍ୟା କରି ସାରିଲା ପରେ ଯଜ୍ଞକୁଣ୍ଡରୁ ଏହି ରଥ ବାହାରି ଥିଲା । ଏହି ରଥରେ ଚଢ଼ି ଯୁଦ୍ଧ କରି ସେ ସମସ୍ତଙ୍କୁ ପରାଜୟ କରି ପାରୁଥିଲା । ]

୨ । ଦେବୀରଥ (ଦେଖ)—2. Debīratha (See)

**ଦେବଦାଣୀ**—ସଂ. ବି—ବଡ଼ ତୋରଡ଼ା (ହି. ଶବ୍ଦସାଗର)—
Debadāṇi A big variety of Luffa.

**ଦେବଦାରୁ**—ସଂ. ବି (ମ. ପ ଲୋ. କର୍ମଧା, ଦେବପ୍ରିୟ ଦାରୁ)—
Debadāru ସ୍ୱନାମ ପ୍ରସିଦ୍ଧ ଦୀର୍ଘ ବୃକ୍ଷ—The Deodar; the Cedar; Cedrus Deodara; Pinus Deodara; Gnateria Longifolia; the Mast tree; Pinus Longifolia (Haines); Pinus Deodara or Cedrus Lebani, Polyanthea Longifolia.

ସଂ. ଦାରୁଭଦ୍ର, ଦାରୁ, ଦେବକାଷ୍ଠ, ଦାରୁକ, ସ୍ନିଗ୍ଧଦାରୁ, ସୁରାହ୍ୱ, ଇନ୍ଦ୍ରଦାରୁ, ମସ୍ତଦାରୁ, ପୀତଦାରୁ, ଦ୍ରୁକିଲିମ, କିଲିମ, ଶକ୍ରପାଦପ, ସୁରଭୂରୁହ, ସରଳ, ସୁରଦାରୁ, ଅମରଦାରୁ, ଭୂତହାରୀ, ଶାମ୍ଭବ, ପୂତିକାଷ୍ଠ
দেবদারু; দেবদা
**देवदारु, देवदारी, देवदार, दियार**
ମ ଦେଓଦାର, ଦେବଦାରୁ
ଗୁ. ଦେବଦାର
ତେ. ଦେବ୍‌ଦାରୁ ଚେକ୍କା, ଅଶୋକ, ଅଶୋକମ
(Kirtikar)
ଫା. ଦେବଦାର
ଅ ଭୁଲ୍‌ଜାନ୍

[ ଦ୍ର—ଏହା ଭାରତର ସର୍ବତ୍ର ଜନ୍ମେ । ଗଛ ଅତି ସୁନ୍ଦର ଓ ସିଧା, ଉଚ୍ଚରେ ୧୫୦ ହାତ ପର୍ଯ୍ୟନ୍ତ ବଢ଼େ । ପତ୍ର ସରୁ ଓ ଲମ୍ବ, ଡାଳଗୁଡ଼ିକ ମଧ୍ୟ ଲମ୍ବା । ବକଳ ଖୁବ୍ ମୋଟା । କାଠ ଈଷତ୍ ହଳଦିଆ । ପତ୍ରଗୁଡ଼ିକ ୬ ଇଞ୍ଚରୁ ୯ ଇଞ୍ଚ ପର୍ଯ୍ୟନ୍ତ ଲମ୍ବ ହୁଏ । ଫୁଲ ନେଳ ଓ ହଳଦିଆ ମିଶା ଓ ଫଳ ନେଳିଆ, ପାଚିଲେ କଳା ଦେଖା ଯାଏ । ଏହା ଦୁଇ ପ୍ରକାର, ଯଥା—ସ୍ନିଗ୍ଧ ଦେବଦାରୁ ଓ କାଷ୍ଠ ଦେବଦାରୁ । ବୈଦ୍ୟଶାସ୍ତ୍ର ମତରେ ଏହା ଲଘୁ, ସ୍ନିଗ୍ଧ, ତିକ୍ତ, ଉଷ୍ଣବୀର୍ଯ୍ୟ ଓ କଟୁବିପାକ । ଏହା ବିବନ୍ଧ, ଆଧ୍ମାନ, ଶୋଥ, ଆମଦୋଷ, ତନ୍ଦ୍ରା, ହିକ୍କା, ଜ୍ୱର, ରକ୍ତଦୋଷ, ପ୍ରମେହ, ପୀନସ, ଶ୍ଳେଷ୍ମା, କାଶ, କଣ୍ଡୂ ଓ ବାତନାଶକ । ଏ ବୃକ୍ଷ ସାଧାରଣତଃ ଛାୟାପ୍ରଦ ହେବାରୁ ରାସ୍ତାକଡ଼ରେ ଲଗାଯାଏ । ପତ୍ରରେ ଘର ଆଦି ସଜ୍ଜିତ କରାଯାଏ । ମଞ୍ଜି ଗୋଲମରିଚ ସହିତ ଘୋରି ବଥ ଉଠୁଥିବା ସମୟରେ ଲଗାଇଲେ ତାହା ବସିଯାଏ । ପୃଥିବୀର ଭିନ୍ନ ଭିନ୍ନ ଅଞ୍ଚଳରେ ଅନେକ ଜାତିର ଦେବଦାରୁ ଗଛ ଜନ୍ମେ । ପୁରୁଣା ଗଛର କାଠ କୋଠା ଆଦିରେ ଲାଗେ ଓ ୪୦୦, ୫୦୦ ବର୍ଷ ପର୍ଯ୍ୟନ୍ତ ସ୍ଥାୟୀ ହୁଏ । ]

**ଦେବଦାଲୀ**—ସଂ. ବି—ତରଡ଼ା ବା ଝଙ୍ଗିଜାତୀୟ ଏକପ୍ରକାର ଲତାଫଳ—
Debadāḷi Bristly Luffa; Luffa Echinate; Andropogen Serratus.

ସଂ. ଦେବତାଡ଼, ବେଣୀ, କଣ୍ଟଫଳା, କଦମ୍ବା, କର୍କଟୀ, ଗରାଗରୀ, ଘୋଷା, ବୃନ୍ତକୋଶ, ଜୀମୂତ, ଘୋରା, କଟୁଫଳା, ବିଷହା, ବିଷଘ୍ନୀ, ଆଖୁବିଷହା, ସହା
ঘোষা
**बिदाली, सोनैया, घघरबेल**
ଗୁ. କୁକଡ଼ବେଲ୍ଲ
ମ ଦେବଦାଲା, ଦେବଡଙ୍ଗର ଫଳ
ତେ. ଡାଡ଼ୁରଙ୍ଗଡ଼ି ଫା. ବନ୍ଦାଲ

[ ଦ୍ର—ଏହା ତିକ୍ତରସ, ବମନକାରକ, ତୀକ୍ଷ୍ଣ ଏବଂ କଫ, ଶୋଥ, ବାତ, ଅର୍ଶ, ପାଣ୍ଡୁ, ହିକ୍କା, କୃମି, ଜ୍ୱର, ଗୁଳ୍ମ, ଶୂଳ, ଶ୍ଳେଷ୍ମାନାଶକ । ଅନ୍ୟ ପ୍ରକାର ଦେବଦାଲୀ ପୀତବର୍ଣ୍ଣ । ଏହାର ସଂ. ନାମ—ଖରସ୍ପର୍ଶା, ବିଷଘ୍ନୀ, ଗରନାଶିନୀ । ]

**ଦେବ ଦାସୀ**—ସଂ ବି (୬ଷ୍ଠୀ ତତ୍, ଦେବ + ଦାସୀ)—୧ । ଠାକୁରଙ୍କ
Deba dāsi ଆଗରେ ନୃତ୍ୟାଦି କରିବା ବା ସେବାକାରିଣୀ ନର୍ତ୍ତକୀ; ମାହାରୀ—2. Dancing girls performing dance and music in temples.
୨ । (ଦେବ = ଇନ୍ଦ୍ରିୟ + ଦାସ୍ ଧାତୁ = ବଧ କରିବା + କର୍ତ୍ତୃ. ଅ + ସ୍ତ୍ରୀ. ଈ)—ବେଶ୍ୟା—2. Prostitute.

[ ଦ୍ର—ଜଗନ୍ନାଥଙ୍କ ମନ୍ଦିର ଓ ଦାକ୍ଷିଣାତ୍ୟ ମନ୍ଦିରମାନଙ୍କରେ ବୃତ୍ତିଭୋଗକାରିଣୀ ଦେବଦାସୀମାନେ ଦେବତାଙ୍କ ଆଗରେ ନୃତ୍ୟ ଗୀତାଦି କରନ୍ତି । ବାପମାଆମାନେ କେତେକ କନ୍ୟାଙ୍କୁ ଦେବଦାସୀ ହେବା ନିମନ୍ତେ ଦେବତାମାନଙ୍କ ମନ୍ଦିରରେ ଅର୍ପଣ କରନ୍ତି ଓ ଏମାନେ ବାଲ୍ୟକାଳରୁ ନୃତ୍ୟଗୀତାଦି ଶିଖି ମନ୍ଦିରରେ ନୃତ୍ୟଗୀତାଦି କରନ୍ତି । କାଳିଦାସଙ୍କ ମେଘଦୂତରେ ମହାକାଳ ଦେବଙ୍କ ମନ୍ଦିରରେ ବେଶ୍ୟାମାନଙ୍କ ନୃତ୍ୟ କରୁଥିବା ବିଷୟ ବର୍ଣ୍ଣିତ ଅଛି । ପ୍ରାଚୀନ ମିଶର, ୟୁନାନ୍, ବାବିଲନ ଆଦି ଦେଶର ଦେବମନ୍ଦିରରେ ଦେବନର୍ତ୍ତକୀମାନେ ନୃତ୍ୟ କରୁଥିବାର ଜଣାଯାଏ । ଦେବଦାସୀଙ୍କ ଭାବିକ୍ତ ସମ୍ପର୍କରେ ସେମାନଙ୍କ କନ୍ୟାମାନେ ଉତ୍ତରାଧିକାରିଣୀ ହୁଅନ୍ତି । (ହି. ଶବ୍ଦସାଗର) । ଅଧୁନା ଦେବଦାସୀମାନଙ୍କର ଚରିତ୍ରଦୋଷ

ସର୍ବତ୍ର ପରିଲକ୍ଷିତ ହେବାରୁ ସମାଜସଂସ୍କାରକମାନେ ଭାରତରୁ ଏ ପ୍ରଥା ଉଚ୍ଛେଦ କରିବା ପାଇଁ ଚେଷ୍ଟା କରୁଅଛନ୍ତି । ]

**ଦେବ ଦୀପ**—ସ. ବି—୧ । ସ୍ୱର୍ଗ—
Deba dipa 1. The Heaven.

ସୁମନର ଅଭ ଚୋର ସଙ୍ଗେ ଅଳ୍ପ ପଥ ସୁଖ ଦେବଦୀପ—
ଉଞ୍ଜ. ପ୍ରେମସୁଧାନିଧି ।

୨ । ( ଦେବ=ଇନ୍ଦ୍ରିୟ+ଦୀପ ) ନୟନ—2. The eye.

ଦେବଦୀପ ତୋଷଦାୟିନୀ ରୁ ମୋର ଅହୁଛ ଶିରକଳାପ—
ଉଞ୍ଜ. ପ୍ରେମସୁଧାନିଧି ।

୩ । କୌଣସି ଦେବତାଙ୍କ ଉଦ୍ଦେଶ୍ୟରେ ପ୍ରଜ୍ୱଳିତ ପ୍ରଦୀପ—
3 A lamp lighted in honour of a Deity.

**ଦେବ ଦୁନ୍ଦୁଭି**- ସ ବି -୧ । ସ୍ୱର୍ଗରେ ଦେବତାମାନଙ୍କଦ୍ୱାରା ବାଦିତ ବାଦ୍ୟ—
Deba dundubhi 1. The drums sounded by the Gods in Heaven.

୨ । ( ବୈଦ୍ୟକ ) ରକ୍ତତୁଳସୀ—2. ( Ayurbeda ) The red variety of the Holy Basil plant.

**ଦେବ ଦୁର୍ଲ୍ଲଭ**—ସ. ବିଣ—୧ । ଯାହା ଦେବତାମାନଙ୍କ ମଧ୍ୟ ମିଳିବା
Deba durllabha କଷ୍ଟକର—1. Unavailable even to the Gods

୨ । ଅତି ଦୁଷ୍ପ୍ରାପ୍ୟ—2 Very rare.

**ଦେବ ଦୂତ**—ସ. ବି ( ୬ଷ୍ଠୀ ତତ୍, ଦେବ+ଦୂତ )—
Deba dūta ୧ । ଦେବତାମାନଙ୍କ ପ୍ରେରିତ ସମ୍ବାଦବାହକ—
1. Divine messenger

୨ । ଅଗ୍ନି—2 Fire.

**ଦେବ ଦୂତୀ**—ସ. ବି—୧ । ଅପ୍ସରାଃ—The heavenly nymphs of
Deba dūti the Hindu mythology.

୨ । ଏକପ୍ରକାର ଲେମ୍ବୁ ( ଦ୍ର. ଶବ୍ଦସାଗର )—
2. A kind of orange.

**ଦେବ ଦେବ**—ସ. ବି. ( ୬ଷ୍ଠୀ ତତ୍, ଦେବ+ଦେବ )—
Deba deba ୧ । ମହାଦେବ; ଶିବ—1. God Siba.

ଦେବଦେବଙ୍କର ବାହନ ପଡ଼ିଅଛି, ପାଇଲି—ପଦ୍ମମଣି. ରହସ୍ୟ ବଚନ ।

୨ । ବିଷ୍ଣୁ—2. Bishṇu.

୩ । ବ୍ରହ୍ମା—3. Brahmā

୪ । ପ୍ରଧାନ ଦେବତା—4. The God of Gods.

**ଦେବ ଦ୍ରୁମ**—ସ. ବି—୧ । ଦେବଦାରୁ ( ଦେଖ )
Deba druma 1. Debadāru ( See )

୨ । ଦେବତରୁ ( ଦେଖ )—2. Debataru ( See )

**ଦେବ ଧାନ୍ୟ**—ସ. ବି—ଦେଧାନ ( ଦେଖ )
Deba dhānya Dedhāna ( See )

**ଦେବ ଧୂପ**—ସ. ବି—ଗୁଗ୍ଗୁଳ—Bdellium; a resinous substance used as incense; Burseraceæ.
Deba dhupa

**ଦେବ ଧେନୁ**—ସ. ବି—କାମଧେନୁ ( ଦେଖ )
Deba dhenu Kāmadhenu ( See )

**ଦେବନ**—ସ. ବି. ( ଦିବ୍ ଧାତୁ=କ୍ରୀଡ଼ା କରିବା+ଭାବ, ଅନ )—
Debana ୧ । କ୍ରୀଡ଼ା; ଖେଳ; କୌତୁକ—
1. Play; sport; pastime.

୨ । ସ୍ତୁତି—2. Prayer.

୩ । ଦୀପ୍ତି; ଦ୍ୟୁତି; କାନ୍ତି—
3. Splendour; glamour

୪ । ଦୁଃଖ; ଶୋକ—4. Grief; sorrow.

୫ । କ୍ଳେଶ—5. Pain.

୬ । ବ୍ୟବହାର—6. Conduct; treatment.

୭ । ଜୟ ଇଚ୍ଛା; ଜିଗୀଷା—7. A desire to win.

୮ । (+ଅଧି. ଅନ) ପ୍ରମୋଦବନ; ଖୁସ୍ ବଗିଚ୍—
8. A pleasure-garden

୯ । ଜୁଆଖେଳ—9. Gambling

୧୦ । ( +କରଣ. ଅନ ) ପଶା ଖେଳ—
10. The game of dice.

୧୧ । ପଦ୍ମ—11. Lotus.

୧୨ । ଗତି ( ଦ୍ର. ଶବ୍ଦସାଗର )—12. Motion.

**ଦେବ ନଦୀ**—ସ. ବି—୧ । ଗଙ୍ଗା—
Deba nadi 1. The Ganges river.

୨ । ଯମୁନା - 2. The Jamunā river.

୩ । ସରସ୍ୱତୀ—3. The Saraswati river.

୪ । ଦୃଷଦ୍ବତୀ—4. The Drushadbati river.

୫ । ଲଙ୍କାସ୍ଥ ସୁବଳ ପର୍ବତ ନିକଟରେ ବହି ଯାଉଥିବା ନଦୀ—
5 The river flowing near the mountain Subala in Ceylon.

ବହାଇଲେ ଦେବ ନଦୀରେ ସମସ୍ତେ ସ୍ନାନ କଲେ ଫଳାଶନ ।
ଉଞ୍ଜ. ବୈଦେହୀଶବିଳାସ ।

**ଦେବ ନନ୍ଦୀ**—ସ. ବି. ପୁଂ ( ଦେବ=ଦେବତା+ନନ୍ଦୀ=ଆନନ୍ଦ କରେ
Deba nandi ଯେ )—ଇନ୍ଦ୍ରଙ୍କ ଦ୍ୱାରପାଳ—
A gate-keeper of Indra.

**ଦେବନା**—ସ. ବି. ସ୍ତ୍ରୀ. ( ଦେବନ+ସ୍ତ୍ରୀ. ଆ )—
Debanā ୧ । କ୍ରୀଡ଼ା—1. Play; pastime.

୨ । ସେବା—2. Worship; tending.

୩ । ଆକ୍ଷେପ—3. Regret.

୪ । ବିଳାପ—4. Lamentation.

**ଦେବନାଗର**—ସ. ବି ( ଦେବ ନଗର+ଅ; +ସ୍ତ୍ରୀ. ଈ; ପ୍ରସିଦ୍ଧି ଅଛି
Debanāgara ଯେ ଦେବତାଙ୍କ ନଗରରେ ଏ ଲିପି ପ୍ରଚଳିତ ଥିଲା)—
(ଦେବନାଗରୀ—ଅନ୍ୟରୂପ) ନାଗରାକ୍ଷର; ସଂସ୍କୃତ ଅକ୍ଷର—
The Sanskrit character or alphabets.

[ ଦ୍ର—ସଂସ୍କୃତ ଓ ହିନ୍ଦୀ ଲିପି ଦେବନାଗର ଅକ୍ଷରରେ ଲେଖା ହୁଏ । ମାରୁଆଡ଼ିମାନଙ୍କ ଲିପି ଏହି ଅକ୍ଷରର ରୂପାନ୍ତର । ମହାରାଷ୍ଟ୍ରୀ ମଧ୍ୟ ଦେବନାଗର ଅକ୍ଷରରେ ଲେଖା ହୁଏ; ଓଡ଼ିଆ, ବଙ୍ଗଳା, ଗୁଜରାଟୀ ଲିପି ଓ ପାଳୀ ଦେବନାଗରରୁ ଉତ୍ପନ୍ନ । ନାଗରୀ ଲିପି ପ୍ରାଚୀନ ବ୍ରାହ୍ମୀ ଲିପିରୁ ଆସିଥିବା ପଣ୍ଡିତମାନେ ଅନୁମାନ କରନ୍ତି । ]

**ଦେବ ନାୟକ**—ସ. ବି. ( ୬ଷ୍ଠୀ ତତ୍; ଦେବ+ନାୟକ )—
Deba nāyaka ସୁରପତି; ଇନ୍ଦ୍ର—Indra.
(ଦେବ ପତି—ଅନ୍ୟରୂପ)

ଦେବନିକାୟ—ସଂ. ବି. ( ୬ଷ୍ଠୀ ତତ୍, ଦେବ+ନିକାୟ )—
Debanikāya ୧ । ଦେବତାମାନଙ୍କ ସମୂହ—
1. A gathering of Gods.
୨ । ସ୍ୱର୍ଗ—2. Heaven

ଦେବନିର୍ମିତା—ସଂ. ବି. (ବୈଦ୍ୟକ)—ଗୁଳଞ୍ଚ ( ଦେଖ )
Debanirmitā Gulāncha ( See )

ଦେବନିଷ୍ଠ—ଦେ. ବି. ପୁଂ. ( ବହୁବ୍ରୀହି; ଦେବ+ନିଷ୍ଠା )—
Debanishtha ୧ । ଦେବତାଙ୍କଠାରେ ଏକାନ୍ତ ଅନୁଗତ—
(ଦେବନିଷ୍ଠା—ସ୍ତ୍ରୀ) 1. Devoted to the God or Gods.
୨ । ଧାର୍ମିକ; ଧର୍ମନିଷ୍ଠ—2. Pious; religious

ଦେବ ପତି—ସ ବି. ( ୬ଷ୍ଠୀ ତତ୍, ଦେବ+ପତି )—ଇନ୍ଦ୍ର—
Deba pati Indra, the king of the Gods.

ଦେବ ପଥ—ସ. ବି. ( ୬ଷ୍ଠୀ ତତ୍, ଦେବ+ପଥ )—
Deba patha ୧ । ଆକାଶ ପଥ—1. The sky.
୨ । ସ୍ୱର୍ଗ ପଥ—2. The way to Heaven.
୩ । ଛାୟା ପଥ—3. The milky way

ଦେବ ପଶୁ—ସ. ବି. ( ମ. ପ. ଲୋ; ଦେବ+ପଶୁ )—
Deba pasu ୧ । ଦେବତାଙ୍କ ନିକଟରେ ବଳି ଦିଆଯିବା ନିମନ୍ତେ ଉତ୍ସର୍ଗୀକୃତ ପଶୁ—1. A beast dedicated for being sacrificed to a Deity.
୨ । ଦେବତାଙ୍କ ଉପାସକ ( ହି. ଶବ୍ଦସାଗର )—
2. The worshipper of a Deity

ଦେବପାଳ—ସ. ବି. ( ବହୁବ୍ରୀହି; ଦେବ+ପାଳ )—୧ । ଇନ୍ଦ୍ର—
Debapāla 1. Indra, the protector of the Gods.
ଗ୍ରୀଷ୍ମ କାଳେ ଯାହାର ପୋଷଣରେ ଜଳ
ଆବ ତାହାଙ୍କୁ ପୂଜୁଥାନ୍ତି ଦେବପାଳ । କୃଷ୍ଣସିଂ. ମହାଭାରତ ଅନୁଶାସନ ।
୨ । ଶାକ ଦ୍ୱୀପସ୍ଥ ପର୍ବତବିଶେଷ—
2. Name of a mountain of the mythological Sāka island.

ଦେବ ପାଳିତ—ସ. ବିଣ—ଯେଉଁ ଦେଶରେ ବୃଷ୍ଟିର ଜଳ ଦ୍ୱାରା କ୍ଷେତ ଆବାଦ କାମ ଚଳେ ( ହି. ଶବ୍ଦସାଗର )—
Deba pālita (a country) Depending upon rain water for the raising of the crops.

ଦେବ ପୁରୀ—ସ. ବି. ( ୬ଷ୍ଠୀ ତତ୍; ଦେବ+ପୁରୀ )—
Deba puri ଦେବତାମାନଙ୍କ ନଗର; ଇନ୍ଦ୍ରପୁରୀ, ଅମରାବତୀ—
(ଦେବପୁର—ଅନ୍ୟରୂପ) Amarābati, the capital where the Deities hold their court; Indra's court.

ଦେବ ପୂଜକ -ସ. ବି—ଯେ ଦେବତାମାନଙ୍କୁ ପୂଜା କରେ—
Deba pūjaka Worshipping a Deity.
ବି—ପୂଜାହାରୀ—Worshipper of a Deity

ଦେବ ପୂଜା—ଦେ. ବି ( ୬ଷ୍ଠୀ ତତ୍; ଦେବ+ପୂଜା )—ଦେବତାଙ୍କ ସତ୍କାର; ଦେବାର୍ଚ୍ଚନା—Divine service;
Deba pūjā worship of a Deity.
(ଦେବପୂଜନ—ଅନ୍ୟରୂପ)

ଦେବ ପ୍ରୟାଗ—ଦେ. ବି (ନାମ)—ଏକ କ୍ଷୁଦ୍ର ସହର—
Deba prayāga Name of a small town.
[ଦ୍ର—ଏହା ଶ୍ରୀ ବଦରୀନାଥଙ୍କ ନିକଟରେ ବହୁଥିବା ଅଳକାନନ୍ଦା ଓ ଗଙ୍ଗୋତ୍ରୀରୁ ପ୍ରବାହିତା ଭାଗୀରଥୀଙ୍କର ସଙ୍ଗମ ସ୍ଥଳରେ ଅବସ୍ଥିତ । ଏହା ହିନ୍ଦୁଙ୍କର ତୀର୍ଥ ସ୍ଥାନ ।
ମଦନମୋହନ. ତୀର୍ଥଦର୍ଶନ ୪ର୍ଥ ।]

ଦେବ ପ୍ରଶ୍ନ—ସ. ବି—ଦୈବପ୍ରଶ୍ନ; ଗ୍ରହ ନକ୍ଷତ୍ରାଦିଙ୍କ ଗତି ଓ ସଞ୍ଚାରଆଦି
Deba prasna ଗଣନାପୂର୍ବକ ଭବିଷ୍ୟତ୍ ଶୁଭାଶୁଭ ଗଣନା କରିବା ନିମନ୍ତେ ପ୍ରଶ୍ନ—An oracle; divination.

ଦେବ ପ୍ରିୟ—ସ. ବି—୧ । ପୀତ ଭୃଙ୍ଗରାଜ—
Deba priya 1. A kind of plant
୨ । ବକବୃକ୍ଷ; ଅଗସ୍ତିଗଛ—
2. Sesbania Grandifloria (tree).
ବିଣ—ଦେବତାମାନେ ଯାହାକୁ ସ୍ନେହ କରନ୍ତି—Beloved of the Gods.

ଦେବ ବକ୍ତ୍ର—ସ. ବି (୬ଷ୍ଠୀ ତତ୍, ଦେବ+ବକ୍ତ୍ର; ଦେବତାମାନେ ଅଗ୍ନିରେ
Deba baktra ପ୍ରଦତ୍ତ ଆହୁତି ଭୋଜନ କରନ୍ତି )—ଅଗ୍ନି—
(ଦେବବାହନ—ଅନ୍ୟରୂପ) Fire.

ଦେବ ବର୍ଦ୍ଧକି—(୬ଷ୍ଠୀ ତତ୍)—ବିଶ୍ୱକର୍ମା—
Deba barddhaki A name of the divine architect of the Hindus.

ଦେବ ବର୍ତ୍ମ—ସ. ବି (୬ଷ୍ଠୀ ତତ୍;ଦେବ+ ବର୍ତ୍ମନ୍)—ଦେବପଥ (ଦେଖ)
Deba bartma Debapatha (See)

ଦେବବର୍ମ୍ମା—ଦେ. ବି (ସ. ଦେବ ବର୍ମନ)—କ୍ଷତ୍ରିୟମାନଙ୍କ ଉପାଧି—
Debabarmmā A title of the Kshatriyas.

ଦେବବଲା—ସ. ବି—ତ୍ରାୟମାଣା (ଦେଖ) (ହରେକୃଷ୍ଣ ଦ୍ରବ୍ୟଗୁଣ)
Debabalā Trāyamānā.

ଦେବ ବଲ୍ଲଭ—ସ. ବି (୬ଷ୍ଠୀ ତତ୍; ଦେବ+ବଲ୍ଲଭ)—୧ । ଇନ୍ଦ୍ର—
Deba ballabha 1. God Indra.
୨ । ପୁନ୍ନାଗ; ନାଗକେଶର; ନାଗେଶ୍ୱର (ଗଛ ଓ ଫୁଲ)—
2. Alexandrian Laurel; Mesua Fera.

ଦେବ ବାଣୀ—ସ. ବି—୧ । ସଂସ୍କୃତ ଭାଷା—
Deba bāni 1. The Sanskrit language.
୨ । ଭବିଷ୍ୟତ୍ ବାକ୍ୟ—2. An oracle.
୩ । ଦେବତାଙ୍କର ଆଦେଶ—
3. A divine order.
୪ । ଦୈବବାଣୀ, ଆକାଶବାଣୀ; ଶୂନ୍ୟାଦେଶ—
4. A voice from the heavens.

ଦେବ ବୃକ୍ଷ—ସ ବି—ଦେବତରୁ ( ଦେଖ )
Deba bruksha Debataru ( See )

ଦେବବ୍ରତ—ସ. ବି—ଭୀଷ୍ମ; ଗଙ୍ଗାଙ୍କ ପୁତ୍ର—
Debabrata Bhishma.
ମନଃ ପରଶୁରାମ ବୃଦ୍ଧିକି ଦେବବ୍ରତ
ବୋଲିଣ କହୁଛନ୍ତି ସକଳ ପଣ୍ଡିତ । କୃଷ୍ଣସିଂ. ମହାଭାରତ. ବନ ।

ଦେବ ବ୍ରାହ୍ମଣ—ସ. ବି ( ଦ୍ୱନ୍ଦ୍ୱ; ଦେବ+ବ୍ରାହ୍ମଣ )—୧ । ଦେବତା ଓ ବ୍ରାହ୍ମଣ; ଦେବତାବ୍ରାହ୍ମଣ—1. The
Deba brāhmana Deities and the Brāhmanas.

୨ । (ମ. ପ ଲୋ. କର୍ମଧା ) ଦେବପୂଜକ ବ୍ରାହ୍ମଣ—
2. A Brāhmaṇa who worships idols.

**ଦେବ ଭବନ**—ସ. ବ (୬ଷ୍ଠୀ ତତ୍; ଦେବ+ଭବନ)—ଦେଉଳ—
Deba bhabana Temple

**ଦେବଭାଗ**—ସ. ବି—୧ । (ଜ୍ୟୋତିଷପରିଭାଷା) ଉତ୍ତର ଖଗୋଳାର୍ଦ୍ଧ—
Deba bhāga 1. (Astrology) Northern celestial hemisphere
୨ । କୌଣସି ବସ୍ତୁର ଯେଉଁ ଅଂଶ ଦେବତାଙ୍କ ଉଦ୍ଦେଶ୍ୟରେ କାଢ଼ି ରଖାଯାଏ (ହ୍ରି. ଶ.)—2. A specific part of a thing kept apart for a Deity.

**ଦେବ ଭାଷିତ**—ସ. ବ—ଦେବବାଣୀ (ଦେଖ)
Deba bhāshita Debabāṇi (See)

**ଦେବ ଭାଷା**—ସ. ବି. (୬ଷ୍ଠୀ ତତ୍; ଦେବ+ଭାଷା)—ସଂସ୍କୃତ ଭାଷା—
Deba bhāshā The Sanskrit language.

**ଦେବଭୂ**—ସ ବି—୧ । ଦେବତା—
Debabhū 1 A Deity.
୨ । ସ୍ୱର୍ଗ—2 Heaven.

**ଦେବ ଭୂତି**—ସ. ବି—୧ । ମନ୍ଦାକିନୀ ବା ସ୍ୱର୍ଗଗଙ୍ଗା—
Deba bhūti 1. The celestial Ganges.
୨ । ଦେବତାମାନଙ୍କ ଐଶ୍ୱର୍ଯ୍ୟ—
2. The divine qualities of the Gods.
ବଳେ ହର-ଶିର ତେଳ ସେ ଯୋଖାକୁ ପ୍ରସାଦ
ପ୍ରସାଦ ରହରେ । ମୁଁ ସେ ମାଉଥାଉ ଦେବ ଭୂତରେ ।
ଭକ୍ତ. ପ୍ରେମସୁଧାନିଧି ।

ଦେ. ବ—ଅପଲକଦ୍ୱ—
The state of having winkless eyes.

**ଦେବ ଭୂମି**—ସ. ବି. (ମ. ପ. ଲୋ; କର୍ମଧା; ଦେବପ୍ରିୟ ଭୂମି)—
Deba bhūmi ୧ । ସ୍ୱର୍ଗ—1. The Heaven.
୨ । ହିମାଳୟ—2. The Himalayas.

**ଦେବଭୂୟ**—ସ. ବି. (ଦେବ+ଭୂ ଧାତୁ+ଯ)—ଦେବତ୍ୱ—
Debabhūya Divinity.

**ଦେବ ମଣି**—ସ. ବି—୧ । ଦେବତାଙ୍କ ବ୍ୟବହୃତ ମଣି—
Deba maṇi 1. Jewel used by a Deity.
୨ । ବିଷ୍ଣୁଙ୍କ ବ୍ୟବହୃତ କୌସ୍ତୁଭ ମଣି—
2. The jewel worn by Bishṇu.
୩ । ଶିବ (ପ୍ରକୃତିବାଦ)—3. Siba.
୪ । ଅଶ୍ୱର ଗଳଦେଶରେ ରୋମାବଳୀକୃତ ଆବର୍ତ୍ତ—
4. A whorl of furs on the neck of a horse
୫ । ସୂର୍ଯ୍ୟ (ହ୍ରି. ଶବ୍ଦସାଗର)—5. The sun.
୬ । ମହାମେଦା (ହ୍ରି. ଶବ୍ଦସାଗର) (ଦେଖ)
6. Mahāmedā (See)

**ଦେବ ମନ୍ଦିର**—ସ. କ୍ଳୀ. (୬ଷ୍ଠୀ ତତ୍; ଦେବ+ମନ୍ଦିର)—
Deba mandira ଦେବାଳୟ; ଦେଉଳ—Temple.

**ଦେବ ମାତା**—ସ. ବି—କଶ୍ୟପ ପତ୍ନୀ; ଅଦିତି—
Deba mātā Aditi, the mother of the Deities; wife of Kaśyapa.

**ଦେବମାତୃକ**—ସ. ବିଣ. (ବହୁବ୍ରୀହି; ଦେବ=ମେଘ ମାତା ଯାହାର;
Debamātṛuka ଦେବ+ମାତୃ+କ)—ବୃଷ୍ଟି ଜଳରେ ଉତ୍ପନ୍ନ (ଦେବମାତୃକା—ସ୍ତ୍ରୀ) ଶସ୍ୟାଦିଦ୍ୱାରା ପାଳିତ (ଦେଶ)—(a country) Fertilised by showers of rain (and not artificially irrigated)

**ଦେବ ମାୟା**—ସ. ବି. (୬ଷ୍ଠୀ ତତ୍, ଦେବ+ମାୟା)—
Deba māyā ୧ । ଦେବତାଙ୍କ ରଚିତ କୁହ ବା ଭୁହୁକ—
1 Illusion created by the Gods.
୨ । ସଂସାର ବନ୍ଧନର ହେତୁଭୂତ ଅଜ୍ଞାନ; ଅବିଦ୍ୟା—
2. Human illusion which is of God's creation.

**ଦେବ ମାସ**—ସ ବି. (ଦେବ=ସ୍ୱର୍ଗୀୟ+ମାସ)—
Deba māsa ୧ । ଭ୍ରୂଣର ମାତୃଗର୍ଭରେ ରହିବାର ଅଷ୍ଟମ ମାସ—
1. The eighth month of the foetus in the womb.
୨ । ସୌର ୩୦ ବର୍ଷ—2. A month of the Gods equal to 30 years in human calculation.
[ ଦ୍ର—ଦେବତାଙ୍କ ଗଣନାରେ ଏକ ଦିନ=ମନୁଷ୍ୟ ଗଣନାରେ ଏକ ବର୍ଷ; ଦେବତାଙ୍କ ଗଣନାରେ ୧ ମାସ=ମନୁଷ୍ୟ ଗଣନାରେ ୩୦ ବର୍ଷ । ]

**ଦେବ ମୁନି**—ସ. ବି—ନାରଦ ମୁନି—
Deba muni Sage Nārada
ଭେଟେ ନାହିଁଲେ ରୁଦ୍ର ସେନ
ତା ଦେଖି ବେଗେ ଦେବମୁନି । ଜଗନ୍ନାଥ. ଭାଗବତ ।

**ଦେବ ଯଜନ**—ସ ବି. ( ଦେବ+ଯଜନ=ପୂଜା; ୬ଷ୍ଠୀ ତତ୍ )—
Deba jajana ଦେବାର୍ଚ୍ଚନା; ଦେବପୂଜା—
Worship of the Gods.

**ଦେବଯଜି**—ସ ବିଣ. ପୁଂ. (ଦେବ+ଯଜ୍ ଧାତୁ=ପୂଜା କରିବା+ କର୍ତ୍ତୃ. ଇ)—ଦେବପୂଜକ—
Debajaji Worshiper of a Deity.

**ଦେବ ଯଜ୍ଞ**—ସ. ବି—ହିନ୍ଦୁ ଗୃହସ୍ଥର ପ୍ରତିଦିନ କର୍ତ୍ତବ୍ୟ ହୋମାଦି—
Deba jajña Oblations to fire which a Hindu householder should perform daily

**ଦେବ ଯାତ୍ରା**—ସ. ବ (ମ. ପ. ଲୋ; ଦେବ+ଯାତ୍ରା; ଦେବତାଙ୍କ
Deba jātrā ଦର୍ଶନାଦି ଉଦ୍ଦେଶ୍ୟରେ ଯାତ୍ରା)—ଦେବତାଙ୍କ ନିକଟକୁ ଗମନ; ତୀର୍ଥ ଯାତ୍ରା—Pilgrimage to holy shrines.

**ଦେବ ଯାନ**—ସ. ବ (୬ଷ୍ଠୀ ତତ୍, ଦେବ+ଯାନ)—
Deba jāna ୧ । ଯେଉଁ ରଥ ସାହାଯ୍ୟରେ ଦେବତାମାନେ ଆକାଶରେ ବିଚରଣ କରନ୍ତି; ବ୍ୟୋମଯାନ—
1. The celestial cars used by the Gods
୨ । (ଜ୍ୟୋତିଷ) ଉତ୍ତରାୟଣ (ମାଘ ସଂକ୍ରାନ୍ତିଠାରୁ ୬ ମାସ ସୂର୍ଯ୍ୟଙ୍କର ଉତ୍ତର ଦିଗକୁ ଗତି ବା ସୌମ୍ୟାୟନ)—
2. (Astrology) The period of the year in which the sun is in the region between the equator and the tropic of Cancer.

[ ଦ୍ର—ଏହି ଉତ୍ତରାୟଣରେ ମୃତ ହେବା ବ୍ୟକ୍ତିର ଆତ୍ମା ବ୍ରହ୍ମଲୋକକୁ ଯାଏ ଓ ଉକ୍ତ ବ୍ୟକ୍ତି ପୁଣି ସଂସାରରେ ଜନ୍ମ ଲଭେ ନାହିଁ । ]

**ଦେବଯାନୀ**—ସଂ. ବି. ସ୍ତ୍ରୀ. (ନାମ)—ଶୁକ୍ରାଚାର୍ଯ୍ୟଙ୍କ କନ୍ୟା ଓ Debajāni ଯଯାତିଙ୍କ ବିବାହିତା ଭାର୍ଯ୍ୟା—The daughter of Śukrāchārjya and the married wife of king Jajāti.

ପ୍ରଭଞ୍ଜନପୁର ଏମ ରାଜପୁରରେ ସୁମଧ୍ୟମା ଦେବଯାନୀ,
ରହିଲେ ସହସ୍ର ଦାସୀପରିବୃତା ହସ୍ତିନାର ପାଟରାଣୀ ।
ନନ୍ଦକଶୋଚ. ଶର୍ମିଷ୍ଠା ।

[ଦ୍ର—ଦୈତ୍ୟମାନଙ୍କ ରଜା ବୃଷପର୍ବାଙ୍କ ନିକଟରେ ଶୁକ୍ରାଚାର୍ଯ୍ୟ ବାସ କରୁଥିବା ସମୟରେ ବୃଷପର୍ବାଙ୍କ କନ୍ୟା ଶର୍ମିଷ୍ଠାଙ୍କର ଦେବଯାନୀ ସଙ୍ଗୀ ଥିଲେ । ଏକଦା ଜଳବିହାର ପରେ ଦେବଯାନୀ ଶର୍ମିଷ୍ଠାଙ୍କ ଲୁଗା ଭ୍ରମରେ ପିନ୍ଧି ପକାଇବାରୁ ଶର୍ମିଷ୍ଠା ଦେବଯାନୀଙ୍କୁ ଗୋଟିଏ କୂଅରେ ପକାଇ ଦେଇ ସେଠାରୁ ଚାଲି ଆସିଲେ । ଏହି ସମୟରେ ମୃଗୟା ଉଦ୍ଦେଶ୍ୟରେ ସେଠାକୁ ନହୁଷ ରାଜାଙ୍କ ପୁତ୍ର ଯଯାତି ଆସି ଦେବଯାନୀଙ୍କୁ କୂପରୁ ଉଦ୍ଧାର କଲେ । ଦେବଯାନୀ ଶୁକ୍ରାଚାର୍ଯ୍ୟଙ୍କ ନିକଟରେ ଏ ସମ୍ବାଦ ଦେବାରୁ ଶୁକ୍ରାଚାର୍ଯ୍ୟ ବୃଷପର୍ବାଙ୍କ ନଅର ଛାଡ଼ି ଚାଲିଯିବାକୁ ବସିଲେ । ବୃଷପର୍ବା ବହୁ ଅନୁନୟ କରିବାରୁ ଦେବଯାନୀଙ୍କୁ ପ୍ରସନ୍ନା କରାଇବାକୁ ଶୁକ୍ରାଚାର୍ଯ୍ୟ ବୃଷପର୍ବାଙ୍କୁ କହିଲେ । ବୃଷପର୍ବା ଦେବଯାନୀଙ୍କୁ ପ୍ରସନ୍ନା କରାଇବାକୁ ପ୍ରାର୍ଥନା କରିବାରୁ ଦେବଯାନୀ କହିଲେ ଯେ ଶର୍ମିଷ୍ଠା ମୋର ଦାସୀ ହେଲେ ମୁଁ ପ୍ରସନ୍ନା ହେବି । ଏଥିରେ ବୃଷପର୍ବା ଓ ଶର୍ମିଷ୍ଠା ଅଙ୍ଗୀକୃତ ହେଲେ । ଦେବଯାନୀ ଯଯାତିଙ୍କୁ ବିବାହ କଲେ ଓ ତାଙ୍କ ସଙ୍ଗେ ଶର୍ମିଷ୍ଠା ଦାସୀ ରୂପେ ଗଲେ । ରାଜା ଶର୍ମିଷ୍ଠାଙ୍କଠାରେ ଅନୁରକ୍ତ ହୋଇ ତାଙ୍କ ଗର୍ଭରୁ ଦ୍ରୁହ୍ୟୁ, ଅନୁ ଓ ପୁରୁ ନାମକ ତିନି ପୁତ୍ର ଜାତ କରାଇଲେ । ଦେବଯାନୀ ଏହା ଜାଣି ପାରି କ୍ରୁଦ୍ଧା ହୋଇ ଶୁକ୍ରାଚାର୍ଯ୍ୟଙ୍କ ଠାକୁ ସମ୍ବାଦ ଦେଲେ । ଶୁକ୍ରାଚାର୍ଯ୍ୟଙ୍କ ଶାପରେ ଯଯାତି ବାର୍ଦ୍ଧକ୍ୟ ପ୍ରାପ୍ତ ହେଲେ । ଦେବଯାନୀଙ୍କ ଗର୍ଭରୁ ଯଦୁ ଓ ତୁର୍ବସୁ ନାମକ ଦୁଇ ପୁତ୍ର ହେଲେ ।]

**ଦେବ ଯୁଗ**—ସଂ. ବି.—ସତ୍ୟ ଯୁଗ—The Satya age. Deba juga

**ଦେବ ଯୋନି**—ସଂ. ବି. (ବହୁବ୍ରୀହି. ଦେବ+ଯୋନି=ଉତ୍ପତ୍ତି ସ୍ଥାନ) Deba joni ୧ । ଉପଦେବତା; ଭୂତାଦି (ଦେବତା ଓ ମନୁଷ୍ୟଙ୍କ ମଧ୍ୟବର୍ତ୍ତୀ ପ୍ରାଣୀ)—1. Demi-god; ghost.

(ଯଥା—ଏମାନେ ସ୍ୱର୍ଗ ଓ ଅନ୍ତରୀକ୍ଷରେ ରହନ୍ତି ।)

୨ । ଦେବତାଙ୍କ ଠାରୁ ଉତ୍ପନ୍ନ ପ୍ରାଣୀ—2. Beings of divine origin.

[ଦ୍ର—ବିଦ୍ୟାଧର, ଅପ୍ସରା, ଯକ୍ଷ, ଗନ୍ଧର୍ବ, ରାକ୍ଷସ, କିନ୍ନର, ପିଶାଚ, ଗୁହ୍ୟକ, ସିଦ୍ଧ, ଭୂତ ଏମାନେ ଦେବଯୋନି ।]

**ଦେବର**—ସଂ. ବି. ପୁଂ. (ଦିବ୍ ଧାତୁ=କ୍ରୀଡ଼ା କରିବା+କର୍ତ୍ତୃ. ଅର; Debara ତୁଲ. ଲା-ଲେବର; ଗ୍ରୀକ୍-ଡେଭର)—ଦିଅର; ସ୍ୱାମୀଙ୍କ କନିଷ୍ଠ ଭ୍ରାତା—Husband's younger brother.

[ଦ୍ର—ମନୁସ୍ମୃତିରେ ବିଧି ଅଛି ଯେ ସନ୍ତାନହୀନା ବିଧବା ଦେବରଙ୍କ ଔରସରେ ଗୋଟିଏ ପୁତ୍ର ଉତ୍ପାଦନ କରି କୁଳରକ୍ଷା କରିବେ, କିନ୍ତୁ ପରାଶର କଳିଯୁଗରେ ଏହା ନଷିଦ୍ଧ ବୋଲି ଲେଖି ଅଛନ୍ତି ।]

**ଦେବରଙ୍ଗି**—ପ୍ରାଦେ. (ସିଂହଭୂମ) ବି—ଏକ ପ୍ରକାର ଧାନ—A species of paddy. Debarañgi

**ଦେବ ରଥ**—ସଂ. ବି.—୧ । ଦେବଯାନ ୧ (ଦେଖ) Deba ratha 1. Debajāna 1 (See)

୨ । ସୂର୍ଯ୍ୟଙ୍କ ରଥ—2. The chariot of the Sun-god.

**ଦେବରାଜ(ଜ୍)**—ସଂ. ବି. ପୁଂ—(୬ଷ୍ଠୀ ତତ୍; ଦେବ+ରାଜା; ଦେବ+ Debarāja(j) ରାଜ୍ ଧାତୁ+କର୍ତ୍ତୃ. କ୍ୱିପ୍)—ଇନ୍ଦ୍ର—Indra; the king of the Gods.

**ଦେବରାଜା**—ଦେ. ବି. (ସଂ. ଦେବରାଜ)—ଦେବରାଜ (ଦେଖ) Debarāja Debarāja (See)

ଶୁଣାଇ ବଜ୍ରଯାଏ ପୂଜା,
କର ଘୋଷିଲେ ଦେବରାଜା । ଜଗନ୍ନାଥ' ଭାଗବତ ।

**ଦେବ ରାତ**—ସଂ. ବି. (ଦେବ+ରା. ଧାତୁ=ଦାନ କରିବା+କର୍ମ. ତ) Debarāta ୧ । ପରୀକ୍ଷିତ; ଅର୍ଜୁନଙ୍କ ପୌତ୍ର—1. Parikshita, the grandson of Arjuna.

୨ । ବିଶ୍ୱାମିତ୍ରଙ୍କ ପୁତ୍ର—2. Name of a son of Biśwāmitra.

ଥୋଇଲେ ମୋ ପୁତ୍ରଙ୍କ ମେଳେ,
ଦେବରାତ ନାମ ଦେଲେ । ଜଗନ୍ନାଥ ଭାଗବତ ।

୩ । ଏକପ୍ରକାର ସାରସ ପକ୍ଷୀ—3. A kind of crane.

ବିଣ.—୧ । ଦେବଦତ୍ତ—1. Given by the Gods.

୨ । ଦେବରକ୍ଷିତ; ଦେବତାମାନଙ୍କ ଦ୍ୱାରା ରକ୍ଷିତ—2. Protected by the gods.

**ଦେବରାଣୀ**—ପ୍ରାଦେ. (ବସ୍ତର) ବି.—ସ୍ତ୍ରୀ.—(ତୁଲ. ଏହି ଅର୍ଥରେ ହି.ଏହି Debarāni ଶବ୍ଦ)—ସାନ ଜାଆ—The wife of one's (a woman's) husband's younger brother.

**ଦେବର୍ଷି**—ସଂ. ବି. (ଦେବ+ଋଷି)—୧ । (ମ. ପ. ଲୋ.) ଦେବତା Debarshi ପ୍ରକୃତିବିଶିଷ୍ଟ ମୁନି—1. A divine sage.

୨ । (ଦେବତାଙ୍କ ପ୍ରିୟ ଋଷି) ନାରଦ—2. The sage Nārda.

**ଦେବଲ**—ସଂ. ବିଣ. (ଦେବ+ ଲା. ଧାତୁ=ଗ୍ରହଣ କରିବା+କର୍ତ୍ତୃ. Debala ଅ; ଯେ ଦେବତାଙ୍କୁ ପୂଜା କରି ଜୀବିକା ନିର୍ବାହ କରେ)—୧ । ଦେଉଳିଆ; ପୂଜାହାରୀ—1. One whose occupation is the worship of Deities.

୨ । ନୀଚ ଶ୍ରେଣୀସ୍ଥ ବ୍ରାହ୍ମଣ; ପଣ୍ଡା—2. An inferior class of Brāhmaṇas.

ବି.—୧ । ମନ୍ଦିର, ଦେବାଳୟ—1. Temple.

୨ । ଅଷ୍ଟାବକ୍ର ମୁନି; ଅସିତ ମୁନିଙ୍କ ପୁତ୍ର—2. The sage Ashṭābakra.

ଦେବଲ ଶାପୁଁ ସାର ଗଜ; ସେ ବସୁ ତହେ ପ୍ରାଣ ହେଲି । ଜଗନ୍ନାଥ ଭାଗବତ ।

[ଦ୍ର—ଦେବଲ ମୁନଙ୍କ ଅଭିଶାପରୁ ହୂ ହୂ ଗନ୍ଧର୍ବ କୁମ୍ଭୀର ହୋଇଥିଲେ ।]

ଦେବ ଲତା—ସ. ବି.—ନବମଲ୍ଲିକା; ନଆଳୀ—
Deba latā Nabamallikā (See)

ଦେବ ଲୋକ—ସ. ବି.—(୬ଷ୍ଠୀ ତତ୍, ଦେବ+ଲୋକ)—୧ । ଅମର
Deba loka ଧାମ; ସ୍ୱର୍ଗ; ସ୍ୱର୍ଗ ଲୋକ—1. Paradise; Heaven; the abode of the Gods.
୨ । ଭୂବାଦ ସପ୍ତଲୋକ—
2 The seven upper worlds of the Hindus.
ଦେ. ବ.—ଦେବତାମାନେ—The Gods.
ଦେବ ଲୋକଙ୍କର ଭାଷା, ଆମେ ଯାକୁ ବୋଲୁ ଗାଇ ବଳଦ,
ତୁମେ ତାକୁ ବୋଲ କଂସା । ତଗ

ଦେବ ଶର୍ମା—ସ. ବି. (ଦେବ+ଶର୍ମନ୍; ୧ମା. ୧ବ.)—
Deba śarmā ୧ । ବ୍ରାହ୍ମଣମାନଙ୍କ ଉପାଧି—
1. A title of the Brāhmaṇas.
୨ । ଜନୈକ ଋଷି—2. Name of a sage.
୩ । ଜଣେ ବେଦଜ୍ଞ ବ୍ରାହ୍ମଣ—
3. Name of a Brāhmaṇa versed in the Bedas.

ଦେବଶ୍ରୁତ—ସ. ବି. (ଦେବ=ସ୍ୱର୍ଗୀୟ+ଶ୍ରୁତ)—୧ । ଈଶ୍ୱର—
Deba śruta 1. God.
୨ । ଶାସ୍ତ୍ର—2. Scripture.
୩ । ନାରଦମୁନି—3. Sage Nārada.
୪ । ଜୈନବିଶେଷ—4. A class of Jaina saints.
୫ । ଶୁକ୍ରାଚାର୍ଯ୍ୟଙ୍କ ଏକ ପୁତ୍ର ( ହି. ଶବ୍ଦସାଗର )—
5. Name of a son of Śukrāchārjya.

ଦେବ ସଭା—ସ. ବି—୧ । ଦେବତାମାନଙ୍କ ବଇଠକ; ସୁଧର୍ମା ସଭା—
Deba sabhā 1. The assembly of the Gods.
୨ । ରାଜସଭା—2. The court of a king.

ଦେବ ସଭ୍ୟ—ସ. ବି( ଦେବ=କ୍ରୀଡ଼ା+ସଭ୍ୟ )—୧ । ସଭିକ, ଦ୍ୟୂତ-
Deba sabhya ସଭାର ଅଧକ୍ଷ—1. The master of gambling.
୨ । ଦେବସଭାର ସଦସ୍ୟ—
2. A member of a Debasabhā.

ଦେବସାତ୍—ସ. ଅ ( ଦେବ+ଦେୟାର୍ଥେ. ସାତ୍; ତୁଳ. ବସ୍ତ୍ରସାତ୍; Debasāt ଅସ୍ମସାତ୍ )—୧ । ଦେବତାଙ୍କୁ ଦେୟ—
1. Due to the Gods.
୨ । ଦେବାଧୀନ; ଦେବାସ୍ୱତ୍ୱ—
2. Under the disposal of the Gods.
୩ । ଦେବସାତ୍କୃତ ( ଦେଖ )
3. Debasāt-kṛuta ( See ).

ଦେବସାତ୍କୃତ—ସ. ବିଣ—୧ । ଦେବତାଙ୍କ ଉଦ୍ଦେଶ୍ୟରେ ଦତ୍ତ—
Debasāt-kṛuta Dedicated to a Deity.
୨ । ଦେବସେବାରେ ଉତ୍ସୃଷ୍ଟ—
2. Endowed for the service of a Deity.

ଦେବ ସାବର୍ଣ୍ଣି—ସ. ବି—ତ୍ରୟୋଦଶ ମନୁ—
Deba sābarṇṇi The thirteenth Manu.
ଦେବସାବର୍ଣ୍ଣି ତ୍ରୟୋଦଶ
ମନୁ ସେ ହୋଇବ ପ୍ରକାଶ—ଜଗନ୍ନାଥ. ଭାଗବତ ।

ଦେବ ସାଯୁଜ୍ୟ—ସ. ବିଣ ( ୬ଷ୍ଠୀ ତତ୍; ଦେବ+ସାଯୁଜ୍ୟ )—
Deba sājujya ୧ । ଦେବତାଙ୍କ ସାହଚର୍ଯ୍ୟ—
1. Vicinity of or interview with the Deity.
୨ । ଦେବତ୍ୱ—2. Divinity.
୩ । ଦେବ ସାଦୃଶ୍ୟ—3. Similarity to the Gods.

ଦେବ ସୃଷ୍ଟା—ସ. ବି ( ବୈଦ୍ୟକ ) ( ୩ୟା ତତ୍; ଦେବ+ସୃଷ୍ଟା )—
Deba srushṭā ମଦିରା; ସୁରା—Wine.

ଦେବ ସେନା—ସ. ବି. ( ୬ଷ୍ଠୀ ତତ୍; ଦେବ+ସେନା )—
Deba senā ୧ । ଦେବତାମାନଙ୍କର ସୈନ୍ୟ—1. Army of the Gods.
୨ । କାର୍ତ୍ତିକେୟଙ୍କ ସ୍ତ୍ରୀ; ବ୍ରହ୍ମାଙ୍କ କନ୍ୟା—
2 The wife of Kārttikeya and the daughter of Brahmā.
ସେକାଳେ ଇନ୍ଦ୍ର ଦେବସେନା ସ୍ମରିଲେ
ସେ ନାସ ସେହୁକ୍ଷଣି ଇନ୍ଦ୍ର ପାଶେ ଗଲେ—କୃଷ୍ଣସିଂହ ମହାଭାରତ ବନ ।
[ ଦ୍ର—ଏ ସାବିତ୍ରୀଙ୍କ ଗର୍ଭରୁ ଜାତ ହୋଇଥିଲେ । ଏହାଙ୍କର ନାମାନ୍ତର ଷଷ୍ଠୀ ବା ମହାଷଷ୍ଠୀ; ଏ ସପ୍ତ ମାତୃକା ମଧ୍ୟରୁ ଜଣେ ଓ ଶିଶୁମାନଙ୍କ ରକ୍ଷିକା; ଏହାଙ୍କୁ ଥରେ କେଶୀ ଦାନବ ହରଣ କରି ନେଇଥିଲା । ଇନ୍ଦ୍ର ଏହାଙ୍କୁ ରକ୍ଷା କରି କାର୍ତ୍ତିକେୟଙ୍କ ସଙ୍ଗେ ଏହାଙ୍କୁ ବିବାହ ଦେଇଥିଲେ—ହି. ଶବ୍ଦସାଗର । ]

ଦେବ ସେନାପତି—ସ. ବି ( ୬ଷ୍ଠୀ ତତ୍; ଦେବ+ସେନାପତି )—
Deba senāpati କାର୍ତ୍ତିକେୟ—Kārttikeya, the commander of the hosts of the Gods.
[ ଦ୍ର—ଏ ଦେବତାମାନଙ୍କର ସେନାପତିରୂପେ ତାରକାସୁରକୁ ବଧ କରିଥିଲେ । ]

ଦେବ ସେବା—ସ. ବି—ଦେବ ପୂଜା (ଦେଖ)
Deba sebā Deba pūjā (See)

ଦେବ ସ୍ଥାନ—ସ. ବି—୧ । ଦେବାଳୟ—
Deba sthāna 1. Temple.
୨ । (ନାମ)—ବନବାସକାଳରେ ପାଣ୍ଡବମାନଙ୍କୁ ଉପଦେଶ ଦେଇଥିବା ଜଣେ ଋଷି—2. Name of a sage.
ପ୍ରାଦେ ( ଗଞ୍ଜାମ ) ବି—ଦେବୋତ୍ତର ଇଲାକା—
A religious endowment.

ଦେବସ୍ଥାନ କମିଟି—ପ୍ରାଦେ ( ଗଞ୍ଜାମ ) ବି—ସାଧାରଣ ଦେବୋତ୍ତର
Debasthāna kamiṭi ସମ୍ପତ୍ତିର ତତ୍ତ୍ୱ ନେବାପାଇଁ ସରକାରଙ୍କ ( ଦେବସ୍ଥାନମ୍ କମିଟି—ଅନ୍ୟରୂପ ) ତରଫରୁ ଜିଲ୍ଲା ଜଜଙ୍କଦ୍ୱାରା ନିଯୁକ୍ତ କମିଟି—An endowment-committee; a committee appointed by the District Judge to look after a public religious endowment.

**ଦେବସ୍ୱ**—ସଂ. ବି (ଷଷ୍ଠୀ ତତ୍; ଦେବ+ସ୍ୱ=ଧନ)—୧। ଦେବତାଙ୍କ ଧନ—1. Property of an Idol.
Debaswa

୨। ଦେବସେବାର୍ଥ ଉତ୍ସର୍ଗୀକୃତ ଧନ—2. Property dedicated to or endowed for the service of a Deity.

୩। ଯଜ୍ଞଶୀଳ ବ୍ୟକ୍ତିର ଧନ (ହି. ଶବ୍ଦସାଗର)—3. The property of a person engaged in performing vedic rites.

**ଦେବହୂତି**—ସଂ. ବି. ସ୍ତ୍ରୀ—ସ୍ୱାୟମ୍ଭୁବ ମନୁଙ୍କ କନ୍ୟା—
Debahūti Name of a daughter of Swāyambhuba Manu.

[ ଦ୍ର—ଏ କର୍ଦ୍ଦମ ମୁନିଙ୍କ ପତ୍ନୀ ଓ କପିଳ ମୁନିଙ୍କ ମାତା ଥିଲେ । ]

**ଦେବ ହେଳନ**—ସଂ. ବି (ଦେବ+ହେଳନ=ଅପରାଧ)—ଦେବତାଙ୍କ ନିକଟରେ ଅପରାଧ—Guilt committed in the eyes of a Deity.
Deba helana

ଦେବହେଳନ କର୍ମ ମୋର
ନଷ୍ଟେ ଲଭିଲି ଦାମୋଦର—ଜଗନ୍ନାଥ, ଭାଗବତ ।

**ଦେବା**—ସଂ. ବି (ସଂ. ଦେବୃ ଶବ୍ଦ, ଦିବ୍ ଧାତୁ କ୍ରୀଡ଼ା କରିବା+ଋ ସଂଜ୍ଞାର୍ଥେ)—୧। ଦେବର; ଦିଅର—1. Husband's younger brother.
Debā

୨। ରଣ୍ଡାପତି; ରାଣ୍ଡୀ ସ୍ତ୍ରୀର ସ୍ୱାମୀ; ଠାଇଁ—2. The husband of a remarried widow.

ସଂ. ବି. ସ୍ତ୍ରୀ—୧। ପଥରଚୂରଣୀ (ପ୍ରକୃତିବାଦ)—1 Name of a plant.

୨। ଅଶନପର୍ଣ୍ଣୀ (ପ୍ରକୃତିବାଦ)—2. Name of a plant.

ଦେ. ବି (ସଂ. ଦେବ)—୧। ଦେବତା—1. Deity.

୨। (ସଂ. ଦେବ ଶବ୍ଦର ୧ମା ବହୁବଚନ ଦେବାଃ)—ଦେବତାମାନେ—2. The Gods.

ଡମରୁଧର ଯାକୁ ସେବା, ଡରେ ଶକ୍ର ସହଦେବା ।
କମଳଲୋଚନଚଉତିଶା ।

ଦେ. କ୍ରି—(ସଂ. ଦା ଧାତୁ; ଓ. ଦେ ଧାତୁ)—୧। ଉପହାର ଦେଓ୍ୱା; ଦେବା—1 To present.
(ନେବା—ବିପରୀତ) ୨। ପ୍ରଦାନ କରିବା; ଦାନ କରିବା—2. To give; to donate.
(ଦିଆଇବା—ଣିଜନ୍ତ)

ଦେବ ଦ୍ୟାଇବ ଦେଖିବ ବୋଲିବ । ବକୁଳିଆ ପଣ୍ଡାଙ୍କ ଗୀତ ।

୩। (ସମୟ ବା ଅବସର ବା ଛୁଟି ବା ଅନୁମତି) ମଞ୍ଜୁର କରିବା—3, To grant (time or opportunity or leave or permission.)

୪। ଅନ୍ୟର ହସ୍ତରେ ଅର୍ପଣ କରିବା—4. To hand over; to make over.

ଗଣ୍ଠାକରେ ଧନ ଦେଇ ପଦେ ନ କହିଲୁରେ ।
କବିସୂର୍ଯ୍ୟ. ହଗୋସା. ଚମ୍ପୁ. ଶ, ଗୀତ ।

୫। ଯୋଗାଇବା—5. To supply.

୬। ଅନ୍ୟଠାରେ ଭାର ନ୍ୟସ୍ତ କରିବା—6. To entrust something to somebody.

ଘର ଦେଇ ପରହାତେ ପଳାଇଲେ ନିଜ ପ୍ରାଣ ଘେନି ।
ଉପେନ୍ଦ୍ରଭଞ୍ଜ. କଟକବର୍ଣ୍ଣନ ।

୭। କୌଣସି କାର୍ଯ୍ୟ କରିବାକୁ ଅନ୍ୟକୁ ସମର୍ଥ କରିବା—7. To make or allow a person to do something.

(ଯଥା—ସେ ମୋତେ ପଦେ କଥା କୁହାଇ ଦେଲା ନାହିଁ । ପିଲାମାନେ ଗୋଳମାଳ କରି ମୋତେ ଶୁଆଇ ଦେଲେ ନାହିଁ ।)

୮। (ଯୁ ସ୍ତୁକାଦିରେ ବା ଅଙ୍ଗରେ ବା ବସ୍ତୁରେ) ସନ୍ନିବେଶିତ କରିବା; ସ୍ଥାପନ କରିବା—8, To place, to put.
[ଯଥା—ଶୀତଦିନେ ଦେହରେ ଲୁଗା ଦିଅ]

୯। (ନିମନ୍ତ୍ରଣାଦି) ପଠାଇବା; ପ୍ରେରଣ କରିବା—9. To send (invitation, letters, news).

ସମସ୍ତ ରାଜାମାନଙ୍କୁ ଦିଅ ନିମନ୍ତ୍ରଣ—ବିଶ୍ୱନାଥ. ବିଚିତ୍ରରାମାୟଣ

୧୦। ଘଟାଇବା, ଅନୁଭୂତ କରାଇବା; ଭୋଗ କରାଇବା—10. To cause; to cause to experience; to cause to undergo.

ମନେ ଦିଏ ଘୋର ଖେଦ—ନନ୍ଦକିଶୋର, ନର୍ମ୍ମଦା

୧୧। ଉତ୍ପାଦନ କରିବା—11. To produce

ତାହାର ପ୍ରଜା ସୁଖପାଇଁ । ବହୁତ ଶସ୍ୟ ଦେଲା ମହୀ । ଜଗନ୍ନାଥ. ଭାଗବତ ।

୧୨। (ଅନ୍ୟ କ୍ରିୟାର ଅସମାପିକା ରୂପ ସଙ୍ଗେ ଯୁକ୍ତ ହେଲେ) ଅମୁକ କ୍ରିୟା କରିବା—12 To do a certain act (indicated by the verb used before it).

(ଯଥା—ଲେଖି ଦେବା; କହିଦେବା, ପଢିଦେବା)

୧୩। (କବାଟ; ଦ୍ୱାର) ବନ୍ଦ କରିବା—13. To shut (the door)

(ଯଥା—ଦୁଆର ଦେବା, ବୋଉଲରେ ଠେଲି ଦେବା)

୧୪। (ପାଣି)ଛାଡ଼ିଦେବା—14. To discharge(water)

(ଯଥା—ଆମ କୋଠାର ଛାତ ପାଣି ଦେଉଛି)

୧୫। (ଅନ୍ୟର ଦେହରେ ହଳଦି ଆଦି)ଲଗାଇବା; ବୋଳିବା—15. To apply; to besmear; to anoint.

(ଯଥା—ଆଇ ପିଲାକୁ ହଳଦି ଦଉଛି)

୧୬। (ମାତା ପିଲାକୁ ସ୍ତନ୍ୟ) ପାନ କରାଇବା—16. To give a suckling (to a child).

(ଯଥା—ମାଆ ପିଲାକୁ ଦୁଧ ଦଉଛନ୍ତି)

୧୭। (ଅନ୍ୟକୁ ପ୍ରହାରାଦି) କରିବା—17. To administer (blows, rebuke),to deal.

(ଯଥା—ମାଡ଼ ଦେବା, ଗାଳି ଦେବା)

[ଦ୍ର—୧। 'ଦେବା' ଅନ୍ୟ କେତେକ କ୍ରିୟାର ଅସମାପିକା ରୂପ ସହିତ ଲାଗିଲେ ଉକ୍ତ କ୍ରିୟାରୂପରେ ଜୋର୍ (emphasis), କ୍ରିୟାର ସମାପ୍ତି ବା କ୍ରିୟାର ଶୀଘ୍ରତା ବୁଝାଏ । ଯଥା—ଖାଇ ଦେବା=ଖାଇ ସାରିବା; ପିଇ ଦେବା=ପାନ କାର୍ଯ୍ୟ ଶେଷ କରିବା; ଦେଇ ଦେବା=ଦେବା କାର୍ଯ୍ୟ ସମାପ୍ତ କରିବା; ଭୁଲି ଦେବା

ହାଣି ଦେବା, ଶୁଣି ଦେବା, ଲେଖି ଦେବା, ଶୁଙ୍ଘି ଦେବା, ଖୋଜି ଦେବା, ମାରି ଦେବା, କରି ଦେବା ଇତ୍ୟାଦିରେ ଉକ୍ତ କ୍ରିୟା ଉପରେ ଜୋର୍ ଦିଆଯାଏ; କହିଦେବା ଆଦିରେ କ୍ରିୟାର ଶୀଘ୍ରତା ବୁଝାଏ; ଉଦାହରଣ ଯଥା—

ଖାଇ ଦେଇ କି ଅମଳ ଅଡେଇ ହୋଇଲୁ ରେ—କବିସୂର୍ଯ୍ୟ, ବଣ୍ଟ୍ର, ଗୀତ ।

୨ । ଣିଜନ୍ତ ବା ପ୍ରୟୋଜକ କ୍ରିୟାରେ ମଧ୍ୟ ଦେବା କ୍ରିୟା ଯୋଗ ହୁଏ, ଯଥା—ଖୁଆଇ ଦେବା; ଶୁଆଇ ଦେବା ପକାଇ ଦେବା ଇତ୍ୟାଦି ।

୩ । ଅନ୍ୟ ବ୍ୟକ୍ତିକୁ ପ୍ରହାର କରିବା ଓ ଗାଳିଦେବା ଅର୍ଥରେ ଆଘାତର ପ୍ରକାର ସଙ୍ଗେ ଦେବା କ୍ରିୟା ବ୍ୟବହୃତ ହୁଏ । ଯଥା—ମାଡ଼ ଦେବା; ବେତ ଦେବା, ଅଭିଶାପ ଦେବା ଇତ୍ୟାଦି ।

୪ । ଏହି କ୍ରିୟା କଥା ଭାଷାରେ 'ଦବା' ଆକାର ଧାରଣ କରେ ।

୫ । ଦେବା କ୍ରିୟାର ଅନୁଜ୍ଞାରୂପ 'ଦେ' 'ଦିଅ' 'ଦିଅନ୍ତୁ' । କଥିତ ବ୍ୟକ୍ତିକୁ କୌଣସି କର୍ମ ଶୀଘ୍ର କରିବାକୁ ଅନୁରୋଧ ସ୍ଥଳରେ ଏରୂପମାନ ବ୍ୟବହୃତ ହୁଏ । ଯଥା—ଦିଅ, ଦିଅ, ଚଞ୍ଚଳ ଖାଅ କଚେରିକୁ ଯିବା ।]

୬ । ଏହି କ୍ରିୟାର ଅସମାପିକାରୂପ ସଙ୍ଗେ ପକାଇବା, ଦେବା କ୍ରିୟାର ସମାପିକାରୂପ ଯୁକ୍ତ ହୁଏ ।

**ଦେବାଜୀବ**—ସଂ. ବି. ( ବହୁବ୍ରୀହି; ଦେବ + ଆଜୀବ = ଜୀବିକା )—
Debājiba ଦେବପୂଜକ; ପୂଜାହାରୀ ବ୍ରାହ୍ମଣ—A professional
( ଦେବାଜୀବୀ—ଅନ୍ୟରୂପ ) worshipper or priest of Deities.

**ଦେବାତ୍ମା**—ସଂ. ବିଣ. ( ବହୁବ୍ରୀହି; ଦେବ + ଆତ୍ମନ୍ )—
Debātmā ୧ । ଦେବତାସ୍ୱରୂପ—1. Like a God; God-like.
୨ । ଦେବ ପ୍ରକୃତିବିଶିଷ୍ଟ—
2. Of divine or godly nature.
ବି—ଅଶ୍ୱତ୍ଥବୃକ୍ଷ—The Ficus Religiosa ( tree ).

**ଦେବାଦେବୀ**—ଦେ. ବି ( ବହୁବ୍ରୀହି; ସଂ. ଦେବ + ଦେବୀ )—ଅମର
Debādebi ଓ ଅମରୀ, ଦେବଗଣ ଓ ଦେବୀଗଣ—
The Gods and Goddesses.

ବ୍ରହ୍ମା ଶଙ୍କର ଦେବାଦେବୀ; ଅଗ୍ନି ପବନ ଚନ୍ଦ୍ର ରବି ।
ପ୍ରାଚୀ. ନରୁଶମାହାତ୍ମ୍ୟ ।

**ଦେବାଧି**—ଦେ. ବି—(ସଂ. ଦେବାଧିଦେବ)—୧ । ପ୍ରଧାନ ଦେବତା—
Debādhi 1. The chief of the Deities.
୨ । ଲୋକଙ୍କ ନାମ—
2. A name given to males.

**ଦେବାଧିଦେବ**—ସଂ. ବି. (୬ଷ୍ଠୀ ତତ୍; ଦେବ + ଅଧିଦେବ)—
Debādhideba ୧ । ମହାଦେବ—
(ଦେବାଧିପ—ଅନ୍ୟରୂପ) 1. Siba.
୨ । ଇନ୍ଦ୍ର—2. Indra.
୩ । ପ୍ରଧାନ ଦେବତା—
3. The chief of all the Deities.

**ଦେବାନ୍ (ଇତ୍ୟାଦି)**—ଦେୱାନ୍ ଇତ୍ୟାଦି ( ଦେଖ )—
Debān (etc) Dewān etc (See)

**ଦେବାନ୍ ହରିବଂଶ ରାୟ**—ଦେ. ବି. (ନାମ)—ମରହଟ୍ଟାମାନଙ୍କର
Debān haribamśa rāya ଜଣେକ ଖ୍ୟାତନାମା ଦେବାନ୍—
Name of a minister of the Marhattās.

[ ଦ୍ର—ଏ ମରହଟ୍ଟା ରଘୁଜୀ ଭୋଁସଲାଙ୍କ ଅମଳରେ ଓଡ଼ିଶାର ଦେବାନୀ ପଦ ପାଇଥିଲେ । ଶୁଣାଥାଏ ଯେ ଯେଉଁ ପ୍ରାର୍ଥୀ ଭୋଁସଲାଙ୍କୁ ବେଶି ଟଙ୍କା ଭେଟି ଦେଉଥିଲା, ସେ ତାକୁ ଦେବାନ୍ ପଦରେ ମୁକରର କରୁଥିଲେ; ସେ ଆସି ଓଡ଼ିଶାରେ ପହଞ୍ଚିବାର ମାସେ ଦୁଇ ମାସ ପରେ ଆଉ ଜଣେ ପ୍ରାର୍ଥୀ ଭେଟି ନେଇ ପହଞ୍ଚିଲେ ନୂତନ ଲୋକକୁ ଦେବାନୀ ସନନ୍ଦ ମିଳୁଥିଲା । ହରିବଂଶ ରାୟ ନାଗପୁରକୁ ଯାଇ ଭେଟି ଦେଇ ଦେବାନୀ ପଦ ପାଇ ବିଦାୟ ହୋଇ ଆସିଲା ବେଳେ ଭୋଁସଲା ତାଙ୍କୁ ଗୋଟିଏ ଭଲ ଘୋଡ଼ା ଉପହାର ଦେଲେ । ହରିବଂଶ ରାୟ ସେ ଘୋଡ଼ାରେ ଲାଙ୍ଗୁଡ଼ଆଡ଼କୁ ମୁହଁ କରି ଚଢ଼ିଲେ । ରାଜକର୍ମଚାରୀମାନେ ଏହା ଦେଖି ଭୋଁସଲାଙ୍କୁ ଜଣାଇଲେ । ଭୋଁସଲା ଆସି ହରିବଂଶଙ୍କୁ ପଚାରିବାରୁ ସେ କହିଲେ ଘୋଡ଼ାର ପଛଆଡ଼କୁ ମୁହଁ କରି ବସିବାର ଅର୍ଥ ଏହି ଯେ, ମୋ ପଛେ ପଛେ ଆପଣ ଆଉ ଯେଉଁ ବ୍ୟକ୍ତିଙ୍କୁ ଦେବାନ୍ କରି ପଠାଇବେ ମୁଁ ତାହାଙ୍କୁ ଦେଖି ପାରିବି । ଭୋଁସଲା ଏଥିରେ ମୁଗ୍ଧ ହୋଇ ତାଙ୍କୁ କେତେକ ବର୍ଷ ନିମନ୍ତେ ସ୍ଥାୟୀ ସନନ୍ଦ ଦେଲେ ।

ଧର୍ମସମାଚାର ୩୨।୩୩ ତା ୧୩।୧୨।୨୯ । ]

**ଦେବାନାମ୍ପ୍ରିୟ**—ସଂ. ବିଣ—୧ । ଦେବତାମାନଙ୍କର ପ୍ରିୟ—
Debānāmpriya 1 Beloved of the Gods.
(ଦେବାନାଂପ୍ରିୟ—ଅନ୍ୟରୂପ) ୨ । ଅଶୋକଙ୍କର ନାମ ପୂର୍ବରେ ଅଶୋକ ଲଗାଇଥିବା ବିଶେଷଣ—2. An epithet which king Aśoka prefixed to his name.

[ଦ୍ର—ଏଥିର ପାଲି ଭାଷାର ଆକାର 'ଦେବାନାଂପିଅ' । ଅଶୋକଙ୍କ ଶିଳାଲିପିମାନଙ୍କରେ ଅଶୋକଙ୍କ ନାମ ପୂର୍ବରେ ଦେବାନାଂପିଅ ପିଅଦସି (ସଂ. ପ୍ରିୟଦର୍ଶୀ) ବିଶେଷଣ ଦିଆ ଯାଇଅଛି । ]

ସଂ. ବି—୧ । ବକରି; ଛେଳି (ହି. ଶବ୍ଦସାଗର)—1. Goat.
୨ । ମୂର୍ଖ ବ୍ୟକ୍ତି (ହି. ଶବ୍ଦସାଗର)—
2. An illiterate person.
ଦେ. ବି—ରାଜା ଅଶୋକ—King Aśoka.

**ଦେବାନୀ (ଇତ୍ୟାଦି)**—ଦେୱାନୀ ଇତ୍ୟାଦି (ଦେଖ)
Debāni (etc) Dewāni etc (See)

**ଦେବାନୁଚର**—ସଂ. ବି ( ୬ଷ୍ଠୀ ତତ୍; ଦେବ + ଅନୁଚର )—
Debānuchara ୧ । ଦେବତାଙ୍କ ଭୃତ୍ୟ—1. An attendant of a Deity.

[ ଦ୍ର—ନନ୍ଦୀ ଓ ଭୃଙ୍ଗୀ ଶିବଙ୍କର ଏବଂ ଗରୁଡ଼ ବିଷ୍ଣୁଙ୍କର ଅନୁଚର ଅଟନ୍ତି । ]

୨ । ଉପଦେବତା; ବିଦ୍ୟାଧର, ଯକ୍ଷ, ଗନ୍ଧର୍ବ ଓ କିନ୍ନରାଦି—
2. Demi-gods.

**ଦେବାନ୍ତକ**—ସଂ. ବି—ରାମାୟଣବର୍ଣ୍ଣିତ ରାକ୍ଷସ ବୀରବିଶେଷ—
Debāntaka Name of a demon described in the Rāmāyana.

ବଳତ ଦେବାନ୍ତକ ତ୍ରିଶିର କବନ୍ଧ ମହୋଦର ଅତକାୟକ—
ଉପ. ବୈଦେହୀଶବିଳାସ ।

ଦେବା ପଦ—ଦେ. ବି—୧ । 'ଦେବା' ଏହି ଶବ୍ଦ—
Debā pada 1. The word 'Give'.
୨ । ଦାତୃତ୍ୱ—2. Liberality

ଦେବାପଦ ସମସ୍ତ ଘରେ ହେବ ଶୂନ୍ୟ—କୃଷ୍ଣସିଂହ. ମହାଭାରତ. ବନ ।

ଦେବାପି—ସଂ. ବି. ( ନାମ )—ମହାଭାରତ ଅନୁସାରେ ରାଜା ଶାନ୍ତନୁଙ୍କ
Debāpi ଭାଇ—Name of a brother of king Sāntanu.

[ ଦ୍ର—ଏ ଧର୍ମାତ୍ମା ଥିଲେ ଓ ତପୋବଳରେ ବ୍ରାହ୍ମଣତ୍ୱ ଲାଭ କରିଥିଲେ । ]

ଦେବାବାସ—ସଂ. ବି. ( ୬ଷ୍ଠୀ ତତ୍; ଦେବ+ଆବାସ )—
Debābāsa ୧ । ଦେବାଳୟ—1. Temple.
୨ । ଅଶ୍ୱତ୍ଥବୃକ୍ଷ—2 The peepal tree.
୩ । ସ୍ୱର୍ଗ—3. Heaven.
୪ । ସୁମେରୁପର୍ବତ—4. The Sumeru mountain.

ଦେବାବେଶ—ସଂ. ବି. ( ୬ଷ୍ଠୀ ତତ୍, ଦେବ+ଆବେଶ )—ମନୁଷ୍ୟଙ୍କ-
Debābesa ଠାରେ ଦେବତାଙ୍କ ଆତ୍ମାର ଆବିର୍ଭାବ; ଠାକୁରାଣୀ ଲାଗିବା; ଠାକୁରାଣୀ ଭୂତ ହେବା—The possession of a human being by a Deity.

ଦେବାୟତନ—ସଂ. ବି. (୬ଷ୍ଠୀ ତତ୍; ଦେବ+ଆୟତନ)—ଦେବାଳୟ—
Debayatana Temple.

ଦେବାୟୁଧ—ସଂ. ବି. ( ୬ଷ୍ଠୀ ତତ୍; ଦେବ+ଆୟୁଧ )—
Debāyudha ୧ । ଦେବତାଙ୍କର ଅସ୍ତ୍ର ଶସ୍ତ୍ର—
1. The weapons of the Gods.

[ ଦ୍ର—ହିନ୍ଦୁଶାସ୍ତ୍ର ଅନୁସାରେ ଭିନ୍ନ ଭିନ୍ନ ଦେବତାଙ୍କର ଭିନ୍ନ ଭିନ୍ନ ଅସ୍ତ୍ର ଅଛି । ଯଥା—୧ ବିଷ୍ଣୁଙ୍କର ସୁଦର୍ଶନ ଚକ୍ର ଓ ଗଦା, ୨. ଶିବଙ୍କର ପରଶୁ ଓ ଖଟ୍ୱାଙ୍ଗ, ୩. ବରୁଣଙ୍କର ପାଶ, ୪. ଗଣେଶଙ୍କର ପାଶ ଓ ଅଙ୍କୁଶ, ୫. ଇନ୍ଦ୍ରଙ୍କର ବଜ୍ର, ୬. ଯମଙ୍କର ଦଣ୍ଡ ଓ ପାଶ । ]

୨ । ଶକ୍ରଧନୁ; ଇନ୍ଦ୍ରଧନୁ—2. Rainbow.

ଦେବାରାଧନ—ସଂ. ବି. ( ଦେବ+ଆରାଧନ, ୬ଷ୍ଠୀ ତତ୍ )—ଦେବତାଙ୍କ
Debārādhana ଉପାସନା ବା ପୂଜା—Worship of a Deity.
( ଦେବାରାଧନା—ଅନ୍ୟରୂପ )

ଦେବାର୍ଚ୍ଚନ—ସଂ. ବି. ( ୬ଷ୍ଠୀ ତତ୍, ଦେବ+ଅର୍ଚ୍ଚନ )—ଦେବୋ-
Debārchchana ପାସନା—Worship of a Deity.
ଦେ. ବି—ରାଜାମାନଙ୍କର ସ୍ନାନାନ୍ତେ ଦୈନିକ ସନ୍ଧ୍ୟାବନ୍ଦନାଦି କାର୍ଯ୍ୟ—The daily rite of worship performed by a Rājā after bath.

ନୃପତିଙ୍କର ଦେବାର୍ଚ୍ଚନ ସମୟରେ
ଦେଖିଲେ ନଳପ୍ରିୟା ସୁନନ୍ଦା ସଙ୍ଗରେ—କୃଷ୍ଣସିଂହ. ମହାଭାରତ. ବନ ।

ଦେବାଲ୍ ( ଇତ୍ୟାଦି )—ଦେୱାଲ୍ ଇତ୍ୟାଦି ( ଦେଖ )
Debāl ( etc ) Dewāl etc ( See )

ଦେବାଳ—ଦେ. ବି. ( ସଂ. ଦେବାଳୟ ) —୧ । ଦେବାଳୟ—
Debāla 1. Temple.
ଦେଉଳ
ଦେଉଳ ୨ । ଦେବମାୟା—
2. Illusion created by the Gods

ଦେବାଳୟ—ସଂ. ବି ( ୬ଷ୍ଠୀ ତତ୍; ଦେବ+ଆଳୟ )—
Debālaya ୧ । ଦେଉଳ; ଦେବମନ୍ଦିର—1. Temple.
୨ । ସ୍ୱର୍ଗ—2. Heaven.

ଦେବାଶ୍ୱ ସଂ ବି. ( ୬ଷ୍ଠୀ ତତ୍; ଦେବ+ଅଶ୍ୱ )—ଇନ୍ଦ୍ରଙ୍କ ଅଶ୍ୱ;
Debāswa ଉଚ୍ଚୈଃଶ୍ରବା—Uchchaihsrabā, the horse of Indra.

ଦେବାଲି ( ଇତ୍ୟାଦି )—ଦେୱାଲି ଇତ୍ୟାଦି ( ଦେଖ )
Debāli ( etc ) Dewāli etc ( See )

ଦେବାହାର—ସଂ. ବି. ( ୬ଷ୍ଠୀ ତତ୍, ଦେବ+ଆହାର )—ଅମୃତ—
Debāhāra Ambrosia; nectar.

ଦେବିକା—ସଂ. ବି—୧ । ( ବୈଦ୍ୟକ ) ଧାତୁରି ( ଦେଖ )
Debikā Dhāturā ( See )
୨ । ଘାଘରା ନଦୀ ( ହି· ଶବ୍ଦସାଗର )—
2. The river Ghāgarā.

ଦେବିକା ତୀର୍ଥ—ଦେବ—୧ । ହିନ୍ଦୁମାନଙ୍କର ତୀର୍ଥବିଶେଷ—
Debikā tirtha 1. A sacred place of Hindus; a place of Hindu pilgrimage.

ଦେବିକା ତୀର୍ଥରେ ଦ କଲେ କାତ—କୃଷ୍ଣସିଂହ, ମହାଭାରତ. ବନ ।

୨ । ସରଯୂ ନଦୀ ( ପ୍ରକୃତିବାଦ )—
2. The river Sarajū.

ଦେବିଳ—ସଂ. ବିଣ. ପୁଂ· ( ଦେବ+ଇଲ )—୧ । ଦେବପରାୟଣ—
Debila 1. God-fearing; saintly.
(ଦେବିଳା—ସ୍ତ୍ରୀ) ୨ । ପରମଧାର୍ମିକ—2. Pious.

ଦେବୀ—ସଂ. ବି. ସ୍ତ୍ରୀ ( ଦେବ+ସ୍ତ୍ରୀ. ଈ )—୧ । ସ୍ତ୍ରୀ ଦେବତା—
Debi 1. Goddess.
୨ । ମହାଶକ୍ତି; ଦୁର୍ଗା—2. The Goddess Durgā.
୩ । ପାଟରାଣୀ; ରାଜମହିଷୀ—3 The chief queen.
୪ । ବ୍ରାହ୍ମଣୀ—4. A Brāhmaṇi woman.
୫ । ପୂଜ୍ୟା ବା ମାନ୍ୟା ସ୍ତ୍ରୀ—5. A respected female.

[ ଦ୍ର—ସଧବା ବ୍ରାହ୍ମଣୀମାନଙ୍କୁ 'ଦେବୀ' ଓ ବିଧବାମାନଙ୍କୁ 'ଦେବ୍ୟା' ଉପାଧି ଦିଆଯାଇ ଲେଖାଯାଏ । କ୍ଷତ୍ରିୟ ଓ କରଣ ସ୍ତ୍ରୀମାନଙ୍କ ନାମ ପରେ ବ୍ୟବହୃତ 'ଦେଈ' ମଧ୍ୟ 'ଦେବୀ'ର ଅପଭ୍ରଂଶ । ଶୂଦ୍ରାସ୍ତ୍ରୀମାନଙ୍କ ନାମ ପରେ 'ଦାସୀ' ବ୍ୟବହୃତ ହୁଏ । ଆଜିକାଲି କି ବ୍ରାହ୍ମଣୀ, କି କ୍ଷତ୍ରିୟା, କି ଶୂଦ୍ରା ସମସ୍ତେ ଦେବୀ ଉପାଧି ବ୍ୟବହାର କରୁଥିବାରୁ ଦେଖାଯାଏ । ]

୬ । ( ବୈଦ୍ୟକ ) ଶାଳପର୍ଣ୍ଣୀ ( ଦେଖ )
6. Sālaparṇṇi ( See )
୭ । ( ବୈଦ୍ୟକ ) ପିଡ଼ଙ୍ଗ ( ଦେଖ )
7. Pirdanga ( See )
୮ । (ବୈଦ୍ୟକ) ମୂର୍ବା (ଦେଖ)—8. Mūrbbā (See)
୯ । ( ବୈଦ୍ୟକ ) ଅଷାଢ଼ୁଆ ( ଦେଖ )
9. Ashārdhuā ( See )
୧୦ । ( ବୈଦ୍ୟକ ) ଅଣସୋରିଷିଆ; ଆଦିତ୍ୟଭକ୍ତା ( ଦେଖ )
10. Ādityabhaktā ( See )

୧୧ । ସୁଶୀଳା ଓ ସଦାଗୁରୁଣୀ ସ୍ତ୍ରୀ ( ହ୍ର. ଶବ୍ଦସାଗର )—
11. A virtuous woman.
୧୨ । ନାଗରମୁଥା ( ହ୍ର. ଶବ୍ଦସାଗର )—
12. The big variety of grass-root
୧୩ । ହରଡ଼ା ( ହ୍ର. ଶବ୍ଦସାଗର )—13. Myrobalan.
୧୪ । ତଶି ( ହ୍ର. ଶବ୍ଦସାଗର )—14. Linseed
୧୫ । ଶ୍ୟାମା ପକ୍ଷୀ ( ହ୍ର. ଶବ୍ଦସାଗର )—
15. A kind of myna bird.
ଦେ. ବି. ସ୍ତ୍ରୀ—ରାଜାମାନଙ୍କର ପାଟରାଣୀଙ୍କ ଛଡ଼ା ଅନ୍ୟ ରାଣୀମାନଙ୍କ ଉପାଧି - The title of the Ranees other than the principal Ranee.

**ଦେବୀଦ୍ୱାର**—ଦେ. ବି—୧ । କଟକ ଜିଲ୍ଲାର ଡମପଡ଼ା ରାଜ୍ୟର ଅନ୍ତର୍ଗତ ମହାନଦୀ ତୀରବର୍ତ୍ତୀ ସ୍ଥାନବିଶେଷ—
Debidwāra 1. Name of a place on the shore of the Mahānadi in the Dompara estate.
ଇନ୍ଦୁ ଦେବୀ ଦ୍ୱାର ଚଣ୍ଡିକା ବଳେ ଦିହ ବୁଝରେ ।
ରାଧାନାଥ. ଚନ୍ଦ୍ରଭାଗା ।
୨ । ଡମପଡ଼ାର ସ୍ୱନାମପ୍ରସିଦ୍ଧ ପର୍ବତମାଳା—
2. Name of a range of hills in the Dompara estate.
ଧୀରେ ଦେବୀ ଦ୍ୱାର ଗିରି ଶୃଙ୍ଗେ ରବି । ରାଧାନାଥ. ନନ୍ଦିକେଶ୍ୱରୀ ।

**ଦେବୀ ନଦୀ**—ଦେ. ବି. (ନାମ)—ମହାନଦୀର ଶାଖାନଦୀବିଶେଷ—
Debi nadi Name of a branch of the Mahānadi river.
ଦେବୀ ନଦୀ ତଟରେ ମୃତ୍ୟୁ ହେବ ସେ ସ୍ଥାନରେ ।
ପ୍ରାଚୀ ମାହାତ୍ମ୍ୟ ଗୀତା ।
[ ଦ୍ର—କାଠଯୋଡ଼ି ନସ୍ରଜଠାରୁ ମହାନଦୀରୁ ବାହାରି ୨୦ ମାଇଲ ଯିବା ପରେ ଦେବୀ ନଦୀ ଆଖ୍ୟା ଧାରଣ କରିଅଛି । ]

**ଦେବୀପାଦହରା**—ଦେ. ବି. (ନାମ)—ଭୁବନେଶ୍ୱରର ପବିତ୍ର ସରୋବରବିଶେଷ—
Debipādaharā Name of a sacred tank in Bhubaneswara.

**ଦେବୀ ପୁରାଣ**—ସଂ. ବି—ଦେବୀ ମାହାତ୍ମ୍ୟ ( ଦେଖ )
Debi purāna Debi māhātmya (See)

**ଦେବୀ ଭାଗବତ**—ସଂ.ବି. (ଭଗବତୀ ଦେବୀଙ୍କୁ ଅବଲମ୍ବନ କରି ଯେଉଁ ଗ୍ରନ୍ଥ ଲିଖିତ ହୋଇଅଛି; ମ. ପ. ପ୍ଲେ )—
Debi bhāgabata ଦୁର୍ଗାଙ୍କ ମାହାତ୍ମ୍ୟ ବର୍ଣ୍ଣନାତ୍ମକ ପୁରାଣବିଶେଷ—
A mythological work on Durgā.
[ ଦ୍ର—କେହି କେହି ଏହାକୁ ପୁରାଣ ଓ କେହି କେହି ଉପପୁରାଣ ବୋଲନ୍ତି । ଏଥିରେ ଭାଗବତ ପରି ୧୨ ସ୍କନ୍ଧ ଓ ୧୮ ହଜାର ଶ୍ଳୋକ ଅଛି । ଦେବୀ ଭାଗବତରେ ଗାର୍ଗିକ ଭାବର ପ୍ରବଳତା ଲକ୍ଷିତ ହୁଏ । ଏଥିରେ ଭଗବତୀଙ୍କ ଉପାସନା ଓ ପୀଠମାନଙ୍କ ବର୍ଣ୍ଣନା ଅଛି । ]

**ଦେବୀ ମାହାତ୍ମ୍ୟ**—ସଂ. ବି—ମାର୍କଣ୍ଡେୟ ପୁରାଣାନ୍ତର୍ଗତ ପ୍ରସିଦ୍ଧ ଗ୍ରନ୍ଥ;ଦୁର୍ଗାଙ୍କ ବିଷୟ ବର୍ଣ୍ଣନାତ୍ମକ ଗ୍ରନ୍ଥ; ଚଣ୍ଡୀ ଗ୍ରନ୍ଥ—
Debi māhātmya A mythological work on the acts done by Durgā.

**ଦେବୀ ରଥ**—ଦେ. ବି. (ନାମ)—ସୁଭଦ୍ରାଙ୍କ ରଥର ନାମ—
Debi ratha The name of the car in which the Goddess Subhadrā is drawn during the car festival of Puri.
[ ଦ୍ର—ଏହାର ଅନ୍ୟ ନାମ ଦେବ ଦଳନ । ]

**ଦେବୀ ଲତା**—ସଂ. ବି. ( ସଂ. ଚଣ୍ଡୀ )—
Debi latā ଔଷଧରେ ବ୍ୟବହୃତ ଲତାବିଶେଷ ( ହରେକୃଷ୍ଣ ଦ୍ରବ୍ୟଗୁଣ )—Name of a medicinal creeper.

**ଦେବୀ ସୂକ୍ତ**—ସଂ. ବି. ( ମ. ପ. ପ୍ଲେ, ଦେବୀଙ୍କ ଉପାସନାରେ ବ୍ୟବହୃତ ସୂକ୍ତ )—ଋଗ୍ବେଦ ଶାକଲ ସଂହିତାର ଅନ୍ତର୍ଗତ ଭଗବତୀଙ୍କ ସୂକ୍ତ—Title of a vedic hymn.
Debi sūkta

**ଦେବେଜ୍ୟ**—ସଂ. ବି. ( ଦେବ + ଇଜ୍ୟ=ପୂଜ୍ୟ; ଆରୁର୍ଯ୍ୟ )—
Debejya ସୁରଗୁରୁ; ବୃହସ୍ପତି—Bruhaspati, the preceptor of the Gods.

**ଦେବେଶ**—ସଂ. ବି. ପୁଂ. ( ୬ଷ୍ଠୀ; ଦେବ + ଈଶ )—
Debesa ୧ । ମହାଦେବ—1. God Siba.
(ଦେବେଶୀ—ଅନ୍ୟରୂପ) ୨ । ବିଷ୍ଣୁ—2. God Bishnu.
୩ । ପରମେଶ୍ୱର—3. God.
୪ । ଇନ୍ଦ୍ର—4. Indra.

**ଦେବେଷ୍ଟ**—ସଂ. ବି. ( ୩ୟା ତତ୍; ଦେବ+ଇଷ୍ଟ )—
Debeshta ୧ । ଦେବବାଞ୍ଛିତ—1 Desired by the Gods
୨ । ଦେବତାଙ୍କ ପ୍ରିୟ—
2. Beloved of the Gods.
ବି—୧ । ଗୁଗ୍ଗୁଲ—1. Bdellium.
୨ । ମହାମୋଦା—2. A medicinal plant.

**ଦେବୋତ୍ତର**—ସଂ. ବିଣ. ( ଦେବ+ଉତ୍ତର=ଯୋଗ )—
Debottara ୧ । ଦେବ ସେବା ପାଇଁ ଉତ୍ସୃଷ୍ଟ ସମ୍ପତ୍ତି—
1. ( property) Dedicated to the worship of an idol.
୨ । ଦେବ ସେବାରେ ନିଯୁକ୍ତ (ସମ୍ପତ୍ତି)—
2. (property) Applied to the worship of an idol.
ଦେ. ବି—ଦେବ ସେବା ପାଇଁ ଉତ୍ସୃଷ୍ଟ ସମ୍ପତ୍ତି—
Endowment; endowed property.
[ ଦ୍ର—ଏହି ପରି ବ୍ରହ୍ମୋତ୍ତର, ପିରୋତ୍ତର ଶବ୍ଦମାନ ବ୍ୟବହୃତ ହୁଏ । ]

**ଦେବୋତ୍ତର ଆଇନ୍**—ଦେ. ବି—ମଠ ଓ ଦେବ ସେବା ପରିଚାଳନ ପାଇଁ ଉତ୍ସୃଷ୍ଟ ସମ୍ପତ୍ତିର ତତ୍ତ୍ୱାବଧାରଣ ସମ୍ପର୍କେ ସରକାର କରିଥିବା ଆଇନ୍—The Endowment Act.
Debottara āin
[ ଦ୍ର—ଏହା ଇଣ୍ଡିଆ କାଉନ୍ସିଲର ୧୮୬୩ ସାଲର ୨୦ ଆଇନ୍ ଅଟେ । ]

ଦେବୋତ୍ତର କମିଟୀ—ଦେ. ବ—ଦେବୋତ୍ତର ସମ୍ପତ୍ତିର ପରିଚାଳନାର୍ଥ
Debottara kamiṭī ଜଜ୍ ସାହେବଙ୍କ ଦ୍ୱାରା ନିଯୁକ୍ତ ସମିତି—
Endowment-committee appointed by the District Judge

ଦେବୋତ୍ତର ଘେନାଣ ମଧ୍ୟସ୍ୱତ୍ୱାଧିକାରୀ ସତ୍ୱ—ଦେ. ବ—
Debottara ghenāṇa madhyaswatwādhikārī satwa
କଟକଜିଲ୍ଲାର କେନ୍ଦ୍ରାପଡ଼ା ଅଞ୍ଚଳରେ ଥିବା ଏକପ୍ରକାର ଦେବୋତ୍ତର ମଧ୍ୟସ୍ୱତ୍ୱ—A kind of religious endowment undertenure in the district of Cuttack.

ନିଷ୍କର—ଦେ. ବ—ଦେବ ସେବା ପାଇଁ ଉତ୍ସୃଷ୍ଟ ଯେଉଁ
Debottara nishkara ଜମିରୁ ଜମିଦାର ଖଜଣା ନଅନ୍ତି ନାହିଁ—
Rent-free Debottar land.

ଦେବୋତ୍ତର ବାଜ୍ୟାପ୍ତି—ଦେ. ବ—ଦେବ ସେବା ପାଇଁ ଉତ୍ସୃଷ୍ଟ
Debottara bājyāpti ଯେଉଁ ଜମିର ସନନ୍ଦ ସମ୍ବନ୍ଧେ ଇଂରାଜ ସରକାର ସନ୍ତୋଷଜନକ ପ୍ରମାଣ ନ ପାଇବାରୁ ତହିଁରେ କର ଧାର୍ଯ୍ୟ କରି ଅଛନ୍ତି—Resumed revenue-free endowed land.

ଦେବୋତ୍ତର ବାହେଲ୍—ଦେ. ବ—ଦେବ ସେବା ପାଇଁ ଉତ୍ସୃଷ୍ଟ ଯେଉଁ
Debottara bāhel ଜମିର ରାଜସ୍ୱ ଇଂରାଜ ସରକାର ମାଫ୍ ଦେଇ ଅଛନ୍ତି—Confirmed Lakharāj dedicated to an idol.

ଦେବୋତ୍ତର ଲାଖରାଜ୍—ଦେ. ବ—ଚିରକାଳ ରାଜସ୍ୱ ମାଫ୍ ପାଇଥିବା
Debottara lākharāj ଦେବୋତ୍ତର ଜମି—Revenue-free land dedicated to an idol.

ଦେବୋତ୍ଥାନ—ସ. ବ. (୬ଷ୍ଠୀ ତତ୍, ଦେବ+ଉତ୍ଥାନ)—
Debotthāna ୧ । ଉତ୍ଥାନ ଏକାଦଶୀ (ଦେଖ)
(ଦେବୋତ୍ଥାପନ—ଅନ୍ୟରୂପ) 1. Utthāna ekādaśī (See)
୨ । ଉତ୍ଥାପନ ଚତୁର୍ଦ୍ଦଶୀ (ଦେଖ)—
2. Utthāpana chaturddaśī (See)

ଦେବୋନ୍ମାଦ—ସ. ବ—ଏକପ୍ରକାର ଉନ୍ମାଦ ରୋଗ—
Debonmāda Religious mania.
(ଯଥା—ଏଥିରେ ରୋଗୀ ସର୍ବଦା ଶୁଚୀ ରହେ, ସୁଗନ୍ଧ ଫୁଲର ମାଳା ପିନ୍ଧେ, ଆଖି ପିଛୁଳେ ନାହିଁ ଓଁଷ୍ଟ୍ରରେ କଥା କହେ—ହି. ଶବ୍ଦସାଗର ।)

ଦେବୌକା—ସ. ବ. (ଦେବ+ଓକସ୍=ବାସସ୍ଥାନ; ୧ମା. ବ)—
Debaukā ସୁମେରୁ ପର୍ବତ—The mythological Sumeru mountain.

ଦେମାକ୍ (ଇତ୍ୟାଦି)—ଦମାକ୍ ଇତ୍ୟାଦି (ଦେଖ)
Demāk (etc) Dimāk etc (See)

ଦେମାକି—ଦେ. ବ—ଦମାକି (ଦେଖ)
Demāki Dimāki (See)

ଦେମୁଲ୍ ପୂଜା—ପ୍ରାଦେ. (ସମ୍ବଲପୁର) ବ—୧ । ଦେପୂଜା (ଦେଖ)
Demulpūjā 1. Depūjā (See)
୨ । ଗ୍ରାମଦେବତାଙ୍କ ଅସ୍ଥାନ—
2. The seat of a village-Deity.

ଦେୟ—ସ. ବିଣ. (ଦା ଧାତୁ+କର୍ମ ଯ)—
Deya ୧ । ଦାନ କରିବାର ଉପଯୁକ୍ତ—
(ଦେୟା—ସ୍ତ୍ରୀ) 1. Fit to be given away.
୨ । ଯାହା ଦେବାକୁ ହେବ; ଯାହା ଦେବା ଉଚିତ—
2. Which must be given; payable.
ବି—ଦେୟ ଅର୍ଥ ବା ବସ୍ତୁ—
A thing or money payable.

ଦେରାଦୁନ୍—ଦେ. ବ (ନାମ)—(ସ. ଦ୍ରୋଣଦୁଗର ଅପଭ୍ରଷ୍ଟ;
Derādun ସ୍ୱାମୀ ସ୍ୱମାନନ୍ଦ ପୃ ୧୫୭ ଦେଖ)—
(ଡେରାଡୁନ୍—ଅନ୍ୟରୂପ) ଉତ୍ତର ପଶ୍ଚିମ ପ୍ରଦେଶ ଅନ୍ତର୍ଗତ ଗୋଟିଏ ଜିଲ୍ଲା ଓ ତାହାର ରାଜଧାନୀ ।—Name of a district and town in the North-western Provinces of India.

ଦେରି--ବୈଦେ. ବ (ଫା. ଦେର୍)—ଡେରି, କାଳ ବିଳମ୍ବ—Delay.
Deri ଗ୍ରା. ଅ—ଦେରେ (ଦେଖ)
देवी; डेरी Dere (See)

ଦେରେ—ଗ୍ରା ଅ (ଇତର ବ୍ୟବହୃତ) (ସ. ସଦୃଶ)—ପରି—
Dere Like.
ଦେରି
ଦେରି
ଦେରିକା
ଦେରେକା } ଅନ୍ୟରୂପ
ଦ୍ୱିଜ କହ ତବ ବାଣୀ, ଶୁଣି ସେ ରମଣୀମଣି ।
ସ୍ନେହେ ଦ୍ରବ ବହୁତର ବାରି ଦେରେ । କବିସୂର୍ଯ୍ୟ ସଙ୍ଗୀତ ।

ଦେୱାନ୍—ବୈଦେ. ବ (ଫା. ଦେୱାନ୍)—ରାଜ୍ୟର ପ୍ରଧାନ ସଚିବ—
Dewān Minister; the chief executive officer of a state; Dewan.
[ଦ୍ର- ଏ ଫାରସୀ ଶବ୍ଦ ଓଡ଼ିଆ ଓ ଇଂରାଜୀରେ ଚଳନ୍ତି।]

ଦେୱାନ୍ ବାହାଦୁର—ବୈଦେ.ବ(ଫା)--ଭାରତ ସରକାରଙ୍କ ପ୍ରଦତ୍ତ ସମ୍ମାନ-
Dewān bāhādur ସୂଚକ ଉପାଧିବିଶେଷ—An honorary title given by the India Government.

ଦେୱାନୀ—ବୈଦେ. ବ (ଫା)—ଦେବାନଙ୍କ ପଦ—The post of
Dewānī a Dewan.
ବିଣ—ସ୍ୱତ୍ୱାସ୍ୱତ୍ୱ ବିଷୟକ ବିଚାର ଅଦାଲତ ସମ୍ବନ୍ଧୀୟ—
Pertaining to the civil court; civil.

ଦେୱାନୀ ଅଦାଲତ୍—ବୈଦେ. ବ (ଫା)—ଯେଉଁ ବିଚାରାଳୟରେ
Dewānī adālat ସ୍ୱତ୍ୱାସ୍ୱତ୍ୱ ଓ ବିଷୟାଧିକାର ସମ୍ବନ୍ଧେ ବିଚାର କରାଯାଏ—Civil court.

ଦେୱାନୀ ଆମ୍—ବୈଦେ. ବ (ଫା. ଦେୱାନୀ ଆମ୍)—ପ୍ରକାଶ୍ୟ ରାଜସଭା;
Dewānī ām ଯେଉଁ ରାଜସଭାରେ ରାଜାଙ୍କ ସମ୍ମୁଖରେ ବିଚାର-ପ୍ରାର୍ଥୀ ହୋଇ ସାଧାରଣ ଲୋକେ ଉପସ୍ଥିତ ହୋଇ ପାରନ୍ତି—A king's court where the king is accessible to every suitor.

ଦେୱାନୀ ଖାସ୍—ବୈଦେ. ବ (ଫା. ଦେୱାନୀ ଖାସ୍)—ମନ୍ତ୍ରୀମାନଙ୍କ ସହିତ
Dewānī khās ରାଜାଙ୍କର ଗୁପ୍ତ ପରାମର୍ଶ ସଭା—
Privy council.

ଦେୱାନୀ ଫାଟକ—ବୈଦେ. ବ (ଫା. ଦେବାନୀ ଫାଠକ୍ )—ଯେଉଁ
Dewāni phāṭaka ଜେଲ୍‌ଖାନାରେ ଉତ୍ତମର୍ଣ୍ଣଙ୍କ ଟଙ୍କା ପରିଶୋଧ
ଦେବାନୀଫାଟକ; **दिवानीफाटक** ନ କରିବା ଖାତକମାନଙ୍କୁ ବନ୍ଦୀ
(ଦେୱାନ ଫାଟକ—ଅନ୍ୟରୂପ) କରି ରଖାଯାଏ—Debtors' prison; civil prison
[ଦ୍ର—ଯେଉଁ ଦେଣଦାରର ଋଣ ପରିଶୋଧ କରିବା କ୍ଷମତା ସତ୍ତ୍ୱେ ଉତ୍ତମର୍ଣ୍ଣଙ୍କୁ ସେ ପରିଶୋଧ ନ କରେ, ଉତ୍ତମର୍ଣ୍ଣଙ୍କ ପ୍ରାର୍ଥନା ଓ ଖରଚରେ ତାକୁ ବିନା ପରିଶ୍ରମରେ ଦେୱାନୀ ଫାଟକରେ ବନ୍ଦୀ କରି ରଖାଯାଏ]

ଦେୱାଲ୍—ବୈଦେ. ବି (ଫା.)—୧ । କାନ୍ଥ—1. Wall.
Dewāl ୨ । ପ୍ରାଚୀର; ପାଚେରି—Compound wall.
ଦେଓୟାଲ; **दिवाल**

ଦେୱାଲ୍‌ଗିରି—ବୈଦେ.ବି (ଫା.)—କାନ୍ଥରେ ଲଗାଯିବା ପ୍ରଦୀପବିଶେଷ—
Dewālgiri Wall lamp.
ଦେଓୟାଲ ଗିରି; **दिवालगिरी**
(ଦେଓ୍ୱାଲଗିରି—ଅନ୍ୟରୂପ)

ଦେୱାଲି—ଦେ. ବି ( ସଂ ଦୀପାବଳୀ )—କାର୍ତ୍ତିକ ମାସର ଦୀପାବଳୀ
Dewāli ଅମାବାସ୍ୟା—The new moon of the month
ଦେବାଳୀ; **दिवाली** of Kārttika.

ଦେୱାଲିଆ—ଦେ. ବି—ଋଣ ପରିଶୋଧ କରିବାକୁ ଅକ୍ଷମ—
Dewālia Insolvent; head over ears in debt;
ଦେବାଲିୟା ଦିବାଲିୟା, **दिवाला** indebted.

ଦେଶ—ସଂ. ବି (ଦିଶ୍ ଧାତୁ=କହିବା+କର୍ମ. ଅ )—୧ । ପୃଥିବୀର
Desa ଅଂଶବିଶେଷ; ଅଞ୍ଚଳ; ସ୍ଥାନ—1 A part of the earth; a tract of country; place; region.
୨ । ଏକ ଜାତୀୟ ବା ଏକଭାଷା ବ୍ୟବହାରୀ ବ୍ୟକ୍ତିମାନଙ୍କର ନିର୍ଦ୍ଦିଷ୍ଟ ବାସସ୍ଥାନ—2. A country belonging to one nation.
୩ । ମହାଦେଶର ଅଂଶ—3. Country; one of the component parts of a continent.
୪ । ଜନ୍ମସ୍ଥାନ; ମାତୃଭୂମି—
4. A country of one's birth; mother country.
୫ । ଦିଗ—5. Quarter of the globe; point of the compass.
୬ । ଦେହର ଅଙ୍ଗ ପ୍ରତ୍ୟଙ୍ଗ ବା ଅଂଶ ବା ଭାଗ; ଅବୟବ—
6. A part or limb of the body.
(ଯଥା—ପୃଷ୍ଠଦେଶ, ଗଣ୍ଡଦେଶ ଇତ୍ୟାଦି ।)
୭ । କୌଣସି ପଦାର୍ଥର ଅଂଶ—
7. Part of a thing.
[illegible]
୮ । ରାଜ୍ୟ; ଏକ ଶାସନାଧୀନ ଅଞ୍ଚଳ—
8. Kingdom; state.
ଦେ. ବି—୧ । ନିର୍ଦ୍ଦିଷ୍ଟ ଅଞ୍ଚଳ—1. A particular tract of a country; locality.
ଦେଶରେ ପାଣ୍ଡ, ଗଳରେ ବାଣ୍ଡ—ଢଗ ।
୨ । ଗ୍ରାମ; ଜନପଦ; ମଫସଲ—
2 Mofassal; the country side.
୩ । ଜାତିଆମାନଙ୍କର ବିଭିନ୍ନ ଅଞ୍ଚଳ ନିବାସୀ ଜାତିଭାଇମାନେ—
3. All the castemen of a caste-guild inhabiting different places
୪ । ଜାତିଆମାନଙ୍କର ଜାତିଆଣ ସଭା—4. An assemblage or meeting of a caste-guild representing a large number of villages.
(ଯଥା—ଏ କଥାପାଇଁ ଦେଶ ବସାଇ ବୁଝି ନେବା ।)
୫ । ଗ୍ରାମବାସୀ ବା ସର୍ବସାଧାରଣ—
5 The public or village community.
୬ । ରାଜ୍ୟର ପ୍ରଜା ସମୂହ—6. The whole body of the subjects of a State.
(ଯଥା—ଦେଶ ମାଡିଲେ ରାଜାର ଉପାୟ କଣ ?)
[ ଦ୍ର—ଅନେକଗୁଡ଼ିଏ ଦେଶରେ ଗୋଟିଏ ମହାଦେଶ ହୁଏ । ଦେଶର କ୍ଷୁଦ୍ର ଅଂଶମାନଙ୍କ ନାମ ପ୍ରଦେଶ; ପ୍ରଦେଶର ଅଂଶ ବିଭାଗ, ବିଭାଗର ଅଂଶ ଜିଲ୍ଲା; ଜିଲ୍ଲାର ଅଂଶ ସବ୍‌ଡିଭିଜନ୍ । ]

ଦେଶକ—ସଂ. ବି. ପୁଂ ( ଦିଶ୍ ଧାତୁ=ଆଜ୍ଞା କରିବା+କର୍ତ୍ତୃ. ଅକ )—
Desaka ୧ । ଉପଦେଶକ; ଶିକ୍ଷକ—1. A preceptor;
(ଦେଶିକା—ସ୍ତ୍ରୀ) teacher.
୨ । ଶାସନକର୍ତ୍ତା—2. A governor

ଦେଶକାରି—ସଂ. ବି—ଦେଶାକ୍ଷ ( ଦେଖ )
Desakāri Desāksha ( See )
(ଦେଶପାଳୀ—ଅନ୍ୟନାମ) [ ଦ୍ର—ଦେଶକଳୀ, ଦେଶକାର, ଦେଶଗାନ୍ଧାର, ଦେଶାଖୀ, ଦେଶମଲ୍ଲାର, ଦେଶାଂଙ୍କା, ଦେଶାକ୍ଷ, ଦେଶଗାନ୍ଧାର ନାମରେ ଅନ୍ୟ କେତେଗୁଡ଼ିଏ ରାଗିଣୀ ଅଛି । ଏ ସବୁ ଭିନ୍ନ ଭିନ୍ନ ଜାତିର ଓ ଭିନ୍ନ ଭିନ୍ନ ଋତୁରେ ଭିନ୍ନ ଭିନ୍ନ ସମୟରେ ଗେୟ । ]

ଦେଶକାଳଜ୍ଞ—ସଂ. ବିଣ ପୁଂ (ଦେଶ+କାଳ+ଜ୍ଞା. ଧାତୁ କର୍ତ୍ତୃ. ଅ)—
Desakālajña ୧ । ଯେଉଁ ଲୋକ ଦେଶାଚାର ଓ ଉଚିତ ସମୟ
(ଦେଶକାଳଜ୍ଞା—ସ୍ତ୍ରୀ) ପ୍ରତି ଲକ୍ଷ୍ୟ ରଖି କାର୍ଯ୍ୟ କରେ—1. One
(ଦେଶକାଳଜ୍ଞତା—ବି) who acts properly, keeping in
(ଦେଶକାଳବିତ୍—ଅନ୍ୟରୂପ) view the manners and customs prevalent in a country and the proper time for action.
୨ । କେଉଁ କାର୍ଯ୍ୟ କେଉଁ ଦେଶରେ ଓ କେଉଁ କାଳରେ କଲେ ଶୋଭନୀୟ ହେବ, ଏଥି ପ୍ରତି ଦୃଷ୍ଟି ରଖି ଯେ କାର୍ଯ୍ୟ କରେ—2. One who adopts himself to his present surroundings or circumstances.

ଦେଶ କାଳ ପାତ୍ର—ସଂ. ବି (ଦ୍ୱନ୍ଦ୍ୱ; ଦେଶ+କାଳ+ପାତ୍ର)—କୌଣସି
Desa kāla pātra କାର୍ଯ୍ୟ କରିବାର ଉପଯୁକ୍ତ ସ୍ଥାନ, ଉପଯୁକ୍ତ ସମୟ ଓ ତହିଁପାଇଁ ଉପଯୁକ୍ତ ବ୍ୟକ୍ତି—The proper place, time and person with reference

to an act; the proper place, time and object of an act; the surroundings; all the circumstances connected with an action.

**ଦେଶକାଳବିତ୍**—ସଂ. ବିଣ. ପୁଂ(ଦେଶ+କାଳ+ବିଦ୍ ଧାତୁ+କର୍ତ୍ତୃ. କ୍ୱିପ୍)
Desakālabit ଦେଶକାଳଜ୍ଞ (ଦେଖ)— Desakālajña (See)

**ଦେଶ କାଳି**—ପ୍ରାଦେ (ପୁରୀ) ବି.—ସ୍ୱଦେଶକୁ ଗଲେ ପଣ୍ଡାଙ୍କୁ ଟଙ୍କା ସୁଝିବା
Desa kāli ପାଇଁ ଯାତ୍ରୀ ତୀର୍ଥରେ ଲେଖି ଦେଇ ଯାଉଥିବା ଟଙ୍କାର ପରିମାଣ—The sum of money for which a pilgrim executes a bond in favour of his Paṇḍā at a holy place, when he has not sufficient money to clear the Paṇḍā's dues.

**ଦେଶକେ**—ଦେ. ଅ —୧ । ଗୋଟିଏ ଦେଶରେ —
Desake 1. In one country
୨ । ପ୍ରତ୍ୟେକ ଦେଶରେ– 2. In every country.
ଦେଶକେ ରାଜା, ନଗରକେ ନାଙ୍କୁ । ପ୍ରବ ।
୩ । ଭିନ୍ନ ଭିନ୍ନ ଅଞ୍ଚଳରେ—
3. In different localities

**ଦେଶଜ**—ସଂ. ବିଣ. (ଦେଶ+ଜନ ଧାତୁ+ଅ) – ଦେଶରେ ଜାତ —
Desaja Produced in a country.
ଦେ.ବିଣ.(ଆଧୁନିକ ଅଭିଧାନକାରମାନଙ୍କ ବ୍ୟବହୃତ ଭାଷା)—ଯେଉଁ ଶବ୍ଦମାନ ସଂସ୍କୃତ ଛଡ଼ା ଅନ୍ୟ ଭାରତୀୟ ଭାଷାରୁ ଆସି ଦେଶର ଅଧିବାସୀଙ୍କ ବ୍ୟବହାରରୁ ଭାଷାରେ ବ୍ୟବହୃତ ହୋଇଅଛି—Words current in a language which have been borrowed from any Indian language other than Sanscrit
[ଦ୍ର—ଯେଉଁ ସବୁ ଶବ୍ଦ ସଂସ୍କୃତ ଶବ୍ଦମାନଙ୍କର ମୌଳିକ ରୂପ ରକ୍ଷିଅଛି ତାକୁ ତତ୍ସମ,ଯେଉଁସବୁ ଶବ୍ଦ କିଞ୍ଚିତ୍ ବିକୃତ ହୋଇଅଛି ତାକୁ ତଦ୍ଭବ ଓ ଯେଉଁ ଶବ୍ଦମାନ ସଂସ୍କୃତଛଡ଼ା ଅନ୍ୟ ଭାରତୀୟ ଭାଷାମାନଙ୍କରୁ ଅଣା ଯାଇଅଛି, କିମ୍ବା ଯାହାଁର ମୂଳଶବ୍ଦ ଅବଧି ନିରୂପିତ ହୋଇ ନାହିଁ, ଅଭିଧାନକାରମାନେ ସେ ଶବ୍ଦମାନଙ୍କୁ ଦେଶଜ ଶବ୍ଦ ରୂପେ ଗଣନା କରୁଅଛନ୍ତି ।
ଏହି ଭାଷାକୋଷରେ ତଦ୍ଭବ ଓ ସଂସ୍କୃତଛଡ଼ା ଅନ୍ୟ ଭାରତୀୟ ଭାଷାମାନଙ୍କରୁ ଆନୀତ ଶବ୍ଦମାନ ଓ ଯେଉଁ ଶବ୍ଦମାନଙ୍କର ମୂଳ ନିର୍ଣ୍ଣିତ ହୋଇ ପାରି ନାହିଁ ସେମାନଙ୍କୁ 'ଦେଶଜ' ଆଖ୍ୟା ଦିଆ ଯାଇଅଛି ।]

**ଦେଶ ଦେଶକେ**—ଦେ. ଅ.—ନାନା ଦେଶରେ; ବହୁତ ଦେଶରେ,
Desa desake ଦେଶଦେଶାନ୍ତରରେ—In different countries.
ଶୁଣ ସୁରୁଚି କଲେ ପ୍ରଚୁର, ଦେଶଦେଶକେ ସନ୍ଦେଶ ଘୂର ।
ଭଞ୍ଜ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।

**ଦେଶଦେଶା**—ଦେ. ବି.—ଦେଶବିଦେଶରେ ବା ଭିନ୍ନ ଭିନ୍ନ ଦେଶରେ
Desadesā କଥିତ ଭାଷାମାନ—Various languages spoken in different countries.
ଯେ ସୁର ନର ନାଗ ଭାଷା, କହନ୍ତି ବାକ୍ୟ ଦେଶଦେଶା ।
ଭୂପତି, ପ୍ରେମପଞ୍ଚାମୃତ ।

**ଦେଶ ଧର୍ମ**—ସଂ. ବି. (୬ଷ୍ଠୀ ତତ୍; ଦେଶ+ଧର୍ମ)—
Desa dharma ଦେଶ ପ୍ରଚଳିତ ଆଚାର ବ୍ୟବହାର ବା ରୀତି ନୀତି–The usages of a country; customs and manners of a country.

**ଦେଶ ଫେରିବା**—ଦେ. କ୍ରି—ଦେଶବିଦେଶରେ ପର୍ଯ୍ୟଟନ କରିବା—
Desa pheribā To travel in different countries.
দেশদেশ ঘুরা देशफीरना

**ଦେଶବାସୀ**—ସଂ. ବିଣ. ପୁଂ. (ଦେଶ+ବସ୍ ଧାତୁ+କର୍ତ୍ତୃ. ଇନ୍; ୧ମା.
Desabāsi ୧ବ) – ଦେଶରେ ବାସ କରୁଥିବା (ବ୍ୟକ୍ତି)—
(ଦେଶବାସିନୀ—ସ୍ତ୍ରୀ) (a person) Resident in a country.

**ଦେଶ ବାହାର**—ଦେ. ବି. (ସଂ. ଦେଶ+ବହିଷ୍କାର) – ଅପରାଧୀ ବ୍ୟକ୍ତିକୁ
Desa bāhāra ଦେଶାନ୍ତରକୁ ତଡ଼ି ଦେବା ରୂପ ରାଜଦଣ୍ଡ;
দেশান্তর নির্বাসন—Transportation; driving away
देश निकाला of an offend or from a country; banishment.
ଦେ ବିଣ.—ଦେଶାନ୍ତରିତ, ନିର୍ବାସିତ—
Banished; exiled.

**ଦେଶ ବିଧାନ**—ସଂ. ବି. (୬ଷ୍ଠୀ ତତ୍; ଦେଶ+ବିଧାନ)—
Desa bidhāna ଦେଶ ଧର୍ମ (ଦେଖ)
(ଦେଶବିଧି—ଅନ୍ୟରୂପ) Desa dharma (See)

**ଦେଶ ବିଦେଶ**—ସଂ. ବି.—ଆପଣା ଦେଶ ଓ ପର ଦେଶ—
Desa bidesa One's own country and abroad.

**ଦେଶ ଭାଷା**—ସଂ ବି.—କୌଣସି ଦେଶରେ ଚଳୁଥିବା ବା କୁହାଯାଉ-
Desa bhāshā ଥିବା ଭାଷା—The spoken language of a country; the vernacular of a country.

**ଦେଶ ମୁଖ**—ଦେ. ବି.—ପ୍ରାଚୀନ ଉତ୍କଳର ଦକ୍ଷିଣାଂଶର ପ୍ରଗଣାଧିପତି
Desa mukha ବା ପ୍ରଗଣାର ଜମିଦାର —The landlord of a Pergannah in ancient Orissa.

**ଦେଶ ରୂପ**—ସଂ ବି.—୧ । ନ୍ୟାଯ୍ୟ—
Desa rūpa 1. Justice.
୨ । ଔଚିତ୍ୟ—2. Propriety.
୩ । ପ୍ରଶଂସିତ ଦେଶ—3 A good country.

**ଦେଶାଉର**—ଦେ. ବି. (ସଂ. ସନ୍ଦେଶହର)—ଚର; ଦୂତ—
Desāura A messenger.
ଦେଶାଉର ଦେଖି ସନ୍ଦେଶ ପଚାରି କହଇ ନୃପ ସନ୍ଧାନ—ପ୍ରାଚୀ. ପ୍ରଭାତ ଶଶିସେଣୀ ।

**ଦେଶାକ୍ଷ**—ସଂ. ବି—ରାଗିଣୀବିଶେଷ —
Desāksha Name of a secondary musical air
(ଦେଶାକ୍ଷୀ—ଅନ୍ୟରୂପ) [ଦ୍ର—ଏହା ମେଘ ରାଗର ଓ ମଲ୍ଲା-ରରେ ହିନ୍ଦୋଳ ରାଗର ପତ୍ନୀ । ଏହା ସମ୍ପୂର୍ଣ୍ଣ ଜାତିର ରାଗିଣୀ; ଏହା ବର୍ଷା ଋତୁରେ ଭୋରଠାରୁ ପାଞ୍ଚ ଦଣ୍ଡ ପର୍ଯ୍ୟନ୍ତ ଗେୟ—ହି. ଶବ୍ଦସାଗର ।]

**ଦେଶାଗ୍ରର**—ସ. ବ ( ୬ଷ୍ଠୀ ତତ୍; ଦେଶ+ଅଗ୍ରର )—
Deśāchāra ଦେଶ ଧର୍ମ (ଦେଖ)—Deśa dharma ( See )

**ଦେଶାଟନ**—ସ. ବ ( ୬ଷ୍ଠୀ ତତ୍; ଦେଶ+ଅଟନ )—ଦେଶଭ୍ରମଣ;
Deśātana ଭିନ୍ନ ଭିନ୍ନ ଦେଶ ବୁଲିବା—
ଦେଶପର୍ଯ୍ୟଟନ, ଦେଶଭ୍ରମଣ } ଅନ୍ୟରୂପ Travelling in different lands.

**ଦେଶାଧିପ**—ସ. ବ (୬ଷ୍ଠୀ ତତ୍; ଦେଶ+ଅଧିପ)—୧ । ରାଜା—
Deśādhipa 1. King.
( ଦେଶାଧିପତି—ଅନ୍ୟରୂପ ) ୨ । ଦେଶର ଶାସନକର୍ତ୍ତା—
2. Ruler of a country.

**ଦେଶାନ୍ତର**—ସ. ବ ( ଅନ୍ୟ+ଦେଶ; କର୍ମଧା; ଅନ୍ୟ=ଅନ୍ତର,
Deśāntara ପରନିପାତ )—୧ । ଅନ୍ୟ ଦେଶ—
1. Another place
୨ । ବିଦେଶ; ଦୂର ଦେଶ—
2. A foreign country.
୩ । (ସ. ଦେଶ+ଅନ୍ତର) ନିର୍ବାସନ ଦଣ୍ଡ—
3. Banishment; deportation.
୪ । (ଭୂଗୋଳ ପରିଭାଷା)—ଉତ୍ତରମେରୁଠାରୁ ଦକ୍ଷିଣମେରୁ ପର୍ଯ୍ୟନ୍ତ କଳ୍ପିତ ରେଖାର ସର୍ବମାନ୍ୟ ମଧ୍ୟରେଖାର ପୂର୍ବ ବା ପଶ୍ଚିମର ଦୂରତ୍ୱ; ଲମ୍ବାଂଶ (ହି. ଶବ୍ଦସାଗର)—
(geography) Longitude.
[ଦ୍ର—ପୂର୍ବେ ଭୌଗୋଳିକ ବା ଜ୍ୟୋତିଷିକ ଗଣନା ପାଇଁ ଏହି ମଧ୍ୟରେଖା ଲଙ୍କା ବା ଉଜ୍ଜୟିନୀଠାରୁ ସୁମେରୁ ପର୍ଯ୍ୟନ୍ତ କଳ୍ପିତ ହେଉଥିଲା । ଆଜିକାଲି ଇଉରୋପର ଓ ଆମେରିକାର ଭିନ୍ନ ଭିନ୍ନ ସ୍ଥାନ ବାଟେ ଏ ରେଖା ଯାଉଥିବାର କଳ୍ପିତ ହେଉଅଛି । ଏହି ମଧ୍ୟରେଖାରୁ କୌଣସି ସ୍ଥାନର ଦୂରତ୍ୱ ସେହି କୋଣର ଅଂଶର ହିସାବରେ ଗଣନା କରି ଯାଉଅଛି—ହି. ଶବ୍ଦସାଗର । ]

**ଦେଶାନ୍ତର କରିବା**—ଦେ. କ୍ରି—ନିର୍ବାସନ କରିବା—
Deśāntara kariba To send a person to exile, to deport.

**ଦେଶାନ୍ତରିତ**—ସ ବ. (ଦେଶାନ୍ତର+ଇତ)—ରାଜଦଣ୍ଡରେ ନିର୍ବାସିତ—
Deśāntarita Banished.

**ଦେଶାନ୍ତରୀ**—ଦେ. ବିଣ (ସ. ଦେଶାନ୍ତରିତ)—ନିର୍ବାସିତ; ରାଜାଜ୍ଞାରେ
Deśāntarī ଅନ୍ୟ ଦେଶକୁ ପ୍ରେରିତ ( ଅପରାଧୀ )—
Deported; banished.
ମନ୍ତ୍ରୀ ବାସୁଦେବ ହେଲେ ଦେଶାନ୍ତରୀ—ରାଧାନାଥ, ଚନ୍ଦ୍ରଭାଗା ।

**ଦେଶାନ୍ତରୀୟ**—ସ. ବିଣ ( ଦେଶାନ୍ତର+ଭବାର୍ଥରେ ଈୟ )—
Deśāntarīya ୧ । ବିଦେଶୀୟ; ବିଦେଶରେ ଜାତ ବା ଉତ୍ପନ୍ନ—
1. Foreign; produced in a foreign country.
୨ । ଅନ୍ୟ ଦେଶବାସୀ—
2. Residing in a foreign country.
୩ । ଅନ୍ୟ ଦେଶସମ୍ବନ୍ଧୀୟ—
3. Relating to another country.

**ଦେଶିଆ**—ଦେ ବିଣ (ସ. ଦେଶୀୟ; ଅନ୍ୟ ଦେଶବାଚକ ଶବ୍ଦ ପରେ
Deśiā ଲାଗେ; ଯଥା—ବଙ୍ଗଦେଶିଆ, ଚୀନଦେଶିଆ )—
୧ । ଦେଶୀୟ—1. Pertaining to a country.
୨ । ମଫସଲିଆ; ଗ୍ରାମୀଣ—
2. Resident of a village; rural.
ପ୍ରାଦେ ( ଜୟପୁର ) ବି—ନୀଚ ଶୂଦ୍ରଜାତିବିଶେଷ—
A low caste of Śūdras living in Jayapura.

**ଦେଶିକ**—ସ. ବି—୧ । ( ଦେଶ+ଗତ୍ୟର୍ଥେ. ଇକ )—
Deśika ପଥିକ; ବାଟୋଇ—Traveller.
୨ । ( ଦିଶ୍ ଧାତୁ+ଇକ ) ଗୁରୁ—
2. Preceptor; teacher.

**ଦେଶିନୀ**—ସ. ବ. ସ୍ତ୍ରୀ ( ଦିଶ୍ ଧାତୁ=ଦେଖାଇଦେବା, କହିବା+ଇନ୍,
Deśinī ସ୍ତ୍ରୀ. ଈ )—୧ । ତର୍ଜ୍ଜନୀ; ବଡ଼ିଆଙ୍ଗୁଠି—
1. Index finger, forefinger.
୨ । ସୂଚୀ (ହି. ଶବ୍ଦସାଗର); ଛୁଞ୍ଚ—2 Needle

**ଦେଶୀ**—ସ. ବିଣ ( ଦେଶ+ସମ୍ବନ୍ଧାର୍ଥେ. ଇନ୍; ୧ମା. ୧ବ)—
Deśī ୧ । ଦେଶୀୟ—1 Pertaining to a country.
୨ । ସ୍ୱଦେଶୀୟ; ସ୍ୱଦେଶ ଜାତ, ସ୍ୱଦେଶ ପ୍ରସ୍ତୁତ—
2 Country-made; pertaining to, made in or born in one's native country.
( ଯଥା—ଦେଶୀ ଲୁଗା, ଦେଶୀ ଚିନି, ଦେଶୀ ହାକିମ, ଦେଶୀ ଘୋଡ଼ା ଇତ୍ୟାଦି । )
୩ । (ହନୁମାନଙ୍କ ମତରେ) ପାପକ ସ୍ୱରର ଭାର୍ଯ୍ୟା, ରାଗିଣୀବିଶେଷ—3. Name of a secondary musical air.
[ ଦ୍ର—ଏଥିରେ ପଞ୍ଚମ ସ୍ୱର ନାହିଁ । ଗ୍ରୀଷ୍ମକାଳର ମଧ୍ୟାହ୍ନରେ ଏହା ଗେୟ—ହି. ଶବ୍ଦସାଗର । ]
୪ । ସଙ୍ଗୀତର ଦୁଇ ପ୍ରକାରରୁ ଏକତର—
4. One of the 2 varieties of music.
[ ଦ୍ର—ସଙ୍ଗୀତ ଦାମୋଦର ମତରେ ନୃତ୍ୟ, ଗୀତ ଓ ବାଦ୍ୟକୁ ସଙ୍ଗୀତ ବୋଲିଯାଏ; ଏହା ୨ ପ୍ରକାର, ଦେଶୀ ଓ ମାର୍ଗ—ହି. ଶବ୍ଦସାଗର । ]
୫ । ତାଣ୍ଡବନୃତ୍ୟର ଏକ ଭେଦ—
5. A kind of male dance.
[ ଦ୍ର—ଏଥିରେ ଅଙ୍ଗବିକ୍ଷେପ ଅଧିକ ଓ ଅଭିନୟ କମ ହୁଏ—ହି. ଶବ୍ଦସାଗର । ]

**ଦେଶୀ ଝାଉଁ**—ଦେ. ବି—ଏକପ୍ରକାର ଝାଉଁ ଗଛ—
Deśī jhāuñ Casurina Muricata.

**ଦେଶୀ ବବୁର**—ଦେ. ବି· (ସ. ବବୁଲ;ବର୍ବୂର)—ଏ ଦେଶରେ ଜାତ
Deśī babur ବବୁର ଜାତୀୟ ଗଛ—Acacia Arabica (Kirtikar).
बाबुर
बाबुर, किकार

ଦେଶୀ ବାଦାମ—ଦେ. ବି.— ବାଦାମନାମକ ବୃକ୍ଷବିଶେଷ—
Desi bādāma Indian Almond tree

ଦେଶୀୟ—ସଂ. ବିଣ. ( ଦେଶ+ସମ୍ବନ୍ଧାର୍ଥେ. ଈୟ )—୧ । ଦେଶ
Desiya ସମ୍ବନ୍ଧୀୟ—1. Pertaining to a country.
(ଦେଶୀୟା—ସ୍ତ୍ରୀ) ୨ । ସ୍ୱଦେଶନିର୍ମିତ—
2. Swadeshi; country-made.
୩ । ସ୍ୱଦେଶୀୟ—3. Local; indigenous.
୪ । ଦେଶ ପ୍ରଚଳିତ—4. Prevalent in a country
୫ । ମଫସଲି; ଗ୍ରାମ୍ୟ—5. Provincial; rural
ସଂ. ଅ. ପ୍ରତ୍ୟୟ (ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ) ସ୍ଥାନୀୟ—
Standing in or occupying the position of.
(ଯଥା—ସେ ମୋର ପିତୃ ଦେଶୀୟ ଅଟନ୍ତି ।)
ଦେ. ବିଣ — ଦେଶଜ (ଦେଖ)—Desaja (See)

ଦେଶୁଆ -- ଦେ ବିଣ. (ସଂ. ଦେଶୀୟ) — ମଫସଲିଆ; ଗାଉଁଲି (ଲୋକ) —
Desuā Rustic (person)
(ସହରିଆ — ବିପରୀତ) मफसली देसवाला

ଦେଶ୍ୟ—ସଂ. ବି. (ଦିଶ୍ ଧାତୁ=କହିବା+କର୍ମ ଯ)—ନ୍ୟାୟର ପୂର୍ବପକ୍ଷ—
Desya A thesis; the major proposition in a syllogism.
(ଦେଶ୍ୟା—ସ୍ତ୍ରୀ)
ବିଣ.--(ଦେଶ+ସମ୍ବନ୍ଧାର୍ଥେ. ଯ)—ଦେଶୀୟ (ଦେଖ)
Desiya (See)

ଦେଷ୍ଠ—ସଂ. ବିଣ ପୁଂ (ଦାତୃ+ଅତିଶୟାର୍ଥେ. ଇଷ୍ଠ)—ଅତିଶୟ ଦାତା;
Deshtha ଅତ୍ୟନ୍ତ ଦାନଶୀଳ—Very liberal, bountiful.
(ଦେଷ୍ଠା —ସ୍ତ୍ରୀ)

ଦେଷ୍ଣୁ—ସଂ. ବିଣ (ଦା ଧାତୁ+ଶୀଳାର୍ଥେ. କର୍ତ୍ତୃ. ଇଷ୍ଣୁ)—
Deshnu ୧ । ଦାନଶୀଳ—1. Bountiful; liberal.
୨ । ଦୁର୍ଦ୍ଦମ—2. Unruly.
ବି. —୧ । ଧୋବା—1. Washerman.
୨ । ଚନ୍ଦ୍ର—2. The moon.

ଦେହ—ସଂ. ବି. (ଦିହ୍ ଧାତୁ=ଲେପନ କରିବା, ଏକତ୍ର କରିବା + କର୍ମ
Deha ଅ)—୧ । ଶରୀର; ତନୁ—1 Body.
୨ । (+ଭାବ. ଅ) —ଲେପନ—
2. Anointing; plastering; smearing.
୩ । ଅଙ୍ଗ ପ୍ରତ୍ୟଙ୍ଗ —୬. Limbs.
୪ । ଜୀବନ —4. Life.
୫ । ମୂର୍ତ୍ତି; ରୂପ—5. Image; form.
[ ଦ୍ର—ଦେହ ଦୁଇ ପ୍ରକାର; ଯୋନିଜ ଓ ଅଯୋନିଜ; ଯୋନିଜ ଦେହ ଦ୍ୱିବିଧ—ଜରାୟୁଜ ଓ ଅଣ୍ଡଜ । ଅଯୋନିଜ ଦେହ — ସ୍ୱେଦଜ, ଉଦ୍ଭିଜ୍ଜ, ଜଳଜ ଓ ତୈଜସ ଭେଦରେ ଚତୁର୍ବିଧ । ଏହା ଛଡ଼ା ଅଙ୍ଗୁଷ୍ଠ ପରମିତ ସୂକ୍ଷ୍ମ ଦେହ ମଧ୍ୟ ଅଛି । ଦେହ କର୍ମଫଳାଫଳ ଭୋଗ କରେ । ହି. ଶବ୍ଦସାଗର]
ଦେ. ବି—୧ । ଜୀବନ କାଳ—1. Lifetime.
( ଯଥା—ଆମ ବାପାଙ୍କ ଦେହକରେ ଏପରି ଘଟଣା ଘଟି ନ ଥିଲା । ]
୨ । ସ୍ୱାସ୍ଥ୍ୟ—2. Health.
(ଯଥା—ତାଙ୍କ ଦେହ ଖରାପ ହୋଇଅଛି ।)

ଦେହ (ଇତ୍ୟାଦି)—ଦିହ ଇତ୍ୟାଦି (ଦେଖ)
Deha (etc) Diha etc (See)

ଦେହ କର୍ତ୍ତା—ସଂ. ବି. (ଉପପଦ; ଦେହ+କର୍ତ୍ତୃ. ୧ମା. ୧ବ)—
Deha karttā ୧ । ପୃଥିବ୍ୟାଦି ପଞ୍ଚଭୂତ—1. The 5 prime elements of Nature.
୨ । ଈଶ୍ୱର—God. ୩ । ସୂର୍ଯ୍ୟ—The sun.

ଦେହକେ—ଦେ. କ୍ରି. ବିଣ — ଜୀବିତ କାଳ ମଧ୍ୟରେ—
Dehake During the lifetime of.
ମୋ ଦେହକେ ଏରୂପେ ସୁବ ଶୁଣିବାର
କହ ମୁଁ କାହିଁ ଅଛେ ଅଉଜନ୍ମ ସାର । କୃଷ୍ଣସିଂହ. ମହାଭାରତ ବନପର୍ବ ।

ଦେହ କୋଷ—ସଂ. ବି. (୬ଷ୍ଠୀ ତତ୍; ଦେହ+କୋଷ=ଆଚ୍ଛାଦନ)—
Deha kosha ୧ । ଚର୍ମ; ଚମଡ଼ା—1. The skin covering the body.
୨ । ପକ୍ଷ—2. The wings.

ଦେହ କ୍ଷୟ—ସଂ. ବି. (୬ଷ୍ଠୀ ତତ୍, ଦେହ+କ୍ଷୟ) —
Deha kshaya ୨ । ପ୍ରାଣତ୍ୟାଗ; ମୃତ୍ୟୁ—1. Death.
୨ । ଶରୀରର ବିନାଶ—2· Decay of the body.
୩ । ରୋଗ —3. Sickness; disease.

ଦେହ ଛାଡ଼ିବା —ଦେ. କ୍ରି— ମୃତ୍ୟୁ ଲଭିବା; ମରିବା—
Deha chhārdibā To die.
देहछाड़ा କେତେ ଦିନ ପରେ କୌଶଲ୍ୟା, କୈକେୟୀ, ସୁମିତ୍ରା ଦେହ ଛାଡ଼ିଲେ ।
देहछोड़ना ମାଳକଣ୍ଠଦାସ. ପିଲାଙ୍କ ରାମାୟଣ ।
(ଦେହ ତେଜିବା —ଅନ୍ୟରୂପ)

ଦେହଜ — ସଂ. ବିଣ. (ଦେହ+ଜନ୍ ଧାତୁ+କର୍ତ୍ତୃ. ଅ)—
Dehaja ଦେହରୁ ଉତ୍ପନ୍ନ—Born of the body.
(ଦେହଜା— ସ୍ତ୍ରୀ) ବି. ପୁଂ —ପୁତ୍ର — Son.

ଦେହ ଜଳିବା — ଦେ. କ୍ରି —୧ । ଅତିଶୟ କ୍ରୋଧର ଉଦୟ ହେବା—
Deha jalibā 1. Becoming angry or enraged.
गा जला ପଢ଼ିଲେ ମନେ କ୍ରୋଧେ ଯାଏ ଦେହ ଜଳି ।
बदन जलना କୃଷ୍ଣସିଂହ. ମହାଭାରତ. ବନ ।
୨ । କଷ୍ଟ ଅନୁଭୂତ ହେବା—2. Suffering of pain.
୩ । ପୋଡ଼ିବା — 3. Burning.
୪ । ଶରୀରରେ ଜ୍ୱାଳା ଉତ୍ପନ୍ନ ହେବା—
4. Burning sensation in the body.

ଦେହ ଟାଣ—ଦେ. ବି—ଶାରୀରିକ ବଳ; କ୍ଷମତା—
Deha tāna Bodily strength; physical power.
ବରୁଣ ଅଗ୍ନି ଭୂଲେ କରିଣ କୃଷ୍ଣ ରଣ,
ତାହାଙ୍କର ଭାଙ୍ଗି ଦେଲେଟି ଦେହ ଟାଣ । କୃଷ୍ଣସିଂହ ମହାଭାରତ. ଉଦ୍ୟୋଗ ।

ଦେହ ଧର୍ମ—ସଂ. ବି. ( ୬ଷ୍ଠୀ ତତ୍; ଦେହ+ଧର୍ମ )—
Deha dharma ଶରୀରର ପ୍ରକୃତି ବା ଗୁଣ—
The attribute of the body.
ମୋର ଝିଅ ରୂପ ଦେଖିବ ଯେବେ କାମ
ରହି ନ ପାରିବ ସେ ତା'ହା ଦେହ ଧର୍ମ ।
କୃଷ୍ଣସିଂହ. ମହାଭାରତ. ଉଦ୍ୟୋଗ ।

**ଦେହ ଧାରକ**—ସଂ. ବି. ( ଦେହ + ଧୃ = ଧରିବା + କର୍ତ୍ତୃ. ଅକ )—
Deha dhāraka ଅସ୍ଥି ; ହାଡ଼—Bone.
ସଂ. ବିଣ—ଶରୀରଧାରୀ—Corporeal.

**ଦେହ ଧାରଣ**—ସଂ. ବି. ( ୬ଷ୍ଠୀ ତତ୍; ଦେହ+ଧାରଣ )—
Deha dhāraṇa ୧ । ଶରୀରର ରକ୍ଷା; ଜୀବନ ରକ୍ଷା; ବଞ୍ଚି ରହିବା—1 Living; subsistence.
୨ । ଜନ୍ମ—2. Birth.
୩ । ଶରୀରଯୁକ୍ତ ରୂପ ଗ୍ରହଣ କରିବା—2. Assumption of a corporeal body or form.

**ଦେହଧାରୀ**—ସଂ. ବିଣ. ପୁଂ. (ଦେହ + ଧୃ ଧାତୁ ଧରିବା + କର୍ତ୍ତୃ. ଣିନ୍;
Dehadhārī ସମା. ୧ବ )—୧ । ଯାହାର ଶରୀର ଅଛି; ଶରୀରୀ—
(ଦେହଧାରିଣୀ—ସ୍ତ୍ରୀ) 1. Corporeal; in flesh and blood; having a body.
୨ । ଜୀବନଧାରୀ; ଜୀବିତ—2. Living.

**ଦେହ ନ ସହିବା**—ଦେ. କ୍ରି—ଦିହ ନ ସହିବା ( ଦେଖ )
Deha na sahibā Diha na sahibā ( See )
ଗା ନା ସହା
ସେ ମୃଗ ଶ୍ରମନ୍ତର ସ୍ୱରରେ ଡାକଇ
ଡାକ ଶୁଣି ମୋହର ଦେହ ନ ସହଇ । କୃଷ୍ଣସିଂହ, ମହାଭାରତ ।

**ଦେହ ନାଶ**—ସଂ.ବି(୬ଷ୍ଠୀ ତତ୍,ଦେହ + ନାଶ)—ଦେହତ୍ୟାଗ ( ଦେଖ )
Deha nāśa Deha tyāga ( See )

**ଦେହ ପାତ**—ସଂ. ବି—ଦେହତ୍ୟାଗ (ଦେଖ)
Deha pāta Deha tyāga (See)

**ଦେହ ପୁଷ୍ଟିକର**—ସଂ. ବିଣ. (୬ଷ୍ଠୀ ତତ୍; ଦେହ + ପୁଷ୍ଟିକର)—ଯାହା
Deha pushṭikara ଦେହକୁ ପୁଷ୍ଟ ବା ସବଳ କରାଏ—Nourishing.

**ଦେହ ତତ୍ତ୍ୱ**—ସ. ବି. ( ଆଧୁନିକ ପାରିଭାଷିକ ଶବ୍ଦ )—
Deha tattwa ୧ । ଶରୀର ବିଜ୍ଞାନ—1. Physiology.
୨ । ଶରୀରର ବିଭିନ୍ନ ଅଂଶ ନିର୍ଣ୍ଣୟ ଶାସ୍ତ୍ର—2. Anatomy.

**ଦେହ ତ୍ୟାଗ**—ସ. ବି. ( ୬ଷ୍ଠୀ ତତ୍; ଦେହ+ତ୍ୟାଗ )—
Deha tyāga ମୃତ୍ୟୁ; ପ୍ରାଣ ତ୍ୟାଗ—Death.

**ଦେହଦ**—ସ. ବି. ( ଦେହ + ଦା ଧାତୁ+କର୍ତ୍ତୃ ଅ )—
Dehada ପାରଦ; ପାରା—Quick-silver; mercury.

**ଦେହ ଦାନ**—ଦେ ବି. ( ସ୍ତ୍ରୀ ପକ୍ଷରେ ପୁରୁଷକୁ )—ସୁରତ ଦାନ—
Deha dāna ( a woman's ) Letting one's-self to be copulated by a man.
ଛେନେ ହେଲେ ସେ କନ୍ୟା କୋହଳ ଭୂପତ
ବୋଇଲେ ଦେହ ଦାନ ଦିଅ ଗୋ ଯୁବତ । କୃଷ୍ଣସିଂହ, ମହାଭାରତ ଶାନ୍ତି ।
ସ. ବି—କୌଣସି କାର୍ଯ୍ୟ ନିମନ୍ତେ ନିଜର ଶରୀର ଉତ୍ସର୍ଗ—Sacrificing or offering of one's body for a certain purpose.

**ଦେହ ଦୁଖ ହେବା**—ଦେ. କ୍ରି—ଦିହ ଖରାପ ହେବା ( ଦେଖ )
Deha dukha hebā Diha kharāpa hebā (See)

**ଦେହ ଦେବା**—ଦେ. କ୍ରି—( ସ୍ତ୍ରୀ ପକ୍ଷରେ ) ପୁରୁଷର ରମଣ ସ୍ୱୀକାର
Deha debā କରିବା—( a female) To allow one's self to be copulated by a male.
ଏହାଙ୍କ ଦ୍ରୌପଦୀ ପାଞ୍ଚୋଟି ଗୃହସ୍ଥଙ୍କୁ
କି ରୂପେ ଦେହ ଦେଲେ କହ ତା ଆମଙ୍କୁ । କୃଷ୍ଣସିଂହ, ମହାଭାରତ, ଆଦି ।

**ଦେହ ଧରିବା**—ଦେ. କ୍ରି. ( ସଂ. ଦେହ ଧାରଣ )—
Deha dharibā ୧ । ଧୈର୍ଯ୍ୟ ଧରିବା; ମନକୁ ସମ୍ଭାଳିବା—
ଦେହଧବା 1. To have patience.
शरीरधारणकरना
କାମିମାନଙ୍କର ମହାମୋହ, ପୁରୁଷ କେ ଧରିବ ଦେହ ।
ଜଗନ୍ନାଥ• ଭାଗବତ ।
୨ । ବଞ୍ଚିବା—2. To live
ତାହାରେ ଅପରାଧ କରି
କେ ଅବା ଥିବ ଦେହ ଧରି । ଜଗନ୍ନାଥ. ଭାଗବତ ।

**ଦେହବନ୍ତ(ନ୍ତା)**—ଦେ. ବିଣ ( ସଂ. ଦେହବତ୍ )—ଶରୀରଧାରୀ;
Dehabanta(ntā) ଦେହଧାରୀ—
দেহবন্ত Having a body; corporeal.
देहबन्त
ତୁମ୍ଭେ ସକଳ ପିତାମାତା; ସଂସାରେ ଯେତେ ଦେହବନ୍ତା—
ପ୍ରାଚୀ ଯଶୋବନ୍ତ. ପ୍ରେମଭକ୍ତି ବ୍ରହ୍ମଗୀତା ।

**ଦେହବାନ୍**—ସ. ବିଣ. ପୁଂ—ଦେହଧାରୀ, ଶରୀରୀ—
Dehabān Corporeal.
( ଦେହବତୀ—ସ୍ତ୍ରୀ ) ସ. ବି. ପୁଂ—ଜୀବ—
Animal; living being.

**ଦେହବାସ**—ଦେ. ବି(ସ ଦେହ+ବାସସ)—ପିନ୍ଧିବା ଲୁଗା—
Dehabāsa The cloth which a man puts on.
ମୁଁ ତ କାଢ଼ି ନେଇଛି ଅଧେ ଦେହବାସ—କୃଷ୍ଣସିଂହ, ମହାଭାରତ ବନ ।

**ଦେହ ଭାରୁଁ**—ପ୍ରାଦେ. ( ସମ୍ବଲପୁର ) ବିଣ—ଦେହେ ଭାରୁଁ ( ଦେଖ )
Deha bhārun̐ Dehe bhārun̐ ( See )

**ଦେହଭୃତ୍**—ସ. ବି. ( ଦେହ+ଭୃ ଧାତୁ+କର୍ତ୍ତୃ. କ୍ୱିପ )—୧ । ଜୀବ—
Dehabhṛut 1. Aminal.
୨ । ଆତ୍ମା—2. Soul
ସ. ବିଣ—ଦେହଧାରୀ ( ଦେଖ )—Dehadhārī ( See )

**ଦେହ ଯାତ୍ରା**—ସଂ ବି. ( ୬ଷ୍ଠୀ ତତ୍; ଦେହ + ଯାତ୍ରା )—
Deha jātrā ୧ । ଶରୀରଯାତ୍ରା; ଜୀବନ ନିର୍ବାହ; ଭରଣପୋଷଣ—1 Subsistence, living; support of life; livelihood.
୨ । ମୃତ୍ୟୁ; ମରଣ—Death.

**ଦେହ ରକ୍ଷା**—ଦେ ବି. ( ୬ଷ୍ଠୀ ତତ୍; ଦେହ+ରକ୍ଷା )—
Deha rakshā ଦେହଯାତ୍ରା (ଦେଖ)—Dehajātrā (See)

**ଦେହ ରଖିବା**—ଦେ. କ୍ରି—( ବୈଷ୍ଣବ, ସାଧୁ ଆଦି ) ମରିବା—
Deha rakhibā To die ( said of anchorites ).
দেহ রক্ষাকবা
ଦେହକୁ ରଖିବ ତହୁଁ ଅଷ୍ଟ ବନ୍ଧ ପାଶ—ପ୍ରାଚୀ. ଶ୍ରୀଗୁରୁଭକ୍ତିଗୀତା ।
देह रक्षा करना

**ଦେହରୁ ଛଡ଼ା(ଡ଼େ)ଇ ଦେବା**—ଦେ.କ୍ରି—୧ । ଆପଣା ଉପରୁ କୌଣସି
Deharu chhaṛā(ṛe)i debā କାର୍ଯ୍ୟ ବା ଦୋଷ ବା ଦାୟିତ୍ୱ
(ଦେହରୁ ଛଡ଼ାଇବା—ଅନ୍ୟରୂପ) ଖସାଇଦେବା—1. To disown any responsibility or guilt.
୨ । ନିଜଠାରୁ ସମସ୍ତ ସମ୍ପର୍କ ତୁଟାଇଦେବା—
2. To cut off al connection.
ତ ଭଳେ ନ ଭଣିଲ ସେ ମୋହରୁ
ତେବଳେ ଛଡାଇ ଦେଇ ଦେହରୁ । କ.ସୂର୍ଯ୍ୟ. ବଢାକଲ୍ଲୋଳ ।

ଦେହ ଲଗା—ଦେ. ବିଣ (ସଂ. ଦେହ+ଲଗ୍ନ)—ଦିହ ଲଗା ( ଦେଖ )
Deha lagā Diha lagā ( See )

ସେ କନ୍ୟାଗଣ ମୂନଅଂଶୀ, କୃଷ୍ଣର ଦେହଲଗା ଦାସୀ—ଭୂପତି. ପ୍ରେମପଞ୍ଚାମୃତ ।

୨ । ଦେହରେ ଲୀନ—
2. Absorbed in the body of.

ଏ କନକଳ ଏଥି ବହୁଛନ୍ତି ଗଙ୍ଗା
ହୋଇବାକୁ ଯାଇ ସମୁଦ୍ର ଦେହଲଗା । କୃଷ୍ଣସିଂହ. ମହାଭାରତ. ବନ ।

ଦେହଲା—ସଂ. ବି ( ଦେହ+ଲା ଧାତୁ=ଆକ୍ରମଣ କରିବା, ଘୋଷଣ କରିବା+କର୍ତ୍ତୃ. ଅ+ଆ)—ମଦ୍ୟ, ମଦିରା—Wine.
Dehalā

ଦେହଳୀ - ସଂ. ବି ( ଦେହ+ଲା ଧାତୁ ଗ୍ରହଣ କରିବା+କର୍ତ୍ତୃ. ଅ+ସ୍ତ୍ରୀ ଈ )—୧ । ଦରୁକାଠର ତଳର କାଷ୍ଠ ଖଣ୍ଡ—
Dehalī
(ଦେହଳ-ଅନ୍ୟରୂପ) 1. Threshold; the lower log in a door-frame.

ଏତେ ବୋଲି ସକଳ ଦେହଳୀ ବଳାଇଲେ—ଭକ୍ତ. ପ୍ରେମସୁଧାନିଧି ।

୨ । ଦ୍ୱାରର ସମ୍ମୁଖସ୍ଥ ପିଣ୍ଡା—
2 The raised terrace in front of a door.

ଦେହ ଶଙ୍କୁ—ସଂ ବି—ପଥର ଖୁଣ୍ଟ (ହି. ଶବ୍ଦସାଗର)—
Deha śanku Stone pillar.
(ଦେହଶଂକୁ—ଅନ୍ୟରୂପ)

ଦେହ ଶୂଳା—ଦେ. ବିଣ —ଦିହ ଶୂଳା (ଦେଖ)
Deha śūlā Diha śūlā (See)

ଦେହ ସଂଚାରିଣୀ—ସଂ. ବି. ସ୍ତ୍ରୀ—କନ୍ୟା; ଝିଅ—(ହି. ଶବ୍ଦସାଗର)—
Deha samchāriṇi Daughter.

ଦେହ ସାର—ସଂ. ବି (୬ଷ୍ଠୀ ତତ୍; ଦେହ+ସାର)—ଦେହର ସାର ପଦାର୍ଥ; ମଜ୍ଜା; ଅସ୍ଥି ଓ ମାଂସର ମଧ୍ୟସ୍ଥ ସ୍ନେହଦ୍ରବ୍ୟ-ବିଶେଷ—Marrow; the essence of the body.
Deha sāra

ବିଣ (ବହୁବ୍ରୀହି)—ଯାହାର ଦେହ ମାତ୍ର ଅବଶିଷ୍ଟ ଅଛି—
Having the body only in existence.

ଦେହ ସୁହାଯିବା—ଦେ. କ୍ରି (ସ.ଦେହ+ସହ୍ ଧାତୁ)—କୌଣସି ବିଷୟ କୌଣସି ବ୍ୟକ୍ତିର ସହ୍ୟହେବା—To be bearable.
Deha suhājibā
ଦେହରେ ସୁହାଯିବା } ଅନ୍ୟରୂପ
ଦେହରେ ସହିବା

ଭୃଷ୍ଣ ସକାଶକୁ ତ ଦେହ ସୁହା ଗଲ
କୃଷ୍ଣସିଂହ ମହାଭାରତ.ବନ

ଦେହାଡ—ବୈଦେ. ପ୍ରାଦେ (ସମ୍ବଲପୁର ଓ ସିଂହଭୂମ) ବି. (ଫା.ଦେହାତ୍ =ଗ୍ରାମ; ତୁଳ. ଏହି ଅର୍ଥରେ ହି. ଏହି ଶବ୍ଦ)-ମଫସଲ—
Dehāt Moffassal; the country-side.

ଦେହାତ—ଦେ. ବି ( ସଂ. ଦେହାନ୍ତ )—ଜୀବନ କାଳ—
Dehāti Lifetime.

ବୈଦେ. ପ୍ରାଦେ (ସିଂହଭୂମ) ବିଣ—ମଫସଲିଆ; ଗ୍ରାମ୍ୟ—
Rural.

ଦେ. ଅ—ଦେହି (ଦେଖ)—Dehi (See)

ଦେହାତ୍ମବାଦ—ଦେ. ବି (ଅଧୁନିକ ପ୍ରୟୋଗ)—ଦେହହିଁ ଆତ୍ମା ଅଟେ ଏହିଭଳି ମତ—Materialism; the doctrine that the soul is identical with the body.
Dehātmabāda

ଦେହାଧି—ଦେ. ବିଣ—ଦେହଧାରୀ; ଦେହାଧିକାରୀ—
Dehādhi One having the body; corporeal.

ଶେଷେ ବୋଲାନ୍ତି ସମକାମ
ଦେହାଧି ଜୀବ ସେ ପରମ—ଯଶୋବନ୍ତ. ପ୍ରେମଭକ୍ତି ବ୍ରହ୍ମଗୀତା ।

ଦେହାନ୍ତ—ସଂ. ବି. (୬ଷ୍ଠୀ ତତ୍; ଦେହ+ଅନ୍ତ)—ପ୍ରାଣତ୍ୟାଗ; ମୃତ୍ୟୁ—
Dehānta Death.

ଦେହାନ୍ତର—ସଂ. ବି. ( ଅନ୍ୟ+ଦେହ; କର୍ମଧା. ଅନ୍ୟ=ଅନ୍ତର; ପରନିପାତ )—୧ । ଅନ୍ୟ ଶରୀର—
Dehāntara 1. Another body.

୨ । ଅନ୍ୟ ଜନ୍ମରେ ଜୀବର ପ୍ରାପ୍ତ ଅନ୍ୟ ଗୋଟିଏ ଶରୀର—
2. Another embodied state according to the doctrine of transmigration.

୩ । ( ଦେହ+ଅନ୍ତର ) ମୃତ୍ୟୁ—3. Death.

ଦେହି—ଦେ. ବି. ( ପଦ୍ୟ ) ( ସଂ. ଦେହ )—ଦେହ, ଶରୀର—
Dehi Body.

ଆନନ୍ଦରେ ଫୁଲଇ ଦେଲେ ନିଜ ଦେହି—କୃଷ୍ଣସିଂହ. ମହାଭାରତ ସଭା ।

ଦେ. ଅ—ଦ୍ୱାରା—By.

ଏ ସାମାନ୍ୟ ବିଷୟ ଏହାଙ୍କ ଦେହି ହୋଇ ନାହିଁ—ରାଧାନାଥ. ଚନ୍ଦ୍ରଭାଗା ।

ଦେହିତି—ଦେ. ଅ—ଦେହି ( ଦେଖ )
Dehiti Dehi ( See )

ଯେବେ ସ୍ନେହଙ୍କ ଦେହିତ ଧାନ ମନରେ ଥୁଅନ୍ତା ତେବେ ବାଳଦ
କିଆଁ ଲେଉଟା ଥୁଅନ୍ତେ ?—ପ୍ରବଚନ ।

ଦେହୀ—ସଂ. ବିଣ. ପୁଂ. ( ଦେହ+ଅଛି ଅର୍ଥରେ ଇନ୍; ୧ମା ୧ବ )—ଶରୀରୀ; ଯାହାର ଦେହ ଅଛି—Corporeal; living.
Dehī
( ଦେହିନୀ—ସ୍ତ୍ରୀ ) ବି—୧ । ପ୍ରାଣୀ—1. Animal; living being.

୨ । ଆତ୍ମା—2. The soul.

ଦେ. ବି. ( ପଦ୍ୟ )—ଦେହ; ଶରୀର—Body.

ଫଳ ମୂଳ ଖାଇଣ ଝରପାଣି ପିଇ
ଦେଶ ଦେଶ ବୁଲି ରଖିଅଛନ୍ତି ଦେହୀ—କୃଷ୍ଣସିଂହ. ମହାଭାରତ, ବନ ।

ଦେହୁଡ଼ି—ଦେ. ବି. ( ସଂ. ଦେହଳ )—୧ । ସିଂହଦ୍ୱାର—
Dehurdi 1. Lion's gate.
ଦେଉଡ଼ୀ; ଦେହୁଡ଼ୀ ୨ । ସଦର ଦରଜା; ଦାଣ୍ଡଦୁଆର—
डेवढ़ी, डेयाढ़ी 2. The sudder door of a house.

୩ । ଘରକୁ ଯିବାର ଦାଣ୍ଡ ଫାଟକ—
3. Gate; portico; vestibule.

୪ । ଗୃହର ପ୍ରଧାନ ପ୍ରବେଶ ମାର୍ଗ—
4. The main gate of a house.

ଦେହୁଡ଼ି ମନା—ଦେ. ବି—ରାଜାଙ୍କ ବିରକ୍ତିଭାଜନ ବ୍ୟକ୍ତିଙ୍କୁ ରାଜାଦେଶକ୍ରମେ ରାଜଦ୍ୱାରକୁ ଆସିବାକୁ ବାରଣ କରାଯିବା ନିଷେଧ—Refusal of admission to a Rājā's palace issued to an offending person.
Dehurdi manā
ଦେଉଡ଼ୀ ବନ୍ଦ
डेयाढ़ी बन्द
( ଦେହୁଡ଼ି ଅଟକ—ଅନ୍ୟରୂପ )

ଦେହୁରି—ଦେ. ବି—ଶବର ବା ଶବରି ଜାତିଙ୍କ ବଂଶୋପାଧିବିଶେଷ—
Dehuri Family title of Śabara people.

ପ୍ରାଦେ· ( ଗଡ଼ଜାତ ) ବି. ( ସଂ ଦେବ )—
୧ । ବଣ ଦେବତା ବା ଅପୂଜା ଦେବତାଙ୍କ ପୂଜକ ଶବର—
1. A priest of a forest Deity.
ଅପୂଜା ଦେବତାକୁ ଦେହୁରୁ ବୁଝାଇବା ନ୍ୟାୟ – ଇଗ ।
୨ । ଗ୍ରାମଦେବତାଙ୍କ ପୂଜକ ବା ସେବକ—
2. The servant of a village Deity.
ଦେହୁରିଏ ହର୍ଷେ ପକାଇବେ ହୁଳ କର୍ଚ୍ଚିକା ଶୈଳ-ସୋପାନେ –
ରାଧାନାଥ, ପାର୍ବତୀ ।
ପ୍ରାଦେ. ( ସିଂହଭୂମ ) ବି—ପାହାଡ଼ୀ ଠାକୁରାଣୀଙ୍କ ଭୂୟାଁ ଅନାର୍ଯ୍ୟ ସେବକ—The non-aryan sebakas of the Pāhārdi Goddess of Singhbhum.

ଦେହେ ଥିବା—ପ୍ରାଦେ. ( ସମ୍ବଲପୁର ) କ୍ରି—ଗର୍ଭବତୀ ହେବା—
Dehe thibā To be pregnant; to conceive.
( ଦେହେ ରହିବା—ଅନ୍ୟରୂପ )

ଦେହେ ଭରୁଁ—ପ୍ରାଦେ. ( ସମ୍ବଲପୁର ) ବିଣ—ଗର୍ଭବତୀ—
Dehe bhāruñ - Pregnant.

ଦେହେରା—ପ୍ରାଦେ. ( ଗଡ଼ଜାତ ) ବି—ଶୂଦ୍ର ଜାତିବିଶେଷ—
Deherā A class of Sūdras.
[ ଦ୍ର—ଏମାନଙ୍କ ଘରେ ଈଶାନୀ କୋଣରେ ଗୋଟିଏ ଖୁଣ୍ଟ (ଈଶାଣ) ଥାଏ । ତାହାକୁ ସେମାନେ ପୂଜା କରନ୍ତି । ]

ଦେହେରି—ପ୍ରାଦେ. ( ସମ୍ବଲପୁର ) ବି—ଦେବପୂଜକ ବ୍ୟକ୍ତି; ସେବକ; ଦେହୁରି—A servant of a Deity.
Deheri
ବାଘ୍ ଦେହେରି, ପୁଅ ପୂଜାରି, ଗଣ୍ଡ୍ ମଣ୍ଡ ସବୁ ଭୁମ୍ପର – ଇଗ ।
( ଅର୍ଥାତ୍ ଭୁମ୍ପେ ଏଠାରେ ସର୍ବେସର୍ବା ହୋଇଛି । )

ଦୈ—ଦେ. ବି. ( ସଂ. ଦଧି )—ଦହି—
Dai Curd.

ଦୈତା ( ଇତ୍ୟାଦି )—ଦଇତା ଇତ୍ୟାଦି ( ଦେଖ )
Daitā ( etc ) Daitā etc ( See)

ଦୈତାରି—ଦେ. ବି—ଦୈତ୍ୟାରି ( ଦେଖ )
Daitāri Daityāri ( See )

ଦୈତେୟ—ସଂ. ବି. (ଦିତି+ଅପତ୍ୟାର୍ଥେ ଏୟ)—୧ । ଅସୁର; ରାକ୍ଷସ—
Daiteya Demon.
୨ । ରାହୁ—2. The Ascending Node.

ଦୈତ୍ୟ—ସଂ. ବି. ପୁଂ. ( ଦିତି+ଅପତ୍ୟାର୍ଥେ ଯ )—
Daitya ୧ । ଦୈତେୟ; ରାକ୍ଷସ—1. Demon.
୨ । କଣ୍ଟାଗଛ—2. Thorny plant.
ଦିକନତ ଦୈତ୍ୟଗଣ ରୂପ ଅଛି ଧରି – ଭଞ୍ଜ, ବୈଦେହୀଶବିଳାସ ।

ଦୈତ୍ୟଗୁରୁ—ସଂ. ବି. ( ୬ଷ୍ଠୀ ତତ୍; ଦୈତ୍ୟ+ଗୁରୁ )—ଅସୁରମାନଙ୍କ ଗୁରୁ; ଶୁକ୍ରାଚାର୍ଯ୍ୟ—Sukrāchārjya; the preceptor of the Demons.
Daitya guru
( ଦୈତ୍ୟୋଜ୍ୟ—ଅନ୍ୟରୂପ )

ଦୈତ୍ୟ ନିସୂଦନ—ସଂ. ବି. ( ୬ଷ୍ଠୀ ତତ୍; ଦୈତ୍ୟ+ନି+ସୂଦ୍ ଧାତୁ=ବଧ କରିବା+କର୍ତ୍ତୃ. ଅନ )—ବିଷ୍ଣୁ—
Daitya nisūdana A name of Bishnu

ଦୈତ୍ୟ ପୁରୋଧାଃ—ସଂ. ବି. ( ୬ଷ୍ଠୀ ତତ୍; ଦୈତ୍ୟ+ପୁରୋଧସ୍ )—
Daitya purodhāh ଦୈତ୍ୟ ଗୁରୁ ( ଦେଖ )
Daitya guru ( See )

ଦୈତ୍ୟ ଯୁଗ—ସଂ. ବି. ( ୬ଷ୍ଠୀ ତତ୍; ଦୈତ୍ୟ+ଯୁଗ )—
Daitya juga ଦୈତ୍ୟମାନଙ୍କ ଗଣନା ଅନୁସାରେ ଏକ ଯୁଗ; ଦେବତାମାନଙ୍କ ଗଣନାରେ ବାର ହଜାର ବରଷ ମନୁଷ୍ୟଙ୍କ ଗଣନାରେ ଚାରି ଯୁଗ—
An aeon or age according to the calculation of the Demons which is equal to the 4 aeons in human calculation.

ଦୈତ୍ୟ ସେନା—ସଂ. ବି—୧ । ଦୈତ୍ୟମାନଙ୍କ ସୈନ୍ୟ—
Daitya senā 1. An army of the demons.
୨ । (ନାମ) ପ୍ରଜାପତିଙ୍କ କନ୍ୟା; ଦେବସେନାଙ୍କ ଭଉଣୀ ଓ କେଶୀ ଦୈତ୍ୟର ସ୍ତ୍ରୀ—Wife of the demon Kesi.

ଦୈତ୍ୟା—ସଂ. ବି. ସ୍ତ୍ରୀ. ( ଦୈତ୍ୟ+ସ୍ତ୍ରୀ. ଆ )—
Daityā ୧ । ଅସୁରୁଣୀ - 1. Demoness.
୨ । ମଦ୍ୟ—2. Wine.
୩ । ମୁରା ନାମକ ଗନ୍ଧ ଦ୍ରବ୍ୟ—
3. Name of a scented herb.

ଦୈତ୍ୟାରି—ସଂ. ବି. ( ୬ଷ୍ଠୀ ତତ୍; ଦୈତ୍ୟ+ଅରି )—ବିଷ୍ଣୁ—
Daityāri A name of Bishnu.
ଦେ. ବି. ପୁଂ—ଲୋକମାନଙ୍କୁ ଦିଆଯିବା ନାମ—
A name given to males.

ଦୈଧିଷବ୍ୟ—ସଂ. ବି. ପୁଂ. ( ଦିଧିଷୁ+ଅପତ୍ୟାର୍ଥେ. ଯ )—
Daidhishabya ସ୍ତ୍ରୀର ଦ୍ୱିତୀୟ ସ୍ୱାମୀଙ୍କ ଔରସ ସନ୍ତାନ (ହି.ଶ)—
(ଦୈଧିଷବ୍ୟା—ସ୍ତ୍ରୀ) A son born of a remarried widow.

ଦୈନ—ସଂ. ବି. ( ଦୀନ+ଭାବ. ଅ )—ଦୀନତା; ଦାରିଦ୍ର୍ୟ—
Daina Poverty; wretchedness.
ବିଣ ( ଦିନ+ଭାବାର୍ଥେ ଅ )—ଦୈନିକ—
Daily; diurnal.

ଦୈନନ୍ଦିନ—ସଂ. ବିଣ. ( ଦିନ+ଦିନ+ଭାବ. ଅ )—
Dainandina ୧ । ପ୍ରତିଦିନ କରାଯିବା; ପ୍ରତିଦିବସୀୟ; ପ୍ରାତ୍ୟହିକ-
(ଦୈନଂଦିନ—ଅନ୍ୟରୂପ) 1. Daily; diurnal.
୨ । ପ୍ରତିଦିନ ଘଟିବା—2. Occuring daily.
ସଂ. କ୍ରି ବିଣ—୧ । ପ୍ରତିଦିନ ( ହି. ଶବ୍ଦସାଗର )—
1. Every day; daily.
୨ । ଦିନକୁ ଦିନ—2. From day to day.

ଦୈନି—ସଂ. ବି. ( ସଂ. ଦୈନ୍ୟ )—ଦଇନି ( ଦେଖ )
Daini Daini ( See )

ଦୈନିକ—ସଂ. ବିଣ. ( ଦିନ+ଭବାର୍ଥେ. ଇକ )—
Dainika ୧ । ପ୍ରାତ୍ୟହିକ —1. Daily.
୨ । ଯାହା ଦିବା ଭାଗରେ ଘଟେ—
2. Happening in the day time.
୩ । ଦିବସ ସମ୍ବନ୍ଧୀୟ—2. Pertaining to the day.
୪ । ଯାହା ଏକ ଦିବସରେ ସମ୍ପନ୍ନ ହୋଇ ପାରେ—
4. Which can be done in a day.

୫ । ଯାହା ପ୍ରତିଦିନ ପ୍ରକାଶିତ ହୁଏ ( ପତ୍ରିକା )—
5. ( newspaper ) Published every day.

**ଦୈନିକା**—ସଂ. ବି. ( ଦିନ+ଇକ+ଆ )—ଦିନ ମଜୁରି; ମୂଲ—
Dainikā Daily wages.

**ଦୈନ୍ୟ**—ସଂ. ବି. ( ଦୀନ+ଭାବ. ଯ ) –
Dainya ୧ । ଦୀନତା; ଦାରିଦ୍ର୍ୟ—1. Poverty; wretchedness.
୨ । କାତରତା—2. Distress.
୩ । ଅତିଶୟ ଦୁଃଖାବସ୍ଥା—
3. Pitiable condition; misery.
୪ । ସନ୍ତାପ—4. Affliction; distress.
୫ । ମନୋଦୁଃଖ—5. Dejection.
୬ । କାବ୍ୟର ସଞ୍ଚାରୀ ଭାବବିଶେଷ, ଯାହା ପାଠ, ଶ୍ରବଣ ବା ଦର୍ଶନ କଲେ ମନ ଦୁଃଖାଦି ଦ୍ୱାରା କାତର ହୁଏ—
1. Pathos ( in literature ); pathetic feeling.

ଦେ. ବି—ଦଇନ; କାତର ପ୍ରାର୍ଥନା—Doleful prayer.
ବୋଲି ଯେ ଦୈନ୍ୟ ସଭରେ କରେ । ଭଞ୍ଜ. ପ୍ରେମସୁଧାନିଧି ।

**ଦୈବ**—ସଂ. ବିଣ. ( ଦେବ+ସମ୍ବନ୍ଧାର୍ଥେ. ଅ )—
Daiba ୧ । ଦେବତା ସମ୍ବନ୍ଧୀୟ; ଈଶ୍ୱରିକ—
(ଦୈବୀ—ସ୍ତ୍ରୀ) 1. Divine; relating to God.
୨ । ବିଧାତାଙ୍କ ବିହିତ; ଭାଗ୍ୟ ସମ୍ବନ୍ଧୀୟ—
2. Providential.
୩ । ଦେବତାଙ୍କ ପ୍ରୀତିସାଧକ—
3. Pleasing to God.
୫ । ପ୍ରାକୃତିକ; ଯାହା କୃତ୍ରିମ ନୁହେ—
5. Natural; not artificial.

ବି—୧ । ହିନ୍ଦୁ ଶାସ୍ତ୍ରୋକ୍ତ ଏକ ପ୍ରକାର ବିବାହ—
1. A form of marriage according to the Hindu Śāstras.
[ ଦ୍ର—ଏ ବିବାହରେ କନ୍ୟାକର୍ତ୍ତା ବରଙ୍କୁ ନିମନ୍ତ୍ରଣ କରି କନ୍ୟା ଦାନ କରନ୍ତି । ]
୨ । ଅଦୃଷ୍ଟ; ଭାଗ୍ୟ; କର୍ମ—2. Destiny; fate.
୩ । (+ସ୍ୱାର୍ଥେ. ଅ) ବିଧାତା; ଈଶ୍ୱର—
3. Providence; the Creator; God.
୪ । ଦେବତା—4. Deity
୫ । ବିଧାତାଙ୍କ ବିହିତ; ବିଧି ବିଧାନ—
5 Divine dispensation.
୬ । ପୂର୍ବଜନ୍ମାର୍ଜିତ କର୍ମ—6. The result enjoyed by a person due to his acts in a previous existence.
୭ । ଅଙ୍ଗୁଳି ଅଗ୍ରଭାଗ ଦେବ ତୀର୍ଥ—
7. The tips of the fingers.

**ଦୈବକ**—ସଂ. ବି. ( ଦୈବ+ସ୍ୱାର୍ଥେ. କ )—
Daibaka ଦେବତା—Deity.

**ଦୈବ କର୍ମ**—ସଂ. ବି. ( କର୍ମଧା; ଦୈବ+କର୍ମ )—
Daiba karma ଦେବତାମାନଙ୍କୁ ସନ୍ତୁଷ୍ଟ କରିବା ନିମନ୍ତେ
(ଦୈବ କାର୍ଯ୍ୟ—ଅନ୍ୟରୂପ) ଅନୁଷ୍ଠିତ ସଜ୍ଞାଦି କର୍ମ —
Religious rite; an act performed to propitiate the Gods.
[ଦ୍ର—ଯଜ୍ଞ, ଦେବତର୍ପଣ, ଜପ, ହୋମ, ପୂଜା, ଆରାଧନା ଆଦିକୁ ଦୈବ କର୍ମ କୁହାଯାଏ ।]

**ଦୈବକୀ**—ସଂ. ବି.ସ୍ତ୍ରୀ (ଦେବକ+ଅପତ୍ୟାର୍ଥେ.ସ୍ତ୍ରୀ. ଈ)—ଦେବକୀ (ଦେଖ)
Daibakī Debakī (See)

**ଦୈବ କ୍ରମେ**—ଦେ. କ୍ରି. ବିଣ—ଦୈବ ଯୋଗେ (ଦେଖ)
Daiba krame Daiba joge (See)
दैवक्रमे; दैवात्

**ଦୈବ ଗତି**—ସଂ.ବି.(୬ଷ୍ଠୀ ତତ୍;ଦୈବ+ଗତି)—୧ । ଦୈବର ବିହିତ
Daiba gati ଅନୁସାରେ ଘଟିବା ଘଟନା; ବିଧିବିଧାନ—
1. Providence.
୨ । ଆକସ୍ମିକ ଘଟନା—2. Accidental happening.

**ଦୈବଗତ୍ୟା**—ସଂ. ଅ; (ଦୈବଗତି ଶବ୍ଦର ତୃତୀୟା ବିଭକ୍ତି ଏକବଚନ)—
Daibagatyā ୧ । ଦୈବଗତିକ୍ରମେ—1. Accidentally.
୨ । ଅକସ୍ମାତ୍; ଦୈବାତ୍—2. Unexpectedly.
୩ । ବିଧି ନିର୍ବନ୍ଧ ଅନୁକ୍ରମେ—3. Providentially.

**ଦୈବ ଘଟନା**—ସଂ. ବି (କର୍ମଧା; ଦୈବୀ+ଘଟନା; ସମାସ ଯୋଗୁଁ
Daiba ghatanā ଦୈବୀର ଦୈବ ରୂପ)—୧ । ଅସମ୍ଭାବିତ ବ୍ୟାପାର; ଅତର୍କିତ ଘଟନା—1. Accident; unexpected occurrence.
୨ । ଭାଗ୍ୟର ଗତି—2. The course of fate; providence.

**ଦୈବ ଘରିଆ**—ପ୍ରାଦେ ( ସିଂହଭୂମ ) ବି—ଦେବପୂଜକ—
Daiba ghariā The worshipper of a Deity

**ଦୈବଜ୍ଞ**—ସଂ. ବି. ପୁଂ (ଦୈବ=ପୂର୍ବଜନ୍ମ କୃତ ଶୁଭାଶୁଭ କର୍ମ+ଜ୍ଞା
Daibajña ଧାତୁ+କର୍ତ୍ତୃ. ଅ)—୧ । ଗଣକ—1. Fortune-
(ଦୈବଜ୍ଞା—ସ୍ତ୍ରୀ) teller.
୨ । ଫଳିତ ଜ୍ୟୋତିଷ ଶାସ୍ତ୍ରଜ୍ଞ; ଭବିଷ୍ୟଦ୍ବକ୍ତା —
2. Astrologer.
୩ । ଜ୍ୟୋତିଷ ବିଦ୍ୟା ଦ୍ୱାରା ଜୀବିକା ନିର୍ବାହକାରୀ ଜାତି-ବିଶେଷ—3 A caste of professional astrologers.

**ଦୈବତ**—ସଂ. ବି (ଦେବତା+ସ୍ୱାର୍ଥେ; ସମୂହାର୍ଥେ. ଅ)—୧ । ଦେବତା—
Daibata 1. Deity.
୨ । ଦେବ ସମୂହ—2. The Gods.
ବିଣ (ଦେବତା+ସମ୍ବନ୍ଧାର୍ଥେ. ଅ)—ଦେବ ସମ୍ବନ୍ଧୀୟ—
Pertaining to the Gods

**ଦୈବ ତୀର୍ଥ**—ସଂ. ବି (କର୍ମଧା; ଦୈବ+ତୀର୍ଥ)—ହାତର ଅଙ୍ଗୁଳିମାନଙ୍କ
Daiba tīrtha ଅଗ୍ରଭାଗ—The tips of the fingers of the hand.

[ଦ୍ର—ଏହି ବାଟେ ଦେବତାମାନଙ୍କୁ ତର୍ପଣ କରିବା ସମୟରେ ଜଳ ଦିଆଯାଏ ।]

ଦୈବ ଦଣ୍ଡ—ସଂ. ବି (କର୍ମଧା. ଦୈବ+ଦଣ୍ଡ)—
Daiba danda ହଠାତ୍ ଘଟିବା ଦୁର୍ଘଟଣା—Divine visitation; providential calamity; divine judgment.

ଦୈବ ଦୀପ—ସଂ. ବି ( କର୍ମଧା; ଦୈବ+ଦୀପ )—ଅକ୍ଷି; ଚକ୍ଷୁଃ—
Daiba dipa The eye.

ଦୈବ ଦୁର୍ଘଟଣା—ଦେ ବି(ସଂ ଦୈବ+ଦୁର୍ଘଟନା)-ଦୈବ ଦୁର୍ବିପାକ(ଦେଖ)
Daiba durghatanā Daiba durbipāka (See)
(ଦୈବୀ ଦୁର୍ଘଟଣ—ଅନ୍ୟରୂପ)

ଦୈବ ଦୁର୍ବିପାକ—ସଂ ବି (କର୍ମଧା; ଦୈବ+ଦୁର୍ବିପାକ)—ଦୁର୍ଘଟନା—
Daiba durbipāka 1. Mishap.
୨ । ଦୁର୍ଭାଗ୍ୟ—2. Misfortune; an evil turn of fate; adverse circumstances.
୩ । ବିଧିଙ୍କ ବିଧାନ ଅନୁସାରେ ଘଟିବା ବିପଦ—
3. Pre-ordained misfortune; affliction proceeding from God; divine visitation.
୪ । ବିଧାତାଙ୍କ ନିଷ୍ଠୁରତା—
4. Cruelty of Fate.

ଦୈବ ଦୁର୍ଯୋଗ—ସଂ. ବି. (କର୍ମଧା; ଦୈବ+ଦୁଃ+ଯୋଗ)—ଦୈବ-
Daiba durjoga ଦୁର୍ବିପାକ (ଦେଖ)
(ଦୈବ ଦୋଷ—ଅନ୍ୟରୂପ) Daiba durbipāka (See)

ଦୈବ ନିଷ୍ଠ—ସଂ.ବିଣ.ପୁଂ(ବହୁବ୍ରୀହି,ଦୈବ+ନିଷ୍ଠା+ଅ)—ଯେଉଁ ବ୍ୟକ୍ତି
Daiba nishtha ଭବିଷ୍ୟତ୍ ପାଇଁ ଦୈବଉପରେ ନିର୍ଭର କରେ;
ଦୈବପର / ଦୈବପରାୟଣ } ଅନ୍ୟରୂପ ଅଦୃଷ୍ଟବାଦୀ—Absolutely depending upon fate; fatalist.
(ଦୈବନିଷ୍ଠା—ସ୍ତ୍ରୀ)
(ଦୈବନିଷ୍ଠିତ—ଅନ୍ୟରୂପ).

ଦୈବ ପ୍ରଶ୍ନ—ସଂ. ବି. (କର୍ମଧା; ଦୈବ+ପ୍ରଶ୍ନ)—ଭବିଷ୍ୟତ ଶୁଭାଶୁଭ
Daiba prasna ସମ୍ବନ୍ଧେ ଜିଜ୍ଞାସା—A question about the future.

ଦୈବ ବଶ—ସଂ. ବିଣ.—ଦୈବାଧୀନ (ଦେଖ)
Daiba basa Daibādhina (See)

ଦୈବ ବଶତଃ—ସଂ. କ୍ରି. ବିଣ—ଦୈବଗତ୍ୟା (ଦେଖ)
Daiba basatah Daibagatyā (See)
(ଦୈବ ବଶାତ୍—ଅନ୍ୟରୂପ)

ଦୈବ ବଶରୁ—ଦେ. କ୍ରି. ବିଣ.—(ସଂ. ଦୈବ ବଶାତ୍)
Daiba basaru ଦୈବ ଯୋଗେ (ଦେଖ)
দৈববশে. Daiba joge (See)
[illegible]
(ଦୈବ ବଶରେ, ଦୈବ ବଶେ, ଦୈବ ବଶୁ—ଅନ୍ୟରୂପ)

ଦୈବ ବାଣୀ—ସଂ. ବି. (କର୍ମଧା; ଦୈବୀ+ବାଣୀ)—୧ । ଆକାଶବାଣୀ—
Daiba bāni 1. A voice from Heaven; a revelation.
୨ । ଈଶ୍ୱରାଦେଶ—2. Divine command.
୩ । ମନୁଷ୍ୟ ମୁଖରେ ପ୍ରକାଶିତ ଦେବତାଙ୍କ ହୁକୁମ—
3. Oracle.
୪ । ସଂସ୍କୃତ ଭାଷା; ଦେବଭାଷା—
4. The Sanscrit language.
[ଦ୍ର—ଏହା ଦେବତାମାନଙ୍କ ବ୍ୟବହୃତ ଭାଷା ଥିବା ହିନ୍ଦୁମାନେ ବିଶ୍ୱାସ କରନ୍ତି ।]

ଦୈବ ବିଡ଼ମ୍ବନା—ସଂ. ବି. (କର୍ମଧା; ଦୈବ+ବିଡ଼ମ୍ବନା)—
Daiba birdambanā ଦୈବଦୁର୍ବିପାକ (ଦେଖ)
[ଦୈବ ବିଡ଼ମ୍ବଣ(ଣା)—ଦେଶଜ ରୂପ];
Daiba durbipāka (See)

ଦୈବ ଯୋଗ—ସଂ. ବି.—୧ । ଦୈବ ଘଟଣା—
Daiba joga 1. Accident.
୨ । ଆକସ୍ମିକ ଘଟନାମାନଙ୍କ ସମାବେଶ—
2. A concatenation of accidents.

ଦୈବ ଯୋଗେ—ଦେ. କ୍ରି. ବିଣ.—ଦଇବ; ଦୈବାତ୍; ହଠାତ୍—
Daiba joge Accidentally; by chance;
দৈবযোগে providentially.
ह बात (ଦୈବଯୋଗରୁ—ଅନ୍ୟରୂପ)

ଦୈବ ଲେଖକ—ସଂ. ବି.—ଗଣକ (ହି. ଶ)—
Daiba lekhaka A fortune-teller.

ଦୈବଲେ(ଲି)ଖନ—ସଂ. ବି.—କପାଳ ଲେଖନ (ଦେଖ)
Kapālalekhana (See)

ଦୈବାତ୍—ସଂ. ଅ. (ଦୈବ ଶବ୍ଦର ୫ମୀ. ୧ବ)—୧ । ସହସା; ହଠାତ୍—
Daibāt 1. Unexpectedly; accidentally.
୨ । ଅତର୍କିତ ଭାବରେ—2. By chance.
୩ । ଈଶ୍ୱରଙ୍କ ଇଚ୍ଛାକ୍ରମେ—3. Providentially.

ଦୈବାଦେଶ—ସଂ. ବି. (କର୍ମଧା; ଦୈବ+ଆଦେଶ)—ଦୈବବାଣୀ;
Daibādesa ଈଶ୍ୱରାଜ୍ଞା—Revelation; divine commandment.

ଦୈବାଧୀନ—ସଂ. ବିଣ. (୬ଷ୍ଠୀ ତତ୍; ଦୈବ+ଅଧୀନ)—
Daibādhina ୧ । ଅଲୌକିକ—1. Supernatural
୨ । ଐଶ୍ୱରିକ; ଈଶ୍ୱରାୟତ୍ତ—2. Divine; in the hands of Providence.
୩ । ବିଧାତାଙ୍କ ବିଧାନ ମୁତାବକ ଘଟିବା—
3. Subject to Divine Dispensation.

ଦୈବାୟତ୍ତ—ସଂ. ବିଣ. (୬ଷ୍ଠୀ ତତ୍; ଦୈବ+ଆୟତ୍ତ)—
Daibāyatta ଦୈବାଧୀନ (ଦେଖ)
Daibādhina (See)

ଦୈବାସିଦ୍ଧ—ପ୍ରାଦେ. (ସମ୍ବଲପୁର) ବି. (କଚେରିଆ ଭାଷା)—ମକଦ୍ଦମାରେ
Daibāsiddha ଡିକ୍ରି—A decree in a case.

ଦୈବିକ—ସଂ. ବିଣ. (ଦେବ+ସମ୍ବନ୍ଧାର୍ଥେ ଇକ୍)—
Daibika ୧ । ଦେବ ସମ୍ବନ୍ଧୀୟ; ଐଶ୍ୱରିକ—
1. Divine; peculiar to the Gods.
୨ । (+ଭବାର୍ଥେ. ଇକ୍) ଦୈବକୃତ—
2. Providential.

ଦୈବୀ—ସ. ଧଣ. ସ୍ତ୍ରୀ—(ଦେବ+ସମ୍ବନ୍ଧାର୍ଥେ. ଅ+ସ୍ତ୍ରୀ. ଈ)—
Daibi ୧ । ଦେବତା ସମ୍ବନ୍ଧୀୟ—
1 Divine; providential.
୨ । ଭାଗ୍ୟ ସମ୍ବନ୍ଧୀୟ—2. Relating to fate.
ସ ବି—୩ । ଚିକିତ୍ସାବିଶେଷ ଯେଉଁ ଚିକିତ୍ସାରେ ଭଗବାନଙ୍କ ଉପରେ ନିର୍ଭର କରାଯାଏ, ଦେବାରାଧନପୂର୍ବକ ଯେଉଁ ଚିକିତ୍ସା କରାଯାଏ—
3 A kind of treatment; faith cure.
ଦେ ବି.—୧ । ଦୈବ ଘଟଣା—1 Accident.
୨ । ଦୁର୍ଘଟଣା—2 Mishap
୩ । ଦୈବକାର୍ଯ୍ୟ—3. Religious rites; acts performed to propitiate the Gods.
ଦେ କ୍ରି. ବିଣ (ସ. ଦୈବାତ୍)—୧ । ଦୈବାତ୍; ଦୈବଘଟଣା କ୍ରମେ—1. Providentially
ଦୋବେ
ଦୈବାତ ୨ । ଅକସ୍ମାତ୍—2 By chance.

ଦୈବୀ ଘଟଣା—ସ. ବି (କର୍ମଧା, ଦୈବୀ+ଘଟଣା,—ଦୈବ ଘଟଣା (ଦେଖ)
Daibi ghaṭanā Daiba ghaṭanā ( See )

ଦୈବୀ ଦଣ୍ଡ—ଦେ. ବି (ସ. ଦୈବଦଣ୍ଡ)—ଦୈବଦଣ୍ଡ ( ଦେଖ )
Daibi daṇḍa Daibadaṇḍa ( See)

ଦୈବୋତ୍ପାତ—ସ. ବି ( କର୍ମଧା, ଦୈବ+ଉତ୍ପାତ )—
Daibotpāta ଦୈବଦଣ୍ଡ ( ଦେଖ )—Daibadaṇḍa (See)

ଦୈବୋପହତ—ସ. ବିଣ (୩ୟା ତତ୍; ଦୈବ+ଉପହତ=ଆହତ)—
Daibopahata ୧ । ବିଧିବିଧାନରେ ଦଣ୍ଡପ୍ରାପ୍ତ—1. Struck by fate; undergoing divine punishment.
୨ । ହତଭାଗ୍ୟ—2 Ill-fated; unfortunate.

ଦୈର୍ଘ୍ୟ—ସ. ବି (ଦୀର୍ଘ+ଭାବେ. ଯ)—ଦୀର୍ଘତା—
Dairghya Length; longitude.

ଦୈଶିକ—ସ. ବିଣ (ଦେଶ+ସମ୍ବନ୍ଧାର୍ଥେ. ଇକ)—୧ । ଦେଶୀ—
Daiśika 1. Native; belonging to the country.
୨ । ଏକ ଅଂଶ ବା ଏକ ଦେଶ ସମ୍ବନ୍ଧୀୟ—
2. Relating to a part of or to one country.
୩ । ଦେଶଜ (ଦେଖ)—3. Desaja ( See )

ଦୈହିକ—ସ. ବିଣ ( ଦେହ+ସମ୍ବନ୍ଧାର୍ଥେ ଇକ )—ଶାରୀରିକ; ଦେହସମ୍ବନ୍ଧୀୟ—Bodily; corporal.
Daihika

ଦୈହିକ ଉପାଦାନ—ସ. ବି—୧ । ( ଜୀବବିଜ୍ଞାନ ପରିଭାଷା )—
Daihika upādāna ଜୀବର ଦେହ ଯେଉଁ ରକ୍ତମାଂସାଦିମୟ ଉପାଦାନରେ ଗଠିତ—1. Body-tissue.
୨ । ଶରୀରର ଉପାଦାନ—
2. The ingredients of the body.
(ଯଥା—ରକ୍ତ, ମାଂସ, ମେଦ, ମଜ୍ଜା, ଅସ୍ଥି, ଚର୍ମ ।)

ଦୋ—ବୈଦେ. ବି (ଫା; ତୁଳ. ସ. ଦ୍ୱି; ଅନ୍ୟ ଶବ୍ଦ ସଙ୍ଗେ ବ୍ୟବହୃତ;
Do ଯଥା—ଦୋରସା, ଦୋନସଲ୍ଲ, ଦୋକନ୍ଧ, ଦୋଅଣୀ)—ଦୁଇ—Two.
ଦୁ

ଦୌ ପ୍ରାଦେ (ଗଡ଼ଜାତ) ବି—ଦୋଉ ( ଦେଖ )
Dou ( See )

ଦୋଅଂଶଲ୍ଲ—ଦେ. ବିଣ (ସ. ଦ୍ୱି ଓ ଅଂଶ)—୧ । ଜାରଜ—
D-oaṁśalla 1. Bastard.
ଦୋଆ ସଲା ୨ । ଦୁଇ ଭିନ୍ନ ଜାତୀୟ ଜୀବଙ୍କ ସଙ୍ଗମରୁ ଉତ୍ପନ୍ନ—
ଦୋଗଲା, ଦୁନସ୍‌ଲା 2. Mongrel; hybrid; half-bred.
ଦୋନୋଶଲ୍ଲ } ଅନ୍ୟରୂପ ୩ । ବର୍ଣ୍ଣସଙ୍କର—
ଦୋନଶଲ୍ଲ 3. Of mixed descent.

ଦୋଅଂଶା—ଦେ. ବିଣ ( ସ ଦ୍ୱି ଓ ଅଂଶ )—୧ । ଦୋରସା (ମାଟି);
Do-aṁśā ଯେଉଁ ମୃତ୍ତିକାରେ କାଦୁଅ ଓ ବାଲି ମିଶିଥାଏ—
ଦୋଅଂଶିଆ } ଅନ୍ୟରୂପ 1. Of mixed grain; (soil)
ଦୋଆଂଶିଆ mixed with clay and sand.
ଦୋଂଶ ୨ । ଯେଉଁ କବଜାରେ ୨ଟି ଅଂଶ ବା ଧାର ଥାଏ—
ଦୁଆଁଶା 2. (a hinge) Having two edges; double-sided.

ଦୋଅକ୍ଷରି ଗାଳି—ଦେ. ବି ( ସ. ଦ୍ୱିଅକ୍ଷର+ଗାଳି )—ଲିଙ୍ଗ, ଯୋନି
Doakshari gāli ଆଦି ବାଚକ ଅଶ୍ଳୀଳ ଶବ୍ଦମାନଙ୍କ ବ୍ୟବହାର-
ଦୋଅକ୍ଷର } ଯୁକ୍ତ ଗାଳି—Abuse with the
ଦୋଅକ୍ଷରିଆ ଗାଳି } ଅନ୍ୟରୂପ uses of obscene and
ଦିଅକ୍ଷରିଆ ଗାଳି filthy words.

ଦୋଅଣୀ—ଦେ. ବି (ସ. ଦ୍ୱି ଓ ଆନକ)—ଦୁଇ ଅଣା ମୂଲ୍ୟର ମୁଦ୍ରା—
Do-aṇi A two-anna-bit, a coin worth two annas.
(ଦୋଓଣୀ—ଅନ୍ୟରୂପ)

ଦୋୟାନୀ, ଦୁଯାନୀ ପ୍ରାଦେ (ଯାଜପୁର) ବି (ସ. ଦୋହନୀ)—ଗାଇଦୁହାଁ
ଦୁଅନୀ ଟେକି—A narrow-mouthed small pitcher used during milking.

ଦୋଆତ—ଦେ. ବି—ଦୁଆତ ( ଦେଖ )
Do-āta Duāta ( See )

ଦୋଆବ୍—ଦେ. ବି (ସ. ଦ୍ୱି+ଅପ୍)—ଦୁଇ ନଦୀ ମଧ୍ୟସ୍ଥ ଭୂଖଣ୍ଡ; ଦ୍ୱିଗଙ୍ଗ
Do-ab ପ୍ରଦେଶ—A doab; country between two rivers.
ଦୋୟାବ୍
ଦୁଆବ, ଦୁଆବା, ଅନ୍ତର୍ବେଦ୍

ଦୋଇ ରାଣୀ—ଦେ. ବି—କାହାଣୀରେ ରାଜାଙ୍କର ଦୁଇ ରାଣୀ ମଧ୍ୟରୁ
Doi rāṇi ପ୍ରଥମ ବିବାହିତା ରାଣୀ, ଯେଉଁ ରାଣୀଙ୍କୁ ରାଜା ଦେଖି
(ଦୋଇ—ଅନ୍ୟରୂପ) ପାରନ୍ତି ନାହିଁ ଓ ଏଥିଲାଗି ଯେ ବହୁତ ଦୁଃଖ
ଦୋବାନୀ ଭୋଗ କରନ୍ତି—The title or name of the neglected or disliked first married Ranee of a Raja having two Ranees, in the folktales.
[ ଦ୍ର—ପରେ ଯେଉଁ ବିବାହିତା ରାଣୀଙ୍କୁ ରାଜା ଭାରି ଦେଖି ପାରନ୍ତି ଓ ସୁଖ ଦିଅନ୍ତି ତାଙ୍କ ନାମ ସୋଇ ରାଣୀ । ]

ଦୋଉ—ପ୍ରାଦେ ( ଗଡ଼ଜାତ ) ବି ( ସ. ଦେବ )—ରାଜା ଓ ରାଜପୁତ୍ରଙ୍କ
Do-u ସମ୍ବୋଧନ; ଦେଉ—A word used in addressing Rajas and princes.

ଦୋଏମ୍—ଦେ. ବିଣ—ଦୋୟମ୍ (ଦେଖ)
Do-em Doyam (See).

ଦୋଓଡ଼—ଦେ. ବିଣ ( ସ. ଦ୍ୱିବାର )—୧ । ଦୁଇଥର ହଳ ଭୁଲା
Do-orda ଯାଇଥିବା—1. Twice ploughed up (land).

୨ । ଦ୍ୱିତୀୟଥର ଚାଷ କରାଯିବା—
2. Ploughed for the second time

ଦୋକବ ୩ । ଦୁଇପରସ୍ତ ଭଙ୍ଗାଯାଇଥିବା—
दोसरो, दोर 3. Double folded.

୪ । ଦୁଇଥର ବା ଦ୍ୱିତୀୟଥର କରାଯିବା—
4 Done twice or for the second time

କ୍ରି ବିଣ—୧ । ଦୁଇଥର—1. Twice.

୨ । ଦ୍ୱିତୀୟଥର —2. Second time

ବି—୧ । ଦ୍ୱିତୀୟଥର—1. A second time.

୨ । ଦୁଇଥର—2. Two times.

ଦୋଓଡ଼ପକ୍ଷ ବର—ଦେ. ବି ଓ ବିଣ— ଦୋବେଇ ବର (ଦେଖ)
Do-orḍapaksha bara Dobei bara (See).
(ଦୋଓଡ଼ବେଇ—ଅନ୍ୟରୂପ) ଦୋଜବର दोजा

ଦୋଓଡ଼ ପାଲି—ପ୍ରାଦେ (ଗଡ଼ଜାତ) ବି—ଦୁଆର ପାଲି (ଦେଖ)
Do-orḍa pāli Duāra pāli (See)
दोसरता

ଦୋଓଡ଼ ବେଉଷା—ଦେ. ବି—୧ । ଶାରଦ ଧାନକୁ ଦ୍ୱିତୀୟଥର ବେଉଷଣ କରାଯିବା—1. Second puddling of winter-paddy.
Do-orḍa beushā
(ଦୋଓଡ଼ ବେଉଷଣ—ଅନ୍ୟରୂପ)

[ ଦ୍ର—ଥରେ ବେଉଷଣ ହୋଇ ସାରିବା ପରେ ଧାନଗଛମାନ ଲୁଆଁ ମାରିବା ପୂର୍ବରୁ ବିଲରୁ ପାଣି ଶୁଖିଗଲେ ଆଉ ଥରେ ବିଲରେ ପାଣି ମଡ଼ାଇ ବେଉଷଣ କରାଯାଏ; ଏହାକୁ ଦୋଓଡ଼ବେଉଷା ବୋଲାଯାଏ । ]

ଦୋଓଡ଼ ମଇ—ଦେ. ବି—ଦୋଓଡ଼ବେଉଷା ପରେ ଧାନ ବିଲରେ ଦିଆଯିବା ମଇ—A ladder drawn over the paddy plants after the second puddling.
Do-orḍa mai

ଦୋଓଡ଼ ମୁଣ୍ଡା—ଦେ. ବି—ଏକପ୍ରକାର ଚଉଡ଼ା ଲଙ୍ଗଳର ତଳଭାଗ; ଯେଉଁ ଲଙ୍ଗଳମୁଣ୍ଡା ଦ୍ୱାରା ଏକ ଓଡ଼ ଚାଷ ହୋଇଥିବା ଜମିକୁ ଦ୍ୱିତୀୟଥର ( ଦୋଓଡ଼ ) ଚାଷ କରାଯାଏ—A kind of plough whose blade is wide and which is used in tilling a field ( already once tilled ) for the second time.
Do-orḍa munḍā

[ ଦ୍ର—ପଡ଼ିଆ ଜମିକୁ ପ୍ରଥମେ ଚାଷ କରିବା ପାଇଁ ଯେଉଁ ଲଙ୍ଗଳ (ଟ୍ରୋଡ଼ଙ୍ଗ) ବ୍ୟବହୃତ ହୁଏ, ତାହାର ମୁଣ୍ଡା ସରୁଆ, କିନ୍ତୁ ତତ୍ପରେ ଥରେ କର୍ଷିତ ହୋଇଥିବା ଭୂମିକୁ ଚଷିବାପାଇଁ ଯେଉଁ ଲଙ୍ଗଳମୁଣ୍ଡା ବ୍ୟବହୃତ ହୁଏ ତାହାର ତଳଭାଗ ବା ପକ୍ଷି ଚଉଡ଼ା; ଏହାକୁ ଅଧାଫାଳ ମଧ୍ୟ କୁହାଯାଏ । ]

ଦୋଓଡ଼ା—ଦେ. ବି—ଅପରାହ୍ନରେ କରାଯିବା ଭୋଜନ; ଦିବସର ଦ୍ୱିତୀୟ ଭୋଜନ—Afternoon meal; lunch; the second meal of the day.
Do-orḍā

ବିଣ—ଦୁଇଥର ଭାଙ୍ଗ କରାଯାଇଥିବା (ଲୁଗା, କାଗଜ)—Folded, double.

ଦୋଓଡ଼ା(ଡେ)ଇବା—ଦେ. କ୍ରି—୧ । କୌଣସି ପଦାର୍ଥକୁ ( ଲୁଗା ଆଦିକୁ ) ଦୁଇ ଭାଙ୍ଗଥିଆ କରିବା—1. To fold a thing double.
Do-orḍā(rḍe)ibā
दोहराना

୨ । ଦୁଇଥର ଚାଷ କରିବା—
2. To plough twice.

୩ । ଏକ କାର୍ଯ୍ୟକୁ ଦୁଇଥର କରିବା—
3. To do a thing twice; to go over twice.

୩ । କୌଣସି କର୍ମକୁ ଦ୍ୱିତୀୟଥର କରିବା; ପୁନର୍ବାର କରିବା—
3. To do a thing for the second time.

୪ । ଦ୍ୱିରୁକ୍ତି କରିବା; ପୁନର୍ବାର କହିବା—
4. To repeat a matter.

ଦୋଓର—ଗ୍ରା (ଇତର) ବି. ବିଣ. ଓ କ୍ରି. ବିଣ—ଦୋଓଡ଼ (ଦେଖ)
Do-ora Do-orḍa (See).
ଟୋକାକୁ ପାଇଲେ ଦୋଓର ବଶନ୍ତ—ଢଗ ।

ଦୋଃ—ସଂ. ବି—ଦୋସ୍ (ଦେଖ)
Doh Dos (See).

ଦୋକଚ୍ଛା—ଦେ. ବି (ସଂ. ଦ୍ୱିକଚ୍ଛ)—ପାଇକଚ୍ଛ; ଫେରକୁ ପୁଡ଼ା ତଳେ ଲେଉଟାଇ ପଛଆଡ଼େ ଅଣ୍ଟାରେ କଚ୍ଛ ଉପରେ ଖୋସିବା; ଏକପ୍ରକାର ଲୁଗା ପିନ୍ଧା—A mode of tucking down the front portion of the cloth and doubling it back to the waist.
Dokachhā
ଦୋକଚ୍ଛା } ଅନ୍ୟରୂପ
ଦୋକଚ୍ଛ(ଚ୍ଛି) }
दोकछि

ଦୋକଟା—ପ୍ରାଦେ. ବି (ବାଲେଶ୍ୱର)—ଶୁଖିଲା ତମାଖୁ ପତ୍ର—Dried tobacco leaves; dry tobacco leaves.
Dokatā
(ଦୋକ୍ତା—ଅନ୍ୟରୂପ) ମହାଜନେ ବୋଲନ୍ତି ଦୋକ୍ତା କାରବାର ଅଛି
तमाखु; दोक्ता ଗୋଷ୍ଠର ସାପ ଖେଳାଇବା ଏକ କଥା ।
ଫକୀରମୋହନ ଗଳ୍ପସ୍ୱଳ୍ପ ।

ଦୋକନା—ଦେ. ବି (ସଂ. ଦ୍ୱି+କଣ୍ଡି)—୧ । ଏକପ୍ରକାର ଅସ୍ତ୍ର—1. A kind of forked weapon.
Dokanā
(ଦୋକେନା—ଅନ୍ୟରୂପ) ୨ । ଅଗ୍ର ଭାଗରେ ଦୁଇ ଶାଖା ଥିବା ଯଷ୍ଟି—
दोफेकड़ा 2. A forked stick.

[ଦ୍ର—କଣ୍ଟା ଗୋଛକୁ ଆଯତ୍ତ କରି ବାନ୍ଧିବା ପାଇଁ ଓ କଣ୍ଟା ଗଛର ଡାଳ ଆଦିକୁ ବାଡ଼ରେ ଯୋଡି ଲଗାଇବା ପାଇଁ ଏହା ବ୍ୟବହୃତ ହୁଏ ।]

୩ । ଦୁଇ ଶାଖାବିଶିଷ୍ଟ ମଶାଲ—
3. A forked torch.

ବିଣ—ଦୁଇ ଶାଖାବିଶିଷ୍ଟ—Forked; biforked.

ଦୋକନା ସିଝୁ—ଦେ. ବି—ଏକ ପ୍ରକାର ସିଝୁ; ଦୁଇଟି ଶାଖା ବା ଲୁଆଁ ଥିବା ଏକପ୍ରକାର ସିଝୁ ଗଛ—Euphorbia Antiquorum.
Dokanā sijhu
ସଂ. ସିହୁଣ୍ଡ, ବଜ୍ର
ବଜ୍ର କଣ୍ଟକ (Kirtikar)
বাজভবণ, তেকাঁটাসিজ্, বাজবারন্
तिधारा सेहुण्ड, तिनधारा सेहुण्ड,
ଲରଥ. ଦାର୍ଉକା

ଦୋକଢ଼ି—ଦେ. ବି—ଦୁଇଟି ପୃଥକ୍ ଘରର ଚାଳର ତଳେ ମଧ୍ୟବର୍ତ୍ତୀ
Dokandı ଭୂମି,ଗମା ଗୋହ୍ଲୀ—A narrow space between
ଅଲିଗଲି two adjoining houses,built separate from
(ଦୋକଢ଼, ଦୋକନ୍ତ—ଅନ୍ୟରୂପ) each other.

ଦୋକର—ଦେ. ଅ—୧ । ଦୁଇ ଥର—1. Double; twice.
Dokara ୨ । ଦ୍ୱିତୀୟଥର—2 For the second time.
দোকব

ଦୋକଲା—ଦେ. ବିଣ. ( ସଂ ଦ୍ୱିକଲ; ତୁଳ. ସଂ. ଏକଲ; ଓ. ଏକଲା=
Dokalā ଏକାକୀ )—ଯାହା ସଙ୍ଗେ ଦ୍ୱିତୀୟ ବ୍ୟକ୍ତି ଥାଏ—
ছুকলা Having a second person in company;
दुकेला accompanied by another person.

ଦୋକା—ଦେ. ବି. ( ସଂ ଦ୍ୱି )—
Dokā ତାସ୍ ଖେଳରେ ଦୁଇ ବିନ୍ଦୁଯୁକ୍ତ ତାସ୍—
(ଦୋକ୍କା—ଅନ୍ୟରୂପ) A card having two points or
ছুবা दुक्का tips.

ଦୋକାଟ—ଦେ. ବିଣ—୧ । ( ଧାନ, ତମାଖୁ, ଅଖୁ ଆଦି ଗଛ ) ଥରେ
Dokāṭa କଟା ହେବା ପରେ ପୁଣି କୁଆ ବାହାରଲେ ଆଉ
ছুকাটি, দোকাট ଥରେ କଟା ଯିବା ( ଗଛ )—
दुकाटा 1. Cut for the second time.
୨ । ଦୁଇ ଥର କଟା ଯିବା ( ଧାନ ଗଛ )—
2. Cut twice.
ଦେ. ବି—୧ । ଧାନ, ତମାଖୁ ଅଖୁ ଗଛ ଆଦିର କାଣ୍ଡ ଦୁଇଥର
କଟାଯିବା—1 Cutting of a plant (e. g. paddy)
twice.
୨ । କଦଳୀ ବାଡ଼ିରେ ପ୍ରଥମ ଥର କେତେକ ଗଛରେ ପେଣ୍ଡା
ପଡ଼ି ସାରିବା ପରେ ଅନ୍ୟ ଗଛମାନଙ୍କରେ ଦ୍ୱିତୀୟ ଥର
ପେଣ୍ଡା ପଡ଼ିବା—The coming out of bunches of plantain from the trunks of some other plantain trees after some trees have borne fruits.

ଦୋକାଠିଆ—ଦେ. ବି—ଢକାଠିଆ ( ଦେଖ )
Dokāṭhia Dikāṭhia ( See )

ଦୋକାନ—ବୈଦେ. ବି. ( ଫା. ଦୁକାନ୍ )—୧ । ପଣ୍ୟଶାଳା—
Dokāna 1. Shop; stall.
দোকান; ছুকান ୨ । କାରଖାନା—2. Workshop.
दुकान ୩ । ଯେଉଁଠାରେ ପଣ୍ୟଦ୍ରବ୍ୟମାନ ଖୁଚୁରା ବିକ୍ରି ହୁଏ—
3. Retail-shop.
[ ଦ୍ର—ଯେଉଁଠାରେ ପଣ୍ୟଦ୍ରବ୍ୟମାନ ବହୁ ପରିମାଣରେ
(ଥୋକ୍‌ରେ) ବିକ୍ରି ହୁଏ ତାକୁ ଗୋଦାମ କହନ୍ତି । ]

ଦୋକାନ ଉଠା(ଠେ)ଇବା—ଦେ. କ୍ରି—୧ । ଦୋକାନର ଦୈନିକ
Dokāna uṭhā(ṭhe)ibā କାରବାର ଶେଷ ହେବା ପରେ ଦୋକାନ
ছুকান উঠান ବନ୍ଦ କରିବା—1. To close a shop after
दुकान उठान the day's business.
୨ । ବ୍ୟବସାୟ ବନ୍ଦ କରିବା ଯୋଗୁଁ ଦୋକାନର କର୍ମ ସ୍ଥଗିତ
କରିବା—2. To close down a shop; to discontinue business.

ଦୋକାନ ଖୋଲିବା—ଦେ. କ୍ରି—୧ । ଦୋକାନ ମେଲାଇବା (ଦେଖ)
Dokāna kholibā 1. Dokāna melāibā ( See )
[ଦୋକାନ ଫିଟା(ଟେ)ଇବା—ଅନ୍ୟରୂପ) ୨ । ଦୈନିକ କାରବାର ଆରମ୍ଭ
ছুকান খোলা କରିବାକୁ ଦୋକାନର ଦ୍ୱାରକୁ ଉନ୍ମୁକ୍ତ କରିବା—
दुकान खोलना 2. To open the doors of a shop for
the day's sale.
ଦୋକାନ ଉଠା(ଠେ)ଇବା, ଦୋକାନ ବନ୍ଦ କରିବା, ଦୋକାନ ପକା(କେ)ଇବା } ବିପରୀତ
୩ । ଗୋଟିଏ ନୂତନ ଦୋକାନ ପ୍ରତିଷ୍ଠା ବା ଆରମ୍ଭ କରିବା—
3. To start or open a new shop.

ଦୋକାନଦାର—ବୈଦେ ବି. ( ଫା. ଦୁକାନ୍‌ଦାର୍ )—
Dokānadār ୧ । ଦୋକାନର ସ୍ୱାମୀ; ଦୋକାନୀ—
দোকানদাব, ছুকানি 1. The owner of a shop.
दुकानदार ୨ । ଯେଉଁ ବ୍ୟକ୍ତି ଦୋକାନରେ ବସି ବିକାକିଣା
କରେ—2. Shopkeeper.

ଦୋକାନଦାରି—ବୈଦେ. ବି. ( ଫା. ଦୁକାନ୍‌ଦାରୀ )—
Dokānadāri ୧ । ଦୋକାନର ବ୍ୟବସାୟ—
দোকানদাবি 1. The profession of shopkeeping; trading.
दुकानदरि ୨ । ଦୋକାନଦାର ପରି ଦରଦାମରେ ଧିକମାଳ କରିବା—
2. Higgling and haggling.
୩ । ସବୁ ବିଷୟରେ ( ଦୋକାନଦାର ପରି ) ଲାଭ ପ୍ରତି ଦୃଷ୍ଟି
ରଖିବା—3. An eye to getting a profit in every matter ( like a shopkeeper. )
୪ । ଦ୍ରବ୍ୟସମ୍ଭାର ଲୋକଙ୍କୁ ଦେଖାଇବା ପାଇଁ ମେଲାଇ
ରଖିବା—4. A show; exhibition.
ବିଣ—୧ । ଦୋକାନଦାର ସମ୍ବନ୍ଧୀୟ—
1. Relating to a shopkeeper.
୨ । ଦୋକାନଦାରର ଯୋଗ୍ୟ ବା ଉଚିତ ( କର୍ମ )—
2. ( act ) Befitting a shopkeeper

ଦୋକାନଦାରିଆ—ଦେ. ବିଣ—୧ । ଦୋକାନଦାର ସମ୍ବନ୍ଧୀୟ—
Dokāndāriā 1. Relating to a shop-keeping.
দোকানদাবী ୨ । ଦୋକାନଦାରର ଯୋଗ୍ୟ (କର୍ମ)—
दुकानदारी 2. (act) Befitting a shopkeeper.

ଦୋକାନଦାରି କଥା—ଦେ. ବି—ଦୋକାନୀମାନଙ୍କର କଥାବାର୍ତ୍ତା—
Dokānadāri kathā A shopkeeper's talk.
দোকানদাবী কথা दुकानदारिकी बातें

ଦୋକାନ ପତ୍ର—ଦେ. ବି. (ବିକାରାର୍ଥକ ସହଚର ଦ୍ୱିତୀୟ ଶବ୍ଦ )—
Dokāna patra ୧ । ଦୋକାନ—1. Shop.
দোকানপাট ୨ । ଦୋକାନର ପଣ୍ୟଦ୍ରବ୍ୟ—
दोकानपत्तर 2. Commodities of a shop.
( ଦୋକାନ ପାଟ—ଅନ୍ୟରୂପ ) ୩ । କ୍ରୟ ବିକ୍ରୟ—
3. Transactions made in a shop.

ଦୋକାନ ମେଲା(ଲେ)ଇବା—ଦେ. କ୍ରି—୧ । ପଣ୍ୟ ଦ୍ରବ୍ୟମାନଙ୍କୁ
Dokāna melā(le)ibā ବିକ୍ରୟାର୍ଥ ସୁସଜ୍ଜିତ କରି ରଖିବା—

ଦୋକାନ ମେଲିବା
ଦୋକାନ ଖୋଲିବା
ଦୋକାନ ଜମା(ମେ)ଇବା
ଦୋକାନ ଲଗା(ଗେ)ଇବା } ଅନ୍ୟରୂପ 1. To set up or exhibit the contents of a shop; to hold a shop;
ଦୁକାନ ଲାଗାନ to exhibit the articles in a shop.
ଦୁକାନ ଲଗାନା ୨ । ଦୋକାନମାନଙ୍କ ପରି ଜିନିଷ ଇତସ୍ତତଃ ବିଛାଇ ରଖିବା—2. To scatter about things as in a shop

(ଯଥା—ଏ ବାଳକଟି ପଢ଼ିବା ବହିଯାକ ଦୋକାନ ମେଲେଇଛି ।)

ଦୋକାନି—ବୈଦେ. ବି. (ଫା)—୧ । ଦୋକାନଦାର ( ଦେଖ )
Dokāni 1 Dokānadār ( See )
( ଦୋକାନିଆ—ଅନ୍ୟରୂପ ) ୨ । ଯେଉଁ ବ୍ୟକ୍ତି ଦୋକାନରେ ଖୁଚୁରା ବିକ୍ରି କରେ—2. The keeper of a retail-shop.

ଦୋଖୁଣ୍ଟିଆ—ଦେ. ବିଣ—ଯେଉଁ ଧାନ ଗଛର ଅଗରୁ ଧାନକେଣ୍ଡାଯାକ
Dokhuntiā କଟା ହୋଇଯିବା ପରେ ମୂଳରୁ ଶୁଖି ଯାଇଥିବା
(ଦୋଖୁଣ୍ଟା—ଅନ୍ୟରୂପ) ଛଣ କଟା ହୁଏ—( paddy plants ) From which the stems are cut separately (for the purpose of straw) after the sheaves of corn are cut away.

ଦୋଗଛିଆ—ଦେ.ବିଣ—ଯେଉଁ ବାଟରେ ବା ଛକରେ ଦୁଇଟି ଗଛ ପରସ୍ପର
Dogachhiā ସଂଲଗ୍ନ ହୋଇଥାଏ—( a crossroad or road) Having two trees standing together.
[ ଦ୍ର—ଏ ବାଟରେ ରାତିରେ ଏକାକୀ ଯିବା ନିଷିଦ୍ଧ । କାରଣ ଏପରି ଛକରେ ଥିବା ଗଛଉପରେ ଭୂତ ଥାଏ ବୋଲି ଲୋକମାନଙ୍କର ବିଶ୍ୱାସ । ]

ଦୋଗଧନି—ଗ୍ରା. ବିଣ. ( ସଂ. ସନ୍ଧାନ; ଦ୍ୱିଧା )—୧ । ସନ୍ଦିହାନ—
Dogadhani 1. Swayed by doubts; doubtful.
ଦୁବିଧା ୨ । କିଂକର୍ତ୍ତବ୍ୟବିମୂଢ଼; ଏକଥା କରିବ, କି ସେକଥା କରିବ,
ଦୁବଧା ଏହା ଯେ ସ୍ଥିର କରି ପାରେ ନାହିଁ—
ଦୋଗୁଧିଆ
ଦୋଖିଆ } ଅନ୍ୟରୂପ 2, Puzzled; vacillating.
ଦୋଘୁଞ୍ଚିଆ ୩ । ବିଷମ ସମସ୍ୟାରେ ପଡ଼ିଥିବା— 3. Between the two horns of a dilemma; between Scylla and Charybdis.
ବି—୧ । ସନ୍ଦେହ—1. Doubt.
୨ । ବିଷମ ସମସ୍ୟା—2. Dilemma.
୩ । ଦୋଦୋପାଞ୍ଚ—3, Hesitancy,

ଦୋଗଧା—ଗ୍ରା. ବି (ସଂ. ଦ୍ୱିଧା)—୧ । ସନ୍ଦେହ—
Dogadhā 1. Doubt.
(ଦୋଗୁଧା—ଅନ୍ୟରୂପ) ୨ । ଧନ୍ଦା; ବିଷମ ସମସ୍ୟା—2. Dilemma.
୩ । ଦୁଇ ବସ୍ତୁ ବା ବିଷୟ ମଧ୍ୟରୁ କାହାକୁ ନେବାକୁ ବା ଅବଲମ୍ବନ କରିବାକୁ ହେବ, ଏ ସମ୍ବନ୍ଧେ ଅନିଶ୍ଚୟ; ମନର ଅସ୍ଥିରତା; ସାତପାଞ୍ଚ କରିବା; ଦୋଦୋପାଞ୍ଚ— 3. Unsettled condition of the mind as to accept which one of the two things present before a person; wavering state of mind; vacillation; hesitancy.
୪ । ଆଶଙ୍କା—4 Apprehension.
ଦୋଖା ବିଣ—୧ । ସନ୍ଦେହଯୁକ୍ତ—1. Doubtful.
ଦୁଗଧା, ଦୁବଧା ୨ । ଦୋଦୋପାଞ୍ଚ—2. Hesitating.

ଦୋଗଧି ହେବା—ଦେ. କ୍ରି—ଧନ୍ଦାରେ ପଡ଼ିବା; ଦୁଇଟି ବିପରୀତ କଥା ବା
Dogadhi hebā କାର୍ଯ୍ୟ ମଧ୍ୟରୁ କେଉଁ କଥା ବା କର୍ମ କରିବାକୁ
ଦୋଖାପଡ଼ା ହେବ ତାହା ସ୍ଥିର କରି ନ ପାରି ସନ୍ଦେହରେ
ଦୁଗ୍ଧାକରନା ଘାରି ହେବା—To hover between the
(ଦୋଗଧାରେ ପଡ଼ିବା—ଅନ୍ୟରୂପ) two horns of a dilemma; to vacillate, to waver.

ଦୋଗଲା—ବୈଦେ. ବିଣ ( ଫା. ଦୋଗଲହ୍—ହି. ଶବ୍ଦସାଗର )—
Dogalā ୧ । ବର୍ଣ୍ଣସଙ୍କର—1. Of mixed descent.
(ଦୋଗ୍ଲା—ଅନ୍ୟରୂପ) ୨ । ଜାରଜ—2. Bastard.
ଦୋଆଁସଲା ୩ । ଦୁଇ ଭିନ୍ନ ଜାତୀୟ ଜୀବଙ୍କ ସଙ୍ଗମରୁ ଉତ୍ପନ୍ନ—
ଦୋଗଲା 3. Mongrel; hybrid
୪ । ଯେଉଁ ବ୍ୟକ୍ତିର ମନ ଗୋଟିଏ କାର୍ଯ୍ୟରେ ଏକାଗ୍ର ହୋଇ ଲାଗେ ନାହିଁ— 4. Absent-minded; unable to concentrate attention to one matter only at a time.

ଦୋଗ୍ଧା—ସଂ. ବି. ପୁଂ (ଦୁହ୍ ଧାତୁ+କର୍ତ୍ତୃ ତୃ; ଦୋଗ୍ଧୃ ଶବ୍ଦ ୧ମା. ୧ବ)
Dogdhā ୧ । ଯେ ଦୁହେଁ—1. One who milks, a
(ଦୋଗ୍ଧ୍ରୀ—ସ୍ତ୍ରୀ) milker
୨ । ବତ୍ସ; ବାଛୁରି—2 Calf
୩ । ଗୋପାଳ; ଗଉଡ଼—3 Milkman
୪ । କବି—4. Poet.
ବିଣ—ଦୁହିଁବା ବ୍ୟକ୍ତି, ଦୁହାଳ—Milking.
ବି. ଓ ବିଣ—ଦୋଗଧା ( ଦେଖ )—Dogadhā ( See )

ଦୋଗ୍ଧ୍ରୀ—ସଂ. ବିଣ. ସ୍ତ୍ରୀ. (ଦୁହ୍+କର୍ତ୍ତୃ. ତୃ+ସ୍ତ୍ରୀ. ଈ) —ଦୋହନଶୀଳା—
Dogdhri Given to milking (female).
ବି. ସ୍ତ୍ରୀ—୧ । ଦୁଗ୍ଧବତୀ ଗାଈ—1. A milch-cow.
୨ । ଗାଈ ଦୁହିଁଲି ସ୍ତ୍ରୀ—2. A woman who milks.
୩ । ଗଉଡ଼ୁଣୀ—3. A milkmaid.

ଦୋଘର—ଦେ. ବି. ( ସଂ. ଦ୍ୱି ଓ ଗୃହ )—୧ । ଏକସ୍ଥାନରେ ବାସ-
Dogharā ଗୃହ ଥାଇ ଆଉ ଅନ୍ୟସ୍ଥାନରେ କରାଯିବା ଦ୍ୱିତୀୟ ବାସଗୃହ—1. Additional residential quarters raised at a second site.
୨ । ଦୁଇ ସ୍ଥାନରେ କରାଯିବା ବାସଗୃହ— 2. Double residential quarters.

ଚଳ ନ ଥିଲେ କି ମାଇପ କର
ଭାତ ନ ସରିଲେ ଦୋଘର କର—ଢଗ ।

ଦୋଘା(ଘେ)ଇ—ଦେ. ବି—୧ । ବିଷମ ସମସ୍ୟା; ଦୋଗଧା; ଧନ୍ଦା—
Doghā(ghe)i 1. Dilemma.
ଦୋଟାନା ୨ । ଦୁଇଟି ନଦୀଧାର ପରସ୍ପରକୁ କାଟିବା—

दोच 3. The crossing of two streams (Howells).
୩ । ଦୁଇ ପକ୍ଷ ମଧ୍ୟରେ ବିବାଦ—3 Contention or disputation between two parties (Howells).

ଦୋଜବର ବିଣ. ( ସଂ. ଦ୍ୱି ଓ ବିବାହିତ )—ଦ୍ୱିତୀୟଥର ବିବାହିତ ପୁରୁଷ, ଦୋବେଇ – Remarried ( widower ).

ଦୋଘାଇରେ ପଡ଼ିବା—ଦେ. କ୍ରି—ଦୋଗଧି ହେବା ( ଦେଖ )
Doghāire pardibā Dogadhi hebā ( See )

ଦୋଚାରି—ଦେ. ବି. ପୁଂ. (ସଂ. ଦ୍ୱିଚର, ଦ୍ୱିଚାରୀ)—ଲମ୍ପଟ; ଜାରପୁରୁଷ—
Dochāri An adulterer.
[ ଦ୍ର—ଏହି ଶବ୍ଦ ମଧ୍ୟ ସ୍ତ୍ରୀଲିଙ୍ଗରେ ବ୍ୟବହୃତ ହୋଇଥାଏ । ]

ଦୋଚାରି(ରୁ)ଣୀ—ଦେ. ବି. ସ୍ତ୍ରୀ. (ସଂ. ଦ୍ୱିଚାରିଣୀ)—କୁଳଟା; ବିଟପୀ—
Dochāri(ru)ni Adulteress
କୁଳଟା ହୋଇ ଦୋଚାରିଣୀ
ଅସତୀପଣେ ସାହସିନୀ—ଜଗନ୍ନାଥ. ଭାଗବତ ।

ଦୋଚାଳ(ଳି)—ଦେ. ବି—ଦୁଇ ଚାଳବିଶିଷ୍ଟ ଘର—
Dochāla(li) A house having the thatch sloping on both sides.
দোচালা दोचला
( ଦୋଚାଳିଆ—ଅନ୍ୟରୂପ )

ଦୋଚିହ୍ନା—ଦେ. ବି—ଚିହ୍ନି ନ ପାରିବା; ଚିହ୍ନିଥିବା ବ୍ୟକ୍ତିକୁ ପରେ ଚିହ୍ନି ନ ପାରିବା—Failure to identify a person who was once known to you.
Dochihnā
( ଦୋ ଦୋ ଚିହ୍ନା—ଅନ୍ୟରୂପ )
ସୁଦେବ ଦୋଚିହ୍ନା କରି ପୁଣ ପୁଣ ଅନୁସରି
ପଚାରିଲେ ମାଏ କିସ ନାମ ତୁମ୍ଭର—ପ୍ରାଚୀ. ନଳଚରିତ ।

ଦୋଚୁଙ୍ଗା(ଙ୍ଗି)—ଦେ. ବିଣ. ( ସଂ. ଦ୍ୱି+ଫା. ଚୁଙ୍ଗା )—ଦ୍ୱିନଳିଆ (ବନ୍ଧୁକ)—Double-barrelled (gun).
Dochungā(ngi)
হুনলী दोजली, दोनली

ଦୋଛକି(କ୍କି)—ଦେ. ବି—ଯେଉଁ ସ୍ଥାନରେ ଦୁଇଟି ବାଟ ପରସ୍ପରକୁ କାଟିଥାଏ—A crossing place of two roads
Dochhaki(kki)
दोराहा

ଦୋଜଖ୍—ବୈଦେ. ବି. ( ଫା )—ମୁସଲମାନଙ୍କ ମତରେ ମୃତ୍ୟୁ ପରେ ପାପୀ ବ୍ୟକ୍ତିଙ୍କୁ ଯେଉଁଠାରେ ଦଣ୍ଡ ଦିଆଯାଏ; ମୁସଲମାନଙ୍କ ନରକ—The hell of the Mahomedans.
Dojakh
দোজখ
दोजख

ଦୋଜ ବର—ପ୍ରାଦେ. ବି. ( ବାଲେଶ୍ୱର )—ଦୋବେଇ ( ଦେଖ )
Doja bara Dobei ( See )
କୋଷ୍ଠୀ ଠିକ ହେଉଁ ହେଉଁ ବରର ବୟସ ହୋଇ ଗଲାଣି ପଚାଶ,
କନ୍ୟା ଧନବନ୍ତ ଲୋକ ଦୋଜବର ଓ ଚେକବର ବୟସ ଖାଟିବେ—
ଫକୀରମୋହନ. ଗଳ୍ପସ୍ୱଳ୍ପ ।

ଦୋଟି—ଗ୍ରା. ( ଇତର ) ବି. ଓ ବିଣ. ( ଆଦରାର୍ଥକ )—ଦୁଇଟି (ଦେଖ)
Doti Duiti ( See )
( ଦୋଓଟି— ଅନ୍ୟରୂପ )
(ଦଇଟା, ଦଉଟା—ଅନାଦରାର୍ଥକ)

ଦୋଡ଼ ରେଜିଷ୍ଟର—ପ୍ରାଦେ. ( ସମ୍ବଲପୁର ) ବି. ( କଚେରୀ )—
Dorda-rejishtara ଯେଉଁ ରେଜିଷ୍ଟରରେ ସମନ ଓ ନୋଟିସ୍ ଜାରି କରିବା ପିଆଦାମାନଙ୍କ ବିବରଣ ଲେଖା ଥାଏ—
Register of process-serving peons.

ଦୋତରଫା—ବୈଦେ. ବିଣ ( କଚେରୀ ) (ଫା)—ବାଦୀ ଓ ପ୍ରତିବାଦୀ ଉଭୟଙ୍କ ଉପସ୍ଥିତିରେ ବିଚାର କରାଯାଇଥିବା (ମୋକଦ୍ଦମା)—( case ) Decided after hearing both sides; two-sided; disposed of after contest.
Dotaraphā
দোতরফা
दोतरफा
( ଏକତରଫା—ବିପରୀତ )

ଦୋତାର ବନ୍ଧ—ଦେ. ବିଣ—ଚୁଲିରେ ପାଣି ଦେଇ ଜାଳରେ ଫୁଟାଇବା ବେଳେ ଚାଟୁରେ ଗୁଡ଼ ପାଣିକୁ ଉଠାଇଲେ ସରୁ ଚାର ପରି ଦୁଇଟି ମାତ୍ର ଧାର ହୋଇ ପଡ଼ିବା ଅବସ୍ଥା ବା ପାଗ—Having a thickened condition (said of boiled syrup while it descends from the ladle in two lines ).
Dotār band
দুতার বন্দ
दुतार बन्द

ଦୋତାରା—ଦେ. ବି—ଦୁଇଗୋଟି ତାରବିଶିଷ୍ଟ ବାଦ୍ୟଯନ୍ତ୍ର—A two stringed musical instrument.
Dotārā
দুতারা दोतारा ବିଣ.—ଦୁଇତାରଯୁକ୍ତ—To-stringed.

ଦୋତାରି—ଦେ. ବିଣ—୧ । ଯେଉଁ ସପ ମସିଣାର ଦୁଇଟି ଲେଖାଏଁ କାଠି ଏକତ୍ର ବୁଣା ଯାଇଥାଏ—
Dotāri
দুতারী 1 ( a mat ) Having two reeds woven together.
दुतारी
୨ । ଯେଉଁ ଲୁଗାରେ ଦୁଇଟି ଲେଖାଏଁ ସୂତା ଏକତ୍ର ବୁଣା ଯାଇଥାଏ—2. Double-threaded or woven ( cloth ).
୩ । ଦୋତାର ବନ୍ଧ ( ଦେଖ )
3. Dotār band (See)

ଦୋତାଲ—ଦେ. ବିଣ. ( ସଂ. ଦ୍ୱିତଳ )—
Dotālā ୧ । ଦ୍ୱିତଳବିଶିଷ୍ଟ –1. Double storied; two-storied.
দোতলা, দোতালা
दोतल्ला ୨ । ( ସଂ. ଦ୍ୱି+ତାଳକ ) ଯେଉଁ କୋଲପର କଳ ଏପରି ଥାଏ ଯେ ତାହା ଦୁଇ ଥର ଘୁରାଯାଇ ବନ୍ଦ ପଡ଼େ—
2. ( a lock ) Locking double; double-levered (lock).
୩ । ଯେଉଁ ଘର ବା ସିନ୍ଦୁକରେ ଦୁଇଟି କୋଲପ ପଡ଼ିଥାଏ—
3 ( a house or box ) Under double lock, double-locked.
ବି—କୋଠାର ଦ୍ୱିତୀୟ ତଲ; ଉପର ମହଲା—
Upper storey

ଦୋଥଣ୍ଡି—ଦେ. ବି—ଚିଲିକା ହ୍ରଦରେ ଥିବା ଏକ ପ୍ରକାର ମାଛ—
Dothanti A kind of fish found in the Chilka lake.

ଦୋଦଲି(ଲ୍ଲି)—ଦେ. ବିଣ ( ସ ଦ୍ୱି+ଅ. ଦିଲ୍ )—
Dodili(lli) ଯେଉଁ ବ୍ୟକ୍ତିର ମନ ଗୋଟିଏ କାର୍ଯ୍ୟରେ ଏକାଗ୍ର ନ ଥାଇ କାର୍ଯ୍ୟାନ୍ତର ପ୍ରତି ଆକୃଷ୍ଟ ହୁଏ—
दोदिला
(ଦୋଦଲିଆ—ଅନ୍ୟରୂପ) ( a person ) Who cannot concentrate his attention to one matter; with divided attention.

ଦୋଦୁଲ୍ୟମାନ—ସ. ବିଣ. ପୁଂ. ( ଦୁଲ ଧାତୁ = ଦୋହଲିବା, ପୁନଃପୁନଃ ଅର୍ଥରେ ଯଙ୍‌ଲୁଗନ୍ତ ଦୋଦୁଲ୍ୟ ଧାତୁ = କର୍ତ୍ତୃ. ଅନ )—
Dodulyamāna
(ଦୋଦୁଲ୍ୟମାନା—ସ୍ତ୍ରୀ)
ଅନବରତ ଦୋହଲୁଥିବା; କ୍ରମାଗତ ଦୋଳାୟମାନ—
Oscillating; swinging.

ଦୋଦୋଚିହ୍ନା - ଦେ. ବି—ଦୋଚିହ୍ନା ( ଦେଖ )
Dodochihnā Dochihnā ( See )

ଦୋଦୋପାଞ୍ଚ—ଦେ. ବିଣ—କୌଣସି କାର୍ଯ୍ୟ କରିବା କି ନ କରିବା ଏ ସମ୍ବନ୍ଧରେ ଛନ୍ଦ ହେବା—
Dodopāñcha
(ଦୋଦୋପଞ୍ଚ—ଅନ୍ୟରୂପ) Wavering; undecided; vacillating.
ବି—କୌଣସି କାର୍ଯ୍ୟ କରିବା ନ କରିବା ସମ୍ବନ୍ଧେ ସନ୍ଦେହ ବା ଅସ୍ଥିରତା--Uncertainty; wavering, want of decision; vacillation.

ଦୋଧୂୟମାନ—ସଂ. ବିଣ. ପୁଂ ( ଧୂ ଧାତୁ=କମ୍ପିବା, ପୁନଃ ପୁନଃ ଅର୍ଥରେ ଯଙ୍‌ ଲୁଗନ୍ତ ଦୋଧୂୟ ଧାତୁ+ କର୍ତ୍ତୃ. ଅନ )—ପୁନଃ ପୁନଃ କମ୍ପମାନ—
Dodhūyamāna
(ଦୋଧୂୟମାନା—ସ୍ତ୍ରୀ)
Quaking or shivering; vibrating

ଦୋନ୍‌ଜମି—ପ୍ରାଦେ. ( ସିଂହଭୂମ ) ବି—ସିଂହଭୂମର ସରକାରୀ ସ୍ୱତ୍ୱସ୍ଥ ବନ୍ଦୋବସ୍ତରେ ଜମିର ବିଶ୍ୱ ଶ୍ରେଣୀବିଶେଷ; ଧୋଉଥିବା ଜମି—
Don-jami Land into which the rain-water of a village flows down.

ଦୋନରି—ଦେ. ବିଣ. ( ସଂ. ଦ୍ୱି + ଲହରୀ )—
Donari ଦୁଇ ସରୁଆ ( ହାର )—
दुनरी Two-stringed ( necklace ).
दोलड़ा
(ଦୋନରିଆ, ଦୋସରିଆ, ଦୋସରି, ଦୋଲରିଆ—ଅନ୍ୟରୂପ)

ଦୋନଲି—ଦେ. ବିଣ. ( ସଂ. ଦ୍ୱି + ନଳ ) —
Donali ଯେଉଁ ବନ୍ଧୁକର ଦୁଇଟି ନଳ ଥାଏ—
दुनला Double-barrelled (gun).
दोनली (ଦୋନଳିଆ—ଅନ୍ୟରୂପ)

ଦୋନଶଲା—ଦେ. ବି—ଦୋଅଂଶଲା ( ଦେଖ )
Donaśalā Do-aṁśalā ( See)
(ଦୋନୋଶଲା—ଅନ୍ୟରୂପ)

ଦୋନାବୁଡ଼ା—ଦେ. ବିଣ. ( ସଂ. ଦ୍ୱି ଓ ନାବ )—
Donāburḍā ୧ । ବିପରୀତଗାମୀ ଦୁଇ ଡଙ୍ଗାରେ ଗୋଡ଼ ଦେଇ ଠିଆ ହୋଇଥିବା (ବ୍ୟକ୍ତି)—
ଦୋନାବଡ଼ା, ଦୋନାବଡ଼ିଆ, ଦୋନାବୁଡ଼ିଆ } ଅନ୍ୟରୂପ
दुमोसया
1. (a person) Who has his two feet on two boats proceeding in opposite directions.
୨ । ( ଲକ୍ଷଣାର୍ଥ ) ସନ୍ଦିଗ୍ଧ—2. ( figurative ) Vacillating; sitting on the fence.
୩ । (ଲକ୍ଷଣାର୍ଥ) ପରସ୍ପରବିପକ୍ଷ ଉଭୟ ପକ୍ଷକୁ ସମର୍ଥନ କରୁଥିବା (ବ୍ୟକ୍ତି)—3. (figurative) Siding with two opposite factions.

ଦୋନାବୁଡ଼ା ରୀତି—ଦେ. ବି. (ସଂ. ଦ୍ୱି ଓ ନାବ + ରୀତି) —
Donāburḍā riti ଉଭୟ ପକ୍ଷକୁ ସମର୍ଥନ କରିବା ରୀତି; ମୃଦଙ୍ଗ ଦୁଇ ପିଠିରେ ହାତ ପକାଇବା ଭଙ୍ଗୀ—
दुमेसियाटंग
Double dealing; two-faced dealing.

ଦୋପଇସା(ସି)—ଦେ. ବି—ଅଧ ଅଣା ବା ଦୁଇ ପଇସା ମୂଲ୍ୟର ତାମ୍ର ମୁଦ୍ରା—Double pice; a copper coin worth half anna.
Dopaisā(si)
दुपयसा डबल पैसा

ଦୋପଖା—ଦେ ବିଣ. ( ସଂ. ଦ୍ୱି ଓ ପାର୍ଶ୍ୱ )—ଦୁଇ ପାର୍ଶ୍ୱବିଶିଷ୍ଟ—
Dopakhā Two-sided.
दोपाका दोहरा

ଦୋପଖା ଚୁଲ୍ଲୀ—ଦେ· ବି—ଯେଉଁ ଚୁଲି ଉପରେ ଏକ ସମୟରେ ଦୁଇଟି ହାଣ୍ଡି ବସି ପାରେ—
Dopakhā chullī
दुपाखाचूल्हा An oven having two holes for putting two pots on them, simultaneously.
दोहराचुल्हा

ଦୋପଟ—ଦେ. ବିଣ—୧ । ଡବଲ୍; ଦ୍ୱିଗୁଣିତ—
Dopaṭa 1. Folded double; double.
दुपट ୨ । ଦୁଇଗୁଣ ପରିମିତ—2. Twice as much.
दूना ବି—ଡଙ୍ଗାର ମୂଳ ଦଣ୍ଡାକୁ ଲାଗି କରି କଣ୍ଟା ଦ୍ୱାରା ସଂଯୁକ୍ତ ହେବା ଦୁଇ ପାଖର ଲମ୍ବ ପଟା—Two long planks joined to the main plank of a boat.

ଦୋପଟା—ଦେ. ବି. ( ସଂ. ଦ୍ୱି ଓ ପଟ୍ଟ )—
Dopaṭā ଦୁଇ ଖଣ୍ଡି ଲମ୍ବ କନାଖଣ୍ଡ ଯୋଡ଼ା ହୋଇଥିବା ଉତ୍ତରୀୟ; ଦୋସଡ଼ା—
दोपटा; दुपटी, दुपट्टा
ଦୋପଟ୍ଟା, ଦୋପଟ୍ଟ, ଦୋପଟ୍ଟି } ଅନ୍ୟରୂପ
Double cloth; a wrapper or sheet having two breadths; a wrapper sewn twice, lengthwise; two breadths of cloth.

ଦୋପଟୀ (ଇତ୍ୟାଦି)—ପ୍ରା. (ବୈଦେ) ବି—ଡେପୁଟୀ ଇତ୍ୟାଦି (ଦେଖ)
Dopaṭi (etc) Deputi etc (See)

ଦୋପରତ—ପ୍ରା. ବି ଓ ବିଣ—ଦୋପରସ୍ତ (ଦେଖ)
Doparata Doparasta (See)
(ଦୋପରତା—ଅନ୍ୟରୂପ)

ଦୋପରସ୍ତ—ଦେ. ବି. (ସ. ଦ୍ୱି ଓ ପ୍ରସ୍ତ)—ଦୁଇ ଥର କରାଯାଇ ଥିବା ଭାଙ୍ଗ—Two folds.
Doparasta
ଦୋପରସ୍ତା, ଦୋପରସ୍ତ, ଦୋପରସ୍ତିଆ } ଅନ୍ୟରୂପ
ବିଣ—ଦୁଇ ଭାଙ୍ଗ କରା ଯାଇଥିବା; ଦୁଇ ଭାଙ୍ଗବିଶିଷ୍ଟ—Folded double; doubled; with two thicknesses.
दोभाँज दोपर्ता

ଦୋପରି—ଦେ. ବି ଓ ବିଣ—ଦୋପୁରି (ଦେଖ)
Dopari Dopuri (See)

ଏମନ୍ତ ଶୁଣି ସେ ନୃପମଣି
ଦୋପରି ପରେ ଗଲେ ଭଣି
ନ ବସେ ଖଳ ଭରତ ପୁଣି କେ ପାରେ ଲଣି, ଯେ । . . . ୦
ବ୍ରଜନାଥ, ସମରତରଙ୍ଗ ।

ଦୋପାଗି—ଦେ. ବିଣ—ଗୁଡ଼ ବା ଚିନିରେ ଦୁଇଥର ପାଗ ହୋଇଥିବା
Dopāgi (ଭୃଷ୍ଣ ଭଜା)—(fried corn) Seasoned twice
ଦୋବବା with sugar or molasses

ଦୋପାଟ—ଦେ. ବିଣ. (ପୁଂ ଓ ସ୍ତ୍ରୀ)—ଦୋହରା ଓ ଡେଙ୍ଗା; ହୃଷ୍ଟ-
Dopāta ପୁଷ୍ଟ ଓ ଡେଙ୍ଗା (ବ୍ୟକ୍ତି)—
Robust and tall (person).

ଦୋପାଟିଆ—ଦେ. ବି—ଏକପ୍ରକାର ଆନକ ବାଦ୍ୟ; ବେଙ୍ଗପାଟିଆ
Dopātiā ବାଜା—A kind of two-faced drum.

ଦୋପୁଟୀ (ଇତ୍ୟାଦି)—ଡେପୁଟୀ ଇତ୍ୟାଦି (ଦେଖ)
Doputi (etc) Deputi etc (See)

ଦୋପୁର—ଦେ. ବିଣ—ଦୁଇ ଥର ବଟା ହୋଇଥିବା (ହଳଦୀ)—
Dopura (Turmeric) Pestled twice.
(ଦୋପୁରବଟା—ଅନ୍ୟରୂପ) ଦୁବାରବାଟা

ଦୋପୁରି—ଦେ. ବିଣ—୧ । ଯେଉଁ ମନୁଷ୍ୟର ଶରୀରର ଗଠନ (ଅସ୍ଥି ଓ
Dopuri ମାଂସ) ମୋଟାସୋଟା; ହୃଷ୍ଟପୁଷ୍ଟ—Of a firm build;
strong and robust.
୨ । ଦୋପରସ୍ତ—2. Folded double
ବି—ଅଟୁ ଘର (ଏଥିରେ ଦୁଇପ୍ରସ୍ଥ ଚାଳ ଥିବାରୁ)—
A double-roofed house.

ଦୋପୁରି ଉଖୁଡ଼ା—ଦେ. ବି—ଦୋପାଗି ଉଖୁଡ଼ା—Fried corn
Dopuri ukhurdā seasoned twice with sugar.

ଦୋଫଳା—ଦେ. ବି—୧ । ଦୋଫସଲି (ଦେଖ)
Dophalā 1. Dophasali (See)
ଦোফলা ୨ । ଯେଉଁ ଗଛରେ ବର୍ଷକେ ଦୁଇଥର ଫଳ ଧରେ—
**दोफला** 2. (tree) Bearing fruit twice a year

ଦୋଫଳା—ଦେ. ବିଣ—ଯେଉଁ ଛୁରୀର ଦୁଇଟି ଫଳକ ଥାଏ—
Dophalā Two-bladed (knife).
ଦুপাতা **दोफला**

ଦୋଫଳୀ—ଦେ. ବିଣ—୧ । ଯେଉଁ ସ୍ତ୍ରୀ ଦୁଇଥର ମାତ୍ର ସନ୍ତାନ ପ୍ରସବ
Dophali କରିଅଛି—1 (a woman) Who has borne
ଦোফলা two children only.
୨ । ଯେଉଁ ଗଛ ବର୍ଷକ ମଧ୍ୟରେ ଦୁଇଥର ଫଳ ଧାରଣ
କରେ—2. (tree) Growing fruits twice in
the year
(ଯଥା—ଦୋଫଳୀ ଆମ୍ବ ଗଛ ।)

ଦୋଫସଲି—ଦେ. ବିଣ. (ସ ଦ୍ୱି + ଆ. ଫସଲ୍)—୧ । ଯେଉଁ ଜମିରେ
Dophasali ବର୍ଷକ ମଧ୍ୟରେ ଦୁଇଗୋଟି ଫସଲ ଉତ୍ପାଦିତ ହୁଏ—
দুফসলী 1. (land) Growing two crops in the year
**दोसाहो, दोफसला**

ଦୋଫାଙ୍କ—ଦେ. ବିଣ. (ସଂ ଦ୍ୱି ଓ ଫା. ଫାଙ୍କ)—
Dophānka ୧ । ଫାଟି କରି ଦୁଇ ଭାଗ ହୋଇଥିବା—
(ଦୋଫାଙ୍କିଆ—ଅନ୍ୟରୂପ) 1. Split into two.
দোফাঙ্ক; দুফাঙ্ক ୨ । ଏକ ଗୋଷ୍ଠି ମଧ୍ୟରେ ଦୁଇଦଳ ହୋଇଥିବା—
2. Divided into two fractions.

୩ । ପରସ୍ପର ଅମେଳ ହୋଇଥିବା—3. Dissentient.
ବି—ଦୁଇ ଜଣଙ୍କ କଥା ବା ଆଖ୍ୟାନ ମଧ୍ୟରେ ପାର୍ଥକ୍ୟ—
Difference between the two versions of two
persons.

ଦୋବନ୍ଧା—ଦେ. ବି—ଦୁଇଟି ବନ୍ଧ ମିଳିଥିବା ସ୍ଥାନ—
Dobandhā A meeting place of two embankments.
(ଦୋବନ୍ଧ—ଅନ୍ୟରୂପ)

ଦୋବାର—ଦେ. ବିଣ. (ସ. ଦ୍ୱି + ବାର)—ଦୁଇ ଥର କରାଯିବା—
Dobārā Done twice.
দুবার ଦେ. ଅ—ଦୁଇ ଥର—Two times.
**दोबारा, द्बारह**

ଦୋବିଆଣୀ—ଦେ. ବିଣ—ଦୋଫଳୀ ୧ (ଦେଖ)
Dobiāni Dophali 1 (See)

ଦୋବିଜା—ଦେ. ବିଣ. (ଗାଳିରେ ବ୍ୟବହୃତ)—୧ । ଦୋଅଂଶଳା—
Dobijā 1. Mongrel.
୨ । ଜାରଜ—2. Bastard.

ଦୋବିଧା—ଦେ. ବି—ଦୋଗଧା (ଦେଖ)
Dobidhā Dogadhā (See)

ଦୋବିନ୍ଧା—ଦେ. ବି—ବିଷମ ସମସ୍ୟା—
Dobindhā A dilemma.

ଦୋବୁଲା—ଦେ. ବିଣ. (ସ.ଦୁର୍ବଳ)—୧ । ଦୁର୍ବଳ—
Dobulā 1. Weak.
(ଦୋବଲା—ଅନ୍ୟରୂପ) ୨ । ଶୀର୍ଣ୍ଣକାୟ—2. Emaciated.
দুবলা **दुबला**

ଦୋବୁହା—ଦେ. ବିଣ—ଯେ ଏକ କାମକୁ ଦୁଇଥର କରେ; ନିର୍ବୁଦ୍ଧିଆ—
Dobuhā Stupid; foolish.

ଦୋବେ—ଦେ. ବି—ଦୁବେଇ (ଦେଖ)
Dobe Dubei (See)

ଦୋବେଇ—ଦେ. ବିଣ. ପୁଂ. (ସ. ଦ୍ୱି ଓ ବିବାହିତ)—ଦ୍ୱିପତ୍ନୀକ (ବର-
Dobei ପାତ୍ର), ଦ୍ୱିତୀୟ ପକ୍ଷ ବର—Widower (bride-
দোজ groom); married for the 2nd time (said of
**दोजा** a remarried widower).
(ଦୋବେହ—ଅନ୍ୟରୂପ) ବି.—୧ । ଦ୍ୱିତୀୟ ଥର ବିବାହିତ
ମୃତଦାର ପୁରୁଷ—1. A remarried widower.
୨ । ଦୁବେଇ (ଦେଖ)—Dubei (See)

ଦୋବେଇ ବର—ଦେ. ବି.—ଦ୍ୱିତୀୟ ଥର ବିବାହିତ ମୃତଦାର—
Dobei bara A remarried widower.
দোজবর **दुजवर; दोहा**

ଦୋଭଜା—ଦେ. ବିଣ.—(ସ. ଦ୍ୱି + ଭର୍ଜିତ)—ଦୁଇ ଥର ଭଜା ହୋଇ
Dobhajā ଥିବା—Baked or fried twice.
দুভাজা (ଯଥା—ଦୋଭଜା ଗଉ ।)

ଦୋଭାକୀ—ଦେ. ବିଣ. ଓ ବି.—ଦୋଭାଷୀ (ଦେଖ)
Dobhāki Dobhāshi (See)
ମହାପାତ୍ର ବାବୁ କୋଠର ବଡ଼ ବଡ଼ ସାହେବଙ୍କ ପାଖକୁ ଗଲେ ଗୋଟାଏ
ଦୋଭାକୀ କରିଥାରେ କଥା ଚଳେ । ଫକୀରମୋହନ. ଗଳ୍ପସ୍ୱଳ୍ପ ।

**ଦୋଭାଙ୍ଗୁଣିଆ(ଆଁ)**—ଦେ. ବିଣ.—ଦୁଇ ଥର ଭାଙ୍ଗିଥିବା—
Dobhāṅguṇiā(āṅ) Folded double; doubled up.
ଦୋଭାଁଜ

**ଦୋଭାଷୀ**—ଦେ. ବିଣ. (ସଂ. ଦ୍ୱିଭାଷୀ)—୧ । ଯେ ଦୁଇଟି ଭାଷାରେ କଥା କହି ପାରେ—1. Speaking two languages; able to talk in two languages.
Dobhāshī
ଦୋଭାଷୀ
**दोभाषीया**
୨ । ମିଥ୍ୟାବାଦୀ; ଯେ ଗୋଟିଏ କଥା କହି ପରେ ତାହା ବଦଳାଏ; ଦୋହଲପୀ—
2. Untruthful; perjuring.
ଦରବାରେ ହେଲୁ କ ଦୋଭାଷୀ ରେ ।
ବଦସୂର୍ଯ୍ୟ ରତ୍ନାକର ତୁମ୍ଭ କ ଶୀଳ ।
୩ । ଦୁଇଟି ଭାଷା ସମ୍ବନ୍ଧୀୟ—3. Bilingual.
୪ । ଯେଉଁ ଗ୍ରନ୍ଥରେ ଦୁଇଟି ଭାଷା ବ୍ୟବହୃତ ହୋଇଥାଏ—
4. (a book) Written in two languages.
ବି.—ଯେଉଁ ଲୋକ ଏକ ଭାଷାରେ କଥିତ ବିଷୟକୁ ଅନ୍ୟ ଭାଷାରେ ଅନୁବାଦ କରି କହେ—
An interpreter

**ଦୋମହଲା**—ଦେ ବିଣ. ଓ ବି.—(ସଂ. ଦ୍ୱି ଓ ଫା. ମହଲ୍)—
Domahalā ଦ୍ୱିତଳ (ଦେଖ)
**दोमंजिला** दोतला Dwitala (See)
(ଦୋମାହାଲା—ଅନ୍ୟରୂପ)

**ଦୋମାସି**—ଦେ. ବି. (ସଂ. ଦ୍ୱିମାସ)— ମଳ ମାସ; ଚାନ୍ଦ୍ରମାନ ବର୍ଷ ଓ ସୌରମାନ ବର୍ଷ ମଧ୍ୟରେ ପ୍ରାୟ ୨ ଦିନ ପ୍ରଭେଦ ଥିବାରୁ ପ୍ରାୟ ପ୍ରତି ୩ ବର୍ଷ ପରେ ଯେଉଁ ଗୋଟିଏ ଅଧିକା ଚାନ୍ଦ୍ରମାନ ମାସ ଯୋଗ କରାଯାଇ ଉଭୟର ଋତୁଗତ ସାମ୍ୟ ରକ୍ଷା କରାଯାଏ; ଅଧିମାସ—An intercalary month.
Domāsi
दुमासी
ବିଣ —ଦୋମାସିଆ (ଦେଖ)—Domāsiā (See)

**ଦୋମାସିଆ**—ଦେ· ବିଣ.—୧ । ଦୁଇ ମାସ ବୟସ୍କ—
Domāsiā 1. Aged two months.
दुमासिआ
୨ । ଯେଉଁ ବର୍ଷରେ ମଳମାସ ଥାଏ—
2. (a year) In which an intercalary month occurs.

**ଦୋମିଶା**—ଦେ. ବିଣ. (ସଂ. ଦ୍ୱି+ମିଶ୍ରିତ)—୧ । ଯହିଁରେ ଦୁଇଟି ବସ୍ତୁ ବା ଉପାଦାନ ମିଶ୍ରିତ ହୋଇଥାଏ—
Domisā
1. Consisting of or a mixture of two things or ingredients.
୨ । ଦୋବୀଜା (ଦେଖ)—2. Dobījā (See)

**ଦୋମୁଣ୍ଡିଆ**—ଦେ. ବି. (ସଂ. ଦ୍ୱି ଓ ମୁଣ୍ଡ)—ଏକ ପ୍ରକାର ସରୁ ସାପ —
Domuṇḍiā A kind of small serpent,
ଦୋମୁଖ ସାପ Amphisbaena.
**दोमुहाँ साँप** [ ଦ୍ର—ଏହାର ମୁହଁ ପାଖ ଓ ଲାଙ୍ଗୁଡ଼ ପାଖ ଏକାପରି ଦେଖା ଯିବାରୁ ଲୋକେ ଏହାର ଦୁଇଟି ମୁଣ୍ଡ ଅଛି ବୋଲି ଭ୍ରମରେ କହି ଥାଆନ୍ତି । ଏହାର ବର୍ଣ୍ଣ ପାଟଳ ଓ ଦେହରେ କାତି ନ ଥାଏ । ]

ବିଣ.—( ଲକ୍ଷଣାର୍ଥ ) ଯେଉଁ ଲୋକ ପରସ୍ପରବିପକ୍ଷ ଉଭୟଙ୍କ ସଙ୍ଗରେ ମିଳି ଥାଏ—Espousing the cause of two opposite sides

**ଦୋମୁହାଁ**—ଦେ. ବିଣ. ପୁଂ (ସଂ. ଦ୍ୱି ଓ ମୁଖ)—୧ । ଯାହାର ଦୁଇଟି ମୁହଁ—1. Two-faced.
Domuhāṅ
ଦୋମୁଖ ୨ । (ଗାଳିରେ ବ୍ୟବହୃତ)—ଯାହାର କଥା ଠିକ ରହେ ନାହିଁ—2. Fickle.
**दोमुहाँ**
(ଦୋମୁହୀଁ—ସ୍ତ୍ରୀ) ୩ । ଯେ ଆପଣାର ସତ୍ୟପାଳନ କରେ ନାହିଁ—
3. One who is not true to his promise, one who is not a man of his words.
୪ । ପ୍ରତାରକ; ଦଗାବାଜ୍—4. Deceitful.
୫ । ଯେ ଉଭୟ ପକ୍ଷଙ୍କୁ ସମର୍ଥନ କରେ—
5. Espousing both the opposite sides.
୬ । କପଟୀ—6. Hypocritical.

**ଦୋମୁହିଁ**—ଦେ. ବି.—(ସଂ. ଦ୍ୱି ଓ ମୁଖୀ)—ଏକପ୍ରକାର ଘର; ବାଘ-ମୁହିଁ (ଯେଉଁ ଘରର ଦୁଇଟି ଦୁଆର ଏପରି କୌଶଳକ୍ରମେ ବସାଯାଇଥାଏ ଯେ ଜଣେ ଆଗନ୍ତୁକ ହଠାତ୍ ସେ ଘରେ ପଶି ପାରେନାହିଁ)—A house with a two intricate doors which puzzle strangers.
Domuhīṅ

**ଦୋୟମ୍**—ବୈଦେ.ବିଣ(ଫା) —୧ । ଉର୍ବରତା ସମ୍ବନ୍ଧେ ଦ୍ୱିତୀୟ ଶ୍ରେଣୀର (ଜମି)—1. (land) Of the second class as regards productiveness.
Doyam
ଦୋୟମ
**दोयम** [ ଦ୍ର—୧୮୪୨ ସାଲର ଓଡ଼ିଶା ରାଜସ୍ୱ ବନ୍ଦୋବସ୍ତ ସମୟରେ ଉର୍ବରତା ଅନୁସାରେ ଜମିମାନଙ୍କ ଶ୍ରେଣୀ ବିଭାଗ କରାଯାଇ ତଦନୁସାରେ ଖଜଣା ଧାର୍ଯ୍ୟ ହୋଇଗଲା । ୧ମ ଶ୍ରେଣୀ ବା ଅତ୍ୟୁତ୍କୃଷ୍ଟ—ଅଉଲ୍, ୨ୟ ଶ୍ରେଣୀ—ଦୋୟମ୍, ୩ୟ ଶ୍ରେଣୀ—ସୋୟମ୍, ୪ର୍ଥ ଶ୍ରେଣୀ—ଚୁହାରମ୍ ଇତ୍ୟାଦି । ]
୨ । ଦ୍ୱିତୀୟ—2. Second (in position).

**ଦୋର**—ଗ୍ରା. ବି—ଦୋରୁଆ ( ଦେଖ )
Dora Dorua ( See )

**ଦୋରଖା(ଖା)**—ବୈଦେ. ବିଣ (ଫା ଦୋରୁଖା)— ଦୁଇ ପିଠିରେ ଏକ ରକମ ଫୁଲ କାମ ବୁଣା ହୋଇଥିବା (ବସ୍ତ୍ର), ଯେଉଁ ଲୁଗାର ସଦର ମଫସଲ ନ ଥାଏ—( a cloth ) Having the same design on both sides.
Dorakā(khā)
ଦୋରକ୍ଖା } ଅନ୍ୟରୂପ
ଦୋରୁକ୍ଖା }
ଦୋବୋଖା
**दोरुखा** (ଯଥା—ଦୋରଖା ଶାଲ ।)

**ଦୋରଙ୍ଗ(ଙ୍ଗା)**—ଦେ. ବିଣ (ସଂ. ଦ୍ୱି ଓ ରଙ୍ଗ)—୧ । ଦ୍ୱିବର୍ଣ୍ଣବିଶିଷ୍ଟ—
Doraṅga(ṅgā) 1. Two coloured; piebald.
ଦୋରଙ୍ଗୀ } ଅନ୍ୟରୂପ
ଦୋରଙ୍ଗିଆ }
ଦୋରଙ୍ଗା
**दुरङ्गी, दोरङ्गा**
୨ । ଦୁଇଟି ବିପରୀତ ବର୍ଣ୍ଣବିଶିଷ୍ଟ—
2. Having two opposite colours or pictures; presenting two different pictures.

ଦୋରନ୍ଧା — ଦେ. ବିଣ(ସଂ. ଦ୍ୱି+ରନ୍ଧନ)—ଦୁଇ ଥର ସିଦ୍ଧ ହୋଇଥିବା— Dorandhā Twice boiled.
दुबाँधा (ଯଥା—ଦୋରନ୍ଧା ଭାତ ।)
दो आतशा

ଦୋରବସ୍ତ—ବୈଦେ. କ୍ରି ବିଣ ( ଫା. ଦୋସ୍ରେବସ୍ତ )—୧ । ଗୋଟା ସୁଦ୍ଧା—1. Entirely; wholly.
Dorabasta
(ଦୋସ୍ରେବସ୍ତ—ଅନ୍ୟରୂପ) ୨ । ସମ୍ପୂର୍ଣ୍ଣରୂପେ—2. Totally.
বেবাক ৩ । ବିବାକ୍—3. Completely, wholly.
दोरबस्त ୪ । ଆଦୌ, ଜମାରୁ—4. At all
ବିଣ—୧ । ଗୋଟାକଯାକ—1. Entire; whole.
୨ । ସମୁଦାୟ—2. All.

ଦୋରସା—ଦେ. ବିଣ ( ସଂ ଦ୍ୱି ଓ ରସ )—୧ । ଦୋଅଂଶା ( ମାଟି ), ଯେଉଁ ମାଟିରେ ବାଲି ଓ କାଦୁଅ ସମାନ ଥାଏ—
Dorasā
দোআঁশ, দোরসা 1 (soil) Having sand and clay
दोरस, दोमट in equal proportions; loamy (soil); of mixed grain.
୨ । ଅଧେ ସଡ଼ି ଯାଇଥିବା—
2 Half putrid (Howells).

ଦୋରସ୍ତ —ବୈଦେ. ବିଣ. (ଫା. ଦୁରୁସ୍ତ )—୧ । ଠିକ୍; ଠିକ୍‌ଠାକ୍—
Dorasta 1. Set right; set in order
দুরুস্ত ୨ । ସଜଡ଼ା ହୋଇଥିବା—
दुरुस्त 2 Fully repaired
୩ । ଟାଣକସ୍—3. Strong.
୪ । ସୁଶାସିତ—4. Brought under control; regulated; controlled.
୫ । ଉତ୍ତରସ; ସମତଳୀକୃତ—5. Levelled up.
୬ । ସୁମାର୍ଜିତ—6 Well refined; well repaired.
୭ । ଉପସ୍ଥିତ ଉଦ୍ଦେଶ୍ୟ କମନ୍ତେ ଯଥେଷ୍ଟ—
7 Sufficient for the present purpose
୮ । ପରାଜିତ—8. Subdued.
୯ । ନିର୍ଦ୍ଦୋଷ; ଦୋଷହୀନ—
9. Flawless; faultless.
୧୦ । ଯାହା ଉତ୍ତମ ଅବସ୍ଥାରେ ଅଛି—
10. Which is in good order.
୧୧ । ଯଥାର୍ଥ; ପ୍ରକୃତ—11. Right; correct.
୧୨ । ଉଚିତ; ସମୁଚିତ—12. Proper.

ଦୋରସ୍ତ କରିବା—ଦେ. କ୍ରି—୧ । ସଜାଡ଼ିଦେବା, ମରାମତ କରିବା—
Dorasta kariba 1. To repair; to set right; to renovate
দুরস্তকরা; दुरुस्तकरना
[ଦୋରସ୍ତକରା(ରେ)ଇବା—ଅନ୍ୟରୂପ]
(ଯଥା—କଲକୁ ଦୋରସ୍ତ କରିଦିଅ)
୨ । ସୁଶାସିତ କରିବା; ଜବତ୍ କରିବା; ସାଧି କରିବା—
2. To bring under control.
(ଯଥା—ଭଲେ ମାଡ଼ରେ ଦୋରସ୍ତ କରି ଦେବି ।)
୩ । ଦୋଷଶୂନ୍ୟ କରିବା—3 To make a thing free from defects.
୪ । ଦଣ୍ଡ ଦେବା—4 To punish.

ଦୋରସ୍ତି—ବୈଦେ. ବି. (ଫା ଦୁରୁସ୍ତି) (କଟକଥି)—୧ । ସୁଧାର; ସଂଶୋଧନ—1 Correction.
Dorasti
দুরুস্তি ୨ । ଯୋଗ୍ୟତା—2. Fitness.
दुरुस्ति ୩ । ଉତ୍ତମତା—3. Goodness

ଦୋରା—ବୈଦେ (ତେଲିଙ୍ଗୀ) ପ୍ରାଦେ (ଗଞ୍ଜାମ) ବି—୧ । ଶୂଦ୍ର ଜାତି-ବିଶେଷର ଉପାଧି—1. Family-title of certain Śūdras in Ganjam.
Dorā
[ଦ୍ର—ଏମାନେ ଜାତି କାଠିରେ ପାଛୁଆ, ପଟ୍ଟ ଅବିଦ ବୁଣନ୍ତି ।]
୨ । ସ୍ୱଜାତୀୟ ଗ୍ରାମ୍ୟ କର୍ମଚାରୀବିଶେଷ—
2. Name of a village revenue-officer.
ବୈଦେ· ବି—(ଆ) ଦଉରା (ଦେଖ)
Daurā (See)
ପ୍ରାଦେ (ଗଡ଼ଜାତ, ଜୟପୁର, ଗଞ୍ଜାମ) ବି—କଣ୍ଡାଦୋରା (ଦେଖ)
Kaṇḍādorā (See)

ଦୋରିହା—ଦେ. (ପଦ୍ୟ) ବିଣ ଓ ବି—ଦୋରେହା (ଦେଖ)
Dorihā Dorehā (See)
ପାଣ୍ଡବେ ଭୂମିର ଦୋରିହା ହୋଇ କରି
ନଷ୍ଟେ ମଲେ ସୁମର ଇନ୍ଦ୍ରପ୍ରସ୍ଥ ଦିହ । କୃଷ୍ଣସିଂହ. ମହାଭାରତ. ବନ୍ତ ।

ଦୋରୁଅ—ଦେ. ବି (ସଂ. ଦ୍ରବ)—୧ । ଆଖୁର ରସ—
Dorua 1. Juice of sugarcane.
রস; राब ୨ । ଗଛର ଡାଳପତ୍ର ଆଦିରୁ ଚିପୁଡ଼ା ହୋଇଥିବା ରସ—
2. Juice impressed from plants, leaves etc.

ଦୋରୁଖା—ବୈଦେ. ବିଣ—ଦୋରଖା (ଦେଖ)—Dorakhā (See)
Dorukhā (ଦୋରୁଖି—ଅନ୍ୟରୂପ)

ଦୋରେହା—ଦେ (ପଦ୍ୟ) ବିଣ - (ସଂ. ଦ୍ରୋହୀ) —୧ । ବିଦ୍ରୋହୀ—
Dorehā 1. Rebellious; contumacious.
ଦୋରେହି
ଦୋରେହା
ଦୋରେହୀ } ଅନ୍ୟରୂପ
ଯାହା ଦ୍ୱାରେ ନଳ ଥିବ ଇଛି ।
ମୋର ଦୋରେହା ଇଟଁ ଅନ୍ତ ନାହିଁ ।
ପ୍ରାଚୀ କଳଚରିତ ।
୨ । କୃତଘ୍ନ—2. Ungrateful.
୩ । ଦୋଷୀ; ଅପରାଧୀ—Guilty; offending
ବି—ଦ୍ରୋହ—Rebellion.
ତାରେ ଦୋରେହା କରି କେହୁ
କଥାରେ ହେଲେ ରକ୍ଷା ନାହିଁ । ଜଗନ୍ନାଥ ଭାଗବତ ।

ଦୋର୍ଦ୍ଦଣ୍ଡ—ସଂ. ବି. (ରୂପକ କର୍ମଧାରୟ; ଦୋଃ=ବାହୁ+ଦଣ୍ଡ=ଯଷ୍ଟି)—
Dorddaṇḍa ୧ । ଭୁଜଦଣ୍ଡ; ଦଣ୍ଡ ପରି ପରାକ୍ରମଯୁକ୍ତ ବାହୁ—
1. Powerful or strong arm (strong and long as a staff); a high hand; a strong hand.
୨ । ବାହୁର ପରାକ୍ରମ—
2. The prowess of a strong arm.

ଦୋର୍ଦ୍ଦଣ୍ଡ ପରାକ୍ରମ—ସ. ବି (୬ଷ୍ଠୀ ତତ୍; ଦୋର୍ଦ୍ଦଣ୍ଡ+ପରାକ୍ରମ)—
Dorddanda parākrama ଦୋର୍ଦ୍ଦଣ୍ଡ ପ୍ରତାପ (ଦେଖ) Dorddanda pratāpa (See)

ଦୋର୍ଦ୍ଦଣ୍ଡ-ପରାକ୍ରମୀ –ସ. ବିଣ (ଦୋର୍ଦ୍ଦଣ୍ଡ+ପରାକ୍ରମ+ଇନ୍; ୧ମା. ୧ବ)
Dorddanda parākramī ଦୋର୍ଦ୍ଦଣ୍ଡ ପ୍ରତାପୀ (ଦେଖ) Dordanda pratāpī (See).

ଦୋର୍ଦ୍ଦଣ୍ଡ ପ୍ରତାପ—ସ. ବି (୬ଷ୍ଠୀ ତତ୍; ଦୋର୍ଦ୍ଦଣ୍ଡ+ପ୍ରତାପ)—
Dorddanda pratāpa ବାହୁପରାକ୍ରମ; ଦେହର ଜୋର୍—High-handedness; strength of arm.

ଦୋର୍ଦ୍ଦଣ୍ଡ ପ୍ରତାପୀ—ସ. ବିଣ (ଦୋର୍ଦ୍ଦଣ୍ଡ+ପ୍ରତାପ+ଇନ୍ ୧ମା. ୧ବ)—
Dorddanda pratāpī ବିଶେଷ ବାହୁପରାକ୍ରମଶାଳୀ—Very powerful.

ଦୋର୍ମୂଳ—ସ. ବି (୬ଷ୍ଠୀ ତତ୍; ଦୋଃ+ମୂଳ)—ବାହୁମୂଳ; କାଖ—
Dormūla Arm-pit

ଦୋର୍ଯୁଦ୍ଧ—ସ. ବି ( ୬ଷ୍ଠୀ ତତ୍, ଦୋଃ+ଯୁଦ୍ଧ )—୧ । ବାହୁଯୁଦ୍ଧ;
Dorjuddha କୁସ୍ତାକୁସ୍ତି—1. Duel.
୨ । ଧରାଧରି; ହସ୍ତାହସ୍ତି—
2 Hand to hand fight

ଦୋଳ—ସ. ବି (ଦୋଳ ଧାତୁ+କର୍ତ୍ତୃ. ଅ)—୧ । ଝୁଲ—
Dola 1. A cradle; a rocking chair; a swing
ଦୋଳା, ଦୋଳୀ } ଅନ୍ୟରୂପ
୨ । ହାନ୍ଦୋଳା; ଖଟୁଆ—
2. A sedan chair
୩ । ଜାଲମୁଣା; ଝୁଣ୍ଟୁଣି; ଉଚ୍ଚ ଗଛରୁ ଆମ୍ବ ତୋଳିବାବେଳେ ତାହା ତଳେ ପଡ଼ି ନ ଯିବ ବୋଲି ଲଗି ଅଗରେ ବନ୍ଧାଯିବା ଜାଲ—3. A basket of network which is attached to a pole used while plucking mangoes from high trees, so that the fruits do not fall down on the ground, but are deposited in the pocket or pouch of the basket.
୪ । ଡୋଲି; ଧାନ ରଖିବାର କୋଡ଼ିମେର—
4. A large basket for storing paddy.
୫ । (+ଣିଚ୍. ଅ) ଦୋହୋଲାଇବା—
5. Causing another to swing; rocking.
୬ । ଦୋହୋଲିବା—6. Oscillation; swinging.
୭ । ଦୋଳ ଉତ୍ସବ—
7. The Dola jātrā festival

ଦୋଳଯାଏ ଭଲ; ବଇଯାଏ ପାଠ—ପ୍ରବଚନ ।

୮ । ( ଯହିଁରେ ବସି ବା ଯାହାକୁ ଅବଲମ୍ବନ କରି ଝୁଲନ୍ତି ) ଠାକୁରଙ୍କ ବିମାନ—8. A covered chair for carrying idols.
(ଯଥା—ଆମ ଗାଆଁ ମେଳନକୁ ୮ଟି ଦୋଳ ଏ ବର୍ଷ ଆସିଥିଲେ ।)
ଦେ. ବି—ଦୋଳଗୋବିନ୍ଦର ଆଦରାର୍ଥକ ଡାକନାମ—
A name for calling Dolagobinda.

ଦୋଳ ଉତ୍ସ(ଛ)ବ—ଦେ. ବି—ଦୋଳ ଯାତ୍ରା (ଦେଖ)
Dola utsa(chha)ba Dola jātrā (See).

ଦୋଳକ—ସ. ବି ( ଦୋଳ ଧାତୁ+କର୍ତ୍ତୃ. ଅକ; ଯାହା ଝୁଲୁଥାଏ )—
Dolaka ଦୋଳଦଣ୍ଡ (ଦେଖ)—Doladanda (See).

ଦୋଳଗୋବିନ୍ଦ—ଦେ. ବି—୧ । ଦୋଳଯାତ୍ରା ସମୟରେ ଦୋଳ
Dolagobinda ଖେଳିବା ପ୍ରକାରେ ସଜ୍ଜିତ ଶ୍ରୀକୃଷ୍ଣଙ୍କ ବିଗ୍ରହ—
1. An idol of Śrīkrushna arryed for swinging during the Dolajātrā.

ଫଗୁଣ ମାସରେ ଦୋଳଗୋବିନ୍ଦେ
ଦୋଳ ଖେଳୁଥାନ୍ତି ପରମାନନ୍ଦେ—ମୋ କାନ୍ତ ହେ—ଗଉଡଙ୍କ ବାରମାସୀଗୀତ ।

୨ । ଲୋକମାନଙ୍କୁ ଦିଆଯିବା ନାମ—
2. A name given to males.

ଦୋଳ ଘଡ଼ି—ଦେ. ବି (ସ. ଦୋଳ ଓ ଘଟି)—ଦୋଳଉତ୍ସବର ସମୟ—
Dola ghardi The season of Dola festival.

ଦୋଳଘଣ୍ଟ ବାଜିବା—ଦେ. ବି ( ବିଶିଷ୍ଟ ପ୍ରୟୋଗ; ଦୋଳଯାତ୍ରାରେ ଘଣ୍ଟ
Dolaghanta bājibā ଆଦି ବାଜିବାରୁ )—ଦୋଳ ଉତ୍ସବର ସମୟ ଉପସ୍ଥିତ ହେବା—The arrival of the time of Dola festival.

ଦୋଳଣି—ଦେ. ବି (ସ. ଦୋଳନ) —ଦୋଳନ (ଦେଖ)
Dolani Dolana (See).

ରୁଚିର ଅର୍ଦ୍ଧ ଯୁଗଳ ଯବାପୁଷ୍ପଶ୍ରେଣୀଭଳ ମଞ୍ଜିର ମଣି ମଞ୍ଜୁଳ ପଦରେ ଦୋଳଣ ।
ପ୍ରାଚୀ ଚନ୍ଦ୍ରସଂସ୍ଥ ।

ଦୋଳ ଦଣ୍ଡ—ସ. ବି (ଦୋଳ+ଦଣ୍ଡ)—ଘଣ୍ଟାରେ ଝୁଲିବା ପେଣ୍ଡୁଲମ୍
Dola danda ବା ସୂକ୍ଷ୍ମ ସୂତାଦ୍ୱାରେ ବନ୍ଧ ଦୋଳାୟମାନ ଭାରି ବସ୍ତୁ—
Pendulum of a clock or some heavy thing suspended by a slender thread.

ଦୋଳ ଦଣ୍ଡି—ଦେ. ବି ( ବଣିଆ ଶବ୍ଦ )—ନାକରେ ପିନ୍ଧିବା ସୁନାର
Dola dandi ଅଳଙ୍କାରବିଶେଷ—A gold ring for the nose.

ଦୋଳ ଦଶହରା—ଦେ. ବି (ସହଚର ଶବ୍ଦ)—ବର୍ଷକ ମଧ୍ୟରେ ହିନ୍ଦୁର
Dola dasaharā ଦୁଇଗୋଟି ପ୍ରଧାନ ପର୍ବ (ଯଥା—ଫାଲ୍ଗୁନରେ ଦୋଳଯାତ୍ରା ଓ ଆଶ୍ୱିନରେ ଦୁର୍ଗା ପୂଜା )—
ଦୋଳ ଦଶରା, ଦୋଳ ଦୁର୍ଗାପୂଜା } ଅନ୍ୟରୂପ
ଦୋଲ ଦসহরা The two chief festivals of the Hindus in a year, viz. Dolajātrā and Durgāpūjā.
[ ଦ୍ର—ଆମ ଦେଶରେ ବର୍ଷକରେ ଏହି ଦୁଇ ଉତ୍ସବରେ ପରିଜ୍ଞ ବାଉସ୍ତ ବ୍ୟକ୍ତିଗଣଙ୍କୁ ଓ ଭୃତ୍ୟାଦିଙ୍କୁ ଗୃହସ୍ୱାମୀ ନୂଆ ଲୁଗା ଦିଅନ୍ତି ।]

ଦୋଳନ—ସ. ବି ( ଦୋଳ ଧାତୁ+ଭାବ. ଅନ )—୧ । କମ୍ପନ;
Dolana ଝୁଲିବା—1. Oscillating.
୨ । ଝୁଲାଇବା—2. Swinging; suspending.
ଦେ. ବି—ଦୋଳା—A swing.

ଅଶୋକ ମାଧବୀ ନାଗକେଶର ବକୁଳ
ଦୋଳନେ ଦୋଳନ୍ତି ଏଥି ନନ୍ଦନେ ଅପ୍ସରା । ସଧାନାଥ, ମହାଯାତ୍ରା ।

ଦୋଳ ପୂନଅଁ—ଗ୍ରା. ବ—ଦୋଳପୂର୍ଣ୍ଣିମା ( ଦେଖ )
Dola pūnaṅ Dolapūrṇṇimā ( See )
(ଦୋଳପୂନେଇଁ, ଦୋଳପୂନମୀ, ଦୋଳପୂର୍ଣ୍ଣିମୀ—ଅନ୍ୟରୂପ)

ଦୋଳ ପୂର୍ଣ୍ଣିମା—ସ ବ- ଫାଲ୍ଗୁନ ପୂର୍ଣ୍ଣିମୀ—
Dola pūrṇṇimā The full moon of the month of Fālguna.
[ ଦ୍ର—ଏ ସମୟରେ ରାଧାକୃଷ୍ଣ ବିଗ୍ରହଙ୍କୁ ଦୋଳମଣ୍ଡପରେ ବିମାନରେ ଝୁଲାଯାଏ । ]

ଦୋଳ ମଣ୍ଡପ—ସ. ବ (ମଧ୍ୟପଦଲୋପୀ; ଦୋଳ+ ମଣ୍ଡପ) —
Dola maṇḍapa ଦୋଳ ମୁଣ୍ଡେଇ ( ଦେଖ )
Dola muṇḍei (See)

ଦୋଳମୁଣ୍ଡେଇ—ଦେ. ବ (ସ. ଦୋଳମଣ୍ଡପ)—ଯେଉଁ ମଣ୍ଡପରେ ରାଧାକୃଷ୍ଣଙ୍କ
Dola muṇḍei ବିଗ୍ରହ ଦୋଳଯାତ୍ରା ସମୟରେ ଦୋଳି ଖେଳନ୍ତି—
(ଦୋଳମଣ୍ଡେଇ—ଅନ୍ୟରୂପ) A raised platform on which the idols of Rādhā and Krushṇa are rocked during the Dolajātrā festival.

ଦୋଳ ଯାତ୍ରା—ସ. ବ (+ଦୋଳ ଓ ଯାତ୍ରା)—ଦୋଳଉତ୍ସବ, ଫାଲ୍ଗୁନ
Dola jātrā ମାସ ଶୁକ୍ଳପକ୍ଷ ଦଶମୀଠାରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ଅନୁଷ୍ଠିତ
ଦୋଳଯାତ, ଦୋଳଯାତର } ଦେଶଜରୂପ ଶ୍ରୀକୃଷ୍ଣଙ୍କ ଦୋଳଖେଳ ଉତ୍ସବ, ହୋଲି ଯାତ୍ରା—The Dolajātrā festival in the bright fortnight of Fālguna.
दोलउत्सव, होली
होरी
[ ଦ୍ର—ବଙ୍ଗଦେଶରେ ଦୁର୍ଗାପୂଜାପରି ଓଡ଼ିଶାରେ ଦୋଳଯାତ୍ରା ସମସ୍ତେ ପାଳନ୍ତି । ଦୋଳଯାତ୍ରା ଦୁଇ ପ୍ରକାର ଯଥା—୧ । ରାଜ ଦୋଳ; ଏହା ଫଗୁଦଶମୀଠାରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ହୁଏ । ୨ । ପଞ୍ଚୁଦୋଳ ଫଗୁଣ ପୂର୍ଣ୍ଣିମାଠାରୁ ଚୈତ୍ର କୃଷ୍ଣପଞ୍ଚମୀ ପର୍ଯ୍ୟନ୍ତ ହୁଏ । ଶ୍ରୀକୃଷ୍ଣଙ୍କ ବିଗ୍ରହକୁ ନେଇ ଦୋଳମଣ୍ଡପରେ ଲୋକେ ଦୋଳି ଖେଳାନ୍ତି ଓ ଆପଣାମଧ୍ୟରେ ଅବିର ବୋଳାବୋଳି ଓ ପିଚକାରି ମାରାମାରି ହୁଅନ୍ତି ଓ ନୃତ୍ୟଗୀତାଦିରେ ଲାଗନ୍ତି । ଓଡ଼ିଶାରେ କୋଠିଆ ଓ ଗାଈଉଆଳ ଗୃହମାନେ ଦୋଳଠାରୁ ଗୃହସ୍ଥର ବର୍ଷ ସ୍ଥିର କରନ୍ତି । ଏହା ମଧ୍ୟ ଗଉଡ଼ମାନଙ୍କର ପ୍ରଧାନ ଉତ୍ସବ । ଗଉଡ଼ମାନେ ଗାଈମାନଙ୍କୁ ଗାଧୋଇ ଦୁଧ ବଜାନ୍ତି ଓ ବେଶ ହୋଇ ଲଉଡ଼ି ଖେଳନ୍ତି ଓ ଗୀତ ବୋଲନ୍ତି । ]

ଦୋଳା—ସ. ବ (ଦୋଳ+ସ୍ତ୍ରୀ. ଆ)—୧ । ଖଟୁଆ; ହାତଦୋଳା; ଶିବିକା-
Dolā ବିଶେଷ—1. Sedan chair.
୨ । ଖଟୁଲୀ; ଚଉଦୋଳ; ବିମାନ—
2. A carrying chair.
୩ । ଝୁଲିବା ଯନ୍ତ୍ର—3. A swinging device; a swing.
୪ । ନୀଳଗଛ ( ଦ୍ର. ଶବ୍ଦସାଗର )—4. Indigo plant.
ଦେ. ବ (ଅନାଦରାର୍ଥ) ଦୋଳଗୋବିନ୍ଦର ଡାକ ନାମ—
Name for calling Dolagobinda.

ଦୋଳା(ଳେ)ଇବା—ଦେ. କ୍ରି (ସ. ଦୋଳ ଧାତୁ)—ଦୋଳି ପହଞ୍ଚାଇବା;
Dolā(le)ibā ଝୁଲାଇବା; ସଞ୍ଚାଳିତ କରାଇବା—To cause to swing; to rock to and fro.
दोलाना
डुलाना ପତାକା ଦୋଳାଇ ରଙ୍ଗେ ପ୍ରସରନ୍ତି ସିନ୍ଧୁ-ମାରୁତ—
ପ୍ରଧାନାଂଶ. ଭଞ୍ଜ ।

ଦୋଳାୟମାନ—ସ. ବିଣ. ପୁଂ (ଦୋଳାୟ ନାମ ଧାତୁ କର୍ତ୍ତୃ. ଆନ) —
Dolāyamāna ୧ । ଝୁଲୁଥିବା—1. Rocking to and fro; oscillating.
(ଦୋଳାୟମାନା – ସ୍ତ୍ରୀ)
୨ । ଇତସ୍ତତଃ ସଞ୍ଚାଳିତ—2 Rocked to and fro.
୩ । (ଲକ୍ଷଣାର୍ଥ) ସନ୍ଦେହାନ; ସଂଶୟାପନ୍ନ—
3. (figurative) Vacillating; wavering.

ଦୋଳାୟିତ—ସ. ବିଣ. ପୁଂ ( ଦୋଳାୟ ନାମ ଧାତୁ+କର୍ତ୍ତୃ. ତ )—
Dolāyita ଦୋଳାୟମାନ ( ଦେଖ )
(ଦୋଳାୟିତା—ସ୍ତ୍ରୀ) Dolāyamāna ( See )
ସ. ବ. (+ଭାବ. ତ)—ଦୋଳନ—Swinging.

ଦୋଳାଯୁଦ୍ଧ—ସ. ବ—ଯେଉଁ ଯୁଦ୍ଧରେ ଦୁଇ ପକ୍ଷଙ୍କର କ୍ରମାନ୍ୱୟରେ
Dolājuddha ହାର ଜଣ ଲାଗିଥାଏ—
A battle in which the parties win and are defeated by turns.

ଦୋଳାଶ୍ୱ—ସ. ବ—ଚଳଣା (ହରେକୃଷ୍ଣ ଦ୍ରବ୍ୟଗୁଣ) ( ଦେଖ )
Dolāśwa Chalaṇā ( See )

ଦୋଳି (ଧାତୁ)—(ଦୁଳ ଧାତୁ=ଝୁଲିବା+ଣିଚ୍) —
Doli (root) ଝୁଲାଇବା—To suspend; to cause to swing.

ଦୋଳି—ଦେ. ବ. ( ସଂ. ଦୋଳା )—୧ । ଦୋଳା—
Doli 1. Swinging chair; a swing.
ଏଣୁ ଦୋଳିରେ ବସିବା ପଛ ହେଲେ । କୃଷ୍ଣସିଂହ ମହାଭାରତ. ବନ ।
୨ । (ଆଦରାର୍ଥ) ଦୋଳଗୋବିନ୍ଦର ଡାକ ନାମ—
2. A name for calling Dolagobinda.

ଦୋଳିଆ—ଦେ. ବ. (ଅନାଦରାର୍ଥକ)—ଦୋଳି ୨ ( ଦେଖ )
Doliā Doli 2 ( See )
ପ୍ରାଦେ. (ଯାଜପୁର) ବ—ମଦ ଓଳି—
A jar in which toddy is collected.

ଦୋଳିକା—ସଂ. ବ. ସ୍ତ୍ରୀ ( ଦୋଳ+କ+ସ୍ତ୍ରୀ. ଆ )—
Dolikā ୧ । ଛୋଟ ଦୋଳା—1. A small swing.
୨ । ହାତଦୋଳା—2. A sedan chair.

ଦୋଳି ଖେଳ—ଦେ. ବ—ଝୁଲିବା ପ୍ରଣାଳୀରେ ଖେଳିବା ଏକ ପ୍ରକାର
Doli khela ଖେଳ—Sporting by swinging in a swing.
ଗର୍ବୀର କରୀଥେ ବକଲବା କୁଞ୍ଜେ,
ଦୋଳି ଖେଳେ ରଭ ବନ ଅଙ୍ଗନା । ନନ୍ଦକିଶୋର । କୃଷ୍ଣଲୀଳା ।

ଦୋଳି ଖେଳିବା—ଦେ. କ୍ରି.—ଆପେ ଦୋଳାରେ ଝୁଲିବା—
Doli kheḷibā To swing in a swing.
ଅମ୍ଭ ବଗିଗୁରେ ଶିଅରୁ ଲତାରେ;
ଯେବେ ଦୋଳି ଖେଳୁ ଥାଉ । ନନ୍ଦକିଶୋର. ନର୍ମଦର୍ଶୀ ।

ଦୋଳି ପହଞ୍ଚା—ଦେ. ବ.—ଦୋଳାରେ ଝୁଲିବା କ୍ରିୟା—
Doli pahañchā Act of swinging.
(ଦୋଳି ପଞ୍ଚା, ଦୋଳି ପହୁଞ୍ଚା, ଦୋଳି ପହଞ୍ଚ—ଅନ୍ୟରୂପ)
पींग

ଦୋଳ ପହଞ୍ଚା(ଞ୍ଚେ)ଇବା—ଦେ. କ୍ରି.—ଅନ୍ୟ ବ୍ୟକ୍ତିକୁ ଦୋଳାରେ
Doḷi pahañchā(ñche)ibā ଝୁଲାଇବା—To rock another person in a swing.
দোলান
झुलाना

ଦୋଳି ପହଞ୍ଚି ହେବା—ଦେ. କ୍ରି.—ଦୋଳି ଖେଳିବା (ଦେଖ)
Doḷi pahañchi hebā Doḷi kheḷibā (See)
ঝুলা झुलाना
(ଦୋଳି ପହଞ୍ଚିବା, ଦୋଳ ପହଞ୍ଚାଇହେବା—ଅନ୍ୟରୂପ)

ଦୋଳିବା—ଦେ. କ୍ରି.—୧ । ଦୋଳରେ ଝୁଲିବା; ଦୋହଲିବା—
Doḷibā 1. To swing to and fro; to oscillate
দুলা, দোলা ଦୋଳନ୍ତି ସବେର ପ୍ରିୟ ସବରେ
डुलना ଘ୍ରାଣନାଥ ମେଘଦୂତ ।
୨ । ହଲିବା—2. To rock; to shake.
ଭୁଜ୍ଞା କଥା କଲେ ଯେତେ ମଥା ଦୋଳୁ
ନ ଫିଟେ ରଚନ ଅକର । ଭକ୍ତକବି. ଗୀତଲହରୀ ।

ଦୋଶାଖା—ଦେ. ବିଣ. (ଫ. ଦ୍ୱିଶାଖା)—ଦୁଇଟି ମାତ୍ର ଶାଖାବିଶିଷ୍ଟ—
Dośākhā Having two branches only; bi-forked.
দোশাখা दुशाखा

ଦୋଶାଲ—ବୈଦେ. ବି. (ଫା. ଦୁଶାଲ୍; ଭୁଲ ସ ଦ୍ୱି+ଶାଟୀ)—
Dośāla ଏକକୁ ଯୋଡ଼ା ହୋଇଥିବା ଦୁଇ ଖଣ୍ଡ ଶାଲ—
(ଦୋଶାଲ—ଅନ୍ୟରୂପ) A pair of shawls put together
দোশালা [ ଦ୍ର—ଶାଲ ଶବ୍ଦ ସଙ୍ଗେ ଏହି ଶବ୍ଦ ସହଚରରୂପେ
दुशाल ବ୍ୟବହୃତ ହୁଏ ଯଥା—ଶାଲ ଦୋଶାଲ—ବହୁମୂଲ୍ୟର
ଶୀତ ବସ୍ତ୍ରମାନ । ]

ଦୋଶାଳୀ—ଦେ. ବି.—ଖୁବ୍ ଖାଲ ଜାଗାରୁ ପାଣି ଉପରକୁ ଉଠାଇବା
Dośāḷi ପାଇଁ ବ୍ୟବହୃତ ଦୁଇଟି ସେଣୀ ବା ଖାଲ—
Two separate baling arrangements done in the case of lifting water from a deep place.
(ଦୋଶାଳଅ—ଅନ୍ୟରୂପ)
[ ଦ୍ର—ପ୍ରଥମେ ପୋଖରୀରୁ ନିମ୍ନତର ସେଣୀରେ ପାଣି ଉଠାଯାଇ ଗୋଟିଏ ଖାଲରେ ଜମା କରାଯାଏ ଓ ପୁଣି ସେ ଖାଲରୁ ଦ୍ୱିତୀୟ ଉଚ୍ଚତର ସେଣୀଦ୍ୱାରା ପାଣି ଉଠାଯାଇ କିଆରିକୁ ମଡ଼ାଯାଏ । ]

ଦୋଷ୍ ଫ. ବି—ଦୋସ୍ (ଦେଖ)
Dosh Dos (See)

ଦୋଷ—ସଂ. ବି. (ଦୁଷ ଧାତୁ=ଦୋଷଯୁକ୍ତ ହେବା+ଭାବ. ଅ)—
Dosha ୧ । ପାପ—1. Sin.
(ଗୁଣ—ବିପରୀତ) ୨ । ଅପରାଧ—2. Crime; guilt.
୩ । ଦୁର୍ଗୁଣ—3. Vice.
୪ । ଅନ୍ୟାୟ—4. Injustice.
୫ । ଅନିଷ୍ଟ; ଅପକାର—5. Mischief; injury.
୬ । କୁକର୍ମ—6. Evil act.
୭ । ଅପବାଦ—7. Blame; bad name.
୮ । ନିନ୍ଦା—8. Scandal.
୯ । କଳଙ୍କ—9. Blemish; taint.
୧୦ । ତ୍ରୁଟି—10. Fault, defect.
୧୧ । ନ୍ୟୂନତା—11. Deficiency.
୧୨ । ଅତ୍ୟାଚାର—12. Oppression.
୧୩ । କ୍ଷତି—13. Loss.
୧୪ । ରୁଗ୍ଣ ଅବସ୍ଥା—14. Diseased condition.
୧୫ । ଶରୀରସ୍ଥ ବାତ, ପିତ୍ତ, କଫର ପ୍ରକୋପ ବା କୁପିତ ଅବସ୍ଥା—15. Disorder or morbidity of the three humours of the body (viz phlegm, bile and wind.)
୧୬ । ବାକ୍ୟ ବା ଲେଖାର ରଚନା ଦୋଷ—
16. Fault in a composition or speech
[ ଦ୍ର—ଯାହା ରସର ଅପକର୍ଷକ, ଅର୍ଥାତ୍ ଯଦ୍ଦ୍ୱାରା ରସ ପ୍ରତୀତି-ଶୂନ୍ୟ ହୁଏ ତାହାକୁ ଦୋଷ କହନ୍ତି । ସାହିତ୍ୟରେ ଏହି ଦୋଷମାନ ପାଞ୍ଚ ଶ୍ରେଣୀରେ ବିଭକ୍ତ ଯଥା—୧ । ଶବ୍ଦ ବା ପଦଦୋଷ, ୨ । ପଦାଂଶ ଦୋଷ, ୩ । ବାକ୍ୟ ଦୋଷ, ୪ । ଅର୍ଥ ଦୋଷ, ୫ । ରସ ଦୋଷ ।]
୧୭ । ରାଗ, ଦ୍ୱେଷ, ମୋହ ଆଦି—
17 Evil passions.
[ ଦ୍ର—ଦୋଷ ଶବ୍ଦ ଅନ୍ୟ କେତେକ ଶବ୍ଦ ପରେ ବ୍ୟବହୃତ ହୁଏ ଯଥା—କର୍ମଦୋଷ, ଭାଗ୍ୟଦୋଷ, ଗ୍ରହଦୋଷ, ସଙ୍ଗଦୋଷ, ଉଚ୍ଚାରଣ ଦୋଷ, ଜଳବାୟୁ ଦୋଷ, ବଂଶଦୋଷ ଇତ୍ୟାଦି । ]
୧୮ । ଭାଗବତ ଅନୁସାରେ ଅଷ୍ଟବସୁଙ୍କ ମଧ୍ୟରୁ ଏକତମ (ହି. ଶବ୍ଦସାଗର)—18. The name of one of the Basu Deities.
୧୯ । ପ୍ରଦୋଷ (ହି. ଶବ୍ଦସାଗର)—19 Night.

ଦୋଷକ—ସଂ. ବି—ବାଛୁରି (ହି. ଶବ୍ଦସାଗର)—
Doshaka Calf.

ଦୋଷ କଟା(ଟେ)ଇବା—ଦେ. କ୍ରି—ଦୋଷ ଖଣ୍ଡାଇବା (ଦେଖ)
Dosha kaṭā(ṭe)ibā Dosha khanḍāibā (See)

ଦୋଷ କଟିବା—ଦେ. ବି—ଦୋଷ ଖଣ୍ଡନ (ଦେଖ)
Dosha kaṭibā Dosha khanḍana (See)
(ଦୋଷ କଟିଯିବା—ଅନ୍ୟରୂପ)
দোষ কেটে যাওয়া दोष कट जाना

ଦୋଷକର—ସଂ. ବିଣ. ପୁଂ (ଦୋଷ+କୃ ଧାତୁ+କର୍ତ୍ତୃ. ଅ)—
Doshakara ୧ । ଯେ ଅପରାଧ କରେ—1. Offending.
(ଦୋଷକୃତ୍, ଦୋଷକାରୀ—ଅନ୍ୟରୂପ) ୨ । ଅନିଷ୍ଟଜନକ—
(ଦୋଷକାରୀ, ଦୋଷକାରିଣୀ—ସ୍ତ୍ରୀ) 2. Injurious; hurtful.

ଦୋଷ କରିବା—ଦେ. କ୍ରି—୧ । ଅପରାଧଜନକ କାର୍ଯ୍ୟ କରିବା—
Dosha karibā 1. To commit an offence.
দোষকরা ୨ । ପରର ମନରେ କଷ୍ଟ ଦେବା—
दोष करना 2. To offend a person.

ଦୋଷ କାଢ଼ିବା—ଦେ. କ୍ରି—୧ । କୌଣସି ବସ୍ତୁ ବା ବିଷୟରେ ଥିବା ଦୋଷକୁ ବାହାର କରିବା—
Dosha kāṛhibā
দোষ বাহির করা 1. To find out the fault in a matter or thing.
दोष निकालना

| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | ଙ୍କ | ଇଯ୍ | ଉଅ | ଓ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଯ୍ୟେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ | ଇଅ | ଢ଼ | ନ୍ |

(ଦୋଷ ବାହାର କରିବା—ଅନ୍ୟରୂପ) ୨ । ଦୋଷ ବା ଅପରାଧର ପତ୍ତା ଲଗାଇବା—2. To trace out a fault or defect.

୬ । ଅନ୍ୟର ଦୋଷକୁ ସାଧାରଣରେ ପ୍ରକାଶ କରିବା—3. To publish the guilt or defect of a person.

**ଦୋଷ ଖଣ୍ଡନ—ସ. ବି.** (୬ଷ୍ଠୀ ତତ୍; ଦୋଷ+ଖଣ୍ଡନ)—
Dosha khaṇḍana ୧ । କୃତ ଅପରାଧର ମାର୍ଜନା; ଦୋଷକୁ କ୍ଷମା କରିବା; ଦୋଷରୁ ମୁକ୍ତି ଦେବା—
(ଦୋଷ ଖାନଲ—ଅନ୍ୟରୂପ)
1. Forgiving of a guilt.
୨ । କୃତ ଅପରାଧର ପ୍ରାୟଶ୍ଚିତ୍ତ—2 Expiation for one's sins.
୩ । ନିଜ ଉପରେ ଆରୋପିତ ଦୋଷ ଆପେ ନ କରିଥିବା ବିଷୟ ପ୍ରମାଣିତ କରିବା—3. Proving of one's innocence, defence of oneself

**ଦୋଷ ଖଣ୍ଡା(ଣ୍ଡେ)ଇବା—ଦେ. କ୍ରି**—୧ । ଆପଣା ଉପରେ ଆରୋପିତ ଦୋଷରୁ ଆପେ ମୁକ୍ତ ହେବାର ଉପାୟ କରିବା—
Dosha khaṇḍā(ṇḍe)ibā
[ଦୋଷ ଘୁଞ୍ଚା(ଞ୍ଚେ)ଇବା—ଅନ୍ୟରୂପ)
দোষ খণ্ডান 1. To wipe out a blot from one's self;
**दोष खंडाना** to repel an accusation
୨ । ଅନ୍ୟର ଅପରାଧ ବା ଦୋଷ କ୍ଷମା କରିବା—2. To forgive another's fault.

**ଦୋଷ ଗିରା(ରେ)ଇବା—ଦେ. କ୍ରି**—ଦୋଷ ଦେବା (ଦେଖ)
Dosha girā(re)ibā Dosha debā (See)
দোষঢালা **दोष गिराना**

**ଦୋଷ ଗୁଣ—ସ. ବି.** (ବିପରୀତାର୍ଥକ, ଦ୍ୱନ୍ଦ୍ୱ, ଦୋଷ+ଗୁଣ)—
Dosha guṇa ଦୋଷ ଓ ଗୁଣ—Faults and merits; bad and good qualities.

**ଦୋଷଗ୍ରାହୀ—ସ.ବିଣ.** (ଦୋଷ+ଗ୍ରହ୍ ଧାତୁ+କର୍ତ୍ତୃ. ଇନ୍; ୧ମା.୧ବ)-
Doshagrāhi ୧ । ଯେଉଁ ଲୋକ ପରର ଗୁଣ ନ ଦେଖି କେବଳ ଦୋଷ ଦେଖେ; ଦୋଷଦର୍ଶୀ—
(ଗୁଣଗ୍ରାହୀ—ବିପରୀତ)
(ଦୋଷଗ୍ରାହିଣୀ—ସ୍ତ୍ରୀ) 1. Fault-finding; censorious (Apte).
(ଦୋଷଗ୍ରାହିତା—ବି) ୨ । ଦୁଷ୍ଟ—2. Wicked.
୩ । ଈର୍ଷୀ—3. Malicious; malignant (Apte).

**ଦୋଷ ଘୋଡ଼ା(ଡ଼େ)ଇବା—ଦେ. କ୍ରି**—୧ । ଅନ୍ୟ ଆଗରେ ନିଜର ତ୍ରୁଟି ବା ଦୋଷକୁ ଲୁଚାଇବା—
Dosha ghoṛā(ṛe)ibā
দোষ লুকান 1. To try to conceal one's faults or
**दोष छिपाना** blemishes from the eyes of another.
୨ । ଅନ୍ୟକୃତ ଦୋଷକୁ ସାଧାରଣଙ୍କ ଦୃଷ୍ଟିରୁ ଗୋପନ ରଖିବା—2. To conceal the fault of another from the eyes of the public.

**ଦୋଷଘ୍ନ—ସ. ବିଣ.** (ଦୋଷ+ହନ୍ ଧାତୁ+କର୍ତ୍ତୃ. କ୍ୱିପ୍)—ଯେଉଁ ଔଷଧ ବା ଚିକିତ୍ସାଦ୍ୱାରା ଶରୀରସ୍ଥ କୁପିତ ବାତ, ପିତ୍ତ ଓ କଫର ଦୋଷ ଶାନ୍ତ ହୁଏ—(medicinal treatment) Which counteracts the morbidity of the humours of the system.
Doshaghna
(ଦୋଷଘ୍ନୀ—ସ୍ତ୍ରୀ)

**ଦୋଷ ଜନକ—ସ. ବିଣ.** (ଦୋଷ+ଜନ ଧାତୁ+କର୍ତ୍ତୃ. ଅକ)—
Dosha janaka ୧ । ଦୋଷଯୁକ୍ତ; ପାପମୟ—1. Faulty; defective; sinful.
୨ । ଯାହା ଅପକାର କରେ—2. Injurious, mischievous.

**ଦୋଷଜ୍ଞ—ସ. ବି.** (ଦୋଷ+ଜ୍ଞା ଧାତୁ+କର୍ତ୍ତୃ. ଅ)—୧ । ଦୋଷ ସମ୍ବନ୍ଧେ ଅଭିଜ୍ଞ—1. Experienced in finding out faults.
Doshajña
(ଦୋଷଜ୍ଞା—ସ୍ତ୍ରୀ)
(ଦୋଷଜ୍ଞତା—ବି) ୨ । ଜ୍ଞାନୀ—2. Learned; sagacious
ସ. ବି—୧ । ରୋଗଜ୍ଞ ଚିକିତ୍ସକ—1. An expert physician.
୨ । ପଣ୍ଡିତ ବ୍ୟକ୍ତି—2. A learned person.
୩ । ଜ୍ଞାନୀ ବ୍ୟକ୍ତି—3. A wise man
୪ । ବୈଦ୍ୟ; ଚିକିତ୍ସକ—4 A physician (Apte).

**ଦୋଷଣ—ସ. ବି.** (ଦୁଷ୍ ଧାତୁ+ଭାବ. ଅନ)—
Doshaṇa ୧ । ଅନ୍ୟଠାରେ ଦୋଷାର୍ପଣ—1. Laying the blame on another; blaming another.
୨ । ଅଭିଯୋଗ—2 Charge, accusation (Apte).

**ଦୋଷ ତକସିର୍—ବୈଦେ. ବି.** (ସହଚର ଶବ୍ଦ; ସ. ଦୋଷ; ଓ ଫା. ତକ୍‌ସିର୍)—ସମସ୍ତ ଅପରାଧ ବା ତ୍ରୁଟି—
Dosha takasir
দোষ কসুর **दोष तकसीर** All the faults or blemishes.
(ଦୋଷ କସୁର; ଦୋଷ କସୋର୍—ଅନ୍ୟରୂପ)

**ଦୋଷତ୍ରୟ—ସ.ବି.**—ଶରୀରସ୍ଥ ବାୟୁ, ପିତ୍ତ ଓ କଫ, ଏହି ତିନି ଗୋଟି ଧାତୁର ବିକୃତି—The morbidity or vitiation of the three humours of the body (e g. wind, bile and phlegm).
Doshatraya

**ଦୋଷଦର୍ଶୀ—ସ.ବିଣ.ପୁଂ** (ଦୋଷ+ଦୃଶ୍ ଧାତୁ+କର୍ତ୍ତୃ.ଇନ୍,୧ମା ୧ବ)-
Doshadarśi ଯେ ପରର ଦୋଷ ଖୋଜି ବୁଲେ; ଦୋଷଗ୍ରାହୀ—
(ଦୋଷଦର୍ଶିନୀ—ସ୍ତ୍ରୀ) One who is on the look out for the faults of others; fault-finding; censorious.
ଦୋଷଦର୍ଶିତା } ବି.
ଦୋଷଦର୍ଶନ }
(ଦୋଷଦ୍ରଷ୍ଟା—ଅନ୍ୟରୂପ)

**ଦୋଷଦୁଷ୍ଟ—ସ. ବିଣ.**-(୩ୟା ତତ୍; ଦୋଷ+ଦୁଷ୍ଟ)—
Dosha dushṭa ଦୋଷାକ୍ରାନ୍ତ (ଦେଖ)
Doshākrānta (See)

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ଼' ନ ମିଳିଲେ 'ଗାଢ' ଖୋଜିବେ, କୂଅ ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ; ଅର୍ଗୀ ନ ପାଇଲେ 'ଅର୍ଘ୍ୟ' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍‌' ଦେଖିବେ ।

ଦୋଷ ଦୃଷ୍ଟି—ସଂ. ବିଣ. (ବହୁବ୍ରୀହି, ଦୋଷ+ଦୃଷ୍ଟି)—
Dosha drushti ଦୋଷଦର୍ଶୀ (ଦେଖ)—Doshadarsi (See)

ଦୋଷ ଦେଖା(ଖେ)ଇବା—ଦେ. କ୍ରି.—ପରର ଦୋଷକୁ ପ୍ରକାଶ କରିବା—To point out another's fault.
Dosha dekhā(khe)ibā
দোষ দেখান दोष दिखाना

ଦୋଷ ଦେବା—ଦେ. କ୍ରି.—୧ । ପରଠାରେ କଳଙ୍କ ବା ନିନ୍ଦା ଅର୍ପଣ କରିବା—1. To lay the blame on another, to blame.
Dosha debā
দোষ দেওয়া
दोषदेना, दोषना ୨ । କୌଣସି ବ୍ୟକ୍ତିକୁ ଦୋଷୀ ସାବ୍ୟସ୍ତ କରିବା—2. To adjudicate a person guilty.
୩ । କୌଣସି ବ୍ୟକ୍ତି ବିରୁଦ୍ଧରେ ଅଭିଯୋଗ କରିବା—3. To accuse a person; to charge a person.

ଦୋଷ ଧରିବା—ଦେ କ୍ରି.—ଅନ୍ୟର ତ୍ରୁଟିକୁ ଗ୍ରହଣ କରିବା—
Dosha dharibā To find out the fault of another.
দোষ ধরা
दोष पकड़ना (ଦୋଷ ବାଛିବା—ଅନ୍ୟରୂପ)

ଦୋଷନ—ଦେ. ବି. (ସଂ. ଦୋଷଣ)—ଦୋଷଣ (ଦେଖ)
Doshana দোষন दोषन Doshaṇa (See)

ଦୋଷଣୀୟ—ଦେ. ବିଣ. (ସଂ. ଦୂଷଣୀୟର ଅଶୁଦ୍ଧ ବ୍ୟବହାର)—
Doshaniya ଦୂଷଣୀୟ; ଦୋଷାରୋପଯୋଗ୍ୟ—
To be found fault with; faulty; blameable

ଦୋଷ ନେବା—ଦେ.କ୍ରି—ଦୋଷ ମୁଣ୍ଡାଇବା (ଦେଖ)
Dosha nebā Dosha muṇḍāibā (See)

ଦୋଷପତ୍ର—ସଂ. ବି. (ମ. ପ. ଲୋ; ଦୋଷ ଉଲ୍ଲେଖକାରୀ ପତ୍ର)—
Dosha patra ଅପରାଧୀର ଅପରାଧର ବିବରଣ ଯେଉଁ କାଗଜରେ ଲେଖାଥାଏ—A writing describing the details of an offence or defect; a written declaration of an offence; a charge sheet.
ଦୋଷପତ୍ରିକା } ଅନ୍ୟରୂପ
ଦୋଷଲେଖ }

ଦୋଷଭାକ୍—ସଂ. ବିଣ. (ଦୋଷ+ଭଜ୍ ଧାତୁ+କର୍ତ୍ତୃ. ଣ୍ୱି; ଦୋଷଭାକ୍;
Doshabhāk ୧ମା. ୧ବ)—୧ । ଅପରାଧୀ—
2. Guilty; offending.

ଦୋଷ ମାଗି ନେବା—ଦେ. କ୍ରି—ପ୍ରାର୍ଥନାଦ୍ୱାରା ଦୋଷର କ୍ଷମା ମାଗିବା—
Dosha māgi nebā To beg excuse for a fault committed, by praying sincerely.

ଦୋଷ ମୁଣ୍ଡା(ଣ୍ଡେ)ଇବା—ଦେ. କ୍ରି—୧ । କୌଣସି ଦୋଷ ନିଜନ୍ତେ
Dosha muṇḍā(ṇḍe)ibā ଆପଣା ଉପରେ ନିନ୍ଦା ବା ଦାୟିତ୍ୱ ନେବା—1. To take the blame for some fault on one's own shoulders.
୨ । ଅନ୍ୟକୃତ ଅପରାଧ ପାଇଁ ଦାୟିତ୍ୱ ଗ୍ରହଣ କରିବା—
2. To take the responsibility of another's guilt on oneself.

ଦୋଷ ମେଣ୍ଟଣ(ନ)—ଦେ. ବି—ଦୋଷ ଖଣ୍ଡନ (ଦେଖ)
Dosha mentana(na) Dosha khandana (See)
দোষমেটান दोषमिटाना

ଦୋଷଲ—ସଂ. ବିଣ. ପୁଂ. (ଦୋଷ+ଅଛି ଅର୍ଥରେ ଲ)—
Doshala ୧ । ଦୋଷଯୁକ୍ତ—1 Faulty; defective.
(ଦୋଷଲା—ସ୍ତ୍ରୀ) ୨ । ପାପୀ—2. Sinful (Apte).

ଦୋଷ ଲଗା(ଗେ)ଇବା—ଦେ କ୍ରି—କୌଣସି ଦୋଷର ଦାୟିତ୍ୱ କୌଣସି ବ୍ୟକ୍ତିଠାରେ ଆରୋପଣ କରିବା—
Dosha lagā(ge)ibā
দোষলাগান To lay the blame on some one;
दोषलगाना to attribute a fault to some one

ଦୋଷ ଲଦିବା—ଦେ. କ୍ରି (ବ୍ୟଙ୍ଗ)—ଦୋଷ ଦେବା (ଦେଖ)
Dosha ladibā Dosha debā (See)
(ଦୋଷ ଲଦି ଦେବା—ଅନ୍ୟରୂପ)

ଦୋଷ ଲାଗିବା—ଦେ. କ୍ରି—୧ । କୌଣସି ବ୍ୟକ୍ତିର ଅଶୁଭ ସମୟ (ତିଥି, ବାର ଆଦି)ରେ ମୃତ୍ୟୁ ଘଟିଲେ ଧର୍ମଶାସ୍ତ୍ରର ବଚନ ଅନୁସାରେ ତଜ୍ଜନିତ ଦୋଷର ପ୍ରଭାବ ତାହାର ଆତ୍ମାକୁ ବା ପ୍ରେତକୁ ବା ବଂଶଧରଙ୍କୁ ଆକ୍ରମଣ କରିବା—1. The influence of a person's dying in an inauspicious time affecting his passing soul or ghost or his relatives.
Dosha lāgiba
দোষলাগা
दोषलगना
୨ । ବାଳିକାର ଅଶୁଭ କାଳରେ ପ୍ରଥମ ରଜୋଦର୍ଶନ ହେଲେ ଧର୍ମଶାସ୍ତ୍ରର ବଚନ ଅନୁସାରେ ତହିଁର ମନ୍ଦ ପ୍ରଭାବ ତାହାର ଭବିଷ୍ୟତ ଜୀବନକୁ ଆକ୍ରମଣ କରିବା ବିଷୟ ଅନୁମିତ ହେବା—2. The ascertainment of the bad effects of a girl having her first menses on an astrologically inauspicious day.
୩ । ଗୋସ୍ୱାମୀ ବା ଗୋରକ୍ଷକର ତ୍ରୁଟିରୁ ଗୋରୁର ଅପମୃତ୍ୟୁ ହେଲେ ଧର୍ମଶାସ୍ତ୍ର ମତରେ ତଜ୍ଜନିତ ଦୋଷ ଉକ୍ତବ୍ୟକ୍ତିଠାରେ ବା ଜଣକଠାରେ ଆରୋପିତ ହେବା—
3. The attribution of the guilt for the unnatural death of a cow to the owner or to the cowherd, according to the dictates of Hindu scriptures.
୪ । କୌଣସି ମନ୍ଦ କାର୍ଯ୍ୟଜନିତ ଅପରାଧ ବା ପାପ କୌଣସି ବ୍ୟକ୍ତିଠାରେ ଆରୋପିତ ହେବା—4. The assignment of the guilt or sin for a bad act on some person.

ଦୋଷା—ସଂ. ବି. ସ୍ତ୍ରୀ—୧ । (ଦୁଷ୍ ଧାତୁ=ବିକୃତ ହେବା+ଅଧିକରଣ ଅ+ସ୍ତ୍ରୀ. ଆ)—ରାତ୍ରି—1. Night.
Doshā
୨ । (+କରଣ ଅ+ଆ) ବାହୁ—2. Arm; hand.

୩ । ଅନ୍ଧକାର—3. Darkness (Apte).
୪ । ସନ୍ଧ୍ୟା (ହ୍ରି. ଶବ୍ଦସାଗର)—4. Evening

ଦୋଷାକର—ସଂ. ବି. (୬ଷ୍ଠୀ ତତ୍; ଦୋଷ+ଆକର)—
Doshākara ୧ । ମହାପାପୀ—1. Very sinful.
୨ । ଅପରାଧୀ—2. Guilty.
୩ । ଯେଉଁ ଲୋକଠାରେ ଦୋଷର ମାତ୍ରା ଅତି ଅଧିକ—
3. Full of faults.
୪ । (ଦୋଷା=ରାତ୍ରି+କୃ ଧାତୁ+କର୍ତ୍ତୃ.ଅ, ଯେ ଦୋଷାରେ କର ବିଧାନ୍ତି ସେ=ନିଶାକର) ଚନ୍ଦ୍ର—
4. The moon (lit. the night-maker or emitting rays in the night).

ଦୋଷାକ୍ରାନ୍ତ—ସଂ. ବିଣ. (ତୃତୀୟା ତତ୍; ଦୋଷ+ଆକ୍ରାନ୍ତ)—
Doshākrānta ଦୋଷଯୁକ୍ତ—Faulty; labouring under a defect

ଦୋଷାକ୍ଷର—ସଂ. ବି—ଆରୋପିତ ଅପରାଧ; ଅଭିଯୋଗ (ହ୍ରି ଶବ୍ଦସାଗର)—
Doshākshara Charge; accusation.

ଦୋଷାତନ—ସଂ. ବି. (ଦୋଷା=ରାତ୍ରି+ସମ୍ବନ୍ଧ ଅର୍ଥେ ତନ, ତୁଳ Doshātana ଅଦ୍ୟତନ, ଅଧୁନାତନ)—ରାତ୍ରିକାଳୀନ—
Nightly, nocturnal.

ଦୋଷା ତିଲକ—ସଂ. ବି. (ଦୋଷା+ତିଲକ; ଦୋଷାର ତିଲକ ସ୍ୱରୂପ)—
Doshā tilaka ପ୍ରଦୀପ—Lamp.

ଦୋଷାଦୋଷ—ସଂ ବି. (ବିପରୀତାର୍ଥକ ସହଚର ଶବ୍ଦ; ଦ୍ୱନ୍ଦ୍ୱ; ଦୋଷ+ Doshādosha ଅଦୋଷ)—୧ । ଦୋଷ ଓ ଗୁଣ—
1. Faults and good parts (of a man).
୨ । କୌଣସି ବିଷୟର ଭଲ ଓ ମନ୍ଦ କଥା—
2 The good and the bad of a matter.

ଦୋଷାବହ—ସଂ. ବିଣ. (ଉପପଦ ତତ୍; ଦୋଷ+ଆବହ=ଯେ ବହନ Doshābaha କରେ)—୧ । ଦୋଷଜନକ—1. Faulty.
୨ । ପାପଜନକ—2. Sinful.
୩ । ଦୋଷପୂର୍ଣ୍ଣ—3. Full of blemishes or defects.

ଦୋଷାରୋପ—ସଂ. ବି. (୬ଷ୍ଠୀ ତତ୍; ଦୋଷ+ଆରୋପ)—
Doshāropa ଅନ୍ୟ ବ୍ୟକ୍ତି ଉପରେ କୌଣସି ଦୋଷର ଅଭିଯୋଗ—
(ଦୋଷାରୋପଣ—ଅନ୍ୟରୂପ) Accusation; charge; laying the blame on another.

ଦୋଷାସ୍ୟ—ସଂ. ବି. (ଦୋଷା=ରାତ୍ରି+ଆସ୍ୟ=ମୁଖ; ରାତ୍ରିର ମୁଖ Doshāsya ସ୍ୱରୂପ)—ଦୋଷା ତିଲକ (ଦେଖ)
Doshā tilaka (See)

ଦୋଷିକ—ସଂ. ବି. (ଦୋଷ+ଇକ)—ରୋଗ; ପୀଡ଼ା—
Doshika Disease; illness.
ସଂ. ବିଣ—ଦୋଷ ବା ତ୍ରୁଟୀ ଯୁକ୍ତ—
Faulty; defective (Apte).

ଦୋଷିଣୀ—ସଂ. ବିଣ. ସ୍ତ୍ରୀ. (ଦୋଷିନ୍+ସ୍ତ୍ରୀ. ଈ)—ଦୋଷୀର ସ୍ତ୍ରୀଲିଙ୍ଗ—
Doshiṇī The feminine of Doshī

ଦୋଷିବା—ଦେ. (ପଦ୍ୟ) କ୍ରି. (ସଂ. ଦୁଷ୍ ଧାତୁ)—
Doshibā ଦୋଷାରୋପ କରିବା; ନିନ୍ଦା କରିବା—
ହିନ୍ଦୀ To blame; to attribute blame to
दोषना; दूषना; दोखना some one.
ନନ୍ଦନ୍ଦନ ମୁଖେ କର ହାଣି
କାହାକୁ କରୁଛେ ଦୋଷି ତାକୁଣ କହତ । ରାଧାନାଥ. ମହାଯାତ୍ରା ।

ଦୋଷୀ—ସଂ. ବିଣ. ପୁଂ (ଦୋଷ+ଅଛି ଅର୍ଥରେ ଇନ୍, ୧ମା.୧ବ)—
Doshī ୧ । ଅପରାଧୀ—1. Guilty; criminal.
(ଦୋଷିଣୀ—ସ୍ତ୍ରୀ) ୨ । ପାପୀ—2. Sinful.
୩ । କୃତଘ୍ନ—3. Ungrateful.
୪ । ଦୋଷଯୁକ୍ତ (ହ୍ରି. ଶବ୍ଦସାଗର)—4. Faulty defective.

ଦୋଷୈକଦର୍ଶୀ—ସଂ. ବିଣ. ପୁଂ (ଦୋଷ+ଏକ+ଦୃଶ୍ ଧାତୁ+କର୍ତ୍ତୃ. Doshaikadarśī ଇନ୍; ୧ମା. ୧ବ)—ଗୁଣ ନ ଦେଖି ଯେ
ଦୋଷୈକଦର୍ଶିନୀ } ସ୍ତ୍ରୀ କେବଳ ମାତ୍ର ଦୋଷ ଦେଖେ—
ଦୋଷୈକଦୃଶା } Fault-finding; censorious.
(ଦୋଷୈକ ଦୃକ୍—ଅନ୍ୟରୂପ)

ଦୋସ୍—ସଂ. ବି (ଦମ୍ ଧାତୁ=ଶାସନ କରିବା+କରଣେ. ଓସ୍)—
Dos ୧ । ତ୍ରିଭୁଜ ବା ଚତୁର୍ଭୁଜ କ୍ଷେତ୍ରର ବାହୁ—
(ଦୋଷ୍—ଅନ୍ୟରୂପ) 1. The sides or arms of a triangle or quadrangle.
୨ । ବାହୁ—2. The arm.
୩ । ହସ୍ତ; କର—3 The hand.

ଦୋସ୍‌ମନ୍—ବୈଦେ. ବିଣ (ଫା)—ଦୁସ୍‌ମନ୍ (ଦେଖ)
Dos-man Duś-man (See)

ଦୋସ୍‌ମନି—ବୈଦେ. ବି (ଫା)—ଦୁସ୍‌ମନି (ଦେଖ)
Doś-mani Duś-mani (See)

ଦୋ ସଡ଼୍‌କ—ଦେ. ବି—ଦୁଇଟି ରାଜପଥର ମିଳନ ସ୍ଥଳ—
Do sarḍaki Meeting place of two roads;
(ଦୋସଡ଼କ—ଅନ୍ୟରୂପ) bifurcation of a road.

ଦୋସଡ଼ା—ଦେ. ବି—ଦୋସୋଡ଼ା (ଦେଖ)
Dosarḍā Dosorḍā (See)

ଦୋସନ୍ଧି—ପ୍ରାଦେ (ସାଲ୍‌ପୁର)ବି—ଘରର ଦୋକନ୍ଧି—The narrow Dosandi open space between two separte houses.
ଦେ. ବି—ଦୋସନ୍ଧି (ଦେଖ)—Dosandhi (See)

ଦୋସନ୍ଧି—ଦେ. ବି (ସଂ. ଦ୍ୱି ଓ ସନ୍ଧି)—୧ । ଦୁଇ ବସ୍ତୁ ମଧ୍ୟରେ ଥିବା Dosandhi ସନ୍ଧି—1. Interstice; crevice.
ହିଫାଙ୍କ ୨ । ଦୁଇ ସୀମା ମଧ୍ୟରେ ଥିବା ଫାଙ୍କ—2. The space
दोफाङ्क between two boundaries.
୩ । (ଲକ୍ଷଣାର୍ଥ) ବିଷମ ସମସ୍ୟା—
3. (figurative) Dilemma.
ଏହିପରି ଦୋସନ୍ଧିରେ ପଡ଼ି ଛଟପଟ ହୋଇ ଦଶରଥ
କେତେବେଳ ଉପରୁ ହତବ ଦମ୍ଭ ହେଲେ । ଗାଲକଣ୍ଠଦାଶ. ପିଲାଙ୍କ ରାମାୟଣ ।

ଦୋସମାଲ—ଦେ. ବି (ସଂ. ଦ୍ୱି ଓ ସୀମା)—୧ । ଦୁଇ ମୌଜାର ବା Dosamāli ଦୁଇଖଣ୍ଡ କ୍ଷେତ୍ରର ଅଥବା ଦୁଇ ରାଜ୍ୟର ମଧ୍ୟବର୍ତ୍ତୀ
(ଦୋସିମାଲ—ଅନ୍ୟରୂପ) ସୀମା—1. The boundary be-
दोसीमाना tween two lands or villages or
दोसाबाना estates or States.

ଖାଲରିର ଉତ୍ତରକୁ ଓ ମୟୂରଭଞ୍ଜ ଦୋସମାଳ ସନ୍ନିକଟେ ଗାଁ।--
ଫକୀରମୋହନ. ଗଳ୍ପସ୍ବଳ୍ପ ।

୨ । ସୀମାରେଖା—2. Boundary line.

ବିଣ—ଦୁଇ ଜମିର ବା ଗ୍ରାମର ସୀମାରେ ଅବସ୍ଥିତ—
Situate on the boundary line of two lands or villages.

**ଦୋସମାଳ ପଥର**—ଦେ. ବି—ଯେଉଁ ପଥର ଦୁଇ ମଉଜାର ସୀମା-ନିର୍ଦ୍ଦେଶାର୍ଥ ପୋତା ହୋଇଥାଏ—
Dosamāḷi pathara
দোসীমানা পাথর
दोसीवाना पथर
Boundary stone set up on the boundary line of two villages.
(ଯଥା—ଏହିପରି ଦୋସମାଳ ଖୁଣ୍ଟ, ଦୋସମାଳ ଖୁଣ୍ଟି, ଦୋସମାଳ ପାହ୍ୟା, ଦୋସମାଳ ପିଲ, ଦୋସମାଳ ଖମ୍ବା, ଦୋସମାଳ ପିଲ-ପାହ୍ୟା ଆଦି ଶବ୍ଦ ହୁଏ ।)

**ଦୋସର**—ଦେ. ବି (ସଂ. ଦ୍ୱି + ସୃ ଧାତୁ; ହି. ଦୁସର)—ସଙ୍ଗୀ—
Dosara
দোসর
दसरा, दसर
A companion.
ଧନ୍ୟ କର୍ଣ୍ଣ ପ୍ରାଣସଖା ଜୀବନ ଦୋସର,
କ ଅମୃତ ରସାୟନ ଚାଲିଲ କର୍ଣ୍ଣର । ମଧୁସୂଦନ. କର୍ଣ୍ଣବଧ ।

ଅ—ପୁଣି; ଦ୍ୱିତୀୟଥର—Again; for the second time.
ତାହା ପ୍ରାଣ ନ ନେଲେ ମୋହର ବଳିଶ
କ ଦେଖିବି ମୁହିଁ ଦୋସର ଭୂଷ ମୁଖ ।
କୃଷ୍ଣସିଂହ. ମହାଭାରତ. ବନ ।

ଦେ. ସଙ୍—୧ । ଦ୍ୱିତୀୟ—1. Second.
ମୋହ ବଳ ନାହିଁ ତହିଁ ଦୋସର ପୁରୁଷ । ପ୍ରାଚୀ. ରହସ୍ୟମଞ୍ଜରୀ ।

୨ । ଅନ୍ୟ—2. Another.
ଦୋସର ନ ପାରଇ କହି । ଯଶୋବନ୍ତ. ପ୍ରେମଭକ୍ତି ଗୀତା ।

**ଦୋସରା**—ଦେ. ବିଣ—(ସଂ. ଦ୍ୱି + ସୃ ଧାତୁ; ହି. ଦୁସ୍‌ରା)—୧ । ଦ୍ୱିତୀୟ—
Dosarā
দোসরা; दुसरा
1 Second.
୨ । ଅନ୍ୟ—2. Another.
(ଦୋସ୍ରା—ଅନ୍ୟରୂପ) ୩ । ସ୍ୱତନ୍ତ୍ର; ପୃଥକ୍; ଭିନ୍ନ—3. Separate.
୪ । ଯୋଡ଼ା; ଯୁଗ୍ମ—4. In pairs.
୫ । ଦୋସରିଆ (ଦେଖ)
5. Dosariā (See)

ବି—୧ । ମାସର ଦୁଇ ତାରିଖ—1. The second day of the month.
୨ । ସହାୟକ ବ୍ୟକ୍ତି—2. Assistant; colleague.

**ଦୋସରିଆ**—ଦେ. ବିଣ—ଦୁଇ ସୋର ବା ସରୁ ଥିବା (ହାର)—
Dosariā
দুনরী; दोलड़ा
Two-stringed (necklace).

**ଦୋସରୀ ଅଙ୍ଗୁଠି**—ଦେ. ବି—ବାହାରଡ଼ା ଅଙ୍ଗୁଠି (ଦେଖ)
Dosari āṅguṭhi Bāhārḍā āṅguṭhi (See)

**ଦୋସରୀ**—ଦେ. ବି—ବାଦ୍ୟବିଶେଷ; ଦୁଇଟି ସ୍ୱରବିଶିଷ୍ଟ ଯୋଡ଼ାମହୁରୀ—
Dosari
A musical instrument; a flute which produces two tunes simultaneously.
ରେଖ ମହୁରୀ ଅର ତୁରୀ, କାହାଳ ଶଙ୍ଖ ସେ ଦୋସରୀ ।
ପ୍ରାଚୀ. ଯଶୋବନ୍ତ. ପ୍ରେମଭକ୍ତି ଗୀତା ।

ବିଣ—ଦୋସରିଆ (ଦେଖ)—Dosariā (See).

**ଦୋସରୀ ଶଙ୍ଖ**—ଦେ. ବି—ଏକକାଳୀନ ଜଣକଦ୍ୱାରା ବାଜୁଥିବା ଦୁଇଟି ଶଙ୍ଖ—
Dosari śaṅkha
জোড়াশাঁখ
Two conches blown simultaneously by one person.

**ଦୋସାଦ(ଧ)(ଧୁ)**—ଦେ. ବି (ଫା. ଦୁଃସାଧୀ=ଦ୍ୱାରପାଳ)—୧ । କଟୁଆଳ; ନଗରରକ୍ଷୀ ପ୍ରଧାନ କର୍ମଚାରୀ—
Dosāda(dha)(dhu)
দোসাদ; दसाद
1 Head of the Police; Police Superintendent
ଧନ ରତ୍ନ ଲୁଟାଇ ଦୋସାଧୁ ହସ୍ତେ ଦେବା
ଦୁହିଙ୍କି ବନ୍ଧାଇ ନଗ୍ର ଯାକ ବୁଲାଇବା । ବିଶ୍ୱନାଥ. ବିଚିତ୍ରରାମାୟଣ ।

୨ । ଦ୍ୱାରୀ; ଦ୍ୱାରପାଳ—2 Porter; door-keeper

**ଦୋସାଲା**—ବୈଦେ. ବିଣ (ଫା; ତୁଳ-ଏକସାଲା, ତିଶାଲା, ଦଶସାଲା)—
Dosālā
দোসালা; दु साला
୧ । ଦୁଇ ବର୍ଷ ପାଇଁ ନିର୍ଦ୍ଦିଷ୍ଟ—1. Limited for two years.
(ଯଥା—ଦୋସାଲା ପଟା)
୨ । ଦୁଇ ବର୍ଷବୟସ୍କ—2. Aged two years.
୩ । ଦୁଇ ବର୍ଷ ଅନ୍ତରରେ ଘଟୁଥିବା—3. Happening at intervals of two years.
(ଯଥା—ଦୋସାଲା ବନ୍ଦୋବସ୍ତ)
୪ । ଦୁଇ ଥର ପାଗ ହୋଇଥିବା ( ଭୁଣ୍ଣା )—
4. Twice seasoned with sugar (fried corn).
ବୈଦେ. ବି—ଦୋଶାଲ (ଦେଖ)—Dośāla (See)

**ଦୋସାଲା ବନ୍ଦୋବସ୍ତ**—ଦେ. ବି—ଯେଉଁ ବନ୍ଦୋବସ୍ତରେ ଧାର୍ଯ୍ୟହେବା ଜମା ଦୁଇ ବର୍ଷ ପାଇଁ ବଳବତ୍ ରହେ—
Dosālā bandobasta
দুসালা বন্দোবস্ত;
बन्दोबस्त दु साला
Biennial settlement of rent.

**ଦୋସାଲିଆ**—ବୈଦେ. ବିଣ (ଫା)—ଦୋସାଲା (ଦେଖ)
Dosāliā
Dosālā (See)
[ ଯଥା—ଦୋସାଲିଆ ବାଛୁରି ]

**ଦୋସିଆଁ**—ଦେ. ବିଣ—(ସଂ. ଦ୍ୱି + ସୂୟତ)—ଏକତ୍ର ସିଲାଇ ହୋଇଥିବା (ଦୁଇ ଖଣ୍ଡ ବସ୍ତ୍ର)—
Dosiāṅ
(Two pieces of cloth) Sewn together.

**ଦୋସୂତା**—ଦେ. ବିଣ. ( ସଂ. ଦ୍ୱି ଓ ସୂତ୍ର )—ଡବଲ ସୂତାରେ ବୁଣା ହୋଇଥିବା; ମୋଟା ( ଲୁଗା )—
Dosūti
দুসুতী
दुसुती, दोतही
Woven with double thread; thick-woven ( cloth ).
ବି—ଡବଲ ବୁଣା ଚଦର; ଯେଉଁ ଚଦରରେ ଟାଣି ଓ ଭରଣିରେ ଦ୍ୱିଗୁଣିତ ସୂତା ଲାଗିଥାଏ—
A double-woven cloth.

**ଦୋସୋଡ଼ା**—ଦେ. ବି—୧ । ଉତ୍ତରୀୟ; ପାଛୁଡ଼ା—1. A scarf or sheet for covering the upper part of the body.
Dosaṛā
দুপাটা
दुपाटा
୨ । ଦୋପଟା ଚଦର—2 A sheet consisting of two breadths sewn together.
ବଡ଼ଙ୍କ ଖଣ୍ଡିଆ ଦୋସୋଡ଼ା—ଗୋପକୃଷ୍ଣ. ଜଗମୋହନ ।

ଦୋସ୍ତ୍—ବୈଦେ. ବ. ( ଫା. ଦୋସ୍ତ୍ )—୧ । ମିତ୍ର; ବନ୍ଧୁ—
Dost                1. Friend.
दोस्त        ତୁମ୍ଭେ ଦୋସ୍ତ ଓ ଭଲ ମନୁଷ୍ୟ ବୋଲି ବେବର୍ତ୍ତି କାମ ଦେଲ—
दोस्त        ଫକୀରମୋହନ. ଛମାଣ ଆଠଗୁଣ୍ଠ ।
୨ । ସୁହୃଦ୍; ଅନ୍ତରଙ୍ଗ ବନ୍ଧୁ—2. Bosom friend.
୩ । ସାଙ୍ଗସୁଖ—3. Companion.

ଦୋସ୍ତ୍ଦାର୍—ବୈଦେ ( ଫା. )—ସାଙ୍ଗସୁଖ—
Dost-dār                Companion.
दोस्तदार        ପୁଣି ଦୋସ୍ତଦାରମାନେ ଆସି ବଡ଼ି ଭଲୁଅଛନ୍ତି—
दोस्तदार        ଫକୀରମୋହନ. ଛମାଣ ଆଠଗୁଣ୍ଠ ।

ଦୋସ୍ତ୍ଦାରି—ବୈଦେ. ବ. ( ଫା )—ବନ୍ଧୁତା—
Dost-dāri                Friendship.
दोस्तदारी दोस्तदारी

ଦୋସ୍ତ୍ ମହମ(ମ୍ମ)ଦ୍—ବୈଦେ. ବ. (ନାମ)—କାବୁଲର ଜଣେ ଅମୀର—
Dost mahama(mma)d Name of an Amir of Kabul.
[ ଦ୍ର—ଲର୍ଡ୍ ଅକ୍‌ଲାଣ୍ଡ୍ ଭାରତବର୍ଷର ଗଭର୍ଣ୍ଣର୍ ଜେନେରଲ୍ ଥିବା ସମୟରେ ( ଖ୍ରୀ. ୧୮୩୬-୧୮୪୨ ) ରୁଷିଆ କାବୁଲ ବାଟେ ଭାରତକୁ ଆକ୍ରମଣ କରିବାର ଆଶଙ୍କା ବଳବତୀ ହେବାରୁ ଲର୍ଡ୍ ଅକ୍‌ଲାଣ୍ଡ୍ ଦୋସ୍ତ୍ ମହମ୍ମଦଙ୍କ ସଙ୍ଗେ ମିତ୍ରତା ବନ୍ଧନ କରିବାକୁ ପ୍ରସ୍ତାବ କଲେ । କିନ୍ତୁ ଦୋସ୍ତ୍ ମହମ୍ମଦ୍ ଉତ୍ତର କଲେ ଯେ ଶିଖମାନଙ୍କଠାରୁ ପେଶାବର କଣ୍ଟା ଛଡ଼ାଇ ଆଣି ତାଙ୍କୁ ଦେଲେ ସେ ଭାରତ ସରକାରଙ୍କ ମିତ୍ର ହେବେ । ଏଥିରେ ଲର୍ଡ୍ ଅକ୍‌ଲାଣ୍ଡ୍ ଅସ୍ୱୀକୃତ ହୋଇ ଦୋସ୍ତ୍ ମହମ୍ମଦଙ୍କୁ ତଡ଼ି ସାହା ସୁଜାଙ୍କୁ କାବୁଲର ଅମୀର କରିବାକୁ ବସିଲେ, କିନ୍ତୁ ଦୋସ୍ତ୍ ମହମ୍ମଦ୍ ସାହା ସୁଜାଙ୍କୁ ପରାସ୍ତ କରି ନିଜେ ଅମୀର ହେଲେ । ପରେ ଲର୍ଡ୍ ଅକ୍‌ଲାଣ୍ଡ୍ ଭାରତରୁ ସେନା ପଠାଇ ଦୋସ୍ତ୍ ମହମ୍ମଦଙ୍କୁ ପରାସ୍ତ କରି ସାହା ସୁଜାଙ୍କୁ କାବୁଲରେ ଅମୀର କଲେ ଓ ଦୋସ୍ତ୍ ମହମଦଙ୍କୁ ବନ୍ଦୀ କରି ଆଣି କଲିକତାରେ ରଖିଲେ । ଏହା ପ୍ରଥମ ଅଫଗାନ ଯୁଦ୍ଧ ( ୧୮୩୮ ।) ପରେ ସାହା ସୁଜା ଇଂରେଜମାନଙ୍କର ବିରୁଦ୍ଧାଚରଣ କରିବାରୁ ପରବର୍ତ୍ତୀ ଗଭର୍ଣ୍ଣର ଜେନେରଲ ଲର୍ଡ୍ ଏଲେନ୍‌ବରା କାବୁଲ ଅଧିକାର କରି ଦୋସ୍ତ୍ ମହମ୍ମଦଙ୍କୁ ପୁଣି କାବୁଲର ଅମୀର କଲେ । ]

ଦୋସ୍ତି—ବୈଦେ. ବ. ( ଫା )—୧ । ବନ୍ଧୁତା—
Dosti                1. Friendship.
दोस्ती        ୨ । ପ୍ରଣୟ—2. Love.
दोस्ती        ୩ । ଘନିଷ୍ଠତା—3. Attachment.
( ଦୋସ୍ତାନା—ଅନ୍ୟରୂପ )        ୪ । ପାପଟଦାସ୍ତି; ଅବୈଧ ପ୍ରଣୟ—
4 Illicit; love.

ଦୋହ—ସଂ. ବ. ( ଦୁହ ଧାତୁ+ଭାବ. ଅ )—୧ । ଦୋହିବା—
Doha                1. Milking.
୨ । ( +ଅଧିକରଣ. ଅ ) ଦୋହନ ପାତ୍ର—
2. Milking pot.
୩ । ସନ୍ତୋଷ—3. Contentment.
୪ । ( +କର୍ମ. ଅ ) ଦୁଗ୍ଧ—4. Milk.

ଦୋହକ—ସଂ. ବଣ. ପୁଂ. (ଦୁହ୍ ଧାତୁ+କର୍ତ୍ତୃ. ଅକ )—ଦୋହନକାରୀ; ଯେ ଦୁହେଁ—Milking.
Dohaka
( ଦୋହିକା—ସ୍ତ୍ରୀ )

ଦୋହଜ —ସଂ. ବ ( ଦୋହ+ଜନ୍ ଧାତୁ+କର୍ତ୍ତୃ. ଅ )—ଦୁଗ୍ଧ—
Dohaja                Milk.
ସଂ. ବଣ—ଦୋହନଜାତ—Got by milking.

ଦୋହ(ହୋ)ଡ—ଦେ. ବ—୧ । ଦ୍ୱିତୀୟ ଥର ହଳ କରିବା, ଦୋଓଡ଼୍—
Doha(ho)rda        1. Tilling for the second time.
୨ । ଦୋରୁଅ ( ଦେଖ )—Dorua ( See )
ବଣ - ଦୋଓଡ଼ି; ଦୁଇ ଥର ଚାଷ କରାଯାଇଥିବା ( ଜମି )—
( a plot of land ) Tilled twice.

ଦୋହ(ହୋ)ଡବେଇ—ଦେ. ବଣ. ପୁଂ—ଦୋବେଇ ( ଦେଖ )
Doha(ho)rdabei                Dobei ( See )

ଦୋହ(ହୋ)ଡ଼ା ( ଇତ୍ୟାଦି )—ଦୋଓଡ଼ା ଇତ୍ୟାଦି ( ଦେଖ )
Doha(ho)rdā (etc)                Do-ordā etc ( See)

ଦୋହଣି—ଦେ. ବ—ଦୋହୁଣି ( ଦେଖ )
Dohani                Dohuni ( See )

ଦୋହଦ—ସଂ. ବ. ( ଦୋହ=ଅସନ୍ତୋଷ+ଦା ଧାତୁ+କର୍ତ୍ତୃ. ଅ )—
Dohada        ୧ । ସ୍ପୃହା; ଇଚ୍ଛା—1. Desire; wish.
୨ । ଲାଳସା—2. Violent desire; hankering.
୩ । ଗର୍ଭିଣୀର ବସ୍ତୁବିଶେଷ ପ୍ରତି ଭୋଜନ ଲାଳସା—
3. The longing of a pregnant woman.
୪ । ଚିହ୍ନ—4. Sign.
୫ । ଔଷଧ —5. Medicine.
୬ । ( ଦ୍ୱି+ହୃଦୟ=କ୍ଷେପାଡନ ) ଗର୍ଭଲକ୍ଷଣ—
6. Signs of pregnancy.
୭ । ଗର୍ଭାବସ୍ଥା - 7. Pregnancy; pregnant state.
୮ । ଗର୍ଭ—8. Womb.
୯ । ବୃକ୍ଷାଦିର ପୋଷକ ଔଷଧ ବା ପ୍ରୟୋଗ—
9 Applications for nourishing trees.

ଦୋହଦ ଦାନ—ସଂ. ବ.—(୬ଷ୍ଠୀ ତତ୍; ଦୋହଦ+ଦାନ)—
Dohada dāna    ଗର୍ଭିଣୀଙ୍କୁ ସ୍ପୃହଣୀୟ ବସ୍ତୁ ଖାଇବାକୁ ଦେବା; ସାଧ ଖୁଆଇବା—Offering of desired things to a longing pregnant woman.

ଦୋହଦବତୀ—ସଂ. ବ. ସ୍ତ୍ରୀ. (ଦୋହଦ+ବତ୍+ସ୍ତ୍ରୀ. ଈ)—ଖାଦ୍ୟ-
Dohada bati    ବିଶେଷ ପ୍ରତି ସ୍ପୃହାବତୀ ଗର୍ଭିଣୀ—A longing pregnant woman.

ଦୋହଦ ଲକ୍ଷଣ—ସଂ. ବ. (୬ଷ୍ଠୀ ତତ୍; ଦୋହଦ୍+ଲକ୍ଷଣ)—୧ । ଗର୍ଭ-
Dohada lakshana    ଲକ୍ଷଣ—1. Signs of pregnancy.
୨ । ଭ୍ରୂଣ; ଗର୍ଭସ୍ଥ ଶିଶୁ—2 Foetus.
୩ । ବୟଃସନ୍ଧି (ପ୍ରକୃତିବାଦ)—3. Transition from childhood to youth; the prime of life.

ଦୋହଦାନ୍ୱିତା—ସଂ. ବଣ. ସ୍ତ୍ରୀ (୩ୟା ତତ୍; ଦୋହଦ+ଅନ୍ୱିତ+ସ୍ତ୍ରୀ.
Dohadānwita    [illegible] ଆ)—ଗର୍ଭବତୀ—Pregnant.

ଦୋହଦନୀ—ସ. ବ. ସ୍ତ୍ରୀ (ଦୋହଦ=ଗର୍ଭିଣୀର ଇଚ୍ଛା+ଇନ୍+ଈ)—
Dohadinī ଦୋହଦବତୀ (ଦେଖ)—Dohadabatī (See)

ଦୋହଦୀ—ସ. ବିଣ. ପୁଂ (ଦୋହଦ+ଅଛି ଅର୍ଥରେ ଇନ୍;୧ମା. ୧ବ)—
Dohadī କାମୀ (ପ୍ରକୃତିବାଦ)—Lustful; amorous.

ଦୋହନ—ସ. ବ. (ଦୁହ୍ ଧାତୁ+ଭାବ. ଅନ)—୧ । ଦୁହିଁବା; ଦୁଗ୍ଧ-
Dohana କର୍ଷଣ—1 Act of milking

୨ । ଦୁହିଁ ହେଲେ ଦୁଧ ଦେଉଥିବା—2. Yielding milk.
କାମୀ କାମ ଦେ ହନ, କରନ୍ତି ଗୋ ଦୋହନ, କଲଶେ ଉଣି ପୁଣି ପୁଣି ।
ଗୋପକୃଷ୍ଣ. ରସକଲ୍ଲୋଳ ।

୩ । ସଂଗ୍ରହ କରିବା—3. Collecting; compiling.

୪ । (+ଅଧି. ଅନ) ଦୋହନ ପାତ୍ର—4 A pail or pot into which milk is milked.

ଦୋହନୀ—ସ. ବ.—(ଦୋହନ+ସ୍ତ୍ରୀ. ଈ)—୧ । ଦୋହନ ପାତ୍ର—
Dohanī 1. Milking pot.

୨ । ଦୋହନ କର୍ମ (ହି. ଶବ୍ଦସାଗର)—
2 The act of milking.

ଦୋହର—ଦେ. ବିଣ.—ଦୋଅଡ଼ ୨ (ଦେଖ)
Dohara Do-arda (See)
ଡବଲ ମୋଟା ବଣିଅ ଲୁଗାର ଦୋହର କରୁଣ',
दोहर ଫକୀରମୋହନ. ଛମାଣ ଆଠଗୁଣ୍ଠ ।

ଦୋ ହରପୀ—ଦେ. ବିଣ. (ସ. ଦ୍ୱି+ଆ. ହର୍ଫ୍)—୧ । ଦୁଇ ପ୍ରକାର
Dohar̄apī ହସ୍ତାକ୍ଷରରେ ଲେଖା ହୋଇଥିବା (ଲେଖ)
ଦୁ ଅକ୍ଷରୀ 1. (a writing) Written in two kinds
दु हरपी of; handwriting.

୨ । ଦୁଇ ପ୍ରକାର ହସ୍ତାକ୍ଷର ଲେଖି ଜାଣି ଥିବା (ବ୍ୟକ୍ତି)—
2 (a person) Knowing to write two kinds of handwriting.

ଦୋହର ମୁଣ୍ଡା—ଦେ. ବ.—ଦୋଅଡ଼ ମୁଣ୍ଡା (ଦେଖ)
Dohara mundā Do-orda mundā (See)

ଦୋହରା (ଇତ୍ୟାଦି)—ଦୋହୋରା ଇତ୍ୟାଦି (ଦେଖ)
Doharā (etc) Dohorā etc (See)

ଦୋହରି (ଇତ୍ୟାଦି)—ଦୋହୋରି ଇତ୍ୟାଦି (ଦେଖ)
Dohari etc Dohori etc (See)

ଦୋହଳ—ସ. ବ. (ଦୋହ=ସନ୍ତୋଷ+ଲା ଧାତୁ=ଗ୍ରହଣ କରିବା+
Dohaḷa କର୍ତ୍ତୃ. ଅ)—ଇଚ୍ଛା; ଅଭିଳାଷ—Desire.
ପ୍ରାଦେ. (ଗଡ଼ଜାତ ଓ ସମ୍ବଲପୁର) ବ. (ସ. ଦେହଳ)—ବାରଣ୍ଡା;
ଅଳିନ୍ଦ—Varanda; portico.

ଦୋହଳ(ଳ)—ଦେ. ବି. (ସ. ଦୁଲ ଧାତୁ)—୧ । କମ୍ପନ—
Dohala(ḷa) 1. Oscillation.
ହଲନ ୨ । ମନର ଅଛିର ଅବସ୍ଥା—
ଡୁଲନା ଡୋଲନା 2. Vasillating.
[ଦୋହୋଲ(ଳ)—ଅନ୍ୟରୂପ] ୩ । ଟଣା ଓଟରା—
3. Dragging to and fro.
୪ । ଆନ୍ଦୋଳନ—4. Agitation.

୫ । ବାଦ ବିବାଦ—
5. Mutual recrimination; wordy fight.

ଦୋ ହଲପୀ—ଦେ. ବିଣ. (ସ. ଦ୍ୱି+ଆ. ହଲଫ୍)—ଯେ ଥରେ ହଲପ
Do halapī କରି କହିଥିବା କଥାରୁ ଦ୍ୱିତୀୟ ଥର ହଲପ କରି
দো হলপী ଜବାନବନ୍ଦୀ ଦେଲା ବେଳେ ଅନ୍ୟ ପ୍ରକାର କରି
दु हलपी କହେ—Speaking two different versions on oath; making contradictory statements on oath.

ଦୋହଳବତୀ—ସ. ବିଣ. ସ୍ତ୍ରୀ—ଦୋହଦବତୀ (ହି. ଶ.) (ଦେଖ)
Dohaḷabatī Dohadabatī (See)

ଦୋହଲା—ଦେ. ବ.—(ସ. ଦୁଲ ଧାତୁ)—୧ । ଦୋହଲିବା; ଇତସ୍ତତଃ
Dohalā ଚଳନ—1. Oscillation.
(ଦୋହୋଲା—ଅନ୍ୟରୂପ) ୨ । ଦୋହଲାଇବା—2. Rocking.
দোলা ଝୁଲନା দোলান डोलाना

ଦୋହଲା(ଲେ)ଇବା—ଦେ. କ୍ରି. (ସ. ଦୁଲ୍ ଧାତୁ ଣିଜନ୍ତ)—
Dohalā(le)ibā ୧ । ଦୋହଲିବା କ୍ରିୟାର ଣିଜନ୍ତ ରୂପ—
[ଦୋହୋଲା (ଲେ)ଇବା—ଅନ୍ୟରୂପ]
1. The causative form of Dohalibā
দোলান ୨ । ଝୁଲାଇବା—2. To rock up.
डोलाना ୩ । ଢୁଙ୍କାଇବା—3. To slacken; to loosen.
ବୃକ୍ଷୀ ଭୟ ପାଇଣ ପତ୍ରକାକ ଧର
ଦୋହଲାନ୍ତେ ଉଠିଲେ ସେ ଯେସନ ମୃଗର—କୃଷ୍ଣସିଂହ. ମହାଭାରତ. ବନ ।

୪ । ଇତସ୍ତତଃ ସଞ୍ଚାଳିତ କରିବା—
4. To wave; to move to and fro.
ତେବେ ସେ ମୁଖମଣ୍ଡଳକୁ ଦୋହଲାଇ—କୃଷ୍ଣସିଂହ. ମହାଭାରତ ସଭା ।

ଦୋହଲା ଦୋହଲି—ଦେ. ବ—୧ । ବହୁବାର ଦୋହଲିବା—
Dohalā dohali 1. Repeated oscillation.
(ଦୋହୋଲା ଦୋହୋଲି—ଅନ୍ୟରୂପ) ୨ । ବହୁବାର ଦୋହଲାଇବା—
2. Rocking a thing repeatedly.

ଦୋହଲିବା—ଦେ. କି (ସ. ଦୁଲ୍ ଧାତୁ)—୧ । ହଲିବା—
Dohalibā 1. To oscillate.
(ଦୋହୋଲିବା—ଅନ୍ୟରୂପ) ୨ । ଝୁଲିବା—2. To swing.
দোলা ୩ । ଇତସ୍ତତଃ ଗୃଳିତ ହେବା—
डोलना 3. To move to and fro.
କେଶୀ ନାଚେ ଯଥା ଦୋହଲ ଦୋହଲି—ରାଧାନାଥ. ଦରବାର ।

ଦୋହଳୀ—ସ. ବ. ସ୍ତ୍ରୀ (ଦୋହଳ+ସ୍ୱାର୍ଥେ. ଈ)—ଅଶୋକ ଗଛ—
Dohaḷī Janesia Asoca (tree).
(ଦୋହଲୀ—ଅନ୍ୟରୂପ)

ଦୋହା—ବୈଦେ. ବ (ସ. ଦ୍ୱି)—୧ । ଦୁହା; ହିନ୍ଦୀଭାଷାର ପଦ୍ୟବିଶେଷ
Dohā ଗୀତ—1 Hindustanee doggerel.
দোহা ୨ । ହିନ୍ଦୀ ମାତ୍ରାଛନ୍ଦୋବିଶେଷ—
दोहा 2. A sort of Hindi metre.

[ ଦ୍ର—ଏଥିରେ ଚାରି ଚରଣ ଥାଏ । ଏହାର ପ୍ରଥମ ଦ୍ୱିତୀୟ ଚରଣ ଏକ ଧାଡ଼ିରେ ଓ ତୃତୀୟ ଚତୁର୍ଥ ଚରଣ ଏକ ଧାଡ଼ିରେ ଲେଖାଯାଏ । ଏହାରି ପ୍ରଥମ ଓ ତୃତୀୟ ଚରଣରେ ୧୩ ଲେଖାଏଁ

ମାତ୍ରା ଏବଂ ଦ୍ୱିତୀୟ ଓ ଚତୁର୍ଥ ଚରଣରେ ୧୨ ଲେଖାଏଁ ମାତ୍ରା ଥାଏ । ଦ୍ୱିତୀୟ ଓ ଚତୁର୍ଥ ଚରଣର ଶେଷ ଅକ୍ଷର ମିତ୍ରାକ୍ଷର ହୁଏ । ]

ଦୋହାଇ—ଦେ ବି (ଦ୍ୱି+ଆହ୍ୱାନ)—୧ । ଶପଥ; ରାଣ—
Dohāi 1. Oath.
दोहाई ୨ । ରାଜାଙ୍କର କୌଣସି ଦେବତା ବା ରାଜାଙ୍କ ନାମ ଧରି
दोहाई ସୁବିଚାର ପ୍ରାର୍ଥନା କରିବା—2. A call for justice in the name of a king or Deity; repeatedly invoking the name of God or king for justice.

ଦେଉଅଛି ମୁହିଁ ଦୋହାଇ ତାଙ୍କ ଚକ୍ର ନାମେ—ମଧୁସୂଦନ. କବିତା ।

ଦୋହାପନୟ—ସଂ. ବି ( ଦୋହ+ଅପ+ନୀ ଧାତୁ+କର୍ମ ଅ )—
Dohāpanaya ଦୁଗ୍ଧ (ବ୍ୟ. ଶ.)—Milk.

ଦୋହି—ଦେ ବି—ଦୋହାଇ (ଦେଖ)
Dohi Dohāi (See).

ଇନ୍ଦ୍ରଦ୍ୟୁମ୍ନ ଶୀରେ ହାତେ ଲଥା ଧରି ଡାକଇ କୌତୁକୀ ହୋଇ
କମଠକୁ ଯାଚି, ନ ଆସିଲେ ତତ୍ତୁ ହବ ଗଙ୍ଗେଶ୍ୱର ଦୋହି ।
ରଘୁନାଥ. ପାଳଙ୍ଗ ।

ଦୋହିଁବା—ଦେ. କ୍ରି—ଦୁହିଁବା (ଦେଖ)
Dohiñbā Duhiñbā (See).

ଦୋହିତା—ଗ୍ରା. ବି. ସ୍ତ୍ରୀ (ସଂ. ଦୁହିତା)—ଦୁହିତା (ଦେଖ)
Dohitā Duhitā (See)

ଦୋହିତି—ଗ୍ରା (ପଦ୍ୟ) ବି. ସ୍ତ୍ରୀ (ସଂ. ଦୁହିତା)—ଦୁହିତା (ଦେଖ)
Dohiti Duhitā (See).

ଦ୍ରୁପଦ ପଣ ପଇ ଦ୍ରୁପଦ ଦୋହିତି
ପାଣ୍ଡବେ ଜିଣେ ତକା ଚନ୍ଦ୍ରା ଧରି ମତି—କୃଷ୍ଣସିଂହ. ମହାଭାରତ. ଦ୍ରୋଣ ।

ଦୋହିତ୍ର(ତ୍ରୀ)—ଦେ. ବିଣ (ସଂ. ଦୌହିତ୍ରିକ)—ଦୌହିତ୍ରିକ—
Dohitra(tri)- Inherited by a daughter's son.
दोहित्र दाहित

ଦୋହି ରାଣୀ—ଦେ. ବି—ଦୋଇ ରାଣୀ (ଦେଖ)
Dohi rāṇi Doi rāṇi (See).
[ଦ୍ର—ପରେ ବିବାହିତା ଯେଉଁ ରାଣୀଙ୍କୁ ରାଜା ଖୁବ୍ ଦେଖିପାରନ୍ତି ଓ ସୁଖ ଦିଅନ୍ତି ତାଙ୍କ ନାମ ସୋହି ରାଣୀ । ]

ଦୋହୁଣୀ—ଦେ. ବି ( ସଂ. ଦୋହନ )—ଛନ୍ଦ; ଦୁଷ୍ଟ ନାଡୋଇ ଗାଈକୁ
Dohuṇi ଦୁହିଁବାବେଳେ ତା ପଛ ଗୋଡ଼କୁ ଯେଉଁ ଦଉଡ଼ିରେ ଛନ୍ଦନ୍ତି A cord to the hind legs of a vicious cow while she is being milked.

ଦୋହେଁ—ଦେ. ସର୍ବ—ଦୁହେଁ (ଦେଖ)
Doheñ Duheñ (See).

କାକ ଠକ ଦୋହେଁ ବିନା ନୁଅନ୍ତି ବୈର—ଭକ୍ତ, ରତ୍ନମାଳୀ ।

ଦୋହୋଡ଼ (ଇତ୍ୟାଦି)—ଦୋହଡ଼ ଇତ୍ୟାଦି (ଦେଖ)
Dohorda (etc) Duharda etc (See).

ଦୋହୋଡ଼ା—ପ୍ରାଦେ (ଯାଜପୁର) ବି—ଦୋଓଡ଼ା (ଦେଖ)
Dohordā Do-ordā.(See).

ଦୋହୋରା—ଦେ. ବି—୧ । ଏକପ୍ରକାର ଆନକ ବାଦ୍ୟ—
Dohorā 1. A kind of drum.
୨ । (ସଂ. ଦାବ; ଦବ) ଅଗ୍ନି—2. Fire.

ଦୋହୋରା ମଦରୁ ଅନଳ ଅଣାଇଁ କଲେକ ଶାସନ ।
କଶୀନାଥ. ଚଉଚନ୍ତ୍ରମାପୂର୍ଣ ।

୩ । ଯେଉଁ ଜମିରେ ଗ୍ରାମର ଧୁଆଧୋଇ ପାଣି ପଶେ; ଧୋଓରି—
3 A land where the rain water from a village accummulates.

ଗାଁଅର ଦୋହୋରା ପୋଖରୀ ଭଲ ।
ସ୍ୱାଭୁ ଦେଉଥିବ ଅଗତ କର—କୃଷିବଚନ ।
[ଦ୍ର—ଏ ଜମି ଖୁବ ଉର୍ବରା ହୁଏ । ]

୪ । ଜଳସ୍ରୋତରେ ଯେଉଁ ମାଟିମିଶା ସଢ଼ା, ପତ୍ର, ପତ୍ରଆଦି ଭାସିଯାଏ ଓ ଅନ୍ୟତ୍ର ଜମା ହୁଏ—4. The refuse matters that are carried away by rain water and deposited elsewhere
୪ । (ସଂ. ଦ୍ୱି) ଦ୍ୱିତୀୟବାର—4. Second time.
୫ । ଦୋଓଡ଼ା (ଦେଖ) —Do-ordā (See)

ବିଣ (ସଂ. ଦ୍ୱି)—୧ । ଦ୍ୱିତୀୟ—
1. Second.
दोहारा ୨ । ଅତିରିକ୍ତ—2. Additional
दोहरा (ଯଥା—ଦୋହୋରା ଘର )
୩ । ଦୁଇ ଥର କରାଯିବା—3 Done twice.
୪ । ଦ୍ୱିଗୁଣିତ—4. Double.
୫ । ଦ୍ୱିତୀୟ ଥର କରାଯିବା—
5. Done for the second time.
୬ । ସ୍ଥୂଳକାୟ—6. Fat; corpulent
୭ । ଦୁଇ ଭାଙ୍ଗ କରାଯାଇ ଥିବା—7. Folded double.
ଅ—ଆଉଥରେ; ପୁନର୍ବାର—Once over again.

ବଢ଼ିଛ ଥରେ ଅଙ୍କ ପଢ଼ କି ଦୋହୋରା । ପ୍ରାଚୀ. ବ୍ରହ୍ମନିରୂପଣ ଗୀତା ।

दायरा ବୈଦେ. ବି—ଦୌରା (ଦେଖ)
दौरा Daurā (See)

ଦୋହୋରା(ରେ)ଇବା—ଦେ. କ୍ରି—ଦୋଓଡ଼ାଇବା ( ଦେଖ )
Dohorā(re)ibā Do-orḍāibā ( See )

ଦୋହୋରା ଘର—ଦେ. ବି—ଦୋଘର ( ଦେଖ )—
Dohorā ghara Dogharā ( See )

ଦୋହୋରା ସମ୍ପ୍ରୋଦ—ବୈଦେ. ବି. ( ଆ. ଦୌରାସୁପର୍ଦ )—
Dohorā samproda ଦଉରା ସୁପର୍ଦ ( ଦେଖ )
दायरा सुपर्द Daurā supardda ( See )
दौरा सुपुर्द ମେଜେଷ୍ଟର ସାହେବ ଦୋହୋରା ସମ୍ପ୍ରୋଦ କରିଥିଲେ—

ଦୋହୋରା ସୁପର୍ଦ, ଦୋହୋରା ସମ୍ପର୍ଦ, ଦୋହୋରା ସମ୍ପ୍ର(ମ୍ପ୍ରୋ)ଦ } ଅନ୍ୟରୂପ — ଫକୀରମୋହନ; ଛମାଣ ଅଠଗୁଣ୍ଠ ।

ଦୋହୋରି—ଦେ. ବିଣ. ( ସଂ. ଦ୍ୱିବାର )—ଦ୍ୱିଗୁଣିତ—.
Dohori Doubled; twofold.
दुचान्द, दोहरि ଅ—୧ । ଦୁଇ ଥର—1. Twice.
୨ । ଆଉଥରେ—2. Once over again.
୩ । ଦ୍ୱିତୀୟ ଥର—3. Second time.

ଦୋହୋରି ନଳିଆ—ଦେ. ବିଣ—ଦୁଇଟି ନଳଥିବା ( ବନ୍ଧୁକ )—
Dohori naliā A double-barelled ( gun ).
दुनला दुगाड़ा [illegible] । ୧

ଦୋହୋର ପଇସା—ଦେ. ବ—ଦୋପଇସି ( ଦେଖ )
Dohori paisā Dopaisi ( See )
ଖାଲି ମକୁଆ ଫେର୍ ଫାର୍, ଦୋହର ପଇସା ଅଣ୍ଟାରେ ମାର—ଢଗ ।

ଦୋହୋଲବେଇ—ଦେ. ବ. ଓ ବଣ—ଦୋବେଇ ( ଦେଖ )
Dohoḷabei Dobei ( See )

ଦୋହୋଲା ( ଇତ୍ୟାଦି ) ଦୋହଲା ଇତ୍ୟାଦି ( ଦେଖ )
Doholā ( etc ) Dohalā etc ( See )

ଦୋହ୍ୟ—ସଂ. ବଣ ( ଦୁହ୍ ଧାତୁ+କର୍ମ. ଯ )—୧ । ଦୋହନଯୋଗ୍ୟ
Dohya 1 Fit to be milked.
୨ । ଯେଉଁ ଜୀବଙ୍କଠାରୁ ଦୁଧ ଦୁହାଁ ଯାଏ ( ଯଥା—ଗାଈ; ମଇଁଷି, ଛେଳି )—2. Milked; giving milk.
୩ । ଯେଉଁ ବ୍ୟକ୍ତିଠାରୁ ଧନ ଆଦି ଜବରଦସ୍ତି ଗ୍ରହଣ କରାଯାଏ—3 (a person) From whom money is extorted.
( ଦୋହ୍ୟା—ସ୍ତ୍ରୀ ) ସଂ. ବ—୧ । ଦୁଗ୍ଧ ( ହି. ଶବ୍ଦସାଗର )—
1. Milk

ଦୌକୂଳ—ସଂ. ବଣ. ( ଦୁକୂଳ+ସମ୍ବନ୍ଧାର୍ଥେ. ଅ )—ରେସମୀ ବସ୍ତ୍ର ଦ୍ୱାରା ଆବୃତ ( ରଥାଦି )—Covered with silk cloth
Daukūla

ଦୌଖେବାର୍—ବିଦେ. ( ରୁଷ୍ ଭାଷା )—ରୁଷିଆର ଅଧିବାସୀ ଜାତି-ବିଶେଷ—The Daukhebars; a class of people of Russia.
Daukhebār
[ଦ୍ର—ଏମାନେ ଅଷ୍ଟାଦଶ ଶତାବ୍ଦୀରେ ଯୁଦ୍ଧ କରିବାକୁ ଅସ୍ୱୀକାର କରିବାରୁ ରୁଷିଆ ଗଭର୍ଣ୍ଣମେଣ୍ଟ ରାଜ୍ୟରୁ ସାତ ହଜାର ଲୋକଙ୍କୁ ତଡ଼ି ଦେଇଥିଲେ । ସେଠାରୁ ଯାଇ ଏମାନେ ଉତ୍ତର ଆମେରିକା କାନେଡ଼ା ରାଜ୍ୟର ନେଲ୍ସନ୍ ସହରର ୬୦ ମାଇଲ ପୂର୍ବରେ ଉପନିବେଶ ସ୍ଥାପନ କଲେ । ଏମାନଙ୍କ ବଂଶଧରମାନେ ସେଠାରେ ଅଛନ୍ତି । ଏମାନେ ଲଙ୍ଗଳା ବହନ୍ତି; ଆମିଷ ଭକ୍ଷଣ କରନ୍ତି ନାହିଁ ଓ ଲୋମବସ୍ତ୍ର ପିନ୍ଧନ୍ତି ନାହିଁ । ଏମାନେ ରୁଷିୟ ସମ୍ବାଦିକ ଓ ଲେଖକ କାଉଣ୍ଟ ଟଲଷ୍ଟୟ ( Count Tolstoy ) ଙ୍କ ମତାବଲମ୍ବୀ ଓ ଏକେଶ୍ୱରବାଦୀ, ଏମାନେ ଶାସନତନ୍ତ୍ରକୁ ମାନନ୍ତି ନାହିଁ ଓ ସରକାରଙ୍କୁ ଖଜଣା ଦିଅନ୍ତି ନାହିଁ । ଏମାନେ ଅଳ୍ପାହାରୀ ଓ ଭୂମିଶାୟୀ । ଏମାନେ ରୁଷ୍ଭାଷା ବ୍ୟବହାର କରନ୍ତି । ]

ଦୌଡ଼ (ଇତ୍ୟାଦି)—ଦଉଡ଼ ଇତ୍ୟାଦି (ଦେଖ)
Daurda (etc) Daurda etc (See)

ଦୌଡ଼ା (ଇତ୍ୟାଦି)—ଦଉଡ଼ା ଇତ୍ୟାଦି (ଦେଖ)
Daurdā (etc) Daurdā etc (See)

ଦୌଡ଼ି (ଇତ୍ୟାଦି)—ଦଉଡ଼ି (ଇତ୍ୟାଦି) (ଦେଖ)
Daurdi (etc) Daurdi etc (See)

ଦୌତ୍ୟ—ସ. ବ (ଦୂତ+ଭାବେ. ଯ)—୧ । ଦୂତଙ୍କ କର୍ମ ବା ଚାକିରି —
Dautya 1 The service or post of an ambassador or messenger.
୨ । ମଧ୍ୟସ୍ଥତା—2. Umpireship; intermediation.

ଦୌବାରିକ—ସ. ବ. ପୁଂ (ଦ୍ୱାର+କାର୍ଯ୍ୟାର୍ଥେ. ଇକ, କପାଳନ) —
Daubārika ୧ । ଦ୍ୱାରୀ—1. A door keeper; porter
(ଦୌବାରିକା—ସ୍ତ୍ରୀ) ୨ । ଦ୍ୱାରପାଳ—2. A guard at the gate.

ଦୌରା (ଇତ୍ୟାଦି)—ଦଉରା (ଇତ୍ୟାଦି) ( ଦେଖ )
Daurā (etc) Daurā etc (See)

ଦୌରାତ୍ମ୍ୟ—ସ. ବ (ଦୁରାତ୍ମନ୍+ଭାବେ. ଯ)—୧ । ଅତ୍ୟାଚାର—
Daurātmya 1. Oppression
୨ । ଉପଦ୍ରବ—2. Outrage.
୩ । ଜୁଲମ୍; ଅନ୍ୟାଯ୍ୟ ବଳପ୍ରୟୋଗ—
3. Violence; illegal use of force.
୪ । ନିଷ୍ଠୁରତା—4. Cruelty.

ଦୌରିତ—ସ. ବ (ଦୁରିତ+ଅ)—କ୍ଷତି; ହାନି ( ହି. ଶବ୍ଦସାଗର )—
Daurita Injury; loss.

ଦୌର୍ଗ—ସ. ବଣ—୧ । (ଦୁର୍ଗ+ଅ) ଦୁର୍ଗ ସମ୍ବନ୍ଧୀୟ—
Daurga 1 Relating to a fort
୨ । (ଦୁର୍ଗା+ଅ) ଦୁର୍ଗା ସମ୍ବନ୍ଧୀୟ—
2. Relating to Durgā.

ଦୌର୍ଗତ୍ୟ—ସ. ବ (ଦୁର୍ଗତି+ଭାବ. ଯ) —୧ । ଦାରିଦ୍ର୍ୟ —
Daurgatya 1. Poverty; wretchedness.
୨ । ଦୁରବସ୍ଥା—2. Misery.
୩ । ମଳିନତା—3 Dirtiness.

ଦୌର୍ଗନ୍ଧ୍ୟ—ସ. ବ (ଦୁର୍ଗନ୍ଧ+ଭାବ. ଯ)—ଦୁର୍ଗନ୍ଧ ଯୁକ୍ତତା—
Daurgandhya Foetidness.

ଦୌର୍ଜ୍ଜନ୍ୟ—ସ ବ (ଦୁର୍ଜ୍ଜନ+ଭାବେ. ଯ)—୧ । ଦୁର୍ଜନତା; କ୍ରୂରତା—
Daurjjanya 1. Wickedness.
(ଦୌର୍ଜନ୍ୟ—ଅନ୍ୟରୂପ) ୨ । ଦୁର୍ବ୍ୟବହାର —
2. Vile treatment.

ଦୌର୍ବ୍ବଲ୍ୟ—ସ. ବ (ଦୁର୍ବଲ+ଭାବେ. ଯ)—୧ । ଦୁର୍ବଳତା—
Daurbbalya 1. Weakness.
(ଦୌର୍ବଲ୍ୟ—ଅନ୍ୟରୂପ) ୨ । କ୍ଷୀଣତା—2. Slenderness, emaciation.
(ଯଥା—ଧାତୁ ଦୌର୍ବ୍ବଲ୍ୟ ।)

ଦୌର୍ଭାଗିନେୟ—ସ. ବ. ପୁଂ (ଦୁର୍ଭଗା+ଅପତ୍ୟାର୍ଥେ ଏୟ; କପାଳନ)—
Daurbhāgineya ଭାଗ୍ୟହୀନା ବା ସ୍ୱାମିପରିତ୍ୟକ୍ତା ସ୍ତ୍ରୀର ସନ୍ତାନ—
(ଦୌର୍ଭାଗିନେୟୀ—ସ୍ତ୍ରୀ) The son of an unfortunate
(ସୌଭାଗିନେୟ—ବିପରୀତ) or deserted woman.

ଦୌର୍ଭାଗ୍ୟ—ସ. ବ ( ଦୁର୍ଭଗ+ଭାବେ ଯ )—ଦୁର୍ଭାଗ୍ୟ; ମନ୍ଦଭାଗ୍ୟ —
Daurbhāgya Misfortune; bad luck.

ଦୌର୍ମନସ୍ୟ—ସ. ବ ( ଦୁର୍ମନସ୍+ଭାବେ. ଯ )—
Daurmanasya ୧ । ଉଦ୍‌ବେଗ—1. Anxiety;
(ସୌମନସ୍ୟ—ବିପରୀତ) ୨ । ଦୁଶ୍ଚିନ୍ତା; ଦୁର୍ଭାବନା—2. Evil thought.
୩ । ଦୁଃଖ ଜନକ ଚିତ୍ତର ଅବସାଦ—
3 Dejected spirit.

୪ । ଦୁଃଖ—4. Grief.

ଦୌର୍ଯ୍ୟ—ସ. ବି. ( ଦୂର + ଭାବ. ଯ )—
Daurjya ଦୂରତ୍ୱ (ହି. ଶବ୍ଦସାଗର)—Distance.

ଦୌର୍ଯ୍ୟୋଧନି—ସ. ବି. (ଦୁର୍ଯ୍ୟୋଧନ + ଗୋତ୍ରସଂଭୂତାର୍ଥେ. ଇ)—
Daurjyodhani ଦୁର୍ଯ୍ୟୋଧନଙ୍କ ଗୋତ୍ରରେ ଉତ୍ପନ୍ନ ବ୍ୟକ୍ତି—
A person born in the family of Durjyodhana.

ଦୌର୍ହାର୍ଦ୍ଦ—ସଂ ବି. ( ଦୁର୍ହୃଦ+ଭାବ. ଅ )—
Daurhārda ୧ । ବୈର—1. Enmity.
(ଦୌର୍ହୃଦଯ୍ୟ—ଅନ୍ୟରୂପ) ୨ । ଦୁଷ୍ଟ ସ୍ୱଭାବ—
2. Wicked disposition.

ଦୌର୍ହୃଦ—ସଂ. ବି. ( ଦ୍ୱି + ହୃଦ୍=ଅନ୍ତଃକରଣ+ଅ; ନିପାତନ )—
Daurhṛuda ଦୋହଦ; ଗର୍ଭିଣୀର ବିଶିଷ୍ଟ ବସ୍ତୁରେ ସ୍ପୃହା—
(ଦୌହୃଦ—ଅନ୍ୟରୂପ) 1. The longing of a pregnant woman.
୨ । ଗର୍ଭଧାରଣ—2. Pregnancy (Apte).
୩ । ଗର୍ଭ—3. Womb (Apte).
୪ । ଭ୍ରୂଣ—4. Embryo.
୫ । (ଦୁର୍ହୃଦ+ଅ) ଦୁଷ୍ଟ ସ୍ୱଭାବ—
5. Evil disposition of mind (Apte).

ଦୌଲତ—ବୈଦେ ବି. (ଆ)—୧ । ଐଶ୍ୱର୍ଯ୍ୟ; ଧନ ସମ୍ପତ୍ତି—
Daulata 1. Riches.
দৌলত ୨ । ଅଚଳାଚଳ ସମ୍ପତ୍ତି—
दौलत 2. Affluence; prosperity.

ମୁଁ କେବଳ ମୋ ନାମ ଲେଖି ଜାଣେ, ଏତେ ଦୌଲତ କମାଇଲି ।
ଫକୀରମୋହନ. ଛମାଣ, ଆଠଗୁଣ୍ଠ ।

୩ । ଆଡ଼ମ୍ବର; ଜାଁକଜମକ—3. Grandeur.

[ ଦ୍ର—ଏହା ଧନ ଶବ୍ଦ ସଙ୍ଗେ ସହଚର ରୂପେ ବ୍ୟବହୃତ ହୁଏ, ଯଥା—ଧନ ଦୌଲତ=ଟଙ୍କା ଠୋକର: ବିଷୟ ସମ୍ପତ୍ତି । ]

ଦୌଲତ ଖାନା—ବୈଦେ ବି. (ଫା)—୧ । ଧନୀର ଅଟ୍ଟାଳିକା—
Daulata khānā 1. A rich man's palace.
দৌলতখানা ୨ । ଧନୀର ଧନାଗାର—
दौलतखाना 2. The treasury of a rich man.
୩ । ବାସଗୃହ—3. Residence.

ଦୌଲତଦାର୍—ବୈଦେ. ବିଣ. (ଫା. ଦୌଲତ୍ମନ୍ଦ୍)—ଐଶ୍ୱର୍ଯ୍ୟଶାଳୀ—
Daulatadār Very rich; wealthy; prosperous.
(ଦୌଲତବନ୍ତ, ଦୌଲତମନ୍ତ—ଅନ୍ୟରୂପ)
(ଦୌଲତଦାରୀ, ଦୌଲତବନ୍ତି—ବି)
দৌলতবন্ত दौलतमंद

ଦୌଲତି—ବୈଦେ. ବିଣ. (ଫା)—ଦୌଲତଦାର୍ (ଦେଖ)
Daulati Daulatadār (See)
(ଦୌଲତିଆ—ଅନ୍ୟରୂପ)

ଦୌଲେୟ—ସ. ବି. (ଦୁଲୀ=କଚ୍ଛପୀ + ଅପତ୍ୟାର୍ଥେ ଏୟ)—
Dauleya କଚ୍ଛପ; କଇଁଛ—Tortoise.

ଦୌଷ୍କୁଲେୟ—ସ. ବିଣ ପୁଂ. (ଦୁଷ୍କୁଲ + ଅପତ୍ୟାର୍ଥେ ଏୟ)—
Daushkuleya ନୀଚକୁଳ ଜାତ—Base-born; born of a low family.
(ଦୌଷ୍କୁଲେୟୀ—ସ୍ତ୍ରୀ)

ଦୌଶ୍ଚର୍ମ୍ୟ—ସ. ବି. (ଦୁଶ୍ଚର୍ମନ୍ + ଭାବାର୍ଥେ ଯ)—
Dauscharmya ଦୁଶ୍ଚର୍ମୀ ହେବାର ଅବସ୍ଥା (ହି. ଶବ୍ଦସାଗର)
ପୁରୁଷର ଲିଙ୍ଗାବରକ ଚର୍ମ ନ ଥିବା ଅବସ୍ଥା—
The state of a male being devoid of the foreskin.

ଦୌଷ୍ମନ୍ତ(ନ୍ତି)—ସ. ବି. (ଦୁଷ୍ମନ୍ତ + ଅପତ୍ୟାର୍ଥେ ଅ; ଇ)—
Daushmanta(nti) ୧ । ରାଜା ଦୁଷ୍ମନ୍ତଙ୍କ ପୁତ୍ର—
1 Son of king Dushmanta.
୨ । ଦୁଷ୍ମନ୍ତଙ୍କ କୁଳଜାତ—
2. Born in the family of Dushmanta.

ଦୌହିତ୍ର—ସ. ବି ପୁଂ (ଦୁହିତୃ + ଅପତ୍ୟାର୍ଥେ. ଅ)—
Dauhitra ୧ । ଝିଅର ପୁଅ, ନାତି—
(ଦୋହିତ୍ରୀ—ସ୍ତ୍ରୀ) 1. Daughter's son.
୨ । ଖଡ୍ଗ (ହି. ଶବ୍ଦସାଗର)—2. Sword.
୩ । ତିଳ (ହି. ଶବ୍ଦସାଗର)—3. Sessamum.
୪ । ଗୁଆଘିଅ; ଗବ୍ୟଘୃତ (ହି. ଶବ୍ଦସାଗର)—
4. Ghee from cow's milk.

ଦୌହିତ୍ରିକ—ସ. ବିଣ. (ଦୌହିତ୍ର+ଇକ)—୧ । ଯେଉଁ ସମ୍ପତ୍ତିକୁ ମୃତ
Dauhitrika ବ୍ୟକ୍ତିର ଦୌହିତ୍ର ଭୋଗ କରେ—
1. (property) Inherited by a daughter's son.
୨ । (ଦୁହିତୃ+ଇକ) ଯେଉଁ ସମ୍ପତ୍ତିକୁ ଅପୁତ୍ରକ ବ୍ୟକ୍ତିର କନ୍ୟା ଉତ୍ତରାଧିକାରିଣୀ ରୂପେ ପାଏ—
2. (property) Inherited by the daughter of a sonless deceased.
୩ । ଦୌହିତ୍ର ସମ୍ବନ୍ଧୀୟ—
3. Relating to the daughter's son.

ଦୌହିତ୍ରୀ—ଦେ ବିଣ ( ସ· ଦୌହିତ୍ରିକ )—
Dauhitrī ୧ । ଦୌହିତ୍ରିକ ୧ ( ଦେଖ )
দৌহিত্রী 1. Dauhitrika 1 ( See )
दौहित्र ସ. ବି. ସ୍ତ୍ରୀ—୨ । ଝିଅର ଝିଅ; ନାତୁଣୀ—
2. Daughter's daughter.

[ଦ୍ର—ହିନ୍ଦୁ ଶାସ୍ତ୍ର ଅନୁସାରେ ଅପୁତ୍ରକ ବ୍ୟକ୍ତିର ତ୍ୟକ୍ତ ସମ୍ପତ୍ତି ତାହାର କନ୍ୟା ଓ କନ୍ୟାର ପୁତ୍ରମାନେ ଉତ୍ତରାଧିକାରୀରୂପେ ପ୍ରାପ୍ତ ହୁଅନ୍ତି । ]

ଦୌହୃଦିନୀ—ସ. ବି. ସ୍ତ୍ରୀ. ( ଦ୍ୱି + ହୃଦ+ଇନ୍ + ଈ )—
Dauhṛudinī ଗର୍ଭବତୀ ସ୍ତ୍ରୀ ( ହି ଶବ୍ଦସାଗର )—
A pregnant woman.

ଦ୍ୱଇତ—ଗ୍ରା. (ପଦ୍ୟ) ବିଣ—ଦ୍ୱୈତ ( ଦେଖ )
Dwaita Dwaita ( See )

ତେବେ ଦ୍ୱଇତ ସବ ଯାଉ
ଗୋବିନ୍ଦ ଚର୍ଣ୍ଣନ ଅଙ୍କ ବାହିଁ । ଜଗନ୍ନାଥ ସ୍ୱ...

**ଦ୍ୱଇତ ବନ**—ଗ୍ରା. (ପଦ୍ୟ) ବି—ଦ୍ୱୈତ ବନ ( ଦେଖ )
Dwaita bana — Dwaita bana ( See )

ସେଠାରେ ଏକାଦଶ ବର୍ଷ ବର୍ଦ୍ଧ ଶେଷ
ଦ୍ୱଇତ ବନେ ଅଣି ହେଲେ ପରବେଶ । କୃଷ୍ଣସିଂହ, ମହାଭାରତ, ବନ ।

**ଦ୍ୱଇଧ**—ଗ୍ରା. (ପଦ୍ୟ) ବି—ଦ୍ୱୈଧ ( ଦେଖ )
Dwaidha — Dwaidha ( See )

ବସ୍ତ୍ରହ ସନ୍ଧି ଯାନ ଆସନ ଦ୍ୱଇଧ ।
କୃଷ୍ଣସିଂହ, ମହାଭାରତ ବନ ।

**ଦ୍ୱଇମାତୁର**—ଗ୍ରା. (ପଦ୍ୟ) ବି ଓ ବିଣ—ଦ୍ୱୈମାତୁର ( ଦେଖ )
Dwaimātura — Dwaimātura ( See )

ସ୍ମୃତ ଦ୍ୱଇମାତୁରେ କଥିତ ମୁନ୍ତ୍ରୀ ଚତୁରେ
କଥ ବଚ୍ଛେଦ ଉତ୍ପୁରେ ସତ୍ ଆତୁରେ । ଉକ୍ତ. ପ୍ରେମସୁଧାନିଧି ।

**ଦ୍ୱଇରଥ ଯୁଦ୍ଧ**—ଗ୍ରା. (ପଦ୍ୟ) ବି—ଦ୍ୱୈରଥ ଯୁଦ୍ଧ ( ଦେଖ )
Dwairatha juddha — Dwairatha juddha ( See )

ଲୋକଙ୍କୁ ମରାଇଲେ କିଛ କାର୍ଯ୍ୟ ନାହିଁ
କରିବା ଦ୍ୱଇରଥ ଯୁଦ୍ଧ ସ୍ୱଜା ପାଇଁ । କୃଷ୍ଣସିଂହ, ମହାଭାରତ ବନ ।

**ଦ୍ୱନ୍ଦ**—ସଂ. ବି. ( ଦ୍ୱି+ଦ୍ୱି, ସହାୟବ୍ୟକ୍ତି; ନିପାତନ )—
Dwanda ୧ । ଦ୍ୱନ୍ଦ୍ୱ ( ଦେଖ )—1. Dwandwa (See)

କୋଧ ଦ୍ୱନ୍ଦ ସେକ୍ଷଣି ଦେଲେ ସେ ତଡାଇ ।
କୃଷ୍ଣସିଂହ, ମହାଭାରତ, ବନ ।

୨ । ସମୟ ଜାଣିବା ପାଇଁ ବାଡ଼ିଆ ଯିବା ଘଣ୍ଟା—
2. A gong on which hours are struck.

[ ଦ୍ୱ—ଅପ୍ରେ ଓ ହି. ଶବ୍ଦସାଗର ମତରେ ଏହା ସଂସ୍କୃତ ଶବ୍ଦ । ]

**ଦ୍ୱନ୍ଦବାଦ**—ଦେ. ବି—କଳହ; ଶତ୍ରୁତା—Quarrel; enmity.
Dwandabāda

ଦ୍ୱନ୍ଦ୍ୱବାଦ କରଣ ଅଦ୍ଭୁତ ଗଣଠାରେ । ପ୍ରାଚୀ. ଶ୍ରୀଗୁରୁଭକ୍ତି. ଗୀତ ।

**ଦ୍ୱନ୍ଦିବା**—ଦେ. କ୍ରି. ( ସଂ. ଦ୍ୱନ୍ଦ )—ବିବାଦ କରିବା—
Dwandibā — To dispute.

**ଦ୍ଵନ୍ଦକରା** ମହାବାହୁ ଯଥା—ଅମା-ସୌମ୍ୟ-ସ୍ୱାତ ଯୋଗେ ବନ୍ଧିଷ୍ଣୁ ଦ୍ୱନ୍ଦ
**ଦ୍ଵନ୍ଦ୍ଵ କଲୋ** ଥାଏଁ ବଶ ଧ୍ୱଂସିବାକୁ । ରାଧାନାଥ. ମହାଯାତ୍ରା ।

**ଦ୍ୱନ୍ଦୀୟ**—ସଂ. ବିଣ—ବିବାଦୀୟ—
Dwandiya — Disputed.
(ଦ୍ୱନ୍ଦ୍ୱୀୟ—ଅନ୍ୟରୂପ )

**ଦ୍ୱନ୍ଦ୍ୱ**—ସଂ. ବି ( ଦ୍ୱି+ଦ୍ୱି; ସହାୟବ୍ୟକ୍ତି; ଦ୍ୱୌ+ଦ୍ୱୌ ( Apte ନିପାତନ )—
Dwandwa

୧ । ସ୍ତ୍ରୀ ପୁରୁଷ; ମିଥୁନ; ଯୁଗଳ; ମାଈ ଅଣ୍ଡିରା; ଯୋଡ଼ା—
1. Husband and wife; a couple; a brace; a male and female together.

୨ । ଯୁଗ୍ମ; ଦ୍ୱୟ—2. Any two things taken together; a pair.

୩ । ସୁଖ ଦୁଃଖ, ରାଗ ଦ୍ୱେଷ ଆଦି ପରସ୍ପରବିରୁଦ୍ଧ ଭାବ-ଦ୍ୱୟ—3. Two opposite feelings or sensations.

୪ । ପରସ୍ପରବିରୁଦ୍ଧ ବସ୍ତୁ ବା ଗୁଣ ବା ଶବ୍ଦଦ୍ୱୟ—
4. Relative or contradictory terms, things or qualities.

( ଯଥା—ପାପପୁଣ୍ୟ, ରାଜାପ୍ରଜା, ବାଳବୃଦ୍ଧ, ଶତ୍ରୁମିତ୍ର, କଠିନତା କୋମଳତା, ସୁଖ ଦୁଃଖ, ସ୍ତ୍ରୀ ପୁରୁଷ ଇତ୍ୟାଦି । ]

୫ । ବିବାଦ—5. Strife; dispute

୬ । ଯୁଦ୍ଧ—6. Fight.

ବନତା ନନ୍ଦନଦ୍ୱନ୍ଦ୍ୱ ଦ୍ୱନ୍ଦ୍ୱ କଲା ପ୍ରାୟେ । ଉକ୍ତ. ବୈଦେହୀଶବିଳାସ ।

୭ । ଦ୍ୱନ୍ଦ୍ୱ ଯୁଦ୍ଧ; ଦୁଇ ଜଣଙ୍କ ମଧ୍ୟରେ ହେବା ଯୁଦ୍ଧ—
7 Duel.

୮ । କଳହ—8. Quarrel.

୯ । ରହସ୍ୟ—9 Mystery; secret.

୧୦ । ଦୁଇଟି ବିଶେଷ୍ୟ ପଦର ଏକତ୍ର ମିଳନରୂପ ସମାସ ( ଏ ସମାସରେ ଉଭୟ ପଦର ଅର୍ଥର ପ୍ରାଧାନ୍ୟ ରହେ )—
10. A grammatical compound word consisting of two gramatically similar nouns joined together by the copulative conjunction 'and'

୧୧ । ରୋଗବିଶେଷ—11. A kind of disease.

୧୨ । ସନ୍ଦେହ—12. Doubt

୧୩ । ଦୁର୍ଗ—13. Fortress; stronghold.

୧୪ । ମିଥୁନ ରାଶି—
14 The sign Gemini of the zodiac.

**ଦ୍ୱନ୍ଦ୍ୱଚର**—ସଂ. ବି. ( ଦ୍ୱନ୍ଦ୍ୱ=ସ୍ତ୍ରୀ ପୁରୁଷ ଯୋଡ଼ା+ଚର୍ ଧାତୁ+ଅ; Dwandwachara ଯେ ଯୋଡ଼ା ଯୋଡ଼ା ହୋଇ ବିଚରଣ କରନ୍ତି)—
ଚକ୍ରବାକ ମିଥୁନ; ଚକୁଆ ଚକେଇ—The Ruddy Goose ( which always live and move about in couples ); Anas Casarea.

ବିଣ—ଯେ ଯୋଡ଼ା ଯୋଡ଼ା ହୋଇ ବୁଲନ୍ତି—
Living and moving about in couples or pairs.

**ଦ୍ୱନ୍ଦ୍ୱଚାରୀ**—ସଂ. ବି ଓ ବିଣ—ଦ୍ୱନ୍ଦ୍ୱଚର ( ଦେଖ )
Dwandwachāri — Dwandwachara ( See )

**ଦ୍ୱନ୍ଦ୍ୱଜ**—ସଂ. ବିଣ ( ଦ୍ୱନ୍ଦ୍ୱ+ଜନ୍ ଧାତୁ+କର୍ତ୍ତୃ. ଅ )—୧ । ସ୍ତ୍ରୀ ପୁରୁଷ Dwandwaja ଉଭୟଙ୍କଠାରୁ ଜାତ—1. Born of a couple.

୨ । ବିବାଦରୁ ଉତ୍ପନ୍ନ—2. Produced from a quarrel; resulting from a dispute.

(ଦ୍ୱନ୍ଦ୍ୱଜାତ—ଅନ୍ୟରୂପ) ୩ । ସ୍ତ୍ରୀ ପୁରୁଷ ଉଭୟଙ୍କ ଦୋଷରୁ ଜାତ (ବ୍ୟାଧି)—3. (disease) Resulting from the faults of both the husband and the wife.

୪ । ବାତ, ପିତ୍ତ ଓ କଫ ମଧ୍ୟରୁ ଦୁଇଟି ଧାତୁର ପ୍ରକୋପରୁ ଉତ୍ପନ୍ନ (ବ୍ୟାଧି)—4. ( disease ) Due to the morbidity or derangement of two of the bodily humours

**ଦ୍ୱନ୍ଦ୍ୱଭାବ**—ସଂ. ବି—ଶତ୍ରୁତା; ବିରୋଧ—
Dwandwa bhāba — Antagonism; discord.

**ଦ୍ୱନ୍ଦ୍ୱଭିନ୍ନ**—ସଂ. ବି—ସ୍ତ୍ରୀ ପୁରୁଷ ଅଲଗା ଅଲଗା ହେବା—
Dwanda vinna — Separation of the sexes (Apte).

**ଦ୍ୱନ୍ଦ୍ୱଭୂତ**—ସଂ. ବିଣ—୧ । ସ୍ତ୍ରୀ ପୁରୁଷ ଯୋଡ଼ା ହୋଇଥିବା—
Dwandwa bhūta — 1. Forming a couple.

୨ । ସନ୍ଦେହଜନକ—
2. Doubtful; uncertain (Apte).

ଦ୍ୱନ୍ଦ୍ୱମୋହ—ସଂ. ବି ( ମଧ୍ୟପଦଲୋପୀ; ଦ୍ୱନ୍ଦ୍ୱଜନକ ମୋହ ) —ସନ୍ଦେହରୁ
Dwandwa moha ଜାତ କଷ୍ଟ—Trouble caused by doubt (Apte)

ଦ୍ୱନ୍ଦ୍ୱଯୁଦ୍ଧ—ସଂ. ବି—ଦୁଇଜଣଙ୍କ ମଧ୍ୟରେ ଯୁଦ୍ଧ—
Dwandwa juddha Duel; single combat
ଏରୂପେ ଶତ ସଂଖ୍ୟ ମହାରଥଗଣ
ଦ୍ୱନ୍ଦ୍ୱଯୁଦ୍ଧ ଆରମ୍ଭ କଲେ ନରଗଣ । କୃଷ୍ଣସିଂହ. ମହାଭାରତ. ଭୀଷ୍ମ ।

ଦ୍ୱନ୍ଦ୍ୱଶଃ—ସଂ. ଅ (ଦ୍ୱନ୍ଦ୍ୱ+ଶସ୍)—ଯୋଡ଼ା ଯୋଡ଼ା ହୋଇ—
Dwandwaśah Two by two; in pairs or couples.

ଦ୍ୱନ୍ଦ୍ୱୀ—ସଂ. ବିଣ.ପୁଂ(ସଂ. ଦ୍ୱନ୍ଦ୍ୱ+ଇନ୍; ୧ମା.୧ବ)—୧।ପରସ୍ପର ବିରୁଦ୍ଧ—
Dwandwi 1 Opposed to one another; contradictory
୨ । କଳହପ୍ରିୟ—2 Quarrelsome; contentions.
(ଦ୍ୱନ୍ଦ୍ୱିନୀ—ସ୍ତ୍ରୀ) ୩ । ବିବାଦୀ—3. Disputant.
ଦ୍ୱନ୍ଦ୍ୱୀ ଅଟଇ ମୋର ଚକ୍ଷୁ ଯୁଗଳ—ଯଥାକାଥ, ମେଘଦୂତ ।
୪ । ମାମଲାବାଜ୍—4 Litigious.

ଦ୍ୱନ୍ଦ୍ୱୀଭୂତ—ସଂ. ବିଣ (ଦ୍ୱନ୍ଦ୍ୱ+ଅଭୂତ ତଦ୍ଭାବେ ଚ୍ୱି+ଭୂତ)—
Dwandibhūta ୧ । ଯେ ଦ୍ୱନ୍ଦ୍ୱଯୁଦ୍ଧରେ ଲାଗିଥାଏ—Engaged in a single combat or duel (Apte).
(ଦ୍ୱନ୍ଦୀଭୂତ—ଅନ୍ୟରୂପ)

ଦ୍ୱୟ—ସଂ. ବି (ଦ୍ୱି+ଅବୟବାର୍ଥେ. ଅୟ)—୧ । ଦୁଇ ସଂଖ୍ୟା
Dwaya 1. Two.
୨ । ଯୋଡ଼ା; ଯୁଗ୍ମ—2. Pair; couple; brace.
୩ । ଉଭୟ—3. Both.
୪ । ଦୋନାକୁହିଆ ସ୍ୱଭାବ—4. Duplicity (Apte).
୫ । ଅସତ୍ୟତା—5. Untruthfulness (Apte).
୬ । (ବ୍ୟାକରଣ) ପୁଂଲିଙ୍ଗ ଓ ସ୍ତ୍ରୀଲିଙ୍ଗ—
6. The masculine and the feminine gender in grammar.
[ ଦ୍ୱୟ—ଏହା ଅନ୍ୟ ଶବ୍ଦ ପରେ ଉଭୟ ବା ଦୁଇ ଅର୍ଥରେ ବ୍ୟବହୃତ ହୁଏ ଯଥା—ଭ୍ରାତୃଦ୍ୱୟ; ପଦଦ୍ୱୟ; ଚକ୍ଷୁଦ୍ୱୟ ଇତ୍ୟାଦି । ]
(ଦ୍ୱୟୀ—ସ୍ତ୍ରୀ) ବିଣ—୧ । ଦ୍ୱିତୀୟ—1. Second.
୨ । ଦୁଇ ସଂଖ୍ୟକ—2. Numbering two.

ଦ୍ୱୟବାଦୀ—ସଂ. ବିଣ. ପୁଂ ( ଦ୍ୱୟ+ବାଦନ୍; ୧ମା. ୧ବ. )—ଅସରଳ;
Dwayabādi ୧ । ଦୋମୁହାଁ—1. Double-tongued; insincere.
(ଦ୍ୱୟବାଦିନୀ—ସ୍ତ୍ରୀ)
(ଦ୍ୱୟବାଦିତା—ବି) ୨ । ଦୋହଲପୀ (ଦେଖ)
2. Dohalapi (See)

ଦ୍ୱୟାତିଗ—ସଂ. ବିଣ. ପୁଂ. ( ଦ୍ୱୟ+ଅତି+ଗମ୍ ଧାତୁ+କର୍ତ୍ତୃ. ଅ)—
Dwayātiga ୧ । ରଜଃ ଓ ତମଃ ଗୁଣଙ୍କୁ ଯେ ଅତିକ୍ରମ କରି ଅଛି—
(ଦ୍ୱୟାତିଗା—ସ୍ତ୍ରୀ) 1. One whose mind is freed from the influence of the two gross worldly attributes, Rajas and Tamas.
୨ । ସାଧୁ—2. Saintly; virtuous.

ଦ୍ୱୟାତ୍ମକ—ସଂ. ବିଣ. (ଦ୍ୱୟ+ଆତ୍ମନ୍+କ)—ଦୁଇ ବିରୁଦ୍ଧ ଗୁଣଯୁକ୍ତ—
Dwayātmaka Of a twofold nature; comprising two opposite attributes.
(ଦ୍ୱୟାତ୍ମିକା—ସ୍ତ୍ରୀ)

ଦ୍ୱୟହୀନ—ସଂ. ବି.—(ବ୍ୟାକରଣ) କ୍ଳୀବଲିଙ୍ଗ—
Dwaya hina (grammar) The neuter gender.

ଦ୍ୱୟୀ—ସଂ. ବି. ଓ ବିଣ—ଦ୍ୱୟ (ଦେଖ)
Dwayi Dwaya (See)

ଦ୍ୱାଃ—ସଂ. ବି.ସ୍ତ୍ରୀ [ଦ୍ୱୃ ଧାତୁ+ଣିଚ+ଅଚ୍—(Apte)=ଦ୍ୱାର୍ ଶବ୍ଦ; ୧ମା. ୧ବ.)—୧ । ଦ୍ୱାର—1 Door; gateway
Dwāḥ
୨ । ପଥ; ପ୍ରବେଶ ପଥ—2. Entrance; ingress.
୩ । ଉପାୟ—3. Means; expedient.

ଦ୍ୱାଃସ୍ଥ—ସଂ. ବିଣ. ପୁଂ. (ଦ୍ୱାଃ=ଦ୍ୱାର+ସ୍ଥା ଧାତୁ+ଅ)—ଦ୍ୱାରସ୍ଥ—
Dwāḥstha Situated at the door; posted at the door.
(ଦ୍ୱାଃସ୍ଥିତ—ଅନ୍ୟରୂପ)
(ଦ୍ୱାଃସ୍ଥା; ଦ୍ୱାଃସ୍ଥିତା—ସ୍ତ୍ରୀ) ବି.—ଦ୍ୱାରପାଳ; ଦ୍ୱାରୀ—
Porter; door-keeper; gate-keeper.

ଦ୍ୱାଚତ୍ୱାରିଂଶ—ସଂ. ବିଣ. (ଦ୍ୱିଚତ୍ୱାରିଂଶତ୍+ଅ)—ବୟାଳିଶ ସଂଖ୍ୟାର
Dwāchatwārimśa ପୂରକ—Forty second.
(ଦ୍ୱିଚତ୍ୱାରିଂଶ, ଦ୍ୱାଚତ୍ୱାରିଂଶତ୍ତମ—ଅନ୍ୟରୂପ)

ଦ୍ୱାଚତ୍ୱାରିଂଶତ୍—ସଂ. ବି.—(ଦ୍ୱି+ଚତ୍ୱାରିଂଶତ୍)—ଚାଳିଶରୁ ଅଧିକ
Dwāchatwārimśat ଦୁଇ ସଂଖ୍ୟା; ୪୨; ବୟାଳିଶ—
( ଦ୍ୱିଚତ୍ୱାରିଂଶତ୍—ଅନ୍ୟରୂପ ) 42; fortytwo
ବିଣ.—ବୟାଳିଶି ସଂଖ୍ୟକ—Numbering fortytwo.

ଦ୍ୱାତ୍ରିଂଶ—ସଂ. ବିଣ.—୧ । ବତିଶ ସ୍ଥାନୀୟ—
Dwātrimśa 1. Thirtysecond.
ଦ୍ୱିତ୍ରିଂଶ
ଦ୍ୱାତ୍ରିଂଶତ୍ତମ } —ଅନ୍ୟରୂପ ୨ । ବତିଶ ସଂଖ୍ୟକ—
2. Consisting of or numbering 32.

ଦ୍ୱାତ୍ରିଂଶତ୍—ସଂ. ବି.-(ଦ୍ୱି+ତ୍ରିଂଶତ୍)—୩୨; ବତିଶ—
Dwātrimśat 32; Thirty two.
(ଦ୍ୱିତ୍ରିଂଶତ୍—ଅନ୍ୟରୂପ) ବିଣ.—ବତିଶ ସଂଖ୍ୟକ—
Numbering thirtytwo.

ଦ୍ୱାତ୍ରିଂଶତି—ସଂ. ବି.—ବତିଶର ସମାହାର—An aggregate or
Dwātrimśati collection of thirty two.
(ଦ୍ୱାତ୍ରିଂଶତକା, ଦ୍ୱାତ୍ରିଂଶତିକା, ଦ୍ୱାତ୍ରିଂଶତ୍ସିକା—ଅନ୍ୟରୂପ)

ଦ୍ୱାତ୍ରିଂଶଲ୍ଲକ୍ଷଣ—ସଂ. ବି.—(ଦ୍ୱିଗୁ; ଦ୍ୱାତ୍ରିଂଶତ୍+ଲକ୍ଷଣ)—
Dwātrimśallakshaṇa ମହାପୁରୁଷମାନଙ୍କ ଦେହରେ ଥିବା
( ଦ୍ୱିତ୍ରିଂଶଲ୍ଲକ୍ଷଣ—ଅନ୍ୟରୂପ ) ୩୨ ଗୋଟି ଲକ୍ଷଣ ବା ଶୁଭ ଚିହ୍ନ—
Thirtytwo specially auspicious marks found on the body of great men.
(ଦ୍ୱାତ୍ରିଂଶଲ୍ଲକ୍ଷଣା—ସ୍ତ୍ରୀ) ସଂ. ବିଣ. ପୁଂ. (ବହୁବ୍ରୀହି)—ଯେଉଁ ମହାପୁରୁଷଙ୍କ ଦେହରେ ୩୨ ଟି ଶୁଭ ଚିହ୍ନ ଥାଏ—(a person) Having thirtytwo auspicious marks on the body.

ଦ୍ୱାତ୍ରିଂଶଲ୍ଲକ୍ଷଣିକ — ସଂ ବିଣ. ପୁଂ. — ମହାପୁରୁଷଲକ୍ଷଣାକ୍ରାନ୍ତ (ପୁରୁଷ)—
Dwātrimśallakshaṇika (a person) Bearing 32
(ଦ୍ୱାତ୍ରିଂଶଲ୍ଲକ୍ଷଣିକା—ସ୍ତ୍ରୀ) conspicuous and auspicious
(ଦ୍ୱିତ୍ରିଂଶଲ୍ଲକ୍ଷଣିକ—ଅନ୍ୟରୂପ) marks on the body; bearing the signs of a great man on the body.

ଦ୍ୱାଦଶ — ସଂ. ବି. (ଦ୍ୱି + ଦଶନ୍) — ଦଶରୁ ଦୁଇ ଅଧିକ ସଂଖ୍ୟା; ବାର—
Dwādaśa 12; twelve.
(ଦ୍ୱିଦଶ — ଅନ୍ୟରୂପ) ବିଣ.—ବାର ସଂଖ୍ୟକ —
(ଦ୍ୱାଦଶୀ — ସ୍ତ୍ରୀ) 1. Numbering twelve
୨ । ବାର ସ୍ଥାନୀୟ — 2 Twelfth.

ଦ୍ୱାଦଶ ଅକ୍ଷର—ଦେ. ବି. (ସଂ. ଦ୍ୱାଦଶାକ୍ଷର) — ଓଁ ନମୋ ଭଗବତେ
Dwādaśa akshara ବାସୁଦେବାୟ ଏହି ମନ୍ତ୍ର —A formula for worshipping Bishṇu

ଏମନ୍ତ ଦ୍ୱାଦଶ ଅକ୍ଷର
ଜପିବ ଶବ ଅଠବାର । ଜଗନ୍ନାଥ ଭାଗବତ ।

ଦ୍ୱାଦଶ କର—ସ. ବି. (ବହୁବ୍ରୀହି; ଦ୍ୱାଦଶ=ବାର+କର=ଅଂଶୁ)—
Dwādaśa kara ୧ । ଦ୍ୱାଦଶାଂଶୁ (ଦେଖ)—
1. Dwādaśāmśu (See)
୨ । କାର୍ତ୍ତିକେୟ— 2. A name of Kārttikeya (Apte).

ଦ୍ୱାଦଶ ଗୋପାଳ—ସ. ବି—ବାର ସୁତ (ଦେଖ)
Dwādaśa gopāḷa Bāra suta (See)

ଦ୍ୱାଦଶ ବନ—ସ. ବି—ଶ୍ରୀକୃଷ୍ଣଙ୍କ ୧୨ଗୋଟି ପ୍ରଧାନ ଲୀଳାକାନନ—
Dwādaśa bana The twelve woods where Śrikṛushṇa disported.
[ ଦ୍ର—ମଧୁ, ତାଳ, କୁମୁଦ, ବହୁଳା, କାମ୍ୟ, ଖଦିର, ବୃନ୍ଦା, ଭଦ୍ର, ବିଲ୍ୱ, ଲୌହ, ଭାଣ୍ଡୀର ଓ ମହାବନ ଦ୍ୱାଦଶ ବନ ଅଟେ । ]

ଦ୍ୱାଦଶ ବାର୍ଷିକ—ସ. ବିଣ. (ଦ୍ୱାଦଶ+ବର୍ଷ+ ଇକ)—
Dwādaśa bārshika ୧ । ବାରବର୍ଷବୟସ୍କ—
1. Twelve years old.
୨ । ବାରବର୍ଷ କାଳ ବ୍ୟାପୀ—
2. Lasting for 12 years (Apte)

*ଦ୍ୱାଦଶ ମଦ୍ୟ—ସଂ. ବି—୧୨ ପ୍ରକାରର ମଦ୍ୟ—
Dwādaśa madya Twelve kinds of wine
[ ଦ୍ର—ପାନସ, ଦ୍ରାକ୍ଷ, ମାଧୂକ, ଖାର୍ଜୁର, ତାଳ, ଐକ୍ଷବ, ମାଧ୍ୱୀକ, ସୁରା, ଟଙ୍କମାଧ୍ୱୀକ, ମୈରେୟ, ନାରକେଳଜ ଓ ସୁରା ଏମାନଙ୍କୁ ଦ୍ୱାଦଶମଦ୍ୟ କୁହାଯାଏ । ]

ଦ୍ୱାଦଶ ମଳ—ସ. ବି— ଦେହର ୧୨ ପ୍ରକାରର ମଇଳା—
Dwādaśa maḷa The twelve kinds of execrations of human body.
[ ଦ୍ର— ବସା, ଶୁକ୍ର, ଅସୃକ୍, ମଜ୍ଜା, ମୂତ୍ର, ବିଷ୍ଠା, ନଖ, କର୍ଣ୍ଣମଳ, ଶ୍ଳେଷ୍ମା, ଅସ୍ଥି, ନେତ୍ରମଳ ଓ ସ୍ୱେଦ ଏମାନଙ୍କୁ ଦ୍ୱାଦଶମଳ କୁହାଯାଏ । ]

ଦ୍ୱାଦଶ ଯାତ୍ରା—ସ. ବି— ପୁରୀ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କର ବାରଗୋଟି
Dwādaśa jātrā ପ୍ରଧାନ ପର୍ବ—The twelve chief festivals of the Deity Jagannātha at Puri.
[ ଦ୍ର—ନିମ୍ନଲିଖିତ ଯାତ୍ରାମାନଙ୍କୁ ଦ୍ୱାଦଶ ଯାତ୍ରା କୁହାଯାଏ; ଯଥା — ୧. ବୈଶାଖ ଶୁକ୍ଳ ତୃତୀୟା—ଅକ୍ଷୟ ତୃତୀୟା । ୨. ଜ୍ୟେଷ୍ଠ ପୂର୍ଣ୍ଣିମା—ଦେବସ୍ନାନ । ଆଷାଢ ଶୁକ୍ଳଦ୍ୱିତୀୟା—ଶ୍ରୀଗୁଣ୍ଡିଚା, ରଥଯାତ୍ରା । ୪. ଆଷାଢ଼ ଶୁକ୍ଳ ଏକାଦଶୀ—ହରିଶୟନ । ୫. ଶ୍ରାବଣ ସଂକ୍ରାନ୍ତି—ଦକ୍ଷିଣାୟନ ସଂକ୍ରାନ୍ତି । ୬. ଭାଦ୍ର ଶୁକ୍ଳ ଏକାଦଶୀ—ପାର୍ଶ୍ୱ ପରିବର୍ତ୍ତନ । ୭. କାର୍ତ୍ତିକ ଶୁକ୍ଳ ଏକାଦଶୀ—ଦେବୋତ୍ଥାପନ । ୮. ମାର୍ଗଶୀର ଶୁକ୍ଳ ଷଷ୍ଠୀ— ପ୍ରାବରଣ ଷଷ୍ଠୀ । ୯. ପୌଷ ପୂର୍ଣ୍ଣିମା—ପୁଷ୍ୟାଭିଷେକ । ୧୦ । ମାଘ ସଂକ୍ରାନ୍ତି—ମକର ସଂକ୍ରାନ୍ତି । ୧୧ ଫାଲ୍ଗୁନ ପୂର୍ଣ୍ଣିମା—ଦୋଳଯାତ୍ରା । ୧୨. ଚୈତ୍ର ଶୁକ୍ଳ ଚତୁର୍ଦ୍ଦଶୀ—ଦମନକ ଚତୁର୍ଦ୍ଦଶୀ ବା ଦଅଣାଚୋରି । ]

ଦ୍ୱାଦଶ ଲୋଚନ—ସଂ. ବି. ପୁଂ ( ବହୁବ୍ରୀହି; ଦ୍ୱାଦଶ+ଲୋଚନ )—
Dwādaśa lochana ଷଡ଼ାନନ; କାର୍ତ୍ତିକେୟ—
( ଦ୍ୱାଦଶାକ୍ଷ—ଅନ୍ୟରୂପ ) A name of Kārttikeya

ଦ୍ୱାଦଶାଂଶୁ—ସଂ. ବି. ( ବହୁବ୍ରୀହି, ଦ୍ୱାଦଶ + ଅଂଶୁ )—ବୃହସ୍ପତି ଗ୍ରହ—
Dwādaśāmśu Bṛuhaspati; Jupitor.

ଦ୍ୱାଦଶାକ୍ଷ —ସଂ ବି. (ବହୁବ୍ରୀହି)—୧ । (ଦ୍ୱାଦଶ + ଅକ୍ଷି) କାର୍ତ୍ତିକେୟ—
Dwādaśāksha 1. A name of Kārttikeya.
୨ । ( ଦ୍ୱାଦଶ + ଅକ୍ଷ ) ବୁଦ୍ଧ—
2. The Buddha ( Apte )

ଦ୍ୱାଦଶାଙ୍ଗୁଳ— ସଂ. ବି—ଏକ ବିତସ୍ତି—
Dwādaśāngu̱la A span; a measure of 12 fingers.

ଦ୍ୱାଦଶାଦିତ୍ୟ — ସଂ. ବି—ସୂର୍ଯ୍ୟଙ୍କର ଶାସ୍ତ୍ରବର୍ଣ୍ଣିତ ଦ୍ୱାଦଶବିଧ ରୂପ ବା
Dwādaśāditya ନାମ —The 12 names of the Sun-god.
( ଦ୍ୱାଦଶାତ୍ମା—ଅନ୍ୟରୂପ )
[ ଦ୍ର ଧାତ୍ର, ଅର୍ଯ୍ୟମନ୍, ବିବସ୍ୱାନ୍, ଅର୍ଯ୍ୟମା, ପୂଷା, ତ୍ୱଷ୍ଟା, ସବିତା, ଭଗ, ଧାତା, ବିଧାତା, ବରୁଣମିତ୍ର ଓ ଉରୁକ୍ରମ ଏହି ୧୨ ଗୋଟି ସୂର୍ଯ୍ୟଙ୍କର ନାମ ଅଟେ । ]

ଦ୍ୱାଦଶାଧ୍ୟାୟୀ—ସ. ବି. (ଦ୍ୱାଦଶ + ଅଧ୍ୟାୟ + ଇନ୍; ୧ମା. ୧ବ; ଏଥିରେ
Dwādaśādhyāyi ୧୨ ଗୋଟି ଅଧ୍ୟାୟ ଥିବାରୁ)— ଜୈମିନୀଙ୍କର ମୀମାଂସା —The name of Jaimini's Mimāmsā in 12 chapters.

ଦ୍ୱାଦଶାୟୁଃ—ସଂ. ବି. ( ବହୁବ୍ରୀହି; ଦ୍ୱାଦଶ=୧୨ ବର୍ଷ+ପରମାୟୁ
Dwādaśāyuḥ ଯାହାର)— କୁକୁର—Dog.

ଦ୍ୱାଦଶାର୍ଚ୍ଚିଃ—ସଂ. ବି. ( ବହୁବ୍ରୀହି; ଦ୍ୱାଦଶ + ଅର୍ଚ୍ଚିସ୍; ୧ମା. ୧ବ )—
Dwādaśārchi ଦ୍ୱାଦଶାଂଶୁ ( ଦେଖ )
Dwādaśāmśu ( See )

ଦ୍ୱାଦଶାସ୍ର— ସଂ. ବି. ( ବହୁବ୍ରୀହି; ଦ୍ୱାଦଶ+ଅସ୍ର )—ବାରଗୋଟି ଭୁଜ
Dwādaśasra ଥିବା କ୍ଷେତ୍ର—A dodecagon.

ଦ୍ୱାଦଶାହ—ସଂ. ବି. (ଦ୍ୱାଦଶ + ଅହନ୍)—୧ । ବାର ଦିନବ୍ୟାପୀ ସମୟ—
Dwādaśāha 1 A period of 12 days.

୨ । ବାରଦିନେ ସମାପନୀୟ ଯଜ୍ଞବିଶେଷ—
2. A sacrifice completed in 12 days (Apte).

**ଦ୍ୱାଦଶୀ**—ସଂ. ବି. ସ୍ତ୍ରୀ. ( ଦ୍ୱାଦଶ + ସ୍ତ୍ରୀ. ଈ)—ପକ୍ଷର ଦ୍ୱାଦଶ ତିଥି—
Dwādaśi The twelfth day of the lunar fortnight
( ଦ୍ୱିଦଶୀ—ଅନ୍ୟରୂପ )
[ଦ୍ର—ନିମ୍ନଲିଖିତ ଦ୍ୱାଦଶୀମାନ ହିନ୍ଦୁମାନଙ୍କର ପ୍ରଧାନ ପର୍ବ ଅଟେ, ଯଥା—୧. ଚମ୍ପକ ଦ୍ୱାଦଶୀ—ଜ୍ୟେଷ୍ଠ ଶୁକ୍ଳଦ୍ୱାଦଶୀ—ଚମ୍ପାଫୁଲଦ୍ୱାରା ବିଷ୍ଣୁପୂଜା ( ଶ୍ରୀକୃଷ୍ଣଙ୍କ ବିବାହୋତ୍ସବ ), ୨. ବାମନ ଜନ୍ମ—ଭାଦ୍ର ଶୁକ୍ଳ ଦ୍ୱାଦଶୀ—ବିଷ୍ଣୁଙ୍କର ବାମନ ଅବତାର ଦିବସ, ୩. ଗରୁଡ଼ ଦ୍ୱାଦଶୀ—କାର୍ତ୍ତିକ ଶୁକ୍ଳ ଦ୍ୱାଦଶୀ, ୪. ବରାହ ଦ୍ୱାଦଶୀ—ମାଘ ଶୁକ୍ଳ ଦ୍ୱାଦଶୀ—ବିଷ୍ଣୁଙ୍କର ବରାହ ଅବତାର ଦିବସ, ୫. ଗୋବିନ୍ଦ ଦ୍ୱାଦଶୀ—ପୁଷ୍ୟାନକ୍ଷତ୍ରଯୁକ୍ତ ଫାଲ୍ଗୁନ ଶୁକ୍ଳ ଦ୍ୱାଦଶୀ । ]

**ଦ୍ୱାଦଶୀ ପାରଣା**—ସଂ. ବି. ( ମ. ପ. ଲୋ; ଦ୍ୱାଦଶୀ+ପାରଣା )—
Dwādaśi pāraṇā ଏକାଦଶୀ ଦିନ ଉପବାସ ବ୍ରତ କରିଥିବା ବ୍ୟକ୍ତିମାନଙ୍କର ଦ୍ୱାଦଶୀ ଦିନ ପ୍ରଥମ ଭୋଜନ ବିଧି—
The breaking of fast after the Ekādaśi on the morning of Dwādaśi.

**ଦ୍ୱାନବତ**—ସଂ. ବିଣ. ( ଦ୍ୱି + ନବତି + ଅ )—ଦ୍ୱିନବତ ( ଦେଖ )
Dwānabata Dwinabata ( See )
( ଦ୍ୱିନବତ, ଦ୍ୱାନବତିତମ - ଅନ୍ୟରୂପ )

**ଦ୍ୱାନବତି**—ସଂ. ବି ଓ ବିଣ. (ଦ୍ୱି+ନବତି) - ବୟାଁନବେ, ନବେରୁ ଦୁଇ
Dwānabati ଅଧିକ ସଂଖ୍ୟା—Ninetytwo
( ଦ୍ୱିନବତି—ଅନ୍ୟରୂପ )

**ଦ୍ୱାପଞ୍ଚାଶ**—ସଂ. ବିଣ. ( ଦ୍ୱି + ପଞ୍ଚାଶତ୍ + ପୂରଣାର୍ଥ. ଅ )—
Dwāpañchāśa ୫୨ ସ୍ଥାନୀୟ—Fifty second.
( ଦ୍ୱିପଞ୍ଚାଶ—ଅନ୍ୟରୂପ )

**ଦ୍ୱାପଞ୍ଚାଶତ୍**—ସଂ. ବି ଓ ବିଣ. ( ଦ୍ୱି + ପଞ୍ଚାଶତ୍ )—ପଚାଶଅପେକ୍ଷା
Dwāpañchāśat ଦୁଇ ଅଧିକ ସଂଖ୍ୟା—Fifty two
( ଦ୍ୱିପଞ୍ଚାଶତ୍—ଅନ୍ୟରୂପ )

**ଦ୍ୱାପର**—ସଂ. ବି. ( ଦ୍ୱି+ପର; ଯେଉଁ ଯୁଗ ଦୁଇ ଯୁଗର ପରେ ଅର୍ଥାତ୍
Dwāpara ସତ୍ୟ ଓ ତ୍ରେତା ଯୁଗ ପରେ ପଡ଼େ )—
୧ । ହିନ୍ଦୁପୁରାଣ ମତରେ ସୃଷ୍ଟିର ତୃତୀୟ ଯୁଗ—
1. The third Puranic age or aeon of the world according to the Hindus.
[ ଦ୍ର—ଏହାର କାଳ ୮ ଲକ୍ଷ ୬୪ ହଜାର ବର୍ଷ । ଏହି ଯୁଗରେ ଶ୍ରୀକୃଷ୍ଣ ଓ ବୌଦ୍ଧ ଅବତାରଦ୍ୱୟ ପୃଥିବୀରେ ଅବତୀର୍ଣ୍ଣ ହୋଇଥିଲେ; ପୁଣ୍ୟ ଓ ପାପ ସମାନ ଥିଲା, ମନୁଷ୍ୟର ଦେହର ପରିମାଣ ୭ ହାତ ଓ ପରମାୟୁ ଏକ ହଜାର ବର୍ଷ ଥିଲା । ଯୁଧିଷ୍ଠିର ଦ୍ୱାପର ଯୁଗର ଶେଷ ରାଜା ଥିଲେ । ]
୨ । ସନ୍ଦେହ—2. Doubt; suspicion.
ଦେବ ଦଇବ ତୋ ଅଭିମତ; ଦୂର କର ଦ୍ୱାପରକୁ ଚେତ—
କବିସୂର୍ଯ୍ୟ, କଣୋଶ୍ୱରଗୁରୁ, ଦ-ଗୀତ ।
୩ । ପଶାକାଠିର ଯେଉଁ ପାଖରେ ଦୁଇଟି ବିନ୍ଦୁ ଚିହ୍ନିତ ହୋଇଥାଏ—3. The side of a die marked with two points ( Apte ).

୪ । ଅନିଶ୍ଚୟ—4. Uncertainty ( Apte ).

**ଦ୍ୱାବିଂଶ**—ସଂ. ବିଣ—ବାଇଶି ସ୍ଥାନୀୟ—
Dwābimsa Twenty second.
( ଦ୍ୱାବିଂଶତିତମ—ଅନ୍ୟରୂପ )

**ଦ୍ୱାବିଂଶତି**—ସ ବି. ( ଦ୍ୱି + ବିଂଶତି; ଦ୍ୱି ଅଧିକ ବିଂଶତି )—କୋଡିଏ
Dwābimsati ଅପେକ୍ଷା ଦୁଇ ଅଧିକ ସଂଖ୍ୟା; ୨୨; ବାଇଶି—
22; Twenty two.
ବିଣ—ବାଇଶି ସଂଖ୍ୟକ—Numbering 22.

**ଦ୍ୱାର**—ସଂ. ବି. ( ଦ୍ୱୃ ଧାତୁ + ଣିଚ୍ = ଦ୍ୱାରି ଧାତୁ = ଆଚ୍ଛାଦନ ବା
Dwāra ରୋଧ କରିବା + କରଣ. ଅ )—
୧ । ଦୁଆର; ଦରଜା; କବାଟ—
1 Door; entrance; door-way; ingress.
[ ଦ୍ର—ଦ୍ୱାରମାନଙ୍କର ଭିନ୍ନ ଭିନ୍ନ ଅଂଶର ନାମ, ଯଥା—ଚଉକାଠ, ଏରୁଣ୍ଡିବନ୍ଧ, ସରଦଲ ପଟା, କବାଟ, ଜାଉଁଳ କବାଟ, ନାଗବନ୍ଧ, କିଳଣୀ, କୁଳୁପ, ଡମଣୀ, କଞ୍ଜା, ଶିକୁଳୀ, ଅସ୍ୱମୁଣ୍ଡ ( ଘୁଙ୍ଗୁଡ଼ି ), କୁତୁଣ୍ଡା ଓ ଦର୍ଶି । ]
୨ । ଗମନାଗମନର ବାଟ—2. Passage; way.
୩ । ଉପାୟ—3. Means. ୪ । ସମ୍ମୁଖ—4. Front.
୫ । କୌଣସି ସ୍ଥାନରେ ମେଲା ଥିବା ଅଂଶ; ଛେଦ; ଛିଦ୍ର—
5 Opening ( Apte ); hole.
୬ । ଯାହାଦ୍ୱାରା କୌଣସି କର୍ମ ସମ୍ପାଦିତ ହୁଏ; କର୍ମସାଧକୋପାୟ—
6. Medium; expedient ( Apte ).
୭ । ଶରୀରର ନଅଗୋଟି ଛିଦ୍ର—7. The nine apertures of the human body ( Apte ).
ଦେ. ବି—ମୂଳକାରଣ—Root cause.
ଏ ଶ୍ଲେଷ ଯୋର ଉମ ଦ୍ୱାର, ଏ କୋହେ ଉତ୍ତମ ବେଗର—
ଜଗନ୍ନାଥ, ଭାଗବତ ।

**ଦ୍ୱାର କଣ୍ଟକ**—ସ. ବି.—୧ । କବାଟ—
Dwāra kanṭaka 1. Door.
୨ । କିଳଣୀ—2 The bolt of a door.

**ଦ୍ୱାର କପାଟ**—ସ. ବି. (୬ଷ୍ଠୀ ତତ୍; ଦ୍ୱାର + କପାଟ)—କବାଟ—
Dwāra kapāṭa The leaf or panel of a door.

**ଦ୍ୱାରକା**—ସଂ. ବି. (ଦ୍ୱାର = ମୁକ୍ତିଦ୍ୱାର + କ + ସ୍ତ୍ରୀ. ଆ )—ଶ୍ରୀକୃଷ୍ଣଙ୍କ
Dwārakā ରାଜଧାନୀ—The capital where Śrikṛushṇa
(ଦ୍ୱାରକା—ଅନ୍ୟରୂପ) was holding his court.
[ଦ୍ର—ଏହା ବର୍ତ୍ତମାନ ଗୁଜରାଟର ପଶ୍ଚିମରେ ଅବସ୍ଥିତ; କିନ୍ତୁ ଶ୍ରୀକୃଷ୍ଣଙ୍କ ରାଜଧାନୀ ସମୁଦ୍ର ଗର୍ଭରେ ଲୀନ ହୋଇଅଛି ବୋଲି କଥିତ । ଏଠାରେ ବର୍ତ୍ତମାନ ଡାକୋରଜୀ ଠାକୁର ଅଛନ୍ତି । ଏହା ହିନ୍ଦୁଙ୍କର ଗୋଟିଏ ତୀର୍ଥ ସ୍ଥାନ । ଏହା ବର୍ତ୍ତମାନ ବରୋଦା ମହାରାଜା ଗାଇକୱାଡ଼ଙ୍କ ଖାସ୍ ଦଖଲରେ ଅଛି ଓ ଉଷାମଣ୍ଡଳ ପ୍ରଗନା ଅନ୍ତର୍ଗତ । ମଦନମୋହନ. ତୀର୍ଥଦର୍ଶନ ।]
ଦେ. ବି. ପୁଂ—ଲୋକଙ୍କୁ ଦିଆ ଯିବା ନାମ—
A name given to males.

ଦ୍ୱାରକା ଦାସ—ଦେ. ବି. (ନାମ)—ଓଡ଼ିଆ ପ୍ରାଚୀନ କବିବିଶେଷ—
Dwārakā dāsa Name of a classical Ordiā poet.
[ଦ୍ର—ଏ ଓଡ଼ିଶାର ରାଜା ତେଲଙ୍ଗା ମୁକୁନ୍ଦ ଦେବଙ୍କ ରାଜତ୍ୱ କାଳରେ (୧୫୫୯—୧୫୬୮ ଖ୍ରୀଷ୍ଟାବ୍ଦ) ଜୀବିତ ଥିଲେ । ଏ ସନ୍ନ୍ୟାସୀ ଥିବାର ଅନୁମାନ କରାଯାଏ । 'ପ୍ରେମରସ ଚନ୍ଦ୍ରିକା' ଓ 'ସପ୍ତପୋଇ' ନାମକ ଗ୍ରନ୍ଥ ଏହାଙ୍କ ଦ୍ୱାରା ରଚିତ ।
ତାରଣୀ. ଉତ୍କଳସାହିତ୍ୟର ଇତିହାସ ।]

ଦ୍ୱାରକା ନାଥ—ସଂ. ବି. (୬ଷ୍ଠୀ ତତ୍; ଦ୍ୱାରକା+ନାଥ)—ଶ୍ରୀକୃଷ୍ଣ—
Dwārakā nātha Śrikṛushṇa.
ଦ୍ୱାରକାପତି, ଦ୍ୱାରକେଶ, ଦ୍ୱାରପ [ଦ୍ର—ଦ୍ୱାରକାନାଥ ନାମକ କୃଷ୍ଣବିଗ୍ରହଙ୍କ ମନ୍ଦିର ଗୋମତୀ ନଦୀକୂଳରେ ଅବସ୍ଥିତ—ମଦନମୋହନ. ତୀର୍ଥଦର୍ଶନ ।]
— ଦେ. ବି. ପୁଂ—ଲୋକଙ୍କ ନାମ—
A name given to males

ଦ୍ୱାରଗୋପ—ସଂ.ବି (ଦ୍ୱାର+ଗୁପ୍ ଧାତୁ=ରକ୍ଷା କରିବା+କର୍ତ୍ତୃ. ଅ)—
Dwāragopa ଦ୍ୱାରପାଳ (ଦେଖ)—Dwārapāla (See)
(ଦ୍ୱାରନାୟକ, ଦ୍ୱାରଦର୍ଶୀ—ଅନ୍ୟରୂପ)

ଦ୍ୱାରଦାରୁ—ସଂ. ବି ( ବୈଦ୍ୟକ )—୧ । ଭୂମିସହ ନାମକ ଔଷଧଦ୍ରବ୍ୟବିଶେଷ—1. A kind of medicinal herb.
Dwāradāru
ସଂ. ଭୂମିସହ, ବରଦାରୁ, ଖରଚ୍ଛଦ — ଦ୍ର—ଏହା ଶୀତବୀର୍ଯ୍ୟ ଓ ରକ୍ତପିତ୍ତପ୍ରସାଦକ ଅଟେ । ]
ପୁରସହ ୨ । ସାଗୁଆନ କାଠ—
2 Teak wood ( Apte ).

ଦ୍ୱାର ଦେଶ—ସଂ. ବି—ଘରର ଦ୍ୱାରରେ ଥିବା ପ୍ରବେଶ ମାର୍ଗ—
Dwāra deśa Door; entrance; passage to a house.

ଦ୍ୱାର ନିରୂପଣ—ଦେ. ବି—ଦ୍ୱାରରକ୍ଷକର କର୍ମ—
Dwāra nirūpaṇa The post of a door-keer.

ଦ୍ୱାରନିରୂପଣ ତାହାରେ କହିଲେ କରିଲ ସେହ୍ନ ପାଦାଷ ।
ଦ୍ୱାରୀ. ଶିଶୁଶଙ୍କର ଉଷା ଅଭିଳାଷ ।

ଦ୍ୱାର ପଟ୍ଟ—ସଂ. ବି ( ୬ଷ୍ଠୀ ତତ୍; ଦ୍ୱାର+ପଟ୍ଟ )—୧ । କବାଟର ପଟା ବା ଫାଳ—1. The panel of a door ( Apte ).
Dwāra paṭṭa
୨ । ଦ୍ୱାରରେ ଦିଆଯିବା ପରଦା—
2. The curtain of a door ( Apte ).

ଦ୍ୱାରପାଳ—ସଂ. ବି ( ଦ୍ୱାର+ପାଳ ଧାତୁ+କର୍ତ୍ତୃ. ଅ )—୧ । ଯେ ଦ୍ୱାର ଜଗେ; ଦରୁଆନ; ଦୌବାରିକ—
Dwārapāla
ଦ୍ୱାରପ, ଦ୍ୱାରପାଳକ } ଅନ୍ୟରୂପ 1. Porter; gatekeeper; doorkeeper.
ଯେ ଶାନ୍ତରେ ଯେତେକ ଦ୍ୱାରପାଳେ ଛନ୍ତି—କୃଷ୍ଣସିଂହ. ମହାଭାରତ.ସଭା ।
୨ । ଦେବାଳୟମାନଙ୍କ ଦ୍ୱାରଦେଶରେ ସ୍ଥାପିତ ଉତ୍ତ ଦେବତାଙ୍କ ଦ୍ୱାରୀମାନଙ୍କ ମୂର୍ତ୍ତି—2. The images of the Deity's doorkeepers placed at the entrance of a temple.

ଦ୍ୱାର ପାଳପୂଜା—ସଂ. ବି—ଦେବତାମାନଙ୍କ ପୂଜା ପୂର୍ବରୁ ମନ୍ଦିରର ଦ୍ୱାରଦେଶରେ ଅବସ୍ଥିତ ଦ୍ୱାରପାଳ ଦେବତାମାନଙ୍କର ପୂଜା—The worship of the gatekeeper-deities before the worship of the main Deity.
Dwāra pālapūjā

ଦ୍ୱାର ପିଣ୍ଡୀ—ସଂ. ବି ( ୬ଷ୍ଠୀ ତତ୍, ଦ୍ୱାର+ପିଣ୍ଡୀ )—୧ । ଚଉକାଠର ଊର୍ଦ୍ଧ୍ୱସ୍ଥ ଫଳକ—1. Lintel of a door-frame.
Dwāra piṇḍi
୨ । ଏରୁଣ୍ଡିବନ୍ଧ—2. Threshold.

ଦ୍ୱାର ପିଧାନ—ସଂ ବି (୬ଷ୍ଠୀ ତତ୍; ଦ୍ୱାର+ପିଧାନ)—କବାଟର ଖିଳଣୀ; ଅର୍ଗଳ—The bolt of a door ( Apte ).
Dwāra pidhāna

ଦ୍ୱାରବତୀ—ସଂ ବି (ଦ୍ୱାର=ମୁକ୍ତିପଥ+ବତ୍+ସ୍ତ୍ରୀ. ଈ)—ଦ୍ୱାରକା (ଦେଖ)
Dwārabatī Dwārakā (See).
(ଦ୍ୱାରାବତୀ—ଅନ୍ୟରୂପ)

ଦ୍ୱାର ବନ୍ଧ—ଦେ. ବି—୧ । ଚଉକାଠ—
Dwāra bandha 1. Door-frame.
ଚଉକାଠ ୨ । ଏରୁଣ୍ଡୀବନ୍ଧ—2. The bottom-piece of the door frame; threshold.
चौखट

ଦ୍ୱାର ବଳିଭୁକ୍—ସଂ. ବି ( ଦ୍ୱାର+ବଳି+ଭୁଜ୍ ଧାତୁ+କର୍ତ୍ତୃ. କ୍ୱିପ୍ ଦ୍ୱାରବଳିଭୁଜ୍; ୧ମା. ୧ବ )—
Dwāra balibhuk
୧ । କୁଆ; କାକ—1. Crow (Apte).
୨ । ଘରଚଟିଆ ଚଢେଇ, ଚଟକ—
2 Sparrow ( Apte ).

ଦ୍ୱାରବାନ୍—ସଂ. ବି. ପୁଂ ( ଦ୍ୱାର+ବତ୍; ୧ମା. ୧ବ )—
Dwārabān ଦ୍ୱାରପାଳ (ଦେଖ)—Dwārapāla (See).

ଦ୍ୱାର ବାହୁ—ସଂ. ବି ( ୬ଷ୍ଠୀ ତତ୍; ଦ୍ୱାର+ବାହୁ )—ଚଉକାଠ—
Dwāra bāhu Door post; jamb.

ଦ୍ୱାରବୃତ୍ତ—ସଂ ବି—ଗୋଲମରିଚ—
Dwārabṛutta Black pepper (Apte).

ଦ୍ୱାର ମୋଚନ—ସଂ. ବି ( ୬ଷ୍ଠୀ ତତ୍; ଦ୍ୱାର+ମୋଚନ )—
Dwāra mochana ଦ୍ୱାରୋଦ୍ଘାଟନ ( ଦେଖ )
Dwārodghāṭana (See).

ଦ୍ୱାର ଯନ୍ତ୍ର—ସଂ. ବି (ମ. ପ. ଲୋ; ଦ୍ୱାରବନ୍ଧନାର୍ଥ ବ୍ୟବହୃତ ଯନ୍ତ୍ର)—
Dwāra jantra ୧ । କୋଲପ—1. Lock; padlock.
୨ । ଖିଳଣୀ—2. Bolt.

ଦ୍ୱାର ରକ୍ଷକ—ସଂ. ବି (୬ଷ୍ଠୀ ତତ୍; ଦ୍ୱାର+ରକ୍ଷକ)—ଦ୍ୱାରପାଳ (ଦେଖ)
Dwāra rakshaka Dwārapāla (See)
(ଦ୍ୱାରରକ୍ଷୀ—ଅନ୍ୟରୂପ)

ଦ୍ୱାର ଶାଖା—ସଂ. ବି (୬ଷ୍ଠୀ ତତ୍; ଦ୍ୱାର+ଶାଖା)—କବାଟର ପଟା—
Dwāra śākhā The leaf of a door.

ଦ୍ୱାରସ୍ଥ—ସଂ. ବଣ. ପୁଂ ( ଦ୍ୱାର+ସ୍ଥା ଧାତୁ+ଅ )—
Dwārastha ୧ । ଯେ ଦ୍ୱାରଦେଶରେ ଅବସ୍ଥାନ କରେ—
(ଦ୍ୱାରସ୍ଥା—ସ୍ତ୍ରୀ) 1. Standing at the door.

୨ । ଭିକ୍ଷା ନିମନ୍ତେ ଦ୍ୱାରରେ ଉପସ୍ଥିତ—
2. Arrived at the door of a person for begging.

୩ । (ଲକ୍ଷଣାର୍ଥ) ଶରଣାଗତ—
3 (figurative) Coming to one's door for shelter, soliciting shelter.

ସ. ବି—ଦ୍ୱାଃସ୍ଥ; ଦ୍ୱାରପାଳ—Doorkeeper (Apte).

ଦ୍ୱାରା—ସ. ଅ.—[ସଂ. ଦ୍ୱାଃ (=ଦ୍ୱାର) ଶବ୍ଦର ତୃତୀୟା ବିଭକ୍ତି=ଦ୍ୱାରା
Dwārā ଦେଖ)—୧ । କର୍ତ୍ତୃକ; ସାହାଯ୍ୟରେ—1. By; with;
(ଦ୍ୱାରେ—ଦେଶଜ ରୂପ) by means of (Apte).
୨ । ଜରିଆରେ—2. Through; per (Apte).
୩ । ହେତୁରୁ—3. By reason of.
୪ । କାରଣରୁ—4. On account of; owing to.

ଦ୍ୱାରାଧ୍ୟକ୍ଷ—ସଂ ବି.—(୬ଷ୍ଠୀ ତତ୍, ଦ୍ୱାର+ଅଧ୍ୟକ୍ଷ)—ଦ୍ୱାରପାଳ (ଦେଖ)
Dwārādhyaksha Dwārapāla (See)
(ଦ୍ୱାରାଧିପ—ଅନ୍ୟରୂପ)

ଦ୍ୱାରାପୁରୀ—ଦେ. ବି.—ଦ୍ୱାରକା (ଦେଖ)
Dwārāpuri Dwārakā (See)
ଦୃଷ୍ଟାଳେ ବଶିଷ୍ଟୁଁ ଏ ଦ୍ୱାରାପୁରୀ । ପ୍ରାଚୀ, ରହସ୍ୟମଞ୍ଜରୀ ।

ଦ୍ୱାରାବତୀ—ସଂ. ବି.—ଦ୍ୱାରକା (ଦେଖ)
Dwārābati Dwārakā (See)

ଦ୍ୱାରି (ଧାତୁ)—ସଂ (ଦ୍ୱୃ ଧାତୁ ଣିଚ)—ଆଚ୍ଛାଦନ କରିବା—
Dwāri (root) To cover.

ଦ୍ୱାରିକ—ସଂ. ବି. (ଦ୍ୱାର+ଇକ)—ଦ୍ୱାରପାଳ (ଦେଖ)
Dwārika Dwārapāla (See)

ଦ୍ୱାରିକା (ଇତ୍ୟାଦି)—ସଂ. ବି. (ଦ୍ୱାରିକ+ଆ)—ଦ୍ୱାରକା ଇତ୍ୟାଦି—
Dwārikā (etc) Dwārakā etc (See)

ଦ୍ୱାରିକା ଛପା—ଦେ. ବି.—ଶ୍ରୀକୃଷ୍ଣଙ୍କ ନାମାଙ୍କିତ ପିତଳ ବା ତମ୍ବାର
Dwārikā chhapā ମୋହର—A brass or copper seal
(ଦ୍ୱାରକା ଛାପା—ଅନ୍ୟରୂପ) containing the letters of the name of Srikrushna.

[ଦ୍ର—ଦ୍ୱାରକାରେ ବୈଷ୍ଣବମାନଙ୍କ ଦେହରେ ଏ ମୋହରକୁ ତତାଇ କରି ଛାପା ମରା ଯାଏ ଓ ତଦ୍ଦ୍ୱାରା ସେମାନଙ୍କ ଦେହରେ ନାମାଙ୍କିତ ଚିହ୍ନ ରହିଯାଏ । ]

ଦ୍ୱାରୀ—ସଂ. ବି. (ଦ୍ୱାର+ଇନ୍; ୧ମା ୧ବ.)—୧ । ଦୁଆର ଜଗୁଆଳ;
Dwāri ଦ୍ୱାରପାଳ—1. Door-keeper; porter.
୨ । ରାଜାଆଦିଙ୍କ ଦଣ୍ଡୁଡ଼ିର ଜଗୁଆଳ—2. Gate-keeper of Rajas etc

ଦେ. ବି.—ଆଧୁନିକ ଯାତ୍ରାମାନଙ୍କରେ ବିଦୂଷକ—
The jester or buffoon in the country pantomines.

ଦ୍ୱାରୀ ପୂଜା—ଦେ. ବି.—ଦୁଆରୀ ପୂଜା (ଦେଖ)
Dwāri pūjā Duāri pūjā (See)

ଦ୍ୱାରେ—ଦେ. ଅ.—(ଅନ୍ୟ ଶବ୍ଦ ସଙ୍ଗେ ବ୍ୟବହୃତ; ସଂ. ଦ୍ୱାରା)—
Dwāre ୧ । ଦ୍ୱାର ବାଟେ—1. By the door of.
୨ । ଦ୍ୱାରା—2. By; by means of; with.

ସୂରଜନେ ଶୁଣ ଶ୍ରୁତ ଦ୍ୱାରେ
କାହୁଁତ ସଂସାର ସାଗରେ । ଜଗନ୍ନାଥ. ଭାଗବତ ।

୩ । (ସଂ. ଦ୍ୱାର୍ ଶବ୍ଦର ୭ମୀ ୧ବ. ଦ୍ୱାରି)—
ଦ୍ୱାରଦେଶରେ; ଦ୍ୱାର ନିକଟରେ—3. At the door.

ଦ୍ୱାରେ ଦ୍ୱାରେ—ଦେ. କ୍ରି. ବିଣ. (ସଂ. ଦ୍ୱାର+ଦ୍ୱାର)—
Dwāre dwāre ୧ । ଅଗର ଦ୍ୱାର; ପ୍ରତି ଦ୍ୱାରରେ—
(ଦ୍ୱାରଦ୍ୱାର—ଅନ୍ୟରୂପ) 1. At every door.
ଦ୍ୱାରେ ଦ୍ୱାରେ ୨ । ଏକ ଦ୍ୱାରରୁ ଅନ୍ୟ ଦ୍ୱାରକୁ—
ଘର ଘର 2. From door to door.

ଦ୍ୱାରୋଦ୍‌ଘାଟନ—ସଂ. ବି. (୬ଷ୍ଠୀ ତତ୍, ଦ୍ୱାର+ଉଦ୍‌ଘାଟନ)—
Dwārodghātana କବାଟ ଫିଟାଇବା—
(ଦ୍ୱାରରୋଧନ—ବିପରୀତ) Opening of the door.

ଦ୍ୱାର୍ଥବୋଧକ—ଦେ. ବିଣ. (ସଂ ଦ୍ୱ୍ୟର୍ଥ ବୋଧକ)—ଦୁଇଟି ଭିନ୍ନ ଅର୍ଥ-
Dwārthabodhaka ବୋଧକ—Equivocal.

ଦ୍ୱାଷଷ୍ଟ—ସଂ. ବିଣ. (ଦ୍ୱି+ଷଷ୍ଟି+ପୂରଣାର୍ଥ ଅ)—
Dwāshashta ବାଅଷଠିର ପୂରକ; ବାଅଷଠି ସ୍ଥାନୀୟ—
(ଦ୍ୱିଷଷ୍ଟ, ଦ୍ୱାଷଷ୍ଟିତମ—ଅନ୍ୟରୂପ) Sixty second.

ଦ୍ୱାଷଷ୍ଟି—ସଂ. ବି ଓ ବିଣ. (ଦ୍ୱି ଅଧିକ=ଷଷ୍ଟି; ମ. ପ ଲୋ)—
Dwāshashti ଷାଠିଏରୁ ଦୁଇ ଅଧିକ ସଂଖ୍ୟା; ୬୨;ବାଷଠି—
(ଦ୍ୱିଷଷ୍ଟି—ଅନ୍ୟରୂପ) 62; Sixty two.

ଦ୍ୱାସପ୍ତତ—ସଂ. ବିଣ. (ଦ୍ୱାସପ୍ତତି+ପୂରଣାର୍ଥେ. ଅ)—
Dwāsaptata ବାଅସ୍ତୁରିର ପୂରକ—Seventy second.
(ଦ୍ୱିସପ୍ତତ, ଦ୍ୱାସପ୍ତତିତମ—ଅନ୍ୟରୂପ)

ଦ୍ୱାସପ୍ତତି—ସଂ. ବି ଓ ବିଣ (ଦ୍ୱି+ସପ୍ତତି; ମ. ପ. ଲୋ)—୭୨; ବାସ୍ତୁରି—
Dwāsaptati 72; Seventytwo.
(ଦ୍ୱିସପ୍ତତି—ଅନ୍ୟରୂପ)

ଦ୍ୱାସ୍ଥ—ସଂ. ବି ଓ ବିଣ—ଦ୍ୱାଃସ୍ଥ (ଦେଖ)
Dwāstha Dwāhstha (See)
(ଦ୍ୱାସ୍ଥିତ—ଅନ୍ୟରୂପ)

ଦ୍ୱାହି—ଦେ. ବି—ଦୋହାଇ (ଦେଖ)
Dwāhi Dohāi (See)

ଦ୍ୱି ସଂ. ବିଣ. (ଗ୍ରୀକ ଡାଇ ଦୋ; ଲାଟିନ୍ ଡ୍ୟୁଓ)—
Dwi ୧ । ଦୁଇ; ଦୁଇ ସଂଖ୍ୟକ—Two in number; numbering two.
୨ । ଉଭୟ; ଦୁହେଁ—2 Both.
୩ । ଦୁଇ ଥର—3 Twice.
୪ । ଦୁଇ ପ୍ରକାରର—4. Of two kinds.

[ଦ୍ର—ଏହି ଶବ୍ଦ ଅନ୍ୟ ସ୍ୱରାନ୍ତ ଶବ୍ଦ ପୂର୍ବେ ଯୁକ୍ତ ହେଲେ ଦ୍ୱି ହୁଏ ଯଥା—ଦ୍ୱି+ଆଗମନ=ଦ୍ୱ୍ୟାଗମନ; ଦ୍ୱି ଅଶନ= =ଦ୍ୱ୍ୟଶନ । ଏହି ଶବ୍ଦ ଅନ୍ୟ ଶବ୍ଦ ପୂର୍ବେ ସମାସରେ ଯୁକ୍ତ ହୁଏ ଯଥା—ଦ୍ୱିବାହୁ,ଦ୍ୱିବିଧ, ଦ୍ୱିକର୍ମକ ଇତ୍ୟାଦି । ]

ଦ୍ୱିକ—ସ. ବି (ଦ୍ୱି+କ; ଯେଉଁ ଶବ୍ଦରେ ଦୁଇଟି କ ଅକ୍ଷର ଅଛି)—
Dwika ୧ । କାକ; କୁଆ—1. Crow (Apte)
(ଦ୍ୱିକକାର—ଅନ୍ୟରୂପ) ୨ । କୋକ, ଚକ୍ରବାକ—
2. The Ruddy Goose (Apte).

ସ. ବଣ—୧ । ଦୁଇ ପରସ୍ତିଆ—1. Two fold (Apte).
୨ । ଦୁଇ ସଂଖ୍ୟକ—2. Consisting of two (Apte).
୩ । ଦ୍ୱିତୀୟ—3. Second (Apte)
୪ । ଦ୍ୱିତୀୟବାର ଘଟବା—
4. Happening for the second time (Apte).
୫ । ଶତକରା ଦୁଇ ହିସାବରେ —
5. Two per cent (Apte).
୬ । ଦୁଇ ସଂଖ୍ୟା ଦ୍ୱାରା ବର୍ଦ୍ଧିତ—
6. Increased by two (Apte).

**ଦ୍ୱିକକୁଦ୍**—ସ. ବ ( ବହୁବ୍ରୀହି; ଦ୍ୱି + କକୁଦ୍ )—( ଦୁଇଟି ଡିଲଯୁକ୍ତ ) ଓଷ୍ଟ୍ର—Camel
Dwikakud

**ଦ୍ୱିକର**—ସ.ବ (ଦ୍ୱିଗୁ, ଦ୍ୱି + କର)—ଦୁଇ ହାତ—
Dwikara Two hands.
(ଦ୍ୱିକରା—ସ୍ତ୍ରୀ) ବଣ. ପୁଂ (ବହୁବ୍ରୀହି)—ଦୁଇ ହସ୍ତବିଶିଷ୍ଟ—
Having two hands; bimanous
ଦେ. ବ—ମନୁଷ୍ୟ—Man.
ଏକାକରେ ଦ୍ୱିକରେ ସ୍ତୀକନ ଧର ଚତୁଷ୍ପର ବର୍ଣନକୁ ପଞ୍ଚକରେ ସ୍ୱତକରେ ଯାଉଅଛନ୍ତି । ଯଦୁମଣି. ରହସ୍ୟ ।

**ଦ୍ୱିକରୀ**—ସ. ବଣ ( ଦ୍ୱି + କର+ଇନ୍; ୧ମା. ୧ବ )—ଦ୍ୱି ହସ୍ତବିଶିଷ୍ଟ
Dwikari (ଜୀବ)—( animal ) Having two hands; bimanous.

**ଦ୍ୱିକର୍ମକ**—ସ. ବଣ—(ଯେଉଁ କ୍ରିୟାର) ଦୁଇଟି କର୍ମ ଥାଏ—
Dwi karmaka (a verb) Governing two objects
( ଉଦାହରଣ—ଶିକ୍ଷକ ଛାତ୍ରଙ୍କୁ ପ୍ରଶ୍ନ ପଚାରିଲେ; ରାମ ଗୋବିନ୍ଦଙ୍କୁ ପଇସା ମାଗିଲା । )

**ଦ୍ୱି ଗର୍ଭ**—ସ. ବଣ—ଯେଉଁ ଜନ୍ତୁର ଦୁଇଟି ଗର୍ଭ ଥାଏ—
Dwigarbha Marsupial; having a pouch under the belly.
(ଦ୍ୱିଗର୍ଭକ—ଅନ୍ୟରୂପ)
(ଦ୍ୱିଗର୍ଭା—ସ୍ତ୍ରୀ) [ଦ୍ର—ଅଷ୍ଟ୍ରେଲିଆ ମହାଦେଶରେ ଅପୋସମ୍, କଙ୍ଗାରୁ ଆଦି କେତେକ ପଶୁଙ୍କର ଛୁଆମାନଙ୍କୁ ବହନ କରିବା ନିମନ୍ତେ ପେଟତଳେ ଚମର ଗୋଟିଏ ମୁଣି ଥାଏ । ]

**ଦ୍ୱିଗୁ**—ସ. ବଣ (ବହୁବ୍ରୀହି, ଦ୍ୱି+ଗୋ)—୧ । ଯେଉଁ ବ୍ୟକ୍ତିର ଦୁଇଟି ଗୋରୁ ଅଛି—1. ( a person ) Owing two cows.
Dwigu
୨ । ଦୁଇଟି ଗୋରୁ ବଦଳରେ ଯାହା ବଦଳା ଯାଇଅଛି—
2. Bartered or exchanged for two cows.
ବ—ସମାହାରାର୍ଥ ଅର୍ଥରେ ସଂଖ୍ୟାପୂର୍ବକ କର୍ମଧାରୟ ସମାସ—
A class of compounds indicating a collection or number in which the first member is a numeral.
(ଯଥା—ତ୍ରିଭୁବନ, ତ୍ରିଲୋକୀ, ଚତୁଷ୍ପଦୀ ଇତ୍ୟାଦି ।)
[ ଦ୍ର—ସଂସ୍କୃତରେ ଦ୍ୱିଗୁସମାସ ତ୍ରିବିଧ ଯଥା—୧ । ଉତ୍ତରପଦ ଯଥା—ସପ୍ତମାତୃଜନ୍ୟ; ୨ । ସମାହାର ଯଥା — ତ୍ରିଭୁବନ, ସପ୍ତସତୀ, ତ୍ରିଲୋକୀ । ୩ । ତଦ୍ଧିତାର୍ଥେ ଯଥା—ଦ୍ୱୈମାତୁର, ଅଷ୍ଟାବର୍ଷ ଇତ୍ୟାଦି ।

**ଦ୍ୱିଗୁଣ**—ସ. ବଣ—ଦ୍ୱିଗୁଣିତ ( ଦେଖ )
Dwiguna Dwigunita (See)

**ଦ୍ୱିଗୁଣିତ**—ସ. ବଣ (ଦ୍ୱି + ଗୁଣିତ)—୧ । ଦୁଇଦ୍ୱାରା ଗୁଣିତ—
Dwigunita 1. Multiplied by two
୨ । ଯେତିକି ଥିଲା ଆଉ ସେତିକି, ଡବଲ—
2. Rouble.
୩ । ଦୁଇ ଭାଙ୍ଗ—3 Twofold; folded double.
୪ । ଅତିଶୟ ବୃଦ୍ଧିପ୍ରାପ୍ତ—
4. Intensified; redoubled.
୫ । ଗୁଡ଼ାଇ ଅବୃତ—5. Enveloped.
୬ । ଯେତିକି ଥିଲା ଆଉ ସେତିକି ବର୍ଦ୍ଧିତ—
6 Doubled; doubly increased.

**ଦ୍ୱିଗୁଣୀକୃତ**—ସ ବଣ. (ଦ୍ୱିଗୁଣ+ଅଭୂତ ତଭାବେ. ଚ୍ୱି+କୃତ)—
Dwigunikruta ୧ । ଦୋଓଡ଼ା ହୋଇଥିବା—
1. Folded double.
୨ । ଅତିଶୟ ବୃଦ୍ଧିପ୍ରାପ୍ତ—2. Redoubled; intensified
୩ । ଦୁଇଗୁଣ କରାଯାଇଥିବା—
3. Doubled; augmented.

**ଦ୍ୱିଚତ୍ୱାରିଂଶ**—ସ. ବଣ ( ଦ୍ୱିଚତ୍ୱାରିଂଶତ୍+ପୂରଣାର୍ଥ. ଅ )—ବୟାଳିଶି
Dwichatwārimsa ସ୍ଥାନୀୟ—Forty second.
(ଦ୍ୱିଚତ୍ୱାରିଂଶତ୍ତମ—ଅନ୍ୟରୂପ)

**ଦ୍ୱିଚତ୍ୱାରିଂଶତ୍**—ସ. ବ ଓ ବଣ (ମ. ପ. ଲୋ; ଦ୍ୱି ଅଧିକ ଚତ୍ୱାରିଂଶତ୍)-
Dwichatwārimsat ଚାଳିଶି ଅପେକ୍ଷା ୨ ଅଧିକ ସଂଖ୍ୟା, ୪୨; ବୟାଳିଶି - 42; Forty two.

**ଦ୍ୱିଚାରିଣୀ**—ସଂ. ବଣ. ସ୍ତ୍ରୀ. (ଦ୍ୱି+ଚର୍ ଧାତୁ + କର୍ତ୍ତୃ. ଇନ୍+ସ୍ତ୍ରୀ. ଈ)—
Dwichārini ଯେଉଁ କପଟୀ ସ୍ତ୍ରୀର ଦୁଇ ଜଣ ପ୍ରଣୟୀ ଥାନ୍ତି—
( a woman ) Having two lovers

**ଦ୍ୱିଜ**—ସଂ. ବ. ପୁଂ ( ଦ୍ୱି + ଜନ ଧାତୁ+କର୍ତ୍ତୃ. ଅ )—
Dwija ୧ । ଦ୍ୱିଜାତି; ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ; ହିନ୍ଦୁମାନଙ୍କର
(ଦ୍ୱିଜା—ସ୍ତ୍ରୀ) ପ୍ରଥମ ତିନି ଉଚ୍ଚ ବର୍ଣ୍ଣ—1. The twice-born castes (Brāhmana, Kshatriya and Baisya) amongst the Hindus.
[ ଦ୍ର—ଏମାନେ ଥରେ ମାତ ଗର୍ଭରୁ ଜନ୍ମ ହୁଅନ୍ତି ଓ ଉପନୟନରୂପ ସଂସ୍କାର ଦ୍ୱାରା ଆଉ ଥରେ ଜନ୍ମିବାର କଳ୍ପିତ ହୁଅନ୍ତି । ]
୨ । ବ୍ରାହ୍ମଣ—2. A Brāhmana.
୩ । ଅଣ୍ଡଜ ଜୀବ ( ପକ୍ଷୀ, ସରୀସୃପ ଆଦି )—
3. Oviparous animals ( birds, snakes, reptiles and fishes ),
[ ଦ୍ର—ଏମାନେ ଡିମ୍ବରୂପରେ ମାତୃଗର୍ଭରୁ ପ୍ରଥମେ ଜନ୍ମ ହୁଅନ୍ତି ଓ ପରେ ଡିମ୍ବ ଫୁଟି ତନ୍ମଧ୍ୟରୁ ଜୀବ ଆକାର ଧାରଣ କରି ଜନ୍ମନ୍ତି ।]
୪ । ଦନ୍ତ—4. Tooth.
[ ଦ୍ର—ଜନ୍ମପରେ ଶିଶୁର ଦାନ୍ତ ଉଠେ ଓ କଛିଦିନ ପରେ ତାହା ପଡ଼ିଯାଇ ଆଉ ଥରେ ଦାନ୍ତ ଉଠେ । ]

ବିଣ—ଯେ ଦୁଇଥର ଜନ୍ମଗ୍ରହଣ କରେ—Twice-born.

ଦ୍ୱିଜଦାସ—ସଂ. ବି. (୬ଷ୍ଠୀ ତତ୍; ଦ୍ୱିଜ+ଦାସ)—ଶୂଦ୍ର—
Dwijadāsa A Śūdra.
(ଦ୍ୱିଜସେବକ—ଅନ୍ୟରୂପ)

ଦ୍ୱିଜନ୍ମା—ସଂ. ବି. (ବହୁବ୍ରୀହି; ଦ୍ୱି+ଜନ୍ମନ୍; ୧ମା. ୧ବ)—
Dwijanmā ଦ୍ୱିଜ (ଦେଖ)—Dwija (See)
ସଂ. ବିଣ—୧ । ଦୁଇଟି ଭିନ୍ନ ପ୍ରକୃତିବିଶିଷ୍ଟ—
1. Having two different natures (Apte)
୨ । ଦୁଇ ଥର ଜନ୍ମଗ୍ରହଣ କରିଥିବା—
2. Regenerated (Apte).

ଦ୍ୱିଜ ପତି—ସଂ ବି. (ଦ୍ୱିଜ+ପତି=ଶ୍ରେଷ୍ଠ)—ଶ୍ରେଷ୍ଠ ବ୍ରାହ୍ମଣ—
Dwija pati 1. A Brāhmaṇa of superior order
(ଦ୍ୱିଜରାଜ—ଅନ୍ୟରୂପ)
୨ । ପକ୍ଷୀରାଜ; ଗରୁଡ଼—2 Garurda.
୩ । ସର୍ପରାଜ, ଅନନ୍ତ, ବାସୁକୀ—
3. The mythological king of serpents.
୪ । ଚନ୍ଦ୍ର—4. The moon.
[ ଦ୍ର—ଗ୍ରହ, ନକ୍ଷତ୍ର, ବିପ୍ର ଓ ଲତାଦି ରାଜ୍ୟରେ ବ୍ରହ୍ମା ଚନ୍ଦ୍ରଙ୍କୁ ରାଜାରୂପେ ଅଭିଷିକ୍ତ କରିଥିଲେ । ]
୫ । କର୍ପୂର—5. Camphor (Apte).

ଦ୍ୱିଜ ପ୍ରପା—ସଂ. ବି. (ଦ୍ୱିଜ+ପ୍ର+ପା ଧାତୁ+କର୍ତ୍ତୃ. କ୍ୱିପ୍; ପକ୍ଷୀମାନେ ଏଥିରୁ ଜଳପାନ କରିବାରୁ)—୧ । ଗଛମୂଳର ଚାରିପାଖେ ପାଣି ପାଇଁ କରାଯିବା ମଳା; ଆଳବାଳ—
Dwija prapā
1. A trench or basin round the root of a tree for holding water (Apte)
୨ । କୂପ ନିକଟରେ ପଶୁପକ୍ଷୀ ଆଦିଙ୍କ ଜଳ ପିଇବା ପାଇଁ ନିର୍ମିତ କୁଣ୍ଡ—2. A trough near a well for watering birds, cattle etc (Apte).

ଦ୍ୱିଜପ୍ରିୟା—ସଂ. ବି. (ବୈଦ୍ୟକ)—ସୋମଲତା—
Dwijapriyā The Moon-plant.

ଦ୍ୱିଜ ବନ୍ଧୁ—ସଂ. ବି—୧ । ନିକୃଷ୍ଟ ଶ୍ରେଣୀର ବ୍ରାହ୍ମଣ—
Dwija bandhu 1. A Brāhmaṇa of a lower order.
୨ । ଦୈବଜ୍ଞ; ଭାଟଆଦି—2 Astrologers etc.
୩ । ଦ୍ୱିଜଲିଙ୍ଗୀ (ଦେଖ)—3. Dwijaliṅgī (See)
୪ । ଯେ ନାମରେ ଓ ଜନ୍ମତଃ ବ୍ରାହ୍ମଣ, କିନ୍ତୁ ବ୍ରାହ୍ମଣୋଚିତ କର୍ମ କରେ ନାହିଁ—4. A person who is Brāhmaṇa by name and birth only but not by acts.

ଦ୍ୱିଜ ବର—ସଂ. ବି—ଦ୍ୱିଜ ସତ୍ତମ (ଦେଖ)
Dwija bara Dwija sattama (See)
(ଦ୍ୱିଜମୁଖ୍ୟ—ଅନ୍ୟରୂପ)

ଦ୍ୱିଜ ବାହନ—ସଂ. ବି. (ବହୁବ୍ରୀହି; ଦ୍ୱିଜ=ଗରୁଡ଼ ପକ୍ଷୀ ଅଟେ ବାହନ ଯାହାଙ୍କର)—ବିଷ୍ଣୁ—
Dwija bāhana An epithet of Bishṇu.

ଦ୍ୱିଜରାଜ—ସଂ ବି (ଦ୍ୱିଜ+ରାଜନ୍)—ଦ୍ୱିଜପତି (ଦେଖ)
Dwijarāja Dwijapati (See)

ଦ୍ୱିଜଲିଙ୍ଗୀ—ସଂ. ବି. (ଦ୍ୱିଜ+ଲିଙ୍ଗ୍+ଇନ୍; ୧ମା. ୧ବ)—
Dwijaliṅgī ୧ । ଛଳ ବ୍ରାହ୍ମଣ; ବ୍ରାହ୍ମଣ ବେଶଧାରୀ ଅବ୍ରାହ୍ମଣ—
(ଦ୍ୱିଜବ୍ରୁବ—ଅନ୍ୟରୂପ) 1. One disguised as a Brāhmaṇa; one who pretends to be a Brāhmaṇa, a pseudo Brāhmaṇa.
୨ । କ୍ଷତ୍ରିୟ—2. A Kshatriya (Apte).

ଦ୍ୱିଜ ସତ୍ତମ—ସଂ. ବି (ଦ୍ୱିଜ+ସତ୍ତମ)—ଉତ୍କୃଷ୍ଟଶ୍ରେଣୀର ବ୍ରାହ୍ମଣ—
Dwija sattama A Brāhmaṇa of superior order.

ଦ୍ୱିଜା—ସଂ. ବି—୧ । ୨୭ ନକ୍ଷତ୍ର ମଧ୍ୟରୁ ୨ୟ ନକ୍ଷତ୍ର; ଭରଣୀ ନକ୍ଷତ୍ର—
Dwijā 1. The second asterism.
୨ । (ବୈଦ୍ୟକ) ରେଣୁକା ନାମକ ସୁଗନ୍ଧ ଦ୍ରବ୍ୟ—
2. Piper Aurantiacum.

ଦ୍ୱିଜାତି—ସଂ. ବି. (ବହୁବ୍ରୀହି; ଦ୍ୱି+ଜାତି)—ଦ୍ୱିଜ (ଦେଖ)
Dwijāti Dwija (See)

ଦ୍ୱିଜାତୀୟ—ସଂ. ବିଣ. (ଦ୍ୱି+ଜାତି+ଈୟ)—୧ । ଦୁଇ ପ୍ରକାରର—
Dwijātiya 1. Of two kinds.
୨ । ଦ୍ୱିଜ ସମ୍ବନ୍ଧୀୟ—2. Relating to the twice-born castes.
୩ । ଦୋଗଲା—3. Mongrel, hybrid.
ବି—ଖଚର; ଅଶ୍ୱତର—Mule.

ଦ୍ୱିଜିହ୍ୱ—ସଂ. ବିଣ. (ଦ୍ୱି+ଜିହ୍ୱା+ଅ)—୧ । ଦୁଇଗୋଟି ଜିହ୍ୱାବିଶିଷ୍ଟ—
Dwijihwa 1. Two-tongued; having a forked tongue.
୨ । ଯାହାର କଥାର ଠିକ ନ ଥାଏ—
2. Double-tongued; insincere.
୩ । ଖଳ—3. Wicked.
୪ । ଦୁର୍ନାମକାରୀ, ଖଚୁଆ—
4. Slanderous; gossiping.
ବି—୧ । ସର୍ପ—1. Serpent (having forked tongue).

[ଦ୍ର—ସର୍ପମାନଙ୍କର ଜିଭର ଅଗ୍ରଭାଗ ଦ୍ୱିଶାଖ । ମହାଭାରତରେ ବର୍ଣ୍ଣିତ ହୋଇଅଛି ଯେ ଗରୁଡ଼ କୁଶାସନରେ ଅମୃତ ଲୁଚାଇ ରଖିଥିବାର ମନେ କରି ସର୍ପମାନେ ସେହି କୁଶାସନ ଚାଟିବା ବେଳେ କୁଶର ଧାରରେ ସେମାନଙ୍କର ଜିଭ ଚିରି ହୋଇଗଲା । ]

୨ । ଚୁଗୁଲିଆ; ଖଚୁଆ ବ୍ୟକ୍ତି—2. An informer; a tale bearer; a slanderer; a gossip.
୩ । ଚୋର—3. A thief.
୪ । ଖଳ ବ୍ୟକ୍ତି—4 A wicked person.

ଦ୍ୱିଜେ—ଦେ. ଅ—୧ । ଦୁଜେ ( ଦେଖ )
Dwije 1. Duje ( See )

୨ । ବ. (ଦ୍ୱିଜ ଶବ୍ଦର ଓଡ଼ିଆ ବହୁବଚନ)—
ଦ୍ୱିଜମାନେ; ବ୍ରାହ୍ମଣମାନେ—
2. (plural) Brāhmaṇas.

ଦ୍ୱିଜେନ୍ଦ୍ର—ସଂ. ବ ( ୬ଷ୍ଠୀ ତତ୍; ଦ୍ୱିଜ+ଇନ୍ଦ୍ର )—
Dwijendra ଦ୍ୱିଜରାଜ ( ଦେଖ )
(ଦ୍ୱିଜେଶ—ଅନ୍ୟରୂପ) Dwijarāja ( See )

ଦ୍ୱିଜୋତ୍ତମ—ସଂ. ବ (୭ମୀତତ୍; ଦ୍ୱିଜ+ଉତ୍ତମ)—ଦ୍ୱିଜବର ( ଦେଖ )
Dwijottama Dwijabara ( See )

ଦ୍ୱିଟ୍—ସଂ. ବି. (ଦ୍ୱିଷ୍ ଧାତୁ+କ୍ୱିପ୍; ଦ୍ୱିଷ୍ ଶବ୍ଦର ୧ମା. ୧ବ)—
Dwiṭ ଶତ୍ରୁ—Enemy.
ବଣ—ବିଦ୍ୱେଷୀ; ଶତ୍ରୁଭାବାପନ୍ନ; ଦ୍ୱେଷକାରୀ—
Inimical; spiteful; malicious; hostile.

ଦ୍ୱଠ—ସଂ. ବି. ( ବହୁବ୍ରୀହି; ଦ୍ୱି+ଠ; ଯହିଁରେ ଦୁଇଟି ଠ ଅକ୍ଷର ଅଛି, ଯଥା, ଃ )—ବିସର୍ଗ—
Dwiṭha
The sign Bisarga in the Sanscrit and other Aryan vernaculars (Apte).

ଦ୍ୱିତୟ—ସଂ. ବି. ( ଦ୍ୱି+ତୟ )—
Dwitaya ୧ । ଯୁଗ୍ମ—1. Pair; couple.
୨ । ଦୁଇ ସଂଖ୍ୟା—2. Two.
୩ । ଦୁଇ ପ୍ରକାର—3. Two kinds.
ବଣ—୧ । ଡବଲ—1. Double.
୨ । ଦୁଇ ପ୍ରକାରର—2. Of two kinds.
୩ । ଦୁଇ ସଂଖ୍ୟକ—3. Numbering two.
୪ । ଦ୍ୱିଗୁଣିତ; ଦୋହରା—4. Twofold (Apte).
୫ । ଦୁଇ ଭାଗରେ ବିଭକ୍ତ—
5. Divided into two (Apte).

ଦ୍ୱିତଲ—ସଂ. ବି. ( ବହୁବ୍ରୀହି; ଦ୍ୱି+ତଲ )—ଦୋମହଲା—
Dwitala Two-storied.
ବ—କୋଠାର ଉପର ମହାଲ; ଏକ ମହାଲା ଉପରେ ନିର୍ମିତ ଗୃହ—Second storey.

ଦ୍ୱିତୀୟ—ସଂ. ବଣ. ପୁଂ ( ଦ୍ୱି+ପୂରଣାର୍ଥେ. ତୀୟ )—
Dwitīya ୧ । ଦୁଇର ପୂରକ; ଦୁଇ ସ୍ଥାନୀୟ—
(ଦ୍ୱିତୀୟା—ସ୍ତ୍ରୀ) 1. Second.
(୨ୟ—ସାଙ୍କେତିକ ରୂପ) ୨ । ଅନ୍ୟ—2. Another.
ବି. ପୁଂ—୧ । ପୁତ୍ର—1. Son.
୨ । ସଙ୍ଗୀ—2. Companion (Apte).
୩ । ବନ୍ଧୁ—3. Friend (Apte).
[ ଦ୍ରଷ୍ଟବ୍ୟ—ଏ ଶବ୍ଦ ଅନ୍ୟ ବ୍ୟକ୍ତିବାଚକ ଶବ୍ଦସଙ୍ଗେ ଯୁକ୍ତ ହୋଇ ସମାସରେ ଉପଯୁକ୍ତ ୨ୟ ଓ ୩ୟ ଅର୍ଥ ପ୍ରତିପାଦନ କରେ । ଯଥା—ପତ୍ନୀ ଦ୍ୱିତୀୟ—ଯାହାଙ୍କ ସଙ୍ଗେ ପତ୍ନୀ ଅଛନ୍ତି । ]
୪ । ଦ୍ୱିତୀୟ ପୁରୁଷ ( ଦେଖ )
4. Dwitīya purusha ( See )
୫ । ଅର୍ଦ୍ଧାଂଶ—5. The half (Apte).

ଦ୍ୱିତୀୟକ—ସଂ. ବଣ. ( ଦ୍ୱିତୀୟ+କ )—
Dwitīyaka ୧ । ଦ୍ୱିତୀୟ ( ଦେଖ )
(ଦ୍ୱିତୀୟିକ—ଅନ୍ୟରୂପ) 1 Dwitīya ( See )
୨ । ଦ୍ୱିତୀୟ ଥର ଘଟୁଥିବା—
2. Happening a second time (Apte).
୩ । ଯେଉଁ ଜ୍ୱର ପ୍ରତ୍ୟେକ ଦ୍ୱିତୀୟ ଦିନ ଆକ୍ରମଣ କରେ; ଏକୋଇ ( ଜ୍ୱର )—3 (fever) Returning every second day (Apte).

ଦ୍ୱିତୀୟ ଜଂଘା—ଦେ. ବି—ଦେଉଳର ଅଂଶବିଶେଷ—
Dwitīya jaṁghā Name of a particular part of a temple.
( ଦେଉଳ ତଳେ ନୋଟ୍ ଦେଖ । )

ଦ୍ୱିତୀୟତଃ—ସଂ. କ୍ରି. ବଣ. ( ଦ୍ୱିତୀୟ+ତସ୍ )—
Dwitīyataḥ ପ୍ରଥମ ବିଷୟ ପରେ ବିବୃତ ହେବା ପ୍ରକାରେ—
secondly; in the second place.

ଦ୍ୱିତୀୟ ପୁରୁଷ—ସଂ. ବି. ( ବ୍ୟାକରଣ )—ମଧ୍ୟମ ପୁରୁଷ ( ତୁ, ତୁମ୍ଭେ, ଆପଣ ପଦମାନ )—
Dwitīya purusha
(grammar) The second person.

ଦ୍ୱିତୀୟ ବରଣ୍ଡୀ—ଦେ. ବି—ଦେଉଳର ଅଂଶବିଶେଷ—
Dwitīya baraṇḍī Name of a particular part of a temple.

ଦ୍ୱିତୀୟ ବୟଃ—ସଂ. ବଣ. ( ବହୁବ୍ରୀହି; ଦ୍ୱିତୀୟ+ବୟସ୍ )—
Dwitīya bayaḥ ୧ । ଦ୍ୱିତୀୟାଶ୍ରମୀ ବ୍ୟକ୍ତି—
1 Having arrived at the second stage of life (Apte).

ଦ୍ୱିତୀୟ ବର୍ଣ୍ଣ—ସଂ. ବ (କର୍ମଧା; ଦ୍ୱିତୀୟ+ବର୍ଣ୍ଣ )—
Dwitīya barṇṇa ୧ । ହିନ୍ଦୁମାନଙ୍କ ମଧ୍ୟରେ କ୍ଷତ୍ରିୟ ଜାତି—
1. The Kshatriya caste amongst the Hindus.
୨ । (ବ୍ୟାକରଣ) ବର୍ଗର ପ୍ରଥମ ବର୍ଣ୍ଣ ପରେ ଥିବା ବର୍ଣ୍ଣ—
2. ( grammar ) The second of a class of consonant letters.

ଦ୍ୱିତୀୟବାନ୍—ସଂ. ବି. ( ଦ୍ୱିତୀୟ+ବତ୍; ୧ମା. ୧ବ. )—
Dwitīyabān ସହାୟ ବା ସଙ୍ଗୀ ଯୁକ୍ତ—
Having a companion or helper.
ଦ୍ୱିତୀୟବାନ ବୃଦ୍ଧମାନ ହେଲେଁ ମତେ
ତୁଥକ୍କ ଲୋକେ ଏହା ମଧ୍ୟ କହ ମୋତେ । କୃଷ୍ଣସିଂ. ମହାଭାରତ. ବନ ।

ଦ୍ୱିତୀୟା—ସଂ. ବଣ. ସ୍ତ୍ରୀ. ( ଦ୍ୱିତୀୟ+ସ୍ତ୍ରୀ. ଆ )—ଦ୍ୱିତୀୟର ସ୍ତ୍ରୀଲିଙ୍ଗ—
Dwitīyā Feminine of Dwitīya.
ସଂ. ବ. ସ୍ତ୍ରୀ ( ଦ୍ୱିତୀୟ+ସ୍ତ୍ରୀ. ଆ )—
୧ । ପତ୍ନୀ; ଭାର୍ଯ୍ୟା—1. Wife.
୨ । ସହଚରୀ; ସଖୀ—2. Female companion.
୩ । ପକ୍ଷର ଦ୍ୱିତୀୟ ତିଥି; ପ୍ରତିପଦ ବା ଅମାବସ୍ୟାର ପରବର୍ତ୍ତୀ ତିଥି—3. The second day of a lunar fortnight.

[ଦ୍ର—ନିମ୍ନଲିଖିତ ଦ୍ୱିତୀୟା ମାନ ପର୍ବଦିନ ଅଟେ—ଯଥା ୧। ଆଷାଢ଼ ଶୁକ୍ଳ ଦ୍ୱିତୀୟା—ଶ୍ରୀଗୁଣ୍ଡିଚା ବା ଜଗନ୍ନାଥଙ୍କର ରଥଯାତ୍ରା। ୨। କାର୍ତ୍ତିକ ଶୁକ୍ଳ ଦ୍ୱିତୀୟା—ଅଧ୍ୟୟନ ଦ୍ୱିତୀୟା—ପାଠ ପଠନ ନିଷେଧ। ୩। କାର୍ତ୍ତିକ ଶୁକ୍ଳ ଦ୍ୱିତୀୟା ବା ଭ୍ରାତୃ ଦ୍ୱିତୀୟା ଶ୍ରୀ ଲିଙ୍ଗରାଜ ଦେବଙ୍କର ଯାତ୍ରା।

**ଦ୍ୱିତୀୟାକୃତ**—ସଂ. ବିଣ (ଦ୍ୱିତୀୟ+ଆକୃତ)—ଦୋଓଡ଼ ଚଷ ହୋଇଥିବା—Twice tilled (field).
Dwitīyākṛuta

**ଦ୍ୱିତୀୟାଶ୍ରମ**—ସଂ. ବି (କର୍ମଧା, ଦ୍ୱିତୀୟ+ଆଶ୍ରମ)—ହିନ୍ଦୁର ୪ ଗୋଟି ଆଶ୍ରମ ମଧ୍ୟରୁ ଦ୍ୱିତୀୟ ଆଶ୍ରମ; ଗୃହସ୍ଥାଶ୍ରମ, ଗାର୍ହସ୍ଥ୍ୟ—The second stage of a Hindu's life viz that of a married householder; family life.
Dwitīyāśrama
(ଦ୍ୱିତୀୟାଶ୍ରମୀ—ବିଣ ପୁଂ)

**ଦ୍ୱିତ୍ୱ**—ସଂ. ବି (ଦ୍ୱି+ଭାବ. ତ୍ୱ)—୧। ଦ୍ୱିଗୁଣ ହେବାର ଅବସ୍ଥା; ଦ୍ୱିଗୁଣତ୍ୱ—1. Reduplication; duality.
Dwitwa
୨। ପୁନରୁକ୍ତି; ଗୋଟିଏ ବିଷୟକୁ ଦୁଇ ଥର କହିବା—2. Repetition.
୩। ଯୁଗ୍ମ, ଯୁଗଳ; ଯୋଡ଼ା—3 A pair; couple (Apte)
୪। ଦୁଇ ସଂଖ୍ୟା—4. The number two (Apte).

**ଦ୍ୱିତ୍ର**—ସଂ. ବି ଓ ବିଣ (ଦ୍ୱି+ତ୍ରି)—ଦୁଇ ବା ତିନି—Two or three (Apte)
Dwitra

**ଦ୍ୱିତ୍ରିଂଶ**—ସଂ. ବିଣ—ଦ୍ୱାତ୍ରିଂଶ (ଦେଖ) Dwātrimśa (See)
Dwitrimśa
(ଦ୍ୱିତ୍ରିଂଶତ୍ତମ—ଅନ୍ୟରୂପ)

**ଦ୍ୱିତ୍ରିଂଶତ୍**—ସଂ. ବି. ଓ ବିଣ—ଦ୍ୱାତ୍ରିଂଶତ୍ (ଦେଖ) Dwātrimśat (See)
Dwitrimśat
(ଦ୍ୱାତ୍ରିଂଶତ୍—ଅନ୍ୟରୂପ)

**ଦ୍ୱିଦତ୍**—ସଂ. ବିଣ. ପୁଂ (ବହୁବ୍ରୀହି; ଦ୍ୱି+ଦନ୍ତ; ଦନ୍ତ ସ୍ଥାନରେ ସମାସରେ ଦତ୍)—ଦ୍ୱିରଦ; ଦୁଇ ଦାନ୍ତ ବିଶିଷ୍ଟ, ଦୁଇଦାନ୍ତିଆ—Having two teeth or tusks.
Dwidat
(ଦ୍ୱିଦତୀ—ସ୍ତ୍ରୀ)

**ଦ୍ୱିଦଳ**—ସଂ. ବିଣ (ବହୁବ୍ରୀହି; ଦ୍ୱି+ଦଳ)—୧। ଦୁଇ ପାଖୁଡ଼ା ବିଶିଷ୍ଟ—1. Two-petalled; bipetalous.
Dwi dala
୨। ଦୁଇ ଫାଳବିଶିଷ୍ଟ (ପତ୍ର); ଦୁଇ ପତ୍ରବିଶିଷ୍ଟ—2. Two leafed; bilobate; two-bladed (leaf).
[ଦ୍ର—କାଞ୍ଚନ ଓ କଂସାର ଲତା ପ୍ରଭୃତିର ପତ୍ର ଦୁଇଦଳବିଶିଷ୍ଟ ଅଟେ।]
ବି—ଡାଲି—Pulse.

**ଦ୍ୱିଦଶ**—ସଂ. ବି ଓ ବିଣ (ମ. ପ. ଲୋ; ଦ୍ୱି ଅଧିକ ଦଶ)—ଦ୍ୱାଦଶ; ବାର; ୧୨—Twelve.
Dwidaśa

**ଦ୍ୱିଦ୍ୱାଦଶ**—ସଂ. ବି (ଦ୍ୱନ୍ଦ୍ୱ; ଦ୍ୱି=ଦ୍ୱିତୀୟ+ଦ୍ୱାଦଶ)—(ଫଳିତ ଜ୍ୟୋତିଷ) ବିବାହରେ ନିଷିଦ୍ଧ ବରକନ୍ୟାଙ୍କର ରାଶି ଦ୍ୱୟର ଆପେକ୍ଷିକ ଅବସ୍ଥିତି ବିଶେଷ—(astrology) A particular comparative position of the zodicical signs in the horoscopes of the bride and bridegroom, which is deemed very inauspicious.
Dwidwādaśa
[ଦ୍ର—ଯେବେ କନ୍ୟାର ଜନ୍ମଲଗ୍ନ ବରର ଜନ୍ମଲଗ୍ନର ଦ୍ୱିତୀୟ ହୁଏ, ଅର୍ଥାତ୍ କ୍ରମିକ ସଂଖ୍ୟା ଗଣନାରେ ବରର ଜନ୍ମଲଗ୍ନ କନ୍ୟାର ଲଗ୍ନର ଦ୍ୱାଦଶ ହୁଏ ତେବେ ଏହି ଯୋଗ ଘଟେ। ବରକନ୍ୟାଙ୍କ ଜାତକରେ ଏ ଯୋଗ ଘଟି ଥିବାର ଦେଖାଗଲେ ଏହା ଅତିଶୟ ଅଶୁଭ ଓ ଏ ଯୋଗଦୁଷ୍ଟ ଦମ୍ପତିଙ୍କର ଜୀବନ ଫଳିତ ଜ୍ୟୋତିଷ ମତରେ ଅତି ଅଶୁଭମୟ। ହି. ଶବ୍ଦସାଗର।]

**ଦ୍ୱିଦେହ**—ସଂ. ବି (ବହୁବ୍ରୀହି; ଦ୍ୱି+ଦେହ, ଏହାଙ୍କ ମୁଣ୍ଡ ହାତୀ ମୁଣ୍ଡପରି ଓ ଦେହ ନର ଦେହପରି ଥିବାରୁ)—ଗଣେଶ—God Gaṇeśa.
Dwideha

**ଦ୍ୱିଧ**—ସଂ. ବିଣ (ଦ୍ୱି+ଧା ଧାତୁ+କର୍ମ. ଅ)—୧। ଦୁଇଖଣ୍ଡ ବା ଭାଗରେ ବିଭକ୍ତ—1 Divided into two parts.
Dwidha
୨। ଦୁଇଫାଳ ହୋଇ ଚିରି ଯାଇଥିବା—2. Split asunder.

**ଦ୍ୱିଧା**—ସଂ. କ୍ରି. ବିଣ (ଦ୍ୱି+ପ୍ରକାରାର୍ଥେ. ଧା)—୧। ଦୁଇ ଥର—1. Twice.
Dwidha
୨। ଦୁଇ ଗୁଣ—2. Doubly.
୩। ଦୁଇ ଖଣ୍ଡରେ—3. In two; into two.
୪। ଦୁଇ ପ୍ରକାରରେ—4. In two ways.
୫। ଦୁଇ ଦିଗରେ—5. In two directions.
୬। ଦୁଇ ଭାଗରେ—6 In two parts.
ବିଣ. ସ୍ତ୍ରୀ (ଦ୍ୱିଧ+ଆ)—୧। ଦୁଇ ପ୍ରକାରର—1. Of two kinds; of two sorts.
୨। ଡବଲ, ଦ୍ୱିଗୁଣିତ—2. Twofold; double.

**ଦ୍ୱିଧା** ଦେ. ବି (ଦ୍ୱିଧା ଭାବ) ଧୋକା; ସନ୍ଦେହ—Hesitation; doubt; vacillation; misgiving.
दुबधा

**ଦ୍ୱିଧା କରଣ**—ସଂ. ବି—ଦୁଇ ବିଭାଗରେ ବିଭାଗ କରଣ—Dividing into two; splitting up.
Dwidhā karaṇa

**ଦ୍ୱିଧା କରିବା**—ଦେ. କ୍ରି.—୧। ସନ୍ଦେହ ହେବା; ଦୋଦୋପାଞ୍ଚ ହେବା—1. To hesitate.
Dwidhā karibā
द्विधाकरना
୨। ଦୁଇଖଣ୍ଡ କରିବା—2. To split up; to divide into two.

**ଦ୍ୱିଧା କୃତ**—ସଂ. ବିଣ.—ଦୁଇ ଅଂଶରେ ବିଭକ୍ତ—Divided into two; split into two parts.
Dwidhā kṛuta

**ଦ୍ୱିଧା ଗତି**—ସଂ ବିଣ. (ବହୁବ୍ରୀହି; ଦ୍ୱିଧା+ଗତି)—୧। ଉଭୟଚର—1. Amphibious.
Dwidhā gati
୨। ଦୁଇ ପ୍ରକାର ଗତିବିଶିଷ୍ଟ—2. Having two kinds of motion.
ବି.—୧। କୁମ୍ଭୀର—1. A crocodile.
୨। ଉଭୟଚର ଜନ୍ତୁ—2. An amphibious animal.
୩। କଙ୍କଡ଼ା—3. A crab (Apte).

ଦ୍ୱିଧା ଲେଖ୍ୟ—ସ. ବ. (ବୈଦ୍ୟକ)—ହିନ୍ତାଳ (ଦେଖ)
Dwidhā lekhya Hintāla (See)

ଦ୍ୱିନଗ୍ନକ—ସ. ବ. ପୁଂ—(ଦ୍ୱି+ନଗ୍ନ+କ)—ଯେଉଁ ବ୍ୟକ୍ତିର ସୁନ୍ନତ ହୋଇଅଛି—A circumcised person.
Dwinagnaka

ଦ୍ୱିନବତ—ସ. ବଣ.—(ଦ୍ୱିନବତି+ପୂରଣାର୍ଥେ. ଅ)—ବୟାନବେ ସ୍ଥାନୀୟ; ୯୨ ର ପୂରକ—
Dwinabata
(ଦ୍ୱିନବତିତମ—ଅନ୍ୟରୂପ) Ninetysecond.

ଦ୍ୱିନବତି—ସଂ. ବ ଓ ବଣ—ବୟାନବେ; ୯୨—
Dwinabati 92; ninetytwo.

ଦ୍ୱିପ—ସଂ. ବ. (ଦ୍ୱି+ପା. ଧାତୁ+କର୍ତ୍ତୃ. ଅ)—୧ । ହସ୍ତୀ; ଗଜ—
Dwipa 1 Elephant.
[ଦ୍ର—ହସ୍ତୀ ଥରେ ଶୁଣ୍ଢରେ ଓ ଥରେ ମୁହଁରେ, ଏପରି ଦୁଇ ଥରରେ ଜଳ ପାନ କରେ ।]
୨ । ନାଗ; ସର୍ପ—2. Serpent.
୩ । ନାଗେଶ୍ୱର ଗଛ—3. Mesua Ferra (tree)

ଦ୍ୱିପଞ୍ଚାଶ—ସଂ. ବଣ. (ଦ୍ୱିପଞ୍ଚାଶତ୍+ପୂରଣାର୍ଥ. ଅ)—ବାଆନ ସଂଖ୍ୟାର ପୂରକ,୫୨ ସ୍ଥାନୀୟ—Fiftysecond.
Dwipañchāśa
(ଦ୍ୱିପଞ୍ଚାଶତ୍ତମ—ଅନ୍ୟରୂପ)

ଦ୍ୱିପଞ୍ଚାଶତ୍—ସଂ. ବ. ଓ ବଣ—(ଦ୍ୱି ଅଧିକ ପଞ୍ଚାଶତ୍; ମ. ପ ଲୋ;)—
Dwipañchāśat ବାଆନ; ୫୨—52; fiftytwo.

ଦ୍ୱିପଥ—ସଂ. ବ. (ବହୁବ୍ରୀହି; ଦ୍ୱି+ପଥିନ୍)—ଯେଉଁଠାରେ ଦୁଇଟି ରାସ୍ତା ମିଳିତ ହୋଇଥାଏ, ଛକ—A meeting place of two roads; a cross-way.
Dwipatha

ଦ୍ୱିପଦ—ସଂ. ବଣ (ବହୁବ୍ରୀହି; ଦ୍ୱି+ପଦ)—୧ । ଯାହାର ଦୁଇଟି ପାଦ ଅଛି, ଦୁଇପାଦ ଯୁକ୍ତ—1. Biped; two-legged
Dwipada
(ଦ୍ୱିପଦୀ, ଦ୍ୱିପଦିକା—ସ୍ତ୍ରୀ) ୨ । ଦୁଇ ଚରଣଯୁକ୍ତ (ପଦ୍ୟ)—
2. (stanza) Having two feet.
୩ । ଦୁଇ ଶବ୍ଦ (ପଦ) ଯୁକ୍ତ (ବାକ୍ୟ)—
3. (a sentence) Having two words.
ବ.—୧ । ଦୁଇ ଚରଣଯୁକ୍ତ ଛନ୍ଦଃ—1. A couplet
୨ । ମନୁଷ୍ୟ—2. Man.
୩ । ପକ୍ଷୀ—3. Bird.
୪ । (ବ୍ୟାକରଣ) ସମାସ ବା ସନ୍ଧି ଯୋଗେ ଦୁଇ ଶବ୍ଦର ସମାହାର—4 (grammar) A combination of two words.
୫ । ରାକ୍ଷସ—5. Demon.
୬ । ଦେବତା—6. Deity.
୭ । (ଜ୍ୟୋତିଷ) ମିଥୁନ, ତୁଳା, କୁମ୍ଭ ଓ କନ୍ୟା ରାଶି—
7. The astrological signs of the twins (Gemini), the scales(Libra), the pitcher (Aquarius), and the virgin(Virgo)
୮ । (ଜ୍ୟୋତିଷ) ଧନୁ ରାଶିର ପୂର୍ବାର୍ଦ୍ଧ—8. The prior half of the astrological sign the archer or Sagittarius.
୯ । ଦୁଇଗୋଡ଼ିଆ ଜୀବ—9 A biped.

ଦ୍ୱିପଦିକା—ସଂ. ବ.—୧ । ପ୍ରାକୃତ ଛନ୍ଦୋବିଶେଷ—
Dwipadikā 1. A kind of Prākṛuta metre.
୨ । ଦ୍ୱିଗୁଣ ମୂଲ୍ୟ ବା ଧନ—
2. Double amount (M. W)

ଦ୍ୱିପଦୀ—ସଂ. ବ.—ଦ୍ୱିପଦିକା (ଦେଖ)
Dwipadī Dwipadikā (See)
ବଣ. ଓ ବ—ଦ୍ୱିପଦ (ଦେଖ)—Dwipada (See)

ଦ୍ୱିପାଦ—ସଂ. ବଣ. ଓ ବ—ଦ୍ୱିପଦ (ଦେଖ)
Dwipāda Dwipada (See)
(ଦ୍ୱିପାଦ୍; ଦ୍ୱିପଦ—ଅନ୍ୟରୂପ)

ଦ୍ୱିପାଦ୍ୟ—ସ. ବ—ଦୁଇଥର ଦଣ୍ଡ; ଦ୍ୱିଗୁଣ ଦଣ୍ଡ—
Dwipādya Double penalty.

ଦ୍ୱିପାୟୀ—ସ. ବ (ଦ୍ୱି+ପା. ଧାତୁ+କର୍ତ୍ତୃ ଣିନ୍; ୧ମା. ୧ବ)—
Dwipāyī ହସ୍ତୀ—Elephant.

ଦ୍ୱିପୁଟ କପାଟ—ସ. ବ—ଯାଉଁଳି କବାଟ—A door-frame having two door-leaves
Dwipuṭa kapāṭa

ଦ୍ୱିପୁରୋଦନ୍ତୀ—ସ. ବଣ. (ଜୀବ ବିଜ୍ଞାନ ପାରିଭାଷିକ ଶବ୍ଦ) (ଦ୍ୱି+ପୁରୋଦନ୍ତ+ଇନ୍; ୧ମା. ୧ବ)—ଯେଉଁ ଜୀବମାନଙ୍କର ମୁଖର ପୁରୋଭାଗରେ ପ୍ରତ୍ୟେକ ପାଟିରେ ୨ଟି ଲେଖାଏଁ କାଟିବା ଦାନ୍ତ ଥାଏ (ମୂଷା, ଗୁଣ୍ଡିଚ ମୂଷା ଇତ୍ୟାଦି)—Rodent; (animals) having two large incisor teeth in each jaw, distant from the molar teeth (e. g mouse; squirrel).
Dwipurodantī

ଦ୍ୱିବଚନ—ସ. ବ—ବ୍ୟାକରଣରେ ଦୁଇ ସଂଖ୍ୟାବୋଧକ ବଚନ—
Dwibachana (grammar) The dual number.
[ଦ୍ର—ସଂସ୍କୃତରେ ଏକବଚନ, ଦ୍ୱିବଚନ ଓ ବହୁବଚନ ଅଛି; କିନ୍ତୁ ଓଡ଼ିଆରେ ନାହିଁ । ଦ୍ୱିବଚନ ବୁଝାଇବାକୁ ହେଲେ ଶବ୍ଦ ପରେ ଦ୍ୱୟ, ଦୁହେଁ, ଦୁଇ ଆଦି ଯୋଗ କରାଯାଏ ।]

ଦ୍ୱିବର୍ଷିକା—ସ. ବ. ସ୍ତ୍ରୀ. (ଦ୍ୱିବର୍ଷ+ଇକ+ଆ)—ଦୁଇ ବର୍ଷ ବୟସ୍କା ମାଈ ବାଛୁରୀ—A female calf 2 years old.
Dwibarshikā
(ଦ୍ୱିବର୍ଷା—ଅନ୍ୟରୂପ)

ଦ୍ୱିବାର୍ଷିକ—ସ. ବଣ. (ଦ୍ୱି+ବର୍ଷ+ଇକ)—୧ । ଦୁଇ ବର୍ଷ ବୟସ୍କ—
Dwibārshika 1. Aged two years
(ଦ୍ୱିବାର୍ଷିଣ—ଅନ୍ୟରୂପ) ୨ । ଦୁଇ ବର୍ଷରେ ଫଳିବା—
(ଦ୍ୱିବାର୍ଷିକା—ସ୍ତ୍ରୀ) 2. Ripening in two years.
୩ । ଦୁଇ ବର୍ଷରେ ଘଟିବା—
3 Happening at the end of two years

ଦ୍ୱିବାହିକା—ସ. ବ. (ଦ୍ୱି+ବହ ଧାତୁ+ଇକ+ଆ, ଯାହାକୁ ଦୁଇଅଙ୍ଗେ ବହନ କରାଯାଏ)—
Dwibāhikā
୧ । ଦୋଳି—1. A swing.
୨ । ଡାଣ୍ଡୋଲା; ଖଟୁଲି—2. Sedan chair.

ଦ୍ୱିବାହୁ--ସଂ. ବି ଓ ବିଣ - ଦ୍ୱିଭୁଜ ( ଦେଖ )
Dwibāhu Dwibhuja ( See )

ଦ୍ୱିବିଂଶ—ସଂ. ବିଣ— ଦ୍ୱାବିଂଶ ( ଦେଖ )
Dwibimśa Dwābimśa ( See )

ଦ୍ୱିବିଂଶତି—ସଂ. ବି. ଓ ବିଣ—ଦ୍ୱାବିଂଶତି ( ଦେଖ )
Dwibimśati Dwābimśati ( See )

ଦ୍ୱିବିଦ—ସଂ ବି – ସୁଗ୍ରୀବଙ୍କ ଦ୍ୱାରପାଳ ମର୍କଟବିଶେଷ ( ଏ ରାମଚନ୍ଦ୍ରଙ୍କ
Dwibida କପିସେନାର ଏକ ସେନାପତି ଥିଲେ )—Name of monkey, doorkeeper of Sugrība.

ଚସିଥିଲା ଦ୍ୱିବିଦ ନାମରେ କପି ଦ୍ୱାରେ—ଭଞ୍ଜ. ବୈଦେହୀଶବିଳାସ ।

ଦ୍ୱିବିଧ—ସଂ. ବିଣ. ( ଦ୍ୱିଗୁ; ଦ୍ୱି+ବିଧ )—ଦୁଇ ପ୍ରକାରର; ଦୁଇ
Dwibidha ରକମର—Of two kinds.
( ଦ୍ୱିବିଧା—ସ୍ତ୍ରୀ )

ଦ୍ୱିବିନ୍ଦୁ—ସଂ. ବି—ଦୁଇଟି ବିନ୍ଦୁବିଶିଷ୍ଟ ବର୍ଣ୍ଣ, ବିସର୍ଗ—
Dwibindu The aspirate Bisarga.

ଦ୍ୱିବୃନ୍ତ --ସଂ. ବି—ମଞ୍ଜୁଆତି ( ଦେଖ ) ( ହରେକୃଷ୍ଣ ଦ୍ରବ୍ୟଗୁଣ )
Dwibṛunta Mañjuāti ( See ) .

ଦ୍ୱିବେଦ—ସଂ. ବିଣ. ପୁଂ ( ବହୁବ୍ରୀହି; ଦ୍ୱି+ବେଦ )—ଦୁଇଟି ବେଦ
Dwibeda ଅଧ୍ୟୟନ କରିଥିବା ( ବ୍ୟକ୍ତି )—( a person ) Versed in two Bedas.

ଦ୍ୱିବେଦୀ—ସଂ. ବିଣ ପୁଂ ( ଦ୍ୱି+ବେଦ+ଇନ୍; ୧ମା. ୧ବ. )—
Dwibedi ଦ୍ୱିବେଦ ( ଦେଖ )—Dwibeda ( See )
ସଂ. ବି—ବ୍ରାହ୍ମଣମାନଙ୍କ ଉପାଧିବିଶେଷ—
A family-title of certain Brāhmaṇas

ଦ୍ୱିଭୁଜ—ସଂ.ବି—୧ । (ଦ୍ୱିଗୁ) ଦୁଇ ହାତ—
Dwibhuja 1. Two hands.
୨ । (ବହୁବ୍ରୀହି) କୋଣ—2. An angle.
ବିଣ—ଦୁଇ ହାତବିଶିଷ୍ଟ—Having two hands; bimanous; two-armed.
( ଦ୍ୱିଭୁଜା—ସ୍ତ୍ରୀ )

ଦ୍ୱିମାତୃକ—ସଂ. ବି. ( ବହୁବ୍ରୀହି; ଦ୍ୱି+ମାତୃ+କ )—
Dwimātṛuka ଦ୍ୱୈମାତୁର (ଦେଖ)—Dwaimātura (See)
( ଦ୍ୱିମାତୃ; ଦ୍ୱିମାତୃଜ—ଅନ୍ୟରୂପ )

ଦ୍ୱିମୁଖ—ସଂ. ବିଣ. ପୁଂ. ( ବହୁବ୍ରୀହି; ଦ୍ୱି+ମୁଖ )—
Dwimukha ୧ । ଦୁଇଗୋଟି ମୁଖବିଶିଷ୍ଟ—1. Two-faced.
ଦ୍ୱିମୁଖା } ସ୍ତ୍ରୀ ୨ । ଯାହାର ଦୁଇଟି ଦର୍ଶନୀୟ ପାଖ ଥାଏ—
ଦ୍ୱିମୁଖୀ } 2. Having two phases.
୩ । (ଲକ୍ଷଣାର୍ଥ) ଦୋମୁହାଁ; ଯାହାର କଥା ବଦଳେ—
3. ( figurative ) Fickle of promise.
ବି—ଦୋମୁଣ୍ଡିଆ ସାପ—A kind of snake having its tail resembling the head.

ଦ୍ୱିମୁଖା—ସଂ. ବି. ( ଦ୍ୱିମୁଖ+ଆ )—ଜୋକ—
Dwimukhā A leech.

ଦ୍ୱିମୁଖୀ—ସଂ. ବିଣ. ସ୍ତ୍ରୀ. ( ଦ୍ୱିମୁଖ+ଈ )—ଦ୍ୱିମୁଖର ସ୍ତ୍ରୀଲିଙ୍ଗ—
Dwimukhi Feminine of Dwimukha.
ସଂ. ବି—ପ୍ରସବ କରୁଥିବା ଗାଈ—A cow while it is giving birth to a calf.
[ ଦ୍ର—ଏପରି ଗାଈକୁ ଦାନ କରିବା ବିଶେଷ ପୁଣ୍ୟଜନକ ବୋଲି ହିନ୍ଦୁଶାସ୍ତ୍ରମାନଙ୍କରେ ଉପଦିଷ୍ଟ ହୋଇଅଛି । ]

ଦ୍ୱିରଦ—ସଂ ବି ( ବହୁବ୍ରୀହି; ଦ୍ୱି+ରଦ=ଦନ୍ତ )—୧ । ହସ୍ତୀ—
Dwirada 1. Elephant.
୨ । ଦୁର୍ଯ୍ୟୋଧନଙ୍କର ଏକ ଭାଇ—
2. Name of a brother of Durjyodhana.

ଦ୍ୱିରଦ ରଦ—ସଂ. ବି. (୬ଷ୍ଠୀ ତତ୍; ଦ୍ୱିରଦ+ରଦ )—ହାତୀ ଦାନ୍ତ—
Dwirada rada Ivory.

ଦ୍ୱିରଦାନ୍ତକ—ସଂ. ବି. ( ୬ଷ୍ଠୀ ତତ୍; ଦ୍ୱିରଦ+ଅନ୍ତକ )—ସିଂହ—
Dwiradāntaka Lion.

ଦ୍ୱିରଶନ—ସଂ. ବି. ( ଦ୍ୱି+ଅଶନ )—( ଦ୍ୱିଗୁ ) ଦିନରେ ଦୁଇଥର
Dwiraśana ଭୋଜନ—Two meals during a day.
ବିଣ—(ବହୁବ୍ରୀହି) ଯେ ଦିନରେ ଦୁଇଥର ଭୋଜନ କରେ —
Taking two meals a day.

ଦ୍ୱିରସନ—ସଂ. ବି (ବହୁବ୍ରୀହି; ଦ୍ୱି+ରସନା+ଅ) – ଦ୍ୱିଜିହ୍ୱ; ସର୍ପ—
Dwirasana Serpent.

ଦ୍ୱିରାଗମନ—ସଂ. ବି (ଦ୍ୱିର୍+ଆଗମନ) —୧ । ବିବାହ ପରେ ବୟଃପ୍ରାପ୍ତା
Dwirāgamana କନ୍ୟାର ପତି ଗୃହକୁ ଆଗମନ; ପୁଅଣିଘର; ପହୁଲିପାଳି—The advent of a bride to her husband's house after attaining puberty.
୨ । ଦୁଆରପାଳି ( ଦେଖ )
2. Duārapāḻi ( See ).

ଦ୍ୱିରାପ—ସଂ. ବି (ଦ୍ୱି+ଆ+ପା ଧାତୁ+ଅ)—ଦ୍ୱିପ; ହସ୍ତୀ—
Dwirāpa Elephant.

ଦ୍ୱିରାବୃତ୍ତି—ସଂ. ବି (ଦ୍ୱିର୍+ଆବୃତ୍ତି)—୧ । କୌଣସି ବିଷୟକୁ ଦୁଇଥର
Dwirābṛutti ପଢିବା—1. Reading a thing twice.
୨ । ଲିଖିତ ବା ପଠିତ ବିଷୟର ଦ୍ୱିତୀୟଥର ଆବୃତ୍ତି—
2 Revision.

ଦ୍ୱିରାଶୀ—ସଂ. ବିଣ. ପୁଂ ( ଦ୍ୱି+ଅଶ୍ ଧାତୁ=ଭୋଜନ କରିବା+ଇନ୍;
Dwirāśi ୧ମା.୧ବ.)—ଯେ ଦିନରେ ଦୁଇ ଥର ଖାଏ—
(ଦ୍ୱିରାଶିନୀ—ସ୍ତ୍ରୀ) Taking 2 meals a day.

ଦ୍ୱିରୁକ୍ତ—ସଂ. ବିଣ (ଦ୍ୱି+ଉକ୍ତ)—ପୁନରୁକ୍ତ; ଦ୍ୱିତୀୟ ବାର କଥିତ—
Dwirukta Twice told; uttered twice; repeated.

ଦ୍ୱିରୁକ୍ତି—ସଂ ବି (ଦ୍ୱି+ଉକ୍ତି)—୧ । ଦୁଇ ଥର କଥନ; ପୁନରୁକ୍ତି—
Dwirukti 1. Saying a thing twice; repetition.
୨ । ରଚନାର ଭଙ୍ଗୀ ବା ଦୋଷବିଶେଷ; ଗୋଟିଏ କଥାକୁ ଦୁଇ ଥର ଉଲ୍ଲେଖକରଣ—2. A defect in composition; tautology.

ଦ୍ୱିରୁକ୍ତି ଯମକ—ଦେ. ବି ( ଅଳଙ୍କାର ) ଯମକବିଶେଷ—
Dwirukti jamaka A kind of alliteration.

[ ଦ୍ରୁ—ଅଭିମନ୍ୟୁଙ୍କ ବିଦଗ୍ଧଚିନ୍ତାମଣିର କମଳଲିଖିତ ପଦ୍ୟଟି ଦ୍ୱିରୁକ୍ତିଯମକ ଅଟେ । ଯଥା—ସ୍ୱେଦର ଗମଗମ ବଦନ ଚମଚମ ଦଗଇ ଶିଞ୍ଜ ଅନଥାନ । ]

ଦ୍ୱିରୂଢ଼ା ସଂ. ବିଣ. ସ୍ତ୍ରୀ ( ଦ୍ୱି+ଊଢ଼ା=ବିବାହିତ)—ଦୁଇଥର ବିବାହ କରିଥିବା ( ବିଧବା ), ପୁନର୍ଭୂ—
Dwirūrdha Remarried ( widow ).

ଦ୍ୱିରୂପ—ସଂ. ନ (ଦ୍ୱିଗୁ; ଦ୍ୱି+ରୂପ) —ଦୁଇଟି ରୂପ—
Dwirūpa Two forms

ବିଣ (ବହୁବ୍ରୀହି)—୧ । ଦୁଇଟି ସ୍ୱତନ୍ତ୍ର ଆକାରବିଶିଷ୍ଟ—
1. Of two different forms; biform.

୨ । ଯୁଗଳରୂପବିଶିଷ୍ଟ—
2. Having a double form.

୩ । ଯାହା ଦୁଇ ଆକାରରେ ଲେଖା ଯାଇ ପାରେ—
3. Written in two ways.

ଦ୍ୱିରେତଃ—ସଂ. ବିଣ (ବହୁବ୍ରୀହି; ଦ୍ୱି+ରେତସ୍)—ଦୋଗଲା (ଦେଖ)
Dwiretah Dogalā (See).

ଦ୍ୱିରେଫ—ସଂ. ବ ( ବହୁବ୍ରୀହି; ଯାହା ମୁହଁରେ ଦୁଇଟି ରେଫ ପରି ଜଣା ଥାଏ; ଅଥବା ଯେଉଁ ଶବ୍ଦରେ ଦୁଇଟି 'ର' ଅକ୍ଷର ବ୍ୟବହୃତ 'ଭ୍ରମର' ଓ 'ର' )—
Dwirepha

୧ । ଭ୍ରମର—1. A bee; black bee.

୨ । ବର୍ବର ( ହ୍ରୁ. ଶବ୍ଦସାଗର ) ( ଦେଖ )
2. Barbara ( See ).

ଦ୍ୱିଶଃ—ସଂ. ଅ ( ଦ୍ୱି+ଶସ୍ )—୧ । ଦୁଇ ଥର—
Dwiśah 1. Twice.

୨ । ଯୋଡ଼ ଯୋଡ଼ ହୋଇ; ଦୁଇ ଦୁଇ ହୋଇ—
2. Two by two; in pairs.

ଦ୍ୱିଶତ—ସଂ. ବି. ଓ ବିଣ—ଦୁଇଶହ; ୨୦୦—
Dwiśata 200; two hundred.

ଦ୍ୱିଶଫ—ସଂ. ବିଣ ( ବହୁବ୍ରୀହି; ଦ୍ୱି+ଶଫ=ଖୁରା )—
Dwiśapha ଯାହାର ଖୁରା ଦୁଇ ଭାଗରେ ବିଭକ୍ତ—
Two-hoofed; cloven-footed; having cloven hoofs.
( ଯଥା—ଗାଈ, ଛେଳି, ମେଣ୍ଢା, ମୃଗ। )

ଦ୍ୱିଶୀର୍ଷ—ସଂ. ବ (ବହୁବ୍ରୀହି; ଦ୍ୱି+ଶୀର୍ଷ)—ଅଗ୍ନି—
Dwiśirsha An epithet of the Fire-god.

(ଦ୍ୱିଶିରଃ—ଅନ୍ୟରୂପ) ସଂ. ବିଣ—ଯାହାର ଦୁଇ ମୁଣ୍ଡ ଅଛି—
Two-headed.

ଦ୍ୱିଷ୍ (ଧାତୁ)—ସଂ.—୧ । ଦ୍ୱେଷ କରିବା—
Dwish (root) 1 To envy.

୨ । ଶତ୍ରୁଆଚରଣ କରିବା—
2. To act inimically.

ଦ୍ୱିଷ୍—ସଂ. ବ ( ଦ୍ୱିଷ୍ ଧାତୁ+କର୍ତ୍ତୃ. କ୍ୱିପ୍ )—ଶତ୍ରୁ—
Dwish Enemy.
(ଦ୍ୱିଷ—ଅନ୍ୟରୂପ)

ଦ୍ୱିଷତ୍—ସଂ. ବ —( ଦ୍ୱିଷ ଧାତୁ+କର୍ତ୍ତୃ. ଅତ୍ )—ବୈରୀ; ଶତ୍ରୁ—
Dwishat Enemy; foe
( ଦ୍ୱିଷତୀ—ସ୍ତ୍ରୀ ) ବିଣ. ପୁଂ—ଦ୍ୱେଷକାରୀ—
Spiteful; envious

ଦ୍ୱିଷନ୍ତପ—ସଂ. ବିଣ ( ଦ୍ୱିଷଂ=ଶତ୍ରୁକୁ+ତପ ଧାତୁ=ପୀଡ଼ା ଦେବା +କର୍ତ୍ତୃ. ଅ)—ଯେ ଶତ୍ରୁକୁ ପୀଡ଼ା ଦିଏ—
Dwishantapa Distressing an enemy; oppressor of a foe

ବ—ତମ୍ବା—Copper.

ଦ୍ୱିଷଷ୍ଟ—ସଂ. ବିଣ (ଦ୍ୱିଷଷ୍ଟି+ପୂରଣାର୍ଥେ. ଅ)—ଦ୍ୱାଷଷ୍ଟ (ଦେଖ)
Dwishashta Dwāshashta (See).
(ଦ୍ୱିଷଷ୍ଟିତମ—ଅନ୍ୟରୂପ)

ଦ୍ୱିଷଷ୍ଟି—ସଂ. ବି. ଓ ବିଣ—ଦ୍ୱାଷଷ୍ଟି (ଦେଖ)
Dwishashti Dwāshashti (See).

ଦ୍ୱିଷ୍ଟ—ସଂ. ବିଣ. (ଦ୍ୱିଷ୍ ଧାତୁ+କର୍ମ. ତ)—୧ । ଯାହା ପ୍ରତି ଶତ୍ରୁଆଚରଣ କରା ଯାଇ ଥାଏ—1. Envied.
Dwishta
(ଦ୍ୱିଷ୍ଟା—ସ୍ତ୍ରୀ) ୨ । ଘୃଣିତ—2. Hated; disliked.

ଦ୍ୱିଷ୍ଠ—ସଂ. ବିଣ.—(ଦ୍ୱି+ସ୍ଥା ଧାତୁ+କର୍ତ୍ତୃ. ଅ)—୧ । ଯେ ଦୁଇଆଡ଼େ ଥାଏ; ଉଭୟପକ୍ଷ ଅବଲମ୍ବିତ—1. Siding with opposite sides.
Dwishtha

୨ । ଦୁଇ ସ୍ଥାନରେ ସ୍ଥିତ—2. Placed or put on both sides or at both places.

ଦ୍ୱିସପ୍ତ—ସଂ. ବି. ଓ ବିଣ—ଚଉଦ—
Dwisapta Fourteen.

ଦ୍ୱିସପ୍ତତ—ସଂ. ବିଣ.—ଦ୍ୱାସପ୍ତତ (ଦେଖ)
Dwisaptata Dwāsaptata (See)
(ଦ୍ୱିସପ୍ତତିତମ—ଅନ୍ୟରୂପ)

ଦ୍ୱିସପ୍ତତି—ସଂ. ବିଣ.—ଦ୍ୱାସପ୍ତତି (ଦେଖ)
Dwisaptati Dwāsaptati (See)

ଦ୍ୱିସପ୍ତାହ—ସଂ. ବ.—ଏକ ପକ୍ଷ; ପନ୍ଦର ଦିନ କାଳ—
Dwisaptāha Fortnight.

ଦ୍ୱିସମ—ସଂ. ବିଣ. (ବହୁବ୍ରୀହି; ଦ୍ୱି+ସମ)—ଦୁଇ ସମାନ ଭାଗ ବିଶିଷ୍ଟ—
Dwisama Having two equal parts.

ଦ୍ୱିସମ ତ୍ରିଭୁଜ—ସଂ. ବ.—ସମଦ୍ୱିବାହୁ ତ୍ରିଭୁଜ—
Dwisama tribhuja An isosceles triangle.

ଦ୍ୱିସହସ୍ର—ସଂ. ବ. ଓ ବିଣ—୨୦୦୦; ଦୁଇ ହଜାର—
Dwisahasra 2000; two thousand.
(ଦ୍ୱିସାହସ୍ର—ଅନ୍ୟରୂପ)

ଦ୍ୱିସୀତ୍ୟ—ସଂ. ବିଣ.—ଦ୍ୱିହଲ୍ୟ (ଦେଖ)
Dwisitya Dwihalya (See)
(ଦ୍ୱିସୀତ୍ୟା—ସ୍ତ୍ରୀ)

ଦ୍ୱିସ୍ୱିନ୍ନାନ୍ନ—ସଂ. ବ. (ଦ୍ୱି+ସ୍ୱିନ୍ନ+ଅନ୍ନ)—ଉଷୁନା ଚାଉଳ (ହ୍ରୁ. ଶ.)
Dwis-swinnānna Rice from paddy which has been vapoured.

[ଦ୍ର—ବ୍ରହ୍ମବୈବର୍ତ୍ତ ପୁରାଣମତରେ ଯଜ୍ଞ, ଅଧବା ଓ ବ୍ରହ୍ମଗୃହସ୍ଥଙ୍କର ଏ ଗୃଉଳର ଅନ୍ନ ଖାଇବା ନାହିଁ; ଦେବପୂଜାରେ ମଧ୍ୟ ଏ ଗୃଉଳର ବ୍ୟବହାର ନାହିଁ ।]

ଦ୍ୱିହଲ୍ୟ—ସଂ.ବିଣ. (ଦ୍ୱି+ହଲ ଧାତୁ=ଚଷିବା+କର୍ମ. ଯ)—ଦୁଇ ଥର କର୍ଷିତ; ଦୋଓଡ଼ ଚଷ ହୋଇ ଥିବା—Twice tilled; twice ploughed
Dwihalya
(ଦ୍ୱିହଲ୍ୟା—ସ୍ତ୍ରୀ)

ଦ୍ୱିହାୟନ—ସ. ବିଣ. (ଦ୍ୱି+ହାୟନ=ବର୍ଷ+ଅ)—ଯାହାର ବୟସ ଦୁଇ ବର୍ଷ; ଦୁଇ ବର୍ଷିଆ, ଦୋସାଲିଆ—Aged two years.
Dwihāyana
(ଦ୍ୱିହାୟନୀ—ସ୍ତ୍ରୀ)

ଦ୍ୱିହାୟନୀ—ସ. ବି. ସ୍ତ୍ରୀ. ( ଦ୍ୱିହାୟନ+ସ୍ତ୍ରୀ ଈ )—ଦ୍ୱିବର୍ଷବୟସ୍କା ମାଈ ବାଛୁରି—A female calf two years old.
Dwihāyani
ବିଣ.—ଦ୍ୱିହାୟନର ସ୍ତ୍ରୀଲିଙ୍ଗ—The feminine of Dwihāyana

ଦ୍ୱିହୀନ—ସ ବି. (ଦ୍ୱି=ପୁଂଲିଙ୍ଗ ଓ ସ୍ତ୍ରୀଲିଙ୍ଗ+ହୀନ; ଯାହା ପୁଂଲିଙ୍ଗ ବା ସ୍ତ୍ରୀଲିଙ୍ଗ ନୁହେଁ)—ନପୁଂସକ ଲିଙ୍ଗ—Neuter gender
Dwihina
ବିଣ.—ନପୁଂସକ—Eunoch; hermaphrodite

ଦ୍ୱିହୃଦୟା—ସ. ବିଣ. ସ୍ତ୍ରୀ ( ବହୁବ୍ରୀହି, ଦୁଇଟି ହୃଦୟ ଅଛି ଯାହାର; ଆପଣାର ଗୋଟିଏ ଓ ଭ୍ରୂଣର ଗୋଟିଏ)—ଗର୍ଭିଣୀ—Pregnant (woman)
Dwihṛudayā

ଦ୍ୱୀପ—ସ. ବି ( ଦ୍ୱି+ପା ଧାତୁ+ଅ )—୧ । ଟାପୁ; ଚଉଦିଗରେ ଜଳବେଷ୍ଟିତ ଭୂଖଣ୍ଡ—1. Island ( surrounded by water on all sides)
Dwipa

[ଦ୍ର—ହିନ୍ଦୁମାନଙ୍କ ପୁରାଣ ମତରେ ପୃଥିବୀ ମେରୁ ପର୍ବତକୁ ଘେରିଥିବା ସାତ ପରସ୍ତ ସମୁଦ୍ର ବେଷ୍ଟିତ ସାତଗୋଟି ଦ୍ୱୀପରେ ବିଭକ୍ତ ଥିଲା; ତହିଁ ମଧ୍ୟରୁ ଜମ୍ବୁ ଦ୍ୱୀପର ଏକାଂଶ ଭାରତବର୍ଷ । ସପ୍ତଦ୍ୱୀପର ନାମ ଯଥା—ଜମ୍ବୁ, କୁଶ, ପ୍ଲକ୍ଷ, ଶାଲ୍ମଳୀ, କ୍ରୌଞ୍ଚ, ଶାକ ଓ ପୁଷ୍କର । ]

୨ । ବ୍ୟାଘ୍ର ଚର୍ମ—2. Tiger skin.

ଦେ. ବି (ସ. ଦ୍ୱିପ)—ହସ୍ତୀ—Elephant.

ଲବଣସିନ୍ଧୁ ପରମଖର ଲବଣ ସେ ଇକ୍ଷୁ ସୁରା ଘୃତ
ଦଧି ଦୁଗ୍ଧ ପୟ ସାତ ବଳୟ ବଧରେ ଉଦେ ଅଧିକ
ଉକ୍ତ ସମୁଦ୍ରେ ତହିଁ ଏଥି ମଧ୍ୟେ ଦ୍ୱୀପ ସ୍ଥିତ ଯେ । ଉପ. ବୈଦେହୀଶବିଳାସ ।

ଦ୍ୱୀପକର୍ପୂରଜ—ସ. ବି ( ବୈଦ୍ୟକ )—ଚୀନକର୍ପୂର; ଚନାକର୍ପୂର—Chinese camphor.
Dwipakarpūraja

ଦ୍ୱୀପନାଥ—ଦେ ବି (୬ଷ୍ଠୀ ତତ୍; ଦ୍ୱୀପ+ନାଥ)—୧ । ରାଜା - 1. King.
Dwipa nātha
ବନ୍ଧନୀୟ ଦ୍ୱୀପନାଥେ ପାଶେ ଅନୁସର—ଉପ. ବୈଦେହୀଶବିଳାସ ।

୨ । ହସ୍ତିଶ୍ରେଷ୍ଠ—
2. A lordly or stately elephant.
ବନ୍ଧନୀୟ ଦ୍ୱୀପନାଥେ ପାଶେ ଅନୁସର—ଉପ. ବୈଦେହୀଶବିଳାସ ।

ଦ୍ୱୀପବାନ୍—ସଂ. ବିଣ (ଦ୍ୱୀପ+ବତ୍; ୧ମା. ୧ବ)—୧ । ଦ୍ୱୀପବିଶିଷ୍ଟ—1. Studded with isles; abounding in islands.
Dwipabān

୨ । ଯହିଁରେ ଅନେକ ଦ୍ୱୀପ ଅଛି—
2. Having many islands.

ବି—୧ । ସମୁଦ୍ର—1. The sea.

୨ । ନଦ—2. A big and shallow river.

ଦ୍ୱୀପବତୀ—ସଂ. ବି. ସ୍ତ୍ରୀ (ଦ୍ୱୀପ+ବତ୍+ସ୍ତ୍ରୀ ଈ)—୧ । ନଦୀ—1. River.
Dwipabati

୨ । ଭୂମି—2 The earth.

ଦ୍ୱୀପସ୍ତମ୍ଭ—ଦେ. ବି—ଆଲୋକସ୍ତମ୍ଭ—Light house.
Dwipa stambha
ଶୋଭନ୍ତ ସସାଗରର୍ଣ୍ଣବ-ଦ୍ୱୀପସ୍ତମ୍ଭ ଦ୍ୱୀପେ
ଉଭଭୁ ବଳାର୍ଣ୍ଣ ହୋଇ ଏହି ଧର୍ମଜ୍ୟୋତଃ । ରାଧାନାଥ. ମହାଯାତ୍ରା ।

ଦ୍ୱୀପାନ୍ତର—ସଂ. ବି (ଅନ୍ୟ+ଦ୍ୱୀପ)—ଆଉ ଗୋଟିଏ ଦ୍ୱୀପ—Another island.
Dwipāntara
ଦେ. ବି(ବହୁବ୍ରୀହି)—ଅପରାଧୀ ବ୍ୟକ୍ତିକୁ ରାଜ୍ୟରୁ ବହିଷ୍କୃତ କରି ଗୋଟିଏ ଦ୍ୱୀପକୁ ପଠାଇବାରୂପ ଦଣ୍ଡ—Transportation of an offender.

ଦ୍ୱୀପାନ୍ତର ବଚ୍ଚ—ସଂ. ବି (ବୈଦ୍ୟକ) (ଦ୍ୱୀପାନ୍ତରରୁ ଭାରତକୁ ଆମଦାନୀ ହେଉଥିବାରୁ)—ଚୋପଚିନି (ଦେଖ) Topachini ( See )
Dwipāntara bachā

ଦ୍ୱୀପିକା—ସଂ. ବି (ଦ୍ୱୀପ+କ+ଆ)—ଶତାବରୀ (ହି. ଶବ୍ଦସାଗର)—Asparagus.
Dwipikā

ଦ୍ୱୀପୀ—ସ. ବି ( ଦ୍ୱୀପ+ଇନ୍, ୧ମା. ୧ବ; ଏହା ଦେହରେ ଦ୍ୱୀପ ପରି ଗୋଲ ଗୋଲ ଚିହ୍ନ ଥିବାରୁ )—
Dwipi
୧ । ଚିତାବାଘ—1. Leopard.
୨ । ଚିତ୍ରକ ଗୁଳ୍ମ—2. Leadwort.

ଦ୍ୱୀଶ—ସ. ବିଣ ( ବହୁବ୍ରୀହି; ଦ୍ୱି+ଈଶ )—
Dwisa ୧ । ଦ୍ୱିସ୍ୱାମିକ; ଯାହାର ଦୁଇ ଜଣ ପ୍ରଭୁ ବା ମାଲିକ—
(ଦ୍ୱୀଶା—ସ୍ତ୍ରୀ) 1. Having two masters.
୨ । ଯେ ଦୁଇ ଜଣଙ୍କର ବା ଦୁଇ ବସ୍ତୁର ମାଲିକ ଅଟେ—
2. Having ownership in two.
୩ । ଦୁଇ ଦେବତାଙ୍କ ପାଇଁ ଉଦ୍ଦିଷ୍ଟ ( ଚରୁ )—
3. (oblation) Intended for two Deities.
ସ. ବି. ପୁଂ—୧ । ଦୁଇ ସ୍ତ୍ରୀର ସ୍ୱାମୀ—
1. Husband of two wives.
୨ । ବିଶାଖା ନକ୍ଷତ୍ର—2. The 16th asterism.

ଦ୍ୱେଷ—ସ. ବି. ( ଦ୍ୱିଷ୍ ଧାତୁ+ଭାବ. ଅ )—
Dwesha ୧ । ବୈର; ଶତ୍ରୁତା—1. Enmity
୨ । ଘୃଣା—2. Aversion; hatred
୩ । ହିଂସା; ଈର୍ଷା—3. Malice; spite; malignity.
୪ । କ୍ରୋଧ—4. Anger.
୫ । ପ୍ରତିହିଂସା—5. Revenge.
୬ । ବିରକ୍ତି; ଚିଡ଼—6. Displeasure.

ଦ୍ୱେଷଣ—ସଂ. ବି. ( ଦ୍ୱିଷ୍ ଧାତୁ+ଭାବେ. ଅନ )—
Dweshana ୧ । ବୈରଭାବ; ଶତ୍ରୁଭାବଲକ୍ଷଣ—1. Enmity.

୨ । ପ୍ରତିହିଂସା ନେବା—2. Taking revenge.
୩ । ଶତ୍ରୁ—3. Enemy.

**ଦ୍ୱେଷୀ**—ସଂ. ବିଣ. ପୁଂ ( ଦ୍ୱେଷ+ଇନ୍; ୧ମା. ୧ବ )—
Dweshi ୧ । ପ୍ରତିହିଂସା ପରାୟଣ—1 Revengeful.
(ଦ୍ୱେଷିଣୀ—ସ୍ତ୍ରୀ) ୨ । ହିଂସୁକ; ଈର୍ଷାଯୁକ୍ତ—
2 Spiteful; malignant.
୩ । ଶତ୍ରୁଭାବାପନ୍ନ—3. Inimical
ବି—ଶତ୍ରୁ—Enemy; foe

**ଦ୍ୱେଷ୍ଟା**—ସଂ. ବିଣ. ପୁଂ. (ଦ୍ୱିଷ୍ ଧାତୁ+ତୃ; ୧ମା. ୧ବ)—
Dweshta ୧ । ଶତ୍ରୁତାଚରଣକାରୀ—1. Inimical.
(ଦ୍ୱେଷ୍ଟ୍ରୀ—ସ୍ତ୍ରୀ) ୨ । ଯେ ହିଂସା କରେ; ହିଂସ୍ର—
2. Revengeful; malicious.
୩ । ଘୃଣାକାରୀ—Hating.
ବି—୧ । ଶତ୍ରୁ—1. Enemy.
୨ । ବିରୋଧୀ—2. Adversary; rival.

**ଦ୍ୱେଷ୍ୟ**—ସଂ. ବିଣ. ପୁଂ. (ଦ୍ୱିଷ୍ ଧାତୁ+କର୍ମ. ଯ)—ବିଦ୍ୱେଷାର୍ହ; ଘୃଣ୍ୟ—
Dweshya Hateful; detestable; odious.
(ଦ୍ୱେଷ୍ୟା—ସ୍ତ୍ରୀ) ବି—୧ । ଦ୍ୱେଷର ପାତ୍ର—
1. An object of hatred.
୨ । ବୈରୀ; ଶତ୍ରୁ—2. Enemy; foe

**ଦ୍ୱୈଗୁଣିକ**—ସଂ. ବିଣ. (ଦ୍ୱିଗୁଣ+ଇକ)—ସୁଦଖୋର; ଯେ ଋଣ ଦେଇ
Dwaigunika ଅଧିକ ସୁଦ ନିଏ—Usurious.

**ଦ୍ୱୈଗୁଣ୍ୟ**—ସଂ. ବି. (ଦ୍ୱିଗୁଣ+ଭାବେ. ଯ)—ଦ୍ୱିଗୁଣ ପରିମାଣ—
Dwaigunya Double amount.

**ଦ୍ୱୈତ**—ସଂ. ବି. (ଦ୍ୱି+ଇତ=ଦ୍ୱୀତ+ଅ)—
Dwaita ୧ । ଦୁଇ ପଦାର୍ଥର ଅସ୍ତିତ୍ୱ—
1. Existence of two things.
୨ । ଦ୍ୱିବିଧତ୍ୱ; ଦ୍ୱିତ୍ୱ—2. Duality of things.
୩ । ଦ୍ୱିଗୁଣ କରଣ; ଦ୍ୱିତ୍ୱକରଣ—3. Duplication.
୪ । ଈଶ୍ୱର ଓ ସୃଷ୍ଟି ମଧ୍ୟରେ ସମ୍ପର୍କ; ଆତ୍ମା ସଙ୍ଗେ ଶରୀରର ସମ୍ବନ୍ଧ ସ୍ଥାପନ—4. Association of spirit and matter.
୫ । ଦ୍ୱୈତବନ; ମହାଭାରତୋକ୍ତ ସରସ୍ୱତୀ ନଦୀ ତୀରସ୍ଥ ବନବିଶେଷ—5. Name of a forest in ancient India.
୬ । ବନ—6. Forest.
୭ । ଯୁଗ୍ମ; ଯୁଗଳ (ହି. ଶବ୍ଦସାଗର)—7. Couple.
୮ । ଭେଦ ଭାବ; ଆପଣାର ଓ ପରର ମଧ୍ୟରେ ପ୍ରଭେଦ ଭାବ—(ହି. ଶବ୍ଦସାଗର)—Distinction between what is one's own and what is not.
୯ । ଅଜ୍ଞାନ (ହି. ଶ)—9. Ignorance.
୧୦ । ଦ୍ୱୈତବାଦ (ହି. ଶ) (ଦେଖ)
10. Dwaitabada (See)
ବିଣ—୧ । ଦ୍ୱୈତବାଦୀ—1. Dualistic (philosophy).
୨ । (ଦ୍ୱି+ତ) ଦୁଇ ସମ୍ବନ୍ଧୀୟ; ଯୁଗ୍ମ—2. Dual.

**ଦ୍ୱୈତ ଜ୍ଞାନ**—ସଂ. ବି—ଦ୍ୱୈତବାଦ (ଦେଖ)
Dwaita jnana Dwaitabada (See)

**ଦ୍ୱୈତ ବନ**—ସଂ ବି (ନାମ)—ପାଣ୍ଡବମାନେ ପଶାଖେଳରେ ହାରି
Dwaita bana ଦ୍ରୌପଦୀଙ୍କ ସହିତ ସରସ୍ୱତୀ ନଦୀ ତୀରସ୍ଥ ଯେଉଁ ବନରେ ଯାଇ ବାସ କରିଥିଲେ—Name of a forest where the Pandabas lived during their exile.

**ଦ୍ୱୈତ ବାଦ**—ସଂ. ବି—ହିନ୍ଦୁ ଦର୍ଶନ ଶାସ୍ତ୍ରର ମତବିଶେଷ, ଆତ୍ମା ଓ ଭୂତ
Dwaita bada ପୃଥକ୍ ଅଟେ ବୋଲି ଯେଉଁ ମତ—
( ଅଦ୍ୱୈତବାଦ—ବିପରୀତ ) Belief in Dualism; the duatistic doctrine of Hindu philosophy; the doctrine of the existence of spirit and matter as distinct from each other.
[ଦ୍ର—ଏ ମତ ଦ୍ୱାରା ଈଶ୍ୱରଙ୍କଠାରୁ ସୃଷ୍ଟ ବସ୍ତୁ ପୃଥକ୍ ଥିବାର ପ୍ରତୀତ । ପୃଥିବୀର ଯାବତୀୟ ପଦାର୍ଥର ଦୁଇଗୋଟି ଅବସ୍ଥିତି ଅର୍ଥାତ୍ ଈଶ୍ୱର ( ପରମାତ୍ମା ) ଓ ମନୁଷ୍ୟ ( ଜୀବାତ୍ମା ) ପରସ୍ପରଠାରୁ ପୃଥକ୍, ଏହିପରି ମତକୁ ଦ୍ୱୈତବାଦ ବୋଲାଯାଏ । ଦ୍ୱୈତବାଦ ମତରେ ଶରୀରଠାରୁ ଆତ୍ମା ପୃଥକ୍ ।]

**ଦ୍ୱୈତବାଦୀ**—ସଂ ବିଣ. ପୁଂ ( ଦ୍ୱୈତବାଦ+ଇନ୍; ୧ମା. ୧ବ.)—ଯେଉଁ
Dwaitabadi ବ୍ୟକ୍ତି ଦ୍ୱୈତବାଦରେ ବିଶ୍ୱାସ କରନ୍ତି—
(ଦ୍ୱୈତବାଦିନୀ—ସ୍ତ୍ରୀ) A Dualistic philosopher; a Dualist
(ଦ୍ୱୈତ—ଅନ୍ୟରୂପ) in Philosophy; a believer in the Dualistic system of Hindu philosophy.

**ଦ୍ୱୈତ ମତ**—ସଂ. ବି—ଦ୍ୱୈତ ବାଦ ( ଦେଖ )
Dwaita mata Dwaita bada ( See )

**ଦ୍ୱୈତ ଶାସନ**—ଦେ. ବି. (ଆଧୁନିକ ରାଜନୀତିକ ପରିଭାଷା)—
Dwaita sasana ରାଜକୀୟ ମତ ଓ ଲୋକମତ ଉଭୟ ମତ ଅନୁସାରେ ପରିଚାଳିତ ଶାସନପ୍ରଣାଳୀ—
A dual system of Government
[ ଦ୍ର—ଏହି ଶାସନ ପ୍ରଣାଳୀରେ କେତେକ ବିଷୟ ରାଜା ବା ରାଜକର୍ମଚାରୀଙ୍କ ମତ ଅନୁସାରେ ଓ କେତେକ ବିଷୟ ଲୋକପ୍ରତିନିଧିମାନଙ୍କ ମତରେ ପରିଚାଳିତ ହୁଏ । ]

**ଦ୍ୱୈତ ହଂସ**—ପ୍ରାଦେ. ( ସିଂହଭୂମ ) ବି—ସରେଇକଲା ରାଜଦରବାରର
Daita hamsa ଚିଟିପତ୍ର ଓ ହୁକୁମନାମାରେ ଅଙ୍କିତ ଦୁଇଟି ହଂସର ସଙ୍କେତ ବା (ଚିହ୍ନ)—The device of a pair of swans drawn on official papers of the Seraikella State of Orissa.
[ ଦ୍ର—ରାଜଦରବାର ଛଡ଼ା ରାଜ୍ୟର ଅନ୍ୟାନ୍ୟ ପୀଠପତିମାନେ କାଗଜପତ୍ରରେ ଗୋଟିଏ ମାତ୍ର ହଂସର ଚିହ୍ନ ବ୍ୟବହାର କରନ୍ତି । ].

**ଦ୍ୱୈଧ**—ସଂ. ବି. ( ଦ୍ୱିଧା+ଅ )—
Dwaidha ୧ । ଦୁଇ ପ୍ରକାର—1. Two kinds.
୨ । ଦ୍ୱିଧା ଦ୍ୱୈଧ ଅବସ୍ଥା—2. Duality.
୩ । ଅମେଳ—3. Conflict; contradiction.

୪ । ସଂଶୟ; ସନ୍ଦେହ—4 Doubt; hesitation.
୫ । ପ୍ରଭେଦ; ପାର୍ଥକ୍ୟ—5 Difference
୬ । ମତ ଭେଦ; ମତ ପାର୍ଥକ୍ୟ—
6. Difference of opinion
୭ । ପରସ୍ପର ବିରୋଧ—7. Mutual opposition.
୮ । ରାଜନୀତିରେ ଷଡ୍‌ଗୁଣ ମଧ୍ୟରୁ ଏକ ଗୁଣ, ମୁଖ୍ୟଉଦ୍ଦେଶ୍ୟକୁ ଗୁପ୍ତ ରଖି ଅନ୍ୟ ଉଦ୍ଦେଶ୍ୟ ପ୍ରକାଶ କରିବାର କର୍ମ—
8. Policy; duplicity (in politics)
ବିଣ—୧ । ଦୁଇ ଭାଗରେ ବିଭକ୍ତ—1. Divided.
୨ । ଦ୍ୱିଗୁଣ—2. Double; two fold

**ଦ୍ୱୈଧୀକରଣ**—ସଂ. ବି (ଦ୍ୱୈଧ+ଅଭୂତତଦ୍‌ଭାବେ ଚ୍ୱି+କରଣ)—
Dwaidhikarana ଦୁଇ ଖଣ୍ଡ ବା ଭାଗରେ ବିଭକ୍ତ କରଣ—
(ଦ୍ୱୈଧୀକୃତ—ବିଣ) Dividing into two.

**ଦ୍ୱୈଧୀଭାବ**—ସଂ. ବି. ( ଦ୍ୱୈଧ+ଅଭୂତତଦ୍‌ଭାବେ ଚ୍ୱି+ଭାବ —
Dwaidhibhaba ୧ । ଅନ୍ତରର ଭାବ ଗୋପନ କରି ମୁଖରେ ଅନ୍ୟ ଭାବ ପ୍ରକାଶ କରିବା—1. Hypocricy.
୨ । ସନ୍ଦେହ—2 Hesitation
୩ । କର୍ତ୍ତବ୍ୟ ବା ମତର ଅସ୍ଥିରତା—3 Vacillation.
୪ । କପଟାଚାର—4. Duplicity.
୫ । ଦୋନାବୁଡ଼ିଆ ଚାଲି—5. Double dealing.

**ଦ୍ୱୈପ**—ସଂ. ବିଣ. ( ଦ୍ୱୀପ+ଅ )—
Dwaipa ୧ । ଦ୍ୱୀପ ସମ୍ବନ୍ଧୀୟ—1 Pertaining to an island; insular.
୨ । ବ୍ୟାଘ୍ର ଚର୍ମନିର୍ମିତ – 2. Made of tiger skin.

**ଦ୍ୱୈପ ସାଗର**—ସଂ. ବି—ଯେଉଁ ସମୁଦ୍ରରେ ବହୁ ଦ୍ୱୀପପୁଞ୍ଜ ଏକତ୍ରିତ
Dwaipa sāgara ହୋଇ ଥାଏ—An archipelago.

**ଦ୍ୱୈପାୟନ**—ସଂ. ବି. ପୁଂ. ( ଦ୍ୱୀପ+ଅୟନ=ଜନ୍ମ )—
Dwaipāyana ୧ । ମହାଭାରତ ପ୍ରଣେତା ବ୍ୟାସ ଦେବ—
1. Byāsa, the author of Mahābhārata.
[ ବୃ—ଏହାଙ୍କର ଜନ୍ମ ଯମୁନା ନଦୀ ଗର୍ଭସ୍ଥ ଦ୍ୱୀପରେ ହୋଇଥିବାର ମହାଭାରତରେ ଉକ୍ତ ଅଛି । ]
୨ । ଦ୍ୱୀପବାସୀ ବ୍ୟକ୍ତି—2. An islander.
ସଂ. ବିଣ. ପୁଂ—୧ । ଦ୍ୱୀପବାସୀ—2. Inhabitant of an island.
୨ । ଦ୍ୱୀପରେ ଜାତ—2. Born in an island.

**ଦ୍ୱୈପେୟ**—ସଂ. ବିଣ. ( ଦ୍ୱୀପ+ଏୟ )—
Dwaipeya ୧ । ଦ୍ୱୀପ ଜାତ—1. Born or produced in an island.
ବି. ( ବୈଦ୍ୟକ ) କାଜୁପଟି ତେଲ—
Oil of Kajupati; Eucalyptus oil.

**ଦ୍ୱୈବାର୍ଷିକ**—ଦେ. ବିଣ. (ସଂ. ଦ୍ୱିବାର୍ଷିକର ଅଶୁଦ୍ଧ ପ୍ରୟୋଗ)—
Dwaibārshika ଦ୍ୱିବାର୍ଷିକ ( ଦେଖ )
Dwibārshika ( See )

**ଦ୍ୱୈବିଧ**—ସଂ. ବି. ( ଦ୍ୱିବିଧ+ଭାବେ. ଯ )—
Dwaibidhya ୧ । ଦ୍ୱିରୂପତ୍ୱ; ଦ୍ୱୈବିଧତ୍ୱ—1. Duality.
୨ । ଦୋଦୋପାଞ୍ଚ—2 Hesitation

**ଦ୍ୱୈମାତୁର**—ସଂ. ବିଣ. ପୁଂ. (ଦ୍ୱି+ମାତୃ+ଅପତ୍ୟାର୍ଥେ. ଅ)—
Dwaimātura ୧ । ଯେଉଁ ସନ୍ତାନର ଦୁଇଟି ମାତା—
(ଦ୍ୱୈମାତୁରୀ—ସ୍ତ୍ରୀ) 1 Having two mothers ( one giving birth and other bringing him up)
୨ । ଯେଉଁ ସନ୍ତାନ ଦୁଇଟିଙ୍କର ପିତା ଏକ, କିନ୍ତୁ ମାତା ପୃଥକ୍-
2. (brothers) Of the same father but of different mothers; half brothers
ବି—୧ । ଗଣେଶ—1 God Ganesa
[ ବୃ—ସ୍କନ୍ଦ ପୁରାଣର ଗଣେଶଖଣ୍ଡରେ ଲେଖା ଅଛି ଯେ ବରେଣ୍ୟ ନାମକ ରାଜାଙ୍କର ପୁଷ୍ପକା ନାମ୍ନୀ ରାଣୀଙ୍କ ଗର୍ଭରୁ ଗଣେଶ ଜନ୍ମି ଥିଲେ । କିନ୍ତୁ ଏହାଙ୍କ ତେଜ ଓ ଆକୃତିରେ ଭୀତ ହୋଇ ରାଜା ଏ ଶିଶୁକୁ ପାର୍ଶ୍ୱ ମୁନିଙ୍କ ଆଶ୍ରମ ନିକଟସ୍ଥ ଏକ ଜଳାଶୟରେ ପକାଇ ଦେଲେ । ସେଠାରୁ ପାର୍ଶ୍ୱ ମୁନିଙ୍କ ସ୍ତ୍ରୀ ଦୀପବତ୍ସଳା ଆଣି ଏହାଙ୍କୁ ପାଳିଲେ । ଏହି କାରଣରୁ ଏହାଙ୍କର ଦ୍ୱୈମାତୁର ନାମ ହେଲା । ଦ୍ର. ଶବ୍ଦସାଗର । ]
୨ । ଜରାସନ୍ଧ—2 Jarāsandha.
[ ବୃ—ଏ ପ୍ରଥମେ ଦୁଇଟି ମାତାଙ୍କ ଗର୍ଭରୁ ଦୁଇ ଫାଳ ହୋଇ ଜନ୍ମ ହୋଇଥିଲା । ଜରାନାମ୍ନୀ ରାକ୍ଷସୀ ପରେ ଦୁଇଫାଳକୁ ଯୋଡ଼ି ଦେବାରୁ ଏହା ଗୋଟିଏ ରୂପ ହେଲା । ]

**ଦ୍ୱୈମାତୃକ**—ସଂ. ବିଣ. ( ଦ୍ୱି+ମାତୃ+କ )—
Dwaimātruka ବର୍ଷା ଜଳ ଓ ନଦୀ ଜଳ ଦ୍ୱାରା ଯେଉଁ ଦେଶରେ ଶସ୍ୟାଦି ଉତ୍ପାଦିତ ହୁଏ; ବୃଷ୍ଟି ଜଳ ଓ ସିକ୍ତ ଜଳ ଦ୍ୱାରା ଯେଉଁ ଦେଶରେ ଶସ୍ୟ ବଢ଼େ—( a country ) Growing crops with the help of rain water and artificial irrigation.

**ଦ୍ୱୈମୁଷ୍ୟାୟଣ**—ସଂ. ବି. ପୁଂ—ଜନ୍ମଦାତା ପିତା ଓ ପାଳକ ପିତାଙ୍କର
Dwaimushyāyana ଏକମାତ୍ର ଉତ୍ତରାଧିକାରୀ—A kind of adopted son who inherits the properties of his natural and adoptive fathers.

**ଦ୍ୱୈୟହ୍ନିକ**—ସଂ. ବି. (ଦ୍ୱି+ଅହନ୍+ଇକ)—
Dwaiyahnika ୧ । ଦୁଇ ଦିନରେ କରଣୀୟ—
1. Performable in 2 days.
୨ । ଯାହାର ବୟସ ଦୁଇ ଦିନ ମାତ୍ର—2. Aged 2 days only.

**ଦ୍ୱୈରଥ ଯୁଦ୍ଧ**—ସଂ. ବି. (ଦ୍ୱି+ରଥ+ଯୁଦ୍ଧ)—
Dwairatha juddha ଦୁଇଟି ରଥୀଙ୍କ ମଧ୍ୟରେ ଦ୍ୱନ୍ଦ୍ୱ ଯୁଦ୍ଧ—
A duel between two charioteers.

**ଦ୍ୱୈରାତ୍ରିକ**—ସଂ. ବିଣ. (ଦ୍ୱି+ରାତ୍ରି+କ)—
Dwairātrika ଦ୍ୱିରାତ୍ରି ସମ୍ବନ୍ଧୀୟ; ଦୁଇ ରାତ୍ରିରେ କୃତ—
Pertaining to two nights; performed in the course of two nights.

ଦ୍ୱୈହ୍ନିକ—ଦେ. ବଣ. (ସ. ଦ୍ୱ୍ୟାହ୍ନିକ)—ଦ୍ୱ୍ୟାହ୍ନିକ (ଦେଖ)
Dwaihika Dwyāhika (See)

ଦ୍ୱ୍ୟକ୍ଷର—ସ. ବି. (ଦ୍ୱି+ଅକ୍ଷର; ବହୁବ୍ରୀହି)—
Dwyakshara ୧ । ଦୁଇ ଅକ୍ଷର ଯୁକ୍ତ ଚିହ୍ନ ବା ବର୍ଣ୍ଣ—
1. Diphthong; compound letter.
୨ । ଦୁଇ ଅକ୍ଷରବିଶିଷ୍ଟ ପଦ ବା ଶବ୍ଦ—
2 Word consisting of 2 letters; dissyllable

ଦ୍ୱ୍ୟକ୍ଷରୀ—ଦେ. ବି -ବାକ୍ୟାଲଙ୍କାରବିଶେଷ—
Dwyakshari An artistic composition in which two letters are repeated in a line.
[ ଦ୍ର—ପ୍ରେମମଞ୍ଜରୀର ନିମ୍ନଲିଖିତ ପଦ୍ୟାଂଶ ଦ୍ୱ୍ୟକ୍ଷରୀ ଅଟେ, ଯଥା—
ଧୁଦ୍ଧାର ଧୁଧର ଧାର ଧର ଧାର ଧର
ଧର ଧର ଧାର ଧୀର ଧର ଧର ଧୀର । ]

ଦ୍ୱ୍ୟଙ୍ଗୁଳ—ସ. ବଣ. (ଦ୍ୱି+ଅଙ୍ଗୁଳ)—ଦୁଇ ଅଙ୍ଗୁଳ ପରିମିତ—
Dwyangula Measured by two fingers.
ବି—ଦୁଇ ଅଙ୍ଗୁଳ ଦୈର୍ଘ୍ୟ—
A length of two fingers

ଦ୍ୱ୍ୟଞ୍ଜଳ—ସ. ବଣ (ବହୁବ୍ରୀହି; ଦ୍ୱି+ଅଞ୍ଜଳି)—ଦୁଇ ଅଞ୍ଜୁଳ ପରିମିତ—
Dwyanjala Measured by the two palms of the hand, made into a cup; two handfuls of.

ଦ୍ୱ୍ୟଣୁକ—ସ ବଣ. (ଦ୍ୱି+ଅଣୁ+କ)—ଦୁଇ ପରମାଣୁର ସମଷ୍ଟିରେ
Dwyanuka ଗଠିତ—Consisting of two atoms.
ବି—ଦୁଇ ଅଣୁର ସମାହାର—An aggregate of two atoms; diad (molecule).

ଦ୍ୱ୍ୟର୍ଥ—ସ. ବି. (ଦ୍ୱି+ଅର୍ଥ)—୧ । ଏକ ବସ୍ତୁ ବା ଶବ୍ଦର ଦୁଇ ଅର୍ଥ—
Dwyartha 1. Two meanings of one word; ambiguity of meaning.
୨ । ଏକ କାର୍ଯ୍ୟର ଦୁଇଟି ଉଦ୍ଦେଶ୍ୟ—
2. Two aims or motives of the same act.
ବି—ଦ୍ୱ୍ୟର୍ଥ ବୋଧକ (ଦେଖ)—
Dwyartha bodhaka (See)

ଦ୍ୱ୍ୟର୍ଥ ବୋଧକ—ସ. ବଣ—ଯହିଁରୁ ଦୁଇଟି ଅର୍ଥ ବୁଝାଯାଏ; ଦୁଇଟି ଅର୍ଥ-
Dwyartha bodhaka ବିଶିଷ୍ଟ—Ambiguous; equivocal;
(ଦ୍ୱ୍ୟର୍ଥକ—ଅନ୍ୟରୂପ) having two different meanings

ଦ୍ୱ୍ୟଶୀତ—ସ. ବଣ—ଦ୍ୱ୍ୟଶୀତିତମ (ଦେଖ)
Dwyasita Dwyasititama (See)

ଦ୍ୟଶୀତି—ସ. ବି ଓ ବଣ. (ମ ପ. ଲୋ; ଦ୍ୱି ଅଧିକ ଅଶୀତି)—
Dwyasiti ବୟାଅଶୀ—82; Eightytwo.

ଦ୍ୱ୍ୟଶୀତିତମ—ସ. ବଣ—୮୨ ସ୍ଥାନୀୟ—
Dwyasititama Eightysecond.

ଦ୍ୱ୍ୟଷ୍ଟ—ସ. ବି—ତାମ୍ର; ତମ୍ବା (ହି. ଶବ୍ଦସାଗର)—
Dwyashta Copper.

ଦ୍ୱ୍ୟହ—ସ. ବି. (ଦ୍ୱି+ଅହନ୍)—ଦୁଇ ଦିନ କାଳ—
Dwyaha A period of two days.

ଦ୍ୱ୍ୟହିକ—ସ. ବଣ (ଦ୍ୱ୍ୟହ+ଇକ)—୧ । ଦିନଦ୍ୱୟଭବ—
Dwyahika 1. Taking two days to finish; produced in 2 days.
୨ । ଦୁଇ ଦିନ ଛଡ଼ା ଘଟୁଥିବା (ଜ୍ୱର)—
2. Tertian (fever); (fever) occurring at intervals of two days.

ଦ୍ୱ୍ୟାତ୍ମକ—ସ. ବଣ. ପୁଂ. (ଦ୍ୱି+ଆତ୍ମନ୍+ଅକ)—
Dwyātmaka ଦୁଇ ଆତ୍ମା ବା ସ୍ୱରୂପବିଶିଷ୍ଟ—
(ଦ୍ୱ୍ୟାତ୍ମିକା—ସ୍ତ୍ରୀ) Having a double nature.
ସଂ. ବି·—(ଜ୍ୟୋତିଷ) ମିଥୁନ, କନ୍ୟା, ଧନୁ ଓ ମୀନ ରାଶି (ହି. ଶବ୍ଦସାଗର)—(Astrology) The zodiacal signs of Gemini, Virgo, Sagittarius and Pisces.

ଦ୍ୟାତ୍ମବାଦ—ସଂ ବି (ଦ୍ୱି+ଆତ୍ମନ୍+ବାଦ)—ଦ୍ୱୈତବାଦ (ଦେଖ)
Dwyātmabāda Dwaitabāda (See)

ଦ୍ୱ୍ୟାତ୍ମବାଦୀ - ସଂ ବଣ—ଦ୍ୱୈତବାଦୀ (ଦେଖ)
Dwyātmabadi Dwaitabādi (See)

ଦ୍ୱ୍ୟାମୁଷ୍ୟାୟଣ—ସଂ. ବଣ. ପୁଂ—ଦ୍ୱୈମୁଷ୍ୟାୟଣ (ଦେଖ)
Dwyāmushyāyana Dwaimushyāyana (See)

ଦ୍ୟାହ୍ନିକ—ସଂ. ବଣ. (ଦ୍ୱ୍ୟହ+ଇକ)—ଦ୍ୱ୍ୟହିକ (ଦେଖ)
Dwyāhika Dwyahika (See)

ଦ୍ୟନ୍ତି ଦେ. (ପ୍ରାଚୀନ ପଦ୍ୟ) କ୍ରିୟା—(ଦେବା କ୍ରିୟାର ବର୍ତ୍ତମାନ କାଳ
Dyanti ଅନ୍ୟ ପୁରୁଷ ବହୁବଚନ ବା ମାନ୍ୟାର୍ଥ ଏକବଚନ; ଦିଅନ୍ତିର ରୂପାନ୍ତର)—ପ୍ରଦାନ କରନ୍ତି—(he or they) Give.
ତୁମ୍ଭଙ୍କୁ ଘଟୁଥିଲେ ଦ୍ୟନ୍ତି ଟିକ ତାହା । କୃଷ୍ଣସିଂହ. ମହାଭାରତ. ସଭା ।

ଦ୍ୟନ୍ତୁ—ଦେ. (ପ୍ରାଚୀନ ପଦ୍ୟ) କ୍ରି—(ସେ ବା ସେମାନେ) ଦିଅନ୍ତୁ—
Dyantu Let (them or him) give (imperative mood).
ପ୍ରାଣନାଥ ଦାନ ଦ୍ୟନ୍ତୁ ଅଶିଳ ବାସ । ପ୍ରାଚୀ. ଶିଶୁଶଙ୍କର. ଉଷାଅଭିଳାଷ ।

ଦ୍ୟାଇବା—ଦେ. (ପଦ୍ୟ) କ୍ରି—(ସ. ଦା ଧାତୁର ଣିଜନ୍ତ; ଦେବା କ୍ରିୟାର
Dyāibā ପ୍ରଯୋଜକ ରୂପ)—୧ । ଦିଆଇବା—1. To cause
ଦ୍ୟାଓଆ to give.
ଦ୍ୟାବାନ ୨ । କୌଣସି ବ୍ୟକ୍ତିଙ୍କୁ ଦାନ କରିବାକୁ ପ୍ରବର୍ତ୍ତାଇବା—
2. To induce a person to give.
ଦେବ ଦ୍ୟାଇବ ଦେପଦ ବୋଲିବ
ପଡିଥି ଭୂମିରେ ଗୋଧନ ଚରାଇବ । ଗୋକୁଳଅପଣା ଗୀତ ।

ଦ୍ୟାନ୍ (ଇତ୍ୟାଦି)—ଦେୱାନ୍ ଇତ୍ୟାଦି (ଦେଖ)
Dyān (etc) Dewān etc (See)

ଦ୍ୟାବାକ୍ଷମା—ସ. ବି—ଦ୍ୟାବାପୃଥିବୀ (ଦେଖ)
Dyābākshamā Dyābāpruthibi (See)

ଦ୍ୟାବାପୃଥିବୀ—ସ. ବି (ଦ୍ୟୁ=ଆକାଶ+ପୃଥିବୀ)—୧ । ପୃଥିବୀ ଓ
Dyābāpruthibi ଆକାଶର ମଧ୍ୟବର୍ତ୍ତୀ ସ୍ଥାନ; ଶୂନ୍ୟ; ଅନ୍ତରୀକ୍ଷ—
(ଦ୍ୟାବାଭୂମି—ଅନ୍ୟରୂପ) 1. The space between the earth and the sky.
୨ । ସ୍ୱର୍ଗ ଓ ମର୍ତ୍ତ୍ୟ—2. Heaven and earth.

ଦ୍ୟୁ (ଧାତୁ)—ସଂ—ସମ୍ମୁଖକୁ ଯିବା—
Dyu (root)    To go before

ଦ୍ୟୁ—ସଂ. ବି (ଦ୍ୟୁ ଧାତୁ+ଅ)—୧ । ସ୍ୱର୍ଗ—
Dyu    1. Heaven.
୨ । ଆକାଶ—2. Sky.
୩ । ଅଗ୍ନି—3. Fire.
୪ । ସୂର୍ଯ୍ୟ—4. The sun
୫ । ଦିବସ; ଦିନ—5 Day.
୬ । ଆଭା—6. Glow.
୭ । ସୂର୍ଯ୍ୟଲୋକ—
7. The imaginary world of the Sun-god.

ଦ୍ୟୁଗ—ସଂ. ବିଣ. ପୁଂ ( ଦ୍ୟୁ+ଗମ ଧାତୁ+କର୍ତ୍ତୃ ଅ )—ଆକାଶରେ ବିଚରଣକାରୀ—Moving in the sky
Dyuga
(ଦ୍ୟୁଗା—ସ୍ତ୍ରୀ)  ସଂ. ବି—ପକ୍ଷୀ—Bird.

ଦ୍ୟୁଚର—ସଂ. ବିଣ. ପୁଂ—ଆକାଶଚର; ଖେଚର—
Dyuchara    Moving in the sky
(ଦ୍ୟୁଚରୀ—ସ୍ତ୍ରୀ)  ସଂ. ବି—୧ । ପକ୍ଷୀ—1. Bird.
୨ । ଗ୍ରହ—2. Planet.

ଦ୍ୟୁତ୍ (ଧାତୁ)—ସଂ—ଦୀପ୍ତି ପାଇବା—
Dyut (root)    To shine, to glitter

ଦ୍ୟୁତ୍—ସଂ. ବି (ଦ୍ୟୁ ଧାତୁ+କର୍ତ୍ତୃ. କ୍ୱିପ୍)—କିରଣ—
Dyut    Ray.

ଦ୍ୟୁତ—ସଂ. ବିଣ (ଦ୍ୟୁ ଧାତୁ+କର୍ତ୍ତୃ. ତ)—ପ୍ରକାଶବାନ୍—
Dyuta    Shining.
(ଦ୍ୟୁତା—ସ୍ତ୍ରୀ)

ଦ୍ୟୁତି—ସଂ. ବି ( ଦ୍ୟୁ ଧାତୁ+ଭାବ. ତି; ଦ୍ୟୁତ୍ ଧାତୁ=ଦୀପ୍ତିପାଇବା+ଭାବ. ଇ)—ଦୀପ୍ତି—1. Lustre; brilliance; radiance
Dyuti
୨ । ତେଜଃ—2 Splendour; glamour; dignity.
୩ । ଆଲୋକ—3. Light.
୪ । କାନ୍ତି, ଶୋଭା; ସୌନ୍ଦର୍ଯ୍ୟ—4. Beauty, grace.
ଶ୍ରୀଅଙ୍ଗ ସଙ୍ଗ ମତ୍ତ, ବନା ଅନାଥ ଦ୍ୟୁତି—ବନସୂର୍ଯ୍ୟ. କଣୋସରତମ୍. ଭ. ଗୀତ ।
୫ । କିରଣ—5. Ray.

ଦ୍ୟୁତିକର—ସଂ. ବି (ଦ୍ୟୁତି+କୃ ଧାତୁ+ଅ)—୧ । ଶୋଭାଜନକ—
Dyutikara    1. Producing grace.
୨ । ଦୀପ୍ତିକାରକ—
2. Brilliant; shining illuminating.
୩ । ଉଜ୍ଜ୍ୱଳ—3. Bright; resplendent.
ବି—୧ । ଧ୍ରୁବ ତାରା—1. The polar star.
୨ । ଶୁକ୍ରତାରା—2. The morning star.

ଦ୍ୟୁତିତ—ସଂ. ବିଣ (ଦ୍ୟୁତ୍ ଧାତୁ+କର୍ମ. ତ)—ଦୀପ୍ତିବିଶିଷ୍ଟ—
Dyutita    Shining.

ଦ୍ୟୁତିଧର—ସଂ.ବିଣ (ଦ୍ୟୁତି+ଧୃ ଧାତୁ+କର୍ତ୍ତୃ. ଅ)—ଉଜ୍ଜ୍ୱଳ—
Dyutidhara    Shining; bright.
ସଂ. ବି—ବିଷ୍ଣୁ—A name of Bishnu.

ଦ୍ୟୁତିମାନ୍—ସଂ. ବିଣ. ପୁଂ (ସଂ. ଦ୍ୟୁତିମତ୍ ଶବ୍ଦ; ଦ୍ୟୁତି+ଅସ୍ତ୍ୟର୍ଥରେ ମତ୍, ୧ମା. ୧ବ)—ଦୀପ୍ତିଶୀଳ—Dazzling; brilliant; resplendent.
Dyutimān
(ଦ୍ୟୁତିମତୀ—ସ୍ତ୍ରୀ)
ସଂ. ବି—୧ । ସ୍ୱାୟମ୍ଭୁବ ମନୁଙ୍କର ଏକ ପୁତ୍ର—
1. Name of a son of Swāyambhuba Manu.
୨ । ମହାଭାରତୋକ୍ତ ଶାଲ୍ୱଦେଶର ରାଜା—2. Name of a king of Sālwa country.
୩ । ବିଷ୍ଣୁପୁରାଣୋକ୍ତ ପ୍ରିୟବ୍ରତରାଜାଙ୍କ ପୁତ୍ର—3. A son of King Priyabrata.

ଦ୍ୟୁନ—ସଂ. ବି (ଜ୍ୟୋତିଷ)—ଲଗ୍ନର ସପ୍ତମ ସ୍ଥାନ—(Astrology)
Dyuna    The seventh place counted from one's natal sign.
(ଦ୍ୟୂନ—ଅନ୍ୟରୂପ)

ଦ୍ୟୁନିଶ—ସଂ. ବି (ଦ୍ୟୁ+ନିଶା)—ଅହୋରାତ୍ର—
Dyunisa    Day and night.

ଦ୍ୟୁପତି—ସଂ. ବି—(୬ଷ୍ଠୀ ତତ୍; ଦ୍ୟୁ=ସ୍ୱର୍ଗ+ପତି=ରାଜା)—
Dyupati    ୧ । ଦେବରାଜ; ଇନ୍ଦ୍ର—1. Indra.
୨ । ସୂର୍ଯ୍ୟ—2 The sun.

ଦ୍ୟୁପଥ—ସଂ. ବି (ଦ୍ୟୁ+ପଥିନ୍)—ଆକାଶ ପଥ—
Dyupatha    The aerial way.

ଦ୍ୟୁମଣି—ସଂ. ବି—(୬ଷ୍ଠୀ ତତ୍; ଦିବସ+ମଣି)—୧ । ଦିନମଣି; ସୂର୍ଯ୍ୟ—
Dyumani    1. The sun.
୨ । ମନ୍ଦାର (ହି. ଶବ୍ଦସାଗର); ଅର୍କ—2. Calotropis Gigantea.
୩ । ଶୋଧିତ ତାମ୍ର—(ହି. ଶ)—3. Refined copper.

ଦ୍ୟୁମତ୍ସେନ—ସଂ. ବି. (ନାମ)—ଶାଲ୍ୱଦେଶର ରାଜା; ସାବିତ୍ରୀଙ୍କ ଶ୍ୱଶୁର; ସତ୍ୟବାନ୍‌ଙ୍କ ପିତା—The father of Satyabān.
Dyumat-sena
[ଦ୍ର—ଏ ଦୁର୍ଭାଗ୍ୟବଶତଃ ଅନ୍ଧ ହୋଇ ରାଜ୍ୟବାସୀଙ୍କ ଦ୍ୱାରା ବିତାଡ଼ିତ ହୋଇ ନିଜର ପତ୍ନୀ ଓ ଶିଶୁ ସତ୍ୟବାନ୍‌ଙ୍କ ସହ ବନବାସୀ ହୋଇଥିଲେ । ସାବିତ୍ରୀ ଉଲେ ନୋଟ୍ ଦେଖ]

ଦ୍ୟୁମାନ୍—ସଂ. ବିଣ—( ଦ୍ୟୁ+ମତ୍; ୧ମା ୧ବ. ) ଆଭାଯୁକ୍ତ—
Dyumān    Shining; lustrous.
(ଦ୍ୟୁମତୀ—ସ୍ତ୍ରୀ)

ଦ୍ୟୁମ୍ନ—ସଂ.ବି(ଦ୍ୟୁ=ଦିନ+ମ୍ନା ଧାତୁ=ଅଭ୍ୟାସ କରିବା+କର୍ମ. ଅ)—
Dyumna    ୧ । ଧନ—1. Riches; wealth.
୩ । ସାମର୍ଥ୍ୟ; ବଳ—3. Power; strength.
୪ । ଅନ୍ନ ( ହି. ଶବ୍ଦସାଗର )—4. Food.
୫ । ଧାନ ( ହି. ଶବ୍ଦସାଗର )—5. Paddy.

ଦ୍ୟୁଲୋକ—ସଂ. ବି. ( ଦ୍ୟୁ+ଲୋକ )—ସ୍ୱର୍ଗଲୋକ—
Dyuloka    The heaven; celestial world.

ଦ୍ୟୁଷଦ୍—ସଂ. ବି. ( ଦ୍ୟୁ+ସଦ୍ ଧାତୁ+କର୍ତ୍ତୃ. ଅ )—୧ । ଦେବତା—
Dyushat    1. Deity.
( ଦ୍ୟୋସଦ୍—ଅନ୍ୟରୂପ )  ୨ । ନକ୍ଷତ୍ର—1. Star.
୩ । ଗ୍ରହ—3. Planet.

ଦ୍ୟୂ—ସଂ. ବି. ( ଦିବ୍ ଧାତୁ=କ୍ରୀଡ଼ା କରିବା+କର୍ତ୍ତୃ. କ୍ୱିପ୍ )—
Dyū    ଜୁଆଡ଼ି—Gambler; a gamester.

ଦ୍ୟୂତ—ସଂ. ବି. (ଦିବ୍ ଧାତୁ=କ୍ରୀଡ଼ା କରିବା+ତ)—
Dyūta ୧ । ଜୁଆ ଖେଳ—1. Gambling; hazard.
୨ । ପଶା ଖେଳ—2. The game at dice.

ଦ୍ୟୂତକର—ସଂ. ବି (ଦ୍ୟୂତ+କୃ ଧାତୁ+ଅ)—ଜୁଆରି; ଅକ୍ଷକ୍ରୀଡ଼କ—
Dyūtakara Gambler; a gamester.
(ଦ୍ୟୂତକାର—ଅନ୍ୟରୂପ)

ଦ୍ୟୂତ କ୍ରୀଡ଼ା—ସଂ. ବି—ଦ୍ୟୂତ (ଦେଖ)
Dyūta krirdā Dyūta (See)

ଦ୍ୟୂତଦାସ—ସଂ. ବି. (ମ. ପ. ଲୋ; ଦ୍ୟୂତ+ଦାସ)—ଜୁଆ ଖେଳରେ
Dyūtadāsa ଜିତିବା ପକ୍ଷକୁ ମିଳିଥିବା ଦାସ—
A slave won by gambling.

ଦ୍ୟୂତ ପୂର୍ଣ୍ଣିମା—ସଂ. ବି—୧ । କାର୍ତ୍ତିକ ପୂର୍ଣ୍ଣିମା; କୋଜାଗରୀ ପୂର୍ଣ୍ଣିମା—
Dyūta pūrṇṇimā 1. The full-moon of the month of Kārttika.
[ ଦ୍ରୁ—ଏ ଦିନ ରାତିରେ ଜୁଆ ଖେଳିବାର ବିଧି ଅଛି । ]
୨ । ଆଶ୍ୱିନ ପୂର୍ଣ୍ଣିମା; କୁମାର ପୂର୍ଣ୍ଣିମା—
2. The fullmoon of the month of Āświna.

ଦ୍ୟୂତ ପ୍ରତିପଦ୍(ଦା)—ସଂ. ବି—କାର୍ତ୍ତିକ ଶୁକ୍ଳ ପ୍ରତିପଦା—The first
Dyūta pratipad(dā) day of the moon's increase in the month of Kārttika.

ଦ୍ୟୂତ ଫଳକ—ସଂ. ବି—ଯେଉଁ ପଟା ଉପରେ ଜୁଆ ଖେଳାଯାଏ—
Dyūta phalaka Gambling board.

ଦ୍ୟୂତ ବୀଜ—ସଂ. ବି—(ଯହିଁ ସାହାଯ୍ୟରେ ଜୁଆ ଖେଳାଯାଏ) କଉଡ଼ି—
Dyūta bija Small shells.

ଦ୍ୟୂତ ବୃତ୍ତି—ସଂ. ବିଣ. (ବହୁବ୍ରୀହି; ଦ୍ୟୂତ+ବୃତ୍ତି)—ଜୁଆରି, ଯେ
Dyūta brutti ଜୁଆ ଖେଳ ପେଟ ପୋଷେ—
Given to gambling as a profession.
ବି.—(ରୂପକ) ଜୁଆ ଖେଳିବା ଜୀବିକା—The profession of a gamester.

ଦ୍ୟୋ—ସଂ. ବି. (ଦିବ୍ ଧାତୁ+ଅଧିକରଣ. ଓ)—୧ । ସ୍ୱର୍ଗ—
Dyo 1. Heaven.
୨ । ଆକାଶ—2. Sky.
୩ । (ଦେବୀ ଭାଗବତ ମତରେ) ଅଷ୍ଟାବସୁ ମଧ୍ୟରୁ ଏକତମ
(ହି. ଶବ୍ଦସାଗର)—
3. One of the eight Basu Deities.

ଦ୍ୟୋକାର—ସଂ. ବି—ରାଜମିସ୍ତ୍ରୀ (ହି. ଶବ୍ଦସାଗର)—
Dyokāra Mason.

ଦ୍ୟୋତ—ସଂ. ବି (ଦ୍ୟୁତ୍ ଧାତୁ+ଅ)—୧ । ଆଲୋକ—
Dyota 1. Light.
୨ । ଦ୍ୟୁତି; ଦୀପ୍ତି—2. Lustre; brilliance.
ବର୍ଣ୍ଣିତ ବୃଷଭ ଦ୍ୟୋତ କଳ୍ପପାଦପକୁ ଖଦ୍ୟୋତ ପରି ଜବଦ ସବ ଆପଣ
ଭଞ୍ଜ. ବୈଦେହୀଶବିଳାସ ।
୩ । ସୂର୍ଯ୍ୟ କିରଣ; ଖରା—3. Sunshine.

ଦ୍ୟୋତକ—ସଂ. ବିଣ. ପୁଂ. (ଦ୍ୟୁତ୍ ଧାତୁ+କର୍ତ୍ତ୍ରି. ଅକ)—୧ । ବ୍ୟଞ୍ଜକ—
Dyotaka 1. Indicating.
(ଦ୍ୟୋତିକା—ସ୍ତ୍ରୀ) ୨ । ସୂଚକ—2. Signifying.
୩ । ପ୍ରକାଶକ—3. Expressive.
୪ । ଉଦ୍‌ବୋଧକ—4. Arousing; exciting.
୫ । ଉଜ୍ଜ୍ୱଳ—5. Shining; illuminating.

ଦ୍ୟୋତନ—ସଂ. ବି. (ଦ୍ୟୁତ୍ ଧାତୁ+ଭାବ. ଅନ)—୧ । ପ୍ରକାଶ—
Dyotana 1. Exhibiting; revealing.
୨ । ଦୀପନ—2. Illuminating.
୩ । ଉଦ୍‌ବୋଧନ—3. Exciting, divulging.
୪ । ଭାବର ପ୍ରକାଶ—
4. Expression of a sentiment or idea.
୫ । ଦୀପ—5. A lamp.
୬ । ନିଦର୍ଶନ—6. Indication.
ସଂ. ବିଣ—ପ୍ରକାଶମାନ, ଉଜ୍ଜ୍ୱଳ (ହି ଶବ୍ଦସାଗର)—
Shining; brilliant.

ଦ୍ୟୋତମାନ—ସଂ. ବି. ପୁଂ. (ଦ୍ୟୁତ୍ ଧାତୁ+କର୍ତ୍ତ୍ରି. ଆନ)—
Dyotamāna ୧ । ଦୀପ୍ୟମାନ—1. Refulgent.
(ଦ୍ୟୋତମାନା—ସ୍ତ୍ରୀ) ୨ । ଶୋଭମାନ—2 Radiant.

ଦ୍ୟୋତି—ସଂ ଡ. (ଦ୍ୟୁତ୍ ଧାତୁ+ଭାବ. ଇ)—୧ । ଦୀପ୍ତି; ଜ୍ୟୋତି—
Dyoti 1. Splendour.
୨ । କାନ୍ତି; ସୌନ୍ଦର୍ଯ୍ୟ—2 Beauty; grace.
୩ । ପ୍ରକାଶ—3. Exhibition; manifestation.

ଦ୍ୟୋତିତ—ସଂ. ବିଣ.—(ଦ୍ୟୋତ+ଇତ)—ପ୍ରକାଶିତ—
Dyotita Expressed; revealed; divulged.

ଦ୍ୟୋତିରିଙ୍ଗଣ—ସଂ. ବି.—ଜ୍ୟୋତିରିଙ୍ଗଣ; ଜକୁଜକିଆ ପୋକ (ହି.ଶ.)-
Dyotiringaṇa Firefly.

ଦ୍ୟୌ—ସଂ. ବି.—ଦ୍ୟୋ (ଦେଖ)
Dyau Dyo (See)

ଦ୍ରଉପଦୀ—ଗ୍ରା. (ପଦ୍ୟ) ବି. (ସଂ. ଦ୍ରୌପଦୀ)—ଦ୍ରୌପଦୀ (ଦେଖ)
Draupadi Draupadi (See)
(ଦ୍ରଉପଦୀ—ଅନ୍ୟରୂପ)

ଦ୍ରକ୍ଷଣ—ସଂ. ବି.—ତୌଲିବାର ପରିମାଣବିଶେଷ (ହି. ଶ)
Drakshaṇa A standard of weight.
[ଦ୍ରୁ—ଏଥିର ଅନ୍ୟ ସଂ. ନାମ—କୋଲ, ବଟକ, କର୍ଷାର୍ଦ୍ଧ ।]

ଦ୍ରଗଣ—ସଂ. ବି.—ଏକ ପ୍ରକାର ବାଜା (ହି. ଶ)—
Dragaṇa A kind of drum.

ଦ୍ରଢ଼ିମା—ସଂ. ବି. (ଦୃଢ଼+ଭାବ. ଇମନ୍; ୧ମା. ୧ବ.)—୧ । ଦୃଢ଼ତା;
Drardhimā କାଠିନ୍ୟ—1. Hardness; firmness.
୨ । ସ୍ଥିରତା—2 Steadiness; fixity.

ଦ୍ରଢ଼ିଷ୍ଠ—ସଂ. ବିଣ.—(ଦୃଢ଼+ଅତିଶୟାର୍ଥେ. ଇଷ୍ଠ)—ଅତି ଦୃଢ଼—
Drardhishtha Very hard; very firm.
(ଦ୍ରଢ଼ିଷ୍ଠା—ସ୍ତ୍ରୀ)

ଦ୍ରାଢ଼ୀୟାନ୍—ସଂ. ବିଣ (ଦୃଢ଼+ଇୟସ୍; ୧ମା. ୧ବ.)—ଦ୍ରଢ଼ିଷ୍ଠ (ଦେଖ)-
Drardhiyān Drardhishtha (See)
(ଦ୍ରାଢ଼ୀୟସୀ—ସ୍ତ୍ରୀ)

ଦ୍ରପିଷ୍ଟ—ଦେ. ବିଣ. (ସଂ. ଦର୍ପିଷ୍ଟ) – ଦୃପ୍ତ, ଦର୍ପଶାଳୀ—
Drapishta Arrogant; puffed up with pride.

ଦ୍ରପ୍ସ—ସଂ. ବିଣ.—୧ । ଦ୍ରୁତଗତିବିଶିଷ୍ଟ (ହ୍ରି. ଶ)—
Drapsa 1. Swift.
୨ । ତରଳ (ହ୍ରି. ଶ) – 2. Liquid
(ଦ୍ରପ୍ସ୍ୟ—ଅନ୍ୟରୂପ) ସଂ. ତ.—୧ । ଘୋଳ ଦହି (ହ୍ରି. ଶ.) – 1. Churned curd.
୨ । ଶୁକ୍ର (ହ୍ରି. ଶ.) – 2. Semen.
୩ । ରସ (ହ୍ରି. ଶ.) —3 Juice.

ଦ୍ରବ—ସଂ. ବି. (ଦ୍ରୁ ଧାତୁ=ଗମନ କରିବା; ତରଳିବା + ଭାବ. ଅ)—
Draba ୧ । ଗତି—1. Motion
୨ । ଦ୍ରୁତ ଗତି – 2. Swift motion.
୩ । ତରଳିବା—3 Melting, fusion.
୪ । ବେଗ – 4 Velocity; speed
୫ । ପଳାୟନ—5. Act of fleeing.
୬ । (+କର୍ତ୍ତୃ. ଅ) ରସ – 6. Juice
୭ । ପରିହାସ – 7. Jest, sport
୮ । ତରଳ ପଦାର୍ଥ—8. A liquid; fluid.
୯ । ଯେଉଁ ତରଳ ପଦାର୍ଥରେ ଅନ୍ୟ ପଦାର୍ଥ ମିଶି ଥାଏ— 9 Solution
୧୦ । ଗଳିତ ପଦାର୍ଥ—10. A molten thing
୧୧ । ତାରଲ୍ୟ, ତରଳତା —11 Fluidity.'
୧୨ । ଆସବ (ହ୍ରି. ଶ)—12. Wine.
ବିଣ.—୧ । ତରଳିତ, ଗଳିତ —1. Liquefied; molten
୨ । ସରସ—2. Juicy
୩ । ଜଳୀୟ; ଜଳପରି ତରଳ—3. Liquid; fluid.
୪ । ପାଣିରେ ମିଳାଇ ଯାଇଥିବା—4. Dissolved.
୫ । ଆର୍ଦ୍ର; ଓଦା—5 Wet; moist.

ଦ୍ରବଜ—ସଂ. ବି. (ଦ୍ରବ+ଜନ୍ ଧାତୁ+ଅ)—ଗୁଡ଼—
Drabaja Raw sugar; molasses.

ଦ୍ରବଣ—ସଂ. ବି. (ଦ୍ରୁ ଧାତୁ+ଅନ)—୧ । ଗମନ—
Drabana 1. Act of going
୨ । ଅନୁତାପ—2. Repentance.
୩ । ଗତି—3. Motion.
୪ । ତରଳି ଯିବା—4. Melting, fusion.
୫ । ହୃଦୟ କରୁଣାରେ ଆର୍ଦ୍ର ହେବା— 5. Melting of the heart
୬ । ପଳାଇ ଯିବା—6 Fleeing away, flight.

ଦ୍ରବତ୍ବ—ସଂ. ବି. (ଦ୍ରବ+ତ୍ବ)—୧ । ତାରଲ୍ୟ, ତରଳତା—
Drabatwa 1. Dissolution; fluidity.
(ଦ୍ରବତା—ଅନ୍ୟରୂପ) ୨ । ତରଳିବା—2. Act of melting.
୩ । କୋମଳତା—3. Softening.
୪ ଜଳରେ ମିଳାଇ ଯିବା ଅବସ୍ଥା— 4. Solubility; solution.

ଦ୍ରବନ୍ତୀ—ସଂ. ବି. ସ୍ତ୍ରୀ.—(ଦ୍ରୁ ଧାତୁ+ଅତ୍+ସ୍ତ୍ରୀ. ଈ) —୧ । ନଦୀ –
Drabanti 1. A river,
୨ । ମୂଷାକାଣୀ (ଦେଖ) (ହରେକୃଷ୍ଣ ଦ୍ରବ୍ୟଗୁଣ) 2. Mūshākāni (See)

ଦ୍ରବ ଭାବ—ସଂ. ବି —ଦ୍ରବତ୍ବ (ଦେଖ)
Draba bhāba Drabatwa (See)

ଦ୍ରବା(ବେ)ଇବା—ଦେ. କ୍ରି. (ସଂ. ଦ୍ରୁ ଧାତୁ ଣିଜନ୍ତ ଦ୍ରବ ଧାତୁ)—
Drabā(be)ibā ୧ । ଦ୍ରବିବା କ୍ରିୟାର ଣିଜନ୍ତ ରୂପ—
दवान 1 The causative form of Drabibā.
द्रवाना ୨ । ତରଳାଇବା—2. To melt.
୩ । ନରମ କରିବା—3. To soften

ଦ୍ରବାଧାର—ସଂ. ବି. (ଷଷ୍ଠୀ ତତ୍; ଦ୍ରବ+ଆଧାର)—ଚକୋଇ; ଯେଉଁ
Drabādhāra ପାତ୍ରରେ ଧାତୁ ଅଉଟାଯାଏ—
A vessel for melting metals; crucible.

ଦ୍ରବାର୍ହ—ସଂ. ବିଣ. (ଦ୍ରବ+ଅର୍ହ ଧାତୁ+କର୍ତ୍ତୃ. ଅ)—ତରଳାଇବାର
Drabārha ଯୋଗ୍ୟ—Soluble; fusible,

ଦ୍ରବିଡ—ସଂ. ବି.—ଦ୍ରାବିଡ଼ ଓ ନୋଟ୍ (ଦେଖ)
Drabirda Drābirda and notes (See)
ଦ୍ରବିଡ ଦେଶ ପାଣ୍ଡ୍ୟ ନାମ;
ଶୁଭ ସୁନ୍ଦର ଗୁଣ ଧାମ । ଜଗନ୍ନାଥ. ଭାଗବତ ।

ଦ୍ରବିଣ – ସଂ.ବି (ଦ୍ରୁ ଧାତୁ+ଇନ୍) – ୧ । ବିତ୍ତ,ଧନ – 1. Wealth;
Drabina riches.
୨ । ସମ୍ପତ୍ତି—2 Property.
୩ । କାଞ୍ଚନ; ସୁନା—3 Gold.
୪ । ପରାକ୍ରମ—4. Strength; power; might.
୫ । ତରଳିବା—5. Melting
୬ । ପୃଥୁ ରାଜାଙ୍କର ଏକ ପୁତ୍ର – 6. A son of king Pruthu.
୭ । କୁଶ ଦ୍ବୀପର ଏକ ସୀମାପର୍ବତ—7. Name of a mythological mountain.

ଦ୍ରବିବା – ଦେ. କ୍ରି (ସଂ. ଦ୍ରୁ ଧାତୁ) – ୧ । ଗଳିତ ହେବା; ତରଳିଯିବା –
Drabibā 1. To melt.
द्रवी, द्रवना ସ୍ନେହେ ଦ୍ରବ ବହିଗଲା ବାହୁଡେରେ । କବିସୂର୍ଯ୍ୟ. ସଙ୍ଗୀତ ।
୨ । ମିଳାଇ ଯିବା – 2. To be dissolved.
୩ । ନରମ ହେବା – 3 To be softened.
୪ । (ଲକ୍ଷଣାର୍ଥ) ଦୟାର୍ଦ୍ର ହେବା—4 To melt with pity.
କରୁଣା ଶ୍ରବଣେ ଦ୍ରବିବ ମନ । ରାଧାନାଥ. ମେଘଦୂତ ।

ଦ୍ରବୀକରଣ—ସ. ବି (ଦ୍ରବ+ଅଭୂତ ତଦ୍ଭାବେ ଚ୍ବି+କରଣ)—କଠିନ
Drabikarana ବସ୍ତୁକୁ ତରଳାଇବା – Melting of a hard thing.

ଦ୍ରବୀକୃତ – ସ. ବିଣ (ଦ୍ରବ+ଅଭୂତ ତଦ୍ଭାବେ ଚ୍ବି+କୃତ)—
Drabikruta ୧ । ତରଳି ଯାଇଥିବା – 1. Liquefied; melted.
୨ । ସମ୍ପୂର୍ଣ୍ଣରୂପେ ମିଳାଇ ଯାଇଥିବା – 2. Dissolved,

ଦ୍ରବୀଭାବ — ସଂ. ବ (ଦ୍ରବ + ଅଭୂତ ତଭାବେ ଚ୍ୱି + ଭାବ) — ଦ୍ରବତ୍ୱ —
Drabībhāba Fluidity; molten condition.

ଦ୍ରବୀଭୂତ — ସଂ. ବଣ. ( ଦ୍ରବ + ଅଭୂତ ତଭାବେ ଚ୍ୱି + ଭୂତ ) —
Drabībhūta ୧ । ତରଳିତ — 1. Melted; molten
( ଦ୍ରବୀଭୂତା — ସ୍ତ୍ରୀ ) ୨ । ନରମ କରାଯାଇଥିବା — 2 Softened.
୩ । ଅନୁତପ୍ତ — 3 Grieved; repenting.
୪ । ମିଳାଇ ଯାଇଥିବା — 4. Dissolved.
୫ । ପାଣିରେ ପରଣତ ହୋଇଥିବା — 5 Liquefied.

ଦ୍ରବ୍ୟ — ସଂ. ବଣ. ( ଦ୍ରୁ = ବୃକ୍ଷ + ଯ ) — ବୃକ୍ଷସମ୍ବନ୍ଧୀୟ —
Drabya Pertaining to a tree or plant.
ବ. ( ଦ୍ରୁ ଧାତୁ = ବୃଦ୍ଧି ପାଇବା + କର୍ତ୍ତୃ. ଯ ) —
୧ । ବସ୍ତୁ; ପଦାର୍ଥ — 1. Thing; article; object; substance.
୨ । ଧନ — 2. Riches; wealth; property.
ଯେଉଁ ଲୋକେ ଦ୍ରବ୍ୟକୁ ନ କରନ୍ତୁ ଇଚ୍ଛା — କୃଷ୍ଣସିଂହ, ମହାଭାରତ. ବନ
୩ । ଔଷଧ — 3. Medicine; drug.
୪ । ଚିତ୍ତ — 4. Heart; inclination.
୫ । ମଦ୍ୟ — 5 Wine.
୬ । ସାମଗ୍ରୀ; ଉପକରଣ — 6. Materials.
୭ । ପିତ୍ତଳ — 7. Brass.
୮ । ( ନ୍ୟାୟ ଶାସ୍ତ୍ର ) କ୍ଷିତି, ଅପ୍, ତେଜଃ, ମରୁତ୍, ବ୍ୟୋମ, କାଳ, ଦିଗ, ଆତ୍ମା ଓ ମନ —
8. The 5 ingredients of the material world, time, directon, soul and mind.
୯ । ଲେପ ( ହି. ଶବ୍ଦସାଗର ) — 9. Ointment.
୧୦ । ଗୋନ୍ ( ହି. ଶବ୍ଦସାଗର ) — 10. Gum.
ଦେ. ବ. (ଆଧୁନିକ ବିଜ୍ଞାନପରିଭାଷା ) — ଯାହା ପାଣିରେ ମିଳାଇ ଯାଏ — Soluble.

ଦ୍ରବ୍ୟଗୁଣ — ସ. ବ. ( ୬ଷ୍ଠୀ ତତ୍; ଦ୍ରବ୍ୟ + ଗୁଣ ) — ୧ । ବସ୍ତୁର ରୂପ,
Drabya guṇa ରସ, ଗନ୍ଧ, ସ୍ପର୍ଶ ପ୍ରଭୃତି ୨୪ଟି ଧର୍ମ ବା ଗୁଣ —
1. The essential qualities of matter.
୨ । କୌଣସି ପଦାର୍ଥର ମନୁଷ୍ୟଶରୀର ଉପରେ ପ୍ରକ୍ରିୟା —
2. The action of a certain article on the human system.
୩ । ଭିନ୍ନ ଭିନ୍ନ ଔଷଧର ବ୍ୟବହାରର ଭିନ୍ନ ଭିନ୍ନ ଫଳ —
3. The different results of the use of different drugs.

ଦ୍ରବ୍ୟବନ୍ତ — ଦେ. ବଣ. (ଦ୍ରବ୍ୟ + ବତ୍ ) — ଧନବାନ୍; ଧନୀ —
Drabyabanta Rich; possessed of riches
द्रव्यमस्त द्रव्यवंत

ଦ୍ରବ୍ୟମୟ — ସଂ. ବଣ ( ଦ୍ରବ୍ୟ + ମୟ ) — ପ୍ରଚୁର ସାମଗ୍ରୀବିଶିଷ୍ଟ; ପଦାର୍ଥ-
Drabyamaya ବହୁଳ — Abounding in materials.

ଦ୍ରବ୍ୟ ସ୍ୱେଦ — ସ.ବ.(୩ୟା ତତ୍; ଦ୍ରବ୍ୟ + ସ୍ୱେଦ) (ବୈଦ୍ୟକ) — ଦେହରେ
Drabya sweda ବାମ୍ଫ ଆଣି ସେକିବା — Vapour-bath.
[ ଦ୍ର — ସ୍ୱେଦ ତଳେ ନୋଟ୍ ଦେଖ । ]

ଦ୍ରବ୍ୟାନ୍ତର — ସଂ. ବି. ( ଅନ୍ୟ + ଦ୍ରବ୍ୟ ) — ଅନ୍ୟ ଦ୍ରବ୍ୟ —
Drabyāntara A different thing; another article.

ଦ୍ରଶନ — ଗ୍ରା. ବ (ସ. ଦର୍ଶନର ଅଶୁଦ୍ଧ ଉଚ୍ଚାରଣ; ତୁଲ. ଏହି ଶ୍ରେଣୀର
Draśana ବ୍ୟବହାର ବର୍ତ୍ତମାନ) —
୧ । ଦର୍ଶନ; ସାକ୍ଷାତ୍କାର —
1. Seeing; visit; interview.
୨ । ଦର୍ଶନଶାସ୍ତ୍ର — 2. Philosophy.
ଅସାଧନା ଦ୍ରଶନ ମଝରେ କହି ନୋହେ
କଥଗଂଠା ପଡ଼ ସେ ମାଉର ବଡ଼ 'ଉତ୍ସେ — ପ୍ରାଚୀ. ବ୍ରହ୍ମନିରୂପଣଗୀତା ।

ଦ୍ରଷ୍ଟବ୍ୟ — ସ. ବଣ ( ଦୃଶ ଧାତୁ = ଦେଖିବା + କର୍ମ. ତବ୍ୟ) —
Drashṭabya ୧ । ଦେଖିବାର ଯୋଗ୍ୟ —
( ଦ୍ରଷ୍ଟବ୍ୟା — ସ୍ତ୍ରୀ ) 1. Fit to be seen; worth looking at.
୨ । ଯାହା ଅନ୍ୟମାନଙ୍କୁ ଦେଖାଇବା ଯୋଗ୍ୟ —
2. Worthy of being shown to others.
୩ । ଯାହା ଅବଶ୍ୟ ଦେଖିବାକୁ ହେବ —
3. Which must be seen or visited.
୪ । ଯହିଁପ୍ରତି ମନୋଯୋଗ ଦିଆଯିବା ଉଚିତ —
4. Worth noticing; notable

ଦ୍ରଷ୍ଟା — ସ. ବଣ. ପୁଂ ( ଦୃଶ ଧାତୁ + ତୃ; ଦ୍ରଷ୍ଟୃ ଶବ୍ଦ; ୧ମା. ୧ବ ) —
Drashṭā ୧ । ଦର୍ଶନକାରୀ — 1. Looking at; seeing.
୨ । ଯେ ଦେଖିଅଛି — 2. One who has seen.
ସ. ବି. ପୁଂ. ୧ । ଦର୍ଶକ; ଯେ ଦେଖେ —
(ଦ୍ରଷ୍ଟ୍ରୀ — ସ୍ତ୍ରୀ) 1. Spectator; observer.
୨ । ଦିବ୍ୟ ଚକ୍ଷୁଦ୍ୱାରା ଯେ ଦେଖେ — 2 Seer.
୩ । ବିଚାରକ — 3. A Judge.
୪ । ସାକ୍ଷୀ — 4. A witness
୫ । ଦେଖଣାହାରୀ — 5. Visitor.
୬ । ବୈଦିକ ମନ୍ତ୍ରାଦିର ପ୍ରକାଶକ —
6. The divulger of a vedic incantation or hymn.
[ ଦ୍ର — ଯେଉଁ ବୈଦିକ ମନ୍ତ୍ର ପ୍ରଥମେ ଯେଉଁ ଋଷିଙ୍କ ମୁହଁରୁ ପ୍ରକାଶିତ ହୋଇଥିଲା ସେହି ଋଷିଙ୍କୁ ସେହି ମନ୍ତ୍ରର ଦ୍ରଷ୍ଟା ବୋଲାଯାଏ, କାରଣ ଅନାଦିକାଳରୁ ବେଦ ବ୍ରହ୍ମାଙ୍କ ମୁଖରୁ ନିର୍ଗତ ହୋଇଥିଲା; ତାକୁ ପ୍ରଥମେ ଋଷିମାନେ ଦିବ୍ୟ ଚକ୍ଷୁଦ୍ୱାରା ଦେଖି ବା ଜାଣିପାରି ସାଧାରଣଙ୍କ ଅବଗତିପାଇଁ ପ୍ରକାଶ କଲେ । ]
୭ । ( ସାଙ୍ଖ୍ୟଦର୍ଶନ ) ପୁରୁଷ —
7. (Sāṁkhya philosophy) The Individual.
୮ । ( ଯୋଗଦର୍ଶନ ) ଆତ୍ମା —
8. (Joga philosophy) The Soul.

ଦ୍ରହ — ସ. ବ — ୧ । ହ୍ରଦ ( ହି. ଶବ୍ଦସାଗର ) —
Draha 1. Lake.
୨ । ଗଭୀର ଜଳାଶୟ (ହି. ଶବ୍ଦସାଗର) —
2. A deep lake (Apte).
[ ଦ୍ର — ଏଥିରୁ ଦେଶଜ ଦହ ଶବ୍ଦ ହୋଇଅଛି । ]

ଦ୍ରହସିତ—ଗ୍ରା. ବିଣ ( ସଂ ଦରହସିତର ଅଶୁଦ୍ଧ ବ୍ୟବହାର )—
Drahasita ଈଷତ୍ ହାସ୍ୟଯୁକ୍ତ—Smiling

ଦ୍ରହାସ—ଗ୍ରା. ବି ( ସଂ. ଦରହାସର ଅଶୁଦ୍ଧ ବ୍ୟବହାର )—ଦରହାସ,
Drahāsa ଈଷତ୍ ହାସ୍ୟ—Smile.

ରାମ ସହିତେ ଦ୍ରହାସେ ମୋତେ ପ୍ରେମାଲିଙ୍ଗନ କର ।
ପ୍ରାଚୀ. ଭକ୍ତଚରଣ ମଥୁରାମଙ୍ଗଳ ।

ଦ୍ରହାସୀ—ଗ୍ରା. ବିଣ. ସ୍ତ୍ରୀ—ଦରହାସୀ (ସ୍ତ୍ରୀ)—
Drahāsi Smiling (woman).

ଦ୍ରହାସୀ ସୁମରନ୍ତ୍ର ମାନ—ଭୂପତି. ପ୍ରେମପଞ୍ଚାମୃତ ।

ଦ୍ରହାସ୍ୟ—ଗ୍ରା. ବି ( ସଂ. ଦରହାସର ଅଶୁଦ୍ଧ ବ୍ୟବହାର )—
Drahāsya ଦ୍ରହାସ ( ଦେଖ )
Drahāsa ( See ).

ବୋଲ ଭୂ କଣ୍ଠ ବାଣୀ ଦ୍ରହାସ୍ୟରବେ ମିଶଣୀ
ଦନ୍ତରୁଚି ଚନ୍ଦ୍ରମା ପ୍ରକାଶୁ—ପ୍ରାଚୀ. ରସବାରିଧି ।

ଦ୍ରା ( ଧାତୁ )—ସଂ.—୧ । ପଳାୟନ କରିବା—
Drā (root) 1. To fly away.
୨ । ନିଦ୍ରିତ ହେବା—2. To be asleep.
୩ । ଦଉଡ଼ିବା—3. To run (Apte).
୪ । ଲଜ୍ଜିତ ହେବା—4 To be ashamed ( Apte ).

ଦ୍ରାକ୍—ସଂ. କ୍ରି. ବି.—୧ । ଶୀଘ୍ର—1. Soon.
Drāk ୨ । ତତ୍କ୍ଷଣାତ୍—
2 Immediately; instantly.
୩ । ହଠାତ୍—3. At once; all on a sudden.

ଦ୍ରାଘିମା—ସଂ. ବି. (ଦୀର୍ଘ+ଭାବ. ଇମନ୍, ଦ୍ରାଘିମନ୍; ୧ମା. ୧ବ)—
Drāghimā ୧ । ଦୀର୍ଘତା; ଦୈର୍ଘ୍ୟ—1. Length.
୨ । (ଭୂଗୋଳପରିଭାଷା) ଯେଉଁ କଳ୍ପିତ ରେଖା ଭୂଗୋଳକର କୌଣସି ନିର୍ଦ୍ଦିଷ୍ଟ ସ୍ଥାନ ବାଟେ ଉତ୍ତର ଓ ଦକ୍ଷିଣ ଆଡ଼କୁ ଉଭୟ ମେରୁକେନ୍ଦ୍ରକୁ ଭେଦ କରି ଅଙ୍କିତ ହୁଏ ଓ ଯାହା ବିଷୁବ ରେଖା ସଙ୍ଗେ ସମକୋଣ ଉତ୍ପନ୍ନ କରି କାଟେ; ଯାମ୍ୟୋତ୍ତର ବୃତ୍ତ—2, (geography) Meridian of the globe.
୩ । (ଭୂଗୋଳପରିଭାଷା) ପ୍ରାଚୀନ ବା ଆଧୁନିକ ଗଣନା ଅନୁସାରେ ଯେଉଁ ସ୍ଥାନ (ଯଥା—ଗ୍ରୀନଚ୍ଚିଚ୍)ରେ ଶୂନ୍ୟ ଦେଖା କଳ୍ପିତ ହୋଇ ଅଛି ସେହି ସ୍ଥାନ ବାଟେ ଯେଉଁରେଖା ଉତ୍ତର ଦକ୍ଷିଣ ମେରୁବିନ୍ଦୁଦ୍ୱୟ (north and south poles) ଆଡ଼କୁ ଟଣା ହୋଇ ଅଛି,ସେହି ରେଖାଠାରୁ କୌଣସି ସ୍ଥାନର ପୂର୍ବ ବା ପଶ୍ଚିମ ଆଡ଼କୁ ଦୂରତ୍ୱଜ୍ଞାପକ କୌଣିକ ପରିମାଣ—3.(geography)The longitude of a place, the angular distance of a place, east or west of the first meridian (which is measured by the number of degrees in the arc intercepted on the equator between the meridian; (e. g. from Greenwich in the British Empire, from Lankā or Ujjayini in Hindu astronomical works) Parker-Elements of Astronomy).

[ ଦ୍ର—ଭୂପୃଷ୍ଠର ପ୍ରତ୍ୟେକ ସ୍ଥାନର ଗୋଟିଏ ଦ୍ରାଘିମା ଥିବାର କଳ୍ପିତ ହୋଇଅଛି । ବ୍ରିଟିଶ୍ ସାମ୍ରାଜ୍ୟର ଗଣକମାନଙ୍କ ମତରେ ଇଂଲଣ୍ଡର ଗ୍ରୀନଚ୍ଚିଚ୍‌କୁ ୧ମ ଦ୍ରାଘିମାରୂପେ ଗଣନା କରାଯାଏ । ବିଷୁବରେଖାର ଏକ ସମାନ୍ତରରେ ଅବସ୍ଥିତ ସମସ୍ତ ସ୍ଥାନର ଅକ୍ଷାଂଶ (latitude) ଏକ ଅଟେ । ଏବଂ ଏକ ଯାମ୍ୟୋତ୍ତର ବୃତ୍ତ (meridian)ରେ ଅବସ୍ଥିତ ସମସ୍ତ ସ୍ଥାନର ଦ୍ରାଘିମା (longitude) ଏକ ଅଟେ । ଅକ୍ଷାଂଶ ଉତ୍ତର ଦିଗରେ ବା ଦକ୍ଷିଣ ଦିଗରେ ଶୂନ୍ୟ ଡିଗ୍ରୀଠାରୁ ୯୦ ଡିଗ୍ରୀ ପର୍ଯ୍ୟନ୍ତ ଗଣନା କରାଯାଏ ଓ ଦ୍ରାଘିମା ପୂର୍ବଦିଗରେ ବା ପଶ୍ଚିମଦିଗରେ ଶୂନ୍ୟ ଡିଗ୍ରୀଠାରୁ ୧୮୦ ଡିଗ୍ରୀ ପର୍ଯ୍ୟନ୍ତ ଗଣନା କରାଯାଏ । ପାର୍କର୍-ଗଣିତ ଜ୍ୟୋତିଷର ମୌଳିକତତ୍ତ୍ୱ; Parker—Elements of Astronomy । ]

[ବିଶେଷ ଦ୍ରଷ୍ଟବ୍ୟ—ଏହି ଭାଷାକୋଷର ୧ମ ଖଣ୍ଡ ୫୭ ପୃଷ୍ଠାରେ **ଅକ୍ଷାଂଶର** ଯେଉଁ ଅର୍ଥ ଓ ଯେଉଁ ନୋଟ୍ ଦିଆ ଯାଇଅଛି ତାହା ଠିକ୍ ନୁହେଁ; ତହିଁ ପରିବର୍ତ୍ତେ ତହିଁର ନିମ୍ନଲିଖିତ ଅର୍ଥ ଓ ନୋଟ୍ କଟକ ରେଭେନ୍ସା କଲେଜର ପ୍ରୋଫେସର ଶ୍ରୀଯୁକ୍ତ ହରେକୃଷ୍ଣ ଦାସ ଯୋଗାଇ ଉପକାରାଧିତ କରିଅଛନ୍ତି—

**ଅକ୍ଷାଂଶ**—ସଂ. ବି. (୬ଷ୍ଠୀ ତତ୍; ଅକ୍ଷ+ଅଂଶ)—(ଭୂଗୋଳ)
Akshāmśa ନିରକ୍ଷବୃତ୍ତଠାରୁ ଉତ୍ତର ବା ଦକ୍ଷିଣ ଦିଗରେ କୌଣସି ସ୍ଥାନର ଦୂରତ୍ୱର କୌଣିକ ପରିମାଣ—The latitude of a place; the angular distance of a place, north or south of the equator, measured on the meridian through the place.

ଦ୍ର—ଏହା ଯାମ୍ୟୋତ୍ତର ବୃତ୍ତ ବରାବର୍ (along, ଅନୁରୂପ) ମାପ କରାଯାଏ । ସଂସ୍କୃତ ଭାଷାରେ ଏକବଚନାନ୍ତ 'ଅକ୍ଷାଂଶ' ଶବ୍ଦ ଦ୍ୱାରା ଭୂଗୋଳକର କୌଣସି ସ୍ଥାନର ଯାମ୍ୟୋତ୍ତର ବୃତ୍ତ (meridian)ର ୩୬୦ ଅଂଶରୁ ଏକ ଅଂଶ (a degree of latitude) ବୁଝାଯାଏ । କୌଣସି ସ୍ଥାନର ଅକ୍ଷାଂଶ ବୁଝାଇବାକୁ ହେଲେ ବହୁବଚନାନ୍ତ 'ଅକ୍ଷାଂଶାଃ' ଶବ୍ଦ ସଂସ୍କୃତ ଭାଷାରେ ବ୍ୟବହୃତ ହୁଏ; କିନ୍ତୁ ଓଡ଼ିଆରେ ବହୁବଚନାନ୍ତ ଶବ୍ଦ ବ୍ୟବହୃତ ହୁଏ ନାହିଁ । ଏହି ହେତୁରୁ ଅକ୍ଷାଂଶ କହିଲେ ଓଡ଼ିଆରେ କୌଣସି ନିର୍ଦ୍ଦିଷ୍ଟ ସ୍ଥାନର ଅକ୍ଷାଂଶ ବୁଝାଯାଏ । ଅକ୍ଷାଂଶ (latitude of a place) ଏବଂ ଦ୍ରାଘିମା (longitude of a place) ଏହି ଦୁଇ ଗୋଟିକୁ ଗଣିତ ଶାସ୍ତ୍ରରେ ଇଂରାଜୀ ଭାଷାରେ Co-ordinates (ଭୁଜକୋଟି) କହନ୍ତି । ଭୂଗୋଳକର କୌଣସି ସ୍ଥାନର ଅବସ୍ଥିତି ଜାଣିବା ସକାଶେ ଏହି ଦୁହେଁ ଦରକାର । ଏହି ଦୁହିଙ୍କ ମଧ୍ୟରେ ସମ୍ପର୍କ ଏହି ଯେ ଗୋଟିକର ବିନା ଅନ୍ୟଟି ଦ୍ୱାରା ଉକ୍ତ ସ୍ଥାନର ଅବସ୍ଥିତି ସମ୍ବନ୍ଧେ କୌଣସି ନିର୍ଦ୍ଦିଷ୍ଟ ଧାରଣା ମନ ମଧ୍ୟରେ ହୋଇପାରେ ନାହିଁ—

ପ୍ରୋଫେସର୍. ହରେକୃଷ୍ଣ ଦାସ]

**ଦ୍ରାଘିମାନ୍ତର**—ସଂ. ବି. ( ଭୂଗୋଳପରିଭାଷା )—ପ୍ରାଥମିକ ଦ୍ରାଘିମା
Drāghimāntara ରେଖାଠାରୁ କୌଣସି ସ୍ଥାନର ପୂର୍ବ ବା ପଶ୍ଚିମ ଦିଗକୁ ଦୂରତ୍ୱ—( geography ) Longitude; distance of a certain place from the prime meridian (to the east or the west).

**ଦ୍ରାଘିଷ୍ଠ**—ସଂ. ବିଣ. ( ଦୀର୍ଘ+ଅତ୍ୟର୍ଥେ ଇଷ୍ଠ )—ଅତି ଦୀର୍ଘ—
Drāghishta Very long; longest.
(ଦ୍ରାଘିଷ୍ଠା—ସ୍ତ୍ରୀ) [ ଦ୍ର—ଦ୍ରାଘିଷ୍ଠର ଅର୍ଥ ଦୀର୍ଘତମ । ]

**ଦ୍ରାଘିୟାନ୍**—ସଂ. ବିଣ. ( ଦୀର୍ଘ+ଅତ୍ୟର୍ଥେ. ଈୟସ୍ )—
Drāghiyān ଦ୍ରାଘିଷ୍ଠ ( ଦେଖ )
(ଦ୍ରାଘିୟସୀ—ସ୍ତ୍ରୀ) Drāghishṭha ( See )
[ ଦ୍ର—ଦ୍ରାଘିୟାନ୍‌ର ଅର୍ଥ ଦୀର୍ଘତର । ]

**ଦ୍ରାଢ୍ୟ**—ସଂ. ବି. ( ଦୃଢ଼+ଭାବ. ଯ )—
Drārdhya Firmness; solidity.

**ଦ୍ରାଣ**—ସଂ. ବିଣ. ପୁଂ. ( ଦ୍ରା ଧାତୁ+କର୍ତ୍ତୃ. ଅନ )—
Drāṇa ୧ । ସୁପ୍ତ, ନିଦ୍ରିତ ( ହି. ଶବ୍ଦସାଗର )—1. Asleep.
୨ । ପଳାୟିତ ( ହି. ଶବ୍ଦସାଗର )—
2. Run away; fleeing; fugitive.
୩ । ପଳାୟମାନ; ପଳାଉଥିବା—
3. Fleeing; running away.
ସଂ. ବି. ( +ଭାବ. ଅନ )—୧ । ସ୍ୱପ୍ନ ( ହି. ଶବ୍ଦସାଗର )—
1. Dream.
୨ । ପଳାୟନ—2. Running away; fleeing; flight.

**ଦ୍ରାପ**—ସଂ. ବି—୧ । ଆକାଶ ( ହି. ଶବ୍ଦସାଗର )—
Drāpa 1. The sky.
୨ । କୌଡ଼ି ( ହି. ଶବ୍ଦସାଗର )—2. Sea-shell.
ସଂ. ବିଣ—୧ । ସୁପ୍ତ (ହି. ଶବ୍ଦସାଗର)—1. Asleep.
୨ । ମୂର୍ଖ—2. Ignorant; illiterate.

**ଦ୍ରାବ**—ସଂ. ବି. ( ଦ୍ରୁ ଧାତୁ+ଭାବ. ଅନ )—
Drāba ୧ । ପଳାୟନ—1. Flight; fleeing away.
୨ । ଗମନ; ଗତି—2. Motion; movement.
୩ । ତରଳିବା—3. Melting; fusion.
୪ । ପାଣିରେ ମିଳାଇ ଯିବା—4. Dissolution, solution.
୫ । ଅନୁତାପ—5. Repentance.
୬ । କ୍ଷରଣ—6. Percolation; leakage.
୭ । ତରଳ ପଦାର୍ଥ—7. A liquid.

**ଦ୍ରାବକ**—ସଂ. ବିଣ (ଦ୍ରୁ ଧାତୁ ଣିଚ୍ ଦ୍ରାବ. ଧାତୁ+ଅକ)—
Drābaka ୧ । ଯାହା ତରଳାଏ—1. Melting; liquefying.
(ଦ୍ରାବିକା—ସ୍ତ୍ରୀ) ୨ । ଯହିଁରେ ଅନ୍ୟ ବସ୍ତୁ ମିଳିଯାଏ; ଦ୍ରବକାରକ—2. Solvent.
୩ । ଯାହା ମିଶାଗଲେ ଧାତୁ ସହଜରେ ତରଳିଯାଏ—
4. Assisting the fusion of metals.
୫ । ପଳାୟମାନ—5. Fugitive; fleeing away.
୬ । ଚତୁର; ଚାଲାକ (ହି. ଶ)—6. Clever
୭ । ହୃଦୟଗ୍ରାହୀ (ହି. ଶ)—7. Interesting.
୮ । (ବୈଦ୍ୟକ) ଯେଉଁ ଔଷଧ ସେବନ କଲେ ଖୁବ୍ ପ୍ରସ୍ରାବ ହୁଏ—8. (medicine) Diuretic
ବି—୧ । ଧାତୁମାନ ଶୀଘ୍ର ତରଳ ହେବା ବିଷୟରେ ଯାହା ସାହାଯ୍ୟ କରେ—1 A flux which accelerates the fusion of metals
୨ । ଯେଉଁ ତରଳ ପଦାର୍ଥରେ ଅନ୍ୟବସ୍ତୁ ମିଳାଇ ଯାଇଥାଏ; ରସାୟନିକ ପ୍ରକ୍ରିୟାଦ୍ୱାରା ଧାତୁ ଆଦି ମିଶ୍ରିତ ତରଳ ପଦାର୍ଥ—2 A chemical solution.
୩ । ଯେଉଁ ଦ୍ରବ ପଦାର୍ଥରେ ଧାତୁ ଆଦି ମିଳାଇ ଯାଏ, ଅମ୍ଳରସ ବିଶେଷ; ଏସିଡ୍—3. Acid; a kind of sour juice.
(ଯଥା—ଗନ୍ଧକ ଦ୍ରାବକ, ଯବକ୍ଷାର ଦ୍ରାବକ, ଅଙ୍ଗାରକ ଦ୍ରାବକ ।)
୪ । ଲମ୍ପଟ ବ୍ୟକ୍ତି—4 A licentious man; an adulteror.
୫ । ଚୋର—5. A thief.
୬ । ଚନ୍ଦ୍ରକାନ୍ତ ମଣି—
6 Moon-stone; a kind of gem.
୭ । ମହମ; ମହଣ—7. Beeswax
୮ । (ସାହିତ୍ୟରେ) ରସ—
8. Sentiment (in literature).
୯ । ସୁହାଗା—9 Borax.

**ଦ୍ରାବକର**—ସଂ. ବି. (ଦ୍ରାବ+କୃ ଧାତୁ+କର୍ତ୍ତୃ. ଅ)—ସୋହାଗା—
Drābakara Borax.

**ଦ୍ରାବଣ**—ସଂ. ବି. (ଦ୍ରୁ ଧାତୁ ଣିଚ୍ ଦ୍ରାବ ଧାତୁ+ଅନ)—
Drābaṇa ୧ । ତରଳାଇବା; ଦ୍ରବୀକରଣ—
1. Act of melting a thing.
୨ । ତଡ଼ିଦେବା—2. Driving away
୩ । ପାଣିରେ ଲୁଣଆଦି ଗୋଳ ମିଳାଇ ଦେବା—
3. Act of dissolving.

**ଦ୍ରାବି (ଧାତୁ)**—ସଂ. (ଦ୍ରୁ ଧାତୁର ଣିଜନ୍ତ)—୧ । ତରଳାଇବା—
Drābi (root) 1. To cause to melt
୨ । ପାଣିରେ ଗୋଳ ମିଳାଇ ଦେବା—
2. To cause to dissolve.

**ଦ୍ରାବିକା**—ସଂ. ବି. ସ୍ତ୍ରୀ. (ଦ୍ରାବକ+ସ୍ତ୍ରୀ. ଆ)—୧ । ପାଟିର ନାଳ—
Drābikā 1. Saliva.
୨ । ମହଣ; ମହମ—2. Beeswax.
ବିଣ. ସ୍ତ୍ରୀ—ଦ୍ରାବକର ସ୍ତ୍ରୀଲିଙ୍ଗ—
The feminine of Drābaka.

**ଦ୍ରାବଡ଼**—ସଂ.ବି.(ଦ୍ରବଡ଼+ସ୍ୱାର୍ଥେ.ଅ)—ଦକ୍ଷିଣ ଭାରତର ଦ୍ରବଡ଼ ଦେଶ—
Drābirda A province of South India. ( from the south of Madras to Cape Comorin); the county of the Dravidians.
[ଦ୍ର—ମନୁରେ ସବର୍ଣ୍ଣା ସ୍ତ୍ରୀମାନଙ୍କଠାରୁ ଉତ୍ପନ୍ନ ବ୍ରାତ୍ୟ କ୍ଷତ୍ରିୟଙ୍କୁ ଦ୍ରବଡ଼ ବୋଲି ଯାଇଅଛି । ମହାଭାରତରେ ଲେଖା ଯାଇଅଛି ଯେ

ପରଶୁରାମଙ୍କ ଭୟରେ ବହୁସଂଖ୍ୟକ କ୍ଷତ୍ରିୟ ଦୂରବର୍ତ୍ତୀ ପାହାଡ଼ ଓ ଜଙ୍ଗଲକୁ ପଳାଇ ଯାଇ ସେଠାରେ ବାସ କଲେ; ସେଠାରେ ବ୍ରାହ୍ମଣଙ୍କ ଅଭାବରେ ସେମାନେ କ୍ରମକ୍ରମରେ ଧର୍ମ କର୍ମ ଭୁଲିଯାଇ ବୃଷଳତ୍ୱ ପ୍ରାପ୍ତ ହେଲେ। ଏହିମାନେହିଁ ଦ୍ରବିଡ଼, ଶବର, ପୁଣ୍ଡ୍ର ଆଦି ହେଲେ। ଦ୍ରବିଡ଼ ଦେଶ ଓଡ଼ିଶାର ଦକ୍ଷିଣରେ ବଙ୍ଗୋପସାଗର ଉପକୂଳରେ ବିସ୍ତୃତ ଥିଲା—ହି. ଶବ୍ଦସାଗର ।]

(ଦ୍ରାବିଡ଼ୀ—ଅନ୍ୟରୂପ) ବି—ଦ୍ରାବିଡ଼ ଦେଶୀୟ (ବ୍ୟକ୍ତି ଆଦି)—
Dravidian; pertaining to South India.

[ ଦ୍ର—ଭାରତୀୟ ଭାଷା ସାଧାରଣତଃ ଦୁଇ ଶାଖାରେ ବିଭକ୍ତ ଯଥା—ଆର୍ଯ୍ୟ (ଏରିଅନ୍)—ସଂସ୍କୃତ ଆଦି। ଓ ଅନାର୍ଯ୍ୟ ବା ଦ୍ରାବିଡ଼ (ଡ୍ରାଭିଡିଅନ୍);—ତେଲୁଗୁ, ତାମିଲ ଆଦି । ]

**ଦ୍ରାବିଡ଼ୀୟ**—ସ. ବିଣ. ( ଦ୍ରାବିଡ଼+ଈୟ )—
Drābirdiya ଦ୍ରାବିଡ଼ ଦେଶୀୟ; ଦ୍ରବିଡ଼ ଜାତୀୟ—
(ଦ୍ରାବିଡ଼ୀ—ଅନ୍ୟରୂପ) Dravidian
ବି—ଛୋଟ ଅଲେଇଚ—Small cardamom.

**ଦ୍ରାବିତ**—ସ. ବିଣ. ( ଦ୍ରୁ ଧାତୁ ଣିଚ ଦ୍ରାବ ଧାତୁ+କର୍ମ. ତ )—
Drābita ୧ । ଦ୍ରବୀଭୂତ—1. Melted, liquefied; molten.
(ଦ୍ରାବିତା—ସ୍ତ୍ରୀ)
୨ । ପାଣିରେ ଗୋଳକରି ଯାଇଥିବା—2. Dissolved.
୩ । ବିତାଡ଼ିତ—3. Expelled, driven away

**ଦ୍ରାବ୍ୟ**—ସ. ବିଣ. ( ଦ୍ରାବ ଧାତୁ+କର୍ମ. ଯ )—
Drābya ୧ । ଯାହା ତରଳା ଯାଇ ପାରେ—1 Capable of being melted; fusible.
୨ । ଯାହା କୌଣସି ତରଳ ପଦାର୍ଥରେ ଗୋଳାଯାଇ ମିଶ୍ରିତ ହୋଇ ପାରେ—2. Soluble; dissolvable.

**ଦ୍ରୁ** (ଧାତୁ)—ସ—୧ । ଗମନ କରିବା—
Dru (root) 1. To go.
୨ । ବୃଦ୍ଧି ପାଇବା—2. To increase.

**ଦ୍ରୁ**—ସ. ବି. ( ଦ୍ରୁ ଧାତୁ+କର୍ତ୍ତୃ ଉ )—
Dru ୧ । ବୃକ୍ଷ, ଗଛ—1. Tree; plant.
୨ । ଶାଖା—2. Branch

**ଦ୍ରୁକିଳିମ**—ସ. ବି—ଦେବଦାରୁ ( ହି. ଶବ୍ଦସାଗର )—
Dru kilima Pine (tree).

**ଦ୍ରୁଘଣ**—ସ. ବି. ( ଦ୍ରୁ=ବୃକ୍ଷ+ହନ୍ ଧାତୁ=ବଧ କରିବା+ଅ )—
Drughaṇa ୧ । ଲୌହ ମୁଦ୍ଗର—1. Iron mallet; iron club.
୨ । କୁରାଢ଼ୀ—2 An axe; hatchet.
୩ । ବ୍ରହ୍ମା—3 Brahmā.
୪ । ( ଗଛ ମରିଯିବା ପରେ ଏ ଫୁଲ ଭୂମିରୁ ବାହାରେ ) ଭୂଇଁଚମ୍ପା—4 Kœmhferia Rotunda ( a flowering plant )

**ଦ୍ରୁଛନା**—ଗ୍ରା. ବି. (ପ୍ରାଚୀନ ପ୍ରୟୋଗ) ବି.—(ସ. ଦଶନ)—
Druchhanā Tooth.
କରଇ ଦ୍ରୁଛନା ପ୍ରାୟେ ଝଣେ ଧାଇ ଧାଇ ।
ପ୍ରାଚୀ, ବୃନ୍ଦାବନଭ୍ରମଣ ଗୀତା ।

**ଦ୍ରୁଣ୍** (ଧାତୁ)—ସ—୧ । ବଧ କରିବା—
Druṇ (root) 1. To kill.
୨ । ଗମନ କରିବା—2 To go.

**ଦ୍ରୁଣ**—ସ. ବି. ( ଦ୍ରୁଣ୍ ଧାତୁ+ସଂଜ୍ଞା. ଅ )—
Druṇa ୧ । ଧନୁ—1. A bow.
୨ । ଖଡ୍ଗ—2 A sword.
୩ । ବିଛା ( ହି. ଶବ୍ଦସାଗର )—3. Scorpion.

**ଦ୍ରୁଣସ**—ସ. ବିଣ. ପୁଂ. ( ବହୁବ୍ରୀହି; ଦ୍ରୁ=ଗଛ+ନସ=ନାସିକା; Druṇasa ଗଛ ପରି ଲମ୍ବ ନାକ ଯାହାର )—
(ଦ୍ରୁଣସା—ସ୍ତ୍ରୀ) ଲମ୍ବନାକା, ନାକୁଆ—Long-nosed.

**ଦ୍ରୁଣା**—ସ. ବି. ( ଦ୍ରୁଣ୍ ଧାତୁ+ଆ )—
Druṇā ଧନୁର ଗୁଣ—Bow-string.

**ଦ୍ରୁଣୀ**—ସ. ବି. ସ୍ତ୍ରୀ. ( ଦ୍ରୁଣ ଧାତୁ+ଇ )—
Druṇi ୧ । କଚ୍ଛପୀ—1 A female tortoise
(ଦ୍ରୁଣୀ—ଅନ୍ୟରୂପ) ୨ । କାନ ବିଛା ( ହି. ଶବ୍ଦସାଗର )—
2. A small and slender species of centipedes.

**ଦ୍ରୁତ**—ସ. ବି. ( ଦ୍ରୁ ଧାତୁ+କର୍ତ୍ତୃ. ତ )—
Druta ୧ । ଧାବିତ; ପଳାୟିତ—1. Fleeing away; fled running; run away.
୨ । ଗଳିତ; ଦ୍ରବୀଭୂତ—2. Melted; liquefied.
୩ । ଆର୍ଦ୍ର—3. Moistened; wet.
୪ । ତରଳ; ଜଳୀୟ—4 Liquid; fluid.
୫ । ତ୍ୱରାନ୍ୱିତ; ଶୀଘ୍ରଗାମୀ—5. Quick; swift.
୬ । ପାଣିରେ ଗୋଳ ହୋଇ ମିଶି ଯାଇଥିବା—Dissolved.
ବି—୧ । ଶୀଘ୍ରତା—1. Quickness; swiftness.
୨ । ଦ୍ରବୀଭୂତ ଘୃତ—2. Melted ghee.
୩ । ଶୀଘ୍ର ଗମନ—3. Quick motion.
୪ । (ସଂଗୀତ) ତାଳର ଏକ ମାତ୍ରାର ଅଧେ—
4 (Music) Half a measure.
୫ । ବୃକ୍ଷ ( ହି. ଶବ୍ଦସାଗର )—5. Tree.
୬ । ବିଛା ( ହି. ଶବ୍ଦସାଗର )—6 Scorpion.
୭ । ବିରାଡ଼ି ( ହି ଶବ୍ଦସାଗର )—7. Cat.
ବେ. ବିଣ—ଦୀର୍ଘ ( ଉଚ୍ଚାରଣ )—
Long (sound of a letter).
ତ୍ରିମାତ୍ରା ଦ୍ରୁତରେ ବନ୍ଧମ ଅନ୍ତ ସେ । ଉତ୍କ. କୋଟବ୍ରହ୍ମାଣ୍ଡସୁନ୍ଦରୀ ।

**ଦ୍ରୁତ ଗତି**—ସ. ବି. ( କର୍ମଧା; ଦ୍ରୁତ+ଗତି )—
Druta gati ଦ୍ରୁତ ପଦ (ଦେଖ )
Druta pada (See)
ସ. ବିଣ. (ବହୁବ୍ରୀହି)—ଦ୍ରୁତଗାମୀ—Swift.

**ଦ୍ରୁତଗାମୀ**—ସ. ବିଣ. ପୁଂ. (ଦ୍ରୁତ+ଗମ୍ ଧାତୁ କର୍ତ୍ତୃ.ଇନ୍; ୧ମା.୧ବ)—
Drutagāmi ବେଗଗାମୀ; ଶୀଘ୍ରଗାମୀ—
(ଦ୍ରୁତଗାମିନୀ—ସ୍ତ୍ରୀ) Moving swiftly; fleet; nimble.

ଦ୍ରୁତଚାରୀ—ସଂ. ବଣ. ପୁଂ ( ଦ୍ରୁତ+ଚର ଧାତୁ+କର୍ତ୍ତୃ. ଇନ୍; ୧ମା· ୧ବ)—ଦ୍ରୁତଗାମୀ ( ଦେଖ )
Drutachārī Drutagāmi ( See )
(ଦ୍ରୁତଚାରିଣୀ—ସ୍ତ୍ରୀ)

ଦ୍ରୁତପଦ—ସ ବ. (କର୍ମଧା, ଦ୍ରୁତ+ପଦ)—ଶୀଘ୍ର ଗତି; ବେଗଗମନ—
Druta pada Quick steps; speedy motion; swift pace; speed.
ବଣ. (ବହୁବ୍ରୀହି) ଶୀଘ୍ରଗାମୀ—
Swift-footed; speedy; fleet of foot

ଦ୍ରୁତ ବିଳମ୍ବ—ସ. ବ. (ଦ୍ରୁତ+ବିଳମ୍ବ)—୪ର୍ଥ, ୭ମ, ୧୦ମ ଓ ୧୨ଶ
Druta bilamba ବର୍ଣ୍ଣ ଗୁରୁ ଥିବା ଦ୍ୱାଦଶାକ୍ଷରବିଶିଷ୍ଟ ସଂସ୍କୃତ
(ଦ୍ରୁତବିଳମ୍ବିତ—ଅନ୍ୟରୂପ) ଛନ୍ଦୋବିଶେଷ—The name of a Sanskrit metre of 12 syllables.
(ଦ୍ରୁ—ଏହି ଛନ୍ଦର ଅନ୍ୟ ନାମ ସୁନ୍ଦରୀ ।)

ଦ୍ରୁତମଧ୍ୟା—ସ. ବ. (ବହୁବ୍ରୀହି, ଦ୍ରୁତ+ମଧ୍ୟ+ଆ)—
Drutamadhyā ସଂସ୍କୃତ ଛନ୍ଦୋବିଶେଷ—
The name of a Sanskrit metre.

ଦ୍ରୁତି—ସ. ବ. (ଦ୍ରୁ ଧାତୁ+ଭାବ. ତି)—୧ । ପଳାୟନ—
Druti 1. Fleeing away; flight.
୨ । ଗତି—2. Motion.
୩ । ଦ୍ରବ (ହି. ଶବ୍ଦସାଗର)—3. Fluid.

ଦ୍ରୁନଖ—ସ. ବ. (୬ଷ୍ଠୀ ତତ୍, ଦ୍ରୁ=ଗଛ+ନଖ=କଣ୍ଟା)—
Dru nakha ଗଛର କଣ୍ଟା—Thorn

ଦ୍ରୁପଦ—ସ. ବ—୧ । ପଞ୍ଚାଳ ଦେଶର ରାଜା; ଦ୍ରୌପଦୀଙ୍କ ପିତା—
Drupada 1. Father of Draupadī, a king of the Pañchāla country.
[ ଦ୍ରୁ—ଏ ଚନ୍ଦ୍ରବଂଶୀ ପୃଷତ ରାଜାଙ୍କ ପୁତ୍ର । ଦ୍ରୌପଦୀ ଏହାଙ୍କ କନ୍ୟା, ଧୃଷ୍ଟଦ୍ୟୁମ୍ନ ଓ ଶିଖଣ୍ଡୀ ଏହାଙ୍କ ପୁତ୍ର; ଦ୍ରୁପଦ ମହାଭାରତ ଯୁଦ୍ଧରେ ନିହତ ହୋଇଥିଲେ । ]
୨ । ପଞ୍ଚାଳ ଦେଶ—2. A tract of country lying along the Ganges and the Jamunā.
୩ । ସ୍ତମ୍ଭର ଗୋଡ଼ା ବା ବଇଠି (ହି. ଶବ୍ଦସାଗର)—
3. The base or capital of a pillar.
୪ । ଖଡ଼ଉ; କଠାଉ (ହି. ଶବ୍ଦସାଗର)—
4. Wooden sandals; clogs

ଦ୍ରୁପଦ ରାଜକନ୍ୟା—ସ. ବ. ସ୍ତ୍ରୀ. (୬ଷ୍ଠୀ ତତ୍; ଦ୍ରୁପଦରାଜ+କନ୍ୟା)—
Drupada rājakanyā ଦ୍ରୌପଦୀ (ଦେଖ)
Draupadī (See)
(ଦ୍ରୁପଦ ରାଜପୁତ୍ରୀ, ଦ୍ରୁପଦାତ୍ମଜା, ଦ୍ରୁପଦପୁତ୍ରୀ—ଅନ୍ୟରୂପ)

ଦ୍ରୁପଦ ରାଜପୁତ୍ର—ସ. ବ. (୬ଷ୍ଠୀ ତତ୍; ଦ୍ରୁପଦରାଜ+ପୁତ୍ର)—
Drupada rājaputra ଧୃଷ୍ଟଦ୍ୟୁମ୍ନ ଓ ଶିଖଣ୍ଡୀ—
(ଦ୍ରୁପଦାତ୍ମଜ—ଅନ୍ୟରୂପ) Two famous warriors of of the Mahābhārata war.
[ ଦ୍ରୁ—ଏମାନେ କୁରୁକ୍ଷେତ୍ରରେ ପାଣ୍ଡବଙ୍କ ପକ୍ଷରେ ଯୁଦ୍ଧ କରିଥିଲେ । ]

ଦ୍ରୁପଦୀ—ଗ୍ରା ବ. (ସ. ଦ୍ରୌପଦୀ)—୧ । ଦ୍ରୌପଦୀ (ଦେଖ)
Drupadī 1. Draupadī (See)
(ଦ୍ରୁପଦୀ—ଅନ୍ୟରୂପ) ୨ । ଦ୍ରୌପଦୀ ନାମ୍ନୀ ସ୍ତ୍ରୀର ଡାକ ନାମ—
2. Name for calling a woman named Draupadī.

ଦ୍ରୁବୟ—ସ. ବ—୧ । କାଠର ମାପ (ହି ଶବ୍ଦସାଗର)—
Drubaya 1. Measurement of timber.
୨ । ପରିମାଣ ହି. ଶବ୍ଦସାଗର)—2. Measurement.

ଦ୍ରୁବିଦ—ଦେ. ବ (ସ. ଦୁର୍ବୁଦ୍ଧି)—୧ । ବୁଦ୍ଧିହୀନ—
Drubida 1. Foolish.
(ଦ୍ରୁବିନ୍ଦ—ଅନ୍ୟରୂପ) ୨ । ମୂର୍ଖ—2. Illiterate.

ଦ୍ରୁବିନ୍—ଦେ. ବ (ସ. ଦୂର ବୀକ୍ଷଣ)—ଦୂରବୀକ୍ଷଣ ଯନ୍ତ୍ର; ଦୂରବୀନ୍—
Drubin Telescope.
[ଦ୍ରୁବିନ୍ଦ(ନ), ଦ୍ରୁବିନ୍(କ)—ଅନ୍ୟରୂପ]
ফুর্বীন दूरबीन

ଦ୍ରୁମ—ସ. ବ. (ଦ୍ରୁ ଧାତୁ+କର୍ତ୍ତୃ ମ)—୧ । ବୃକ୍ଷ—
Druma 1. A tree.
୨ । ବଡ଼ଗଛ—2. Big tree.
୩ । କୁବେର—3 Kubera, the Hindus' God of wealth.
୪ । ପାରିଜାତ (ହି. ଶ.)—4 Name of a tree and its flower said to thrive in Heaven.
୫ । ହରିବଂଶ ଅନୁସାରେ ରୁକ୍ମିଣୀ ଗର୍ଭଜାତ ଶ୍ରୀକୃଷ୍ଣଙ୍କ ଏକ ପୁତ୍ର—5 Name of a son of Śrīkṛushṇa.

ଦ୍ରୁମକଣ୍ଟିକା—ସ. ବ. (ଦ୍ରୁମ+କଣ୍ଟ+କ+ଅ)—ଶିମିଳି ଗଛ (ହି.ଶ.)
Druma kanṭikā The silk-cotton tree.

ଦ୍ରୁମ ନଖ—ସ ବ.—ଦ୍ରୁନଖ; ଗଛର କଣ୍ଟା—
Druma nakha Thorn.
(ଦ୍ରୁମରଭ—ଅନ୍ୟରୂପ)

ଦ୍ରୁମ ବ୍ୟାଧି—ସ. ବ (୬ଷ୍ଠୀ ତତ୍; ଦ୍ରୁମ+ବ୍ୟାଧି)—୧ । ଲାକ୍ଷା;
Druma byādhi ଲାକ୍ଷ—1. Shell-lac.
(ଦ୍ରୁମାମୟ—ଅନ୍ୟରୂପ) ୨ । ଗଛର ରୋଗ—
2. A disease attacking a tree.

ଦ୍ରୁମର—ସ. ବ. (ଦ୍ରୁମ+ସଂଜ୍ଞାର୍ଥେ. ର)—ଗଛର କଣ୍ଟା—
Drumara Thorn.

ଦ୍ରୁମରାଜ—ସ. ବ. (୬ଷ୍ଠୀ ତତ୍; ଦ୍ରୁମ+ରାଜନ୍)—୧ । ଖୁବ୍ ବଡ଼ ଗଛ—
Drumarāja 1. A very big tree.
ଦ୍ରୁମ ଶ୍ରେଷ୍ଠ, ଦ୍ରୁମେଶ୍ୱର } ଅନ୍ୟରୂପ ୨ । ତାଳଗଛ—2. Palm tree.

ଦ୍ରୁମ ସାର—ସ ବ. (୬ଷ୍ଠୀ ତତ୍; ଦ୍ରୁମ+ସାର)—ଡାଳିମ୍ବ (ହି. ଶ.)—
Druma sāra Pomegranate.

ଦ୍ରୁମସେନ—ସ. ବ.—(ନାମ) ଧୃଷ୍ଟଦ୍ୟୁମ୍ନଙ୍କଦ୍ୱାରା ନିହତ କୌରବ ପକ୍ଷୀୟ
Drumasena ଯୋଦ୍ଧା—Name of a warrior who fought for the Kaurabas.

ଦ୍ରୁମାରି—ସଂ. ବି —(୬ଷ୍ଠୀ ତତ୍; ଏ ଗଛମାନ ଭାଙ୍ଗିବାରୁ )—ହାତୀ—
Drumāri Elephant.

ଦ୍ରୁମାଳୟ—ସଂ. ବି (୬ଷ୍ଠୀ ତତ୍; ଦ୍ରୁମ+ଆଳୟ)—ବଣ; ଜଙ୍ଗଲ
Drumālaya (ହି. ଶ.)—Forest.
(ଦ୍ରୁମିଣୀ—ଅନୁରୂପ)

ଦ୍ରୁମାଶ୍ରୟ—ସଂ. ବି. (ବହୁବ୍ରୀହି, ଦ୍ରୁମ+ଆଶ୍ରୟ)—କୃକଳାସ; ଏଣ୍ଡୁଅ—
Drumāśraya Lizard; chameleon.

ଦ୍ରୁମିଳ—ସଂ. ବି. (ନାମ)—ସୌଭ ଦେଶର ରାଜା, ଦାନବବିଶେଷ—
Drumila Name of a demon, king of the Saubha kingdom.

ଦ୍ରୁମେଶ୍ୱର—ସଂ.ବି. (ଦ୍ରୁମ+ଈଶ୍ୱର)—୧ । ଚନ୍ଦ୍ର (ହି. ଶ.); ଔଷଧୀଶ-
Drumeśwara 1. The moon.
୨ । ତାଳଗଛ—2. Palm tree
୩ । ପାରିଜାତ (ଦେଖ)—3. Pārijāta (See)
୪ । ଖୁବ୍ ବଡ଼ ଗଛ—4. A very big tree

ଦ୍ରୁମୋତ୍ପଳ—ସଂ. ବି.—କର୍ଣ୍ଣିକାର ବୃକ୍ଷ; କନିଅର ଗଛ—
Drumotpala Theveta Neriflorіa tree).

ଦ୍ରୁହ୍ (ଧାତୁ)—ସଂ.—୧ । ବଧ କରିବା—
Druh (root) 1. To kill.
୨ । ଅନିଷ୍ଟ କରିବା—2 To injure.
୩ । ହିଂସା କରିବା—3. To take vengeance

ଦ୍ରୁହ—ସଂ. ବିଣ. (ଦ୍ରୁହ୍ ଧାତୁ+କ୍ୱପ)—ବିଦ୍ରୋହୀ—
Druha Rebellious.
(ଦ୍ରୁହୀ—ସ୍ତ୍ରୀ) ସଂ. ବି. ପୁଂ.—୧ । ପୁତ୍ର—1. Son
୨ । ବୃକ୍ଷ—2. Tree.

ଦ୍ରୁହଣ—ସଂ. ବି —( ଦ୍ରୁହ୍ ଧାତୁ+କର୍ତ୍ତୃ ଅନ; ଯେ ଦୁଷ୍ଟଙ୍କୁ ବଧ
Druhaṇa କରନ୍ତି )—୧ । ବ୍ରହ୍ମା—1.Brahmā.
୨ । ବିଷ୍ଣୁ—2.Bishṇu,

ଦ୍ରୁହୀ—ସଂ. ବି ସ୍ତ୍ରୀ (ଦ୍ରୁହ୍ ଧାତୁ+ଅ+ଈ)—କନ୍ୟା—
Druhī Daughter.

ଦ୍ରୁହ୍ୟ—ସଂ. ବିଣ. (ଦ୍ରୁହ୍ ଧାତୁ+କର୍ତ୍ତୃ. ଯ)—ଦ୍ରୋହକାରୀ—
Druhya Rebellious

ଦ୍ରୁହ୍ୟୁ—ସଂ. ବି. ( ନାମ )—୧ । ଶର୍ମିଷ୍ଠାଙ୍କ ଗର୍ଭଜାତ ଯଯାତିଙ୍କର ଏକ
Druhyū ପୁତ୍ର—1. Name of a son of King Jajāti.
୨ । ତ୍ରିପୁରା ରାଜବଂଶର ବଂଶାବଳୀ ( ରାଜମାଳା ) ମତରେ ତ୍ରିପୁରା ରାଜବଂଶର ପ୍ରଥମ ପ୍ରତିଷ୍ଠାତା ଚନ୍ଦ୍ରବଂଶୀୟ ରାଜା—
2. Name of the founder of the Raj-family of the Hill Tippera State.

ଦ୍ରୁ ( ଧାତୁ )—ସଂ—୧ । ଗମନ କରିବା—
Drū ( root ) 1. To go.
୨ । ତରଳିବା—2. To melt.

ଦ୍ରୁ—ସଂ. ବି. ( ଦ୍ରୁ ଧାତୁ+ଉ )—ସୁନା—
Drū Gold.

ଦ୍ରୁଣ—ସଂ. ବି. ( ଦ୍ରୁ ଧାତୁ+କର୍ତ୍ତୃ. ନ )—ବିଛା—
Drūṇa Scorpion.

ଦ୍ରେକ୍କାଣ—ସଂ ବି. ( ଜ୍ୟୋତିଷ, ଭୁଲ. ଗ୍ରୀକ୍ ଦ୍ରେକାନସ )—
Drekkāṇa ୧ । ରାଶିର ତୃତୀୟ ଅଂଶର ଅଧିପତି ଗ୍ରହ—
ଦ୍ରିକ୍କାଣ, ଦ୍ରେକ୍କ } ଅନ୍ୟରୂପ 1. The planetary regent of one-third of a zodiacal sign; the Decanus of European astrology.
୨ । ଫଳିତ ଜ୍ୟୋତିଷରେ ଏକ ରାଶିର ତୃତୀୟ ଭାଗ ବା ଦଶ ଡିଗ୍ରି ପରିମିତ ଅଂଶ—
2. ( astrology ) One third of a sign of the zodiac.
[ ଦ୍ର—ରାଶିଚକ୍ର ୩୬୦ ଡିଗ୍ରି; ପ୍ରତ୍ୟେକ ରାଶି ୩୦ ଡିଗ୍ରି ଓ ପ୍ରତ୍ୟେକ ଦ୍ରେକ୍କାଣ ୧୦ ଡିଗ୍ରି । ପ୍ରତ୍ୟେକ ଦ୍ରେକ୍କାଣର ଅଧିପତି ଗୋଟିଏ ଲେଖାଏଁ ଗ୍ରହ ଅଛନ୍ତି । ଏକ ରାଶିର ଅଧିପତି ଗ୍ରହ ଉକ୍ତ ରାଶିର ପ୍ରଥମ ଦ୍ରେକ୍କାଣର ଅଧିପତି ଅଟନ୍ତି । ଉକ୍ତ ରାଶିଠାରୁ ୫ମ ରାଶିର ଅଧିପତି ଗ୍ରହ ଦ୍ୱିତୀୟ ଦ୍ରେକ୍କାଣର ଅଧିପତି ଓ ୯ମ ରାଶିର ଅଧିପତି ତୃତୀୟ ଦ୍ରେକ୍କାଣର ଅଧିପତି ଅଟନ୍ତି । ଶୁଭ ଗ୍ରହର ଦ୍ରେକ୍କାଣର ନାମ ଜଳ ଓ ଅଶୁଭ ଗ୍ରହର ଦ୍ରେକ୍କାଣର ନାମ ଦହନ । ଜଳ ଦ୍ରେକ୍କାଣରେ ଯେଉଁ ବ୍ୟକ୍ତିର ଜନ୍ମ ହୋଇଥାଏ ଜଳରେ ତାହାର ମୃତ୍ୟୁ ହୁଏ, ଦହନ ଦ୍ରେକ୍କାଣରେ ଯାହାର ଜନ୍ମ, ଅଗ୍ନିରେ ତାହାର ମୃତ୍ୟୁ ଘଟେ । ହି ଶବ୍ଦସାଗର । ]

ଦ୍ରୋଛନା—ଦେ. ବି. ( ସଂ ଜ୍ୟୋତ୍ସ୍ନା )—୧ । କିରଣ—
Drochhanā 1 Rays.
୨ । ଚନ୍ଦ୍ର କିରଣ—2. Moonlight.
ମଥ ଅଷଳଙ୍କ ଦ୍ରୋଛନା ଦିଶେ କଳାପ୍ରାୟେ—ପ୍ରାଚୀ. ବ୍ରହ୍ମନିରୂପଣଗୀତା ।

ଦ୍ରୋଣ—ସଂ ବି ପୁଂ ( ଦ୍ରୁ ଧାତୁ+ଣ )—୧ । ଦ୍ରୋଣାଚାର୍ଯ୍ୟ; କୌରବ
Droṇa ଓ ପାଣ୍ଡବ ରାଜକୁମାରମାନଙ୍କର ଅସ୍ତ୍ରବିଦ୍ୟାଗୁରୁ—
1. Droṇa, the preceptor of the Kauraba and Pāndaba princes.
[ ଦ୍ର—ଘୃତାଚୀ ନାମ୍ନୀ ଅପ୍ସରାକୁ ଦେଖି ଭରଦ୍ୱାଜ ମୁନିଙ୍କର ରେତଃପାତ ହେଲା । ସେହି ରେତଃକୁ ମୁନି ଗୋଟିଏ ଦ୍ରୋଣୀ ( ପାତ୍ର ) ମଧ୍ୟରେ ରଖିଥିଲେ । ସେହି ଦ୍ରୋଣୀରେ ଏହାଙ୍କର ଜନ୍ମ ହୋଇଥିବାରୁ ଏହାଙ୍କର ଦ୍ରୋଣ ନାମ ହୋଇଥିଲା । ଦ୍ରୋଣ ପରଶୁରାମଙ୍କଠାରୁ ଅସ୍ତ୍ର ବିଦ୍ୟା ଶିକ୍ଷା କରିଥିଲେ । ଏ କୃପାଚାର୍ଯ୍ୟଙ୍କ ଭଗ୍ନୀ କୃପୀଙ୍କୁ ବିବାହ କରିଥିଲେ ଓ ଏହାଙ୍କଠାରୁ ଅଶ୍ୱତ୍ଥାମା ଜନ୍ମିଥିଲେ । ଏ କୌରବ ଓ ପାଣ୍ଡବମାନଙ୍କର ଅସ୍ତ୍ରଗୁରୁ ଥିଲେ । ମହାଭାରତ ଯୁଦ୍ଧରେ ଏ କୌରବମାନଙ୍କ ପକ୍ଷରେ ଯୁଦ୍ଧ କରିଥିଲେ । ୧ ଦିନ ଯୁଦ୍ଧ କରିବା ପରେ ଯୁଧିଷ୍ଠିରଙ୍କର ମୁହଁରୁ 'ଅଶ୍ୱତ୍ଥାମା (ହାତୀ) ହତ ହେଲା' ବାକ୍ୟ ଶୁଣି ନିଜର ପୁତ୍ର ଅଶ୍ୱତ୍ଥାମା ହତ ହେଲା ବୋଲି ଭାବନା କରି ଏ ଶୋକରେ ଧ୍ୟାନମଗ୍ନ ହେଲେ, ଓ ଏହି ଅବସରରେ ଦ୍ରୁପଦଙ୍କ ପୁତ୍ର ଧୃଷ୍ଟଦ୍ୟୁମ୍ନ ଏହାଙ୍କ ମୁଣ୍ଡ କାଟି ଦେଲେ । ]
୨ । ଡାମରା କୁଆ—
2. Jackdaw; raven; carrion crow.
୩ । ବିଛା—3. Scorpion.
୪ । ବୃହତ୍ ଜଳାଶୟ—4. A big tank.
[ ଦ୍ର—ଏହାର ଦୈର୍ଘ୍ୟ ଓ ପ୍ରସ୍ଥ ୪୦୦ ଧନୁ ଲେଖାଏଁ, ଏହା ପୁଷ୍କରିଣୀ ଓ ବାପିକାଠାରୁ ବଡ଼—ହି. ଶବ୍ଦସାଗର । ]

୫ । ଡଙ୍ଗା ଆକୃତିର ଜଳାଧାର—
5. A long boat-shaped trough of water.
[ ଦ୍ର—ବୈଦିକ ଯୁଗରେ ଏଥିରେ ସୋମରସ ରକ୍ଷିତ ହେଉଥିଲା—ହି. ଶବ୍ଦସାଗର । ]
୬ । ଗଯୂସ ଗୁଳ୍ମ—6. Leucas plant.
[ ଦ୍ର—ଏହାର ଫୁଲର ଆକୃତି ଡଙ୍ଗା ପରି । ]
୭ । ପାତ୍ରୀ, ଡଙ୍ଗା ଆକୃତିର ପାତ୍ର—
7. A cup shaped like a boat.
୮ । ୩୨ ସେର ଶସ୍ୟାଦିର ପରିମାଣ ପାତ୍ର—
9. A measure of 32 seers of corn and other things
୯ । ପସୁରି; ପାଞ୍ଚସେର; ପାଞ୍ଚସେରିଆ ଓଜନି —
9. A standard weight or measure of 5 seers.
୧୦ । ମେଘବିଶେଷ; ବାଇଗଣକୋଡ଼ା ମେଘ; ଗୁରୁ ପ୍ରକାର ମେଘ ମଧ୍ୟରୁ ଏକ ପ୍ରକାର ମେଘ—
10. Name of a cloud; the cirrus cloud; the mackerel cloud.
[ଦ୍ର—ଜ୍ୟୋତିଷ ମତରେ ଏହା ମେଘମାନଙ୍କର ଏକ ଅଧିପତିର ନାମ, ଯେଉଁ ବର୍ଷ ଏ ମେଘନାୟକ ହୁଏ ସେ ବର୍ଷ ପୃଥିବୀରେ ଖୁବ୍ ବର୍ଷା ହୁଏ—ହି. ଶବ୍ଦସାଗର । ]
୧୧ । ଡଙ୍ଗା ( ହି. ଶବ୍ଦସାଗର )—11. Boat.
୧୨ । ଡଙ୍ଗା ଆକୃତିର ପତ୍ରନିର୍ମିତ ଦନା ( ହି. ଶବ୍ଦସାଗର )—
12. A boat-shaped cup of leaves.
୧୩ । ବୃକ୍ଷ; ଗଛ ( ହି. ଶବ୍ଦସାଗର )—13. Tree; plant.
୧୪ । ନୀଳଗୁଳ୍ମ ( ହି. ଶବ୍ଦସାଗର )—14. Indigo plant.
୧୫ । କଦଳୀ ( ହି. ଶବ୍ଦସାଗର )—15. Plantain.

**ଦ୍ରୋଣ କାକ**—ସଂ. ବି—ଡାମରା କୁଆ—
Drona kāka Raven; carrion crow.

**ଦ୍ରୋଣ ଗୁରୁ**—ସଂ ବି—ଦ୍ରୋଣ ୧ ( ଦେଖ )
Drona guru Drona 1 ( See )
(ଦ୍ରୋଣାଚାର୍ଯ୍ୟ—ଅନ୍ୟରୂପ)

**ଦ୍ରୋଣଦୁଘା**—ସଂ ବିଣ. ସ୍ତ୍ରୀ (ଦ୍ରୋଣ+ଦୁହ୍ ଧାତୁ+କର୍ମ କ୍ୱିପ୍+ସ୍ତ୍ରୀ.)ଆ-
Dronadughā ଯେଉଁ ଗାଈ ଦିନକେ ୩୨ ସେର ପରିମିତ ଦୁଧ ଦିଏ—
( ଦ୍ରୋଣମାନା—ଅନ୍ୟରୂପ ) A cow which gevis 32 seers of milk a day.

**ଦ୍ରୋଣପୁଷ୍ପୀ**—ସଂ.ବି—(ଦ୍ରୋଣ+ପୁଷ୍ପ+ସ୍ତ୍ରୀ. ଈ;ଏହାର ଫୁଲ ଡଙ୍ଗାପରି)
Dronapuspi ଗଯୂସ ଗଛ—Leucas plant.
( ଦ୍ରୋଣପୁଷ୍ପା—ସ୍ତ୍ରୀ )

**ଦ୍ରୋଣମ୍ପକ**—ସଂ. ବିଣ. ( ଦ୍ରୋଣଂ+ପଚ୍ ଧାତୁ+ଅ ) - ଯେଉଁ ପାଚକ
Dronampaka ବହୁପରିମିତ ପଦାର୍ଥ ଏକଥର ରାନ୍ଧି ପାରେ—
A cook who can cook large quantities of food at a time.

**ଦ୍ରୋଣା**—ସଂ. ବି. ସ୍ତ୍ରୀ—(ଦ୍ରୋଣ+ଆ)—ଗଯୂସ ଫୁଲ—
Droṇā Leucas flower.

**ଦ୍ରୋଣାଚାର୍ଯ୍ୟ**—ସଂ. ବି—ଦ୍ରୋଣ ୧ ( ଦେଖ )
Dronāchārjya Drona 1 ( See )

**ଦ୍ରୋଣାୟନ**—ସଂ ବି. ପୁଂ. (ଦ୍ରୋଣ+ଅପତ୍ୟାର୍ଥେ. ଆୟନ)—ଦ୍ରୋଣଙ୍କ
Dronāyana ପୁତ୍ର ଅଶ୍ୱତ୍ଥାମା—Aśwatthāmā, the son of Drona.
( ଦ୍ରୋଣାୟନୀ—ଅନ୍ୟରୂପ )

**ଦ୍ରୋଣି**—ସଂ. ବି. ସ୍ତ୍ରୀ. ( ଦ୍ରୁ ଧାତୁ+ନି )—୧ । ଡଙ୍ଗି; ଛୋଟ ଡଙ୍ଗା—
Droni 1. A canoe; small boat.
(ଦ୍ରୋଣୀ—ଅନ୍ୟରୂପ) ୨ । ଗୋରୁକୁଣ୍ଡ—2 A vat or bucket used in feeding cattle; a trough.
୩ । ଜଳସେଚନୀ, ସେଉତି—
3. A baling vessel, a kind of pot used in sprinkling water on fields.
୪ । ଗିରିସଙ୍କଟ—4. A mountain pass.
୫ । ଡଙ୍ଗା ଆକାରର ପାତ୍ର—
5 A boat-shaped cup.
୬ । ଲମ୍ବଡ଼ା କୁଣ୍ଡ—6. A long tub.
୭ । କାଠର ପାତ୍ର; କାଠୁଆ ( ହି. ଶବ୍ଦସାଗର ) -
7. Wooden pot
୮ । ପତ୍ରର ଦନା ( ହି. ଶବ୍ଦସାଗର )—
8. A cup made of leaves.
୯ । କଦଳୀ (ହି. ଶବ୍ଦସାଗର)—9. Plantain.
୧୦ । ନୀଳଗୁଳ୍ମ (ହି. ଶବ୍ଦସାଗର)—10. Indigo plant.
୧୧ । ୧୨୮ ବା ମତାନ୍ତରରେ ୬୮ସେର ପରିମାଣବିଶେଷ—
11. A unit of measure.
୧୨ । ଏକପ୍ରକାର ଲୁଣ—12. A kind of salt.
୧୩ । ଶୀଘ୍ରତା (ହି. ଶବ୍ଦସାଗର)—13. Swiftness.
୧୪ । ( ଦ୍ରୋଣ+ଅପତ୍ୟାର୍ଥେ. ଇ ) ଅଶ୍ୱତ୍ଥାମା—
14. Aśwatthāmā
୧୫ । ( ଦ୍ରୋଣ+ଈ)—ଦ୍ରୋଣାଚାର୍ଯ୍ୟଙ୍କ ସ୍ତ୍ରୀ; କୃପୀ—
15. The wife of Drona.

**ଦ୍ରୋଣିକ**—ସଂ. ବି. ସ୍ତ୍ରୀ (ଦ୍ରୋଣ+କ+ସ୍ତ୍ରୀ. ଆ)—ନୀଳୀ ଗୁଳ୍ମ—
Dronika Indigo plant.
(ଦ୍ରୋଣିକା—ସ୍ତ୍ରୀ)

**ଦ୍ରୋଣୀ ଦଳ**—ସଂ. ବି. (ବହୁବ୍ରୀହି; ଦ୍ରୋଣୀ+ଦଳ; ଏହାର ପତ୍ର ଓ
Droni dala ପାଖୁଡ଼ା ଡଙ୍ଗା ପରି)—କେତକୀ ଗଛ ଓ ଫୁଲ—
Pandanus Odoratissimus (tree and flowers.)

**ଦ୍ରୋଣୀ ଲବଣ**—ସଂ. ବି.—କର୍ଣ୍ଣାଟଦେଶ ନିକଟରେ ମିଳିବା ଏକପ୍ରକାର
Droni labana ଲୁଣ—A kind of salt found in the Karnatak coast of India.
[ଦ୍ର—ଏହା ଅତି ଭେଦକ, ସ୍ନିଗ୍ଧ,ଶୂଳନାଶକ; ଅନ୍ୟ ସଂ. ନାମ ଦ୍ରୋଣେୟ, ଦ୍ରୋଣୀଜ, ବାରିଜ, ବାର୍ଦ୍ଧିଜ, ଦ୍ରୋଣୀ, ଉତ୍କଟ ଲବଣ, ବଟ୍ଟେର୍ୟ୍ୟ, ବାର୍ଦ୍ଧିଭବ)

**ଦ୍ରୋପଦୀ**—ଗ୍ରା. ବ. (ଦ୍ରୌପଦୀର ଅଶୁଦ୍ଧ ଉଚ୍ଚାରଣ)--ଦ୍ରୌପଦୀ (ଦେଖ)--
Dropadi Draupadi (See)

**ଦ୍ରୋହ**—ସଂ. ବି (ଦ୍ରୁହ୍. ଧାତୁ + ଭାବ. ଅ)—୧ । ଅନିଷ୍ଟାଚରଣ—
Droha 1. Mischief; violence
୨ । ଅପକାର — 2. Injury.
୩ । ପରର ଅନିଷ୍ଟ ଚିନ୍ତା — 3. Thoughts to injure another; malice.
୪ । ପରାଭବ—4. Defeat,
୫ । ବିଶ୍ୱାସଘାତକତା — 5 Treachery; perfidy.
୬ । ବିଦ୍ରୋହାଚରଣ — 6. Rebellion; treason.

ପାପକାରୀ ଦ୍ରୌଣିର ଦ୍ରୋହ ଯୁଦ୍ଧ ଦେଖି
ଶାପ ଦେଲେ ବ୍ୟାସ କୋହଣ କରି ଦୁଃଖୀ । କୃଷ୍ଣସିଂହ ମହାଭାରତ.ଅଦ ।

୭ । ଘୃଣା — 7. Hatred.
୮ । ପ୍ରତିହିଂସାବୃତ୍ତି — 8 Spirit of revenge,

**ଦ୍ରୋହାଟ**—ସଂ. ବି ( ଦ୍ରୋହ+ଅଟ୍ ଧାତୁ +କର୍ତ୍ତୃ. ଅ ) —
Drohāta ୧ । ବୈଡ଼ାଳବ୍ରତିକ ବ୍ୟକ୍ତି; ବିଡ଼ାଳତପସ୍ୱୀ (ହି. ଶବ୍ଦସାଗର )—1. A person who bears a mask of piety
୨ । ମୃଗଲୁବ୍ଧକ ( ହି. ଶବ୍ଦସାଗର )—
2 A hunter
୩ । ବେଦର ଶାଖାବିଶେଷ—
3 Name of a branch of the Bedas

**ଦ୍ରୋହୀ**—ସଂ. ବିଣ. ପୁଂ ( ଦ୍ରୁହ୍ ଧାତୁ + କର୍ତ୍ତୃ. ଇନ୍. ୧ମା ୧ବ )—
Drohi ୧ । ପରର ଅନିଷ୍ଟଚିନ୍ତକ—1. Bent upon injuring others
(ଦ୍ରୋହିଣୀ—ସ୍ତ୍ରୀ ) ୨ । ଈର୍ଷାନ୍ୱିତ — 2 Malicious; malevolent, spiteful.
୩ । ପରାଭବକାରୀ—3 Defeating.
୪ । ବିଦ୍ରୋହୀ—4. Rebellious; recalcitrant.
୫ । ଶତ୍ରୁ — 5. Inimical.
୬ । ପାପୀ—6 Sinful.
୭ । ବିଶ୍ୱାସଘାତକ—
7. Treacherous, perfidious
୮ । କୃତଘ୍ନ—8 Ungrateful.
[ ଦ୍ର—ଏହା ଅନ୍ୟ ଶବ୍ଦ ସଙ୍ଗେ ବ୍ୟବହୃତ ହୁଏ । ଯଥା—ଗୁରୁଦ୍ରୋହୀ, ପିତୃଦ୍ରୋହୀ, ରାଜଦ୍ରୋହୀ, ଦେଶଦ୍ରୋହୀ ଇତ୍ୟାଦି । ]
୨ ବି—ଶତ୍ରୁ—Enemy.

**ଦ୍ରୌଣ**—ସଂ. ବି. ପୁଂ—ଦ୍ରୋଣାୟନ (ଦେଖ)
Drauna Dronāyana (See)
(ଦ୍ରୌଣି, ଦ୍ରୌଣେୟ, ଦ୍ରୌଣାୟନ, ଦ୍ରୋଣାୟନୀ —ଅନ୍ୟରୂପ)

**ଦ୍ରୌଣିକ**—ସଂ. ବି ( ଦ୍ରୋଣ + ଇକ ) —ଯେଉଁ କ୍ଷେତ୍ରରେ
Draunika ଦ୍ରୋଣପରିମିତ ଶାଳ ବୁଣା ଯାଇ ପାରେ—
A corn-field in which 32 seers of seeds can be sown.

**ଦ୍ରୌପଦ**—ସଂ. ବି ପୁଂ ( ଦ୍ରୁପଦ + ଅପତ୍ୟାର୍ଥେ. ଅ )—
Draupada ଧୃଷ୍ଟଦ୍ୟୁମ୍ନ—Dhrushtadyumna, son of king Drupada.

**ଦ୍ରୌପଦୀ**—ସଂ. ବି. ସ୍ତ୍ରୀ ( ଦ୍ରୁପଦ+ଅପତ୍ୟାର୍ଥେ ସ୍ତ୍ରୀ ଈ )—
Draupadi ପଞ୍ଚପାଣ୍ଡବଙ୍କ ପତ୍ନୀ—The common wife of the five Pāndaba brothers.

[ ଦ୍ର – ଏ ପଞ୍ଚାଳରାଜ ଦ୍ରୁପଦଙ୍କର କନ୍ୟା ଥିଲେ । ପଞ୍ଚପାଣ୍ଡବଙ୍କ ଅଜ୍ଞାତବାସକାଳରେ ବ୍ରାହ୍ମଣବେଶଧାରୀ ଅର୍ଜୁନ ସ୍ୱୟଂବର ସଭାରେ ଲକ୍ଷ୍ୟଭେଦ କରି ଏହାଙ୍କୁ ପାଇଥିଲେ । କିନ୍ତୁ ବିଦେଶକୁ ଯାଇ ପାଞ୍ଚ ଭାଇ ମଧ୍ୟରୁ ଜଣେ ଭାଇ ଯାହା ଅର୍ଜନ କରନ୍ତି ତାକୁ ସବୁ ଭୋଗ କରିବ ବୋଲି ମାତାଙ୍କୁ ପରସ୍ପରବାରୁ ମାତା ଏ ପ୍ରଶ୍ନର ଅନ୍ତର୍ନିହିତ ଉଦ୍ଦେଶ୍ୟ ଜାଣି ନ ଥିବାରୁ ତାହା ପାଞ୍ଚ ଭାଇଯାକ ବାଣ୍ଟିକରି ଭୋଗ କରିବେ ବୋଲି କହିବାରୁ ମାତୃବାକ୍ୟ ପାଳି ଏହାଙ୍କୁ ପଞ୍ଚପାଣ୍ଡବ ବିବାହ କଲେ । ଯୁଧିଷ୍ଠିର କପଟପଶା-ଖେଳରେ ଦୁର୍ଯ୍ୟୋଧନଙ୍କଦ୍ୱାରା ପରାସ୍ତ ହୋଇ ରାଜ୍ୟ ସହିତ ଦ୍ରୌପଦୀଙ୍କୁ ହାରିବାରୁ ଦୁର୍ଯ୍ୟୋଧନ ଦୁଃଶାସନଦ୍ୱାରା ଦ୍ରୌପଦୀଙ୍କୁ ଅନ୍ତଃପୁରରୁ ବଳପୂର୍ବକ ଚୁଟିଧରି ଟିଙ୍କାଇ ଆଣି ରାଜସଭାରେ ବିବସ୍ତ୍ରା କଲେ ଓ ଭଗବାନ୍ ଶ୍ରୀକୃଷ୍ଣ ଦ୍ରୌପଦୀଙ୍କ କାତର ପ୍ରାର୍ଥନା ଶୁଣି ଅପ୍ରମେୟ ବସ୍ତ୍ର ଦାନପୂର୍ବକ ତାଙ୍କ ଲଜ୍ଜା ନିବାରଣ କଲେ । ଅବଶେଷରେ ଭୀମ ଏ ଅପମାନର ପ୍ରତିଶୋଧରେ ଦୁର୍ଯ୍ୟୋଧନଙ୍କୁ ମାରିଲେ ଓ ଦୁଃଶାସନଙ୍କୁ ମାରି ତାହାଙ୍କ ରକ୍ତ ଦ୍ରୌପଦୀଙ୍କୁ ଦେବାରୁ ଦ୍ରୌପଦୀ ସେହି ରକ୍ତ ବୋଳି କଉରବ କୁରୁସଭାରେ ଘଟିଥିବା ଅପମାନ ସମୟରୁ ମୁକୁଳା ହୋଇଥିବା କେଶକୁ ବାନ୍ଧିଲେ । ]

**ଦ୍ରୌପଦେୟ**—ସଂ. ବି. ପୁଂ—( ଦ୍ରୌପଦୀ + ଅପତ୍ୟାର୍ଥେ ଏୟ )—
Draupadeya ଦ୍ରୌପଦୀଙ୍କ ଗର୍ଭରୁ ପଞ୍ଚପାଣ୍ଡବଙ୍କ ଔରସ ପାଞ୍ଚ ପୁତ୍ର—The 5 sons born of Draupadi to the 5 husbands respectively.
[ ଦ୍ରୌପଦୀଙ୍କ ଗର୍ଭରୁ ଯୁଧିଷ୍ଠିରଙ୍କ ଔରସ ପ୍ରତିବିନ୍ଧ୍ୟ, ଭୀମଙ୍କର ଶ୍ରୁତସୋମ, ଅର୍ଜୁନଙ୍କର ଶ୍ରୁତକର୍ମା, ନକୁଳଙ୍କର ଶତାନୀକ ଓ ସହଦେବଙ୍କର ଶ୍ରୁତସେନ ନାମକ ୫ ପୁତ୍ର ଯଥାକ୍ରମେ ଜନ୍ମଲାଭ କରିଥିଲେ । ]

| ୧ | ଇ | ଊ | ଋ,ଌ | ˊ | | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | ଙ୍କ | ଇମ୍ | ଉଂ | ଛ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ନ୍ | ଯ୍ୟ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଚ୍ୟ | ଇଂ | ଙ୍ଗ | ନ୍ |

# ଧ

**ଧ**—ଊନବିଂଶ ବ୍ୟଞ୍ଜନବର୍ଣ୍ଣ । ତ ବର୍ଗର ୪ର୍ଥ ବର୍ଣ୍ଣ । ( ଏହାର ଉଚ୍ଚାରଣ
Dha ସ୍ଥାନ ଦନ୍ତ)—The 19th consonant ( dental ) corresponding to 'dh'.

ସଂ. ବି ( ଧା ଧାତୁ=ଧାରଣ କରିବା+କର୍ତ୍ତୃ. କ୍ୱିପ୍ )—
୧ । ବ୍ରହ୍ମା—1. Brahmā, the Creator of the universe.
୨ । ( +କର୍ତ୍ତୃ. ଅ ) କୁବେର—
2. Kubera, the God of riches
୩ । ଧର୍ମ —3. Virtue; religion.
୪ । (+କର୍ମ. ଅ) ଧନ—4. Riches.
୫ । ସଙ୍ଗୀତର ସପ୍ତ ସ୍ୱର ( ସା ରି ଗା ମା ପା ଧା ନି ) ମଧ୍ୟରୁ ୬ଷ୍ଠ ସ୍ୱର—5. The 6th tune of the Hindu gamut.

ଦେ. କ୍ରି —୧ । (ଧରିବା କ୍ରିୟାର ଅନୁଜ୍ଞା ଅନାଦରାର୍ଥ ଏକବଚନ ତୁ କର୍ତ୍ତା ସଙ୍ଗେ ଯୁକ୍ତ) ତୁ ଧର୍—1 ( you ) Hold; catch.

ଧର ୨ । (ଅବ୍ୟୟ)କୌଣସି ଶିକାରକୁ ଧରିବା ନିମନ୍ତେ କୁକୁର
ପକଡ଼ୋ ପ୍ରତି ପ୍ରଯୁକ୍ତ ସଙ୍କେତ ଶବ୍ଦ (ଏହାର ଅର୍ଥ=ଧର୍ !)—
n interjection used in setting a dog to a prey meaning 'catch it'

ଧଅ
ଧଅଧଅ
ଧଅଧଅତୁ } ଅନ୍ୟରୂପ
ଧଧ
ଧଧତୁ

୩ । ଦେ. ବି—ଧଅ ( ଦେଖ )--3 Dha-a (See)

**ଧଅ**— ଦେ.ବି ( ସଂ. ଧବ)—ଧବ ବୃକ୍ଷ, ଏକପ୍ରକାର ଜଙ୍ଗଲୀ କାଠ ଗଛ—
Dha-a Anogeissus Latifolia; Anogeissus Tomentosa.

ସଂ. ନାମ—ଧବ, ଧବଳ, ପିଶାଚ-ବୃକ୍ଷ, ଶକଟାକ୍ଷୀ, ଦୃଢ଼ତରୁ, ଗୌର, କଷାୟ, ଧୁରନ୍ଧର, ମଧୁରତ୍ୱକ୍, ଶୁକ୍ଳାଙ୍ଗ, ପାଣ୍ଡୁତରୁ, ପାଣ୍ଡୁର, ଘଟ, ନନ୍ଦିତରୁ, ସ୍ଥିର, ପୀତଫଳ, ଶୁକ୍ଳପକ୍ଷ,
ହି. ଧାଓୟା
ଧାବା, ଧୌର, ଧୌଲା
ମ. ଧାବଡ଼ା
ତେ. ନାରଂଜରେଟ୍ଟୁ
ଗୁ. ଧାବଡ଼ୋ

[ବି—ଏହା ହରୀତକ୍ୟାଦି ବର୍ଗର ଆରଣ୍ୟ ବୃହତ୍ ତରୁ । ଏହାର ପତ୍ର ଅତି ଗଛର ପତ୍ର ପରି । ଏହାର ବକଳ ଧଳା ଓ ଚିକ୍କଣ ଏବଂ ମଞ୍ଜକାଠ ଧଳା, ଚକଚକିଆ ଓ ଦୃଢ଼ । ଏ କାଠ ଘର, ସଗଡ଼ ଓ ଲଙ୍ଗଳ ଆଦିରେ ବ୍ୟବହୃତ ହୁଏ । ଜଳ ପାଣି ଖାଇଲେ ଏହା ଶୀଘ୍ର ସଡ଼ିଯାଏ । ଏ ଗଛରୁ ଏକ ପ୍ରକାର ଅଠା ବାହାରେ । ଏ ଅଠା ଲୁଗାକୁ ରଙ୍ଗାଇବା କାମରେ ଲାଗେ; ଏ ଗଛର ପତ୍ର, ଫଳ ଓ ଚେର ଔଷଧରେ ଲାଗେ । ବୈଦ୍ୟଶାସ୍ତ୍ର ମତରେ ଏହା କଷାୟରସ, କଫବାତନାଶକ, ପିତ୍ତକାରକ, ଦୀପନ, ରୁଚିବର୍ଦ୍ଧକ ଓ ପାଣ୍ଡୁ ରୋଗରେ ଉପକାରୀ । ଏହା ପ୍ରମେହ, ଅର୍ଶ ଓ କଫନାଶକ । ]

**ଧଅକ**—ଗ୍ରା. ବି (ସଂ. ଦହ୍ ଧାତୁ)—ଦହକ—
Dha aka Blazing of fire.
ଧକଧକ ବିଣ—ଦହକୁଥିବା—Blazing.
ଧଧକ

**ଧଅକ ସକ**—ଦେ ଅ—ଧକସକ (ଦେଖ)
Dha-aka saka Dhakasaka ( See)

**ଧଅ ଧଅତୁ**—ଦେ. (ବାକ୍ୟ)—ଶିଶୁରଞ୍ଜନଗୀତର ଅଂଶବିଶେଷ—
Dha-a dha-atu A part of a lullaby.
ଧଧତୁ—ଅନ୍ୟରୂପ ଧଅ ଧଅତୁ, କନଅମାଆର ପୁଅ କହୁତୁ—ଶିଶୁଗୀତ ।

**ଧଅପ ଚିକଣ**—ପ୍ରାଦେ. (ଯାଜପୁର) ବିଣ.—ଯେ ଭିତରେ ଅସାର କିନ୍ତୁ
Dhaa-pa chikana ବାହାରେ ଚକଚକିଆ ଦେଖାଯାଏ ।
ଧଅପ ଚିକଣା
ଧଅପ ଚିକଣିଆଁ } ଅନ୍ୟରୂପ
ଧଅପ ଚିକ୍କଣିଆ
That which has an outward show while possessing no inner worth; gaudy.

**ଧଅ ବୋଇଲେ କାମୁଡ଼ି ପକା(କ)ଉଛି**—ଦେ (ବ୍ୟଙ୍ଗ୍ୟ; ବାକ୍ୟ)
Dha-a boile kāmurdi pakā(ka)uchhi ଦନ୍ତର ହତିଆର ବା ଅକର୍ମଣ୍ୟ କୁକୁରର କାର୍ଯ୍ୟକାରିତାର ଅଭାବ ଦେଖିଲେ ବ୍ୟଙ୍ଗ୍ୟଭାବରେ ସାଧାରଣତଃ ଏହି ବାକ୍ୟ ପ୍ରଯୁକ୍ତ ହୁଏ—An ironical expression used in respect of a blunt weapon or a worthless dog.

**ଧଅଳା(ଳେ)ଇବା**—ଦେ. କ୍ରି. (ସଂ. ଧବଳରୁ ଉତ୍ପନ୍ନ ନାମ ଧାତୁ;
Dha-alā(le)ibā ତୁଳ. ସଂ. ଧବଳାୟତେ=ଧଳା ପାଲଟୁଛି)—
ଧବଲନା ୧ । ଧବଳିତ କରିବା—1 To whiten.
୨ । ଘରର କାନ୍ଥ ଆଦିକୁ ପାଣିଆଁ ଚୂନରେ ସଫେଦ କରିବା—2. To whitewash.

**ଧଅଳିବା**—ଦେ. କ୍ରି. ( ସଂ ଧବଳ ଶବ୍ଦରୁ)—ଧଉଳାଇବା (ଦେଖ)—
Dha-aliba Dhaulāibā (See)

**ଧଅସ**—ଦେ. କ୍ରି. ବିଣ.—(ସଂ. ଝଟିତି)—ଝଟ୍; ଅତିଶୀଘ୍ର—
Dha-asa Quickly; very soon.
(ଧଅସି—ଅନ୍ୟରୂପ) ଦେ ବି.—୧ ଜୋର୍; ବଳ—1. Force.
୨ । ଦ୍ରୁତଗତି—2. Great speed.

**ଧଇଁ**—ଦେ. ବି—(ଫା. ଦମା)—୧ । ଶ୍ୱାସ ରୋଗ—
Dhain 1 Asthma.
हँपानि ୨ । ଢର ଶ୍ୱାସ—
दमा 2. Gasping; panting.

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଈ' ଖୋଜିବେ, କୁଅ ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ, ଅକ୍ଷି ନ ପାଇଲେ 'ଆକ୍ଷି' ଦେଖିବେ, 'ଅଲବଟ' ନ ପାଇଲେ 'ଅଲ୍‌ବଟ' ଦେଖିବେ ।

**ଧଇଁଆଁ**—ଦେ. ବିଣ.—ଧଇଁ ରୋଗଗ୍ରସ୍ତ—
Dhaiñañ Asthmatic.
(ଧୟାଁ—ଅନ୍ୟରୂପ)

**ଧଇଁ ଉଠିବା**—ଦେ. ବି—୧ । ଶ୍ୱାସରୋଗର ହଠାତ୍ ଉଠିବା—
Dhaiñ uṭhibā 1. Attack of an asthmatic fit.
(ଧଇଁ ପେଲିବା—ଅନ୍ୟରୂପ) ୨ । ଖରଶ୍ୱାସ ବହିବା—
हाँपानि उठना दमा उठना 2 Gasping; panting.

**ଧଇଁଚ୍ଚ**—ଦେ. ବି—ଧଣିଚ୍ଚ (ଦେଖ)
Dhaiñchā Dhaṇichā (See)

**ଧଇଁ ସଇଁ**—ଦେ. ବିଣ—ଅତି ପରିଶ୍ରମ ହେତୁରୁ ଯାହାର ଖରଶ୍ୱାସ
Dhaiñ saiñ ବହୁଥାଏ—Panting; gasping
ଧଇଁସଇଁ ହୋଇ ଧାଇଁଛନ୍ତି । ଫକୀରମୋହନ. ଗଳ୍ପସ୍ୱଳ୍ପ ।

**ଧଇଁ ସଇଁ ହେବା**—ଦେ. କ୍ରି. (ଧ୍ୱନ୍ୟନୁକରଣ)—ଅତ୍ୟନ୍ତ କ୍ଳାନ୍ତି ହେତୁ
Dhaiñ saiñ hebā ବେଗରେ ଶ୍ୱାସ ପ୍ରଶ୍ୱାସ ନେବା ଓ ଛାଡ଼ିବା—
(ଧଁଆଁ ସଁଆଁ ହେବା—ଅନ୍ୟରୂପ) To gasp, to pant on
हाँपना हाँफना account of exhaustion

**ଧଇରି**—ଦେ. ବି—କାଠି ଲଗା ଫେଣ୍ଟିରେ ସରୁ ନିର୍ମିତ ମାଛ ଧରିବାର ଯନ୍ତ୍ର-
Dhairi ବିଶେଷ—A fishing contrivance of reed
(ଧଉରି, ଧଉଳି—ଅନ୍ୟରୂପ) work.

**ଧଇର୍ଯ୍ୟ**—ଗ୍ରା (ପଦ୍ୟ) ବି. (ସଂ. ଧୈର୍ଯ୍ୟ)—୧ । ଦମ୍ଭ, ଧୈର୍ଯ୍ୟ—
Dhairjya 1. Patience; fortitude.
ଧଇର୍ଯି, ଧଇରଜ, ଧୋର୍ଯ୍ୟ } ଅନ୍ୟରୂପ
ଧଉର୍ଯ୍ୟ, ଧଉର୍ଯି, ଧଉରଜ }
ମୋ ଧଇର୍ଯ୍ୟ ମୃଗଲୁ ସାଞ୍ଚି
ନ ପୂରାଇ ବରିଛ ଅଞ୍ଚି ।
କବିସୂର୍ଯ୍ୟ, ସଙ୍ଗୀତ ।
धीरज ୨ । ଦୃଢ଼ତା—2 Firmness.
धीरज ୩ । ଶାନ୍ତଭାବ—3 Calmness; composure.

**ଧଇର୍ଯ୍ୟ ବୁଡ଼ା**—ଦେ. ବିଣ—ଧୈର୍ଯ୍ୟ ବା ଧୃତି ନାଶକାରୀ—
Dhairjya buṛā Causing loss of patience or fortitude.
ଚାତକରୁ ବଳିଲୁ ସେ ଧଇର୍ଯ୍ୟ ବୁଡ଼ୀ—ଗୋପାଳକୃଷ୍ଣ ଜନମେ ହୁନ ।

**ଧଉଡ଼ି(ରି)**—ପ୍ରାଦେ. (ପାରଳାଖେମୁଣ୍ଡି) ବି—ଧଇରି (ଦେଖ)
Dhauṛi(ri) Dhairi (See)
[ ଦ୍ର—ଚିଲିକାରେ ଏଥିଦ୍ୱାରା ଚିଙ୍ଗୁଡ଼ିମାଛ ଧରାଯାଏ । ]

**ଧଉତ**—ଗ୍ରା. ପଦ୍ୟ ବିଣ (ସ. ଧୌତ)—ଧୌତ—
Dhauta Washed; cleaned.
ସେ ଅମୃତ କଲା ଯୌବନ ବାଳାକୁ ଧଉତ—ରଘୁନାଥ. ଚନ୍ଦ୍ରଭାଗା ।

**ଧଉରା**—ବି (ସ. ଧବ)—ଧଅ (ଦେଖ)
Dhaurā Dha-a (See)

**ଧଉଳ(ଳା)**—ଗ୍ରା ବିଣ. (ସ. ଧବଳ)—ଧଳା; ଶ୍ୱେତ—
Dhauḷa(ḷā) White.
सफेद, धौला

**ଧଉଳା(ଳେ)ଇବା**—ଦେ. କ୍ରି (ସ. ଧବଳରୁ ଓଡ଼ିଆ ନାମ ଧାତୁ)—
Dhauḷā(ḷe)ibā ୧ । ଧୋବ କରିବା—1. To whiten.
धोलाईकरना ୨ । କାନ୍ଥକୁ ଚୂନଆଦି ଲେପି ଧଳା କରିବା—
सफेदीकरना 2. To whitewash.
(ଧଉଳିବା—ଅନ୍ୟରୂପ)

**ଧଉଳି**—ଦେ. ବି (ସ. ଧବଳ)—୧ । ଧାନଗଛରେ ଲାଗିବା ଏକପ୍ରକାର
Dhauḷi ଛୋଟ ଛୋଟ ଧଳା ପୋକ—1 A kind of white
शाँखी plant-lice infesting paddy plants.
[ ଦ୍ର—ଏହି ପୋକ ଶ୍ରାବଣ ଓ ଭାଦ୍ର ମାସରେ ଧାନ ଗଛରେ ଲାଗନ୍ତି; ଗଛ ହଳଦିଆ ପଡ଼ିଯାଏ ଓ ଭଲ କେଣ୍ଡା ବାହାରେ ନାହିଁ । ଏ ପୋକ ଗଛର ରସ ଖାଇଯିବାରୁ ଗଛ ମଧ୍ୟ ମରିଯାଏ । ]
୨ । ବାଉଁଶ କାଟିରେ ବୁଣା ହୋଇଥିବା ମାଛ ଧରିବା ଯନ୍ତ୍ର ବିଶେଷ; ଧଇରି—2 A contrivance for fishing made of bamboo-laths.
୩ । ସ୍ତ୍ରୀ (ସ. ଧବଳା, ଧବଳୀ)—ଧଳା ଗାଈ—
3 White cow.
୪ । ଧଉଳଗିରି ( ଦେଖ )—4 Dhauligiri (See)
ଦେ. ବିଣ ସ୍ତ୍ରୀ—ଧବଳବର୍ଣ୍ଣ ବିଶିଷ୍ଟା; ଧଳା—White.

**ଧଉଳ ଗିରି**—ଦେ. ବି (ସ. ଧବଳଗିରି)—ଉତ୍କଳର ପୁରୀ ଜିଲ୍ଲାର କ୍ଷୁଦ୍ର
Dhauḷi giri ପର୍ବତବିଶେଷ—Name of a hill in the Puri district.
ଧଉଳପର୍ବତ } ଅନ୍ୟରୂପ
ଧଉଳପାହାଡ଼ }
[ଦ୍ର—ଏହା ଭୁବନେଶ୍ୱରର ୭ମାଇଲ ଉତ୍ତରପୂର୍ବରେ ଦୟାନଦୀର ଦକ୍ଷିଣ ତୀରରେ ଅବସ୍ଥିତ । ଏହି ପର୍ବତର ସର୍ବୋଚ୍ଚ ଚୂଡ଼ା ୧୬୦ ହାତ ଉଚ୍ଚ । ଏଥିରେ ବୌଦ୍ଧମାନଙ୍କ ଦ୍ୱାରା ଗୁହା ଏ ଗୁମ୍ଫା ଖୋଦିତ ହୋଇଅଛି । ଏହି ଗୁମ୍ଫାମାନ ଖାରବେଳ ରାଜାଙ୍କ ସମୟରେ ଖ୍ରୀ ପୂ ୪ର୍ଥ ଶତାବ୍ଦୀରେ ନିର୍ମିତ ହୋଇ ଥିବାର ଅନୁମାନ କରାଯାଏ । ଏହି ପାହାଡ଼ର ସମୀପବର୍ତ୍ତୀ ଅଶ୍ୱତ୍ଥାମା ପାହାଡ଼ ଗାତ୍ରରେ ଅଶୋକଙ୍କର ୧୧ଟି ଅନୁଶାସନ ପାଲି ଭାଷାରେ ଖୋଦିତ ହୋଇଅଛି । ଏହା ଉପରେ ବର୍ତ୍ତମାନ ଗୋଟିଏ ଶିବ-ମନ୍ଦିର ଓ ନିମ୍ନଦେଶରେ ଗଣେଶଙ୍କ ମନ୍ଦିର ଅଛି । ଏହି ପର୍ବତ ନିକଟରେ ପ୍ରାଚୀନ କଳିଙ୍ଗର ବୌଦ୍ଧ ରାଜଧାନୀ 'ତୋଷାଲି' ନାମକ ଗୋଟିଏ ନଗର ଥିଲା ବୋଲି ଅନୁମାନ କରାଯାଏ । ଏଥିରେ ଥିବା ଅଶୋକଙ୍କ ୧୧ଟି ଆଜ୍ଞା ସଙ୍ଗେ ତଦାନୀନ୍ତନ ସ୍ଥାନୀୟ ନଗରପତିଙ୍କର ୨ଟି ଆଜ୍ଞା ମଧ୍ୟ ଲେଖା ଅଛି । ଗୋଟିଏ ସ୍ଥାନରେ ୫ଟି ଗୁମ୍ଫା (ପଞ୍ଚ ପାଣ୍ଡବ ବା ପଞ୍ଚ ଗେ ସେଇ ଗୁମ୍ଫା) ଅଛି, ସେ ଗୁମ୍ଫାରେ ବୈଦ୍ୟମାନଙ୍କର ଔଷଧ ବାଟିବା କୁଣ୍ଡୀ (ଖଲ) ପରି କୁଣ୍ଡୀମାନ ଅଛି । ଏହି ପାହାଡ଼ ଦେହରୁ କୋଣାର୍କ ଓ ପୁରୀ ଦେଉଳର ପଥରମାନ କଟା ହୋଇ ନିଆ ଯାଇଥିବାର ଅନୁମାନ କରାଯାଏ । କମ୍ବଦନ୍ତୀ ଅଛି ଯେ ବୁଦ୍ଧଦେବଙ୍କ ଦନ୍ତ ସିଂହଳ ଦ୍ୱୀପକୁ ନୀତ ହେବା ପୂର୍ବରୁ ଏହିଠାରେ ରକ୍ଷିତ ହୋଇଥିଲା । ଜନକର ସ୍ଥାନାଧିପ

ପାବଙ୍ଗ କାବ୍ୟ ବର୍ଣ୍ଣିତ କୌଶଲ୍ୟାଗାଙ୍କ ସ୍ୱୟମ୍ବରଣୀ ଏହି ପାହାଡ଼ର ନିମ୍ନଦେଶରେ ବସ୍ତୁତ ।]

**ଧଉଳିବା**—ଦେ. କ୍ରି—(ସ. ଧବଳରୁ)—ଧଅଳାଇବା (ଦେଖ)
Dhaulibā Dha-alāiba (See).
**धवलना**

**ଧଉଳି ମାରିବା**—ଦେ. ବି.—ଗଛର ଡାଳରେ ବା ଧାନଗଛରେ ଧଉଳି ପୋକ ଲାଗିବା—The plants being infested with white plant-lice
Dhauli-māribā
श ाखीमाबा
(ଧଉଳି ମାରିଯିବା—ଅନ୍ୟରୂପ)

**ଧଏନ୍**—ପ୍ରାଦେ (ସମ୍ବଲପୁର) ବିଣ—ଧନ୍ୟ (ଦେଖ)
Dhaen Dhanya (See)

**ଧଏନ୍ ଧଏନ୍ କରିବା**—ପ୍ରାଦେ(ସମ୍ବଲପୁର) କ୍ରି—ଧନ୍ୟ ଧନ୍ୟ କରିବା(ଦେଖ)-
Dhaen dhaen karibā Dhanya dhanya karibā(See)

**ଧଏରି**- ପ୍ରାଦେ (ସମ୍ବଲପୁର) ବି—ଧଇରି (ଦେଖ)
Dhaer Dhairi (See)

**ଧଂକିଆ**—ପ୍ରାଦେ (ଗଞ୍ଜାମ) ବି—୧ । ଧକ୍କା—1. A push.
Dhamkiā ୨ । ଧକ୍କା ଦ୍ୱାରା ଆଘାତ—2 A pushing blow
(ଧଂକିଆ—ଅନ୍ୟରୂପ)

**ଧଂଶା**—ଦେ. ବି.—୧ । (ସ. ଧ୍ୱଜ) ବଡ଼ ପତାକା—1 A big flag; standard; pennant; ensign.
Dhamśā
ध्वजा, **झंडा**
୨ । (ସ. ଦମ୍ଭ; ଶୋଭାଯାତ୍ରାରେ ରାଜାଙ୍କ ଆଗରେ ହାତୀ ଓ ଓଟ ଉପରେ ବଜାଯିବା ବଡ଼ ନାଗରା—2. Big kettledrum carried and struck on the back of an elephant or camel in a Rājā's procession.
दामामा
**धमसा, धौंसा**

**ଧଂଶିବା**—ଦେ କ୍ରି—୧ । (ସ.ଦନ୍ଶ୍ ଧାତୁ)ଦଂଶନ କରିବା; କାମୁଡ଼ିବା—
Dhamśibā 1. To bite
दंशना; **डसना**
୨ । (ସ. ଧ୍ୱଂସ) ଧ୍ୱଂସ କରିବା—
2. To destroy; to ruin
ध्वंसा **धंसना**
୩ । (ସ.ଧର୍ଷଣ) ବଳାତ୍କାର କରିବା, ଧର୍ଷଣ କରିବା;—
3. To use force; to assault; to outrage.
धवसा
**धरसना**
୪ । ଲଦିସିଯିବା, ଡଗିଯିବା, ଦବିଯିବା—
4. To sink down; to yield.
धसा, **धँसना**

**ଧଁଦା**—ଦେ ବି—ଧନ୍ଦା (ଦେଖ)
Dhañdā Dhandā (See)

**ଧକ୍ ଧକ୍**—ସ. ଅ—ଅଗ୍ନି ଶିଖାର ଜ୍ୟୋତି, ଅନଳର ଉଜ୍ଜ୍ୱଳ ଜ୍ୟୋତି—
Dhak dhak Blazing of a flame, glow of fire; glitter of fire.
धक्धक्
**धकधक**
୨ । ବଥ ଆଦି ଗନ୍ଧିବା ବା ଯନ୍ତ୍ରଣା ଦେବା; ବେଦନା—
(ଧକ୍—ଅନ୍ୟରୂପ) 1. Feeling of acute pain in boils and wounds; aching pain.
୩ । ଛାତି ଥରିବା; ଦକ ଦକ—
3. Throbbing; palpitation.
ଦେ. ବିଣ—ଧୁ ଧୁ ହୋଇ ଜଳୁଥିବା—
Blazing; burning with a flame.
ସହସା ଅନଳେ ଧକ ଧକ ହୋଇ ଜଳଇ ତହିଁ । ରାଧାନାଥ. ଇନ୍ଦୁ ।

ଦେ. କ୍ରି ବିଣ—ଦୁ ଦୁ ହୋଇ—
In a blazing manner
ଭୂଷାନଳ ଜଳେ ଧକ ଧକ
ତଥା ହୃଦୟ ହୋଇଲା ଦକ ଦକ । ଅଭିମନ୍ୟୁ. ବିଦଗ୍ଧ ଚିନ୍ତାମଣି ।

**ଧକ୍‌ସକ୍**—ଦେ. ବି—କଇଁ କଇଁ କାନ୍ଦିବା—
Dhak-sak Weeping bitterly with gasping; sobbing; moaning.
ଧକଲସକଲ } ଅନ୍ୟରୂପ
ଧକେଇସକେଇ }
ଦେ. ବିଣ—କଇଁ କଇଁ ହୋଇ କାନ୍ଦୁଥିବା—Weeping with gasping; sobbing.
খোঁকা, ধুঁকা
**धड़क**
କ୍ରି ବିଣ—କଇଁ କଇଁ ହୋଇ—Sobbingly
ଧକସକ କାନ୍ଦ କାନ୍ଦି ମୁଁ ଅଧିଲିଣି, ଶାପ ଲଗେଇ ଦେଖ ପିଠି ମୁଁ ସ୍ୱଚ୍ଛ-
ରେଙ୍ଗ ଭାବ ପାଇଲିଣି—ଚଗ ।

**ଧକ**—ଦେ. ବି—୧ । ଶ୍ରମଜନିତ ଖର ନିଶ୍ୱାସ—
Dhaka 1. Gasping or panting due to over-exertion
୨ । ଛାତି ଦମ୍ ଦମ୍ ହେବା—
2. Palpitation of the heart (Howells).
୩ । କ୍ଲାନ୍ତି—3. Fatigue (Howells).
୪ । ଜଳୁଥିବା ନିଆଁର ତେଜ—4. Blaze of fire.
(କାବର=ନାଲି ଚାଉଳ—ବିପରୀତ) ପ୍ରାଦେ ( ବାଲେଶ୍ୱର ) ବି—ସଫା ଚାଉଳ—White rice; fine rice.
ଦେ. ବିଣ—ଉତ୍ତମ—Good

**ଧକଉଁ ଧକା**—ଦେ. ବି—୧ । ପରସ୍ପର ଧକା ମରାମରି; ଧକାଧକ -
Dhakauñ dhakā 1. Pushing each other; mutual shoving.
(ଧକମ୍‌ଧକା, ଧକଂଧକା—ଅନ୍ୟରୂପ)
ধাক্কাধাক্কী
୨ । ଅତ୍ୟଧିକ ଜନତା ମଧ୍ୟରେ ଠେଲା ଠେଲି—
**धक्कमधक्का, धक्कपेल** 2. Pushing each other in a large crowd; justling in a dense crowd.

**ଧକ ଚକ**—ଦେ. ବି ଓ ବିଣ. (ଧ୍ୱନ୍ୟନୁକାରୀ)—୧ । ବକ୍‌ବକାଳି; ବକର ବକର; ବକୁଡ଼ ଗୁଡ଼ାଏ ବୃଥାରେ ଗପିବା—
Dhaka chaka 1. Wrangling; tattling.
ଧକଡ଼ ଚକଡ଼ } ଅନ୍ୟରୂପ
ଧକର ଚକର }
୨ । ଦ୍ରବ୍ୟର ମୂଲ୍ୟ ସ୍ଥିର କଲାବେଳେ କ୍ରେତା ଓ ବିକ୍ରେତା ମଧ୍ୟରେ ଯିଦ୍ ଧସ୍ତାଧସ୍ତି ହୋଇ ଦାମ କରିବା—2. Higgling and haggling
বকবক
**बकवादी**
(ଯଥା—ବିଶାଏ ବାଇଗଣ ମୂଲେଇବା ପାଇଁ କ୍ରେତା ଓ ବିକ୍ରେତା ମଧ୍ୟରେ ଦୁଇଘଣ୍ଟା କାଳ ବକୁଡ଼ ଧକଚକ ଲାଗିଲା ।)
୩ । ଢଲଢଲ; ଦୋହୋଲା ଦୋହୋଲି—
3. Jolting
নড়াচড়া
**रेलापेल**
( ଯଥା—ଟେକା ବଲରେ ଶଗଡ଼ ଗାଡ଼ିରେ ଚଢ଼ିଥିବା ଲୋକ ଧକଚକ ହୁଏ ।)

**ଧକଚକ ଲଗା(ଗେ)ଇବା**—ଦେ. କ୍ରି—କୌଣସି ବ୍ୟକ୍ତି ସଙ୍ଗେ ବୃଥା ବାକ୍ ବିତଣ୍ଡା କରିବା—
Dhakachaka lagā(ge)ibā To have a wordy fight with another; to wrangle; to prattle-
ଧକଡ଼ଚକଡ଼ ଲଗାଇବା } ଅନ୍ୟରୂପ
ଧକଚକେଇବା }
বকাবকা লাগান **बकना झकना**

ଧକଚକ ହେବା—ଦେ. କ୍ରି—୧ । ବୃଥା ବଶେଷ ବାକ୍ୟ ବ୍ୟୟ କରିବା—
Dhakachaka hebā 1. To talk long for nothing; to babble.
(ଧକେଇଚକେଇ ହେବା—ଅନ୍ୟରୂପ)
ବକାଝକା ୨ । ସଗଡ଼ ଆଦିରେ ବସି ଅସମତଳ ଭୂମିରେ ଦ୍ରୁତ-
बकना बकरना ଗତିରେ ଶଗଡ଼ ଚଳିବା ଯୋଗୁ ହଲଚଲ ହେବା—
2 To be awfully shaken (said of a person sitting on a cart driven on a very rough road)

ଧକଚକିଆ—ଦେ ବିଶ. ପୁଂ—ଯେ ବୃଥାରେ ଗୁଡ଼ାଏ ବାକ୍ୟବ୍ୟୟ କରେ;
Dhakachakiā ଗପଡ଼ୁ—Wrangling; babbling, talkative.
(ଧକଚକେଇ—ସ୍ତ୍ରୀ)
গপ্পিযা बकवादी

ଧକଣ—ଦେ. ବି. (ସଂ. ଢକ୍କା)—ପ୍ରାଚୀନକାଳରେ ବ୍ୟବହୃତ ଯୁଦ୍ଧାସ୍ତ୍ର
Dhakaṇa ବିଶେଷ (ମାଦଳା ପାଞ୍ଜି)—A weapon used in ancient days in battle.

ଧକଧକ ହେବା - ଦେ. କ୍ରି. (ସଂ. ଧଗଦ୍ଧଗତ୍)—
Dhakadhaka hebā ୧ । ଅଲୁଅ ଉଜ୍ଜ୍ୱଳରୂପେ ଜଳିବା—
ধকধক হওযা 1. To burn briskly or with a blaze.
धगधगाना
୨ । ଗାତ୍ରଭିତରେ ବିନ୍ଧିବା; ବେଦନା କରିବା—2. To ache with a throbbing or shooting pain

ଧକଧକି—ଦେ. ବି. (ଧ୍ୱନ୍ୟନୁକରଣ)—୧ । ଛାତି ଧଡ଼କା—
Dhakadhakī 1. Palpitation of the heart.
ধুকধুকী ୨ । ହୃତ୍ପିଣ୍ଡ; ଧୁକ୍‌ଧୁକି—2. The heart
धुकधुकी

ଧକ ନିକିଡ଼ିଯିବା—ପ୍ରାଦେ. (ଯାଜପୁର) ବି—ପରିଶ୍ରମଆଦି ଜନିତ ଅତ୍ୟନ୍ତ
Dhaka nikirdijibā କ୍ଲାନ୍ତ—Being much tired or fatigued.
(ଧକ ନିକଲିଯିବା—ଅନ୍ୟରୂପ)
(ଯଥା—୪ ମାଇଲ ବାଟ ଗଲି ମୋର ଧକ ନିକିଡ଼ିଗଲାଣି ।)

ଧକପକ—ଦେ. ଅ. (ଧ୍ୱନ୍ୟନୁକରଣ)—୧ । ଛଟପଟ—
Dhakapaka 1. Restless
ধকধক ୨ । ଛାତି ଧଡ଼କା—
धकपक 2. Palpitation of the heart.
୩ । ଭୟରେ ଚିତ୍ତର ଅସ୍ଥିରତା—
3 Restlessness of mind due to fear

ଧକମ ଧକା—ଦେ. ବି—ଧକଉଁ ଧକା (ଦେଖ)—
Dhakama dhakā Dhakauñ dhakā (See)

ଧକ ମାରିବା—ପ୍ରାଦେ. (ଗଡ଼ଜାତ) କ୍ରି—୧ । ଧକେଇବା—
Dhaka māribā 1. To pant
୨ । (ଦଉଡ଼ି ଦଉଡ଼ି ଯାଉଥିବା ଲୋକ) କିଛିକ୍ଷଣ ପାଇଁ ବିଶ୍ରାମ ନେବା; ଦମ୍ ମାରିବା—2. To take rest after running for some time.

ଧକଲ—ଦେ. ବି. (ସଂ. ଧକ୍କ ଧାତୁ=ପ୍ରହାର କରିବା)—୧ । ଧକ୍କା—
Dhakalā 1. A push with the arms.
ଧକଳ ୨ । ଅତ୍ୟାଚାର—2. Oppression.

धकेल, ढकेला ୩ । ଧକ୍କା ମାରି ତଡ଼ିବା—
3. Driving away with a push.

ଧକଲ(ଲେ)ଇବା—ଦେ.କ୍ରି—୧ । ଧକ୍କାମାରି ଏଣେ ସେଣେ ନେବା—
Dhakalā(le)ibā 1. To push a man to and fro.
ଧକଲାଧକଲ କରିବା, ଧକଲିବା, ଧକାଲିବା } ଅନ୍ୟରୂପ
୨ । ସଙ୍କୀର୍ଣ୍ଣ ସ୍ଥାନରେ ବହୁ-ଲୋକଙ୍କୁ ପୂରାଇବା—
ধাক্কাদেওযা 2. To over crowd a place, to push many
धचक उठाना; धक्कामारना persons into a small place.
धचकना; धकेलना; ୩ । ଜୁଲମ୍ କରିବା; ଅତ୍ୟାଚାର କରିବା—
ढकेलना 3. To oppress.

ଧକଲି ଧକଲି—ଦେ ବି ଓ ବିଣ—ପରସ୍ପର ଧକ୍କା ମରାମରି, ଧକ୍କାଧକ୍କି—
Dhakalā dhakali Mutual shoving or pushing.
ধাক্কাধাক্কী धकाधकी

ଧକା—ଦେ. ବି. (ସଂ. ଧକ୍କ୍ ଧାତୁ=ପ୍ରହାର କରିବା)—
Dhakā ୧ । ବାହୁଦ୍ୱାରା ଠେଲା, ବାହାଠେଲା—
(ଧକ୍କା—ଅନ୍ୟରୂପ) 1. A push or shove with the arms.
ধাক্কা ୨ । ଶ୍ୱାସଶ୍ୱାସ—2 Gasping; panting.
धचका; धक्का ୩ । ଦୁଇ ପଦାର୍ଥ ପରସ୍ପର ସହିତ ଜୋରରେ ବାଜିବା—
3. Collision of two things.
୪ । (ଲକ୍ଷଣାର୍ଥ) ପ୍ରତିରୋଧ—
4 (figurative) Obstruction; check
୫ । (ଲକ୍ଷଣାର୍ଥ) କୌଣସି ବସ୍ତୁ ବା ଘଟଣା ଉପରେ ଅନ୍ୟ ବସ୍ତୁ ବା ଘଟଣାର ପ୍ରଭାବ—
5. (figurative) The influence of a thing or act on another.

[ଦ୍ର—ଧକା, ନେ(ଲେ)ଉ଼ା, ହାବୁକା, ଉଣ୍ଡିଆ, ଗଲଥା, ଠେଲା, କହୁଣିଆଁ ମଧ୍ୟରେ କିମ୍ବଲସୂତ ପ୍ରଭେଦ ଅଛି । ଧକା—ବାହା ଦ୍ୱାରା ଠେଲା । ନେ(ଲେ)ଉ଼ା—କରତଳ ଦ୍ୱାରା ଆଘାତ । ହାବୁକା-ପ୍ରସାରିତ ତର୍ଜନୀ ଓ ଅଙ୍ଗୁଷ୍ଠ ଦ୍ୱାରା ଠେଲା । ଉଣ୍ଡିଆ—ପ୍ରସାରିତ ତର୍ଜନୀ ଓ ଅଙ୍ଗୁଷ୍ଠ ଦ୍ୱାରା ମନୁଷ୍ୟର ଉଣ୍ଡିରେ ସମ୍ମୁଖ ଆଡ଼ୁ ଠେଲା । ଗଲଥା—ପ୍ରସାରିତ ତର୍ଜନୀ ଓ ଅଙ୍ଗୁଷ୍ଠ ଦ୍ୱାରା ମନୁଷ୍ୟର ବେକରେ ପଛଆଡ଼ୁ ଠେଲା । ଠେଲା—ଦେହର ସମସ୍ତ ବଳ ପ୍ରୟୋଗ ପୂର୍ବକ ବାହା ଦ୍ୱାରା ପେଲା । କହୁଣିଆଁ—କହୁଣି ଦ୍ୱାରା କୌଣସି ବ୍ୟକ୍ତିଙ୍କୁ କଡ଼ରୁ ବା ପଛରୁ ଠେଲା ।]

ଧକା(କେ)ଇବା—ଦେ. କ୍ରି. (ସଂ. ଧକ୍କ୍ ଧାତୁ=ପ୍ରହାର କରିବା; ଧୂକ୍ଷ ଧାତୁ=କ୍ଲେଶ ଦେବା)—
Dhakā(ke)ibā
ধাক্কামারা ୧ । ଧକ୍କା ମାରିବା—
धकेलना 1. To push violently with the arms.
ধোঁকা ୨ । ପରିଶ୍ରମ ପରେ ଶ୍ୱାସଶ୍ୱାସ ମାରିବା—
हाँफना 2. To gasp; to pant.
ଧକିବା, ଧକେଇ ହେବା } ଅନ୍ୟରୂପ
ତେବେ ହେଲେ ତକିଲୁ ନ ପାରନ୍ତେ ଟେକି
ଉଠିଲେ ଅଧରଥକର ଶୂନ ଧକି ।
କୃଷ୍ଣଙ୍ଗ ଦ. ମହାଭାରତ. କର୍ଣ୍ଣ ।

୩ । ଅସହ୍ୟ ଗ୍ରୀଷ୍ମ ଯୋଗୁଁ ଖର ଶ୍ୱାସ ମାରିବା—
3. To pant on account of extreme heat
ଲଗା ତଳୁ ସନ୍ଧ୍ୟା-ଜବରେ ଧକେଇ ହେଉଣ ଥାନ୍ତି ବହୁତେ ।
ରାଧାନାଥ ଯଯାତି ।
କୁକୁର × × × ଡେଙ୍ଗା ଜିଭଟା ବାହ ପକାଇ ଧକାଉଅଛି ।
ଫକୀରମୋହନ, ଛମାଣ ଆଠଗୁଣ୍ଠ ।

ধকধকান ୪ । ଧକ ଧକ ହେବା, ସ୍ପନ୍ଦିତ ହେବା—
धकधकाना 4. To palpitate; to throb.

**ଧକା ଖାଇବା**—ଦେ. କ୍ରି—୧ । ଅନ୍ୟଠାରୁ ଧକା ମାଡ଼ ସହିବା—
Dhakā khāibā 1. To get a push or shove from another; to be shoved by another.
ধাক্কাখাওয়া
धक्काखाना
ପେଲି ଦେଇ ଠେଲି ଯିବା ଧକା ଖାଇଲେ ସହିବା । ଲୌକିକ ଭଜନ
୨ । ( ଲକ୍ଷଣାର୍ଥ ) ପ୍ରତିରୋଧ ପାଇବା—
2. ( figurative ) To meet with opposition or check.

**ଧକା ଦେବା**—ଦେ. କ୍ରି—ଅନ୍ୟକୁ ଧକ୍କା ଦ୍ୱାରା ଆଘାତ କରିବା—
Dhakā debā To give a push or shove.
(ଧକା ମାରିବା—ଅନ୍ୟରୂପ)
ধাক্কাদেওয়া, ধাক্কামারা
धक्का मारना, धक्का देना

**ଧକା ବାଜିବା**—ଦେ. ବି—ଏକ ବସ୍ତୁ ସଙ୍ଗେ ଅନ୍ୟ ବସ୍ତୁର ଖୁବ୍ ଜୋରରେ ଆଘାତ—
Dhakā bājibā
ধাক্কালাগা Collision; two things colliding with each other.
धक्का लगना
(ଧକା ଲାଗିବା—ଅନ୍ୟରୂପ)

**ଧକା ସହିବା**—ଦେ. କ୍ରି—କୌଣସି ଆଘାତ ବା ବିପଦାଦିର ଚୋଟକୁ ସମ୍ଭାଳିବା—
Dhakā sahibā
ধাক্কাসামলান To bear the brunt of a blow or misfortune; to weather a blow; to hold out stoutly against a danger or blow.
धक्का संभालना
ଧକା ସମ୍ଭାଳିବା } ଅନ୍ୟରୂପ
ଧକା ସମାଳିବା }

**ଧକେଇ ସକେଇ ହେବା**—ଦେ. କ୍ରି—୧ । କଇଁ କଇଁ ହୋଇ କାନ୍ଦିବା—
Dhakei sakei hebā 1. To cry bitterly with sobs to sobs; to bewail; to bemoan.
୨ । କାନ୍ଦି କାନ୍ଦି ଫେରାଦ ହେବା—
2. To complain with wails and sobs.

**ଧକ୍କ୍ (ଧାତୁ)**—୧ । ପ୍ରହାର କରିବା—
Dhakk (root) 1. To strike.
୨ । ନଷ୍ଟ କରିବା—2. To destroy; to spoil.
୩ । ବିନାଶ ଘଟାଇବା—3. To annihilate.

**ଧକ୍କା (ଇତ୍ୟାଦି)**—ଧକା ଇତ୍ୟାଦି ( ଦେଖ ).
Dhakkā (etc) Dhakā etc. ( See )

**ଧଙ୍କ**—ଦେ. ବି—ରାମାୟଣବର୍ଣ୍ଣିତ ରାକ୍ଷସବିଶେଷ—
Dhanka A demon described in the Rāmāyana
ନଥିବ ଯେ ଧଙ୍କରେ ବ. ଶିବ ଅଙ୍କରେ ବିହରୁ ଶର ଉଠିଲେ ନାଶେ ସେ ।
ଉପେନ୍ଦ୍ର ଭଞ୍ଜ, ବୈଦେହୀଶବିଳାସ ।

**ଧଙ୍କସ ଗଡ଼**—ଦେ. ବି—ପ୍ରାଚୀନ ଉତ୍କଳର ଅନାର୍ଯ୍ୟ ରାଜାଙ୍କର ଗୋଟିଏ ଦୁର୍ଗ—Name of a stronghold of a non-aryan Raja of ancient Orissa
Dhankasa garda
[ ଦ୍ର—କେହି କେହି ଏହାକୁ ଢେଙ୍କା ବା ଆଧୁନିକ ଢେଙ୍କାନାଳ ବୋଲି ଅନୁମାନ କରନ୍ତି । ]

**ଧଙ୍କିଆ**—ପ୍ରାଦେ. (ଗଞ୍ଜାମ) ବି—ଧକ୍କା—
Dhankia Push.

**ଧଙ୍ଗଡ଼**—ପ୍ରାଦେ. (ସମ୍ବଲପୁର) ବି. ପୁଂ—ଅବିବାହିତ ଯୁବକ—
Dhangarda Unmarried young man; a bachelor.
(ଧଙ୍ଗର, ଧଙ୍ଗଡ଼ା, ଧଙ୍ଗରାଧାଙ୍ଗଡ଼, ଧାଙ୍ଗଡ଼ା—ଅନ୍ୟରୂପ)
(ଧଙ୍ଗସି, ଧାଙ୍ଗଡ଼ୀ, ଧାଙ୍ଗସି, ଧଙ୍ଗଡ଼ୀ—ସ୍ତ୍ରୀ)

**ଧଜା**—ଦେ. ବି. ( ସ. ଧ୍ୱଜ; ତୁଳ. ପାଲି—ଧଜୋ )—
Dhajā ପତାକା—A flag.
ধজা ধজা

**ଧଟ**—ସ. ବି. ( ଧଟ୍ ଧାତୁ=ଶବ୍ଦ କରିବା+କର୍ତ୍ତୃ. ଅ, ନ ସ୍ଥାନରେ ଟ ଆଦେଶ )—୧ । ଧଡ଼ା; ତୁଳା ଯନ୍ତ୍ର, ନିକିତି—
Dhata
1. Scales; balance.
୨ । ତୁଳା ପରୀକ୍ଷା; ନିକିତି ଦ୍ୱାରା ଅପରାଧୀର ପରୀକ୍ଷା—
2. Ordeal by the balance.
୩ । ତୁଳା ରାଶି—
3. The sign Libra of the zodiac.
୪ । ୪୨ ରତି ଓଜନ —
4. A standard weight of 42 ratis.
୫ । ଧର୍ମ ( ଦ୍ର. ଶବ୍ଦସାଗର )—5. Religion.
୬ । ଧବ ଗଛ ( କ୍ଲାନେକ୍ସ )—
6. Anogeissus Latifolia ( tree ).

**ଧଟକ**—ସ. ବି. (ଧଟ+ସ୍ୱାର୍ଥେ. କ)—୪୨ ରତି ଓଜନ—
Dhataka A standard weight of 42 ratis.

**ଧଟିକା**—ସ. ବି. ସ୍ତ୍ରୀ (ଧଟ+କ+ଆ)—୧ । ପୁରାତନ ବସ୍ତ୍ର—
Dhatikā 1. Old cloth.
(ଧଠୀ—ଅନ୍ୟରୂପ) ୨ । ଅଣ୍ଟାରେ ଗୁଡ଼ି ପିନ୍ଧିବା ଲମ୍ବ ବସ୍ତ୍ର—
2. Loin cloth.
୩ । ଚୀର; ଚିରା ଲୁଗା—3. Rags.
୪ । କୌପୀନ—4. A strip of cloth worn over the private parts.
୫ । ଲୁଗା ଧଡ଼ି—5. Hem of cloth; border of a cloth.
ବନ୍ଧାଇ ଶାଶୀ ଧଟୀରୁ ବିହରୁ ମଧ୍ୟରେ ।
ଭଞ୍ଜ, ବୈଦେହୀଶବିଳାସ ।
୬ । ପସୁରି; ପାଞ୍ଚ ସେର ଓଜନ (ଦ୍ର. ଶ.)—
A standard weight of 5 seers.

**ଧଟୀ**—ସ. ବି. ପୁଂ—୧ । ( ଧଟ+ଇନ୍ ; ଦ୍ରୁମା ୧ବ. )—(ଜ୍ୟୋତିଷ)
Dhati ତୁଳା ରାଶି (ଦ୍ର. ଶ.)—1. The astrological sign Libra in the zodiac.
(ଧଟ—ଅନ୍ୟରୂପ)

୨ । ଶିବ; ମହାଦେବ—2 Siba.

୩ । ବଣିକ୍ (ପ୍ରକୃତିବାଦ)—3. Merchant

୪ । ଦଣ୍ଡୀଦାର, ଯେ ପଣ୍ୟ ଦ୍ରବ୍ୟାଦି ଓଜନ କରେ(ହି ଶ)—4. A weighman

୫ । ସ୍ତ୍ରୀ.—(ଧଟ+ଈ) ଚୀର; ଚୀରକନା—5. Rag.

୬ । ପୁରୁଣା ଲୁଗା—6. Old cloth.

୭ । କୌପୀନ (ହି. ଶ.)—7. A long and narrow strip of cloth put on over the privities.

୮ । କଚ୍ଛ ବସ୍ତ୍ର (ଖ୍ରୀନେନ୍ଦ୍ର)—7. Loin-cloth.

୯ । ଗର୍ଭାଧାନ ପରେ ସ୍ତ୍ରୀମାନେ ପିନ୍ଧିବା ବସ୍ତ୍ର ଖଣ୍ଡ (ହି. ଶ.)—9. A piece of cloth worn by a woman, after conception

[ଦ୍ର— ଫଳିତ ଜ୍ୟୋତିଷ ଅନୁସାରେ ଗର୍ଭାଧାନ ପରେ ମୂଳା, ଶ୍ରବଣା ହସ୍ତା, ପୁଷ୍ୟା, ଉତ୍ତରାଷାଢ଼ା, ଉତ୍ତରଭାଦ୍ର ଓ ମୃଗଶିରା ନକ୍ଷତ୍ରରେ କୌଣସି ଶୁଭଦିନରେ ସ୍ତ୍ରୀକୁ ଧଟୀ ପିନ୍ଧିବାକୁ ଦିଆଯାଏ (ହି. ଶ)]

**ଧଡ଼୍**—ଦେ. ଅ.—(ଧ୍ୱନ୍ୟନୁକାରୀ; ତୁଲ. ଫ. ଝଟିତି)—୧ । ଅତିଶୀଘ୍ର, ହଠାତ୍—1. At once; immediately
Dhard
ଧଡ଼ାମ
**ଧଡ଼ସେ**

(ଯଥା—ସଭା ମଧ୍ୟରୁ ଜଣେ ଧଡ଼୍ କିନା ଉଠି ଗଲେ ଗଲା।)

୨ । ଧଡ଼୍ ଶବ୍ଦ ଉତ୍ପାଦନ ପୂର୍ବକ, ଦୁଇ କଠିନ ବସ୍ତୁ ପରସ୍ପର ସହିତ ଜୋରରେ ବାଜି ଯିବା—2. Cracking or crashing sound of two hard things striking with force.

ଧଡ଼୍ କରି, ଧଡ଼୍ କିନା, ଧଡ଼୍ କିନି, ଧଡ଼୍ କରି } ଅନ୍ୟରୂପ

ଚମ୍ପା ଧଡ଼୍ କରି ହଦାଟଟା ଆଉଜାଇ ଦେଇ ଅପଣା ସ୍ଥାନରେ ବସି ରହିଲା ।
ଫକୀରମୋହନ, ଛମାଣ ଆଠଗୁଣ୍ଠ ।

**ଧଡ଼୍କା(କେ)ଇବା**—ଦେ. କ୍ରି. (ସ. ଧକ୍କ ଧାତୁ; ଧଡ଼କବାର ଣିଜନ୍ତରୂପ)—
Dhard-ka(ke)iba ୧ । ଭୟାଇବା; ଧମକାଇବା—1. To threaten; to terrify.
ଧମକାନ
**ଥମକାନା** ୨ । ଗାଳି ଆଦି ଦ୍ୱାରା ହୃତ୍କମ୍ପ ଉପସ୍ଥିତ କରାଇବା—2. To cause palpitation of the heart with abuse or threatening.

**ଧଡ଼୍କା ଧଡ଼୍କି**—ଦେ.ବି.—ଭର୍ତ୍ସଣା; ଧମକାଣ—
Dhard-ka dhard-ki Terryfying; threats.

**ଧଡ଼୍ ଧଡ଼୍**—ଦେ. ଅ.—(ଦ୍ୱିଧ୍ୱନ୍ୟନୁକରଣ)—୧ । ଛାତି ଥରିବାର ଶବ୍ଦ—
Dhard dhard 1. Sound of palpitation of the heart.

ଧଡ଼୍ ଧଡ଼୍ ୨ । ଶୁଖିଲା ଚମଡ଼ାକୁ କାଠିରେ ପିଟିବାର ଶବ୍ଦ ବା
**ଧକ, ଧଡ଼,** ଠାଆଁସା ଲୁଗା କଠିଣ ବସ୍ତୁରେ ବାଜିବାର ଶବ୍ଦ—
**ଧଡ଼ଧଡ଼, ଧୁକ୍କଡ଼ ଧୁକ୍କଡ଼** 2. Sound produced by striking a dry skin with a stick or by a stiff cloth striking against a hard thing.

୩ । ଦୁଇଟା କଠିନ ବସ୍ତୁର ପରସ୍ପର ଆଘାତଜନିତ ଶବ୍ଦ—3. Sound produced by two hollow things clashing against each other; rumbling sound.

କାଳିଆ ବଳଦ ଗଳାରେ ଦାଣ୍ଡି ଲୁଣେଙ୍ଗେ ସମ୍ଭାଳ ଥିବୁ
ଦାଣ୍ଡି ଧଡଧଡ କରି ଉରେ—ଚିଣ୍ଡଗୀତ ।

୪ । ବୃଦ୍ଧାବସ୍ଥା ବା ରୋଗରୁ ଶରୀରର ଚମଡ଼ା ଶିଥିଳ ହେବା—4. Wrinkling or slackening of the skin of the body due to old age or sickness.

[ଦ୍ର—ଧଡ଼ଧଡ଼ଠାରୁ ଅନୁଚ୍ଚଶବ୍ଦକୁ ଧୁଡ଼୍ଧୁଡ଼୍ ବୋଲାଯାଏ । ]

**ଧଡ଼**—ଦେ. ବି. ( ସ. ଧୃ ଧାତୁରୁ ଧର, ଧାରଣ କରିବା; ଯାହା ମସ୍ତକକୁ
Dharda ଧାରଣ କରେ )—୧ । କବନ୍ଧ, ମସ୍ତକହୀନ ଓ ହସ୍ତପଦ ହୀନ ଦେହ; ସ୍କନ୍ଧଠାରୁ କଟିଦେଶ ପର୍ଯ୍ୟନ୍ତ ଦେହ; ଶରୀରର ସ୍ଥୂଳ ମଧ୍ୟଭାଗ—1. Headless trunk.

ପ୍ରଭୁଷାଙ୍କ ଛୋର ଶାଳ ଛିନ୍ନର ଦାମୋଡ଼ କଷାଇ ସମଗ୍ର ଧଡ—
ରଘୁନାଥ, ଶୁଭାନନ୍ଦୀୟ ।

ଧଡ
**ଧଡ** ୨ । ସାରଶୂନ୍ୟ ବହିରାବରଣ—2. Frame; outward cover without the inner contents.

( ଯଥା—ତହସିଲଦାର ଜମିଦାରୀରୁ ସବୁ ରସଯାକ ଝାଣି ନେଇ ଜମିଦାରଙ୍କ ପାଇଁ ଖାଲି ଧଡ଼ଟି ରଖି ଯାଇଛନ୍ତି । )

୩ । ଶରୀର; ଦେହ—3. Body.

( ଯଥା—ବୁଢ଼ା ବୟସରେ ଆଉ ମୋ ଧଡ଼ ଚଳିବାକୁ ନାହିଁ । )

୪ । ଅସ୍ଥିକଙ୍କାଳମାତ୍ରାବଶିଷ୍ଟ ଶରୀର—4 Skeleton only.

( ଯଥା—ନ ଖାଇ ନ ପିଇ ତା ଧଡ଼ ରହିଲାଣି । )

୫ । ଗଛର ଗଣ୍ଡି; ଗଛର ମୂଳ ଓ ଡାଳ ଅଂଶ ବାଦ୍ ବାକି ଲମ୍ବ ଓ ସ୍ଥୂଳ ଅଂଶ—5. The trunk of a tree.

**ଧଡ଼କ**—ଦେ. ବି. ( ଧ୍ୱନ୍ୟନୁକରଣ )—୧ । ଭୟ—
Dhardaka 1. Fear
ଧଡ଼ଧଡ଼ାନି ୨ । ଛାତି ଧମ୍ଧମ୍, ହୃତ୍କମ୍ପ—
**ଧଡ଼କନ** 2 Palpitation of the heart.
ଟିଲା; ଧଡ଼ଧଡେ ଦେ. ବିଣ—୧ । ଅଦୃଢ଼—
**ଧାକ** 1. Infirm; unsteady.
୨ । ଶିଥିଳ—2. Slack; loose.

**ଧଡ଼କ ଧଡ଼କ**—ଦେ. ଅ—ଠକର ଠକର; ଦୁଇଟି କଠିନ ବସ୍ତୁ ଏକାଧିକ
Dhardaka dhardaka ଥର ପରସ୍ପର ସଙ୍ଗେ ବାଜିଲେ ଯେଉଁ
ଧଡ଼ଧଡ ଶବ୍ଦ ହୁଏ—Harsh grating sound of two
**ଧଡ଼ଧଡ଼** hard things repeatedly striking against each other.
( ଧଡ଼କଡ—ଅନ୍ୟରୂପ )

**ଧଡ଼କା**—ଦେ. ବି—୧ । ରାଗି କରି ଧମକାଇବା—
Dhardaka 1. Angry threatening.
ଧମକାନି ୨ । ହୃତ୍କମ୍ପ—
**ଧଡ଼କା, ଝିଡ଼କା** 2 Palpitation of the heart.
ଧଡଫଡ଼େ ଦେ. ବିଣ—ଯାହା ହୃତ୍କମ୍ପ ଉତ୍ପାଦନ କରେ—
**ଧଡ଼କା, ଝିଡ଼କା** Producing palpitation of the heart.

( ଯଥା—ଶାଶୁଙ୍କ ନଚନ୍ଦ୍ର ଶବ୍ଦ ଧଡ଼କା, କର୍ମକୁ ଅବିର ଥରୁ—ଛଗ । )

ଧଡ଼କିବା — ଦେ. କ୍ରି. ( ଧ୍ୱନ୍ୟନୁକରଣ ) —
Dhardakibā ୧ । ଚମକି ପଡ଼ିବା; ଡରିବା; ଭୀତତ୍ରସ୍ତ ହେବା—
ধড়ধড় করা 1 To be affrighted; to be afraid
धड़कना, धड़कना ୨ । ( ହୃଦ ) ଧଡ଼ ଧଡ଼ ହେବା—
2. ( the heart ) To palpitate; to throb.

ଧଡ଼ଧଡ଼ିଆ — ଦେ. ବିଣ — ୧ । ଶିଥିଳ; ଶିଥିଳୀକୃତ—
Dhardadhardia 1. Slackened; loosened.
ধড়ধড়িয়া; ধড়ধড়ে ୨ । ଲୁଳିତ—2. Wrinkled
ढीला ୩ । ଟଡ଼ଟଡ଼ ଶବ୍ଦ କରୁଥିବା—
3 Producing a Dharda-dharda sound.

ଧଡ଼ ପ(ଫ)ଡ଼ — ଦେ. କ୍ରି. ବିଣ. ( ଧ୍ୱନ୍ୟନୁକରଣ ) — ୧ । ଅତିଶୀଘ୍ର—
Dharda pa(pha)rda 1 Quickly, speedily
ধড়ফড়, ধড়পড় ଧଡ଼ପଡ଼ ହୋଇ ଚଳିଲେ ଯାଇ ଯାଇ —
धड़धड़, फड़फड़ କୃଷ୍ଣସିଂହ. ମହାଭାରତ. ବନ ।
୨ । ସ୍ପନ୍ଦନ ସହକାରେ—2 Palpitating; throbbing.
( ଯଥା—ମୋ ଛାତି ଧଡ଼ପଡ଼ ହଉଛି । )
୩ । ଛଟପଟ; ଉଚ୍ଛନ୍ନ; ଅସ୍ଥିର
3. Restless; writhing in agony.
( ଯଥା—ମୋ ମନଟା ସେ ଖବର ଶୁଣିଲାବେଳୁ ଧଡ଼ପଡ଼ ହଉଛି । )
୪ । ଫଡ଼ଫଡ଼ ଶବ୍ଦ—4. Fluttering sound.
୫ । ପକ୍ଷୀ ଡେଣାକୁ ଭୂଇଁରେ ବାଡ଼େଇବାର ଶବ୍ଦ—
5. Sound produced by a bird striking its pinions on the ground.
ବନନେ ଥାଇ କାଳ ମଧ୍ୟେ
ବେକ ବାଳକ ଧଡ଼ପଡ଼େ—ପ୍ରାଚୀ. କପୋତମାହାତ୍ମ୍ୟ ।

ଧଡ଼ ପଡ଼ିବା — ଦେ. କ୍ରି — ରୋଗ ବା ଅନାହାର ଯୋଗୁଁ ଅସ୍ଥିଚର୍ମସାର ହେବା—Becoming much emaciated on account of disease or starvation.
Dharda pardibā
ধড় বহা
धड़ रहजाना
( ଧଡ଼ ରହିବା—ଅନ୍ୟରୂପ )

ଧଡ଼ମଡ଼ି — ଦେ. ବି—ଝାଡ଼ଝୁଡ଼; ଅତ୍ୟାଚାର—
Dhardamardi Oppression.
ধাক্কা धड़ाक्का

ଧଡ଼ର — ପ୍ରାଦେ. ( ସିଂହଭୂମ ) ବି—ବୃକ୍ଷ କୋଟର; କୋରଡ଼—
Dhardara The hollow of a tree.

ଧଡ଼ର ଧଡ଼ର — ଦେ. ଅ. ( ଧ୍ୱନ୍ୟନୁକରଣ )—ଧଡ଼ଧଡ଼ ( ଦେଖ )
Dhardara dhardara Dharda dharda ( See )
ଲୁଗା ବୁଣୁଥିବାକୁ ବେଳ ନାହିଁ, ଲୁଗା ଧଡ଼ର ଧଡ଼ର ବାନ୍ଧ
ଗୋଡ଼ାଇଲେ ଝର ଝର ହୋଇ ଖାଲି ବୋଝ ପଡ଼ୁଅଛି—
ଫକୀରମୋହନ. ଛମାଣ ଆଠଗୁଣ୍ଠ ।

ଧଡ଼ରା — ଦେ. ବିଣ — ୧ । ଶ୍ଲଥ—
Dhardarā 1. Slack; loose.
ধড়ধড়ে ୨ । କୋମଳ—2. Wrinkled.
ढीला ( ଯଥା—ପାଚିଲା ହୋଇ ନ ଥିବା ଅମ୍ବକୁ ଆଣି ଘରେ ପଶାଇଲେ ତାହା ପାଚି ନ ପାରି ଧଡ଼ରା ହୋଇଯାଏ । )
୩ । ଦୁର୍ବଳ—3. Very weak; weakened.
(ଧଡ଼ରା—ସ୍ତ୍ରୀ) ଦେ. ବିଣ. ପୁଂ—ଶ୍ଲଥଚର୍ମୀ—
With the skin wrinkled.
( ଯଥା—୮୦ ବରଷର ଧଡ଼ରା ବୁଢ଼ାଟାଏ ଫେର୍ ବାହା ହେବାକୁ ବସିଛି । )

ଧଡ଼ସ — ଦେ. ବି—ବଡ଼ କେନାଲରେ ସ୍ଥାନେ ସ୍ଥାନେ ଶଗଡ଼ ଆଦି
Dhardas ଗଡ଼ିକରି ଯିବାପାଇଁ କରି ଯାଇଥିବା ଗଡ଼ାଣି; ଗଡ଼ା—
Sloping or inclined passages made across canals or ditches for the passage of carts.

ଧଡ଼ସ — ଦେ. ବି—ଦେ. ବି ( ସଂ. ଧୃଷ୍ ଧାତୁ=ହିଂସା କରିବା, କ୍ରୋଧ କରିବା, ପ୍ରଗଲ୍ଭ ହେବା )— ୧ । ଧମସ; ଶୀଘ୍ର
Dhardasa ଚାଲିବାର ବେଗ—1. Great velocity or force of movement.
भड़क
(ଯଥା—ସେ ଭାରି ଧଡ଼ସରେ ଚାଲିଯାଉଛି । )
୨ । ସାହସ; ହିମ୍ମତ—2. Courage
(ଯଥା—ତାର ଭାରି ଧଡ଼ସ । )
୩ । ଚାଲିବାର ଦମ୍ଭ ବା ଥର—
3. One stretch of walking (e. g. to walk 10 miles at one stretch.)
(ଯଥା—ମୁଁ ଏକାଧଡ଼ସକେ ୫ କୋଶ ବାଟ ଚାଲି ଆସିଲି । )
୪ । ଧମକ—4 Threat
(ଯଥା—ସେ ମତେ ଭାରି ଧଡ଼ସ ଦେଖାଉଛି । )
তাড়াতাড়ি ଦେ. କ୍ରି. ବିଣ (ସଂ. ଝଟିତି)—ଅତିଶୀଘ୍ର—
धड़से Very quickly.
ଧଡ଼ସ ହୋଇ ଉଠିଲା ମୂର୍ଚ୍ଛା ସେ ଯାଇଁ ପଡ଼ିଲା
ଅତି ଶୋକଭର ହୋଇ ବାଳୀ ଶୋକଇ—ପ୍ରାଚୀ ନଳଚରିତ ।

ଧଡ଼ସା — ଦେ. ବିଣ—ଅତି ବେଗଯୁକ୍ତ—
Dhardasā Having a great velocity or force.

ଧଡ଼ସା(ସେ)ଇବା — ଦେ. କ୍ରି (ଧୃଷ୍ ଧାତୁ)— ୧ । ଧମକାଇବା—
Dhardasā(se)ibā 1. To terrify; to threaten.
ধমকান ୨ । ତ୍ୱରାନ୍ୱିତ କରାଇବା—2. To hasten.

ଧଡ଼ସାଧଡ଼ସି — ଦେ. ବି—ଧମକାଧମକି—
Dhardasādhardasi Threats; show of threat.
ধমকচমক घुड़की

ଧଡ଼ସି — ଦେ. କ୍ରି. ବିଣ (ସଂ. ଝଟିତି)—ଝଟ; ଧଅସି; ଶୀଘ୍ର—
Dhardasi Very soon, precipitously.
তাড়াতাড়ি दड़ले

ଧଡ଼ସିବା — ଦେ. କ୍ରି (ଧୃଷ୍ ଧାତୁ)— ୧ । ଶଙ୍କି ଯିବା; ଭୀତ ହେବା—
Dhardasibā To be frightened or terrified.
দমেযাওয়া ୨ । ଶଙ୍କିତ ହୋଇ କୌଣସି କାର୍ଯ୍ୟରୁ ପଶ୍ଚାତ୍ପଦ ହେବା—
सिकुड़ना, झझकना 2. To shrink from doing something through fear.
( ଧଡ଼ସି ଯିବା—ଅନ୍ୟରୂପ )

ଧଡ଼ା—ଦେ. ବି (ସ. ଧଟ)—୧ । ତୁଳାଦଣ୍ଡ—
Dharda 1. Scale-beam.
୨ । ତୁଳାଯନ୍ତ୍ର—2. Scales; balance
୩ । ବଟକରା—3. Standard weights for weighing; standard pieces of stone or metal used in weighing.
୪ । ଧଡ଼ା ଧରିବାପାଇଁ ତରାଜୁର ଏକ ପଲ୍ଲାରେ ଯେଉଁ ମାଟି, ଗୋଡ଼ି ବା ଇଟାଖଣ୍ଡମାନ ରଖାଯାଏ; ପାସଙ୍ଗ—
4. Bits of earth, stone or brick or any other substance put on one of the scales of a balance to adjust the scale-beam; counterpoise.
୫ । ଅର୍ଗଳ, କାଷ୍ଠଦଣ୍ଡ—
5. A wooden bar.
ধারা; ধাড়া ୬ । ଠେଙ୍ଗା; ଦଣ୍ଡ—6. A big and
धड़ा, धंधार thick staff; bludgeon
୭ । କବାଟରୂପେ ବ୍ୟବହୃତ ଟାଟିକୁ ଦଉଡ଼ିଦ୍ୱାରା ଅଟକାଇ ବନ୍ଦ କରିବାପାଇଁ ବ୍ୟବହୃତ ବାଉଁଶ—
7. A bamboo bar used to fasten a Tāti-door with.
୮ । ( ସ ଧଟୀ, ଧଟକା )—ପିନ୍ଧା ଲୁଗା ଉପରେ
धड़ा ଅଣ୍ଟାରେ ଭିଡ଼ାଯିବା ଗୁଦର—
8. A cloth tied round the waist over the loin cloth.
୯ । କୌପୁନୀ—9 A strip of cloth covering the privities.
୧୦ । ଚିରା କନା—10. Rags.
୧୧ । ପୃଷ୍ଠବସ୍ତ୍ର—11. A covering for the back.
ଦେ. ବିଣ—ଧଡ଼ିଆ, ଅତି କୃଶ—
রোগা Very thin; emaciated.
( ଯଥା—ଦିନ ଦିନ ହେଲା ନ ଖାଇବାରୁ ଲୋକଟି ଧଡ଼ା ହୋଇଗଲାଣି । )

ଧଡ଼ା ଉଠା(ଠେ)ଇବା—ଦେ. କ୍ରି.—ତୁଳିବା; ଓଜନ କରିବା—
Dharda utha(the)iba To weigh.
धड़ा उठाना

ଧଡ଼ାଏ ପକା(କେ)ଇବା—ଦେ.କ୍ରି—ଠେଙ୍ଗାଦ୍ୱାରା ଏକ ପ୍ରହାର ଦେବା—
Dhardāe pakā(ke)iba To give one a blow with a
একঘা মারা bludgeon

ଧଡ଼ାଙ୍ଗ—ଦେ. ଅ ( ଧ୍ୱନ୍ୟନୁକରଣ )—୧ । ତେଙ୍ଗା ଓ ସ୍ଥୂଳ ପଦାର୍ଥର
Dhardāng ଦ୍ରୁତ ଶବ୍ଦପୂର୍ବକ ଭୂମିରେ ପଡ଼ିବା; ସଡାଙ୍ଗ୍—
ধড়াঙ্গ 1. Crashing sound produced by a
धड़ाम big and heavy thing falling on the ground with force.
ଧଡ଼ାଙ୍ଗ କରି
ଧଡ଼ାମ୍
ଧଡ଼ାସ୍
ଧଡ଼ାଂ } ଅନ୍ୟରୂପ ୨ । ଦ୍ରୁତ—2 Quickly; at once.

ଧଡ଼ା ଚୂଡ଼ା—ଦେ. ବି (ସହଚର)—୧ । ସାଜସଜ୍ଜା—
Dhardā churda 1. Equipments.
ধড়াচূড়া ୨ । ପୋଷାକ—2. Dress; costume.
୩ । ସାଜସଜ୍ଜାର ଉପକରଣ; ଅଣ୍ଟାବନ୍ଧା ଓ ମୁଣ୍ଡବନ୍ଧା ଲୁଗା; ପାଗପଟୁକା—3 Cloths for the waist and for the head while dressing.

ଧଡ଼ାଧଡ଼—ଦେ ଅ (ଧ୍ୱନ୍ୟନୁକରଣ)—୧ । ଉପର୍ଯ୍ୟୁପରି ବନ୍ଧୁକ ଫୁଟିବାର
Dhardādhard ଶବ୍ଦ—1. Repeated reports of a gun.
ধড়াধড় ୨ । କଠିନ ବସ୍ତୁମାନଙ୍କର ପରସ୍ପର ଅଘାତଜନିତ ଶବ୍ଦ—
धड़ाधड़ 2 The sound produced by the collision of hard substances.
ଦେ. ଅ—ଅତି ଶୀଘ୍ର—Very quickly.

ଧଡ଼ା ଧରିବା—ଦେ. କ୍ରି—କୌଣସି ବସ୍ତୁକୁ ତରାଜୁରେ ଓଜନ କରିବା
Dhardā dharibā ପୂର୍ବରୁ ତରାଜୁର ଦଣ୍ଡକୁ ଭୂପୃଷ୍ଠ ସଙ୍ଗେ
ধাড়াবান্ধা ସମତଳ କରିବା, ପାସଙ୍ଗ ଧରିବା—To make
धड़ा बाँधना, धड़ा करना the scale-beam perfectly
(ଧଡ଼ା ବାନ୍ଧିବା—ଅନ୍ୟରୂପ) horizontal and the two pans equally balanced before weighing any article in it; to adjust a scale by counterpoise, before weighing.
[ ଦ୍ର—ତରାଜୁର ଦଣ୍ଡର ଦୁଇ ମୁଣ୍ଡରେ ଓହୋଳଥିବା ପଲ୍ଲା ଦୁହେଁ ଓଜନରେ କମ ବେଶି ଥିଲେ ତୁଳାଦଣ୍ଡ ଭୂପୃଷ୍ଠର ସମତଳ ହୋଇ ରହେ ନାହିଁ । ଏପରି ଅବସ୍ଥାରେ ତଦ୍ୱାରା କୌଣସି ଦ୍ରବ୍ୟ ଓଜନ କଲେ ତଉଲ ଠିକ୍ ହୁଏ ନାହିଁ । ଏଥିପାଇଁ କୌଣସି ଦ୍ରବ୍ୟ ତଉଲିବା ପୂର୍ବରୁ ଆଗେ ତରାଜୁର ଦୁଇ ପଲ୍ଲା ସମାନ ଅଛି କି ନାହିଁ ଏହା ପରୀକ୍ଷା କରାଯାଏ ଓ ତୁଳାଦଣ୍ଡର ଯେଉଁ ମୁଣ୍ଡ ଅନ୍ୟ ମୁଣ୍ଡଠାରୁ ଉପରକୁ ଉଠିବାର ଦେଖାଯାଏ, ସେ ପାଖର ପଲ୍ଲାରେ ଗୋଡ଼ି ମାଟି ଅଳ୍ପ ପକାଇ ତରାଜୁର ଦଣ୍ଡକୁ ଭୂପୃଷ୍ଠର ସମାନ୍ତର (horizontal) କରାଯାଏ । ଏହି ସମାନ୍ତରକରଣ କର୍ମକୁ ଧଡ଼ା ଧରିବା କହନ୍ତି । ମଧ୍ୟ କୌଣସି ପାତ୍ରରେ କିଛି ଆଦି ଓଜନ କରିବାକୁ ହେଲେ ପ୍ରଥମେ ଏକ ପଲ୍ଲାରେ ଖାଲି ପାତ୍ରକୁ ରଖି ଅପର ପଲ୍ଲାରେ ଖାଲି ପାତ୍ରର ଓଜନକୁ ଗୋଟିଏ ମାଟି ଗୋଡ଼ି ଦେଇ ତୁଳାଦଣ୍ଡକୁ ଭୂମିର ସମତଳ କରାଯାଏ । ପରେ ପାତ୍ରରେ ଘିଅ ଅବା ଚାଳ ଅପର ପଲ୍ଲାରେ ବଟକରା ରଖି ଓଜନ କରାଯାଏ । ଦିଶା କାଠିରେ ଧଡ଼ା ଧରିବାର ରୀତି ପୃଥକ୍ । ]

ଧଡ଼ା ପଡ଼ା(ରା)—ଦେ. ବି (ସ. ଧୃ ଓ ପଢ଼ ଧାତୁ)—ଧରାପରା ( ଦେଖ )
Dhardā pardā(rā) Dharāparā (See)

ଧଡ଼ି—ଦେ. ବି ( ସ. ଧାରା=ରେଖା )—୧ । ଲୁଗାର ଧାର; ଲୁଗାର
Dhardi ଲମ୍ବ ପାଖର ଧାରରେ ଯେଉଁ ରଙ୍ଗିନ୍ ସୂତା ବୁଣା ଯାଇ-
পাড়, ধারী ଥାଏ—1. Border or hem of a cloth.
द्वार, किनारा [ ଦ୍ର—ଲୁଗାର ଲମ୍ବପାଖର ଦୁଇ ଧାରକୁ ଧଡ଼ି ଓ ଚଉଡ଼ାବାଗର ଦୁଇ ଧାରକୁ ମୁହିଁ, ମୁହୁଣ୍ଡା ବା ଅଞ୍ଚଳା ବୋଲାଯାଏ ।]
୨ । (ସ. ଧଟୀ) ଛିଣ୍ଡାକନା—2. Rag.
ନରକୁ କାହାରିଲେ କଉଜନ୍ତୁ ପାଏ
ଅଣ୍ଟାରେ ଧଡ଼ି ବାନ୍ଧି ନଡ଼ ବୁଲୁଥାଏ । କୃଷ୍ଣସିଂ. ମହ.ଶାନ୍ତି. ଅନୁଶାସନ ।

୪ । ଅପରିଥିଲା ବାଳକବାଳିକାଙ୍କ ନାମ—4. A name given to a boy or girl who was born after the death of his or her elder, while an infant.

ଧଡ଼ିଆ—ଦେ. ବି (ସ. ଧଟୀ, ଡୋରକ)—ମସ୍ତକର କେଶରେ ବାନ୍ଧିବା Dhardia ଡୋର ବା ପାଟଫୁଲ—A tape or string to tie the hair with.
ଫିତା
ଡୋରା ଦେ. ବିଣ—(ଅନ୍ୟ ଶବ୍ଦ ସଙ୍ଗେ ଲାଗେ; ଯଥା-ନାଲି ଧଡ଼ିଆ, କିନାରୀ ଫୁଲଧଡ଼ିଆ)—୧ । ଧଡ଼ିବିଶିଷ୍ଟ—1. Having a hem; bordered (cloth)
କିନାରୀ
ଦୁବଲା ୨ । (ସ ଦୁର୍ବଳ) କୃଶ, ଦୁର୍ବଳ—
ଦୁବଲା 2. Emaciated, lean; feeble.
ମନ୍ତ୍ର । ଏ କଳେବରରେ ସେ ଯୋଗିଁ ଧଡ଼ିଆ ହୋଇଁ
ମଲ୍ଲକୁଞ୍ଜ ଦୁଃଖା ଅଛୁ, ତା ଜାଲମ୍ ଫେର୍ ନ ଦେଖିବ ।
ଉପେନ୍ଦ୍ର. କଳକଳଟ୍ଟ ।
୩ । ପତଳା—3. Thin.
୪ । ଜାର୍ଣ୍ଣ ( ବସ୍ତ୍ର )—
4. Worn out; reduced to rags.

ଧଡ଼ି ଛାଡ଼ିଯିବା—ଦେ. କ୍ରି—୧ । ବସ୍ତ୍ରର ଧଡ଼ିର ରଙ୍ଗ ଫିକା ପଡ଼ିଯିବା—Dhardi chhardi jiba 1. To fade ( said of the colour of the border of a cloth after washing.
୨ । (ଲକ୍ଷଣାର୍ଥ) ଅଭିଭୂତ ହୋଇ ପଡ଼ିବା; କ୍ଲାନ୍ତ ହୋଇ ଯିବା—2. To feel overpowered or tired

ଧଡ଼ି ଛିଣ୍ଡା(ଣ୍ଡେ)ଇବା—ଦେ. କ୍ରି (ଇତର ଜନ ବ୍ୟବହୃତ)—କୌଣସି Dhardi chhinda (nde)iba ବ୍ୟକ୍ତିକୁ ପରିଶ୍ରମ କରାଇ ଏକାନ୍ତ ଅବସନ୍ନ କରି ପକାଇବା; ନାକାନ୍ତ କରିବା—To tire out a person by causing him to labour very hard

ଧଡ଼ି ଛିଣ୍ଡି(ଡ଼ି)ବା—ଦେ. କ୍ରି—୧ । ଜାର୍ଣ୍ଣ ହେବା—1. To become Dhardi chhindi(rdi)ba worn or ragged
[ଧଡ଼ି ଛି(ଣ୍ଡି)ଡ଼ିଯିବା— ଅନ୍ୟରୂପ] ୨ । (ଲକ୍ଷଣାର୍ଥ) କ୍ଲାନ୍ତହେବା—2. (figurative) To be overtired

ଧଡ଼ିଦାର୍—ଦେ. ବିଣ—ଧଡ଼ିଥିବା (ବସ୍ତ୍ର)—
Dhardidar ( a cloth ) Having a coloured border; bordered; having a good and fashionable border.
ପେଡେ
କିନାରିଦାର

ଧଡ଼ିବାଜ୍—ଦେ. ବିଣ. ସ୍ତ୍ରୀ ଓ ପୁଂ (ସ. ଧୂର୍ତ୍ତ)—୧ । ମାମଲାବାଜ୍—
Dhardibaj 1. Litigious.
ଧଡ଼ୀବାଜ, ଧୋକେବାଜ, ଦୃଗଡ଼ବାଜ
୨ । ବଗୁଲିଆ; ଦୁଷ୍ଟ—2. Wicked.
୩ । ଖେଳେଡ଼ା—3. Wanton.
୪ । ଶଠ, ପ୍ରବଞ୍ଚକ, ଧୂର୍ତ୍ତ—4. Crafty; deceitful.
୫ । (ମନ୍ଦାର୍ଥ) ଚଲାଖ—5. Cunning.
୬ । ଯେ ଅନ୍ୟକୁ ବିପଦରେ ପକାଏ—
6. Causing trouble to others.
୭ । ବ୍ୟଭିଚାରୀ—7. Adulterous.

ଧଡ଼ିବାଜି—ଦେ. ବି.—୧ । ଖେଳେଡ଼ାମି; ଦୁଷ୍ଟାମି; ବଗୁଲିଆପଣ—
Dhardibaji 1. Wickedness; roguery; wantonness.
ଧଡ଼ିବାଜି ୨ । ଧୂର୍ତ୍ତତା; ଚଲାଖୀ—
ଧୋକେବାଜ, ଦୃଗଡ଼ବାଜ 2. Craftiness; deceitfulness.

ଧଡ଼ୀ—ଦେ. ବିଣ. ସ୍ତ୍ରୀ—୧ । ଅତି ଶୀର୍ଣ୍ଣ—
Dhardi 1. Emaciated (woman).
ଧାଡ଼ୀ ୨ । ଅତି ବୃଦ୍ଧା; ଅନେକ ସନ୍ତାନ ପ୍ରସବ କରିଥିବା ଯୋଗୁଁ
ଓଡ଼ଢ଼ୀ, ଡୋକରୀ ଶୀର୍ଣ୍ଣକାୟା; ଧଡ଼ଡ଼ୀ; ଅସ୍ଥିକଙ୍କାଳମାତ୍ରାବଶିଷ୍ଟା (ଧଡ଼ୀ;ଧଡ଼ି ଧୋକଡ଼ୀ— ଅନ୍ୟରୂପ) (ବୃଦ୍ଧା)-2. Old and decrepit (woman); wasted (by giving birth to many children); worn out.

ଧଣ୍ (ଧାତୁ)—ସ.—ଶବ୍ଦ କରିବା—
Dhan (root) To make a sound.

ଧଣତା—ଦେ.ବିଣ.—ପାଣିଚିଆ (ଖାଦ୍ୟ ; ପାଣି ମିଶିବାରୁ ବିସ୍ୱାଦ(ଖାଦ୍ୟ)-
Dhanata (food) Having its taste spoiled on account of the presence of too much disproportionate water.
(ଧଣନ୍ତା—ଅନ୍ୟରୂପ)
ଜୋଲୋ
[ଦ୍ର—ସଜ ପଖାଳରେ ଅମ୍ଳିଲା ତୋରାଣି ନ ମିଶିଲେ କିମ୍ବା ଭାତ ଗରମ ଥାଉ ଥାଉଁ ତହିଁରେ ପାଣି ମିଶାଇ ସଙ୍ଗେ ସଙ୍ଗେ ତାକୁ ଖାଇଲେ ତାହା ବିସ୍ୱାଦ ଲାଗେ, ଏପରି ଭାତକୁ ଧଣତା ବା ଧଣନ୍ତା ଭାତ ବୋଲାଯାଏ । ]

ଧଣିଆଁ(ଆ)—ଦେ. ବି· (ସ. ଧନ୍ୟା, ଧନ୍ୟାକ)—ଧନିଆ; କୋଥମେରୁ—
Dhanian(a) Coriander; Coriandrum Sativum.
ଧନେ ଧନୀୟା
ସ. ପର୍ଯ୍ୟାୟ—ଧନକ, ଧନ୍ୟାକ, ଧାନକ, ଧାନେୟକ, ଧନ୍ନକା, ଛତ୍ରା, ଧାନ୍ୟ, କୁସ୍ତୁମ୍ବୁରୁ, ବିତୁନ୍ନକ, କୁନଟୀ, ଧେନୁକା, ସୁଗନ୍ଧ, ସୁଚ୍ଛଦ, ଜନପ୍ରିୟ, ବେଧକ, ଧାନା, ବଜ୍ରଧାନ୍ୟ
ଧନେ, ଧନିୟା, ଧନ୍ୟା
ଧନିୟା, କୋଥମିରି
ତେ. କୋଥମିଲ୍ଲି, କୋତମିର, ଧନ୍ନଯାଲୁ
ମ. ଧନ୍ନେ, କୋଥିଂବାରି
ଗୁ ଧାନାଁ, କୋଥମୀର
ତା କୋତ୍ତମଲ୍ଲି
ଫା. ଭୁଦ୍ମେ କସ୍ନୀଜ୍
ଆ. କଜ୍ଭୁର

[ ଦ୍ର—ଏହା ବର୍ଷାୟୁଃ ବହୁଶାଖ ଗୁଳ୍ମ । ଭାରତର ନାନା ସ୍ଥାନରେ ବହୁଳ ସମସ୍ତରେ ଏହାର କୃଷି ହୁଏ । ଏଥିର ଫୁଲ ଛତ୍ରାକାର ଓ ଫେଣ୍ଟା ଫେଣ୍ଟା, ଫୁଲ ଧଳା ବା ଈଷତ୍ ରକ୍ତାଭ । ଏଥିର ବାଜ ଗୋଲ ଓ ଦୁଇ ଫାଳିଆ; ଦୁଇ ଫାଳର ଗର୍ଭ ଫମ୍ପା; ଏ ଗଛ ହାତେ ଦେଢ଼ ହାତ ବଢ଼େ । ଏହାର ପତ୍ର ନରମ ଓ ପତ୍ରର ଧାର ଦନ୍ତୁର । ଏହାର ପତ୍ର, ଫୁଲ ଓ ଫଳ ସୁବାସିତ । ପତ୍ର ଓ ଫୁଲକୁ ଲୋକେ ଭିଅଣରେ ମିଶାଇ ଓ ବଟାଇ କରି ଓ ଶାଗ ଓ ଚଟଣୀ କରି ଖାଆନ୍ତି । ଡାଳରୁ ଗୋଟିଏ ଲେଖାଏଁ ଡେମ୍ଫ ବାହାରି ଡେମ୍ଫ ଅଗରେ ଛତ୍ରା ପରି ଫୁଲ ଧରେ । ଫୁଲ ଝଡ଼ି ଗଲେ ଫଳ ଧରେ । ଧନିଆ ମଞ୍ଜିକୁ ରଗଡ଼ି ତହିଁରୁ ଚୋପା ବାହାର କରି ଦେଲେ ଭିତରୁ ଯେଉଁ ଦୁଇ ଫାଳ ଟାଣ ଶସ ବାହାରେ ତାହା

ଭଅଣରେ ମସଲାରୂପେ, ପାନର ଓ ଗୁଣ୍ଡିର ମସଲାରୂପେ ଓ ଔଷଧରେ ବ୍ୟବହୃତ ହୁଏ । ଏ ମଞ୍ଜିରୁ ଅରଖ ମଧ୍ୟ କଢ଼ା ଯାଏ । ବୈଦ୍ୟକ ମତରେ ଏହା ସ୍ନିଗ୍ଧ, ଶୀତଳ, ଧାପନ, ପାଚନ, ସ୍ତମ୍ଭକାରକ, କୃମିନାଶକ ଓ ପିତ୍ତଜ୍ୱର, କାଶ, ଶୋଷ ଓ ଦାହରେ ଉପକାରୀ । ଡାକ୍ତରମାନେ ଏହାକୁ ଉଦରସ୍ଥ ବାୟୁ ଦୂର କରିବାକୁ ପ୍ରୟୋଗ କରନ୍ତି । ଉଗଡ଼ା ଧନିଆରୁ ଗ୍ରେପାକୁ ପାଚୁଡ଼ ଦେଲେ ଯେଉଁ ଖାଣ୍ଡିଆ ଈଷତ୍ ସୁବାସିତ ଶସ ବାହାରେ ତାକୁ ଧନିଆ ଗୁଭଲ କହନ୍ତି । ]

**ଧଣିଆ ଗୁଭଲ**—ଦେ. ବି. ( ସଂ. ଧନ୍ୟା+ତଣ୍ଡୁଳ )—ଧନିଆ ମଞ୍ଜିକୁ Dhaṇiā chāula ଉଗଡ଼ ତହିଁରୁ ଭୁସ ପାଚୁଡ଼ିବା ପରେ ରହିବା ଧନେଚାଲ ମଞ୍ଜି ଉଫାଳ—Split coriander seed.

**ଧଣିଚ**—ଦେ. ବି. (ସଂ. ଜୟନ୍ତୀ-ଯୋଗେଶଚନ୍ଦ୍ର)—ଶିମ୍ବାଦି ବର୍ଗର ଦୀର୍ଘ, Dhaṇichā ଶୀର୍ଣ୍ଣ ବର୍ଷାୟୁଃ କ୍ଷୁପବିଶେଷ—Sesbania ধনিচা; ধনচে Cannabina; Sesbania Aculeata

**जयंती, जैंत** [ ଦ୍ର—ଏହାର ଗଛ ଅଗସ୍ତି ଗଛ ପରି, କିନ୍ତୁ ଆକାରରେ କ୍ଷୁଦ୍ରତର । ଏହାର କାଣ୍ଡ ସିଧା, ପତ୍ର ଅଗସ୍ତି ପତ୍ର ପରି; ତୁଇଁ ୧ ଫୁଟ ପର୍ଯ୍ୟନ୍ତ ଲମ୍ବ ହୁଏ; ମଞ୍ଜି ମୁଗ ପରି, ଫଲ ହରଡ଼ ଫୁଲ ପରି ହଳଦିଆ । ଲୋକେ ଏ ଗଛକୁ ଲଗାଇ ଗଛ ବଢ଼ିଗଲେ ତାକୁ କାଟି ନେଇ କ୍ଷେତରେ ପୋତି ପକାନ୍ତି ଓ ମାଟିତଳରେ ଏହା ସଢ଼ିଗଲେ ଜମିରେ ସାରର କାର୍ଯ୍ୟ କରେ । ବଙ୍ଗଦେଶରେ ଲୋକେ ଏ ଗଛର ଡାଙ୍ଗରେ ପାନ ଲତାକୁ ମଡ଼ାନ୍ତି । ଓଡ଼ିଶା ରେ ଲୋକେ ଏହାର ପତ୍ରକୁ ଶାଗ କରି ଖାଆନ୍ତି । ହି ଶବ୍ଦସାଗର ମତରେ ଏହାର ବୀଜ ସଂକୋଚକ ଓ ଉତ୍ତେଜକ ଏବଂ ଝାଡ଼ା ରୋଗରେ ଓ କାଛୁ କୁଣ୍ଡିଆରେ ଔଷଧରୂପେ ବ୍ୟବହୃତ ହୁଏ । ବଥ, ଫୁଲ ଓ ଟିଲ୍ଟି ଆଦିରେ ଏହାର ପତ୍ର ବନ୍ଧାଯାଏ ଓ ଏଥିରେ ବଥ ଓ ଟିଲ୍ଟି ପାଚି ଫାଟିଯାଏ । ପତ୍ରକୁ ବାଟି ବିଛାକାମୁଡ଼ାରେ ବୋଳାଯାଏ । ଏ ଗଛର କାଣ୍ଡକୁ ପାଣିରେ ସଢ଼ାଇ ଲୋକେ ଏଥିରୁ ଝୋଟ ପରି ଅଂଶୁମୟ ସୂତ୍ର ବାହାର କରନ୍ତି । ]

**ଧଣୁଥା(ଆଁ)**—ଦେ. ବିଣ. (ସଂ. ଦୋହନୀୟା)—ଯେଉଁ ଗାଈ ଦୁଧ Dhaṇuā(āṅ) ଦେଉଥାଏ; ଯେଉଁ ଗାଈଠାରୁ ଦୁଧ ଦୁହାଁ ହେଉ- (ବରଡ଼—ବ୍ୟବହୃତ) ଥାଏ—Milch (cow); giving milk. दुधाल दुधारू ଦେ. ବି—ଦୁହାଁଳୀ ଗାଈ – Milch cow.

**ଧଣ୍ଡ**—ଦେ. ବି. (ସଂ. ଡୁଣ୍ଡୁଭ)—ଏକପ୍ରକାର ନିର୍ବିଷ ଜଳଚର ସର୍ପ; Dhaṇḍa ପାଣିଧଣ୍ଡ —A non-poisonous water-snake; ঢোঁড়ো; ঢোঁড়া Homalopsidæ

**डेड़हा** [ ଦ୍ର—ଏମାନେ ଛୋଟ ମାଛ ଓ ବେଙ୍ଗ ଖାଇ ପାଣିରେ ଥାଆନ୍ତି । ]

**ଧଣ୍ଡଛୁଆଁ**—ଦେ.ବିଣ.(ସଂ.ଡୁଣ୍ଡୁଭ)—୧ । ଯାହାକୁ ଧଣ୍ଡସାପ କାମୁଡ଼ିଥାଏ- Dhaṇḍa chhuāṅ 1. Bitten by a water-snake.

[ଦ୍ର—ଯେଉଁ ବ୍ୟକ୍ତିକୁ ଥରେ ଧଣ୍ଡସାପ କାମୁଡ଼ିଥାଏ, ତାକୁ ଅନ୍ୟ ବିଷଧର ସାପ କାମୁଡ଼ନ୍ତି ନାହିଁ ବୋଲି ଲୋକେ ବିଶ୍ୱାସ କରନ୍ତି ।]

୨ । (ଲକ୍ଷଣାର୍ଥ) ଯାହାକୁ ଜଣେ ଆକ୍ରମଣ କରିବା ପରେ ଅନ୍ୟ ବ୍ୟକ୍ତି ଆକ୍ରମଣ କରି ପାରିବେ ନାହିଁ—2. One who has no fear of being attacked by any other person after the attack of the first assailant.

**ଧଣ୍ଡଷଣ୍ଡ(ଣ୍ଢ)**—ଦେ. ବି.—ଅକଥ୍ୟ ବା ଅଶ୍ଳୀଳ ଭାଷା— Dhaṇḍa shaṇḍa (ṇḍha) Obscene words. (ଧଣ୍ଡ ଷଣ୍ଡିଆ, ଧଣ୍ଡଷଣ୍ଡିଆ —ଅନ୍ୟରୂପ)

**ଧଣ୍ଡ ଶିକଳା**—ଦେ. ବି. (ସଂ. ଡୁଣ୍ଡୁଭ+ଶୃଙ୍ଖଳ)—ଗୋଡ଼ରେ ଅଳଙ୍କାର Dhaṇḍa śikaḷā ରୂପେ ବ୍ୟବହୃତ ଏକପ୍ରକାର ଶିକୁଳି— ଧଣ୍ଡ ଶିକୁଳା, ଧଣ୍ଡ ଶିକୁଳି } ଅନ୍ୟରୂପ A chain worn round the ankle as an ornament.

**ଧଣ୍ଡା**—ଦେ. ବି. (ସଂ. ଦଣ୍ଡ; ଦଣ୍ଡ ପରି ମୋଟ ଓ ଲମ୍ବ ଦେଖା ଯିବାରୁ)— Dhaṇḍā ୧ । ବେକରୁ ପାଦ ପର୍ଯ୍ୟନ୍ତ ଲମ୍ବି ଥିବା ଫୁଲର ବଡ଼ গড়ে মালা ମାଳ—1. A big wreath of गजरा flowers.

ଗଢ଼ବ ତଖା ଧଣା, ନିର୍ମିତ ଗଜଶୁଣ୍ଡା । କବିସୂର୍ଯ୍ୟ. ସଙ୍ଗୀତ ।

୨ । ଆଖୁର ଗୋଟିଏ ଗଛ ବା ଦଣ୍ଡ— 2. One stick of sugarcane.

୩ । ପ୍ରସାଦୀ ମାଳା; ଦେବତାଙ୍କ ବେକରେ ଲମ୍ବିତ ପୁଷ୍ପମାଳ; ଯାହା ଦେବତାଙ୍କଠାରୁ କଢ଼ା ଯାଇ ଭକ୍ତଙ୍କୁ ଦିଆଯାଏ; ଦେବତାଙ୍କ ଛଡ଼ା ମାଳ—3. A wreath of flowers put on an idol and afterwards brought down from it.

ସୁଗନ୍ଧ ବାସ ରସ ପୁଷ୍ପ ଧଣ୍ଡା, ତହିଁକୁ ହୃଦେ ବାସନା ପଣ୍ଡା । ଗ୍ରାଚୀ. ଘଭଚେଗୀତା ।

ঝাণ্ডা; झंडा ୪ । (ସଂ. ଜୟନ୍ତ) ପତାକା, ଝଣ୍ଡା; ବଡ଼ ପତାକା— 4. An ensign; a big flag; a standard.

ମାତଙ୍ଗ ଧଣ୍ଡା ଡମରୁ ନିଶାଣ, ତାଳ ଉଚ୍ଚବାର ବନ୍ଧୁଗ ଘୁଣ । ବ୍ରଜନାଥ.ସମରତରଙ୍ଗ ।

୫ । ( ସଂ. ଡୁଣ୍ଡୁଭ) ଧଣ୍ଡ—(ଦେଖ) 5. Dhaṇḍa (See)

ପାଣିଢୁଳା ଧଣ୍ଡା ଢଗ ଆଦି ଏ ସାପେ ଉଢ଼ୁଲେ ପନ୍ଥ ଧରି କର୍ଣ୍ଣଙ୍କ ସମୀପେ । କୃଷ୍ଣସିଂହ, ମହାଭାରତ, କର୍ଣ୍ଣ ।

**ଧଣ୍ଡାଳିବା**—ଦେ. କ୍ରି—ଧନ୍ଦାଳିବା (ଦେଖ) Dhaṇḍāḷibā Dhandāḷibā (See)

**ଧଣ୍ଡାଳ ହେବା**—ଦେ. କ୍ରି.—ଧନ୍ଦାଳ ହେବା (ଦେଖ) Dhaṇḍāḷi hebā Dhandāḷi hebā (See)

**ଧଣ୍ଡି**—ଦେ. ବି—(ସଂ. ଦଣ୍ଡ)—୧ । ଝଣ୍ଡା; ଲମ୍ବ ବାଉଁଶ ଉପରେ Dhaṇḍi ଲଗା ଯିବା ପତାକା—1. Flag attached to a झंडी; ঝাণ্ডী big pole.

୨ । କ୍ଷେତାଦି ମପିବା ସମୟରେ ଚେନ୍ ଯେଉଁ ବାଟେ ନିଆଯାଏ ତହିଁର ନିଦର୍ଶନରୂପେ ଭୂମିରେ ଅଙ୍କିତ ଗାର— 2. A chain-line in a surveying.

୩ । ଦୁଇ ସ୍ଥାନ ବା ମଉଜା ବା କ୍ଷେତ ମଧ୍ୟରେ ଥିବା ସୀମା ଚିହ୍ନିତ କରିବା ରେଖା—3. Boundary-line drawn between two plots of land or between 2 villages.

ପ୍ରାଦେ (ଗଡ଼ଜାତ) ବ—ଭଣ୍ଡି—(ଦେଖ)
Bhaṇḍi (See)

**ଧଣ୍ଡିଗ୍ଚ**—ଦେ. ବ- ଧଣିଗ୍ଚ (ଦେଖ)
Dhaṇḍichā Dhaṇichā (See)

**ଧତ୍**—ଦେ. ଅ. ( ସଂ. ଦୂର )—୧ । ଦୂର୍; ଦୂର୍‌କର—
Dhat 1. (Interjection) Fie !; Be off !; Shame !
दूर धत्,
ଧତ୍ତ୍, ଧତ୍ତେର; ଧତ୍ତେରକା, ଧତ୍ତେରକ; ଧତ୍ତେରକେ, ଢୂ — ଅନ୍ୟରୂପ — ୨ । ହାତୀକୁ ଠିଆ କରିବା ନିମନ୍ତେ ମାହୁନ୍ତର ଉଚ୍ଚାରିତ ଆଦେଶ-
1. Interjection used by the driver directing an elephant to stop.

**ଧତ୍‌କାର**—ଦେ. ବ. (ସଂ. ଧିକ୍କାର)—ଧିକ୍କାର—
Dhat-kāra Crying shame.
धिक्कार धतकारा

**ଧତ୍‌କାରିବା**—ଦେ. କି. ( ସଂ ଧିକ୍କାର )—
Dhat-kāribā ୧ । ଧିକ୍କାର କରିବା—1. To cry shame;
धिक्कारा to cry down a person.
धतकारना ୨ । ଧତ୍ ଧତ୍ ଶବ୍ଦ ଉଚ୍ଚାରଣ କରି କୌଣସି ବ୍ୟକ୍ତିକୁ ତଡ଼ି ଦେବା; ଢୂତ୍‌କାରିବା—
2. To drive away a person by crying him down.

**ଧତଡ଼ା(ରା)**—ଦେ. ବଣ. ପୁଂ. ( ସଂ. ଧ୍ୱସ୍ତ )—
Dhatarḍā(rā) ୧ । ଅତି ଜୀର୍ଣ୍ଣ—1. Worn out.
धाड़ि ( ଯଥା—ଧତଡ଼ା ଗାଡ଼ି । )
डोकरा ୨ । ଜରାଜୀର୍ଣ୍ଣ—2. Decrepit.
( ଯଥା—ଧତଡ଼ା ଘୋଡ଼ା । )
୩ । ଛିଣ୍ଣ; କନ୍ଥାଯୁକ୍ତ—3. Ragged; torn.
( ଯଥା—ଧତଡ଼ା ଲୁଗା । )

**ଧତଡ଼ୀ(ରୀ)**—ଦେ. ବଣ. ସ୍ତ୍ରୀ—୧ । ଅତିବୃଦ୍ଧା ଦୁର୍ବଳା ଓ (ସ୍ତ୍ରୀ)—
Dhatarḍi(ri) 1. Decrepit (woman); infirm.
धाड़ी ୨ । ଜରାଜୀର୍ଣ୍ଣା, ବହୁ ସନ୍ତାନ ପ୍ରସବ କରିଥିବା ଯୋଗୁଁ
डोकरी ବୃଦ୍ଧା ଓ ଶୀର୍ଣ୍ଣା; ଧଡ଼ୀ—2. Worn out on account of having given brith to many children and of oldage.
୩ । ଶ୍ଳଥ ଚର୍ମବିଶିଷ୍ଟା (ସ୍ତ୍ରୀ)—3. (a woman) With the skin wrinkled.
୪ । କ୍ଲେଶ ବା ବୃଦ୍ଧାବସ୍ଥା ଯୋଗୁଁ ଯାହା ଦେହର ଚର୍ମିଦ ଶ୍ଳଥ ହୋଇଅଛି—4. Wrinkled and wasted on account of old age or disease.

**ଧତୁ**—ଦେ. ବି. (ସଂ. ଧାତୁ )—
Dhatu ୧ । ମନୁଷ୍ୟର ମାନସିକ ପ୍ରକୃତି—
धांत 1. Mental propensities.
धात; धत ୨ । ଦୈହିକ ପ୍ରକୃତି; ଶରୀରସ୍ଥ ବାତ ପିତ୍ତ କଫ ଆଦି—
2. Humours of the body; physical system.
୩ । ଶୁକ୍ର, ବୀର୍ଯ୍ୟ, ରେତଃ—3. Semen virile.
୪ । ପ୍ରକୃତି—4 Nature.
୫ । ମନ୍ଦ ଅଭ୍ୟାସ, ଖୋଇ—5. Bad habit
୬ । ଧାତୁ ( ଦେଖ )—6. Dhātu ( See )

**ଧତୁ ପଡ଼ିବା**—ଦେ. କି—ଧାତୁ ପଡ଼ିବା; ମେହ ରୋଗ—
Dhatu parḍibā Gonorrhœa.
धांतपडा धात गीरना

**ଧତୁରା**—ଦେ ବି. ( ସଂ. ଧତ୍ତୂର )—ଧାତୁରା (ଗୁଳ୍ମ ଓ ଫଳ)—
Dhaturā Thorn apple (tree and fruit ); Stramonium; Dhatura Fastuosa.
ସଂ ଧୁସ୍ତୂର, ଧୂସ୍ତୂର, ଦୂର୍ତ୍ତି, ଧତ୍ତୂର, ଉନ୍ମତ୍ତ, ଦେବିକା କିତବ, ଶଠ, ଭ୍ରମ, ମହାମୋହୀ, ଶିବପ୍ରିୟ,ମାତୁଳ, ମଦନ, କନକ, ମୋହନ, ଶ୍ୟାମ, ଶିବଶେଖର, କାହଳାପୁଷ୍ପ
धुतुरा
धतुरा
ମ. ଧୋତରା, ଧୋତ୍ରା
ଲେ. ଡ୍ରେଟୁରେଷ୍ଟ୍ରୁ, ଡ୍ରମ୍ନେଲା, ନାକ୍ଷାଡ୍ରନ୍ମିଲେ, ନକ୍ଷିଡ୍ରମେଲା
ତା. କାରୁଉମତେ, ଉମତାଇ
ସ୍ବ. ଧଂତୁରୋ
ଆ. ଜୋଜ୍ ମାସେଲ, ତାତୁରା
[ଦ୍ର—ଏହା ବଙ୍ଗନାଦି ବର୍ଗରେ ବନ୍ୟ ଗୁଳ୍ମବିଶେଷ, ଧଳା କଳା ଭେଦରେ ଏହାର ଗଛ, ଡେମ୍ଫ, ଫୁଲ ଓ ଫଳ ଦୁଇ ପ୍ରକାର । ଏହାର ଫଳ ମାଦକ ଓ ବିଷାକ୍ତ । କଳା ଧତୁରା ଫୁଲ ଓ ଡେମ୍ଫ ବାଇଗଣି ରଙ୍ଗ । ଏହା ମତ୍ତତା-ଜନକ, ବର୍ଣ୍ଣ ପ୍ରସାଦକ, ଅଗ୍ନିବର୍ଦ୍ଧକ, ବାୟୁଜନକ, ତନ୍ଦ୍ରା ଓ ମୂର୍ଚ୍ଛା କାରକ । ଏହା ଉକୁଣି, ଜ୍ୱର, କୁଷ୍ଠ, ବ୍ରଣ, କଣ୍ଡୂ, କଫ, ବିଷ ଓ ବେଦନା ନାଶକ । ଏହାର ଧୂମ ପାନ କଲେ ଶ୍ୱାସ ସତ୍ୱର ପ୍ରଶମିତ ହୁଏ । ନିଶା-ଖୋରମାନେ ପତ୍ର ବା ଗଞ୍ଜେଇ ସଙ୍ଗେ ଧତୁରା ମଞ୍ଜି ବାଟି କରି ଖାଆନ୍ତି । ଏହାର ଫଳ, ଫୁଲ ଓ ପତ୍ରରେ Daturine ବା Atropine ନାମକ ଉଗ୍ର ବିଷ ଅଛି । ଏହା ଆତ୍ମହତ୍ୟା ଓ ନରହତ୍ୟାରେ ପ୍ରୟୋଗ କରାଯାଏ । ଏହି ଗଛ ଭାରତରେ ଏବଂ ଇଂଲଣ୍ଡରେ ହୁଏ ।]

**ଧତୁରିଆ**—ଦେ. ବି. ( ସଂ. ଧୁସ୍ତୂର )—
Dhaturiā ପୂର୍ବେ ଭାରତରେ ପଥିକମାନଙ୍କ ଉପରେ ଅତ୍ୟାଚାର
धुतरिआ କରୁଥିବା ଯେଉଁ ଠଗମାନେ ପଥିକଙ୍କୁ ଧତୁରା ମଞ୍ଜି
धतुरिआ ଖୁଆଇ ବେହୋସ୍ କରି ସେମାନଙ୍କ ସର୍ବସ୍ୱ ଲୁଣ୍ଠନ କରୁଥିଲେ—The Thugs fo India who used to make travellers unconscious by administering Dhaturā poison and rob them of their belongings.
ଦେ ବଣ—ଧତଡ଼ା ( ଦେଖ )—Dhatarḍā ( See )

**ଧତ୍ତୂର**—ସଂ. ବି (ଧେ ଧାତୁ=ପାନ କରିବା+ଉର, କ୍ରିପାତନ)—
Dhattūra ଧତୁରା ଗଛ ଓ ଫଳ—
The Dhaturā (plant and berry).

**ଧଥ୍**—ଦେ. ଅ—ଧତ୍ ( ଦେଖ )
Dhath Dhat ( See )
(ଧଥ୍‌ତେର, ଧଥ୍‌ତେରକା, ଧଥ୍‌ତେରକ, ଧଥ୍‌ତେରକେ—ଅନ୍ୟରୂପ)

**ଧନ୍ (ଧାତୁ)**—ସଂ—୧ । ଶବ୍ଦ କରିବା—
Dhan (root) 1. To make a sound.

୨ । (ଶସ୍ୟାଦି) ଉତ୍ପନ୍ନ ହେବା—2. To come out; to be produced; to be brought forth.

୩ । କ୍ଷେପ କରିବା—3. To throw

ଧନ୍—ପ୍ରାଦେ. (ସମ୍ବଲପୁର) ବି—ଧନ (ଦେଖ)
Dhan Dhana (See)

ଧନ୍‌କିବା—ପ୍ରାଦେ. (ସମ୍ବଲପୁର) କ୍ରି. (ସଂ. ଧୂନନ)—କମ୍ପାଇବା—
Dhan-kibā To shake.

ଧନ୍‌ତରି—ଦେ. ବିଣ. (ସଂ. ଧନ୍ୱନ୍ତରି)—
Dhan-tari ଧୁରନ୍ଧର; ପ୍ରବୀଣ—Expert.
(ଧନ୍ତୁରି—ଅନ୍ୟରୂପ) (ଯଥା—ସେ ଖାଇବା ବିଷୟରେ ଧନ୍ତରି।)
ବି—ଧନ୍ତୁରି (ଦେଖ)—Dhanutari (See)

ଧନ୍‌ଦୁଗାନି—ପ୍ରାଦେ. (ସମ୍ବଲପୁର) ବି. (ସହଚର)—ଧନ ଦଉଲତ—
Dhan-dugāni Riches.

ଧନ—ସଂ. ବି. [ ଧନ୍ ଧାତୁ =(ଶସ୍ୟ) ଉତ୍ପନ୍ନ ହେବା + କର୍ତ୍ତୃ. ଅ ]—
Dhana ୧ । ସମ୍ପତ୍ତି; ବିତ୍ତ—1. Wealth; property; riches.

ଦଣ୍ଡେ କରେ ଧନ ଦେଇ ପଦେ ନ କହୁଛି ରେ ।
କବିସୂର୍ଯ୍ୟ- ବଳଦେବରଥ, ଓ ଗୀତ ।

୨ । ଗୋଧାନ୍ୟାଦି ସ୍ଥାବର ଅସ୍ଥାବର ସମ୍ପତ୍ତି —
2. Property, movable and immovable.

୩ । ନଗଦ ଟଙ୍କା ଟୋକର, ପୁଞ୍ଜି, ପାଣ୍ଠି —
3. Money; hard cash.

ହାତରେ ନ ଥାଏ ଧନ, ସୁଖ ବାହା କହି ନନ—ଚଗ ।

୪ । ସୁବର୍ଣ୍ଣ—4. Gold.

୫ । ମୂଲ୍ୟବାନ୍ ପଦାର୍ଥ—5. Valuables.

ବାଣାର୍ଜ୍ଜିତ ଦ୍ରବ୍ୟକ ମନ୍ଦ ଥାଇ, ଧନ ଆଲଗନେ ମନ ବଳଇ ।
ଗୋପେନ୍ଦ୍ର, ଲକ୍ଷ୍ମଣରେଖା ।

୬ । ଧନ ପରି ପ୍ରିୟତମ ବ୍ୟକ୍ତି; ସ୍ନେହପାତ୍ର—
6. Object of love or attachment; the beloved one.

ତରୁଣୀ ଭୋଳେ ମୋ ଧନ କଲେ ଯତ୍ନ କରୁଣାନିଧି ଶଙ୍କରରେ ।
କବିସୂର୍ଯ୍ୟ- ସଙ୍ଗୀତ ।

୭ । (ଜ୍ୟୋତିଷ) ଧନିଷ୍ଠା ନକ୍ଷତ୍ର—7 The 23rd lunar mansion or asterism in Hindu astronomy.

୮ । (ଜ୍ୟୋତିଷ) ଧନସ୍ଥାନ—8. The apartment of riches on one's horoscope.

୯ । (ଗଣିତ) ଯୋଗ ଚିହ୍ନ—
9. (mathematics) The plus sign,

(ଋଣ ଚିହ୍ନ – ବିପରୀତ)

୧୦ । କମନୀୟ ବସ୍ତୁ—10. Desirable thing; the object of one's cherished desire.

୧୧ । ଖଣିରୁ ବାହାରିବା ଅଶୁଦ୍ଧ ଧାତୁ ଖଣ୍ଡ (ହି. ଶ.)—
11. Crude pieces of metal brought out from the mine; ore.

ଦେ. ଅ—୧ । (ଶିଶୁ, ସ୍ୱାମୀ, ସ୍ତ୍ରୀ, ସହଚରୀ ଆଦିଙ୍କ ପ୍ରତି) ଆଦର ଓ ସ୍ନେହସୂଚକ ସମ୍ବୋଧନ)—ହେ ପ୍ରିୟା—
1. (Interjection used to one's beloved person My dear.)

ଶିଖିଲି ପରି କି ଧନ ମନରେ ଭାଳିଲୁରେ ।
କବିସୂର୍ଯ୍ୟ- ବଳଦେବରଥ, ଓ ଗୀତ ।

ଦେ. ବି—୧ । (ଆଦରାର୍ଥେ) ଶିଶୁମାନଙ୍କ ଶିଶ୍ନ, ଗୁଡ଼ି—
1. The pretty penis of a child (used in endearment).

୨ । ମୂଳଧନ—2. Capital

ଧନକ—ସଂ. ବି. (ଧନ + କ)—୧ । ଧନ ପ୍ରାପ୍ତିର ଇଚ୍ଛା (ହି ଶ.)—
Dhanaka 1 A desire to acquire riches.
୨ । (ନାମ) ରାଜା କୃତବୀର୍ଯ୍ୟଙ୍କ ପିତା (ଭାଗବତ)—
2. Name of the father of king Krutabirjya.

ଧନ କଷ୍ଟ—ସଂ. ବି. (ଧନ ନିମିତ୍ତ କଷ୍ଟ; ୪ର୍ଥୀ ତତ୍)—
Dhana kashta ୧ । ଦାରିଦ୍ର୍ୟ—1. Penury.
୨ । ଦାରିଦ୍ର୍ୟ ଦୁଃଖ—2. Affliction of poverty.
୩ । ଧନାଭାବ—3. Want

ଧନ କୁବେର—ସଂ. ବି. (ଧନରେ କୁବେର ତୁଲ୍ୟ, ୭ମୀ ତତ୍)—
Dhana kubera ୧ । କୁବେର ପରି ଅତ୍ୟନ୍ତ ଧନୀ ବ୍ୟକ୍ତି—
1. A very rich or wealthy man.
୨ । ଲକ୍ଷପତି; କୋଟିପତି—2. A millionaire

ଧନ କେଳି—ସଂ. ବି. (ବହୁବ୍ରୀହି; ଧନରେ କେଳି ବା କ୍ରୀଡ଼ା କରେ
Dhana keli ଯେ)—କୁବେର—Kubera, the Hindu God of riches.

ଧନ କୋଷ—ସଂ. ବି. (୬ଷ୍ଠୀ ତତ୍, ଧନ + କୋଷ)—ଧନାଗାର—
Dhana kosha Treasury.

ଧନ କ୍ଷୟ—ସଂ. ବି. (୬ଷ୍ଠୀ ତତ୍; ଧନ + କ୍ଷୟ)—
Dhana kshaya ୧ । ବିତ୍ତନାଶ; ଲକ୍ଷ୍ମୀ ଛାଡ଼ିବା—
1. The state of being reduced to poverty; destitution.

୨ । ଅପବ୍ୟୟ—2. Waste of money
୩ । ଧନର କ୍ଷତି—3. Loss of money
୪ । ଧନ ସରିଯିବା—4. Exhaustion of wealth.

ଧନ କ୍ଷୟକର—ସଂ. ବିଣ. ପୁଂ. (ଧନକ୍ଷୟ + କୃ ଧାତୁ + କର୍ତ୍ତୃ. ଅ,
Dhana kshayakara ଉପପଦ ତତ୍)—୧ । ଅପବ୍ୟୟୀ—
1. Prodigal.
(ଧନକ୍ଷୟକରୀ—ସ୍ତ୍ରୀ)
(ଧନକ୍ଷୟକାରୀ. ପୁଂ—ଅନ୍ୟରୂପ) ୨ । ଯେଉଁ କାର୍ଯ୍ୟଦ୍ୱାରା ଧନକ୍ଷୟ
(ଧନକ୍ଷୟକାରିଣୀ—ସ୍ତ୍ରୀ) ହୁଏ—2. Leading to waste or loss of money.

ଧନ ଗରବ—ଗ୍ରା. ବି. (ସଂ. ଧନଗର୍ବ)—ଧନାହଙ୍କାର—
Dhana garaba Pride of wealth.

**ଧନ ଗର୍ବ**—ସଂ. ବି. (ମ. ପ. ଲୋ; ଧନ ଜନିତ ଗର୍ବ)—
Dhana garba ଅଧିକ ଧନ ଥିବା ହେତୁରୁ ଅହଙ୍କାର—
(ଧନଦର୍ପ—ଅନ୍ୟରୂପ) Pride born of riches.

**ଧନଗର୍ବିତ**—ସଂ. ବିଣ. ପୁଂ—ଧନ ଥିବା ଯୋଗୁଁ ଅହଙ୍କାରୀ—
Dhanagarbita Purse-proud.
(ଧନଦର୍ପୀ, ଧନଦୃପ୍ତ, ଧନଗର୍ବୀ—ପୁଂ. ଅନ୍ୟରୂପ)
(ଧନଗର୍ବିଣୀ, ଧନଦର୍ପିଣୀ, ଧନଦୃପ୍ତା—ସ୍ତ୍ରୀ)

**ଧନ ଗୌରବ**—ସଂ. ବି. (୬ଷ୍ଠୀ ତତ୍ ବା ମ. ପ. ଲୋ; ଧନ+ଗୌରବ)—
Dhana gauraba ୧ । ଧନଯୋଗୁଁ ଧନୀ ବ୍ୟକ୍ତିର ସମାଜରେ ସମ୍ମାନ—1. Respect shown to a person in society for his riches
୨ । ଧନଗର୍ବ—2. Pride of wealth.
୩ । ଧନର ମାହାତ୍ମ୍ୟ—3 The glory or greatness of wealth.

**ଧନ ଜଗିଆ**—ଦେ. ବିଣ—ଯେ ଧନକୁ ଜଗିଥାଏ ମାତ୍ର, ଅର୍ଥାତ୍ ବ୍ୟୟ
Dhana jagiā କରେ ନାହିଁ—Mere custodian of
[ଧନଜଗୁଆଳ(ଳି)—ଅନ୍ୟରୂପ] wealth.

**ଧନ ଜନ**—ଦେ. ବି. (ଦ୍ୱନ୍ଦ୍ୱ; ଧନ+ଜନ)—ସମ୍ପତ୍ତି ଓ ପରିବାର
Dhana jana (ଆଶୀର୍ବାଦରେ ବ୍ୟବହୃତ)—
Riches and family
ଧନଜନ ଗୋପ ଲକ୍ଷ୍ମୀ ବର୍ଦ୍ଧିତ ହୁଅନ୍ତୁ । ଯୋଗୀଙ୍କ. କେଦାର ଗୀତ ।

**ଧନ, ଜନ, ମରଣ**—ଦେ. ଅ—ଭବିଷ୍ୟତ ଶୁଭାଶୁଭ ପ୍ରଶ୍ନ ଉପଲକ୍ଷରେ
Dhana, jana, maraṇa କୌଣସି ପଦାର୍ଥକୁ ଗଣିବାର କ୍ରମ—
A mode of counting in an oracular calculation.

[ଦ୍ର—୧—ଧନ=ଧନଲାଭ, ୨—ଜନ=ଜନଲାଭ, ମିତ୍ରଲାଭ, ୩—ମରଣ=ଅମଙ୍ଗଳ ବା ମୃତ୍ୟୁ, ସର୍ବନାଶ । ଗୋରୁଜଗୁଆଳ ପିଲାଏ ଗଣ୍ଡିଏ ପାଷାଣ କରିବାପାଇଁ ନୂଆ ବାଉଁଶ ବାଡ଼ିକୁ କାଟି ତାହାର ଗଣ୍ଠିକୁ ଗଣନା କରି ସେ ବାଡ଼ିଦ୍ୱାରା ଯଷ୍ଟିର ଅଧିକାରୀର ଶୁଭାଶୁଭ ନିର୍ଣ୍ଣୟ କରିବା ସମୟରେ ୧ମ ଗଣ୍ଠି ଧନ, ୨ୟ ଗଣ୍ଠି ଜନ, ୩ୟ ଗଣ୍ଠି ମରଣ, ୪ର୍ଥ ଗଣ୍ଠି ଧନ, ୫ମ ଗଣ୍ଠି ଜନ, ୬ଷ୍ଠ ଗଣ୍ଠି ମରଣ, ଏହିପରି ଗଣନା କରି, ବାଡ଼ିର ୪, ୫, ୭, ୮ ଗଣ୍ଠି ଥିଲେ ଶୁଭ ଓ ୩, ୬, ୯ ଗଣ୍ଠି ଥିଲେ ଅଶୁଭ ବୋଲି ସ୍ଥିର କରନ୍ତି । ଭୂମିରେ ଗୁଡ଼ିଏ ଗାର ପକାଇ କୌଣସି ଶୁଭାଶୁଭ ପ୍ରଶ୍ନ ସମାଧାନାର୍ଥ ଏହି ନିୟମରେ ଗଣନା କଲେ ୪, ୫, ୭, ୮ ସଂଖ୍ୟକ ଗାର ଶୁଭ ଓ ୩, ୬, ୯ ଗାର ଅଶୁଭ ବୋଲି ସ୍ଥିର କରାଯାଏ । ]

**ଧନଞ୍ଜୟ**—ଗ୍ରା. ବି. (ସଂ. ଧନଞ୍ଜୟ)—ଧନଞ୍ଜୟ (ଦେଖ)
Dhanañjae Dhanañjaya (See)
(ଧନଞ୍ଜୟେ—ଅନ୍ୟରୂପ) ତାହା କହଇ ଶୁଣ ଧନଞ୍ଜଏ ।
ପ୍ରାଚୀ. ସଚ୍ଚିଦ୍ ଗୀତା ।

**ଧନଞ୍ଜୟ**—ସଂ. ବି (ଧନଂ=ଧନକୁ ଅର୍ଥାତ୍ ଧନାଧିପତି କୁବେରଙ୍କୁ+
Dhanañjaya ଜି ଧାତୁ=ଜୟ କରିବା+କର୍ତ୍ତୃ. ଅ; ଅର୍ଜୁନ
(ଧନଂଜୟ—ଅନ୍ୟରୂପ) କୁବେରଙ୍କୁ ଜୟ କରି ନିଜ ମାତା କୁନ୍ତୀଙ୍କ ପାଇଁ କୁବେରଙ୍କ ଭଣ୍ଡାରରୁ ସହସ୍ର ସ୍ୱର୍ଣ୍ଣ ପଦ୍ମକ ଆହରଣ କରିଥିଲେ)—୧ । ଅର୍ଜୁନ—1. Arjuna.
୨ । (ଅଗ୍ନିକୁ ପୂଜା କଲେ ଧନପ୍ରାପ୍ତି ହୁଏ; ଦ୍ର. ଶବ୍ଦସାଗର) ଅଗ୍ନି—2. Fire.
୩ । ସର୍ପବିଶେଷ—3. Name of a mythological serpent.
[ ଦ୍ର—ଏ ଜଳାଶୟମାନଙ୍କର ଅଧିପତି ଥିବା ବିଷୟ ପୁରାଣରେ ଲିଖିତ; ଦ୍ର. ଶବ୍ଦସାଗର । ]
୪ । ଶରୀରସ୍ଥ ପ୍ରାଣବାୟୁ ମଧ୍ୟରୁ ଏକତମ (ଏହି ବାୟୁଦ୍ୱାରା ଶରୀର ପୁଷ୍ଟ ହୁଏ)—4 One of the essential winds in the human body (which is said to fatten the body).
୫ । ଧଳାଚିତା ଗଛ—5. The Leadwort plant.
୬ । କକୁଭ ବୃକ୍ଷ; ଅର୍ଜୁନ ଗଛ—
6. Terminalia Arjuna (tree).
[ଦ୍ର—ଏହା ଅସନ ଗଛ ପରି ଗଛ; କିନ୍ତୁ ଏଥିର ମଞ୍ଜି କାଠ ଖଇର ପରି ରଙ୍ଗ ନ ହୋଇ ଶ୍ୱେତବର୍ଣ୍ଣ । ]
ଦେ ବି. (ବ୍ୟଙ୍ଗ୍ୟ) ନିଷ୍ଠୁର ପ୍ରହାର; ପିଟିପାଟି; କ୍ଷାନ ଦାସ—
A sound thrashing or beating.
[ଦ୍ର—ଜଣେ ବ୍ରାହ୍ମଣ ତାହାର ଘରେ ବହୁକାଳ ଅଯାଚିତରୂପେ ରହିଥିବା ତିନି ଜାମାତାଙ୍କୁ ଘରୁ ତଡ଼ି ଦେବା ଉଦ୍ଦେଶ୍ୟରେ ସେମାନଙ୍କ ପ୍ରତି ପ୍ରଥମେ ଅପମାନସୂଚକ ବ୍ୟବହାର କଲା । ସେହି ବ୍ୟବହାରରେ ସେମାନଙ୍କ ମଧ୍ୟରୁ ଦୁଇ ଜଣ ଶ୍ୱଶୁର ଘରୁ ବାହାରି ଗଲେ, କିନ୍ତୁ ଧନଞ୍ଜୟ ନାମକ କନିଷ୍ଠ ଜାମାତା ନ ଯିବାରୁ ବ୍ରାହ୍ମଣ ତାକୁ ଶେଷରେ ଗୁଡ଼ିଏ ପ୍ରହାର ଦେଇ ଘରୁ ବିତାଡ଼ିତ କଲା । ଏହି ଗଳ୍ପରୁ "ପ୍ରହାରେଣ ଧନଞ୍ଜୟଃ" ପ୍ରବଚନ ଅଛି । ଏହି 'ପ୍ରବଚନରେ ଥିବା 'ଧନଞ୍ଜୟ' ଶବ୍ଦକୁ ଲକ୍ଷ୍ୟ କରି 'ଧନଞ୍ଜୟ'ର ଏହି ଅର୍ଥ ଚଳି ଆସିଅଛି ।]

**ଧନଞ୍ଜୟ ଭଞ୍ଜ**—ଦେ. ବି (ନାମ)—ଉପେନ୍ଦ୍ରଭଞ୍ଜଙ୍କ ପିତାମହ—
Dhanañjaya bhañja Name of the grandfather of the Oria classical poet Upendrabhañja.
[ଦ୍ର—ଏ ସପ୍ତଦଶ ଶତାବ୍ଦିର ମଧ୍ୟଭାଗରେ ଜୀବିତ ଥିଲେ । ଏ ରତ୍ନମଞ୍ଜରୀ କାବ୍ୟ ପ୍ରଣୟନ କରିଥିଲେ । ଏହାଙ୍କ ରଚିତ କାବ୍ୟମାନଙ୍କ ମଧ୍ୟରେ "ତ୍ରିପୁରସୁନ୍ଦରୀ" 'ମଦନମଞ୍ଜରୀ', 'ଅନଙ୍ଗରେଖା' ଓ 'ଇଚ୍ଛାବତୀ' ପ୍ରଧାନ । ତାରଣୀ—ଉତ୍କଳ ସାହିତ୍ୟ ଇତିହାସ ।]

**ଧନତୃଷା**—ସଂ. ବି. (୪ର୍ଥୀ ତତ୍; ଅମ୍ବା ମ. ପ. ଲୋ; ଧନ ପାଇଁ ବା ଧନ
Dhanatṛushā ଲାଭାର୍ଥ ତୃଷା)—ଧନ ପାଇବା ନିମନ୍ତେ ଲୋଭ—
(ଧନତୃଷ୍ଣା—ଅନ୍ୟରୂପ) Avarice, thirst for wealth.

**ଧନ ତୃଷ୍ଣ**—ସଂ. ବିଣ. ପୁଂ—(ବହୁବ୍ରୀହି; ଧନ+ତୃଷ୍ଣା)—ଧନଲୋଭୀ—
Dhana tṛushṇa Avaricious; hankering after riches.
(ଧନତୃଷ୍ଣା—ସ୍ତ୍ରୀ)

**ଧନଦ**—ସଂ. ବିଣ. ପୁଂ (ଧନ+ଦା ଧାତୁ=ଦାନ କରିବା+କର୍ତ୍ତୃ. ଅ)—
Dhanada ୧ । ଧନ ଦାନକାରୀ; ମୁକ୍ତହସ୍ତ; ଦାତା—
(ଧନଦା—ସ୍ତ୍ରୀ) 1. Bestowing wealth; munificent; liberal.

୨ । ଯଦ୍ଦ୍ୱାରା ଧନ ଲାଭ ହୁଏ—2. Wealth-giving.
ସଂ. ବି. (ଧନ+ଧୈ ଧାତୁ=ପାଳନ କରିବା+କର୍ତ୍ତୃ ଅ) —
୧ । କୁବେର—1. Kubera.
୨ । ହିଞ୍ଜଳ ବୃକ୍ଷ (ଦେଖ)—2. Hinjala tree (See)

**ଧନ ଦଉଲତ**— ଦେ. ବି. (ସଂ. ଧନ+ଆ. ଦୌଲତ୍; ସଦ୍ବନ୍ଦ)—
Dhana-daulata ଧନ ସମ୍ପତ୍ତି; ବିଭବ —
धनदौलत Riches; affluence
**धन दौलत** ଗୋକାଜ କୃପାରେ ଗୃହ, ଗୋକାଜ କଲ୍ୟାଣେ ବାସ,
ସବୁ ଧନ ଦଉଲତ ତାଙ୍କ ବୋଲିବେ । ଉତ୍କଳ. ଗୀତଲହରୀ ।

**ଧନ ଦଣ୍ଡ**— ସଂ. ବି. (୩ୟା ତତ୍, ଧନଦ୍ୱାରା ଦଣ୍ଡ)—ଅର୍ଥଦଣ୍ଡ;
Dhana danda ଜୋରିମାନା—Fine.

**ଧନ ଦାତା**—ସଂ. ବିଣ. ପୁଂ. (ଧନ+ଦାତୃ; ୧ମା. ୧ବ.)—ଧନଦ; ଯେ
Dhana dātā ଧନ ଦିଏ—Bestowing wealth.
(ଧନଦାତ୍ରୀ—ସ୍ତ୍ରୀ)
(ଧନଦାୟକ, ଧନଦାୟୀ—ଅନ୍ୟରୂପ) (ଧନଦାୟିକା, ଧନଦାୟିନୀ—ସ୍ତ୍ରୀ)

**ଧନଦାୟୀ**—ସଂ. ବି. (ଧନଦାୟିନ୍, ଧନ+ଦା ଧାତୁ=ଦାନ କରିବା+
Dhanadāyi କର୍ତ୍ତୃ. ଇନ୍, ୧ମା. ୧ବ.)—ଅଗ୍ନି—
The God of fire.
ସଂ. ବିଣ.—୨ । ଧନଦାତା (ଦେଖ)
Dhanadāta (See)

**ଧନ ଦାସ**—ସଂ. ବି. ପୁଂ. (୬ଷ୍ଠୀ ତତ୍; ଧନ+ଦାସ)—ଯେ ଧନ ପ୍ରାପ୍ତି
Dhana dāsa ନିମନ୍ତେ ଦାସତ୍ୱ ସ୍ୱୀକାର କରେ—One who
(ଧନଦାସୀ—ସ୍ତ୍ରୀ) accepts bondage or slavery for money.
ସଂ. ବିଣ—ଅତି ଲୋଭୀ—Very avaricious.

**ଧନ ଦେବ**—ସଂ. ବି. (୬ଷ୍ଠୀ ତତ୍; ଧନ+ଦେବ)—୧ । କୁବେର—
Dhana deba 1. Kubera.
ଧନଦେବତା } ଅନ୍ୟରୂପ ୨ । ଧନରୂପ ଉପାସ୍ୟ ଦେବତା—
ଧନନାଥ } 2. Mammon; riches (personified)

**ଧନ ଧାନ୍ୟ**—ସଂ. ବି. (ସମାନାର୍ଥବୋଧକ ସଦ୍ବନ୍ଦ; ଧନ+ଧାନ୍ୟ)—
Dhana dhānya ଧନ ଓ ଅନ୍ନ; ଧନସମ୍ପତ୍ତି—
Riches; money and paddy

**ଧନ ଧାମ**—ସଂ. ବି. (ଧନ+ଧାମନ୍; ସମାନାର୍ଥକ ସଦ୍ବନ୍ଦ)—ଧନ ଓ
Dhana dhāma ଗୃହ; ଧନ ସମ୍ପତ୍ତି—
Riches; money and house-property.

**ଧନ ନାଶ**—ସଂ. ବି. (୬ଷ୍ଠୀ ତତ୍, ଧନ+ନାଶ)—୧ । ଧନକ୍ଷୟ—
Dhana nāśa 1. Exhaustion of wealth.
୨ । ଅପବ୍ୟୟ—2. Waste of money.

**ଧନ ନିୟୋଗ**—ସଂ. ବି. (୬ଷ୍ଠୀ ତତ୍; ଧନ+ନିୟୋଗ)—୧ । ଲାଭ
Dhana niyoga ନିମନ୍ତେ ବ୍ୟବସାୟ; ଋଣ ଆଦିରେ ଟଙ୍କା
ଧନ ପ୍ରୟୋଗ } ଅନ୍ୟରୂପ ଲଗାଇବା—1. Investment of
ଧନ ବ୍ୟବହାର } money in business; money-lending etc.
୨ । ଋଣ ଦେବା—2 Advancing money on loan.

**ଧନନ୍ତରି**—ଗ୍ରା. ବି—ଧନୁତ୍ତରି (ଦେଖ)
Dhanantiri Dhanutiri (See)
(ଧନନ୍ତରୀ, ଧନନ୍ତ୍ରି—ଅନ୍ୟରୂପ)

**ଧନ ପତି**—ସଂ. ବି. (୬ଷ୍ଠୀ ତତ୍; ଧନ+ପତି)—୧ । କୁବେର—
Dhana pati 1. Kubera.
(ଧନପାଳ—ଅନ୍ୟରୂପ) ୨ । ବାୟୁ—2. Air.
ସଂ. ବିଣ—ଧନୀ—Rich (man).
ଦେ.ବି.ପୁଂ —ଲୋକଙ୍କ ନାମ—A name given to males.

**ଧନ ପତ୍ର**—ସଂ. ବି. (ମ. ପ. ଲୋ; ଧନ ସମ୍ବନ୍ଧୀୟ ପତ୍ର)—ଧନର ହିସାବ
Dhana patra ଲେଖାଥିବା ଖାତା—
Money-account book.

**ଧନ ପାତ୍ର**—ସଂ. ବି—ଧନୀ ବ୍ୟକ୍ତି (ହି. ଶବ୍ଦସାଗର)—
Dhana pātra A rich man.

**ଧନ ପିପାସା**—ସଂ. ବି. (୪ର୍ଥୀ ତତ୍; ଧନ ପାଇଁ ପିପାସା)—
Dhana pipāsā ଧନ ତୃଷା (ଦେଖ)—Dhana trushā (See)
(ଧନପିପାସୁ—ବିଣ)

**ଧନ ପିଶାଚ**—ସଂ. ବି. ପୁଂ. (ରୂପକ)—ଲୋଭ ବାସନା; ଧନରୂପ ରାକ୍ଷସ;
Dhana piśācha ଲୋଭ; ଧନତୃଷ୍ଣା—The demon of wealth;
(ଧନପିଶାଚୀ; ଧନପିଶାଚିକା—ସ୍ତ୍ରୀ) mammon.
ସଂ. ବିଣ—୧ । ଧନଲୋଭୀ—1. Avaricious.
୨ । କୃପଣ—2. Miserly.

**ଧନ ପ୍ରିୟ**—ସଂ. ବିଣ. ପୁଂ. (ବହୁବ୍ରୀହି; ଧନ ଅଟେ ପ୍ରିୟ ଯାହାର)—
Dhana priya ୧ । ଯେ ଧନକୁ ଅତି ପ୍ରିୟବସ୍ତୁ ବୋଲି ମନେ
କରେ—1. Loving wealth; very fond of wealth.
(ଧନପ୍ରିୟା—ସ୍ତ୍ରୀ) ୨ । ଲୋଭୀ—2. Avaricious.

**ଧନବତୀ**—ସଂ. ବି. ସ୍ତ୍ରୀ. (ଧନବତ୍+ସ୍ତ୍ରୀ. ଈ)—ଧନିଷ୍ଠା ନକ୍ଷତ୍ର—
Dhanabati The 23rd asterism.
(ଧନବାନ୍—ପୁଂ) ସଂ. ବିଣ. ସ୍ତ୍ରୀ—ସୌଭାଗ୍ୟଶାଳିନୀ; ଧନଶାଳିନୀ—
Rich (woman).

**ଧନବତ୍ତା**—ସଂ. ବି. (ଧନବତ୍+ଭାବେ. ତା)—ବିଭବଶାଳିତା—
Dhanabattā Affluence.

**ଧନବନ୍ତ**—ଦେ ବିଣ. ପୁଂ. ଓ ସ୍ତ୍ରୀ. (ସଂ ଧନବତ୍)—ବିଭବଶାଳୀ,
Dhanabanta ଧନୀ—Rich.
धनवन्त ଧନବନ୍ତ ଜନେ ଅଙ୍ଗରେ ଖାଦିବସ୍ତ୍ର ବହିଲେ ।
**धनवंत** ମଧୁସୂଦନ. ଛନ୍ଦମାଳା ।

**ଧନବାନ୍**—ସଂ. ବିଣ. ପୁଂ. (ଧନ+ବତ୍=ଧନବତ୍ ଶବ୍ଦ; ୧ମା. ୧ବ.)—
Dhanabān ୧ । ଐଶ୍ୱର୍ଯ୍ୟଶାଳୀ, ଧନୀ—1. Rich; affluent.
(ଧନବତୀ—ସ୍ତ୍ରୀ) ୨ । ମହାଜନ; କୃଷି ଓ ବାଣିଜ୍ୟାଦିରେ ଯେ ଧନ
ପ୍ରୟୋଗ କରେ—1. Investing money in busines, agriculture etc.

**ଧନ ବିଜ୍ଞାନ**—ଦେ. ବି. (ଆଧୁନିକ ପାରିଭାଷିକ ଶବ୍ଦ)—ଅର୍ଥବିଜ୍ଞାନ;
Dhana bijñāna ଅର୍ଥଶାସ୍ତ୍ର; ରାଜ୍ୟରେ ସମାଜରେ କି କି ଉପାୟଦ୍ୱାରା
ଧନବୃଦ୍ଧି ହୁଏ ଏ ବିଷୟ ଯେଉଁ ଶାସ୍ତ୍ରରେ ଆଲୋଚିତ
ହୋଇଥାଏ—Political economy; economics.

ଧନ ବିଦ୍ୟୁତ୍—ଦେ. ବି ( ଆଧୁନିକ ପାରିଭାଷିକ ଶବ୍ଦ)—ଯୁକ୍ତ ତଡ଼ିତ୍—
Dhana bidyut Positive electricity.
( ଋଣବିଦ୍ୟୁତ୍—ବିପରୀତ )

ଧନ ବିଭାଗ—ସଂ. ବି. ( ୬ଷ୍ଠୀ ତତ୍, ଧନ+ବିଭାଗ )—
Dhana bibhāga ୧ । ଅଂଶୀଦାରମାନଙ୍କ ମଧ୍ୟରେ ସମ୍ପତ୍ତିର ବଣ୍ଟନ; ବଣ୍ଟାବଣ୍ଟି—1. Partition of property amongst the cosharers
୨ । ଉତ୍ତରାଧିକାରୀମାନଙ୍କ ମଧ୍ୟରେ ମୃତ ବ୍ୟକ୍ତିର ତ୍ୟକ୍ତ ସମ୍ପତ୍ତିର ବଣ୍ଟନ—
2. Partition of heritage amongst the heirs.

ଧନ ବୃଦ୍ଧି—ସଂ. ବି. (୬ଷ୍ଠୀ ତତ୍, ଧନ+ବୃଦ୍ଧି )—ସମ୍ପତ୍ତି ବଢ଼ିବା;
Dhana bruddhi ଧନୋନ୍ନତି— Increase of wealth.

ଧନ ଭଣ୍ଡାର—ଦେ. ବି. ( ସଂ.ଧନ+ଭାଣ୍ଡାଗାର )—ଧନାଗାର ( ଦେଖ )
Dhana bhandāra :Dhanāgāra ( See )
ଧନଭାଣ୍ଡାର ଧନभण्डार
( ଧନଶାଳା—ଅନ୍ୟରୂପ )

ଧନର୍ଜଇ—ଗ୍ରା. ( ପ୍ରାଚୀନ ପ୍ରୟୋଗ ) ବି. ( ସଂ. ଧନଞ୍ଜୟ )—ଧନଞ୍ଜୟ;
Dhanarjai ଅର୍ଜୁନ — Arjuna.
ସେ ଅର୍ଥ ଧର ଯୋଗେ ସିଦ୍ଧ ହୋଇ . . .
ଅହାର ଭୁଞ୍ଜ କଲେ ଧନର୍ଜଇ—ସାରୀ ପରିଚେଗୀତା ।

ଧନ ଲାଭ—ସଂ. ବି. ( ୬ଷ୍ଠୀ ତତ୍; ଧନ+ଲାଭ )—
Dhana lābha ୧ । ସମ୍ପତ୍ତି ପ୍ରାପ୍ତି; ଅର୍ଥଲାଭ—
1. Acquisition of wealth.
୨ । ଆୟ—2. Income.

ଧନ ଲୋଭ—ସଂ. ବି ( ୭ମୀ ତତ୍ କିମ୍ବା ୪ର୍ଥୀ ତତ୍ )—ଧନତୃଷ୍ଣା—
Dhana lobha Avarice; hankering after riches.
( ଧନଲୁବ୍ଧ; ଧନଲୋଭୀ—ବିଣ. ପୁଂ )
( ଧନଲୁବ୍ଧା; ଧନଲୋଭିନୀ—ବିଣ. ସ୍ତ୍ରୀ )

ଧନଶାଳୀ—ସଂ. ବିଣ. ପୁଂ. ( ସଂ. ଧନଶାଳିନ୍; ୧ମା. ୧ବ. )—ଧନୀ—
Dhanasāli Rich.
( ଧନଶାଳିନୀ—ସ୍ତ୍ରୀ )

ଧନ ସମ୍ପଦ—ସଂ. ବି. (ଦ୍ୱନ୍ଦ୍ୱ; ଧନ+ସମ୍ପଦ)—ଅତୁଳ ଐଶ୍ୱର୍ଯ୍ୟ; ବିଭବ—
Dhana sampada Affluence; accumulation of wealth.
(ଧନ ସମ୍ପତ୍ତି—ଅନ୍ୟରୂପ)

ଧନସୂ—ସଂ. ବି.—କୋଚିଲାଖାଇ ପକ୍ଷୀ (ହି. ଧନେସ) (ହି. ଶ.)—
Dhanasū Hornbill (bird).

ଧନ ସ୍ଥାନ—ସଂ. ବି. (ଧନ+ସ୍ଥାନ; ୬ଷ୍ଠୀ ତତ୍)—(ଜ୍ୟୋତିଷ)
Dhana sthāna ଜାତକରେ ଲଗ୍ନର ୨ୟ ସ୍ଥାନ—
(astrology) The 2nd place from one's natal sign in the horoscope.
[illegible]

ଧନ ସ୍ୱାମୀ—ସଂ. ବିଣ. (ସଂ. ଧନ+ସ୍ୱାମିନ୍; ୧ମା. ୧ବ.)—
Dhana swāmi ୧ । ଧନପତି; ଧନର ମାଲିକ—
(ଧନସ୍ୱାମିନୀ—ସ୍ତ୍ରୀ) 1. Owner of riches

୨ । କୁବେର—2. The Hindu God of riches
୩ । ଯେଉଁ ବ୍ୟକ୍ତିଙ୍କ ମୂଳଧନରେ କୌଣସି ବ୍ୟବସାୟ ଆଦି ଚଳେ—3. A capitalist.

ଧନସ୍ୟକ—ସଂ. ବିଣ—ଧନ ପ୍ରାପ୍ତି ପାଇଁ ଲାଳାୟିତ; ଲୋଭୀ (ହି. ଶ)—
Dhanasyaka Avaricious; hankering after riches.
ସଂ. ବି.—ଗୋଖର (ଦେଖ) (ହି. ଶ)—Gokhara (See)

ଧନହର—ସଂ. ବିଣ. ପୁଂ.—(ଧନ+ହୃ ଧାତୁ=ହରଣ କରିବା+କର୍ତ୍ତୃ.
Dhanahara ଅ)— ଯେ ପରର ଧନ ହରଣ କରେ—
ଧନହାରକ } ଅନ୍ୟରୂପ
ଧନହାରୀ }
Stealing the wealth of another.
ଧନହରୀ; ଧନହାରିକା } ସ୍ତ୍ରୀ
ଧନହାରିଣୀ }
ସଂ. ବି.—୧ । ଡକାଇତ, ଲୁଟିଆରୀ—
1. Robber; dacoit
୨ । ଚୋର ନାମକ ଗନ୍ଧ ଦ୍ରବ୍ୟ—
3. A kind of medicinal scent.

ଧନହରୀ—ସଂ. ବି. ସ୍ତ୍ରୀ—(ଧନହର+ସ୍ତ୍ରୀ. ଈ)—ଚୋରନାମକ ଗନ୍ଧଦ୍ରବ୍ୟ
Dhanahari Name of a sweet-scented herb.

ଧନହୀନ—ସଂ. ବିଣ. ପୁଂ (୩ୟା ତତ୍; ଧନ+ହୀନ)—ଦରିଦ୍ର, ଦରିଦ୍ର;
Dhanahina ଗରିବ—Poor; indigent.
(ଧନହୀନା—ସ୍ତ୍ରୀ) (ଧନହୀନତା—ବି)

ଧନା—ଦେ. ବିଣ (ସଂ. ଧନାଢ୍ୟ) ମହାଧନୀ—
Dhanā ଧନୀ धना Very rich
( ଯଥା—ଧନା ଶେଠ । )
ଗ୍ରା. ବି—୧ । ( ବ୍ୟଙ୍ଗ୍ୟ ) ଶିଶ୍ନ—
1 Penis; male organ.
୨ । ଧନେଶ୍ୱରର ଡାକ ନାମ—
2 Name for calling Dhaneswara.

ଧନାକାଂକ୍ଷା—ସଂ. ବି ( ଧନ+ଆକାଂକ୍ଷା; ୪ର୍ଥୀ ବା ୬ଷ୍ଠୀ ତତ୍ )—
Dhanākānkshā ଧନ ପାଇବାର ଇଚ୍ଛା; ଧନ କାମନା—
(ଧନାକାଂକ୍ଷୀ—ବିଣ) Wish to get wealth or riches
(ଧନାକାଂକ୍ଷିଣୀ—ସ୍ତ୍ରୀ)

ଧନାଗମ—ସଂ. ବି (୬ଷ୍ଠୀ ତତ୍; ଧନ+ଆଗମ—୧ । ଧନ ଉପାର୍ଜ୍ଜନ;
Dhanāgama ଧନାର୍ଜ୍ଜନ—1 Acquisition of wealth.
୨ । ଆୟ—2. Income

ଧନାଗମ ତୃଷା—ସଂ. ବି ( ୬ଷ୍ଠୀ ତତ୍; ଧନ+ଆଗମ+ତୃଷା )—
Dhanāgama trushā ଉପାର୍ଜ୍ଜନ କରିବାର ବଳବତୀ ଇଚ୍ଛା—
( ଧନାଗମ ତୃଷ୍ଣା—ଅନ୍ୟରୂପ ) Thirst for acquisition of wealth.

ଧନାଗାର—ସଂ. ବି ( ୬ଷ୍ଠୀ ତତ୍; ଧନ+ଆଗାର )—
Dhanāgāra ଖଜଣାଖାନା; ଭଣ୍ଡାର; ମାଲଖାନା—
Treasury; treasure-house

ଧନାଢ୍ୟ—ସଂ. ବିଣ. ପୁଂ ( ୩ୟା ତତ୍; ଧନ+ଆଢ୍ୟ )—
Dhanādhya ମହାଧନୀ; ବିଭବଶାଳୀ; ବଡ଼ଲୋକ—
(ଧନାଢ୍ୟା—ସ୍ତ୍ରୀ) Affluent; wealthy; opulent.
(ଧନାଢ୍ୟତା ବି) ଧନାଢ୍ୟ ବୋଲି ଏ ଭୁବନେ ;
ଯେ ନାଢ୍ୟ ଇଷ୍ଟଧର୍ମ ପାଳେ—ଜଗନ୍ନାଥ, ଭାଗବତ ।

ଧନାତ୍ମକ—ଦେ ବିଣ ( ଗଣିତ ଓ ବିଜ୍ଞାନପରିଭାଷା )—
Dhanātmaka ୧ । ( ଗଣିତ ) ଯୋଗଚିହ୍ନସୂଚକ —
1. (mathematics) Indicating a positive number.
(ଋଣାତ୍ମକ —ବିପରୀତ)
[ ଦ୍ର—ଧନାତ୍ମକ ଚିହ୍ନ + ; ଋଣାତ୍ମକଚିହ୍ନ — ]
୨ । ( ବିଜ୍ଞାନ ) ସତ୍ତ୍ୱାତ୍ମକ ( ବିଦ୍ୟୁତ୍ )—
2. ( physics ) Positive (electricity).

ଧନାଧାର—ସଂ. ବି ( ୬ଷ୍ଠୀ ତତ୍; ଧନ + ଆଧାର )—ଧନ ରଖିବାର
Dhanādhāra ସିନ୍ଦୁକ ବା ବାକସ—Coffers; chest; cash-box.

ଧନାଧିକାର—ସଂ. ବି ( ୭ମୀ ତତ୍; ଧନ + ଅଧିକାର )—
Dhanādhikāra ୧ । ଧନରେ ସ୍ୱତ୍ୱ ବା କ୍ଷମତା—
1. Right and title to riches or wealth.
୨ । ଉତ୍ତରାଧିକାରୀ ରୂପେ ଧନପ୍ରାପ୍ତି—
2 Devolution of property by inheritance.
୩ । ଧନପ୍ରାପ୍ତି —3. Acquisition of wealth.
( ଧନାଧିକାରୀ— ବିଣ ) ୪ । ଧନଭୋଗ—4. Enjoyment
( ଧନାଧିକାରିଣୀ—ବିଣ. ସ୍ତ୍ରୀ ) of property, possession of wealth.

ଧନାଧିକୃତ—ସଂ. ବିଣ ( ଧନ + ଅଧିକୃତ )—ଧନରକ୍ଷାର ଭାରପ୍ରାପ୍ତ—
Dhanādhikṛuta (କ୍ୱଚିତ୍)—Charged with the custody of wealth
ସଂ. ବି.—ଧନାଧ୍ୟକ୍ଷ, ଖଜାଞ୍ଚି—( କ୍ୱଚିତ୍ )—
Treasurer.

ଧନାଧିପ—ସଂ. ବିଣ ପୁଂ (୬ଷ୍ଠୀ ତତ୍; ଧନ + ଅଧିପ)—ମହାଧନୀ—
Dhanādhipa Opulent; very rich.
(ଧନାଧିପତି, ଧନାଧୀଶ—ଅନ୍ୟରୂପ) ସଂ. ବି—୧ । କୁବେର—
(ଧନାଧିପା – ସ୍ତ୍ରୀ) 1. Kubera.
୨ । ( ଜ୍ୟୋତିଷ ) ଲଗ୍ନର ୨ୟ ସ୍ଥାନରେ ଥିବା ଗ୍ରହ—
2. (astrology) The planet presiding over the second mansion (counted from the Lagna) in a person's horoscope.

ଧନାଧ୍ୟକ୍ଷ—ସଂ. ବି (୬ଷ୍ଠୀ ତତ୍, ଧନ + ଅଧ୍ୟକ୍ଷ)—୧ । କୁବେର—
Dhanādhyaksha 1 Kubera; the Hindu God of riches
୨ । ଖଜାଞ୍ଚି; କୋଷାଧ୍ୟକ୍ଷ; ଧନାଗାରର ଭାରପ୍ରାପ୍ତ ବ୍ୟକ୍ତି—
2. Treasurer; cashier.

ଧନାପହରଣ— ସଂ. ବି (୬ଷ୍ଠୀ ତତ୍, ଧନ + ଅପହରଣ)—ଚୋରି—
Dhanāpaharaṇa Stealing.

ଧନାପହାରକ —ସଂ. ବିଣ ଓ ବି. ପୁଂ ( ଧନ + ଅପହାରକ )—
Dhanāpahāraka ଧନହର ( ଦେଖ )
Dhanahara ( See )
(ଧନାପହାରୀ—ଅନ୍ୟରୂପ)
(ଧନାପହାରିକା, ଧନାପହାରିଣୀ—ସ୍ତ୍ରୀ.)

ଧନାଭିଳାଷ—ସଂ. ବି (ଧନ + ଅଭିଳାଷ)—ଧନାକାଂକ୍ଷା (ଦେଖ)
Dhanābhilāsha Dhanākāṅkshā (See)
(ଧନାଭିଳାଷୀ—ପୁଂ. ବିଣ) (ଧନାଭିଳାଷିଣୀ—ସ୍ତ୍ରୀ)

ଧନାର୍ଜକ - ସଂ. ବିଣ. ପୁଂ (ଧନ + ଅର୍ଜକ, ୬ଷ୍ଠୀ ତତ୍)—ଯେ ଧନ ଅର୍ଜନ
Dhanārjaka କରେ – Earning or acquiring
(ଧନାର୍ଜିକା—ସ୍ତ୍ରୀ) wealth; acquirer of wealth.

ଧନାର୍ଜନ—ସଂ. ବି ( ୬ଷ୍ଠୀ ତତ୍; ଧନ + ଅର୍ଜନ)—ଧନଲାଭ କରିବା—
Dhanārjana Earning or acquiring wealth; acquisition of wealth.

ଧନାର୍ଥୀ—ସଂ. ବିଣ. ପୁଂ ( ଧନ+ଅର୍ଥିନ୍, ୧ମା. ୧ବ )—
Dhanārthī ୧ । ଯେ ଧନପ୍ରାର୍ଥନା କରେ—
(ଧନାର୍ଥିନୀ—ସ୍ତ୍ରୀ) Praying for getting wealth.
୨ । ଧନାଭିଳାଷୀ—2 Desirous of getting riches

ଧନାଶା—ସଂ. ବି. (୬ଷ୍ଠୀ ତତ୍; ଧନ + ଆଶା)—
Dhanāśā ୧ । ଧନଲୋଭ—1. Avarice.
୨ । ଧନତୃଷ୍ଣା—2. Thirst for wealth
୩ । ଧନ ମିଳିବାର ଆଶା—
3 Prospect of acquisition of wealth.

ଧନାଶେଠ—ଦେ. ବି.—( ସଂ. ଧନାଢ୍ୟ + ଶ୍ରେଷ୍ଠୀ)—୧ । ବହୁଧନୀ
Dhanāsetha ବଣିକ୍—1. A very rich merchant.
**ଧନ୍ନାସେଠ** ୨ । ବ୍ୟଙ୍ଗ୍ୟ) ଅସରିବରୂପେ ଧନୀ ବ୍ୟକ୍ତି—
ଧନୀସେଠ 2 (ironical) Fabulously rich person.

ଧନାଶେଠଙ୍କ ନାତି—ଦେ.ବି —(ବ୍ୟଙ୍ଗ୍ୟ) ବହୁତ ଧନାଢ୍ୟ ଓ କ୍ଷମତା—
Dhanāsethaṅka nāti ଶାଳୀ ବ୍ୟକ୍ତିର ବଂଶଧର—
( ironical ) The descendant of a very rich man.

ଧନାଶ୍ରୀ—ସଂ. ବି. ସ୍ତ୍ରୀ—ସଙ୍ଗୀତର ରାଗିଣୀବିଶେଷ—
Dhanāsrī Name of a Sanskrit musical air.
[ଦ୍ର—ଏହି ରାଗିଣୀ ଷାଡ଼ ରସରେ ପ୍ରଯୁଜ୍ୟ । ହନୁମାନଙ୍କ ମତରେ ଏହା ଶ୍ରୀରାଗର ଭାର୍ଯ୍ୟା; ଦିବସର ଦ୍ୱିତୀୟ ( ବା ମତାନ୍ତରରେ ତୃତୀୟ) ପ୍ରହରରେ ଏହା ବୋଲାଯିବା ଉଚିତ । ଭରତଙ୍କ ମତରେ ଏହା ମାଳବ ରାଗର ଓ ମଲ୍ଲିନାଥଙ୍କ ମତରେ ମେଘ ରାଗର ଭାର୍ଯ୍ୟା—ହି. ଶବ୍ଦସାଗର ।]

ଧନି—ଗ୍ରା. ବିଣ. (ସଂ. ଧନ୍ୟ)—ଧନ୍ୟ—
Dhani Praiseworthy.
(ଧନିଆ; ଧନିଆଁ—ଅନ୍ୟରୂପ) ଦେ ବି.—(ସଂ. ଧନୀ)—
ଧନୀ ୧ । (ପୁଂ.) ରସିକ ପୁରୁଷ—1. A gallant; a beau.
**ଧନି** ୨ । (ସଂ. ଧନିକା—ଯୁବତୀ)—ନାଗରୀ, ରସିକା ସ୍ତ୍ରୀ—
2. A jilt; a flirt.
୩ । ଚତୁରା ସ୍ତ୍ରୀ—3. A clever woman.
୪ । ଯୁବତୀ—4. A young woman.
୫ । ସୁନ୍ଦରୀ—5. A graceful lady.

୬ । (ପୁଂ. ଓ ସ୍ତ୍ରୀ) ଧନେଶ୍ୱର ଓ ଧନେଶ୍ୱରୀର ଡାକନାମ—
6. A name by which persons named Dhaneśwara and Dhaneśwari are called.

ଦେ. ଅ. ପୁଂ ଓ ସ୍ତ୍ରୀ—[ସ୍ନେହ ପାତ୍ର ( ପୁରୁଷ ଓ ସ୍ତ୍ରୀ ) ପ୍ରତି ସମ୍ବୋଧନ]—ହେ ଧନ ! ହେ ପ୍ରିୟତମ !—Oh Dear !

**ଧନିଅ(ଅଁ)**—ଟୀ ବିଣ ଓ ଅବ୍ୟୟ (ସଂ. ଧନ୍ୟର ଅଶୁଦ୍ଧ ଉଚ୍ଚାରଣ)—
Dhania (añ) ଧନ୍ୟ (ଦେଖ)—Dhanya (See).

**ଧନିଆ(ଆଁ)**—ଦେ. ବି—୧ । (ସଂ. ଧନିକା) ଧଣିଆ (ଦେଖ)
Dhaniā(āñ) 1. Dhaṇiā (See)
(ଧନିୟାଁ—ଅନ୍ୟରୂପ) ୨ । (ସଂ. ଧନିକା=ଯୁବତୀ) ଧନି (ଦେଖ)
2. Dhani (See)

ଧନିଆ ଧମକଧମେଇଲା,
ସାଇଁଲି ନାକରେ କାଇଁକି ଗଣା, ମାରୁ ନ ପରେଇଲା । ଗୀତ ।

**ଧନିଆଁ ଚାଉଳ**—ଦେ. ବି—ଧଣିଆ ଚାଉଳ (ଦେଖ)
Dhaniāñ chāula Dhaṇiā chāuḷa (See)

**ଧନିଆଁ ଫାଙ୍କ**—ଦେ. ବି. (ମୁସଲମାନୀ ଭାଷା)—ଧନିଆଁ ଫାଳ (ଦେଖ)
Dhaniāñ phāṅka Dhaniā phāḷa (See)

**ଧନିଆଁ ଫାଳ**—ଦେ. ବି. (ବର୍ଣ୍ଣନାଶବ୍ଦ)—ଫାଳେ ଧନିଆଁରୁ ଗୋଟିଏ
Dhaniāñ phāḷa ବାହାର କରି ନେଲେ ଯେଉଁ ଫମ୍ପା ଖୋପା-
(ଧନିଆମାଳ—ଅନ୍ୟରୂପ) ରହେ, ସେହି ଆକାରରେ ସୁନାପତ୍ରରେ
ଧନେହାବ ତିଆରି ହୋଇଥିବା ବେକର ଅଳଙ୍କାରବିଶେଷ—
**धनियामाल** A kind of necklace of which the beads are like split coriander seeds.

[ଦ୍ର—ଫାଳ ଧନିଆର ଖୋପା ଆକୃତିର ଅନେକଗୁଡ଼ିଏ ସୁନାର ଦାନାରେ ଛିଦ୍ରଯୁକ୍ତ ଭୂଣ୍ଡି ଲଗାଇ ଅନେକଗୁଡ଼ିଏ ଦାନା ଗୁନ୍ଥି ଗୋଟିଏ ହାର କରାଯାଏ; ଧନିଆଫାଳ ଅପେକ୍ଷା ବଡ଼ ଦାନାର ମାଳକୁ ହରଡ଼ଫାଳିଆ ମାଳ କହନ୍ତି । ]

**ଧନିକ**—ସଂ. ବି. ପୁଂ. (ଧନିନ୍+କୈ ଧାତୁ=ବିସ୍ତାର କରିବା+କର୍ତ୍ତୃ.
Dhanika ଅ)—୧ । ଧନୀ ବ୍ୟକ୍ତି—1. A rich man.
(ଧନିକା—ସ୍ତ୍ରୀ) ୨ । ଧନିଆ ଶସ୍ୟ—2. Coriander.
୩ । ସ୍ୱାମୀ—3. Lord; husband.
୪ । ସାଧୁ; ବଣିକ; ମହାଜନ; ଶେଠ—4. Merchant.
୫ । ମହାଜନ; ଋଣଦାତା—5. Creditor.
ସଂ. ବିଣ. ପୁଂ. (ଧନ+ଇକ)—୧ । ଧନୀ—
1. Rich; wealthy.
୨ । ସାଧୁ; ଧାର୍ମିକ—2. Virtuous; religious.

**ଧନିକା**—ସଂ. ବି. ସ୍ତ୍ରୀ (ଧନିକ+ସ୍ତ୍ରୀ. ଆ)—
Dhanikā ୧ । ଧନିକ ବଧୂ; ବଣିକର ସ୍ତ୍ରୀ—
1. A merchant's wife.
୩ । ସାଧ୍ୱୀ ସ୍ତ୍ରୀ—3. A chaste woman.
୨ । ମାନନୀୟା ସ୍ତ୍ରୀ—
2. A respectable lady.
୪ । ସୁନ୍ଦରୀ ସ୍ତ୍ରୀ—4. A beautiful woman; a graceful woman.
୫ । ରସିକା ସ୍ତ୍ରୀ—5 A flirt; a gay lady.
୬ । (ଯୌବନରେ ଧନୀ) ଯୁବତୀ—
6. A young woman.
୭ । ବଧୂ; ଭାର୍ଯ୍ୟା—7. Wife.
୮ । ଧନବତୀ ସ୍ତ୍ରୀ—8. A rich woman.
୯ । ପ୍ରିୟଙ୍ଗୁ (ବୃ. ଶ)—9. Priyaṅgu ( See )
ସଂ. ବିଣ—୧ । ଧାର୍ମିକା—1. Virtuous.
୨ । ସାଧ୍ୱୀ—2. Chaste.
୩ । ଧନବତୀ (ସ୍ତ୍ରୀ)—3. Rich (woman).

**ଧନିଚ୍ଛ**—ଦେ. ବି—ଧଣିଚ୍ଛ ( ଦେଖ )
Dhanichā Dhaṇichā ( See )

**ଧନିତା**—ସଂ. ବି. ( ଧନିନ୍+ଭାବାର୍ଥେ. ତା )—ଧନୀପଣ
Dhanitā The state of having wealth; affluence.
(ଧନିତ୍ୱ—ଅନ୍ୟରୂପ)

**ଧନିତିରି**—ଗ୍ରା. ବି—କତ୍ତୃଣ ( ଦେଖ )
Dhanitiri Kattṛuṇa ( See )
(ଧନିତ୍ରି—ଅନ୍ୟରୂପ)

**ଧନିଷ୍ଠ**—ସଂ. ବିଣ. ପୁଂ (ଧନିନ୍+ଅତିଶୟ ଅଛି ଯାହାର, ଅର୍ଥରେ ଇଷ୍ଠ)—
Dhanistha ଖୁବ୍ ଧନୀ; ଧନାଢ୍ୟ—Very rich.
(ଧନିଷ୍ଠା—ସ୍ତ୍ରୀ)

**ଧନିଷ୍ଠା**—ସଂ. ବି. ସ୍ତ୍ରୀ—ତ୍ରୟୋବିଂଶ ନକ୍ଷତ୍ର—
Dhanishṭhā The twenty third asterism.
(ଅନ୍ୟ ସଂ. ନାମ—ଶ୍ରବିଷ୍ଠା, ବସୁଦେବତା, ଭୂତି, କଧାନ, ଧନବତୀ)
[ ଦ୍ର—ଏ ନକ୍ଷତ୍ରରେ ଜନ୍ମିବା ଲୋକ ସଦାଗ୍ରହ ଓ ଭାଗ୍ୟବାନ୍, ଦୀର୍ଘ-କାୟ, କାମାତୁର, କଫଯୁକ୍ତ, ଶାସ୍ତ୍ରବେତ୍ତା ଓ କାନ୍ତିମାନ୍ ହୁଏ । ]
ନକ୍ଷତ୍ର ତଳେ ନୋଟ୍ ( ଦେଖ )—
(See notes under Nakshatra)
ଦେ. ବିଣ—ଭାଗ୍ୟବନ୍ତ—Fortunate; lucky.

ବଯୋଗିଲେ ତନ୍ତ୍ର ଗାପ୍ୟମାନ କ୍ଷମୁଷଗି
ତନ୍ତ୍ରଭାବରେ ଧନିଷ୍ଠା ହୋଇ ପରଶଂସୀ । ଉକ୍ତ. ବୈଦେହୀଶବିଳାସ ।

**ଧନୀ**—ସଂ. ବିଣ. ପୁଂ (ଧନ+ଅଛି ଅର୍ଥରେ ଇନ୍; ୧ମା. ୧ବ)—
Dhani ୧ । ଧନାଢ୍ୟ; ଧନବାନ୍; ଧନବନ୍ତ—
(ଧନିନୀ—ସ୍ତ୍ରୀ) 1. Rich; opulent; wealthy.
ସଂ. ବିଣ. ସ୍ତ୍ରୀ (ସଂ. ଧନ+ଈ)—୧ । ଧନବତୀ (ସ୍ତ୍ରୀ)—
1. Wealthy (lady).
୨ । (ଯୌବନ ଧନରେ ଧନୀ) ଯୁବତୀ—
2. Young (girl); youthful.

ମୋ ଧନୀ ନ ଜାଇବ ମୋ ବନାଶରେ—ଭକ୍ତ. ପ୍ରେମ ସୁଧାନିଧି ।

୩ । (ସୌନ୍ଦର୍ଯ୍ୟ ଧନରେ ଧନୀ) ସୁନ୍ଦରୀ—
3. Graceful (girl).

ହସେ ପ୍ରାଚୀ ଶିରେ ଧନୀ ଉଷାକୁ ଅନାଇ—ରାଧାନାଥ. ବେଣୀସଂହାର ।

ଦେ. ବି. ପୁଂ—୧ । ଶେଠ; ସାଧୁତ—1. Merchant.
୨ । କୌଣସି ବ୍ୟବସାୟ ବା ବେପାରର ମୂଳ ଧନାଧ୍ୟକ୍ଷ—
2. A capitalist of any business.

ଦେ. ବି. ସ୍ତ୍ରୀ—୧ । ପ୍ରିୟତମା ସ୍ତ୍ରୀ, ପ୍ରଣୟିନୀ—
1. One's beloved lady

୨ । ସ୍ତ୍ରୀଲୋକଙ୍କୁ ଡାକିବା ନାମ—
2. A name given to females.

**ଧଣୀକା**– ସଂ. ବି. ସ୍ତ୍ରୀ (ଧନ+ଇକ; ଇ ସ୍ଥାନରେ ଈ)—ଯୁବତୀ—
Dhanikā A young or youthful woman.

**ଧଣୀୟକ**— ସଂ. ବି ( ଧନ୍ ଧାତୁ=ଶସ୍ୟ ଉତ୍ପନ୍ନ ହେବା+ଈୟ+କ )—
Dhanīyaka ଧଣିଆ ( ଦେଖ )
Dhaniā ( See )

**ଧନୁ(ନୁଃ)**— ସଂ ବି (ଧନ୍ ଧାତୁ=ନିକ୍ଷେପ କରିବା+କର୍ତ୍ତୃ. ଉ, ଉସ୍)—
Dhanu(nuḥ) ୧ । କୋଦଣ୍ଡ; କାର୍ମୁକ; ଶରାସନ—1. A bow.
(ଧନୁସ୍, ଧନୁଃ—ଅନ୍ୟରୂପ) ୨ । ବାଟୁଳିଗଡ଼ା—2. A bow used for throwing small balls of earth to a distance

୩ । (ଜ୍ୟୋତିଷ) ନବମ ରାଶି—
3. The 9th sign of the zodiac; Sagittarius

୪ । ଚାରିହସ୍ତ ପରିମାଣ, ଦୁଇ ଗଜ—
4. A lineal measure of 4 cubits or 2 yards.

୫ । ତୁଳା ଧୁଣିବାର କୋଦଣ୍ଡାକାର ଯନ୍ତ୍ର ବା ନାଠୀ—
5. A cotton-carding bow.

୬ । ସୌରମାନ ପୌଷ ମାସ—
6 The solar month of Pausha.

[ଦ୍ର—ପୌଷମାସରେ ସୂର୍ଯ୍ୟୋଦୟ ଧନୁଲଗ୍ନରେ ହୁଏ ।]

୭ । ପିଆଳ ଗଛ—7. Buchanonia Latifolia (tree).

୮ । ଗୋଲ କ୍ଷେତ୍ରର ଅର୍ଦ୍ଧେ ଅପେକ୍ଷା କମ କ୍ଷେତ୍ର (ଜ୍ୟା. ଶ)—
8. A plot of land which is smaller than a semicircle.

୯ । (ଜ୍ୟାମିତି) ବୃତ୍ତାର୍ଦ୍ଧ ଅପେକ୍ଷା କମ ବିସ୍ତାରର ପରିଧି—
9. Arc of a circle.

୧୦ । ହଠଯୋଗର ଆସନବିଶେଷ (ହ୍ଠ. ଶ)—
10. A kind of posture in Joga-exercise.

[ ଦ୍ର—ଧନୁର ଭିନ୍ନ ଭିନ୍ନ ଅଂଶ—ଦଣ୍ଡ, କାଣ୍ଡ=Bow; ଗୁଣ, ଛିଲା=Bow string; ଧନୁର ଅଗ୍ରଭାଗ, କୋଟୀ= the horns of a bow.

ଧନୁ ମାରିବାର ଶବ୍ଦ ବା ଟଙ୍କାର—Twang of a bow]

ଦେ. ବି—ଚାରିକୋଶ ଦୂରତ୍ୱ—A distance of 8 miles.

ଅଦ୍ୟାପି ହୋଇଣ ଅଛି; ବାହୁଡ଼ିଗଲା ଧନୁ ସାତ ।
ଜଗନ୍ନାଥ. ଭାଗବତ ।

**ଧନୁଆ(ଆଁ)**—ଦେ. ବିଣ (ସଂ. ଧନୁ)—ଧନୁକାକାର—
Dhanuā(ān) Bow-shaped.
ଧନୁଖରା; ধুনকী; ধনুআ

ଦେ. ବି.—ତୁଳା ଧୁଣିବାର ଧନୁ—Cotton-carding bow.

**ଧନୁଃପଟ**— ସ. ବି—ପିଆଳ ବୃକ୍ଷ—Buchanonia Latifolia (tree).
Dhanuḥpaṭa
(ଧନୁଃ ପାଟା—ଅନ୍ୟରୂପ)

**ଧନୁଃଶ୍ରେଣୀ**—ସ. ବି—୧ । (ଏହାର ପତ୍ରର ଅଗ୍ରରୁ ଧନୁର ଗୁଣ ପାଇଁ
Dhanuḥśreṇī ଦଉଡ଼ି ବଳାଯାଏ )—ମୂର୍ଵା—
1. Tanseveiria Roxburghiana (plant).

୨ । ମହେନ୍ଦ୍ରବାରୁଣୀ ( ଦେଖ )—2. Mahendra-bāruṇī (See).

**ଧନୁଃଶର**—ସ. ବି—୧ । ( ମ. ଷ. ଲୋ ) ଧନୁରୁ କ୍ଷିପ୍ତ ବାଣ—
Dhanuḥśara 1. The arrow ejected from a bow.

୨ । (ଦ୍ୱନ୍ଦ୍ୱ) ଧନୁ ଓ ଶର—2. Bow and arrow.

**ଧନୁକ**—ସ. ବି—(ଧନୁ+ସ୍ୱାର୍ଥେ, କ)—ଧନୁ—Bow.
Dhanuka

ସ. ବି (ଧନୁ+କ)—ଧନୁର୍ଦ୍ଧର ବ୍ୟକ୍ତି—An archer; bowman.

୨ । ଚାରିକୋଶ ଦୂରତ୍ୱ—2. A distance of 8 miles.

୩ । ବେହେଲାର ଛଡ଼—3. The bow of a violin.

**ଧନୁକଧାରୀ**—ଦେ. ବିଣ ( ସ. ଧନୁର୍ଦ୍ଧର)—୧ । ଧନୁର୍ଦ୍ଧର—
Dhanukadhārī 1. Armed with bow; carrying a bow.
धनुकधारी; ধনুকধারী

୨ । ଧୁରନ୍ଧର (ଦେଖ)—2. Dhurandhara (See).

ଦେ. ବି (ରାମଚନ୍ଦ୍ର ଧନୁର୍ଦ୍ଧର ଥିବାରୁ)—ରାମାବତାର—
3. The incarnation of Bishṇu in Rāmachandra.

ପ୍ରାଦେ (ଯାଜପୁର) ବି—ହନୁମାନ୍ ବାବାଜୀ—
Name of a class of itinerant ascetics who come from North India.

[ଦ୍ର—ଏମାନେ ଘୋର ସେନ ନାଲି ବେଶ ଗଳାଇ ଗ୍ରାମ ଗ୍ରାମ ବୁଲି "ସୀତାରାମ୍ ଧନୁକଧାରୀ" ବୋଲି ବୋଲି ଭିକ୍ଷା ମାଗନ୍ତି ]

**ଧନୁକ ବାତ**—ଦେ ବି (ସ.ଧନୁକ+ବାତ)—ଧନୁଷ୍ଟଙ୍କାର ବାତରୋଗ—
Dhanuka bāta Tetanus.
धनुकबात, ধনুকবাই

**ଧନୁକାକାର**—ସ. ବିଣ—( ବହୁବ୍ରୀହି; ଧନୁକ+ଆକାର )—ଧନୁପରି
Dhanukākāra ଆକୃତିବିଶିଷ୍ଟ—Bow-shaped.
(ଧନୁକାକୃତି—ଅନ୍ୟରୂପ)

ସ. ବି (୬ଷ୍ଠୀ ତତ୍) ଧନୁର ଆକୃତି—Shape of a bow.

**ଧନୁକୀ**—ଦେ. ବି—( ସ. ଧାନୁଷ୍କ )—ଧନୁର୍ଦ୍ଧର ବ୍ୟକ୍ତି—
Dhanuki Archer.
धानुकी धानुक, धानकी ଅର୍ଜ୍ଜୁନ ଦ ଯୁଦ୍ଧା ଧନୁକୀ ଭୀମ ଦ୍ରୋଣ—
କୃଷ୍ଣଦାସ-ମହାଭାରତ, ସ୍ୱର୍ଗ ।

**ଧନୁ ଗୁଣ**—ସ.ବି. (ଧନୁ+ଗୁଣ; ୬ଷ୍ଠୀ ତତ୍)—ଧନୁର ଜ୍ୟା ବା ଦଉଡ଼ି—
Dhanu guṇa (ଧନୁର୍ଗୁଣ—ଅନ୍ୟରୂପ) Bow-string.

**ଧନୁତ୍ତିରି**—ଗ୍ରା. ବି. ( ସ. ଧନ୍ୱନ୍ତରି )—୧ । ସ୍ୱର୍ଗ ବୈଦ୍ୟ—
Dhanutiri 1. The physician of the Gods.
ଧନ୍ୱନ୍ତର } ଅନ୍ୟରୂପ
ଧନୁନ୍ତିର }
୨ । କତ୍ତୃଣ ( ଦେଖ )
2. Kattruṇa ( See )

[ ଦ୍ର—ଏହା ଏକପ୍ରକାର ଘାସ; ଏଥିର ପତ୍ରରେ ଲେମ୍ବୁର ଗନ୍ଧ ଅଛି । ଗୋରୁମାନଙ୍କ ଅଜୀର୍ଣ୍ଣ ହେଲେ ଏହା ଔଷଧରୂପରେ

ବ୍ୟବହୃତ ହୁଏ । ଏ ଘାସରୁ ଏକପ୍ରକାର ଲେମ୍ବୁ ଗନ୍ଧଯୁକ୍ତ ତୈଳ ବାହାରେ ]

**ଧନୁ ଧରା(ରେ)ଇବା**—ଦେ. କ୍ରି—କୌଣସି ଦାୟିତ୍ୱପୂର୍ଣ୍ଣ କାର୍ଯ୍ୟରେ ଅନ୍ୟ ବ୍ୟକ୍ତିଙ୍କୁ ପୁରାଇ ନିଶ୍ଚିନ୍ତ ହେବା—
Dhanu dharā(re)ibā To throw the brunt of some hard work on another man's shoulders

**ଧନୁ ଧରିବା**—ଦେ. କ୍ରି—କୌଣସି ସ୍ୱେଚ୍ଛାରେ ବା ଦାୟିତ୍ୱପୂର୍ଣ୍ଣ କାର୍ଯ୍ୟ କରିବା ନିମନ୍ତେ ପ୍ରସ୍ତୁତ ହେବା—
Dhanu dharibā To be prepared to do any hard or responsible task.

**ଧନୁଫଳା**—ଦେ. ବି(ସଂ. ଧନୁ+ଫଳକ)—ଯୁଦ୍ଧାସ୍ତ୍ରବିଶେଷ—
Dhanuphaḷā Name of a weapon of war

**ଧନୁ ବୁଲା ଉତ୍ସବ**—ଦେ ବି—ଆଶ୍ୱିନ ଶୁକ୍ଳପକ୍ଷ ଦୁର୍ଗାପୂଜାରେ ହେବା ଉତ୍ସବବିଶେଷ—
Dhanu bulā utsaba Name of a festival during the Durgāpūjā in Āswina.

**ଧନୁ ଭଗ୍ନ କରିବା**—ଦେ. କ୍ରି—କୌଣସି ଅସାଧ କାର୍ଯ୍ୟ ସମ୍ପନ୍ନ କରିବା—
Dhanu bhagna karibā To accomplish an extraordinary and hard task.
ଧନୁକ ଭାଁଗା
**ଧନୁକ ତୋଡ଼ନା** [ ଦ୍ର—ଶିବଧନୁ ଭାଙ୍ଗି ରାମଚନ୍ଦ୍ର ସୀତାଙ୍କୁ ବିବାହ କରିବା ଘଟନା ପ୍ରତି ଲକ୍ଷ୍ୟ ।]
( ଧନୁ ଭାଙ୍ଗିବା—ଅନ୍ୟରୂପ )

**ଧନୁ ମାରିବା**—ଦେ କ୍ରି—କାଣ୍ଡ ମାରିବା; ଧନୁଦ୍ୱାରା ଶର ପ୍ରୟୋଗ କରିବା—
Dhanu māribā To shoot with the bow
ଧନୁକମାବା **ଧନୁସଧନା**

**ଧନୁ ମୁଆଁ(ହାଁ)**—ଦେ. ବି—ଧନୁ ସଂକ୍ରାନ୍ତିରେ ଠାକୁରଙ୍କୁ ଭୋଗ କରାଯିବା ମୁଆଁ—
Dhanu muā̃(hā̃) Fried paddy seasoned with sugar and rolled into cakes and offered to Deities on the Dhanu samkrānti day.

**ଧନୁର୍ଗୁଣ**—ସଂ. ବି. (୬ଷ୍ଠୀ ତତ୍; ଧନୁସ୍+ଗୁଣ)—
Dhanurguṇa ୧ । ଧନୁର ଦଉଡ଼ି; ଜ୍ୟା—
1 Bow-string.
୨ । (ଜ୍ୟାମିତି) ବୃତ୍ତଖଣ୍ଡର ଅଗ୍ରଭାଗ ସଂଯୋଜକରେଖା; ଜ୍ୟା—
2. (geometry) Chord of an arc

**ଧନୁର୍ଗୁଣା**—ସଂ. ବି. ସ୍ତ୍ରୀ. (ଧନୁସ୍+ଗୁଣ+ଆ)—ମୂର୍ବା—
Dhanurguṇā A kind of fibrous grass.

**ଧନୁର୍ଦ୍ରୁମ**—ସଂ. ବି. (ମ. ପ. ଲୋ; ଧନୁସ୍+ଦ୍ରୁମ, ଯେଉଁ ଦ୍ରୁମରୁ ଧନୁ ତିଆରି ହୁଏ)—ବାଉଁଶ (ଗଛ)—
Dhanurdruma Bamboo (tree).

**ଧନୁର୍ଦ୍ଧର**—ସଂ. ବିଣ. ପୁଂ. (ଧନୁସ୍+ଧୃ ଧାତୁ=ଧାରଣ କରିବା+କର୍ତ୍ତୃ. ଅ)—୧ । ଧନୁର୍ଦ୍ଧାରୀ; ଯେ ଧନୁ ଓ ଶର ଧରି ଯୁଦ୍ଧ କରେ; ଭାରଦ୍ୱାଜ—
Dhanurdhara
(ଧନୁର୍ଦ୍ଧର; ଧନୁର୍ଦ୍ଧାରୀ—ଅନ୍ୟରୂପ)
1. Carrying a bow; armed with a bow; bearing a bow.
(ଧନୁର୍ଦ୍ଧରୀ, ଧନୁର୍ଦ୍ଧାରିଣୀ—ସ୍ତ୍ରୀ)
୨ । କୌଣସି କାର୍ଯ୍ୟରେ ଦକ୍ଷ ବା ନିପୁଣ; ଧୁରନ୍ଧର; ବିଚକ୍ଷଣ—
2. Expert in a work; skilful.

ଦେ ବି—ଭାରଦ୍ୱାଜ ସେନା—An archer; bowman

**ଧନୁର୍ବାତ**—ସଂ. ବି. (ଧନୁସ୍+ବାତ)—ଧନୁଷ୍ଟଙ୍କାର ରୋଗ—
Dhanurbāta Tetanus.

**ଧନୁର୍ବାହା**—ଦେ. ବିଣ (ସଂ. ଧନୁର୍ବାହୁ)—ଧନୁର୍ଦ୍ଧର—
Dhanurbāhā Armed with a bow.
ସେ ହଂସ କହୁ ଥିବା ବଚନକୁ ସାହା
ପାଇ ରଣ ବାହା ହୋଇଣ ଧନୁର୍ବାହା । କୃଷ୍ଣସିଂହ. ମହାଭାରତ ବନ ।

**ଧନୁର୍ବାହୁ**—ସଂ. ବିଣ. (ବହୁବ୍ରୀହି, ଧନୁସ୍+ବାହୁ)—ଧନୁର୍ଦ୍ଧର (ଦେଖ)
Dhanurbāhu Dhanurdhara (See)

**ଧନୁର୍ବିଦ୍ୟା**—ସଂ. ବି. (ଧନୁସ୍+ବିଦ୍ୟା)—ଧନୁ ମାରିବା କୌଶଳ—
Dhanurbidyā Archery; the science of archery.

**ଧନୁର୍ବୃକ୍ଷ**—ସଂ. ବି. (ମ. ପ. ଲୋ; ଧନୁସ୍+ବୃକ୍ଷ)—
Dhanurbṛuksha ୧ । ଧାମଣ (ଗଛ) (ହି. ଶବ୍ଦସାଗର)(ଦେଖ)—
1. Dhāmana (tree) (See).
୨ । ବାଉଁଶ (ହି. ଶବ୍ଦସାଗର)—2. Bamboo.
୩ । ଅଶ୍ୱତ୍ଥ ଗଛ (ହି. ଶବ୍ଦସାଗର)—
3. The religious fig tree.
୪ । ଭାଲିଆ (ହି. ଶବ୍ଦସାଗର)—4. Marking nut

**ଧନୁର୍ବେଦ**—ସଂ. ବି. ପୁଂ. (ଧନୁସ୍+ବେଦ)—୧ । ଧନୁର୍ବିଦ୍ୟା—
Dhanurbeda 1. The science of archery.
୨ । ବିଶ୍ୱାମିତ୍ରପ୍ରଣୀତ ଯଜୁର୍ବେଦର ଉପବେଦବିଶେଷ; ଧନୁର୍ବିଦ୍ୟା ବିଷୟକ ଉପଦେଶପୂର୍ଣ୍ଣ ଶାସ୍ତ୍ର—
2. One of the secondary Bedas which treats of archery; a treatise on archery by Biswāmitra.

[ ଦ୍ର—ପ୍ରାଚୀନକାଳରେ ଭାରତବର୍ଷରେ ଓ ଇଉରୋପ, ଅମେରିକା, ଆଫ୍ରିକା ଆଦି ସବୁଠି ଧନୁର ବ୍ୟବହାର ଥିଲା । ଭାରତରେ ଧନୁର୍ବେଦ ଯଜୁର୍ବେଦର ଉପବେଦ ରୂପେ ଗଣ୍ୟ ହେଉଥିଲା । ଧନୁର୍ବେଦର ବର୍ଣ୍ଣନା ଶୁକ୍ରନୀତି, କାମନ୍ଦକୀନୀତି, ଅଗ୍ନିପୁରାଣ, ବୀରଚିନ୍ତାମଣି, ବୃଦ୍ଧଶାର୍ଙ୍ଗଧର, ଯୁକ୍ତିକଳ୍ପତରୁ, ନୀତିମୟୂଖ ଆଦି ଗ୍ରନ୍ଥରେ ମିଳେ । ଧନୁର୍ବେଦର ୪ପାଦ (ଭାଗ)ଥିଲା ଯଥା—ଦୀକ୍ଷାପାଦ, ସଂଗ୍ରହପାଦ, ସିଦ୍ଧିପାଦ ଓ ପ୍ରୟୋଗପାଦ । ପ୍ରାଚୀନ କାଳରେ ଦୁଇଟି ଜ୍ୟା ଥିବା ବାଟୁଳଖଡ଼ା (ଉପଳକ୍ଷେପକ)ର ବ୍ୟବହାର ମଧ୍ୟ ଥିଲା । ଧନୁ ଓ ଗୁଣ ଓ ଶରର ପରିମାଣ ଓ ନିର୍ମାଣ-ପ୍ରଣାଳୀ ଓ ଏଥିର ପ୍ରୟୋଗପ୍ରଣାଳୀ ପୂର୍ବେ ଭାରତରେ ବିଶଦରୂପେ ଶିକ୍ଷା ଦିଆଯାଉ ଥିଲା । ଶର ବା ବାଣମାନ ଫଳା ଅନୁସାରେ ନାନା ପ୍ରକାର ଥିଲା; ଶରର ଗତିକୁ ସିଧା ରଖିବା ପାଇଁ ଶର ପଛରେ ପକ୍ଷ ଲଗାଯାଉଥିଲା । ରାମାୟଣ ଓ ମହାଭାରତଆଦିରେ ଶବ୍ଦଭେଦୀ ବାଣ ମାରିବା ବିଷୟ ଲେଖାଅଛି—ହି. ଶବ୍ଦସାଗର । ]

**ଧନୁର୍ଭଙ୍ଗ**—ସଂ. ବି. (୬ଷ୍ଠୀ ତତ୍; ଧନୁସ୍+ଭଙ୍ଗ)-ଧନୁକୁ ଭାଙ୍ଗି ଦେବା—
Dhanurbhaṅga Breaking of a bow.

[ ଦ୍ର—'ଯେଉଁ ରାଜକୁମାର ପ୍ରୋଥିତ ଧନୁକୁ ଭାଙ୍ଗିବେ ତାଙ୍କୁ ମୁଁ ମୋ କନ୍ୟାକୁ ବିବାହ ଦେବି' ପୂର୍ବେ ରାଜାମାନେ ଏହିପରି ପଣ ରଖୁଥିଲେ ଓ ଧନୁର୍ଭଙ୍ଗଦ୍ୱାରା ଭାବୀ ଜାମାତାଙ୍କର ବୀରତ୍ୱ ପରୀକ୍ଷା

କରୁଥିଲେ । ରାମଚନ୍ଦ୍ର ଶିବଧନୁ ଭାଙ୍ଗିବା ରୂପ ପଣକୁ ରକ୍ଷା କରି ଜନକକନ୍ୟା ସୀତାଙ୍କୁ ବିବାହ କରିଥିଲେ । ]

**ଧନୁର୍ଭୃତ୍**—ସଂ ବିଣ. ( ଧନୁସ୍ + ଭୃ ଧାତୁ = ଧାରଣ କରିବା + କର୍ତ୍ତୃ. କ୍ୱିପ୍ )—ଧନୁର୍ଦ୍ଧର—
Dhanurbhrut
Armed with a bow.

**ଧନୁଷ୍କର**—ସଂ. ବିଣ. ପୁଂ. (ଧନୁସ୍ + କର; ବହୁବ୍ରୀହି)—ଧନୁର୍ଦ୍ଧର—
Dhanushkara
Armed with a bow

**ଧନୁଷ୍କୋଟି**—ସଂ. ବି. ( ୬ଷ୍ଠୀ ତତ୍, ଧନୁସ୍ + କୋଟି)—
Dhanushkoti
୧ । ଧନୁର ଅଗ୍ରଭାଗ — 1 The horns or ends of a bow.
୨ । (ନାମ) ରାମେଶ୍ୱରର ଦକ୍ଷିଣପୂର୍ବରେ ଥିବା ସମୁଦ୍ରସ୍ଥ ତୀର୍ଥବିଶେଷ—2. Name of a holy bathing place near Rāmeśwara (S India).

**ଧନୁଷ୍ଟଙ୍କାର**—ସଂ. ବି. (୬ଷ୍ଠୀ ତତ୍; ଧନୁସ୍ + ଟଙ୍କାର)—
Dhanushtankāra
୧ । ଧନୁର ଜ୍ୟା ଆକର୍ଷଣର ଶବ୍ଦ— 1. The twang of a bow.
୨ । ବାତରୋଗବିଶେଷ—2 Tetanus; spasms.
[ ଦ୍ର—ଏହି ରୋଗଗ୍ରସ୍ତ ବ୍ୟକ୍ତିର ଶରୀର ଦୃଢ଼ାକ୍ଷେପଦ୍ୱାରା ଧନୁପରି ବଙ୍କା ହୋଇଯାଏ । ]

**ଧନୁଷ୍ପାଣି**—ସଂ ବିଣ. (ଧନୁସ୍ + ପାଣି) — ଧନୁଷ୍କର (ଦେଖ)
Dhanushpāni
Dhanushkara (See)

**ଧନୁଷ୍ମାନ୍**—ସଂ. ବିଣ —ଧନୁସ୍ + ଅସ୍ତି ଅର୍ଥରେ ମତ୍, ୧ମା. ୧ବ.)—
Dhanushmān
ଧନୁର୍ଦ୍ଧର—
(ଧନୁଷ୍ମତୀ — ସ୍ତ୍ରୀ)
Armed with a bow.

**ଧନୁସ୍**—ସଂ. ବି.—(ଧନ ଧାତୁ = କ୍ଷେପ କରିବା + କର୍ତ୍ତୃ. ଉସ୍)—
Dhanus
ଧନୁସ୍ ଶବ୍ଦ; ଏଥିର ୧ମା.୧ବ. ଧନୁଃ)—ଧନୁ (ଦେଖ)—
Dhanu (See).

**ଧନୁ ହୁଲ**—ଦେ. ବି—ଧନୁଷ୍କୋଟି; ଧନୁର ଅଗ୍ରଭାଗ—
Dhanu hula
A horn or end of a bow.
ଧନୁହୁଲେ ଟେକିଣ ତାହାକୁ ଅର୍ଣ୍ଣଲେ ।
କୃଷ୍ଣସିଂହ. ମହାଭାରତ ଆଦି ।

**ଧନେଶ**—ସଂ. ବି. ( ୬ଷ୍ଠୀ ତତ୍, ଧନ + ଈଶ )—
Dhaneśa
୧ । କୁବେର—1 Kubera.
ଧନେଶପାଖୀ
୨ । ମହାଧନୀ ବ୍ୟକ୍ତି—2. Rich person
ଧନେଶ
ଦେ. ବି—କୋଚିଲାଖାଇ ( ଦେଖ )
The Indian Horn bill; Anthracoceros Coronatus; Buceros Cavatus
[ ଦ୍ର—ଏହା ଏକ ହାତଠାରୁ ଦୁଇ ହାତପର୍ଯ୍ୟନ୍ତ ଶାଖାଶ୍ରୟୀ ବର୍ଗର ପକ୍ଷୀ; ବର୍ଣ୍ଣ କଳା ଓ ସବୁଜ ରଙ୍ଗ ମିଶ୍ରିତ; କଳା ଓ ଧଳା ମିଶ୍ରିତ ପକ୍ଷ । ଏମାନଙ୍କର ଥଣ୍ଟ ଶୃଙ୍ଗଖଣ୍ଡେ ଲମ୍ବ ଓ ଥଣ୍ଟର ଉପର ଫାଳ ତଳଫାଳର ପ୍ରାୟ ଦ୍ୱିଗୁଣ । ଏମାନେ ଫଳ ଓ ବିଶେଷତଃ କୋଚିଲା ଫଳ ଖାଆନ୍ତି । ଉପର ଫାଳ ଥଣ୍ଟ ଉପରେ ଗୋଟିଏ ଶିଙ୍ଗ ପରି ପକ୍ଷୀ ଉଚ୍ଚ ଖଣ୍ଡ ଲାଗି ଥାଏ । ଧ୍ରୁବ୍ ବଡ଼ ପକ୍ଷୀଙ୍କୁ ଭୀଲଥଖାଇ, ଚଢ଼େଇ ସାନଙ୍କୁ କୋଚିଲାଖାଇ, ତହିଁରୁ ସାନଙ୍କୁ କଖାଖାଇ ଓ ତହିଁରୁ ସାନଙ୍କୁ ଧନେଶ ବୋଲାଯାଏ । ]

**ଧନେଶ୍ୱର**—ସଂ. ବି. ( ୬ଷ୍ଠୀ ତତ୍; ଧନ + ଈଶ୍ୱର )—ଧନେଶ (ଦେଖ)
Dhaneśwara
Dhaneśa (See)

**ଧନ୍ଦପଟ୍ କରିବା**—ପ୍ରାଦେ ( ସମ୍ବଲପୁର ) କ୍ରି —( କୌଣସି କାର୍ଯ୍ୟରେ )
Dhand-pat karibā
ପ୍ରଗାଢ଼ ପରିଶ୍ରମ ବା ଯତ୍ନ କରିବା—
To toil hard ( in accomplishing some work ).

**ଧନ୍ଦ**—ଦେ. ବି—ଧନ୍ଦା ( ଦେଖ )
Dhanda
Dhandā ( See )
ବାତୁଳ ଗଲେ ଅବଦନ୍ଦ, ଏକଥା ଆମ୍ଭ ମନେ ଧନ୍ଦ ।
ପ୍ରାଚୀ. ନିର୍ଗୁଣ ମ ହାତ୍ମ୍ୟ ।

**ଧନ୍ଦକା**—ଦେ. ବି. ( ସ ଦ୍ୱନ୍ଦ୍ୱ )—
Dhandakā
୧ । ଛନ୍ଦିଆ; ବିଷମ ସମସ୍ୟାରେ ପଡ଼ିବା ଲୋକର
(ଧନ୍ଦକ—ଅନ୍ୟରୂପ)
ଘଟିବା କିଂକର୍ତ୍ତବ୍ୟବିମୂଢ଼ତା—
धाँधा, धन्द, धाँधस
1. Bewilderment
धंधक, धंदा
୨ । କାର୍ଯ୍ୟବ୍ୟସ୍ତତା; ଜଞ୍ଜାଳ— 2. Press of work.
୩ । ଗୋଲକଧନ୍ଦା—3 Puzzle; labyrinth.
୪ । ଦୃଷ୍ଟିଭ୍ରମ—4. Mistiness of eyesight.
୫ । ସନ୍ଦେହ—5 Doubt; hesitation

**ଧନ୍ଦକା ଲାଗିବା**—ଦେ. ବି—୧ । ଧନ୍ଦାଳ ହେବା; କିଂକର୍ତ୍ତବ୍ୟବିମୂଢ଼ତା—
Dhandakā lāgibā
धाँदालागा
खटक लगना
1. Being at a loss to decide what to do, being puzzled; bewilderment.
୨ । ସନ୍ଦେହାନ୍ୱିତ ଅବସ୍ଥା—2. Being in doubt.

**ଧନ୍ଦକି ହେବା**—ଦେ କ୍ରି—୧ । କିଂକର୍ତ୍ତବ୍ୟବିମୂଢ଼ ହେବା—
Dhandhaki hebā
1. To be bewildered.
धाँदायपड़ा
୨ । ସନ୍ଦିହାନ ହେବା—2. To be in doubt.
୩ । ଦୋଦୋପାଞ୍ଚ ହେବା—3. To vacillate.
୪ । କାର୍ଯ୍ୟରେ ଅତି ବ୍ୟସ୍ତ ହେବା— 4. To be very busy.

**ଧନ୍ଦପୁଆ**—ଦେ. ବି—ଡାବଲପୁଆ ( ଦେଖ )
Dhandapuā
Dābalapuā ( See )

**ଧନ୍ଦରା**—ଦେ. ବିଣ. ( ସଂ. ଜୀର୍ଣ୍ଣ; ଜର୍ଜରିତ )—
Dhandarā
୧ । ଛିଣ୍ଡା; ଚିରା—1. Ragged; torn.
झाँझरा
୨ । ଜୀର୍ଣ୍ଣ—2. Worn

**ଧନ୍ଦଲା**—ଦେ. ବିଣ—ଧନ୍ଦାଳ ( ଦେଖ )
Dhandalā
Dhandāli ( See )
(ଧନ୍ଦଲ —ଅନ୍ୟରୂପ)

**ଧନ୍ଦା**—ଦେ. ବି. (ସଂ. ଧନଦା, ଯେଉଁଥିରୁ ଧନ ମିଳେ; ଜମ୍ମା ଦ୍ୱନ୍ଦ୍ୱ)—
Dhandā
୧ । ଧନୋପାର୍ଜନୋପାୟ—
धन्द,धन्धा
1. Profession; occupation.
धंधा
୨ । ବ୍ୟବସାୟ; କାମ ଧନ୍ଦା; ଜୀବିକା—
(ଧନ୍ଧା—ଅନ୍ୟରୂପ)
2 Livelihood; business.
ସାଥିରେ ତ ଧନ୍ଦାରେ ଲାଗିଥିନ୍ତି । ଫକୀରମୋହନ ଛମାଣ ଆଠଗୁଣ୍ଠ ।

୩ । କାଉଳ; କାର୍ଯ୍ୟବ୍ୟସ୍ତତା — 3. The state of being busy; bustle; stir.

ଲକ୍ଷଣୀ ପୁଣି ସେ ହୋଇଅଛନ୍ତି ବନ୍ଧା
ଦେଖିଲେ ତାହା ଲୋକ ମନେ ଲାଗେ ଧନ୍ଦା ।
କୃଷ୍ଣସିଂହ, ମହାଭାରତ. ଆଦ ।

୪ । ମାନସିକ ଆନ୍ଦୋଳନ ବା ବ୍ୟସ୍ତତା—
4. Mental agitation; confusion.

୫ । ବିଷମ ସମସ୍ୟା—5 Dilemma.

୬ । ସଂସାର ସଂଗ୍ରାମ—
6 The battle of life; worry of life.

୭ । ସାଂସାରିକ ଚିନ୍ତା, ପେଟ ଚିନ୍ତା—
7. Worldy anxiety.

୮ । ସନ୍ଦେହ—8. Doubt.

କାହିଁପାଇଁ ନକୁଳ କଲ ତାହା ନନ୍ଦା
ଏ ସନ୍ଦାଶୁ ମୋ ମନେ ହେଉଅଛି ଧନ୍ଦା । କୃଷ୍ଣସିଂହ,ମହାଭାରତ,ଅଶ୍ୱମେଧ ।

୯ । ପ୍ରହେଳିକା—9. Riddle.

୧୦ । ଗୋଲକଧନ୍ଦା—10. Maze, labyrinth.

ଦେ. ବିଣ—୧ । କାର୍ଯ୍ୟବ୍ୟସ୍ତ—
1. Very busy; pre-occupied.

୨ । କିଂକର୍ତ୍ତବ୍ୟବିମୂଢ଼—
2 Bewildered, confused.

୩ । ଆନ୍ଦୋଳିତ—3. Agitated.

ସ୍ଥିର ଲତା ଖ୍ରାପେତ ଖାଲ ପାଗେ ବନ୍ଧା
ହୋଇ କରୁଥିଲ ସେ ମାନସକୁ ଧନ୍ଦା । କୃଷ୍ଣସିଂହ, ମହାଭାରତ, ବନ ।

୪ । ମୁଗ୍ଧ—4. Charmed.

ସେ ସଙ୍ଗରେ ବଚନ ଉକ୍ତ୍ୟାତପ ବନ୍ଧା
ହୋଇଥିବାରୁ କୁଅର ମନ କେଞ୍ଚ ଧନ୍ଦା । କୃଷ୍ଣସିଂହ,ମହାଭାରତ,ଉଦ୍ୟୋଗ ।

**ଧନ୍ଦାଳି**—ଦେ. ବିଣ. ( ସଂ ଦ୍ୱନ୍ଦ୍ୱ )—
Dhandāli ୧ । ଦୃଷ୍ଟିଭ୍ରମ ଯୁକ୍ତ—1. Dazzled
ଧାନ୍ଧୀ ୨ । ଅସ୍ପଷ୍ଟ ଦୃଷ୍ଟିଯୁକ୍ତ; ଜାଲଜାଲୁଆ ଦେଖି ପାରୁଥିବା—
**ଧଂଧଲା** 2. Dim-sighted; blurred ( in eye sight ); (ଧନ୍ଦାଳିଆ —ଅନ୍ୟରୂପ) not able to see distinctly.

୩ । ସନ୍ଦିହାନ—3. Puzzled; confused; in doubt.

**ଧନ୍ଦାଳିବା**—ଦେ. କ୍ରି—୧ । ବ୍ୟସ୍ତ ହୋଇ ଏଣେ ତେଣେ କୌଣସି ବସ୍ତୁକୁ
Dhandāliba ଖୋଜିବା—1. To anxiously search for a thing here and there.
ଧନ୍ଦଲେଇବା, ଧନ୍ଧିବା } ଅନ୍ୟରୂପ
୨ । ଭିଣ୍ଡାଳିବା—2. To grope for a thing.
**ହାତଡ଼ନ**
**ଟଟୋଲନା**

**ଧନ୍ଦାଳି ହେବା**—ଦେ. କ୍ରି ( ସଂ ଦ୍ୱନ୍ଦ୍ୱ )—୧ । ଉନ୍ତାଳ ହେବା; ଏଣେ
Dhandāli heba ତେଣେ ଖୋଜିବାରେ ବ୍ୟସ୍ତ ହେବା—
(ଧନ୍ଦହେବା—ଅନ୍ୟରୂପ) 1. To anxiously search for a thing here and more.
**ଧାନ୍ଦାୟପଡ଼ା**
**ଘଂଘାମେଗାଁମୋ** ୨ । କିଂକର୍ତ୍ତବ୍ୟବିମୂଢ଼ ବା ବ୍ୟସ୍ତ ହେବା—
2. To be agitated; to be bewildered.

୩ । କାର୍ଯ୍ୟରେ ବ୍ୟସ୍ତ ହେବା; କାଉଳ ହେବା—
3. To be very busy; to be in a bustle; to be pre-occupied.

ସ୍ଥାନଭାଗ୍ୟ ଲୋକ ଦହୁ କ ମିଛେ ନନ୍ଦ
ଏ ସଂସାର ମାୟାରେ ହୋଇଥାଏ ଧନ୍ଦ । କୃଷ୍ଣସିଂହ ମହାଭାରତ, ଶାନ୍ତି ।

୪ । ଜାଲୁଜାଲୁଆ ଦେଖାଯିବାରୁ ବା ଅନ୍ଧାର ଯୋଗୁଁ ଦଗ୍ଧଣ୍ଡ ହେବା —4. To grope on account of one's dim sight or in the dark

୫ । ସନ୍ଦିହାନ ହେବା—5 To be in doubt

ଜଗଉଯାନ ଧର୍ମିର କ୍ଷୁବେ ବାନ୍ଧ
ହୋଇଅଛ ସେ ନୃପ ନୃହ ଘହିଁ ଧନ୍ଦ । କୃଷ୍ଣସିଂହ, ମହାଭାରତ, ବନ ।

୬ । ଗୋଲକଧନ୍ଦାରେ ପଡ଼ିବା—
6 To be between the horns of a dilemma.

**ଧନ୍ଦି ମରିବା**—ଦେ. କ୍ରି—ବ୍ୟତିବ୍ୟସ୍ତ ହେବା—
Dhandi maribā To be in a bustle.
(ଧନ୍ଦହୋଇ ମରିବା—ଅନ୍ୟରୂପ)

ଧନ୍ଦି ମରନ୍ତି ଗୃହଧର୍ମେ
ନାନାପ୍ରକାରେ ମନ ଭ୍ରମେ ।
ପ୍ରାଚୀ, ନର୍ଗୁଣମାହାତ୍ମ୍ୟ ।

**ଧନ୍ଦୋଳ**—ସଂ. ବି (ସଂ. ଦ୍ୱନ୍ଦ୍ୱ)—୧ । କଳହ—
Dhandola 1. Quarrel.
ଧଂନ୍ଦା ୨ । ଗୋଳମାଳ—2 Confusion.
**ଘଂଧା** ଦେ ବିଣ— ୧ । କାଉଳ; ବ୍ୟସ୍ତ—1 Confused.
୨ । କିଂକର୍ତ୍ତବ୍ୟବିମୂଢ଼, ସନ୍ଦିହାନ —2. Puzzled.

**ଧନ୍ୱ(ଧାତୁ)**—ସଂ—ଗତି କରିବା—
Dhanw(root) To go; to move.

**ଧନ୍ୱ**—ସଂ ବି (ଧନ୍ୱ୍ ଧାତୁ=ଗମନ କରିବା+କରଣ. ଅ)—୧ । ଧନୁ—
Dhanwa 1. Bow.

୨ । (+ଅଧିକରଣେ. ଅ) ମରୁଭୂମି—2. A desert.

୩ । ନିର୍ଜଳ ପ୍ରଦେଶ—3. A waterless tract.

୪ । କାଶୀର ଜଣେ ରାଜା; ଧନ୍ୱନ୍ତରିଙ୍କ ପିତା—
4. Name of a king of ancient Kāsi.

**ଧନ୍ୱ ଦୁର୍ଗ**—ସଂ. ବି. କ୍ଲୀ—୧ । ମରୁଭୂମି—
Dhanwa durga 1. A desert.

୨ । ନିର୍ଜଳ ପ୍ରଦେଶ—
2. A waterless tract or country.

୩ । ଆକ୍ରମଣୋଦ୍ୟତ ଶତ୍ରୁକୁ ବାଧା ଦେବା ପାଇଁ ଆକ୍ରାନ୍ତ ସ୍ଥାନର ଓ ଆକ୍ରମଣାର୍ଥ ଅଗ୍ରସର ଶତ୍ରୁପକ୍ଷର ମଧ୍ୟସ୍ଥ ଅଞ୍ଚଳକୁ ମରୁଭୂମି ଓ ନିର୍ଜଳ ପ୍ରଦେଶ କରିବା ରୂପ ଉପାୟ—
3. The expedient of turning a tract of country (through which an advancing enemy is to pass) into a waterless desert.
[ଦ୍ର—ଏପରି କରିବାଦ୍ୱାରା ଶତ୍ରୁପକ୍ଷ ସେହି ଅଞ୍ଚଳ ବାଟେ ଅଗ୍ରସର ହେବାବେଳେ ଖାଦ୍ୟ ଓ ଜଳ ଅଭାବରେ ଆଉ ଅଗ୍ରସର ହୋଇ ପାରିବ ନାହିଁ । ]

୪ । ଯେଉଁ ଦୁର୍ଗ ଚାରିପାଖେ ୫ ଯୋଜନ ପର୍ଯ୍ୟନ୍ତ ନିର୍ଜଳ ମରୁଭୂମି ଦ୍ୱାରା ବେଷ୍ଟିତ ( ବୃ. ଶ )—4. A fort

surrounded on all sides by waterless desert to the extent of 40 miles.

**ଧନ୍ୱନ୍ତର**—ସଂ. ବି ( ଧନୁ + ଅନ୍ତର )—ଗୁର ହାତ ଦୈର୍ଘ୍ୟର ଏକ ମାପ
Dhanwantara (ବ୍ର. ଶବ୍ଦସାଗର) —A standard lineal measure of 4 cubits or 2 yards.

**ଧନ୍ୱନ୍ତରି**—ସଂ. ବି. ( ଧନ୍ୱ + ଅନ୍ତ + ର୍ ଧାତୁ ଗମନ କରିବା + କର୍ତ୍ତୃ ଇ, Dhanwantari ଏ କାଶୀରାଜ ଧନ୍ୱଙ୍କ ଔରସ ଥିବାରୁ )—
୧ । ଦେବଚିକିତ୍ସକ—1. Name of the divine physician according to the Hindu mythology
[ ଦ୍ର—ହରିବଂଶରେ ଲେଖା ଅଛି ଯେ ଏ ସମୁଦ୍ରମନ୍ଥନ ବେଳେ ଲକ୍ଷ୍ମୀ ଓ ଚନ୍ଦ୍ର ଆଦିଙ୍କ ସଙ୍ଗେ ସମୁଦ୍ରରୁ ବାହାରିଥିଲେ ଓ ସମୁଦ୍ରରୁ ବାହାରିବା ମାତ୍ରେ ଦେବତାମାନଙ୍କ ସଙ୍ଗେ ଗୋଟିଏ ଭାଗ ଓ ଆସନ ପାଇବା ପାଇଁ ଭଗବାନଙ୍କୁ ପ୍ରାର୍ଥନା କଲେ । ଏଣୁ ଭଗବାନ୍ କହିଲେ ଯେ ଏଥି ପୂର୍ବରୁ ଦେବତାମାନଙ୍କ ଭାଗ ଓ ସ୍ଥାନ ସ୍ଥିର ହୋଇ ସାରିଅଛି, ତୁମ୍ଭେ ଆଗାମୀ ଜନ୍ମରେ ବିଶେଷ ସିଦ୍ଧି ଲାଭ କରିବ ଓ ସଶରୀର ଦେବତ୍ୱ ଲାଭ କରିବ ଓ ଆୟୁର୍ବେଦକୁ ଆଠ ଭାଗରେ ବିଭକ୍ତ କରି ଦେବଚିକିତ୍ସକ ହେବ । ତଦନୁସାରେ ପୁତ୍ରଲାଭାର୍ଥ ବହୁକାଳ ତପସ୍ୟା କରୁଥିବା କାଶୀରାଜ ଧନ୍ୱଙ୍କ ଘରେ ଏ ଅବତାର ଗ୍ରହଣ କଲେ । ଏ ଭରଦ୍ୱାଜ ମୁନିଙ୍କଠାରୁ (ଭାବପ୍ରକାଶ ମତରେ ଇନ୍ଦ୍ରଙ୍କଠାରୁ ) ଆୟୁର୍ବେଦ ଶିକ୍ଷା କରି ଲୋକମାନଙ୍କୁ ଚିକିତ୍ସା କଲେ ଓ କାଶୀର ରାଜା ହେଲେ—ହି ଶବ୍ଦସାଗର ]
୨ । ବିକ୍ରମାଦିତ୍ୟଙ୍କ ରାଜସଭାସ୍ଥ ନବରତ୍ନଙ୍କ ମଧ୍ୟରୁ ଜଣେ ପଣ୍ଡିତ ( କାଳିଦାସଙ୍କ ସମସାମୟିକ )—2. One of the 9 Pandits (gems) of the court of Bikramāditya.
୩ । କାଶୀର ରାଜା ଦିବୋଦାସଙ୍କ ନାମାନ୍ତର—3. A name of Dibodāsa, an ancient king of Kāsi.
୪ । ଧନ୍ୱନ୍ତରି ( ଦେଖ )—4. Dhanitiri ( See )

**ଧନ୍ୱନ**—ସଂ. ବି. ( ଧନୁ + ଅନ; ଏ ଗଛରୁ ପୂର୍ବେ ଧନୁ ତିଆରି ହେଉଥିବାରୁ ) - ଧାମଣ ( ଗଛ ) ( ଦେଖ
Dhanwana Dhāmaṇa ( tree ) ( See )

**ଧନ୍ୱୟ(ଯ)ବାସ**—ସଂ. ବି - ଦୁରାଲଭା ( ହି. ଶବ୍ଦସାଗର ) ( ଦେଖ )—
Dhanwaya(ja)bāsa Durālabhā ( See )

**ଧନ୍ୱା**—ସଂ. ବି. ( ଧନ୍ ଧାତୁ = ସେପଣ କରିବା + କରଣ ବନ୍ = ଧନ୍ୱନ୍ Dhanwā ଶବ୍ଦ; ୧ମା. ୧ବ )—୧ । ଧନ୍ୱ ୧।୨ ( ଦେଖ )
Dhanwa 1 & 2 ( See )
୨ । ଆକାଶ, ଅନ୍ତରୀକ୍ଷ (ହି ଶବ୍ଦସାଗର)—2. The sky.
୩ । ସ୍ଥଳ; ଶୁଷ୍କିଲ ଭୂମି ( ହି. ଶବ୍ଦସାଗର )—
3. Dry land.
ସଂ. ବିଣ. ( ଧନୁ + ବତ୍; ଧନ୍ୱନ୍ ଶବ୍ଦ, ୧ମା ୧ବ; ଅନ୍ୟ ଶବ୍ଦ ପରେ ସମାସରେ ପ୍ରୟୁକ୍ତ ହୁଏ, ଯଥା—ଶାର୍ଙ୍ଗଧନ୍ୱା )—
ଅମୁକ ଧନୁ ଧାରଣକାରୀ—Holding a bow.

**ଧନ୍ୱାୟୀ**—ସଂ ବିଣ. ପୁଂ. ( ଧନ୍ + ଆ + ଯା ଧାତୁ + ଇନ୍, ଧନ୍ୱାୟିନ୍ Dhanwāyi ୧ମା.୧ବ)—ଧନୁର୍ଦ୍ଧର—Armed with a bow
( ଧନ୍ୱାୟିନୀ—ସ୍ତ୍ରୀ )

**ଧନ୍ୱିନ**—ସଂ. ବି ( ଧନ୍ୱ = ଜଳହୀନ ପ୍ରଦେଶ, ମରୁଭୂମି + ବିଚରଣକାରୀ Dhanwina ଅର୍ଥରେ ଇନ୍ ) —ଶୂକର, ଘୁଷୁରି (ହି. ଶବ୍ଦସାଗର)—
Hog; pig.

**ଧନ୍ୱୀ**—ସଂ. ବିଣ. ପୁଂ ( ଧନ୍ୱନ୍, ଧନ୍ୱ + ଅସ୍ତ୍ୟର୍ଥେ ଇନ୍, ୧ମା. ୧ବ)—
Dhanwi ୧ । ଧନୁର୍ଦ୍ଧାରୀ—1 Armed with a bow.
( ଧନ୍ୱିନୀ—ସ୍ତ୍ରୀ ) ୨ । ଚତୁର; ଦକ୍ଷ; ନିପୁଣ—
2 Clever; skilful.
୩ । ବିଶାରଦ; ପଣ୍ଡିତ—3 Learned; accomplished.
ବି—୧ । ଅର୍ଜୁନ—
1 Arjuna; the 3rd Pāṇḍaba brother.
୨ । ଧନୁର୍ଦ୍ଧାରୀ ଯୋଦ୍ଧା—2 Archer; bowman.
୩ । ଅର୍ଜୁନ (ଗଛ)(ଦେଖ)—3. Arjuna (tree)(See)
୪ । ବକୁଳ ( ଦେଖ )—4 Bakula ( See )
୫ । ଦୁରାଲଭା ( ଦେଖ )—5. Durālabhā ( See )
୬ । ବିଷ୍ଣୁ ( ହି. ଶବ୍ଦସାଗର ) ( ଶାର୍ଙ୍ଗନାମକ ଧନୁର୍ଦ୍ଧର ଥିବାରୁ ଓ ଗାଣ୍ଡୀବ ଧନୁର ଅଧିକାରୀ ଥିବାରୁ )—
6 Bishṇu
୭ । ଶିବ ( ହି. ଶବ୍ଦସାଗର ) ( ପିନାକ ଧନୁର ଅଧିକାରୀ ଥିବାରୁ )—7. God Siba.
୮ । ( ନାମ ) ତାମସ ମନୁଙ୍କର ଏକ ପୁତ୍ର—
8 The name of a son of Tāmasa Manu.

**ଧନ୍ୟ**—ସଂ. ବିଣ. ପୁଂ. ( ଧନ + ଯୋଗ୍ୟାର୍ଥେ ଯ )—
Dhanya ୧ । ମଙ୍ଗଳମୟ, ଶୁଭସୂଚକ—1. Auspicious.
( ଧନ୍ୟା - ସ୍ତ୍ରୀ ) ୨ । ଭାଗ୍ୟବାନ୍—2 Fortunate.
୩ । ସୌଭାଗ୍ୟଶାଳୀ—3. Blessed; affluent.
୪ । ସୁଖୀ—4. Happy
୫ । କୃତାର୍ଥ—5. Successful.
୬ । ପ୍ରଶଂସନୀୟ; ଶ୍ଲାଘ୍ୟ—
6 Praiseworthy; esteemable
୭ । ଧାର୍ମିକ; ସାଧୁ; ପୁଣ୍ୟବାନ୍; ସୁକୃତ—
7. Virtuous; pious
୮ । ଧନ ଦେବାବାଲା; ଯାହାଙ୍କଠାରୁ ଧନ ମିଳେ—
8. Bestowing wealth.
ସଂ. ବି—୧ । ଅଶ୍ୱକର୍ଣ୍ଣ ବୃକ୍ଷ (ହି. ଶବ୍ଦସାଗର)—
1. Shorea Robusta ( tree )
୨ । ବିଷ୍ଣୁ ( ହି. ଶବ୍ଦସାଗର )—
2. A name of Bishṇu.
୩ । ଧନିଆଁ ( ହି. ଶବ୍ଦସାଗର )—3. Coriander.
୪ । ନାସ୍ତିକ ( ହି ଶବ୍ଦସାଗର )—4. An atheist.

[ ଦ୍ର—ଏ ବିଶେଷଣ ଶବ୍ଦ କୌଣସି ବ୍ୟକ୍ତିକୁ ସାଧୁବାଦ କରିବା ସମ୍ପର୍କରେ ବ୍ୟବହୃତ ହୁଏ; ଯଥା—ତୁମ୍ଭେ ଧନ୍ୟ, ତୁମ୍ଭର ସାହସ ଧନ୍ୟ । ]

ଦେ ଅ —୧ । ସାଧୁ ! ସାଧୁ ! ବାହାବା !—1. Bravo !
(ଧନ୍ୟ ଧନ୍ୟ—ଅନ୍ୟରୂପ) ୨ । ସାବାସ୍—
धन्य 2. Well done !
धन्य; धन्यधन्य ୩ । (ବ୍ୟଙ୍ଗ୍ୟାର୍ଥ) ଧିକ୍ ! ଛି !—
3 (ironical) Fie !

ଦେ. ବି.– (ସଂ. ଧନ୍ୟବାଦ)—୧ । ସାଧୁବାଦ; ପ୍ରଶଂସାବାଦ—
1. Eulogy.
୨ । କୃତଜ୍ଞତାଜ୍ଞାପନ—2 Thanksgiving.

**ଧନ୍ୟ କରିବା**—ଦେ. କ୍ରି.—୧ । କୃତଜ୍ଞତା ଜ୍ଞାପନ କରିବା; ଧନ୍ୟବାଦ ଦେବା—1.To give thanks; to thank.
Dhanya karibā
ধন্যবাদ দেওয়া ୨ । ପ୍ରଶଂସା କରିବା—
धन्यवाद करना 2. To praise; to eulogise.
ଶୁଣିଣ ଶ୍ରୀହରି ବଚନ, ତେବେ ଧୃବକୁ କଲେ ଧନ୍ୟ ।
ଜଗନ୍ନାଥ । ଭାଗବତ ।

**ଧନ୍ୟଧନ୍ୟ କରିବା**—ଦେ. କ୍ରି.—ଅତ୍ୟଧିକ ପ୍ରଶଂସା କରିବା—
Dhanyadhanya karibā To speak very highly of; to give thanks.
ধন্যবাদ দেওয়া
धन्यवाद देना ସମସ୍ତେ ଶାର ରଜାଙ୍କୁ ଧନ୍ୟ ଧନ୍ୟ କଲେ ।
ଗଙ୍ଗାଧର ଦାସ । ଚିଲିକା ସମାଗମ ।

**ଧନ୍ୟପଦ**—ଦେ. ବି. (ସଂ. ଧନ୍ୟବାଦ)—ଧନ୍ୟବାଦ (ଦେଖ)
Dhanya pada Dhanyabāda (See)
(ଧନ୍ୟ ଧନ୍ୟପଦ, ଧନ୍ୟ ଧନ୍ୟ ବଚନ—ଅନ୍ୟରୂପ)

**ଧନ୍ୟବାଦ**—ସଂ. ବି.—(ଧନ୍ୟ+ବଦ୍ ଧାତୁ=କହିବା+ଭାବ. ଅ)—
Dhanyabāda ୧ । ସାଧୁବାଦ; ପ୍ରଶଂସାବାଦ; ସାବାସୀ—
1. Eulogy; applause
୨ । କୃତଜ୍ଞତାଜ୍ଞାପନ—
2. Thanksgiving; expression of gratefulness.

ଦେ. ଅ. (ଇଂରାଜ ସମାଜର ବ୍ୟବହାର ଅନୁକରଣରେ ଅଧୁନା ଭଦ୍ର ସମାଜରେ ବ୍ୟବହୃତ) ମୁଁ ଆପଣଙ୍କୁ ଧନ୍ୟବାଦ ଦେଉଅଛି—(Interj) Thanks ! Thank you !

**ଧନ୍ୟବାଦ କରିବା**—ଦେ. କ୍ରି.—ସାଧୁବାଦ କରିବା—
Dhanyabāda karibā To thank; to express gratitude; to applaud.
ধন্যবাদ করা (দেওয়া)
धन्यवाद करना (देना)
(ଧନ୍ୟବାଦ ଦେବା—ଅନ୍ୟରୂପ)

**ଧନ୍ୟବାଦାର୍ହ**—ସଂ. ବିଣ. ପୁଂ—(ଧନ୍ୟବାଦ+ଅର୍ହ ଧାତୁ+କର୍ତ୍ତୃ. ଅ)—
Dhanyabādārha ଧନ୍ୟବାଦ ପାଇବାର ଯୋଗ୍ୟ—
(ଧନ୍ୟବାଦାର୍ହା—ସ୍ତ୍ରୀ) Deserving thanks.

**ଧନ୍ୟା**—ସଂ. ବି. ସ୍ତ୍ରୀ—(ଧନ୍ ଧାତୁ=ଉତ୍ପନ୍ନ ହେବା+କର୍ତ୍ତୃ. ଯ+ଆ)—
Dhanyā ଧଣିଆ (ଦେଖ)—Dhaṇiā (See)

ସଂ ବିଣ. ସ୍ତ୍ରୀ.—(ଧନ୍ୟ+ସ୍ତ୍ରୀ. ଆ)—ଧନ୍ୟର ସ୍ତ୍ରୀଲିଙ୍ଗ—
Feminine of Dhanya.

**ଧନ୍ୟାକ**—ସଂ ବି କ୍ଲୀ—(ଧନ୍ ଧାତୁ=ଉତ୍ପନ୍ନ ହେବା+କର୍ତ୍ତୃ. ଆକ)—
Dhanyāka ଧଣିଆ (ଦେଖ)—Dhaṇiā (See)

**ଧପ୍**—ଦେ. ଅ.—୧ । ଆଲୁଅ ହଠାତ୍ ଲିଭିଯିବା ପ୍ରକାରେ—
Dhap 1, (extinction of a light) Suddenly.
ধপ ୨ । ଆଲୁଅ ହଠାତ୍ ଜଳି ଉଠିବା ପ୍ରକାରେ—
धप 2 Suddenly (flaring up of a light)
ଧପ୍‌କିନା, ଧପ୍‌କିନ; ଧପ୍‌କିରି, ଧପ୍‌କିରି; ଧଡ଼୍‌ଧସ୍, ଧପ୍‌ଧପ୍ } ଅନ୍ୟରୂପ ୩ । ( ଧ୍ୱନ୍ୟନୁକରଣ ) କୌଣସି କଠିନ ବସ୍ତୁ (ଯଥା ବଡ଼ ବାଡ଼ି) କୌଣସି କୋମଳ ବସ୍ତୁ (ଯଥା ଗଦି) ଉପରେ ଜୋର୍ ପୂର୍ବକ ପଡ଼ିବାର ଶବ୍ଦ—3. Thumping sound produced by a hard substance falling on a soft surface.

**ଧପ୍(ପ) ଧପ୍(ପ)**—ଦେ. ଅ.—୧ । ଆଲୁଅ ଅସ୍ଥିର ଭାବରେ ଜଳିବା ଓ ଲିଭିବା ପ୍ରକାରେ—
Dhap (pa) dhap(pa)
দপদপ 1. In a flickering manner; in a twinkling manner.
ଧପ ଧପ ହୋଇ ପ୍ରାଚୀ ମୂଳେ, ଧପ ଧପ ଜଳେ ଜହ୍ନର ଅନଳ
କମ୍ବଳ ବଦନ କରି ଧ୍ୟାନ । ନନ୍ଦକିଶୋର । କୃଷ୍ଣକୃପାସିନ୍ଧୁ ।
দুপদাপ ୨ । ଧପ୍‌ଧାପ୍ ( ଦେଖ )—
दपदप 2 Dhap-dhāp ( See )
ପଦାତିମାନେ ଧପଧପ ଯିବା ସାଙ୍ଗେ,
ଚାପ ଲଗିଣ ମସ୍ତ ଦର୍ପିଙ୍କ ମରନ୍ତେ । କୃଷ୍ଣସିଂହ । ମହାଭାରତ, ଖଣ୍ଡ ।
ধপধপ ୪ । ଚକ୍ ଚକ୍—4. Glitteringly
जगमग ଧପ ଧପ ହୋଇ ପ୍ରାଚୀମୂଳେ ଉର୍ମିମାଳୀ ରତ୍ନାକର
ରାଧାନାଥ ପାଟ୍ଟରୀ ।
୫ । କଠିନ ଭୂମିରେ ଜୋର୍‌ରେ ଚାଲିବା ସମୟରେ ପାଦର ଶବ୍ଦ—5. The thud of foot steps on firm ground.

**ଧପ ଧାପ୍**—ଦେ. ଅ—୧ । ଶୀଘ୍ର ଶୀଘ୍ର—
Dhap dhāp 1. Quickly.
ধপাধাপ, ধপাস ୨ । ଗୋଟିଏ କଠିନ ବସ୍ତୁ ଅନ୍ୟ ଗୋଟିଏ କୋମଳ
दबदब ବସ୍ତୁରେ ଉପର୍ଯ୍ୟୁପରି ଆଘାତ କରିବାର ଶବ୍ଦ—
(ଧପାଧପ୍—ଅନ୍ୟରୂପ) 2. Thumping sound; the sound of a heavy and hard thing falling on a soft surface.
[ ଦ୍ର—ଚଟିଅରେ ବିଧା ମାରିବା, ପାଦ ଭୂଇଁରେ ବାଡ଼େଇବା । ]
୩ । ଦ୍ରୁତବେଗରେ ଭୂମିରେ ଚାଲିବାର ଶବ୍ଦ—
3. Thumping sound of foot steps.

**ଧପ ଚିକଣ(ଣା)**—ଦେ. ବିଣ— ଧାପ ଚିକଣ ( ଦେଖ )
Dhapa chikaṇa(ṇā) Dhapa chikaṇa (See)

ଧପ ଚକଣିଆ(ଆଁ)—ଦେ. ବିଣ—ବାହାରେ ଛମ ଦେଖାଇବା
Dhapa chikaniā(āṅ) (ଲୋକ)—ବାହ୍ୟ ଚାକଚକ୍ୟବିଶିଷ୍ଟ—
ଚଟକଦାର ଭଡ଼କୀଲା Showy; gaudy; tawdry

ଧପଟ—ଦେ. ବି. (ସଂ. ଧାବ୍ ଧାତୁ)—୧ । ଦଉଡ଼ିବା—1. Running.
Dhapaṭa (ଧପଡ଼, ଧପଡ଼ା—ଅନ୍ୟରୂପ)
ଧାବାଡ ଧପ୍ପାଡ଼ ୨ । ଝପଟ—2. Race; swift motion.
ବାଳୀ ଦେଖ ପରେ ଭୁରଙ୍ଗ ଧପଟ ଲମ୍ଫ ବଶେ ଆବରୁ ।
ଉଷ୍ଟ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।

ଧପଟିବା—ପ୍ରାଦେ (ସିଂହଭୂମ) କ୍ରି.—ଧମକାଇବା (ଦେଖ)
Dhapaṭibā Dhamakāibā (See)

ଧପଡ଼ ଧପଡ଼—ଦେ. ଅ.—(ଧ୍ୱନ୍ୟନୁକରଣ)—ଦଉଡ଼ିବାର ଶବ୍ଦ—
Dhaparḍa dhaparḍa Thumping sound of foot-steps
(ଧାପଡ଼ ଧାପଡ଼, ଧାପୁଡ଼ୁ ଧାପୁଡ଼ୁ—ଅନ୍ୟରୂପ)

ଧପଡ଼ା (ଡ଼େ)ଇବା—ଦେ. କ୍ରି.—ଧପଡ଼ିବାର ଣିଜନ୍ତରୂପ—
Dhaparḍā (rḍe)ibā Causative of Dhaparḍibā.
ଦୌଡାନ ଦୌଡ଼ାନା
(ଧପୁଡ଼ାଇବା, ଧପୁଡ଼େଇବା—ଅନ୍ୟରୂପ)

ଧପଡ଼ା ଧପଡ଼ି—ଦେ. ବି.—ଦଉଡ଼ା ଦଉଡ଼ି; ଧାଁଆଁ ଧପଡ଼—
Dhaparḍā dhaparḍi Race; running to and fro.
ଦୌଡଧাব, ଦୌଡ ଧপাড় ଦୌଡ଼ଧାପଡ଼

ଧପଡ଼ି—ଦେ. ବିଣ.—(ସଂ. ଧବ୍)—ଧପାବାଜ—
Dhaparḍi Deceitful; swindling.
ধপাবাজ ଧୋକାବାଜ (ଧପଡ଼ି—ଅନ୍ୟରୂପ)

ଧପଡ଼ିବା—ଦେ. କ୍ରି.—(ସଂ. ଧାବ୍ ଧାତୁ)—ଦଉଡ଼ିବା—
Dhaparḍibā To run with a thumping sound.
ଦୌଡା ଧପନା (ଧପୁଡ଼ିବା—ଅନ୍ୟରୂପ)

ଧପ ଧାପ(ପେ)—ଦେ. କ୍ରି. ବିଣ.—ଅତିଶୀଘ୍ର—Quickly.
Dhapa dhāpa(pe)
ଝুপদাপ
ଝଟପଟ
ଧପ ଧାପେ ଘୋଡାମାନଙ୍କୁ ଥୁଅଁ ଥିଲେ,
କୋପ କରୁଛ ସେପ ଅମାପ କହିଲେ । କୃଷ୍ଣସିଂହ. ମହାଭାରତ. ଦ୍ରୋଣ ।

ଧପା (ପ୍ପା)—ଦେ. ବି. (ସଂ. ଧବ୍=ଧୂର୍ତ୍ତ ବ୍ୟକ୍ତି)—୧ । ଠକାମି—
Dhapā(ppā) 1. Swindling.
ধাপা ଧପ୍ପା ୨ । ପ୍ରତାରଣା—2. Deceit.
(ଧପାଙ୍ଗି, ଧପ୍ପାଙ୍ଗି—ଅନ୍ୟରୂପ)

ଧପା(ପେ)ଇବା—ଦେ. କ୍ରି.—୧ । ଠକାଇବା—
Dhapā(pe)ibā 1. To swindle; to deceive.
ধাপা দেওয়া ୨ । ଭଣ୍ଡିବା—2. To put off.
ଧପ୍ପା ମାରନା ୩ । ଆଖିରେ ଧୂଳି ପକାଇବା—
3. To throw dust over one's-eyes.
(ଧପା ଦେବା, ଧପ୍ପାଦେବା, ଧପା ମାରିବା, ଧପ୍ପା ମାରିବା, ଧପାଙ୍ଗିମାରିବା, ଧପ୍ପାଙ୍ଗି ମାରିବା, ଧପାଙ୍ଗି ବତା(ତେ)ଇବା, ଧପ୍ପାଙ୍ଗି ବତା(ତେ)ଇବା—ଅନ୍ୟରୂପ)

ଧପାଡ଼ି—ଦେ. ବିଣ.—୧ । ଭଣ୍ଡ; ପ୍ରତାରକ—
Dhapārḍi 1. Swindling; deceitful.
ধাপাবাজ ୨ । ଯେଉଁ ବ୍ୟକ୍ତି କୌଣସି କାର୍ଯ୍ୟ କରିବ କରିବ ବୋଲି କହି ବାହାନା କରେ—2. Putting off a matter on various excuses.
ଧପ୍ପାବାଜ

ଧପ୍ପାଡ଼ି, ଧପାଡ଼ିଆ; ଧପ୍ପାଡ଼ିଆ, ଧପାଦିଆ;
ଧପ୍ପାଦିଆ, ଧପାମରା, ଧପ୍ପାମରା, ଧପାବାଜ୍ } ଅନ୍ୟରୂପ

ଧପାବାଜ୍—ଦେ. ବିଣ—୧ । ପ୍ରତାରକ—
Dhapābāj 1. Fraudulent; deceitful.
(ଧପ୍ପାବାଜ୍, ଧପାଙ୍ଗି, ଧପ୍ପାଙ୍ଗି—ଅନ୍ୟରୂପ)
ধাপাবাজ, ଧପାବାଜ

ଧପାବାଜି—ଦେ ବି—ପ୍ରତାରଣା; ଠକାମି—
Dhapābāji Deceitfulness.
(ଧପ୍ପାବାଜି—ଅନ୍ୟରୂପ) କ ହୋ ପଣ୍ଡାଙ୍କୁ ଏ କ ଧପାବାଜି କଥା ?—
ধাপাবাজী ଦାନ୍ଦଲବାଜୀ, ଧପାବାଜୀ ଭିକାରୀଚରଣ. ସୌଭୁକ ।

ଧପାଳିବା—ଦେ. କ୍ରି (ସଂ. ଧାବ୍ ଧାତୁ)—ଦଉଡ଼ିବା—
Dhapālibā To run.
ধাওয়া, ଧପାଡ଼ନା; ଦୌଡ଼ନା

ଧବ—ସଂ. ବି. ପୁଂ (ଧୂ ଧାତୁ=କମ୍ପାଇବା+କର୍ତ୍ତୃ. ଅ)—୧ । ପତି;
Dhaba ସ୍ୱାମୀ—1. Husband.
୨ । ପ୍ରଭୁ—2. Lord; master.
୩ । ମନୁଷ୍ୟ—3. A man.
୪ । ଧୂର୍ତ୍ତ ବ୍ୟକ୍ତି—4. A knave; a cheat.
୫ । ଧଅ (ଗଛ) (ଦେଖ)—5. Dha-a (tree) (See)
(୧+୫)=ବଂଶପାଣି ଭଣି ଈଶାନ କଲେଣି ଏ ବନେ କି ବସା
ବୈଦେହୀ କହୁ ନ ବୁଝ କି ସେ ହୋଇ ଧବରେ ଏ ଭାଷା
ବୋଲେ ଲଙ୍କପତି ଏଥି ଗଡାଗଡ କରନ୍ତି ବୃଷ କି
କଣ୍ଠରେ କରନ ସ୍ୱସବନ୍ଧ ସେହି ଭାଷିତ ନାନକୀ ।
ଉଷ୍ଟ. ବୈଦେହୀଶବିଳାସ ।

୬ । (+ଭାବ. ଅ) କମ୍ପ—6. Quaking; trembling.

ଧବଳ—ସଂ. ବିଣ (ଧବ=କମ୍ପ+ଲା ଧାତୁ+କର୍ତ୍ତୃ. ଅ)—
Dhabaḷa ୧ । ଧଳା; ଶୁଭ୍ର; ଶ୍ୱେତ; ଶୁକ୍ଳ—1. White.
(ଧବଳା, ଧବଳୀ—ସ୍ତ୍ରୀ) ୨ । ଗୋରା—2. Fair-skinned; white skinned.
(ଧବଳତା, ଧବଳତ୍ୱ—ବି)
୩ । ଚକଚକିଆ ଧଳା—3. Dazzling white.
ସଂ. ବି—୧ । ଶ୍ୱେତବର୍ଣ୍ଣ; ଧଳାରଙ୍ଗ—1. White-colour.
୨ । ଶ୍ୱିତ୍ର; ଶ୍ୱେତକୁଷ୍ଠ—
2. White leprosy; leucoderma.
ଗୁରୁ କାମିନୀ ଯେତେବେଳେ ରତେ,
ଧବଳ ହୋଇ ମୃତ ହୁଏ । ଜଗନ୍ନାଥ. ଭାଗବତ ।
୩ । ଏକପ୍ରକାର କର୍ପୂର; ଚିନା କର୍ପୂର—
3. A kind of camphor.
୪ । ଶ୍ୱେତ ମରିଚ—4. White pepper.
୫ । ଧଳା ଷଣ୍ଢ—5. White bull.
୬ । ଶ୍ରେଷ୍ଠ ବୃଷ—6. An excellent bull.
୭ । ଧଅ (ଗଛ) (ଦେଖ)—7. Dha-a (tree) (See).
୮ । ଧଳା ପାରା (ହି. ଶବ୍ଦସାଗର)—
8. White pigeon.

୯ । ଅର୍ଜୁନ (ଗଛ) ( ଦ୍ର. ଶବ୍ଦସାଗର )—
9. Arjuna (tree) (See)
୧୦ । ରାଗିଣୀବିଶେଷ ( ଦ୍ର. ଶବ୍ଦସାଗର )—
10. Name of a secondary musical air in Hindu music.
[ଦ୍ର—ଭରତଙ୍କ ମତରେ ଏହା ହିନ୍ଦୋଳ ରାଗର ଅଷ୍ଟମ ପୁତ୍ର—(ହି. ଶବ୍ଦସାଗର) । ]
ଦେ. ବି—ପ୍ରାଚୀନ ଉତ୍କଳର ଏକ ଜାତି ଲୋକଙ୍କର ସଂଜ୍ଞା—
A title of a caste of people in ancient Utkal

**ଧବଳ କର**—ସଂ. ବି ( ବହୁବ୍ରୀହି; ଧବଳ+କର=କିରଣ )—ଚନ୍ଦ୍ର; ଇନ୍ଦୁ; ହିମାଂଶୁ—The moon.
Dhabaḷa kara
ବଳ ପ୍ରବଳ ମୋର ଧବଳକର ପ୍ରାୟେ ଉମ ପ୍ରାୟ କବଳ କର ସେ—
ଭକ୍ତ. ବୈଦେହୀଶବିଳାସ ।

**ଧବଳ କୁଷ୍ଠ**—ସଂ. ବି (ଧବଳ+କୁଷ୍ଠ)—ଶ୍ୱେତକୁଷ୍ଠ; ଧଳା ଛଉ—
Dhabaḷa kushṭha Leucoderma; white leprosy; albinism.

**ଧବଳ ଗିରି**—ସଂ. ବି (ଧବଳ+ଗିରି)—୧ । ହିମାଳୟ ପର୍ବତର ସର୍ବୋଚ୍ଚ ଶୃଙ୍ଗ—1. Name of the highest peak of the Himalayas (Apte).
Dhabaḷa giri
[ ଦ୍ର—ଏହି ଶୃଙ୍ଗ ନେପାଳ ରାଜ୍ୟରେ ଅବସ୍ଥିତ । ଏଥିର ଉଚ୍ଚତା ପ୍ରାୟ ୨୭ ହଜାର ଫୁଟ । ]
୨ । ଶ୍ୱେତ ପର୍ବତ—2. A white mountain.
ଦେ ବି—ଧଉଳି ଗିରି (ଦେଖ)—Dhauḷi giri (See)

**ଧବଳ ପକ୍ଷ**—ସଂ. ବି (କର୍ମଧା, ଧବଳ+ପକ୍ଷ)—୧ । ଚାନ୍ଦ୍ରମାସର ଶୁକ୍ଳପକ୍ଷ—
Dhabaḷa paksha 1. The bright fortnight of a lunar month.
୨ । ଧଳା ପର—2. White feather.
୩ । (ବହୁବ୍ରୀହି; ଧବଳ ପକ୍ଷ ଯାହାର) ଧଳା ହଂସ
3. Swan; white-winged gander.

**ଧବଳମୟ(ୟେ)**—ସ୍ତ୍ରୀ. (ପ୍ରାଚୀନ) ବିଣ—ଧବଳ (ଦେଖ)
Dhabaḷamaya.ye) Dhabaḷa (See)
ଧବଳମୟେ ବସ୍ତ୍ରହ ମହାନନ୍ଦେ ଛିନ୍ତ—ପ୍ରାଚୀ. ବ୍ରହ୍ମଚନ୍ଦ୍ରପଣଗୀତା ।

**ଧବଳମୟ ପୁର(ରୀ)**—ଦେ. ବି ( ସଂ. ଧବଳ+ପୁର; +ପୁରୀ )—
Dhabaḷamaya pura(rī) ଅଟ୍ଟାଳିକାମୟ ସ୍ଥାନ—(କୋଠାମାନ ଚୂନ ବୋଳାହୋଇ ଧବଳିତ ହୋଇଥିବାରୁ)—
धौराहर
A place full of (white) buildings or palaces.
(ଯଥା—ମୋ ଦ୍ୱାରରେ ବନାଜେବେ ରାଜ୍ୟର ଭାର ପଡ଼ିଲେ ମୁଁ ଏ ସ୍ଥାନକୁ ଧବଳମୟ ପୁରୀ କରେଇ ଦେଅନ୍ତି । )

**ଧବଳ ମୃତ୍ତିକା**—ସଂ. ବି. ସ୍ତ୍ରୀ (ଧବଳ+ମୃତ୍ତିକା)—୧ । ଚକ୍ ଖଡ଼ି—
Dhabaḷa mruttikā 1. Chalk.
୨ । ଖଡ଼ିଆ ମାଟି—2. Chalky soil.

**ଧବଳା**—ସଂ. ବି. ସ୍ତ୍ରୀ (ଧବଳ+ଆ)—ଧଳା ଗାଈ—
Dhabaḷā A white cow.
ସଂ. ବିଣ. ସ୍ତ୍ରୀ—ଧବଳର ସ୍ତ୍ରୀଲିଙ୍ଗ—
Feminine of Dhabaḷa..
ଦେ. ବିଣ (ସଂ. ଧବଳ)—ଧବଳ; ଧଳା—White.
ଦେଖ ଦେଖ ଗୋ ସ୍ୱଜର ଗଳା,
ସେ ତ କସ୍ତୁର ପ୍ରାୟେ ଧବଳା—ପ୍ରାଚୀ. ରହସ୍ୟମଞ୍ଜରୀ ।

**ଧବଳାଙ୍ଗ**—ସଂ. ବିଣ. ପୁଂ (ବହୁବ୍ରୀହି; ଧବଳ+ଅଙ୍ଗ)—ଯାହାର ଶରୀର ଧଳା—Having a white body.
Dhabaḷāṅga
(ଧବଳାଙ୍ଗୀ—ସ୍ତ୍ରୀ) ସଂ. ବି—ହଂସ—Swan

**ଧବଳିତ**—ସଂ. ବିଣ (ଧବଳ+ଯୁକ୍ତାର୍ଥେ. ଇତ)—୧ । ଶୁକ୍ଳୀକୃତ—
Dhabaḷita 1. Whitened.
(ଧବଳିତା—ସ୍ତ୍ରୀ) ୨ । ଶୁଭ୍ରୀଭୂତ—2. Brightened.

**ଧବଳିବା**—ଦେ. କ୍ରି—ଧଉଳିବା (ଦେଖ)
Dhabaḷibā Dhauḷibā (See)
धवलाना

**ଧବଳିମା**—ସଂ. ବି ( ଧବଳ+ଭାବାର୍ଥେ. ଇମନ୍; ୦ମା. ୧ବ )—
Dhabaḷimā ୧ । ଶୁକ୍ଳତା—1 Whiteness.
୨ । ରକ୍ତହୀନତା ଯୋଗୁଁ ଶରୀରର ପାଣ୍ଡୁରତା—
2. Paleness of the skin due to bloodlessness.

**ଧବଳୀ**—ସଂ. ବି. ସ୍ତ୍ରୀ (ଧବଳ+ସ୍ତ୍ରୀ. ଈ)—୧ । ଧଳା ଗାଈ—
Dhabaḷī 1. White cow.
୨ । ଏକ ରୋଗ, ଯହିଁରେ ବାଲ ଧଳା ହୋଇଯାଏ (ହି.ଶ.)—
2. A disease turning the hair grey.
୩ । ଧଳା ମରିଚ—3. White pepper.

**ଧବଳୀକୃତ**—ସଂ. ବିଣ (ଧବଳ+ଅଭୂତ ତଦ୍ଭାବେ ଚ୍ୱି+କୃତ)—
Dhabaḷīkṛuta ଯାହା ପୂର୍ବେ ଧଳା ହୋଇ ନ ଥିଲା ପରେ ଧଳା କରି ଯାଇଅଛି—Made white; whitened.
(ଧବଳୀକୃତା—ସ୍ତ୍ରୀ)
(ଧବଳୀକରଣ—ବି)

**ଧବଳୀଭୂତ**—ସଂ. ବିଣ ( ଧବଳ+ଅଭୂତ ତଦ୍ଭାବେ ଚ୍ୱି+ଭୂତ )—
Dhabaḷībhūta ଯାହା ପୂର୍ବେ ଧଳା ହୋଇ ନ ଥିଲା ପରେ ଧଳା ହୋଇଅଛି—Turned white.
(ଧବଳୀଭୂତା—ସ୍ତ୍ରୀ)
(ଧବଳୀଭାବ—ବି)

**ଧବଳୀ ଶ୍ୟାମଳୀ**—ସ ବି. ସ୍ତ୍ରୀ ( ଦ୍ୱନ୍ଦ୍ୱ, ଧବଳୀ+ଶ୍ୟାମଳୀ )—ଶ୍ରୀକୃଷ୍ଣଙ୍କ ଚରାଉଥିବା ଧଳା ଗାଈ ଓ କଳା ଗାଈ—
Dhabaḷi syāmaḷi
The white and black cows tended by Śrikrushṇa.

**ଧବଳେଶ୍ୱର**—ଦେ. ବି. ( ସଂ. ଧବଳ+ଈଶ୍ୱର )—କଟକ ନଗରଠାରୁ ମହାନଦୀ ଗର୍ଭସ୍ଥ ଆଠଗଡ଼ ରାଜ୍ୟର ଗୋଟିଏ ପାହାଡ଼ର ଉପରେ ଥିବା ଶିବଲିଙ୍ଗ—
Dhabaḷeśwara
ଧବଳେଶର, ଧବଳେଶର, ଧବଳେଶ୍ୱର } ଅନ୍ୟରୂପ
Name of an idol (Śiba) situated on a hillock on the bed of the Mahānadi river to the north-west of the town of Cuttack.

[ ଦ୍ର—ଏହା ଆଠଗଡ଼ ରାଜ୍ୟର ଅନ୍ତର୍ଗତ । ଏ ସ୍ଥାନଟି ଅତି ମନୋହର । ପ୍ରବାଦ ଅଛି ଯେ କୌଣସି ଭକ୍ତର ଆର୍ତ୍ତି ଡାକ ଶୁଣି ଏହି ଠାକୁର କଳା ବଳଦକୁ ଧଳା କରିଦେଇ, ତାହାଙ୍କୁ ଆସନ୍ନ ବିପଦରୁ ରକ୍ଷା କରିଥିଲେ । କାର୍ତ୍ତିକପୂର୍ଣ୍ଣିମା ସମୟରେ ଏଠାରେ ବହୁସହସ୍ର ଉତ୍କଳୀୟ, ବିଶେଷତଃ କଟକ ଜିଲ୍ଲା ଓ ଗଡ଼ଜାତର, ଯାତ୍ରୀ ଏକତ୍ର ହୋଇ ବଡ଼ଓଷା ବ୍ରତ କରନ୍ତି । ଏହାଙ୍କ ଉଦ୍ଦେଶ୍ୟରେ କଟକ ଜିଲ୍ଲାର ମଫସଲରେ ମଧ୍ୟ 'ବଡ଼ଓଷା' ବ୍ରତ କରାଯାଏ । 'ବଡ଼ଓଷା'ର ପ୍ରସାଦ ମଣ୍ଡା ଓ ଖିରିସା । ଏଠାରେ କବିବର ରାଧାନାଥଙ୍କ ପୁତ୍ର ଶଶିଭୂଷଣଙ୍କର ଖଣ୍ଡିଏ ସୁନ୍ଦର କୁଟୀର ଅଛି । ]

**ଧବଳୋତ୍ପଳ**—ସଂ. ବି (ଧବଳ+ଉତ୍ପଳ)—ଧଳା କଇଁ—
Dhabalotpala — White water-lily.

**ଧବାଣକ**—ସଂ. ବି (ଧୂ ଧାତୁ=କମ୍ପିତ ହେବା+କରଣ. ଆନ+କ)—
Dhabānaka — ପବନ—Wind (Apte).

**ଧବିତ୍ର**—ସଂ. ବି. (ଧୂ ଧାତୁ=କମ୍ପିବା+କରଣ. ଇତ୍ର)—
Dhabitra — ୧ । ମୃଗଚର୍ମର ପଙ୍ଖା—1. A fan made of deer-skin.
୨ । ତାଳପତ୍ରର ପଙ୍ଖା—2. A palm-leaf fan.
ସଂ. ବିଣ. (ଧୂ ଧାତୁ+କର୍ତ୍ତୃ. ଇତ୍ର)—ଅପନୟନକାରକ—Removing

**ଧବୁଡ଼ା**—ଦେ. ବି. (ସଂ. ଧାବ୍ ଧାତୁ)—ଧଉଡ଼; ଦଉଡ଼—
Dhaburdā — Running.

**ଧବୁଡ଼ା(ଡ଼େ)ଇବା**—ଦେ. କ୍ରି. (ସଂ. ଧାବ୍ ଧାତୁ)—ଧବୁଡ଼ିବାର
Dhaburdā(rde)ibā ଣିଜନ୍ତରୂପ—Causative of Dhaburdibā.
(ଧବୁଡ଼େଇବା—ଅନ୍ୟରୂପ)

**ଧବୁଡ଼ିବା**—ଦେ. କ୍ରି. (ସଂ. ଧାବ୍ ଧାତୁ)—ଦଉଡ଼ିବା—
Dhaburdibā — To run.
ଦୌଡ଼ା **ଧପନା**

**ଧ ବୋଇଲେ ମାଡ଼ି ବସୁଛି**—ଦେ. (ବ୍ୟଙ୍ଗ୍ୟ ବାକ୍ୟ)—ଧଅ ବୋଇଲେ
Dha boile mārdi basuchhi — କାମୁଡ଼ି ପକାଉଛି (ଦେଖ)
(ଧଅ ବୋଇଲେ ମାଡ଼ି ବସୁଛି—ଅନ୍ୟରୂପ) Dha-a boile Kāmurdi pakāuchhi (See)

**ଧମ୍ନା**—ପ୍ରାଦେ. (ସମ୍ବଲପୁର)—ଧମଣା (ଦେଖ)
Dham-nā — Dhamanā (See)

**ଧମ**—ସଂ. ବି. (ଧ୍ମା ଧାତୁ=ଶବ୍ଦ କରିବା, ଅଗ୍ନି ସଂଯୋଗ କରିବା+କର୍ତ୍ତୃ. ଅ)—
Dhama
୧ । କମାରଶାଳରେ ଯେ ଭାତି ଚାଏ—
1. One who blows the bellows.
୨ । ଯେ ଅଗ୍ନି ସଂଯୋଗ କରେ; ଯେ ନିଆଁ ଲଗାଏ—
2. One who kindles a fire.
୩ । ଶବ୍ଦ ଉତ୍ପାଦନକାରୀ ବ୍ୟକ୍ତି—
3. One who produces or makes a sound.
ଦେ. ବିଣ. (ସଂ. ଅଧମର ବିପରୀତ)—ଉତ୍ତମ ବ୍ୟକ୍ତି—
A good person.

ଜାଣି ପଗ୍ଗରେ-ଧମ; ନ ଜାଣି ନ ପଗ୍ଗରେ ଅଧମ—ପ୍ରବଚନ ।

**ଧମକ୍**—ଦେ. ବି—ଧମକ (ଦେଖ)
Dhamak — Dhamaka (See)
ପ୍ରାଦେ. (ସମ୍ବଲପୁର) ବି—ଗାଳି—Abuse.

**ଧମକ୍ ଦେବା**—ପ୍ରାଦେ. (ସମ୍ବଲପୁର) କ୍ରି—ଧମକାଇବା (ଦେଖ)
Dhamak debā — Dhamakāibā (See)

**ଧମକ**—ସଂ. ବି. (ଧ୍ମା ଧାତୁ+କର୍ତ୍ତୃ. ଅକ)—କମାର—
Dhamaka — Black-smith.
ଧମକ ଦେ. ବି. (ସଂ. ଧ୍ମା ଧାତୁ=ଶବ୍ଦ କରିବା)—
ଧମକୀ, ଧମକ ୧ । ତର୍ଜନ; ଭୟ ପ୍ରଦର୍ଶନ—1. Threat
ଧମକ ଛୁରଣ ହୁଅନ୍ତେ ତରୁଣ
ତରଣି ଅନ୍ୟକୁ ନ ଲଭ ଶରଣ ଗୋ—କବିସୂର୍ଯ୍ୟ, ସଙ୍ଗୀତ ।
୨ । ଦମଦମ ହେବା, ଧକଧକ ହେବା—2. Throbbing.
୩ । ଛାତି ଦମଦମ; ହୃତ୍‌କମ୍ପ—
3. Palpitation of the heart.
୪ । ଅଧିକାରପତ୍ର; ହୁକୁମନାମା—
4 Order, order-slip
୫ । ଖୁବ୍ ଜୋର୍—5. Great force.
ଦେ. ଅ. (ସବାରି ବେହେରାମାନଙ୍କ ଡାକ)—ବାଟରେ ଆଗରେ ଗର୍ତ୍ତ ଅଛି—(a halloo of palki-bearers) There is a pit on the road.

**ଧମକ ଚମକ**—ଦେ ବି—୧ । ତର୍ଜନ ଗର୍ଜନ—
Dhamaka chamaka 1 Loud threats.
(ଧମକା ଚମକା—ଅନ୍ୟରୂପ) ୨ । ବହୁ ଭର୍ତ୍ସନା—
ଧମକଚମକ 2. Scolding; a shower of rebuke.
**ଧମଗଜର**

**ଧମକଧମା**—ଦେ. ବି—୧ । ଧମକାଣ—
Dhamakadhamā 1. Threatening.
ଧମକୀ ୨ । ଆଡ଼ମ୍ବର ଦେଖାଇବା—2. Making ado.
୩ । (ସବାରି ଗଉଡ଼ଙ୍କ ଡାକ) ଅସମତଳ ବା ଗର୍ତ୍ତମୟ କଷ୍ଟପ୍ରଦ ମାର୍ଗ ପ୍ରତି ଲକ୍ଷ୍ୟ କରି ବେହେରାମାନଙ୍କ ଡାକ—
3. A halloo of palki-bearers indicating that the road is very uneven or full of pits.

**ଧମକ ଧମା(ମେ)ଇବା**—ଦେ. କ୍ରି. (ତୁଳନାକର, ହି. ଦମକ=
Dhamaka dhamā(me)ibā ଝିକ୍‌ମିକ୍)—୧ । ଚମକାଇବା—
ଚମକାନ; ଧପଧପକବା 1. To cause to wince.
ଧମକନା ୨ । ଚମକ ବା ଗୁଣ୍ଡଚକ୍ୟ ଦେଖାଇବା—
2 To glitter.
୩ । ଅଙ୍ଗ ପ୍ରତ୍ୟଙ୍ଗ ସଞ୍ଚାଳନ କରିବା—3. To show one's self off to advantage by moving the limbs
୪ । ଆଡ଼ମ୍ବର ଦେଖାଇବା—4. To make ado.
୫ । (ଧ୍ୱନ୍ୟନୁକରଣ) ଅଳଙ୍କାରବର ଝମ ଝମ ଶବ୍ଦ କରିବା; ଗୁଣ୍ଡଚକ୍ୟ ଦେଖାଇ ଚାଲିବା—5 To walk by producing tinkling sound of the ornaments or by showing off one's graces.

ଧମଶା ଧମକ ଚମେରଇ
ସାଙ୍ଗ ନାକରେ କାହିଁ ଘୃଣା ମାରି ପକେଇଲା । ଇତି ।

ଧମକରେ ରହିବା—ଦେ. କ୍ରି—୧ । ଭୟତ୍ରସ୍ତ ହେବା—
Dhamakare rahibā 1. To be frightened.
धमकीमें आना ୨ । ଧମକ ହୋଇ ଅଧୀନତା ସ୍ୱୀକାର କରିବା—
2. To be coerced by one's threats.

ଧମକା—ଦେ. ବି. (ସଂ. ଧ୍ମା ଧାତୁ=ଶବ୍ଦ କରିବା)—ଧମକ (ଦେଖ)
Dhamakā Dhamaka (See)

ଧମକା(କେ)ଇବା—ଦେ. କ୍ରି. (ସଂ. ଧ୍ମା ଧାତୁ=ଶବ୍ଦ କରିବା)—
Dhamakā(ke)ibā ୧ । ପ୍ରହାରାଦିର ଭୟଦେଖାଇବା—
ଧମକଦେବା } ଅନ୍ୟରୂପ 1. To threaten.
ଧମକବାଢ଼ିବା ୨ । ଗାଳି ଦେବା—
शासान, धमकान 2. To rebuke; to scold.
धमकाना ୩ । ଡରାଇବା—3. To frighten.
ଧୂଳିଭର ସେ ଅଙ୍ଗେ, ଧରିଥିଲୁ କେହି ସଙ୍ଗେ,
ଧମକାଇଲା କାହିଁ କି ବଳ ଲଜ । କବିସୂର୍ଯ୍ୟ. ବଳରାମଦାସଙ୍କ ଗୀତ ।
୪ । (ଲକ୍ଷଣାର୍ଥ) ଲୋପ କରାଇବା—
4. (fig) To cause to disappear.
ଧୂଳିକି ଭୂ ସିନା ଧମକାଇ କାଣୁ । କବିସୂର୍ଯ୍ୟ. ସଙ୍ଗୀତ ।

ଧମକାଣ—ଦେ. ବି. (ସଂ ଧ୍ମା ଧାତୁ=ଶବ୍ଦ କରିବା)—
Dhamakāṇa ୧ । ତର୍ଜନ; ତର୍ଷଣ—1 Threatening,
धमकान ୨ । ଛରସ୍କାର—2. Abuse; snubbing.
धमकी

ଧମକା ଧମକି—ଦେ. ବି—୧ । ଧମକ ଚମକ (ଦେଖ)
Dhamakā dhamaki 1. Dhamaka chamakā (See)
ଧମକଚମକ ୨ । ପରସ୍ପର ପ୍ରତି ଧମକାଣ—
धमकाधमकी 2. Mutual threatening,

ଧମକିବା—ଦେ. କ୍ରି (ଧ୍ୱନ୍ୟନୁକରଣ)—୧ । ଧଡ଼ିକିବା; ଦମଦମ ହେବା—
Dhamkibā 1. To throb; to palpitate.
धड़धड़करा; दपादपकरा (ଯଥା—ମୋ ଛାତି ଧମକୁଛି ।)
धमकना ୨ । ବ୍ୟଥା କରିବା; ବଥାଇବା; ବ୍ୟଥାସହ ଶିର
ପ୍ରଭୃତିର ପଡ଼ିବା ଉଠିବା—2. To throb
with aching.
(ଯଥା—ମୋ ମୁଣ୍ଡ ଧମକୁଛି ।)
୩ । ଭୟତ୍ରସ୍ତ ହେବା—3. To be alarmed or
frightened; to be panic-struck (Howells).

ଧମଧମ୍—ଦେ. ଅ. (ଧ୍ୱନ୍ୟନୁକରଣ)—ଧମ୍‌ଧମ୍ ଶବ୍ଦ କରି; ଦମଦମ—
Dhamadham With thumping sounds.
धमधम [illegible]
[illegible]

[illegible] କାର୍ତ୍ତିକଙ୍କ ଗଣ-
[illegible] class of attendants of
Kārttikeya.

ଧମନ—ସଂ. ବି. (ଧ୍ମା ଧାତୁ=ଶବ୍ଦ କରିବା; ଫୁଙ୍କିବା+କରଣ. ଅନ)—
Dhamana ୧ । ନଳ—1. A pipe; a tube.
୨ । ଭାଥି—2. Bellows.
୩ । (+ଭାବ ଅନ) ପବନ ଫୁଙ୍କିବା କର୍ମ—
3. Act of blowing wind.
୪ । (+କର୍ତ୍ତୃ. ଅନ) ନଳ; କାଣ୍ଡଶର—
4. A kind of reed.
୫ । ଯେ କମାରଶାଳରେ ଭାଥି ଚାପେ—
5. One who blows the bellows in a blacksmith's forge.
ସଂ. ବିଣ—କ୍ରୂର—Cruel.

ଧମନି(ନୀ)—ସଂ ବି.ସ୍ତ୍ରୀ (ଧ୍ମା ଧାତୁ=ଶବ୍ଦ କରିବା+କର୍ତ୍ତୃ. ଅନ+ଇ)—
Dhamani(nī) ୧ । ନଳ—1. A pipe, a tube.
୨ । ଶିରା; ନାଡ଼ୀ—2. Artery; vein.
୩ । ଗଳା—3. Throat.
୪ । ଲେମଣୀ; ବେଶ୍ୟା—4. Prostitute.
୫ । ହଳଦୀ; ହଳଦୀ—5. Turmeric.

ଧମାଧମ୍—ଦେ. ଅ (ଧ୍ୱନ୍ୟନୁକରଣ)—୧ । ଧମ୍ ଧମ୍ ଶବ୍ଦ କରି—
Dhamādham 1. With thumping sounds
दमादम ୨ । ଉପର୍ଯ୍ୟୁପରି ଧମ ଧମ ଶବ୍ଦ ପୂର୍ବକ—
धमाधम 2. Producing repeated thumping sounds.
୩ । ଅତି ଶୀଘ୍ର; ଖୁବ୍ କାର୍ଯ୍ୟବ୍ୟସ୍ତତା ସହକାରେ; ତ୍ୱରିତ—
3. In a hurry; in haste.
(ଯଥା—କାରଖାନାରେ ଦିନ ରାତି କାମ ଧମାଧମ୍ ଚାଲିଛି ।)
୪ । ଖୁବ୍ ଗୋଳମାଳ ସହିତ—
4 With bustle; with a great noise;
with much ado

ଧମ୍ମିଲ୍ଲ—ସଂ. ବି. ( ଧମ୍=ଊର୍ଦ୍ଧ୍ୱ ବା ମୂର୍ଦ୍ଧା+ମିଲ୍ ଧାତୁ=ମିଳିତ
Dhammilla ହେବା+ସଜ୍ଞାର୍ଥେ ଲ; ଯାହା ମୁଣ୍ଡ ଉପରେ ଏକତ୍ର
ମିଳିତ ହୁଏ )—ମନୋହରରୂପେ ମୁକ୍ତା ଓ ପୁଷ୍ପାଦି ଦ୍ୱାରା
ଅଲଙ୍କୃତ ଆବଦ୍ଧ କେଶପାଶ; ଜୂଡ଼ା; ଖୋପା; ଖୋସା;
ସଂଯତ କେଶକଳାପ; ଫାଶଗଣ୍ଠି—
Chignon; the hair of the head tied into
a very beautiful knot; coiffure of hair.

ଧମ୍ମିଲ୍ଲବନ୍ତ—ଦେ. ବିଣ. ( ଧମ୍ମିଲ୍ଲ+ବନ୍ତ )—
Dhammillabanta ପୁଷ୍ପାଦି ମଣ୍ଡିତ କେଶପାଶ ଥିବା (ବ୍ୟକ୍ତି)—
(man) With a coiffure of hair.
କେହୁ କାହିଁ କେଞ୍ଚିତ ଧମ୍ମିଲ୍ଲବନ୍ତ ହେ, କରିବାକୁ ଏ ନାଳ କଣ୍ଠେ ଲମ୍ବିତ ।
ଗୋପକୃଷ୍ଣ. ଭଜନ ଶ୍ଳୋକ ।

ଧର୍‌ବା—ପ୍ରାଦେ. (ଗଡ଼ଜାତ; ସମ୍ବଲପୁର) କ୍ରି—ଆଣିବା—
Dhar-bā To bring.

ଧର୍‌ମାର୍—ଦେ. ବି—ମାରଧର; ପ୍ରହାର—
Dhar-mār Beating.
मारधर

ଧର୍‌ଶା—ପ୍ରାଦେ. ( ସମ୍ବଲପୁର ) ବି—୧ । ରାସ୍ତା; ପଥ—
Dhar-sā 1. Road.
୨ । ଗ୍ରାମର ସର୍ବସାଧାରଣ ରାସ୍ତା—
2. The public road of a village.

**ଧର୍ଷା ଢୁଲି**—ପ୍ରାଦେ. ( ସମ୍ବଲପୁର ) ବି—
Dharṣā ḍuli ରାସ୍ତାକୁ ଲାଗିଥିବା କ୍ଷେତ—
A corn-field or plot of land adjoining a road

**ଧର୍ଷଣ(ଶା)ରଣା**—ଦେ.ବି—ଅପରିବର୍ତ୍ତନୀୟ ବା କଠୋର ନିୟମ; ଧରାବନ୍ଧା
Dhar-ṣa(ṣā)raṇā ନିୟମ—Hard and fast rule.
ধরাবাঁধা নিয়ম ( ଯଥା—ତହସିଲଦାରମାନଙ୍କଠାରୁ କାଗଜପତ୍ର
ठिकाना, ठहराव ବୁଝିବାରେ ତାଙ୍କର କିଛି ଧର୍ଷଣରଣା ନାହିଁ ।)

**ଧର**—ସଂ. ବି. ( ଧୃ ଧାତୁ=ଧାରଣ କରିବା+କର୍ତ୍ତୃ. ଅ )—
Dhara ୧ । ପର୍ବତ—1. Mountain
ବନ୍ଧ୍ୟ ଧରେ । ବସୁ ଭାର ଉପମା ଧରେ ।
ଉଛ. ବୈଦେହୀଶବିଳାସ ।
୨ । କପା—2. Cotton
୩ । ଗର୍ଭ; ଜରାୟୁ—3. Uterus.
୪ । ଧଡ଼; ଶରୀର—4. Body.
୫ । କବନ୍ଧ—5. Headless trunk.
୬ । ବେକ ତଳୁ ଅଣ୍ଟା ପର୍ଯ୍ୟନ୍ତ ବାହୁହୀନ ଶରୀରାଂଶ—
6. Part of the body from the neck to the waist without the arms
୭ । କୂର୍ମରାଜ; ବିଷ୍ଣୁଙ୍କର କଚ୍ଛପାବତାର—
7. The second incarnation of Bishṇu in the shape of a tortoise.
୮ । ଅଷ୍ଟାବସୁ (ଦେବତା)ମାନଙ୍କ ମଧ୍ୟରୁ ଏକତମ—
8. Name of one of the Basu class of Deities
୯ । ବ୍ରାହ୍ମଣମାନଙ୍କ ଗୋତ୍ରୋପାଧିବିଶେଷ—
9 Family-title of some Brāhmaṇas
( ଯଥା—ଧରଶର୍ମା, ଧର ଗୌତମ । )
୧୦ । ବ୍ୟଭିଚାରୀ ପୁରୁଷ; ବିଟ ( ଦ୍ର. ଶବ୍ଦସାଗର )—
10. An adulterer.
ସଂ. ବିଣ. ତ୍ରି°—ଧାରଣ କର୍ତ୍ତା; ଯେ ଧାରଣ କରେ—
Holding; bearing; that which holds or sustains.
[ ଦ୍ର—ଅନ୍ୟ ଶବ୍ଦ ସଙ୍ଗେ ବ୍ୟବହୃତ । ଯଥା—ଭୂଧର, ଜଳଧର, ଧନୁର୍ଦ୍ଧର । ]
ଦେ. ବି—୧ । (ପ୍ରାଚୀନ) (ସଂ. ଅଧର)ଅଧର—Lip.
ବେନି ଅବଲୋକ ଧର ସୁଧା ପାନ କରି । ପ୍ରାଚୀ. ରସବାରିଧି ।
୨ । ଯେ ଗିରଫ କରେ, ଧରିବା ବ୍ୟକ୍ତି—
2 One who catches or arrests..
ଅପେ ଚୋର ଅପେ ଧର ଅପେ ଡାକୁଥାଇ ।
ପ୍ରାଚୀ. ବିହ୍ୱଳକୃଷ୍ଣଗୀତା ।

**ଧରଣ**—ସଂ. ବି. ( ଧୃ ଧାତୁ=ଧାରଣ କରିବା+ଭାବ. ଅନ )—
Dharaṇa ୧ । ଧାରଣ—1. Holding.
ଚନ୍ଦ୍ରାଧର ଶୁଷ୍କ ଧରଣ ଧରନ୍ତେ ନାହିଁ ଏହି ଉଦ୍ଦେଶ୍ୟ ନିଲେ ।
ଉଛ. ବୈଦେହୀଶବିଳାସ ।
୨ । ଢଙ୍ଗ; ରୀତି; ପଦ୍ଧତି—
2. Manner; style; fashion.
୩ । ପ୍ରଥା—3. Custom.
୪ । ଆକାର; ପ୍ରକୃତି—4 Shape.
୫ । ଓଜନ ପରିମାଣବିଶେଷ—
5. Name of a standard weight.
[ ଦ୍ର—ଏହାକୁ କେହି ୨୪ ରତି, କେହି ୧୦ ପଳ, କେହି ୧୬ ମଷା, କେହି ½ କର୍ଷ, କେହି ୧୬ କର୍ଷାବ କହନ୍ତି । ଦ୍ର. ଶବ୍ଦସାଗର । ]
୬ । ସୂର୍ଯ୍ୟ—6. The sun.
୭ । ହିମାଳୟ ପର୍ବତ—7. The Himalayas.
୮ । ସ୍ତନ—8. Female breast; mamma.
୯ । ଅବଲମ୍ବନ—9. A support; a prop.
୧୦ । ସେତୁ; ପୋଲ—10 Bridge; dam
୧୧ । ଧାନ୍ୟ—11. Paddy
୧୨ । ଲୋକ; ସଂସାର—12. The world.
୧୩ । ନାଗବିଶେଷ—
13. Name of a mythological serpent.
୧୪ । ପ୍ରକୃତି—14. Nature
।—ଦେ. ବି. ( ସଂ. ଧାରଣ )—
Dharaṇā ୧ । ଧାରଣା, ଠିଅ, ଠେକ—
ठेक 1. A support; a prop.
धरन ୨ । କୌଣସି ବ୍ୟକ୍ତିର ଦୁଆରେ କୌଣସି ଉଦ୍ଦେଶ୍ୟପାଇଁ ଜିଦ ଧରି ବସି ରହିବା—2. Dunning; picketing.
ধন্না ধরনা ୩ । ଠାକୁରଙ୍କ ପାଖେ ଅଧିଆ ପଡ଼ିବା; ଉପବାସ ରହି
धरना ଅନୁସରଣ କରିବା—3 Lying prostrate before a Deity till one's prayer is granted.

**ଧରଣା ପଡ଼ିବା**—ଦେ. କ୍ରି.—୧ । ଧାରଣା ଦେବା; ଅଧିଆ ପଡ଼ିବା—
Dharaṇā paḍibā 1 To lie prostrate before a
ধরনা দেওয়া Deity without taking food so
धरना देना long as one's prayer is not
(ଧରଣା ଦେବା—ଅନ୍ୟରୂପ) granted.
୨ । କୌଣସି ବ୍ୟକ୍ତିଙ୍କ ନିକଟରେ ଏକାଗ୍ରଭାବରେ ଅନୁସରଣ କରି ପଡ଼ି ରହିବା—2. To attend upon a person till one's prayer is granted; to picket.

**ଧରଣି(ଣୀ)**—ସଂ. ବି. ସ୍ତ୍ରୀ. (ଧୃ ଧାତୁ=ଧରିବା+କର୍ତ୍ତୃ. ଅନ;+ଈ);
Dharaṇi(ṇi) ଯେ ପ୍ରାଣୀମାନଙ୍କୁ ଧାରଣ କରିଅଛି)—୧ । ପୃଥିବୀ—
1. The earth.
୨ । ଭୂମି—2. Ground.
୩ । ଶିମିଳି ଗଛ—3 The silk-cotton tree.
୪ । ନାଡ଼ୀ; ଶିରା—4. Artery.
୫ । କନ୍ଦଅଳୁ—5. A bulbuous sweet edible root.
୬ । ପ୍ରାଚୀନ ଭାରତର ଅର୍ଣ୍ଣବପୋତବିଶେଷ—
6. Name of a kind of ship used in ancient India.

[ଦ୍ର—ଭୋଳନାଥଙ୍କ ପ୍ରଣୀତ "ସ୍ଵଲ୍ପକଳ୍ପତରୁ" ପୁସ୍ତକ ଅନୁସନ୍ଧେୟ । ଜଗବନ୍ଧୁ. ପ୍ରାଚୀନଉତ୍କଳ. ।]

**ଧରଣୀ ତଳ**—ସଂ. ବି.—(୬ଷ୍ଠୀ ତତ୍; ଧରଣୀ+ତଳ)—୧ । ଭୂତଳ; ଧରାତଳ; ଭୂଇଁ ତଳ—
Dharaṇi taḷa
(ଧରଣୀତଳ—ଅନ୍ୟରୂପ) 1. The surface of the earth.
୨ । ଅନାବୃତ ଭୂମି—2. Bare ground.

**ଧରଣୀ ଦେବ**—ସଂ. ବି. (୬ଷ୍ଠୀ ତତ୍; ଧରଣୀ+ଦେବ)—ବ୍ରାହ୍ମଣ—
Dharaṇi deba A Brāhmaṇa
(ଧରଣୀଦେବ—ଅନ୍ୟରୂପ) ଧରଣୀଦେବଙ୍କ ଚରଣ ରଜ,
ଶିରେ ସେନବା ଯେବେ ହେବ ଲଜ ।
କବିସୂର୍ଯ୍ୟ, ସଙ୍ଗୀତ ।

**ଧରଣୀଧର**—ସଂ. ବି. (ଧରଣୀ+ଧୃ ଧାତୁ=ଧରିବା+କର୍ତ୍ତୃ. ଅ)—
Dharaṇidhara ୧ । ପର୍ବତ—1. Mountain
(ଧରଣୀଧର—ଅନ୍ୟରୂପ) ୨ । ଅନନ୍ତ; ବାସୁକୀ—
2. Bāsuki; the great serpent said to bear the earth on its head.
୩ । କୂର୍ମଶୁକ; ବିଷ୍ଣୁଙ୍କ ଦ୍ଵିତୀୟ ଅବତାର—
3. The second (tortoise) incarnation of Bishṇu
୪ । ମହାବରାହ; ବିଷ୍ଣୁଙ୍କ ତୃତୀୟ ଅବତାର—
4. The third (boar) incarnation of Bishṇu
୫ । ଶିବ; ମହାଦେବ—5. Śiba.
୬ । (ପୃଥିବୀକୁ ଧାରଣ କରିଥିବାରୁ) ବିଷ୍ଣୁ—6 Bishṇu.
୭ । ରାଜା; ଭୂପତି—7. King.
ଦେ. ବି. ପୁଂ.—ଲୋକଙ୍କ ନାମ—
A name given to males.

**ଧରଣୀ କୀଳକ**—ସଂ. ବି. ପୁଂ. (ଧରଣୀ+କୀଳକ=ଶଙ୍କୁ)—ପର୍ବତ—
Dharaṇi kiḷaka Mountain.
(ଧରଣୀକୀଳକ—ଅନ୍ୟରୂପ)

**ଧରଣୀଧର ମିଶ୍ର**—ଦେ. ବି. (ନାମ)—ଉତ୍କଳର ଜନୈକ ପ୍ରାଚୀନ କବି—
Dharaṇidhara misra An ancient poet of Utkaḷa.
[ଦ୍ର—ଏ ଜୟଦେବ ଗୋସ୍ଵାମୀଙ୍କ କୃତ ସଂସ୍କୃତ 'ଗୀତଗୋବିନ୍ଦ' ଓଡ଼ିଆରେ ପଦ୍ୟାନୁବାଦ କରିଥିଲେ । ତାରିଣୀ—ଉତ୍କଳସାହିତ୍ୟର ଇତିହାସ । ଏ ୩୪୦ ବର୍ଷ ପୂର୍ବେ ଜୀବିତ ଥିଲେ ।
ଜଗବନ୍ଧୁ—ପ୍ରାଚୀନ ଉତ୍କଳ ।]

**ଧରଣୀ ନିର୍ଜର**—ସଂ. ବି.—(ଧରଣୀ+ନିର୍ଜର=ଦେବ)—ବ୍ରାହ୍ମଣ—
Dharaṇi nirjara Brāhmaṇa.
(ଧରଣୀନିର୍ଜର—ଅନ୍ୟରୂପ)

**ଧରଣୀପତି**—ସଂ. ବି. (୬ଷ୍ଠୀ ତତ୍; ଧରଣୀ+ପତି)—୧ । ମହାଦେବ—
Dharaṇi pati 1 Śiba.
ଧରଣିପତି } ଅନ୍ୟରୂପ ୨ । ବିଷ୍ଣୁ—2. Bishṇu
ଧରଣୀଶ୍ଵର } ୩ । ରାଜା; ସମ୍ରାଟ—
3. Emperor; king.

**ଧରଣୀପୂର**—ସଂ. ବି ( ଧରଣୀ+ପୂର୍ ଧାତୁ=ସମ୍ପୂର୍ଣ୍ଣରୂପେ ବେଷ୍ଟନ କରିବା+ଅ; ପୃଥିବୀ ଯାହା ଉପରେ ଭାସେ)—
Dharaṇipūra
(ଧରଣୀପୂର—ଅନ୍ୟରୂପ) ସମୁଦ୍ର—The sea; ocean

**ଧରଣୀଭୃତ୍**—ସଂ. ବି ( ଧରଣୀ+ଭୃ ଧାତୁ=ଧାରଣ କରିବା+କର୍ତ୍ତୃ. କ୍ଵିପ୍)—ଧରଣୀଧର ( ଦେଖ )
Dharaṇibhrut
(ଧରଣୀଭୃତ୍—ଅନ୍ୟରୂପ) Dharaṇidhara (See)

**ଧରଣୀମଣ୍ଡନ**—ସଂ. ବି (ଧରଣୀ+ମଣ୍ଡନ)—ପୃଥିବୀର ଅଳଙ୍କାର ସ୍ଵରୂପ ସୁନ୍ଦର ବ୍ୟକ୍ତି—A very graceful
Dharaṇimaṇḍana
(ଧରଣୀମଣ୍ଡନା—ସ୍ତ୍ରୀ) person (who adorns the earth).
ଧରଣୀ-ମଣ୍ଡନା ଭାବେ ଏ ଜାତକା ସ୍ତନ୍ ଅବାରେ ନୋହେ ରୁଧିର—
ଭକ୍ତ. ପ୍ରେମସୁଧାନିଧି ।

**ଧରଣୀ ସୁତ**—ସଂ. ବି. ପୁଂ ( ୬ଷ୍ଠୀ ତତ୍; ଧରଣୀ+ସୁତ )—
Dharaṇi suta ୧ । ମଙ୍ଗଳଗ୍ରହ—1. The planet Mars
[ଦ୍ର—ଜ୍ୟୋତିର୍ବିଦ୍‌ମାନଙ୍କ ମତରେ ଘୂର୍ଣ୍ଣୀୟମାନ ପୃଥିବୀର କିୟଦଂଶ ଛିଡ଼ିକ ଯାଇ ମଙ୍ଗଳଗ୍ରହ ହୋଇଅଛି । ]
୨ । ନରକାସୁର—2 The name of a demon.

**ଧରଣୀ ସୁତା**—ସଂ. ବି. ସ୍ତ୍ରୀ (୬ଷ୍ଠୀ ତତ୍ ଧରଣୀ+ସୁତା)—ସୀତା—
Dharaṇisutā A name of Sitā.
[ଦ୍ର—ଯଜ୍ଞସ୍ଥାନ ପାଇଁ ଭୂମି କର୍ଷଣ କରୁଥିବା ଜନକରାଜାଙ୍କ ଲଙ୍ଗଳ ସିଆରରୁ ସୀତା ଉତ୍ପତ୍ତି ହୋଇଥିଲେ । ]

**ଧରତି**—ଦେ. ବି (ପଦ୍ୟ)—୧ । (ସଂ. ଧୃତି) ଧରଣା; ଠେକ—
Dharati 1. Prop
ଯ ଅକ୍ଷରନ୍ତି ଉର୍ଦ୍ଧ୍ଵେ ଧାରଣା ଧରତୀ—ବ୍ରହ୍ମାନନ୍ଦରୂପଣଗୀତା ।
(ଧରତି—ଅନ୍ୟରୂପ) ୨ । (ସଂ. ଧରଣୀ) ପୃଥିବୀ—
ଧରା 2 The earth.
**धरती,** ହୋଇଲେ ଅଶଗୁଣ ମୂର୍ତ୍ତି ପବନ ବହିଲେ ଧରତୀ—
ଯଶୋବନ୍ତ, ପ୍ରେମଭକ୍ତିଗୀତା ।

**ଧର ପକଡ଼**—ଦେ ବି (ସଂ. ଧୃ ଧାତୁ+ହି ପକଡ଼ନା )—୧ । ମାରଧର; ଧୁମ୍‌ଧଡ଼ିକା; ଅତ୍ୟାଚାର—1. Oppression
Dhara pakaṛda
ଧରପଗଡ଼ } ଅନ୍ୟରୂପ ୨ । ଖୋଜତଲାସ, ଅପରାଧୀଙ୍କୁ ଧରିବା
ଧରାପଗଡ଼ା } କ୍ରମରେ ବିଶେଷ ଅନୁସନ୍ଧାନ—
ଧରବାନ୍ଧ } 2. A thorough searching to find out a culprit.
ଧରାବନ୍ଧା
ଧରପାକଡ଼ ମଙ୍ଗରାଜଙ୍କ ଠାରେ ଗୁହାରି କଲା, ଖୁବ୍ ଧରପକଡ଼ ହେଲା—
**धरपकड़, धरहर** ଫକୀରମୋହନ, ଛମାଣ ଆଠଗୁଣ୍ଠ ।
୩ । ବହୁ ଲୋକଙ୍କୁ ଗିରଫ୍‌ଦାର୍ କରିବା—
3. Arresting of many persons.

**ଧରମ**—ଗ୍ରା (ପଦ୍ୟ) ବି (ସଂ. ଧର୍ମ)—ଧର୍ମ ( ଦେଖ )
Dharama Dharma (See)
ଧରମ ଅତରିଲେ ସାଧୁ ଧରମ ସେ ଉରତ—କୃଷ୍ଣସିଂହ, ମହାଭାରତ, ଆଦି ।
**धरम**

**ଧରମକଣ୍ଟା**—ଗ୍ରାଦେ ( ଗଡ଼ଜାତ ) ବି—୧ । ଜୁଆଳି ମଝିରେ ମରାଯିବା ଖିଲ—1. A pin put on the middle of a yoke.
Dharamakaṇṭā
(ଧରମମେଖ—ଅନ୍ୟରୂପ)

[ ଦ୍ର—ଏହି ଶବ୍ଦରେ ଛୁରୁ ଓ ଜୁଆଳକୁ ସଲଗ୍ନ କରିବା ଦଉଡ଼ି ଅଟକାଯାଏ । ]

୨ । ଧର୍ମ ବା ନ୍ୟାୟବିଚାରସୂଚକ ତୁଳା ଯନ୍ତ୍ର—
2. The scales or balance ( representing justice).

ଧରମ କରମ—ଗ୍ରା. ବି (ସଂ. ଧର୍ମ ଓ କର୍ମ)—ଧର୍ମକର୍ମ (ଦେଖ)
Dharama karama Dharma-karma (See)
धरमकरम धर्मकर्म

ଧରମ କରିବା—ଗ୍ରା. କ୍ରି—ଧର୍ମ କରିବା (ଦେଖ)
Dharama karibā Dharma karibā (See)

ଧରମ କୋଢ଼ି—ପ୍ରାଦେ (ଯାଜପୁର) ବିଣ—କର୍ମ କୋଢ଼ି (ଦେଖ)
Dharama kordhi Karma kordhi (See)

ଧରମ ଡଙ୍ଗା—ଗ୍ରା. ବି—ଧର୍ମ ଡଙ୍ଗା (ଦେଖ)
Dharama dangā Dharma dangā (See)
[ଧରମନାଆ(ବ୍ୟା; ଧରମନାବ—ଅନ୍ୟରୂପ]

ଧରମ ଡାକ—ଗ୍ରା ବି—ଧର୍ମ ଡାକ (ଦେଖ)
Dharama dāka Dharma dāka (See)

ଧରମ ଦାଣ୍ଡ—ଗ୍ରା. ବି—ଧର୍ମ ମାର୍ଗ (ଦେଖ)
Dharama dānda Dharma mārga (See)
ଧରମ ଦାଣ୍ଡ କ ସେ ପାପ କର୍ମେ—ସାଧନାଥ ତୁଳସୀସୁବକ ।

ଧରମ ଦେବତା—ଗ୍ରା. ବି—ଧର୍ମ ଦେବତା (ଦେଖ)
Dharama debatā Dharma debatā (See)

ଧରମ ଧାଡ଼ି—ଗ୍ରା. ବି—୧ । ଧର୍ମାନୁମୋଦିତମାର୍ଗ—
Dharama dhārdi 1. The way of religion, the path of virtue.
୨ । ଧର୍ମାନୁମୋଦିତ କର୍ମମାନ—
2. Acts sanctioned by equity or religion
ଏହିସକାଶରୁ ଭୁମ୍ଭର ପଅ ଭଜ
କହିଲେ ଦ୍ରୋଣ ଗୁରୁ ଯେ ଧରମ ଧାଡ଼ି ।
କୃଷ୍ଣସିଂହ ମହାଭାରତ, ଦ୍ରୋଣ ।

ଧରମ ପୁଅ—ଗ୍ରା. ବି.—(ସଂ. ଧର୍ମପୁତ୍ର)—ମହାପ୍ରସାଦଦ୍ୱାରା ଯେଉଁ ବ୍ୟକ୍ତି ଠାରେ ପୁତ୍ରତ୍ୱ ଆରୋପ କରାଯାଇ ଅଛି—
Dharama pua
धरम छेले Godson, a person with whom the rela-
धरमका बेटा tionship of son has been established through Mahāprasāda.
[ଦ୍ର—ଏହିପରି ଧରମ ବାପ, ଧରମ ମାଆ, ଧରମ ଝିଅ ଶବ୍ଦମାନ ହୁଏ । ]

ଧରମବନ୍ତ—ଗ୍ରା. ବିଣ.—(ସଂ. ଧର୍ମ+ବନ୍ତ)—ଧାର୍ମିକ—
Dharamabanta Virtuous; religious.
धरमवन्त ବୋଇଲେ ଧରମବନ୍ତ ମହାସାଧୁ ।
धरमबन्त କୃଷ୍ଣସିଂହ. ମହାଭାରତ; ବନ ।

ଧରମ ବଳ—ଗ୍ରା. ବି. (ସଂ. ଧର୍ମବଳ)—ଭାଗ୍ୟ ବଳ; ଭାଗ୍ୟର ଜୋର—
Dharama bala The force or fruit of one's good luck.
ଧରମ ବଳୁଁ କ ମୋର, ଧର୍ପ ଦେଇ ନଳ କର
ବୋଲକୁ ଅର୍ଣ୍ଣିଲୁ କଳା ବୀଙ୍କଳ ।
କବିସୂର୍ଯ୍ୟ. କଶୋଚନ୍ଦ୍ର ଧ ଗୀତ ।

ଧରମ ବୁଦ୍ଧି—ଗ୍ରା. ବି—(ସଂ. ଧର୍ମବୁଦ୍ଧି)—ଧର୍ମ ବୁଦ୍ଧି (ଦେଖ)
Dharama buddhi Dharma buddhi (See)
ଶ୍ରବ ବନ୍ତ ହୋଇ ଉଦଯୋଗୀ ହେବ ।
ସତ୍ୟରେ ଯେ ଧରମବୁଦ୍ଧି ହୋଇଅଛ ।
କୃଷ୍ଣସିଂହ. ମହାଭାରତ. ଆଦ ।

ଧରମ ସହିବା—ଦେ. ବି—ଧର୍ମ ସହିବା (ଦେଖ)
Dharama sahibā Dharma sahibā (See)
ଏସବୁଭାଙ୍କୁ କେମନ୍ତ ଧରମ ସହିତ—ଭକାସ କଟବକଳସ୍ୟ ।

ଧରମା—ଦେ. ବି ( ନାମ ) ( ଅନାଦରାର୍ଥେ )—ଧର୍ମାନନ୍ଦ ବା ଧର୍ମଧର ନାମକ ବ୍ୟକ୍ତିଙ୍କୁ ଡାକିବା ନାମ—
Dharamā
(ଧରମ୍—ଆଦରାର୍ଥେକରୂପ) Name by which a person named 'Dharmānanda' or 'Dharmadhara' is called.

ଧରଶଣା—ପ୍ରାଦେ ( କଟକ ) ବି—୧ । ଭେଦବିଚାର—
Dharaśanā 1 Discrimnation.
( ଯଥା—ତାଙ୍କର ନିଜ ଓ ପର ମଧ୍ୟରେ ଧରଶଣା ନ ଥିଲା । )
୨ । ଦୃଢ଼ ନିୟମ ପାଳନ—2. Abiding by the rules strictly; strict discipline.
୩ । ଭେଦ ବିଚାର ପୂର୍ବକ ବ୍ୟବହାର—
3. Discriminatory treatment.

ଧରଶର—ଦେ. ବି—୧ । (ସଂ. ଧରାଧର+ଶର)—ପର୍ବତାସ୍ତ୍ର—
Dharaśara 1. A weapon resembling a hill.
ବଡ ଶୋ ଧରେ ଧରଶର ହାରେ ହରେ ତା ବେ ଅସୁଧରଙ୍କେ
ଉପେ. ବୈଦେହୀଶବିଳାସ
୨ । ବ୍ୟସ୍ତ—
2 Oppressed; troubled; harassed.
୩ । ଅସ୍ଥିର—3. Restless.
( ଯଥା—ସେ ପିଲାଟି ଅନ୍ୟର ଖେଳନା ଦେଖି ଭାରି ଧରଶର ହେଉଛି । )

ଧରଶ(ଶା)ରଣା—ଦେ ବି—ଧର୍ଶଶରଣା (ଦେଖ)
Dharaśa(śā)ranā Dhar-śaranā (See)

ଧରଶା—ପ୍ରାଦେ ( ସମ୍ବଲପୁର ) ବି—୧ । ଶଗଡ଼ଗୁଳା, ଶଗଡ଼ଚକଦ୍ୱାରା ମଡ଼ା ହୋଇଥିବା ମାର୍ଗଚିହ୍ନ—
Dharaśā
1. Cart-track; the track worn out by cart-wheels.
୨ । ରାସ୍ତା—2 Road.

ଧରଷକ—ଗ୍ରା (ପଦ୍ୟ) ବିଣ—( ସଂ. ଧର୍ଷକ )—ଧର୍ଷକ (ଦେଖ)
Dharashaka Dharshaka (See)
ଦମ୍ଭ ଧରଷକ, ଉତ୍ସବ ଜଳ ପ୍ରଳୟ ସର୍ଜକ—ଉପେ. ପ୍ରେମସୁଧାନିଧି ।

ଧରଷଣ—ଗ୍ରା (ପଦ୍ୟ) ବି-(ସଂ. ଧର୍ଷଣ)—ଉପଦ୍ରବ; ଅତ୍ୟାଚାର—
Dharashana Oppression.
( ଧରଷଣ—ଅନ୍ୟରୂପ ) ଯାମା କହେବ ପର ଧରଷଣେ,
କେହୁ ଜନ ଫଳମୂଳ ଭକ୍ଷଣେ ।
ଉପେ. ବୈଦେହୀଶବିଳାସ

**ଧରଷିବା**—ଗ୍ରା (ପଦ୍ୟ) କ୍ରି (ସଂ. ଧୃଷ୍ ଧାତୁ = ହିଂସା, କ୍ରୋଧ, ପ୍ରଗଲ୍ଭତା
Dharashibā କରିବା )—୧ । ଧର୍ଷିବା ( ଦେଖ )
1. Dharshibā ( See )

ଧରଷା ବୋଇଲେ ଶଙ୍କର ମନାସର ଏବେ ଧରଷିବାକୁ ହୁଦ୍ୟନ୍ତ ।
ଘରଷନା ରଘୁନାଥ. ପାଦଙ୍ଗୀ ।

୨ । ଅପମାନ ଦେବା—2. To insult.
ତାହା ଶର ମାନୁଷୀ ଦେବଙ୍କୁ ଧରଷି ।
କୃଷ୍ଣସିଂହ. ମହାଭାରତ.ବନ ।

୩ । ଅବଜ୍ଞା କରିବା—3 To slight; to disregard.
ଖାପ୍ରି କାନ୍ତକ ଧାମ କରୁ ।
ପ୍ରଭାବ ନ ଧରଷେ କେହୁ—ପ୍ରାଚୀ. ପୂର୍ଣ୍ଣଚନ୍ଦ୍ରୋଦୟ ।

୪ । ସାହସ କରିବା—4. To venture .
ଧୂରନ୍ଧର ସେ ଇନ୍ଦ୍ରଙ୍କୁ ଧରଷିଲୁ କେହୁ ସଙ୍ଗେ ଧମକାଇଲା କାହିଁ କଳ୍ପ ନାକ ।
କବିସୂର୍ଯ୍ୟ. କଣୋତ୍ସବକୁ ଧ ଗୀତ

**ଧର ସୁଧା**—ଗ୍ରା. (ପ୍ରାଚୀନ ପଦ୍ୟ) ବି—( ସଂ. ଅଧରସୁଧା )—
Dhara sudhā ଅଧରାମୃତ ( ଦେଖ )
Adharāmruta (See)

ବେନି ଅବଲେକ ଧରସୁଧା ପାନ କରି—ପ୍ରାଚୀ. ରସବାରିଧ ।

**ଧରା**—ସଂ. ବି. ସ୍ତ୍ରୀ (ଧୃ ଧାତୁ = ଧାରଣ କରିବା + କର୍ତ୍ତୃ. ଅ + ସ୍ତ୍ରୀ. ଆ)—
Dharā ୧ । ପୃଥିବୀ; ସଂସାର—1. Earth; the world
୨ । ଗର୍ଭ; ଜରାୟୁ—2. Uterus.
୩ । ଗର୍ଭସ୍ଥ ଫୁଲ—3. Placenta.
୪ । ନାଡ଼ୀ—4. Artery.
୫ । ଚର୍ବି; ମେଦ—5. Marraw; fat.
୬ । ଧଡ଼ା ୩ । ୪ । (ଦେଖ) (ହି. ଶବ୍ଦସାଗର)—
6. Dhardā 3 and 4 ( See ).

ଧରା ଦେ ବି—୧ । ଧୃତ ହେବା କର୍ମ—1. The act of being caught.
ଘରନୋ

୨ । ବନ୍ଧନ କରିବା କର୍ମ—
2 Act of holding or bearing.
( ଯଥା— ବଳାଙ୍କ ପାଖରେ ଛନ୍ଦଧରା ପାଇଁ ସେ ଗୁହାର କରୁଛି । )

୩ । ଧୃତକରଣ; ଧରିବା କାମ—3. Catching; seizing.
( ଯଥା —ହାଣ୍ଡାଧରା । )

୪ । ଅଣ୍ଡିରା ବାଛୁରୀର ପୁଂସ୍ତ୍ୱ ଲୋପ କରିବା; ବାଛୁରୀଧରା କର୍ମ—4. Castrating of a he-calf.

୫ । ଗାଈଟେକା; ବାଛୁରୀ ଜନ୍ମ କରିଥିବା ଗାଈକୁ ସାଧ କରିବା ପାଇଁ ତାର ଜନନେନ୍ଦ୍ରିୟ ବାଟେ ପାଟିରେ ପବନ ଫୁଙ୍କିବା କର୍ମ—5. The process of blowing wind with the mouth through the female organ of a newly delivered cow.

ଧରା ଦେ. ବିଣ—୧ । ଧୃତ—1. Caught.
ଧ୍ୟା ୨ । ନିର୍ଦ୍ଧାରିତ; ଧରିବନ୍ଧା—2. Settled.
ମଙ୍ଗଳକୁ ଜାତ କରିବାରେ ନଷ୍ଟେ ଧରା—ଉଞ୍ଜ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।

୩ । ପୁଂସ୍ତ୍ୱ ହାନ କରାଯାଇଥିବା; ମୁଷ୍କ ଛେଦନ କରାଯାଇଥିବା
(ବାଛୁରୀ)—3. Castrated (he-calf).
(ଅଧରା—ବିପରୀତ)

୪ । ଉପସ୍ଥାପିତ—4. Placed.
( ଯଥା—ତାଙ୍କ କାଗଜପତ୍ର ମୋ ଆଗରେ ଧରା । )

୫ । ( ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ ) ଯେ ଧରେ; ଧାରଣକାରୀ—
5. Holding.
ଚ ପଞ୍ଚ ଧରାରେ ମୁଲେଇଆରେ ରହିଇଛି କଲ ଖେଳା ରେ—
କବିସୂର୍ଯ୍ୟ. ସଙ୍ଗୀତ ।

୬ । ଯେଉଁ ନବପ୍ରସୂତା ଗାଈର ଜନନେନ୍ଦ୍ରିୟ ବାଟେ ମନୁଷ୍ୟ ପବନ ଫୁଙ୍କିଅଛି – 6. ( a cow ) Which has undergone the operation of being blown through her generative organ.

**ଧରା ( ରେ)ଇ ଦେବା**—ଦେ. କ୍ରି —୧ । ଆସାମୀ ବା ଅପରାଧୀ ଅନ୍ୟ ବ୍ୟକ୍ତି
Dharā(re)i debā ଦ୍ୱାରା ଧୃତ ହେବା ବିଷୟରେ ଅନ୍ୟ ବ୍ୟକ୍ତିକୁ ସାହାଯ୍ୟ କରିବା—
(ଧରେଇଦେବା, ଧରାପକାଇବା, ଧରାପକେଇବା—ଅନ୍ୟରୂପ)
ଧରିଦେ ଦେଓୟା 1. To cause an accused or offender
ଧରା ଦେନା to be arrested.

୨ । କୌଣସି କାର୍ଯ୍ୟ କରିଥିବା ବ୍ୟକ୍ତିକୁ ଚିହ୍ନା ପକାଇଦେବା-
2 To cause the doer of an act to be detected.

**ଧରା(ରେ)ଇ ନେବା**—ଦେ. କ୍ରି.—କୌଣସି ବ୍ୟକ୍ତିକୁ ଅନ୍ୟ ବ୍ୟକ୍ତିଦ୍ୱାରା
Dharā(re)i nebā ଧୃତ କରାଇ ନିଜ ନିକଟକୁ ନେବା—
ଧରିୟେ ଲଓୟା To cause a person to be arrested
ଧରନେନା and brought before one.

**ଧରା(ରେ)ଇବା**—ଦେ. କ୍ରି.—୧ । ଧରିବା କ୍ରିୟାର ଣିଜନ୍ତ ରୂପ—
Dharā(re iba 1. Causative of Dharibā.
ଧରାନ କରେ ଜଳ ଅଭିଷେକ, କଲେ ବ୍ରାହ୍ମଣ ଅନେକ.
ଧରୱାନା ଶ୍ୱେତ ଛତ୍ର ଧରାଇ ଦିଗଲେ । ରଘୁନାଥ. ବଡଏଗ୍ରାମାପୁଣ ।

୨ । (ଅଗ୍ନି) ପ୍ରଜ୍ୱଳନ କରିବା—2 To enkindle.
(ଯଥା—ବହୁତ ଫୁଙ୍କି ଫୁଙ୍କି ମୁଁ ଓଦା କାଠରେ ନିଆଁ ଧରାଇଲି ।)

୩ । କୌଣସି ବ୍ୟକ୍ତିକୁ କୌଣସି ବସ୍ତୁ ବ୍ୟବହାର କରିବାକୁ ଅଭ୍ୟସ୍ତ କରିବା—3. To cause a person to be habituated to the use of something.
(ଯଥା—୩ ବର୍ଷରେ ପିଲାକୁ ମାଆ ଦୁଧ ଛଡ଼ାଇ ଭାତ ଧରାଇବାକୁ ହେବ ।)

୪ । ଗଣକଦ୍ୱାରା ଗଣନା କରାଇ ବିବାହାଦି ପାଇଁ ଗୋଟିଏ ଶୁଭ ଦିନ ନିର୍ଣ୍ଣୀତ କରିବା—4 To find out a suitable or auspicious date by having it calculated by a fortune-teller.

**ଧରାକ** – ଦେ. ବି.—୧ । ପରୀକ୍ଷକ (ନନ୍ଦେ)—
Dharāka 1. Examiner
୨ । ତତ୍ତ୍ୱାବଧାରକ (ନନ୍ଦେ)—2. Superintendent.

ଧରା କଦମ୍ବ—ସ. ବି.—ଧାରା କଦମ୍ବ (ଦେଖ)
Dharā kadamba Dhārā kadamba (See)

ଧରାକୁ ଶରା ଜ୍ଞାନ କରିବା—ଦେ. କ୍ରି.—ଗର୍ବରେ କାହାକୁ ଖାତିର ନ
Dharāku śarā jñāna karibā କରିବା—To be
ধরাকে শরা জ্ঞান করা puffed up with pride, to look down upon the world as if it were a mere nutshell

ଧରାକୋଟ—ଦେ. ବି.—ଗଞ୍ଜାମ ଜିଲ୍ଲା ଅନ୍ତର୍ଗତ ଏକ ରାଜ୍ୟ ବା
Dharākoṭa ଜମିଦାରୀ—Name of an estate in Ganjam.

କହଇ କୃଷ୍ଣସିଂହ ଧରାକୋଟ ଧଣ ।
କୃଷ୍ଣସିଂହ. ମହାଭାରତ. ସଭା ।

[ଦ୍ର—ଓଡ଼ିଆ ମହାଭାରତର ରଚୟିତା କୃଷ୍ଣସିଂହ ଏଠାର ରାଜା ଥିଲେ ।]

ଧରା ଛୁଆଁ—ଦେ. ବି. (ସଂ. ଧୃ ଧାତୁ ଓ ସ୍ପୃଶ୍‌ ଧାତୁ)—୧ । ଦେଖାଦର୍ଶନ;
Dharā chhuāñ ଦେଖା ସାକ୍ଷାତ—
1. The sight of a person.
ধরাছোঁআ ୨ । କୌଣସି କାର୍ଯ୍ୟରେ ନିଜର ସମ୍ପର୍କ ଥିବା ବିଷୟର
नामनिशान ପ୍ରକାଶ ବା ସୂଚନା—2. Indication about one's own interest or complicity in a matter.
୩ । ଇଶାରା; ସୂଚନା—3. Hint; indication.

ଧରାଛୁଆଁ ନ ଦେବା—ଦେ. କ୍ରି.—୧ । କୌଣସି ବ୍ୟକ୍ତି ନିକଟରେ
Dharāchhuāñ na debā ଆଦୌ ଉପସ୍ଥିତ ନ ହେବା—
ধরাছোঁআঁনা দেওয়া 1. Not to appear before a person.
नाम निशान न बताना ୨ । କୌଣସି ବିଷୟରେ ଆପଣାକୁ ଛନ୍ଦା ନ ପକାଇବା; ଇଶାରା ମାତ୍ର ନ ବତାଇବା—
2. Not to give any clue about one's complicity in a matter.

ଧରା ତନୟୀ—ଦେ.ବି.ସ୍ତ୍ରୀ—(ସଂ. ଧରା+ତନୟା)-(ଧରଣୀ ସମ୍ଭୂତା) ସୀତା
Dharā tanayī Sītā; wife of Rama.

କଦ୍ୟା କଶାରଦା ଶାରଳା ଜନୟୀ ଧର ତନୟୀ । ହେଲେ ତୋରେ ।
ଉପେ. ବୈଦେହୀଶବିଳାସ ।

ଧରା ତଳ—ସ. ବି.—(୬ଷ୍ଠୀ ତତ୍‌; ଧରା+ତଳ)=୧ । ଭୂପୃଷ୍ଠ—
Dharā taḷa 1. Surface of the earth.
୨ । ଧରାଧାମ; ସମଗ୍ର ପୃଥିବୀ—
2. The whole world.
୩ । ଭୂମିତଳ—3. Bare ground.
୪ । (ଜ୍ୟାମିତି) କେବଳ ଦୈର୍ଘ୍ୟ ଓ ପ୍ରସ୍ଥ ଥିବା କ୍ଷେତ୍ର—
4. (geometry) A surface.
୫ । ରକବା; କ୍ଷେତ୍ରଫଳ (ବ୍ର. ଗ.)—
5. Area of a plot of land.

ଧରାତଳୀ—ଦେ. ବି. ସ୍ତ୍ରୀ. (ସ. ଧରାତଳ)—ପୃଥିବୀ; ଭୂପୃଷ୍ଠ—
Dharātaḷi The earth.

ଭେରୀ ତୁରୀ ବାଣା ଯେ ମୃଦଙ୍ଗ କାହାଳୀ,
ଶବଦରେ ଯାଉ କମ୍ପାଇ ଧରାତଳୀ । କୃଷ୍ଣସିଂହ. ମହାଭାରତ ଆଦି ।

ଧରାତ୍ମଜ—ସ. ବି. ପୁଂ (୬ଷ୍ଠୀ ତତ୍‌; ଧରା+ଅତ୍ମଜ)-ଧରଣୀ ସୁତ (ଦେଖ)
Dharātmaja Dharaṇi suta (See)
(ଧରାସୁତ, ଧରାତନୟ—ଅନ୍ୟରୂପ)
(ଧରାତ୍ମଜା, ଧରାସୁତା, ଧରାତନୟା—ସ୍ତ୍ରୀ)

ଧରା ଦେବା—ଦେ. କ୍ରି.—୧ । ଅନ୍ୟଦ୍ୱାରା ନିଜେ ଧରା ହେବା ପାଇଁ
Dharā debā ସୁବିଧା କରି ଦେବା—1. To permit one's
ধরা দেওয়া self to be caught or apprehended.
୨ । ଧରିବା ବ୍ୟକ୍ତି ନିକଟରେ ସ୍ୱୟଂ ଆସି ଉପସ୍ଥିତ ହେବା; ଆତ୍ମ ସମର୍ପଣ କରିବା—2. To surrender one's self to a person.

ଧରାଧର୍‌—ଦେ. ବି.—ବଳାବଳ; ଗୋଳମାଳ; ଅତି ଆପନ୍ନ ଅବସ୍ଥା;
Dharādhar ଅସମ୍ଭାଳ; ଅସହ୍ୟ ଅବସ୍ଥା—
বেঠিকানা Very critical position; crisis.
**बेठिकाना**
( ଯଥା—ମୋ ନିଜ କଥା ତ ଧରାଧର୍‌, ମୁଁ ତତେ ରଖିଛି କାହୁଁ ? )
ଦେ. ବିଣ.—୧ । ଅତ୍ୟନ୍ତ ଆପନ୍ନ (ଅବସ୍ଥା)—
1. Very critical (condition).
୨ । ଅସମ୍ଭାଳ—2. Unbearable.

ଧରାଧର—ସ. ବି.—(ଧରା+ଧୃ ଧାତୁ=ଧାରଣ କରିବା+କର୍ତ୍ତୃ. ଅ)—
Dharādhara ୧ । ପର୍ବତ—1. Mountain.
୨ । ବିଷ୍ଣୁ—2. Bishṇu.
୩ । କୂର୍ମରାଜ; ବିଷ୍ଣୁଙ୍କ ଦ୍ୱିତୀୟ ଅବତାର—
3. The 2nd or tortoise incarnation of Bishṇu.
୪ । ଶେଷ ନାଗ; ବାସୁକୀ—4. The king of serpents said to hold up the universe on its thoods.

ଧରାଧରି—ଦେ. ବି.—୧ । ଭୁଣ୍ଡିଆ ଭୁଣ୍ଡେଇ—
Dharādhari 1. Embracing each other.

ବନସ୍ତୀ ବଗହରେ ଭୋଗେ ଧରାଧରି । ଗୋଲୋକ—ଉଦ୍ଧରେଶ ।

୨ । ଅନ୍ୟୋନ୍ୟରେ ଧରିବା; ଧରାପରା—
2. Holding or seizing each other.

ମଲ୍ଲମଲ୍ଲ ହୋଇଣ ହେଲେ ଧରାଧରି ।
କୃଷ୍ଣସିଂହ ମହାଭାରତ ସଭା

୩ । ଭୂମିରୁ ଟେକାଟେକି କରିବା—
3. Lifting up from the ground.
୪ । ସନ୍ନିର୍ବନ୍ଧ ଅନୁରୋଧ କରିବା—
4. Making of pressing request.
୫ । ଘାଆ ବ୍ରଣ ଆଦି ମନ୍ତ୍ର ପ୍ରୟୋଗଦ୍ୱାରା ଦୁରାରୋଗ୍ୟ କରିବା-
5. Making a wound fester by means of charms.
୬ । କୌଣସି ବସ୍ତୁକୁ ବହୁବାର ଧରିବା—6. Repeated holding or handling (of any thing).

ଅରେ ଯାଁଗିର, ଧରାଧରି କଲେ ଉଭୟ ସମ୍ବୋଧନ ।
ଜର୍ଜ ସିଂ. ସଙ୍ଗୀତ ।

ସ. ବ —କଳ କର ପରସ୍ପର ବଲ କଷାକଷି ହେଉଥିବା (ଦୁଇଜଣ)—(two persons) Duelling with each other.

ଦେ. କ୍ରି. ବଣ—କୌଣସି କାର୍ଯ୍ୟ କରିବାକୁ ଅନିଚ୍ଛା ବା ଅଶକ୍ତି
ଧବେଭଦ୍ରେ ସତ୍ତ୍ୱେ କୌଣସି ବ୍ୟକ୍ତି ପ୍ରତି ଜବରଦସ୍ତି ବା ବଳପ୍ରୟୋଗ-
ଧରପକଡ଼କର ଦ୍ୱାରା ବା ଭୁମିରୁ ଉଠାଇ (କୌଣସି କାର୍ଯ୍ୟ କରାଇବା)—(to make a person do a thing) Against one's wish or inspite of one's inabilitys' by the use of force or coercion

ଠାଆରୁ ନ ଉଠେ ବର, ଧରଧର ବାହା କର । ଢଗ ।

**ଧର୍ ଧାମ**— ସ. ବ. (ଧରା+ଧାମନ୍)—ପୃଥିବୀ—
Dharā dhāma The earth.

ସେ ସ୍ୱର୍ଗସ୍ଥାନର ବଇଭ ସାଦର
ଥିଲ ଅନୁତ୍ତମ ଏ ଧରଧାମେ । ନନ୍ଦକିଶୋର. କୃଷ୍ଣକୁମାର ।

**ଧରାଧିପ**—ସ. ବ. (୬ଷ୍ଠୀ ତତ୍; ଧରା+ଅଧିପ)—ରଜା—
Dharādhipa King.
(ଧରାଧିପତି, ଧରାଧୀଶ, ଧରାଧୀଶ୍ୱର—ଅନ୍ୟରୂପ)

**ଧର୍ ପଗଡ଼ା**—ଦେ. ବ. (ସ. ଧୃ ଧାତୁ ଓ ଫା. ପକଡ଼)—
Dharā pagarda ଧର ପଗଡ଼ (ଦେଖ)
ଧବପାକଡ଼ା ଧରପକଡ଼ Dhara pagarda (See)

**ଧର୍ ପଡ଼ା(ରା)**—ଦେ. ବ—୧ ଅନ୍ୟୋନ୍ୟରେ ଧରାଧରି ହୋଇ କଳ
Dharā parda(rā) କରିବା ବା ବଲ କଷାକଷି ହେବା—
1. Quarrelling by catching hold of each other.
୨ । ଲୁଷ୍ଠାଲୁଷ୍ଠି—2. Duelling.
ଦେ. ବଣ—ଅନ୍ୟୋନ୍ୟରେ ଲୁଷ୍ଠାଲୁଷ୍ଠି ହେଉଥିବା (ଦୁଇ ବ୍ୟକ୍ତି)—Duelling with each other.

**ଧର୍ ପଡ଼ିବା**—ଦେ. କ୍ରି—୧ । ଜଲେହ୍ଟ ହେବା; ଗିରଫଦାର ହେବା—
Dharā pardibā 1. To be apprehended or arrested.
ଧରାପଡ଼ା ୨ । ଅପରାଧ କରିବା ସମୟରେ ଧୃତ ହେବା—
ଧରାଜାନା 2. To be caught red-handed.

ସଖୀ ଅଗେ ଧରା ନ ପଡ଼ ମୋତେ ରଖିବନ୍ତ ହେ । କବସୂର୍ଯ୍ୟ. ସଙ୍ଗୀତ ।

୩ । ପ୍ରକାଶିତ ହେବା; ଜଣାଯିବା; ସ୍ଥିରୀକୃତ ହେବା—
3. To be ascertained; to be clearly known; to be detected.
(ଯଥା—ହିସାବ କଲେ କେତେ ଖରଚ ହୋଇଛି ଧରାପଡ଼ିବ ।)
୪ । ଅନ୍ୟର ଅଧିକାରାଧୀନ ହେବା—
4. To come under another's clutches.
୫ । ଆବୁଡ଼େ ପଡ଼ିବା—
5. To encounter; to meet with.

**ଧର୍ବାନ୍ଧା**—ଦେ. ବଣ—୧ । ସୁନିଶ୍ଚିତ—
Dharābandhā 1. Certain; well-defined.
ଧବାବାଁଧା ୨ । ନିର୍ଦ୍ଧାରିତ—2 Specified.
କଡ଼ାକଡ଼ ଯେଉଁଠାରେ ପାଣି, ସେହିଠାରେ ମାଛ,
ଯେପରି ଗ୍ରାମରେ ଗ୍ରାମ୍ୟପଶୁ, ଏଥି ଧରାବନ୍ଧା କଥା ।
ଫକୀରମୋହନ. ଛମାଣ ଆଠଗୁଣ୍ଠ ।
୩ । ଅଲଙ୍ଘ୍ୟ; କଡ଼ା (ନିୟମ)—
3. Strict (rule); inviolable.
ଦେ. ବି—୧ । ଅଲଙ୍ଘ୍ୟ ନିୟମ—
1. Hard and fast rule.

**ଧର୍ମତ**—ପ୍ରାଦେ. (ଗଞ୍ଜାମ) ବ (ତେଲୁଗୁ)—ବଇନା—
Dharāmata Advance made after a contract of sale.

**ଧର୍ ଯିବା**—ଦେ.କ୍ରି. (ଧରିବାର କର୍ମବାଚ୍ୟରୂପ)—୧ । ଧୃତ ହେବା—
Dharā jibā 1 To be caught hold of.
ଧବା ସାଓୟା ବେଶ୍ୟୁମନ୍ଦ୍ ଉନନ୍ଦ୍ ସେ ସମସ୍ତ ଗଲ ଅଣ ଧରପଡ ।
ଧରାଯାନା ଭକ୍ତ, ବୈଦେହୀଶବିଳାସ ।
(ଧରା ହେବା—ଅନ୍ୟରୂପ) ୨ । ଗିରଫଦାର ହେବା—
2. To be arrested or apprehended.
୩ । (ହୃଦରୁ ଅନୁକୂଳ)—ସମ୍ମୁଖରେ ରକ୍ଷିତ ହେବା—
3. To be placed before a person.
୪ । ନିଶ୍ଚିତ ହେବା; ନିର୍ଦ୍ଧାରିତ ହେବା; ସ୍ଥିରୀକୃତ ହେବା—
4. To be ascertained or settled
[ଦ୍ର—ଧରିବା କ୍ରିୟାର ଅର୍ଥମାନଙ୍କୁ କର୍ମ ବାଚ୍ୟରେ ପ୍ରୟୋଗ କଲେ ଏହି ଶବ୍ଦର ଅନ୍ୟ ଅର୍ଥମାନ ଜଣା ଯିବ ]

**ଧରି**—ଦେ. (ଧରିବା କ୍ରିୟାର ଅସମାପିକା ଆକାର ଅନ୍ୟ ଶବ୍ଦ ସଙ୍ଗେ କ୍ରିୟା
Dhari ବିଶେଷଣ ବା ଅବ୍ୟୟରୂପେ ବ୍ୟବହୃତ)—୧ । (ଦେଶର
ଧବେ ବ୍ୟାପ୍ତି ଅର୍ଥରେ ) (ଏତେ ଅଞ୍ଚଳ ବା ପରସର) ବ୍ୟାପି—
ଧରକେ 1. Extending or spreading over an area
(ଧରିକରି—ଅନ୍ୟରୂପ) of; to the extent of.
( ଯଥା—ଗୃହ କୋଶ ଧରି ବର୍ଷା ହେଉଛି, ମେଘ ଚଉଦିଗ ଧରି ବରଷୁଛି । )
୨ । ( ସମୟର ବ୍ୟାପ୍ତି ଅର୍ଥରେ ) ( ଏତେ ସମୟ ) ବ୍ୟାପି; ବିସ୍ତୃତ ହୋଇ—2. Extending over a period of; continuously for
( ଯଥା—କାଲି ରାତିରେ ଚାରିଘଣ୍ଟା ଧରି ମେଘ ବରଷିଲା । )
୩ । ( ଅମୁକଙ୍କୁ ବା ଏତେ ଲୋକଙ୍କୁ ) ସଙ୍ଗରେ ନେଇ; ସମଭିବ୍ୟାହାରରେ—3. With; having; accompanied by; in the company of.
( ଯଥା—ରଜା ୨୦ଜଣ ଅନୁଚର ଧରି କଟକ ଗଲେ । )
୪ । (ଏତେ ଲୋକଙ୍କ ସହିତ) ଏକ ଦଳ ବାନ୍ଧି—
4. Forming into a body or company (with so many persons).
( ଯଥା—ଆମେ ଗାଁଅ ଯାକ ଧରି ହାକିମଙ୍କ ପାଖେ ଗୁହାରି କରିବାକୁ ଯାଇଥିଲୁ । )

**ଧରିତ୍ରୀ**—ସ. ବ.ସ୍ତ୍ରୀ (ଧୃ ଧାତୁ=ଧାରଣ କରିବା+କର୍ତ୍ତୃ. ଇତ୍ର+ଈ ପ୍ର)
Dharitrī ପୃଥିବୀ; ଧରଣୀ—The earth.
ଧରିତ୍ରୀ ମୋହିନୀ ଛବି ବସ୍ତ୍ରଧର ଧରି—ଗୌରୀଶଙ୍କର. ଉର୍ଦ୍ଧ୍ୱରେଖା ।

**ଧରିତ୍ରୀ ଶୋଭି**—ଦେ. ବିଣ. ସ୍ତ୍ରୀ (ପ୍ରାଚୀନ) (ସଂ. ଧରିତ୍ରୀ+ଶୋଭନା)—
Dharitrī śobhī ଧରଣୀମଣ୍ଡନା; ଖୁବ୍ ସୁନ୍ଦରୀ—(a woman) Who is an ornament to the earth; very beautiful or charming.

ରାଜୁକ ଧରି ଧରିତ୍ରୀ ଶୋଭିର ଅଧରୁ ଅମୃତ ପିଇବ—ଭଞ୍ଜ. ପ୍ରେମସୁଧାନିଧି

**ଧରି ଦେବା**—ଦେ. କ୍ରି—୧ । କୌଣସି ପଦାର୍ଥକୁ ଧରି ଅନ୍ୟକୁ ଦେବା—
Dhari debā 1. To catch a thing and give
ধরেদেওয়া it to another person.
**धरदेना** (ଯଥା—ମତେ କେଲା ଗୋଟିଏ ଶୁଆ ଧରି ଦେଇଛି ।)

୨ । (ସଂ. ଧାର) ପନ୍ଦାଇବା, ଶାଣଦେବା—
2 To whet (an instrument).

୩ । ସମ୍ମୁଖରେ ଉପସ୍ଥାପିତ କରିବା; ଜିମା କରିବା—
3 To place before; to make over.
(ଯଥା—ମତେ ହାଣ୍ଡି, କାଠ, ଚାଉଳ, ଡାଲି ଧରି ଦିଅ । ମୁଁ ଘଣ୍ଟାକ ପରେ ଦଶ ଜଣଙ୍କ ପାଇଁ ରୋଷେଇ କରିଦେବି ।)

**ଧରି ଧରମ କରା(ରେ)ଇବା**—ଦେ. କ୍ରି—କୌଣସି ବ୍ୟକ୍ତିକୁ (ତାର
Dhari dharama karā(re)ibā ଇଚ୍ଛା ନ ଥିଲେ ମଧ୍ୟ) ବାଧ୍ୟ
ଧରି ଧର୍ମ କରା(ରେ)ଇବା } ଅନ୍ୟରୂପ କରି ଧର୍ମକାର୍ଯ୍ୟରେ
ଧରି ବାନ୍ଧି ଧର୍ମ କରା(ରେ)ଇବା } ପ୍ରବୃତ୍ତ କରାଇବା—
ধরে ধর্ম করান To oblige a person to become
**धरपकड़कर धरम कराना** pious against his wish.

**ଧରି ନେବା**—ଦେ. କ୍ରି—୧ । ବିବେଚନା କରିବା; ସ୍ଥିର କରିବା—
Dhari nebā 1. To decide
ধরেনেওয়া ୨ । କଳ୍ପନା କରିବା; ଅନୁମାନରେ ସ୍ଥିର କରିବା—
**धरलेना** 2. To assume; to suppose; to hypothecise; to take for granted.

୩ । କୌଣସି ଜୀବ ବା ମନୁଷ୍ୟକୁ ଆସୁରି ବା ଗିରଫ କରି କୌଣସି ସ୍ଥାନକୁ ଜବରଦସ୍ତି ନେବା—3. To take a person or animal to any place forcibly.

୪ । ଅନୁକରଣ କରିବା; ଅନୁକରଣ କରିବାରେ କୃତକାର୍ଯ୍ୟ ହେବା—4. To imitate; to succeed in imitating.
(ଯଥା—ସେ ଥରେ ମାତ୍ର ଶୁଣିକରି ଗୀତ ପଦକ ଧରି ନେଲା ।)

**ଧରି ପକା(କେ)ଇବା**—ଦେ. କ୍ରି—ହଠାତ୍ ଧରିବା—
Dhari pakā(ke)ibā 1. To catch suddenly;
ধরেফেলা **धरलेना** to catch up.
୨ । ଛୁଇଁବା; ସ୍ପର୍ଶ କରିବା—2. To touch.

**ଧରି ବସିବା**—ଦେ. କ୍ରି—୧ । କୌଣସି ବିଷୟ ପାଇଁ ଏକ ଜିଗର
Dhari basibā କରିବା—1. To harp upon; to insist
ধরেবসা on; to importune; to persist.
**धरबैठना** ଦଶହର ବନ୍ଧ ସମୟରେ ଗୃହିଣୀ ଏକାନ୍ତ ଧରି ବସିଲେ ଗୃହକୁ ଯିବେ ।
ବ ନନ୍ଦୀଚରଣ. ସାବିତ୍ରୀର ଭୂଷଣ ।

୨ । କୌଣସି ଗୋଟିଏ ମାତ୍ର ବିଷୟରେ ବ୍ୟାପୃତ ହେବା ଓ ବିଷୟାନ୍ତରର ପ୍ରତି ଦୃଷ୍ଟି ନ ଦେବା—
2 To stick to one matter with pertinacity and neglect other matters.

୩ । କୌଣସି ବସ୍ତୁକୁ ବହୁକାଳ ପାଇଁ ଧାରଣ କରିବା—
3. To hold a thing for a long time
(ଯଥା—ମୁଁ ପିଲାକୁ ରାତିଯାକ ଧରି ବସିଛି, କେହି ଘଡ଼ିଏ ଖଣ୍ଡେ ମୋଠାରୁ ପିଲାକୁ ନେଲେ ନାହିଁ ।)

**ଧରିବା**—ଦେ. କ୍ରି. (ସଂ. ଧୃ ଧାତୁ)—
Dharibā ୧ । (ସକର୍ମକ) କୌଣସି ବସ୍ତୁକୁ ହସ୍ତରେ ଧାରଣ
ধরা କରିବା ବା ଗ୍ରହଣ କରିବା—
**धरना** 1. To take hold of a thing; to take with
[ଧରା(ରେ)ଇବା—ଣିଜନ୍ତରୂପ] the hand.
ତଣ୍ଡ ମୂରଛ ଧରିଲା କା ବୋଲେ ଚରଣ ପଙ୍କଜ ଧରିଲେ ହେଲେ ।
କବିସୂର୍ଯ୍ୟ ସଙ୍ଗୀତ ।

୨ । (ସକର୍ମକ) ଉପରକୁ ଟେକିବା; ଟେକି ରଖିବା—
2. To lift up; to support.
(ଯଥା—ଛତା ଧରିବା ।)

୩ । (ସକର୍ମକ) ବହନ କରିବା—3. To carry.
ସାର ହାର ମଣାର ମଣି ବର ପଟ ଧରି ବକ୍ଷସ୍ଥଳେ ନିରନ୍ତରେ ।
କବିସୂର୍ଯ୍ୟ ସଙ୍ଗୀତ ।

୪ । (ସକର୍ମକ) ଅଣ୍ଡିରା ବାଛୁରିର ମୁଷ୍କ ଛେଦନ କରିବା, ଖାସି କରିବା—4 To castrate a calf; to geld.

୫ । (ସକର୍ମକ) ଚାଷ କରିବା; ହଳ କରିବା—
5. To plough; to till.
(ଯଥା—ଧାନ ବୁଣା ହେବା ପୂର୍ବରୁ ବିଲକୁ ମୁଁ ତିନିଓଡ଼ ଧରି ସାରିଲିଣି ।)

୬ । (ଅକର୍ମକ) ପୀଡ଼ାଯୁକ୍ତ ହେବା; ବଥାଇବା; ବେଦନା ଯୁକ୍ତ ହେବା—6. To ache.
(ଯଥା—ଅଣ୍ଟା ଧରିବା; ଆଖି ଧରିବା, ଗାଲପାଟି ଧରିବା ।)

୭ । (ସକର୍ମକ)ମନ୍ତ୍ରାଦି ପ୍ରୟୋଗଦ୍ୱାରା ଘାଆ ପ୍ରଭୃତିକୁ ପ୍ରକୁପିତ କରାଇବା—7 To cause a wound to fester by evil incantations or spells.

୮ । (ସକର୍ମକ) ନବପ୍ରସୂତା ଗାଈର ଜନନେନ୍ଦ୍ରିୟ ଫୁଙ୍କିବା—
8. To blow wind into the abdomen of a recently delivered cow with one's mouth (so that the cow will not give any trouble while being milked).

୯ । (ସକର୍ମକ) ଉଚ୍ଚାରଣ କରିବା—9. To utter.
ହରି ଗୁ କାହିଁ ଧରିଲୁ
ଶ୍ରୀରାମ ନାମ ଧରିଲୁ—ବିଶ୍ୱନାଥ. ବିଚିତ୍ରରାମାୟଣ ।

୧୦ । (ଅକର୍ମକ ଓ ସକର୍ମକ), ଫଳବତ୍ ହେବା; କାମିବା; କାମ କରିବା—10. To be effective; to take effect; to affect.
(ଯଥା—ଔଷଧ ତାଙ୍କ ପାକସ୍ଥଳୀରେ ଧରିଲା ନାହିଁ; ମତକୁ ଔଷଧ ଧରିବ ନାହିଁ ।)

୧୧ । (ସକର୍ମକ) ଅବଲମ୍ବନ କରିବା; ଆଶ୍ରାନେବା; ଆଶ୍ରୟ କରିବା—11. To have recourse to; to take shelter under

ଫଳୁ ଯା ଫଳବ କର୍ମେ, ଉଦ୍ଧ ଧର୍ମ ଧର—ଜଗନ୍ନାଥ, ମହାଯାତ୍ରା ।

୧୨ । (ସକର୍ମକ) ଆସୃତ୍ତ କରିବା; ଧୃତ କରିବା—
12 To catch; to bring under one's, control.

କାଗ ଚନ୍ଦ୍ରକୁ ଧରିବା ନ୍ୟାୟ—ତଗ ।

୧୩ । (ସକର୍ମକ) ଅନୁସରଣ କରିବା, ସାହାଯ୍ୟ ପ୍ରାର୍ଥନା କରିବା—
13. To cling for help; to approach for help.

( ଯଥା—ଜଣେ ବଡ଼ମୁଣ୍ଡିଆ ମୁରବୀଙ୍କୁ ନ ଧରିଲେ ମୋ କାମ ହାସଲ ହେବ ନାହିଁ । )

୧୪ । ( ସକର୍ମକ ) ନିକଟରେ ପହଞ୍ଚିବା—
14. To approach; to reach near.

( ଯଥା—ନଇବର୍ତ୍ତି ପାଣି ୧୨ ଫୁଟକୁ ଛାଡି ୧୮ ଫୁଟ ଧରିଲାଣି । )

୧୫ । ( ସକର୍ମକ ) ଛୁଇଁବା—15. To touch.

( ଯଥା—ବୁଡ଼ିଆଣୀକି ନେ ଆଗକରି ଧରିବ, ସେ ଖେଳରେ ଜିଣିବ । )

୧୬ । ( ସକର୍ମକ ) କୌଣସି ବିଷୟରେ ଜିଦ କରିବା—
16. To insist on something.

( ଯଥା—ପିଲାଟା ସକାଳୁଁ ଏକଗାଡ଼ା ଧରିଛି, ଯେତେ ବୁଝାଇଲେ ବୁଝୁ ନାହିଁ । )

୧୭ । ( ସକର୍ମକ ) ( ଶୁଆ, ଶାରୀ, ବଣି ଇତ୍ୟାଦି ) ଶିକ୍ଷା ଦିଆଯିବା ପଦକୁ ବୋଲି ପାରିବା ବା ଉଚ୍ଚାରଣ କରିବା—
17. To be able to utter ( said of a parrot etc ) the words taught; to learn by rote.

( ଯଥା—ମୋ ଶୁଆଟି ଗୀତଗୋବିନ୍ଦର ପ୍ରଥମ ଛାନ୍ଦଟି ଧରିଲାଣି । )

୧୮ । ( ଅକର୍ମକ ) ଫଳିବା; ଜନ୍ମିବା—
18. To grow ( said of fruits, flowers, buds ).

( ଯଥା—ଗଛରେ ଫୁଲ ଧରିଲାଣି, ତଞ୍ଚଲ ଫଳ ଧରିବ । )

୧୯ । ( ସକର୍ମକ ) ବିବେଚନା କରିବା; ଗଣନା କରିବା; ହିସାବ କରିବା—19. To consider, to calculate; to count

( ଯଥା—ଗୋଟିଏ ଫଳକୁ ଗୁରି ପଇସା ଧରିଲେ କୋଡ଼ିଏଟି ଫଳର କେତେ ଦାମ ହେବ ? )

୨୦ । ( ଅକର୍ମକ) ଅବଶ ହେବା—
20. To be benumbed.

(ଯଥା—ବସି ବସି ମୋ ଗୋଡ଼ ଧରିଲାଣି; ଅଣ୍ଟାପିଠି ଧରିଲାଣି । )

୨୧ । (ସକର୍ମକ) ଗିରଫଦାର କରିବା—
21. To arrest; to seize; to capture.

( ଯଥା—ପୁଲିସ୍ ସାହେବ ନିଜେ ଯାଇ ଫେରାରି ଆସାମୀକୁ ଧରିଲେ । )

୨୨ । ( ସକର୍ମକ ) ତଥ୍ୟ ପାଇବା; ଠଉରାଇବା; ଦୋଷ ଆଦି ଜାଣିବାକୁ କ୍ଷମ ହେବା—
22. To detect; to succeed in ascertaining.

(ଯଥା—ତୋ ବିଦ୍ୟା କେତେ ଯେ, ତୁ ମୋ ଭୁଲ ଧରିବୁ ?

ଚୋର ଧରିବ ଗର୍ତ୍ତରେ, ନାସ ଧରିବ ଖରରେ—ତଗ ।

୨୩ । (ଅକର୍ମକ) ଯଥେଷ୍ଟ ହେବା; ସମ୍ପୁରିବା—
23 To be held by; to contain; to suffice; to be enough for.

(ଯଥା—ଏ ଗିଲାସରେ ସେରେ ଦୁଧ ଧରିବ ନାହିଁ ।)

୨୪ । (ସକର୍ମକ) ରଖିଦେବା; ଉପସ୍ଥାପିତ କରିବା—
24 To place; to produce before.

(ଯଥା—ମୋ ଆଗରେ ଭାତ ଥାଳିକ ଧରିଲେ ମୁଁ ସେତକର ଶୀଘ୍ର ସଦ୍‌ବ୍ୟବହାର କରିଦେବି ।)

୨୫ । (ସକର୍ମକ) ପହଞ୍ଚିବା—25. To reach.

( ଯଥା—ଜିଆ ଆମ ପଢ଼ଶା ଗ୍ରାମକୁ ଧରିଲାଣି । )

୨୬ । ( ସକର୍ମକ ) ସମାଲୋଚନା କରିବା—
26. To criticise.

(ଯଥା—ମୋ କଥାକୁ ଏପରି ଧରିଲେ ମୁଁ ଆଉ ପାଟି ଫିଟେଇବି ନାହିଁ । )

୨୭ । (ସକର୍ମକ) (ପଥ) ଅବଲମ୍ବନ କରିବା—
27. To take (a route),

(ଯଥା—ସଡ଼କ ବାଟ ଧରିଲେ ମୁଁ ଆଖି ବୁଜି ପୁରୀରେ ପହଞ୍ଚିବି ।)

୨୮ । (ସକର୍ମକ) କୌଣସି କାର୍ଯ୍ୟ କରିବାକୁ ବାଧ୍ୟ କରିବା—
28. To oblige or force a person to do something.

(ଯଥା—ସେ ମୋତେ ଧରି ଧର୍ମ କରଉଛି)

୨୯ । (ସକର୍ମକ) (ଅମୁକର) ସାହାଯ୍ୟ ନେବା—
29. To take the help of,

କାଳୁ ଧରିଲି କ ବାଡ ଟଲିଲ, କହାଲେ ଅଲଙ୍କୁ ପୁଅ ବେଇଲି—ତଗ ।

୨୯ । (ସକର୍ମକ) ବ୍ୟାପିବା; ବିସ୍ତୃତ ହେବା—
29. To extend over; to pervade.

ସେ ଅଣ୍ଟା ସବୁ ସତେ ଧରି
ଦୃଶ୍ୟେ ଅଦୃଶ୍ୟେ ଛନ୍ତି ପୂରି । ଜଗନ୍ନାଥ, ଭାଗବତ ।
ଦେଶର ବାହାରେ ବହୁ ଦୂର ଧରି ଅଛି ଯେ ସବୁ ମନ୍ଦିର ଅଛି ।
କୃପାସିନ୍ଧୁ, ଇତିହାସ ।

୩୦ । (ସକର୍ମକ) ଘୋଟିବା; ଆକ୍ରାନ୍ତ କରିବା—
30 To pervade; to overpower.

( ଯଥା—ତାଙ୍କୁ ନିଶା ଧରିଲାଣି । ).

୩୧ । (ସକର୍ମକ) ଆକ୍ରମଣ କରିବା—
31. To attack; to set upon.

( ଯଥା—ଡାହାଳ କୁକୁର ଲୋକଙ୍କୁ ଧରିବାକୁ ଗୋଡ଼ାଉଛି । )

୩୨ । (ସକର୍ମକ) ନିମନ୍ତ୍ରଣ କରି ସଙ୍ଗରେ ନେବା—
32. To take the invited person with one's self.

( ଯଥା— ବର ଧରିବାକୁ କାଲି ସନ୍ଧ୍ୟାବେଳଠାରୁ ଲୋକ ଗଲେଣି, ଏତେ ବେଳଯାଏଁ ଫେରି ନାହାନ୍ତି । )

୩୩ । (ଅକର୍ମକ) (ନିଆଁ) ଲାଗିବା—
33. To be ignited; to catch (fire).

( ଯଥା—ଓଦା ଶୋଲରେ ନିଆଁ ଧରୁ ନାହିଁ । )

୩୪ । (ସକର୍ମକ) ବନ୍ଦ କରି ରଖିବା; ଅଟକାଇବା—
34. To restrain.

( ଯଥା—୨୪ ବର୍ଷର ପୁଅକୁ କଏ ସବୁବେଳେ ଘରେ ଧରି ରଖି ପାରିବ ? )

୩୫ । (ସକର୍ମକ) ସମ୍ଭାଳିବା—
35. To keep intact; to maintain.

( ଯଥା—ମୁଁ ଆଉ ଧୈର୍ଯ୍ୟ ଧରି ପାରିବି ନାହିଁ । )

୩୬ । (ସକର୍ମକ) ଆକାର ଧାରଣ କରିବା—
36. To assume the form of.

ଚଣ୍ଡି ମୂରତି ଧରିଲି କା ବୋଲେ । କବିସୂର୍ଯ୍ୟ. ସଙ୍ଗୀତ ।

୩୭ । (ସକର୍ମକ) ସଂଗ୍ରହ କରିବା; ସଞ୍ଚୟ କରିବା—
37. To collect; to gather up; to store up

ଜାଳକି ଧରିଲେ କି ଘଡ଼ା ଭର୍ତ୍ତି ହୁଏ ? ଢଗ ।

( ଯଥା—ଆମ ମାଳ ମଞ୍ଜିଯାକ ଧରି ରଖି ସାରିଲାଣି । )

୩୮ । (ସକର୍ମକ) ବିବେଚନା କରିବା; ବୁଝିବା—
38. To consider; to notice

ନ ଧରି ଦୋଷ ଥିଲେ ସାଧୁ ଜନ । କୃଷ୍ଣସିଂହ, ମହାଭାରତ, ଆଦି ।

୩୯ । (ସକର୍ମକ) ଗ୍ରହଣ କରିବା; ଧାରଣ କରିବା—
39. To hold.

ଚଳେ ବସନ ପ୍ରସାଦ ତୃଣ ଦଶନାଗ୍ରେ ଧରି ।
କବିସୂର୍ଯ୍ୟ. କଳଶୋପଚୌତିଶା ଗୀତ ।

୪୦ । ( ସକର୍ମକ ) ଆଲିଙ୍ଗନ କରିବା—
40 To embrace.

[ ଦ୍ର—ମାତା ପୁତ୍ରକୁ କୋଳରେ ଧରିଛନ୍ତି । ]

୪୧ । (ଅକର୍ମକ) ପରିଣତ ହେବା—
41. To turn into.

( ଯଥା—ପଇଡ଼ଯାକ ନଡ଼ିଆ ଧରିଲାଣି, ଆମ୍ବ କଷି ଧରିଲାଣି । )

୪୨ । (ସକର୍ମକ) (ତାରିଖ) ସ୍ଥିର କରିବା—
42. To fix; to settle ( a date ).

( ଯଥା—ମାଘ ଶୁକ୍ଳପଞ୍ଚମୀ ଦିନ ୫ ଦଣ୍ଡକୁ ପଣ୍ଡିତେ ବିବାହର ଲଗ୍ନ ଧରିଛନ୍ତି । )

୪୩ । (ସକର୍ମକ) ହୃଦୟରେ ବହିବା; ଅନୁଭବ କରିବା—
43. To feel; to experience.

କାହୁଁଲେ ବେକକୁ ଟିକି ବିକଳ କି ଧରି । କୃଷ୍ଣସିଂହ. ମହାଭାରତ. ବିରାଟ ।

୪୪ । (ସକର୍ମକ) (ଆଜ୍ଞା) ପାଳନ କରିବା—
44. To obey ( an order ).

କେବଳ ତୁମ୍ଭ ଆଜ୍ଞା ଧରି ମୁଁ ଯାଉଛି
କଳଇ ମାନସରେ ନୃପ ଦୁଃଖ କରୁ । କୃଷ୍ଣସିଂହ. ମହାଭାରତ. ଦ୍ରୋଣ ।

୪୫ । (ସକର୍ମକ) (ମନକୁ) ଏକାଗ୍ର କରିବା—
45. To concentrate (one's mind).

ଯୋଗେ ନ ପାରି ଚିତ୍ତ ଧରି
ଚଞ୍ଚଳେ ଏମନ୍ତ କରଇ । ଜଗନ୍ନାଥ. ଭାଗବତ ।

୪୬ । (ମନକୁ) ସଂଲଗ୍ନ କରିବା, ମଜାଇବା; ଲଗାଇବା, ସଂଯୋଗ କରିବା—46. To fix (one's mind) on.

ଏବେ ହୋ ଶୁଣ ମୁନିବର
ହରି ଚରଣେ ମନ ଧର । ଜଗନ୍ନାଥ. ଭାଗବତ ।

୪୭ । (ସକର୍ମକ) (ଗଛ ଫୁଲ ଫଳ ଆଦି) ଉତ୍ପାଦନ କରିବା—
47. To bear (fruits, flowers etc)

କଷ୍ଣା କାମତରୁ କୁସୁମ ନ ଧରୁ ନିଷ୍ଫଳ କୁଠାରେ କାଟିଲ ।
ଦୀନକୃଷ୍ଣ. ରସକଲ୍ଲୋଳ ।

୪୮ । (ସକର୍ମକ) କୌଣସି ନୂତନ ଖାଦ୍ୟାଦିରେ ଅଭ୍ୟସ୍ତ ହେବା
48. To be habituated to (any kind of new thing).

( ଯଥା—ଏ ବାଛୁରି ଘାସ ଧରିଲାଣି; ଏବକୁ ଇସ୍କୁଲିଆ ପିଲାମାନେ ଚୁରୁଟ ଧରିଲେଣି । )

୪୯ । (ସକର୍ମକ) ଅସ୍ତ୍ର ଶସ୍ତ୍ରାଦିକୁ ପଜାଇବା—
49. To sharpen; to whet.

( ଯଥା—କ୍ଷୁର ଧରିବା । )

୫୦ । (ସକର୍ମକ) ନିଲାମରେ ଡାକ ସମ୍ପତ୍ତି କିଣିବା—
50. To purchase a property by bidding at an auction-sale.

୫୧ । ( କର୍ମକର୍ତ୍ତୃବାଚ୍ୟ ପ୍ରୟୋଗ ) ( ରୋଗ ଆଦି ) ଆକ୍ରମଣ କରିବା—51. To attack ( said of a disease ).

( ଯଥା—ତାକୁ ବାଇ ଧରିଛି; ତାକୁ ଗୁଳଣା ଧରିଲାଣି; ହଇଜା ଧରିବା । )

୫୨ । (ସକର୍ମକ) (କଥାର ବା ଲେଖାର) ଦୋଷ ବାଛିବା—
52. To find fault with ( another's speech or writing ).

( ଯଥା—ମୁଁ ତ ବ୍ୟାକରଣ ପଢ଼ି ନାହିଁ, ଆପଣ ବ୍ୟାକରଣର ନିୟମଅନୁସାରେ ମୋ ଲେଖାକୁ ଧରିଲେ ମୁଁ ଆଉ ସୁନ୍ଦର ଶୁଦ୍ଧ ଭାଷା ଲେଖି ପାରିବି ନାହିଁ । )

୫୩ । ସଙ୍ଗରେ ନେବା—53. To take with.

କେଶିନୀ ତାହା ଶୁଣି ଧରି ସେ ପିଲାକୁ;
ଚଳିଲା ସେ ବାହୁକ ଥିବାର ସ୍ଥାନକୁ ।
କୃଷ୍ଣସିଂହ. ମହାଭାରତ. ବନ ।

୫୪ । ଯଥାକାଳରେ ଷ୍ଟେସନ ଆଦିରେ ରେଲ ବା ଜାହାଜରେ ଆରୋହଣ କରିବା—54. To catch a train or ship.

(ଯଥା—ବାଟରେ ଡେରି ହେବାରୁ ମୁଁ ଡାକଗାଡ଼ି ଧରି ପାରିଲି ନାହିଁ ।).

୫୫ । (ସକର୍ମକ) କୌଣସି ବିଷୟକୁ ନ ଛାଡ଼ିବା—
55. To stick to; never to give up.

ହରିନାମଟି ଧରି ଥିବୁଟି—ଢଗ ।

୫୬ । ଆରମ୍ଭ କରିବା—56 To begin.
( ଯଥା—ବ୍ୟାକରଣ ପଢ଼ା ଶେଷ କରି ମୁଁ ଏବେ କାବ୍ୟ ଧରିଛି । )

୫୭ । (ସକର୍ମକ ଓ ଅକର୍ମକ) (କଳଙ୍କି ଆଦି) ଲାଗିବା; (ମୁରୁଗୁ) ମାରିବା—57. To be spread over with (rust); to rust.
[ଯଥା—ବହୁଦିନ ବ୍ୟବହୃତ ନ ହେବାରୁ ଏ ଖଣ୍ଡାରେ କଳଙ୍କି (ମୁରୁଗୁ) ଧରିଲାଣି ବା ଖଣ୍ଡା କଳଙ୍କି ଧରିଲାଣି ।]

୫୮ । (ସକର୍ମକ ଓ ଅକର୍ମକ) ନଷ୍ଟ କରିବାକୁ ଆରମ୍ଭ କରିବା-58. To begin to spoil.
(ଯଥା—କାଠରେ ଉଇ ଧରିଲେଣି; ପୁରୁଣା ବହି ଯାକ ପୋକ ଧରିଲେଣି ।)

୫୯ । ଅନୁସରଣ କରିବା; ଅନୁସାରେ ଚଳିବା—
59 To follow; to act according to.
(ଯଥା—କଡ଼ଖରେ ଘଣ୍ଟା ଧରି ଲୋକେ କାମ କରନ୍ତି । )

[ଦ୍ର—'ଧରିବା କ୍ରିୟାର ଅତୀତ କାଳରେ 'ଧଇଲି, ଧଇଲ, ଧଇଲା, ଧଇଲେ ଇତ୍ୟାଦି ରୂପ ସିଦ୍ଧ ହୁଏ ।
ଧରିବା କ୍ରିୟାର ଅସମାପିକା ରୂପ ପରେ ଆଣିବା, ନେବା, ପକା(କେ)ଇବା, ଦେବା, ବାନ୍ଧିବା, ମାରିବା, ରଖିବା, ଆଦି କ୍ରିୟାର ସମାପିକା ରୂପ ବ୍ୟବହୃତ ହୋଇ ମିଶ୍ରିତ କ୍ରିୟାମାନ ସମ୍ପନ୍ନ ହୁଏ ।
ଧରିବା କ୍ରିୟାର ସମାପିକା ରୂପ ସଙ୍ଗେ ବାନ୍ଧିବା ଓ ମାରିବା, କ୍ରିୟା ସମାର୍ଥସୂଚକ ସହଚରରୂପେ ବ୍ୟବହୃତ ହୁଏ ।
କାମୁଡ଼ିବା, ଚପିବା, ଟେକିବା, ଟାଣିବା, ଓଟାରିବା, ଉଠା(ଠେ)ଇବା, ମାଡ଼ିବା,ଉଡ଼ିବା ଆଦି କ୍ରିୟାର ଅସମାପିକା ରୂପ ପରେ ଧରିବା କ୍ରିୟାର ସମାପିକା ରୂପ ଯୁକ୍ତ ହୁଏ ।]

**ଧରି ବାନ୍ଧି**—ଦେ.କ୍ରି. ବିଣ.—(ଧରିବା ଓ ବାନ୍ଧିବା, ଏ ଦୁଇ କ୍ରିୟା ଯୋଗରେ ଉତ୍ପନ୍ନ ମିଶ୍ର କ୍ରିୟାର ଅସମାପିକା ରୂପ କ୍ରି. ବିଣ. ରୂପେ ବ୍ୟବହୃତ )—ବାଧ୍ୟ କରି; ଜବରଦସ୍ତି କରି ବା ବଳାଇ କରି—Forcibly.
Dhari bāndhi
ଧରେବେନ୍ଧେ ଜବରଦସ୍ତି କରି

**ଧରିମା**—ସଂ. ବି.— ( ଧୃ ଧାତୁ+କର୍ମ ଇମନ୍=ଧରିମନ୍ ଶବ୍ଦ ୧ମା. ୧ବ )—୧ । ତରାଜୁ; ତୁଳା ଯନ୍ତ୍ର—
Dharimā
1. A pair of scales; a balance (Apte).
୨ । ରୂପ; ଆକାର—2. Form; shape.

**ଧରି ମାରିବା**—ଦେ.କ୍ରି.—(ସଂ. ଧୃ ଧାତୁ ଓ ମୃ ଧାତୁ ଣିଚ୍ ମାରି ଧାତୁ)—
Dhari māribā
କୌଣସି ବ୍ୟକ୍ତି ମାଡ଼ ଖାଇଲା ବେଳେ ପଳାଇ ଯାଇ ନ ପାରିବ ବୋଲି ତାକୁ ଆଗେ ଧରିବା ଓ ପଛେ ମାଡ଼ ଦେବା—To beat a person after catching hold of him so that he may not escape.
ଧରି ମାରିଲେ ସିନା ମରନ୍ତି—ଭଗ ।

**ଧରି ରଖିବା**—ଦେ. କ୍ରି.—୧ । ନିଜର ଆୟତ୍ତରେ ରଖିବା; ଆୟତ୍ତ କରିବା—To keep under one's control.
Dhari rakhibā
ଧରେବାଖା ' ଧର ରଖନା

**ଧରୁଆ**—ଦେ. ବି.—୧ । (ସଂ. ଧୃ ଧାତୁ) ମଝି ଶେଣୀ—1. The central long beam of a thatched roof.
Dharuā
ଘର ନାମ ଶେଣୀ ଛନ୍ଦି ଘଟିଛି ଧରୁଆ ।
ବୃହନ୍ନଳରୂପଣଗୀତା ।
୨ । ଧାରଣା; ଠେକ—2. Prop; support.

**ଧରୋଟ**—ଦେ. ବିଣ.—(ସଂ. ଧର୍ତ୍ତବ୍ୟ)—ବିବେଚିତ ହେବାର ଯୋଗ୍ୟ—Worthy of being noticed; noticeable.
Dharoṭa
ମକର ମାସ ଶୀତ ଦେଖିଲୁ, କକଡ଼ା ମାସ ଚଳୁଛି, ଏଇଟା କ ଧରୋଟ ଭିତରେ ନୁହେ । ଫକୀରମୋହନ. ଗଳ୍ପସ୍ୱଳ୍ପ ।
ବି.—ବିବେଚିତ ହେବାର ଯୋଗ୍ୟତା—
The state of being noticeable

**ଧର୍ତ୍ତବ୍ୟ**—ସଂ. ବିଣ. (ଧୃ ଧାତୁ=ଧରିବା+କର୍ମ ତବ୍ୟ)—
Dharttabya
(ଧର୍ତବ୍ୟ—ଅନ୍ୟରୂପ)
(ଧର୍ତ୍ତବ୍ୟା—ସ୍ତ୍ରୀ)
୧ । ଧାରଣୀୟ; ଧରିବାର ଯୋଗ୍ୟ—1. Worthy of being held.
୨ । ଗଣନୀୟ—
2. Calculable; noticeable.
୩ । ରଖିବାର ଯୋଗ୍ୟ—3. Fit to be kept.
୪ । ଗିରଫ କରାଯିବାର ଯୋଗ୍ୟ—
4 Deserving to be apprehended.
୫ । ବିବେଚନାର ଯୋଗ୍ୟ—
5. Worthy of consideration.
୬ । ଗ୍ରାହ୍ୟ—6. Acceptable

**ଧର୍ତ୍ତା**—ସଂ. ବିଣ ପୁଂ. (ଧୃ ଧାତୁ=ଧରିବା+କର୍ତ୍ତୃ. ତୃ; ୧ମା. ୧ବ)—
Dharttā
(ଧର୍ତ୍ତ୍ରୀ—ସ୍ତ୍ରୀ)
୧ । ଧାରଣ କର୍ତ୍ତା—1. Holding; supporting.
୨ । ରକ୍ଷଣକାରୀ—2 Preserving.
୩ । ବହନକର୍ତ୍ତା—3 Bearing; carrying.
୪ । ଯେ କୌଣସି କାର୍ଯ୍ୟର ଭାର ନିଜର ଉପରେ ଗ୍ରହଣ କରେ—4. Taking upon one's self the responsibility for any work.

**ଧର୍ତ୍ତି**—ଦେ. ବି—୧ । (ସଂ ଧରିତ୍ରୀ)—ଧରିତ୍ରୀ (ଦେଖ)
Dhartti
(ଧର୍ତି—ଅନ୍ୟରୂପ)
1. Dharitrī (See)
୨ । (ସଂ. ଧୃତି) ଧୈର୍ଯ୍ୟ—2. Patience.
ଧରତୀ धर्ती

**ଧର୍ତ୍ର**—ସଂ. ବି (ଧୃ ଧାତୁ=ଧରିବା+ସଂଜ୍ଞାର୍ଥେ ତ୍ର)—୧ । ଗୃହ—
Dharttra
1. House.
୨ । ଯଜ୍ଞ—2. Vedic sacrifice.
୩ । ଧର୍ମ—3. Virtue; piety; religion.
୪ । ସହଜ ଗୁଣ—4 Attribute.

**ଧର୍ମ**—ସଂ. ବି. (ଧୃ ଧାତୁ=ପୋଷଣ କରିବା+କର୍ତ୍ତୃ. ମ; ଯାହା ସଂସାରକୁ ବା ଲୋକମାନଙ୍କୁ ଧାରଣ କରେ ବା ପୋଷଣ କରେ)—
Dharma
(ଧର୍ମ୍ମ—ଅନ୍ୟରୂପ)
୧ । କର୍ତ୍ତବ୍ୟ କର୍ମ—1. Duty.
୨ । ସଦନୁଷ୍ଠାନ; ସତ୍କର୍ମ—
2. A good act; meritorious deed.
୩ । ଭାଗ୍ୟ—3. Fortune; luck.

୪ । ଶୁଭାଦୃଷ୍ଟ—Good fortune.

୫ । ପୁଣ୍ୟ—5. Virtue; piety.

୬ । ଶ୍ରେୟଃ; ମଙ୍ଗଳ—6 Welfare

୭ । ସୁକୃତ—7. Virtue acquired by good actions.

୮ । ମହାଦେବଙ୍କ ବୃଷ—8. Sibas' bull.

୯ । ନ୍ୟାୟ—9. Justice; right; righteousness.

୧୦ । ସ୍ୱାଭାବିକ ଅବସ୍ଥା—10. Natural condition.

୧୧ । ସ୍ୱଭାବ; ପ୍ରକୃତି—11 Nature; property of a thing; natural disposition; characteristic.

୧୨ । ଗୁଣ—12. Quality; attribute.

୧୩ । ଆଚରଣ; ଆଚାର; ବ୍ୟବହାର—
13. Conduct; practice.

ଅପରେ ଧର୍ମ ପ୍ରାଣୀଙ୍କର
ଏ ସବୁ କହ ମୁନିବର । ଜଗନ୍ନାଥ ଭାଗବତ ।

୧୪ । ଶାସ୍ତ୍ରବିହିତ ଆଚାର—14 Act or conduct approved by the scriptures.

[ ଦ୍ର—ହିନ୍ଦୁ ଧର୍ମଶାସ୍ତ୍ରମାନଙ୍କର ପ୍ରତ୍ୟେକ ମନୁଷ୍ୟର ଓ ବିଭିନ୍ନ ବର୍ଣ୍ଣାଶ୍ରମୀମାନଙ୍କର ସାଧାରଣ କର୍ତ୍ତବ୍ୟ ଓ ବର୍ଣ୍ଣାଶ୍ରମ ଧର୍ମ ବର୍ଣ୍ଣିତ ହୋଇଅଛି । ]

୧୫ । ଯଥାଯୋଗ୍ୟ ବ୍ୟବହାର—15. Proper or seasonable conduct; suitable conduct.

୧୬ । ଯଜ୍ଞ; ବେଦବିହିତ କର୍ମ—
16. Sacrifice; vedic rites.

୧୭ । ସାମ୍ପ୍ରଦାୟିକ ଈଶ୍ୱରବିଶ୍ୱାସ; ଉପାସନାପଦ୍ଧତି—
17. Faith; tenet of a religion.

୧୮ । ଦେଶଚାଳି; ଆଇନ୍—
18. Law; usage; custom.

୧୯ । ଧନୁ—19. Bow.

୨୦ । (ମନୁଷ୍ୟକୁ ଦଣ୍ଡ ଓ ପୁରସ୍କାର ଦେବାର କର୍ତ୍ତା) ଯମ—
20. Jama, the Hindu God of death.

୨୧ । ସୋମପାୟୀ ଯାଜ୍ଞିକ—21. One who drinks the juice of the Soma creeper in the course of performing a vedic sacrifice.

୨୨ । ନ୍ୟାୟାନୁଗତ ବିଚାର—22. Just consideration.

୨୩ । ସତ୍ସଙ୍ଗ—23. Good company.

୨୪ । ସ୍ତ୍ରୀର ସତୀତ୍ୱ—24. Chastity of a woman.

୨୫ । ଯୋଗ୍ୟତା—25. Merit; desert.

୨୬ । (ଫଳିତ ଜ୍ୟୋତିଷ) ଲଗ୍ନର ନବମ ସ୍ଥାନ—
26. (astrology) The 9th place counted from one's Lagna or natal planet.

୨୭ । ବିଷ୍ଣୁଙ୍କ ନାମ—
27. One of the names of Bishnu.

୨୮ । ସାଦୃଶ୍ୟ (ପ୍ରକୃତିବାଦ)—28. Similarity.

୨୯ । ଆତ୍ମା ବା ଜୀବ—29. The Living Soul.

୩୦ । ଭାବ—30. Idea.

୩୧ । ଯୁଧିଷ୍ଠିର—31. A name of Judhishthira.

୩୨ । ସୂର୍ଯ୍ୟ—32. The sun.

୩୩ । ଉପନିଷଦ୍—33. The Upanishads.

୩୪ । ପାପ ପୁଣ୍ୟର ବିଚାରକ ଈଶ୍ୱର—
34. God, who judges of the piety and sin of the created beings.

୩୫ । ଅହିଂସା—35 Inoffensiveness, aversion to slaughter.

୩୬ । ( ଅଳଙ୍କାର ଶାସ୍ତ୍ର ) ଉପମାନ ଓ ଉପମେୟରେ ଥିବା ସାଧାରଣ ଗୁଣ (ହି. ଶବ୍ଦସାଗର)—36. (Rhetoric) The attribute which is common to an object and the thing to which it is compared in a metaphor or Simile.

୩୭ । ସମାଜର ସ୍ଥିତି ଓ ମଙ୍ଗଳପାଇଁ ଅନୁଷ୍ଠିତ କର୍ମମାନ—
37. Acts conducing to the welfare and preservation of the society; acts conducing to the greatest good of the greatest number in society.

୩୮ । ନ୍ୟାୟବୃତ୍ତି; ବିବେକ; ଉଚିତ ଓ ଅନୁଚିତ ବିଷୟର ବିଚାରକ ଚିତ୍ତବୃତ୍ତି (ହି. ଶବ୍ଦସାଗର)—
38. Conscience.

୩୯ । ବୌଦ୍ଧମାନଙ୍କର ତିନି ଉପାସ୍ୟ ଦ୍ରବ୍ୟ ମଧ୍ୟରୁ ଏକ—
39. One of the Buddhistic Trinity.

[ଦ୍ର—୧ । ବୌଦ୍ଧମାନଙ୍କର ଉପାସ୍ୟ ବସ୍ତୁ ତିନୋଟି । ୧, ବୁଦ୍ଧ, ୨, ସଂଘ ଓ ୩, ଧର୍ମ ।

୨ । ପ୍ରାୟ ସବୁ ଧର୍ମରେ ଈଶ୍ୱରବିଶ୍ୱାସ, ଈଶ୍ୱରାଜ୍ଞାପାଳନ, ଲୋକୋପକାର, ଅହିଂସା, ଇନ୍ଦ୍ରିୟ ସଂଯମ, ସତ୍ୟବାଦିତା, ପରଲୋକରେ ବିଶ୍ୱାସ ଆଦି ହୋଇଅଛି । ସବୁ ଧର୍ମର ମୂଳରେ ଈଶ୍ୱରଭକ୍ତି ରହିଅଛି । ବୌଦ୍ଧମାନେ 'ଈଶ୍ୱର'ଙ୍କୁ ସାକ୍ଷାତ୍ ସମ୍ବନ୍ଧରେ ସ୍ୱୀକାର ନ କଲେ ମଧ୍ୟ ସେମାନଙ୍କ 'ନିର୍ବାଣ ବା ମୋକ୍ଷ' ହିନ୍ଦୁମାନଙ୍କର 'ମୁକ୍ତି' ସଙ୍ଗେ ସମାନ । ନାସ୍ତିକମାନେ ଈଶ୍ୱରଙ୍କୁ ମାନନ୍ତି ନାହିଁ; କିନ୍ତୁ ସେମାନଙ୍କ ସଂଖ୍ୟା ସବୁ ଯୁଗରେ ଏତେ କମ୍ ଯେ ତାହା କେବେହେଁ ଗୋଟିଏ ସ୍ୱତନ୍ତ୍ର ଧର୍ମ ରୂପେ ପ୍ରତିଷ୍ଠିତ ହୋଇ ପାରି ନାହିଁ । ଶ୍ରୁତି (ବେଦ); ସ୍ମୃତି ( ମନୁଆଦିଙ୍କର ରଚିତ ଶାସ୍ତ୍ର) ଓ ପୁରାଣ ( ବୈଦିକଯୁଗ ପରେ ରଚିତ ଶାସ୍ତ୍ର) ମାନଙ୍କରେ ନିର୍ଦ୍ଦିଷ୍ଟ ଉପଦେଶମାନ ସାଧାରଣତଃ 'ଧର୍ମ' ନାମରେ ଅଭିହିତ ହୁଏ । ଏଥିରେ ଈଶ୍ୱରୋପାସନା, ପରଲୋକ ଓ ଇହଲୋକର ମଙ୍ଗଳକର କର୍ମ, ସାମାଜିକ ଓ ବୈଜ୍ଞାନିକ ନିୟମମାନ, ଧନବିଭାଗ ଓ ଉତ୍ତରାଧିକାରିତ୍ୱ ଆଦି ନାନା ବିଷୟ ଅଛି । ଅନେକ ସମୟରେ ଏହି ଭିନ୍ନ ଭିନ୍ନ ଉପଦେଶମାନଙ୍କ ମଧ୍ୟରେ ବୈପରୀତ୍ୟ ବା ବୈଷମ୍ୟ ଦୃଷ୍ଟ ହୁଏ । ଏଥିପାଇଁ ଋଷିମାନେ କହି ଯାଇଅଛନ୍ତି ଶ୍ରୁତି, ସ୍ମୃତି, ପୁରାଣ ମଧ୍ୟରେ ଅସାମଞ୍ଜସ୍ୟ ଦେଖାଗଲେ, ଶ୍ରୁତିର ଆଜ୍ଞା ହିଁ ଗ୍ରାହ୍ୟ ।

କେହି କେହି କହୁଅଛନ୍ତି 'ମହାଜନ' ବା ମହାପୁରୁଷ ମାନେ ଯେଉଁ ବାଟରେ ଯାଇଅଛନ୍ତି ଓ ଯାହା ବହୁକାଳରୁ ଦେଶାଚାରର ବା ଲୌକିକାଚାରରୂପେ ଚଳି ଆସୁଅଛି ତାହାହିଁ ପାଳନୀୟ । ଧର୍ମ ଶବ୍ଦର ଅର୍ଥ ବିଷୟ ମଧ୍ୟରେ ନାନା ମୁନିଙ୍କ ନାନା ମତ । ଅଭିଧାନ ମତରେ ସତ୍ସଙ୍ଗହିଁ ଧର୍ମ; ମହାଭାରତ ମତରେ ଧର୍ମର ଲକ୍ଷଣ 'ଅହିଂସା' । ପୁରାଣରେ ଲେଖାଅଛି ଯେ ଯଦ୍ଦ୍ୱାରା ଲୋକସ୍ଥିତି ବିହିତ ହୁଏ ତାହାକୁ ଧର୍ମ କୁହାଯାଏ । ମୀମାଂସା ମତରେ ପୁରୁଷର ବିହିତ କ୍ରିୟା ସାଧ୍ୟ ଗୁଣକୁ ଧର୍ମ ବୋଲାଯାଏ । ଯୁକ୍ତିବାଦୀମାନେ କହନ୍ତି—ମନୁଷ୍ୟର ଯାହା କର୍ତ୍ତବ୍ୟ ତାହା ସମ୍ପାଦନ କରିବାକୁ ଧର୍ମ ବୋଲାଯାଏ; ମନର ଯେଉଁ ପ୍ରକୃତିଦ୍ୱାରା ବିଶ୍ୱବିଧାତା ପରମାତ୍ମାଙ୍କ ପ୍ରତି ଭକ୍ତି ଜନ୍ମେ ଜ୍ଞାନବାଦୀମାନଙ୍କ ମତରେ ତାହାର ନାମ ଧର୍ମ । ]

ଦେ. ବି (ସଂ. ଧର୍ମ)—୧ । ଧର୍ମଦେବତା; ନିରଞ୍ଜନ; ପରଂବ୍ରହ୍ମ; ଈଶ୍ୱର; ଅଣାକାର—1. God; the Universal God; the formless God contemplated by the popular mystics of Orissa

୨ । ସୂର୍ଯ୍ୟଦେବତା—2. The Sun-god.

[ଦ୍ର—ହିନ୍ଦୁମାନଙ୍କ ମଧ୍ୟରେ ସାଧାରଣ ଲୋକେ ବୌଦ୍ଧଧର୍ମ ଓ ହିନ୍ଦୁଧର୍ମ ବିଶ୍ୱାସ ସମନ୍ୱିତ ଅଣାକାରଦେବତା ବା ସୂର୍ଯ୍ୟଦେବତାଙ୍କୁ ଧର୍ମଦେବତା ବୋଲି ବିଶ୍ୱାସ କରନ୍ତି । ଲୋକେ ବିଶ୍ୱାସ କରନ୍ତି ଯେ ଏହି ଦେବତା ପାପୀଙ୍କୁ ଦଣ୍ଡ ଦିଅନ୍ତି । ଏଥିପାଇଁ ଅତ୍ୟାଚାରିତ ବ୍ୟକ୍ତି ଧର୍ମକୁ ଡାକେ ଓ ଧର୍ମନାମଧରି ପାଣି ଅଞ୍ଜୁଳା ଦିଏ । ]

୩ । ନ୍ୟାୟ; ଆଇନ୍‌ର ସ୍ଥୂଳବିଚାରବହିର୍ଭୂତ ନ୍ୟାୟ; ଆଇନ୍ କାନୁନ୍‌ର ଦଫା ଅନୁସାରେ ନ ଫାଦଲେ ମଧ୍ୟ ଈଶ୍ୱରଙ୍କ ଦୃଷ୍ଟିରେ ଯାହା ଉଚିତ—
3. Equity.

୪ । କୌଣସି ଆଚାର୍ଯ୍ୟ ବା ମହାତ୍ମାଙ୍କ ଦ୍ୱାରା ପ୍ରବର୍ତ୍ତିତ ଈଶ୍ୱର, ପରଲୋକ ଓ କର୍ତ୍ତବ୍ୟ ଆଦି ସମ୍ବନ୍ଧେ ବିଶ୍ୱାସ ଓ ବିଶିଷ୍ଟ ଉପାସନା ପ୍ରଣାଳୀ—4. Religion; religious faith or persuation; creed.

ଦେ. ବି. ଓ ବିଣ—ଧର୍ମ ବା ଈଶ୍ୱର ବା ଦେବତା ବା ମହାପ୍ରସାଦକୁ ସାକ୍ଷ୍ୟ ରଖି ଦୁଇ ଜଣଙ୍କ ମଧ୍ୟରେ ଯେଉଁ ପିତା, ମାତା, ପୁତ୍ର, କନ୍ୟା, ଭ୍ରାତା, ଭଗିନୀ ଆଦି ସମ୍ବନ୍ଧ ସ୍ଥାପନ କରାଯାଏ—God-relationship; relationship set up between 2 persons not related to each other by blood or marriage but by calling upon God to witness the establishment of the relationship.

(ଯଥା—ଧର୍ମପୁଅ, ଧର୍ମଭାଇ, ଧର୍ମ ବାପ, ଧର୍ମ ମାଆ । )

[ଦ୍ର—କୌଣସି ଦେବତା ବା ମହାପ୍ରସାଦ ବା କୌଣସି ଦେବତାଙ୍କ ଭୋଗ ବା ଗଙ୍ଗା-ଜଳାଦି ପବିତ୍ର ବସ୍ତୁକୁ ସାକ୍ଷୀ ରଖି ଦୁଇ ଜଣ ବ୍ୟକ୍ତି ପରସ୍ପର ସଙ୍ଗେ ଧର୍ମ ବାପ, ଧର୍ମ ପୁଅ, ଧର୍ମ ଭାଇ, ଧର୍ମ ଭଉଣୀ, ଧର୍ମ ମାଆ, ଧର୍ମ ଝିଅ, ସଙ୍ଗାତ, ମୈତ୍ର, ଓଶକା, ସବୁଫୁଲ, ଅଭଡ଼ା, ଗୁଜ, ବଉଳ, ଗଙ୍ଗାଜଳ, ତୁଳସୀ, ଗୋଦାବରୀ, ପହିଲି ଭୋଗ, ଏହିପରି ନାନାପ୍ରକାର ଧର୍ମ-ବନ୍ଧୁତା ସ୍ଥାପନ କରନ୍ତି । ଏମାନଙ୍କୁ ପ୍ରୀତି ବନ୍ଧୁ ବା ଧର୍ମ ବନ୍ଧୁ ବୋଲାଯାଏ । ସମୟ ସମୟରେ ଦେଖା ଯାଏ ଯେ ଏ ବନ୍ଧୁତା ରକ୍ତ ସମ୍ପର୍କ ବା ବିବାହ ସମ୍ପର୍କଠାରୁ ଦୃଢ଼ତର ଓ ପବିତ୍ରତର ହୁଏ । ସମୟ ସମୟରେ ଏହି ଧର୍ମ ସମ୍ପର୍କ ସ୍ଥାପନ କରିବା ଛଳରେ ମଧ୍ୟ ଲୋକେ ସ୍ୱାର୍ଥସାଧନ ଓ ଇନ୍ଦ୍ରିୟବୃତ୍ତିସାଧନାଦି ଜଘନ୍ୟ କର୍ମମାନ କରି ଥାଆନ୍ତି । ]

**ଧର୍ମ ଅବତାର** – ଦେ. ବି. ଓ ଅ. (ସଂ. ଧର୍ମାବତାର)—
Dharma abatāra ଧର୍ମାବତାର (ଦେଖ)
ধর্ম অবতার Dharmābatāra (See)
धर्मावतार

**ଧର୍ମ ଅର୍ଜିବା**—ଦେ. କ୍ରି.—( ସଂ ଧର୍ମ + ଅର୍ଜନ )—ପୁଣ୍ୟକାର୍ଯ୍ୟଦ୍ୱାରା
Dharma arjibā ପୁଣ୍ୟ ସଞ୍ଚୟ କରିବା—To earn merit
ধরম কামান by performing pious acts.
धरम कमाना

[ଧର୍ମ ଅରଜିବା; ଧର୍ମ କାମା(ମେ)ଇବା—ଅନ୍ୟରୂପ]

**ଧର୍ମ କରିବା**—ଦେ. କ୍ରି—ପୁଣ୍ୟ କାର୍ଯ୍ୟ କରିବା—
Dharma karibā To perform pious acts.
ধর্ম্মকরা ধর্ম্মশীল প্রাণীমানে স্বর্গে গমন করিবে,
धरम करना ब्राह्मण डाकुहाक धर्म करेव हे । व्रजभाषा प्रचा गीत ।

**ଧର୍ମ କର୍ମ**—ସଂ. ବି ( ମ. ପ. ଲୋ, ଧର୍ମ + କର୍ମ )—୧ । ଧର୍ମାନୁଷ୍ଠାନ,
Dharma karma ଧର୍ମାନୁମୋଦିତ କ୍ରିୟାକର୍ମ—1. Religious
(ଧର୍ମକାର୍ଯ୍ୟ, ଧର୍ମକ୍ରିୟା, ଧର୍ମକର୍ମ—ଅନ୍ୟରୂପ) observances; religious rites and ceremonies; performances of a religious ritual.

୨ । ସଦନୁଷ୍ଠାନ; ଲୋକହିତକର କର୍ମ—
2. Meritorious act; virtuous act; act conducting to public good.

**ଧର୍ମ କାମ**—ସଂ ବିଣ. ପୁଂ ( ଧର୍ମ + କାମ; ବହୁବ୍ରୀହି )—୧ । ଫଳପ୍ରାପ୍ତି
Dharma kāma କାମନାରେ ଯେ ଧର୍ମ କରେ—1. Doing pious or meritorious acts with an eye to the ultimate result.

୨ । ଧାର୍ମିକ—2. Devoted to virtue; pious.

**ଧର୍ମ କାୟ**—ସଂ ବି (ଧର୍ମ + କାୟ)—ବୁଦ୍ଧଦେବ—
Dharma kāya The Buddha.
(ଧର୍ମକେତୁ, ଧର୍ମଚକ୍ରଭୃତ୍, ଧର୍ମଧାତୁ—ଅନ୍ୟରୂପ)

[ ଦ୍ର—ବୌଦ୍ଧମାନଙ୍କ ଧର୍ମଶାସ୍ତ୍ର ତ୍ରିପିଟକରେ ତିନଗୋଟି ବିଷୟ ପ୍ରତିପାଦ୍ୟ ଓ ଉପାସନୀୟ ଯଥା—୧, ବୁଦ୍ଧ, ୨, ସଂଘ ଓ ୩, ଧର୍ମ ।]

**ଧର୍ମକୀଲ**—ସଂ. ବି—ରାଜ୍ୟଶାସନ—
Dharmakīla The act of governing a king-dom; administration.

**ଧର୍ମକୁ ଆଖିଠାର ମାରିବା**—ଦେ. କ୍ରି—୧ । ଧର୍ମଦେବତା ନ ଜାଣିବେ
Dharmaku ākhithāra māribā ବୋଲି ବିଶ୍ୱାସକରି ଲୋକ
(ଧର୍ମକୁ ଆଖି ଠାରିବା—ଅନ୍ୟରୂପ) ଦେଖାଇବା ପାଇଁ ଧର୍ମକାର୍ଯ୍ୟ କରିବା କିନ୍ତୁ ଭିତରେ ଭିତରେ ପାପ କରିବା—
1. To try to hood wink God by showing one's self externally pious, but to

be privately and secretely doing wrong and sinful acts.

୨ । ଧର୍ମଶାସ୍ତ୍ରର ଦୋହାଇ ଦେଇ ଆପଣାର ଇଚ୍ଛାନୁରୂପ କାର୍ଯ୍ୟ କରିବା—2. To quote scriptures to justify one's selfish conduct.

**ଧର୍ମକୁ ଆସିବା**—ଦେ. କ୍ରି—( କୌଣସି କାର୍ଯ୍ୟ ) ଉଚିତ ବା
Dharmaku āsibā କର୍ତ୍ତବ୍ୟ ବୋଲି ଅନ୍ତଃକରଣରେ ବିବେଚିତ
ধর্ম্মেআসা ହେବା—(any act) To be thought
**धरममें आना** proper by one's self.

( ଯଥା—ମୁଁ ଆପଣଙ୍କଠାରେ ଶରଣ ପଶିଲି, ଆପଣଙ୍କର ଯାହା ଧର୍ମକୁ ଆସିବ ତାହା କରନ୍ତୁ । )

**ଧର୍ମକୁ ଡାକିବା**—ଦେ. କ୍ରି—ଅନ୍ୟଦ୍ୱାରା ପ୍ରପୀଡ଼ିତ ଓ ନିଃସହାୟ ବ୍ୟକ୍ତି
Dharmaku ḍākibā ଉପରେ ବଳଶାଳୀ ବ୍ୟକ୍ତି ଅତ୍ୟାଚାର
ধর্ম্মকে ডাক দেওয়া କରୁଥିଲେ, ନିଃସହାୟ ବ୍ୟକ୍ତି ଅତ୍ୟା-
**धरमको पुकारना** ଚାରର ପ୍ରତିଶୋଧ ନେବାକୁ ଅସମର୍ଥ

ଧର୍ମକୁ ପାଣି ଟେକିବା } ଅନ୍ୟରୂପ
ଧର୍ମକୁ ପାଣି ଦେବା
ଧର୍ମକୁ ସାକ୍ଷୀ ଦେବା

ହୋଇ ଉକ୍ତ ଅତ୍ୟାଚାରୀକୁ ଦଣ୍ଡ ଦେବା ନିମନ୍ତେ 'ଧର୍ମ ! ତୁ ଏକଥା ବୁଝିବୁ' ବୋଲି ପ୍ରଭୁଙ୍କୁ ଡାକିବା ବା ଧର୍ମଙ୍କ ନାମ ଉଚ୍ଚାରଣ କରି ଅତ୍ୟାଚାରୀର ଅମଙ୍ଗଳ କାମନାରେ ଅଞ୍ଜଳାଏ ପାଣି ଟେକିବା—To invoke the wrath of God on the head of a powerful oppressor.

କଥା କହୁଥାଏ ସରମକୁ, ଗୋଡ଼ ଧାଉଥାଏ ଭରମକୁ
ଉପରେ ଉପରେ ଯେ ହା ହେଉଥାଏ ସାକ୍ଷୀ ଦେଉଥାଏ ଧରମକୁ—ତଗ ।

**ଧର୍ମକୃତ୍**—ସଂ. ବିଣ. ( ଧର୍ମ+କୃ ଧାତୁ=କରିବା+କର୍ତ୍ତୃ. କ୍ୱିପ୍ )—
Dharmakṛut ଧର୍ମାନୁଷ୍ଠାତା—Performing religious acts.

ସଂ. ବି—ବିଷ୍ଣୁଙ୍କର ଏକ ନାମ—
A name of Bishṇu.

**ଧର୍ମ କ୍ଷେତ୍ର**—ସଂ. ବି. ( ଧର୍ମ+କ୍ଷେତ୍ର, ୬ଷ୍ଠୀ ତତ୍ )—
Dharma kshetra ୧ । ପୁଣ୍ୟକ୍ଷେତ୍ର, ତୀର୍ଥ—
1. A holy place; a place of pilgrimage.

୨ । କୁରୁକ୍ଷେତ୍ର; ମହାଭାରତ ଯୁଦ୍ଧର ସ୍ଥାନ—
2. Kurukshetra, the battle-field of the Mahābhārata war

**ଧର୍ମ ଗୋଲା**—ଦେ. ବି. ( ଆଧୁନିକ ବ୍ୟବହାର )- ଗ୍ରାମବାସୀମାନଙ୍କଦ୍ୱାରା
Dharma golā ସମବାୟ ସମିତିର ନିୟମାନୁସାରେ ପ୍ରତିଷ୍ଠିତ ଧାନ୍ୟ-
ধর্ম্মগোলা ଭଣ୍ଡାର—Co operative paddy store-
**धरमगोला** house of a village or group of villages

**ଧର୍ମ ଗ୍ରନ୍ଥ**—ସଂ. ବି. ( ଧର୍ମ+ଗ୍ରନ୍ଥ, ୬ଷ୍ଠୀ ତତ୍ )—
Dharma grantha ୧ । ସାମ୍ପ୍ରଦାୟିକ ଧର୍ମମତ ପ୍ରତିପାଦକ ଶାସ୍ତ୍ର—
1. Sacred scripture

[ ଦ୍ର—ଭିନ୍ନ ଭିନ୍ନ ଧର୍ମସମ୍ପ୍ରଦାୟର ଭିନ୍ନ ଭିନ୍ନ ଧର୍ମପୁସ୍ତକ ଅଛି; ଯଥା—ହିନ୍ଦୁମାନଙ୍କର ବେଦ, ସ୍ମୃତି, ପୁରାଣ; ମୁସଲମାନଙ୍କର କୋରାନ୍ ସରୀଫ୍; ବୌଦ୍ଧମାନଙ୍କର ତ୍ରିପିଟକ, ଶିଖମାନଙ୍କର ଗ୍ରନ୍ଥ ସାହେବ; ପାରସୀମାନଙ୍କର ଜେନ୍ଦାବେସ୍ତା; ଜୈନମାନଙ୍କର କଳ୍ପସୂତ୍ର, ଖ୍ରୀଷ୍ଟିୟାନ୍‌ମାନଙ୍କର ବାଇବଲ୍ ଇତ୍ୟାଦି । ]

୨ । ସ୍ମୃତିଶାସ୍ତ୍ର; ଆଚାର, ବ୍ୟବହାର, ବିଷୟବିଭାଗ ଆଦି ସମ୍ବନ୍ଧୀୟ ମନ୍ୱାଦି ଋଷିପ୍ରଣୀତ ଶାସ୍ତ୍ର ( ଏଗୁଡ଼ିକ ବେଦ ପରେ ରଚିତ )—2 The later books of the Hindus laying down codes of law and conduct; code of Hindu law.

[ ଦ୍ର—ମନୁ, ପରାଶର, ବୃହସ୍ପତି, କପିଳ, ଯାଜ୍ଞବଲ୍କ୍ୟ, ଜୈମିନି, କଣାଦ ପ୍ରଭୃତି ହିନ୍ଦୁଧର୍ମ ଶାସ୍ତ୍ର ପ୍ରଣେତା ଅଟନ୍ତି । ]

୩ । ଆଇନ୍ ବହି—3. Law book.

**ଧର୍ମ ଘଟ**—ସଂ. ବି ( ମ. ପ. ଲୋ, ଧର୍ମ+ଘଟ )—
Dharma ghaṭa ୧ । ପଣାସଂକ୍ରାନ୍ତିଠାରୁ ଆରମ୍ଭ କରି ବୈଶାଖ ମାସରେ ତୃଷାର୍ତ୍ତମାନଙ୍କୁ ଜଳ ଦିଆଯିବା ନିମନ୍ତେ କିମ୍ବା ବ୍ରାହ୍ମଣଙ୍କୁ ଦାନ ଦିଆଯିବା ପାଇଁ ଉଦ୍ଦିଷ୍ଟ ସୁବାସିତ ଜଳପୂର୍ଣ୍ଣ କଳସ—

1. A jar full of scented water, kept for distributing water to the thirsty during every day of the month of Baiśākha or for bestowing it on a Brāhmaṇa.

୨ । ପଣାସଂକ୍ରାନ୍ତିଠାରୁ ୧ ମାସ ପର୍ଯ୍ୟନ୍ତ ତୁଳସୀ ଗଛ ଉପରେ ସବୁବେଳେ ଜଳଧାରା ଦେବା ନିମନ୍ତେ ଯେଉଁ ସଚ୍ଛିଦ୍ର କଳସ ( ବସୁନ୍ଧରା ଘଡ଼ି ) ଟଙ୍ଗାଯାଏ—

2. A jar with a small hole at the bottom suspended over Tulasī plants to water them constantly during the month of Baiśākha.

ধর্ম্মঘট ଦେ. ବି—୧ । ଏକ ସମ୍ପ୍ରଦାୟଭୁକ୍ତ ସମସ୍ତ ବ୍ୟକ୍ତି ସମବେତ
**हरताल** ହୋଇ କୌଣସି କାର୍ଯ୍ୟ କରିବା ସମ୍ବନ୍ଧେ ଯେଉଁ ପ୍ରତିଜ୍ଞା କରନ୍ତି—1 A resolution passed by all the members of a sect or society laying down certain rules of conduct.

୨ । ( ଆଧୁନିକ ପ୍ରୟୋଗ ) ଶ୍ରମଜୀବୀମାନେ ମହାଜନ ବା ଶେଠମାନଙ୍କ ଅଧୀନରେ କାର୍ଯ୍ୟ କରିବା ସମ୍ବନ୍ଧେ ପ୍ରତିଜ୍ଞାମାନ ନିର୍ଦ୍ଧାରଣ କରି ଯେଉଁ ମେଳ ବାନ୍ଧନ୍ତି; ହରତାଲ—2. A business strike; a strike of labourers or workmen.

**ଧର୍ମଘଟ କରିବା**—ଦେ. କ୍ରି—( ଶ୍ରମିକମାନେ ) କାର୍ଯ୍ୟ ସମ୍ବନ୍ଧେ ଏକମେଳ
Dharmaghaṭa karibā ବାନ୍ଧିବା—To strike ( said of
ধর্ম্মঘট করা **हरताल करना** workmen ).

**ଧର୍ମଘଟ ବ୍ରତ**—ସଂ. ବି—ବୈଶାଖ ମାସରେ ଗ୍ରୀଷ୍ମ ବର୍ଷକାଳ ଗୋଟିଏ
Dharmaghata brata ସୁବାସିତ ଜଳପୂର୍ଣ୍ଣ ଘଟ ପ୍ରତିଦିନ ବ୍ରାହ୍ମଣଙ୍କୁ ଦାନ କରିବା ନିମନ୍ତେ ଯେଉଁ ବ୍ରତ ବା ସଙ୍କଳ୍ପ କରାଯାଏ—

A vow to present a jar full of scented water daily to a Brāhmaṇa during the month of Baiśākha for a period of 4 years (as prescribed by the Hindu Śāstras)

**ଧର୍ମଘଟୀ**—ଦେ. ବ—ଯେଉଁମାନେ ମେଳ ବାନ୍ଧି ଧର୍ମଘଟ କରନ୍ତି— Dharmaghaṭī धर्मघटी Strikers.

**ଧର୍ମ ଘଣ୍ଟି**—ଦେ.ବ. (ଧର୍ମ+ଘଣ୍ଟିକା)—୧ । ସର୍ବସାଧାରଣଙ୍କ ଦ୍ୱାରା ଦେଖା ଯାଇପାରିବା ଭଳି ଖୁବ୍ ଉଚ୍ଚ ଓ ପ୍ରକାଶ୍ୟ ସ୍ଥାନରେ ସ୍ଥାପିତ ଘଣ୍ଟିକା ଯନ୍ତ୍ର—
Dharma gharḍi
धर्मघडि
धर्मघड़ि
(ଧର୍ମଘଣ୍ଟା—ଅନ୍ୟରୂପ)
1. A clock kept at a very conspicuous place so as to be seen by the public
୨ । ଯେଉଁ ଘଣ୍ଟି ମନକୁ ବାଜେ ବା ଘଣ୍ଟାର ସଂଖ୍ୟା ଅନୁସାରେ ଯେଉଁ ଘଣ୍ଟାକୁ ବଜାଯାଏ—
2. A clock or bell striking hours.
[ ଦ୍ର—ଲୋକେ କୌଣସି ଅଭୀପ୍ସିତ ବିଷୟର ଚର୍ଚ୍ଚା କରିବା ବେଳେ ଯେବେ କଳ ଘଣ୍ଟା ବାଜିବାର ଶୁଣାଯାଏ ତେବେ ଅଭୀପ୍ସିତ ବିଷୟ ସିଦ୍ଧ ହେବାର ଏହା ଶୁଭ ଶକୁନ ବୋଲି ସ୍ଥିର କରି କହନ୍ତି ଏ କାମ କଷ୍ଟେ ସିଦ୍ଧ ହେବ, କାରଣ ଏହି କଥା ପଡ଼ିବାବେଳେ ଧର୍ମ ଘଣ୍ଟି ବାଜିଲା । ]

**ଧର୍ମ ଚକ୍ର**—ସଂ. ବ—୧ । ବୁଦ୍ଧଦେବଙ୍କର ଚାରି ଗୋଟି ଉପଦେଶ (ଯାହା କି ପ୍ରତ୍ୟେକ ବୌଦ୍ଧଙ୍କର ପାଳନୀୟ)—
Dharma chakra
1. The four tenets of Buddhism laid down by the Buddha.
[ ଦ୍ର—ବୁଦ୍ଧଙ୍କ ପ୍ରଚାରିତ ସତ୍ୟ ଚତୁଷ୍ଟୟ ଯଥା—୧. ସଂସାର ନିରବଚ୍ଛିନ୍ନ ଦୁଃଖମୟ; ୨. ବିଷୟତୃଷ୍ଣାହିଁ ଦୁଃଖର ମୂଳ କାରଣ; ୩. ବିଷୟତୃଷ୍ଣାକୁ ସମୂଳେ ଉତ୍ପାଟନ କରିବାହିଁ ଦୁଃଖ ନିବୃତ୍ତି; ୪. ବିଷୟ ନିବୃତ୍ତିର ଅଷ୍ଟାଙ୍ଗିକ ପଥ; ଯଥା –(/) ସମ୍ୟକ୍ ଦୃଷ୍ଟି, (//) ସମ୍ୟକ୍ ସଙ୍କଳ୍ପ; (///) ସମ୍ୟକ୍ ବାକ୍ୟ=ସତ୍ୟ, ସରଳ ଓ ପ୍ରିୟ ବାକ୍ୟ; (।) ସମ୍ୟକ୍ କର୍ମ=ସଦାଚରଣ; (।/) ସମ୍ୟକ୍ ଆଜୀବ= ସର୍ବଭୂତରେ ଅହିଂସାପୂର୍ଣ୍ଣ ସାଧୁ ଜୀବିକା ନିର୍ବାହ; (।//) ସମ୍ୟକ୍ ବ୍ୟାୟାମ=ଆତ୍ମସଂଯମ ପ୍ରଭୃତି ଉପାୟରେ ଆତ୍ମାର ଉନ୍ନତି ସାଧନ; (।///) ସମ୍ୟକ୍ ସ୍ମୃତି; (୨) ସମ୍ୟକ୍ ସମାଧି=ଜୀବନର ସୁଗଭୀର ତତ୍ତ୍ୱମାନଙ୍କର ଧ୍ୟାନ, ମନନ ଓ ନିଦିଧ୍ୟାସନ । ]
୨ । ଚକ୍ର ରୂପେ କଳ୍ପିତ ଆଇନ୍—
2. The wheel of law.
୩ । ଚକ୍ର ରୂପେ କଳ୍ପିତ ଧର୍ମ—3. The wheel or vast range of religion or piety.
୪ । ବୁଦ୍ଧଦେବ (ହି. ଶ.)—4. The Buddha.
୫ । ଧର୍ମ ସମୂହ—
5. A collection of religions.

**ଧର୍ମ ଚର୍ଯ୍ୟା**—ସଂ. ବ. ( ଧର୍ମ+ଚର୍ଯ୍ୟା; ୬ଷ୍ଠୀ ତତ୍ )—
Dharma charjyā ଧର୍ମାଚରଣ, ଧର୍ମ କାର୍ଯ୍ୟ କରିବା—
Observance of the law and performance of religious duty.

**ଧର୍ମଚାରିଣୀ**—ସଂ. ବି. ସ୍ତ୍ରୀ. ( ଧର୍ମ+ଚର୍ ଧାତୁ=ଗମନ କରିବା+ କର୍ତ୍ତୃ. ଇନ୍; ସ୍ତ୍ରୀ. ଈ )—
Dharmachāriṇī
(ଧର୍ମଚାରିଣୀ—ଅନ୍ୟରୂପ) ଧର୍ମ ପତ୍ନୀ; ସହଧର୍ମିଣୀ—
One's wedded wife.
[ ଦ୍ର—ହିନ୍ଦୁ ଶାସ୍ତ୍ର ଅନୁସାରେ ସ୍ୱାମୀ ସ୍ତ୍ରୀ ଏକତ୍ର ଧର୍ମାଚରଣ କରିବେ । ]
ସଂ. ବିଣ ସ୍ତ୍ରୀ. ( ଧର୍ମଚାରିନ୍+ସ୍ତ୍ରୀ. ଈ )—
୧ । ସଚ୍ଚରିତ୍ରା; ପୁଣ୍ୟଶୀଳା—
1. Pious (woman); virtuous.
୨ । ସାଧ୍ୱୀ—2. Chaste; devoted to her husband.

**ଧର୍ମଚାରୀ**—ସଂ. ତ ପୁଂ.(ଧର୍ମ+ଚର୍ ଧାତୁ=ଗମନ କରିବା+କର୍ତ୍ତୃ. ଇନ୍
Dharmachārī ୧ମା.୧ବ )—୧ । ଯେ ଧର୍ମ ପଥରେ ଚଳେ—
(ଧର୍ମଚାରିଣୀ—ସ୍ତ୍ରୀ) 1. Fulfilling one's religious duties; following the duties enjoined by the scriptures,
୨ । ଧାର୍ମିକ—2. Pious; religious.
୩ । ପୁଣ୍ୟକ୍ରିୟାରତ—3. Virtuous.

**ଧର୍ମ ଚିନ୍ତା**—ସଂ. ବ ( ଧର୍ମ+ଚିନ୍ତା; ୬ଷ୍ଠୀ ତତ୍ )—
Dharma chintā ୧ । ଧର୍ମ ବିଷୟକ ଭାବନା, ଅଧ୍ୟାତ୍ମଚିନ୍ତା—
(ଧର୍ମଚିନ୍ତନ—ଅନ୍ୟରୂପ) 1 Religious thoughts; spiritual thoughts.
୨ । ସାଧୁ ଚିନ୍ତା—2. Virtuous thoughts; pious thoughts.

**ଧର୍ମ ଚୋର**—ଦେ. ବି—ମିଥ୍ୟାଗ୍ରସ୍ତ ଲୋକ—
Dharma chora A liar; a hypocrite.
ମିଥ୍ୟାକୁ ଆଚରଣ କରଇ ଯେଉଁ ନର;
। ସେହିଟି ହେ ନୃପତି ଅଟଇ ଧର୍ମ ଚୋର । କୃଷ୍ଣସିଂହ. ମହାଭାରତ, ଆଦି ।

**ଧର୍ମଚ୍ୟୁତ**—ସଂ. ବିଣ. ( ଧର୍ମ+ଚ୍ୟୁତ, ୫ମୀ ତତ୍ )—
Dharma chyuta ୧ । ଯାହାର ଧର୍ମ ଲୋପ ହୋଇଥାଏ—
1. One who has strayed from the path of virtue.
୨ । ଧର୍ମ ସମ୍ପ୍ରଦାୟରୁ ବହିର୍ଭୂତ—
(ଧର୍ମବିଚ୍ୟୁତ—ଅନ୍ୟରୂପ) 2. Driven out of the pale of a religious society.
ଧର୍ମଚ୍ୟୁତା, ଧର୍ମବିଚ୍ୟୁତା } ସ୍ତ୍ରୀ.
ଧର୍ମଚ୍ୟୁତ, ଧର୍ମ ବିଚ୍ୟୁତ } ବି.
୩ । ଆପଣାର ଅତି ଅନ୍ୟାୟ କାର୍ଯ୍ୟ ଯୋଗୁଁ ଈଶ୍ୱରଙ୍କ ଦୟା ବା ଅନୁଗ୍ରହରୁ ବଞ୍ଚିତ—
3. Deprived of God's blessing on account of one's evil deeds; damned.
୪ । ଧର୍ମତ୍ୟାଗୀ—4. Apostate.

**ଧର୍ମଛଡ଼ା**—ଦେ. ବିଣ—୧ । ଧର୍ମବିରୁଦ୍ଧ, ସୃଷ୍ଟିଛଡ଼ା—
Dharmachharḍā धर्म छाड़ा 1. Contrary to the precepts of religion.
(ଧର୍ମଛଡ଼ୀ—ସ୍ତ୍ରୀ) ୨ । ଅଧାର୍ମିକ—2 Irreligious; impious.

୩ । ଯେ ଧର୍ମକୁ ମାନେ ନାହିଁ ବା ଧର୍ମ ବିଗର୍ହିତ କାର୍ଯ୍ୟ କରେ- 3. Unrighteous.

**ଧର୍ମ ଛାଡ଼ିବା**—ଦେ. କ୍ରି—୧ । ପାପ କାର୍ଯ୍ୟ ଯୋଗୁଁ ଧର୍ମ ବା ଈଶ୍ୱରଙ୍କ ଅନୁଗ୍ରହରୁ ବଞ୍ଚିତ ହେବା— Dharma chhāṛḍibā
ଧର୍ମଛାଡ଼ା
**ଧର୍ମଛାଡ଼ନା**
1 ( a person ) Deprived of God's blessing or protection on account of one's sins.

( ଯଥା—ଧନକୁ ଧନ ତାର ଅଭ୍ୟାଗ୍ରତ ବଢ଼ୁଛି, ବୋଧ ହେଉଛି ତାକୁ ଧର୍ମ ଛାଡ଼ିଲାଣି । )

୨ । ଈଶ୍ୱରଙ୍କ ଦୃଷ୍ଟିରେ ଦୋଷୀ ହେବା—
2. ( a person ) Being considered guilty in the eyes of God.

( ଯଥା—ମୁଁ ତାକୁ ଥର ଥର କରି ସାବଧାନ କରାଇଲି, ତଥାପି ବୁ ଝୁଥିଲୁ ନାହିଁ, ଏଣିକି ତାକୁ ଧର୍ମ ଛାଡ଼ିଲା ।

ଧର୍ମବିଗାଡ଼ନା ଦେ. କ୍ରି —ଧର୍ମ ପଥ ତ୍ୟାଗ କରି ଅଧର୍ମାଚରଣ କରିବା, **ଧର୍ମଛାଡ଼ାନ** ଧର୍ମବିରୁଦ୍ଧ ଆଚରଣ କରିବା—
To tread the path of impiety

**ଧର୍ମଜ**—ସଂ. ବିଣ ( ଧର୍ମ+ଜନ ଧାତୁ=ଜନ୍ମ କରିବା+କର୍ତ୍ତୃ. ଅ )— Dharmaja ଧର୍ମାନୁଷ୍ଠାନରୁ ଉଦ୍ଭୂତ—Resulting from pious acts.

(ଧର୍ମଜା— ସ୍ତ୍ରୀ) ସଂ. ବି. ପୁଂ—୧ । ଧର୍ମ ପତ୍ନୀର ଗର୍ଭଜାତ ସନ୍ତାନ—
1. One's legitimate son

୨ । ନର ନାରାୟଣ (ଦେଖ) (ହି. ଶବ୍ଦସାଗର)—
2. Nara nārāyaṇa (See)

**ଧର୍ମଜନ୍ମା**—ସଂ. ବି. ପୁଂ. (ଧର୍ମ+ଜନ୍ମନ୍; ବହୁବ୍ରୀହି)— Dharmajanmā ଧର୍ମପୁତ୍ର ଯୁଧିଷ୍ଠିର—
Judhishṭhira, the son of Dharma.

**ଧର୍ମ ଜାୟା**—ସଂ. ବି. ସ୍ତ୍ରୀ. (ଧର୍ମ+ଜାୟା, ୬ଷ୍ଠୀ ତତ୍)— Dharma jāyā ସହଧର୍ମିଣୀ; ବିବାହିତା ସ୍ତ୍ରୀ—
(ଧର୍ମପତ୍ନୀ—ଅନ୍ୟରୂପ) One's wedded wife.

**ଧର୍ମ ଜିଜ୍ଞାସା**—ସଂ. ବି—ଧର୍ମ ସମ୍ବନ୍ଧେ ଅନୁସନ୍ଧାନ ବା ପ୍ରଶ୍ନ— Dharma jijñāsā Inquiry into religion or proper
(ଧର୍ମଜିଜ୍ଞାସୁ—ବିଣ ) course of conduct.

**ଧର୍ମ ଜୀବନ**—ସଂ. ବି. (ଧର୍ମ+ଜୀବନ; ମ ପ.ଲୋ)— Dharma jibana ୧ । ଧର୍ମାନୁଷ୍ଠାନରତ ଜୀବନ—
1. A life devoted to piety.

୨ । ଆଧ୍ୟାତ୍ମିକ ଚିନ୍ତାରେ ବ୍ୟାପୃତ ଜୀବନ—
2. Spiritual life; a life spent in spiritual contemplation.

**ଧର୍ମଜ୍ଞ**—ସଂ. ବିଣ. ପୁଂ. (ଧର୍ମ+ଜ୍ଞା ଧାତୁ=ଜାଣିବା+କର୍ତ୍ତୃ. ଅ)— Dharmajña ୧ । ଯେ ଧର୍ମର ତତ୍ତ୍ୱ ଉତ୍ତମରୂପେ ଜାଣନ୍ତି—
(ଧର୍ମଜ୍ଞା—ସ୍ତ୍ରୀ) 1. Conversant with spiritual or
(ଧର୍ମଜ୍ଞତା—ବି) religious truths.

୨ । ଧର୍ମୋପଦେଶକ—2. Missionary; teaching the tenets of religion.

୩ । ଧାର୍ମିକ—3. Pious; religious.

୪ । ନ୍ୟାୟପର—4. Righteous

୫ । ଯେ ଆଇନ୍ ଜାଣେ— 5. Versed in law.

**ଧର୍ମ ଜ୍ଞାନ**—ସଂ.ବି. (ଧର୍ମ+ଜ୍ଞାନ)—୧ । ଧର୍ମତତ୍ତ୍ୱ ବିଷୟକ ବୋଧ— Dharma jñāna 1. Conception of the principles of religion

୨ । ଧର୍ମ ଓ ଅଧର୍ମ ସମ୍ବନ୍ଧୀୟ ଜ୍ଞାନ; ନ୍ୟାୟାନ୍ୟାୟ ବିବେକ—
2. Conception of what is for and what is against the tenets of one's religion; ability to distinguish between what is right and what is wrong.

**ଧର୍ମ ଡଙ୍ଗା**—ଦେ. ବି—୧ । ଧର୍ମପାଳନରୂପ କାର୍ଯ୍ୟ, ଧର୍ମ ପନ୍ଥାନୁସରଣ— Dharma ḍaṅgā 1. The path of religion.
ଧର୍ମ ଡଙ୍ଗା ବୁଡ଼ରେ ଯାଏ । ତଳ ।

୨ । ନୌକା—2. A boat

[ ବି—ଲୋକେ ନୌକାକୁ ଧର୍ମରେ ପରଗ୍ରକାଳ ହେବାର କହନ୍ତି । ସଂସାରରେ ଧର୍ମ ଥିବାରୁ ଡଙ୍ଗା ଭାସୁଛି ନଚେତ୍ ବୁଡ଼ି ଯାଆନ୍ତା ବୋଲି ସାଧାରଣ ଲୋକେ ବିଶ୍ୱାସ କରନ୍ତି । ]

**ଧର୍ମ ଡାକ**—ଦେ ବି—ଧର୍ମକୁ ସାକ୍ଷୀ ରଖି ଆହ୍ୱାନ କରିବା; ଧର୍ମଦୋହାଇ Dharma ḍāka ଦେଇ କୌଣସି ବ୍ୟକ୍ତିଙ୍କୁ କୌଣସି କାର୍ଯ୍ୟରେ (ଧର୍ମଦୋହାଇ,ଧର୍ମଡକା—ଅନ୍ୟରୂପ)ଯୋଗ ଦେବାପାଇଁ ଆହ୍ୱାନ କରିବା—
ଧର୍ମଡାକ To call on other people to join by invoking the name of God.

**ଧର୍ମଣ**—ସଂ. ବି. (ଧୃ ଧାତୁ+ମନ)—୧ । ଢେମଣାସାପ— Dharmaṇa 1. A non-poisionous snake; Zamenis Mucosus.

୨ । ଧାମଣ ଗଛ (ଦେଖ)—
2 Dhāmaṇa tree (See)

**ଧର୍ମତଃ**—ସଂ. ଅ. (ଧର୍ମ+ତସ୍)—୧ । ଧର୍ମାନୁସାରେ; ଧର୍ମପ୍ରମାଣେ— Dharmataḥ 1. Religiously; from a religious point of view.

୨ । ନ୍ୟାୟତଃ; ନ୍ୟାୟାନୁସାରେ—2 Justly; rightly.

୩ । ଆଇନ୍ଅନୁସାରେ—3. Legally.

୪ । ସାମାଜିକ ଦୃଷ୍ଟିରେ ଦେଖିବାକୁ ଗଲେ—
4 From a social point of view

୫ । ଧର୍ମଦ୍ୱାରରେ, ଈଶ୍ୱରଙ୍କ ଦୃଷ୍ଟିରେ—
5 In the eyes of God.

୬ । ଈଶ୍ୱରଙ୍କ ନାମ ଗ୍ରହଣ କରି (ଶପଥ କରିବା)—
6. In the name of God; solemnly.

**ଧର୍ମ ତଣ୍ଡ**—ଦେ. ବି—୧ । ଧର୍ମ ଦଣ୍ଡ ( ଦେଖ ) Dharma taṇḍa 1. Dharma daṇḍa (See)
**ଧରମଡଣ୍ଡ** ୨ । ବୃଥା ଅର୍ଥଦଣ୍ଡ—2. Undeserved fine.

୩ । ଅନ୍ୟର ଦୋଷ ପାଇଁ ଦିଆଯିବା ଜୋରିମାନା—
3. Fine paid for another's fault.

**ଧର୍ମ ତତ୍ତ୍ୱ**—ସ.ବି. (ଧର୍ମ+ତତ୍ତ୍ୱ; ୬ଷ୍ଠୀ ତତ୍)—୧ । ଧର୍ମର ଗୂଢ ମର୍ମ—
Dharma tattwa 1, The fundamental principles or truths of religion; essential or inner religious truths,
୨ । ଧର୍ମବିଜ୍ଞାନ—2. The Science of Religion.

**ଧର୍ମ ତ୍ୟାଗ**—ସ ବି (ଧର୍ମ+ତ୍ୟାଗ; ୬ଷ୍ଠୀ ତତ୍)—୧ । ଆପଣାର ଧର୍ମ-
Dharma tyāga ସମ୍ପ୍ରଦାୟର ପରିତ୍ୟାଗ—
1. Apostasy; abandonment of one's religious profession.
୨ । ଆପଣାର କର୍ତ୍ତବ୍ୟକୁ ଛାଡ଼ିବା—2 Abandonment of one's religious duties or virtue.

**ଧର୍ମ ତ୍ୟାଗୀ**—ସ. ବିଣ. ପୁଂ (ଧର୍ମ+ତ୍ୟାଗୀ)—ଯେ ସ୍ୱଧର୍ମକୁ ଛାଡ଼ିଥାଏ—
Dharma tyāgi Apostate.
(ଧର୍ମତ୍ୟାଗିନୀ—ସ୍ତ୍ରୀ)

**ଧର୍ମ ଦଣ୍ଡ**—ସ. ବି—୧ । ନିଜର ଧର୍ମରକ୍ଷାପାଇଁ ସୁହାଯିବା କଷ୍ଟ—
Dharma danda 1. Trouble undergone by a person for preserving his religion.
ଧର୍ମଦଣ୍ଡ; ଧର୍ମଧକ୍କା
ଧର୍ମଧକ୍କା ୨ । ବୃଥା କଷ୍ଟ; ବୃଥା ଦଣ୍ଡ; ବ୍ୟର୍ଥ ଦଣ୍ଡ—
2 Undeserved punishment
୩ । ଅନ୍ୟର ଅପରାଧ ପାଇଁ ଭୋଗିବା ଦଣ୍ଡ—
3. Punishment for the sin or offence of another.

**ଧର୍ମ ଦାନ**—ସ. ବି. (ମ. ପ. ଲୋ; ଧର୍ମ+ଦାନ)—୧ । କେବଳ ଧର୍ମ
Dharma dāna ନିମିତ୍ତ ଦାନ; ସାତ୍ତ୍ୱିକ ଦାନ—
1. A gift from a purely religious or disinterested motive.
୨ । ଧର୍ମ କର୍ମ ପାଇଁ ଦାନ—
2. Gift for a religious purpose.

**ଧର୍ମ ଦାର(ରା)**—ସ. ବି.—ଧର୍ମ ପତ୍ନୀ (ଦେଖ)
Dharma dāra(rā) Dharma patni (See)

**ଧର୍ମ ଦୀପିକା**—ସ. ବି. ସ୍ତ୍ରୀ—ଗୌଡ଼-ପ୍ରସିଦ୍ଧ ମୀମାଂସା ଗ୍ରନ୍ଥବିଶେଷ—
Dharma dipikā Name of a philosophical treatise on Baishnabism.

**ଧର୍ମ ଦେବତା**—ସ. ବି. (ଧର୍ମ+ଦେବତା)—୧ । ପାପୀର ଦଣ୍ଡ ଓ ପୁଣ୍ୟ-
Dharma debatā ବାନ୍‌ର ପୁରସ୍କାରଦାତା ଈଶ୍ୱର; ପୃଥିବୀର ସୃଷ୍ଟି-କର୍ତ୍ତା; ଈଶ୍ୱର—1 God; the Righteous and just God
୨ । ଯମ—2. Jama.
୩ । ସୂର୍ଯ୍ୟଦେବ—3. The Sun-god.
୪ । ଠୁଲ ଶୂନ୍ୟ ଅଣାକାର ପୁରୁଷ—
4. The Invisible God.

[ଦ୍ର—ପାପର ଦଣ୍ଡଦାତା ଓ ପୁଣ୍ୟର ପୁରସ୍କାରଦାତା ଭଗବାନଙ୍କ ସମ୍ବନ୍ଧେ ହିନ୍ଦୁ ଶାସ୍ତ୍ର ଓ ବୌଦ୍ଧ ଶାସ୍ତ୍ରମାନ ସାଧାରଣ ଲୋକଙ୍କ ମନରେ ନାନା ପ୍ରକାରର ଗୋଳମାଳିଆ ଭାବ ଉପସ୍ଥିତ କରାଇଥିବାର ଦେଖାଯାଏ । ଅତ୍ୟାଗୃହୀଙ୍କୁ ଦଣ୍ଡ ଦେବା ନିମନ୍ତେ ଜଗନ୍ନାଥ ଅତ୍ୟାଗୃହୀତ ବ୍ୟକ୍ତି ଯେଉଁ ଧର୍ମଦେବତାଙ୍କୁ ଡାକ ପକାଏ ଓ ପାଣି ଅଞ୍ଜୁଳା ଟେକେ, ସେ ଇହକାଳରେ ପାପୀକୁ ଦଣ୍ଡ ଦେବେ ବୋଲି ତାହାର ବିଶ୍ୱାସ ଥାଏ । ଭୂମିଆ ମାନେ ସେହି ଧର୍ମ ଦେବତାଙ୍କୁ ସୂର୍ଯ୍ୟରୂପେ କଳ୍ପନା କରନ୍ତି । ବିଧାତା, ଯମ, ଅଣାକାର, କୃଷ୍ଣ ଆଦି ସେହି ଧର୍ମ ଦେବତାଙ୍କର ଆକାର ।]

**ଧର୍ମ ଦେଶ**—ସ. ବି. ପୁଂ (ଧର୍ମ+ଦେଶ)—ଧର୍ମସାଧନର ସ୍ଥାନ—
Dharma deśa The place or country which is the field of the performance of many pious acts.

**ଧର୍ମଦ୍ରବୀ**—ସ. ବି. ସ୍ତ୍ରୀ—(ଧର୍ମ+ଦ୍ରୁ ଧାତୁ=ଦ୍ରବ ହେବା+କର୍ତ୍ତୃ. ଅ,
Dharmadrabi ସ୍ତ୍ରୀ.ଈ)—ଗଙ୍ଗା—The Ganges.
[ ଦ୍ର—ବିଷ୍ଣୁପାଦାଗ୍ରସମ୍ଭୂତା ଏବଂ ତ୍ରିପଥଗାମିନୀ ହେତୁ ଗଙ୍ଗାର ନାମ ଧର୍ମଦ୍ରବୀ ।]

**ଧର୍ମ ଦ୍ରୋହ**—ସ ବି.—(୬ଷ୍ଠୀ ତତ୍; ଧର୍ମ+ଦ୍ରୋହ)—୧ । ଅଧର୍ମାଚରଣ
Dharma droha 1 Impious conduct.
ଧର୍ମଦ୍ୱେଷ, ଧର୍ମବିରୋଧ } ଅନ୍ୟରୂପ ୨ । ଧର୍ମବିଦ୍ୱେଷ—2. Hatred of the tenets of religion.

**ଧର୍ମଦ୍ରୋହୀ**—ସ ବିଣ. ପୁଂ (ଧର୍ମ+ଦ୍ରୁହ୍ ଧାତୁ=ନଷ୍ଟ କରିବା+କର୍ତ୍ତୃ.
Dharma drohi ଇନ)—୧ । ଦୁଷ୍ଟାଶୟ—
(ଧର୍ମଦ୍ରୋହିଣୀ—ସ୍ତ୍ରୀ) 1. Wicked; wanton.
(ଧର୍ମଦ୍ୱେଷୀ; ଧର୍ମବିରୋଧୀ—ଅନ୍ୟରୂପ) ୨ । ଅଧର୍ମାଶୟ—
2. Impious; irreligious.
୩ । ଯେ ଧର୍ମକର୍ମକୁ ଘୃଣା କରେ—
3. Hating the practice of religion
୪ । ପାପୀ—4. Sinful.
ସ. ବି.—୧ । ରାକ୍ଷସ—1. A demon.
୨ । ପାପୀ ବ୍ୟକ୍ତି—2. Sinner.

**ଧର୍ମ ଧାଡ଼ିୟା**—ଦେ. ବି—ଦୂତ—
Dharma dhārdiyā Messenger.
(ଧର୍ମଧାଡ଼ିଆ—ଅନ୍ୟରୂପ)
ଧର୍ମଧାଡ଼ିଅକୁ ରାଜାଙ୍କ ଛାମୁକୁ ପେଷିଲେ ଏହିପରି କହି ।
ବ୍ରଜନାଥ. ସମରତରଙ୍ଗ ।

**ଧର୍ମ ଧ୍ୱଜ**—ସ. ବିଣ.—(ବହୁବ୍ରୀହି, ଧର୍ମ+ଧ୍ୱଜ)—
Dharma dhwaja ୧ । କପଟ ଧାର୍ମିକ; ବିଡ଼ାଳ ବୈଷ୍ଣବ—
1. Hypocritical; one who is irreligious under the garb of religion.
(ଧର୍ମଧ୍ୱଜୀ—ଅନ୍ୟରୂପ) ୨ । ଯେ ଧର୍ମର ଦୋହାଇ ଦେଇ ମାତ୍ର ସ୍ୱାର୍ଥ ସାଧନ କରେ—2. Pursuing one's self interest in the name of religion
ସ. ବି.—୧ । ଯେଉଁ ଲୋକ ଧର୍ମର ଲକ୍ଷଣମାନ ଦେଖାଏ—କିନ୍ତୁ କାର୍ଯ୍ୟତଃ ଅଧର୍ମାଚରଣ କରେ;—
1. An imposter.
ନ କହନ୍ତୁ ଦୁର୍ଜନ ଅଟନ୍ତି,
ଅପରେ ଧର୍ମଧ୍ୱଜ ଯେତେ । ଜଗନ୍ନାଥ ଭାଗବତ ।

୨ । ଜନକବଂଶୀ ମିଥିଳାର ନୃପବିଶେଷ—
2. The name of a king of ancient Mithila

**ଧର୍ମ ନନ୍ଦନ**—ସ. ବି.—(ଧର୍ମ+ନନ୍ଦନ, ୬ଷ୍ଠୀ ତତ୍‌)—ଯୁଧିଷ୍ଠିର—
Dharma nandana — Judhishthira

**ଧର୍ମନାଭ**—ସ. ବି. ପୁଂ (ଧର୍ମ+ନାଭି; ବହୁବ୍ରୀହି)—ବିଷ୍ଣୁ—
Dharmanābha — Bishnu.

**ଧର୍ମ ନାଶ**—ସ. ବି. (ଧର୍ମ+ନାଶ; ୬ଷ୍ଠୀ ତତ୍‌)—୧ । ଧର୍ମର ଲୋପ,
Dharma nāśa ଧର୍ମହାନି—1. Ruin of religion; compromise of virtue.
୨ । ସ୍ତ୍ରୀର ସତୀତ୍ୱ ନାଶ; ସ୍ତ୍ରୀର ଇଜ୍ଜତ୍ ନେବା—
2. Outraging of a woman's chastity or modesty.

**ଧର୍ମ ନିନ୍ଦା**—ସ. ବି. (ଧର୍ମ+ନିନ୍ଦା; ୬ଷ୍ଠୀ ତତ୍‌)—୧ । ଧର୍ମ ପ୍ରତି
Dharma nindā ବିଦ୍ୱେଷାଚରଣ ବା ଧର୍ମକୁ ପରିହାସ କରିବା—
1. Mocking at a religion; blasphemy.
୨ । କୌଣସି ଧର୍ମ ପ୍ରତି କଳଙ୍କାରୋପଣ—
2. Speaking evil of a religion.

**ଧର୍ମ ନିନ୍ଦକ**—ସ. ବିଣ. ପୁଂ—(ଧର୍ମ+ନିନ୍ଦକ; ଉପପଦ ତତ୍‌)-ଯେ ଧର୍ମକୁ
Dharma nindaka ନିନ୍ଦା କରେ—Speaking ill of a religion; blasphemous.
(ଧର୍ମନିନ୍ଦୁକ—ଅନ୍ୟରୂପ)

**ଧର୍ମ ନିରତ**—ସ. ବିଣ. ପୁଂ (ଧର୍ମ+ନିରତ, ୭ମୀ ତତ୍‌)—ଧର୍ମକାର୍ଯ୍ୟରେ
Dharma nirata ସର୍ବଦା ବ୍ୟାପୃତ—Devoted to the practice of piety.
(ଧର୍ମରତ—ଅନ୍ୟରୂପ)
(ଧର୍ମନିରତା, ଧର୍ମରତା—ସ୍ତ୍ରୀ)

**ଧର୍ମନିଷ୍ଠ**—ସ. ବିଣ. ପୁଂ ( ଧର୍ମ+ନିଷ୍ଠା; ବହୁବ୍ରୀହି )—ଧର୍ମପରାୟଣ;
Dharmanishtha ଧାର୍ମିକ—Virtuous; religious; pious; devoted to piety.
(ଧର୍ମନୈଷ୍ଠିକ—ଅନ୍ୟରୂପ)
(ଧର୍ମନିଷ୍ଠା—ସ୍ତ୍ରୀ)

**ଧର୍ମ ନିଷ୍ଠା**—ସ. ବି ( ଧର୍ମ+ନିଷ୍ଠା; ୭ମୀ ତତ୍‌ )—୧ । ଧର୍ମରେ ଆସ୍ଥା ବା
Dharma nishthā ଏକାଗ୍ରତା—1 Firm belief in religion.
୨ । ଧର୍ମ ବିଷୟରେ ଆନ୍ତରିକ ଶ୍ରଦ୍ଧା—2. Sincere piety.
୩ । ଧର୍ମପରାୟଣତା—3. Devotion to religion.
ସ. ବିଣ. ସ୍ତ୍ରୀ (ଧର୍ମନିଷ୍ଠ+ଆ)—ଧର୍ମନିଷ୍ଠର ସ୍ତ୍ରୀଲିଙ୍ଗ—
Feminine of Dharmanishtha.

**ଧର୍ମ ନୀତି**—ସ. ବି ( ଧର୍ମ+ନୀତି; ୬ଷ୍ଠୀ ତତ୍‌ )—୧ । ଧର୍ମ ସମ୍ବନ୍ଧୀୟ
Dharma niti ବିଧାନ—1. The principles of religion.
୨ । ଧର୍ମବିଜ୍ଞାନ—2 The science of religion; the philosophy of religion.
୩ । ଆଇନର ବିଧାନ; ଆଇନଶାସ୍ତ୍ର—
3. Jurisprudence; the science of law.

**ଧର୍ମ ପଟ୍ଟ**—ସ. ବି ( ମ. ପ. ଲୋ; ଧର୍ମ+ପଟ୍ଟ )—୧ । ରାଜା ବା ଧର୍ମାଧି-
Dharma paṭṭa କାରୀଙ୍କ ଠାରୁ ପ୍ରାପ୍ତ ଆଇନ୍ ସମ୍ବନ୍ଧୀୟ ବ୍ୟବସ୍ଥାପତ୍ର-
1. A statement or prescription about any point of law issued by a king or judge.

**ଧର୍ମ ପତି**—ସ. ବି. ପୁଂ (ଧର୍ମ+ପତି)—୧ । ଯମ—
Dharma pati 1. Jama, the God of death
୨ । ବରୁଣ—2. Baruṇa, the God of the ocean.

**ଧର୍ମ ପତ୍ନୀ**—ସ. ବି. ସ୍ତ୍ରୀ (ଧର୍ମ+ପତ୍ନୀ; ୪ର୍ଥୀ ତତ୍‌)—୧ । ପ୍ରଥମ ବିବାହିତା
Dharma patnī ଭାର୍ଯ୍ୟା—1. One's first wedded wife.
୨ । ସହଧର୍ମିଣୀ—2. One's better-half.
( ଯଥା—ଶାସ୍ତ୍ରରେ ଅଛି ପ୍ରଥମା ଧର୍ମପତ୍ନୀତ ଦ୍ୱିତୀୟା ରତି-ବର୍ଦ୍ଧିନୀ; ଅର୍ଥାତ୍, ପ୍ରଥମବିବାହିତା ସ୍ତ୍ରୀ ଧର୍ମପତ୍ନୀ ଓ ଦ୍ୱିତୀୟ-ବିବାହିତା ସ୍ତ୍ରୀ କାମପତ୍ନୀ ।)

**ଧର୍ମ ପତ୍ତନ**—ସ. ବି—୧ । ବୃହତ୍‌ସଂହିତା ମତରେ କୂର୍ମବିଭାଗର ଦକ୍ଷିଣସ୍ଥ
Dharma pattana ଜନସ୍ଥାନବିଶେଷ ( ଅଧୁନାକ ମାଲବାର ନିକଟସ୍ଥ ଧର୍ମପଟ୍ଟମ) (ହି. ଶବ୍ଦସାଗର)—1. Name of an ancient village in S. India.
୨ । ଶ୍ରାବସ୍ତୀ ନଗରୀ ( ହି. ଶବ୍ଦସାଗର )—
2. The town of Śrābastī.
୩ । ଗୋଲମରିଚ (ହି. ଶବ୍ଦସାଗର)—
3. Black pepper.

**ଧର୍ମ ପତ୍ର**—ସ. ବି ( ଧର୍ମ+ପତ୍ର, ବହୁବ୍ରୀହି; ଯାହାର ପତ୍ର ଯଜ୍ଞାଦି ଧର୍ମ-
Dharma patra କାର୍ଯ୍ୟରେ ଆବଶ୍ୟକ ହୁଏ)—ଡିମ୍ବିରିଗଛ—
Fig tree.

**ଧର୍ମ ପଥ**—ସ.ବି (ଧର୍ମ+ପଥିନ୍, ରୂପକ କର୍ମଧା)—ଧର୍ମାନୁମୋଦିତ ପଥ—
Dharma patha Righteous conduct; the path of virtue; a virtuous course of conduct.
(ଧର୍ମପନ୍ଥା—ଅନ୍ୟରୂପ)

**ଧର୍ମପଦ**—ଦେ. ବି—କୋଣାର୍କ ମନ୍ଦିର ନିର୍ମାଣ ସମୟରେ ୧୨ଶହ ବଢ଼େଇଙ୍କ
Dharmapada ବୁଦ୍ଧିର ଅଗମ୍ୟ ମନ୍ଦିରର ମୁଦଶିଳା (ମୁଣ୍ଡିମାରିବା) କାର୍ଯ୍ୟ ସମାଧାନ କରିଥିବା ଜଣେ ବୁଦ୍ଧିମାନ୍ ବଢ଼େଇ ବାଳକର ନାମ—Name of a very intelligent carpenter boy who was able to complete the temple at Konārka by setting the coping stone at the proper place.

[ ଦ୍ର—ଚୁମ୍ବକ ପଥରକୁ ଦେଉଳରେ ବସାଇ ଦେଉଳର ମୁଣ୍ଡି ମାରିବାପାଇଁ କୋଣାର୍କ ମନ୍ଦିର ନିର୍ମାଣର ଭାରପ୍ରାପ୍ତ ଲାଙ୍ଗୁଲା ନରସିଂହଦେବଙ୍କ କର୍ମଗୁରୁ ଶିବେଇ ସାଆନ୍ତରା କଳ୍ପନା କରିଥିଲେ; କିନ୍ତୁ ବଢ଼େଇମାନେ ଯଥାସ୍ଥାନରେ ଉକ୍ତ ପଥରକୁ ବସାଇ ପାରୁ ନ ଥିବାରୁ ଦେଉଳ ମୁଣ୍ଡି ମରି ପାରୁ ନ ଥିଲା । ତାକୁ ଉକ୍ତ ବାଳକ ବସାଇ ଦେଇଥିଲା । ସ୍ୱର୍ଗୀୟ ଗୋପବନ୍ଧୁ ଦାସ ଏହି କାହାଣୀକୁ ଅବଲମ୍ବନ କରି 'ଧର୍ମପଦ' ନାମରେ ଖଣ୍ଡେ କ୍ଷୁଦ୍ର କାବ୍ୟ ଲେଖିଅଛନ୍ତି । ]

**ଧର୍ମ ପର**—ସ. ବିଣ. ପୁଂ (ଧର୍ମ+ପର; ବହୁବ୍ରୀହି)—ଧାର୍ମିକ; ଧର୍ମଶୀଳ;
Dharma para ଧର୍ମନିଷ୍ଠ; ଧର୍ମାତ୍ମା—Devoted to religion, virtuous; pious; righteous.
(ଧର୍ମପରାୟଣ—ଅନ୍ୟରୂପ)
( ଧର୍ମପରା, ଧର୍ମପରାୟଣା—ସ୍ତ୍ରୀ )

**ଧର୍ମ ପାଠକ**—ସ ବି. ପୁଂ (ଧର୍ମ=ଧର୍ମଶାସ୍ତ୍ର+ପାଠକ; ଉପପଦ ତତ୍)—
Dharma pāṭhaka 1. Devoted to the study of the scriptures or sacred books.
(ଧର୍ମପାଠିକା—ସ୍ତ୍ରୀ) ୨ । ଧର୍ମଶାସ୍ତ୍ର ବା ଆଇନର ଅଧ୍ୟାପକ—
2. A teacher of civil or religious law; law-professor (Apte).

**ଧର୍ମପାଳ**—ସ. ବି. ପୁଂ ( ଧର୍ମ+ପାଳ; ୬ଷ୍ଠୀ ତତ୍ )—
Dharma pāḷa ୧ । ଯେ ଧର୍ମ ରକ୍ଷା କରନ୍ତି—1. The defender of faith; the protector of law.
( ଧର୍ମପାଳିକା—ସ୍ତ୍ରୀ ) ୨ । ବୌଦ୍ଧ ସନ୍ନ୍ୟାସୀଙ୍କ ଉପାଧିବିଶେଷ—
2. A title of Buddhist saints.
ଧର୍ମପାଳକ, ଧର୍ମରକ୍ଷକ, ଧର୍ମଭୃତ୍ } ଅନ୍ୟରୂପ ୩ । (ବହୁବ୍ରୀହି) ( ଯାହାର ଭୟରେ ଲୋକେ ଧର୍ମ ପାଳନ କରନ୍ତି )—ଦଣ୍ଡ—
3. Punishment.
୪ । ( ନାମ ) ରାଜା ଦଶରଥଙ୍କର ଏକ ମନ୍ତ୍ରୀ—
4. Name of a minister of king Daśaratha.

**ଧର୍ମ ପାଳନ**—ସ. ବି ( ୬ଷ୍ଠୀ ତତ୍, ଧର୍ମ+ପାଳନ )—
Dharma pāḷana ୧ । ଧର୍ମସମ୍ବନ୍ଧୀୟ କର୍ତ୍ତବ୍ୟମାନ ପାଳିବା—
1. Observance of religious duties.
୨ । ଧର୍ମକର୍ମ—2. Practice of piety.

**ଧର୍ମ ପିଅର**—ଦେ. ବି (ସ. ଧର୍ମ+ପିତ)—ଧର୍ମ ପିତା (ଦେଖ)
Dharma piara Dharma pitā (See)
ଅନାଥ ବାଳକଙ୍କୁ ଆଣି ଧର୍ମେ ପୋଷନ୍ତି ଯେଉଁ ପ୍ରାଣୀ,
ସେ ଧର୍ମ ପିଅର ଜନମ,ବୋଲନ୍ତି ବେଦମତେ ମନ୍ତ୍ର—ଜଗନ୍ନାଥ- ଭାଗବତ ।

**ଧର୍ମ ପିତା**—ସ. ବି ( ଧର୍ମ+ପିତୃ. ୧ମା. ୧ବ )—୧ । ଧର୍ମଶାସ୍ତ୍ର ଅନୁସାରେ ଆପଣାର ପିତୃସ୍ଥାନୀୟ ବ୍ୟକ୍ତି—
Dharma pitā 1. A person standing in the relation of a father to a person according to the Śāstras
୨ । ଯାହାଙ୍କ ସଙ୍ଗେ ମହାପ୍ରସାଦ ଆଦିଦ୍ୱାରା ପିତୃ ସମ୍ପର୍କ ସ୍ଥାପିତ ହୋଇଥାଏ—2. God-father; a person with whom the relationship of father is set up by the exchange of Mahāprasāda etc
[ ଦ୍ର—ଏହିପରି ଧର୍ମ ଭ୍ରାତା, ଧର୍ମ ଭଗିନୀ, ଧର୍ମ ମାତା ଆଦି ପଦ ହୁଏ । ଶାସ୍ତ୍ର ଅନୁସାରେ ଜନ୍ମଦାତା, କନ୍ୟାଦାତା, ଭୟତ୍ରାତା, ବିଦ୍ୟାଗୁରୁ, ଜ୍ୟେଷ୍ଠଭ୍ରାତା, ଅନ୍ନପ୍ରଦାତା, ଦୀକ୍ଷାଗୁରୁ ଓ ରାଜା ଏମାନେ ପିତାଙ୍କ ପରି ପୂଜ୍ୟ । ଗୁରୁପୁତ୍ର ଭ୍ରାତୃଷ୍ପୁତ୍ରୀ ଗୁରୁପତ୍ନୀ, ଶାଶୁ, ରାଣୀ, ଜ୍ୟେଷ୍ଠ ଭ୍ରାତୃ ପତ୍ନୀ, ବ୍ରାହ୍ମଣୀ, ପର ସ୍ତ୍ରୀ, ବିଧବା, ମାଉସୀ ଓ ପିଉସୀ—ଏମାନେ ମାତୃସ୍ଥାନୀୟା । ଗୁରୁକନ୍ୟା ଓ ସହାଧ୍ୟାୟୀର ଭଗିନୀ—ଏମାନେ ଭଗିନୀସ୍ଥାନୀୟା । ଶିଷ୍ୟପତ୍ନୀ, ଭ୍ରାତୃଷ୍ପୁତ୍ରୀ, ଭାଣିଜୀ, ପୁତ୍ରବଧୂ—ଏମାନେ କନ୍ୟାସ୍ଥାନୀୟା । ]

**ଧର୍ମ ପୀଠ**—ସ. ବି ( ୬ଷ୍ଠୀ ତତ୍; ଧର୍ମ+ପୀଠ )—
Dharma pīṭha ୧ । ଧର୍ମ ସାଧନର ପ୍ରଧାନ ସ୍ଥାନ; ତୀର୍ଥ—
1. A holy place
୨ । ଯେଉଁ ସ୍ଥାନରେ ଧର୍ମ ସମ୍ବନ୍ଧେ ବ୍ୟବସ୍ଥା ମିଳେ—
2. A place where prescriptions about religious points may be had.
୩ । କାଶୀ ( ହି ଶବ୍ଦସାଗର )—
3. A name of Benares.

**ଧର୍ମ ପୀଡ଼ା**—ସ. ବି ( ୬ଷ୍ଠୀ ତତ୍, ଧର୍ମ+ପୀଡ଼ା )—
Dharma pīrdā ୧ । ଧର୍ମର ବା ନ୍ୟାୟର ବିରୁଦ୍ଧ ଆଚରଣ—
1. An offence against religion or justice.
୨ । ବେଆଇନୀ ଆଚରଣ, ଅପରାଧ—
2. An offence against law; transgression of law.

**ଧର୍ମ ପୁଅ**—ଦେ. ବି ( ସ. ଧର୍ମ+ପୁତ୍ର )—ଧର୍ମ ସମ୍ବନ୍ଧ ଦ୍ୱାରା ପ୍ରତିଷ୍ଠିତ ପୁତ୍ର—God-son
Dharma pua
ଭିକ୍ଷାପୁତ୍ର ଧରମବେଟା

**ଧର୍ମ ପୁତ୍ର**—ସ. ବି. ( ଧର୍ମ+ପୁତ୍ର )—୧ । ଯୁଧିଷ୍ଠିର—
Dharma putra 1. Judhishṭhira.
[ କୁନ୍ତୀଙ୍କ ଗର୍ଭରେ ଧର୍ମଦେବ ବା ଯମଙ୍କ ଔରସରେ ଏ ଜନ୍ମ ହୋଇଥିଲେ । ]
୨ । ଔରସ ପୁତ୍ର; ବିବାହିତା ସ୍ତ୍ରୀ ଗର୍ଭରୁ ସ୍ୱାମୀର ଔରସ ସନ୍ତାନ - 2. Legitimate son; a son begotton by the husband on his married wife.
୩ । ଧାର୍ମିକ ପୁତ୍ର ( କ୍ଲାରେନ୍ସ )—
3. A son practising piety.
୪ । ପୋଷ୍ୟ ପୁତ୍ର—4. Adopted son.
ଦେ. ବି—ଧରମପୁଅ; ମହାପ୍ରସାଦ ସମ୍ବନ୍ଧ ସ୍ଥାପନଦ୍ୱାରା ସ୍ୱୀକୃତ ପୁତ୍ର—A god-son.
[ ଦ୍ର—ଆମ୍ଭମାନଙ୍କ ଦେଶରେ ବିଭିନ୍ନ ଜାତୀୟ ଓ ନିଃସମ୍ପର୍କ ବ୍ୟକ୍ତିମାନଙ୍କ ମଧ୍ୟରେ ଧର୍ମ ବା ମହାପ୍ରସାଦ ସମ୍ବନ୍ଧଦ୍ୱାରା ପିତା, ମାତା, ପୁତ୍ର, କନ୍ୟା, ଭ୍ରାତା, ଭଗିନୀ, ସଙ୍ଗାତ, ମଇତ୍ର ଆଦି ଧର୍ମସମ୍ବନ୍ଧ ସ୍ଥାପିତ ହୋଇଥାଏ । ଏଥିପାଇଁ ଧର୍ମସନ୍ତାନ ( ଧରମପୁଅ ), ଧର୍ମକନ୍ୟା, ଧର୍ମଦୁହିତା ( ଧରମଝିଅ ), ଧର୍ମପିତା ( ଧରମବାପ ) ଧର୍ମମାତା ( ଧରମମାଆ ), ଧର୍ମଭ୍ରାତା ( ଧରମଭାଇ ), ଧର୍ମଭଗିନୀ ( ଧରମ ଭଉଣୀ ) ଆଦି ଶବ୍ଦ ନିଷ୍ପନ୍ନ ହୁଏ । ]

**ଧର୍ମ ପୁରୀ**—ସ. ବି—୧ । ( ଯେଉଁଠାରେ ମୃତ୍ୟୁ ପରେ ପ୍ରାଣୀର ଧର୍ମାଧର୍ମ ବିଚାର କରାଯାଏ) ଯମପୁରୀ—
Dharma purī 1. The abode or court of Jama, the God of death
୨ । ଧର୍ମାଧିକରଣ; କଚେରି ( ହି. ଶବ୍ଦସାଗର )—
2. A court of law.

**ଧର୍ମ ପୁସ୍ତକ**—ସ. ବି—ଧର୍ମଗ୍ରନ୍ଥ ( ଦେଖ )
Dharma pustaka Dharma grantha ( See)

**ଧର୍ମ ପ୍ରଚାର**—ସ. ବି (ଧର୍ମ+ପ୍ରଚାର, ୬ଷ୍ଠୀ ତତ୍ )—କୌଣସି ଦେଶରେ ସର୍ବସାଧାରଣ ଲୋକଙ୍କ ସମ୍ମୁଖରେ ଧର୍ମର ବ୍ୟାଖ୍ୟା କରିବା—A religious mission; preaching of religion.
Dharma prachāra

**ଧର୍ମ ପ୍ରଚାରକ**—ସ. ବିଣ. ପୁଂ—ଧର୍ମ ପ୍ରଚାର କରିବା ବ୍ୟକ୍ତି—
Dharma prachāraka Missionary; a preacher of religion.
(ଧର୍ମପ୍ରଚାରିକା—ସ୍ତ୍ରୀ)

**ଧର୍ମ ପ୍ରବକ୍ତା**—ସ. ବି (ଧର୍ମ+ପ୍ରବକ୍ତୃ; ୧ମା. ୧ବ)—୧ । ଆଇନ
Dharma prabaktā ବିଷୟରେ ଉପଦେଶକ—1 An expounder of law, a legal adviser.
୨ । ଧର୍ମପ୍ରଚାରକ—2 A religious preacher

**ଧର୍ମ ପ୍ରବର୍ତ୍ତନ**—ସ. ବି (ଧର୍ମ+ପ୍ରବର୍ତ୍ତନ, ୬ଷ୍ଠୀ ତତ୍)—କୌଣସି
Dharma prabarttana ଦେଶରେ ଗୋଟିଏ ନୂତନ ଧର୍ମ ଚଳାଇବା—Introduction of a religion into a country
(ଧର୍ମ ପ୍ରବର୍ତ୍ତକ—ବିଣ. ପୁଂ)

**ଧର୍ମ ପ୍ରମାଣ**—ସ. ବିଣ (ଧର୍ମ+ପ୍ରମାଣ; ବହୁବ୍ରୀହି)—ଧର୍ମକୁ ସାକ୍ଷୀ ରଖି
Dharma pramāṇa ଅନୁଷ୍ଠିତ ବା ଉକ୍ତ (କର୍ମ ବା ବଚନ)—
ଧର୍ମପ୍ରମାଣ (act) Done or (word) said by invoking
धरमलगती God to witness it.
ଦେ. କ୍ରି ବିଣ—୧ । ଧର୍ମ ଅନୁସାରେ; ଧର୍ମତଃ -1. In the name of God; by God, upon One's faith
ଦେ. ବି - କର୍ତ୍ତବ୍ୟ ହଲପ; ସ୍ୱୀକୃତ କରିବା—The taking of special oath; solemn affirmation.

**ଧର୍ମ ପ୍ରମାଣେ**—ଦେ. କ୍ରି. ବିଣ—ଧର୍ମପ୍ରମାଣ (ଦେଖ)
Dharma pramāṇe Dharma pramāṇa (See)

**ଧର୍ମ ପ୍ରାଣ**—ସ. ବିଣ. ପୁଂ (ଧର୍ମ+ପ୍ରାଣ; ବହୁବ୍ରୀହି)—ଅତ୍ୟନ୍ତ ଧାର୍ମିକ;
Dharma prāṇa ପୁଣ୍ୟଶୀଳ—Pious, virtuous, religious; one whose whole life is pervaded by religion.
(ଧର୍ମପ୍ରାଣା—ସ୍ତ୍ରୀ)
(ଧର୍ମପ୍ରାଣତା—ବି)

**ଧର୍ମ ବକ**—ସ. ବି (ଧର୍ମ+ବକ)—୧ । ବକରୂପଧାରୀ ଧର୍ମ ବା ଈଶ୍ୱର—
Dharma baka 1. God appearing in the form of an ardea or heron.
[ଦ୍ର—ଯୁଧିଷ୍ଠିରଙ୍କୁ ପରୀକ୍ଷା କରିବା ସକାଶେ ଧର୍ମବକ ତାଙ୍କୁ ଚାରୋଟି ପ୍ରଶ୍ନ କରିଥିଲେ ଓ ଯୁଧିଷ୍ଠିର ଉକ୍ତ ଚାରୋଟି ପ୍ରଶ୍ନର ଯଥାଯଥ ଉତ୍ତର ଦେଇଥିଲେ । (କ) ପ୍ରଶ୍ନ—ପୃଥିବୀରେ ଠିକ୍ ବାଟ କଅଣ ? (କଃ ପନ୍ଥା) । ଉତ୍ତର—ବେଦ, ସ୍ମୃତି ଓ ପୁରାଣରେ ନାନା ପ୍ରକାର ବିଭିନ୍ନ ପନ୍ଥାର ଉଲ୍ଲେଖ ଅଛି । କିନ୍ତୁ ମହାଜନମାନେ ଯେଉଁ ପନ୍ଥା ବାଟେ ଯାଇଅଛନ୍ତି ତାହାହିଁ ପ୍ରକୃତ ପନ୍ଥା । (ଖ) ପ୍ରଶ୍ନ—ପୃଥିବୀରେ ଆଶ୍ଚର୍ଯ୍ୟ ବିଷୟ କଅଣ ? (କିମାଶ୍ଚର୍ଯ୍ୟଂ ?) । ଉତ୍ତର—ପ୍ରତିଦିନ ମନୁଷ୍ୟ ତା ଆଖି ଆଗରେ ସହସ୍ର ସହସ୍ର ଲୋକ ମରିବାର ଦେଖି ସୁଦ୍ଧା ବଞ୍ଚି ରହିଥିବା ଲୋକେ ବିଚାରନ୍ତି ଯେ ଆମେ ଚିରଜୀବୀ ହେବା, ଏହାହିଁ ଅତି ଆଶ୍ଚର୍ଯ୍ୟର ବିଷୟ । (ଗ) ପ୍ରଶ୍ନ—ପୃଥିବୀରେ କିଏ ସୁଖୀ ? (କଃ ମୋଦତେ ?) । ଉତ୍ତର—ଯେଉଁ ଲୋକ ଋଣ ନ କରି, ପ୍ରବାସକୁ ନ ଯାଇ, ଘରେ ବସି ମୁଠିଏ ଶାକାନ୍ନ ଦିନାନ୍ତେ ଖାଇବାକୁ ପାଏ ସେ ଏକା ସୁଖୀ । (ଘ) ପ୍ରଶ୍ନ—ସଂସାରର ଖବର କଅଣ ? (କା ଚ ବାର୍ତ୍ତା ?) । ଉତ୍ତର—ଏ ସଂସାରରେ 'କାଳ' ବା 'ମୃତ୍ୟୁ' ସମସ୍ତଙ୍କୁ ଶାସନ କରୁଅଛି, ଏହାହିଁ ବାର୍ତ୍ତା ଅଟେ ।]
୨ । ବକ ପରି ଧର୍ମର ବାହାନା କରୁଥିବା ଅସଦାଚାରୀ ବ୍ୟକ୍ତି, କପଟି ଧାର୍ମିକ—2. A religious hypocrite
[ଦ୍ର—ବକ ମାଛ ପାଇଁ ପାଣି ପାଖେ ଜଗି ବସିଥିବବେଳେ, ସେ ଧ୍ୟାନରେ ବସିଥିଲାପରି ଦେଖାଯାଏ ।]

**ଧର୍ମବକା**—ଦେ. ଚ (ସ. ଧର୍ମବକ)—୧ । ଧର୍ମବକ ୨ (ଦେଖ)
Dharmabakā Dharmabaka 2 (See)
୨ । ଧର୍ମବୋକା (ଦେଖ)—
2 Dharmabokā (See)

**ଧର୍ମବନ୍ତ**—ଦେ. ବିଣ (ସ. ଧର୍ମ+ବନ୍ତ)—୧ । ଧାର୍ମିକ—
Dharmabanta 1. Pious; virtuous; religious.
ଧର୍ମବନ୍ତ ୨ । ନ୍ୟାୟବାନ୍—
धरमबन्त 2 Just; righteous.
ଧର୍ମବନ୍ତ ଲୋକେ ଯେ ସାନ ଲୋକଠାରେ
ଦୟା ଘେନ ଆନ୍ତି ହୃଦରେ କାଳନ୍ତରେ । କୃଷ୍ଣସିଂହ. ମହାଭାରତ. ବନ ।

**ଧର୍ମ ବଳ**—ସ. ବି. (ସ. ଧର୍ମ+ବଳ)—ଧରମ ବଳ (ଦେଖ)
Dharma baḷa Dharama baḷa (See)

**ଧର୍ମ ବଳା**—ଦେ ବି. (ସ. ଧର୍ମ+ବାଳ)—ଧର୍ମପୁତ୍ର; ଯୁଧିଷ୍ଠିର—
Dharma baḷā A name of Judhishṭhira.
ଗୁରୁ ଭାଇଙ୍କ ତାହା କହୁ ଧର୍ମବଳା
ଦ୍ରୌପଦୀଙ୍କୁ ଘେନିଣ ଗଲେ ପାକଶାଳା । କୃଷ୍ଣସିଂହ. ମହାଭାରତ. ବନ ।

**ଧର୍ମ ବହିର୍ଭୂତ**—ସ. ବିଣ (୫ମୀ ତତ୍; ଧର୍ମ+ବହିର୍ଭୂତ)—
Dharma bahirbhūta ୧ । ପାପଜନକ (କାର୍ଯ୍ୟ)-1. Sinful
ଧର୍ମବିଗର୍ହିତ } ଅନ୍ୟରୂପ ୨ । ଯେଉଁ କାର୍ଯ୍ୟ ଧର୍ମର ବିପରୀତ ଅଟେ—
ଧର୍ମବିରୁଦ୍ଧ } 2. (acts) Contrary or opposed to religious precepts.

**ଧର୍ମ ବାଟ**—ଦେ. ବି—ଧର୍ମ ପଥ—
Dharma bāṭa The ways of the righteous.

**ଧର୍ମ ବାଣିଜିକ**—ସ. ବି. (ଧର୍ମ+ବାଣିଜ୍ୟ+ଇକ)—
Dharma bāṇijika ୧ । (ବଣିକ ଯେଉଁ ପରି ପଣ୍ୟ ଦ୍ରବ୍ୟର ବ୍ୟବସାୟ ଦ୍ୱାରା ଲାଭ କରେ ସେହିପରି) ଯେଉଁ ବ୍ୟକ୍ତି ଆପଣାର ଧର୍ମସାଧନକୁ ଲାଭର ଉପାୟରେ ପରିଣତ କରେ—
1. One who tries to make profit out of his virtue (Apte).
୨ । ପୁରସ୍କାର ଆଶାରେ ଯେଉଁ ବ୍ୟକ୍ତି ଧର୍ମ କାର୍ଯ୍ୟ କରେ—2. One who performs religious rites with a view to reward (Apte)

**ଧର୍ମବାନ୍**—ସ. ବିଣ. ପୁଂ. (ଧର୍ମ+ବତ୍, ୧ମା. ୧ବ)—
Dharmabān ଧାର୍ମିକ—Pious.
(ଧର୍ମବତୀ—ସ୍ତ୍ରୀ)

**ଧର୍ମ ବାସର**—ସ. ବି. (ବହୁବ୍ରୀହି; ଧର୍ମ+ବାସର)—
Dharma bāsara ୧ । ଯେଉଁ ଦିନ ଧର୍ମକାର୍ଯ୍ୟ ଓ ଧର୍ମ ଚିନ୍ତା ପାଇଁ ନିର୍ଦ୍ଦିଷ୍ଟ—1.A day set a part for religious performances and religious contemplation.
୨ । ପୂର୍ଣ୍ଣିମା ତିଥି—2. The full moon day.

**ଧର୍ମ ବାହନ**—ସ. ବି.—୧। (ଧର୍ମ=ବୃଷଭ, ଅଟେ ବାହନ ଯାହାର, Dharma bāhana ବହୁବ୍ରୀହି)—୧। ଶିବ; ମହାଦେବ—1. Siba

୨। (୬ଷ୍ଠୀ ତତ୍, ଧର୍ମ=ଯମର ବାହନ)—ମହିଷ; ମଇଁଷି—2. Buffalo (Apte).

୩। (ଧର୍ମ+ବାହ ଧାତୁ ଣିଜନ୍ତ ବାହି ଧାତୁ+ଭାବ ଅନ) ଧର୍ମ ପ୍ରାପଣ; ଧର୍ମ ପ୍ରାପ୍ତି; ଧର୍ମ ଲାଭ—3. Attainment of piety.

**ଧର୍ମ ବିଚାର**—ସ. ବି. (ଧର୍ମ+ବିଚାର)—୧। ନ୍ୟାଯ୍ୟ ବିଚାର—Dharma bichāra 1. Just consideration.

୨। ନ୍ୟାଯ୍ୟ—2. Justice.

୩। ଧର୍ମ ସମ୍ବନ୍ଧେ ଚିନ୍ତନ—3. Thoughts about religion.

୪। ଅଭିଯୁକ୍ତ ବ୍ୟକ୍ତିର ଦୋଷିତା ବା ନିର୍ଦ୍ଦୋଷତା ବିଷୟରେ ବିଚାର—4. Adjudication of the guilt or innocence of an accused.

(ଧର୍ମବିବେଚନ; ଧର୍ମବିଚାରଣା—ଅନ୍ୟରୂପ)

**ଧର୍ମ ବିଜ୍ଞାନ**—ସ. ବି. (ଧର୍ମ+ବିଜ୍ଞାନ)—୧। ଅଧ୍ୟାତ୍ମ ବିଦ୍ୟା—Dharma bijñāna 1. The Philosophy of religion.

ଧର୍ମ ବିଦ୍ୟା, ଧର୍ମ ଶାସ୍ତ୍ର } ଅନ୍ୟରୂପ

୨। ନୀତିଜ୍ଞାନ ଉପଦେଶକ ଶାସ୍ତ୍ର—2. Ethics; moral science; moral philosophy.

୩। ସ୍ମୃତି ଶାସ୍ତ୍ର—3. The code of law.

୪। ଆଇନ୍—4. Jurisprudence.

**ଧର୍ମବିତ୍**—ସ. ବିଣ. ପୁଂ ( ଧର୍ମ+ବିଦ୍ ଧାତୁ+କର୍ତ୍ତୃ କ୍ୱିପ୍; ଧର୍ମବିଦ୍ ଶବ୍ଦ Dharmabit ୧ମା. ୧ବ.)—ଧର୍ମଜ୍ଞ—Versed in religious doctrines.

(ଧର୍ମବିଦ୍—ଅନ୍ୟରୂପ)

**ଧର୍ମ ବିଧି**—ସ. ବି. (ଧର୍ମ+ବିଧି)—ଧର୍ମ ବା ଆଇନ୍ ସମ୍ବନ୍ଧୀୟ ନିୟମ ବା Dharma bidhi ବିଧାନ—Precepts of law or religion.

**ଧର୍ମ ବିପ୍ଳବ**—ସ. ବି. (ଧର୍ମ+ବିପ୍ଳବ; ୬ଷ୍ଠୀ ତତ୍)—୧। ଧର୍ମ ଲୋପ—Dharma biplaba 1. Convulsion or destruction of religion.

୨। ଅନୀତି—2. Immorality, violation of duty.

୩। ଧର୍ମ ସମ୍ବନ୍ଧେ ଲୋକ ସମାଜରେ ଘୋର ଆନ୍ଦୋଳନ—3. A great agitation in the popular mind about religion.

**ଧର୍ମ ବୀର**—ସ. ବି. (୭ମୀ ତତ୍; ଧର୍ମ+ବୀର )—ଧର୍ମକର୍ମ ସାଧନ Dharma bīra ବିଷୟରେ ଯେ ବୀରତ୍ୱ ଦେଖାଏ; ଧର୍ମକର୍ମ କରିବା ବିଷୟରେ ସାହସୀ; ଧର୍ମରକ୍ଷାର୍ଥେ ସାହସୀ—Full of heroism in defending one's religion; having chivalrous piety.

[ ଦ୍ର—ରସଶାସ୍ତ୍ରୀୟ ଗ୍ରନ୍ଥରେ ବୀର ରସର ସମ୍ପର୍କରେ ୪ ପ୍ରକାର ବୀରଙ୍କର ଉଲ୍ଲେଖ ହୋଇଅଛି ଯଥା—ବୀର, ଧର୍ମବୀର, ଦାନବୀର ଓ ଦୟାବୀର—ଦ୍ର. ଶବ୍ଦସାଗର । ]

**ଧର୍ମ ବୁଦ୍ଧି**—ସ. ବି. (ଧର୍ମ+ବୁଦ୍ଧି)—୧। ଧର୍ମଜ୍ଞାନ; ଯେଉଁ ଈଶ୍ୱରଦତ୍ତ Dharma buddhi ଶକ୍ତିଦ୍ୱାରା ମନୁଷ୍ୟର ମନ ଧର୍ମଆଡ଼କୁ ଆକୃଷ୍ଟ ହୁଏ—1. Religious propensity; the promptings of piety.

ଧର୍ମପ୍ରବୃତ୍ତି, ଧର୍ମବିବେକ } ଅନ୍ୟରୂପ

୨। ହିତାହିତ ଜ୍ଞାନ—2. Conscience; regard for justice; discrimination between right and wrong.

**ଧର୍ମ ବୃଦ୍ଧ**—ସ. ବିଣ. ପୁଂ. (୭ମୀ ତତ୍; ଧର୍ମ+ବୃଦ୍ଧ)—Dharma bruddha ୧। ଧର୍ମୀନ ଷ୍ଠାନରେ ପ୍ରବୀଣ—(ଧର୍ମବୃଦ୍ଧା—ସ୍ତ୍ରୀ) 1. Advanced in piety.

୨। ଅନ୍ୟମାନଙ୍କଠାରୁ ବେଶି ଧାର୍ମିକ—2. More pious than others.

୩। ଧାର୍ମିକପ୍ରବର—3. Very pious.

**ଧର୍ମ ବୈଡ଼ାଂଶିକ**—ସ. ବିଣ. ପୁଂ (ଧର୍ମ+ବୈଡ଼ାଂଶିକ)—Dharma baitaṁsika ପାପକାର୍ଯ୍ୟଦ୍ୱାରା ଧନ ଉପାର୍ଜନ କରି (ଧର୍ମବୈଡ଼ାଂଶିକା—ସ୍ତ୍ରୀ) ଆପଣାକୁ ଧାର୍ମିକ ବୋଲି ସଂସାରରେ ଜଣାଇବା ପାଇଁ ଯେଉଁ ବ୍ୟକ୍ତି ଦାନ ଆଦି କରେ—Earning money in evil ways but giving it away in charity to show to the public that he is a pious person.

[ ଦ୍ର—ଆଧୁନିକ ସମାଜରେ ଏ ଶ୍ରେଣୀର ଦାତା ଅନେକ ଦେଖା ଯାଆନ୍ତି । ଏମାନେ ଖାଦ୍ୟ ଓ ଦେବତାଙ୍କ ଭୋଗ ପାଇଁ ଉଦ୍ଦିଷ୍ଟ ଜିନିଷରେ ଚର୍ବି ମିଶାଇ ଲକ୍ଷ ଲକ୍ଷ ଟଙ୍କା ଉପାର୍ଜନ କରନ୍ତି, ଅଥଚ ଧର୍ମଶାଳା ଏବଂ ଅନ୍ନ ସତ୍ରାଦିରେ ଅଜସ୍ର ଅର୍ଥବ୍ୟୟ କରି ଲୋକସମାଜରେ ଧାର୍ମିକପ୍ରବରରୂପେ ଖ୍ୟାତହେବାର ଆଶା ପୋଷଣ କରନ୍ତି । ]

**ଧର୍ମ ବୋକା**—ଦେ. ବି.—ଧର୍ମର ଗୂଢ଼ ମର୍ମ ନ ବୁଝି ଯେ ଅନ୍ଧ ବିଶ୍ୱାସରେ Dharma bokā ଧର୍ମ କର୍ମ କରେ—A person who blindly practises religion without an intelligent understanding of its inner meaning; a blind follower of any faith.

**ଧର୍ମ ବ୍ୟାଧ**—ସ. ବି. (ନାମ) ପରଦ୍ୱାରା ହତ ପଶୁର ମାଂସ ବିକ୍ରେତା, Dharma byādha ବ୍ୟାଧ କୁଳରେ ଜାତ, ମାତା, ପିତା ଓ ଅତିଥିଙ୍କ ସେବାକାରୀ ମିଥିଳାପୁରବାସୀ ମହାତ୍ମାଉତ୍ତୋକୁ ଜଣେ ବ୍ୟାଧ ବା ମାଂସବିକ୍ରେତା—(name)—Name of a seller of meat who was very pious and hospitable and was following his family profession.

[ଦ୍ର—କୌଶିକ ନାମରେ ଜଣେ ଋଷି ଦିନେ ଗୋଟିଏ ଗଛ ମୂଳେ ବସି ଯାଇଥିଲେ, ଏପରି ଅବସ୍ଥାରେ ତାଙ୍କ ଉପରେ ଗୋଟିଏ ବଗ ମଳୋତ୍ସର୍ଗ କରିଦେଲା । ଋଷି କ୍ରୁଦ୍ଧ ହୋଇ ବଗ ଆଡ଼କୁ ଦୃଷ୍ଟି କରିବାରୁ ବଗ ତତ୍କ୍ଷଣାତ୍ ମରିଗଲା । ଋଷି ବଗର ମୃତ୍ୟୁରେ ଦୁଃଖିତ ହୋଇ ସେଠାରୁ ଗଲେ ଓ ଭିକ୍ଷା କରିବା ଉଦ୍ଦେଶ୍ୟରେ ଜଣେ ଗୃହସ୍ଥର ଘରେ ଯାଇ ପହଞ୍ଚିଲେ । ଏହି ସମୟରେ ଗୃହସ୍ଥ

କେଉଁଆଡ଼େ ବାହାରକୁ ଯାଇଥିଲେ, ତେଣୁ ଅତି କ୍ଷୁଧାର୍ତ୍ତ ହୋଇ ଫେରି ଘରେ ପହଞ୍ଚିବାରୁ ଗୃହିଣୀ ପତିଙ୍କ ସେବାରେ ଲାଗିଗଲେ ଓ ଋଷିଙ୍କୁ ଭିକ୍ଷା ଦେବାରେ ବିଳମ୍ବ ଘଟିଲା । ସ୍ୱାମୀଙ୍କ ସେବା ସାରି ଗୃହିଣୀ ଋଷିଙ୍କୁ ଭିକ୍ଷା ଦେବା ପାଇଁ ଦାଣ୍ଡଦୁଆରକୁ ଆସି ବିଳମ୍ବ ନିମନ୍ତେ ଋଷିଙ୍କଠାରେ କ୍ଷମା ପ୍ରାର୍ଥନା କଲେ । ଋଷି ଗୃହିଣୀଙ୍କ ଉପରେ ବିଳମ୍ବ ଯୋଗୁଁ କ୍ରୁଦ୍ଧ ହୋଇ ବ୍ରାହ୍ମଣର କ୍ରୋଧର ଭୟଙ୍କର ଫଳ ବିଷୟ କହି ଗୃହିଣୀଙ୍କୁ ଡରାଇବାକୁ ଲାଗିଲେ । ଗୃହିଣୀ ଏହା ଶୁଣି ଋଷିଙ୍କୁ କହିଲେ 'ମୁଁ ବଗ ନୁହେଁ ଯେ ଆପଣଙ୍କ କ୍ରୋଧରେ ମରିଯିବି । ମୁଁ ମୋ ପତିଦେବତାଙ୍କ ସେବାରେ ଲାଗିଥିଲି । ଆପଣ କ୍ରୋଧ ସମ୍ବରଣ କରନ୍ତୁ । କ୍ରୋଧ ବଡ଼ ମନ୍ଦ । ଯେବେ ଆପଣଙ୍କର ଧର୍ମର ଯଥାର୍ଥ ତତ୍ତ୍ୱ ଜାଣିବାକୁ ଇଚ୍ଛା ଥାଏ ତେବେ ମିଥିଳାର ଧର୍ମବ୍ୟାଧ ନିକଟକୁ ଯାଆନ୍ତୁ' । ଋଷି ଗୃହିଣୀଙ୍କ କଥା ଶୁଣି ଆଶ୍ଚର୍ଯ୍ୟାନ୍ୱିତ ହୋଇ ମିଥିଳାକୁ ଗଲେ ଓ ସେଠାରେ ଧର୍ମବ୍ୟାଧଙ୍କୁ ଭେଟିଲେ । ଧର୍ମବ୍ୟାଧ ପଶୁ-ମାଂସ ବିକ୍ରି କରୁଥିଲେ; ଋଷିଙ୍କୁ ଦେଖି ଧର୍ମବ୍ୟାଧ କହିଲେ "ଆପଣଙ୍କୁ ଜଣେ ବ୍ରାହ୍ମଣୀ ମୋଠାକୁ ପଠାଇଅଛନ୍ତି ।" ଋଷି ଧର୍ମବ୍ୟାଧଙ୍କୁ ପଚାରିଲେ 'ଆପଣ ଏପରି ଜ୍ଞାନସମ୍ପନ୍ନ ହୋଇ ଏପରି ନିକୃଷ୍ଟ କର୍ମ କାହିଁକି କରୁଅଛନ୍ତି ?' । ଧର୍ମବ୍ୟାଧ ଉତ୍ତର କଲେ—'ମୋର ପିତୃ-ପରମ୍ପରାରୁ ଏହି କୁଳବୃତ୍ତି ଚାଲି ଆସୁଥିବାରୁ ମୁଁ ମୋ କୁଳଧର୍ମ ଅନୁଧାବନ କରୁଅଛି । ମୁଁ ମାତା, ପିତା, ଅତିଥି ଓ ଦେବତାଙ୍କ ସେବା କରେଁ, ଯଥାଶକ୍ତି ଦାନ କରେଁ, ମିଥ୍ୟା କହେଁ ନାହିଁ ବା ବିଶ୍ୱାସଘାତକତା କରେ ନାହିଁ, ଅନ୍ୟ ବ୍ୟକ୍ତିଦ୍ୱାରା ହତ ପଶୁର ମାଂସ ମୁଁ ବିକ୍ରୟ କରେଁ । ନିଜର କୁଳଧର୍ମ ତ୍ୟାଗ କରିବା ଉଚିତ ନୁହେଁ । ବିଶେଷ ସଙ୍ଗେ ସଙ୍ଗେ ମୁଁ ସଦାଗୁରୁ ରତ ହୋଇଥିବାରୁ ଧର୍ମଦୃଷ୍ଟିରେ ଏଥିରେ କିଛି ବାଧା ନାହିଁ । ପୂର୍ବ ଜନ୍ମରେ ମୁଁ ବେଦାଧ୍ୟାୟୀ ବ୍ରାହ୍ମଣ ଥିଲି, ଜଣେ ମିତ୍ର ରାଜାଙ୍କ ସଙ୍ଗେ ମୃଗୟା କରିବାକୁ ଯାଇ ଗୋଟିଏ ମୃଗୀ ଉପରେ ଶର ନିକ୍ଷେପ କଲି । ସେ ପ୍ରକୃତରେ ମୃଗୀରୂପଧାରୀ ଜଣେ ଋଷି ଥିଲେ । ତାଙ୍କର ଶାପରେ ମୁଁ ଶୂଦ୍ର ଯୋନି ପ୍ରାପ୍ତ ହୋଇ ବ୍ୟାଧକୁଳରେ ଜନ୍ମିଅଛି ।' କୌଶିକ ଧର୍ମବ୍ୟାଧଠାରୁ ଧର୍ମତତ୍ତ୍ୱ ଶୁଣି ଆଶ୍ରମକୁ ଫେରିଗଲେ—ହି. ଶବ୍ଦ-ସାଗର । ]

**ଧର୍ମ ବ୍ରତ**—ସଂ. ବି. ( ଧର୍ମ+ବ୍ରତ; ୬ଷ୍ଠୀ ତତ୍ ) - ଧର୍ମର ଅନୁଷ୍ଠାନ; ଧର୍ମାଚରଣ—Religious practice or observance.
Dharma brata
( ଧର୍ମବ୍ରତା—ସ୍ତ୍ରୀ )
ସଂ. ବିଣ. ପୁଂ. (ବହୁବ୍ରୀହି) – ଧର୍ମାନୁଷ୍ଠାନରେ ରତ; ଧାର୍ମିକ—Religious; devoted to religious or pious acts

**ଧର୍ମବ୍ରତା**—ସଂ. ବିଣ. ସ୍ତ୍ରୀ.( ଧର୍ମବ୍ରତ+ସ୍ତ୍ରୀ. ଆ )—ଧର୍ମବ୍ରତର ସ୍ତ୍ରୀଲିଙ୍ଗ—Feminine of Dharmabrata.
Dharmabrata
ସଂ. ବି. ସ୍ତ୍ରୀ. ( ନାମ )—ଧର୍ମ ନାମକ ଏକ ରାଜାଙ୍କ ଔରସରେ ତାଙ୍କ ପତ୍ନୀ ବିଶ୍ୱରୂପାଙ୍କ ଗର୍ଭରୁ ଉତ୍ପନ୍ନା ମରୀଚ ଋଷିଙ୍କ ପତ୍ନୀ—Name of the wife of sage Marichi.
[ ଦ୍ର—ଏ ପାତିବ୍ରତ୍ୟ ପ୍ରାପ୍ତି ପାଇଁ ତପସ୍ୟା କରିଥିଲେ । ମରୀଚ ଏହାଙ୍କୁ ପୃଥିବୀରେ ସମସ୍ତଙ୍କଠାରୁ ଶ୍ରେଷ୍ଠା ପତିବ୍ରତା ଦେଖି ବିବାହ କଲେ—ହି. ଶବ୍ଦସାଗର । ]

**ଧର୍ମ ଭଉଣୀ**—ଦେ. ବି. ସ୍ତ୍ରୀ. ( ସଂ ଧର୍ମ+ଭଗିନୀ )—ମହାପ୍ରସାଦ ସମ୍ପର୍କରେ ଭଉଣୀ—God-sister.
Dharma bhauṇi

**ଧର୍ମ ଭଗିନୀ**—ସଂ. ବି. ସ୍ତ୍ରୀ. ( ଧର୍ମ+ଭଗିନୀ )—ଗୁରୁକନ୍ୟା—The daughter of one's spiritual preceptor.
Dharma bhagini
( ଧର୍ମଭଗ୍ନୀ—ଅନ୍ୟରୂପ )
ଦେ. ବି—ଧର୍ମ ଭଉଣୀ ( ଦେଖ )
Dharma bhauṇi ( See )

**ଧର୍ମ ଭଙ୍ଗ**—ସଂ. ବି ( ୬ଷ୍ଠୀ ତତ୍; ଧର୍ମ+ଭଙ୍ଗ )—ଧର୍ମ କାର୍ଯ୍ୟ ବନ୍ଦ ହେବା; ଧର୍ମ କାର୍ଯ୍ୟରେ ଧାରାବାହିକତା ଲୋପ; ଧର୍ମଲୋପ—Infraction of a series of religious actss.
Dharma bhaṅga

**ଧର୍ମ ଭୟ**—ସଂ. ବି. (ଧର୍ମ+ଭୟ )—୧ । ଈଶ୍ୱର ଭୟ—1. The fear of God.
Dharma bhaya
( ଧର୍ମଭୀରୁତା—ଅନ୍ୟରୂପ ) ୨ । ମନ୍ଦ କାର୍ଯ୍ୟ କଲେ ଧର୍ମନାଶ ହେବ ଏବମ୍ଭୂତ ଭୟ—2. Fear of losing one's virtue by doing evil acts.

**ଧର୍ମ ଭାଣକ**—ସଂ. ବି. ପୁଂ. ( ଧର୍ମ+ଭଣ୍ ଧାତୁ=କହିବା+କର୍ତ୍ତୃ. ଅକ )—୧ । ଧର୍ମଧ୍ୱଜୀ ବ୍ୟକ୍ତି; ପାଷଣ୍ଡ—1. Hypocrite; imposter.
Dharma bhāṇaka
୨ । ପୁରାଣାଦି ଧର୍ମଗ୍ରନ୍ଥ ପାଠ କରି ଯେ ଅର୍ଥ ଉପାର୍ଜନ କରେ—2. A person who earns money as a public reader or reciter of scriptures.

**ଧର୍ମ ଭିକ୍ଷୁକ**—ସଂ ବି. ପୁଂ. ( ଧର୍ମ+ଭିକ୍ଷୁକ; ୪ର୍ଥୀ ତତ୍ )—
Dharma bhikshuka ୧ । ଯେଉଁ ବ୍ୟକ୍ତି କୌଣସି ଧର୍ମକାର୍ଯ୍ୟ ବା ଧର୍ମରକ୍ଷା ପାଇଁ ସାଧାରଣରେ ସାହାଯ୍ୟ ପ୍ରାର୍ଥନା କରେ—1. A person soliciting help for performing some pious duty.
୨ । ଯେଉଁ ବ୍ୟକ୍ତି ଧର୍ମାର୍ଥ ଭିକ୍ଷାବୃତ୍ତି ଅବଲମ୍ବନ କରିଅଛି—2. A person who has assumed the garb of a beggar from a sense of religious duty.
[ ଦ୍ର—ମନୁ ୯ ଶ୍ରେଣୀର ଧର୍ମଭିକ୍ଷୁକ ଗଣନା କରିଅଛନ୍ତି—୧. ପୁନଃ କାମନାରେ ବିବାହ କରିବାକୁ ଇଚ୍ଛୁକ ବ୍ୟକ୍ତି, ୨. ଯଜ୍ଞ କରିବାକୁ ଇଚ୍ଛୁକ, ୩. ପଥିକ, ୪. ଯେ ଯଜ୍ଞରେ ସର୍ବସ୍ୱ ତ୍ୟାଗ କରି ନିର୍ଦ୍ଧନ ହୋଇଅଛି, ୫. ୬. ୭. ଗୁରୁ, ମାତା ଓ ପିତାଙ୍କ ଭରଣ ପୋଷଣାର୍ଥ ସାହାଯ୍ୟପ୍ରାର୍ଥୀ, ୮. ଅଧ୍ୟୟନେଚ୍ଛୁ ବିଦ୍ୟାର୍ଥୀ ଓ ୯ ରୋଗୀ । ଏପରି ଧର୍ମଭିକ୍ଷୁକ ଶ୍ରେଷ୍ଠ ସ୍ନାତକରୂପେ ପରିଗଣିତ । ଏପରି ବ୍ୟକ୍ତିଙ୍କୁ ଯଜ୍ଞବେଦୀ ଭିତରେ ବସାଇ ଦକ୍ଷିଣା ସହିତ ଅନ୍ନ ଦାନ ଦେବା ବହୁ ପୁଣ୍ୟଜନକ ଅଟେ । ଧର୍ମଭିକ୍ଷୁକ ଛଡ଼ା ଅନ୍ୟ ବ୍ରାହ୍ମଣଙ୍କୁ ଯଜ୍ଞବେଦୀର ବାହାରେ ବସାଇବା ଉଚିତ—ହି. ଶବ୍ଦ-ସାଗର । ]

**ଧର୍ମ ଭୀତ**—ସଂ. ବିଣ. ପୁଂ. (ଧର୍ମ+ଭୀତ )—୧ । ବିବେକବାନ୍—1. Conscientious; scrupulous.
Dharma bhīta

( ଧର୍ମଭୀରୁତା—ସ୍ତ୍ରୀ ) ୨ । ସବୁ କାର୍ଯ୍ୟ ଈଶ୍ୱର ଦେଖୁଅଛନ୍ତି ବୋଲି
( ଧର୍ମଭୀରୁ—ଅନ୍ୟରୂପ ) ଜାଣି ଯେ ଅଧର୍ମକୁ ଡର ସବୁ କାର୍ଯ୍ୟ କରେ—2. God-fearing.
୩ । ପରମଧାର୍ମିକ—3. Very pious.

**ଧର୍ମଭୃତ୍**—ସ. ବିଣ. ( ଧର୍ମ+ଭୃ ଧାତୁ+କର୍ତ୍ତୃ. କ୍ୱିପ୍ )—ଧର୍ମଶୀଳ; ଧାର୍ମିକ—Pious.
Dharmabhṛut

**ଧର୍ମମୟ**—ସ. ବିଣ. ( ଧର୍ମ+ପ୍ରାଚୁର୍ଯ୍ୟାର୍ଥେ ମୟ ) —୧ । ଧାର୍ମିକ—
Dharmamaya 1. Virtuous; religious.
( ଧର୍ମମୟୀ—ସ୍ତ୍ରୀ ) ୨ । ନୈତିକ—2. Moral
୩ । ଧର୍ମ ସମ୍ମତ କର୍ମରେ ପୂର୍ଣ୍ଣ ( ଜୀବନ )—
3. ( a life ) Devoted to pious acts.

**ଧର୍ମ ମାଆ**—ଦେ. ବି. ( ସ. ଧର୍ମମାତା )—୧ । ଧର୍ମମାତା ( ଦେଖ )
Dharma mā-ā 1. Dharma mātā ( See)
ଧର୍ମ मा ୨ । ମହାପ୍ରସାଦ ଆଦି ସମ୍ପର୍କରେ ଆପଣାର ମାତୃସ୍ଥାନୀୟା
धर्ममाता ବ୍ୟକ୍ତି—2. God-mother,
( ଧର୍ମ ମା—ଅନ୍ୟରୂପ ) ୩ । ପୋଷିଆ ମା—
3. Adoptive mother.

**ଧର୍ମ ମାଣ୍ଡୁ**—ଦେ. ବି. ( ଧର୍ମ ପରୀକ୍ଷାର୍ଥ ମଣ୍ଡୁ )—
Dharma māṇḍu ୧ । ବିନା ପ୍ରମାଣରେ ଦିବ୍ୟଦ୍ୱାରା କୌଣସି ବ୍ୟକ୍ତିର ବିଚାର ପଦ୍ଧତି—1. System of trial by means of special oath.
୨ । ସାକ୍ଷ୍ୟ ପ୍ରମାଣ ଗ୍ରହଣ ନ କରି ( ଫୁଟନ୍ତା ତେଲ, ସାପ ଥିବା ମାଠିଆ ଆଦିରେ ହାତ ପୂରାଇବା ଦ୍ୱାରା ) ସନ୍ଦେହୀ ବ୍ୟକ୍ତିର ପରୀକ୍ଷା—Trial of an accused by his being made to undergo some severe tests; ordeal by fire etc.

[ ଦ୍ର—ପୂର୍ବେ ଅଭିଯୁକ୍ତ ବ୍ୟକ୍ତିର ନିର୍ଦ୍ଦୋଷତା ପ୍ରମାଣ କରିବା ପାଇଁ ଉକ୍ତ ବ୍ୟକ୍ତି ତାତି କରି ପାଚଥିବା ଲୌହାଦି ଧାତୁ, ଫୁଟନ୍ତା ତେଲ, ଅଗ୍ନି ଆଦିକୁ ସ୍ପର୍ଶ କରୁଥିଲା, କିମ୍ବା ସାପ ଥିବା ମାଠିଆରେ ହାତ ପୂରାଉ ଥିଲା । ଏହିପରି ନାନା କଠୋର ପରୀକ୍ଷା ଦ୍ୱାରା ଯେବେ ତାହାର କିଛି ଅନିଷ୍ଟ ନ ହେବାର ଦେଖା ଯାଉଥିଲା ତେବେ ସେ ନିର୍ଦ୍ଦୋଷ ବୋଲି ସାବ୍ୟସ୍ତ ହେଉଥିଲା । ]

**ଧର୍ମ ମାତା**—ସ. ବି. ସ୍ତ୍ରୀ. ( ଧର୍ମ+ମାତୃ; ୧ମା. ୧ବ )—
Dharma mātā ଧର୍ମତଃ ଆପଣା ମାତୃସ୍ଥାନୀୟା ସ୍ତ୍ରୀ—
A woman who stands in the relation of a mother to a person.
[ ଦ୍ର—ଶାଶୂ, ଗୁରୁପତ୍ନୀ, ବ୍ରାହ୍ମଣୀ, ରାଜପତ୍ନୀ, ଗାଈ, ଧାତ୍ରୀ ଓ ବସୁମତୀ ଏମାନେ ଧର୍ମତଃ ମାତୃସ୍ଥାନୀୟା ଅଟନ୍ତି । ]

**ଧର୍ମ ମାର୍ଗ**—ସ. ବି. ( ୬ଷ୍ଠୀ ତତ୍; ଧର୍ମ+ମାର୍ଗ )—
Dharma mārga ସୁମାର୍ଗ; ଧର୍ମ ପଥ—
The path of virtue.

**ଧର୍ମ ମୂଳ**—ସ. ବି. ( ଧର୍ମ+ମୂଳ; ୬ଷ୍ଠୀ ତତ୍ )—
Dharma mūla ଧର୍ମର ହେତୁ—The essence of religion; the basis of religion.

ସ. ବିଣ ( ଧର୍ମ+ମୂଳ; ବହୁବ୍ରୀହି )—
ଯେଉଁ କାର୍ଯ୍ୟର ମୂଳରେ ଧର୍ମ ନିହିତ ଅଛି—
(ଧର୍ମମୂଳକ—ଅନ୍ୟରୂପ) Based on religion or righteousness.

**ଧର୍ମ ମେଘ**—ସ. ବି—ଯୋଗରେ ଅସମ୍ପ୍ରଜ୍ଞାତ ସମାଧିର ଅନ୍ତର୍ଗତ ଏକ
Dharma medha ସମାଧି, ଯହିଁରେ ବୈରାଗ୍ୟର ଅଭ୍ୟାସଯୋଗୁଁ ସାଧକର ଚିତ୍ତ ସବୁ ବୃତ୍ତିରୁ ରହିତ ହୋଇଯାଏ—
Complete withdrawal of the mind from all outside matters during Joga exercise.

**ଧର୍ମ ଯାଜକ**—ସ. ବି. ( ଧର୍ମ+ଯାଜକ )—
Dharma jājaka ୧ । ପୁରୋହିତ—1. Priest.
୨ । ପାଦ୍ରୀ—2. Parson.

**ଧର୍ମ ଯୁଗ**—ସ. ବି ( ଧର୍ମ+ଯୁଗ; ମ ପ. ଲୋ; ଧର୍ମପ୍ରଧାନ ଯୁଗ)—
Dharma juga ୧ । ସତ୍ୟଯୁଗ—1. The Golden age of the earth according to the Hindus.
୨ । ଧର୍ମପ୍ରଧାନ ଯୁଗ; ଯେଉଁ ଯୁଗରେ ଦେଶରେ ଧର୍ମାଲୋଚନା ବିଶେଷ ଭାବରେ ହୁଏ ଓ ବହୁ ଧାର୍ମିକ ଓ ଧର୍ମସଂସ୍କାରକ ବ୍ୟକ୍ତି ଜନ୍ମ ହୁଅନ୍ତି—
2. An era when religion preponderates in the country and religiously minded persons and religious reformers are born.

**ଧର୍ମ ଯୁଦ୍ଧ**—ସ. ବି. ( ମ. ପ. ଲୋ, ଧର୍ମ+ଯୁଦ୍ଧ)—
Dharma juddha ୧ । ଯେଉଁ ଯୁଦ୍ଧରେ ଯୋଦ୍ଧାମାନେ ବିପକ୍ଷ ପ୍ରତି ଅଧର୍ମ ବା ଅନ୍ୟାୟ ଆଚରଣ କରନ୍ତି ନାହିଁ ଓ ଧର୍ମାନୁମୋଦିତ ନିୟମମାନ ପାଳନ କରନ୍ତି—
1. A war carried on with strict principles of morality.
୨ । ଧର୍ମ ରକ୍ଷା ପାଇଁ କରାଯିବା ଯୁଦ୍ଧ—
2. Crusade; war carried on for preservation of one's religion.

**ଧର୍ମ ରକ୍ଷକ**—ସ. ବି. ( ୬ଷ୍ଠୀ ତତ୍; ଧର୍ମ+ରକ୍ଷକ )—
Dharma rakshaka ୧ । ଯେ ସ୍ୱଧର୍ମକୁ ରକ୍ଷା କରେ—
1. The preserver of one's religion.
୨ । ରାଜା—2. The King, the defender of the faith.
୩ । ଜିନ; ଜୈନ ସାଧୁ ( ହି. ଶବ୍ଦସାଗର )—
3. A Jaina saint.

**ଧର୍ମ ରକ୍ଷା**—ସ. ବି. ( ଧର୍ମ+ରକ୍ଷା; ୬ଷ୍ଠୀ ତତ୍)—
Dharma rakshā ୧ । ଧର୍ମ ପାଳନ—1. Observance of religion; following the path of religion.
୨ । ସ୍ତ୍ରୀର ସତୀତ୍ୱ ରକ୍ଷା—
2. Protection of the chastity of a woman.
୩ । ସ୍ୱଧର୍ମର ପ୍ରତିଷ୍ଠାକୁ ରକ୍ଷା କରିବା—
3. Defence of one's religion.

**ଧର୍ମରକ୍ଷିତ**—ସଂ. ବି. (ନାମ)—ଯୋଗ (ଯବନ) ଦେଶୀୟ ଏକ ବୌଦ୍ଧ ଧର୍ମୋପଦେଶକ, ଯାହାଙ୍କୁ ମହାରାଜ ଅଶୋକ ଅପରାନ୍ତକ (ବେଲୁଚ ସ୍ଥାନ) ଅଞ୍ଚଳକୁ ବୌଦ୍ଧ ଧର୍ମ ପ୍ରଚାରାର୍ଥ ପଠାଇଥିଲେ ( ହି. ଶବ୍ଦସାଗର )—
Dharmarakshita Name of a Buddhist preacher who was sent by King Aśoka to preach the tenets of Buddhism in Beluchistan area.

**ଧର୍ମରାଜ**—ସଂ. ବି. ( ଧର୍ମ + ରାଜନ୍; ୬ଷ୍ଠୀ ତତ୍ )—
Dharmarāja ୧ । ଯମ—1. Jama, the God of death
୨ । ସମ୍ରାଟ; ରାଜା—
2 King ( the defender of the faith ).
[ ଦ୍ର—ହିନ୍ଦୁମାନଙ୍କ ମତରେ ଦେଶର ରାଜା ଧର୍ମର ବା ଈଶ୍ୱରଙ୍କର ଅବତାର ଅଟନ୍ତି, ଅତଏବ ରାଜା ଈଶ୍ୱରଙ୍କ ପରି ପୂଜ୍ୟ । ଇଂଲଣ୍ଡରେ ମଧ୍ୟ ରାଜା ଧର୍ମରକ୍ଷକ (Defender of the faith) ଅଟନ୍ତି । ],
୩ । ( ଧର୍ମପାଳନକାରୀ ) ଯୁଧିଷ୍ଠିର—
3. Judhishṭhira.
୪ । ବୁଦ୍ଧ—4. The Buddha

**ଧର୍ମରାଜନ**—ଦେ. ବି. (ସଂ. ଧର୍ମରାଜ)— ଧର୍ମରାଜ ( ଦେଖ )
Dharmarājana Dharmarāja ( See)
**ଧର୍ମରାଯ** ଭରତବଂଶେ ଜଣି ଜନ୍ମବାଗ୍ନକଙ୍କୁ
ଯେ ଅଣି ଦେଲେ ତୋଷ ଧର୍ମରାଜନଙ୍କ ।
କୃଷ୍ଣସିଂହ. ମହାଭାରତ ବନ ।

**ଧର୍ମରାଜା**—ଦେ. ବି. (ସଂ. ଧର୍ମରାଜ)—ଧର୍ମରାଜ (ଦେଖ)
Dharmarājā Dharmarāja (See)
ଧର୍ମରାଜାର ଅଜ୍ଞାମାନ
କପାଇଁ କରୁଛ ଲଙ୍ଘନ । ଜଗନ୍ନାଥ. ଭାଗବତ ।

**ଧର୍ମଲକ୍ଷଣ**—ସଂ. ବି. (ଧର୍ମ+ଲକ୍ଷଣ; ୬ଷ୍ଠୀ ତତ୍ )—
Dharm lakshaṇa ହିନ୍ଦୁଶାସ୍ତ୍ର ବର୍ଣ୍ଣିତ ଧର୍ମର ଦଶ ବିଧ ଚିହ୍ନ—
Ten moral qualities; the 10 signs of a religious or pious man (as enumerated in the Hindu scriptures.
[ ଦ୍ର—ଧୃତି, କ୍ଷମା, ଦମ, ଶୌଚ, ଅସ୍ତେୟ, ଇନ୍ଦ୍ରିୟ ନିଗ୍ରହ, ଧୀ, ବିଦ୍ୟା, ସତ୍ୟ, ଅକ୍ରୋଧ ଏମାନ ଧର୍ମଲକ୍ଷଣ ଅଟେ-ସ୍ମୃତିକାରନ୍ତି । ]

**ଧର୍ମଲୋପ**—ସଂ. ବି. (ଧର୍ମ+ଲୋପ, ୬ଷ୍ଠୀ ତତ୍ )—
Dharma'lopa ୧ । ଧର୍ମର ଅସ୍ତିତ୍ୱ ବିନାଶ; ଧର୍ମ ବୁଡ଼ିଯିବା—
1. Irreligion; disappearance of religion from the country.
୨ । ଧର୍ମନାଶ; ଧର୍ମାନୁମୋଦିତ କର୍ତ୍ତବ୍ୟ କର୍ମର ଲଙ୍ଘନ—
2. Violation of a moral or religious duty

**ଧର୍ମଶଙ୍କା**—ଦେ. ବିଣ. (ସଂ. ଧର୍ମ+ଶଙ୍କା)—ଧର୍ମବିଷୟରେ ସଂଶୟଯୁକ୍ତ;
Dharma śaṅkā ଯେ ଧର୍ମବିଷୟରେ ସନ୍ଦେହ କରେ—
Doubtful about the questions affecting religion.
ଧର୍ମଶଙ୍କା ଦେଇ ଶାସ୍ତ୍ରର ଯୋଗ ଜନ୍ମ
ବୃଥାର ଗୋ ଦ୍ରୌପଦୀ ନାରୀଙ୍କ ଉତ୍ତମ । କୃଷ୍ଣସିଂହ. ମହାଭାରତ ବନ ।

**ଧର୍ମଶାଳା**—ସଂ. ବି. (ଧର୍ମ+ଶାଳା; ୬ଷ୍ଠୀ ତତ୍ )—
Dharma'śālā ୧ । ଅତିଥିଶାଳା; ପାନ୍ଥଶାଳା—
(ଧର୍ମଶାଳା—ଅନ୍ୟରୂପ) 1. A place for accomodating pilgrims and wayfarers.
୨ । ଧର୍ମାଧିକରଣ, ବିଚାରାଳୟ—
2. Court of justice; tribunal.
୩ । ଦାତବ୍ୟ ଚିକିତ୍ସାଳୟ ବା ଔଷଧାଳୟ—
3. A charitable hospital or dispensary.
୪ । ଛତ୍ର, ଛତର —4 Alms-house.
୫ । ଯେଉଁଠାରେ କ୍ଷୁଧାର୍ତ୍ତଙ୍କୁ ଅନ୍ନ ଓ ନିରାଶ୍ରୟଙ୍କୁ ଆଶ୍ରୟ ଦିଆଯାଏ—5. A place of free distribution of food and help to the needy.
[ ଦ୍ର—ବର୍ତ୍ତମାନ ଭାରତର ତୀର୍ଥମାନଙ୍କରେ ଶେଠମାନେ ଯାତ୍ରୀମାନଙ୍କୁ ବିନା ଭଡ଼ାରେ ଆଶ୍ରୟ ଦେବା ନିମନ୍ତେ ନିର୍ମାଣ କରିଥିବା ଗୃହମାନଙ୍କୁ ଧର୍ମଶାଳା ବୋଲାଯାଏ । ]

**ଧର୍ମଶାସନ**—ସଂ. (ଧର୍ମ+ଶାସନ; ୬ଷ୍ଠୀ ତତ୍)—
Dharma śāsana ୧ । ଧର୍ମର ଅନୁଶାସନ ବା ଆଦେଶ—
1. Religious commandment or precept.
୨ । ଧର୍ମାନୁସାରେ ଚାଳିତ ରାଜ୍ୟଶାସନ—2. An administration conducted on principles of equity and justice.
୩ । ଧର୍ମଶାସ୍ତ୍ର—3. Religious books; scripture.

**ଧର୍ମଶାସ୍ତ୍ର**—ସଂ. ବି. (ଧର୍ମ+ଶାସ୍ତ୍ର; ମ ପ. ଲୋ )—୧ । ଧର୍ମ ବିଷୟକ
Dharma śāstra ଶାସ୍ତ୍ର (ଯଥା—ହିନ୍ଦୁମାନଙ୍କ ବେଦ, ଖ୍ରୀଷ୍ଟାନମାନଙ୍କ ବାଇବଲ, ମୁସଲମାନଙ୍କ କୋରାନ୍ )—
1 The scriptures.
୨ । ସ୍ମୃତିଶାସ୍ତ୍ର; ଯହିଁରେ କୌଣସି ଧର୍ମାବଲମ୍ବୀ ବ୍ୟକ୍ତିମାନଙ୍କ ଆଚାର ବ୍ୟବହାର ଓ କର୍ତ୍ତବ୍ୟାଦି ଲିପିବଦ୍ଧ ହୋଇଥାଏ—
2. The jurisprudence or code of law.
[ ଦ୍ର—ମନୁ, ଅତ୍ରି, ବିଷ୍ଣୁ, ହାରୀତ, ଯାଜ୍ଞବଲ୍କ୍ୟ, ଉଶନା, ଅଙ୍ଗିରା, ଯମ, ଆପସ୍ତମ୍ବ, ସମ୍ବର୍ତ୍ତ, କାତ୍ୟାୟନ, ବୃହସ୍ପତି, ପରାଶର, ବ୍ୟାସ, ଶଙ୍ଖ, ଲିଖିତ, ଦକ୍ଷ, ଗୌତମ, ବଶିଷ୍ଠ, ଶାତାତପ ଓ ନାରଦ, ଏହି ମୁନିମାନଙ୍କ ପ୍ରଣୀତ ସାମାଜିକ ଓ ଅନୁଶାସନମୂଳକ ଗ୍ରନ୍ଥମାନଙ୍କୁ ଧର୍ମଶାସ୍ତ୍ର ବୋଲାଯାଏ । ]
୩ । ପୁରାଣାଦି ଶାସ୍ତ୍ର—3. Mythology.
୪ । ବେଦାନ୍ତ ଦର୍ଶନାଦି—
4. The philosophy of religion.

**ଧର୍ମଶାସ୍ତ୍ରୀ**—ସଂ. ବିଣ. ପୁଂ. (ଧର୍ମଶାସ୍ତ୍ର+ଇନ୍; ୧ମା. ୧ବ)—
Dharmaśāstri ୧ । ଧର୍ମଶାସ୍ତ୍ର ବିଷୟରେ ବିଜ୍ଞ—
1. Versed in the scriptures.
୨ । ଧର୍ମଶାସ୍ତ୍ର ସମ୍ବନ୍ଧେ ବ୍ୟବସ୍ଥା ଦାତା—
2. Issuing prescriptions or mandates according to the dictates of the scriptures.

**ଧର୍ମଶିକ୍ଷା**—ସଂ. ବି (ଧର୍ମ+ଶିକ୍ଷା)—ଧର୍ମବିଷୟକ ଶିକ୍ଷା—
Dharma sikshā Teaching of the doctrines of religion; religious instruction.

**ଧର୍ମଶୀଳ**—ସ. ବିଣ. ପୁଂ (ଧର୍ମ+ଶୀଳ; ବହୁବ୍ରୀହି)—୧ । ଧାର୍ମିକ—
Dharmasila 1. Religious; pious.
(ଧର୍ମଶୀଳା—ସ୍ତ୍ରୀ) ୨ । ନ୍ୟାୟପର—2. Righteous; just
(ଧର୍ମଶୀଳତା—ବି)

**ଧର୍ମ ସଂହିତା**—ସଂ. ବି. ସ୍ତ୍ରୀ ( ଧର୍ମ+ସଂହିତା; ମ. ପ. ଲୋ )—
Dharma samhitā ୧ । ଯେଉଁ ଶାସ୍ତ୍ରରେ ସାଂସାରିକ ଓ ପାରଲୌକିକ ସମସ୍ତ ବିଷୟର ମୀମାଂସା ଥାଏ; ଧର୍ମପୁସ୍ତକ; ସ୍ମୃତିଶାସ୍ତ୍ର—1. A religious code or collection of duties enjoined by religion
[ ଦ୍ର—ମନୁସଂହିତା, ଅତ୍ରିସଂହିତା, ପରାଶରସଂହିତା ପ୍ରଭୃତି ଗ୍ରନ୍ଥକୁ 'ଧର୍ମସଂହିତା' ବୋଲାଯାଏ । ]
୨ । ଧର୍ମ ସମ୍ବନ୍ଧୀୟ ଗ୍ରନ୍ଥ—
2. A book dealing with spiritual subjects.

**ଧର୍ମ ସଙ୍କର**—ସଂ.ବି (୬ଷ୍ଠୀ ତତ୍; ଧର୍ମ+ସଙ୍କର)—୧ । ପରସ୍ପର ବିରୁଦ୍ଧ
Dharma sankara ଧର୍ମମାନଙ୍କର ସମ୍ମିଶ୍ରଣ—1 Confusion or mixture of different laws.
୨ । ବିଭିନ୍ନ ଧର୍ମମତ ବା ଆଇନ କାନୁନ୍‌ମାନଙ୍କ ମଧ୍ୟରେ ବିରୋଧ—
2. Conflict of laws.

**ଧର୍ମ ସଙ୍ଗତ**—ସଂ. ବି (ଧର୍ମ+ସଙ୍ଗତ)—୧ । ଧର୍ମାନୁମୋଦିତ—
Dharma sangata 1. Approved by the dictates of religion; pious.
(ଧର୍ମସମ୍ମତ—ଅନ୍ୟରୂପ)
୨ । ନ୍ୟାୟାନୁମୋଦିତ; ଆଇନ୍ ସଙ୍ଗତ—
2. According to justice; lawful; legal.

**ଧର୍ମ ସଭା**—ସଂ. ବି (ଧର୍ମ+ସଭା; ମ. ପ ଲୋ; )—୧ । ଧର୍ମାଲୋଚନା
Dharma sabhā ନିମନ୍ତେ ପ୍ରତିଷ୍ଠିତ ସଭା—1 Religious meeting or conference; a congress of religion.
୨ । ଧର୍ମାଧିକରଣ; ବିଚାରାଳୟ—
2. Court of justice; legal tribunal.
୩ । ଧର୍ମରକ୍ଷା ନିମନ୍ତେ ଆହୂତ ସଭା—3. A congregation convened for the protection of religion.

**ଧର୍ମ ସହିବା**—ଦେ. ବି—କୌଣସି ବ୍ୟକ୍ତିର କ୍ରିୟାକଳାପର ଧର୍ମଦେବତା
Dharma sahibā ବା ଈଶ୍ୱରଙ୍କଦ୍ୱାରା ଅନୁମୋଦନ—The approval of one's actions by God.
ଧର୍ମସହା
**ଧରମ ସହନା** ଧ୍ୱଂସୀ ହୋଇଲେ ତ ହେବ,
ଏ ଉଦ୍ୟ ଧର୍ମ କି ସହିବ ? ଭୂପତି ପ୍ରେମପଞ୍ଚାମୃତ ।

[ ଦ୍ର—ଲୋକେ ବିଶ୍ୱାସ କରନ୍ତି ଯେ ଅତି ଅନ୍ୟାୟ ହେଲେ ଧର୍ମ ସହେ ନାହିଁ; ଅର୍ଥାତ୍ ଧର୍ମଦେବତା ଅଧର୍ମାଚାରୀ ବ୍ୟକ୍ତିକୁ ଇହକାଳରେ ଦାରିଦ୍ର୍ୟ, ମୃତ୍ୟୁ, ପୁତ୍ରନାଶ ଓ ରୋଗାଦି ଦଣ୍ଡ ଦିଅନ୍ତି । ]

**ଧର୍ମ ସାଧନ**—ସଂ. ବି (୬ଷ୍ଠୀ ତତ୍; ଧର୍ମ+ସାଧନ)—ଧର୍ମାଚରଣ—
Dharma sādhana Practising of piety; practice of virtue.

**ଧର୍ମ ସାବର୍ଣ୍ଣି**—ସଂ. ବି. ପୁଂ —ଏକାଦଶ ମନୁ—
Dharma sābarnni The 11th descendant of Manu.
ଧର୍ମ ସାବର୍ଣ୍ଣି ମନୁ ହୋଇ, ପାଳିବେ ଏକାଦଶେ ମହୀ—ଜଗନ୍ନାଥ. ଭାଗବତ ।

**ଧର୍ମ ସୁତ**—ସଂ. ବି (୬ଷ୍ଠୀ ତତ୍; ଧର୍ମ+ସୁତ)—ଧର୍ମପୁତ୍ର (ଦେଖ )
Dharma suta Dharma putra (See)

**ଧର୍ମ ସୂତ୍ର**—ସଂ. ବି—ଜୈମିନି ପ୍ରଣୀତ ଧର୍ମକର୍ତ୍ତବ୍ୟସୂଚକ ଗ୍ରନ୍ଥବିଶେଷ—
Dharma sūtra A code or instute of law compilled by Jaimini.

**ଧର୍ମହଟ**—ଦେ. ବି—ଧର୍ମଘଟ ( ଦେଖ )
Dharmahata Dharmaghata (See)

**ଧର୍ମ ହାନି**—ସଂ. ବି (୬ଷ୍ଠୀ ତତ୍; ଧର୍ମ+ହାନି)—ଧର୍ମଲୋପ—
Dharma hāni Prejudice to religion; violation of religious duty.

**ଧର୍ମ ହୀନ**—ସଂ. ବିଣ. ପୁଂ (୩ୟା ତତ୍; ଧର୍ମ+ହୀନ)—୧ । ଅଧାର୍ମିକ—
Dharma hina 1. Irreligious; god-less.
(ଧର୍ମହୀନା ସ୍ତ୍ରୀ) ୨ । ପୁଣ୍ୟରହିତ—
(ଧର୍ମହୀନତା—ବି) 2. Devoid of virtue.

**ଧର୍ମାଙ୍ଗ**—ସ. ବି. (ବହୁବ୍ରୀହି, ଧର୍ମ+ଅଙ୍ଗ; ଯାହାର ଅଙ୍ଗ ଧର୍ମ ପରି ଶୁକ୍ଳ)
Dharmānga ବଗ; ବକ ପକ୍ଷୀ (ହି. ଶ )—
Ardea Nivea (bird).

**ଧର୍ମାଚରଣ**—ସ. ବି. (୬ଷ୍ଠୀ ତତ୍; ଧର୍ମ+ଆଚରଣ)—ଧର୍ମଚର୍ଯ୍ୟା;
Dharmācharana ଧର୍ମାନୁଷ୍ଠାନ—The practice of piety

**ଧର୍ମାଚାର୍ଯ୍ୟ**—ସ. ବି. (ଧର୍ମ+ଆଚାର୍ଯ୍ୟ)— ୧ । ଧର୍ମୋପଦେଶକ; ଧର୍ମଗୁରୁ
Dharmāchārjya 1. Religious preceptor.
୨ । ଋଗ୍‌ବେଦୀୟମାନଙ୍କର ତର୍ପଣୀୟ ପୁରୁଷ (ଋଷି) ବିଶେଷ—
2. A sage to whom oblations of water is offered by the followers of the Rug-beda.
୩ । କୌଣସି ଧର୍ମମତର ପ୍ରବର୍ତ୍ତକ—3. The founder of a certain religious tenet.
୪ । କୌଣସି ଧର୍ମ ମତର ପ୍ରଚାରକ—
4. A religious missionary.

**ଧର୍ମାତ୍ମା**—ସ. ବିଣ. (ବହୁବ୍ରୀହି ଧର୍ମ+ଆତ୍ମନ୍; ୧ମା. ୧ବ.)—ଧାର୍ମିକ;
Dharmātmā ପୁଣ୍ୟାତ୍ମା; ଧର୍ମ ପ୍ରାଣ—Religious; virtuous; pious.

**ଧର୍ମାଧର୍ମ**—ସଂ. ବି. (ଧର୍ମ+ଅଧର୍ମ; ଦ୍ୱନ୍ଦ୍ୱ)—୧ । ଧର୍ମ ଓ ଅଧର୍ମ—
Dharmādharma 1. Virtue and vice.
୨ । ନ୍ୟାୟ ଓ ଅନ୍ୟାୟ—2. Justice and injustice.
୩ । ପୁଣ୍ୟ ଓ ପାପ—3. Peity and sin.
୪ । ସତ୍‌କର୍ମ ଓ ଅସତ୍ କର୍ମ—4 Good and evil acts.

**ଧର୍ମାଧିକରଣ**—ସଂ. ବି. (ଧର୍ମ+ଅଧିକରଣ=ଆଧାର, ୬ଷ୍ଠୀ ତତ୍)—
Dharmādhikaraṇa ୧ । ଅଦାଲତ; ବିଚାରାଳୟ—
1. Court of justice
୨ । (ଧର୍ମ+ଅଧି+କୃ ଧାତୁ+କର୍ମ. ଅନ) ବିଚାରକ, ଜଜ୍—
2. Judge
ବିଣ.—(ବହୁବ୍ରୀହି) ଧର୍ମଶାସ୍ତ୍ରଜ୍ଞ—Versed in the scriptures.

**ଧର୍ମାଧିକରଣିକ**—ସଂ. ବି. ପୁଂ—(ଧର୍ମ+ଅଧିକରଣିକ)—ବିଚାରକ—
Dharmādhikaraṇika A judge.

**ଧର୍ମାଧିକାର**—ସଂ. ବି (୬ଷ୍ଠୀ ତତ୍, ଧର୍ମ+ଅଧିକାର)—୧ । ଧର୍ମାଧର୍ମ ବିଚାର
Dharmādhikāra କରିବାର କ୍ଷମତା—1. The power of discriminating between right and wrong.
୨ । ଆଇନ ସମ୍ବନ୍ଧେ ବିଚାରଣା—
2. Administration of justice.
୩ । ବିଚାରକଙ୍କ ପଦ—3. The office of a judge.

**ଧର୍ମାଧିକାରୀ**—ସଂ. ବି. (ଧର୍ମାଧିକାରିନ୍; ଧର୍ମାଧିକାର+ଅସ୍ତ୍ୟର୍ଥେ ଇନ୍ ୧ମା
Dharmādhikārī ୧ବ; କିମ୍ବା ଧର୍ମ+ଅଧିକାରୀ; ୬ଷ୍ଠୀ ତତ୍)—
(ଧର୍ମାଧିକାରିଣୀ—ସ୍ତ୍ରୀ) ୧ । ବିଚାରପତି - 1. Judge.
୨ । ଦାନାଧ୍ୟକ୍ଷ; ରାଜା ବା ଦାତାଙ୍କର ଦାନାର୍ଥ ଉତ୍ସର୍ଗୀକୃତ ଧନକୁ ବା ବସ୍ତୁକୁ ପାତ୍ରାପାତ୍ର ବିଚାରପୂର୍ବକ ବାଣ୍ଟିବା ପାଇଁ ଯେଉଁ ବ୍ୟକ୍ତିଙ୍କ ଉପରେ ଭାର ଦିଆଯାଇ ଥାଏ—
2. A person entrusted with the duty of distributing gifts amongst deserving persons

**ଧର୍ମାଧ୍ୟକ୍ଷ**—ସଂ. ବି. ପୁଂ (ଧର୍ମ+ଅଧ୍ୟକ୍ଷ, ୬ଷ୍ଠୀ ତତ୍)—
Dharmādhyaksha ୧ । ବିଚାରପତି—1. Judge.
୨ । ଧର୍ମ ଗୁରୁ—2 Spiritual guide.
୩ । ପ୍ରଧାନ ବିଚାରପତି; ପ୍ରାଡ୍ ବିବେକ—
3. Chief Justice
୪ । ବିଷ୍ଣୁ—4 Bishṇu.
୫ । ଶିବ (ହି. ଶ)—5 Śiba.

**ଧର୍ମାନୁଗତ**—ସଂ. ବିଣ. (୬ଷ୍ଠୀ ତତ୍; ଧର୍ମ+ଅନୁଗତ)—
Dharmānugata ୧ । ଧର୍ମ ସଙ୍ଗତ—
(ଧର୍ମାନୁଗତା—ସ୍ତ୍ରୀ) 1. Just; righteous.
ଧର୍ମାନୁଯାୟୀ, ଧର୍ମାନୁମତ } ଅନ୍ୟରୂପ ୨ । ପୁଂ . ଧର୍ମାବଲମ୍ବୀ—
2. Following piety.

**ଧର୍ମାନୁଷ୍ଠାନ**—ସଂ ବି. (୬ଷ୍ଠୀ ତତ୍; ଧର୍ମ+ଅନୁଷ୍ଠାନ)—୧ । ଧର୍ମକାର୍ଯ୍ୟ
Dharmānushṭhāna 1. Religious practice.
୨ । ଧର୍ମାଚରଣ—2. Practising of peity.
୩ । ଯେଉଁ ସ୍ଥାନରେ ଧର୍ମକାର୍ଯ୍ୟ କରାଯାଏ—
3. A religious institution or establishment.

**ଧର୍ମାନ୍ତର**—ସଂ ବି. (ଅନ୍ୟ+ଧର୍ମ; ଅନ୍ୟ ସ୍ଥାନରେ ଅନ୍ତର; କର୍ମଧା,
Dharmāntara ଅନ୍ୟ ଧର୍ମ—Another faith or religion.

**ଧର୍ମାବତାର**—ସଂ. ବି. (ଧର୍ମ+ଅବତାର; ୬ଷ୍ଠୀ ତତ୍)—୧ । ମୂର୍ତ୍ତିମାନ୍
Dharmābatāra ଧର୍ମ ଦେବତା, ସାକ୍ଷାତ୍ ଈଶ୍ୱର—
2. God Himself.
୨ । ମୂର୍ତ୍ତିଧାରୀ ନ୍ୟାୟ—
2. Justice personified.
୩ । ନ୍ୟାୟ ବିଚାରକ, ନ୍ୟାୟାଧୀଶ, ଧର୍ମାଧିକାରୀ—
3. Judge; court of justice
୪ । ଯୁଧିଷ୍ଠିର—4. A name of Judhishṭhira.
धर्मावतार ଦେ ଅ. ( ହ ଭୈ । ଧର୍ମାବତାର )—( ରାଜା,
**धर्मावतार** ବିଚାରପତି ଓ ପ୍ରଭୁ ଆଦିଙ୍କ ସମ୍ବୋଧନ ) ହେ ମୂର୍ତ୍ତିମାନ୍ ଧର୍ମ । ହଜୁର—( interjection used in addressing a court or king or one's master) Your Honour ! Your Worship ! Your Lordship ! My Lord ! Your Highness !.

**ଧର୍ମାଭାସ**—ସଂ. ବି. ( ୬ଷ୍ଠୀ ତତ୍, ଧର୍ମ+ଆଭାସ )—
Dharmābhāsa ୧ । ଅପ୍ରକୃତ ଧର୍ମ; ଅପ୍ରକୃଷ୍ଟ ଧର୍ମ; ଯାହା ପ୍ରକୃତ ଧର୍ମ ନୁହେଁ, କିନ୍ତୁ ଧର୍ମର ଛାୟାମାତ୍ର—
1. Semblance of justice or religion; false faith.
୨ । ଶ୍ରୁତି ସ୍ମୃତି ଭିନ୍ନ ଧର୍ମଶାସ୍ତ୍ର—
2 Miscellaneous religious books except the Bedas and the Smṛutis

**ଧର୍ମାରଣ୍ୟ**—ସଂ. ବି. ( ଧର୍ମ+ଅରଣ୍ୟ )—୧ । ତୀର୍ଥରୂପେ ଗଣିତ
Dharmāraṇya ଅରଣ୍ୟ—1. A forest considered as a place of pilgrimage.
ଯେ ଧର୍ମାରଣ୍ୟେ ଧର୍ମ କରେ ଯେ ପାପଚିତ୍ତି
ତାହା ଦେହରେ ଘୋଟି ନ ପାରଇ ଆ—କୃଷ୍ଣ ହ. ମହାଭାରତ ବନ ।
୨ । ପଞ୍ଚାଳ ଓ ଉତ୍ତର କୋଶଳ ମଧ୍ୟବର୍ତ୍ତୀ ହିମାଳୟ ପାଦମୂଳସ୍ଥ ଅରଣ୍ୟ ଓ ଅମୂର୍ତ୍ତି ରଜା କର୍ତ୍ତୃକ ସ୍ଥାପିତ ନଗର ( ପ୍ରାଚୀନ ଭୂଗୋଳମତେ ପ୍ରାଗଜ୍ୟୋତିଷପୁର ) ( କ୍ଷାନେନ୍ଦ୍ର - ପରିଶିଷ୍ଟ )—2 Name of a forest and town of ancient India.
[ ଦ୍ରୁ—ଚନ୍ଦ୍ର ଗୁରୁପତ୍ନୀ ତାରାଙ୍କୁ ହରଣ କରିବାରୁ ଧର୍ମ ପ୍ରପୀଡ଼ିତ ହୋଇ ଗହନବନରେ ପ୍ରବେଶ କଲେ । ସେହି ସମୟରେ ବ୍ରହ୍ମା କହିଲେ—ଧର୍ମ ! ତୁମେ ଏହି ବନରେ ପ୍ରବେଶ କରିବାରୁ ଏହା ଧର୍ମାରଣ୍ୟ ନାମରେ ବିଖ୍ୟାତ ହେବ—ବହ୍ନିପୁରାଣ । ]
୩ । ଗୟାସ୍ଥ ତୀର୍ଥ ବିଶେଷ—
3. A sacred place at Gayā.
୪ । ( ଆସାମର ) କାମରୂପସ୍ଥ ନଗରବିଶେଷ—
4. A city at Kāmarūpa in Assam.

**ଧର୍ମାର୍ଥ**—ସଂ. ବି (ଧର୍ମ+ଅର୍ଥ; ଦ୍ୱନ୍ଦ୍ୱ)—ଧର୍ମ ଓ ଅର୍ଥ; ଚତୁର୍ବର୍ଗ ମଧ୍ୟରୁ
Dharmārtha ଦୁଇଟି—Religion and wealth (two of the four most desirable objects of human life).

ସଂ ବଣ ( ଧର୍ମ+ଅର୍ଥ; ବହୁବ୍ରୀହି)—୧। ଧର୍ମପାଇଁ ପ୍ରୟୋଜନୀୟ—1. Necessary for religion

୨। ଧର୍ମମୟ—2. Righteous.

୩। ଧର୍ମସାଧନ ଯହିଁର ଉଦ୍ଦେଶ୍ୟ ଅଟେ—

3. Pious; having religion as its aim

୪। ପରୋପକାରାର୍ଥ କୃତ ( ଦାନାଦି )—

4. (gift) Done with the sole view of benefitting others.

ଧର୍ମାର୍ଥ ଦେ. କ୍ରି. ବଣ—ଧର୍ମ ନିମନ୍ତେ; ପୁଣ୍ୟ ଉଦ୍ଦେଶ୍ୟରେ—

**ଧର୍ମାର୍ଥ** For the sake of religion.

ଦେ. ବି—୧। ଧର୍ମକାର୍ଯ୍ୟ—

1 Religious act, act of piety.

୨। ଖଇରାତ୍, ଦୟାଯୁକ୍ତ କର୍ମ—

2. Charity; charitable act.

**ଧର୍ମାର୍ଥକାମମୋକ୍ଷ**—ସ. ବି (ଧର୍ମ+ଅର୍ଥ+କାମ+ମୋକ୍ଷ; ଦ୍ୱନ୍ଦ୍ୱ)—
Dharmārthakāmamoksha ମନୁଷ୍ୟ ଜୀବନର ଚତୁର୍ବର୍ଗ ବା ସାଧନ ଚତୁଷ୍ଟୟ—The four desirable worldly objects, viz religion, wealth, desire and salvation.

**ଧର୍ମାସନ**—ସ. ବି ( ଧର୍ମ+ଆସନ; ୬ଷ୍ଠୀ ତତ୍ )—
Dharmāsana ୧। ବିଚାରାସନ; ଇଜଲାସ୍—

1. Judgment seat; the Bench.

୨। ବିଚାରକଙ୍କ ପଦ—

2. The position of a judge.

**ଧର୍ମିଣୀ**—ସ. ବଣ. ସ୍ତ୍ରୀ (ଧର୍ମିନ+ସ୍ତ୍ରୀ. ଈ)—ଧର୍ମୀର ସ୍ତ୍ରୀଲିଙ୍ଗ—
Dharmiṇī Feminine of Dharmī.

ସ. ବି. ସ୍ତ୍ରୀ—୧। ପତ୍ନୀ; ବିବାହିତା ଭାର୍ଯ୍ୟା—

1. One's married wife.

୨। ରେଣୁକା; ଗନ୍ଧଦ୍ରବ୍ୟବିଶେଷ—

2. A kind of medicinal scent.

**ଧର୍ମିଷ୍ଟ**—ଗ୍ରା. ବଣ. ପୁଂ. ଓ ସ୍ତ୍ରୀ (ସ. ଧର୍ମିଷ୍ଠ)—ଧର୍ମିଷ୍ଠ (ଦେଖ)
Dharmishṭa Dharmishṭha (See)
(ଧର୍ମିଷ୍ଟା—ସ୍ତ୍ରୀ)

**ଧର୍ମିଷ୍ଠ**—ସ. ବଣ. ପୁଂ ( ଧର୍ମ+ଇଷ୍ଠ, ଅତି ଅର୍ଥରେ )—
Dharmishṭha ଅତି ଧାର୍ମିକ; ଧର୍ମନିରତ—
(ଧର୍ମୀୟାନ୍—ଅନ୍ୟରୂପ) Very pious, devoted to virtue
(ଧର୍ମିଷ୍ଠତା, ଧର୍ମୀୟସ୍ତ୍ୱ, ଧର୍ମୀୟସ୍ତା—ବି) or piety.

ସ. ବି—ବିଷ୍ଣୁଙ୍କର ନାମ—A name of Bishṇu.
(ଧର୍ମିଷ୍ଠା, ଧର୍ମୀୟସୀ—ସ୍ତ୍ରୀ)

**ଧର୍ମୀ**—ସ. ବଣ (ଧର୍ମ+ଅସ୍ତ୍ୟର୍ଥେ. ଇନ୍; ଧର୍ମିନ୍; ୧ମା. ୧ବ )—
Dharmī ୧। ଧାର୍ମିକ; ପୁଣ୍ୟାତ୍ମା—

1. Religious; pious.

୨। ଧର୍ମଯୁକ୍ତ—2. Connected with religion.

୩। ( ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ ଯଥା—ପ୍ରସବ ଧର୍ମୀ )—
ଅମୁକଗୁଣବିଶିଷ୍ଟ—3. Having such or such a quality or attribute.

୪। ( ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ, ଯଥା—ଭିନ୍ନ ଧର୍ମୀ )—
ଅମୁକ ଧର୍ମମତକୁ ମାନିବାବାଲା—

4. Professing such or such a faith.

ସ. ବି—୧। ବିଷ୍ଣୁଙ୍କ ନାମ—

1. A name of Bishṇu.

୨। ଧାର୍ମିକ ବ୍ୟକ୍ତି—2. A pious person.

**ଧର୍ମୀପୁତ୍ର**—ସ. ବି—ନଟ; ନାଟକର ଅଭିନୟକର୍ତ୍ତା ( ହି. ଶବ୍ଦସାଗର)—
Dharmīputra An actor

**ଧର୍ମେନ୍ଦ୍ର**—ସ. ବଣ (ଧର୍ମ+ଇନ୍ଦ୍ର; ୭ମୀ ତତ୍)—ଧାର୍ମିକଶ୍ରେଷ୍ଠ—
Dharmendra Very pious

ସ. ବି—ଯମ—Jama, the God of death.

**ଧର୍ମୋତ୍ତର**—ସ. ବଣ (ଧର୍ମ+ଉତ୍ତର; ବହୁବ୍ରୀହି)—ଧାର୍ମିକପ୍ରବର—
Dharmottara Very pious.

**ଧର୍ମୋପଦେଶ**—ସ. ବି (ଧର୍ମ+ଉପଦେଶ, ମ ପ. ଲୋ.)—
Dharmopadeśa ଧର୍ମସମ୍ବନ୍ଧୀୟ ଶିକ୍ଷା—Religious precepts; religious instruction.

**ଧର୍ମୋପଦେଶକ**—ସ. ବି. ପୁଂ ( ଧର୍ମ+ଉପଦେଶକ; ୬ଷ୍ଠୀ ତତ୍ )—
Dharmopadeśaka ୧। ଧର୍ମ ସମ୍ବନ୍ଧେ ଉପଦେଶଦାତା; ଗୁରୁ—
(ଧର୍ମୋପଦେଷ୍ଟା—ଅନ୍ୟରୂପ) 1. Spiritual teacher.
(ଧର୍ମୋପଦେଶିକା, ଧର୍ମୋପଦେଷ୍ଟ୍ରୀ—ସ୍ତ୍ରୀ) ୨। ଆଇନ୍ ଶିକ୍ଷକ—

2. A teacher of law, law lecturer.

**ଧର୍ମୋପେତ** ସ. ବଣ (ଧର୍ମ+ଉପେତ; ୭ମୀ ତତ୍)—୧। ଧର୍ମସଙ୍ଗତ—
Dharmopeta 1. Consonant with religion.

୨। ନ୍ୟାୟସଙ୍ଗତ—2. Rightful; righteous.

**ଧର୍ମ୍ୟ**—ସ. ବଣ ( ଧର୍ମ+ଅନପେତାର୍ଥେ. ଯ )—୧। ନ୍ୟାଯ୍ୟ—
Dharmya 1. Rightful; just; fair.

୨। ଆଇନ୍‌ସଙ୍ଗତ—2. Lawful; legal.

୩। ଧର୍ମଲବ୍ଧ—3. Obtained as a result of religious observances.

୪। ସାଧାରଣ—4. Usual (Apte).

୫। ଧର୍ମସମ୍ବନ୍ଧୀୟ—5. Religious (Apte).

**ଧର୍ମ୍ୟ ବିବାହ**—ସଂ. ବି (କର୍ମଧା, ଧର୍ମ୍ୟ+ବିବାହ )—୧। ଆଇନ୍‌ସଙ୍ଗତ
Dharmya bibāha 1. Legal marriage.

୨। ଧର୍ମାନୁମୋଦିତ ବିବାହ—

2. Marriage approved by the dictates of religion.

[ ଦ୍ର—ହିନ୍ଦୁମାନଙ୍କରେ ଯେଉଁ ବିବାହମାନଙ୍କ ବିଷୟ ଲେଖା ଅଛି ତହିଁ ମଧ୍ୟରୁ ବ୍ରାହ୍ମ, ଦୈବ, ଆର୍ଷ, ଗାନ୍ଧର୍ବ ଓ ପ୍ରାଜାପତ୍ୟ, ଏହି ୫ ବିବାହକୁ ଧର୍ମ୍ୟ ବିବାହ ବୋଲାଯାଏ—

ହି. ଶବ୍ଦସାଗର। ]

**ଧର୍ଷ**—ସ. ବି. (ଧୃଷ୍ ଧାତୁ=ହିଂସା କରିବା; କ୍ରୋଧ କରିବା+ଭାବେ
Dharsha ଅ)—୧। ମାଡ଼ପିଟ—1. Assault.
(ଧର୍ଷଣ—ଅନ୍ୟରୂପ) ୨। ଦଳନ; ପୀଡ଼ନ—

2. Crushing; oppressing.

୩ । ଅତ୍ୟାଚାର, ଜୁଲମ୍—
3. Ill treatment; outrage.
୪ । ପରାଭବକରଣ—4. Defeating.
୫ । ଚଢ଼ାଉ; ଆକ୍ରମଣ—5. Attack; assailing.
୬ । ବଳପୂର୍ବକ ଗ୍ରହଣ—
6. Taking forcible possession; kidnapping.
୭ । ଅବଜ୍ଞାକରଣ; ଅପମାନ—
7. Contempt; insulting; insolence; affront.
୮ । ପ୍ରଗଲ୍ଭତା, ଔଦ୍ଧତ୍ୟ—
8. Arrogance; audacity; impudence.
୯ । ବଳାତ୍କାର; ବଳପୂର୍ବକ ରତି—9. Rape; forcible intercourse with a woman; violation, outraging the modesty of a woman.
୧୦ । ଗର୍ବ—10. Pride; arrogance (Apte).
୧୧ । ଅଧୈର୍ଯ୍ୟ—11. Impatience (Apte).
୧୨ । ଅଟକ—12 Restraint (Apte).
୧୩ । ନପୁଂସକ ବ୍ୟକ୍ତି—13. An eunoch (Apte).

**ଧର୍ଷକ**—ସଂ. ବିଣ. ପୁଂ (ଧୃଷ୍ ଧାତୁ=ହିଂସା କରିବା+କର୍ତ୍ତୃ ଅକ)—
Dharshaka ୧ । ଉତ୍ପୀଡ଼କ—1. Oppressive; assaulting.
୨ । ଉଦ୍ଧତ—2. Arrogant.
୩ । ପରାଭବକାରୀ—3. Defeating.
୪ । ଆକ୍ରମଣକାରୀ—4. Assailing; assaulting.
୫ । ଅଧୀର—5. Impatient (Apte).
୬ । ସ୍ତ୍ରୀ ପ୍ରତି ଅତ୍ୟାଚାର ବା ବଳପ୍ରୟୋଗକାରୀ—
6. Violating, seducing (Apte).
ସଂ. ବି—୧ ନର୍ତ୍ତକ—1. A dancer
୨ । ନଟ—2. An actor.
୩ । ଯାହାରେ ସୁଆଙ୍ଗବାଲା—3. Mime.
୪ । ସ୍ତ୍ରୀର ସତୀତ୍ୱ ନାଶକାରୀ ବ୍ୟକ୍ତି; ସ୍ତ୍ରୀ ପ୍ରତି ପାଶବ ବଳପ୍ରୟୋଗକାରୀ ବ୍ୟକ୍ତି—4. A violator, seducer.

**ଧର୍ଷକାରିଣୀ**—ସଂ. ବି. ସ୍ତ୍ରୀ (ଧର୍ଷ+କୃ ଧାତୁ=କରିବା+କର୍ତ୍ତୃ. ଇନ୍; ସ୍ତ୍ରୀ. ଈ)—୧ । ଦୂଷିତା କନ୍ୟା—
Dharshakāriṇī
1. A deflowered girl; a violated virgin.
୨ । ପୁଂଶ୍ଚଳୀ—2. An adulteress.
୩ । ବଳାତ୍କାରରେ ଯେଉଁ ସ୍ତ୍ରୀକୁ ରମଣ କରାଯାଇ ଥାଏ—
3. A raped woman.

**ଧର୍ଷଣ(ଣା)**—ସଂ. ବି. ସ୍ତ୍ରୀ. (ଧୃଷ୍ ଧାତୁ+ଭାବ. ଅନ; +ସ୍ତ୍ରୀ. ଆ)—
Dharshaṇa(ṇā) ୧ । ଧର୍ଷ (ଦେଖ)
1. Dharsha (See)
ଧର୍ଷଣୀୟ } ବିଣ
ଧର୍ଷିତ }
୨ । ଗାଳିମନ୍ଦ; ତିରସ୍କାର—2. Abuse (Apte).
୩ । ଅପରାଧ—3. An offence (Apte).
୪ । ସ୍ତ୍ରୀସଙ୍ଗମ—4. Copulation (Apte).

**ଧର୍ଷଣକାରିଣୀ**—ସଂ.ବି.ସ୍ତ୍ରୀ. (ଧର୍ଷଣ+କୃ ଧାତୁ+କର୍ତ୍ତୃ. ଇନ୍; ସ୍ତ୍ରୀ ଈ)—
Dharshaṇakāriṇī ଧର୍ଷକାରିଣୀ (ଦେଖ)
Dharshakāriṇī (See)

**ଧର୍ଷଣୀ(ଣି)**—ସଂ. ବି ସ୍ତ୍ରୀ—(ଧୃଷ୍ ଧାତୁ+ଅନ, ସ୍ତ୍ରୀ. ଈ (ଇ)—
Dharshaṇi(ni) ୧ । ଅସତୀ ସ୍ତ୍ରୀ—1. An unchaste woman; a wanton woman.
୨ । ବେଶ୍ୟା—2, A harlot (Apte).

**ଧର୍ଷିଣୀ**—ସଂ ବି. ସ୍ତ୍ରୀ (ଧର୍ଷିନ୍+ସ୍ତ୍ରୀ. ଈ)—ଧର୍ଷିତା (ଦେଖ)
Dharshiṇi Dharshitā (See)

**ଧର୍ଷିତ**—ସଂ. ବିଣ. ପୁଂ. (ଧୃଷ୍ ଧାତୁ, ଣିଚ+କର୍ମ. ତ)—୧ । ପରାଭୂତ,
Dharshita ପରାଜିତ—1. Defeated; overpowered.
(ଧର୍ଷିତା—ସ୍ତ୍ରୀ) ୨ । ଉତ୍ପୀଡ଼ିତ—
2. Outraged; oppressed; ill-treated
୩ । ଅପମାନିତ—3. Insulted
୪ । ଆକ୍ରାନ୍ତ—4. Assaulted; smitten.
୫ । ତିରସ୍କୃତ—5 Abused.
ସଂ. ବି. (+ଭାବ. ତ)—୧ । ବଳାତ୍କାର ରତି—1 Rape.
୨ । ମୈଥୁନ—2. Sexual intercourse; coition; copulation.
୩ । ଗର୍ବ; ଔଦ୍ଧତ୍ୟ—3. Pride; arrogance.
୪ । ଅସହନ, ଅଧୈର୍ଯ୍ୟ—
4. Impatience; intolerance.

**ଧର୍ଷିତା**—ସଂ ବିଣ.ସ୍ତ୍ରୀ. (ଧର୍ଷିତ+ସ୍ତ୍ରୀ.ଆ)—୧ । ଯେଉଁ ସ୍ତ୍ରୀ ସଙ୍ଗେ ବଳାତ୍କାର
Dharshitā ପୂର୍ବକ ମୈଥୁନ କରାଯାଏ; ବଳାତ୍କୃତା—
1. Raped, deflowered; violated (woman).
୨ । କୁଳଟା, ବିଚାରିଣୀ—2. Unchaste, adulterous.
ସଂ. ବି. ସ୍ତ୍ରୀ.—୧ । ଅସତୀ ସ୍ତ୍ରୀ—1. Unchaste woman.
୨ । ବିଚାରିଣୀ ସ୍ତ୍ରୀ; ବେଶ୍ୟା—2. A harlot.

**ଧର୍ଷିବା**—ଦେ. କ୍ରି.—(ସଂ. ଧୃଷ୍ ଧାତୁରୁ ଧର୍ଷ)—୧ । ଧର୍ଷଣ କରିବା—
ଧର୍ষ୍ୟ, ଧরষা 1. To oppress.
ধৰ্ষনা ୨ । ସ୍ତ୍ରୀକୁ ବଳାତ୍କାର କରିବା—
2 To commit rape; to outrage the modesty of (a woman)
ବଳି ଯାହାକୁ ଜିଣି କରି ନ ପାରେ ଅନଙ୍ଗେ ଧର୍ଷିବ ତାରେ ।
ଉପେ. ବୈଦେହୀଶବିଳାସ ।
୩ । ଆକ୍ରମଣ କରିବା—3. To attack.

**ଧର୍ଷୀ**—ସଂ. ବିଣ ପୁଂ (ଧୃଷ୍ ଧାତୁ+ଇନ୍; ୧ମା. ୧ବ)—୧ । ଗର୍ବୀ—
Dharshī 1. Arrogant; overbearing.
(ଧର୍ଷିଣୀ—ସ୍ତ୍ରୀ) ୨ । ଆକ୍ରମଣକାରୀ—2. Assaulting; oppressing.
୩ । ଅତ୍ୟାଚାରକାରୀ—3. Outraging.
୪ । ଅପମାନକାରୀ—4. Insulting.
୫ । ଉଦ୍ଧତ—5. Impudent.
୬ । ବଳାତ୍କାରରେ ସ୍ତ୍ରୀ ସଙ୍ଗମକାରୀ—6. Committing rape on a woman; violating the chastity of a woman.

୬ । ରମଣକାରୀ—6. Copulating.

ଧଳ—ଦେ. ବି—କ୍ଷତ୍ରିୟ, ଶୂଦ୍ର ଓ ଖଣ୍ଡାଏତ ଜାତିର ଉପାଧିବିଶେଷ—
Dhaḷa A family-title of some Kshatriyas, Sūdras and Khandāetas

ଧଳଭୂମ(ମି)—ଦେ.ବି—ଓଡ଼ିଶା ଗଡ଼ଜାତର ଉତ୍ତର ସୀମାରେ ଅବସ୍ଥିତ
Dhaḷabhūma(mi) ଓଡ଼ିଆଭାଷୀ ଅଞ୍ଚଳବିଶେଷ—A tract of
ଧଲଭୂମ country on the northern boundary
ଧलभूम of Orissa States.
[ ଦ୍ର—ଏ ଅଞ୍ଚଳରେ ବହୁ ସଂଖ୍ୟକ ଧଳ ଉପାଧିଧାରୀ କ୍ଷତ୍ରିୟ ବାସ କରନ୍ତି । ]

ଧଳମଡ଼ି(ଲି)—ଦେ ବି—ଧଡ଼ମଡ଼ି ( ଦେଖ )
Dhaḷamardi li) Dhardamardi ( See )

ଧଳା—ଦେ. ବିଣ (ସଂ. ଧବଳ)— ୧ । ଶ୍ୱେତ; ଶୁକ୍ଳ—
Dhaḷā 1 White.
ধল, ধলা ୨ । ଗୋରା—2. White or fair-complexioned
धवर, धवरा
(କଳା— ବିପରୀତ) ଦେ. ବି — ଧବଳ ବସ୍ତୁ—A white object.
ଦେଖିଲି ଗୋ ଧଳା କଳା ଏଥର,
ମଧ୍ୟରେ ହୃଦ୍‌ସାମୃତୀ କି ଚମତ୍କାର । ଭଜନ ।

ଧଲ୍ଲି— ପ୍ରାଦେ (ସମ୍ବଲପୁର) ବିଣ (ଳ ସ୍ଥାନରେ ଲ ଉଚ୍ଚାରଣ)—ଧଳା—
Dhalā White.

ଧଳା ଅଙ୍କୁ—ଦେ. ବି (ସଂ. ଅଙ୍କୋଟ, ଅଙ୍କୋଲ)—ଅଙ୍କୋଟ (ଦେଖ)
Dhaḷā aṅku Aṅkoṭa ( See )
(ଧଳାଅଙ୍କୁ, ଧଳାଅଙ୍କୁଡ଼ା, ଧଳାଅଙ୍କୁଲ, ଧଳାଙ୍କୁ, ଧଳାଙ୍କୁଲ —ଅନ୍ୟରୂପ)
ধলআঙ্কড়া,বাঘঅংক্রা,অকবকন্টা,ধলগু, আঁকোড়, धलाकूब,अकाल
[ ଦ୍ର—ଏହାର ଗଛର ଛାଲ ଧଳା; ପତ୍ର ଏକୋଡ଼ିଆ; ସରୁଡାଳ ଉପରେ କଣ୍ଟା ଥାଏ; ଫୁଲ ଧଳା, ଫଳ ଜାମୁକୋଳପରି, କାଠ ଶକ୍ତ ଓ ଧଳା । ଏଥିରେ ବାଡ଼ି ତିଆରି ହୁଏ । ବାଡ଼ି ଖୁବ୍ ପାଲସ୍ ହୁଏ ।]

ଧଳା ଅଁଶିଆ— ଦେ. ବିଣ (ସଂ. ଧବଳ ଓ ଆଂଶିକ)—ଆଂଶିକ ଧଳା—
Dhaḷā ãsiā Slightly white; whitish.
ধলাটে, धवरसा (ଧଳାଅଁଶିଆ— ଅନ୍ୟରୂପ)

ଧଳା କଇଁ— ଦେ. ବି (ସଂ. କୁମୁଦ)—ଶୁକ୍ଳବର୍ଣ୍ଣବିଶିଷ୍ଟ କଇଁ ଫୁଲ—
Dhaḷā kaĩ White Indian water-lily; Nymphia
(ଘୋଡ଼ା କଇଁ—ଅନ୍ୟରୂପ) Alba (Kirtikar)
সালুক, सफेदकूईं

ଧଳାକୁ କଳା କରିବା—ଦେ. (ବିଶିଷ୍ଟ ବାକ୍ୟ)—( ଲକ୍ଷଣାର୍ଥ )୧ । ସତ
Dhaḷāku kaḷā karibā କଥାକୁ ମିଛ ଓ ମିଛ କଥାକୁ ସତ ପରି
କହିବା—1. (figurative) To tell a black lie.
୨ । ସତକୁ ମିଛ ଓ ମିଛକୁ ସତ ବୋଲି ପ୍ରମାଣିତ କରିବା—
2. To prove something which is not the actual fact.

ଧଳା ଖୁରାଣ୍ଟି—ଦେ. ବି—ଚିଲିକା ହ୍ରଦରେ ମିଳୁଥିବା ଏକପ୍ରକାର ମାଛ—
Dhaḷā khuranti A kind of fish found in the Chilka lake.

ଧଳା ଚମ୍ପା— ଦେ. ବି ( ସଂ. ଧବଳ+ଚମ୍ପକ )— ଚମ୍ପକ ବୃକ୍ଷବିଶେଷ;
Dhaḷā champā ଶୁକ୍ଳ ପୁଷ୍ପଯୁକ୍ତ ଚମ୍ପକ—The white-
সাদাচাঁপা flowered variety of Michelia Champaka.
सादाचंपा [ ଦ୍ର—ଏହାର ଫୁଲ ସୁଗନ୍ଧଯୁକ୍ତ ଓ ଶୁକ୍ଳ । ]

ଧଳା ଗୁଆଳିଆ — ଦେ. ବି—ଶୁକ୍ଳ ବର୍ଣ୍ଣ ବିଶିଷ୍ଟ ପିଜୁଳି—
Dhaḷā ghāuliā White guava; Psydium
সাদাপিজুড়, सफेद अमरुत Pyriferum.

ଧଳା ଚିତା— ଦେ. ବି. ( ସଂ. ଧବଳ+ଚିତ୍ରକ )—
Dhaḷā chitā ଧୋବଚିତା; ଏକପ୍ରକାର ଚିତ୍ରକ ଗୁଳ୍ମ—
ସଂ. ପର୍ଯ୍ୟାୟ—ଚିତ୍ରକ,ଅନଳନାମା Plumbago Zeylanica.
ଅଗ୍ନି, ବହ୍ନି, କୃଷ୍ଣଭୂକ୍, ପାଠ [ ଦ୍ର—ଏହାର ଚେରମୂଳ ଓ ଡାଙ୍ଗ ଧଳା,
ବ୍ୟାଲ, ଉଷଣ ଏହା ଗ୍ରହଣୀ କୁଷ୍ଠ, ଶୋଥ, ବାତ,
শ্বেত চিতা. ଶ୍ଳେଷ୍ମା ଓ ପିତ୍ତର ପ୍ରଶମକ । ଏହାକୁ
चिता,चित्र, चित्रक ସିଝାଇ କରି ବ୍ୟବହାର କଲେ ଏହା
ମ. ଚିତ୍ରକୁ ଅଗ୍ନିକାରକ, ପାଚକ, ଲଘୁ, ଉଷ୍ଣ-
ତେ ଚିତ୍ରମୁ ବୀର୍ଯ୍ୟ ଓ ମଳ ସଂଗ୍ରାହକ ହୁଏ । ଏହି
ତା. ଶିବପୁଚିତ୍ତିର ଜାତୀୟ ନାଲି ଗୁଳ୍ମକୁ ନାଲି ଚିତା
ଗୁ ଚିତ୍ରୋ କହନ୍ତି । ]
ଫା. ବେଙ୍ଗବରଜା, ଶିତ୍ତରୁକ୍
ଆ. ଶିତ୍ତରଜ

ଧଳା ଚିତି— ଦେ. ବି. ( ସଂ. ଧବଳ+ଚିତ୍ର ) —
Dhaḷā chiti ୧ । ଏକ ପ୍ରକାର ଚିତି ସାପ ( ସାପ ତଳେ ନୋଟ
সাদাচিতি ଦେଖ)—1 (See notes under Sāpa)
सफेद चितल A kind of serpent.
୨ । ପାଟଲି ଗାମୁଛା ଦେହରେ ଛିପା ଛିପା ଧଳା ଚିହ୍ନ—
सफेदचित्ति 2. White spots appearing on a cloth which is intended for use as a seasoned napkin.

ଧଳା ଛଉ —ଦେ.ବି. ( ସଂ. ଧବଳ ଶ୍ୱିତ୍ର )—
Dhaḷā chhau ଧବଳକୁଷ୍ଠ; ଶ୍ୱେତ କୁଷ୍ଠ—
ধবলকুষ্ঠ सफेद कोढ़ Albino; Leucoderma.

ଧଳା ଜାମୁ—ଦେ. ବି. ( ସଂ. ଧବଳ+ଜମ୍ବୁ )—
Dhaḷā jāmu ଜାମୁ ଜାତୀୟ ଶୁକ୍ଳାଭ ଫଳବିଶିଷ୍ଟ ବୃକ୍ଷ—
সাদাজাম A kind of tree with whitish berries
उजला जामुन resembling blackberry.

ଧଳା ଜୀବକଣା— ଦେ. ବି. ( ବିଜ୍ଞାନ ପରିଭାଷା )—ରକ୍ତରେ ଥିବା
Dhaḷā jībakaṇā ଧଳା କୋଷାଣୁ—White corpuscles in blood.

ଧଳା ତୁଳସୀ— ଦେ. ବି —(ସଂ ଧବଳ+ତୁଳସୀ)— ଏକ ଜାତୀୟ ତୁଳସୀ
Dhaḷā tuḷasī ଗଛ ଓ ତାହାର ଡାଳ--Ocymum Basilicum;
শ্বেততুলসী; श्वेततुलसी sweet Basil.
[ଦ୍ର—ଏଥିର ପତ୍ର, ଚେରମୂଳ ଓ ମଞ୍ଜରୀ ଶ୍ୱେତାଭ ହୋଇଥାଏ; ତୁଳସୀ ତଳେ ନୋଟ୍ ଦେଖ ।] (ଧଳା ତୁଳ୍‌ସୀ—ଗ୍ରାମ୍ୟରୂପ)

**ଧଳା ଧାତୁରା**—ଦେ. ବି. (ସଂ. ଧବଳ+ଧୁସ୍ତୁର)—ଫିକା ସବୁଜବର୍ଣ୍ଣର ଧାତୁରା ଗୁଳ୍ମ; ଧଳା ଦୁତୁରା—
Dhaḷā dhātura
ସାଦାଧুতুরা; **सफेदधतूरा**
Datura Alba; Dhatura Stremonium.
(ଧଳା ଧତୁରା—ଅନ୍ୟରୂପ)
[ଦ୍ର—ଏହାର ଫୁଲ ଧଳା, ଫଳ ଏବଂ ପତ୍ର ଫିକା ସବୁଜବର୍ଣ୍ଣ]

**ଧଳାପୋଇ**—ଦେ. ବି. (ସଂ. ଧବଳ+ପୋତକୀ, ଉପୋଦକୀ)—ପୁଇଁକା; ପୋଇ ଶାକ—
Dhaḷā poi
ସাদাপুই
**पोइ, मयलकामाजी, सफेदबचलो**
Bassella Alba, Indian spinach
[ଦ୍ର—ଧଳା ପୋଇର ନାଡ଼ ଓ ଫଳ ଫିକା ସବୁଜ; ପୋଇ ଭଳେ ନୋହି ଦେଖ।]

**ଧଳା ମୁଗୁନି**—ଦେ. ବି—ଧଳା ବା ପାଣ୍ଡୁର ବର୍ଣ୍ଣର ମୁଗୁନି ପଥର—
Dhaḷā muguni
গয়েশ্বরী পাথর
**संगखरा**
The whitish or brown variety of chlorite stone.

**ଧଳା ଶିମିଳି**—ଦେ. ବି. (ସଂ. ଶ୍ୱେତ ଶାଲ୍ମଳୀ)—ବୃକ୍ଷବିଶେଷ—
Dhaḷā śimiḷi
শ্বেতশিমুল
**सफेद शिमुल, शेम्बल, हातिआन**
A kind of white-flowered variety of silk-cotton tree; Eriodendron Antractuosum.
ତେ—ବୁରୁଗା, ପୁର, ବୁରଗାସବା,
ତା—ହାଭନ୍
ମ—ଶାମିକୁଲ୍, ସଫେଦ୍ ସାଭର୍, ଶାଲ୍ମଳୀ
(Kirtikar)
[ଦ୍ର—ଏହା ଜବାଦ ବର୍ଗର ଶିମିଳି ଜାତୀୟ ବଡ଼ ଗଛ। ଫୁଲ ଧଳା ଓ ପଞ୍ଚ କେଶର। ଏହାର ମଞ୍ଜିରେ ମଧ ତୁଳା ଥାଏ। ଏହା ଭାରତର ସବୁ ଜଙ୍ଗଲରେ ଜନ୍ମେ। ଏଥିରୁ ଗୁନ ଅଠା ଝୁଏ; ପତ୍ର, ଚେର ଓ କଞ୍ଚା ଫଳ କେତେକ ଔଷଧରେ ଲାଗେ। ନାଲି ଫୁଲବାଲା ଶିମିଳି ପରି ଏ ଗଛ ବେଶି ଦେଖାଯାଏ ନାହିଁ।]

**ଧଳମଳ**—ଦେ. ବି—୧। ଧଡ଼ମଡ଼; ଅତ୍ୟାଚାର—
Dhaḷimaḷi
1. Oppression.
ସହର ପୃଥିବୀ ପର ଯେତେ ଧଳ ମଳ—ଗ୍ରମଶଙ୍କର, ଚୈତନ୍ୟଲୀଳା।
୨। କଠୋର ବ୍ୟବହାର—2. Rough usage.

**ଧଳୀ**—ଦେ. ବିଣ. (ସ୍ତ୍ରୀ) (ସଂ. ଧବଳୀ)—
Dhaḷī
ଧବଳବର୍ଣ୍ଣବିଶିଷ୍ଟା—White
କାଲୀ କବୁରୀ ଧଳୀ ରଙ୍ଗ। ରୂପଚ. ପ୍ରେମପଞ୍ଚାମୃତ।
ଦେ. ବି. ସ୍ତ୍ରୀ—ଧଳା ଗାଈ—White cow.

**ଧସ୍**—ଦେ. କ୍ରି. ବିଣ. (ସଂ. ଝଟିତି)—
Dhas
ଝଟ; ଅତି ଶୀଘ୍ର—Very soon; quickly.
ଚଟ
**फट्**
**करे.**
**करके**
ଦେ. ଅ. (ଧ୍ୱନ୍ୟର୍ଥକ ଶବ୍ଦ ପରେ ବ୍ୟବହୃତ) ପ୍ରକାରେ; କରି; କରି; କନା—
Like the adverbial suffix 'ly' as in quickly.
(ଯଥା—ସେ ଭୁଷ୍‌ଧସ୍ ଖସି ପଡ଼ିଲା।)

**ଧସ୍‌ଧସ୍**—ଦେ. ଅ (ଧ୍ୱନ୍ୟନୁକରଣ)—
Dhas-dhas
ଭୁଷ୍‌ଭୁଷ୍; ପାଦୁକାହୀନ ଗୋଡ଼ରେ ଶୀଘ୍ର ଚାଲିବାଦ୍ୱାରା ଉତ୍ପନ୍ନ ଶବ୍ଦ—
Sound of brisk walking on the ground with bare feet.
ନେତୁରେ ବା କହୁଛ, ଚାଲିଛ ଧସ୍‌ଧସ୍—
ଫକୀରମୋହନ, ଭ୍ରମଣ ଅଠଗଡ଼।

**ଧସ୍‌ଧାସ୍**—ଦେ. କ୍ରି. ବିଣ—ଶୀଘ୍ରତା ସହକାରେ—
Dhasa-dhās
তাড়াতাড়ি
**चटपट**
With swiftness.
ସହସ୍ର ସଖ୍ୟା ରଜାମାନେ ତାହା ରହି।
ଛୁଟା ହେଲେ ସଭରେ ଧସଧାସ ହୋଇ।
କୃଷ୍ଣସିଂହ, ମହାଭାରତ, ଉଦ୍ୟୋଗ।

**ଧସନଶନ**—ଦେ. ବି. (ସଂ. ଧ୍ୱଂସନ+ନାଶ)—
Dhasanaśana
উজাড
**चौपट, सतयानाश**
୧। ଲୁଣ୍ଠ ଦ୍ୱାରା ଅସ୍ତବ୍ୟସ୍ତ କରିବା, ଧ୍ୱଂସ କରିବା—1. Depradation; act of despoiling
୨। ସର୍ବନାଶ—2. Utter ruination.
ଧ୍ୱଂସନଶନ } ଅନ୍ୟରୂପ
ଧଁସନଶନ }
ଦେ. ବିଣ—ଵିଧ୍ୱସ୍ତ, ଅସ୍ତବ୍ୟସ୍ତ; ଉଜାଡ଼ମସ୍ତ—Delapidated; crumbled down; destroyed; despoiled.

**ଧସନଶନ କରିବା**—ଦେ. କ୍ରି. (ସଂ. ଧ୍ୱଂସ+ନାଶ)—
Dhasanaśana karibā
উজাড়করা
**उजाड़ना**
ବିଧ୍ୱସ୍ତ କରିବା; ମାଡ଼ି ଦଳିବା ସର୍ବନାଶ କରିବା—To spoil a thing by depradation; to despoil; to lay waste.
ଧ୍ୱଂସନଶନ କରିବା } ଅନ୍ୟରୂପ
ଧଁସନଶନ କରିବା }
(ଯଥା—ଗୋରୁ ପଲେ ମୋ ଲଙ୍କାମରିଚ ବଗିଚାରେ ପଶି ବଗିଚାଟାଯାକ ଧସନଶନ କରି ଦେଲେ।)

**ଧସା**—ଦେ. ବିଣ. (ସଂ. ଧ୍ୱଂସ)—
Dhasā
ধস
**धँसाव**
୧। ଯେଉଁ ସ୍ଥାନରୁ ମାଟିର ଅଡ଼ଡ଼ା ଖସି ପଡ଼ୁଥାଏ—1. A place from which the earth is falling down; crumbling.
୨। ଯେଉଁ ସ୍ଥାନର ମୃତ୍ତିକାର ତଳରେ ପାଣି ବା ପଙ୍କ ଥିବାରୁ ତା ଉପରେ ପାଦ ଦେଲା ମାତ୍ରେ ତାହା ବସି ଯାଉଥାଏ—2. (a soil) Which gives way owing to there being water or mud below the surface.
**धौंसा**
ଦେ. ବି.—୧। ବଡ଼ ନାଗରା; ବଡ଼ ନାଗରା; ଧଂସା—1. Big kettle-drum.
ଧସା ନାଗରା ନଉବତ ଝଟ
ତେଲଙ୍ଗ ବାଜା ରଙ୍ଗ ଗୁଡ଼ଗୁଡ଼। ବଳନାଥ, ସମରତରଙ୍ଗ।
**भूसी**
**भुसी**
୨। (ସଂ. ଭୁଷ) ଧୁଷ—2. Chaff of grain.

**ଧସା(ସେ)ଇବା**—ଦେ. କ୍ରି. (ସଂ. ଧର୍ଷଣ ବା ଧ୍ୱଂସନ)—
Dhasā(se)ibā
ধসাইবা } ଅନ୍ୟରୂପ
ধংসেইবা }
ধসান **धसाना, धँसाना**
ମାଟିକୁ ପଦାଘାତରେ ଦବାଇବା; ଲଦସାଇବା—To cause the surface of the soil to sink by one's heavy foot-steps.

**ଧସିବା**—ଦେ. କ୍ରି. ( ସଂ. ଧର୍ଷିତ )—
Dhasibā ୧ । ଉଖିଯିବା; ଦବିଯିବା; ଲହସି ଯିବା—
ଧସ୍‌ନା 1. To shrink down ( as soft soil
**धसना, धँसना** under heavy foot-steps ); to
(ଧସିଯିବା—ଅନ୍ୟରୂପ) sink
( ଯଥା—ନରମ ମାଟି ଯୋଗୁଁ କୋଠାଟା ଧସିଗଲା । )
୨ । ( ସଂ. ଧ୍ୱଂସ ) ( ମାଟି ଆଦି ) ଶିଥିଳ ହେବା; ଖଣ୍ଡ ଖଣ୍ଡ ହୋଇ ଖସି ପଡ଼ିବା—2. To crumble down; to be delapidated.

**ଧସ୍ତାଧସ୍ତି**—ଦେ. ବି ଓ ବିଣ. (ସଂ. ଧ୍ୱସ୍ତ; ବଙ୍ଗଳାରୁ ଅନୁକୃତ)—
Dhastādhasti ପରସ୍ପର ଠେଲାଠେଲି; ପେଲା ପେଲି; ଝିଙ୍କାଝିଙ୍କି ଓ
ଧ୍ବସ୍ତାଧ୍ବସ୍ତି ମାଡ଼ ମରାମରି; କୁସ୍ତାକୁସ୍ତି; ଧ୍ୱସ୍ତାଧ୍ୱସ୍ତି—
**ठिलाठिलि, ठेलाठेलि** Mutual pushing or shoving; fighting with each other by pushing.

**ଧା (ଧାତୁ)**—ସଂ—୧ । ସ୍ଥାପନ କରିବା—
Dhā (root) 1. To put; to place.
୨ । ଧାରଣ କରିବା—
2. To hold; to contain.
୩ । ପାଳନ କରିବା—
3. To bring up; to support; to maintain.
୪ । ପରିଧାନ କରିବା—
4. To put on; to wear.
୫ । କରିବା—5. To perform; to do.
୬ । ସୃଷ୍ଟି କରିବା—6. To create; to make.
୭ । ଦେବା—7. To give; to bestow.
୮ । ଟେକି ଧରିବା—8. To uphold.

**ଧା**—ସଂ. ବି. ( ଧା ଧାତୁ—ଧାରଣ କରିବା+କର୍ତ୍ତୃ. କ୍ୱିପ୍)—
Dhā ୧ । ଧାରଣକର୍ତ୍ତା—1. Holder; upholder.
୨ । ଧାତା; ବିଧାତା; ବ୍ରହ୍ମା—
2. The creator; Brahmā.
୩ । ବୃହସ୍ପତି—3. Bruhaspati.
ସଂ. ପ୍ରତ୍ୟୟ. ( ସଂଖ୍ୟାବାଚକ ଶବ୍ଦ ପରେ ଯୁକ୍ତ ହୁଏ; ଯଥା—ଦ୍ୱିଧା, ଶତଧା, ବହୁଧା )—
୧ । (ଏତେ) ପ୍ରକାରେ ( ଯଥା—ବହୁଧା )—
1. In ( so many ) ways.
୨ । (ଏତେ) ଖଣ୍ଡରେ ( ଯଥା—ଶତଧା )—
2. Into ( so many ) pieces
[ ଦ୍ର—ଏହି ପ୍ରତ୍ୟୟ ଦ୍ୱାରା ନିଷ୍ପନ୍ନ ପଦ ଅବ୍ୟୟ ରୂପେ ବ୍ୟବହୃତ ହୁଏ । ]

**ଧ** ଦେ. ବି.—୧ । (ସଂ. ଧୈବତ)—ସଙ୍ଗୀତର ସପ୍ତ ସ୍ୱରଗ୍ରାମ
**ध** (ସା ରେ ଗା ମା ପା ଧା ନି) ମଧ୍ୟରୁ ଷଷ୍ଠ ସ୍ୱର—1. The 6th tone of the Hindu musical gamut.
[ଦ୍ର—ଏହି ଧା ସ୍ୱର ଦୁଇ ପ୍ରକାର ଯଥା—ସାଧାରଣ ଧା ଓ କୋମଳ ଧା ।]

୨ । ତବଲାର ଉଲ୍ଲୁଟବିଶେଷ—1. A part of the formula for striking the tabalā drum.

**ଧାଆଁ (ଇତ୍ୟାଦି)**—ଦେ. ବି.—ଧାଁ ଇତ୍ୟାଦି (ଦେଖ)
Dhā-ān (etc) Dhān etc (See)

**ଧାଆଁ ପଡ଼ିବା**—ଦେ. ବି. (ବ୍ୟଙ୍ଗ୍ୟ)—୧ । ତ୍ୱରାନ୍ୱିତ ହେବା—
Dhā-ān pardibā 1. Being in haste.
(ଧାଁ ପଡ଼ିବା—ଅନ୍ୟରୂପ) ୨ । ଅତ୍ୟାବଶ୍ୟକ—
2. Urgency; dire necessity.
[ଯଥା—ତୋର ହୁକୁମ ପାଳିବାକୁ ମତେ (ବା ମୋର) ଧାଆଁ ପଡ଼ିଛି ।]

**ଧାଇଁ ଆସିବା**—ଦେ. କ୍ରି.—(ସଂ. ଧାବନ+ଆଗମନ)—୧ । ଦଉଡ଼ି କରି କୌଣସି ସ୍ଥାନକୁ ଆସିବା—
Dhāin āsibā
ଦୌଡ଼େ ଆସ୍‌ନା 1. To come to a place in hot haste; to
**दौड़आना** rush to a place; to rush in.
କହୁଥାନ୍ତି ଯେବେ ଧାଇଁ ଆସି । କବିସୂର୍ଯ୍ୟ. ସଙ୍ଗୀତ ।

**ଧାଇଁ ଗୁଡ୍ରୁଗୁଡ୍ରୁ**—ଦେ. ଅ —( ଶିଶୁବଚନ )—ଶିଶୁମାନଙ୍କର
Dhāin gurdu gurdu ସୁମଧୁର ବେଗଗମନ—
The act of brisk walking performed by children who are just learning to
(ଧାଇଁ ଗୁଲଗୁଲ—ଅନ୍ୟରୂପ) walk a little briskly.
[ଦ୍ର—ଶିଶୁମାନେ ଅଳ୍ପ ଅଳ୍ପ ଚାଲିବାକୁ ଶିଖିବା ସମୟରେ ମାଆମାନେ ଖଣ୍ଡିଏ ଦୂରରେ ଠିଆ ହୋଇ ଏହି ବାକ୍ୟ ଉଚ୍ଚାରଣ କରି ପିଲାମାନଙ୍କୁ ଡାକନ୍ତି ଓ ପିଲାମାନେ ଚଞ୍ଚଳ ଚଞ୍ଚଳ ଚାଲି ମାଆମାନଙ୍କ ପାଖକୁ ଆସନ୍ତି ।]

**ଧାଇଁ ଧାଇଁ**—ଦେ. କ୍ରି. ବିଣ—(ଧାଇଁବା କ୍ରିୟାର ଅସମାପିକା ରୂପର
Dhāin dhāin ଦ୍ୱିରୁକ୍ତିଦ୍ୱାରା ସମୟାଧିକ୍ୟ ଜ୍ଞାପିତ ହେଉଅଛି)—
ଦୌଡେ ଦୌଡ଼େ ୧ । ଦଉଡ଼ି ଦଉଡ଼ି—
**दौड़, दौड़ कर** 1. Running.
କାହେଁ ପାଣି, ଧୂର୍ତ୍ତ ଥଣ୍ଡା, ଧାଇଁ ଧାଇଁ ଖାଇଁ କଲୁର ବେଙ୍ଗ ।
କଲୁରବେଙ୍ଗ କାହାଣୀର ଗାଁଡି଼ୀଂଶ ।
ଧାଇଁଧପ(ପୁ)ଡ଼ି
ଧାଇଁ ଧାଇଁକା } ଅନ୍ୟରୂପ ୨ । ଶୀଘ୍ରଗତିରେ ଚାଲି—
ଧାଇଁ ଧାଇଁ କ(କ)ରି
2. Walking briskly.
୩ । ଅବିଶ୍ରାନ୍ତ କର୍ମ କରି—
3 Working incessantly.
୪ । ବାରଂବାର ଯାଇ—4. Going repeatedly.
ଧାଇଁ ଧାଇଁ ଭୃତ୍ୟ, ମନ୍ଦିରକୁ ଯିବ;
ପଦେ ସ୍ୱୀକ୍ଷା ହୁଅନ୍ତ, ଲଭନ୍ତ ଚ ଶିତ । କବିସୂର୍ଯ୍ୟ. ସଙ୍ଗୀତ ।
୪ । ବାରଂବାର—4 Repeatedly.
୫ । ଜଳଦି; ଅତି ଶୀଘ୍ର; ତ୍ୱରିତ—5. Very quickly.

**ଧାଇଁ ଧୂପିବା**—ପ୍ରାଦେ. (ସମ୍ବଲପୁର) କ୍ରି.—ଧାଇଁବା ଧୂପିବା (ଦେଖ)
Dhāin dhupibā Dhāinbā dhupibā (See)
ଧାଁଇ ଧୂପି ବ,ଥାତ, ସବେ ବସି ତେବେର । ଉଗ ।

**ଧାଇଁ ପଡ଼ିବା**—ଦେ. କ୍ରି—(ସଂ. ଧାବନ)—ବହୁ ଲୋକ ଦଉଡ଼ି କରି
Dhāiñ pardibā ଏକ ସ୍ଥାନରେ ଉପସ୍ଥିତ ହେବା—
ଦୌଡ଼େ ଆସା (many people) To assemble at a place
**दौड़ पड़ना** by running up from various distances
ଧାଁଇ ପଡ଼ିବା, ଧାଇଁ ଆସିବା, ଧାଇଁ ଆସିବା } ଅନ୍ୟରୂପ — ଗାଆଁ ମୁଣ୍ଡେ କଲି ଘର, ଧାଇଁ ପଡ଼ ହୋ ମାଇ ପଡ଼ଶା । ମୋ ଘରେ ପଶୁଛ ଚୋର । ଛଗ ।

**ଧାଇଁ ପଳା(ଲେ)ଇବା**—ଦେ. କ୍ରି.—ଦଉଡ଼ି କରି କୌଣସି ସ୍ଥାନ
Dhāiñ palā (le)ibā ତ୍ୟାଗ କରିବା—
ଦୌଡ଼େ ପାଳାନ To run away, to flee away
**दौड़कर भागना**

**ଧାଇଁବା**—ଦେ. କ୍ରି.—(ସଂ. ଧାବ୍, ପ୍ରାକୃତ ଧାଁ ଧାତୁ)—
Dhāiñbā ୧ । ଦଉଡ଼ିବା—1. To run.
ଧାଓନ, ଧାଓଆ ୨ । ଅନବରତ ବା ଅବିଶ୍ରାନ୍ତ ପରିଶ୍ରମ କରିବା—
**दौड़ना, धाना** 2. To work incessantly; to labour without rest.
(ଧାଁଇଁବା—ଅନ୍ୟରୂପ) ପେଟପାଟଣା ପାଇଁ ଜଗତର ସମସ୍ତ ପ୍ରାଣୀ ଧାଇଁଅଛନ୍ତି । ଫକୀରମୋହନ. ଛମାଣ ଆଠଗୁଣ୍ଠ ।
(ଧୁଆଇଁବା—ଶିଜନ୍ତ) ୩ । ଦ୍ରୁତ ଗତି କରିବା; ଦ୍ରୁତଗତି କରିବା—
3. To walk briskly; to move quickly
୪ । ତ୍ୱରାନ୍ୱିତ ହୋଇ କୌଣସି କାର୍ଯ୍ୟ କରିବା—
4. To make haste; to hasten.
୫ । କୌଣସି ବ୍ୟକ୍ତିର ଉପକାର ବା ମଙ୍ଗଳାର୍ଥ ଚେଷ୍ଟା କରିବା—5. To strive for the benefit of another.
ମୁଁ ଧାଇଁ ଥାଏ ଗୋସେଇଁ ପାଇଁ, ଗୋସେଇଁର ହୃଦେ ଦୟା ନାହିଁ । ଛଗ ।
୬ । କୌଣସି ଉଦ୍ୟମ ବା ଚେଷ୍ଟା ପାଇଁ ଏଣେ ତେଣେ ଯିବା ଆସିବା କରିବା—6 To run to and fro on a particular mission.
୭ । (ତରଳ ପଦାର୍ଥ) ଉଚ୍ଚ ସ୍ଥାନରୁ ନୀଚ ସ୍ଥାନକୁ ଅବିରତ ସ୍ରୋତ ସହକାରେ ବହିବା—7. (a liquid) To flow down with a current; to run down.
(ଯଥା—ବନ୍ଧ କାଟି ଦେବାରୁ ତଳ କିଆରିକୁ ପାଣି ଧାଇଁଲାଣି ।)
[ଦ୍ର—ଧାଇଁବା କ୍ରିୟାର ଅସମାପିକା ରୂପ ପରେ ଆସିବା, ପଡ଼ିବା ଯିବା, ଗୁଳିବା, ପଳା(ଲେ)ଇବା ଆଦି କ୍ରିୟାର ସମାପିକା ରୂପ ଯୁକ୍ତ ହୁଏ । ଧାଇଁବା କ୍ରିୟାର ସମାପିକା ରୂପ ପରେ ଦଉଡ଼ିବା, ଧପଡ଼ିବା, ଧପୁଡ଼ିବା ଆଦି କ୍ରିୟା ସହଚର ରୂପେ ବ୍ୟବହୃତ ହୁଏ ।]

**ଧାଇଁବା ଦଉଡ଼ିବା**—ଦେ. କ୍ରି. (ଏକାର୍ଥକ ସହଚର ଶବ୍ଦଦ୍ୱୟ)—
Dhāiñbā daurdibā ୧ । ବାରଂବାର ବା ବହୁବାର ଦଉଡ଼ିବା—
ଧାଇଁବା ଦୌଡ଼ିବା, ଧାଇଁବା ଧପଡ଼ିବା, ଧାଇଁବା ଧପୁଡ଼ିବା }—ଅନ୍ୟରୂପ — 1. To run several times or repeatedly
ଦୌଡ଼ାଦୌଡ଼ିକରବା ୨ । ଏଣିକି ତେଣିକି ଦଉଡ଼ିବା—
**दौड़नाधूपना** 2. To run one way and the other, to run to and fro.

୩ । ତ୍ୱରାଯୁକ୍ତ ହୋଇ କାର୍ଯ୍ୟ କରିବା—
3. To act in hot haste.
୪ । ଅତ୍ୟଧିକ ଯତ୍ନ କରିବା—
4. To strive very hard.

**ଧାଇଁବା ଧୁପିବା**—ପ୍ରାଦେ. (ସମ୍ବଲପୁର) କ୍ରି—(ସହଚର ଶବ୍ଦ)
Dhāiñbā dhupibā ଧାଁଧପଡ଼ କରିବା; ବାରଂବାର ବା ବହୁବାର ଦଉଡ଼ିବା—To run several times or repeatedly.

**ଧାଇଁଯିବା**—ଦେ. କ୍ରି—୧ । ଦଉଡ଼ି କରି କୌଣସି ସ୍ଥାନ ତ୍ୟାଗ
Dhāiñ jibā କରିବା—1. To run away from a place.
ଦୌଡ଼େଯାଓଆ ୨ । ଅନ୍ୟ ସ୍ଥାନକୁ ଦଉଡ଼ିଯିବା—
**दौड़जाना** 2. To run down to a place
ଧାଇଁ ଯାଇ ମଁ କରେ ପିଲଙ୍କୁ ଧଇଲେ । କୃଷ୍ଣସିଂହ. ମହାଭାରତ ଆଦି ।
୩ । ତ୍ୱରିତ ବା ତତ୍କ୍ଷଣାତ୍ ଯିବା; କ୍ଷଣବିଲମ୍ବ ନ କରି ଯିବା—
3. To go at once.
ଆଦର୍ଶ ମନୁଷ୍ୟ ଯେବେ ଦେଖିବାକୁ ଇଚ୍ଛ
ଧାଇଁ ଯାଅ ଦେଖିଅସ ଘରର ମଧ୍ୟଗର୍ଭ । ଫକୀରମୋହନ ଉତ୍କଳଭ୍ରମଣ ।

**ଧାଇ**—ଦେ ବି. ସ୍ତ୍ରୀ. (ସଂ. ଧାତ୍ରୀ; ପ୍ରା. ଧାଇ)—୧ । ଉପମାତା; ଯେଉଁ
Dhāi ସ୍ତ୍ରୀ ଅନ୍ୟର ଶିଶୁକୁ ପାଳନ କରେ—
(ଧାଈ—ଅନ୍ୟରୂପ) 1. Foster-mother
**धाई** ତାଙ୍କ ଧାଇ ବୃହସେନାକୁ ବରିଗଲେ ।
**धाय; दाई; धाई** କୃଷ୍ଣସିଂହ ମହାଭାରତ ବନ ।
୨ । ଯେଉଁ ସ୍ତ୍ରୀ ଅନ୍ୟ ସ୍ତ୍ରୀର ଶିଶୁକୁ ସ୍ତନ୍ୟଦିଏ—
2. Wet nurse.
ଯେ ଧାଇ ପିଆଇଲା ଦୁଧ
ତା ପ୍ରାଣ ଶୋଷିକଲା ବଧ । ଉପେନ୍ଦ୍ର. ପ୍ରେମପଞ୍ଚାମୃତ ।
୩ । ଧାତ୍ରୀ; ଦାଇ; ଯେଉଁ ସ୍ତ୍ରୀ ସନ୍ତାନ ପ୍ରସବ ସମୟରେ ଜନନୀକୁ ସାହାଯ୍ୟ କରେ ଓ ଅନୁଡ଼ଶାଳରେ ପ୍ରସୂତିର ଓ ନବଜାତ ଶିଶୁର ଶୁଶ୍ରୂଷା କରେ—
3. A midwife; accoucheuse.
ଧାଇ ଆଗେ ପେଟ ଲୁଚେଇବା ନ୍ୟାୟ । ଛଗ ।
୪ । ଆୟା; ପୋଇଲି; ପରିଚାରିକା—
4 A maid servant; an Ayah.
ବାତୁଲଙ୍କ ଧାଇ ଘରକୁ ପେଷଣ । କୃଷ୍ଣସିଂହ. ମହାଭାରତ ବନ ।
୫ । ରୋଗୀର ବା ଶିଶୁର ସେବା କରିବା ପାଇଁ ନିଯୁକ୍ତା ଦାସୀ—
5. Nurse.
[ ଦ୍ର—ହିନ୍ଦୀଭାଷାରେ ଜନନ କର୍ମରେ ସହାୟିକା ଧାଇ (ଦାଇ ଜନାଇ), ଶିଶୁକୁ ସ୍ତନ୍ୟପାନ କରାଇବା ଧାଇ (ଦାଇ ପିଲାଇ) ଓ ଶିଶୁକୁ ଖେଳାଇବା ଧାଇ (ଦାଇ ଖେଲାଇ) ମାନଙ୍କର ସ୍ୱତନ୍ତ୍ର ନାମ ଅଛି । ]
୬ । (ସଂ. ଧାତକୀ; ଧାତୁ, ଧାତ୍ରୀ)—ଧାଇଁଲାଫୁଲ ଓ ଗୁଳ୍ମ;
ସଂ. ନାମ—ଧାତୁ, ଧାତ୍ରୀ, ଧାବନୀ, ଧାତକୀ, ଧାତୁପୁଷ୍ପୀ, ତାମ୍ରପୁଷ୍ପୀ, କୁଞ୍ଜରା, ଗୁଚ୍ଛପୁଷ୍ପୀ, ବହ୍ନିଶିଖା, ଧାତୁପୁଷ୍ପିକା,
ତାମ୍ରବର୍ଣ୍ଣ ପୁଷ୍ପ କ୍ଷୁପବିଶେଷ—
6. Woodfordia Floribunda (flower and tree); Grislea Tomentosa (M. W.)

ସୁରଭା, ବହୁପୁଷ୍ପୀ, କୁମୁଦା, [ ଦ୍ର—ଏହି ଫୁଲ ବସନ୍ତରେ
ସାଧୁପୁଷ୍ପୀ, ବହ୍ନିଜ୍ୱାଳା, ଫୁଟେ । ଫୁଲ ଷଡ଼ଦଳ, ଦ୍ୱାଦଶକେଶର-
ସିନ୍ଧୁପୁଷ୍ପ, ମଘବାସିନୀ, ପାର୍ବତୀ, ବର୍ଣ୍ଣବିଶିଷ୍ଟ ଓ ତାମ୍ରବର୍ଣ୍ଣ । ଏଥିରେ ଲୁଗାରଙ୍ଗ
ବହୁପୁଷ୍ପିକା କରଯାଏ ଓ ଏହା ଔଷଧରେ ଲାଗେ ।
ଧାଈ ଏ ଗଛର ପତ୍ର ଡାଳମ୍, ପତ୍ର ପତ୍ର; ଏଥିର
ଧବଈ, ଧାଓଆ, ଧାଇ, ଧାୟ ପତ୍ର ଓ ବକଳ ମଧ୍ୟ ଔଷଧରେ ଲାଗେ ।
ଭେ. ଧାଭୁକାଫୁଲ, ଜାର୍ଗୀ ଏହି ଫୁଲ କଟୁ, ଶୀତଳସ୍ପର୍ଶ, ମଦ-
କାରକ, କଷାୟ ଓ ଲଘୁ । ଏହା ତୃଷା, ଅତିସାର, ପିତ୍ତ, ପ୍ରଦର,
ରକ୍ତଦୋଷ, ବିଷଦୋଷ, କୃମି ଓ ବିସର୍ପନାଶକ । ]

୭ । (ସଂ. ଧାତ୍ରୀ) ଅଁଳା ଗଛ; ଅଁଳା କୋଳଗଛ—
7. Embellic Myrobalan.

**ଧାଈ ବେହେରା**—ଦେ. ବ. ସ୍ତ୍ରୀ—ରଜାଙ୍କ ଅନ୍ତଃପୁରର ବୟସ୍କା ଦାସୀ—
Dhāi behera An elderly maid servant of the harem.

**ଧାଈ ମାଆ**—ଦେ.ବ.ସ୍ତ୍ରୀ.(ସଂ. ଧାତ୍ରୀ+ମାତା)—୧ । ଶୈଶବ ଉପମାତା—
Dhāi mā-ā 1. Foster mother.
(ଧାଇମା—ଅନ୍ୟରୂପ) । ୨ । ଅଧିକବୟସ୍କା ଗୃହଦାସୀ—
ଧାଈମା ଦାଈମା 2. An elderly maid servant.

**ଧାଉଡ଼(ଢ଼)**—ଦେ. ବ—୧ । (ସଂ. ଧାବନ)—ଧାବନ, ଦଉଡ଼—
Dhāurda(rdha) 1. Running; race.
दौड़ ବାକସ୍ଥାନ, ଚେସଲେନ, ଲୁଦ୍ଦର ଧାଉଡ଼,
दौड़, धावनी ଲେଲେ ଯାଇଁ ଗାଇବ ସରକାର ଘର କଉଡ଼ । ଉଗ ।
(ଧାଉଁଡ଼ —ଅନ୍ୟରୂପ) ୨ । ଧାଡ଼; ଆକ୍ରମଣ—
धावा 2. Attack; onslaught.
୩ । (ସଂ. ଧାରା) ଧାଡ଼; ଶ୍ରେଣୀ; ପଂକ୍ତି—
साबी 3. A row; a line.
पाँति (ଯଥା—ଡାକ୍ତର ଘର ତଳ ଧାଉଡ଼ ।)

**ଧାଉଡ଼ିଆ**—ଦେ. ବ. (ସଂ. ଧାବକ)—୧ । ଯେ ଦଉଡ଼େ; ଦଉଡ଼ିବା
Dhāurdiā ଲୋକ—1. A runner.
(ଧାଉଁଡ଼ିଆ—ଅନ୍ୟରୂପ) ୨ । ଦ୍ରୁତଗାମୀ ଦୂତ, ବାର୍ତ୍ତାବାହକ—
धावाड़े; धाउड़ा 2. A swift messenger.
धावत ୩ । ଡାକ ନେଇ ଦଉଡ଼ିବା ଦୂତ—
3. A postal runner.
୪ । ପିଆଦା; ପିଅନ; ପଦାତିକ—
4. A peon; foot soldier; footman.
କାହୁଁରେ ଧାଉଡ଼ିଆ ପ୍ରହଣ
ଜଳା ଭୂଇଁରେ ପକାଇ ବାଣ
ଉଠିବା ପାଇଁ ହୋଇଛି ମୂର୍ଖ
ଲୁଣ୍ଠିଛି ଓଷ୍ଠ ଓଷ୍ଠ । ଅଭିକାଙ୍କ- ବିମରଚରଙ୍ଗ ।
ଦେ. ବଣ—୧ । (ସଂ. ଧାବକ) ଧାବନକାରୀ—1. Running.
୨ । (ସଂ. ଆଶ୍ରିତ...) ଧାଡ଼ିଯୁକ୍ତ; ଶ୍ରେଣୀବଦ୍ଧ; ଶ୍ରେଣୀବଦ୍ଧ
ଗୃହବିଶିଷ୍ଟ—Arranged in a row; having houses arranged in rows.
(ଯଥା—ଏ ଗାଁଅଟା ଭୁଇଁ ଧାଉଡ଼ିଆ । ଡାକ୍ତର ତଳ ଧାଉଡ଼ିଆ
ଧୂଳିଆ ଘର ।)

ପ୍ରାଦେ. ( ଚଢ଼ଙ୍କାଡ ) ବ—ଖଲସରର ପିଣ୍ଡା ଦାଢ଼ରେ ଥିବା
ଖୁଣ୍ଟ—The posts put on the edge of the veranda of a thatched house.

**ଧାଉଡ଼ିଆ ଟପା(ପ୍ପା)**—ପ୍ରାଦେ (ଗଞ୍ଜାମ) ବ (ସଂ. ଧାବକ+ଦେ. ଟପାଲ)
Dhāurdiā tapā(ppā) ଦଉଡ଼ିବା ବ୍ୟକ୍ତି ଦ୍ୱାରା ଚିଠି ନେବା
ଡାକ—The arrangement for the carriage of postal articles by relays of runners.

**ଧାଉଡ଼ିଆ ପାଇକ**—ଦେ. ବ ( ସଂ. ଧାବକ+ପଦାତିକ )—ଦଉଡ଼ିକରି
Dhāurdiā pāika ଜରୁରି ଖବର ନେବା ଆଣିବା କରିବା
धावाडे पाइक ପାଇଁ ନିଯୁକ୍ତ ପାଇକ ବା ପଦାତିକ—
धावत A running messenger ( for carrying urgent news.

**ଧାଉଡ଼ି ଦେବା**—ଦେ. କ୍ରି ( ସଂ. ଧାବ୍ ଧାତୁ )—୧ । କୌଣସି ସ୍ଥାନକୁ
Dhāurdi debā ଉପର୍ଯ୍ୟୁପରି ଆସିବା—1 To come to a
दौड़ लगाना place repeatedly.
धावा मारना ୨ । ଆକ୍ରମଣ କରିବା—2 To attack.
[ଧାଉଡ଼ି ଲଗା(ଗ)ଇବା—ଅନ୍ୟରୂପ]

**ଧାଁ**—ଦେ. ବ (ସଂ. ଧାବନ)—୧ । ଧାଇଁବା—
Dhān 1. Running
[ଧାଁଅଁ, ଧାଦଉଡ଼, ଧାଁଅଁ ଦଉଡ଼, ଧାଁଧପଡ଼, ଧାଁଅଁଧପଡ଼, ଧାଁଧପଡ଼ା,
ଧାଁଅଁଧପଡ଼ା, ଧାଁଦୌଡ଼, ଧାଁଅଁବା(ଧା)ଉଡ଼—ଅନ୍ୟରୂପ)
(ଧାଁଅଁ, ଧାଅଁ—ଅନ୍ୟରୂପ) ୨ । ସତ୍ୱର ଗମନାଗମନ; ଦଉଡ଼ା-
धाओया ଦଉଡ଼ି—2. Running up and down
धावनी, दौड़ place.
ସେ ବାଉଡ଼ିଆ ରଠାରୁ ଦାଣ୍ଡଦ୍ୱାର ପର୍ଯ୍ୟନ୍ତ
ଧାଁ ଦଉଡ଼ କରି ଡାକ ଛାଡ଼ଥାଏ । ଫକୀରମୋହନ. ଛମାଣ ଅଠଗୁଣ୍ଠ ।
୩ । କାର୍ଯ୍ୟବ୍ୟସ୍ତତା; ତ୍ୱରା—3. Haste; hurry

**ଧାଁଚ**—ଦେ. ବ—୧ । ଛାଞ୍ଚ; ଆକୃତି, ଗଠନ—
Dhāncha 1. Form; shape; make; build.
टाँचा ୨ । ଛାଞ୍ଚ—2. A mould.
ढाँचा ୫ । ଫେସନ୍; ଧରଣ—5. Fashion; manner.
(ଧାଞ୍ଚ—ଅନ୍ୟରୂପ) ୪ । ଥାଟ; କୌଣସି ବସ୍ତୁର ବାହ୍ୟକ ସୀମା-
ରେଖାଯୁକ୍ତ ଆକାର—4 Framework; outline.

**ଧାଁଡେଇ**—ଗ୍ରା. ବଣ. ସ୍ତ୍ରୀ—ଦାଣ୍ଡେଇ ( ଦେଖ )
Dhāndei Dāndei ( See )

**ଧାଁ ଦଉଡ଼ (ଡ଼ା)**—ଦେ. ବ (ବହୁବାର ସୂଚକ; ଏକାର୍ଥକ ସହଚର)—
Dhān daurda(rdā) ୧ । ବହୁବାର ଦଉଡ଼ିବା କର୍ମ—
दौड़धूप, दौड़धाप 1. Running several times.
दौड़धाड़, दौड़धूप ୨ । ଉପର୍ଯ୍ୟୁପରି ଦଉଡ଼ିବା କର୍ମ—
[ଧାଁ ଧଉଡ଼(ଡ଼ା), ଧା ଧାପଡ଼(ଡ଼ା), 2. Repeated running.
ଧାଁଧପ(ପ)ଡ଼ (ଡ଼ା)—ଅନ୍ୟରୂପ]
ଧାଁଅଁ ଧପଡ଼କୁ ମାଣ୍ଡିଆ ଯାଇ
ବସିବା ଲୋକ ଉଦର ଖାଇ । ଉଗ ।

୩ । ଇତସ୍ତତଃ ଦଉଡ଼ିବା; ଦଉଡ଼ା ଦଉଡ଼ି —
3. Running to and fro, running about.
୪ । ଭୁସ୍‌ଯୁକ୍ତ କର୍ମ—4. Bustle; activity.

**ଧାଁସା**—ପ୍ରାଦେ (ଗଞ୍ଜାମ) ବି — ୧ । ରୀତି; ଶୃଙ୍ଖଳ;ପ୍ରଥା
Dhā̃sā 1. Custom
୨ । ଅଭ୍ୟାସ—2. Habit.
୩ । ଗତି—3. Manner; mode

**ଧାକଡ଼**—ପ୍ରାଦେ (ଗଡ଼ଜାତ) ବିଣ (ଗାଳରେ ବ୍ୟବହୃତ) ଅଯୋଗ୍ୟ—
Dhākarda Good for nothing; worthless
ପ୍ରାଦେ (ବସ୍ତର) ବିଣ— ବର୍ଣ୍ଣସଙ୍କର ଜାତିବିଶେଷ—
Name of a mixed caste of Hindus.
[ଦ୍ର—ଏ ଜାତି ଅଦମଜାତୀୟା ସ୍ତ୍ରୀ ଗର୍ଭରୁ ବ୍ରାହ୍ମଣ ଔରସରେ ଉତ୍ପନ୍ନ । ଏମାନେ ପଇତା ପକାନ୍ତି ଓ ବ୍ରାହ୍ମଣମାନଙ୍କର ରୀତି ନୀତି ଅନୁକରଣ କରନ୍ତି । ]

**ଧାକଲେଇ**—ପ୍ରାଦେ. ( ସମ୍ବଲପୁର ) ବିଣ—ସ୍ଥୂଳୋଦର; ପେଟା—
Dhākalei Big-bellied, pot-bellied.

**ଧାଗଣା**—ଦେ. ବି—ଧାମଣ ( ଗଛ ) ( ଦେଖ )
Dhāgaṇā Dhāmaṇa ( tree ) ( See )
ଧାଗଣା କାଠରେ କେତୁ କରୁଣ ବୋଦଣ—କଳାହାମ. ଗ୍ରାମାଚିତ୍ର ।

**ଧାଗା ( ଇତ୍ୟାଦି )**—ଦେ. ବି—ଢାଗା ଇତ୍ୟାଦି ( ଦେଖ )
Dhāgā ( etc ) Ḍhāgā etc ( See )

**ଧାଙ୍ଗଡ଼**—ପ୍ରାଦେ. ( ସମ୍ବଲପୁର )—ବି. ପୁଂ— ଅବିବାହିତ ଯୁବକ—
Dhāṅgarḍ Bachelor; an unmarried youth
ଧାଙ୍ଗରୁ, ଧାଙ୍ଗର } ଅନ୍ୟରୂପ — ପ୍ରାଦେ. ( କୋରାପୁଟ ) ବି—ଚାକର—
Servant.
ଧାଙ୍ଗଡ଼ୀ, ଧାଙ୍ଗରି } ସ୍ତ୍ରୀ — ପ୍ରାଦେ ( ସିଂହଭୂମ ) ବି. ( ଭୁଲ. ଏହି ଅର୍ଥରେ ହି. ଏହି ଶବ୍ଦ)—ଗୋରୁଚରାଳିଆ ଟୋକା—A young man or boy-servant tending cattle.

ଧାଙ୍ଗଡ **ଧାଁଗଡ଼** ଦେବି—୧ । ଛୋଟନାଗପୁର ଓ ହଜାରିବାଗ ଅଞ୍ଚଳର ଏକ ଜାତୀୟ ଜଙ୍ଗଲୀ ଲୋକ, ସାନ୍ତାଳ —
1. A class of aboriginal tribes of Chhotanāgapur and Hazāribāg; the Santals
୨ । ଦାକ୍ଷିଣାତ୍ୟର ନୀଚ ଶ୍ରେଣୀର ଅସ୍ପୃଶ୍ୟ ଜାତିବିଶେଷ, ଧେଡ଼; ମାଙ୍ଗଅଲେଲା ( ଏମାନେ କୂଅ ଓ ପୋଖରୀ ଖୋଳି ଜୀବିକା ଅର୍ଜନ କରନ୍ତି—ହି. ଶବ୍ଦସାଗର )—
2. A low untouchable caste of South India, a pariah
୩ । ଓଡ଼ିଶା ଗଡ଼ଜାତର ବନ୍ୟଜାତୀୟ ବ୍ୟକ୍ତିଙ୍କର ନୃତ୍ୟବିଶେଷ—3. A dancing prevalent among some wild tribes of Orissa states.
୪ । ବିନ୍ଧ୍ୟ ଆଦି ପର୍ବତବାସୀ ଅନାର୍ଯ୍ୟ ଜାତିବିଶେଷ ( ହି. ଶବ୍ଦସାଗର )—4. Name of a class of non-aryan wild tribes inhabiting the Bindhya hills

ଦେ ବିଣ—ଅସଭ୍ୟ; ବର୍ବର, ବଣୁଆ; ଜଙ୍ଗଲୀ —
Uncivilized; wild; jungly; aboriginal ( tribe or person ).

**ଧାଙ୍ଗଡ଼ା**—ପ୍ରାଦେ. ( ସମ୍ବଲପୁର, କନ୍ଧ କୋହ୍ଲଙ୍କ ବ୍ୟବହୃତ ) ବି. ପୁଂ—
Dhāṅgarḍā କନ୍ଧ, କୋହ୍ଲ, ସାନ୍ତାଳ ଆଦି ଅନାର୍ଯ୍ୟ ଜାତିର
**धाँगर** ଅବିବାହିତ ଯୁବକ ବା ଟୋକା - Unmarried youth
( ଧାଙ୍ଗଡ଼ୀ—ସ୍ତ୍ରୀ ) of the Khonds, Kohls, Santals and other wild tribes.
ପ୍ରାଦେ. (ସମ୍ବଲପୁର) ବିଣ—ଟୋକିଆ ଓ ଅବିବାହିତ (ବାଳକ)—
Unmarried and youthful ( boy ).

**ଧାଙ୍ଗଡ଼ୀ**—ପ୍ରାଦେ. ( ସମ୍ବଲପୁର; କନ୍ଧ କୋହ୍ଲଙ୍କ ମଧ୍ୟରେ ) ବି. ସ୍ତ୍ରୀ—
Dhāṅgarḍi ଅବିବାହିତା ଯୁବତୀ; ଟୋକୀ; ଝିଙ୍କୁଲୀ; ଅଭିଆଡ଼ୀ ଟୋକୀ—Unmarried young girl ( of wild tribes ).
[ ଦ୍ର—ଗ୍ରାମର ଅବିବାହିତ ଯୁବତୀମାନେ ଜଣେ ବୃଦ୍ଧାଙ୍କ ତତ୍ତ୍ୱାବଧାନରେ ଓ ଅବିବାହିତ ଯୁବକମାନେ ଜଣେ ବୃଦ୍ଧଙ୍କ ତତ୍ତ୍ୱାବଧାନରେ ଗ୍ରାମର ଦୁଇ ବିପରୀତ ପ୍ରାନ୍ତରେ ଦୁଇଟି ସ୍ୱତନ୍ତ୍ର ଘରେ ରାତ୍ରି ଯାପନ କରନ୍ତି । ଉତ୍ସବାଦି ସମୟରେ ଏମାନେ ଦଳବଦ୍ଧ ହୋଇ ନୃତ୍ୟ କରନ୍ତି । ଏହି ନୃତ୍ୟସମୟରେ ଯୁବକମାନେ ଯଥାକ୍ରମେ ସେମାନଙ୍କ ମନୋନୀତା ଯୁବତୀଙ୍କୁ ବିବାହ କରିବା ନିମନ୍ତେ ସ୍ଥିର କରନ୍ତି । ]
ପ୍ରାଦେ. ( ବସ୍ତର ) ବିଣ. ସ୍ତ୍ରୀ—ଯୁବତୀ ଓ ଅବିବାହିତା—
Young and unmarried (girl ).

**ଧାଙ୍ଗରା**—ପ୍ରାଦେ. ( ସମ୍ବଲପୁର ) ବି. ପୁଂ —ଯୁବକ, ଟୋକା—
Dhāṅgarā A youth; a young man.
( ଧାଙ୍ଗରୀ—ସ୍ତ୍ରୀ )

**ଧାଟୀ**—ଦେ. ବି—୧ । ( ସଂ ଧାବନ ) ଶତ୍ରୁଙ୍କୁ ଆକ୍ରମଣ—
Dhāṭi 1. Attacking an enemy; onslaught.
धाटी ୨ । ( ସଂ ଧାତ୍ରୁ ) ସମୂହ—
**धारी** 2. Number; collection; multitude.
ମର୍ମ ଗଣ ଫାଟି ରେ ତନ୍ତ୍ରନନା । ମାରମାର୍ଗଣ ଧାଟୀ ରେ —
କବିସୂର୍ଯ୍ୟ. ସଙ୍ଗୀତ ।
୩ । ଶତ୍ରୁର ବା ଅସ୍ତ୍ରଶସ୍ତ୍ରାଦିର ସମ୍ମୁଖୀନ ହେବା—
3. Encountering an enemy or a missile; act of facing an enemy or missile.
୪ । ଶ୍ରେଣୀ; ଧାଡ଼ି—4. Row; line; array

**ଧାଡ଼ଙ୍ଗା**—ଦେ ବିଣ—ଶୀର୍ଣ୍ଣ; ଧେଡ଼େଙ୍ଗା —
Dhārḍaṅgā Emaciated; weakened.
( ଧାଡ଼େଙ୍ଗା—ଅନ୍ୟରୂପ ) काहिल **दुबला**

**ଧାଡ଼ି** —ଦେ. ବି. ( ସଂ. ଧାଟୀ )—୧ । ସମୂହ—
Dhārḍi 1. A number of.
सावी କେ ବୋଇଲେ ଏହାର ଝୁଣ୍ଟିଆର ରଡ଼ି
**धारी** ଶୁଣି କାମ ମର୍ମେ ବିନ୍ଧିଛି ଶରଧାଡ଼ି - କୃଷ୍ଣସିଂ. ମହାଭାରତ, ବନ ।
୨ । ଶ୍ରେଣୀ— 2. Row; array.
କୁହେଳୀରେ କାଳବର୍ଣ୍ଣ ଭ୍ରମରମାନ ଗଁଦି ଧାଡ଼ି ହୋଇ ବେକ ଗଲେ—
ପ୍ରଧାନ:ଅ. ମହାଯାତ୍ରା

୩ । ରେଖା—3 Line; range.

୪ । ଗ୍ରନ୍ଥାଦିର ବିଷୟ, ଅନୁକ୍ରମ—
4. Scope; contents; range of a book.

ଯେ ଅବା ନେଇଁ କଥା ଲେଖି, ସବୁ ଅଛଇ ବେଦ ଧାଡ଼ି—
ପ୍ରାଚୀ. ଜଗନ୍ନାଥମାହାତ୍ମ୍ୟ ।

୫ । ରୀତି—5. Customs; manners.
( ଯଥା—ଏହା କରଣଘରର ଧାଡ଼ି । )

୬ । ଅନୁକ୍ରମ; କ୍ରମ—6. Succession; series

୭ । (ସ. ଧାବନ) ଦଉଡ଼ିବା—7. Running.

୮ । ସମୟ—8 Time

କଲୁ ବାହାରନ୍ତି ସର୍ପକୁ ଧରି, ପଡ଼ନ୍ତି ବିଷମ ଧାଡ଼ି—
ଭଞ୍ଜ. ବୈଦେହୀଶବିଳାସ ।

୯ । ପାଖ; ପାର୍ଶ୍ୱ—9. Side.

କୃଷ୍ଣ ଅର୍ଜୁନ ଦୁହେଁ ରଥରେ ଚଢ଼ି
ରହିଲେ ସେ ଶାଣ୍ଡବଳ ଦୁଇଧାଡ଼ି—କୃଷ୍ଣସିଂ. ମହାଭାରତ, ଆଦି ।

୧୦ । ( ସ. ଧାବନ ) ଯୁଦ୍ଧାର୍ଥ ଆକ୍ରମଣ—
10. Attacking with a view to fight; onslaught.

ଏବେ କୀଚକଙ୍କୁ ଲାଗିଲା କାମ ଧାଡ଼ି;
ମୋତେ ହରି ନେଉଛନ୍ତି ନଣି ଦନ ପଡ଼ି । କୃଷ୍ଣସିଂ. ମହାଭାରତ ।

୧୧ । ଯୁଦ୍ଧସଜ୍ଜା—11. Battle array

୧୨ । ଧର୍ମ ବା ନ୍ୟାୟାନୁମୋଦିତ ମାର୍ଗ; ସଦାଚାର—
12. Approved ways or conduct

କହିଲେ ଦ୍ରୋଣଗୁରୁ ସେ ଧରମ ଧାଡ଼ି ।
କୃଷ୍ଣସିଂ. ମହାଭାରତ. ବନ ।

୧୩ । ଧାଡ଼ି ପାଠ ( ଦେଖ )
13. Dhārdi pātha ( See )

ପ୍ରାଦେ. ( ବାଲେଶ୍ୱର, ମେଦିନୀପୁର, ଭୁଲ. ବ. ଏହି ଅର୍ଥରେ ଏହି ଶବ୍ଦ ) ବି. ପୁଂ. ଓ ସ୍ତ୍ରୀ—୧ । ( ସ୍ତ୍ରୀ ) ଜୀବଜନ୍ତୁଙ୍କ ମଧ୍ୟରେ ଯେଉଁ ମାଈ ଜୀବ ଅନେକ ଛୁଆ ଜନ୍ମ କରି ସାରିଅଛି—1. A female animal which has already borne many offsprings.

୨ । ( ପୁଂ. ) ଜୀବଙ୍କ ଦଳର ନେତା—
2. The head or leader of a herd of animals

୩ । ( ପୁଂ. ) ସନ୍ତାନୋତ୍ପାଦନକ୍ଷମ ପୁରୁଷ—
3. A grown up man who is capable of begetting children.

ପ୍ରାଦେ. ( ବାଲେଶ୍ୱର; ମେଦିନୀପୁର ) ବିଣ—ସନ୍ତାନୋତ୍ପାଦନକ୍ଷମ ଓ ଯୁବକ ( ବ୍ୟକ୍ତି )—( a male ) Young and capable of begetting children.

**ଧଡ଼ିଆ**—ପ୍ରାଦେ. ( ପୁରୀ ) ବିଣ—କଇଥା; ଦରସିଝା—
Dhārdiā Imperfectly boiled; parboiled.
( ଯଥା—ଧାଡ଼ିଆ ଚାଉଳ । )

ଦେ. ବିଣ. ( ଅନ୍ୟ ସଂଖ୍ୟାବାଚକ ଶବ୍ଦ ସଙ୍ଗେ ଯୁକ୍ତ, ଯଥା—ତିନିଧାଡ଼ିଆ )—ଏତେ ପଂକ୍ତିବିଶିଷ୍ଟ—Consisting of ( so many ) lines or rows.

**ଧାଡ଼ି କର୍**—ଦେ. ଅ (ଡ୍ରିଲ୍ ଓ ବ୍ୟାୟାମପ୍ରବର୍ତ୍ତିକ ଉଦ୍ୟମାନ ଯୁବକ
Dhārdi kar ବ୍ୟାୟାମୀମାନଙ୍କ ପ୍ରତି ଦିଆଯାଉଥିବା ଆଦେଶ—ଶବ୍ଦ)—
(ସମସ୍ତ ଛାତ୍ର) ଏକ ଧାଡ଼ିରେ ଲଗାଲଗି ହୋଇ ଠିଆହୁଅ—
( a term in drill ) Fall-in; fall into a row.

**ଧାଡ଼ିକିଆ**—ଦେ. ବିଣ—୧ । ଏକ ଧାଡ଼ିରେ ସମ୍ପୂର୍ଣ୍ଣ—
Dhārdikiā 1. Finished in one row or line.
୨ । ଯାହାର ଏକ ଧାଡ଼ି ବା ପଂକ୍ତି ମାତ୍ର ଅଛି—
2. Consisting of one line only

**ଧାଡ଼ିକିଧାଡ଼ି**—ଦେ କ୍ରି ବିଣ—୧ । ପ୍ରତ୍ୟେକ ପଂକ୍ତିରେ—
Dhārdikidhārdi 1. In each row or line.
ସାରିସାରି ୨ । ଧାଡ଼ିଧାଡ଼ି ହୋଇ; ଅନେକ ପଂକ୍ତିରେ—
**ସାରିସାରି** 2. In several rows.
ଧାଡ଼ିକୁଧାଡ଼ି } ଅନ୍ୟରୂପ ୩ । ଏକ ପଂକ୍ତିରେ ଅନ୍ୟ ପଂକ୍ତି—
ଧାଡ଼ିଧାଡ଼ିକ(କ)ର } 3 Row after row.

**ଧାଡ଼ି ଛାଡ଼ିବା**—ଦେ. କ୍ରି—ଅଗ୍ର ଛାଡ଼ିବା; ନିର୍ଦ୍ଦିଷ୍ଟ ସୀମାକୁ ଲଙ୍ଘିବା—
Dhārdi chhārdibā To stray beyond the fixed line
(ଧାଡ଼ିଟପିବା—ଅନ୍ୟରୂପ) or the limit laid down.

**ଧାଡ଼ିଦେବା**—ଦେ. କ୍ରି—୧ । ଯୁଦ୍ଧାର୍ଥ ଅଗ୍ରସରହେବା—
Dhārdi debā 1 To advance to fight.
ଧାଟିଦେଓଆ ୨ । ଆକ୍ରମଣ କରିବା—
**ଧାବାମାରନା** 2 To attack.
ଟାଡ଼ି ଲଗା(ଗେ) ଦିବା } ଅନ୍ୟରୂପ ଦନେ କୁଡାନ୍ତକ ପଡ଼ିବ ଧାଡ଼ି—
ଧାଡ଼ିପଡ଼ିବା } ପ୍ରାଚୀ. ପରବେଗୀତା

**ଧାଡ଼ିଧାଡ଼ିକା**—ଦେ. ବିଣ—ଧାଡ଼ି ଧାଡ଼ି ହୋଇ ସୁସଜ୍ଜିତ—
Dhārdidhārdikā Arranged in rows.
ସାରିସାରି **ସାରିସାରି**
(ଧାଡ଼ିଧାଡ଼ିଆ—ଅନ୍ୟରୂପ)

**ଧାଡ଼ି ଢୋକଡ଼ି**—ପ୍ରାଦେ (ଗଞ୍ଜାମ) ବି—ଘରୁ ଖେଳ—A kind of
Dhārdi dhokardi outdoor country game.
ପ୍ରାଦେ (ଗଡ଼ଜାତ) ବି—ବାଘବକରୀ ପରି ଏକପ୍ରକାର ଖେଳ—
A kind of indoor game.
[ ଦ୍ର—ଏଥିରେ ଦୁଇ ଜଣ ଖେଳାଳି ଖେଳନ୍ତି । ଜଣକର ସାର ଏକ ବର୍ଣ୍ଣର ୧୧ଟି ଗୋଡ଼ି, ଅନ୍ୟ ଜଣକର ଅନ୍ୟ ବର୍ଣ୍ଣର ୧୧ଟି ଗୋଡ଼ି । ଏକ ସୀମା ରେଖା ଉପରେ ୩ଟି ବର୍ଗକ୍ଷେତ୍ର ଭୂମିରେ କଟାଯାଇ ତହିଁରେ ୨୪ଟି ଘର ବା ଛକ ଅଙ୍କିତ ହୁଏ । ଦୁଇ ଜଣଙ୍କର ୨୨ଟି ସାର ବସିବା ପରେ ୨ଟି ଘର ବଧା ବା ବନ୍ଧକା ରହେ । ଯେଉଁ ଖେଳାଳିର ୩ଟି ସାର ଗୋଟିଏ ଧାଡ଼ିରେ ରହିଯାଏ, ସେଥିର ପାଇଁ ସେ ଜିତେ; ଏହା ଘଟିଲେ ଅନ୍ୟ ଖେଳାଳିର ଗୋଟିଏ ସାର ମରିଯାଏ । ଏହିପରି ଖେଳୁ ଖେଳୁ ଯାହାର ସବୁ ଗୋଡ଼ିଯାକ ମରିଯାଏ ସେ ହାରେ । ]

**ଧାଡ଼ି ନ ଛାଡ଼ିବା**—ଦେ କ୍ରି—ନିର୍ଦ୍ଦିଷ୍ଟ ପଥ ବା ସୀମାକୁ ଅତିକ୍ରମ ନ
Dhārdi na chhārdibā କରିବା—To keep one's self within the assigned line or boundary; not to stray beyond a specified limit.

**ଧାଡ଼ି ପହଣ୍ଡି** — ଦେ. ବି — ପହଣ୍ଡି ବିଜୟ (ଦେଖ)
Dhārdi pahandi — Pahandi bijaya (See)

**ଧାଡ଼ି ପାଠ** — ଦେ. ବି (ଧାଡ଼ି + ପାଠ) — ଗୁରୁଶାଳୀରେ ଖଡ଼ିରେ ଗୁରୁ
Dhārdi pātha — ଧାଡ଼ିରେ ଓଡ଼ିଆ ବର୍ଣ୍ଣମାଳା ଲେଖି ଶିଶୁମାନେ ପଢ଼ିବା ପାଠ—Learning of the Oria alphabets in village schools ( by writing them down in 4 lines
[ ଦ୍ର— ଗୁହାଳୀରେ ବାଳକମାନେ ଓଡ଼ିଆ ବର୍ଣ୍ଣମାଳାକୁ ଚାରୋଟି ଧାଡ଼ିରେ ଲେଖି ଶିଖନ୍ତି ।
୧ମ ଧାଡ଼ି—ସ୍ୱରବର୍ଣ୍ଣ, ୧୪ଟି ।
୨ୟ ଧାଡ଼ି—ବ୍ୟଞ୍ଜନବର୍ଣ୍ଣ କ ଠାରୁ ଠ, ୧୨ଟି ।
୩ୟ ଧାଡ଼ି—ଡ ଠାରୁ ଭ, ୧୨ଟି ।
୪ର୍ଥ ଧାଡ଼ି—ମ ଠାରୁ କ୍ଷ ଓ ଅନୁସ୍ୱାର, ବିସର୍ଗ, ଚନ୍ଦ୍ରବିନ୍ଦୁ, ୧୩ଟି ।]

**ଧାଡ଼ି ମରଦ** — ପ୍ରାଦେ (ବାଲେଶ୍ୱର, ମେଦିନୀପୁର) ବି. ପୁଂ —
Dhārdi marada — ସନ୍ତାନୋତ୍ପାଦନକ୍ଷମ ହୃଷ୍ଟପୁଷ୍ଟ ଯୁବକ— A grown up man who is capable of begetting children
(ଧାଡ଼ି ମର୍ଦ୍ଦ— ଅନ୍ୟରୂପ)

**ଧାଡ଼ିମୂଳିଆ** — ଦେ. ବିଣ— ୧ । ଶ୍ରେଣୀବଦ୍ଧ; ଶ୍ରେଣୀବଦ୍ଧହୋଇ ସଜ୍ଜିତ—
Dhārdimūlia — 1 Arranged in a row or rows
୨ । ଧାଡ଼ିବାହୁକ; ଧାଡ଼ି ଧାଡ଼ି ହୋଇ ଲେଖା ଯାଇଥିବା— 2 Written in serial lines, one below the other
ଦେ. କ୍ରି ବିଣ—୧ । ଧାଡ଼ିର ପ୍ରଥମରୁ ଆରମ୍ଭ କରି ଧାଡ଼ିର ଶେଷ ପର୍ଯ୍ୟନ୍ତ—1, From the beginning of a line to its end
୨ । ଧାଡ଼ିଧାଡ଼ିକରି; ବହୁ ପଂକ୍ତିରେ— 2 Serially; in rows; line by line.

**ଧାଡ଼ୁଆ** — ପ୍ରାଦେ (ବାଲେଶ୍ୱର) ବି (ଭୁଲ. ବ. ଏହି ଅର୍ଥରେ ଧାଡ଼ୀ—
Dhārduā — ୧ । ଗୋଧ; ଦଳର ବୁଢ଼ା ମାକଡ଼— 1. The head of a flock of monkeys.
ଧାଡ଼ୁଆ ମାଙ୍କଡ ପରି ଅମ କାହାକୁ ଉପରେ ଥାଁ ଦଉଡ ଲଗାଇଥାନ୍ତି ।
ଫକୀରମୋହନ. ଗଳ୍ପସ୍ୱଳ୍ପ ।
୨ । ଦଳର ସର୍ଦ୍ଦାର—2. Leader of a gang.

**ଧାତକୀ** — ସ.ବି. ସ୍ତ୍ରୀ (ଧା ଧାତୁ = ଧାରଣ କରିବା + କର୍ତ୍ତୃ ଅକ; ସ୍ତ୍ରୀ. ଈ)-
Dhātaki — ଧାଈ (ଫୁଲ ଓ ଗଛ) ୬ (ଦେଖ) Dhāi 6 (See)
ବହେ ଘଗ ଅତ ତରୁଣ ଧାତକୀ ଅନୁସରଣ ଝଟତ—ଭଞ୍ଜ. ବୈଦେହୀଶବିଳାସ ।

**ଧାତବ** — ସ. ବିଣ (ଧାତୁ + ସମ୍ବନ୍ଧାର୍ଥେ. ଅ)—୧ । ଧାତୁମୟ—
Dhātaba — 1. Metallic; made of metal.
୨ । ଧାତୁ ସମ୍ବନ୍ଧୀୟ— 2 Pertaining to metals.

**ଧାତା** — ସ. ବି. ପୁଂ (ଧା ଧାତୁ = ଧାରଣ କରିବା + କର୍ତ୍ତୃ. ତୃ; ଧାତୃ
Dhātā — ୧ମା. ୧ବ.)—୧ । ଈଶ୍ୱର—1. God; Providence; the Maker.
(ଧାତ୍ରୀ—ସ୍ତ୍ରୀ) ୨ । ବ୍ରହ୍ମା; ବିଧାତା— 2. Brahmā; the Creator.
କୃଷ୍ଣ କହେ ମୁଁ ଧାତାକୁ—ଜଗନ୍ନାଥ. ଦାଣୀଶମ୍ଭୁ ଗୀତ ।
୩ । ବିଷ୍ଣୁ—3. Bishnu.
୪ । ପିତା—4. Father.
୫ । ଆତ୍ମା—5. Soul.
୬ । ଅଣଷାଠି ବାୟୁ ମଧ୍ୟରୁ ଏକତମ— 6. One of the 49 winds ( according to the Hindu mythology).
୭ । ଦ୍ୱାଦଶ ଆଦିତ୍ୟ ମଧ୍ୟରୁ ଏକତମ— 7. One of the 12 forms of the Sun-god.
୮ । ଶିବ (ହି. ଶ.)—8. God Śiba.
୯ । ଶେଷନାଗ ( ହି. ଶବ୍ଦସାଗର )— 9 The king of serpents(who is said to bear the universe on his head).
୧୦ । ଜାର; ଉପପତି ( ପ୍ରକୃତିବାଦ )— 10. A paramour.
ସ. ବିଣ—୧ । ଧାରଣକର୍ତ୍ତା— 1. Holding; supporting
୨ । ପାଳନକର୍ତ୍ତା—2 Bringing up.
୩ । ସୃଷ୍ଟିକର୍ତ୍ତା—3. Creating.
୪ । ନିୟନ୍ତା, ନିୟାମକ—4. Regulating.
ଦେ. ବି — ବଳ; ଅଧିକାର—Power; authority.

**ଧାତି** — ଦେ. କ୍ରି. ବିଣ. (ସ. ଝଟିତି)—୧ । ଅତିଶୀଘ୍ର—
Dhāti — 1. Very quickly; sharp; soon
ଧାଁକବେ — ମସ୍ତିକ ଘର ଆଖି ଦେଲେ ଧାତି—ପ୍ରାଚୀ. ପ୍ରତାପ. ଗଣେଶେଣା ।
फौरन — ୨ । ତତ୍‌କ୍ଷଣାତ୍—2. Immediately; at once.
ଧାତିକାର, ଧାତିକାରେ } ଅନ୍ୟରୂପ
ନନ୍ଦ୍ରାବିତା ଯେବେ ଧାତିକାର,
କଳେ କଲେ ଲକ୍ଷଣ କେବର ।
ଦଶରଥ. ବନବାସମାସୃଣ ।
ଗୋପୀଙ୍କି ଦେଖି ଉତ୍ସବରେ
କାହ୍ନ ମିଳିଲେ ଧାତିକାରେ । ଭୂପତି. ପ୍ରେମପଞ୍ଚାମୃତ ।

**ଧାତିଙ୍ଗି** — ଦେ. ଅ (ଧ୍ୱନ୍ୟର୍ଥକ)—ବାଦ୍ୟ ଓ ନୃତ୍ୟର ଉଲ୍ଲୁଟିବିଶେଷ—
Dhātingi — A sound representing a formula in music and dancing.
ଧାତିନ, ଧାତିନା, ଧାତିନତିନା, ଧାତିନତିନା } ଅନ୍ୟରୂପ

**ଧାତୁ** — ସ. ବି (ଧା ଧାତୁ = ଧାରଣ କରିବା + କର୍ତ୍ତୃ. ତୁ)—
Dhātu — ୧ । ପରମେଶ୍ୱର, ଈଶ୍ୱର; ଧାତା; ପରମେଶ୍ୱର— 1. The Creator, God.
୨ । ସ୍ୱଭାବ; ପ୍ରକୃତି — 2. Nature.
୩ । ଦେହଧାରକ ଧର୍ମ ବା ପ୍ରକୃତି— 3. Bodily humour; temperament.
୪ । ଶୁକ୍ର—4. Semen; virile.
୫ । ନାଡ଼ୀ—5. Pulse.

୬ । ଶରୀରସ୍ଥ ସପ୍ତ ଧାତୁ; ରସ, ରକ୍ତ, ମେଦ, ମଜ୍ଜା, ଶୁକ୍ର, ମାଂସ ଓ ଅସ୍ଥି—6. The seven ingredients or constituents of the body.

୭ । ଶରୀରସ୍ଥ ତ୍ରିଧାତୁ, ବାତ, ପିତ୍ତ ଓ କଫ— 7. The three humours or elements regulating the physical system.

୮ । ଚେତନା; ଜୀବନୀଶକ୍ତି—8 Vitality; life.

୯ । ପଞ୍ଚଭୂତ; କ୍ଷିତି, ଅପ୍, ତେଜ, ମରୁତ୍ ଓ ବ୍ୟୋମ— 9 The five elements of the material universe.

୧୦ । ମୂଳ; ମୌଳିକ ବସ୍ତୁ— 10 Root, base; element

୧୧ । ଉପାଦାନ, ଉପକରଣ— 11. Material; component part, ingredient.

୧୨ । ତୈଜସ ପଦାର୍ଥ; ବିଶିଷ୍ଟ ଗୁଣଯୁକ୍ତ ଖନିଜ ପଦାର୍ଥ— 12. Metal

[ ଦ୍ର—ସପ୍ତ ଧାତୁ ଯଥା—ସ୍ୱର୍ଣ୍ଣ, ରୌପ୍ୟ, ତାମ୍ର, ରଙ୍ଗ, ଲୌହ, ସୀସା, ଦସ୍ତା । ଅଷ୍ଟ ଧାତୁ=ସପ୍ତ ଧାତୁ ଓ ପାରଦ । ]

୧୩ । (ବ୍ୟାକରଣ) ଭୂ,କୃ, ଗମ୍, ସ୍ଥା, ଦୃଶ୍ ପ୍ରଭୃତି କ୍ରିୟାବାଚକ-ପ୍ରକୃତି, ଶବ୍ଦର ମୂଳ ଉପାଦାନ—13 (grammar) Roots; verbal elements.

୧୪ । ଗନ୍ଧକ, ପାରଦ, ମନଃଶୀଳା, ହିଙ୍ଗୁଳ, ଗେରୁମାଟି ଆଦି ଖଣିଜ ବସ୍ତୁ—14. Minerals; ore; fossil.

୧୫ । (ସଙ୍ଗୀତ) ସପ୍ତସ୍ୱର—15. (music) Gamut.

[ ଦ୍ର—ସଙ୍ଗୀତର ସପ୍ତସ୍ୱର—ସା, ରି, ଗା, ମା, ପା, ଧା, ନି ଏମାନ ପ୍ରତ୍ୟେକେ ଗୋଟିଏ ଗୋଟିଏ ଧାତୁ । ]

୧୬ । ବୁଦ୍ଧ ବା ଅନ୍ୟ କୌଣସି ମହାତ୍ମାଙ୍କ ଅସ୍ଥି, ନଖ, ଦନ୍ତ, କେଶ ଆଦି, ଯାହା ଭକ୍ତମାନେ ଆଧାରରେ ରାଇଛି, ରଖି ପୂଜା କରନ୍ତି ( ହି. ଶବ୍ଦସାଗର )— 16. The remains or relics of any great man which his devotees preserve and worship.

ଧାତ ଦେ. ବି—୧ । ଶରୀର ମଧ୍ୟସ୍ଥ ସ୍ନାୟୁ—
**धात** 1. Nerves of the body.

୨ । ବ୍ୟକ୍ତିଗତ ଶାରୀରିକ ପ୍ରକୃତି— 2. The peculiar physical constitution of an individual; physique.

୩ । ମେହ ରୋଗ—3. Gonorrhoea.

**ଧାତୁ କାସୀସ**—ସ. ବି—ହୀରାକସ—
Dhātu kāsisa Green sulphate of iron.

**ଧାତୁକୀ**—ଦେ. ବି. ( ସ. ଧାତକୀ )—ଧାତକୀ ( ଦେଖ )
Dhātuki Dhātaki ( See )
ধাইফুল **धव, धवा**

**ଧାତୁ କୁଶଳ**—ସ. ବିଣ. ପୁଂ. ( ଧାତୁ+କୁଶଳ; ୭ମୀ ତତ୍ )—
Dhātu kuśala ୧ । ବ୍ୟାକରଣର ଧାତୁ ବିଦ୍ୟାରେ କୁଶଳ—
(ଧାତୁକୁଶଳା—ସ୍ତ୍ରୀ) 1 Well versed in the grammatical roots.

୨ । ସ୍ୱର୍ଣ୍ଣାଦି ଧାତୁ ସମ୍ବନ୍ଧରେ ସମ୍ୟକ୍ ଜ୍ଞାନବିଶିଷ୍ଟ— 2. Well versed in metallurgy.

**ଧାତୁ କ୍ଷୟ**—ସ. ବି. (ଧାତୁ+କ୍ଷୟ; ୬ଷ୍ଠୀ ତତ୍ )—
Dhātu kshaya ୧ । ଶୁକ୍ରକ୍ଷରଣ ରୋଗ—1. The disease of involuntary remission of semen

୨ । ପ୍ରମେହ—2. Gonorrhoea

୩ । ପ୍ରଦର ରୋଗ—3. Leucorrhœa.

୪ । ( ବହୁବ୍ରୀହି ) ମାରାତ୍ମକ କାଶରୋଗବିଶେଷ— 4 A kind of fatal cough; consumption

**ଧାତୁ ଗରମ**—ଦେ. ବି—ଦେହ ଗରମ ହେବା—
Dhātu garama The preponderance of heat in the system.
ধাতগরম **धात गरमी**
(ଧାତୁ ତେଜ—ଅନ୍ୟରୂପ)

**ଧାତୁ ଗର୍ଭ**—ସ ବିଣ ( ଧାତୁ+ଗର୍ଭ; ବହୁବ୍ରୀହି )—
Dhātu garbha ଯେଉଁ ମୃତ୍ତିକା ମଧ୍ୟରେ ଧାତୁ ଥାଏ—
(ଧାତୁଗର୍ଭିକ—ଅନ୍ୟରୂପ) Metalliferous (soil).

ସ ବି—ଯେଉଁ ଡବାରେ ବୌଦ୍ଧମାନେ ବୁଦ୍ଧଦେବଙ୍କ ଦେହର କୌଣସି ଅଂଶ (ଯଥା—କେଶ, ନଖ, ଦନ୍ତ) ରଖି ପୂଜା କରନ୍ତି ( ହି. ଶବ୍ଦସାଗର )— A box in which relics of the Buddha are preserved and worshipped.

**ଧାତୁ ଘଟନ**—ଦେ. ବିଣ. ( ସ. ଧାତୁ+ଘଟିତ )—
Dhātu ghatana ଧାତୁନିର୍ମିତ—
(ଧାତୁମନ୍ତ—ଅନ୍ୟରୂପ) Composed of Dhātu.

ଅଧାତୁମନ୍ତ ଅସ୍ଥା ହୋଏ
ଧାତୁ ଘଟଣ ଦେହ ବହେ । ଜଗନ୍ନାଥ. ଭାଗବତ ।

**ଧାତୁ ଘଟିତ**—ସ. ବିଣ. ( ଧାତୁ+ଘଟିତ )—
Dhātu ghatita ୧ । ଧାତୁ ସମ୍ପର୍କୀୟ—
1. Pertaining to Dhātu.

୨ । ଧାତୁ ମିଶ୍ରିତ—2. Mixed with Dhātu.

**ଧାତୁଘ୍ନ**—ସ. ବି. ( ଧାତୁ=ଶରୀରସ୍ଥ ବାତ ପିତ୍ତାଦି+ହନ୍ ଧାତୁ=
Dhātughna ନାଶ କରିବା+କର୍ତ୍ତୃ ଅ )—କାଞ୍ଜି (ଦେଖ)
(ଧାତୁନାଶକ—ଅନ୍ୟରୂପ) Kānji (See)

ସ ବିଣ—ଯଦ୍ୱାରା ଶରୀରସ୍ଥ ଧାତୁ ନଷ୍ଟ ହୁଏ— Destroying the elements of the body.

**ଧାତୁଚଲା**—ଦେ. ବି—୧ । ମେହ ରୋଗ—
Dhātuchalā 1. Gonorrhoea.

ଧାତୁ ପଡ଼ିବା, ଧାତୁ ରୋଗ } ଅନ୍ୟରୂପ

୨ । ଧାତୁକ୍ଷୟ ରୋଗ— 2. Abnormal wastage of semen.
ধাতের ব্যারাম **धातछिन**

**ଧାତୁତତ୍ତ୍ୱ**—ସ. ବି ( ଧାତୁ+ତତ୍ତ୍ୱ )—
Dhātu tattwa ଯେଉଁ ବିଦ୍ୟାଦ୍ୱାରା ଖନିଜ ପଦାର୍ଥମାନଙ୍କର ସ୍ୱରୂପ ଓ ଗୁଣାଗୁଣ କଥିତ ହୁଏ—
ଧାତୁବିଦ୍ୟା, ଧାତୁବିଜ୍ଞାନ } ଅନ୍ୟରୂପ
Minerology; metallurgy.

ଧାତୁ ଦୁର୍ବଳତା—ସ. ବି. ( ଧାତୁ+ଦୁର୍ବଳତା, ୬ଷ୍ଠୀ ତତ୍ )—
Dhātu durbalatā ଶାରୀରିକ ବା ସ୍ନାୟବିକ ଦୁର୍ବଳତା—
(ଧାତୁ ଦୌର୍ବଲ୍ୟ—ଅନ୍ୟରୂପ) Nervous debility.

ଧାତୁ ଦ୍ରାବକ—ସ. ବି (ଧାତୁ+ଦ୍ରୁ ଧାତୁ=ଦ୍ରବ କରିବା+କର୍ତ୍ତୃ. ଅକ)—
Dhātu drābaka ସୋହାଗା—Borax.
ଧାତୁବଲ୍ଲଭ } ଅନ୍ୟରୂପ ;
ଧାତୁମାରଣୀ }

ଧାତୁ ନରମ—ଦେ. ବି—ଶରୀରରେ ଶ୍ଳେଷ୍ମାଧିକ୍ୟ—
Dhatu narama Preponderance of phlegm
ধাত নরম धातनरम in the system.
(ଧାତୁ ଥଣ୍ଡା—ଅନ୍ୟରୂପ)

ଧାତୁ ପାତ୍ର—ସ. ବି. ( ଧାତୁ+ପାତ୍ର; ମ. ପ. କ୍ଲୀ )—
Dhātu pātra ଧାତୁନିର୍ମିତ ପାତ୍ର—Metallic pot.

ଧାତୁ ପୁଷ୍ଟି—ସ. ବି. ( ୬ଷ୍ଠୀ ତତ୍; ଧାତୁ+ପୁଷ୍ଟି )—ଶରୀରରେ
Dhātu pushti ବଳାଧାନ—Conservation of bodily strength; nutrition.

ଧାତୁପୁଷ୍ପୀ—ସ. ବି—ଧାଇ ୬ ( ଦେଖ )
Dhātupushpī Dhāi 6 ( See )
(ଧାତୁପୁଷ୍ପିକା—ଅନ୍ୟରୂପ)

ଧାତୁପୋଷକ—ସ. ବିଣ. ( ଧାତୁ+ପୋଷକ )—
Dhātuposhaka ଶରୀରର ପୁଷ୍ଟିକର—Nutritious.
(ଧାତୁ ପୁଷ୍ଟିକର, ଧାତୁଭୃତ୍)—ଅନ୍ୟରୂପ
(ଧାତୁପୋଷଣ—ବି)

ଧାତୁ ପ୍ରତ୍ୟୟ—ସ. ବି. ( ଦ୍ୱନ୍ଦ୍ୱ, ଧାତୁ+ପ୍ରତ୍ୟୟ )—
Dhātu pratyaya ୧ । (ବ୍ୟାକରଣ) ଧାତୁ ଓ ତହିଁରେ କରାଯିବା ପ୍ରତ୍ୟୟ—1. A verb and its affix.
୨ । ପଦନିଷ୍ପନ୍ନ ହୋଇଥିବା ଧାତୁ ଓ ପ୍ରତ୍ୟୟ, ଶବ୍ଦର ବ୍ୟୁତ୍ପତ୍ତି
2. Etymology of a word.

ଧାତୁ ବର୍ଦ୍ଧକ—ସ. ବିଣ. ( ୬ଷ୍ଠୀ ତତ୍, ଧାତୁ+ବର୍ଦ୍ଧକ )—
Dhātu barddhaka ବୀର୍ଯ୍ୟ ବୃଦ୍ଧିକାରକ; ଶୁକ୍ରବର୍ଦ୍ଧକ—
Increasing semen.

ଧାତୁବାଦ—ସ. ବି—୧ । ତନ୍ତ୍ରଶାସ୍ତ୍ରୋକ୍ତ ୬୪ କଳା ବା ବିଦ୍ୟା ମଧ୍ୟରୁ
Dhātubāda ଏକତମ, ଯଦ୍ଦ୍ୱାରା ଖଣିରୁ ବାହାରିଥିବା ମିଶ୍ରିତ ଧାତୁକୁ ସଫା କରାଯାଏ ଓ କୌଣସି ମିଶ୍ରିତ ଦ୍ରବ୍ୟରୁ ଭିନ୍ନ ଭିନ୍ନ ଧାତୁ ପୃଥକ କରାଯାଏ—1. Metallurgy
୨ । ରସାୟନ ବିଦ୍ୟା,ଯେଉଁ ବିଦ୍ୟା ପ୍ରଭାବରେ ନିକୃଷ୍ଟ ଧାତୁକୁ ସୁନା ବା ରୁପାରେ ପରିଣତ କରାଯାଇ ପାରେ—
2. Alchemy.

ଧାତୁବାଦୀ—ସ. ବି. ପୁଂ. ( ଧାତୁ+ବଦ୍ ଧାତୁ+ଇନ୍ )—
Dhātubādī ୧ । ଧାତୁ ବିଦ୍ୟାରେ ପାରଦର୍ଶୀ—
(ଧାତୁବାଦିନୀ—ସ୍ତ୍ରୀ) 1. Metallurgist; minerologist.
ଧାତୁବିଦ୍ } ଅନ୍ୟରୂପ
ଧାତୁବିଦ୍ }
୨ । ରସାୟନ ଶାସ୍ତ୍ରର ସହାୟତାରେ ନିକୃଷ୍ଟ ଧାତୁକୁ ସୁନା ବା ରୁପାରେ ପରିଣତକାରୀ ବ୍ୟକ୍ତି—2. Alchemist; a person who can turn base metals into gold or silver by alchemy.

ଧାତୁ ବିଦ୍ୟା—ସ. ବି. ସ୍ତ୍ରୀ. (ଧାତୁ+ବିଦ୍ୟା)—
Dhātu bidyā ଯେଉଁ ବିଦ୍ୟାରୁ ଧାତୁ ବିଷୟରେ ନାନା ତଥ୍ୟ ଶିକ୍ଷା କରାଯାଏ—Metallurgy; alchemy.

ଧାତୁ ବୈରି—ସ. ବି. (ଧାତୁ+ବୈରିନ୍, ୧ମା. ୧ବ )—ଗନ୍ଧକ—
Dhātu bairi Sulpher.

ଧାତୁଭୃତ୍—ସ. ବି. (ଧାତୁ+ଭୃ ଧାତୁ=ଧାରଣ କରିବା+କର୍ତ୍ତୃ. କ୍ୱିପ୍)—
Dhātubhrut ପର୍ବତ—Mountain.
ସ ବିଣ - ଶରୀରସ୍ଥ ଧାତୁର ପୋଷକ—Nutritious.

ଧାତୁମୟ—ସ. ବିଣ. ( ଧାତୁ+ବିକାରାର୍ଥେ. ମୟ )—
Dhātumaya ୧ । ଧାତୁପୂର୍ଣ୍ଣ—1. Metallic.
(ଧାତୁମୟୀ—ସ୍ତ୍ରୀ) ୨ । ଧାତୁ ଦ୍ୱାରା ଗଠିତ—
2. Made of metal
୩ । ଯହିଁରେ ଅନେକ ଧାତୁ ମିଳେ; ଧାତୁବହୁଳ—
3. Abounding in metals.

ଧାତୁ ମର୍ମ—ସ. ବି—ଧାତୁବାଦ ( ଦେଖ )
Dhātu marma Dhātubāda ( See )

ଧାତୁ ମଳ—ସ. ବି. ( ଧାତୁ+ମଳ)—
Dhātu mala ୧ । ଧାତୁମୟ ଦ୍ରବ୍ୟ ଉପରେ ପଡ଼ିବା କଳଙ୍କି—
1. Rust on metals.
୨ । ଲୁହାଗୁହ; ମଣ୍ଡୁର—2 Rust of iron.
୩ । (ବୈଦ୍ୟକ) କଫ, ପିତ୍ତ, ଝାଳ, ନଖ, କେଶ, ଲୋମ,ନସ, ଶିଂଘାଣି, କାନଗୁହ ଆଦି ଶରୀରର ମଳ (ହି. ଶ )—
3. The excretions of the body

ଧାତୁମାକ୍ଷିକ—ସ. ବି—୧ । ଧାତୁପର ଆଭାଯୁକ୍ତ ପଦାର୍ଥବିଶେଷ—
Dhātumākshika 1 Pyrites.
୨ । ସ୍ୱର୍ଣ୍ଣ, ରୌପ୍ୟ ଓ ତାମ୍ରଆଦି ଧାତୁ ସଙ୍ଗେ ଗନ୍ଧକମିଶ୍ରିତ ଅବସ୍ଥାରେ ଖଣିରୁ ଉତ୍ପନ୍ନ ପଦାର୍ଥ—
2. Sulphides of different metals

ଧାତୁମାରଣୀ—ସ ବି. (ଧାତୁ+ମୃ ଧାତୁ ଣିଚ୍ ମାର ଧାତୁ+ଇନ୍+
Dhātumāriṇī ସ୍ତ୍ରୀ ଈ)—ସୋହାଗା (ହି. ଶବ୍ଦସାଗର)—
Borax.

ଧାତୁରା—ଦେ. ବି. [ସ. ଧୁସ୍ତୁ(ସ୍ତୂ)ର; ଧତ୍ତୂର]—ଧତୁରା (ଦେଖ)
Dhāturā Dhaturā (See)

ଧାତୁ ରାଗ—ସ. ବି. (ଧାତୁରୁ ଉତ୍ପନ୍ନ ରାଗ; ମ. ପ. କ୍ଲୀ)—
Dhātu rāga ହିଙ୍ଗୁଳ, ଗେରୁଆଦି ରଙ୍ଗ—
Dyes produced from minerals; mineral dye.

ଧାତୁରାଜକ—ସ ବି. (ଧାତୁ=ଦେହସ୍ଥ ରସାଦି+ରାଜନ୍=ପ୍ରଧାନ+
Dhāturājaka କ)—ଶୁକ୍ର; ବୀର୍ଯ୍ୟ—Semen; virile.

ଧାତୁରାଫୁଲିଆ—ଦେ. ବିଣ—ଦୁଦୁରାଫୁଲର ପାଙ୍ଖୁଡ଼ା ଅଗପରି ଫନ୍ଦଥିବା
Dhāturāphuliā (କଂସା ବାସନ)—(bellmetal utensil)
Having the rim shaped like the rim of a Dhāturā flower.

ଧାତୁ ଶେଖର—ସଂ. ବି—୧ । କାସୀସ; ହିରାକସ—
Dhātu śekhara 1. Sulphate of iron.
୨ । ସୀସା ଧାତୁ—2. Lead.

ଧାତୁ ସଞ୍ଜ୍ଞ—ସଂ.ବି. (ବହୁବ୍ରୀହି;ଧାତୁ + ସଞ୍ଜ୍ଞା)—ସୀସା ଧାତୁ (ହି. ଶ.) —
Dhātu samjña Lead.

ଧାତୁ ସ୍ତମ୍ଭକ—ସ ବଣ. (୬ଷ୍ଠୀ ତତ୍, ଧାତୁ+ସ୍ତମ୍ଭକ) —
Dhātu stambhaka ଶୁକ୍ରସ୍ତମ୍ଭନକାରୀ (ଦ୍ରବ୍ୟ); ଯେଉଁ ଦ୍ରବ୍ୟ ସେବନ ବା ବ୍ୟବହାର କଲେ ସହଜରେ ଶୁକ୍ର ସ୍ଖଳିତ ହୁଏ ନାହିଁ—Restraining the flow of semen.

ଧାତୁହନ—ସଂ. ବି. (ଧାତୁ+ହନ୍ ଧାତୁ+ଅ)—ଗନ୍ଧକ (ହି. ଶ.)—
Dhātuhana Sulpher.

ଧାତୁପଲ—ସଂ. ବି. (ଧାତୁ=ଖନିଜ ପଦାର୍ଥ+ଉପଲ=ପଥର)—ଖଡ଼ି -
Dhātūpala Chalk.

ଧାତୃପୁତ୍ର—ସଂ. ବି. (୬ଷ୍ଠୀ ତତ୍; ଧାତୃ+ପୁତ୍ର)—
Dhātruputra ବ୍ରହ୍ମାଙ୍କ ପୁତ୍ର ସନତ୍କୁମାର—
Sanatkumāra; the son of Brahmā.

ଧାତୃପୁଷ୍ପିକା—ସଂ. ବି—ଧାଈ ୬ (ଦେଖ)
Dhātrupushpikā Dhāi 6 (See)
(ଧାତୃପୁଷ୍ପୀ—ଅନ୍ୟରୂପ)

ଧାତ୍ୱର୍ଥ—ସଂ. ବି. (୬ଷ୍ଠୀ ତତ୍; ଧାତୁ+ ଅର୍ଥ)—
Dhātwartha ୧ । (ବ୍ୟାକରଣ) ଧାତୁର ଅର୍ଥ—
1. The meaning of a verbal root.
୨ । କୌଣସି ଶବ୍ଦର ଧାତୁରୁ ଉଦ୍ଭୂତ ଅର୍ଥ; ମୌଳିକ ବା ପ୍ରଥମାର୍ଥ
2. The root; meaning of a word-the primary meaning of a word which follows from the root.

ଧାତ୍ର—ସଂ. ବି. (ଧା ଧାତୁ=ଧାରଣ କରିବା+କର୍ତ୍ତୃ. ତ୍ର)—ପାତ୍ର—
Dhātra A receptacle; a vessel.

ଧାତ୍ରିକା—ସଂ. ବି. ସ୍ତ୍ରୀ. (ଧାତ୍ରୀ+କ+ସ୍ତ୍ରୀ. ଆ)—ଆମଳକୀ, ଅଁଳା—
Dhātrikā Emblic Myrabalan.

ଧାତ୍ରୀ—ସଂ. ବି. ସ୍ତ୍ରୀ. (ଧା ଧାତୁ=ଧାରଣ କରିବା; ପାଳନ କରିବା+ କର୍ତ୍ତୃ. ତୃ=ଧାତୃ+ସ୍ତ୍ରୀ. ଈ)—୧ । ମାତା—
Dhātri 1. Mother.
୨ । ଦୁର୍ଗା—2. Goddess Durgā.
୩ । ଉପମାତା, ଧାଈ—
3. Nurse; foster-mother.
୪ । ଯେ ଅନ୍ୟର ପିଲାକୁ ସ୍ତନ୍ୟପାନ କରାଇ ପାଳେ—
4. Wet nurse.
୫ । ପୃଥିବୀ—5. The earth.
୬ । ପ୍ରସୂତି ଓ ସନ୍ତାନର ଯତ୍ନ କରିବା ସ୍ତ୍ରୀ ବୈଦ୍ୟ—
6. Midwife; obstetrix.
୭ । ଆମଳକୀ; ଅଁଳା—7. Emblic Myrabalan; Phyllanthus Emblica.
୮ । ଗଙ୍ଗାନଦୀ (ହି. ଶବ୍ଦସାଗର)—8. The Ganges.
୯ । ଭୂମି (ହି. ଶବ୍ଦସାଗର)—9. The soil; earth.
୧୦ । ସେନା, ଫଉଜ (ହି. ଶବ୍ଦସାଗର)—10. Army
୧୧ । ଗାଈ (ହି ଶବ୍ଦସାଗର)—11. Cow.
୧୨ । ଅର୍ଯ୍ୟା; ଛନ୍ଦୋବିଶେଷ—
12 A kind of Sanscrit metre.
(ଯଥା—ଏଥିରେ ୧୬ଟି ଗୁରୁ ଓ ୧୬ଟି ଲଘୁ ମାତ୍ରା ଥାଏ—ହି. ଶବ୍ଦସାଗର ।)
୧୩ । ଗାୟତ୍ରୀ ସ୍ୱରୂପିଣୀ ଭଗବତୀ (ହି. ଶବ୍ଦସାଗର)—
13. Durgā in the shape of Gāyatri; Gāyatri personified.

ଧାତ୍ରୀ ଚିକିତ୍ସା—ଦେ. ବି. (ଆଧୁନିକ ପ୍ରୟୋଗ)—
Dhātri chikitsā ପ୍ରସୂତି ଓ ନବଜାତ ସନ୍ତାନର ଚିକିତ୍ସା —
Midwifery; obstetrics.

ଧାତ୍ରୀ ପତ୍ର—ସଂ. ବି. (ଧାତ୍ରୀ+ପତ୍ର)—୧ । (୬ଷ୍ଠୀ ତତ୍) ଅଁଳାଗଛର
Dhātri patra ପତ୍ର—1. The leaf of Embelic Myrabalan.
୨ । (ବହୁବ୍ରୀହି) ତାଲୀସପତ୍ର (ହି. ଶବ୍ଦସାଗର) (ଦେଖ)
2. Tālisa patra (See)

ଧାତ୍ରୀ ପୁତ୍ର—ସଂ. ବି. (୬ଷ୍ଠୀ ତତ୍; ଧାତ୍ରୀ+ପୁତ୍ର)—୧ । ନଟ—
Dhātri putra 1. A dancer.
୨ । ଉପମାତାର ପୁତ୍ର —2. Foster-brother.

ଧାତ୍ରୀ ଫଳ—ସଂ.ବି—ଅଁଳା କୋଳି—The fruit or berry of
Dhātri phala the Embelic Myrabalan.

ଧାତ୍ରୀ ବିଦ୍ୟା—ଦେ. ବି. (ଆଧୁନିକ ପ୍ରୟୋଗ)—ଧାତ୍ରୀ ଚିକିତ୍ସା(ଦେଖ)—
Dhātri bidyā Midwifery.

ଧାତ୍ରେୟିକା—ସଂ. ବି. ସ୍ତ୍ରୀ.—( ଧାତ୍ରେୟୀ+ସ୍ୱାର୍ଥେ. କ; ସ୍ତ୍ରୀ. ଆ )—
Dhātreyikā ଧାତ୍ରେୟୀ (ଦେଖ)—Dhātreyi (See)

ଧାତ୍ରେୟୀ—ସଂ. ବି. ସ୍ତ୍ରୀ —(ଧାତ୍ରୀ+ଏୟ+ସ୍ତ୍ରୀ. ଈ)—୧ । ଧାଈ—
Dhātreyi 1. Midwife; nurse.
୨ । ଉପମାତାର କନ୍ୟା—
2. A foster-sister (Apte).

ଧାନ—ସଂ. ବି. (ଧା ଧାତୁ+ଅଧିକରଣେ ଅନ)—୧ । ସ୍ଥାନ—
Dhāna 1. Place; habitation.
(ଧାନୀ, ଧାନିକା—ସ୍ତ୍ରୀ) ୨ । ଆଧାର—
2. Container; holder; receptacle.

ଧାନ ଦେ. ବି. (ସଂ. ଧାନ୍ୟ)—୧ । ଶସ୍ୟବିଶେଷ; ତୁଷାବୃତ ତଣ୍ଡୁଳ; ଭାରତ ଆଦି ଗ୍ରୀଷ୍ମପ୍ରଧାନ ଦେଶର କୃଷିଜାତ ପ୍ରଧାନ ଖାଦ୍ୟ ଶସ୍ୟ—1. Paddy; unhusked rice; Oryza Sativa.
[ ଦ୍ର—ଧାନ ଭାରତବର୍ଷରେ ବୈଦିକ ଯୁଗରୁ ଖାଦ୍ୟ ଶସ୍ୟ ରୂପେ ଚଳିଆସୁଛି । ଭାରତବର୍ଷ, ବ୍ରହ୍ମଦେଶ, ଚୀନ, ଯାପାନ, ଅଷ୍ଟ୍ରେଲିଆ, ଆମେରିକା, ଇଟାଲି, ସ୍ପେନ୍ ଆଦି ଦେଶର ଗ୍ରୀଷ୍ମପ୍ରଧାନ ଅଞ୍ଚଳମାନଙ୍କରେ ଏହାର କୃଷି ହୁଏ । ଧାନ ଫସଲ ପାଇଁ ବର୍ଷା ବା ସେଚନ ପ୍ରକ୍ରିୟା ଦ୍ୱାରା ଜଳ ବିଶେଷ ଦରକାର । ଉପଯୁକ୍ତ ସମୟରେ ପାଣି ନ ପାଇଲେ ଧାନ ଗଛ ମରିଯାଏ । ଧାନରୁ ଯେଉଁ ଚାଉଳ ବାହାରେ

ତାହା ସରୁ ଓ ମୋଟ ଏବଂ ଧଳା ଓ ନାଲି ଭେଦରେ ଦୁଇ ଦୁଇ ପ୍ରକାରର । ଧାନର ବର୍ଣ୍ଣ ସାଧାରଣତଃ ଈଷତ୍ ହଳଦିଆ, କିନ୍ତୁ କେତେକ ଧାନର ବର୍ଣ୍ଣ ନାଲିଆ, କଳା, ଗାଢ଼ ହଳଦିଆ ଓ ମାଟିଆ ହୁଏ । ଧାନ ଗଛର ମୂଳ ଅଂଶ ଛଣ ବା ନଡ଼ା ହୁଏ । ବାଉଁଶ ଗଛ ମଧ୍ୟ ଧାନ ଜାତୀୟ ଗଛ । ବାଉଁଶ ଗଛରେ ବହୁ ବର୍ଷ ପରେ ଫୁଲ ଫୁଟି ସେଥିରୁ ଧାନ ପରି ଏକ ପ୍ରକାର ଶସ୍ୟ ବାହାରେ । ଧାନକୁ ଢିଙ୍କିରେ ବା ଉଦୁଖଳ ମୂଷଳରେ ବା କଳଦ୍ୱାରା କୁଟି ଧାନରୁ ଚାଉଳ ବାହାର କରାଯାଏ । ସେ ଚାଉଳକୁ ସିଦ୍ଧ କରି ଅନ୍ନରୂପେ ଲୋକେ ଖାଆନ୍ତି, ଚାଉଳକୁ ପାଣି ଓ ଦୁଧରେ ସିଝାଇ ଖିରି କରି ଖାଆନ୍ତି ଓ ଚାଉଳକୁ ବାଟି ବା ଚୁନା କରି ଚୁଲ୍ଲିରେ ପିଠା ତିଆରି କରି ଖାଆନ୍ତି । ଧାନକୁ ଖରାରେ ଶୁଖାଇ କୁଟିଲେ ତହିଁରୁ ଅରୁଆ ଚାଉଳ ହୁଏ । ଧାନକୁ ଈଷତ୍ ସିଦ୍ଧ କରି ଶୁଖାଇ କୁଟିଲେ ସେଥିରୁ ଉସୁନା ଚାଉଳ ହୁଏ । ଧାନକୁ ସିଝାଇ ଓ ସଢାଇ ସେଥିରୁ ଏକପ୍ରକାର ମଦ୍ୟ (ଅଲକ୍ଷି) ତିଆରି କରାଯାଏ । ସାଧାରଣତଃ ଗରିବ ଲୋକମାନେ ମୋଟ ଧାନର ଚାଉଳର ଭାତ ଖାଆନ୍ତି ଓ ବଡ଼ଲୋକମାନେ ସରୁ ଚାଉଳର ଭାତ ଖାଆନ୍ତି ।

ଏ ଦେଶରେ ୩ ପ୍ରକାର ଧାନ ଫସଲ ହୁଏ :— ବିଆଳି ଶାରଦ, ଓ ଡାଲୁଆ । ଓଡ଼ିଶାର ଭିନ୍ନ ଅଞ୍ଚଳରେ ଧାନର ନାମ ଭିନ୍ନ ଭିନ୍ନ । ବିଆଳି ବା ଆଶୁ—ଏହା ବର୍ଷାଦିନରେ ପାଚେ । ଷାଠିକା, ବୋଦଡ଼ା, ପଟିଆ କାକୁଁଅଇଲା, ପରଙ୍ଗା ଓ ନୂଆଗଡ଼, କାବୁଲୀ ଆଦି ଧାନ ଏହି ଶ୍ରେଣୀର ଅନ୍ତର୍ଗତ ।

ଶାରଦ— ଏହାକୁ ମଧ୍ୟ ହୈମନ୍ତିକ ବା ଶାଳି କୁହାଯାଏ । ଉଚ୍ଚ ଜମିରେ ହେବା ଶାରଦ ଧାନକୁ ଲଘୁଧାନ ଓ ନୀଚ ଜମିରେ ହେବା ଧାନକୁ ମୋଟ ବା ବଡ଼ ଧାନ ବୋଲାଯାଏ । ଏହା ଶୀତଦିନରେ ପାଚେ ।

ସରୁ ଶାରଦ ଧାନର ଭିନ୍ନ ଭିନ୍ନ ନାମ-ଦଅଣାଗୁଣ୍ଡି, ଗୋପାଳଭୋଗ, ବାସବନ୍ତି, ହଳଦୀଗୁଣ୍ଡୀ, ବହୁବାଙ୍କୀ, ରାମଚନ୍ଦ୍ର ଭୋଗ, ପଳାଶଫୁଲ, ଗୁଆପେଣ୍ଡୀ, ବଉଳଫୁଲ, ନଡ଼ିଆଫୁଲ, ନାଲିଟୁଲସୀ, ନରସିଂହଭୋଗ, ହରିବୋଲି, ତୁଳସୀଫୁଲ, ପିମ୍ପୁଡ଼ିବାସ, କଳାଜୀରା, ରାଇଶିରୀ, ଲାଙ୍ଗୁଡ଼ା, କେଦାରଗୁଣ୍ଡି, ଖୀରାଗୁଣ୍ଡି, ସୁନାଖଳି ଓ ସୁବର୍ଣ୍ଣକେତକୀ, (ବାଲେଶ୍ୱରରେ) ଅଗିଣା, ଗଗୁଆଦୁଲେଇ ଇତ୍ୟାଦି ।

ମୋଟ ଶାରଦ ଧାନର ଭିନ୍ନ ଭିନ୍ନ ନାମ-କଖାରୁଆ, ବାଙ୍କୋଇ, ଛେଳଚମ୍ପା, କୋଇଲି, କଦଳୀଆ ରମ୍ଭା, ରଙ୍ଗେଇଶିଣା, ନଦିଆ, ପାଣିକଜଳ, ବୋଇତାଳ ପଖିଆ, ସରଗଡ଼ା, ବଙ୍କୀ, ବଳଭଦ୍ର ପଖିଆ, ହାତିପଞ୍ଜରା, ରାବଣା, ବଉଳା, ଦୁଣ୍ଡୀ, ହରଶଙ୍କର, କୋଇଲିବାଇ, ବାଉଁଶମୂଳୀ, ହଳଦିଆମୁଗୁରା, ଧଳାପକ୍ଷିଆ, କଳାପକ୍ଷିଆ, କୁକୁଡ଼ା ଜଟ, ସର୍ଅଁସ୍ତ ।

ଦା(ଡା)ଲୁଅ—ଏହା ଗ୍ରୀଷ୍ମକାଳରେ ଜଳା ଭୂମି ବା ପାଟରେ ଆବାଦ ହୁଏ । ଏହା ଗିଆ ଓ କାସୁଣ୍ଡା ଏହି ଦୁଇ ଶ୍ରେଣୀର ଅନ୍ତର୍ଗତ ।

ଉକ୍ତ ୩ ଶ୍ରେଣୀର ଧାନ ବ୍ୟତୀତ ଆଉ ଏକ ଜାତୀୟ ଅସହୃପ୍ରସୂତ ଧାନ୍ୟ କ୍ଷେତ୍ରରେ ଓ ପାଣିକଟରେ ମନକୁ ହେବାର ଦେଖାଯାଏ । ଏହାକୁ ବାଲୁଙ୍ଗା କୁହାଯାଏ । (ବାଲୁଙ୍ଗା ତଳେ ନୋଟ୍ ଦେଖ) ।

୨ । ଏକ ରତିର ଚତୁର୍ଥାଂଶ; ଏକ ଧାନ ଓଜନ —
2. Weight of one grain.
ନେଦାଡ କେଭେ ଚନା କେତେକ ଧାନ
ଏହା କହିବା ହେଇ ଜନାର୍ଦ୍ଦନ—ପ୍ରାଚୀ. ପରଚେଗାଁଡା ।
୩ । ଅତି ଅଳ୍ପ ପରିମାଣ—
3. A little quantity.
୪ । ବାଉଁଶ ଗଛରେ ଜନ୍ମିବା ଧାନ ପରି ଶସ୍ୟ—
4. Paddy from bomboo trees.

**ଧାନ ଅଗାଡ଼ି**—ଦେ. ବି—ଯେଉଁ ଧାନର ଖୋସା ଭିତରେ ଶସ ବା ଚାଉଳ ନ ଥାଏ—Empty grains of paddy.
Dhāna agārdi
ଆଗଡା, ଚିଟା **धानकी खखड़ी**

**ଧାନ ଅମଳ କରିବା**—ଦେ.କ୍ରି — କଟା ହୋଇଥିବା ଧାନ ହଲାକୁ ବେଙ୍ଗଲା ପକାଇ, ବାଡ଼େଇ ବା ଗୋଡ଼ରେ ମଳି ଗୁଣ୍ଠାରୁ ଧାନକୁ ପୃଥକ୍ କରିବା—To thresh out paddy grains from paddy-sheaves
Dhāna amala karibā
ଧାନମାଡା
**धानउदजाना**

**ଧାନ ଉଡ଼ା(ଡ଼େ)ଇବା**—ଦେ କ୍ରି—ଅମଳ କରିବା ପରେ କୁଲା ସାହାଯ୍ୟରେ ଧାନରୁ ଟୁଷ, ଅଗାଡ଼ି ଓ ମଇଳା ଉଡ଼ାଇ ତାକୁ ସଫା କରିବା—To winnow paddy after threshing.
Dhāna urdā(rde)ibā
ধানেব ধুলো উড়ান
**धान उड़ाना**

**ଧାନ ଉସୁଆଁ**—ଦେ. ବି. ( ସଂ. ଧାନ୍ୟ ଓ ଉଷ୍ଣ )—ଉସୁନା ଚାଉଳ ବାହାର କରିବା ପାଇଁ ଧାନକୁ ହାଣ୍ଡିରେ ବସାଇ ଅର୍ଦ୍ଧସିଦ୍ଧ କରିବା ପ୍ରକ୍ରିୟା —The act of half boiling paddy
Dhāna ushuāñ
ধান সিজান
**धान उबालना**

**ଧାନ ଉସେଇଁବା**—ଦେ. କ୍ରି ( ସଂ. ଧାନ୍ୟ+ଉଷ୍ଣ )—ଉସୁନା ଚାଉଳ ପ୍ରସ୍ତୁତ କରିବା ପାଇଁ ଧାନକୁ ଅଗ୍ନି ଓ ଜଳ ସାହାଯ୍ୟରେ ଅର୍ଦ୍ଧସିଦ୍ଧ କରିବା—To half-boil paddy for preparing parboiled rice.
Dhāna usheiñbā
ধান সিদ্ধ করা
**धान उबालना,**
**धान उषिनना**

**ଧାନ ଓଳିଆ**—ଦେ. ବି—ଧାନ ସଞ୍ଚୟ କରିବା ନିମନ୍ତେ ନିର୍ମିତ କୁଟାର ପିଣ୍ଡାକାର ଆଧାର—A ball-shaped packet made of straw tied round by straw ropes for storing paddy.
Dhāna oliā
ধানেব পঁড়া
**धानकी मोड़ी**
( ଧାନପୁଡ଼ା—ଅନ୍ୟରୂପ )

**ଧାନକ**—ସଂ. ବି ( ଧା ଧାତୁ+ଅନ+କ )—୧ । ଧନିଆ—
Dhānaka 1. Coriander.
( ଧାନୀ—ଅନ୍ୟରୂପ ) ୨ । ଏକ ରତିର ଚତୁର୍ଥାଂଶ ଓଜନ—
2 A weight of $\frac{1}{4}$ rati.

**ଧାନକଜଳ**—ପ୍ରାଦେ. ( ଗଡ଼ ଜାତ ) ବି—ଧାନ ସାହାରି ( ଦେଖ )
Dhānakajala Dhāna sāhāra ( See )

**ଧାନ କଟା**—ଦେ. ବି. ( ସଂ. ଧାନ୍ୟ+କର୍ତ୍ତନ )—ପାଚିଲା ଧାନ ଗଛକୁ କାଟିବା କର୍ମ—The reaping of paddy plants.
Dhāna katā
ধানকাটা **धनकटी**

**ଧାନ କଣ୍ଠା ଝଡ଼ା**—ଦେ. ବି—ଧାନହଲା ଗୋଛମାନ ଝଡ଼ାଇ ଅସି ପଡ଼ିବା ...ଲେ ଗଦା ମଣ୍ଡି ହେବା
Dhāna kanthā jhardā

ଝଡ଼ୁଆଧାନ ସମୟରେ ଖଳାରେ ଯେଉଁ ଧାନ ହଳାରୁ ମଳକୁ ଝଡ଼ି ପଡ଼ିଥାଏ—The grains of paddy that fall from the bundles or sheaves on the threshing floor before they are stacked in a heap.

**ଧାନ କାଟିବା**—ଦେ. କ୍ରି—ପାଚିଲା ଧାନ ଗଛକୁ କାଟିବା—
Dhāna kāṭibā To reap the ripe paddy plants.
ধানকাটা
**धान काटना**
[ ଦ୍ର—ଧାନ କାଟିବାର ଦୁଇ ପ୍ରକାର ରୀତି ପ୍ରଚଳିତ ଅଛି । ଧାନ ଗଛରୁ ଧାନକେଣ୍ଡାମାନ ଆଗ କାଟି ନେଇ ପରେ ନଡ଼ା ବା ଛଣ ସକାଶେ ଅବଶିଷ୍ଟ ଅଂଶ କାଟିବା ପ୍ରଣାଳୀକୁ ଅଗକାଟ କହିବା କହନ୍ତି । ମୂଳକାଟ କରିବା ରୀତିରେ ଧାନଗଛମାନ ମୂଳରୁ କଟା ଯାଇ ବିଲରେ କଚଡ଼ା ପଡ଼େ । କଚଡ଼ା ଶୁଖିବା ପରେ ତାହାର ଅଗ କଟା ଯାଏ ଓ ମୂଳ ଅଂଶମାନ ନଡ଼ାରୂପେ ବିଡ଼ା ବନ୍ଧାଯାଏ ପ୍ରଥମ ପ୍ରକାର କଟା ଧାନକୁ 'ଅଗ କଟା' ଧାନ ଓ ଦ୍ୱିତୀୟ ପ୍ରକାର କଟା ଧାନକୁ 'ମୂଳ ବାଡ଼ିଆ' ଧାନ କୁହାଯାଏ । ]

**ଧାନ କାଡ଼ିଆ**—ଦେ. ବି—୧ । ଧାନ ଅମଳ ସମୟରେ ଦାଣ୍ଡ ଭାଉ ଅପେକ୍ଷା ନିର୍ଦ୍ଦିଷ୍ଟ ପରିମାଣରେ ବେଶୀ ଭାଉରେ ଖାତକଠାରୁ ଧାନ ପାଇବା ଚୁକ୍ତିରେ ପୂର୍ବରୁ ଟଙ୍କା କରଜ ଦେବା—
Dhāna kāṛdhiā
**धानपर रुपिया ताड़ना**
1 Advancing money to a debtor to get paddy from him at the harvest time at a rate higher than the prevailing rate.
୨ । ଉପରୋକ୍ତ ରୀତିରେ ଧାନ ଋଣ କରିବା—
2. Borrowing paddy on interest under the above condition.

**ଧାନ କୁଟା**—ଦେ. ବି—ଚାଉଳ ବାହାର କରିବା ପାଇଁ ଧାନ କୁଟିବା କର୍ମ-
Dhāna kuṭā The act of husking paddy.
ধান ভানা **धनकुट्टी**

**ଧାନ କୁଟାଳି(ଳୀ)**—ଦେ. ବି. ପୁଂ. ଓ ସ୍ତ୍ରୀ - ଧାନ କୁଟିବା ବ୍ୟକ୍ତି—
Dhāna kuṭāḻi(ḻī) One who husks paddy.
ধান ভানুরী; ধানভানানিয়া **धानकुट्टा**

**ଧାନ କୁଟିବା**—ଦେ. କ୍ରି—ଧାନ କୁଟି ଚାଉଳ କରିବା—
Dhāna kuṭibā To husk paddy into rice.
ধান ভানা; ধান কাঁড়া **धान कूटना**

**ଧାନ କେଣ୍ଡା**—ଦେ. ବି—ଶସ୍ୟଯୁକ୍ତ ଧାନର ଶାଖା—
Dhāna keṇḍā An ear of paddy.
ধানের শীংস **धानका शीस**

**ଧାନକେରା**—ଦେ. ବି—ଏକାଧିକ ଧାନକେଣ୍ଡାମାନଙ୍କ ଗୁଚ୍ଛ—
Dhānakerā A bunch of ears of paddy.
**धानकि ज़ुट्टी**
ପଶିବା ଧାନକେରା ସାଉଣ୍ଟି ଖାଇବ—କୃଷ୍ଣସିଂହ, ମହାଭାରତ ।

**ଧାନ କୋଠି**—ଦେ. ବି—ଯେଉଁ ଘରେ ଧାନ ସଞ୍ଚିତ ହୁଏ—
Dhāna koṭhi Granary
ধানের গোলা
**धानकी कोठी, धानबखाड़ी**
ଉପାର ଗୋଶାଳା, ଖଳା, ମଣ୍ଡା ଧାନ କୋଠି—
ରଧାନାଥ ମହାଯାତ୍ରା ।
( ଧାନଅମାର; ଧାନବଦାଡ଼ି—ଅନ୍ୟରୂପ )

**ଧାନକ୍ଷେ(ଖେ)ତ**—ଦେ. ବି. ( ସଂ. ଧାନ୍ୟ+କ୍ଷେତ୍ର )—ଯେଉଁ କ୍ଷେତ୍ରରେ ଧାନ୍ୟ ଗଛ କୃଷିଦ୍ୱାରା ଉତ୍ପାଦିତ ହୋଇ-ଥାଏ—Paddy field.
Dhānakshe(khe)ta
ধানের ক্ষেত
**धानकी खेती**

**ଧାନ ଖଣି**—ଦେ. ବି ( ସଂ. ଧାନ୍ୟ+ଖନି )—ଭୂଗର୍ଭରେ ଯେଉଁ ଗର୍ତ୍ତ ଖୋଳା ଯାଇ ତହିଁରେ ଧାନ୍ୟ ସଞ୍ଚିତ ହୁଏ—
Dhāna khaṇi Pits for storing paddy
ধানেবখনি
**धान रखनेका गड्ढा**

**ଧାନଜମି**—ଦେ. ବି (ସଂ. ଧାନ୍ୟ ଓ ଫା ଜମିନ୍)—ଯେଉଁ ଜମିରେ ଧାନ ଫସଲ ଉତ୍ପାଦିତ କରାଯାଇପାରେ—Paddy land; land fit for growing paddy.
Dhāna jami
ধানজমী
**धनकर, धनखट**

**ଧାନ ଖଳା**—ଦେ. ବି—ଯେଉଁ ସ୍ଥାନରେ ଧାନ ଅମଳ କରାଯାଏ—
Dhāna khaḻā Threshing floor.
ধানের খামার, **धानका खलिहान**

**ଧାନ ଖାତା**—ଦେ. ବି (ସଂ. ଧାନ୍ୟ+ଯେଉଁ ଖାତାରେ ଲେଖାପଢ଼ି କରି ମହାଜନ ଖାତକକୁ ଧାନ କରଜ ଦିଏ—
Dhāna khātā A loan register of paddy.
ধানখাতা **धानकि बही**

**ଧାନ ଦାଦନ ଦେବା**—ଦେ. କ୍ରି—ଧାନ ଋଣ ଦେବା—
Dhāna dādana debā To advance paddy loans

**ଧାନ ଦେଢ଼ି**—ଦେ. ବି (ସଂ. ନାମ. ଧାନ୍ୟବର୍ଦ୍ଧନ; ସଂ. ଧାନ୍ୟ+ଅର୍ଦ୍ଧାର୍ଘ୍ୟ)
Dhāna deṛhi ୧ । ଧନ ଋଣ ଦେଇ ବର୍ଷ ଶେଷରେ ଖାତକ ଠାରୁ ମୂଳ ଧାନ ଓ ତାହାର ଅର୍ଦ୍ଧେକ ସୁଧ ଆଦାୟ କରିବା ରୀତି—1 Usury in paddy.
ধান কর্জা
**धानका करजा**
୨ । ଧାନ କରଜ—2 Paddy lending.
( ଯଥା—ସାଧାରଣତଃ ଏ ଦେଶରେ ଆଜିକାଲି ଦେଢ଼ି ରୀତିରେ ସୁଧ ଆଦାୟ ହୁଏ ନାହିଁ; 'ଧାନ ଦେଢ଼ି' କହିଲେ ଋଣରୂପେ ନିଆ ଯିବା ଧାନ ଉପରେ ½ ଅଂଶ (ସ୍ୱାଇ) ସୁଧ ସାଧାରଣତଃ ଆଦାୟ କରାଯାଏ । ମାତ୍ର ପୂର୍ବକାଳରେ ½ସୁଧ ଆଦାୟର ରୀତି ଥିବାରୁ 'ଧାନ ଦେଢ଼ି' ଶବ୍ଦ ଏ ପର୍ଯ୍ୟନ୍ତ ଚଳୁଅଛି । )

**ଧାନ ଧର୍ମ**—ଦେ. ବି ( ଧାନ+ନିରର୍ଥକ ଧର୍ମ ସହଚର )—
Dhāna dharma ୧ । ଧାନ; ଧାନ୍ୟରୂପ ସମ୍ପତ୍ତି—
ধান টান 1 Paddy etc, paddy considered as wealth.
**धान मन**
(ଧାନ ଧରମ—ଅନ୍ୟରୂପ) ୨ । ଧାନ ଆଦି ଶସ୍ୟ—
2. Paddy etc; paddy and other grains.
୩ । ଗୃହସ୍ଥର ସଞ୍ଚିତ ଧାନ୍ୟ—
3 Paddy stored by a house-holder for future use.
(ଯଥା—'ଯାହା ଘରେ ଧାନ ଧର୍ମ ନାହିଁ ତାହା ଘରେ ଝିଅକୁ ବାହା ଦେବ ନାହିଁ । )

**ଧାନ ବଛା**—ଦେ. ବି—ଧାନ ବିଲରେ ଉଠିଥିବା ଘାସ ଓ ଅନାବନା ଗଛକୁ ଉପାଡ଼ି ଦୂର କରିବା କ୍ରିୟା—
Dhāna bāchhā The act of weeding out grass etc from paddy fields.
ধাননিড়ান
**धानकामौना, धाननिकौनो**

**ଧାନ ବାଛୁବା**—ଦେ. କ୍ରି—ଧାନକ୍ଷେତରୁ ଘାସ ଓ ଅନାବନା ଗଛମାନ
Dhāna bāchhibā ଉପାଡ଼ିବା—To weed out grass
ଧାନ নিড়ান etc from amongst the paddy plants
**धान कमाना**

**ଧାନ ବାଡେଇବା**—ଦେ. କ୍ରି—ଧାନକେଣ୍ଡାରୁ ଧାନକୁ ପୃଥକ୍ କରିବା
Dhāna bārdeibā ସକାଶେ ଧାନକେଣ୍ଡାକୁ ପଟା ଉପରେ ପିଟିବା
ধান ঝাড়া To beat the paddy stalks on a
**धान पाटना, धानफ्टाना** plank in order to separate
(ଧାନ ଝାଡ଼ିବା—ଅନ୍ୟରୂପ) the corns from them

**ଧାନ ବିଲ**—ଦେ. ବି—୧ । ଯେଉଁ କ୍ଷେତ୍ରରେ ଧାନ ଫସଲ କରାଯାଏ—
Dhāna bila 1 Paddy field
ধানের খেত ୨ । ଯେଉଁ କ୍ଷେତ୍ରରେ ଧାନଗଛ ବର୍ତ୍ତମାନ ଅଛି—
**धनहर, धानकि खेती** 2 The field on which paddy
(ଧାନକ୍ଷେତ, ଧାନକିଆର—ଅନ୍ୟରୂପ) plants are standing

**ଧାନ ବୁଣିବା**—ଦେ କ୍ରି—(ସଂ. ଧାନ୍ୟ + ବପନ)-ଧାନର ବିହନ ବିଲରେ
Dhāna bunibā ବପନ କରିବା—To sow paddy
ধানবোনা, **धानबोना**

**ଧାନ ବେଉ(ହୁ)ଡ଼ିବା**—ଦେ. କ୍ରି—ଧାନକ୍ଷେତରେ ଧାନଗଛ ସଙ୍ଗେ ବଢ଼ି
Dhāna beu(hu)rdibā ଥିବା ଘାସକୁ ମାରିବା ଓ ମାଟିକୁ
[ଧାନ ବେଉ(ହୁ)ଷଣ କରିବା—ଅନ୍ୟରୂପ] ହାଲୁକା କରିବା ନିମନ୍ତେ
ବର୍ଷାଋତୁରେ ପାଣି ଥିବାବେଳେ ତାକୁ ଗୋଟିଏ
ଲଙ୍ଗଳ ପୂର୍ବର ଚଷିବା । [ଏହି କ୍ରିୟାରେ ଧାନଗଛ
ସବୁ ସ୍ଥାନାନ୍ତରିତ ହୋଇଯାଏ]—
(ଧାନ ବେଉଡ଼ା—ବି) To puddle the paddy field
ধানকাডান **धान बिराहना**
(ଧାନ ବେଉଷଣ କରିବା—ଅନ୍ୟରୂପ)

**ଧାନ ବେଙ୍ଗ(ଙ୍ଗୋ)ଲା**—ଦେ. ବି.—ଧାନ ପାଚିବା ପରେ କିଆରିରୁ କଟା
Dhāna benga (ngo)lā ହୋଇ ଆସିଥିବା ଧାନହଲାମାନ
ধানমাড়া ଖଳାରେ ମେରୁଖୁଣ୍ଟ ଚାରି ପାଖେ ବିସ୍ତୃତ କରି ତହିଁ
**धानदौनि** ଉପରେ ବଳଦଙ୍କୁ ଚଳାଇ କେଣ୍ଡାରୁ ଧାନକୁ ପୃଥକ୍
**धानमंडाइ** କରିବାର ରୀତି—The mode of threshing
paddy by making bullocks tread on
the sheaves spread on a courtyard
by being driven round a central
post.

**ଧାନ ବେଙ୍ଗୁଳିବା**—ଦେ କ୍ରି—୧ । ଧାନକେଣ୍ଡାରୁ ଧାନକୁ ପୃଥକ୍ କରିବା
Dhāna bengulibā ପାଇଁ ବଳଦଙ୍କ ଗୋଡ଼ରେ ଚାପା
ଧାନବେଙ୍ଗୁଲା(ଲେ)ଇବା } ମକଚାଇବା—1. To
ଧାନବେଙ୍ଗଲା ପକା(କେ)ଇବା—ଅନ୍ୟରୂପ } have the paddy-
ଧାନବେଙ୍ଗୁଲା(ଲେ)ଇବା } grains threshed
ধানমাড়া out from the stalks by having the
**धानदौनीकरवाना** sheaves trodden by bullocks
୨ । ବଳଦଙ୍କ ଖୁରାରେ ଧାନହଲାମାନ ମକଚା ହେବା ପାଇଁ
ବନ୍ଧନମୁକ୍ତ ଧାନହଲାମାନଙ୍କୁ ମେରୁଖୁଣ୍ଟର ଚାରିପାଖରେ
ବୃତ୍ତାକାରରେ ସଜାଡ଼ି ରଖିବା—2. To arrange
paddy sheaves round the central post in
a threshing floor to have them trodden
upon by bullocks tethered together and
driven round the post
[ ଦ୍ର—ପ୍ରଥମେ ଖଳାରେ ମେରୁଖୁଣ୍ଟ ପୋତି ସେ ମେରୁଖୁଣ୍ଟର
ଚାରିପାଖେ ବୃତ୍ତାକାରରେ ଧାନହଲାମାନଙ୍କ ବନ୍ଧନକୁ ଛିନ୍ନ କରି
ଧାନକେଣ୍ଡାମାନଙ୍କୁ ବିଛାଇ ଦିଆଯାଏ । ତତ୍ପରେ ମେରୁରେ ଏକାଧିକ
ଫାଶ ବା ଘାଗୁଡ଼ି ଲାଗିଥିବା ଖଣ୍ଡେ ଲମ୍ବ ଦଉଡ଼ି (ଦାଉଣା)
ଲଗାଯାଇ ସେହି ଦାଉଣୀରେ ଏକାଧିକ ବଳଦ ବନ୍ଧାଯାଇ ବୃତ୍ତର
ବ୍ୟାସାର୍ଦ୍ଧରୂପେ ଯୋଗ୍ୟ ହୁଅନ୍ତି । ବଳଦମାନେ ମେରୁଖୁଣ୍ଟ କେନ୍ଦ୍ର
କରି ଦାଉଣୀକୁ ବ୍ୟାସାର୍ଦ୍ଧ କରି ଘାଣ୍ଟିର ବୃତ୍ତ ଚଲେ ବିଛାଇ
ଦିଆଯାଇ ଥିବା ଧାନହଲାକୁ ଖୁରାରେ ମକଚିଲେ ଧାନ ଶସ୍ୟଯାକ
ଅଲଗା ହୋଇଯାଏ ଓ ନଡ଼ା ମକଚି ହୋଇ ପାଳ ବା କୁଟାରେ
ପରିଣତ ହୁଏ । ଉପରୁ କୁଟାପାଳ ଝାଡ଼ିଦେଲେ ଛିଣ୍ଡାକୁଟା,
ଅଗାଡ଼ି ଓ ତୁଷ ମିଶା ଯେଉଁ ଧାନ ତଳେ ରହିଯାଏ ତାକୁ ପବନ
ସାହାଯ୍ୟରେ ବା କୁଲାରେ ବିଞ୍ଚି ଉଡ଼ାଇଲେ ବା କୁଲାରେ ପାଛୁଡ଼ିଲେ
ସେଥିରୁ କୁଟାଗୁଣ୍ଡା, ତୁଷ, ଅଗାଡ଼ି ବାହାରିପାଇ କିମ୍ବା ଧାନ
ରହିଯାଏ । ]

**ଧାନ ଭୁଙ୍ଗିବା**—ଦେ. କ୍ରି—ଧାନଗଛର କେଣ୍ଡା ବାହାରଲେ ସିଧା ହୋଇ
Dhāna bhāngibā ଠିଆ ହୋଇଥିବା ଧାନଗଛମାନ କେଣ୍ଡାର
ଧାନରେ ବାଉଁଶ ଦେବା } ଅନ୍ୟରୂପ ଭାରରେ ଇତସ୍ତତଃ
ଧାନରେ ବାଉଁଶ ଚଳା(ଲା)ଇବା } ଲଇଁ ପଡ଼ିବା ବିଷୟ
ধানে মই দেওয়া ନିବାରଣ କରିବା ପାଇଁ ଠିଆ ହୋଇଥିବା ଧାନ
ଗଛମାନଙ୍କ ଉପରେ ଗୋଟିଏ ଲମ୍ବ ବାଉଁଶ ଚଳାଇବା—
To draw a long bamboo over the
paddy plants when the ears have come
out, so as to make the stalks lie on the
field in a regular order.
[ ଦ୍ର—ଏପରି କଲେ ଧାନଗଛମାନ ଗୋଟିଏ ଆଡ଼କୁ ଢଳି
ପଡ଼େ ଓ ଧାନକଟାଳିମାନଙ୍କୁ ଧାନ କାଟିବାକୁ ସୁବିଧାଜନକ ହୁଏ ।
ଯେଉଁ ଧାନରେ ବାଉଁଶ ଦିଆ ଯାଇ ନ ଥାଏ ସେ ଧାନଗଛମାନ
କେଣ୍ଡା ଧରି ଏଣେ ତେଣେ ଢଳିଥାଏ । ଏଥିଲାଗି ଧାନ କାଟିଲାବେଳେ
ପ୍ରତ୍ୟେକ ଗଛର ମୂଳକୁ କଟାଳି ସୁବିଧା ଅନୁସାରେ ଆସୁଡ଼ି କରି
ପାରେ ନାହିଁ ଓ ଧାନ କାଟିବାକୁ ବହୁତ ସମୟ ଲାଗେ । ]

**ଧାନ ମଡ଼ା**—ପ୍ରାଦେ (ସମ୍ବଲପୁର) ବି (ତୁଳ. ହି. ମଁଡ଼ାଇ=ବେଙ୍ଗଲା)—
Dhāna mardā ବଳଦଦ୍ୱାରା ଧାନକୁ ବେଙ୍ଗଲା ପକାଇବା—
Garnering of paddy sheaves by having
them trodden over by a number of
tethered bullocks.

**ଧାନ ମରେଇ**—ଦେ. ବି—ଧାନ ସଞ୍ଚୟ କରିବା ସକାଶେ ପାଳ ମଳାରେ
Dhāna marei ପ୍ରସ୍ତୁତ ଆଧାରବିଶେଷ—A big recepta-
ধান মরেই, ধানের হামাব cle made of plaited straw for
**धानका गोल** storing large quantities of paddy.
(ଧାନମଲେଇ, ଧାନମେଦ—ଅନ୍ୟରୂପ) [ ଦ୍ର—ଏହା ଧାନ
କୋଠିର କାର୍ଯ୍ୟ କରେ; ମରେଇର ଚାରିପାଖ ଓ ତଳିଅଁରଦେଶ

ଲୁଚାଦ୍ୱାରା ଚକ୍ରମରୂପେ କୁଆଣି କରି ଯାଇଥାଏ । ଏଥିଲାଗି ବର୍ଷାପାଣି ମରେଇ ଭିତରକୁ ପଶେ ନାହିଁ । ]

**ଧାନ ମଳିବା**—ଦେ. କ୍ରି—ଧାନଗଛରୁ ଧାନକୁ ପୃଥକ୍ କରିବା କ୍ରମରେ ଧାନ କେଣ୍ଡାମାନ ଗୋଡ଼ରେ ମକଚିବା—
Dhāna maḷibā — To tread and twist paddy sheaves or plants to separate the corn from the stalks.
ধানমলা
**धानमाड़ना, धानरौंदना**
(ଧାନ ମକଚିବା—ଅନ୍ୟରୂପ)
[ଧାନ ମଳା(ଲେ)ଇବା, ଧାନ ମକଚା(ଚେ)ଇବା—ଣିଜନ୍ତରୂପ ]

**ଧାନ ମହାଜନି**—ଦେ ବି—ଧାନ ଋଣ ଦେଇ ଖାତକଠାରୁ ମୂଳ ଓ ନିର୍ଦ୍ଧାରିତ ସୁଧ ଧାନ ଆଦାୟ କରିବା ସ୍ୱତ୍ତ—
Dhāna mahājani — Investment of paddy in loan repayable in kind.
ধানের মহাজনী
**धानकी महाजनी**

**ଧାନ ମାଣିକା ଗୁରୁବାର**—ଦେ. ବି—ମାର୍ଗଶିର ମାସର ଗୁରୁବାରମାନ—
Dhāna māṇikā gurubāra — The Thursdays of the month of Mārgaśira.

**ଧାନ ମାପୁଣି**—ଦେ. ବି ( ସଂ ଧାନ୍ୟମାପ୍ତ )—୧ । ଯେଉଁ ବ୍ୟକ୍ତି ଜମିଦାରଙ୍କର ବା ମହାଜନଙ୍କର ସମସ୍ତ କାରବାରୀ ଧାନ ମାପିବାପାଇଁ ନିଯୁକ୍ତ ଥାଏ—1. A servant who is employed to measure the paddy of his master.
Dhāna māpuṇi
୨ । ଧାନ ମାପିବା ଲୋକ ମାପିବାର ପାରିଶ୍ରମିକ ସ୍ୱରୂପ ଭରଣକେ ଯେଉଁ ନିର୍ଦ୍ଦିଷ୍ଟ ପରିମାଣ ଧାନ ପାଏ—2 A quantity of paddy given at a fixed rate to a person who measures paddy
[ଦ୍ର—ଧାନ ମହାଜନୀରେ ଧାନ ମାପିବାଲୋକ (ମାପୁଣି) ସାଧାରଣତଃ ଭରଣକେ ଏକଗୌଣି ମାପୁଣି ପାଏ ଓ ଧାନମହାଜନ ହିସାବ ଲେଖିବା କର୍ମଚାରୀ (କରଣ) ଭରଣକେ ଏକ ଗୌଣୀ କରଣି ପାଏ । ଖାତକମାନଙ୍କଠାରୁ ଏହିକ ଧାନ ସୁଦ ଅପେକ୍ଷା ଅଧିକା ନିଆଯାଏ । ]

**ଧାନ ମୁକୁଲ**—ଦେ. ବି—କଟାଳି ବଳରୁ କାଟି ଖଳାକୁ ବୋହି ଆଣିଥିବା ଧାନହଳାମାନଙ୍କର ଯେଉଁ ନିର୍ଦ୍ଦିଷ୍ଟ ଅଂଶ ମୂଲସ୍ୱରୂପ କଟାଳି ପାଏ—The stipulated share given to a reaper out of the paddy sheaves harvested by him and brought to the threshing floor.
Dhāna mukuḷa
**धानकाबोन, धानकी मजुरी**
[ଦ୍ର—ସାଧାରଣ ମୂଲିଆ କଟାଳିମାନେ ଯେଉଁ ଧାନ କାଟନ୍ତି ସେଥିପାଇଁ କେତେକ ଅଞ୍ଚଳରେ ସେମାନେ ନଗଦ ପଇସା ବା ଚୁନା ଧାନ ନିର୍ଦ୍ଦିଷ୍ଟ ରେଟ୍‌ରେ ମୂଲ ପାଆନ୍ତି । କିନ୍ତୁ ଅନେକ ଅଞ୍ଚଳରେ ସେମାନେ ମୁକୁଳ ପାଆନ୍ତି । ଦଶଟି କମ୍ବା ବାରଟି ହଳା କାଟିଥିବା କଟାଳି ସେଥିମଧ୍ୟରୁ ଗୋଟିଏ ହଳା ଆପଣାର କଟା ମୂଲ ବା ମୁକୁଳ ପାଏ । କ୍ଷେତ୍ରସ୍ୱାମୀର କୋଠିଆ ବା ହଳିଆ ଆଠଟା ହଳାରେ ଗୋଟିଏ ହଳା ମୁକୁଳ ପାଏ । ]

**ଧାନ ମୁକୁଳା(ଲେ)ଇବା**—ଦେ. କ୍ରି—କଟାଳିମାନଙ୍କଦ୍ୱାରା କ୍ଷେତରୁ କଟା ହୋଇ ଖଳାକୁ ଅଣା ଯାଇଥିବା ଧାନହଳାମାନଙ୍କରୁ କାଟିବାର ମୂଲ ସ୍ୱରୂପ ନିର୍ଦ୍ଦିଷ୍ଟ ଅଂଶ କଟାଳିଙ୍କୁ ଦେଇ ଅବଶିଷ୍ଟ ଅଂଶ ମାଲିକ ରଖିବା—( the owner of paddy-sheaves ) To pay a reaper's wages in kind out of the paddy sheaves reaped and brought to the threshing floor by the reapers and to keep the rest for himself
Dhāna mukuḷā(le)ibā
**धान बोन चुकाना**

**ଧାନ ମେଣ୍ଟା**—ଦେ. ବି—ଶୁଖିଏ ଧାନ କେଣ୍ଡାର ବୃନ୍ତମାନ ବେଣୀ ପରି ଏକଚ୍ଛ ବୁଣା ଯାଇଥିବା ସ୍ୱଦୃଶ୍ୟ ଥୋପା—A round bunch of paddy stalks made by weaving the stems into a long braid and then twining it round and round in a spiral shape.
Dhāna meṇṭā
ধানের ঝাবা
**धानकी जुट्टी**

**ଧାନ ରୋଇବା**—ଦେ. କ୍ରି—ଧାନ ବିଆଣ୍ଟରେ ଧାନର ଗଛ ନେଇ ପୋତିବା—To transplant paddy.
Dhāna roibā
ধান বে
**धान रोपना**

**ଧାନ ଶିଷା**—ଦେ. ବି. ( ସଂ. ଧାନ୍ୟ ଶୀର୍ଷକ)—୧ । ଧାନ କେଣ୍ଡା—1. An ear of corn.
Dhāna śishā
ধানের শীষ
**धानका शीस**
୨ । ଧାନ ଉଡ଼ା ହେବା ପରେ ଜମା ହୋଇଥିବା ଧାନର ସ୍ତୂପ—2. The heap of paddy after it is winnowed.
( ଧନଶିଂଶା—ଅନ୍ୟରୂପ )

**ଧାନ ହଳା**—ଦେ.ବି—କଟା ଧାନଗଛମାନଙ୍କର ବନ୍ଧା ହୋଇଥିବା ବିଡ଼ା; କଲେଇ—Sheaves of paddy when cut and bound.
Dhāna haḷā
ধানের বীড়া
**धानकी आँटी**

**ଧାନା**—ସଂ. ବି. ( ନିତ୍ୟ ବହୁବଚନ; ଧା ଧାତୁ=ପୋଷଣ କରିବା+କର୍ତ୍ତୃ. ନ+ସ୍ତ୍ରୀ. ଆ )—
Dhānā
୧ । ଭଜ୍ଜିତ ଯବ; ଯଅ ଭଜା—1. Fried barley.
୨ । ଚୂର୍ଣ୍ଣି ଯବ—2 Barley powder.
୩ । ଧନିଆ—3. Coriander.
୪ । ( ଏକବଚନ ) ଅଙ୍କୁର; ଗଜା—4 A sprout; shoot.
୫ । ଚୂଡ଼ା—5. Flattened parched rice.
୬ । ଖଇ—6. Fried paddy.
୭ । ଛତୁ; ସକ୍ତୁ—7. Corn flour.
୮ । ଅନ୍ନକଣ; କ୍ଷୁଦ ( ହି. ଶବ୍ଦସାଗର )—8. Particles of food-grain.
୯ । ଅନ୍ନମାତ୍ର ( ହି. ଶବ୍ଦସାଗର )—9. Food grain; corn (in general ).
୧୦ । ଧାନ ( ହି. ଶବ୍ଦସାଗର )—10. Paddy

**ଧାନା ଚୂର୍ଣ୍ଣ**—ସ. ବି. ( ୬ଷ୍ଠୀ ତତ୍; ଧାନା+ଚୂର୍ଣ୍ଣ )—ଛତୁଅ ( ହି. ଶବ୍ଦସାଗର )—Corn flour.
Dhānā chūrṇṇa

**ଧାନିକା**—ସ. ବି. ସ୍ତ୍ରୀ. ( ଧାନ+ସ୍ୱାର୍ଥେ. କ+ସ୍ତ୍ରୀ ଆ; ଅନ୍ୟ ଶବ୍ଦ ସଙ୍ଗେ ସମାସରେ ଯୁକ୍ତ ହୋଇ ବ୍ୟବହୃତ )—
Dhānikā
୧ । ସ୍ଥାନ; ଭଣ୍ଡାର—1. A store; a place.
୨ । ଆଧାର; ଧାମ—2. A receptacle.
( ଯଥା—ଅଙ୍ଗାର ଧାନିକା=ଉମ୍ବେର । )

**ଧାମି**—ସ. ବି. ସ୍ତ୍ରୀ. ( ଧା ଧାତୁ + ଅଧିକରଣେ ଅନ + ସ୍ତ୍ରୀ. ଈ )—
Dhāni ୧ । ଧାନିକା ( ଦେଖ ) —1. Dhānikā ( See )
( ଯଥା—ରାଜଧାନୀ = ରାଜାଙ୍କ ବାସସ୍ଥାନ । )
୨ । ପୀଲୁ ଗଛ (ହି ଶବ୍ଦସାଗର) ( ଦେଖ )—
2. Pīlu tree ( See )
୩ । ଧନିଆ ( ହି. ଶବ୍ଦସାଗର )—3 Coriander.

**ଧାନୁଆ(ଆଁ)**—ଦେ. ବିଣ—୧ । ଧାନ ଆକୃତିବିଶିଷ୍ଟ—
Dhānuā(ān) 1. Paddy-shaped
ଧେନୋ ( ଯଥା—ଧାନୁଆ କଣ୍ଠି, ଧାନୁଆ ଲଙ୍କାମରିଚ । )
धानाकार, जई ୨ । ଧାନମିଶ୍ରିତ ( ଚାଉଳ)—
2. (rice) Mixed up with grains of paddy.
ପ୍ରାଦେ. (ବାଲେଶ୍ୱର) ବିଣ—ଯେ ବହୁତ ଧାନ ସଞ୍ଚୟ କରିଥାଏ
(a person) Who has stored up a large quantity of paddy.

**ଧାନୁଆ କଣ୍ଠି**—ଦେ. ବି—ଧାନ ଆକାରର ସୁନା ବା ରୁପା କଣ୍ଠି ଥିବା
Dhānuā kanthi ଗଳାର ମାଳ—A necklace consisting of paddy-shaped beads.
ଧାନ ଅମାଳ / ଧାନୁଅମାଳ } ଅନ୍ୟରୂପ
ଧେନୋହାବ जईकंठी

**ଧାନୁଆ ମଦ**—ଦେ. ବି. ( ସ. ଧାନ୍ୟ + ମଦ୍ୟ )—
Dhānuā mada ସିଦ୍ଧ ଧାନ୍ୟରୁ ଅରଖ ଛଡ଼ାଇ କରିବା ପ୍ରଣାଳୀରେ
धानी मद ପ୍ରସ୍ତୁତ ମଦ—Rum or spirit brewed
धानी शराब from unhusked paddy.

**ଧାନୁଆ ଲଙ୍କା ମରିଚ**—ଦେ. ବି—ଧାନ ପରି ଛୋଟ ଛୋଟ ଅଥଚ ଅତି
Dhānuā lankā maricha ତୀକ୍ଷ୍ଣ ସ୍ୱାଦ ଥିବା ଏକ ଜାତୀୟ
(ଧାନୁଆ ମରିଚ, ଧାନୁଆ ଲଙ୍କା—ଅନ୍ୟରୂପ) ଲଙ୍କାମରିଚ—
धानी लंका, धान लंका The small capsicum; Capsicum
लौंगी मिर्चाई Minimum.
[ ଦ୍ର—ଏହା ତିନି ପ୍ରକାର—୧. ଜଙ୍ଗଲି; ୨. ଉଲଟ ଧାନୁଆ; ୩. ସୂର୍ଯ୍ୟ ପାଣି ମୁହାଁ-ଏହାର ଫୁଲ ସୂର୍ଯ୍ୟ ଆଡ଼କୁ ମୁହାଁ କରି ଫୁଟେ ।]

**ଧାନୁକ**—ସ. ବିଣ. ପୁଂ. ( ଧନୁସ୍ + କ )—ଧନୁର୍ଦ୍ଧର—
Dhānuka Armed with a bow.
(ଧାନୁକୀ—ସ୍ତ୍ରୀ) ସ. ବି—ଧନୁର୍ଦ୍ଧର; ଯୋଦ୍ଧା—
Bowman; archer.

**ଧାନୁକୀ**—ଦେ. ବିଣ. ( ସ ଧାନୁକ )—ଧନୁର୍ଦ୍ଧାରୀ—
Dhānuki Armed with a bow.
धानुकी धानकी

**ଧାନୁଷ୍କ**—ସ. ବିଣ. ପୁଂ. (ଧନୁଷ୍ + ଅ, ଅଥବା ଧନୁସ୍ + ପ୍ରହରଣାର୍ଥରେ କ)-
Dhānushka ଧନୁର୍ଦ୍ଧାରୀ—Armed with a bow.
(ଧାନୁଷ୍କୀ—ସ୍ତ୍ରୀ) ସ. ବି—ଧନୁର୍ଦ୍ଧାରୀ ଯୋଦ୍ଧା—
Archer; bowman.

**ଧାନୁଷ୍କା**—ସ. ବି. ସ୍ତ୍ରୀ. ( ଧାନୁଷ୍କ + ଆ )—ଅପାମାର୍ଗ ଗଛ—
Dhānushkā Achiranthes Aspera (plant).

**ଧାନୁଷ୍ୟ**—ସ. ବି. ( ଧନୁସ୍ + ସ୍ୱରୂପାର୍ଥରେ ଯ, ଯଦ୍ଦ୍ୱାରା ଧନୁ ତିଆରି
Dhānushya ହୁଏ )—ବାଉଁଶ—Bamboo.

**ଧାନେ**—ଦେ. କ୍ରି. ବିଣ—ଅତ୍ୟଳ୍ପରେ; ସାମାନ୍ୟରେ—
Dhāne A little; a bit.
ଧାନେ ଉଣା ଭୂଲେ ହେଲେ ସ୍ନେହ ଯେଲେ କ୍ଷଣକେ କଳସେ ଗୁରୁବାର ।
କବିସୂର୍ଯ୍ୟ, ରତ୍ନାକରଚମ୍ପୂ ।

**ଧାନେୟ**—ସ. ବି. ( ଧନ = ଶସ୍ୟାଦି + ଏୟ )—ଧନିଆ—
Dhāneya Coriander.
(ଧାନେୟ, ଧାନେୟକ, ଧାନେୟକ—ଅନ୍ୟରୂପ)

**ଧାନ୍ୟ**—ସ. ବି. ( ଧନ + ସ୍ୱାର୍ଥରେ ଯ )—
Dhānya ୧ । ୪ ରତି ପରିମିତ ଓଜନ—
1 A standard weight of 4 Ratis.
୨ । ଧାନ ଗଛ—
2. Paddy plant; Oriza Sativa.
୩ । ଧାନ (ଶସ୍ୟ)—3 Paddy (grain).
୪ । ଧନିଆ—4. Coriander
୫ । ଧାନ ଜାତୀୟ ଶସ୍ୟ ( ଯଥା—ବ୍ରୀହି, ଯବ, ଗୋଧୂମ, ମସୁର ଆଦି)—4. Corn; grain; cereals; pulse.
[ଦ୍ର—ପାଚିବା ଋତୁ ଅନୁସାରେ ଶାଳୀ, ଷାଷ୍ଟିକ ଓ ବ୍ରୀହି ଭେଦରେ ଧାନ୍ୟ ତ୍ରିବିଧ । ପୂର୍ବକାଳରେ ଧାନ ଓ ବ୍ରୀହି ଶବ୍ଦ ଦ୍ୱୟ ଏକାର୍ଥବାଚକ ଥିଲା । ତହିଁର ଅର୍ଥ ଖାଦ୍ୟ ଶସ୍ୟ । ଅମରକୋଷ ଓ ମେଦିନୀରେ ଧାନ୍ୟ ଓ ବ୍ରୀହି ଏକ ଥିବାର ଉଲ୍ଲେଖ ଅଛି । କେହି କେହି ଶାସ୍ତ୍ରକାର ଧାନ୍ୟକୁ ପାଞ୍ଚ ଭାଗରେ ବିଭକ୍ତ କରିବାର ଦେଖାଯାଏ—
୧ । କ୍ଷୁଦ୍ର ବା କଙ୍ଗୁ ଧାନ୍ୟ—ଶୁଆଁ, ଚୀନା, କୋଦୁଅ ।
୨ । ଶାଳୀ ଧାନ୍ୟ—ଶାରଦ ବା ହୈମନ୍ତିକ ଧାନ ।
୩ । ଷାଷ୍ଟିକ ଧାନ୍ୟ—ଦାଳୁଅ ଧାନ ।
୪ । ବ୍ରୀହି ଧାନ୍ୟ—ଡିଅଲ ଧାନ ।
୫ । ଶୂକ ଧାନ୍ୟ ବା ଶିମ୍ବୀ ଧାନ୍ୟ—ଯେଉଁ ଶସ୍ୟ ଭୁଇଁ (ଶୂକ ବା ଶିମ୍ବୀ) ମଧ୍ୟରେ ଥାଏ, ଯଥା—ବୁଟ, ବିରି, ମୁଗ, ହରଡ଼, ମସୁର, ବଳଗୁଡ଼ି ଆଦି ।
ଉପରୋକ୍ତ ଗଣନାରେ କେହି କେହି ଷାଷ୍ଟିକ ଧାନ୍ୟ (୩ୟ) ପରିବର୍ତ୍ତେ ଶିମ୍ବୀ ଧାନ୍ୟ ଓ ଷଷ୍ଠରେ ଶୂକ ଧାନ୍ୟ ଗଣନା କରି ଅଛନ୍ତି । ଯେଉଁ ଶସ୍ୟ ଶିମ୍ବୀ (ଭୁଇଁ) ମଧ୍ୟରେ ଥାଏ ତାହାକୁ ଶିମ୍ବୀ ଧାନ୍ୟ (ଯଥା ମୁଗ, ବିରି, ହରଡ଼, ମସୁର, କୋଳଥ, ବରଗୁଡ଼ି) ଓ ଯେଉଁ ଶସ୍ୟ ଅଗରେ ଶୂକ (ଶିଂଘ ବା କଣ) ଥାଏ ତାକୁ ଶୂକ ଧାନ୍ୟ (ଯଥା ବାଜରା, ଗହମ, ଯବ) ରୂପେ ଗଣିଅଛନ୍ତି ।]

**ଧାନ୍ୟକ**—ସ. ବି. (ଧାନ୍ୟ + କ)—୧ । (ସ୍ୱାର୍ଥେ. କ) ଧାନ୍ୟ; ଧାନ—
Dhānyaka 1. Paddy.
୨ । (ସାଦୃଶ୍ୟାର୍ଥେ. କ)—ଧନିଆ —2. Coriander.

**ଧାନ୍ୟ କୋଷ୍ଠ**—ସ. ବି. (ଧାନ୍ୟ + କୋଷ୍ଠ = ଶସ୍ୟାଗାର)—ଧାନକୋଠା;
Dhānya koshtha ଅମାର—Granary; the house for storing paddy.
ଧାନ୍ୟକୋଷ୍ଠକ / ଧାନ୍ୟକୋଶ / ଧାନ୍ୟ କୋଷ } ଅନ୍ୟରୂପ

**ଧାନ୍ୟ କ୍ଷେତ୍ର**—ସ. ବ. (୬ଷ୍ଠୀ ତତ୍; ଧାନ୍ୟ+କ୍ଷେତ୍ର)—ଧାନ ବିଲ — Dhānya kshetra Paddy-field.

**ଧାନ୍ୟ ଚମସ**—ସ. ବ. ( ଧାନ୍ୟ+ଚମସ=ପିଷ୍ଟକ ବିଶେଷ )—ଚିପିଟକ; Dhānya chamasa ଚୁଡ଼ା—Flattened parched rice

**ଧାନ୍ୟ ତୁଷୋଦ**—ସ. ବ.— (ଧାନ୍ୟ + ତୁଷ+ଉଦ) କାଞ୍ଜି — Dhānya tushoda Sour rice-water, fermented (ଧାନ୍ୟମ୍ଳ, ଧାନ୍ୟ ଯୂଷ, ଧାନ୍ୟଯୋନି—ଅନ୍ୟରୂପ) rice-water.

**ଧାନ୍ୟତ୍ୱକ୍**—ସ. ବ.—(୬ଷ୍ଠୀ ତତ୍; ଧାନ୍ୟ+ତ୍ୱକ୍)—ତଷୁ— Dhānya twak The husk of paddy.

**ଧାନ୍ୟ ଧେନୁ**—ସ. ବ.—( ଧାନ୍ୟ+ଧେନୁ )—ଦାନାର୍ଥ ଧାନ୍ୟନିର୍ମିତ Dhānya dhenu ଧେନୁ—Paddy collected and made into the shape of a cow for gift to Brāhmaṇas

[ଦ୍ର—ବିଷୁବ ସଂକ୍ରାନ୍ତିରେ ଓ କାର୍ତ୍ତିକ ମାସରେ ଧାନ୍ୟଧେନୁ ଦାନ କଲେ ବହୁ ସୌଭାଗ୍ୟ, ସୁଖ ଓ ପୁଣ୍ୟଲାଭ ହୁଏ । ହି. ଶବ୍ଦସାଗର ।]

**ଧାନ୍ୟ ପଞ୍ଚକ**—ସ. ବ.—୧ । ଶୁଦ୍ର ବା କଙ୍ଗୁ, ଶାଳୀ, ଷଷ୍ଟିକ, Dhānya pañchaka ଵ୍ରୀହି ଓ ଶୂକ ବା ଶିମ୍ବୀ ଏହି ପଞ୍ଚବିଧ ଶସ୍ୟ 1. The 5 classes of grains like paddy or cereals.

[ଦ୍ର—'ଧାନ୍ୟ' ତଳେ ନୋଟ୍ ଦ୍ରଷ୍ଟବ୍ୟ ।]

୨ । ବୈଦ୍ୟକ ମତରେ ପଞ୍ଚଧାନ୍ୟ ଧନିଆ, ଶୁଣ୍ଠି, ନାଗରମୁଥା, ଭୂଯ୍ୟମାଣା ଓ ବେଲଶୁଣ୍ଠାରେ ପ୍ରସ୍ତୁତ ଅମାଶୟ, ଅତିସାର ଓ ଉଦରଶୂଳର ଔଷଧବିଶେଷ—2 Name of a medicinal preparation for colic and dysentery

**ଧାନ୍ୟ ପାନକ**—ସ. ବ ( ମ. ପ. ଲୋ; ଧାନ୍ୟ ମିଶ୍ରିତ ପାନକ ) — Dhānya pānaka ଧନିଆକୁ ବାଟି ପାଣିରେ ଗୋଳାଇ ଛାଣି (ଧାନ୍ୟପ୍ରପାନକ, ଧାନ୍ୟପାମାମ୍ବୁକ—ଅନ୍ୟରୂପ) ଛଣା ନେଇ ସେହି ପାଣିରେ ଲୁଣ, ଗୋଲମରିଚ, ଚିନି ଓ କର୍ପୂର ଆଦି ମିଶାଇ ପ୍ରସ୍ତୁତ କରିବା ଏକପ୍ରକାର ପଣା—A drink made of coriander seeds bruised and seasoned with salt, sugar, black pepper and camphor after being filtered.

**ଧାନ୍ୟ ବର୍ଗ**—ସ.ବ (୬ଷ୍ଠୀ ତତ୍; ଧାନ୍ୟ+ବର୍ଗ)—ଧାନ୍ୟପଞ୍ଚକ ୧ (ଦେଖ) Dhānya barga Dhānyapañchaka 1 (See)

[ଦ୍ର—ବୈଦ୍ୟକ ଓ ଦ୍ରବ୍ୟଗୁଣାଦି ଗ୍ରନ୍ଥରେ ଧାନ୍ୟବର୍ଗ ମଧ୍ୟରେ ଵ୍ରୀହିଧାନ୍ୟ, ଶାଳିଧାନ୍ୟ, ଷଷ୍ଟିକଧାନ୍ୟ, ଗାବାର (ବାଲୁଙ୍ଗା), ବରକ (ବରଗୁଡ଼ି), ଶୂକଧାନ୍ୟ (ଯବ ଓ ଗୋଧୂମ), ଶିମ୍ବୀଧାନ୍ୟ (ମୁଗ, ମାଷ, ମସୁର, ହରଡ଼, ଚଣକ, ମଟର, ଖେସାରି, ତିଳ, ପେଣ୍ଡୁ, ସର୍ଷପ, ରାଇ ସୋରିଷ ଓ କ୍ଷୁଦ୍ର ଧାନ୍ୟ (କାଙ୍ଗୁ, ଶୁଆଁ, କୋଦୁଅ, ଦେଧାନ) ଗୃହୀତ ହୋଇଅଛି । ]

**ଧାନ୍ୟ ବର୍ଦ୍ଧନ**—ସ. ବ ( ୬ଷ୍ଠୀ ତତ୍; ଧାନ୍ୟ+ବର୍ଦ୍ଧନ )—ବେଢ଼ି ବା Dhānya barddhana ସୁଧରେ ଦେଇ ଧାନ ବଢ଼ାଇବା; ଧାନ ମହାଜନୀ—Investment of paddy in loans repayable in kind.

**ଧାନ୍ୟ ବୀଜ**—ସ. ବ (୬ଷ୍ଠୀ ତତ୍; ଧାନ୍ୟ+ବୀଜ)—୧ । ଧନିଆ— Dhānya bīja 1. Coriander

୨ । ଧାନର ବିହନ— 2. Paddy seeds; paddy stored for being used as seeds

**ଧାନ୍ୟ ବୀର**—ସ. ବ (୭ମୀ ତତ୍; ଧାନ୍ୟ+ବୀର=ଅତି ଉତ୍ତମ )— Dhānya bīra ମୁଗଜାତୀୟ କୃଷ୍ଣବର୍ଣ୍ଣ ଶସ୍ୟ; ବୀର— A kind of Phaseolus Mungo.

**ଧାନ୍ୟମାୟ୍ୟ**—ସ. ବ (ଧାନ୍ୟ+ମା ଧାତୁ=ମାପିବା+କର୍ତ୍ତୃ. ଯ)— Dhānyamāya ୧ । ଧାନ୍ୟ ବିକ୍ରୟୀ—1 Paddy-seller.

୨ । ଧାନ ମହାଜନ, ଧାନ ବେପାରୀ — 2. A dealer in paddy

୩ । ଧାନ ମାପିବା ଲୋକ, ଧାନ ମାପୁଣି— 3. A person who measures paddy.

**ଧାନ୍ୟରାଜ**—ସ. ବ ( ୭ମୀ ତତ୍, ଧାନ୍ୟ+ରାଜନ୍ )—ଯବ— Dhānyarāja Barley.

**ଧାନ୍ୟ ଶର୍କରା**—ସ ବ. ( ମ ପ. ଲୋ; ଧାନ୍ୟ+ଶର୍କରା )— Dhānya śarkarā ( ବୈଦ୍ୟକ ) ଅନ୍ତର୍ଦାହ ଶାନ୍ତ କରିବା ସକାଶେ ପିଆଯିବା ଚିନି ମିଶା ଧନିଆ ବଟୁରା ପାଣି— Water mixed with coriander seeds and sweetened with sugar ( drunk to allay burning sensation inside the system ).

**ଧାନ୍ୟ ଶୀର୍ଷକ**—ସ. ବ. ( ୬ଷ୍ଠୀ ତତ୍; ଧାନ୍ୟ+ଶୀର୍ଷକ=ଉପରଭାଗ Dhānya śīrshaka ବା ମସ୍ତକ ) — (ଧାନ୍ୟ ମଞ୍ଜରୀ—ଅନ୍ୟରୂପ) ଧାନର ଶିଂଷା ବା କେଣ୍ଡା— An ear of paddy

**ଧାନ୍ୟ ଶୁଣ୍ଠି**—ସ. ବ. ( ମ ପ. ଲୋ; ଧାନ୍ୟ+ଶୁଣ୍ଠୀ )— Dhānya śuṇṭhi (ବୈଦ୍ୟକ) ଏକ ତୋଳା ଧନିଆ ଓ ଦୁଇ ତୋଳା ଶୁଣ୍ଠିକୁ କୁଟି ଅଧ ସେର ପାଣିରେ ନିଆଁରେ ସିଦ୍ଧ କରି ଅଧପାଏ ପାଣି ଥାଉଁ ଥାଉଁ ଓହ୍ଲାଇଲେ ସେଉ ଜ୍ୱରାତିସାରନାଶକ ପାନୀୟ ପ୍ରସ୍ତୁତ ହୁଏ (ହି. ଶ)— A decoction of coriander and dry ginger crushed and boiled, used as an antidote against dysentery and fever

**ଧାନ୍ୟ ଶୂକ**—ସ. ବ. ( ୬ଷ୍ଠୀ ତତ୍; ଧାନ୍ୟ+ଶୂକ )— . Dhānya śūka ବାଳୁଙ୍ଗା ଧାନର ଶିଂଘ— (ଧାନ୍ୟଶୃଙ୍ଗ—ଅନ୍ୟରୂପ) The awn or beard of wild paddy.

**ଧାନ୍ୟ ଶୈଳ**—ସ. ବ—ପୁରାଣ ମତରେ ଉଚ୍ଚ ସ୍ତୂପାକାର ଧାନ, ଯାହା Dhānya śaila ଦାନ କଲେ ଦାତା ମରଣାନ୍ତେ ସ୍ୱର୍ଗରେ ଅପ୍ସରା ଓ ଗନ୍ଧର୍ବମାନଙ୍କ ଦ୍ୱାରା ସେବିତ ହୁଏ ଓ ଅନ୍ୟ ଜନ୍ମରେ

ଦାନ କୁଏ—A heap of paddy given away to a Brāhmaṇa which secures to the doner bliss after death and in the next birth.

ଧାନ୍ୟ ସାର—ସଂ. ବି. ( ୬ଷ୍ଠୀ ତତ୍; ଧାନ୍ୟ + ସାର )—
Dhānya sāra ୧ । ଅମଳ ହୋଇ ପରିଷ୍କୃତ ହୋଇଥିବା ଧାନ—
1. Threshed, winnowed and cleansed paddy.
୨ । ଚାଉଳ—2. Rice

ଧାନ୍ୟା—ସଂ. ବି—ଧନିଆ ( ଦ୍ର. ଶବ୍ଦସାଗର )—
Dhānyā Coriander (Apte).

ଧାନ୍ୟାକ—ସଂ. ବି. ( ଧନ୍ୟାକ+ସ୍ୱାର୍ଥରେ. ଅ )—
Dhānyāka ୧ । ଧନିଆ—1. Coriander.
୨ । ଧନିଆ ଚାଉଳ—2. Coriander seeds.

ଧାନ୍ୟାକୃତ—ସଂ. ବି. ( ଧାନ୍ୟ+ଆ+କୃ ଧାତୁ+କର୍ମ ତ; ଅଗ୍ନ୍ୟାହୃତା—
Dhānyākṛuta ବବତ୍ ବହୁବ୍ରୀହି; ଯେ ଧାନ୍ୟ ଉତ୍ପାଦନ କରେ)—
କୃଷକ—Cultivator; tiller

ଧାନ୍ୟାଭ୍ରକ—ସଂ. ବି. ( ଧାନ୍ୟ + ଅଭ୍ରକ )—
Dhānyābhraka ଆୟୁର୍ବେଦୋକ୍ତ ମତେ ଭସ୍ମ ପ୍ରସ୍ତୁତ କରିବା ପାଇଁ ଧାନ ବଭୁସ ଯାଇ ଶୋଧିତ ହୋଇଥିବା ଅଭ୍ର—
Mica which has been moistened in coriander water before it is reduced to medicinal oxide.

ଧାନ୍ୟାମ୍ଳ—ସଂ. ବି. ( ଧାନ୍ୟ=ତଣ୍ଡୁଲ + ଅମ୍ଳ )—କାଞ୍ଜି—
Dhānyāmla Conjee; sour rice-water or gruel.
(ଧାନ୍ୟାମ୍ଳକ—ଅନ୍ୟରୂପ)

ଧାନ୍ୟାରି—ସଂ. ବି. ( ୬ଷ୍ଠୀ ତତ୍; ଧାନ୍ୟ+ଅରି=ଶତ୍ରୁ )—
Dhānyāri ମୂଷିକ, ମୂଷା—Mouse.

ଧାନ୍ୟାସ୍ଥି—ସ ବି—ତୁଷ—
Dhānyāsthi Husk; chaff.

ଧାନ୍ୟୋତ୍ତମ—ସ ବି. ( ୭ମୀ ତତ୍; ଧାନ୍ୟ + ଉତ୍ତମ )—
Dhānyottama ଶାଳି ଧାନ; ଶାରଦ ଧାନ—
Winter paddy.

ଧାପ୍‌ସା—ଦେ. ବି ଓ ବିଣ—ଝାପ୍‌ସା ( ଦେଖ )
Dhāp-sā Jhāp-sā ( See )
झापसा धुँधला

ଧାପ—ଦେ. ବି. ( ସଂ ଦର୍ପ )—୧ । ପୀଡ଼ନ—
Dhāpa 1 Oppression.
धाप, दाप ୨ । ( ସଂ. ଧାବ୍ ଧାତୁ )—
धाप, धाव ସିଡ଼ିର ଗୋଟିଏ ପାହାଚ—
2. One step of a staircase.
୩ । ଦ୍ରୁତ ଗତି; ବେଗ—
3. Velocity; swift motion.
୪ । ଦଉଡ଼ିବା—4. Running.
୫ । କ୍ଷଣମାତ୍ର—5. A moment
୬ । ଅତି ଅଳ୍ପ ମାତ୍ରା—
6. A minute quantity.
୭ । ଅତି ଅଳ୍ପ ପଥ ବା ଦୂରତ୍ୱ —
7. A small distance
ସଜ କରୁଥିଲୁ କୋଶେ ଧାପକୁ । ତୁଳନା ଯ ପ୍ରମରଡରଙ୍କ ।
୮ । ( ସଂ. ଧାବ୍ ଧାତୁ ) ଧାବନ; ଦଉଡ଼—
8. Running.
୯ । ଆକ୍ରମଣ—9. Attack; onslaught.
ଦେ. କ୍ରି. ବିଣ—ଧାପେ ( ଦେଖ )
Dhāpe ( See )

ଧାପଟ—ଦେ. ବି. ( ସଂ. ଦର୍ପ )—
Dhāpaṭa ୧ । ପ୍ରତାପ—1. Might.
दापट ୨ । ଦମ୍ଭ; ବଳ—2. Stregth.
धप्पाड़, दंभ, तेज ୩ । ବେଗ; ଦ୍ରୁତଗତି—
3. Velocity; speed.
୪ । ( ସଂ. ଧାବ୍ ଧାତୁ ) ଝପଟ; ଦଉଡ଼—4. Race

ଧାପଡ଼—ପ୍ରାଦେ. (ସମ୍ବଲପୁର) ବି—ଚାପୁଡ଼ା—
Dhāparḍa A slap.

ଧାପଡ଼ିବା—ଦେ. କ୍ରି. ( ସଂ. ଧାବ୍ ଧାତୁ )—
Dhāparḍibā ଧପୁଡ଼ିବା; ଦଉଡ଼ିବା; ଝପଟିବା—
(ଧାପୁଡ଼ିବା—ଅନ୍ୟରୂପ) To run; to gallop.
दौड़ा धपना
(ଧାପଡ଼େଇବା—ଣିଜନ୍ତ)

ଧାପଡ଼ ଧାପଡ଼—ଦେ. ଅ—ଶବ୍ଦପୂର୍ବକ ଦୌଡ଼ିବା—
Dhāparḍa dhāparḍa Running with a thumping sound.
(ଧାପୁଡ଼(ଡ଼ୁ) ଧାପୁଡ଼(ଡ଼ୁ)—ଅନ୍ୟରୂପ)

ଧାପ ଦେବା—ଦେ. କ୍ରି. (ସଂ. ଧାବ୍ ଧାତୁ)—୧ । ସାହସ ସହିତ ପଶିବା—
Dhāpa debā 1. To enter with courage.
दाबदेओआ ଅସୁରେ ବଢ ଦୁଇଗୁର
धावाकरना ଧାପଦେଅନ୍ତି ଉନପୁର । ପ୍ରାଚୀ. ଜଗୁ.ଶମାହାତ୍ମ୍ୟ ।
୨ । ଭୀତ ନ ହୋଇ ଦମ୍ଭ ସହକାରେ କାର୍ଯ୍ୟ କରିବା—
2. To do a thing courageously and without fear.
୩ । ଆକ୍ରମଣ କରିବା—3. To attack.
୪ । ଦଉଡ଼ିବା—4. To run.

ଧାପ ଧଉଡ଼—ଦେ. ବି—୧ । ଦଉଡ଼ାଦଉଡ଼ି ଖେଳ—
Dhāpa dhaurḍa 1. A game at running,
(ଧାପ ଧାଉଁଡ଼ି—ଅନ୍ୟରୂପ) ୨ । ଧାଁଦଉଡ଼—
दउड़धाप दौड़धूप 2. Running about.

ଧାପେ—ଦେ. ବିଣ—ସାମାନ୍ୟ ପରିମିତ—
Dhāpe A minute quantity of.
एकटुकु (ଯଥା—ଔଷଧ ଖାଇବାକୁ ତାକୁ ଧାପେ ମହୁ ଦିଅ ।)
थोड़ा, जरासा ଦେ. କ୍ରି. ବିଣ—୧ । ଅସ୍ଥିରତା; ଝଟ୍—
1. Quickly.

୬ । ତତକ୍ଷଣାତ୍ —2 At once.

ଧାପେ ତା ନାଶି ଦେଲେ ଅନ୍ତ କେ ଧ ହୋଇ ।
କୃଷ୍ଣସିଂହ ମହାଭାରତ. ବନ ।

୩ । କ୍ଷଣମାତ୍ରକେ—3 Instantly; in no time.

୪ । ଅଳ୍ପଅଳ୍ପ, ସାମାନ୍ୟ ପରିମାଣରେ—
4. A bit; a little.

ତା ଜାଣି ଧାପେ ଧାପେ ମନ୍ଦ ଶୁଖାଇଲେ । କୃଷ୍ଣସିଂହ. ମହାଭାରତ ଅଦ ।

**ଧାପେ ବାଟ**—ଦେ. ବି—ଅତି ଅଳ୍ପ ପଥ ବା ଦୂରତ୍ୱ—
Dhāpe bāṭa A small distance.
খানিকরাস্তা

**ଧାବ୍** (ଧାତୁ)—ସ—୧ । ଦଉଡ଼ିବା—1 To run; to gallop.
Dhāb (root) ୨ । ଧୋଇବା—2. To wash.
୩ । ଗତି କରିବା—3. To move, to glide.
୪ । ଆକ୍ରମଣ କରିବା—4. To assault: to attack.
୫ । ବହିବା—5. To flow.
୬ । ପଳେଇଯିବା 6. To flee away.
୭ । ଦୁଧ ଦେବା—7. To give milk.
୮ । ଘଷିବା—8. To rub with anything.
୯ । ସଫା କରିବା; ପାଲିସ କରିବା—
9. To brighten; to polish.

**ଧାବକ**—ସ. ବିଣ. (ଧାବ୍ ଧାତୁ+କର୍ତ୍ତୃ. ଅକ)—୧ । ଯେ ଦଉଡ଼େ—
Dhābaka 1 One who runs; running,
(ଧାବିକା—ସ୍ତ୍ରୀ) ୨ । ଦ୍ରୁତଗାମୀ; ବେଗଗତିବିଶିଷ୍ଟ—
2. Moving quickly; fleet; swift-footed.
୩ । ଯେ ଧୁଏ; ସମ୍ମାର୍ଜନକାରୀ—3. Washing.
ସ. ବି—୧ । ଧୋବା; ରଜକ—1. Washerman.
୨ । ହରକରା; ପତ୍ରବାହକ, ଦ୍ରୁତଗାମୀ ବାର୍ତ୍ତାବହ—
2 A runner; a messnger; an express,
୩ । (ନାମ) ରତ୍ନାବଳୀ ରଚୟିତା କବି—
3. Name of a poet who composed Ratnābali.
[ ଦ୍ର—ଏହାଙ୍କ ନାମ କାଳିଦାସଙ୍କ ମାଳବିକାଗ୍ନିମିତ୍ର, କାବ୍ୟ-ପ୍ରକାଶ ଓ ସାହିତ୍ୟସାର ଗ୍ରନ୍ଥମାନଙ୍କରେ ମିଳେ । ]

**ଧାବନ**—ସ. ବି. (ଧାବ୍ ଧାତୁ+ଭାବ. ଅନ)—୧ । ଦଉଡ଼ିବା—
Dhābana 1 Running; fleeing.
୨ । ବେଗଗତି—2 Swift motion.
୩ । ଧୌତ କରଣ; ଧୋଇବା; ଧୋଇକରି ସଫା କରିବା—
3. Act of washing: cleansing,
୪ । ଘୋଡ଼ାର ଦଉଡ଼ିବା—4. Galloping of a horse.
୫ । ବହିଯିବା—5. Flowing.
୬ । (+କର୍ତ୍ତୃ. ଅନ) ହରକରା; ଶୀଘ୍ରଗାମୀ ଦୂତ (ହ୍ର. ଶ.)—
6. A runner; a running messenger.
୭ । ଘଷିବା—7. Rubbing with anything.
୮ । ଆକ୍ରମଣ କରିବା—8. Attacking.

**ଧାବମାନ**—ସ. ବିଣ. ପୁଂ (ଧାବ୍ ଧାତୁ+କର୍ତ୍ତୃ. ଅନ)—
Dhābamāna ୧ । ଯେ ଦଉଡ଼ୁ ଅଛି—1. Running.
(ଧାବମାନା—ସ୍ତ୍ରୀ) ୨ । ଯେ ଅଶ୍ୱାଦ ଚଢ଼ି ବେଗରେ ଗତି କରୁଛି—
2. Riding at a gallop.

**ଧାବଲ୍ୟ**—ସ.ବି. (ଧବଳ+ଭାବ. ଯ)—ଧବଳତା—
Dhābalya Whiteness.

**ଧାବା**—ଦେ. ବି. (ସ. ଧାବ୍ ଧାତୁ)—୧ । ଶତ୍ରୁ ଆଦିଙ୍କ ପଶ୍ଚାଦ୍ଧାବନ; ପଛରେ ଗୋଡ଼ାଇବା—1 Chase, pursuit.
Dhābā
ধাওয়া; ধাবা ୨ । ଚଢ଼ଉ; ଶତ୍ରୁପ୍ରତି ଆକ୍ରମଣ—
धावा 2. Invasion; attack,

**ଧାବା କରିବା**—ଦେ. କ୍ରି—ପଛରେ ଗୋଡ଼ାଇବା—
Dhābā karibā To chase, to give a chase; to pursue.
(ଧାବାଦେବା, ଧାବାମାରିବା—ଅନ୍ୟରୂପ)
ধাওআকরা धावाकरना

**ଧାବିତ**—ସ.ବିଣ. ପୁଂ—୧ । (ଧାବ୍ ଧାତୁ+କର୍ତ୍ତୃ. ତ)—ଦଉଡ଼ୁଥିବା—
Dhābita 1. Running, having begun to run.
୨ । କୌଣସି ଦିଗକୁ ଦଉଡ଼ୁଥିବା—
2. Running towards or against.
୩ । (+କର୍ମ. ତ) ଧୌତ; ପରିଷ୍କୃତ—
3. Washed; cleansed by washing.

**ଧାବିବା**—ଗ୍ରା. (ପଦ୍ୟ) କ୍ରି. (ସ. ଧାବ୍ ଧାତୁ)—ଦଉଡ଼ିବା—
Dhābibā To run.
ধাবা
धावना

ବାଳ ଫିଙ୍ଗି ଲେଉଟେ ପୁଣ୍ୟେ ଧାବନ୍ତେ
ବାଉଦ କ ଗେଲେ ହେମ ପଙ୍କରେ । ଭଞ୍ଜ. ବୈଦେହୀଶବିଳାସ ।

**ଧାମ**—ସ. ବି. (ଧା ଧାତୁ=ଧାରଣ କରିବା+କର୍ତ୍ତୃ. ମନ୍; ଧାମନ୍; ୧ମା.
Dhāma ୧ବ.)—୧ । ବାସସ୍ଥାନ—1. Residence; dwelling place; abode.
୨ । ଗୃହ; ଘର—2. House; room.
୩ । ଠିକଣା—3. Address.
୪ । ସ୍ଥାନ—4. Place.
୫ । ଆସ୍ପଦ; ଆଧାର; ପାତ୍ର—
5 Receptacle; container.
୬ । ଦେହ; ଶରୀର—6 Body.
୭ । ସ୍ୱର୍ଗ—7. Abode of the Gods; heaven.
୮ । ଜନ୍ମ—8. Birth.
୯ । ପଦ—9. Position.
୧୦ । ପ୍ରଭାବ; ମହତ୍ତ୍ୱ, ପ୍ରତାପ—10. Might; power; glory; energy; influence.
୧୧ । ଜ୍ୟୋତିଃ; ଦୀପ୍ତି—11. Lustre; radiance.
୧୨ । ରଶ୍ମି; କିରଣ—12. Ray of light.
୧୩ । ଆଲୋକ—13 Light.
୧୪ । ମର୍ଯ୍ୟାଦା—14. Dignity; majesty.
୧୫ । ଅହଂକାର—15. Pride.
୧୬ । ପରାକ୍ରମ—16 Valour; courage; heroism.
୧୭ । ପଲ୍ଲୀ ଗ୍ରାମ—17. Hamlet; village.
୧୮ । ପରିଚୟ—18. Significance; indication.

୧୯ । ଏକ ପ୍ରକାର ବାଉଁଶ—
19. A kind of bamboo.
୨୦ । ସୈନ୍ୟ ଦଳ—20. A troop; host (Apte).
୨୧ । ଶୈଳୀ—
21. Fashion; manner; mode (Apte).
୨୨ । ପରିବାରର ବ୍ୟକ୍ତି—
22. Member of a family (Apte)
୨୩ । ପାରିବାରିକ ବିଷୟ—
23. Family affairs; family property (Apte)
୨୪ । ଅବସ୍ଥା; ଗତି—24. State; condition (Apte).
୨୫ । ବିଧି; ନିୟମ—25. Rule, law. (Apte)
୨୬ । ଲଗାମ; ବାଗଡୋର (ହି ଶବ୍ଦସାଗର)—
26. Bridle; reins.
୨୭ । ଶୋଭା (ହି. ଶ)—27. Splendour.
୨୮ । ଦେବସ୍ଥାନ; ପୁଣ୍ୟ ସ୍ଥାନ; ପୀଠ (ହି. ଶ)—
28 A holy place; a shrine.

ଧାମହିଁ ନାମ ମାତ୍ରେ ଥିବ,
ଜଳେ ଦ୍ୱାରକା ନାଶ ଯିବ। ଜଗନ୍ନାଥ- ଭାଗବତ।

[ଦ୍ର—ଭାରତର ୪ ଦିଗରେ ୪ ଗୋଟି ଧାମ ବା ପ୍ରସିଦ୍ଧ ଦେବସ୍ଥାନ ଅଛି; ଯଥା—ଉତ୍ତରରେ ବଦ୍ରୀନାଥ (ବଦ୍ରୀକା), ଦକ୍ଷିଣରେ ରାମନାଥ (ରାମେଶ୍ୱର), ପୂର୍ବରେ ଜଗନ୍ନାଥ (ପୁରୀ) ଓ ପଶ୍ଚିମରେ ଦ୍ୱାରକାନାଥ (ଦ୍ୱାରକା)।]
୨୯ । ବିଷ୍ଣୁ (ହି. ଶ.)—Bishṇu.
୩୦ । ବ୍ରହ୍ମ (ହି. ଶ.)—30. Brahma.
୩୧ । ଘେରିବା ପାଚେରି, ପାଚିର (ହି. ଶବ୍ଦସାଗର)—
31. Compound wall.
୩୨ । ପରଲୋକ (ହି. ଶ.)—
32. Existence after death
୩୩ । ବେଡ଼ି; ଶୃଙ୍ଖଳ—33. Fetter (Apte).

**ଧାମକ**—ସଂ. ବି. (ଧାମନ୍+ସଂଜ୍ଞାର୍ଥେ. କ)—୧² ଗ୍ରେନ୍, ୧ ତୋଲାର Dhāmaka ୧/୨ ଭାଗର ଏକ ଭାଗ, ୧ ମଷା ପରିମାଣ ବା ଓଜନ—
$\frac{1}{12}$ of a Tola (weight).

**ଧାମଣ**—ଦେ. ବି.—୧ । (ସଂ. ଧର୍ମଣ ବା ଧନ୍ୱନ୍=ଧନୁ ବୃକ୍ଷ)—ବୃହତ୍ Dhāmaṇa ଆରଣ୍ୟତରୁ ବିଶେଷ; ଧନୁବୃକ୍ଷ, ଧାମଣ—
(ଧାମଣା, ଧାମଣୀ, ଧାମଣ—ଅନ୍ୟରୂପ) 1. A wild tree
(ସଂ ପର୍ଯ୍ୟାୟ—ଧାମନ, ରକ୍ତକୁସୁମ, ଧନୁର୍ବୃକ୍ଷ ମହାବଳ।) having very hard and tenacious wood; Cordia Macleodie; Grewia Teliaefolia.
ଧାମନ, ଧାମନା
**ଧାମନ, ଫାରସା, ଧାମନୀ**
ଭା. ଥାଡ଼ା, ଥରସ
[ଦ୍ର—ମଧ୍ୟଭାରତ, ଛୋଟନାଗପୁର ଓ ଓଡ଼ିଶାର ଜଙ୍ଗଲମାନଙ୍କରେ ଏହା ଜନ୍ମେ। ଏହାର କାଠ ଭାରି ଶକ୍ତ ଓ ଚେମଡ଼ା ଥିବାରୁ ଏ କାଠରେ ଧନୁ ଓ ବାହୁଙ୍ଗୀ କରାଯାଏ। ଏହାର ଛାଲ ନାଳୁଆ ଓ ଚଟଚଟ।]

୨ । (ସଂ. ଧାମ=ଗୃହ; ଏହା ଘରେ ଚଳପ୍ରଚଳ ହେଉ ଥିବାରୁ) ଚେମେଣା, ଧମଣା ସାପ—2 A large nonpoisonous snake, Zamenis Mucasum.

**ଧାମନିକ**—ସଂ ବିଣ (ଧମନୀ+ଇକ)—ଧମନୀ ସମ୍ବନ୍ଧୀୟ—
Dhāmanika Arterial; pertaining to the veins.

**ଧାମନିଧି**—ସଂ ବି. (୬ଷ୍ଠୀ ତତ୍, ଧାମ=ତେଜ+ନିଧି=ଆଧାର)—ସୂର୍ଯ୍ୟ
Dhāmanidhi The sun.

**ଧାମନୀ**—ସଂ. ବି. (ଧମନୀ+ସ୍ୱାର୍ଥରେ ଅ+ ସ୍ତ୍ରୀ. ଈ)—ଧମନୀ, ନାଡ଼ୀ—
Dhāmanī Artery; pulse
(ଧାବନିକା—ଅନ୍ୟରୂପ)

**ଧାମରା**—ଦେ. ବି.—ଓଡ଼ିଶା ଉପକୂଳର ପ୍ରାଚୀନ ବନ୍ଦରବିଶେଷ—
Dhāmarā An ancient port on the sea-coast of
(ଧାମରାମୁହାଣ—ଅନ୍ୟରୂପ) Orissa, now in the district of Bālasore.

**ଧାମରୀ**—ଦେ ବି—ଧାମରା ମୁହାଣ ନିକଟରେ ପ୍ରତିଷ୍ଠିତା ଦେବୀବିଶେଷ—
Dhāmarī Name of a Goddess

ଚେକୋଧାମ ଯେଉଁ ଧାମରୀ ଦେବୀଙ୍କ ଜଙ୍ଘ-ପଦ୍ମରେ
ତାଙ୍କ ଅର୍ଦ୍ଧାଙ୍ଗ ଭୂମିରୁ ଅର୍ଦ୍ଧଲେ ରୂପ-କ୍ରମରେ—ରାଧାନାଥ. ଛିଲା।

**ଧାମା**—ଦେ. ବି (ସଂ. ଧାମନ=ବାଉଁଶ; ଏହା ବାଉଁଶରେ କରିତ
Dhāmā କିମ୍ବା ସଂ. ଧାମନ୍=ଆଧାର; ପାଦ )—
ଧାମା ୧ । ଡମା; ଗୋରୁଙ୍କୁ କୁଣ୍ଡାପାଣି ଦେଇବା ସକାଶେ ବ୍ୟବହୃତ
**ଧାମା** ବାଉଁଶ ବା ବେତ ପାଛିଆରେ ନିର୍ମିତ ଏକପ୍ରକାର ପାତ୍ର—
1. A scuttle or impervious basket of bomboo or rattan for feeding cattle.
୨ । ବେତ ବା ବାଉଁଶ ପାଛିଆରେ ନିର୍ମିତ ଶସ୍ୟାଧାର; ଟୋକେଇ—2. A cane or bamboo basket for grains.

**ଧାମାର୍ଗବ**—ସଂ. ବି—୧ । ଅପାମାର୍ଗ; ଅପମାରଙ୍ଗ—1. A herbarious
Dhāmārgaba plant; Achyranthus Aspera.
୨ । ମହାକାଳ (ଲତା) (ଦେଖ) (ବିରେଳକୃଷ୍ଣ. ଦ୍ରବ୍ୟଗୁଣ)—
2. Mahākāla (creeper) (See)
୩ । ଗୋସାଉଳ; ବନ୍ୟ ଲତାବିଶେଷ—
(ବିରେଳକୃଷ୍ଣ. ଦ୍ରବ୍ୟଗୁଣ)—3. Name of a wild creeper.
୪ । ରକ୍ତାପମାର୍ଗ, ନାଲି ଅପାମାରଙ୍ଗ (ହି. ଶ)—
4. The red variety of Achyranthes Aspera.

**ଧାମିବା**—ଦେ. (ପଦ୍ୟ) କ୍ରି. (ସଂ. ଧାବ୍ ଧାତୁ)—ଧାଇଁବା—
Dhāmibā To run.
ଧାଓଆ; ଧାବା
**ଧାବନା**

ଧାମନ୍ତି ଅତି ମହାବେଗେ
କର୍ଣ୍ଣ ନିକଟ ମୁକ୍ତ କେଶେ—ଜଗନ୍ନାଥ. ଭାଗବତ।

ଧାୟାଁ — ଦେ. ବି—ପଖୋଜ ମୃଦଙ୍ଗ ଆଦିର ବାଆଁ ପାଖର ମୁହଁରେ ମଡ଼ା
Dhāyāṅ ଯାଇଥିବା ଚମଡ଼ା ଓ ତହିଁର କାଢ଼ୁଥିବା ଶବ୍ଦ—
ବାୟାଁ The leather on the left hand face of
**बायाँ** a drum and the sound produced by striking it

**ଧାର** ସଂ. ବିଣ. ( ଧୃ ଧାତୁ + କର୍ତ୍ତୃ ଅ )—
Dhāra ୧ । ଯେ ଧରେ, ଧାରଣକାରୀ—
1 Holding; supporting; containing.
[ ଦ୍ର—ଅନ୍ୟ ଶବ୍ଦ ସଙ୍ଗେ ପ୍ରଯୁଜ୍ୟ ହୁଏ । ]
୨ । ଯେ ବୋହିଯାଏ; ପ୍ରବାହିତ—
2. Streaming; flowing (Apte).
୩ । ଗମ୍ଭୀର; ଗଭୀର (ହି. ଶବ୍ଦସାଗର)—3. Deep.
ସଂ. ବି—୧ । (+କର୍ମ. ଅ) ଋଣ—1 Loan, debt.
୨ । ଶେଷ ସୀମା —
2. Limit; boundary; border.
୩ । ଅସ୍ତ୍ରାଦିର ତୀକ୍ଷ୍ଣାଂଶ; ଦାଢ଼—
3 Edge, sharp edge
୪ । ତୀର—4. Bank.
୫ । ତୀକ୍ଷ୍ଣତା, ପ୍ରାଖର୍ଯ୍ୟ—
5. Kneeness; sharpness.
୬ । ଦ୍ରବ ବସ୍ତୁର ଅବିରଳ ଜଳାଦି ଧାରି—
6. A continuous flow of a liquid.
୭ । ବୃଷ୍ଟି ଜଳ—7. Rain water
୮ । ଏକ ପ୍ରକାର ପଥର—
8. A kind of stone.
୯ । ଗମ୍ଭୀରତା—9. Depth.
୧୧ । ନଦୀ ବା ଖାଲର ଉଚ୍ଚ ତଟ; ଅଡଡ଼ା—
11. Precipitous edge of a river or declivity.
୧୨ । ବରଫ—12. Snow; hail (Apte).
୧୩ । ବିଷ୍ଣୁର ଏକ ନାମ—
13. An epithet of Bishṇu.
୧୪ । ଗଭୀର ସ୍ଥାନ—14. A deep place.
୧୫ । ଜୋରରେ ପାଣି ବରଷିବା; ମୂଷଳଧାରରେ ବର୍ଷା (ହି.ଶ)-
15. Heavy downpour or shower.
୧୬ । ଜଳାଶୟାଦିରେ ଏକତ୍ର ହୋଇଥିବା ବର୍ଷା ଜଳ ( ହି. ଶବ୍ଦସାଗର )—16. Rain water accumulated in a tank.
[ଦ୍ର—ବୈଦ୍ୟକ ମତରେ ଏହା ତ୍ରିଦୋଷନାଶକ, ଲଘୁ, ରସାୟନ, ବଳକାରକ, ତୃପ୍ତିକର, ପାଚକ ଓ ମୂର୍ଚ୍ଛା, ତନ୍ଦ୍ରା, ଦାହ, କ୍ଲାନ୍ତି ଓ ତୃଷା ନିବାରକ । ଶ୍ରାବଣ ଓ ଭାଦ୍ରବରେ ଏ ଜଳ ବିଶେଷ ଉପକାରୀ । ହି ଶବ୍ଦସାଗର । ]
୧୭ । ପ୍ରାନ୍ତ; ପ୍ରଦେଶ ( ହି. ଶବ୍ଦସାଗର )—
17. Province; part of a country.

ଧାର ଦେ. ବି. ( ସଂ. ଧାରା ) ୧ । ନଦୀ ସ୍ରୋତ—
**धार** 1. Current of a river.
୨ । ଖରା ଦିନେ ନଦୀର ପାଣି ବହି ଯାଉଥିବା ସ୍ଥାନ; ଖରା ଦିନେ ନଦୀ ଜଳର ପ୍ରବାହିତ ସ୍ରୋତ—
2. A current of water of a river running in dry season.
୩ । ଉଧାର; ବିନା ସୁଧରେ ଟଙ୍କା ଆଦି କରଜ—
3. Loan of money or any article without interest.
୪ । ପିମ୍ପୁଡ଼ି, ଜନ୍ଦା, ମାଛ ଆଦିଙ୍କର ଗୋଟିକ ପରେ ଗୋଟିଏ ଅବିଚ୍ଛିନ୍ନ ରୂପେ ଚାଲୁଥିବା ରେଖା ( ଯଥା—ପିମ୍ପୁଡ଼ି ଧାର, ଜନ୍ଦା ଧାର )—4 A continuous line of ants, fish etc following each other.
ପ୍ରାଦେ. (ଯାଜପୁର) ବି—ତାଳବାହୁଙ୍ଗାର ଭିତର ଅଂଶରୁ କାଢ଼ାଯିବା ଲିଇ—The tenacious fibres from the inner rind of the stalks of palm branches.

ଧାରଉଧାର—ଦେ ବି. (ସଦଚର)—କରଜ ଦାମ; ଦେଣା; ଋଣଧନ ବା
Dhāraudhāra, ଦ୍ରବ୍ୟାଦିର ଋଣ—Loan, borrowing of
(ଧାରଉଧାରି—ଅନ୍ୟରୂପ) money or articles.
धावउधाव; धावकवज ଏଠାରେ କଣ କଣାବିକା କଥା ସେ ।
**धावकर्ज** ଧାରଉଧାର ଚଳେ । ଫକୀରମୋହନ. ଛମାଣଆଠଗୁଣ୍ଠ ।
[ ଦ୍ର— କରଜାରେ ଖାତକକୁ ସୁଧ ଦେବାକୁ ପଡ଼େ; ମାତ୍ର ଧାର ଉଧାରରେ ସୁଧ ନାହିଁ । ]

ଧାରକ— ସଂ. ବି. (ଧୃ ଧାତୁ+କର୍ତ୍ତୃ. ଅକ)—୧ । କଳସ—
Dhāraka 1. A pitcher.
୨ । କୌଣସିପ୍ରକାର ପାତ୍ର ବା ଆଧାର—
2. A vessel or receptacle of any kind(Apte).
୩ । ଅଧମର୍ଣ୍ଣ; ଖାତକ—3. A debtor.
୪ । ମଧ୍ୟସ୍ଥ—4. An umpire (Ganguly).
୫ । ପତଳା ଝାଡ଼ାକୁ ବାନ୍ଧିବା ଔଷଧ—
5 Astringent medicine.
(ଧାରିକା—ସ୍ତ୍ରୀ) ସଂ. ବିଣ—୧ । ଧାରଣକର୍ତ୍ତା; ବହନକାରୀ—
1. Holding; bearing; possessing;
୨ । ଋଣଗ୍ରସ୍ତ; ଧାରୁଆ— 2. Indebted.
୩ । ଯେ ପୁରାଣ ପାଠକର ଭ୍ରମ ଦେଖାଏ—
3. Pointing out the mistakes of a reader of Purāṇas.
୪ । ଯେଉଁ ଔଷଧ ସେବନ କଲେ ମଳଭାଣ୍ଡରେ ମଳଧାରଣର ଶକ୍ତି ହୁଏ—4. (a medicine) Checking loose motions; astringent.
୫ । ଯେ ବା ଯାହା ଅଟକାଏ (ହି. ଶବ୍ଦସାଗର)—
5. Restraining.

**ଧାରକରଜ**—ଦେ. ବ. (ସମାର୍ଥକ ସହଚର, ସଂ. ଧାର, ଫା. କର୍ଜ୍)—
Dhārakaraja ଧାରଉଧାର (ଦେଖ)—
(ଧାରକରଜା—ଅନ୍ୟରୂପ) Dhāraudhāra (See)
धावकवज [ ଦ୍ର—ଧାର ନେଲେ ଖାତକ ମହାଜନଙ୍କୁ ସୁଧ ଦିଏ
धारकर्ज ନାହିଁ, କିନ୍ତୁ କରଜ ନେଲେ ସୁଧ ଦିଏ । ]

**ଧାରକରିବା**—ଦେ କ୍ରି—୧ । ଅସ୍ତ୍ରାଦିକୁ ଦାଢ଼ କରିବା; ପଜେଇବା—
Dhārakaribā 1 To sharpen or whet an
धावकवा धारदेना, धारकरना instrument.
୨ । ଋଣ କରିବା—2. To borrow.

**ଧାରକା**—ସଂ. ବି. ସ୍ତ୍ରୀ (ଧାରକ+ସ୍ତ୍ରୀ ଆ)—ସ୍ତ୍ରୀ ଯୋନି—
Dhārakā The vulva of a female (Apte).

**ଧାରଞ୍ଜ**—ଦେ. ବି.—(ବୈଦ୍ୟକ)—ବୃକ୍ଷବିଶେଷ—
Dhārañja Name of a tree.
[ ଦ୍ର—ଏହା ଛେଲିର କ୍ୱାଥ ଓ ଚୂର୍ଣ୍ଣି କଟୁ ଏବଂ ଉଷ୍ଣ । ଏହା କଫ, ବାତ ଓ ଆମବାତ ହରଣ କରେ । ଏହି ଛେଲିର ଚୂର୍ଣ୍ଣି ସୁଦ୍ଧିକା ସନ୍ନିପାତରେ ପ୍ରୟୋଗ କରାଯାଏ । ଦ୍ରବ୍ୟଗୁଣ କଳ୍ପଦ୍ରୁମ ]

**ଧାରଣ**—ସଂ. ବି. (ଧୃ ଧାତୁ+ଭାବ ଅନ)—୧ । ଧରିବା; ଗ୍ରହଣ; ଅବଲମ୍ବନ—1. Act of holding or supporting.
Dhārana
୨ । ରକ୍ଷଣ—2. Retention; retaining, keeping
୩ । ପରିଧାନ; ପିନ୍ଧିବା—3 Wearing; putting on.
୪ । ରକ୍ଷା କରିବା—4 Preserving.
୫ । ବ୍ରତାଦି ପାଳନ—5. Observance of vows.
୬ । ସଂରକ୍ଷଣ; ସଂବରଣ; ସଂଯମନ—
6. Restraining, controlling.
୭ । ସହନ—7 Endurance; fortitude.
୮ । ଋଣଗ୍ରହଣ (ହି. ଶ.)—8. Borrowing.
୯ । ଧାରଣା (ଦେଖ)—9. Dhāranā (See)
୧୦ । (ନାମ) କଶ୍ୟପଋଷିଙ୍କର ଏକ ପୁତ୍ର (ହି. ଶ)—
10. Name of a son of sage Kaśyapa.

**ଧାରଣ କରିବା**—ଦେ. କ୍ରି—୧ । (କୌଣସି ବସ୍ତୁ) ଅଙ୍ଗରେ ଧରିବା—
Dhārana karibā 1. To hold
धावन कवा ୨ । (ବସ୍ତ୍ରାଦି) ପିନ୍ଧିବା; ପରିଧାନ କରିବା—
धारणकरना 2. To wear; to put on.
୩ । (ଭାର ଆଦି) ବହନ କରିବା—3 To carry.
୪ । (ଔଷଧାଦି) ସମ୍ଭାଳିବା—
4. To bear; to retain (any medicine).
୫ । (ପ୍ରସ୍ରାବ ଆଦିର ବେଗ) ଅଟକାଇବା ବା ସଂଯମ କରିବା—
5 To restrain, to control.
୬ । (ନାମ ବା ଦାୟିତ୍ୱ) ଗ୍ରହଣ କରିବା—
6. To take upon one' self; to undertake.
୭ । ଅବଲମ୍ବନ କରିବା—7. To have recourse to.

**ଧାରଣା**—ସଂ. ବି. ସ୍ତ୍ରୀ (ଧୃ ଧାତୁ ଣିଜନ୍ତରେ ଧାରି ଧାତୁ=ପୋଷଣ କରିବା
Dhāranā ଭାବ. ଅନ+ସ୍ତ୍ରୀ. ଆ)—୧ । ନିର୍ଦ୍ଧାରଣ—
1. Resolution.
୨ । ସିଦ୍ଧାନ୍ତ—2. Conclusion
୩ । ନିଶ୍ୱାସ ବନ୍ଦ କରିବା; କୁମ୍ଭକ—3 The exercise of suspension of the breath for some time.
୪ । ସ୍ମରଣ ରଖିବା—4. Retention in memory; remembrance.
୫ । ଏକାଦିକ୍ରମେ ସ୍ଥିତି, ସ୍ଥୈର୍ଯ୍ୟ—5. Tenacity.
୬ । ବୁଦ୍ଧି—6. Intellect.
୭ । ନ୍ୟାଯ୍ୟ ପଥରେ ସ୍ଥିତି—
7. Continuance in rectitude and propriety.
୮ । ଅଭିନିବେଶ, ଚିତ୍ତର ଏକାଗ୍ରତା—8. Close attention, mental concentration; meditation.
୯ । ଅଦ୍ୱିତୀୟ ବ୍ରହ୍ମରେ ଅଭିନିବେଶ—
9. Concentrated devotion to God.
୧୦ । ଅଧ୍ୟବସାୟ—10 Perseverance.
୧୧ । ସଂସ୍କାର, ବିଶ୍ୱାସ—11 Belief; faith; notion, conception; impression.
୧୨ । ଦୃଢ଼ ବିଶ୍ୱାସ—12. Conviction (Apte).
୧୩ । ନିର୍ଦ୍ଧାରିତ ନିୟମ—
13 A settled rule (Apte).
୧୪ । ଅବରୋଧ—14. Retention.
धर्णी ଦେ ବି—୧ । ଠେକା—1. A support; a prop.
धरन, धरनी, धरना ୨ । କାନ୍ଥରେ କବାଟ ବସିବା ଫାଙ୍କ ଉପରେ ଦିଆଯିବା ଲମ୍ବକାଠ (ଯାହା ଉପରେ ପଥର ବା ଇଟା କାମ ଗଢ଼ାଯାଏ)—2. A beam put horizontally across the opening of a door or window in a wall.
ଦହୁଁ ଦୁହେଁ ଅରସନ କେ ନୁହନ୍ତ ଊଣା
ଅଳପ ହୁଁଏ ଘାଇ ଦେଇଲେ ଧାରଣା । କୃଷ୍ଣସିଂହ. ମହାଭାରତ. ଶାନ୍ତି ।
୩ । ଦେବତାଙ୍କ ପାଖେ ମନୋବାଞ୍ଛା ପୂର୍ଣ୍ଣ ହେବା ପର୍ଯ୍ୟନ୍ତ ଅଧାପଡ଼ିବା—3. To lie praying before a Deity till one gets one's wishes fulfilled.
୪ । ସାପ କାମୁଡ଼ିବା ସ୍ଥାନ ଉପରେ ଦେବତାଙ୍କ ନାମରେ ବନ୍ଧାଯିବା ସୂତା—4. A thread tied in the name of a Deity over the part of the body bitten by a serpent.
୫ । ସହାୟ; ଆଶ୍ରୟ—5. Help
ସେ କାଳରେ କାହାକୁ ଯୁଦ୍ଧରେ ଧାରଣା
ନ ପାଇ ଭୂଭୁମାନେ ହୋଇଲେ ବିମନା । କୃଷ୍ଣସିଂହ. ମହାଭାରତ. କର୍ଣ୍ଣ ।
୬ । ରେଖା; ଗାର—6. Line.
ସା ପିଠିରେ ପଞ୍ଚଛ ସୁନାର ଧାରଣା
ଏ କାହା ଧନୁ ସହ କହ ନୋହୁ ବଣା । କୃଷ୍ଣସିଂହ. ମହାଭାରତ. କର୍ଣ୍ଣ ।
୭ । ଦୁଇ ବା ତତୋଽଧିକ ଲମ୍ବ ବସ୍ତୁକୁ ସମାନ୍ତର ଭାବରେ ଯଥାସ୍ଥାନରେ ରଖିବା ପାଇଁ ଉହିଁରେ ଆଡ଼ ଭାବରେ ଦିଆଯିବା କାଠର ଦଣ୍ଡ ବା ଦଣ୍ଡମାନ; ଆଡ଼ଧାରଣା—

7. Cross-beam; a pole or poles which are placed breadthwise to keep two or more long things in proper position.

ପ୍ରାଦେ. (ପୁରୀ) ବି—ବର୍ଷାଦିନେ ପାଣି ପୂର୍ଣ୍ଣ ହୋଇଥିବା ନାଳ ଉପରେ ପଡ଼ିଥିବା ନଡ଼ିଆ, ତାଳ ବା ଖଜୁରୀଗଡ଼ ଉପରେ ଲୋକେ ଚାଲିଲାବେଳେ ଯେପରି ପଡ଼ି ନ ଯିବେ ଏଥିପାଇଁ ତା କଡ଼ରେ ବନ୍ଧା ଯାଇଥିବା ବାଉଁଶ (ଯାହାକୁ ଧରି ଲୋକେ ଉକ୍ତ ଗଡ଼ ଉପରେ ଚାଲନ୍ତି)—A raised railing used by people for holding it while crossing a water channel on a log.

**ଧାରଣାକରିବା**—ଦେ. କ୍ରି—୧ । ନିର୍ଦ୍ଧାରଣ କରିବା—
Dhāraṇākariba 1. To resolve
धारनाकरना; **धारणाकरना** ୨ । ସ୍ଥିର କରିବା—
2. To arrive at a definite conclusion.
୩ । ମନ ମଧ୍ୟରେ ଗୋଟିଏ ଚିତ୍ର ଅଙ୍କିତ କରିବା—
3. To have an impression.
୪ । ଚିତ୍ତର ଏକାଗ୍ରତା ସମ୍ପାଦନ କରିବା—4. To concentrate one's mind upon a thing
୫ । କଳ୍ପନା କରିବା—5 To conceive.

**ଧାରଣା ଦେବା**—ଦେ. କ୍ରି—୧ । କୌଣସି ଦେବତାଙ୍କ ନିକଟରେ
Dhāraṇā deba ଅଧା ପଡ଼ିବା—1 To lie praying and
धर्णादेओआ; **धरनादेना** prostrate before a Diety till
(ଧାରଣା ପଡ଼ିବା—ଅନ୍ୟରୂପ) one's wishes are fulfilled.
ସାଥିଜାଣି ନଶ୍ୱାସହାଏ ଉକାଉ କହିଲେ; ଆଜ୍ଞା ଦେବେ ଧାରଣା ଦିଅ—ଫକୀରମୋହନ; ଗଳ୍ପସ୍ୱଳ୍ପ ।
୨ । କୌଣସି ବ୍ୟକ୍ତି ନିକଟରେ ଅଳି କରି ପଡ଼ି ରହିବା—2. To picket.
୩ । କେତେଗୁଡ଼ିଏ ଲମ୍ବ କାଠ ଆଦିକୁ ଟେକି ରଖିବାପାଇଁ ତଳେ ଆଡ଼ ଭାବରେ କାଠ ଦେବା—3. To place a prop crosswise below long things

**ଧାରଣାବାନ୍**—ସ. ବଣ. ପୁଂ(ଧାରଣା+ଅସ୍ତି ଅର୍ଥରେ ବତ୍; ୧ ମା. ୧୭)-
Dhāraṇāban ୧ । ମେଧାବୀ—1. Intelligent.
(ଧାରଣାବତୀ—ସ୍ତ୍ରୀ) ୨ । ସ୍ମରଣଶକ୍ତିବିଶିଷ୍ଟ—
2. Of retentive memory.

**ଧାରଣାଶକ୍ତି**—ସ.ବି—(୬ଷ୍ଠୀ ବା ରୂପକ; ଧାରଣା+ଶକ୍ତି) ୧ । ମେଧା—
Dhāraṇāśakti 1. Intelligence.
୨ । ସ୍ମରଣଶକ୍ତି—2. Retentive memory.
୩ । ସଙ୍ଗମକାଳରେ ବୀର୍ଯ୍ୟ ସମ୍ଭାଳିବା ଶକ୍ତି—
3. Sexual retentive power; the power of retaining the semen during copulation.

**ଧାରଣୀ**—ସ. ବି. ସ୍ତ୍ରୀ. (ଧାରଣ+ଈ)—୧ । ନାଡ଼ୀ—
Dhāraṇi 1. Artery; vein; blood vessel.
୨ । ଶ୍ରେଣୀ—2. Class.
୩ । ଯନ୍ତ୍ର; କବଚ; ମନ୍ତ୍ରବିଶେଷ—3. A class of incantations (which are to be worn on the body to ward off evils).
ଗ୍ରା. ବଣ. ସ୍ତ୍ରୀ (ସ. ଧାରଣୀ)—ଧାରଣକର୍ତ୍ତ୍ରୀ 1—Holding;
(ଧାରେଣୀ—ଅନ୍ୟରୂପ) upholding.
ସହାରଣୀ ପାଳଣୀ ଧର 1 ସଂସାର,
ପ୍ରକୃତ କାରଣୀ ସବଂଭୂତେ ନମସ୍କାର । ଗ୍ରା ଗୀ. ରହସ୍ୟମଞ୍ଜରୀ ।

**ଧାରଣୀୟ**—ସ. ବଣ ( ଧୃ ଧାତୁ+କର୍ମ. ଅନୀୟ )—୧ । ଧୃତ ହେବାର
Dhāraṇiya ଉପଯୁକ୍ତ; ଧାରଣଯୋଗ୍ୟ—1. Fit to be held.
(ଧାରଣୀୟା—ସ୍ତ୍ରୀ) ୨ । ପରିଧେୟ—2. Fit to be worn

**ଧାରତା**—ଦେ. ବି—୧ । ଖାତକ; ଦେଣଦାର; ଅଧମର୍ଣ୍ଣ—
Dhāratā 1. Debtor.
धेरो ୨ । ଋଣ—2. Debt.
**धारनेवाला** ୩ । ଯାମିନ୍; ପ୍ରତିଭୂ—3. Surety
(ଧାରୁତି—ଅନ୍ୟରୂପ) ୪ । ବନ୍ଧକ—4. Mortgage.
ଦେ. ବଣ—ଧାରୁଆ; ଋଣୀ—Indebted

**ଧାରତା ବନ୍ଧା**—ଦେ. ବି—ସମ୍ପତ୍ତି ବନ୍ଧକ—Mortgage or pledge
Dhāratā bandhā of property.
बन्धक; **रेहन; गिरवी** ଦେ. ବଣ—ଋଣରେ ଆବଦ୍ଧ; ଋଣୀ—
(ଧାରୁତିବନ୍ଧା—ଅନ୍ୟରୂପ) Indebted; bound by debt.
देनदाव; धेरो **देनदार**

**ଧାର ଦେବା**—ଦେ. କ୍ରି—କୌଣସି ବ୍ୟକ୍ତିକୁ ବିନା ସୁଧରେ ଟଙ୍କା ବା
Dhāra debā ଅନ୍ୟ ବସ୍ତୁ ପଦାର୍ଥ ଋଣ ଦେବା—To lend
धाब देओ्आ money or article without any
**उधार देना** interest.

**ଧାର ଧାର**—ଦେ. ବଣ—ଏକାଧିକ ଧାର ବା ସ୍ରୋତବିଶିଷ୍ଟ—
Dhāra dhāra Consisting of many currents.
बहु धाबे ଦେ କ୍ରି. ବଣ—ଏକାଧିକ ଧାରରେ—
**धारी धारी, धाराएँ** In currents.
ନେତ୍ରଜଳନ୍ତି ନାଳ ବହେ କାହିଁକି ଅହା ଧାର ଧାରରେ—କବିସୂର୍ଯ୍ୟ. ସଙ୍ଗୀତ ।

**ଧାର ଧାରିବା**—ଦେ. କ୍ରି—୧ । ଅନ୍ୟ ବ୍ୟକ୍ତିଠାରେ ଋଣଦାୟରେ ଆବଦ୍ଧ
Dhāra dhāriba ହେବା; ଋଣଗ୍ରସ୍ତ ହେବା;—
धाब धाबा 1 To owe money to another.
**धारना** ୨ । (ଲକ୍ଷଣାର୍ଥ) କୌଣସି ବ୍ୟକ୍ତି ବା ବିଷୟ ସହିତ ସମ୍ପର୍କ ରଖିବା—1. To have any connection with a person or a thing.
ସେ ପାଠ ଶାଠର ଧାର ଧାରେ ନାହିଁ—କୁନ୍ତଳାକୁମାରୀ. ନଅଭୁଣୀ ।

**ଧାର ନେବା**—ଦେ. କ୍ରି—ଅନ୍ୟ ବ୍ୟକ୍ତିଠାରୁ ଋଣ କରିବା—
Dhāra nebā To borrow.
धाबलओ्आ **उधार लेना**

**ଧାରମିକ**—ଦେ (ପଦ୍ୟ) ବଣ—ଧାର୍ମିକ (ଦେଖ)
Dhāramika Dhārmika (See)
କହିଲେ ପଣ୍ଡୁ ଧାରମିକ ଶିରୋମଣି—କୃଷ୍ଣସିଂହ. ମହାଭାରତ. . ଅବ ।

**ଧାରଯ**—ଗ୍ରା ବଣ (ସ. ଧାର୍ଯ୍ୟ)—ଧାର୍ଯ୍ୟ (ଦେଖ)
Dhāraja Dhārjya (See)
धारय **धारज**

**ଧାରୟିତା**—ସ. ବଣ. ପୁଂ (ଧୃ ଧାତୁ ଣିଚ୍=ଧାରି ଧାତୁ+କର୍ତ୍ତୃ. ତୃ; Dhārayitā ୧ମା ୧ବ)—ଧାରକ, ଧାରଣକର୍ତ୍ତା—Holding, (ଧାରୟିତ୍ରୀ—ସ୍ତ୍ରୀ) sustaining; bearing.

**ଧାରୟିତ୍ରୀ**—ସ. ବ. ସ୍ତ୍ରୀ (ଧାରୟିତାର ସ୍ତ୍ରୀଲିଙ୍ଗ)—ପୃଥିବୀ—Dhārayitrī The earth.

**ଧାରୟିଷ୍ଣୁ**—ସ. ବଣ. ପୁଂ (ଧୃ ଧାତୁ ଣିଚ୍+ଶୀଳାର୍ଥରେ ଇଷ୍ଣୁ)—Dhārayishṇu ୧ । ଯେ ଧାରଣ କରି ରହିଅଛି, ଧାରଣଶୀଳ—1. Habituated to hold.

୨ । ଯେ ଧାରଣ କରି ପାରେ—2 Capable of holding or sustaining.

**ଧାରା**—ସଂ. ବ. ସ୍ତ୍ରୀ (ଧୃ ଧାତୁ ଣିଜନ୍ତ ଧାର୍ ଧାତୁ+ଭାବ. ଅ+ସ୍ତ୍ରୀ. ଆ.—Dhārā ୧ । ଦ୍ରବ ବସ୍ତୁର କ୍ରମାଗତ ବା ଅବିରଳ କ୍ଷରଣ ବା ସ୍ରାବ—1. Continuous flow of a liquid; a line of fluid falling down.

୨ । ପ୍ରବାହ, ଜଳସ୍ରୋତ—2 Current, stream; torrent.

୩ । ବରଷାର ଅସାର, ପ୍ରବଳ ବର୍ଷା—3 A shower, downpour; torrential shower.

୪ । ବୃଷ୍ଟି—4. Rain.

୫ । ରଥଚକ୍ର—5. Wheel of a car.

୬ । ରଥଚକ୍ରର ଚିହ୍ନ ବା ଦାଗ—6. The mark or track left by a wheel.

୭ । ଝରଣା; ନିର୍ଝର; ପ୍ରସ୍ରବଣ—7. Spring.

୮ । ସମୂହ—8. Collection; plurality; multitude.

୯ । ଘୋଡ଼ାଙ୍କର ଗତି—9 The different motions of the horse; pace of a horse.

[ଦ୍ର—ଏହା ୫ ପ୍ରକାର ।—ଆସ୍କନ୍ଦିତ—କଦମଚାଲି; ଧୌରିତ—ଦୌଡ଼ିବା; ରେଚିତ—ଚକ୍କର ଦେବା; ବଲ୍ଗିତ—ଡ଼ୁଲକି ଚାଲିବା; ପ୍ଳୁତ—ଛଡ଼ାଡକ, ଗୋଡ଼ ଖୁରା ଉଠାଇ ଦଉଡ଼ିବା ।]

୧୦ । ଯଶଃ—10. Fame.

୧୧ । ଅସ୍ତ୍ରର ଧାର—11. Sharp edge of a weapon.

୧୨ । ପ୍ରାଖର୍ଯ୍ୟ, ପ୍ରଖରତା—12. Sharpness, keenness.

୧୩ । ଶୃଙ୍ଖଳା; କ୍ରମ—13. Order of succession; system.

୧୪ । ଉତ୍କର୍ଷ—14. Excellence.

୧୫ । ଶ୍ରେଣୀ—15. Class; series.

୧୬ । ରୀତି; ଧାରଣ; ପ୍ରକାର—16. Mode; fashion.

୧୭ । ସାଦୃଶ୍ୟ—17. Likeness.

୧୮ । ପଦ୍ଧତି; ବ୍ୟବସ୍ଥା; ନିୟମ—18. Mode; code; prescribed rule.

୧୯ । ପ୍ରକୃତି; ସ୍ୱଭାବ—19. Nature; habit.

୨୦ । ବହୁକାଳ ପ୍ରଚଳିତ ପ୍ରଥା; ରୀତି—20. Custom; usage.

୨୧ । ଚଳୁଥିବା ନିୟମ—21. Practice.

୨୨ । ଆଇନର ବିଧାନମାନଙ୍କର ପରିଚ୍ଛେଦ ବା ଭାଗ; ବିଧି—22. Section of law.

୨୩ । ଅଭ୍ୟାସ—23 Habit

୨୪ । ଗଣିତ ଆଦିର ପ୍ରଣାଳୀ—24. A mathematical rule or method.

୨୫ । ପରିଚ୍ଛେଦ; ଅନୁଚ୍ଛେଦ; ଅଧ୍ୟାୟ—25. Chapter.

୨୬ । ପ୍ରକରଣ—26. Paragraph.

୨୭—ସେନାଦଳର ଅଗ୍ରଭାଗ—27. The front or advance guard of an army.

୨୮ । ଘଟ ଆଦିର ତଳେ କରାଯିବା ଛିଦ୍ର—28 A hole made at the bottom of a pot; a leak.

୨୯ । ଦକ୍ଷିଣାତ୍ୟର ପ୍ରାଚୀନକାଳର ନଗରବିଶେଷ; ଧାରା ନଗରୀ—29. Name of an ancient town in southern India.

୩୦ । (+ଅଧିକରଣ. ଅ) ଭୋଜ ରାଜାଙ୍କ ରାଜଧାନୀ—30. The capital of Bhoja, the ancient king of Ujjayinī.

୩୧ । (+କରଣ. ଅ) କୌଣସି ପଦାର୍ଥର ଧାର ବା ସୀମା—31. Edge of anything; border, margin.

୩୨ । ରାତ୍ରି—32. Night.

୩୩ । ହଳଦୀ—32. Turmeric.

୩୪ । ବାକ୍ୟ, କଥା—34. Speech.

୩୫ । ଜନପ୍ରବାଦ; ଜନଶ୍ରୁତି—35. Rumour; report.

୩୬ । କାନ ଅଗ—36. The tip of the ear (Apte).

୩୭ । ଗଡ଼ଦେବାଲ, ପରିଖିତ—37. A garden wall (Apte).

୩୮ । ବାଡ଼—38 Fence.

୩୯ । ରେଖା; ପଂକ୍ତି; ଧାଡ଼ି—39. Line; row.

୪୦ । ଗିରିଶୃଙ୍ଗ—40. Mountain peak.

**ଧାରା କଦମ୍ବ**—ସ. ବ (ଧାରା+କଦମ୍ବ)—କେଳି କଦମ୍ବ ୧ (ଦେଖ) Dhārākadamba Kelikadamba 1 (See)

**ଧାରାକ୍ରମେ**—ଦେ.କ୍ରି.ବିଣ—ପୂର୍ବ ପ୍ରଚଳିତ ରୀତି ବା ପ୍ରଥା ଅନୁସାରେ—Dhārākrame According to old usage or custom. धारा से, धाराक्रम

**ଧାରାଗୃହ**—ସଂ. ବ (ଧାରା+ଗୃହ)—ଯେଉଁ ଘରେ ସ୍ନାନ କରିବା Dhārāgṛuha ସକାଶେ ଜଳଧାରା ପଡ଼ିବାର ବ୍ୟବସ୍ଥା ହୋଇଅଛି—Bath room; a bath-room with water jets; a room containing a shower bath.

**ଧାରାଙ୍କୁର**—ସଂ. ବ (୬ଷ୍ଠୀ ତତ୍; ଧାରା+ଅଙ୍କୁର)—୧ । ରଣକ୍ଷେତ୍ରରେ Dhārāṅkura ଅଗ୍ରବର୍ତ୍ତୀ ସୈନ୍ୟ—1. The front part of an army taking the field; pioneer.

୨ । ଜଳକଣା—2. Water particles.

୩ । ବର୍ଷାର ଟୋପା—3. A drop of rain
୪ । କରକା; ଲୁଆ ପଥର—4. Hail stone.
୫ । ସରଳ ଗଛର ଅଠା ( ହ ଶବ୍ଦସାଗର )—
5. The gum of Pine tree.

**ଧାରାଙ୍ଗ**—ସଂ. ବି. (ବହୁବ୍ରୀହି, ଧାରା = ଅସ୍ତ୍ରର ତୀକ୍ଷ୍ଣ ଅଗ୍ରଭାଗ + ଅଙ୍ଗ)—
Dhārānga ୧ । ଖଡ୍ଗ; ଖଣ୍ଡା—1. A sword
୨ । ପ୍ରାଚୀନ ତୀର୍ଥବିଶେଷ—2 Name of an ancient holy place of India.

**ଧାରାଟ**—ସଂ.ବି.(ଧାରା = ବୃଷ୍ଟି + ଅଟ୍ ଧାତୁ = ଗମନ କରିବା + କର୍ତ୍ତୃ ଅ)
Dhārāṭa ୧ । ଚାତକ ପକ୍ଷୀ—1. Swallow.
୨ । ମେଘ—2. Cloud
୩ । ଘୋଡ଼ା—3 Horse.
୪ । ମତ୍ତହସ୍ତୀ—4. An excited elephant; a must elephant; an elephant in rut.

**ଧାରାଦତ୍ତ କରିବା**—ପ୍ରାଦେ. (ଗଞ୍ଜାମ) କ୍ରି—ଦାନ କରିବା —
Dhārādatta kariba To make a gift of.
ରାଜା ତାହାଙ୍କୁ ୨ ଏକର ଜମି ଧାରାଦତ୍ତ କରି ଅଛନ୍ତି ।
ବେ. ଅଣା—୧. ୧. ୨୮ ।

**ଧାରାଧର**—ସଂ. ବି. ( ଧାରା + ଧୃ ଧାତୁ + କର୍ତ୍ତୃ. ଅ )—
Dhārādhara ୧ । ମେଘ—1. Cloud.
୨ । ଧାରୁଆ ଅସ୍ତ୍ର—2. A sharp weapon.
୩ । ଖଡ୍ଗ—3. A sword.

**ଧାରା ନଗରୀ**—ସଂ. ବି. (ନାମ—ପ୍ରାଚୀନ ମାଳବ ରାଜ୍ୟର ରାଜଧାନୀ)—
Dhārā nagarī The capital of ancient Malaba Kingdom.
[ ଦ୍ର—ଭୋଜରାଜା ଏଠାରେ ରାଜପଣ କରୁଥିଲେ । ପାତଞ୍ଜଳ ଯୋଗସୂତ୍ରର ବୃତ୍ତି ଓ ରାଜମାର୍ତ୍ତଣ୍ଡ ନାମକ ଜ୍ୟୋତିଷିକ ଗ୍ରନ୍ଥ ଏହାଙ୍କ ଦ୍ୱାରା ରଚିତ । କଥିତ ଅଛି ଯେ, ଭୋଜରାଜା ଉଜ୍ଜୟିନୀଠାରୁ ଏଠାକୁ ରାଜଧାନୀ ଉଠାଇ ଆଣିଥିଲେ । ]

**ଧାରା ନିପାତ**—ସଂ. ବି. ( ୭ମୀ ତତ୍; ଧାରା + ନିପାତ )—
Dhārā nipāta ମୁଷଳଧାରାରେ ବର୍ଷା; ଦୁମୁକାଣି; ଅବିରଳ ଜଳଧାରାରେ ବର୍ଷା ହେବା—
ଧାରାପତନ } ଅନ୍ୟରୂପ
ଧାରାବର୍ଷ }
Raining in continuous showers; incessant raining; a down pour of rain; raining cats and dogs.

**ଧାରାନୁଯାୟୀ**—ଦେ. ବିଣ. ( ଧାରା + ଅନୁଯାୟୀ )—
Dhārānujāyi ଧାରା ବା ନିର୍ଦ୍ଦିଷ୍ଟ ରୀତି ଅନୁସାରେ କରାଯିବା
(ଧାରାନୁସାରେ—ଅନ୍ୟରୂପ) (କର୍ମ) —(act) Done according to custom or practice

**ଧାରାପାତ**—ସଂ. ବି. ( ୭ମୀ ତତ୍; ଧାରା + ପାତ = ପତନ )—
Dhārāpāta ୧ । ଧାରା ନିପାତ ( ଦେଖ )
1. Dhārā nipāta ( See )
୨ । ଗଣିତ ସମସ୍ୟା ସାଧନ କରିବାର ସହଜ ପ୍ରଣାଳୀବିଶେଷ--
2. An easy method of working out a mathematical problem

**ଧାରାବତ୍**—ସଂ. ବିଣ. ( ଧାରା + ବତ୍ )—ଧାରାଳ ( ଦେଖ )
Dhārābat Dhārāla ( See )

**ଧାରାବନି**—ସଂ. ବି. ( ଧାରା + ବନ୍ ଧାତୁ = ଶବ୍ଦ କରିବା + ଇ )—
Dhārābani ପବନ—Wind.

**ଧାରାବାହିକ**—ସଂ. ବିଣ. ପୁଂ ( ଧାରା + ବହ୍ ଧାତୁ + ଇକ )—
Dhārābāhika ୧ । ଅବିଚ୍ଛିନ୍ନ—1. Incessant, continuous; serial.
(ଧାରାବାହିକା—ସ୍ତ୍ରୀ)
(ଧାରାବାହିକତା—ବି) ୨ । କ୍ରମାଗତ —
(ଧାରାବାହୀ—ଅନ୍ୟରୂପ) 2. Never-ending succession.
(ଧାରାବାହିନୀ—ସ୍ତ୍ରୀ) ୩ । ରୀତିସଙ୍ଗତ—3. Customary
୪ । ଅବିରଳ ଧାରାରେ ବହୁଥିବା—
4 Flowing continuously
୫ । ନିୟମିତରୂପେ ସମ୍ପାଦିତ—
5 Done systematically; systematic.

**ଧାରାବିଷ**—ସଂ. ବି ( ବହୁବ୍ରୀହି; ଧାରା = ଦାନ୍ତ + ବିଷ; ଯାହାର ଦାନ୍ତ ବିଷ ସଦୃଶ ସାଂଘାତିକ )—
Dhārābisha
୧ । ତୀକ୍ଷ୍ଣ ଖଡ୍ଗ—1. A sharp sword.
୨ । ବିଷାକ୍ତ ଛୁରୀ—2. A poisoned dagger.
୩ । ବକ୍ର ଖଡ୍ଗ—3. A crooked sword.

**ଧାରାଯନ୍ତ୍ର**—ସଂ. ବି ( ୬ଷ୍ଠୀ ତତ୍; ଧାରା + ଯନ୍ତ୍ର )—
Dhārājantra ୧ । ଜଳଯନ୍ତ୍ର; ଯେଉଁ ଯନ୍ତ୍ରରୁ ଜଳଧାରା ବାହାରିଥାଏ—1. A jet of water; an artificial fountain of water.
୨ । ପିଚକାରୀ—2 A syringe.

**ଧାରାଳ**—ସଂ. ବିଣ. ( ଧାରା + ଅସ୍ତି ଅର୍ଥରେ ଲ )—
Dhārāla ୧ । ତୀକ୍ଷ୍ଣ; ଧାରୁଆ—1. Sharp-edged.
୨ । ପ୍ରଖର—2. Keen.
୩ । ଧାରାବାହିକ—
3. Continuous; systematic; incessant.
୪ । ରୀତିସଙ୍ଗତ—4. Confirming or following a custom or usage.

**ଧାରା ଶ୍ରାବଣ**—ସଂ. ବି. ( ଧାରା = ବୃଷ୍ଟି ଅବସ୍ଥାରେ ପ୍ରଚୁର + ଶ୍ରାବଣ; ମ. ପ. ଲୋ. କର୍ମଧା )—
Dhārā srābaṇa
ଶ୍ରାବଣ ମାସ; (ଏହି ମାସରେ ଅବିରତ ଜଳଧାରାରେ ବୃଷ୍ଟି ହୁଏ)—The month of incessant raining in India; the month of Srābaṇa.

**ଧାରାଶ୍ରୁ**—ସଂ. ବି. ( ଧାର + ଅଶ୍ରୁ ) —ଧାର ଧାର ହୋଇ ଗଡୁଥିବା ଲୋତକ ଧାର—A flood of tears; a continuous flow of tear
Dhārāsru

**ଧାରାସମ୍ପାତ**—ସଂ. ବି. ( ୭ମୀ ତତ୍, ଧାରା + ସମ୍ପାତ )—
Dhārā sampāta ଧାରା ନିପାତ ( ଦେଖ )
Dhārā nipāta ( See )

**ଧାରାସାର**—ସଂ ବି. (ଧାରା + ଆସାର —ଧାରାନିପାତ ( ଦେଖ )
Dhārāsāra Dhārānipāta ( See )

ଧାରାସ୍ନୁହୀ—ସଂ. ବି—ତ୍ରିଧାରାସ୍ନୁହୀ; ତ୍ରିକଣ୍ଟା ସିଜୁ; ଲଙ୍କାସିଜୁ—
Dhārāsnuhī Euphorbia Triucalli; a kind of cactus.

ଧାରାସ୍ରାବ—ସଂ. ବି. ( ୬ଷ୍ଠୀ ତତ୍; ଧାରା+ସ୍ରାବ )— ୧ । ଅବିରତ ଧାରାରେ ବହିବା—1. Outflow of any
Dhārāsrāba
liquid in continuous stream.
୨ । ଅବିରତ ଧାରାରେ ବର୍ଷା—
2. Continuous shower of rain.

ଧାରି —ଦେ. ବି. (ଗ୍ରାମ୍ୟ) (ସ. ଧାରା)—ଧାଡ଼ି (ଦେଖ)
Dhāri Dhārḍi (See)
धाड़ि धାରି ଧାରି କରି ଶ୍ୱେତ ସୌଧମାଳେ
धारी, पाँती ରଚନ୍ତି ଯେଉଁ ରମ୍ୟ ନଗର । ଦ୍ୱାରକା. ଗୀତଲହରୀ ।

ଧାରିଣୀ—ସ. ବିଣ. ସ୍ତ୍ରୀ. (ଧୃ ଧାତୁ + ଇନ୍ + ସ୍ତ୍ରୀ. ଈ)—ଧାରଣକର୍ତ୍ତ୍ରୀ—
Dhāriṇī Holding; bearing.
(ଧାରୀ—ପୁଂ) (ଯଥା—କରଙ୍କଧାରିଣୀ; ଗର୍ଭଧାରିଣୀ ।)
[ ଦ୍ର—ଏ ଅର୍ଥରେ 'ଧାରିଣୀ' ଶବ୍ଦ ଅନ୍ୟ ଶବ୍ଦ ସହିତ ଯୁକ୍ତ ହୋଇ ବ୍ୟବହୃତ ହୁଏ । ]
ସ. ବି—୧ । ଧରଣୀ; ପୃଥିବୀ—1. The earth.
୨ । ଶିମିଳିଗଛ—2 The silk-cotton tree.
୩ । କାଳିଦାସ କୃତ 'ମାଳବିକାଗ୍ନିମିତ୍ର' ନାଟକର ରାଜା ଅଗ୍ନିମିତ୍ରଙ୍କ ପାଟରାଣୀ—3. The name of the heroine (queen) of Kālidāsa's drama of Mālabikāgnimitra.

ଧାରିତ—ସ. ବିଣ. (ଧୃ ଧାତୁ ଣିଚ୍+କର୍ମ ତ)—
Dhārita ୧ । ଧରାଯାଇଥିବା; ଧୃତ—1. Seized; held.
(ଧାରିତା—ସ୍ତ୍ରୀ) ୨ । ବାହିତ—2. Carried; borne.
୩ । ସ୍ଥାପିତ—3. Placed.
୪ । ଗ୍ରାହିତ—4. Caused to be held.

ଧାରିବା—ଦେ. କ୍ରି. (ସ. ଧୃ ଧାତୁ)—୧ । ଧାରି କରିବା—
Dhāribā 1. To borrow.
धारा ୨ । କାଲି କରି ବା ଉଧାର କରି ସଉଦା ନେବା—
लेना 2. To purchase a thing on credit.
୩ । ଅନ୍ୟ ବ୍ୟକ୍ତି ପାଖରେ ଋଣଗ୍ରସ୍ତ ହେବା—
3. To owe; to be in debt to.

ଧାରୀ—ସ. ବିଣ (ଧୃ ଧାତୁ + ଇନ୍)—୧ । ଯେ ଧାରଣ କରେ; ଧାରଣକାରୀ—1. One who holds; holding.
Dhārī
(ଧାରିଣୀ—ସ୍ତ୍ରୀ) [ ଦ୍ର—ଏହି ଅର୍ଥରେ ଅନ୍ୟ ଶବ୍ଦ ସହ ବ୍ୟବହୃତ ହୁଏ । ]
୨ । ଧାରୁଆ; ଦାନ୍ତୁଆ—2. Sharp-edged.
୩ । ଋଣୀ—3. Indebted
ସ. ବି—୧ । ପୀଲୁବୃକ୍ଷ—1. A kind of tree; pilu tree; Salvadora Persica.
[ ଦ୍ର—ଏହାର କାଠ କୋମଳ ଓ ଈଷତ୍ ପୀତ; ଫଳ ପାଚିଲେ ନାଲି ହୁଏ । ଏହା ସିନ୍ଧୁ ଓ ପଞ୍ଜାବରେ ଜନ୍ମେ । ]
୨ । ଦେଣଦାର; ଅଧମର୍ଣ୍ଣ—2. Debtor.

ଧାରୁ—ସ. ବିଣ. (ଧେ ଧାତୁ=ପାନ କରିବା+କର୍ତ୍ତୃ. ରୁ)—ପାନକାରୀ;
Dhāru ଯେ ପାନ କରେ—One who drinks

ଧାରୁଆ—ଦେ. ବିଣ. ପୁଂ (ସ. ଧୃ ଧାତୁ)—ଋଣୀ, କରଜଦାର—
Dhārua 1. Indebted.
(ଧାରେଇ—ସ୍ତ୍ରୀ) ୨ । ଯେ କାଲିରେ ସଉଦା କିଏ—
धेबो 2. One who takes things on credit.
देणदार, धारनेवाला ୩ । (ସ. ଧାର=ଦାନ୍ତ)—ଦାନ୍ତୁଆ—
3. Sharp-edged.

ଧାରେ ଧାରେ—ଦେ. ଅ—କୌଣସି ବସ୍ତୁ ବା ସ୍ଥାନର ପ୍ରାନ୍ତଭାଗ ବାଟେ—
Dhāre dhāre Along the edge of.
धारे धारे किनारे किनारे

ଧାରୋଷ୍ଣ—ସ. ବିଣ. (ଧାରା + ଉଷ୍ଣ; ଗାଈ ଦୁହିଁଲାବେଳେ ଗାଈ ଚରରୁ ପଡ଼ିତ ଦୁଗ୍ଧଧାରାର ଉଷ୍ଣତାତୁଲ୍ୟ ଉଷ୍ଣ)—
Dhāroshṇa
୧ । କବୋଷ୍ଣ; ଈଷଦୁଷ୍ଣ; ନଶଉଷୁମ—1. Slightly warm (as milk just when it is milked).
୨ । ସଦ୍ୟ ଗାଈଠାରୁ ଦୁହିଁ ହୋଇଥିବା (ଦୁଧ)—
2 Fresh; recently drawn (milk).

ଧାର୍ତ୍ତରାଷ୍ଟ୍ର—ସ. ବି. (ଧୃତରାଷ୍ଟ୍ର+ଅପତ୍ୟାର୍ଥରେ ଅ)—
Dhārttarāshtra ୧ । ଧୃତରାଷ୍ଟ୍ରରାଜାଙ୍କ ପୁତ୍ର—
1. The sons of Dhṛutarāshṭra.
[ ଦ୍ର—ଏହାଙ୍କର ଦୁର୍ଯ୍ୟୋଧନ, ଦୁଃଶାସନଆଦି ୧୦୦ ପୁତ୍ର ଥିଲେ । ]
୨ । ଧୃତରାଷ୍ଟ୍ର-ନାମକ ନାଗଙ୍କର ପୁତ୍ର; କଦ୍ରୁପୁତ୍ର—
2. The sons of Kadru (a she-serpent)
୩ । ଗେଡ଼ୀହଂସ; କୃଷ୍ଣବର୍ଣ୍ଣ ଚଞ୍ଚୁ ଓ ଚରଣଯୁକ୍ତ ହଂସ-ବିଶେଷ - 3. Black-footed goose; black-legged and black-billed gander.
ହଂସେ ଧାର୍ତ୍ତରାଷ୍ଟ୍ର ହସ୍ତୀରେ ଐରାବତ । କୃଷ୍ଣସିଂହ. ମହାଭାରତ. ବନପ ।

ଧାର୍ମ—ସ. ବିଣ. (ଧର୍ମ+ସମ୍ବନ୍ଧାର୍ଥେ ଅ)—ଧର୍ମସମ୍ବନ୍ଧୀୟ—
Dhārma Relating to justice or Dharma.

ଧାର୍ମିକ—ସ. ବିଣ. ପୁଂ (ଧର୍ମ+ଆଚରଣାର୍ଥେ ଇକ)—
Dhārmika ୧ । ଧର୍ମଶୀଳ; ଧର୍ମିଷ୍ଠ; ସଦାବ୍ରତ—
(ଧାର୍ମିକା—ସ୍ତ୍ରୀ) 2. Religious; pious; virtuous; righteous.
ଧାର୍ମିକତା, ଧାର୍ମିକତ୍ୱ, ଧାର୍ମିକ୍ୟ } ବି ୨ । ଧର୍ମର ଅନୁକୂଳ—
2. Equitable; resting on right.

ଧାର୍ମିକପ୍ରବର—ସ. ବିଣ. ପୁଂ. (୭ମୀ ତତ୍; ଧାର୍ମିକ+ପ୍ରବର)—
Dharmikaprabara ଅତ୍ୟନ୍ତ ଧର୍ମଶୀଳ; ଧାର୍ମିକବର; ଧାର୍ମିକଶ୍ରେଷ୍ଠ—Very pious.

ଧାର୍ମିଣ—ସ. ବି. (ଧର୍ମିଣ+ସମୂହାର୍ଥରେ ଅ; ଅଥବା ଧର୍ମ+ଇଣ)—
Dhārmiṇa ୧ । ଧାର୍ମିକ ସମୂହ—
1. A number of pious men.
୨ । ଧାର୍ମିକମାନଙ୍କର ସଭା ବା ମିଳନ—
2. An assemblage of pious men.

**ଧାର୍ଯ୍ୟ**—ସଂ. ବିଣ. (ଧୃ ଧାତୁ+କର୍ମ ଯ)—୧ । ଧାରଣୀୟ, ଧାରଣଯୋଗ୍ୟ;
Dhārjya ବହନୀୟ—1, Fit to be held or borne.
(ଧାର୍ଯ—ଅନ୍ୟରୂପ) ୨ । ସ୍ଥିରୀକାର୍ଯ୍ୟ; ଅବଧାରଣୀୟ—
2. Fit to be fixed or settled.
୩ । ପିନ୍ଧିବା ଯୋଗ୍ୟ—3. Fit to be worn.
୪ । ମନରେ ରଖିବା ଯୋଗ୍ୟ, ସ୍ମରଣୀୟ—
4 Fit to be borne in mind.
୫ । ସହିବା ଯୋଗ୍ୟ—5 Fit to be suffered.
ସଂ. ବି. ପୁଂ (ଧା ଧାତୁ+ଯ, ନିପାତନ)—୧ । ପୁରୋହିତ—
1. A priest.
୨ । ଲୁଗାପଟା; ବସ୍ତ୍ର—2. Clothes; garments.
ধার্য্য ଦେ. ବିଣ—୧ । ଚିରସ୍ଥାୟୀ—1. Permanent.
(ଯଥା—ଜଳେ ଏ ସୁଖ ଧାର୍ଯ୍ୟ ହେଉ ।)
୨ । ସ୍ଥିରୀକୃତ; ନିର୍ଦ୍ଧାରିତ—2. Fixed, settled.

**ଧାର୍ଯ୍ୟ କରିବା**—ଦେ. କ୍ରି—୧ । ନିର୍ଦ୍ଧାରଣ କରିବା—
Dhārjya karibā 1. To resolve.
ধার্য্যকরা ୨ । ସ୍ଥିର କରିବା—
ठहराना 2. To settle; to fix or appoint.
୩ । ନିର୍ଦ୍ଧାରିତ କରିବା—
3. To assess rent or tax.

**ଧାର୍ଯ୍ୟ ଜମା**—ଦେ. ବି (କଚେରୀଆ)—ଜମି ଉପରେ ଯେଉଁ ଖଜଣା
Dhārjya jamā ନିର୍ଦ୍ଧାରିତ ହୋଇଥାଏ—Settled rent
ধার্য্য জমা, स्थिर जमा

**ଧାର୍ଯ୍ୟମାଣ**—ସଂ. ବିଣ (ଧୃ ଧାତୁ ଣିଚ୍=ଧାରି ଧାତୁ+କର୍ମ. ଅନ)—
Dhārjya māṇa ଯାହା ଧୃତ ବା ଗୃହୀତ ହୋଇଅଛି; ଗୃହ୍ୟମାଣ—
That which has been held, fixed or accepted.

**ଧାର୍ଷ୍ଟ୍ୟ(ର୍ଷ୍ଟ୍ୟ)**—ସଂ. ବି (ଧୃଷ୍ଟ+ଭାବ. ଅ. ଯ)—୧ । ଧୃଷ୍ଟତା; ପ୍ରଗଲ୍ଭତା—
Dhārshṭa(rshṭya) 1. Arrogance; audacity.
(ଧୃଷ୍ଟ—ବିଣ) ୨ । ଔଦ୍ଧତ୍ୟ; ଅବାଧ୍ୟତା—
2. Insubordination; insolence.
୩ । ନିର୍ଲଜ୍ଜତା—3. Shamelessness.

**ଧାସ**—ଦେ ବି (ସଂ. ଧ୍ମା ଧାତୁ)—୧ । ଉତ୍ତାପ, ନିଆଁ ବା ଖରାର ତେଜ—
Dhāsa 1. Heat; glare; blaze.
ঝাঁজ (ଯଥା—ନିଆଁ ଧାସ ଭାରି ବାଜୁଛି ।)
୨ । (ଲକ୍ଷଣାର୍ଥ) ପ୍ରଭାବ—
2. (figurative) Power; influence.

**ଧାସୁଆ ରୁପା**—ଦେ. ବି—ନିକୃଷ୍ଟ ଧାତୁମିଶ୍ରିତ ରୁପା—
Dhāsuā rūpā. Silver mixed with inferior metals.
নিরেস রুপা टलहा चांदी

**ଧି (ଧାତୁ)**—ସଂ—୧ । ଧାରଣ କରିବା—
Dhi (root) 1. To hold; to possess.
[ଦ୍ର—ନିଧି, ଅମ୍ବୁଧି, ବାରିଧି, ଉଦଧି ଆଦି ଶବ୍ଦ ଏହି ଅର୍ଥରେ ଉକ୍ତ ଧାତୁରୁ ନିଷ୍ପନ୍ନ ।]
୨ । ଖୁସି କରିବା; ସନ୍ତୁଷ୍ଟ କରିବା—
2 To please; to satisfy.
୩ । ନିନ୍ଦା କରିବା—3. To blame.

**ଧିଆଇବା**—ଦେ. (ପଦ୍ୟ) କ୍ରି (ସଂ. ଧ୍ୟୈ ଧାତୁ ଧ୍ୟାନ କରିବା)—
Dhiāibā ୧ । ଧ୍ୟାଇବା; ଧ୍ୟାନ କରିବା—
ধিআন 1. To contemplate.
धीआना ୨ । ସର୍ବଦା ଚିନ୍ତା କରିବା—2. To brood over.
୩ । ସ୍ମରଣ କରିବା; ମନେ ପକାଇବା—
3. To remember; to recall to mind; to recollect.
ଚନ୍ଦ୍ରମା, ପ୍ରଭାତେ ଭାବ ଧିଆଇବ—ଭକ୍ତ. ପ୍ରେମସୁଧାନିଧି ।

**ଧିଆନ**—ଦେ. (ପଦ୍ୟ) ବି (ସଂ. ଧ୍ୟାନ)—୧ । ଧ୍ୟାନ; ମନନ—
Dhiāna 1. Contemplation
ধিআন, ধেআন ୨ । ସର୍ବଦା ଚିନ୍ତା କରିବା; ସ୍ମରଣ—
धिआन 2 Harping upon; brooding over; remembering.
କହେ ମୋ ଅନ ନାହିଁ ଧିଆନ ତୋ ବିନୁ ଅନ ଗୋପ—ଭକ୍ତ. ପ୍ରେମସୁଧାନିଧି ।
୩ । ଏକାଗ୍ର ମନୋନିବେଶ; ମନର ଏକାଗ୍ରତା—
3. Concentrated attention.
ଅଛ ଉହିଁରେ ଧିଆନ, ସିଦ୍ଧ କରି ନ ପାରଇ କର୍ମିକୁ ଆନ—
ଭକ୍ତ. କୋଶଳ୍ୟାବ୍ରହ୍ମାଣ୍ଡସ୍ତବନ ।
୪ । (ସଂ. ଧି=ବୁଦ୍ଧି+ଓ. ଆନ=ଅନ୍ୟ) ଅନ୍ୟ ବିଷୟରେ ବୁଦ୍ଧି ବା ମନ—4. Mind devoted to any other matter
ଅଛି ଧିଆନରେ ବାଳା ନାହିଁ ଧିଆନରେ—ସଙ୍ଗୀତ ।

**ଧିଆନୀ**—ଦେ. (ପଦ୍ୟ) ବିଣ. (ସଂ. ଧ୍ୟାନୀ)—ଧ୍ୟାନୀ; ଧ୍ୟାନମଗ୍ନ—
Dhiāni Engaged in meditation.
ধেয়ানী, धिआनी

**ଧିକ୍**—ସଂ. ଅ (ସଂ. ଧି ଧାତୁ କିମ୍ବା ଧକ୍ ଧାତୁ=ପ୍ରହାର କରିବା+ଇକ)
Dhik ଛି ! ହା ଧିକ୍ !—(interjection) Fie.
[ଦ୍ର—ନିନ୍ଦା, ଅବଜ୍ଞା, ଲଜ୍ଜା, ଭର୍ତ୍ସନା, ଘୃଣା, ଅନାଦର ଆଦି ଅର୍ଥରେ ବ୍ୟବହୃତ; ଯେଉଁ ବ୍ୟକ୍ତି ବା ବସ୍ତୁ ପ୍ରତି 'ଧିକ୍' ଶବ୍ଦ ବ୍ୟବହାର କରାଯାଏ ଉକ୍ତ ବ୍ୟକ୍ତି ବା ବସ୍ତୁଠାରେ ୨ୟା ବିଭକ୍ତି ହୁଏ ଯଥା—ତାକୁ ଧିକ୍; ଦାସବୃତ୍ତିକୁ ଧିକ୍ ।]

**ଧିକ୍ତାନ୍**—ଦେ. ଅ. (ଧ୍ୱନ୍ୟନୁକରଣ)—ମୃଦଙ୍ଗାଦି ବାଦ୍ୟ ଓ ନୃତ୍ୟର
Dhiktān ଶବ୍ଦ; ଧେଇତା ତାଧେଇ—
ধিকতান Sound of drumming and dancing.
(ଧିକତାନ୍—ଅନ୍ୟରୂପ)

**ଧିକ୍ପାରୁଷ୍ୟ**—ସଂ. ବି. (ଧିକ୍+ପାରୁଷ୍ୟ)—ଭର୍ତ୍ସନା; ଗାଳିମନ୍ଦ—
Dhik-pārushya Abuse; reproach (Apte)
(ଧିଗ୍ଦଣ୍ଡ—ଅନ୍ୟରୂପ)

**ଧିକ**—ଦେ. ଅ. (ସଂ. ଧିକ୍)—୧ । ଧିକ୍ (ଦେଖ)
Dhika 1. Dhik (See)
(ଧିକ, ଧିକ୍କ—ଅନ୍ୟରୂପ) ତା ଦେଖି ସର୍ବାଙ୍ଗର ଭୂଲେ ସର୍ବ ଲୋକ,
ধিকধিক ମନେ ଦୁର୍ଯ୍ୟୋଧନେ ବୋଇଲେ ଧିକ ଧିକ ।
धिक କୃଷ୍ଣସିଂ. ମହାଭାରତ. ସଭା ।

୨ । ନିନ୍ଦିତ; ଘୃଣିତ—2. Hateful.
ମାନୁଷଙ୍କ ଶଣ ଜୀବନ; ତା ଜୀବନଟା ଧିକ । ଭଗ ।
୩ । ନ୍ୟୂନ; ଊଣା; ଅଳ୍ପ—3. Small; little.
କାଳରେ ଅଧିକ ଏହୁ, ଲୁଧେ ତାକୁ ଧିକ କହୁ ।
ଭଞ୍ଜ. ବୈଦେହୀଶବିଳାସ ।

ଧିକ ଜୀବନ—ଦେ. ବି.—ଘୃଣିତ ବା କଳଙ୍କିତ ଜୀବନ—
Dhika jibana Shameful life; life of shame.
ধিক্জীবন; धिक् जीवन
(ଧିକ ଜୀବନ—ଅନ୍ୟରୂପ)

ଧିକ ବଚନ—ଦେ. ବି.—୧ । ଧିକାର (ଦେଖ)
Dhika bachana 1. Dhikāra (See)
ধিক্কার; धिकबचन ୨ । ଭର୍ତ୍ସନା; ଗାଳିମନ୍ଦ—
2. Abuse; reproach

ଧିକାର—ଦେ ବି. (ସଂ. ଧିକ୍କାର)—୧ । ଧିକ୍କାର; ନିନ୍ଦା—
Dhikāra 1 Blame.
ধিক্কার, धिक्कार ୨ । ଭର୍ତ୍ସନା—2. Rebuke
୩ । ଘୃଣାଯୁକ୍ତ ବାକ୍ୟ—3. Contemptuous words

ଧିକି ଧିକି—ଦେ. ବି. (ସଂ. ଧିକ୍କାର)—ଧିକାର (ଦେଖ)
Dhiki dhiki Dhikāra (See)
ধিকি ধিকি ଦେ. କ୍ରି ବିଣ—ଢିକ ଢିକ; ମୁହୁର୍ମୁହୁ ଭାବରେ, ଅତି
टिमटिम; धुकधुक କ୍ଷୀଣ ଭାବରେ—In a flickering
(ଢିକ ଢିକ—ଅନ୍ୟରୂପ) manner; very feebly.
(ଯଥା—ଦୀପଟି ଧିକି ଧିକି ଜଳୁଛି ।)

ଧିକି ମାକି—ଦେ. ବିଣ.—କହି କହି ବିରକ୍ତ, ବକବକାର—
Dhiki māki Bothered after repeatedly saying a
বকা বকি thing; tired of speaking a thing
बकवाद; बकबक repeatedly.
(ଧିକମାକି—ଅନ୍ୟରୂପ)

ଧିକ୍କାର—ସଂ. ବି. (ଧିକ୍+କୃ ଧାତୁ+ଭାବ. ଅ)—୧ । ଧିକ୍ ଶବ୍ଦ
Dhikkāra ଉଚ୍ଚାରଣ ପୂର୍ବକ ତିରସ୍କାର; ଭର୍ତ୍ସନା ବାକ୍ୟ—
1. Abuse; censure; reproachful vilification.
୨ । ଅବଜ୍ଞା—2. Contempt.
୩ । ଅବଜ୍ଞା ପ୍ରଦର୍ଶନ—3. Contemptuous treatment.

ଧିକ୍କାରିବା—ଦେ. କ୍ରି.—(ସଂ. ଧିକ୍କୃ ଧାତୁ)—୧ । ଧିକ୍କାର ବଚନ
Dhikkāriba କହିବା—1. To vilify; to speak
ধিক্কার দেওয়া বা করা धिक्कारना with contempt.
୨ । ତୁଚ୍ଛ କରିବା—2. To humiliate.
ବଡ଼ ଭେକରେ ଦେଲେ ଅର୍ଜୁନ ଧିକ୍କାର ।
କୃଷ୍ଣସିଂହ, ମହାଭାରତ. ବନ ।
୩ । ନିନ୍ଦା କରିବା—3. To treat with contempt; to censure.
୪ । (ଲକ୍ଷଣାର୍ଥ) ବଳ ପଡ଼ିବା—4. To exceed.
ଅଧର ସୁନ୍ଦର କ ଥାଇ ପାନ ବୋଳ,
ଧିକ୍କାରୁ ଥାଇ ସବୁ ବିମ୍ବଳରେ ପ୍ରବାଳ । କୃଷ୍ଣସିଂହ, ମହାଭାରତ. ବନ ।

ଧିକ୍କୃ (ଧାତୁ)—ସଂ.—ଧିକ୍କାର କରିବା; ଘୃଣା କରିବା—To despise;
Dhikkṛu (root) to cry down; to contemn.

ଧିକ୍କୃତ—ସଂ. ବିଣ. ପୁଂ. (ଧିକ୍+କୃ ଧାତୁ+କର୍ମ. ତ)—୧ । ଭର୍ତ୍ସିତ—
Dhikkṛuta 1. Rebuked; abused; censured.
(ଧିକ୍କୃତା—ସ୍ତ୍ରୀ) ୨ । ଅବଜ୍ଞାତ—2 Treated with contempt; cried down.
ସଂ. ବି. (ଭାବ. ତ)—ଧିକ୍କାର (ଦେଖ)—Dhikkāra (See)

ଧିକ୍କୃତି—ସଂ. ବି. (ଧିକ୍+କୃତି)—ଧିକ୍କାର (ଦେଖ)—
Dhikkṛuti Dhikkāra (See)
(ଧିକ୍କ୍ରିୟା—ଅନ୍ୟରୂପ)

ଧିକ୍ଷ୍ (ଧାତୁ)—ସଂ.—୧ । ଜଳାଇବା; ଜାଳିବା, ନିଆଁ ଲଗାଇବା—
Dhiksh (root) 1. To kindle.
୨ । ବଞ୍ଚିବା—2. To live.
୩ । ଅତ୍ୟାଚାରିତ ହେବା—
3. To be harassed or oppressed.
୪ । କ୍ଳାନ୍ତ ହେବା—4, To be weary.

ଧିଗ୍ବଣ—ସଂ ବି—ମନୁସ୍ମୃତି ଅନୁସାରେ ବ୍ରାହ୍ମଣପିତା ଓ ଅୟୋଗବୀ ମାତା-
Dhigbaṇa ଠାରୁ ଉତ୍ପନ୍ନ ସଙ୍କରବିଶେଷ—Name of a mixed caste amongst the Hindus born of a Brahman father and a Ayogobi mother

ଧିଙ୍ଗାସ - ଦେ. ବି (ସଂ. ଧିକ୍ ଓ ଭର୍ତ୍ସଣ)—୧ । ଭର୍ତ୍ସନା; ଧିକ୍କାର—
Dhingāsa 1 Abuse, reproach.
(ଢିଙ୍ଗାସ—ଅନ୍ୟରୂପ) ୨ । ଅପ୍ରୀତି—2. Displeasure.
ধিক্কার, फटकारा

ଧିଙ୍ଗାସ କରିବା—ଦେ. କ୍ରି (ସଂ. ଧିକ୍କାର) ଗାଳିଦେବା; ବକିବା—
Dhingāsa kariba To rebuke.
(ଧିଙ୍ଗାସ ଦେବା—ଅନ୍ୟରୂପ)
ধিক্কারকরা; धिक्कारना; फटकारना

ଧିଙ୍ଗାସିବା—ଦେ. କ୍ରି (ସଂ. ଧିକ୍କାର)—ଗାଳିଦେବା, ଭର୍ତ୍ସନା ବା ଧିକ୍କାର
Dhingāsibā କରିବା—To abuse; to rebuke.
ধিক্কারকরা; धिक्कारना, फटकारना

ଧିଙ୍ମୂର୍ଖ—ସଂ. ଅ (ଧିକ୍+ମୂର୍ଖ)—ହେ ମୂର୍ଖ, ତୋତେ ଧିକ୍ !—
Dhinmūrkha Fie! you stupid person!

ଧିଟ—ଦେ. ବିଣ (ସଂ. ଧୃଷ୍ଟ)—୧ । ଦୁଷ୍ଟ—
Dhiṭa 1. Wicked.
ধীট ୨ । ଥୋଡବସ୍; ନିର୍ଲଜ୍ଜ—2 Shameless; impudent.
ढीट ୩ । ଜିଦିଖୋର; ଜିଦିଆ -3 Obstinate.
୪ । ଯେ ବାରଂବାର ପ୍ରାର୍ଥନା କରି ବିରକ୍ତ କରେ—
4. Nagging; teasing; insistent.

ଧିଟପଣ—ଦେ. ବି.—୧ । ଧୃଷ୍ଟତା—
Dhiṭapaṇa 1. Shamelessness; wickedness
ধীট পনা ୨ । ଯେ ବାରଂବାର ପ୍ରାର୍ଥନା କରି ବିରକ୍ତ କରେ—
ढिठाई 2. Teasing; nagging insistence.
(ଧିଟପଣିଆ (ଆଁ)—ଅନ୍ୟରୂପ)

**ଧିଟୁଆ**—ଦେ. ବଣ.—ଧିଟ (ଦେଖ)
Dhiṭuā Dhiṭa (See)
(ଧିଟେଇ—ସ୍ତ୍ରୀ.)

**ଧିଟେଇ ଲଗିବା**—ଦେ. କ୍ରି —ବାରଂବାର କୌଣସି କଥା କହି ବା କରି
Dhiṭei lāgibā କୌଣସି ବ୍ୟକ୍ତିକୁ ବିରକ୍ତ କରିବା—
বিরক্ত করা To pester or bother a person by
खिझाना; जीद् करना repeatedly doing or saying a thing; to tease; to nag.
ଧିଟ ହୋଇ ଲଗିବା, ଧିଟେଇ ହୋଇ ଲଗିବା } ଅନ୍ୟରୂପ

**ଧିଣ୍ଡା**—ଗ୍ରାଦେ.—(ଆଠମଲ୍ଲିକ)—ବି. ପୁଂ.—ଯୁବକ—
Dhiṇḍā Youth
(ଧିଣ୍ଡୀ ସ୍ତ୍ରୀ)

**ଧିତ୍‌କାର**—ଗ୍ରା. ବି.—(ସଂ. ଧିକ୍କାର)—ଧିକ୍କାର (ଦେଖ)
Dhitkāra Dhikkāra (See)
ধিক্কার दुतकार

**ଧିତ୍‌କାରିବା**—ଗ୍ରା. କ୍ରି.—ଧିକ୍କାରିବା (ଦେଖ)
Dhitkāribā Dhikkāribā (See)
ধিক্কার করা धुतकारना

**ଧିନ୍‌ଧିନ୍**—ଦେ. ଉ.—ମୃଦଙ୍ଗର ଧ୍ୱନିବିଶେଷ—
Dhin dhin A particular sound of a drum
ধিনধিন धिन् धिन्

**ଧିନତା**—ଦେ. ଅ. (ଧ୍ୱନ୍ୟନୁକରଣ)—ନୃତ୍ୟ ଓ ବାଦ୍ୟର ଅନୁକରଣ
Dhinitā ଓ ବୋଲ—An onomatopoic sound of a metallic musical instrument and dancing.
ଧିନ୍ ଧିନ୍, ଧିନ୍‌ତା, ଧିନାଧିନା, ଧିନ୍‌ତାକ୍, ଧିନେଇ ଧିନେଇ } ଅନ୍ୟରୂପ
ধিনতা; ধিনধিন
धिनता, धाधिन, तिनता

**ଧିମା**—ଦେ. ବଣ. (ସଂ. ଧୀର; ସଂ. ମଧ୍ୟମ; ଅଧମ)—୧ । ଅତି ଧୀର—
Dhimā 1. Very slow.
ধীমা ୨ । କାର୍ଯ୍ୟରେ ହେଳାଯୁକ୍ତ ବା ଢିଲା; ଯେ ଅତି ଧୀରେ
धीमा ଧୀରେ କାମ କରେ; ସୁସ୍ତ—2 Tardy; lazy
୩ । ମନ୍ଦଗତିବିଶିଷ୍ଟ—3. Of a very slow motion.
୪ । କ୍ଷୀଣ; ନୀଚ (ସ୍ୱର)—4. Low (sound).

**ଧିମା ଚାଲି**—ଦେ. ବି.—ଅତି ଧୀର ଗତି—
Dhimā chāli Very slow pace.
धिमाचाल

**ଧିମା(ମେ)ଇବା**—ଦେ. କ୍ରି—କୌଣସି କାର୍ଯ୍ୟ ଅତି ବିଳମ୍ବରେ କରିବା;
Dhimā(mé)ibā କାର୍ଯ୍ୟରେ ହେଳା କରିବା—To do a thing very slowly or tardily.
ধিমীয়ে ধীমীয়ে কাজকরা; ধীমাচালে কাজকরা
धीमाकरना; धीरे धीरे करना

**ଧିୟାବସୁ**—ସଂ. ବି—ବୁଦ୍ଧିର ଅଧିଷ୍ଠାତ୍ରୀ ଦେବତା—A Deity said
Dhiyābasu to preside over intelligence.

**ଧିରତି**—ଗ୍ରା (ପଦ୍ୟ) ବି. (ସଂ. ଧୃତି)—ଧୃତି; ଧୈର୍ଯ୍ୟ—
Dhirati Patience.
ধৈৰ্য ଅନ୍ୟ ଏ ସୁନ୍ଦର ରୂପ ମୂରତି
धीरज ଏବେ ସେ ଏହାଙ୍କ ମନ ଧିରତି । ପ୍ରାଚୀ. ରହସ୍ୟମଞ୍ଜରୀ ।

**ଧିରିଆଇବା**—ଗ୍ରାଦେ. (ସମ୍ବଲପୁର) (ଭୁଲ. ଏହି ଅର୍ଥରେ ହୁନ୍ଦୀ ଧିରାନା
Dhiriāibā ସଂ. ଧର୍ଷଣ) କ୍ରି—'ତତେ ଠିକ୍ କରି ଦେବି' ବୋଲି
(ଧିରେଇବା—ଅନ୍ୟରୂପ) କହି କୌଣସି ବ୍ୟକ୍ତିକୁ ଧମକାଇବା—
To threaten a person.

**ଧିଷ୍ (ଧାତୁ)**—ସଂ.—୧ । ଶବ୍ଦ କରିବା—
Dhish (root) 1. To sound.
୨ । ପ୍ରଗଲ୍‌ଭ କରିବା—2 To blab; to talk.

**ଧିଷଣ**—ସଂ. ବି (ଧିଷଣା=ବୁଦ୍ଧି+ଅସ୍ତି ଅର୍ଥରେ ଅ) – ୧ । ସୁରଗୁରୁ;
Dhishaṇa ବୃହସ୍ପତି—1. Bṛuhaspati.
୨ । ବାସସ୍ଥାନ; ଆବାସ—2 Dwelling; residence.
୩ । ବ୍ରହ୍ମା (ହି. ଶ.)—3. Brahmā
୪ । ବିଷ୍ଣୁ (ହି. ଶ.)—4 Bishṇu.

**ଧିଷଣା**—ସଂ. ବି. (ଧିଷ୍ ଧାତୁ=ପ୍ରଗଲ୍‌ଭ କରିବା+କର୍ତ୍ତୃ. ଅନ+ସ୍ତ୍ରୀ.
Dhishaṇā ଆ)—୧ । ବୁଦ୍ଧି—
1. Intellect; understanding.
୨ । ପୃଥିବୀ—2 The earth.
୩ । ଜ୍ଞାନ—3. Wisdom.
୪ । କଂସା; ପାତ୍ର—4. Cup; bowl.
୫ । ସ୍ତବ; ପ୍ରଶଂସା—5. Praise; eulogy; hymn.
୬ । ବାକ୍ୟ; ବକ୍ତୃତା—6. Speech (Apte).
୭ । ବାକ୍‌ଶକ୍ତି (ହି. ଶବ୍ଦସାଗର)—
7. The faculty of speech or articulation.
୮ । ସ୍ଥାନ (ହି. ଶବ୍ଦସାଗର)—8. Place.

**ଧିଷଣାଧିପ**—ସଂ. ବି. (୬ଷ୍ଠୀ ତତ୍; ଧିଷଣା+ଅଧିପ)—ବୃହସ୍ପତି—
Dhishaṇādhipa Bṛuhaspati
(ଧିଷଣାଧୀଶ—ଅନ୍ୟରୂପ)

**ଧିଷ୍ଣ(ଷ୍ଣ)**—ସଂ. ବି. (ଧିଷ୍ ଧାତୁ=ପ୍ରଗଲ୍‌ଭ କରିବା+କର୍ମ ତ+ଥ)—
Dhishṭa(ṭha) ୧ । ସ୍ଥାନ—1. Place; site; seat.
ଧିଷ୍ଣ୍ୟ, ଧିଷ୍ଟ୍ୟ } ଅନ୍ୟରୂପ ୨ । ଯଜ୍ଞଶାଳା—2. A place for the sacrificial fire.
୩ । ବାସସ୍ଥାନ; ଗୃହ—
3. House; room; abode; residence.
୪ । ବଳ—4. Power; strength.
୫ । ନକ୍ଷତ୍ର—5. Star, asterism (Apte).
୬ । ଅସୁରଗୁରୁ; ଶୁକ୍ରାଚାର୍ଯ୍ୟ—
6. Śukrāchārjya, the preceptor of the demons.
୭ । ଶୁକ୍ରଗ୍ରହ—7. The planet Venus.
୮ । ଅଗ୍ନି—8. Fire.
୯ । ଉଲ୍କା—9 Meteor.
୧୦ । ଶକ୍ତି (ହି. ଶବ୍ଦସାଗର) –10. Power; might.
ସଂ. ବଣ—ପ୍ରଶଂସାର୍ହ; ପ୍ରଶଂସାପାତ୍ର—
Worthy of high praise.

**ଧୀ** (ଧାତୁ)—ସ—୧ । ସମ୍ପନ୍ନ କରିବା—
Dhī (root) 1. To fulfil; to accomplish.
୨ । ଶାନ୍ତ କରିବା—2 To propitiate.
୩ । ଅବଜ୍ଞା କରିବା—3. To disregard.
୪ । ଧାରଣ କରିବା; ଧରିବା—
4. To hold; to contain.

**ଧୀ**—ସ. ବି. ସ୍ତ୍ରୀ (ଧ୍ୟୈ ଧାତୁ=ଚିନ୍ତା କରିବା+କରଣେ. କ୍ୱିପ୍)—
Dhī ୧ । ବୁଦ୍ଧି, ବୋଧଶକ୍ତି—
1 Intellect; understanding
୨ । ଜ୍ଞାନ—2. Wisdom; knowledge.
୩ । ମନ; ମତି; ମନର ଗତି—3. Mind, propensity.
୪ । ଚିନ୍ତା—4. Thought.
୫ । ମାନସିକ ପ୍ରବେଶ—5 Insight.
୬ । ଧାରଣା—6. Idea; conception.
୭ । ଭକ୍ତି—7. Devotion
୮ । ଯଜ୍ଞ—8. A sacrifice.
୯ । ଉଦ୍ଦେଶ୍ୟ 9. Intention; purpose.
୧୦ । ବିଜ୍ଞାନ—10 Science (Apte).
୧୧ । ପ୍ରାର୍ଥନା; ସ୍ତବ—11. Prayer (Apte).

**ଧୀଗୁଣ**—ସ. ବି. (୬ଷ୍ଠୀ ତତ୍; ଧୀ+ଗୁଣ)—ଧୀଶକ୍ତି; ବୁଦ୍ଧିଶକ୍ତି—
Dhīguṇa Intellectual qualities.
[ଦ୍ର—ଧୀ ବା ବୁଦ୍ଧିର ଗୁଣ ଅଷ୍ଟବିଧ; ଯଥା—ଶୁଶ୍ରୂଷା, ଶ୍ରବଣ, ଗ୍ରହଣ, ଧାରଣ, ଉହ ବା ତର୍କ, ଅପୋହ, ଅର୍ଥବିଜ୍ଞାନ ଓ ତତ୍ତ୍ୱଜ୍ଞାନ ।]

**ଧୀତ**—ସ. ବିଣ. (ଧେ ଧାତୁ=ପାନ କରିବା+କର୍ମ. ତ)—
Dhīta ୧ । ପୀତ; ଯାହା ପାନ କରାଯାଇ ଅଛି; ଯାହାକୁ ଶୋଷା ଯାଇଅଛି—1. Drunk; sucked.
୨ । ଧ୍ୟାତ; ଯାହା ବିଷୟରେ ଧ୍ୟାନ ବା ଚିନ୍ତା କରାଯାଇ ଅଛି—
2. Reflected upon; thought about.
୩ । ଉପଶାନ୍ତ; ଶମିତ—3. Propitiated
୪ । ଆରାଧିତ (ପ୍ରକୃତିବାଦ)—
4. Worshipped; adored.
୫ । ଅନାଦୃତ—5. Slighted, disregarded.

**ଧୀତି**—ସ. ବି. ସ୍ତ୍ରୀ. (ଧେ ଧାତୁ=ପାନ କରିବା+ଭାବ. ତି)—
Dhīti ୧ । ପିପାସା, ଶୋଷ—1 Thirst
୨ । ପାନ; ପିଇବା 2 Drinking.
୩ । ଭାବ; ଧାରଣା—3. Notion.
୪ । ଭକ୍ତି—4 Devotion.
୫ । ଅସମ୍ମାନ; ଅବଜ୍ଞା—5. Disrespect; disregard.
୬ । ଆରାଧନା—6. Worshipping; adoring.

**ଧୀଦା**—ସ. ବି. ସ୍ତ୍ରୀ. (ଧୀ+ଦା ଧାତୁ+ଅ+ସ୍ତ୍ରୀ. ଆ)—
Dhīdā ୧ । କୁମାରୀ; କନ୍ୟା—1. Virgin; maid.
୨ । ଦୁହିତା; ଝିଅ—2. Daughter.
୩ । ବୁଦ୍ଧି; ଜ୍ଞାନ—3. Wisdom.

**ଧୀନ୍ଦ୍ରିୟ**—ସ. ବି. (ଧୀ+ଇନ୍ଦ୍ରିୟ)—୧ । ଜ୍ଞାନେନ୍ଦ୍ରିୟ—
Dhīndriya 1. An organ of perception
୨ । ଜ୍ଞାନ—2 Intellect.

**ଧୀପତି**—ସ. ବି. (୬ଷ୍ଠୀ ତତ୍; ଧୀ+ପତି)—ସୁରଗୁରୁ; ବୃହସ୍ପତି—
Dhīpati Bṛihaspati, the preceptor of the gods.
(ଧିୟାଂପତି—ଅନ୍ୟରୂପ)

**ଧୀବର**—ସ. ବି. (ଧୀ ଧାତୁ=ଧାରଣା କରିବା+କର୍ତ୍ତୃ. ବର; ମାଛ ଧରିବା ଯାହାର ଜୀବିକା)—୧ । ମାଛ ଧରିବା ଓ ବିକ୍ରୟ କରିବା
Dhībara
(ଧୀବରୀ—ସ୍ତ୍ରୀ) ଯେଉଁ ଜାତିର ବ୍ୟବସାୟ, କୈବର୍ତ୍ତ; ଜାଲିଆ;
(ଧୀବରକ—ଅନ୍ୟରୂପ) କେଉଟ—1. Fisherman.
୨ । ଲୌହ—2. Iron.
୩ । ଦାସ; ସେବକ—3. Slave; servant.
୪ । କୃଷ୍ଣକାୟ ବ୍ୟକ୍ତି (ହି. ଶବ୍ଦସାଗର)—
4. A man of a very dark complexion; a dark-skinned person.

**ଧୀବରୀ**—ସ. ବି. ସ୍ତ୍ରୀ (ଧୀବର+ସ୍ତ୍ରୀ. ଈ)—୧ । କେଉଟୁଣୀ—
Dhīberī 1 Fishwoman.
୨ । ମାଛ ମାରିବା ଚେଙ୍ଗା—2. A harpoon for catching fish. (Apte)
୩ । ଖାଲୋଇ; ମାଛ ରଖିବା ଟୋକେଇ—3 Fisherman's basket; fish-basket. (Apte)

**ଧୀବା**—ସ. ବି. ପୁଂ (ଧୃ ଧାତୁ=କର୍ତ୍ତୃ. ବନ୍;=ଧୀବନ୍ ଶବ୍ଦ ୧ମା. ୧ବ.)
Dhībā ଧୀବର; କେଉଟ—Fisherman
(ଧୀବରୀ—ସ୍ତ୍ରୀ)

**ଧୀମନ୍ତ୍ରୀ**—ସ. ବି (ଧୀ+ମନ୍ତ୍ରୀ)—୧ । ପରାମର୍ଶଦାତା; ମନ୍ତ୍ରୀ—1. A
Dhīmantri minister for counsel; consulting minister.
[ଦ୍ର—ଯେଉଁ ମନ୍ତ୍ରୀ ରାଜାଙ୍କୁ ପରାମର୍ଶ ଦିଅନ୍ତି ତାଙ୍କୁ ଧୀମନ୍ତ୍ରୀ ଓ ଯେ କର୍ମ କରନ୍ତି ତାଙ୍କୁ କର୍ମମନ୍ତ୍ରୀ ବା କର୍ମସଚିବ ବୋଲି ଯାଏ—(Apte)]
୨ । ବିଜ୍ଞ ବା ଦୂରଦର୍ଶୀ ପରାମର୍ଶଦାତା—2. A wise or prudent advisor.

**ଧୀମାନ୍**—ସ. ବିଣ. ପୁଂ (ଧୀ+ଅସ୍ତି ଅର୍ଥରେ. ମତ୍; ଧୀମତ୍ ଶବ୍ଦ, ୧ମା. ୧ବ.)—୧ । ବୁଦ୍ଧିମାନ୍; ଅକଲବନ୍ତ—
Dhīmān
(ଧୀମତୀ—ସ୍ତ୍ରୀ) 1. Intelligent
୨ । ଜ୍ଞାନୀ—2. Wise.
୩ । ବିଦ୍ୱାନ୍—3. Learned (Apte).
ସ. ବି.—ବୃହସ୍ପତି—The preceptor of the Gods.

**ଧୀର**—ଦେ. କ୍ରି. ବିଣ. (ସ. ଧୀରଂ)—ଧୀରେ (ଦେଖ)
Dhīr Dhīre (See)
(ଧୀରୁ; ଧୀରକ(ଚ)ର—ଅନ୍ୟରୂପ)

**ଧୀର୍ ଧୀର୍**—ଦେ. କ୍ରି. ବିଣ. (ସ. ଧୀରଂ ଧୀରଂ)—
Dhīr dhīr ଧୀରେ ଧୀରେ (ଦେଖ)—Dhīre Dhīre (See)
(ଧୀରୁ ଧୀରୁ—ଅନ୍ୟରୂପ) ଦେ. ବିଣ.—୧ । ମନ୍ଦଗତିବିଶିଷ୍ଟ—
1. Slow (motion).
ଧୀର୍ ଧୀର୍ ଗଲକ, ସର ନୁହେଁ ଘୋଡ଼ା ସାଲଙ୍କି । ଭଗ ।

୨ । ଅନୁଚ୍ଚ ସ୍ୱରଯୁକ୍ତ—2. Low (sound).
ଧିର୍ ଧିର୍ କଥା, କହୁ ଗୋଉଚ୍ଚ ମଧ୍ୟ—ଭଗ ।

**ଧୀର**—ସ. ବି. (ଧୀ+ର ଧାତୁ=ଗ୍ରହଣ କରିବା+କର୍ତ୍ତୃ. ଅ)—
Dhira ୧ । ଜାଫ୍ରାନ୍, କୁଙ୍କୁମ—1. Saffron.
୨ । ସମୁଦ୍ର—2. The ocean.
୩ । ଋଷଭ ନାମକ ଔଷଧ ଗୁଳ୍ମ—
3. A herb called Rishava.
୪ । ଚିଦାତ୍ମା—4. The thinking soul (Apte)
୫ । ବଳିରାଜା—5. King Bali
୬ । ବୁଦ୍ଧଦେବ—6. The Buddha.
(ଧୀରା—ସ୍ତ୍ରୀ) ସ. ବିଣ—୧ । ଧୈର୍ଯ୍ୟଶାଳୀ, ସହିଷ୍ଣୁ—1 Patient; forbearing.
(ଧୀରତା, ଧୀରତ୍ୱ, ଧୈର୍ଯ୍ୟ—ବି)
୨ । ପଣ୍ଡିତ; ବିଦ୍ୱାନ୍—2. Learned.
୩ । ସାହସୀ—3. Brave; bold; courageous; daring.
୪ । ସମର୍ଥ—4 Able.
୫ । ବୁଦ୍ଧିମାନ୍—5. Wise; intelligent; sagacious.
୬ । ଅଧ୍ୟବସାୟୀ—6 Persevering; strong-minded.
୭ । ଗମ୍ଭୀର—7 Grave; sedate; sober; solemn.
୮ । ଅନୁଦ୍ଧତ; ଶାନ୍ତ—8. Mild; tranquil; serene.
୯ । ସ୍ଥିର; ଅଟଳ—9. Calm; steady; staunch; steadfast.
୧୦ । ବିଲମ୍ବିତ, ଅଦ୍ରୁତ—10. Slow; gentle.
(ଯଥା—ଧୀର ସମୀରଣ ।)
୧୧ । ମନୋହର—11. Nice; charming; pleasing.
୧୨ । ଅଳସୁଆ; ସୁସ୍ତି—12. Lazy; idle; dull.
୧୩ । ସାରବାନ୍—13. Worthy; meritorious.
୧୪ । ଅନୁଚ୍ଚ ସ୍ୱରଯୁକ୍ତ—14. Having a low sound.
୧୫ । ଦୂରଦୃଷ୍ଟିଯୁକ୍ତ; ଜ୍ଞାନୀ—15. Farseeing; prudent.
୧୬ । ପ୍ରଶାନ୍ତଚେତାଃ—16. Sedate; composed.
୧୭ । ତେଜସ୍ୱୀ; ଶକ୍ତିଶାଳୀ—
17. Strong; energetic. (Apte)
୧୮ । ଚତୁର—18. Clever. (Apte)
୧୯ । ଗମ୍ଭୀର, ଉଚ୍ଚୈଃସ୍ୱରଯୁକ୍ତ ଓ ବହୁକାଳବ୍ୟାପୀ (ଶବ୍ଦ)—
19. Deep, grave and loud(sound).
୨୦ । ସୁସଂଗୃହୀତ, ସୁଆଚରିତ—20. Well-conducted; well behaved. (Apte)
୨୧ । ଏକଜିଦିଆ—21. Headstrong. (Apte)
୨୨ । ଅଟଳପ୍ରତିଜ୍ଞ—22. Resolute; of firm resolve or purpose (Apte).
୨୩ । ସ୍ଥାୟୀ; ବହୁକାଳସ୍ଥାୟୀ—
23. Lasting; durable (Apte).
୨୪ । ଅପରିବର୍ତ୍ତିଷ୍ଣୁ—24 Constant (Apte).
୨୫ । କାବ୍ୟାଦିର ନାୟକମାନଙ୍କର ଶ୍ରେଣୀବିଶେଷ—25. An epithet of a class of heroes in fiction or romance.
ଦେ. ବି—କ୍ଷତ୍ରିୟମାନଙ୍କ ଉପାଧିବିଶେଷ—
A title of Kshatriyas.
[ ଦ୍ର—କଟକ ଜିଲ୍ଲାର ମଧୁପୁର ଓ ବଳରାମପୁର ରାଜବଂଶ ଏହି ଉପାଧିଧାରୀ । ]

**ଧୀରଗତି**—ସ. ବି. ( କର୍ମଧା; ଧୀର+ଗତି )—ଅଦ୍ରୁତ ଗତି—
Dhiragati Slow motion
( ଧୀର ଗମନ—ଅନ୍ୟରୂପ ) ସ. ବିଣ. ( ବହୁବ୍ରୀହି )—
ଧୀରଗମନଶୀଳ—Moving slowly.

**ଧୀରଗାମୀ**—ସ. ବିଣ. ପୁଂ. ( ଧୀର+ଗମ୍ ଧାତୁ+କର୍ତ୍ତୃ. ଣିନ୍; ୧ମା. ୧ବ )—ଧୀରଗତି—Of slow motion.
Dhiragami
( ଧୀରଗାମିନୀ—ସ୍ତ୍ରୀ )

**ଧୀରଚେତାଃ**—ସ. ବିଣ. ( ବହୁବ୍ରୀହି; ଧୀର+ଚେତସ୍; ୧ମା. ୧ବ )—
Dhirachetah ୧ । ଦୃଢ଼ପ୍ରତିଜ୍ଞ—1. Firm; resolute.
( ଧୀରଚେତା—ଅନ୍ୟରୂପ ) ୨ । ସାହସୀ—
2. Brave; courageous.
୩ । ପ୍ରଶାନ୍ତ, ଯେ ଭୁରୁଭୁରିଆ ନୁହେଁ—
3 Calm; not hasty

**ଧୀରତା**—ସ. ବି. [ ଧୀର+ଭାବ. ତା )—୧ । ଧୈର୍ଯ୍ୟ—
Dhirata 1. Patience: fortitude.
( ଧୀରତ୍ୱ—ଅନ୍ୟରୂପ ) ୨ । ସାହସ—2. Courage; boldness.
୩ । ଚିତ୍ତର ସ୍ଥିରତା ବା ଦୃଢ଼ତା—3. Steadiness; firmness; strength of mind.
୪ । ସହିଷ୍ଣୁତା—4. Forbearance.
୫ । ଗାମ୍ଭୀର୍ଯ୍ୟ—5. Solemnity; gravity.
୬ । ପାଣ୍ଡିତ୍ୟ—6 Learning; wisdom.
୭ । ଅନୌଦ୍ଧତ୍ୟ—7. Mildness; freedom from arrogance or haughtiness.
୮ । ସନ୍ତୋଷ—8 Contentment.

**ଧୀରତି**—ଦେ. ( ପଦ୍ୟ ) ବି. ( ସ. ଧୃତି )—ଧୈର୍ଯ୍ୟ—
Dhirati Patience.

ଧନ୍ଦ ତୋହର ଧୀରତି ନେ'
ଲଜ ଦୂର କଲେ ଚପଳ ନୟନ ଭାବ ଦେବାକୁ କରି—
ଅଭିମନ୍ୟୁ- ବିଦଗ୍ଧଚିନ୍ତାମଣି ।

**ଧୀର ନାୟକ**—ସ. ବି—କାବ୍ୟାଦିରେ ବର୍ଣ୍ଣିତ ସାହସୀ ନାୟକବିଶେଷ—
Dhira nayaka A class of heroes of a romance who are noble and brave.
[ ଦ୍ର—ଧୀର ନାୟକମାନେ ଧୀରପ୍ରଶାନ୍ତ ବା ଧୀରଶାନ୍ତ, ଧୀରଲଳିତ, ଧୀରୋଦାତ୍ତ ଏବଂ ଧୀରୋଦ୍ଧତ ଏହି କେତେକ ଶ୍ରେଣୀରେ ବିଭକ୍ତ । ]

**ଧୀର ପ୍ରଶାନ୍ତ**—ସ. ବିଣ. ପୁଂ. ( କର୍ମଧାରୟ; ଧୀର+ପ୍ରଶାନ୍ତ )—
Dhīra praśānta ୧ । ବହୁବିଧ ସାମାନ୍ୟ ସୁଗୁଣବିଶିଷ୍ଟ ନାୟକ; ( ଧୀରଶାନ୍ତ—ଅନ୍ୟରୂପ ) ଦୟାଶୀଳ, ପୁଣ୍ୟବାନ୍, ସୁଶୀଳ ଓ ଗୁଣବାନ୍ ନାୟକ—1. ( a hero or lover of a romance) Endowed with many ordinary good qualities e g. piety, kindness and good character.
୨ । ସାହସୀ ଓ ପ୍ରଶାନ୍ତ ( ନାୟକ )—2. ( a hero of a romace ) Who is brave and calm.

**ଧୀରବନ୍ତ**—ଗ୍ରା. ( ପ୍ରାଚୀନ ପଦ୍ୟ ) ବିଣ—ଧୀର ( ଦେଖ )
Dhīrabanta Dhīra ( See )
ସାଧୁ ବୋଲି ଧୀରବନ୍ତ ସଜ୍ଜନପ୍ରିୟ—ଶିବ. ସ୍ୱରୋଦୟ ।

**ଧୀର ଲଳିତ**—ସ. ବିଣ. ପୁଂ. ( ଧୀର+ଲଳିତ )—୧ । ମୃଦୁପ୍ରକୃତି, Dhīra lalita ନିଶ୍ଚିନ୍ତ ଏବଂ କଳାର ନୃତ୍ୟଗୀତାଦିରେ ଆସକ୍ତ ( ନାୟକ ); ପ୍ରଶାନ୍ତ ଅଥଚ ଆମୋଦପ୍ରିୟ ( ବ୍ୟକ୍ତି )—
1 ( a hero of a romance ) Of a mild and happy-go-lucky nature and fond of music and sports.
୨ । ପ୍ରଶାନ୍ତ ଓ ସାହସୀ ଅଥଚ କୌତୁକପ୍ରିୟ—
2 ( a hero of a romance ) Firm or brave but sportive or reckless.
୩ । ଉଦାରମନାଃ ଓ ପ୍ରସନ୍ନଚିତ୍ତ ( ନାୟକ )—
3 Noble and cheerful (hero of a romance)

**ଧୀରସ୍କନ୍ଧ**—ସ. ବି. ( ବହୁବ୍ରୀହି; ଧୀର+ସ୍କନ୍ଧ )—୧ । ମହିଷ—
Dhīraskandha 1. Buffalo.
୨ । ମସ୍ତିଷ୍କ ( ପ୍ରକୃତିବାଦ )—2. Brain.

**ଧୀରା**—ସ. ବିଣ ସ୍ତ୍ରୀ. ( ଧୀର+ସ୍ତ୍ରୀ. ଆ )—୧ । ଧୀରର ସ୍ତ୍ରୀଲିଙ୍ଗ—
Dhīrā 1 Feminine of Dhīra ( See )
୨ । ବ୍ୟଙ୍ଗ୍ୟକୋପ ପ୍ରକାଶିକା ( ନାୟିକା ); ଯେଉଁ ନାୟିକା ନିଜର ନାୟକଠାରେ ଅନ୍ୟ ନାୟିକା ପ୍ରତି ତାଙ୍କର ଆଶକ୍ତିର ଚିହ୍ନ ଓ ଲକ୍ଷଣାଦି ଦେଖି ନିଜର କ୍ରୋଧକୁ ବାହାରେ ପ୍ରକାଶ କରେ ନାହିଁ କିମ୍ବା ବ୍ୟଙ୍ଗ୍ୟ ସହକାରେ ଆପଣାର ଈର୍ଷାଯୁକ୍ତ ମନୋଭାବ ନାୟକ ନିକଟରେ ପ୍ରକାଶ କରେ—
2. ( a heroine of a romance ) Who though jealous of her lover or husband suppresses all manifestations of her resentment in his presence; ( a wife ) jealous of her husband but suppressing the outward manifestation of her jealousy; (a wife) who is jealous of her husband but conceals her resentment.
[ଦ୍ର—ସଂସ୍କୃତ ଓ ଭାରତୀୟ କାବ୍ୟମାନଙ୍କରେ ଆପଣା ନାୟକଙ୍କ ଦେହରେ ଅନ୍ୟ ନାୟିକାର ସଙ୍ଗମସୂଚକ ଚିହ୍ନ ଦେଖି କିମ୍ବା ନାୟକ ଅନ୍ୟ ସ୍ତ୍ରୀଠାରେ ଆସକ୍ତ ହେବା ବିଷୟ ଜାଣି ବା ସନ୍ଦେହ କରି ଯେଉଁ ନାୟିକା ଈର୍ଷ୍ୟାପରବଶ ହୋଇ ନାୟକଙ୍କ ପ୍ରତି କୁପିତ ହୁଏ, କିନ୍ତୁ ନିଜର କୋପକୁ ପ୍ରକାଶ କରେ ନାହିଁ ଏପରି ନାୟିକାକୁ ଧୀରା ନାୟିକା ଓ ଯେଉଁ ନାୟିକା ବେଳେ ବେଳେ କୋପ ସମ୍ବରଣ କରେ ଓ ବେଳେ ବେଳେ କୋପ ପ୍ରକାଶ କରେ ତାକୁ ଧୀରାଧୀରା ନାୟିକା ବୋଲାଯାଏ । ]
ସ. ବି ( ବୈଦ୍ୟକ ) ଗୁଳୁଚି (ହି. ଶବ୍ଦସାଗର) (ଦେଖ)
1 Guluchi ( See )
୨ । କାକୋଲି ( ହି. ଶବ୍ଦସାଗର ) ( ଦେଖ )
2. Kākolī ( See )
୩ । ମହାଜ୍ୟୋତିଷ୍ମତୀ ଲତା ( ହି. ଶବ୍ଦସାଗର ) ( ଦେଖ )
3. Mahājyotishmatī ( See )
ଧୀରସ୍ଥିର ଦେ. ବିଣ—୧ । ଧୀର; ସ୍ଥିର—1. Calm.
**धीरा** ୨ । ଧୀରପ୍ରକୃତିବିଶିଷ୍ଟ—2. Mild; gentle.
ଧୀରେ ଦେ. କ୍ରି. ବିଣ. (ସ. ଧୀରଂ)—ଧୀରେ; ଅସ୍ତେ—
**धीरे, धीरेसे** Slowly, gently.

**ଧୀରାଧୀରା**—ସ. ବିଣ ( ଧୀରା ଅଥଚ ଅଧୀରା )—ବ୍ୟଙ୍ଗ୍ୟାବ୍ୟଙ୍ଗ୍ୟ କୋପ-
Dhīrādhīrā ପ୍ରକାଶିକା (ନାୟିକା); ଯେଉଁ ନାୟିକାର ଅଭିମାନ ସମୟ ସମୟରେ ପ୍ରକାଶ ପାଏ ଏବଂ ସମୟ ସମୟରେ ଅବ୍ୟକ୍ତ ହୁଏ—( a heroine of a romance ) Whose resentment due to jealousy is at times expressed and at times suppressed before her lover
ଧୀରେ ଧୀରେ ଦେ କ୍ରି. ବିଣ. (ସ. ଧୀରଂ ଧୀରଂ)—ଧୀରେ (ଦେଖ)
**धीरेसे धीरेसे; आस्ते आस्ते** Dhīre ( See )

**ଧୀରାନ୍ତ**—ଗ୍ରା (ପ୍ରାଚୀନ ପଦ୍ୟ) ବିଣ—ଅତି ଧୀର; ନିଶ୍ଚଳ—
Dhīrānta Very slow, calm and quiet.
ମହିମା ନାମକ ଯେତୁ ମନକୁ ହୋଇଛି
ବୁଦ୍ଧି ବସ୍ତୁରଣେ କରି ଧୀରାନ୍ତ ରହିଛି । ବ୍ରହ୍ମନିରୂପଣ ଗୀତା ।

**ଧୀରେ**—ଦେ କ୍ରି. ବିଣ ( ସ ଧୀରଂ )—
Dhīre ୧ । ଅସ୍ଥିର; ଅସ୍ତେ; ଧୀର ଭାବରେ—
(ଧୀରେ ଧୀରେ—ଅନ୍ୟରୂପ) 1. Slowly; gently.
ଧୀରେ ଧୀରେ ୨ । କ୍ରମଶଃ—2. Gradually.
**धीरे, धीरेसे** ୩ । ଅନୁଚ୍ଚସ୍ୱରରେ—3. In a low tone.
୪ । କୋମଳତା ସହକାରେ—4. Softly; lightly.

**ଧୀରେ ସୁସ୍ଥେ**—ଦେ. କ୍ରି. ବିଣ—୧ । ଧୀରେ ଧୀରେ; ଅସ୍ତେ ଅସ୍ତେ—
Dhīre susthe 1. Slowly; gently.
ଧୀରେ ସୁସ୍ଥେ ୨ । କ୍ରମଶଃ; କ୍ରମେ କ୍ରମେ—
**धीरे सुस्ते** 2. Gradually; by degrees.
୩ । ଅବସରକ୍ରମେ—3. At one's leisure

**ଧୀରୋଦାତ୍ତ**—ସ. ବିଣ. ପୁଂ. ( ଧୀର+ଉଦାତ୍ତ=ଦୟାଳୁ )—
Dhīrodātta ଆତ୍ମଶ୍ଳାଘାବର୍ଜିତ, ହର୍ଷ ବା ଶୋକଦ୍ୱାରା ଅନଭିଭୂତ, ବିନମ୍ର ଓ ଅଙ୍ଗୀକାରପାଳନରତ (ନାୟକ); କାବ୍ୟ ନାଟକାଦି ବର୍ଣ୍ଣିତ ଯେଉଁ ନାୟକ ନରଉତ୍ତମ, ସାହସୀ ଓ ବଳବାନ୍, କ୍ଷମାଶୀଳ, ଦୟାଳୁ ଓ ସ୍ଥିର ଅଟନ୍ତି—
(a hero of a romance) Brave and noble minded

[ ଦ୍ର—ଶୃଙ୍ଗାରରସପ୍ରଧାନ କାବ୍ୟ ବା ନାଟକର ଧୀରୋଦାତ୍ତ ନାୟକଙ୍କଠାରୁ ମୁଖ୍ୟ ନାୟକ ଅଟନ୍ତି (ଦ୍ର. ଶବ୍ଦସାଗର)—

**ଧୀରୋଦ୍ଧତ**—ସଂ. ବିଣ. ( ଧୀର+ଉଦ୍ଧତ )—ମାୟାବୀ, ଉଦ୍ଧତ, ଚଞ୍ଚଳ,
Dhiroddhata ଓ ଅହଙ୍କାରୀ ଶ୍ଳାଘାକାରୀ ( ନାୟକ )—
( a hero of a romance ) Of a violent temper, vain, proud and pretending, though brave but haughty.
( ଯଥା—ମହାଭାରତରେ ଭୀମ ଧୀରୋଦ୍ଧତ ନାୟକ । )

**ଧୀଲଟି**—ସଂ. ବି. ସ୍ତ୍ରୀ—ଦୁହିତା; ଝିଅ—
Dhilati Daughter (Apte)

**ଧୀଶକ୍ତି**—ସଂ. ବି. ( ରୂପକ ୬ଷ୍ଠୀ ତତ୍; ଧୀ+ଶକ୍ତି )—
Dhisakti ୧ । ବୁଦ୍ଧି—1. Intelligence.
୨ । ବୁଦ୍ଧି ଶକ୍ତି—2. Intellectual faculty

**ଧୀସଖ**—ସଂ. ବି. ପୁଂ. ( ଧୀ+ସଖା )—୧ । ମନ୍ତ୍ରୀ, ଅମାତ୍ୟ—
Dhisakha 1. Minister; counsellor.
(ଧୀ ସଚିବ—ଅନ୍ୟରୂପ) ୨ । ପରାମର୍ଶଦାତା—
2. An adviser; a consultee.

**ଧୁ** ( ଧାତୁ )—ସଂ.—୧ । କମ୍ପିବା; ଥରିବା—
Dhu ( root ) 1. To shake; to tremble.
( ଧୂ—ଅନ୍ୟରୂପ ) ୨ । ତ୍ୟାଗ କରିବା—2. To abandon.
୩ । ଭର୍ତ୍ସନା କରିବା—3. To rebuke.

**ଧୁଃ** ସଂ. ବି. ( ଧୁ ଧାତୁ+ଭାବ. କ୍ୱିପ୍ )—କମ୍ପନ; ଥରିବା—
Dhuh Shaking; trembling ( Apte ).

**ଧୁଆ**—ଦେ. ବି. ( ସଂ. ଧାବ୍ ଧାତୁରୁ ଧୌତ )—
Dhuā ୧ । ଧୌତ କରଣ; ଧୋଇବା କର୍ମ—
ଧୋୟା **धव, धुलाई** 1. Washing.
ଧୁଚୁନୀ; ଧୁଉନୀ ୨ । ଯେଉଁ ପାତ୍ରଅରେ ଧୁଆଧୋଇ କାର୍ଯ୍ୟ ହୁଏ—
**धोआ** 2. A basket used to wash things.
[ ଦ୍ର—ଏ ଅର୍ଥରେ ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ ହୋଇ ବ୍ୟବହୃତ ହୁଏ; ଯଥା—ଚାଉଳଧୁଆ, ଅଇଁଷଧୁଆ । ]
ଧୁୟା ୩ । ( ସଂ. ଧ୍ରୁବକ ) ଗୀତର ଘୋଷା; ଧ୍ରୁବକ—
**धुवका, धुआ** 3. The refrain of a song; the burden of a song.
ଧୋଆ; ଧୋୟା ଦେ. ବିଣ—୧ । ଧୌତ—1 Washed.
**धोया हुआ** ୨ । ଯେଉଁ ଲୁଗା ବୁଣା ହେବା ପରେ ଥରେ ଧୁଆ ( କୋର୍—ଛପଶାଡ ) ହୋଇ ସାଇ ଶୁଭ୍ର ହୁଏ—
2. Bleached ( cloth ).
୩ । ( ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ ହୁଏ; ଯଥା—ଗୋଡ଼ଧୁଆ ପାଣି; ଚାଉଳଧୁଆ ପାଣି )—ଯେଉଁ ପାଣିରେ କୌଣସି ବସ୍ତୁ ଧୌତ ହୋଇଥାଏ—3. (the water) With which something is washed.
୪ । ( ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ ହୁଏ; ଯଥା—ଗୋଡ଼ଧୁଆ କଂସା; ମୁହଁଧୁଆ କୁଣ୍ଡ ) ଯେଉଁ ପାତ୍ର କୌଣସି ଦ୍ରବ୍ୟ ବା ଅଙ୍ଗ ଧୋଇବା ପାଇଁ ବ୍ୟବହୃତ ହୁଏ—
4. ( pot or vessel ) Which is used for the purpose of washing something.

**ଧୁଆଇବା**—ଦେ. କ୍ରି (ସଂ ଧାବ୍ ଧାତୁ; ଧୋଇବାର ଣିଜନ୍ତରୂପ)—
Dhuāibā ଅନ୍ୟଦ୍ୱାରା ଧୋଇବା କ୍ରିୟା କରାଇବା—
ଧୋୟାନ **धुलाना** To cause to be washed

**ଧୁଆଇଁବା**—ଦେ. କ୍ରି (ଧାଇଁବାର ଣିଜନ୍ତରୂପ)—
Dhuāinbā ୧ । ଦଉଡ଼ାଇବା; ଧାବମାନ କରାଇବା—
(ଧୁଁଆଁଇବା—ଅନ୍ୟରୂପ) 1. To cause to run.
ଧୁଓନା; ଧୁୟାନ ତାହାର ପଛେ ପଛେ ରଥକୁ ଧୁଆଇଁ ।
**धपाना** କୃଷ୍ଣସିଂହ. ମହାଭାରତ. ବନ ।
ଧୋୟାନ ୨ । (ଧୋଇବାର ଣିଜନ୍ତରୂପ) ଧୌତ କରାଇବା—
**धुलाना; धुलवाना** 2 To cause to be washed

**ଧୁଆଁ**—ଦେ. ବି—୧ । (ଧାବ୍ ଧାତୁ)—ଧାଇଁବା—
Dhuān 1. Running.
(ଧୁଁଆଁ—ଅନ୍ୟରୂପ) ୨ । ଦ୍ରୁତଗତି—
ଧାଓଆ 2 Speed; quick motion
**धावना; दौड़ना** ସେହିରୂପେ ଦ୍ରୁପଦ କର୍ଣ୍ଣରଥ ଧୁଆଁ
ଦେଖି ହେଲେ କୋପେ ଦ୍ରୁପଦସୁତେ ନଥାଁ ।
କୃଷ୍ଣସିଂହ. ମହାଭାରତ. କର୍ଣ୍ଣ ।
ଧୁଆଁ ୩ । (ସଂ. ଧୂମ) ଧୂଆଁ ଇତ୍ୟାଦି (ଦେଖ)
**धुआँ** 3. Dhūān etc (See)

**ଧୁଆଁଧୁଇଁ**—ଦେ. ବିଣ. (ସଂ. ଧାବ୍ ଧାତୁ)—ଦୌଡ଼ାଦୌଡ଼ି; ଇତସ୍ତତଃ
Dhuān dhuin ଧାଇଁବା—Running about
ଧାବାଧାବୀ ସେଥୁଁ ବାନରମାନେ ଚଳଇଁ
**दौड़धूप** ଅତି ଆରତେ ହୋଇ ଧୁଆଁଧୁଇଁ । ପ୍ରତାପ. ଶଶିସେଣା ।
ଦେ ବି—ଦୌଡ଼ିବା—Running

**ଧୁଆ ଖସାତେଲ**—ଦେ. ବି—ରାଶି ବା ଖସାକୁ ଉତ୍ତମରୂପେ ଧୋଇ
Dhuā khasātela ଶୁଖାଇ ଓ ସେଥିରୁ ଉଠିଥିବା ଯେଉଁ ତେଲ
ଧୁଆତୀଲତେଲ ବାହାର କରାଯାଏ – Oil pressed from
**धोयातिलतेल** washed and cleansed sesame seeds.

**ଧୁଆ ଚିଙ୍ଗୁଡ଼ି**—ପ୍ରାଦେ. (ସମ୍ବଲପୁର) ବି—ଛୋଟ ଚିଙ୍ଗୁଡ଼ି ମାଛ—
Dhuā chingurdi A small shrimp or prawn

**ଧୁଆ ଧରିବା**—ଦେ. କ୍ରି. (ସଂ. ଧ୍ରୁବକ+ଧୃ ଧାତୁ)—୧ । ପ୍ରଧାନ ଗାୟକ
Dhuā dharibā ଗୀତର ଅନ୍ୟ ପଦମାନ ଗାଇ ସାରିବା ପରେ
ଧୁୟାଁ ଧବା ତାହାର ସହକାରୀମାନେ ଗୀତର ଘୋଷାକୁ ବାରଂବାର
**धुवकादेना; धुआगाना** ଗାଇବା—To repeat the refrain
(ଧୁଆଦେବା—ଅନ୍ୟରୂପ) of a song.
୨ । (ଲକ୍ଷଣାର୍ଥ) କୌଣସି ବିଷୟକୁ ବାରଂବାର କହିବା—
2. (figurative) To repeat a thing several times; to say the same thing repeatedly.
୩ । (ଲକ୍ଷଣାର୍ଥ) କୌଣସି ବ୍ୟକ୍ତିର କଥିତ ବିଷୟକୁ ସମର୍ଥନ କରିବା—3. ( figurative ) To support a person's proposal.

**ଧୁଆ ଧୋଇ**—ଦେ. ବ. (ସ. ଧାବ୍ ଧାତୁ)—୧ । ଦେହାଦିକୁ ଉତ୍ତମରୂପେ ଧୋଇବା କ୍ରିୟା—1. Thorough washing of the body.
Dhuā dhoi
ଧୁଆ ଧୁଆ **धुलाई, धुआधोइ**
ଧୁଆପଖାଳ / ଧୋପଖାଳ } ଅନ୍ୟରୂପ
୨ । ଗାଧୋଇବା; ସ୍ନାନ—2. Bath; ablution.
୩ । ବହୁବାର ଧୋଇବା କର୍ମ—
3. Repeated washing.
୪ । ଘରର ତଳ ଓ ଅନ୍ୟାନ୍ୟ ଅନେକ ବସ୍ତୁ ଧୋଇବା କର୍ମ--
4. Washing of the floor and of many other things.

**ଧୁଆ ପଖାଳ**—ଦେ. ବ. (ସ. ଧୌତ+ପ୍ରକ୍ଷାଳତାଳ୍)—ଗରମ ଭାତ ଥରେ ଧୁଆ ହେଲା ପରେ ତହିଁରେ ପୁଣି ପାଣି ପୂରାଯାଇ ପ୍ରସ୍ତୁତ ହେବା ପଖାଳ ଭାତ—Boiled rice kept in water after having once been washed while warm
Dhuā pakhāla
ଧୁଆଭାତ
**पनियायामात**

**ଧୁଆ ପୋଛା**—ଦେ ବ ( ସ ଧାବନ+ପ୍ରୋଞ୍ଛନ )—ଧୋଇବା ଓ ପୋଛିବା କର୍ମ; ଧୋ ପଖାଳ—Washing and scouring
Dhuā pochhā
ଧୁଆପୁଁଛା
**धोना पोछना**
(ଧୁଅ ପଖଳା—ଅନ୍ୟରୂପ)

**ଧୁଆ ମୁଗ**—ଦେ. ବ—ପାଣିରେ ବହୁତ ହୋଇ ନରମ ହେଲା ପରେ ଚୋପା ଛଡ଼ା ଯାଇଥିବା ମୁଗ—Split moong moistened for some time in water and then washed and freed from the chaff and become made soft.
Dhuā muga
ଧୁଆମୁଗ
**धोया मुग**
[ ଦ୍ର—ଏହା ସିଦ୍ଧ ନ ହୋଇ ମଧ୍ୟ ଏକପ୍ରକାର ସୁଖାଦ୍ୟ ବୋଲି ବିବେଚିତ ହୁଏ, ବୃଦ୍ଧାସ୍ତ୍ରୀମାନେ ଏହା ଖାଆନ୍ତି । ]

**ଧୁଆ ମୁହଁ**—ଦେ ବ—ସକାଳୁ ଉଠି ଧୋଇଥିବା ମୁହଁ; ଶଯ୍ୟା ତ୍ୟାଗ ପରେ ପ୍ରକ୍ଷାଳିତ ମୁଖ—The face washed after rising from one's bed in the morning
Dhuā muhaṅ
ଧୋଆ ମୁଖ
**धोया मुहँ**
(ଅଧୁଅ ମୁହଁ—ବିପରୀତ)

**ଧୁଆ ମୂଳା ଅଧୁଆ ମୂଳା ସମାନ**—ଦେ. (ନ୍ୟାୟ)—ଭଲ ଓ ମନ୍ଦ ମଧ୍ୟରେ ପ୍ରଭେଦ ନ ରଖିବା—To treat the good and the bad equally without discrimination.
Dhuā mūlā adhuā mūlā samāna
ମୁଡି ମିଛିବି ଏକଦର
**सब धान बाइस पसेरो**
**टकासेर भाजी, टकासेर खाजा**

**ଧୁଆ ଯିବା**—ଦେ. କ୍ରି. ( ସ. ଧାବ୍ ଧାତୁ; ଧୋଇବା କ୍ରିୟାର କର୍ମବାଚ୍ୟ ରୂପ )—ଧୌତ ହେବା—(passive voice of the verb to wash) To be washed.
Dhuā jibā
ଧୁୟା ଯାଓୟା
**धुलाइ होना, धोयाजाना**
(ଧୁଆ ହେବା—ଅନ୍ୟରୂପ)
ଦେ. ବିଣ.—୧ । ଯାହା ଧୁଆ ଯାଇଅଛି—
1. Already washed.
୨ । ଯାହାକୁ ଧୋଇବାର ସ୍ଥିର କରାଯାଇଛି—
2. That which has to be washed.

**ଧୁଆ ଲୁଗା**—ଦେ. ବ. ( ସ. ଧୌତ )—
Dhuā lugā ୧ । ଯେଉଁ ଲୁଗା ପାଣିରେ ଧୌତ ହୋଇଥାଏ—
ଧୋୟା କାପଡ 1 Washed cloth
**धोया हुआ कपड़ा** ୨ । ଯେଉଁ ଲୁଗା ବୁଣା ହେବା ପରେ ପାଣିରେ ଧୁଆ ଯାଇ ସଫା ହୋଇ ବିକ୍ରି କରାଯାଏ—
2 Bleached cloth.

**ଧୁଇବା**—ପ୍ରାଦେ. (ବାଲେଶ୍ୱର) (ଭୁଲ. ବ ଏହି ଅର୍ଥରେ ଧୁୟା) କ୍ରି—ଧୋଇବା—To wash.
Dhuibā

**ଧୁକ୍‌ଧୁକ୍**—ଦେ. ଅ. ( ଧ୍ୱନ୍ୟନୁକରଣ )—୧ । ହୃତ୍‌ପିଣ୍ଡର ଧୀର ସ୍ପନ୍ଦନ; କ୍ଷୀଣ ସ୍ପନ୍ଦନ—1. Feeble palpitation of the heart.
Dhuk-dhuk
ଧୁକ୍‌ନି, ଧুকুନି, ଧୁକଧୁକ୍
**धुकधुक, धड़कन** ୨ । କ୍ଷୀଣ ଭାବରେ ନିଶ୍ୱାସ ପ୍ରଶ୍ୱାସ ନେବା—
(ଧୁକୁଧୁକୁ—ଅନ୍ୟରୂପ) 2. Feeble breathing or panting.
[ ଦ୍ର—ଧକ୍‌ଧକ୍'ଠାରୁ 'ଧୁକ୍‌ଧୁକ୍' କ୍ଷୀଣତର । ]

**ଧୁକ୍‌ଧୁକ୍ ହେବା**—ଦେ. କ୍ରି ( ଧ୍ୱନ୍ୟନୁକରଣ )—
Dhuk-dhuk hebā ୧ । ସନ୍ଦେହ ବା ଭୟରେ (ହୃଦୟ) ଅତି କ୍ଷୀଣ ଭାବରେ ସ୍ପନ୍ଦିତ ହେବା; ଧୁକୁଧୁକୁ ହେବା—1. (the heart) To throb very feebly through fear or doubt.
(ଧୁକୁଧୁକୁ ହେବା—ଅନ୍ୟରୂପ)
ଧୁଁକା, ଧୁକଧুক কবা
**धड़कना, धुकधुक करना**
(ଧୁକ୍‌ଟୁକେଇବା—ଅନ୍ୟରୂପ)
୨ । ଅତି କ୍ଷୀଣ ଭାବରେ ନିଶ୍ୱାସ ନେବା ଓ ଛାଡ଼ିବା—
2 To breathe very feebly.
୩ । ପ୍ରାଣ ଯିବା ପୂର୍ବରୁ ଅତି କ୍ଷୀଣ ଭାବରେ ନିଶ୍ୱାସ ମାରିବା—3. To breathe very feebly before death.

**ଧୁକ୍‌ଧୁକି**—ଦେ. ବ. ( ଧ୍ୱନ୍ୟନୁକରଣ )—୧ । ହୃତ୍‌ପିଣ୍ଡ ( ଯାହା ଧୁକ୍ ଧୁକ୍ ହେଉଥାଏ ); କଲିଜା—1. Heart.
Dhuk-dhuki
(ଧୁକୁଧୁକି—ଅନ୍ୟରୂପ) ୨ । କଣ୍ଠହାର ଆଗର ମଝିରୁ ଓହୋଳିଥିବା ଝୁଲି—2. A pendant or locket hanging from the middle of a necklace.
ଧুকধুকী
**धुकधुकी**

**ଧୁକ୍‌ପୁଚ୍**—ଦେ. ବିଣ—୧ । ଉଦ୍‌ବିଗ୍ନ, ଅସ୍ଥିର (ମନ)—
Dhuk-puch 1. Anxious (heart).
(ଧୁକୁପୁଚୁ—ଅନ୍ୟରୂପ) ୨ । ସନ୍ଦେହାନ୍ଦୋଳିତ; ସନ୍ଦେହରେ ପଡ଼ି ଇତସ୍ତତଃ (ହୃଦୟ)—Dubious; hesitating (heart).
ধুকধুকনী
**धकपक, धतपत**
ଦେ. ବ—୧ । ମନର ସନ୍ଦେହ—1. Doubt; hesitation.
୨ । ଉଦ୍‌ବେଗ—2. Anxiety.

**ଧୁକା**—ଦେ. ବ—ଧୋକା ( ଦେଖ )
Dhukā Dhokā ( See )
ପ୍ରାଦେ. ( ସମ୍ବଲପୁର ) ବ. [ଭୁଲ. ହି. ଝୋଁକା; ସ. ଧୁକ=ଗାବନ ( Apte ) ]—୧ । ପବନର ଝପ୍ଟା; ଝୁଙ୍କ—
1. Gust of wind.

୨ । ଝଡ଼—2 Tempest.

ଧୁକିବା—ପ୍ରାଦେ. (ସମ୍ବଲପୁର) କ୍ରି. (ସ. ଧୂ ଧାତୁ=କମ୍ପିତ ହେବା, Dhukibā ଦୋହୋଲିବା)—ପବନ ବୋହିବା—To blow.

ପ୍ରାଦେ. (କଳାହାଣ୍ଡି) କ୍ରି—ବିଞ୍ଚିବା—To fan.

ଧୁକା(କେ)ଇବା—ଦେ. କ୍ରି. (ଧ୍ୱନ୍ୟନୁକରଣ)—
Dhakā(ke)ibā ୧ । ଧୁକ୍ ଧୁକ୍ ହେବା—
1. Dhuk-dhuk heba.

୨ । ଧକାଇବା (ଦେଖ)—2. Dhakāibā (See)

ଧୁକୁଲ୍ ପଡ଼ିବା—ପ୍ରାଦେ. (ଯାଜପୁର) ବି. (ଶିଶୁ ବଚନ; ଖେଳ ବନ୍ଦ Dhukul paṛdibā କରିବାର ସୂଚନାମୂଳକ ବାକ୍ୟ)—
(ଧୁକୁଲ ପଡ଼ିବା—ଅନ୍ୟରୂପ) ଖେଳା ଯାଉଥିବା ଖେଳ ବନ୍ଦ ହେବା—
The stoppage of a game.

ଧୁଗାଡ଼ି—ଦେ ବି—୧ । ଅଜୀର୍ଣ୍ଣବିକାର—1 Indigestion.
Dhugārḍi ୨ । ଅଜୀର୍ଣ୍ଣ ହାକୁଟି, ଟୁଆଁ ହାକୁଟି—
অম্লঢেকুৰ 2. Acid belching.
धुआँहा डकार, अनपचकार

ଧୁଙ୍ଗିଆ—ପ୍ରାଦେ. (ସମ୍ବଲପୁର) ବି. (ସ. ଧୂମ)—ଧୂଆଁ; ଧୂମ—
Dhungiā Smoke
(ଟୁଙ୍ଗିଆ—ଅନ୍ୟରୂପ) ପ୍ରାଦେ (କଳାହାଣ୍ଡି) ବି—ଧୂଆଁପତ୍ର—
Tobacco.

ଧୁଙ୍ଗିଆ ଢଙ୍କାର—ପ୍ରାଦେ. (ସମ୍ବଲପୁର) ବି—ଖଇର ହାକୁଟି; ଆମ୍ବିଲ Dhungiā ḍhankāra ହାକୁଟି—Acid belching due (ଧୁଁ ଗିଆ ଗଁକାର—ଅନ୍ୟରୂପ) to indigestion.

ଧୁଡ଼ୁକା—ଦେ. ବିଣ—ଢ଼ୁଗୁଲା; ଶ୍ଳଥ—
Dhurḍukā Loose; slackened
ঢিলা ढीला, लड़खड़ाया हुआ
(ଧୁଡ଼୍ କା—ଅନ୍ୟରୂପ)

ଧୁଡ଼ୁକା ଜହ୍ନି—ପ୍ରାଦେ. (ଗଞ୍ଜାମ) ବି—ତରଡ଼ା (ଦେଖ)
Dhurḍukā jahni Tararḍā (See)

ଧୁଡ଼ୁକି—ଦେ. ବି. (ଧ୍ୱନ୍ୟନୁକାରୀ)—ବାଦ୍ୟଯନ୍ତ୍ରବିଶେଷ—
Dhurḍuki A kind of musical instrument
আনন্দলহৰী; গাবগুবাগুব [ ଦ୍ର—ଗୋଟିଏ ବଡ଼ ନଳର ଗୋଟିଏ
गुन्ना मुन्ना ମୁହଁରେ ବନ୍ଧାଥିବା ଚମଡ଼ାର ମଝିରେ ଗୋଟିଏ ଛିଦ୍ର
(ଧୁଡୁକ—ଅନ୍ୟରୂପ) ହୋଇ ତହିଁରେ ଖଣ୍ଡିଏ ତନ୍ତୁମୟ ସୂତ ଲାଗି-
ଥାଏ ଓ ତନ୍ତୁ ତନ୍ତୁର ଗୋଟିଏ ମୁଣ୍ଡ ସେ ଛିଦ୍ରରେ ଚମଡ଼ାରେ ସଂଲଗ୍ନ ଥାଏ । ତନ୍ତୁ ନଳକୁ ବ ଆଁ କାଖରେ ଯାକି ସୂତାର ମୁକୁଳା ମୁଣ୍ଡକୁ ବାଁ ହାତରେ ଟାଣି ଧରି ଡାହାଣ ହାତର ଅଙ୍ଗୁଠିଦ୍ୱାରା ସେ ସୂତାକୁ ବଜାଇଲେ ଟଙ୍ଗ୍ ଟଙ୍ଗ୍ ବା ଧୁଡ଼୍ ଧୁଡ଼୍ ଶବ୍ଦ ହୁଏ । କେଳାମାନେ ଗୀତ ବୋଲି ଗୀତର ତାଳ ଅନୁସାରେ ଏହି ଯନ୍ତ୍ର ବଜାନ୍ତି । ]

ଦେ. ବିଣ—୧ । ଭଗ୍ନ—1. Broken.

୨ । ଧୁଡ଼୍ କା; ଢୁଗୁଲା; ନଡ଼ନଡ଼ିଆ—
2. Slackened; loose.

ଧୁଡ଼ୁକିଆ—ଦେ. ବି—ଯେଉଁ କେଳା ଧୁଡ଼ୁକି ବଜାଏ—
Dhurḍukiā The person who plays on the
गुन्नामुन्ना बाजानेवाला Dhurḍuki.

ଧୁଡ଼ୁକି ବାଜଇ ରଙ୍ଗେ; ଧୁଡ଼ୁକି କହନ୍ତି ବୁଝି ନ ପାରଇଲେ
ସିକୁ ଧୁଡ଼ୁ କଥା ସଙ୍ଗେ । କେଳାଗୀତ ।

ଧୁଡ଼ୁକି କଉଡ଼ି—ଦେ. ବି—ଧୁଡ଼ୁକି ବଜାଇବା ବ୍ୟକ୍ତିକୁ ଧୁଡ଼ୁକି ବାଜା Dhurḍuki kaurḍi ଓ ଗୀତ ଶୁଣିବା ବ୍ୟକ୍ତିର ଦେବା ପାରିତୋଷିକ—Money paid to the person who plays on the Dhurḍuki.

ଧୁଡ଼ୁଧୁଡ଼ୁ—ଦେ. ଅ—୧ । ଧଡ଼ଧଡ଼ଠାରୁ କ୍ଷୀଣତର ଶବ୍ଦ—
Dhurḍudhurḍu 1. Sound less loud than
(ଧୁଡ଼ ଧୁଡ଼, ଧଡ଼ଧଡ଼୍—ଅନ୍ୟରୂପ) Dharḍa dharḍa.
ধুড়ধুড় ୨ । ଚଞ୍ଚଳ ଓ ନିସ୍ତବ୍ଧଭାବରେ—
धड़धड़, हड़हड़ 2 Quickly and silently.

୩ । କୋଞ୍ଚିତ—3. Wrinkled; hanging loosely.
(ଯଥା—ସେ ବୁଢ଼ା ହୋଇ ଯିବାରୁ ତା ଚମ ଧୁଡ଼ୁ ଧୁଡ଼ୁ ହୋଇ-
ଗଲାଣି ।)

ଧୁଣ—ପ୍ରାଦେ (ସିଂହଭୂମ; ତୁଳ. ହି. ଧୁନ୍) ବି—ଧନୁ—
Dhuṇa Bow.

ଧୁଣେଇବା—ପ୍ରାଦେ. (ସିଂହଭୂମ) କ୍ରି—ପ୍ରସବ କରିବା; ଜନ୍ମ କରିବା—
Dhuṇeibā To give birth to; to bring forth.

ଧୁଣ୍ଡା—ଦେ. ବିଣ. ପୁଂ. (ସ. ଢୁଣ୍ଢି=ଲମ୍ବୋଦର; ଗଣେଶ)—
Dhuṇḍā ୧ । ସ୍ଥୂଳକାୟ (ବ୍ୟକ୍ତି)—
(ଧୁଣ୍ଡୀ—ସ୍ତ୍ରୀ) 1. Fat or corpulent (man).
ভুডে; ভুডুয়া ୨ । ହୁଣ୍ଡା (ଦେଖ)
ढीढ़ावाला; थोंधवाला; तोंदवाला 2. Huṇḍā (See)

ଧୁଣ୍ଡା(ଣ୍ଡେ)ଇବା—ଦେ. କ୍ରି—'ଧୁଣ୍ଡିବା'ର ଣିଜନ୍ତରୂପ—
Dhuṇḍā(ṇḍe)ibā Causative form of Dhuṇḍibā.
খোজকবান ढुँढ़वाना

ଧୁଣ୍ଡାଧୁଣ୍ଡି—ଦେ. ବି—ଖୋଜାଖୋଜି; ବାରମ୍ବାର ଖୋଜିବା—
Dhuṇḍādhuṇḍi Repeated searching.
খোজাখোজি ढुँढ़ाढुँढ़ी

ଧୁଣ୍ଡିବା—ଦେ. କ୍ରି (ସ. ଢୁଣ୍ଢନ)—୧ । ଖୋଜିବା—
Dhuṇḍibā 1. To search; to seek.
খুঁজা; খোঁজা ୨ । ଅଣ୍ଡାଳିବା—2. To grope after a
ढुँढ़ना thing in the dark.

୩ । କୌଣସିବସ୍ତୁ ଖୋଜିବାପାଇଁ ଅନେକ ଆଡ଼ ବୁଲିବା—
3. To roam about in search of a thing.

୪ । ଉଦ୍ଦେଶ୍ୟବିହୀନ ହୋଇ ନାନାଦିଗ ବୁଲିବା—
4. To roam aimlessly.

ଧୁତ୍—ଦେ. ଅ. (ସ. ଧୁତ=ଭର୍ତ୍ସିତ; ପରିତ୍ୟକ୍ତ)—
Dhut (ବିରକ୍ତିପ୍ରକାଶକ ଅବ୍ୟୟ) ଧତ୍; ଦୂର୍; ଧିକ୍—
(interjection) Fie.
(ଧୁତ୍ତେରି, ଧୁତ୍ତେରିକା, ଧୁତ୍ତେରିକେ, ଧୁତ୍‌ଧୁତ୍, ଧୁକୁତ୍—ଅନ୍ୟରୂପ)
ধুৎ धुत; दुत

—ଦେ. ବି. (ସ. ଧିକ୍କାର)—ଧିକାର (ଦେଖ)
Dhut-kāra Dhıkāra (See)
धिंकाव धुतकार

ଧୂତ୍କାରିବା—ଦେ. କ୍ରି. (ସ. ଧିକ୍କାର)—୧ । ଧିକ୍କାରିବା—
Dhutkārıbā 1. To cry down.
धतकारना; धुतकारना ୨ । ଅବମାନନା କରିବା—
धिक्काव देओया 2. To humiliate; to insult.

—ସ ବିଣ. (ଧୂ ଧାତୁ=କମ୍ପିବା+କର୍ମ ତ)—୧ । କମ୍ପିତ—
Dhuta 1 Shaken; trembling.
୨ । ପରିତ୍ୟକ୍ତ, ବର୍ଜିତ—2. Abandoned; forsaken
୩ । ଭର୍ତ୍ସିତ—3. Rebuked; abused.

ଧୂତି—ପ୍ରାଦେ. (ବାଲେଶ୍ୱର, ସମ୍ବଲପୁର ଓ ଗଡ଼ଜାତ; ତୁଳ. ହି. ଧୂତୀ)
Dhuti ବି - ଧୋତି (ଦେଖ)—Dhoti (See)

- ଦେ. ବିଣ. (ସ. ଧ୍ୱସ୍ତ)—୧ । ଧଡ଼ଡ଼ା; ଭଙ୍ଗାଭୁଙ୍ଗା—
Dhuturdā 1. Broken.
(ଧୂଡ଼ଡ଼ା, ଧୂଡ଼ରା, ଧୂଭୁରା—ଅନ୍ୟରୂପ) ୨ । ଜୀର୍ଣ୍ଣଶୀର୍ଣ୍ଣ—
टुटाफाटा टुटाफुटा 2. Worn out

ଧୂତୁରା—ଦେ. ବି—୧ । ଧତୁରା (ଦେଖ)
Dhuturā Dhaturā (See)
(ଧୂଡ଼ରା—ଅନ୍ୟରୂପ)
धुतूरा धुतुरा

ଧୂତୁରା ଫୁଲିଆ—ଦେ ବି—ଦୁଦୁରାଫୁଲିଆ (ଦେଖ)
Dhuturā phulıā Dudurāphuliā (See)
(ଧୂଡ଼ରାଫୁଲିଆ, ଧାଭୁରାଫୁଲିଆ—ଅନ୍ୟରୂପ)

ଧୂଧ୍ଲା—ପ୍ରାଦେ. (ସମ୍ବଲପୁର) ବିଣ. ପୁଂ. (ତୁଳ. ହି. ଧୋଧଲା)—
Dhudhlā ଧୁଣ୍ଡା; ମୋଟା; ସ୍ଥୂଳକାୟ—
(ଧୂଧ୍ଲୀ—ସ୍ତ୍ରୀ) Fat; corpulent.

ଧୂଧୂ—ଦେ. ଅ—ଧୂଧୂ (ଦେଖ)
Dhu dhu Dhū dhū (See)
धुधु धूधू

ଧୂନ୍—ପ୍ରାଦେ. (ସମ୍ବଲପୁର) ବି—ଧନୁ—
Dhun A bow.

ଧୂନ୍କୀ—ପ୍ରାଦେ. ( ସମ୍ବଲପୁର )—ବି. (ସ. ଧନୁ); ତୁଳ. ଏହି ଅର୍ଥରେ
Dhun-ki ହି. ଶବ୍ଦ 'ଧୂନକୀ')—ତୁଳା ଭଣିବାର ଧନୁ—Cotton-carding bow

ଧୂନନ—ସ. ବି. (ଧୂ ଧାତୁ=କମ୍ପିବା+ଣିଚ୍=ଧୂନ ଧାତୁ+ଭାବ.
Dhunana ଅନ)—୧ । ଆନ୍ଦୋଳନ; କମ୍ପାଇବା—
(ଧୂନନ—ଅନ୍ୟରୂପ) 1. Shaking.
୨ । ଗୁଞ୍ଜନ—2. Moving.
୩ । ଶବ୍ଦ କରିବା—3. Sounding.

ଧୂନା - ପ୍ରାଦେ. (ସମ୍ବଲପୁର) ବି.—(ସ. ଧୂନନ) ତୁଳ. ହି. ଏହି ଅର୍ଥରେ
Dhunā ଧୂନନା)-(ତୁଳା) ଭଣିବା କର୍ମ—Carding of cotton.

ଧୂନାଇବା—ପ୍ରାଦେ. (ସମ୍ବଲପୁର) କ୍ରି. (ତୁଳନା କର ହି. ଏହି ଅର୍ଥରେ
Dhunāibā ଧୂନ୍ୱାନା)—ତୁଳା ଭଣାଇବା—To cause cotton to be carded.

ଧୂନି—ସ ବି (ଧୂ ଧାତୁ=କମ୍ପିବା+ସଂଜ୍ଞାର୍ଥେ. କର୍ତ୍ତୃ ନି)—ନଦୀ—
Dhuni River.
(ଧୂନୀ - ଅନ୍ୟରୂପ) ଦେ. ବି.—୧ । (ସ. ଧ୍ୱନି)—୧ । ଶବ୍ଦ—
ଧୁନୀ 1. Sound
ध्वनी ଶଙ୍ଖ ମହୁରୀ ଧୂନିରେ ହୋଇଛି ପ୍ରଧାନ ।
ଭଞ୍ଜ. କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ।
୨ । ବୈଷ୍ଣବମାନଙ୍କର ପଙ୍ଗତରେ ବସିବା ସମୟରେ ଦେବତା ବା ଭକ୍ତମାନଙ୍କ ନାମ ଧରି କରିବା ଜେଜେକାର—
2. The simultaneous recital of the names of Deities and saints and famous doners or thanks-giving made by Baishnabas assembled at a feast before partaking of it.
धुनी ୩ । (ସ. ଧୂମ) ବୈଷ୍ଣବମାନଙ୍କର କାଠମୁଣ୍ଡିଥରେ କାଠ ଲଗାଇ ନିଜ ନିଜ ଆସନ ଆଗରେ ଜାଳିବା ଅଗ୍ନିରାଶି—
3 Heap of fire lighted by ascetics near their seats.

ଧୂନିଆଁ—ପ୍ରାଦେ. (ସମ୍ବଲପୁର) ବି.—(ସ ଧୂନନ; ସ. ଧନୁ)—
Dhunıāñ ଯେ ତୁଳା ଭଣେ—Cotton-carder.

ଧୂନି ଜାଳିବା—ଦେ. କ୍ରି.—୧ । (ବୈଷ୍ଣବମାନେ) କାଠ ଜାଳିବା—
Dhuni jālibā 1 To kindle a sacrificial fire.
धुनीजालान ୨ । ଶୀତଦିନେ କାଠ ପୋଇବା ପାଇଁ କାଠ ଜାଳିବା-
धुनीदेना, धूनीजगाना, 2. To kindle a fire to bask in
धूनीलगाना, धूनीजमाना it during cold.
ଧୂନି ଜଳା(ଳେ)ଇବା, ଧୂନି ଲଗା(ଗେ)ଇବା, ଧୂନି ଜାଳିବା, ଧୂନି ଦେବା } ଅନ୍ୟରୂପ

ଧୂନିନାଥ—ସ. ବି. (ଷଷ୍ଠୀ ତତ୍; ଧୂନି+ନାଥ)—ସରିତ୍ପତି; ସମୁଦ୍ର—
Dhuni nātha Ocean.
(ଧୂନୀନାଥ—ଅନ୍ୟରୂପ)

ଧୂନିବା—ପ୍ରାଦେ. (ସମ୍ବଲପୁର) କ୍ରି. (ସ. ଧୂନନ; ତୁଳ ଏହି ଅର୍ଥରେ
Dhunıbā ହିନ୍ଦୀ ଧୂନ୍ନା)—ତୁଳା ଭଣିବା—To card or fleece cotton.

ଧୂନି ଲଗା(ଗେ)ଇବା—ଦେ. କ୍ରି.—(ବୈରାଗୀ) ନିଜ ଆସନ ପାଖରେ
Dhuni lagā(ge)ıbā କାଠ ଜଳାଇବା—To set up or
धुनीजागान light a fire near the seat (said of an
धुनी जागना ascetic.)
(ଧୂନି ଚାପିବା, ଧୂନି ଥାପିବା—ଅନ୍ୟରୂପ)

ଧୂନ୍ଦଲା—ଦେ. ବି.—୧ । ସ. ( ଢୁଣ୍ଢନ ) କୌଣସି ପଦାର୍ଥକୁ ବନ୍ଧୁବାକୁ
Dhundalā ଇତସ୍ତତଃ ଖୋଜିବା—1. Repeated search after a thing.
टटोलना
[ଧୂନ୍ଦୁଲା, ଧୂନ୍ଦ(ନ୍ଦୁ)ଲା—ଅନ୍ୟରୂପ] ୨ । ଗୋଳମାଳ—
2. Dispute; trouble.

୩ । (ସ. ଧୂମ)–ଧୂଆଁ ଘୋଡ଼ିବାରୁ ଅନୁଭୂତ ଅନ୍ଧାର—
3. Darkness due to the overspreading of smoke.

୪ । ଧୂମ୍ରବର୍ଣ୍ଣ—4. The colour of smoke

୫ । ଅନ୍ଧକାର ବା ରୋଗ ଯୋଗୁଁ ପଦାର୍ଥମାନ ସ୍ପଷ୍ଟ ଦେଖା ନ ଯିବା ଅବସ୍ଥା—5 Indistinctness of vision due to darkness, smoke or dimness of eyesight.

**ଧୁଁଧଳା, ଧୁଁଧୁରି** ବିଣ.—୧ । ଧନ୍ଦଳା (ଦେଖ)—
1. Dhandalā ( See )

୨ । ଧୂମ୍ରମୟ—2. Smoky; full of smoke

**ଧୁନ୍ଦାଧୁନ୍ଦି**—ଦେ. ବି.—ଧୁଣ୍ଡା ଧୁଣ୍ଡି (ଦେଖ)
Dhundā dhundi Dhundā dhundi (See)

**ଧୁନ୍ଦାଳିବା**—ଦେ. କ୍ରି.—ଧନ୍ଦାଳିବା (ଦେଖ)
Dhundāliba Dhandāliba (See)
(ଧୁନ୍ଦାଳିବା—ଅନ୍ୟରୂପ)

**ଧୁନ୍ଦିଆ**—ଦେ ବି. ପୁଂ —ପୁରୁଷଙ୍କ ନାମବିଶେଷ—
Dhundiā Name given to a male.
(ଧୁନ୍ଦିଆ—ଅନ୍ୟରୂପ) ଦେ. ବିଣ. ପୁଂ.—ଧୁଣ୍ଡା (ଦେଖ)
(ଧୁନ୍ଦେଇ—ସ୍ତ୍ରୀ) Dhundā (See)

**ଧୁନ୍ଦିବା**—ଦେ. କ୍ରି.—ଧୁଣ୍ଡିବା (ଦେଖ)
Dhundiba Dhundiba (See)
(ଧୁନ୍ଦିବା—ଅନ୍ୟରୂପ)

**ଧୁନ୍ଦୁଳ(ଲେ)ଇବା**—ଦେ. କ୍ରି.—ଘୁଙ୍ଗାଳିବା (ଦେଖ)
Dhandula le)iba Ghungāliba (See)
(ଧୁନ୍ଦୁଳା(ଲେ)ଇବା—ଅନ୍ୟରୂପ)

**ଧୁନ୍ଧୁ**—ସ ବି. ( ନାମ )—ମଧୁ ଦୈତ୍ୟର ପୁତ୍ର; ଏକ ରାକ୍ଷସର ନାମ—
Dhundhu Name of a demon.
( ଧୁଁଧୁ—ଅନ୍ୟରୂପ ) [ ଦ୍ର—ହରିବଂଶରେ ଲେଖା ଅଛି ଯେ ସଂସାରକୁ ନଷ୍ଟ କରିବା କାମନାରେ ଧୁନ୍ଧୁ ମରୁଭୂମି ଜନ୍ମରେ ବାଲିରେ ଲୁଚି ତପସ୍ୟା କଲା । ତାହାର ନିଶ୍ୱାସରେ ଭୂମି କମ୍ପୁଥାଏ ଓ ପର୍ବତମାନ ହଲି ଯାଉଥାଏ । ମହାରାଜ ବୃହଦଶ୍ୱ ନିଜ ପୁତ୍ର କୁବଲୟାଶ୍ୱଙ୍କୁ ରାଜ୍ୟଭାର ଦେଇ ବାନପ୍ରସ୍ଥ କରିବା ସମୟରେ ଏ ଦୈତ୍ୟକୁ ମାରି ପକାଇବା ପାଇଁ ଉତଙ୍କ ନାମକ ଜଣେ ଋଷି ବୃହଦଶ୍ୱଙ୍କୁ କହିଲେ; କିନ୍ତୁ ବୃହଦଶ୍ୱ ବାନପ୍ରସ୍ଥ ଅବଲମ୍ବନ କରିଥିବାରୁ ସ୍ୱୟଂ ଅସ୍ତ୍ର ଧାରଣ କରିବେ ନାହିଁ ବୋଲି ସ୍ୱୀୟ ପୁତ୍ରଙ୍କୁ ଏ ରାକ୍ଷସକୁ ମାରିବା ପାଇଁ ଆଦେଶ ଦେଲେ । କୁବଲୟାଶ୍ୱ ନିଜର ଶହେ ପୁତ୍ରଙ୍କୁ ଘେନି ଏହା ସଙ୍ଗେ ଯୁଦ୍ଧ କଲେ । ପୁତ୍ରମାନଙ୍କ ମଧ୍ୟରୁ ୨୭ ଜଣଙ୍କୁ ଓ ଶେଷରେ କୁବଲୟାଶ୍ୱଙ୍କୁ ଧୁନ୍ଧୁ ବଧ କଲା । ଧୁନ୍ଧୁ କୁବଲୟାଶ୍ୱଙ୍କୁ ବଧ କରିଥିଲେହେଁ କୁବଲୟାଶ୍ୱଙ୍କ ନାମ ଧୁନ୍ଧୁମାର ହେଲା । ହ. ଶ. । ]

**ଧୁନ୍ଧୁମାର**—ସ. ବି. ( ଧୂମ=ଧୂଆଁ; ଧ୍ୱିମ୍+ଣ ଧାତୁ=ଗମନ କରିବା +ଅ; ନିପାତନ )—
Dhundhumāra
୧ । ବୃହଦଶ୍ୱ ମହାରାଜାଙ୍କ ପୁତ୍ର; ରାଜା କୁବଲୟାଶ୍ୱ—
1 Name of an ancient king; son of Bruhadaswa.

[ ଯଥା—ଧୁନ୍ଧୁ ତଳେ ନୋହି ଦେଖ । ]

୨ । ଇନ୍ଦ୍ରଗୋପ; ସାଧବଘର ବୋହୂ ପୋକ—
2. Cocculus (insect) cochineal.

୩ । ଧୂମ; ଧୂଆଁ—3. Smoke.

୪ । କୋଲାହଳ; ଧୂମ୍‌ଧାମ୍—4. Ado.

୫ । ଗୋଳମାଳ; ବିଦ୍ରୋହ—
5. Tumult; rebellion.

୬ । ରନ୍ଧନ ଗୃହ ଆଦିରେ ଥିବା ଧୂମ ବା ଅଳକ୍ତ; ଝୁଲ—
6. Soot.

୭ । ( ନାମ ) ରାଜା ତ୍ରିଶଙ୍କୁଙ୍କ ପୁତ୍ର ( ହ୍ର. ଶ. )—
7. Name of the son of king Trisanku.

**ଧୁପ୍**—ଦେ. ଅ ( ଧ୍ୱନ୍ୟନୁକରଣ )—କୋମଳ ବସ୍ତୁ ଉପରେ କୋମଳ ବସ୍ତୁର ପଡ଼ନଜନିତ ଅନୁଚ୍ଚ ଶବ୍ଦ—A low sound of two soft things striking against each other.
Dhup
( ଧୂପ୍‌ଧାପ୍—ଅନ୍ୟରୂପ )

**ଧୁପ୍‌ଛାୟା**—ଦେ. ବି. ( ହି. ଧୂପ୍=ଖରା ଓ ସ ଛାୟା=ଛାଇ )—ଏକ ପ୍ରକାର ରଙ୍ଗିନ୍ ଲୁଗା ( ଯାହାର ଟାଣୀ ସୂତା ନାଲି ଓ ଭରଣୀ ନେଳ, କଳା ବା ବାଇଗଣି )—
Dhup-chhāyā
धूपछाया
धूपछाँह
(ଧୂପ୍‌ଛାୟା—ଅନ୍ୟରୂପ)
A cloth with red woof and black violet or blue warp thread.

**ଧୁପ୍‌ସାଧୁପ୍‌ସି**—ଦେ. ବି—୧ । କ୍ରୋଧରେ ମାଡ଼ ମରାମରି ହେବାକୁ ପରସ୍ପର ନିକଟବର୍ତ୍ତୀ ହେବା—1. Coming close to each other for mutual beating or striking out of anger.
Dhup-sā dhup-si
धक्काधुक्की; त्वचाहुंच

୨ । କ୍ରୋଧବଶତଃ ଅନ୍ୟୋନ୍ୟରେ ମରାମରି ହେବା—
2. Mutual beating or striking out of anger; affray.

ଦେ. ବିଣ—କ୍ରୁଦ୍ଧ ହୋଇ ଅନ୍ୟୋନ୍ୟରେ ମରାମରି ହେଉଥିବା—
Beating each other, being enraged.

**ଧୁପା**—ଦେ. ବି. ( ସ. ଧାବ୍ ଧାତୁ ବା ଧୂ ଧାତୁ )—୧ । ଆକ୍ରମଣ—
Dhupā 1. Onslaught; attack.
धाओा
धावा
୨ । ଅନ୍ୟ ବ୍ୟକ୍ତିକୁ ମାରିବାକୁ ଉଦ୍ଧୁକିବା—
2. Setting upon a person with fury.

୩ । ଡିଆଁ; ଲମ୍ଫ—
3. Jump; springing up.

**ଧୁପା(ପେ)ଇବା**—ଦେ. କ୍ରି. ( ଧୁପିବାର ଣିଜନ୍ତରୂପ )—ଧାବମାନ କରାଇବା; ଦଉଡ଼ାଇବା—
Dhupā(pe)iba
दौड़ान
धपाना
To cause to run.

ପାଣ୍ଡବ ସିପାଇ ଧୁପାଇ ଥିଲେ ଘୋଡ଼ା
ଦେଖି ସେ ଦୁଇ ରଥୀ ଯୁଦ୍ଧଯୋଦ୍ଧା ଛଡ଼ା—କୃଷ୍ଣସିଂହ. ମହାଭାରତ. କର୍ଣ୍ଣ

**ଧୁପିବା**—ଦେ. କ୍ରି. ( ସ. ଧାବ୍ ଧାତୁ )—୧ । ଧାଇଁବା—
Dhupiba 1. To run.
धाओा
धावना
୨ । ଆକ୍ରମଣ କରିବା—2. To attack.

୩ । ମାରିବାକୁ ଧାଇଁବା—

3. To set on for striking a person.

ପ୍ରାଦେ. ( ଗଞ୍ଜାମ ) କ୍ରି—୧ । ମାରିବା—

1. To beat; to strike

୨ । କୌଣସି ସମୁଚ୍ଚ ସ୍ଥାନକୁ (ହସ୍ତାଦି) ପ୍ରସାରିତ କରିବା—

2. To raise up the arms to a high place.

ଧରମବଳୁଁ ଵ ମୋର, ଧୂରି ଦେଇ ନାକ କର
କେ ଇକୁ ଅଣିଲୁ କଳାଦି ଜଗଜ—କବିସୂର୍ଯ୍ୟ ବଳଦେବରଥ,. ଧ-ଗୀତ ।

**ଧୁବ୍‌ଲା**—ପ୍ରାଦେ ( ସମ୍ବଲପୁର ) ବିଣ—ଧୋବଲା; ଧୋବ—
Dhub-lā White.

**ଧୁବ**—ପ୍ରାଦେ. ( ବାଲେଶ୍ୱର ) ବିଣ—ଧୋବ; ଧଳା—
Dhuba White.

**ଧୁବକୀ**—ସ. ବି. ସ୍ତ୍ରୀ. ( ଧୂ ଧାତୁ=କମ୍ପିବା+ଅକ+ସ୍ତ୍ରୀ. ଈ )—
Dhubakī ଧ୍ରୁପଦ, ଗୀତର ଘୋଷା—
(ଧୁବକା—ଅନ୍ୟରୂପ) The burden of a song.

**ଧୁବନ**—ସ. ବି. ( ଧୂ ଧାତୁ=କମ୍ପିବା+ଭାବ. ଅନ )—୧ । କମ୍ପନ—
Dhubana 1. Trembling; shaking

୨ । ଅକ୍ରମଣାର୍ଥ ଅସ୍ତ୍ରାଦିର ସଞ୍ଚାଳନ—

2. Brandishing of weapons for attack.

୩ । ଅଗ୍ନି—3. Fire.

ସ. ବିଣ ( +କର୍ତ୍ତୃ. ଅନ )—ସଞ୍ଚାଳକ—
Moving; brandishing.

**ଧୁବିତ୍ର**—ସ. ବିଣ. ( ଧୂ ଧାତୁ+କରଣେ. ଇତ୍ର )—
Dhubitra ୧ । ଯଜ୍ଞାଗ୍ନି ପ୍ରଜ୍ୱଳିତ କରାଇବା ନିମନ୍ତେ ବ୍ୟବହୃତ
(ଧବିତ୍ର—ଅନ୍ୟରୂପ) ମୃଗଚର୍ମନିର୍ମିତ ବ୍ୟଜନବିଶେଷ—

1. A leathern fan to kindle sacrificial fire.

୨ । ତାଳ ପତ୍ର ବିଞ୍ଚଣା —

2 A fan made of palm leaf.

**ଧୁମ୍ (ଇତ୍ୟାଦି)**—ଦେ. ବି—ଧୂମ୍ ଇତ୍ୟାଦି ( ଦେଖ )
Dhum (etc) Dhūm etc. ( See )

**ଧୁମ୍‌ତେଇବା**—ପ୍ରାଦେ. (ଯାଜପୁର) କ୍ରି—୧ । ଧୁମଲୁନ୍ କରିବା—
Dhum-teibā 1. To create a row or hubbub.

୨ । କମ୍ପାଇବା—2. To shake.

( ଯଥା—ପିଲାଗୁଡ଼ାକ ଏଠାକୁ ଆସି ଏ ଥାନକୁ ଧୁମ୍‌ତେଇ ଦେଇ ଗଲେ । )

**ଧୁମ୍‌ସା**—ଦେ ବିଣ. ପୁଂ—ଧୂମ୍‌ସା ( ଦେଖ )
Dhum-sā Dhūmsā ( See )
(ଧୁମ୍‌ସୀ—ସ୍ତ୍ରୀ)

**ଧୁର୍**—ସ. ବି. ସ୍ତ୍ରୀ. ( ଧୁର୍ବ୍ ଧାତୁ=ହିଂସା କରିବା+କରଣ. କ୍ୱିପ୍ )—
Dhur ୧ । ରଥାଗ୍ରଭାଗ; ଜୁଆମୁଣ୍ଡି—1. The front end of a cart where both the poles meet.

୨ । ଭାର; ବୋଝ—2. Weight; burden; load.

୩ । ଚିନ୍ତା—3 Thought

୪ । ଭାବନା; ଉଦ୍‌ବେଗ—4 Anxiety.

୫ । ସମ୍ମୁଖ ଭାଗ—5 Front part

୬ । ଅକ୍ଷ ଦଣ୍ଡ; ଅଖ—6. Axle

୭ । ଶଗଡ଼ର ଯୁଆଳି —7 Yoke of a cart.

୮ । ଧନ; ସମ୍ପତ୍ତି—8 Wealth; riches.

୯ । (ଶଗଡ଼) ଅଖକିଲି—9. The pin at both ends of an axle for fastening the nave of the wheel.

୧୦ । କର୍ତ୍ତବ୍ୟ; ଦାୟିତ୍ୱ—10 Duty; responsibility.

୧୧ । କମ୍ପନ—11 Agitation; trembling.

୧୨ । ଅଗ୍ନିସ୍ଫୁଲିଙ୍ଗ—12 Spark of fire.

୧୩ । ଦୁଃଖ—13 Distress; affliction.

୧୪ । ଗଙ୍ଗା ନଦୀର ଏକ ନାମ—

14. A name of the Ganges.

୧୫ । ଖୁଣ୍ଟି ( ହି. ଶବ୍ଦସାଗର )—15. Post; pillar.

୧୬ । ଶୀର୍ଷ ସ୍ଥାନ ( ହି. ଶବ୍ଦସାଗର )—

16 Prominent or upmost part.

୧୭ । ଅଙ୍ଗୁଳି ( ହି. ଶବ୍ଦସାଗର )—17. Finger.

୧୮ । ଭାଗ; ଅଂଶ ( ହି. ଶବ୍ଦସାଗର )—

18. Part, portion.

**ଧୁର୍‌ପଙ୍ଗା**—ଦେ. ବି—ଅତ୍ୟଧିକ ପରିଶ୍ରମାଦି ଜନିତ ଶ୍ୱାସ—
Dhur-pangā Hurried breathing due to excessive labour.
ଧୁରୁପଙ୍ଗା
ଧୁରି(ରୁ)ପୁଙ୍ଗା } ଅନ୍ୟରୂପ

**ଧୁର୍‌ପଙ୍ଗା ଉଡ଼ିଯିବା**—ଦେ. କ୍ରି—୧ । ଅତ୍ୟଧିକ ପରିଶ୍ରମାଦି ଯୋଗୁଁ
Dhur-pangā urdijibā ଶ୍ୱାସ ବନ୍ଦ ହେବା ବା ବେଦମ୍
**हाँफनी आना** ହୋଇଯିବା—1 Being out of breath on acoount of excessive labour.
ଧୁରୁପ(ପୁ)ଙ୍ଗା ଉଡ଼ିବା
ଧୁରୁପ(ପୁ)ଙ୍ଗା ନିକଳିବା
ଧୁରୁପ(ପୁ)ଙ୍ଗା ବାହାରି ପଡ଼ିବା
ଧୁରୁପ(ପୁ)ଙ୍ଗା ବାହାରିଯିବା } ଅନ୍ୟରୂପ
( ଯଥା—ମାଡ଼ରେ ତାର ଧୁରୁପଙ୍ଗା ଉଡ଼ିଗଲାଣି । )
ଧୁରୁପ(ପୁ)ଙ୍ଗା ଉଠା(ଠେ)ଇବା
ଧୁରୁପ(ପୁ)ଙ୍ଗା ନିକାଳିବା
ଧୁରୁପ(ପୁ)ଙ୍ଗା ବାହାର କରିବା } କ୍ରିୟାବାଚକ ରୂପ

୨ । ଅତ୍ୟନ୍ତ କ୍ଲାନ୍ତ ହେବା ଅବସ୍ଥା—

2. The state of being overtired.

**ଧୁର୍‌ମୁସ୍**—ଦେ. ବି. ( ଧ୍ୱନ୍ୟନୁକରଣ )—ତଳେ ଓଜନଦାର କାଠ ବା
Dhur-mus ଲୁହା ପିଣ୍ଡ ଲାଗିଥିବା ମୁଷଳ—A rammer.
**दुरमुष धुरमुट, दुरमुस**

**ଧୁର**—ସ. ବି. ସ୍ତ୍ରୀ. ( ଧୁର୍ବ୍ ଧାତୁ+ଅ )—ଧୁର୍ ( ଦେଖ )
Dhura Dhur ( See )

ତା. ବିଣ. ( ସ. ଦୂର ) ୧ । ଦୂରବର୍ତ୍ତୀ—1. Distant.

୨ । ବହୁ ଦୂରରେ ଅବସ୍ଥିତ—

2. Situated at a great distance.

ତା. ବି. ( ସ. ଦୂରତା )—ଦୂରତା—Distance.

ପ୍ରାଦେ. (କିଉଁଝର; ମେଦିନୀପୁର) ବି—⅒ କାଠା (ଜମି ପରିମାଣ)
**धूर धुर** One tenth of a Kāthā of land.

ଧୁରନ୍ଧର—ସଂ. ବିଣ. ପୁଂ. (ଧୁର୍‌ଂ=ଭାରକୁ+ଧୃ ଧାତୁ=ଧାରଣ କରିବା + କର୍ତ୍ତୃ ଅ)—୧ । ଭାରବାହୀ—
Dhurandhara
(ଧୁରନ୍ଧରା—ସ୍ତ୍ରୀ) 1. Carrying a load.
(ଧୁରଂଧର—ଅନ୍ୟରୂପ) ୨ । ଯେ ଅନାୟାସରେ ଗୁରୁ ଭାର ବହନ କରିବାକୁ ସମର୍ଥ—2. Able to carry a heavy load easily.
୩ । ଅତ୍ୟନ୍ତ କ୍ଷମତାଶୀଳ ବା ବଳବନ୍ତ—
3. Very strong or powerful.
୪ । ଆଗୁଆ; ଅଗ୍ରଣୀ—
4. Leading others, heading others.
୫ । ସମର୍ଥ, ଯୋଗ୍ୟ, କାର୍ଯ୍ୟକ୍ଷମ—5. Able.
୬ । ଶ୍ରେଷ୍ଠ; ପ୍ରଧାନ—
6. Excellent; chief, principal.
୭ । କାର୍ଯ୍ୟଦକ୍ଷ; ନିପୁଣ—7. Skilful; expert.
ସଂ. ବି—୧ । ମୁଖିଆ; ଦଳର ନେତା—
1. Leader, chief; head of a party.
୨ । କାର୍ଯ୍ୟଦକ୍ଷ ବ୍ୟକ୍ତି—2 capable person; a man of business.
୩ । ଧଅ ଗଛ; ଧବ ବୃକ୍ଷ—3 A wild timber-tree.
୪ । ଭାରବାହୀ ପଶୁ—4 A beast of burden.
୫ । ଶିବ—5. Siba.
୬ । ବାହନ—6. A beast which carries persons on its back
୭ । (ନାମ) ପ୍ରହସ୍ତ ରାକ୍ଷସର ମନ୍ତ୍ରୀ ରାକ୍ଷସ (ରାମାୟଣ)—
7. Name of a demon mentioned in the Rāmāyaṇa.

ଧୁରା—ସଂ. ବି. ସ୍ତ୍ରୀ. (ଧୁର୍ବ୍ ଧାତୁ+ଅ+ସ୍ତ୍ରୀ. ଆ)—ଧୁର୍ ୨ (ଦେଖ)
Dhurā Dhur 2 (See)

ଧୁରି—ଦେ. ବି—ଢୁରି (ଦେଖ)
Dhuri Ḍhuri (See)
ସଂ. ଅ—ଆଗରେ—In front.

ଧୁରୀଣ—ସଂ ବିଣ. ପୁଂ. (ଧୁର+ବହନାର୍ଥରେ ଇନ)—
Dhuriṇa ଧୁରନ୍ଧର (ଦେଖ)
(ଧୁରୀଣା—ସ୍ତ୍ରୀ) Dhurandhara (See)

ଧୁରୀୟ—ସଂ. ବିଣ. ପୁଂ. (ଧୁର+ଯୋଗ୍ୟାର୍ଥରେ ଈୟ)—
Dhuriya ଧୁରନ୍ଧର (ଦେଖ)
(ଧୁରୀୟା—ସ୍ତ୍ରୀ) Dhurandhara (See)
ସଂ. ବି—୧ । ଅନଭ୍ୟାସ; ବଡ଼ ଅଣ୍ଡିରା ବାଛୁରୀ; ଦାମୁଡ଼ି—
1. A young bullock.
୨ । ଷଣ୍ଢ—2. Bull.
୩ । ଧୁରନ୍ଧର ୧।୨।୪ (ଦେଖ)
3. Dhurandhara 1, 2 & 4 (See)

ଧୁରୁବ—ଗ୍ରା. (ପଦ୍ୟ) ବି. (ସଂ. ଧ୍ରୁବ)—ଧ୍ରୁବ (ଦେଖ)
Dhuruba Dhruba (See)

ଧୁର୍ବହ—ସଂ. ବିଣ. ପୁଂ. (ଧୁର+ବହ୍ ଧାତୁ+କର୍ତ୍ତୃ. ଅ)—
Dhurbaha ଧୁରନ୍ଧର (ଦେଖ)
(ଧୁର୍ବହା—ସ୍ତ୍ରୀ) Dhurandhara (See)
(ଧୂର୍ବହ—ଅନ୍ୟରୂପ)

ଧୁର୍ମ—ଦେ. ବି—ଧୂର୍ମ (ଦେଖ)
Dhurma Dhūrma (See)

ଧୁର୍ଯ୍ୟ—ସଂ. ବିଣ ପୁଂ. (ଧୁର+ଯୋଗ୍ୟାର୍ଥରେ ଯ)—
Dhurjya ୧ । ଭାରବହନ କ୍ଷମ—
(ଧୁର୍ଯ୍ୟା—ସ୍ତ୍ରୀ) 1 Able to bear a burden.
୨ । ଦାୟିତ୍ୱପୂର୍ଣ୍ଣ କାର୍ଯ୍ୟଭାର ଗ୍ରହଣ କରିବାକୁ ଉପଯୁକ୍ତ—
(ଧୂର୍ଯ୍ୟ—ଅନ୍ୟରୂପ) 2. Fit to be entrusted with important duties.
୩ । ଅଗ୍ରଗାମୀ, ମୁଖିଆ—3 Chief; foremost.
ବି—୧ । ଭାରବାହୀ ପଶୁ—1. A beast of burden.
୨ । ଗାଡ଼ିରେ ଲାଗିଥିବା ବଳଦ ବା ଘୋଡ଼ା—
2. Bullock or horse yoked to a carriage
୩ । ଦାୟିତ୍ୱବହନକାରୀ ବ୍ୟକ୍ତି—
3. One who carries a burden of responsibility.
୪ । ନେତା—4. Leader; head.
୫ । ପ୍ରଧାନ କାର୍ଯ୍ୟଭାର ବହନ କରିଥିବା ମନ୍ତ୍ରୀ—
5. Minister charged with important duties.
୬ । ବିଷ୍ଣୁ—6. Bishṇu
୭ । ଯୁଗମୁଣ୍ଡି—7 The fore part of the pole or poles of a cart.

ଧୁଲଣ୍ଡୀ—ଦେ.ବି. (ସଂ. ଧୂଳି; ଲୋକେ ପରସ୍ପର ଧୂଳି ବା ଅବିର ମାରୁଥିବାରୁ)—ଦୋଳପୂର୍ଣ୍ଣିମାର ଦ୍ୱିତୀୟ ଦିନ ମାରବାଡ଼ୀମାନଙ୍କ ଅବିର ମାରିବା ଉତ୍ସବ—
Dhulaṇḍi
ଧୁଲଣ୍ଡୀ
A festival and merrymaking by mutual throwing of Abira amongst the Marwaris.

ଧୁଲା(ଲେ)ଇ—ଦେ.ବି. (ସଂ. ଧାବନ)—୧ । ପ୍ରକ୍ଷାଳନକ୍ରିୟା; ଧୋଇବା—
Dhulā(le)i 1. Washing.
ଧୁଲାଈ ୨ । ନୂଆ ଲୁଗାକୁ ଧୋଇ କରି ଧୋବ କରିବା ପ୍ରକ୍ରିୟା—
ଧୁଲାଇ 2 Bleaching of a new cloth.
ଦେ. ବିଣ—୧ । ଧୌତ ହୋଇଥିବା—1. Washed.
୨ । ସଫା ଧୋବ କରାଯାଇଥିବା (ନୂଆ ଲୁଗା)—
3 Bleached (cloth).

ଧୁସ୍ (ଧାତୁ)—ସଂ—ଅଳଂକୃତ କରିବା, ଭୂଷିତ କରିବା—
Dhus (root) To adorn.

ଧୁସ—ଦେ. ବି—ଧୂସ (ଦେଖ)
Dhusa Dhūsa (See)

ଧୁସା—ଦେ. ବି. (ସଂ. ଦ୍ୱିଶାଟ)—ପଶମରେ ବୁଣା ମୋଟା ଶୀତବସ୍ତ୍ର; କମ୍ବଳ—A thick and coarse woollen wrapper.
Dhusā
(ଧୁସ୍ସା—ଅନ୍ୟରୂପ)

ଧୋସା ଗ୍ରା ବି. (ସଂ. ଦୁଃଶାସନ) ଦୁଃଶାସନର ଡାକନାମ— A name for calling Duhsāsana
ଘୂସା

ଧୂସୀ—ଦେ ବି (ନାମ)—କଳିଙ୍ଗରାଜ ଖାରବେଳଙ୍କର ରାଣୀଙ୍କ Dhusi ନାମ—Name of the queen of Khārabeḷa, an ancient king of Kaḷinga.

ଧୂସ୍କା—ପ୍ରାଦେ. (ସିଂହଭୂମ) ବି—ଚୂନ ଓ ଅରୁଆଚାଉଳ ବାଟି ଗୁଡରେ Dhuskā ଗୋଳାଇ ସେହି ପାଣିଆ ପିଠଉକୁ ଢିଅ କରେଇରେ ପକାଇ ମାଲପୁଆ ପରି ଯେଉଁ ପିଠା ଛଣାଯାଏ— A kind of pastry-cake made of watered flour fried in ghee

ଧୂସ୍ତୁର—ସଂ. ବି. (ଧୁସ୍ ଧାତୁ+କ୍ୱିପ୍=ଧୁସ୍=ସୁନ୍ଦର, କମନୀୟ+ Dhustura ତୁର୍ ଧାତୁ=ହିଂସା କରିବା+କର୍ତ୍ତୃ. ଅ; ଯାହା (ଧୁସ୍ତୁର—ଅନ୍ୟରୂପ) ଦେଖିବାକୁ ସୁନ୍ଦର ଅଥଚ ମାରାତ୍ମକ,— ଧତୁରା (ଦେଖ)—Dhaturā (See)

ଧୂ (ଧାତୁ) ସଂ.—କମ୍ପିବା— Dhū (root) To tremble; to shake.

ଧୂଅ—ଦେ. ଅ. (ଧ୍ୱନ୍ୟନୁକରଣ)—୧ । ଯୋ, ଧୋଡୋ, ମାକଡ଼, Dhūa ବନ୍ୟଆ ଓ ପକ୍ଷୀଆଦିଙ୍କୁ ଘଉଡ଼ାଇବାର ଶବ୍ଦ—
ଧୂଅଧୂଅ, ଧୂଓ, ଧୂଓଧୂଓ } ଅନ୍ୟରୂପ 1 Interjection or halloo uttered while scaring away
ଧୋଧୋ monkeys, wild beasts and birds from
ଦୁରଜୋ; ହାଟ୍ fields etc
୨ । କୁକୁରଙ୍କୁ ଶିକାର ପଛରେ ଲଗାଇବାର ଶବ୍ଦ— 2. Hallooing to dogs while chasing a game

ଧୂଆଁ—ଦେ ବି. (ସଂ. ଧୂମ)— ୧ । ଧୂମ—1. Smoke.
Dhūāṅ ୨ । ବାଷ୍ପ, ବାମ୍ଫ—2. Steam; vapour.
ଧୂଆଁ ୩ । ଗୋମେଷାଦିଙ୍କୁ ଓ ବନା ମଶାରିରେ ଶୋଇ ଥିବା
ଘୁଆଁ ଲୋକଙ୍କୁ ମଶା ମାଛି ଆଦିର କାମୁଡ଼ିବା ପାଇଁ ଗୁହାଳରେ ଯେଉଁ କୁହୁଳ ଥିବା ନିଆଁଗଦା କରାଯାଏ— 3. Smoking-fire made to scare away mosquitoes from cattle and from a room where people sleep without mosquito curtains
ପ୍ରାଦେ. (ଗଞ୍ଜାମ)—୪ । ଧୂଆଁପତ୍ର—4 Tobacco

ଧୂଆଁକଳ—ଦେ ବି.—୧ । ଯେଉଁ କଳ ବାଷ୍ପଦ୍ୱାରା ଚାଳିତ ହୁଏ— Dhūāṅ kaḷa 1. A machine propelled by steam.
ଧୁଆଁକଳ ୨ । ବାଷ୍ପୀୟ ପୋତ—
ଧୁଆଁକଲ 2 Steamer; steamship.
ଦେ. ବିଣ.—ବାଷ୍ପର ବେଗଦ୍ୱାରା ଚାଳିତ (ଜାହାଜ)— 2. Propelled by steam.

ଧୂଆଁକସ—ଦେ. ବି —୧ । ଘର ବା କଳ ବା କାରଖାନାରୁ ଧୂଆଁ Dhūāṅkasa ବାହାରିବାର ପଥ ବା ନଳ —1. Chimney; a
ଧୁଆଁପଥ tube set up for the escape of smoke from
ଘରାଁଯା ଧୁଆଁସା a house or engine or workshop.

୨ । ଧୂଆଁକଳ (ଦେଖ)—2 Dhūāṅ kaḷa (See)

ଧୂଆଁକାଳି—ଦେ. ବି (ସଂ. ଧୂମ+କାଳି)—ଝୁଲ— Dhūāṅ kāḷi Soot.
ଝୁଲ କାଲଖ

ଧୂଆଁ ଖାଇବା—ଦେ. କ୍ରି (ସଂ ଧୂମ୍ରପାନ)—ଧୂମ୍ରପାନ କରିବା, ପିକା Dhūāṅ khāibā ଆଦିର ଧୂଆଁ ପାଟିଦ୍ୱାରା ଗର୍ଭକୁ ନେବା—
ଧୂମ୍ରପାନ କରা To smoke cigar etc
ଧୂମ୍ରପାନ करना [ଦ୍ର—ଲୋକେ ଗଞ୍ଜେଇ, ଅଫିମ, ଧୂଆଁପତ୍ର ଆଦିରେ (ଧୂଆଁ ଟାଣିବା- ଅନ୍ୟରୂପ) ନିଆଁ ଲଗାଇ ତାହାର ଧୂଆଁକୁ ପେଟମଧ୍ୟକୁ ଟାଣି ସେବନ କରନ୍ତି ।]

ଧୂଆଁଖିଆ—ଦେ ବି. (ସଂ. ଧୂମ୍ର+ଖାଦ୍ ଧାତୁ)—୧ । ପିକାଆଦିଦ୍ୱାରା Dhūāṅ khiā ଧୂମ୍ରପାନ—1 Smoking of cigar etc.
୨ । ଭୃତ୍ୟାଦି ଇତର ଲୋକଙ୍କୁ ପିକା ଖାଇବା ପାଇଁ ପ୍ରଭୁଙ୍କ ପ୍ରଦତ୍ତ ସାମାନ୍ୟ ଧନ; ପିକାଖିଆ—2 A small gratuity given to servants for smoking.

ଧୂଆଁଗଦା—ଦେ.ବି.—ପୋକକ ମଶା ଆଦିଙ୍କୁ ତଡ଼ିବା ପାଇଁ ଗୋରୁ ବନ୍ଧା Dhūāṅ gadā ଯିବା ସ୍ଥାନରେ ଯେଉଁ ନିଆଁଗଦା ଜଳା ହୁଏ— A heap of fire burnt to drive away mosquitoes from places where cows are tethered.

ଧୂଆଁଚାଷ—ପ୍ରାଦେ. (ଗଞ୍ଜାମ) ବି.—ଧୂଆଁପତ୍ରର ଚାଷ— Dhūāṅ chāsha Cultivation of tobacco.

ଧୂଆଁଟିଆ—ଦେ. ବିଣ. (ସଂ ଧୂମ୍ର)—୧ । ଧୂମମିଶ୍ରିତ ବକୃତଗନ୍ଧ- Dhūāṅṭiā ବାସିଷ୍ଟ (ବ୍ୟଞ୍ଜନାଦି)—1. Having a smoky
ଧୂଯାଁଟିଆ taste or smell.
ଘୁମୈଲା, ଘୁଆଁଇନ ୨ । ଧୂମ୍ରବର୍ଣ୍ଣ—2. Smoke-coloured.
୩ । ଧୂଆଁପୂର୍ଣ୍ଣ—3 Smoky.
୪ । ଧୂଆଁ ଲାଗିବାରୁ ମଳନତା ପ୍ରାପ୍ତ— 4. Discoloured by smoke

ଧୂଆଁଦେବା—ଦେ. କ୍ରି.—୧ । ୧ । ଘରୁ ମଶାଙ୍କୁ ତଡ଼ିବା ପାଇଁ ପଶି, Dhūāṅ debā ଚଣ୍ଡ ଆଦି ଘରେ ଜମାଇ ତହିଁରେ ନିଆଁ ଲଗାଇବା-
ଧୁଯାଁ ଦେଓୟା To fumigate a room for driving
ଘୁଆଦେନା away mosquitoes.

ଧୂଆଁଧାର—ଦେ. ବି. (ନାମ)—ନର୍ମଦା ନଦୀସ୍ଥ ଜଳପ୍ରପାତବିଶେଷ— Dhūāṅdhāra Name of a waterfall or rapid in the river Narmadā
ଧୂଆଁଧାରେ ପଡ଼ି ହୋଇ ଶତଧାର,
ଭୈରବ ଅରବେ ଭେବା ଦେଇ ଲମ୍ଫ । ରାଧାନାଥ. ଚଲ୍କା ।

ଧୂଆଁପତ୍ର—ଦେ. ବି. (ସଂ. ଧୂମ ଓ ପତ୍ର)—ତମାଖୁ; ଧୂଆଁପତର— Dhūāṅ patra Tobacco; Nicotina Tabacum; Nico-
ତାମାକ(କୁ) tina Rustica (Haines).
ତମାକୁ(ଖୁ) [ଦ୍ର—ଓଡ଼ିଶାରେ ଦେଶୀ ଅର୍ଥାତ୍ ଓଡ଼ିଶାରେ ଜାତ, ମୋଉଜୁର (ବଡ଼ା ବଡ଼ା ବନ୍ଧା), ମୋଉହାସ (ମେଣ୍ଡାସିଆଁ), ବାଲେଶ୍ୱରୀ, ବନ୍ଧୁ ପୁରି, ଭଡ଼ ଓ ବାଇଗଣୀ ଏପରି ଅନ୍ୟ ଅନ୍ୟ ଜାତୀୟ ଧୂଆଁପତ୍ର ମିଳେ ।]

ଧୂଆଁ ପଗ—ଦେ. ବି.—ଅଳ୍ପ ସମୟ ମଧ୍ୟରେ ପଗାଇବା ପାଇଁ କଞ୍ଚା
Dhūāñ pachā କଦଳୀକୁ ହାଣ୍ଡିରେ ପୂରାଇ ତହିଁରେ ଧୂଆଁ
(ଧୂଆଁ ପୁଙ୍କା—ଅନ୍ୟରୂପ) ଲଗାଇବା ପ୍ରଣାଳୀ—The process
ଧୁଁକାଛଆ of smoking or fumigating plantains to make them ripe soon

ଦେ. ବଣ.—ଯେଉଁ କଦଳୀକୁ ଧୂଆଁ ପଙ୍କିବା ଧୂଆଁ ଦେଇ ପଗାଇବାକୁ ହୁଏ—( Plantains ) Artificially ripened by fumigating smoke through them.

ଧୂଆଁବାଣ—ଦେ. ବି—୧ । ଭୟ ଦେଖାଇବା ପାଇଁ ଗୁଳ ବା ଛରସ
Dhūāñ bāna ଦିଆ ନ ଯାଇ ବନ୍ଧୁକ ଫାଏର୍ କରିବା—
1. Blank fire.
୨ । (ଲକ୍ଷଣାର୍ଥ) ଭୟ ପ୍ରଦର୍ଶନ ପାଇଁ ମିଥ୍ୟା ଧମକାଣ—
2. (figurative) False threats.

ଧୂଆଁରଡିଆ—ଗ୍ରା. ବଣ—ଧୂଆଁଟିଆ ( ଦେଖ )
Dhūāñratia Dhūāñtiā ( See )

ଧୂଆଁ ହାକୁଟି—ଦେ. ବି. (ସଂ. ଧୂମ+ଉଦ୍ଗାର)—
Dhūāñ hākuṭi ଅମ୍ଳଉଦ୍ଗାର; ଅଜୀର୍ଣ୍ଣଜନିତ ହାକୁଟି—
ଅମ୍ଳଢେକୁର Acid or sour belching.
ଖଅାଁରା

ଧୂଉ ଧୂଉ—ଦେ. ଅ—ଧୂଧୂ ( ଦେଖ )
Dhū u dhū-u Dhūdhū ( See )
ଧୂଉ ଧୂଉ ବହେ ତପନ ବାୟୁ—ନନ୍ଦକିଶୋର, ନିର୍ଝରିଣୀ ।

ଧୂକ—ସଂ. ବି ( ଧୂ ଧାତୁ=କମ୍ପିବା+କର୍ତ୍ତୃ. କ )—୧ । ବାୟୁ—
Dhūka 1. Air
୨ । ସମୟ—2. Time.
୩ । ଠକ—3. A cheat; a rogue
ସଂ. ବଣ—ଧୂର୍ତ୍ତ—Cunning; artful.

ଧୂକନା—ପ୍ରାଦେ. ( କଳାହାଣ୍ଡି ) ବି. (ଭୁଲ. ହି. ଧୌଁକନୀ)—କମାରର
Dhūkanā ଭାତି—Blacksmith's bellows

ଧୂତ—ସଂ. ବଣ. ( ଧୂ ଧାତୁ+କର୍ମ. ତ )—ଧୁତ ୧. ୨. ୩. ( ଦେଖ )
Dhūta Dhuta 1. 2. 3. ( See )
(ଧୂତା—ସ୍ତ୍ରୀ) ୪ । ସାବ୍ୟସ୍ତ—4. Judged
୫ । ଅବହେଳିତ—5. Slighted; disregarded.
୬ । ତ୍ୟକ୍ତ—6. Abandoned.
୭ । ତର୍କିତ—7. Suspected; apprehended; thought of.

ଧୂତ ପାପ—ସଂ. ବଣ. ପୁଂ. (ବହୁବ୍ରୀହି; ଧୂତ+ପାପ)—
Dhūta pāpa ୧ । ଯାହା ଦେହରୁ ପାପ ଦୂର ହୋଇଅଛି, ପାପ-
( ଧୂତକଲୁଷ—ଅନ୍ୟରୂପ ) ବର୍ଜିତ; କଳ୍ମଷକଲୁଷ—
ଧୂତପାପା } ସ୍ତ୍ରୀ
ଧୂତକଲୁଷା }
1. Free from sin; freed from the taint of sin.
୨ । ନିଷ୍ପାପ—2. Sinless

ଧୂତ ହସ୍ତ—ସଂ. ବଣ. ପୁଂ. ( ବହୁବ୍ରୀହି; ଧୂତ+ହସ୍ତ )—ଯେ ହାତକୁ
Dhūta hasta ହଲାଉ ଅଛି—Shaking the arms.
( ଧୂତହସ୍ତା—ସ୍ତ୍ରୀ )

ଧୂତା—ସଂ. ବି. ସ୍ତ୍ରୀ.—ଭାର୍ଯ୍ୟା—
Dhūtā A wife.

ଧୂଧୂ—ଦେ. ଅ. ( ସଂ ଧୂ ଧାତୁ=କମ୍ପିବା; ଶବ୍ଦ ଧ୍ୱନ୍ୟନୁକରଣ )—
Dhūdhū ୧ । ହୁହୁ, ଅଗ୍ନିଶିଖା କମ୍ପିତ ହୋଇ ପ୍ରଖରଭାବରେ
( ଧୂଉ ଧୂଉ—ଅନ୍ୟରୂପ ) ଜଳିବା ପ୍ରକାର—
ଧୁ ଧୁ 1. The manner of a fire blazing fiercely
ଘୁ ଘୁ ୨ । ଉତ୍ତପ୍ତ (ଖରା; ଅତି ପ୍ରଚଣ୍ଡ ( ଖରା ); ଯେଉଁ ଖରାରେ ପୃଥିବୀ ତାତି ଯିବାରୁ ଭୂପୃଷ୍ଠ ବା ବାଲୁକାର ଉପରସ୍ଥ ବାୟୁ-ସ୍ତର କମ୍ପିତ ହେଲା ପରି ବୋଧହୁଏ—
2. Blazing ( rays of the sun or moon ) when the layer of the (air over the ground seems to dance).
( ଯଥା—ସେ ଧୂଧୂ ଖରାରେ କୋଶେ ବାଟ ଦଉଡ଼ିଲେ । )
୩ । ହୁହୁ ଜଳିବା ନିଆଁର ଶବ୍ଦ—
3 The sound of blazing fire
୩ । ନିଛାଟିଆ ଜନଶୂନ୍ୟ ସ୍ଥାନରେ ଉପସ୍ଥିତ ବ୍ୟକ୍ତିର ମନରେ ଜନ୍ମିବା ଭୟ—
3. Awe or unnamed fear produced in the mind in a lonely wilderness.

ଧୂନକ—ସଂ. ବଣ. ( ଧୂ ଧାତୁ ଣିଚ୍=ଧୂନ ଧାତୁ+କର୍ତ୍ତୃ. ଅକ )—ଯେ
Dhūnaka ହୋହଲାଏ—Causing to shake.
ସଂ. ବି—ଝୁଣା—Resin used as incense.

ଧୂନନ—ସଂ. ବି—୧ । ପବନ—1 Wind.
Dhūnana ୨ । କମ୍ପନ—2. Shaking; agitation.

ଧୂନା—ଦେ. ବି. ( ସଂ. ଧୂନକ )—୧ । ଝୁଣା—
Dhūnā 1. Resin
ଧୁନା ୨ । ସର୍ଜରସ; ଶାଳରସ; ଏକପ୍ରକାର ଝୁଣା—
ଧୂନା 2. Mimosa Rubicantis.

ଧୂନିବା—ଦେ. ( ପଦ୍ୟ ) କ୍ରି. ( ସଂ. ଧୂ ଧାତୁ )—ଶବ୍ଦ କରିବା—
Dhūnibā To make a sound.
ଧୁନା ନବଘ ଘାଳାଘର ମନ୍ଦ ଧୂନଇ—ରଘୁନାଥ, ମେଘଦୂତ ।
ଧୂନନା

ଧୂନ୍ୟ—ଗ୍ରା. ( ପଦ୍ୟ ) ବଣ (ସଂ. ଧୂ ଧାତୁ=କମ୍ପିବା)—୧ । କ୍ରୁଦ୍ଧ—
Dhūnya 1. Very angry.
୨ । କ୍ରୋଧରେ ଥରୁଥିବା—
2. Shaking with fear.
ବାହାର ଧୂନ୍ୟ ହୋଇଣ ରକ୍ଷ ସୈନ୍ୟ ଯାଇ ପୁଣି ଜନପୁର—
ଭଞ୍ଜ, ବୈଦେହୀଶବିଳାସ ।

ଧୂପ୍ ( ଧାତୁ )—ସଂ.—୧ । ସନ୍ତପ୍ତ କରିବା—
Dhūp ( root ) 1. To heat.
୨ । ଧୂପ ଦେବା—2. To perfume by burning incense.
୩ । କିରଣ ଦେବା—3. To shine.
୪ । କହିବା—4. To speak.

୫ । ଧୂଆଁରେ ମଳିନ କରିବା—
5. To obscure with smoke; to eclipse.
୬ । ଧୂଆଁ ଦେବା—6 To fumigate.

**ଧୂପ**—ସଂ. ବି. ( ଧୂପ୍ ଧାତୁ+କର୍ତ୍ତୃ. ଅ )—୧ । ଝୁଣା ଆଦି ଜାଆଁରେ ପୋଡ଼ିଲେ ଯହିଁରୁ ଯେଉଁ ସୁଗନ୍ଧ ବାହାରେ—
Dhūpa
1. Frankincense; incense; smoke arising from scented resin etc thrown over fire; aromatic vapour or smoke.
୨ । ଦେବାର୍ଚ୍ଚନରେ ଦେବତାଙ୍କ ଆଗରେ ଅଗ୍ନିରେ ଝୁଣା ଆଦି ପକାଇବାରୁ ଯହିଁରୁ ସୁଗନ୍ଧ ଧୂଆଁ ବାହାରିବା କ୍ରିୟା—
2. The act of offering or burning incense during worship
[ ଦ୍ର—ନିର୍ଯ୍ୟାସ ବା ଦ୍ରବ, ପରାଗ ବା ଚୂର୍ଣ୍ଣ, କାଷ୍ଠ ବା ଅଗୁରୁ ଆଦି, ଗନ୍ଧ ବା କସ୍ତୁରୀ ଆଦି ଓ କୃତ୍ରିମ ବା ବର୍ତ୍ତିକାଦି ଭେଦରେ ଧୂପ ୫ ପ୍ରକାର । କୃତ୍ରିମ ଧୂପ—ପଞ୍ଚାଙ୍ଗ, ଷଡ଼ଙ୍ଗ, ଅଷ୍ଟାଙ୍ଗ, ଦଶାଙ୍ଗ, ଦ୍ୱାଦଶାଙ୍ଗ ଓ ଷୋଡ଼ଶାଙ୍ଗ ଦେବାର୍ଚ୍ଚନରେ ପ୍ରଶସ୍ତ । ପଞ୍ଚାଙ୍ଗ ଧୂପ—ଚନ୍ଦନ, କୁଙ୍କୁମ, କର୍ପୂର, ଗୁଗ୍ଗୁଳ ଏବଂ ଅଗୁରୁ ଘୃତସଂଯୁକ୍ତ ହୋଇ ପ୍ରସ୍ତୁତ ହୁଏ । ଷଡ଼ଙ୍ଗଧୂପ—ଚନ୍ଦନ, ଉଶୀର, ଗୁଗ୍ଗୁଳ, ଅଗୁରୁ, ଶର୍କରା ଓ ମଧୁସହ ଘୃତ ମିଶ୍ରିତ ହୋଇଥାଏ । ଅଷ୍ଟାଙ୍ଗଧୂପ—ପଞ୍ଚାଙ୍ଗଧୂପ ସଙ୍ଗେ ତେଜପତ୍ର, ସୁଗନ୍ଧବାଲା ଓ କୂଡ଼ମିଶ୍ରି ଏହା ପ୍ରସ୍ତୁତ ହୁଏ । ଦଶାଙ୍ଗଧୂପ—ମଧୁ, ମୁସ୍ତକ, ଘୃତ, ଗନ୍ଧକ, ଗୁଗ୍ଗୁଳ, ଅଗୁରୁ, ଶୈଳଜ, ସରଳ (ବିଡ଼), ସିହ୍ଲକ (ଶିଳାରସ) ଓ ଶ୍ୱେତ ସର୍ଷପର ମିଶ୍ରଣରେ ପ୍ରସ୍ତୁତ । ଷୋଡ଼ଶାଙ୍ଗ ଧୂପ—ମୁସ୍ତକ, ଦେବଦାରୁ, ଏଲା, ମୁରାମାଂସୀ ଏବଂ ଦ୍ୱାଦଶାଙ୍ଗ ଧୂପର ଉପକରଣ, ମାନ ଘୃତରେ ମିଶ୍ରିତ ହୋଇଥାଏ । ସାଧାରଣତଃ ଲୋକେ ଝୁଣା, ଗୁଗ୍ଗୁଳ ଓ ଘିଅରେ ଦେବତାଙ୍କ ଆଗରେ ଧୂପ ଦିଅନ୍ତି । ଭୂତପ୍ରେତାଦି ଛଡ଼ାଇବା ନିମନ୍ତେ ହଳଦୀ, ଅଡ଼ୁଆବାଳ ଓ ଜନାର୍ଦ୍ଦନ ଧୂପଆଦିରେ ଧୂପ ଦିଆଯାଏ । ଦ୍ର. ଶବ୍ଦସାଗର]
୩ । ଧୂଆଁ ଦେବା—3. Fumigation
୪ । ତାପନ—4. Heating.
୫ । ସୁଗନ୍ଧ ଚୂର୍ଣ୍ଣ—5. A fragrant powder.
ଦେ. ବି—୧ । ଦେବପୂଜା; ଅର୍ଚ୍ଚନା, ଭୋଗ—
1. Worship of a Deity with offerings

[ ଦ୍ର—ଧୂପ ଦେବାର୍ଚ୍ଚନାର ଗୋଟିଏ ପ୍ରଧାନ ଅଙ୍ଗ ଥିବାରୁ ପୁରୀର ଜଗନ୍ନାଥଆଦି ଦେବତାଙ୍କର ପୂଜା ବା ଭୋଗକୁ ଧୂପ ବୋଲାଯାଏ । ଜଗନ୍ନାଥଙ୍କର ୫ ଗୋଟି ଧୂପ ବା ଭୋଗ ହୁଏ; ଯଥା—ସକାଳ ଧୂପ, ଦ୍ୱିପହର ଧୂପ, ଭୋଗମଣ୍ଡପ, ସନ୍ଧ୍ୟାଧୂପ ଓ ବଡ଼ଶିଙ୍ଗାର ।
କେହି କେହି ଭୋଗମଣ୍ଡପ ଓ ବଡ଼ଶିଙ୍ଗାରକୁ 'ଧୂପ' ବୋଲି ଗଣନା କରନ୍ତି ନାହିଁ । ସେମାନଙ୍କ ମତରେ 'ଧୂପ' ୩ ଗୋଟି । ଯେଉଁ ଭୋଗରେ ଷୋଡ଼ଶୋପଚାର ପୂଜା ହୁଏ ତାହା ଧୂପ ମଧ୍ୟରେ ଗଣ୍ୟ । ଶ୍ରୀ ଜଗନ୍ନାଥ ଓ ଲିଙ୍ଗରାଜ ମହାପ୍ରଭୁଙ୍କଠାରେ ଏପରି ଧୂପ ଦେବାର ବିଧାନ ଅଛି ।
'ଧୂପ' ଲାଗୁଥିବା ବେଳେ ଦେବତାଙ୍କ ଆଗରେ ଚନ୍ଦନ ଅର୍ଗଳିଠାରେ 'ଟେରା' ପଡ଼ିଥାଏ ଓ ଯାତ୍ରୀମାନେ ସେ ସମୟରେ ଦେବତାଙ୍କ ଦର୍ଶନ କରି ପାରନ୍ତି ନାହିଁ । 'ଧୂପ' ସରିବା ପରେ 'ଟେରା' ଫିଟାଯାଏ ଓ ଯାତ୍ରୀମାନେ ଦେବଦର୍ଶନର ସୁବିଧା ପାଆନ୍ତି ।]
୨ । ସୂର୍ଯ୍ୟକିରଣ; ଖରା—2. Sun's rays
୩ । ସୌର ତାପ—3. Solar heat.
୪ । ଗ୍ରୀଷ୍ମକାଳର ଦ୍ୱିପହରର ତାପ—
4. The midday heat of summer.
ଦେ. ବି (ସଂ ଦୀପ୍ତ)—୧ । ଦୀପ୍ତ; ତେଜାସ୍ୱାନ୍—
1. Shining.
ପ୍ରାଦେ. (କଳାହାଣ୍ଡି) ବି—ଝୁଣା—Resin.

**ଧୂପ ଉଠିବା**—ପ୍ରାଦେ.(ପୁରୀ) କ୍ରି--ପୁରୀର ବଡ଼ଦେଉଳର ଠାକୁରଙ୍କୁ ସକାଳଧୂପ, Dhūpa uṭhibā ସନ୍ଧ୍ୟାଧୂପ ଆଦିର ନୈବେଦ୍ୟ ସାମଗ୍ରୀ ନିଆଯାଇ ବଢ଼ା ହେବା ପରେ ପୂଜାର ଆରମ୍ଭ—The act of beginning the worship and the offering of bhog after they are laid before Lord Jagannātha in the morning and evening Dhūpas.

**ଧୂପକ**—ସଂ.ବିଣ. (ସଂ. ଧୂପ ଧାତୁ+କର୍ତ୍ତୃ. ଅକ)—୧ । ଯେ ଧୂପଦିଏ—
Dhūpaka 1. (a person) Burning incense.
(ଧୂପିକ—ଅନ୍ୟରୂପ) ୨ । ଯେ ସୁବାସିତ କରେ—
(ଧୂପିକା—ସ୍ତ୍ରୀ) 2. Perfuming.

**ଧୂପକାଠି**—ଦେ ବି. (ସଂ. ଧୂପ+କାଷ୍ଠ)—ସୁଗନ୍ଧ ଦ୍ରବ୍ୟ ମିଶ୍ରିତ Dhūpa kāṭhi ବର୍ତ୍ତିକା; ଉଦ୍‌ବତୀ—Incense stick.
(ଧୂପବତୀ—ଅନ୍ୟରୂପ) [ ଦ୍ର—ଏହା ଦେବାର୍ଚ୍ଚନାରେ ବ୍ୟବହୃତ ହୁଏ । ରାଜାମହାରାଜମାନେ ସୁଗନ୍ଧ ଧୂଆଁ ପାଇବା ପାଇଁ ଏହାର ମଧ୍ୟ ବ୍ୟବହାର କରନ୍ତି । ]
ଧୂପବାତୀ
धूपकाठी

**ଧୂପ କାଡ଼ୀ(ଢ଼ୀ)**—ଦେ. ବି—ଧୂପକାଠି (ଦେଖ)
Dhūpa kārdi(rdhi) Dhūpakāṭhi (See)
କେ ଦ୍ୱିବିଧ ପକାଡ଼ୀକ ଘଷବ । ଅଭିମନ୍ୟୁ. ବିଦଗ୍ଧଚିନ୍ତାମଣି ।

**ଧୂପଖଣ୍ଡା**—ଦେ. ବି—ଏକପ୍ରକାର ବକ୍ରଧାରବିଶିଷ୍ଟ ଉତ୍କୃଷ୍ଟ ତରବାରି—
Dhūpakhaṇḍā A kind of excellent sword having its edge curved or curled like curling smoke.
ପାଇକେ ପଦ୍ମମାନ ଅଣ୍ଟରେ କସିଛନ୍ତି
ସରଳ ଧୂପଖଣ୍ଡାମାନ ତୁଆଁ ଇଲେ । କୃଷ୍ଣସିଂହ. ମହାଭାରତ ଆଦି ।

**ଧୂପଦାନି**—ଦେ. ବି. (ସଂ. ଧୂପଧାନୀ)—ଯେଉଁ ପାତ୍ରରେ ଅଗ୍ନି ଆଦି ରଖି Dhūpa dāni ଧୂପ ଦିଆଯାଏ—Incense pot; censer.
(ଧୂପଦ୍ରୁ; ଧୂପାଚ—ଅନ୍ୟରୂପ) ଧୂନଚୀ, ଧୂପଚି धूपदानि

**ଧୂପଦୀପ**—ସଂ. ବି. (ଦ୍ୱନ୍ଦ୍ୱ; ଧୂପ+ଦୀପ)—ଦେବତାଙ୍କୁ ନୈବେଦ୍ୟ Dhūpa dipa ଦେବା ସମୟରେ ଅର୍ପିତ ହେବା ଧୂପ ଓ ଦୀପ—
ଧୂପଦୀପ Incense and lamp presented to a Deity during worship.
धूपदीप

**ଧୂପ ଦେବା**—ଦେ.କ୍ରି—୧ । ନିଆଁରେ ଧୂପର ସରଞ୍ଜାମ ପକାଇ ଉଦ୍ଦୁଦ୍ଧିତ
Dhūpa debā ସୁଗନ୍ଧ ଧୂପ ଦେବତାଙ୍କୁ ଅର୍ପଣ କରିବା—
(ଧୂପଜଳା(ଳେ)ଇବା—ଅନ୍ୟରୂପ) 1. To burn incense
ଧୂପଦେଓୟା; ଧୂପଜ୍ଵାଲାନ **धूपदेना** before a Deity.
୨ । ଝୁଣାଆଦିର ଧୂଆଁଦ୍ଵାରା ଗୃହକୁ ସୁବାସିତ କରିବା—
2. To fumigate a house with incense.

**ଧୂପନ**—ସ. ବି. (ଧୂପ୍ ଧାତୁ+ଭାବ. ଅନ)—୧ । ଧୂପ ଦେବା—
Dhūpana 1. Burning incense.
୨ । ଧୂଆଁଦେବା—2. Fumigation.
୩ । (+କରଣ. ଅନ)—ଝୁଣା—3. Resin.

**ଧୂପ ପାତ୍ର**—ସ. ବି. (ଧୂପ+ପାତ୍ର)—ଧୂପଦାନୀ (ଦେଖ)
Dhūpa pātra Dhūpadānī (See)

**ଧୂପ ବାସ**—ସ. ବି. (ଧୂପ+ବାସ)—ସ୍ନାନ କରି ସାରି ସୁଗନ୍ଧିତ ଧୂଆଁ
Dhūpa bāsa ଦ୍ଵାରା ଶରୀରକୁ ସୁବାସିତ କରିବା କର୍ମ—
The act of fumigating the body with scented incense after bath

**ଧୂପ ବୃକ୍ଷ**—ସ. ବି. (ମ. ଷ.ଲେ; ଧୂପ+ବୃକ୍ଷ)—ଦେବଦାରୁ ଗଛ; ସରଳ
Dhūpa bṛuksha ବୃକ୍ଷ—A species of pine.

**ଧୂପ ମୁଦ୍ରା**—ସ. ବି.—(ଧୂପ+ମୁଦ୍ରା)—ଦେବପୂଜା ସମୟରେ (ପୂଜକର)
Dhūpa mudrā ଦୁଇ ହାତର ଗୁଡ଼ିଏ ଅଙ୍ଗୁଳିକୁ ଛନ୍ଦି କରି
ଦେବତାଙ୍କୁ ଦେଖାଇବା ମୁଦ୍ରାବିଶେଷ—
A peculiar pose of the fingers of the hand during worship.

**ଧୂପ ସରା**—ଦେ. ବି. (ସ. ଧୂପ+ସରାବ)—ଯେଉଁ ସରାରେ କୋଇଲା
Dhūpa sarā ଜଳନ୍ତା ଅଙ୍ଗାର ରଖାଯାଇ ଧୂପ ଝୁଣା ପକାଯାଏ—
**धूपसराह** An earthen pan or dish in which
ধূপসরা incens is burnt.

**ଧୂପାଗୁରୁ**—ସ. ବି. (ଧୂପ+ଅଗୁରୁ)—ଧୂପାର୍ଥ ବ୍ୟବହୃତ ଏକପ୍ରକାର
Dhūpāguru ସୁଗନ୍ଧକାଷ୍ଠ—Agallochia.

**ଧୂପାଙ୍ଗ**—ସ. ବି. (ବହୁବ୍ରୀହି; ଧୂପ+ଅଙ୍ଗ)—୧ । ତାର୍ପିନ୍ ତେଲ—
Dhūpānga 1. Terpentine oil.
୨ । ସରଳ ଗଛ—2. The pine tree.

**ଧୂପାୟିତ**—ସ. ବିଣ. (ଧୂପ+ଯ=ଧୂପାୟ ନାମ ଧାତୁ+କର୍ମ. ତ)—
Dhūpāyita ୧ । ଧୂପର ଧୂମରେ ସୁଗନ୍ଧୀକୃତ; ଧୂପିତ—
1. Perfumed with incense.
[illegible]—ସ୍ତ୍ରୀମାନଙ୍କର ଆଲୁଳାୟିତ କେଶକୁ ଓ ଶରୀରକୁ ଧୂପର
ଧୂଆଁଦ୍ଵାରା ସୁଗନ୍ଧିତ କରାଇବାର ବର୍ଣ୍ଣନା ପ୍ରାଚୀନ ଗ୍ରନ୍ଥମାନଙ୍କରେ
[illegible]
[illegible] ଧୂପର ଧୂଆଁ ଲାଗି ଥାଏ—2. Fumigated.
[illegible]—3. Heated.
୪ । ପଥଶ୍ରାନ୍ତ—4. Fatigued on account of a journey.

**ଧୂପିକା**—ସ. ବି. (ଧୂପ+ [illegible] ଆ)—କୁହୁଡ଼ି—
Dhūpikā Fog; mist.
(ଧୂପିକା—ଅନ୍ୟରୂପ)

**ଧୂପିତ**—ସ. ବିଣ. (ଧୂପ୍ ଧାତୁ+କର୍ମ. ତ)—୧ । ସନ୍ତାପିତ—
Dhūpita 1. Troubled.
୨ । ଧୂପର ଧୂମଦ୍ଵାରା ସୁଗନ୍ଧୀକୃତ; ଧୂପାୟିତ—
2. Perfumed with incense; fumigated.
୩ । ପଥଶ୍ରାନ୍ତ—3. Wearied with travelling.

**ଧୂପି ଦେବା**—ଦେ. କ୍ରି.—ଧୂପିବା; ବଢ଼ାଇଦେବା—
Dhūpi debā To extend (one's arms).
(ଧୂପିବା—ଅନ୍ୟରୂପ) ଧରମ ବନ୍ଧୁ କ ମୋର, ଧୂପି ଦେଇ 'ନନ କରି
କୋଳକୁ ଆଣିଲୁ କଲା ବିଜୟକୁ । କବିସୂର୍ଯ୍ୟ. ସଙ୍ଗୀତ ।

**ଧୂମ୍**—ଦେ. ବି.—(ସ. ଧୂ ଧାତୁ=କମ୍ପିବା)—୧ । କୋଳାହଳ;
Dhūm 1. Ado; row; noise; uproar.
ধূম ୨ । ସମାରୋହ, ଘଟା, ବାହ୍ୟାଡ଼ମ୍ବର—2 Pomp;
**धूम** grandeur; show; splendour.
୩ । ଜିଗର, ଜିଦ—3. Insisting on a thing

**ଧୂମ୍ କରିବା**—ଦେ. କ୍ରି.—ଜିଗର କରିବା—
Dhūm karibā To insist on a thing.
ধূম লাগান **धूम मचाना** [ଧୂମ୍ ଲଗା(ଟେ)ଇବା—ଅନ୍ୟରୂପ]

**ଧୂମ୍ କୁଟ୍**—ଦେ. ବି.—୧ । ସମାରୋହ; ଘଟା; ଆଡ଼ମ୍ବର—
Dhūm kuṭ 1 Pomp; splendour; show; a noisy
ধূমধাম glaring pageantry.
**धूमधाम** ୨ । ଗୋଳମାଳ—2. Confusion; ado.
(ଧୂମଧାମ—ଅନ୍ୟରୂପ) ୩ । କୋଳାହଳ—3. Noise.
୪ । ମାଡ଼ଗୋଳ—4. Affray; mutual assault.

**ଧୂମ୍ ଧଡ଼କା**—ଦେ. ବି.—୧ । ମହା ସମାରୋହ—
Dhūm dhaṛakā 1. Splendour; pomp.
ধূমধড়াক ୨ । ଜୁଲମ; ମାରଧର; ଧରପଗଡ଼; ଧରାଧରି—
**धूमधड़क्का** 2. Oppression; highhandedness.
(ଧୂମଧଡ଼ାକା—ଅନ୍ୟରୂପ) ୩ । ରୁକ୍ଷ୍ମ, କଠୋର ବ୍ୟବହାର—
3. Rough usage.

**ଧୂମ୍‌ଧାମ୍**—ଦେ. ବି.—ଧୂମ୍‌କୁଟ୍ (ଦେଖ)
Dhūm-dhām Dhūm-kuṭ (See)
ধূমধাম **धूमधाम**

**ଧୂମ୍‌ସା**—ଦେ. ବିଣ. ପୁଂ (ସ. ଧୂମ୍ର)—କୃଷ୍ଣବର୍ଣ୍ଣ, କଦାକାର ଓ ସ୍ଥୂଳ-
Dhūm-sā କାୟ (ବ୍ୟକ୍ତି)—(a person) Disproportionately fat and of a dark complexion.
ধূমসা
**धूमला** (ଧୂମ୍‌ସୀ—ସ୍ତ୍ରୀ)

**ଧୂମ**—ସ.ବି.—(ଧୂ ଧାତୁ=କମ୍ପିବା+ସଂଜ୍ଞାର୍ଥରେ ମ)—୧ । ଧୂଆଁ—
Dhūma 1. Smoke.
୨ । ବାମ୍ପ; ବାଷ୍ପ—2. Steam; vapour.
୩ । କୁହୁଡ଼ି—3. Mist; haze.
୪ । ଉଲ୍କା—4. Meteor.
୫ । ଉଲ୍କାପାତ—5. The fall of a meteor.
୬ । ମେଘ—6. Cloud.

୭ । ଅଜୀର୍ଣ୍ଣ ହାକୁଡ଼ି; ଝଇର ହାକୁଡ଼ି—
7 Acid belching due to indigestion.
୮ । ଘରଭଳ ଡମି—
8. The site of a proposed building.
୯ । କେତେକ ରୋଗରେ ରୋଗୀକୁ ସେବନ କରା ହେବା ଔଷଧବର୍ତ୍ତିକାର ଧୂଆଁ—9. Smoke from medicated wicks inhaled by a person suffering from certain diseases.
[ଦ୍ର—ସୁଶ୍ରୁତରେ ୫ ପ୍ରକାର ଧୂମର ଉଲ୍ଲେଖ ଅଛି ।
୧ । ପ୍ରାୟୋଗିକ—କେତେକ ମସଲା ଦିଆ ଯାଇଥିବା ବତ୍ତିର ଧୂଆଁ, ୨ । ସ୍ନେହନ—ମସଲା ଦିଆଯାଇ ଘିଅ ବା ତେଲରେ ବୁଡ଼ା ଯାଇଥିବା ବତ୍ତିର ଧୂଆଁ, ୩ । ବୈରେଚନ—ପିପଲି, ବଡ଼ଙ୍ଗ, ଅପାମାର୍ଗ ଇତ୍ୟାଦି ନସ୍ୟ ଦ୍ରବ୍ୟର ବତ୍ତିର ଧୂଆଁ, ୪ । କାସଘ୍ନ—କକଡ଼ାଶୃଙ୍ଗୀ, କଣ୍ଟକାରି, ବୃହତୀ ଆଦି ଦ୍ରବ୍ୟର ବତ୍ତିର ଧୂଆଁ, ୫ । ବାମନୀୟ—ଚମଡ଼ା, ଶିଙ୍ଗ, ଶୁଖିଲା ମାଛ ଓ କୃମି ଆଦିର ଧୂଆଁ—ହି. ଶବ୍ଦସାଗର । ]
୧୦ । ଧୂମକେତୁ (ହି. ଶବ୍ଦସାଗର) –10. Comet.

ଝଡ଼; ତୁଫାନ ଦେ. ବି—୧ । ପ୍ରବଳ ବତାସ; ଝଡ଼, ତୋଫାନ—
आँधी; झक्कड़ 1. Tempest, tornado.
୨ । ମେଘ ନ ଥାଇ ଯେଉଁ ଝଞ୍ଜା ପବନ ବହେ ଓ ଯେଉଁ ପବନଦ୍ୱାରା ଧୂଳି ଉଡ଼ି ଆକାଶ ଧୂମାବୃତ ହେଲା ପରି ଜଣାଯାଏ—2. A tempest without rain; violent wind; dust-storm.
ଧୂମ ୩ । ଧୂମ୍; ଗୋଳମାଳ—3. Noise.
ଧୂମ ଯାନ ବାହନରେ ଲଗିଥିବ ଧୂମ—ଜଗନ୍ନାଥ. ଦରବାର ।

**ଧୂମ ଉଠା(ଠେ)ଇବା**—ଦେ.ବି—ପ୍ରବଳ ବାତ୍ୟା ବହିବାକୁ ଆରମ୍ଭ କରିବା—The beginning of a dust-storm; the signs of an approaching tornado.
Dhūma uṭhā(ṭhe)ibā
ତୁଫାନ ଉଠନ
आँधी उठाना
( ଧୂମ ଅସିବା—ଅନ୍ୟରୂପ )

**ଧୂମ କୁଣ୍ଡଳୀ**—ସ ବି. (୬ଷ୍ଠୀ ତତ୍, ଧୂମ+କୁଣ୍ଡଳୀ)—କୁଣ୍ଡଳାକାରରେ ଉଠୁଥିବା ଧୂଆଁ—A curl of smoke; curling smoke.
Dhūma kuṇḍaḷī

**ଧୂମ କେତନ**—ସ. ବି. ( ବହୁବ୍ରୀହି; ଧୂମ+କେତନ )—୧ । ଅଗ୍ନି—1 Fire.
Dhūma ketana
୨ । ନକ୍ଷତ୍ର ଲଞ୍ଜା; ପୁଚ୍ଛଯୁକ୍ତ ତାରା—2. Comet.
୩ । କେତୁଗ୍ରହ—3. The descending node.
୪ । (ନାମ) କୃଶାଶ୍ୱଙ୍କ ପୁତ୍ର—
4. The name of the son of Kṛuśāśwa.

**ଧୂମକେତୁ**—ସ. ବି. ( ବହୁବ୍ରୀହି; ଧୂମ+କେତୁ=ଧ୍ୱଜ )—୧ । ନକ୍ଷତ୍ରଲଞ୍ଜା; ଲଞ୍ଜାତାରା; ପୁଚ୍ଛଯୁକ୍ତ ତାରା—1. Comet.
Dhūma ketu
[ ଦ୍ର—ଧୂମକେତୁ ଦେଖା-ଗଲେ ଦେଶରେ ଅଶୁ ଉପଦ୍ରବ ଘଟିବାର ଅଶଙ୍କା କରାଯାଏ । ]
୨ । କେତୁଗ୍ରହ—
2. Ketu; the descending node.
୩ । ଶିବ; ମହାଦେବ—3. God Śiba.
୪ । ପୁଚ୍ଛରେ ଭଉଁରି ଥିବା ଘୋଡ଼ା ( ଏ ଘୋଡ଼ା ଅମଙ୍ଗଳ-ସୂଚକ)—4. A horse with a whorl on the tail.
୫ । (ନାମ) ରାବଣର ସେନାର ଏକ ରାକ୍ଷସ—
5. Name of a soldier of Rābaṇa.
୬ । କୁଗ୍ରହ—6. Evil star; malignant planet.
୭ । ଅମଙ୍ଗଳସୂଚକ ଲକ୍ଷଣ—7. Bad omen.
୮ । ( ଲକ୍ଷଣାର୍ଥ ) କୁଳାଙ୍ଗାର—8. (figuratvie) The dreg or unworthy scion of a family.
୯ । ଅଗ୍ନି—2. Fire.
ସ.ବିଣ—୧ । ଧୂମକେତୁ ସ୍ୱରୂପ ଅମଙ୍ଗଳକର; ବିନାଶସୂଚକ—
1 Ominous; portending disaster ( like a comet); destructive.
[ ଦ୍ର—ଏହା ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ ହୁଏ; ଯଥା—ଶକ୍ତି ସୃକୁଳ ଧୂମକେତୁ=ପର୍ଶୁରାମ । ]
୨ । ଧୂମକେତୁ ପରି ରକ୍ତବର୍ଣ୍ଣ—
2. Reddish like a comet.

**ଧୂମ ଗର୍ଭ**—ସ. ବିଣ. ( ବହୁବ୍ରୀହି; ଧୂମ+ଗର୍ଭ )—ଯାହା ମଧ୍ୟରେ ଧୂଆଁ ଥାଏ—Filled with smoke; having smoke within.
Dhūma garbha
( ଧୂମଗର୍ଭିକ—ଅନ୍ୟରୂପ )

**ଧୂମ ଗ୍ରହ**—ସ. ବି. ( ମ. ପ. ଲୋ; ଧୂମଯୁକ୍ତ ଗ୍ରହ)—ରାହୁ—
Dhūma graha Rāhu; the ascending node.

**ଧୂମଜ**—ସ. ବି—୧ । ମେଘ—
Dhūmaja 1. Cloud.
୨ । ମୁଥା (ହି. ଶବ୍ଦସାଗର)—
2. The bulbuous root of creeping grass.

**ଧୂମଜାଙ୍ଗଜ**—ସ. ବି—ନବସାର; ନିସାଦଲ (ହି. ଶବ୍ଦସାଗର)—
Dhūmajāṅgaja Sal ammoniac.

**ଧୂମଦର୍ଶୀ**—ସ. ବିଣ. ( ଧୂମ+ଦୃଶ ଧାତୁ+ଇନ୍; ୧ମା. ୧ବ. )—ଯାହାର ଆଖିକୁ ଝାପ୍‌ସା ଝାପ୍‌ସା ଦେଖାଯାଏ—Dim-sighted; ( a person ) to whom every thing looks as if enveloped in smoke.
Dhūmadarśī
(ଧୂମଦର୍ଶିନୀ—ସ୍ତ୍ରୀ)

**ଧୂମଧର**—ସ. ବି. ( ଧୂମ+ଧୃ ଧାତୁ+କର୍ତ୍ତୃ. ଅ )—ଅଗ୍ନି—
Dhūmadhara Fire.

**ଧୂମ ଧ୍ୱଜ**—ସ. ବି. ( ବହୁବ୍ରୀହି; ଧୂମ+ଧ୍ୱଜ )—ଧୂମକେତନ ( ଦେଖ )
Dhūma dhwaja Dhūmaketana (See)

**ଧୂମପ**—ସ. ବିଣ. ପୁଂ. ( ଧୂମ+ପା ଧାତୁ+କର୍ତ୍ତୃ. ଅ )—
Dhūmapa ଧୂମପାୟୀ ( ଦେଖ )—Dhūmapāyī ( See )
( ଧୂମପା—ସ୍ତ୍ରୀ )

**ଧୂମ ପଥ**—ସଂ. ବି—୧ । (ଧୂମ ଉପଲକ୍ଷିତ ପଥ, ମ.ପ. ଲୋ କର୍ମଧାରୟ)
Dhūma patha ପିତୃଯାନ; ଯେଉଁ କଳ୍ପିତ ପଥରେ ମୃତ ବ୍ୟକ୍ତିର ଆତ୍ମା ପିତୃଲୋକକୁ ଯାଏ—
1. The way of the manes to their world
୨ । (୬ଷ୍ଠୀ ତତ୍) ଧୂମନିର୍ଗମନ ପଥ—
2. A chimney; airhole.
୩ । ଯଜ୍ଞ—3 A sacrifice.

**ଧୂମ ପଟଳ**—ସଂ. ବି. (୬ଷ୍ଠୀ ତତ୍; ଧୂମ+ପଟଳ)—ଧୂମାବଳି (ଦେଖ)
Dhūma paṭaḷa Dhūmābaḷi (See)

**ଧୂମ ପତ୍ର(ତ୍ରା)**—ସଂ. ବି. (ମ. ପ. ଲୋ; ଧୂମପାନାର୍ଥ ବ୍ୟବହୃତ ପତ୍ର)—
Dhūma patra(trā) ଧୂଆଁପତ୍ର; ତମାଖୁଗଛ (କ୍ଷୀରେଜ୍)—
Tobacco plant.

**ଧୂମ ପାନ**—ସଂ. ବି. (୬ଷ୍ଠୀ ତତ୍; ଧୂମ+ପାନ)—୧ । ତମାଖୁ, ଗଞ୍ଜେଇ,
Dhūma pāna ଅଫିମଆଦି ନିଶା ଦ୍ରବ୍ୟରେ ଅଗ୍ନି ସଂଯୋଗ କରି ତଜ୍ଜାତ ଧୂମକୁ ପାଟିବାଟେ ଭିତରକୁ ଟାଣିବା; ଧୂଆଁ ଖାଇବା—1 Smoking of tobacco, ganja, opium and other drugs
୨ । ରୋଗବିଶେଷର ପ୍ରତୀକାରାର୍ଥ ଔଷଧ ଦ୍ରବ୍ୟର ଧୂଆଁ ପିଇବା—2 Smoking done for driving away certain diseases.

**ଧୂମପାୟୀ**—ସଂ. ବିଣ. ପୁଂ. (ଧୂମ+ପା ଧାତୁ+କର୍ତ୍ତି. ଇନ୍; ୧ମା. ୧ବ)--
Dhūmapāyī ୧ । ଯେ ଧୂମପାନ କରେ; ଯେ ଧୂଆଁ ଖାଏ—
(ଧୂମପାୟିନୀ—ସ୍ତ୍ରୀ 1. One who smokes
୨ । ଯାହାର ଖୁବ୍ ପିକା ଖାଇବାର ଅଭ୍ୟାସ ଅଛି—
2. Addicted to smoking.
୩ । ଯେଉଁ ଋଷି କେବଳ ତପସ୍ୟା ନିମନ୍ତେ ଧୂଆଁ ପିଅନ୍ତି—
3. (a sage)-Who inhales smoke or vapour only for doing penance.

**ଧୂମ ପୋତ**—ସଂ. ବି. (ଆଧୁନିକ ବ୍ୟବହାର) (ଧୂମ ଉଦ୍ଗୀରକ ପୋତ)—
Dhūma pota ଧୂଆଁକଳ ଜାହାଜ; ବାଷ୍ପୀୟପୋତ—
Steamer, steamship.

**ଧୂମପ୍ରଭା**—ସଂ. ବି—ସର୍ବଦା ଧୂଆଁରେ ପୂର୍ଣ୍ଣ ନରକବିଶେଷ—
Dhūmaprabhā Name of a hell said to be filled up with smoke

**ଧୂମପ୍ରାଣ**—ସଂ. ବିଣ. ପୁଂ—ଧୂମପାୟୀ (ତପସ୍ୱୀ)—
Dhūmaprāṇa (a hermit) Subsisting only on smoking for purposes of penance.

**ଧୂମବାନ୍**—ସଂ. ବିଣ. ପୁଂ. (ଧୂମ+ବତ୍=ଧୂମବତ୍ ଶବ୍ଦ ୧ମା. ୧ବ)—
Dhūmabān ୧ । ଧୂଆଁରେ ପୂର୍ଣ୍ଣ—1. Full of smoke.
(ଧୂମବତୀ—ସ୍ତ୍ରୀ) ୨ । ଯହିଁରୁ ଧୂଆଁ ଉଠୁଛି; ଧୂମ ଉଦ୍ଗୀରଣକାରୀ—Emitting smoke.
୩ । ଯାହା ଜଳୁଅଛି—
3. Smoking; smouldering.

**ଧୂମ ମହିଷୀ**—ସଂ. ବି. (ଧୂମ+ମହିଷୀ)—କୁହୁଡ଼ିକା; କୁହୁଡ଼—
Dhūma mahishī Mist; fog.

**ଧୂମ ଯୋନି**—ସଂ. ବିଣ. (ବହୁବ୍ରୀହି; ଧୂମ+ଯୋନି)—
Dhūma joni ଯାହା ମଧ୍ୟରେ ଧୂଆଁଥାଏ; ଧୂମଗର୍ଭ—
Filled with smoke; having smoke within.
ସଂ. ବି—୧ । ମେଘ—1. Cloud.
୨ । ଅଗ୍ନି—2. Fire.
୩ । ଆଗ୍ନେୟାସ୍ତ୍ର—3. Firearms.
୪ । ମୁଥା—4. Bulbuous grass-root.

**ଧୂମ ରଜଃ**—ସଂ. ବି. (ଧୂମ+ରଜସ୍)—୧ । ଘରୁ ଉଠୁଥିବା ଧୂଆଁ—
Dhūma rajah 1. The smoke rising up from a house.
୨ । ଅଳକ୍ତ—2. Soot.

**ଧୂମଳ**—ସଂ. ବି. (ଧୂମ+ଲା ଧାତୁ=ଗ୍ରହଣ କରିବା+କର୍ତ୍ତି. ଅ)—
Dhūmaḷa ୧ । ଧୂମ୍ରବର୍ଣ୍ଣ; ଧୂଆଁର ରଙ୍ଗ—
1. Smoky colour.
୨ । କୃଷ୍ଣଲୋହିତ ବର୍ଣ୍ଣ; ବାଇଗଣିଆଁ ରଙ୍ଗ—
2 Purple or violet colour.
୩ । ଶିବ; ମହାଦେବ—3. Śiba; Mahādeba.
ସଂ. ବିଣ—୧ । ଧୂମ୍ରବର୍ଣ୍ଣବିଶିଷ୍ଟ; ଧୂଆଁ ରଙ୍ଗିଆ; ନାସର ବର୍ଣ୍ଣ
(ଧୂମଳା—ସ୍ତ୍ରୀ) ବିଶିଷ୍ଟ—1. Smoke-coloured; snuff
(ଧୂମଳତା—ବି) coloured.
୨ । କୃଷ୍ଣଲୋହିତବର୍ଣ୍ଣବିଶିଷ୍ଟ—
2. Purple coloured; violet.

**ଧୂମ(ମୁ)ସା**—ଦେ. ବିଣ. ପୁଂ—ଧୂମ୍ସା (ଦେଖ)
Dhūma(mu)sā Dhūm-sā (See)
(ଧୂମସୀ—ସ୍ତ୍ରୀ)

**ଧୂମ ସାର**—ସଂ. ବି. (୬ଷ୍ଠୀ ତତ୍; ଧୂମ+ସାର)—
Dhūma sāra ଘରୁ ଉଠୁଥିବା ଧୂଆଁ (ହ୍ରି. ଶବ୍ଦସାଗର)—
The smoke rising up from a house.

**ଧୂମା**—ସଂ. ବିଣ. (ଧୂମ+ସାଦୃଶ୍ୟ ଅର୍ଥରେ. ଅ)—
Dhūmā ୧ । ଧୂମବିଶିଷ୍ଟ—1. Smoky.
୨ । ଧୂମ୍ରବର୍ଣ୍ଣବିଶିଷ୍ଟ - 2 Smoke-coloured.
ଦେ. ବିଣ. ପୁଂ—ଧୂମ୍ସା (ଦେଖ)
(ଧୂମୀ—ସ୍ତ୍ରୀ) Dhūm-sā (See)

**ଧୂମାକାର**—ସଂ. ବିଣ. (ବହୁବ୍ରୀହି; ଧୂମ+ଆକାର)—
Dhūmākāra ୧ । ଯାହାର ଆକାର ଧୂଆଁ ପରି—
1. Smoke-shaped.
୨ । ଧୂମ ପରିପୂର୍ଣ୍ଣ—2. Full of smoke.

**ଧୂମାକୁସ୍ତି**—ପ୍ରାଦେ. (ଯାଜପୁର) ବି—ଦଉଡ଼ାଦଉଡ଼ି; ଦଉଡ଼ାଧାପଡ଼—
Dhūmākusti Running about; racing.

**ଧୂମାକ୍ଷ**—ସଂ. ବିଣ. (ବହୁବ୍ରୀହି; ଧୂମ+ଅକ୍ଷି)—
Dhūmāksha ଧୂମାକାର ନେତ୍ରବିଶିଷ୍ଟ—
Having purple-coloured eyes.

**ଧୂମାଗ୍ନି**—ସଂ. ବି. ( ମ. ପ. ଲୋ; ଧୂମ ଉଦ୍ଗୀରଣକାରୀ ଅଗ୍ନି )—
Dhūmāgni ୧ । ଲୁହୁଲୁହୁଥିବା ନିଆଁ—
1. Smoking or smouldering fire.
୨ । ଘଷି ନିଆଁ—2. The fire made of burning cowdung cakes.

**ଧୂମାଙ୍ଗ**—ସଂ ବି. ( ବହୁବ୍ରୀହି; ଧୂମ+ଅଙ୍ଗ )—
Dhūmānga ଶିଶୁ ଗଛ, ଶିଂଶପା ଗଛ—
The Śisu tree, Dalbergia Sissoo
ସଂ. ବିଣ. ପୁଂ—ଯାହାର ଦେହ ଧୂମ ବର୍ଣ୍ଣ—
Having a smoky complexion.

**ଧୂମାଙ୍ଗଜ**—ସଂ. ବି—ନିଶାଦଳ—Muriate of ammonia;
Dhūmāngaja sal-ammoniac

**ଧୂମାତ୍**—ଦେ. ବି—୧ । ଧୂମ ( ଦେଖ )
Dhūmāt 1. Dhūma ( See )
୨ । ଛିନ୍ନଭିନ୍ନ ହେବା ଅବସ୍ଥା; ଧୂଳିସାତ୍ ହେବା ଅବସ୍ଥା—
2 Devastated condition; devastation; being razed to the dust.
୩ । ଦେଶରେ ପ୍ରଜାମେଳି ହେତୁରୁ ଅରାଜକ ଅବସ୍ଥା—
3. Anarchical condition of a kingdom due to revolt
୪ । ପ୍ରଜାମେଳି—4. Revolt; rebellion
ଦେ. ବିଣ—୧ । ଛିନ୍ନଭିନ୍ନ ହୋଇଥିବା; ଭାଙ୍ଗି ଭୁଶି ଅସ୍ତବ୍ୟସ୍ତ ହୋଇଥିବା ( ଦେଶ ବା ବସ୍ତୁ )—1. Ruined;
**मटिआमेट** devastated; laid waste.
୨ । ଅରାଜକ ଅବସ୍ଥା ଘୋଟିଥିବା ( ଦେଶ )—1. (place) Where anarchy is raging

**ଧୂମାତ୍ କରିବା**—ଦେ· କ୍ରି—ଛିନ୍ନଭିନ୍ନ କରିବା; ଧୂଳିସାତ୍ କରିବା—
Dhūmāt karibā To lay waste; to ruin; to devastate
ধূলধাপড়া উড়ান
**मटिआमेट करना** [ଧୂମାତ୍ ପକା(କେ)ଇବା—ଅନ୍ୟରୂପ]

**ଧୂମାଧୂମ୍**—ଦେ. ବି. ( ଧ୍ୱନ୍ୟନୁକରଣ )—
Dhūmādhūm ୧ । ଗୋଳମାଳ, ଗଣ୍ଡଗୋଳ; ଘୋଷା—
ধূমধাম 1. Confusion; row; uproar.
**धूमधाम** ୨ । ଅତି ବ୍ୟସ୍ତତା ଓ କ୍ଷିପ୍ରତା—
2. Great haste; hurry.

**ଧୂମାଧୂମି**—ଦେ. ବି—ପରସ୍ପର ମାଡ଼ପିଟ—Affray; mutual
Dhūmādhūmi assault; brawl.
মাবামাবি, ধ্বস্তাধ্বস্তি **त्वचाहंची**
ଦେ. ବିଣ—ପରସ୍ପର ମଧ୍ୟରେ ମାଡ଼ପିଟ ଲଗାଇବା—
Assaulting each other; brawling.

**ଧୂମାନ୍ତ**—ବିଣ. ( ସଂ. ଧୂମିତ )—୧ । ଧୂମାତ ( ଦେଖ )
Dhūmānta 1. Dhūmāt ( See )
**मटिआमेट** ଧୂମାନ୍ତ କରି ମୂଳକଟାକୁ ଧନ କାଞ୍ଚନ ଲୁଟି ଅନେକ ।
ବ୍ରଜନାଥ. ସମରତରଙ୍ଗ ।
୨ । ଧୂମମୟ—2. Smoky; filled with smoke.
ଧୂମ ବର୍ଣ୍ଣ ଜଣେ ନୋହେ ଧୂମାନ୍ତ ଶରୀର । ପ୍ରାଚୀ. ବହୁଜନରୂପଣ ଗୀତା ।
ଦେ. ବି—ଧୂମାତ୍ ( ଦେଖ )—Dhūmāt ( See )

**ଧୂମାବତୀ**—ସଂ. ବି. ସ୍ତ୍ରୀ. ( ଧୂମ+ଅ=ଧୂମା+ବତ୍; ସ୍ତ୍ରୀ. ଈ )—
Dhūmābatī ଦଶ ମହାବିଦ୍ୟାରୁ ଗୋଟିଏ, ଦୁର୍ଗାଙ୍କର ତନ୍ତ୍ରୋକ୍ତ ୧୦ ଆକାରରୁ ଏକତମ —One of the 10 forms of Goddess Durgā in her darkish widowed form, worshipped according to the Tantras.
[ ଦ୍ର—ତନ୍ତ୍ରରେ ଏହାଙ୍କ ଧ୍ୟାନରେ ନିମ୍ନଲିଖିତ ରୂପ ବର୍ଣ୍ଣିତ ହୋଇଅଛି—ବିବର୍ଣ୍ଣା, ଚଞ୍ଚଳା, ଦୁଷ୍ଟା, ଦୀର୍ଘା, ମଳିନାମ୍ବରା, ବିମୁକ୍ତକୁନ୍ତଳା, ରୂକ୍ଷା, ବିଧବା, ବିରଳଦନ୍ତା, କାକଧ୍ୱଜରଥାରୂଢ଼ା, ବିଲମ୍ବିତପୟୋଧରା, ସର୍ପହସ୍ତା, ଅତିରୂକ୍ଷାକ୍ଷୀ, ଧୂତହସ୍ତବରାନ୍ୱିତା, ବୃହନ୍ନାସିକା, ଅତିକୁଟିଳା, କୁଟିଳେକ୍ଷଣା, କ୍ଷୁତ୍ପିପାସାର୍ଦ୍ଦିତା, ନିତ୍ୟଭୟପ୍ରଦା ଓ କଳହାସ୍ପଦା । ତନ୍ତ୍ରରେ ଲେଖାଅଛି ଯେ ପାର୍ବତୀ ଥରେ କ୍ଷୁଧାତୁର ହୋଇ ମହାଦେବଙ୍କୁ ଖାଇବାକୁ ମାଗିଲେ; ବିଳମ୍ବ ହେବାରୁ ଅତ୍ୟନ୍ତ କ୍ଷୁଧାତୁର ହୋଇ ସ୍ୱୟଂ ମହାଦେବଙ୍କୁ ଗିଳି ଦେଲେ ଓ ତତ୍ପରେ ଏହାଙ୍କ ଶରୀର ଧୂମ୍ରମୟ ହୋଇଗଲା । ଶେଷରେ ମହାଦେବ ପ୍ରକଟ ହୋଇ କହିଲେ 'ତୁମେ ମୋତେ ଗିଳି ଦେବାରୁ ବିଧବା ହୋଇଅଛ । ତୁମ୍ଭେ ଜଗତରେ ଏହି ବେଶରେ ପୂଜା ପାଇବ' । ହି. ଶବ୍ଦସାଗର । ]

**ଧୂମାବଳି(ଳୀ)**—ସଂ. ବି. ( ଧୂମ+ଆବଳି )—ଧୂଆଁ ସମୂହ—
Dhūmābali(lī) A wreath or cloud of smoke, a volume of smoke.

**ଧୂମାଭ**—ସଂ. ବିଣ. ପୁଂ. ( ବହୁବ୍ରୀହି; ଧୂମ+ଆଭା )—
Dhūmābha ଧୂମ୍ର ବର୍ଣ୍ଣ; ଧୂଆଁ ପରି ବର୍ଣ୍ଣବିଶିଷ୍ଟ—
Smoke-coloured.

**ଧୂମାୟନ**—ସଂ. ବି. ( ଧୂମ ଶବ୍ଦରୁ ଧୂମାୟ ନାମ ଧାତୁ+ଭାବ. ଅନ )—
Dhūmāyana ୧ । ଗରମି; ଉଷ୍ଣତା—1. Heat (Apte).
୨ । ଧୂଆଁ ଦେବା—2. Smoking (Apte).
୩ । ବାଷ୍ପ ଉଠିବା—3. Steaming (Apte).

**ଧୂମାୟମାନ**—ସଂ. ବିଣ. ପୁଂ. ( ଧୂମାୟ ନାମ ଧାତୁ+କର୍ତ୍ତୃ. ଆନ )—
Dhūmāyamāna ୧ । ଯହିଁରୁ ଧୂଆଁ ବାହାରୁ ଅଛି; ଲୁହୁଲୁହୁ
(ଧୂମାୟମାନା—ସ୍ତ୍ରୀ) ଥିବା—1. Emitting smoke; smouldering.
୨ । ଯେ ଧୂଆଁ ଦେଉଅଛି—
2. Fumigating; smoking.
୩ । ଯାହା କୌଣସି ସ୍ଥାନ ବା ବସ୍ତୁକୁ ଧୂମଦ୍ୱାରା ବା ବାଷ୍ପଦ୍ୱାରା ଆବୃତ କରୁଅଛି ବା ଧୂମପୂର୍ଣ୍ଣ କରୁଅଛି—3 Covering or filling up with smoke or vapour.
୪ । ଅନ୍ଧକାରମୟ କରୁଥିବା—
4. Darkening; enveloping with darkness.
୫ । ଧୂମଦ୍ୱାରା ଆବୃତ—
5. Hazy; covered over with smoke.

ଧୂମାଳ—ଦେ. ବ ( ସ. ଧୂମଳ )—ବହୁତ ଧୂଳି ଉଡ଼ି ଆକାଶକୁ
Dhūmāla ଧୂଆଁ ପରି ଅଚ୍ଛନ୍ନ କରିଥିବା ତୋଫାନ—
ঝক্কড় Dust storm.
ଦେ. ବିଣ—୧ । ଧୂମାଳିଆ ( ଦେଖ )
1. Dhūmālīā ( See )
୨ । ଧୂମାତ୍ ( ଦେଖ )—2. Dhūmāt (See)

ଧୂମାଳ ଉଠା(ଠେ)ଇବା—ଦେ. ବ—ଝଡ଼ି ତୋଫାନ ସହ ମେଘ
Dhūmāla uṭhā(ṭhe)ibā ଉଠାଇବା —The rising of
ঝক্কড়উঠনা clouds with heavy puffs of wind.

ଧୂମାଳିଆ—ଦେ. ବିଣ—୧ । ଝଡ଼ତୋଫାନଯୁକ୍ତ—
Dhūmālīā 1 Tempestuous.
ঝক্কড়দার ୨ । ଧୂମାତ୍ ( ଦେଖ )—
2 Dhūmāt ( See )

ଧୂମିକା—ସ. ବ. ସ୍ତ୍ରୀ ( ଧୂମ+କ+ସ୍ତ୍ରୀ. ଆ )—
Dhūmikā ୧ । କୁଜ୍‌ଝଟିକା; କୁହୁଡ଼ି—
1. Fog; mist.
୨ । ଧୂଆଁ—2. Smoke.
୩ । ବାଷ୍ପ, ବାମ୍ଫ—3 Vapour; steam.

ଧୂମିତ—ସ. ବିଣ (ଧୂମ+ଯୁକ୍ତାର୍ଥରେ. ଇତ)—୧ । ଧୂମବିଶିଷ୍ଟ—
Dhūmita 1 Smoking.
( ଧୂମିତା—ସ୍ତ୍ରୀ ) ୨ । ଧୂମାବୃତ—2. Obscured with smoke.
୩ । ଅନ୍ଧକାରବୃତ—3 Darkened.
୪ । କୁହୁଳୁଥିବା—4 Smouldering; smoking.
୫ । ଅନ୍ତରରେ କ୍ରୋଧଦୃଷ୍ଟି—
5. Burning with unexpressed rage
ସ. ବି—୧ । ଦୂଷିତ ମନ୍ତ୍ରବିଶେଷ—
1. A kind of corrupted esoteric formula
୨ । ସୂର୍ଯ୍ୟଙ୍କ ଅଗମ୍ୟ ଦିଗ୍‌ବିଶେଷ—
2 A region which the sun's rays do not reach.
୩ । ଯେଉଁ ଦିଗକୁ ସୂର୍ଯ୍ୟ ପ୍ରଥମେ ଯାଆନ୍ତି—
3. The quarter towards which the sun turns first.

ଧୂମିନୀ—ସ. ବିଣ. ସ୍ତ୍ରୀ (ଧୂମିନ୍+ସ୍ତ୍ରୀ. ଈ)—ଧୂମୀର ସ୍ତ୍ରୀଲିଙ୍ଗ—
Dhūminī Feminine of Dhūmī.
ସ. ବି. ସ୍ତ୍ରୀ—ଅଗ୍ନିଙ୍କର ସପ୍ତ ଜିହ୍ୱା ମଧ୍ୟରୁ ଏକତମା—
Name of one of the 7 tongues of the Fire-god (Apte)

ଧୂମୀ—ସ. ବିଣ. ପୁଂ ( ଧୂମ+ଇନ୍; [illegible] )—୧ । ଧୂମପୂର୍ଣ୍ଣ;
Dhūmī ଧୂମବହୁଳ—1. Filled with smoke; full of
(ଧୂମିନୀ—ସ୍ତ୍ରୀ) smoke; smoky.
୨ । ଯହିଁରୁ ଧୂଆଁ ବାହାରୁଅଛି; କୁହୁଳୁଥିବା—
2. Smoking; smouldering.

ଦେ ବିଣ. ସ୍ତ୍ରୀ—ଧୂମାର ସ୍ତ୍ରୀଲିଙ୍ଗ—
Feminine of Dhūmā.

ଧୂମୋତ୍ଥ—ସ. ବିଣ (୫ମୀ ତତ୍; ଧୂମ+ଉତ୍ଥ)—ଧୂଆଁରୁ ଉତ୍ପନ୍ନ—
Dhūmottha Produced from smoke.
ସ. ବ—ନିଶାଦଳ - Sal ammoniac.

ଧୂମୋଦ୍ଗାରୀ—ସଂ. ବିଣ. ପୁଂ (ଧୂମ+ଉତ୍+ଗୃ ଧାତୁ+କର୍ତ୍ତୃ. ଇନ୍, ୧।ଏ
Dhūmodgārī ୧ବ)—ଯହିଁର ମୁହଁରୁ ଧୂଆଁ ବାହାରୁଥାଏ—
ଧୂମୋଦ୍ଗାରକ } ଅନ୍ୟରୂପ — Emitting or discharging
ଧୂମୋଦ୍ଗିରକ } smoke from the mouth.
ଧୂମୋଦ୍ଗାରିଣୀ }
ଧୂମୋଦ୍ଗାରିକା } ସ୍ତ୍ରୀ — ଦୂରରୁ ଅଗ୍ନେୟ ପର୍ବତର ଶୃଙ୍ଗ ଧୂମୋଦ୍ଗାରୀ ସ୍ୱଭାବରୁ
ଧୂମୋଦ୍ଗିରିକା } ଦୃଷ୍ଟିଗୋଚର ହୁଏ । ମଧୁସୂଦନ. ପ୍ରବନ୍ଧମାଳା ।

ଧୂମୋଦ୍ଗମ—ସଂ ବ (୬ଷ୍ଠୀ ତତ୍; ଧୂମ+ଉଦ୍ଗମ)—କୌଣସି ପଦାର୍ଥରୁ
Dhūmodgama ଧୂଆଁ ଉଠିବା—The issuing of smoke (from a thing).

ଧୂମୋଦ୍ଗାର—ସ. ବ. ( ୬ଷ୍ଠୀ ତତ୍; ଧୂମ+ଉଦ୍ଗାର )—
Dhūmodgāra ୧ । ଧୂମୋଦ୍ଗମ ( ଦେଖ )
ଧୂମୋଦ୍ଗାରଣ } ଅନ୍ୟରୂପ 1. Dhūmodgama ( See )
ଧୂମୋଦ୍ଗିରଣ } ୨ । ମୁଖବାଟେ ଧୂଆଁ ବାହାରୁଥିବା—
2. Emission of smoke from the mouth.
୩ । ଖଟାର ଢେକୁର—
3. Acid belching ( Apte ).

ଧୂମୋର୍ଣ୍ଣା—ସ. ବ. ସ୍ତ୍ରୀ. ( ବହୁବ୍ରୀହି, ଧୂମ ପରି ଊର୍ଣ୍ଣା ଯାହାର=ଧୂମୋର୍ଣ୍ଣ
Dhūmorṇṇā +ସ୍ତ୍ରୀ. ଆ )—ଯମପତ୍ନୀ—Name of the wife of Jama, the Hindu God of death.

ଧୂମ୍ୟା—ସ. ବି. ( ଧୂମ+ସମୂହାର୍ଥରେ ଯ+ସ୍ତ୍ରୀ. ଆ )—ଧୂମସମୂହ—
Dhūmyā A volume of smoke; a cloud of smoke.
( ତୁଳନାକର—ବାତ୍ୟା ଓ ବନ୍ୟା । )

ଧୂମ୍ୟାଟ—ସ. ବ ପୁଂ. ( ଧୂମ୍ୟା=ଧୂମରାଶି+ଅଟ୍ ଧାତୁ=ଗମନ
Dhūmyāṭa କରିବା+କର୍ତ୍ତୃ. ଅ )—କଜଳପାଖିଆ
ଅନ୍ୟ ସ. ପର୍ଯ୍ୟାୟ—କଳିଙ୍ଗ, ଚଢ଼େଇ; ଭୃଙ୍ଗପକ୍ଷୀ—The black
ଭୃଙ୍ଗ, ଫିଙ୍ଗା drongo; Dicrurus Ater.
( ଧୂମ୍ରାଟ—ଅନ୍ୟ ନାମ )

ଧୂମ୍ର—ସ. ବିଣ. ପୁଂ. ( ଧୂମ+ରା ଧାତୁ=ଗ୍ରହଣ କରିବା+କର୍ତ୍ତୃ. ଅ;
Dhūmra ଯାହା ଧୂଆଁର ବର୍ଣ୍ଣକୁ ଗ୍ରହଣ କରିଅଛି )—
( ଧୂମ୍ରା—ସ୍ତ୍ରୀ ) ୧ । ଧୂଆଁ ପରି କୃଷ୍ଣଲୋହିତ ବର୍ଣ୍ଣ—
1. Smoke-coloured; deep purple; dark-red.
୨ । ପାଉଁଶିଆ; ପାଣ୍ଡୁର—2. Grey.
୩ । ବାଇଗଣୀ ରଙ୍ଗର ( ପ୍ରକୃତିବାଦ )—3 Violet.
୪ । ଅନ୍ଧକାରମୟ—4 Dark, obscure.
ସ. ବ—୧ । ଧୂଆଁର ବର୍ଣ୍ଣ—
1. The colour of smoke.
୨ । ବାଇଗଣୀ ରଙ୍ଗ—2. Violet colour.
୩ । କୃଷ୍ଣଲୋହିତ ବର୍ଣ୍ଣ—
3 Dark-red colour; deep purple colour.

୪ । ଶିବ—4. Siba

୫ । ପାପ—5. Sin; vice ( Apte ).

୬ । ଦୁଷ୍ଟତା; ଖଳତା—
6. Wickedness ( Apte ).

**ଧୂମ୍ରକ**—ସଂ. ବି. ( ଧୂମ୍ର+କ, ଏହାର ବର୍ଣ୍ଣ ଧୂଆଁ ପରି )—ଉଷ୍ଟ୍ର; ଓଟ—
Dhūmraka A camel.
( ଧୂମ୍ରଶୂକ—ଅନ୍ୟରୂପ )

**ଧୂମ୍ର ବର୍ଣ୍ଣ**—ସଂ. ବି (ଷଷ୍ଠୀ ତତ୍, ଧୂମ୍ର+ବର୍ଣ୍ଣ)—
Dhūmra barnna ୧ । ଧୂଆଁର ବର୍ଣ୍ଣ, କୃଷ୍ଣଲୋହିତ ବର୍ଣ୍ଣ—
1. Dark-red colour.

୨ । ଧୂପ—2. Incense ( Apte )

( ଧୂମ୍ରବର୍ଣ୍ଣା—ସ୍ତ୍ରୀ ) ସଂ. ବିଣ. ପୁଂ. (ବହୁବ୍ରୀହି)—କୃଷ୍ଣ ଲୋହିତ—
Dark-red.

**ଧୂମ୍ରବର୍ଣ୍ଣକ**—ସଂ. ବି. ( ଧୂମ୍ର+ବର୍ଣ୍ଣ+କ )—ଗୁମ୍ଫାରେ ବାସ କରୁଥିବା
Dhūmrabarnnaka ଏକପ୍ରକାର ଜନ୍ତୁ, କୋକିଶିଆଳ—
A kind of animal living in caves, fox
( Apte )

**ଧୂମ୍ର ଲୋଚନ**—ସଂ. ବିଣ. ପୁଂ. (ବହୁବ୍ରୀହି; ଧୂମ୍ର+ଲୋଚନ )—ଯାହାର
Dhūmra lochana ଆଖି ଧୂମ୍ରବର୍ଣ୍ଣବିଶିଷ୍ଟ—Grey-eyed
( ଧୂମ୍ରଲୋଚନା—ସ୍ତ୍ରୀ ) ସଂ ବି—୧ । ପାରା—1. Pigeon.

୨ । କପୋତ—2 Dove

୩ । (ନାମ) ଶୁମ୍ଭାସୁରର ସେନାପତି—
3 Name of a general of Sumbha demon
[ ଦ୍ର—ସେ ଶୁମ୍ଭର ମୃତ୍ୟୁ ପୂର୍ବରୁ ଦୁର୍ଗାଙ୍କଦ୍ୱାରା ନିହତ ହୋଇ-
ଥିଲା । ]

**ଧୂମ୍ର ଲୋହିତ**—ସଂ. ବିଣ. ( ମ. ପ. ଲୋ; ଧୂମ୍ର ମିଶ୍ରିତ ଲୋହିତ )—
Dhūmra lohita କୃଷ୍ଣଲୋହିତ; କଳା ମିଶା ନାଲି; ଗାଢ଼
ନାଲି—Deep purple; dark-red.
ସଂ. ବି—ଶିବ; ମହାଦେବ—Siba.

**ଧୂମ୍ରା**—ସଂ. ବିଣ. ସ୍ତ୍ରୀ ( ଧୂମ୍ର+ଆ )—ଧୂମ୍ରର ସ୍ତ୍ରୀଲିଙ୍ଗ—
Dhūmrā Feminine of Dhūmra.
ସଂ. ବି—ଏକପ୍ରକାର କାକୁଡ଼ି (ହି. ଶବ୍ଦସାଗର) —
A kind of cucumber.

**ଧୂମ୍ରାକ୍ଷ**—ସଂ ବିଣ. ( ବହୁବ୍ରୀହି, ଧୂମ୍ର+ଅକ୍ଷି )—ଯାହାର ଚକ୍ଷୁ ଧୂମ୍ର-
Dhūmrāksha ବର୍ଣ୍ଣବିଶିଷ୍ଟ; ଧୂମ୍ରଲୋଚନ—Having eyes
(ଧୂମ୍ରାକ୍ଷୀ—ସ୍ତ୍ରୀ) of a smoky colour
ସଂ. ବି—୧ । ରାବଣର ଜନୈକ ସେନାପତି—1. Name of
a general of demon Rābana

୨ । ଭାଗବତୋକ୍ତ ଇକ୍ଷ୍ୱାକୁବଂଶୀୟ ରାଜା ହେମଚନ୍ଦ୍ରଙ୍କ ପୁତ୍ର
(ହି. ଶବ୍ଦସାଗର)—2. Name of a prince, son
of king Hemachandra

**ଧୂମ୍ରିକା**—ସଂ ବି. ( ଧୂମ୍ର+କ+ସ୍ତ୍ରୀ. ଆ )—ଶିଶୁଗଛ; ଶିଂଶପାଗଛ—
Dhūmrikā Dalbergia Sissoo ( tree ).

**ଧୂୟମାନ**—ସଂ. ବିଣ ପୁଂ. (ଧୂ ଧାତୁ=କମ୍ପିତ ହେବା+କର୍ତ୍ତୃ. ମାନ)—
Dhūyamāna ୧ । କମ୍ପମାନ—1. Shivering, trembling;
( ଧୂୟମାନା—ସ୍ତ୍ରୀ ) shaking.

୨ । ଯାହାକୁ କେହି କମ୍ପିତ କରୁଅଛି—2. Shaken

**ଧୂର୍** ( ଧାତୁ )—ସଂ.—୧ । ବଧ କରିବା—
Dhūr (root ) 1. To kill.

୨ । ହିଂସା କରିବା—2. To hurt.

୩ । ଗତି କରିବା, ଯିବା—
3 To go; to move ( Apte ).

**ଧୂର୍**—ସଂ. ବି—ଧୁର୍ ( ଦେଖ )
Dhūr Dhur ( See )
( ଧୂର୍କର୍—ଅନ୍ୟରୂପ ) ଦେ. ଅ—ଦୂର୍ ( ଦେଖ )—
Dūr ( See )
ଦେ. ବି. ( ସଂ. ଦୂର ) – ଦୂରତ୍ୱ —Distance.
ଦେ. ବିଣ —ଦୂରସ୍ଥ –Distant.

**ଧୂର୍ମୁସ୍**—ଦେ ବି—ଗୋଡ଼ି ପ୍ରଭୃତିକୁ ପିଟି ଦୃଢ଼ କରିବାରେ ବ୍ୟବହୃତ
Dhūr-mus ଦଣ୍ଡ ବା ମୁଷଳବିଶିଷ୍ଟ ଭାରି ଲୌହ ବା କାଷ୍ଠପିଣ୍ଡ—
ଦୁରମୁଷ **दुरमुट** Rammer.

**ଧୂର**—ସଂ. ବି.—ଧୁର୍ ( ଦେଖ )—
Dhūra Dhur ( See )
ଗ୍ରା ବି. ଓ ବିଣ -ଧୂର୍ ( ଦେଖ )—Dhura ( See )

**ଧୂରତି**—ଗ୍ରା. ( ପଦ୍ୟ ) ବି. ( ସଂ ଧୃତି )—ଧୃତି ( ଦେଖ )
Dhūrati Dhṛuti ( See )
ଏବୁ ରନର୍ହେ ହରନ୍ତୁ ତର ଧୂରତି—ଭକ୍ତ• ପ୍ରେମସୁଧାନିଧି ।

**ଧୂର୍ା**—ସଂ. ବି —ଧୁର୍ ( ଦେଖ )
Dhūrā Dhur ( See )
ଧୂଳ ଗ୍ରା. ( ଇତର ଭାଷା ) ବି. ( ସଂ. ଧୂଳି )—
**धुरा** ଧୂଳି ଇତ୍ୟାଦି ( ଦେଖ )—Dhūli etc ( See )
( ଧୂର୍ୀ—ଅନ୍ୟରୂପ )

**ଧୂରି**—ଗ୍ରା. (ଇତରଭାଷା) ବି (ସଂ ଧୂଳି) —ଧୂଳି (ଦେଖ)
Dhūri Dhūli (See)
ଧୂଳ **धूरि**

**ଧୂରୁତ**—ଗ୍ରା. ବିଣ. (ସଂ. ଧୂର୍ତ୍ତ)—ଧୂର୍ତ୍ତ (ଦେଖ)
Dhūruta Dhurtta (See)
**धूरत**

**ଧୂରେ**—ଗ୍ରା. କ୍ରି. ବିଣ. (ସଂ. ଦୂରଂ)—ଦୂରରେ—
Dhūre At a distance.
ଦୂରେ ଧୂରେ ଥାଇଁ ଭୃଙ୍ଗ କରନ୍ତି ନାଥର ବାସ ପେଶି ପଦ୍ମିନୀ ର ।
**दूरमे** ଅଭିମନ୍ୟୁ• ବିଦଗ୍ଧଚିନ୍ତାମଣି ।

**ଧୂରେଇ ହେବା**—ଗ୍ରା. କ୍ରି—କେତେକ ଦୂରରେ ବା ଦୂରଛଡ଼ା ହୋଇ
Dhūrei hebā ରହିବା—To remain at a distance.
**अलगहोना, दूरहोना** (ଯଥା—ଶୂଦ୍ରମାନେ ବ୍ରାହ୍ମଣମାନଙ୍କଠାରୁ
ଧୂରେଇ ହୋଇ ଖାଇ ବସିଲେ ।)

**ଧୂର୍ଗତ**— ସଂ. ବିଣ—୧ । ଅଗ୍ରଗାମୀ; ପ୍ରଧାନ—
Dhūrgata 1 Foremost; chief.
୨ । ରଥର ଦଣ୍ଡା ଉପରେ ଠିଆ ହୋଇଥିବା—
2 Standing on the pole of a chariot.

**ଧୂର୍ଜ୍ଜଟି**—ସଂ. ବି. (ଧୂର୍=ତ୍ରୈଲୋକ୍ୟର ଚନ୍ଦ୍ରାରୂପ ଭାର ବା ବଡ଼ଜଟାର ଭାର+ଜଟ୍ ଧାତୁ=ବନ୍ଧନ କରିବା+କର୍ତ୍ତୃ. ଇ; ବଡ ଜଟା ଥିବା ଯୋଗୁଁ)—
Dhūrjjaṭi
ଧୂର୍ଜ୍ଜଟୀ } ଅନ୍ୟରୂପ
ଧୂର୍ଜଟି(ଟୀ) }
ଶିବ; ମହାଦେବ—Śiba.

**ଧୂର୍ତ୍ତ**—ସଂ. ବିଣ. ପୁଂ. (ଧୂର୍ବ ଧାତୁ=ହିଂସା କରିବା+କର୍ତ୍ତୃ. ତ)—
Dhūrtta ୧ । ଶଠ; ପ୍ରତାରକ; ବଞ୍ଚକ; ଦଗାବାଜ୍—
(ଧୂର୍ତ—ଅନ୍ୟରୂପ) 1. Sly; fraudulent; crafty;
(ଧୂର୍ତ୍ତା—ସ୍ତ୍ରୀ) knavish; deceitful.
(ଧୂର୍ତ୍ତିତା—ବି) ୨ । ଚତୁର-2 Shrewd; cunning
୩ । କପଟାଚାରୀ—3. Hypocritical
୪ । (+କର୍ମ.ତ) ଆହତ; ଆଘାତପ୍ରାପ୍ତ—4 Hurt; injured.
୫ । ଅନିଷ୍ଟକାରୀ—5 Injurious; mischievous.
୬ । ଲମ୍ପଟ 6 Licentious; lecherous.
୭ । ମାୟାବୀ—7 Illusive
ସଂ. ବି—୧ । ଦ୍ୟୂତକର; ଜୁଆରୀ—1. A gambler
୨ । ଶଠ ବ୍ୟକ୍ତି—2. A cheat; a rogue.
୩ । ବିଲୁଆ—3. Jackal.
ନରାଣାଂ ନାପିତୋଧୂର୍ତ୍ତଃ, ପକ୍ଷିଣାଂ ଚୈବ ବାୟସଃ;
ଦଂଷ୍ଟ୍ରିଣାଂଚ ଶୃଗାଲସ୍ତୁ, ଶ୍ୱେତ ଭିକ୍ଷୁ ସ୍ତପସ୍ୱିନାଂ ।
ଏହିପରି ଗୋଟିଏ ଶ୍ଳୋକ ଅଛି ।
୪ । ଧାତୁରା; ଦୁଦୁରାଗଛ—Thorn apple (plant).
୫ । ଲୁହାର କଳଙ୍କି—5. Rust of iron.
୬ । ଲୁହାଚୂନା; ଲୁହାଗୁଣ୍ଡ—6 Iron filings (Apte)
୭ । ବିଟ ଲବଣ—7. Foetid salt.
୮ । କଳା ଲୁଣ—8. Black salt.
୯ । ପ୍ରେମିକ; ନାଗର—
9. A lover; a gallant (Apte).

**ଧୂର୍ତ୍ତକ**—ସଂ. ବି. (ଧୂର୍ତ୍ତ+କ) —୧ । ଶୃଗାଳ; ବିଲୁଆ—
Dhūrttaka 1. A jackal
୨ । ଜୁଆରୀ—2. A gambler.
୩ । ମହାଭାରତୋକ୍ତ କୌରବ୍ୟକୁଳର ନାଗବିଶେଷ—
3. Name of a mythological serpent.
ସଂ. ବିଣ—ଅତି ଧୂର୍ତ୍ତ—Very cunning; crafty.

**ଧୂର୍ତ୍ତ କିତବ**—ସଂ. ବି—ଜୁଆଖେଳାଳି—
Dhūrta kitaba A gamester; a gambler.

**ଧୂର୍ତ୍ତତା**—ସଂ. ବି. (ଧୂର୍ତ୍ତ+ଭାବ. ତା)—୧ । ପ୍ରତାରଣା; ଶଠତା—
Dhūrttatā 1. Fraud; knavery; deceit.
୨ । ଧୂର୍ତ୍ତପଣ—2. Deceitfulness.
୩ । ଚତୁରତା; ଚାଲାକୀ—
3. Shrewdness; cunning; craftiness.

**ଧୂର୍ତ୍ତପଣ**—ଦେ. ବି—ଧୂର୍ତ୍ତତା; ଶଠପଣିଆ; ଠକପଣ—
Dhūrttapaṇa Deceitfulness.
**ଧୂର୍ତ୍ତପନା ଧୂରତପନା**
[ଧୂର୍ତ୍ତପଣିଆ (ଆଁ)—ଅନ୍ୟରୂପ]

**ଧୂର୍ତ୍ତମାନୁଷା**—ସଂ. ବି—ରାସ୍ନା (ହି. ଶ) (ଦେଖ)
Dhūrtta mānushā Rāsnā (See)

**ଧୂର୍ଦ୍ଧର**—ସଂ ବିଣ (ଧୂର୍=ଭାର+ଧୃ ଧାତୁ+କର୍ତ୍ତୃ ଅ)—ଧୁରନ୍ଧର
Dhūrddhara (ଦେଖ)—Dhurandhara (See)
(ଧୂର୍ଧର—ଅନ୍ୟରୂପ)

**ଧୂର୍ବ** (ଧାତୁ)—ସଂ.—ହିଂସା କରିବା; ବଧ କରିବା—
Dhūrbb (root) To kill; to hurt
(ଧୂର୍ବ୍—ଅନ୍ୟରୂପ)

**ଧୂର୍ବହ**—ସଂ ବିଣ (ଧୂର୍+ବହ୍ ଧାତୁ+କର୍ତ୍ତୃ. ଅ)—ଧୂର୍ଦ୍ଧର (ଦେଖ)
Dhūrbbaha Dhūrddhara (See)
(ଧୂର୍ବ୍ବହ—ଅନ୍ୟରୂପ)

**ଧୂର୍ବୀ**—ସଂ. ବି. ସ୍ତ୍ରୀ (ଧୂର୍ବ୍ ଧାତୁ=ବଧ କରିବା+ଅ+ସ୍ତ୍ରୀ. ଈ)—
Dhūrbbī ଶଗଡ଼ର ଜୁଆମୁଣ୍ଡି—
(ଧୂର୍ବୀ—ଅନ୍ୟରୂପ) The front point of a cart (where the poles meet); the forepart of a carriage.

**ଧୂର୍ମ**—ଦେ. ବି (ସଂ. ଧର୍ମ)—ଆଧୁନିକ ତନ୍ତ୍ର ବା ଶରୀରଭେଦସାଧକ ବା
Dhūrma ଅଣାକାରଭଜନକାରୀମାନଙ୍କର ଶରୀରର ଓ ପ୍ରକୃତିର ପାଞ୍ଚ କଳା ମଧ୍ୟରୁ ଏକତମ—
One of the 5 elements of nature and body according to the modern Tantric devotees.
(ଅଣାକାର ତଳେ ନୋଟ୍ ଦେଖ)

**ଧୂଲକ**—ସଂ. ବି—ବିଷ—
Dhūḷaka Poison (Apte)

**ଧୂଳା**—ଦେ. ବି. (ସ. ଧୂଳି)—ଧୂଳି (ଦେଖ);
Dhūḷā Dhūḷi (See)
ଧୂଲ, ଧୂଲୋ **ଧୂଲ, ଧୂରା**

**ଧୂଳା ଉଡ଼ିବା**—ଦେ. ବି—୧ । କୌଣସି କାର୍ଯ୍ୟ ଅତିରିକ୍ତ ମାତ୍ରାରେ
Dhūḷā urḍibā ସମ୍ପାଦିତ ହେବା—1 (anything) Being
ଧୂଲ ଖାଁପଡ଼ ଉଡ଼ା done in excessive proportion or
**ଧୂରା ଉଡ଼ାନା** quantity.
(ଧୂଳା ଉଡ଼ିଯିବା—ଅନ୍ୟରୂପ) (ଯଥା—ରଜା ଘର ବିଭାଘର ଯୋଗୁଁ ଖିଆ ପିଆରେ ଧୂଳା ଉଡ଼ୁଛି; ସେଠାରେ ମାଡ଼ରେ ଧୂଳା ଉଡ଼ୁଛି ।)
୨ । ବିଧ୍ୱଂସନ; ବିଧ୍ୱସ୍ତ ହେବା ଅବସ୍ଥା—
2. Devastation.
୩ । ଧୂଳିସାତ୍ ହେବା; ଭୂମିସାତ୍ ହେବା—
3. Being reduced to dust; being razed to the ground.
[ଦ୍ର—କୌଣସି ବସ୍ତୁକୁ ବିଶେଷ ଭାବେ ଆଘାତ କରି ଗୁଣ୍ଡ କରି ଦେବା କିମ୍ବା ବହୁ ସଂଖ୍ୟକ ଅଶ୍ୱ ଏକ ସ୍ଥାନରେ ଦଉଡ଼ିବା

ହାସ୍ ଧୂଳ ଉଡ଼ିବା ବା କୌଣସି କାର୍ଯ୍ୟରେ ବହୁ ସଂଖ୍ୟକ ଲୋକ ଲାଗିଲେ ସେମାନଙ୍କ ଇତସ୍ତତଃ ଯିବା ଆସିବା କରିବାରେ ଧୂଳ ଉଡ଼ିବା ଭାବରୁ 'ଟୂଳା ଉଡ଼ିବା' କଥା ଆସିଅଛି ।)

**ଧୂଳା ଉଡ଼ା(ଡ଼େ)ଇବା**—ଦେ. କ୍ରି—୧ । କୌଣସି କାର୍ଯ୍ୟକୁ ଅତ୍ୟଧିକ
Dhūḻā urḍā(rḍe)ibā ମାତ୍ରାରେ କରିବା—1. To do something excessively.
ধূল ধাপড়া উড়ান
**धूएँ उड़ाना** ( ଯଥା - ସେ ମାଡ଼ରେ ଟୂଳା ଉଡ଼େଇଲା । )
[ଟୂଳା ଉଡ଼ା(ଡ଼େ)ଇଦେବା—ଅନ୍ୟରୂପ] ୨ । ଛିନ୍ନଛତ୍ର କରିବା; ଧ୍ୱଂସନ କରିବା; ବିଧ୍ୱସ୍ତ କରିବା—
2 To devastate; to lay waste.
୩ । କୌଣସି ସ୍ଥାନକୁ ଭାଙ୍ଗି ତହିଁ ଧୂଳସାତ୍ କରିବା—
3 To raze to the ground; to reduce to dust

**ଧୂଳି(ଳୀ)**— ସଂ. ବି ( ଧୂ ଧାତୁ=କମ୍ପିବା+ସଂଜ୍ଞାର୍ଥରେ ଲି; ଲୀ, ବାୟୁର
Dhūḻi(ḻi) ଈଷତ୍ ତାଡ଼ନାରେ ଯାହା କମ୍ପିତ ହୁଏ )—
୧ । ପରାଗ; ଫୁଲ ଆଦିର ରଜଃ—1. Pollen
୨ । ମାଟି ବା ଧୂଳି ପରି ଅକିଞ୍ଚିତ୍କର ପଦାର୍ଥ—
2 Any insignificant thing (like dust).
୩ । ମାଟିର ଚୂର୍ଣ୍ଣ—3. Earth dust; powdered earth.
୪ । ଗୁଣ୍ଡା, ଚୂର୍ଣ୍ଣ, ଚୂନା—4. Powder.
୫ । ଧୂଳି ପରି ମୂଲ୍ୟହୀନ ବସ୍ତୁ—
5. Anything of no value like dust.
୬ । ଚରଣରେଣୁ; ଗୁରୁଜନମାନଙ୍କ ପାଦ ତଳେ ଲାଗିଥିବା ଧୂଳି, ଯାହା ସନ୍ତାନ ବା ସେବକ ଆଦିଙ୍କ ମୁଣ୍ଡରେ ମଙ୍ଗଳ କାମନାର୍ଥ ଦିଆଯାଏ—6. The dust from the feet of elders which is put on the head of children etc for the purpose of bringing them bliss.

ଦେ. ବିଣ—ଧୂଳି ଧୂସରିତ, ମଇଳା—
Soiled with dust; dusty.

**ଧୂଳିଆ**—ଦେ. ବିଣ. ( ସଂ. ଧୂଳି )—
Dhūḻiā ୧ । ଚୂର୍ଣ୍ଣିତ, ଧୂଳି ପରି ଗୁଣ୍ଡା ହୋଇଥିବା—
ধূলিআ, ধুলো 1 Powdered.
**धूलिआ मिटिआ, धूलसा** ( ଯଥା—ଧୂଳିଆ ନାସ । )
୨ । ଧୂଳି ଧୂସରିତ; ଧୂଳି ବୋଳା ହୋଇଥିବା—
2. Rendered grey by being covered over with dust
( ଯଥା—ଧୂଳିଆ ବାବାଜୀ । )
୩ । ଯେ ଧୂଳିରେ ବିଚରଣ କରେ—
3. Grovelling in the dust.
( ଯଥା—ଧୂଳିଆ ଛୁଆ । )
୪ । ମାଟିଆ ରଙ୍ଗର; ଧୂସର ବର୍ଣ୍ଣବିଶିଷ୍ଟ; ଖାକୀ ରଙ୍ଗର
( ଯଥା—ଧୂଳିଆ ଲୁଗା)—4. Grey; khaki
୫ । ଧୂଳିମୟ; ଧୂଳିରେ ପୂର୍ଣ୍ଣ—5. Dusty; full of dust
୬ । ଯେଉଁ ଋତୁ ବା ସମୟରେ ବର୍ଷା ଅଭାବରୁ ବାଟଘାଟରେ ଧୂଳି ଉଡ଼େ—6. (weather or time) In which the roads and lands become dusty; dry (season).
( ଯଥା—ଧୂଳିଆ ଗୁଣ୍ଡିଚା । )
ଦେ. ବି—୧ । ଧୂଳିଆ ଘର ( ଦେଖ )
1. Dhūḻiā ghara ( See )
୨ । ଧୂଳିଆ ଘରେ ଲାଗିଥିବା କାଠର ଖୁଆ ଓ କାଠର ପାରେଣୀ ବତା—2. Wooden rafters and thin ribs used in constructing the upper frame-work of a house.
ପ୍ରାଦେ. (ପୁରୀ) ବି—ଧୂଳିଆ ଗୁମାସ୍ତା ( ଦେଖ )
Dhūḻiā gumāstā ( See )

**ଧୂଳିଆ କଣ୍ଟା**—ଦେ. ବି—ଲୌହ ନିର୍ମିତ କ୍ଷୁଦ୍ର କ୍ଷୁଦ୍ର କଣ୍ଟା—
Dhūḻiā kanṭā Small iron nails or pricks

**ଧୂଳିଆ କରିବା**—ଦେ. କ୍ରି—ଯାହା ଆପଣାର ପ୍ରାପ୍ୟ ନୁହେଁ ତାହା ଆଦାୟ
Dhūḻiā karibā କରିବା—To realise some profit which is not one's own
(ଧୂଳିଆ ମାରିବା—ଅନ୍ୟରୂପ)
দাওঁমাবা [ ଦ୍ର—ଏକ ପଣ୍ଡାର ଯଜମାନ ଯାତ୍ରୀ ସଙ୍ଗେ ଅନ୍ୟ ଏକ
**नफा मारना** ପଣ୍ଡାର ଗୁମାସ୍ତା ଦୂର ଦେଶରୁ ତୀର୍ଥ ପର୍ଯ୍ୟନ୍ତ ଆସି ସେ ଯାତ୍ରୀକୁ ଫୁସୁଲା ଫୁସୁଲି କରି ତାହାକୁ ତାହାର ପାରମ୍ପରିକ ପଣ୍ଡାଠାରୁ ଛଡ଼ାଇ ନେଇ କାଳେ ଆପଣା ପଣ୍ଡା ନିକଟରେ ପହଞ୍ଚାଇବ, ଏହି ଭୟରେ ଯାତ୍ରୀର ପାରିବାରିକ ବା ପୈତୃକ ପଣ୍ଡା ଯାତ୍ରୀଠାରୁ ପାଇବା ଭେଟିରୁ ଧୂଳିଆ ଗୁମାସ୍ତାକୁ ଲାଭରୁ କିଛି ଅଂଶ ଦିଏ । ଉକ୍ତ ଗୁମାସ୍ତାକୁ 'ଧୂଳିଆ' ଓ ତାହାର କାର୍ଯ୍ୟକୁ 'ଧୂଳିଆ କରିବା' ବୋଲାଯାଏ । ଏଥିରୁ 'ଧୂଳିଆ କରିବା' ଏହି କ୍ରିୟାର ଲକ୍ଷଣାର୍ଥ ପ୍ରୟୋଗ ଚଳିଅଛି । ]

**ଧୂଳିଆ ଗୁଣ୍ଡିଚା**—ଦେ. ବି—ଯେଉଁ ଗୁଣ୍ଡିଚା ବା ରଥଯାତ୍ରା ସମୟରେ ଧୂଳି
Dhūḻiā gunḍichā ଉଡ଼ୁଥାଏ, ଅର୍ଥାତ୍ ବର୍ଷା ହେଉ ନ ଥାଏ—
A season of the car festival ( held in the month of Āshārḍha ) when there is no rain; dry car festival season
ଧୂଳିଆ ଗୁଣ୍ଡିଚା କାଦୁଅ ରଥ
ତଷା ବୋଲେ ଧାନ ହାତକୁ ନେମା । କୃଷିବଚନ ।

**ଧୂଳିଆ ଗୁମାସ୍ତା**—ପ୍ରାଦେ. (ପୁରୀ) ବି—ଯେଉଁ ଯାତ୍ରୀ-ଗୁମାସ୍ତା ନିଜର ପଣ୍ଡା
Dhūḻiā gumāstā ଛଡ଼ା ଅନ୍ୟ ପଣ୍ଡାର ଯାତ୍ରୀଙ୍କୁ ସଙ୍ଗରେ ଆଣି ଅନ୍ୟ ପଣ୍ଡା ତରଫରୁ ଉକ୍ତଯାତ୍ରୀଙ୍କୁ ଦେବଦର୍ଶନାଦି କରାଏ ଓ ଯାତ୍ରୀ ତାହାର ପାରମ୍ପରିକ ପଣ୍ଡାକୁ ଦେବା ପାରିତୋଷିକରୁ ଭାଗ ନିଏ—A pilgrim-agent who accompanies pilgrims belonging to some other Panda to a sacred place and makes the necessary arrangements for their visit to the Deity and gets a share out of the perquisites given by them to their own Pandā.

**ଧୂଳିଆ ଘର**—ଦେ. ବି—ଯେଉଁ ଖୁଲଘରର ଛାତ ବା ଲଦନରେ ବାଉଁଶର
Dhūḷiā ghara ରୁଅ ଓ ପାରେଣୀ ବଦଳ। ପଥରବଣ୍ଡିରେ କାଠର
**काठकी कोरोबत्तोका घर** ରୁଅ ଓ ବତା ଲଗିଥାଏ—
A thatched house having its roof or frame planked with wooden rafters and ribs

ଗୃହଟିକୁ ଧୂଳିଆ ଘର ବନାଇ ପକାଇଲଣି । ଫକୀରମୋହନ, ଗଳ୍ପସ୍ବଳ୍ପ ।

[ ଦ୍ର—ଧୂଳିଆ ଘରର ଶେଣୀମାନଙ୍କ ଉପରେ କାଠର ରୁଅମାନ ପଡ଼େ ଓ କାଠ ରୁଅ ଉପରେ କାଠର ପାରେଣୀ ବଉାମାନ ସାନ ସାନ ଲୁହାକଣ୍ଟା ବାଡ଼ିଆ ହୋଇ ଲଗାଯାଏ । ବାଉଁଶରେ ଛଅାର ଘରର ଛାତ ଅପେକ୍ଷା ଧୂଳିଆ ଘରର ଛାତ ସୁନ୍ଦର ଓ ବେଶି ମଜ୍ଭୁତ ଅଟେ ।]

**ଧୂଳିଆ ଜନ୍ଦା**—ଦେ. ବି—ଏକପ୍ରକାର ଚକଚକିଆ କଳା ବା ପାଉଁଶିଆ
Dhūḷiā jandā ଜନ୍ଦା—A kind of big black
ଡେଯେଁ ପୀଁ ପଡ଼େ or grey pismire living in dust.
**विषपोपड़ी चीटी**

ଧୂଳିଆସବୁ ଧୂଳିଅବନ୍ଦା ଭୁଇଁ ଉଳେ ଉଳେ ଥାଏ
କହିଁଲ ମାଇଁସ ଛବେ ପାଇଲେ ଲୁଟି୍ଦନ ଖାଏ ।
ଉତ୍କଳ କାହାଣୀ ।

[ ଦ୍ର—ଏମାନେ ସରୁ ଓ ଲମ୍ବା । ଏମାନଙ୍କ ଦଂଶନ ଅତ୍ୟନ୍ତ ଯନ୍ତ୍ରଣାଦାୟକ । ଏମାନେ ଧୂଳିରେ ବିଚରଣ କରନ୍ତି । ]

**ଧୂଳିଆ ଧୂସର**—ଦେ. ବିଣ. (ସଂ. ଧୂଳିଧୂସରିତ)—ଧୂଳିଧୂସର (ଦେଖ)
Dhūḷiā dhūsara Dhūḷidhūsara (See)
ଧୁଲୋୟଧୂସର

ଧୂଳିଆଧୂସର ହଣେ କୃହର ଧୂଳିଆ । ବୁଦ୍ଧନ୍ଧରୁପଣଗୀତା ।

**धूलधुसर** (ଧୂଳିଆଧୂସ(ଷ୍ର)ର ଅନ୍ୟରୂପ)

**ଧୂଳିଆ ନାଗ**—ଦେ. ବି—ଏକଜାତୀୟ ନାଗସାପ—A kind of
Dhūḷiā nāga small cobra, 3 or 4 inches long,
**शखरासाँप** generally living in dusty places.

[ ଦ୍ର—ଏ ୨।୩ ଆଙ୍ଗୁଳ ଲମ୍ବ । ଏହାର ବିଷ ଉତ୍କଟ । ଏହା ଧୂଳି ଭିତରେ ଥାଏ ଓ ଏହାର ବର୍ଣ୍ଣ ପାଣ୍ଡୁର । ]

**ଧୂଳିଆ ବାଡ଼େଇବା**—ଦେ.କ୍ରି—୧ । ଧୂଳିଆ ଘରର ଛାତର କାଠର ରୁଅ
Dhūḷiā bārdeibā ଉପରେ କାଠର ବତାକୁ ଲୁହାକଣ୍ଟାଦ୍ୱାରା
ଧୂଳିଆ ପିଟିବା } ଅନ୍ୟରୂପ ସଂଲଗ୍ନ କରିବା—1 To drive nails
ଧୂଳିଆ ମାରିବା } into the wooden ribs to attach them to the wooden rafters of a Dhūḷiā ghara.

୨ । (ଲକ୍ଷଣାର୍ଥ) ଧନୀ ହୋଇ ବ୍ୟୟସାପେକ୍ଷ ଧୂଳିଆଘର କରିବା—
2. (figurative) To be rich and be able to construct a costly house with wooden rafters and ribs instead of bamboo ones like ordinary poor people.

**ଧୂଳିଆ ବାବାଜୀ**—ଦେ. ବି—ଯେଉଁ ବାବାଜୀ ବା ବୈଷ୍ଣବ ଦେହରେ
Dhūḷiā bābājī ଭସ୍ମ ବା ଧୂଳି ବୋଳି ହୋଇ ଥାଆନ୍ତି—
**धूरिया बाबाजी** A mendicant who rubs dust or
(ଧୂଳିଆ ବଇଷ୍ଣମ—ଅନ୍ୟରୂପ) ashes on his body.

**ଧୂଳିଆ ଯାତ୍ରୀ**—ପ୍ରାଦେ. (ପୁରୀ) ବି—ଯେଉଁ ଯାତ୍ରୀ ନିଜର ପାରମ୍ପରିକ
Dhūḷiā jātrī ପଣ୍ଡା ଛଡ଼ା ଅନ୍ୟ ପଣ୍ଡା ବା ଅନ୍ୟ ପଣ୍ଡାର ଗୁମାସ୍ତା ସଙ୍ଗେ ତୀର୍ଥକୁ ଆସି ଦେବଦର୍ଶନାଦି କରେ—
A pilgrim who visits a shrine by taking the help of a pilgrim-agent other than his family Paṇḍā's servant

**ଧୂଳି ଉଡ଼ା(ଡ଼େ)ଇବା**—ଦେ. କ୍ରି. (ସଂ. ଧୂଳି+ଉଡ୍ଡୟନ)—
Dhūḷi urḍā(rḍe)ibā ୧ । ଧୂଳିମୟ ରାସ୍ତାରେ ଗୋଡ଼ବାଦ୍ୱାରା
ଧୁଲାଉଡ଼ାନ ରାସ୍ତାର ଧୂଳିକୁ ପାଦ ବା ଖୁରର ଆଘାତଦ୍ୱାରା
**धूलउड़ाना** ପବନରେ ସଞ୍ଚାଳିତ କରିବା—1. To raise the dust from a dusty road by the tread of the feet or hoofs.

ଧନ ଉଡାଇଣ ଦାଣ୍ଡେ କରୁ ହମ୍ବାରବ
ଯାଉଛନ୍ତି ଗୋଠୁଲେ ଗୋଠରୁ ବାହୁଡ଼ି । ମଧୁସୂଦନ, ଛନ୍ଦମାଳା ।

୨ । ଯେଉଁଆଡ଼ୁ ପବନ ବହୁଛି ସେହିଆଡ଼ୁ କୌଣସି ବ୍ୟକ୍ତି-ଆଡ଼କୁ ବା ଉପରକୁ ଧୂଳିକୁ ସଞ୍ଚାଳିତ କରିବା—
1. To cause dust to be blown towards a person by wind.

୩ । ଧୂଳା ଉଡ଼ାଇବା(ଦେଖ)—3. Dhūḷā urḍaibā (See)

୪ । (ପବନ ବା ବତାସ) ଭୂପୃଷ୍ଠରେ ଥିବା ଧୂଳିକୁ ଶୂନ୍ୟକୁ ସଞ୍ଚାଳିତ କରିବା—4. (the wind or tempest) To raise the dust off the ground.

**ଧୂଳି ଉଡ଼ିବା**—ଦେ. ବି—୧ । ଧୂଳା ଉଡ଼ିବା (ଦେଖ)
Dhūḷi urḍibā 1. Dhūḷā urḍibā (See)
ଧୁଲାଉଡା ୨ । ଭୂପୃଷ୍ଠରୁ ଧୂଳିପଟଳ ପବନ ବା ମନୁଷ୍ୟର
**धूलउड़ना** ପାଦ ବା ଅଶ୍ୱାଦିର ଖୁରଦ୍ୱାରା ସଞ୍ଚାଳିତ ହୋଇ ଶୂନ୍ୟରେ ଉଡ଼ିବା—2. The raising of dust from the surface of the earth by the wind or feet or hoofs of animals.

**ଧୂଳି(ଳୀ) କଦମ୍ବ**—ସଂ. ବି—କେଳି କଦମ୍ବ, ୧ (ଦେଖ)
Dhūḷi(ḷī) kadamba Keḷi kadamba 1 (See)

**ଧୂଳିକା**—ସଂ. ବି. ସ୍ତ୍ରୀ (ଧୂଳି+ସାଦୃଶ୍ୟାର୍ଥେ. କ+ସ୍ତ୍ରୀ. ଆ; ଯାହା ଆକାଶରେ
Dhūḷikā ଧୂଳି ସଦୃଶ ଦିଶେ)—କୁଜ୍‌ଝଟିକା; କୁହୁଡ଼ି—
Mist; fog.

**ଧୂଳି କୁଟ୍ଟିମ**—ସଂ. ବି. (ଧୂଳି+କୁଟ୍ଟିମ)—୧ । କର୍ଷିତ କ୍ଷେତ୍ର; ଚଷା
Dhūḷi kuṭṭima ହୋଇ ଥିବା କ୍ଷେତ—1. A ploughed
(ଧୂଳି କେଦାର—ଅନ୍ୟରୂପ) field.

୨ । ମାଟିର ସ୍ତୂପ ବା କାନ୍ଥ—
2. A mound or rampart of earth (Apte).

**ଧୂଳି ଖେଳ**—ଦେ. ବି.—୧ । ଧୂଳି ସାହାଯ୍ୟରେ ପିଲାମାନଙ୍କର
Dhūḷi kheḷa ଖେଳିବା ନାନାପ୍ରକାର କ୍ରୀଡ଼ା—1. Child's
ଧୂଲୋ ଖେଲା play in which children raise sem-
**धूरिआ मिटिआ खेल** blance of houses with dust.

୨ । (ଲକ୍ଷଣାର୍ଥ) ଅବାସ୍ତବ କଥା—
2. (figurative) Any unreal affair.

୩ । (ଲକ୍ଷଣାର୍ଥ) ପିଲାଙ୍କ ଧୂଳିଖେଳ ପରି ଅସ୍ଥାୟୀ ବିଷୟ—
3. (figurative) Any unsubstantial or short-lived matter.

ଧୂଳି ଗୁଚ୍ଛକ—ସ. ବି (୬ଷ୍ଠୀ ତତ୍; ଧୂଳି+ଗୁଚ୍ଛକ)—ଅବିର; ଫଗୁ—
Dhūli guchchhaka A red powder (made from the root of a wild ginger).

ଧୂଳି ଗୁଞ୍ଜା(ଞ୍ଜେ)ଇ—ଦେ. ବି.—ପିଲାମାନଙ୍କର ଧୂଳି ସାହାଯ୍ୟରେ
Dhūli gunjā (nje)i ଖେଳିବା ଏକପ୍ରକାର ଖେଳ—
A kind of child's play done with the help of dust.

ଧୂଳି ଗୁଣ୍ଡୁରି—ଦେ. ବି.—ଏକଜାତୀୟ ପୋକ; ଗୁଣ୍ଡୁରିପୋକ—
Dhūli gunduri A kind of worm boring into
ঘুর্ঘুরে পোকা dust; sand-borer.
गुड्डु [ଦ୍ର—ଏମାନେ ଧୂଳିରେ ଗାତ କରି ରହନ୍ତି ।]

ଧୂଳି ଗୋଡ଼—ଦେ. ବି.—ଅନାବୃତ ପାଦ ଦ୍ୱାରା ଭୂଇଁରେ ଯିବା ଆସିବା
Dhūli gorda ଯୋଗୁଁ ଧୂଳି ଲାଗିଥିବା ଗୋଡ଼—Feet soiled
ধুলা পা with dust on account of walking
धूरिअया पाओं on dusty road with bear feet.

ଧୂଳି ଘର—ଦେ. ବି.—୧ । ପିଲାମାନଙ୍କର ଧୂଳି ସାହାଯ୍ୟରେ କରିବା
Dhūli ghara ଖେଳଘର—1. A doll's house made
ধুলাঘর by children with dust
धूलीघर ୨ । ପିଲାମାନଙ୍କ ଧୂଳି ଘର ପରି ଅବାସ୍ତବ ଓ ଅସ୍ଥାୟୀ ବିଷୟ—2 Any unreal or short-lived thing like children's doll-house.
୩ । ପିଲାଙ୍କ ଖେଳଘର ପରି ସଂସାରର ଗାର୍ହସ୍ଥ୍ୟ କ୍ରିୟା—
3. Worldly affairs compared to children's play-house
(ଯଥା—ଦଇବ ମୋ ଧୂଳିଘର ଭାଙ୍ଗି ଦେଲା ।)

ଧୂଳି ଝାଡ଼ିବା—ଦେ. କ୍ରି.—୧ । ଶିଶୁ ଆଦିଙ୍କ ଧୂଳିଧୂସରିତ ଦେହରୁ ବା
Dhūli jhardiba ଧୂଳିଧୂସରିତ କୌଣସି ବସ୍ତୁରୁ ବସ୍ତ୍ରାଦି
ধূলি ঝাড়া ସାହାଯ୍ୟରେ ଧୂଳି ଅପସାରିତ କରିବା—2. To dust;
धूल झाड़ना to remove dust from a dust-smeared body or thing by beating off the dust.
୨ । କୌଣସି ବ୍ୟକ୍ତିର ପଦରଜଃ ଶିଶୁଆଦିଙ୍କ ମୁଣ୍ଡରେ ଛିଞ୍ଚି ଦେବା—2. To sprinkle the dust of one's feet on the head of a youngster.

ଧୂଳି ଦେବା—ଦେ. କ୍ରି.—୧ । ଶିଶୁ, ବାଳକ, ସେବକ ଆଦିଙ୍କ ମଙ୍ଗଳ
Dhūli debā କାମନାର୍ଥ ସେମାନଙ୍କ ମୁଣ୍ଡରେ (ଗୁରୁଜନ) ପଦଧୂଳି [ଧୂଳି ପକା(କେ)ଇବା—ଅନ୍ୟରୂପ] ପକାଇବା; ଚରଣଧୂଳି ପ୍ରଦାନ କରିବା—1. To lay the dust of one's feet on the head of one's younger, wishing him bliss
୨ । (ଆଖିରେ) ଧୂଳି ଦେବା; ଅନ୍ୟ ବ୍ୟକ୍ତିଙ୍କୁ ଆଖି ଆଗରେ ଠକାଇବା—2. To throw dust in the eyes; to deceive a person in his very face.
୩ । (ଲକ୍ଷଣାର୍ଥ) କୌଣସି ବ୍ୟକ୍ତିର ଜୀବିକା ଉପାର୍ଜନ ପନ୍ଥାରେ ବାଧା ଦେବା, ଭାତରେ ଧୂଳି ଦେବା—
3. (figurative) To put obstacles in the way of one's means of living.

ଧୂଳି ଧୂସର—ସ. ବିଣ. ପୁଂ (୩ୟା ତତ୍; ଧୂଳି+ଧୂସର)—ଧୂଳି ବୋଳି
Dhūli dhūsara ହୋଇ ଥିବାରୁ ଧୂସରବର୍ଣ୍ଣ; ମାଟିଆ—Grey
ধুলিআ with dust; soiled with a layer of dust
धुलिआ मिटिआ, धुरिसे भरा over the body.
(ଧୂଳିଧୂସରା, ଧୂଳି ଧୂସରା(ପୁଂ); ଧୂଳିଧୂସରା, ଧୂଳିଧୂସୁରା (ସ୍ତ୍ରୀ)–ଦେଶଜ ରୂପ)
(ଧୂଳି ଧୂସରା—ସ୍ତ୍ରୀ)

ଧୂଳି ଧୂସରିତ—ସ. ବିଣ. ପୁଂ (୩ୟା ତତ୍; ଧୂଳି+ଧୂସରିତ)—ଧୂଳିରେ
Dhūli dhūsarita ଆବୃତ ହେବା ଯୋଗୁଁ ପାଂଶୁବର୍ଣ୍ଣ—
(ଧୂଳିଧୂସରିତା—ସ୍ତ୍ରୀ) Soiled with dust; smeared over with dust; dusty.

ଧୂଳି ଧ୍ୱଜ—ସ. ବି (ବହୁବ୍ରୀହି; ଧୂଳି+ଧ୍ୱଜ)—୧ । ପବନ—
Dhūli dhwaja 1. The wind.
୨ । ଘୂର୍ଣ୍ଣିବାୟୁ; ଘଣ୍ଟିଆ ଭୂତ—2. Whirl-wind

ଧୂଳି ପଟଳ—ସ ବି. (୬ଷ୍ଠୀ ତତ୍; ଧୂଳି+ପଟଳ)—ଧୂଳି ଉଡ଼ି ମେଘ
Dhūli patala ପରି ଦେଖାଯିବା ଘନ ଧୂଳିରାଶି—
A cloud of dust.

ଧୂଳି ପୁଷ୍ପିକା—ସ. ବି. (ବହୁବ୍ରୀହି; ଧୂଳି+ପୁଷ୍ପିକା; ଏଥିର ଫୁଲ ମଧ୍ୟରୁ
Dhūli pushpikā ଝଡ଼ାରେ ଧୂଳି ପରି ବହୁତ ପରାଗ ଥିବାରୁ)-
କିଆ ଗଛ; କେତକୀ ଗଛ—Screwpine; Pandanus Odoratissimus.

ଧୂଳି ବତା—ଦେ ବି—ଛପରର ଛାଆଣି ଘରେ, ଓ ଧୂଳିଆଘରେ ରୁଅ ଉପରେ
Dhūli batā ଲଗାଯିବା ଦୁଇ ଅଙ୍ଗୁଳ ଓସାର ଓ ଅଧଅଙ୍ଗୁଳ ବହଳ କାଠର ସରୁଆ ବତା—Thin wooden ribs of a thatch-frame over which earthen tiles are laid instead of straw or of a
(ଧୂଳିଆବତା—ଅନ୍ୟରୂପ) Dhūliā house.

ଧୂଳିମୟ—ସ. ବିଣ. (ଧୂଳି+ପ୍ରାଚୁର୍ଯ୍ୟାର୍ଥେ ମୟ)—
Dhūlimaya ୧ । ଧୂଳିଦ୍ୱାରା ଆଚ୍ଛନ୍ନ—
1. Covered over with dust.
୨ । ଧୂଳିଆ, ଧୂଳିପୂର୍ଣ୍ଣ—2. Dusty.

ଧୂଳି ମରିବା—ଦେ. ବି.—ସାମାନ୍ୟ ବର୍ଷାଦ୍ୱାରା ବା ପାଣି ଛିଞ୍ଚା ହେବା
Dhūli maribā ଦ୍ୱାରା ଭୂପୃଷ୍ଠରେ ଉଡ଼ୁଥିବା ଧୂଳି ଆଉ ଉଡ଼ି ନ ପାରି ବସି ଯିବା—The settling of the dust over the surface of the ground by a light shower of rain or by the sprinkling of water over it.

ଧୂଳି ମଳି—ଦେ. ବି. (ସଦ୍ଭବ; ସ. ଧୂଳି+ମଳ)—
Dhūli mali ୧ । ଧୂଳି ଓ ମଳ—1 Dust and dirt.
ধুলা ময়লা ୨ । ଧୂଳି ପଡ଼ିବା ଯୋଗୁଁ ଜାତ ହେବା ମଇଳା—
धुरिमइलो 2. Soil due to dust.
୩ । (ଲକ୍ଷଣାର୍ଥ) ସାମାନ୍ୟମାତ୍ର ସନ୍ଦେହ—
3. (figurative) The slightest doubt.
(ଯଥା—ତାଙ୍କ କଥାରେ ଧୂଳି ମଳି ନାହିଁ ।)

୪ । ସାମାନ୍ୟ ମାତ୍ର ଗୋଳମାଳ—
4. Any little confusion.
୫ । ସାମାନ୍ୟ ମାତ୍ର କଳଙ୍କ—
5. A little blemish
୬ । ସାମାନ୍ୟ ମାତ୍ର ମଇଳା—
6. A speck of dirt

**ଧୂଳି ମାଟି**—ଦେ. ବି. ( ସହଚର; ସଂ. ଧୂଳି+ମୃତ୍ତିକା )—
Dhūli māṭi ୧ । ଧୂଳି ଓ ମାଟି—1. Dust and earth
ধুলামাটি ୨ । ଧୂଳି ଓ ମାଟି ପରି ମୂଲ୍ୟହୀନ ବସ୍ତୁ—
**धुल्लआ मिट्टिआ** 2. A thing of no value like dust and earth.
( ଯଥା—ସେ ତା ବାପର ସାଇତା ଧନକୁ ଧୂଳି ମାଟି ପରି ଉଡ଼ାଇ ଦଉଛି । )

**ଧୂଳିର**—ଦେ. ବିଣ. ( ଧୂଳି ଶବ୍ଦର ୬ଷ୍ଠୀ ବିଭକ୍ତି ବିଶେଷଣରୂପେ
Dhūḷira ବ୍ୟବହୃତ )—୧ । ଧୂଳିରେ ନିର୍ମିତ—
ধূলার 1. Made of dust.
**धुलका** ୨ । ଧୂଳି ପରି ଅକିଞ୍ଚିତ୍କର—
2. Insignificant like dust.
ଧୂଳିର ଏ ପର କଳେବର—ମଧୁସୂଦନ. କବିତାବଳୀ ।
୩ । ଯାହା ଦିନେ ଧୂଳିସାତ୍ ହେବ—
3. Which will one day be reduced to dust.

**ଧୂଳିରେ ମିଶିବା**—ଦେ. କ୍ରି—୧ । ଧୂଳିସାତ୍ ହେବା—
Dhūḷire misibā 1. To turn into dust.
ধুলায় মিশে যাওআ ୨ । ବିନଷ୍ଟ ହେବା—
**धुलमे मीलना** 2. To be destroyed.
( ଧୂଳିରେ ମିଶିଯିବା—ଅନ୍ୟରୂପ ) ୩ । ମରିବା—3. To die.
[ ଧୂଳିରେ ମିଶା(ଶେ)ଇବା—ସକର୍ମକରୂପ]

**ଧୂଳି ସରସର**—ଦେ. ବିଣ—ଧୂଳିଧୂସର ( ଦେଖ )
Dhūḷi sarasara Dhūḷidhūsara ( See )

**ଧୂଳିସାତ୍**—ସଂ. ବିଣ. ( ଧୂଳି+ପରିଣତାର୍ଥେ ସାତ୍; ତୁଳ. ଭସ୍ମସାତ୍ )—
Dhūḷisāt ୧ । ଧୂଳିରେ ପରିଣତ—
1. Reduced or turned into dust
୨ । ଭାଙ୍ଗି ଯାଇ ଧୂଳି ସଙ୍ଗେ ମିଶିଯିବା (ଘରଆଦି)—
2. Razed to dust.

**ଧୂଳିସାଟ(ଥ)**—ଦେ. ( ପଦ୍ୟ ) ବିଣ ( ସଂ.—ଧୂଳିସାତ୍ )—ଧୂଳିରେ
Dhūḷisāṭa(tha) ପରିଣତ—Reduced to dust.
... ଦେଖାଇ ... ଧୂଳିସାଥ—... ମହାଭାରତ. ଦ୍ରୋଣ ।

**ଧୂଷ୍** ( ଧାତୁ )—ସଂ. ଶୋଭିତ କରିବା—
Dhūṣ ( root ) To adorn; to embellish.
( ଧୂଚ୍; ଧୂଶ୍—ଅନ୍ୟରୂପ )

**ଧୂସ୍**—ଦେ. ଅ. ( ଧ୍ୱନ୍ୟନୁକରଣ )—ଭୁସ୍; କୌଣସି କୋମଳ ବସ୍ତୁର
Dhūs ହଠାତ୍ ପତନ ଶବ୍ଦ—The sound of a soft
ভুস খুস massy thing falling suddenly.

**ଧୂସ**—ଦେ. ବି. ( ସଂ. ତୁଷ )—ଧାନ ଆଦି ଶସ୍ୟରୁ ବା କୁଟା ଆଦିରୁ
Dhūsa ଉଡ଼ିବା ଧୂଳି ପରି ସୂକ୍ଷ୍ମ ଅଂଶ—Small particles
তুষ of grain-dust; particles of chaff or straw
**भुस;पटपर** coming out of grains or dry plants when handled; refuse or dust of corn.

**ଧୂସର** ସଂ. ବିଣ ( ଧୂ ଧାତୁ=କମ୍ପିବା+କର୍ତ୍ତୃ ସର )—
Dhūsara ୧ । ଈଷତ୍ ପାଣ୍ଡୁର; ପାଉଁଶିଆ ରଙ୍ଗ; ଧୂଳିଆ, ମାଟିଆ—
ধূসর } ସ୍ତ୍ରୀ 1. Greyish; dust-coloured; ashy,
ধূসরা } khaki-coloured.
୨ । ଧୂଳି ବୋଳା ହୋଇଥିବା—
2. Dusty; smeared with dust.
୩ । ମଳିନ; ମଳିଆ—3 Dirty, filthy
ଦେ. ବିଣ.( ଲକ୍ଷଣାର୍ଥ )—ଅପମାନ ବା ଦୁଃଖଯୁକ୍ତ, ଚିନ୍ତିତ—
( figurative ) Grieved; troubled.
ଧୂଳି ହୋଇ ବଳସ୍ଥାନ, ଧୂସର ହୋଇବା ମନ
ଧୋଇ ଚନ୍ଦ୍ର-କଳଙ୍କ ସମାନ ନାଳ—କବିସୂର୍ଯ୍ୟ ବଳଦେବରଥ. ଧ ...ଲି ।
ସଂ. ବି—୧ । ପାଣ୍ଡୁରବର୍ଣ୍ଣ—1. Gray colour
୨ । ପାଣ୍ଡୁର ବର୍ଣ୍ଣର କୌଣସି ବସ୍ତୁ—
2 Any thing of grey colour.
୩ । ଉଷ୍ଟ୍ର; ଓଟ—3 Camel
୪ । ଗଧ—4. An ass.
୫ । କପୋତ—5 Dove.
୬ । ବଣିଆଁ—6. Goldsmith
୭ । ତେଲି—7. Oilman.
[ ଦ୍ର—ବଣିଆଁ ଓ ତେଲିଙ୍କ ଦେହ ପାଣ୍ଡୁର ବର୍ଣ୍ଣ ହୁଏ ।
ତେଲିର ଦେହ ତେଲିଆ ହୋଇଥାଏ; ଧୂଳି ଲାଗି ତାର ଦେହ ପାଣ୍ଡୁର
ହୁଏ । ପାଉଁଶ ଉଡ଼ି ବଣିଆମାନଙ୍କ ଦେହ ମଧ୍ୟ ଧୂସର ଦେଖାଯାଏ ।]

**ଧୂସରଧୂମା**—ଦେ. ବିଣ. ପୁଂ—ଧୂସରଧୂମା ( ଦେଖ )
Dhūsaradhūmā Dhūsar-dhumā ( See )
( ଧୂସରଧୂମୀ—ସ୍ତ୍ରୀ ) [ଧୂସର(ରୁ)ଧୂମା—ଅନ୍ୟରୂପ]

**ଧୂସରଧୂସା**—ଦେ. ବିଣ. ପୁଂ—ଧୂସରଧୂସା ( ଦେଖ )
Dhūsaradhūsā Dhūsur-dhūsā ( See )
( ଧୂସରଧୂସୀ—ସ୍ତ୍ରୀ )

**ଧୂସରା**—ଦେ. ବିଣ. ପୁଂ. ( ସଂ ଧୂସର )—
Dhūsarā ୧ । ପାଂଶୁବର୍ଣ୍ଣ; ଧୂସରବର୍ଣ୍ଣ; ପାଉଁଶିଆ—
**धुसरा** 1 Grey-coloured.
( ଧୂସରା—ଅନ୍ୟରୂପ ) ୨ । ଧୂଳିଆ—2 Dusty.
ଧୂସରୀ } ସ୍ତ୍ରୀ ୩ । ମଳିଆ, ମଳିନ—3. Soiled.
ଧୂସୁରୀ }
ଦେ. ବି—କସରା ରଙ୍ଗର ଏକପ୍ରକାର ଧାନ—
A kind of greyish paddy.

**ଧୂସରା(ରେ)ଇବା**—ଦେ. କ୍ରି. ( ସଂ. ଧୂସର )—ଧୂସରିବା ( ଦେଖ )
Dhūsarā(re)ibā Dhūsāribā ( See )

**ଧୂସରା କେନ୍ଦୁ**—ଦେ. ବି. ( ସଂ. ଧୂସର ଓ ତିନ୍ଦୁକ )—
Dhūsarā kendu ମାକଡ଼ କେନ୍ଦୁ ( ଦେଖ )
( ଧୂସରାକେନ୍ଦୁ—ଅନ୍ୟରୂପ ) Mākarḍa kendu ( See )

ଧୂସରା ଧୂସରି—ଦେ. ବି ଓ ବଣ—ପରସ୍ପର ଉପରକୁ ଧୂଳି ଫୋପଡ଼ା
Dhūsarā dhūsari ଫୋପଡ଼ି ହୋଇ ଧୂଳିଧୂସରିତ
धुलि फेंकाफेंकी ହେବା—Soiling each other by
ধুলো ফেলফেলি হওয়া throwing dust.

ଧୂସରୀ—ପ୍ରାଦେ. ( ସିଂହଭୂମ ) ବି—ଏକପ୍ରକାର ଧାନ—
Dhūsarī A species of paddy.
ସଂ. ବଣ—'ଧୂସର'ର ସ୍ତ୍ରୀଲିଙ୍ଗ—
Feminine of Dhūsara.
ସଂ. ବି. ସ୍ତ୍ରୀ—କିନ୍ନରୀବିଶେଷ ( ଦ୍ର. ଶବ୍ଦସାଗର )—
Name of a Kinnarī.

ଧୂସରିତ—ସ ବଣ. ପୁଂ. (ଧୂସର+ଯୁକ୍ତାର୍ଥରେ ଇତ)—
Dhūsarita ୧ । ଧୂସରବର୍ଣ୍ଣ ରଞ୍ଜିତ—1. Made grey;
(ଧୂସରିତା—ସ୍ତ୍ରୀ) turned grey; turned dusty-white.
୨ । ପାଣ୍ଡୁର—2 Greyish.
୩ । ଧୂଳିରେ ଆବୃତ—
3. Smeared with dust; dusty

ଧୂସରିମା —ସଂ. ବି. (ଧୂସର+ଭାବାର୍ଥରେ ଇମନ୍)—ପାଣ୍ଡୁରତା—
Dhūsarimā Greyish tint; the state of being grey.

ଧୂସା—ଦେ. ବଣ. ପୁଂ—ଭୂସା; ଅତି ସ୍ଥୂଳକାୟ—
Dhūsā Very corpulent
ଧୁମସା ଦେ. ବି—୧ । (ସଂ. ଦ୍ବିଶାଟ) ଲୋମ; ମୋଟା ଶୀତବସ୍ତ୍ର;
धुमसा ଉର୍ଣ୍ଣାବସ୍ତ୍ର—1. A coarse woollen wrapper
(ଧୂସୀ—ସ୍ତ୍ରୀ) ୨ । ଦୁଃଶାସନର ଅନାଦରାର୍ଥକ ଡାକନାମ—
ଧୁସା 2. A name for calling Duḥśāsan in
धुसा contempt
ପ୍ରାଦେ. (ଗଡ଼ଜାତ ଓ ଜୟପୁର) ବି—ବଡ଼ ମୂଷା—
Big mouse.

ଧୂସାଧୂସି—ଦେ. ବି ଓ ବଣ—ଧୂପ୍ସା ଧୂପ୍ସି (ଦେଖ)
Dhūsādhūsi Dhup-sā dhup-si (See)

ଧୂସାରିବା—ଦେ. କ୍ରି. (ସ. ଧୂସର; 'ଧୂସରିବା' କ୍ରିୟାର ଣିଜନ୍ତରୂପ)—
Dhūsāribā ୧ । କୌଣସି ପଦାର୍ଥକୁ ଧୂଳିରେ ଘୋଷାରିବା—
(ଧୂସାରେଇବା—ଅନ୍ୟରୂପ) 1 To drag a thing through
घसीटना dust.
୨ । କୌଣସି ପଦାର୍ଥକୁ ଧୂଳିଧୂସର କରିବା—
2. To cause a thing to become dusty.

ଧୂସୁମା—ଦେ. ବଣ. ପୁଂ—ଧୂମ୍ସା (ଦେଖ)
Dhūsumā Dhūm-sā (See)
(ଧୂସୁମୀ—ସ୍ତ୍ରୀ)

ଧୂସୁରଧୂମା—ଦେ. ବଣ. (ସ. ଧୂସର)—୧ । ସ୍ଥୂଳକାୟ; ମୋଟା; ଗେଧା
Dhūsur-dhumā (ବ୍ୟକ୍ତି)—1. Corpulent (person).
(ଧୂସୁରୁଧୂମା—ଅନ୍ୟରୂପ) ୨ । ଧୂଳିଧୂସରିତ ଓ ମୋଟା—
(ଧୂସୁରଧୂମୀ—ସ୍ତ୍ରୀ) 2 Smeared over with dust
धुरधुसरा and fat.

ଧୂସୁରୁଧୂସା—ଦେ. ବଣ. ପୁଂ. (ସ. ଧୂସର) —ଧୂଳିଧୂସରିତ; ଦେହସାରା
Dhūsur-dhūsā ଧୂଳି ବୋଳା ହୋଇଥିବା (ବ୍ୟକ୍ତି)—
(ଧୂସୁରୁଧୂସା—ଅନ୍ୟରୂପ) Smeared over with dust.
(ଧୂସୁରଧୂସୀ —ସ୍ତ୍ରୀ)

ଧୂସୁରିବା—ଦେ. କ୍ରି. (ସ. ଧୂସରିତ)—ତଳେ ଘୁସୁରି ଧୂଳିଧୂସରିତ
Dhūsuribā ହେବା, ଧୂଳିରେ ଘୁସୁରିବା—To be soiled
(ଧୂସରିବା—ଅନ୍ୟରୂପ) with dust by grovelling in it.
घसियाना

ଧୂସ୍ତର—ସ. ବି—ଧୁସ୍ତୁର (ଦେଖ)
Dhūstara Dhustara (See)

ଧୂସ୍ତୁର—ସ. ବି—ଧୁସ୍ତୁର (ଦେଖ)
Dhūstura Dhustara (See)
(ଧୂସ୍ତୂର—ଅନ୍ୟରୂପ)

ଧୃ (ଧାତୁ)—ସ—ଧରିବା—To hold.
Dhṛu (root) [ ଦ୍ରୁ—ଏହାର ବାଙ୍ଗଳା ଅର୍ଥ କାମଲେ 'ଧରିବା' କ୍ରିୟା ତଳେ ଅର୍ଥ ଦ୍ରଷ୍ଟବ୍ୟ । ]

ଧୃକ୍—ସ. ବଣ. (ଅନ୍ୟ ପଦ ପରେ ଯୁକ୍ତ, ଧୃ ଧାତୁ+କ୍ୱିପ୍)—
Dhṛuk ଯେ ଧରିଥାଏ; ଧାରଣକାରୀ—
Bearing; carrying; holding; assuming.
(ଯଥା—କାଳରୂପ ଧୃକ୍ ।)

ଧୃକ - ଦେ. ବଣ. (ସ. ଧୃକ୍)—ଧାରକ, ଧାରଣକାରୀ—
Dhṛuka Holding; one who holds anything.
ବଜ୍ର କବଚ ଧୃକ ଭଞ୍ଜଦେବ ଶାସ୍ତ୍ରକ କାର୍ମୁକ ଶରତ ସାୟକ ।
ଉ. ବୈଦେହୀଶବିଳାସ ।

ଧୃତ୍ ସ. ବଣ. (ଅନ୍ୟ ପଦ ପରେ ଯୁକ୍ତ; ଧୃ ଧାତୁ+ଶତୃ)—
Dhṛut ଧୃକ୍ (ଦେଖ)
Dhṛuk (See)

ଧୃତ —ସ. ବଣ. ( ଧୃ ଧାତୁ+କର୍ମ. ତ )—୧ । ହାତରେ ଧରା ହୋଇ
Dhṛuta ଥିବା—1. Held, caught; seized by the
(ଧୃତା—ସ୍ତ୍ରୀ) hand.
୨ । ଗୃହୀତ—2. Taken; accepted.
୩ । ସ୍ଥାପିତ—3 Placed; deposited
୪ । ପିନ୍ଧା ଯାଇଥିବା; ପରିହିତ—4 Worn; put on.
୫ । ଆଲୋଚିତ; ବିବେଚିତ—
5. Considered; discussed.
୬ । ଗିରଫ୍ କରାଯାଇ ଥିବା—6 Arrested.
୭ । ବାହିତ—7. Borne; carried.
୮ । ପାଳିତ; ଆଚରିତ—8. Maintained; observed.
୯ । ଅବରୁଦ୍ଧ—9. Beseiged.
୧୦ । ରକ୍ଷିତ—10. Preserved; kept.
୧୧ । ଅଭ୍ୟସ୍ତ—11. Practised; habituated.
୧୨ । ଓଜନ କରା ଯାଇ ଥିବା—12. Weighed.
୧୩ । ଅଧିକୃତ—13. Possessed.
୧୪ । ଅବଲମ୍ବିତ—14. Resorted to.

୧୫ । (+କର୍ତ୍ତୃ. ତ)—ସ୍ଥିତ—15. Situated.
୧୬ । ପତିତ (ହି ଶ)—Fallen.
୧୭ । ନିଶ୍ଚିତ—17 Settled, ascertained.
ସଂ ବି. (+ଭାବ ତ)—୧ । ଧାରଣ—
1. Containing; holding
୨ । ଗ୍ରହଣ—2. Acceptance.
୩ । ତ୍ରୟୋଦଶ ମନୁଙ୍କର ଜନୈକ ପୁତ୍ର—
3 A son of the thirteenth Manu.
୪ । ଦ୍ରୁହ୍ୟୁ ବଂଶୀୟ ଧର୍ମଙ୍କ ପୁତ୍ର, ନୃପବିଶେଷ (ଭାଗବତ)—
4. The name of a king of ancient India
୫ । ଏକପ୍ରକାର ଯୁଦ୍ଧ—
5. A mode of fighting (Apte)
ଦେ (ପଦ୍ୟ) ବିଣ.—ଧାରଣକାରୀ —
One who puts on anything; wearing
ରଘୁନାଥ ହେ, ସନଶ୍ୟାମ ପୀତବାସ ଧୃତ ହେ ।
ରଘୁନାଥ. ବଡ଼ଚଢ଼ରାମାୟଣ ।

**ଧୃତ କରିବା**—ଦେ କ୍ରି. (ସଂ. ଧୃ ଧାତୁ -ଧରିବା, ଗିରଫ୍‌ଦାର କରିବା)—
Dhṛuta karibā To catch; to seize; to arrest.
ଧରା ପକଡ଼ିବା

**ଧୃତ ଦଣ୍ଡ**—ସଂ. ବିଣ.ପୁଂ ବହୁବ୍ରୀହି; ଧୃତ ହୋଇଅଛି ଦଣ୍ଡ ଯାହାଦ୍ୱାରା)-
Dhṛuta daṇḍa ୧ । ରାଜଦଣ୍ଡଧାରୀ —1 Holding a sceptre.
୨ । ଯଷ୍ଟିଧାରୀ—2 Holding a stick.
୩ । ଦଣ୍ଡଦାତା—3. Inflicting punishment.
୪ । ଦଣ୍ଡିତ—4. Punished; convicted.

**ଧୃତ ଦୀଧିତି**—ସଂ. ବି.—(ବହୁବ୍ରୀହି; ଧୃତ+ଦୀଧିତି)—ଅଗ୍ନି—
Dhṛuta dīdhiti Fire.

**ଧୃତ ବର୍ମା**—ସଂ. ବିଣ. ପୁଂ (ବହୁବ୍ରୀହି; ଧୃତ+ବର୍ମନ୍; ୧ମା. ୧ବ)—
Dhṛuta barmā କବଚ ଦ୍ୱାରା ରକ୍ଷିତଦେହ; ବର୍ମଧାରୀ—
(ଧୃତବର୍ମ୍ମା—ଅନ୍ୟରୂପ) Armoured; mailed.
ସଂ. ବି.—ତ୍ରିଗର୍ତ୍ତଦେଶର ରାଜକୁମାର—
Name of a prince of ancient India.
[ଦ୍ର—ଯୁଧିଷ୍ଠିର ଅଶ୍ୱମେଧ କରିବା ପୂର୍ବରୁ ଯେଉଁ ଘୋଡ଼ାକୁ ଛାଡ଼ି ଦେଇ ଥିଲେ ତାକୁ ଏ ବାନ୍ଧି ରଖିବାରୁ ଅର୍ଜ୍ଜୁନ ଏହାଙ୍କ ସଙ୍ଗେ ଯୁଦ୍ଧ କରିଥିଲେ । ହି ଶ]

**ଧୃତବ୍ରତ**—ସଂ. ବିଣ. ପୁଂ. (ବହୁବ୍ରୀହି; ଧୃତ+ବ୍ରତ)—୧ । ବ୍ରତ
Dhṛuta brata ଧାରଣକାରୀ; ଗୃହୀତ ବ୍ରତ (ପୁରୁଷ)—
(ଧୃତବ୍ରତା—ସ୍ତ୍ରୀ) 1. One who has taken a religious vow.
୨ । ଅନୁଗତ—2. Attached; devoted (Apte).
୩ । ଭଙ୍ଗିଷ୍ଣୁ ନିୟମର ଅନୁବର୍ତ୍ତୀ—
3. Of a fixed law or order (Apte).
ସଂ. ବି—୧ । ଇନ୍ଦ୍ର—1. Indra (Apte).
୨ । ବରୁଣ—2. Baruna, The Hindu God of the ocean (Apte).
୩ । ଅଗ୍ନି—3 Fire (Apte).
୪ । (ନାମ) ପୁରୁବଂଶୀୟ ଜୟଦ୍ରଥଙ୍କ ପୁତ୍ର ଓ ବିଜୟଙ୍କ ପୌତ୍ର (ହି ଶବ୍ଦସାଗର)—
4. Name of a king of ancient India

**ଧୃତରାଷ୍ଟ୍ର**—ସଂ. ବି. ପୁଂ (ବହୁବ୍ରୀହି; ଧୃତ=ଗୃହୀତ+ରାଷ୍ଟ୍ର=ରାଜ୍ୟ)—
Dhṛutarāshṭra ୧ । କୁରୁ ବଂଶୀୟ ଜନ୍ମାନ୍ଧ ରାଜା; ବିଚିତ୍ରବୀର୍ଯ୍ୟ ରାଜାଙ୍କ ବିଧବା ସ୍ତ୍ରୀ ଅମ୍ବିକାଙ୍କ ଗର୍ଭରୁ ବ୍ୟାସଦେବଙ୍କ ଔରସ ସନ୍ତାନ; ଦୁର୍ଯ୍ୟୋଧନଙ୍କ ପିତା—1 Name of the king of the Kurus who was born blind.
[ଦ୍ର—ସତ୍ୟବତୀ ବା ମତ୍ସ୍ୟଗନ୍ଧାଙ୍କ ଗର୍ଭରୁ ଉତ୍ପନ୍ନ ପୁରୁବଂଶୀୟ ରାଜା ଶାନ୍ତନୁଙ୍କର ଏକ ପୁତ୍ର ବିଚିତ୍ରବୀର୍ଯ୍ୟ ଅପୁତ୍ରକ ଅବସ୍ଥାରେ ମୃତ ହେବାରୁ ସତ୍ୟବତୀଙ୍କ ଆଦେଶ ଅନୁସାରେ ବିଚିତ୍ରବୀର୍ଯ୍ୟଙ୍କର ଦୁଇ ସ୍ତ୍ରୀ ମଧ୍ୟରୁ ଜ୍ୟେଷ୍ଠା ଅମ୍ବିକାଙ୍କ ଗର୍ଭରେ ସତ୍ୟବତୀଙ୍କର କାନୀନ ପୁତ୍ର ବେଦବ୍ୟାସ ଧୃତରାଷ୍ଟ୍ରଙ୍କୁ ନିୟୋଗ ବିଧାନ ଅନୁସାରେ ଉତ୍ପାଦନ କଲେ ଓ ଅମ୍ବାଲିକାଙ୍କ ଗର୍ଭରେ ପାଣ୍ଡୁଙ୍କ ଉତ୍ପାଦନ କଲେ । ବେଦବ୍ୟାସଙ୍କ କୃଷ୍ଣବର୍ଣ୍ଣ ଶରୀର ଓ ଜଟାଜୁଟ ଦେଖି ସଙ୍ଗମ ସମୟରେ ଅମ୍ବିକା ଆଖି ବୁଜି ଦେବାରୁ ଧୃତରାଷ୍ଟ୍ର ଜନ୍ମାନ୍ଧ ହେଲେ । ଧୃତରାଷ୍ଟ୍ର ବଡ଼ ଭାଇ ଥାଇଁ ସୁଦ୍ଧା ଜନ୍ମାନ୍ଧ ଥିବାରୁ ତାଙ୍କ ସାନ ଭାଇ ପାଣ୍ଡୁ ରାଜା ହେଲେ । ଧୃତରାଷ୍ଟ୍ର ଗାନ୍ଧାର ଦେଶର ରାଜକନ୍ୟା ଗାନ୍ଧାରୀଙ୍କୁ ବିବାହ କଲେ; ସ୍ୱାମୀ ଜନ୍ମାନ୍ଧ ଥିବାରୁ ଗାନ୍ଧାରୀ ଆମରଣ ଆଖିରେ ଅନ୍ଧପୋଟଳୀ ବାନ୍ଧିଲେ । ଗାନ୍ଧାରୀଙ୍କ ଗର୍ଭରେ ଧୃତରାଷ୍ଟ୍ରଙ୍କର ଦୁର୍ଯ୍ୟୋଧନାଦି ଶତପୁତ୍ର ଜାତ ହେଲେ । ପାଣ୍ଡୁଙ୍କ ଅନ୍ତେ ପାଣ୍ଡୁପୁତ୍ର ଯୁଧିଷ୍ଠିର ଅର୍ଦ୍ଧ ରାଜ୍ୟ ପାଇବାରୁ ଦୁର୍ଯ୍ୟୋଧନ ସ୍ୱୀୟ ପିତା ଧୃତରାଷ୍ଟ୍ରଙ୍କ ଜ୍ୟେଷ୍ଠତ୍ୱ ଦାବୀରେ ପାଣ୍ଡବମାନଙ୍କଠାରୁ ରାଜ୍ୟ ଦାବି କଲେ ଓ ଏଥିରୁ କୁରୁକ୍ଷେତ୍ର ଯୁଦ୍ଧ ରୂପ ଭୂମୂଳ କାଣ୍ଡ ଘଟିଲା । କୁରୁକ୍ଷେତ୍ର ଯୁଦ୍ଧ ପରେ ଦୁର୍ଯ୍ୟୋଧନାଦି ପାଣ୍ଡବମାନଙ୍କ ଦ୍ୱାରା ନିହତ ହେବାର ଜାଣି ଧୃତରାଷ୍ଟ୍ର ମନରେ କ୍ରୁଦ୍ଧ ହୋଇଥିବା ପ୍ରତିହିଂସା ଚରିତାର୍ଥ କରିବାକୁ ଭୀମଙ୍କୁ ଆଲିଙ୍ଗନ କରିବାକୁ ଇଚ୍ଛା ପ୍ରକାଶ କଲେ, କିନ୍ତୁ ଶ୍ରୀକୃଷ୍ଣ ତାଙ୍କ ଅଭିସନ୍ଧି ଜାଣି ପାରି ଭୀମଙ୍କର ଗୋଟିଏ ଲୌହ ମୂର୍ତ୍ତି ଗଢ଼ାଇ ଜନ୍ମାନ୍ଧ ରାଜାଙ୍କ ନିକଟରେ ପଠାଇଲେ । ଉକ୍ତ ଲୌହ ଭୀମକୁ ଧୃତରାଷ୍ଟ୍ର ଏପରି ଦୃଢ଼ ରୂପେ ଆଲିଙ୍ଗନ କଲେ ଯେ ତାହା ଚୂର୍ଣ୍ଣ ହୋଇଗଲା । ତତ୍ପରେ ଯୁଧିଷ୍ଠିର ଗାନ୍ଧାରୀଙ୍କ ସହିତ ହିମାଳୟକୁ ଗଲେ ଓ କେତେକ ବର୍ଷ ପରେ ସେଠାରେ ପଞ୍ଚତ୍ୱ ପ୍ରାପ୍ତ ହେଲେ ।

ଧୃତରାଷ୍ଟ୍ରଙ୍କ ଶତପୁତ୍ରଙ୍କ ନାମ—
ଦୁର୍ଯ୍ୟୋଧନ, ଦୁର୍ମୁଖ, କର୍ଣ୍ଣ, ଦୁଃଶାସନ,
ଦୁଃଶଳ, ଦୁଃସହ, ଯେ ଦୁର୍ଜୟ, ବିକର୍ଣ୍ଣ ।
ବିବିଂଶତି, ଜଳସନ୍ଧ, ସୁଲୋଚନ,
ନନ୍ଦ, ଅନୁବିନ୍ଦ, ଯେ ଦୁର୍ଦ୍ଧର୍ଷ, ଦୁଷ୍କର୍ଣ୍ଣ ।
ଚିତ୍ର, ଉପଚିତ୍ର, ସୁବାହୁ, ଦୁର୍ମର୍ଷଣ,
ଚିତ୍ରାକ୍ଷ, ଚିତ୍ରାଙ୍ଗଦ, ଦୁଷ୍ପ୍ରଧର୍ଷଣ ।
ଉଗ୍ର, ସମ, ଭୀମରଥ, ବିକଟ, ଦୁର୍ମଦ,
ଦୁଷ୍ପ୍ରଦର୍ଷ, ସୁନାଭ, ନନ୍ଦ, ଉପନନ୍ଦ ।

ଊର୍ଣ୍ଣନାଭ, ସେନାପତି, କୁଣ୍ଡୋଦର,
ସୁଷେଣ, ବଳାକୀ, ସୁବର୍ମା, ମହୋଦର ।
ସୁକୁଣ୍ଡଳ, ଚିତ୍ରବର୍ମା, ଯେ ଚିତ୍ରବାହୁ,
ଭୀମବେଗ, ତ ଭୀମବଳ, ଭୀମବାହୁ ।
ବଳବର୍ଦ୍ଧନ, କୁଣ୍ଡାଶୀ, ଉଗ୍ରାୟୁଧ,
ବିରଜା, ଦୃଢ଼ବର୍ମା, ତହୁଁ ଜରାସନ୍ଧ ।
କନକାୟୁ, ଦୃଢ଼କ୍ଷେତ୍ର, ଯେ ପଣ୍ଡିତକ,
ଉଗ୍ରଶ୍ରବା, ଉଗ୍ରସେନ, ସହସ୍ରବାକ ।
ଅପରାଜିତ, ସୋମକୀର୍ତ୍ତି, ସତ୍ୟସନ୍ଧ,
ସେନାନୀ, ବିଶାଳାକ୍ଷ, ପୁଣି ଦୃଢସନ୍ଧ ।
ଅନୂଦର, ଦୁର୍ମୁଖ, ତହୁଁ ଦୃଢହସ୍ତ
ବାତବେଗ, ସୁବର୍ଚ୍ଚା, କବଚୀ, ସୁହସ୍ତ ।
ନିଷଙ୍ଗୀ, ଯେ ଆଦିତ୍ୟକେତୁ, ଦଣ୍ଡଧର,
ବହ୍ବାଶୀ, ପାଶୀ, ନାଗଦତ୍ତ, ଦୁରାଧର ।
ଅଗ୍ରଯାୟୀ, ଉଗ୍ର, ଭୀମରଥ, ଖରବାହୁ,
ଅଲୋଲୁପ, ଅଭୟ, ପୁଣି ଦୀର୍ଘବାହୁ ।
ଦୀର୍ଘଲୋଚନ, ଦୃଢ଼ରଥ, ଯେ ଭୀମଶର,
ଅନାଧୃଷ୍ୟ, ଖାତଜ, କୁଣ୍ଡଭେଦୀ, ଖର ।
ଚିତ୍ରରୂପ, ଦୁଷ୍ପରାଜୟ, ଅୟୋବାହୁ,
ଦୃଢାୟୁଧ, ଚିତ୍ରଲୋଚନ, ମହାବାହୁ ।
ଧନୁର୍ଗ୍ରହ, ଯେ ବ୍ୟୂଢୋରୁ, କନକଧ୍ୱଜ,
ରୌଦ୍ରକର୍ମା ମିଶିଣ ଏ ଶତ ଅଗ୍ରଜ ।
କୃଷ୍ଣସିଂହ ମହାଭାରତ. ଆଦି ।]

୨ । ନାଗବିଶେଷ—2. Name of a mythological serpent

୩ । କୃଷ୍ଣବର୍ଣ୍ଣ ଚଞ୍ଚୁ ଓ ପଦବିଶିଷ୍ଟ ହଂସବିଶେଷ; ଗେଣ୍ଡା ହଂସ-
3. Gander with black legs and bill.

୪ । ଜନମେଜୟ ରାଜାଙ୍କର ଏକପୁତ୍ର—
4 Name of a son of king Janamejaya

୫ । ଉତ୍ତମ ରାଜା—5. A good king (Apte).

୬ । ଉତ୍ତମ ରାଜାଙ୍କଦ୍ୱାରା ଶାସିତ ରାଜ୍ୟ—6. A country ruled by a good king (Apte)

**ଧୃତରାଷ୍ଟ୍ରୀ**—ସ. ବି. ସ୍ତ୍ରୀ ( ଧୃତରାଷ୍ଟ୍ର+ସ୍ତ୍ରୀ. ଈ )—୧ । ହଂସୀ—
Dhṛutarāshṭrī 1. Goose.

୨ । କଶ୍ୟପ ଋଷିଙ୍କର ଏକ ପତ୍ନୀ (ଯେ ହଂସ ଆଦିଙ୍କୁ ଜାତ କରିଥିଲେ)—2. Name of one of the wives of sage Kaśyapa.

୩ । ଧୃତରାଷ୍ଟ୍ରଙ୍କ ସ୍ତ୍ରୀ—3 The wife of Dhṛutarāshṭra.

**ଧୃତ ଶଙ୍ଖ ଚକ୍ର**—ସ. ବିଣ. ତ୍ରି (ଦ୍ୱନ୍ଦ୍ୱ ଓ ବହୁବ୍ରୀହି; ଶଙ୍ଖ ଓ ଚକ୍ର=ଶଙ୍ଖ-
Dhṛuta śankha chakra ଚକ୍ର; ଧୃତ ହୋଇଅଛି ଶଙ୍ଖଚକ୍ର ଯାହାଙ୍କ ଦ୍ୱାରା)—ଶଙ୍ଖଚକ୍ରଧାରୀ (ବିଷ୍ଣୁ)—(Bishṇu) Holding the conch and the discus in his hands.

[ଦ୍ର—ଏହିପରି 'ଧୃତ' ଶବ୍ଦ ସଙ୍ଗେ ଅନ୍ୟ ଶବ୍ଦ ଯୁକ୍ତ ହୁଏ; ଯଥା—ଧୃତଯଷ୍ଟି; ଧୃତାତପତ୍ର; ଧୃତବସ୍ତ୍ର ।]

**ଧୃତାତ୍ମା**—ସ.ବିଣ(ବହୁବ୍ରୀହି;ଧୃତ+ଆତ୍ମନ୍; ୧ମା.୧ବ) ୧ । ଆତ୍ମଜ୍ଞାନୀ—
Dhṛatātmā 1. Endowed with spiritual wisdom.

୨ । ସଂଯତଚିତ୍ତ—2. One who has subdued his passions.

୩ । ଧୀର; ଧୈର୍ଯ୍ୟଶାଳୀ—3. Patient.

ସ. ବି—୧ । ବିଷ୍ଣୁଙ୍କର ନାମ—1 A name of Bishṇu

୨ । ଧୀର ବ୍ୟକ୍ତି; ଧୈର୍ଯ୍ୟଶାଳୀ ବ୍ୟକ୍ତି (ହି. ଶ)—
2 A calm and patient person.

**ଧୃତି**—ସ. ବି. ସ୍ତ୍ରୀ ( ଧୃ ଧାତୁ+ଭାବ. ତି )—ଧାରଣ କରିବା—
Dhṛuti 1. Holding.

୨ । ଗ୍ରହଣ—2. Taking

୩ । ପରିଧାନ—3. Wearing; putting on.

୪ । ଟେକି ଧରିବା—4. Supporting

୫ । ପୋଷଣ—5. Maintaining.

୬ । ବହନ—6. Carrying.

୭ । ଅଧିକାର କରିବା—7. Possessing; having.

୮ । ଅଟକାଇ ରଖିବା -- 8. Restraining.

୯ । ଦୃଢ଼ ସଙ୍କଳ୍ପ—9 Resolution

୧୦ । ସାହସ—10 Courage

୧୧ । ଆତ୍ମବଳ—11. Self-command

୧୨ । ଧାରଣା—12. Conviction; impression.

୧୩ । ଧୈର୍ଯ୍ୟ—13. Patience; fortitude.

[ ଦ୍ର—ଇଷ୍ଟ ବିୟୋଗରେ ମଧ୍ୟ ମନର ସ୍ଥିରତାକୁ ଧୃତି ବୋଲାଯାଏ । ]

୧୪ । ସ୍ଥୈର୍ଯ୍ୟ; ସ୍ଥିରତା—
14. Composure; constancy.

୧୫ । ଅଟଳତା; ଦୃଢ଼ତା—
15. Constancy; firmness.

୧୬ । ଇଚ୍ଛା—16 Desire; wish.

୧୭ । ସନ୍ତୋଷ; ଆନନ୍ଦ—
17. Contentment; satisfaction; delight; joy.

୧୮ । ସୁଖ—18 Happiness; pleasure.

୧୯ । ଉତ୍ସାହ—19. Encouragement.

୨୦ । ସର୍ବଭୂତ ପ୍ରୀତି—20. Love for all; universal attachment.

୨୧ । ଯାଗ; ଯଜ୍ଞ—21. Vedic sacrifice.

୨୨ । ( +କରଣେ. ତି ) (ସ୍ତ୍ରୀ) ଷୋଡ଼ଶ ମାତୃକା ମଧ୍ୟରୁ ତ୍ରୟୋଦଶ ମାତୃକା—22. Name of one of the 16 Mātrukās or maternal Deities

୨୩ । ଜ୍ୟୋତିଷୋକ୍ତ ୨୦ ଯୋଗ ମଧ୍ୟରୁ ଏକତମ—
23. One of the 20 astrological conjunctions.

୨୪ । ଅଷ୍ଟାଦଶ ଅକ୍ଷରଯୁକ୍ତ ସଂସ୍କୃତ ଛନ୍ଦୋବିଶେଷ—
24. A Sanscrit metre of 18 sylables
୨୫ । (ସ୍ତ୍ରୀ) ଚନ୍ଦ୍ରଙ୍କ ଷୋଳକଳା ମଧ୍ୟରୁ ଏକ—
25. One of the digits or phases of the moon
୨୬ । (ସ୍ତ୍ରୀ) ଦକ୍ଷଙ୍କର ଏକ କନ୍ୟା ଓ ଧର୍ମଙ୍କ ପତ୍ନୀ—
26. Name of a daughter of Daksha and wife of Dharma.
୨୮ । (ସ୍ତ୍ରୀ) ଅଶ୍ୱମେଧର ଏକ ଅନୁଷ୍ଠାନର ନାମ—
28. Name of one of the oblations offered in a horse-sacrifice.
୨୯ । (ପୁଂ) ଜୟଦ୍ରଥ ରାଜାଙ୍କ ପୌତ୍ର—
29. Name of a grandson of Jayadratha.
୩୦ । (ପୁଂ) ଏକ ବିଶ୍ୱଦେବଙ୍କ ନାମ—
30. Name of a Biswadeba Deity.
୩୧ । (ପୁଂ) ଚନ୍ଦ୍ରବଂଶୀୟ ବଭ୍ରୁ ରାଜାଙ୍କ ପୁତ୍ର—
31. Name of the son of king Babhru.

**ଧୃତିମାନ୍**—ସ. ବିଣ. ପୁଂ (ଧୃତି+ଅସ୍ତି ଅର୍ଥରେ ମତ୍; ୧ମା. ୧ବ.)—
Dhrutimān ୧ । ଧୈର୍ଯ୍ୟଶାଳୀ—1 Patient; forbearing.
(ଧୃତିମତୀ—ସ୍ତ୍ରୀ) ୨ । ଧୀର—2 Calm.
୩ । ଅଟଳ; ଦୃଢ଼—3. Firm; steady; steadfast.
୪ । ଦୃଢ଼ ପ୍ରତିଜ୍ଞ—4 Resolute
୫ । ସନ୍ତୁଷ୍ଟ—5 Content, satisfied.
୬ । ଆନନ୍ଦିତ; ସୁଖୀ—6. Pleased; happy.
ସ. ବି—୧ । ନୃପ ବିଶେଷ—1. Name of a king.
୨ । ଅଗ୍ନି ବିଶେଷ—
2. Name of a sacrificial fire.
୩ । ପୁରାଣୋକ୍ତ କୁଶ ଦ୍ୱୀପସ୍ଥ ବର୍ଷ ବା ଦେଶ ବିଶେଷ—
3. Name of a kingdom in the mythological Kusa island

**ଧୃତି ହୋମ**—ସ. ବି (୬ଷ୍ଠୀ ତତ୍; ଧୃତି=ଧାରଣ+ହୋମ)—ବିବାହର
Dhruti homa ଅଙ୍ଗୀଭୂତ ହୋମବିଶେଷ—Name of a sacrifice performed in the course of the Hindu marriage rites.

**ଧୃପଦ**—ଗ୍ରା. ବି (ସ. ଧ୍ରୁବପଦ)—ଧ୍ରୁପଦ (ଦେଖ)
Dhrupada Dhrupada (See)

**ଧୃପଙ୍ଗା (ଇତ୍ୟାଦି)**—ଦେ. ବି—୧ । ଧୂରପଙ୍ଗା ଇତ୍ୟାଦି (ଦେଖ)
Dhrupangā (etc) 1. Dhur-pangā etc (See)
(ଧୃପଙ୍ଗୀ—ଅନ୍ୟରୂପ) ୨ । ଧୂଳା ଇତ୍ୟାଦି (ଦେଖ)
2. Dhulā etc (See)

**ଧୃଷ୍(ଧାତୁ)**—ସ.—୧ । ପ୍ରଗଲ୍ଭ ହେବା—
Dhrush(root) 1. To be talkative.
୨ । ଦଳନ କରିବା—2. To oppress.
୩ । ଆକ୍ରମଣ କରିବା—3. To assail.

**ଧୃଷ୍ଟ**—ସ. ବିଣ. ପୁଂ (ଧୃଷ୍ ଧାତୁ+କର୍ତ୍ତୃ. ତ)—
Dhrushta ୧ । ନିର୍ଲଜ୍ଜ, ଧୀଠ—1 Shameless; immodest; impudent
(ଧୃଷ୍ଟା—ସ୍ତ୍ରୀ)
(ଧୃଷ୍ଟତା, ଧାର୍ଷ୍ଟ୍ୟ—ବି) ୨ । ଅବାଧ୍ୟ, ଉଦ୍ଧତ—
2. Insolent; arrogant.
୩ । ପ୍ରଗଲ୍ଭ—3 Bold; forward.
୪ । ଲମ୍ପଟ—4. Adulterous; guilty of adultery.
୫ । ଯେ ଅନୁଚିତ କାର୍ଯ୍ୟ କରି ସୁଦ୍ଧା ଦାମ୍ଭିକତା ବା ମୁହଁଭୁରୁଡ଼ୁ ବାହାର କରେ—
5. Brazen-faced,
ସ. ବି—୧ । ନାୟକବିଶେଷ; ଯେଉଁ ନାୟକ ଅନ୍ୟ ନାୟିକା ପ୍ରତି ଆସକ୍ତିଜନିତ ଅପରାଧ କରି ସୁଦ୍ଧା ଶଙ୍କାଶୂନ୍ୟ ହୁଏ ଓ ତିରସ୍କୃତ ହୋଇ ମଧ୍ୟ ନିର୍ଲଜ୍ଜ ହୁଏ ଏବଂ ମିଥ୍ୟା କହି ନିଜ ଦୋଷ ଗୋପନ କରେ—
1. An insolent and impudent lover who pays attention to more than one woman and assumes an air of innocence before each of them.
୨ । (ନାମ) ଚେଦିବଂଶୀୟ କୁନ୍ତୀ ରାଜାଙ୍କ ପୁତ୍ର—
2 Name of a son of king Kunti.
୩ । (ନାମ) ଭାଗବତୋକ୍ତ ସପ୍ତମ ମନୁଙ୍କର ଏକ ପୁତ୍ର—
3. Name of a son of the 7th Manu.
୪ । ଅସ୍ତ୍ରର ସଂହାର ( ହି. ଶବ୍ଦସାଗର )—
4. The withdrawal of the effects of a weapon.

**ଧୃଷ୍ଟତା**—ସଂ. ବି (ଧୃଷ୍ଟ+ଭାବାର୍ଥେ ତା)—୧ । ନିର୍ଲଜ୍ଜତା—
Dhrushtatā 1. Shamelessness; impudence.
ଧୃଷ୍ଟତ୍ୱ } ଅନ୍ୟରୂପ
ଧୃଷ୍ଟିତା
ଧୃଷ୍ଟିତ୍ୱ
୨ । ଔଦ୍ଧତ୍ୟ; ଅବାଧ୍ୟତା—
2 Arrogance; insolence.
୩ । ପ୍ରଗଲ୍ଭତା—3. Forwardness.

**ଧୃଷ୍ଟଦ୍ୟୁମ୍ନ**—ସ. ବି (ବହୁବ୍ରୀହି; ଧୃଷ୍ଟ=ପ୍ରଗଲ୍ଭ+ଦ୍ୟୁମ୍ନ=ବଳ)—
Dhrushtadyumna ଦ୍ରୁପଦ ରାଜାଙ୍କ ପୁତ୍ର; ଦ୍ରୌପଦୀଙ୍କ ଭାଇ—
Name of the son of king Drupada
[ ଦ୍ରି—ଏ ମହାଭାରତ ଯୁଦ୍ଧରେ ପାଣ୍ଡବଙ୍କ ପକ୍ଷରେ ଯୁଦ୍ଧ କରିଥିଲେ । ଏ ଦ୍ରୋଣଙ୍କ ମସ୍ତକ ଛେଦନ କରିଥିବାରୁ ଦ୍ରୋଣପୁତ୍ର ଅଶ୍ୱତ୍ଥାମା ଏହାଙ୍କୁ ବଧ କଲେ । ]

**ଧୃଷ୍ଟ ନାୟକ**—ସ. ବି—ଧୃଷ୍ଟ (ଦେଖ)
Dhrushta nāyaka Drushta (See)

**ଧୃଷ୍ଟା**—ସ. ବିଣ. ସ୍ତ୍ରୀ. (ଧୃଷ୍ଟ+ସ୍ତ୍ରୀ. ଆ)—ଧୃଷ୍ଟର ସ୍ତ୍ରୀଲିଙ୍ଗ—
Dhrushtā Feminine of Dhrushta.
୧ । ଅସତୀ (ସ୍ତ୍ରୀ)—1. Unchaste (woman).

୨ । ଧର୍ଷିତା, ଯେଉଁ ସ୍ତ୍ରୀର ସତୀତ୍ୱ ନଷ୍ଟ କରାଯାଇ ଅଛି—
2. Violated (woman); ravished.

ଧୃଷ୍ଟି—ସଂ. ବି. ( ଧୃଷ୍ ଧାତୁ + ତି )—
Dhrushti ୧ । (ନାମ) ହିରଣ୍ୟାକ୍ଷ ଦୈତ୍ୟର ଏକ ପୁତ୍ର—
1 Name of a son of Hiranyāksha.
୨ । ( ନାମ ) ଦଶରଥ ରାଜାଙ୍କର ଏକ ମନ୍ତ୍ରୀ—
2 The name of a minister of King Dasaratha.
୩ । ଯଜ୍ଞପାତ୍ରବିଶେଷ—
3. A kind of sacrificial vessel.

ଧୃଷ୍ଣି - ସଂ. ବି. ( ଧୃଷ୍ ଧାତୁ = ପ୍ରଗଳ୍ଭ ହେବା + କରଣ. ନି )—
Dhrushni ୧ । କିରଣ—1. Rays
୨ । ଆଲୋକ—2. Light.

ଧୃଷ୍ଣୁ—ସଂ. ବିଣ. ପୁଂ. ( ଧୃଷ୍ ଧାତୁ + ଶୀଳାର୍ଥରେ. ନୁ )—
Dhrushnu ୧ । ଧୃଷ୍ଟ—1. Arrogant; insolent;
୨ । ନିର୍ଲଜ୍ଜ—2. Shameless.
୩ । ସହିଷ୍ଣୁ—3. Patient; enduring; forbearing.
ସଂ. ବି—୧ । (ନାମ) ବୈବସ୍ୱତ ମନୁଙ୍କର ଏକ ପୁତ୍ର—
1. Name of a son of Baibaswata Manu.
୨ । ସାବର୍ଣ୍ଣି ମନୁଙ୍କର ଏକ ପୁତ୍ର—
2. Name of a son of Sābarnna Manu.
୩ । ଏକ ରୁଦ୍ରଙ୍କ ନାମ—
3 Name of one of the Rudra Deities.

ଧୃଷ୍ୟ—ସଂ ବିଣ. ପୁଂ. ( ଧୃଷ ଧାତୁ = ପ୍ରଗଲ୍ଭ ହେବା + କର୍ମ. ଯ )—
Dhrushya ଧର୍ଷଣୀୟ; ଦଳନୀୟ—Assailable; conquerable; governable
(ଧୃଷ୍ୟା—ସ୍ତ୍ରୀ)

ଧେ (ଧାତୁ)—ସଂ—ପାନ କରିବା—
Dhe root) To drink

ଧେଇ—ଦେ. ଅ. ( ଧ୍ୱନ୍ୟନୁକରଣ )—୧ । ଆନନ୍ଦ ବାଦ୍ୟର ଧ୍ୱନିବିଶେଷ; ମୃଦଙ୍ଗ ଆଦିର ବୋଲକଟି ବା ଭୁଲୁଟ—
Dhei
ଧେଈ, ଧେଈଆ, ଧେୟା 1. A word signifying measured sound of drums.
ଧେୟଧେଇ
୨ । (ଲକ୍ଷଣାର୍ଥ) ତାଧେଇ; ଚଞ୍ଚଳ ପଦକ୍ଷେପ ଦ୍ୱାରା ନୃତ୍ୟ; ଧାବନସହ ନୃତ୍ୟ—2 Brisk dance; brisk dancing to music; a word signifying a movement in dancing.
[ ଦ୍ର—ସାଧାରଣତଃ ଧେଇ ଧେଇ ତତାଲା ଆଦିର ଧ୍ୱନି ଓ ଥେଇ ଥେଇ ନୃତ୍ୟାଦି ସୂଚନା କରେ । ]
୩ । ( ଉପହାସ ବା ବିଦ୍ରୂପ ସୂଚକ ଅବ୍ୟୟ) ଅହୋ !
3. (an interjection used in irony) Hallo !

ଧେଇଆ—ଦେ. ଅ—ଧେଇ ( ଦେଖ )
Dheiā Dhei ( See )
ଧେଇଆ । ଯାହା କହୁଥିଲ ସେଇଆ—ଚଳ ।

ଧେଇକି—ଦେ. ଅ—ଧେଇ ( ଦେଖ )
Dheiki Dhei ( See )
(ଧେଇକି ଧେଇ—ଅନ୍ୟରୂପ)
ଧେଇକି ରେ । ଭୁଡା ହକେ ପୁଅ ଟେଇକି ରେ—ଚଳ ।

ଧେଇତା—ଦେ. ଅ - ଧେଇ ( ଦେଖ )
Dheitā Dhei ( See )
ଧେଇତା । ଯାହା କହୁଥିଲ ସେଇତା—ଚଳ ।

ଧେଇତା ରଗଡ଼ା ଥୋ—ଦେ. ଅ—ଧେଇ ( ଦେଖ )
Dheitā ragarda tho Dhei ( See )
(ଧେଇତ ରଗଡ଼ ଥୋ—ଅନ୍ୟରୂପ)

ଧେଇ ତିନ କିଟି ଥୋ—ଦେ. ଅ—ଧେଇ ( ଦେଖ )
Dhei tini kiti tho Dhei ( See )

ଧେଇ ଧେଇ—ଦେ. ଅ—୧ । ଧେଇ ( ଦେଖ )
Dhei dhei 1. Dhei ( See )
ତା ଧେଇ ଧେଇ ଧେଇକି ନାଚ, ମନା ପିଲ୍ଲଟନ୍ତି କେଳଥା ପାଠ ।
ଶିଶୁରଞ୍ଜନ ପଦ ।
୨ । ( ଲକ୍ଷଣାର୍ଥ ) ଥେଇ ଥେଇ; ତାଣ୍ଡବ; ପଦକ୍ଷେପସହ କଳହ; ଯେଉଁ କଳହ ବେଳେ କଳହକାରୀ ପକ୍ଷମାନେ ନାଚି କୁଦି ହୁଅନ୍ତି—2. Violent dancing, quarrel accompanied with dancing; boisterous quarrelling.

ଧେଇ ଧେଇକା—ଦେ. ଅ—୧ । ଧେଇ ( ଦେଖ )
Dhei dheikā 1. Dhei ( See )
୨ । ଧେଇ ଧେଇ ( ଦେଖ )—2. Dhei dhei ( See )

ଧେଇ ଧେଇତା—ଦେ ଅ—ଧେଇ ( ଦେଖ )
Dhei dheitā Dhei ( See )

ଧେଇ ଧେ ଧେଇକି ନାଚ—ଦେ. ବି. ( ଶିଶୁରଞ୍ଜନ ପଦ )—
Dhei dhei dheiki nāta ଚାଲି ନ ଥିବା ପିଲାଙ୍କୁ ଧରି ନଚାଇବା ବେଳେ ବୋଲାଯିବା ପଦବିଶେଷ—
A sentence or formula lisped by an elder while holding a child up for making it dance.

ଧେଁକ୍ ଧେଁକ୍ ଥେଇ ଥେଇ—ଦେ. ଅ. ( ଧ୍ୱନ୍ୟନୁକରଣ )—
Dheñk dheñk thei thei ବାଦ୍ୟ ଧ୍ୱନିବିଶେଷ—
The sound of musical instruments.
ଧେଁକ୍ ଧେଁକ୍ ଥେଇ ଥେଇ ଦୁନ୍ଦୁଭି ବାଜେ । ପାଠୀ. ଋଷ୍ୟଶୃଙ୍ଗ ।

ଧେଢ଼—ଦେ. ବି. ପୁଂ—୧ । ନୀଚ ଅସ୍ପୃଶ୍ୟ ଅନାର୍ଯ୍ୟ ଜାତିବିଶେଷ—
Dherda 1. A low class of untouchables.
ଧେଢ଼ୀ } ସ୍ତ୍ରୀ
ଧେଢ଼ୁଆଣୀ }
ଢେଢ଼; ଢେର
[ ଦ୍ର—ଧେଢ଼ ନାମକ ଅନାର୍ଯ୍ୟଜାତିର ଲୋକେ ରାଜପୁତାନା, ପଞ୍ଜାବ ଓ ସଂଯୁକ୍ତପ୍ରଦେଶର ପଶ୍ଚିମାଞ୍ଚଳମାନଙ୍କରେ ଅଛନ୍ତି । ଏମାନେ ଗ୍ରାମର ବାହାରେ ରହନ୍ତି ଓ ମୃତ ଗୋମେଷାଦିଙ୍କ ମାଂସ ଖାଆନ୍ତି । ରାଜପୁତାନାରେ ଏମାନେ ମୃତ ଗାଈବଳଦଙ୍କ ଚମଡ଼ା ଉତାରି ଚମାର (ମୋଚି)ଙ୍କୁ ଦିଅନ୍ତି । ରାଜପୁତନାର ଧେଢ଼ମାନେ ଶୂକର-ମାଂସ ଖାଆନ୍ତି ନାହିଁ—ହି. ଶବ୍ଦସାଗର । ]

୨ । ଦକ୍ଷିଣିଆ ଝାଡ଼ୁ ଜାତି—2. A low caste of sweepers hailing from S. India.

ଦେ. ବଣ—ଅସ୍ଥିକଙ୍କାଳମାତ୍ରାବଶିଷ୍ଟ ତଥା ଅପରିଷ୍କୃତ ଅପରିଚ୍ଛନ୍ନ; ଖାଇବାକୁ ନ ପାଇବାରୁ ଯାହାର ଦେହ ଶୀର୍ଣ୍ଣ ହୋଇ ହାଡ଼ମାନ ବାହାରି ପଡ଼ିଥାଏ ଏବଂ ଯାହାର ଲୁଗାପଟା ଅତି ମଇଳା—(a person) Reduced to skeleton as a result of forced fasting or starvation and very unclean.

**ଧେଡ଼ି**—ଦେ. ବି. (ସ. ଉଣ୍ଡିସ=ଭେଣ୍ଡିଫଳ; ଏହା ଭେଣ୍ଡିପରି ବଳ-ବଳ ହୋଇଥିବାରୁ)—ନୋଳପରି କର୍ଣ୍ଣାଳଙ୍କାରବିଶେଷ—
Dherdi
ଢେଁଡ଼ୀ; ଧେଁଡ଼ି A kind of ear-ring.
ढेंढ़ी ପ୍ରାଦେ. (ସିଂହଭୂମ) ବି—ଢାପ; କର୍ଣ୍ଣାଳଙ୍କାରବିଶେଷ—A kind of flat ear-ornament.

ପ୍ରାଦେ. (ସମ୍ବଲପୁର) ବି—କନାଧଡ଼ି—Borders of a torn old cloth.

**ଧେଡ଼ିଆ**—ଦେ. ବଣ—ଧଡ଼ିଆ, ଅତି ଶୀର୍ଣ୍ଣକାୟ—
Dherdiā Emaciated; reduced to skeleton.
(ଧେଡ଼ଙ୍ଗା, ଧେଡ଼େଙ୍ଗା —ଅନ୍ୟରୂପ)
ଦୋବଲା दुबला

**ଧେଣ୍ଟ**—ପ୍ରାଦେ. (କଳାହାଣ୍ଡି) ବି—ବେଣ୍ଟ—
Dhenta Handle.

**ଧେଣ୍ଡୁଆ**—ପ୍ରାଦେ. (ଯାଜପୁର) ବି. (ସ. ଡୁଣ୍ଡୁଭ)—ଧଣ୍ଡସାପ—
Dhendua A non-poisonous water-snake.

**ଧେଣ୍ଡୁରା**—ଦେ. ବି. (ସ. ଢିଣ୍ଡିମ)—୧ । ଢକ୍କା; ଢଉଁ; ଡିଣ୍ଡିମ; ନାଗରା—1. Drum; tomtom.
Dhendurā
(ଧେଣ୍ଡରା, ମେଣ୍ଡେରା—ଅନ୍ୟରୂପ) ୨ । ଡିଣ୍ଡିମ ବଜାଯାଇ ସର୍ବସାଧାରଣରେ କରାଯିବା ଘୋଷଣା—2. A proclamation by beat of drum.
ଢେଁଟରା; ଢେଁଡ଼ରା; ଢେଁଡ଼ା
ढंढोरा; ढिन्ढोरा; डाग्डी

**ଧେଣ୍ଡୁରା ଦେବା**—ଦେ.କ୍ରି—୧ । ଡିଣ୍ଡିମ ବଜାଇବା; ନାଗରା ପିଟିବା—
Dhendurā debā 1. To beat a drum.
ଧେଣ୍ଡୁରା ପିଟିବା } ଅନ୍ୟରୂପ ୨ । ନାଗରା ପିଟି କୌଣସି ବିଷୟ ଘୋଷଣା କରିବା—
ଧେଣ୍ଡୁରା ବଜା(ଜେ)ଇବା }
ଢେଁଟରା ବା ଢେଁଡ଼ାପେଟା 2. To proclaim anything by beat of drum.
ढंढोरा पीटना
ଧେଣ୍ଡୁରା ହଅଇବା } ଶିଜନ୍ତରୂପ ୩ । ସର୍ବସାଧାରଣରେ କୌଣସି ବିଷୟ ପ୍ରକଟ
ଧେଣ୍ଡୁରାପିଟା(ଟେ)ଇବା }
କରିବା—3. To proclaim a matter publicly, to publish any matter.

**ଧେଣ୍ଡୁରା ପିଟା**—ଦେ. ବି—୧ । ଡିଣ୍ଡିମ ବାଦନ—
Dhendurā pitā 1. Beating of drum.
ଢେଁଟରାପିଟା ୨ । ଡିଣ୍ଡିମବାଦନଦ୍ୱାରା କୌଣସି ବିଷୟର ଘୋଷଣା—
ढिंढोरा पिटना 2. Proclamation by beat of drum.
୩ । ସର୍ବସାଧାରଣରେ କୌଣସି ବିଷୟର ପ୍ରକଟନ—
3. Publication of any matter.

**ଧେଣ୍ଡୁରିଆ**—ଦେ. ବି—ଯେ ଡିଣ୍ଡିମ ବଜାଏ; ନାଗରଚୀ—
Dhenduriā One who beats the drum;
ढिंढोरिया; ढंढोरची drummer.

**ଧେନ**—ସ. ବି. (ଧେ ଧାତୁ=ପାନ କରିବା+ସଜ୍ଞାର୍ଥରେ ନ)—
Dhena ୧ । ସମୁଦ୍ର—1 The ocean.
୨ । ନଦ; ବଡ଼ ଅଗଭୀର ନଈ—
2. A large and shallow river.

**ଧେନା**—ସ. ବି. ସ୍ତ୍ରୀ. (ଧେ ଧାତୁ+ନ+ସ୍ତ୍ରୀ. ଆ)—୧ । ନଦୀ—
Dhenā 1. River.
୨ । ଭାରତୀ; ବଚନ—2. Words.

**ଧେନିକା**—ସ. ବି. ସ୍ତ୍ରୀ. (ଧେ ଧାତୁ+ନ+ସ୍ୱାର୍ଥରେ କ+ସ୍ତ୍ରୀ. ଆ)—
Dhenikā ଧନିଆଁ; ଧଣିଆ—Coriander seed.

**ଧେନୁ**—ସ. ବି. ସ୍ତ୍ରୀ. (ଧେ ଧାତୁ+ସଜ୍ଞାର୍ଥରେ କର୍ତ୍ତୃ. ନୁ)—
Dhenu ୧ । ସବତ୍ସା ଗୋ; ନବପ୍ରସୂତିକା ଗାଈ—
1. Lately calved cow.
୨ । ସବତ୍ସା ଦୁଗ୍ଧବତୀ ଗାଈ—
2. A milch cow with calf.
୩ । ଗାଈ—3. Cow.
୪ । ପୃଥିବୀ—4. The earth.

**ଧେନୁକ**—ସ. ବି. ପୁଂ. (ଧେନୁ+କ)—୧ । ଅସୁରବିଶେଷ—
Dhenuka 1. Name of a demon.
[ଦ୍ର—ଶ୍ରୀକୃଷ୍ଣ ଏହାକୁ ବିନାଶ କରିଥିଲେ (ପ୍ରକୃତିବାଦ)। ହି. ଶବ୍ଦସାଗର ଓ 'ଆପ୍ଟେ' କହନ୍ତି ବଳରାମ ଏହାର ହନ୍ତାରକ।]
୨ । ରତିମଞ୍ଜରୀ ବର୍ଣ୍ଣିତ ଷୋଡ଼ଶ ରତିବନ୍ଧମଧ୍ୟରୁ ଦ୍ୱାଦଶବନ୍ଧ (ଯହିଁରେ ବୃଷ ଗାଈକୁ ସହବାସ କରିବା ପ୍ରକ୍ରିୟାର ଅନୁକରଣ କରାଯାଏ)—2. The 12th of the 16 postures in copulation (as described in the Indian books of sexual sience).
୩ । ତୀର୍ଥବିଶେଷ—3. Name of a sacred place of the Hindus.
[ଦ୍ର—ଏଠାରେ ସ୍ନାନ କରି ତିଳ ନିର୍ମିତ ଧେନୁ ଦାନ କରିବାର ବିଧାନ ଅଛି—ହି. ଶବ୍ଦସାଗର।]

**ଧେନୁକ ପାଳ**—ଦେ. ବି—ବଳରାମ; ଶ୍ରୀକୃଷ୍ଣଙ୍କ ବଡ଼ଭାଇ—
Dhenuka pāla Balarāma.
ଧେନୁକ ଧେନୁକ ପାଳ ତାଳାର୍ଥେ ନାଶି । ଅଭିମନ୍ୟୁ. ବିଦଗ୍ଧଚିନ୍ତାମଣି ।

**ଧେନୁକ ସୂଦନ**—ସ. ବି. (ବହୁବ୍ରୀହି; ଧେନୁକ+ସୂଦନ)—୧ । (ଧେନୁକ ନାମକ ଅସୁରର ବିନାଶକ) ଶ୍ରୀକୃଷ୍ଣ—
Dhenuka sūdana
(ଧେନୁକ ନିସୂଦନ—ଅନ୍ୟରୂପ) Śrīkrushna, the destroyer of the demon Dhenuka.
୨ । ବଳରାମ—2. A name of Balarāma.
[ଦ୍ର—ଆପ୍ଟେ ଓ ହି. ଶବ୍ଦସାଗର ମତରେ ବଳରାମ ଏହି ଅସୁରକୁ ବିନାଶ କରିଥିଲେ; ପ୍ରକୃତିବାଦ ମତରେ ଶ୍ରୀକୃଷ୍ଣ ଏହାକୁ ବଧ କରିଥିଲେ।]

ଧେନୁକା—ସଂ. ବି. ସ୍ତ୍ରୀ (ଧେନୁ+କ+ସ୍ତ୍ରୀ. ଆ)—୧ । ହସ୍ତିନୀ—
Dhenukā 1. A female elephant.
୨ । ଧେନୁ; ଗାଈ—2 A milch cow
୩ । ପଶୁ ନାୟିକା (ପ୍ରକୃତିବାଦ)—
3 A female leader of a herd of beasts.

ଧେନୁକାରି—ସଂ. ବି. (୬ଷ୍ଠୀ ତତ୍, ଧେନୁକ+ଅରି)—
Dhenukāri ଧେନୁକ ସୂଦନ (ଦେଖ)—
Dhenuka sūdana (See)

ଧେନୁ ଦୁଗ୍ଧ—ସଂ. ବି.—(୬ଷ୍ଠୀ ତତ୍; ଧେନୁ+ଦୁଗ୍ଧ)—୧ । ଗାଈଦୁଧ—
Dhenu dugdha 1 Cow's milk.
୨ । (ଧେନୁ ଦୁଗ୍ଧ ପରି ସ୍ୱାଦୁ ବୋଲି) ଚର୍ଭିଟୀ; ଫୁଟିକାକୁଡ଼ି—
2 Melon

ଧେନୁ ଦୁଗ୍ଧକର—ସଂ. ବିଣ.—ଯାହା ଖାଇଲେ ଗାଈଙ୍କଠାରେ ବେଶୀ ଦୁଧ
Dhenu dugdhakara ଜନ୍ମେ—That which produces much milk in cows, when eaten; lactative (medicine) for cows.
ସଂ. ବି.—ଗାଜର; ଗର୍ଜର—Carrot; Daucus Carota.

ଧେନୁ ମକ୍ଷିକା—ସଂ. ବି. ସ୍ତ୍ରୀ. (ମ. ପ. ଲୋ. କର୍ମଧା; ଧେନୁ+ମକ୍ଷିକା)—
Dhenu makshikā ଦଂଶ; ଡାଙ୍ଗ—Gadfly.

ଧେନୁମତୀ—ସଂ. ବି.—୧ । ଗୋମତୀ ନଦୀ—
Dhenumatī 1. The river Goomti.
୨ । ଭରତ ବଂଶୀୟ ରାଜା ଦେବଦ୍ୟୁମ୍ନଙ୍କ ପତ୍ନୀ—
2. Name of the queen of king Debadyumna.

ଧେନୁ ମୁଖ—ସଂ. ବି. ( ବହୁବ୍ରୀହି; ଧେନୁର ମୁଖ ପରି ମୁଖ ଯାହାର )
Dhenu mukha ଗୋମୁଖ ନାମକ ବାଦ୍ୟ (ହି. ଶ.); ଏକପ୍ରକାର ତୂରୀ—A kind of musical instrument; a sort of trumpet.

ଧେନୁ ମୂଲ୍ୟ—ସଂ. ବି. (୬ଷ୍ଠୀ ତତ୍; ଧେନୁ+ମୂଲ୍ୟ)—ପ୍ରାୟଶ୍ଚିତ୍ତାଦିରେ
Dhenu mūlya ଶାସ୍ତ୍ରବିହିତ ଧେନୁ ଦାନ ପରିବର୍ତ୍ତରେ ଧେନୁର ଉପକଳ୍ପିତ ମୂଲ୍ୟ—Cash price given away to Brāhmaṇas in lieu of a cow enjoined to be given in the Sāstras.

ଧେନୁମୂଲ୍ୟୋପକଳ୍ପିତ—ସଂ. ବିଣ. (୩ୟା ତତ୍; ଧେନୁ ମୂଲ୍ୟ+ଉପକଳ୍ପିତ)
Dhenumūlyopaklpita ଶାସ୍ତ୍ର ଅନୁସାରେ ଦେୟା ଗାଈ
(ଧେନୁମୂଲ୍ୟୋପକଳ୍ପିତା—ସ୍ତ୍ରୀ) ପରିବର୍ତ୍ତରେ ତାହାର ମୂଲ୍ୟ ରୂପେ ସ୍ଥିରୀକୃତ (ଧନ)—( cash ) Adjudged as the price of and given in lieu of a cow to be given away as religious gift.

ଧେନୁଷ୍ୟ—ସଂ.ବିଣ.ପୁଂ. (ଧେନୁ=ସବତ୍ସା ଗୋ+ଯ; ନିପାତନ)—ଯେଉଁ
Dhenushya ବ୍ୟକ୍ତି ଦୁହାଁଳ ଗାଈକୁ ବନ୍ଧକ ଦେଇ ମହାଜନଠାରୁ
(ଧେନୁଷ୍ୟା—ସ୍ତ୍ରୀ) କରଜ କରେ—(a person) Borrowing money by the piedge of a milch cow.

ଧେନୁଷ୍ୟା—ସଂ. ବି. ସ୍ତ୍ରୀ. (ଧେନୁଷ୍ୟ+ସ୍ତ୍ରୀ. ଆ)—ମହାଜନ ନିକଟରେ
Dhenushyā ବନ୍ଧକ ସ୍ୱରୂପ ରଖାଯିବା ଗାଈ—A cow pledged to a creditor; the pledge of a cow.

ଧେୟ—ସଂ. ବିଣ. (ଧା ଧାତୁ=ରଖିବା, ଗ୍ରହଣ କରିବା+କର୍ମ. ଯ)—
Dheya ୧ । ଗ୍ରାହ୍ୟ; ଯାହା ଧାରଣ କରିବା ଯୋଗ୍ୟ; ଧାର୍ଯ୍ୟ—
(ଧେୟା—ସ୍ତ୍ରୀ) 1. Fit to be held or kept; fit to be accepted or taken.
୨ । ଜ୍ଞେୟ; ଜ୍ଞାନଗମ୍ୟ; ଜଣାଯିବାର ଯୋଗ୍ୟ—
2. Fit to be known.
୩ । ଡାକିବାର ଯୋଗ୍ୟ—3 Fit to be called
୪ । ପୋଷ୍ୟ; ପୋଷଣୀୟ (ହି. ଶବ୍ଦସାଗର)—
4. Maintainable.
୫ । (ଧେ ଧାତୁ=ପିଇବା+କର୍ମ. ଯ) ପେୟ, ପିଇବାର ଯୋଗ୍ୟ (ହି. ଶ.)—5. Drinkable.
ସଂ. ଅ.—ସ୍ୱାର୍ଥରେ ପ୍ରତ୍ୟୟ ବିଶେଷ, (ଏହା ନାମ ଓ ଭାଗଶବ୍ଦ ପରେ ସ୍ୱାର୍ଥରେ ପ୍ରତ୍ୟୟ ହୁଏ; ଯଥା ନାମଧେୟ=ନାମ; ଭାଗଧେୟ=ଭାଗ)—A suffix added to the words Nāme and Bhāga to denote identity.

[ଦ୍ର—ଜ୍ଞାନେନ୍ଦ୍ର ତାଙ୍କ ଅଭିଧାନରେ ଧେୟ ଶବ୍ଦର ବିଶେଷଣ ରୂପେ ରକ୍ଷିତ, ସ୍ଥିତ, ଧାରି, ଗ୍ରାହୀ ଅର୍ଥମାନ ଦେଇ ତହିଁର ଉଦାହରଣ ସ୍ୱରୂପ ନାମଧେୟ=ନାମଧାରୀ; ଭାଗଧେୟ=ଭାଗ୍ୟବାନ୍, ଭାଗୀ ଅର୍ଥ ଲେଖିଅଛନ୍ତି, କିନ୍ତୁ ଏହା ଠିକ୍ ନୁହେଁ । ଅନ୍ୟାନ୍ୟ ପ୍ରାମାଣିକ ଅଭିଧାନ ମାନ (ଯଥା ଆପ୍ଟେ, ପ୍ରକୃତିବାଦ, ମନିଅର୍ ୱିଲିଅମ୍ସ, ହିନ୍ଦି ଶବ୍ଦସାଗର) ଏହା ଗ୍ରହଣ କରି ନାହାନ୍ତି । ନାମଧେୟ ଶବ୍ଦର ଏକାକୀ ପ୍ରୟୋଗ ହେଲେ ଏଥିର ଅର୍ଥ ନାମ; ଏହା ବହୁବ୍ରୀହି ସମାସରେ ଜନ୍ମାମଧେୟ, କିଂନାମଧେୟ ରୂପେ ବ୍ୟବହୃତ ହୁଏ । ନାମଧେୟ ବିଶେଷଣ ପଦ ନୁହେଁ; ଏହା ବିଶେଷ୍ୟ ]

ଧେୟା—ଦେ. ଅ—ଧେଇ (ଦେଖ)
Dheyā Dhei (See)

ଧେୟାତା—ଦେ. ଅ—ଧେଇ (ଦେଖ)
Dheyāta Dhei (See)

ଧେୟାତାଧେୟା—ଦେ. ଅ—ଧେଇ (ଦେଖ)
Dheyātadheyā Dhei (See)

ଧୈନବ—ସଂ. ବିଣ—(ଧେନୁ+ଉତ୍ପନ୍ନାର୍ଥେ. ଅ)—ଗାଈଠାରୁ ଉତ୍ପନ୍ନ—
Dhainaba Produced or got from a cow.
(ଧୈନବୀ—ସ୍ତ୍ରୀ) ସଂ. ବି—ବାଛୁରୀ—Calf.

ଧୈନୁକ—ସଂ.ବି (ଧେନୁକ+ସମୂହାର୍ଥରେ ଅ)—ଧେନୁସମୂହ;ଗାଈପଲ—
Dhainuka A herd of cows; kine; cattle.

ଧୈବତ—ସଂ. ବି (ଧୀମତ୍+ଅ; ନିପାତନ ଅଥବା ଧେ ଧାତୁ+ଐତଚ୍)—
Dhaibata ସାରେଗାମାପାଧାନି ନାମକ ସପ୍ତସ୍ୱରର ଅନ୍ତର୍ଗତ ୬ଷ୍ଠ ସ୍ୱର; ହିନ୍ଦୁ ସଙ୍ଗୀତର ସ୍ୱରଗ୍ରାମର ୬ଷ୍ଠ ସ୍ୱର; ଧା—

The 6th note of the Hindu musical gamut; 'Dha'.

[ଦ୍ର— ନାରଦଙ୍କ ମତରେ ଏହା ଅଷ୍ଟମ ସ୍ୱର, ମାତ୍ର ପାରସିକ ତାନ୍‌ସେନ୍‌ଙ୍କ ମତରେ ଏହା ଷଷ୍ଠ, ସ୍ୱର ଅଟେ । 'ସ୍ୱର' ତଳେ ନୋଟ ଦେଖ । ]

**ଧୈରଜ**—ଗ୍ରା. ବି ( ସ. ଧୈର୍ଯ୍ୟ)—ଧୈର୍ଯ୍ୟ—
Dhairaja Patience
ধৈরজ, धीरज

**ଧୈରଜମାନ**—ଗ୍ରା ବିଣ ( ସଂ ଧୈର୍ଯ୍ୟବାନ୍ )—ଧୈର୍ଯ୍ୟଶୀଳ—
Dhairajamāna Patient.
ধৈরজমান; धीरजमान

**ଧୈରି**—ଦେ. ବି.— ଧଇରି (ଦେଖ)
Dhairi Dhairi (See)

**ଧୈର୍ଯ୍ୟ**—ସଂ.ବି (ଧୀର+ଭାବାର୍ଥରେ ଯ)—୧ । ଧୀରତା,ମନର ସ୍ଥିରତା—
Dhairjya 1. Patience.
୨ । ସହିଷ୍ଣୁତା—2. Fortitude; forbearance; endurance.
୩ । ଦୃଢ଼ତା; ସ୍ଥିରତା—3. Firmness;steadfastness.
ଗ୍ରା. ବି—( ସଂ ସ୍ଥାୟିର )—ପ୍ରୌଢ଼ାବସ୍ଥା—Adult stage of life.
ବାଳ ଯୁବକ ଧୈର୍ଯ୍ୟ ବୃଦ୍ଧ, ତୋହର ନାହିଁ ଜନ୍ମ ବଧ
ଭୂପତ. ପ୍ରେମପଞ୍ଚାମୃତ ।

**ଧୈର୍ଯ୍ୟ ଚ୍ୟୁତ**—ସଂ. ବିଣ. ପୁଂ (୫ମୀ ତତ୍; ଧୈର୍ଯ୍ୟ+ଚ୍ୟୁତ )—ଅଧୀର, ଅସମ୍ଭାଳ—One who has lost one's patience; impatient.
Dhairjya chyuta
(ଧୈର୍ଯ୍ୟ ଚ୍ୟୁତା—ସ୍ତ୍ରୀ)

**ଧୈର୍ଯ୍ୟ ଚ୍ୟୁତି**—ସଂ. ବି ( ୬ଷ୍ଠୀ ତତ୍; ଧୈର୍ଯ୍ୟ+ଚ୍ୟୁତି )—ମାନସିକ ଅସ୍ଥିରତା, ଅଧୈର୍ଯ୍ୟ; ଅଧୀରତା—Loss of patience; impatience
Dhairjya chyuti

**ଧୈର୍ଯ୍ୟ ଧରିବା**—ଦେ. କ୍ରି—ମନ ସମ୍ଭାଳି ରହିବା; ମନକୁ ସ୍ଥିର ବା ଦୃଢ଼ ରଖିବା; ଅଥୟ ନ ହେବା—To have patience;to bear a thing with equanimity.
Dhairjya dharibā
ধৈরজধরা; धीरजधरना

**ଧୈର୍ଯ୍ୟ ଧାରଣ**—ସଂ. ବି ( ୬ଷ୍ଠୀ ତତ୍; ଧୈର୍ଯ୍ୟ+ଧାରଣ )—ସହିଷ୍ଣୁତା ଅବଲମ୍ବନ, ଧୈର୍ଯ୍ୟ ଧରିବା; ସହିଷ୍ଣୁତା—Fortitude; forbearnce.
Dhairjya dhāraṇa

**ଧୈର୍ଯ୍ୟବନ୍ତ**—ଦେ. ବିଣ— ଧୈର୍ଯ୍ୟବାନ୍ ( ଦେଖ )
Dhairjyabanta Dhairjyabān (See)
ধৈরজমান धीरजमान

**ଧୈର୍ଯ୍ୟବାନ୍**—ସ. ବିଣ. ପୁଂ. ( ଧୈର୍ଯ୍ୟ+ଅସ୍ତି ଅର୍ଥରେ ବତ୍; ୧ମା. ୧ବ. )—୧ । ସହିଷ୍ଣୁ; ଧୀର—
Dhairjyabān
( ଧୈର୍ଯ୍ୟବତୀ—ସ୍ତ୍ରୀ ) 1. Patient; forbearing.
( ଧୈର୍ଯ୍ୟବସ୍ତୁ – ବି ) ୨ । ଅବିଚଳିତ—
2. Firm; calm; steady.

**ଧୈର୍ଯ୍ୟଶାଳୀ**—ସଂ. ବିଣ. ପୁଂ. (ଧୈର୍ଯ୍ୟ+ଅସ୍ତି ଅର୍ଥରେ ଶାଳିନ୍; ୧ମା. ୧ବ)—୧ । ଧୈର୍ଯ୍ୟବାନ୍—1. Patient.
Dhairjyaśāli
(ଧୈର୍ଯ୍ୟଶାଳିନୀ—ସ୍ତ୍ରୀ) ୨ । ସହିଷ୍ଣୁ—2. Forbearing.
(ଧୈର୍ଯ୍ୟଶାଳିତା—ବି)

**ଧୈର୍ଯ୍ୟଶୀଳ**—ସ. ବିଣ. ପୁଂ. ( ବହୁବ୍ରୀହି; ଧୈର୍ଯ୍ୟ+ଶୀଳ )—ସ୍ୱଭାବତଃ ଧୀର ବା ସହିଷ୍ଣୁ—Patient or forbearing by nature.
Dhairjyaśīla
( ଧୈର୍ଯ୍ୟଶୀଳା—ସ୍ତ୍ରୀ ) ( ଧୈର୍ଯ୍ୟଶୀଳତା—ବି )

**ଧୋ**—ଦେ. ଅ. ( ଧ୍ୱନ୍ୟନୁକରଣ )—୧ । ଧୂଅ ( ଦେଖ )
Dho 1. Dhūa ( See ).
ଧୋଓ, ଧୋଓ ଧୋଓ, ଧୋଃ, ଧୋଧୋ } ଅନ୍ୟରୂପ
ଧୋ ରେ ବାପ୍ପା ଧୋ, ଯେଉଁ କଅରରେ ଗଢ଼ଳ ମାଣ୍ଡିଆ ସେହି କଅରରେ ଶୋ—
ଶିଶୁରଞ୍ଜନ ଗୀତ ।
୨ । ମୃଦଙ୍ଗ ଆଦି ବାଦ୍ୟର ସ୍ତ୍ରୋକଟକୁ ସମାପ୍ତ କରିବାର ଶବ୍ଦ—
2. The sound representing the concluding beat or stroke in the striking of the Mṛudaṅga.
ଦେ. କ୍ରି—( 'ଧୋଇବା' କ୍ରିୟାର ଅନୁଜ୍ଞା, ଅନାଦରାର୍ଥକ ମଧ୍ୟ ପୁରୁଷ ଓ ୧ ବଚନ ରୂପ )—ଧୂଅ—
( Imperative singular form of the verb 'Dhoibā' ) Do wash.

**ଧୋଇ**—ଦେ. ବି. ( ସ. ଧାବ ଧାତୁ=ଧୋଇବା )—
Dhoi ୧ । ପ୍ରବଳ ନଈବଢ଼ି—
বান 1. High flood; inundation.
सैलाब; बुढ़ोवाढ़ ୨ । ଜଳବହୁଳତା ଯୋଗୁଁ ଶସ୍ୟ ଆଦିର ନଷ୍ଟ—
(ମରୁଡ଼ି—ଅନ୍ୟରୂପ ) 2. The state of the crops etc being washed away by flood, devastation of a country by flood
୩ । ଅତିବୃଷ୍ଟିଜନିତ ଜଳବହୁଳତା, ଜଳ ପ୍ଲାବନ—
3. The state of a country being over flooded by excessive rain.
୪ । (ପୁଂ) (ଆଦରାର୍ଥକ)ଧୋବା ନାମକ ବ୍ୟକ୍ତିର ଡାକ ନାମ—
4. Name for calling Dhobā.
ଧୋଇ ମଳକ; ସଙ୍ଗାଳ କରିଛି ହିଁଅ ହୃଳକ – ଡଗ ।
୫ । ( ସ୍ତ୍ରୀ ) ସ୍ତ୍ରୀମାନଙ୍କୁ ଦିଆଯିବା ନାମ—
5. A name given to femeles.
ଦେ. ବିଣ—କୌଣସି ସ୍ଥାନ ବର୍ଷାଜଳ ଆଦିରେ ଧୂଆ ହେବା ପରେ ସେଠାରୁ ଗଡ଼ି ଆସୁଥିବା ( ଜଳ )—( rain-water ) Washed off from a place.
( ଯଥା— ଗାଆଁର ଧୋଇ ପାଣି ଏହି ବିଲବାଟେ ଯାଏ । )

**ଧୋଇଆ**—ଦେ ବିଣ. ( ସ ଧାବ ଧାତୁ )—
Dhoiā ୧ । ପ୍ରଚୁର ଜଳଦ୍ୱାରା ଶସ୍ୟାଦି ନଷ୍ଟ ହେବା (ଭୂଭାଗ);
ধোয়াট; ধোয়াটে ଯେଉଁ ଭୂଖଣ୍ଡ ବା ଅଞ୍ଚଳର ଶସ୍ୟାଦି ପ୍ରବଳ ବୃଷ୍ଟି
पनमार; सैलाबी; दहार ବା ବନ୍ୟା ଜଳରେ ନଷ୍ଟ ହୋଇଅଛି—
(ମରୁଡ଼ିଆ—ଅନ୍ୟରୂପ) 1. ( country ) Washed away or devastated by excessive flood or rain-fall.
୨ । ଯେଉଁ ସ୍ଥାନରେ ପ୍ରତିବର୍ଷ ନଈ ବଢ଼ି ପାଣି ମାଡ଼େ—
2. ( country ) Subject to flood.
. ଧୋଇଆ କଣେ; ମରୁଡ଼ିଆ ମାଣେ—କୃଷିବଚନ ।

୩ । (ଅନାଦରାର୍ଥକ) ଧୋବା ନାମକ ବ୍ୟକ୍ତିର ଡାକ ନାମ —
3. Name for calling Dhobā

**ଧୋଇ ଖୁସ୍କି**—ଦେ ବି. ( ସ. ଧୌତ ଓ ଶୁଷ୍କ; ଫା ଖୁଶ୍କି ) —
Dhoi khus-ki ଧୋଇ ମରୁଡ଼ି ( ଦେଖ )—
Dhoi marurdi ( See )

**ଧୋଇ ଧାଇ ଦେବା**—ଦେ. କ୍ରି - ଧୁଆ ଧୋଇ କରିବା; ଉତ୍ତମରୂପେ
Dhoi dhāi debā ଧୌତ କରିବା –To wash thoroughly.
ଧୁଯେ ଦେଓୟା **धो धा देना**
[ଦ୍ର— ୧୯୩୩ ମସିହା ନଈ ବଢ଼ି ଓଡ଼ିଶାର ଅଧିକାଂଶ ସ୍ଥାନରେ ଘାଗ ଲୋକଙ୍କ ଫସଲ ଓ ଘରଦ୍ୱାର ଧୋଇଧାଇ ଦେଲା ।]

**ଧୋଇ ଧାଇ ହେବା**—ଦେ. କ୍ରି—ଧୁଆ ଧୋଇ ହେବା; ଆପଣା ଦେହକୁ
Dhoi dhāi hebā ଜଳଦ୍ୱାରା ଉତ୍ତମରୂପେ ପରିଷ୍କାର କରିବା —
**धो धा करना** To cleanse oneself of dirt by a thorough washing

**ଧୋଇ ପାଣି**—ଦେ. ବି. ( ସ. ଧୌତ ଓ ପାନୀୟ )—କୌଣସି ସ୍ଥାନ
Dhoi pāni ବୃଷ୍ଟିଜଳ ଆଦିରେ ଧୁଆ ହେବା ପରେ ସେଠାରୁ
ଧୋୟାନୀ ଯେଉଁ ପାଣି ଅନ୍ୟ ସ୍ଥାନକୁ ଗଡ଼ିଯାଏ —
**धोयापानी** The rain water washed off from a place.

**ଧୋଇ ପାଣି ଦେବା**— ଦେ. କ୍ରି ( ଲକ୍ଷଣାର୍ଥ )—( କୌଣସି ବସ୍ତୁକୁ)
Dhoi pāni debā ଦେବା ତ ଦୂରର କଥା, ସେହି ପଦାର୍ଥକୁ)
ଧୁଇୟେ ଜଲ ଦେଓୟା ଜଳରେ ଧୋଇ ସେହି ଜଳକୁ ଦେବା, ଅର୍ଥାତ୍
**धोकर भिदेना** ଆଦୌ କିଛି ନ ଦେବା ( fig ) Not to
(ଧୋଇ କରି ପାଣି ଦେବା—ଅନ୍ୟରୂପ) give any thing at all.
( ଯଥା—ତୁ ମୋଠାରୁ ଶହେ ଟଙ୍କା ନେବାକୁ ଆସିଛୁ । ମୁଁ ତୋତେ ଟଙ୍କା ଧୋଇ ପାଣି ଦେବି । )

**ଧୋଇବା**—ଦେ. କ୍ରି. (ସ ଧାବ ଧାତୁ)—ଜଳଦ୍ୱାରା ଧୌତ କରିବା—
Dhoibā To wash with water.
ଧোয়া, ଧোওয়া [ ଦ୍ର—ଏ କ୍ରିୟାର ଅସମାପିକାରୂପ ସଙ୍ଗେ ଦେବା,
**धोना** ନେବା, ପକା(କେ)ଇବା କ୍ରିୟାର ସମାପିକାରୂପ ଯୁକ୍ତ
[ ଧୁଆଯି(ହେ)ବା—କର୍ମବାଚ୍ୟରୂପ ) ହୁଏ; ଯଥା—ଧୋଇ ଦେବା;
( ଧୁଆଇବା—ଣିଜନ୍ତ ) ଧୋଇ ପକାଇବା, ଧୋଇ ନେବା ଓ ଧ୍ୱନ୍ୟନୁକାରୀ ଧାଇବା କ୍ରିୟାର ଅସମାପିକାରୂପ ଯୁକ୍ତ ହୁଏ; ଯଥା—ଧୋଇ ଧାଇ ଦେବା । ]

**ଧୋଇ ମରୁଡ଼ି**—ଦେ. ବି. (ବିପରୀତାର୍ଥବୋଧକ ସହଚର)—
Dhoi marurdi ୧ । ଅତିବୃଷ୍ଟି ଓ ଅନାବୃଷ୍ଟି ; ଧୋଇ ଓ ମରୁଡ଼ି -
ଧোয়াটখুস্কী 1. Flood and draught; excessive
**दहारौदी; दहारखुस्की** rain and draught.
ଧୋଇ ମରୁଡ଼ି ସହିଁରେ କ ଥାଇ
ସେ ଭୂମି ତଳ ଦଣ୍ଡ ଭଣେ କେଇ । ପ୍ରାଚୀ. ପରଦେଶୀଗୀତ ।

୨ । ଅତିବୃଷ୍ଟି ଜନିତ ଫସଲର ହାନି ବା ଅନାବୃଷ୍ଟି ଜନିତ ଶସ୍ୟହାନି—2. Loss or damage of crops due to excessive rain or draught

**ଧୋଇ ଯିବା**—ଦେ. କ୍ରି—୧ । ନଦୀବଢ଼ି ବା ବନ୍ୟାରେ ଭାସିଯିବା—
Dhoi jibā 1. To be carried away by flood.
ଧুয়েযাওআ ୨ । ନଦୀବଢ଼ି ବା ବନ୍ୟାରେ (ଶସ୍ୟ) ନଷ୍ଟ ହେବା—
**दहजाना** 2. ( crops ) To be damagod by flood-water.
( ଧୋଇହୋଇ ଯିବା —ଅନ୍ୟରୂପ )

**ଧୋଇ ଶୁଖା(ଖୋ)ଇ ଖାଇବା**—ଦେ. କ୍ରି —କୌଣସି ବିଷୟ ବା ପଦାର୍ଥକୁ
Dhoi sukhā(khe)i khāibā କୌଣସି ପ୍ରକାରେ ନ ବଢ଼ାଇ ବା
**लड़ा बराकर खना** ନ କମାଇ ତାହାର ବ୍ୟବହାର କରିବା; କୌଣସି ଦ୍ରବ୍ୟର ଆୟମାତ୍ର ଭୋଗ କରିବା—To enjoy the income only of a property without in any way touching the main body of it.

**ଧୋଓରା**—ଦେ. ବି—୧ । ଯେଉଁ ବାନ୍ଧ ବା ଭୂମି ଉପରେ କୌଣସି ଗ୍ରାମର
Dho-orā ବର୍ଷା ପାଣି ବହିଯାଏ —1 A land over which
ধোআনি flows the surplus rain water of a
**गोड़हा** village.
ଘଁଆର ଧୋଓରା ପୋଖରୀ ଉଳ
ପ୍ରଜା ବେଉଥିବ ଅଗତ କରି—କୃଷିବଚନ ।

୨ । ବର୍ଷା ପାଣିରେ ମାଟି ଆଦି ଯାହା ଧୋଇ ହୋଇଯାଏ —
2. Earth etc which is washed away by rain water.

ଦେ. ବିଣ —ଗ୍ରାମର ଧୋଇ ( ପାଣି )—
( water ) Washed off from a village; surplus ( rain water ).

**ଧୋଓରେ**—ଦେ. ଅ. ( ଧ୍ୱନ୍ୟନୁକରଣ )—ବାୟାଭଡ଼େଇ ଓ ମାଙ୍କଡ଼
Dho-ore ଆଦିଙ୍କୁ ତଡ଼ିଦେବା ଧ୍ୱନି—Sound made for scaring away monkeys and birds.
ଧୋଓରେ ବାୟା ଧୋ, ସେଇଁ କଅଁଳରେ ଗହଳ ମାଣ୍ଡିଆ
ସେହି କଅଁଳରେ ଶୋ । ଶିଶୁରଞ୍ଜନ ଗୀତ ।

**ଧୋଓରେ ବାୟା ଧୋ**—ଦେ. ( ଶିଶୁବଚନ )ଅ—ଶିଶୁମାନଙ୍କୁ ଶୁଆଇବା
Dho-ore bāyā dho କୋଳରେ ନିଦ୍ରିତ କରାଇବା ପାଇଁ ମାତା
**आरे निनिया आ** ଆଦିଙ୍କର ଆବୃତ୍ତ ବଚନ—The burden of a lullaby strain repeated in the course of rocking an infant to sleep in the mother's lap.

**ଧୋକଡ଼**- ଦେ. ବିଣ. ପୁଂ ( ସ. ଦୁଷ୍କୃତ; ପ୍ରା. ଡୁକ୍କର; ଭୁଲ. ହି.
Dhokarda ଧୋକଡ଼ = ହୃଷ୍ଟପୁଷ୍ଟ)—୧ । ଜରାଗ୍ରସ୍ତ; ଜାର୍ଣ୍ଣ—
ধোকড 1. Decrepit; worn out; exhausted.
**डोकरा; डोकर** ୨ । ମୋଟା (ଲୁଗା)—2. Coarse; rough.
୩ । ଚୀରା; ଲେକ୍‌ଚଡ଼ା—3. Torn; ragged.
୪ । ଶୀର୍ଣ୍ଣ—4. Shrivelled up.
୫ । ଢିଲା; ଶ୍ଲଥ—5 Loosened; slackened.
୬ । ଶ୍ଳଥଚର୍ମ—6. Having shrivelled skin.
୭ । ପଲିତ; ବଲବଲକିଆ; ବଲିତ—7. Wrinkled.
୮ । ଅନ୍ତଃସାରଶୂନ୍ୟ—8 Emptied of its contents; unsubstantial; hollow.
ବହିନ ଗଲେଣି ଉମା ଖାଇ; ଓଳଅ ପଡ଼ିଛି ଧୋକଡ ହୋଇ । ଦଗ ।
୯ । ଲକ୍ଷ୍ମୀ; ବାଉଳ—9. Loaferish; aimlessly wandering.
୧୦ । ଅତି ବୃଦ୍ଧ—10. Very old.

୧୧ । ବଲମ୍ବିତ (ସ୍ତନ)—
11. Hanging (breasts of women).
୧୨ । ହୃଷ୍ଟପୁଷ୍ଟ; ବଳିଷ୍ଠ (ତୁଳ. ଏହି ଅର୍ଥରେ ହି. ଧୋକଡ଼)—
12. Stout and strong
୧୩ । ନିର୍ଦ୍ଦୋଷ; ନିଷ୍ପାପ—13 Sinless; innocent.
(ପଣ୍ଡିତଙ୍କ ପୁଅ) ମାଙ୍କଡ ମାଇଲେ ହୁଏ ଧୋକଡ ।
ବଙ୍ଗଳା. ପ୍ରବଚନ ।

ଦେ. ବି. (ସଂ. ଦୌଦକଣ୍ଠ)—ଲୁଗାର ଥଳି; ମୁଣି—
A cloth bag; wallet.

**ଧୋକଡ଼ା**—ଦେ. ବିଣ. ପୁଂ.—ଧୋକଡ (ଦେଖ)
Dhokarda Dhokarda (See)
ବହୁତ ଗଳାଣି ଭଳା ଖାଇ; ଓଳଥା ପଡ଼ଛ ଧୋକଡା ହୋଇ—ଭଗ ।

**ଧୋକଡ଼ିଆ**—ଦେ. ବିଣ.—ଧୋକଡ଼ (ଦେଖ)
Dhokardia Dhokarda (See)

**ଧୋକଡ଼ୀ**—ଦେ. ବି. ସ୍ତ୍ରୀ—୧ । ଶ୍ଳଥସ୍ତନୀ ବା ଲମ୍ବିତସ୍ତନୀ ସ୍ତ୍ରୀ; ଲମ୍ବକୁଚ୍ଚ ସ୍ତ୍ରୀ—1. A woman with hanging breasts.
Dhokardi
ଧোকড়ী
धोकरी
୨ । ଲୁଗାର ଥଳି ବା ମୁଣି—
2. A wallet or bag made of cloth.
ଦେ. ବିଣ. ସ୍ତ୍ରୀ—୧ । ଧୋକଡ଼ର ସ୍ତ୍ରୀଲିଙ୍ଗ—
1. Feminine of Dhokarda.
୨ । ବଲମ୍ବିତ ପୟୋଧର (ସ୍ତ୍ରୀ)—2. (a woman) With wrinkled or hanging breasts.

**ଧୋକା**—ଦେ. ବି. (ସଂ ଦୁଃଖ; କିମ୍ବା ଧୁକ୍ଷ ଧାତୁ=କ୍ଲେଶନ; ତୁଳ ସଂ. ଧୂର୍ତ୍ତତା)—୧ । ସନ୍ଦେହ—1. Doubt.
Dhokā
ধোকা; ধোঁকা
धोखा
୨ । ଦୋଟାଳି; ଉଭୟସଙ୍କଟ ସମସ୍ୟା—
2. Dilemma.
୩ । ଛାତିର ଦକ; ଛାତି ଦକଦକ ହେବା—
3. Palpitation of the heart; state of nervousness or consternation.
୪ । ବିପଦର ଆଶଙ୍କା—
4. Apprehension of danger.
୫ । ଭବିଷ୍ୟତ ଭୟଜନିତ ଚିନ୍ତା—
5. Anxiety due to fear.
ସାଥପ୍ରାଣୀଙ୍କ ମନକୁ ହଟଏ କମିଛବା ଧୋକା ଲୁଗିଛି ।
ଫକୀରମୋହନ. ଗଳ୍ପସ୍ବଳ୍ପ ।
୬ । ମୋହ; ଭ୍ରାନ୍ତି; ଭ୍ରମ—
6. Error; illusion; delusion.
୭ । ଦରଭୟ; ଭୟ—7. Fear; fright.
୮ । ଭୁଲ ବୁଝିବା—8. Misconception; misunderstanding.
୯ । ଦୁଃଖ—9. Sorrow; trouble.
୧୦ । କ୍ଷତି—10. Damage; injury.
୧୧ । ବିପଦ—11. Danger.
୧୨ । କୌଣସି ବ୍ୟକ୍ତିର ଧୂର୍ତ୍ତତା-ଜନିତ ଅନ୍ୟର ଭ୍ରମ ବା ବିପଦ—
12. Error or danger resulting from the wicked conduct of another person.
ପ୍ରାଦେ. (ଯାଜପୁର) ବି—ପିଷ୍ଟକବିଶେଷ—
A kind of cake.
[ ଦ୍ର—ବୁଟକୁ ବାଟି ସେଥିରେ ଲଙ୍କାମରିଚ ଓ ପିଆଜ ପକାଇ ତାହାକୁ ବଡ଼ି ପିଠା ପରି କରି ଘିଅ ବା ତେଲରେ ଛାଣିବାକୁ ହୁଏ । ଏହା ଖାଇ ଖିଆଯାଏ ବା ତରକାରି ଆଦିରେ ମଧ୍ୟ ପଡ଼େ । ତୁଳ. ଏହି ଅର୍ଥରେ ବଂ. ଧୋଁକା ]

**ଧୋକା କରିବା**—ଦେ. କ୍ରି—୧ । ସନ୍ଦେହ କରିବା—
Dhokā karibā 1. To doubt.
ধোঁকা খাওয়া
धोखा खाना
୨ । ଆଶଙ୍କା କରିବା; ଭୟ କରିବା—
2 To fear; to apprehend.
୩ । ପରୱା ବା ପରୱାସ୍ତ କରିବା—3. To care for.
୪ । ଚିନ୍ତା କରିବା; ମନରେ ଦକଦକ ହେବା—
4. To be nervous about; to feel nervous.

**ଧୋକା ଖାଇବା**—ଦେ. କ୍ରି—୧ । ଧୋକା କରିବା (ଦେଖ)
Dhokā khāibā 1. Dhokā karibā (See)
ধোঁকায় পড়া
धोखेमें गीरना
୨ । ଅନ୍ୟର କୌଶଳ ଦ୍ୱାରା ବିପଦଗ୍ରସ୍ତ ହେବା—
2 To be in danger as a result of another's manipulation.
୩ । ଭ୍ରମଗ୍ରସ୍ତ ହେବା, ଭ୍ରାନ୍ତହେବା—
3 To labour under a delusion.

**ଧୋକା ଦେବା**—ଦେ. କ୍ରି—୧ । ସନ୍ଦେହାନ୍ୱିତ କରିବା—
Dhokā debā 1. To put in doubt
[ଧୋକାରେ ପକା(କେ)ଇବା—ଅନ୍ୟରୂପ]
ধোঁকা দেওয়া
धोखा देना
୨ । ଭୀତି ଉତ୍ପାଦନ କରିବା—2. To frighten; to unnerve.
୩ । ଅନ୍ୟକୁ ବିପନ୍ନ କରିବା; ବିପଦରେ ପକାଇବା—
3 To put a person in danger; to endanger a person.
୪ । ଚିନ୍ତାଗ୍ରସ୍ତ କରାଇବା—4. To put (a person) into a state of consternation.
୫ । ଦୁଃଖରେ ପକାଇବା; ଅନିଷ୍ଟ କରିବା—
5 To injure, to put to trouble.
୬ । ଭ୍ରମରେ ପକାଇବା—6. To delude a person.

**ଧୋକାବାଜ**—ବୈଦେ. ବିଣ (ହି. ଧୋଖେବାଜ୍)—୧ । ଯେ ଅନ୍ୟକୁ ଧୋକା ଦିଏ—1. One who puts another to fear, declusion or doubt.
Dhokābāj
ধোঁকাবাজ; धोखेबाज
୨ । ପ୍ରବଞ୍ଚକ; ଧପ୍ପାବାଜ—2. Deceiving; illusive; fraudulent.

**ଧୋକାବାଜି**—ବୈଦେ. ବି (ହି. ଧୋଖେବାଜୀ)—ପ୍ରତାରଣା—
Dhokābāji Deceit; putting another to trouble, fraud.
ধোঁকাবাজী; धोखेबाजी

**ଧୋକା ରଖିବା**—ଦେ. କ୍ରି—ଧୋକା କରିବା (ଦେଖ)
Dhokā rakhibā Dhokā karibā (See)

ଧୋକେଇବା—ଦେ. କ୍ରି—(ସ ଧୂକ୍ଷ ଧାତୁ=କ୍ଳେଶ ଦେବା)—
Dhokeibā ୧ । ଧୋକା ଦେବା—1. To frighten.
(ଧୋକାଇବା—ଅନ୍ୟରୂପ) ୨ । ଧୋକା କରିବା—
ধোকান; धोखादेना 2. To be unnerved about.
ধোঁকা; हाँफना ୩ । ଧକେଇବା; ଧଇଁ ସଇଁ ହେବା; ଧୁକ୍ ଧୁକ୍ ହେବା—3. To gasp or pant.

ଧୋଜା—ଗ୍ରା. ବି (ସ. ଧ୍ୱଜା)—ଧ୍ୱଜା; ପତାକା—
Dhojā Flag.
ধ্বজা; झंडा

ଧୋଜା ମୁଣୋହିଁ—ଦେ.ବି—ଦୂଜକ ଯେଉଁ ଭୋଗକୁ ମନ୍ଦିରାଭ୍ୟନ୍ତରରେ
Dhojā muṇohĩ ଠାକୁରଙ୍କ ଛାମୁରେ ଭୋଗ ନ ଲଗାଇ ମନ୍ଦିର-
ଧୋଜା ମୁଣୋହି, ଧୋଜା ମୁଣୋହି, ଧ୍ୱଜା ମୁଣୋହି, ଧୋଜା ମଣୋହିଁ } ଅନ୍ୟରୂପ
ଶୃଙ୍ଗସ୍ଥ ଧ୍ୱଜାକୁ ଦେଖାଇ ଦେଉଳର ବାହାରେ ଭୋଗ ଲଗାଏ—
An offering offered to an idol in the sight of the flag, instead of being offered near the Deity.

ଧୋଜା ମୁଣ୍ଡେଇ—ଦେ. ବି (ସ. ଧ୍ୱଜ ଓ ମଣ୍ଡପ)—ଯେଉଁ ଦେବ-
Dhojā muṇḍei ମଣ୍ଡପର ଉପରେ ପତାକା ଉଡ଼ୁଥାଏ—
A pavillion over which flies a flag

ଧୋଡ଼—ସ. ବି (ଧୃ ଧାତୁ=କମ୍ପାଇବା+କର୍ତ୍ତୃ. ଡ଼)—ଡୁଣ୍ଡୁଭ ବା
Dhorḍa ଧଣ୍ଡସାପ—Water-snake.

ଧୋଡ଼କା—ଦେ. ବି—୧ । ଢୁଗୁଳା—1. Loosened; shaky.
Dhorḍakā ୨ । ଶିଥିଳ; ଶ୍ଳଥ—2. Slackened.
নড়ডে, নড়বড়ে ୩ । ଫମ୍ପା—3. Empty
लुड़कताहुआ, डुनमुनिआ ୪ । ଧଡ଼ଧଡ଼ିଆ—4. Tottering.

·ଧୋଡ଼କା(କେ)ଇବା—ଦେ. କ୍ରି (ଧୋଡ଼କିବାର ସକର୍ମକରୂପ)—
Dhorḍakā(ke)ibā ଢୁଗୁଳା କରିଦେବା—To loosen; to
নড়ান; ढुलकाना slacken.

·ଧୋଡ଼କିବା—ଦେ. କ୍ରି—ଶିଥିଳ ହେବା; ଲଡ଼ିବା—To become
Dhorḍakibā slack or loose.
নড়বড়হওআ; ढुरकना; ढुलकना

ଧୋଡ଼ା—ଦେ. ବି—ଢିପ ଜମି; ଉଚ୍ଚ ଭୂମି—High land.
Dhorḍā টিপী; ढुह

·ଧୋତ୍—ଦେ. ଅ—ଧୁତ୍ (ଦେଖ)
Dhot Dhut (See)
(ଧୋତ୍ତେର, ଧୋତ୍ତେରକା; ଧୋତ୍ତେରକେ—ଅନ୍ୟରୂପ)

ଧୋଡ଼—ଦେ.ବଣ (ସ.ଧୌତକଠ)—୧ । ଜୀର୍ଣ୍ଣ ଶୀର୍ଣ୍ଣ;ଧୋକଡ଼(ବସ୍ତ୍ର)—
Dhotarḍa 1. Worn out and torn (cloth).
(ଧୋତଡ଼ା, ଧୋତରା—ଅନ୍ୟରୂପ)
(ଧୋତଡ଼ୀ, ଧୋତରୀ—ସ୍ତ୍ରୀ)
୨ । ଧୋକଡ଼ (ଦେଖ)
2. Dhokarḍa (See)

ଧୋତରା ଉଡ଼ିଯିବା—ଦେ. କ୍ରି—୧ । କୌଣସି ଘଟଣାରେ କୌଣସି
Dhotarā urḍijibā ବ୍ୟକ୍ତିର ଅସ୍ତବ୍ୟସ୍ତ ଓ ସର୍ବସ୍ୱାନ୍ତ ହୋଇ
ପଡ଼ିବା ଅବସ୍ଥା—1. (a person) Being altogether ruined or done for
୨ । ଅତ୍ୟନ୍ତ କ୍ଳାନ୍ତି—
2 The state of being over-tired

ଧୋତି—ଦେ. ବି (ସ ଧୌତି; ଭୁଲ. ସ ଅଧୋବସ୍ତ୍ର; ଭୁଲ. ବଂ. ଧୁତି,
Dhoti ହି. ଧୋତି, ତେ ଧୋଡି, ମ. ଧୋତର, ଧୋଟ)—
ধুতি ୧ । ପିନ୍ଧା; ପରିଧେୟ ବସ୍ତ୍ର; ପୁରୁଷଙ୍କ ପିନ୍ଧା ଲୁଗା—
धोति 1. A cloth for males' wear.
୨ । ଅଧୋବାସ; କଟିବସ୍ତ୍ର—2 A piece of cloth worn round the waist; waist cloth.

ଧୋତି ଚ(ଚା)ଦର—ଦେ. ବି (ସ. ଧୌତି+ଆ. ଚଦର)—ଅଧୋବାସ
Dhoti cha(chā)dara ଓ ଉତ୍ତରୀୟ, ପିନ୍ଧା ଓ ଘୋଡ଼ିବା—
ধুতিচাদর A suit of cloth consisting of a wearing
धोतिचद्दर, धोतिचाद्दर piece and a covering piece.

ଧୋ ପଖାଳ—ଦେ. ବି (ସ. ଧୌତ ଓ ପ୍ରକ୍ଷାଳନ)—ପ୍ରତିଦିନ ସକାଳେ
Dho pakhāḷa ଓ ଭୋଗ ଉଠିଲା ପରେ ଦେବମନ୍ଦିରର ତଳ ବା
ধুআধুই ଚଟାଣରେ ପାଣି ଢାଳି ଧୁଆପୋଛା କରି ସଫା
धुलाई उलाई, धुलावट କରିବା କର୍ମ—Washing and cleansing the floor of a temple.

ଧୋ ପଖାଳିଆ—ଦେ. ବି—ଦେବତାଙ୍କ ନିଯୋଗ ବିଶେଷ—
Dho-pakhāḷiā A class of servants serving in temples.
[ ଦ୍ର—ଏମାନେ ମନ୍ଦିରର ତଳକୁ ପ୍ରତିଦିନ ଧୁଆଧୋଇ କରି ପରିଷ୍କୃତ କରନ୍ତି । ]

ଧୋ ପଖାଳିବା—ଦେ. କ୍ରି (ସ. ଧୌତ ଓ ପ୍ରକ୍ଷାଳନ)—ଦେବମନ୍ଦିରର
Dho pakhāḷibā ଚଟାଣରେ ପାଣି ଢାଳି ଓ ଝାଡ଼ୁ ମାରି ତାକୁ
ধোওন, ধুয়েফেলা ସଫା କରିବା—To wash and cleanse
धोडालना the floor of a temple.

ଧୋବ୍‌ଛାୟା—ଦେ. ବି—ଧୂପ୍‌ଛାୟା (ଦେଖ)
Dhob-chhāyā Dhup-chhāyā (See)

ଧୋବ—ଦେ. ବଣ (ସ. ଧବଳ କମ୍ବା ଧାବ୍ ଧାତୁ=ଧୋଇବା; ସ. ଧୂପ
Dhoba ଧାତୁ=ଦୀପ୍ତି)—୧ । ଶୁକ୍ଳ; ଧବଳ; ଧଳା—
ধোপ 1. White.
धवर, सफेद, धौला ୨ । କାଚ୍ଚ ହୋଇ ପରିଷ୍କୃତ ଓ ଧଳା ହୋଇଥିବା (ଲୁଗା)—2. (cloth) Washed clean and white; bleached.
ধোপ ଦେ. ବି—୧ । ଶୁକ୍ଳବର୍ଣ୍ଣ—1. White colour.
धोब, धोलाई ୨ । ଥରେ ଧୋବାଘରେ ପଡ଼ି ପରିଷ୍କୃତ ହେବା ଅବସ୍ଥା—2. One washing; a wash (of a cloth).
( ଯଥା—ଏ ଲୁଗାଖଣ୍ଡକର ଗୁରି ଧୋବ ହେଲାଣି । )

ଧୋବ କରିବା—ଦେ. କ୍ରି (ସ. ଧାବନ, ଧବଳ)—୧ । ଧଳାରଙ୍ଗ
Dhoba karibā କରିବା—1. To whiten.
ধোপ দেওয়া ୨ । ଲୁଗା କାଚ ସଫା କରିବା—2. To wash
धोब करना, साफ करना a cloth and turn it white.

[ ଦ୍ର—ଧୋବାମାନେ ଲୁଗାକୁ ସାମାନ୍ୟ ପରିମାଣରେ କାଚ ସଫା କଲେ ତାକୁ ସଜଧୋବ ଓ ଉତ୍ତମରୂପେ କାଚ ସଫା କରି ଇସ୍ତ୍ରୀ କଲେ ତାକୁ ବାସିଧୋବ ବୋଲାଯାଏ । ]

**ଧୋବଣୀ**—ଦେ ବି. ସ୍ତ୍ରୀ ( ଧୋବାର ସ୍ତ୍ରୀଲିଙ୍ଗ )—୧ । ଧୋବା ଜାତୀୟା
Dhobaṇī ସ୍ତ୍ରୀ – 1. A woman of the washerman caste.
ଧୋପାନୀ ୨ । ଯେଉଁ ସ୍ତ୍ରୀ ଲୁଗା କାଚେ—
**धोबन, धोबिन, धोबइन** 2. Washerwoman.
୩ । ଅପର୍ତ୍ତିଆଣୀ ସ୍ତ୍ରୀଲୋକଙ୍କୁ ଦିଆଯିବା ନାମ—
3 A name given to Aparttiāṇi females

**ଧୋବ ଧାଉଳିଆ**—ଦେ ବିଣ (ସଂ. ଧବଳବସନଧାରୀ)– ୧ । ଯାହାର
Dhoba dhāulīā ଦେହତମାମ୍ ଧଳା, ଯାହାଙ୍କ ଦେହଯାକ ଶୁକ୍ଳ—
ଧପଧପେ; ଧବଧବିଆ 1. White throughout.
**सफेदपोश** ୨ । ଯେ ଧୋବ ଲୁଗା ପିନ୍ଧିଥାଏ; ଶୁକ୍ଳବସ୍ତ୍ରପରିହିତ—
2. Wearing white cloth.
୩ । ଧବଳବର୍ଣ୍ଣବିଶିଷ୍ଟ —3. White.
ଧୋବଧାଉଳିଆ ପକ୍ଷୀ, ଶ୍ରୀରାମଚନ୍ଦ୍ର, କହୁଥାଇଛନ୍ତି ସୀତା ବଡ ଦୁଃଖୀ—ଗୀତ ।
ଦେ. ବି—ଭଦ୍ରଲୋକ; ଶୁକ୍ଳ ପରିଚ୍ଛଦଧାରୀ ବ୍ୟକ୍ତି, ଭଲଲୋକ—
A gentleman; a finely attired person.
ଧୋବଧାଉଳିଆ ଗେହ୍ନ କରନ୍ତି
ଲକ୍ଷ୍ମୀ ଦେଖିଲେ ପାଦ ଗୋଡାନ୍ତି – ଢଗ ।

**ଧୋବ ପକା(କେ)ଇବା**—ଦେ. କ୍ରି—ଲୁଗାକୁ ସଫା କରିବା ନିମନ୍ତେ
Dhoba pakā(ke)ibā ଧୋବାକୁ ଦେବା—
**धोनेदेना** To give (clothes) to the washerman to wash.

**ଧୋବ ପଡ଼ିବା**—ଦେ. କ୍ରି—୧ । ଧବଳୀକୃତ ହେବା; ଶୁକ୍ଳ ହେବା—
Dhoba parḍibā 1. To turn white.
ଧୋପପଡ଼ା ୨ । (ଲୁଗା) ସଫା ହେବାପାଇଁ ଧୋବାଘରେ ଦିଆଯିବା—
**धोबपड़ना** 2. ( a cloth ) To be given to the washerman for being washed.

**ଧୋବ ଫରଫର**—ଦେ. ବିଣ—ଧଳାତକତକ; ଅତିଶୟ ଶୁକ୍ଳ; ଶୁଭ୍ରୋଜ୍ଜ୍ୱଳ-
Dhoba pharaphara Fleecy white; very white;
ଧପଧପେ; ଶାଦା ଧବଧବ glistening white; dazzlingly
**उजलादपदप** white.
[ ଦ୍ର—ବର୍ଣ୍ଣବ୍ୟଞ୍ଜକ ବିଶେଷଣ ପରେ ଅତ୍ୟନ୍ତ ବା ଉଜ୍ଜ୍ୱଳତା ସୂଚନାକରିବାପାଇଁ ଫରଫର ଆଦି ଶବ୍ଦ ବ୍ୟବହୃତ ହୁଏ; ଯଥା—ରଙ୍ଗଟହଟହ, ହଳଦିଆଗରଗର, ଧଳାତକତକ, ନାଲିଟହଟହ, ନେଳସରସର, କାଳିଅଟରଟର । ]

**ଧୋବ ଫିଟିବା**—ଦେ. କ୍ରି—ଉତ୍ତମରୂପେ ଧବଳବର୍ଣ୍ଣବିଶିଷ୍ଟ ହେବା;
Dhoba phiṭibā ଧବଳୀକୃତ ହେବା —
ଧୋପଧରା To become very white.
**सफेदीखुलना** (ଯଥା—ଧୋବା ଭଲକରି ନ କାଚବାରୁ ମୋ ଲୁଗା
[ଧୋବ ଫିଟା(ଟେ)ଇବା—ସକର୍ମକ ରୂପ] ଧୋବ ଫିଟିନାହିଁ । )

**ଧୋବଲ**—ଦେ. ବିଣ (ସଂ. ଧବଳ)—ଧଳା; ଧୋବ—
Dhobala White.
ଧଉଳା, ଧଳା **धौला, धौर**

**ଧୋବ ଲାଉ**—ଦେ. ବି (ସଂ. ଧବଳ ଓ ଅଲାବୁ)—ଏକପ୍ରକାର ଶୁକ୍ଳବର୍ଣ୍ଣ
Dhoba lāu ଅଲାବୁଫଳ; ଧଳା ଲାଉ—
ସାଦାଲାଉ **सफेद कद्दू** White gourd.

**ଧୋବଲି ଚଢ଼େଇ**—ଦେ. ବି—କ୍ଷୁଦ୍ର ପକ୍ଷିବିଶେଷ—
Dhobali chardhei A sand lark; a water-
**धोबीन** thrush.
[ ଦ୍ର—ଏମାନେ କୁଳେଚରବର୍ଗର ପକ୍ଷୀ; ୩୬ ଅଙ୍ଗୁଳ ଲମ୍ବ; ଏମାନଙ୍କ ଦେହଯାକ ଧଳା, ମାତ୍ର ବେକ ତଳେ ଗୋଟିଏ କଳା ଡୋରି ଥାଏ । ଏମାନେ ନଦୀକୂଳ ବାଲିରେ ବିଚରଣ କରନ୍ତି । ]

**ଧୋବଲି ଠକ**—ଦେ. ବି (ସଂ ଧବ—ପ୍ରବଞ୍ଚକ)—ଯେଉଁ ଶୁଭ୍ର ପରିଚ୍ଛଦ-
Dhobali ṭhaka ଧାରୀ ବାହାରେ ଦେଖିବାକୁ ଭଦ୍ରଲୋକ ପରି ମାତ୍ର
ପ୍ରକୃତରେ ପ୍ରତାରକ ବା ଶଠ—A cheat appearing in fine dress ( who makes people believe that he is a gentle man).

**ଧୋବଲି ଶୁଖୁଆ**—ଦେ. ବି (ଏଥିର ବର୍ଣ୍ଣ ଧୋବ ବା ଶୁକ୍ଳ ଥିବାରୁ )—
Dhobali śukhuā ଖରାରେ ଶୁଖାଯାଇ ରଖା ଯାଇଥିବା ଏକ ପ୍ରକାର
ଛୋଟ ଛୋଟ ମାଛ;ପିଡା ଶୁଖୁଆ—Small fry (fish)
**सुखौती** dried in the sun.

**ଧୋବଲି(ଲେ)ଶ(ଶ୍ୱ)ର**—ଗ୍ରା ବି (ସଂ ଧବଳେଶ୍ୱର)–ଧବଳେଶ୍ୱର (ଦେଖ)
Dhobali(le)śa(śwa)ra Dhabaleśwara (See)

**ଧୋବ ସରସର**—ପ୍ରାଦେ. (ସାକ୍ଷୀଗୋପାଳ) ବିଣ—ଧୋବ ଫରଫର—
Dhoba sarasara Very white.

**ଧୋବା**—ଦେ. ବି ( ସଂ. ଧାବକ, ଏ ଲୁଗା ଧୋଇବା ବା
Dhobā ସଫା କରୁଥିବାରୁ )—
ଧୋପା, ଧୋବା ୧ । ଲୁଗା ସଫା କରିବା ସେବକ ନୀଚ ଶୂଦ୍ର
**धोबी** ଜାତିବିଶେଷ; ରଜକ—1 Washerman.
( ଧୋବଣୀ—ସ୍ତ୍ରୀ ) [ ଦ୍ର—ସାଧାରଣତଃ ମଫସଲରେ ଧୋବାମାନେ ପ୍ରଥମେ ଖାରରେ ଲୁଗାକୁ ସିଝାଇ ତା ପରେ ତାହା କାଚ ସଫା କରନ୍ତି । ଲୁଗାକୁ ସାମାନ୍ୟ ପରିମାଣରେ କାଚ ସଫା କଲେ ତାକୁ ସଜ ଧୋବ ଓ ଉତ୍ତମରୂପେ ସଫା କରି ଇସ୍ତ୍ରୀ ଆଦି କଲେ ତାକୁ ବାସିଧୋବ ବୋଲାଯାଏ । ଏବେ ଧୋବାମାନେ ଲୁଗା ବାସିଧୋବ କରିବା ପାଇଁ ଇସ୍ତ୍ରୀ, ଖଳ ଓ ସାବୁନ ଆଦି ବ୍ୟବହାର କଲେଣି । ଆଗେ ଧୋବାମାନେ ଲୁଗାକୁ କେବଳ ଧୋବ କରୁ ନ ଥିଲେ, ମାତ୍ର ରଙ୍ଗ ( ରଞ୍ଜନ ) ( ବିଶେଷତଃ ନୀଳ ରଙ୍ଗ ) କରୁଥିଲେ । ଏଣୁ ସେମାନଙ୍କୁ ରଜକ ବୋଲାଯାଏ । ପ୍ରାୟ ୬୦ ବର୍ଷ ତଳେ ମଫସଲରେ ଧୋବାମାନେ ଲୁଗାକୁ କାଚ ସାରି ନେଳ ରଙ୍ଗଦ୍ୱାରା ରଞ୍ଜିତ କରୁଥିଲେ ।

ପ୍ରତ୍ୟେକ ଗ୍ରାମରେ ନିର୍ଦ୍ଦିଷ୍ଟ ଧୋବା ଥାଆନ୍ତି । ସେମାନେ ଗ୍ରାମ ସେବା ପାଇଁ ଗ୍ରାମର ସାଧାରଣ ସମ୍ପତ୍ତିରୁ ଯାଗିର ପାଇ ଥାଆନ୍ତି ଓ ସେମାନଙ୍କ ପାଇଁ ପ୍ରତି ଗୃହସ୍ଥଙ୍କଠାରୁ ବାର୍ଷିକ 'ବର୍ତ୍ତନ'ର ମଧ୍ୟ ବ୍ୟବସ୍ଥା ଥାଏ । ଲୁଗା କାଚିବା ଛଡ଼ା ଗ୍ରାମର କୌଣସି ବ୍ୟକ୍ତି ମରିଗଲେ ଶବଦାହ ପାଇଁ କାଠ କାଟିବା ଓ ଶ୍ମଶାନରେ କାଠ ପହଞ୍ଚାଇବା ମଧ୍ୟ ଏମାନଙ୍କ କାର୍ଯ୍ୟ । ଗ୍ରାମବାସୀମାନଙ୍କର ନିମନ୍ତ୍ରଣ ପର୍ବରେ ଏମାନେ କାଠ ଚିରନ୍ତି । ଓଡ଼ିଶାରେ ଲୁଗା କାଚିବା ଓ କାଠ ଚିରିବା

ଏ ଦୁଇଟି ଧୋବାଙ୍କର ମୁଖ୍ୟ କର୍ମ ସ୍ଥାନେ ସ୍ଥାନେ ଠାକୁରାଣୀଙ୍କ-ଠାରେ ଏମାନେ ବୋଦା ଦାଣନ୍ତି । ଦାକ୍ଷିଣାତ୍ୟରେ ଏମାନେ ସବାର ମଧ୍ୟ ବୁହନ୍ତି । ଧୋବାମାନେ ମଦ୍ୟପାନ କରନ୍ତି ଓ ଗୋମାଂସ ଭକ୍ଷଣ କରନ୍ତି ନାହିଁ । ହିନ୍ଦୁ ସମାଜରେ ଏମାନେ ଅସ୍ପୃଶ୍ୟ ନୀଚ ଜାତି ମଧ୍ୟରେ ଗଣ୍ୟ । ]

୨ । ଅପର୍ତ୍ତିଆଣୀ ପିଲାଙ୍କୁ ଦିଆଯିବା ନାମବିଶେଷ —
2 Name given to Aparttiāni male children.
ଧୋବା ପଲକ; ସଙ୍ଗାଳ କରିଛ ଥିଅ ପୂଳକ—ଚନ ।

୩ । ଧ୍ରୁବଚରଣର ଅନାଦରାର୍ଥକ ଡାକ ନାମ —
3. A name for calling Dhrubacharaṇa

**ଧୋବାଇ** - ଦେ. ବି. ( ଆଦରାର୍ଥକ ) — ୧ । ଧୋବା ନାମକ ବ୍ୟକ୍ତିର ଡାକନାମ — 1. A name for calling a person named Dhobā in fondness.
Dhobāi
ଧୋବେଇ, ଧୋବି } ଅନ୍ୟରୂପ
୨ । ଧ୍ରୁବଚରଣନାମକ ବ୍ୟକ୍ତିର ଡାକ ନାମ — 2. A name for calling Dhrubacharaṇa in fondness.

**ଧୋବା ଖଟିବା**— ଦେ. ବି— ( ଧୋବା ) କୌଣସି ପରିବାରର ଲୁଗା କାଚିବାରୂପ ସେବା କରିବା — The service of a washerman rendered to a family in regularly washing the clothes thereof.
Dhobā khatibā
ধোবা খাটা
**धोबीका खिदमत्**

**ଧୋବା ଗଣ୍ଡି**— ଦେ. ବି— ଧୋବା ଯେଉଁ କାଠ ପଟା ବା କାଠ ଗଣ୍ଡି ଉପରେ ଲୁଗା କାଚେ — A plank or fat log of wood on which the washerman beats the clothes while washing them.
Dhobā gaṇḍi
ধোবার পাট
**धोबीका पाट**

**ଧୋବା ଚୁଲି**— ପ୍ରାଦେ. ( ଗଞ୍ଜାମ ) ବି— ବାଳକମାନଙ୍କ ମଧ୍ୟରେ ଏକ ପ୍ରକାର ଖେଳ— A sort of outdoor game amongst boys
Dhobā chuli

**ଧୋବା ତୁ(ତୋ)ଠ**— ଦେ. ବି— ଜଳାଶୟର ଯେଉଁ ସ୍ଥାନରେ ଧୋବା ଲୁଗା କାଚେ ଓ ଶୁଖାଏ— The place near a pond or a river where the washerman washes and dries the clothes.
Dhobā tu(to)ṭha
ধোপাঘাট
**धोबीघटा**
( ଯଥା— ଗାଆଁ ପରମଳ ଧୋବାତୋଠରୁ ଜଣା — ଢଗ । )

**ଧୋବା ଭଣ୍ଡାରି**— ଦେ. ବି. ( ସମାହାର ) — ଭାରତୀୟମାନଙ୍କର ଦୁଇଜଣ ଅବଶ୍ୟ ପ୍ରୟୋଜନୀୟ ଗ୍ରାମସେବକ (ଧୋବାର କାର୍ଯ୍ୟ ଲୁଗା ସଫା କରିବା ଓ ଭଣ୍ଡାରିର କାର୍ଯ୍ୟ କ୍ଷୌର କରିବା)— The washerman and the barber; the two most indispensable village-servants in India.
Dhobā bhaṇḍāri
ধোপা নাপিত
**धोबी नाइ(उ)**

**ଧୋବା ଭଣ୍ଡାରି ଅଟକ**— ଦେ. ବି— ଗ୍ରାମର କୌଣସି ବ୍ୟକ୍ତି ସାମାଜିକ ଅପରାଧରେ ଅପରାଧୀ ହେଲେ ତାହାର ସେବା ନ କରିବା । ସକାଶେ ଗ୍ରାମସମାଜଦ୍ୱାରା ଧୋବା ଭଣ୍ଡାରିଙ୍କୁ ଆଦେଶ ହେବା, ଏକଘରକିଆ ହେବା; ଜାତିରୁ ଅଟକ, ବାସନ୍ଦ —Excommunication of a person by a caste-guild or village community by depriving him of the services of the village washerman and the village barber.
Dhobā bhaṇḍāri aṭaka
ধোবা নাপিত বন্দ
**धोबी नाइ रोक; हुक्का पानी बन्द**
ଧୋବା ଭଣ୍ଡାରି ବନ୍ଦ, ଧୋବା ଭଣ୍ଡାରି ବାସନ୍ଦ, ଧୋବା ଭଣ୍ଡାରି ରୋକ୍, ଧୋବା ଭଣ୍ଡାରି ନ ଖଟିବା } ଅନ୍ୟରୂପ

**ଧୋବା ଭଣ୍ଡାରି ଖଟିବା**— ଦେ. ବି— କୌଣସି ବ୍ୟକ୍ତିର ସମାଜରେ ବା ଜାତିରେ ଚଳିବା — ( a person ) Being within the pales of a village community.
Dhobā bhaṇḍāri khaṭibā
ধোপা নাপিত খাটা
**हुक्का पानी चलना**

**ଧୋବା ଭାଟି**— ଦେ ବି— ଧୋବା ଯେଉଁ ବଡ଼ ହାଣ୍ଡି ମଧ୍ୟରେ କ୍ଷାର ପାଣିରେ ଲୁଗା ବତୁରାଇ ଓ ଆଉ ଗୋଟିଏ ସଛିଦ୍ର ହାଣ୍ଡି ବା ପଲମ ତା ଉପରେ ଯୋଡ଼ାଇ ଲୁଗାକୁ କାଚିବା ପୂର୍ବରୁ ସିଝାଏ — A pot in which the washerman fumigates or steams the clothes before washing.
Dhobā bhāṭi
ধোবার ভাটি
**धोबीकी भट्टी**

**ଧୋବା ସଙ୍ଗାତ**— ଦେ. ବି. ( ବ୍ୟଙ୍ଗ୍ୟ ) — ଧୋବାବନ୍ଧୁ; ରଜକମିତ୍ର — ( ironical ) Washerman-friend.
Dhobā saṅgāta
**धोबीका यार** ଧୋବା ସଙ୍ଗାତ, ଭଣ୍ଡାରି ମିତ, ସଖି ଗୋ । ମନ୍ଦ ଏ—ଢଗ ।
[ ଦ୍ର— କେହି ଲୋକ ଧୋବା ସାଙ୍ଗେ ସଙ୍ଗାତ ବସିଲେ ସେ ପ୍ରତିଦିନ ଧୋବା ସଙ୍ଗାତଠାରୁ ଅନ୍ୟ ବ୍ୟକ୍ତିଙ୍କର ଭଲଭଲ ଧୋବ ଲୁଗା ଆଣି ପିନ୍ଧିପାରେ ଏବଂ ପିନ୍ଧିସାରି ଧୋବା ସଙ୍ଗାତକୁ ଉକ୍ତ ଲୁଗା ଫେରାଇ ଦେଲେ ସେ ତାକୁ ପୁଣି ସଫା କରି ବସ୍ତ୍ରସ୍ୱାମୀଙ୍କୁ ଦିଏ । ଏ ଆଚରଣ ସର୍ବଥା ନିନ୍ଦ୍ୟ । ]

**ଧୋବି**— ଦେ. ବି. ( ସ. ଧବ ) — ୧ । ଧ (ଗଛ) ( ଦେଖ ) 1 Dha (tree) ( See )
Dhobi
୨ । (ଆଦରାର୍ଥକ) ଧୋବା ନାମକ ବ୍ୟକ୍ତିର ଡାକ ନାମ—
2. Name for calling 'Dhobā'
ପ୍ରାଦେ. (ବସ୍ତର,ଭୁଲ.ହି-ଧୋବୀ) ବି -- ଧୋବା — Washerman.

**ଧୋବୀ**— ଦେ. ବି. ସ୍ତ୍ରୀ— ଧୋବଣୀ ନାମ୍ନୀ ସ୍ତ୍ରୀର ଅନ୍ୟ ନାମ— A name by which a woman Dhobaṇi is called.
Dhobī

**ଧୋୟୀ**— ସ. ବି. (ନାମ)— ଜୟଦେବଙ୍କ ଗୀତଗୋବିନ୍ଦରେ ଉଲ୍ଲିଖିତ ଜଣେ କବିଙ୍କ ନାମ —Name of a poet alluded to by Jayadeba in his Gītagobinda.
Dhoyi
[ ଦ୍ର— ଏ ଜଣେ ରାଜା ଥିବାର ଅନୁମିତ ହୁଏ । କାଳିଦାସଙ୍କ ମେଘଦୂତ ପରି ଏହାଙ୍କ ରଚିତ ବାୟୁଦୂତ ନାମରେ ଖଣ୍ଡିଏ ଖଣ୍ଡ-କାବ୍ୟ ମିଳୁଅଛି । ଦ୍ର. ଶବ୍ଦସାଗର ].

**ଧୋର୍ (ଧାତୁ)**— ସ— ୧ । ଅଗ୍ରସର ହେବା— 1. To advance.
Dhor (root)
୨ । ଦ୍ରୁତଗତି କରିବା; ଦଉଡ଼ିବା— 2. To run; to walk briskly; to trot.

୩ । ନିପୁଣ ହେବା—3 To be skilful (Apte).

**ଧୋରଇ**—ପ୍ରାଦେ. (ଉତ୍ତରଭାଷା) ବି—ମେଣ୍ଢା ଜଗୁଆଳ; ମେଷପାଳକ- Dhorai Shepherd

**ଧୋରଣ**—ସଂ. ବି. (ଧୋର୍ ଧାତୁ=ଦ୍ରୁତଗତି କରିବା+କରଣ ଅନ)— Dhorana ୧ । ହାତୀ ଘୋଡ଼ା ଆଦିଙ୍କ ଦ୍ୱାରା ଚାଳିତ ରଥାଦି ବାହନ—1 Vehicles drawn by animals.
୨ । ଦୋଳା—2 Litter
୩ । ପାଲିଙ୍କି—3. Palanquin; sedan.
୪ । (+ଭାବ ଅନ) ଅଶ୍ୱର ଗତି, ଅଶ୍ୱର ଧୌରିତକ ଗତି, ଦୁଲ୍କି—4. Trotting motion of a horse; brisk pace of a horse.
୫ । ଦୌଡ଼ା, ଦ୍ରୁତଗତି — 5. Going quickly, running

**ଧୋରଣା**—ଦେ. ବିଣ (ସଂ ଜୀର୍ଣ୍ଣ )— Dhorana ଝୁଲଝୁଲ; ଜୀର୍ଣ୍ଣଶୀର୍ଣ୍ଣ; ଲମ୍ବାରେ ଫଟିଥିବା— ଛେଁଡା Torn into shreds
ଧଜ୍ଜୀ ( ଯଥା—ଏ ଲୁଗାଟା ଧୋରଣା ହୋଇଗଲାଣି । )

**ଧୋରଣି(ଣୀ)**—ସଂ. ବି. ( ଧୋର୍ ଧାତୁ=ଦ୍ରୁତଗତି କରିବା+ଭାବ. Dhorani(ni) ଅନି, ଈ )—୧ । ଜନଶ୍ରୁତି—1. Rumour ( which runs apace ).
୨ । ଶ୍ରେଣୀ; ପରମ୍ପରା—2 Succession; continuity; uninterrupted series.
୩ । ପରମ୍ପରାଗତ କଥା—3. Tradition (Apte).

**ଧୋରିତ**—ସଂ. ବି. ( ଧୋର୍ ଧାତୁ+ଭାବ. ତ )— Dhorita ୧ । ଅଶ୍ୱର ଗତିବିଶେଷ; ଧୋରଣ, ଦୁଲ୍କି— (ଧୋରିତକ—ଅନ୍ୟରୂପ) 1. Trotting motion of a horse.
୨ । ବଧ—2. Killing; murder; slaughter.
୩ । ଗତି—3. Motion; going.
୪ । ଆଘାତ —4. Injuring; hurting; striking (Apte).

**ଧୋଲା(ଲେ)ଇ**—ଦେ. ବି ଓ ବିଣ—ଧୁଲେଇ ( ଦେଖ ) Dhola(le)i Dhulei ( See )
ଧୁଲାଈ ଧୁଲାଇ

**ଧୌଡ଼**—ଦେ. ବି. ( ସଂ. ଧୋର୍ ଧାତୁ )— Dhaurda ଧଉଡ଼; ଦଉଡ଼; ଧାଉଡ଼; ଦ୍ରୁତଗତି— ଦୌଡ଼ ଦୌଡ଼ Running; race.

**ଧୌଡ଼ ଧାପଡ଼**—ଦେ. ବି. (ସହଚର)—ଧାଁ ଧପଡ଼; ଦଉଡ଼ା ଦଉଡ଼ି— Dhaurda dhaparda Running about.
ଦୌଡ଼ା ଦୌଡ଼ି ଦୌଡ଼ ଧାପଡ଼
(ଧୌଡ଼ ଧପଡ଼, ଧୌଡ଼ ଧାପ—ଅନ୍ୟରୂପ)

**ଧୌଡ଼ ମାରିବା**—ଦେ. କ୍ରି—ଦୌଡ଼ିଯିବା; ଏକବାରକେ ବା ହଠାତ୍ Dhaurda mariba ଦଉଡ଼ି କରି ପଳାଇବା—To run (ଧୌଡ଼ ଦେବା—ଅନ୍ୟରୂପ) away suddenly; to run
ଦୌଡ଼ ମାରା ଦୌଡ଼ ପଡ଼ନା continuously.

**ଧୌଡ଼ା(ଡ଼େ)ଇବା**—ଦେ. କ୍ରି. ( 'ଧୌଡ଼ିବା'ର ଣିଜନ୍ତ ରୂପ )— Dhaurda(rde)iba ଦଉଡ଼ାଇବା—To cause to run
ଦୌଡାନ ଦୌଡ଼ାନା

**ଧୌଡ଼ା ଧୌଡ଼ି**—ଦେ ବି—ଦଉଡ଼ା ଦଉଡ଼ି; ଇତସ୍ତତଃ ଦଉଡ଼ିବା— Dhaurda dhaurdi Running about.
ଦୌଡା ଦୌଡି ଦୌଡ଼ା ଦୌଡ଼ି

**ଧୌଡ଼ିବା**—ଦେ. କ୍ରି. ( ସଂ. ଧୋର୍ ଧାତୁ )—ଦଉଡ଼ିବା— Dhaurdiba To run.
ଦୌଡ଼ା ଦୌଡ଼ନା

**ଧୌତ**—ସଂ ବିଣ. ( ଧାବ୍ ଧାତୁ+କର୍ମ. ତ )— Dhauta ୧ । ପ୍ରକ୍ଷାଳିତ; ଧୁଆ ହୋଇଥିବା— 1 Washed; cleaned by washing
୨ । ମାର୍ଜିତ; ପରିଷ୍କୃତ— 2 Cleansed; purified; washed off.
୩ । ଶୁକ୍ଲୀକୃତ; ଧବଳୀକୃତ; ଶୁଭ୍ର— 3. Whitened; bleached.
୪ । ନିଷ୍ପାପ—4 Clean; sinless
୫ । ଶୋଧିତ—5 Refined; rectified
୬ । ଶାଣିତ—6. Whetted, sharpened.
୭ । (+କର୍ତ୍ତୃ. ତ) ସ୍ନାତ—7. Bathed.
୮ । ପାଲିସ କରା ଯାଇଥିବା— 8 Polished; brightened.
୯ । ଉଜ୍ଜ୍ୱଳ—9. Bright; shining.
୧୦ । ଶୁକ୍ଲ, ଧଳା—10. White.
ବି—୧ । ରଜତ; ରୂପା—1 Silver.
୨ । (+ଭାବ. ତ) ଧାବନ; ଧୋଇବା—2. Washing.
୩ । ସଫା କରିବା—3. Cleansing.

**ଧୌତକଟ**—ସଂ.ବି. (ଧୌତ+କଟ)—ମୋଟା କନାର ଥଳି; ଧୋକଡ଼— Dhautakata A bag of coarse cloth.

**ଧୌତ କୌଷେୟ**—ସଂ. ବି. (କର୍ମଧା; ଧୌତ=ମାର୍ଜିତ+ Dhauta kausheya କୌଷେୟ)—୧ । ପାଟବସ୍ତ୍ର— (ଧୌତ କୋଷକ—ଅନ୍ୟରୂପ) 1. Silk cloth.
୨ । ଅବୋର୍ଣ୍ଣ; ସରୁ ପଶମ—2. Fine wool.

**ଧୌତ ଖଣ୍ଡୀ**—ସଂ. ବି—ମିଶ୍ରି— Dhauta khandi Sugarcandy (Apte).

**ଧୌତ ଶିଳା**—ସଂ. ବି. (ଧୌତ+ଶିଳା)—୧ । ସ୍ଫଟିକ— Dhauta sila 1. Crystal.
(ଧୌତ ଶିଳ—ଅନ୍ୟରୂପ) ୨ । ସ୍ଫଟିକ ମଣି—2. Quartz.

**ଧୌତାତ୍ମା**—ସଂ. ବିଣ. (ବହୁବ୍ରୀହି; ଧୌତ+ଆତ୍ମନ୍)— Dhautatma ପବିତ୍ରାତ୍ମା; ବିଶୁଦ୍ଧାତ୍ମା—Pure-souled.

**ଧୌତି**—ସଂ. ବି. (ଧାବ୍ ଧାତୁ+କର୍ମ. ତି)—୧ । ଧୋତି— Dhauti 1. Cloth.

(ଧୌତି—ଅନ୍ୟରୂପ) ୨ । ଯୋଗସାଧନାର ଅଙ୍ଗବିଶେଷ; ଅଙ୍ଗୁଳି ଦ୍ୱାରା ମଳଦ୍ୱାରର ଅଭ୍ୟନ୍ତର ଶୋଧନ କରିବା ପ୍ରକ୍ରିୟା-ବିଶେଷ—2. The practise of washing the rectum with the fingers after a motion of the bowels.

[ ଦ୍ର—ମଳୋତ୍ସର୍ଗ ପରେ ଜଳଶୌଚ କରିବା ସମୟରେ ଦକ୍ଷିଣହସ୍ତର ତର୍ଜନୀ ବା ମଧ୍ୟମାଙ୍ଗୁଳିକୁ ଶୌଚଜଳସିକ୍ତ କରି ଗୁହ୍ୟରନ୍ଧ୍ର-ବାଟେ ଭିତରକୁ ପୂରାଇ ଭିତରେ ଲାଗିଥିବା ମଳକଣାମାନ ପରିଷ୍କାର କରିବା ପ୍ରକ୍ରିୟାକୁ ଧୌତି ବୋଲାଯାଏ । ଏହାଦ୍ୱାରା ଗୁହ୍ୟଦେଶ ପରିଷ୍କୃତ ହୁଏ ଓ ଅପାନବାୟୁ ଦୂଷିତ ହୋଇ ନ ପାରିବାରୁ ସ୍ୱାସ୍ଥ୍ୟ ଭଲ ରହେ । ଏହା ଅଜୀର୍ଣ୍ଣ, ଅର୍ଶଃ ଓ କୋଷ୍ଠବଦ୍ଧତା ଆଦି ରୋଗ ନାଶ କରେ । ]

୩ । ଶରୀରର ବାହାର ଓ ଭିତର ଶୁଦ୍ଧ କରିବାର ହଠଯୋଗର କ୍ରିୟାବିଶେଷ (ହ୍ର ଶବ୍ଦସାଗର)—3. A mode of cleansing the inside and outside of one's body practised by persons exercising Hatha-joga.

[ ଦ୍ର—ଘେରଣ୍ଡ ସଂହିତାରେ ଧୌତି ୪ପ୍ରକାର ବର୍ଣ୍ଣିତ ହୋଇ-ଅଛି—ଅନ୍ତ ଧୌତି, ଦନ୍ତଧୌତି, ହୃଦ୍‌ଧୌତି ଓ ମୂଳଶୋଧନ । ଅନ୍ତର୍ଧୌତି ମଧ୍ୟ ୪ପ୍ରକାର ଯଥା ବାତସାର, ବାରିସାର, ବହ୍ନିସାର ଓ ବହିଷ୍କୃତ । ବାତସାରରେ ମୁହଁକୁ କୁଆଥଣ୍ଟ ପରି ଗୋଲିଆ କରି ସେହି ଛିଦ୍ର ବାଟେ ପବନ ଟାଣି ନେଇ ପେଟରେ ପୂରାଇବ, ପୁଣି ତାହା ମୁହଁବାଟେ ଛାଡ଼ିବ । ବାରିସାରରେ ଗଳାପର୍ଯ୍ୟନ୍ତ ପାଣି ପିଇ ତାହା ଅଧୋମାର୍ଗ ବାଟେ ଛାଡ଼ିବ । ବହ୍ନିସାରରେ ଶ୍ୱାସ ବନ୍ଦ କରି ପେଟକୁ ଶହେ ଥର ମେରୁଦଣ୍ଡରେ ଲଗାଇବ । ବହିଷ୍କୃତରେ ମୁହଁକୁ କୁଆଥଣ୍ଟ ପରି ଗୋଲିଆ କରି ସେହି ଛିଦ୍ରବାଟେ ପବନ ଟାଣି ପେଟରେ ପବନ ଭରିତ କରି ପବନକୁ ପେଟରେ ୪ଦଣ୍ଡ ରଖି ଅଧୋମାର୍ଗରେ ତାହା ଛାଡ଼ିବ । ଏମାନ କରିବା ପରେ ନାଭି ପର୍ଯ୍ୟନ୍ତ ପାଣିରେ ଠିଆ ହୋଇ ଅନ୍ତନାଳୀକୁ ବାହାର କରି ତହିଁମଧ୍ୟରୁ ମଳଯାକ ସଫା କରି ପୁଣି ତାହା ଉଦରରେ ପୂରାଇବ । ଦନ୍ତଧୌତି ମଧ୍ୟ ୪ପ୍ରକାର-ଦନ୍ତମୂଳ, ଜିହ୍ୱାମୂଳ, ରନ୍ଧ୍ର, କର୍ଣ୍ଣଦ୍ୱାର ଓ କପାଳରନ୍ଧ୍ର । ଜିଭକୁ ଚମୁଟାଦ୍ୱାରା ଟାଣି ଜିହ୍ୱାମୂଳ ଶୁଦ୍ଧି କରାଯାଏ । ରନ୍ଧ୍ରଧୌତିରେ ନାକରେ ପାଣି ପିଇବ ଓ ମୁହଁବାଟେ ପାଣି କାଢ଼ିବ, ପୁଣି ମୁହଁବାଟେ ପାଣି ପିଇ ନାକବାଟେ କାଢ଼ିବ । ଜଳପାନ ଓ ବସ୍ତ୍ରାଶନଦ୍ୱାରା ହୃଦ୍‌ଧୌତି ଓ ମଳୋତ୍ସର୍ଗାନ୍ତେ ଶୌଚ କରିବା ବେଳେ ଅଙ୍ଗୁଳିଦ୍ୱାରା ଗୁହ୍ୟରନ୍ଧ୍ରର ଭିତର ସଫା କରିବ—ହ୍ର. ଶବ୍ଦସାଗର । ]

୪ । ଯୋଗସାଧନର ଏକ ପ୍ରକ୍ରିୟା; ଯଦ୍ଦ୍ୱାରା ୨ ଆଙ୍ଗୁଳି ଓସାର ଓ ୧୦ ହାତ ଲମ୍ବ କନାକୁ ପାଟି ବାଟେ ଗିଳି ପେଟକୁ ନେଇ, ତହିଁ ଉପରେ ପାଣି ପିଇ ଉକ୍ତ କନାକୁ ଧୀରେ ଧୀରେ ପାଟିବାଟେ କଢ଼ାଯାଏ (ହ୍ର. ଶବ୍ଦସାଗର)—4. An exercise of joga in which a long and narrow strip of cloth is swallowed up and gradually brought out.

୫ । ଯୋଗ କ୍ରିୟାରେ ଅନ୍ତଶୋଧନାର୍ଥ ବ୍ୟବହୃତ ଲମ୍ବ ଓ ସରୁଆ କନା (ହ୍ର. ଶବ୍ଦସାଗର)—5. A strip of long and narrow cloth used in cleansing the stomach in Joga exercise.

**ଧୌମ**—ସଂ. ବି. (ନାମ) (ଧୂମ=ଋଷିବିଶେଷ+ଅପତ୍ୟାର୍ଥେ ଅ)—
Dh<u>au</u>ma ପାଣ୍ଡବମାନଙ୍କ ପୁରୋହିତ; ଦେବଳଙ୍କ ସନିଷ୍ଠ ଭ୍ରାତା—Name of the priest of the Pāṇḍabas.

**ଧୌମ୍ୟ**—ସଂ. ବି. ନାମ—୧ । ଧୌମ (ଦେଖ)
Dh<u>au</u>mya 1. Dh<u>au</u>ma (See)

୨ । ବ୍ୟାଘ୍ରପଦ ନାମକ ଋଷିଙ୍କ ପୁତ୍ର; ଶିବଭକ୍ତ, ଦିବ୍ୟଜ୍ଞାନ-ସମ୍ପନ୍ନ, ଅଜର ଓ ଅମର ସତ୍ୟଯୁଗର ଏକ ଋଷି (ମହାଭାରତ)—2. Name of a sage of the Satya juga.

୩ । ଆୟୋଦ ଋଷି, ଆରୁଣି, ଉପମନ୍ୟୁ ଓ ବେଦ ନାମକ ୩ ପୁତ୍ରଙ୍କ ପିତା—3. Name of a sage, father of Āruṇi.

୪ । ପଶ୍ଚିମଦିଗରେ ତାରାରୂପେ ଦେଖାଯାଉଥିବା ଏକ ଋଷି—4. Name of a sage who is said to have been transformed to a star appearing in the west.

**ଧୌର**—ସଂ. ବି—ଧ ଗଛ (ଦେଖ)
Dh<u>au</u>ra Dha tree (See)

**ଧୌରିତକ**—ସଂ. ବି. (ଧୋରିତକ+ଅ)—ଧୋରିତ (ଦେଖ)
Dh<u>au</u>ritaka Dhorita (See)

**ଧୌରେୟ**—ସଂ. ବି. (ଧୁର=ଭାର+ବହନାର୍ଥରେ ଏୟ)—
Dh<u>au</u>reya ୧ । ଭାରବାହୀ—1. Carrying a burden.

୨ । ଅଗ୍ରବର୍ତ୍ତୀ—2. Advancing ahead.

୩ । ରଥ ଆଦି ଟାଣିବାବାଲା—3. Drawing a vehicle.

ସଂ. ବି—ଭାରବାହୀ ପଶୁ—A beast of burden.

**ଧୌର୍ତ୍ତ୍ୟ**—ସଂ. ବି. (ଧୂର୍ତ୍ତ+ଭାବ. ଯ)—ଧୂର୍ତ୍ତତା—
Dh<u>au</u>rttya Wickedness; fraudulence.
(ଧୌର୍ତ୍ୟ—ଅନ୍ୟରୂପ)

**ଧୌର୍ଯ୍ୟ**—ସଂ. ବି. (ଧୂର+ଭବାର୍ଥରେ. ଯ)—ଧୋରିତ (ଦେଖ)—
Dh<u>au</u>rjya Dhorita (See)

ଗ୍ରା. ବି. (ସଂ. ଧୈର୍ଯ୍ୟର ଅଶୁଦ୍ଧ ଉଚ୍ଚାରଣ) ଧୈର୍ଯ୍ୟ—Patience.

**ଧ୍ୱଂସ୍** (ଧାତୁ)—ସଂ.—ବିନଷ୍ଟ ହେବା—
Dhwaṁs (root) To be destroyed.

**ଧ୍ୱଂସ**—ସଂ. ବି. (ଧ୍ୱଂସ୍ ଧାତୁ+ଭାବ. ଅ)—୧ । ବିନାଶ—
Dhwaṁsa 1. Decay; destruction; demolition; annihilation.

୨ । ବଧ—2. Killing.

୩ । ହାନି; କ୍ଷୟ; ଅପଚୟ—3. Waste; loss.

୪ । ସର୍ବନାଶ—4. Ruin.

୫ । ଅଧଃପତନ—5 Fall; downfall.

୬ । ଗମନ (ପ୍ରକୃତିବାଦ)—6. Going.

**ଧ୍ୱଂସକ**—ସ. ବିଣ. ପୁଂ (ଧ୍ୱଂସ୍ ଧାତୁ+କର୍ତ୍ତୃ. ଅକ)—ଯେ ଧ୍ୱଂସ କରେ; Dhwamsaka ଧ୍ୱଂସକାରୀ—Destroying; destructive, (ଧ୍ୱଂସିକା—ସ୍ତ୍ରୀ) ruinous

**ଧ୍ୱଂସକର**—ଦେ. ବିଣ. ପୁଂ—ଧ୍ୱଂସକ; ଧ୍ୱଂସକାରୀ—Dhwamsakara Destructive. (ଧ୍ୱଂସକାରୀ—ଅନ୍ୟରୂପ. (ଧ୍ୱଂସକରୀ, ଧ୍ୱଂସକାରିଣୀ—ସ୍ତ୍ରୀ)

**ଧ୍ୱଂସ କରିବା**—ଦେ କ୍ରି.—୧ । ବିନାଶ କରିବା—Dhwamsa kariba 1. To destroy, to annihilate.
ধ্বংসকরা ୨ । ବଧ କରିବା—
ধ্বংসকরনা 2. To kill.

**ଧ୍ୱଂସନ**—ସ ବ (ଧ୍ୱଂସ୍ ଧାତୁ+ଭାବ ଅନ)—ଧ୍ୱଂସ (ଦେଖ)—Dhwamsana Dhwamsa (See)

**ଧ୍ୱଂସନୀୟ**—ସ. ବିଣ. (ଧ୍ୱଂସ୍ ଧାତୁ+କର୍ମ. ଅନୀୟ)—ଧ୍ୱଂସଯୋଗ୍ୟ-Dhwamsaniya Deserving to be demolished; fit (ଧ୍ୱଂସନୀୟା—ସ୍ତ୍ରୀ) to be destroyed or ruined.

**ଧ୍ୱଂସ ପଥ**—ସ. ବ. (୬ଷ୍ଠୀ ତତ୍, ଧ୍ୱଂସ+ପଥ)—ବିନାଶର ଉପାୟ; Dhwamsa patha ସର୍ବନାଶର ପନ୍ଥା—(ଧ୍ୱଂସମାର୍ଗ—ଅନ୍ୟରୂପ) The way to ruin.

**ଧ୍ୱଂସ ମୁଖ**—ସ. ବ. (୬ଷ୍ଠୀ ତତ୍, ଧ୍ୱଂସ+ମୁଖ)—ବିନାଶର ସୂତ୍ରପାତ—Dhwamsa mukha The beginning of ruin.

**ଧ୍ୱଂସାବଶେଷ**—ସ. ବ (୬ଷ୍ଠୀ ତତ୍; ଧ୍ୱଂସ+ଅବଶେଷ)—ଭଗ୍ନାବଶେଷ; Dhwamsābasesha ଭସ୍ମାବଶେଷ; ବିନଷ୍ଟ ପଦାର୍ଥର ଯେଉଁ ଅଂଶ ନଷ୍ଟ ନ ହୋଇ ରହି ଯାଇ ଥାଏ—The ruins; the remains; the ashes.

**ଧ୍ୱଂସିତ**—ସ. ବ. (ଧ୍ୱଂସ୍ ଧାତୁ+କର୍ମ ତ) - ୧ । ଧ୍ୱଂସପ୍ରାପ୍ତ—Dhwamsita 1. Ruined.
୨ । ବିନାଶିତ—2. Destroyed.

**ଧ୍ୱଂସିବା**—ଦେ (ପଦ୍ୟ) କ୍ରି. (ସ. ଧ୍ୱଂସ୍ ଧାତୁ)—ବିନାଶ କରିବା—Dhwamsibā To destroy.
ধ্বংসা ତାଙ୍କ ହୃଦୟେ ହେତ ପଶେ,
ढाना, ढाहना ସର୍ବ ଅଶୁଭ ଫଳ ଧ୍ୱଂସେ । ଜଗନ୍ନାଥ. ଭାଗବତ ।

**ଧ୍ୱଂସୀ**—ସ. ବିଣ. ପୁଂ.—(ଧ୍ୱଂସ୍ ଧାତୁ+କର୍ତ୍ତୃ. ଇନ୍; ୧ମା. ୧ବ)—Dhwamsi ୧ । ଧ୍ୱଂସପ୍ରବଣ; ଯାହାର ଧ୍ୱଂସ ଅନିବାର୍ଯ୍ୟ; ନଶ୍ୱର; (ଧ୍ୱଂସିନୀ—ସ୍ତ୍ରୀ) ଅଚିରସ୍ଥାୟୀ—1. Destructible.
୨ । ଧ୍ୱଂସକ; ବିନାଶକ—2 Destroying; ruining.
ସ. ବ.—ପାର୍ବତ୍ୟ ପିଲୁଗଛ (ଶ୍ଳ. ଶ.)—A kind of Pilu tree growing on mountains.

**ଧ୍ୱଜ୍ (ଧାତୁ)**—ସ—୧ । ଗମନ କରିବା—Dhwaj (root) 1. To go.
୨ । ଘୁଞ୍ଚିବା; ଗତି କରିବା—2. To move.

**ଧ୍ୱଜ**—ସ. ବ (ଧ୍ୱଜ୍ ଧାତୁ+କର୍ତ୍ତୃ. ଅ)—୧ । ନିଶାଣ, ବୈଜୟନ୍ତୀ; Dhwaja ପତାକା—1 Flag, standard, ensign; banner.
୨ । (ପର୍ବତର) ଶିଖର —2. Peak of a mountain).
୩ । ମେଢ୍ର; ଲିଙ୍ଗ; ଯୋନି; ଜନନେନ୍ଦ୍ରିୟ—3 The penis; the organ of generation of a male or female animal (Apte)
୪ । ଲକ୍ଷଣ; ବାହ୍ୟ ଚିହ୍ନ—4. External sign; mark symbol; token; emblem.
୫ । ଗର୍ବ—5 Pride.
୬ । ପତାକାର ଦଣ୍ଡ—6 Flag-staff.
୭ । ଖଟ୍ୱାଙ୍ଗ—7 Bedpost; the beams of a bedstead
୮ । ଶୁଣ୍ଡୀ—8 Wine-distiller; grog-dealer
୯ । ପୂର୍ବଦିଗର ଗୃହ—9 An eastern house, a house situated to the east of any object (Apte).
୧୦ । ସେନାଚିହ୍ନବିଶେଷ; ସେନାଦଳର ପତାକା—10. The ensign or flag of an army
୧୧ । (ସମାସରେ ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ; ଯଥା—କୁଳଧ୍ୱଜ) ଶ୍ରେଷ୍ଠ ବା ବିଖ୍ୟାତ ବ୍ୟକ୍ତି—11. A distinguished or eminent person; the honour or ornament (e. g. of a family) (Apte)
୧୨ । ଦେବତାଙ୍କର ଗୁଣ—12. The attribute of a Deity (Apte)
୧୩ । ଟ୍ରେଡ୍‌ମାର୍କ; ପଣ୍ୟଦ୍ରବ୍ୟନାମୀତାଙ୍କର ବିଶିଷ୍ଟ ଚିହ୍ନ - 13. Trade mark (Apte).
୧୪ । ଶୌଣ୍ଡିକାଳୟର ବାହାରେ ଥିବା ବିଶିଷ୍ଟ ଚିହ୍ନ—14. The sign of a tavern (Apte).
୧୫ । କପଟାଚାର—15. Hypocricy (Apte).
୧୬ । ମହାପୁରୁଷଙ୍କ ପାଦତଳ ବା କରତଳରେ ଥିବା ଧ୍ୱଜାକାର ରେଖା—16. A line resembling a flag found on the soles and palms of great men.

**ଧ୍ୱଜ ଚିହ୍ନ**—ସ. ବ (୬ଷ୍ଠୀ ତତ୍; ଧ୍ୱଜ+ଚିହ୍ନ)—ପତାକା ଦେହରେ ଅଙ୍କିତ Dhwaja chihna ଜାତି, ସମ୍ପ୍ରଦାୟ ବା ରାଜଶକ୍ତିଜ୍ଞାପକ ଲକ୍ଷଣ, ପତାକା ଚିହ୍ନ—An ensign, a mark appearing in a flag to denote a particular nation, sect or state.

**ଧ୍ୱଜଦଣ୍ଡ**—ସ ବ. (୬ଷ୍ଠୀ ତତ୍; ଧ୍ୱଜ+ଦଣ୍ଡ)—ପତାକା କାଠି; ନିଶାଣି Dhwaja danda ଦଣ୍ଡା—Flagstaff; a post on which a flag is planted.

**ଧ୍ୱଜ ଦ୍ରୁମ**—ସ. ବ (ମ. ପ. ଲୋ; ଧ୍ୱଜବତ୍ ଦ୍ରୁମ)—ତାଳଗଛ—Dhwaja druma The palm tree.

**ଧ୍ୱଜ ପଟ**—ସ.ବ (୬ଷ୍ଠୀ ତତ୍; ଧ୍ୱଜ+ପଟ)—ଧ୍ୱଜଦଣ୍ଡର ମସ୍ତକରେ ଲଗ୍ନ Dhwaja pata ବସ୍ତ୍ରଖଣ୍ଡ—Flag cloth; a piece of cloth (ଧ୍ୱଜାଂଶୁକ—ଅନ୍ୟରୂପ). attached to the top of a flag.

ଧ୍ୱଜ ବଜ୍ରାଙ୍କୁଶ—ସ ଭ (ଦ୍ୱନ୍ଦ୍ୱ; ଧ୍ୱଜ+ବଜ୍ର+ଅଙ୍କୁଶ)—୧ । ଧ୍ୱଜ, ବଜ୍ର ଓ ଅଙ୍କୁଶ ଚିହ୍ନ; ରାଜଚିହ୍ନବିଶେଷ—
Dhwaja bajrānkusa
1. The three paraphernalia of royalty; three royal symbols viz flag, thunder and hook.
୨ । ବିଷ୍ଣୁଙ୍କର ବା ବିଷ୍ଣୁ ଅଂଶୀ ବ୍ୟକ୍ତିଙ୍କ ପାଦତଳେ ଥିବା ଚିହ୍ନତ୍ରୟ
2. The three marks found on the soles of the feet of Bishṇu when He assumes earthly form.

ଧ୍ୱଜବାନ୍—ସ ବିଣ. ପୁଂ ( ଧ୍ୱଜ+ବତ୍, ୧ମା. ୧ବ)—
Dhwajabān
୧ । ପତାକାଦ୍ୱାରା ସୁଶୋଭିତ—
1 Adorned with flags.
୨ । ଚିହ୍ନଯୁକ୍ତ—2. Having a mark; marked.
୩ । ଦାଗୀ ବା ରାଜଦଣ୍ଡପ୍ରାପ୍ତ, ରାଜଦଣ୍ଡର ପ୍ରମାଣସ୍ୱରୂପ ଯାହାର ଦେହରେ ଦାଗ ଦିଆ ଯାଇଥାଏ—
3. Branded as a convict.
ସ. ବି—୧ । ଶୁଣ୍ଡୀ—1. A distiller or seller of spirituous liquor.
୨ । ଦାଗୀ—2. A previous convict.
୩ । ପତାକାବାହକ—3 Standard-bearer.
୪ । ଯେଉଁ ବ୍ରାହ୍ମଣ ନିଜଦ୍ୱାରା ହତ ହୋଇଥିବା ବ୍ୟକ୍ତିର କପାଳକୁ ଘେନି ପ୍ରାୟଶ୍ଚିତ୍ତାର୍ଥ ତୀର୍ଥକୁ ଯାଏ—
4. A Brāhmaṇa who carries with him the skull of the man murdered by him to centres of pilgrimage by way of penance.

ଧ୍ୱଜ ଭଙ୍ଗ—ସ. ବି. (୬ଷ୍ଠୀ ତତ୍; ଧ୍ୱଜ=ମେଢ୍ର+ଭଙ୍ଗ=ଶିଥିଳତା)—
Dhwaja bhanga ପୁରୁଷର ଜନନେନ୍ଦ୍ରିୟର ଶିଥିଳତା ଓ ଶକ୍ତି-
(ଧ୍ୱଜପାତ—ଅନ୍ୟରୂପ) ହୀନତା; ପୁରୁଷତ୍ୱହୀନତା ରୋଗ; କ୍ଲୀବତା—
Impotency; inability to beget children.

ଧ୍ୱଜଯଷ୍ଟି—ସ. ବି. (୬ଷ୍ଠୀ ତତ୍; ଧ୍ୱଜ+ଯଷ୍ଟି)—ଧ୍ୱଜ ଦଣ୍ଡ (ଦେଖ)
Dhwaja jāshṭi Dwaja daṇḍa (See)

ଧ୍ୱଜ ସ୍ତମ୍ଭ—ସ. ବି. (୬ଷ୍ଠୀ ତତ୍; ଧ୍ୱଜ+ସ୍ତମ୍ଭ)—ଧ୍ୱଜଦଣ୍ଡ (ଦେଖ)
Dhwaja sthmbha Dhwaja daṇḍa (See)

ଧ୍ୱଜା—ଦେ. ବି. (ସ. ଧ୍ୱଜ)—୧ । ପତାକା; ଝଣ୍ଡା—
Dhwajā 1. A flag.
ଧ୍ୱଜା ୨ । ଗର୍ବ—2. Pride.
ଘେଜା ୩ । ମସ୍ତକର ଶିଖା; ଚୁଟି—
3. A tuft of hair on the head.

ଧ୍ୱଜାଧାରୀ—ଦେ. ବିଣ. ପୁଂ (ସ. ଧ୍ୱଜଧାରିନ୍)—୧ । ପତାକାବାହକ—
Dhwajādhāri 1. Flag-bearing; standard-bearing.
୨ । ଶିଖାଧାରୀ; ଯାହାର ଚୁଟି ଥାଏ—2. Having a long tuft of hair or pightail on the head.

ଧ୍ୱଜାରୋପଣ—ସ. ବି. ( ୬ଷ୍ଠୀ ତତ୍; ଧ୍ୱଜ+ଆରୋପଣ )—ଦେବାଳୟ-
Dhwajāropaṇa ଓ ତୀର୍ଥାଦିରେ ମନ୍ତ୍ରପୂତ ପତାକା ପୋତିବା—
The planting of a consecrated flag at a sacred place or over a temple.

ଧ୍ୱଜାହୃତ—ସ. ବିଣ.—ଯୁଦ୍ଧ ଭୂମିରେ ଗୃହୀତ—
Dhwajāhṛuta Seized in the battlefield.

ଧ୍ୱଜିକ—ସ. ବି.ପୁଂ—କପଟ ଧାର୍ମିକ—A hypocrite who only
Dhwajika makes a pretence of religion (Apte).

ଧ୍ୱଜିନୀ—ସ ବି. ସ୍ତ୍ରୀ—'ଧ୍ୱଜ+ଇନ୍+ସ୍ତ୍ରୀ. ଈ) —ସେନା; ବାହିନୀ—
Dhwajini An army.
ସ. ବିଣ. ସ୍ତ୍ରୀ—ଧ୍ୱଜୀର ସ୍ତ୍ରୀଲିଙ୍ଗ—
Feminine of Dhwaji.

ଧ୍ୱଜୀ—ସ. ବିଣ. ପୁଂ (ଧ୍ୱଜ+ଅସ୍ତି ଅର୍ଥରେ ଇନ୍)—୧ । ପତାକାବାହକ
Dhwaji 1. Standard bearing; bearing a flag.
(ଧ୍ୱଜିନୀ—ସ୍ତ୍ରୀ) ୨ । କପଟୀ; ଭଣ୍ଡ—
2. Hypocritical; imposter.
୩ । ସୁରାଭାଜନ ଚିହ୍ନଧାରୀ—3. Bearing the mark of a liquor vessel.
୪ । (ସମାସରେ) ଅମୁକକୁ ଚିହ୍ନରୂପେ ଧାରଣ କରିଥିବା—
4. Having as a mark.
(ଯଥା—ଧର୍ମ ଧ୍ୱଜୀ ।)
ସ. ବି. ପୁଂ—୧ । (ପତାକା ଥିବାରୁ) ରାଜା—1. King.
୨ । (ଶିଖର ଥିବାରୁ) ପର୍ବତ—2. Mountain.
୩ । (ପତାକା ଥିବାରୁ) ରଥ—3. Car; chariot.
୪ । (ଚୂଳ ଥିବାରୁ) ଶିଖୀ; ମୟୂର—4 Peacock.
୫ । (ଫଣା ଥିବାରୁ) ସର୍ପ—5 Serpent.
୬ । (ଶିଖା ଥିବାରୁ) ବ୍ରାହ୍ମଣ—
6. A Brāhmaṇa.
୭ । (ଶିଖା ଥିବ ) ଅଗ୍ନି—7. Fire.
୮ । ( ମୁଣ୍ଡ ଓ ବେକରେ କେଶଗୁଚ୍ଛ ଥିବାରୁ ) ଅଶ୍ୱ—
8. Horse.
୯ । ଶୁଣ୍ଡୀ—9. A distiller; a vintner.

ଧ୍ୱଜୀକରଣ—ସ. ବି (ଧ୍ୱଜ+ଅଭୂତ ତଦ୍ଭାବେ ଚ୍ୱି+କରଣ )—
Dhwajikaraṇa ୧ । ପତାକା ଉତ୍ତୋଳନ କରିବା; ପତାକା ଉଡ଼ାଇବା—1. Hoisting of a flag; raising of a standard.
୨ । କୌଣସି ବିଷୟକୁ ବାହାନା କରିବା—
2. Setting up as a pretext or claim; making anything a plea (Apte).

ଧ୍ୱଜୋତ୍ଥାନ—ସ. ବି—ଇନ୍ଦ୍ରଙ୍କ ପୂଜା ଉତ୍ସବ—
Dhwajotthāna A festival in honour of Indra.

ଧ୍ୱନ୍ (ଧାତୁ)—ସ—୧ । ଶବ୍ଦ କରିବା—
Dhwan (root) 1. To make a sound.
(ଧ୍ୱଣ୍—ଅନ୍ୟରୂପ) ୨ । ଗର୍ଜନ କରିବା—2. To roar; to thunder.

ଧ୍ୱନ—ସ. ବି. ( ଧ୍ୱନ୍ ଧାତୁ+ଭାବ. ଅ )—ଧ୍ୱନି ( ଦେଖ )
Dhwana Dhwani (See)

**ଧ୍ୱନନ**—ସଂ. ବି. ( ଧ୍ୱନ୍ ଧାତୁ+ଅନ )—
Dhwanana ୧ । ଶବ୍ଦ କରିବା—1. Making a sound.
୨ । (ଅଳଙ୍କାର) ଶବ୍ଦଙ୍କର ବ୍ୟାପାରବିଶେଷ; ବ୍ୟଞ୍ଜନା— 2. ( rhetoric ) That power of a word or sentence by virtue of which it conveys a sense different from its primary or secondary meaning; suggestive power of a word.
୩ । ଗୁଣୁ ଗୁଣୁ ଶବ୍ଦ କରିବା— 3. Buzzing; humming.
୪ । ଅର୍ଥାଦିର ସୂଚନ—4. Hinting; suggesting or implying ( as a meaning ).
୫ । ଅବ୍ୟକ୍ତ ଉଚ୍ଚାରଣ—5. Indistinct utterance.

**ଧ୍ୱନି**—ସଂ. ବି. ( ଧ୍ୱନ୍ ଧାତୁ=ଶବ୍ଦ କରିବା+ଭାବ. ଇ )—
Dhwani ୧ । ଶବ୍ଦ—1. Sound; noise.
୨ । ରବ, ସ୍ୱର—2. Tone; note; tune.
୩ । କଣ୍ଠ ସ୍ୱର—3. Voice; cry.
୪ । ବାଦ୍ୟ ସମ୍ବନ୍ଧ ସ୍ୱର— 4. Musical note or sound; melody.
୫ । ( ଅଳଙ୍କାର ) ଲକ୍ଷ୍ୟାର୍ଥ, ଗୂଢ଼ାର୍ଥ; ବାକ୍ୟାର୍ଥ ଛଡ଼ା ବ୍ୟଙ୍ଗ୍ୟାର୍ଥ—5. Implied meaning; a hint.
ଅଶ୍ଳେଷ ଧ୍ୱନି ଶ୍ଳେଷ ଛଳ ବସୋଧ ରୂପକ ଉହା'ସ୍ତା ।
ଉପେ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।
୬ । ପ୍ରତିଧ୍ୱନି—6. An echo.
୭ । ଘଡ଼ଘଡ଼ି ରଡ଼ି; ବଜ୍ର ଧ୍ୱନି—7. Thunder clap; the roar of thunder.
୮ । ଉତ୍କୃଷ୍ଟ କାବ୍ୟ—8. A literary work containing passages in which the implied or suggested sense is more striking than the expressed meaning.
[ଦ୍ର—ଯେଉଁ କାବ୍ୟରେ ବାକ୍ୟାବଳର ପ୍ରକାଶିତ ଅର୍ଥ ଅପେକ୍ଷା ସୂଚିତ ଅର୍ଥ ବା ଲକ୍ଷଣାର୍ଥ ପ୍ରଧାନ ଅଟେ ତାକୁ ଧ୍ୱନି ବୋଲିଯାଏ ]
୯ । ଫମ୍ପା ଶବ୍ଦ ମାତ୍ର—9. A mere empty sound (Apte).

ଦେ. ବି—(ସଂ. ଧ୍ୱନି) ପଙ୍କ୍ତିରେ ବସି ଖାଇବା ସମୟରେ ବୈଷ୍ଣବ ଓ ବାବାଜମାନଙ୍କର ଏକତ୍ର ଉଚ୍ଚାରଣ କରିବା 'ଢେଳେକାର' ବା ହରିନାମ—A chorus of thanksgiving uttered by Baishnabas assembled at a feast, before partaking of the meal.
ଧୁନୀ

**ଧ୍ୱନିକରିବା**—ଦେ. କ୍ରି ( ସଂ. ଧ୍ୱନ୍ ଧାତୁ )—ଶବ୍ଦ କରିବା—
Dhwani kariba To raise a sound or note.
ଧ୍ୱନିକରାଁ; ଧ୍ୱନିକରନା

**ଧ୍ୱନି କାବ୍ୟ**—ସଂ. ବି ( ମ. ପ. ଲୋ. କର୍ମଧା; ଧ୍ୱନି+କାବ୍ୟ)—ଉତ୍କୃଷ୍ଟ
Dhwani kābya କାବ୍ୟବିଶେଷ; ଯେଉଁ କାବ୍ୟରେ ବାକ୍ୟାର୍ଥଠାରୁ ବ୍ୟଙ୍ଗ୍ୟାର୍ଥ ବା ଲକ୍ଷଣାର୍ଥ ଅଧିକତର ଚମତ୍କାରଜନକ—A literary composition in which the implied meaning is more excellent or striking than the meaning appearing on the face of the words.

**ଧ୍ୱନି ଗ୍ରହ**—ସଂ. ବି (ଧ୍ୱନି+ଗ୍ରହ ଧାତୁ+କର୍ତ୍ତୃ. ଅ)—୧ । କାନ—
Dhwani graha 1. Ear.
୨ । ( +ଭାବ. ଅ ) ଶବ୍ଦଜ୍ଞାନ—2. Conception of sound.
୩ । ଶୁଣିବା—3. Hearing
୪ । ଭୁମ୍ପା; ଭେଣ୍ଡି;ବଂଶୀ—4. Pipe;fife;flute (Apte).

**ଧ୍ୱନିତ**—ସଂ. ବିଣ (ଧ୍ୱନ୍ ଧାତୁ+କର୍ମ. ତ)—୧ । ଶବ୍ଦିତ—
Dhwanita 1. Sounded.
୨ । ଧ୍ୱନିଦ୍ୱାରା ପ୍ରତିପନ୍ନ ( ଅର୍ଥ )—2. Implied; hinted; suggested (meaning)
ସଂ. ବି—୧ । (+ଭାବ ତ)—ଶବ୍ଦ—1 Sound.
୨ । ମେଘ ଗର୍ଜ୍ଜନ—2 The roar or thunder of a cloud (Apte)

**ଧ୍ୱନି ନାଳା**—ସଂ ବି ( ଧ୍ୱନି=ଶବ୍ଦ+ନାଳା=ନଳ )—୧ । ବୀଣା—
Dhwani nāḷā 1. Harp.
୨ । ବଂଶୀ—2 Flute

**ଧ୍ୱନିବା**—ଦେ. (ପଦ୍ୟ) କ୍ରି. (ସଂ. ଧ୍ୱନି)—ଧ୍ୱନି କରିବା—
Dhwaniba To make a sound.
ଧ୍ୱନା; ধ্বনিকরনা ମେଘ ମନ୍ଦ୍ର ଅବର ଧ୍ୱନିଲ ଅକାଶର—ମଧୁସୂଦନ ଛନ୍ଦମାଳା ।

**ଧ୍ୱନି ବିକାର**—ସଂ. ବି ( ୬ଷ୍ଠୀ ତତ୍; ଧ୍ୱନି+ବିକାର )—ଶୋକ, ରାଗ, ଭୟ ବା ଅତିରିକ୍ତ କଥନାଦି ଯୋଗୁଁ କଣ୍ଠସ୍ୱରର ବିକୃତି—Hoarseness or loss or change of voice caused by fear, anger, grief or straining.
Dhwani bikāra

**ଧ୍ୱନିମନ୍ତ**—ଦେ. ବିଣ—(ସଂ. ଧ୍ୱନିମତ୍ )ଶବ୍ଦାୟମାନ; ଶବ୍ଦ କରୁଥିବା—
Dhwanimanta Making a sound; ringing.
ବଉଳର ପଲ୍ଲବେ ଧ୍ୱନିମନ୍ତ, ବେଗେ ଯାଇ ନଗର ପାଶେ ସ୍ଥିତ—
ଉପେ. ବୈଦେହୀଶବିଳାସ ।

**ଧ୍ୱନି ଯମକ**—ସଂ. ବି (ଅଳଙ୍କାର)—ଯମକବିଶେଷ—
Dhwani jamaka A sort of alliteration.
ଯଥା—ସରସ ରସ ରତ ରସର ସରସତ ଗ୍ରନ୍ଥ-ଗ୍ରନ୍ଥ ଗ୍ରନ୍ଥୀବ ତୋଷେ
ସାର ସାର ସାରତ ତୋଷର ସାର ସାଧ ମାନ ମାନ ମାନସ ରସେରେ
ଅଭିମନ୍ୟୁ, ବିଦଗ୍ଧଚିନ୍ତାମଣି

**ଧ୍ୱନ୍ୟନୁକରଣ**—ସଂ. ବି. (୬ଷ୍ଠୀ ତତ୍; ଧ୍ୱନି+ଅନୁକରଣ)—୧ । କୌଣସି ଧ୍ୱନି ବା ଶବ୍ଦର ଅନୁକରଣ—
Dhwanyanukaraṇa
( ଧ୍ୱନ୍ୟନୁକାର—ଅନ୍ୟରୂପ ) 1. Imitation of a sound.
୨ । ଧ୍ୱନି ଅନୁସାରେ ଶବ୍ଦର ଗଠନ—
2 Onomatopoeia.

[ ଦ୍ର—ଯେଉଁ ଶବ୍ଦ ବା ବାକ୍ୟର ଧ୍ୱନିରୁ ତାହାର ଅର୍ଥ ପ୍ରକାଶିତ ହୁଏ ବା ଧ୍ୱନିଅନୁସାରେ ଯେଉଁ ଶବ୍ଦ ଗଠିତ ତାହାକୁ ଏ ଅଭିଧାନରେ ଧ୍ୱନ୍ୟନୁକରଣ ବା ଧ୍ୱନ୍ୟନୁକାରୀ ଶବ୍ଦ ବୋଲି ଲେଖା ଯାଇଅଛି । ]

**ଧ୍ୱନ୍ୟନୁକାରୀ**—ସଂ. ତଣ. ପୁଂ. ( ଧ୍ୱନି+ଅନୁକାରିନ୍; ୧ମା. ୧ବ )—
Dhwanyanukārī ୧ । ଯେ କୌଣସି ଧ୍ୱନି ବା ଶବ୍ଦର ଅନୁକରଣ (ଧ୍ୱନ୍ୟନୁକାରିଣୀ—ସ୍ତ୍ରୀ) କରେ—1. Imitating a particular sound.
୨ । ଯେଉଁ ଶବ୍ଦ କୌଣସି ଧ୍ୱନିର ଅନୁକରଣରେ ଗଠିତ—
2 Onomatopoetic, (a word) formed so as to resemble the sound of the thing or matter implied thereby.

**ଧ୍ୱନ୍ୟର୍ଥ**—ସଂ. ବି. (ଧ୍ୱନି+ଅର୍ଥ)—୧ । (ଅଳଙ୍କାର ଶାସ୍ତ୍ର) ପଦର ଗୂଢ଼ାର୍ଥ;
Dhwanyartha ବାକ୍ୟାର୍ଥ ଛଡ଼ା ବ୍ୟଙ୍ଗ୍ୟାର୍ଥ—
1. (rhetoric) Implied meaning of a word or passage.

**ଧ୍ୱନ୍ୟର୍ଥକ**—ସଂ. ବଣ. ( ବହୁବ୍ରୀହି, ଧ୍ୱନି+ଅର୍ଥ, କ ଆଗମ )—
Dhwanyarthaka ଯେଉଁ ଶବ୍ଦ ବା ବାକ୍ୟର ଧ୍ୱନିରୁ ତାହାର ଅର୍ଥ ଜଣାପଡ଼େ ( ଯଥା—କଟକଟ, ମଟମଟ, କେଁକେଁ, ମେଁମେଁ ଇତ୍ୟାଦି )—Onomatopoetic (word or expression)

**ଧ୍ୱନ୍ୟାତ୍ମକ**—ସଂ. ବଣ. ( ବହୁବ୍ରୀହି, ଧ୍ୱନି+ଆତ୍ମନ୍, କ ଆଗମ )—
Dhwanyātmaka ଧ୍ୱନ୍ୟର୍ଥକ ( ଦେଖ )—
Dhwanyarthaka ( See )

**ଧ୍ୱସ୍ତ**—ସଂ. ବଣ. (ଧ୍ୱଂସ୍ ଧାତୁ+କର୍ମ. ତ)—୧ । ଧ୍ୱଂସପ୍ରାପ୍ତ—
Dhwasta 1. Ruined.
(ଧ୍ୱସ୍ତା—ସ୍ତ୍ରୀ) ୨ । ବିନଷ୍ଟ—2 Destroyed.
୨ । ଅଧଃପତିତ—3. Fallen down.

**ଧ୍ୱସ୍ତ ବିଧ୍ୱସ୍ତ**—ସଂ. ବଣ. (ସହଚର)—ସମ୍ପୂର୍ଣ୍ଣରୂପେ ବିନଷ୍ଟ—
Dhwasta bidhwasta Completely ruined or destroyed.

**ଧ୍ୱସ୍ତା ଧ୍ୱସ୍ତି**—ଦେ. ବି. (ସ ଧ୍ୱସ୍ତ)—୧ । ମରାମରି; ପରସ୍ପରର ପରସ୍ପର-
Dhwastā dhwasti ପ୍ରତି ବଳ ପ୍ରୟୋଗ—1. Mutual
ଧସ୍ତାଧସ୍ତି shuffling, affray; mutual onslaught.
ଧକ୍କାଧୁକ୍କୀ ୨ । ମାଡ଼ପିଟ; ଦଙ୍ଗାଦେଙ୍ଗାମା—2. Affray; brawl.
ଦେ. ବିଣ—ମରାମରି କରୁଥିବା; ପରସ୍ପର ପରସ୍ପରକୁ ଆକ୍ରମଣ କରୁଥିବା—Attacking each other.

**ଧ୍ୱାଙ୍କ୍ଷ**—ସଂ. ବି—ଧ୍ମାଙ୍କ୍ଷ (ଦେଖ)
Dhwāṅksha Dhmāṅksha (See)

**ଧ୍ୱାଙ୍କ୍ଷପୁଷ୍ଟ**—ସଂ. ବି—ଧ୍ମାଙ୍କ୍ଷପୁଷ୍ଟ (ଦେଖ)
Dhwāṅksha pushṭa Dhmāṅksha pushṭa (See)

**ଧ୍ୱାଙ୍କ୍ଷମାଚୀ**—ସଂ. ବି—କାକଚିଞ୍ଚା (ଦେଖ)
Dhwāṅksha māchi Kākachiñchā (See)

**ଧ୍ୱାନ**—ସଂ. ବି. (ଧ୍ୱନ୍ ଧାତୁ+ଭାବ. ଅ)—୧ । ଧ୍ୱନି (ଦେଖ)
Dhwāna 1. Dhwani (See)
୨ । ଗୁଣୁ ଗୁଣୁ ଧ୍ୱନି—2. Buzzing; humming.

**ଧ୍ୱାନ୍ତ**—ସଂ. ବି. (ଧ୍ୱନ୍ ଧାତୁ+ଅଧିକରଣ ତ; ନିପାତନ)—
Dhwānta ୧ । ଅନ୍ଧକାର—1 Darkness.
୨ । ପାପ ବା ଅଜ୍ଞାନରୂପ ଅନ୍ଧକାର—
2. Darkness of sin or ignorance.

**ଧ୍ୱାନ୍ତ ନାଶକ**—ସଂ. ବଣ. (ଉପପଦ; ଧ୍ୱାନ୍ତ+ନାଶକ)—
Dhwānta nāsaka ଯେ ଅନ୍ଧକାର ନାଶ କରେ—
(ଧ୍ୱାନ୍ତନାଶନ, ଧ୍ୱାନ୍ତନାଶୀ—ଅନ୍ୟରୂପ) Dissipating darkness.
(ଧ୍ୱାନ୍ତନାଶିକା, ଧ୍ୱାନ୍ତନାଶିନୀ—ସ୍ତ୍ରୀ)
ସଂ. ବି—ସୂର୍ଯ୍ୟ—The sun.

**ଧ୍ୱାନ୍ତ ବିତ୍ତ**—ସଂ. ବି. (ବହୁବ୍ରୀହି; ଧ୍ୱାନ୍ତ+ବିତ୍ତ)—ଖଦ୍ୟୋତ,
Dhwānta bitta ଜୁଳୁଜୁଳିଆପୋକ—Firefly

**ଧ୍ୱାନ୍ତହର**—ସଂ. ବି ଓ ବଣ. (ଧ୍ୱାନ୍ତ+ହୃ ଧାତୁ+କର୍ତ୍ତୃ. ଅ)—
Dhwāntahara ଧ୍ୱାନ୍ତ ନାଶକ (ଦେଖ)
Dhwānta nāsaka (See)
ଧ୍ୱାନ୍ତହାରୀ, ଧ୍ୱାନ୍ତହାରକ } ଅନ୍ୟରୂପ
(ଧ୍ୱାନ୍ତହରା, ଧ୍ୱାନ୍ତହାରିଣୀ, ଧ୍ୱାନ୍ତହାରିକା—ସ୍ତ୍ରୀ)

**ଧ୍ୱାନ୍ତାରାତି**—ସଂ. ବି (୬ଷ୍ଠୀ ତତ୍; ଧ୍ୱାନ୍ତ+ଅରାତି)—୧ । ସୂର୍ଯ୍ୟ—
Dhwāntārāti 1. The sun.
( ଧ୍ୱାନ୍ତଶାତ୍ରବ, ଧ୍ୱାନ୍ତାରି—ଅନ୍ୟରୂପ ) ୨ । ଚନ୍ଦ୍ର—
2. The moon.
୩ । ଅଗ୍ନି—3. Fire.
୪ । ଆଲୋକ—4. Light.
୫ । ଶୁକ୍ଳବର୍ଣ୍ଣ—5. The white colour (Apte).

**ଧ୍ୱାନ୍ତୋନ୍ମେଷ**—ସଂ. ବି ( ବହୁବ୍ରୀହି; ଧ୍ୱାନ୍ତ+ଉନ୍ମେଷ )—
Dhwāntonmesha ଧ୍ୱାନ୍ତ ବିତ୍ତ ( ଦେଖ )
Dhwānta bitta (See)

**ଧ୍ମା** (ଧାତୁ)—ସଂ.—୧ । ଅଗ୍ନିସଂଯୋଗ କରିବା; ନିଆଁ ଲଗାଇବା—
Dhmā (root) 1. To ignite; to set fire to.
୨ । ଶବ୍ଦ କରିବା ( ପ୍ରକୃତିବାଦ )—
2. To produce a sound.
୩ । ଫୁଙ୍କିବା—3. To blow (as a wind instrument) (Apte).
୪ । ନିଶ୍ୱାସ ମାରିବା—4 To breathe out; to exhale (Apte)
୫ । ଫୁଙ୍କିକରି ନିଆଁ ଧରାଇବା—5. To blow a fire; to excite fire by blowing (Apte).
୬ । ଚକମକିଦ୍ୱାରା ନିଆଁ ଝାଡ଼ିବା—
6. To excite sparks (Apte)
୭ । ଫୁଙ୍କିକରି ଦୂରକୁ ଉଡ଼ାଇଦେବା—
7. To cast; to blow or throw away (Apte).
୮ । ଫୁଙ୍କିବାଦ୍ୱାରା କୌଣସି ବସ୍ତୁ ନିର୍ମାଣ କରିବା—
8. To manufacture by blowing.

ଧ୍ମାକାର—ସଂ.ବି ( ଧ୍ମା ଧାତୁ+କ୍ୱିପ=ଧ୍ମା=ଶବ୍ଦ ତାଇବା+କାର )—
Dhmākāra କମାର—Blacksmith.

ଧ୍ମାଙ୍କ୍ଷ୍ ( ଧାତୁ )—ସ—ଘୋର ରବ କରିବା—
Dhmāṅksha ( root ) To roar; to bellow.
( ଧ୍ୱାଙ୍କ୍ଷ୍—ଅନ୍ୟରୂପ )

ଧ୍ମାଙ୍କ୍ଷ—ସଂ. ବି (ଧ୍ମାଙ୍କ୍ଷ ଧାତୁ=ଘୋର ରବ କରିବା+କର୍ତ୍ତୃ. ଅ)—
Dhmāṅksha ୧ । କାକ, କୁଆ—1. Crow.
୨ । ମାଛରଙ୍କା; ମତ୍ସ୍ୟଭକ୍ଷକ ପକ୍ଷିବିଶେଷ—
2 The king-fisher bird
୩ । ଭିକ୍ଷୁ—3. A beggar.
୪ । ତକ୍ଷକ; ନାଗବିଶେଷ—
4. Name of a mythological serpent; Takshaka.

ଧ୍ମାଙ୍କ୍ଷପୁଷ୍ଟ—ସଂ. ବି ( ଷଷ୍ଠୀ ତତ୍; ଧ୍ମାଙ୍କ୍ଷ+ପୁଷ୍ଟ )—
Dhmāṅksha pushṭa କାକପୁଷ୍ଟ; କୋଇଲ; କୋଇଲି—
A cuckoo

ଧ୍ମାତ—ସଂ. ବିଣ ( ଧ୍ମା ଧାତୁ+କର୍ମ.ତ )—୧ । ନିଆଁ ଲଗା ଯାଇଥିବା;
Dhmāta ଅଗ୍ନି ସଂଯୁକ୍ତ; ଉଦ୍ଦୀପିତ; ସନ୍ଦୀପିତ; ସନ୍ଧୁକ୍ଷିତ—
1 Ignited; kindled.
୨ । ଫୁଙ୍କା ହେବା ଦ୍ୱାରା ଶବ୍ଦିତ; ବିନାଦିତ(ଭୁରୀ ଆଦି ଯନ୍ତ୍ର)—
2. Blown or sounded (as a wind-instrument.
୩ । ଦଗ୍ଧ—3. Burnt.
୪ । ଫୁଙ୍କା ଯାଇଥିବା—4. Blown into.
୫ । ଫୁଙ୍କା ଯାଇ ଫୁଲି ଯାଇଥିବା—
5. Inflated; puffed up; blown up.

ଧ୍ମାନ—ସଂ. ବି (ଧ୍ମା ଧାତୁ+ଭାବ.ନ)—୧ । ଫୁଙ୍କିବା କର୍ମ—
Dhmāna 1. The act of blowing.
୨ । ଫୁଙ୍କିକରି ନିଆଁ ଲଗାଇବା—
2. Kindling or igniting a fire by blowing

ଧ୍ମାପିତ—ସଂ. ବିଣ (ଧ୍ମା ଧାତୁ ଣିଚ ଧ୍ମାପି ଧାତୁ+କର୍ମ. ତ)—
Dhmāpita ୧ । ଯାହା ଫୁଙ୍କା ଯାଇଅଛି—1, Blown into.
୨ । ଯାହାକୁ ଫୁଙ୍କିକରି ଫୁଲାଇ ଦିଆ ଯାଇଅଛି—
2. Inflated by being blown into.
୩ । ଦଗ୍ଧ; ଭସ୍ମୀଭୂତ—
3. Reduced to ashes; burnt down (Apte).

ଧ୍ୟା—ସଂ. ବି—(ଧ୍ୟୈ ଧାତୁ+ଭାବ. କ୍ୱିପ୍)—ଧ୍ୟାନ (ଦେଖ)
Dhyā Dhyāna ( See )

ଧ୍ୟାଇବା—ଦେ. କ୍ରି (ସଂ. ଧ୍ୟୈ ଧାତୁ; ଧ୍ୟାନ )—ଧ୍ୟାନ କରିବା (ଦେଖ)
Dhyāibā Dhyāna karibā (See)
ध्याना, ধ্যানা

ଧ୍ୟାତ—ସଂ. ବିଣ (ଧ୍ୟୈ ଧାତୁ=ଚିନ୍ତା କରିବା+କର୍ମ. ତ)—
Dhyāta ୧ । ଯାହାକୁ ଧ୍ୟାନ କରା ଯାଇଅଛି; ଧ୍ୟାନର ବିଷୟୀଭୂତ—
(ଧ୍ୟାତା—ସ୍ତ୍ରୀ) 1. Meditated upon; contemplated.
(ଧ୍ୟା, ଧ୍ୟାନ—ବି) ୨ । ଭାବିତ; ଚିନ୍ତିତ—
(ଧ୍ୟାତବ୍ୟ; ଧ୍ୟେୟ—ବିଣ) 2. Reflected upon; thought of.
୩ । ସ୍ମୃତ—3 Remembered.

ଧ୍ୟାତବ୍ୟ—ସଂ. ବିଣ (ଧ୍ୟୈ ଧାତୁ+କର୍ମ ତବ୍ୟ)—୧ । ଚିନ୍ତିତବ୍ୟ;
Dhyātabya ଚିନ୍ତନୀୟ—1. Fit to be meditated upon
(ଧ୍ୟାତବ୍ୟା—ସ୍ତ୍ରୀ) ୨ । ସ୍ମରଣୀୟ—2 To be remembered
୩ । ଆଲୋଚନୀୟ—3. To be discussed.
୪ । କଳ୍ପନୀୟ—4. Imaginable.

ଧ୍ୟାତା—ସଂ. ବିଣ. ପୁଂ (ଧ୍ୟୈ ଧାତୁ+କର୍ତ୍ତୃ ତୃ; ୧ମା. ୧ବ)—
Dhyātā ଧ୍ୟାନକାରୀ—Engaged in meditation or contemplation.
(ଧ୍ୟାତ୍ରୀ—ସ୍ତ୍ରୀ)
ସଂ. ବିଣ. ସ୍ତ୍ରୀ (ଧ୍ୟାତ+ଆ)—ଧ୍ୟାତର ସ୍ତ୍ରୀଲିଙ୍ଗ—
Feminine of Dhyāta.

ଧ୍ୟାନ—ସଂ. ବି (ଧ୍ୟୈ ଧାତୁ=ଚିନ୍ତା କରିବା+ଭାବ. ଅନ)—
Dhyāna ୧ । ଯୋଗସାଧନର ଅଙ୍ଗବିଶେଷ; ମନନ;
ମନେ ମନେ କଳ୍ପନ—1. Contemplation; meditation.

[ଦ୍ର—ଯୋଗର ଆଠଗୋଟି ଅଙ୍ଗ ମଧ୍ୟରୁ ଧ୍ୟାନ ସପ୍ତମ ଅଟେ । ଏହା ଧାରଣା ଓ ସମାଧିର ମଧ୍ୟବର୍ତ୍ତୀ ଅବସ୍ଥା । ଯୋଗସାଧକ ପ୍ରତ୍ୟାହାର ଦ୍ୱାରା ଚିତ୍ତବୃତ୍ତି ଉପରେ ଅଧିକାର ଲାଭ କରିବା ପରେ ସେ ଚିତ୍ତବୃତ୍ତିକୁ ଅନ୍ୟ ସବୁଆଡ଼ୁ ଫେରାଇଆଣି ନାଭି ଆଦି କୌଣସି ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ଅବରୁଦ୍ଧ କରେ । ଯୋଗର ଏହି ପ୍ରକ୍ରିୟା ବା ଅଙ୍ଗକୁ ଧାରଣା ବୋଲାଯାଏ । ଧାରଣା ଯେତେବେଳେ ଏପରି ଅବସ୍ଥାରେ ପହଞ୍ଚେ ଯେ ଧାରଣୀୟ ବସ୍ତୁ ସଙ୍ଗେ ଚିତ୍ତର ପ୍ରତ୍ୟୟର ଏକତାନତା ହୋଇଯାଏ ତେତେବେଳେ ତାହାକୁ ଧ୍ୟାନ ବୋଲାଯାଏ । ଯେତେବେଳେ ଧ୍ୟାନ ଏହି ଅବସ୍ଥା ପ୍ରାପ୍ତ ହୁଏ ଯେ, ଧ୍ୟାତା ଧ୍ୟେୟ ବିଷୟରେ ତନ୍ମୟ ହୋଇଯାଏ ଓ ଧ୍ୟାତାର ହୃଦୟରେ ଧ୍ୟେୟ ବିଷୟ ଛଡ଼ା ଜଗତରେ ଅନ୍ୟ କୌଣସି ବିଷୟର ପ୍ରତୀତି ଆଦୌ ସ୍ଥାନ ପାଏ ନାହିଁ ଓ ସେ ନିଜରସତ୍ତାକୁ ସୁଦ୍ଧା ଭୁଲିଯାଏ ତେତେବେଳେ ଏହି ଅବସ୍ଥାକୁ ସମାଧି ବୋଲାଯାଏ । ବୌଦ୍ଧ ଓ ଜୈନମାନଙ୍କ ମତରେ ଉତ୍ତମ ସଂହନନଯୁକ୍ତ ଚିତ୍ତର ଅବରୋଧର ନାମ ଧ୍ୟାନ ଅଟେ—
ହି. ଶବ୍ଦସାଗର । ].

୨ । ଭାବନା; ଚିନ୍ତନ; ଏକ ବିଷୟକ ଜ୍ଞାନଧାରା—
2. Reflection; thought.
୩ । ସ୍ମରଣ; ଖିଆଲ; ସ୍ମୃତି—
3. Recollection; remembrance.
୪ । ଏକ ବିଷୟରେ ଏକାଗ୍ର ଚିନ୍ତା—4 Wrapt attention to one subject; concentrated attention to one particular matter.
୫ । କୌଣସି ଦେବତାଙ୍କର ରୂପ ଚିନ୍ତା—
5. Meditation upon the image of a Deity

[ ଦ୍ର—କୌଣସି ଦେବତାଙ୍କ ମନ୍ତ୍ର ଜପ କରିବା ପୂର୍ବରୁ ସେ ଦେବତାଙ୍କର ରୂପ ଧ୍ୟାନ କରାଯାଏ । ଧ୍ୟାନ ଦ୍ୱାରା ଉକ୍ତ ଦେବତାଙ୍କ ରୂପ ମନଶ୍ଚକ୍ଷୁରେ ପ୍ରତିଭାତ ହେଲେ ତାଙ୍କ ମନ୍ତ୍ର ଜପ କରାଯାଏ । ଭିନ୍ନ ଭିନ୍ନ ଦେବତାଙ୍କର ଧ୍ୟାନ ଭିନ୍ନ ଭିନ୍ନ ଅଟେ । ]

୬ । ଅଭିନିବେଶ – 6 Attention

୭ । ଧାରଣା ବିଷୟରେ ଏକାଗ୍ରତା—
7. Concentration of thought on a certain matter.

୮ । ଅଦ୍ୱିତୀୟ ବ୍ରହ୍ମବସ୍ତୁରେ ଅନ୍ତଃକରଣର ବୃତ୍ତି ପ୍ରବାହ—
8 The flow of thought towards the Supreme or Essential Being of the universe; divine intuition or discernment; abstract contemplation.

୯ । ଶାସ୍ତ୍ରାଦିରେ ବର୍ଣ୍ଣିତ ଦେବତାଙ୍କର ଭିନ୍ନ ଭିନ୍ନ ଅଙ୍ଗର ଓ ଚିହ୍ନ ଅସ୍ତ୍ରଶସ୍ତ୍ରାଦିର ଓ ରୂପର ବର୍ଣ୍ଣନା—
9. Description of the particular form, limbs and weapons etc of a Deity as given in religious tracts.

୧୦ । କୌଣସି ଦେବତାଙ୍କର ବିଶିଷ୍ଟ ଗୁଣ ସମ୍ବନ୍ଧୀୟ କଳ୍ପନା—
10. Mental representation of the peculiar attributes of a Deity.

**ଧ୍ୟାନକ**—ଦେ. ବି. ( ସଂ. ଧ୍ୟାନ )—ଧ୍ୟାନ ( ଦେଖ )
Dhyānaka — Dhyāna ( See )

ଯମ ନିୟମ ଆସନ ପ୍ରାଣାୟାମ
ପ୍ରତ୍ୟାହାର ଧ୍ୟାନକ ଧାରଣ । ପ୍ରାଚୀ. ରହସ୍ୟମଞ୍ଜରୀ ।

**ଧ୍ୟାନ କରିବା**—ଦେ. କ୍ରି—୧ । କୌଣସି ବିଷୟ ସମ୍ବନ୍ଧେ ଏକାଗ୍ର ଚିନ୍ତା କରିବା—1. To meditate upon a matter.
Dhyāna karibā
ध्यान करना
ধ্যান করা

୨ । ଖିଆଲ କରିବା; ହେଜିବା; ସ୍ମରଣ କରିବା—
2. To recollect; to remember.

**ଧ୍ୟାନ ଗମ୍ୟ**—ସଂ. ବିଣ. ପୁଂ. ( ୩ୟା ତତ୍; ଧ୍ୟାନ+ଗମ୍ୟ )—
Dhyāna gamya — ଧ୍ୟାନ ଦ୍ୱାରା ପାଇବା ଯୋଗ୍ୟ; ଯାହା ଧ୍ୟାନ ଦ୍ୱାରା ଲାଭ କରାଯାଇ ପାରେ —
(ଧ୍ୟାନ ସାଧ୍ୟ—ଅନ୍ୟରୂପ)
(ଧ୍ୟାନଗମ୍ୟା—ସ୍ତ୍ରୀ) — Attainable by meditation only
(ଧ୍ୟାନଗମ୍ୟତା—ବି)

**ଧ୍ୟାନ ଧାରଣା**—ସଂ. ବି. ( ସହଚର, ଧ୍ୟାନ+ଧାରଣା )—
Dhyāna dhāraṇā — ୧ । ଏକାଗ୍ର ଚିନ୍ତା—
1. Deep meditation.

୨ । ( ମ. ପ. ଲୋ ) କଳ୍ପନାଦ୍ୱାରା ହୃଦ୍‌ଦର୍ପଣରେ ପ୍ରତିଫଳିତ ଭାବରାଜି—2. Mental impression resulting from imagination.

**ଧ୍ୟାନନିଷ୍ଠ**—ସଂ. ବିଣ. ପୁଂ. ( ବହୁବ୍ରୀହି; ଧ୍ୟାନ+ନିଷ୍ଠା )—
Dhyānanishṭha — ୧ । ଧ୍ୟାନରେ ଏକାଗ୍ର ଚିତ୍ତ—1 Given to meditation; contemplative.
(ଧ୍ୟାନନିଷ୍ଠା—ସ୍ତ୍ରୀ)
ଧ୍ୟାନ ତତ୍ପର, ଧ୍ୟାନ ପର, ଧ୍ୟାନ ନିରତ } ଅନ୍ୟରୂପ
ଧ୍ୟାନ ନିଷ୍ଠତା, ଧ୍ୟାନ ନିଷ୍ଠା } ବି.

୨ । ଧ୍ୟାନରେ ଯେ ଏକାନ୍ତ ଭାବରେ ବୁଡ଼ି ଯାଇଅଛି—2. Absorbed in meditation; lost in thought.

**ଧ୍ୟାନ ଭଗ୍ନ**—ସଂ. ବିଣ ପୁଂ. ( ବହୁବ୍ରୀହି; ଧ୍ୟାନ+ଭଗ୍ନ )—
Dhyāna bhagna — ଯାହାର ଧ୍ୟାନରେ ବ୍ୟାଘାତ ପଡ଼ିଅଛି—
(ଧ୍ୟାନଭଗ୍ନା—ସ୍ତ୍ରୀ) — Disturbed during one's meditation.

ध्यान भङ्ग — ଦେ. ବି (ସଂ. ଧ୍ୟାନ ଭଙ୍ଗ)—ଧ୍ୟାନ ଭଙ୍ଗ (ଦେଖ)
ধ্যান ভঙ্গ — Dhyāna-bhaṅga ( See )

**ଧ୍ୟାନ ଭଙ୍ଗ**—ସଂ. ବି. ( ୬ଷ୍ଠୀ ତତ୍; ଧ୍ୟାନ+ଭଙ୍ଗ )—
Dhyāna bhaṅga — ଧ୍ୟାନରେ ବ୍ୟାଘାତ—Disturbance of one's meditation; interruption of thought.

**ଧ୍ୟାନମଗ୍ନ**—ସଂ ବିଣ. ପୁଂ. ( ୭ମୀ ତତ୍; ଧ୍ୟାନ+ମଗ୍ନ )—
Dhyāna magna — ଧ୍ୟାନରେ ଏକାନ୍ତ ରତ; ଯେଉଁ ବ୍ୟକ୍ତିର ଚିତ୍ତ-ବୃତ୍ତି କୌଣସି ବିଷୟରେ ଏକାଗ୍ର ଭାବରେ ମଜ୍ଜି ଯାଇଅଛି—Lost or absorbed in meditation.
(ଧ୍ୟାନମଗ୍ନା—ସ୍ତ୍ରୀ)
(ଧ୍ୟାନମଗ୍ନତା—ବି)
(ଧ୍ୟାନରତ—ଅନ୍ୟରୂପ)

**ଧ୍ୟାନ ଯୋଗ**—ସଂ. ବି. ( ମ. ପ. ଲୋ; ଧ୍ୟାନ ପ୍ରଧାନ ଯୋଗ, ଧ୍ୟାନ+ଯୋଗ )—୧ । ଧ୍ୟାନଦ୍ୱାରା ଯୋଗସାଧନ ପ୍ରକ୍ରିୟା; ଯେଉଁ ଯୋଗରେ ଧ୍ୟାନହିଁ ପ୍ରଧାନ ଅଙ୍ଗ ଅଟେ—
Dhyāna joga
1. Profound meditation or absorption as the principal step of Joga exercise.

୨ । ତାନ୍ତ୍ରିକ କ୍ରିୟାବିଶେଷ, ଯହିଁରେ ମନରେ କୌଣସି ଅଦ୍ଭୁତ କଳ୍ପନା କରି ଶତ୍ରୁର ନାଶ କରାଯାଏ (ହି. ଶ.)—
2 A Tantric process for killing an enemy by meditating upon a certain imaginary form.

**ଧ୍ୟାନସ୍ଥ**—ସଂ. ବିଣ. ପୁଂ. (ଧ୍ୟାନ+ସ୍ଥା ଧାତୁ+କର୍ତ୍ତୃ. ଅ)—
Dhyānastha — ଧ୍ୟାନରେ ବୁଡ଼ି ଯାଇଥିବା; ଧ୍ୟାନମଗ୍ନ—
(ଧ୍ୟାନସ୍ଥା—ସ୍ତ୍ରୀ) — Absorbed in contemplation.

**ଧ୍ୟାନିକ**—ସଂ. ବିଣ. (ଧ୍ୟାନ+ଇକ)—୧ । ଧ୍ୟାନଗମ୍ୟ ( ଦେଖ )
Dhyānika — 1. Dhyānagamya ( See )

୨ । ଧ୍ୟାନ ଦ୍ୱାରା ପ୍ରାପ୍ତ—2. Obtained by contemplation.

**ଧ୍ୟାନିବୁଦ୍ଧ**—ସଂ. ବି. ( କର୍ମଧା; ଧ୍ୟାନିନ୍+ବୁଦ୍ଧ )—
Dhyānibuddha — ଧ୍ୟାନମଗ୍ନ ବୁଦ୍ଧଦେବଙ୍କ ମୂର୍ତ୍ତି—
The image of the Buddha in the pose of meditation.

[ ଦ୍ର—ଧ୍ୟାନିବୁଦ୍ଧଙ୍କର ଉନ୍ମୀଳିତଚକ୍ଷୁ, ପଦ୍ମାସନ, ଭୂତକରଣସ୍ପୃଷ୍ଟ ରୂପ କଳ୍ପିତ ହୁଏ । ]

ଧ୍ୟାନୀ—ସଂ. ଵଣ. (ଧ୍ୟାନ+ଅସ୍ତି ଅର୍ଥରେ ଇନ୍; ୧ମା ୧ବ)—
Dhyāni ୧ । ଧ୍ୟାନମଗ୍ନ—1 Engaged in contemplation.
(ଧ୍ୟାନିନୀ—ସ୍ତ୍ରୀ) ୨ । ସମାଧିସ୍ଥ—2 Forgetful of one's existence, being absorbed in contemplation.

ଧ୍ୟାନୀବୁଦ୍ଧ—ଦେ. ବି. (ସଂ. ଧ୍ୟାନିବୁଦ୍ଧ)—ପଦ୍ମାସନରେ ଉପବିଷ୍ଟ ଧ୍ୟାନମଗ୍ନ
Dhyānibuddha ବୁଦ୍ଧଦେବ-The image of the Buddha represented as sitting cross-legged; and engaged in deep contemplation, with the eyes shut.

ଧ୍ୟାମ—ସଂ. ବି. (ଧ୍ୟୈ ଧାତୁ+କର୍ମ ମ)—୧ । ଗନ୍ଧତୃଣ, ଧନକୀ,
Dhyāma ଗୋହୃସ ତୃଣ—1. Lemon grass
୨ । ଦଅଣା ଗୁଳ୍ମ (ଦେଖ) 2. Da-anā plant (See)
ସଂ. ଵଣ—୧ । କୃଷ୍ଣବର୍ଣ୍ଣ—1 Black.
୨ । ଅପରିଷ୍କୃତ; ମଳଅ - 2. Unclean; dirty (Apte).
୩ । କଳଙ୍କିତ—3. Soiled (Apte).

ଧ୍ୟାମା—ସଂ. ବି. (ଧ୍ୟୈ ଧାତୁ+କର୍ମ ମନ୍, ଧ୍ୟାମନ୍; ୧ମା. ୧ବ)—
Dhyāmā ୧ । ମାପ; ପରିମାଣ —1 Measure (Apte).
(ଧ୍ମା—ଅନ୍ୟରୂପ) ୨ । ଆଲୋକ—2. Light (Apte).
୩ । (+ଭାବ ମନ୍) ଧ୍ୟାନ—3. Meditation (Apte)

ଧ୍ୟାୟ—ଦେ. ବି. (ସଂ. ଧ୍ୟାନ)—ଧ୍ୟାନ; ଲୟ—
Dhyāya Meditation.
ସେ ସଙ୍ଗ୍ୟାସୀନ ଯୋଗ ଧ୍ୟାୟେ
ପରମହଂସ ଗାତ୍ରା ବାହ୍ୟ । ଜଗନ୍ନାଥ. ଭାଗବତ ।

ଧ୍ୟାୟିବା—ଦେ. କ୍ରି. (ସଂ. ଧ୍ୟୈ ଧାତୁ)—ଧ୍ୟାନ କରିବା—
Dhyāyibā To meditate.
ଧ୍ୟାୟିଲା ମାତାକୁ ଧ୍ୟାୟିଲ ଏକ ଚିତ୍ତ ମନେ । ଗୋପୀନାଥ. ଚନ୍ଦ୍ରକେଶ୍ୱରୀ ।
ध्यानकरना

ଧ୍ୟେୟ—ସଂ. ଵଣ. (ଧ୍ୟୈ ଧାତୁ+କର୍ମ ଯ)—
Dhyeya ୧ । ଧ୍ୟାନର ଯୋଗ୍ୟ; ଚିନ୍ତନୀୟ—
(ଧ୍ୟେୟା—ସ୍ତ୍ରୀ) 1. Fit for being meditated upon.
୨ । ସ୍ମରଣୀୟ—2 Thinkable; memorable.

ଧ୍ୟୈ (ଧାତୁ)—ସଂ—୧ । ଧ୍ୟାନ କରିବା—
Dhyai (root) 1. To meditate upon, to contemplate.
୨ । ଚିନ୍ତା କରିବା—2. To think of; to ponder over.
୩ । ସ୍ମରଣ କରିବା; ମନେକରିବା—
3. To call to mind; to recollect.
୪ । କଳ୍ପନା କରିବା—4. To imagine.

ଧ୍ରା (ଧାତୁ)—ସଂ—ଗତି କରିବା; ଯିବା—
Dhrā (root) To go; to move.
(ଧ୍ରାଙ୍କ୍, ଧ୍ରାଡ୍, ଧ୍ରାଖ୍—ଅନ୍ୟରୂପ)

ଧ୍ରାଂକ୍ଷ (ଧାତୁ)—ସଂ—୧ । କାଆ କାଆ ରାବିବା—
Dhrāmksh (root) 1. To caw; to crow.
୨ । ଇଚ୍ଛା କରିବା—2 To desire.

ଧ୍ରାକ୍ଷା—ସଂ. ବି—ଦ୍ରାକ୍ଷା (ହି. ଶବ୍ଦସାଗର) (ଦେଖ)
Dhrākshā Drākshā (See)

ଧ୍ରାଡ୍ (ଧାତୁ)—ସଂ—ବିଭକ୍ତ କରିବା; ଚିରିବା—
Dhrārd (root) To divide, to split.

ଧ୍ରାଡି—ସଂ ବି—ପୁଷ୍ପ ଚୟନ—
Dhrārdi Gathering of flowers (Apte).

ଧ୍ରିୟମାଣ—ସଂ ଵଣ. (ଧୃ ଧାତୁ+କର୍ମ ଆନ)—ଯାହା ଧରାଯାଉଅଛି—
Dhriyamāna That which is being held.
(ଧ୍ରିୟମାଣା—ସ୍ତ୍ରୀ)

ଧ୍ରୁ (ଧାତୁ)—ସଂ—୧ । ସ୍ଥିର ହେବା –
Dhru (root) 1 To be fixed; to be firm
୨ । ଗତି କରିବା; ଯିବା—2 To go; to move.
୩ । ସ୍ଥିର କରିବା; ନିଶ୍ଚିତରୂପେ ଜାଣିବା—
3 To ascertain; to know for certain.
୪ । ହତ୍ୟା କରିବା; ବଧ କରିବା -- 4. To kill.

ଧ୍ରୁପଦ—ଦେ ବି. (ସଂ ଧ୍ରୁବ ପଦ; ଧ୍ରୁବକ)—
Dhrupada ସଙ୍ଗୀତର ରାଗବିଶେଷ—A grave
ध्रुपद devotional style of Hindu music.
ध्रुपद [ ଦ୍ର—ଗାନର ବିଭାଗ ୩ ଗୋଟି; ଯଥା—ଧ୍ରୁପଦ, ଖେୟାଲ ଓ ଠୁଁଗ୍ରି । ଧ୍ରୁପଦର ୪ଟି ଅଙ୍ଗ; ଯଥା—ଅସ୍ଥାୟୀ, ଅନ୍ତରା, ସଞ୍ଚାରୀ ଓ ଆଭୋଗୀ । ଦେବଲୀଳା, ରାଜକୀର୍ତ୍ତି, ସଂଗ୍ରାମଆଦି ବର୍ଣ୍ଣନାରେ ଧ୍ରୁପଦ ଅବଲମ୍ବିତ ହୁଏ । ଏଥିରେ ସ୍ୱର-ବିସ୍ତୃତ ଦରକାର ହେଉଥିବାରୁ ଓ କୋମଳସ୍ୱରର ଆବଶ୍ୟକତା ନ ଥିବାରୁ ଗାୟିକାମାନେ ଏଥିରେ ବିଶେଷ ଦକ୍ଷତା ପ୍ରକାଶ କରି ପାରନ୍ତି ନାହିଁ । ଗାୟକମାନେହିଁ ଏଥିରେ ନିପୁଣ ହୋଇ ପାରନ୍ତି । ସଙ୍ଗୀତ ଦାମୋଦର ମତରେ ଧ୍ରୁପଦ ୧୬ ପ୍ରକାର । ]

ଧ୍ରୁପଦୀ—ଦେ. ବି ପୁଂ—'ଧ୍ରୁପଦ' ଗାଇବାରେ ଦକ୍ଷ ଗାୟକ—
Dhrupadi A singer who is an expert in singing
ध्रुपदी ध्रुपदिया Dhrupada.

ଧ୍ରୁବ—ସଂ. ବି (ଧ୍ରୁ ଧାତୁ=ସ୍ଥିର ହେବା+କର୍ତ୍ତୃ. ଅ)—
Dhruba ୧ । ନିଶ୍ଚଳ ତାରକାବିଶେଷ; ପୃଥିବୀର ଉତ୍ତର କେନ୍ଦ୍ରର ଠିକ୍ ଊର୍ଦ୍ଧ୍ୱରେ ଅବସ୍ଥିତ ସ୍ଥିର ତାରକା—
1 The pole star; the polaris.
[ ଦ୍ର—ଏହା ସର୍ବଦା ସ୍ଥିର । ଏହାକୁ ଦେଖି ଅକୂଳ ସମୁଦ୍ରରେ ଓ ମରୁଭୂମିରେ ନାବିକ ଓ ପଥିକମାନେ ସହଜରେ ଦିଗ ଓ ଗନ୍ତବ୍ୟ ପଥ ନିର୍ଣ୍ଣୟ କରନ୍ତି । ଉତ୍ତର ଓ ଦକ୍ଷିଣରେ ଏପରି ୨ଟି ସ୍ଥିର ତାରା ଅଛନ୍ତି । ସାଧାରଣତଃ ଆମ୍ଭେମାନେ ଉତ୍ତର ଧ୍ରୁବ ତାରା (ସୌମ୍ୟ ଧ୍ରୁବତାରା)କୁ ଦେଖୁଁ । ଦକ୍ଷିଣ ଧ୍ରୁବତାରା (ବା ଯାମ୍ୟ ଧ୍ରୁବତାରା) ଦକ୍ଷିଣ ଦିଗ୍‌ବଳୟ ତଳେ ଥିବାରୁ ଆମ୍ଭ ସ୍ଥାନକୁ ଦେଖାଯାଏ ନାହିଁ । ସାଧାରଣତଃ ଉତ୍ତରଧ୍ରୁବ ବା ସୌମ୍ୟ ଧ୍ରୁବକୁ ଧ୍ରୁବ ନକ୍ଷତ୍ର ବୋଲାଯାଏ । ('ନକ୍ଷତ୍ର' ଭଳେ ଟୀକାଟି ଦେଖ) । ]

୨ । ନିଶ୍ଚୟ—2 Certainty

୩ । (ଭୂଗୋଳ) ପୃଥିବୀର ଅକ୍ଷଦଣ୍ଡର ପ୍ରାନ୍ତଦ୍ୱୟ—
3. (geography) The two ends of the earth's axis, the poles of the earth.

[ଦ୍ର—ଉତ୍ତର ପ୍ରାନ୍ତକୁ ଉତ୍ତର ଧ୍ରୁବ ବା ସୌମ୍ୟ ଧ୍ରୁବ ଓ ଦକ୍ଷିଣ ପ୍ରାନ୍ତକୁ ଦକ୍ଷିଣ ଧ୍ରୁବ ବା ଯାମ୍ୟ ଧ୍ରୁବ ବୋଲଯାଏ ।

ପୃଥିବୀ ଲଟ୍ଟୁ ପରି ଆପଣା ଅକ୍ଷଦଣ୍ଡ ଉପରେ ଘୂରୁ ଘୂରୁ ବର୍ଷକେ ଥରେ ସୂର୍ଯ୍ୟଙ୍କୁ ପ୍ରଦକ୍ଷିଣ କରୁଅଛି । ଏହି ଅକ୍ଷଦଣ୍ଡ (axis)ର ଉତ୍ତର ମୁଣ୍ଡ ଉତ୍ତରଧ୍ରୁବ ବା ସୁମେରୁ ଓ ଦକ୍ଷିଣମୁଣ୍ଡ ଦକ୍ଷିଣଧ୍ରୁବ ବା କୁମେରୁ ଅଟେ । ଏହି ମେରୁ ଦ୍ୱୟରୁ ଯଥାକ୍ରମେ ଦକ୍ଷିଣକୁ ଓ ଉତ୍ତରକୁ ୨୩୩ ଡିଗ୍ରୀ ଛଡ଼ା ପେଉଁ ବୃତ୍ତ କଳ୍ପିତ ହୋଇଅଛି ତାହା ଯଥାକ୍ରମେ ଉତ୍ତର ଓ ଦକ୍ଷିଣ ଶୀତକଟିବନ୍ଧ ଅଟେ । ଧ୍ରୁବଦ୍ୱୟ ଓ ଉକ୍ତ କଟିବନ୍ଧଦ୍ୱୟର ମଧ୍ୟସ୍ଥ ଅଞ୍ଚଳଦ୍ୱୟ ଶୀତପ୍ରଧାନ ଅଟେ ଓ ସର୍ବଦା ବରଫରେ ଆବୃତ । ଧ୍ରୁବ ଦ୍ୱୟର ସନ୍ନିକଟସ୍ଥ ଅଞ୍ଚଳରେ ଦିନ ରାତି ସମାନ ହୁଏ ନାହିଁ । ସୂର୍ଯ୍ୟ ଉତ୍ତରାୟଣରେ ଥିବା ୬ ମାସ ଉତ୍ତର ଧ୍ରୁବ ଅଞ୍ଚଳରେ ବରାବର ଦିନ ହୁଏ ଓ ଦକ୍ଷିଣ ଧ୍ରୁବ ଅଞ୍ଚଳ ବରାବର ରାତି ହୁଏ । ସୂର୍ଯ୍ୟ ଦକ୍ଷିଣାୟନରେ ଥିବା ୬ ମାସ ଦକ୍ଷିଣଧ୍ରୁବ ଅଞ୍ଚଳରେ ୬ ମାସ ବରାବର ଦିନ ହୁଏ ଓ ଉତ୍ତର ଧ୍ରୁବ ଅଞ୍ଚଳରେ ୬ ମାସ ବରାବର ରାତି ହୁଏ । ସେ ଅଞ୍ଚଳରେ ଆମଆଡ଼ ପରି ସୂର୍ଯ୍ୟ ଓ ଚନ୍ଦ୍ର ପୂର୍ବରେ ଉଦୟ ହୋଇ ପଶ୍ଚିମରେ ଅସ୍ତ ହେବା ଦେଖାଯାଆନ୍ତି ନାହିଁ, କିନ୍ତୁ ଆକାଶରେ ଗୋଟିଏ ଦିଗରେ ଘଣା ବଳଦ ପରି ଘୂରୁ ଥିବାର ଦେଖା ଯାଆନ୍ତି । ଏହି ଧ୍ରୁବ ପ୍ରଦେଶ ଦ୍ୱୟରେ ଉଷାକାଳ ଓ ସନ୍ଧ୍ୟାକାଳର ରକ୍ତିମା ଦିନ୍‌ବଳୟରେ ୨୦ ଦିନ କାଳ ଘୂରିବା ପରି ଦେଖା ଯାଏ । ଧ୍ରୁବ ପ୍ରଦେଶରେ ଶୀତର ରାତି ଖୁବ ଉଜ୍ଜ୍ୱଳ ହୁଏ ଏହି ପ୍ରଦେଶମାନଙ୍କରେ ରାତି ହୋଇ ଥିବା ୬ ମାସ ମଧ୍ୟରେ ସମୟେ ସମୟେ ମେରୁଜ୍ୟୋତି (aurora) ନାମରେ ଗୋଟିଏ ନୈସର୍ଗିକ ନାନାବର୍ଣ୍ଣର ବିଚିତ୍ର ଜାଜ୍ୱଲ୍ୟମାନ ଆଲୋକବିଳାସ ଦେଖାଯାଏ । (ହି. ଶ.) ।]

୪ । ପୃଥିବୀର ଉତ୍ତର କେନ୍ଦ୍ର; ସୁମେରୁ (ଜ୍ଞାନେନ୍ଦ୍ର) —
4. The north pole of the earth.

୫ । ସ୍ଥାୟିତ୍ୱ—5. Permanence.

୬ । ବ୍ରହ୍ମା—6. Brahmā

୭ । ବସୁବିଶେଷ; ଅଷ୍ଟାବସୁ ମଧ୍ୟରୁ ଏକତମ—
7. Name of one of the 8 Basu Deities.

୮ । ବିଷ୍ଣୁ—8. Bishṇu.

୯ । ଶିବ—9. Siba.

୧୦ । ଖୁଣ୍ଟି; ଖୁଣ୍ଟା—10 A post; a peg; stake

୧୧ । ସ୍ଥାଣୁ ବା ଲଣ୍ଡା ଗଛ; ଲଣ୍ଡା ଗଛର ଗଣ୍ଡି—11. Stump of a tree; the trunk of a lopped off tree
ବକେ ।ସଥିଲ ଧ୍ରୁବ ଉପରେ । ଭକ୍ତ. ବୈଦେହୀଶବିଳାସ ।

୧୨ । (ଧ୍ରୁବଯୋଗରେ ଜନ୍ମଗ୍ରହଣ କରିଥିବାରୁ) ଉତ୍ତାନପାଦ ରାଜାଙ୍କର ପୁତ୍ର; ପରମବୈଷ୍ଣବ ଭକ୍ତବାଳକ ବିଶେଷ—
12. Name of the son of Raja Uttānapāda, who, while a boy, was wholly devoted to Bishṇu.

[ଦ୍ର—ସ୍ୱାୟମ୍ଭୁବ ମନୁଙ୍କର ପୁତ୍ର ଉତ୍ତାନପାଦ ରାଜା କନିଷ୍ଠା ପତ୍ନୀ ସୁରୁଚିଙ୍କ ପ୍ରେରଣାରେ ତାଙ୍କର ପ୍ରଥମା ରାଣୀ ସୁନୀତିଙ୍କୁ ବନକୁ ନିର୍ବାସିତ କଲେ । ସୁନୀତିଙ୍କର ବନବାସ ସମୟରେ ଦିନେ ରାଜା ମୃଗୟାକୁ ଯାଇଥିଲେ । ସେ ପଥଭ୍ରଷ୍ଟ ହୋଇ ସୁନୀତିଙ୍କ କୁଟୀରରେ ପହଞ୍ଚିଲେ; ରାଜା ସୁନୀତିଙ୍କୁ ଆପଣା ରାଣୀ ବୋଲି ସେତେବେଳେ ଚିହ୍ନି ପାରି ନ ଥିଲେ; କିନ୍ତୁ ସୁନୀତି ରାଜାଙ୍କୁ ନିଜର ସ୍ୱାମୀ ବୋଲି ଚିହ୍ନିଲେ ଓ ତାଙ୍କୁ ଆଶ୍ରୟ ଦେଇ ଖୁବ୍ ଆଦର ଓ ସତ୍କାର କଲେ । ରାଜା ସୁନୀତିଙ୍କ କୁଟୀରରେ ଏକ ରାତ୍ରି ରହିଲେ । ତତ୍ ଫଳରେ ସୁନୀତି ଗର୍ଭବତୀ ହୋଇ ଧ୍ରୁବଙ୍କୁ ଜନ୍ମ କଲେ । ରାଜା ପରଦିନ ରାଜଧାନୀକୁ ଫେରି ଆସିଲେ । ରାଜା ସୁନୀତିଙ୍କୁ ଭେଟିବା ସମୟରେ ତାଙ୍କୁ ଗୋଟିଏ ଅଭିଜ୍ଞାନ ବା ସଙ୍କେତ ଦେଇଥିଲେ; ସୁନୀତି ତାହା ଧ୍ରୁବଙ୍କ ହାତରେ ଦେଇ ତାହାଙ୍କୁ ପିତାଙ୍କ ନିକଟକୁ ପଠାଇଲେ । ରାଜା ଉକ୍ତ ସଙ୍କେତ ଦେଖି ଧ୍ରୁବଙ୍କୁ ଆପଣା ପୁତ୍ର ବୋଲି ଜାଣି କୋଳରେ ବସାଇଥିବା ସମୟରେ ବିମାତା ସୁରୁଚି ତାହା ଦେଖି ରାଜାଙ୍କୁ ତିରସ୍କାର କଲେ ଏବଂ ଧ୍ରୁବଙ୍କୁ ରାଜପୁରରୁ ତଡ଼ିଦେଲେ । ଧ୍ରୁବ ଲାଞ୍ଛନା ପାଇ ବନକୁ ଫେରି ଆସି ମାତା ସୁନୀତିଙ୍କୁ ଏ କଥା କହିବାରୁ ସେ ତାଙ୍କୁ ସାନ୍ତ୍ୱନା ଦେଇ କହିଲେ, "ଭଗବାନ୍ ଦୁଃଖୀର ଦୁଃଖ ଦୂର କରନ୍ତି ।" ବାଳକ ଧ୍ରୁବ ପଚାରିଲେ, "ଭଗବାନ୍ କାହାନ୍ତି ?" ମାତା କହିଲେ, "ସେ ସବୁଠାରେ ଅଛନ୍ତି । ତାଙ୍କୁ ଯେ ଡାକେ ସେ ତା ଦୁଃଖ ଦୂର କରନ୍ତି ଓ ତାକୁ ଦେଖା ଦଅନ୍ତି ।" ବାଳକ ଧ୍ରୁବ ମାତାଙ୍କଠାରୁ ଏହା ଶୁଣି ଅରଣ୍ୟକୁ ଯାଇ ଏକାନ୍ତଚିତ୍ତରେ ହରିଙ୍କୁ ଡାକିଲେ । ହରି ବାଳକର ଭକ୍ତିରେ ବିଗଳିତ ହୋଇ ତାଙ୍କୁ ଦେଖା ଦେଲେ । ବୈମାତ୍ରେୟ ଭ୍ରାତା 'ଉତ୍ତମ'ର ମୃତ୍ୟୁ ହେବାରୁ ଧ୍ରୁବ ରାଜା ହେଲେ । ଧ୍ରୁବ ଶିଶୁମାରଙ୍କ କନ୍ୟା ଭ୍ରମିଙ୍କୁ ବିବାହ କଲେ । ଭ୍ରମିଙ୍କ ଗର୍ଭରୁ କଳ୍ପ ଓ ବତ୍ସର ନାମରେ ଦୁଇ ପୁତ୍ର ଜାତ ହେଲେ । ଧ୍ରୁବଙ୍କର ଅନ୍ୟ ଏକ ରାଣୀ ଇଳାଙ୍କ ଗର୍ଭରୁ ଉତ୍କଳ ନାମକ ପୁତ୍ର ଜାତ ହେଲେ । ଧ୍ରୁବ ୩୬ ହଜାର ବର୍ଷ ରାଜ୍ୟ ଭୋଗ କରି ଦେହାନ୍ତେ ଧ୍ରୁବଲୋକ ପ୍ରାପ୍ତ ହେଲେ । ଉତ୍ତରଦିଗର ଆକାଶରେ ଦେଖା ଯାଉଥିବା ଧ୍ରୁବ ନକ୍ଷତ୍ରହିଁ ଏହି ଧ୍ରୁବ ବୋଲି ହିନ୍ଦୁମାନେ ବିଶ୍ୱାସ କରନ୍ତି ।]

୧୩ । ଲଲାଟସ୍ଥ ଆବର୍ତ୍ତିକବିଶେଷ—
13. A whorl of hair in the middle of the forehead.

୧୪ । ନାସାଗ୍ରଭାଗ (ଯାହାକୁ ଏକଦୃଷ୍ଟିରେ ଚାହିଁ ଯୋଗସାଧନ କରାଯାଏ) —14. The tip of one's nose.

୧୫ । ଗୀତର ଘୋଷା—
15. The refrain or burden of a song; chorus; the introductory portion of a song repeated at the end of every stanza.

୧୬ । (ଜ୍ୟୋତିଷ) ଗ୍ରହମାନଙ୍କ ଶୁଭଯୋଗବିଶେଷ—
16. (astrology) Name of an auspicious combination of planets.

[ ଦ୍ର—ଏ ଯୋଗରେ ଜନ୍ମିବା ବାଳକ ବିଦ୍ୱାନ୍, ଗୁଣବାନ୍, ବୁଦ୍ଧିମାନ୍ ଓ ଯଶସ୍ୱୀ ହୁଏ । ]

୧୭ । ଉତ୍ପ୍ରେକ୍ଷା—17. Simile; metaphor.

୧୮ । ଧ୍ରୁବଯଷ୍ଟି ;ପୃଥିବୀର ଦୁଇ ମେରୁ ଉପରେ ଥିବା ଖଗୋଳର ବିନ୍ଦୁଦ୍ୱୟ; ସୌମ୍ୟ ଧ୍ରୁବ ଓ ଯାମ୍ୟ ଧ୍ରୁବ—
18. Celestial poles

୧୯ । ( ଗଣିତ ଜ୍ୟୋତିଷ )—ମେରିବ ଦ୍ରାଘିମା; ନାକ୍ଷତ୍ରିକ ମଣ୍ଡଳର ଆରମ୍ଭଠାରୁ କୌଣସି ଗ୍ରହର ଦୂରତ୍ୱ—
19. (astronomy)The distance of a planet from the beginning of the sidereal zodiac; polar longitude (Apte)

୨୦ । ଉମ୍ବିରଗଛ—20 The fig tree (Apte)

୨୧ । ସମୟ; ଯୁଗ—
21. Time; epoch ( Apte ).

୨୨ । ଯଜ୍ଞପାତ୍ରବିଶେଷ—
22. A sacrificial vessel ( Apte ).

୨୩ । ବଟ ବୃକ୍ଷ ( ହି. ଶବ୍ଦସାଗର )—
23. Banian tree.

୨୪ । ଶରାର ପକ୍ଷୀ ( ହି. ଶବ୍ଦସାଗର )—
24. A teal ( bird )

୨୫ । ଶରୀରର ଭଉଁରି ( ହି. ଶବ୍ଦସାଗର )—
25. A whorl or volute of furs on the body.

[ଦ୍ର—ଶବ୍ଦାର୍ଥ ଚିନ୍ତାମଣି ଅଭିଧାନ ମତରେ ବକ୍ଷସ୍ଥଳ, ମସ୍ତକ, ରନ୍ଧ୍ର, ଉପରନ୍ଧ୍ର, କପାଳ ଓ ଅପାନ ଦେଶରେ ଥିବା ଭଉଁରିମାନଙ୍କୁ ଧ୍ରୁବ ବୋଲାଯାଏ । ହି. ଶବ୍ଦସାଗର ।]

୨୬ । (ଫଳିତ ଜ୍ୟୋତିଷ) ଉତ୍ତରଫାଲ୍‌ଗୁନୀ, ଉତ୍ତରାଷାଢ଼ା, ଉତ୍ତର ଭାଦ୍ରପଦ ଓ ରୋହିଣୀ ସମ୍ମିଳିତ ନକ୍ଷତ୍ରଗଣ (ହି. ଶ.)—2(. ( astrology ) A group consisting of the 12th, 21st 26th, and the 4th asterisms.

୨୭ । ନାକ ନାଲି ପଡ଼ି ଯିବା ଓ ଫୁଲିବା ରୋଗବିଶେଷ (ହି. ଶ)
27 A disease of the brow.

୨୮ । କୌଣସି ଦେବତାଙ୍କୁ ଅର୍ପିତ ନ ହୋଇ ସୋମରସର ଯେଉଁ ଭାଗ ସକାଳ ଠାରୁ ସନ୍ଧ୍ୟା ପର୍ଯ୍ୟନ୍ତ ରଖା ଯାଇ ଥାଏ (ହି. ଶ.)—28. A portion of the Soma-juice which is kept from morn till eve without being offered to any Deity.

୨୯ । ଆକାଶ (ହି. ଶ )—29. The sky.

୩୦ । ପର୍ବତ (ହି. ଶ.)—30. Mountain.

ଦେ. ବି. ପୁଂ.—ଲୋକଙ୍କ ନାମ—A name given to males.

(ଧ୍ରୁବଚରଣ, ଧ୍ରୁବପଦ—ଅନ୍ୟରୂପ) ସଂ. ବିଣ—୧ । ନିଶ୍ଚିତ;ସ୍ଥିର—
(ଧ୍ରୁବା—ସ୍ତ୍ରୀ) 1 Sure; certain.

(ଧ୍ରୁବତା, ଧ୍ରୁବତ୍ୱ—ବି) ୨ । ଅଟଳ; ଦୃଢ଼—2. Fixed; firm.

ଧ୍ରୁବ ଅସରେ ଉଚ୍ଚାରି ହୋଇ—ସ୍ଥାଚୀ. ପଦ୍ମଲେଖା ।

୩ । ନିତ୍ୟ; ଶାଶ୍ୱତ—3. Permanent; eternal.

୪ । ଅକ୍ଷୟ—2 Indestructible.

**ଧ୍ରୁବକ**—ସଂ. ବି. ( ଧ୍ରୁବ+କ )—୧ । ଗୀତର ଘୋଷା—
Dhrubaka 1. Chorus or burden of a song

୨ । ସ୍ଥାଣୁ; ଲଣ୍ଡାଗଛ—
2 Stump of a tree

୩ । ( ଜ୍ୟୋତିଷ ପରିଭାଷା ) ତାରା ଓ ଗ୍ରହାଦିଙ୍କର ଅବସ୍ଥିତି-ସୂଚକ ଦୂରତ୍ୱ ପରିମାଣ; ନକ୍ଷତ୍ରର ଦୂରତ୍ୱ—
3 (astronomy) Celestial latitude; sidereal distance.

**ଧ୍ରୁବକା**—ସଂ. ବି—ଧ୍ରୁପଦ; ଗୀତର ଘୋଷା—
Dhrubakā The retrain of a song.

**ଧ୍ରୁବ ଗଣ**—ସଂ. ବି. ( ଫଳିତ ଜ୍ୟୋତିଷ )—ଉତ୍ତରଫାଲ୍‌ଗୁନୀ, ଉତ୍ତରାଷାଢ଼ା, ଉତ୍ତରଭାଦ୍ରପଦ ଓ ରୋହିଣୀ ନକ୍ଷତ୍ର ଚତୁଷ୍ଟୟ—( Hindu astrology ) A group of 4 of the lunar constellations ( fixed stars ); the group consisting of the 12th, 21st, 26th and the 4th asterisms.
Dhruba gaṇa

**ଧ୍ରୁବତା**—ସଂ. ବି. ( ଧ୍ରୁବ+ଭାବାର୍ଥରେ ତା )—୧ । ସ୍ଥିରତା; ନିଶ୍ଚୟ—
Dhrubatā 1 Certainty

( ଧ୍ରୁବତ୍ୱ—ଅନ୍ୟରୂପ ) ୨ । ନିତ୍ୟତା—2, Permanence.

୩ । ଅକ୍ଷୟତା – 3. Indestructibility.

୪ । ଦୃଢ଼ତା—4 Steadiness; firmness.

**ଧ୍ରୁବ ତାରା**—ସଂ. ବି—ଉତ୍ତର କେନ୍ଦ୍ରସ୍ଥ ଅବିଚଳିତ ତାରା—
Dhruba tārā The pole star.

ଧ୍ରୁବନକ୍ଷତ୍ର }
ଧ୍ରୁବତାରକ } ଅନ୍ୟରୂପ
ଧ୍ରୁବତାରକା }

[ ଦ୍ର—ଧ୍ରୁବତାରା ୨ଟି । ଏ ତାରା ଦୁଇଟି ସ୍ଥିର ଅର୍ଥାତ୍ ଘୂରନ୍ତି ନାହିଁ । ଆକାଶର ଅନ୍ୟ ତାରାଗୁଡ଼ିକ ପୂର୍ବରେ ଉଦିତ ହୋଇ ପଶ୍ଚିମରେ ଅସ୍ତ ହୁଅନ୍ତି । ଉକ୍ତ ତାରା ଦୁଇଟି ମଧ୍ୟରୁ ଗୋଟିଏ ପୃଥିବୀର ଉତ୍ତର ମେରୁର ଊର୍ଦ୍ଧ୍ୱରେ ଅବସ୍ଥିତ । ତାକୁ ସୌମ୍ୟ ଧ୍ରୁବତାରା ବୋଲାଯାଏ । ଦକ୍ଷିଣ ମେରୁ ଉପରେ ଅବସ୍ଥିତ ଅନ୍ୟଟି ଯାମ୍ୟ ଧ୍ରୁବତାରା । ଶୂନ୍ୟମଣ୍ଡଳରେ ପୃଥିବୀର ତିର୍ଯ୍ୟକ୍ ଅବସ୍ଥିତି ଯୋଗୁଁ ଆମ୍ଭେମାନେ ଉତ୍ତର ଦିଗରେ ଦିଗ୍‌ବଳୟର କିଛି ଊର୍ଦ୍ଧ୍ୱରେ ଉତ୍ତର ଧ୍ରୁବତାରାକୁ ଦେଖିପାରୁଁ; ମାତ୍ର ଦକ୍ଷିଣ ଧ୍ରୁବତାରା ଦେଖାଯାଏ ନାହିଁ । ସପ୍ତର୍ଷିମଣ୍ଡଳର ମୁଣ୍ଡରେ ଥିବା ଦୁଇ ନକ୍ଷତ୍ରକୁ ଯୋଗ କରି ସେ ରେଖାକୁ ବଢ଼ାଇଲେ ବର୍ଦ୍ଧିତ ରେଖା ଧ୍ରୁବନକ୍ଷତ୍ରର ପାର୍ଶ୍ୱ ଦେଇ ଯାଏ । ଶିଶୁମାର ମଣ୍ଡଳର ଲାଞ୍ଜତାରା ଧ୍ରୁବତାରା ଅଟେ । ଉକ୍ତ ଉତ୍ତର ଧ୍ରୁବତାରାର ସ୍ଥାନପରିବର୍ତ୍ତନ ହୁଏ ନାହିଁ, ଏଣୁ ନାବିକମାନେ ଏହାକୁ ଦେଖି ରାତିରେ ଦିଙ୍ନିର୍ଣ୍ଣୟ କରନ୍ତି । ଏହା ଭକ୍ତ ଧ୍ରୁବଙ୍କ ଅଧିଷ୍ଠିତ ଧ୍ରୁବଲୋକରେ ଅବସ୍ଥିତ ବୋଲି ଲୋକଙ୍କର ବିଶ୍ୱାସ—ନକ୍ଷତ୍ର ତଳେ ନୋଟ୍ ଦେଖ । ]

**ଧ୍ରୁବ ଦର୍ଶକ**—ସଂ ବି—୧ । ସପ୍ତର୍ଷିମଣ୍ଡଳ—1. The constellation of the Ursa Major; the Great Bear
Dhruba darśaka

[ ଦ୍ର—ଏହି ମଣ୍ଡଳର ମୁଣ୍ଡରେ ଥିବା ଦୁଇ ତାରାର ସଂଯୋଜକ ରେଖାକୁ ବଢାଇଲେ ତାହା ଧ୍ରୁବତାରା ପାଖ ଦେଇ ଯାଏ । ]

୨ । ଜାହାଜୀମାନଙ୍କର ଦିଗ୍‌ବାରଣ ଯନ୍ତ୍ର—
2. The mariner's compass.

**ଧ୍ରୁବ ଦର୍ଶନ**—ସଂ ବି. ( ୬ଷ୍ଠୀ ତତ୍, ଧ୍ରୁବ+ଦର୍ଶନ )—ହିନ୍ଦୁମାନଙ୍କ
Dhruba darśana ବିବାହର କର୍ମକାଣ୍ଡ ଅନ୍ତର୍ଗତ ଏକ କର୍ମ, ଯହିଁରେ ମନ୍ତ୍ରପାଠପୂର୍ବକ ବର କନ୍ୟା ଦୁହେଁ ଧ୍ରୁବତାରାକୁ ଦର୍ଶନ କରନ୍ତି—A ritual in the course of the marriage rites amongst the Hindus, consisting of the bride and the bridegroom having a look at the pole star while reciting some vedic formulas.

[ ଦ୍ର—ଏଥିର ଉଦ୍ଦେଶ୍ୟ ଏହି ଯେ ଦମ୍ପତିଙ୍କର ପ୍ରେମ ଧ୍ରୁବତାରା ପରି ଅଟଳ ରହିବ । ]

**ଧ୍ରୁବ ଧେନୁ**—ସଂ.ବି. ( କର୍ମଧା, ଧ୍ରୁବା+ଧେନୁ )—ସୁଧାର ଗାଈ, ଯେଉଁ
Dhruba dhenu ଗାଈ ଦୁଧ ଦୁହିଁବା ବେଳେ ବେଳେ ସ୍ଥିରଭାବରେ ଠିଆ ହୋଇ ରହେ ( ହି. ଶବ୍ଦସାଗର )—
A cow which stands still while being milked.

**ଧ୍ରୁବ ପଦ**—ସଂ. ବି—୧ । ଧ୍ରୁପଦ ( ଦେଖ )
Dhruba pada 1. Dhrupada ( See )
୨ । ଧ୍ରୁବଲୋକ; ସ୍ୱର୍ଗଧାମ—2. The heaven; the seat of Dhruba in heaven.

ଅତ କଠୋର ତପ କଲ; ତାକୁ ଯେ ଧ୍ରୁବପଦ ଦେଲ—
ଜଗନ୍ନାଥ. ଭାଗବତ ।

୩ । ଆକାଶ—3. The sky.

ଦେ. ବି. ପୁଂ—ଲୋକଙ୍କୁ ଡାକିବା ନାମ—
A name given to males.

**ଧ୍ରୁବ ପ୍ରହ୍ଲାଦ**—ସଂ. ବି. ( ଦ୍ୱନ୍ଦ୍ୱ, ଧ୍ରୁବ+ପ୍ରହ୍ଲାଦ )—ପୁରାଣପ୍ରସିଦ୍ଧ
Dhruba prahlāda ବିଷ୍ଣୁଭକ୍ତ ବାଳକଦ୍ୱୟ; ଉତ୍ତାନପାଦ ରାଜାଙ୍କ ପୁତ୍ର ଧ୍ରୁବ ଓ ହିରଣ୍ୟକଶିପୁ ଅସୁରର ପୁତ୍ର ପ୍ରହ୍ଲାଦ—
Name of two boys devoted to Bishṇu as described in the Purāṇas

**ଧ୍ରୁବ ପ୍ରତିଜ୍ଞା**—ସଂ. ବି. ( କର୍ମଧା; ଧ୍ରୁବା+ପ୍ରତିଜ୍ଞା )—ଅଟଳ ପ୍ରତିଜ୍ଞା
Dhruba pratijnā ବା ଦୃଢ଼ଶପଥ—
Inviolable promise.

**ଧ୍ରୁବ ବିଶ୍ୱାସ**—ସଂ. ବି ( କର୍ମଧା; ଧ୍ରୁବ+ବିଶ୍ୱାସ )—ଅଟଳ ବିଶ୍ୱାସ—
Dhruba biswāsa Firm belief; conviction.

**ଧ୍ରୁବ ମଣ୍ଡଳ**—ସଂ. ବି. ( ଜ୍ୟୋତିଷ )—ଉତ୍ତର ଦିଗରେ ଧ୍ରୁବତାରାକୁ
Dhruba maṇḍala ଲାଗି ରହିଥିବା ୭ ଗୋଟି ତାରାଯୁକ୍ତ (ଧ୍ରୁବପୁଞ୍ଜ—ଅନ୍ୟନାମ) ଶିଶୁମାର ମଣ୍ଡଳ—
The Lesser Bear constellation.

**ଧ୍ରୁବ ମତ୍ସ୍ୟ**—ସଂ. ବି. ( ଜ୍ୟୋତିଷ )—୧ । ଧ୍ରୁବମଣ୍ଡଳ ( ଦେଖ )
Dhruba matsya 1. Dhrubamaṇḍala (See)
୨ । ଧ୍ରୁବମଣ୍ଡଳ ଏବଂ ଧ୍ରୁବମଣ୍ଡଳର ଲଞ୍ଜତାରା ଓ ସପ୍ତର୍ଷିମଣ୍ଡଳ ମଧ୍ୟରେ ଥିବା ଗୋଟିଏ ତାରା, ଏପରି ୮ ଗୋଟି ତାରାଯୁକ୍ତ ମତ୍ସ୍ୟାକୃତି ତାରକାପୁଞ୍ଜ (ନକ୍ଷତ୍ରତଳେ ଚୋଡ଼ି ଦେଖ)—
2 A constellation consisting of the Lesser Bear and Corcoroli.
୩ । ଦିଗବାରଣ ଯନ୍ତ୍ର ( ହି. ଶବ୍ଦସାଗର )—
3 The mariner's compass.

**ଧ୍ରୁବ ଯଷ୍ଟି**—ଦେ. ବି ( ଜ୍ୟୋତିଷପରିଭାଷା )—ପୃଥିବୀର ମେରୁଦଣ୍ଡ—
Dhruba jashṭi The axis of the poles ( M W ).

**ଧ୍ରୁବ ରେଖା**—ସଂ. ବି (ଭୂଗୋଳପରିଭାଷା)—ବିଷୁବ ରେଖା (କ୍ଷାନେକ୍ତ)—
Dhruba rekhā The equator.

**ଧ୍ରୁବ ଲୋକ**—ସଂ ବି—୧ । ବିଷ୍ଣୁ ଭକ୍ତ ଧ୍ରୁବଙ୍କ ପାଇଁ ନିର୍ମାଣ କରିଥିବା
Dhruba loka ବିଷ୍ଣୁଲୋକର ଉପରସ୍ଥ ସତ୍ୟଲୋକାନ୍ତର୍ଗତ ସ୍ୱର୍ଗଧାମ—
1 The heaven assigned to Dhruba by Bishṇu for his devotion
୨ । ସ୍ୱର୍ଗଧାମ; ସତ୍ୟଧାମ, ବୈକୁଣ୍ଠ—
2. The heaven, the abode of Bishṇu.

ଧ୍ରୁବଲୋକ ଦେ ବି ୧ । ବହୁଦୂରସ୍ଥ ଦେଶ—
ଧ୍ରୁବଲୋକ 1 Any distant place.
( ଯଥା—ଏ ସାମାନ୍ୟ କଥାପୂରା ଧ୍ରୁବଲୋକ ପର୍ଯ୍ୟନ୍ତ ଗଲାଣି । )
୨ । ଉଚ୍ଚପଦସ୍ଥ ବ୍ୟକ୍ତିମାନେ, କର୍ତ୍ତୃପକ୍ଷ —
2 Highest authorities.
( ଯଥା—ଏ ମକଦ୍ଦମାଟା ଧ୍ରୁବଲୋକ ପର୍ଯ୍ୟନ୍ତ ନ ଉଠିବାଯାକେ ମୁଁ ଛାଡ଼ିବି ନାହିଁ । )

**ଧ୍ରୁବ ସତ୍ୟ**—ସଂ. ବି. ( କର୍ମଧା, ଧ୍ରୁବ+ସତ୍ୟ )—୧ । ଚିରସତ୍ୟ;
Dhruba satya ଯାହା କେବେ ହେଲେ ମିଛ ହୋଇ ନ ପାରେ—
1 Universal truth; eternal truth.
୨ । ଅଟଳ ପ୍ରତିଜ୍ଞା—
2 Inviolable promise.
ସଂ. ବିଣ ଯାହା ସର୍ବଦା ସତ୍ୟ—Eternally true.

**ଧ୍ରୁବା**—ସଂ. ବି. ସ୍ତ୍ରୀ (ଧ୍ରୁବ+ସ୍ତ୍ରୀ. ଆ)—୧ । ବଟପତ୍ରାକୃତି ହୋମପାତ୍ର;
Dhrubā ସ୍ରୁଚ—1. A shallow spoon of wood used in vedic sacrifice, a sacrificial ladle.
୨ । ପଦ; ଘୋଷା—2 The refrain or burden of a song; chorus.
୩ । ମତ—3. Policy; principle
୪ । ସାଧ୍ୱୀ ସ୍ତ୍ରୀ—4. A chaste or devoted wife.
୫ । ଦୂବା; ମୁରୁଗା ଗଛ—5. A kind of tenacious grass.
୬ । ଧ୍ରୁବ ଧେନୁ (ଦେଖ)—
6. Dhruba dhenu (Apte). (See)
ସଂ. ବିଣ. ସ୍ତ୍ରୀ (ଧ୍ରୁବ+ସ୍ତ୍ରୀ. ଆ)—ଧ୍ରୁବର ସ୍ତ୍ରୀଲିଙ୍ଗ—
Feminine of Dhruba.
ଦେ. ବି—'ଧ୍ରୁବ'ର ଡାକ ନାମ—Name for calling Dhruba.

| ୧ | ଇ | ଉ | ଋ,ଋ | ୮ | ୍ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | କ୍ଷ | ଇସ୍ | ଉଅ | ଓ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ନ୍ | ଙ୍ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଖ୍ୟ | ଇଅ | ଔ | ନ |

**ଧ୍ରୁବାବର୍ତ୍ତ**—ସଂ. ବି. (କର୍ମଧା, ଧ୍ରୁବ+ଆବର୍ତ୍ତ)—୧ । ଅଶ୍ୱର ଲୋମ-
Dhrubābartta ସ୍ଥାନବିଶେଷ; ଘୋଡ଼ା ଦେହରେ ଥିବା ଏକ ପ୍ରକାର ଲୋମର ଭଉଁରୀ—1. A kind of whorl found on the body of a horse

୨ । କପାଳର ଯେଉଁ ବିନ୍ଦୁରୁ ମୁଣ୍ଡର କେଶ ବାମ ଓ ଦକ୍ଷିଣ ପାଖକୁ ବାଗେଇଥାଏ—The point on the crown of the head from which the hair radiate (Apte).

**ଧ୍ରୈ** (ଧାତୁ)—ସଂ—ସନ୍ତୁଷ୍ଟ ହେବା—
Dhrai (root) To be pleased or satisfied

**ଧ୍ରୌବ୍ୟ**—ସଂ. ବି.—(ଧ୍ରୁବ+ଭାବାର୍ଥେ ଯ)—୧ । ସ୍ଥିରତା, ଅଟଳତା—
Dhraubya 1. Fixedness; stability; firmness.

୨ । ନିଶ୍ଚୟ—2. Certainty

୩ । ବ୍ୟାପିବା କାଳ—3 Duration.

---

# ନ

**ନ୍**—ପ୍ରାଦେ. (ସମ୍ବଲପୁର)—ବିଭକ୍ତ୍ୟନ୍ତ ଚିହ୍ନ [ଓଡ଼ିଆ ଅତୀତ ଓ ବର୍ତ୍ତମାନ
N କାଳ, ମଧ୍ୟମପୁରୁଷ ମାନ୍ୟାର୍ଥକ ଏକବଚନ (ଆପଣ) ଓ ବହୁବଚନ (ଆପଣମାନେ) ଏବଂ ତୃତୀୟ ପୁରୁଷ ମାନ୍ୟାର୍ଥକ ୧ ବଚନ (ସେ) ଓ ବହୁବଚନ (ସେମାନେ) ସଙ୍ଗେ ବ୍ୟବହୃତ]—ନ୍ତି, ଣି (ଯଥା—କରନ୍ତି; କଲେଣି) ପରବର୍ତ୍ତିରେ ବ୍ୟବହୃତ ଅକ୍ଷର—
An inflectional ending of verbs.
(ଯଥା—ମଲେନ୍=ମଲେଣି; ଯାଉଛନ୍=ଯାଉଛନ୍ତି ।)

**ନ**—ବ୍ୟଞ୍ଜନବର୍ଣ୍ଣର ବିଂଶ ବର୍ଣ୍ଣ; 'ତ' ବର୍ଗର ୫ମ ବର୍ଣ୍ଣ (ଏହାର ଉଚ୍ଚାରଣ
Na ସ୍ଥାନ ଦନ୍ତ । ଏହା ଅନୁନାସିକ ଓ ଦନ୍ତ୍ୟ ବର୍ଣ୍ଣ)—The 20th consonant corresponding to 'n'.

ସଂ. ବି.—୧ । ବୌଦ୍ଧ—1. A Buddhist.

୨ । ଗଣେଶ—2. Ganesa.

୩ । ବନ୍ଧନ—3. Binding; bond.

୪ । ଦାନ—4. Gift.

୫ । ରଣ—5. Battle.

ସଂ. ଅ. (ଣା ଧାତୁ=ଯାଇବା+କର୍ତ୍ତୃ. ଅ)—ନୁହେଁ; ନାହିଁ—
Not; no.

[ ବିଶେଷ—ଏହା ସ୍ୱରାଦ୍ୟ ଶବ୍ଦ ପୂର୍ବରେ ସମାସରେ ଯୁକ୍ତ ହେଲେ 'ଅନ୍' ( ଯଥା—ଅନନ୍ତ, ଅନାଦି, ଅନାବଶ୍ୟକ) ଏବଂ ବ୍ୟଞ୍ଜନବର୍ଣ୍ଣ ପୂର୍ବରେ ଯୁକ୍ତ ହେଲେ 'ଅ' ହୁଏ (ଯଥା—ଅଜ୍ଞ, ଅବଧ୍ୟ; ଅମର, ଅଶାନ୍ତ ) । ଏହା ପ୍ରଭେଦ, ସାଦୃଶ୍ୟ, ଅଭାବ, ନିଷେଧ, ବୈପରୀତ୍ୟ ଓ ଅଳ୍ପାର୍ଥକତା ଅର୍ଥବୋଧକ । ଭାଷାରେ ଏହା ଅନ୍ୟଶବ୍ଦ ପୂର୍ବେ ସମାସରେ ଯୁକ୍ତ ହେଲେ ଏହାର ଆକାର 'ଅଣ' ହୁଏ; ଯଥା—ଅଣ ବାଗୁଆ, ଅଣପାଠୁଆ, ଅଣଉଦିଆ । କ୍ରିୟା ଏବଂ କ୍ରିୟାବାଚକ ବିଶେଷ୍ୟ ଓ ବିଶେଷଣ ପୂର୍ବେ 'ନ' ରହିଲେ ନଞର୍ଥ ବୁଝାଏ; ଯଥା—ନ ଯିବ, ନ ଖାଇଲା, ନ ଥଇଲା । 'ନ' ମାତ୍ରାରୂପେ ଅନ୍ୟ ବର୍ଣ୍ଣତଳେ ଯୁକ୍ତ ହେଲେ ଉକ୍ତ ବର୍ଣ୍ଣର ତଳେ 'ନ' ଚିହ୍ନ ସ୍ୱରୂପ ରହେ ।]

ଦେ. ବି ଓ ବିଣ (ସଂ)—ନଅ (ଦେଖ)—Na-a (See)

ନ ବରଷରୁ ଊଣା କାହ୍ନୁରେ ଅଛ ଜଣା—କବିସୂର୍ଯ୍ୟ. ଚଣୋପସତଃଗୁ ନ ଗୀତ ।

ଦେଶୀ ଦେ. ବି ୧ । (କଚରିଆ ସାଙ୍କେତିକ)—'ନବସିନ୍ଧା'ର ସଂକ୍ଷିପ୍ତ ଆକାର—1 The abbreviation for Nabisindhā.

୨ । (ଇଂ. 'ନମ୍ବର'ର ସାଙ୍କେତିକ)—ଇଂରେଜ 'ନମ୍ବର'ର
ନଂ ନ ସଂକ୍ଷିପ୍ତ ଆକାର—'No'; abbreviation for Number.
(ଯଥା—ନ୩=ନମ୍ବର ୩=ତୃତୀୟ ସ୍ଥାନୀୟ ।)

[ ଦ୍ର—କଥାବାର୍ତ୍ତାରେ ଲୋକେ 'ଲ' ସ୍ଥାନରେ 'ନ' ଓ 'ନ' ସ୍ଥାନରେ 'ଲ' ଉଚ୍ଚାରଣ କରନ୍ତି ଯଥା—ଲଗୀ ସ୍ଥାନରେ ନଗୀ; ଲାହି ସ୍ଥାନରେ ନାହି; ଲାଭ=ନାଭ; ଲଇ=ନଇ; ଲଟା=ନଟା, ଲଟ=ନଟ; ଲକେଇ=ନକେଇ; ଏବଂ ନବେ ସ୍ଥାନରେ ଲବେ, ନେମ୍ବୁ ସ୍ଥାନରେ ଲେମ୍ବୁ; ନିମ୍ବ=ଲିମ୍ବ, ଲୁଣ=ନୁଣ । କଟକସହରଆମାନେ 'ନ' ଯାଗାରେ କଥାରେ 'ଲ' ବ୍ୟବହାର କରିଥାଆନ୍ତି; ଯଥା—ନଉଡ଼ିଆ ସ୍ଥାନରେ ଲଉଡ଼ିଆ; ନେବା=ଲେବା; ନାହା=ଲାହା; ମହାନଦୀ=ମହାଲଦୀ । ]

**ନଂ**—ଦେ. ବି (ବଙ୍ଗଳାରୁ ଅନୁକୃତ, ସଂଖ୍ୟା ପୂର୍ବେ ଲାଗେ ଯଥା ନଂ ୩)
Nam ନମ୍ବରର ସାଙ୍କେତିକ ଚିହ୍ନ—Abbreviation for Number.

**ନଂକମାରିଚ**—ଗ୍ରା. ବି—ଲଙ୍କାମରିଚ (ଦେଖ)
Namkamāricha Lankāmaricha (See)

**ନଂଗଳ** (ଇତ୍ୟାଦି)—ଗ୍ରା. ବି—ଲଙ୍ଗଳ ଇତ୍ୟାଦି (ଦେଖ)
Namgala (etc) Langala etc ( See )

**ନଂଗଳା** (ଇତ୍ୟାଦି)—ଗ୍ରା. ବିଣ—ନଙ୍ଗଳା ଇତ୍ୟାଦି (ଦେଖ)
Namgalā (etc) Nangalā etc ( See )

**ନଂଗା**(ଘା)—ଦେ. ବିଣ—୧ । ନଙ୍ଗା ( ଦେଖ )
Namgā(ghā) Nangā ( See )

ଦେ. ବି—ନଙ୍ଘା ( ଦେଖ )—Nanghā ( See )

**ନଂଘିବା**—ଗ୍ରା. କ୍ରିଣ—ଲଂଘିବା ( ଦେଖ )
Namghibā Lamghibā ( See )

**ନଅ**—ଦେ.ବି—୧ । (ସଂଖ୍ୟାବାଚକ) (ସଂ.ନବ)—ଅଠର ବିଂଶତି ସଂଖ୍ୟା;
Na-a ୯; ନବ—1. Nine; 9.

ନୟ ୨ । (ସଂ. ଲତା); ଶୁଭବାଚନ—ଲମ୍ବା ଜନ୍ତୁ; ସାପ—
नौ 2. (euphhemism) Serpent.

ବିଣ—ନବ ସଂଖ୍ୟକ—Numbering nine.

**ନଅ ଉତ୍ତର ଶହେ**—ଦେ. ବି ଓ ବିଣ (ସଂଖ୍ୟାବାଚକ) (ସଂ. ନବୋତ୍ତର-
Na-a uttara sahe ଶତ)—ଏକଶହ ନଅ; ୧୦୯—
नौधह, एकशहन One hundred and nine.

ସାଧାରଣ ଲୋକେ ଅପର ପୃଷ୍ଠାରେ ଧୃତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । 'ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଅଭିଧାନରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଉକ୍ତିର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— ଗାଢ଼' ନ ମିଳିଲେ 'ଗାଢ' ଖୋଜିବେ, କୁଅ ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ, ଅର୍ଘ୍ୟ ନ ପାଇଲେ 'ଅର୍ଘ୍ୟ' ଦେଖିବେ; 'ଅଲବତ୍' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

**ନଅକ**—ଦେ. ବିଣ—'୯' ସଂଖ୍ୟା ସମ୍ବନ୍ଧୀୟ (ପଣିକିଆ)—
Na-aka (multiplication table) Pertaining to '9'.
नअका

**ନଅକା**—ଦେ. ବିଣ (ସଂ. ନମ୍ର)—ଲହକା (ଦେଖ)
Na-akā Lahakā (See)

**ନଅକିବା**—ଦେ. କ୍ରି (ସଂ. ନମ ଧାତୁ)—ଲହକିବା (ଦେଖ)
Na-akibā Lahakibā (See)
[ନଅକା(କେ)ଇବା—ଣିଜନ୍ତରୂପ]

**ନଅଏକେ**—ଦେ. କ୍ରି. ବିଣ—ନଅ ଏକ ଦ୍ୱାରା ଗୁଣିତ ହେଲେ—
Na-ake Nine multiplied by one
नयेएक ନଅଏକେ ନଅ ପଣ—ପଣିକିଆ ।
नअके

**ନଅଖାଇ ପଣା**—ପ୍ରାଦେ. (ଯାଜପୁର) ବି—ନବମ ଦିନରେ; କୌଣସି
Na-akhāi paṇā ବ୍ୟକ୍ତିର ମୃତ୍ୟୁର ନବମ ଦିବସରେ ଜ୍ଞାତି-କୁଟୁମ୍ବମାନଙ୍କୁ ଦିଆଯିବା ଜଳଖିଆ ସାମଗ୍ରୀ—Tiffin with which the kinsmen and relatives of a deceased person are fed on the 9th day during the obsequies

**ନଅଙ୍କ**—ଦେ. ବି (ସଂ ନବାଙ୍କ)—୧ । ପୁରୀର ରାଜା ଦିବ୍ୟସିଂହ
Na-aṅka ଦେବଙ୍କ ରାଜତ୍ୱର ୯ମ ଅଙ୍କ—
षोलह साल 1. The 9th Aṅka of the reign of late Raja Dibyasiṁha Deba of Puri
୨ । ଖ୍ରୀଷ୍ଟାବ୍ଦ ୧୮୬୬।୬୭ ସାଲରେ ଓଡ଼ିଶାରେ ପଡ଼ିଥିବା ଭୟାନକ ଦୁର୍ଭିକ୍ଷ—2. The great famine of Orissa during the year 1866—67.
[ଦ୍ର—ଏ ଦୁର୍ଭିକ୍ଷରେ ଓଡ଼ିଶାର ପ୍ରାୟ ୮ ଲକ୍ଷ ଲୋକଙ୍କର ଅନାହାର ଓ ତଜ୍ଜନିତ ରୋଗରେ ପ୍ରାଣନାଶ ଘଟିଥିଲା ।]
୩ । ଦୁର୍ଭିକ୍ଷ—3 Famine

**ନଅଙ୍କିଆ**—ଦେ. ବିଣ. ପୁଂ. ଓ ସ୍ତ୍ରୀ—୧ । ଦୁର୍ଭିକ୍ଷପ୍ରପୀଡ଼ିତ—
Na-aṅkiā 1. Famine-stricken
(ନଅଙ୍କୀ—ଅନ୍ୟରୂପ) ୨ । ଖାଦ୍ୟାଭାବରୁ କଙ୍କାଳମାତ୍ରାବଶିଷ୍ଟ;
(ନଅଙ୍କିଆଣୀ—ସ୍ତ୍ରୀ) ଜୀର୍ଣ୍ଣଶୀର୍ଣ୍ଣ—2. Reduced to skeleton for want of food.
୩ । ଅତି ଉତ୍କାଳିଆ; ଅତି ଲୋଭରେ ସର୍ବଦା ଖାଇବାକୁ ଇଚ୍ଛା କରୁଥିବା (ବ୍ୟକ୍ତି)—3. Very greedy; rapacious
ଦେ. ବି—ଛତରଖିଆ; ଯେଉଁମାନେ ଓଡ଼ିଶାର ନଅଙ୍କ ଦୁର୍ଭିକ୍ଷ ସମୟରେ ସରକାରୀ ଅନ୍ନସତ୍ରରେ ଖାଇବାରୁ ସମାଜଚ୍ୟୁତ ହୋଇଥିଲେ—A class of persons and the descendants of those persons who lost their castes by taking food cooked in public kitchens opened by the Government during the great famine of Orissa

**ନଅ ଛଅ**—ଦେ. ବିଣ—୧ । ବହୁସଂଖ୍ୟକ; ଅନେକ—
Na-a chha-a 1 Many.
(ନଅଟା ଛଅଟା—ଅନ୍ୟରୂପ) ୨ । ଅନିଶ୍ଚିତ; ଅଥୟ—
नयछय नौ तेरह बाईस 2 Uncertain.
(ଯଥା—ଏପରି ନଅ ଛଅ କଥା କହିଲେ ଚଳିବ ନାହିଁ ।)
୩ । ଅପବ୍ୟୟିତ—3. Wasted; squandered.
ଦେ. ବି (ସଂ. ନଶ୍ୟ ବା ଲୟ+କ୍ଷୟ)—୧ । ଅପଚୟ—
1. Decay; damage.
୨ । ଅପବ୍ୟୟ—2. Waste.

**ନଅ ଛଅ କହିବା**—ଦେ. କ୍ରି—୧ । ମିଥ୍ୟାକଥା କହିବା—
Na-a chha-a kahibā 1 To tell a falsehood.
ନଅଛଅ କରି କହିବା
ନଅଛଅ ବଢା(ଢେ)ଇବା
ନଅକୁ ଛଅ କହିବା
ନଅକୁଛଅ ଲଗାଇକହିବା } ଅନ୍ୟରୂପ
୨ । ପର ନାମରେ ଚୁଗୁଲି କହିବା—2. To backbite a person.
नातेरहबाईस बताना ୩ । କୌଣସି ବ୍ୟକ୍ତିକୁ ବୃଥା ଅପବାଦ ଦେବା—
3 To defame a person; to speak evil of a person.
୩ । ନାନା ଛଳନାରେ ଟାଳଟୁଳ କରିବା—
3. To put off on various excuses

**ନଅ ଛୁଇଁବା**—ଦେ. କ୍ରି (ଶୁଭବାଚକ)—ସାପ କାମୁଡ଼ିବା; ଲଥ ଛୁଇଁବା—
Na-a chhuiṅbā (euphemisn) Snake-bite.
(ନଅ କାଟିବା—ଅନ୍ୟରୂପ)
[ଦ୍ର—ଲୋକେ ସାପ କାମୁଡ଼ିବା ରୂପ ଅଶୁଭସୂଚକ ଶବ୍ଦ ବ୍ୟବହାର ନ କରି ଲମ୍ବ ଜନ୍ତୁ ବା ନଅ ବା ଲଥ ଛୁଇଁବାରୂପ ଶୁଭବାଚୀ ଶବ୍ଦ ବ୍ୟବହାର କରନ୍ତି ।]

**ନଅଟା ଛଅଟା**—ଦେ. ବିଣ—୧ । ଅନେକ, ବହୁସଂଖ୍ୟକ—
Na-aṭā chha-aṭā 1 Many.
नअठोछअठो ୨ । ପ୍ରୟୋଜନାଧିକ—
नयटाछयटा 2. More than enough.
(ଯଥା—ମୋର କଅଣ ନଅଟା ଛଅଟା ପୁଅ ଅଛନ୍ତି ଯେ, ମୁଁ ନେଇ ଯା ଚାଟେଇଁ ପୋଷାପୁଅ ଯୁକ୍ତି ଦେବି)

**ନଅଣ୍ଟ**—ଦେ. ବି. (ସଂ. ଅନଟନ; ନ୍ୟୂନ)—
Na-anṭa ୧ । ଅଭାବ; ଅନଟନ—1. Want.
अनाटन, अकुलन, टानाटानि ୨ । ଅପ୍ରାଚୁର୍ଯ୍ୟ; ଅପ୍ରଭୁଳତା—
घटति, कमो, घटी 2. Insufficience.
୩ । କମ ହେଉଥିବା ବସ୍ତୁ; କମତି—2. Deficit.
୪ । ଅସମ୍ପୂର୍ଣ୍ଣତା—4. Incompleteness.
୫ । କମ୍ ହେବା ଅବସ୍ଥା—5. Decrease; deficience.
ଦେ. ବିଣ—ନଅଣ୍ଟିଆ (ଦେଖ)—Na-anṭiā (See)

**ନଅଣ୍ଟ ଅଣ୍ଟ**—ଦେ. ବି—୧ । ଅନଟନ ଓ ପ୍ରାଚୁର୍ଯ୍ୟ—
Na-anṭa anṭa 1. Insufficience and sufficience

କମ୍ ବেশী
ঘটাৱ বঢ়াৱ
୨ । ଅନଟନ ଓ ପ୍ରଚୁର ହେବା ଅବସ୍ଥା—2 The state of being insufficient and sufficient.

୩ । ନଅଣ୍ଟ ହେବା ଅବସ୍ଥା—3. The state of insufficience or want.

( ଯଥା—ଜନର ସ୍ତ୍ରୀ ହାତରେ ଯେଉଁ ଟଙ୍କା ଠୋକର ରଖିବ, ତାହା ନଅଣ୍ଟ ଅଣ୍ଟ ବେଳେ କାମରେ ଆସିବ । )

**ନଅଣ୍ଟିଆ**—ଦେ ବିଣ—୧ । ଅଭାବଗ୍ରସ୍ତ; ନଅଣ୍ଟିଆ—
Na-antia 1. In want; needy.
অনাটন অকুলান ୨ । ଅପ୍ରଚୁର; ଅପ୍ରତୁଳ—
ঘट, कम 2. Insufficient.
୩ । ଯାହା କମ୍ ଥାଏ—3. Deficient.
୪ । ଅସମ୍ପୂର୍ଣ୍ଣ—4 Incomplete.

**ନ ଅଣ୍ଟିବା**—ଦେ. କ୍ରି—ନଅଣ୍ଟ ହେବା; କମ୍ ହେବା—
Na antiba Not to suffice, to be deficient
অকুলান হওআ न अँटना

**ନଅ ନୁଆଣ**—ଗ୍ରା. ବି(ଶୁଭବଚନ)—ଲଅ ଲୁଆଣ ( ଦେଖ )
Na-a nuana (euphemism) La-a luana (See)
(ନଅନୁଆଣି, ନଅନୁଆଣିଆ—ଅନ୍ୟରୂପ)
ଗ୍ରା. ବିଣ—ଲହୁଲୁହାଣ ( ଦେଖ )
Lahuluhana ( See ).

**ନଅମା**—ଦେ. ବି—ନହମା (ଦେଖ)
Na-ama Nahama (See).

**ନଅମୀ**—ଗ୍ରା. ବି—ନବମୀ ( ଦେଖ )
Na-ami Nabami ( See )
নবমী नौमी

**ନଅର**—ଦେ. ବି. ( ସଂ. ନଗର, ପ୍ରା. ଣଅର )—
Na-ara ୧ । ରାଜଭବନ—1 Palace.
রাজমহল, রাজবাটি ୨ । ରାଜାଙ୍କ ଅନ୍ତଃପୁର; ରାଣୀବାସ—
महल 2. The harem of a king.
ପ୍ରାଦେ. (ଗଡ଼ଜାତ) ବି—ଏକପ୍ରକାର ବଡ଼ ଜହ୍ନି; ନଅର ଜହ୍ନି-
A big variety of Luffa.

**ନଅର କୋଳି**—ଦେ. ବି—ନର କୋଳି ( ଦେଖ )
Na-ara koli Nara koli ( See )

**ନଅର ଜହ୍ନି**—ଦେ. ବି—ଏକ ପ୍ରକାର ଜହ୍ନି—
Na-ara jahni A big variety of Luffa

**ନଅର ଦାରି**—ଦେ. ବି ସ୍ତ୍ରୀ—ରାଜାଙ୍କ ରକ୍ଷିତା ବେଶ୍ୟା ବା ନର୍ତ୍ତକୀ—
Na-ara dari A dancing-girl or prostitute in the keeping of a Raja.
ନଅରଦାରି ବାଣରେ ଭୁଲେ
ରଜା ହବେ ବଲେ (ଦଣ୍ଡ) କବାଃ ପ.ଢ—ଚଗ ।

**ନଅର ବଳିତା**—ପ୍ରାଦେ. (ଗଡ଼ଜାତ) ବି—ବାତି (୨) ( ଦେଖ )
Na-ara balita Bati (2) ( See )

**ନଅର ବିଷୟୀ**—ଦେ. ବି ( ସଂ. ନଗର ଓ ବିଷୟୀ )—
Na-ara bishayi ରାଜଭବନର ତତ୍ତ୍ୱାବଧାରକ କର୍ମଚାରୀ—
(ନଅର ବିଷଇ, ନଅର ବିଷୋୟୀ ନଅରବିସେଇ, ନଅରବିଷୋଇ—ଅନ୍ୟରୂପ) Palace-superintendent.

**ନଅର ମୁଥା**—ଦେ. ବି. ( ସଂ. ନାଗର ମୁସ୍ତକ )—
Na-ara mutha ନାଗର ମୁଥା; ଏକ ପ୍ରକାର ବଡ଼ ମୁଥା—
নাগর মুথা A kind of bulbuous grass root
नागर मोथा ( used in medicine ).

**ନଅରି**—ଦେ. ବିଣ—ନଅରିଆ ( ଦେଖ )
Na-ari Na-aria ( See )

**ନଅରିଆ**—ଦେ. ବିଣ—୧ । ରାଜଭବନସମ୍ବନ୍ଧୀୟ—
Na-aria 1. Relating to the palace.
୨ । ରାଜାଙ୍କ ଅନ୍ତଃପୁରସମ୍ବନ୍ଧୀୟ—
2 Relating to a king's harem.
୩ । ( ଏତେ ) ସରିଆ—
3 Having so many strings

**ନଅଳା**—ଦେ. ବି—ନହଳା (ଦେଖ)
Na-ala Nahala (See)

**ନଅସରା**—ଦେ ବିଣ.—ନଅସେରା ବା ସୂତ୍ରଯୁକ୍ତ (ହାର)—
Na-asara Nine stringed (necklace)
(ନଅସରିଆ, ନଅସୋରିଆ—ଅନ୍ୟରୂପ)
নয়নরী नौसरा, नौलरा

**ନଇ**—ଗ୍ରା. ବି. (ସଂ. ଲତା)—ଲଇ (ଦେଖ)
Nai Lai (See)
ଦେ. ବି (ସଂ ନଦୀ)—ନଦୀ—River

**ନଇଁବା**—ଦେ. କ୍ରି. (ସଂ. ନମ ଧାତୁ)—ତଳଆଡ଼କୁ ବଙ୍କାଇବା; ନତ
Nainba ହେବା—1. To be bent downwards; to be
নুআ bent in a concave manner.
नवन [ଦ୍ର—ଉପର ଆଡ଼କୁ ବଙ୍କେଇବାକୁ 'କୁଜେଇବା' କହନ୍ତି ।]
(ନୁଆଇଁବା—ଶିଜନ୍ତ) ୨ । ନତ କରିବା—
2. To bend.
୩ । ନରମ ହେବା—3. To soften; to grow soft.
୪ । ଭୂମି ଆଡ଼କୁ ନତ ହେବା—
4. To bow down.
[ଦ୍ର—ଏ କ୍ରିୟାର ଅସମାପିକାରୂପ ସଙ୍ଗେ ପଡ଼ିବା ଓ ଯିବା କ୍ରିୟାର ସମାପିକା ରୂପ ଯୁକ୍ତ ହୁଏ; ନଇଁ ଯିବା; ନଇଁ ପଡ଼ିବା ।],

**ନଇଖଣ**—ଗ୍ରା. ବି.—୧ । (ସଂ. ଲକ୍ଷଣ) ଲକ୍ଷଣ (ଦେଖ)—
Naikhana 1 Lakshana (See)
୨ । (ସଂ. ଲକ୍ଷ୍ମଣ)—ଲକ୍ଷ୍ମଣ (ଦେଖ)—
2. Lakshmana (See)
ନଇଖଣିଆଁ, ନଇଖୁଣିଆଁ } ଅନ୍ୟରୂପ ୩ । (ନାମ) (ଆଦରାର୍ଥକ) ଲକ୍ଷ୍ମଣ ବା ଲଛ୍‌ମନ୍ ନାମକ ବ୍ୟକ୍ତିର ଡାକ ନାମ—3. A name for calling Lakshmana or Lachh-man.

**ନଇଚ୍ଛ**—ବୈଦେ. ବି. (ଫା. ନୈଚ୍ଛ)—ହୁକ୍କାର ଯେଉଁ ନଳର ଉପର ମୁଣ୍ଡରେ ଚିଲମ ରଖା ଯାଏ ଓ ତଳମୁଣ୍ଡ ଜଳପାତ୍ର ବା ନଡ଼ିଆ ଭିତରକୁ ପଶି ଥାଏ; ନଳଚ୍ଛ—The main tube of a hubble-bubble or narghile.
Naichā
नइचा
नैचा, नली

**ନଇଜ**—ଦେ. ବି.—୧ । ସ୍ୱଭାବ; ପ୍ରକୃତି—1. Nature.
Naija
आदत
୨ । ଅଭ୍ୟାସ; ଖୋଇ—2. Habit.
लत, आदत
୩ । ଆଚରଣ—3. Conduct.

**ନଇବେଦ୍**—ପ୍ରାଦେ. (ସମ୍ବଲପୁର) ବି—ନୈବେଦ୍ୟ; ଭୋଗ—Offerings made to a Deity.
Naibed

**ନଇବେଦ୍ୟ**—ଗ୍ରା. ବି. (ସଂ. ନୈବେଦ୍ୟ)—ନୈବେଦ୍ୟ; ଦେବତାଙ୍କୁ ଦିଆ ଯିବା ଭୋଗ—Food offered to a Deity
Naibedya
नैवेद्य
ସେଠାରେ ସ୍ନାନ କରି ଅଚ୍ଛନ୍ତି ଯୁବଣ,
ତାଙ୍କ ନଇବେଦ୍ୟକୁ ଖାଅଇ ସେ ଅଣ । କୃଷ୍ଣସିଂହ ମହାଭାରତ ବନ ।

**ନଇମିଷ**—ଗ୍ରା. (ପଦ୍ୟ) ବି—ନୈମିଷାରଣ୍ୟ (ଦେଖ)
Naimisha Naimishāraṇya (See)
ତହଁରେ ନଇମିଷ ଅରଣ୍ୟ ବାସିବେ । କୃଷ୍ଣସିଂହ, ମହାଭାରତ ବନ ।

**ନଇରୁତ**—ଦେ. ବି. (ସଂ. ନୈର୍ଋତ)—ନୈର୍ଋତ ୩ (ଦେଖ)
Nairuta Nairṛuta 3 (See)
ଯମ ନଇରୁତ ଇନ୍ଦ୍ର ଅନଳ କୁବେର ସେ । ପ୍ରାଚୀ, ରହସ୍ୟମଞ୍ଜରୀ ।

**ନଇଲା**—ଦେ. କ୍ରି(ସେ ବା ତାହା କର୍ତ୍ତୃ ସଙ୍ଗେ ଯୁକ୍ତ; ଅନାଦରାର୍ଥକ)—
Nailā ୧ । ପଇଁଟିଲା ନାହିଁ, ଆସିଲା ନାହିଁ—
नाएल 1. Is not mastered or got by heart.
नहिंआया ୨ । ନ ଆସିଲା; ଆସିଲା ନାହିଁ—2. Did not come.
୩ । ନ ହେଲା; ନୋହିଲା—3. Did not happen.
୪ । ଆସିନାହିଁ—4. Has not come.
ଦେ. ବି—ନହଲା (ଦେଖ)—Nahalā (See)
ଦେ. ବିଣ—୧ । ନ ଘଟିବା (କଥା)—
1 (a thing) Which has not happened.
୨ । ଯାହା ପଇଁଟି ନ ଥାଏ—
2. That which has not been mastered or got by heart

**ନଇଲେ**—ଦେ. ଅ. (ସଂ. ନୋଚେତ୍)—୧ । ନୋଚେତ୍—1. Nor.
Naile
(ନ ହେଲେ—ଅନ୍ୟରୂପ) ଅବିଳେ ଅସଇ ଜୀବ ନଇଲେ ନଥାସେ ।
नात; नहिलें ପ୍ରାଚୀ. ଶ୍ରୀଗୁରୁଭକ୍ତିଗୀତା ।
नहीं तो; नत ୨ । ଅନ୍ୟଥା—2. Otherwise; else.
୩ । ଅଥବା—3. Or
ଦେ. କ୍ରି—୧ । (ଅତୀତକାଳ) (ଆଦରାର୍ଥକ ସେ ବା ସେମାନେ)—ଆସିଲେ ନାହିଁ; ଆସି ନାହାନ୍ତି—1. (he or they) Did not come; have not come.
କନ୍ଧ କରି କାଲି ରଜନୀ ସଜନ ।
ନଇଲେ ଗୋ ଦଶୀଧ ସା । ପ୍ରାଚୀନ ସଙ୍ଗୀତ ।
୨ । (ସମ୍ଭାବନାର୍ଥକ) ଯଦି ତୁମ୍ଭେ ମୁଁ ବା ସେ ବା ସେମାନେ ନ ଆସିଲେ—2. If you or I or he or they do not come.

**ନଇଲେ ନାହିଁ**—ଦେ. ଅ—ନଚେତ୍ ନାହିଁ, ଅନ୍ୟଥା ନୁହେଁ; ନ ହେଲେ ନାହିଁ—Or else not; otherwise not.
Naile nāhiñ
নাহলেনেঈ नता नहीं, नहीं तो नहीं

**ନଇଷାଦୀ**—ଦେ. (ପଦ୍ୟ) ବି. (ସଂ ନିଷାଦୀ)—ନିଷାଦୀ (ଦେଖ)
Naishādi Nishādi (See)
ନଇଷାଦୀ ହାତୀ ଚଢ଼ିଣ ତୋମରକୁ
ପିଙ୍ଗୁଥିଲେ ହେ ପାର୍ଥେ ଶ୍ରମଙ୍କ ତେଢ଼କୁ । କୃଷ୍ଣସିଂହ. ମହାଭାରତ, କର୍ଣ୍ଣ ।

**ନଈ**—ଦେ ବି. (ସଂ. ନଦୀ)—ନଦୀ—River.
Nai
नदी नइ

**ନଈ କୂଳ**—ଦେ. ବି (ସଂ ନଦୀ କୂଳ)—ନଦୀର କୂଳ—Bank of a river; river-bank
Nai kūla
নদীৰ ধাব नदी किनारा

**ନଈକୂଳିଆ**—ଦେ. ବିଣ—୧ । ନଦୀକୂଳ ସମ୍ବନ୍ଧୀୟ—1. Relating to the river bank.
Naikūliā
नदी किनारेका ୨ । ନଦୀ କୂଳରେ ଅବସ୍ଥିତ ବା ଜାତ—2. Situated or grown on the bank of a river.
নদিবক্‌লেব
(ଯଥା—ନଈକୂଳିଆ ଫସଲ ।)

**ନଈ ଖଣ୍ଡି**—ପ୍ରାଦେ. (ସମ୍ବଲପୁର) ବି—ନଦୀକୂଳ—River-bank.
Nai khaṇḍi

**ନଈ ତଳ**—ଦେ. ବି. (ସଂ. ନଦୀ ଓ ତଳ)—
Nai tala ୧ । ନଈକୂଳ—1. River-bank.
୨ । ନଦୀର ନିମ୍ନତମ ଦେଶ;ନଦୀଶଯ୍ୟା—2. Bed of a river.

**ନଈ ତଳିଆ**—ଦେ. ବିଣ—୧ । ନଦୀର ଅତି ନିକଟରେ ଅବସ୍ଥିତ—1. Situated very near the river.
Naitaliā
୨ । ନଦୀକୂଳରେ ଅବସ୍ଥିତ—2. Riparian; situated on the bank of a river.

**ନଈ ପହଁରା**—ପ୍ରାଦେ. (ଯାଜପୁର) ବି—
Nai pahañrā ଗେଟେଇ ଅଟକାଳି; ଗଇଣ୍ଠା ଓ ଖିରି—Cake and gruel.
(ନଈ ପହରା—ଅନ୍ୟରୂପ)
ଦେ. ବି—ନଈରେ ପହଁରିବା—Swimming in a river.

**ନଈ ବଢ଼ି**—ଦେ. ବି. (ସଂ. ନଦୀ ବୃଦ୍ଧି)—ନଦୀର ଜଳବୃଦ୍ଧି—Flood of a river; inundation.
Nai barḍhi
বন্যা, বাণ ନଇବଢ଼ିକି ଷଅଳ ଗୁଣ—ନ୍ୟାୟ ।
नदीका बाढ़

**ନଈ ବାଙ୍କ**—ଦେ. ବି. (ସଂ. ନଦୀ+ବାଙ୍କ)—
Naibāṅka ନଦୀ ଯେଉଁଠାରେ ବଙ୍କ ହୋଇ ବହି ଯାଇଥାଏ—The bend or meandering point of a river.
নদীর বাঁক
नदीका घुमाव

**ନଇ ବାଲି**—ଦେ. ବି. (ସଂ. ନଦୀ ଓ ବାଲୁକା)—ନଦୀର ବାଲୁକା—
Nai bāli Sand of a river.
ନଦୀର ବାଲି
नदीका बालु
ସେ ଖାଇଲେ ନଇ ବାଲି ସଙ୍ଗେ—ପ୍ରବଚନ ।

**ନଇ ଭାଲିଆ**—ଦେ. ବି (ସଂ ନଦୀ ଭଲ୍ଲାତକ)—
Nai bhālia ଲଙ୍କା ଅମ୍ବର ମଞ୍ଜି; ବାଦାମ ମଞ୍ଜି—
Seeds of cashew-nut.
[ ଦ୍ର—ଏହାର ଶସ ସୁଖାଦ୍ୟ । ]

**ନଇଶୁଆ**—ଦେ. ଅ. ପୁଂ (ଗାଳି)—(ଯେଉଁ ଲୋକ ନଈରେ ଶୁଏ)-
Naisuā ତୁ ନଈରେ ଶୋ, ଅର୍ଥାତ୍ ଶୀଘ୍ର ମରସି ଓ ତୋର
शमशानमे जाने वाला ଶବକୁ ନେଇ ଲୋକେ ନଈରେ ପକାଇ
(ନଈ ଶୋଇ—ସ୍ତ୍ରୀ) ଦିଅନ୍ତୁ (A term of imprecation or curse, meaning) You die uncared for and your body be thrown into the river after death

**ନଉ**—ଦେ. ବି ଓ ବିଣ. (ସଂଖ୍ୟାବାଚକ) (ସଂ. ନବତି)—
Nau ନବତି, ନବେ, ୯୦—90; ninety
ନବ୍ବଇ
नब्बे
ଗ୍ରାମସେନ ସ୍ୱଭ ଭା ସହ୍ନ ନ ପାରିଲେ
ନଉ କାଣ ଦୁର୍ମଖ ବେହରୁ ବଞ୍ଚିଲେ । କୃଷ୍ଣସିଂହ, ମହାଭାରତ ସ୍ୱର୍ଗ ।
ଗ୍ରା. ବୈଦେ. ବି. (ଫା ଲହୁ)—ରକ୍ତ—Blood.
ପ୍ରାଦେ (ଉତ୍ତର ଭାଷା) ବି ଓ ବିଣ—ନଅ, ୯—9; nine

**ନଉଅ ଶହେ**—ଦେ. ବି ଓ ବିଣ (ସଂ ନବତ୍ୟୁତ୍ତର ଶତ)—
Naua sahe ଏକ ଶହ ନଅ—
एकशौ नब्बे One hundred and ninety.

**ନଉକର (ଇତ୍ୟାଦି)**—ବୈଦେ. ବି. ପୁଂ (ଫା. ନୌକର୍)—
Naukara (etc) ନୌକର ଇତ୍ୟାଦି (ଦେଖ)
(ନଉକରୁଣୀ, ନଉକରିଆଣୀ—ସ୍ତ୍ରୀ) Naukara etc, ( See )
ନଉକର ଗଣେ ଜଣେ କରି ମୋତେ ଅନୁକ୍ଷଣେ ରଖିବାକୁ × ×—
ଜବସୁନ୍ଦ୍ୟ. ରତ୍ନାକର ଚମ୍ପୂ ।

**ନଉକରାନ୍**—ବୈଦେ ବି. (ଫା. ବହୁବଚନ)—ଭୃତ୍ୟମାନେ—
Naukarān Servants
(ନୌକରାନ୍—ଅନ୍ୟରୂପ) ଦେ. ବିଣ—୧ । ଭୃତ୍ୟ ସମ୍ବନ୍ଧୀୟ—
नौकरान 1. Relating to servants.
୨ । ଭୃତ୍ୟତା ସମ୍ବନ୍ଧୀୟ—2. Relating to service.
( ଯଥା—ନଉକରାନ୍ ଜାଗିର । )

**ନଉକରି**—ବୈଦେ. ବି (ଫା)—ନୌକରି (ଦେଖ)
Naukari Naukari ( See )
ନଉକରି କି ବାଇ ହେବାଯାଏ ଲଗାଇ କାଣ୍ଡ ମୋହନ ମନ୍ତ୍ରରୁ ଗୋ ।
ଜବସୁନ୍ଦ୍ୟ. ରତ୍ନାକର ଚମ୍ପୂ ।

**ନଉକା**—ଗ୍ରା. ବି. (ସଂ. ନୌକା)—ନାବ; ନାଆ; ଡଙ୍ଗା—
Naukā Boat.
नउका ନଉକା ଜାଗ୍ରିକା ହେଲେ ବୁଡ଼ିବ ଭେଳା ।
ଉପ. ବୈଦେହୀଶବିଳାସ ।

**ନଉଟ**—ଗ୍ରା. ବି—ଲେଉଟ (ଦେଖ)
Nauta Leuta ( See )

**ନଉଟା**—ଗ୍ରା ବି—ଲେଉଟା (ଦେଖ)
Nautā Leutā ( See )

**ନଉଟା(ଟେ)ଇବା**—ଗ୍ରା କ୍ରି—ଲେଉଟାଇବା (ଦେଖ)
Nautā(te)ibā Leutāibā (See)

**ନଉଟିଆ**—ଗ୍ରା. ବି—ନେଉଟିଆ (ଦେଖ)
Nautia Neutiā (See)

**ନଉଟିବା**—ଗ୍ରା. କ୍ରି—ଲେଉଟିବା (ଦେଖ)
Nautibā Leutibā (See)

**ନଉଡ଼ା**—ଗ୍ରା. ବି (ହି. ଲୌଡ଼ା)—ଲହୁଡ଼ା (ଦେଖ)
Naurdā Lahurdā (See)
(ନୌଡ଼ା, ନହୁଡ଼ା—ଅନ୍ୟରୂପ)

**ନଉଡ଼ି**—ଦେ. ବି. (ସଂ. ଲଗୁଡ଼)—୧ । ଯଷ୍ଟି, ଲଉଡ଼; ବାଡ଼ି—
Naurdi 1. Stick.
(ନୌଢ଼ି—ଅନ୍ୟରୂପ) ୨ । ଗଉଡ଼ଙ୍କ ବାଡ଼; ଗୋରୁଜଗା ବାଡ଼ି—
नडि; लडि 2. A cowherd's staff
लाठी; लकड़ी
ଏହି ନଉଡ଼ି ଧରି ଚରାଏ ଗୋବାଳୁଙ୍କ
ଗଉଡ଼ ମୁରଲୀ ବଜାଇ । ମଧୁସୂଦନ. ଛନ୍ଦମାଳା ।

**ନଉଡ଼ି ଖେଳ**—ଦେ. ବି. (ସଂ. ଲଗୁଡ଼ ଓ ଖେଳ)—ଦୋଳପୂର୍ଣ୍ଣିମ
Naurdi khela ସମୟରେ ଗଉଡ଼ମାନେ ବାଡ଼ି ଧରି ଯେଉଁ ଖେଳ
नडिखेला ଖେଳନ୍ତି—A play with sticks played
लाठीखेल; लकड़ीखेल by cowherds during the Dolajātrā festival.

**ନଉଡ଼ି ଖେଳିବା**—ଦେ. କ୍ରି—ଦୋଳଯାତ୍ରା ବେଳେ (ଗଉଡ଼ମାନେ)
Naurdi khelibā ଯଷ୍ଟିଦ୍ୱାରା ନାନାପ୍ରକାର କ୍ରୀଡ଼ା କରିବା—
[ନଉଡ଼ି ବୁଲା(ଲେ)ଇବା—ଅନ୍ୟରୂପ] (cowherds) To play
नडिखेला with sticks by brandishing them
लाठीखेलना, लकड़िखेलना with dexterity.

**ନଉଡ଼ି ସଙ୍କେତ**—ଦେ. ବି—ଲେଖିପଢ଼ି ନ ଜାଣିବା ଗଉଡ଼ମାନଙ୍କର
Naurdi santaka ନାମ ସ୍ୱାକ୍ଷର କରିବାର ସଙ୍କେତ ବା ଚିହ୍ନ—
लकोर सङ्केत The mark of a cow-driving staff put on a document by an illiterate cow-herd in lieu of signature.

**ନଉଣିଆ(ଆଁ)**—ଗ୍ରା. ବି ଓ ବିଣ—ନହୁଣିଆ (ଦେଖ)
Naunia(ān) Nahuniā (See)

**ନଉଣୀ (ଇତ୍ୟାଦି)**—ଗ୍ରା. ବି. (ସଂ. ନବନୀ)—ନହୁଣୀ ଇତ୍ୟାଦି (ଦେଖ)
Nauni (etc) Nahuni etc (See)

**ନଉତନ**—ଗ୍ରା. ବିଣ. (ସଂ ନୂତନ; ନବୀନ)—ନୂଆ; ନୂତନ—
Nautana New.
(ନୌତନ—ଅନ୍ୟରୂପ) नतुन नबतन; नया; नूतन

**ନଉତି**—ଦେ. ବି—୧ । ବଡ଼ ମାଟି ହାଣ୍ଡି—
Nauti 1. Big earthen pot.
ନଉତା } ଅନ୍ୟରୂପ
ନୌତା
ନୌତି
ଶୁଣି ମୁଁ ହେଲ ହୋଇଲି
ନଉତି ନକଟରୁ ନେଲି । ରୂପଦ. ପ୍ରେମପଞ୍ଚାମୃତ ।
तोलोहाँड़ि ୨ । ଶସ୍ୟ ମାପିବା ପାତ୍ରବିଶେଷ; ଗଉଣୀ—
2. A standard measure for corn.

**गौंडा** [ ଦ୍ର—ବିଭିନ୍ନ ଅଞ୍ଚଳରେ ଭିନ୍ନ ଭିନ୍ନ ପରିମାଣର
ଗୋଣୀ ନଉଡି ବ୍ୟବହୃତ ହୁଏ; ଯଥା—୩ ସେରିଆ, ୪
**गोन, मौनी** ସେରିଆ, ୫ ସେରିଆ, ୩½ ସେରିଆ ଇତ୍ୟାଦି । ]
ପ୍ରାଦେ. (ଗଞ୍ଜାମ) ବି—୪ ଗୌଣୀର ମାପ—
A standard measure of 4 Gaunis.

**ନଉ ନୁଆଣ**—ଦେ. ବି—ଲଥ ଲୁଆଣ (ଦେଖ)
Nau nuāṇa La-a luāṇa (See)

ନଉନ ଆଣି } ଅନ୍ୟରୂପ ଦେ ବିଣ (ଫା. ଲହୁ=ରକ୍ତ)—
ନଉନୁଆଣିଆ } ଲହୁଲୁହାଣ, ରକ୍ତାକ୍ତ—
Blood stained; profusely bleeding

**ନଉବତ୍**—ବୈଦେ. ବି. (ଫା. ନୌବତ୍=ସମୟ, ପାଳି; ଯାହା
Naubat ରାଜଦ୍ୱାରରେ ନିର୍ଦ୍ଦିଷ୍ଟ ସମୟରେ ବାଦିତ ହୁଏ)—
(ନୌବତ—ଅନ୍ୟରୂପ) ନହବତ; ଡେଙ୍ଗାନାଗରା, ଯୋଡ଼ି ନାଗରା—
ନଓବଂ Kettle-drums beaten in pairs periodically everyday at the gate of kings
**नौबत** and rich people.

ହୋଇଲା ପ୍ରାଭାତିକ ନହବତ
ଶୁଭିଲା ବନ୍ଦୀବୃନ୍ଦ ସ୍ତୁତିବାଦ । କବିସୂର୍ଯ୍ୟ. ଚନ୍ଦ୍ରକଳା ।

[ ଦ୍ର—ଏହା ପ୍ରତ୍ୟହ ନିର୍ଦ୍ଦିଷ୍ଟ ସମୟରେ ଦେବମନ୍ଦିର ଓ ରାଜଦ୍ୱାର ସମ୍ମୁଖରେ ଓ ଅନ୍ୟ ସ୍ଥାନରେ ଉତ୍ସବ ଓ ମଙ୍ଗଳ କର୍ମ ଉପଲକ୍ଷରେ ବଜାଯାଏ । ନଉବତ୍ ସଙ୍ଗେ ମହୁରି ମଧ ବଜାଯାଏ ।]

**ନଉବତ୍ଖାନା**—ବୈଦେ. ବି (ଫା)—ରାଜଦ୍ୱାରର ଦେଉଡ଼ି ନିକଟରେ
Naubat-khānā ଓ ଧନୀମାନଙ୍କ ଉତ୍ସବାଦି ଉପଲକ୍ଷରେ ସଦର-
ନଓବଂଖାନା ଦୁଆରର ଉପରୁ ବାହାରେ ନଉବତ୍ ବାଜା
**नौबतखाना** ବଜାଯିବା ପାଇଁ ଉଚ୍ଚ ଖୁଣ୍ଟ ଉପରେ ନିର୍ମିତ
ଅସ୍ଥାୟୀ ପ୍ରକୋଷ୍ଠବିଶେଷ; ନହବତ୍ଖାନା—

[ ଦ୍ର—ଏହି ପ୍ରକୋଷ୍ଠରେ ନଉବତ୍ ବାଦ୍ୟ ବା ଯୋଡ଼ି ନାଗରା ବାଜେ ଓ ଏହା ଉଚ୍ଚରେ ବାଜିବାରୁ ବହୁଦୂରକୁ ଶୁଣାଯାଏ । ମୋଗଲ ସମ୍ରାଟମାନଙ୍କର ନଉବତ୍ଖାନାରେ ନଉବତ୍ ବାଜଣା ପୃଥିବୀପ୍ରସିଦ୍ଧ ଥିଲା । ପ୍ରତ୍ୟେକ ମୋଗଲ ରାଜପ୍ରାସାଦର ବହିର୍ଦେଶରେ ନଉବତ୍ଖାନା ଥିଲା । କଥିତ ଅଛି ଯେ ଗ୍ରୀକ୍ ବିଜୟୀ ସିକନ୍ଦରସାହା (Alexander the Great) ଭାରତବର୍ଷରେ ନଉବତ୍ ବାଦ୍ୟ ପ୍ରଥମେ ଚଳାଇଥିଲେ—ଗାଙ୍ଗୁଲି । ]

**ନଉବତି**—ବୈଦେ. ବି. (ଫା)—ଯେଉଁ ବ୍ୟକ୍ତିମାନେ ନଉବତ୍ ବାଦ୍ୟ
Naubati ବଜାନ୍ତି—Drummers of Naubat.
(ନଉବଦିଆ—ଅନ୍ୟରୂପ) ନଓବତିୟା **नौबती**

**ନଉରଙ୍ଗ**—ଦେ. ବି. (ସଂ. ନବରଙ୍ଗ)—ନବରଙ୍ଗ (ଦେଖ)
Naurang Nabaranga (See)

**ନଉରୁଣୀ**—ଦେ. ବି. (ସଂ. ନଖରଞ୍ଜନୀ)—
Nauruṇi ନହୁରୁଣୀ; ଭଣ୍ଡାରିଙ୍କର ନଖ କାଟିବା ଶସ୍ତ୍ରବିଶେଷ—
ନହ୍ନନ; ନହ୍ନଣ A nail-clipper used by barbers
**नहरनी**

**ନଉରୋଜ୍**—ବୈଦେ. ବି. (ଆ. ନଓ ଓ ଫା. ରୋଜ୍=ନବବର୍ଷ; ମୁସଲ-
Nauroj ମାନଙ୍କ ସନର ପ୍ରଥମ ଦିବସ)—ଅକବର ବାଦଶାହାଙ୍କ
ନଓରୋଜ ଦ୍ୱାରା ଅନୁଷ୍ଠିତ ଉତ୍ସବବିଶେଷ—1. A festival
**नौरोज** introduced to India by Emperor Akbar on
(ନଓରୋଜ୍—ଅନ୍ୟରୂପ) the Mahomedan new year's day.
୨ । ମୁସଲମାନଙ୍କ ନବବର୍ଷର ପ୍ରଥମ ଦିବସ—2. The new year's day of the Mahomedan year.

**ନଉଲ**—ଗ୍ରା. (ଇତର) ବି. (ସଂ. ନକୁଲ; ପ୍ରା. ନଉଲ)—ନେଉଳ;
Naula ନକୁଳ—An ichneumon; mungoose
ବେଜୀ, ନେଉଳ [ଦ୍ର—ଅନେକ ସ୍ଥଳରେ ଦେଖାଯାଏ ଯେ ଶିକ୍ଷିତମାନଙ୍କ
**बीजि** ବ୍ୟବହୃତ ଓ କଥିତ ଅନେକ ତଦ୍ଭବ (ଦେଶଜ) ଶବ୍ଦ (ଯଥା ନେଉଳ) ତଦ୍ରୂପ ଶବ୍ଦର ଗ୍ରାମ୍ୟ ବା ଇତରଜନକଥିତ ଆକାର (ଯଥା ନଉଳ) ଅପେକ୍ଷା ବେଶି ଅପଭ୍ରଷ୍ଟ ବା ବିକୃତ ହୋଇଅଛି । ଇତରଜନମାନେ ସଂସ୍କୃତ ନକୁଳ ଶବ୍ଦର ପ୍ରାକୃତ 'ନଉଳ' ରୂପ ଅବିକୃତ ରଖି ଅଛନ୍ତି । କିନ୍ତୁ ଶିକ୍ଷିତମାନେ ତାକୁ 'ନେଉଳ' ରୂପରେ ବିକୃତ କରି ଅଛନ୍ତି । ତୁଳନା କର ସଂ ଜାନାମି, ପ୍ରା. ଜାଣାମି; ଇତର ଜାଣିମି, ଶିକ୍ଷିତ ଲୋକଙ୍କ ବ୍ୟବହୃତ. ଜାଣିବି ।]

**ନଉଲି**—ଦେ. ବିଣ. (ସଂ ନବ; ନବଲ; ସ୍ତ୍ରୀ. ନବଲା ସ୍ତ୍ରୀ)—
Nauli ୧ । ନୂଆ, ନଉଲ—1. New
ନହଲି, ନଓଲ ୨ । ଯୁବା (ବୟସ)—
**नवलि, नवली** 2 Youthful; young (age).
୩ । (ସ୍ତ୍ରୀ)—ଯୁବତୀ (ସ୍ତ୍ରୀ)—3. Young (woman).
ଦେ ବି. ସ୍ତ୍ରୀ—ଯୁବତୀ ସ୍ତ୍ରୀ—A young damsel.

**ନଉସନ୍ଧା**—ଗ୍ରା ବିଣ. (ଫା. ନଓ୍ୱସିନ୍ଦାହ୍=ଲେଖକ); (ଫଳତାର୍ଥ) ନିପୁଣ;
Nausandhā ଚତୁର—Skilful; clever
**कातीब, नबीस** ଗ୍ରା. (ବୈଦେ.) ବି. (କଚିରିଆ, ଫା. ନଓ୍ୱସ୍; ନଓ୍ୱ-
ନବିସିନ୍ଦା ସିନ୍ଦାହ୍ ) ଦଲିଲର ଲେଖକ—The scribe or writer of a document.

**ନଉସନ୍ଧାଧିକ**—ଦେ. ବିଣ.—( ଫା. ନଓ୍ୱସିନ୍ଦାହ୍+ସଂ. ଅଧିକ )—ଖୁବ୍
Nausandhādhika ନିପୁଣ; ଚତୁର;ପଟୁ—Very clever or skilful.

ନ କହିଲୁର କନକ, ନନ୍ଦା ନଉସନ୍ଧାଧିକ.
ଗଉରଙ୍ଗୀ ଶୁଣି କ ବୋଇଲରେ । କବିସୂର୍ଯ୍ୟ. ଉତ୍ତାବିଳୀ ଚମ୍ପୂ. ହ ଗୀତ ।

[ଦ୍ର—ଏ ପଦରେ କନକନନ୍ଦାନଉସନ୍ଧାଧିକଗଉରଙ୍ଗୀର ଅର୍ଥ ଯେଉଁ ନାଗରୀର ଅଙ୍ଗର ଗୌରବର୍ଣ୍ଣ କନକ ବା ସୁନାକୁ ନିନ୍ଦା କରିବାରେ ପଟୁ ଅଟେ, ଅର୍ଥାତ୍ ଯେଉଁ ସ୍ତ୍ରୀ ଗୌରବର୍ଣ୍ଣରେ ସୁନାକୁ ନିନ୍ଦା କରୁଛି ବା ଜିଣିଛି ।]

**ନଏଦ୍**—ପ୍ରାଦେ. (ସମ୍ବଲପୁର) ବି.—ନଦୀ—
Naed River.
[ଦ୍ର—ଏହିପରି ସ୍ରଏତ୍=ସ୍ରୋତ; ଖଏନ୍=ଖଣି ।]

**ନଏଦ୍ ତରା**—ପ୍ରାଦେ. (ସମ୍ବଲପୁର) ବି.—ନଦୀତୀର—
Naed tarā River-bank.
(ଯଥା—ନଏଦ୍ ତରାରୁ କାଏଁ ଗଛ ? କହ—ଶିଶୁବଚନ ।)

**ନକଟ**—ଦେ. ବି. (ସଂ. ନକ୍ତକ=ଲେଙ୍ଗୁଡ଼ା କନା)—୧ । ଟିକିଏ; ଅତି
Nakaṭa ଅଳ୍ପ ମାତ୍ରା—1. A minute quantity.

(ନକଟକ, ନକଟେ—ଅନ୍ୟରୂପ) ୨ । କନ୍ଥା; ଚିରିକନା— 2. Rag.
टुकू एकटुक
एतटुकु ବିଣ—୧ । ନକଟେ; ଅତି ଛୋଟ, କ୍ଷୁଦ୍ର—
ऐकटुक 1. Very small; a little.
୨ । ଚିରା; ଲେଙ୍କଡ଼ା (କନା)—2. Ragged; torn

**ନକଟକ**—ଦେ. ବି. ଓ ବିଣ.—୧ । ଅତି ସାମାନ୍ୟ ମାତ୍ର—
Nakaṭaka 1. A little only; a minute quantity.
এতটুকু (ଯଥା—ଘିଅ ନକଟକ ମୋତେ ଅଣିକ ନାହିଁ ।)
एताकम ୨ । ଅତି କ୍ଷୁଦ୍ର; ଟିକିଏ ମାତ୍ର—
2. Very small, tiny.
( ଯଥା—ଏ ପିଲା ନକଟକ ଠେଇଁ ଏତେ ଜୁକର ଅଛି ! )

**ନକଟେ**—ଦେ. ବି. ଓ ବିଣ —୧ । ଟିକିଏ; ସାମାନ୍ୟ ପରିମାଣ; ଅଳ୍ପ
Nakate ମାତ୍ର— 1 A little.
୨ । ଅତି କ୍ଷୁଦ୍ର—2. Very small; tiny.

**ନକଠକ**—ଦେ. ଅ.—(ଆ. ନକଦ୍) ୧ । ଖେକ୍ ଠୋକ୍; କୌଣସି
Nakathaka ବିଷୟର ଶେଷ ମୀମାଂସା—1. Final decision.
বোকসোধ ୨ । ନଗଦ କାରବାର—
नकदी, बेबाक, बिदा 2 Cash transaction.
୩ । ସଙ୍ଗେ ସଙ୍ଗେ କୌଣସି ବିଷୟର ମୀମାଂସା—
3. Prompt decision of any matter.
୪ । ନଗଦାନଗଦ—4. In cash
୫ । ସଙ୍ଗେ ସଙ୍ଗେ—5. Then and there
୬ । ଠିକ୍; ଯଥାର୍ଥ—6. Just; right.
୭ । ଅବିକଳ—7. Exact.
୮ । ଉପଯୁକ୍ତ; ଯୋଗ୍ୟ—8. Proper.
୯ । ବାଦବିବାଦ—9. Dispute; wrangling.

**ନକଠକ ବାହାପିଆ**—ଦେ. ବି.—ଘୋର ମିଥ୍ୟାବାଦୀ; ଲଥିଗିଲା—
Nakaṭhaka bāhāpiā A downright liar; an inveterate liar.
ডাহা মিথ্যাবাদি
पक्का झूठा आदमि

**ନକଡ଼ ଛକଡ଼**—ଦେ. ବି—ଗୋଳମାଳ; ଅଡୁଆ—
Nakarda chhakarda Confusion; complication
चोकटोक ଅସମାନଙ୍କ ତୁଣ୍ଡାତୁଣ୍ଡି କଥା ସେଥିପାଇଁ, ନକଡ ଛକଡ ନାହିଁ ।
গোলযোগ ଫକୀରମୋହନ.ଛମାଣଆଠଗୁଣ୍ଠ ।
ଦେ. ବିଣ—ନକଡ଼ା ଛକଡ଼ା ( ଦେଖ )
Nakardā chhakardā (See)

**ନକଡ଼ା**—ଦେ. ବି—ନଅ କଡ଼ା ମାତ୍ର କଉଡ଼ି—
Nakardā Nine small sea shells(used as coin)
নকড়া ଦେ. ବିଣ—୧ । ନଅକଡ଼ା କଉଡ଼ି ମୂଲ୍ୟର; ଯାହାର ମୂଲ୍ୟ
ଅତି ଅଳ୍ପ—1. Of very little value.
୨ । ଅତି ତୁଚ୍ଛ; ହେୟ—2. Contemptible; negligible.

**ନକଡ଼ା ଛକଡ଼ା**—ଦେ. ବିଣ—୧ । ଅତି ହେୟ; ନଗଣ୍ୟ—
Nakardā chhakardā 1. Contemptible.
নকডাছকডা ୨ । ମୂଲ୍ୟହୀନ—2. Of no value.
नाचीज ୩ । ଗୋଳମାଳିଆ; ଅଡୁଆଅଡୁଆ—
3 Confused; complicated.
ଦେ. ବି—୯କଡ଼ା କଉଡ଼ି ଓ ୬କଡ଼ା କଉଡ଼ି—Nine bits and six bits of small sea-shells
(ଯଥା—ନକଡ଼ା ଛକଡ଼ା ଛକ ବାର କଡ଼ା ବିଡଣ୍ଡା ବିକଡ଼ା କେତେ ? ଶିଶୁଙ୍କର ମାନସାଙ୍କ ପ୍ରଶ୍ନ । )

**ନକଡ଼ା ଛକଡ଼ା କରିବା**—ଦେ. କ୍ରି—୧ । ତୃଣବତ ଗଣନା କରିବା;
Nakardā chhakardā karibā ତୁଚ୍ଛ ମନେ କରିବା—
(ନକଡ଼ ଛକଡ଼ କରିବା—ଅନ୍ୟରୂପ) 1. To treat with scorn
নকডা ছকডা কৰা
नाचीज करना ୨ । ମୂଲ୍ୟହୀନ ପଦାର୍ଥ ପରି ବ୍ୟବହାର କରିବା—
2. To deal with a thing as if it is of no value.
୩ । ଅପମାନିତ କରିବା—3 To insult; to humiliate.

**ନକଡ଼ି**—ଦେ. ବି. ପୁଂ ଓ ସ୍ତ୍ରୀ—୧ । ଅପଞ୍ଚିଆଣୀ ପିଲାଙ୍କ ନାମ—
Nakardi 1 A name given to boys and girls
(ନକଡ଼ିଆ—ଅନ୍ୟ ପୁଂଲିଙ୍ଗରୂପ) whose elders had died
নকড়ি before they were born
୨ । ନକଡ଼ା (ଦେଖ)—2. Nakardā (See)
ଦେ. ବିଣ—ନକଡ଼ା (ଦେଖ)—Nakardā (See)

**ନକ ନକ**—ଗ୍ରା. ଅ.—ଲକ ଲକ (ଦେଖ)
Naka naka Laka laka (See)

**ନକ ନକା(କେ)ଇବା**—ଗ୍ରା. କ୍ରି.—ଲକଲକାଇବା (ଦେଖ)
Naka nakā(ke)ibā Laka lakāibā (See)

**ନକ ନକିଆ**—ଗ୍ରା. ବିଣ.—ଲକଲକିଆ (ଦେଖ)
Naka nakiā Laka lakiā (See)

**ନକନୋର**—ଦେ. ବି—ମୁନିଆ ପକ୍ଷୀ ( ଦେଖ )
Nakanor Muniā (bird) ( See )
মুনিয়া नकलनोर

**ନକମାରିଚ**—ଗ୍ରା. ବି. ( ସଂ. ଲଙ୍କା ଓ ମରିଚ )—ଲଙ୍କାମରିଚ—
Nakamāricha Red pepper; chilly
লঙ্কা लालमिर्चा
( ନକାମରିଚ; ନକାମାରିଚ—ଅନ୍ୟରୂପ )

**ନକଲ**—ବୈଦେ. ବି. ( ଆ )—୧ । ଅନୁକରଣ—
Nakala 1. Imitation.
নকল ୨ । ପ୍ରତିଲିପି; ଲେଖା ଆଦିର ଅବିକଳ ପ୍ରତିଲିପି—
नकल 2. Copy; transcript.
( ଅସଲ—ବିପରୀତ ) [ ଦ୍ର—ମହାଫିସ୍‌ଖାନାରେ ଥିବା ଦଲିଲ ଆଦିର ୨ ପ୍ରକାର ନକଲ ମିଳେ; ଯଥା—ସାଧା ନକଲ ଓ ସଇ ମୋହର ନକଲ । ସରକାରଙ୍କ ମହାଫିସ୍‌ଖାନାରେ ଥିବା ଦଲିଲ ଆଦିର କୌଣସି ଅଦାଲତରେ ପ୍ରମାଣରୂପେ ଉପସ୍ଥାପିତ ହେବା ଆବଶ୍ୟକ ହେଲେ କେତେକ ସ୍ଥଳରେ ଲୋକେ ଅସଲ ଦଲିଲ-

ଅନ୍ଧ ନ ଆଣି ସେମାନଙ୍କର ସହୃଦୋଦର ନକଲ ଆଣି ଦର୍ଶାଇଲେ ଅଦାଲତ ସେ ସବୁ ପ୍ରମାଣରୂପେ ଗ୍ରହଣ କରନ୍ତି, ଏହାପରି ଆଇନର ବିଧାନ ଅଛି । ]

୩ । ଥଟ୍ଟା; କୌତୁକ, ପରିହାସ— 3. Jest, sport; fun

ବିଣ—୧ । କୃତ୍ରିମ—1. Artificial.

୨ । ଜାଲ୍—2. Forged.

୩ । ଅପ୍ରକୃତ; କମସଲ୍—3. Not genuine.

**ନକଲ ଆଣିବା**—ଦେ. କ୍ରି—କୌଣସି ଲେଖାର ପ୍ରତିଲିପି ସଂଗ୍ରହ କରିବା—
Nakala āṇibā To procure or bring out a copy of a writing.
নকল আনা नकल लाना

**ନକଲ ଉତାରିବା**—ଦେ. କ୍ରି—୧ । ପ୍ରତିଲିପି କରିବା—
Nakala utāribā 1. To make a copy.
নকল করা ୨ । ଅନୁକରଣ କରିବା—2. To imitate.
नकल उतारना

**ନକଲ କରିବା**—ଦେ କ୍ରି—୧ । ଥଟ୍ଟା କରିବା—
Nakala karibā 1 To jest.
নকল করা; নকলান ୨ । ଛଇ ବାହାର କରିବା—
नकल करना 2 To make a sport.
( ନକଲ କାଢ଼ିବା—ଅନ୍ୟରୂପ ) ୩ । କାହାରିକୁ ଅନୁକରଣ କରି ଥଟ୍ଟା ବା ପରିହାସ କରିବା—3. To mimic; to redicule by imitating.

୪ । ପ୍ରତିଲିପି କରିବା—4. To make a copy.

୫ । ଅନୁକରଣ କରିବା—5. To imitate.

**ନକଲ ନବିସ**—ବୈଦେ. ବି. ( ଫା ) - ୧ । ପ୍ରତିଲିପିକାରକ, ଯେଉଁ କର୍ମଚାରୀ ନକଲ କରିବାକୁ ନିଯୁକ୍ତ ହୋଇଥାଏ—
Nakala nabis 1. A copyist; a copying clerk.
নকল নবীস
नकल नवीस ୨ । ଯେ ଦଲିଲ ଉତାରେ—
2. Transcriber of documents.

**ନକଲ ନବିସି**—ବୈଦେ. ବି—୧ । ନକଲ ନବିସ୍ ( ଦେଖ )
Nakala nabisi 1. Nakala nabis ( See )
নকল নবীসী ୨ । ନକଲ ନବିସ୍‌ର କର୍ମ ବା ପଦବୀ—
नकल नवीसी 2 The post of a copyist.

**ନକଲ ନୋର୍**—ଦେ. ବି—ନକନୋର୍ ( ଦେଖ )
Nakala nor Nakanor ( See )

**ନକଲ ବହି**—ବୈଦେ. ବି. (ଫା. ନକଲ୍ + ବହି) (କଟକଣା ଓ ମହାଜନୀ ସିରସ୍ତା )—୧ । କୌଣସି ସିରସ୍ତାରୁ ଅନ୍ୟତ୍ର ପ୍ରେରିତ ପତ୍ରାଦିର ପ୍ରତିଲିପି ଯେଉଁ ପୁସ୍ତକରେ ଲେଖା ହୋଇ ରହେ—1. A book in which copies of letters issued from an office is kept.
Nakala bahi
নকল বহী
नकल बही

୨ । ରେଜେଷ୍ଟ୍ରିଖାନାରେ ଯେଉଁ ଖାତାରେ ରେଜେଷ୍ଟ୍ରି ହୋଇଥିବା ଦସ୍ତାବିଜମାନଙ୍କର ଅବିକଳ ପ୍ରତିଲିପି ରହେ—
2 A book kept in the Registration office in which the registrered documents are copied out.

୩ । ଏକପ୍ରକାର ଖୁବ୍ ବାରିକ୍ କାଗଜର ବହି, ଯାହାର ପୃଷ୍ଠା ତଳେ କପିଙ୍ଗ୍ କାଳିରେ ଲେଖା ଚିଠି ଆଦି ଚିପି ଦେଲେ ତାହାର ନକଲ ଉଠିଯାଏ—
3. A copying book.

**ନକଲ୍**—ଦେ. ବି—ଥଟ୍ଟା; ପରିହାସ, କୌତୁକ—
Nakal नकल नकल Jest; fun.
( ଅସଲ—ବିପରୀତ ) ଦେ ବିଣ ନକଲ ( ଦେଖ )
নকলী नकली Nakala ( See )

**ନକଲିଆ**—ଦେ. ବିଣ. ପୁଂ. ଓ ସ୍ତ୍ରୀ—୧ । ଥଟ୍ଟାବାଜ୍—
Nakaliā 1 Jestive; jocular.
নকুলিয়া; নকুলে ୨ । କୌତୁକପ୍ରିୟ—
नक्काल 2. Sportive; funny.
୩ । ଅନୁକରଣପ୍ରିୟ—3 Mimicing.
୪ । ଯେ ଅନ୍ୟକୁ ହସାଇବା ଭଳି କଥା କହିବାରେ ପଟୁ—
4. Witty; humorous.
୫ । ନଅଗୋଟି କଳି ଲାଗିଥିବା ( କୁର୍ତ୍ତା )—
5. (coat) Having 9 long triangular bits of cloth sewn to it.

**ନକସ**—ବୈଦେ.ବି. (ଆ. ନକ୍‌ସ) —୧ । ଗଞ୍ଜପା ଖେଳର ଏକଅବସ୍ଥା—
Nakasa 1. A state of the distribution of cards in a game at Gañjapā when some cards of one player tally with those of another.
নকস
नकश

[ଦ୍ର—ଏଥିରେ ୩।୪ ଜଣ ଖେଳନ୍ତି । ଦୁଇଜଣ ଖେଳାଳିଙ୍କର ରୁପ ଗଣନାରେ ୧୨ ହେଲେ ଏବଂ ଜଣକର ଏକାକୁ ଅନ୍ୟ ଜଣକର ଏକା, ରଜାକୁ ରଜା, ମନ୍ତ୍ରୀକୁ ମନ୍ତ୍ରୀ ଓ ଦଶକୁ ଦଶର ମେଳ ହେଲେ ନକସ ହୁଏ । ]

୨ । ହାତରେ ପିନ୍ଧିବା ଚିତ୍ରିତ କାଚବଳୟ—
2. Ornamental glass bangle with various designs worked on it.

ବିଣ - ନକସୀ ( ଦେଖ )—Nakasī ( See )

ସୁନା ରୁପା ନକସ କାଚ ଚୁଡ଼ି ଖଣ୍ଡା
ଅଣ୍ଟାରେ ବହୁ ମରଛତ୍ର କେତେ ଭେଣ୍ଡା—କୃଷ୍ଣସିଂହ, ମହାଭାରତ. କର୍ଣ୍ଣ ।

**ନକସା**—ବୈଦେ. ବି. ( ଆ. ନକ୍‌ସା )—୧ । ଅଙ୍କିତ ଚିତ୍ର—
Nakasā 1 A drawing.
নকসা ୨ । ଅଙ୍କିତ ପ୍ରତିମୂର୍ତ୍ତି; ଛବି—2. Picture.
नक्सा ୩ । ଭୂମି ବା ଦେଶ ଆଦିର ଚିତ୍ର—
3. A plan; map; sketch.
୪ । ସୂକ୍ଷ୍ମ କାରୁକାର୍ଯ୍ୟ—4 Artistic design.
୫ । ଆଦର୍ଶ—5. A design; pattern.
୬ । ଛଇ; କୌତୁକ; ତାମସା—6. Jest; sport.
ବିଣ—ନକସୀ ( ଦେଖ )—Nakasī ( See )

**ନକସା କାଟିବା**—ଦେ. କ୍ରି—୧ । ଚିତ୍ର ଅଙ୍କନ କରିବା—
Nakasā kāṭibā 1. To draw up a plan, a map or a design.
नकसा काटा
**नक्सा खींचना** ୨ । ( ଅଳଙ୍କାର ଆଦିରେ ) ଲତା ପତ୍ର ଆଦି ଖୋଦନ କରିବା—
( ନକସା କରିବା—ଅନ୍ୟରୂପ )
2 To engrave artistic figures on ornaments

**ନକସା କାଢ଼ିବା**—ଦେ. କ୍ରି.—କାହାର ଗଡ଼ିକଥି ଓ କଥାବାର୍ତ୍ତାର ଶୈଳୀକୁ ଅନୁକରଣ କରି ଉପହାସ କରିବା; ଛଇ ବାହାର କରିବା—To caricature; to mimic a person's movements and expressions; to do something in sport.
Nakasā kāṛhibā
**नकल दिखाना**
( ନକସା କରିବା—ଅନ୍ୟରୂପ )

**ନକସୀ**—ବୈଦେ. ବିଣ. ( ଆ. ନକ୍କାସୀ )—ବର୍ଣ୍ଣିଆମାନଙ୍କଦ୍ୱାରା କରା ଯାଇଥିବା ସୁନା ରୁପାର ଓ ମଣିର କାରୁକାର୍ଯ୍ୟ ଓ ଖୋଦାଇ କାର୍ଯ୍ୟବିଶିଷ୍ଟ ( ଅଳଙ୍କାର ଆଦି ); ଦାଇମନ୍-କଣ୍ଠା ଓ ଫୁଲ ଲତା ଆଦି କାରୁକାର୍ଯ୍ୟବିଶିଷ୍ଟ—
Nakasi
नकाशी
**नक्काशी**
( ନକାସୀ—ଅନ୍ୟରୂପ ) ( ornaments ) Having artistic or ornamental designs or engravings (on stone or metal).

ଦେ. ବି—୧ । ଧାତୁ ଓ ମଣି ଆଦିରେ ଲତାପତ୍ର ଆଦି ଖୋଦନ କରିବା; ଖୋଦାଇ କାମ—1. Engraving; carving on metal and gems.
୨ । କାରୁକାର୍ଯ୍ୟ; କାମ—2. Artistec designs.
୩ । ଯେ ଖୋଦେଇ କାମ କରେ—3. Engraver.
୪ । ଚିତ୍ରକାର; ଚିତ୍ର ଆଙ୍କିବା ଲୋକ—4. Painter.
୫ । ନକସା କରିବା ଲୋକ—5. Draughtsman

**ନକାବ୍**—ବୈଦେ. ବି. (ଆ)—ମୁସଲମାନ୍ ଜାତୀୟା ସ୍ତ୍ରୀ ଓ ସାହେବାଣୀ-ମାନେ ମୁଣ୍ଡରେ ମୁହଁଠାରୁ ବେକ ପର୍ଯ୍ୟନ୍ତ ପକାଇବା ଖୁବ୍ ପତଳା ବା ଜାଲିଜାଲିଆ ଲୁଗା ବା ଜାଲି ଓଢ଼ଣା—
Nakāb
नकाव
**नकाब**
A veil of gauze or net put on the head over the face by respectable Mahomedan and European ladies

[ ଦ୍ର—ଏହାର ବ୍ୟବହାରଦ୍ୱାରା ମୁହଁରେ ଧୂଳି ଓ ପୋକଆଦି ପଡ଼ିପାରେ ନାହିଁ । ପରିଧାନକାରିଣୀ ସମସ୍ତଙ୍କୁ ଦେଖି ପାରନ୍ତି, କିନ୍ତୁ ତାଙ୍କ ମୁହଁ ଅନ୍ୟ କେହି କରେଖି କରି ଦେଖିପାରେ ନାହିଁ । ]

**ନକାସୀ କାମ**—ଦେ. ବି. (ଆ. ନକ୍କାସୀ+ସଂ. କର୍ମ)—
Nakāsi kāma ୧ । ଧାତୁ ଓ ମଣିଆଦି ଉପରେ ଖୋଦନ କର୍ମ—
नकासीकाय 1. Engraving or carving on metal and gems.
**नक्काशीकाम**
୨ । ଧାତୁ ଓ ମଣିଆଦି ଉପରେ ଖୋଦନ କରିବା ବିଦ୍ୟା ବା କୌଶଳ—2. The art of engraving or carving on metals and gems.

**ନକାସୀଦାର**—ବୈଦେ. ବିଣ—ଖୋଦନ କର୍ମ କରାଯାଇ ଥିବା (ଧାତୁମୟ ବା ମଣିମୟ ଅଳଙ୍କାରାଦି)—
Nakāsidār
नकासीदाव Engraved (ornaments or gems).
**नक्काशीदार**

**ନକି**—ଦେ. ବି—୧ । ପତଳା ପିତ୍ତଳର ପତ୍ର (ଯାହା ସାମାନ୍ୟ ଭାର ପାଇଲେ ଲକ ଲକ ହୁଏ)—1. Slender brass plates.
Naki
୨ । ପିତଳ ପତ୍ରରେ ତିଆରି ବାସନ; ତସଲା—
2. A pot made from slender or thin brass plates.
ପ୍ରାଦେ. (ଗଞ୍ଜାମ) ବି—ଛିଆପୁଡ଼ା କଉଡ଼ି ଖେଳରେ ୧, ୫, ୯ ଓ ୧୩ ସଂଖ୍ୟକ ଦାନ—A throw of cowries resulting in 1, 5, 9 and 13 cowries falling with the ventral side upwards.
**नक्की**
ପ୍ରାଦେ. (ବାଲେଶ୍ୱର) ବି—ପିତଳ ପଲମ—
A flat pan of brass.

**ନକିଞ୍ଚନ**—ସଂ. ବିଣ. ପୁଂ (ନ+କିଞ୍ଚନ; ବହୁବ୍ରୀହି)—୧ । ଅକିଞ୍ଚନ—
Nakiñchana 1. Of no importance.
(ନକିଞ୍ଚନା—ସ୍ତ୍ରୀ) ୨ । ହେୟ —2. Negligible.
୩ । ଅତି ଦରିଦ୍ର—3. Very poor.

**ନକିବ**—ବୈଦେ. ବି. (ଆ)—୧ । ରାଜାଙ୍କର ଆଗମନବାର୍ତ୍ତା ପ୍ରକାଶକ ଅଗ୍ରଗାମୀ ଦୂତ—1. A messenger who heralds the arrival of a king just before his arrival; herald.
Nakiba
नकीव
**नकीब**
୨ । ରାଜାଙ୍କ ଯଶୋଗାୟକ ବ୍ୟକ୍ତି; ଚାରଣ; ଭାଟ—
2. A panegyrist
୩ । (କଚିତ୍ ଅର୍ଥ) ଆଗରୁ ଦିଆଯିବା ପରିଚୟ; ଅଗ୍ରସୂଚନା—
3. Introduction; preliminary hint.
୪ । ଆପଣା ପ୍ରଭୁଙ୍କର ପରିଚୟଦାତା—4. A usher.
୫ । ପିଆଦା—5 Peon.

**ନକିହଂସ**—ଦେ. ବି—ହଂସଜାତୀୟ ବୃହତ୍ ପକ୍ଷିବିଶେଷ—
Nakihamsa The comb-duck; Sarcidiornis Melanotus.
नकता
**नकटा** [ ଦ୍ର—ଏହାର ମୁଣ୍ଡ ଧଳା, ମାତ୍ର ତହିଁରେ କଳାକଳା ଫୁଟ-ଫୁଟିକା ଦାଗ ଥାଏ । ଅଣ୍ଡିରା ଚଢ଼େଇର ମୁଣ୍ଡରେ ଚର୍ମର ଚୂଡ଼ାଥାଏ । ଏମାନଙ୍କୁ ବଡ଼ ବଡ଼ ଜଳାଶୟରେ ଅଳ୍ପ ସଂଖ୍ୟାରେ ଦଳ ବାନ୍ଧି ଚରିବାର ଦେଖାଯାଏ । ]

**ନକୁଟି**—ଦେ. ବି.—ଶାଖାଶ୍ରୟୀ ବର୍ଗର ପକ୍ଷିବିଶେଷ—
Nakuṭi The martin; Cotyle Sinensis.
नकुटि [ଦ୍ର—ଏମାନେ ୩½ ଅଙ୍ଗୁଳ ଦୀର୍ଘ; ପକ୍ଷ ଖଇରିଆ; ନଦୀର ଅତଡ଼ାରେ ଦଳ ଦଳ ହୋଇ ବସା କରନ୍ତି ।]

**ନକୁଳ**—ସଂ. ବି. (ବହୁବ୍ରୀହି; ନ=ନାହିଁ+କୁଳ=ବଂଶ)—
Nakuḷa ୧ । ମହାଦେବ—1. Siba.
୨ । ନେଉଳ—2 Ichneumon; mongoose.

୩ । ୪ର୍ଥ ପାଣ୍ଡବ; ମାଦ୍ରୀଙ୍କ ପ୍ରଥମ ପୁତ୍ର—
3. The 4th Pāṇḍaba brother.
[ଦ୍ର—ଏ ଅଶ୍ୱିନୀକୁମାରଙ୍କ ଔରସରେ ପାଣ୍ଡୁ ରାଜାଙ୍କର ଦ୍ୱିତୀୟ ପତ୍ନୀ ମାଦ୍ରୀଙ୍କ ଗର୍ଭରେ ସହଦେବଙ୍କ ସହିତ ଜନ୍ମି ଥିଲେ, ନକୁଳ ବଡ଼, ସହଦେବ ସାନ । ନକୁଳ ଦେଖିବାକୁ ଅତି ସୁନ୍ଦର ଓ ନୀତି-ଶାସ୍ତ୍ର, ଧର୍ମଶାସ୍ତ୍ର ଏବଂ ଯୁଦ୍ଧ ବିଦ୍ୟାରେ ପାରଙ୍ଗମ ଥିଲେ । ଏ ପଶୁ-ଚିକିତ୍ସା ବିଦ୍ୟା ମଧ୍ୟ ଜାଣୁଥିଲେ । ବିରାଟ ଭବନରେ ପାଣ୍ଡବମାନଙ୍କ ଅଜ୍ଞାତବାସ କାଳରେ ନକୁଳ ତନ୍ତିପାଳ ନାମ ଧାରଣ କରି ବିରାଟଙ୍କର ଗୋସ୍ତ୍ରରଣ କର୍ମରେ ନିଯୁକ୍ତ ଥିଲେ । ଏ ଚେଦିରାଜ-କନ୍ୟା କରେଣୁମତୀଙ୍କୁ ବିବାହ କରିଥିଲେ ଓ ତାଙ୍କ ଗର୍ଭରୁ ଏହାଙ୍କର ନିରମିତ୍ର ନାମକ ପୁତ୍ର ଜନ୍ମି ଥିଲା । ଯୁଧିଷ୍ଠିରଙ୍କ ରାଜସୂୟ ଯଜ୍ଞ ଉପଲକ୍ଷରେ ଏ ପଶ୍ଚିମ ଦେଶସ୍ଥ ରାଜ୍ୟମାନଙ୍କୁ ଜୟ କରିଥିଲେ ଓ ଦ୍ୱାରକାକୁ ଦୂତ ପଠାଇ ବାସୁଦେବ (ଶ୍ରୀକୃଷ୍ଣ)ଙ୍କୁ ଯୁଧିଷ୍ଠିରଙ୍କ ଅଧୀନତା ସ୍ୱୀକାର କରାଇଥିଲେ । (ହି. ଶ)]
୪ । ପୁତ୍ର (ହି. ଶ.)—4 A son.
୫ । ପ୍ରାଚୀନ କାଳର ଏକପ୍ରକାର ବାଦ୍ୟ (ହି. ଶ.)—
A kind of musical instrument used in ancient India.
(ନକୁଳା—ସ୍ତ୍ରୀ) ସ ବିଣ. ପୁଂ—କୁଳହୀନ—Having no family or pedigree or caste.
ବୈଦେ. ବି.—୧ । (ଆ. ନୁକଲ୍) ମାଦକ ଦ୍ରବ୍ୟ ସେବନ ପରେ ଖିଆ ଯିବା ମୁଖରୋଚକ ପଦାର୍ଥ; ଗ୍ଲହ୍—1. Something eaten after swallowing any intoxicating drug or liquor
ନକୁଲ
ନକ୍କୁଲ
ଦେ. ବି. (ପୁଂ) ଲୋକଙ୍କ ନାମ—
A name given to males.

**ନକୁଳକ**—ସ. ବି.—୧ । ପ୍ରାଚୀନ କାଳର ଏକ ପ୍ରକାର ଗହଣା (ହି.ଶ)
Nakuḷaka 1. A kind of ornament used in ancient-India
୨ । ଟଙ୍କା ଆଦି ରଖିବାର ଏକ ପ୍ରକାର ଥଳି (ହି. ଶ )—
2 A kind of money-bag.

**ନକୁଳ କନ୍ଦ**—ସ. ବି.— ଗନ୍ଧନାକୁଳୀ (ଦେଖ)
Nakuḷa kanda Gandhanākuḷī (See)
(ନକୁଲାଢ୍ୟା—ଅନ୍ୟରୂପ)

**ନକୁଳ ତୈଳ**—ସ. ବି.—ଅମବାତ ଆଦି ରୋଗରେ ଉପକାରୀ ନକୁଳ ମାଂସ ଓ ଅନ୍ୟ କେତେକମସଲା ସିଦ୍ଧ କରି ଯାଇ ପ୍ରସ୍ତୁତ ହୋଇଥିବା ତୈଳ—A medicated oil (in which the flesh of ichneumon is boiled) used for rheumatism.
Nakuḷa taila

**ନକୁଳା**—ସ. ବିଣ. ସ୍ତ୍ରୀ—ନକୁଳର ସ୍ତ୍ରୀଲିଙ୍ଗ—
Nakuḷā Feminine of Nakuḷa.
ସ. ବି. ସ୍ତ୍ରୀ—ପାର୍ବତୀ (ହି. ଶ.)—Goddess Pārbatī.

**ନକୁଳାନ୍ଧ ରୋଗ**—ସ. ବି —ସୁଶ୍ରୁତ ଅନୁସାରେ ଚକ୍ଷୁର ରୋଗବିଶେଷ, ଯହିଁରେ ମନୁଷ୍ୟର ଆଖି ନେଉଳ ଆଖି ଭଳି କାଳି ହୁଏ ଓ ବସ୍ତୁମାନ ରଙ୍ଗବେରଙ୍ଗ ଦେଖା ଯାଏ—A kind of eye-disease.
Nakuḷāndha roga

**ନକୁଳୀ**—ସ. ବି. ସ୍ତ୍ରୀ (ନକୁଳ +ସ୍ତ୍ରୀ. ଈ)—୧ । ମାଈ ନେଉଳ—
Nakuḷī 1. A female ichneumon.
୨ । କୁକ୍କୁଟୀ—2. A hen.
୩ । କୁଙ୍କୁମ—3. Saffron.
୪ । ଜଟାମାଂସୀ—
4. A kind of herb; Hedysarum.
୫ । ଶଂଖିନୀ ନାମକ ବନୌଷଧି ( ହି. ଶବ୍ଦସାଗର )—
5. A medicinal plant.

**ନକେଇ**—ଗ୍ରା. ବିଣ ( ସ ଲପ୍ସିକୃତ; ବମ୍ବା ଲପ୍ସିକା=ଯାଉ) ଲକେଇ; ଯାଉଆ; ଅତିରିକ୍ତ ପରିମାଣରେ ସିଦ୍ଧ ହେବା ଯୋଗୁଁ କୋମଳ ହୋଇଥିବା(ଅନ୍ନ)—Gruelly; become excessively softened owing to being over-boiled.
Nakei
(ନକାଇ—ଅନ୍ୟରୂପ)
ଲେକଟ
ଲପସୀ, ମାଁଡ଼ୀ
(ବିପରୀତ—ଖୁରୁଳିଆ)
ନକେଇ ! ଭାତ ହେଲା ନକେଇ, ଖାଇଣ ହେଲା ଡୁଲଡୁଆ,
ଜଳି ବସିଲେ ଟଳଦିଆ —ଶିଶୁଗୀତ ।

**ନକେଇବା**—ଗ୍ରା. କ୍ରି (ଭାତ) ଅତିରିକ୍ତ ପରିମାଣରେ ସିଦ୍ଧ ହୋଇ ନରମ ହେବା; ଲକେଇବା, ଯାଉଆ ହେବା—(rice) To become over boiled and softened; to become gruelly.
Nakeibā
ଲେକଟ ହୱ୍ଆ
ଲପସୀ ହୋନା, ମାଁଡ଼ୀହୋନା
(ନକାଇବା—ଅନ୍ୟରୂପ)

**ନକ୍ତ**—ସ. ବି. ( ନଜ୍ ଧାତୁ=ଲଜ୍ଜିତ ହେବା+ଅଧିକରଣ. ତ )—
Nakta ୧ । ରାତ୍ରି—1. Night.
୨ । ଯେଉଁ ସମୟରେ ମୂହୂର୍ତ୍ତ ମାତ୍ର ଦିନ ବାକି ଥାଏ; ସନ୍ଧ୍ୟା-ଗମ ସମୟ—2 Evening; nightfall, dusk.
୪ । ଶିବ (ହି. ଶବ୍ଦସାଗର)—4. Śiba.
୫ । ରାଜା ପୃଥୁଙ୍କର ଏକ ପୁତ୍ର—
5. Name of a son of king Pṛuthu.
ସ. ବିଣ. ପୁଂ (ନଜ ଧାତୁ+କର୍ତ୍ତୃ. ତ)—ଲଜ୍ଜିତ—
(ନକ୍ତା—ସ୍ତ୍ରୀ) Ashamed.
୩ । ନକ୍ତ ବ୍ରତ (ଦେଖ)—3. Nakta brata ( See )

**ନକ୍ତକ**—ସ. ବି (ନଜ୍ ଧାତୁ=ଲଜ୍ଜିତ ହେବା+କରଣ. ତ+କ)—
Naktaka ଛିନ୍ନ ବସ୍ତ୍ର; ନେକ୍ଡ଼ା କନା; କନ୍ଥା; ଛିଣ୍ଡା କନା—Rags.

**ନକ୍ତଚର**—ସ. ବି (ନକ୍ତ+ଚର ଧାତୁ=ବିଚରଣ କରିବା+କର୍ତ୍ତୃ. ଅ)
Naktachara ୧ । ରାକ୍ଷସ—1. A demon; fiend.
(ନକ୍ତଂଚର—ଅନ୍ୟରୂପ) ୨ । ପେଚକ —2. An owl.
(ନକ୍ତଚରୀ—ସ୍ତ୍ରୀ) ୩ । ବିରାଡ଼ି—3. A cat.
୪ । ଚୋର—4. A thief.
ସଂ. ବିଣ. ପୁଂ—ଯେ ରାତ୍ରିରେ ବିଚରଣ କରେ—
Wandering at night.

**ନକ୍ତଗ୍ଟରୀ**—ସଂ. ବି ଓ ବିଣ (ନକ୍ତ+ଚର ଧାତୁ+ଇନ୍; ୧ମା. ୧ବ)—
Naktachāri ନକ୍ତଚର ( ଦେଖ )
(ନକ୍ତଚାରିଣୀ—ସ୍ତ୍ରୀ) Naktachara ( See )

**ନକ୍ତଞ୍ଚର**—ସଂ. ବି ଓ ବିଣ (ନକ୍ତଂ+ଚର ଧାତୁ+କର୍ତ୍ତୃ. ଅ)—
Naktañchara ନକ୍ତଚର ( ଦେଖ )
(ନକ୍ତଞ୍ଚାରୀ—ଅନ୍ୟରୂପ) Naktachara (See)
(ନକ୍ତଞ୍ଚରୀ, ନକ୍ତଞ୍ଚାରିଣୀ—ସ୍ତ୍ରୀ)

**ନକ୍ତଞ୍ଚର୍ଯ୍ୟା**—ସଂ. ବି (ନକ୍ତଂ=ରାତ୍ରି+ଚର୍ଯ୍ୟା=ଭ୍ରମଣ)—ରାତ୍ରି ଯୋଗେ
Naktañcharjyā ଭ୍ରମଣ—Walking by night

**ନକ୍ତନ୍ଦିବ**—ସଂ. ଅ ( ଦ୍ୱନ୍ଦ୍ୱ; ନକ୍ତଂ+ଦିବା; ନିପାତନ )—ଦିବାରାତ୍ର,
Naktandiba ରାତ୍ରିଦିନ; ଦିନରେ ଓ ରାତ୍ରରେ—Day and night.

**ନକ୍ତ ବ୍ରତ**—ସଂ. ବି—ଦିବସରେ ଉପବାସ ରହି ରାତ୍ରିରେ କିମ୍ବା ଠିକ୍
Nakta brata ସନ୍ଧ୍ୟା ପୂର୍ବରୁ ଭୋଜନକରିବା ବ୍ରତ; ରୋଜା—
Fasting by day and eating at dusk or in night as a religious now.
[ ଦ୍ର—ମୁସଲମାନ୍‌ମାନେ ରମ୍‌ଜାନ୍ ମାସରେ ନକ୍ତ ବ୍ରତ ପାଳନ କରନ୍ତି । ]

**ନକ୍ତଭୋଜୀ**—ସଂ. ବିଣ. ପୁଂ (ନକ୍ତ+ଭୁଜ୍ ଧାତୁ+କର୍ତ୍ତୃ. ଇନ୍; ୧ମା.
Naktabhoji ୧ବ)—ଯେ ଦିନରେ ଉପବାସ ରହି ରାତ୍ରରେ
(ନକ୍ତଭୋଜିନୀ—ସ୍ତ୍ରୀ) ଭୋଜନ କରେ; ନକ୍ତବ୍ରତଧାରୀ—
Taking meals at night.
ସଂ. ବି—୧ । ପେଚ୍ଚା—1. Owl.
୨ । ବାଦୁଡ଼ି—2. Bat.

**ନକ୍ତମାଲ**—ସଂ. ବି ( ନକ୍ତଂ=ରାତ୍ରରେ+ଆ+ଅଲ୍ ଧାତୁ=ଭୂଷିତ
Naktamāla କରିବା+ଅ; ରାତ୍ରରେ ଫୁଲ ଫୁଟିବାରୁ)—
(ନକ୍ତାହ୍ୱ—ଅନ୍ୟରୂପ) କରଞ୍ଜ ଗଛ—A kind of tree; Galidupa Arborea

**ନକ୍ତମୁଖା**—ସଂ. ବି (ନକ୍ତଂ+ଉଖ୍ ଧାତୁ=ଉଜ୍ଜ୍ୱଳକରିବା+କର୍ତ୍ତୃ ଅ+
Naktamukhā ସ୍ତ୍ରୀ. ଆ )—ରାତ୍ରି—Night.

**ନକ୍ତା**—ସଂ. ବି. ସ୍ତ୍ରୀ—୧ । ବିଶଲ୍ୟାଙ୍ଗଲୀ ଗଛ—
Naktā 1. A poisonous plant
୨ । କନିଅର ଗଛ—
2. Thevetia Neriflona tree.
୩ । ହଳଦୀ (ହି. ଶ)—3. Turmeric.
୪ । ରାତ୍ରି (ହି. ଶ)—4. Night.
ସଂ. ବିଣ. ସ୍ତ୍ରୀ—ନକ୍ତର ସ୍ତ୍ରୀଲିଙ୍ଗ—
Feminine of Nakta.

**ନକ୍ତାନ୍ଧ**—ସଂ. ବିଣ. ପୁଂ ( ନକ୍ତ+ଅନ୍ଧ )—ଯାହାକୁ ରାତ୍ରରେ ବା
Naktāndha ଅନ୍ଧାରରେ ଜାଲୁଜାଲୁଆ ଦିଶେ; ଅନ୍ଧାରକଣା,
(ନକ୍ତାନ୍ଧା—ସ୍ତ୍ରୀ) ରାତ୍ରକଣା—Moon-blind; ( a person )
ନକ୍ତାନ୍ଧତା } ବି
ନକ୍ତାନ୍ଧ୍ୟ }
who suffers from nyctalopia; blind by night

**ନକ୍ତାନ୍ଧତା**—ସଂ. ବି (ନକ୍ତାନ୍ଧ+ଭାବାର୍ଥରେ ତା)—ଅନ୍ଧାରକଣା ରୋଗ—
Naktāndhatā Nyctalopia; night-blindness.

**ନକ୍ତି**—ସଂ. ବି (ନକ୍ତ ଧାତୁ=ଲଜ୍ଜିତହେବା+ଅଧିକରଣ. ଇ)—
Nakti ରାତ୍ରି (ହି. ଶ)—Night.

**ନକ୍ର**—ସଂ. ବି (ନ=ନୁହେ+କ୍ରମ୍ ଧାତୁ=ଗମନକରିବା+କର୍ତ୍ତୃ. ଅ,
Nakra ଯେ ଆପଣା ସ୍ଥାନ ଅର୍ଥାତ୍ ଜଳରୁ ଉପରକୁ ଯାଏ ନାହିଁ
ଏବଂ ସ୍ୱସ୍ଥାନରେ ଥାଇ ଶିକାରକୁ ଆକର୍ଷଣ କରେ)—
୧ । କୁମ୍ଭୀର—1. Alligator.
୨ । ଜଳଜନ୍ତୁ—2. Aquatic animal.
୩ । ଦ୍ୱାରବନ୍ଧର ଉପର କାଠ—
3 The upper piece of a door-frame.

**ନକ୍ରରାଜ**—ସଂ ବି—ଗ୍ରାହ; ହାଙ୍ଗର—
Nakrarāja A shark.

**ନକ୍ରା**—ସଂ ବି. ସ୍ତ୍ରୀ (ନକ୍ର+ସ୍ତ୍ରୀ. ଆ)—ନାସିକା; ନାକ—
Nakrā Nose

**ନକ୍ଷ (ଧାତୁ)**—ସଂ:—ଗମନକରିବା; ଗତିକରିବା—
Naksha (root) To go; to move.

**ନକ୍ଷତ୍ର**—ସଂ. ବି (ନ=ନୁହେ+କ୍ଷି ଧାତୁ=କ୍ଷୟପାଇବା+କର୍ତ୍ତୃ. ଅତ୍ର;
Nakshatra କିମ୍ବା ନକ୍ଷ ଧାତୁ+କର୍ତ୍ତୃ ଅତ୍ର)—୧ । ତାରକା;
ତାରା—1. Star.
[ ଆକାଶରେ ରାତ୍ରରେ ଦେଖାଯିବା ଚନ୍ଦ୍ର ଛଡ଼ା ଆଉ ଉଜ୍ଜ୍ୱଳ ଜ୍ୟୋତିଷ୍କମାନଙ୍କୁ ତାରା ବୋଲାଯାଏ । ସେଥିମଧ୍ୟରେ ୫ଟି ଜ୍ୟୋତିଷ୍କ ଗ୍ରହ ଅଟନ୍ତି ଓ ଅନ୍ୟ ସମସ୍ତେ ତାରା । ତାରାଗଣ ଆମ୍ଭମାନଙ୍କ ଆଖିକୁ ଛୋଟ ଦେଖାଗଲେ ହେଁ ସେମାନେ ସୂର୍ଯ୍ୟପରି ବା ସୂର୍ଯ୍ୟଙ୍କ ଠାରୁ ବଡ଼ । ସୌରଜଗତ୍ ପରି ପ୍ରତ୍ୟେକ ତାରାର ଗୋଟିଏ ଗୋଟିଏ ଜଗତ ଅଛି । ସୂର୍ଯ୍ୟ ଆମ୍ଭମାନଙ୍କଠାରୁ ଯେତେଦୂରରେ ଅଛନ୍ତି ତାରାମାନେ ତଦପେକ୍ଷା ବହୁଦୂରରେ ଅଛନ୍ତି । କୌଣସି କୌଣସି ତାରା ପୃଥିବୀଠାରୁ ଏତେ ଦୂରରେ ଅଛନ୍ତି ଯେ ସେମାନଙ୍କର ଆଲୋକ ପ୍ରତି ସେକେଣ୍ଡ୍‌ରେ ୧ ଲକ୍ଷ ୮୩ ହଜାର ମାଇଲ୍ ଗତିକରି ପୃଥିବୀରେ ପହଞ୍ଚିବାକୁ ଶହଶହ ବର୍ଷ ଲାଗେ । ପୃଥିବୀର ଖୁବ୍ ନିକଟବର୍ତ୍ତୀ ତାରାର ଆଲୋକ ପୃଥିବୀରେ ପହଞ୍ଚିବାକୁ ୩ ବରଷ ଲାଗେ । ପୃଥିବୀଠାରୁ ସୂର୍ଯ୍ୟ ଯେତେ ଦୂରରେ ଅବସ୍ଥିତ କୌଣସି କୌଣସି ତାରା ତହିଁ ଅପେକ୍ଷା ୨୦ ହଜାର ୬ ଶହ ଗୁଣ ଦୂରରେ ଅଛନ୍ତି । ସୂର୍ଯ୍ୟଙ୍କ ଚାରି ପାଖେ ଯେଉଁପରି ପୃଥିବୀ ଓ ଗ୍ରହମାନେ ବୁଲୁଅଛନ୍ତି ସେହିପରି ଗୋଟିଏ ଗୋଟିଏ ତାରାର ଚାରି ପାଖେ ଗୋଟିଏ ଗ୍ରହ ବୁଲୁଅଛନ୍ତି । ଏପରି ଅଗଣିତ ସୌରଜଗତ୍ ସମ୍ବଳିତ ବିଶ୍ୱ ବ୍ରହ୍ମାଣ୍ଡ କି ପ୍ରକାଣ୍ଡ ତାହା କଳ୍ପନାରେ ସୁଦ୍ଧା ଠଉରାଇ ହେବ ନାହିଁ । ହି. ଶ]
୨ । ତାରାପୁଞ୍ଜ—2. Constellation of star s
[ଦ୍ର—କେତେକ ତାରା ପୁଞ୍ଜ ନକ୍ଷତ୍ରରୂପେ ଓ କେତେକ ରାଶି ରୂପେ କଳ୍ପିତ ଏବଂ ଆଉ କେତେକ ନକ୍ଷତ୍ରଙ୍କୁ ମନୁଷ୍ୟର କଳ୍ପନାନୁସାରେ ବା ପୌରାଣିକ ଉପାଖ୍ୟାନମତେ ଭିନ୍ନ ଭିନ୍ନ ନାମ ଦିଆ ଯାଇଅଛି । ]

୩ । ହିନ୍ଦୁ ଜ୍ୟୋତିଷୋକ୍ତ ୨୭ଗୋଟି ତାରା ବା ତାରାପୁଞ୍ଜ, ଯାହାଙ୍କ ପାଖ ଦେଇ ଚନ୍ଦ୍ରମା ଗତି କରନ୍ତି—3. The 27 constellations of stars in Hindu astronomy, the lunar mansions.

[ ଦ୍ର—୨୭ ନକ୍ଷତ୍ରର ନାମ —ଅଶ୍ୱିନୀ, ଭରଣୀ, କୃତ୍ତିକା, ରୋହିଣୀ, ମୃଗଶିରା, ଆର୍ଦ୍ରା, ପୁନର୍ବସୁ, ପୁଷ୍ୟା, ଅଶ୍ଳେଷା, ମଘା, ପୂର୍ବଫାଲ୍‌ଗୁନୀ, ଉତ୍ତରଫାଲ୍‌ଗୁନୀ, ହସ୍ତା, ଚିତ୍ରା, ସ୍ୱାତୀ, ବିଶାଖା, ଅନୁରାଧା, ଜ୍ୟେଷ୍ଠା, ମୂଳା, ପୂର୍ବାଷାଢ଼ା, ଉତ୍ତରାଷାଢ଼ା, ଶ୍ରବଣା, ଧନିଷ୍ଠା, ଶତଭିଷା, ପୂର୍ବଭାଦ୍ରପଦ, ଉତ୍ତରଭାଦ୍ରପଦ ଓ ରେବତୀ ।]

ନକ୍ଷତ୍ରମାନଙ୍କ ସମ୍ବନ୍ଧରେ ବିଶେଷ ବିବରଣ—

[ ଦ୍ର—ପୃଥିବୀ ବର୍ଷକେ ଥରେ ସୂର୍ଯ୍ୟଙ୍କର ଚାରିଆଡ଼େ ଘୂରି ଆସେ । କିନ୍ତୁ ଜ୍ୟୋତିଷ ଗଣନାର ସୁବିଧା ପାଇଁ ପଣ୍ଡିତମାନେ କଳ୍ପନା କରିଅଛନ୍ତି ଯେ ସମୁଦାୟ ଆକାଶ ବା ଖ-ଗୋଳରେ ଥାଇ ସୂର୍ଯ୍ୟ ୧୨ ମାସ ବା ୩୬୫ ଦିନରେ ବା ଏକ ସୌର ବର୍ଷରେ ପୃଥିବୀର ଚାରିଆଡ଼େ ଥରେ ଘୂରି ଆସନ୍ତି । ବର୍ଷକ ୧୨ ମାସ ଥିବାରୁ ଖ-ଗୋଳ(୩୬୦ ଡିଗ୍ରୀ)କୁ ୧୨ ଭାଗରେ ବିଭକ୍ତ କରାଯାଇଅଛି । ଏହି ପ୍ରତ୍ୟେକ ଭାଗ ୩୦ ଡିଗ୍ରୀ ଅଟେ ଓ ପ୍ରତ୍ୟେକ ୩୦ ଡିଗ୍ରୀ ପରିମିତ ସୀମା ମଧ୍ୟରେ ଦେଖାଯାଉଥିବା କେତେକ ଉଜ୍ଜ୍ୱଳ ନକ୍ଷତ୍ରମାନଙ୍କୁ ଯୋଗ କରି ଗୋଟିଏ ଗୋଟିଏ ଜୀବ (ଯଥା—ମେଷ, ବୃଷ, ମିଥୁନ, କର୍କଟ, ସିଂହ, କନ୍ୟା, ବିଛା, ମକର, ମୀନ)ର ବା ବସ୍ତୁ (ଯଥା—ତୁଳାଯନ୍ତ୍ର, ଧନୁ, କୁମ୍ଭ)ର ଛବି କଳ୍ପନାସାହାଯ୍ୟରେ ଅଙ୍କିତ କରାଯାଇ ସେହି ନକ୍ଷତ୍ରମାନଙ୍କୁ ସେହି ସେହି ଜୀବ ବା ବସ୍ତୁ ନାମରେ ଡକାଯାଇଅଛି । ଉଦାହରଣ ସ୍ୱରୂପ ଦେଖାଯିବ ଯେ ଯେଉଁ ୩୦ ଡିଗ୍ରୀ ସୀମା ମଧ୍ୟରେ ବିଛା ରାଶି ଅବସ୍ଥିତ ସେଥିରେ ଥିବା ଉଜ୍ଜ୍ୱଳ ତାରାଗୁଡ଼ିକ ଯୋଗ କଲେ ଗୋଟିଏ କଙ୍କଡ଼ା ବିଛାର ରୂପ କଳ୍ପିତ ହୋଇ ପାରିବ । ଏଥିପାଇଁ ଉକ୍ତ ୩୦ ଡିଗ୍ରୀକୁ ବିଛାରାଶି ନାମରେ ଡକା ଯାଏ । ଏହାହିଁ ରାଶିମାନଙ୍କ ନାମକରଣ ।

ଚନ୍ଦ୍ର ପୃଥିବୀର ଚାରିଆଡ଼େ ୩୦ ଦିନରେ ଥରେ ଘୂରି ଆସନ୍ତି । ଏଥିପାଇଁ ଚାନ୍ଦ୍ରମାନ ମାସକ ୩୦ ଦିନ ଓ ଚାନ୍ଦ୍ରମାନ ବର୍ଷକ ୩୬୦ ଦିନ ।

ପ୍ରତ୍ୟେକ ନକ୍ଷତ୍ର ପୃଥିବୀର ଚାରିଆଡ଼େ ୨୭ ଦିନରେ ଥରେ ଘୂରି ଆସେ । ଏଥିପାଇଁ ନାକ୍ଷତ୍ରିକ ମାସ ୨୭ ଦିନ । ନକ୍ଷତ୍ରମାନଙ୍କୁ ହିନ୍ଦୁ ଜ୍ୟୋତିଷିକମାନେ ୨୭ଟି ସ୍ୱତନ୍ତ୍ର ତାରକା ବା ତାରକାପୁଞ୍ଜରେ ବିଭକ୍ତ କରି ପ୍ରତ୍ୟେକଙ୍କୁ ଗୋଟିଏ ଲେଖାଏଁ ସ୍ୱତନ୍ତ୍ର ନାମ ଦେଇ ଅଛନ୍ତି । ନକ୍ଷତ୍ରମାନଙ୍କ ଅବସ୍ଥିତି ବିଷୟ ଭାଗବତ ୫ମ ସ୍କନ୍ଧ ୨୩ଶ ଅଧ୍ୟାୟରେ ବିବୃତ ହୋଇଅଛି । ସୂର୍ଯ୍ୟ ଓ ଚନ୍ଦ୍ରଙ୍କ ପରି ନକ୍ଷତ୍ରମାନେ ପୂର୍ବରେ ଉଦିତ ହୋଇ ପଶ୍ଚିମରେ ଅସ୍ତ ଯାଆନ୍ତି । ସବୁ ନକ୍ଷତ୍ର ଆକାଶର ଉତ୍ତରଦିଗରେ ଥିବା ଧ୍ରୁବ ନକ୍ଷତ୍ରକୁ କେନ୍ଦ୍ର (ବା ବେଙ୍ଗଳାର ମେଣି ଖୁଣ୍ଟ) କରି ତାହାର ଚାରିଆଡେ ପୂର୍ବରୁ ପଶ୍ଚିମକୁ ଘାଣ୍ଟିରି ଖାଇ ବୁଲୁଅଛନ୍ତି । ଧ୍ରୁବନକ୍ଷତ୍ର ପୃଥିବୀର ଉତ୍ତରମେରୁର ଠିକ୍ ମୁଣ୍ଡ ଉପରେ ଆକାଶରେ ଅବସ୍ଥିତ । ଏହା ସର୍ବଦା ଆକାଶରେ ଏକ ସ୍ଥାନରେ ସ୍ଥିର ହୋଇଥାଏ, ଏହାର ଉଦୟ ବା ଅସ୍ତ ନାହିଁ । ନାବିକମାନେ ଓ ମରୁଭୂମିରେ ଭୁଆଁବୁଲିବା ବାଟୋଇମାନେ ଏହି ଧ୍ରୁବନକ୍ଷତ୍ରକୁ ଦେଖି ଅକୂଳ ସମୁଦ୍ରରେ ଓ ଅପନ୍ତରା ମରୁଭୂମିରେ ରାତ୍ରିରେ ଦିଗ ନିର୍ଣ୍ଣୟ କରନ୍ତି । ଏ ଧ୍ରୁବ ନକ୍ଷତ୍ରକୁ ଚିହ୍ନିବା ସହଜ ଅଟେ । ଉତ୍ତରାକାଶରେ ସପ୍ତର୍ଷିମଣ୍ଡଳ ନାମକ ୭ଟି ଉଜ୍ଜ୍ୱଳ ନକ୍ଷତ୍ରବିଶିଷ୍ଟ ଗୋଟିଏ ନକ୍ଷତ୍ରପୁଞ୍ଜ ଅଛି, ଏହି ମଣ୍ଡଳର ମୁଣ୍ଡପାଖର ୨ଟି ନକ୍ଷତ୍ରକୁ ଯୋଗ କରି ସେହି ଗାରକୁ ବଢ଼ାଇଦେଲେ ତାହା ଧ୍ରୁବ ତାରା ପାଖ ଦେଇଯିବ । ଥରେ ଧ୍ରୁବକୁ ଓ ସପ୍ତର୍ଷିମଣ୍ଡଳକୁ ଚିହ୍ନି ରଖିଲେ ତାରାମାନଙ୍କୁ ଚିହ୍ନିବାକୁ ସହଜ ହୁଏ । ପ୍ରତିଦିନ ପ୍ରତି ନକ୍ଷତ୍ର ପୂର୍ବଦିନ ଅପେକ୍ଷା ୪ ମିନିଟ୍ ଲେଖାଏଁ ଡେରି କରି ଉଦିତ ହୁଏ; ଅର୍ଥାତ୍ ଆଜି ଯେଉଁ ତାରା ସନ୍ଧ୍ୟା ୭ଟାବେଳେ ଉଇଁଛି କାଲି ସେ ତାରା ଉଇଁଲାବେଳକୁ ୭ଟା ବାଜି ୪ ମିନିଟ୍ ହୋଇଥିବ । ସୂର୍ଯ୍ୟ ଯେଉଁ ରାଶିରେ ଯେଉଁ ମାସରେ ଅବସ୍ଥାନ କରୁଥାଆନ୍ତି ସୌର ମାସର ନାମକରଣ ସେହି ରାଶିର ନାମ ଅନୁସାରେ ହୁଏ । ଯେଉଁ ଚାନ୍ଦ୍ର ମାସର ପୂର୍ଣ୍ଣିମାର ସନ୍ଧ୍ୟାରେ ଚନ୍ଦ୍ର ଯେଉଁ ନକ୍ଷତ୍ର ସଙ୍ଗେ ଉଦିତ ହୁଅନ୍ତି ସେହି ନକ୍ଷତ୍ରର ନାମ ଅନୁସାରେ ତତ୍‌ପୂର୍ବବର୍ତ୍ତୀ ଚାନ୍ଦ୍ର ମାସର ନାମକରଣ ହୁଏ । ଯଥା – ବୈଶାଖ ପୂର୍ଣ୍ଣିମାରେ ଚନ୍ଦ୍ର ବିଶାଖା ନକ୍ଷତ୍ର ସଙ୍ଗେ ଉଦିତ ହୁଅନ୍ତି ବୋଲି ପୂର୍ବବର୍ତ୍ତୀ ମାସର ନାମ ବୈଶାଖ । ଆକାଶରେ ନକ୍ଷତ୍ର ଓ ନକ୍ଷତ୍ରପୁଞ୍ଜମାନଙ୍କ ଅବସ୍ଥିତି-ମାନଙ୍କୁ ଧ୍ରୁବର ଅବସ୍ଥିତି ସଙ୍ଗେ ଓ ପରସ୍ପରର ଅବସ୍ଥିତି ସଙ୍ଗେ ତୁଳନା କଲେ ଧ୍ରୁବର ଅବସ୍ଥିତି ଅପରିବର୍ତ୍ତନୀୟ ବୋଲି ଜଣାଯାଏ । କିନ୍ତୁ ଆକାଶରେ ଆଉ କେତେଗୁଡ଼ିଏ ଉଜ୍ଜ୍ୱଳ ବସ୍ତୁ ବେଳେ ବେଳେ ଦେଖାଦିଅନ୍ତି; ସେମାନଙ୍କ ଗତି ଓ ଅବସ୍ଥିତି ନିୟମିତ ନୁହେ । ଏମାନଙ୍କୁ ଗ୍ରହ ବୋଲାଯାଏ । ଏମାନେ ତାରା ନୁହନ୍ତି କିନ୍ତୁ ତାରା ପରି ଉଜ୍ଜ୍ୱଳ ଦେଖାଯିବାରୁ ଲୋକେ ଏହାଙ୍କୁ ବେଳେ ବେଳେ ଭ୍ରମରେ ତାରା ନାମରେ ଡାକନ୍ତି; ଯଥା—ପାହାନ୍ତି ତାରା ବା ପହରଙ୍କିଆ ତାରା; ଏହା ଶୁକ୍ର ନାମକ ଗୋଟିଏ ଗ୍ରହ । ବୃହସ୍ପତି, ଶନି, ବୁଧ, ମଙ୍ଗଳ ମଧ୍ୟ ଗୋଟିଏ ଲେଖାଏଁ ଗ୍ରହ । ଆଖିକୁ ଦେଖା-ଯିବା ଗ୍ରହମାନଙ୍କ ସଂଖ୍ୟା ୫ ଅଟେ—ଯଥା—ଶୁକ୍ର, ବୃହସ୍ପତି, ବୁଧ, ଶନି ଓ ମଙ୍ଗଳ । ଚନ୍ଦ୍ରର କକ୍ଷ ଓ କ୍ରାନ୍ତିରେଖାର ଅଧଃପାତ ବିନ୍ଦୁକୁ କେତୁ ଓ ଊର୍ଦ୍ଧ୍ୱପାତ ବିନ୍ଦୁକୁ ରାହୁ ବୋଲି ଦୁଇଟି ଗ୍ରହରୂପେ ହିନ୍ଦୁ ଜ୍ୟୋତିଷୀମାନେ ଗଣନା କରିଅଛନ୍ତି । ଚନ୍ଦ୍ର, ସୂର୍ଯ୍ୟ, କେତୁ, ରାହୁ ଓ ଉପରୋକ୍ତ ୫ଟି ଗ୍ରହଙ୍କୁ ହିନ୍ଦୁମାନେ ନବଗ୍ରହ-ରୂପେ ଗଣନା କରନ୍ତି ଓ ସୂର୍ଯ୍ୟଙ୍କୁ ଗ୍ରହରାଜ କହନ୍ତି ।

ପ୍ରାଚୀନ ହିନ୍ଦୁମାନେ ଚନ୍ଦ୍ରର ଗତିପଥର ସୀମା ମଧ୍ୟରେ ଥିବା ଭିନ୍ନ ଭିନ୍ନ ନକ୍ଷତ୍ରମାନଙ୍କୁ ୨୭ଟି ନାମ ଦେଇଥିଲେ ଓ ଏ ୨୭ ନକ୍ଷତ୍ରରୁ ଅଧିକା ଅଭିଜିତ୍ ନାମରେ ଆଉ ଗୋଟିଏ ନକ୍ଷତ୍ରକୁ ଗଣୁ-ଥିଲେ । ଏହା ଛଡ଼ା ଆକାଶର ଭିନ୍ନ ଭିନ୍ନ ଅଞ୍ଚଳରେ ଥିବା ଆଉ କେତେଗୁଡ଼ିଏ ନକ୍ଷତ୍ରକୁ ହିନ୍ଦୁମାନେ ନାମ ଦେଇଥିଲେ । ହିନ୍ଦୁମାନଙ୍କ ବାରଟି ରାଶିର ନାମ ସଙ୍ଗେ ପ୍ରାଚୀନ ମିଶର, ଆରବ, ଗ୍ରୀସ୍ ଓ ରୋମବାସୀମାନଙ୍କ ପ୍ରଦତ୍ତ ନାମର ସାମଞ୍ଜସ୍ୟ ଅଛି । ଯଥା—ହିନ୍ଦୁମାନଙ୍କ ସିଂହ ରାଶି=ଗ୍ରୀକ୍‌ମାନଙ୍କର ଲିଓ=ସିଂହ; କିନ୍ତୁ ହିନ୍ଦୁମାନଙ୍କ ପ୍ରଦତ୍ତ ନକ୍ଷତ୍ରମାନଙ୍କ ନାମ ସଙ୍ଗେ ଗ୍ରୀକ୍ ଆଦିଙ୍କ ପ୍ରଦତ୍ତ ନକ୍ଷତ୍ରମାନଙ୍କ ନାମର ସାମଞ୍ଜସ୍ୟ ଦେଖା ଯାଏ ନାହିଁ ।

ହିନ୍ଦୁ ଜ୍ୟୋତିଷୋକ୍ତ ୨୭ ନକ୍ଷତ୍ର ଯଥାକ୍ରମେ ପଶ୍ଚିମରୁ ପୂର୍ବଆଡ଼କୁ ଗଣିବାକୁ ହେବ । ଏ ନକ୍ଷତ୍ରମାନଙ୍କ ଆକାରର ସୂଚନା ବରାହ-ମିହିର ଓ କାଳିଦାସକୃତ ସଂସ୍କୃତ କଣ୍ଠପାଠ୍ୟ ନାମକ ଗ୍ରନ୍ଥରେ ଓ କବିସୂର୍ଯ୍ୟଙ୍କ ସମକାଳୀନ କବିଚନ୍ଦ୍ରଙ୍କର ଓ ଆଧୁନିକ ଜ୍ୟୋତିଷୀ ଧର୍ମ ଦାସଙ୍କ ରଚିତ ଓଡ଼ିଆ ପଦ୍ୟ କଣ୍ଠପାଠ୍ୟରେ ସୂଚିତ ହୋଇଅଛି ।

ଖ ଗୋଳ = ୪ ସମକୋଣ = ୩୬୦ ଡିଗ୍ରୀ । ଏହି ୩୬୦ ଡିଗ୍ରୀକୁ ୧୨ଟି ରାଶି ଏବଂ ୨୭ଟି ନକ୍ଷତ୍ର ଅଧିକାର କରିଅଛି । ପ୍ରତ୍ୟେକ ରାଶିର ଅଧିକୃତ ସ୍ଥାନ = $\frac{360}{12}$° = ୩୦ ଡିଗ୍ରି, ଏବଂ ପ୍ରତ୍ୟେକ ନକ୍ଷତ୍ରର ଅଧିକୃତ ସ୍ଥାନ = $\frac{360}{27}$° = ୧୩⅓ ଡିଗ୍ରି; ଅର୍ଥାତ୍ ପ୍ରତ୍ୟେକ ରାଶିର ସୀମା ମଧ୍ୟରେ ୨¼ ନକ୍ଷତ୍ର ଅଛି ।

୧ । ମେଷ ରାଶି (ଲାଟିନ୍ Aries; ଇଂ. The ram) = ୧ ଅଶ୍ୱିନୀ ନକ୍ଷତ୍ର + ୧ ଭରଣୀ + ¼ କୃତ୍ତିକା ।

୨ । ବୃଷ ରାଶି ( ଲାଟିନ୍—Taurus, ଇଂ The bull) = ¾ କୃତ୍ତିକା + ୧ ରୋହିଣୀ + ½ ମୃଗଶିର ।

୩ । ମିଥୁନ ରାଶି(ଲାଟିନ Gemini; ଇଂ. The twins) = ½ ମୃଗଶିର + ୧ ଆର୍ଦ୍ରା + ¾ ପୁନର୍ବସୁ ।

୪ । କର୍କଟ ରାଶି ଲାଟିନ Cancer, ଇଂ. The crab) = ¼ ପୁନର୍ବସୁ + ୧ ପୁଷ୍ୟା + ୧ ଅଶ୍ଳେଷା ।

୫ । ସିଂହ (ଲାଟିନ୍ Leo; ଇଂ. Lion) = ୧ ମଘା + ୧ ପୂର୍ବଫାଲ୍‌ଗୁନୀ + ¼ ଉତ୍ତରଫାଲ୍‌ଗୁନୀ ।

୬ । କନ୍ୟା (ଲା. Virgo, ଇଂ Virgin) = ¾ ଉତ୍ତର ଫାଲ୍‌ଗୁନୀ + ୧ ହସ୍ତା + ½ ଚିତ୍ରା ।

୭ । ତୁଳା (ଲା. Libra ଇଂ. The scales ) = ½ ଚିତ୍ରା + ୧ ସ୍ୱାତି + ¾ ବିଶାଖା ।

୮ । ବିଛା ( ଲା. Scorpio ଇଂ. Scorpion) = ¼ ବିଶାଖା; ୧ ଅନୁରାଧା + ୧ ଜ୍ୟେଷ୍ଠା ।

୯ । ଧନୁ (ଲା. Sagitarius ଇଂ. The archer) = ୧ ମୂଳା + ୧ ପୂର୍ବାଷାଢ଼ା + ¼ ଉତ୍ତରାଷାଢ଼ା ।

୧୦ । ମକର (ଲା. Capricornus ଇଂ.Capricorn) ¾ ଉତ୍ତରାଷାଢ଼ା + ୧ ଶ୍ରବଣା + ½ ଧନିଷ୍ଠା ।

୧୧ । କୁମ୍ଭ ( ଲା. Aquarius ଇଂ. Water-bearer) = ½ ଧନିଷ୍ଠା + ୧ ଶତଭିଷା + ¾ ପୂର୍ବାଭାଦ୍ରପଦ ।

୧୨ । ମୀନ ( ଲା. Pisces ଇଂ. Fishes ) = ¼ ପୂର୍ବ ଭାଦ୍ରପଦ + ୧ ଉତ୍ତର ଭାଦ୍ରପଦ + ୧ ରେବତୀ ।

**ନକ୍ଷତ୍ରମାନଙ୍କ ପରିଚୟ :—**

**୧ । ହିନ୍ଦୁମତରେ ନାମ—ଅଶ୍ୱିନୀ ।**

ଗଠନ ବା ଚକ୍ର



କେଉଁ ରାଶିରେ ଅବସ୍ଥିତ—ମେଷରେ ।

ଆକାଶର କେଉଁଠାରେ ଅବସ୍ଥିତ—ଉତ୍ତରାକାଶରେ ।

ଆକାର ଓ ତାରକା ସଂଖ୍ୟା—୩ଟି ଅନୁଜ୍ଜ୍ୱଳ ତାରା । ଏ ତିନି ତାରାକୁ ଯୋଗ କଲେ ଗୋଟିଏ ସ୍ଥୂଳକୋଣୀ ତ୍ରିଭୁଜ ହେବ; ଏହାକୁ ଘୋଡ଼ାର ମୁଣ୍ଡପରି କଳ୍ପନା କରାଯାଇ ପାରେ ।

ପାଶ୍ଚାତ୍ୟ ନାମ—1. Hamal; 2 Sheritan; 3. Mesarthen

ପାଶ୍ଚାତ୍ୟରାଶି ଅନୁସାରେ ଜ୍ୟୋତିଷିକ ପରିଚୟ—In Aries— 1. Alpha Arietes, 2. Beta Arietes; 4. Gamma Arietes.

କଣ୍ଠପାଠ୍ୟରେ ଲିଖିତ ସୂଚନା—ଅଶ୍ୱମସ୍ତକାକାର ୩ ତାରକା ।

ମନ୍ତବ୍ୟ—ଚିତ୍ରରେ ୧ ଚିହ୍ନିତ ତାରା ଏ ନକ୍ଷତ୍ରର ଉଜ୍ଜ୍ୱଳତମ ତାରା ବା ଯୋଗତାରା । ଏହି ଯୋଗତାରାର ନାମ ଇଂ. ମୁଖରଶ୍ମି । ଆଶ୍ୱିନ ପୂର୍ଣ୍ଣିମା ଦିନ ଚନ୍ଦ୍ର ଏହି ନକ୍ଷତ୍ର ସଙ୍ଗେ ଥାଆନ୍ତି ।

**୨ । ହିନ୍ଦୁମତରେ ନାମ—ଭରଣୀ, ଭରଣୀ ବା ଯମ ।**

ଗଠନ ବା ଚକ୍ର



କେଉଁ ରାଶିରେ ଅବସ୍ଥିତ—ମେଷରେ ।

ଆକାଶର କେଉଁଠାରେ ଅବସ୍ଥିତ—ଉତ୍ତରାକାଶରେ, ଅଶ୍ୱିନୀର ପଶ୍ଚିମରେ ।

ଆକାର ଓ ତାରକା ସଂଖ୍ୟା—୩ଟି କ୍ଷୀଣତାରା; ଏ ତିନି ତାରାକୁ ଯୋଗ କଲେ ଗୋଟିଏ ସମବାହୁ ତ୍ରିଭୁଜ ହେବ ।

ପାଶ୍ଚାତ୍ୟ ନାମ—Musca Borealis.

ପାଶ୍ଚାତ୍ୟରାଶି ଅନୁସାରେ ଜ୍ୟୋତିଷିକ ପରିଚୟ—In Aries— 1. 35 Arietes; 2. 39 Arietes. 3. 41 Arietes.

କଣ୍ଠପାଠ୍ୟରେ ଲିଖିତ ସୂଚନା—ତ୍ରିକୋଣାକାର ତିନିତାରା ।

ମନ୍ତବ୍ୟ—ଏହାର ଯୋଗତାରା ୩ ଚିହ୍ନିତ ।

**୩ । ହିନ୍ଦୁମତରେ ନାମ—କୃତ୍ତିକା, ମାତୃମଣ୍ଡଳ, ବହୁଳା ବା ଅନଳ ।**

ଗଠନ ବା ଚକ୍ର



କେଉଁ ରାଶିରେ ଅବସ୍ଥିତ—ମେଷରେ ¼ ଓ ବୃଷରେ ¾ ।

ଆକାର ଓ ତାରକା ସଂଖ୍ୟା—୬ଟି ତାରା; ଏମାନଙ୍କୁ ଯୋଗ କଲେ ଗୋଟିଏ କଟାର ବା କତୃରିର କାଠମୁଣ୍ଡର ଆକାର ହେବ ଇ. ନାମ—୧ । ଅମ୍ବିକା, ୨ । ଅନସୂୟା, ୩ । ସନ୍ନତି, ୪ । ଲଜ୍ଜା, ୫ । ପ୍ରୀତି, ୬ । ଦେବସେନା ବା ଷଷ୍ଠୀ ।

ଓଡ଼ିଆ ବା ଦେଶୀୟ ନାମ—କାର୍ତ୍ତିକପୁଞ୍ଜ; ସମ୍ବଲପୁରୀ ନାମ କଠଲ୍ଲ ତାରା (କଠଲ୍ଲ = ବଡ଼େଇର ମୁଗୁର) ।

ପାଶ୍ଚାତ୍ୟ ନାମ—ଇଂ—Hen and chickens; the Pleidas. ଆ—Ath thuraya ଗ୍ରୀକ୍—Pleides; Virgilii; Atlantaides. ହେବ୍ରୁ—Kimah ଯ୍ଥା. 1. Maia. 2. Taygeta; 3. Celoeno; 4. Electra; 5 Merobe: 6 Alcyone.

ପାଶ୍ଚାତ୍ୟରାଶି ଅନୁସାରେ ଜ୍ୟୋତିଷିକ ପରିଚୟ—In Taurus— 1. 19 Tauri; 2 16 Tauri; 3. 17 Tauri; 4. 23 Tauri; 5 27 Tauri; 6. Pi Tauri.

କଷ୍ଟପାଥ୍ରରେ ଲିଖିତ ସୂଚନା—ଅଗ୍ନିଶିଖାଭୁକ୍ତ ୬ ତାରା ।

ମନ୍ତବ୍ୟ—ଏଥିର ଯୋଗତାରା ୬ ଚିହ୍ନିତ । ପାଶ୍ଚାତ୍ୟମାନେ ଏହି ପୁଞ୍ଜରେ ୧ ନମ୍ବରର ଉତ୍ତରପୂର୍ବକୁ ଆଉ ଗୋଟିଏ ତାରା (Asterope; Eta Tauri)କୁ ମିଶାଇ ଏ ପୁଞ୍ଜରେ ୭ଟି ତାରା ଗଣନା କରନ୍ତି । ପୁରାଣ ମତରେ ବଶିଷ୍ଠପତ୍ନୀ ଅରୁନ୍ଧତୀଙ୍କ ଛଡ଼ା ଏମାନେ ଅନ୍ୟ ୬ ଜଣ ସପ୍ତର୍ଷିପତ୍ନୀ ଅଟନ୍ତି । ଏ ୬ ଜଣ କାର୍ତ୍ତିକେୟଙ୍କୁ ୬ ମୁଖରେ ସ୍ତନ୍ୟପାନ କରାଇଥିଲେ । କାର୍ତ୍ତିକ ପୂର୍ଣ୍ଣିମା ଦିନ ଚନ୍ଦ୍ର ଏହି ପୁଞ୍ଜ ସଙ୍ଗେ ଥାଆନ୍ତି ।

**୪ । ହିନ୍ଦୁ ମତରେ ନାମ—ରୋହିଣୀ ବା ପ୍ରଜାପତି ବା ରୋହିତ ତାରା ।**

ଗଠନ ବା ଚିତ୍ର




କେଉଁ ରାଶିରେ ଅବସ୍ଥିତ—ବୃଷ ରାଶିରେ ।

ଆକାଶର କେଉଁଠାରେ ଅବସ୍ଥିତ—ଉତ୍ତରାକାଶରେ; ଏହା ତ୍ରିଭୁଜାକୃତି ।

ଆକାର ଓ ତାରକା ସଂଖ୍ୟା—୫ ଗୋଟି ତାରା, ଏ ୫ ତାରାକୁ ଯୋଗ କଲେ ଗୋଟିଏ ସମଦ୍ୱିବାହୁ ତ୍ରିଭୁଜ ବା ଶଗଡ଼ଦଣ୍ଡାର ଆକାର ହେବ ।

ଓଡ଼ିଆ ବା ଦେଶୀୟ ନାମ—ରୋହିଣୀ ଶକଟ ।

ପାଶ୍ଚାତ୍ୟ ନାମ—Hyades.

ପାଶ୍ଚାତ୍ୟ ରାଶି ଅନୁସାରେ ଜ୍ୟୋତିଷିକ ପରିଚୟ—In Taurus; 1. Alpha Tauri; 2. Theta Tauri; 3. Gamma Tauri; 4. Delta Tauri; 5. Epsilon Tauri.

କଷ୍ଟପାଥ୍ରରେ ଲିଖିତ ସୂଚନା—ଶକଟାକୃତି ୫ ତାରା ।

ମନ୍ତବ୍ୟ—ଏ ନକ୍ଷତ୍ରର ସମଦ୍ୱିବାହୁ ତ୍ରିଭୁଜର ଭୂମିର ଦକ୍ଷିଣ କୋଣର ଉଜ୍ଜ୍ୱଳତମ ତାରା ଲାଲଦିଆ ୧ ଚିହ୍ନିତ; ଏହି ତାରାର ପାଶ୍ଚାତ୍ୟ ନାମ Aldeberan । ତ୍ରିଭୁଜର ଦୁଇ ବାହୁର ମଝିରେ ଥିବା ତାରା ବୃଷର ଲାଲ ଆଖିକୁ ପ୍ରଥମେ ଗୋଟିଏ ଲେଖାଏଁ ଦେଖା ଯାଆନ୍ତି, କିନ୍ତୁ ସେମାନେ ଏକାଧିକ ଅଟନ୍ତି । ଚନ୍ଦ୍ର ଯେବେ ରୋହିଣୀ-ଶକଟକୁ ଭେଦ କରିବାର ଦେଖା ଯାଏ ତେବେ ରାଜ୍ୟରେ ଅନର୍ଥ ଆଶଙ୍କା କରାଯାଏ ।

**୫ । ହିନ୍ଦୁମତରେ ନାମ—ମୃଗଶିରା ବା ଵଧୂ ବା ଏଣକ ।**

ଗଠନ ବା ଚିତ୍ର




କେଉଁ ରାଶିରେ ଅବସ୍ଥିତ—ବୃଷରେ ୨/୩, ମିଥୁନରେ ୧/୨ ।

ଆକାଶର କେଉଁଠାରେ ଅବସ୍ଥିତ—ଉତ୍ତରାକାଶରେ । ଏହା ତ୍ରିଭୁଜାକୃତି ।

ଆକାର ଓ ତାରକା ସଂଖ୍ୟା—୩ ଗୋଟି ତାରା । ଏ ୩ ତାରାକୁ ଯୋଗ କଲେ ଗୋଟିଏ ସ୍ପଷ୍ଟ କୋଣୀ ତ୍ରିଭୁଜ ହେବ । ଏହି ହରିଣର ମସ୍ତକରୂପେ କଳ୍ପିତ ।

ଓଡ଼ିଆ ବା ଦେଶୀୟ ନାମ—କାଳପୁରୁଷର ମୁଣ୍ଡ ।

ପାଶ୍ଚାତ୍ୟ ନାମ—Heka; Orion's head.

ପାଶ୍ଚାତ୍ୟ ରାଶି ଅନୁସାରେ ଜ୍ୟୋତିଷିକ ପରିଚୟ—1. Lambda Orionis; 2. $Phi_1$ Orionis; 3. $Phi_2$ Orionis.

କଷ୍ଟପାଥ୍ରରେ ଲିଖିତ ସୂଚନା—ବିଡ଼ାଳପଦାକୃତି ୩ ତାରା ।

ମନ୍ତବ୍ୟ—ଏଥିର ଯୋଗତାରା ୧ ଚିହ୍ନିତ । ମାର୍ଗଶିର ପୂର୍ଣ୍ଣିମାରେ ଚନ୍ଦ୍ର ଏହି ନକ୍ଷତ୍ର ସଙ୍ଗେ ଥାଆନ୍ତି ।

**୬ । ହିନ୍ଦୁ ମତରେ ନାମ—ଆର୍ଦ୍ରା ବା ଶୂଳମୀ ।**

ଗଠନ ବା ଚିତ୍ର ✱

କେଉଁ ରାଶିରେ ଅବସ୍ଥିତ—ମିଥୁନ ରାଶିରେ ।

ଆକାଶର କେଉଁଠାରେ ଅବସ୍ଥିତ—ଏହା ମୃଗଶିରାର ଦକ୍ଷିଣ-ପଶ୍ଚିମରେ ।

ଆକାର ଓ ତାରକା ସଂଖ୍ୟା—ଗୋଟିଏ ଲାଲଦିଆ ଉଜ୍ଜ୍ୱଳ ତାରା ।

ଓଡ଼ିଆ ବା ଦେଶୀୟ ନାମ—କାଳପୁରୁଷର ଡାହାଣ ଖୁଆମୁଣ୍ଡ ।

ପାଶ୍ଚାତ୍ୟ ନାମ—Betelgeux.

ପାଶ୍ଚାତ୍ୟ ରାଶି ଅନୁସାରେ ଜ୍ୟୋତିଷିକ ପରିଚୟ— Alpha Orionis.

କଷ୍ଟପାଥ୍ରରେ ଲିଖିତ ସୂଚନା—ରୁଧିରବିନ୍ଦୁ ବର୍ଣ୍ଣର (ରକ୍ତାଭ) ଗୋଟିଏ ଉଜ୍ଜ୍ୱଳ ତାରା ।

ମନ୍ତବ୍ୟ—'କାଳପୁରୁଷ' ପୁଞ୍ଜ ତଳେ ଦେଖ—ଏହା କାଳପୁରୁଷର ଡାହାଣ ଖୁଆ ମୁଣ୍ଡିରେ ଅବସ୍ଥିତ ।

**୭ । ହିନ୍ଦୁ ମତରେ ନାମ—ପୁନର୍ବସୁ ବା ସୁରମାତା ।**

ଗଠନ ବା ଚିତ୍ର




କେଉଁ ରାଶିରେ ଅବସ୍ଥିତ—ମିଥୁନରେ ୫, କର୍କଟରେ ୧ ।

ଆକାଶର କେଉଁଠାରେ ଅବସ୍ଥିତ—ଉତ୍ତରାକାଶରୁ ଦକ୍ଷିଣାକାଶ

ପର୍ଯ୍ୟନ୍ତ ବିସ୍ତୃତ ଧନୁକାକାରରେ ଅବସ୍ଥିତ ୬ଟି ତାରା । ଧନୁର ଦକ୍ଷିଣାର୍ଦ୍ଧ ଛାୟାପଥକୁ କାଟିଛି । ୧ ଓ ୨, ୩ ଓ ୪ ଚିହ୍ନିତ ତାରା ଉତ୍ତରାକାଶରେ, ୫।୬ ଦକ୍ଷିଣାକାଶରେ । ୩।୪ ଓ ୫।୬ ମଧ୍ୟରେ ଛାୟାପଥ । ୧ । ସୋମ ତାରା, ୨ । ବିଷ୍ଣୁତାରା, ୩ । ପ୍ରତ୍ୟୁଷ, ୪ । ସରମା ବା ଶ୍ୱା, ୫ । (ନାମ ଜଣା ନାହିଁ), ୬ । ପ୍ରଶ୍ୱା ବା ଲୁବ୍ଧକ ।

ଆକାର ଓ ତାରକା ସଂଖ୍ୟା—ଛଅ ଗୋଟି ତାରା । ଏମାନଙ୍କୁ ଯୋଗ କଲେ ଗୋଟିଏ ଶରଯୁକ୍ତ ଧନୁ ପରି ଦେଖା ଯାଏ ।

ପାଶ୍ଚାତ୍ୟ ନାମ—1. Castor; 2 Pollux; 3. Gomesia; 4. Procyon or Mira or Lesser dog-star; 5 Murzim; 6. Sirius or Dogstar-

ପାଶ୍ଚାତ୍ୟ ରାଶି ଅନୁସାରେ ଜ୍ୟୋତିଷିକ ପରିଚୟ—1 and 2 in Gemini; 1. Alpha Geminorum; 2. Beta Geminorum, 3 and 4 in Canis minoris; 3 Beta Canis minoris, 4. Alpha Canis minoris; 5 and 6 in Canis majoris; 5. Beta Canis majoris; 6 Alpha Canis majoris.

କଷ୍ଟପାଥ୍ୟରେ ଲକ୍ଷିତ ସୂଚନା—ଧନୁସାକୃତି ୫ ତାରା ।

ମନ୍ତବ୍ୟ—ଏ ପୁଞ୍ଜରେ ୬ଷ୍ଠ ତାରା (ପ୍ରଶ୍ୱା ବା Dogstar) ଉଜ୍ଜ୍ୱଳତମ; ଏହା ଉଜ୍ଜ୍ୱଳ ନୀଳବର୍ଣ୍ଣ, ଏଥିରୁ କମ୍ ଉଜ୍ଜ୍ୱଳ ୪ର୍ଥ ତାରା (ଶ୍ୱା ବା Lesser dogstar.)

**୮ । ହିନ୍ଦୁମତରେ ନାମ—ପୁଷ୍ୟା ବା ଗୁରୁ ।**

ଗଠନ ବା ଚିତ୍ର




କେଉଁ ରାଶିରେ ଅବସ୍ଥିତ—କର୍କଟରେ ।

ଆକାଶର କେଉଁଠାରେ ଅବସ୍ଥିତ—ଉତ୍ତରାକାଶରେ; ବିନ୍ଦୁକାକାର ୩ଟି କ୍ଷୀଣତାରା ମଧ୍ୟରେ ଦେଖାଯାଉଥିବା ମଧୁଚକ୍ରାକାର ତାରାସ୍ତବକ । ଏହା କୁମ୍ଭଳଚକ୍ରରୂପେ କଳ୍ପିତ ହୋଇ ପାରେ ।

ଆକାର ଓ ତାରକା ସଂଖ୍ୟା—କ୍ଷୀଣ ଧୂମମୟ ତାରାସ୍ତବକ ।

ପାଶ୍ଚାତ୍ୟ ନାମ—The Manger or Bee hive; ଲାଟିନ୍—Praesepe; ଗ୍ରୀକ୍—Phatne

ପାଶ୍ଚାତ୍ୟରାଶି ଅନୁସାରେ ଜ୍ୟୋତିଷିକ ପରିଚୟ—In Cancer; Small misty looking cluster enclosed by 1. Gamma Cancri, 2. Delta Cancri; 3. Theta Cancri; Gamma and Delta Cancri are the twin asses and Praesepe is the manger.

କଷ୍ଟପାଥ୍ୟରେ ଲକ୍ଷିତ ସୂଚନା—ବାଳକ ଭୂମିରେ ଖଡ଼ିପାଠ ଲେଖି ଲଗାଇଥିବା ପରି ଦେଖାଯିବା ନକ୍ଷତ୍ର ।

ମନ୍ତବ୍ୟ—ପୌଷ ପୂର୍ଣ୍ଣିମାରେ ଚନ୍ଦ୍ର ଏହି ନକ୍ଷତ୍ରରେ ଅବସ୍ଥାନ କରନ୍ତି । ଏ ନକ୍ଷତ୍ରଯୁକ୍ତ ତିଥିରେ ଶ୍ୱେତପୁନର୍ଣ୍ଣବା ମୂଳ ଖୋଳିଆଣି ଘରେ ରଖିଲେ ସର୍ପଭୟ ନିବାରିତ ହୁଏ ।

**୯ । ହିନ୍ଦୁ ମତରେ ନାମ—ଅଶ୍ଳେଷା, ଭୁଜଙ୍ଗ ବା ସର୍ପ ।**

ଗଠନ ବା ଚିତ୍ର—




କେଉଁ ରାଶିରେ ଅବସ୍ଥିତ—କର୍କଟରେ ।

ଆକାଶରେ କେଉଁଠାରେ ଅବସ୍ଥିତ—ମଧ୍ୟାକାଶରେ; ପୁଷ୍ୟାର ଦକ୍ଷିଣରେ ।

ଆକାର ଓ ତାରକା ସଂଖ୍ୟା—ଶ୍ୱାନପୁଚ୍ଛ ବା ବଜ୍ରଶିକଣ୍ଠା ବା ଏକ ଅଙ୍କ ୧ ଆକୃତିର ପୂର୍ବରୁ ପଶ୍ଚିମ ଆଡ଼କୁ କ୍ରମଶଃ ଅବସ୍ଥିତ ୬ଟି ତାରା ।

ପାଶ୍ଚାତ୍ୟ ନାମ—The Head of Hydra; ଲାଟିନ୍ Caput Hydrae

ପାଶ୍ଚାତ୍ୟ ରାଶି ଅନୁସାରେ ଜ୍ୟୋତିଷିକ ପରିଚୟ—In Hydra; 1. Theta Hydrae, 2. Zeta Hydrae, 3. Epsilon Hydrae, 4 Delta Hydrae, 5. Sigma Hydrae, 6. Eta Hydrae.

କଷ୍ଟପାଥ୍ୟରେ ଲକ୍ଷିତ ସୂଚନା—ଶ୍ୱାନପୁଚ୍ଛ ପ୍ରାୟ ଭଙ୍ଗୁରାକୃତି ୫ ତାରା ( ଏହା ପ୍ରକୃତରେ ୬ ତାରା ) ।

ମନ୍ତବ୍ୟ—୨ ଚିହ୍ନିତ ତାରା ଏ ନକ୍ଷତ୍ରର ଯୋଗତାରା ।

**୧୦ । ହିନ୍ଦୁମତରେ ନାମ—ମଘା ବା ପିତୃ ।**

ଗଠନ ବା ଚିତ୍ର—




କେଉଁ ରାଶିରେ ଅବସ୍ଥିତ—ସିଂହରେ ।

ଆକାଶରେ କେଉଁଠାରେ ଅବସ୍ଥିତ—ଉତ୍ତରାକାଶରେ ।

ଆକାର ଓ ତାରକା ସଂଖ୍ୟା—ଦାଆ ବା ଲଙ୍ଗଳାକୃତି ବା କଣ୍ଠାରର ଆକୃତିବିଶିଷ୍ଟ ୫ ବା ୬ ତାରା; ୧ ଚିହ୍ନିତ ତାରା ଯମର ପୁତ୍ର ।

ପାଶ୍ଚାତ୍ୟ ନାମ—The Sickle in Leo ଅ. Alguba; 1. Regulus.

ପାଶ୍ଚାତ୍ୟ ରାଶି ଅନୁସାରେ ଜ୍ୟୋତିଷିକ ପରିଚୟ—Leo; 1. Regulus or Alpha Leonis, 2. Eta Leonis, 3 Gamma Leonis, 4. Zeta Leonis, 5. Mu Leonis, 6. Epsilon Leonis

କଷ୍ଟପାଥ୍ୟରେ ଲକ୍ଷିତ ସୂଚନା—ଲଙ୍ଗଳ ଆକୃତି ପାଞ୍ଚତାରା (ଲଙ୍ଗଳାକୃତି କଳ୍ପନା କଲେ ୬ ଚିହ୍ନିତ ତାରାକୁ ବାଦ ଦିଆଯିବ । )

ମନ୍ତବ୍ୟ—୧ ଚିହ୍ନିତ ତାରା ଉଜ୍ଜ୍ୱଳତମ ବା ଯୋଗତାରା, ୩ ଚିହ୍ନିତ ତାରା ଗାଢ ହଳଦିଆ । ମାଘ ପୂର୍ଣ୍ଣିମାରେ ଚନ୍ଦ୍ର ଏ ନକ୍ଷତ୍ର ସଙ୍ଗେ ଥାଆନ୍ତି । ୧ ଚିହ୍ନିତ ତାରାର ଇଂ. ନାମ ରେଗୁଲସ୍ ।

୧୧ । ହିନ୍ଦୁ ମତରେ ନାମ—**ପୂର୍ବଫାଲ୍‌ଗୁନୀ** ବା ଯୋନିଭ, ବୈଦିକ ନାମ ଅର୍ଜୁନୀ ।

ଗଠନ ବା ଚିତ୍ର—



କେଉଁ ରାଶିରେ ଅବସ୍ଥିତ—ସିଂହରେ ।

ଆକାଶରେ କେଉଁଠାରେ ଅବସ୍ଥିତ—ଉତ୍ତରାକାଶରେ

ପାଶ୍ଚାତ୍ୟ ନାମ—ଆ. Alzubra

ପାଶ୍ଚାତ୍ୟ ରାଶି ଅନୁସାରେ ଜ୍ୟୋତିଷିକ ପରିଚୟ—Leo; 1. Delta Leonis, 2 Theta Leonis.

କଷ୍ଟପାତ୍ରରେ ଲିଖିତ ସୂଚନା—ଉତ୍ତର ପଶ୍ଚିମ ହୋଇ ୨ ତାରା (ଖଟ୍ୱାକାର ।)

ମନ୍ତବ୍ୟ—ଏଥିର ୨ ଚିହ୍ନିତ ତାରା ଯୋଗତାରା ।

୧୨ । ହିନ୍ଦୁ ମତରେ ନାମ—**ଉତ୍ତରଫାଲ୍‌ଗୁନୀ** ବା ଅର୍ଯ୍ୟମା, ବୈଦିକ ନାମ ଅର୍ଜୁନୀ ।

ଗଠନ ବା ଚିତ୍ର—



କେଉଁ ରାଶିରେ ଅବସ୍ଥିତ—ସିଂହରେ ୧/୪; କନ୍ୟାରେ ୩/୪ ।

ଆକାଶରେ କେଉଁଠାରେ ଅବସ୍ଥିତ—ଉତ୍ତରାକାଶରେ ।

ଆକାର ଓ ତାରକା ସଂଖ୍ୟା—ଉତ୍ତର ଦକ୍ଷିଣ ହୋଇ ଅବସ୍ଥିତ ୨ ତାରା ।

ଓଡ଼ିଆ ବା ଦେଶୀୟ ନାମ—ଉତ୍ତରଫାଲ୍‌ଗୁନୀ ।

ପାଶ୍ଚାତ୍ୟ ନାମ—ଆ. Al Sherfa, 1. Denebola.

ପାଶ୍ଚାତ୍ୟ ରାଶି ଅନୁସାରେ ଜ୍ୟୋତିଷିକ ପରିଚୟ—Leo; 1 Denebola; Beta Leonis, 2. 93 Leonis

କଷ୍ଟପାତ୍ରରେ ଲିଖିତ ସୂଚନା—ଉତ୍ତର ଦକ୍ଷିଣ ହୋଇ ୨ ତାରା; ଶଯ୍ୟାକାର ।

ମନ୍ତବ୍ୟ—ଏ ତାରା ଦ୍ୱୟ ପୂର୍ବଫାଲ୍‌ଗୁନୀର ପୂର୍ବରେ । ଏଥିର ଯୋଗତାରା ୧ ଚିହ୍ନିତ । ଦ୍ର—ପୂର୍ବଫାଲ୍‌ଗୁନୀ ଓ ଉତ୍ତରଫାଲ୍‌ଗୁନୀର ତାରା ୪ଟି ଯୋଗ କଲେ ଗୋଟିଏ ଆୟତ କ୍ଷେତ୍ର ହେବ । ଫାଲ୍‌ଗୁନ ପୂର୍ଣ୍ଣିମା ବେଳେ ଚନ୍ଦ୍ର ଏ ନକ୍ଷତ୍ରରେ ଥାଆନ୍ତି । ପୂର୍ବଫାଲ୍‌ଗୁନୀ ଓ ଉତ୍ତରଫାଲ୍‌ଗୁନୀର ୪ ତାରାର ଇଂ. ନାମ The Rectangle.

୧୩ । ହିନ୍ଦୁ ମତରେ ନାମ—**ହସ୍ତା** ବା କର ।

ଗଠନ ବା ଚିତ୍ର



କେଉଁ ରାଶିରେ ଅବସ୍ଥିତ—କନ୍ୟାରେ ।

ଆକାଶର କେଉଁଠାରେ ଅବସ୍ଥିତ—ଦକ୍ଷିଣାକାଶରେ ମଘାର ଦକ୍ଷିଣ ପୂର୍ବରେ ।

ଆକାର ଓ ତାରକା ସଂଖ୍ୟା—ହାତର ୫ଟି ଆଙ୍ଗୁଠିକୁ ଭୂମିରେ ଚିପ ମାରିବା ଚିହ୍ନ ପରି ଅବସ୍ଥିତ ତାରା ୫ଟି ।

ଓଡ଼ିଆ ବା ଦେଶୀୟ ନାମ—ସୁପର୍ଣ୍ଣ ମଣ୍ଡଳ ବା କରତଳ ।

ପାଶ୍ଚାତ୍ୟ ନାମ—The Corvus or the Crow 1. ଆ—Alchiba; 3. ଆ—Algorab.

ପାଶ୍ଚାତ୍ୟରାଶି ଅନୁସାରେ ଜ୍ୟୋତିଷିକ ପରିଚୟ—In Corvus Group; 1. Alpha Corvi; 2. Beta Corvi; 3. Delta Corvi 4 Gamma Corvi; 5. Epsilon Corvi.

କଷ୍ଟପାତ୍ରରେ ଲିଖିତ ସୂଚନା—କରାକୃତ ୫ ତାରା ।

ମନ୍ତବ୍ୟ—ଏଥିର ଯୋଗ ତାରା ୩ ଚିହ୍ନିତ; କେହି କେହି କହନ୍ତି ଯେ ଏହି ପୁଞ୍ଜର ଉତ୍ତର ପଶ୍ଚିମରେ ଥିବା ହାତର କହୁଣି ପରି ଅବସ୍ଥିତ ୫ଟି ତାରା ହସ୍ତା ନକ୍ଷତ୍ର ।

କ୍ଷମ୍ୟା ମତାନ୍ତରେ

ଗଠନ ବା ଚିତ୍ର



କେଉଁ ରାଶିରେ ଅବସ୍ଥିତ—କନ୍ୟାରେ ।

ଆକାଶର କେଉଁଠାରେ ଅବସ୍ଥିତ—ମଧ୍ୟାକାଶରେ ।

ଆକାର ଓ ତାରକା ସଂଖ୍ୟା—କହୁଣିଠାରୁ ସମକୋଣରେ ଭଙ୍ଗା ହୋଇଥିବା ହାତର ଅନୁକରଣ ୫ ତାରା; ୧ । ଦ୍ରୌପଦୀ, ୪ । ଆପ, ୫ ଶବରୀ । ୫ ଚିହ୍ନିତ ତାରା ଏଥିର ଯୋଗ ତାରା

ପାଶ୍ଚାତ୍ୟ ନାମ—1. ଆ—Zabi Zaba, 3. ଆ—Rayiwah Anwa; 5 ଲା—Vendimia trix. ଏହି ପୁଞ୍ଜର ନାମ ଆରବୀରେ Al Anwa ଅଲ୍ ଅନ୍‌ଵା ।

ପାଶ୍ଚାତ୍ୟରାଶି ଅନୁସାରେ ଜ୍ୟୋତିଷିକ ପରିଚୟ—In Virgo; 1. Beta Virginis; 2. Eta Virginis; 3. Gamma Virginis; 4. Delta Virginis; 5. Epsilon Virginis.

ମନ୍ତବ୍ୟ—୧ । ହଳଦିଆ, ୨ । ଧଳା, ୩ । ଧଳା, ୪ । ନାଲି, ୫ । ହଳଦିଆ ।

୧୪ । ହିନ୍ଦୁ ମତରେ ନାମ—**ଚିତ୍ରା** ବା ତ୍ୱଷ୍ଟା ବା ନାଭତାରା ।

ଗଠନ ବା ଚିତ୍ର ❋

କେଉଁ ରାଶିରେ ଅବସ୍ଥିତ—କନ୍ୟାରେ ୧/୨, ତୁଳରେ ୧/୨ ।

ଆକାଶର କେଉଁଠାରେ ଅବସ୍ଥିତ—ମଧ୍ୟାକାଶରେ ।

ଆକାର ଓ ତାରକା ସଂଖ୍ୟା—ଗୋଟିଏ ଉଜ୍ଜ୍ୱଳ ତାରା ।

ପାଶ୍ଚାତ୍ୟ ନାମ—ଇଂ—Spica, ଗ୍ରୀ—Stachys; ଫା—Zera; ଆ—Supel.
ପାଶ୍ଚାତ୍ୟରାଶି ଅନୁସାରେ ଜ୍ୟୋତିଷିକ ପରିଚୟ—In Virgo, Alpha Virginis.
କଟପାୟାରେ ଲକ୍ଷିତ ସୂଚନା—ମୁକ୍ତାପ୍ରାୟ ଉଜ୍ଜ୍ୱଳ ତାରା ।
ମନ୍ତବ୍ୟ—ଏଥିର ବର୍ଣ୍ଣ ନୀଳାଭଶ୍ୱେତ । ଚୈତ୍ର ପୂର୍ଣ୍ଣିମାରେ ଚନ୍ଦ୍ର ଏହି ନକ୍ଷତ୍ରରେ ଥାଆନ୍ତି ।

**୧୫ ।** ହିନ୍ଦୁମତରେ ନାମ—**ସ୍ୱାତୀ** ବା ବାୟୁ ବା କଷ୍ଟ୍ୟ ।
ଗଠନ ବା ଚକ୍ର । ❋
କେଉଁ ରାଶିରେ ଅବସ୍ଥିତ—ତୁଳରେ ।
ଆକାଶର କେଉଁଠାରେ ଅବସ୍ଥିତ—ଉତ୍ତରାକାଶରେ ।
ଆକାର ଓ ତାରକା ସଂଖ୍ୟା—ଗୋଟିଏ ଉଜ୍ଜ୍ୱଳ ତାରା ।
ପାଶ୍ଚାତ୍ୟ ନାମ—Arcturus
ପାଶ୍ଚାତ୍ୟ ରାଶି ଅନୁସାରେ ଜ୍ୟୋତିଷିକ ପରିଚୟ—
In Libra; Alpha Bootes.
କଟପାୟାରେ ଲକ୍ଷିତ ସୂଚନା—କୁଙ୍କୁମ ପ୍ରାୟ ଅରୁଣବର୍ଣ୍ଣ ୧ ତାରା ।
ମନ୍ତବ୍ୟ—ସ୍ୱାତୀଠାରୁ ଉତ୍ତର ଆଡ଼େ ସପ୍ତର୍ଷି ମଣ୍ଡଳର ଶେଷ ଲାଙ୍ଗୁଳ ତାରା ଯେଉଁ ଅବସ୍ଥିତିରେ ଅଛି, ଦକ୍ଷିଣ ଆଡ଼େ ଚିତ୍ରା ମଧ୍ୟ ସେହିପରି ଅବସ୍ଥିତ । ଚିତ୍ରା, ସ୍ୱାତୀ ଓ ସପ୍ତର୍ଷି ମଣ୍ଡଳର ଶେଷ ଲାଙ୍ଗୁଳତାରାକୁ ଯୋଗ କଲେ ଗୋଟିଏ ଚେପଟା ସମଦ୍ୱିବାହୁ ତ୍ରିଭୁଜ ହେବ ।

**୧୬ ।** ହିନ୍ଦୁ ମତରେ ନାମ—**ବିଶାଖା** ।

ଗଠନ ବା ଚକ୍ର—




କେଉଁ ରାଶିରେ ଅବସ୍ଥିତ—ତୁଳରେ ¾, ବିଛରେ ¼ ।
ଆକାଶର କେଉଁଠାରେ ଅବସ୍ଥିତ-ଦକ୍ଷିଣାକାଶରେ ଚିତ୍ରାର ଦକ୍ଷିଣପୂର୍ବ ।
ଆକାର ଓ ତାରକା ସଂଖ୍ୟା—ଉତ୍ତର ଦକ୍ଷିଣ ହୋଇ ଅବସ୍ଥିତ ୨ଟି ତାରା ।
ପାଶ୍ଚାତ୍ୟ ନାମ—ଆ. ୧ । ଜୁବେନ୍ ଏଲ ଉମେଲି ।
ଆ. ୨ । ଜୁବେନ୍ ଏଲ୍ ଜେନୁବୀ ।
ପାଶ୍ଚାତ୍ୟ ରାଶି ଅନୁସାରେ ଜ୍ୟୋତିଷିକ ପରିଚୟ—In Libra;
1. Alpha Librae; 2. Beta Librae.
କଟପାୟା ଲକ୍ଷିତ ସୂଚନା—ତୋରଣ ବା ମାଳାକୃତି ୫ ତାରା ।
ମନ୍ତବ୍ୟ—୧ମ ତାରା ୨ୟ ତାରାର ଉତ୍ତରରେ । ୨ୟ ତାରାଟି ସବୁଜ ବର୍ଣ୍ଣ; ୧ମ ତାରାଟି ରବିମାର୍ଗ (Ecliptic) ର ଉପରେ ଅବସ୍ଥିତ ।
କମ୍ପା ମତାନ୍ତରେ
ପୂର୍ବୋକ୍ତ ତାରା ଦ୍ୱୟ ଓ ୩।୪।୫ ଚିହ୍ନିତ ତାରା ।

ଗଠନ ବା ଚକ୍ର—




ଆକାର ଓ ତାରକା ସଂଖ୍ୟା—କଟପାୟା ମତରେ ତୋରଣାକୃତି ୫ ତାରା । ୨ ଚିହ୍ନିତ ତାରା ଏଥିର ଯୋଗ ତାରା ।
ପାଶ୍ଚାତ୍ୟ ରାଶି ଅନୁସାରେ ଜ୍ୟୋତିଷିକ ପରିଚୟ—In Libra; 1 Alpha Librae; 2 Beta Librae; 3. Delta Librae 4. Gamma Librae; 5. Zeta Librae.
ମନ୍ତବ୍ୟ—ବୈଶାଖ ପୂର୍ଣ୍ଣିମାରେ ଚନ୍ଦ୍ର ଏହି ନକ୍ଷତ୍ରରେ ଥାଆନ୍ତି । ଏହି ବିଶାଖା ଫାଟକର ତାରକା ଦ୍ୱୟର (୧ ଓ ୨ର) ମଧ୍ୟ ଦେଇ ସୂର୍ଯ୍ୟ ଗତି କରନ୍ତି ।

**୧୭ ।** ହିନ୍ଦୁମତରେ ନାମ—**ଅନୁରାଧା** ବା ମିତ୍ର ।
ଗଠନ ବା ଚକ୍ର—




କେଉଁ ରାଶିରେ ଅବସ୍ଥିତ—ବିଛରେ ।
ଆକାଶର କେଉଁଠାରେ ଅବସ୍ଥିତ—ଦକ୍ଷିଣାକାଶରେ ।
ପାଶ୍ଚାତ୍ୟ ନାମ—Scorpion's head.
ପାଶ୍ଚାତ୍ୟ ରାଶି ଅନୁସାରେ ଜ୍ୟୋତିଷିକ ପରିଚୟ—In Libra; 1. Lambda Librae; In Scropio; 2. Delta scropii 3. Omega Scropii; 4. Nu Scropii; 5. Beta Scropii.
କଟପାୟାରେ ଲକ୍ଷିତ ସୂଚନା—ସର୍ପାକୃତି ୫ ତାରା; ସୂର୍ପ ବା ଜଳଧାରା ବା କଙ୍କଡ଼ା ବିଛାର ମୁଣ୍ଡ ।
ମନ୍ତବ୍ୟ—୪ ଚିହ୍ନିତ ତାରାର ଦକ୍ଷିଣରେ ଅନ୍ୟ ତାରାମାନେ ଅବସ୍ଥିତ । ୧ ଓ ୩ ଚିହ୍ନିତ ତାରା ରବିମାର୍ଗ ଉପରେ ଅବସ୍ଥିତ । ଏ ପୁଞ୍ଜର ଯୋଗତାରା ୫ ଚିହ୍ନିତ । ଏ ନକ୍ଷତ୍ର କଙ୍କଡ଼ାବିଛାର ମୁଣ୍ଡ ।
କମ୍ପା ମତାନ୍ତରେ

ଗଠନ ବା ଚକ୍ର




ଆକାର ଓ ତାରକା ସଂଖ୍ୟା—କଟପାୟା ମତରେ ସର୍ପାକୃତି ୫ ତାରା ।
ପାଶ୍ଚାତ୍ୟ ରାଶି ଅନୁସାରେ ଜ୍ୟୋତିଷିକ ପରିଚୟ—
In Scropio; 1. Rho Scropii; 2. Pi Scropii. 3. Delta Scorpii; 4. Omega Scropii; 5, Beta Scropii
କଟପାୟା ଲକ୍ଷିତ ସୂଚନା—କଙ୍କଡ଼ା ବିଛାର ଦୁଇ ଅଡ଼ାକୁ ନାକୁଡ଼ ବାହାର ଥିବା ମୁଣ୍ଡ ।
ମନ୍ତବ୍ୟ—ପୂର୍ବ ବର୍ଣ୍ଣିତ ପୁଞ୍ଜର ୨ୟ ତାରା ଏ ପୁଞ୍ଜର ୩ୟ ତାରା, ପୂର୍ବ ପୁଞ୍ଜର ୩ୟ ତାରା ଏ ପୁଞ୍ଜର ୪ର୍ଥ ତାରା ଓ ପୂର୍ବବର୍ଣ୍ଣିତ ପୁଞ୍ଜର ୫ମ ତାରା ଏ ପୁଞ୍ଜର ୫ମ ତାରା । ଏଥିର ଯୋଗ ତାରା

୫ ଚିହ୍ନିତ ତାରା । ଏ ନକ୍ଷତ୍ର କଙ୍କଡ଼ା ବିଛାର ମୁଣ୍ଡ ଓ ଦୁଇ ପାଖେ ୨ ଟି ନାହୁଡ଼ ।

**୧୮ ।** ହିନ୍ଦୁମତରେ ନାମ—**ଜ୍ୟେଷ୍ଠା** ବା ବାସବ ।

ଗଠନ ବା ଚକ୍ର




କେଉଁ ରାଶିରେ ଅବସ୍ଥିତ—ବୃଷ୍ଚରେ ।

ଆକାଶର କେଉଁଠାରେ ଅବସ୍ଥିତ—ଦକ୍ଷିଣାକାଶରେ ।

ଆକାର ଓ ତାରକା ସଂଖ୍ୟା—ଉତ୍ତରପଶ୍ଚିମରୁ ଦକ୍ଷିଣପୂର୍ବକୁ ଅବସ୍ଥିତ ୩ଟି ତାରା ।

ପାଶ୍ଚାତ୍ୟ ନାମ—Scorpion's body or back.

ପାଶ୍ଚାତ୍ୟଗଣିତ ଅନୁସାରେ ଜ୍ୟୋତିଷିକ ପରିଚୟ—In Scorpio; 1 Sigma Scorpii; 2 Antares or Alpha Scorpii; 3. Tau Scorpii

କଷ୍ଟପାସ୍ୟାରେ ଲିଖିତ ସୂଚନା—ବରାହ ଦନ୍ତପରି ୩ ତାରକା; ସର୍ପାକୃତି ବା କୁଣ୍ଡଳାକୃତି ।

ମନ୍ତବ୍ୟ—ଏଥିର ଯୋଗ ତାରା ୨ ଚିହ୍ନିତ ଓ ଏହା ଜଳନ୍ତା ନିଆଁ ବା ଗଙ୍ଗଶିଉଳି ଫୁଲର ଡେମ୍ଫ ପରି ନାଲି । ଏ ନକ୍ଷତ୍ର କଙ୍କଡ଼ା-ବିଛାର ଦେହ ବା ପିଠିରୂପେ କଳ୍ପିତ । ଜ୍ୟେଷ୍ଠ ପୂର୍ଣ୍ଣିମାଦିନ ଚନ୍ଦ୍ର ଏ ନକ୍ଷତ୍ରରେ ଥାଆନ୍ତି ।

**୧୯ ।** ହିନ୍ଦୁ ମତରେ ନାମ—**ମୂଳା** ।

ଗଠନ ବା ଚକ୍ର—




କେଉଁ ରାଶିରେ ଅବସ୍ଥିତ—ଧନୁରେ ।

ଆକାଶରେ କେଉଁଠାରେ ଅବସ୍ଥିତ—ଦକ୍ଷିଣାକାଶରେ ।

ଆକାର ଓ ତାରକା ସଂଖ୍ୟା—କଙ୍କଡ଼ା ବିଛାର ବଙ୍କା ଲାଙ୍ଗୁଳରୂପେ କଳ୍ପିତ, ଶଙ୍ଖ ବା ଧନୁର କୋଟିରୂପେ ଅବସ୍ଥିତ ୧୧ଟି ତାରା । ୮ ଚିହ୍ନିତ ଶ୍ୟାମ, ୯ ଚିହ୍ନିତ ଶବଳ, ୮ ଓ ୯ ଚିହ୍ନିତ ତାରା ଦ୍ୱାରା ଯମଙ୍କର ୨ଟି କୁକୁର ବା ସାରମେୟ ଯୁଗଳ ।

ଓଡ଼ିଆ ବା ଦେଶୀୟ ନାମ—ମୂଳା ଶଙ୍ଖ ।

ପାଶ୍ଚାତ୍ୟ ନାମ—Scorpion's tail. ୮ ଚିହ୍ନିତ ଲାଟିନ୍ Shoula, ୯ ଚିହ୍ନିତ ଲାଟିନ୍ Lesath.

ପାଶ୍ଚାତ୍ୟ ଗଣିତ ଅନୁସାରେ ଜ୍ୟୋତିଷିକ ପରିଚୟ—In Scorpio-1 Epsilon Scorpii, 2 Mu Scorpii, 3 Zeta Scorpii, 4 Eta Scorpii, 5 Theta Scorpii, 6 Iota Scorpii, 7. Kappa Scorpii, 8 Lambda Scorpii, 9 Upsilou Scorpii.

କଷ୍ଟପାସ୍ୟାରେ ଲିଖିତ ସୂଚନା—ଶଙ୍ଖାକୃତି ବା ସିଂହପୁଚ୍ଛାକୃତି ୯ ତାରା ।

---

ମନ୍ତବ୍ୟ—ଅନୁରାଧା, ଜ୍ୟେଷ୍ଠା ଓ ମୂଳା ନକ୍ଷତ୍ରର ତାରାମାନଙ୍କୁ କଳ୍ପନାଦ୍ୱାରା ଯୋଗ କଲେ ଲାଙ୍ଗୁଳ ଉପରକୁ ଗୁଡ଼ାଇ କରି ଠେକିଥିବା ଗୋଟିଏ କଙ୍କଡ଼ାବିଛା ପରି ହେବ । ଏ ବିଛାର ମୁଣ୍ଡ ଅନୁରାଧା, ପିଠି ଜ୍ୟେଷ୍ଠା ଓ ଲାଙ୍ଗୁଡ଼ ମୂଳା ।




---

**୨୦ ।** ହିନ୍ଦୁ ମତରେ ନାମ—**ପୂର୍ବାଷାଢ଼ା** ।

ଗଠନ ବା ଚକ୍ର—




କେଉଁ ରାଶିରେ ଅବସ୍ଥିତ—ଧନୁରେ ।

ଆକାଶରେ କେଉଁଠାରେ ଅବସ୍ଥିତ—ଦକ୍ଷିଣାକାଶରେ ଛାୟାପଥରେ ଅବସ୍ଥିତ ଓ ମୂଳା ଶଙ୍ଖର ପଶ୍ଚିମରେ । ବିଷମ ଚତୁର୍ଭୁଜର ଗୋଟିଏ ବାହୁ ବର୍ଦ୍ଧିତ ।

ଆକାର ଓ ତାରକା ସଂଖ୍ୟା—କୁଲା ବା ସୂର୍ପ ଆକୃତିଯୁକ୍ତ ୫ ତାରା । ୪ ଚିହ୍ନିତ ତାରା ତୁଳସୀ ।

ପାଶ୍ଚାତ୍ୟ ନାମ—1, 2, 3 & 4 called Archer's bow, 3 ଲାଟିନ୍ N. Kaus, 4 ଲାଟିନ୍ M. Kaus, 5 ଲାଟିନ୍ Kaus Australis.

ପାଶ୍ଚାତ୍ୟ ଗଣିତ ଅନୁସାରେ ଜ୍ୟୋତିଷିକ ପରିଚୟ—In Sagittarius; 1 Epsilon Sagittarii, 2. Delta Sagittarii, 3. Lambda Sagittarii, 4. Mu Sagittarii 5 4 Sagittarii.

କଷ୍ଟପାସ୍ୟାରେ ଲିଖିତ ସୂଚନା—ହସ୍ତିଦନ୍ତ ବା ସୂର୍ପା କୃତି ୪ ତାରା; ତାହା ହେଲେ ୧ ଚିହ୍ନିତ ତାରାକୁ ବାଦ୍ ଦେବାକୁ ହେବ ।

ମନ୍ତବ୍ୟ—ଏଥିର ଯୋଗତାରା ୨ ଚିହ୍ନିତ; ଆଷାଢ଼ ପୂର୍ଣ୍ଣିମାରେ ଚନ୍ଦ୍ର ଏହି ନକ୍ଷତ୍ରରେ ଥାଆନ୍ତି ।

୨୧ । ହିନ୍ଦୁ ମତରେ ନାମ—**ଉତ୍ତରଷାଢ଼ା** ବା ଶଙ୍ଖ—



କେଉଁ ରାଶିରେ ଅବସ୍ଥିତ—ଧନୁରେ ୫, ମକରରେ ୫ ।

ଆକାଶରେ କେଉଁଠାରେ ଅବସ୍ଥିତ—ଦକ୍ଷିଣାକାଶରେ ଛାୟାପଥର ପୂର୍ବରେ; ବୃଷମ ଚତୁର୍ଭୁଜ ।

ଆକାର ଓ ତାରକା ସଂଖ୍ୟା—କୁଲା ବା ସୂର୍ପ ପର ୪ ତାରା ।

ପାଶ୍ଚାତ୍ୟ ନାମ—Trapezium in Sagittarius.

ପାଶ୍ଚାତ୍ୟ ରାଶି ଅନୁସାରେ ଜ୍ୟୋତିଷିକ ପରିଚୟ—In Sagittarius-1 Zeta Sagittarii, 2. Sigma Sagittarii, 3 Omicron Sagittarii, 4 Pi. Sagittarii.

କଷ୍ଟପାସ୍ଥିରେ ଲିଖିତ ସୂଚନା—ସୂର୍ପାକୃତି ୧ ତାରା ।

ମନ୍ତବ୍ୟ—ଦ୍ର—ଏଥିର ଯୋଗ ତାରା ୨ ଚିହ୍ନିତ; ଏହା ଛାୟାପଥର ପୂର୍ବରେ । ମକର ରାଶିରେ ଉତ୍ତରଷାଢ଼ାର ଉତ୍ତର ଓ ଶ୍ରବଣାର ଉତ୍ତର ପଶ୍ଚିମରେ ଗୋଟିଏ ନୀଳାଭ ଉଜ୍ଜ୍ୱଳ ତାରାର ନାମ ଅଭିଜିତ୍ ।

ଦ୍ର—ପୂର୍ବାଷାଢ଼ା ଓ ଉତ୍ତରଷାଢ଼ା ନକ୍ଷତ୍ରପୁଞ୍ଜଦ୍ୱୟର ୧୫ ତାରା ମିଳି ଗୋଟିଏ ବଡ଼ କୁଲା ପରି ଦେଖାଯାଏ ।




୨୨ । ହିନ୍ଦୁ ମତରେ ନାମ—**ଶ୍ରବଣା** ବା କେଶବ ।

ଗଠନ ବା ଚକ୍ର—



କେଉଁ ରାଶିରେ ଅବସ୍ଥିତ—ମକରରେ ।

ଆକାଶରେ କେଉଁଠାରେ ଅବସ୍ଥିତ—ମଧ୍ୟାକାଶରେ ।

ଆକାର ଓ ତାରକା ସଂଖ୍ୟା—ଉତ୍ତର ଦକ୍ଷିଣ ହୋଇ ଅବସ୍ଥିତ ୩ ତାରା, ଏହି ୩ ତାରାକୁ ଯୋଗ କଲେ ଗୋଟିଏ ଶର ବା ଯଷ୍ଟି ହେବ । ୧ କର୍ଣ୍ଣ, ୨ ବାସୁଦେବ ।

ପାଶ୍ଚାତ୍ୟ ନାମ—1 ଆ. Tarazed, 2 Altair, 3 ଆ. Alshain

ପାଶ୍ଚାତ୍ୟ ରାଶି ଅନୁସାରେ ଜ୍ୟୋତିଷିକ ପରିଚୟ—In Aquilla; 1 Gamma Aquilae, 2 Alpha Aquilae, 3 Beta Aquilae.

କଷ୍ଟପାସ୍ଥିରେ ଲିଖିତ ସୂଚନା—ତ୍ରିଶୂଳ ବା ଯାସ୍ତିକ ବା ଧନୁଶରାକୃତି ୩ ତାରା ।

ମନ୍ତବ୍ୟ—ଏଥିର ଯୋଗତାରା ୨ ଚିହ୍ନିତ । ଶ୍ରାବଣ ପୂର୍ଣ୍ଣିମାରେ ଚନ୍ଦ୍ର ଏହି ନକ୍ଷତ୍ରରେ ରହନ୍ତି ।

୨୩ । ହିନ୍ଦୁ ମତରେ ନାମ—**ଧନିଷ୍ଠା** ବା ଶ୍ରବିଷ୍ଠା ବା ଧନ ।

ଗଠନ ବା ଚକ୍ର—



କେଉଁ ରାଶିରେ ଅବସ୍ଥିତ—ମକରରେ ½, କୁମ୍ଭରେ ½ ।

ଆକାଶରେ କେଉଁଠାରେ ଅବସ୍ଥିତ—ଦକ୍ଷିଣାକାଶରେ, ଛାୟାପଥର ପୂର୍ବକୂଳରେ ଓ ଜ୍ୟେଷ୍ଠାର ଉତ୍ତରପୂର୍ବରେ ।

ଆକାର ଓ ତାରକା ସଂଖ୍ୟା—ଡୋର ଲାଗିଥିବା କାଗଜ ଚଙ୍ଗ ( ଗୁଡ଼ି ) ଆକାରର ୫ ତାରା । ୧ ବସୁଦେବ, ୨ ରହସ୍ୟ ।

ପାଶ୍ଚାତ୍ୟ ନାମ—The Kite, 1 Sadalacin, 4 Rotaner.

ପାଶ୍ଚାତ୍ୟ ରାଶି ଅନୁସାରେ ଜ୍ୟୋତିଷିକ ପରିଚୟ—In Delphinus; 1 Alpha Delphini, 2 Gamma Delphini, 3 Delta Delphini. 4 Beta Delphini, 5 Epsilon Delphini.

କଷ୍ଟପାସ୍ଥିରେ ଲିଖିତ ସୂଚନା—ମର୍ଦ୍ଦଲାକାର ୫ ତାରା ।

ମନ୍ତବ୍ୟ—ଏଥିର ଯୋଗତାରା ୧ ଚିହ୍ନିତ ।

୨୪ । ହିନ୍ଦୁ ମତରେ ନାମ—**ଶତଭିଷା** ବା ଶତତାରକା—



କେଉଁ ରାଶିରେ ଅବସ୍ଥିତ—କୁମ୍ଭରେ ।

ଆକାର ଓ ତାରକା ସଂଖ୍ୟା—ମୁକ୍ତାହାର ଛିଣ୍ଡି ଯାଇ ଶେଷରେ ବୃଣି ହୋଇଯିବା ପରି ଇତସ୍ତତଃ ବିକ୍ଷିପ୍ତ ୭ଟି ଉଜ୍ଜ୍ୱଳ ତାରା । ୧ ଗାବାସି, ୨ ଦୃଢ଼ବସ୍ତ୍ର, ୩ ବିଦୁର, ୭ ଦୁର୍ଯ୍ୟୋଧନ ।

ପାଶ୍ଚାତ୍ୟ ନାମ—1 ଆରବ୍ଧ. Sadal Sud; 2 ଆରବ୍ଧ. Sadal Melik; 3 ଆରବ୍ଧ Sadal Chiba; 7 ଆରବ୍ଧ. Ancha.

ପାଶ୍ଚାତ୍ୟ ରାଶି ଅନୁସାରେ ଜ୍ୟୋତିଷିକ ପରିଚୟ—In Aquarius; 1 Beta Aquarii, 2 Alpha Aquarii, 3 Gamma Aquarii, 4 Zeta Aquarii, 5 Eta Aquarii, 6 Lambda Aquarii, 7 Theta Aquarii.

କଷ୍ଟିପାଥରରେ ଲକ୍ଷିତ ସୂଚନା—ମଣ୍ଡଳାକାର ବା ମୁକ୍ତାହାର ଏକ ଶତ ତାରକା ।

ମନ୍ତବ୍ୟ—( ବାମ ପାଖରୁ ସଂଖ୍ୟାର ଗଣନା ଆରମ୍ଭ କରି ଡାହାଣପାଖରେ ୭ ସଂଖ୍ୟା ଶେଷ କରାଯିବା ) ଏଥିର ଯୋଗତାରା ୩ ସଂଖ୍ୟକ ତାରା; ଏ ନକ୍ଷତ୍ର କୁମ୍ଭରାଶିସ୍ଥିତ ଶତାଧିକ ଇତସ୍ତତଃ ବିକ୍ଷିପ୍ତ କ୍ଷୁଦ୍ର ତାରାମାନଙ୍କର ସମାହାର ।

**୨୫ । ହିନ୍ଦୁ ମତରେ ନାମ—ପୂର୍ବଭାଦ୍ରପଦ ।**

ଗଠନ ବା ଚିତ୍ର—




କେଉଁ ରାଶିରେ ଅବସ୍ଥିତ—କୁମ୍ଭରେ ¾; ମୀନରେ ¼ ।

ଆକାଶରେ କେଉଁଠାରେ ଅବସ୍ଥିତ—ଉତ୍ତରାକାଶରେ, ୨ଟି ଶତଭିଷାର ଠିକ ପରେ ୨ଟି ଉଜ୍ଜ୍ୱଳ ତାରା ।

ଓଡ଼ିଆ ବା ଦେଶୀୟ ନାମ—ପୂର୍ବଭାଦ୍ରବ ।

ପାଶ୍ଚାତ୍ୟ ନାମ—1 Scheat, 2 Markab.

ପାଶ୍ଚାତ୍ୟ ରାଶି ଅନୁସାରେ ଜ୍ୟୋତିଷିକ ପରିଚୟ—In Pegassus; 1 Beta Pegasii, 2 Alpha Pegasai

କଷ୍ଟିପାଥରରେ ଲକ୍ଷିତ ସୂଚନା—ଘଣ୍ଟା ବା ଖଟ ଆକୃତିର ୨ଟି ତାରା ।

ମନ୍ତବ୍ୟ—ଭାଦ୍ର ପୂର୍ଣ୍ଣିମାରେ ଚନ୍ଦ୍ର ଏହି ନକ୍ଷତ୍ରରେ ଥାଆନ୍ତି ।

**୨୬ । ହିନ୍ଦୁ ମତରେ ନାମ—ଉତ୍ତରଭାଦ୍ରପଦ—**

ଗଠନ ବା ଚିତ୍ର ।




କେଉଁ ରାଶିରେ ଅବସ୍ଥିତ—ମୀନରେ ।

ଆକାଶର କେଉଁଠାରେ ଅବସ୍ଥିତ—ପୂର୍ବଭାଦ୍ରପଦର ପୂର୍ବରେ ଉତ୍ତରାକାଶରେ; ୨ଟି ଖଟଖୁରା ପରି ୨ଟି ଉଜ୍ଜ୍ୱଳ ତାରା ।

ଓଡ଼ିଆ ବା ଦେଶୀୟ ନାମ—ଉତ୍ତରଭାଦ୍ରବ । ୨ ଚିହ୍ନିତ ତାରାର ନାମ ସଂସ୍କୃତ. ଗୋପଦ ।

ପାଶ୍ଚାତ୍ୟ ନାମ—୧ । ଆରବ୍ଧ. Alpheratz; ୨ । ଆରବ୍ଧ. Algenib. Note—The 4 stars of Pūrba Bhādrapada and Uttara Bhādrapada are called the Square of Pegassus.

ପାଶ୍ଚାତ୍ୟ ରାଶି ଅନୁସାରେ ଜ୍ୟୋତିଷିକ ପରିଚୟ—
1. In Andromeda; Alpha Andromedae.
2. In Pegassus; Gamma Pegasii.

କଷ୍ଟିପାଥରା ଲକ୍ଷିତ ସୂଚନା—ଦୁଇଟି ନରମସ୍ତକ ବା ଖଟ ଆକୃତିର ୨ ତାରା ।

ମନ୍ତବ୍ୟ—କେବେ କେବେ ଭାଦ୍ର ପୂର୍ଣ୍ଣିମାରେ ଚନ୍ଦ୍ର ଏ ନକ୍ଷତ୍ରରେ ରହନ୍ତି । ପୂର୍ବଭାଦ୍ରପଦ ଓ ଉତ୍ତର ଭାଦ୍ରପଦର ୪ଟି ଯାକ ନକ୍ଷତ୍ର ପ୍ରାୟ ବର୍ଗକ୍ଷେତ୍ରାକାର ଖଟର ୪ଟି ଖୁରାର ଭୂମିରେ ପଡ଼ିଥିବା ଚିହ୍ନ ପରି ଦେଖାଯାଏ । ଏ ୪ଟି ତାରାକୁ ଯୋଗ କଲେ ଅଂଶତଃ ଗୋଟିଏ ସମଚତୁର୍ଭୁଜ ପରି ଦେଖାଯାଏ ।




**୨୭ । ହିନ୍ଦୁ ମତରେ ନାମ—ରେବତୀ ।**

ଗଠନ ବା ଚିତ୍ର—




କେଉଁ ରାଶିରେ ଅବସ୍ଥିତ—ମୀନରେ

ଆକାଶର କେଉଁଠାରେ ଅବସ୍ଥିତ—ଉତ୍ତରାକାଶରେ; ଉତ୍ତରଭାଦ୍ରପଦର ପୂର୍ବରେ ଆଖିକୁ ଦେଖାଯିବା ମତ୍ସ୍ୟାକୃତି ବା ଓଲଟ ଦେଉଳ ଆକୃତିର ୧୩ଟି ତାରା ।

ଆକାର ଓ ତାରକା ସଂଖ୍ୟା—ମତ୍ସ୍ୟାକାର ୧୩ ତାରା ।

ପାଶ୍ଚାତ୍ୟ ନାମ—ଗ୍ରୀକ୍. Mirach ।

ପାଶ୍ଚାତ୍ୟ ରାଶି ଅନୁସାରେ ଜ୍ୟୋତିଷିକ ପରିଚୟ—
9 stars in Andromeda and 4 in Piscis Australis; 1. Nu Andromedae; 2. Mu Andromedae; Beta Andromedae; 4. 82 Piscis Australis; 5. Epsilon Piscis Australis; 6. Lambda Piscis Australis; 7. Psi Piscis Australis; 8 Zeta Andromedae; 9 Epsilon Andromedae; 10. Delta Andromedae; 11. Pi Andromedae; 12. Sigma Andromedae; 13. Theta Andromedae.

କଷ୍ଟିପାଥରରେ ଲକ୍ଷିତ ସୂଚନା—ମୃଦଙ୍ଗ ବା ମତ୍ସ୍ୟାକୃତି ୩୨ ତାରା ।

ମନ୍ତବ୍ୟ—ଏ ତାରାମାନ ସଂଖ୍ୟାରେ ୩୨ ଥିଲେ ମଧ୍ୟ ଖାଲି ଆଖିକୁ ୧୩ ଟି ସ୍ପଷ୍ଟ ଦେଖା ଯାଆନ୍ତି । ଏଥିର ଯୋଗ ତାରା ୩ ଚିହ୍ନିତ ।

୨୮ । ହିନ୍ଦୁମତରେ ନାମ—**ଅଭିଜିତ୍** ।

ଗଠନ ବା ଛନ୍ଦ— *

କେଉଁ ରାଶିରେ ଅବସ୍ଥିତ—ମକର ରାଶିରେ ।

ଆକାଶର କେଉଁଠାରେ ଅବସ୍ଥିତ—ଉତ୍ତରାକାଶରେ ଶ୍ରବଣାର ଉତ୍ତରପଶ୍ଚିମ କୋଣରେ ।

ଆକାର ଓ ତାରକା ସଂଖ୍ୟା—ନୀଳ ଓ ଉଜ୍ଜ୍ୱଳ ଗୋଟିଏ ତାରା ।

ପାଶ୍ଚାତ୍ୟ ନାମ—Vega.

ପାଶ୍ଚାତ୍ୟ ରାଶି ଅନୁସାରେ ଜ୍ୟୋତିଷିକ ପରିଚୟ—
In Lyre; Alpha Lyra.

ମନ୍ତବ୍ୟ—ଅଶ୍ୱିନୀଠାରୁ ରେବତୀ ପର୍ଯ୍ୟନ୍ତ ୨୭ ନକ୍ଷତ୍ର ମଧ୍ୟରେ ଗ୍ରହମାନ ମାସକୁ ବାଣ୍ଟିବାବେଳକୁ କିଛି ନଆଣ୍ଟ ଦେଖା ଯିବାରୁ ହିନ୍ଦୁ ଜ୍ୟୋତିଷିମାନେ ଏହାକୁ ଅଷ୍ଟାବିଂଶ ନକ୍ଷତ୍ର ରୂପେ ଗଣନା କରିଅଛନ୍ତି । ଅଭିଜିତ ଧନିଷ୍ଠା ନକ୍ଷତ୍ରର ଘୁଡ଼ିର ଲାଞ୍ଜ ଦିଗରେ ଅବସ୍ଥିତ । ସୌର ଜଗତ ଏହି ତାରା ଆଡ଼କୁ ଗତି କରୁ ଅଛି ବୋଲି ପାଶ୍ଚାତ୍ୟ ପଣ୍ଡିତମାନେ କହନ୍ତି । ବାର ସହସ୍ର ବର୍ଷ ପୂର୍ବେ ଏହି ତାରା Pole star ବା ଧ୍ରୁବତାରା ଥିବାର ପଣ୍ଡିତମାନେ ନିର୍ଣ୍ଣୟ କରନ୍ତି ।

—o—

[ଦ୍ର—ଏହି ୨୮ ଟି ନକ୍ଷତ୍ର ବା ତାରାପୁଞ୍ଜ ଛଡ଼ା ଆଉ ଅନେକଗୁଡ଼ିଏ ଉଜ୍ଜ୍ୱଳ ନକ୍ଷତ୍ର ବା ତାରକା ଆକାଶରେ ଦେଖା ଯାଆନ୍ତି । ହିନ୍ଦୁ ଜ୍ୟୋତିଷିମାନେ ତହିଁରୁ କେତେଗୁଡ଼ିକର ନାମକରଣ କରିଅଛନ୍ତି । ପାଶ୍ଚାତ୍ୟମାନେ ଅପେକ୍ଷାକୃତ ଅଧିକ ସଂଖ୍ୟକ ନକ୍ଷତ୍ର ଓ ନକ୍ଷତ୍ରପୁଞ୍ଜମାନଙ୍କ ନାମକରଣ କରିଅଛନ୍ତି ।

୨୯ । ହିନ୍ଦୁମତରେ ନାମ—(ବଡ଼) **ସପ୍ତର୍ଷିମଣ୍ଡଳ** ବା ପିତୃଗଣ ବା ଚିତ୍ରଶିଖଣ୍ଡୀ । ( ଋଗ୍ବେଦରେ ଏହାକୁ ଋକ୍ଷମଣ୍ଡଳ ବୋଲାଯାଇ ଅଛି ) ।




ଆକାଶର କେଉଁଠାରେ ଅବସ୍ଥିତ—ଉତ୍ତରାକାଶରେ ଧ୍ରୁବତାରାକୁ କେନ୍ଦ୍ର କରି ତା ଚାରିପାଖରେ କିଛିଦୂର ଛଡ଼ାରେ ଘୁରୁଥିବା ୭ଟି ଉଜ୍ଜ୍ୱଳ ତାରା—

୧ । କ୍ରତୁ, ୨ । ପୁଲହ, ୩ । ପୁଲସ୍ତ୍ୟ, ୪ । ଅତ୍ରି, ୫ । ଅଙ୍ଗିରା, ୬ । ବଶିଷ୍ଠ, ୭ । ମରୀଚି ।

ଆକାର ଓ ତାରକା ସଂଖ୍ୟା—ଏ ତାରା ୭ଟି କୁ ଯୋଗ କଲେ ଗୋଟିଏ ବେଣ୍ଟଲଗା କରଚୁଲ ପରି ହେବ ।

ଓଡ଼ିଆ ବା ଦେଶୀୟ ନାମ—ଓଡ଼ିଆ. ସାତଭାଇୟା, ହିନ୍ଦ. ଖଟୋଲା ।

ପାଶ୍ଚାତ୍ୟ ନାମ—The Great Bear; The Plough; Charle's wain; The Waggon; The Butcher's cleaver; 1. Dubhe; 2. Merak; 3. Phecda; 4. Magrez; 5. Alioth; 6. Mizar; 7. Alkaid or Benetansch.

ପାଶ୍ଚାତ୍ୟରାଶି ଅନୁସାରେ ଜ୍ୟୋତିଷିକ ପରିଚୟ—In Ursa Major; 1 Alpha Ursae Majoris; 2. Beta Ursae Majoris; 3. Gamma Ursae Majois; 4. Delta Ursae Majoris; 5. Epsilon Ursae Majoris, 6 Zeta Ursae Majoris; 7. Eta Ursae Majoris

ମନ୍ତବ୍ୟ—୧।୨ ଚିହ୍ନିତ ତାରାକୁ ଯୋଗ କରି ଉକ୍ତ ରେଖାକୁ ୨ ଚିହ୍ନିତ ତାରା ଆଡ଼କୁ ଆଗକୁ ବଢ଼ାଇଲେ ଉକ୍ତ ରେଖା ଧ୍ରୁବତାରାର ପାଖ ଦେଇ ଯିବ । ଏ ଦୁଇ ତାରାକୁ The Pointers (ଧ୍ରୁବତାରାର ପ୍ରଦର୍ଶକ ବା ଧ୍ରୁବଦର୍ଶକ ) ବୋଲାଯାଏ । ୬ଷ୍ଠ ତାରା ପାଖେ ଗୋଟିଏ ଅତି ଛୋଟ ତାରା ଅଛି, ତାକୁ ବଶିଷ୍ଠଙ୍କ ପତ୍ନୀ ଅରୁନ୍ଧତୀ ( ଆରବୀ. Alcor; ପାରସୀ. Saidak; ଗ୍ରୀକ୍. 80 Ursae Majoris) କହନ୍ତି । ଏ ୭ ତାରା ବା ସପ୍ତର୍ଷିମଣ୍ଡଳର ୬ଷ୍ଠ ତାରା ପାଖେ ଥିବା ବଶିଷ୍ଠପତ୍ନୀ ଅରୁନ୍ଧତୀ ଛଡ଼ା ଆଉ ୬ ଜଣ ଋଷିପତ୍ନୀ କୃତ୍ତିକାପୁଞ୍ଜରେ ଅବସ୍ଥିତ । ୪ର୍ଥ ତାରା ଏ ପୁଞ୍ଜରେ କ୍ଷୀଣତମ ତାରକା । ସପ୍ତର୍ଷିମଣ୍ଡଳର ଉଲ୍ଲେଖ ଭାଗବତ ୯ମ ସ୍କନ୍ଧ ୧୯ଶ ଶ୍ଲୋକରେ ଅଛି ।

୩୦ । ହିନ୍ଦୁମତରେ ନାମ—**ଅରୁନ୍ଧତୀ** ।

ଗଠନ ବା ଛନ୍ଦ— *

ଆକାଶର କେଉଁଠାରେ ଅବସ୍ଥିତ—ଉତ୍ତରାକାଶରେ ସପ୍ତର୍ଷିମଣ୍ଡଳର ଲାଞ୍ଜର ଶେଷ ମୁଣ୍ଡ ତାରକାକୁ ଛାଡ଼ି ଗୋଟିଏ ତାରା (୬ଷ୍ଠ ତାରା) ନିକଟରେ ଥିବା କ୍ଷୁଦ୍ର ତାରା ।

ଆକାର ଓ ତାରକା ସଂଖ୍ୟା—ଗୋଟିଏ କ୍ଷୁଦ୍ର ତାରା ।

ପାଶ୍ଚାତ୍ୟ ନାମ—ଆରବୀ. Alcor; ପାରସୀ. Saidak.

ପାଶ୍ଚାତ୍ୟ ରାଶି ଅନୁସାରେ ଜ୍ୟୋତିଷିକ ପରିଚୟ—
Iu Ursa Major; 80 Ursae Majoris.

ମନ୍ତବ୍ୟ—ହିନ୍ଦୁମାନେ ବିଶ୍ୱାସ କରନ୍ତି ଯେ ମରିବାର ୬ ମାସ ପୂର୍ବରୁ ଏ ତାରା ମନୁଷ୍ୟର ଆଖିକୁ ଦେଖା ଯାଏ ନାହିଁ । ଏଥିସମ୍ବନ୍ଧେ ଶାସ୍ତ୍ରବଚନ ଯଥା—ପାପନିର୍ବାଣଶକଂ ଚ ସୁହୃଦ୍ବାକ୍ୟ ମରୁନ୍ଧତୀଂ, ନ ଜିଘ୍ରନ୍ତି ନ ଶୃଣ୍ୱନ୍ତି ନ ପଶ୍ୟନ୍ତି ଗତାୟୁଷଃ । ଫଳତଃ ଏ ନକ୍ଷତ୍ରଟି ଅତି କ୍ଷୁଦ୍ର ଥିବାରୁ କ୍ଷୀଣଦୃଷ୍ଟି ବ୍ୟକ୍ତିଙ୍କୁ ଏହା ଦେଖାଯାଏ ନାହିଁ । ପୁରାଣରେ ଅଛି ଯେ ସପ୍ତର୍ଷିଙ୍କ ପତ୍ନୀମାନଙ୍କୁ ଇନ୍ଦ୍ର ପ୍ରଲୋଭନ ଦେଖାଇବାରୁ ବଶିଷ୍ଠପତ୍ନୀ ଅରୁନ୍ଧତୀଙ୍କ ଛଡ଼ା ଅନ୍ୟ ୬ ଜଣଙ୍କ ମନ ବିଚଳିତ ହେଲା । ସପ୍ତର୍ଷିମାନେ ଏ କଥା ଜାଣିପାରି ଅବିଚଳିତା ଅରୁନ୍ଧତୀଙ୍କୁ ବଶିଷ୍ଠଙ୍କ ପାଖେ ସ୍ଥାନ ଦେଲେ, ବାକି ୬ ଜଣଙ୍କୁ ନିଜନିଜ ପାଖରୁ ତଡ଼ିଦେଲେ ଓ ସେମାନେ ଯାଇ କୃତ୍ତିକାପୁଞ୍ଜ (ହିନ୍ଦୁ ଜ୍ୟୋତିଷର ୩ୟ ନକ୍ଷତ୍ର)ରେ ରହିଲେ । ଅରୁନ୍ଧତୀ ପତିବ୍ରତା ନାରୀର ଆଦର୍ଶ । ଏଥିପାଇଁ ବିବାହିତ ଦମ୍ପତି ପାଣିଗ୍ରହଣବିଧି ଶେଷରେ ସାଙ୍ଗ ହୋଇ ବଶିଷ୍ଠ ଓ ଅରୁନ୍ଧତୀ ନକ୍ଷତ୍ରଦ୍ୱୟଙ୍କୁ ଦର୍ଶନ କରିବାର ବିଧି ଅଛି ।

୩୧ । ହିନ୍ଦୁମତରେ ନାମ—**ଧ୍ରୁବତାରା** ବା ସୌମ୍ୟଧ୍ରୁବ ବା ଶିଶୁମାର ପୁଚ୍ଛ ।

ଗଠନ ବା ଛନ୍ଦ— *

ଆକାଶର କେଉଁଠାରେ ଅବସ୍ଥିତ—ଉତ୍ତରାକାଶର ମଧ୍ୟଭାଗରେ ଚକ୍ରବାଳର କିଛି ଉପରେ ଅବସ୍ଥିତ ସ୍ଥିର ଓ ଅଚଳ ଉଜ୍ଜ୍ୱଳ ତାରା। ଏହା ଧ୍ରୁବ ମଣ୍ଡଳର ବା ଶିଶୁମାର ପୁଞ୍ଜର ପୁଚ୍ଛତାରା ।

ଆକାର ଓ ତାରକା ସଂଖ୍ୟା—ଗୋଟିଏ ଉଜ୍ଜ୍ୱଳ ତାରା ।

ଓଡ଼ିଆ ବା ଦେଶୀୟ ନାମ—ଧ୍ରୁବ ।

ପାଶ୍ଚାତ୍ୟ ନାମ—North pole star; The Polaris

ପାଶ୍ଚାତ୍ୟରୀତି ଅନୁସାରେ ଜ୍ୟୋତିଷିକ ପରିଚୟ—In Ursa Minor, Alpha Ursae Minoris.

ମନ୍ତବ୍ୟ—ସବୁ ନକ୍ଷତ୍ର ମଧ୍ୟରେ କେବଳ ଏହି ଧ୍ରୁବତାରା ସ୍ଥିର ଓ ଅଚଳ । ଆକାଶମଣ୍ଡଳର ଅନ୍ୟ ସମସ୍ତ ତାରା ଧ୍ରୁବଙ୍କୁ କେନ୍ଦ୍ର କରି ପୂର୍ବରୁ ପଶ୍ଚିମକୁ ବେଙ୍ଗଳା ପରି ଘୁରୁଛନ୍ତି । ଭାଗବତ ୪ ର୍ଥ ସ୍କନ୍ଧ ୧୯।୨୨ଶ ଅଧ୍ୟାୟରେ ଏ ତାରାର ବିଷୟ ଲେଖାଅଛି । ଏ ତାରା ଅପେକ୍ଷାକୃତ କିଞ୍ଚିତ ଥିଲେ ମଧ୍ୟ ଏହାର ଗତି ଅଛି । ଏ ପୃଥିବୀର ମେରୁଦଣ୍ଡର ବୃତ୍ତାକାର ଗତି ସଙ୍ଗେ ବୁଲି ବୁଲି ୨୮୦୦୦ ବର୍ଷରେ ଉତ୍ତରାକାଶରେ ଗୋଟିଏ ବୃତ୍ତ ଅଙ୍କିତ କରେ । ଏ ତାରା ପୃଥିବୀର ଉତ୍ତର ମେରୁର ଠିକ୍ ମୁଣ୍ଡ ଉପରେ ଅବସ୍ଥିତ । ଉତ୍ତର ମେରୁବାସୀ ଲୋକଙ୍କୁ ଏ ତାରା ମୁଣ୍ଡ ଉପରେ ଦେଖାଯାଏ । ଭଗବାନ୍ ଭକ୍ତ ଧ୍ରୁବଙ୍କ ତପସ୍ୟାରେ ପ୍ରୀତ ହୋଇ ତାଙ୍କୁ ଏ ସ୍ଥାନ ଦେଇଥିଲେ । ଏହି ତାରାକୁ ଲକ୍ଷ୍ୟ କରି ଉତ୍ତର ଦିଗ ନିର୍ଣ୍ଣୟ କରି ରାତିରେ ପଥଭ୍ରାନ୍ତ ପଥିକ ଓ ନାବିକମାନେ ବାଟ ଠଉରାନ୍ତି ।

**୩୨ । ଛନ୍ଦମତରେ ନାମ—(ଛୋଟ) ସପ୍ତର୍ଷିମଣ୍ଡଳ** ଶିଶୁମାରମଣ୍ଡଳ; ଧ୍ରୁବାମଣ୍ଡଳ; ଧ୍ରୁବପୁଞ୍ଜ ।



ଆକାଶର କେଉଁଠାରେ ଅବସ୍ଥିତ—ଉତ୍ତରାକାଶରେ ।

ଆକାର ଓ ତାରକା ସଂଖ୍ୟା—ବଡ଼ ସପ୍ତର୍ଷିମଣ୍ଡଳର ବିପରୀତ ଦିଗରେ ସପ୍ତର୍ଷିମଣ୍ଡଳପରି ଅବସ୍ଥିତ ୭ଟିତାରା—୧ । ଉତ୍ତମ ବା ଉତ୍ତାନପାଦ, ୨ । ସୁରୁଚି, ୪ । ପ୍ରଜାପତି ଶିଶୁମାର, ୬ । ସୁନୀତି, ୭ । ଧ୍ରୁବ ।

ପାଶ୍ଚାତ୍ୟ ନାମ—ଲା. Ursa Minoris; ଇଂ. The Little or Lesser Bear, ଆ. Arkas; ଏ ପୁଞ୍ଜର ଅନ୍ୟ ଇଂ. ନାମ The circumpolar stars; ୧ । ଆରବୀ Kochab; ୨ । ଆରବୀ Pherkad; ୭ । ଲାଟିନ୍ Polaris.

ପାଶ୍ଚାତ୍ୟରୀତି ଅନୁସାରେ ଜ୍ୟୋତିଷିକ ପରିଚୟ—In Ursae Minor; 1. Beta Ursae Minoris; 2. Gauma Ursae Minoris; 3 Eta Ursae Minoris; 4. Zeta Ursae Minoris; 5. Epsilon Ursae Minoris; 6. Delta Ursae Minoris; 7. Alpha Ursae Minoris

ପୁରାଣ ଲିଖିତ ସୂଚନା—ଭାଗବତ ୪ର୍ଥ, ୯ମ ଓ ୫ମ ସ୍କନ୍ଧରେ ଧ୍ରୁବ ନକ୍ଷତ୍ର ଓ ଶିଶୁମାରମଣ୍ଡଳର ବର୍ଣ୍ଣନା ଅଛି ।

ମନ୍ତବ୍ୟ—ଶିଶୁମାର ଧ୍ରୁବଙ୍କ ଶ୍ୱଶୁର । ଏହାଙ୍କ କନ୍ୟା ଭ୍ରମିଙ୍କୁ ଧ୍ରୁବ ବିବାହ କରିଥିଲେ । ବଡ଼ ସପ୍ତର୍ଷି ମଣ୍ଡଳର ଲାଙ୍ଗୁଡ଼ରେ ଏ ଧ୍ରୁବମଣ୍ଡଳର ମୁଣ୍ଡପାଖ ଏବଂ ଏହାର ଲାଙ୍ଗୁଡ଼ରେ ବଡ଼ ସପ୍ତର୍ଷିମଣ୍ଡଳର ମୁଣ୍ଡପାଖ । ଏ ମଣ୍ଡଳର ଲାଙ୍ଗତାରା ଧ୍ରୁବ ସର୍ବୋଜ୍ଜ୍ୱଳ । ଏ ମଣ୍ଡଳର ୧।୨ ଚିହ୍ନିତ ତାରା ଉଜ୍ଜ୍ୱଳ । ବାକି ୪ଟି ତାରା ଉଜ୍ଜ୍ୱଳ ନୁହନ୍ତି ଓ ନିର୍ମଳାକାଶ ନ ହେଲେ ଦେଖା ପଡ଼ନ୍ତି ନାହିଁ । ଏ ପୁଞ୍ଜର ୧।୨ ତାରା ଓ ବଡ଼ ସପ୍ତର୍ଷିମଣ୍ଡଳର ୬ଷ୍ଠ ତାରାର ମଝିରେ ଗୋଟିଏ ଅନୁଜ୍ଜ୍ୱଳ ତାରା ଅଛି । ଏହି ତାରା ଏବଂ ଧ୍ରୁବପୁଞ୍ଜକୁ ମିଶାଇ ଗାର ଟାଣିଲେ ଗୋଟିଏ ମାଛର ଆକାର ଦେଖାଯାଏ । ଏ ମାଛ ଆକୃତିକୁ 'ଧ୍ରୁବମତ୍ସ୍ୟ' କହନ୍ତି ।

**୩୩ । ଛନ୍ଦମତରେ ନାମ—ଧ୍ରୁବମତ୍ସ୍ୟ ।**

ଗଠନ ବା ଛବି



ଆକାଶର କେଉଁଠାରେ ଅବସ୍ଥିତ—ଉତ୍ତରାକାଶରେ ।

ଆକାର ଓ ତାରକା ସଂଖ୍ୟା—ଧ୍ରୁବପୁଞ୍ଜର ୭ଟି ତାରା ଓ ଉକ୍ତ ପୁଞ୍ଜର ୧ ଓ ୨ ଚିହ୍ନିତ ତାରାଦ୍ୱୟର ମୁଣ୍ଡ ଉପରେ ଥିବା ଗୋଟିଏ ତାରା, ଏରୂପେ ୮ ତାରା । ୧ ଓ ୨ ଚିହ୍ନିତ ତାରାଦ୍ୱୟର ମୁଣ୍ଡ ଉପରେ ଥିବା ତାରାର ସଂସ୍କୃତ ନାମ ଯମ ।

ପାଶ୍ଚାତ୍ୟ ନାମ—୧ ଠାରୁ ୭ ଚିହ୍ନିତ ତାରା ଧ୍ରୁବପୁଞ୍ଜର ୭ ତାରା; ୮ମ ତାରାର

ସଂ. ନାମ ଯମ; ଗ୍ରୀକ୍—Thuban; ଆରବୀ—Rastaban

ପାଶ୍ଚାତ୍ୟରୀତି ଅନୁସାରେ ଜ୍ୟୋତିଷିକ ପରିଚୟ—All the seven stars of Ursa Minor and the star Alpha Draconis which is the head-star of Dhruba-matsya.

ମନ୍ତବ୍ୟ—୮ମ ତାରାଟି ଧ୍ରୁବ ମତ୍ସ୍ୟର ଥିଣ୍ଟ ତାରା । ଜ୍ୟୋତିଷିମାନେ କହନ୍ତି ଯେ ୫୦୦୦ ବର୍ଷ ପୂର୍ବେ ଏହି ତାରାଟି ଧ୍ରୁବ ତାରାର ସ୍ଥାନ ଅଧିକାର କରିଥିଲା ।

**୩୪ । ଛନ୍ଦମତରେ ନାମ—କାଶ୍ୟପୀୟ ମଣ୍ଡଳ ।**

ଗଠନ ବା ଛବି—



ଆକାଶରେ କେଉଁଠାରେ ଅବସ୍ଥିତ—ଉତ୍ତରାକାଶରେ ବଡ଼ ସପ୍ତର୍ଷିମଣ୍ଡଳର ଦକ୍ଷିଣକୁ ଥିବା ୫ ତାରା । ଏ ୫ ତାରାକୁ ଯୋଗ କଲେ ଇଂରାଜି W (ଡବଲ୍ୟୁ) ପରି ଅକ୍ଷର ଦେଖାଯିବ । ୧. ଜମଦଗ୍ନି,

୨. ଗୋତମ, ୩. ବଶିଷ୍ଠ, ୪. ଅତ୍ରି, ୫. କଶ୍ୟପ । ଏହି ତାରପୁଞ୍ଜ ପାଖରେ ଆଉ ଦୁଇଟି ତାରାକୁ ବିଶ୍ୱାମିତ୍ର ଓ ଭରଦ୍ୱାଜ ବୋଲି-ଯାଏ ।

ପାଶ୍ଚାତ୍ୟ ନାମ —ଇଂ. Lady's chair or The lady in her throne; 1 Caph, 2 Schedar.

ପାଶ୍ଚାତ୍ୟ ରାଶି ଅନୁସାରେ ଜ୍ୟୋତିଷିକ ପରିଚୟ—In Group Cassiopea; 1 Beta Cassiopeiæ, 2 Alpha Cassiopeiæ, 3 Gamma Cassiopeiæ, 4 Delta Cassiopeiæ, 5 Epsilon Cassiopeiæ.

ପୁରାଣ ଲିଖିତ ସୂଚନା—ଭାଗବତ ୮ମ ସ୍କନ୍ଧ ୧୩ଶ ଅଧ୍ୟାୟରେ ଏ ପୁଞ୍ଜରେ ୭ଟି ଋଷି ଥିବାର ଉଲ୍ଲେଖ ଅଛି ।

ମନ୍ତବ୍ୟ—ଧ୍ରୁବତାରା ସଙ୍ଗେ ସପ୍ତର୍ଷି ମଣ୍ଡଳର ୫ମ ତାରାକୁ ଯୋଗ କରି ଉକ୍ତ ରେଖାକୁ ଦକ୍ଷିଣ ଆଡ଼କୁ ବଢ଼ାଇଲେ ଉକ୍ତ ବର୍ଦ୍ଧିତ ରେଖା ଏ କାଶ୍ୟପୀୟ ପୁଞ୍ଜକୁ ଭେଦ କରିବ । ଏ ପୁଞ୍ଜର ୫ମ ତାରା ଧ୍ରୁବ ତାରାର ନିକଟତମ ତାରା ।

**୩୫ ।** ହିନ୍ଦୁ ମତରେ ନାମ—**ବ୍ରହ୍ମ କଟାହ** ବା ବ୍ରହ୍ମ ମଣ୍ଡଳ ।



ଆକାଶରେ କେଉଁଠାରେ ଅବସ୍ଥିତ—ଉତ୍ତରାକାଶର କୃତ୍ତିକା ପୁଞ୍ଜର ଉତ୍ତରପୂର୍ବରେ ପୂର୍ବ ଆଡ଼କୁ ଅଣେଇ ହୋଇଥିବା କଟାହ ବା ହାଣ୍ଡି ପରି ୫ଟି ଉଜ୍ଜ୍ୱଳ ତାରା ଓ ହାଣ୍ଡିର ଫନ୍ଦ ଉପରକୁ ଅଣକର ବେଣ୍ଟ ପରି ବାହାରିଥିବା ୨ଟି ଅନୁଜ୍ଜ୍ୱଳ ତାରା ।

ଓଡ଼ିଆ ବା ସଂସ୍କୃତ ନାମ—୧. ବ୍ରହ୍ମା ବା ବ୍ରହ୍ମ ହୃଦୟ, ୨.ପ୍ରଜାପତି ବା ଭୂରଃ, ୪. ଅଗ୍ନି, ୭. ରାମବାଣ ।

ପାଶ୍ଚାତ୍ୟ ନାମ—1 ଗ୍ରୀକ୍ Aige Cappella; ଆରବୀ Alajoth, 2 Menkalinnan, 4 Nath, 6 and 7 The kids.

ପାଶ୍ଚାତ୍ୟ ରାଶି ଅନୁସାରେ ଜ୍ୟୋତିଷିକ ପରିଚୟ—In Auriga; 1 Alpha Aurigae, 2 Beta Aurigae, 3 Theta Aurigae, 4 Beta Touri, 5 Iota Aurigae, 6 Eta Aurigae, 7 Zeta Aurigae.

ମନ୍ତବ୍ୟ—ଏ ପୁଞ୍ଜର ୧ମ ତାରା ଛାୟା ପଥର ଉତ୍ତର କୂଳରେ; ଏଥିର ୨ୟ ତାରା ପ୍ରଜାପତି ବା ଭୂରଃ; ୪ର୍ଥ ତାରା ଅଗ୍ନି; ଏହା ଉତ୍ତରାକାଶରେ ଆକାଶଗଙ୍ଗାର ଉଜ୍ଜ୍ୱଳତାରା । ୧ମ ତାରା ବ୍ରହ୍ମା ବା ବ୍ରହ୍ମ ହୃଦୟ । ଅଗ୍ନି ତାରାର ଦକ୍ଷିଣ ପୂର୍ବରେ ଥିବା ତାରା Zeta Tauri, ଅଶ୍ୱିନୀ ସ୍ୱାହା ।

**୩୬ ।** ହିନ୍ଦୁ ମତରେ ନାମ—**କାଲପୁରୁଷ ପୁଞ୍ଜ** ବା ରୁଦ୍ର ବା ଅଗ୍ରହାୟଣ ।



କେଉଁ ରାଶିରେ ଅବସ୍ଥିତ—ବୃଷ ରାଶିରେ ।

ଆକାଶରେ କେଉଁଠାରେ ଅବସ୍ଥିତ—ରୋହିଣୀ ଓ ପୁନର୍ବସୁ ନକ୍ଷତ୍ର ମଧ୍ୟରେ ଥିବା ଧନୁର୍ଦ୍ଧାରୀ ପୁରୁଷର କାଳ୍ପନିକ ଆକୃତିବିଶିଷ୍ଟ-ତାରାଗଣ । ଏଥି ମଧ୍ୟରୁ ୧।୨।୩ ଚିହ୍ନିତ ଏଣକ ବା ମୃଗଶିରା ( କାଲପୁରୁଷର ମୁଣ୍ଡ ) ଓ ୪ର୍ଥ ଚିହ୍ନିତ ଆର୍ଦ୍ରା ( କାଲପୁରୁଷର ଡାହାଣ ଖୁଆ ମୁଣ୍ଡି ) । ୫ କାର୍ତ୍ତିକେୟ, ୬ଉଷା, ୭ ଅନିରୁଦ୍ଧ ୮ ଚିତ୍ରଲେଖା; ୬।୭।୮ ଇଷୁ ତ୍ରିକାଣ୍ଡ ବା ପାଶୁପତ ବାଣ, ୯।୧୦।୧୧।୧୨।୧୩ ମୟୂରଭୁଣ୍ଡ, ୧୪ କାର୍ତ୍ତିବୀର୍ଯ୍ୟ, ୧୫ବାଣରାଜ, ୧୬ ଠାରୁ ୨୧ କାଲପୁରୁଷର ଧନୁ ।

କାଲପୁରୁଷର ଅଣ୍ଟା ବା ୬।୭।୮ ତାରାତ୍ରୟ ବିଷୁବ ବୃତ୍ତ (Equator) ଉପରେ ଅବସ୍ଥିତ । ମୁଣ୍ଡ ପାଖ ୧।୨।୩।୪।୫ ଉତ୍ତରାକାଶରେ;୯।୧୦।୧୧।୧୨।୧୩।୧୪।୧୫ଦକ୍ଷିଣାକାଶରେ । ପାଶ୍ଚାତ୍ୟ ନାମ--English Orion; 1, 2, 3, Orion's head, 4 Betelgeux, 5 Bellatrix, 6 Al Nitak, 7 Al Nilam, 8 Mintaka 6.7.8 Orion's belt.9. 10 11. 12.13 Orion's dagger, 14 Saiph, 15 Rigel, 16. 17. 18. 19. 20 21 Orion's bow.

ପାଶ୍ଚାତ୍ୟ ରାଶି ଅନୁସାରେ ଜ୍ୟୋତିଷିକ ପରିଚୟ—In Group Orion; 1 Lambda Orionis, 2 $Phi_1$ Orionis, 3 $Phi_2$ Orionis, 4 Alpha Orionis, 5 Gamma Orionis,6 Zeta Orionis, 7 Epsilon, Orionis, 8 Delta Orionis, 9Sigma Orionis, 10 42.Orionis, 11 Theta Orionis, 12 Iota Orionis, 13 Upsilon Orionis, 14 Kappa Orionis, 15 Beta Orionis, 16 $Pi_4$ Orionis, 17 $Pi_2$ Orionis,

18 $Pi_1$ Orionis, 19 $Pi_3$ Orionis, 20 $Pi_5$ Orionis, 21 $Pi_6$ Orionis

୩୭ । ହିନ୍ଦୁ ମତରେ ନାମ—**ଆପାଂବତ୍ସ** ବା ଅପାଂନପାତ୍ (ସ୍କନ୍ଦ ବା କାର୍ତ୍ତିକେୟଙ୍କ ନାମାନ୍ତର) ।

ଗଠନ ବା ଚିହ୍ନ —*

ଆକାଶର କେଉଁଠାରେ ଅବସ୍ଥିତ—ଉତ୍ତରାକାଶରେ ।

ଆକାର ବା ତାରକା ସଂଖ୍ୟା— ଗୋଟିଏ ଉଜ୍ଜ୍ୱଳ ତାରା ।

ପାଶ୍ଚାତ୍ୟ ରାଶି ଅନୁସାରେ ନାମ—Theta Virginus.

ମନ୍ତବ୍ୟ—ଏହା ରବିମାର୍ଗର ଉତ୍ତରରେ ଓ ଚିତ୍ରାନକ୍ଷତ୍ରର ଉତ୍ତର-ପଶ୍ଚିମରେ ।

୩୮ । ହିନ୍ଦୁ ମତରେ ନାମ—**ଅଗସ୍ତ୍ୟ** ।

ଗଠନ ବା ଚିହ୍ନ— *

ଆକାଶର କେଉଁଠାରେ ଅବସ୍ଥିତ—ଦକ୍ଷିଣାକାଶରେ ପ୍ରଶ୍ୱାର ଦକ୍ଷିଣରେ ।

ଆକାର ବା ତାରକା ସଂଖ୍ୟା— ଗୋଟିଏ ଉଜ୍ଜ୍ୱଳ ତାରକା ।

ପାଶ୍ଚାତ୍ୟ ରାଶି ଅନୁସାରେ ନାମ—Canopus.

ପାଶ୍ଚାତ୍ୟ ରାଶି ଅନୁସାରେ ଜ୍ୟୋତିଷିକ ନାମ—In Argus; Alpha Argus.

ମନ୍ତବ୍ୟ—୧୪୦୦୦ବର୍ଷ ପୂର୍ବେ ଏହା ଦକ୍ଷିଣ ଧ୍ରୁବ ତାରକା ଥିଲା । ଏ ତାରା ଶରତ୍‌କାଳରେ ଦକ୍ଷିଣାକାଶରେ ରାତ୍ରିରେ ଦେଖାଯାଏ; ଏଥିପାଇଁ କହନ୍ତି ଯେ ଅଗସ୍ତ୍ୟୋଦୟ ହେଲେ ବର୍ଷାଋତୁର ଗୋଳିଆ ପାଣି ଓ କାଦୁଅ ବାଟ ଶୁଖିଯାଏ । ଏହାର ଦକ୍ଷିଣ-ପୂର୍ବରେ ଥିବା କ୍ଷୁଦ୍ର ତାରା ଅଗସ୍ତ୍ୟଙ୍କ ସ୍ତ୍ରୀ ଲୋପାମୁଦ୍ରା ।

୩୯ । ହିନ୍ଦୁ ମତରେ ନାମ—**ଯାମୀ** ବା ଯମୁନା ବା ନଦୀମୁଖ ବା ଶୂଳ ତାରା ।

ଗଠନ ବା ଚିହ୍ନ— *

ଆକାଶରେ କେଉଁଠାରେ ଅବସ୍ଥିତ—ଦକ୍ଷିଣାକାଶରେ ଅଗସ୍ତ୍ୟର ଦକ୍ଷିଣରେ ।

ଆକାର ବା ତାରକା ସଂଖ୍ୟା—ଅତ୍ୟୁଜ୍ଜ୍ୱଳ ରକ୍ତାଭ ଗୋଟିଏ ତାରା ।

ପାଶ୍ଚାତ୍ୟ ନାମ ଓ ରାଶି ଅନୁସାରେ ଜ୍ୟୋତିଷିକ ପରିଚୟ— ଏକର୍ନର୍ Acherner, In Eridani; Alpha Eridani

୪୦ । ମନ୍ତବ୍ୟ—**ତ୍ରିଶଙ୍କୁମଣ୍ଡଳ** ।

ଗଠନ ବା ଚିହ୍ନ—




ଆକାଶରେ କେଉଁଠାରେ ଅବସ୍ଥିତ— ଦକ୍ଷିଣାକାଶରେ; ହସ୍ତା ନକ୍ଷତ୍ରର ଦକ୍ଷିଣ ।

ଆକାର ବା ତାରକା ସଂଖ୍ୟା—୪ଟି ଉଜ୍ଜ୍ୱଳ ତାରା ।

ପାଶ୍ଚାତ୍ୟ ନାମ—ଇଂ. The Southern Cross.

ପାଶ୍ଚାତ୍ୟ ରାଶି ଅନୁସାରେ ନାମ—Crux, 1 Gamma Crucis, 2, Beta Crucis; 3. Delta Crucis; 4. Alpha Crucis

ମନ୍ତବ୍ୟ—ଏ ତାରା ଚତୁଷ୍ଟୟର ମଧ୍ୟରୁ ଦୁଇଟି ଦୁଇଟିଙ୍କୁ ବିପରୀତ ଦିଗରେ ଯୋଗ କଲେ ଗୋଟିଏ କ୍ରସ୍ (cross) ବା ଯୋଗଚିହ୍ନ ହୁଏ । ୪ ଚିହ୍ନିତ ଉଜ୍ଜ୍ୱଳତମ ତାରା ବିଶ୍ୱାମିତ୍ର । ଏହି ତାରା ସବୁଠାରୁ ସ୍ଥାନଭ୍ରଷ୍ଟ । ଜଗନ୍ନାଥ ଦାସଙ୍କ ଭାଗବତରେ ତ୍ରିଶଙ୍କୁ ଉତ୍ତରାକାଶରେ ଥିବାର ଭୁଲରେ ଲେଖାଅଛି । ମୂଳ ଭାଗବତ ଅନୁସନ୍ଧେୟ । ୧।୨।୩ ଚିହ୍ନିତ ତାରା ସମ୍ପ୍ରତି ତ୍ରିଶଙ୍କୁ ନାମରେ ବିଖ୍ୟାତ ।

୪୧ । ହିନ୍ଦୁ ମତରେ ନାମ—**ଜୟ** ।

ଗଠନ ବା ଚିହ୍ନ— * ।

ଆକାଶରେ କେଉଁଠାରେ ଅବସ୍ଥିତ—ଦକ୍ଷିଣାକାଶରେ ସ୍ୱାତିର ଦକ୍ଷିଣ ଓ ମୂଳାର ଦକ୍ଷିଣପଶ୍ଚିମରେ ଗୋଟିଏ ଉଜ୍ଜ୍ୱଳ ତାରା ।

ପରିଚୟ—ମହିଷାସୁର ମଣ୍ଡଳର ୧ମ ତାରା ।

ପାଶ୍ଚାତ୍ୟରାଶି ଅନୁସାରେ ଜ୍ୟୋତିଷିକ ପରିଚୟ—In Centaurus; Alpha Centauris.

ମନ୍ତବ୍ୟ—ଏହା ଆକାଶଗଙ୍ଗାର ଦକ୍ଷିଣାଂଶରେ ଅବସ୍ଥିତ ।

୪୨ । ହିନ୍ଦୁମତର ନାମ—**ବିଜୟ** ।

ଗଠନ ବା ଚିହ୍ନ—* ।

ପରିଚୟ— ମହିଷାସୁର ମଣ୍ଡଳ (Centaurus ବା କିନ୍ନର ମଣ୍ଡଳର ୨ୟ ତାରକା ।

ଆକାଶରେ କେଉଁଠାରେ ଅବସ୍ଥିତ— ଦକ୍ଷିଣାକାଶରେ ଜୟର ପଶ୍ଚିମ ।

ଆକାର ବା ତାରକା ସଂଖ୍ୟା—ଗୋଟିଏ ଉଜ୍ଜ୍ୱଳ ତାରା ।

ପାଶ୍ଚାତ୍ୟ ରାଶି ଅନୁସାରେ ଜ୍ୟୋତିଷିକପରିଚୟ—In Centaurus; Beta Centauris.

ମନ୍ତବ୍ୟ— ଏ ଆକାଶଗଙ୍ଗାରେ ଅବସ୍ଥିତ । ଜୟ ଓ ବିଜୟ ଏ ଦୁଇ ତାରା ଦକ୍ଷିଣାକାଶରେ ତ୍ରିଶଙ୍କୁ ମଣ୍ଡଳର ଉତ୍ତର ପୂର୍ବରେ ମହିଷାସୁର ମଣ୍ଡଳ (Centaurus) ରେ ଅବସ୍ଥିତ ।

୪୩ । ହିନ୍ଦୁ ମତରେ ନାମ—**ସାରମେୟ ଯୁଗଳ** ବା କାଳକଞ୍ଜ ମଣ୍ଡଳ ।

ଗଠନ ବା ଚିହ୍ନ—* * ।

ଆକାଶରେ କେଉଁଠାରେ ଅବସ୍ଥିତ—ଉତ୍ତରାକାଶରେ ବଡ଼ ସପ୍ତର୍ଷି-ମଣ୍ଡଳର ଲାଞ୍ଜତାରାର ଦକ୍ଷିଣକୁ ।

ଆକାର ବା ତାରକା ସଂଖ୍ୟା—ଦୁଇଟି ତାରା ।

ଓଡ଼ିଆ ବା ଦେଶୀୟ ନାମ—୧ । ଜ୍ୟେଷ୍ଠ କାଳକଞ୍ଜ, ୨ କନିଷ୍ଠ କାଳକଞ୍ଜ ।

ପାଶ୍ଚାତ୍ୟ ନାମ—1 Cor Caroli or Charle's heart.

ପାଶ୍ଚାତ୍ୟ ରାଶି ଅନୁସାରେ ଜ୍ୟୋତିଷିକ ପରିଚୟ—Canes Venatici; 1 Alpha Canum Venaticorum, 2 Beta Canum Venaticorum

ମନ୍ତବ୍ୟ—ମଘାର ଯୋଗତାରା, ଚିତ୍ରା ଓ ଜ୍ୟେଷ୍ଠକାଳକଞ୍ଜକୁ ଯୋଗ କଲେ ଗୋଟିଏ ସମବାହୁ ତ୍ରିଭୁଜ ହେବ ।

୪୪ । ହିନ୍ଦୁ ମତରେ ନାମ—**ପରଶୁରାମ ମଣ୍ଡଳ**

ଗଠନ ବା ଚିତ୍ର




ଆକାଶରେ କେଉଁଠାରେ ଅବସ୍ଥିତ—ଉତ୍ତରାକାଶରେ; ବ୍ରହ୍ମକଣ୍ଠାହାର ପୂର୍ବ ଓ କୃତ୍ତିକା ପୁଞ୍ଜର ଉତ୍ତର ।

ଆକାର ବା ତାରକା ସଂଖ୍ୟା—୩ ତାରା ।

ସଂସ୍କୃତ ନାମ—୧ କୁଠାର ପୃଷ୍ଠ ବା ପରଶୁରାମ, ୨ ମାତୃବାତୀ, ୩ ରେଣୁକା ।

ପାଶ୍ଚାତ୍ୟ ନାମ—1 Merfak, 2 Algol; 3 Caput Meduci

ପାଶ୍ଚାତ୍ୟ ରାଶି ଅନୁସାରେ ଜ୍ୟୋତିଷିକ ପରିଚୟ—Perseus; 1 Alpha Persi, 2 Beta Persi, 3 Rho Persi.

ମନ୍ତବ୍ୟ—୨ୟ ଓ ୩ୟ ତାରା ବହୁରୂପ (variable stars) । ପରଶୁରାମ ତାରା ସପ୍ତର୍ଷିଙ୍କ ମଧ୍ୟ ସ୍ଥଳରେ ଥିବାର ଭାଗବତ ୯ମ ସ୍କନ୍ଧ ୧୬ଶ ଅଧ୍ୟାୟରେ ଲେଖା ଅଛି, କିନ୍ତୁ ଏହା ଠିକ୍ ନୁହେଁ ।

୪୫ । ହିନ୍ଦୁ ମତରେ ନାମ—**ମତ୍ସ୍ୟ ମୁଖ** ।

ଗଠନ ବା ଚିତ୍ର ❊

ଆକାଶରେ କେଉଁଠାରେ ଅବସ୍ଥିତ—ଦକ୍ଷିଣାକାଶରେ ପୂର୍ବଭାଦ୍ରପଦର ଦକ୍ଷିଣରେ ।

ଆକାର ବା ତାରକା ସଂଖ୍ୟା—୧ ଉଜ୍ଜ୍ୱଳ ତାରା ।

ପାଶ୍ଚାତ୍ୟ ନାମ—Formalhaut.

ପାଶ୍ଚାତ୍ୟ ରାଶି ଅନୁସାରେ ଜ୍ୟୋତିଷିକ ପରିଚୟ - 1 Alpha. Pisces Australis.

୪୬ । ହିନ୍ଦୁ ମତରେ ନାମ—**କାଳୀୟ** ବା ହ୍ରଦ ସର୍ପ ବା ବାସୁକିମଣ୍ଡଳ ।

ଗଠନ ବା ଚିତ୍ର—




ଆକାଶର କେଉଁଠାରେ ଅବସ୍ଥିତ—ଉତ୍ତରାକାଶରେ ।

ଆକାର ଓ ତାରକା ସଂଖ୍ୟା—୩ ଉଜ୍ଜ୍ୱଳ ତାରା ଓ ଅନେକଗୁଡ଼ିଏ ଅନୁଜ୍ଜ୍ୱଳ ତାରା ।

ସଂସ୍କୃତ ନାମ—୧ । କାଳୀୟ ବା ସର୍ପ; ୨ । ବାସୁକୀ; ୩ । ଅନନ୍ତ ।

ପାଶ୍ଚାତ୍ୟ ରାଶି ଅନୁସାରେ ଜ୍ୟୋତିଷିକ ପରିଚୟ—Hydra; 1. Alpha Hydrae or Alphard: 2 Zeta Hydrae; 3. Beta Hydrae.

ମନ୍ତବ୍ୟ—ଏହା ସିଂହ ରାଶି ଠାରୁ ତୁଳା ରାଶି ପର୍ଯ୍ୟନ୍ତ ଲମ୍ବିଛି । ଚିତ୍ରାର ପଶ୍ଚିମରେ ଓ ମଘାର ଯୋଗତାରାର ଦକ୍ଷିଣରେ ଥିବା ଉଜ୍ଜ୍ୱଳ ବହୁରୂପ ତାରା ଏଥିରୁ ଗୋଟିଏ । ଏ ପୁଞ୍ଜର ମୁଣ୍ଡପାଖ ପୁଷ୍ୟର ଦାକ୍ଷରେ ଓ ଲାଞ୍ଜପାଖ ଦକ୍ଷିଣାକାଶରେ ଅବସ୍ଥିତ । ଅଶ୍ଳେଷାକୁ ଏହି ସର୍ପର ମୁଣ୍ଡ ।

୪୭ । ହିନ୍ଦୁ ମତରେ ନାମ—**ତିମି ମଣ୍ଡଳ** ।

ଆକାଶର କେଉଁଠାରେ ଅବସ୍ଥିତ—ଦକ୍ଷିଣାକାଶରେ ରେବତୀ ନକ୍ଷତ୍ରର ଦକ୍ଷିଣରେ ।

ଆକାର ଓ ତାରକା ସଂଖ୍ୟା—୪ଟି ତାରା ।

ସଂସ୍କୃତ ନାମ—୧ । ମୀନକେତନ ୩ । ମାର ବା କାମରୂପ; (ବହୁରୂପ, ରକ୍ତବର୍ଣ୍ଣ) ୪ । ତିମିପୁଚ୍ଛ ।

ପାଶ୍ଚାତ୍ୟ ନାମ—The Whale; 1 Mencar; 2 Diphda; 3. Mira; 4. Dheneb.

ପାଶ୍ଚାତ୍ୟ ରାଶି ଅନୁସାରେ ଜ୍ୟୋତିଷିକ ପରିଚୟ—Cetus; Alpha Ceti, 2 Beta Ceti, 3 Omega Ceti, 4 Iota Ceti.

ମନ୍ତବ୍ୟ—ଏଥିର ଗୋଟିଏ ତାରା (ମାର) ଅତ୍ୟୁଜ୍ଜ୍ୱଳ ଓ ଆଉ ଗୋଟିଏ ତାରା (Diphda) ବହୁରୂପ ଓ ରକ୍ତବର୍ଣ୍ଣ ।

———

ପାଶ୍ଚାତ୍ୟମାନେ ହିନ୍ଦୁ ଜ୍ୟୋତିଷୋକ୍ତ ମଣ୍ଡଳ ବା ପୁଞ୍ଜମାନଙ୍କ ଛଡ଼ା ଅନ୍ୟ ଅନେକଗୁଡ଼ିଏ ନକ୍ଷତ୍ର ପୁଞ୍ଜର ନାମକରଣ କରିଅଛନ୍ତି; ଯଥା—

୪୮ । The Crator (cup), ସଂ. ଅନୁବାଦ ଅମୃତପାତ୍ର ମଣ୍ଡଳ ବା କାଂସ୍ୟ ମଣ୍ଡଳ—

ଗଠନ ବା ଚିତ୍ର—



ହସ୍ତାର ପଶ୍ଚିମ ବଇତିଲଗା ପାତ୍ର ଆକୃତିର ୭ ତାରା—

୪୯ । କେତୁ—The tail of Hydra, ୫ ତାରା । କରମୁଣ୍ଡ ମଣ୍ଡଳ ବା ଗଣଦେବ ମଣ୍ଡଳ ବା କେତୁ ।

Coma Berenices; Eng. The Tress

ସିଂହ ରାଶିର ପୂର୍ବ, କନ୍ୟାର ଉତ୍ତର—ଋଗ୍ବେଦର ଊର୍ଣ୍ଣିଗର୍ଭ ମଣ୍ଡଳ; ଗ୍ରୀକ୍—Plokamos

୫୦ । Musca - ମକ୍ଷିକା ମଣ୍ଡଳ ।

୫୧ । Argos—ନୌମଣ୍ଡଳ ବା ଅର୍ଣ୍ଣବଜାନ

୫୨ । The lyre—ତାର୍କ୍ଷ୍ୟ ବା ବୀଣା ମଣ୍ଡଳ ।

୫୩ । The Swan, ଲାଟିନ୍. Cygnus—ହଂସ ମଣ୍ଡଳ । ଉତ୍ତରାକାଶରେ ଶ୍ରବଣାର ଉତ୍ତରରେ ଓ ଅଭିଜିତ୍‌ର ପୂର୍ବରେ ଉଜ୍ଜ୍ୱଳ ତାରା—Deneb Adige or Arided; Alpha Cygnus

———

ଭାରତୀୟ ଜ୍ୟୋତିର୍ବିମାନଙ୍କର କେତେକ ତାରା ଓ ତାରାପୁଞ୍ଜର ପାଶ୍ଚାତ୍ୟ ନାମ ଅଛି ।

୫୪ । ହିନ୍ଦୁ ମତରେ ନାମ—ନହୁଷ ।

ଆକାଶର କେଉଁଠାରେ ଅବସ୍ଥିତ—ଉତ୍ତରାକାଶରେ ।

ଆକାର ଓ ତାରକା ସଂଖ୍ୟା—ସାଗୋଟିଏ ଚଳନ୍ତି ଋଷିପତ୍ନୀ ଥିବା ପର ୨ଟି ତାରା । ପାଶ୍ଚାତ୍ୟ ନାମ ଜଣା ନାହିଁ ।

୫୫ । ହିନ୍ଦୁ ମତରେ ନାମ—କପିଳ ।

ପାଶ୍ଚାତ୍ୟ ନାମ—Eta Argus.

୫୬ । ହିନ୍ଦୁ ମତରେ ନାମ—ଶେଫାଳପୁଞ୍ଜ ।
ପାଶ୍ଚାତ୍ୟ ନାମ—Cepheus.

୫୭ । ହିନ୍ଦୁ ମତରେ ନାମ—ଗରୁଡ଼ ।
ପାଶ୍ଚାତ୍ୟ ନାମ—Aquilla

୫୮ । ହିନ୍ଦୁ ମତରେ ନାମ—ଶିଶୁଭୂତେଶ ।
ପାଶ୍ଚାତ୍ୟ ନାମ—Bootes

୫୯ । ହିନ୍ଦୁ ମତରେ ନାମ—ତକ୍ଷକପୁଞ୍ଜ ।
ପାଶ୍ଚାତ୍ୟ ନାମ—The Draco.

୬୦ । ହିନ୍ଦୁ ମତରେ ନାମ—କପୋତ ମଣ୍ଡଳ ।
ପାଶ୍ଚାତ୍ୟ ନାମ—Columbae.

୬୧ । ହିନ୍ଦୁ ମତରେ ନାମ—କପୋତୀ ।
ପାଶ୍ଚାତ୍ୟ ନାମ—Lepus.

୬୨ । ହିନ୍ଦୁ ମତରେ ନାମ—ମୂଳଜ୍ୟୋତିକ ।
ପାଶ୍ଚାତ୍ୟ ନାମ—Zeta Piscium; the beginning of the Zodiac sign ମେଷ, Aries.

୬୩ । **ଛାୟାପଥ**—ଏହା ସୂକ୍ଷ୍ମ ନକ୍ଷତ୍ର ଓ ନୀହାରିକା ଓ ନକ୍ଷତ୍ରପୁଞ୍ଜ-ସମ୍ବଳିତ ବୃତ୍ତାକାର ପଙ୍କ୍ତି । ଏହା ଉତ୍ତରଧ୍ରୁବ ଓ ଦକ୍ଷିଣଧ୍ରୁବ (ଯାହାକ ଦକ୍ଷିଣର ବହୁଳଯୂର ତଳେ ଥିବାରୁ ଦୃଶ୍ୟ ହୁଏ ନାହିଁ) ଭେଦ କରି ଆକାଶକୁ ଦୁଇ ଭାଗରେ ବିଭକ୍ତ କରିଅଛି । ଛାୟାପଥ ଉତ୍ତର ଖଗୋଳାର୍ଦ୍ଧରେ ମିଥୁନ ଓ କର୍କଟ ରାଶି କାଟେ ଏବଂ ଦକ୍ଷିଣ ଖଗୋଳାର୍ଦ୍ଧରେ ବୃଷ ଓ ଧନୁ ରାଶି କାଟେ ଯାଇଅଛି । ଏହି ଛାୟାପଥରେ କାଶ୍ୟପୀପୁଞ୍ଜ, ପରଶୁରାମପୁଞ୍ଜ, ଜ୍ୟେଷ୍ଠା, ମୂଳା, ପୂର୍ବାଷାଢ଼ା, ଶ୍ରବଣା, ବ୍ରହ୍ମା, ଅଗ୍ନି ତାରା, ତ୍ରିଶଙ୍କୁ, ଓ ଅଗସ୍ତ୍ୟ ଅବସ୍ଥିତ । ଛାୟାପଥ ବହୁଦୂରରେ ଥିବା କୋଟି କୋଟି ନକ୍ଷତ୍ରପୁଞ୍ଜର ସମଷ୍ଟି ଅଟେ । ଅନ୍ଧାର ପକ୍ଷରେ ନିର୍ମଳାକାଶରେ ଛାୟାପଥ ସଫା ଦେଖା ପଡ଼େ ।

ସଂ. ନାମ—ସୋମଧାରା, ଦେବପଥ, ଖସରିତ୍, ଆକାଶ ଗଙ୍ଗା, ହରତାଲୀ ।
ଇଂ. ନାମ—The milky way; galaxy.
ଲାଟିନ୍—Via Lactea
ଗ୍ରୀକ୍—Galaxis.
ଓଡ଼ିଆନାମ—ହାତିବଣ୍ଡା ।]

(**ନକ୍ଷତ୍ର ଶବ୍ଦର ଚତୁର୍ଥ ଅର୍ଥ**)—୪ । ଚନ୍ଦ୍ର, ସୂର୍ଯ୍ୟ, ଗ୍ରହଆଦିଙ୍କର ପୃଥିବୀର ଚାରି ପାଖେ ଆକାଶରେ କଳ୍ପିତ ବୃତ୍ତାକାର ପରିଭ୍ରମଣ ପଥ ( ୩୬୦ ଡିଗ୍ରୀ ବା ଅଂଶ )କୁ ସମାନ ୨୭ ଭାଗରେ ବିଭକ୍ତ କଲେ, ପ୍ରତ୍ୟେକ ଭାଗ; ୧୩ ଡିଗ୍ରୀ ୨୦ ମିନିଟ୍ ରେ ଅବସ୍ଥିତ ଆକାଶର ଅଂଶ—
4. A space of the sky representing $\frac{1}{27}$ th of the sky-sphere or 13°. 26′.

[ଦ୍ର—ଆକାଶ ବୃତ୍ତକୁ ୧୨ ଭାଗରେ ବିଭକ୍ତ କଲେ ପ୍ରତି ଭାଗ (୩୦ ଡିଗ୍ରୀ)କୁ ରାଶି ବୋଲାଯାଏ ।]

୫ । ଆକାଶରେ କଳ୍ପିତ ନିର୍ଦ୍ଦିଷ୍ଟ ୧୩ ଅଂଶ ୨୦ କଳା ମଧ୍ୟସ୍ଥିତ ବିଭାଗର ଅନ୍ତର୍ବର୍ତ୍ତୀ ଏକ ବା ତତୋଽଧିକ ତାରା—5. Asterism; one star or a group of stars within the area of 13°. 26′ of the sky-sphere

[ଦ୍ର—ଏକ ତାରାବିଶିଷ୍ଟ ନକ୍ଷତ୍ର, ଯଥା—ଚିତ୍ରା,ସ୍ୱାତୀ ଓ ଆର୍ଦ୍ରା; ଦୁଇ ତାରାବିଶିଷ୍ଟ ନକ୍ଷତ୍ର; ଯଥା—ପୂର୍ବଭାଦ୍ରପଦ, ଉତ୍ତରଭାଦ୍ରପଦ, ପୂର୍ବାଫାଲ୍ଗୁନୀ ଓ ଉତ୍ତରାଫାଲ୍ଗୁନୀ । ଅଶ୍ୱିନୀ, କୃତ୍ତିକା, ରୋହିଣୀ ଇତ୍ୟାଦି ଦୁଇରୁ ଅଧିକ ତାରାଯୁକ୍ତ ନକ୍ଷତ୍ର ଅଟନ୍ତି । ]

୬ । ମୁକ୍ତା—6. Pearl
୭ । ଉଲ୍କା—7. Shooting star; meteor.
ଦେ. ବି—ହାଉଇବାଣରେ ଦିଆଯିବା ବାରୁଦର ଛୋଟ ଛୋଟ ବଟିକା ବା ଗୁଳା—Small balls of gunpowder attached to rockets.

[ ଦ୍ର—ହାଉଇ ଆକାଶକୁ ଉଠିଯାଇ ଫାଟି ଗଲେ ଏଗୁଡ଼ିକ ଅଗ୍ନି ସଂଯୋଗରେ ଜଳଉଠି ନକ୍ଷତ୍ର ପରି ଆକାଶରେ ଦୃଷ୍ଟ ହୋଇ ଯାଆନ୍ତି । ]

**ନକ୍ଷତ୍ର ଇଣ୍ଡୁରି**—ଦେ. ବି—କଂସ ଇଣ୍ଡୁରି, ଛୋଟ ଛୋଟ ଇଣ୍ଡୁରିପିଠା—Nakshatra induri Small steam-boiled cakes.
(ନକ୍ଷତ୍ର ଏଣ୍ଡୁରି—ଅନ୍ୟରୂପ)

**ନକ୍ଷତ୍ର ନାଥ**—ସଂ. ବି. (୬ଷ୍ଠୀ ତତ୍; ନକ୍ଷତ୍ର+ନାଥ)—ଚନ୍ଦ୍ର;ତାରାପତି—Nakshatra nātha The moon.

**ନକ୍ଷତ୍ର ନେମି**—ସଂ. ବି. (ନକ୍ଷତ୍ର+ନେମି=ପରିଧି)—୧ । ଚନ୍ଦ୍ର—Nakshatra nemi 1. The moon.
୨ । ବିଷ୍ଣୁଙ୍କର ନାମ—2. A name of Bishṇu.
୩ । ଧ୍ରୁବତାରା—3. The polestar; Polaris.
୪ । ରେବତୀ ନକ୍ଷତ୍ର—4. The 27th lunar mansion.

**ନକ୍ଷତ୍ରପ**—ସଂ. ବି. (ନକ୍ଷତ୍ର+ପା ଧାତୁ=ପାଳନ କରିବା+କର୍ତ୍ତୃ. ଅ)—Nakshatrapa ଚନ୍ଦ୍ର—The moon.

**ନକ୍ଷତ୍ର ପତି**—ସଂ. ବି. (୬ଷ୍ଠୀ ତତ୍; ନକ୍ଷତ୍ର+ପତି)—ତାରାପତି; ଚନ୍ଦ୍ର—Nakshatra pati The moon.

**ନକ୍ଷତ୍ର ପାତ**—ସଂ. ବି. (୬ଷ୍ଠୀ ତତ୍; ନକ୍ଷତ୍ର+ପାତ=ପତନ)=Nakshatra pāta ଉଲ୍କାପାତ—The fall of shooting stars or meteors.

**ନକ୍ଷତ୍ର ବିଦ୍ୟା**—ସଂ. ବି—ଜ୍ୟୋତିଷ ଶାସ୍ତ୍ର (ଗଣିତ ଓ ଫଳିତ)—Nakshatra bidyā Astronomy; astrology

**ନକ୍ଷତ୍ର ବୃଷ୍ଟି**—ସଂ. ବି (୬ଷ୍ଠୀ ତତ୍; ନକ୍ଷତ୍ର+ବୃଷ୍ଟି)—Nakshatra brushṭi ବହୁ ଉଲ୍କାର ଏକ ସମୟରେ ପତନ—Simultaneous falling of shooting stars.

**ନକ୍ଷତ୍ର ବେଗ**—ସଂ. ବି. (୬ଷ୍ଠୀ ତତ୍; ନକ୍ଷତ୍ର+ବେଗ)—Nakshatra bega ଉଲ୍କାର ଗତି ପରି ଦ୍ରୁତ ଗତି—Rapid motion like that of a meteor.

**ନକ୍ଷତ୍ର ମାଳା**—ସଂ. ବି. (୬ଷ୍ଠୀ ତତ୍; ନକ୍ଷତ୍ର+ମାଳା)—Nakshatra mālā ୧ । ୨୭ଟି ମୁଦ୍ରା ବା ମୁକ୍ତା ଗୁନ୍ଥା ହୋଇଥିବା ହାର—1. A necklace consisting of 27 coins or pearls.

୨ । ନକ୍ଷତ୍ର ସମୂହ—2. A collection of stars.
୩ । ନୃତ୍ୟର ପ୍ରକାରଭେଦ, ନୃତ୍ୟବିଶେଷ—
3. A kind of dance.

**ନକ୍ଷତ୍ର ଯାଜକ**—ସଂ. ବି. (ନକ୍ଷତ୍ର+ଯାଜ ଧାତୁ=ଯଜ୍ଞ କରିବା+କର୍ତ୍ତୃ. ଅକ; ଭୂଇ. ଗ୍ରହବିପ୍ର)—ଯେଉଁ ବ୍ରାହ୍ମଣ ନକ୍ଷତ୍ରଦୋଷର ଶାନ୍ତି ପାଇଁ ଅନୁଷ୍ଠିତ ଯାଗାଦିରେ ପୌରୋହିତ୍ୟ କରନ୍ତି; ନିକୃଷ୍ଟ ବ୍ରାହ୍ମଣବିଶେଷ—An inferior class of Brāhmaṇas who officiate at the rites performed for propitiating the evil stars.
Nakshatra jājaka

**ନକ୍ଷତ୍ର ଯୋଗ**—ସଂ. ବି. (ଫଳିତ ଜ୍ୟୋତିଷ)—ନକ୍ଷତ୍ରମାନଙ୍କ ସଙ୍ଗେ ଗ୍ରହମାନଙ୍କର ଯୋଗ—(astrology) The conjunction of planets with particular asterisms
Nakshatra joga

**ନକ୍ଷତ୍ର ଯୋନି**—ସଂ. ବି. (ଫଳିତ ଜ୍ୟୋତିଷ)—ବିବାହାର୍ଥ ନିଷିଦ୍ଧ ନକ୍ଷତ୍ର—The astrologically inauspicious stars for marriage.
Nakshatra joni

**ନକ୍ଷତ୍ର ରାଜ**—ସଂ. ବି. (୬ଷ୍ଠୀ ତତ୍; ନକ୍ଷତ୍ର+ରାଜନ୍)—ଚନ୍ଦ୍ର; ତାରାପତି—The moon
Nakshatra rāja

**ନକ୍ଷତ୍ର ଲଞ୍ଜା**—ଦେ. ବି. (ସଂ. ନକ୍ଷତ୍ର+ଓ. ଲାଞ୍ଜ; ପୁଚ୍ଛଯୁକ୍ତ ନକ୍ଷତ୍ର)—ଲଞ୍ଜାତାରା; ଧୂମକେତୁ—A comet.
Nakshatra lanjā

**ନକ୍ଷତ୍ର ଲୋକ**—ସଂ. ବି. (୬ଷ୍ଠୀ ତତ୍; ନକ୍ଷତ୍ର+ଲୋକ)—ନକ୍ଷତ୍ରାଧିଷ୍ଠିତ କଳ୍ପିତ ଭୁବନବିଶେଷ—The astral universe.
Nakshatra loka

**ନକ୍ଷତ୍ର ଶୂଳ**—ସଂ. ବି. (ଫଳିତ ଜ୍ୟୋତିଷ)—ଯାତ୍ରାଦି ଶୁଭକାର୍ଯ୍ୟରେ ନିଷିଦ୍ଧ ନକ୍ଷତ୍ର (ଯଥା—ପୂର୍ବଦିଗକୁ ଯିବା ସମୟରେ ଶ୍ରବଣା ଓ ଜ୍ୟେଷ୍ଠା, ଦକ୍ଷିଣକୁ ଅଶ୍ୱିନୀ ଓ ଉତ୍ତରଭାଦ୍ରପଦ, ପଶ୍ଚିମକୁ ରୋହିଣୀ ଓ ପୁଷ୍ୟା ଏବଂ ଉତ୍ତରକୁ ଉତ୍ତରଫାଲ୍‌ଗୁନୀ ଓ ହସ୍ତା)—(astrology) Particular asterisms considered as ominous for the purpose of starting on a mission towards particular quarters.
Nakshatra śūla

**ନକ୍ଷତ୍ରାମୃତ ଯୋଗ**—ସଂ. ବି. (ଜ୍ୟୋତିଷ)—ବାରବିଶେଷ ସଙ୍ଗେ ନକ୍ଷତ୍ରବିଶେଷ ଯୁକ୍ତ ହେବାରୂପ ଶୁଭଯୋଗ—(astrology) Auspicious combinations of particular asterisms with particular week-days.
Nakshatrāmṛuta joga

[ ଦ୍ର—ରବିବାର—ଉତ୍ତରଫାଲ୍‌ଗୁନୀ, ଉତ୍ତରାଷାଢ଼ା, ଉତ୍ତରଭାଦ୍ରପଦ, ରୋହିଣୀ, ପୁଷ୍ୟା, ମୂଳା ଓ ରେବତୀ ।
ସୋମବାର—ଶ୍ରବଣା, ଧନିଷ୍ଠା, ରୋହିଣୀ, ମୃଗଶିରା, ପୂର୍ବଫାଲ୍‌ଗୁନୀ ଉତ୍ତରଫାଲ୍‌ଗୁନୀ, ପୂର୍ବଭାଦ୍ରପଦ, ଉତ୍ତରଭାଦ୍ରପଦ, ହସ୍ତା ଓ ଅଶ୍ୱିନୀ ।
ମଙ୍ଗଳବାର—ପୁଷ୍ୟା, ଅଶ୍ଳେଷା, କୃତ୍ତିକା, ସ୍ୱାତୀ, ଉତ୍ତରଭାଦ୍ରପଦ ଓ ରେବତୀ ।
ବୁଧବାର—କୃତ୍ତିକା, ରୋହିଣୀ, ଶତଭିଷା ଓ ଅନୁରାଧା ।
ଗୁରୁବାର—ସ୍ୱାତୀ, ପୁନର୍ବସୁ, ପୁଷ୍ୟା ଓ ଅନୁରାଧା ।
ଶୁକ୍ରବାର—ପୂର୍ବଭାଦ୍ରପଦ, ଉତ୍ତରଭାଦ୍ରପଦ, ଅଶ୍ୱିନୀ, ଶ୍ରବଣା ଓ ଅନୁରାଧା ।
ଶନିବାର—ସ୍ୱାତୀ ଓ ରୋହିଣୀ ।
ଉପରୋକ୍ତ ବାରମାନଙ୍କର ଯଥାକ୍ରମେ ଏହି ନକ୍ଷତ୍ରମାନଙ୍କ ଯୋଗ ଘଟିଲେ ନକ୍ଷତ୍ରାମୃତ-ଯୋଗ ହୁଏ । ]

**ନକ୍ଷତ୍ରେଶ**—ସଂ. ବି. (୬ଷ୍ଠୀ ତତ୍; ନକ୍ଷତ୍ର+ଈଶ)—୧ । ଚନ୍ଦ୍ର—1. The moon.
Nakshatreśa
(ନକ୍ଷତ୍ରେଶ୍ୱର—ଅନ୍ୟରୂପ) ୨ । କର୍ପୂର—2 Camphor.

**ନକ୍ଷୀ**—ଦେ. ବି. (ସଂ. ନଖୀ)—ନଖୀ (୨) (ଦେଖ) Nakhī (2) (See)
Nakshi
(ନକ୍ଷ୍ମୀ—ଅନ୍ୟରୂପ) ଅ ଜାଣିଚ ନକ୍ଷୀ ଭଲ, ପାଟକ ବଧ ବଳ କର ।
ବଂଶସ୍ଥା ବୋଲେ ବ କାର୍ଯ୍ୟ, ସେଉଁ ଲଟକ ଅମୂଳ ।
ଭଞ୍ଜ. ଲାବଣ୍ୟବତୀ ।
ଗ୍ରା. ବି. ସ୍ତ୍ରୀ—(ସଂ. ଲକ୍ଷ୍ମୀ) ଲକ୍ଷ୍ମୀ (ଦେଖ)
Lakshmī (See)

**ନଖ୍ (ଧାତୁ)**—ସଂ.—୧ । ବୃଦ୍ଧି ପାଇବା—1. To increase
Nakh (root)
୨ । ଗମନ କରିବା; ଗତି କରିବା—2. To move.

**ନଖ୍‌ନଉ**—ଦେ. ବି. (ହି. ନକଲନୋର)—୧ । ଏକ ପ୍ରକାର କ୍ଷୁଦ୍ର ଚଢ଼େଇ; ନାଲି ଚଢ଼େଇ—1 A kind of small bird.
Nakh-nau
नकलनोर (ନଖ୍‌ନୋର୍—ଅନ୍ୟରୂପ)
[ଦ୍ର—ଏହା ୩।୪ ଇଞ୍ଚ ଲମ୍ବା । ଏହାର ଦେହସାରା କଳା, ନାଲି ଓ ଧଳା ଛିଟି ଛିଟି ଚିହ୍ନ ଥାଏ ।]
ଲକ୍ଷ୍ନୌ ୨ । ନକନୋର୍ (ଦେଖ)—2. Nakanor (See)
लखनऊ
ଗ୍ରା. ବି.—ଅଯୋଧ୍ୟାର ନଗର ଓ ଜିଲ୍ଲାବିଶେଷ; ଲକ୍ଷ୍ନୌ—Lucknow; name of a city and district in the United Provinces and Oudh.

**ନଖ**—ସଂ ବି. (ନଖ୍ ଧାତୁ=ବୃଦ୍ଧି ପାଇବା+କର୍ତ୍ତୃ. ଅ; ଯାହା ପ୍ରତି ଦିନ ବୃଦ୍ଧି ପାଏ)—୧ । ଅଙ୍ଗୁଳିର ଅଗ୍ରଭାଗସ୍ଥ ଉପାଙ୍ଗ—1. Nail.
Nakha
ନଖ नाखुन, नख
୨ । ପଶୁପକ୍ଷୀଙ୍କ ନଖର ବା ଗୋଡ଼ ନଖ—2. Claws or talons of animals.
ନଖର ଅନ୍ୟ ସଂ ନାମ—କରଜ, ନଖର, କରରୁହ, ପାଣିଜ, କରଶୂକ, କରକଣ୍ଟକ କରାଂକୁଶ, କରଚନ୍ଦ୍ର, ପୁନର୍ଭବ, କାମାଙ୍କୁଶ, ସୁରଙ୍କୁଶ, ଭୁଜପଥ [ଦ୍ର—କେହି କେହି 'ନଖ'କୁ 'ଲଖ' ବୋଲି ଉଚ୍ଚାରଣ କରନ୍ତି ।]
୩ । ଫାଳିଆ ଅଂଶ; ଫାଳିଆ ଲମ୍ବ ଖଣ୍ଡ—3 Part; slice.
୪ । ନଖୀ ୨ (ଦେଖ)—4. Nakhī 2 (See)
ଦେ. ବି. (ଫା. ନଖ୍)—ଗୁଡ଼ି ଉଡ଼ାଇବାର ଡୋର—
ନଖ नख — string for a paper kite.

**ନଖ ଆମ୍ପୁର୍ଡ଼ା**—ଗ୍ରା. ବି. ଓ ବିଣ—ନଖ ରାମ୍ପୁର୍ଡ଼ା (ଦେଖ) Nakha rāmpurḍā (See)
Nakha āmpurḍā
(ନଖଆମ୍ପୁଡ଼ା—ଅନ୍ୟରୂପ)

**ନଖଇ**—ପ୍ରାଦେ. (ଗଞ୍ଜାମ; ଇତର ଭାଷା) ବ ସ୍ତ୍ରୀ—ଲକ୍ଷ୍ମୀ—
Nakhai — Lakshmi, the Goddess of wealth

**ନଖ ଉଷୁମ**—ଦେ. ବ.—ସାମାନ୍ୟ ତାପ—
Nakha ushuma — Slight heat
କୁସୁମ କୁସୁମ ଗରମ — ଦେ. ବଣ—କବୋଷ୍ଣ; ସାମାନ୍ୟ ଉଷ୍ଣ—
**ସୁସୁମ** — Slightly warm, tepid.

**ନଖ କଟା(ଟେ)ଇବା**—ଦେ. କ୍ରି.—ଆପଣାର ବର୍ଦ୍ଧିତ ନଖାଗ୍ରକୁ ଭଣ୍ଡାରି ଦ୍ୱାରା କର୍ତ୍ତିତ କରାଇବା—
Nakha katā(ṭe)ibā
ନଖ କାଟାନ — To have one's nails pared by the barber.
**नख कटवाना**

**ନଖ କର୍ତ୍ତନୀ**—ସ ବ.—(ନଖ+କର୍ତ୍ତନ+ଈ)—ନହୁରୁଣୀ—
Nakha karttanī — Nail-clipper
(ନଖ କୃନ୍ତନୀ—ଅନ୍ୟରୂପ)

**ନଖ କାଟିବା**—ଦେ. କ୍ରି. (ସ. ନଖ+କର୍ତ୍ତନ)—ଅଙ୍ଗୁଳି ଅଗରୁ ନଖର ବର୍ଦ୍ଧିତ ଅଂଶ ଛେଦନ କରିବା—
Nakha kāṭibā
ନଖ କାଟା — To pare or clip the nails.
**नख काटना** [ ଦ୍ର—ଭଣ୍ଡାରିମାନଙ୍କଦ୍ୱାରା ବାଳ କଟାଇବା ଓ ନଖ କାଟିବା କର୍ମ ହୁଏ । ]

**ନଖକୁଟ୍ଟ**—ସ. ବ. (ନଖ+କୁଟ୍ଟ ଧାତୁ=କାଟିବା+କର୍ତ୍ତୃ ଅ)—
Nakha kuṭṭa ଭଣ୍ଡାରି—A barber; one who pears the nails.

**ନଖ କୃନ୍ତନ**—ସ. ବ.—୧ । (୬ଷ୍ଠୀ ତତ୍; ନଖ+କୃନ୍ତନ)—ନଖ
Nakha kṛuntana କାଟିବା—1 The paring or clipping of the nails.
୨ । (ନଖ+କୃତ୍ ଧାତୁ=ଛେଦନ କରିବା+କରଣ. ଅନ)-ନହୁରୁଣୀ—2. Barber's nail-clipper.

**ନଖ କୋଣ**—ସ. ବ. (୬ଷ୍ଠୀ ତତ୍; ନଖ+କୋଣ)—ହାତ ଓ ଗୋଡ଼ର
Nakha koṇa ନଖର ଅଗ୍ରଭାଗର ଦୁଇ ପ୍ରାନ୍ତ—The two corners of the ends of the finger nails.

**ନଖକୋଣୀ**—ସ. ବ.—( ନଖ+କୋଣ+ଈ )—ନଖର କୋଣବୃଦ୍ଧି
Nakha koṇī ରୋଗ; କଣନଖା; ନଖଶୂଳ—A disease in which the nails increase and pierce the skin, giving excruciating pain; whitlow.

**ନଖ କ୍ଷତ**—ସ.ବ. (ମ ପ ଲୋ,ନଖ ଜନିତ କ୍ଷତ)—୧ । ନଖଦ୍ୱାରା ବସାଣିବା
Nakha kshata ଚିହ୍ନ;ନଖାଘାତର ଦାଗ,ନଖରେ ରାମ୍ପୁଡ଼ା ଚିହ୍ନ—Marks left by the nails; nail-mark; scratches left by nails.
୨ । ନାଗରର ଶରୀର ଓ ବିଶେଷତଃ ସ୍ତନରେ ନାଗରର ନଖାଘାତ ଜନିତ ଚିହ୍ନ—2. Marks left on the body and specially the breasts of a lady by the nails of a lover or gallant.

**ନଖଖାଦୀ**—ସ. ବଣ. ପୁଂ. (ନଖ+ଖାଦ୍ ଧାତୁ+କର୍ତ୍ତୃ. ଇନ୍; ୧ମା.
Nakhakhādī ୧ବ)—୧ । ଯେଉଁ ବ୍ୟକ୍ତି ଆପଣା ନଖର ଅଗକୁ
(ନଖଖାଦନୀ—ସ୍ତ୍ରୀ) ଦାନ୍ତରେ କାମୁଡ଼ି ଛିଣ୍ଡାଏ—1. (a person) Clipping his own nails with the teeth.
[ ଦ୍ର—ମନୁ ଅନୁସାରେ ଏପରି ବ୍ୟକ୍ତିର ଶୀଘ୍ର ବିନାଶ ଘଟେ—ଦ୍ର. ଶବ୍ଦସାଗର । ]
୨ । ଯେଉଁ ଜୀବମାନେ ନଖ ସାହାଯ୍ୟରେ ଖାଆନ୍ତି—
2 (animals) Taking food with the help of the finger-nails

**ନଖ ଗଳା(ଳେ)ଇବା**—ଦେ. କ୍ରି—୧ । କୌଣସି ପଦାର୍ଥରେ ନଖକୁ
Nakha gaḷā(ḷe)ibā ଫୋଡ଼ିବା—1. To thrust the
ନଖଗଲାନ — sharp ends of the nails into something.
**नख गड़ाना** — ୨ । ରାମ୍ପୁଡ଼ିବା—
(ନଖ ଗଳିବ.—ବି) — 2 To scratch with the nails.

**ନଖଗୁଚ୍ଛଫଳା**—ସ. ବ. ( ବହୁବ୍ରୀହି, ନଖ+ଗୁଚ୍ଛ+ଫଳ, ଯାହାର
Nakhaguchchhaphaḷā ଫଳଗୁଚ୍ଛ ନଖଗୁଚ୍ଛପରି)—ଏକପ୍ରକାର
(ନଖପୁଞ୍ଜଫଳା—ଅନ୍ୟରୂପ) ଶିମ୍ବ ( ଦ୍ର.ଶବ୍ଦସାଗର )—A kind of bean.

**ନଖ ଘାତ**—ସ. ବ. ( ୩ୟା ତତ୍, ନଖ+ଘାତ )—
Nakha ghāta ନଖ ରାମ୍ପୁଡ଼ା ( ଦେଖ )
Nakha rāmpurḍā ( See )

**ନଖ ଚିହ୍ନ**—ସ ବ—ନଖ କ୍ଷତ ( ଦେଖ )
Nakha chihna — Nakha kshata ( See )

**ନଖଚ୍ଛେଦ**—ସ. ବ. (୬ଷ୍ଠୀ ତତ୍; ନଖ+ଛେଦ)—ନଖ କୃନ୍ତନ (ଦେଖ)
Nakhachchheda — Nakha kṛuntana ( See )

**ନଖ ଛାଡ଼ିବା**—ଦେ. କ୍ରି—ନଖକୁ ନ କାଟିବା; ନଖକୁ ନ କାଟି
Nakha chhārḍibā ବଢ଼ିବାକୁ ଦେବା—To let the nails
ନଖ ବାଢାନ — grow ( without clipping them ).
**नाखुन बढ़ाना** [ ଦ୍ର—କେହି କେହି କୌଣସି ଦେବତାଙ୍କ ଠାରେ ମାନସିକ କରି ଅଭୀଷ୍ଟସିଦ୍ଧି ନ ହେବା ପର୍ଯ୍ୟନ୍ତ ନଖ ଛାଡ଼ନ୍ତି । ]
ନଖ ରଖିବା, ନଖ ବଢ଼ା(ଢ଼େ)ଇବା } ଅନ୍ୟରୂପ

**ନଖ ଜାଦୁ**—ଦେ. ବ. ( ସ. ନଖଦଦ୍ରୁ ) - ନଖ ମରିବା ( ଦେଖ )
Nakha jādu — Nakha maribā ( See )

**ନଖ ଦର୍ପଣ**—ସ. ବ. ( ରୂପକ; ନଖ+ଦର୍ପଣ )—ଯେଉଁ ସୁମାର୍ଜିତ
Nakha darpaṇa ତୈଳାକ୍ତ ମସୃଣ ନଖରେ ଆପଣା ମୁହଁ ପ୍ରତିଫଳିତ ହୁଏ—Very polished and oily nails which reflect a person's face.
[ ଦ୍ର—ମନୁଷ୍ୟ ସବୁବେଳେ ଆପଣା ନଖରେ ଆପଣା ମୁହଁ ଦେଖି ପାରେ । ଯେଉଁ ବସ୍ତୁ ବା ବିଷୟ ବା ବ୍ୟକ୍ତିକୁ ମନୁଷ୍ୟ ସବୁବେଳେ ସ୍ମରଣ କରେ ବା ଯାହା ଚିନ୍ତା କଲେ ମାତ୍ରେ ପଡ଼ିଯାଏ ତା ସମ୍ବନ୍ଧେ ଲକ୍ଷଣାର୍ଥରେ ଲୋକେ କହନ୍ତି 'ଅମୁକ ବସ୍ତୁ, ବିଷୟ ବା ବ୍ୟକ୍ତି ମୋ ନଖ ଦର୍ପଣରେ ଅଛି । ]

**ନଖଦଳ**—ପ୍ରାଦେ. ( ଗଡ଼ଜାତ ) ବ—ପାଇକ; ପଦାତିକ—
Nakhadaḷa — A foot soldier.

ନଖ ଦାଗ—ଦେ. ବ. ( ସ. ନଖ + ଫା ଦାଗ୍ )—ନଖ କ୍ଷତ (ଦେଖ)
Nakha dāga Nakha kshata ( See )
নখের দাগ नखक्षत; नखरौट

ନଖ ଦାରଣ—ସ. ବ.—ନହୁରୁଣୀ (ହି. ଶବ୍ଦସାଗର)—
Nakha dārana Nail-clipper

ନଖ ନିକୃନ୍ତନ—ସ ବ—ନଖ କୃନ୍ତନ ( ଦେଖ )
Nakha nikṛuntana Nakha kṛuntana ( See )

ନଖ ପଚ୍ଛ(ଚ୍ଛେ)ଇବା—ଦେ. କ୍ରି—ମେହେନ୍ଦୀ ବା ମଞ୍ଜୁଆଟି ବା ହରଗଉରୀ ଆଦିଦ୍ୱାରା ନଖକୁ ରଞ୍ଜିତ କରିବା—
Nakha pachā(che)iba
নখ বাঁগান To dye one's nails with certain
नख रंगना pigments.

ନଖ ପଦ—ସ. ବ—ନଖ କ୍ଷତ ( ଦେଖ )
Nakha pada Nakha kshata ( See )

ନଖ ପାତଳ—ଦେ. ବଣ—ନଖ ପରି ପତଳା—
Nakha pātala Thin as the finger-nails
बहुत पतला

ନଖପୁଙ୍ଖୀ—ସ. ବ—ପୁଙ୍ଖା; ମିଡ଼ିଙ୍ଗ ଶାଗ—A kind of edible
Nakhapuṅkhi pot-herb; Trigonella Corniculata.

ନଖ ବଢ଼ା(ଢ଼େ)ଇବା—ଦେ. କ୍ରି—ନଖ ଛାଡ଼ିବା ( ଦେଖ )
Nakha bar̲dhā(r̲dhe)ibā Nakha chhār̲dibā ( See )

ନଖ ବନା(ନେ)ଇବା—ଗ୍ରା. (ଇତର) କ୍ରି—୧ । ନଖ କାଟିବା (ଦେଖ)
Nakha banā(ne)ibā 1 Nakha kāṭibā ( See )
୨ । ନଖ କଟାଇବା ( ଦେଖ )
2 Nakha kaṭāibā ( See )

ନଖ ବସା(ସେ)ଇବା—ଦେ. କ୍ରି—ନଖ ଗଳାଇବା ( ଦେଖ )
Nakha basā(se)ibā Nakha gal̲āibā ( See )

ନଖ ବାଳ—ସ. ବ. ( ସଦ୍ଵନ୍ଦ ) ( ନଖ + ବାଳ )—ଅଙ୍ଗୁଠିର ନଖ ଓ ମୁଣ୍ଡର କେଶ - Finger-nails and the
Nakha bāl̲a
নখচুল नाखुन बाल hair of the head.

ନଖ ବାଳ ଛାଡ଼ିବା—ଦେ. କ୍ରି—କୌଣସି ଦେବତାଙ୍କଠାରେ ମାନସିକ କରି ବହୁକାଳ ନଖ ଓ ବାଳ ନ କଟାଇବା
Nakha bāl̲a chhār̲dibā
নখ চুল বাঢান To let one's hair and
नख बाल बढ़ाना nails grow for a long time ( in
[ ନଖବାଳ ବଢ଼ା(ଢ଼େ)ଇବା—ଅନ୍ୟରୂପ ] connection with some religious vow )

ନଖ ବାଳ ଛାଡ଼ି ଲୁଚି କେତେ ଯୋଗୀ ହେଲେଣି—ଦଗ ।

ନଖ ବିନ୍ଦୁ—ସ ବ—ନଖ ଉପରେ ସ୍ତ୍ରୀମାନେ ମେହେନ୍ଦୀ ବା ହରଗୌରୀରେ ରଞ୍ଜିତ କରିବା ଗୋଲ ବା ଚନ୍ଦ୍ରାକାର ଚିହ୍ନ
Nakha bindu
( ହି. ଶବ୍ଦସାଗର )—Circular or crescent-shaped spots on the finger-nails of females made with dyes.

ନଖ ବିଷ—ସ. ବଣ. ( ବହୁବ୍ରୀହି; ନଖ + ବିଷ )—ଯେଉଁ ଜୀବମାନଙ୍କ ନଖରେ ବିଷ ଅଛି ଓ ଯେଉଁମାନଙ୍କ ନଖକ୍ଷତ ବିଷାକ୍ତ—(animals) Having poisonous nails.
Nakha bisha
( ଯଥା—ମନୁଷ୍ୟ, ବିରାଡ଼ି, କୁକୁର, ମା.. ଙ୍କୁ, କୁମ୍ଭୀର, ବେଙ୍ଗ, ଗୋଧି, ଚେମ୍ଫେଇନେଉଳ, ଝିଟିପିଟି । )
ସ. ବ. ( ମ ପ. ଲେ )—ନଖାଘାତଦ୍ୱାରା ଜାତ ବିଷ—
Poison resulting from scratching with the nails.

ନଖ ବୃକ୍ଷ—ସ. ବ—ନୀଳଗୁଳ୍ମ ( ହି. ଶବ୍ଦସାଗର )—
Nakha bṛuksha Indigo plant.

ନଖ ବିଷ୍କିର—ସ. ବ—ଯେଉଁ ଜନ୍ତୁମାନେ ଶିକାର ବା ଖାଦ୍ୟକୁ ନଖ ଦ୍ୱାରା ଚିରି ବା ବିନ୍ଧି ଖାଆନ୍ତି—
Nakha bishkira
Animals which eat their prey or food by scratching or piercing it with nails or claw
( ଯଥା—ବାଘ, ଭାଲୁ, ବାଜ । )

ନଖ ବ୍ରଣ—ସ. ବ. ( ମ. ପ. ଲେ, ନଖଜନିତ ବ୍ରଣ )—
Nakha braṇa ନଖ କ୍ଷତ (ଦେଖ)
(ନଖ ଲେଖା, ନଖ ରେଖା—ଅନ୍ୟରୂପ) Nakha kshata (See)

ନଖ ମରିବା—ଦେ. ବ—ଏକ ପ୍ରକାର ରୋଗ (ଏଥିରେ ଅଙ୍ଗୁଠିର ନଖ ମିଳାଇ ଯାଇ ନଷ୍ଟ ହୋଇଯାଏ )—
Nakha maribā
(ନଖ ମରିଯିବା—ଅନ୍ୟରୂପ) Fungoid disease of the
নখ মবে যাওআ nails; onichomichosis, Phytosis
नाखुन मरना Ungium.

ନଖ ମଳି—ଦେ. ବ. ( ସ. ନଖ + ମଳ )—
Nakha mal̲i ନଖ ଓ ଅଙ୍ଗୁଠି ଅଗର ସନ୍ଧରେ ଥିବା ମଳ—
নখের ময়লা Dirt inside the space between the
नख मैल grown up nails and the fleshy finger-tip.

ନଖ ମାରିବା—ଦେ. କ୍ରି—ନଖାଇବା ୧,୨ ( ଦେଖ )
Nakha māribā Nakhāibā 1 and 2 ( See )
নখমাবা नाखुन गड़ाना

ନଖମୀ ( ଇତ୍ୟାଦି )—ଗ୍ରା. ବ. ସ୍ତ୍ରୀ. ( ଲକ୍ଷ୍ମୀର ଅଶୁଦ୍ଧ ଉଚ୍ଚାରଣ )—
Nakhamī ( etc ) ଲକ୍ଷ୍ମୀ ଇତ୍ୟାଦି ( ଦେଖ )—
Lakshmī etc (See )

ନଖମୂଳ—ପ୍ରାଦେ. (ଗଡ଼ଜାତ) ବ—ପଦିକ—
Nakhamūl̲a Foot-soldier.

ନଖର—ସ. ବ. (ନଖ + ସ୍ୱାର୍ଥରେ ର; ଅଥବା ନଖ + ର ଧାତୁ = ଗ୍ରହଣ କରିବା + କର୍ତ୍ତୃ. ଅ)—୧ । ନଖ—
Nakhara
1. Nail.
୨ । ପଶୁ ପକ୍ଷୀ ଆଦିଙ୍କ ତୀକ୍ଷ୍ଣ ନଖ—
2 Claws or talons of animals.
୩ । ପ୍ରାଚୀନକାଳର ଅସ୍ତ୍ରବିଶେଷ (ହି. ଶବ୍ଦସାଗର)—
3. The name of a weapon used in ancient India.

ନଖ ରଖିବା—ଦେ. କ୍ରି—ନଖ ଛାଡ଼ିବା (ଦେଖ)
Nakha rakhibā Nakha chhār̲dibā (See)

ନଖ ରଞ୍ଜକ—ସ. ବ (ନଖ + ରଞ୍ଜକ)—ମଞ୍ଜୁଆଟି (ଦେଖ)
Nakha rañjaka Mañjuāti (See)

ନଖ ରଞ୍ଜନ—ସ. ବି. (୬ଷ୍ଠୀ ତତ୍; ନଖ+ରଞ୍ଜନ)—
Nakha rañjana ୧ । ନଖ କୃନ୍ତନ, ନଖ କାଟିବା—
1. The paring of nails.
୨ । ନଖ ରଙ୍ଗାଇବା—
2. Painting the nails with pigments.

ନଖ ରଞ୍ଜନୀ—ସ. ବି. ସ୍ତ୍ରୀ. (ନଖ ରଞ୍ଜନ+ସ୍ତ୍ରୀ. ଈ; ଯାହାଦ୍ୱାରା ନଖରଞ୍ଜନ
Nakha rañjanī କରଯାଏ)—୧ । ନହୁରୁଣୀ—
1. An instrument for paring the nails; nail-clipper.
୨ । ମେହେନ୍ଦୀ ଗଛ (ଦେଖ)
2. Mehendī tree (See)
୩ । ହରଗଉରୀ ଗଛ (ଦେଖ)
3. Haragaurā tree (See)

ନଖର(ରେ)ଇବା—ଦେ କ୍ରି. (ସ ନଖର)—
Nakharā(re)ibā ୧ । ନଖାଇବା ୧।୨ (ଦେଖ)
1. Nakhāibā 1 & 2 (See)
୨ । (ଫା. ନଖରା=ସ୍ତ୍ରୀମାନଙ୍କର କାମଚେଷ୍ଟା ପ୍ରକାଶକ ହାବ ଭାବ)—(ସ୍ତ୍ରୀ ପକ୍ଷରେ) ପୁରୁଷ ପ୍ରତି କାମଚେଷ୍ଟା ପ୍ରକାଶକ ହାବଭାବ ଦେଖାଇବା—2. To flirt; to
नखराकरना coquet (said of a woman)

ନଖରଘାତ—ସ. ବି—ନଖାଘାତ (ଦେଖ)
Nakharāghāta Nakhāghāta (See)

ନଖରାଙ୍କ—ସ. ବି. (୬ଷ୍ଠୀ ତତ୍; ନଖର+ଅଙ୍କ)—
Nakharāṅka ନଖଚିହ୍ନ, ନଖରାମ୍ପୁଡ଼ା ଦାଗ—
Marks left by scratching with the nails; nail scratches.

ନଖ ରାମ୍ପୁଡ଼ା—ଦେ. ବି—୧ । ନଖଦ୍ୱାରା ଚିରିବା ବା ବିଦାରିବା—
Nakha rāmpurḍā 1. Scratching by finger-nails.
नख आँचड़ान ୨ । ନଖଚିହ୍ନ—2 Marks left by scrat-
नाखुनसे खुरचना ching with the nails.
ଦେ ବିଣ—ନଖରେ ରାମ୍ପିବାରୁ ଉତ୍ପନ୍ନ, ନଖରେ ରାମ୍ପୁଡ଼ିବା ଯୋଗୁଁ ହୋଇଥିବା—Due to nail-scratching.

ନଖରାୟୁଧ—ସ. ବି (ବହୁବ୍ରୀହି, ନଖର+ଆୟୁଧ)—୧ । ସିଂହ—
Nakharāyudha 1. Lion.
(ନଖାୟୁଧ—ଅନ୍ୟରୂପ) ୨ । ବ୍ୟାଘ୍ର—2. Tiger.
୩ । ଯେଉଁ ପଶୁମାନଙ୍କର ନଖର ଅଛି—3. Beasts having sharp claws; beasts of prey.
୪ । ଯେଉଁ ପକ୍ଷୀମାନଙ୍କର ନଖର ଅଛି—
4. Birds having talons, birds of prey.
୫ । କୁକୁଡ଼ା—5. A cock
୬ । (ରୂପକ କର୍ମଧା; ନଖର+ଆୟୁଧ)—ନଖର ବା ତୀକ୍ଷ୍ଣ ନଖରୂପ ଅସ୍ତ୍ର—Nails utilised as weapon of offence and defence.

ସ. ବିଣ. ପୁଂ—ଯାହାର ନଖ ଅସ୍ତ୍ରସ୍ୱରୂପ—
(ନଖରାୟୁଧା—ସ୍ତ୍ରୀ) Armed with claws.

ନଖରାହ୍ୱ—ସ. ବି. (ନଖର+ହ୍ୱେ ଧାତୁ+କର୍ତ୍ତୃ. ଅ)—କରବୀର ବୃକ୍ଷ—
Nakharāhwa Sweet-scented oleander.

ନଖରୀ—ସ ବିଣ. ପୁଂ. (ନଖର+ଅସ୍ତି ଅର୍ଥରେ ଇନ୍; ୧ମା. ୧ବ)—
Nakharī ଯାହାର ନଖ ଅଛି; ନଖଧାରୀ (ଜନ୍ତୁ)—
(ନଖରିଣୀ—ସ୍ତ୍ରୀ) (animals) Having nails; having claws or talons.
ଦେ ବିଣ. ସ୍ତ୍ରୀ (ଗାଳରେ ବ୍ୟବହୃତ, ଫା. ନଖରା=ସ୍ତ୍ରୀମାନଙ୍କ
(ନଖରୁଣୀ—ଅନ୍ୟରୂପ) କାମଚେଷ୍ଟାସୂଚକ ହାବଭାବ)—
(ନାଖରୀବାଜୀ—ବି) ୧ । ଯେଉଁ ସ୍ତ୍ରୀ ପରପୁରୁଷ ପ୍ରତି ହାବଭାବ
नखरेबाज, नखरीला ଦେଖାଏ—1. (a woman) Making blandishments of love; flirting; coquettish.
୨ । ନଷ୍ଟ ଚରିତ୍ରା—2. Dissolute.

ନଖ ରେଖା—ସ. ବି. (ମ. ପ. ଲୋ, କର୍ମଧା; ନଖ+ରେଖା)—
Nakha rekhā ନଖଦାଗ; ନଖକ୍ଷତ—Nail-scratch.
(ନଖଲେଖା—ଅନ୍ୟରୂପ)

ନଖରେ ଚିରିବା—ଦେ. କ୍ରି—କୌଣସି ପଦାର୍ଥକୁ ନଖଦ୍ୱାରା ରାମ୍ପୁଡ଼ି
Nakhare chiribā କ୍ଷତ କରିବା—To scratch with the
नखे आँचड़ान नखसे लकीर देना nails.

ନଖ ଶସ୍ତ୍ର—ସ. ବି. (୬ଷ୍ଠୀ ତତ୍; ନଖ+ଶସ୍ତ୍ର)—ନହୁରୁଣୀ—
Nakha śastra Nail-clipper.
ସ. ବି ଓ ବିଣ—ନଖରାୟୁଧ (ଦେଖ)
Nakharāyudha (See)

ନଖଶିଖ—ସ. କ୍ରି. ବିଣ (ଅବ୍ୟୟୀଭାବ, ନଖ+ଶିଖା)—
Nakhaśikha ପାଦର ନଖଠାରୁ ଶିଖା ପର୍ଯ୍ୟନ୍ତ; ଅପାଦମସ୍ତକ—
From head to foot; from top to toe
ସମ୍ଭ୍ରମେ ଭୂତ ଦୃଷ୍ଟ ସକଳେ
ନଖଶିଖ ଯାର ଚଳସରଇଲେ । ରାଧାନାଥ, ଚନ୍ଦ୍ରଭାଗା ।
ସ. ବି—ନଖଠାରୁ ଶିଖା ପର୍ଯ୍ୟନ୍ତ ସମସ୍ତ ଅଙ୍ଗ (ହି. ଶ.)—
All the limbs of the body from the head to the nails.

ନଖ ଶୂଳ—ସ. ବି (୬ଷ୍ଠୀ ତତ୍; ନଖ+ଶୂଳ)—ନଖକୋଣୀ (ଦେଖ)
Nakha śūla Nakhakoṇī (See)

ନଖ ସନ୍ଧି—ସ. ବି. (୬ଷ୍ଠୀ ତତ୍; ନଖ+ସନ୍ଧି)—ନଖ ଓ ଆଙ୍ଗୁଠିର
Nakha sandhi ମାଂସଳ ଅଗ୍ରମଧ୍ୟରେ ଥିବା ସ୍ଥାନ—
The hollow space between the nail-tops and the finger-tops

ନଖ ସରୁ—ଦେ. ବିଣ—ନଖ ପରି ପାତଳ—
Nakha saru Thin as the finger-nails.

ନଖହରଣୀ—ସ. ବି. (ନଖ+ହରଣ+ଈ)—ନହୁରୁଣୀ (ହି. ଶ.)—
Nakhaharaṇī Nail-clipper.

ନଖାଇବା—ଦେ କ୍ରି. (ସ. ନଖ)—୧ । ନଖରେ ରାମ୍ପୁଡ଼ିବା;
Nakhāibā ନଖରାଇବା—1. To scratch with the
नखे आँचड़ान nails.

**नखियाना; नखोटना, नखसेखोंटना** ୨ । ନଖରେ ଫଳଆଦିର ଚୋପା ଛଡ଼ାଇବା—2 To peel off the rind of fruits with the nails.

୩ । (ସଂ. ନ+ଖାଦ୍ ଧାତୁ)—ନ ଖାଇବା; ଭୋଜନକ୍ରିୟା ନ କରିବା—3. Not to eat

ଗ୍ରା. କ୍ରି. (ସଂ. ଲଗ୍ନ)—ଲଖାଇବା, କୌଣସି ପଦାର୍ଥକୁ କୌଣସି ସ୍ଥାନରେ ଅଟକାଇବା ବା ଲଗାଇରଖିବା—To cause a thing to stick or adhere to some place.

**ନଖାଘାତ**—ସଂ. ବି. (୬ଷ୍ଠୀ ତତ୍; ନଖ+ଆଘାତ)—
Nakhāghāta ନଖଦ୍ୱାରା ବିଦ୍ଧ ହେବା; ନଖ ମାରିବା—Scratching with the nails, claws or talons

**ନଖାଙ୍କ**—ସଂ ବି—୧ । ନଖରାଙ୍କ (ଦେଖ)
Nakhāṅka 1. Nakharāṅka (See)

୨ । ନଖୀ ୨ (ଦେଖ) (ହି. ଶବ୍ଦସାଗର)—2. Nakhī 2 (See)

**ନଖାନଖି**—ଦେ. ବି ଓ ବିଣ—ନଖଦ୍ୱାରା ପରସ୍ପରକୁ ଆକ୍ରମଣ; ବିଦ୍ଧାବିଦ୍ଧି—Mutual scratching with nails, claws or talons.
Nakhānakhi
नखानखि
नखियानखो

**ନଖାୟୁଧ**—ସଂ. ବି ଓ ବିଣ—ନଖରାୟୁଧ (ଦେଖ)
Nakhāyudha Nakharāyudha (See)

**ନଖାଶୀ**—ସଂ ବି(ନଖ+ଅଶ୍ ଧାତୁ ଭୋଜନ କରିବା+କର୍ତ୍ତୃ.ଇନ୍;୧ମା.୧ବ)
Nakhāśī ଯେ ଖାଇବାବେଳେ କେବଳ ନଖ ସାହାଯ୍ୟରେ ଖାଦ୍ୟ (ନଖାଶିନୀ—ସ୍ତ୍ରୀ) ଗ୍ରହଣ କରେ)—ପେଚକ; ପେଚ୍ଚା—Owl.

ସଂ. ବିଣ. ପୁଂ—ନଖଖାଦୀ (ଦେଖ)
Nakhakhādī (See).

**ନଖି**—ଦେ. ବି (ସଂ. ନଖ)—୧ । ଘୋଡ଼ାର ଖୁରା ଚିକ୍କଣ ହୋଇ କଟିବାରୁ ବାହାରିଥିବା ନଖର କ୍ଷୁଦ୍ର କ୍ଷୁଦ୍ର ଓ ପତଳା ଛୁଲକାମାନ—The thin slices of nails pared off from the hoofs of a horse during shoeing
Nakhi
नख
नाखुन, नख

୨ । ଘୋଡ଼ା ଖୁରରେ ବଢ଼ିଥିବା ନଖ—2. The nails of a horse's hoof

मिजराब ୩ । ମିଜରାବ୍; ସିତାରକୁ ବଜାଇବା ପାଇଁ ବାଦକର
नाखुना ତର୍ଜନୀ ଅଙ୍ଗୁଠିରେ ବନ୍ଧା ହୋଇଥିବା ଲୁହା ତାରରେ ମୋଡ଼ା ହୋଇଥିବା ସୂକ୍ଷ୍ମାଗ୍ର ଅଙ୍ଗୁଳିତ୍ର—3 A cap of wire put on the index finger of the person who plays on the guitar.

ଗ୍ରା ବି. ପୁଂ (ନାମ) (ଆଦରାର୍ଥକ)—ଲକ୍ଷ୍ମୀଧର, ଲକ୍ଷ୍ମୀକାନ୍ତ,
(ନଖୁ - ଅନ୍ୟରୂପ) ଲକ୍ଷ୍ମଣଆଦି ନାମଧାରୀ ବ୍ୟକ୍ତିଙ୍କ ଡାକନାମ—
(ନଖା, ନଖିଆ, ନଖୁଆ—ଅନାଦରାର୍ଥକ ରୂପ) A name for calling persons whose names begin with Lakshmī.

(ସ୍ତ୍ରୀ) ଲକ୍ଷ୍ମୀ ନାମ୍ନୀ ସ୍ତ୍ରୀର ଡାକ ନାମ—A name for calling a woman named Lakshmī.

ଦେ. ଅ—ଦୁଇଟି ଅଙ୍ଗୁଳିର ନଖକୁ ପରସ୍ପର ସହିତ ଘଷିବାବେଳେ ଉଚ୍ଚାରିତ ଶବ୍ଦ—A word uttered while rubbing two nails against each other to counteract the effect of a second person uttering an oath.

ଗୋଟିଏ ଗୋଟିଏ ରଣ ଲଗି ନଖି ବୋଲୁ ଯେ କାହିଁକି ଏତେ ଲଜ୍ଜାରେ—
ଜଗନ୍ନାଥ ସଙ୍ଗୀତ ।

[ ଦ୍ର—କେହି କାହାକୁ ରଣ ପକାଇଲେ ଯାହାପ୍ରତି ରଣ ପକାଯାଏ ସେ ଦୁଇ ନଖକୁ ପରସ୍ପର ସହିତ ଘଷି 'ନଖି' ଏହି ଶବ୍ଦ ଉଚ୍ଚାରଣ କଲେ ରଣ କାଟେ ନାହିଁ ବୋଲି ଲୋକଙ୍କର ବିଶ୍ୱାସ । ]

**ନଖିତହଁରି**—ପ୍ରାଦେ. (ବାଲେଶ୍ୱର) ବି.—ସରୁଧଡ଼ିଆ ଲୁଗା—
Nakhi tahaṅri Narrow-bordered cloth.

**ନଖି ମାରିବା**—ପ୍ରାଦେ. (ପୁରୀ) କ୍ରି. (ପଇଡ଼ ଉପରୁ ଛଡ଼ା ହେବା ଚକଟି
Nakhi māribā ନଖ ପରି ପତଳା ଥିବାରୁ)—ଛୁଆଁ ହୋଇ ଥିବା ପଇଡ଼ର ଉପରୁ କଟୁରୀ ଆଦି କୌଣସି ଶସ୍ତ୍ରଦ୍ୱାରା ଗୋଟିଏ ଗୋଲାକାର ଚକଟି ଛଡ଼ାଇବା—To cut a small slice from the top of a young cocoanut.

[ ଦ୍ର—ଏପରି ନଖି ମାରି ଛିଦ୍ର କରାଯାଇ ସେହି ବାଟେ ମୁହଁ ଲଗାଇ ବା ଗିଲାସରେ ଢାଳି ପଇଡ଼ପାଣି ପିଆଯାଏ । ]

**ନଖିମୀ** (ଇତ୍ୟାଦି)—ଗ୍ରା· ବି ସ୍ତ୍ରୀ (ସଂ. ଲକ୍ଷ୍ମୀର ଅଶୁଦ୍ଧ ଉଚ୍ଚାରଣ
Nakhimī (etc) ଲକ୍ଷ୍ମୀ (ଇତ୍ୟାଦି) (ଦେଖ)—Lakshmī etc (See)

**ନଖୀ**—ସଂ. ବି. (ନଖ+ଅସ୍ତି ଅର୍ଥରେ ଇନ; ୧ମା ୧ବ.)—
Nakhī ୧ । ନଖଧାରୀ ଜୀବ—1. Animals having nails, claws or talons.

୨ । ସିଂହ (ହି. ଶ)—2. Lion

୩ । ବାଘ (ହି ଶ)—3 Tiger.

୪ । ଗନ୍ଧଦ୍ରବ୍ୟବିଶେଷ—4 Fasciolaria; Ungus Odorata; shell.

(ସଂ. ନାମ—ଶୁକ୍ତିଶଙ୍ଖ; ନଖ, ଚକ୍ରକାରକ, ବ୍ୟାଘ୍ରନଖ, ବ୍ୟାଘ୍ରାୟୁଧ, ଶଙ୍ଖନଖୀ
ତେ. ନଖମୁ
ମ ନଖଲ୍ଲ, ବାଘନଖ
ଗୁ. ନଖଲ୍ଲ
ଫା. ଡାଫ୍ନ୍ ପରୁୟା
ଆ. ଆଜ୍‌ଫାରୁତିବ୍
नखी
नखी, बाघनख

[ ଦ୍ର—ଏହା ସାମୁଦ୍ରିକ ଶମ୍ବୁକବିଶେଷର ଖୋଳ; ଏହା ଈଷତ୍ ଉତ୍ତପ୍ତ ହେଲେ ଏଥିରୁ ସୁଗନ୍ଧ ବାହାରେ; କିନ୍ତୁ ପୋଡ଼ି ଗଲେ ଦୁର୍ଗନ୍ଧ ବାହାରେ । କବିରାଜମାନେ ଏହାକୁ ଭାଜି ତୈଳାଦିରେ ପକାଇ ତୈଳକୁ ସୁଗନ୍ଧଯୁକ୍ତ କରନ୍ତି ।

ନଖୀ, ଦୁଇ ଜାତି—୧ବୃହନ୍ନଖୀ(ସଂ. ନାମ· ନଖ, ଶଙ୍ଖନଖୀ, ବ୍ୟାଘ୍ରନଖ, ବ୍ୟାଘ୍ରାୟୁଧ, ଚକ୍ରକାରକ) ଓ ୨ ସ୍ୱଳ୍ପ ନଖୀ ବା କ୍ଷୁଦ୍ର ନଖୀ, (ସଂ. ନଖୀ, ହନୁ, ହଟ୍ଟବିଲାସିନୀ) । ବୈଦ୍ୟ-

ଶାସ୍ତ୍ର ଅନୁସାରେ ଏହା ଗ୍ରହଦୋଷ, କଫ, ବାୟୁ, ରକ୍ତ, ଜ୍ୱର, କୁଷ୍ଠ, ବ୍ରଣ, ବିଷ, ଅଲକ୍ଷ୍ମୀ ଓ ମୁଖର ଦୁର୍ଗନ୍ଧନାଶକ । ଏହା ଲଘୁ, ଉଷ୍ଣବୀର୍ଯ୍ୟ ଶୁକ୍ରବର୍ଦ୍ଧକ, ବର୍ଣ୍ଣକାରକ । ନଖୀର ଆକାର ମନୁଷ୍ୟର ନଖ ପରି ଅର୍ଦ୍ଧଚନ୍ଦ୍ରାକାର ଓ ଗୋଲ । ଏହା ଧଳା ଓ ନେଳି ରଙ୍ଗର ମିଳେ । ]

(ନଖିନୀ ସ୍ତ୍ରୀ) ସଂ ବିଣ. ପୁଂ—ନଖସ୍ତ୍ର; ନଖଧାରୀ (ଜନ୍ତୁ)—
(animals) Armed with nails.

ଗ୍ରା. ବି. ସ୍ତ୍ରୀ—ଲକ୍ଷ୍ମୀ (ଦେଖ)—Lakshmī (See)

**ନଖେ**—ଦେ. ବିଣ. ଓ ବି—ଅତି ଅଳ୍ପ ମାତ୍ର; (ନଖ ସମ୍ବନ୍ଧରେ ଯେତିକି ମାତ୍ର ସମ୍ଭବ) ଟିକଟେ, ଟିକଟେ—A minute quantity of, a little quantity of.
Nakhe
एकटुकु
**जरासा, एकटुक**

**ନଖେଇବା**—ଦେ. କ୍ରି—(ସଂ. ନଖ)—ନଖାଇବା ୧।୨।୪ (ଦେଖ)
Nakheibā — Nakhāiba 1, 2 and 4 (See)

**ନଗ**—ସଂ. ବିଣ. ( ନ=ନାହିଁ+ଗମ୍ ଧାତୁ=ଯିବା+କର୍ତ୍ତୃ ଅ; ଯାହା ଗତି କରେ ନାହିଁ)—ଅଚଳ, ସ୍ଥିର—Immobile.
Naga

ସଂ. ବି.—୧ । ପର୍ବତ—1 Mountain

୨ । ବୃକ୍ଷ—2 Tree.

୩ । ସାତ ସଂଖ୍ୟା (ହ୍ରି. ଶ)—
3. The number seven (Apte).

୪ । ସର୍ପ; ସାପ (ହ୍ରି. ଶ)—4 Serpent (Apte).

୫ । ସୂର୍ଯ୍ୟ (ହ୍ରି. ଶ)—5. The sun (Apte).

୬ । ବୃକ୍ଷଲତାଦି—
6. A plant (in general) (Apte).

ଦେ. ବି. ପୁଂ—(ଆଦରାର୍ଥ)—ନଗେନ୍ଦ୍ରର ଡାକ ନାମ—
A name by which Nagendra is called.

**ନଗଜ**—ସଂ. ବିଣ. (ନଗ+ଜନ୍ ଧାତୁ+କର୍ତ୍ତୃ. ଅ)—ପର୍ବତଜାତ—
Nagaja — Produced from a mountain; mountain-born.
(ନଗଜା—ସ୍ତ୍ରୀ)

ସଂ. ବି.—ହସ୍ତୀ—Elephant.

**ନଗଜା**—ସଂ. ବି. ସ୍ତ୍ରୀ (ନଗଜ+ସ୍ତ୍ରୀ. ଆ)—୧ । ପାର୍ବତୀ—
Nagajā — 1. Pārbati.

୨ । ନଦୀ—2 River.

୩ । କ୍ଷୁଦ୍ର ପାଷାଣଭେଦୀ ଲତା—3. A small creeper growing on stone.

**ନଗଣ**—ସଂ. ବି—ପିଙ୍ଗଳ ଶାସ୍ତ୍ରରେ ତିନିଗୋଟିଯାକ ଲଘୁବର୍ଣ୍ଣବିଶିଷ୍ଟ ଶବ୍ଦମାନଙ୍କର ଗଣବିଶେଷ—A class of words which consist of three short letters only.
Nagaṇa

( ଯଥା—କମଳ, ଭଜନ, ମଦନ, ଚରଣ, ମନନ, ନୟନ ଏହି ଗଣରେ ଛନ୍ଦ ଆରମ୍ଭ କରିବା ଶୁଭ ବୋଲି ବିବେଚିତ ହୁଏ । )

**ନଗଣ୍ୟ**—ସଂ ବିଣ. ପୁଂ (ନ+ଗଣ୍ୟ)—୧ । ଅଗଣ୍ୟ; ଅଗଣନୀୟ—
Naganya — 1. Innumerable.
(ନଗଣ୍ୟା—ସ୍ତ୍ରୀ)

୨ । ଗଣନାର ଅଯୋଗ୍ୟ—2. Unnoticeable.

୩ । ସାମାନ୍ୟ; ତୁଚ୍ଛ; ହେୟ—
3. Insignificant; contemptible.

**ନଗଦ**—ବୈଦେ ବି ( ଅ. ନକ୍‌ଦ )—୧ । ଗଚ୍ଛିତ ଟଙ୍କା; ରୋକଡ଼; ମୁଦ୍ରାରୂପୀ ଧନ—1 Cash; ready money.
Nagada
नगद

୨ । ସଙ୍ଗେ ସଙ୍ଗେ ଟଙ୍କା ଆଦାନ ପ୍ରଦାନ—
**नगद** — 2. Cash payment; cash transaction.

(ଯଥା—ସିନ୍ଧେଶ୍ୱରପୁର ଦେଖଣାସନ ମକଦମ ନଗଦ ଗଣାଇଲା—
ଶିଶୁ ହସ୍ତାକ୍ଷର ଲିପି ।)

ବିଣ—୧ । ଗଚ୍ଛିତ; ଉପସ୍ଥିତ (ମୁଦ୍ରା)—1. Cash.

୨ । ସଙ୍ଗେ ସଙ୍ଗେ ଦେୟ ବା ଦିଆ ଯାଇଥିବା—
2. Payable or paid in cash.

୩ । ସଙ୍ଗେ ସଙ୍ଗେ ମୂଲ୍ୟ ଦିଆଯାଇ କ୍ରୀତ—
3. Purchased on cash payment.

୪ । ଅତି ଅଳ୍ପ କାଳ ହେଲା ଘଟିଥିବା—
4 Recent; of very late occurrence

କ୍ରି. ବିଣ—୧ । ସଙ୍ଗେ ସଙ୍ଗେ ( ଟଙ୍କା ଦେବା )—
1. (payment of money) In cash; in ready money.

୨ । ଅତିଶୀଘ୍ର; ସଙ୍ଗେସଙ୍ଗେ—
2 Immediately; at once.

୩ । ଅତି ଅଳ୍ପକାଳ ହେଲା—3. Recently.

ପ୍ରାଦେ (ଉତ୍ତର ଭାଷା) ବିଣ—ଉତ୍ତମ—Excellent.

**ନଗଦ କାରବାର**—ବୈଦେ. ବି—ନଗଦ ଟଙ୍କା ଦିଆନିଆ ହୋଇ କରାଯିବା କ୍ରୟବିକ୍ରୟ—Cash transaction; transaction made with payment in ready money.
Nagada kārabāra
नगद कारबार
**नगदकारबार**

ନଗଦ ଖରିଦ ବିକ୍ରି, ନଗଦ ନେଣଦେଣ, ନଗଦ କେଉଁର, ନଗଦ ସଉଦା } —ଅନ୍ୟରୂପ

**ନଗଦା**—ଦେ ବିଣ—ଯେଉଁ ମୂଲିଆ ପ୍ରତିଦିନ ନଗଦ ମଜୁରି ନେଇ ମୂଲ ଲାଗେ—(a labourer) Who works on the system of daily payment of his wages; journeyman (labourer).
Nagadā
नगदा
**नगद मजुरी**

**ନଗଦାତ୍**—ବୈଦେ. ବିଣ - ସଙ୍ଗେ ସଙ୍ଗେ ମୂଲ୍ୟ ଦିଆଯିବା; ନଗଦାନଗଦ—
Nagadāt — Paid in cash.
**नगदी**

ନଗଦାତ ହେବ ଛଡ଼ ସମସ୍ତ ଜମିଦାର ବେଠି ଘର ଅ ନକ ଜନସ ଦେଉଥିଲେ—
ଫକୀରମୋହନ. ଛମାଣଆଠଗୁଣ୍ଠ ।

**ନଗଦାନଗଦ**—ବୈଦେ. ବିଣ (ଅ.ନକ୍‌ଦ) ୧ । ସଙ୍ଗେ ସଙ୍ଗେ ଦିଆଯିବା—
Nagadānagada — 1. Paid in cash.
**नगदानगद**

୨ । ଅଳ୍ପକାଳ ପୂର୍ବେ ଘଟିଥିବା—
(ନଗଦାନଗଦ—ଅନ୍ୟରୂପ) — 2. Recent.

୩ । ସମସାମୟିକ; ସଙ୍ଗେ ସଙ୍ଗେ ଘଟିବା—
3. Simultaneous.

ଦେ. କ୍ରି. ବିଣ—ନଗଦ ( ଦେଖ )
Nagada ( See ).

**ନଗଦ**—ବିଦେ. ବି (ଅ. ନକ୍‌ଦ୍)—୧ । ପ୍ରଜାଙ୍କଠାରୁ ନଗଦ ଖଜଣା
Nagadi ଆଦାୟ କରିବା ନିମନ୍ତେ ନିଯୁକ୍ତ କର୍ମଚାରୀ ବା ପିଆଦା—
ନଗଦୀ 1. A servant or a peon engaged to
**नकदी, नगदी** realise cash rent from rayats

୨ । ଯେଉଁ ଜମିର ଖଜଣା ଜମିଦାରଙ୍କୁ ତହିଁରୁ ଉତ୍ପନ୍ନ ଶସ୍ୟାଦି ଆକାରରେ ଦିଆ ନ ଯାଇ ନଗଦ ଟଙ୍କାରେ ଦିଆ ଯାଏ—2 A holding or tenure paying cash rent.

୩ । ଏକ ପ୍ରକାର କାଚ ବଳୟ—
3 A kind of glass bangle.

ବିଣ.—୧ । ନଗଦ ମୂଲ୍ୟରେ କ୍ରୀତ—
1. Purchased on cash payment.
୨ । ଅଳ୍ପକାଳ ପୂର୍ବେ ଘଟିଥିବା—2. Recent.
୩ । ସମସାମୟିକ—3 Simultaneous.

କ୍ରି. ବିଣ.—୧ । ଏଇକ୍ଷଣି; ଏହିକ୍ଷଣି—
1. Immediately; just now.
୨ । ଅଳ୍ପକାଳ ପୂର୍ବେ—2 Recently.

**ନଗନ**—ଗ୍ରା. ବି. (ସଂ. ଲଗ୍ନ)—୧ । ଲଗ୍ନ; ଜ୍ୟୋତିଷ ମତରେ ବିବାହାଦି
Nagana ଶୁଭ କର୍ମାନୁଷ୍ଠାନର ଅନୁକୂଳ ମୁହୂର୍ତ୍ତ; ଶୁଭ ଲଗ୍ନ; ଶୁଭ
ନଗନ ମୁହୂର୍ତ୍ତ—1. The exact moment for performing
**लगन** a ceremony, which is the most auspicious according to astrological calculations.

୨ । (ଜ୍ୟୋତିଷ) ଲଗ୍ନ; ଗ୍ରହମାନଙ୍କ ଉଦୟକାଳ—
2 The moment of the rising of planets

**ନଗନ ଧରିବା**—ଗ୍ରା. କ୍ରି—(ଜ୍ୟୋତିଷ ମତରେ) ବିବାହାଦି ଶୁଭ
Nagana dharibā କାର୍ଯ୍ୟ ପାଇଁ ଲଗ୍ନ ସ୍ଥିର କରିବା—
ନଗନ ଧରା To ascertain or fix the most oppor-
**लगन निकालना** tune moment for performing a ceremony.
[ନଗନ ଧରା(ରେ)ଇବା—ଣିଜନ୍ତ ରୂପ]

**ନଗ ନଦୀ**—ସଂ. ବି. (ନଗ+ନଦୀ)—
Naga nadi ୧ । (ଦ୍ୱନ୍ଦ୍ୱ) ପର୍ବତ ଓ ନଦୀ—
1. Mountain and river.
୨ । (ମ ପ ଲୋ; କର୍ମଧା) ପର୍ବତରୁ ଉତ୍ପନ୍ନ ନଦୀ—
2. Hill stream; a river rising from a mountain.

**ନଗନନ୍ଦିନୀ**—ସଂ. ବି. ସ୍ତ୍ରୀ. (୬ଷ୍ଠୀ ତତ୍; ନଗ+ନନ୍ଦିନୀ)—
Naganandini ପାର୍ବତୀ; ଗିରିଜା—Pārbati.

**ନଗନିକ**—ଗ୍ରା. ବିଣ. (ସଂ. ଲଗ୍ନିକ)—ଲଗ୍ନିକ (ଦେଖ)
Naganika Lagnika (See)

**ନଗପତି**—ସଂ. ବି. ପୁଂ. (୬ଷ୍ଠୀ ତତ୍; ନଗ+ପତି)—
Naga pati ୧ । ଅତ୍ୟୁଚ୍ଚ ପର୍ବତ; ବଡ଼ ପର୍ବତ—
1. A big mountain.
୨ । ହିମାଳୟ ପର୍ବତ—2. The Himalayas
୩ । ଚନ୍ଦ୍ର—3. The moon.
୪ । କୈଳାଶ ପତି; ଶିବ—4 Name of Śiba.
୫ । ସୁମେରୁ ପର୍ବତ (ହି. ଶବ୍ଦସାଗର)—
5. The mythological Sumeru mountain

**ନଗଭିଦ୍**—ସଂ. ବି. (ନଗ=ପର୍ବତ+ଭିଦ୍ ଧାତୁ=ଭେଦ କରିବା
Nagabhid +କର୍ତ୍ତୃ. କ୍ୱିପ୍)—
୧ । ଇନ୍ଦ୍ର (ବଜ୍ରଦ୍ୱାରା ପର୍ବତମାନଙ୍କୁ ଭେଦ କରିଥିବାରୁ)—
1. Indra.
୨ । ବଜ୍ର—2. Thunder-bolt.
୩ । କୁଠାର; କୁରାଢ଼ି—3. Axe
୪ । ପାଷାଣଭେଦୀ ନାମକ ଗୁଳ୍ମ ବିଶେଷ—
4. A kind of hardy mountain plant; Plectranthus.
୫ । ପୂର୍ବକାଳରେ ବ୍ୟବହୃତ ପାଷାଣଭେଦନାସ୍ତ୍ର—
5 An instrument used in ancient India for piercing through or blasting stones.

ସଂ. ବିଣ—ପର୍ବତ ଭେଦନକାରୀ—
Piercing the mountain

**ନଗର**—ସଂ. ବି. (ନଗ+ଅସ୍ତି ଅର୍ଥରେ ର; ଯହିଁରେ ନଗ ଅର୍ଥାତ୍
Nagara ପର୍ବତ ପରି କୋଠାମାନ ଅଛି)—
୧ । ସହର—1. Town; city.
୨ । ଶିଳ୍ପ ଓ ବାଣିଜ୍ୟପ୍ରଧାନ ଜନାକୀର୍ଣ୍ଣ ସ୍ଥାନ—
2. A populous centre of trade and art.
[ଦ୍ର—ଉଚ୍ଚ ସୌଧାଦି ପୂର୍ଣ୍ଣ ବାଣିଜ୍ୟପ୍ରଧାନ ଓ ବହୁ ଶ୍ରେଣୀର ଜନମାନଙ୍କ ଅଧ୍ୟୁଷିତ ଲୋକାଳୟକୁ ନଗର ବୋଲାଯାଏ ।]

**ନଗର କାକ**—ସଂ ବି. (ମ. ପ ଲୋ, ସହରରେ ଯେଉଁ କୁଆ ବିଚରଣ
Nagara kāka କରନ୍ତି)—(ଗାଳିରେ ବ୍ୟବହୃତ)ତୁଚ୍ଛ ହୀନ ବ୍ୟକ୍ତି
(an expression of contempt) A vile or low person (Apte).

**ନଗର କୀର୍ତ୍ତନ**—ସଂ. ବି (ମ. ପ. ଲୋ. କର୍ମଧା; ନଗର+କୀର୍ତ୍ତନ)—
Nagara kirttana ହରିନାମ ସଂକୀର୍ତ୍ତନ କରି ଶୋଭାଯାତ୍ରା ଦ୍ୱାରା ନଗରର ରାଜପଥମାନଙ୍କରେ ବୁଲିବା—
The act of walking through the streets of a town in a procession chanting hymns.

**ନଗର ଘାତ**—ସଂ ବି. (ନଗର+ହନ୍ ଧାତୁ+କର୍ତ୍ତୃ. ଅ)—
Nagara ghāta ହାତୀ (ହି.ଶ)—Elephant (Apte).

**ନଗର ଜନ**—ସଂ. ବି. (ନଗର+ଜନ)—
Nagara jana ପୁରଲୋକ; ନଗରବାସୀ ବ୍ୟକ୍ତି; ନାଗରିକ ବ୍ୟକ୍ତି—
Townsman; townsfolk; citizen.

**ନଗର ଦ୍ୱାର**—ସଂ. ବି. (୬ଷ୍ଠୀ ତତ୍; ନଗର+ଦ୍ୱାର)—
Nagara dwāra ସହରକୁ ପ୍ରବେଶ କରିବାର ଫାଟକ—
City-gate.

**ନଗର ନାୟିକା**—ସଂ. ବି. ସ୍ତ୍ରୀ—ବେଶ୍ୟା (ହି. ଶବ୍ଦସାଗର)—
Nagara nāyikā A prostitute.
(ନଗର ନାରୀ—ଅନ୍ୟରୂପ)

**ନଗର ନିବାସ**—ସଂ. ବି—୧ । (ମ. ପ. ଲୋ; କର୍ମଧା; ନଗର + ନିବାସ)
Nagara nibāsa ମଫସଲବାସୀ ବଡ଼ଲୋକଙ୍କର ସହରରେ ଥିବା ଅଟ୍ଟାଳିକା ବା ବାସଭବନ—1. Town residence of a country magnate.
୨ । ନଗରରେ ବାସ କରିବା—2. Living in a city; taking up one's residence in a town.

**ନଗର ନିବାସୀ**—ସଂ.ବିଣ.ପୁଂ. (ଉପପଦ ବହୁବ୍ରୀହି; ନଗର + ନିବାସିନ୍;
Nagara nibāsi ୧ମା. ୧ବ)—ସହରିଆ, ନାଗରିକ—
(ନଗର ନିବାସିନୀ—ସ୍ତ୍ରୀ) Residing in a town.
ସଂ. ବି—ବଜାରିଆ ବା ସହରିଆ ଲୋକ—
A cockney; townsman

**ନଗରପାଳ**—ସଂ. ବି. (୬ଷ୍ଠୀ ତତ୍, ନଗର + ପାଳ)—
Nagarapāḷa ୧ । କୋତୁଆଲ, ନଗର ଜଗିବା ପ୍ରଧାନ କର୍ମଚାରୀ—
(ନଗରପାଳକ—ଅନ୍ୟରୂପ) 1. Police commissioner, the head of the city police.
୨ । ସହରର ସନ୍ତ୍ରୀ ବା ପ୍ରହରୀ, ଚୌକିଦାର—
2. A watchman; town-guard, sentinel; constable.
୩ । ସହରର ଶାନ୍ତିରକ୍ଷକ ପୁଲିସ ଫଉଜ—
3. The town police.
୪ । ପ୍ରାଚୀନଭାରତରେ ନଗରର ଶାସନ ଓ ନ୍ୟାୟବିଚାର ସମ୍ବନ୍ଧୀୟ ବିଷୟମାନ ତଦାରଖ କରିବା ପାଇଁ ରାଜାଙ୍କ ତରଫରୁ ନିଯୁକ୍ତ କର୍ମଚାରୀ—4. A person employed by the king in ancient India to superintend the executive and judicial administration of a town.

**ନଗର ପାଳିକା ସଭା**—ସଂ. ବି. (ଆଧୁନିକ ପ୍ରୟୋଗ)—
Nagara pāḷikā sabhā ମିଉନିସିପାଲିଟୀ—Municipality;
(ନଗର ରକ୍ଷିଣୀ ସଭା—ଅନ୍ୟରୂପ) town-council.

**ନଗର ପ୍ରାନ୍ତ**—ସଂ. ବି. (୬ଷ୍ଠୀ ତତ୍; ନଗର + ପ୍ରାନ୍ତ)—
Nagara prānta ସହରର ଶେଷଭାଗ; ସହରତଳି—
ନଗରାଭ୍ୟାଶ (ସ), ନଗରୋପାନ୍ତ, ନଗରୋପକଣ୍ଠ } ଅନ୍ୟରୂପ — The outskirts of a town; the suburbs of a city.

**ନଗର ବାସୀ**—ସଂ. ବିଣ. ପୁଂ—ନଗର ନିବାସୀ (ଦେଖ)
Nagara bāsi Nagara nibāsi (See)
(ନଗର ବାସିନୀ—ସ୍ତ୍ରୀ)

**ନଗର ମୁସ୍ତକ**—ସଂ. ବି—ନାଗର ମୁଥା—A large bulbuous
Nagara mustaka grass-root used in medicine.
(ନଗରମୁସ୍ତା—ଅନ୍ୟରୂପ) [ ଦ୍ର—ଏହା ଔଷଧରେ ବ୍ୟବହୃତ ହୁଏ । ]

**ନଗର ରକ୍ଷକ**—ସଂ. ବି. (ଉପପଦ ତତ୍; ନଗର + ରକ୍ଷକ)—
Nagara rakshaka ନଗର ପାଳ (ଦେଖ)
Nagara pāḷa (See)

**ନଗର ରକ୍ଷିଣୀ ସଭା**—ସଂ. ବି. (ଆଧୁନିକ ପ୍ରୟୋଗ)—ମିଉନିସିପାଲିଟୀ—
Nagara rakshiṇi sabhā Municipality; town-council.

**ନଗର ରକ୍ଷିଣୀ ସେନା**—ସଂ. ବି—ସହରର ପୁଲିସ୍—
Nagara rakshiṇi senā Town police; town-guards; the military police of a town.

**ନଗର ରକ୍ଷୀ**—ସଂ ବି - ନଗର ପାଳ ( ଦେଖ )
Nagara rakshi Nagara pāḷa ( See )

**ନଗର ସନ୍ନିବେଶ**—ସଂ. ବି. (୬ଷ୍ଠୀ ତତ୍; ନଗର + ସନ୍ନିବେଶ)—
Nagara sannibeśa ନୂତନ ନଗରର ସ୍ଥାପନ ଓ ନିର୍ମାଣ—
(ନଗରୀୟ ସନ୍ନିବେଶ—ଅନ୍ୟରୂପ) Town-planning; the starting and building of a new town.
[ ଦ୍ର—ଅଗ୍ନିପୁରାଣରେ ଉପଦେଶ ଦିଆ ଯାଇଅଛି ଯେ ଯୋଜନେ ନୂତନ ନଗର ବସାଇବାକୁ ହେଲେ ରାଜା ପ୍ରଥମେ ଏକ ବା ଅଧ ଯୋଜନ ଲମ୍ବ ସ୍ଥଳର ସ୍ଥାନ ବାଛିବେ ଓ ସେଠାରେ ବଜାର ଆଦି ବସାଇବେ । ଏଥିର ଅଗ୍ନି କୋଣରେ ବଣିଆଁ, ଦକ୍ଷିଣରେ ନର୍ତ୍ତକ, ନର୍ତ୍ତକୀ ଓ ବେଶ୍ୟା, ନୈର୍ଋତରେ ନଟ ଓ କୈବର୍ତ୍ତ, ପଶ୍ଚିମରେ ରଥ ଓ ଶସ୍ତ୍ରାଦି, ବାୟୁ କୋଣରେ ଭୃତ୍ୟ ଓ ଦାସଦାସୀ, ଉତ୍ତରରେ ବ୍ରାହ୍ମଣ, ଯତି ଓ ସିଦ୍ଧ ପୁରୁଷ, ଈଶାନ କୋଣରେ ଫଳ ଓ ଖାଦ୍ୟ ଦ୍ରବ୍ୟ ବିକ୍ରେତା ଓ ପୂର୍ବରେ ଯୋଦ୍ଧା ଆଦିଙ୍କ ରହିବା ପାଇଁ ଉପଯୁକ୍ତ ସ୍ଥାନମାନ ତିଆର କରାଇବେ । ଏହା ଛଡ଼ା ପୂର୍ବରେ କ୍ଷତ୍ରିୟ, ଦକ୍ଷିଣରେ ବୈଶ୍ୟ ଓ ପଶ୍ଚିମରେ ଶୂଦ୍ରମାନଙ୍କ ରହିବା ସ୍ଥାନ ନିରୂପଣ କରିବେ; ନଗରର ଚାରି ପାଖେ ସେନା ରଖିବେ; ଦକ୍ଷିଣରେ ଶ୍ମଶାନ ଓ ପଶ୍ଚିମରେ ଗୋମେଷାଦି ରହିବା ଓ ଚରିବା ପାଇଁ ପଡ଼ିଆ ଜମି ରଖିବେ ଓ ଉତ୍ତରରେ କ୍ଷେତ ହେବା ଜମି ରଖିବେ; ନଗରର ସ୍ଥାନେ ସ୍ଥାନେ ଦେବମନ୍ଦିରମାନ ନିର୍ମାଣ କରିବେ । ଦ୍ର. ଶବ୍ଦସାଗର ]

**ନଗରସ୍ଥ**—ସଂ. ବିଣ. ( ନଗର + ସ୍ଥା ଧାତୁ + କର୍ତ୍ତୃ. ଅ )—
Nagarastha ୧ । ନଗରରେ ଥିବା; ନଗରବାସୀ—
1. Residing in a town.
୨ । ନଗରର ଅନ୍ତର୍ଗତ—
2. Within the ambits of a city.
୩ । ନଗରରେ ଅବସ୍ଥିତ—3. Situated in a town.

**ନଗରାଜ**—ସଂ. ବି. ପୁଂ ( ନଗ + ରାଜନ୍ )—ନଗପତି ( ଦେଖ )
Nagarāja Nagapati ( See )

**ନଗରାଜ କନ୍ୟା**—ସଂ. ବି. ସ୍ତ୍ରୀ. (୬ଷ୍ଠୀ ତତ୍; ନଗରାଜ + କନ୍ୟା )—
Nagarāja kanyā ପାର୍ବତୀ; ଗିରିଜା—Pārbati.

**ନଗରାଧ୍ୟକ୍ଷ**—ସଂ. ବି. ( ୬ଷ୍ଠୀ ତତ୍; ନଗର + ଅଧ୍ୟକ୍ଷ )—
Nagarādhyaksha ନଗରପାଳ ( ଦେଖ )
Nagarapāḷa ( See )

**ନଗରିଆ**—ଦେ. ବି. (ସଂ. ନାଗରିକ)—ନାଗରିକ; ସହରିଆ ଲୋକ—
Nagariā Townsfolk.

ନଗରହା

**ନଗରୀ**—ସଂ. ବି. ସ୍ତ୍ରୀ. (ନଗର+ବଶିଷ୍ଟାର୍ଥରେ ବା ସ୍ୱାର୍ଥରେ ଈ)—
Nagarī ୧ । ବଡ଼ ସହର; ବଶିଷ୍ଟ ସହର —
1 A big town; a city
୨ । ନାଗରିକ ବ୍ୟକ୍ତି—2. Townsman; citizen

**ନଗରୀ କାକ**—ସଂ ବି. (ନଗରୀର କାକ ସ୍ୱରୂପ)—ବକ; ବଗ—
Nagarī kāka The Indian crane; Ardea Nevia.

**ନଗରୀ ବକ**—ସଂ. ବି. (ନଗରୀର ବକ ସ୍ୱରୂପ)—କାକ; କୁଆ—
Nagarī baka Crow.

**ନଗରୀୟ**—ସଂ. ବଣ. ପୁଂ. (ନଗର+ଈୟ)—୧ । ନଗର ସମ୍ବନ୍ଧୀୟ—
Nagarīya 1. Pertaining to a town, urban
(ନଗରୀୟା—ସ୍ତ୍ରୀ) ୨ । ନଗରସ୍ଥ—2. Urban; situate in the town.
୩ । ନଗରୋତ୍ପନ୍ନ—3. Produced or manufactured in a town.

**ନଗରୋତ୍ଥା**—ସଂ. ବି—ନଗର ମୁସ୍ତକ (ଦେଖ)
Nagarotthā Nagara mustaka (See)

**ନଗରୋପକଣ୍ଠ**—ସଂ. ବି. (୬ଷ୍ଠୀ ତତ୍; ନଗର+ଉପକଣ୍ଠ)—
Nagaropakantha ନଗରପ୍ରାନ୍ତ; ନଗରର ଶେଷ ଭାଗ; ସହରତଳି—The outskirts of a town

**ନଗରୋପାନ୍ତ**—ସଂ. ବି. (୬ଷ୍ଠୀ ତତ୍, ନଗର+ଉପାନ୍ତ)—
Nagāropānta ନଗରୋପକଣ୍ଠ; ନଗରପ୍ରାନ୍ତ—
The suburbs of a city.

**ନଗା**—ଗ୍ରା. ବି ଓ ବଣ—ଲଗା (ଦେଖ)—
Nagā Lagā (See)
(ନଗ ନଗୁ—ଆଦରାର୍ଥକ) ଦେ.ବି. (ଅନାଦରାର୍ଥକ)—'ନଗେନ୍ଦ୍ର'ର ଡାକନାମ—Name for calling Nagendra

**ନଗା(ଗେ)ଇବା**—ଗ୍ରା କି—ଲଗାଇବା (ଦେଖ)
Nagā(ge)ibā Lagāibā (See)

**ନଗାଟନ**—ସ ବି. (ବହୁବ୍ରୀହି, ନଗ+ଅଟନ)—ମାଙ୍କଡ଼—
Nagātana Monkey (Apte).

**ନଗାଧିପ**—ସଂ. ବି. (୬ଷ୍ଠୀ ତତ୍; ନଗ+ଅଧିପ)—
Nagādhipa ୧ । ସବୁଠାରୁ ବଡ଼ ପର୍ବତ—
ନଗାଧିପତି, ନଗାଧିରାଜ, ନଗାଧୀଶ୍ୱର—ଅନ୍ୟରୂପ
1. The greatest or biggest mountain.
୨ । ହିମାଳୟ ପର୍ବତ—
2. The Himalayas.
୩ । ସୁମେରୁ ପର୍ବତ—3. The mythological Sumeru mountain.

**ନଗାନଗି**—ଗ୍ରା. ବି ଓ ବଣ—ଲଗାଲଗି (ଦେଖ)
Nagānagi Lagālagi (See)

**ନଗାବାସ**—ସଂ. ବି. (ବହୁବ୍ରୀହି; ନଗ+ଆବାସ)—ମୟୂର—
Nagābāsa A peacock (Apte).

**ନଗାମ**—ଗ୍ରା. ବି—ଲଗାମ; ଘୋଡ଼ାମୁହଁରେ ବନ୍ଧା ହେବା ରଜ୍ଜୁ—
Nagāma Reins of a horse; bridle.

**ନଗାରି**—ସଂ. ବି. (୬ଷ୍ଠୀ ତତ୍; ନଗ+ଅରି)—ଇନ୍ଦ୍ର—
Nagāri Indra.

**ନଗି**—ଗ୍ରା. ବି—ଲଗି (ଦେଖ)
Nagi Lagi (See)
नगी

**ନଗିଚ(ଜ)**—ବୈଦେ. ବି ଓ ବଣ ଓ କ୍ରି ବଣ. (ଫା. ନଜ୍‌ଦିକ୍)—
Nagich(j) ନଜଦିକ୍ (ଦେଖ)—Najadik (See)
नगीच **नगीच, नजदीक**

**ନଗେନ୍ଦ୍ର**—ସଂ. ବି. (୭ମୀ ତତ୍; ନଗ+ଇନ୍ଦ୍ର)—
Nagendra ୧ । ହିମାଳୟ ପର୍ବତ—
(ନଗେଶ—ଅନ୍ୟରୂପ) 1. The Himalayas.
୨ । କୈଳାସ ପର୍ବତ—2. The Kailāsa mountain.
୩ । ସୁମେରୁ ପର୍ବତ—3. The Sumeru mountain.
ଦେ. ବି. ପୁଂ—ଲୋକଙ୍କ ନାମ—
A name given to males.

**ନଗେନ୍ଦ୍ର ନନ୍ଦିନୀ**—ସଂ. ବି. (୬ଷ୍ଠୀ ତତ୍; ନଗେନ୍ଦ୍ର+ନନ୍ଦିନୀ)—
Nagendra nandinī ପାର୍ବତୀ—Pārbatī.
ଦେ. ବି. ସ୍ତ୍ରୀ—ସ୍ତ୍ରୀ ଲୋକଙ୍କ ନାମ—
A name given to females.

**ନଗେନ୍ଦ୍ର ନାଥ**—ସଂ. ବି. (୬ଷ୍ଠୀ ତତ୍; ନଗେନ୍ଦ୍ର+ନାଥ)—
Nagendra nātha ଶିବ, ମହାଦେବ—God Śiba.
ଦେ. ବି ପୁଂ—ପୁରୁଷଙ୍କୁ ଦିଆଯିବା ନାମ—
A name given to males.

**ନଗେନ୍ଦ୍ର ବାଳା**—ସ ଓ ଦେ. ବି—ନଗେନ୍ଦ୍ର ନନ୍ଦିନୀ (ଦେଖ)
Nagendra bāḷā Nagendra nandinī (See)

**ନଗୌକା**—ଦେ. ବି ଓ ବଣ. (ସ. ନଗୌକସ୍ ଶବ୍ଦଜ)—
Nagaukā ନଗୌକାଃ (ଦେଖ)—Nagaukāḥ (See)

**ନଗୌକାଃ**—ସ. ବଣ. (ବହୁବ୍ରୀହି; ନଗ+ଓକସ୍=ଗୃହ ବା ସ୍ଥାନ;
Nagaukāḥ ନଗୌକସ୍; ୧ମା. ୧ବ)—ପର୍ବତବାସୀ—
Living in mountains
ସ. ବି—୧ । ପକ୍ଷୀ—1. Bird.
୨ । ସିଂହ—2. Lion
୩ । ବନ୍ୟ ଜନ୍ତୁ—3. Wild animals
୪ । କାକ—4. Crow
୫ । ବାନର; ମାଙ୍କଡ଼ (ପ୍ରକୃତିବାଦ)—
5. Monkey.
୬ । ଶରଭ; ପୁରାଣୋକ୍ତ କାଳ୍ପନିକ ଅଷ୍ଟପଦୀ ଜନ୍ତୁବିଶେଷ—
6. A mythological animal said to have eight legs.

**ନଗୌଚ୍ଛ୍ରାୟ**—ସଂ. ବି. (ନଗ+ଉଚ୍ଛ୍ରାୟ; ୬ଷ୍ଠୀ ତତ୍)—
Nagauchchhrāya ପର୍ବତର ଉଚ୍ଚତା—The height or altitude of a mountain.

**ନଗୌଷଧି**—ସ. ବି. (ନଗ+ଔଷଧି)—କଦଳୀ (ବୃ. ଶବ୍ଦସାଗର)—
Nagaushadhi Plantain

ନଗ୍ନ—ସଂ. ବିଣ ପୁଂ. ( ନଜ୍ ଧାତୁ=ଲଜ୍ଜିତ ହେବା+କର୍ତ୍ତୃ. ତ; ଜ୍ତ ସ୍ଥାନେ ନ )—
Nagna
(ନଗ୍ନା—ସ୍ତ୍ରୀ) ୧ । ଦିଗମ୍ବର; ବିବସ୍ତ୍ର; ଉଲଙ୍ଗ, ଲଙ୍ଗଳା—
1 Naked; nude; bare.
୨ । କଷାୟ ବସ୍ତ୍ରଧାରୀ, ଗେରୁଆ ଲୁଗା ପିନ୍ଧିଥିବା—
2. Wearing a red-coloured cloth.
୩ । ଲୋକଜନପରିଶୂନ୍ୟ ( ଦେଶ )—
3. Uninhabited; desolate.
୪ । ଅଚଷା, ଅକର୍ଷିତ ( ଭୂମି )—
4 Uncultivated ( land ).
୫ । ଅନାବୃତ—5. Uncovered

ସଂ. ବି. ପୁଂ—୧ । ନାଗା, ନଙ୍ଗୁଳୀ ବାବାଜୀ—
1 A class of mendicants going naked.
୨ । କ୍ଷପଣକ; ବୌଦ୍ଧ ସନ୍ନ୍ୟାସୀ—
2. Buddhist mendicant.
୩ । ଯାଯାବର ସ୍ତୁତିପାଠକ—
3. A wandering bard, herald; minstrel
୪ । କପଟୀ ବ୍ୟକ୍ତି—4 Hypocrite (Apte).
୫ । ଶିବ—5. Śiba (Apte)
୬ । କୌପୀନ ଓ କଷାୟାମ୍ବରଧାରୀ ଦିଗମ୍ବର ଜୈନ ସନ୍ନ୍ୟାସୀ ( ହି. ଶବ୍ଦସାଗର )—6. A class of Jaina anchorites wearing Kaupina and red-dyed cloth.

[ ଦ୍ର—ଏମାନେ ୫ ପ୍ରକାର; ଦ୍ୱିକଚ୍ଛ, କଚ୍ଛଶେଷ, ମୁକ୍ତକଚ୍ଛ, ଏକବାସା ଓ ଅବାସା । ]

୭ । ଯେଉଁ ବ୍ରାହ୍ମଣର ଶାସ୍ତ୍ର ଜ୍ଞାନ ନାହିଁ ଓ ଯାହା କୁଳରେ କେହି ବେଦ ପଢ଼ି ନାହାନ୍ତି ( ହି ଶବ୍ଦସାଗର )—
7. A Brāhmaṇa who is not versed in the scriptures and none of whose family has read the Bedas.

[ ଦ୍ର—ଏପରି ବ୍ୟକ୍ତିର ଅନ୍ନ ଗ୍ରହଣ ନିଷିଦ୍ଧ । ]

୮ । ଯେଉଁ ବ୍ରାହ୍ମଣ ଗୃହସ୍ଥାଶ୍ରମ ପରେ ବାନପ୍ରସ୍ଥ ଅବଲମ୍ବନ ନ କରି ସନ୍ନ୍ୟାସ ଗ୍ରହଣ କରିଅଛନ୍ତି (ହି. ଶବ୍ଦସାଗର)—
8 A Brāhmaṇa who has taken to the 5th stage after leaving the 3rd stage ( of the householder.)

[ ଦ୍ର—ଶାସ୍ତ୍ର ଅନୁସାରେ ଏମାନେ ପାତକୀ । ]

ଗ୍ରା. ବି ( ସଂ. ଲଗ୍ନ )—ଲଗ୍ନ ( ଦେଖ )
Lagna ( See )

ନଗ୍ନକ—ସଂ. ବି ଓ ବିଣ. ପୁଂ ( ନଗ୍ନ+ସ୍ୱାର୍ଥରେ. କ )—
Nagnaka ନଗ୍ନ ( ଦେଖ )—Nagna ( See )
(ନଗ୍ନିକା—ସ୍ତ୍ରୀ)

ନଗ୍ନ କ୍ଷପଣକ—ସଂ. ବି. ( କର୍ମଧା; ନଗ୍ନ+କ୍ଷପଣକ )—ଲଙ୍ଗୁଳୀ ବୌଦ୍ଧ ଯତି ବା ଜୈନ ସନ୍ନ୍ୟାସୀ—
Nagna kshapaṇaka
A nude Buddhist or Jaina mendicant.

ନଗ୍ନତା—ସଂ. ବି. ( ନଗ୍ନ+ଭାବ. ତା )—ଦିଗମ୍ବରତ୍ୱ, ବସ୍ତ୍ରହୀନତା—
Nagnatā Nudity; nakedness.
(ନଗ୍ନତ୍ୱ—ଅନ୍ୟରୂପ)

ନଗ୍ନଜିତ୍—ସଂ. ବି. (ନାମ)—ଶତପଥ ବ୍ରାହ୍ମଣରେ ଉଲ୍ଲିଖିତ ଗାନ୍ଧାର ଦେଶର ପ୍ରାଚୀନ ରାଜା—1 Name of an ancient King of Gāndhāra ( modern Kandahar ).
Nagnājit
୨ । କୋଶଳର ଏକ ପ୍ରାଚୀନ ରାଜା—
2. Name of an ancient King of Kosala

[ ଦ୍ର—ଏହାଙ୍କ କନ୍ୟା ସତ୍ୟା ବା ନାଗ୍ନଜିତୀଙ୍କ ସଙ୍ଗେ ଶ୍ରୀକୃଷ୍ଣ ବିବାହ କରିଥିଲେ । ହି. ଶବ୍ଦସାଗର । ]

ନଗ୍ନାଟ—ସଂ. ବିଣ. ( ନଗ୍ନ+ଅଟ୍ ଧାତୁ=ଗମନ କରିବା+କର୍ତ୍ତୃ. ଅ )—
Nagnāta ୧ । ଦିଗମ୍ବର; ବିବସ୍ତ୍ର—1. Naked; nude.
(ନଗ୍ନାଟକ—ଅନ୍ୟରୂପ) ୨ । ଜୈନ ବା ବୌଦ୍ଧ ଯତି—
2 A Jaina or Buddhist mendicant.

ନଗ୍ନିକ(କା)—ଗ୍ରା. ବିଣ. ( ସଂ. ଲଗ୍ନିକ )—
Nagnika(kā) ନିକଟ ସମ୍ପର୍କରେ ସମ୍ପର୍କିତ ( ବ୍ୟକ୍ତି )—
Closely related ( person ).

ନଗ୍ନିକା—ସଂ. ବି. ସ୍ତ୍ରୀ. ( ନଗ୍ନକ+ସ୍ତ୍ରୀ. ଆ )—
Nagnikā ୧ । ନିର୍ଲଜ୍ଜା ବିବସ୍ତ୍ରା ସ୍ତ୍ରୀ; ଲଙ୍ଗୁଳୀ ସ୍ତ୍ରୀ—
1. A wanton woman; a shameless and nude woman.
୨ । ଗୌରୀ, ଅପ୍ରାପ୍ତରଜସ୍କା ସ୍ତ୍ରୀ—2. A girl before she attains puberty; a girl who has not yet had her first menses.
୩ । ଶିଶୁ କନ୍ୟା—3 An infant girl.

ସଂ. ବିଣ—୧ । ବିବସ୍ତ୍ରା; ଲଙ୍ଗୁଳୀ ( ସ୍ତ୍ରୀ )—
1. Nude or naked ( female ).
୨ । କୁଚହୀନା ଯୁବତୀ—2 Breastless; (a young lady ) having no prominent breasts.

ନଗ୍ନୀକରଣ—ସଂ. ବି. [ ନଗ୍ନ+ଅଭୂତ ତଦ୍ଭାବେ ଚ୍ୱି (ଈ)+କରଣ ]—
Nagnīkaraṇa ବିବସ୍ତ୍ରୀକରଣ; ବିବସ୍ତ୍ର କରିବା; ଲଙ୍ଗଳା କରିବା—
Denuding; stripping one of clothes.

ନଗ୍ନୀକୃତ—ସଂ. ବିଣ. ପୁଂ. [ନଗ୍ନ+ଅଭୂତ ତଦ୍ଭାବେ ଚ୍ୱି (ଈ+କୃତ]—
Nagnīkruta ବିବସ୍ତ୍ରୀକୃତ; ଯେଉଁ ବସ୍ତ୍ରପରିହିତ ବ୍ୟକ୍ତିକୁ ନଗ୍ନ
(ନଗ୍ନୀକୃତା—ସ୍ତ୍ରୀ) କରି ଯାଇଅଛି—Made naked; stripped of one's clothes.

ନଗ୍ର—ଗ୍ରା. (ପଦ୍ୟ) ବି. ( ସଂ. ନଗର )—ନଗର—
Nagra Town; city.
ଯଥା ଅମୃତ ଅଧାର ସେ ନଗ୍ରରେ ବସ୍ତିତ । ଗୀତକୃଷ୍ଣ, ଜଗମୋହନ ।

ନଙ୍କା—ଗ୍ରା. ବି. ( ସ. ଲଙ୍କା; 'ଲ୍' ର 'ନ୍' ଉଚ୍ଚାରଣ )—
Naṅkā ୧ । ଲଙ୍କା ( ଦେଖ )—1. Laṅkā ( See )
୨ । ଲଙ୍କାମରିଚ—2. Red pepper.

**ନଙ୍କା ଅମ୍ବ**—ଗ୍ରା. ବି—ଲଙ୍କା ଅମ୍ବ ( ଦେଖ )
Nankā amba — Lankā amba ( See )

**ନଙ୍କା ମରିଚ**—ଗ୍ରା. ବି—ଲଙ୍କା ମରିଚ ( ଦେଖ )
Nankā maricha — Lankā maricha ( See )
(ନଙ୍କ ମାରିଚ, ନଙ୍କା ମାରିଚ—ଅନ୍ୟରୂପ)

**ନଙ୍ଗ**—ସଂ. ବି. ( ନଂ=ବନ୍ଧନକୁ+ଗମ୍ ଧାତୁ=ଗମନ କରିବା+ କର୍ତ୍ତୃ. ଅ )—ଉପପତ୍ତି, ଜାର—
Nanga
A secret lover; paramour.
ଗ୍ରା. (ପଦ୍ୟ) ବି. ( ସଂ. ଅନଙ୍ଗ ) ଅନଙ୍ଗ; କାମଦେବ—
(ନଂଗ—ଅନ୍ୟରୂପ) God Cupid.
ଜଳେ ଉମ୍ଭା ବ ଜଘନ ଯୁଗ, ନିତମ୍ବ ଉଚ୍ଚ ସିଂହାସନ ନଙ୍ଗ ।
ପ୍ରାଚୀ ରହସ୍ୟମଞ୍ଜରୀ ।

**ନଙ୍ଗପଙ୍ଗ**—ଦେ. ଅ—୧ । ଲଙ୍ଗପଙ୍ଗ; ଲୁଙ୍ଗୁପୁଙ୍ଗୁ; ବିନା କାର୍ଯ୍ୟରେ ଏଣେତେଣେ ବୁଲୁଥିବା; ଉଦ୍ଦେଶ୍ୟବିହୀନ ହୋଇ ଯିବା ଆସିବା କରୁଥିବା—
Nangapanga
ନଙ୍ଗର ପଙ୍ଗର, ନୁଙ୍ଗୁରୁପୁଙ୍ଗୁରୁ ନୁଙ୍ଗୁପୁଙ୍ଗୁ; ନୁଙ୍ଗୁରୁପୁଙ୍ଗୁରୁ } ଅନ୍ୟରୂପ
1. Walking up and down aimlessly; loitering about.
୨ । ଲୁଚିକରି ଭାବରେ ବିଚରଣ କରିବା—2. Walking up and down a place stealthily.

**ନଙ୍ଗର (ଇତ୍ୟାଦି)**—ବୈଦେ. ବି—ଲଙ୍ଗର ଇତ୍ୟାଦି ( ଦେଖ )
Nangara (etc) — Langara etc. ( See )
नंगर लंगर

**ନଙ୍ଗଲ୍**—ପ୍ରାଦେ. (ସମ୍ବଲପୁର) ବି—ଲଙ୍ଗଳ ( ଦେଖ )
Nangal — Langala ( See )

**ନଙ୍ଗଲ ଜୁଡ଼ା**—ପ୍ରାଦେ. ( ସମ୍ବଲପୁର ) ବି—ତାରାପୁଞ୍ଜବିଶେଷ; ଇଲ୍ୱଲା ନକ୍ଷତ୍ର ( କାଳପୁରୁଷର କଟିବନ୍ଧନ )—
Nangal jurdā
The belt of Orion ( a constellation ).
[ ଦ୍ର—ସମ୍ବଲପୁରର କୃଷକମାନେ ଏ ନକ୍ଷତ୍ରର ଉଦୟ ନ ହେଲେ ( ବୈଶାଖ ମାସ ନ ହେଲେ ) ଲଙ୍ଗଳ ଯୋଚନ୍ତି ନାହିଁ ଅର୍ଥାତ୍ ଧାନବୁଣାବୁଣି କାମ କରନ୍ତି ନାହିଁ । ଏଣୁ ଏ ନକ୍ଷତ୍ରପୁଞ୍ଜକୁ 'ନଙ୍ଗଲଜୁଡ଼ା' ବୋଲାଯାଏ । ]

**ନଙ୍ଗଲ (ଇତ୍ୟାଦି)**—ଗ୍ରା. ବି—ଲଙ୍ଗଳ ଇତ୍ୟାଦି ( ଦେଖ )
Nangala (etc) — Langala etc. ( See )
ସକାଳେ ଉଠି ନଙ୍ଗଳେ ଯାଅନ୍ତି, ଚୋଡ଼ାଣି ହେମ କାକର—ଚଗ ।

**ନଙ୍ଗଲା**—ଦେ. ବିଣ. ପୁଂ. (ସଂ. ନଗ୍ନ)—୧ । ଲଙ୍ଗଳା; ବିବସ୍ତ୍ର;ଉଲଙ୍ଗ—
Nangalā — 1. Naked; nude; bare.
নেঙ্গটা; নেংটা; ন্যাংটা — ବସ୍ତ୍ର ଦେବା ଲୋକ ଯେ ବସ୍ତ୍ର ଚିନ୍ତି ଯାନ୍ତି
नङ्गा — ନ ଦେବାର ଲୋକେ ନଙ୍ଗଳା ହୋଇଥାନ୍ତି ।
(ନଙ୍ଗୁଳୀ—ସ୍ତ୍ରୀ) (ନଂଗଲା—ଅନ୍ୟରୂପ) — କୃଷ୍ଣସିଂହ. ମହାଭାରତ. ବନ ।
୨ । ଅଳଙ୍କାର ଶୂନ୍ୟ; ଆଭରଣ ହୀନ—2. Having one's ornaments put off or removed.
୩ । (ଲକ୍ଷଣାର୍ଥ) ସଂସାର ବନ୍ଧନ ଶୂନ୍ୟ; ଗୃହବନ୍ଧନହୀନ—3. (figurative) Having no worldly ties.
୪ । ନିର୍ଭୀକ—4. Fearless.

**ନଙ୍ଗଲା ମୁକୁଳା**—ଦେ. ବିଣ(ସଂ. ନଗ୍ନ+ମୁକ୍ତ)—ଲଙ୍ଗଳା ମୁକୁଳା (ଦେଖ)
Nangalā mukulā — Langalā mukulā (See)

**ନଙ୍ଗା(ଘା)**—ଦେ. ବିଣ—୧ । (ହିନ୍ଦୀରୁ ଅନୁକୃତ; ମୂଳ. ସଂ. ନଗ୍ନ; ପ୍ରା. ଣଙ୍ଗଲ)—ଲଂଘା, ଉନ୍ମୁକ୍ତ—
Nangā(nghā)
ଖୋଲା — 1 Open; drawn (sword); unsheathed.
नंगा (ଯଥା—ନଙ୍ଘା ତରବାରି ।)
ନଂଗା(ଘା)—ଅନ୍ୟରୂପ] ୨ । (ସଂ. ଲମ୍ବ) ଲମ୍ବା—2. Long
(ଯଥା—ମାଡ଼ ମାରି ତଳେ ନଙ୍ଘା କରି ଶୁଆଇ ଦେବି ।)
୩ । (ସଂ. ଲଂଘନ) ଉପବାସ କରିଥିବା—
3 Fasting, famished

**ନଙ୍ଗୁ(ଙ୍ଗୋ)ଟି (ଇତ୍ୟାଦି)**—ଦେ ବି—ଲଙ୍ଗୋଟି ଇତ୍ୟାଦି (ଦେଖ)
Nangu(ngo)ti (etc) — Langotā etc (See)

**ନଙ୍ଗୁଳି**—ଦେ. ବିଣ. ପୁଂ ଓ ସ୍ତ୍ରୀ (ସଂ. ନଗ୍ନ)—ନଙ୍ଗଲା ( ଦେଖ )
Nanguli (ନଂଗୁଳି—ଅନ୍ୟରୂପ) Nangalā ( See )

**ନଙ୍ଗୁଳି ବାବାଜୀ**—ଦେ. ବି. (ସଂ. ନଗ୍ନ)—ନାଗା; ନଗ୍ନକ୍ଷପଣକ—
Nanguli bābāji — Naked mendicant.
নাগা नङ्गा बाबाजी

**ନଙ୍ଘା**—ଦେ. ବି (ସଂ ନଗ୍ନ)—୧ । ଛାଳରୁ ବର୍ଷାପାଣି ଗଡ଼ି ଭୂମିରେ ନ ପଡ଼ି ବହିଯିବା ନିମନ୍ତେ ଓଳର ଛାଳର ଠିକ୍ ତଳେ ଲମ୍ବ ଭାବରେ ଦିଆ ଯାଇଥିବା ନଡ଼ିଆ ବା ତାଳଗଛର ଗଣ୍ଡିର ଫଳା ଫାଳ; ଛୋଲା—1. Half of the split trunk of a palm or cocoanut tree placed length wise under the eaves of a thatch for preventing the eaves-droppings from falling on the ground.
Nanghā
करीन
(ନଂଘା—ଅନ୍ୟରୂପ)
মঠঠ ୨ । ସମକୋଣଭାବରେ ମିଳିତ ହୋଇଥିବା ଦୁଇଟି ଛାଳର ନ୍ୟୁବ୍ଜପୃଷ୍ଠ ସନ୍ଧିସ୍ଥଳ—2. The concave declivity formed by two thatches when they meet each other at a right angle.
[ ଦ୍ର—ଯେବେ ସମକୋଣଭାବରେ ଅବସ୍ଥିତ ଦୁଇଟି ଘରର ଛାଳ ଏପରି ମିଳିତ ହୋଇଥାଏ ଯେ ଉତ୍ତର ବା ଦକ୍ଷିଣଆଡ଼ୁ ଆସିଥିବା ଛାଳ ସଙ୍ଗେ ପୂର୍ବ ବା ପଶ୍ଚିମଆଡ଼ୁ ଆସିଥିବା ଛାଳ ଗୋଟିଏ ସମକୋଣୀ ଗହ୍ୱରଯୁକ୍ତ (concave) ସନ୍ଧି ସୃଷ୍ଟି କରେ ତେବେ ସେହି ସନ୍ଧିକୁ ଲଙ୍ଘା ବା ନଙ୍ଘା ବୋଲାଯାଏ; ଉଭୟ ଛାଳର ଉଭୟ ଅଂଶର ବର୍ଷଣା ପାଣି ସେହି ନଙ୍ଘାବାଟେ ଗଡ଼ି ଦୁଇ ଓଳର କଣବାଟେ ତଳକୁ ପଡ଼େ । ]
ଦେ. ବିଣ—ନଙ୍ଗା (ଦେଖ)—Nangā (See)

**ନଙ୍ଘା(ଙ୍ଘେ)ଇବା**—ଗ୍ରା କ୍ରି. (ସଂ. ଲଂଘ ଧାତୁ ଣିଚ)—ଲଙ୍ଘାଇବା (ଦେଖ)—
Nanghā(nghe)ibā — Langhāibā (See)
লংঘান नघाना

**ନଙ୍ଘା ଘୋଡ଼ା ପାଇଛ**—ଦେ. ବି—୧ । ଉନ୍ମୁକ୍ତ ଖଡ଼୍ଗଧାରି ଅଶ୍ୱାରୋହୀ ସାର—1. A rider with a drawn sword.
Nanghā ghordā pāichhā
उठजल आदमी

୨ । ଏକାକୀ ବ୍ୟକ୍ତି (ଯାହାର କେହି ଗଳଗ୍ରହ ହେବାକୁ ନାହିଁ ଓ ଯେ ସର୍ବଦା ଯେକୌଣସି କାର୍ଯ୍ୟ କରିବାକୁ ସ୍ୱାଧୀନ ଓ ପ୍ରସ୍ତୁତ); ଘର ଦଉଡ଼ ନଥିବା ବ୍ୟକ୍ତି — 2 A person who has no encumbrances; a person who is his own master

**ନଙ୍ଘା ମାରିବା**—ଦେ. କ୍ରି —ସମକୋଣଭାବରେ ମିଳିତ ଦୁଇଟି ଛଳର ନ୍ୟୁବ୍ଜ ପୃଷ୍ଠ ସନ୍ଧି ସ୍ଥଳକୁ କାରୁକ୍ ଓ ନିବିଡ଼ ରୂପେ ଛୁଆଣି କରିବା—To thatch densely and imperviously the concave meeting place of two thatches which meet each other by forming a right angle.
Nangha māribā

**ନଙ୍ଘିବା**—ଗ୍ରା କ୍ରି.— ଲଙ୍ଘିବା (ଦେଖ)
Nanghibā Langhibā (See)
লংঘা **नाघना, नघना** (ନଂଘିବା—ଅନ୍ୟରୂପ)

**ନଚକା**—ଦେ. ବଣ. (ସଂ. ନୃତ୍ୟ; କିମ୍ବା ନଚନଚ ଧ୍ୱନ୍ୟନୁକରଣ)—
Nachakā ୧ । ଲହକା, ଲମ୍ବ ଓ ଅତି ପାତଳ ଥିବାରୁ ଯାହା ନଚନଚ, লগবগে ବାରଂବାର କମ୍ପିତ ହୁଏ—
**लचलच, लचकोला** 1. Long and very thin
হেঁচকা ୨ । ବାରଂବାର କମ୍ପିତ—
**लचक** 2. Vibrating repeatedly.
୩ । ସହଜନମ୍ୟ—3 Flexible.

ଦେ. ବି.—୧ । ବାରଂବାର ଉପରକୁ ତଳକୁ ହଲାହଲି; ଧକାଡକା—1 Jolting.

୨ । ଲମ୍ବ ଓ ଛୋଟ ପତଳା ବସ୍ତୁର ବାରଂବାର କମ୍ପନ— 2. Repeated jerkings of a long and thin thing.

**ନଚକା(କେ)ଇବା**—ଦେ. କ୍ରି. (ସଂ ନୃତ୍ ଧାତୁ)—୧ । ଲହଲହ କରିବା -
Nachakā(ke)ibā 1 To flourish or wave a long
নচকান, হেঁচকান and very thin or slender thing
**लचकाना; लचाना** ୨ । ଝୁଙ୍କେଇ ଝୁଙ୍କେଇ ବଳପୂର୍ବକ ଟାଣିବା—
2. To jerk; to pull with jerks.

**ନଚକିବା**—ଦେ. କ୍ରି. (ସଂ. ନୃତ୍ୟ)—୧ । ଲକ୍ ଲକ୍ ହେବା; ଲହକିବା;
Nachakibā (ପତଳା ଲମ୍ବା ବସ୍ତୁ) ନମନୀୟ ହେବା—1. To become malleable or flexible.
নচকা; হেঁচকা
**लचकना** ୨ । ବାରଂବାର ଦୋହଲିବା—2. To jolt; to jerk.

**ନଚନଚ**—ଦେ. ଅ. (ସଂ. ନୃତ୍ ଧାତୁ)—ନକ ନକ; ଲହକା; ସହଜନମ୍ୟ; ନମନୀୟ—Flexible.
Nacha nacha
নচনচ **लचलच**

**ନଚା**—ଦେ. ବି. ( ସଂ. ନର୍ତ୍ତନ; ନୃତ୍ୟ ପ୍ରା. ଣଚ୍ଚ )—୧ । ନଚାଇବା—
Nachā 1. Causing to dance.
নাচ ୨ । ନାଚିବା; ନର୍ତ୍ତନ—
**नाच** 2. Dancing.

**ନଚା(ଚେ)ଇବା**—ଦେ. କ୍ରି. (ସଂ. ନୃତ୍ ଧାତୁ ଣିଚ୍; ନାଚିବାର ଣିଜନ୍ତ ଆକାର)—୧ । ନୃତ୍ୟ କରାଇବା—
Nachā(che)ibā
নাচান **नचाना** 1. To cause to dance.

୨ । ଇତସ୍ତତଃ ବା ଉପରକୁ ତଳକୁ ସଞ୍ଚାଳିତ କରିବା, କମ୍ପାଇବା—1. To move to and fro; to move up and down.

ପଶୁଇ ଦେବାକୁ ଅଭିଳାଷ ଫଳ ନଚାଇ ଭୁରୁକମାଣ ଗୋ—କବିସୂର୍ଯ୍ୟ ବଳଭ

୩ । ସ୍ପନ୍ଦିତ କରାଇବା, ଦୋହଲାଇବା—3. To dangle; to cause to oscillate

୪ । ଗୀତ ବୋଲି ବା ବାଦ୍ୟସଙ୍ଗୀତ ବଜାଇ ନର୍ତ୍ତକକୁ ନାଚରେ ସାହାଯ୍ୟ କରିବା—4. To help a dancer by the accompaniment of music.

୫ । ନୃତ୍ୟରେ ପ୍ରବୃତ୍ତ କରାଇବା—5 To engage or induce a person to dance

୬ । (ଲକ୍ଷଣାର୍ଥ) କୌଣସି ବ୍ୟକ୍ତିକୁ ବାରଂବାର ଉଠିବା ବସିବା କିମ୍ବା ଏକସ୍ଥାନରୁ ଅନ୍ୟସ୍ଥାନକୁ ଯିବା ଆସିବା ଆଦି କର୍ମରେ ଲଗାଇ ହଇରାଣ କରିବା—6. (figurative) To harass a person by obliging or making him to constantly move about.

୭ । (ଲକ୍ଷଣାର୍ଥ)—ଅସ୍ଥିର କରିବା—7. (figurative) To make a person restless.

**ନଚାକୁଦା**—ଦେ. ବି ( ସଂ. ନୃତ୍ୟ+ସ୍କୁନ୍ଦନ )—ଲମ୍ଫ ଝମ୍ପ; ଉଆଁ ଡେଇଁ—Jumping and frisking about; capering.
Nachākudā
নাচকুঁদা **नाचकूद**

**ନଚାନଚି**—ଦେ. ବି.—୧ । ଲମ୍ଫଝମ୍ପ, ଲମ୍ଫନ—
Nachānachi 1 Frisking about.
নাচানাচি ୨ । ବହୁ ଲୋକଙ୍କର ନୃତ୍ୟ—
2 Dancing of many persons

**ନଚିକେତାଃ**—ସଂ. ବି. (ନଚିକେତସ୍ ଶବ୍ଦ ୧ମା .୧ବ)—୧ । ଅଗ୍ନି—
Nachiketāh 1. Fire.
(ନଚିକେତା—ଦେ. ରୂପ) ୨ । ବେଦୋକ୍ତ ଋଷିବିଶେଷ —
2. Name of a sage

[ ଦ୍ର—ଏ ବାଜଶ୍ରବା ଋଷିଙ୍କ ପୁତ୍ର ଥିଲେ । ବାଜଶ୍ରବା ଋଷି ଥରେ ଯଜ୍ଞର ଦକ୍ଷିଣାପାଇଁ ସର୍ବସ୍ୱ ଦାନ କଲେ । ଏହି ସମୟରେ ନଚିକେତାଃ ପିତାଙ୍କୁ ଏକାଧିକ ଥର ପଚାରିଲେ ମୋତେ କାହାକୁ ଦାନ କଲ ? ପିତା ବିରକ୍ତ ହୋଇ କହିଲେ 'ତୋତେ ମୃତ୍ୟୁକୁ ଦାନ କଲି' । ଏହା ଶୁଣି ନଚିକେତାଃ ମୃତ୍ୟୁଙ୍କ ଠାକୁ ଗଲେ ଓ ସେଠାରେ ୩ ଦିନ ଅନାହାର ରହି ମୃତ୍ୟୁଙ୍କଠାରୁ ବ୍ରହ୍ମଜ୍ଞାନ ପ୍ରାପ୍ତ ହେଲେ—ଛା. ଶ. । ]

**ନଚିର**—ସଂ. ଅ.—(ନ+ଚିର=କାଳମ୍) —ଶୀଘ୍ର; ଅବିଳମ୍ବେ—
Nachira At once; instantly.

**ନଚେତ୍**—ସଂ. ଅ. (ନ+ଚେତ୍)—ନ ହେଲେ; ନଚୁବା—
Nachet Else; otherwise; if not.

**ନଛମନ** (ଇତ୍ୟାଦି) ଗ୍ରା. ବି.—ଲଛମନ (ଇତ୍ୟାଦି) (ଦେଖ)
Nachhamana (etc) Lachhamana etc (See)
[ନଛମନଆ(ଆଁ)—ଅନାଦରାର୍ଥକ ରୂପ]

**ନଛା**—ଗ୍ରା. ବି —ଲଛା (ଦେଖ)
Nachhā Lachhā (See)

ନଛୁ(ଛୁ)—ଗ୍ରା. ବି. (ଆଦରାର୍ଥକ)—ଲକ୍ଷ୍ମୀଧର, ଲକ୍ଷ୍ମଣ, ନରସିଂହ, ଲକ୍ଷ୍ମୀକାନ୍ତ ଆଦି ଲୋକଙ୍କୁ ଡାକିବା ନାମ—
Nachhi(chhu) A name for calling persons named Lakshmīdhara, Lakshmaṇa, Narasiṁha etc.
ନଛୁଆ, ନଚୁଆ } ଅନାଦରାର୍ଥକ

ନଛୁବା—ଗ୍ରା କ୍ରି—ଲଛୁବା (ଦେଖ)
Nachhibā Lachhibā (See)

ନଚ୍ଛୋଡ଼ବନ୍ଦା—ଦେ. ବିଣ—ନାଛୋଡ଼ବନ୍ଦା (ଦେଖ)
Nachhordabandā Nāchhordabandā (See)

ନଜ୍ (ଧାତୁ)—ସଂ—ଲଜ୍ଜିତ ହେବା—
Naj (root) To be ashamed

ନଜଦିକ୍(ଗ୍)—ବୈଦେ. ବି. (ଆ. ନଜ୍‌ଦିକ୍=ନିକଟ)—ସାମିପ୍ୟ; ନୈକଟ୍ୟ—Nearness; propinquity.
Najadik(g)
ନଜଦୀକ୍
ନଜ଼ଦୀକ
ବିଣ—ନିକଟବର୍ତ୍ତୀ; ନିକଟସ୍ଥ—Near; adjacent; proximate.
କ୍ରି. ବି—ନିକଟରେ—Near; at hand.

ନଜର—ବୈଦେ. ବି. (ଆ. ନଜ଼ର୍)—୧ । ଦୃଷ୍ଟି; ଚାହାଣି—
Najara 1. View.
ନଜର
ନଜ଼ର

ଜଳଧର ପଙ୍କ କି ଅବା କଳଙ୍କ ଶଶେ ତିରି କରି ଫଳେ ନାହିଁକି ନଜର ।
କବିସୂର୍ଯ୍ୟ. ସଙ୍ଗୀତ ।

୨ । ତୀକ୍ଷ୍ଣ ଦୃଷ୍ଟି—2. A sharp look-out
୩ । ଦର୍ଶନ—3. Sight; vision.
୪ । ଖାତିର—4. Care; regard.
୫ । ଖିଆଲ; ମନୋଯୋଗ=5 Attention.
୬ । ଧ୍ୟାନ; ଜ୍ଞାନ—6. Notice.
୭ । ଅନ୍ୟ ପାଇଁ ଅଭିପ୍ରେତ ଖାଦ୍ୟ ବା ସୁକୁମାର ଶିଶୁଙ୍କ ଉପରେ ଡାହାଣୀ ଓ ଡାହାଣୀଙ୍କର ପଡ଼ିବା ପାପଦୃଷ୍ଟି ବା ଲୋଲୁପ ଦୃଷ୍ଟି, ଯହିଁର ଫଳରେ ଖାଦ୍ୟଦ୍ରବ୍ୟ ଦୂଷିତ ଓ ଅଖାଦ୍ୟ ହୋଇଯାଏ ଓ ଶିଶୁଙ୍କର ରୋଗ ହୁଏ (ଦୃଷ୍ଟି-ତଳେ ନୋଟ ଦେଖ)—7. Casting of evil, sinful or greedy eye on food intended by others and on infants by wizards and witches (see notes under Drushṭi).
୮ । ଦର୍ଶନୀ; ରାଜାଆଦିଙ୍କୁ ଦର୍ଶନ କରିବା ବ୍ୟକ୍ତି ପ୍ରଥମେ ସମ୍ମାନ ସ୍ୱରୂପ ଯେଉଁ ମୁଦ୍ରା ବା ଧନ ଭେଟି ଦିଅନ୍ତି; ନଜରାନା; ଉପଢୌକନ; ଭେଟି—
8. A present; nuzzer.

ସମ୍ମୁଖରେ ମେଦିନୀରୁ ମଣ୍ଡନ ଶ୍ରେଣୀ ଭୂଷଣ ଦେଲୁ ପୁଣି ମୃଗଦୃଶାରେ ।
କବିସୂର୍ଯ୍ୟ. ସଙ୍ଗୀତ ।

[ଦ୍ର— ସମ୍ମାନ ପ୍ରଦର୍ଶନ ପାଇଁ ବା ଅଧୀନତା ସ୍ୱୀକାରର ନିଦର୍ଶନ ସ୍ୱରୂପ ଦର୍ଶକ ତାହାଙ୍କଠାରୁ ଉଚ୍ଚତର ପଦଧାରୀ ବ୍ୟକ୍ତିଙ୍କୁ ଦର୍ଶନ କରିବା ବେଳେ ଟଙ୍କା ବା ମୋହର ତାଙ୍କ ଆଗରେ ଥୁଅନ୍ତି । ଏକବେଳେ ଉଚ୍ଚପଦାଧିକାରୀଙ୍କୁ ତାହାକୁ କେବଳ ସ୍ପର୍ଶ କରି ଭେଟିବା ବ୍ୟକ୍ତିଙ୍କୁ ଫେରାଇ ଦିଅନ୍ତି, କେତେବେଳେ ବା ତାହା ଗ୍ରହଣ ବା ଆତ୍ମସାତ୍ କରନ୍ତି ।
ଏହି ନଗଦ ଭେଟ ଅର୍ଥରେ ଏହି ଶବ୍ଦ ଇଂରାଜୀ ଭାଷାରେ ମଧ୍ୟ ଚଳିଲାଣି । ]

୯ । ସମ୍ରାଟ ବା ସମ୍ରାଟଙ୍କ ପ୍ରତିନିଧିଙ୍କୁ ଅଧୀନ ବା କରଦ ରାଜାମାନେ ଯେଉଁ ନିର୍ଦ୍ଦିଷ୍ଟ ଧନ ବା ସ୍ୱର୍ଣ୍ଣମୁଦ୍ରା ଦରବାର ବା ଭେଟ ଉପଲକ୍ଷେ ଭେଟି ଦିଅନ୍ତି—9 A fixed sum of money or gold coins which is presented to the Emperor or his representative by a feudatory or tributary Chief on the occasion of a Durbar or formal interview.

ନଜର କରିବା—ଦେ କ୍ରି—୧ । ଦେଖିବା—
Najara karibā 1. To see; to look at.
ନଜରକରବା ୨ । ଦୃଷ୍ଟି ରଖିବା—2. To keep an eye on.
ନଜ଼ରକରନା ୩ । ଜଗିବା—3. To watch; to guard.
୪ । ତଦ୍ଧ ନେବା—4 To supervise.
୫ । ଖାତିର କରିବା—5 To care for.

ଅଛନ୍ତ ଦୃଷ୍ଟି ନାହିଁ ଏତ ବଳଆନ
ନାହିଁକି ଏ କାହାକୁ କରିବେ ନଜର । କୃଷ୍ଣସିଂହ. ମହାଭାରତ ଶାନ୍ତି ।

ନଜରକୁ ଆଣିବା—ଦେ. କ୍ରି—୧ । ଖାତିର କରିବା—
Najaraku āṇibā 1. To care for.
(ନଜରକୁ ନେବା—ଅନ୍ୟରୂପ)
ନଜରେଆନା
ନଜ଼ରମେଁଲାନା

ତାହାକୁ କି କଳାବତୀ ନଜରକୁ ଆଣେ ?
ବନ୍ଧା ହୋଇ ନାହିଁ ଥରେ ଯେ କୁସୁମବାଣେ ।
କବିସୂର୍ଯ୍ୟ. ସଙ୍ଗୀତ ।

୨ । ଗୁଣୀ ମଧ୍ୟରେ ଗଣନା କରିବା—
2. To count as a good man.
୩ । ଖିଆଲ କରିବା—3. To take cognisance of; to take notice of.

ନଜର ଖାନା—ବୈଦେ. ବି. (ଆ. ନଜର୍ ଓ ଖାନା)—ବଇଠକଖାନା—
Najara khānā Drawing room; parlour.
ନଜରଖାନା ନଜ଼ରଖାନା

ନଜର ଦେବା—ଦେ କ୍ରି—୧ । ନଜର କରିବା (ଦେଖ)
Najara debā 1. Najara karibā (See)
ନଜରଦେଓୟା ୨ । ବଡ଼ଲୋକଙ୍କୁ ଦର୍ଶନ କରିବା ବେଳେ ଭେଟି
ନଜ଼ରଦେନା ଦେବା—2. To pay nuzzerana or present on cash.

ନଜର ନଲ(ଳି)—ଦେ. ବି. (ଆ. ନଜର୍=ଦୃଷ୍ଟି+ସଂ. ନଳ)—
Najara naḷa(ḷi) ଦୂରବୀକ୍ଷଣ ଯନ୍ତ୍ର—
ନଜରନଲୀ ନଜ଼ରନଲୀ Eyeglass; telescope.

ନଜର ପକା(କେ)ଇବା—ଦେ. କ୍ରି—୧ । ନଜର କରିବା (ଦେଖ)
Najara pakā(ke)ibā 1 Najara karibā (See)
ନଜରଫେଲା ୨ । ପାପଦୃଷ୍ଟି ବା ଲୋଭ ଦୃଷ୍ଟି ପକାଇବା—
ନଜ଼ରଡାଲନା 2. To cast sinster look upon.
(ନଜର ପଡ଼ିବା—ରୂ)

**ନଜରବନ୍ଦ**—ବୈଦେ. ବିଣ (କଚରଥ) (ଅ ନଜର୍+ଫା. ବନ୍ଦ୍)—
Najaraband  ୧ । ପ୍ରହରୀ-ରକ୍ଷିତ—1. Guarded.
नजबबंद  ୨ । ଅଟକ ରଖାଯିବା; କାରାବଦ୍ଧ—
**नजरबंद**  2. Confined; imprisoned
୩ । କଡ଼ା ବା ସତର୍କ ଦୃଷ୍ଟିରେ ରଖାଯାଇଥିବା—
3. Kept under surveillance; watched.

**ନଜରବନ୍ଦୀ**—ବୈଦେ. ବି. (କଚରଥ) (ଅ ନଜର୍+ଫା. ବନ୍ଦୀ)—
Najarabandi  ୧ । ଅଟକ ରଖିବା; କଇଦ କରି ରଖିବା—
नजबबन्दी  1. Imprisonment; confinement.
**नजरबन्दी**

**ନଜର ବାଗ୍**—ବୈଦେ ବି. (ଅ. ନଜର୍+ଫା. ବାଗିଚ୍ଚ୍)—
Najara bāg  ବଡ଼ଲୋକଙ୍କ ଗୃହ ସଲଗ୍ନ ବିହାରୋଦ୍ୟାନ—
(ନଜରବଗିଚ୍ଚ—ଅନ୍ୟରୂପ) Pleasure-garden attached to
नजबबाग, नजरबागान  the house of rich men.
**नजरबगीचा, नजरबाग**

**ନଜରବାଜ୍**—ବୈଦେ. ବି (ଅ. ନଜର୍+ଫା. ବାଜ୍)—
Najarabāj  ୧ । ଭୁଭୁକା; ଐନ୍ଦ୍ରଜାଲିକ—
नजबबाज्  1. Juggler; magician.
**नजरबाज, नजरहाया**  ୨ । ପ୍ରତାରକ; ଠକ—
2. Swindler; knave.
୩ । ଯେଉଁ ଭାହାଣା ବା ଭାହାଣୀ ଖାଦ୍ୟ ବା ଶିଶୁମାନଙ୍କ ଉପରେ ପାପ ଦୃଷ୍ଟି ପକାଏ—3. A person (man or woman) who casts sinister look on food or children.
ବିଣ—୧ । ତୀକ୍ଷ୍ଣ ଦୃଷ୍ଟି ବିଶିଷ୍ଟ (ବ୍ୟକ୍ତି)—1. Having a sharp look-out; keen-eyed; keen-sighted.
୨ । ଯେ ଖାଦ୍ୟ ବା ଶିଶୁଙ୍କପ୍ରତି ପାପ ଦୃଷ୍ଟି ପକାଏ—
2. Habituated to casting sinister look on food or children.

**ନଜରବାଜି**—ବୈଦେ. ବି (ଅ. ନଜର୍+ଫା. ବାଜୀ)—୧ । ଭୁଭୁକ; ଭେଲକି—1. Jugglery, magic.
Najarabāji
नजबबाजी  ୨ । ପ୍ରଣୟିଯୁଗଳର ପରସ୍ପର ପ୍ରେମକଟାକ୍ଷପାତ—
**नजरबाजी**  2 Mutual love-glance.

**ନଜର ରଖିବା**—ଦେ. କ୍ରି—୧ । ନଜର କରିବା (ଦେଖ)
Najara rakhibā  1 Najara karibā (See)
नजब बाखा  ୨ । କୌଣସି ବ୍ୟକ୍ତି ବା ବିଷୟର ତତ୍ତ୍ୱ ନେବା—
**नजर रखना**  2 To take care of.
୩ । କୌଣସି ବ୍ୟକ୍ତିର ଗତିବିଧି ପ୍ରତି ସତର୍କ ଦୃଷ୍ଟି ରଖିବା—3. To keep a vigilant eye on the movemets of a person.
୪ । କୌଣସି ବ୍ୟକ୍ତି ପ୍ରତି କୃପାଦୃଷ୍ଟି ବା ଅନୁଗ୍ରହ ଦୃଷ୍ଟି ରଖିବା—4. To look upon a person with kindness or favour.

**ନଜରଣା(ନା)**—ବୈଦେ. ବି (ଅ. ନଜରନା)—୧ । ଭେଟି; ଉପଢୌକନ—1. Present.
Najarāṇā(nā)
नजबाना  ୨ । ସଲାମୀ; ଦର୍ଶନୀ; ରାଜା ଜମିଦାର ଆଦିଙ୍କୁ ପ୍ରଥମେ
**नजराना**  ଦର୍ଶନ କଲାବେଳେ ଅଧୀନ ବ୍ୟକ୍ତିର ଦେୟ ଭେଟି—
2. Cash present given to kings etc at the first interview; nuzzerana
ଆଗନ୍ତୁକ ଉପସ୍ଥିତ ହୋଇ ଆଗରେ ପାଞ୍ଚଟଙ୍କା ନଜରଣା।
ଦେଇ ... ସଲାମ କଲେ—ଫକୀର ମୋହନ  ଛମାଣ ଅଠଗୁଣ୍ଠ ।
[ଦ୍ର—ଏ ଶବ୍ଦ ଇଂରାଜୀ ଭାଷାରେ ମଧ୍ୟ ଚଳନ୍ତି—Nuzzerana]

**ନଜିକ୍(ଗ୍)**—ବୈଦେ. ବି ଓ ବିଣ (ଅ)—ନଜଦିକ୍ (ଦେଖ)
Najik(g)  Najadik (See)
नजदीक **नजीक**

**ନଜିର୍**—ବୈଦେ. ବି (କଚରଥ) (ଅ)—୧ । ନମୁନା—
Najir  1. Specimen.
नजीब  ୨ । ଦୃଷ୍ଟାନ୍ତ; ଉଦାହରଣ—2 Example.
**नजीर**  ୩ । ପ୍ରାମାଣିକ ବାକ୍ୟ—3 Authoritative words.
୪ । ନିଦର୍ଶନ; ପ୍ରମାଣ—4 Proof.
୫ । ଆଇନ୍—5. Law.
୬ । କୌଣସି ମକଦ୍ଦମାରେ ପ୍ରଦର୍ଶିତ ଦୃଷ୍ଟାନ୍ତ, ଯଦ୍ୱାରା ଦର୍ଶାଇବା ପକ୍ଷର ଯୁକ୍ତିର ସପକ୍ଷରେ ଏହିପରି ବିଷୟ ପୂର୍ବେ କୌଣସି ହାଇକୋର୍ଟ ବା ଉଚ୍ଚ ଅଦାଲତରେ ମୀମାଂସିତ ହୋଇଥିଲା—6. Ruling or case-law quoted by a party in support of his contention in a law court; authority in support of one's point.

**ନଞ୍**—ସଂ. ଅ—(ନୁହେଁ, ଏହି ଅର୍ଥବୋଧକ) ନାହିଁ; ନୁହେଁ; ନ—
Nañ  No; not.
[ ଦ୍ର—ସାଦୃଶ୍ୟ, ଅଭାବ, ଅନ୍ୟଥା, ଅଳ୍ପତ୍ୱ, ଅପ୍ରାଶସ୍ତ୍ୟ ଓ ବିରୋଧ ଅର୍ଥରେ ଏହା ବ୍ୟବହୃତ ହୁଏ । ଏହାର ତତ୍ତ 'ନ' । ଆଦ୍ୟରେ ସ୍ୱରବର୍ଣ୍ଣ ଥିବା ଶବ୍ଦ ସହିତ ସମାସରେ ଯୁକ୍ତ ହେଲେ ଏହି 'ନଞ୍' ବା 'ନ' ଠାରେ 'ଅନ୍' ହୁଏ ଯଥା, ଅନାହୁତ; ଏବଂ ବ୍ୟଞ୍ଜନ ବର୍ଣ୍ଣ ଥିଲେ 'ଅ' ହୁଏ ଯଥା, ଅସୁନ୍ଦର । ]

**ନଞ୍ ତତ୍ପୁରୁଷ**—ସଂ. ବି—(ବ୍ୟାକରଣ) ନିଷେଧାର୍ଥକ ନଞ୍ ଶବ୍ଦ ସଙ୍ଗେ
Nañ tat-purusha  ଅନ୍ୟ ଶବ୍ଦ ଯୁକ୍ତ ହୋଇ ଯେଉଁ ସମାସ ହୁଏ-
(grammar) A negative compound
(ଯଥା—ଅବ୍ରାହ୍ମଣ, ଅନିଚ୍ଛା, ଅଭୂତ । ଏହି ଭାଷାକୋଷରେ ଏଥିର ସାଂକେତିକ ନଞ୍ତତ୍ ।)

**ନଞର୍ଥ**—ସଂ. ବି. (ନଞ୍+ଅର୍ଥ)—'ନ' ବା 'ନାହିଁ' ଏହି ଅର୍ଥ—
Nañartha  Negative meaning.
ସଂ. ବିଣ—ନଞର୍ଥକ (ଦେଖ)
Nañarthaka (See)

**ନଞର୍ଥକ**—ସଂ. ବି. (ନଞ୍+ଅର୍ଥ+କ)—ନ, ନାହିଁ, ନୁହେଁ ଆଦି
Nañarthaka  ଅର୍ଥ ଯହିଁରୁ ପ୍ରତିପନ୍ନ ହୁଏ—
Having or conveying a negative meaning.

**ନଟ୍** (ଧାତୁ)—ସଂ—୧ । ନୃତ୍ୟ କରିବା—
Naṭ (root)  1. To dance.

୨ । ଦୀପ୍ତି ପାଇବା—2. To shine
୩ । ବଧ କରିବା—3. To kill.
୪ । ଅଭିନୟ କରିବା—4 To act
୫ । ଅଧଃପତିତ ହେବା—5. To drop down.

**ନଟ**—ସଂ. ବି ପୁଂ ( ନଟ୍ ଧାତୁ+କର୍ତ୍ତୃ. ଅ )—
Nata ୧ । ନର୍ତ୍ତକ; ନାଚୁଆ—1. Dancer.
(ନଟୀ—ସ୍ତ୍ରୀ) ୨ । ନାଟକର ଅଭିନେତା; ନାଟ୍ୟକଳାରେ ପ୍ରବୀଣ ବ୍ୟକ୍ତି—
2. A player in a dramatic performance; an actor.
୩ । ଅଶୋକ ବୃକ୍ଷ—3. Asoka tree
୪ । ( ନଶ୍ ଧାତୁ+ଅଟ ) ବର୍ଣ୍ଣସଙ୍କର ଜାତିବିଶେଷ—
4. A hybrid caste
[ ଦ୍ର—ପ୍ରାଚୀନ ଭାରତର ଏକାଧିକ ସଙ୍କର ଜାତି 'ନଟ' ନାମରେ ଅଭିହିତ ହେଉଥିଲେ । ଏମାନଙ୍କ ବ୍ୟବସାୟ ନୃତ୍ୟଗୀତାଦି ଥିଲା । (୧) ଶୌଣ୍ଡିକ ପିତା ଓ ଶୌଚକୀ ମାତାଠାରୁ ଉତ୍ପନ୍ନ ଜାତିକୁ (୨) ମନୁଙ୍କ ମତରେ ବ୍ରାତ୍ୟ କ୍ଷତ୍ରିୟଙ୍କଠାରୁ ଉତ୍ପନ୍ନ ଏକ କ୍ଷତ୍ରିୟ ଜାତିକୁ ଓ (୩) ମାଳାକାର ପିତା ଓ ଶୂଦ୍ରା ମାତାଠାରୁ ଉତ୍ପନ୍ନ ଜାତିକୁ ନଟ ବୋଲାଯାଉଥିଲା—ହି ଶବ୍ଦସାଗର । ]
୫ । ଲମ୍ପଟ ବ୍ୟକ୍ତି—
5. Adulterer; a man of loose character
୬ । ଭଣ୍ଡ—6. A jester.
୭ । ସଙ୍ଗୀତର ରାଗିଣୀବିଶେଷ—
7. Name of a musical tune or air.
[ ଦ୍ର—ନଟ ରାଗ ସମ୍ପୂର୍ଣ୍ଣ ଜାତିର ରାଗ; ଏଥିରେ ସବୁ ଶୁଦ୍ଧ ସ୍ୱର ଲାଗେ । କେହି କେହି ଏହାକୁ ମାଲକୋଶ ରାଗର, କେହି କେହି ଶ୍ରୀରାଗର ପୁତ୍ର ବୋଲି କହନ୍ତି । କେହି କେହି ଏହାକୁ ଦୀପକ ରାଗର ରାଗିଣୀ ବୋଲି କହନ୍ତି । ଏହାର ଗାନ ସମୟ ଦିନର ତୃତୀୟ ପ୍ରହର ଓ ସନ୍ଧ୍ୟା (ହି. ଶବ୍ଦସାଗର) । ଏହା ଅନ୍ୟ ରାଗମାନଙ୍କ ସଙ୍ଗେ ମିଶି ଅନେକ ମିଶ୍ରରାଗ ଉତ୍ପାଦନ କରିଅଛି ଯଥା, ନଟ ମଲ୍ଲାରିକ, ନଟ ବେହାଗ । ଏହା ନଅ ପ୍ରକାର ବା ନବନଟ ନାମରେ ପ୍ରସିଦ୍ଧ; ଯଥା—ଶୁଦ୍ଧନଟ ବା ନଟନାରାୟଣ, କେଦାରନଟ, କଲ୍ୟାଣନଟ, କାମୋଦନଟ, ମଲ୍ଲାରନଟ ବା ନଟମଲ୍ଲାର, ଛାୟାନଟ, କଦମ୍ବନଟ, ହାମ୍ବୀରନଟ ଓ ଆହାରନଟ—କ୍ଷୀନେନ୍ଦ୍ର । ]
୮ । ଶ୍ୟୋନାକ; ଫଣଫଣା ଗଛ ( ହି. ଶବ୍ଦସାଗର )—
8. Bignonia Indica ( tree )
ଦେ. ବି—୧ । ଲଟ ( ଦେଖ )—1. Lata (See)
୨ । ନଟବର ନାମକ ବ୍ୟକ୍ତିର ଡାକ ନାମ—
2. Name by which a person named Natabara is called.
ଦେ. ବିଣ. ( ସଂ. ନଷ୍ଟ )—ଦୁଷ୍ଟ; ନଷ୍ଟ—
ନଟ Wicked; wanton.
ପୀତପଟ ନଟ କି ମୋ ଅଗ୍ରରେ କି ଧର ।—ବଳଭଦ୍ର. କଲୋଲ୍ଲାସଚମ୍ପୂ, ୫ ଗୀତ ।

**ନଟକଣ**—ଗ୍ରା. ବି—ଲଟକଣ ( ଦେଖ )
Natakana Latakana ( See )

**ନଟକଣି**—ଗ୍ରା. ବି ( ସଂ. ଲଡ଼ନ=ଝୁଲିବା )—
Natakani ଲଟକଣି; ପାଗ ବା ଟୋପିରୁ ଲମ୍ବିଥିବା ଝୁଣ୍ଡି ବା ଫୁଲ—
ଲଟକନ Tassels hanging down from a turban
लटकन or cap.
ନଟକଣି ସୁରୁ ସେ କର୍ମି ଜନରୁଥ
ବନ୍ଧାଉଣ ଥଇ ନ କରି କହ ଦୟା ।—କୃଷ୍ଣସିଂ. ମହାଭାରତ. ବନ ।

**ନଟକା(କେ)ଇବା**—ଗ୍ରା. କ୍ରି—ଲଟକାଇବା ( ଦେଖ )
Natakā(ke)ibā Latakāibā ( See )

**ନଟକାର**—ଦେ. ବି. ( ସଂ. ନଟ; ନାଟ୍ୟକାର )—
Natakāra ୧ । ନଟ; ନର୍ତ୍ତକ—1. Dancer.
୨ । ଐନ୍ଦ୍ରଜାଲିକ, କୁହୁକୀ—1. Juggler; magician.
ଧାତା ନଟକାର ପରି ଦେଖାଇଛ ହରି ନେଲ କନକ ଗଇସ ।
ଭକ୍ତ. ପ୍ରେମସୁଧାନିଧି ।

**ନଟକାରୀ**—ଦେ. ବି ଓ ସ୍ତ୍ରୀ. ( ସଂ. ନାଟ୍ୟକାର, ନାଟ୍ୟକାରିଣୀ )—
Natakāri ନଟକାର ( ଦେଖ )—Natakāra ( See )
ଏହା ଶୁଣି କରଇ ନାମକ ନଟକାରୀ । ବିଶ୍ୱନାଥ. ବିଚିତ୍ରରାମାୟଣ ।
ଦେ. ବିଣ. ( ସଂ. ନାଟ୍ୟକାରୀ ) ଯେ ନାଚେ ବା ନୃତ୍ୟ କରେ—
Dancing.

**ନଟକିବା**—ଗ୍ରା. କ୍ରି—ଲଟକିବା ( ଦେଖ )
Natakibā Latakibā ( See )

**ନଟକୂଟ**—ଦେ. ବି. ( ସଂ. ଲଟ=ପ୍ରମାଦ ବଚନ ଓ କୂଟ=କପଟ )—
Natakūta ୧ । ଲୁଟୁଲୁଟୁ; ଗୋଳମାଳିଆ ବିଷୟ; ଝଞ୍ଜଟ; ଅଡୁଆ—
नटखट, नटखटि 1. Labyrinth; maze; intricacy;
नटखट perplexity.
ଆପେ ଛକ ଆପେ ଭକ ଆପେ ନଟକୂଟ । ପ୍ରାଚୀ. ବୃନ୍ଦାବନଗୁପ୍ତଗୀତା ।
୨ । ବିଘ୍ନ—2. Obstacle.
୩ । ବିରକ୍ତିକର ଘଟଣା; ଅନର୍ଥ—
3. Vexatious matter; troubles; vexation.
୪ । ଉତ୍ପାତ—4. Oppression.
୫ । ଦୁଶ୍ଚିନ୍ତା—5 Anxiety.
୬ । ଦୁଷ୍ଟପଣ—6 Wickedness.

**ନଟକୂଟିଆ**—ଦେ. ବିଣ. ପୁଂ—୧ । ଗୋଳମାଳିଆ; ଅଡୁଆ—
Natakūtiā 1. Intricate; awkward
(ନଟକୂଟେଇ—ସ୍ତ୍ରୀ) ୨ । ଯେ ଅଡୁଆ ଲଗାଏ—
नटखट 2 Causing complications.
୩ । ବିରକ୍ତିକର—3. Troublesome; perplexing; vexatious.
୪ । ଉତ୍ପାତକାରୀ—4. Oppressive.
୫ । ଦୁଷ୍କର; କଷ୍ଟସାଧ୍ୟ—5. Difficult.
୬ । ଦୁଷ୍ଟ—6. Wicked.

**ନଟଖଟ**—ଦେ. ବି—ନଟକୂଟ (ଦେଖ)
Natakhata Natakūta (See)

**ନଟଖଟିଆ**—ଦେ. ବଣ—ନଟକୁଟିଆ (ଦେଖ)
Naṭakhaṭiā Naṭakūṭiā (See)
(ନଟଖଟେଇ—ସ୍ତ୍ରୀ)

**ନଟଘଟ** (ଇତ୍ୟାଦି)—ଦେ. ବି—ଲଟଘଟ ଇତ୍ୟାଦି (ଦେଖ)
Naṭaghaṭa (etc) Laṭaghaṭa etc (See)

**ନଟଘଟିଆ**—ଦେ. ବଣ—ଲଟଘଟିଆ (ଦେଖ)
Naṭaghaṭiā Laṭaghaṭiā (See)
(ନଟଘଟେଇ—ସ୍ତ୍ରୀ)

**ନଟଚର୍ଯ୍ୟା**—ସ. ବି. (୬ଷ୍ଠୀ ତତ୍, ନଟ+ଚର୍ଯ୍ୟା)—
Naṭacharjyā ୧ । ନଟର ବାକ୍ୟାଭିନୟ—
1. The verbal acting of an actor
୨ । ନାଟକାଭିନୟ—2. Acting of a drama; dramatic performance

**ନଟତା**—ସ. ବି (ନଟ+ତା)—୧ । ନଟର ଭାବ—
Naṭatā 1 The state of being an actor or dancer.
(ନଟତ୍ୱ—ଅନ୍ୟରୂପ) ୨ । ନଟର କାର୍ଯ୍ୟ—
2 The act of a dancer or actor.

**ନଟନ**—ସ. ବି. (ନଟ୍ ଧାତୁ+ଅନ)—୧ । ନୃତ୍ୟ; ନର୍ତ୍ତନ—
Naṭana 1 Dancing.
୨ । ନାଟକ ଅଭିନୟ—2 Acting in a play.

**ନଟ ନାଗର**—ଦେ. ବି—ଶ୍ରୀକୃଷ୍ଣ—
Naṭa nāgara Śrīkṛushṇa.

**ନଟ ନାରାୟଣ**—ସ. ବି—ସଙ୍କର ରାଗିଣୀବିଶେଷ—
Naṭa nārāyaṇa Name of a composite musical air.
[ ଦ୍ର—ଏହା ସମ୍ପୂର୍ଣ୍ଣ ଜାତିର ଏକ ରାଗ । ଏଥିରେ ସବୁ ଶୁଦ୍ଧ ସ୍ୱର ଲାଗେ । ହେମନ୍ତ ଋତୁରେ ରାତ୍ରି ୨୧ ଦଣ୍ଡଠାରୁ ୨୬ ଦଣ୍ଡ ପର୍ଯ୍ୟନ୍ତ ଏହା ଗେୟ । ହନୁମାନଙ୍କ ମତରେ ଏହା ମେଘରାଗର ଓ ଭରତଙ୍କ ମତରେ ଏହା ଦୀପକରାଗର ପୁତ୍ର । ହି. ଶବ୍ଦସାଗର । ]

**ନଟ ନାରୀ**—ସ. ବି.ସ୍ତ୍ରୀ. (ନଟ+ନାରୀ)—ନଟୀ (ଦେଖ)
Naṭa nārī Naṭī (See)

**ନଟପଟ** (ଇତ୍ୟାଦି)—ଦେ. ଅ—ଲଟପଟ ଇତ୍ୟାଦି (ଦେଖ)
Naṭapaṭa (etc) Laṭapaṭa etc (See)
(ନଟରପଟର—ଅନ୍ୟରୂପ) नटपट लटपट

**ନଟପଟିଆ**—ଦେ. ବଣ—ଲଟପଟିଆ (ଦେଖ)
Naṭapaṭiā Laṭapaṭiā (See)

**ନଟବର**—ସ. ବି. (୭ମୀ ତତ୍; ନଟ+ବର=ଶ୍ରେଷ୍ଠ)—
Naṭabara ୧ । ଶ୍ରୀକୃଷ୍ଣ—1. Śrīkṛushṇa.
୨ । ପ୍ରଧାନ ନଟ—2. The chief dancer or actor.
୩ । ଅଭିନୟର ସୂତ୍ରଧାର—3. Stage manager.
ସ. ବଣ—ନୃତ୍ୟପଟୁ; ନାଚିବା ବିଷୟରେ ଦକ୍ଷ—
Expert in dancing.
ଦେ. ବି. ପୁଂ—ଲୋକଙ୍କ ନାମ—
A name given to males.

**ନଟବର ବେଶ**—ଦେ. ବି—ଶ୍ରୀକୃଷ୍ଣଙ୍କର ବେଶବିଶେଷ—
Naṭabara beśa A sort of dress of Śrīkṛushṇa.
[ ଦ୍ର—ଶ୍ରୀକୃଷ୍ଣ ତ୍ରିଭଙ୍ଗ-ମୂର୍ତ୍ତି ହୋଇ ବଂଶୀ ଧରି ନାଚିବା ସମୟର ବେଶ । କାର୍ତ୍ତିକମାସରେ ପୁରୀରେ ଜଗନ୍ନାଥଙ୍କର ଏବଂ ସତ୍ୟବାଦୀରେ ସାକ୍ଷୀଗୋପାଳଙ୍କର ଏ ବେଶ ହୁଏ । ]

**ନଟବେହାଗ**—ସ. ବି—ରାଗିଣୀବିଶେଷ—
Naṭabehāga Name of a musical air.

**ନଟଭୂଷଣ**—ସ. ବି. (୬ଷ୍ଠୀ ତତ୍; ନଟ+ଭୂଷଣ=ଆଭରଣ)—
Naṭabhūshaṇa ହରିତାଳ—Red orpiment.
(ନଟମଣ୍ଡନ—ଅନ୍ୟରୂପ)

**ନଟମଲ୍ଲାର**—ସ. ବି—ରାଗିଣୀବିଶେଷ—
Naṭamallāra Name of a musical tune or air.
(ନଟମଲ୍ଲାରକ—ଅନ୍ୟରୂପ) [ ଦ୍ର—ଏହା ସମ୍ପୂର୍ଣ୍ଣ ଜାତିର ଏକ ସଙ୍କର ରାଗ; ଏହା ନଟ ଓ ମଲ୍ଲାର ରାଗଦ୍ୱୟର ମିଶ୍ରଣରେ ଉତ୍ପନ୍ନ; ଏଥିରେ ସବୁ ଶୁଦ୍ଧ ସ୍ୱର ଲାଗେ । ]

**ନଟ ମୁକୁଟ**—ଦେ ବି ଓ ବଣ—ନଟବର (ଦେଖ)
Naṭa mukuṭa Naṭabara (See)
କି ହେବ ମନରେ ଭୁରୁ କରୁଥିଲେ,
ଯଉହେବ ସେହି କାଳେ ନଟ ମୁକୁଟକୁ ବୋଲେ ନଗର ।
କବିସୂର୍ଯ୍ୟ. ସଙ୍ଗୀତ ।

**ନଟଯୋଷା**—ସ. ବି. ସ୍ତ୍ରୀ. (ନଟ+ଯୋଷିତ୍)—ନଟୀ (ଦେଖ)
Naṭajoshā Naṭī (See)
(ନଟଯୋଷିତ୍—ଅନ୍ୟରୂପ)

**ନଟ ଯୋଷିତା**—ଦେ. ବି. ସ୍ତ୍ରୀ (ନଟ+ଯୋଷିତ୍)—୧ । ନଟନାରୀ, ନଟୀ—1. A female dancer.
Naṭa joshitā
୨ । ବେଶ୍ୟା—2. Harlot; prostitute.
କଲୋତ୍ସୁ ମୋତେ ଯେମନ୍ତ ନଟଯୋଷିତା—ଉପେ. ବୈଦେହୀଶବିଳାସ ।

**ନଟରଙ୍ଗ**—ସ. ବି—ରଙ୍ଗମଞ୍ଚ—
Naṭaraṅga Theatrical stage (Apte).

**ନଟରା**—ଗ୍ରା. ବି—ଲଟରା (ଦେଖ)
Naṭarā Laṭarā (See)

**ନଟ ସଂଜ୍ଞକ**—ସ. ବି—୧ । ଗୋଦନ୍ତୀ ହରିତାଳ (ହି. ଶବ୍ଦସାଗର)—
Naṭa saṁjñaka 1. Red orpiment (Apte).
୨ । ନଟ (ହି. ଶବ୍ଦସାଗର)—
2. An actor; a dancer (Apte).

**ନଟ ସୂତ୍ର**—ସ. ବି (ନଟ+ସୂତ୍ର)—ଅଭିନେତୃବର୍ଗଙ୍କ ପାଳନୀୟ ନିୟମ ବା ଉପଦେଶଗ୍ରନ୍ଥ—Directions or rules for actors (Apte).
Naṭa sūtra

**ନଟା** (ଇତ୍ୟାଦି)—ଗ୍ରା. ବି—ଲଟା ଇତ୍ୟାଦି (ଦେଖ)
Naṭā (etc) Laṭā etc (See)

**ନଟାଇ**—ପ୍ରାଦେ (ସମ୍ବଲପୁର) ବି—ନଟେଇ (ଦେଖ)
Naṭāi Naṭei (See)

**ନଟାନ୍ତିକା**—ସ. ବି. ସ୍ତ୍ରୀ (ନଟ+ଅନ୍ତ+କ+ସ୍ତ୍ରୀ. ଆ; ନଟଭ ଲଜ୍ଜା ନ ଥିବାରୁ ନଟାନ୍ତିକାର ଏହି ଅର୍ଥ) ଲଜ୍ଜା—
Naṭāntikā Bashfulness.

**ନଟି**—ଦେ. ବ—୧ । ( ଚଳନ୍ତାବେଳେ ) ଚଳୁଥିବା ନୌକାର ପାଲକୁ
Nati ଅଟକାଇ ରଖିବା ସକାଶେ ବ୍ୟବହୃତ ଲମ୍ବା ଦଉଡ଼ି—
1. A long piece of rope used for holding tightly the sail of a boat in motion

୨ । ( ଆଦରାର୍ଥକ ) ନଟବରର ଡାକ ନାମ—
2 A fond name for calling Natabara.

ଗ୍ରା. ବ. ( ସ. ଲତା )—ଲଟି; ଲଟା; ଛୋଟ ଛୋଟ ଲତା—
Small creepers.

ପ୍ରାଦେ. ( ସିଂହଭୂମ ) ବ—ଲତାବହୁଳ ବନ—
A jungle full of creepers.

**ନଟିତ**—ସ. ବ. ( ନଟ୍ ଧାତୁ + ଭାବ. ତ )—ନାଟକାଭିନୟ—
Natita Acting; dramatic representation.

**ନଟୀ**—ସ. ବ. ସ୍ତ୍ରୀ. (ନଟ + ସ୍ତ୍ରୀ. ଈ)—୧ । ଅଭିନେତ୍ରୀ—
Nati 1. An actress.

୨ । ନର୍ତ୍ତକୀ—2. Dancing girl.

୩ । ବେଶ୍ୟା—3. Harlot; courtezan; prostitute.

୪ । ନଷ୍ଟା ସ୍ତ୍ରୀ—4. A strumpet.

୫ । ନାଟକର ସୂତ୍ରଧାରର ସ୍ତ୍ରୀ; ମୁଖ୍ୟା ନଟୀ—
5 The chief actress, regarded as the wife of the stage manager.

୬ । ଗୋଦନ୍ତୀ ହରତାଳ—6. Red arsenic (Apte).

୭ । ନଳୀ ନାମକ ଗନ୍ଧକ ଦ୍ରବ୍ୟ (ହି. ଶ.) -
7. A medicinal scent; shell.

ଦେ. ବ.—ନଟୀକାଳ (ଦେଖ)—Natikala (See)

ନଟୀ ସେ କଦଳୀ ସୃତ ବଢ଼ାଇବ । ପ୍ରାଚୀ. ଶ୍ରୀ ଗୁରୁଭକ୍ତି ଗୀତା ।

**ନଟୀକାଳ**—ଦେ. (ପ୍ରାଚୀନ) ବ. (ସ. ନାରକେଳ)—ନଡ଼ିଆ—
Natikala Cocoanut

ଗମ୍ଭ ସ୍ୱ ପାଳିଥିଲ ନଟୀକାଳ । ପ୍ରାଚୀ. ପ୍ରତାପ ଶଶିରେଖା ।

**ନଟୁ** (ଇତ୍ୟାଦି)—ଦେ. ବ.—ଲଟୁ ଇତ୍ୟାଦି (ଦେଖ)
Natu (etc) Latu etc. (See).

**ନଟେଇ**—ଦେ. ବ. (ସ. ନର୍ତ୍ତକୀ)—୧ । ଭରଣୀ ସୂତା ଗୁଡ଼ାଇବାରେ
Natei ବ୍ୟବହୃତ ବଉଁଶଲାଠିରେ ନିର୍ମିତ ତନ୍ତୀର ଯନ୍ତ୍ରବିଶେଷ—
नाटाई 1. An instrument made of bamboo
नटाई नरी strips used for winding the warp threads.

୨ । ଗାଲୁଚିର ନମ୍ନାଂଶ (ଯହିଁରେ ସୂତା ଗୁଡ଼ା ଯାଏ)—
2. A reel for winding threads.

**ନଟେଇ ପଟେଇ**—ଗ୍ରା. ଅ.—ଲଟପଟ (ଦେଖ)
Natei patei Lata pata (See)

**ନଟେଶ୍ୱର**—ସ. ବ. (୬ଷ୍ଠୀ ଓ ୭ମୀ ତତ୍; ନଟ = ନର୍ତ୍ତକ + ଈଶ୍ୱର)—
Nateswara ମହାଦେବ; ତାଣ୍ଡବ ନୃତ୍ୟକାରକ ଶିବ—Siba;

**ନଟ୍ୟା**—ସ. ବ. (ନଟ + ଯ + ଆ)—ନଟ ସମୂହ; ଅଭିନେତୃବୃନ୍ଦ;
Natya [illegible]
A company of dancers or actors

**ନଠା**—ଗ୍ରା. ବ.—ଲଠା (ଦେଖ)
Natha Latha (See)

**ନର୍ଡ୍** (ଧାତୁ)—ସ.—ବନ୍ଧନ କରିବା—
Nard (root) To bind.

**ନର୍ଡ**—ସ. ବ. (ନର୍ଡ୍ ଧାତୁ + କରଣ ଅ; ଯାହାଦ୍ୱାରା ବନ୍ଧନ କରାଯାଏ)—
Narda ୧ । ତୃଣବିଶେଷ, ନଳ—1. A reed.

୨ । ହାତରେ ପିନ୍ଧାଯିବା କାଚବଳୟ ତିଆରି ଓ ବିକ୍ରି କରିବା ଜାତିବିଶେଷ—Name of a tribe manufacturing and selling glass bracelets.

**ନର୍ଡକ**—ସ ବ.—ଦୁଇ କାନ୍ଧ ମଧ୍ୟରେ ଥିବା ଅସ୍ଥି—
Nardaka A bone between the shoulders (Apte).

**ନର୍ଡକା**—ଗ୍ରା. ବି. ଓ ବିଣ—ଲଡ଼କା (ଦେଖ)
Nardaka Lardaka (See)
(ନଡ଼ୁକୀ—ସ୍ତ୍ରୀ)

**ନର୍ଡକୀୟ**—ସ. ବିଣ (ନଡ଼ + ଅଛ ଅର୍ଥରେ ଈୟ)—ଯେଉଁ ସ୍ଥାନରେ
Nardakiya ପ୍ରଚୁର ନଳ ତୃଣ ଜନ୍ମେ; ନଳବହୁଳ (ପ୍ରଦେଶ)—
(a place) Growing reeds abundantly.

**ନଡଚଡ**—ଦେ. ଅ. (ସ. ଲଡ୍ ଧାତୁ)—କୌଣସି ସ୍ଥାନରୁ ସାମାନ୍ୟ
Narda charda ମାତ୍ର ଘୁଞ୍ଚିବା; ହଲଚଲ, ବିଚଳନ—
नडचड़ Moving slightly from one's original
हलचल, हिलनाडुलना position, slight shifting of the position; slight deviation.

**ନଡନଡ**—ଦେ. ଅ. (ସ. ଲଡ୍ ଧାତୁ)—୧ । ଲଡ଼ ଲଡ଼, ଦୋଦୁଲ୍ୟମାନ—
Narda narda 1. Oscillating; hanging to and
नड़नड़, झुड़झुड़, झुड़झुड़े, झुझुड़े fro; dangling.
लड़खड़, ढीला, डगमग ୨ । ଢିଲା; ଲଡ଼କା; ଶ୍ଲଥ—
[ନୁଡ଼(ଡ଼) ନୁଡ଼(ଡ଼)—ଅନ୍ୟରୂପ] 2. Loose; slackened.

ଯାଇଥିଲ ମଞ୍ଚ; ଦେଖି ଅଇଲ ପରପଞ୍ଚ;
ହାତ ବଢ଼ାଇ ନଡ ନଡ, ଗୋଡ ବଢ଼ାଇ ନଡ ନଡ,
ବଥାନାଟର ବଳ୍ଦିତ ଉକ୍ତି । ଶିଶୁବଚନ ।

୩ । ଯେ ସିଧା ହୋଇ ଠିଆ ହୋଇ ନ ପାରେ ଟଳୁ ଥାଏ;
ଟଳ ଟଳ—3 Shaky, tottering.

**ନଡନଡ ହେବା**—ଦେ. କ୍ରି—ଶ୍ଲଥ ବା ଢିଲା ହେବା—
Narda narda heba To become loose or
नडनड़हओ्या लड़खड़होना slackened.

**ନଡ ନଡିଆ**—ଦେ. ବିଣ.—ନଡ଼ ନଡ଼ (ଦେଖ)
Narda nardia Narda narda (See)
नन्नडिया लड़खड़िया
[ନଡ଼ (ଡ଼) ନୁଡିଆ—ଅନ୍ୟରୂପ]

**ନଡପ**—ପ୍ରାଦେ. (ଗଡ଼ଜାତ) ବ.—୧ । ତେଲି—
Nardapa 1. Oilman.
୨ । ତେଲ—2. Oil.

**ନଡପ ଶାଳ**—ପ୍ରାଦେ. (ଗଡ଼ଜାତ) ବ.—ତେଲଶାଳ—
Nardapa sala An oilman's factory.

**ନଡ଼ବଡ଼**—ଦେ. ଅ (ସ. ଲଡ଼୍ ଧାତୁ=କମ୍ପିତ ହେବା)—
Nardabarda ୧ । ଢୁଗୁଳା; ଶ୍ଲଥ; ନଡ଼ ନଡ଼—
ନାଡାଚାଡା, ଲଡବଡ 1. Loose; slackened.
**ଲଡ଼ବଡ଼** ୨ । ଦୋଦୁଲ୍ୟମାନ—2. Dangling;
[ନ୍‌ଡ଼୍(ଡ଼୍)ବ୍‌ଡ଼୍(ଡ଼୍)—ଅନ୍ୟରୂପ] oscillating.
୩ । ଖଜବଜ, ଅସ୍ଥିର—3. Restless

ଶୂନ୍ୟ ଖଡଖଡ ଖଡଖଡ, ମିଛ ମାଦ୍ୟାରେ ପଞ୍ଜ ଭୂ ନଡବଡ ନଡବଡ ।
ଶବାରଭେଦ ରଚକ ।

୩ । ଚପଳ—3. Unsteady.
୪ । ଲମ୍ପଟ, ପରସ୍ତ୍ରୀଲୋଲୁପ—
4. Adulterous; lascivious.
୫ । ଯେଉଁ ଲୋକ ଦୁର୍ବଳତା ଯୋଗୁଁ ଟଳଟଳ ହେଉଥାଏ—
5. Wavering; tottering.
୬ । ଯେଉଁ ଲୋକ ଏକ କଥା ବା ପକ୍ଷକୁ ସ୍ଥିରଭାବରେ ଧରି ରହେ ନାହିଁ; ଚଞ୍ଚଳଚିତ୍ତ—
6. Vacillating; fickle.

ହଳାଧ ଟଙ୍କା ବଇନା ନେଇ ଫେର ଏଣେ ତେଣେ
କାହିଁକି ନଡବଡ ହୁଅଛ । ଭକାସ. ଯୌତୁକ ।

୭ । ତସ୍କର; ପରଧନାପହାରୀ—
7. Stealing; pilfering.
୮ । ଲହରପହର, ବୃଥା ବା ଉଦ୍ଦେଶ୍ୟହୀନଭାବରେ ଯିବା ଅସିବା କରୁଥିବା—1. Unnecessarily walking to and fro; loitering.

**ନଡ଼ବଡ଼ି**—ଦେ. ବି—୧ । ଲାମ୍ପଟ୍ୟ; ଲମ୍ପଟ ସ୍ୱଭାବ—
Nardabardi 1. Adulterous nature.
ଲଡବଡି (ଯଥା—ଇନ୍ଦ୍ର ନଡ଼ବଡ଼ି ।)
**ଲଡ଼ବାଡ଼ି** ୨ । ଖାଦ୍ୟଲାଲସା; ଜିଭ ନଡ଼ବଡ଼ିଆ ସ୍ୱଭାବ—
2. Hankering after food.
(ଯଥା—ଜିଭ ନଡବଡ଼ି ।)
୩ । ଚୌର୍ଯ୍ୟ ପ୍ରକୃତି, ଚୋରି କରିବା ସ୍ୱଭାବ—
3. Stealing or pilfering
(ଯଥା—ହାତ ନଡ଼ବଡ଼ି ।)
୪ । ଏପକ୍ଷ ସେ ପକ୍ଷ ଅବଲମ୍ବନ କରିବା ପ୍ରକୃତି; ଅବ୍ୟବସ୍ଥିତ ପ୍ରକୃତି—4. Fickle nature.

**ନଡ଼ବଡ଼ିଆ**—ଦେ. ବିଣ—ନଡ଼ବଡ଼ (ଦେଖ)
Nardabardia Nardabarda (See)
[ନୁଡ଼୍(ଡ଼୍)ବୁଡ଼ିଆ—ଅନ୍ୟରୂପ]
ଲଡଲଡିଆ

**ନଡ଼ବଡ଼ିଆ ଖୋଇ**—ଦେ. ବି—ନଡ଼ବଡ଼ି (ଦେଖ)
Nardabardia khoi Nardabardi (See)
[ଦ୍ର—ଖୋଇ, ପ୍ରକୃତି, ସ୍ୱଭାବଆଦି ଶବ୍ଦ ସହିତ 'ନଡ଼ବଡ଼ିଆ' ଶବ୍ଦର ବ୍ୟବହାର ଭାଷାରେ ସୁଲଭ ।]

**ନଡ଼ା**—ଦେ. ବି. (ସ ନଡ଼; ନଳ)—୧ । ତୃଣ; ଧାନଗଛର କେଣ୍ଡାରହିତ ଫମ୍ପା ଅଂଶ—1. Straw; hollow stalk of paddy and other plants.
Narda
ଖଡ; ନାଡା
**नरह, नार** ୨ । ସାରୁଗଛର ପତ୍ରରହିତ ଅଂଶ—
2. The leafless stem of taro plant.
ବୈଦେ ବି. (ଫା. ଲଡାଇ)—ମଲ୍ଲମାନଙ୍କ ଲଢ଼ିବା—
Athletic fight.

**ନଡ଼ା(ଡ଼େ)ଇ(ଇତ୍ୟାଦ)**—ବୈଦେ. ବି (ଫ.)—ଲଢାଇ ଇତ୍ୟାଦ (ଦେଖ)
Narda(rde)i (etc) Lardhai etc (See)

**ନଡ଼ା(ଢ଼ା)ନଡ଼ି(ଢ଼ି)**—ଦେ. ବି—ଲଢାଲଢି (ଦେଖ)
Narda(rdha)nardi(rdhi) Lardhalardhi (See)

**ନଢ଼ିଆ**—ଦେ. ବି. (ସ. ନାଡ଼କେଲ)—ନାରିକେଲ ଗଛ ଓ ଫଳ—
Nardia Cocoanut (tree and fruit); Cocus Nucifera.
ସ. ନାମ—ନାରିକେଲ, ନାଡ଼କେଲ
ସଦାପୁଷ୍ପ, ଶିରଃଫଳ, ରସଫଳ, ଦୃଢ଼ଫଳ, ସ୍କନ୍ଧଙ୍ଗ, ଦୃଢ଼ନାଳ, ସଦାଫଳ, ତୃଣଦ୍ରୁ, ମାଲଦ୍ରୁ, କୂର୍ଚଶେଖର, ଲାଙ୍ଗଲୀ, ମଙ୍ଗଳ୍ୟ, ତୃଣରାଜ, ସ୍କନ୍ଧଦ୍ରୁ, ଦାକ୍ଷିଣାତ୍ୟ, ତ୍ର୍ୟମ୍ବକଫଳ, ଦୃଙ୍ଗ, କୌଶିକଫଳ, ଫଳମୁଣ୍ଡ, ଦୃଢ଼ବୀଜ ...
ନାରକୋଲ, ନାରକେଲ; ନାରିକେଲ
**नारकेल, नरियल, नारियल, गरी**
ତେ. କୋବରକାୟା

[ଦ୍ର—ତେଙ୍ଗ ଗଛରୁ ଯେଉଁ ଶୁଖିଲା ନଢ଼ିଆ ମନକୁ ଝଡ଼ିପଡ଼େ ତାକୁ ଦନାକୋଣେ ଘରେ ରଖିଲେ ସେଥିରୁ ଗଜା ବାହାରେ । ସେ ଗଜାନଢ଼ିଆକୁ ଖେଣ୍ଟ ବୋଲାଯାଏ । ସେହି ଖେଣ୍ଟ ଭୂମିରେ ପୋତା ହେଲେ ତାର ଗଜା ବଡ଼ ହୁଏ । ତାହାକୁ ନଢ଼ିଆ ଗାଡ଼ ବୋଲାଯାଏ । ନଢ଼ିଆ ଗାଡ଼କୁ ୨।୩ ଥର ସ୍ଥାନାନ୍ତରିତ କରିବା ପରେ (ଦ୍ର- ଗାଡ଼, ଉଗାଡ଼ ଶୁଣ) ଶେଷରେ ତାକୁ ବଗିଚା ଆଦିରେ ଦେଡ ହାତ ଦୁଇ ହାତ ଗଭୀର ଗାତ ଖୋଳି ପୋତିବାକୁ ହୁଏ । ୯ ହାତ ଛଡ଼ାରେ ଗଛ ଲଗାଇବା ଆବଶ୍ୟକ । ଗାଡ଼ ପୋତା ହେବାର ୫ ବର୍ଷଠାରୁ ୧୦ ବର୍ଷ ମଧ୍ୟରେ ପ୍ରଥମ ଫଳ ଫଳେ । ସମୁଦ୍ର ଉପକୂଳସ୍ଥ ପ୍ରଦେଶରେ ନଢ଼ିଆ ଗଛ ଉତ୍ତମ ରୂପେ ବଢ଼େ ଏବ ତାହାର ଫଳ ସଂଖ୍ୟା ମଧ୍ୟ ଅପେକ୍ଷାକୃତ ଅଧିକ ହୁଏ । ପାର୍ବତ୍ୟ ପ୍ରଦେଶରେ ଏ ଗଛ ଉଠାଏ ନାହିଁ । ଗ୍ରୀଷ୍ମ ମଣ୍ଡଳ, ଭାରତର ଉପକୂଳ ପ୍ରଦେଶମାନ ( ବଙ୍ଗ, ଉତ୍କଳ ଓ ପୂର୍ବ ଉପକୂଳ ) ଓ ପ୍ରଶାନ୍ତ ମହାସାଗରର ଦ୍ୱୀପପୁଞ୍ଜରେ ଖୁବ୍ ନଢ଼ିଆ ହୁଏ । ଲଙ୍କା ଦ୍ୱୀପର ନଢ଼ିଆ ଆମ ଦେଶର ନଢ଼ିଆ ଅପେକ୍ଷା ବଡ଼ । ନଢ଼ିଆ ଫଳ ବର୍ଣ୍ଣଭେଦରେ ୩ ପ୍ରକାର ଯଥା—ସାଧାରଣ ବା ସବୁଜା ନଢ଼ିଆ, ନାଲି ବା ରଙ୍ଗି ନଢ଼ିଆ ଓ ହଳଦିଆ ନଡ଼ିଆ । ନଢ଼ିଆ ଫଳ ପଇଡ଼ ଅବସ୍ଥାରେ ଥିଲା ବେଳେ ଲମ୍ବଅଂଶିଆ ବୃତ୍ତାକାର ଥାଏ, କିନ୍ତୁ କ୍ରମଶଃ ନଢ଼ିଆ ପରିପକ୍ୱ ହେବା ସଙ୍ଗେ ଫଳ ତିନି ପହଲିଆ ବା ତ୍ରିକୋଣ ହୁଏ ।

ନଢ଼ିଆ ଗଛର ପ୍ରତ୍ୟେକ ଅଂଶ ଆମ୍ଭମାନଙ୍କର ଉପକାରରେ ଲାଗେ । ନଢ଼ିଆ ଫଳ ସୁଖାଦ୍ୟ । ପଇଡ଼ ବା ଅପକ୍ୱ ନଡ଼ିଆର ପାଣି ଉତ୍ତମ ପାନୀୟରୂପେ ସର୍ବତ୍ର ଆଦୃତ ହୁଏ । ଶୁଖିଲା ନଢ଼ିଆର ଶସକୁ ପେଡ଼ିଲେ ବା ସିଝାଇଲେ ତହିଁରୁ ତେଲ ବାହାରେ । ନଢ଼ିଆ ଘଷରୁ ଯେଉଁ ଶସ ବାହାରେ ତାକୁ କୋରା ସେଥିରେ ଚିନି ଆଦି ମିଶାଇ ପିଠା ଆଦିର ପୁର ଓ କୋରା (ଲଡୁ) କରାଯାଏ । ଉକ୍ତ ଶସରୁ

ରସ ଚଗୁଡ଼ି ସେ ରସକୁ ନିଆଁରେ ନିର୍ଜଳ କଲେ ନଡ଼ିଆ ଘିଅ ବାହାରେ । ଏହି ଘିଅ ଓ ତେଲ ଦେହରେ ଲଗାଇବା ଓ ପିଠା ଛାଣିବାରେ ବ୍ୟବହୃତ ହୁଏ । ଫଳର ଆବରଣ ବା କତା କାଢ଼ି ଦେଲେ ଯେଉଁ ଖାଣ୍ଟୁଆ ଗୋଲକ ବା ଖପୁରି ବାହାରେ ତହିଁରୁ ଅନେକ ଓ ନାନା ପ୍ରକାର ମସୃଣ ପାତ୍ର ପ୍ରସ୍ତୁତ ହୁଏ । ବର୍ତ୍ତମାନ ଏଥିରୁ ବୋତାମ୍, ଗୁହା ପିଆଲା ଆଦି ପ୍ରସ୍ତୁତ ହେଉଅଛି । ନଡ଼ିଆ ଫଳର କତା ତଳେ ଥିବା ଗୋଲ ଖପୁରିର ୩ଟି ଆଖି ଥାଏ । ସେଥି ମଧ୍ୟରୁ ଗୋଟିକର ଉପର ଆବରଣ କୋମଳ । ଏହି ଆବରଣକୁ ଛଡ଼ାଇ ଦେଇ ଛିଦ୍ର ବାଟେ ଶସକୁ କୋରି ବାହାର କରି ନଡ଼ିଆ ଫଳକୁ କୁମ୍ପା ବା ଦାମା କରାଯାଏ । ନଡ଼ିଆ ଖପୁରିକୁ ଦୁଇଫାଳ କରି ସେଥିରେ ବେଣ୍ଟ ଭରତି କରି ଅନେକ କରାଯାଏ । ନଡ଼ିଆର ଉପର ତନ୍ତୁମୟ ଆବରଣ ବା କତାରୁ ଦଉଡ଼ି ହୁଏ । ଏହି କତା ମଧ୍ୟ ବାଡ଼ୁଆ ହୋଇ ଗଦିରେ ଭୁଜା ପରି ଭରତି କରାଯାଏ । ନଡ଼ିଆ ପତ୍ର ବା ବରଡ଼ାରୁ ଝାଡ଼ୁକା ବାହାରେ ଓ ଏହି ଝାଡ଼ୁକାରେ ପଦିଁସ୍ ମୁଠା, ଖଇଷ୍ଟ, ବାଉଁଶିଆ, ପରଦା ଆଦି ତିଆରି ହୁଏ । ନଡ଼ିଆ ବରଡ଼ା (ପତ୍ର)ରେ ଆସନ (ଛପା ବା ଗୁଣ୍ଠ) ପ୍ରସ୍ତୁତ ହୁଏ । ନଡ଼ିଆ ପତ୍ର ମଧ୍ୟ ଜାଳ ଓ ମସାଲ ରୂପେ ବ୍ୟବହୃତ ହୁଏ । ନଡ଼ିଆ ଗଛର ଗଣ୍ଡିରୁ ଘରର ଶେଣୀ, ରୁଅ, ଜଗ ଆଦି ଓ ପାଣି ବୋହିବା ଓ ଲଂଘା ମାରିବା ଲୋଧା ହୁଏ । ମାନ୍ଦ୍ରାଜ ଅଞ୍ଚଳରେ ଲୋକେ ନଡ଼ିଆର ଶଣ୍ଡାକାର ସିପ ବା ଖୋସାର ଅଗ୍ର ଭାଗକୁ ଚଅଁର ବାହାରିବା ପୂର୍ବେ କାଟି ସେଥିରୁ ଯେଉଁ ରସ ବାହାର କରନ୍ତି ତାହା ତାଡ଼ି ହୁଏ ଓ ସେଥିରୁ ଗୁଡ଼ ମଧ୍ୟ ପ୍ରସ୍ତୁତ ହୁଏ ।

ଶୁଭକାର୍ଯ୍ୟରେ କଳସ ଉପରେ ନଡ଼ିଆ ରଖି ପୂଜା କରାଯାଏ । ବ୍ରାହ୍ମଣମାନେ ରାଜା ଆଦିଙ୍କୁ ନଡ଼ିଆ ଭେଟି ଦିଅନ୍ତି । ରାଜାମାନଙ୍କର ଅଭିଷେକ ଆଦି କାର୍ଯ୍ୟରେ ମଧ୍ୟ ଏହା ଲୋଡ଼ା ହୁଏ । କଞ୍ଚି ନଡ଼ିଆକୁ ଗୋଟମା, ଅର୍ଦ୍ଧପକ୍ୱ ନଡ଼ିଆକୁ ପଇଡ଼, ପୂର୍ଣ୍ଣ ପକ୍ୱ ନଡ଼ିଆକୁ ପାଣିଚ ନଡ଼ିଆ ଓ ନଡ଼ିଆକୁ କିଛି ଦିନ ରଖିଲେ ଭିତରୁ ପାଣି ଶୁଖି ଯାଇଥିବା ନଡ଼ିଆକୁ ଖରୁଡ଼ି ବୋଲାଯାଏ । ପଇଡ଼ର ପାଣି ସୁମିଷ୍ଟ ଓ ଜୀର୍ଣ୍ଣକାରକ । ]

**ନଡ଼ିଆ ଅଂଶୁ**—ଦେ. ବି—ନଡ଼ିଆ ବାହୁଙ୍ଗାର ମୂଳ ଭାଗରେ ଲାଗିଥିବା
Nardiā ãmsu ଧଳା, କୋମଳ ଓ ରେଣୁ ସଦୃଶ ପଦାର୍ଥବିଶେଷ-- A soft white and scale-like substance sticking to the body of a cocoanut branch.

[ ଦ୍ର—ଏହାକୁ ଘର୍ଷି ବାହାର କରାଯାଏ । ଘାଆରେ ଏହାକୁ ପକାଇଲେ ଘାଆ ଶୀଘ୍ର ଶୁଖିଯାଏ । ]

**ନଡ଼ିଆ ଆଖି**— ଦେ. ବି. ( ସ. ନାଡ଼ିକେଲ+ଅକ୍ଷି )—
Nardiā ākhi ନଡ଼ିଆ ଫଳରୁ କତା କଢ଼ାଯିବା ପରେ ଯେଉଁ
ନାରକେଲେର ଚୋଖ ବର୍ତ୍ତୁଳ ଖାଲ ରହେ ତହିଁ ଉପରେ ଥିବା ଅଣୁ
नारियलकी आँख ଗଭୀର ୩ଟି ଛିଦ୍ର ଚିହ୍ନ—The three round marks representing holes on the head of a cocoanut fruit after it is shorn of its rind.

[ ଦ୍ର—ଏହି ଆଖି ତିନୋଟି ମଧ୍ୟରୁ ଗୋଟିଏ ଅତି କୋମଳ ଓ ୨ଟି କଡ଼ା; ସେହି କୋମଳ ଆଖିର ଆବରଣକୁ ଛଡ଼ାଇ ଦେଲେ ବା ଫୁଟାଇ ଦେଲେ ନଡ଼ିଆରେ ଗୋଟିଏ ଛିଦ୍ର ହୋଇଯାଏ । ସେହି ସଚ୍ଛିଦ୍ର ଆଖି ବାଟେ ନଡ଼ିଆରୁ ଗଜା ବାହାରେ ଓ ସେହି ଛିଦ୍ର ବାଟେ ନଡ଼ିଆ ମଧ୍ୟରୁ ଶସ କୋରି ଲୋକେ ନଡ଼ିଆ କୁମ୍ପା ତିଆରି କରନ୍ତି ଓ ସେହି ଛିଦ୍ର ବାଟେ ହୁକାର ନଇଚ (ନଳ) ପୂରାନ୍ତି । ]

**ନଡ଼ିଆ କାଠ**—ଦେ. ବି—ବୁଢ଼ା ନଡ଼ିଆ ଗଛରୁ ମଞ୍ଜକୁ ଝଡ଼ିବା ଶୁଖିଲା
Nardiā kāṭha ନଡ଼ିଆ (ଯାହା କି ମଞ୍ଜି ରୂପେ ବ୍ୟବହୃତ ହୁଏ)- The dry cocoanuts from an old tree.

**ନଡ଼ିଆ କତା**—ଦେ. ବି—ନଡ଼ିଆ ଫଳର ଉପରସ୍ଥ ଅଂଶୁମୟ ଚୋପା—
Nardiā katā The fibrous rind of the
নারকেলের ছোবড়া नारियलका छिलका cocoanut.

**ନଡ଼ିଆ କନ୍ଧା**—ଦେ. ବି. ( ସ ନାରିକେଳ+ସ୍କନ୍ଧ )—
Nardiā kandā ନଡ଼ିଆ ଗଛର କୋମଳ ସ୍କନ୍ଧ ଦେଶ ( ଯେଉଁଠାରୁ ବାହୁଙ୍ଗା ବାହାରି ଥାଏ )—The tender part inside the neck of a cocoanut tree.

**ନଡ଼ିଆ କଲି**—ଦେ. ବି—ଅତି ସରୁ ନଡ଼ିଆ ( ଯାହାକୁ କୁମ୍ପା ଓ
Nardiā kali ନାସଦାମା କରାଯାଏ )— A small and long cocoanut.

**ନଡ଼ିଆ କୁମ୍ପା**—ଦେ. ବି -- ବୋତଲ ରୂପେ ବ୍ୟବହୃତ ଫମ୍ପା ନଡ଼ିଆ—
Nardiā kumpā A pot made by scrooping off the
নারকেলের কুপী kernel out of a cocoanut through
नारियलका कुपा the bore on its head.
(ନଡ଼ିଆ କୁମ୍ପୀ—ଛୋଟ ଆକାର)

[ ଦ୍ର—ନଡ଼ିଆ ଫଳର ମୁଣ୍ଡ ଉପରେ ଥିବା ଛିଦ୍ର ବାଟେ ତହିଁ ମଧ୍ୟସ୍ଥ ଶସକୁ କୋରି ବାହାର କରି ସେହି ଫମ୍ପା ନଡ଼ିଆରେ ନାସ, ଗୁଣ୍ଡି, ତେଲ, ଚୂଆ ଆଦି ରଖାଯାଏ । ଏହିପରି ବଡ଼ ବଡ଼ ଫମ୍ପା ନଡ଼ିଆକୁ କୁମ୍ପା ଓ ସାନ ସାନଗୁଡ଼ିକକୁ କୁମ୍ପୀ ବୋଲାଯାଏ । ସମ୍ବଲପୁର ଅଞ୍ଚଳରେ ନଡ଼ିଆ ଭିତର କୋରି କୁମ୍ପା ତିଆରି କରିବା ବ୍ୟବସାୟୀ ଜାତିକୁ 'ଭଡ଼କେଇତା' ବୋଲାଯାଏ । ଏହି ନଡ଼ିଆ କୁମ୍ପା ମଧ୍ୟ ହୁକ୍କାର ଜଳାଧାର ହୁଏ । ]

**ନଡ଼ିଆ କୋରା**—ଦେ. ବି—୧ । ନଡ଼ିଆଫାଳରୁ କୋରଣା ସାହାଯ୍ୟରେ
Nardiā korā କୋରାଯାଇ ଥିବା ଶସ—1. The kernel
নারকেল কুরী scrooped off from the cocoanut
नारीयलका छीलाहुआ गुदा copra.

[ ଦ୍ର—ଏହା ପିଠାର ପୂରରୂପେ ବ୍ୟବହୃତ ହୁଏ ଏବଂ ଏହାକୁ ଚିପୁଡ଼ିଲେ ଯେଉଁ ରସ ବାହାରେ ସେଥିରୁ ନଡ଼ିଆ ଘିଅ ହୁଏ । ]

নারকেলের নাড়ু ୨ । କୋରା ନଡ଼ିଆ ଗୁଡ଼ଆଦିରେ ପାଗ ହୋଇ
नारीयलका लड्डु ପ୍ରସ୍ତୁତ ହେବା ମିଠେଇ ବା ମୋଦକବିଶେଷ— 2. Sweetmeats prepared by boiling cocoanut kernel and sugar.

**ନଡ଼ିଆ କୋରୁଅ**—ଦେ. ବି—ନଡ଼ିଆ ରସ ସିଦ୍ଧ ହୋଇ ଘିଅ ମରିହେଲା
Nardiā korua ବେଳେ ପାତ୍ରପାଦ ତଳେ ଲେଖାପରି ଯେଉଁ
নারকেলের চাঁছি ସୁଖାଦ୍ୟ କଠିନ ଅଂଶ ରହିଯାଏ—

**नारीयलकी झारी** The delicious sediment left at the bottom of the pot in which cocoanut juice is boiled into ghee

**ନଡ଼ିଆ ଖଡ଼ିକା**—ଦେ. ବି – ନଡ଼ିଆ ପତ୍ରର ଶାଣୁଆ ସରୁ ମେରୁଦଣ୍ଡ—
Nardiā khardikā The slender and hard ribs
নাবকেল কাঠি of cocoanut leaves.
**नारीयलका शीक** [ ଦ୍ର—ଏଥିରେ ପହଁର, ଖଇଞ୍ଚ, ମୁଗୁର, ପରଦା, ଚଟେଇ ରଖିବା ପଞ୍ଜୁରୀ ଓ ଭଙ୍ଗାଭଙ୍ଗ ଖଡ଼ିକା ଆଦି ଅନେକ ପ୍ରୟୋଜନୀୟ ପଦାର୍ଥ ପ୍ରସ୍ତୁତ ହୁଏ । ]

**ନଡ଼ିଆ ଖୁଙ୍କୁ**—ଦେ. ବି—ଗଜା ହୋଇଥିବା ନଡ଼ିଆ ମଧ୍ୟରେ ଥିବା ଧଳା,
Nardiā khunku କୋମଳ ଓ ସୁମିଷ୍ଟ ଖାଦ୍ୟବିଶେଷ—
নাবকেল ফোপব The tender, white and sweet
**नारीयलका शष** substance found inside a sprouting cocoanut.

**ନଡ଼ିଆ ଖୋଳପା**—ପ୍ରାଦେ. (ସିଂହଭୂମ) ବି—ନଡ଼ିଆ ଖପ୍ପର—
Nardiā kholapā The hard rind of a cocoanut seed.

**ନଡ଼ିଆ ଖୋସା**—ଦେ. ବି (ସଂ. ନାରିକେଳ+କୋଷ)—
Nardiā khosā ଯେଉଁ ଖଣ୍ଡାକାର ପୁଷ୍ପକୋଷ ମଧ୍ୟରୁ ନଡ଼ିଆ
নাবকেলেব চাঁপ ଫୁଲର ଚଅଁର ବାହାରେ—The
**नारीयलका कोषा** scabbard-like covering or sheath from which bunches of flowers of cocoanut come out
[ ଦ୍ର—ଏଥିରୁ ଚଅଁର ବାହାରିବା ପୂର୍ବରୁ ଏହାର ଅଗ କାଟିଲେ ଯେଉଁ ରସ ବାହାରେ ତହିଁରୁ ତାଡ଼ି ଓ ଗୁଡ଼ ହୁଏ । ଚଅଁର ବାହାରିଯିବା ପରେ ସିଏ ଶୁଖିଗଲେ ତାହା ଜାଳ ହୁଏ । ଏହାର ଧୂଆଁରେ ମଶାମାନେ ପଳାଇ ଯାଆନ୍ତି । ]

**ନଡ଼ିଆ ଗଜା**—ଦେ. ବି—ଗଜୁରିଥିବା ନଡ଼ିଆ—
Nardiā gajā Sprouting cocoanut fruit
নাবকেলে গজা **नारीयलका गाजा**

**ନଡ଼ିଆ ଗଡ଼**—ଦେ. ବି—ନଡ଼ିଆ ଗଛର ମୂଳଠାରୁ ସ୍କନ୍ଧ ପର୍ଯ୍ୟନ୍ତ ଗୋଲ
Nardiā garda ଲମ୍ବ ଅଂଶ—A long piece out of
**नारीयल पेड़का टुकड़ा** the trunk of a cocoanut tree

**ନଡ଼ିଆ ଗୁଡ଼ି**—ପ୍ରାଦେ. (ଯାଜପୁର) ବି—ନଡ଼ିଆ ଗୋଟମା (ଦେଖ)
Nardiā gurdi Nardiā gotamā (See)

**ନଡ଼ିଆ ଗୋଟମା**—ଦେ. ବି—ନଡ଼ିଆର ଅତି ଛୋଟ ଅପରିପକ୍ୱ ଫଳ—
Nardiā gotamā Very small raw fruits of
নাবকেলেব মুচী **नारियलका बतोया** cocoanut

**ନଡ଼ିଆ ଘିଅ**—ଦେ ବି—ନଡ଼ିଆ ରସକୁ ନିଆଁରେ ସିଦ୍ଧ କଲେ ତାହାର
Nardiā ghia ଜଳୀୟ ଅଂଶ ମରିଯାଇ ଯେଉଁ ଘୃତବତ୍ ପଦାର୍ଥ
নাবিকেলেব ঘী ରହିଯାଏ—Ghee prepared by boiling
**नारीयलका घी** the juice of cocoanut kernel.

**ନଡ଼ିଆଘିଅ ମାରିବା**—ଦେ କ୍ରି—ନଡ଼ିଆ ରସରୁ ଅଗ୍ନି ସାହାଯ୍ୟରେ ଘିଅ
Nardiāghia māribā ପ୍ରସ୍ତୁତ କରିବା—To prepare ghee by boiling the juice pressed from cocoanut kernel.

**ନଡ଼ିଆ ଚଅଁର**—ଦେ. ବି—୧ । ନଡ଼ିଆ ଫୁଲ ଓ ଫଳ ଲାଗିଥିବା
Nardiā cha-anra ଗୁମ୍ଫିତଭୂତ ଗୁଚ୍ଛ—1. The bunch
নাবকেলেব ঝাটী which holds the flowers and
**नारीयलका गुच्छा** fruits of cocoanut.
। ଏକପ୍ରକାର ସରୁ ଧାନ—
2 A species of fine paddy.

**ନଡ଼ିଆ ଚାଞ୍ଚ**—ଦେ ବି—ନଡ଼ିଆ ବାହୁଙ୍ଗାକୁ ଦୁଇଫାଳ କରି ସେଥିରେ
Nardiā chāncha ଲାଗିଥିବା ନଡ଼ିଆପତ୍ରରେ ବୁଣିବା ଆସନ—
(ନଡ଼ିଆ ଛପା—ଅନ୍ୟରୂପ) A mat woven with the
নাবকেল পাতাব চাঁচ leaves of a coconut branch
**नारीयलकी चटाइ** split into two at its ridge.

**ନଡ଼ିଆ ଚାଞ୍ଚର**—ଦେ. ବି – ନଡ଼ିଆଗଛର ବାହୁଙ୍ଗାର ମୂଳ ଓ ଗଛର
Nardiā chānchara ଗଣ୍ଡିମଧ୍ୟରେ ଗୁଡ଼େଇ ହୋଇଥିବା ଜାଲି-
ନଡ଼ିଆ ଚାଞ୍ଚ } ଅନ୍ୟରୂପ The net-like formation wound
ନଡ଼ିଆ ଚାଞ୍ଚ round the root of a branch and
নাবকেলেব চাঁচাড়ি the trunk of a cocoanut tree.
**नारियलकी जाली**

**ନଡ଼ିଆ ଛପା**—ଦେ. ବି—ନଡ଼ିଆ ଚାଞ୍ଚ (ଦେଖ)
Nardiā chhapā Nardiā chāncha (See)

**ନଡ଼ିଆ ଛୁ(ଛୋ)ରା**—ଦେ. ବି—ଛୋଟ ଛୋଟ ଗଜା (ଯାହାର ପତ୍ର
Nardiā chhu(chho)rā ଫିଟି ନ ଥାଏ) ବାହାରିଥିବା ନଡ଼ିଆ—
নাবকেলেব গজা Cocoanuts with dagger-like
**नारीयलकी गोभी** sprouts coming out of them.
**नारीयलका कला** [ ଦ୍ର—ଏହା ଛୁରୀ ପରି ଦେଖାଯାଏ । ]

**ନଡ଼ିଆ ତାଡ଼**—ଦେ. ବି—ଗଜା ହୋଇ ପତ୍ର ମେଲିଥିବା ନଡ଼ିଆ ଗଛ—
Nardia tarda Cocoanut seedlings of which
নাবকেলেব চাবা the leaves have come out
**नारीयलका पौधा**
[ ଦ୍ର—ଏହାକୁ ଏକାଧିକବାର ତାଡ଼ିବାକୁ ହୁଏ ବୋଲି ଏହାର ନାମ ତାଡ଼ ହୋଇଅଛି । ନଡ଼ିଆ କ୍ଷେତ୍ରର ପତ୍ର ଫିଟି ଗଲେ ତାହା ଏକାଧିକବାର ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ନିଆଯାଇ ଭୂମିରେ ପୋତା ହୁଏ । ଉକ୍ତ ତାଡ଼ ବଢ଼ିଗଲେ ତାହାକୁ ସ୍ଥାୟୀଭାବରେ ବଗିଚା ଆଦିରେ ରୋପଣ କରିବାକୁ ହୁଏ ।]

**ନଡ଼ିଆ ତେଲ**—ଦେ. ବି.—ନଡ଼ିଆର ଶସକୁ ଉତ୍ତମରୂପେ ଶୁଖାଇ ତାକୁ
Nardiā tela ଘଣା ପକାଇଲେ ବା ରାନ୍ଧିଲେ ତହିଁରୁ ଯେଉଁ ତେଲ
নাবকেল তেল ବାହାରେ—Cocoanut oil.
**नारीयलका तेल** [ଦ୍ର—ଏହା ଦେହରେ ଲଗାଇବା, ପିଠା ଛାଣିବା ଓ ସାବୁନ ପ୍ରସ୍ତୁତ କରିବାରେ ବ୍ୟବହୃତ ହୁଏ ।]

**ନଡ଼ିଆ ଦୋର**—ଦେ. ବି.—ନଡ଼ିଆର ଶସକୁ ଚିପୁଡ଼ିଲେ ତହିଁରୁ ଦୁଗ୍ଧ-
Nardiā dora ପରି ଯେଉଁ ରସ ବାହାରେ; ନଡ଼ିଆ ରସ—
নাবকেলেব দুধ Milky juice pressed from the kernel
**नरीयलका द्रव** (ନଡ଼ିଆ ଦୋରୁଅ—ଅନ୍ୟରୂପ)—of cocoanut.

**ନଡ଼ିଆ ନାସି**—ଦେ. ବି.—(ସଂ. ନାରିକେଳ+ନାସିକା) ଚଅଁରରୁ ଛୁଣ୍ଡା
Nardiā nāsi ହେବା ତେଣ୍ଟାଳିଆ । ନଡ଼ିଆର ଦ୍ୱିଶାଖାଯୁକ୍ତ

ନାବକେଲେର ବୋଁଟା **ଭେଣ୍ଟ**—The stalk which joins the
**नारीयलका डंटी** cocoanut to the branch.
[ ଦ୍ର—ନାରିକେଳ ନଡ଼ିଆ ଶୁଭକର୍ମାଦି ଉପଲକ୍ଷରେ କଳସ ଉପରେ ରଖାଯାଏ ।]

**ନଡ଼ିଆ ପନ**—ଦେ. ବ —ନଡ଼ିଆ ଚଞ୍ଚର (ଦେଖ)
Nardia pani Nardia chanchara (See)

**ନଡ଼ିଆ ଫାଉଁ(ଶୁ)**—ଦେ.**ବ.**—କୋରା ନଡ଼ିଆ ଚୁପୁଡ଼ା ହୋଇ ତହିଁରୁ ରସ
Nardia phaun (su) ବାହାର କରି ଗଲା ପରେ ଚକ୍ଷୁ ପର
ନାবকেলের ছিবড়ে ଯେଉଁ ନୀରସ ଦ୍ରବ୍ୟ ରହିଯାଏ—The
**नारीयलका नीरस गुदा** kernel of the cocoanut after the juice is pressed out from it.

**ନଡ଼ିଆଫୁଲିଆ ପଇଞ୍ଚ (ଞ୍ଚି)**—ଦେ. **ବ** (ବର୍ଣ୍ଣିଆ ଶବ୍ଦ)—ସୁନା ବା ରୁପାର
Nardiaphulia paincha (nchi) ପଇଁଞ୍ଚ ବା ଖଡ଼ୁ, ଯାହା
নারকেল ফুল ଉପରେ ନଡ଼ିଆ ଫୁଲ ପରି ଦାନାମାନ ବାହାର ଥାଏ—
**नारीयलका फुल** A kind of bracelet made of gold or silver; which is furnished with artistic works resembling cocoanut flowers.

**ନଡ଼ିଆ ବଗାଡ**—ଦେ. ବ.—ଯେଉଁ ସ୍ଥାନରେ ବହୁତ ନଡ଼ିଆଗଛ ଲଗା-
Nardia bagata ଯାଇ ଥାଏ—A cocoanut plantation
নারকেল বাগান **नारीयलका बाग** or garden.
(ନଡ଼ିଆ ବଗିଚ୍ଚ, ନଡ଼ିଆ ବଗାଏତ—ଅନ୍ୟରୂପ)

**ନଡ଼ିଆ ବରଡ଼ା**—ଦେ. ବ.—୧ । ନଡ଼ିଆ ବାହୁଙ୍ଗାର ଦୁଇ ପାଖରେ
Nardia barards ଲଗିଥିବା ପତ୍ର—1. Cocoanut leaves
নারকেল পাতা ୨ । ନଡ଼ିଆ ବାହୁଙ୍ଗା—
**नारीयलका पता** 2. Cocoanut branches.
[ଦ୍ର—ନଡ଼ିଆପତ୍ର ବା ବରଡ଼ା ଛାଲ ହୁଏ ଏବଂ ଏହାର ମେରୁ-ଦଣ୍ଡ ଖଡ଼ିକା ହୁଏ । ଶୁଖିଲା ନଡ଼ିଆ ବରଡ଼ା ବନ୍ଧାକରି ବାଲିଲେ ତାହା ମଶାଲର କାର୍ଯ୍ୟ କରେ । ସାଧାରଣତଃ ନଡ଼ିଆ ଗଛର ପତ୍ରସମୂହ ଡାଳକୁ ବାହୁଙ୍ଗା ଓ କେବଳ ପତ୍ରକୁ ବରଡ଼ା ବୋଲାଯାଏ । ଡାଳ ସମ୍ବନ୍ଧେ ମଧ୍ୟ ଏହିପରି । ]

**ନଡ଼ିଆ ବାହୁଙ୍ଗା**—ଦେ. ବ.—ନଡ଼ିଆ ଗଛର ଡାଳ—
Nardia bahunga Cocoanut branches.
নারকেল ডাল [ଦ୍ର—ଏହା ଛାଲ ହୁଏ ଏବଂ ଏହାର ମେରୁଦଣ୍ଡରୁ
**नारीयलका डाला** ଘର ଛପର ଓ ବାଡ଼ ସକାଶେ ବତା ହୁଏ ।]
(ନଡ଼ିଆ ବାହାଙ୍ଗା—ଅନ୍ୟରୂପ)

**ନଡ଼ିଆ ଭଣ୍ଡିରିଆ**—ପ୍ରାଦେ. (ଗୁମ୍ସର) ବ.—୧ । ପ୍ରତ୍ୟେକ ନଡ଼ିଆଗଛରେ
Nardia bhaunria ଥିବା ଶୋଲୋଗା, ମୁଣ୍ଡୁକ, ପଇଡ଼, ପାଣିଆ ଓ
**नारीयलका कौन** ଗଛିଲା ନଡ଼ିଆ ଆଦିର ହିସାବ ଯେଉଁ ଖାତାରେ ଲେଖା
ହୁଏ—1. A list or catalogue showing the number of cocoanuts, large and small, existing in cocoanut trees.

୨ । ତାଳପତ୍ରରେ ନଡ଼ିଆର ହିସାବ ଲେଖିବା—2. Writing the accounts of cocoanuts ( specially on palm leaf ).

**ନଡ଼ିଆ ମାଳ**—ଦେ. ବ.—ଏକସ୍ଥାନରେ ଥିବା ଅନେକଗୁଡ଼ିଏ ନଡ଼ିଆ
Nardia mala ବଗାଡ—A number of cocoanut plantations or gardens situate at a place close to each other.

**ନଡ଼ିଆ ମାଲପା**—ଦେ. **ବ.**—ନଡ଼ିଆ ତେଲ—
Nardia malapa Cocoanut oil.

**ନଡ଼ିଆ ରସ**—ଦେ. ବ —ନଡ଼ିଆ ଦୋର (ଦେଖ)
Nardia rasa Nardia dora (See)

**ନଡ଼ିଆ ଲଢେଇ**—ଦେ. ବ.—ଦୁଇଟି ନଡ଼ିଆ ଫଳକୁ ପରସ୍ପର ବିପରୀତ
Nardia lardhei ଦିଗରୁ ଭୂମିରେ ଗଡ଼ାଇ ଫଳଦ୍ୱୟ ପରସ୍ପରକୁ
**नारीयलका खेल** ଅତି ଜୋରରେ ଆଘାତ କରିବା ରୂପ କ୍ରୀଡ଼ା—
A game with 2 cocoanuts made to roll and strike each other from opposites directtions violently.
[ଦ୍ର—ଏଥିରେ ଦୁଇ ଜଣ ବ୍ୟକ୍ତି ପରସ୍ପର ବିପରୀତ ଦିଗରେ ଠିଆ ହୋଇ ବା ବସି ଜୋରରେ ଆପଣା ଆପଣା ନଡ଼ିଆକୁ ଗଡ଼ାଇ ଦିଅନ୍ତି । ନଡ଼ିଆ ଦୁଇଟିର ପରସ୍ପର ଆଘାତରେ ଯାହାର ନଡ଼ିଆଟି ଫାଟି ଯାଏ ସେ ଖେଳରେ ହାରିଯାଏ । ଗମ୍ଭାପୂର୍ଣ୍ଣିମା ସମୟରେ ସାଧାରଣ ଲୋକଙ୍କ ମଧ୍ୟରେ ବହୁତ ନଡ଼ିଆ ଲଢେଇ କରାଯାଏ ।]

**ନଡ଼ିଆ ଲଢା(ଢେ)ଇବା**—ଦେ.କ୍ରି.—ଦୁଇ ଜଣ ବ୍ୟକ୍ତି ପରସ୍ପର ବିପରୀତ
Nardia lardha(rdhe)iba ଦିଗରୁ ଲକ୍ଷ୍ୟ କରି ଆପଣା ଆପଣା
ନଡ଼ିଆକୁ ଭୂମିରେ ଗଡେଇବା—(two persons) To cause 2 cocoanuts to roll on the ground from opposite directions so as to strike each other.

**ନଡ଼ିଆ ଲୋଧା**—ଦେ.ବ.—ନଡ଼ିଆଗଛର ଗଣ୍ଡିକୁ ଦୁଇ ଫାଳ କରି ଫାଳର
Nardia lodha ମଧ୍ୟଭାଗରୁ ଅନ୍ତ ଯାକ ସାର୍ଟ୍ଟ ବାହାର କରିଦେଲେ
(ନଡ଼ିଆ ନୋହା(ଧା)—ଅନ୍ୟରୂପ) ପରେ ଯାହା ପାଣିନଳାରୂପେ
ବ୍ୟବହୃତ ହୁଏ—The scrooped half of the trunk of a cocoanut tree used for conveying water droppings from eaves or water to irrigate fields.

**ନଡ଼ିଆ ଶଢେଇ**—ଦେ.ବ—ନଡ଼ିଆ ଫଳର ଛୋଲିଆ ବା ଶକ୍ତ ଆବରଣ-
Nardia sardhei The hard rind of a cocoanut.

**ନଡ଼ିଆ ଶେଣୀ**—ଦେ. ବ—ନଡ଼ିଆ ଗଛର ଗଣ୍ଡିକୁ ଚିରି ତହିଁରୁ
Nardia seni କରାଯିବା ଘରର ଶେଣୀ—Roof-plates made of cocoanut truuks.

**ନଡ଼ିଆ ସିପ**—ଦେ. ବ—ନଡ଼ିଆ ଖୋସା (ଦେଖ)
Nardia sipa Nardia khosa (See)

**ନଡ଼ିବା**—ଦେ. କ୍ରି. (ବଙ୍ଗଳାରୁ ଅନୁକୃତ; ସ. ନଡ଼ ଧାତୁ—ଭ୍ରଂଶ
Nardiba କରିବା—କ୍ଲାନେନ୍ତ୍ର)—୧ । ହଲିବା—1. To shake.

ନଡ଼ା ୨ । ଗଛ କରିବା—2. To move
हिलना ଗ୍ରା. ( ସ. ଲଡ୍ ଧାତୁ )—ଲଢ଼ିବା ( ଦେଖ )
ତା ନଢ଼ Lardhibā ( See )

ନଡ଼ୁ (ଇତ୍ୟାଦ)—ଗ୍ରା. ବ—ଲଡ଼ୁ ଇତ୍ୟାଦ ( ଦେଖ )
Nardu (etc) Lardu etc. ( See )

ନଡ଼ୁଆ (ଇତ୍ୟାଦ)—ଗ୍ରା. ବ—ଲଡ଼ୁଆ ଇତ୍ୟାଦ ( ଦେଖ )
Nardua etc) Lardua etc. ( See )

ନଢ଼ା(ଢେ)ଇ—ବୈଦେ. ବ. (ପ୍ରା. ଲଢ଼ାଇ)—ଲଢ଼ାଇ ( ଦେଖ )
Nardhā(rdhe)i Lardhāi ( See )

ନଢ଼ିବା—ଦେ. କି—ଲଢ଼ିବା ( ଦେଖ )
Nardhibā Lardhibā ( See )

ନଢ଼େର—ପ୍ର ଦେ. (ବସ୍ତର) ବ—ନଡ଼ିଆ—
Nardhera Cocoanut ( See )

ନଣଦ(ନ୍ଦ)—ଦେ. ବ. ସ୍ତ୍ରୀ. (ସ. ନନାନ୍ଦୃ ଶବ୍ଦର ୧ମା. ୧ବ ନନାନ୍ଦା)—
Nanada(nda) ସ୍ୱାମୀଙ୍କ ଭଉଣୀ—
ननद The sister of one's husband
ननद, ननंद्

ନଣନ୍ଦ ପଣିଆ(ଆଁ)—ପ୍ରାଦେ. (ଯାଜପୁର) ବ—ଭାଇର ସ୍ତ୍ରୀ ପହିଲ ପାଳି
Nananda paniā(ān̐) ଆସି ଘରେ ଗୋଡ଼ ଦେବା ବେଳେ ଭଉଣୀ (ନଣନ୍ଦ) ଦୁଆର ମୁହଁରେ ଗୋଡ଼ ଲମ୍ବାଇ ବସି ଭାଉଜଙ୍କୁ ବାଟ ଓଗାଳିବା ରୂପ ଅଧିକାର—
[ ଦ୍ର—ନଣନ୍ଦ କଣ୍ଟିଏ ଲୁଗା ପାଇଲେ ଭାଉଜଙ୍କୁ ବାଟ ଛାଡ଼ି ଦିଏ । ]

ନଣନ୍ଦ ପୋଟଳା(ଳି)—ଦେ. ବ. (ସ. ନନନ୍ଦା ଓ ପୋଟଳ=ପୁଡ଼ା)—
Nananda potalā(li) କନ୍ୟା ବର ଘରକୁ ପ୍ରଥମେ ଆସି
ननद खेमी ପହଞ୍ଚିବା ସମୟରେ ବରଙ୍କ ଭଉଣୀଙ୍କୁ
द्वार छेकावन उपहार ଦେବା ବସ୍ତ୍ରାଦି ଉପଢୌକନ—
(ନଣନ୍ଦ ପୁଟ(ଟୁ)ଳୀ—ଅନ୍ୟରୂପ) The present of cloth etc given to the husband's sister by the bride when first entering the husband's house.
[ ଦ୍ର—କନ୍ୟା ପ୍ରଥମେ ବର ଘରେ ପ୍ରବେଶ କରିବାବେଳେ ନଣନ୍ଦ ତାକୁ ବାଟ ଓଗାଳେ । ସେ ବସ୍ତ୍ରାଦି ଉପଢୌକନ ପାଇଲେ କନ୍ୟାର ମୁହଁରେ ହଳଦୀ ଦହି ଲଗାଇ ଦେଇ ତାକୁ ଆଲିଙ୍ଗନ କରେ ଏବଂ ବାଟ ଛାଡ଼ି ଦିଏ ।
ଭାଉଜ ନଣନ୍ଦ ପାଇଁ ସିନ୍ଦୂର, ଫରୁଆ, ପାନିଆଁ, କାଚ, ଅଳତା ଆଦି ଯେଉଁ ଶ୍ରେଷ୍ଠ ପେଡ଼ିରେ ଆଣି ଥାଏ ତାହା ଓ ତହିଁ ସହିତ ଥିବା ବସ୍ତ୍ର ଖଣ୍ଡ ନଣନ୍ଦ ପୋଟଳ ନାମରେ ଖ୍ୟାତ । ]

ନଣନ୍ଦେଇ—ଦେ. ବ. ପୁଂ ( ସ. ନନନ୍ଦୃପତି )—
Nanandei ସ୍ୱାମୀଙ୍କ ଭଗ୍ନୀ ପତି—The husband of one's husband's sister.
ननदोई, नन्दोई
ननदोइ, नन्दोसी

ନଣ୍ଡ (ଇତ୍ୟାଦ)—ଗ୍ରା. ବ—ଲଣ୍ଡ ଇତ୍ୟାଦ ( ଦେଖ )
Nanda (etc) Landa etc. ( See )

ନଣ୍ଡା (ଇତ୍ୟାଦ)—ଗ୍ରା. ବ ଓ ବିଣ—ଲଣ୍ଡା ଇତ୍ୟାଦ ( ଦେଖ )
Nandā (etc) Landā etc. ( See )

ନଣ୍ଡା(ଣ୍ଡେ)ଇବା—ଗ୍ରା. କି—ଲଣ୍ଡାଇବା ( ଦେଖ )
Nandā(nde)ibā Landāibā ( See )

ନଣ୍ଡି—ଗ୍ରା. ବ—ଲଣ୍ଡି ( ଦେଖ )
Nandi Landi ( See )

ନତ—ସ ବିଣ ( ନମ ଧାତୁ+କର୍ତ୍ତୃ. ତ )—
Nata ୧ । ପ୍ରଣତ, ପ୍ରଣାମକାରୀ—1. Bowing.
(ନତା—ସ୍ତ୍ରୀ) ୨ । ଲମ୍ବ ହୋଇ ଶୋଇଥିବା—
2 Lying low; prostrate.
୩ । ନମ୍ର ମୁଖ; ଲଇଁ ପଡ଼ିଥିବା; ଅବନତ—
3 Inclined; bent down; drooping; bowed down.
୪ । କୁଟିଳ—4. Crooked.
୫ । ବିନୀତ; ନମ୍ର—5. Humble.
୬ । ନମନୀୟ—6. Pliant.
୭ । ବକ୍ର—7 Bent.
ସ. ବ—୧ । ଯାମ୍ୟୋତ୍ତର ବୃତ୍ତଠାରୁ କୌଣସି ଗ୍ରହର ଦୂରତ୍ୱ—
1. The distance of a planet from the meridian (Apte).
୨ । ଯାମ୍ୟୋତ୍ତର ବୃତ୍ତର ସଙ୍କ୍ରମଣଠାରୁ ଆକାଶର ମଧ୍ୟ ବିନ୍ଦୁର ଦୂରତ୍ୱ—2. The zenith distance at a meridian transit (Apte).

ନତଗ୍ରୀବ—ସ. ବିଣ ପୁଂ ( ବହୁବ୍ରୀହି; ନତ+ଗ୍ରୀବ )—
Natagriba ଯାହାର ବେକ ନଇଁ ପଡ଼ିଛି—
(ନତଗ୍ରୀବା—ସ୍ତ୍ରୀ) With neck bent down.

ନତଜାନୁ—ସ. ବିଣ. ( ବହୁବ୍ରୀହି; ନତ+ଜାନୁ )—
Natajānu ଯେ ଜଙ୍ଘ ଉପରେ ଭର ଦେଇ ବା ଆଣ୍ଠେଇ କରି ବସିଥାଏ; ଆଣ୍ଠୁମାଡ଼ି ବସିଥିବା—Kneeling.

ନତଡ଼—ବୈଦେ. ବ ( ହି. ଲତଡ଼୍; ଭୁଲ. ସ. ଲତା )—
Natard ଲତା ପରି କାରୁକାର୍ଯ୍ୟ—Artistic designs
नतड़ wrought on wood, cloth or ornaments
लतर resembling creepers.
[ ଦ୍ର—କାଠ, ଲୁଗା ବା ଅଳଙ୍କାର ଆଦିରେ ଏହିପରି କାରୁକାର୍ଯ୍ୟ କରାଯାଏ । ]

ନତଦ୍ରୁମ—ସ. ବ—ଏକ ପ୍ରକାର ଲତାଣିଆ ଶାଳ ବୃକ୍ଷ (ହି. ଶ.)—
Natadruma A kind of Shorea Robusta tree with drooping branches.

ନତନତ—ଦେ. ବ ଓ ବିଣ—ଲତପତ ( ଦେଖ )
Natanata Latapata ( See )
पतपत

**ନତନତା(ତେ)ଇବା**—ଦେ. କ୍ରି—ଲତପତାଇବା ( ଦେଖ )
Natanatā(te)ibā Latapatāibā ( See )
**পলপল করনা**

**ନତନତିଆ**—ଦେ. ବିଣ—ଲତପତିଆ ( ଦେଖ )
Natanatiā Latapatiā ( See )

**ନତନାଡ଼ୀ**—ସଂ. ବି—ଦିନ ଦ୍ୱିପ୍ରହର ପରେ ବା ରାତ୍ରି ଦ୍ୱିପ୍ରହର ପରେ
Natanārdi କୌଣସି ସନ୍ତାନ ଭୂମିଷ୍ଠ ହେବାର ସମୟ—
(ନତନାଡ଼ିକା—ଅନ୍ୟରୂପ) Any hour of birth after noon or before midnigt (Apte).

**ନତନାସିକ**—ସଂ. ବିଣ. ପୁଂ. ( ବହୁବ୍ରୀହି; ନତ+ନାସିକା )—ଚେପଟା
Nata nāsika ନାକ—Flat-nosed; having a depressed nose.
(ନତନାସିକା—ସ୍ତ୍ରୀ)

**ନତନିନ୍**—ପ୍ରାଦେ. (ବସ୍ତର) ବି.—(ମୂଳ. ଏହି ଅର୍ଥରେ ହି. ନତ୍ନୀ)
Natanin ନାତୁଣୀ—Grand daughter.
(ନତନୀ—ଅନ୍ୟରୂପ)

**ନତନୁ**—ସଂ. ବି. (ନ+ତନୁ)—ଅତନୁ; କନ୍ଦର୍ପ—
Natanu Cupid.
ନର୍ଦ୍ଦପ୍ତ ଜତନୁ ବାଣ । ବଳସୂର୍ଯ୍ୟ ବଶୋଷତେଷ୍ଟ ।

**ନତପଞ୍ଚମୀ**—ସଂ. ବି.—ଆଶ୍ୱିନ ମାସର ଶୁକ୍ଳପଞ୍ଚମୀ—The 5th. day
Nata pañchami of the bright fortnight of Āswina.
[ବି—ଏହି ଦିନ ଦୁର୍ଗାଙ୍କର ଶାରଦୀୟ ପଞ୍ଚଦିନ ପୂଜାରମ୍ଭ ହୁଏ ।]

**ନତପତ**—ଦେ. ବି. ଓ ବିଣ.—ଲତପତ (ଦେଖ)
Natapata Latapata (See)
**পলপল** (ନୁତ୍ (ଭୁ)ସୁତ୍(ଭୁ)—ଅନ୍ୟରୂପ)

**ନତପତା(ତେ)ଇବା**—ଦେ. କ୍ରି.—ଲତପତାଇବା (ଦେଖ)
Natapatā(te)ibā Latapatāibā

**ନତପତିଆ**—ଦେ. ବିଣ.—ଲତପତିଆ (ଦେଖ)
Natapatiā Latapatiā (See)

**ନତପର୍ବା**—ସଂ. ବିଣ. ( ନତ+ପର୍ବନ୍; ୧ମା. ୧ବ )—ଯାହାର ଗଣ୍ଠି
Nata parbā ଚେପଟା—Flat-jointed (Apte).

**ନତବଦନ**—ସଂ. ବିଣ. ପୁଂ—(ବହୁବ୍ରୀହି; ନତ+ବଦନ)—ଯେ ଲଜ୍ଜା
Nata badana ବା ଆଜ୍ଞା ପାଳନଜନିତ ନମ୍ରତା ଯୋଗୁଁ ମୁଣ୍ଡ
(ନତବଦନା—ସ୍ତ୍ରୀ) ନୁଆଇଁ ଥାଏ; ଅଧୋମୁଖ—With head bowed down; down-faced.
ସଂ. ବି. ( କର୍ମଧା )—ତଳକୁ ହୋଇଥିବା ମୁହଁ; ନତମୁଖ—
Head bent low.

**ନତବ୍ରତ**—ସଂ. ବି.—ବ୍ରତବିଶେଷ—
Nata brata A religious observance.
ହେମନ୍ତ ଋତୁର ଉତ୍ସବ, ସକଳେ କଲେ ନତବ୍ରତ । ଜଗନ୍ନାଥ. ଭାଗବତ ।
[ବି—ଏହି ବ୍ରତ ମାର୍ଗଶିର ମାସ ଷଷ୍ଠୀଠାରୁ ଗୋପୀମାନେ ଶ୍ରୀକୃଷ୍ଣଙ୍କୁ ସ୍ୱାମୀରୂପେ ପାଇବା ପାଇଁ ଏ ବ୍ରତ କରିଥିଲେ । ଏଥିରେ ଶୁକ୍ଳପକ୍ଷ ଷଷ୍ଠୀରେ ଦୁର୍ଗାଙ୍କୁ ଅର୍ଚ୍ଚନା କରି ଉପବାସ କରାଯାଏ ।]

**ନତଭାଗ**—ସଂ. ବି. (ଜ୍ୟୋତିଷ)—କୌଣସି ତାରା ବା ଗ୍ରହର ଆକାଶର
Nata bhāga ମଧ୍ୟ ବିନ୍ଦୁ ଠାରୁ ଦୂରତ୍ୱ—(Astrology) The zenith distance; the distance of a star from the zenith

**ନତଭ୍ରୂ**—ସଂ. ବି. ସ୍ତ୍ରୀ (ବହୁବ୍ରୀହି; ନତ+ଭ୍ରୂ)—ବଙ୍କା ଭ୍ରୂଲତାଯୁକ୍ତା ସ୍ତ୍ରୀ—
Natabhrū A woman with curved eye-brows.
(ନତଭ୍ରୂ—ଅନ୍ୟରୂପ) ସଂ. ବିଣ. (ବହୁବ୍ରୀହି)—ଭ୍ରୂକୁଞ୍ଚିତଯୁକ୍ତ—
Frowning.

**ନତମସ୍ତକ**—ସଂ. ବି. ଓ ବିଣ. ପୁଂ.—ନତବଦନ (ଦେଖ)
Natamastaka Natabadana
(ନତମସ୍ତକା—ସ୍ତ୍ରୀ)

**ନତମୁଖ**—ସଂ. ବି. ଓ ବିଣ. ପୁଂ—ନତବଦନ (ଦେଖ)
Nata mukha Nata badana (See)
( ନତମୁଖା; ନତମୁଖୀ—ସ୍ତ୍ରୀ )

**ନତରା (ଇତ୍ୟାଦି)**—ଦେ. ବିଣ—ଲତରା ଇତ୍ୟାଦି (ଦେଖ)
Natarā etc Latarā etc. (See)

**ନତଶାଖ**—ସଂ. ବିଣ. (ବହୁବ୍ରୀହି; ନତ+ଶାଖା )—ଯେଉଁ ଗଛର ଶାଖା
Natasākha ନଇଁ ପଡ଼ିଅଛି—
(a tree) Having its branches drooping.

**ନତା**—ଗ୍ରା. ବି.—ଲତା—Creeper.
Natā ପ୍ରାଦେ. (ମେଦିନୀପୁର) ବି.—ମୁରୁଜ (ଦେଖ)
Muruja (See)

**ନତାଂଶ**—ସଂ. ବି. ୧ । ନତଭାଗ (ଦେଖ)
Natāmsa 1. Nata bhāga (See)
୨ । (ଜ୍ୟୋତିଷ) ଏକ ବୃତ୍ତ, ଯାହାର କେନ୍ଦ୍ର ଭୂକେନ୍ଦ୍ରରେ କଳ୍ପିତ ଓ ଯାହା ବିଷୁବତ୍ ରେଖା ଉପରେ ଲମ୍ବଭାବରେ ରହେ ( ଏହି ବୃତ୍ତି ଗ୍ରହ ନକ୍ଷତ୍ରମାନଙ୍କର ଅବସ୍ଥିତି ନିର୍ଣ୍ଣୟ ପାଇଁ କଳ୍ପିତ ହୁଏ—ହି. ଶ.)—
(Astronomy) An imaginary circle cutting the e uinox at right angles.

**ନତାଙ୍ଗ**—ସଂ. ବିଣ. ପୁଂ (ବହୁବ୍ରୀହି, ନତ+ଅଙ୍ଗ)—ଯାହାର ଶରୀର
Natānga ନଇଁ ପଡ଼ିଅଛି—Bowed; stooping (person).

**ନତାଙ୍ଗୀ**—ସଂ. ବିଣ. ସ୍ତ୍ରୀ. (ବହୁବ୍ରୀହି; ନତ+ଅଙ୍ଗ+ସ୍ତ୍ରୀ. ଈ)—
Natāngi ଅବନତାଙ୍ଗୀ; ସ୍ତନଭାରରେ ଅବନତା (ଯୁବତୀ)—
(ନତାଙ୍ଗା—ଅନ୍ୟରୂପ) (a young woman) With stooping limbs; with body bent down with the weight of big breasts.
ସଂ. ବି. ସ୍ତ୍ରୀ—A woman (in general) (Apte.)

**ନତାନି ପତାନି**—ଗ୍ରା. ବି.—ଲତାନି ପତାନି (ଦେଖ)
Natāni patāni Latāni patāni (See)
(ନତାପତା—ଅନ୍ୟରୂପ)

**ନତି**—ସଂ. ବି. (ନମ ଧାତୁ+ଭାବ. ତି)—୧ । ନମନ; ନଇଁବା—
Nati 1. Bending; stooping.
୨ । ନମ୍ରତା—2. Pliability; flexibility.

୩ । ନମସ୍କାର—3. Bowing; obeisance, a bow.
୪ । ବକ୍ରତା—4. Crookedness; curvature.
୫ । ଆକର୍ଷଣ—5 Attraction
୬ । (ବ୍ୟାକରଣ) ବ୍ୟାକରଣର ନିୟମ ଅନୁସାରେ ଦନ୍ତ୍ୟ-ବର୍ଣ୍ଣର ମୂର୍ଦ୍ଧନ୍ୟ ବର୍ଣ୍ଣରୂପେ ପରିବର୍ତ୍ତନ—
6. (grammar) The change of a dental into a lingual letter (Apte)
୭ । ଜ୍ୟୋତିଷର ଏକପ୍ରକାର ଗଣନା (ହି. ଶବ୍ଦସାଗର)—
7. ( astronomy ) Parallax in latitude (Apte).

**ନତ କରିବା**—ଦେ. କ୍ରି—ନମସ୍କାର କରିବା—
Natu kariba To make obeisance.
ଜନନୀଙ୍କୁ ଶିର ନତକଲ ନତ କର ଉଷ୍ଣୀଷ । ରାଧାନାଥ, ଉଷା ।

**ନତୁ**—ସଂ. ଅ. ( ନ+ତୁ )—କିନ୍ତୁ ନୁହେ—
Natu 1 But not.
୨ । ନୋଚେତ୍; ଅନ୍ୟଥା—2. Otherwise.

**ନତୁବା**—ସଂ. ଅ—୧ । ନଚେତ୍; ନ ହେଲେ—
Natubā 1. Otherwise; else; if not.
୨ । ଅଥବା—2 Or; nor.

**ନତୋନ୍ନତ**—ସଂ. ବି. ( ଦ୍ୱନ୍ଦ୍ୱ; ନତ+ଉନ୍ନତ )—
Natonnata ଉଚ୍ଚାବଚ; ଉଚ୍ଚାନୀଚ; ନିମ୍ନୋନ୍ନତ—
Up and down; undulating; wavy.

**ନଥ୍କନା(ନି)**—ଦେ. କ୍ରି. ବିଣ—ଲଥ୍କନା (ଦେଖ)
Nathkinā(ni) Lathkinā (See)

**ନଥ**—ଦେ. ବି. (ସଂ. ନସ୍ତ ଧାତୁ=ଦୋଦୁଲ୍ୟମାନ ହେବା; ଭୁଲ. ସଂ. ନସ୍ତ=ନାକ ଓ ନସ୍ତା=ପଶୁମାନଙ୍କ ନାକରେ କରାଯିବା ଛିଦ୍ର ଓ ନାଥ=ପଶୁଙ୍କ ନାକ ଫୋଡ଼ା ହୋଇ ତହିଁରେ ଗଳାଯାଇ ଥିବା ଦଉଡ଼ି)—ନୋଥ (ଦେଖ)
Natha
नथ
**नथ**
Notha (See)
ଭଲ ମୋତି ଝଲକ ଝୁଲ ବାସବରଞ୍ଜନ ନଥ ନଇଜନ
ଉପିକା ନାସିକା ପୃଷ୍ଠ ଉଲ୍ଲସା । କବିସୂର୍ଯ୍ୟ, ସଙ୍ଗୀତ ।

**ନଥ ନଥ**—ଦେ. ଅ—ଲଥଲଥ (ଦେଖ)
Natha natha Latha latha (See)
ଦେ. ବିଣ. (କଚେରୀ)—ନଥି ତଲବ ସମ୍ବନ୍ଧୀୟ—
Relating to the calling for of a record.

**ନଥା (ଇତ୍ୟାଦି)**—ଦେ. ବି—ଲଥା ଇତ୍ୟାଦି (ଦେଖ)
Nathā (etc) Lathā etc (See)

**ନଥି**—ଦେ. ବି. (କଚେରୀ) (ହି. ଭୁ ଅନୁକୃତ; ସଂ. ନସ୍ତ=(ନାକ)ରୁ ଓ. ନଥ; ଯେଉଁ କାଗଜମାନଙ୍କର ଏକକୋଣରେ ନାକ ଫୋଡ଼ା ହେବା ପରି ବିଣା ହୋଇ ନଥ ପରି ସୂତା ଗଳ ଥାଏ । ଭୁଲ ହି. ନାଥନା=ନାକଫୋଡ଼ିବା; ସଂ. ନସ୍ତା=ପଶୁମାନଙ୍କ ନାକରେ ଦଉଡ଼ି ଗଳାଯିବା ପାଇଁ କରାଯିବା ଛିଦ୍ର; ସଂ. ନାଥ=ପଶୁମାନଙ୍କ ନାକରେ ବିଣା ହୋଇ ତହିଁରେ ଗଳାଯିବା ଦଉଡ଼ି )—
Nathi
नथि
**नथि**
୧ । କୌଣସି ବିଷୟ ସମ୍ପର୍କୀୟ ସମସ୍ତ କାଗଜମାନ, ଯାହା ତ ଏକ କୋଣରେ ଫୋଡ଼ା ହୋଇ ସୂତାରେ ଗୁନ୍ଥାଯାଇ ଗୋଟିଏ ତାଡ଼ା କରାଯାଇ ଥାଏ—1. A file of papers tagged together and relating to a particular subject.
୨ । କୌଣସି ମକଦ୍ଦମା ସମ୍ପର୍କୀୟ ସମସ୍ତ କାଗଜପତ୍ର ଯାହା ଏକତ୍ର ଗୁନ୍ଥା ହୋଇ ରଖାଯାଇଥାଏ—
2. Record of any case.

[ଦ୍ର—ଅଦାଲତର ନଥିମାନ ମୂଳତଃ ୩ ପ୍ରକାର. ଯଥା—୧ ସରେନରୀ ନଥି=ମୂଳ ମକଦ୍ଦମା ବିଗ୍ଭର ସମ୍ପର୍କୀୟ ସମସ୍ତ କାଗଜ, ୨ ଅପିଲ ନଥି=ଅପିଲ ମକଦ୍ଦମା ବିଗ୍ଭର ସମ୍ପର୍କୀୟ କାଗଜ ଓ ୩ ମୁଣ୍ଡଫର୍କା ନଥି=ବାଜେ ମକଦ୍ଦମା ସମ୍ପର୍କୀୟ ସମସ୍ତ କାଗଜ । ମକଦ୍ଦମା ସମ୍ପର୍କୀୟ ନଥିରୁ ଅପେକ୍ଷାକୃତ ଦରକାରୀ ଓ ଅଳ୍ପ ଦରକାରୀ ଓ ବେଦରକାରୀ କାଗଜମାନଙ୍କୁ ବାଛି ଭିନ୍ନ ଭିନ୍ନ ନଥି କରାଯାଏ ଓ ନିର୍ଦ୍ଦିଷ୍ଟ ସମୟ ପରେ ତହିଁ ମଧ୍ୟରୁ ଦରକାରୀ କାଗଜସମ୍ବଳିତ ନଥିକୁ ମହାଫିଜଖାନାରେ ସାଇତି ରଖାଯାଏ ଓ ବେଦରକାରୀ କାଗଜଗୁଡ଼ିକ ନଷ୍ଟ କରାଯାଏ ବା ପୋଡ଼ି ଦିଆଯାଏ । ଗୋଟିଏ ନଥିରେ ଥିବା ଦରକାରୀ, କମ ଦରକାରୀ ଓ ବେଦରକାରୀ କାଗଜମାନଙ୍କ ନଥିକୁ ଯଥାକ୍ରମେ A file ( ଏ ଫାଇଲ ), B file ( ବି ଫାଇଲ ) ଓ C file ( ସି ଫାଇଲ ) ବୋଲାଯାଏ ।]

**ନଥି ତଦନ୍ତ**—ଦେ. ବି. ( କଚେରୀ )—କଚେରୀରେ ଥିବା କୌଣସି ସରକାରୀ ନଥିର ପରିଦର୍ଶନ—
Nathi tadanta Inspection of a public record.

**ନଥି ତଲବ(ବି)**—ଦେ. ବି. ( କଚେରୀ ) ( ହି ନଥି+ତଲବ )—
Nathi talaba(bi) ଅଦାଲତରେ କୌଣସି ମକଦ୍ଦମା ବିଗ୍ଭର-
नथि तलब ବେଳେ ଅନ୍ୟ ଅଦାଲତ ଆଦିରୁ କିମ୍ବା ସେହି
**नथि तलब** ଅଦାଲତରୁ ଏ ମକଦ୍ଦମା ପ୍ରମାଣ ନିମିତ୍ତ କୌଣସି ସରକାରୀ ନଥି ଉପସ୍ଥାପିତ ହେବା ନିମନ୍ତେ ଆଦେଶ—Calling for a certain public record or part of a rebuant record from another place during the trial of a case.

[ଦ୍ର—କୌଣସି ପକ୍ଷ ନଥି ତଲବ କରିବାକୁ ହାକିମଙ୍କ ପାଖେ ଦରଖାସ୍ତ କଲେ ପ୍ରାର୍ଥିତ ନଥି ବିଗ୍ଭର ଅଦାଲତକୁ ଅଣାଯିବା ପାଇଁ ଉକ୍ତ ପକ୍ଷକୁ ନିର୍ଦ୍ଧାରିତ ଫିସ୍ ( ତଲବାନା ) ଦାଖଲ କରିବାକୁ ପଡ଼େ । ]

**ନଥି ତଲବ(ବି)ଏଫିଡେବିଟ୍**—ଦେ. ବି. (କଚେରୀ ଭାଷା) (ହି. ନଥି; ଆ. ତଲବ୍;ଇଂ. ଏଫିଡେଭିଟ୍)—
Nathi talaba(bi)ephidebit
नथितलबी आफिडेविट
**नथितलबी हलफनामा**
କୌଣସି ମକଦ୍ଦମାର ପକ୍ଷମାନେ ସ୍ଥାନାନ୍ତରରୁ କୌଣସି ନଥି ତଲବ କରିବା ପାଇଁ ହାକିମଙ୍କ ନିକଟରେ ପ୍ରାର୍ଥନା କଲେ ଉକ୍ତ ପ୍ରାର୍ଥନା ସଙ୍ଗେ ପକ୍ଷଠାରୁ ନିଆଯିବା ହଲପାନ୍ ଯୁକ୍ତ ପତ୍ର—Affidavit or sworn statement required

to be filed by a party who files a petition for calling for a certain record from another Court.

**ନଥିତଲବ କରିବା**—ଦେ. କ୍ରି (କଚେରିଆଭାଷା)—କୌଣସି ହାକିମ Nathi talaba kraibā ଅନ୍ୟ କୌଣସି ଅଦାଲତରୁ ବା (ନଥିତଲବ କରାଇବା—ଣିଜନ୍ତ) ସିରସ୍ତାରୁ ଆବଶ୍ୟକ ନଥି ଅନ୍ୟ- ନଥି ତଲବ କବା ସ୍ଥାନକୁ ମଗାଇ ପଠାଇବା— **नथि तलब करना** To call for a record; to send for a record.

**ନଥି ତଲବ(ବି)ରୁ(ରୋ)ବ କାରି**—ଦେ ବି. (କଚେରିଆଭାଷା)— Nathi talaba(bi)ru(ro)ba kāri କୌଣସି ସିରସ୍ତାରୁ ନଥିତଲବୀ ରුରୋବକାରୀ ଆବଶ୍ୟକ ନଥି ତଲବ କରାଗଲେ **नथितलबी रुबकारी** ତଲବ କରିବା ହାକିମଙ୍କଠାରୁ ନଥି ଥିବା ଅଫିସରଙ୍କ ନିକଟକୁ ପଠାଯିବା ଆଦେଶ- ପତ୍ର—An order sent from the court (which calls for a record) to the officer who is in charge of the record.

**ନଥି ଦୋରସ୍ତ କରିବା**—ଦେ. କ୍ରି. (କଚେରିଆ ଭାଷା; ହି. ନଥି+ Nathi dorasta karibā ଫା. ଦୁରବସ୍ତ)—ନଥିର ସମସ୍ତ ନଥି दुरस्त कवा କାଗଜ ପତ୍ରକୁ ଧାରାମତେ ସଜ୍ଜିତ କରି ରଖିବା; **नथि दुरुस्त करना** ନଥି ଦୋରସ୍ତ ରଖିବା—To keep or arrange record in proper order.

**ନଥି ପେଶ୍ କରିବା**—ଦେ. କ୍ରି. (କଚେରିଆ ଭାଷା; ହି. ନଥି+ଆ. Nathi peś karibā ପେଶ୍)—କୌଣସି ନଥିକୁ ହାକିମଙ୍କ ନଥି पेश कवा ନିକଟ ଉପସ୍ଥାପିତ କରିବା—To put **नथि पेश करना** up a file or record before a court or an officer.

**ନଥି ଫଏସଲ୍ କରିବା**—ଦେ. କ୍ରି. (କଚେରିଆ ଭାଷା; ହି. ନଥି+ Nathi phaesal karibā ଫା. ଫୈସଲ୍)—ନଥି ସକାଶ ନଥି फयसल करा ମକଦ୍ଦମାମାନଙ୍କର ମୀମାଂସା କରିବା— **नथि फैसला करना** To clear off one's files; to dispose (ନଥି ସାଫ କରିବା—ଅନ୍ୟରୂପ) of all the ceses on the file

**ନଥି ଫାଇଲ୍ କରିବା**—ଦେ. କ୍ରି. (କଚେରିଆ ଭାଷା; ହି. ନଥି+ଇଂ. Nathi phāil karibā ଫାଇଲ)—କୌଣସି କାଗଜକୁ ତତ୍ ନଥि फाईल करा ସମ୍ପର୍କୀୟ ନଥିର ଭାଗ ରୂପରେ ରଖିବା; ରେକର୍ଡ଼- **नथि शामिल करना** ଭୁକ୍ତ କରିବା—To keep a paper in the respective file; to file with the record.
ନଥିଭୁକ୍ତ କରିବା, ନଥି ସାମିଲ କରିବା, ନଥିସାତ୍ କରିବା } ଅନ୍ୟରୂପ

**ନଥିବା**—ଦେ. ବିଣ—୧। ଅନୁପସ୍ଥିତ— [illegible]
Nathiba [illegible] 1. Absent [illegible]
ना थावा [illegible] Poor,
—न रहना [illegible] In want; needy.
[illegible] (ଦେଖ)—Lathiba (See)

ଦେ. କ୍ରି—ଥିବା କ୍ରିୟାର ନଞାର୍ଥକ— To negative of the verb to be.

**ନଥିଭୁକ୍ତ**—ଦେ.ବିଣ—ସମ୍ପର୍କୀୟ ନଥି ସଙ୍ଗେ ସଂଯୁକ୍ତ ହେବା (କାଗଜ)— Nathibhukta Filed with or attached to a record.
नथिभुक्त **नथि शामिल**
(ନଥି ସାମିଲ୍—ଅନ୍ୟରୂପ)

**ନଦ୍** (ଧାତୁ)—ସ.—ଶବ୍ଦ କରିବା— Nad (root) To make a sound.

**ନଦ**—ସଂ ବି. ପୁଂ (ନଦ୍ ଧାତୁ+କର୍ତ୍ତୃ. ଅ; ଯାହା ଜଳସ୍ରୋତ ଯୋଗୁ Nada ନିରନ୍ତର ନାଦ କରେ)—ସ୍ରୋତବିଶିଷ୍ଟ ଜଳପ୍ରବାହ— (ନଦୀ—ସ୍ତ୍ରୀ) A river.

[ଦ୍ର—ନଦ ଓ ନଦୀର ଏକ ଅର୍ଥ, ମାତ୍ର 'ନଦ' ପୁଂଲିଙ୍ଗ ଏବଂ 'ନଦୀ' ସ୍ତ୍ରୀଲିଙ୍ଗ । ଯେଉଁ ସ୍ରୋତର ଅଧିଷ୍ଠାତ୍ରୀ ଦେବତା ପୁଂ. ବାଚକ ତାହା ନଦ ଏବଂ ଯାହାର ଦେବତା ସ୍ତ୍ରୀ ବାଚକ ତାହା ନଦୀ ନାମରେ ଖ୍ୟାତ, ଯଥା—ସିନ୍ଧୁ, ବ୍ରହ୍ମପୁତ୍ର, ଶୋଣଭଦ୍ର ଆଦି 'ନଦ' ଏବଂ ଗଙ୍ଗା, ଯମୁନା, ସରସ୍ୱତୀ ଆଦି 'ନଦୀ' । କୌଣସି ଭୂଖଣ୍ଡରେ ମଧ୍ୟ ଓ ପୂର୍ବଗାମୀ ସ୍ରୋତମାନେ 'ନଦୀ' ଏବଂ ପଶ୍ଚିମଗାମୀ ସ୍ରୋତମାନେ 'ନଦ' ନାମରେ କଥିତ ହୁଅନ୍ତି, କିନ୍ତୁ ନର୍ମଦା ପଶ୍ଚିମବାହିନୀ ସ୍ରୋତ ହେଲେହେଁ 'ନଦୀ' ନାମରେ ଖ୍ୟାତ । ]

**ନଦଉ** (ଇତ୍ୟାଦି)—ଦେ. ବି—ଲଦଉ ଇତ୍ୟାଦି (ଦେଖ) Nadau (etc) Ladau etc (See).

**ନଦକା**—ଦେ. ବିଣ—ଲଦକା (ଦେଖ) Nadakā Ladakā (See)

**ନଦନ**—ଦେ. ବି—ଲଦନ (ଦେଖ) Nadana Ladana (See)
ସ, ବି (ନଦ୍ ଧାତୁ+ଭାବ ଅନ)—ଶବ୍ଦ କରିବା— Producing a sound.

**ନଦନୁ**—ସ ବି. (ନଦ୍ ଧାତୁ+କର୍ତ୍ତୃ. ଅନୁ)—
Nadanu ୧। ମେଘ (ହି. ଶବ୍ଦସାଗର)—1. Cloud.
୨। ସିଂହ (ହି. ଶବ୍ଦସାଗର)—2 Lion.
୩। (+ଭାବ. ଅନୁ) ଶବ୍ଦ (ହି.ଶବ୍ଦସାଗର)— 3. Sound.

**ନଦର**—ସ. ବି. (ନଦ+ର)—ନଦ ବା ନଦୀର ପାର୍ଶ୍ୱବର୍ତ୍ତୀ ପ୍ରଦେଶ Nadara (ହି. ଶବ୍ଦସାଗର)—The country along the bank of a river.
ସ. ବିଣ. (ନ+ଦର)—ନିଡର; ନିର୍ଭୟ (ହି. ଶବ୍ଦସାଗର)— Fearless.

**ନଦର** (ଇତ୍ୟାଦି)—ବୈଦେ. ବି. (ଆ)—ନଜର ଇତ୍ୟାଦି (ଦେଖ) Nadara (etc) Najara etc (See)

**ନଦା**—ଦେ. ବି—ଲଦବା— Nadā Loading.

**ନଦା(ଦେ)ଇବା**—ଦେ. କ୍ରି—ଲଦାଇବା (ଦେଖ) Nadā(de)iba Ladāiba (See).

**ନଦାଣ**—ଗ୍ରା. ବି. ଓ ବିଣ—ଲଦାଣ ( ଦେଖ )
Nadāna Ladāna ( See )

**ନଦାନ୍ ଛବିଶ୍ବା**—ଦେ. ବି—୧ । ଅତି ଶୋଚନୀୟ ଓ ଅକଥନୀୟ ଅବସ୍ଥା—
Nadān chhabiswā 1. A very wretched or miserable condition
**सर्वस्वहा**
(ନାଦାନ୍ ଛବିଶ୍ବା – ଅନ୍ୟରୂପ) ୨ । ଅତି ଗରିବ ଅବସ୍ଥା—
2. Condition of extreme poverty.
ଦେ ବିଣ—ଅତି ଗରିବ—Very poor.

**ନଦାନଦି**—ଗ୍ରା ବି– ବୋଝ ଆଦି ଲଦିବା—
Nadānadi Act of loading

**ନଦାମୁ**—ଦେ. ବି—ଲଦାମୁ ( ଦେଖ )
Nadāmu Ladāmu ( See )

**ନଦାରତ୍(ଦ୍)**–ବୈଦେ. ଅ. [ ଆ ନଦାରତ୍(ଦ୍)]—
Nadārat(d) ୧ । ନାସ୍ତି ; ନାହିଁ—1 No; not
नदारद ( ଯଥା—ତାଙ୍କର ଆମ ପ୍ରତି ଖାତିର ନଦାରଦ୍ । )
**नदारत द्)** ୨ । ଅନୁପସ୍ଥିତ, ଅସ୍ଥିତ—2. Absent

**ନଦି**—ସଂ. ବି. ( ନନ୍ଦ୍ ଧାତୁ + ଭାବ ଇ )– ସ୍ତୁତି (ହି. ଶବ୍ଦସାଗର)—
Nadi Praise.

**ନଦିଆ**—ଦେ. ବି. ( ସଂ. ନବଦ୍ବୀପ )—୧ । ବଙ୍ଗଦେଶର ଗୋଟିଏ ଜିଲ୍ଲା ଓ ସହର – 1. Name of a district and town in Bengal.
Nadiā
नदिया; नदे **नदिया**
[ଦ୍ର—ଏଠାରେ ମହାତ୍ମା ଶ୍ରୀ ଚୈତନ୍ୟ ଜନ୍ମଗ୍ରହଣ କରିଥିଲେ । ଚୈତନ୍ୟଙ୍କ ଜନ୍ମ ଓ ଆଦ୍ୟଲୀଳାଭୂମି ବୋଲି ଅଧୁନିକ ବୈଷ୍ଣବମାନେ ଏହାକୁ ଗୋଟିଏ ପ୍ରଧାନ ତୀର୍ଥ ଜ୍ଞାନ କରନ୍ତି । ]
୨ । ଏକପ୍ରକାର ଧାନ—
2. Name of a kind of paddy.

**ନଦିଆ କୀର୍ତ୍ତନ**—ଦେ. ବି. ( ସଂ ନବଦ୍ବୀପ ଓ କୀର୍ତ୍ତନ )—ଚୈତନ୍ୟ ମହାପ୍ରଭୁଙ୍କ ଅମଳରୁ ଓଡ଼ିଶାରେ ଚଳୁଥିବା ବଙ୍ଗଳାଭାଷା ଓ ବଙ୍ଗଳା ସ୍ବର ମିଶା ସଂକୀର୍ତ୍ତନ –
Nadiā kirttana
नदिआब कीर्तन
ନଦିଆ ସଂକୀର୍ତ୍ତନ } ଅନ୍ୟରୂପ
ନଦିଆ ଗାଇଣା }
The mode of chanting hymns accompanied by music, as it prevails in Nabadwipa.
[ ଦ୍ର—ଓଡ଼ିଆମାନଙ୍କ ଦେଶୀ ସଂକୀର୍ତ୍ତନରେ ଏକାଧିକ ମୃଦଙ୍ଗ ଓ ଅନେକ ଯୋଡ଼ା ବଡ଼ ଝାଞ୍ଜ ବ୍ୟବହୃତ ହୁଏ । ଓଡ଼ିଶୀ ସଂକୀର୍ତ୍ତନରେ ବୋଲାଯିବା ଓଡ଼ିଆମିଶା ବିକୃତ ବଙ୍ଗଳା ପଦମାନ ମୃଦଙ୍ଗ ବାଡ଼ିଆ ଓ ଝାଞ୍ଜ ପିଟାର କର୍ଣ୍ଣପୀଡ଼ାଦାୟକ ଧ୍ୱନରେ ଲୁଚଯାଏ । ଓଡ଼ିଆ ସଂକୀର୍ତ୍ତନଆମାନେ ସଂକୀର୍ତ୍ତନକୁ ମୃଦଙ୍ଗପିଟା ଓ ଝାଞ୍ଜପିଟାରେ ପରିଣତ କରିଥିଲେ । କିନ୍ତୁ କ୍ରମଶଃ ତହିଁ ପରବର୍ତ୍ତିରେ ଓଡ଼ିଶାର ସ୍ଥାନେ ସ୍ଥାନେ ନଦିଆ କୀର୍ତ୍ତନ ଚଳିଲଣି । ନଦୀଆ କୀର୍ତ୍ତନରେ ଚୈତନ୍ୟ ସମ୍ପ୍ରଦାୟଙ୍କ ଗୀତ,ବଙ୍ଗଳା ପଦମାନ ବୋଲାଯାଏ ଓ ଏକ ଦଳରେ ଓଡ଼ିଶୀ ମୃଦଙ୍ଗ ଅପେକ୍ଷା କ୍ଷୁଦ୍ର ମୃଦଙ୍ଗ ଗୋଟିଏ ଓ ୨।" ହଳ କୁବୁଜା ( କ୍ଷୁଦ୍ର ଝାଞ୍ଜ ) ସୁମଧୁର ଭାବରେ ବଜାଯାଏ । ନଦିଆ କୀର୍ତ୍ତନରେ ବୋଲାଯିବା ଶୁଦ୍ଧତର ବଙ୍ଗଳା ପଦମାନ ଓ ମିଷ୍ଟତର ବାଦ୍ୟକ କର୍ଣ୍ଣରସାୟନ ହୁଏ । ଏଥିପାଇଁ ଶିକ୍ଷିତ ଲୋକେ 'ନଦିଆ ଗାଉଣା' ଓ 'ନଦିଆ ବାଜଣା'କୁ ଆଦର କରନ୍ତି ଓ କ୍ରମଶଃ ଓଡ଼ିଶାରୁ କୀର୍ତ୍ତନରେ ଓଡ଼ିଶୀ ଗାଉଣା ଓ ଓଡ଼ିଶୀ ବାଜଣା କମି ଯାଉଛି । ]

**ନଦିଆ ଚାନ୍ଦ**—ଦେ. ବି—ଶ୍ରୀ ଗୌରଚନ୍ଦ୍ର, (ନବଦ୍ବୀପର ଚନ୍ଦ୍ରସ୍ବରୂପ) ଶ୍ରୀ ଚୈତନ୍ୟଦେବ—
Nadiā chānda
नदे चान्द, नदेर चान्द An epithet of Śrī Chaitanya.
**नदियाका चांद्**

**ନଦିକା**–ସଂ ବି. ( ନଦ+ସ୍ବାର୍ଥେ. କ+ସ୍ତ୍ରୀ. କ୍ଷୁଦ୍ରାର୍ଥେ. ଆ)—
Nadikā କ୍ଷୁଦ୍ର ନଦୀ—Small river; revulet; rill; brook (Apte).

**ନ ଦିନ କରିବା**—ପ୍ରାଦେ. (ପୁରୀ) କ୍ରି ( ସ. ନବଦିନ )—
Na dina karibā ଗୁଣ୍ଡିଚାଠାରୁ ବାହୁଡ଼ା ପର୍ଯ୍ୟନ୍ତ ନଅ ଦିନ
(ନଅ ଦିନ କରିବା—ଅନ୍ୟରୂପ) ପୁରୁଷୋତ୍ତମ କ୍ଷେତ୍ରରେ ତୀର୍ଥବାସ କରି ହବିଷ୍ୟ କରିବା—To observe Habishya at Puri during the 9 days from the Gundichā up to Bāhurdā Ekādaśi.

**ନଦିବା**—ଗ୍ରା. କ୍ରି—ଲଦିବା ( ଦେଖ )
Nadibā Ladibā ( See )

**ନଦୀ**—ସଂ ବି. ସ୍ତ୍ରୀ ( ନଦ + ସ୍ତ୍ରୀ. ଈ )—
Nadī (ନଦର ସ୍ତ୍ରୀଲିଙ୍ଗ) ନଦ ( ଦେଖ );
Feminine of Nada; Nada ( See )
[ ନଦୀର ଅନ୍ୟ ସଂ.ନାମ—ସରିତ୍, ସରିତା, ଆପଗା, ତରଙ୍ଗିଣୀ ଶୈବଳିନୀ, ତଟିନୀ, ହ୍ରଦିନୀ, ଧୁନୀ, ସ୍ରୋତସ୍ବତୀ, ଦ୍ବୀପବତୀ, ନିମ୍ନଗା, ନିର୍ଝରିଣୀ, ସରସ୍ବତୀ, ସମୁଦ୍ରଗା, କୂଳବତୀ, କୂଳଂକଷା, କଲ୍ଲୋଳିନୀ, ଋଷିକୁଲ୍ୟା, ସ୍ରୋତୋବାହା । ଅଗଭୀର ଓ ପ୍ରଶସ୍ତ ଓ ଦୀର୍ଘ ଜଳମାର୍ଗକୁ ନଦ ଓ ଗଭୀର ନଦକୁ ନଦୀ ବୋଲାଯାଏ । ]

**ନଦୀ କାନ୍ତ**—ସଂ. ବି. ( ୬ଷ୍ଠୀ ତତ୍, ନଦୀ + କାନ୍ତ ) —ସମୁଦ୍ର—
Nadī kānta The sea; ocean.

**ନଦୀ କାନ୍ତା**—ସଂ. ବି—୧ । ଜାମୁ ଗଛ (ହି. ଶବ୍ଦସାଗର )—
Nadī kāntā 1. The blackberry tree.
୨ । କାକଜଂଘା ( ଦେଖ ) ( ହି. ଶବ୍ଦସାଗର )—
2. Kākajamghā ( See )

**ନଦୀ କୂଳ**—ସଂ ବି. ( ୬ଷ୍ଠୀ ତତ୍; ନଦୀ+କୂଳ,—
Nadī kūla ନଦୀର ତଟ; ନଦୀ କିନାରା; ନଦୀ ତୀର —
River-bank; riverside.

**ନଦୀକୂଳ ପ୍ରିୟ**—ସଂ. ବି. ( ୬ଷ୍ଠୀ ତତ୍ ଓ ବହୁବ୍ରୀହି; ଏହା ନଦୀ କୂଳରେ
Nadīkūla priya ଜନ୍ମ ଥିବାରୁ ) —ଜଳ ବେତସ (ହି.ଶ.)—
A kind of ratan growing on the edge of rivers.

**ନଦୀକୂଳ ବନ୍ଧୁ**—ସଂ. ବି ( ୬ଷ୍ଠୀ ତତ୍, ନଦୀକୂଳ+ବନ୍ଧୁ )—
Nadīkūla bandhu ନଦୀକୂଳରେ ବାସ କରୁଥିବା ପକ୍ଷିବିଶେଷ —
A kind of bird.

**ନଦୀ ଗର୍ଭ**—ସଂ. ବି. ( ୬ଷ୍ଠୀ ତତ୍; ନଦୀ + ଗର୍ଭ )—
Nadī garbha ନଦୀର ଉଭୟ କୂଳର ମଧ୍ୟବର୍ତ୍ତୀ ସ୍ଥାନ —
The bed of a river.

**ନଦୀଜ**—ସ. ବି. (ନଦୀ+ଜନ୍ ଧାତୁ+କର୍ତ୍ତୃ. ଅ)—ନଦୀରୁ ଉତ୍ପନ୍ନ—
Nadīja Produced from or growing in a
(ନଦୀଜା—ସ୍ତ୍ରୀ) river, river-born
ସ. ବି—୧ । ( ଗଙ୍ଗାଙ୍କ ପୁତ୍ର ) ଭୀଷ୍ମ—
1. Bhishma
୨ । ହିଞ୍ଜଳ (ଗଛ) ( ଦେଖ )
2. Hiñjaḷa ( tree ) ( See )
୩ । ଅର୍ଜ୍ଜୁନ ( ଗଛ ) ( ଦେଖ )
3. Arjuna ( tree ) ( See )
[ ଦ୍ର—ଉକ୍ତ ଦୁଇବୃକ୍ଷ ନଈ ପୋଖରୀ ଆଦି ଜଳାଶୟ ନିକଟରେ ଜନ୍ମେ । ]
୪ । କଳା ସୁର୍ମା ( ହି. ଶବ୍ଦସାଗର )—
4. Black collyrium.
୫ । ସମୁଦ୍ର ଫଳ ( ଦେଖ ) ( ହି. ଶବ୍ଦସାଗର )—
5. Samudra phaḷa ( See )

**ନଦୀଜା**—ସ. ବିଣ. ସ୍ତ୍ରୀ ( ନଦୀଜ+ଆ )—ନଦୀଜର ସ୍ତ୍ରୀଲିଙ୍ଗ—
Nadījā Feminine of Nadīja
ସ. ବି—ଅଗ୍ନିମନ୍ଥ ବୃକ୍ଷ ( ହି ଶବ୍ଦସାଗର ) ( ଦେଖ )
Agnimantha (tree) ( See )

**ନଦୀ ଜାତ**—ସ ବିଣ. ( ୫ମୀ ତତ୍; ନଦୀ+ଜାତ )—
Nadī jāta ନଦୀଜ ( ଦେଖ )—Nadīja ( See )

**ନଦୀଜ୍ଞ**—ସ. ବି. ( ନଦୀ+ଜ୍ଞା ଧାତୁ+କର୍ତ୍ତୃ ଅ )—
Nadījña ଯେଉଁ ବ୍ୟକ୍ତି ନଦୀର ଗଭୀରତା ସମ୍ବନ୍ଧରେ ଅଭିଜ୍ଞ ଥିବାରୁ ନଦୀରେ ନୌକା, ଜାହାଜ ଆଦିକୁ ବାଟ କଢ଼ାଏ; କଢ଼ୁଆଳ—A pilot.
ସ. ବିଣ—ନଦୀର ଗଭୀରତା ଓ ବିଷମ ସମ୍ବନ୍ଧରେ ଅଭିଜ୍ଞ—
Familiar with the depth, rapids and dangerous spots of a river.

**ନଦୀ ତଟ**—ସ. ବି. ( ୬ଷ୍ଠୀ ତତ୍; ନଦୀ+ତଟ )—ନଦୀକୂଳ—
Nadī taṭa River-bank.

**ନଦୀ ତରସ୍ଥାନ**—ସ. ବି. (ନଦୀ+ତୃ ଧାତୁ+ଅ=ନଦୀତର+ସ୍ଥାନ)—
Nadī tarasthāna ନଈ ପାର ହେବା ଘାଟ—
Ferry-ghat; a place where people are ferried across a river.

**ନଦୀ ତୀର**—ସ. ବି. (୬ଷ୍ଠୀ ତତ୍; ନଦୀ+ତୀର)—ନଈକୂଳ—
Nadī tīra Riverside.

**ନଦୀ ଦୋହ**—ସ. ବି. ( ମ. ପ. ଲୋ; ନଦୀ+ଦୋହ )—ନଈ ମାସୁଲ;
Nadī doha ନଈ ପାର ହେବା ଲୋକ ପାର କରିବା ବ୍ୟକ୍ତିକୁ ଯେଉଁ ଶୁଳ୍କ ଦିଏ ( ହି. ଶବ୍ଦସାଗର )—
Ferry-toll; fees levied for ferrying people across a river.

**ନଦୀଧର**—ସ. ବି. ( ନଦୀ+ଧୃ ଧାତୁ+କର୍ତ୍ତୃ. ଅ; ଯେ ଗଙ୍ଗା ନଦୀକୁ
Nadīdhara ମସ୍ତକରେ ଧାରଣ କରି ଅଛନ୍ତି )—
ଶିବ, ମହାଦେବ ( ହି. ଶବ୍ଦସାଗର )
Siba.

**ନଦୀନ**—ସ ବି. ( ୬ଷ୍ଠୀ ତତ୍; ନଦୀ+ଇନ୍=ପ୍ରଭୁ )—୧ । ସମୁଦ୍ର—
Nadīna 1. The sea.
୨ । ବରୁଣ—2. The God of the sea.
୩ । ବରୁଣ ଗଛ ( ଦେଖ )
3. Baruṇa ( tree ) ( See )
ସ. ବିଣ. ପୁଂ ( ନ+ଦୀନ )—ଯେ ଦୀନ ଅର୍ଥାତ୍ ଦରିଦ୍ର ନୁହେଁ;
(ନଦୀନା—ସ୍ତ୍ରୀ) ଦୀନ ଭିନ୍ନ (ବ୍ୟକ୍ତି)—Not poor.

**ନଦୀ ନିଷ୍ପାବ**—ସ. ବି—ଦାଳୁଅ ଧାନ ( ହି. ଶବ୍ଦସାଗର )—
Nadī nishpāba Summer-paddy.
[ ଦ୍ର—ଏ ଧାନର ଗୁଣ—ଲ କଷାଳିଆ, ବଗଡ଼ା, ରୁକ୍ଷ, ବାତ ଓ କଫ ଉତ୍ପାଦକ ଓ ବିଷଦୋଷନାଶକ—ହି. ଶବ୍ଦସାଗର । ]

**ନଦୀ ପତି**—ସ. ବି. ( ୬ଷ୍ଠୀ ତତ୍, ନଦୀ+ପତି )—ସମୁଦ୍ର—
Nadī pati The sea.

**ନଦୀ ପ୍ରଦେଶ**—ସ. ବି—ଯେଉଁ ପ୍ରଦେଶର ସମସ୍ତ ଜଳ ଗୋଟିଏ ନଦୀକୁ
Nadī pradeśa ବୋହିଯାଏ—River basin.

**ନଦୀ ପ୍ରବାହ**—ସ. ବି. ( ୬ଷ୍ଠୀ ତତ୍; ନଦୀ+ପ୍ରବାହ )—ନଈର ସୁଅ;
Nadī prabāha ନଦୀସ୍ରୋତ—The current or flow of a river.

**ନଦୀ ବଙ୍କ**—ସ. ବି. ( ୬ଷ୍ଠୀ ତତ୍; ନଦୀ+ବଙ୍କ=ବାଙ୍କ )—ନଈର
Nadī baṅka ବାଙ୍କ—The bend or turn of a river; the place where a river turns to another direction

**ନଦୀ ବନ୍ୟା**—ସ. ବି.( ୬ଷ୍ଠୀ ତତ୍; ନଦୀ+ବନ୍ୟା )—ନଈବଢ଼ି; ନଦୀର
Nadī banyā ଜଳବୃଦ୍ଧି; ବର୍ଷାଦି ଯୋଗୁଁ ନଦୀର ଜଳସ୍ଫୀତି—
The flood or inundation of a river; the swelling of a river.

**ନଦୀ ବୃଦ୍ଧି**—ସ. ବି—ନଦୀ ବନ୍ୟା ( ଦେଖ )
Nadī bṛuddhi Nadī banyā ( See )

**ନଦୀଭବ**—ସ. ବିଣ. (ନଦୀ+ଭୂ ଧାତୁ+କର୍ତ୍ତୃ. ଅ)—ନଦୀରୁ ଉତ୍ପନ୍ନ—
Nadībhaba Produced from a river.
ସ. ବି—ସୈନ୍ଧବ ଲୁଣ ( ହି. ଶବ୍ଦସାଗର ) ( ଦେଖ )
(ନଦୀଭବ—ଅନ୍ୟରୂପ) Saindhaba salt ( See )

**ନଦୀଭୂଷକ**—ସ ବି—ମାଣସାରୁ ( ହି: ଶବ୍ଦସାଗର ) ( ଦେଖ )
Nadībhūshaka Māṇasāru ( See )

**ନଦୀମାତୃକ**—ସ. ବିଣ. ପୁଂ. ( ବହୁବ୍ରୀହି; ନଦୀ+ମାତୃ+କ; ଯେଉଁ
Nadīmātṛuka ସ୍ଥାନର ନଦୀ ମାତୃସ୍ୱରୂପ )—ଯେଉଁ ଦେଶରେ
( ଦେବମାତୃକ—ବିପରୀତ ) ନଦୀଜଳ ସାହାଯ୍ୟରେ ଶସ୍ୟାଦି ଉତ୍ପନ୍ନ
( ନଦୀମାତୃକା—ସ୍ତ୍ରୀ ) ହୁଏ—( a country ) Watered by rivers; river-irrigated ( area ).
[ ଦ୍ର—ବୃଷ୍ଟିଜଳଦ୍ୱାରା ଯେଉଁ ଦେଶରେ ଶସ୍ୟ ଉତ୍ପନ୍ନ ହୁଏ ତାକୁ ଦେବମାତୃକ ଦେଶ କହନ୍ତି । ]

**ନଦୀ ମୁଖ**—ସ. ବି. ( ୬ଷ୍ଠୀ ତତ୍, ନଦୀ+ମୁଖ )—
Nadī mukha ୧ । ନଈର ମୁହାଣ; ନଦୀ ଓ ସମୁଦ୍ରର ସଙ୍ଗମ ସ୍ଥାନ—
1. The mouth of a river.

୨ । ( ନଦୀରୂପ ମୁଖ; ରୂପକ କର୍ମଧାରୟ ) ସମୁଦ୍ରର ନଦୀରୂପ ଜଳ ନିଃସରଣ ପଥ—
2. The outlet of a sea consisting of a river flowing out of it.

**ନଦୀ ରୟ**—ସଂ. ବି. ( ୬ଷ୍ଠୀ ତତ, ନଦୀ + ରୟ=ପ୍ରବାହ; ବେଗ )—
Nadiraya ନଦୀ ପ୍ରବାହ ( ଦେଖ )—Nadi prabāha (See)

**ନଦୀଶ**—ସଂ. ବି. ( ୬ଷ୍ଠୀ ତତ୍; ନଦୀ + ଈଶ )—ସମୁଦ୍ର—
Nadiśa The sea.

**ନଦୀଷ୍ଣ**—ସଂ. ବିଣ. ପୁଂ ( ନଦୀ + ସ୍ନା ଧାତୁ + କର୍ତ୍ତୃ. ଅ )—
Nadishṇa ୧ । ଯେ ନଦୀରେ ସ୍ନାନ କରେ—
( ନଦୀଷ୍ଣା—ସ୍ତ୍ରୀ ) 1. Bathing in a river.
୨ । ନଦୀଜ୍ଞ ( ଦେଖ )—2. Nadijña ( See )

**ନଦୀସ୍ନାୟୀ**—ସଂ. ବିଣ ପୁଂ. ( ନଦୀ + ସ୍ନା ଧାତୁ + କର୍ତ୍ତୃ. ଇନ୍; ୧ମା. ୧ବ )—ଯେ ନଦୀରେ ସ୍ନାନ କରେ—
Nadisnāyi
(ନଦୀସ୍ନାୟିନୀ—ସ୍ତ୍ରୀ) Bathing in a river.

**ନଦୀ ସ୍ରୋତଃ**—ସଂ. ବି ( ୬ଷ୍ଠୀ ତତ୍, ନଦୀ+ସ୍ରୋତସ୍ )—ନଦୀର ସୁଅ; ନଦୀପ୍ରବାହ—The current or flow of a river
Nadi srotaḥ
( ନଦୀସ୍ରୋତ—ଦେଶଜରୂପ )

**ନଦେୟା**—ସଂ. ବି. ( ନଦ+ଏୟ + ସ୍ତ୍ରୀ. ଅ )—ଭୂଇଁଜାମୁ (ହ୍ରି ଶ.)—
Nadeyā A small variety of blackberry tree.

**ନଦ୍ଧ**—ସଂ. ବିଣ. ( ନହ୍ ଧାତୁ=ବନ୍ଧନ କରିବା+କର୍ମ. ତ )—
Naddha ୧ । ବନ୍ଧା ହୋଇଥିବା; ବଦ୍ଧ—
( ନଦ୍ଧା – ସ୍ତ୍ରୀ ) 1. Tied; bound down.
୨ । ପିନଦ୍ଧ; ପରିହିତ, ପିନ୍ଧା ଯାଇଥିବା—2. Worn.
୩ । ବ୍ୟାପ୍ତ—3. Spread, occupied; pervaded

**ନଦ୍ଧ୍ରୀ**—ସଂ ବି. ସ୍ତ୍ରୀ. ( ନହ୍ ଧାତୁ + କରଣ. ତ୍ର + ସ୍ତ୍ରୀ. ଈ )—ଚର୍ମମୟ ରଜ୍ଜୁ; ଚମ ଦଉଡ଼ି—
Naddhri
A rope of hide; a leathern chord.

**ନନ୍‌ସେନ୍ସ**—ବୈଦେ. ବିଣ. ( ଇଂ )—ନିର୍ବୋଧ; ମୂର୍ଖ—
Nan-sens Nonsense
ନନ୍‌ସେନ୍ସ **ननसेन्स**

**ନନନ୍ଦା**—ସଂ. ବି. ସ୍ତ୍ରୀ. ( ସଂ. ନନନ୍ଦୃ ଶବ୍ଦର ୧ମା. ୧ବ. ନ=ନଞର୍ଥେ+ ନନ୍ଦ୍ ଧାତୁ =ଆନନ୍ଦିତ ହେବା+ଅ + ସ୍ତ୍ରୀ. ଅ; ଯେ ଭାଉଜ ପ୍ରତି ପ୍ରସନ୍ନା ହୁଏ ନାହିଁ; ଶରଲ୍ଲ ଭାଉଜ ଆସିଲେ ଯାହାଠାରୁ ଭାଇଙ୍କ ସ୍ନେହ କମିଯାଏ । ଏଥିପାଇଁ ନବାଗତ ବଧୂକୁ ପ୍ରଥମ ଗୃହପ୍ରବେଶ କାଳରେ ନଣନ୍ଦ ବାଟ ଓଗାଳେ ଓ ଉତ୍କୋଚ ପାଇଲେ ବାଟ ଛାଡେ)—ନଣନ୍ଦ; ଭର୍ତ୍ତୃଭଗ୍ନୀ—Husband's sister.
Nanandā
(ନନାନ୍ଦା—ଅନ୍ୟରୂପ)
ନନାନ୍ଦପତି / ନନାନ୍ଦୃପତି } ପୁଂ=ନଣନ୍ଦେଇ

**ନନା**—ସଂ. ବି—୧ । ମାତା (ହ୍ରି. ଶ.)—1. Mother.
Nanā ୨ । କନ୍ୟା( ହ୍ରି. ଶ.)—2. Daughter.
୩ । ବାକ୍ୟ (ହ୍ରି. ଶ.)—3. Word; utterance.

**ନନା**—ଦେ. ବି. [ଭୁଇ. ଦ୍ରା. ନନା=ପିଉସୀ; ସମ୍ଭବତଃ ଦ୍ରା. ନାନୀ (ବଡ଼ଭଉଣୀ) ଓଡ଼ିଆରେ ସେହି ଅର୍ଥରେ ବ୍ୟବହୃତ ହୋଇ ଉକ୍ତ ଶବ୍ଦର ବିପରୀତଲିଙ୍ଗ ରୂପେ 'ନନା' ଶବ୍ଦ ଚଳିଅଛି)—୧ । ଜ୍ୟେଷ୍ଠଭ୍ରାତା, ବଡ଼ଭାଇ; ଭାଇନନା; ଭାଇନା—1. Elder brother.
Nanā
(ନାନୀ—ସ୍ତ୍ରୀ)
ଦାଦା
भया

ଗୀ. ଅନ୍ୱ ଡାକନ୍ତାକୁ ଧିକା ସେ ଯୁଝୁଣ୍ଟିର ନନା
ତେ ଅନ୍ୱ ହାରିଲେ ଖେଳେ ଘର ଭୁଲେ ପ୍ରିୟାଙ୍ଗନା ।
କୃଷ୍ଣସିଂ. ମହାଭାରତ ବନ ।

[ ଦ୍ର—ମତାନ୍ତରେ ସଂ. ନୃ ଶବ୍ଦର ୧ମା. ୧ବ. ନା; ନ ନା=ଯେ ନର ନୁହନ୍ତି ଅର୍ଥାତ୍ ଦେବତା, ଅତଏବ ମାନ୍ୟ ବ୍ୟକ୍ତିଙ୍କୁ 'ନନା' ବୋଲି ସମ୍ବୋଧନ କରିବା ସ୍ୱାଭାବିକ ।
ଋକ୍‌ବେଦ ୯।୧୧୨।୩ ରେ 'ନନା' ଶବ୍ଦ 'ମାତା' ଅର୍ଥରେ ବ୍ୟବହୃତ । ହିନ୍ଦିରେ ମାତାମହଙ୍କୁ ନନ୍ନା ଓ ନାନା ବୋଲାଯାଏ । ]

୨ । କଥାପ୍ରସଙ୍ଗରେ ଯାହାକୁ ବଡ଼ଭାଇ ବୋଲି ସମ୍ବୋଧନ କରାଯାଏ – 2 One addressed as an elder brother.

ଲୁଆନନା ଘର ଡୋଳରେ ଠେଲୁ ଅନା । ଶିଶୁଗୀତ ।

ଗୋସାଇଁ ୩ । ବ୍ରାହ୍ମଣଙ୍କ ପ୍ରତି ବ୍ରାହ୍ମଣେତର ଜାତିର ସାଧାରଣ ସମ୍ବୋଧନ— 3 A word used in addressing a Brāhmaṇa (generally) by a non-Brāhmaṇa.
महाराज

ପ୍ରାଦେ. (ପୁରୀଜିଲ୍ଲାର ବ୍ରାହ୍ମଣଙ୍କ ବ୍ୟବହୃତ ଶବ୍ଦ; ତେ. ନାଇନା) —
୪ । ପିତା; ବାପ—4. Father.
୫ । ଗୃହକର୍ତ୍ତା—5 The male head of a house.
ନନାଙ୍କର ପାଠେ ତ ନାନୀଙ୍କର ପାଠେ । ତଗ ।
୬ । ନନା ଗୋସାଇଁ ( ଦେଖ )
6 Nanā gosāiñ ( See )

ପ୍ରାଦେ. (ସମ୍ବଲପୁର) ବୈଦେ. ବି. (ଦ୍ରା. ନନା=ପିଉସୀ)—ପିଉସୀ—Father's sister.

**ନନା ଗୋସା(ସେ)ଇଁ**—ଦେ ବି ଓ ସମ୍ବୋଧନ—ସାଧାରଣ ବ୍ରାହ୍ମଣଙ୍କ ପ୍ରତି ସମ୍ବୋଧନ—A term used in addressing Brāhmaṇas generally.
Nanā gosā(se)iñ
ଗୋସାଞି
**देवताजो; महाराजजो**

**ନନାନ୍ଦା**—ସଂ. ବି. ସ୍ତ୍ରୀ. (ସଂ. ନନାନ୍ଦୃ, ୧ମା. ୧ବ)—ନନନ୍ଦା (ଦେଖ)
Nanāndā Nanandā (See)

**ନନୀ**—ପ୍ରାଦେ. (ଗଡ଼ଜାତ) ବି (ସଂ.ନବନୀତ)—୧ । ନଳୁଣୀ; ନବନୀତ—
Nani 1. Butter.
୨ । ରଜାଝିଅ; ଜେମା; ରାଜଜେମା—2. A term of endearment used to a king's daughter.
୩ । ଦୁଲଣୀ; ଗେହ୍ଲା ଝିଅ —3. A petted daughter.
(ନନ୍ନୀ— ଅନ୍ୟରୂପ) ୪ । ପ୍ରାଦେ. (ସମ୍ବଲପୁର) ବି— ବ୍ରାହ୍ମଣକନ୍ୟା— 4. A term used to a Brāhmaṇa's daughter.

[ ଦ୍ର—ସମ୍ବଲପୁରର କେତେକ ଅଞ୍ଚଳରେ ବ୍ରାହ୍ମଣ କନ୍ୟାକୁ 'ନନୀ' ଓ ଶୂଦ୍ର କନ୍ୟାକୁ 'ବୁଢ଼ୀ' ବୋଲି ଡାକନ୍ତି ।]

**ନନୁ**—ସ. ଅ. (ନ+ନୁଦ୍ ଧାତୁ=ପ୍ରେରଣ କରିବା+କର୍ତ୍ତୃ ଉ)—
Nanu (ପ୍ରଶ୍ନ, ସ୍ୱୀକାର, ସନ୍ଦେହ, ଜିଜ୍ଞାସା, ଅନୁନୟ, ବିରୋଧ ଓ ଆମନ୍ତ୍ରଣ-ଅର୍ଥବୋଧକ) ଉ—(interjection) A word of emphasis (used in questioning, admitting, doubting, requesting drawing attention etc).

[ଦ୍ର—ସଂସ୍କୃତରେ ଏହା ବାକ୍ୟର ଆଦ୍ୟରେ ବ୍ୟବହୃତ ହୁଏ ।]

**ନନ୍ଦ୍** (ଧାତୁ)—ସ—ଆନନ୍ଦିତ ହେବା—
Nand (root) To be glad

**ନନ୍ଦ**—ସ. ବି. (ନନ୍ଦ୍ ଧାତୁ+ଭାବ. ଅ)—୧ । ଆନନ୍ଦ—
Nanda 1 Gladness; joy

୨ । (ନନ୍ଦ ଧାତୁ=ଆନନ୍ଦିତ କରିବା+କର୍ତ୍ତୃ. ଅ)—
(ନାମ) ଶ୍ରୀକୃଷ୍ଣଙ୍କର ପାଳକ ପିତା—2. Name of the foster-father of Śrikṛushṇa.

[ଦ୍ର—ଏ ମଥୁରା ରାଜାଙ୍କ ଅଧୀନ ବ୍ରଜର ଗୋପାଳମାନଙ୍କର ରାଜା ଥିଲେ । ଏହାଙ୍କ ସ୍ତ୍ରୀ ଯଶୋଦା । ବସୁଦେବଙ୍କ ସହିତ ଏହାଙ୍କର ମିତ୍ରତା ଥିଲା । ଦେବକୀଙ୍କ ଗର୍ଭରୁ ଶ୍ରୀକୃଷ୍ଣ ଜନ୍ମ ହେଲା ବେଳେ ଯଶୋଦାଙ୍କ ଗର୍ଭରୁ ମହାମାୟା ବା ଦୁର୍ଗା ଗୋଟିଏ କନ୍ୟାରୂପେ ଜନ୍ମଗ୍ରହଣ କଲେ । କଂସର ଭୟରେ ବସୁଦେବ ସଦ୍ୟୋଜାତ ଶ୍ରୀକୃଷ୍ଣଙ୍କୁ ନେଇ ଯଶୋଦାଙ୍କ କୋଳରେ ରଖି ଯଶୋଦାଙ୍କ କନ୍ୟାକୁ ଆଣି ଦେବକୀଙ୍କ କୋଳରେ ରଖିଲେ । କଂସ ସେହି କନ୍ୟାକୁ ପଥରରେ ପିଟି ଦେଲା ବେଳେ ସେ କନ୍ୟା କଂସ ହାତରୁ ଖସି ଶୂନ୍ୟରେ ଉଭେଇ ଗଲେ । ଶ୍ରୀକୃଷ୍ଣ ଯଶୋଦାଙ୍କ କୋଳରେ ବଢ଼ିଲେ । କଂସର ଭୟରେ ନନ୍ଦ ଶ୍ରୀକୃଷ୍ଣଙ୍କୁ ମଥୁରାରୁ ନେଇ ବୃନ୍ଦାବନରେ ବାସ କଲେ । ନନ୍ଦ ଥରେ ଯମୁନାକୁ ସ୍ନାନ କରିବା ପାଇଁ ଯାଇଥିଲେ । ଏହି ସମୟରେ ସେଠାରୁ ବରୁଣଙ୍କ ଦୂତ ତାଙ୍କୁ ଧରି ବରୁଣଙ୍କଠାକୁ ନେଇଗଲେ; ପରେ ଶ୍ରୀକୃଷ୍ଣ ବରୁଣଙ୍କଠାରୁ ନନ୍ଦଙ୍କୁ ମୁକୁଳାଇ ଆଣିଲେ । ନନ୍ଦ ପୂର୍ବଜନ୍ମରେ ଦକ୍ଷପ୍ରଜାପତି ଓ ଯଶୋଦା ତାଙ୍କ ସ୍ତ୍ରୀ ଥିଲେ । ସ୍ୱାମୀଙ୍କ ଅପମାନରେ ସତୀ ଯଜ୍ଞକୁଣ୍ଡରେ ଝାସ ଦେଇ ଦେହତ୍ୟାଗ କରିବାରୁ ଏ ଦମ୍ପତି ତପସ୍ୟା କଲେ । ସତୀ ପ୍ରସନ୍ନା ହୋଇ ବର ଦେଇଥିଲେ ଯେ ଆରଜନ୍ମରେ ଦ୍ୱାପରରେ ତୁମ୍ଭେ ଦୁହେଁ ନନ୍ଦ ଯଶୋଦା ହେବ ଓ ମୁଁ ତୁମର କନ୍ୟା ହୋଇ ଜନ୍ମିବି । ତଦନୁସାରେ ସତୀ କନ୍ୟାରୂପେ ଯଶୋଦାଙ୍କ ଗର୍ଭରୁ ଜନ୍ମଗ୍ରହଣ କଲେ ଓ ବସୁଦେବ ତାଙ୍କୁ ନେଇ ଶ୍ରୀକୃଷ୍ଣଙ୍କୁ ଯଶୋଦାଙ୍କ କୋଳରେ ରଖି ଗଲେ ଓ ସେହି କନ୍ୟାରୂପଧାରିଣୀ ସତୀଙ୍କୁ କଂସ ନିକ୍ଷେପ କଲା ।]

୩ । ବିଷ୍ଣୁ— 3. Name of Bishṇu.

୪ । ପ୍ରାଚୀନ (ମଗଧର) ରାଜବଂଶୀୟ ନୃପବଂଶ—
4. Name of a dynasty of kings of the ancient Magadha

[ଦ୍ର—ଏହି ବଂଶର ଅଠେଇଶ ରାଜା ରାଜତ୍ୱ କରିଥିଲେ । ଶେଷ ରାଜା [illegible] ଚାଣକ୍ୟଙ୍କ ଉଦ୍ୟମରେ ହତ ହୋଇଥିଲେ, ଏବଂ ମୌର୍ଯ୍ୟବଂଶୀୟ ଚନ୍ଦ୍ରଗୁପ୍ତ ମଗଧ ସିଂହାସନ ଅଧିକାର କଲେ । ଏ ବଂଶ ଖ୍ରୀ. ପୂ. ୪୦୦ ଠାରୁ ଖ୍ରୀ ପୂ. ୩୦୦ ପର୍ଯ୍ୟନ୍ତ ରାଜତ୍ୱ କଲେ ।]

୫ । ନନ୍ଦ ବଂଶର ପ୍ରଥମ ରାଜା—5 A name of the first king of the Nanda dynasty

[ଦ୍ର—ରାଜା ମହାନନ୍ଦଙ୍କ ଔରସରେ ଏକ ଶୂଦ୍ରାର ଗର୍ଭରୁ ଏହାଙ୍କର ଜନ୍ମ । ବରରୁଚି କେତେକ ସମୟ ଏହାଙ୍କର ମନ୍ତ୍ରୀ ଥିଲେ । ଖ୍ରୀଷ୍ଟ ଜନ୍ମର ଚତୁର୍ଥ ଶତାବ୍ଦୀ ପୂର୍ବେ ଏ ବିଦ୍ୟମାନ ଥିଲେ । (ମୁଦ୍ରାରାକ୍ଷସ)]

୬ । କୁବେରଙ୍କ ନଅ ନିଧି ମଧ୍ୟରୁ ଏକତମ ନିଧି—
6. One of the nine treasurers possessed by Kubera, the God of wealth.

୭ । ୧୧ ଇଞ୍ଚ ଲମ୍ବ ବେଣୁ ବା ବଂଶୀବିଶେଷ—
7. A kind of musical flute 11 inches long.

୮ । ମୃଦଙ୍ଗବିଶେଷ—
8. A kind of musical drum.

୯ । ପରମେଶ୍ୱର—9. God

୧୦ । ମଦିରା ଗର୍ଭଜାତ ବସୁଦେବଙ୍କ ପୁତ୍ର—10. Name of a son of Basudeba.

୧୧ । ବୁଦ୍ଧଦେବଙ୍କ ବୈମାତ୍ରେୟ ଭାଇ—11 Name of a step-brother of the Buddha.

[ଦ୍ର—ବୁଦ୍ଧଦେବ ଜ୍ଞାନ ଲାଭ କରି କପିଳବସ୍ତୁକୁ ଆସି ଏହାଙ୍କୁ ଦୀକ୍ଷିତ କରିଥିଲେ । ଏ ସନ୍ନ୍ୟାସ ଗ୍ରହଣ କରି ବୁଦ୍ଧଙ୍କ ସଙ୍ଗେ ରହୁଥିଲେ ଓ ନିଜର ସ୍ତ୍ରୀ ଭଦ୍ରାକୁ ଦେଖିବା ପାଇଁ କେତେଥର ଘରକୁ ଯିବାକୁ ଇଚ୍ଛା କରିଥିଲେ, କିନ୍ତୁ ବୁଦ୍ଧ ତାହା କରିବା ଦେଲେ ନାହିଁ । ବୁଦ୍ଧଦେବ ଏହାଙ୍କୁ ଭିକ୍ଷୁ କରାଇ ସଂସାର ବନ୍ଧନରୁ ମୁକ୍ତ କରାଇଥିଲେ ଏବଂ ଏହାଙ୍କୁ ସ୍ୱର୍ଗ ଓ ନରକର ଦୃଶ୍ୟମାନ ଦେଖାଇ ଥିଲେ । ହି. ଶ.]

୧୨ । ବେଙ୍ଗ—12. A frog.

ଦେ. ବି.—୧ । ବୈଦିକ ବ୍ରାହ୍ମଣଙ୍କ ଉପାଧିବିଶେଷ—
1. The family-title of certain Brāhmaṇas.

ନନ୍ଦ ଘରେ କନ୍ଦ ପୂଜା,
ନନ୍ଦ ଖାଉଲେ କଦଳୀ ଭଜା । ଶିଶୁଗୀତ ।

ନାଁନ୍ଦ ପଟା ୨ । (ସ. ନାନ୍ଦୀପଟ୍ଟ) କୂଅରେ ବେଢ଼ାଯିବା ମାଟି ବା ପଥରର ବଳୟାକାର ବେଷ୍ଟନୀ—2. Rings (of burnt earth or stone) put round a well.

[ଦ୍ର—କୂଅର ସବା ଉପରେ ମୁହଁ ପାଖେ ଭୂପୃଷ୍ଠରୁ ଉଚ୍ଚରେ ଯେଉଁ ନନ୍ଦ ବସା ଯାଏ ତାକୁ ଯୋଡ଼ାନନ୍ଦ, ତା ତଳକୁ ଯେଉଁ ନନ୍ଦମାନ ବସା ଯାଏ ତାକୁ ନନ୍ଦ ଓ ସାବୁ ତଳେ ଯେଉଁ ଶ୍ରେଷ୍ଠ ନନ୍ଦ ଦିଆ ଯାଏ ତାକୁ ତଳନନ୍ଦ ବୋଲାଯାଏ । କୂଅରେ ଦୁଇ ପ୍ରସ୍ଥ ନନ୍ଦ ବସା ଗଲେ ତାକୁ ଦୋହୋର ନନ୍ଦ କହନ୍ତି ।]

୩ । ଧାନ ରଖିବା ନିମିତ୍ତ ବ୍ୟବହୃତ ମାଟି ବା ପଥରର ବଳୟାକାର ବେଷ୍ଟନୀ, ଯାହାକୁ ଘରଭିତରେ ଉପରେ ରଖନ୍ତି—
3. Rings of burnt earth or stone placed inside a house to put paddy therein.

୪ । (ଦୂ) ଲୋକଙ୍କ ନାମ—4 A name given to males.

ଗ୍ରାଦେ. (ସମ୍ବଲପୁର) ବି.—ଗଉଡ଼ମାନଙ୍କ ଶ୍ରେଣୀବିଶେଷ—
A sub-caste of the Gaurdas in Sambalpur

ନନ୍ଦକ—ସଂ. ବିଣ. ତ୍ରି° (ନନ୍ଦ୍ ଧାତୁ=ଆନନ୍ଦିତ କରାଇବା+କର୍ତ୍ତୃ ଅକ)—୧ । ଆନନ୍ଦପ୍ରଦ, ଆନନ୍ଦକାରକ—
Nandaka (ନନ୍ଦିକା—ସ୍ତ୍ରୀ)
1 Gladdening; pleasant; joyful; pleasing.

୨ । କୁଳପାଳକ; କୁଳର ଆନନ୍ଦଦାୟକ (ପୁତ୍ର)—
2. Maintaining one's family; gladdening the family.

ସଂ ବି.—(+କରଣେ. ଅକ)—୧ । ଶ୍ରୀକୃଷ୍ଣଙ୍କ ଖଡ୍ଗ—
1. The sword of Śrikrushna.

୨ । (ନନ୍ଦ+ସ୍ୱାର୍ଥେ. କ)—ଶ୍ରୀକୃଷ୍ଣଙ୍କ ପାଳକ ପିତା; ନନ୍ଦ—
2. The foster-father of Śrikrushna.

୩ । ଆନନ୍ଦ—3 Pleasure; joy; happiness

୪ । ଭେକ; ବେଙ୍ଗ—4. A frog.

୫ । ଧୃତରାଷ୍ଟ୍ରଙ୍କର ଜଣେ ପୁତ୍ର —5. Name of one of the hundred sons of Dhrutarāshtra.

୬ । ସ୍କନ୍ଦଙ୍କ ଅନୁଚରବିଶେଷ—
6. Name of an attendant of Kārttikeya

୭ । ପୌରାଣିକ ନାଗବିଶେଷ—
7. Name of an mythological serpent.

ନନ୍ଦକା—ସଂ. ବି.—ପିପ୍ପଳୀ—
Nandaki Long pepper.

ନନ୍ଦକିଶୋର—ସଂ. ବି.—( ନନ୍ଦ+କିଶୋର; ୬ଷ୍ଠୀ ତତ୍ )—ଶ୍ରୀକୃଷ୍ଣଙ୍କ ନାମ—A name of Śrikrushna.
Nanda kiśora

ଦେ. ବି. ପୁଂ—ଲୋକଙ୍କ ନାମ—
A name given to males.

ନନ୍ଦକିଶୋର ଦାସ (ରାୟ ବାହାଦୁର)—ଦେ. ବି. (ନାମ)—ଗଭର୍ଣ୍ଣମେଣ୍ଟଙ୍କ ଦ୍ୱାରା ସମ୍ମାନିତ ଓ ଉଚ୍ଚ-ଅଧିକାର ପ୍ରାପ୍ତ ଉତ୍କଳର ଜନୈକ ବ୍ୟକ୍ତି—
Nandakiśora dāsa

[ଦ୍ର—ଏ ଓଡ଼ିଆ କରଣ କୁଳରେ ୧୨୫୨ ସାଲ (ଇଂ. ୧୮୪୫ ମସିହା) ଜ୍ୟେଷ୍ଠ ମାସରେ ଜନ୍ମଗ୍ରହଣ କରି ୧୩୦୧ ସାଲ (୧୮୯୪ ମସିହା) ଚୈତ୍ର ମାସରେ ଇହଧାମ ପରିତ୍ୟାଗ କରିଥିଲେ । କଟକ ଜିଲ୍ଲାର ଜୟପୁର ଗ୍ରାମ ଏହାଙ୍କର ଜନ୍ମଭୂମି । ଏହାଙ୍କ ପିତା ନରହରି ହରିଚନ୍ଦନ ମଧ୍ୟ ଏହାଙ୍କ ପରି ଉଚ୍ଚ ରାଜପଦ ଲାଭ କରିଥିଲେ । ଏ ଉତ୍କଳର କଲ୍ୟାଣ କାମନାରେ ସର୍ବଦା ଚେଷ୍ଟିତ ଥିଲେ । ଏହାଙ୍କର ପୁତ୍ର ପୌତ୍ରମାନେ ମଧ୍ୟ ଉଚ୍ଚ ରାଜପଦସମାନ ଅଳଙ୍କୃତ କରିଥିଲେ ଓ ଅଛନ୍ତି । ଶିକ୍ଷିତ ଓଡ଼ିଆମାନଙ୍କ ମଧ୍ୟରୁ ଏ ପ୍ରଥମେ ଜିଲ୍ଲା ମାଜିଷ୍ଟ୍ରେଟ ପଦ ଲାଭ କରିଥିଲେ ।]

ନନ୍ଦକିଶୋର ବଳ (ରାୟ ସାହେବ)—ଦେ. ବି. (ନାମ)—
Nandakiśora bala ଉତ୍କଳର ଆଧୁନିକ କବିବିଶେଷ—
A poet of modern Orissa.

[ ଦ୍ର—ଏ ଶିକ୍ଷାବିଭାଗର ଅସିଷ୍ଟାଣ୍ଟ ଇନ୍ସପେକ୍ଟର ହୋଇଥିଲେ; ପଲ୍ଲିଚିତ୍ର, କର୍ଣ୍ଣିରଣୀ, କୃଷ୍ଣକୁମାରୀ ଆଦି ଏହାଙ୍କ ରଚିତ କାବ୍ୟ । ଏ ମଧ୍ୟ କେତେ ଖଣ୍ଡି ଉପନ୍ୟାସ ରଚନା କରିଥିଲେ । ]

ନନ୍ଦକିଶୋରୀ ପଠା—ଦେ. ବି. (ନାମ)—ନନ୍ଦିକେଶ୍ୱରୀ ( ଦେଖ )
Nandakiśori paṭhā Nandikeśwari ( See )

ନନ୍ଦକୀ—ସଂ. ବି. ( ନନ୍ଦକ=ଶ୍ରୀକୃଷ୍ଣଙ୍କ ଖଡ୍ଗ+ଅସ୍ତି ଅର୍ଥରେ ଇନ୍; ୧ମା. ୧ବ. )—ବିଷ୍ଣୁଙ୍କର ନାମ—
Nandaki
A name of Bishnu.

ନନ୍ଦ କୁମାର—ସଂ ବି. ( ୬ଷ୍ଠୀ ତତ୍; ନନ୍ଦ+କୁମାର )—
Nanda kumāra ନନ୍ଦଙ୍କ ପାଳିତ ପୁତ୍ର ଶ୍ରୀକୃଷ୍ଣ—
Śrikrushna.

ଦେ. ବି. ପୁଂ—୧ । ଲୋକଙ୍କ ନାମ—
1. A name given to males.

୨ । ବଙ୍ଗଳାର ରାଜା ନନ୍ଦକୁମାର—
4. Raja Nandakumar of Bengal.

[ ଦ୍ର—ଏ ବଙ୍ଗର ଜଣେ ଧନୀ ବ୍ୟକ୍ତି ଥିଲେ । କାଉନ୍ସିଲ୍‌ରେ ଗଭର୍ଣ୍ଣର ଜେନେରାଲ ଓ୍ୱାରେନ୍ ହେଷ୍ଟିଙ୍ଗସଙ୍କ ବିରୋଧରେ ଉତ୍କୋଚ ଗ୍ରହଣ ଅଭିଯୋଗ ଆଣି ଏ ତାହାଙ୍କର ବିରାଗଭାଜନ ହୋଇଥିଲେ । ଏ ଜାଲ୍ କରିବା ଅପରାଧରେ କଲିକତା ସୁପ୍ରୀମ୍ କୋର୍ଟରେ ଅଭିଯୁକ୍ତ ହୋଇ ୧୭୭୫ ଖ୍ରୀଷ୍ଟାବ୍ଦରେ ଫାଶୀ ପାଇଲେ । ]

ନନ୍ଦଗାଁ—ଦେ. ବି. ( ସଂ. ନନ୍ଦ+ଗ୍ରାମ )—ମଥୁରାରୁ ୧୪ କୋଶ ଦୂରବର୍ତ୍ତୀ ବୃନ୍ଦାବନର ଗ୍ରାମ, ଯେଉଁଠାରେ ନନ୍ଦ ଶ୍ରୀକୃଷ୍ଣଙ୍କ ସହ ବାସ କରୁଥିଲେ—
Nandagāñ
नन्दगाँउ
**नन्दगाँव**
(ନନ୍ଦଗାଆଁ, ନନ୍ଦଗାଁଆଁ—ଅନ୍ୟରୂପ)
Name of a village in Brundābana where Nanda lived during Śrikrushna's childhood.

ନନ୍ଦ ଗୋପ—ସଂ. ବି—ଶ୍ରୀକୃଷ୍ଣଙ୍କ ପାଳକ ପିତା; ନନ୍ଦ ୨ ( ଦେଖ )
Nanda gopa Śrikrushna's foster father.

ନନ୍ଦ ଗ୍ରାମ—ସଂ. ବି. (ନାମ)—୧ । ନନ୍ଦଗାଁ ( ଦେଖ )
Nanda grāma 1. Nanda gāñ ( See)

୨ । ନନ୍ଦିଗ୍ରାମ ( ଦେଖ )
2. Nandigrāma ( See )

ନନ୍ଦ ଘୋଷ—ସଂ. ବି—ନନ୍ଦ ଗୋପ (ଦେଖ )
Nanda ghosha Nanda gopa (See)

ନନ୍ଦଥୁ—ସଂ. ବି. ( ନନ୍ଦ୍ ଧାତୁ+ଭାବ. ଅଥୁ )—ଆନନ୍ଦ—
Nandathu Joy; pleasure.

ନନ୍ଦଦ—ସଂ. ବିଣ. ପୁଂ. (ନନ୍ଦ+ଦା ଧାତୁ+କର୍ତ୍ତୃ. ଅ)—ଆନନ୍ଦଦାୟକ—
Nandada Delightful; giving joy.
(ନନ୍ଦଦା—ସ୍ତ୍ରୀ) ସଂ. ବି. ପୁଂ—ପୁତ୍ର ( ଦ୍ରୁ. ଶ. )—Son.

ନନ୍ଦ ଦାସ—ଦେ.ବି. (ନାମ) - ଖ୍ରୀ: ସପ୍ତଦଶ ଶତାବ୍ଦୀର ଓଡ଼ିଆ କବିବିଶେଷ—
Nanda dāsa An Oria poet of the 17th century A.D.
[ ଦ୍ର—'ଅଣାକାର ସଂହିତା' ଏହାଙ୍କ ପ୍ରଣୀତ ଗ୍ରନ୍ଥ । ]

ଦୁଲାଲ—ଦେ. ବି ( ସଂ. ନନ୍ଦ+ଦୁର୍ଲ୍ଲଭ ବା ଦ୍ବିଲଳିତ )—
Nanda dulāla (ନନ୍ଦଙ୍କ ପାଳିତ ପୁତ୍ର) ଶ୍ରୀକୃଷ୍ଣ—
नन्ददुलाल Śrīkrushṇa, the foster son of
नन्ददुलारा Nanda.

ନନ୍ଦନ—ସଂ. ବି ପୁଂ. ( ନନ୍ଦ୍ ଧାତୁ ଣିଚ୍=ନନ୍ଦି ଧାତୁ=ଆନନ୍ଦିତ
Nandana କରିବା+କର୍ତ୍ତୃ ଅନ )—
(ନନ୍ଦନା—ସ୍ତ୍ରୀ) ୧ । ସୁତ; ପୁତ୍ର; ପୁଅ—1 Son
୨ । ନନ୍ଦନ କାନନ; ବନବିଶେଷ; ସ୍ୱର୍ଗସ୍ଥ ଇନ୍ଦ୍ରଙ୍କର କ୍ରୀଡ଼ୋଦ୍ୟାନ—2. The pleasure-garden of Indra in Heaven.
୩ । ଆସାମରେ କାମାକ୍ଷ୍ୟା ଦେଶର ପର୍ବତବିଶେଷ—
3 Name of a mountain in Assam.
[ ଦ୍ର—ସ୍କନ୍ଦ ପୁରାଣ ମତରେ କାମାକ୍ଷ୍ୟା ଦେବୀଙ୍କର ପୂଜା କରିବା ପାଇଁ ଇନ୍ଦ୍ର ସର୍ବଦା ଏ ପର୍ବତରେ ରହନ୍ତି । ଏଥିପାଇଁ ଲୋକେ ଏ ପର୍ବତକୁ ଯାଇ ଇନ୍ଦ୍ରଙ୍କର ପୂଜା କରନ୍ତି । ହି. ଶବ୍ଦସାଗର । ]
୪ । ଭେକ—4. Frog.
୫ । ବିଷ୍ଣୁଙ୍କ ନାମ—5 A name of Bishṇu.
୬ । ଶିବ; ମହାଦେବ—6 Siba.
୭ । କାର୍ତ୍ତିକେୟଙ୍କ ଅନୁଚରବିଶେଷ—
7. Name of an attendant of Kārttikeya.
୮ । ବିଷବିଶେଷ ( ହି ଶବ୍ଦସାଗର )—
8. A kind of poison.
୯ । ବାସ୍ତୁ ଶାସ୍ତ୍ର ଅନୁସାରେ ୩୨ ହାତ ବିସ୍ତାର ଓ ୧୬ ଶୃଙ୍ଗ-ବିଶିଷ୍ଟ ଷଟ୍‌କୋଣ ଗୃହ ( ହି. ଶବ୍ଦସାଗର )—
9. Name of a hexagonal room with 16 turrets, and 32 cubits wide.
୧୦ । କେଶର ( ହି. ଶ. )—10. Saffron.
୧୧ । ଚନ୍ଦନ ( ହି. ଶ. )—11. Sandal.
୧୨ । ମେଘ ( ହି. ଶ. )—12. Cloud.
୧୩ । ଫଳିତ ଜ୍ୟୋତିଷ ଗଣନାକ୍ରମେ ୬୦ ସମ୍ବତ୍ସର ମଧ୍ୟରୁ ଷଡ଼ବିଂଶ ସମ୍ବତ୍ସର—13 Name of the 26th out of the 60 years according to Hindu astrological calculation.
[ ଦ୍ର—ଏ ବର୍ଷ ପୃଥିବୀ ପୂର୍ଣ୍ଣଶସ୍ୟା ହୁଏ; ଲୋକେ ନୀରୋଗ ଓ ଗାଭୀମାନେ ପ୍ରଚୁର ଦୁଗ୍ଧବତୀ ହୁଅନ୍ତି—ହି. ଶ. ]
୧୪ । ୧୮ ଅକ୍ଷରବିଶିଷ୍ଟ ବର୍ଣ୍ଣବୃତ୍ତବିଶେଷ—14. Name of a Sanscrit metre with 18 syllables.
ସଂ. ଗୁଣ—ଆନନ୍ଦଦାୟକ—
Pleasing; gladdening; giving pleasure.

ନନ୍ଦନ କାନନ—ସଂ. ବି ( ମ.ପ. ଲୋ. କର୍ମଧା; ନନ୍ଦନ+କାନନ )—
Nandana kānana ସ୍ୱର୍ଗରେ ଥିବା ଇନ୍ଦ୍ରଙ୍କର କ୍ରୀଡ଼ୋଦ୍ୟାନ—
The name of the pleasure-garden of Indra; the Elysium of the Hindu mythology.

ନନ୍ଦନଜ—ସଂ. ବି. (ନନ୍ଦନ+ଜନ୍ ଧାତୁ+କର୍ତ୍ତୃ. ଅ)—
Nandanaja ୧ । ହରିଚନ୍ଦନ; ଏକପ୍ରକାର ଉତ୍କୃଷ୍ଟ ଚନ୍ଦନ—
1. The fragrant yellow sandal wood.
୨ । ଶ୍ରୀକୃଷ୍ଣ (ହି. ଶ )—2. Śrīkrushṇa.

ନନ୍ଦନ ତରୁ—ସଂ. ବି. (୬ଷ୍ଠୀ ତତ୍; ନନ୍ଦନ+ତରୁ)—
Nandana taru ନନ୍ଦନକାନନରେ ଥିବା ସ୍ୱର୍ଗୀୟ ବୃକ୍ଷ—
The heavenly trees said to flourish in the Nandana garden of Indra.
( ଯଥା—ପାରିଜାତ, ହରି ଚନ୍ଦନ । )

ନନ୍ଦ ନନ୍ଦନ—ସଂ. ବି. ପୁଂ. (୬ଷ୍ଠୀ ତତ୍; ନନ୍ଦ+ନନ୍ଦନ)—
Nanda nandana ନନ୍ଦଙ୍କର (ଆନନ୍ଦଦାୟକ) ପୁତ୍ର ଶ୍ରୀକୃଷ୍ଣ—
(ନନ୍ଦନନ୍ଦନା—ସ୍ତ୍ରୀ) Śrīkrushṇa.

ନନ୍ଦ ନନ୍ଦିନୀ—ସଂ. ବି. ସ୍ତ୍ରୀ. (୬ଷ୍ଠୀ ତତ୍, ନନ୍ଦ+ନନ୍ଦିନୀ)—ଦୁର୍ଗା—
Nanda nandinī Durgā.
(ନନ୍ଦପୁତ୍ରୀ—ଅନ୍ୟରୂପ) [ ଦ୍ର—ଦୁର୍ଗା ନନ୍ଦଙ୍କ ଔରସରେ ଯଶୋଦାଙ୍କ ଗର୍ଭରୁ କନ୍ୟାରୂପେ ଜନ୍ମିଥିଲେ । ବସୁଦେବ ଦେବକୀଗର୍ଭଜାତ ଶ୍ରୀକୃଷ୍ଣଙ୍କୁ ଆଣି ଯଶୋଦାଙ୍କ କୋଳରେ ରଖି ତାଙ୍କ କୋଳରୁ ଏ କନ୍ୟାଙ୍କୁ ନେଇ କଂସର ବନ୍ଦୀଶାଳରେ ଦେବକୀଙ୍କ କୋଳରେ ରଖିଦେଲେ । କଂସ ଏହାଙ୍କୁ ଧରି କଚାଡ଼ିବା ସମୟରେ ଏ କଂସ ହାତରୁ ଖସିଯାଇ ଶୂନ୍ୟରେ ଉଭେଇ ଗଲେ । ଏ ବିନ୍ଧ୍ୟବାସିନୀରୂପେ ଦୁଇଟି ଅସୁରଙ୍କୁ ବଧ କରିଥିଲେ । ବିନ୍ଧ୍ୟପର୍ବତରେ ବିନ୍ଧ୍ୟବାସିନୀଙ୍କ ମୂର୍ତ୍ତି ଅବସ୍ଥିତ; ଏ ପୂର୍ବଜନ୍ମରେ ସତୀ, ନନ୍ଦଗୋପ ଦକ୍ଷପ୍ରଜାପତି ଓ ଯଶୋଦା ଦକ୍ଷପତ୍ନୀ ଥିଲେ । ଚଣ୍ଡୀପୁରାଣ—ଏକାଦଶ ଅଧ୍ୟାୟ । ନନ୍ଦ ତଳେ ନୋଟ୍ ଦେଖ । ]

ନନ୍ଦନ ବନ—ସଂ. ବି—୧ । ନନ୍ଦନ କାନନ (ଦେଖ)
Nandana bana 1. Nandana kānana (See)
୨ । କପା (ହି. ଶ.)—2. Cotton.

ନନ୍ଦନା—ସଂ. ବି. ସ୍ତ୍ରୀ. (ନନ୍ଦନ+ସ୍ତ୍ରୀ. ଆ)—କନ୍ୟା; ଝିଅ—
Nandanā Daughter.

ସମ୍ବୁକାଥ ନନ୍ଦନା, ଅନାଇଣଙ୍କ ମନା,
କନ୍ଦୁ ଯା ଥାଇଁ ହସ୍ତ ଗୃହିଁଲୁ ଗୋ ।
କବିସୂର୍ଯ୍ୟ. କଣେଶଗଚମ୍ପୂ ଘ ଗୀତ ।

ନନ୍ଦପାଳ—ସଂ. ବି. (ନନ୍ଦ=ନିଧିବିଶେଷ+ପାଲ୍ ଧାତୁ+କର୍ତ୍ତୃ. ଅ)—
Nandapāla ୧ । କୁବେର (ପ୍ରକୃତିବାଦ)—
1. Kubera, the God of wealth (M. W.).
୨ । ବରୁଣ (ହି. ଶବ୍ଦସାଗର)—
2. Baruṇa, the God of water (M. W.).

ନନ୍ଦପ୍ରୟାଗ—ଦେ. ବି. (ନାମ)—ଭାରତର ତୀର୍ଥବିଶେଷ—
Nandaprayāga A sacred place in India.
[ ଦ୍ର—ଏହା ନନ୍ଦା ଓ ଅଲକାନନ୍ଦା ନଦୀଦ୍ୱୟର ସଙ୍ଗମସ୍ଥଳରେ ଅବସ୍ଥିତ । ଏହା ବଦରୀଧାମରୁ ୪୮ ମାଇଲ ଦୂରବର୍ତ୍ତୀ । ଏଠାରେ କଣ୍ୱଋଷିଙ୍କର ଆଶ୍ରମ ଥିବାରୁ ଏହାର ଅନ୍ୟ ନାମ କଣ୍ୱାଶ୍ରମ । ଭାରତରେ ଥିବା 'ପ୍ରୟାଗ' ନାମଧାରୀ ସାତଗୋଟି ତୀର୍ଥ ମଧ୍ୟରୁ ଏହା ଗୋଟିଏ । ]

**ନନ୍ଦ ବଂଶ**—ସଂ. ବି—ମଗଧର ଏକ ପ୍ରସିଦ୍ଧ ରାଜବଂଶ—Name of a celebrated line of kings of Magadha
Nanda baṁśa

[ଦ୍ର—ଅଲେକ୍ଜାଣ୍ଡର (ସାର ସିକନ୍ଦର ସାହା) ଖ୍ରୀ: ପୂ: ୩୨୭ ରେ ପଞ୍ଜାବକୁ ଆକ୍ରମଣ କରିବା ସମୟରେ ଏହି ବଂଶର ଶେଷରାଜା ମଗଧରେ ରାଜତ୍ୱ କରୁଥିଲେ । ଏ ବଂଶର ନାମ ବିଷ୍ଣୁପୁରାଣ, ଶ୍ରୀମଦ୍ଭାଗବତ, ବ୍ରହ୍ମାଣ୍ଡପୁରାଣ, କଥାସରିତ୍‌ସାଗର, ବୌଦ୍ଧ ଓ ଜୈନ ଗ୍ରନ୍ଥରେ ଉଲ୍ଲେଖ ଅଛି । ଏବଂଶର ଶେଷ ରାଜା ନନ୍ଦ ଚାଣକ୍ୟ (ବା କୌଟିଲ୍ୟ)ଙ୍କ ବିରାଗଭାଜନ ହୋଇଥିଲେ ଓ ତାଙ୍କର ଅଭିଶାପରେ ମୃତ୍ୟୁ ଲଭିଲେ । ଚାଣକ୍ୟ ଚନ୍ଦ୍ରଗୁପ୍ତଙ୍କୁ ରାଜସିଂହାସନରେ ବସାଇ ଆପେ ମନ୍ତ୍ରୀ ହେଲେ—ହି. ଶବ୍ଦସାଗର । ]

**ନନ୍ଦ ରାଣୀ**—ଦେ. ବି. ସ୍ତ୍ରୀ. (ସଂ. ନନ୍ଦ+ରାଜ୍ଞୀ)—ନନ୍ଦପତ୍ନୀ; ଯଶୋଦା—Jaśodā
Nanda rāṇi
नन्दरानी **नन्दराणी**

**ନନ୍ଦରାମ**—ଦେ ବି. ପୁଂ—ଲୋକଙ୍କୁ ଦିଆଯିବା ନାମ—A name given to males.
Nandarāma

**ନନ୍ଦଲାଲ**—ଦେ. ବି. ପୁଂ. (ହିନ୍ଦୀରୁ ଅନୁକୃତ; ସଂ. ନନ୍ଦ+ଲାଳିତ; ନନ୍ଦଙ୍କ ପ୍ରିୟତମ ପୁତ୍ର ବା ପାଳିତପୁତ୍ର)—
Nandalāla
नन्दलाल **नन्दलाल**
୧ । ଶ୍ରୀକୃଷ୍ଣଙ୍କ ନାମ—1. A name of Srikṛushṇa.
ଏବେ ଚାଲ ନନ୍ଦଲାଲ ମନ୍ଦ ମାନ ଦେବା ଛାଡ଼ ଗୋ । ବନସ୍ତୁ,ପୁଂ.ସଙ୍ଗୀତ
୨ । ଲୋକଙ୍କୁ ଦିଆଯିବା ନାମ—
2. A name given to males.

**ନନ୍ଦ ସାଆନ୍ତ**—ଦେ. ବି. (ସଂ. ନନ୍ଦ ଓ ସାମନ୍ତ)—
Nanda sā-ānta ନନ୍ଦ ଉପାଧିଧାରୀ କୁଳୀନ ବ୍ରାହ୍ମଣ—A sect of respectable Brāhmaṇas of a high social status having the title of Nanda and residing in Śrimukundapur of Puri district.

[ଦ୍ର—ପୁରୀଜିଲ୍ଲାର ଉତ୍ତୁନା ବରପଦା ବା ଶ୍ରୀ ମୁକୁନ୍ଦପୁରରେ କେବଳ ଏହି ସାମନ୍ତ ବ୍ରାହ୍ମଣମାନେ ଅଛନ୍ତି । ପୁରୀଜିଲ୍ଲାର ଗୃହ ସାଆନ୍ତଙ୍କ ମଧ୍ୟରୁ ଏ ଏକତମ । ]

**ନନ୍ଦ ସୁତ**—ସଂ. ବି. ପୁଂ. (୬ଷ୍ଠୀ ତତ୍; ନନ୍ଦ+ସୁତ)—ନନ୍ଦଙ୍କର ପୁତ୍ର; ଶ୍ରୀକୃଷ୍ଣ—Śrikṛushṇa.
Nanda suta
(ନନ୍ଦସୁତା—ସ୍ତ୍ରୀ) ( ନନ୍ଦସୂନୁ—ଅନ୍ୟରୂପ )

**ନନ୍ଦସୁତା**—ସଂ. ବି. ସ୍ତ୍ରୀ—'ନନ୍ଦନନ୍ଦିନୀ' (ଦେଖ)
Nanda sutā Nanda nandini (See)

**ନନ୍ଦା**—ସଂ. ବି ସ୍ତ୍ରୀ ( ନନ୍ଦ୍ ଧାତୁ ଣିଚ୍=ନନ୍ଦି ଧାତୁ+କର୍ତ୍ତୃ. ଅ+ସ୍ତ୍ରୀ. ଆ)—୧ । ନନ୍ଦିଆ; ବଡ଼ ଜଳପାତ୍ର; ବୃହତ୍ ଜଳାଧାର; ଜାହାଲ—1. A big jar for keeping water
Nandā
୨ । ଗୌରୀ; ଦୁର୍ଗା—2. Gauri; Durgā.
୩ । ଶୁଭ ତିଥିବିଶେଷ; ଶୁକ୍ଳ ଓ କୃଷ୍ଣପକ୍ଷର ପ୍ରତିପଦ୍, ଷଷ୍ଠୀ ଓ ଏକାଦଶୀ ତିଥି—3. The 1st, 6th and 11th days of the lunar fortnight, considered as auspicious.

[ଦ୍ର—ଜ୍ୟୋତିଷ ମତରେ ତିଥିମାନ ନନ୍ଦା (୧, ୬, ୧୧), ଭଦ୍ରା (୨, ୭, ୧୨), ଜୟା (୩, ୮, ୧୩), ରିକ୍ତା (୪, ୯, ୧୪) ଓ ପୂର୍ଣ୍ଣା (୫, ୧୦, ୧୫) ଏହି ପାଞ୍ଚ ଶ୍ରେଣୀରେ ବିଭକ୍ତ ।]
୪ । ନଣନ୍ଦ—4. Husband's sister.
୫ । ଧନ ସମ୍ପଦ; ସମୃଦ୍ଧି—5. Riches; affluence.
୬ । ନନ୍ଦ ଗୋପଙ୍କର ଗାଭୀବିଶେଷ—
6. A cow belonging to Nanda.
୭ । ଆନନ୍ଦ—7. Joy; delight.
୮ । +(ନାମ) ଅପ୍ସରାବିଶେଷ—
8. Name of a heavenly nymph.
୯ । (ନାମ)—ବିଭୀଷଣର କନ୍ୟା—
9. Name of the daughter of Bibhishaṇa.
ଦେ. ବି.—୧ । ନନ୍ଧା (ଦେଖ)—1. Nandhā (See)
୨ । ନନ୍ଦ ନାମକ ବ୍ୟକ୍ତିର ଡାକନାମ—
2 A name for calling Nanda.

**ନନ୍ଦା ଚିଙ୍ଗୁଡ଼ି**—ପ୍ରାଦେ. (ସିଂହଭୂମ) ବି.—ବଡ଼ ଚିଙ୍ଗୁଡ଼ି—Big shrimp.
Nandā chiṅgurḍi

**ନନ୍ଦା ତୀର୍ଥ**-ସଂ ବି. (ନାମ)—ହେମକୂଟ ପର୍ବତ ଉପରେ ଥିବା ନଦୀ ଓ ତୀର୍ଥର ନାମ—Name of a place of Hindu pilgrimage.
Nanda tirtha
(ନନ୍ଦାଶ୍ରମ—ଅନ୍ୟ ନାମ)

[ଦ୍ର—ମହାଭାରତରେ ଏ ତୀର୍ଥର ଉଲ୍ଲେଖ ଅଛି । ଏଠାରେ ସର୍ବଦା ବତାସ ବନ୍ଦ ଥାଏ ଓ ପାଣି ବରଷୁ ଥାଏ । ଏହା ସାଧାରଣ ଲୋକଙ୍କ ଅଗମ୍ୟ । ଏଠାରେ ସର୍ବଦା ବେଦଧ୍ୱନି ଶୁଣା ଯାଏ, କିନ୍ତୁ କେହି ବେଦପାଠକଙ୍କର ଦେଖା ମିଳେ ନାହିଁ । ସକାଳେ ଓ ସନ୍ଧ୍ୟାବେଳେ ଏଠାରେ ଅଗ୍ନିଦେବଙ୍କ ଦର୍ଶନ ମିଳେ । ଯୁଧିଷ୍ଠିର ଆପଣା ଭାଇମାନଙ୍କ ସଙ୍ଗେ ଥରେ ଏଠାକୁ ଯାଇଥିଲେ ହି. ଶ ।]

**ନନ୍ଦାତ୍ମଜ**—ସଂ. ବି. ପୁଂ (୬ଷ୍ଠୀ ତତ୍, ନନ୍ଦ+ଆତ୍ମଜ)—ନନ୍ଦନନ୍ଦନ; ଶ୍ରୀକୃଷ୍ଣ—Śrikṛushṇa.
Nandātmaja (ନନ୍ଦାତ୍ମଜା—ସ୍ତ୍ରୀ)

**ନନ୍ଦାତ୍ମଜା**—ସଂ. ବି. ସ୍ତ୍ରୀ—ଦୁର୍ଗା; ଯୋଗମାୟା—
Nandātmajā Durgā. (ନନ୍ଦ ତଳେ ନୋଟ ଦେଖ)

**ନନ୍ଦା ଦେବୀ**—ଦେ. ବି. (ନାମ)—ହିମାଳୟର ଉଚ୍ଚ ଶୃଙ୍ଗ ବିଶେଷ—Name of a high peak of the Himalayas.
Nandā debi

[ଦ୍ର—ଏହା ହିମାଳୟର ଦକ୍ଷିଣାଂଶରେ ଅବସ୍ଥିତ ଏହାର ଉଚ୍ଚତା ୨୫୦୦୦ ଫୁଟ । ଏହା ଯମୁନା ନଦୀର ଉତ୍ପତ୍ତି ସ୍ଥଳର ନିକଟରେ (ହି. ଶବ୍ଦସାଗର)]

**ନନ୍ଦାବର୍ତ୍ତ**—ଦେ ବି. (ସଂ. ନନ୍ଦ୍ୟାବର୍ତ୍ତ)—ବର୍ତ୍ତୁଳ ପକା ଘର—1. A round building.
Nandābartta
୨ । ଏକପାଖୁଡ଼ିଆ ଟଗର ଫୁଲ ଓ ଗଛ—2. Single-petalled Taraṭa flower and tree.
୩ । ଭୂମ୍ ବାଣର 'ପେଣ୍ଡି' ଖୋଳିବା ପୂର୍ବରୁ ମାପ ଅନୁସାରେ ଦିଆ ଯିବା ଚିହ୍ନ—3. Mark for carving out the 'pendi' in a log of wood for preparing tumba' firework

**ନନ୍ଦା ମାଛ**—ପ୍ରାଦେ. (ସିଂହଭୂମ) ବି.—ବୁଢ଼ା ଚିଙ୍ଗୁଡ଼ି ମାଛ—
Nandā māchha Large shrimp

**ନନ୍ଦି**—ସଂ. ବିଣ. (ନନ୍ଦ୍ ଧାତୁ+କର୍ତ୍ତୃ. ଇ)—ଆନନ୍ଦଦାୟୀ—
Nandi Giving pleasure.
ସଂ. ବି—୧ । (ଭାବ. ଇ) ଆନନ୍ଦ—1 Joy.
୨ । ଶିବଙ୍କର ବା ତାଙ୍କ ବାହନ ବୃଷଭର ଅନୁଚରବିଶେଷ—
2. An attendant of Siba or of his bull.
୩ । ମହାଦେବ; ଶିବ—3 Siba
୪ । ଧଅ ଗଛ; ବୃକ୍ଷବିଶେଷ—
4. Name of a tree; Grislea Tomentosa
୫ । (+କରଣ. ଇ) ଦ୍ୟୂତାଙ୍ଗବିଶେଷ—
5. One of the materials for gambling.
୬ । ବିଷ୍ଣୁ—6. Bishṇu.
୭ । ନାଟକର ମଙ୍ଗଳାଷ୍ଟକ ପାଠକାରୀ ବନ୍ଦୀ—
7. The speaker of a prelude or benediction in a drama.
ଦେ. ବି.—ଶୂଦ୍ରମାନଙ୍କ ବଂଶୋପାଧିବିଶେଷ—
A family—title of the Sūdras.

**ନନ୍ଦିଆ**—ଦେ. ବି. (ସ. ନନ୍ଦା, ନନ୍ଦିକା)—୧ । ଚଉଡ଼ାମୁହାଁ ମାଟିର ବଡ଼
Nandiā ଜଳାଧାର ବା କୁଣ୍ଡ; ଜାହାଲ; ଅଳଞ୍ଜର—
नाँद 1. A big wide-mouthed earthen water-jar.
नान्द नाद्
୨ । ନନ୍ଦ ନାମକ ବ୍ୟକ୍ତିର ଅନାଦରସୂଚକ ଡାକ ନାମ—
2. Name for calling Nanda disrespectfully.

**ନନ୍ଦିକ**—ସଂ. ବି (ନନ୍ଦି+ସ୍ୱାର୍ଥରେ କ)—୧ । ଧବବୃକ୍ଷ; ବୃକ୍ଷବିଶେଷ—
Nandika 1. Name of a tree; Grislea Tomentosa.
୨ । ଆନନ୍ଦ—2. Joy; pleasure
୩ । ଗୁଡ଼୍ ମୋଠା, ଟାଣୁଆ, ଚେମଡ଼ା ବାର୍ଷିକ ଉଦ୍ଭିଦବିଶେଷ—
3. Elusine Indica (Haines).
[ ଦ୍ର—ଏହା ୩ ଫୁଟ ପର୍ଯ୍ୟନ୍ତ ଉଚ୍ଚ ହୁଏ । ]

**ନନ୍ଦିକା**—ସଂ. ବି. ସ୍ତ୍ରୀ ( ନନ୍ଦୀ+କ+ସ୍ତ୍ରୀ. ଆ )—୧ । ନନ୍ଦନ କାନନ;
Nandikā ଇନ୍ଦ୍ରଙ୍କ କ୍ରୀଡ଼ାସ୍ଥାନ—1 Indra's pleasure-garden.
୨ । (ନନ୍ଦା+ସ୍ୱାର୍ଥେ. କ+ସ୍ତ୍ରୀ. ଆ) ନନ୍ଦିଆ—
2. An earthen jar.
୩ । ନନ୍ଦାତିଥି; ପ୍ରତିପଦ୍, ଷଷ୍ଠୀ ଓ ଏକାଦଶୀ—
3 The 1st, 6th and 11th days of the lunar fortnight.
୪ । ନଣନ୍ଦ—4. Husband's sister.
୫ । ଦୁର୍ଗା—5. Durga.
୬ । ଛୋଟ ଜଳପାତ୍ର—6. Small water-jar
୭ । ହର୍ଷମୁଖୀ ସ୍ତ୍ରୀ ( ହି. ଶବ୍ଦସାଗର)—7. A woman who has a smiling face.

**ନନ୍ଦିକେଶ୍ୱର**—ସ ବି ( ୬ଷ୍ଠୀ ତତ୍; ନନ୍ଦିକା+ଈଶ୍ୱର )—
Nandikeśwara ୧ । ନନ୍ଦୀ; ମହାଦେବଙ୍କ ଅନୁଚରବିଶେଷ—
(ନନ୍ଦିକେଶ—ଅନ୍ୟରୂପ) 1. Name of an attendant of Śiba.
୨ । ପୁରାଣବିଶେଷ—2. Name of a Purāna.

**ନନ୍ଦିକେଶ୍ୱରୀ**—ଦେ. ବି. ସ୍ତ୍ରୀ (ନାମ)—୧ । କେଶରୀ ବଂଶୀୟ ଶେଷ ରାଜା
Nandikeśwarī ସୁବର୍ଣ୍ଣକେଶରୀଙ୍କ କନ୍ୟା—1 The daughter of Subarṇṇakeśarī, the last king of the Keśarī dynasty of ancient Orissa.
୨ । କବିବର ରାଧାନାଥଙ୍କ ପ୍ରଣୀତ କାବ୍ୟବିଶେଷ ( ଏହି କାବ୍ୟରେ ନନ୍ଦିକେଶ୍ୱରୀ ନାୟିକା; ନନ୍ଦିକେଶ୍ୱରୀ ପଠା ବିଷୟକ ସ୍ଥାନୀୟ କିଂବଦନ୍ତୀ ଉପରେ ଏ କାବ୍ୟ କଳ୍ପିତ ହୋଇଅଛି)—2 The title of an Oria epic by poet Rādhānātha.

**ନନ୍ଦିକେଶ୍ୱରୀ ପଠା**—ଦେ. ବି (ନାମ)—କଟକର କଚ୍ଛ ଦୂର ଉତ୍ତରରେ
Nandikeśwarī paṭhā ମହାନଦୀ ମଧ୍ୟରେ ଥିବା ଗୋଟିଏ ପଠା—Name of a small grassy eminence in the bed of the Mahanadi.

**ନନ୍ଦିଗ୍ରାମ**—ସଂ. ବି—(ନାମ) ଅଯୋଧ୍ୟା ନିକଟବର୍ତ୍ତୀ ଗ୍ରାମବିଶେଷ—
Nandigrāma Name of a village near ancient Ajodhyā.
[ ଦ୍ର—ରାମଙ୍କ ବନବାସକାଳରେ ଭରତ ଏହି ଗ୍ରାମରେ ରାମଙ୍କ ପାଦୁକାକୁ ପୂଜା କରି ରାଜ୍ୟଶାସନ କରୁଥିଲେ ଓ ତପସ୍ୟା କରୁଥିଲେ । ]

**ନନ୍ଦିଘୋଷ**—ସଂ. ବି (ବହୁବ୍ରୀହି; ନନ୍ଦି=ଆନନ୍ଦଜନକ+ଘୋଷ=ଶବ୍ଦ)
Nandighosha ୧ । (ନାମ) ଅର୍ଜୁନଙ୍କ ରଥ—1. Name of the car of Arjuna.
୨ । ବନ୍ଦୀଜନଙ୍କ ଘୋଷଣା—
2. The proclamations of a herald.
୩ । କୌଣସି ପ୍ରକାର ଶୁଭ ଘୋଷଣା ( ହି. ଶବ୍ଦସାଗର)—
3. Any auspicious proclamation
ସଂ. ବିଣ—ଆନନ୍ଦଜନକ ଶବ୍ଦଯୁକ୍ତ—Having a pleasant sound
ଦେ. ବି—ରଥଯାତ୍ରା ସମୟରେ ଜଗନ୍ନାଥ ମହାପ୍ରଭୁ ଯେଉଁ ରଥରେ ବିଜେ କରନ୍ତି—Name of the car in which the Deity Jagannātha is drawn during the car-festival at Puri.

**ନନ୍ଦିତ**—ସଂ. ବିଣ. ପୁଂ. ( ନନ୍ଦ୍ ଧାତୁ+କର୍ତ୍ତୃ. ତ )—
Nandita ୧ । ଆନନ୍ଦିତ—1. Glad.
୨ । ( ନନ୍ଦ ଧାତୁ+କର୍ମ. ତ )—ତୋଷିତ—
2. Gratified; satisfied; satiated.

**ନନ୍ଦିତରୁ**—ସଂ. ବି—ଧବ ବୃକ୍ଷ; ଧଅ ଗଛ—
Nanditaru Grislea Tomentosa (tree).

ନନ୍ଦନୀ—ସ. ବି. ସ୍ତ୍ରୀ. ( ନନ୍ଦ୍ ଧାତୁ ଣିଜନ୍ତରେ ନନ୍ଦ ଧାତୁ+ଇନ୍+
Nandini ସ୍ତ୍ରୀ. ଈ )—ଆନନ୍ଦଦାୟିନୀ—Pleasant; joyous.
(ନନ୍ଦୀ—ପୁଂ) ସ. ବି—୧ । କନ୍ୟା; ଦୁହିତା—2. Daughter.
୨ । ନଣନ୍ଦ—2. Husband's sister.
୩ । ଦୁର୍ଗା—3. Durga
୪ । ଗଙ୍ଗା ନଦୀ—4. The Ganges.
୫ । ରେଣୁକା, ପରଶୁରାମଙ୍କ ମାତା—
5. Reṇukā, the mother of Paraśurāma.
୬ । ବଶିଷ୍ଠଙ୍କ ହୋମ ଧେନୁ—6. The cow supplying the sacrificial ghee to the sage Baśishtha.

[ ଦ୍ର—ଏ ସୁରଭିର କନ୍ୟା । ରାଜା ଦିଲୀପ ଏହାଙ୍କୁ ଆରାଧନା କରି ରଘୁ ନାମକ ପୁତ୍ର ପ୍ରାପ୍ତ ହୋଇଥିଲେ । ପରେ ବିଶ୍ୱାମିତ୍ର ଏହାଙ୍କୁ ବଶିଷ୍ଠଙ୍କ ଆଶ୍ରମରୁ ବଳପୂର୍ବକ ହରଣ କଲେ, କିନ୍ତୁ ବାଟରେ ଏହାଙ୍କ ଅଙ୍ଗରୁ ଅନେକ ଯବନ ଓ ମ୍ଳେଚ୍ଛ ସେନା ଜାତ ହୋଇ ବିଶ୍ୱାମିତ୍ରଙ୍କୁ ପରାସ୍ତ କଲେ ଓ ନନ୍ଦନୀଙ୍କୁ ତାଙ୍କଠାରୁ ଛଡ଼ାଇ ଆଣିଲେ । ]

୭ । ଅଯୋଧ୍ୟା - 7. The town Ajodhyā.
୮ । ଅଭିଧାନକାର ବ୍ୟାଡି ମୁନିଙ୍କ ମାତା—
8. Name of the mother of the Lexicographer Byāḍi.
୯ । ହାଲିମ ( ଦେଖ )—9. Hālima ( See )
୧୦ । ତୁଳସୀ ଗଛ—10. The holy basil plant.
୧୧ । ଜଟାମାଂସୀ ( ହି. ଶବ୍ଦସାଗର ) ( ଦେଖ )
11 Jaṭāmāmsi ( See )
୧୨ । ରେଣୁକା ନାମକ ଗନ୍ଧ ଦ୍ରବ୍ୟ ( ହି. ଶ. )—
12 A medicinal scent.
୧୩ । ପତ୍ନୀ; ସ୍ତ୍ରୀ ( ହି ଶ. )—13. Wife
୧୪ । ତେର ଅକ୍ଷରର ଏକ ବୃତ୍ତ ( ହି. ଶବ୍ଦସାଗର )—
14. Name of a Sanscrit metre of 13 syllables.

ନନ୍ଦିବର୍ଦ୍ଧନ—ସ. ବିଣ. ( ଉପପଦ ତତ୍, ନନ୍ଦି=ଆନନ୍ଦ+ବର୍ଦ୍ଧନ )—
Nandibarddhana ଆନନ୍ଦ ବୃଦ୍ଧିକାରୀ—Increasing pleasure.
ସ. ବି—୧ । ପୁତ୍ର—1. Son.
୨ । ମହାଦେବ—2. Siba.
୩ । ବନ୍ଧୁ; ମିତ୍ର—3. Friend.
୪ । ଆନନ୍ଦ—4. Joy; happiness.

ନନ୍ଦୀ—ସ. ବି. ପୁଂ. ( ନନ୍ଦ+ଅସ୍ତ୍ୟର୍ଥେ, ଇନ୍; ୧ମା. ୧ବ )—
Nandī ୧ । ଶିବଙ୍କର ପ୍ରଧାନ ଅନୁଚର; ଶିବଙ୍କ ଦ୍ୱାରପାଳଦ୍ୱୟ ମଧ୍ୟରୁ ଏକତର—1. Name of one of the two Siba's orderlies or doorkeepers.
[ ଦ୍ର— ଅନ୍ୟ ଦ୍ୱାରପାଳର ନାମ ଭୃଙ୍ଗୀ; ମତାନ୍ତରରେ ଏ ବୃଦ୍ଧ ବଳଦ । ]
୨ । ବଟ ବୃକ୍ଷ—2. Banyan tree.
୩ । ତୁଦ୍ ଗଛ—3. The Toon tree
୪ । ପୁତ୍ର—4. A son
୫ । ଧବ ଗଛ ( ହି. ଶବ୍ଦସାଗର )—
5. Grislea Tomentosa ( tree )
୬ । ଗର୍ଦ୍ଦଭାଣ୍ଡ ବୃକ୍ଷ ( ହି. ଶବ୍ଦସାଗର ) ( ଦେଖ )
6. Gardabhāṇda (tree) ( See )
୭ । ଶିବଙ୍କ ନାମରେ ଉତ୍ସର୍ଗ କରି ଯାଇଥିବା ତ୍ରିଶୂଳାଙ୍କିତ ବୃଷ ( ହି ଶବ୍ଦସାଗର )—7. A bull branded with the mark of a trident and dedicated to Śiba.
୮ । ବିଷ୍ଣୁ ( ହି. ଶ. )—8. Bishṇu.
୯ । ଯେଉଁ ବଳଦର ଦେହରେ ଗୋଟିଏ ଅଧିକା ଚର୍ମ ପିଣ୍ଡ ବା ଅଙ୍ଗ ବାହାରି ଥାଏ ( ହି. ଶବ୍ଦସାଗର )—
9. A bull having a tuft of flesh or additional leg hanging out of his body.
୧୦ । ନନ୍ଦନ କାନନ—10. Indra's garden.
୧୧ । (ସ୍ତ୍ରୀ) ଦୁର୍ଗା—11. Durgā
(ନନ୍ଦନୀ—ସ୍ତ୍ରୀ) ସ. ବିଣ. ପୁଂ—ଆନନ୍ଦିତ—Gratified; pleased

ନନ୍ଦୀଟ—ସ. ବିଣ. ପୁଂ ( ନନ୍ଦୀ+ଟ )—
Nandīṭa ୧ । ଲଣ୍ଡାମୁଣ୍ଡା; ଲଣ୍ଡାମୁଣ୍ଡିଆ—1 A person with a shaven head.
(ନନ୍ଦୀଟା—ସ୍ତ୍ରୀ)
୨ । ଟାଙ୍ଗରା—2. Bald-headed.

ନନ୍ଦୀବୃକ୍ଷ—ସ. ବି—୧ । ଗନ୍ଧଶୁଣ୍ଠି ( ଦେଖ )
Nandībṛuksha ( କବିରାଜ ହରେକୃଷ୍ଣ ଦ୍ରବ୍ୟଗୁଣ )
1 Gandha śuṇṭhi ( See )
୨ । ମେଣ୍ଢା ଶିଂଘା ( ହି. ଶବ୍ଦସାଗର ) ( ଦେଖ )
2. Meṇḍhā śingha ( See )
୩ । ତୁତ ଗଛ ( ହି. ଶବ୍ଦସାଗର )—
3. Mulberry plant.

ନନ୍ଦୀଭୃଙ୍ଗୀ—ସ. ବି ( ଦ୍ୱନ୍ଦ୍ୱ, ନନ୍ଦୀ+ଭୃଙ୍ଗୀ )—
Nandībhṛungi ମହାଦେବଙ୍କର ପ୍ରଧାନ ଅନୁଚର ବା ଦ୍ୱାରପାଳ ଦ୍ୱୟ—The name of 2 principal attendants of Śiba.

ନନ୍ଦୀଭୃକୁଟୀ—ଦେ. ବି—୧ । ନନ୍ଦୀଭୃଙ୍ଗୀ ( ଦେଖ )
Nandībhrūkuṭi 1. Nandībhṛungi ( See )
୨ । କୌଣସି ବ୍ୟକ୍ତିର ପ୍ରଧାନ ପାର୍ଶ୍ୱଚର ବା ଅନୁଚରଦ୍ୱୟ—
2. Any two bosom friends or chief personal servants of a person.

ନନ୍ଦୀମୁଖୀ—ସ. ବି—୧ । ତନ୍ଦ୍ରାଳୁତା; ଅବସନ୍ନତା—
Nandīmukhī 1. Drowsiness; lassitude.
(ନନ୍ଦିମୁଖୀ – ଅନ୍ୟରୂପ) ୨ । ତନ୍ଦ୍ରା—2. Nap.

ନନ୍ଦୀଶ—ସ. ବି. ( ୬ଷ୍ଠୀ ତତ୍; ନନ୍ଦୀ+ଈଶ )—
Nandīśa ୧ । ମହାଦେବ, ଶିବ—1. Śiba

(ନନ୍ଦୀଶ୍ୱର—ଅନ୍ୟରୂପ) ୨ । ଶିବଙ୍କର ପ୍ରଧାନ ଦ୍ୱାରପାଳ ନନ୍ଦୀ—
2 The principal attendants and door keeper of Śiba.

**ନନ୍ଦୀସରଃ**—ସ. ବି. ( ନନ୍ଦୀ=ନନ୍ଦନ କାନନ+ସରଃ )—
Nandīsarah ଇନ୍ଦ୍ରଙ୍କ ଉଦ୍ୟାନ ମଧ୍ୟସ୍ଥ ସରୋବର—
The pond inside Indra's garden

**ନନ୍ଦୋତ୍ସବ**—ସ ବି. ( ନନ୍ଦ+ଉତ୍ସବ )—
Nandotsaba ୧ । ଶ୍ରୀକୃଷ୍ଣଙ୍କ ଜନ୍ମୋତ୍ସବ; ଜନ୍ମାଷ୍ଟମୀ—
1. The festival on the birth-day of Śrīkrushṇa.
[ ଦ୍ର—ଭାଦ୍ର କୃଷ୍ଣାଷ୍ଟମୀରେ ଏ ଉତ୍ସବ ହୁଏ । ]
୨ । ଜନ୍ମାଷ୍ଟମୀର ବାସି ଦିନ କରାଯିବା ଉତ୍ସବ—
2. A festivity observed on the next day of Janmāshṭamī.

**ନନ୍ଦୋଦ୍ଭବ**—ସ. ବି. ( ନାମ )—ପ୍ରାଚୀନ ଉତ୍କଳର ରାଜବଂଶବିଶେଷ—
Nandodbhaba A dynasty of kings in ancient Utkala

**ନନ୍ଦ୍ୟାବର୍ତ୍ତ**—ସ. ବି—୧ । ଏକ ପ୍ରକାର ଗୋଲ ପକ୍କା ଘର, ଯହିଁର
Nandyābartta ପଶ୍ଚିମରେ ଦ୍ୱାର ନ ଥାଏ—1 A kind of round building having no door to the west.
୨ । ତଗର ଗଛ ( ଦେଖ )—2. Tagara plant(See)

**ନନ୍ଧା**—ଦେ. ବି—୧ । ଘରଚାଳର କାଷ୍ଠ ଉପକରଣବିଶେଷ—
Nandhā 1 Name of a wooden material of a thatch,
୨ । ଘର ଚାଳରୁ ପାଣି ଗଡ଼ି ଆସି ବାହାରିବା ପାଇଁ ପ୍ରସ୍ତୁତ ନଳା; ଝୋଲା—2. An eaves-trough; an eaves-gutter.
୩ । ଶଗଡ଼ର ଝୁଙ୍ଗାକୁ ଯୁଆଳରେ ଦଉଡ଼ିଦ୍ୱାରା ବାନ୍ଧିବା କର୍ମ—
3 The act of tying the front end of the beam of a cart to the middle of the yoke.

**ନନ୍ଧା ଯୋତ**—ଦେ. ବି—ଶଗଡ଼ର ଝୁଙ୍ଗାକୁ ଯୁଆଳରେ ଛନ୍ଦି କରି
Nandhā jota ବାନ୍ଧିବା ପାଇଁ ବ୍ୟବହୃତ ରଜ୍ଜୁବିଶେଷ—
(ନନ୍ଧାଦଉଡ଼(ଡ଼ା)—ଅନ୍ୟରୂପ) A piece of rope used in tying the beam of a cart to the centre of the yoke.

**ନନ୍ଧିବା**—ଦେ. କ୍ରି. ( ସ. ନନ୍ଧ୍ ଧାତୁ=ବାନ୍ଧିବା ) ଶଗଡ଼ର ଝୁଙ୍ଗାକୁ
Nandhibā ଜୁଆଳର ମଝିରେ ଦଉଡ଼ା ଦ୍ୱାରା ଛନ୍ଦି କରି ବାନ୍ଧିବା—
To tie the front end of the beam of a cart to the middle of the yoke.

**ନପାହେବା**—ଦେ. (ପ୍ରାଚୀନ ପଦ୍ୟ) କ୍ରି.—କାଠର ଖାପରେ ଭୁକ୍ତ
Napāhebā ହେବା—To be fitted into a cavity or mortise in wood work.
ଅଣ ପାଖେ ଅଣଶେଣୀ ହୋଇଅଛନ୍ତି ନପା ।
ପ୍ରାଚୀ. ବୃନ୍ଦାବନରୂପଣ ଗୀତା ।

**ନପୁଂସ**—ଦେ. ବି ଓ ବିଣ. (ସ. ନପୁଂସକ)—ନପୁଂସକ (ଦେଖ)
Napumsa Napumsaka (See)
[ନପୁ (ପୁଂ)ସ୍ତ୍ରୀ—ସ୍ତ୍ରୀ] ନପୁଂସ ଜନ୍ମ କେବେ ଧରେ, ଏ ରୂପ କର୍ମ ଅକର୍ମାରେ ।
ଜଗନ୍ନାଥ. ଭାଗବତ ।

**ନପୁଂସକ**—ସ. ବିଣ (ନ=ନୁହେ+ପୁମାନ=ପୁରୁଷ; ନିପାତନ)—
Napumsaka ଅଥବା ନ ସ୍ତ୍ରୀ ନ ପୁମାନ୍=ନପୁଂସକ; ନିପାତନ—
୧ । ପୁରୁଷ ପ୍ରକୃତିକ କଲୁ ପୁରୁଷତ୍ୱହୀନ, ହେଞ୍ଜଡ଼ା; ଅଣପୁରୁଷା—1 Eunoch, impotent
(ନପୁଂସକତା, ନପୁଂସକତ୍ୱ—ବି) ୨ । ଯାହାଠାରେ ପୁରୁଷ ଓ ସ୍ତ୍ରୀ ଉଭୟଙ୍କର ଚିହ୍ନ ଅଛି—2. Hermaphrodite.
୩ । କ୍ଲୀବ; ଯାହାର ମୁଷ୍କ ଛିନ୍ନ ହୋଇଅଛି—3. Having his penis cut off; gelded; emasculated
୪ । (ବ୍ୟାକରଣ) ନପୁଂସକ ଲିଙ୍ଗବାଚକ (ଶବ୍ଦ)—
(grammar) Neuter; of neuter gender.
୫ । ଭୀରୁ—5. Coward.
ସ. ବି.—୧ । ପୁରୁଷତ୍ୱହୀନ ବ୍ୟକ୍ତି—
1 A eunoch; an impotent man.
୨ । ମାଈ ନୁହେଁ ବା ଅଣ୍ଡିରା ନୁହେଁ ଏପରି ବ୍ୟକ୍ତି—
2. A hermaphrodite
୩ । (ବ୍ୟାକରଣ) ତୃତୀୟ ପ୍ରକୃତି;ଯାହା ସ୍ତ୍ରୀ ବା ପୁରୁଷ ନୁହେଁ; କ୍ଲୀବ ଲିଙ୍ଗ—3.(grammar) Neuter gender
୪ । କ୍ଲୀବଲିଙ୍ଗ ବାଚକ ଶବ୍ଦ —
4. A word in the neuter gender.

**ନପୁଂସକି**—ଦେ. ବିଣ (ସ. ନପୁଂସକ)—ନପୁଂସକ; ପୁରୁଷତ୍ୱହୀନ—
Napumsakı Eunoch; impotent.
ମୁଁ କ୍ଷୀର ବନ୍ଧୁ, ଅଭିଷେକ।
ତୁ ପୁଣି ହୁଅ ନପୁଂସକ । ଯଶୋବନ୍ତ. ବ୍ରେଳଭକ୍ତି ବ୍ରହ୍ମଗୀତା ।

**ନପୁଣ**—ଦେ. ଅ. (ସ. ନ ଓ ପୁନଃ) (ଆଶଙ୍କା ଓ ବିତର୍କାର୍ଥ)—କେଜାଣି
Napuṇa ଅବା; କାଳେ; ଆଶଙ୍କା ହେଉଅଛି ଯେ—
केजाने Lest; it is apprehended that.
**क्या जाने** ମନେ ଚଳନ୍ତୁ ବିଶ୍ୱନାଥ,
ନପୁଣ ହୁଅଇ ଅନର୍ଥ—ଜଗନ୍ନାଥ. ଭାଗବତ ।

**ନପ୍ତା**—ସ. ବି. ପୁଂ. ( ନ=ନୁହେଁ+ପତ୍ ଧାତୁ=ପତିତ ହେବା+
Naptā କରଣ. ତୃ; ନପ୍ତୃ ଶବ୍ଦ ୧ମା. ୧ବ)—ଯାହାଦ୍ୱାରା ବଂଶ
(ନପ୍ତ୍ରୀ—ସ୍ତ୍ରୀ) ପତିତ ହୁଏ ନାହିଁ; ତୁଲ. ଲାଟିନ ନପୋଟ)—
୧ । ପୌତ୍ର; ପୁଅର ପୁଅ; ନାତି—1. Son's son
୨ । ଦୌହିତ୍ର, ଝିଅର ପୁଅ; ନାତି—2. Daughters son.

**ନଫର**—ବୈଦେ. ବି. (ଫା)—୧ । ଭୃତ୍ୟ; ଚାକର—
Naphara 1. A servant.
नफर **नफर**
୨ । ପାର୍ଶ୍ୱଚର; ଅନୁଚର—2. An attendant.

**ନଫର ଚାକର**—ବୈଦେ. ବି. (ଏକାର୍ଥକ ସହଚର) ଚାକର ଆଦି—
Naphara chākara Servants and attendats.
नफर चाकर **नौकर चाकर**
(ନଫର୍ ଚାକର—ଅନ୍ୟରୂପ)

**ନଫରାଲି**—ବୈଦେ ବି. -ଭୃତ୍ୟର କର୍ମ; ଗୃହର (ନନ୍ଦେ)—
Napharāli Service of a servant,

**ନଫା**—ବୈଦେ. ବି. (ଫା ନଫା)—୧ । ଲଫା; ଲାଭ, ଆନୁଷଙ୍ଗିକ
Naphā ଖର୍ଚ୍ଚ ବାଦ ଆୟ—1. Profit, gain; net income.
নাফা **नफा**
କ ମାନସେ ଥିବା, ସୃଜିଲ ଏ ବଣ୍ଡ, କେଉଁ ନଫା ଇହୁଁ ପାଅ ।
ଭକ୍ତକା. ଗୀତଲହରୀ ।

୨ । ସୁବିଧା -2. Advantage; benefit

**ନଫୁରି**—ବୈଦେ. ବି.—(ଫା. ନଫୀରି)—ତୁରୀ—
Naphuri Trumpet.
**नफीरी** ନଅ ଅଷରେ ଇହୁଁ ନଫୁରି ବାଜଣା । ପ୍ରାଚୀ. କୃଷ୍ଣଜନ୍ମରହସ୍ୟଗୀତା ।

**ନବ**—ସଂ. ବି. (ନୁ ଧାତୁ=ସ୍ତବ କରିବା+ଭାବ. ଅ)—୧ । ସ୍ତବ,
Naba ସ୍ତୋତ୍ର —1 Prayer; hymn.
୨ । ପ୍ରଶଂସା—2. Praise
୩ । କାକ; କୁଆ—4. A crow (Apte).
୪ । ନାଲି ପୁରୁଣୀ ଶାଗ—4 A kind of red pot-herb; Procumbens Anderecta.
୫ । ଅଙ୍କର ଅଙ୍କ ଗୁଣ ସଂଖ୍ୟା —
5. The number nine

(ନବା—ସ୍ତ୍ରୀ) ସଂ. ବିଣ —୧ । (+କର୍ମ ଅ) —ନୂତନ—
(ନବତା, ନବତ୍ୱ—ବି) 1. New.
୨ । ଅଳ୍ପଦିନ ହେଲା ଘଟିଥିଲା —2. Recent
୩ । ଟଟକା—3 Fresh.
୪ । ଯୁବକ—4. Young; youthful
୫ । (ନବନ୍ ଶବ୍ଦ ୧ମା ୧ବ.)—ନଅ; ୯—Nine; 9.

ଦେ. ବି.—୧ । (ସଂ. ଲବ)—ଲବ (ଦେଖ)
1. Laba (See)
୨ । ନବକିଶୋର, ନବକୁମାର ଆଦିଙ୍କ ଡାକ ନାମ—
2. A name for calling Nabakisor and Nabakumār.

**ନବକ**—ସଂ. ବିଣ.—(ନବ+କ)—ନଅ ସଂଖ୍ୟକ—
Nabaka Consisting of nine (Apte).
ସଂ. ବି.— ନଅ ସଂଖ୍ୟାର ସମାହାର—
An aggregate of nine (Apte).

**ନବକାରିକା**—ସଂ. ବି. ସ୍ତ୍ରୀ. (କର୍ମଧା; ନବ=ନୂତନ+କାରିକା=
Nabakārikā କର୍ତ୍ତ୍ରୀ)—୧ । ନବୋଢ଼ା ସ୍ତ୍ରୀ—
1. Newly married girl.
୨ । ନୂତନ ବ୍ୟାଖ୍ୟାଯୁକ୍ତ ଶ୍ଳୋକ—
2. New explanatory verse.
୩ । ସ୍ତ୍ରୀ-ସଂସ୍କାରକା; ସଂସ୍କାରକାରିଣୀ ସ୍ତ୍ରୀ—3. A woman who renovates or reforms; a female reformer.
୪ । ନବରଜୋବତୀ ନାରୀ—4. A woman in whom menstruation has newly commenced (Apte).

**ନବକାଳିକା** —ସଂ. ବିଣ. ସ୍ତ୍ରୀ (ନବକାଳ+ଇକ+ସ୍ତ୍ରୀ. ଆ)—
Nabakālikā ନବୀନ, ନୂତନ—New.
ସଂ. ବି. (କର୍ମଧା; ନବ+କାଳିକା=ମେଘ)—
୧ । ନୂତନ ମେଘ—1. Newly formed cloud.
ତେଣି ନବକାଳିକା ୧ କାଜ ୨ । ମାଳିକା ଅଳକାଳିକା କାନ୍ତି ମୁହଁ ।
ଉପେ. ଲାବଣ୍ୟବତୀ ।
୨ । ନବକାରିକା ୧-୪ ( ଦେଖ )—
2 Nabakārkā 1-4 ( See )

**ନବକିଶୋର** —ସଂ. ବି (ନବ+କିଶୋର)—ଯୁବକ ଶ୍ରୀକୃଷ୍ଣଙ୍କ ନାମ—
Nabakiśora A name of Śrikrushna in his boyhood.
ଦେ. ବି—ପୁରୁଷଙ୍କୁ ଦିଆଯିବା ନାମ—
A name given to males.

**ନବକୁମାର**—ସଂ. ବି. ପୁଂ. (କର୍ମଧା; ନବ+କୁମାର)—
Nabakumāra ନୂଆପୁଅ; ଶିଶୁପୁତ୍ର—
(ନବକୁମାରୀ—ସ୍ତ୍ରୀ) Infant-son; male child.
ଦେ. ବି—ଲୋକଙ୍କ ନାମ—Name given to males.

**ନବକୁମାରୀ**—ସଂ. ବି—ଦୁର୍ଗାପୂଜାର ନବରାତ୍ରରେ ପୂଜାଯାଉଥିବା ନଅଟି କୁମାରୀ,
Nabakumarī ଯାହାଙ୍କଠାରେ ଯଥାକ୍ରମେ ଦୁର୍ଗାଙ୍କର ନଅଟି ମୂର୍ତ୍ତିଙ୍କର କଳ୍ପନା କରାଯାଏ—(ଯଥା— କୁମାରିକା, ତ୍ରିମୂର୍ତ୍ତି, କଲ୍ୟାଣୀ, ରୋହିଣୀ, କାଳୀ, ଚଣ୍ଡିକା, ଶାମ୍ଭବୀ, ଦୁର୍ଗା ଓ ସୁଭଦ୍ରା)—Nine maidens worshipped as nine forms of Durgā during nine successive nights of the Durgāpūjā.

**ନବଖଣ୍ଡ**—ସଂ. ବି—ପୌରାଣିକ ଭୂଗୋଳ ଅନୁସାରେ ମେଦିନୀ ବା
Nabakhanda ପୃଥିବୀର ୯ଟି ବିଭାଗ —( ଯଥା —ଭାରତଖଣ୍ଡ, ଇଳାବୃତ୍ତ, କିଂପୁରୁଷ, ଭଦ୍ର, କେତୁମାଳ, ହରି, ହିରଣ୍ୟ, ରମ୍ୟ ଓ କୁଶ)—The nine parts of the globe according to the Hindu mythology.

**ନବଗୁଞ୍ଜର** - ଦେ. ବି—ନଅଗୋଟି ପଶୁପକ୍ଷୀଙ୍କର ଭିନ୍ନ ଭିନ୍ନ ଅଙ୍ଗବିଶିଷ୍ଟ
Nabaguñjara କାଳ୍ପନିକ ପଶୁବିଶେଷ—An imaginary animal having the different limbs of 9 animals
ପ୍ରାଦେ. (ସମ୍ବଲପୁର) ବି—ମହାବଳ ବାଘ—
Royal Bengal tiger.

**ନବଗୁଣ**—ସଂ. ବି. (ନବ+ଗୁଣ)—୧ । ନଅଗୁଣ—
Nabaguna 1. Nine times as much.
୨ । ନଅ ସୂତ—2 Nine strings
୩ । ମୃତପିତୃକ ବ୍ରାହ୍ମଣର ପଇତା—3. The sacred thread of a Brahmin whose father is dead.

[ ଦ୍ର—ବାପ ମରିଯାଇ ଥିବା ବ୍ରାହ୍ମଣର ୯ ସୂତ ପଇତା ପିନ୍ଧିବା ବିଧାନ ଶାସ୍ତ୍ରସମ୍ମତ; ଏଥିମଧ୍ୟରୁ ୬ ଖିଅ ସଙ୍କୋପବୀତ ଓ ୩ ସୂତ ଉତ୍ତରୀୟ । ]

**ନବଗ୍ରହ**—ସଂ. ବି (କର୍ମଧା; ନବ+ଗ୍ରହ)—(ଜ୍ୟୋତିଷ) ୯ ଗୋଟି
Nabagraha ପ୍ରସିଦ୍ଧ ଜ୍ୟୋତିଷ୍କ—(ଯଥା—ସୂର୍ଯ୍ୟ, ଚନ୍ଦ୍ର, ମଙ୍ଗଳ, ବୁଧ, ବୃହସ୍ପତି, ଶୁକ୍ର, ଶନି, ରାହୁ ଓ କେତୁ)—
The 9 planets of Hindu astrology—(viz The Sun, the Moon, Mars, Mercury, Jupiter, Venus, Saturn, the Dragon's head or ascending node, and the Dragon's tail or the descending node).

**ନବଘନ**—ସଂ. ବି. ( କର୍ମଧା; ନବ+ଘନ )—ନବୋଦିତ ମେଘ; ନୂଆ
Nabaghana ମେଘ—Newly risen clouds.
ଦେ. ବି. ପୁଂ—ଲୋକଙ୍କ ନାମ—
Name given to males.

**ନବଘନ ବର୍ଣ୍ଣ**—ସଂ. ବି. (କର୍ମଧା ଓ ୬ଷ୍ଠୀ ତତ୍, ନବଘନ+ବର୍ଣ୍ଣ)—
Nabaghana barnna ନବୋଦିତ ମେଘର ବର୍ଣ୍ଣ ପରି କୃଷ୍ଣବର୍ଣ୍ଣ—
Black colour like that of newly risen clouds.
ସଂ. ବିଣ. (ବହୁବ୍ରୀହି)—ନବୋଦିତ ମେଘ ପରି କଳା—
Black as newly risen cloud.

**ନବଘନ ଶ୍ୟାମ**—ସଂ. ବିଣ. (କର୍ମଧା ଓ ତୃ. କ. ଧା, ନବଘନ+ଶ୍ୟାମ
Nabaghana śyāma =ଶ୍ୟାମଳ )—ନୂଆ ମେଘ ପରି ଶ୍ୟାମଳ ବର୍ଣ୍ଣ—As black or blue as newly risen clouds.
ସଂ. ବି—ଶ୍ରୀକୃଷ୍ଣଙ୍କ ନାମ—Name of Śrikrushna

**ନବଙ୍ଗ**—ଗ୍ରା. ବି—ଲବଙ୍ଗ ( ଦେଖ )
Nabaṅga Labaṅga ( See )

**ନବଚତ୍ୱାରିଂଶ**—ସଂ. ବିଣ—ଅଣଚାଶର ପୂରକ—
Nabachatwārimśa Forty-ninth.

**ନବଚତ୍ୱାରିଂଶତ୍**—ସଂ. ବି ଓ ବିଣ ମ. ପ. ଲୋ କ. ଧା. ନବ ଅଧିକ
Nabachatwārimśat ଚତ୍ୱାରିଂଶତ୍ (ସଂଖ୍ୟାବାଚକ)—ଅଣଚାଶ; ଊନପଞ୍ଚାଶତ୍; ୪୯—49; Forty-nine.

**ନବଚ୍ଛିଦ୍ର**—ସଂ. ବି (କର୍ମଧା; ନବ+ଛିଦ୍ର)—ନବଦ୍ୱାର ( ଦେଖ )
Nabachchhidra Nabadwāra ( See )

**ନବଜ**—ବୈଦେ. ବି—୧ । (ଆ. ନବ୍ଜ୍) ନାଡ଼ି—1. Pulse.
Nabaja (ନବ୍ଜ—ଅନ୍ୟରୂପ)
नवज; नवज ୨ । ଲବଜ ( ଦେଖ —2. Labaja ( See )

**ନବଜାତ**—ସଂ ବିଣ. ( କର୍ମଧା; ନବ+ଜାତ )—ଉତ୍ପନ୍ନ; କଅଁଳା;
Nabajāta ଅଳ୍ପକାଳ ହେଲା ଜାତ (ସନ୍ତାନ)—Newly born
(ନବଜାତା—ସ୍ତ୍ରୀ) (babe).

**ନବ ଜ୍ୱର**—ସଂ. ବି (କର୍ମଧା; ନବ+ଜ୍ୱର) (ବୈଦ୍ୟକ)—ଯେଉଁ ଜ୍ୱର
Naba jwara ଅଳ୍ପଦିନ ହେଲା ରୋଗୀକୁ ଆକ୍ରମଣ କରିଥାଏ; ତରୁଣ ଜ୍ୱର—New fever.

**ନବତ୍**—ବୈଦେ. ବି (ଆ. ନଉବତ୍)—ନଉବତ୍ ( ଦେଖ )
Nabat; नवत् Naubat ( See )

**ନବତ**—ସଂ. ବିଣ (ନବତି+ପୂରଣାର୍ଥେ ଅ)—ନବତିତମ ( ଦେଖ )
Nabata Nabatitama ( See )

ସଂ. ବି—୧ । ହାତୀ ଉପରେ ପଡ଼ିବା ଚିତ୍ରିତ ଆସ୍ତରଣ—
1. An elephant's painted housings(Apte).
୨ । କମ୍ବଳ; ଊର୍ଣ୍ଣାବସ୍ତ୍ର—
2. Blanket; woolen cloth (Apte).
୩ । ଘୋଡ଼ାହେବା ଚଦର; ଘୋଡ଼ଣୀ—
3 A cover; wrapper (generally) (Apte )

**ନବତନ**—ଦେ. ବି (ସଂ. ନବତନୁ)—ଯୁବତୀ (ସ୍ତ୍ରୀ)—
Nabatana Young (woman).
**नवतन** ନୂଆ ନବତନ ଗୋପ, ନୂଆ କରି ଯେଉଁ ବଚନ କହନ୍ତି ।
ଅବନା ଅକ୍ଷର ଗୁରୁ—ପ୍ରହେଳିକା ।
ଦେ. ବିଣ (ସଂ. ନୂତନ)—ନୂଆ—New.

ନବତନ କଶୋର-ବୟସ ଶ୍ରୀରାମ
ଛବି ଦେଖି ମୂର୍ଚ୍ଛିତ ହୁଅନ୍ତି କାମ—ବିଶ୍ୱନାଥ, ବିଚିତ୍ରରାମାୟଣ ।

**ନବ ତରୁଣ**—ସଂ. ବି. ପୁଂ (କର୍ମଧା; ନବ+ତରୁଣ)—ନବଯୁବା—
Naba taruṇa A person in the prime of youth.
(ନବତରୁଣୀ—ସ୍ତ୍ରୀ)

**ନବତା(ତ୍ୱ)**—ସଂ. ବି [ନବ+ଭାବାର୍ଥରେ ତା (ତ୍ୱ)]—ନୂତନତ୍ୱ—
Nabatā(twa) Newness; freshness; novelty.

**ନବତି**—ସଂ. ବି ଓ ବିଣ ( ନବ+ସଂଜ୍ଞାର୍ଥେରେ ତି; କିଂବା ନବନ୍+
Nabati ଅତି)—ଦଶ ସଂଖ୍ୟାର ନଅଗୁଣ ନବେ; ନବ୍ବେ, ୯୦—
Ninety; 90.

**ନବତିକା**—ସଂ. ବି. ସ୍ତ୍ରୀ—୧ । (ନବ+ତିକ୍ ଧାତୁ =ଗମନ କରିବା+
Nabatikā କର୍ତ୍ତୃ ଅ+ସ୍ତ୍ରୀ. ଆ ) ତୂଳିକା, ତୁଳୀ—
1. Painter's brush;
୨ । (ନବତି+କ+ଆ) ନବତି ( ଦେଖ )
2. Nabati ( See )

**ନବତିତମ**—ସଂ. ବିଣ (ନବତି+ପୂରଣାର୍ଥରେ ତମ)—୯୦ର ପୂରକ;
Nabatitama ନବେ ସ୍ଥାନୀୟ —Ninetieth.

**ନବତିଧା**—ସଂ. କ୍ରି . ବିଣ (ନବତି+ଧା)—୧ । ନବେ ପ୍ରକାର—
Nabatidhā 1. 90 kinds.
୨ । ନବେ ଗୁଣ—2. Ninety-fold.

**ନବଦଣ୍ଡ**—ସଂ ବି ( ବହୁବ୍ରୀହି; ନବ+ଦଣ୍ଡ; ଏଥିରେ ନଅଟି କାଠି
Nabadaṇḍa ଥିବାରୁ)—ରାଜଛତ୍ର ବିଶେଷ—A royal umbrella; the umbrella held over the head of a king.

**ନବଦମ୍ପତି**—ସଂ. ବି ( ସମସ୍ତଙ୍କରେ ଦ୍ୱିବଚନାନ୍ତ )—ନବ ବିବାହିତ ବର
Naba dampati କନ୍ୟା—Newly married couple.

**ନବ ଦଳ**—ସଂ. ବି (କର୍ମଧା; ନବ+ଦଳ=ପତ୍ର)—୧ । ନୂତନ ପତ୍ର;
Naba daḷa କଅଁଳ ପତ୍ର—1. Tender or new leaf; young leaf.
୨ । ନୂଆ ପଦ୍ମପତ୍ର—2. New lotus-leaf.
୩ । ପଦ୍ମକେଶର ସମୀପସ୍ଥ ପାଖୁଡ଼ା—
3. A petal of a lotus near its pollen.

**ନବଦୀଧିତି**—ସଂ. ବି (ନବ=୯+ଦୀଧିତି=କିରଣ)—ମଙ୍ଗଳଗ୍ରହ—
Nabadidhiti The planet Mars

**ନବ ଦୁରୁଗା**—ଗ୍ରା. ବି. ସ୍ତ୍ରୀ (ସଂ. ନବଦୁର୍ଗା)—ଛଇଳୀ ସ୍ତ୍ରୀ—
Naba durugā A frolicsome or gay woman

**ନବଦୁର୍ଗା**—ସଂ. ବି. ସ୍ତ୍ରୀ—ଦୁର୍ଗାଙ୍କର ପୁରାଣୋକ୍ତ ନଅଗୋଟି ରୂପ ( ଯଥା—
Nabadurgā ପାର୍ବତୀ ବା ଶୈଳପୁତ୍ରୀ, ବ୍ରହ୍ମଚାରିଣୀ, ଚନ୍ଦ୍ରଘଣ୍ଟା, କୁଷ୍ମାଣ୍ଡା, ସ୍କନ୍ଦମାତା, କାତ୍ୟାୟନୀ, କାଳରାତ୍ରି, ମହାଗୌରୀ ଓ ସିଦ୍ଧିଦା ବା ସିଦ୍ଧିଦାତ୍ରୀ)—The nine incarnations or forms of Durgā

[ଦ୍ର—ମାର୍କଣ୍ଡେୟପୁରାଣାନ୍ତର୍ଗତ ହରିହରବ୍ରହ୍ମବିରଚିତ ଦେବୀକବଚ ଦ୍ରଷ୍ଟବ୍ୟ । ]

ଦେ. ବି—ନବଦୁରୁଗା ( ଦେଖ )—Nabadurugā (See)

**ନବଦ୍ୱାର**—ସଂ. ବି—ଶରୀରର ନଅଗୋଟି ଦ୍ୱାର ବା ବାଟ ( ଯଥା—
Nabadwāra ୨ ଚକ୍ଷୁ, ୨ କର୍ଣ୍ଣ, ୨ ନାସା, ୧ ମୁଖ, ୧ ପାୟୁ ଓ ୧ ଉପସ୍ଥ ) —The 9 vents or holes or outlets of the body

ସଂ. ବିଣ (ବହୁବ୍ରୀହି)—୧ । ନଅଗୋଟି ଦ୍ୱାରବିଶିଷ୍ଟ—
1. Having nine doors or vents

୨ । ନଅଟି ଫୋଡ଼ ବା ଛିଦ୍ର ଥିବା—
2. Having nine holes

**ନବଦ୍ୱାରପୁର**—ଦେ. ବି (କର୍ମଧା; ନବଦ୍ୱାର+ପୁର)—ଶରୀର; ଦେହ—
Nabadwārapura The body

**ନବଦ୍ୱୀପ**—ଦେ. ବି—୧ । (ନାମ) ବଙ୍ଗର ପ୍ରାଚୀନ ରାଜଧାନୀ; ନଦିଆ—
Nabadwipa 1. Nuddea (in Bengal)
नवद्वीप [ ଦ୍ର—ଏହା ଗଙ୍ଗାନଦୀର ପଶ୍ଚିମ ଭାଗରେ ଅବସ୍ଥିତ ।
**नदीया** ଅନ୍ତର୍ଦ୍ୱୀପ, ସୀମନ୍ତଦ୍ୱୀପ, (ଆଧୁନିକ ସିମୁଲିଆ) ଓ ଗୋଦ୍ରୁମ ଦ୍ୱୀପ (ଗାଦିଗାଛା) ପ୍ରଭୃତି ନଅଗୋଟି ଦ୍ୱୀପ ନେଇ ଏହା ଗଠିତ ହୋଇଥିଲା । ଶ୍ରୀବୃନ୍ଦାବନ ସଦୃଶ ନବଦ୍ୱୀପ ପଦ୍ମପୁଷ୍ପାକୃତି । ଏହାର ମଧ୍ୟସ୍ଥିତ ଅନ୍ତର୍ଦ୍ୱୀପ ପୁଷ୍ପର କେଶର; ଚତୁଃପାର୍ଶ୍ୱସ୍ଥ ଅଷ୍ଟଦ୍ୱୀପ ଅଷ୍ଟଦଳ । ଅନ୍ତର୍ଦ୍ୱୀପ ଶ୍ରୀ ଚୈତନ୍ୟମହାପ୍ରଭୁଙ୍କ ଜନ୍ମଭୂମି ଓ ଅପର ଅଷ୍ଟଦ୍ୱୀପ ତାହାଙ୍କର ଲୀଳାଭୂମି । ଏହା ହିନ୍ଦୁର ଗୋଟିଏ ପବିତ୍ର କ୍ଷେତ୍ର—ମଦନମୋହନ ତୀର୍ଥଦର୍ଶନ ଦ୍ରଷ୍ଟବ୍ୟ । ବହୁକାଳ ହେଲା ଏହା ସଂସ୍କୃତ ନ୍ୟାୟଶାସ୍ତ୍ରର ଗୋଟିଏ ପ୍ରଧାନ ବିଦ୍ୟାପୀଠରୂପେ ବିଖ୍ୟାତ । ]

୨ । ଭ୍ରୂମଧ୍ୟବର୍ତ୍ତୀ ସ୍ଥାନ ପର୍ଯ୍ୟନ୍ତ ବିସ୍ତୃତ ନବଦ୍ୱାରଯୁକ୍ତ ଶରୀର ସ୍ଥାନ – 2. The human body.

ସେ ସେ କାରୁଣ୍ୟ ମହାକାର, ନବଦ୍ୱୀପରେ ନାହିଁ ପାର—ଭୂପତି. ପ୍ରେମପଞ୍ଚାମୃତ ।

ଦ୍ର ବି—ନବଖଣ୍ଡ ( ଦେଖ )—Nabakhanda ( See )

**ନବଦ୍ୱୀପା ମହୀ**—ଦେ. ବି. ସ୍ତ୍ରୀ—ଶରୀର; ଦେହ—
Nabadwipā mahi The body.
(ନବଦ୍ୱୀପା ମେଦିନୀ—ଅନ୍ୟରୂପ) ଭ୍ରମିଲେ ନବଦ୍ୱୀପା ମହୀ—
ପ୍ରାଚୀ. ନର୍ମମୋହାସ୍ୟ ।

ଦ. ବି. ସ୍ତ୍ରୀ—ନବଖଣ୍ଡବିଶିଷ୍ଟ ପୃଥିବୀ—The earth which consists of 9 islands according to the Hindu mythologies.

**ନବଦ୍ୟ**—ସଂ. ବିଣ ( ନ+ବଦ୍ ଧାତୁ=କହିବା+କର୍ମ. ଯ )—
Nabadya ଅକଥନୀୟ, ଅବାଚ୍ୟ—Unspeakable.
ନବଦ୍ୟ ଚାପ ଲଭନ୍ତି ନୃଦେ-ଭ୍ରମାଜ୍ଞ-- ଭଞ୍ଜ. ଲାବଣ୍ୟବତୀ ।

**ନବଧ**—ଗ୍ରା. ବି (ସଂ ଲବ୍ଧ)—ଲବ୍ଧ ( ଦେଖ )
Nabadha Labdha ( See )

**ନବଧା**—ସଂ. ବିଣ ଓ କ୍ରି ବିଣ ( ନବ+ପ୍ରକାରାର୍ଥରେ ଧା )—
Nabadhā ୧ । ନଅପ୍ରକାରର—1 Of nine kinds
୨ । ନଅ ଥର, ୯ ବାର—2 Nine times.
୩ । ନଅ ଦିଗରେ—
3. In nine ways or directions.
୪ । ନଅଗୁଣ—4 Nine-fold

**ନବଧା ଅଙ୍ଗ**—ସ ବି.—ଦେହର ନଅ ଗୋଟି ଅଙ୍ଗ (ଯଥା—ଦୁଇ
Nabadhā anga ଆଖି, ଦୁଇ କାନ, ଦୁଇ ହାତ, ଦୁଇ ଗୋଡ଼ ଓ ଏକ ନାକ) (ହ୍ରି. ଶ)—The nine limbs of the body.

**ନବ ଧାତୁ**—ସ ବି (କର୍ମଧା; ନବ+ଧାତୁ)—ନଅଗୋଟି ଧାତୁଦ୍ରବ୍ୟ—
Naba dhātu (ଯଥା—ସୁନା, ରୂପା, ତମ୍ବା, ରଙ୍ଗ, ଲୌହ, ସୀସା, କଂସା, ଦସ୍ତା ଓ ପାରା)—Nine principal metals.

**ନବଧା ଭକ୍ତି**—ସ. ବି (ନବଧା+ଭକ୍ତି)—ପ୍ରେମ ବା ଭକ୍ତିର ନଅଗୋଟି
Nabadhā bhakti ଅଙ୍ଗ (ଯଥା—ଶ୍ରବଣ, କୀର୍ତ୍ତନ, ସ୍ମରଣ, ପଦସେବନ, ଅର୍ଚ୍ଚନା ବା ପୂଜା, ବନ୍ଦନା ବା ସ୍ତବ, ପରିଚର୍ଯ୍ୟା, ସଖ୍ୟ ବା ସଖାଭାବରେ ସମ୍ଭାଷଣ ଓ ଦାସ୍ୟ ବା ଦାସରୂପେ ଆତ୍ମସମର୍ପଣ)—The 9 steps of devotion.

**ନବ ନଟ**—ସ. ବି. (କର୍ମଧା; ନବ+ନଟ)—୧ । ନୂଆ ନାଟୁଆ—
Naba nata 1. A new dancer.
୨ । ଶ୍ରୀକୃଷ୍ଣ—2 Srikrushna
ଶୁଣି ଭଣିଲେ ହସି ନବନଟ, ଅନ୍ୟ ସଙ୍ଗେ ମୋର ହୁଟ ତମଟ ।
ଜଗନ୍ନାଥ. ସଙ୍ଗୀତ ।

**ନବ ନବତି**—ସ. ବି. ଓ ବିଣ (ସଂଖ୍ୟାବାଚକ) (ନବ ଅଧିକ ନବତି; ମ. ପ. ଲୋ. କର୍ମଧା; ନବ+ନବତି )—
Naba nabati
—ଏକଶତରୁ ଏକ ସଂଖ୍ୟା ଊଣା; ଅନେଶତ—
99; ninetynine

**ନବନିଧି**—ସ. ବି.—ନଅ ପ୍ରକାର ରତ୍ନ; କୁବେରଙ୍କ ନିକଟରେ ଥିବା
Naba nidhi ୯ ପ୍ରକାର ରତ୍ନ (ଯଥା—ମୋତି ବା ମୁକ୍ତା, ମାଣିକ, ବୈଦୂର୍ଯ୍ୟ, ଗୋମେଦ, ବଜ୍ର ବା ହୀରକ, ବିଦ୍ରୁମ ବା ପ୍ରବାଳ; ପଦ୍ମରାଗ, ମରକତ ଓ ନୀଳକାନ୍ତ)—The nine gems said to be in possession of Kubera, the God of wealth.
ବସୁରେ କୁବେର ନବନିଧି ଯେଣ ଠାବେ ଠାବେ ଅଛି ରହି ଯେ ।
ଭଞ୍ଜ. ବୈଦେହୀଶବିଳାସ ।

[ଦ୍ର—ପୁରାଣ ମତରେ ଏ ନଅ ପ୍ରକାର ନିଧି ପ୍ରତ୍ୟେକେ ଗୋଟିଏ ଗୋଟିଏ ଗ୍ରହଙ୍କ ପ୍ରିୟ ନିଧି ଅଟେ ଓ ତାହା ସେହି ସେହି ଗ୍ରହଙ୍କ

ଦୋଷଶାନ୍ତି ପାଇଁ ଦାନ କରାଯାଏ ବା ଶରୀରରେ ଧାରଣ କରାଯାଏ । ମୋତି ବା ମୁକ୍ତା—ବୃହସ୍ପତିଙ୍କର, ମାଣିକ୍ୟ—ରବିଙ୍କର, ବୈଦୁର୍ଯ୍ୟ—କେତୁଙ୍କର, ଗୋମେଦ—ରାହୁଙ୍କର, ହୀରକ ବା ବଜ୍ର—ଶୁକ୍ରଙ୍କର, ବିଦ୍ରୁମ ବା ପ୍ରବାଳ—ମଙ୍ଗଳଙ୍କର, ପଦ୍ମରାଗ ବା ପୁଷ୍ପରାଗ—ଚନ୍ଦ୍ରଙ୍କର, ମରକତ ବା ପାଚି—ବୁଧଙ୍କର, ନୀଳକାନ୍ତ ବା ଇନ୍ଦ୍ରନୀଳ—ଶନିଙ୍କର, କିନ୍ତୁ ହି. ଶବ୍ଦସାଗର ନବ ରତ୍ନ ତଳେ ନୋଟ୍‍ରେ ଲେଖିଅଛନ୍ତି ଯେ ସୂର୍ଯ୍ୟଙ୍କ ଦୋଷଶାନ୍ତି ପାଇଁ ଲହସୁନିଆ (ବୈଦୂର୍ଯ୍ୟ) ଚନ୍ଦ୍ରମାଙ୍କ ପାଇଁ ନୀଳାମ (ନୀଳକାନ୍ତ), ମଙ୍ଗଳଙ୍କ ପାଇଁ ମାଣିକ (ମାଣିକ୍ୟ), ବୁଧଙ୍କ ପାଇଁ ପୁଖରାଜ (ପଦ୍ମରାଗ), ବୃହସ୍ପତିଙ୍କ ପାଇଁ ମୋତିକାନ୍ତ, ଶୁକ୍ରଙ୍କ ପାଇଁ ହୀରା (ହୀରକ), ଶନିଙ୍କ ପାଇଁ ନୀଲମ୍ (ନୀଲ), ରାହୁଙ୍କ ପାଇଁ ଗୋମେଦ ଓ କେତୁଙ୍କ ପାଇଁ ପନ୍ନା (ମରକତ) ।

**ନବନିଶି**—ଦେ. ବିଣ (ସଂ ନବନିଶିତ)—୧ । ନୂଆ ହୋଇ ଶାଣ ଦିଆ ଯାଇ ଥିବା—1. Recently sharpened
Naba nisi
୨ । ସୁତୀକ୍ଷ୍ଣ—2. Very sharp.

ନବନିଶି ଖଡ୍ଗମାନ ଝଲକାନ୍ତି କରେ—ଖାରଲା ମହାଭାରତ. ବଗଡ ।

**ନବ ନିଶିତ**—ସଂ. ବିଣ. (ନବ+ନି+ଶୋ ଧାତୁ=ତୀକ୍ଷ୍ଣ କରିବା+କର୍ମ. ତ)—ନୂଆ ହୋ'ଇ ଶାଣ ଦିଆଯାଇ ଥିବା—Recently sharpened.
Naba nisita

**ନବନୀ**—ସଂ ବି. ସ୍ତ୍ରୀ (ନବ+ନୀ ଧାତୁ+କର୍ମ କ୍ୱିପ୍)—ନବନୀତ (ଦେଖ)
Nabani — Nabanita (See)

**ନବନୀତ**—ସଂ. ବି. କ୍ଲୀ. (ନବ+ନୀ ଧାତୁ=ନେବା+କର୍ମ. ତ)—(ଦହିରୁ ବା ଦୁଧରୁ ଯାହାକୁ କଢ଼ାଯାଏ)—ମାଖନ; ନହୁଣୀ; ଲହୁଣୀ—Butter
Nabanita

**ନବନୀତକ**—ସଂ. ବି.—(ନବନୀତ+ସଜାତ ଅର୍ଥରେ କ)—ଘିଅ, ଘିଅ—1. Clarified butter; ghee
Nabanitaka
୨ । (ସ୍ୱାର୍ଥେ. କ)—ନହୁଣୀ—2. Butter.

**ନବପତ୍ରିକା**—ସଂ. ବି. (ନବ=୯+ପତ୍ର+କ+ସ୍ତ୍ରୀ. ଆ)—
Naba patrika ୧ । ଅଶ୍ୱିନ ଓ ଚୈତ୍ର ମାସରେ ଶୁକ୍ଳ ୭ମୀ ଠାରୁ ନବମୀ ପର୍ଯ୍ୟନ୍ତ ଦିବସତ୍ରୟବ୍ୟାପୀ ନଅ ଜାତୀୟ ପତ୍ରନିର୍ମିତ ଦୁର୍ଗାମୂର୍ତ୍ତିଙ୍କର ପୂଜା—1. The worship of Goddess Durgā for 3 days in the months of Āswina and chaitra.

[ଦ୍ର—ଏହି ପୂଜା ଆଶ୍ୱିନ ଓ ଚୈତ୍ର ଶୁକ୍ଳ ସପ୍ତମୀଠାରୁ ଆରମ୍ଭ ହୁଏ ଓ ନବମୀ ଦିନ ଶେଷ ହୁଏ । କଦଳୀ, ସାରୁ, ହଳଦୀ, ଅଶୋକ, ଡାଳିମ୍ବ, ବେଲ, ଜୟନ୍ତୀ, ମାଣସାରୁ ଓ ଧାନ ଏହି ନଅ ଜାତି ପତ୍ରଦ୍ୱାରା ଦୁର୍ଗାଙ୍କର ଗୋଟିଏ ମୂର୍ତ୍ତି ଗଠନ କରି ପୂଜା କରିବାର ବିଧି ଥିବାରୁ 'ନବପତ୍ରିକା' ଏହି ନାମ ହୋଇଅଛି ।]

୨ । ଉପର୍ଯ୍ୟୁକ୍ତ ନଅଟି ପତ୍ରରେ ନିର୍ମିତ ଦୁର୍ଗାଙ୍କର ମୂର୍ତ୍ତି—2. The image of Goddess Durgā made of nine kinds of leaves of particular trees and plants.

୩ । ଦୁର୍ଗାଙ୍କର ଆଶ୍ୱିନ ଓ ଚୈତ୍ର ଶୁକ୍ଳ-ପ୍ରତିପଦଠାରୁ ନବମୀ ପର୍ଯ୍ୟନ୍ତ ବିହିତ ନବରାତ୍ର-ପୂଜା—3. The worship of goddess Durgā for 9 nights in the month of Āswinaand chaitra.

**ନବପଲ୍ଲବ**—ସଂ. ବି (କର୍ମଧା; ନବ+ପଲ୍ଲବ)—୧ । କିଶଳୟ; ଗଛରେ ଜନ୍ମିବା ନୂଆ କୋମଳ ପତ୍ର—1. New tender leaf.
Naba pallaba
୨ । ଗଜା; ଅଙ୍କୁର—2. A new shoot.

**ନବ ପ୍ରସୂତ**—ସଂ. ବିଣ. ପୁଂ—ନବଜାତ (ଦେଖ)
Naba prasūta — Nabajāta (See)
(ନବପ୍ରସୂତା—ସ୍ତ୍ରୀ)

**ନବପ୍ରସୂତା (ତି)**—ସଂ ବିଣ. ସ୍ତ୍ରୀ—ନବପ୍ରସୂତର ସ୍ତ୍ରୀଲିଙ୍ଗ—Feminine of Nabaprasūta.
Nabaprasūtā (ti)
ସଂ ବି ସ୍ତ୍ରୀ—୧ । ଯେଉଁ ସ୍ତ୍ରୀ ଗୋଟିଏ ମାତ୍ର ସନ୍ତାନ ପ୍ରସବ କରିଅଛି—1 A woman who has had her first delivery.
(ନବପ୍ରସୂତିକା—ଅନ୍ୟରୂପ)
୨ । ଯେଉଁ ସ୍ତ୍ରୀ ଅତି ଅଳ୍ପକାଳ ହେଲା ସନ୍ତାନ ପ୍ରସବ କରିଅଛି; ପୋଇତି ସ୍ତ୍ରୀ—2 A woman recently delivered.

[ଦ୍ର—'ନବ' ଉପପଦ ନ ଲଗିଲେ ମଧ୍ୟ ପ୍ରସୂତା, ପ୍ରସୂତି ଓ ପ୍ରସୂତିକାର ଅର୍ଥ ଯେଉଁ ସ୍ତ୍ରୀ ଅଳ୍ପଦିନ ହେଲା ପ୍ରସବ କରିଅଛି ।]

**ନବପ୍ରାଶନ**—ସଂ.ବି (ନବ+ପ୍ର+ଅଶ୍ ଧାତୁ=ଖାଇବା+ଭାବ. ଅନ)—
Nabaprāsana ୧ । ଶିଶୁର ଅନ୍ନପ୍ରାଶନ ବା ପ୍ରଥମ ଅନ୍ନଭୋଜନ ଉତ୍ସବ—1. A festival held on an infant's first feeding of boiled rice.
୨ । ନବାନ୍ନଭୋଜନ; ନୂଆଖିଆ—2. The eating of the year's new rice for the first time.

**ନବଫଳିକା**—ସଂ. ବି. ସ୍ତ୍ରୀ (ନବ+ଫଳ୍ ଧାତୁ+କ+ସ୍ତ୍ରୀ. ଆ)—
Nabaphalikā ୧ । ନବୋଢ଼ା; ନବବିବାହିତା କନ୍ୟା—1. Newly married girl.
୨ । ପ୍ରଥମେ ରଜସ୍ୱଳା ହୋଇଥିବା ବାଳିକା—2. Newly menstruated girl.

**ନବବଧୂ**—ସଂ ବି. ସ୍ତ୍ରୀ (କର୍ମଧା; ନବ+ବଧୂ)—୧ । ନବୋଢ଼ା ବାଳିକା; ନବବିବାହିତା କନ୍ୟା—1. Newly married girl.
Nababadhū
(ନବବାଳିକା—ଅନ୍ୟରୂପ)
୨ । ନୂଆବୋହୂ; ଭୂଆସୁଣୀ—2. A daughter-in law newly come to a family.

**ନବବଧୂ ଯାତ୍ରା**—ସଂ. ବି (୬ଷ୍ଠୀ ତତ୍; ନବବଧୂ+ଯାତ୍ରା)—ନୂଆ ବୋହୂର ସର୍ବପ୍ରଥମେ ଶ୍ୱଶୁରଘରକୁ ଯିବା; ପହିଲି ପାଳି ଯିବା—The starting of the bride for the first time to her husband's house (on an auspicious day).
Nababadhū jātrā
(ନବବଧୂାଗମନ—ଅନ୍ୟରୂପ)

[ଦ୍ର—ଏଥିପାଇଁ ଜ୍ୟୋତିଷ ଗଣନା ମତେ ଶୁଭଦିନ ସ୍ଥିର କରାଯାଏ ।]

**ନବବୟସୀ**—ଦେ. ବି. ଓ ବିଣ. ସ୍ତ୍ରୀ—ନବ ବାଳା, ନବୀନ ଯୁବତୀ—
Nababayasi A very young lady; a girl in the prime of her youth.
नवयुवती

ପ୍ରାତେ ନବବୟସୀ ବୟସୀ ପାଶେ ବହି, ବର୍ଣ୍ଣୀଭୂତ ଦର୍ପେ ଅଶେ । ଭଞ୍ଜ, କୋଟିବ୍ରହ୍ମାଣ୍ଡସୁନ୍ଦରୀ ।

**ନବବରିକା**—ସଂ. ବିଣ. ସ୍ତ୍ରୀ (ନବ+ବର+କ+ସ୍ତ୍ରୀ ଆ)—
Naba barikā ନବୋଢା (ଦେଖ—Nabordha (See)

**ନବବର୍ଷ**—ସଂ ବି. (କର୍ମଧା, ନବ+ବର୍ଷ)—୧ । ଅଳ୍ପକାଳ ହେଲା
Naba barsha ଆରମ୍ଭ ହୋଇଥିବା ବର୍ଷ; ନୂତନ ବତ୍ସର—
1 The new year.
୨ । ଚଳିତ ସନ; ହାଲ ସନ—2 Current year.
୩ । ନବଖଣ୍ଡ (ଦେଖ)—3 Nabakhanda (See)
୪ । ନୂତନ ବୃଷ୍ଟି; ବର୍ଷା ଋତୁର ଆରମ୍ଭରେ ପ୍ରଥମ ବୃଷ୍ଟି—
4 The first shower of the rainy season.

**ନବବର୍ଷାରମ୍ଭ**—ସଂ ବି. (ଷଷ୍ଠୀ ତତ୍; ନବବର୍ଷ+ଆରମ୍ଭ)—ନୂଆ
Naba barshārambha ସନର ଆଦ୍ୟ; ସନ୍ନଅ—The New year's day; the 1st day of the new year
[ଦ୍ର—ବିଭିନ୍ନ ଦେଶରେ ବର୍ଷ ଗଣନା ଭିନ୍ନ ଭିନ୍ନ ହେଉଥିବାରୁ ନବବର୍ଷାରମ୍ଭ ଦିବସ ବିଭିନ୍ନ ହୁଏ ।]

**ନବବଲ୍ଲଭ**—ସଂ. ବି. ପୁଂ (କର୍ମଧା, ନବ+ବଲ୍ଲଭ)—୧ । ନବୀନ
Naba ballabha ପ୍ରଣୟୀ—1. A new lover.
(ନବବଲ୍ଲଭା—ସ୍ତ୍ରୀ) ୨ । ଦାହାଗୁରୁ—2. A kind of incense

**ନବବିଂଶ**—ସଂ. ବିଣ.—ଅଣତିରିଶ ସଂଖ୍ୟାପୂର୍ଣ—
Naba bimsa Twentyninth

**ନବବିଂଶତି**—ସଂ. ବି ଓ ବିଣ (ସଂଖ୍ୟାବାଚକ) (ମ. ପ. ଲୋ. କର୍ମଧା;
Nababimśati ନବାଧିକବିଂଶତି)—ଅଣତିରିଶ;ଊନତ୍ରିଂଶତ୍;୨୯—
Twenty nine, 29.

**ନବ ବିବାହିତ**—ସଂ. ବିଣ ପୁଂ (ଅଳ୍ପକାଳ ହେଲା ବିବାହିତ ହୋଇଥିବା
Naba bibāhita (ପୁରୁଷ)—Newly wedded;recently married
(ନବପରିଣୀତ—ଅନ୍ୟରୂପ)

**ନବ ବିଷ**—ସଂ. ବି—ଆୟୁର୍ବେଦ ଅନୁସାରେ ନଅପ୍ରକାର ବିଷ ( ଯଥା—
Naba bisha ବତ୍ସନାଭ, ହାରିଦ୍ରକ, ସକ୍ତୁକ, ପ୍ରଦୀପନ ସୌରାଷ୍ଟ୍ରିକ, ଶୃଙ୍ଗକ, କାଳକୂଟ, ହଳାହଳ ଓ ବ୍ରହ୍ମାପୁତ୍ର—ହି. ଶବ୍ଦସାଗର)—Nine kinds of poison mentioned in the Ayurbeda.

**ନବମ**—ସଂ ବିଣ. ପୁଂ ( ନବନ୍+ପୂରଣାର୍ଥରେ. ମ )—ନଅ ସଂଖ୍ୟାର
Nabama ପୂରକ; ନଅ ସଂଖ୍ୟାପୂ--Ninth.
(ନବମୀ—ସ୍ତ୍ରୀ) ଦେ. ବି—୧ । ମୃତାହର ନବମ ଦିନ—
1. The ninth day of a person's death
୨ । ମୃତାହର ନବମ ଦିନର କୃତ୍ୟ; ନବମ ଶୀତଳ ( ଅର୍ଥାତ୍ ଜ୍ଞାତିବନ୍ଧୁମାନଙ୍କୁ ଜଳଖିଆ ବା ଶୀତଳ ସାମଗ୍ରୀ ଦେବା)—
2 The feeding of kinsmen and relations on the 9th day of the funeral.

**ନବମ ଦଶା**—ସଂ ବି ( କର୍ମଧା; ନବମୀ+ଦଶା )—୧ । ପ୍ରାଣରୋଧ
Nabama daśā ଅବସ୍ଥା; ମରଣାନ୍ତକ ଅବସ୍ଥା—1. Verge of death; grip of death.
(ନବମୀ ଦଶା—ଅନ୍ୟରୂପ)

ଧାଣ୍ଡବ ବୈବ୍ୟଙ୍କ ନବମ ଦଶା ଦେଖି
ପାଣ୍ଡୁଙ୍କୁ କହିଲେ ସରସ ବୁହି-ଆଖି । କୃଷ୍ଣସିଂହ. ମହାଭାରତ ଆଦି ।

[ଦ୍ର—କାମଜ ଦଶା ଦଶଗୋଟି ଯଥା—ଅଭିଳାଷ, ଚିନ୍ତା, ସ୍ମୃତି, ଗୁଣକଥନ, ଉଦ୍ବେଗ, ପ୍ରଳାପ, ଉନ୍ମାଦ, ବ୍ୟାଧି, ଜଡ଼ତା ବା ମୂର୍ଚ୍ଛା ଓ ମରଣ; ଶରୀରଜ ଦଶଦଶା ଯଥା—ଗର୍ଭବାସ, ଜନ୍ମ, ବାଲ୍ୟ, କୈଶୋର, ପୌଗଣ୍ଡ, ଯୌବନ, ସ୍ଥାବର୍ଯ୍ୟ, ଜରା, ପ୍ରାଣରୋଧ ଓ ବିନାଶ ।]

**ନବ ମଲ୍ଲିକା**—ସଂ. ବି. ସ୍ତ୍ରୀ ( ପ୍ରା ଶୋମାଳଥ )—୧ । କାଆଳି ଫୁଲ—
Naba mallikā 1 Arabian Jasmine; Jasminum Arborescens.
ନେୱାଳୀ
नेवारी ୨ । ଡବଲ ମଲ୍ଲିଫୁଲ—
2 The double Jasmine.

**ନବମ ଶୀତଳ**—ଦେ. ବି—ମୃତାହର ନବମ ଦିନ ଜ୍ଞାତିବନ୍ଧୁବାନ୍ଧବାଦିଙ୍କୁ
Nabama śitala ଦିଆଯିବା ଅନରୂଳ ସାମଗ୍ରୀ ବା ଜଳଖିଆ—
Luncheon given to kinsmen and relations on the 9th day of the funeral.

**ନବମାଂଶ**—ସଂ ବି—ନବାଂଶ ( ଦେଖ )
Nabamāmsa Nabāmsa ( See )

**ନବମାଳିକା**—ସଂ. ବି. ସ୍ତ୍ରୀ—ନବମଲ୍ଲିକା ( ଦେଖ )
Nabamālikā Nabamallikā ( See )
(ନବମାଳକା—ଅନ୍ୟରୂପ)

**ନବମୀ**—ସଂ. ବି. ସ୍ତ୍ରୀ (ନବମ+ସ୍ତ୍ରୀ. ଈ)—ଅମାବାସ୍ୟା ବା ପୂର୍ଣ୍ଣିମା ପରେ
Nabami ନବମ ତିଥି, ଚନ୍ଦ୍ରଙ୍କ ନବମ କଳାର ହ୍ରାସବୃଦ୍ଧି-ଘଟିତ ତିଥି ( କୃଷ୍ଣ ନବମୀ ଓ ଶୁକ୍ଳ ନବମୀ)—The 9th day of the lunar fortnight.
[ ଦ୍ର—ହିନ୍ଦୁଶାସ୍ତ୍ର ଅନୁସାରେ ଉତ୍କଳରେ ନିମ୍ନଲିଖିତ ନବମୀମାନ ଉତ୍ସବ ଦିବସ ବୋଲି ଗଣ୍ୟ—୧ । ରାମନବମୀ—ଚୈତ୍ର ଶୁକ୍ଳନବମୀ; ଏ ଦିନ ରାମଚନ୍ଦ୍ରଙ୍କ ଜନ୍ମୋତ୍ସବ ଏବଂ ଦୁର୍ଗାଙ୍କର ମଧ୍ୟ ବାସନ୍ତିକ ନବମୀପୂଜା ହୁଏ । ୨ । ନନ୍ଦୋତ୍ସବ—ଭାଦ୍ର କୃଷ୍ଣନବମୀ; ଜନ୍ମାଷ୍ଟମୀର ପରଦିନ କୃତ ଉତ୍ସବ । ୩ । ମହାନବମୀ—ଆଶ୍ୱିନ ଶୁକ୍ଳନବମୀ, ଶାରଦୀୟା ଦୁର୍ଗାପୂଜାର ଅନ୍ତ୍ୟ ବା ଶେଷ ଦିବସ । ୪ । ଅଁଳାନବମୀ ବା ଧାତ୍ରୀନବମୀ—କାର୍ତ୍ତିକ ଶୁକ୍ଳନବମୀ; ଜଗଦ୍ଧାତ୍ରୀପୂଜା ଓ ଦୁର୍ଗାନବମୀ ବ୍ରତ । ୫ । କାଞ୍ଜିଅଁଳାନବମୀ—ମାର୍ଗଶିର କୃଷ୍ଣ ନବମୀ ।

**ନବମ୍ବର**—ବୈଦେ. ବି ( ଇଂ ନଭେମ୍ବର )—ନଭେମ୍ବର; ଇଂରାଜୀ
Nabambara ଗଣନାର ଏକାଦଶ ମାସ—
नवेम्बर नम्बर The month of November.

**ନବଯଉବନ**—ଦେ. ବି (ସଂ. ନବଯୌବନ)—ନବଯୌବନ (ଦେଖ)
Nabajaubana Nabajaubana (See).
नवजउबन

**ନବଯଉବନା(ନୀ)**—ଦେ ବି. ଓ ବିଣ. ସ୍ତ୍ରୀ ( ସଂ ନବଯୌବନା )—
Nabajaubanā (nī) ନବଯୁବତୀ—A girl in her prime of youth
नवजोबना

**ନବଯୁବକ**—ସଂ. ବିଣ. ପୁଂ—ଯାହାର ଯୌବନାରମ୍ଭ ମାତ୍ର ହୋଇଅଛି;
Nabajubaka ତେଣ୍ଡା; ଟେଣ୍ଡିଆ—(a person) In the
(ନବଯୁବତୀ—ସ୍ତ୍ରୀ) prime of (his) youth, blooming with the freshness of youth.

**ନବଯୁବା**—ସଂ. ବିଣ. ପୁଂ—ନବଯୁବକ (ଦେଖ)
Nabajubā Nabajubaka (See .
नवजवान ଦେ ବିଣ—୧ । (ପୁଂ. ଓ ସ୍ତ୍ରୀ)—ନବ ଯୁବକ ବା ନବ ଯୁବତୀ—1. ( a person of both genders ) In the prime of youth, blooming with youth
୨ । ( ସ୍ତ୍ରୀ ) ଅଳ୍ପଦିନ ହେଲା ପ୍ରଥମେ ଋତୁମତୀ ହୋଇଥିବା (ବାଳିକା)—2. A recently menstruated ( girl ).

**ନବଯୌବନ**—ସଂ. ବି (କର୍ମଧା; ନବ+ଯୌବନ)—ପ୍ରଥମ ଯୌବନ—
Nabajaubana Prime of youth, the full bloom of youth
(ନବଯୌବନା—ସ୍ତ୍ରୀ) ସଂ ବିଣ. ପୁଂ—ନବଯୁବା—
(a man) In the prime of youth

**ନବଯୌବନ ବେଶ**—ଦେ. ବି—ଶ୍ରୀଜଗନ୍ନାଥମହାପ୍ରଭୁଙ୍କ ଦାରୁମୂର୍ତ୍ତି
Nabajaubanabeśa ନୂତନ ରଞ୍ଜିତ ହେଲା ପରେ ରଥକୁ ଯିବା ପୂର୍ବରୁ ଯେଉଁ ରୂପ ବା ବେଶରେ ସଜ୍ଜିତ ହୁଅନ୍ତି; ନେତ୍ରୋତ୍ସବରେ ଦେବା ରୂପ ବା ବେଶ — The newly painted image of the idol Jagannathā on His eyes being finally touched up and the image opened to the public view for the 1st time.
[ ଦ୍ର—ଆଷାଢ଼ ଅମାବାସ୍ୟା ଦିନ ଏ ବେଶ ହୁଏ । ]

**ନବଯୌବନୀ**—ଦେ. ବି. ଓ ବିଣ. ସ୍ତ୍ରୀ ( ସଂ. ନବଯୌବନା )—ନବ
Nabajaubanī ଯୁବତୀ—A girl in the prime of her youth
नौजवान

**ନବର**—ଦେ. ବି (ସଂ. ନଗର)—୧ । ନଗର; ସହର—
Nabara 1. Town.
ବର୍ତ୍ତିବୁ ସୁଖହବରେ ତୁକ ନବରେ—ଭଞ୍ଜ. ବୈଦେହୀଶବିଳାସ ।
୨ । ରାଜଧାନୀ—2. Capital.
ବେଢ଼ ସୁନବରେ କଟକକଲେ ନୃପୁପୁର ନରେଶ—ରାଧାନାଥ. ଭଣ ।
राजमहल ୩ । ରାଜାଙ୍କ ରହୁଅସ; ରାଜାଙ୍କ ନଅର; ରାଜବାଟୀ—
राजमहल 3. King's palace.
ମର୍ମବେଷ୍ଟା ତାହାବାରେ ପୂରସ ନବର—ରାଧାନାଥ ମହାଯାତ୍ରା ।
୪ । ରାଜାଙ୍କ ଅନ୍ତଃପୁର—4 The harem or female quarters of a king.

**ନବରଙ୍ଗ**—ଦେ. ବି – ୧ । କଥାକହିବା ଓ ଚାଲିବାର ଢଙ୍ଗ—
Nabaranga 1. Gestures
नवरंग ୨ । ଛଇ —2. Airs; gaiety; buffoonery.
नवरंग ୩ । ଫିଟ୍; ଢଙ୍ଗ—3 Fashion
୪ । ନୂଆ ଚାଲି —4. A new fashion
୫ । ରହସ୍ୟ; ଥଟ୍ଟା—
5 Jest, short; wit; fun; frolic.
୬ । ଚାତୁରୀ; ଫିସାଦ—
6 A trick; craftiness; roguery.
୭ । କୌତୁକ, ଆମୋଦପ୍ରମୋଦ—
7 Amusements; sports

**ନବରଙ୍ଗ କରିବା**—ଦେ. କ୍ରି—୧ । ଛଇ ଦେଖାଇବା—
Nabaranga karibā 1 To assume airs
ନବରଙ୍ଗ କାଢ଼ିବା,
ନବରଙ୍ଗ ବାହାର କରିବା } ଅନ୍ୟରୂପ
ନବରଙ୍ଗ ଲଗାଇବା
୨ । ଥଟ୍ଟା କରିବା— 2. To cut jokes
नवरङ्ग निकालना

**ନବରଙ୍ଗିଆ**—ଦେ. ବିଣ ପୁଂ—୧ । ଛଇଲ—
Nabarangiā 1 Frolicsome; gay; assuming or displaying airs.
(ନବରଙ୍ଗୀ—ସ୍ତ୍ରୀ)
नवरङ्गिआ ୨ । ଥଟ୍ଟିଲ—2. Witty; jocose; jovial
नवरङ्गी ୩ । ଚତୁର—3. Crafty.
୪ । କୌତୁକିଆ, ଦେଖିବାକୁ ସୁନ୍ଦର—4. Handsome.

**ନବରଜାଃ**—ସଂ. ବି. ସ୍ତ୍ରୀ (ବହୁବ୍ରୀହି; ନବ+ରଜସ୍—ଅଳ୍ପ ଦିନ ହେଲା
Nabarajāh ଯେଉଁ ବାଳିକାର ପ୍ରଥମ ରଜୋଦର୍ଶନ ହୋଇଅଛି— A girl who has recently menstruated (Apte).

**ନବରତ୍ନ**—ସଂ. ବି. (କର୍ମ; ନବ+ରତ୍ନ)—୧ । ନବନିଧି (ଦେଖ)
Nabaratna 1. Nabanidhi (See)
୨ । ନଅଗୋଟି ମଣି (ରତ୍ନ ତଳେ ନୋଟ ଦେଖ)—
2. The nine precious gems (See notes under Ratna )
୩ । (ଦ୍ୱିଗୁ) ଏକତ୍ର ନବରତ୍ନର ସମାହାର—
3. A collection of nine gems.
୪ । ନବରତ୍ନଖଚିତ ଅଳଙ୍କାର—
4 An ornament set with nine gems
୫ । ବିକ୍ରମାଦିତ୍ୟଙ୍କ ରାଜସଭାର ୯ ଜଣ ପଣ୍ଡିତ—
5. The nine distinguished men of letters of the court of Bikramāditya
[ଦ୍ର—ଧନ୍ୱନ୍ତରି, କ୍ଷପଣକ, ଅମରସିଂହ (ଶବ୍ଦକୋଷକାର), ଶଙ୍କୁ, ବେତାଳଭଟ୍ଟ, ଘଟକର୍ପର, କାଳିଦାସ (କବି), ବରାହମିହିର (ଜ୍ୟୋତିଷିକ) ଓ ବରରୁଚି ଏମାନେ ବିକ୍ରମାଦିତ୍ୟଙ୍କ ସଭାର ପଣ୍ଡିତ ଥିଲେ । ସମ୍ଭବତଃ ଏମାନେ ସମକାଳୀନ ନ ଥିଲେ । 'ବିକ୍ରମାଦିତ୍ୟ' ତଳେ ନୋଟ୍ ଦେଖ ।]

**ନବରସ**—ସଂ. ବି.—୧ । (କର୍ମଧା; ନବ+ରସ)—ଅଳଙ୍କାର ଶାସ୍ତ୍ରରେ
Naba rasa ବର୍ଣ୍ଣିତ ୯ ପ୍ରକାର ରସ ବା ସ୍ଥାୟୀ ଭାବ (ରସ ତଳେ ନୋଟ୍ ଦେଖ)—1. The nine kinds or emotions (in literature)(See notes under Rasa)

୨ । (କର୍ମଧା; ନବ = ନୂତନ + ରସ)—ଅଭିନବ ଭାବ—
2. A new sentiment or emotion

**ନବରସିକ**—ସ. ବଣ. ପୁଂ—ନବଯୁବା ଓ ରସିକ (ବ୍ୟକ୍ତି)—
Nabarasika Youthful and gay (person).
(ନବରସିକା—ସ୍ତ୍ରୀ)

**ନବରାତ୍ର**—ସ. ବି—୧ । ଆଶ୍ୱିନ ଓ ଚୈତ୍ର ଶୁକ୍ଳ ପ୍ରତିପଦଠାରୁ ନବମୀ ପର୍ଯ୍ୟନ୍ତ କରାଯିବା ଦୁର୍ଗା ପୂଜା—
Nabarātra 1 Worship of Durgā for 9 nigths in Āswina and Chaitra.
[ ଦ୍ର—ନବରାତ୍ର ପୂଜାର ଆରମ୍ଭରେ ପ୍ରଥମ ଦିନ ଘଟ ସ୍ଥାପନ କରି ଦେବୀଙ୍କୁ ଆବାହନ କରାଯାଏ ଓ ୯ ଦିନ ପର୍ଯ୍ୟନ୍ତ ପୂଜା ହୋଇ ଶେଷ ଦିନ ଘଟକୁ ବିସର୍ଜନ କରାଯାଏ । ଅଷ୍ଟମୀ ବା ନବମୀ ଦିନ ଦଶ ବର୍ଷ ବୟସରୁ ଊଣା ବୟସର ୯ ଜଣ କୁମାରୀଙ୍କୁ ଦୁର୍ଗାଙ୍କର ନଅ ଗୋଟି ମୂର୍ତ୍ତି ( ଯଥା—କୁମାରିକା, ତ୍ରିମୂର୍ତ୍ତି, କଲ୍ୟାଣୀ, ରୋହିଣୀ, କାଳୀ, ଚଣ୍ଡିକା ଶାମ୍ଭବୀ, ଦୁର୍ଗା ଓ ସୁଭଦ୍ରା ) ରୂପେ କଳ୍ପନା କରି ଭୋଜନ ଦିଆଯାଏ - ଶବ୍ଦସାଗର ]
୨ । ନବଦିବସବ୍ୟାପୀ ଯଜ୍ଞବିଶେଷ—
2. A vedic sacrifice performable in 9 days.
ଦେ. ବି—ନବରାତ୍ରି ( ଦେଖ )—Nabarātri ( See )

**ନବରାତ୍ରି**—ଦେ. ବି. (ସ. ନବରାତ୍ର)—
Nabarātri ୧ । ପୋଷଣ୍ଡା ସ୍ତ୍ରୀର ପ୍ରସବର ନବମ ଦିନ ରାତ୍ରିରେ କରାଯିବା ଉତ୍ସବ; ଷ୍ଠୀ ଆଚାରବିଶେଷ—
1. A festival observed on the 9th day of the birth of a child.
୨ । ନଅ ଦିନ ଓ ନଅ ରାତ୍ରି ଅବିଶ୍ରାନ୍ତ ଭାବରେ ନାମ ସଂକୀର୍ତ୍ତନ କରିବାରୂପ ଉତ୍ସବବିଶେଷ—
2. A festival of loudly repeating the name of the Deity for 9 days ( day and night ) without cessation.

**ନବରାଶିକ**—ସ. ବି—ଗଣିତ ଶାସ୍ତ୍ରରେ ୯ ଗୋଟି ରାଶିର ସମାନୁପାତ-
Nabarāśika ପ୍ରକ୍ରିୟାବିଶେଷ—(mathematics) A compound rule of three; the rule of nine

**ନବରାଷ୍ଟ୍ର**—ସ. ବି—ନୂତନ ରାଜ୍ୟ—
Nabarāshtra 1 A new kingdom.
୨ । ପ୍ରାଚୀନ ଭାରତର ଦକ୍ଷିଣ ଭାଗସ୍ଥ ନଅ ଗୋଟି ପ୍ରସିଦ୍ଧ ପ୍ରଦେଶ ( ଯଥା—ସୌରାଷ୍ଟ୍ର, ମହାରାଷ୍ଟ୍ର, ଗୁର୍ଜ୍ଜରରାଷ୍ଟ୍ର, ଉତ୍ତରାଷ୍ଟ୍ର ଇତ୍ୟାଦି )—2. Nine famous kingdoms in the southern portion of ancient India.
୩ । ଉଶୀନର ଦେଶାଧିପତିଙ୍କ ରାଜ୍ୟ—2. Name of an ancient kingdom of India.

**ନବରି**—ପ୍ରାଦେ. ( ଯାଜପୁର ) ବି—ଛଇ; ନବରଙ୍ଗ—
Nabari Airs; fashion; gaiety; buffoonery.

**ନବଳ**—ସ. ବଣ. ପୁଂ. (ନବ + ଲା ଧାତୁ = ଗ୍ରହଣ କରିବା + କର୍ତ୍ତୃ.ଅ)-
Nabala ୧ । ନବୀନ; ନୂତନ—1. New.
(ନବଳା—ସ୍ତ୍ରୀ) ୨ । ଯୁବକ—2. Young; youthful
୩ । ନବ ଯୁବକ—
3 ( a person ) In the prime of youth
୪ । ସୁନ୍ଦର (ହି. ଶ.)—4. Beautiful.
୫ । ସ୍ୱଚ୍ଛ (ହି. ଶ)—5 Bright
୬ । ତାଜା, ଟଟକା (ହି. ଶ.)—6. Fresh.

**ନବଳ କିଶୋର**—ସ. ବି, ପୁଂ—ନବକିଶୋର ( ଦେଖ )
Nabala kiśora Nabakiśora ( See)

**ନବଲକ୍ଷଣ**—ସ ବି—୧ । ବ୍ରାହ୍ମଣର ନଅ ଗୋଟି ଲକ୍ଷଣ ବା ଚିହ୍ନ—
Nabalakshana 1 The nine signs by which a Brāhmana can be known
[ ଦ୍ର—ଆଚାର, ବିନୟ, ବିଦ୍ୟା, ପ୍ରତିଷ୍ଠା, ତୀର୍ଥ ଦର୍ଶନ, ନିଷ୍ଠା, ବୃତ୍ତି, ତପ ଓ ଦାନ ବ୍ରାହ୍ମଣର ନବ ଲକ୍ଷଣ । ]
୨ । ନବଧାଭକ୍ତି ( ଦେଖ )
2. Nabadhā bhakti ( See )
୩ । ଅନୁରାଗ ବା ପ୍ରଣୟର ନଅ ଗୋଟି ଲକ୍ଷଣ—
3. Nine signs or indications of a person falling in love with another of the opposite sex.
୪ । ଯୋଗସାଧନର ନଅ ଗୋଟି ସୋପାନ—
4. Nine steps in Joga exercise.
୫ । ସୃଷ୍ଟି, ସ୍ଥିତି, ପ୍ରଳୟ ସମ୍ବନ୍ଧୀୟ ନଅ ପ୍ରକାର ଐଶ୍ୱରିକ ଲକ୍ଷଣ—5. Nine natural signs in connection with the creation, preservation and destruction of the Universe.

**ନବଶଃ**—ସ. (ନବନ୍ + ଶସ୍; ବାର ଅର୍ଥରେ)—୧ । ନଅ ନଅ କରି;
Nabaśaḥ ଥରକେ ନଅଟା ଲେଖାଏଁ—1. Nine at a time; by nines.
୨ । (ଗଣିତ) ଏକାଅଶି, ୯ × ୯; ୯ ର ବର୍ଗ—
2 81; the square of nine.

**ନବଶକ୍ତି**—ସ. ବି.—୧ । ନୂତନ ଶକ୍ତି ବା ବଳ—
Naba śakti 1. New or fresh vigour or strength.
୨ । ହିନ୍ଦୁ ପୁରାଣ ମତରେ ବିଶ୍ୱନିୟନ୍ତ୍ରୀ ନଅ ଗୋଟି ଶକ୍ତିରୂପିଣୀ ଦେବତା—2. The nine personifications of the energy guiding the Universe according to the Hindus.
[ଦ୍ର—ନବଶକ୍ତି ଯଥା—ପ୍ରଭା, ମାୟା, ଜୟା, ସୂକ୍ଷ୍ମା, ବିଶୁଦ୍ଧା, ନନ୍ଦିନୀ, ସୁପ୍ରଭା, ବିଜୟା ଓ ସର୍ବସିଦ୍ଧିଦା; ମତାନ୍ତରେ ବିମଳା, ଉତ୍କର୍ଷିଣୀ, ଜ୍ଞାନକ୍ରିୟା, ଯୋଗା, ପ୍ରହ୍ୱୀ, ସତ୍ୟା, ଈଶାନା, ଅନୁଗ୍ରହା ଓ ଚିରଜା । ]
ଅନ୍ୟେ ବଦନ୍ତି ନବଶକ୍ତି,
ସେ ଅବା ଛନ୍ତି ପାଶ୍ୱରନ୍ତି । ଭାଗବତ ।

**ନବଶଶୀ**—ସ. ବି.—ଦ୍ୱିତୀୟାର ଚନ୍ଦ୍ର—
Nabaśaśi The new crescent moon.

**ନବଶସ୍ୟ**—ସ. ବି.—ବର୍ଷର ପ୍ରଥମ ଫସଲରୁ ଲବ୍ଧ ଶସ୍ୟ—
Nabaśasya The first fruits of the year's harvest.

**ନବଶାକ**—ସ. ବି.—୧ । ନବଶାୟକ (ଦେଖ)
Nabaśāka 1. Nabaśāyaka (See)
୨ । ଶକଜାତୀୟ ନଅଗୋଟି ଶିଳ୍ପବ୍ୟବସାୟୀ ଜାତି (ପ୍ରତ୍ନତତ୍ତ୍ୱ-ବାଦ)—2 Nine classes of artisans amongst the Sakas of ancient India.

**ନବ ଶାକର**—ଦେ. ବି.—ନିଶାଦଳ (ଦେଖ)
Naba śākara Niśādala (See)

**ନବଶାଖ(ଖା)**—ଦେ. ବି. (ସ. ନବଶାଖା)—ନବଶାୟକ (ଦେଖ)
Nabasākha (khā) Nabaśāyaka (See)

**ନବଶାୟକ**—ସ. ବି.—ବୈଶ୍ୟକାନ୍ତଥା ଜାତି, ନଅ ଗୋଟି ହାଟୁଆ ଜାତି—
Naba śāyaka Nine castes of traders and artisans in Hindu society.

[ ଦ୍ର—ଗଉଡ଼, ତେଲି, ତନ୍ତୀ, ଭଣ୍ଡାରି, ମାଳି, ଗୁଡ଼ିଆ, କମାର, କୁମ୍ଭାର ଓ ପାନବରଜୀ ବା ପାନ ସ୍ୱ ଏମାନେ ହିନ୍ଦୁ ସମାଜର ୯ଟି ହାଟୁଆ ଜାତି । ଏମାନଙ୍କର ସ୍ୱାମୀମାନେ ପ୍ରକାଶତଃ ଦାଣ୍ଡିକୁ ଯାଆନ୍ତି । ଏମାନଙ୍କ ଜାତିପାଟକମାନେ ବୈଶ୍ୟ କାନ୍ତରେ ବସି ସାମାଜିକ ଦଣ୍ଡବିଧାନ କରନ୍ତି ।
ପରାଶର ସଂହିତା ଅନୁସାରେ ଗଉଡ଼, ମାଳୀ, ତେଲି, ତନ୍ତୀ, ଗୁଡ଼ିଆ, ପାନବରଜୀ, କୁମ୍ଭାର, କମାର, ଓ ଭଣ୍ଡାରି ନବଶାୟକ ଅଟନ୍ତି । ପରାଶର ଅନୁସାରେ ଏ ନଅ ଜାତି ସଙ୍କର ଓ ଶୁଦ୍ଧ ଶୂଦ୍ର । ବଙ୍ଗଦେଶରେ ବ୍ରାହ୍ମଣମାନେ ଏମାନଙ୍କ ହାତରୁ ଜଳ ସ୍ପର୍ଶ କରନ୍ତି, କିନ୍ତୁ ଓଡ଼ିଶାରେ ତେଲି, ତନ୍ତୀ, କମାର, କୁମ୍ଭାରମାନଙ୍କ ସ୍ପୃଷ୍ଟଜଳ ବ୍ରାହ୍ମଣମାନେ ଗ୍ରହଣ କରନ୍ତି ନାହିଁ । ହିନ୍ଦୀଭାଷୀ ଅଞ୍ଚଳମାନଙ୍କରେ ତେଲି, ତନ୍ତୀଙ୍କ ସ୍ପୃଷ୍ଟଜଳ ବ୍ରାହ୍ମଣମାନେ ଗ୍ରହଣ କରନ୍ତି ନାହିଁ ।]

**ନବଶିକ୍ଷିତ**—ସ. ବିଣ. ପୁଂ—(କର୍ମଧା; ନବଶିକ୍ଷିତ)—୧ । ନୂଆଶିକ୍ଷାଳି; ଯେ କୌଣସି ବିଦ୍ୟା ନୂଆ ଶିଖିଅଛି—
Naba śikshita 1 Novice
(ନବଶିକ୍ଷିତା—ସ୍ତ୍ରୀ)
୨ । ଆଧୁନିକ ପଦ୍ଧତିରେ ଶିକ୍ଷା ପ୍ରାପ୍ତ—
2. Educated in modern methods.

**ନବଶୋଭ**—ସ. ବିଣ. ପୁଂ—(ବହୁବ୍ରୀହି; ନବ+ଶୋଭା)—ତରୁଣ; ଯୁବକ (ହି. ଶ.)—Youthful; in the prime of youth.
Nabaśobha
(ନବଶୋଭା—ସ୍ତ୍ରୀ)

**ନବସଙ୍ଗମ**—ସ. ବି.—( କର୍ମଧା; ନବ+ସଙ୍ଗମ )—୧ । ନୂତନ ସମାଗମ—1. New interview.
Naba saṅgama
୨ । ଦମ୍ପତିଙ୍କର ପ୍ରଥମ ମିଳନ—
2. The first meeting of a married couple

**ନବସ(ସି)ନ୍ଦା(ନ୍ଧା)**—ବୈଦେ. ବି. (ଫା. ନକ୍ସିନ୍ଦାହ୍)—୧ । ଦଲିଲ ଲେଖିବା ବ୍ୟକ୍ତି; ଦଲିଲ ଲେଖକ—
Nabasa(si)ndā (ndhā) 1. The scribe or writer of a document.
[ ନବିସିନ୍ଦା
୨ । ଦରଖାସ୍ତର ଲେଖକ—2. Petition writer.
୩ । ଲେଖକ—3. Writer.

**ନବସର(ରି)**—ଦେ ବିଣ.—ନବସରିଆ (ଦେଖ)
Nabasarā(ri) Nabasariā (See)

**ନବସରିଆ**—ଦେ. ବିଣ.—( ସ. ନବ+ସ୍ରକ୍ )—ନଅ ସରିଯୁକ୍ତ (ହାର)
Naba sariā Nine-stringed (necklace)
नलवी **नवसरा**

**ନବସାଗରି**—ଦେ. ବି.—ସାଗରପେଶା (ଦେଖ)
Nabasāgari Sāgarapeśā (See)
ପ୍ରାଦେ. (ବାଲେଶ୍ୱର) ବି—ଓଡ଼ିଆରେ କଥାବାର୍ତ୍ତା କରୁଥିବା ବଙ୍ଗାଳୀ—The Bengalees talking in the Oriya language.

**ନବସୂତ**—ସ. ବିଣ. ପୁଂ (ନବ+ସୂତ)—ନବଜାତ (ଦେଖ)—
Nabasūta Nabajāta (See)
(ନବସୂତା ସ୍ତ୍ରୀ)

**ନବସୂତା**—ସ ବିଣ. ସ୍ତ୍ରୀ (ନବସୂତ+ସ୍ତ୍ରୀ. ଆ)—ନବପ୍ରସୂତା (ଦେଖ)
Nabasūtā Naba prasūtā (See)
(ନବସୂତିକା—ଅନ୍ୟରୂପ)

**ନବା**—ସ. ବିଣ. ସ୍ତ୍ରୀ (ନବ+ସ୍ତ୍ରୀ. ଆ)—ନବର ସ୍ତ୍ରୀଲିଙ୍ଗ—
Nabā Feminine of Nabā.
(ନବ—ପୁଂ) ଦେ. ବି.—(ସ. ନବନ)—୧ । ନଅ ବିନ୍ଦୁଯୁକ୍ତ ତାସ୍; ନହଲା—1. ( in card playing ) The card containing nine points.
୨ । (ଅନାଦରାର୍ଥକ) ନବକିଶୋର ବା ନବଘନର ଡାକନାମ—
2. Name for calling Nabakiśora or Nabaghana.
୩ । (ସ.ନବା)-ନବୀନା; ନବ ଯୁବତୀ—3 A girl in the hey-day of youth.
କ୍ରୀ. ବି ( ସ. ନୀ ଧାତୁ )—ଗ୍ରହଣ କରିବା; ନେବା—
1. Taking; accepting.
୨ । ବହନ କରିବା—2. Carrying.
କ୍ରୀ. କି (ସ. ନୀ ଧାତୁ)—'ନେବା' (ଦେଖ) Nebā (See)
[ଦ୍ର—ସ. ନୀ ଧାତୁର ଲେଖା ହେବା କ୍ରିୟାବାଚକ ଆକାର 'ନେବା' ଓ କଥାବାର୍ତ୍ତାରେ ବ୍ୟବହୃତ ଆକାର 'ନବା'; ଭୁଲ. ଦେବା କ୍ରିୟାର କଥିତ ଆକାର 'ଦବା']

**ନବାଂଶ**—ସ. ବି (ନବ+ଅଂଶ)—(ଫଳିତ ଜ୍ୟୋତିଷ) ମେଷାଦି ଦ୍ୱାଦଶ ରାଶି ବା ଲଗ୍ନର ପ୍ରତ୍ୟେକର ନବମଭାଗର ଏକ ଏକ ଭାଗ—(astrology) One ninth of each of the 12 Lagnas or natal signs of one's horoscope.
Nabāmśa
[ଦ୍ର—ଜାତକରେ ଏହି ନବାଂଶ ଦ୍ୱାରା ଶିଶୁର ଭାବୀ ଜୀବନର ବିଷୟମାନ ନିର୍ଣ୍ଣୟ କରାଯାଏ]

**ନବା(ବେ)ଇ**—ଦେ. ବି (ଆଦରାର୍ଥକ)—ନବକିଶୋର, ନବଘନ ଆଦିଙ୍କ ଡାକ ନାମ—Name for calling Nabakishore or Nabaghana.
Nabā(be)i
नवाई

**ନବାକି**—ଦେ. ବିଣ—୧ । ଫାଜିଲାମି—1. Pertness, undue forwardness
Nabāki
୨ । ମୁହଁବାଲିଗି—2 Vainglory; bragging

**ନବାଗତ**—ସଂ. ବିଣ. ପୁଂ (କର୍ମଧାରୟ. ନବ+ଆଗତ)—ନୂଆ ହୋଇ ଉପସ୍ଥିତ ହୋଇଥିବା—Newly come, one who has recently arrived or joined
Nabāgata (ନବାଗତା – ସ୍ତ୍ରୀ)

**ନବାଙ୍କ**—ସଂ ବି (କର୍ମଧା ନବ+ଅଙ୍କ)—ନୂତନ ସନ; ନବବର୍ଷ—New year
Nabāṅka
ଦେ. ବି — ନଅ ବାଙ୍କ ବା ମୋଡ଼—Nine bends or curvatures.

**ନବାଙ୍କ ପାଞ୍ଜି**—ଦେ. ବି (ସଂ. ନବାଙ୍କ ଓ ପଞ୍ଜିକା)—ନୂତନ ବର୍ଷର ପାଞ୍ଜି, ନୂଆପାଞ୍ଜି—The almanac for the new year.
Nabānka pāñji

**ନବାଙ୍କ ବେଢ଼ା**—ଦେ. ବି—ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କର ଯାତ୍ରାବିଶେଷ—One of the festivals of Lord Jagannath
Nabāṅka berḍhā
(ନବାଙ୍କ ଯାତ୍ରା—ଅନ୍ୟରୂପ)
[ଦ୍ର—ସୌର ପୌଷ ବା ଧନୁମାସର ଶେଷ ଦିନ ଏ ଯାତ୍ରା ହୁଏ । ତହିଁ ଆରଦିନଠାରୁ ସୂର୍ଯ୍ୟ ଦେବଙ୍କର ହିନ୍ଦୁ ଜ୍ୟୋତିଃଶାସ୍ତ୍ରୋକ୍ତ ଉତ୍ତରାୟଣ ଗତି ଅନୁସାରେ ନୂତନ ବର୍ଷାରମ୍ଭ ହେବାରୁ ସମ୍ଭବତଃ ଏହି ଯାତ୍ରାର ଏପରି ନାମକରଣ ହୋଇଅଛି ।]

**ନବାଙ୍ଗପାଚନ**—ସଂ ବି—ନଅ ଗୋଟି ଔଷଧ ଦ୍ରବ୍ୟ (ଶୁଣ୍ଠି, ପିପ୍ପଳି, ମରିଚ, ହରିଡ଼ା, ବାହାଡ଼ା, ଅଁଳା, ଚବ୍ୟ, ଚିତା ଓ ବାଇବିଡ଼ଙ୍ଗ) ସିଦ୍ଧ ହୋଇ ପ୍ରସ୍ତୁତ ହେବା ପାଚନ— A decoction made of nine ingredients
Nabāṅga pāchana

**ନବାଙ୍ଗୀ**—ସଂ.ବି.ସ୍ତ୍ରୀ—(ନବ+ଅଙ୍ଗ+ଈ) ୧ । ସ୍ତ୍ରୀ—1 A woman (Apte).
Nabāṅgi
୨ । ନବ ଯୁବତୀ—2. A woman in her prime of youth.

**ନବାତ**—ବୈଦେ. ବି (ଫା.)—କନ୍ଦ; ସଫା କରାଯାଇଥିବା ଗୁଡ—Refined molasses
Nabāta
नवात; खाँड़
ନବାତ ମିଶ୍ରି ଯେ ନ ହେବେ, ଲୁଣ ଛଟକ ପ୍ରାପ୍ତ ମଣେ—
ଭୂପତି-ପ୍ରେମପଞ୍ଚାମୃତ ।

**ନବାଥବା**—ପ୍ରାଦେ (ଗଡ଼ଜାତ)ବି—ପେଚା ଜାତୀୟ ଏକପ୍ରକାର ଚଢ଼େଇ—A bird belonging to the class of the owl.
Nabāthabā
[ଦ୍ର—ଦୂରରେ ଥାଇ ଗୋଟିଏ ଚଢ଼େଇ ବୋବାଏ 'ନବା'; ଆଉ ଗୋଟିଏ ଜବାବ୍ ଦିଏ 'ଥବା' ଏ ପକ୍ଷୀ ହୁଁହାଁ ଚଢ଼େଇ ପରି । ଏହାର ଶବ୍ଦ ଅଶୁଭସୂଚକ ।]

**ନବାନ୍ନ**—ସଂ. ବି. (କର୍ମଧା; ନବ+ଅନ୍ନ)—୧ । ନୂଆ ଖିଆ; କୌଣସି ବର୍ଷର ଆମଦାନି ହୋଇ ଥିବା ନୂଆ ଧାନର ଚୁଡ଼ା ବା ନୂଆ ଚାଉଳର ଭାତ ଖାଇବା ଉପଲକ୍ଷରେ ଗୃହସ୍ଥର ଉତ୍ସବବିଶେଷ—1. A feast when the house-holder first partakes of the rice or churḍā of the new year's paddy.
Nabānna
[ଦ୍ର—ଏ ଉତ୍ସବରେ ଗୃହସ୍ଥ ପିତୃଦେବତା, ଅତିଥି, ଜ୍ଞାତି ଓ ବନ୍ଧୁମାନଙ୍କୁ ଅର୍ଚ୍ଚନା କରନ୍ତି ।]
୨ । ସଦ୍ୟ ରନ୍ଧା ଯାଇଥିବା ଭାତ, ତଟକା ଭାତ—2. Fresh boiled rice.

**ନବାବ**—ବୈଦେ. ବି. (ଆ. ନବ୍ବାବ୍)—୧ । (ମୁସଲମାନ ରାଜତ୍ୱକାଳୀନ) ପ୍ରଦେଶର ଶାସନକର୍ତ୍ତା—1 Lieutenant Governor; a ruler of a provice (under the Mahomedan rule.)
Nabāb
नवाब
নবাব
୨ । ମୁସଲମାନ ସାମନ୍ତ ରାଜା—2. A feudatory Mahomedan chief or Ruler of a state.
୩ । ଇଂରେଜ ଗଭର୍ଣ୍ଣମେଣ୍ଟଙ୍କର ମୁସଲମାନ ଜମିଦାର ଓ ଧନୀଙ୍କୁ ପ୍ରଦତ୍ତ ଉପାଧି—3. A title given by the British Government to Mahomedan zamindars.
୪ । ଧନୀ ଓ ସମ୍ଭ୍ରାନ୍ତ ବ୍ୟକ୍ତି—4. Rich and respectable man, Nabab.
୫ । ବଡ଼ଲୋକୀ ଢଙ୍ଗରେ ଚଳବା ଓ ବ୍ୟୟ କରିବା ବ୍ୟକ୍ତି—4. A person living in rich and expensive style.
[ଦ୍ର—ଏ ଶବ୍ଦ ଇଂରାଜୀ ଭାଷାରେ Nabab ନବାବ୍ ବା Nawab ନୱାବ୍ ରୂପ ଧାରଣ କରି ଚଳୁ ଅଛି ।]

**ନବାବ୍‌ଗିରି**—ଦେ. ବି.—ନବାବି ଢଙ୍ଗ (ଦେଖ)
Nabāb giri — Nabābi ḍhaṅga (See)
নবাবগিরি

**ନବାବ୍ ଜାଦା**—ବୈଦେ. ବି. ପୁଂ (ଆ ନବାବ୍+ଫା. ଜାଦା)—ନବାବଙ୍କ ପୁତ୍ର—A son of a Nabāb; a prince of a Nabāb.
Nabāb jādā
(ନବାବ୍‌ଜାଦୀ—ସ୍ତ୍ରୀ)

**ନବାବ୍ ନାଜିମ୍**—ବୈଦେ. ବି (ଆ. ନବାବ୍+ନାଜିମ୍)—କୌଣସି ପ୍ରଦେଶର ଶାସନକର୍ତ୍ତା ଓ ବିଚାରପତି—The Provincial executive and Judicial head.
Nabāb nājim
नवाब नाजीम
নবাব নাজীম

**ନବାବ୍ ବାହାଦୁର**—ବୈଦେ ବି (ଆ. ନବାବ୍ ଓ ଫା. ବାହାଦୁର)—ଭାରତୀୟ ସଂଭ୍ରାନ୍ତ ମୁସଲମାନଙ୍କୁ ଇଂରେଜ ସରକାରଙ୍କ ଦେବା ଉପାଧିବିଶେଷ—A title given to Mahomedans by the British Government.
Nabāb bahādur
नवाब बाहादुर
নবাব বাহাদুর
[ଦ୍ର—ହିନ୍ଦୁମାନଙ୍କୁ ଦେବା ଉପାଧି=ରାଏସାହେବ, ରାଓ ସାହେବ; ରାଏବାହାଦୁର, ରାଓବାହାଦୁର; ରାଜା, ରାଜାବାହାଦୁର । ମୁସଲମାନଙ୍କୁ ଦେବାଉପାଧି=ଖାଁସାହେବ, ଖାଁ ବାହାଦୁର; ନବାବ୍, ନବାବ୍ ବାହାଦୁର ।]

ନବାବ୍ ସାହେବ—ବୈଦେ. ବ (ଆ. ନବାବ୍ ଓ ସାହବ୍)—ନବାବଙ୍କର ସମ୍ମାନସୂଚକ ସମ୍ବୋଧନ—A term of respect applied to a Nabāb.
Nabāb saheb
नवाब साहिब
**नबाब साहिब**

ନବାବି—ବୈଦେ. ବିଣ (ଆ. ନବାବୀ)—୧ । ନବାବ ଯୋଗ୍ୟ—1. Befitting a Nabāb; princely.
Nabābi
नवाबी
**नवाबी**
୨ । ବଡ଼ଲୋକଙ୍କର, ଧନୀସୁଲଭ (କର୍ମ)—2. (act) Becoming or befitting a rich man.
(ନବାବୀଆ—ଅନ୍ୟରୂପ)
ବି—୧ । ଧନମଦ; ଧନଗାରିମା—1 Pride of riches.
୨ । ନବାବ୍ ବା ପ୍ରାଦେଶିକ ଶାସକକର୍ତ୍ତାଙ୍କ ପଦ—2. The position of a Nawāb.
୩ । ଧନସମ୍ପଦ—3 Riches; prosperity.
୪ । ନବାବଙ୍କ ରାଜତ୍ୱକାଳ—4. The regime or rule of a Nawāb.
୫ । ବଡ଼ଲୋକୀ; ଧନୀସୁଲଭ ଢଙ୍ଗ—5. Manners befitting a rich man.

ନବାବି କାଇଦା—ବୈଦେ. ବି (ଆ. ନବାବୀ ଓ କାୟୂଦା)—ନବାବ୍ ବା ବଡ଼ଲୋକଙ୍କ ଉପଯୁକ୍ତ ନିୟମ ବା ରୀତି—Style or etiquette befitting a Nawāb.
Nabābi kāidā
नवाबी कायदा
**नवाबी कायदा**

ନବାବି କାରଖାନା—ବୈଦେ. ବି (ଆ. ନବାବୀ ଓ ଫା. କାର୍‌ଖାନା)—ଆଡ଼ମ୍ବରପୂର୍ଣ୍ଣ ବା ବହୁବ୍ୟୟସାଧ୍ୟ କାର୍ଯ୍ୟ; ବଡ଼ଲୋକି ଆଡ଼ମ୍ବର—Grandeour befitting a Nawāb.
Nabābi kārakhānā
नवाबी कारखाना
**नवाबी कारखाना**

ନବାବି ଢଙ୍ଗ—ଦେ. ବି—୧ । ନବାବଯୋଗ୍ୟ ଆଚରଣ—1. Conduct befitting a Nawāb.
Nabābi dhanga
ନବାବିଚଳଣ, ନବାବିଗୁଲ୍, ନବାବିଗୁଲି, ନବାବିଧରଣ } ଅନ୍ୟରୂପ
नवाबीढंग **नवाबीढङ्ग**
୨ । ବଡ଼ଲୋକଙ୍କ ଚଳବା ରୀତି—2. Richman's style of living
୩ । ବଡ଼ଲୋକି ଆଚରଣ—3. Behaviour or style befitting a noble man.

ନବାମ୍ବର—ସ. ବି (କର୍ମଧା; ନବ+ଅମ୍ବର)—ନୂଆଲୁଗା; ନବବସ୍ତ୍ର—New cloth.
Nabāmbara

ନବାମ୍ବିକା—ସ. ବି (କର୍ମଧା; ନବ+ଅମ୍ବିକା)—୧ । ନବଦୁର୍ଗା (ଦେଖ)—1. Nabadurgā (See).
Nabāmbikā
୨ । ନଅ ପ୍ରକାର ଶକ୍ତି-ମୂର୍ତ୍ତି—2 The 9 incarnations of the essential energy of the universe personified as mother of the universe.
[ଦ୍ର—ନବଦୁର୍ଗା—ବ୍ରହ୍ମାଣୀ, ମାହେଶୀ, କୌମାରୀ, ବୈଷ୍ଣବୀ, ବାରାହୀ, ନାରସିଂହୀ, ମାହେନ୍ଦ୍ରୀ, ଚଣ୍ଡିକା ଓ ମହାଲକ୍ଷ୍ମୀ । ]

ନବାର୍ଚ୍ଚିଃ—ସ. ବି. (ନବ=୯+ଅର୍ଚ୍ଚିଃ=ଦୀପ୍ତି; ନବାର୍ଚ୍ଚିସ୍—ହମା. ୯ବ) ମଙ୍ଗଳ ଗ୍ରହ—The planet Mars.
Nabārchchih

ନବାହ—ସ. ବି. (କର୍ମଧା; ନବ+ଅହନ୍=ଦିନ)—୧ । ନଅ ଦିନ—1 Nine days.
Nabāha
୨ । ନବମ ଦିନ—2. Ninth day.
୩ । ନଅ ଦିନରେ ସମାପ୍ୟ କାର୍ଯ୍ୟ—3. A work which takes 9 days to be completed.
୪ । ନୂଆଖାଁ; ବର୍ଷର ପ୍ରଥମ ଦିନ—4. New year's day
୫ । ପକ୍ଷର ପ୍ରଥମ ତିଥି, ପ୍ରତିପଦ୍—5. The first day of a fortnight (Apte).
୬ । ନଅ ଦିନରେ ସମାପନୀୟ ରାମାୟଣର ପାଠ (ହି. ଶ)—6. A reading through of the Rāmāyaṇa which is finished in nine days.

ନବିନା ଘୋଟ—ପ୍ରାଦେ. (ଗଞ୍ଜାମ) ବି—କାଞ୍ଜିଗାତରେ ପକାଇ ଖେଳାଯିବା ବାଟି ବା କଉଡ଼ିଖେଳର 'ନବମ ଆଘାତ'—The ninth stroke of a game of cowries.
Nabinā ghoṭa

ନବିସ୍—ବୈଦେ. ବି. (ଫା. ନବୀସ)—୧ । ଲେଖକ—1. Writer.
Nabis
नविस
**नबीस**
୨ । ଯେଉଁ ବ୍ୟକ୍ତି କୌଣସି ଲେଖା କାର୍ଯ୍ୟ କରେ—2. A person who does a certain writing.
[ଦ୍ର—ଏହା ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ ହୁଏ, ଯଥା—ନକଲନବିସ, ଚାଲାନ ନବିସ, ଇଂରେଜୀ ନବିସ୍, ଅରଜୀ ନବିସ୍ ଇତ୍ୟାଦି ।]

ନବିସ(ସି)ନ୍ଦା(ନ୍ଧା)—ବୈଦେ. ବି. (ଫା)—ନବସନ୍ଦା (ଦେଖ)
Nabisa (si)ndā(ndhā) Nabasandā (See)

ନବିସୀ—ବୈଦେ. ବି (ଫା)—୧ । ଲେଖକ ବା କିରାଣୀର ଚାକିରି—1. The post of a clerk or scribe.
Nabisi
୨ । ଲେଖିବା କର୍ମ—2. Writing.

ନବୀ—ଦେ. ବି. ସ୍ତ୍ରୀ—ସ୍ତ୍ରୀଲୋକଙ୍କ ନାମ—Name given to females.
Nabi
नवी, **नबी**
ବୈଦେ. ବି (ଆ. ନବୀ)—୧ । ମୁସଲମାନଙ୍କ ମତରେ ପୃଥିବୀକୁ ଈଶ୍ୱରଙ୍କ ପ୍ରେରିତ ଦୂତ; ପୟଗମ୍ବର—1. God's messenger on earth.
୨ । ଭବିଷ୍ୟଦ୍ ବକ୍ତା—2. A prophet.
୩ । ଧର୍ମ-ସଂସ୍କାରକ—3. A religious reformer.

ନବୀକରଣ—ସ. ବି (ନବ+ଅଭୂତ ତଦ୍ଭାବେ ଚ୍ୱି+କରଣ)—ଜୀର୍ଣ୍ଣସଂସ୍କାର; ପୁନର୍ଗଠନ—Reformation; repairing; renewal; renovation.
Nabīkaraṇa

ନବୀକୃତ—ସ. ବିଣ (ନବ+ଅଭୂତତଦ୍ଭାବେ ଚ୍ୱି+କୃତ)—୧ । ମରାମତି କରାଯାଇଥିବା; ଜୀର୍ଣ୍ଣସଂସ୍କୃତ—1. Repaired; reformed
Nabīkṛuta
(ନବୀକରଣ—ବି)
(ନବୀକୃତା—ସ୍ତ୍ରୀ)
୨ । ବିଶ୍ରାମାଦି ଦ୍ୱାରା ନବ ବଳ ପ୍ରାପ୍ତ—2 Refreshed after rest.
୩ । ପୁଣି ନୂଆ ହୋଇ କରା ଯାଇଥିବା; ପୁନର୍ଗଠିତ—3. Renewed; renovated.

**ନବୀନ**—ସ. ବଣ. ପୁଂ (ନବ+ସ୍ୱାର୍ଥରେ ଈନ)—୧ । ନୂତନ—
Nabina 1 New.
(ନବୀନା—ସ୍ତ୍ରୀ) (ବିପରୀତ—ପ୍ରାଚୀନ) ୨ । ଅଳ୍ପବୟସ୍କ—
2. Young.
୩ । ଯୁବକ; ତରୁଣ—3, Youthful; adolescent
୪ । ସଜ; ଟଟକା—4 Fresh.
ଦେ. ବି—ପୁରୁଷଙ୍କୁ ଦିଆଯିବା ନାମ—Name given to males

**ନବୀନା**—ସ. ବି ସ୍ତ୍ରୀ (ନବୀନର ସ୍ତ୍ରୀଲିଙ୍ଗ ରୂପ)--୧ । ନବତରୁଣୀ—
Nabinā 1. A girl in the prime of her youth.
ଦେ. ବି. ପୁଂ—୧ । ନବୀନର ଡାକନାମ—
1. Name for calling Nabina.
୨ । ଏକପ୍ରକାର ସୁଗନ୍ଧ ଫୁଲ ଓ ତାହାର ଗଛ—
2. A sweet smelling flower and its plant

**ନବୀଭାବ**—ସ. ବି (ନବ+ଅଭୂତ ତଦ୍ଭାବେ ଚ୍ୱି+ଭାବ)—ସଂସ୍କାର, Nabībhāba ସଂଶୋଧନ—Reformation; renewal.

**ନବୀଭୂତ**—ସ. ବଣ (ନବ+ଅଭୂତ ତଦ୍ଭାବେ ଚ୍ୱି+ଭୂତ)-ପୁନର୍ଗଠିତ--
Nabībhūta Repaired; renewed; renovated.
(ନବୀଭୂତା—ସ୍ତ୍ରୀ)

**ନବେ(ବ୍ବେ)**—ଦେ ବି. ଓ ବଣ (ସ. ନବତି)—ନବେ; ୯୦—
Nabe(bbe) Ninety; 90
नव्वेई नब्बे

**ନବେ(ଭେ)ମ୍ବର**—ବୈଦେ. ବି (ଇଂ. ନଭେମ୍ବର)—ଇଂରାଜୀ
Nabe(bhe)mbara ଗଣନାରେ ବର୍ଷର ଏକାଦଶ ମାସ
नवेम्बर, नभेम्बर (କାର୍ତ୍ତିକ ଓ ମାର୍ଗଶିର)—
नोअम्बर Month of November

**ନବୈଦ୍ୟ ବ୍ୟାଧି**—ଦେ. ବି--ଅଚିକିତ୍ସ୍ୟ ରୋଗ—A disease
Nabaidyabyādhi which can never be cured by a physician

**ନବୋଢା**—ସ. ବଣ. ସ୍ତ୍ରୀ (ନବ+ଊଢା=ବିବାହିତା)—
Naborḍhā ନବବିବାହିତା (ବାଳିକା)--
(ନବ ପାଣିଗ୍ରହଣା—ଅନ୍ୟରୂପ) Newly wedded; newly married (girl).
ସ. ବି. ସ୍ତ୍ରୀ—୧ । ନବବିବାହିତା କନ୍ୟା; ନୂଆବୋହୂ, ନବବଧୂ—1 A bride; a newly married girl
୨ । କାବ୍ୟ ନାଟକାଦିରେ ମୁଗ୍ଧା ନାୟିକା ଶ୍ରେଣୀର ଅନ୍ତର୍ଗତ ଜାତଯୌବନା ନାୟିକାବିଶେଷ, ଯେ ଲଜ୍ଜା ଓ ଭୟ ଯୋଗୁଁ ନାୟକର ପାଖକୁ ଯିବାକୁ ଇଚ୍ଛୁକ ନୁହେଁ (ହି. ଶବ୍ଦସାଗର)—2. A class of heroines of romance or fiction who has recently attained puberty and does not wish to meet her lover owing to bashfulness and fear.

**ନବୋଦକ**—ସ. ବି (କର୍ମଧା; ନବ+ଉଦକ)—ନୂଆ ବର୍ଷାଜଳ—
Nabodaka New rain-water.

**ନବୋଦିତ**—ସ. ବଣ. (କର୍ମଧା; ନବ+ଉଦିତ)—
Nabodita ନୂଆ ହୋଇ ଉଦିତ ବା ଜାତ ହୋଇଥିବା—
Newly risen.

**ନବୋଦିତ ଭାନୁ**—ସ ବି—ବାଳରବି—
Nabodita bhānu Newly risen sun.
[ଦ୍ର—ଏହିପରି ନବୋଦିତ ସୂର୍ଯ୍ୟ, ନବୋଦିତ ଚନ୍ଦ୍ର ଆଦି ମଧ୍ୟ ହୁଏ ।]

**ନବୋଦ୍ଗତ**—ସ. ବଣ. (କର୍ମଧା; ନବ+ଉଦ୍ଗତ=ଜାତ)—
Nabodgata ନୂଆ ହୋଇ ବାହାରି ଥିବା—
Newly come out.

**ନବୋଦ୍ଧୃତ**—ସ. ବଣ. (କର୍ମଧା, ନବ+ଉଦ୍ଧୃତ)—
Naboddhṛuta ନୂଆ ହୋଇ ଉଦ୍ଧାର କରାଯାଇଥିବା; ଅଳ୍ପଦିନ ହେଲା ଯାହାର ଉଦ୍ଧାରସାଧନ ହୋଇଥାଏ—
Newly extracted or brought out or delivered.
ସ. ବି—ନବନୀତ; ଲହୁଣୀ—Butter.

**ନବୋଦ୍ୟମ**—ସ ବି. (କର୍ମଧା; ନବ+ଉଦ୍ୟମ)—୧ । ପ୍ରଥମ ଚେଷ୍ଟା--
Nabodyama 1. First attempt.
୨ । ନୂତନ ଚେଷ୍ଟା; ଆଉଥରେ ଚେଷ୍ଟା—
2. A fresh attempt.

**ନବୋଦ୍ୟମୀ**—ସ. ବଣ ପୁଂ. (ନବୋଦ୍ୟମ+ଇନ୍; ୧ମା. ୧ବ)—
Nabodyamī ଯେଉଁ ବ୍ୟକ୍ତି କୌଣସି କାର୍ଯ୍ୟ କରିବାକୁ ପ୍ରଥମେ ଉଦ୍ୟମ କରିଥାଏ—Attempting a thing for the first time.

**ନବ୍ଜ**—ବୈଦେ. ବି—୧ । (ଫା. ଲବ୍ଜ୍)—ଲବଜ (ଦେଖ)
Nabja 1 Labaja (See)
୨ । (ଫା. ନବ୍ଜ୍)—ନାଡ଼ୀ—2. Pulse.

**ନବ୍ଧା**—ଗ୍ରା. (ପଦ୍ୟ) ବଣ. (ସ. ନବଧା)—ନବଧା (ଦେଖ)
Nabdhā Nabadhā (See)

**ନବ୍ୟ**—ସ ବଣ. (ନବ=ନୂତନ+ସ୍ୱାର୍ଥରେ ଯ)—
Nabya ୧ । ନବୀନ; ନୂତନ—1. New.
(ନବ୍ୟା—ସ୍ତ୍ରୀ) ୨ । ଇଦାନୀନ୍ତନ, ଆଧୁନିକ—2. Modern.
[ନବ୍ୟତା(ତ୍ୱ)—ବି] ୩ । ଅପ୍ରବୀଣ; ଅଳ୍ପବୟସ୍କ, ଯୁବକ—
3. Raw; young.
୪ । ସଜ; ଟଟକା—4. Fresh.
୫ । ଆଧୁନିକ ଶିକ୍ଷା ବା ସଭ୍ୟତାରେ ଶିକ୍ଷିତ—
5. Trained in the lines of modern civilization or education
୬ । ଅଳ୍ପଦିନ ହେଲା ଘଟିଥିବା—6. Recent.
୭ । (ନୁ ଧାତୁ=ସ୍ତୁତି କରିବା+କର୍ମ. ଯ)—ସ୍ତୁତ ହେବାର ଯୋଗ୍ୟ—7. Fit to be prayed to.
ସ. ବି. (ନୁ ଧାତୁ+ଭାବ. ଯ)—ସ୍ତବ—

**ନବ୍ୟଭାରତ**—ସଂ. ବି. (କର୍ମଧା; ନବ୍ୟ+ଭାରତ, ଆଧୁନିକ ପ୍ରୟୋଗ)— Nabyabhārata ନବ୍ୟଯୁଗର ଶିକ୍ଷାଦୀକ୍ଷାରେ ଦୀକ୍ଷିତ ଭାରତବର୍ଷ— Modern India; new India.

**ନବ୍ୟଯୁଗ**—ସଂ. ବି. (ଆଧୁନିକ ପ୍ରୟୋଗ)—ନବଯୁଗ, ଆଧୁନିକ କାଳ— Nabyajuga The modern times; the modern age.

**ନବ୍ୟଶିକ୍ଷା**—ସଂ. ବି. (ଆଧୁନିକ ପ୍ରୟୋଗ)—ଅଧୁନା ପ୍ରଚଳିତ ଶିକ୍ଷା— Nabyasikshā Modern education.

**ନବ୍ୟଶିକ୍ଷିତ**—ସଂ. ବିଣ. ପୁଂ. (ଆଧୁନିକ ପ୍ରୟୋଗ)— Nabyasikshita ଆଧୁନିକ ଶିକ୍ଷାରେ ଦୀକ୍ଷିତ— Educated on modern lines

**ନବ୍ୟସଭ୍ୟ**—ସଂ. ବିଣ. ପୁଂ (ଆଧୁନିକ ପ୍ରୟୋଗ)—୧ । ଆଧୁନିକ Nabya sabhya ସଭ୍ୟତାରେ ଶିକ୍ଷିତ ଓ ଦୀକ୍ଷିତ ହୋଇଥିବା— (ନବ୍ୟସଭ୍ୟା—ସ୍ତ୍ରୀ) 1. Trained in the ways of modern civilization.

୨ । ଆଧୁନିକ କାଇଦାରେ ଢାଳିମ୍ ହୋଇଥିବା— 2 New-fangled.

**ନବ୍ୟସଭ୍ୟତା**—ସଂ. ବି. (ଆଧୁନିକ ପ୍ରୟୋଗ)—୧ । ଆଧୁନିକ ସଭ୍ୟତା— Nabya sabhyatā 1 Modern civilization

୨ । ପାଶ୍ଚାତ୍ୟ ସଭ୍ୟତା—2. Western civilization

**ନଭ୍** (ଧାତୁ)—ସଂ—ନଷ୍ଟ ହେବା— Nabh (root) To decay.

**ନଭ**—ସଂ. ବି. (ନଭ୍ ଧାତୁ+ଅ; ଯେ ପ୍ରଳୟରେ ମଧ୍ୟ ନଷ୍ଟ ନ ହୁଏ)— Nabha ୧ । ସ୍ୱର୍ଗ—1. Heaven

୨ । ଗଗନ; ଆକାଶ—2. The sky; the heavens.

୩ । ଶୂନ୍ୟ—3. The space

୪ । ଭୂପୃଷ୍ଠରେ ବହୁଥିବା ବାୟୁ; ଆବହ ବାୟୁ— 4. Atmosphere; the air enveloping the globe

୫ । ଶ୍ରାବଣ ମାସ—5. The month of Srābaṇa (July and August).

ବୃଷ୍ଟି ବାରଣ ଛନ ନ ପଡନ୍ତି।
ନ ମାନେ ନଭ ମାସ ନଶା ଝଡ଼ । କବିସୂର୍ଯ୍ୟ. ସଙ୍ଗୀତ ।

୬ । ଋଷିବିଶେଷ—6. Name of a sage.

୭ । ମେଘ—7. Cloud.

୮ । ପକ୍ଷୀ—8. Bird.

୯ । ଘ୍ରାଣ—9. Scent.

୧୦ । (ଫଳିତ ଜ୍ୟୋତିଷ) ଜନ୍ମ କୁଣ୍ଡଳୀରେ ଲଗ୍ନର ଦଶମସ୍ଥାନ- 10. (astrology) The tenth place counted from one's natal sign.

୧୧ । ଭାଦ୍ରମାସ (ହ୍ରୁ. ଶ.)—11 The month of Bhādra (August-September).

୧୨ । ଆଶ୍ରୟ; ଆଧାର— 12. Shelter; refuge; receptacle.

୧୩ । ରାଜା ନଳଙ୍କର ଏକପୁତ୍ର— 13. Name of a son of king Naḷa.

୧୪ । ଅଭ୍ରକ (ହ୍ରୁ ଶ)—14. Mica

୧୫ । ବର୍ଷା (ହ୍ରୁ ଶ)—15 Rain

୧୬ । ମୃଣାଳ ତନ୍ତୁ (ହ୍ରୁ ଶ.)— 16 The fibre of the stalk of lotus.

ସଂ. ବିଣ.—ହିଂସକ (ହ୍ରୁ. ଶ)—Malignant.

**ନଭଃ**—ସଂ. ବି (ନଭ ଧାତୁ—ନଷ୍ଟ ହେବା+ଅସ୍; କିମ୍ବା ନ+ଭସ୍ Nabhaḥ ଧାତୁ=ଦୀପ୍ତି ପାଇବା+କର୍ତ୍ତୃ. ବି. ପ୍; ମେଘାଚ୍ଛନ୍ନ ହେଲେ ସୂର୍ଯ୍ୟ ଯହିଁରେ ଦୀପ୍ତି ପ୍ରକାଶ କରନ୍ତି ନାହିଁ)— ନଭ (ଦେଖ) —Nabha (See)

**ନଭଃକେତନ**—ସଂ ବି.—(ବହୁବ୍ରୀହି; ନଭଃ+କେତନ)—ସୂର୍ଯ୍ୟ— Nabhah ketana The sun. (ନଭଃ ପନ୍ଥ—ଅନ୍ୟରୂପ)

**ନଭଃକାନ୍ତୀ** ସଂ. ବି (ବହୁବ୍ରୀହି; ନଭଃ+କାନ୍ତିନ୍; ୬ମା. ୧ବ, ଯେ Nabhaḥ krānti ଲମ୍ଫ ଦେଇ ଉର୍ଦ୍ଧ୍ୱକୁ ଡେଇଁ)—ସିଂହ—Lion

**ନଭଃ ପ୍ରାଣ**—ସଂ. ବି. (ବହୁବ୍ରୀହି, ନଭଃ+ପ୍ରାଣ)—ବାୟୁ, ପବନ— Nabhaḥ-prāṇa The air. (ନଭଃସ୍ପୃତ—ଅନ୍ୟରୂପ)

**ନଭଃସଦ୍**—ସଂ. ବି (ନଭଃ+ସଦ୍ ଧାତୁ=ରହିବା+କର୍ତ୍ତୃ. ବି. ପ୍)— Nabhaḥ-sad ଦେବତା—1. Deity; the gods.

୨ । ଆକାଶବିହାରୀ ପକ୍ଷୀ ଆଦି— 2 Birds etc moving in the sky.

**ନଭଃସରିତ୍**—ସଂ. ବି. (୬ଷ୍ଠୀ ତତ୍; ନଭଃ+ସରିତ୍)—୧ । ସ୍ୱର୍ଗଗଙ୍ଗା— Nabhaḥ sarit 1 The Ganges said to flow in the heaven. (ନଭୋନଦୀ—ଅନ୍ୟରୂପ)

୨ । ଆକାଶରେ ରାତ୍ରିରେ ଦେଖାଯିବା ଘନସନ୍ନିବିଷ୍ଟ ନକ୍ଷତ୍ର-ପୁଞ୍ଜ-ରଚିତ ମାର୍ଗ; ଛାୟାପଥ—2. The milky way; the galaxy.

**ନଭଃସ୍ଥଳ**—ସଂ. ବି. (ରୂପକ କର୍ମଧା; ନଭଃ+ସ୍ଥଳ)—ଆକାଶ— Nabhaḥ sthaḷa The sky. (ନଭସ୍ଥଳ—ଅନ୍ୟରୂପ)

**ନଭଃସ୍ଥିତ**—ସଂ ବିଣ. (୭ମୀ ତତ୍; ନଭଃ+ସ୍ଥିତ)—ଆକାଶସ୍ଥ; Nabhaḥ sthita ଶୂନ୍ୟରେ ଅବସ୍ଥିତ—Situated in the (ନଭସ୍ଥିତ—ଅନ୍ୟରୂପ) sky; suspended in space.

ସଂ. ବି—ନରକବିଶେଷ—Name of a hell.

**ନଭଃସ୍ପୃକ୍**—ସଂ. ବିଣ. ପୁଂ ଓ କ୍ଲୀ (ନଭସ୍+ସ୍ପୃଶ ଧାତୁ=ଛୁଇଁବା+ Nabhaḥ spṛuk +କର୍ତ୍ତୃ. ବି. ପ୍; ନଭସ୍ପୃଶ୍ ଶବ୍ଦ, ୧ମା. ୧ବ)

୧ । ଗଗନସ୍ପର୍ଶୀ—1, Cloud-capped.

୨ । ଅତି ଉଚ୍ଚ—2. Lofty; touching the sky.

**ନଭଗ**—ସଂ. ବିଣ. ପୁଂ—୧ । (ନଭ+ଗମ୍ ଧାତୁ+କର୍ତ୍ତୃ. ଅ)— Nabhaga ଆକାଶଗାମୀ; ନଭଶ୍ଚର— (ନଭଗା—ସ୍ତ୍ରୀ) 1. Moving in the sky.

୨ । ଶୂନ୍ୟ-ବିମାନଗାମୀ— 2. Moving in aeroplanes.

୩ । (ବହୁବ୍ରୀହି; ନ=ନୃତ୍ତ୍ୱେ + ଭଗ=ଭାଗ୍ୟ, ହତଭାଗ୍ୟ—
3 Unlucky; unfortunate.

ସଂ. ବି.—୧ । ପକ୍ଷୀ (ହ୍ରି. ଶ.)—1 Bird.

୨ । ପବନ; ବାୟୁ (ହ୍ରି. ଶ)—2 Air.

୩ । ମେଘ (ହ୍ରି. ଶ)—3. Cloud.

୪ । ବୈବସ୍ୱତ ମନୁଙ୍କର ଏକପୁତ୍ର (ହ୍ରି. ଶ)—
4. Name of a son of Baibaswata Manu

**ନଭଗ ନାଥ**—ସଂ. ବି. (୬ଷ୍ଠୀ ତତ୍; ନଭଗ+ନାଥ)—ଗରୁଡ଼—
Nabhaga nātha Garurda.
(ନଭଗେଶ—ଅନ୍ୟରୂପ)

**ନଭଶ୍ଚକ୍ଷୁ**—ସଂ. ବି. (୬ଷ୍ଠୀ ତତ୍; ନଭଃ+ଚକ୍ଷୁଃ)—ସୂର୍ଯ୍ୟ—
Nabhaśchakshuh The sun

**ନଭଶ୍ଚମସ**—ସଂ. ବି. (ନଭଃ=ସ୍ୱର୍ଗ+ଚମସ=ଯଜ୍ଞପାତ୍ରବିଶେଷ)—
Nabhaśchamasa ୧ । ଚନ୍ଦ୍ର—1 The moon.

୨ । ଇନ୍ଦ୍ରଜାଲ—2 Magic

୩ । ଚକଲି ପିଠା—3. A kind of cake

୪ । ନାନା ବର୍ଣ୍ଣବିଶିଷ୍ଟ ପିଷ୍ଟକ—
4 A kind of multi-coloured cake.

**ନଭଶ୍ଚର**—ସଂ. ବିଣ. ପୁ. (ନଭସ୍+ଚର୍ ଧାତୁ+କର୍ତ୍ତୃ. ଅ)—ଶୂନ୍ୟଗମୀ,
Nabhaśchara ଶୂନ୍ୟବିହାରୀ; ଆକାଶଚର—Moving in
(ନଭଶ୍ଚରୀ—ସ୍ତ୍ରୀ) the sky; aerial.

ସଂ. ବି—୧ । ପକ୍ଷୀ—1. Bird.

୨ । ଦେବ, ଗନ୍ଧର୍ବ, ବିଦ୍ୟାଧର ପ୍ରଭୃତି—2 Celestial
beings; the deities and demigods;
aerial beings

୩ । ଗ୍ରହ ନକ୍ଷତ୍ରାଦି—3. Planets and stars

୪ । ରାକ୍ଷସ ଓ ଭୂତ ପ୍ରେତାଦି—
4 Aerial spirits; ghosts; demons

୫ । ପବନ; ବାୟୁ- 5 The wind; the air.

୬ । ମେଘ—6 The clouds.

୭ । ସୂର୍ଯ୍ୟ—7. The sun.

୮ । ଶୂନ୍ୟ ବିମାନ; ଆକାଶଯାନ—8. Aeroplane.

**ନଭଶ୍ଚାରୀ**—ସଂ ବି. ଓ ବିଣ. (ନଭସ୍+ଚର୍ ଧାତୁ+କର୍ତ୍ତୃ. ଇନ୍; ୧ମା.
Nabhaśchārī ୧ବ.)—ନଭଶ୍ଚର (ଦେଖ)
(ନଭଶ୍ଚାରିଣୀ—ସ୍ତ୍ରୀ) Nabhaśchara ( See )

**ନଭଶ୍ଚୁମ୍ବୀ**—ସଂ. ବିଣ. ପୁଂ (ନଭସ୍+ଚୁମ୍ବ୍ ଧାତୁ+କର୍ତ୍ତୃ. ଇନ୍; ୧ମା.
Nabhaśchumbī ୧ବ)—ନଭଃସ୍ପୃକ୍ ( ଦେଖ )
(ନଭଶ୍ଚୁମ୍ବିନୀ—ସ୍ତ୍ରୀ) Nabhahspṛuk ( See )

**ନଭସ**—ସଂ. ବି. (ନଭ୍ ଧାତୁ+ସଂଜ୍ଞାର୍ଥେ ଅସ)—୧ । ଆକାଶ—
Nabhasa 1. The sky.

୨ । ସ୍ୱର୍ଗ—2. Heaven.

**ନଭସଙ୍ଗମ**—ସଂ. ବି. (ନଭସ=ଆକାଶକୁ+ଗମ୍ ଧାତୁ+କର୍ତ୍ତୃ. ଅ)—
Nabhasangama ନଭଶ୍ଚର ( ଦେଖ )
Nabhaśchara ( See )

**ନଭସ୍ତଳ**—ସଂ. ବି. (୬ଷ୍ଠୀ ତତ୍; ନଭସ୍+ତଳ)—
Nabhastaḷa ୧ । ଆକାଶର ଦେହ—
1. The surface of the sky.

୨ । ନଭଃସ୍ଥଳ; ଗଗନତଳ; ଆକାଶମଣ୍ଡଳ—
2 The vault of heaven; the sky; the space.

**ନଭସ୍ଥଳ**—ସଂ ବି. (ନଭ+ସ୍ଥଳ)—୧ । ନଭସ୍ତଳ ( ଦେଖ )
Nabhasthaḷa 1. Nabhastaḷa ( See )

୧ । ଶିବ (ହ୍ରି. ଶ.)—2. Śiba.

**ନଭସ୍ୱତ**—ଦେ ବି. (ସଂ. ନଭସ୍ୱତ୍)—ପବନ—
Nabhaswata Wind; air

ମଧ୍ୟାହ୍ନେ ସତ ଭସ୍ମର ନଭସ୍ୱତରେ ଥର । ଭକ୍ତ. କୋଷ୍ଟବନ୍ଧ ଶ୍ରୀସ୍ୱତଶ ।

**ନଭସ୍ୱାନ୍**—ସଂ. ବି. (ନଭସ୍+ବତ୍, ନଭସ୍ୱତ୍ ଶବ୍ଦର ୧ମା.
Nabhaswān ୧ବ.)—୧ । ପବନ—
1. The wind; the air.

୨ । ଯୁବା—2. A youth.

**ନଭସ୍ୟ**—ସଂ. ବି. (ନଭସ୍+ଯ)—୧ । ଭାଦ୍ର ମାସ—
Nabhasya 1. The month of Bhādra.

୨ । (ନାମ) ସ୍ୱାରୋଚିଷମନୁଙ୍କର ଏକ ପୁତ୍ର—
2. Name of a son of Swārochisha Manu.

ସଂ. ବିଣ.—ଆକାଶଜାତ, ସ୍ୱର୍ଗୀୟ—
Celestial; aerial.

**ନଭାକ**—ସଂ. ବି. (ନ+ଭା ଧାତୁ ଦୀପ୍ତି ପାଇବା+ସଂଜ୍ଞାର୍ଥେ ଅକ)—
Nabhāka ୧ । ଅନ୍ଧକାର—1 Darkness.

୨ । ରାହୁ—2. The ascending node.

୩ । (ନାମ) ଋଷିବିଶେଷ—3. The name of a sage.

**ନଭି**—ସଂ ବି.—ଚକ; ପଞ୍ଚୁଆ—
Nabhi Wheel.

**ନଭିବା**—ଗ୍ରା କ୍ରି. (ସଂ. ଲଭ୍ ଧାତୁ)—ଲଭିବା ଦେଖ—
Nabhibā Labhibā (See)

**ନଭୂତ**—ଦେ. ବିଣ (ସଂ.'ନଭୂତୋ ନ ଭବିଷ୍ୟତି'ପ୍ରବଚନର ଆଦ୍ୟ ପଦ)—
Nabhūta ୧ । ଅଦୃଷ୍ଟପୂର୍ବ (ବିଷୟ)—1. Unseen (thing).

୨ । ଯାହା ଘଟି ନ ଥିଲା; ଅଦ୍ଭୁତ—2 Wonderful.

୩ । ଅସାଧାରଣ—3. Unusual.

୪ । ଅସମ୍ଭବ—4. Impossible; improbable.

**ନ ଭୂତୋ ନ ଭବିଷ୍ୟତି**—ସଂ. ପ୍ରବଚନ—ଯେଉଁ କଥା ହୋଇ ନଥିଲା
Na bhūto na bhabishyati ବା ହେବ ନାହିଁ; ଅଶ୍ରୁତପୂର୍ବ ଓ
**न भूतो न भविष्यति** ଅସମ୍ଭବ କଥା—A thing which has
never been heard of nor can be
imagined.

**ନଭେଲ୍**—ବୈଦେ. ବି. (ଇଂ. ନୋଭେଲ୍)—ଉପନ୍ୟାସ; କାଳ୍ପନିକ
Nabhel ଗଳ୍ପବିଶିଷ୍ଟ ଗ୍ରନ୍ଥ; ରସପ୍ରଧାନ ଉପକଥା—Novel.
ନଭେଲ **नोबेल**

**ନଭୋଗ**—ସଂ. ବିଣ. ପୁଂ (ନଭସ୍+ଗମ୍ ଧାତୁ+କର୍ତ୍ତୃ. ଅ)—
Nabhoga ଆକାଶବିହାରୀ; ନଭଶ୍ଚର—Moving in the air;
soaring; sky-going.

ସଂ. ବି.—ନଭଗ (ଦେଖ)—Nabhaga (See)

**ନଭୋଗଜ**—ସଂ. ବି.—(ନଭଃ+ଗଜ)—୧। ମେଘ—
Nabhogaja 1. Cloud
୨। ଐରାବତ ହସ୍ତୀ—2 Indra's elephant.

**ନଭୋଗତି**—ସଂ. ବି. (୭ମୀ ତତ୍ ନଭଃ+ଗତି)—୧। ବିମାନାଦିରେ
Nabhogati ଆକାଶପଥରେ ବିଚରଣ—
(ନଭୋଗମନ—ଅନ୍ୟରୂପ) 1. Movement in the sky.
୨। ଉଡ଼ିବା—2 Flying

ସଂ ବିଣ —ନଭଶ୍ଚର (ଦେଖ)—Nabhaschara (See

**ନଭୋଦୁହ**—ସଂ ବି (ନଭସ୍+ଦୁହ୍ ଧାତୁ+କର୍ମ. ଅ)—ମେଘ —
Nabhoduha The clouds.
(ନଭୋ ଦ୍ୱୀପ, ନଭୋ ଧୂମ—ଅନ୍ୟରୂପ)

**ନଭୋମଣି**—ସଂ. ବି. (୬ଷ୍ଠୀ ତତ୍; ନଭଃ+ମଣି ଆକାଶର ମଣି ସ୍ୱରୂପ)—
Nabhomani ସୂର୍ଯ୍ୟ—The sun (literally the gem of the sky).

**ନଭୋମଣ୍ଡଳ**—ସଂ. ବି. (୬ଷ୍ଠୀ ତତ୍; ନଭଃ+ମଣ୍ଡଳ)—୧। ଆକାଶ
Nabhomandala ମଣ୍ଡଳ; ଦୃଶ୍ୟମାନ ଆକାଶ—1 The sky;
(ନଭୋବଟ—ଅନ୍ୟରୂପ) sky-circle; firmament.
୨। ବାୟୁମଣ୍ଡଳ—2. Atmosphere.

**ନଭୋରେଣୁ**—ସଂ ବି. (୬ଷ୍ଠୀ; ନଭଃ+ରେଣୁ)—୧। କୁହୁଡ଼ି—
Nabhorenu 1. Fog; mist
୨। ବାଷ୍ପ—2. Vapour.

**ନଭୋଲୟ**—ସଂ ବି. (ନଭଃ+ଆଲୟ ? କିମ୍ବା ନଭଃ+ଲୟ)—ଧୂଆଁ
Nabholaya (ହ. ଶ.)—Smoke

**ନଭୋଲିହ**—ସଂ. ବିଣ. ପୁଂ ଓ କ୍ଳୀ (ନଭସ୍+ଲିହ୍ ଧାତୁ=ଚାଟିବା+
Nabholiha କର୍ତ୍ତୃ ଅ—୧। ଗଗନସ୍ପର୍ଶୀ—1 Touching the
(ନଭୋଲିହା—ସ୍ତ୍ରୀ) sky; cloud-capt.
୨। ଅତ୍ୟୁଚ୍ଚ—2. Very lofty.

ନଭ୍ୟ—ସଂ. ବିଣ. (ନଭ+ଯ)—ଆକାଶ ସମ୍ବନ୍ଧୀୟ—
Nabhya Aerial; relating to the sky.
ସଂ. ବି.—୧। ଦୁଇ ଚକର ମଧ୍ୟବର୍ତ୍ତୀ ଅଂଶ—
1. The space between the wheels
୨। ଅକ୍ଷ (ହ ଶ.)—2. Axle.
୩। ଅକ୍ଷରେ ଦିଆ ଯିବା ତେଲ (ହ. ଶ.)—3. Oily substance or lard put on the axle, lubricant

ଗ୍ରା. ବିଣ. (ସଂ. ଲଭ୍ୟ)—ଲଭ୍ୟ (ଦେଖ)—
Labhya (See)

ନଭ୍ରାଟ୍—ସଂ. ବି. (ନ+ଭ୍ରାଜ୍ ଧାତୁ=ଦୀପ୍ତି ପାଇବା+କର୍ତ୍ତୃ. କ୍ୱିପ୍;
Nabhrat ନଭ୍ରାଜ୍ ଶବ୍ଦ ୧ମା ୧ବ.)—ମେଘ—Cloud.

ନମ୍ (ଧାତୁ)—ସଂ—୧। ନମସ୍କାର କରିବା—
Nam (root) 1 To salute; to make obeisance.
୨। ନତ ହେବା; ଲଇଁବା—
2 To bow down; to bend.
୩। ଶବ୍ଦ କରିବା—3. To make a sound.
୪। ତଳକୁ ଖସିବା—4 To sink; to go down.

**ନମ**—ସଂ ବି. (ନମ୍ ଧାତୁ+ଭାବ ଅ)—୧। ମାନ୍ୟ ବ୍ୟକ୍ତିଙ୍କୁ
Nama ଅଭିବାଦନ; ପ୍ରଣାମ, ନମସ୍କାର—
1 Salutation; bowing; obeisance.
୨। ନତି, ଲଇଁବା—2. Bowing, bending
୩। ତ୍ୟାଗ—3. Giving up; abandoning.
୪। ବିଳାପ—4 Lamentation; wailing.
୫। ଦାନ—5. Gift.
ଦେ. ଅ. (ସଂ. ନମଃ)—ହେ ମହାଶୟ, ଆପଣଙ୍କୁ ନମସ୍କାର କରୁଛି, ପ୍ରଣାମ ! ଦଣ୍ଡବତ୍ !—(interjection)
Good morning! I salute thee! I bow to you!
ଦେ. ବି.—ନର୍ମଦା ନାମ୍ନୀ ସ୍ତ୍ରୀର ଡାକ ନାମ—
Name for calling Narmada

**ନମଃ**—ସଂ. ବି. ଓ ଅ. (ନମ୍ ଧାତୁ+ଅସ୍)—୧। ନମ (ଦେଖ)—
Namah 1 Nama (See)
୨। ବଜ୍ର (ହ. ଶ)—2 Thunderbolt (Apte).
୩। ଯଜ୍ଞ—3 A sacrifice (Apte)
୪। ସ୍ତୋତ୍ର (ହ. ଶ)—4 Hymn

**ନମତ**—ସଂ. ବିଣ (ନମ୍ ଧାତୁ+ଅତ)—୧। ନତ—
Namata 1 Bent, bowed (Apte)
୨। ବଙ୍କା—2. Crooked; curved (Apte).
ସଂ. ବି.—୧। ଅଭିନେତା, ନଟ—1. An actor (Apte).
୨। ଧୂଆଁ—2. Smoke (Apte).
୩। ପ୍ରଭୁ—3. Master; lord (Apte).
୪। ମେଘ—4 Cloud (Apte).
୫। ଊର୍ଣ୍ଣାବସ୍ତ୍ର—5 Woolen stuff (Apte).

**ନମତା**—ଦେ. ବି. (ସଂ. ନମସ୍କର୍ତ୍ତା)—୧। ଭୃତ୍ୟ; ସେବକ—
Namata 1. Servant.
୨। ପରିଜନ, ଅନୁଚର—2. Attendant.

**ନମତ୍ତ**—ପ୍ରାଦେ. (ଗଞ୍ଜାମ) ବି. (ସଂ. ନାପିତ)—ଭଣ୍ଡାରି ଜାତିବିଶେଷ—
Namatta A class of barbers.

**ନମଦା**—ବୈଦେ ବି. (ଫା; ଭୁଲ ସଂ. ନମତ=ଊର୍ଣ୍ଣାବସ୍ତ୍ର)—ପଶମ ଜମା
Namada ହୋଇ ବା ଛିଣ୍ଡା ହୋଇ ତିଆରି ହୋଇଥିବା କମ୍ବଳ
ନନଦା ବା ଲୁଗା—A cloth of compressed.
ନମଦ୍ଦା wool.

**ନମନ**—ସଂ. ବି. (ନମ୍ ଧାତୁ+ଭାବ. ଅନ)—୧। ଲଇଁବା—
Namana 1. Bending; bowing down.
୨। ନମସ୍କରଣ; ପ୍ରଣାମ—2 Obeisance; bowing.
୩। ନରମ ହେବା—3. Softening.
୪। ବଶ ହେବା—4. Yielding.

**ନମନୀୟ**—ସଂ. ବିଣ. (ନମ୍ ଧାତୁ+କର୍ମ. ଅନୀୟ)—
Namaniya ୧। ନତହେବାର ଯୋଗ୍ୟ; ଯାହାକୁ ନୁଆଇଁ ହୁଏ—
(ନମନୀୟା—ସ୍ତ୍ରୀ) 1. Pliant; flexible; plastic.

୨ । ଯାହାକୁ ନୁଆଇଁବା ଆବଶ୍ୟକ—
2. Requiring to be bent.
୩ । ଯାହାକୁ ନମସ୍କାର କରିବା ଉଚିତ; ପୂଜନୀୟ—
3. Respectable.

**ନମନ୍ତା**—ଦେ. ବ—ନମତା ( ଦେଖ )
Namantā Namatā ( See )

**ନମ(ମଃ)ଶୂଦ୍ର**—ଦେ. ବ—ବଙ୍ଗଦେଶର ନୀଚ ଶୂଦ୍ରଜାତିବିଶେଷ—
Nama(maḥ)śūdra A low caste of śūdras of Bengal.
(ନମୋଶୂଦ୍ର—ଅନ୍ୟରୂପ)
**নমঃশূদ্র** নমশূদ্র

**ନମସ**—ସଂ. ବ—୧ । (ନମ୍ ଧାତୁ+କର୍ତ୍ତୃ. ଅସ )—
Namasa ଆପଣାର ସପକ୍ଷ ବ୍ୟକ୍ତି—
1. A person belonging to one's own party.
୨ । ସହାୟକ ବ୍ୟକ୍ତି—2. Supporter; helper.
୩ । ସହାୟ—3. Help; support.
୪ । (+ଭାବ. ଅସ )—ଆନନ୍ଦ; ପ୍ରୀତି—
4. Gladness; joy
୫ । ସମ୍ମତି—5 Assent; consent

**ନମସିତ**—ସଂ. ବିଣ. ପୁଂ. (ନମସ୍+ଇ ତ)—ପୂଜିତ; ଅଭିବାଦିତ—
Namasita Reverenced, worshipped
(ନମସିତା—ସ୍ତ୍ରୀ) (ନମସ୍ୟିତ—ଅନ୍ୟରୂପ)

**ନମସ୍କରଣୀୟ**—ସଂ. ବ. (ନମସ୍+କୃ ଧାତୁ+କର୍ମ. ଅନୀୟ)—
Namaskaraṇiya ନମସ୍ୟ ( ଦେଖ )
(ନମସ୍କରଣୀୟା—ସ୍ତ୍ରୀ) Namasya ( See )

**ନମସ୍କରିବା**—ଦେ. (ପଦ୍ୟ) କ୍ରି. (ପଦ୍ୟ) (ସଂ. ନମସ୍କାର)—
Namaskaribā ନମସ୍କାର କରିବା—
নমস্কার করা **नमस्कार करना** To salute; to bow down
ବିମାନ ପ୍ରଦକ୍ଷିଣ କରି, ଦଣ୍ଡବତରେ ନମସ୍କରି । ଜଗନ୍ନାଥ. ଭାଗବତ ।

**ନମସ୍କର୍ତ୍ତା**—ସଂ. ବିଣ. ପୁଂ. (ନମସ୍+କୃ ଧାତୁ+କର୍ତ୍ତୃ. ତୃ, ୧ମା
Namaskarttā ୧ବ)—ଯେ ନମସ୍କାର କରେ—
(ନମସ୍କର୍ତ୍ତ୍ରୀ—ସ୍ତ୍ରୀ) Bowing down to another; making obeisance; saluting

**ନମସ୍କାର**—ସଂ. ବ. (ନମସ୍+କୃ ଧାତୁ+ଭାବ. ଅ)—
Namaskāra ଭକ୍ତିପୂର୍ବକ ଅଭିବାଦନ ବା ବନ୍ଦନା; ପ୍ରଣାମ, ଭକ୍ତି ସହକାରେ ଦଣ୍ଡବତ—Obeisance (as a token of respect); respectful salutation; paying homage
[ ଦ୍ର—ପ୍ରଣାମ ବା ନମସ୍କାର ଅନେକ ପ୍ରକାରରେ କରାଯାଏ । ଯଥା—୧ । ହାତ ଯୋଡ଼ି ମୁଣ୍ଡକୁ ନୁଆଇଁବା (ଅଧମ ନମସ୍କାର)—୨ । ଆଣ୍ଠୁ ମାଡ଼ି ବସି ଭୂମିରେ ମୁଣ୍ଡ ଲଗାଇବା (ମଧ୍ୟମ)—୩ । ଦଣ୍ଡବତ୍ ଲମ୍ବ ହୋଇ ଭୂମିରେ ମୁଣ୍ଡ ମାଡ଼ି ପଡ଼ି ସାଷ୍ଟାଙ୍ଗ ନମସ୍କାର କରିବା (ଉତ୍ତମ—ଅନ୍ୟତ୍ର ମଧ୍ୟ କାୟିକ, ବାଚିକ ଓ ମାନସିକ ଭେଦରେ ନମସ୍କାର ୩ ପ୍ରକାର ।) ]
ଦେ. ଅ—ନମ (ଦେଖ)—Nama (See)

**ନମସ୍କାର କରିବା**—ଦେ. କ୍ରି—ପ୍ରଣାମ କରିବା—
Namaskāra karibā To pay homage to a person; to bow down; to salute.
(ନମସ୍କାର ଦେବା—ଅନ୍ୟରୂପ)
নমস্কার করা **नमस्कार करना**

**ନମସ୍କାରୀ**—ସଂ. ବିଣ. ପୁଂ. (ନମସ୍+କୃ ଧାତୁ+କର୍ତ୍ତୃ. ଇନ୍; ୧ମା. ୧ବ)—ନମସ୍କର୍ତ୍ତା; ନମସ୍କାର କରିବା ବ୍ୟକ୍ତି—
Namaskāri
(ନମସ୍କାରିଣୀ—ସ୍ତ୍ରୀ) Saluting.
ସଂ. ବ—୧ । ଲାଜକୁଳୀ ଲତା; ଲଜ୍ଜାଳୁ ଲତା—
1 A sensitive plant; Mimosa Pudica.
୨ । ବରାହକ୍ରାନ୍ତା (ହି ଶବ୍ଦସାଗର) (ଦେଖ)
2 Barāhakrāntā ( See )
ଦେ. ବ. (ସଂ. ନମସ୍କାର; ନମସ୍କାର ବେଳେ ଦିଆଯିବା ହେତୁ)—ନଜ଼ରି; ଦର୍ଶନୀ, ପ୍ରଣାମି; ପ୍ରଥମ ନମସ୍କାର କରିବା ସମୟରେ ମାନ୍ୟବ୍ୟକ୍ତିଙ୍କୁ ଦିଆଯିବା ଉପଢୌକନ—
A present given to a revered person by the saluter at the time of salutation.

**ନମସ୍କାର୍ଯ୍ୟ**—ସଂ ବିଣ. ପୁଂ (ନମସ୍+କୃ ଧାତୁ+କର୍ମ. ଯ)—
Namaskārjya ନମସ୍ୟ; ନମସ୍କରଣୀୟ; ପୂଜନୀୟ—
(ନମସ୍କାର୍ଯ୍ୟା—ସ୍ତ୍ରୀ) Worthy of reverence or salutation.

**ନମସ୍କୃତ**—ସଂ. ବିଣ. ପୁଂ. (ନମସ୍+କୃ ଧାତୁ+କର୍ମ. ତ)—
Namaskṛuta ଯାହାକୁ ନମସ୍କାର କରାଯାଇ ଅଛି—
(ନମସ୍କୃତା—ସ୍ତ୍ରୀ) Saluted; revered.

**ନମସ୍କ୍ରିୟା**—ସଂ. ବ. (ନମସ୍+କ୍ରିୟା)—ନମସ୍କାର (ଦେଖ)
Namaskriyā Namaskāra (See)

**ନମସ୍ତେ**—ସଂ. ଅବ୍ୟୟରୂପେ ବ୍ୟବହୃତ ବାକ୍ୟ (ନମଃ+ତେ=ତୁମ୍ଭକୁ)—
Namaste ତୁମ୍ଭକୁ ନମସ୍କାର; ଆପଣଙ୍କୁ ନମସ୍କାର—
(a word) Obeisance to you.

**ନମସ୍ତେ ନମସ୍ତେ କରିବା**—ଦେ. କ୍ରି. ( ସଂ. ନମସ୍ତେ )—୧ । କୌଣସି ବ୍ୟକ୍ତିଙ୍କ ପାଖେ ଅତି ପ୍ରଣତ ହେବା—
Namaste namaste karibā
নমস্তে নমস্তে করা 1. To be humble before a person
**नमस्ते नमस्ते करना**
୨ । ନମସ୍କାର କରିବା—
2. To bow down; to salute.

**ନମସ୍ୟ**—ସଂ. ବ. ପୁଂ. ( ନମସ୍+କର୍ମ. ଯ )—
Namasya ବନ୍ଦନୀୟ; ନମସ୍କାର ଯୋଗ୍ୟ, ନମସ୍କରଣୀୟ—
(ନମସ୍ୟା—ସ୍ତ୍ରୀ) Venerable; worthy of being saluted, worthy of homage; entitled to be saluted.

**ନମସ୍ୟା**—ସଂ. ବିଣ. ସ୍ତ୍ରୀ—ନମସ୍ୟର ସ୍ତ୍ରୀଲିଙ୍ଗ—
Namasyā Feminine of Namasya.
ସଂ. ବ. ସ୍ତ୍ରୀ (ନମସ୍+ଭାବ. ଯ+ସ୍ତ୍ରୀ. ଆ)—୧ । ପୂଜା; ବନ୍ଦନା; ଅର୍ଚ୍ଚନା—1. Worship; homage.
୨ । ନମସ୍କାର—2. Obeisance; bowing down.

**ନମସ୍ୟିତ** — ସଂ. ବିଣ. ପୁଂ (ନମସ୍ୟ + ଇତ)—ନମସ୍କୃତ, ଯାହାଙ୍କୁ
Namasyita ନମସ୍କାର କରାଯାଇ ଅଛି—Revered; saluted
(ନମସ୍ୟିତା—ସ୍ତ୍ରୀ)

**ନମାଜ୍**—ବୈଦେ. ବି. (ଫା. ନମାଜ୍, ଭୁଲ, ସ. ନମନ)—
Namāj ଦୈନିକ ୫ ଥର କରାଯିବା ମୁସଲମାନଙ୍କର ଈଶ୍ୱରୋପାସନା—
ନମାଜ Mahomedans' daily prayer to God
**नमाज**

**ନମାଜ୍ କରିବା**—ଦେ କ୍ରି—ଆଲ୍ଲାଙ୍କୁ ଉପାସନା କରିବା;(ମୁସଲମାନମାନେ)
Namāj karibā କୋରାନର ମନ୍ତ୍ର ବା ସୁରା ପାଠପୂର୍ବକ ଆଲ୍ଲାଙ୍କୁ
(ନମାଜ ପଢ଼ିବା—ଅନ୍ୟରୂପ) ତାଙ୍କ ସ୍ତୁତିପାଠ ଓ ନମସ୍କାର କରିବା—
ନମାଜ ପଢ଼ା To salute to God by reciting the
**नमाज पढ़ना** texts of the Koran (by Mahomedans); to pray to God with recitals from the Koran and gesticulations and postures, five times during 24 hours

[ଦ୍ର—ପ୍ରତ୍ୟେକ ମୁସଲମାନଙ୍କର ଦୈନିକ ୫ ଥର ନମାଜ୍ ପଢ଼ିବାର ବିଧି ଅଛି। ମୁହଁହାତ ଧୋଇ ଶୁଚି ଏ ସ୍ୱତନ୍ତ୍ର ଆସନରେ ଆଣ୍ଠୁ ମାଡ଼ି ବସି ଓ ଠିଆହୋଇ ଓ ମୁଣ୍ଡ ତଳକୁ ଲଗାଇ ମକ୍କାଆଡ଼କୁ ମୁହଁ କରି ନମାଜ୍ ପଢ଼ିବାକୁ ହୁଏ।

ନମାଜ ପଢ଼ିବାର ନିର୍ଦ୍ଦିଷ୍ଟ ସମୟ :—୧। (ଫଜର୍) ବଡ଼ଭୋର୍ ୪ଟା ବେଳେ (ସୂର୍ଯ୍ୟୋଦୟ ପୂର୍ବରୁ); ୨। (ଜୋହର୍) ଅପରାହ୍ନ ୧ଟା ବେଳେ (ଦ୍ୱିପ୍ରହର ପରେ), ୩। (ଅସର୍) ଅପରାହ୍ନ ୩ଟା ଠାରୁ ୪ଟା ବେଳେ; ୪। (ମଗରୀବ୍) ସୂର୍ଯ୍ୟାସ୍ତର ଠିକ୍ ପୂର୍ବରୁ; ୫। (ଏଶା) ରାତି ୮ଟା ବେଳେ।

ଦୈନିକ ନମାଜ୍ ପଢ଼ିବା ଛଡ଼ା ସପ୍ତାହ ମଧ୍ୟରେ ପ୍ରତି ଶୁକ୍ରବାର ଦିନ ମସଜିଦରେ ମୁସଲମାନମାନେ ଏକଜ ହୋଇ ଈଶ୍ୱରୋପାସନା କରନ୍ତି। ଏହାକୁ ଯୁମା ନମାଜ କହନ୍ତି। ଏହି ବିଶେଷ ନମାଜ୍ ଇଦ୍‌ଦିନ ଦିନ ୯ଟା ଠାରୁ ୧୧ଟା ପର୍ଯ୍ୟନ୍ତ କରାଯାଏ। ଏହାକୁ ଇଦନମାଜ କହନ୍ତି।

ଏହା ଛଡ଼ା ସୂର୍ଯ୍ୟ ବା ଚନ୍ଦ୍ର ଗ୍ରହଣ ସମୟରେ, ଅନାବୃଷ୍ଟି ସମୟରେ, କୌଣସି ବ୍ୟକ୍ତିର ମୃତ୍ୟୁ ଘଟିଲେ ନମାଜ୍ କରାଯାଏ—ହି. ଶବ୍ଦସାଗର।

ନମାଜର ୩ ଅଂଶ ଯଥା :—୧। ଫର୍ଜ୍—ଯାହା ଈଶ୍ୱରଙ୍କ ଉଦ୍ଦେଶ୍ୟରେ ବୋଲାଯାଏ; ୨। ସୁନ୍ନତ୍—ଯାହା ହଜରତ୍ ମହମ୍ମଦ୍ ପାଠ କରୁଥିଲେ; ୩। ନଫୀଲ୍—ଯାହା ପ୍ରାର୍ଥନାକାରୀ ନିଜର ଧର୍ମ-ସାଧନାର୍ଥ ପାଠକରେ।

ନମାଜର ମର୍ମ—ଈଶ୍ୱର ଏକମାତ୍ର ପ୍ରଭୁ, ତାଙ୍କଛଡ଼ା ଅନ୍ୟକେହି ପ୍ରଭୁ ନାହିଁ। ମହମ୍ମଦ୍ ତାଙ୍କର ପୟମ୍ବର। ତେଣୁ ତାଙ୍କୁ ସମସ୍ତଙ୍କର ପ୍ରଶଂଶା କରିବା ଉଚିତ, ଇତ୍ୟାଦି। ଏହାଛଡ଼ା କୋରାନ୍‌ରୁ କେତେ ଗୁଡ଼ିଏ ସୁରା ବା ସୂକ୍ତ ମଧ୍ୟ ନମାଜ୍ ବେଳେ ପଢ଼ାଯାଏ।]

**ନମାଜ୍‌ଗା**—ବୈଦେ. ବି. (ଫା. ନମାଜଗାହ୍)—ମସଜିଦର ଯେଉଁ
Namāj-gā ଅଂଶରେ ମୁସଲମାନ୍‌ମାନେ ନମାଜ ପାଠ କରନ୍ତି—
ନମାଜଗା The part of a mosque where the
**नमाजगाह** Mahomedans pray.

**ନମାଜିଆ**—ଦେ. ବିଣ (ଫା. ନମାଜ୍ + ଓ. ପ୍ରତ୍ୟୟ ଇଆ)—
Namājiā ନମାଜୀ (ଦେଖ)—Namājī (See)

**ନମାଜୀ**—ବୈଦେ. ବିଣ. (ଫା)—ଯେଉଁ ଧର୍ମପ୍ରାଣ ମୁସଲମାନ୍ ଶାସ୍ତ୍ରବିଧି
Namājī ଅନୁସାରେ ପ୍ରତିଦିନ ନମାଜ୍ ପଢ଼ନ୍ତି—(a pious
ନମାଜୀ Mahomedan) Regularly saying his
**नमाज़ी** prayers every day at the stated times.

**ନମାମି**—ସ. କ୍ରି (ନମ୍ ଧାତୁ ଲଟ୍, ଉତ୍ତମ ପୁରୁଷ ୧ବ)—
Namāmi (ମୁଁ) ନମସ୍କାର କରେଁ ବା କରୁଅଛି—
(I) Bow down; (I) do salute to thee.

ବୋଧଇ ନମୋ ସଦେଶ୍ୱର
ନମାମି ବ୍ରହ୍ମାଣ୍ଡଠାକୁର। ଭୂପତି. ପ୍ରେମପଞ୍ଚାମୃତ।

**ନମିତ**—ସ. ବିଣ—୧। (ନମ୍ ନମି ଧାତୁ ଣିଜନ୍ତ = ଧାତୁ = ନତ
Namita କରାଇବା + କର୍ମ ତ)—ନମସ୍କୃତ—
1 Worshipped; revered

୨। ବଙ୍କାକୃତ; ତଳକୁ ନୁଆଁ ଯାଇଥିବା—
2. Bent down.

୩। ଦଣ୍ଡବତ୍ ହୋଇ ଭୂମିରେ ପତିତ—3. Prostrated

୪। ନମିତ—4 Lowered.

୫। ତଳକୁ ଖସାଇଦିଆ ଯାଇଥିବା—5. Lowered

**ନମିନେଟେଡ୍ ମେମ୍ବର୍**—ବୈଦେ ବି. (ଇଂ)—କୌଣସି ସଭା ବା
Nameneted membara ସମିତିର ସରକାରଙ୍କମନୋନୀତ ସଭ୍ୟ
ନମିନେଟେଡ ମେମ୍ବର ବା ସଦସ୍ୟ—Nominated member.
**नमिनेटेड मेम्बर**

**ନମିନେସନ୍**—ବୈଦେ. ବି (ଇଂ)—କୌଣସି ନିର୍ଦ୍ଦିଷ୍ଟ ପଦ ପାଇଁ
Naminesan ବିଧିଅନୁସାରେ କୌଣସି ବ୍ୟକ୍ତିଙ୍କ ନାମ ଉଲ୍ଲେଖ
ନମିନେସନ କରିବା—Nomination of a candidate
**नमिनेसन** or a person for a particular post.

**ନମିନେସନ୍ ପେପର୍**—ବୈଦେ. ବି. (ଇଂ)—ଯେଉଁ କାଗଜରେ
Naminesan pepar ମନୋନୀତ ବ୍ୟକ୍ତିଙ୍କ ନାମ ପ୍ରସ୍ତାବରୂପେ ଲେଖାଯାଏ—
ନମିନେସନ୍ ପେପର Nomination paper.
**नमिनेसन पेपर**

**ନମିବା**—ଦେ. (ପଦ୍ୟ) କ୍ରି. (ସ. ନମ୍ ଧାତୁ)—
Namibā ନମସ୍କାର କରିବା; ଦଣ୍ଡବତ ହେବା; ଗୋଡ଼ତଳେ
ନମା ପଡ଼ିବା—To make obeisance; to bow
**नमना** down.

ସେ ନୃପ ସେହିକ୍ଷଣି ତାହାଙ୍କୁ ନମିଲେ। କୃଷ୍ଣସିଂହ. ମହାଭାରତ ସଭା।

**ନମୁଚି**—ସ ବି. (ନ = ନୁହେଁ + ମୁଚ୍ ଧାତୁ = ଛାଡ଼ିବା + ଇ; ଯେ
Namuchi କାହାରିକୁ ଛାଡ଼େ ନାହିଁ)—୧। କାମ; କନ୍ଦର୍ପ—
1. Cupid (personified).

[ଦ୍ର—ମହାଦେବ ଏହାଙ୍କୁ ବିନାଶ କରିଥିଲେ।]

୨। ଏକ ଦୈତ୍ୟର ପୁତ୍ର—
2. Son of a demon

[ଦ୍ର—ଏ ବିପ୍ରଚିତ୍ତି ନାମକ ଦାନବର ପୁତ୍ର ଥିଲା। ଏ ଇନ୍ଦ୍ରଙ୍କର ସଖା ଥିଲା ଓ ଇନ୍ଦ୍ର ଏହା ନିକଟରେ ସତ୍ୟ କରିଥିଲେ

ଯେ ମୁଁ ତୋତେ ଦିନବେଳେ ବା ରାତି ବେଳେ ମାରିବି ନାହିଁ, କମ୍ପା ଶୁଖିଲା ବା ଓଦା ଅସ୍ତ୍ରରେ ମାରିବ ନାହିଁ । ପରେ ଇନ୍ଦ୍ର ଏହାର ବଳ ହରଣ କରି ନେଇଥିଲେ । ଇନ୍ଦ୍ର, ସରସ୍ୱତୀ ଓ ଅଶ୍ୱିନୀ-କୁମାରଦ୍ୱୟଙ୍କ ଠାରୁ ସମୁଦ୍ରଫେନ ପରି ଏକ ବଜ୍ରାସ୍ତ୍ର ନେଇ ଏହାଙ୍କୁ ମାରିଥିଲେ—ହି. ଶବ୍ଦସାଗର ।]

୩ । ଶୁମ୍ଭ ଓ ନିଶୁମ୍ଭ ରାକ୍ଷସଙ୍କ ସାନ ଭାଇ (ହି. ଶ)— 3. Name of the younger brother of the demons Śumbha and Niśumbha.

୪ । ଏକ ଋଷିଙ୍କ ନାମ (ହି. ଶବ୍ଦସାଗର)— 4 Name of a sage

**ନମୁଚିଦ୍ୱିଟ୍**—ସ. ବି (ନମୁଚି+ଦ୍ୱିଷ ଧାତୁ=ହିଂସା କରିବା+କର୍ତ୍ତୃ. Namuchidwit କ୍ୱିପ୍, ୧ମା. ୧ବ)—୧ । ମହାଦେବ, ଶିବ—Śiba.
(ନମୁଚିଦ୍ୱିଷ୍, ନମୁଚିସୂଦନ, ନମୁଚି ନିସୂଦନ—ଅନ୍ୟରୂପ)
୨ । ଇନ୍ଦ୍ର—2 Indra.

**ନମୁଦ୍**—ଦେ ବି.—(ଭୂଲ. ଫା. ନମୁଦ୍=ବାହ୍ୟ ଦୃଶ୍ୟ,ଆରମ୍ଭ ପ୍ରଦର୍ଶନ-Namud ଯୋଗେଷ୍ଟନ୍)—କାର୍ଯ୍ୟରେ ନିଯୁକ୍ତି—
ନମୁଦ Appointment; deputation.
मुकरर ଦେ. ବିଣ.—କାର୍ଯ୍ୟରେ ନିଯୁକ୍ତ—
ନମୁଦ୍ Appointed; deputed to do a work,
बहाल
(ନମୋଦ—ଅନ୍ୟରୂପ)

**ନମୁଦ୍ କରିବା**—ଦେ. କ୍ରି.—କୌଣସି ବ୍ୟକ୍ତିଙ୍କୁ କୌଣସି ପଦରେ Namud karibā ନିଯୁକ୍ତ କରିବା—To appoint a person.
ନମୁଦ କବା बहाल करना

**ନମୁନା**—ବୈଦେ. ବି. (ଫା.)—୧ । ଆଦର୍ଶ—
Namunā 1. Model,
ନମୁନା ୨ । ଚିତ୍ର ଅଙ୍କିବା ପୂର୍ବରୁ ଚିତ୍ରକରର ମୋଟାମୋଟି ଅଙ୍କିବା
नमुना ଚିତ୍ର—2. A preliminary rough sketch drawn by a painter
୩ । ମଷ୍ଟ; କୌଣସି ପଦାର୍ଥର ସ୍ୱରୂପ ଓ ଗୁଣ ଆଦି ଜଣାଇବା ପାଇଁ ସେହି ପଦାର୍ଥରୁ ନିଆ ଯାଇଥିବା ଅଂଶ—
3. Specimen; sample; pattern.
୪ । ନିଦର୍ଶନ—4 Indication; proof.
୫ । ଦୃଷ୍ଟାନ୍ତ—5. Example.

**ନମେରୁ**—ସ. ବି. (ନମ୍ ଧାତୁ+ସଂଜ୍ଞାର୍ଥେ. ଏରୁ)—
Nameru ୧ । ରୁଦ୍ରାକ୍ଷ (ଦେଖ)—1 Rudrāksha (See)
୨ । ସୁରପୁନ୍ନାଗ; ନାଗେଶ୍ୱର ଗଛ—
2. A flower-tree; Mesua Ferra.

**ନମୋ**—ଦେ. ଅ. (ସ. ନମଃ;ସ୍ୱତନ୍ତ୍ରରେ ଏହା ଅନ୍ୟ ଶବ୍ଦ ସଙ୍ଗେ ସନ୍ଧିରେ Namo 'ନମୋ' ରୂପ ଧାରଣ କରେ, ମାତ୍ର ଓଡ଼ିଆରେ ଏହି ଆକାରରେ ନମୋ ପୃଥକ୍ ବ୍ୟବହୃତ ହୁଏ)—ଆପଣଙ୍କୁ ନମସ୍କାର; ନମସ୍ତେ—(interjection) Obeisance to you!
ବୋଇଲେ ନମୋ ମହେଶ୍ୱର । ଭୂପତି. ପ୍ରେମପଞ୍ଚାମୃତ ।

**ନମୋଗୁରୁ**—ସ. ବି. (ନମଃ+ଗୁରୁ)—୧ । ବ୍ରାହ୍ମଣ—
Namo guru 1. A Brāhmaṇa.
୨ । ଆଚାର୍ଯ୍ୟ; ଗୁରୁଦେବ—
2. A spiritual preceptor.

**ନମୋଦ୍**—ଦେ. ବି. ଓ ବିଣ.—ନମୁଦ୍ (ଦେଖ)
Namod Namud (See)
ପ୍ରାଦେ. (ଗଞ୍ଜାମ) ବି.—ଉଲ୍ଲେଖ—Mention.

**ନମୋନମ(ମୋ)**—ଦେ. ଅ. (ସ. ନମୋନମଃ)—ନମ (ଦେଖ)
Namonama(mo) Nama (See)
ନମୋ ନମୋ ତୁମ୍ଭେ ଗୁରୁ ମୋର ତୁମ୍ଭଙ୍କୁ ନମୋନମ
नमो नमो କୃଷ୍ଣସିଂହ ମହାଭାରତ, ବନ

**ନମୋନମଃ**—ସ. ଅ (ନମଃ+ନମଃ)—ନମ (ଦେଖ)
Namonamaḥ Nama (See)

**ନମୋ ନମସ୍ତେ**—ସ. ଅ. (ନମଃ+ନମସ୍ତେ)—ନମ (ଦେଖ)
Namo namaste Nama (See)

**ନମୋବାକ**—ସ. ବି. (ନମଃ+ବାକ୍; ନିପାତନ)—ନମସ୍କାର ବଚନ; Namobāka ନମସ୍କାର କରିବା ବ୍ୟକ୍ତିଙ୍କର ମୁଖରେ ଉଚ୍ଚାରିତ ବଚନ—Formula uttered at the time of salutation.

**ନମ୍ପ(ମ୍ଫ)**—ପ୍ରାଦେ. (ମେଦିନୀପୁର) ବୈଦେ ବି.—(ଇଂ. ଲ୍ୟାମ୍ପ୍; Nampa (mpha) ଭୂଲ. ବ. ନମ୍ପ, ନମ୍ଫ)—କିରାସିନି ଜାଳିବା ଡିବି—A kind of open kerosine lamp.

**ନମ୍ବ (ଧାତୁ)**—ସ.—୧ । ଯିବା; ଗମନ କରିବା—
Namba (root) 1. To go.
୨ । ଚଳିବା; ଘୁଞ୍ଚିବା; ଗତିଶୀଳ ହେବା—2. To move

**ନମ୍ବ (ଇତ୍ୟାଦି)**—ଗ୍ରା. ବି. (ସ. ଲମ୍ବ)—ଲମ୍ବ ଇତ୍ୟାଦି (ଦେଖ)
Namba etc. Lamba etc (See)

**ନମ୍ବଡ଼ା**—ଗ୍ରା. ବିଣ. (ସ. ଲମ୍ବ)—ଲମ୍ବଡ଼ା (ଦେଖ)
Nambarḍā Lambarḍā (See)

**ନମ୍ବର**—ବୈଦେ. ବି (ଇଂ ନମ୍ବର)—୧ । ଅଙ୍କ; ସଂଖ୍ୟା;
Nambara 1 Number; numerical figure.
ନମ୍ବର ୨ । କ୍ରମିକ ସଂଖ୍ୟା—2. Successive number;
नंबर serial number.
(ନମ୍ବର—ଅନ୍ୟରୂପ)
୩ । ପଣ୍ୟଦ୍ରବ୍ୟାଦିରେ ଦିଆଯିବା ମାର୍କା ବା ସଂଖ୍ୟା—
3. Figure or number marked on an article.
୪ । ପରୀକ୍ଷାରେ ଛାତ୍ର ପାଇବା ମାର୍କ—
4. Examination-marks.
୫ । ମକଦ୍ଦମା—5, Case; suit.
(ଯଥା—ଆଜି ସବଜଜ ହରିହର ଗୁରୁଙ୍କ ନମ୍ବର ବିଚାର କରିବେ ।)
୭ । ମକଦ୍ଦମାର ପରିଚୟସୂଚକ କ୍ରମିକ ସଂଖ୍ୟା—
7. The serial number of a suit or a case.

୭ । କୌଣସି ବସ୍ତୁକୁ ଚିହ୍ନିତ କରିବା ପାଇଁ ତହିଁରେ ଦିଆଯିବା ସଂଖ୍ୟା—7. Number put as a distinguishing mark

ବିଣ—୧ । ନମ୍ବର ଯୁକ୍ତ—
1. Bearing a mark or number.
(ଯଥା—ବାଲୁବଜାରର ୧୩ ନମ୍ବର ଘର ।)
୨ । (ଏତେ) ସଂଖ୍ୟକ; ସଂଖ୍ୟାବିଶିଷ୍ଟ—
2. Numbering ( so much ).
୩ । (ଅମୁକ) ଶ୍ରେଣୀସ୍ଥ; ରକମର—
3 Belonging to a particular class
(ଯଥା—ଅଭୁଲ ନମ୍ବର ମାଲ ନ ହେଲେ ସେ ବାବୁଙ୍କ ପାଟକୁ ସ୍ୱାଦ ଲାଗିବ ନାହିଁ ।)

**ନମ୍ବରଦାର୍**—ପ୍ରାଦେ. (ସମ୍ବଲପୁର) ବୈଦେ ବି. (ଇଂ. ନମ୍ବର୍ ଓ ଫା. Nambaradār ଦାର୍)—୧ । ରାଜସ୍ୱଦାତା ପ୍ରଜା—
**नम्बरदार** 1. A revenue-paying royat.
୨ । ଲମ୍ବରଦାର୍; ଗ୍ରାମାଧ୍ୟକ୍ଷ; ଗଉନ୍ତିଆ—
2. Headman of a village.
[ ଦ୍ର—ଏହି ଗ୍ରାମାଧ୍ୟକ୍ଷ ବା ଗଉନ୍ତିଆ ଗ୍ରାମର ସମସ୍ତ କରଦାତାଙ୍କର ଦେୟ ରାଜସ୍ୱ ସଂଗ୍ରହ କରି ରାଜକୀୟ ଖଜଣାଖାନାକୁ ପ୍ରେରଣ କରନ୍ତି । ଏ କରଦାତାମାନଙ୍କର ପ୍ରତିନିଧି ଏବଂ ଏହାଙ୍କ ନାମ ସରକାରୀ ରେଜିଷ୍ଟରରେ ଲେଖାଥାଏ । ]

**ନମ୍ବର ଦେବା**—ଦେ. କ୍ରି—୧ । ପରୀକ୍ଷାର୍ଥୀ ଛାତ୍ରର କଥିତ ବା ଲିଖିତ Nambara debā ଉତ୍ତର ଦେଖି ମାର୍କ ଦେବା—1. To give ନম୍ବର ଦେଓଆ or award marks to an examinee **नम्बर देना** by examining his answers to questions
୨ । ନମ୍ବର ମାରିବା ( ଦେଖ )
2 Nambara māribā ( See )

**ନମ୍ବର ମାରିବା**—ଦେ. କ୍ରି—୧ । ସଂଖ୍ୟାଦ୍ୱାରା ଚିହ୍ନିତ କରିବା—
Nambara māribā 1 To mark with a number.
[ନମ୍ବର ବସା(ସେ)ଇବା—ଅନ୍ୟରୂପ] ୨ । ମାର୍କା ମାରିବା; ନମ୍ବର ନম୍ବରମারা; নম্বরবসান ଦେବା - 2. To attach a mark **नम्बरदेना** or number.

**ନମ୍ବରିଆ**—ଦେ. ବିଣ—ନମ୍ବରୀ ( ଦେଖ )
Nambariā Nambarī ( See )

**ନମ୍ବରିଙ୍ଗ୍ ମେସିନ୍**—ବୈଦେ. ବି ( ଇଂ )—ଯେଉଁ ଯନ୍ତ୍ରଦ୍ୱାରା ଧାଡ଼ିଭ, Nambaring mesin ପୁସ୍ତକର ପୃଷ୍ଠା ଆଦିରେ କ୍ରମସଂଖ୍ୟା ନম্বরিঙ্গমেসিন ଛାପି ଦିଆଯାଏ—Numbering machine.
**नंबरिंग मसिन**

**ନମ୍ବରୀ**—ବୈଦେ. ବିଣ—୧ । ଲମ୍ବରୀ; ନମ୍ବର ମରାଯାଇଥିବା —
Nambarī 1. Marked; numbered
নম্বরী (ଯଥା—୪୦ ନମ୍ବରୀ ସୂତା ।)
**नम्बरी** ୨ । ପ୍ରସିଦ୍ଧ; ମାର୍କାମାରା; ନାମଜାଦା—
2. Celebrated; notorious.

**ନମ୍ବରୀ ମକଦ୍ଦମା**—ବୈଦେ. ବି—ଧାରାବାହିକରୂପେ ଓ କ୍ରମଅନୁସାରେ Nambarī makaddamā ବିଚାର କରାଯିବା ସ୍ୱତ୍ୱାସ୍ୱତ୍ୱ ସମ୍ବନ୍ଧୀୟ নম্বরী মকদ্দমা ମକଦ୍ଦମା—Regular suit; title suit.
**नम्बरी मुकद्दमा**

**ନମ୍ବରୀ ସେର**—ବୈଦେ ବି—ବାଲେଶ୍ୱରୀ ସେର; ୮୦ ଟଙ୍କା ଓଜନର Nambarī sera ସେର—A standard seer of 80 rupees পকী সের **नम्बरी सेर** weight.

**ନମ୍ବା**—ଗ୍ରା ବିଣ—ଲମ୍ବା ( ଦେଖ )
Nambā Lambā ( See )
(ନମ୍ବୀ—ସ୍ତ୍ରୀ)

**ନମ୍ବା(ମ୍ବେ)ଇବା**—ଗ୍ରା. କ୍ରି—ଲମ୍ବାଇବା ( ଦେଖ )
Nambā(mbe)ibā Lambāibā ( See )

**ନମ୍ବିବା**—ଗ୍ରା. କ୍ରି—ଲମ୍ବିବା ( ଦେଖ )
Nambibā Lambibā ( See )

**ନମ୍ବୀ**—ଗ୍ରା. ବିଣ ଓ କ୍ରି. ବିଣ—ଲମ୍ବୀ ( ଦେଖ )
Nambī Lambī ( See )

**ନମ୍ବୁରି(ଦ୍ରୀ)**—ଦେ. ବି. ଭାରତର ଦକ୍ଷିଣପଶ୍ଚିମସ୍ଥ ମାଲବାର ଉପକୂଳ Namburī(drī) ଅଞ୍ଚଳର ବ୍ରାହ୍ମଣଙ୍କ ଶ୍ରେଣୀବିଶେଷ—
নাম্বুদি A class of Brāhmaṇas of the Malabar **नंम्बुरी** (west) coast of S. India.
[ନାମ୍ବୁରି(ରୀ)—ଅନ୍ୟରୂପ]
[ଦ୍ର—କଥିତ ଅଛି ଯେ ଏମାନେ ୧୨୦୦ ବା ୧୩୦୦ ପୂର୍ବେ ପୂର୍ବ ଭାରତରୁ ଆସି ମାଲବାର ଉପକୂଳରେ ବସତି କରିଥିଲେ । ଏମାନେ ପରଶୁରାମଙ୍କ ଦ୍ୱାରା ଏ ଅଞ୍ଚଳକୁ ଅଣା ହୋଇ ଥିଲେ ବୋଲି କହନ୍ତି ଏବଂ କେରଳ ମାହାତ୍ମ୍ୟ ନାମକ ସ୍ମୃତିଦ୍ୱାରା ଏମାନେ ଶାସିତ । ଏମାନଙ୍କ ବଂଶର ବଡ଼ ପୁଅମାନେ ବିବାହ କରନ୍ତି ଓ ବଂଶର ଅନ୍ୟ ପୁଅମାନେ ନାୟାର ଜାତୀୟା ଶୂଦ୍ରା ସ୍ତ୍ରୀଙ୍କ ସହବାସ କରନ୍ତି । ଏମାନଙ୍କ ମଧ୍ୟରେ ବଡ଼ ପୁଅ ପୈତୃକ ସମ୍ପତ୍ତିର ଉତ୍ତରାଧିକାରୀ ହୁଏ । ପୁଅ ନ ଥିଲେ କନ୍ୟାର ପୁତ୍ର ସମ୍ପତ୍ତିର ମାଲିକ ହୁଏ । ବଂଶର ସାନ ପୁଅମାନଙ୍କର ସନ୍ତାନମାନେ ନାୟାର୍ ପତ୍ନୀର ଉତ୍ତରାଧିକାରୀ ହୁଅନ୍ତି । ନମ୍ବୁରୀମାନଙ୍କ ମଧ୍ୟରେ କନ୍ୟାର ବିବାହଯୋଗ୍ୟ ବୟସର ସ୍ଥିରତା ନାହିଁ ଏବଂ ବହୁ କନ୍ୟା ଅବିବାହିତା ହୋଇ ରହନ୍ତି । ମୃତ ସ୍ୱାମୀଙ୍କ ବିନା ଅନୁମତିରେ ବିଧବା ପୋଷ୍ୟପୁତ୍ର ଗ୍ରହଣ କରିପାରେ । ପିତାର ଏକ ମାତ୍ର ପୁତ୍ର ପୋଷ୍ୟପୁତ୍ର ରୂପେ ଦିଆ ଯାଇ ପାରେ ଓ ଉକ୍ତ ଦ୍ୱୈମୁଷ୍ୟାୟନ ପୁତ୍ର ଜନ୍ମଦାତା ପିତାଙ୍କୁ ଓ ପୋଷିଆଁ ପିତାଙ୍କୁ ପିଣ୍ଡ ଦେଇ ଦୁହିଁଙ୍କ ସମ୍ପତ୍ତିରେ ଉତ୍ତରାଧିକାରୀ ହୁଏ ବା ମେନ୍ ସାହେବଙ୍କ ସଂକଳିତ ହିନ୍ଦୁ ଆଇନ୍ ଓ ବ୍ୟବହାର ।

**ନମ୍ବେ ନମ୍ବେ**—ଗ୍ରା. କ୍ରି. ବିଣ—ଲମ୍ବେ ଲମ୍ବେ; ସିଧା ସିଧା—
Nambe nambe Straight; straightway.

**ନମ୍ର**—ସଂ ବିଣ. (ନମ୍ ଧାତୁ + କର୍ତ୍ତୃ. ର)—୧ । ବିନୀତ; ବିନୟ ସମ୍ପନ୍ନ-
Namra 1. Humble; lowly; submissive.
(ନମ୍ରତା—ବି) ୨ । ଶିଷ୍ଟ; ଭଦ୍ର—2. Polite.
୩ । ଯାହା ନଇଁ ଅଛି—3. Bowed; bent down.

୪ । ବକ୍ରୀଭୂତ—4 Bent.

୫ । ମୃଦୁ—5. Meek, mild.

୬ । କୋମଳ; ନରମ—6. Soft; pliant.

**ନମ୍ରକ** - ସଂ. ବି. (ନମ୍ର+ସଜ୍ଞାର୍ଥେକ)—ବେତସ; ବେତ —
Namraka — Retan; cane

**ନମ୍ର ପ୍ରକୃତି**—ସଂ. ବି. (କର୍ମଧା; ନମ୍ର+ପ୍ରକୃତି)—୧ । ଶିଷ୍ଟ ସ୍ୱଭାବ; ଭଦ୍ରତା—1. Politeness.
Namra prakruti

୨ । କୋମଳ ସ୍ୱଭାବ—2 Meek nature

୩ । ବିନୟ—3. Humble nature, humility.

ସଂ. ବିଣ.—(ବହୁବ୍ରୀହି) ନମ୍ର ପ୍ରକୃତିକ (ଦେଖ)
Namra prakrutika (See)

**ନମ୍ର ପ୍ରକୃତିକ**—ସଂ. ବିଣ. ପୁଂ (ବହୁବ୍ରୀହି; ନମ୍ର+ପ୍ରକୃତି; 'କ' ଆଗମ) ·
Namra prakrutika — ୧ । ନମ୍ର ପ୍ରକୃତିବିଶିଷ୍ଟ—
(ନମ୍ର ପ୍ରକୃତିକା—ସ୍ତ୍ରୀ) 1. Humble; sweet-tempered.

୨ । ଶିଷ୍ଟ, ଭଦ୍ର—2 Polite

୩ । ଶାନ୍ତ ପ୍ରକୃତିବିଶିଷ୍ଟ—
3 Of a gentle or meek disposition.

**ନମ୍ର ମୁଖ**—ସଂ. ବି. (କର୍ମଧା, ନମ୍ର+ମୁଖ)—ଅବନତ ମସ୍ତକ; ନତମୁଖ—
Namra mukha — Head bent down; drooping head

(ନମ୍ରମୁଖୀ, ନମ୍ରମୁଖା—ସ୍ତ୍ରୀ) ସଂ. ବିଣ. ପୁଂ. (ବହୁବ୍ରୀହି)—
୧ । ନତମୁଖ; ହେଟବଦନ; ଯାହାର ମୁହଁ ତଳକୁ ହୋଇଅଛି—1. With the head bent down.

୨ । ତଳକୁ ମୁହଁ କରିଥିବା—
2. Facing downwards.

୩ । ଲାଜକୁଳା; ଯେ ସର୍ବଦା ଲାଜରେ ମୁହଁ ତଳକୁ ପୋତି ଥାଏ—3. Shy; always looking downwards on account of modesty; coy.

**ନମ୍ର ଶୀଳ**—ସଂ. ବିଣ. ପୁଂ. (ବହୁବ୍ରୀହି; ନମ୍ର+ଶୀଳ=ସ୍ୱଭାବ)—
Namra śila — ନମ୍ରପ୍ରକୃତିକ ( ଦେଖ )
(ନମ୍ରଶୀଳା—ସ୍ତ୍ରୀ) Namraprakrutika ( See )
(ନମ୍ରଶୀଳତା—ବି)

**ନମ୍ର ସ୍ୱଭାବ**—ସଂ. ବି ଓ ବିଣ. ପୁଂ—ନମ୍ରପ୍ରକୃତି (ଦେଖ)
Namra swabhaba — Namraprakruti (See)
(ନମ୍ରସ୍ୱଭାବା—ସ୍ତ୍ରୀ)

**ନମ୍ରାଙ୍ଗ**—ସଂ. ବି. (କର୍ମଧା; ନମ୍ର+ଅଙ୍ଗ)—ସୁକୋମଳ ଶରୀର—
Namrānga — Pliant body.
(ନମ୍ରାଙ୍ଗୀ,ନମ୍ରାଙ୍ଗା—ସ୍ତ୍ରୀ) ସଂ. ବିଣ. ପୁଂ—ସୁକୋମଳ ଶରୀରବିଶିଷ୍ଟ—
Having soft limbs.

**ନମ୍ରିବା**—ଦେ. (ପଦ୍ୟ) କ୍ରି. (ସଂ. ନମ୍ର)—ନମ୍ରହେବା; ବିନୟସମ୍ପନ୍ନ ହେବା—To be polite.
Namribā

ଛୁଦ ପ୍ରମୋଦିତ ହୋଇ ହୃଦେବସୁ ବହଇ
ନମ୍ରି ସୁକୃତଫଳ ଲଭଇପୂର୍ଣ୍ଣ । ପ୍ରାଚୀ. ରସବାରିଧ ।

**ନୟ** (ଧାତୁ)—ସଂ—୧ । ଗମନ କରିବା; ଯିବା—1. To go.
Naya (root) ୨ । ଚଳିବା; ଗତି କରିବା—2. To move.

**ନୟ**—ସଂ ବି. (ନୀ ଧାତୁ=ପାଇବା+ଭାବ. ଅ)—୧ । ଆଚରଣ—
Naya — 1. Conduct; behaviour.

୨ । ବିଧି, ନୀତି; ନିୟମ—
2 Rules; morals; policy; maxim; principle.

୩ । ରାଜନୀତି—3. Politics.

୪ । (+କରଣ . ଅ)—ନୀତିଶାସ୍ତ୍ର—
4 Sociology; ethics, the science of morality.

୫ । ଗୁରୁଙ୍କ ଉପଦେଶ ବଚନ—5. Advice received from a preceptor; precepts.

୬ । ଦ୍ୟୂତକ୍ରୀଡ଼ାବିଶେଷ; ନ୍ୟାୟବଳ ଖେଳ, ସତରଞ୍ଚ ଖେଳ—
6. A kind of game at chess.

୭ । (+କର୍ତ୍ତୃ ଅ)—ପଥପ୍ରଦର୍ଶକ, ନେତା—
7. A guide; a leader.

୮ । ଚଳିବାର ରୀତି—8. Way of life (Apte)

୯ । ଦୂରଦୃଷ୍ଟି—9 Prudence, foresight; circumspection (Apte).

୧୦ । ରାଜନୀତିକୁଶଳତା—10. Policy; statesmanship; political wisdom (Apte).

୧୧ । ନ୍ୟାୟାନୁମୋଦିତ ମାର୍ଗ—
11 Morality; equity; rectitude (Apte).

୧୨ । କାର୍ଯ୍ୟ ସାଧନାର୍ଥ ପରିକଳ୍ପିତ ଉପାୟ—
12. Plan; design, scheme (Apte).

୧୩ । ବିଧିବଦ୍ଧ ପନ୍ଥା, ରୀତି—13. Method, manner; course, system (Apte).

୧୪ । କୌଣସି ମତବାଦ—
14. Doctrine; opinion (Apte).

୧୫ । ବିଷ୍ଣୁଙ୍କ ନାମ—15. A name of Bishnu (Apte).

୧୬ । ପରିଚାଳନ; ପଥପ୍ରଦର୍ଶନ—
16 Guiding; leading; managing (Apte).

ସଂ. ବିଣ—୧ । ନ୍ୟାଯ୍ୟ; ନ୍ୟାୟାନୁମୋଦିତ—
1 Righteous; just.

୨ । ଅଗ୍ରଗାମୀ—2. Leading.

୩ । ଉପଯୁକ୍ତ; ଯଥାଯୋଗ୍ୟ—
3 Suitable; right; proper (Apte).

ଗ୍ରା. ବି. (ସଂ. ଲୟ)—ଧ୍ୟାନ; ଏକାଗ୍ରଦୃଷ୍ଟି—
Contemplation; concentrated attention.

ବନହୁରେ ତାଙ୍କର ନୟନ ରଖି
ବନ ହୁରଷେ ନାହିଁ ନୟ ନ ରଖି ସେ । ଉପେ. ବୈଦେହୀଶବିଳାସ ।

**ନୟକ**—ସଂ. ବି. ପୁଂ. (ନୀ ଧାତୁ+କର୍ତ୍ତୃ. ଅକ)—
Nayaka — ୧ । କାର୍ଯ୍ୟ ପରିଚାଳକ ଚତୁର ବ୍ୟକ୍ତି—
· (ନୟିକା—ସ୍ତ୍ରୀ) 1. A skilful manager (Apte).

୨ । ରାଜନୀତିକୁଶଳ ବ୍ୟକ୍ତି—
2. A statesman (Apte)
ସ ବିଣ—୧ । ନେତା; ପରିଚାଳନକାରୀ—
1. Leading; managing.
୨ । ରାଜନୀତିଜ୍ଞ—2. Versed in policy or politics (Apte).

**ନୟ ଚକ୍ଷୁଃ**—ସ. ବିଣ. (ବହୁବ୍ରୀହି, ନୟ+ଚକ୍ଷୁଃ; ୧ମା. ୧ବ)—
Naya chakshuḥ ଯାହାର ରାଜନୀତିରେ ଦୂରଦୃଷ୍ଟି ଅଛି—
Having political foresight; prudent; wise (Apte.

**ନୟଜ୍ଞ**—ସ. ବିଣ. ପୁଂ. (ନୟ+ଜ୍ଞା ଧାତୁ+କର୍ତ୍ତୃ. ଅ)—
Nayajña ୧ । ନୀତିବିଶାରଦ—
(ନୟକୋବିଦ—ଅନ୍ୟରୂପ) 1 Versed in politics
(ନୟଜ୍ଞା—ସ୍ତ୍ରୀ) ସ. ବି. ପୁଂ—୧ । ରାଜନୀତିବିଶାରଦ ବ୍ୟକ୍ତି—
(ନୟଜ୍ଞତା—ବି) 1 A politician; a statesma (Apte).
୨ । ଓସ୍ତାଦି ପେଞ୍ଚ ଜାଣିବା ବାଲା ବ୍ୟକ୍ତି—
2. Tactician; statesman skilled in policy
୩ । ଦୂରଦୃଷ୍ଟିବିଶିଷ୍ଟ—3. Prudent (Apte).

**ନୟନ୍ (ଇତ୍ୟାଦି)**—ବୈଦେ ବି. (ଇଂ. ଲାଇନ୍)—
Nayan (etc) ଲାଇନ୍ ଇତ୍ୟାଦି (ଦେଖ)
নয়ন;' লাইন **नयन, लाइन** Lāin etc (See)

**ନୟ କ୍ଲାଟ୍**—ବୈଦେ. ବି. (ଇଂ. ଲଙ୍ଗ୍ କ୍ଲଥ୍)—
Nayan-klāṭ କଲବୁଣା ଧଳାସୂତାର ଲୁଗା—
(ନୟନକ୍ଲାଟ—ଅନ୍ୟରୂପ) Longcloth; machine-woven
লংক্লথ **नयनगिलाठ** white cotton cloth.

**ନୟନ୍ ପରେଡ୍**—ବୈଦେ. ବି. (ଇଂ. ଲାଇନ୍=ପଂକ୍ତି+ପାରେଡ୍=
Nayan paret ସେନାମାନଙ୍କର ବ୍ୟାୟାମ ଅଭ୍ୟାସ)—
নয়ন পরেট ୧ । ସେନାମାନଙ୍କର ପଂକ୍ତିବଦ୍ଧ ହୋଇ ବନ୍ଧୁକ
**नयन परेट** ଆଦି ମାରିବାର ଅଭ୍ୟାସ କରିବା—
1. Military parade
୨ । ଯେଉଁ ମୁକ୍ତସ୍ଥାନରେ ସେନାମାନେ ବନ୍ଧୁକଆଦି ମାରିବାର ଅଭ୍ୟାସ କରନ୍ତି—2 A field where soldiers hold military parade or target practice

**ନୟନ୍ସୁକ୍(ଖ୍)**—ଦେ. ବି. (ସ. ନୟନସୁଖ; ଦେଖିବାକୁ ସୁନ୍ଦର)—
Nayan-suk(kh) ସୂକ୍ଷ୍ମଚିକଣା କଲବୁଣା ସୂତା ଲୁଗା; ସୂତାର ପତଳା
নয়নসুখ ସାର୍ଟିନ୍ କନା—White shirting; cambric
**नैनसुख**

**ନୟନ**—ସ. ବି. (ନୀ ଧାତୁ=ନେବା+କରଣ. ଅନ)—୧ । ଚକ୍ଷୁଃ;
Nayana ଆଖି—1 Eye.
୨ । (+ଭାବ. ଅନ) ପ୍ରାପଣ; ପ୍ରାପ୍ତି କରାଇବା—
2. Procuring.
୩ । (+କର୍ତ୍ତୃ. ଅନ)—ପଥ ପ୍ରଦର୍ଶକ—3. A guide.
୪ । (କାଳ) ଯାପନ; କଟାଇବା, ଅତିବାହନ—
4 Passing (of time); whiling away.
୫ । ରାଜ୍ୟାଦିର ଶାସନ—
5. Ruling; governing (Apte).

[ଦ୍ର—'ନୟନ' ଶବ୍ଦ ଅନ୍ୟ ଶବ୍ଦ ସଙ୍ଗେ ସମାସରେ ଯୁକ୍ତ ହୋଇ ବିଶେଷଣ ହୁଏ, ଯଥା—ତ୍ରିନୟନ (ପୁଂ); ମୃଗନୟନା ଓ ଏଣୀନୟନା (ସ୍ତ୍ରୀ) । ]

**ନୟନ ଗୋଚର**—ସ. ବିଣ. (୭ମୀ ତତ୍, ନୟନ+ଗୋଚର=ଇନ୍ଦ୍ରିୟ-
Nayana gochara ଗ୍ରାହ୍ୟ)—୧ । ଚକ୍ଷୁଗୋଚର; ଦେଖାଯିବା;
ଦୃଷ୍ଟିର ବିଷୟୀଭୂତ; ଯାହା ଦେଖାଯାଏ—
1. Visible; apparent
୨ । ସମକ୍ଷ; ଯାହା କୌଣସି ବ୍ୟକ୍ତିର ଆଖି ଆଗରେ ଅଛି—
2. Which is before the eyes of a person

**ନୟନଗୋଚର କରିବା**—ଦେ. କ୍ରି.—ଦେଖିବା—
Nayanagochara karibā To see.
নয়নগোচর করা **नयन गोचर करना**

**ନୟନ ଜଳ**—ସ. ବି. (୬ଷ୍ଠୀ ତତ୍; ନୟନ+ଜଳ)—ଲୋତକ, ଲୁହ;
Nayana jaḷa ଅଶ୍ରୁ—Tears.
(ନୟନ ନୀର, ନୟନ ବାରି, ନୟନ ସଲିଳ—ଅନ୍ୟରୂପ)

**ନୟନ ଜୁ(ଜୋ)ଡ଼ି(ରି)**—ଦେ. ବି. (ସ. ନୀ ଧାତୁରୁ ଉତ୍ପନ୍ନ ନୟନ
Nayana ju(jo)ṛḍi(ri) =ନେବା, ପ୍ରାପଣ+ଜଳ; ଯେଉଁ
[ନଏନ ଜୁ(ଜୋ)ଡ଼ି(ରି)—ଅନ୍ୟରୂପ] ବାଟେ ପାଣି ବାହାରି
ଯାଏ)—ସଡ଼କର ଦୁଇ ପାଖରେ ଥିବା ଜଳନିର୍ଗମନର
**मोरी** ନାଳ, ନର୍ଦ୍ଦମା—Drains on both sides of a road,
নয়ন জুলী gutter.

**ନୟନ ଠାର**—ଦେ. ବି.—ନୟନ ଭଙ୍ଗୀ; ଆଖିଠାର; ଆଖିଦ୍ୱାରା ଇସାରା
Nayana ṭhāra Wink; furtive looks.
নয়নঠাব **कनखी, आँख मटमट**

**ନୟନ ତରା**—ଦେ. ବି. (ସ. ନୟନ ତାରା)—ନୟନତାରା (ଦେଖ)
Nayana tarā Nayana tārā (See)
চোখের পুতুল **आँखकी पुतली, आँखका तारा**

**ନୟନ ତାରା**—ସ. ବି. (୬ଷ୍ଠୀ ତତ୍; ନୟନ+ତାରା)—୧ । କନୀନିକା,
Nayana tārā ଆଖିର ମଣି; ଆଖିର ପୁଅ; ଆଖିର କେନ୍ଦ୍ରରେ
(ନୟନ ତାରକ—ଅନ୍ୟରୂପ) କଳାଡୋଳାର ମଧ୍ୟସ୍ଥଳରେ ଥିବା
ଦର୍ପଣବତ୍ ସ୍ୱଚ୍ଛ କୋମଳ ଚର୍ମଖଣ୍ଡ—1 The pupil of the eye.
୨ । (ଲକ୍ଷଣାର୍ଥ) ପୃଥିବୀରେ ସବୁଠାରୁ ପ୍ରିୟତମ ବ୍ୟକ୍ତି ବା ବସ୍ତୁ—2. One's most beloved object

**ନୟନ ତୃପ୍ତିକର**—ସ. ବିଣ. (୬ଷ୍ଠୀ ତତ୍ ଓ ଉପପଦ; ନୟନ+
Nayana truptikara ତୃପ୍ତିକର)—ଯାହା ଦେଖିଲେ ମନରେ
(ନୟନ ତର୍ପକ—ଅନ୍ୟରୂପ) ଆନନ୍ଦ ହୁଏ; ନୟନ ପ୍ରିୟ; ପ୍ରିୟଦର୍ଶନ—
Pleasing to the eye.

**ନୟନ ପଟ** – ସଂ. ବି. (୬ଷ୍ଠୀ ତତ୍; ନୟନ+ପଟ)—ଆଖିର ପଲକ, ଆଖି ପତା (ହି ଣ)—Eye-lid
Nayana paṭa
(ନୟନଚ୍ଛଦ—ଅନ୍ୟରୂପ)

**ନୟନ ପଥ**—ସଂ ବି. (୬ଷ୍ଠୀ ତତ୍, ନୟନ+ପଥ)—ଦୃଷ୍ଟି ଯେତେ ଦୂର ଯାଇ ପାରେ; ଦୃଷ୍ଟିପଥ—Ken; the range of sight.
Nayana patha

**ନୟନ ପିତୁଲା(ଲି)**—ଦେ. ବି· (ସଂ ନୟନ ପୁତ୍ତଳିକା)—
Nayana pitulā(li) ୧ । ନୟନ ତାରା (ଦେଖ)
চোখের পুতুল 1. Nayana tārā (See)
**आँखकी पुतली** ନୟନ ପିତୁଲା ଭୂମ୍ଭେ ମୋ ଅଟି ଖ ଣି ।
ନନ୍ଦକିଶୋର. ସୀତାବନବାସ ।
୨ । ନୟନ ସମ୍ପତ୍ତି ୨ (ଦେଖ)
2. Nayana sampatti 2 (See)

**ନୟନ ପୁଟ** – ସଂ. ବି. (୬ଷ୍ଠୀ ତତ୍; ନୟନ+ପୁଟ)—ଆଖିର ଗହ୍ବର—
Nayana puṭa The cavity of the eye (Apte)

**ନୟନ ପେଡ଼ି**—ଦେ. ବି. (ସଂ ନୟନ ଓ ପେଟିକା)—
Nayana peṛdi ଯାହା ଆଖିଆଗରେ ନ ଥାଏ ଅଥଚ ସର୍ବଦା କଳ୍ପନାରୂପ ଆଖିଆଗରେ ନାଚୁ ଥାଏ—Any absent thing which dances before one's eyes.
ସେ ଗୋଟି କରୁଛ ମୋ ନୟନ ପେଡ଼ି । ଭକ୍ତ. ସୁବର୍ଣ୍ଣରେଖା ।

**ନୟନ ପ୍ରତିମା**—ସଂ. ବି. (ଲକ୍ଷଣାର୍ଥ)—ଅତି ପ୍ରିୟତମ ବ୍ୟକ୍ତି; ନୟନ ସମ୍ପତ୍ତି—One's most beloved person.
Nayana pratimā

**ନୟନ ପ୍ରିୟ**—ସଂ. ବିଣ—ନୟନ ତୃପ୍ତିକର—
Nayana priya Pleasing to the eye

**ନୟନ ବିଷୟ**—ସଂ. ବି. (୬ଷ୍ଠୀ ତତ୍; ନୟନ+ବିଷୟ)—
Nayana bishaya ୧ । ଦେଖାଯାଉ ଥିବା କୌଣସି ବସ୍ତୁ—
1. Any visible object.
୨ । ଦିଗ୍‌ବଳୟ; ଚକ୍ରବାଳ—2. The horizon (Apte)
୩ । ଦୃଷ୍ଟି ପଥ—3. The range of sight (Apte).
ସଂ. ବିଣ—ନୟନଗୋଚର (ଦେଖ)
Nayana gochara (See)

**ନୟନସମ୍ପତ୍ତି**—ସଂ. ବି. (୬ଷ୍ଠୀ ତତ୍; ନୟନ+ସମ୍ପତ୍ତି)—
Nayana sampatti ୧ । ନୟନ ପ୍ରତିମା (ଦେଖ)
1 Nayana pratimā (See)
୨ । ଆଖିଆଗରେ ସର୍ବଦା ନାଚୁଥିବା ଅନୁପସ୍ଥିତ ବା ଅତୀତ ବିଷୟ—2. Any past or absent thing which dances before one's eyes.

**ନୟନ ସୁଖକର**—ସଂ. ବିଣ—ନୟନ ତୃପ୍ତିକର (ଦେଖ)
Nayana sukhakara Nayana truptikara (See)
(ନୟନ ସୁଖଦ—ଅନ୍ୟରୂପ)

**ନୟନା(ନୀ)** – ସଂ. ବି. (ନୟନ+ଅ; ଈ)—ଆଖିର ପିତୁଳା—
Nayanā(ni) The pupil of the eye (Apte).

**ନୟନାନନ୍ଦ**—ସଂ. ବି. (୬ଷ୍ଠୀ ତତ୍; ନୟନ+ଆନନ୍ଦ)—ଚକ୍ଷୁର ପ୍ରୀତି—
Nayanānanda Pleasure to the eye
(ନୟନାନନ୍ଦା—ସ୍ତ୍ରୀ) ସଂ. ବିଣ. ପୁଂ. (ବହୁବ୍ରୀହି)—ନୟନ ତୃପ୍ତିକର; ସୁନ୍ଦର—Beautiful.

**ନୟନାନନ୍ଦକର**—ସଂ. ବିଣ ପୁଂ—ନୟନାନନ୍ଦ (ଦେଖ)
Nayanānandakara Nayanānanda (See)
(ନୟନାନନ୍ଦକରୀ—ସ୍ତ୍ରୀ)

**ନୟନାଭିରାମ**—ସଂ. ବିଣ. (ବହୁବ୍ରୀହି ନୟନ+ଅଭିରାମ)—
Nayanābhirāma ଚକ୍ଷୁର ପ୍ରୀତିକର; ନୟନ ତୃପ୍ତିକର—
(ନୟନାଭିରାମା—ସ୍ତ୍ରୀ) Pleasing to the eye; lovely to behold.
ସଂ. ବି—ଚନ୍ଦ୍ର—The moon (Apte).

**ନୟନାମୋଷୀ**—ସଂ. ବିଣ. ( ନୟନ+ଆ+ମୁଷ ଧାତୁ+କର୍ତ୍ତୃ. ଇନ୍; ୧ମା. ୧ବ.)—
Nayanāmoshī
୧ । ଯାହା ଆଖିରୁ ଦୃଷ୍ଟିଶକ୍ତିହୀନ କରିଦିଏ—
1. Blinding the sight; obscuring (Apte).

**ନୟନାଶ୍ରୁ**—ସଂ ବି. (୬ଷ୍ଠୀ ତତ୍; ନୟନ+ଅଶ୍ରୁ)—ଲୁହ; ଲୋତକ—
Nayanāśru Tears.

**ନୟନୀ**—ସଂ. ବି. ସ୍ତ୍ରୀ. (ନୟନ+ସ୍ତ୍ରୀ. ଈ)—ନୟନତାରା, ଆଖିର ପୁଅ—
Nayanī The pupil of the eye.
ସଂ. ବିଣ. ପୁଂ. (ନୟନ+ଇନ୍; ୧ମା. ୧ବ)—ଚକ୍ଷୁବିଶିଷ୍ଟ—
(ନୟନିନୀ—ସ୍ତ୍ରୀ) Having eyes.

**ନୟ ନେତା**—ସଂ. ବି. ପୁଂ. (ନୟ+ନେତୃନ୍; ୧ମା. ୧ବ)—
Naya neta ରାଜନୀତି ବିଷୟରେ ନେତୃସ୍ଥାନୀୟ ବା ଅତି ବିଚକ୍ଷଣ ବ୍ୟକ୍ତି—A master in politics (Apte).
(ନୟନେତ୍ରୀ—ସ୍ତ୍ରୀ)

**ନୟନୋତ୍ସବ**—ସଂ. ବି. (ବହୁବ୍ରୀହି; ନୟନ+ଉତ୍ସବ)—୧ । ପ୍ରଦୀପ—
Nayanotsaba 1. Lamp.
୨ । ନେତ୍ରତୃପ୍ତିକର କୌଣସି ବସ୍ତୁ—
2. Any lovely object.
୩ । ସୁନ୍ଦର ବା ପ୍ରିୟ ବସ୍ତୁ ଦେଖିବା ଯୋଗୁଁ ଉତ୍ପନ୍ନ ନୟନର ଆନନ୍ଦ—3 Delight of the eyes (Apte).
ସଂ. ବିଣ. (ବହୁବ୍ରୀହି)—ନେତ୍ରପ୍ରିୟ, ନୟନତୃପ୍ତିକର—
Pleasing to the eye.

**ନୟନୋପାନ୍ତ**—ସଂ. ବି. (୬ଷ୍ଠୀ ତତ୍; ନୟନ+ଉପାନ୍ତ)—
Nayanopānta ଅପାଙ୍ଗ, ଚକ୍ଷୁର କୋଣ; ନେତ୍ରପ୍ରାନ୍ତ—
The corner of the eye.

**ନୟନୌଷଧ**—ସଂ. ବି. (୬ଷ୍ଠୀ ତତ୍; ନୟନ+ଔଷଧ)—
Nayanaushadha ପୁଷ୍ପକାସୀସ, ହିରାକସ—
Copperas; yellow vitriol.

**ନୟ ପୀଠୀ**—ସଂ. ବି. (ନୟ+ପୀଠ+ଈ)—ସତରଞ୍ଜି ବା ପଶାଖେଳର ପାଲି—The board or cloth on which men are moved in play; chessboard; dice-board (Apte).
Naya pīṭhī

**ନୟ ପ୍ରୟୋଗ**—ସ. ବି. (୬ଷ୍ଠୀ ତତ୍, ନୟ=ନୀତି, ବିଧି+ପ୍ରୟୋଗ)—
Naya prayoga ରାଜନୀତିର ବ୍ୟବହାର; ରାଜନୀତିକ ଦୂରଦର୍ଶନ—
Practical politics; statesmanship; political wisdom (Apte).

**ନୟ ବର୍ତ୍ମ**—ସ. ବି. (୬ଷ୍ଠୀ ତତ୍, ନୟ=ନୀତି+ବର୍ତ୍ମ=ବାଟ)—
Naya barttma ରାଜନୀତିର ମାର୍ଗ—
(ନୟବର୍ତ୍ମ—ଅନ୍ୟରୂପ) A method or way of politics

**ନୟ ବାଦୀ**—ସ. ବିଣ. ଓ ବି. ପୁଂ (ନୟ+ବଦ୍ ଧାତୁ+କର୍ତ୍ତୃ. ଇନ୍, ୧ମା. ୧ବ)—ନୟଜ୍ଞ (ଦେଖ)
Naya bādi Nayajña (See)

**ନୟବିଦ୍**—ସ ବିଣ. ପୁଂ. (ନୟ+ବିଦ୍ ଧାତୁ=ଜାଣିବା+କର୍ତ୍ତୃ. କ୍ୱିପ୍)—ନୟଜ୍ଞ (ଦେଖ)
Nayabid Nayajña (See)

**ନୟବିଶାରଦ**—ସ. ବିଣ. ପୁଂ. (୭ମୀ ତତ୍; ନୟ+ବିଶାରଦ)—
Nayabiśārada ନୟଜ୍ଞ (ଦେଖ)
(ନୟବିଶାରଦା—ସ୍ତ୍ରୀ) Nayajña (See)

**ନୟଶାଳୀ**—ସ ବିଣ. ପୁଂ. (ନୟ+ଶାଳିନ୍; ୧ମା. ୧ବ)—ନ୍ୟାୟପର—
Nayaśāli Just; righteous (Apte).
(ନୟଶାଳିନୀ—ସ୍ତ୍ରୀ)

**ନୟଶାସ୍ତ୍ର**—ସ. ବି (୬ଷ୍ଠୀ ତତ୍ ବା ମ. ପ. ଲୋ, କ. ଧା)—
Nayaśāstra ୧ । ନୀତିଶାସ୍ତ୍ର—1. Ethics; moral science.
୨ । ରାଜନୀତି ଶାସ୍ତ୍ର—2. The science of civil government; politics.
୩ । ରାଜନୀତି ସମ୍ବନ୍ଧୀୟ ଗ୍ରନ୍ଥ—3. Any work on politics or political economy (Apte).

**ନୟଶୀଳ**—ସ ବିଣ. ପୁଂ (ବହୁବ୍ରୀହି; ନୟ+ଶୀଳ)—
Nayaśīla ୧ । ନୀତିଜ୍ଞ (ହି. ଶବ୍ଦସାଗର)—
(ନୟଶୀଳା—ସ୍ତ୍ରୀ) 1. Versed in politics
(ନୟଶୀଳତା—ବି) ୨ । ବିନୀତ (ହି. ଶ.)—2 Humble.

**ନୟସ୍**—ଦେ. ବି—ଲୟସ (ଦେଖ)
Nayas Layas (See)

**ନୟା**—ବୈଦେ. ବିଣ. (ସ. ନବ; ଯାବନିକ ଶବ୍ଦ)—୧ । ନୂତନ—
Nayā 1 New
ନୟା ୨ । ନୂତନ ପ୍ରତିଷ୍ଠିତ—2. Newly started.
**ନୟା** (ଯଥା—ନୟାସଡ଼କ; ନୟାବଜାର ।)

**ନୟାଗଡ଼**—ଦେ. ବି—ନୂଆଗଡ଼ (ଦେଖ)
Nayāgarda Nūāgarda (See)

**ନୟାନ୍ତ**—ଦେ. ବିଣ—ଅତିଶୟ କ୍ଲାନ୍ତ—
Nayānta Very tired.
**ଥକାହୁଆ**

**ନୟାବାଦ୍(ଦୀ)**—ଦେ. ବି. (ସ. ନବ+ଫା. ଅବାଦ୍)—
Nayābād(dī) ନୂଆ ଚାଷ ହୋଇଥିବା ଜମି—
[ନୟା ଅବାଦ(ଦୀ)—ଅନ୍ୟରୂପ] Newly reclaimed land.
ନୟାଆବାଦୀ ଦେ. ବି—ନୂଆ ଅବାଦ ହୋଇଥିବା (ଜମି)—
**ନୟାଆବାଦୀ** Newly reclaimed; recently brought under cultivation

**ନୟାମ୍**—ବୈଦେ. ବି. (ଫା)—ତରବାରର ଖୋଳ—
Nayām Scabbard; sheath
**ନୟାମ ନୟାମ**

**ନର**—ସ. ବି ପୁଂ. (ନୀ ଧାତୁ=ନେବା; ପାଇବା+କର୍ତ୍ତୃ. ଅ, ଯେ ଅଭୀଷ୍ଟଫଳ ପ୍ରାପ୍ତ ହୁଏ)—୧ । ମାନବ, ମନୁଷ୍ୟ—
Nara 
(ନାରୀ—ସ୍ତ୍ରୀ) 1 Man, human being
୨ । ବିଷ୍ଣୁ—2. Bishnu.
୩ । ଅର୍ଜୁନ—3. Arjuna.
୪ । ସୀମାନିର୍ଦ୍ଦେଶକ ଖୁଣ୍ଟ—4 A boundary pillar
୫ । ପରମାତ୍ମା—5. The Supreme Spirit
୬ । ସତରଞ୍ଚି ଖେଳର ଗୋଟି—
6. A man or piece at chess (Apte).
୭ । ସୂର୍ଯ୍ୟଘଡ଼ିର ଛାୟାନିର୍ଦ୍ଦେଶକ ଶଙ୍କୁ—
7. The pin of a sundial; gnomon (Apte).
୮ । ମନୁଷ୍ୟର ଉଚ୍ଚତା; ପୁରୁଷ (ଯଥା—ପୁରୁଷେ ପାଣି)—
8. A man's height.
୯ । ଧର୍ମଋଷି ଓ ଦକ୍ଷପ୍ରଜାପତିଙ୍କର ଏକ କନ୍ୟାଙ୍କଠାରୁ ଜାତ ପୌରାଣିକ ଋଷିବିଶେଷ—9. Name of a primitive sage.
[ଦ୍ର—ଏ ବିଷ୍ଣୁଙ୍କର ଅଂଶାବତାର ଥିଲେ ଓ ନାରାୟଣ ନାମରେ ଏହାଙ୍କର ଏକ ଭାଇ ଥିଲେ । ହି. ଶବ୍ଦସାଗର । ]
୧୦ । ଘୋଡ଼ା—10. A horse (Apte).
୧୧ । (ବ୍ୟାକରଣ) ବ୍ୟକ୍ତିବାଚକ ଅନ୍ତ୍ୟପଦ—
11 (grammar) A personal termination.
୧୨ । ରୋହିଷ (ହି. ଶ.) (ଦେଖ)—
12. Rohisha (See)
୧୩ । ସେବକ (ହି. ଶ.)—
13. Servant; boy servant; men servant
ଦେ. ବି.—୧ । ଅଣ୍ଡିରା ଜୀବ—1. Male animal.
୨ । (ସ. ଲଡ଼ୀ) ପଙ୍କ୍ତି; ସୂତା; ସରୁ—
2. String (of beads or necklace).
(ମାଈ—ସ୍ତ୍ରୀ) ଦେ ବିଣ.—ଅଣ୍ଡିରା; ମର୍ଦ୍ଦ; (ଜୀବ)—
ନବ **ନର** A male (animal).

**ନରକ**—ସ. ବି.—୧ । (ନୃ ଧାତୁ+ଅକ; ଯେଉଁ ସ୍ଥାନକୁ ପାପୀମାନେ ନିଆ ଯାଆନ୍ତି)—ପରଲୋକରେ ପାପୀର ଦଣ୍ଡ ପ୍ରାପ୍ତିର ସ୍ଥାନ—1. Hell; infernal regions.
Naraka
[ଦ୍ର—ନରକ ୨୯ ଗୋଟି ଯଥା—ତାମିସ୍ର,ଅନ୍ଧତାମିସ୍ର, ରୌରବ, ମହାରୌରବ, କୁମ୍ଭୀପାକ, କାଳସୂତ୍ର, ଅସିପତ୍ରବନ, ଶୂକରମୁଖ, ଅନ୍ଧକୂପ, କୃମିଭୋଜନ, ସନ୍ଦଂଶ, ତପ୍ତସୂର୍ମି, ବଜ୍ରକଣ୍ଟକ, ଶାଲ୍ମଳୀ, ବୈତରଣୀ, ପୂୟୋଦ, ପ୍ରାଣରୋଧ, ବିଶସନ, ଲାଳାଭକ୍ଷ, ସାରମେୟାଦନ, ଅବୀଚି, ଅୟଃପାନ, କ୍ଷାରକର୍ଦ୍ଦମ, ରକ୍ଷୋଗଣଭୋଜନ, ଶୂଳପ୍ରୋତ, ଦନ୍ଦଶୂକ, ଅବଟନିରୋଧନ, ପର୍ଯ୍ୟାବର୍ତ୍ତନ, ସୂଚୀମୁଖ ।

ଭାଗବତ ୫ମ ସ୍କନ୍ଧ ୨୬ ଅଧ୍ୟାୟର ଶୁକପରୀକ୍ଷିତ ସମ୍ବାଦରେ ଉକ୍ତ ୨୮ ନରକ ଓ କେଉଁ ପ୍ରକାର ପାପୀ କେଉଁ ନରକରେ ପଡ଼ି କି ଯନ୍ତ୍ରଣା ଭୋଗ କରେ ତାହା ବର୍ଣ୍ଣିତ ହୋଇଅଛି । ମନୁସ୍ମୃତିରେ ୨୧ ନରକର ଉଲ୍ଲେଖ ଅଛି ଓ ଅନ୍ୟାନ୍ୟ ପୁରାଣମାନଙ୍କରେ ମଧ୍ୟ ଭିନ୍ନ ଭିନ୍ନ ନରକ କୁଣ୍ଡ (ବସାକୁଣ୍ଡ, ତପ୍ତକୁଣ୍ଡ, ସର୍ପକୁଣ୍ଡ, ଚକ୍ରକୁଣ୍ଡ, ମାନଙ୍କରେ ଉଲ୍ଲେଖ ଅଛି । ପୁରାଣ ଓ ସ୍ମୃତିରେ ନରକର ବର୍ଣ୍ଣନା ମିଳେ, କିନ୍ତୁ ହିନ୍ଦୁମାନଙ୍କର ପୁରାଣ ଅପେକ୍ଷା ପ୍ରାଚୀନ ଗ୍ରନ୍ଥମାନଙ୍କରେ ନରକର ଉଲ୍ଲେଖ ନାହିଁ । ଭିନ୍ନ ଭିନ୍ନ ପ୍ରକାର ପାପ କରିଥିବା ବ୍ୟକ୍ତିଙ୍କ ଆତ୍ମା ମୃତ୍ୟୁ ପରେ ଭିନ୍ନ ଭିନ୍ନ ପ୍ରକାର ନରକରେ ବହୁକାଳ ଯନ୍ତ୍ରଣା ଭୋଗ କରେ । ମୁସଲମାନ୍ ଓ ଖ୍ରୀଷ୍ଟିୟାନଙ୍କ ଧର୍ମଶାସ୍ତ୍ର ଅନୁସାରେ ନରକର କଳ୍ପନା ଅଛି, କିନ୍ତୁ ଏତେ ନରକର ଉଲ୍ଲେଖ ନାହିଁ । ସେମାନଙ୍କ ମତରେ ନରକରେ ସର୍ବଦା ଗନ୍ଧକର ନିଆଁ ଜଳୁଛି । ହି ଶ. । ]

୨ । ଯାତନା, ଦୁର୍ଗତି, ଯନ୍ତ୍ରଣା —
2. Misery; torment

୩ । ଦୁଃଖଭୋଗର ସ୍ଥାନ—3. A place of misery.

୪ । (ନର + କ) —ନରକାସୁର; ଅସୁରବିଶେଷ -
4. Name of a demon

୫ । ହିନ୍ଦୁ ପୁରାଣ ମତରେ କଳିର ପୁତ୍ର ଭୟ ଓ ପୁତ୍ରୀ ମୃତ୍ୟୁଙ୍କଠାରୁ ଜାତ କାଳ୍ପନିକ ପୁରୁଷ, ଯେ ଆପଣା ଭଗିନୀ ଯାତନାକୁ ବିବାହ କରିଥିଲେ (ହି. ଶବ୍ଦସାଗର)—
5. Name of a mythological personification of hell said to be the son of Fear and Death and grandson of Kali (Ironage) and husband of Torment.

୬ । (ନାମ) ବିପ୍ରଚିତ୍ତି ଦାନବର ଏକପୁତ୍ର (ହି. ଶ.)
6. Name of a son of demon Biprachitti.

ଦେ ବି —୧ । ବିଷ୍ଠା; ମଇଳା—
1. Ordure; filth; dirt.

କରଇ ନରକ ଆହାର; ତଥାପି ଦୁଃଖ ନୁହେ ଦୂର । ଭାଗବତ ।

୨ । ବିଷ୍ଠାମୟ ସ୍ଥାନ—
2 A place full of ordure.

୩ । ଅତି ମଇଳା ସ୍ଥାନ—3. Filthy place

**ନରକ କୁଣ୍ଡ**—ସଂ. ବି —୧ । ନରକସ୍ଥ ବିଷ୍ଠା କୁଣ୍ଡ—1 An abyss
Naraka kunḍa in hell for tormenting sinners; the ordure-pit in hell.

[ ଦ୍ର—କୌଣସି କୌଣସି ପୁରାଣରେ ବିଭିନ୍ନ ଶ୍ରେଣୀର ପାପୀଙ୍କ ପାଇଁ ଭିନ୍ନ ଭିନ୍ନ ପ୍ରକାର ୮୬ଟି ନରକ କୁଣ୍ଡ ନିର୍ଦ୍ଦିଷ୍ଟ ଥିବାର ଉଲ୍ଲେଖ ଅଛି, ଯଥା—ବିଷ୍ଠାକୁଣ୍ଡ, ବସାକୁଣ୍ଡ, ତପ୍ତକୁଣ୍ଡ, ସର୍ପକୁଣ୍ଡ, ପୂଯକୁଣ୍ଡ, ରୁଧିରକୁଣ୍ଡ ଇତ୍ୟାଦି । ]

୨ । (ଲକ୍ଷଣାର୍ଥ) ଅପରିଷ୍କୃତ ଓ ଜଘନ୍ୟ ସ୍ଥାନ—
2. (figurative) A dirty and filthy place.

୩ । ବିଷ୍ଠାକୁଣ୍ଡ—3. A tub or pot filled with ordure

**ନରକ ଗତି**—ସଂ ବି. (୭ମୀ ତତ୍; ନରକ + ଗତି)—
Naraka gati ୧ । ପାପକାର୍ଯ୍ୟ କରିଥିବା ହେତୁ ମୃତ୍ୟୁ ପରେ ନରକଅଭିମୁଖେ ଯିବା - 1 Advancing in the path leading to the Hell after death (as a result of one's sins).

୨ । ପାପକର୍ମ ଯୋଗୁଁ ମୃତ୍ୟୁ ପରେ ନରକରେ ପଡ଼ିବା—
2. Falling in to the Hell after death for one's sins.

**ନରକଗାମୀ**—ସଂ. ବିଣ. ପୁଂ. (ନରକ+ଗମ୍ ଧାତୁ+କର୍ତ୍ତୃ. ଇନ୍; ୧ମା.
Narakagāmi ୧ବ)—ଯେ ପାପକାର୍ଯ୍ୟଦ୍ୱାରା ମୃତ୍ୟୁପରେ ନରକକୁ (ନରକଗାମିନୀ—ସ୍ତ୍ରୀ) ଯାଏ—Going to the Hell after death for one's sins.

**ନରକ ଚତୁର୍ଦ୍ଦଶୀ**—ସଂ. ବି—କାର୍ତ୍ତିକ କୃଷ୍ଣଚତୁର୍ଦ୍ଦଶୀ; ଭୂତଚତୁର୍ଦ୍ଦଶୀ—
Naraka chaturddaśi The 14th day of the dark fortnight of Kārttika.

[ ଦ୍ର—ଏ ଦିନ ୧୪ ପ୍ରକାର ଶାଗ ଖାଇବାକୁ ହୁଏ ଏବଂ ଅପାମାର୍ଗ ଡାଳ ଖଣ୍ଡେ ମୁଣ୍ଡ ଚାରିପାଖରେ ବୁଲାଇବାକୁ ହୁଏ । ]

**ନରକଜିତ୍**—ସଂ. ବି ପୁଂ. (ନରକ=ନରକାସୁର+ଜି ଧାତୁ=ଜୟ
Narakajit କରିବା + କର୍ତ୍ତୃ. କ୍ୱିପ୍ )—ବିଷ୍ଣୁ—Bishṇu.

**ନରକ ଦେବତା**—ସଂ. ବି. (ନରକ + ଦେବତା; ୬ଷ୍ଠୀ ତତ୍)—
Naraka debatā ନରକର ଅଧିଷ୍ଠାତ୍ରୀ ଦେବୀ, ଅଲକ୍ଷ୍ମୀ—
Goddess of the Hell.

**ନର କପାଳ**—ସଂ. ବି. (୬ଷ୍ଠୀ ତତ୍; ନର + କପାଳ)—
Nara kapāla ମଲା ମନୁଷ୍ୟର ଖପୁରି—
The skull of a dead man.

**ନରକ ବାସ**—ସଂ. ବି. (୭ମୀ ତତ୍; ନରକ + ବାସ)—
Naraka bāsa ପାପର ଦଣ୍ଡସ୍ୱରୂପ ନରକରେ ଅବସ୍ଥିତି —
Abiding or staying in Hell (of a sinner).

**ନରକ ଯନ୍ତ୍ରଣା**—ସଂ. ବି. (୬ଷ୍ଠୀ ତତ୍; କର୍ମଧା; ନରକ+ଯନ୍ତ୍ରଣା)—
Naraka jantraṇā ନରକରେ ଦଣ୍ଡିତ ପାପୀର ଅନୁଭୂତ ଦୁଃଖ-
(ନରକଯାତନା—ଅନ୍ୟରୂପ) The torments of the Hell.

**ନରକାଗତି**—ଗ୍ରା ବି—ନରକଗତି ( ଦେଖ )
Narakāgati Narakagati (See)

**ନରକାନ୍ତକ**—ସଂ. ବି. (୬ଷ୍ଠୀ ତତ୍; ନରକ + ଅନ୍ତକ)—
Narakāntaka ୧ । ଯେ ମନୁଷ୍ୟର ପାପକୁ କ୍ଷମା କରି ତାହାକୁ ନରକରୁ ଉଦ୍ଧାର କରନ୍ତି—1. Saviour of the sinners.

୨ । ନରକାସୁରର ବିନାଶକାରୀ; ବିଷ୍ଣୁ—2 Bishṇu.

**ନରକାସୁର**—ସଂ. ବି—ବରାହ ଅବତାରରେ ବିଷ୍ଣୁଙ୍କ ଔରସରେ ପୃଥିବୀ-
Narakāsura ଗର୍ଭଜାତ ଅସୁରବିଶେଷ—Name of a demon born of Bishṇu in the Barāha incarnation and the earth.

[ ଦ୍ର—ବରାହ ଅବତାରରେ ବିଷ୍ଣୁ ପୃଥିବୀ ସଙ୍ଗେ ସହବାସ କରିବାରୁ ପୃଥିବୀ ଗର୍ଭବତୀ ହେଲେ । ତାଙ୍କ ଗର୍ଭରେ ଏକ ଲିଙ୍ଗ ଓ ବଳୀ

ଅସୁର ଥିବାର ଜାଣିପାରି ଦେବତାମାନେ ପୃଥିବୀଙ୍କ ପ୍ରସବକୁ ରୋକିଦେଲେ । ପୃଥିବୀ ବିଷ୍ଣୁଙ୍କୁ ପ୍ରାର୍ଥନା କରିବାରୁ ତ୍ରେତାଯୁଗରେ ରାବଣବଧ ପରେ ପୃଥିବୀ ପ୍ରସବ କରିବେ ବୋଲି ବିଷ୍ଣୁ ବର ଦେଲେ । ତଦନୁସାରେ ରାବଣବଧ ପରେ ପୃଥିବୀର ଯେଉଁ ସ୍ଥାନରୁ ସୀତାଙ୍କର ଜନ୍ମ ହୋଇଥିଲା ସେହି ସ୍ଥାନରୁ ନରକାସୁର ଜନ୍ମ ହେଲା । ରାଜା ଜନକ ଏହାକୁ ୧୬ ବର୍ଷ ପର୍ଯ୍ୟନ୍ତ ପାଳଲେ । ୧୬ ବର୍ଷ ବୟସରେ ଆପଣା ମାତା ପୃଥିବୀଙ୍କଠାରୁ ଏ ଆପଣା ଜନ୍ମବୃତ୍ତାନ୍ତ ଅବଗତ ହୋଇ ବିଷ୍ଣୁଙ୍କୁ ସ୍ମରଣ କରିବାରୁ ବିଷ୍ଣୁ ଏହାକୁ ପ୍ରାଗ୍‌ଜ୍ୟୋତିଷ ପୁରର ରାଜା କରାଇଲେ । ଏ ବିଦର୍ଭ ରାଜକୁମାରୀ ମାୟାଙ୍କୁ ବିବାହ କଲା । ବ୍ରାହ୍ମଣ ଓ ଦେବତାଙ୍କ ସଙ୍ଗେ ବିରୋଧ ନ କରିବା ପାଇଁ ବିଷ୍ଣୁ ଏହାକୁ ଚେତାଇ ଥିଲେ । ବାଣାସୁର ଥରେ ପ୍ରାଗ୍‌ଜ୍ୟୋତିଷ-ପୁରକୁ ବୁଲିବାକୁ ଆସିଥିଲା । ସେହି ସମୟରେ ବାଣାସୁରର ସଂସର୍ଗରେ ଏ ଦୁଷ୍ଟ ହେଲା ଓ ଦେବତାମାନଙ୍କୁ କଷ୍ଟ ଦେଲା । ଦେବତାମାନେ କ୍ରୁଦ୍ଧ ହୋଇ ଏହାକୁ ଶାପ ଦେଲେ । ଏ କଠୋର ତପସ୍ୟା ସାଧନ କରି ବହୁବାର ଇନ୍ଦ୍ରଙ୍କୁ ଜିତିଲା । ଶେଷରେ ଶ୍ରୀକୃଷ୍ଣ ପ୍ରାଗ୍‌ଜ୍ୟୋତିଷପୁରକୁ ଆକ୍ରମଣ କରି ସୁଦର୍ଶନ ଚକ୍ରରେ ଏହାକୁ ବଧ କଲେ—ହି. ଶବ୍ଦସାଗର । ]

**ନରକୀ**—ସଂ. ବିଣ. ପୁଂ. (ନରକ+ଅସ୍ତି ଅର୍ଥରେ ଇନ୍; ୧ମା ୧ବ)—
Narakī ୧ । ମହାପାପୀ; ନାରକୀ—1. Sinful; hellish; fiendish; infernal
(ନରକିନୀ—ସ୍ତ୍ରୀ)
୨ । କ୍ଲେଶସଙ୍କୁଳ—3. Full of torment.

**ନର କୀଲକ**—ସଂ. ବି. (ନର+କୀଲ=ଶଙ୍କୁ+କ)—
Nara kīlaka ଗୁରୁଘ୍ନ; ଗୁରୁହତ୍ୟାକାରୀ ବ୍ୟକ୍ତି—The murderer of one's spiritual preceptor (Apte).

**ନରକୁନ୍ଦନ ବିଦ୍ୟା**—ଦେ ବି—ବ୍ୟାୟାମ; ଅଙ୍ଗଚାଳନା—
Narakundana bidyā Gymnastics; bodily exercises

**ନରକୁଳ ଦେବ**—ସଂ. ବି. (୬ଷ୍ଠୀ ତତ୍; ନରକୁଳ=ମନୁଷ୍ୟଗଣ+
Narakuḷa deba ଦେବ)—ରାଜା—King.
ତାହା କର ବେଗେହେ ନରକୁଳ ଦେବ । କୃଷ୍ଣସିଂହ. ମହାଭାରତ ବନ ।

**ନର କେଶରୀ**—ସଂ. ବି. ( ନର+କେଶରୀ=ଶ୍ରେଷ୍ଠ, ୭ମୀ ତତ୍; ବା
Nara kesarī ଉପମିତ କର୍ମଧାରୟ, କେଶରୀ ପରି ନର)—
(ନରକେସରୀ—ଅନ୍ୟରୂପ) ୧ । ନରଶ୍ରେଷ୍ଠ; ନରପୁଙ୍ଗବ—
1. The chief among men; a great man.
୨ । ମୁଣ୍ଡରୁ କଣ୍ଠ ଦେଶ ପର୍ଯ୍ୟନ୍ତ ସିଂହାକୃତି ଓ ଅବଶିଷ୍ଟ ଅର୍ଦ୍ଧାଙ୍ଗ ନରାକୃତି ବିଷ୍ଣୁଙ୍କର ଅବତାରବିଶେଷ; ନୃସିଂହ ଅବତାର—2. An incarnation of Bishṇu (half man and half lion).
[ଦ୍ର—ବିଷ୍ଣୁ ୪ର୍ଥ ଅବତାରରେ ଏହିରୂପ ଧରି ହିରଣ୍ୟକଶିପୁକୁ ନଖରେ ଚିରି ବଧ କରିଥିଲେ ।]
ଦେ. ବି. ପୁଂ—ଲୋକଙ୍କୁ ଡାକିବା ନାମ—
A name given to males.

**ନରକୋଳି**—ଦେ. ବି. (ସଂ. ଲବଲୀ)—ନଅରକୋଳ; ଅଁଳା କୋଳ
Nara kolī ଜାତୀୟ ଏକ ପ୍ରକାର କୋଳ ଗଛ ଓ ତାର କୋଳ—

ସଂ. ପର୍ଯ୍ୟାୟ—ସୁଗନ୍ଧ ମୂଳା, ଲବଲୀ, ପାଣ୍ଡୁ, କୋମଳ-ବଲ୍କଲା, ଦଳପଙ୍କରୀ
ମ. କାଥ ଆମ୍ବଳା, ରାୟଆମଳୀ
ଗୁ ଖାଟ୍ଟ ଆମଳୀ
A kind of tree bearing acid berries; Otaheite Goose berry; cicca destitcha; Phyllan thus Distichus; Phyllanthus Longifolius.
ନୋଡ, ନୋୟାଡି
हरफा रेवड़ी, चालमेरि हरफा
ନଅର କୋଳ } ଅନ୍ୟରୂପ
ନଡର କୋଳ }
[ଦ୍ର—ଏହାର କୋଳ ଖଟା ଓ କଷା । ଏହାର ପତ୍ର କୋମଳ । ତେଣୁ ଲୋକେ ଏହି ପତ୍ରରେ ଶଯ୍ୟା ରଚନା କରି ତହିଁରେ ବସନ୍ତ-ରୋଗୀଙ୍କ ଶୁଆନ୍ତି । ଏହା ଅଶ୍ମରୀ, ଅର୍ଶ, କଫ, ଅତିସାର, ବ୍ରଣ, ଲୂତ-ଦଂଶ ଓ ପିତ୍ତନାଶକ । ଶୁଭ କର୍ମ ଓ ଉତ୍ସବ ଉପଲକ୍ଷେ ଏହାର ଡାଳକୁ ଦଉଡ଼ିରେ ବାନ୍ଧି ଲୋକେ ପିଣ୍ଡା ଆଦିରେ ତୋରଣାକାରରେ ଝୁଲାନ୍ତି ।]

**ନର ଗଣ**—ସଂ. ବି—ଫଳିତ ଜ୍ୟୋତିଷରେ ଉତ୍ତରଫାଲ୍‌ଗୁନୀ, ଉତ୍ତରାଷାଢା,
Nara gaṇa ପୂର୍ବଭାଦ୍ରପଦ, ରୋହିଣୀ, ଭରଣୀ ଓ ଆର୍ଦ୍ରା ନକ୍ଷତ୍ରର ଗଣବିଶେଷ—(astrology.) A group of asterisms
[ଦ୍ର—ଏଥିରେ ଜାତ ହେବା ବ୍ୟକ୍ତି ସୁଶୀଳ ଓ ବୁଦ୍ଧିମାନ୍ ହୁଏ । ଏହାକୁ ମନୁଷ୍ୟଗଣ ମଧ୍ୟ ବୋଲାଯାଏ । ରାକ୍ଷସଗଣ ସଙ୍ଗେ ନରଗଣର ବିରୋଧ ଓ ଦେବଗଣ ସଙ୍ଗେ ମିତ୍ରତା ହୁଏ । ]

**ନରଗିସ୍**—ବିଦେ. ବି (ଫା)—ଏକପ୍ରକାର ଧଳା ସୁଗନ୍ଧ ଫୁଲ—
Naragis Narcissus.
नरगीस [ ଦ୍ର—ଏଥିର ଗଛ ଓ ପତ୍ର ପିଆଜଗଛ ଓ ପତ୍ରପରି । ଏଥିର ମୂଳରେ ପିଆଜପରି ପିଣ୍ଡ ଥାଏ । ଏଥିରେ କଟୋରିପରି ଧଳା ସୁଗନ୍ଧ ଫୁଲ ଧରେ ଓ ସେଥିରେ କଳା ଛୋପାମାନ ଥାଏ । ପାରସୀକ କବିମାନେ ଏ ଫୁଲ ସଙ୍ଗେ ସ୍ତ୍ରୀମାନଙ୍କର ସୁନ୍ଦର ଆଖିକୁ ତୁଳନା କରନ୍ତି—ହି. ଶବ୍ଦସାଗର । ]

**ନରଘଣ୍ଟା**—ପ୍ରାଦେ. (ଗଡ଼ଜାତ) ବି.—ଦେବୀବିଶେଷ—
Naraghaṇṭā Name of a Goddess.

**ନରଘଣ୍ଟା ବେଣ୍ଟ**—ପ୍ରାଦେ. (ଗଡ଼ଜାତ) ବି.—ନରଘଣ୍ଟା ନାମକ
Naraghaṇṭā beṇṭa ଦେବତାଙ୍କୁ ପୂଜା କରି ଶିକାରୀ ଯେଉଁ ଶିକାର କରିବା । ଅନୁକୂଳ କରେ—A chase in which a person starts after worshipping a Deity named Naraghaṇṭā.
[ ଦ୍ର—ଏହିପରି ଦେବତାଙ୍କ ନାମାନୁସାରେ କାଳୀବେଣ୍ଟ, ମଙ୍ଗଳାବେଣ୍ଟ ଇତ୍ୟାଦି ହୁଏ ।]

**ନରଘାତକ**—ସଂ. ବିଣ. ପୁଂ ( ନର+ହନ୍ ଧାତୁ+କର୍ତ୍ତୃ. ଅକ )—
Naraghātaka ମନୁଷ୍ୟ ହତ୍ୟାକାରୀ—Murdering men.
(ନରଘାତୁକ, ନରଘାତୀ—ଅନ୍ୟରୂପ) ସଂ ବି. ପୁଂ—ମନୁଷ୍ୟ ହତ୍ୟାକାରୀ ବ୍ୟକ୍ତି—Murderer; assassin.
ନରଘାତିକା }
ନରଘାତୁକା } ସ୍ତ୍ରୀ
ନରଘାତିନୀ }

ନରଙ୍ଗ—ସଂ ବି ( ନୃ ଧାତୁ+ସଙ୍କୋଚାର୍ଥ+ଅଙ୍ଗ )—୧ । ବରୁଣ; କାଠ-ବରୁଣ—1. Pimples.
Naranga
୨ । ପୁରୁଷର ଜନନେନ୍ଦ୍ରିୟ; ମେହନ—
2. Penis; male organ.
୩ । ନାରଙ୍ଗ ଗଛ (ହି. ଶ) (ଦେଖ)
3. Nāranga (tree) (See).

ନରଜା—ବୈଦେ. ବି (ବର୍ଣ୍ଣିଆ ଶବ୍ଦ, ଫା. ଲରଜା; କମ୍ପ; ନୋଲକମାନ ସର୍ବଦା ହଲୁଥିବାରୁ)—କୌଣସି ଅଳଙ୍କାର ତଳେ ସୁନା ବା ମୁକ୍ତାର ଦାନାକୁ ଗୁନ୍ଥି ଝୁଲାଇବା ଉଦ୍ଦେଶ୍ୟରେ ବ୍ୟବହୃତ ସୁନା ବା ରୁପାର ତାର—
Narajā
लरजा
लवजा
Gold or silver wire used for stringing a gem when it is used as a pendant

ନରଡଡଙ୍କ—ଦେ. ବି—ଅମ୍ଳରସବିଶିଷ୍ଟ ଲତାବିଶେଷ—
Narardadanka A creeper with sour taste.
[ ଦ୍ର—ଏହାର ପତ୍ରକୁ ଶାଗ କରି ଖାଆନ୍ତି । ]

ନରତନ—ଦେ. (ଦେଶ୍ୟ) ବି. (ସଂ. ନର୍ତ୍ତନ)—ନର୍ତ୍ତନ (ଦେଖ)
Naratana Nartana (See)
नरतन ବୋଇଲେ ଦେଖିଲ ଜନ ନୟନ
ହେବ ଡ ନରତନ-ନାକେତନ—ଭଞ୍ଜ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।

ନରତମ—ଗ୍ରା. ବି ( ସଂ. ନରୋତ୍ତମ ) (ଆଦରାର୍ଥକ)—ନରୋତ୍ତମର ଡାକନାମ—A name for calling Narottama.
Naratama
(ନରତମା—ଅନାଦରାର୍ଥକରୂପ)

ନରଦମା—ଦେ. ବି—ନର୍ଦ୍ଦମା (ଦେଖ)
Naradamā Nardamā (See)

ନର ଦେବ—ସଂ. ବି (୭ମୀ ତତ୍; ନର+ଦେବ)—୧ । ବ୍ରାହ୍ମଣ—
Nara deba 1. A Brāhmaṇa
୨ । ରାଜା—2. King.
୩ । ଦେବପ୍ରକୃତିକ ମନୁଷ୍ୟ—
3 A man of divine nature.

ନରଦ୍ୱିଟ୍—ସଂ. ବି ( ନର+ଦ୍ୱିଷ୍ ଧାତୁ=ହିଂସା କରିବା+କର୍ତ୍ତୃ. କ୍ୱିପ୍ ନରଦ୍ୱିଷ୍ ଶବ୍ଦ, ୧ମା. ୧ବ )—ରାକ୍ଷସ; ଅସୁର—Demon
Naradwit

ନରଧି—ସ. ବି. ( ନର+ଧା ଧାତୁ=ଧାରଣ କରିବା+କର୍ତ୍ତୃ. ଇ )—
Naradhi ପୃଥିବୀ—The world (Apte).

ନର ନାରାୟଣ—ସଂ. ବି—୧ । ବଦରିକାଶ୍ରମବାସୀ ନରରୂପଧାରୀ ୨ ଜଣ ଋଷିଭ୍ରାତା ( ବିଷ୍ଣୁଙ୍କ ଅବତାର ) ( ନର ୯ ଦେଖ )—1. An incarnation of Bishṇu in the shape of 2 sages.
Nara nārāyaṇa
୨ । ଅର୍ଜ୍ଜୁନ ଓ ଶ୍ରୀକୃଷ୍ଣ—
2. Arjuna and Śrikrushṇa.

ନରନାରୀ—ସଂ. ବି. ( ନର+ନାରୀ )—୧ । (ଦ୍ୱନ୍ଦ୍ୱ) ପୁରୁଷ ଓ ସ୍ତ୍ରୀ—
Nara nāri 1. Man and woman.
୨ । ( ୬ଷ୍ଠୀ ତତ୍ ) (ଅର୍ଜ୍ଜୁନଙ୍କ ସ୍ତ୍ରୀ) ଦ୍ରୌପଦୀ (ହି ଶ.)—
2. A name of Draupadi

ନରନାହା—ଦେ. ବି ( ସଂ. ନରନାଥ )—ନରନାଥ; ନୃପତି—
Naranāhā King.
नबनाहा नरनाह

ନର ପତି—ସଂ. ବି. ( ୬ଷ୍ଠୀ ତତ୍; ନର+ପତି )—ରାଜା; ନୃପତି—
Nara pati A king; ruler or lord of men.
( ନରନାଥ, ନରନାୟକ—ଅନ୍ୟରୂପ )

ନରପଦ—ସଂ. ବି. ( ୬ଷ୍ଠୀ ତତ୍; ନର+ପଦ; ତୁଳ. ଜନପଦ )—
Narapada ୧ । ନଗର—1. Town.
୨ । ଦେଶ—2 Country.

ନର ପଶୁ—ସଂ. ବି. ( ୭ମୀ ତତ୍; ନର+ପଶୁ )—ପଶୁବୃତ୍ତିଅବଲମ୍ବୀ ବ୍ୟକ୍ତି—A beast in human form; a beastly man
Nara pasu

ନରପାଳ—ସଂ. ବି. ( ଉପପଦ ତତ୍ପୁରୁଷ; ନର+ପାଳ ଧାତୁ+କର୍ତ୍ତୃ. ଅ)—ନରପତି (ଦେଖ)—Narapati ( See )
Narapāla

ନରପାଳି—ସଂ. ବି—ଛୋଟ ଶଙ୍ଖ (ହି. ଶବ୍ଦସାଗର)—
Narapāli A small conch.

ନର ପିଶାଚ—ସଂ. ବି ( ୭ମୀ ତତ୍, ନର+ପିଶାଚ )—ପିଶାଚ ପରି କ୍ରୂର ମନୁଷ୍ୟ—A devilish person
Nara pisācha

ନର ପୁଙ୍ଗବ—ସଂ. ବି. ( ୭ମୀ ତତ୍; ନର+ପୁଙ୍ଗବ ) —ପୁରୁଷଶ୍ରେଷ୍ଠ—A great man; the chief among men.
Nara pungaba

ନର ପୁର—ସଂ ବି ( ୬ଷ୍ଠୀ ତତ୍; ନର+ପୁର )—ଭୂଲୋକ; ମନୁଷ୍ୟଲୋକ—The world.
Nara pura

ନର ବଳି—ସଂ. ବି—ଦେବତା ଆଦିଙ୍କ ଉଦ୍ଦେଶ୍ୟରେ ମନୁଷ୍ୟକୁ ବଳି ଦେବା—Offering of human victim as sacrifice; a human sacrifice.
Nara bali
ଦେ. ବି—ମେରିଆ ( ଦେଖ )—Meriā ( See )

ନର ବାହନ—ସଂ. ବି—୧ । ( ମ ପ. ଲୋ; କର୍ମଧା. ନର+ବାହନ)—ପାଲିଙ୍କି ଆଦି ମନୁଷ୍ୟ ବହିବା ଯାନ—
Nara bāhana
1 A vehicle drawn or carried by men ( palky; sedan chair etc ).
୨ । ( ବହୁବ୍ରୀହି ) କୁବେର—2 Kubera.

ନର ବାହ୍ୟ—ସଂ. ବିଣ ( ୩ୟା ତତ୍; ନର+ବାହ୍ୟ )—ମନୁଷ୍ୟ ବହନ କରିନେବା ( ଯାନ )—( conveyance ) Borne or carried by men.
Nara bāhya
[ ଦ୍ର—ବିମାନ, ଚତୁର୍ଦ୍ଦୋଳ, ପାଲିଙ୍କି, ଖଟୁଲି, ଡାଣ୍ଡୋଳା, ରିକ୍ସା ଓ ଠେଲାଗାଡ଼ି ଆଦି ଯାନକୁ ଲୋକେ ବୋହି ନିଅନ୍ତି । ]

ନର ବୀର—ସଂ. ବି. (୭ମୀ ତତ୍; ନର+ବୀର)—ସାହସୀ ବ୍ୟକ୍ତି; ବୀର—
Nara bira A brave man; a hero (Apte).

ନର ବ୍ୟାଘ୍ର—ସଂ. ବି—ନରପୁଙ୍ଗବ ( ଦେଖ )
Nara byāghra Narapungaba ( See )

ନରଭୁକ୍—ସଂ. ବି. ( ନର+ଭୁଜ୍ ଧାତୁ+କର୍ତ୍ତୃ କ୍ୱିପ୍; ନରଭୁଜ୍ ଶବ୍ଦ; ୧ମା ୧ବ. )—୧ । ନରମାଂସଭୋଜୀ—
Narabhuk 1. Cannibal.
ନରଭକ୍ଷକ } ଅନ୍ୟରୂପ
ନରଭକ୍ଷୀ }
୨ । ରାକ୍ଷସ; ପିଶାଚ—2 Goblin.

ନରଭୂ—ସଂ. ବି. ( ନର+ଭୂ ଧାତୁ+କର୍ତ୍ତୃ. କ୍ୱିପ୍; ଯେଉଁଠାରେ ନର- Narabhū ପଦବାଚ୍ୟ ବ୍ୟକ୍ତିମାନେ ବାସ କରନ୍ତି)—ଭାରତବର୍ଷ-- ( ନରଭୂମି—ଅନ୍ୟରୂପ ) India ( Apte )

ନରମ(ମା)—ବୈଦେ. ବିଣ (ଫା. ନରମ୍; ନର୍ମ୍ ତୁଳ. ସଂ ନମ୍ର)— Narama(mā) ୧ । କୋମଳ, କଅଁଳିଆ—1 Soft (ନର୍ମ—ଅନ୍ୟରୂପ) ୨ । ନମ୍ର; ମୃଦୁ; ଧୀର— नरम 2. Meek, gentle
**नरम** ୩ । ସୁକୁମାର—3. Tender.
୪ । ଯାହାକୁ ଚିପି ଦେଲେ ବସିଯାଏ ବା ଲଇଁଯାଏ—
4 Supple; pliant
୫ । ଅନୁଦ୍ଧତ; ଶାନ୍ତ—5. Mild
୬ । ଆର୍ଦ୍ର; ଓଦା—6 Wet.
୭ । ଦୟାର୍ଦ୍ର; କରୁଣାର୍ଦ୍ର—7. Melting with pity.
୮ । ଥଣ୍ଡା; ଶୀତଳ—8 Cold; cooled down.
୯ । ସହଜ—9 Easy
ବି.—ଦର ବା ମୂଲ୍ୟର ହ୍ରାସ—
Fall in price of a commodity.

ନରମ ଗରମ—ବୈଦେ. ବିଣ(ବିପରୀତାର୍ଥ ସହଚର ଫା. ନର୍ମ୍+ଗର୍ମ୍)- Narama garama ଥଣ୍ଡା ଓ ଉଷ୍ଣ—Hot and cold.
नरम गरम ଦେ. ବି—୧ । କଡ଼ା ଓ ଥଣ୍ଡା କଥା—1 Harsh
**नरम गरम** and tender words; rude and polite words.
୨ । କଡ଼ା ଓ ନମ୍ର କଥାର ମିଶ୍ରଣ—2. A mixture of rude and polite expressions.

ନର ମଣି—ସଂ. ବି (୭ମୀ ତତ୍; ନର+ମଣି)—୧ । ରାଜା— Nara maṇi 1. King.
୨ । ମନୁଷ୍ୟମାନଙ୍କ ମଧ୍ୟରେ ଶ୍ରେଷ୍ଠ ବ୍ୟକ୍ତି; ପୁରୁଷଶ୍ରେଷ୍ଠ—
2. A great man; the chief among men

ନରମ ପନ୍ଥୀ—ଦେ. ବି ( ଆଧୁନିକ ପ୍ରୟୋଗ )—ଯେଉଁ ବ୍ୟକ୍ତିମାନେ Narama panthī ରାଜନୈତିକ ସଂସ୍କାରମାନ ମୃଦୁ ଉପାୟରେ (ଚରମପନ୍ଥୀ—ବିପରୀତ) କରିବାକୁ ପ୍ରୟାସ କରନ୍ତି—
नरमपंथी Moderates in politics.
**नरमपंथी**

ନର ମାଦୀ—ଦେ. ବିଣ (ବିପରୀତାର୍ଥକ ସହଚର; ସଂ. ନର+ଫା.ମାଦୀ)— Nara mādī ଅଣ୍ଡିରା ଓ ମାଈ (ଜୀବ)—Male and female
नरमादी (animals).
**नरमादी** ଦେ. ବି (ଜୀବଙ୍କର) ଯୋଡ଼ା; ଦମ୍ପତି · A couple; a pair(of animals).

ନରମାନିକା—ସଂ. ବି. ସ୍ତ୍ରୀ (ନର+ମାନ+କ+ଆ)—ନରଚିହ୍ନଧାରିଣୀ Narāmanikā ସ୍ତ୍ରୀ; ଯେଉଁ ସ୍ତ୍ରୀଠାରେ ଶ୍ମଶ୍ରୁ ଆଦି ପୁରୁଷ ଚିହ୍ନ
ନରମାନିନୀ } ଅନ୍ୟରୂପ— ଲକ୍ଷିତ ହୁଏ—A man-like
ନରମାଳିନୀ } woman; an amazon; a masculine woman; a woman with a beard (Apte).

ନର ମାର୍ଗ—ସଂ. ବି (୬ଷ୍ଠୀ ତତ୍; ନର+ମାର୍ଗ)—ରାଜପଥ— Nara mārga A high way; a main road (Apte)

ନର ମାଳା—ସଂ. ବି (୬ଷ୍ଠୀ ତତ୍; ନର+ମାଳା)—ନରମୁଣ୍ଡମାଳା— Nara mālā A girdle of skulls (Apte).

ନରରାଟ୍—ସଂ. ବି (ନର+ରାଜନ୍; ନରରାଜ୍ ଶବ୍ଦ ୧ମା. ୧ବ)— Nararāṭ ୧ । ନରଶ୍ରେଷ୍ଠ—1 The chief amongst men
୨ । ନରପତି, ରାଜା—2 King

ନର ମେଧ—ସଂ. ବି ( ନର+ମେଧ=ଯଜ୍ଞ)—ଯଜ୍ଞ ବିଶେଷ; ଯହିଁରେ Nara medha ନରକୁ ହତ୍ୟା କରି ଆହୁତି ଦିଆଯାଏ— A human sacrifice.
ଦେ. ବି—ମେରିଆ (ଦେଖ)—Meriā (See)

ନର ଯନ୍ତ୍ର—ସଂ. ବି (ମ ପ. ଲୋ. କର୍ମଧା; ନର ପରିଲକ୍ଷିତ ଯନ୍ତ୍ର)— Nara jantra ସୂର୍ଯ୍ୟଘଣ୍ଟା—Sundial ( Apte).

ନର ଯାନ—ସଂ. ବି ( ମ. ପ ଲୋ; ନରବାହ୍ୟ ଯାନ )—ମନୁଷ୍ୟଙ୍କଦ୍ୱାରା Nara jāna ବାହିତ ଯାନ—A vehicle drawn by men
ନରରଥ } —ଅନ୍ୟରୂପ sedan chair.
ନରବାହନ }

ନରରାଣ—ଦେ. ବି ( ସଂ. ନରରାଜ, ନରରାଟ୍ )—ନରପତି, ନୃପତି; Nararāṇa ରାଜା—King.
नरराज ଦେଖନ୍ତି ନରରାଣ କେମା ତୁ ମୋର ପରାଣ ଯେ ଓଲଟଇ ।
**नराट** ଉଷ. ବୈଦେହୀଶବିଳାସ ।

ନରର୍ଷଭ—ସଂ. ବି. (୭ମୀ ତତ୍; ନର+ଋଷଭ)—୧ । ପୁରୁଷଶ୍ରେଷ୍ଠ— Nararshava 1. The chief of men (Apte).
୨ । ରାଜା—2. King (Apte).

ନର ଲୋକ—ସଂ. ବି. (୬ଷ୍ଠୀ ତତ୍; ନର+ଲୋକ=ଭୁବନ)— Nara loka ୧ । ପୃଥିବୀ; ଇହଲୋକ, ମର୍ତ୍ତ୍ୟଲୋକ—
1. The earth, the habitable world; the mortal world.
· । ପୃଥିବୀର ସମସ୍ତ ମନୁଷ୍ୟ ଜାତି; ମାନବଜାତି—
2. The mankind (Apte)

ନର ଶାର୍ଦ୍ଦୂଳ—ସଂ. ବି—ନର ପୁଙ୍ଗବ (ଦେଖ) Nara śārddūla Nara puṅgaba (See)

ନର ଶୃଙ୍ଗ—ସଂ. ବି (୬ଷ୍ଠୀ ତତ୍; ନର+ଶୃଙ୍ଗ; ତୁଳ. ଶଶବିଷାଣ, Nara śṛunga ଆକାଶ କୁସୁମ, ବନ୍ଧ୍ୟାପୁତ୍ର)—ମନୁଷ୍ୟର ଶୃଙ୍ଗ ଭଳି ଅପ୍ରାକୃତ ପଦାର୍ଥ—A man's horn, an impossibility; a chimera, a nonentity (Apte).

ନର ଶ୍ରେଷ୍ଠ—ସଂ. ବି—ନର ପୁଙ୍ଗବ (ଦେଖ) Nara śreshṭha Nara puṅgaba (See)

ନର ସଂସର୍ଗ—ସଂ. ବି. ( ୬ଷ୍ଠୀ ତତ୍; ନର+ସଂସର୍ଗ )— Nara saṃsarga ୧ । ମନୁଷ୍ୟଙ୍କ ସଙ୍ଗେ ଚଳପ୍ରଚଳ ହେବା— (ନରସମାଜ—ଅନ୍ୟରୂପ) 1. Moving amongst men.
୨ । ମନୁଷ୍ୟମାନଙ୍କ ଗଠିତ ସମାଜ—
2. The human society.

**ନରସାଇଁ**—ଦେ. ବି. (ସଂ. ନର ଓ ସ୍ୱାମୀ)—ରାଜା; ନରପତି; ନୃପତି—
Narasāiñ King; ruler of men.

ନବସାଇ ଏରୂପେ କହୁ ଥିଲସ୍କୁ ନରସାଇଁ
ନବସାଇ ତକା ଶାଉଲେ ସେ ଅତି ଦୁଃଖୀ ହୋଇ ।
କୃଷ୍ଣସିଂହ ମହାଭାରତ ଅଦି ।

**ନରସିଂହ**—ସଂ ବି—୧ । ନରକେଶରୀ (ଦେଖ)
Narasimha 1. Narakeśarī (See)
୨ । ଲୋକଙ୍କୁ ଦିଆଯିବା ନାମ—
2 A name given to males
[ ଦ୍ର—ଏ ଶବ୍ଦକୁ ଉଚ୍ଚାରଣ ଦୋଷରେ ଅମ୍ଭେମାନେ ନରସିଂଘ ରୂପେ ଅଶୁଦ୍ଧ ଉଚ୍ଚାରଣ କରିଥାଉଁ । ]

**ନରସିଂହ କଣ୍ଡା**—ଦେ. ବି.—କ୍ଷୁଦ୍ର ତରୁବିଶେଷ—
Narasimha karda A small tree.
[ଦ୍ର—ଏହା ଓଡ଼ିଶା ଗଡ଼ଜାତମାନଙ୍କରେ ନଦୀ ବା ଝରଣା କୂଳରେ ଜନ୍ମେ । ଏହାର ଉଚ୍ଚତା ପ୍ରାୟ ୨୫ ଫୁଟ ପର୍ଯ୍ୟନ୍ତ ହୁଏ ।]

**ନରସିଂହ ପୁର**—ଦେ ବି (ନାମ)—୧ । ଓଡ଼ିଶାର ଗଡ଼ଜାତବିଶେଷ—
Narasimha pura 1 One of the states of Orissa
[ଦ୍ର—ପୂର୍ବେ ନରସିଂହ ଓ ପୁର ନାମରେ ଦୁଇ ଜଣ କନ୍ଧ ରାଜା ରାଜ୍ୟର ଅଧିକାରୀ ଥିବାରୁ ସେମାନଙ୍କ ନାମାନୁସାରେ ଏହାର ଏପରି ନାମ ହୋଇଅଛି—(କୃପାସିନ୍ଧୁ ଇତିହାସ) ।
୧୨୯୨ ଖ୍ରୀଷ୍ଟାବ୍ଦରେ ଧର୍ମସିଂହ ନାମକ ଜଣେ ବ୍ୟକ୍ତି ଏ ରାଜ୍ୟ ସ୍ଥାପନ କରିଥିଲେ । ଏ ରାଜବଂଶର ସନ୍ତକ 'ବୃଷ୍ଟିକ' ।
(ଜଗବନ୍ଧୁ. ପ୍ରା. ଉତ୍କଳ)]
୨ । ପୁରୀ ଜିଲ୍ଲା ରହାଙ୍ଗ ପ୍ରଗନ୍ନା ଅନ୍ତର୍ଗତ ପ୍ରସିଦ୍ଧ ବ୍ରାହ୍ମଣ-ଶାସନ—2. Name of a Brāhmaṇa-village in the pergunah of Rāhāñga in Puri district.
[ଦ୍ର—ଏହାର ନାମ ମଧ୍ୟ ବୀର ନରସିଂହପୁର ଶାସନ । ଏହା ଭାର୍ଗବୀ ନଦୀ ଉତ୍ତର କୂଳରେ ସତ୍ୟବାଦୀ ଠାରୁ ପ୍ରାୟ ୩ ମାଇଲ ଦକ୍ଷିଣରେ ଅବସ୍ଥିତ; ପୁରୀର ସ୍ୱାଧୀନ ନରପତି ବୀର ଶ୍ରୀ ନୃସିଂହ ଦେବ ଏ ଶାସନ ବସାଇ ଥିଲେ ଓ ଉତ୍କଳର ସ୍ୱାଧୀନ ନରପତିମାନଙ୍କ କାଳରେ ଏ ଗ୍ରାମରେ ମହା ପଣ୍ଡିତ ଓ ଡାକ୍ତିକମାନେ ଜନ୍ମଗ୍ରହଣ କରୁଥିଲେ ଏବଂ କେତେଜଣ ମୋଗଲ ଦରବାରରେ ସମ୍ମାନିତ ହୋଇଥିଲେ । ]
୩ । ପୁରୀଜିଲ୍ଲାର କାକଟପୁର କକଟବର୍ତ୍ତୀ ଗୋଟିଏ ଗ୍ରାମ—
3 Name of a village in the Puri district known for its betel leaves.
[ଦ୍ର—ଏଠାରେ ପ୍ରଚୁର ପରିମାଣରେ ପାନ ଚାଷ ହୁଏ; ପୁରୀ ଓ କଟକରେ ଏହି ନରସିଂହପୁରୀ ପାନର ଆଦର ବେଶୀ ]

**ନରସିଂହ ବାଜପେୟୀ**—ଦେ. ବି. (ନାମ)—ଜଣେକ ଉତ୍କଳୀୟ ସ୍ମୃତିକାର—An oriya compiler of social laws in Sanskrit.
Narasimha bājapeyī
[ ଦ୍ର—'ନିତ୍ୟାଚାର ପଦ୍ଧତି' ଓ 'ପ୍ରତିଷ୍ଠା ପଦ୍ଧତି' ଏହାଙ୍କ ରଚିତ ଗ୍ରନ୍ଥମାନଙ୍କ ମଧ୍ୟରେ ପ୍ରଧାନ । ଏ 'ରାଜଗୁରୁ' ଉପାଧି ପାଇଥିଲେ । ]

**ନରସିଂହ ଭୋଗ**—ଦେ. ବି—ଏକପ୍ରକାର ସରୁ ଧାନ—
Narasimha bhoga A species of paddy

**ନରସିଂହ ସେଣ**—ଦେ. ବି. (ନାମ)—ଜଣେକ ବଙ୍ଗାଳୀ କବି—
Narasimha seṇa A Bengali poet who composed two Oria poems.
[ ଦ୍ର—ଏ ଓଡ଼ିଆରେ 'ପଦ୍ମମାଳା' ଓ 'ଭାବବତୀ ମୋହନ' ନାମରେ ଦୁଇ ଖଣ୍ଡି ପୁସ୍ତକ ଲେଖିଅଛନ୍ତି—ଚାରଣୀ. ଉତ୍କଳ ସାହିତ୍ୟ ଇତିହାସ । ]

**ନରସୁନ୍ଦର**—ସଂ. ବି. (ବହୁବ୍ରୀହି, ନର + ସୁନ୍ଦର)—ଭଣ୍ଡାରୀ—
Narasundara Barber

**ନରସ୍କନ୍ଧ**—ସଂ. ବି. (ନର + ସମୂହାର୍ଥେ ସ୍କନ୍ଧ)—ମନୁଷ୍ୟମାନଙ୍କ ସମଷ୍ଟି—
Naraskandha A multitude or body of men.

**ନରହତ୍ୟା**—ସଂ ବି. (୬ଷ୍ଠୀ ତତ୍; ନର + ହତ୍ୟା)—ମଣିଷମାରୁ; ଖୁଣି—
Narahatyā Murder; homicide.
[ ଦ୍ର—ଭାରତୀୟ ଦଣ୍ଡ ବିଧି ଆଇନ ଅନୁସାରେ କୌଣସି ବ୍ୟକ୍ତି ଅନ୍ୟ ବ୍ୟକ୍ତିର ମୃତ୍ୟୁ ଘଟାଇଲେ ପ୍ରଥମ ବ୍ୟକ୍ତି ନରହତ୍ୟା (murder) ଅପରାଧରେ ଅପରାଧୀ ହୁଏ । ଏ ନରହତ୍ୟା ଅପରାଧୀକୁ ଗୁରୁତର (Culpable homicide amounting to murder) ଓ ଲଘୁତର Culpable homicide not amounting to murder) ଏପରି ଦୁଇ ଶ୍ରେଣୀରେ ବିଭକ୍ତ କରାଯାଇଅଛି । ସ୍ଥୂଳତଃ ହତ ବ୍ୟକ୍ତିକୁ ହତ୍ୟା କରିବା ଉଦ୍ଦେଶ୍ୟରେ ଯେଉଁ ହତ୍ୟା କରାଯାଏ ତାହା ଗୁରୁତର ଓ ହତ ବ୍ୟକ୍ତିର ମୃତ୍ୟୁ ଘଟିବା ବିଷୟରେ ଆଶଙ୍କା ଥିବା ସ୍ଥଳେ ମୃତ୍ୟୁ ନ ଘଟିବା ପାଇଁ ସାବଧାନ ହୋଇ ସୁଦ୍ଧା ଯେଉଁ ମୃତ୍ୟୁ ଘଟେ କିମ୍ବା ଆତ୍ମରକ୍ଷା ଓ ସ୍ୱୀୟ ସମ୍ପତ୍ତି ରକ୍ଷା ବା ପରର ଜୀବନ ରକ୍ଷା ବା ଆକ୍ରମଣକାରୀ ଦ୍ୱାରା ଉତ୍ତେଜିତ ହୋଇ ନିଜର ହିତାହିତ ଜ୍ଞାନ ହରାଇଥିବା ଅବସ୍ଥାରେ ଅନ୍ୟର ଯେଉଁ ମୃତ୍ୟୁ ଘଟେ ତାହା ଲଘୁତର ବିବେଚିତ ହୁଏ । ]

**ନରହନ୍ତା**—ସଂ. ବି. ପୁଂ. (ନର + ହନ୍ ଧାତୁ + କର୍ତ୍ତୃ. ତୃ; ୧ମା.୧ବ)—
Narahantā ଯେ ମନୁଷ୍ୟକୁ ହତ୍ୟା କରେ—
(ନରହନ୍ତ୍ରୀ—ସ୍ତ୍ରୀ) Murderer; a homicide.

**ନରହୟ**—ସଂ. ବି. (ନର + ହୟ)—ମନୁଷ୍ୟ ଓ ଅଶ୍ୱ ମଧ୍ୟରେ ଯୁଦ୍ଧ ବା ସଂଘର୍ଷ—A fight or enmity between man and horse.
Narahaya

**ନରହରି**—ସଂ. ବି. (୭ମୀ ତତ୍; ନର + ହରି = ସିଂହ ବା ଶ୍ରେଷ୍ଠ)—
Narahari ୧ । ନରସିଂହ; ଶ୍ରେଷ୍ଠ ବ୍ୟକ୍ତି—
1. An eminent person.
୨ । ବିଷ୍ଣୁଙ୍କ ନାମ—2. Name of Bishṇu
ଦେ. ବି. ପୁଂ—ଲୋକଙ୍କ ନାମ—
Name given to males

**ନରା**—ଗ୍ରା. (ଉତ୍ତର) ବି—ନଡ଼ା—
Narā Straw.
[ ଦ୍ର—ଉତ୍ତର ଲୋକେ କାହିଁ ସ୍ଥାନରେ କାଢ଼, ଦଉଡ଼ା(ଡ) ସ୍ଥଳରେ ଦଉରା(ର) ଇତ୍ୟାଦି ବ୍ୟବହାର କରନ୍ତି । ]

**ନରାଙ୍ଗ**—ସ. ବି. ( ନର+ଅଙ୍ଗ )—
Narānga ୧ । ପୁରୁଷର ଜନନେନ୍ଦ୍ରିୟ—1 Penis (Apte).
୨ । ବ୍ରଣ ବରୁଣ—
2. Eruption on the face ( Apte )

**ନରାଚ**—ଦେ. ବି. ( ସ ନାରାଚ )—ଶର; ଶର—
Narācha नराच Arrow

**ନରାଜ**—ଦେ. ବି. (ନାମ)—୧ । କଟକ ଜିଲ୍ଲାର ଗ୍ରାମବିଶେଷ—
Narāja 1. A village in the district of Cuttack.

[ ଦ୍ର—ଏହି ସ୍ଥାନରେ କାଠଯୋଡ଼ୀ ମହାନଦୀରୁ ଶାଖା ହୋଇ ବାହାରି ଅଛି । ଏଠାରେ ସରକାରର ଗୋଟିଏ ପଥର ବନ୍ଧ ବା ଆଣିକଟ୍ କରି କେନାଲ ପାଇଁ ଜଳ ଭଣ୍ଡାର କରି ଅଛନ୍ତି । ଏହା କଟକ ସହରଠାରୁ ପଶ୍ଚିମରେ ପ୍ରାୟ ୬ ମାଇଲ ଦୂରରେ ଅବସ୍ଥିତ । କାଠଯୋଡ଼ୀ ମହାନଦୀଠାରୁ ବାହାରିଥିବା ସ୍ଥାନରେ ଗୋଟିଏ ପଥର ବନ୍ଧ ଓ ୨୮ ମାଇଲ ଛଡ଼ା ମହାନଦୀରେ ଜୋବ୍ରାଠାରେ ଗୋଟିଏ ପଥର ବନ୍ଧ କରିବା ଦ୍ୱାରା ଯେଉଁ ଜଳ ଭଣ୍ଡାର କରା ଯାଇଅଛି ତହିଁରୁ ତାଳଦଣ୍ଡା ନାଳ, କେନ୍ଦ୍ରାପଡ଼ା ନାଳ, ହାଇଲେଭଲ ନାଳମାନ ବାହାରି ଅଛି; ନରାଜର ପାହାଡ଼ରେ ଗୋଟିଏ ସ୍ତମ୍ଭ ଦେହରେ ପାଲି ଭାଷାରେ କେତେ ଗୋଟି ପଂକ୍ତି ଖୋଦିତ ହୋଇଥିବାର ଦେଖାଯାଏ । ]
୨ । ନରାଜୁ ( ଦେଖ )—2. Narāju ( See)

**ନରାଜୁ**—ଦେ. ବି. ( ସ. ନାରାଚୀ )—୧ । ତରାଜୁ; ନିକିତି—
Narāju 1. Weighing machine; the scales.
(ନରେଜ—ଅନ୍ୟରୂପ) ୨ । ତୁଲା ଯନ୍ତ୍ରର ଦଣ୍ଡ—
नराज 2. The beam of a weighing machine.
नराज ୩ । ବଣାକାଠି—3. Weighing scale-yard.
୪ । (ସ. ନଳ) ଯେଉଁ କାଷ୍ଠ ଦଣ୍ଡରେ ତନ୍ତୀଙ୍କର ଲୁଗା ବୁଣା ପାଇଁ ଟାଣୀ ସୂତା ଗୁଡ଼ିଆ ହୋଇଥାଏ; ତନ୍ତକାଠି—
नरा 4. A weaver's roller on which the warp-thread is rolled; weaver's beam.

**ନରାଧମ**—ସ. ବି. ପୁଂ ( ୭ମୀ ତତ୍; ନର+ଅଧମ )—
Narādhama ୧ । ଅତିଶୟ କୁଚରିତ୍ର ବ୍ୟକ୍ତି— 1. A wretch; a vile person; a miscreant.
୨ । ମହାପାପୀ—2. A great sinner.

**ନରାଧାର**—ସ. ବି (୬ଷ୍ଠୀ ତତ୍; ନର+ଆଧାର) —ଶିବ—
Narādhāra Śiba.

**ନରାଧାରା**—ସ ବି (ନର+ଆଧାର+ସ୍ତ୍ରୀ. ଆ) —ପୃଥିବୀ—
Narādhārā The earth (Apte).

**ନରାଧିପ**—ସ. ବି. ପୁଂ (୬ଷ୍ଠୀ ତତ୍; ନର+ଅଧିପ)—ରାଜା —
Narādhipa King.
(ନରାଧିପତି—ଅନ୍ୟରୂପ)

**ନରାନ୍ତକ**—ସ. ବି (ନର+ଅନ୍ତକ=ବିନାଶକାରୀ)—୧ । ଯମ—
Narāntaka 1. God of death.
୨ । ରାମାୟଣୋକ୍ତ ରାକ୍ଷସବିଶେଷ; ରାବଣର ପୁତ୍ର—
2 A demon, son of Rābaṇa.
[ ଦ୍ର—ଲଙ୍କା ଯୁଦ୍ଧରେ ଏ ଅଙ୍ଗଦଦ୍ୱାରା ହତ ହୋଇଥିଲା—
(ହି. ଶବ୍ଦସାଗର) । ]
୩ । ମୃତ୍ୟୁ—3 Death (Apte)
୪ । ନରଘାତକ ବ୍ୟକ୍ତି—4. A murderer.
ସ ବିଣ—ନରଘାତୀ, ଯେ ନରହତ୍ୟା କରେ—Killing men.

**ନରାୟଣ**—ସ. ବି (ନର+ଅୟନ) —ନାରାୟଣ ( ଦେଖ )
Narāyaṇa Nārāyaṇa ( See )

**ନରାଶ**—ସ. ବି (ନର+ଅଶ୍ ଧାତୁ=ଖାଇବା+କର୍ତ୍ତୃ. ଅ; ନରଭକ୍ଷକ)
Narāśa ୧ । ରାକ୍ଷସ—1. A demon; goblin ( Apte ).
୨ । ନରମାଂସଭୋଜୀ ବ୍ୟକ୍ତି—2 A cannibal.

**ନରି**—ଦେ. ବିଣ (ସ. ଲଡ଼ୀ)—(ଏତେ) ନର ବା ସରିଯୁକ୍ତ—
Nari Stringed (used with other words
नर ी denoting number, e g fire stringed.
लड़ी [ ଦ୍ର—ଏହା ସଂଖ୍ୟାବାଚକ ଶବ୍ଦ ସଙ୍ଗେ ପ୍ରଯୁକ୍ତ ହୁଏ; ଯଥା—ତିନିନରି ହାର; ସାତନରି ହାର । ]
ଦେ. ବି—(ଆଦରାର୍ଥକ)—ନରସିଂହ ଆଦି ବ୍ୟକ୍ତିଙ୍କ ଡାକନାମ —
Name for calling Narasiṁha etc.

**ନରିଆ**—ଦେ. ବିଣ—ନରି ( ଦେଖ )
Nariā Nari ( See)
ପ୍ରାଦେ (ସମ୍ବଲପୁର) ବି—ନରିହା ( ଦେଖ )—
Narihā ( See )
ଦେ. ବି (ଅନାଦରାର୍ଥକ)—ନରସିଂହ ଆଦିଙ୍କ ଡାକ ନାମ—
A name for calling Narasiṁha etc.

**ନରିଆଣୀ**—ପ୍ରାଦେ (ସମ୍ବଲପୁର) ବି. ସ୍ତ୍ରୀ (ହି. ପନିଭରନୀ)—ଯେଉଁ ସ୍ତ୍ରୀ
Nariāṇī କୌଣସି ଗୃହସ୍ଥର ଘରକୁ କୂଅ ବା ପୋଖରୀରୁ ପାଣି ଯୋଗାଏ—A woman who supplies water to a family from tanks or wells.

**ନରିହା**—ପ୍ରାଦେ ( ସମ୍ବଲପୁର ) ବି—ଗଉଡ଼ ଶ୍ରେଣୀର ଗ୍ରାମସେବକ
Narihā ବିଶେଷ—A clan of village servants.

**ନରେ**—ଦେ. ବି (ସ. ନରାଃ)—ମନୁଷ୍ୟମାନେ, ଲୋକେ—
Nare Men; people.
ଲୋକେବା ଦେ. ଅ (ସ. ହେ ନରାଃ)—ହେ ନରମାନେ—
Oh men!

ନନ୍ଦକିଶୋର ଗୋପୀନାଥ
ନରସୁଣିବା ନରେ ଦେଖ । ବଳରାମ କମଳଲୋଚନ ତଉଡଣା ।

**ନରେତର**—ସ. ବି (୫ମୀ ତତ୍; ନର+ଇତର)—୧ । ମନୁଷ୍ୟ ଅପେକ୍ଷା
Naretara ଉଚ୍ଚତର ଜୀବ—1. A being higher than a man.
୨ । ମନୁଷ୍ୟ ଛଡ଼ା ଅନ୍ୟ ଜୀବ, ପ୍ରାଣୀ—
2. An animal other than man

**ନରେ(ରୋ) ବା ଗୁଞ୍ଜରେ(ରୋ) ବା ଅଶ୍ୱତ୍ଥାମା ହତ**—ଦେ. ପ୍ରବଚନ
Nare(ro) bā guñjare(ro) bā aśwatthāmā hata
(ସଂ. ନରୋ ବା ଗୁଞ୍ଜରୋ ବା ଅଶ୍ୱତ୍ଥାମା ହତଃ)—
ଦ୍ୱ୍ୟର୍ଥବୋଧକ ବାକ୍ୟବିଶେଷ—A sentence hvaing an ambiguous meaning.
[ଦ୍ର—ମହାଭାରତ ଯୁଦ୍ଧବେଳେ ଯୁଧିଷ୍ଠିର ଦ୍ରୋଣାଚାର୍ଯ୍ୟଙ୍କୁ ଏହି କପଟବଚନ ଶୁଣାଇଥିଲେ । ଅଶ୍ୱତ୍ଥାମା ନାମକ ହସ୍ତୀ ଯୁଦ୍ଧରେ ମରିଥିଲା, କିନ୍ତୁ ଯୁଧିଷ୍ଠିର ଉଚ୍ଚୈଃସ୍ୱରରେ 'ଅଶ୍ୱତ୍ଥାମା ହତଃ' (ଅଶ୍ୱତ୍ଥାମା ମରିଗଲା) କହି ବାକ୍ୟର ଅବଶିଷ୍ଟ ଅଂଶ ନରୋ ବା ଗୁଞ୍ଜରୋ ବା (ନର ହେଉ ବା ହସ୍ତୀ ହେଉ)ଅସ୍ପଷ୍ଟସ୍ୱରରେ କହିବାରୁ ଦ୍ରୋଣାଚାର୍ଯ୍ୟ ଏ ବାକ୍ୟରୁ ନିଜପୁତ୍ର ଅଶ୍ୱତ୍ଥାମାଙ୍କର ମୃତ୍ୟୁ ହୋଇଥିବା ବୁଝି ଯୁଦ୍ଧରୁ ବିରତ ହୋଇ ଯୁଦ୍ଧଭୂମି ତ୍ୟାଗକଲେ ଓ ଇତ୍ୟବସରରେ ପାଣ୍ଡବମାନେ ଯୁଦ୍ଧରେ ଜୟଲାଭ କଲେ, ମାତ୍ର ଯୁଧିଷ୍ଠିର ଏଥିଲାଗି ପାପଭାଗୀ ହୋଇଥିଲେ ଓ ସେ ଜୀବନରେ ଏହିଥର ମାତ୍ର ମିଥ୍ୟାଯୁକ୍ତ ବାକ୍ୟ ଉଚ୍ଚାରଣ କରିଥିବାରୁ ଏହାଙ୍କୁ ଥରେ ମାତ୍ର ନରକ ଦର୍ଶନ କରିବାକୁ ପଡ଼ିଥିଲା ।]

**ନରେନ୍**—ପ୍ରାଦେ (ସମ୍ବଲପୁର) ବି—ନରାଣୀ (ଦେଖ)
Naren — Narāṇi (See).

**ନରେନ୍ଦ୍ର**—ସଂ. ବି (୭ମୀ ତତ୍; ନର+ଇନ୍ଦ୍ର)—୧ । ରାଜା—
Narendra — 1 King.
୨ । ବିଷବୈଦ୍ୟ, ସାପୁଆ—2 A snake charmer; a physician who cures snake bites and other effects of poisons.
୩ । ଗୁଣିଆଁ; ଭୂତବୈଦ୍ୟ—3. An exorcist
୪ । ବୈଦ୍ୟ—4. Physician (Apte)
୫ । ଔଷଧବ୍ୟବସାୟୀ—
5. A dealer in antidotes (Apte).
୬ । ଶ୍ୟୋନାକ ବୃକ୍ଷ (ହି. ଶ.); ଫଣଫଣା—
6. Bignonia Indica (tree).
୭ । ଶ୍ରେଷ୍ଠବ୍ୟକ୍ତି—7. The chief amongst men
୮ । ୨୮ ମାତ୍ରାଯୁକ୍ତ ଛନ୍ଦୋବିଶେଷ (ହି. ଶ.)—
8 Name of a metre of 28 syllables
ଦେ. ବି—୧ । କ୍ଷତ୍ରିୟମାନଙ୍କର ବଂଶୋପାଧିବିଶେଷ—
1. A family title of the Kshatriyas.
୨ । ପୁରୀ ସହରରେ ଥିବା ବୃହତ୍ ପୁଷ୍କରିଣୀବିଶେଷ—
2. Name of a big tank at Puri.
[ଦ୍ର—ଶ୍ରୀଜଗନ୍ନାଥ ମହାପ୍ରଭୁ ଚନ୍ଦନଯାତ୍ରାବେଳେ ଏହି ପୋଖରୀରେ ନୌକା ଖେଳନ୍ତି । ଏହାର ଦୈର୍ଘ୍ୟ ୮୭୩ ଫୁଟ ଓ ପ୍ରସ୍ଥ ୨୪୩ ଫୁଟ । ନରସିଂହ ଦେବଙ୍କର ଲକ୍ଷପୋଷୀ ନରେନ୍ଦ୍ର ମହାପାତ୍ର ନାମକ ମନ୍ତ୍ରୀଙ୍କ ଦ୍ୱାରା ଏହା ଖୋଳିତ ହୋଇଥିଲା । ୧୯୨୯ ଖ୍ରୀଷ୍ଟାବ୍ଦରେ ଏବେ ଅଳ୍ପଦିନ ପୂର୍ବେ ପୁରୀର ଏମାରମଠ ମହନ୍ତ ଶ୍ରୀ ଗଦାଧର ରାମାନୁଜ ଦାସ ବହୁ ଅର୍ଥବ୍ୟୟରେ ଏହାର ପଙ୍କୋଦ୍ଧାର କରିଅଛନ୍ତି ।]
୩ । ଲୋକଙ୍କୁ ଦିଆଯିବା ନାମ—
3. A name given to males.

**ନରେନ୍ଦ୍ରମାର୍ଗ**—ସଂ. ବି (ନରେନ୍ଦ୍ର+ମାର୍ଗ; ୬ଷ୍ଠୀ ତତ୍ପୁରୁଷ; ନରେନ୍ଦ୍ରଙ୍କ ମାର୍ଗ କିମ୍ବା ମ. ପ. ଲୋ. ନରେନ୍ଦ୍ରବ୍ୟବହୃତ ମାର୍ଗ କିମ୍ବା ୭ମୀ ତତ୍, ମାର୍ଗମାନଙ୍କ ମଧ୍ୟରେ ନରେନ୍ଦ୍ର ବା ରାଜା)—୧ । ରାଜମାର୍ଗ; ରାଜଦାଣ୍ଡ—
Narendramārga
1. The kings' high way.
୨ । ପ୍ରକାଶ୍ୟ ପଥ; ସର୍ବସାଧାରଣଙ୍କ ବ୍ୟବହୃତ ପଥ—
2. Public road

**ନରେଶ**—ସଂ. ବି (୬ଷ୍ଠୀ ତତ୍; ନର+ଈଶ)—ରାଜା—
Nareśa — King.
(ନରେଶ୍ୱର—ଅନ୍ୟରୂପ)

**ନରୋତ୍ତମ**—ସଂ. ବି (୭ମୀ ତତ୍, ନର+ଉତ୍ତମ)—
Narottama — ୧ । ନରଶ୍ରେଷ୍ଠ; ଅତି ଉତ୍ତମ ବ୍ୟକ୍ତି—
1. A very good man.
୨ । ପୁରୁଷୋତ୍ତମ; ବିଷ୍ଣୁ—2. Vishnu.
୩ । ବୁଦ୍ଧଦେବ—3 An epithet of the Buddha (Apte).
ଦେ. ବି. ପୁଂ—ଲୋକଙ୍କ ନାମ—
Name given to males.

**ନର୍କ**—ଦେ. ବି (ସଂ. ନରକ)—ନରକ (ଦେଖ)
Narka — Naraka (See)
ନର୍କ

**ନର୍କପାଣି**—ଦେ. ବି—ବିଷ୍ଠା ମିଶ୍ରିତ ଜଳ—
Narkapāṇi — Water mixed with ordure.

**ନର୍ତ୍ତକ**—ସଂ. ବି. ପୁଂ. (ନୃତ୍ ଧାତୁ=ନାଚିବା+କର୍ତ୍ତୃ. ଅକ)—
Narttaka — ୧ । ନୃତ୍ୟଜୀବି; ନାଟୁଆ—1. Male dancer; a professional dancer.
(ନର୍ତ୍ତକ—ଅନ୍ୟରୂପ)
(ନର୍ତ୍ତକୀ—ସ୍ତ୍ରୀ) ୨ । ନଟ; ଅଭିନେତା—2. An actor.
୩ । ମୟୂର—3. Peacock.
୪ । ହସ୍ତୀ—4. Elephant.
୫ । ଚାରଣ; ଭାଟ—5. Herald.
୬ । କେଳକ; ଦଉଡ଼ି ଉପରେ ଓ ଖଣ୍ଡା ଧାରରେ ନାଚିବା ଆଦି ଅଦ୍ଭୁତ କ୍ରୀଡ଼ା ପ୍ରଦର୍ଶକ (ହି. ଶ.)—
6. Rope dancer.
୭ । ଏକପ୍ରକାର କାଣ୍ଡଶର ବା ନଳ (ହି. ଶ.)—
7. A kind of reed.
୮ । ମହାଦେବ (ଏ ତାଣ୍ଡବନୃତ୍ୟ କରୁଥିବାରୁ) (ହି.ଶ.)—
8. Śiba.
୯ । ରାଜା (ହି. ଶ.)—9. King.
୧୦ । ଧୋବା ପିତା ଓ ବେଶ୍ୟା ମାତାଠାରୁ ଉତ୍ପନ୍ନ ସଙ୍କର ଜାତିବିଶେଷ (ହି. ଶ.)—
10. A hybrid caste amongst the Hindus.
୧୧ । ମାଣ୍ଡିଆ (ଶସ୍ୟ) (ହି. ଶ.)—
11. A kind of coarse globular food grain.
୧୨ । ମହୁଅ (ହି. ଶ.); ମହୁଲ—
12. Mahwa (tree).

**ନର୍ତ୍ତକୀ**—ସଂ. ବି. ସ୍ତ୍ରୀ. ( ନର୍ତ୍ତକ+ସ୍ତ୍ରୀ. ଈ )—
Narttakī ୧ । ନୃତ୍ୟକାରିଣୀ ସ୍ତ୍ରୀ, ନାଚବାଲୀ—
1. A female dancer; a dancing girl.
୨ । ହସ୍ତିନୀ—2. A femal elephant.
୩ । ମୟୂରୀ—3. A pea-hen
୪ । ନଟୀ; ଅଭିନେତ୍ରୀ—4. An actress
୫ । ନାଳିକା ନାମକ ସୁଗନ୍ଧ ଦ୍ରବ୍ୟ—
5. Name of a medicinal scent

**ନର୍ତ୍ତନ**—ସଂ. ବି. ( ନୃତ୍ ଧାତୁ+ଭାବ. ଅନ )—
Narttana ୧ । ନୃତ୍ୟ, ନାଚ; ନାଚ—1 A dance.
( ନର୍ତ୍ତନ—ଅନ୍ୟରୂପ ) ୨ । ନାଚିବା କର୍ମ—2 Dancing.
୩ । ନାଟକ ଅଭିନୟ କରିବା—
3. Acting of a play.

**ନର୍ତ୍ତନପ୍ରିୟ**—ସଂ ବିଣ. ପୁଂ. ( ବହୁବ୍ରୀହି; ନର୍ତ୍ତନ+ପ୍ରିୟ )—ଯେ
Narttanapriya ନୃତ୍ୟ କରିବାକୁ ବା ଦେଖିବାକୁ ସୁଖ ପାଏ—
Fond of dancing; fond of dance.
ସଂ. ବି. ପୁଂ—୧ । ଶିବ ( ହ୍ଲାକେନ୍ଦ୍ର )—1. Śiba
୨ । ମୟୂର—2. Peacock ( Apte ).

**ନର୍ତ୍ତନଭର**—ଦେ. ବିଣ—ନୃତ୍ୟ କରୁଥିବା; ନାଚୁଥିବା—
Narttanabhara Dancing.

ରକ୍ଷଣ ନର୍ତ୍ତକ ନର୍ତ୍ତନଭର—ଭଞ୍ଜ, ପ୍ରେମସୁଧାନିଧି ।

**ନର୍ତ୍ତନଶାଳା**—ସଂ. ବି—ନୃତ୍ୟଶାଳା; ନାଚଖାନା—
Narttanaśālā A dancing hall; a theatre.
( ନର୍ତ୍ତନାଗାର; ନର୍ତ୍ତନମନ୍ଦିର—ଅନ୍ୟରୂପ )

**ନର୍ତ୍ତମ**—ଗ୍ରା. ବି. ପୁଂ. ( ଆଦରାର୍ଥକ )—ନରୋତ୍ତମର ଡାକ ନାମ—
Narttama Name for calling Narottama.
( ନର୍ତମା—ଅନାଦରାର୍ଥକ )

**ନର୍ତ୍ତୟିତା**—ସଂ. ବି. ପୁଂ. ( ନୃତ୍ ଧାତୁ ଣିଚ୍ ନର୍ତ୍ତି ଧାତୁ+ତୃ; ନର୍ତ୍ତୟିତୃ; ୧ମା. ୧ବ. )—ନୃତ୍ୟଗୁରୁ; ନାଚର ଗୁରୁ; ଯେ
Narttayitā (ନର୍ତୟିତା—ଅନ୍ୟରୂପ) ନାଚୁଆମାନଙ୍କୁ ନଚାଏ—A dancing
( ନର୍ତ୍ତୟିତ୍ରୀ—ସ୍ତ୍ରୀ ) master ( Apte ).

**ନର୍ତ୍ତିତ**—ସଂ. ବିଣ. ( ନୃତ୍ ଧାତୁ ଣିଚ୍=ନର୍ତ୍ତି ଧାତୁ=ନୃତ୍ୟ କରିବା
Narttita +କର୍ମ. ତ )—୧ । ଆନ୍ଦୋଳିତ; କମ୍ପିତ—
( ନର୍ତିତ—ଅନ୍ୟରୂପ ) 1 Dangled.
୨ । ନର୍ତ୍ତନଶୀଳ—2. Dancing.
୩ । ଯାହାକୁ ନଚାଯାଉଅଛି—
3. Caused to dance.
ସଂ. ବି. ( +ଭାବ. ତ )—ନର୍ତ୍ତନ—Dancing.

**ନର୍ଦ୍**—ବୈଦେ. ବି. (ଫା)—ପଶାଖେଳର ଗୋଟି—
Nard The balls which are moved on the
ଗୁଟି; ଗୋଟି नर्द dice-board.

**ନର୍ଦ୍(ର୍ଦ୍ଦ)** (ଧାତୁ)—ସଂ—ଶବ୍ଦ କରିବା—
Nard(rdd) (root) To make a sound.

**ନର୍ଦ୍ଦ(ର୍ଦ୍ଦ)ନ**—ସଂ. ବି (ନର୍ଦ୍ଦ ଧାତୁ+ଭାବ+ଅନ)—୧ । ନାଦ—
Narda(rdda)na 1. Sound.
୨ । ଗର୍ଜନ (ହି. ଶ)—2. Roar.

**ନର୍ଦ୍ଦ(ର୍ଦ୍ଦ)ମା**—ଦେ. ବି. (ସଂ. ନର୍ଦ୍ଦ ଧାତୁ=ଶବ୍ଦ କରିବା, ଗନ୍ଧ କରିବା,
Narda (rdda)mā ଭୁଲ ଫା. ନାବ୍‌ଦାନ୍)—୧ । ପାଣିନାଳ;
नर्दमा ନୟନଯୋଡ଼; ପୟଃପ୍ରଣାଳୀ—1 Gutter; drain;
नरदवाँ नरदा wayside ditch; water channel.

କୁରୁଚ ନର୍ଦମା କର୍ଦମେ ପଚ୍ଚ ଗଡ଼ୁଛ ଖେଳ । ମଧୁସୂଦନ. ବ୍ୟଙ୍ଗକବିତା ।

୨ । ମଇଳା ପାଣି ବୋହି ଯିବାର ନାଳୀ—
2. A channel for the flow of foul water.

**ନର୍ଦ୍ଦିତ**—ସଂ. ବିଣ. (ନର୍ଦ୍ଦ ଧାତୁ=ଶବ୍ଦ କରିବା+କର୍ମ. ତ)—
Narddita ୧ । ଶବ୍ଦିତ; ନିନାଦିତ—1 Sounded; tuned;
resounding.
୨ । ପ୍ରସିଦ୍ଧ—2. Celebrated.

**ନର୍ଦ୍ଦି(ର୍ଦ୍ଦି)ବା**—ପ୍ରାଦେ. (ଗଡ଼ଜାତ ଓ ସମ୍ବଲପୁର)—୧ । ଦଉଡ଼ିବା—
Nardi(rddi)bā 1. To run.
(ନରଦିବା—ଅନ୍ୟରୂପ) ୨ । ଡେଇଁବା; କୁଦିବା—
2. To frisk; to jump

**ନର୍ମ**—ବୈଦେ. ବିଣ. (ଫା. ନରମ୍; ଭୁଲ. ସଂ. ନମ୍ର)—
Narma ୧ । ନରମ ( ଦେଖ )
नरम 1. Narama ( See )
नरम ୨ । ଅନଚ୍ଛୁକ—2 Unwilling.
ଛବି ପୃକ୍ତଲେ ଅମ୍ଭେ ହୋଇଛୁଁ ଜନମ
ଯୁଦ୍ଧରେ ମରିବାକୁ କପାଂ ହେବୁ ନର୍ମ । କୃଷ୍ଣସିଂହ. ମହାଭାରତ ଅନୁ ।
ବି—ସୁଖ—Pleasure.
ହେ ବାଳେ ନର୍ମଦା ସ୍ୱର ତରଙ୍ଗିଣୀ ହବ । ଭଞ୍ଜ, କୋଟିବ୍ରହ୍ମାଣ୍ଡସୁନ୍ଦରୀ ।

ସଂ ବି—ନର୍ମ୍ମ (ଦେଖ)—Narmma (See)

**ନର୍ମ୍ମ**—ସଂ. ବି. (ନୃ ଧାତୁ=ନେବା+ମନ୍; ନର୍ମନ୍ ଶବ୍ଦ)—
Narmma ୧ । କ୍ରୀଡ଼ା—1. Sport; pastime.
(ନର୍ମ—ଅନ୍ୟରୂପ) ୨ । କୌତୁକ—2. Amusement.
୩ । ପରିହାସ—4. Jest.
୪ । ବିହାର; ଲୀଳା—4. Pleasure; diversion.
୫ । କେଳି—5. Amorous sports.
୬ । ରସିକତା; ରଙ୍ଗରସ—
6. Witticism; wit and humour.
୭ । ହସ କୌତୁକ କରିବା ସାଙ୍ଗ; କ୍ରୀଡ଼ା ସଙ୍ଗୀ (ହି. ଶ)—
7. Playmate.

**ନର୍ମ୍ମକୀଳ**—ସଂ. ବି—ସ୍ୱାମୀ; ପତି—
Narmmakīla Husband (Apte).
(ନର୍ମକୀଳ—ଅନ୍ୟରୂପ)

**ନର୍ମ୍ମଗର୍ଭ**—ସଂ. ବିଣ. ( ବହୁବ୍ରୀହି; ନର୍ମ+ଗର୍ଭ )—ପରିହାସ ବା
Narmmagarbha ରସିକତାପୂର୍ଣ୍ଣ ( ବାକ୍ୟ )—Witty;
( ନର୍ମଗର୍ଭ—ଅନ୍ୟରୂପ ) humorous ( words ).

**ନର୍ମ୍ମଟ**—ସଂ. ବି—୧ । ସୂର୍ଯ୍ୟ (ହି. ଶବ୍ଦସାଗର)—1 The sun.
Narmmaṭa ୨ । ଖପର୍—2. Potsherd (Apte).

**ନର୍ମ୍ମଠ**—ସଂ. ବିଣ. ପୁଂ ( ନର୍ମ୍ମନ୍+ଠ, ଅଥବା ନର୍ମ୍ମନ୍+ସ୍ଥା ଧାତୁ= ରହିବା+କର୍ତ୍ତୃ ଅ, ନିପାତନ)—୧ । କେଳିରତ—
Narmmaṭha
(ନର୍ମ୍ମଠା—ସ୍ତ୍ରୀ) 1. Addicted to dissipation or daliance.
(ନର୍ମ୍ମଠତା—ବି) ୨ । କ୍ରୀଡ଼ାଶୀଳ—2. Sportive; playful.
(ନର୍ମଠ—ଅନ୍ୟରୂପ) ୩ । କୌତୁକପ୍ରିୟ—3. Pleasure-loving; devoted to amusements.
୪ । ବିଳାସପ୍ରିୟ—
4. Given to luxury, coquettish.
୫ । କେଳିପ୍ରିୟ—5 Loving dalliance.
୬ । ଲମ୍ପଟ—6 Amorous; lecherous; adulterous.
୭ । ସଉକୀ—7. Gallant.
୮ । ଥଟ୍ଟିଲ; ପରିହାସପ୍ରିୟ—8 Jestive; witty.
ସଂ. ବି—୧ । ସ୍ତନାଗ୍ର; ଚୁଚୁକ, ଦୁଧଭୁଣ୍ଡି—1. Nipple.
୨ । ପରିହାସ—2. Sport.
୩ । ସିଦ୍ଧ; ନାଗର; ଉପପତି—
3. A gallant; a libertine; paramour.
୪ । କୌତୁକ; ଆମୋଦ—4. Amusement.
୫ । ମୈଥୁନ; ରତି; ସହବାସ—5 Sexual intercourse; cohabitation.
୬ । ଚିବୁକ—6. The chin.

ବାଳକ । ବୋଲି ଧରିବ ନର୍ମଠ—ଉପେ. ବୈଦେହୀଶବିଳାସ ।

୭ । ସ୍ତନ (ହି. ଶବ୍ଦସାଗର)—7. Female breast.
୮ । ଲମ୍ପଟ ବ୍ୟକ୍ତି—
8. A lecher; rake; libertine (Apte).

**ନର୍ମ୍ମଦ**—ସଂ. ବି. ପୁଂ ( ନର୍ମ୍ମନ୍=କେଳି+ଦା ଧାତୁ=ଦାନକରିବା+କର୍ତ୍ତୃ. ଅ )—୧ । ନର୍ମ୍ମସଚିବ; କ୍ରୀଡ଼ାସହଚର;
Narmmada
(ନର୍ମଦ—ଅନ୍ୟରୂପ) ଲୀଳାସହଚର—1. Boon companion; playmate.
(ନର୍ମ୍ମଦା—ସ୍ତ୍ରୀ)
୨ । ବିଦୂଷକ; ଭଣ୍ଡ—2. A jester; a buffoon.
ସଂ. ବିଣ—୧ । କୌତୁକପ୍ରଦ—1. Giving amusement.
୨ । ଆନନ୍ଦପ୍ରଦ—2 Gladdening; pleasure-giving.

**ନର୍ମ୍ମଦା**—ସଂ. ବି. ସ୍ତ୍ରୀ ( ନର୍ମଦ+ସ୍ତ୍ରୀ. ଆ )—୧ । ବିନ୍ଧ୍ୟ ପର୍ବତରୁ ଉତ୍ପନ୍ନ ହୋଇ ଆରବସାଗରରେ ପଡ଼ିଥିବା ନଦୀ-
Narmmadā
(ନର୍ମ୍ମଦା—ଅନ୍ୟରୂପ) ବିଶେଷ; ରେବା ନଦୀ ( ତୀର୍ଥବିଶେଷ )—
1. The Nerbudda river rising from the Bindhyas and falling into the Arbian sea

ନର୍ମଦାରେ ପଡ଼ୁକୁ ଯେ ଦେବ ଜଳଦାନ
ତାହା ସୁକୃତ କହି ନ ପାରେ ବଦନ । କୃଷ୍ଣସିଂହ. ମହାଭାରତ. ବନ ।

[ଦ୍ର—ଏହା ବିନ୍ଧ୍ୟପର୍ବତର ଅମରକଣ୍ଟକରୁ ବାହାରି ପଶ୍ଚିମଗାମୀ ହୋଇ କାମ୍ବେ ଉପସାଗରରେ ପଡ଼ିଅଛି । ନର୍ମଦା ନଦୀ ସମ୍ବନ୍ଧେ ଗୋଟିଏ ପୌରାଣିକ ଉପାଖ୍ୟାନ ଓଡ଼ିଆ ନୃସିଂହପୁରାଣରେ ଲେଖା ଅଛି । ନର୍ମ୍ମଦା ବେଶ୍ୟା କୁଳରେ ଜନ୍ମଗ୍ରହଣ କରି ବେଶ୍ୟାବୃତ୍ତି କରୁଥିଲା । କିନ୍ତୁ ଦୃଢ଼ ନିୟମ କରିଥିଲା ଯେ କୌଣସି ପୁରୁଷ ସକାଳେ ତା ନିକଟରେ ଉପସ୍ଥିତ ହୋଇ, ତାକୁ ଯାହା ଦେବ ସେଥିରେ ସେ ସନ୍ତୁଷ୍ଟ ହୋଇ ସେ ଦିନସାକ ତାଙ୍କୁ ସ୍ୱାମୀପରି ସେବା କରିବ । ତାହାର ଏହି ବ୍ରତ ଭାଙ୍ଗିବାରେ ଦେବତାମାନେ ଅକୃତକାର୍ଯ୍ୟ ହୋଇ ତାହାକୁ ବର ଦେଲେ ଯେ ସେ ପର ଜନ୍ମରେ ନର୍ମ୍ମଦା ନାମ୍ନୀ ନଦୀରୂପରେ ଗୋଟିଏ ପ୍ରଧାନ ତୀର୍ଥରେ ପରିଣତ ହେବ ।

ପୂର୍ବୋକ୍ତ ସପ୍ତତୀର୍ଥ ( ଗଙ୍ଗା, ଯମୁନା, ଗୋଦାବରୀ, ସରସ୍ୱତୀ, ନର୍ମ୍ମଦା, ସିନ୍ଧୁ, କାବେରୀ) ମଧ୍ୟରୁ ଏହା ଅନ୍ୟତମ । ପଶ୍ଚିମଗାମୀ ଅନ୍ୟ ସ୍ରୋତମାନଙ୍କୁ ନଦ ବୋଲାଯାଏ । କେବଳ ପଶ୍ଚିମଗାମିନୀ ନର୍ମ୍ମଦା ନଦୀ ନାମରେ ଖ୍ୟାତ । ]

୨ । ପୃକ୍କା; ପିଡ଼ଙ୍ଗ ଶାଗ—2 A pot-herb; Trigonalla Corniculata
୩ । କୁଟ୍ଟନୀ; ଦୂତୀ—3. A panderess; a female go-between.
୪ । (ନାମ) ଏକ ଗନ୍ଧର୍ବ ସ୍ତ୍ରୀ—
4. Name of a Gandharba woman.
[ ଦ୍ର—ଏ କେତୁମତୀ, ସୁନ୍ଦରୀ ଓ ବସୁଦାଙ୍କ ମାତା ଥିଲେ । ]
ସଂ. ବିଣ. ସ୍ତ୍ରୀ—ଲୀଳାଦାୟିନୀ—
Giving amusement.

ବିହରି ନର୍ମଦା ଘେନି ନର୍ମଦା ।
ବାହୁଦା ପ୍ଲବନେ କାନ୍ତ ବାହୁଦା । ଉପେ. ବୈଦେହୀଶବିଳାସ ।

**ନର୍ମ୍ମଦା ଦେବୀ**—ଦେ. ବି. ସ୍ତ୍ରୀ. (ନାମ)—ଉଚ୍ଚଶିକ୍ଷିତା ଆଧୁନିକ ଓଡ଼ିଆ ଲେଖିକା—A modern educated Oriya writer.
Narmmadā debi
(ନର୍ମଦା ଦେବୀ—ଅନ୍ୟରୂପ) [ ଦ୍ର—ଏ 'ପ୍ରସାଦ' ନାମରେ ଖଣ୍ଡିଏ ଉପାଦେୟ ଗଳ୍ପ ପୁସ୍ତକ ଲେଖି ଅଛନ୍ତି (ଭାରତୀ. ଉତ୍କଳ ଇତିହାସ) । ଏ ଶ୍ରୀଯୁକ୍ତ ବିଶ୍ୱନାଥ କରଙ୍କ ଜ୍ୟେଷ୍ଠା କନ୍ୟା । ଏ ବି. ଏ. ପାଶ କରି ଉତ୍କଳ ସାହିତ୍ୟରେ ସମୟ ସମୟରେ ଅନେକ ଗଳ୍ପ ଲେଖିଅଛନ୍ତି । ଏ ଉତ୍କଳର ଦ୍ୱିତୀୟ ସ୍ତ୍ରୀ ଗ୍ରାଜୁଏଟ୍ । ]

**ନର୍ମ୍ମଦେଶ୍ୱର**—ନର୍ମଦା ନଦୀ ଗର୍ଭରୁ ମିଳିବା ଏକପ୍ରକାର ଅଣ୍ଡାକାର ଶିବଲିଙ୍ଗ—A kind of oval peeble found in the bed of the Nerbudda river.
Narmmadeśwara

[ ଦ୍ର—ଏହା ସ୍ଫଟିକ ପରି ଶୁଭ୍ର ହଳଦୀ ନାଲି ବା କଳା ରଙ୍ଗର ମିଳେ । ପୁରାଣାନୁସାରେ ଏ ଲିଙ୍ଗର ପୂଜାରେ ବିଶେଷ ମାହାତ୍ମ୍ୟ ଅଛି—ହି. ଶ. । ]

**ନର୍ମ୍ମଦ୍ୟୁତି**—ସଂ. ବିଣ. ପୁଂ. ଓ ସ୍ତ୍ରୀ. (ନର୍ମ୍ମନ୍+ଦ୍ୟୁତି; ବହୁବ୍ରୀହି)—
Narmmadyuti ୧ । ବିଳାସୀ—1. Addicted to luxury.
(ନର୍ମଦ୍ୟୁତି—ଅନ୍ୟରୂପ) ୨ । କୌତୁକୀ—2. Merry.
୩ । ପରିହାସକ—3. Jesting; sportive.

**ନର୍ମ୍ମସଚିବ**— ସଂ. ବି. ପୁଂ. (ନର୍ମ୍ମନ୍ + ସଚିବ)—୧ । ରାଜାଙ୍କର ବିଳାସ
Narmmasachiba ବସ୍ତୁ ଯୋଗାଇବା ମନ୍ତ୍ରୀ ଓ ବିଳାସାର୍ଥ ଅୟୋଜନକାରୀ ମନ୍ତ୍ରୀ—1. A minister of sports.
ନର୍ମସଚିବ, ନର୍ମ୍ମସଖା, ନର୍ମ୍ମସହଚର, ନର୍ମସୁହୃଦ } ଅନ୍ୟରୂପ
୨ । କ୍ରୀଡ଼ା ସହଚର—2. Playmate.
ନର୍ମ୍ମସଚିବା, ନର୍ମ୍ମସଖୀ, ନର୍ମ୍ମସହଚରୀ } ସ୍ତ୍ରୀ
୩ । ସାଙ୍ଗ—3 Boon companion.
୪ । ରସିକ; ପ୍ରଣୟୀ—4. Lover; a gallant.
୫ । ଭଣ୍ଡ, ବିଦୂଷକ—5. A buffoon; a fool; a jester.
୬ । କୁଟୁଣୀ; ଭଡ଼ୁଆ—6. A panderer.

**ନର୍ମ୍ମସାଚିବ୍ୟ**— ସଂ. ବି (ନର୍ମସଚିବ + ଭାବାର୍ଥେ ଯ)—
Narmmasāchibya ନର୍ମ୍ମସଚିବର କାର୍ଯ୍ୟ—The post or act of a panderer
(ନର୍ମସଚିବ୍ୟ—ଅନ୍ୟରୂପ)

**ନର୍ମ୍ମା**—ବୈଦେ. ବିଣ. (ଫା. ନର୍ମ୍)—ନରମ୍—Soft.
Narmmā ନରମା **नरमा** (ନର୍ମା—ଅନ୍ୟରୂପ)

**ନର୍ମ୍ମାଦୀ**—ଦେ. ବିଣ. (ବିପରୀତ ସହଚର ଶବ୍ଦ, ସଂ. ନର ଓ ମାତୃ)—
Narmmādi ନର ଓ ମାଈ; ଅଣ୍ଡିରା ଓ ମାଈ—
(ନର୍ମାଦୀ—ଅନ୍ୟରୂପ) Male and female.
ନର ମାଦୀ ଦେ. ବି—ଜୀବମିଥୁନ; ଦ୍ୱନ୍ଦ୍ୱ—
**नर मादी** A pair or couple of animals.

**ନର୍ମ୍ମାଲ୍ ଟ୍ରେଣ୍ଡ୍**—ବୈଦେ. (ଇଂ) ବିଣ. (ନର୍ମାଲ + ଟ୍ରେନ୍ଡ୍)—
Narmmāl trend ନର୍ମ୍ମାଲ୍‌ସ୍କୁଲରେ ଶିକ୍ଷାପ୍ରାପ୍ତ (ଶିକ୍ଷକ)—
(ନର୍ମାଲ ଟ୍ରେଣ୍ଡ—ଅନ୍ୟରୂପ) Normal trained (teacher).

**ନର୍ମ୍ମାଲ୍ ଟ୍ରେନିଙ୍ଗ୍**—ବୈଦେ. (ଇଂ) ବି—ନର୍ମ୍ମାଲସ୍କୁଲରେ ଶିକ୍ଷକମାନଙ୍କୁ
Narmmāl trening ଶିକ୍ଷା ଦେବାପାଇଁ ଶିକ୍ଷା ଦିଆଯିବା—
ନର୍ମାଲ୍ ଟ୍ରେନିଙ୍ଗ୍, ନର୍ମ୍ମା(ର୍ମ୍ମା)ଲ ଟ୍ରେନିଂ } ଅନ୍ୟରୂପ Normal training; the training of a teacher in a Normal School.
**नर्मालटेनिङ्ग**
**नर्मालट्रेनिं** ବୈଦେ. (ଇଂ) ବିଣ—ନର୍ମ୍ମାଲ ସ୍କୁଲରେ ଶିକ୍ଷାପ୍ରାପ୍ତ (ଶିକ୍ଷକ)—Normal trained (teacher).

**ନର୍ମ୍ମାଲ୍ ସ୍କୁଲ**—ବୈଦେ. (ଇଂ)—ବି—ମଧ୍ୟମ ଶ୍ରେଣୀସ୍ଥ ବିଦ୍ୟାଳୟ-
Narmmāl skul ମାନଙ୍କରେ ଶିକ୍ଷକତା କରିବାକୁ ଉପଯୁକ୍ତ ପଣ୍ଡିତ ଯେଉଁଠାରେ ଶିକ୍ଷିତ ହୁଅନ୍ତି—
ନର୍ମାଲସ୍କୁଲ, ନର୍ମ୍ମାଲବିଦ୍ୟାଳୟ } ଅନ୍ୟରୂପ Normal School; a school for training teachers for secondary schools.
**नर्मालस्कुल**
**नार्मालस्कूल**

[ ଦ୍ର—ବର୍ତ୍ତମାନ ଏହାର ନାମ ଟିଚର ଟ୍ରେନିଙ୍ଗ୍ (Teacher Training) ବା ସେକେଣ୍ଡେରି ଟ୍ରେନିଙ୍ଗ୍ ସ୍କୁଲ (Secondary Training school) ପ୍ରାଥମିକ ବା ପ୍ରାଇମେରି ସ୍କୁଲର ଶିକ୍ଷକ ତାଲିମ୍ କରିବା ସ୍କୁଲକୁ ଗୁରୁଟ୍ରେନିଙ୍ଗ୍ ବା ଏଲିମେଣ୍ଟାରି ଟ୍ରେନିଙ୍ଗ୍ (Elementary Training) ସ୍କୁଲ କୁହାଯାଏ । ଇଂରାଜୀ ସ୍କୁଲର ଭାବୀ ଶିକ୍ଷକମାନେ ଟ୍ରେନିଙ୍ଗ୍ କଲେଜରେ ଶିକ୍ଷା ପାଆନ୍ତି । ପୂର୍ବେ ନର୍ମାଲ ସ୍କୁଲକୁ ପଣ୍ଡିତ ଟ୍ରେନିଙ୍ଗ୍ ମଧ୍ୟ କୁହାଯାଉ ଥିଲା । ]

**ନଲ୍ (ଧାତୁ)**—ସଂ—୧ । ବନ୍ଧନ କରିବା—1 To bind.
Nal (root) ୨ । ସାପ୍ତି ପାଇବା—2 To shine.
୩ । ବାସିବା—3. To smell (Apte).

**ନଲ୍**—ପ୍ରାଦେ. (ସିଂହଭୂମ) ବି—ଓଠ—
Nal Lip.

**ନଲ୍‌ତା**—ପ୍ରାଦେ. (ସମ୍ବଲପୁର) ବି—ନଳିତା (ଦେଖ)
Nal-tā Nalitā (See)

**ନଲ୍‌ତାପଟ୍**—ପ୍ରାଦେ. (ସମ୍ବଲପୁର) ବି—ଝୋଟ—
Nal-tāpat Jute.

**ନଳ**—ସଂ. ବି (ନଲ୍ ଧାତୁ = ବନ୍ଧନ କରିବା + କର୍ତ୍ତୃ. ଅ)—
Nala ୧ । ଇକଡ଼ି; ବାଘ ନଳ; କାଣ୍ଡଶର; ଏକପ୍ରକାର ଘାସ—1 A kind of reed; Phragmites Karka Arundo Tibialis.
[ସଂ. ନାମ; ନଲ, ପୋଟଗଲ ଶୂନ୍ୟ ମଧ୍ୟ, ଧମନ
ମ. ନଲ, ଦେବନଲ
ତେ କକ୍କେଶଗଡ୍ଡି, ଭୁଙ୍ଗୁସୁରୁ
ଗୁ ନାଲି
ଖାଗଡ଼ା; ଖାକଡ଼ା
**नरकट, नरसल**
ପୂର୍ଣ୍ଣ ଗର୍ମ୍ଭଲ ଯୋଉ ଦେଶେ; ପୂରିତ ନଳ ଭୂଷକାଶେ । ଜଗନ୍ନାଥ, ଭାଗବତ
[ ଦ୍ର—ଏ ଗଛ ତୃଣଜାତୀୟ ଓ ଏଥିର ପତ୍ର ବାଉଁଶ ପତ୍ର ପରି । ଏହା ସନ୍ତସନ୍ତିଆ ଭୂଇଁ ବା ନଦୀକୂଳ ଓଦା ଭୂଇଁରେ ଜନ୍ମେ । ଏହାର ପତ୍ରସ୍ଥାନ କାଣ୍ଡ ବା ଦଣ୍ଡ ଦେଖିବାକୁ ବେତ ପରି ଓ ତହିଁ ଭିତର ପୋଲ । ଏଥିରେ ତାଟି ହୁଏ, ହେଁସ ବୁଣାଯାଏ ଓ ଘର ଛପରି ହୁଏ । ଏହାର କାଣ୍ଡରୁ ମଧ୍ୟ କାଠି କଲମ ହୁଏ । ବୈଦ୍ୟଶାସ୍ତ୍ର ମତରେ ଏହା ମଧୁରତିକ୍ତକଷାୟରସ ଓ ଉଷ୍ଣବୀର୍ଯ୍ୟ; ଏହା କଫ, ରକ୍ତଦୋଷ, ହୃଦ୍‌ରୋଗ, ବସ୍ତିଗତ ଦୋଷ, ଯୋନିବ୍ୟାପତ୍, ଦାହ, ପିତ୍ତ ଓ ବିଷର୍ପନାଶକ ।]

୨ । ଚୁଙ୍ଗା; ଭିତରରେ ପୋଲ ଥିବା ସରୁ ଓ ଲମ୍ବ ଦଣ୍ଡ (ପ୍ରକୃତିବାଦ)—2. Pipe; a tube; a long hollow cylender.
୩ । ଶାଗ, ସାରୁ ଆଦି ଗୁଳ୍ମଗଛ ବା ଲତାର ପତ୍ରସ୍ଥାନ ଶୂନ୍ୟଗର୍ଭ କାଣ୍ଡ ବା ଡାଙ୍ଗ—3. The hollow stalk of pot-herbs and other plants.
୪ । ମୃଣାଳ; ପଦ୍ମନାଡ଼—4. The stem or stalk of lotus plants.
୫ । ପଦ୍ମ—5 Lotus.
୬ । ସୁଗନ୍ଧ; ସୌରଭ—6. Flavour; smell.
୭ । ଦମୟନ୍ତୀଙ୍କ ସ୍ୱାମୀ; ନିଷଧରାଜ—8 The king of Nishadha; husband of Damayanti.

[ ଦ୍ର—ଏ ନିଷଧ ଦେଶର ଚନ୍ଦ୍ରବଂଶୀ ରାଜା ବୀର ସେନଙ୍କ ପୁତ୍ର ଥିଲେ । ଏ ଖୁବ ସୁନ୍ଦର ଓ ଗୁଣବାନ ଥିଲେ । ଏ ଅଶ୍ୱ ପରୀକ୍ଷା, ଅଶ୍ୱ ସଞ୍ଚାଳନ, ବିନା ଅଗ୍ନି ସାହାଯ୍ୟରେ ଅନ୍ନାଦି ପାକ, ବୃକ୍ଷର ପତ୍ର ସଂଖ୍ୟା ଗଣନା ଆଦିରେ ଖୁବ ନିପୁଣ ଥିଲେ । ବିଦର୍ଭ ଦେଶର ରାଜା ଭୀମସେନଙ୍କ କନ୍ୟା ଦମୟନ୍ତୀ ଓ ନଳ ଦୁହେଁ ଦୁହିଙ୍କର ରୂପ ଗୁଣର ବର୍ଣ୍ଣନା ଶୁଣି ପରସ୍ପର ପ୍ରତି ଏକାନ୍ତ ଆସକ୍ତ ହେଲେ, ଓ ଗୋଟିଏ ହଂସ ଦ୍ୱାରା ପରସ୍ପର ମଧ୍ୟରେ ସମ୍ବାଦ ଆଦାନପ୍ରଦାନ କଲେ ଓ

ଦମୟନ୍ତୀ ମନେ ମନେ ନଳଙ୍କୁ ପତିରୂପେ ବରଣ କଲେ । ଇନ୍ଦ୍ର, ଯମ, ଅଗ୍ନି ଓ ବରୁଣ ଦମୟନ୍ତୀଙ୍କ ରୂପଗୁଣରେ ମୁଗ୍ଧ ହୋଇ ଦମୟନ୍ତୀଙ୍କ ବରପ୍ରାର୍ଥୀ ହେଲେ ଏବଂ ନଳଙ୍କୁ ଦୂତ ରୂପେ ନିଯୁକ୍ତ କରି ଦମୟନ୍ତୀଙ୍କୁ ବିବାହ କରିବା ପାଇଁ ଦମୟନ୍ତୀଙ୍କଠାରୁ ସମ୍ବାଦ ନେଲେ; ଦମୟନ୍ତୀ ଏଥିରେ ଅସ୍ୱୀକାର କରି କହିଲେ 'ମୋ ଚିତ୍ତ ନଳଙ୍କୁ କାମନା କରୁଅଛି, ନଳଙ୍କୁ ନ ପାଇଲେ ମୁଁ ଅନଳ କାମନା କରିବି' । ସ୍ୱୟଂବର ସଭାରେ ଉକ୍ତ ଦେବତାମାନେ ନଳ ରୂପ ଧାରଣ କରି ଉପସ୍ଥିତ ହେଲେ । ଦମୟନ୍ତୀ ପ୍ରକୃତ ନଳ ଓ ନଳ ରୂପଧାରୀ ପ୍ରଚ୍ଛନ୍ନ ଦେବତାମାନଙ୍କ ମଧ୍ୟରୁ ପ୍ରକୃତ ନଳଙ୍କୁ ପ୍ରଥମେ ଚିହ୍ନି ନ ପାରି ଦୋଧାଇରେ ପଡ଼ିଲେ । ପରେ ଦେବତାମାନଙ୍କୁ ଧର୍ମର ଦୋହାଇ ଦେଇ କାତର ପ୍ରାର୍ଥନା କରିବାରୁ ଦେବତାମାନଙ୍କ ସୂଚନାକ୍ରମେ ଦମୟନ୍ତୀ ନଳଙ୍କୁ ଉପସ୍ଥିତ ଦେବତାମାନଙ୍କଠାରୁ ବାରି ନେଲେ ଓ ସ୍ୱୟଂବର ସଭାରେ ନଳଙ୍କଠାରେ ବରଣମାଳା ଅର୍ପଣ କଲେ । ଦେବତାମାନେ ବିଫଳମନୋରଥ ହୋଇ ସ୍ୱୟଂବର ସଭାରୁ ଫେରିଲାବେଳେ କଳି ସେମାନଙ୍କୁ ବାଟରେ ଭେଟି ସେମାନଙ୍କଠାରୁ ଏହା ଶୁଣି ନଳଙ୍କ ଉପରେ କୋପ କଲେ ଓ ସେହି କୋପ ଯୋଗୁଁ କଳି ନଳଙ୍କ ଦେହରେ ପ୍ରବେଶ କରି ନଳଙ୍କୁ ଦ୍ୟୂତାସକ୍ତ କରାଇଲେ ଓ ଶେଷରୁ ନଳ ରାଜ୍ୟ ହାରି ସସ୍ତ୍ରୀକ ବନବାସୀ ହେଲେ । ଦୈବଦୁର୍ଯୋଗରୁ ନଳ ନିଜର ପିନ୍ଧା ବସ୍ତ୍ର ମଧ୍ୟ ହରାଇଲେ । ବନରେ ଦମୟନ୍ତୀ ନିଦ୍ରିତା ଥିବାବେଳେ ତାଙ୍କ ଲୁଗାରୁ ଖଣ୍ଡେ କାଟି ନଳ ସ୍ୱୟଂ ପିନ୍ଧି ଦମୟନ୍ତୀଙ୍କୁ ଛାଡ଼ି ଚାଲିଗଲେ । ଦମୟନ୍ତୀ ବହୁ ଦୁଃଖ ଭୋଗ କରି ଶେଷରେ ପିତୃ ଗୃହରେ ଆଶ୍ରୟ ନେଲେ । ଏଣେ ନଳ ଛଦ୍ମବେଶରେ ଅଯୋଧ୍ୟାର ରାଜା ଋତୁପର୍ଣ୍ଣଙ୍କ ସାରଥି ହେଲେ । ଦମୟନ୍ତୀ ଦେଶଦେଶ ଖୋଜାଇ ନଳ ଋତୁପର୍ଣ୍ଣଙ୍କ ନିକଟରେ ଥିବାର ପତ୍ତା ପାଇଲେ ଓ ନଳଙ୍କୁ ନିଜର ପିତ୍ରାଳୟକୁ ଅଣାଇବା ପାଇଁ ନିଜର ଗୋଟିଏ କପଟ ସ୍ୱୟଂବରର ଘୋଷଣା କରାଇଲେ । ଋତୁପର୍ଣ୍ଣ ସେହି ସ୍ୱୟଂବରରେ ଯୋଗ ଦେବା ପାଇଁ ନିଜର ସାରଥି ନଳଙ୍କୁ ସଙ୍ଗେ ନେଇ ବିଦର୍ଭକୁ ଆସିଲେ । ସେଠାରେ ସ୍ୱାମୀ ସ୍ତ୍ରୀ ପରସ୍ପରଙ୍କୁ ଚିହ୍ନି ମିଳିତ ହେଲେ । ନଳ ପୁଣି ନିଜ ରାଜ୍ୟ ପାଇଲେ ଓ ଦମୟନ୍ତୀଙ୍କ ସଙ୍ଗେ ଜୀବନଯାପନ କଲେ । ]

୯ । ନଦବିଶେଷ ( ହି. ଶବ୍ଦସାଗର )—
9. Name of a large and shallow river.

୧୦ । ରାମଚନ୍ଦ୍ରଙ୍କ ସଙ୍ଗେ ଲଙ୍କା ଅଭିଯାନରେ ଯାଇଥିବା ବାନର ସେନାପତି —10. Name of a monkey general who accompanied Rāmachandra when he invaded Laṅkā

[ ଦ୍ର—ଏ ଘୃତାଚୀ ଅପ୍ସରାର ଗର୍ଭରେ ବିଶ୍ୱକର୍ମାଙ୍କ ଔରସରେ ଜନ୍ମିଥିଲେ । ଏହି ବାନର ସେନାପତିଙ୍କର ଗୋଟିଏ ଅସାଧାରଣ ଗୁଣ ଥିଲା । ଏ ଯେଉଁ ପଥର ଖଣ୍ଡକ ସ୍ପର୍ଶ କରୁଥିଲେ, ତାହା ହାଲୁକା ହୋଇ ପାଣିରେ ଭାସୁଥିଲା । ଏ ପଥରମାନଙ୍କୁ ସ୍ପର୍ଶ କରିବାରୁ ସେହି ଭାସମାନ ପଥରଦ୍ୱାରା ରାମଚନ୍ଦ୍ର ସମୁଦ୍ରରେ ସେତୁବନ୍ଧ ବନାଇ ସମୁଦ୍ରକୁ ପାର ହୋଇ ଲଙ୍କା ଗଡ଼ରେ ପହଞ୍ଚିଥିଲେ । ]

୧୧ । ପିତୃଲୋକବିଶେଷ—11. One of the abodes of the spirits of the departed ancestors ( according to the Hindus ).

୧୨ । ଶ୍ରେଷ୍ଠ ଗଛର ପୋଲା ଡାଙ୍ଗ—
12. Hollow stalk of plants.

୧୩ । ରଙ୍ଗ, ବର୍ଣ୍ଣ—13 Colour.

୧୪ । ବିପ୍ରଚିତ୍ତି ରାକ୍ଷସର ଚତୁର୍ଥ ପୁତ୍ର ଦାନବବିଶେଷ—
14. Name of a demon, the fourth son of Biprachitti.

୧୫ । ରାଜା ଯଦୁଙ୍କର ଏକ ପୁତ୍ର—
15. The name of a son of King Jadu.

୧୬ । ପ୍ରାଚୀନକାଳର ଏକପ୍ରକାର ଚର୍ମାନଦ୍ଧ ଯୁଦ୍ଧବାଦ୍ୟ;, ଯାହା ଘୋଡ଼ା ପିଠିରେ ରଖାଯାଇ ଯୁଦ୍ଧବେଳେ ଯୁଦ୍ଧକ୍ଷେତ୍ରରେ ବାଦିତ ହେଉଥିଲା ( ହି. ଶବ୍ଦସାଗର )—
16. A kind of leather-bound war drum used in ancient India.

**ହାଁଡ** **ଲଗୀ ବାଁସ** ଦେ. ବି.—୧ । ହାତ ଓ ଗୋଡ଼ର ନଳହାଡ଼—
1. The radius or outer bone of the forearm; the fibula or outer bone of the leg between the knee and ankle.

୨ । ଲଠା; ଜମି ମାପିବାର ଦଣ୍ଡ; ପଦିକା—
2. A rod for measuring land.

[ ଦ୍ର—ଭିନ୍ନ ଭିନ୍ନ ଅଞ୍ଚଳରେ ଭିନ୍ନ ଭିନ୍ନ ଲମ୍ବର ନଳ ବା ପଦିକା ବ୍ୟବହୃତ ହୁଏ । ତେରଣ ଦସ୍ତି ପଦିକାର ଲମ୍ବ ୭ ହାତ କାଣିଏ = ଫୁଟ ୧୦, ୫ ଇଞ୍ଚ ଓ ଏକ ଯବ । ବାଇଶି ଦସ୍ତି, ଚଉଦ ଦସ୍ତି ଓ ବାର ଦସ୍ତି ପଦିକା ମଧ୍ୟ ଚଳେ ।]

୩ । ୪୦୦ ହାତ ଭୂମିର ଲମ୍ବ—3. A land-length of 400 cubits; a furlong.

୪ । ନଳା ବା ଜଳନିଃସରଣ ପ୍ରଣାଳୀ—
4. Water pipe.

୫ । ହୁକାର ନଳୀ; ଗୁଡ଼ାଖୁ ଧୂଆଁ ଟାଣିବାର ନଳୀ—
5. Smoking pipe; the pipe of a narghile.

୬ । ବନ୍ଧୁକର ନଳୀ—
6. The tube or barrel of a gun.

୭ । କଣ୍ଠ ନାଳୀ; ଶ୍ୱାସ ନଳୀ—
7 Trachea; wind pipe.

୮ । ବଣିଆମାନଙ୍କର ନିଆଁ ଫୁଙ୍କିବାର ନଳୀ—
8. Goldsmith's blow pipe.

**ସାତନଳ** **ନର; ସର** ୯ । ଚେଳା ଚଢ଼େଇ ଧରିବା ପାଇଁ ବ୍ୟବହାର କରିବା ଲମ୍ବ ବାଉଁଶ ବାଡ଼ି—9. A set of telescopic bamboo staffs used by fowlers to catch birds.

[ଦ୍ର—ଚେଲାମାନଙ୍କର ବ୍ୟବହୃତ ନଳ କାଠି ୭ କ୍ରମ୍। ୮ ଖଣ୍ଡ ସରୁଆ ବାଉଁଶ ଅଟେ । ଏଥିର ଖଣ୍ଡିକର ମୁଣ୍ଡକୁ ଅନ୍ୟ ଖଣ୍ଡକର ଅଗରେ ଯୋଖି ଏ କାଠିମାନଙ୍କୁ କ୍ରମଶଃ ଲମ୍ବକରିବାକୁ ହୁଏ ।

ପ୍ରତି ଖଣ୍ଡର ଦୈର୍ଘ୍ୟ ୩ ହାତ । ସର୍ବ ଶେଷ କାଠିର ଅଗରେ ଖଣ୍ଡିଏ ଅଠାଯୁକ୍ତ କାଠି ଲମ୍ବା ମୁନଅଁ କେଞ୍ଚା ଲାଗିଥାଏ । କେଳାମାନେ ତଳେ ଠିଆ ହୋଇ ଏହି ନଳମାନଙ୍କୁ ଯୋଖି ଯୋଖି ଅଗ୍ରରେ ଥିବା ସେହି ଅଠା କାଠି ବା କେଞ୍ଚାକୁ ଗଛ ଡାଳରେ ବସିଥିବା ଚଢେଇର ପେଟରେ ମାର ଦେବାରୁ ତହିଁରେ ଚଢ଼େଇ ଲାଗିଯାଏ ଓ ଧରାପଡ଼େ । ତତ୍ପରେ ଯୋଖା ହୋଇଥିବା ନଳ କାଠିମାନଙ୍କୁ କ୍ରମଶଃ ଖସାଇ ଆଣି ଖଣ୍ଡକର ମୂଳରୁ ଅନ୍ୟ ଖଣ୍ଡର ଅଗକୁ ହୁଗାଳ ଦେଲେ ନଳ କାଠିମାନ ପୂର୍ବ ପର ଖଣ୍ଡ ଖଣ୍ଡ ହୋଇ ଯାଏ ।]

୧୦ । ନଳ ବା ପଦିକା ଦ୍ୱାରା ଦୀର୍ଘ ଓ ପ୍ରସ୍ଥ ମାପ କରା ଯାଇଥିବା ଭୂମିର କ୍ଷେତ୍ରଫଳ ସ୍ଥିରୀକରଣରୂପ ଗାଣିତିକ-ପ୍ରକ୍ରିୟା—10. The arithmetical system of finding out the area of a land measured with a rod by multiplying the length with the breadth.

সাবাকালি খেসরা

[ ଦ୍ର—ଦୀର୍ଘ ଏତେ ନଳ ପ୍ରସ୍ଥ ଏତେ ନଳ ହୋଇଥିବା ଜମିର କ୍ଷେତ୍ରଫଳ ମାଣ, ଗୁଣ୍ଠ, ବିଶ୍ୱାରେ କେତେ ? ଏହା ସ୍ଥିର କରିବା ନିମନ୍ତେ ଗୁଡ଼ିଏ ସୂତ୍ର ଅଛି । ସେହି ସୂତ୍ରମାନଙ୍କ ସାହାଯ୍ୟରେ ଜମିର କ୍ଷେତ୍ରଫଳ ସହଜରେ ବାହାରେ । ୪ ନଳରେ ଏକ କାହାଣ; ୧ ନଳ=୪ ପଣ; ୧ ପଣ= ୨୦ ଗଣ୍ଡା, ୧ ଗଣ୍ଡା=୪ କଡ଼ା ନଳ ଭାଙ୍ଗିବା ପ୍ରଣାଳୀ ଅନେକ ପ୍ରକାର—ଯଥା—ହାତ ନଳ, ଦସ୍ତି ନଳ, ସମ ନଳ ବା ସାଧା ନଳ ଓ ଦୀର୍ଘ ପ୍ରସ୍ଥ ଜଣା ନ ଥିଲେ ଜମିର କ୍ଷେତ୍ରଫଳ ବାହାର କରିବା ଜାଣି ବା ବିଷମ ନଳ । ନଳ ଭାଙ୍ଗିବାର ଗୋଟିଏ ପୁରୁଣା ସୂତ୍ର ଏହି—

ପଣକୁ ପଣ ପାଞ୍ଚକଡ଼ା ମାଗଣ, ପଣ ଗଣ୍ଡା ଅଷ୍ଟ ଦାଢ଼ି ।
ଗଣ୍ଡା ଗଣ୍ଡା ଅଷ୍ଟ ବିଦାଢ଼ି ହୁଅଇ, ପଣ କଡ଼ା ବେନି ଦାଢ଼ି ।
ଏହି ରୂପେ କଡ଼ା ଗଣ୍ଡାକୁ ଗୁଣିଲେ, ହୁଅଇ ବିଦାଢ଼ି ବେନି ।
କଡ଼ାକୁ କଡ଼ାରେ ଗୁଣିଲେ ଜାଣିବ ବିଦାଢ଼ିର ଅର୍ଦ୍ଧ ଘେନି ।
କାହାଣ ସଙ୍ଗତେ ଯାହାକୁ ଗୁଣିବ ମୂଳ ତାର ସେହି ହୁଏ;
ଶିଷ୍ଟମାନଙ୍କର ପ୍ରୟୋଜନ ଅର୍ଥେ ଲୀଳାବତୀ ସୂତ୍ର କହେ ।"

ନଳଦ୍ୱାରା ମାପିବା ଜମିର ସ୍ମାରକ ଲିପି (field book) କୁ ଉଚ୍ଛିରଅ ବୋଲାଯାଏ । ]

**ନଳକ**—ସଂ. ବି ( ନଳ+ସାଦୃଶ୍ୟାର୍ଥେ. କ; ଅଥବା ନଳ+କୈ ଧାତୁ=ଦୀପ୍ତି ପାଇବା+କର୍ତ୍ତୃ. ଅ )—
Nalaka

୧ । ପବ; ବାଉଁଶ ଆଦିର ପବ ବା ପଗ—
1. An internode; the part of a bamboo or cane between two joints.

୨ । ହାତ ଓ ଗୋଡ଼ର ନଳ ହାଡ଼—
2. The long bones of the fore arm and leg; the radius of the arm and the fibula of the leg.

୩ । ନଳାକାର ଅସ୍ଥି—3. Tubulous bone.

୪ । କ୍ଷେତ ଗଛର ଶୂନ୍ୟଗର୍ଭ ଡାଙ୍ଗ ବା ଦଣ୍ଡ—
4. The hollow stalk of plants

**ନଳକନ୍ଦ**—ସଂ. ବି (ନଳ+କନ୍ଦ)—୧ । ଉଶୀର; ବେଣାଚେର—
Nalakanda
1. The fragrant root of Benā grass.

୨ । ପୁଷ୍ପମଧୁ—2. The honey of a flower.

**ନଳକଯନ୍ତ୍ର**—ସଂ. ବି (ଆଧୁନିକ ପ୍ରୟୋଗ; ନଳକ+ଯନ୍ତ୍ର; କେତେଗୁଡ଼ିଏ ନଳର ସମଷ୍ଟିରେ ଏହା ନିର୍ମିତ ଓ ବ୍ୟବହାର ନ ହେଲାବେଳେ ଗୋଟିଏ ନଳ ମଧ୍ୟରେ ଅନ୍ୟ ନଳକୁ ପୂରାଇ ଏହାକୁ ଛୋଟ କରାଯିବାରୁ ଏହି ନାମ)—ଦୂରବୀକ୍ଷଣ ଯନ୍ତ୍ର—Telescope
Nalaka jantra

**ନଳ କରିବା**—ଦେ. କ୍ରି—( ମାଦଳାପାଞ୍ଜି )—ନଳିବା; ଜମିକୁ ନଳ ବା ପଦିକାଦ୍ୱାରା ମାପିବା—To measure a plot of land with the measuring rod.
Nala karibā

**ନଳକାଠି**—ଦେ ବି—କେଳାଙ୍କ ନଳ—A set of telescopic tubular staffs of a fowler
Nalakāṭhi
সাতনলা **नरकाठी**

**ନଳକାଣ୍ଡ**—ଦେ. ବି—ନଳକାଠି (ଦେଖ)
Nalakāṇḍa — Nalakāṭhi (See).

ନଳକାଣ୍ଡ ଯୋଖିଲା କେଇ—ପ୍ରାଚୀ ନିର୍ଗୁଣମାହାତ୍ମ୍ୟ ।

**ନଳକିନୀ**—ସଂ. ବି (ନଳକ+ଇନ୍+ସ୍ତ୍ରୀ ଈ)—୧ । ଜଙ୍ଘ (ହି. ଶ)—
Nalakini
1. Thigh.

୨ । ଆଣ୍ଠୁର ଚକି ହାଡ଼—
2 The kneepan ( Apte ).

୩ । ଗୋଡ଼—3. The leg (Apte).

**ନଳକୀଳ**—ସଂ. ବି (୬ଷ୍ଠୀ ତତ୍, ନଳ=ଗୋଡ଼ର ନଳିହାଡ଼+କୀଳ)—ଆଣ୍ଠୁ—The knee (Apte).
Nalakila

**ନଳକୂବର**—ସଂ. ବି (ବହୁବ୍ରୀହି; ନଳ+କୁବର=ଶରୀର; ନଳ ସ୍ୱଜାଙ୍କ ପରି ଶରୀର ଯାହାର)—କୁବେରଙ୍କର ଏକ ପୁତ୍ର—Name of a son of Kubera.
Nalakūbara

[ ଦ୍ର—ଏ ଓ ଏହାଙ୍କ ଭାଇ ମଣିଗ୍ରୀବ ନାରଦଙ୍କ ଅଭିଶାପରୁ ଯାଆଁଳା ଅର୍ଜୁନ ଗଛ ହୋଇଥିଲେ । ଶ୍ରୀକୃଷ୍ଣ ଶୈଶବକାଳରେ ଏହି ଗଛ ଯୋଡ଼ିକୁ ଗୋଇଠାମାରି ଭାଙ୍ଗିଦେବାରୁ ଏ ଦୁହେଁ ଶାପ-ମୁକ୍ତ ହୋଇ ସ୍ୱର୍ଗକୁ ଗଲେ । ]

**ନଳ ଗୁଞ୍ଜିବା**—ଦେ. ବି—୧ । ( କେଳା ) ପକ୍ଷୀକୁ ଧରିବା ନିମନ୍ତେ ଏକାଧିକ ନଳକୁ ପରସ୍ପର ଯୁକ୍ତ କରିବା—1. ( said of a fowler ) To set the Nala staffs one at the end of another to catch a bird.
Nala guñjibā
সাতনলা গোঁজা
**नर जेड़ना**
(ନଳ ଯୋଖିବା—ଅନ୍ୟରୂପ)

୨ । ( ଲକ୍ଷଣାର୍ଥ ) ଉପାୟ ଉଦ୍ଭାବନ କରିବା—
2. ( fig ) To devise a plan.

**ନଳ ଡାକିବା**—ଦେ. କ୍ରି—ନଳରେ ଭୂମି ମାପ କରୁଥିବା ବ୍ୟକ୍ତି ମାପି-ମାପିକା ଯାଉ ଯାଉ ଯେତେ ନଳ ମାପିଲା ତାହା ଉଚ୍ଚସ୍ୱରରେ କହିବା—To call aloud the number of Nalas or measuring rod while engaged in measuring a land with the rod.
Nala ḍākibā

**ନଳଟି**—ଗ୍ରା. ବି. ସ୍ତ୍ରୀ—ଲଳିତାନାମ୍ନୀ ସ୍ତ୍ରୀର ଡାକ ନାମ—
Nalati Name for calling Lalitā.

**ନଳଟିଗିରି**—ଦେ. ବି—କଟକ ଜିଲ୍ଲାର ଯାଜପୁର ସବ୍‌ଡିଭିଜନର ଏକ
Nalatigiri ପାହାଡ଼ର ନାମ—Name of a hill in the Cuttack district.
[ ଦ୍ର—ଏହି ପାହାଡ଼ ଧାନମଣ୍ଡଳ ଷ୍ଟେସନଠାରୁ ୧୮ ମାଇଲ ଦୂରରେ ଅବସ୍ଥିତ । ଏଥିରେ ସ୍ତୂପ, ଗୁମ୍ଫା, ବୁଦ୍ଧଙ୍କ ମୂର୍ତ୍ତି ଓ ପାଲି ଭାଷାରେ ଅଶୋକଙ୍କ ଅନୁଶାସନ ଖୋଦିତ ହୋଇଅଛି । ]

**ନଳଦ**—ସଂ. ବି. ( ନଳ=ସୁଗନ୍ଧ+ଦା ଧାତୁ=ଦାନ କରିବା+କର୍ତ୍ତୃ.
Nalada ଅ )—୧ । ଜଟାମାଂସୀ—1 Indian spikenard;
( ନଳଦା—ଅନ୍ୟରୂପ ) Valanaria Jatāmāmsi.
୨ । ବେଣା ଚେର—
2. The root of the Benā grass.
ବଣାର ବୋଲାଇଲେ ବହୁତ ନଳଦ—କୃଷ୍ଣ ସଂ ହି, ମହାଭାରତ, ବନ ।
୩ । ପୁଷ୍ପକରଥ—
3. The mythological chariot Pushpaka.
୪ । ମକରନ୍ଦ—
4. The nectar of flowers; flower honey.
୫ । ଲାମଜ୍ଜକ ( ହ୍ରି. ଶ. ); ଗନ୍ଧବେଣା ନାମକ ତୃଣ—
5 The Juncus Odoratus ( grass )
ସଂ. ବି—ନଳଦାତା; ଯହିଁରୁ ସୁଗନ୍ଧ ବାହାରୁଅଛି—
Emitting a sweet smell.

**ନଳଦମ୍ବୁ**—ସଂ. ବି—ନିମ୍ବ ଗଛ ( ହ୍ରି ଶବ୍ଦସାଗର )—
Naladambu The Nima tree.

**ନଳଦା**—ସଂ ବି. ( ନଳଦ+ଆ )—ଜଟାମାଂସୀ—
Naladā Indian spikenard.

**ନଳନୀରୁହ**—ସଂ. ବି—ମୃଣାଳ; ପଦ୍ମନାଡ଼ ( ହ୍ରି. ଶବ୍ଦସାଗର )—
Naniruha The stalk of lotus.

**ନଳ ପକା(କେ)ଇବା**—ଦେ. କ୍ରି—ନଳବା; ନଳଦ୍ୱାରା ଭୂମି ମାପିବା—
Nala pakā(ke)ibā To measure a land with the rod.
ଲଗ୍‌ଗୀତେଜମି ମାପା **लग्गी माँजना, खेत नापना**

**ନଳପଟ୍ଟିକା**—ସଂ. ବି. ( ନଳ ପଟ୍ଟ=ଷୋଟ ବସ୍ତ୍ର+ସାଦୃଶ୍ୟାର୍ଥେ କ +ସ୍ତ୍ରୀ. ଆ )—
Nalapattikā
୧ । ବେରୁଆଁ ବେଁସ; କାଠିମସିଣା, ନଳର ଗୁନ୍ଥି—
1. A mat of reeds.
୨ । କାଣ୍ଡଶରର ଡାଟ—2 A partition or framework made of reeds.

**ନଳ ବଣ**—ଦେ. ବି. ( ସଂ. ନଳ ବନ )—
Nala bana ୧ । ନଳ ଗଛରେ ପୂର୍ଣ୍ଣ ଜଙ୍ଗଲ—
ନଲବନ 1. A jungle of reeds.
**नलबन** ୨ । ( ନାମ ) ଚିଲିକା ହ୍ରଦ ମଧ୍ୟସ୍ଥ ୧ ବର୍ଗମାଇଲ ବିସ୍ତୃତ ଦ୍ୱୀପବିଶେଷ—2. Name of an islet in the Chilkā lake ( in Orissa ).
[ ଦ୍ର—ଖରାଦିନରେ ଲୋକେ ଡଙ୍ଗା ନେଇ ଏହି ଦ୍ୱୀପକୁ ଯାଇ ସେଠାରୁ ନଳ ତୃଣ କାଟିଆଣି ଘର ଛାଉଣି କରନ୍ତି । ଏହି ଦ୍ୱୀପ ଚିଲିକା ଜଳର ପତନରୁ ଅଧିକ ଉଚ୍ଚ ନୁହେ । ଏହା ଚିଲିକାର ପଶ୍ଚିମ ଓ ଦକ୍ଷିଣାଂଶରେ ଅବସ୍ଥିତ । ଏଠାରେ ପକ୍ଷୀ ଶିକାର କରାଯାଏ ଓ ଏଠାରୁ ପ୍ରଚୁର ମାଛ ମରନ୍ତି; ଖରାଦିନେ ଏ ଦ୍ୱୀପ ଉପରେ ୧ଫୁଟ ବା ୨ ଫୁଟ ମାତ୍ର ପାଣି ଥାଏ । ]

**ନଳ ବନ**—ସଂ. ବି (ନଳ+ବନ; ୬ଷ୍ଠୀ ତତ୍)—ନଳ ଗଛର ଜଙ୍ଗଲ—
Nala bana A jungle of reeds.
ଦେ ବି—ନଳ ବଣ ( ଦେଖ )
Nalabana ( See ).

**ନଳ ଭାଙ୍ଗିବା**—ପଦକା ମାପରେ ଜମିର ଦୈର୍ଘ୍ୟ ଓ ପ୍ରସ୍ଥ ଜଣା ଥିଲେ,
Nala bhāngibā ତଦ୍ୱାରା ଜମିର କ୍ଷେତ୍ରଫଳ ସ୍ଥିର କରିବା—
সাবাকালি কৰা To find out the area of a land whose
**खेसरा करना** length and breadth (by rod measurement) are known

**ନଳ ମାପ**—ଦେ. ବି.—(ସଂ. ନଳ+ମାପ)—ନଳ ବା ପଦକାଦ୍ୱାରା
Nala māpa ଭୂମିର ମାପ ବା ଜରିପ—Measurement or
দাঁড়েতে মাপা survey of land with the measuring
**लगीनाप** rod.

**ନଳ ମୀନ**—ସଂ. ବି. (ନଳ+ମୀନ; ମ. ପ. ଲୋ; ନଳପରି ଦେଖାଯିବା
Nala mina ମୀନ)—ଚିଙ୍ଗୁଡ଼ି ମାଛ—Shrimp.

**ନଳା**—ଦେ. ବି.—(ସଂ. ନଳ)—୧ । ପାଣି ବହି ଯିବାର ନାଳ—
Nalā 1. Drain; gutter.
নালা ୨ । କୋଠା ଆଦି ଉଚ୍ଚ ସ୍ଥାନରୁ ତଳକୁ ପାଣି ଗଳିବା
**नल** ନିମନ୍ତେ ସ୍ଥାପିତ ନଳ—2. Water-pipe.
୩ । ପୋଲ ଆଦିର ଫୁକାର—3 An opening or arch in a bridge or culvert.
(ଯଥା—ଅଠରନଳା ପୋଲ ।)
নল ୪ । ବାଉଁଶ ଆଦିର ଏକ ପାଖ ଖୋଲା ଚୁଙ୍ଗା—
**नल** 4. A bamboo tube with one end open.
[ଦ୍ର—ଏଥିରେ ତେଲ ଆଦି ରଖା ଯାଏ ।]
দাগ ୫ । ନୋଳା; ବେତର ପ୍ରହାର ଯୋଗୁଁ ଦେହରେ ରହିବା
**दोदरा** ଲମ୍ବ ଚିହ୍ନ—5. A long mark left on the body after a cane-beating; stripe.
ପ୍ରାଦେ. (ଗଞ୍ଜାମ) ବି.—୧ । ଧାନଗଛର ରୋଗବିଶେଷ; ପେଟଁ-କାଳଆ ରୋଗ; କାହାଳଆ ରୋଗ—1. A pest affecting paddy plants.
୨ । ନଳା ପୋକ (ଦେଖ)—
2. Nalā poka (See)

**ନଳା(ଳେ)ଇବା**—ଦେ. କ୍ରି.—(ନଳବାର ଣିଜନ୍ତ)—ଅନ୍ୟ ବ୍ୟକ୍ତିଦ୍ୱାରା
Nalā(le)ibā ନଳ ଦ୍ୱାରା ଜମି ମାପ କରାଇବା—To cause a
মাপান land to be measured by another
**खेत नपाना** person with a measuring rod.

**ନଳାଦଣ୍ଡି** — ପ୍ରାଦେ. (ଗଞ୍ଜାମ) ବି.—ଯୂପଦଣ୍ଡି—The post driven
Nalā dandi in the centre of a tank.

**ନଳା ପାଣି**—ଦେ ବି —(ସଂ ନଳା + ପାନୀୟ)— ନଳାରେ ବହି ଯାଉ
Nalā pāni ଥିବା ବର୍ଷା ପାଣି ବା ମଇଳା ପାଣି— water
ନର୍ଦ୍ଦମାବ ଜଲ flowing through a gutter.
ପ୍ରାଦେ. (ଗଡ଼ଜାତ) ବି.—ଦୁଧ; ଦୁଗ୍ଧ—Milk
[ଦ୍ର— ଗଡ଼ଜାତରେ ପାନୀୟ ଦୁଗ୍ଧକୁ 'ଦୁଧ' ନ କହି ଷୀର, ଔଷଧ, ଜଳପାନ, ନଳାପାଣି ଓ ଧଳା ପାଣି କହନ୍ତି । ଗଡ଼ଜାତରେ ଦୁଧ କହିଲେ ସ୍ତ୍ରୀମାନଙ୍କ ସ୍ତନକୁ ବୁଝାଏ ।]

**ନଳା ପୋକ**— ପ୍ରାଦେ (ଗଞ୍ଜାମ) ବି – ତେଲୁଣି ପୋକ (ଦେଖ)
Nalā poka Teluni poka (See)

**ନଳା ଫାଟିବା**— ଦେ. ବି.—ଦେହରେ ବେତ ପ୍ରହାରର ଚିହ୍ନ ରହିଯିବା-
Nalā phatiba Cane-marks being left on body
ଦାଗ ବସା दोद्रा फटना
(ନଳା ଫାଟି ଯିବା, ନଳା ବସିବା, ନଳା ବସିଯିବା— ଅନ୍ୟରୂପ)

**ନଳା ବାଟ**—ଦେ. ବି.—ପାଣି ବହି ଯିବାର ନଳା –
Nalā bāta Water channel; drain; water-
ନାଲା, ନାଲୀ course.
नहर, नाली

**ନଳି**—ଦେ. ବି. ( ସଂ. ନଳ; ନଳିକା )—
Nali ୧ । ସରୁ ନଳ—1 A slender tube.
ନଲୀ ( ଯଥା—ନଳର ନଳ । )
नली ୨ । ବନ୍ଧୁକ—2 A gun
ରକ୍ଷକ ଦ୍ୟୋଇ ନଳ ଅଛ ଯୋଗି । ଉକ୍ତ. କୋଟ ବ୍ରହ୍ମାଣ୍ଡସୁନ୍ଦରୀ ।
୩ । ବନ୍ଧୁକର ନଳ—3 Gun-barrel
୪ । ନଳ—4. Tube
× × ବଂଶ ନଳରେ ଥିବାର ଯେ । ଉକ୍ତ. ବୈଦେହୀଶବିଳାସ ।
୫ । ଚେଳାଙ୍କର ନଳ କାଠି—5. A set of telescopic staffs used by fowlers.
ନଳ ଅଗରେ ଯେନ ଅଠା କାଠିକି । ଉକ୍ତ. ଲାବଣ୍ୟବତୀ ।
୬ । ଗୋଡ଼ର ବଳାଗଣ୍ଠି ଉପରଠାରୁ ଅଣ୍ଠୁ ପର୍ଯ୍ୟନ୍ତ ଥିବା ଅଂଶର ଅସ୍ଥିମୟ ପୃଷ୍ଠ ଦେଶ —
6. The bony back of the calf of the leg; fibula.

ଦେ. ବିଣ—ଛୋଟ ନଳ ପରି ସରୁ—
Slender like a small tube.
( ଯଥା— ନଳି ଗୋଡ଼, ନଳି ଗୋଡ଼ୀ । )
ସଂ. ବି—ନଳୀ ( ଦେଖ )—Nali ( See )

**ନଳିଆ** – ଦେ. ବିଣ—ନଳ ପରି ସରୁ—
Naliā Slender like a small tube; tubular,
ନଳିନଳି cylindrical.
ଦେ. ବି—ନଳୀ ବାଲା; ଯେ ବନ୍ଧୁକ ମାରେ—
A gunner; one who fires a gun.

**ନଳିକା**—ସଂ. ବି. ( ନଳ + କ; ସ୍ତ୍ରୀ. ଆ )—
Nalikā ୧ । ନଳ—1. Tube
ସ. ନାମ—ବିଦ୍ରୁମଲତାର ୨ । ନାଡ଼ୀ—2. Pulse
କପୋତଚରଣା, ନଟୀ, ଧମନୀ, ୩ । ତୂଣ, ଶର ତୂଣୀ—
ଅଞ୍ଜନକେଶୀ, ନର୍ମ୍ମଧା, 3 A quiver for arrows
ଧୂର୍ତ୍ତଗ, ନଳୀ, ନଳମା, ରକ୍ତଦଳା, ୪ । ନଳିତା ଶାଗ —4. The
ନର୍ତ୍ତକୀ, ପ୍ରବାଲୀ leaves of the jute plant
ନାଲକେ। used as pot-herb
नालका ୫ । ଭାରତର ଉତ୍ତରପଶ୍ଚିମ ପ୍ରଦେଶଜାତ ଏକ
ମ ନଳକାଜାଗୀ ପ୍ରକାର ଗନ୍ଧ ଦ୍ରବ୍ୟ ଓ ତହିଁର ଲତା—
ଟେ. ପକ୍କେମୁକ 5. A kind of creeper growing in N. W India and producing a scent
[ ଦ୍ର—ଏହା ଶୀତବୀର୍ଯ୍ୟ । ଏହାର ଆକୃତି ପ୍ରବାଳ ସଦୃଶ । ଏହା ଲଘୁ ଓ ଚକ୍ଷୁର ହିତକର, ବାତ ପିତ୍ତ ଓ କଫ ନାଶକ ଏବଂ ମୂତ୍ରକୃଚ୍ଛ୍ର, ଅଂଶୁ, ଶୂଳ, ତୃଷ୍ଣା, ରକ୍ତଦୋଷ, କୁଷ୍ଠ, କଣ୍ଡୁ ଓ ଜ୍ୱରନାଶକ । ]
୬ । ନଳ ପରି ସରୁ, ଲମ୍ବ ଓ ଶୂନ୍ୟଗର୍ଭ କୌଣସି ବସ୍ତୁ ( ହି. ଶବ୍ଦସାଗର )—6. Any slender and cylindrical thing.
୭ । ପ୍ରାଚୀନ ଭାରତରେ ବ୍ୟବହୃତ ବନ୍ଧୁକ ପରି ଅସ୍ତ୍ରବିଶେଷ-
7 A kind of weapon of offence resembling a gun used in ancient India.
[ ଦ୍ର—ଲୋକେ ଅନୁମାନ କରନ୍ତି ଯେ ଏହି ଅସ୍ତ୍ର ଆଧୁନିକ ବନ୍ଧୁକ ପରି ଥିଲା ଓ ଏହାଦ୍ୱାରା ଲୁହାର ଛୋଟ ଛୋଟ ଗୁଳ ଓ ତୀର କ୍ଷେପଣ କରା ଯାଉଥିଲା । ଏଥିର ଉଲ୍ଲେଖ ରାମାୟଣ, ମହାଭାରତ, ଏମନ୍ତ କି ବେଦରେ ମଧ୍ୟ ଅଛି । ଶୁକ୍ରନୀତିରେ ଏହାର ବିସ୍ତୃତ ବର୍ଣ୍ଣନା ଅଛି । ଏ ଅସ୍ତ୍ରକୁ 'ନାଳିକ', ନାଳକ ଓ'ନାଳ' ମଧ୍ୟ କୋହା-ଯାଉଥିଲା । ]
୮ । ପୋଦନା ଶାଗ ( ହି ଶବ୍ଦସାଗର )—
8 Mentha Virdis; a herbarious plant used for salad.
୯ । କଳମ ଶାଗ ( ହି. ଶବ୍ଦସାଗର )—
9. Ipomæa Reptens ( creeper ).
[ଦ୍ର—ଏହାର ଡାଙ୍ଗ ନଳ ପରି ଫମ୍ପା]
୧୦ । ଜଳୋଦର ରୋଗୀର ପେଟରୁ ପାଣି ବାହାର କରିବା ପାଇଁ ବ୍ୟବହୃତ ପ୍ରାଚୀନକାଳର ଏକପ୍ରକାର ଯନ୍ତ୍ର (ହି. ଶବ୍ଦସାଗର)—10 A kind of tubular instrument used in ancient India for tapping the abdomen of dropsy-patients.

**ନଳି ଗୋଡ଼** – ଦେ ବି—୧ । ସରୁଆ ଗୋଡ଼—
Nali gorda 1. Slender legs.
ନଳି ନଳିପା ବଗ ଲେ ବଗ । ଧାନ କୁଟୁରୁ ?
छावा ନିଂ – ମେ ନଳଗୋଡ଼ଣ୍ଡି ଲଙ୍ଘିବ । ଶିଶୁଗୀତ
पारेर नली ୨ । ଗୋଡ଼ର ବଳାଗଣ୍ଠିଠାରୁ ଅଣ୍ଠୁ ପର୍ଯ୍ୟନ୍ତ ଥିବା ଅଂଶର ପୃଷ୍ଠାଂଶ—2. The front bony part of the calf of the leg; fibula.

**ନଳଗୋଡ଼ ଘା**—ଦେ.ବ—ମନୁଷ୍ୟର ନଳଗୋଡ଼ରେ ହୋଇଥିବା କ୍ଷତ— Naligorda ghā A sore or ulcer on the fibula.
ପାଯେର ନଲୀର ঘা ଘର ଆଗ ମହାଜନ, ନଳଗୋଡ଼ ଘା,—
ଛାବାକାଘାବ ସକ୍ଷି ଚୋ, ମନ ଏ । ଡଗ ।
(ନଳଗୋଡ଼ ଘାଆ—ଅନ୍ୟରୂପ)
[ ଦ୍ର—ଏହି କ୍ଷତ ସହଜରେ ଭଲ ହୁଏ ନାହିଁ । ]

**ନଳଗୋଡ଼ା**—ଦେ. ବିଣ. ପୁଂ—ଯେଉଁ ପୁରୁଷର ଗୋଡ଼ ସରୁଅ— Naligordā Slender-legged.
(ନଳଗୋଡ଼ିଆ—ଅନ୍ୟରୂପ) [ଦ୍ର—ଆମ ଦେଶରେ ନଳ-
(ନଳଗୋଡ଼ୀ, ନଳଗୋଡ଼େଇ—ସ୍ତ୍ରୀ) ଗୋଡ଼ୀ ସ୍ତ୍ରୀମାନେ ଅସୁନ୍ଦରୀଙ୍କ ମଧ୍ୟରେ ପରିଗଣିତା । ]

**ନଳଘା**—ଦେ. ବ ( ସଂ. ନାଡ଼ୀ କ୍ଷତ, ସଂ ନଳ+ଘାତ) ଯେଉଁ ଘଅ Naligha ଉପରେ ଶୁଖିଗଲା ପରି ଦେଖାଯାଏ କିନ୍ତୁ ଭିତରେ ନ (ନଳଘଅ—ଅନ୍ୟରୂପ) ଶୁଖି ପୂଜ ହୁଏ; ଦୁଷ୍ଟ କ୍ଷତ; ନାଡ଼ୀ ବ୍ରଣ—
ନାଲীঘা, ନଲୀଘାବ, ନାସୁର Sinus

**ନଳଚ୍ଛ**—ଦେ.ବ (ସଂ ନଳ, ଭୁଲ ଫା ନଇଚ୍ଚ)—୧ । ହୁକାର ନଳ— Nalichā 1 The pipe of a hubble bubble.
ନଲିଚା, ନଲ୍‌ଚେ, ନଇଚା ୨ । ( ସଂ ନଳତ, ନାଡ଼ୀ=ପଟ୍ଟଶାକ )—
ନୈଚା ଝୋଟଗଛ—2 Jute plant.
ନলিত্, নালিতা, পাটগছ, তিতোপাটি, ନାଡ଼ିକା, ପଟୁଆ
[ ଦ୍ର—ଏହାର ପତ୍ର ଭାରି ପିତା; ଲୋକେ ଏ ପତ୍ରକୁ ଶୁଖାଇ ରଖି, କୋଷ୍ଠ ପରିଷ୍କାର ନିମନ୍ତେ ତାହାର କ୍ୱାଥ ଖାଆନ୍ତି । କଞ୍ଚା ନଳିତାପତ୍ରକୁ ମଧ୍ୟ ଲୋକେ ଶାଗ କରି ଖାଆନ୍ତି । ନଳିତା ୩ ପ୍ରକାର ୧—ଧଳାଗଛର ଶାଗ ପିତା ନୁହେଁ । ଇଷତ୍ ନାଲିଗଛର ଶାଗ ପିତା । ଆଉ ଏକପ୍ରକାର ନଳିତା (ପଙ୍କତ କାଉଁରିଆ) ର ପତ୍ର ଖଟା । ]
ଦେ. ବିଣ—ନଳପରି ସରୁ—Slender like a tube

**ନଳିତା(ତ)**—ସଂ.ବ (ନଳ ଧାତୁ+କର୍ତ୍ତୃ. ତ; ସ୍ତ୍ରୀ. ଆ; ଏଥିର ଡାଙ୍ଗମାନ Nalitā(ta) ନଳପରି ହେବାରୁ)—ଝୋଟ ବା କାଉଁରିଆଗଛ—
ଅନ୍ୟ ସଂ. ନାମ—ନାଡ଼ୀକ, ନାଡ଼ୀଚ, ନାଡ଼ୀଶାକ, ପଟ୍ଟଶାକ, କେରୁକ, କାକଚାକ, ପେରୁଲ୍ଲ, କ୍ଷାରଶାକ, ପେରୁ, କାନକ, ବ୍ରଣରୋଚନ, ନାଳକ, ପଟ୍ଟ, ସିଂହିକା
ନାଲିতা, পট, ললিতাপট, বনপট্
ଝୁଟ, ପଟୁଆ
ମ. ନାଡ଼ୀଶାକ
ଗୁ. ବନପଟ, ନାଲାମାଭାଜୀ
ତା. ପେରୁଇଳକୀରଇ,
ତେଲ୍‌ପରନ୍ତୁ (Kirtikar)

Jute plant; Corchorus.
[ଦ୍ର—ସମ୍ଭବତଃ ପୂର୍ବେ ଭାରତରେ ଅଂଶୁ ବା ଝୋଟ ଉତ୍ପାଦନ କରିବା ପାଇଁ ଏହାର କୃଷି କରା ଯାଉ ନ ଥିଲା ଓ ଇଉରୋପୀୟମାନଙ୍କ ଆଗମନ ପରେ ଅଂଶୁ ପାଇଁ ଏହାର କୃଷି ଆରମ୍ଭ ହୋଇଅଛି । ଏହି ଝୋଟଗଛ ଅନେକ ପ୍ରକାର । କେତେକ ଜାତିର ଫଳ ଗୋଲ ଓ ଚୁଟି କଲସପରି । କେତେକ ଜାତିର ଫଳ ନାଲ ଭେଣ୍ଡି ପରି । କେତେକ ଜାତିର ପତ୍ର ଖଟା (ପଙ୍କତ କାଉଁରିଆ) । କେତେକ ଜାତିର ପତ୍ର ପିତା (ନଳିତାପିତା) । କେତେକ ଜାତିର ପତ୍ର ପିତା ବା ଖଟା ନୁହେଁ । ଅନେକ ଜାତି ବନ୍ୟ ଅବସ୍ଥାରେ ଜନ୍ମେ । କେତେକ ଜାତିର ଶୀଘ୍ର ହୁଏ । ଏହାର ପତ୍ର ଓ ମଞ୍ଜି ଔଷଧରେ ଲାଗେ । ଯାହାର ଫଳ ଗୋଲ ଚୁଟି କଲସପରି ଓ ପତ୍ର ପିତା ତାକୁ ଇଂରେଜୀରେ Corchorus Capsularis ଓ ଯାହାର ଫଳ ଭେଣ୍ଡିପରି ଲମ୍ବା ଓ ଖଟା ତାକୁ ଇଂରେଜୀରେ Corchorus Olitorius କହନ୍ତି । ବୈଦ୍ୟକ ମତରେ ଏହା ତିକ୍ତ, ରକ୍ତପିତ୍ତନାଶକ, ଶୁକ୍ରବର୍ଦ୍ଧକ, ବିଷ୍ଟମ୍ଭୀ ଓ ବାତପ୍ରକୋପକ । ]

ଗ୍ରା. ବି. ସ୍ତ୍ରୀ ( ନାମ ) ( ସଂ. ଲଳିତା )—
୧ । ଶ୍ରୀକୃଷ୍ଣଙ୍କ ପ୍ରିୟସଖୀ—1 One of the female companions of Rādhikā.
୨ । ସ୍ତ୍ରୀମାନଙ୍କର ନାମ—
2 A name given to females

**ନଳିତା ପିତା**—ଦେ. ବ. ( ସଂ. ନଳିତ+ତିକ୍ତ )—ନଳିତା ବା ଝୋଟ Nalitā pitā ଗଛର ପିତା ପତ୍ର—The bitter leaves of
ନালিত, নালতেপাতা the Jute plant.
ପଟୁଆକା ସାଗ, ନାଡ଼ିକା ସାଗ [ ଦ୍ର—ଏହାକୁ ଶୁଖାଇ କରି ରଖି ଏଥିର କ୍ୱାଥ କରି କୋଷ୍ଠଶୁଦ୍ଧି ନିମନ୍ତେ ଲୋକେ ଖାଆନ୍ତି । ଏହାକୁ କଞ୍ଚାରେ ଶାଗ କରି ମଧ୍ୟ କୋଷ୍ଠଶୁଦ୍ଧି ପାଇଁ କେହି କେହି ଖାଆନ୍ତି ।]

**ନଳିନ**—ସଂ. ବ. ( ନଳ ଧାତୁ=ବନ୍ଧନ କରିବା; ଉଜ୍ଜ୍ୱଳ ହେବା+ Nalina କର୍ତ୍ତୃ. ଇନ )—
୧ । ପଦ୍ମ—1. Lotus.
୨ । କଇଁ—2. Water lily
୩ । ଜଳ—3. Water.
୪ । ନୀଳଗଛ—4. Indigo plant.
୫ । ଶୈବାଳ; ଶିଉଳୀ—5 Moss.
୬ । ସାରସପକ୍ଷୀ—6 The Indian crane.
୭ । ପାଟି ଅଁଳା ଫଳ ଓ ଗଛ—7. Flacourtia Cataphracta (plant and berry).
୮ । ସ୍ୱର୍ଗଗଙ୍ଗା; ମନ୍ଦାକିନୀ—
8 The Ganges said to flow in the Heaven.
୯ । କରଞ୍ଜା ( ଗୁଳ୍ମ ଓ କୋଳ ) ( ହ୍. ଶ. )—
9. Carissa Carandas ( plant and berry )

**ନଳିନ ନୟନ**—ସଂ. ବିଣ ପୁଂ. (ନଳିନ+ନୟନ; ଉପମିତ ବହୁବ୍ରୀହି)— Nalina nayana ପଦ୍ମଲୋଚନ; ଯାହାର ଚକ୍ଷୁ ପଦ୍ମ ପରି ସୁନ୍ଦର—
(ନଳିନାକ୍ଷ—ଅନ୍ୟରୂପ) Lotus-eyed; having eyes as
(ନଳିନନୟନା, ନଳିନାକ୍ଷା, ନଳିନାକ୍ଷୀ—ସ୍ତ୍ରୀ) graceful as the lotus.

**ନଳିନଳି**—ଦେ. ବିଣ—ନଳ ପରି ସରୁ—Tubular; slender Nalinali like a tube; slender and cylindrical.
নলিনলি ( ନଳିନଳିଆ—ଅନ୍ୟରୂପ )

**ନଳିନଶୟ୍ୟ**—ସଂ. ବ. ( ନଳିନ=ପଦ୍ମ+ଶୀ ଧାତୁ=ଶୋଇବା+କର୍ତ୍ତୃ. Nalinaśaya ଅ; ଉପପଦ ସମାସ )—ବିଷ୍ଣୁ—Bishnu.
[ ଦ୍ର—ବିଷ୍ଣୁ ପ୍ରଳୟକାଳରେ ପଦ୍ମ ଉପରେ ଶୁଅନ୍ତି । ]

**ନଳିନୀ**—ସ. ବି. ସ୍ତ୍ରୀ. ( ନଳିନ+ସ୍ତ୍ରୀ. ଈ )—୧ । ପଦ୍ମ—
Nalini 1 Lotus.
୨ । ପଦ୍ମିନୀ, ପଦ୍ମସମୂହ—2. A group or assemlage of lotus growing together.
୩ । ପଦ୍ମିନୀ ସ୍ତ୍ରୀ—3. One of the four classes of women according to the Hindu love-books
୪ । ପଦ୍ମପୋଖରୀ, ପଦ୍ମବନ—4. A place where plenty of lotuses grow together.
୫ । ମୃଣାଳ; ପଦ୍ମର ନାଡ଼—
5. Stalk of the lotus flower
୬ । ପଦ୍ମଲତା—6. The lotus plant
୭ । ୧୫ ଅକ୍ଷରବିଶିଷ୍ଟ ଛନ୍ଦୋବିଶେଷ—7. A Sanskrit metre of 15 letters or syllables.
୮ । ସ୍ୱର୍ଗଗଙ୍ଗା—
8. The Ganges of the Heaven.
୯ । ନାରିକେଳ ସୁରା; ନଡ଼ିଆ ଗଛର ତାଡ଼ି—
9. Cocoanut toddy.
[ଦ୍ର—ନଳିନୀର ଭିନ୍ନ ଭିନ୍ନ ଉକ୍ତଗୋଷ୍ଠ ଅର୍ଥ ଉକ୍ତ ଲାବଣ୍ୟବତୀରେ ପ୍ରୟୋଗ କରିଛନ୍ତି—ଯଥା—ଦେଖରେ ନଳିନ (୩ୟ ଅର୍ଥ ) ନଳିନୀ ( ୪ର୍ଥ ଅର୍ଥ ) ନଳିନୀ ( ୧ମ ଅର୍ଥ ) ରେ ଶୋଇଛି । ]
୧୦ । ନଳିକା ୫ ( ଦେଖ ) (ହି. ଶବ୍ଦସାଗର)—
10 Nalika 5 ( See )
୧୧ । ନଦୀ ( ହି. ଶବ୍ଦସାଗର )—11. River.
୧୨ । ନାକର ବାଆଁ ପୁଡ଼ା ( ହି. ଶବ୍ଦସାଗର )—
12. The left nostril.
୧୩ । ଏକ ସଂସ୍କୃତ ବୃତ୍ତ ( ଏଥିରେ ପ୍ରତ୍ୟେକ ଚରଣରେ ୫ ସଗଣ ଥାଏ )—
13. Name of a Sanskrit metre.

**ନଳିନୀ ଖଣ୍ଡ**—( ନଳିନୀ+ସମୂହାର୍ଥରେ ଖଣ୍ଡ )—ପଦ୍ମସମୂହ—
Nalini khanda A group or assemblage of lotuses.
( ନଳିନୀଷଣ୍ଡ - ଅନ୍ୟରୂପ )

**ନଳିନୀଗୌଡ଼ା**—ଦେ. ବି—ମଙ୍ଗଳଗୁଜ୍ଜରୀ ପରି ଚତୁର୍ଦ୍ଦଶ ଅକ୍ଷରବିଶିଷ୍ଟ
Nalinigaurda ଦ୍ୱିପାଦକ ଓଡ଼ିଆ ବୃତ୍ତବିଶେଷ—
A kind of Oria metre.
[ ଦ୍ର—ବିଦଗ୍ଧଚିନ୍ତାମଣିର ୪୩ ଛାନ୍ଦ ଏହି ବୃତ୍ତରେ ରଚିତ । ]

**ନଳିନୀ ଦଳ**—ସ ବି. ( ୬ଷ୍ଠୀ ତତ୍, ନଳିନୀ + ଦଳ )—୧ । ପଦ୍ମପତ୍ର—
Nalini dala 1. Lotus leaf.
[ ଦ୍ର—ଏଥିରେ ପାଣି ପଡ଼ିଲେ ତାହା ପତ୍ରରେ ନ ଲାଗି ଚଳଚଳ ହେଉଥାଏ । ପାଣି ଖସି ପଡ଼ିଲେ ଦେଖାଯାଏ ଯେ ପତ୍ର ଦେହରେ ପାଣିର କୌଣସି ଅଂଶ ଲାଗି ନାହିଁ । ଏଥିପାଇଁ ମନୁଷ୍ୟର ଜୀବନକୁ କବି ଓ ଋଷିମାନେ "ନଳିନୀଦଳଗତ ଜଳ" ପରି ତରଳ ବା ଚଳଚଳ ବୋଲି ବର୍ଣ୍ଣନା କରିଅଛନ୍ତି । ]
୨ । ପଦ୍ମଫୁଲର ପାଖୁଡ଼ା—
2 The petals of the lotus flower.

**ନଳିନୀ ନନ୍ଦନ**—ସ. ବି. ( ନଳିନୀ+ନନ୍ଦନ; ୬ଷ୍ଠୀ ତତ୍, ଏ ବିଷ୍ଣୁଙ୍କ
Nalini nandana ନାଭିରୁ ଉଠିଥିବା କମଳରୁ ଜାତ ହୋଇଥିବାରୁ )—୧ । ବ୍ରହ୍ମା—
1. A name of Brahmā.
୨ । କୁବେରଙ୍କ ଉପବନ ( ହି. ଶବ୍ଦସାଗର )—
2 Name of the garden of Kubera.

**ନଳିନୀ ରୁହ**—ସ. ବି. ( ନଳିନୀ + ରୁହ ଧାତୁ = ଉଠିବା; ଉତ୍ପନ୍ନ ହେବା
Nalini ruha କର୍ତ୍ତୃ ଅ )—୧ । ମୃଣାଳ; ପଦ୍ମର ନାଡ଼—
1. The stalk of lotus
୨ । ବ୍ରହ୍ମା—2 Brahmā
[ ଦ୍ର—ପ୍ରଳୟାନ୍ତେ ବିଷ୍ଣୁଙ୍କ ନାଭି କମଳରୁ ଉଠିଥିବା ପଦ୍ମଫୁଲ ଉପରେ ସେ ବସି କରି ସୃଷ୍ଟି ଆରମ୍ଭ କରନ୍ତି । ]
୩ । ପଦ୍ମ ନାଡ଼ର ତନ୍ତୁ—
3. The fibres of a lotus ( Apte ).

**ନଳିନେଶୟ**—ସ. ବି. ( ନଳିନେ=ପଦ୍ମରେ+ଶୀ ଧାତୁ =ଶୋଇବା+
Nalinesaya କର୍ତ୍ତୃ. ଅ; ଉପପଦ ଓ ଅଲୁକ୍ ସମାସ )—
ନଳିନଶୟ ( ଦେଖ )—Nalinasaya ( See )

**ନଳିବା**—ଦେ. କ୍ରି. ( ସ. ନଳ )—
Naliba ୧ । ଭୂମିକୁ ନଳ ବା ପଦିକା ଦ୍ୱାରା ମାପ କରିବା
(ନଳ ଦେବା—ଅନ୍ୟରୂପ) ବା ଜରିବ କରିବା—
दाँड़े मापा 1. To measure land with
खेत नापना the rod.
× × ନଳ ଦେଲେ ବଣ ବାଡ଼ରୁ ଭିଣା ପଡ଼ିବ କାହିଁ ।
ଫକୀରମୋହନ ଛମାଣ ଅଠଗୁଣ୍ଠ ।
टकटक करे चला ୨ । ବଡ଼ ବଡ଼ ପାହୁଣ୍ଡ ପକାଇ ଚାଲିବା—
पाँव चीरना, 2. To walk with long strides;
डग मारना to stride.
୩ । ( ସ. ଲଡ଼ଧା ) ନହଳିବା; ଏକ ଧମସରେ କଥା କହିବା; ଗପିବା, ଅନର୍ଗଳ ଗପିବା—
3. To go on speaking without stopping.

**ନଳି ହାଡ଼**—ଦେ. ବି—ଗୋଡ଼ର ଆଣ୍ଠୁ ତଳୁ ବଳାଗଣ୍ଠି ପର୍ଯ୍ୟନ୍ତ
Nali harda ଅଂଶର ସମ୍ମୁଖସ୍ଥ ସରୁ ଅସ୍ଥି—
नली Fibula; thin bone on the external
नलाहाड़, नला side of the leg below the knee.

**ନଳୀ**—ସ. ବି. ( ନଳ + ଇନ୍; ୧ମା. ୧ବ )—
Nali ୧ । ମନଃଶିଳା—1 Red arsenic
(ନଳ—ଅନ୍ୟରୂପ) ୨ । ସୁଗନ୍ଧ ଦ୍ରବ୍ୟବିଶେଷ—
2 Name of a herbal perfume.
୩ । ନଳିକା ( ଦେଖ )—3. Nalika ( See )
୪ । ଗଛର ଡାଙ୍ଗ ବା ନାଡ଼—
4. The stalk or stem of a plant.

୫ । ନଳ, ଚୋଙ୍ଗା—5 A tube
୬ । ନଳା—6. Pipe
୭ । ନଳ ତୃଣ—7. Reed grass
୮ । କଣ୍ଠ ନାଳୀ, ଶ୍ୱାସ ନାଳୀ—
8 Wind pipe, trachea, larynx.
୯ । କଣ୍ଡା; ତନ୍ତୁର କାଣ୍ଡିଆ—
9. A cylindrical wooden bit used by weavers to wind the thread round it.
୧୦ । ତୂଣ; ଶର ମୁନା—10 A quiver for arrows.
୧୧ । ବନ୍ଧୁକର ନଳ—11 Barrel of a gun.
୧୨ । ଖଜୁରି ବା ତାଳ ଗଛରୁ ତାଡ଼ି ଝରି ଯେଉଁ ନଳ ଦେଇ ଘଟରେ ପଶେ—12 A faucet or tube attached to the incision made on a toddy-palm for conveying the juice into the attached pot.

ଦେ ବ—ନଳ ( ଦେଖ )—Na̲li ( See )

**ନଳୀ କୋଷ**—ଦେ ବ—ପିଚକାରୀର ନଳ—
Na̲li kosha The tube of a syringe

**ନଳୀ ଦ୍ୱାର**—ସ. ବ (ନଳୀ+ଦ୍ୱାର, ୬ଷ୍ଠୀ ତତ୍)—
Na̲li dwāra କଣ୍ଠନାଳୀର ମୁଖ—The opening of the throat; pharynx

**ନଳୀ ଭଉଁରି**—ଦେ ବ. ( ସହଚର; ବଣିଆ ଶବ୍ଦ )—
Na̲li bhauñri କାନ ବା ନାକରେ ପିନ୍ଧିବା କେତେକ
नलीभुंडी ଅଳଙ୍କାରରେ ଯୋଗ୍ୟ ନଳୀ ପରି ଯେଉଁ ନାଡ଼ ଥାଏ (ତାହା ନଳୀ) ଓ ତାହା ଭିତରେ ଯେଉଁ କିଲ ବାଯାଏ (ତାହା ଭଉଁରି)—The small tubular and screw-like pins attached to the middle of bracelets and anklets to make the two haves closed unto one another.

**ନଳୁଆ**—ଦେ ବଣ—ଯେ ପକ୍ଷୀ ଧରିବା ନଳ ବ୍ୟବହାର କରେ—
Na̲luā Using the fowler's staff for capturing
नलिया, नलुआ शरवाला birds.

**ନଳୁଆକେଳା**—ଦେ. ବ—କେଳାମାନଙ୍କର ଶ୍ରେଣୀବିଶେଷ (ଏମାନେ
Na̲luākela̲ ନଳଦ୍ୱାରା ପକ୍ଷୀ ଶିକାର କରନ୍ତି)—
नलिया, सातनला A class of Kelās using the teles-
शरवाला करोड़ा copic Nala for fowling.

[ ଦ୍ର—କେଳାମାନେ ଅନେକ ଶ୍ରେଣୀରେ ବିଭକ୍ତ; ଯଥା—୧ । ନଳୁଆ, ୨ । ସାପୁଆ, ୩ । ସବାଖିଆ, ୪ । ମାଙ୍କଡ଼ିଆ, ୫ । ମୁଣ୍ଡଫୋଡ଼ା । ]

**ନଳୋତ୍ତମ**—ସ ବ. (ନଳ+ଉତ୍ତମ)—ଏକପ୍ରକାର ବଡ଼ ନଳ ତୃଣ;
Na̲lottama ଇକଡ଼ି; ବାଘନଳ—A kind of large reed.

**ନଳୋପାଖ୍ୟାନ**—ସ. ବ. (ନଳ+ଉପାଖ୍ୟାନ; ୬ଷ୍ଠୀ ତତ୍)—
Na̲lopākhyāna ମହାଭାରତୋକ୍ତ ନିଷଧରାଜ ନଳଙ୍କ ଚରିତ ବିଷୟକ କଥା—The story of the life of king Na̲la.

**ନଲ୍ବ**—ସ. ବ. (ନଲ୍ ଧାତୁ=ନଳଭୁକ୍ତ ଦୀର୍ଘ ହେବା+କର୍ତ୍ତୃ; ବ)—
Na̲lba ୪୦୦ ହାତ ଲମ୍ବ ଭୂମି; କ୍ରୋଶର ୨୦ ଭାଗରୁ ଏକଭାଗ—
(ନଲ୍ୱ—ଅନ୍ୟରୂପ) A land measuring 400 cubits in length; ⅛th of a mile; a furlong; one twentieth of a kros.

**ନଲ୍ୟଗ୍ର**—ସ. ବ. (ନଳ+ଅଗ୍ର; ୬ଷ୍ଠୀ ତତ୍)—ଘଣ୍ଟିକା—
Nalyagra The glottis.

**ନଶ୍** (ଧାତୁ)—ସ—୧ । ବିନଷ୍ଟ ହେବା—
Naś (root) 1. To be destroyed; to decay.
୨ । ଧ୍ୱଂସହେବା—2. To be ruined

**ନଶ୍କର**—ଦେ. ବ—ଲଶ୍କର (ଦେଖ)
Naś-kara Laś-kara (See)

**ନଶପଶ୍**—ଦେ ବ—ଲଶପଶ୍ (ଦେଖ)
Naś paś Laśapaś (See)
( ନସ୍ପସ୍—ଅନ୍ୟରୂପ )

**ନଶମ**—ଦେ. ବ. (ସ. ଶ୍ଳେଷ୍ମା)—ଶର୍ଦ୍ଦି, ଶର୍ଦ୍ଦି, ଦେହରେ ଥଣ୍ଡା
Naśama ଲାଗିବା ଯୋଗୁଁ ନାକରୁ ପାଣି ବୋହିବା ରୋଗ—
(ନସ୍ମ—ଅନ୍ୟରୂପ) Catching cold; catarrh.
सर्दी ହେମ ନ ଭେଦଇ ତାକୁ କେଁଉଁ ନଶମ ।
शर्दी ଗ୍ରା°ଗୀ. ବ୍ରହ୍ମନନ୍ଦନପଣଗୀତା ।

**ନଶମା**—ଦେ. ବଣ. (ସ ଶ୍ଳେଷ୍ମା)—୧ । ଶ୍ଳେଷ୍ମା ବା ଶର୍ଦ୍ଦିଗ୍ରସ୍ତ—
Naśamā 1 Suffering from cold.
୨ । ମନ୍ଦା; ନେଶମା—2. Sluggish

**ନଶା**—ଦେ. ବ. (ସ. ରସ)—୧ । ଗଛ ବା ଫଳରୁ ବୋହିବା ରସ—
Naśā 1 Juice exuded from a fruit or tree.
बस ୨ । ଲସା, ଘାଆଆଦିରୁ ବୋହିବା ଜଳୀୟ ରସ—
रस 2. Watery juice coming out of a sore.

**ନଶା(ଶେ)ଇବା**—ଦେ. କ୍ରି. (ସ. ରସ)—ଲସାଇବା; (ଘାଆଆଦିରୁ)
Naśā(śe)ibā ଲସା ବୋହିବା—To water (said of
बसा sores)
पनछाना ପ୍ରାଦେ (ସମ୍ବଲପୁର) କ୍ରି. (ସ. ନଶ୍ ଧାତୁ; ଭୁଲ. ଛ ଏହି ଅର୍ଥରେ ନସାନା)—ନାଶ କରିବା; ନଷ୍ଟ କରିବା—
To ruin; to damage.
ଖେଳୁ ନଶାଏ ଶରୁବନା (ଶ୍ରବଣ, ନକ୍ଷତ୍ରରେ ବର୍ଷା ?)
ଗାଁ ନଶାଏ ବାମନା (ବ୍ରାହ୍ମଣ) । ଡାକ ।

**ନଶା ଦେବା**—ଦେ କ୍ରି—ନଶାଇବା (ଦେଖ)
Naśā debā Naśāibā (See)

**ନଶି**—ଦେ. ବ—ଲଶି (ଦେଖ)
Naśi Laśi (See)

**ନଶିଆ**—ଦେ. ବଣ—ଲଶିଆ (ଦେଖ)
Naśia Laśiā (See)

**ନଶି ଫିଟିବା**—ଦେ. ବ—ଲଶି ଫିଟିବା (ଦେଖ)
Naśi phitiba Laśi phitibā (See)

ନଶିବା - ଦେ. କ୍ରି. (ସ. ନଶ୍ ଧାତୁ)— ବିନାଶ ପ୍ରାପ୍ତ ହେବା, ନାଶଯିବା--
Nasiba To be destroyed.
ନାଶହଓଆ ଅପଣା ନ ଜାଣନ୍ତି ଭଲେ
ନଶନା ନଶିଲେ ବ୍ରହ୍ମଶାପ ବଳେ। ଜଗନ୍ନାଥ. ଭଗବତ।

ନଶ୍କର—ଦେ ବି—ଲସ୍କର (ଦେଖ)
Naskara Laskara (See)

ନଶ୍ୱର—ସ. ବିଣ. (ନଶ୍ ଧାତୁ+କର୍ତ୍ତୃ. ଶୀଳାର୍ଥେ. ବର)—
Naswara ୧। ମରଣଶୀଳ—1. Mortal.
(ନଶ୍ୱରୀ—ସ୍ତ୍ରୀ) ୨। କ୍ଷୟଶୀଳ; ଅସ୍ଥାୟୀ—2 Subject to decay; perishable; frail
ନଶ୍ୱରତା। ବି
ନଶ୍ୱରତ୍ୱ।
୩। ଅନିତ୍ୟ—3. Temporary.
୪। କ୍ଷଣଭଙ୍ଗୁର—4. Transient.

ନଷ୍ଟ—ସ. ବିଣ. ପୁଂ. (ନଶ୍ ଧାତୁ=ବିନଷ୍ଟ ହେବା+କର୍ତ୍ତୃ. ତ)—
Nashta ୧। କ୍ଷୟ ପ୍ରାପ୍ତ; ନାଶପ୍ରାପ୍ତ—1. Destroyed; decayed; ruined; perished.
(ନଷ୍ଟା—ସ୍ତ୍ରୀ)
(ନଷ୍ଟତା—ବି) ୨। ଦୂଷିତ—2. Contaminated.
୩। ବିକୃତ—3. Spoiled; spoilt.
୪। ଅପଚିତ—4. Wasted.
୫। (ତୁଳ. ଇଂ. ଲଷ୍ଟ) ହଜିଥିବା—5. Lost.
୬। ତିରୋହିତ—6. Disappeared; gone or removed out of sight.
୭। ଗତ—7. Gone.
୮। ଅପବିତ୍ରୀକୃତ—8. Defiled; polluted.
୯। ପଳାୟିତ—9. Fled.
୧୦। ଖଳ; ଦୁଷ୍ଟ; ଦୁର୍ବୃତ୍ତ—10. Wicked; depraved.
ଏଣୁ ତୁ ଦୁଷ୍ଟ ନଷ୍ଟକୁ ଉପାୟରେ
ଯେ ମାରିବ ଯଶ ସେ ନେବ ଏ ମସ୍ତରେ। କୃଷ୍ଣସିଂହ ମହାଭାରତ. ବନ।
୧୧। ଭ୍ରଷ୍ଟ; ଦୁଶ୍ଚରିତ୍ର—11. Debauched; immoral.
୧୨। ଅକର୍ମଣ୍ୟ; ଗୁଣହୀନ—
12. Having demerit; worthless.
୧୩। ଅଭଦ୍ର—13. Uncivil; rude.
୧୪। ଲମ୍ପଟ; କାମୁକ—14. Lustful, lascivious.
୧୫। ହିଂସ୍ର—15. Revengeful; spiteful
୧୬। ମୃତ—16 Dead.
୧୭। ପର ସ୍ତ୍ରୀ ରତ—17. Adulterous.
ସ. ବି. (ନଶ୍ ଧାତୁ+ଭାବ. ତ)—
୧। ନାଶ; ଅପଚୟ; କ୍ଷୟ—1. Decay.
୨। ସଂହାର; ବିନାଶ—2. Destruction.

ନଷ୍ଟ କରିବା—ଦେ. କ୍ରି. (ସ. ନଷ୍ଟ)—୧। ବିନାଶ କରିବା—
Nashta kariba 1. To ruin; to destroy.
[ନଷ୍ଟ କରା(ରେ)ଇବା—ଣିଜନ୍ତ] ୨। ବିଗାଡ଼ିବା—
ନଷ୍ଟକରା 2. To spoil.
नष्ट करना ୩। ଅପବିତ୍ର କରିବା—
3. To defile; to pollute.
୪। ଅପବ୍ୟୟ କରିବା; ଅପଚୟ କରିବା—
4. To waste; to squander away.
୫। କ୍ଷତି କରିବା—5. To put to loss.
୬। ସ୍ତ୍ରୀର ସତୀତ୍ୱ ନାଶ କରିବା—
6. To ravish; to deflower a woman.
୭। କଳଙ୍କିତ କରିବା—7. To stain
୮। ଭ୍ରଷ୍ଟ କରିବା—8. To undo.

ନଷ୍ଟ କୋଷ୍ଠୀ -ସ ବି. (କର୍ମଧା; ନଷ୍ଟ+କୋଷ୍ଠୀ=ଜାତକ)—
Nashta koshthi ହଜି ଯାଇଥିବା ଜାତକ—
(ନଷ୍ଟ ଜାତକ—ଅନ୍ୟରୂପ) Missing horoscope.

ନଷ୍ଟ କୋଷ୍ଠୀ ଉଦ୍ଧାର କରିବା—ଦେ. କ୍ରି—ହଜି ଯାଇଥିବା କୋଷ୍ଠୀର
Nashta koshthi uddhara kariba ଉପାଦାନମାନ
নষ্ট কোষ্ঠি উদ্ধার করা କୋଷ୍ଠୀର ବିନାସାହାଯ୍ୟରେ ସଂଗ୍ରହ କରିବା-
नष्ट कोष्ठी उद्धार करना To arrive at the data of a man's nativity without the help of a horoscope which is missing.

ନଷ୍ଟଙ୍କ ଗୁରୁ ଦୁଷ୍ଟଙ୍କ ଗୋସା(ସେ)ଇଁ - (ପ୍ରୟୋଗ; ଏକାର୍ଥକ ସହଚର)—
Nashtanka guru dushtanka gosa(se)iñ
নষ্টের গুরু দুষ্টের গোসাই অତ୍ୟନ୍ତ ଦୁଷ୍ଟ ଓ ଦୁଶ୍ଚରିତ୍ର ବ୍ୟକ୍ତି—
नष्टका गुरु दुष्टका गोसाइं A very wicked and immoral person.
[ଦ୍ର—ଏଥିର ସୂଚନାର୍ଥ—ଯେ କେବଳ ନିଜେ ନଷ୍ଟ ନୁହେଁ ବରଂ ଅନ୍ୟମାନଙ୍କୁ ତା ମାର୍ଗରେ ନିଏ ଓ ତାହାର ଧର୍ମବିଶିଷ୍ଟ ଗୁରୁ ଏ ଲୋକଙ୍କ ନେତା ଅଟେ।]

ନଷ୍ଟ ଚନ୍ଦ୍ର-- ସ. ବି. (ନଷ୍ଟ+ଚନ୍ଦ୍ର; କର୍ମଧା)—
Nashta chandra ଭାଦ୍ର ଶୁକ୍ଳ ଓ କୃଷ୍ଣପକ୍ଷ ଚତୁର୍ଥୀର ଚନ୍ଦ୍ର—
The 4th day of the bright and dark fortnights of the month of Bhadra; the moon on the 4th lunations in the month of Bhadra
[ଦ୍ର—ଏ ଚନ୍ଦ୍ରକୁ ଦେଖିବା ନିଷିଦ୍ଧ। ଶାସ୍ତ୍ରରେ ଅଛି ଯେ ଏହି ସମୟରେ ଚନ୍ଦ୍ର ତାଙ୍କର ଗୁରୁ ବୃହସ୍ପତିଙ୍କ ପତ୍ନୀ ତାରାଙ୍କୁ ହରଣ କରିଥିଲେ। ଏହି ଚନ୍ଦ୍ରଙ୍କୁ ଦେଖିବା ବ୍ୟକ୍ତିର ଅକାରଣରେ କଳଙ୍କ ଘଟେ। ଏଥିର ବଚନ .—ନଷ୍ଟଚନ୍ଦ୍ରେ। ନଦୃଶ୍ୟଃ ଭାଦ୍ରେମାସି ସିତାସିତେ। ଗଣେଶ ଚତୁର୍ଥୀର ଚନ୍ଦ୍ରଙ୍କୁ ଲୋକେ ଦେଖନ୍ତି ନାହିଁ, ଏହି କଥାକୁ ଲକ୍ଷ୍ୟ କରି କବି ଯଦୁମଣି ଗାଇ ଅଛନ୍ତି, ଗୁରୁ ଚନ୍ଦ୍ରାନନା ଚମ୍ପକ ବରନା କାଲି ଏହି ବାଟେ ଗଲା। ଚନ୍ଦ୍ର ଅବତଂସ ନନ୍ଦନ—ଜନମଦିଥି (ଗଣେଶ ଚତୁର୍ଥୀର) ଚନ୍ଦ୍ର, ମୋତେ କଲା—ଅର୍ଥାତ୍ ମୋ ଆଡ଼କୁ ଅଦୌ ଚାହିଁଲା ନାହିଁ।]

ନଷ୍ଟ ଚରିତ୍ର—ସ. ବିଣ. ପୁଂ. (ବହୁବ୍ରୀହି; ନଷ୍ଟ+ଚରିତ୍ର)—
Nashta charitra ଯାହାର ଚରିତ୍ର ମନ୍ଦ—
(ନଷ୍ଟ ଚରିତ୍ରା—ସ୍ତ୍ରୀ) Of spoiled character.
ସ. ବି. (ନଷ୍ଟ+ଚରିତ୍ର; କର୍ମଧା)—
ମନ୍ଦ ଚରିତ୍ର—Bad character.

ନଷ୍ଟ ଚିତ୍ତ—ସଂ. ବି ପୁଂ ( ନଷ୍ଟ+ଚିତ୍ତ; ବହୁବ୍ରୀହି )—
Nashta chitta ମୂଢ଼; ନିର୍ବୋଧ—Foolish
(ନଷ୍ଟ ଚିତ୍ତା—ସ୍ତ୍ରୀ)

ନଷ୍ଟ ଚେତନ—ସଂ. ବି. ପୁଂ. (ନଷ୍ଟ+ଚେତନା; ବହୁବ୍ରୀହି)—
Nashta chetana ୧ । ହତଚେତନ, ହତଜ୍ଞାନ; ଗତଚେତନ;
(ନଷ୍ଟ ଚେତନା—ସ୍ତ୍ରୀ) ସଂଜ୍ଞାହୀନ—1. Unconscious; insensible.
୨ । ମୂର୍ଚ୍ଛିତ—2 Fainted.

ନଷ୍ଟଚେତାଃ—ସଂ. ବିଣ. ପୁଂ (ନଷ୍ଟ+ଚେତସ୍; ୧ମା. ୧ବ, ବହୁବ୍ରୀହି)-
Nashtachetāh ୧ । ଅଜ୍ଞ—1. Ignorant.
୨ । ମୂଢ଼—2. Foolish.
୩ । ନିର୍ବୋଧ—3 Dunce.
୪ । ଲମ୍ପଟ—4. Lecherous.
୫ । ସ୍ଫୂର୍ତ୍ତିହୀନ—5 Devoid of energy.

ନଷ୍ଟଚେଷ୍ଟ—ସଂ. ବିଣ ପୁଂ. (ନଷ୍ଟ+ଚେଷ୍ଟା; ବହୁବ୍ରୀହି)—୧ । ଜଡ଼,
Nashtacheshta ନିଷ୍ପନ୍ଦ—1 Inert
୨ । ଗତିହୀନ—2. Motionless.
୩ । ନିଶ୍ଚେଷ୍ଟ; ଉଦ୍ୟମହୀନ—
(ନଷ୍ଟଚେଷ୍ଟା—ସ୍ତ୍ରୀ) 3. Destitute of energy.
୪ । ମୂର୍ଚ୍ଛିତ—4. Fainted.

ନଷ୍ଟଚେଷ୍ଟତା—ସଂ. ବି. ସ୍ତ୍ରୀ (ନଷ୍ଟଚେଷ୍ଟ+ଭାବ. ତା)—୧ । ପ୍ରଳୟ—
Nashtacheshtatā 1. Devolution of nature.
୨ । ଅଚୈତନ୍ୟ—2. Insensibility.
୩ । ନିଷ୍ପନ୍ଦତା—3. Inertness.
୪ । ମୂର୍ଚ୍ଛା—4 Fainting.

ନଷ୍ଟତା—ସଂ. ବି—(ନଷ୍ଟ+ଭାବାର୍ଥେ. ତା;)—୧ । ଧୂର୍ତ୍ତତା, ଶଠତା—
Nashtatā 1. Knavery
୨ । ଲାମ୍ପଟ୍ୟ—2 Debauchery; profligacy.
୩ । ଅପବିତ୍ରତା—3 Pollution.
୪ । ଦୁଷ୍ଟାମି; ଦୁଷ୍ଟତା—4 Wickedness, depravity; wantonness; turpitude.

ନଷ୍ଟଦୂତୀ—ସଂ. ବି.—(ନଷ୍ଟା+ଦୂତୀ)—ଅସଦାଚରଣୀ ଦୂତୀ—
Nashtadūti A lustful go-between.

ଦ୍ରବ୍ୟ ଦେଇ ନଷ୍ଟଦୂତୀ, କହେ ସେ ଭୂଜଙ୍ଗରେ ଗୀତ ।
ଉପେ. ବୈଦେହୀଶବିଳାସ ।

ନଷ୍ଟଦୃଷ୍ଟି—ସଂ ବିଣ. (ନଷ୍ଟ+ଦୃଷ୍ଟି, ବହୁବ୍ରୀହି)—ଅନ୍ଧ—
Nashta drushti Blind.
(ନଷ୍ଟନେତ୍ର—ଅନ୍ୟରୂପ)

ନଷ୍ଟଧନ—ସଂ. ବିଣ.—(ନଷ୍ଟ+ଧନ)—୧ । ଦରିଦ୍ରାବସ୍ଥାପ୍ରାପ୍ତ—
Nashta dhana 1 Impoverished.
୨ । ଜାଦାନ୍ ଛଅ ଦଶା ହୋଇଥିବା (ବ୍ୟକ୍ତି)—
2 Reduced to penury.

ନଷ୍ଟ ପୁରୁଷ—ସଂ. ବି.—(କର୍ମଧା; ନଷ୍ଟ+ପୁରୁଷ)—ଅକର୍ମଣ୍ୟ ବ୍ୟକ୍ତି;
Nashta purusha ନପୁଂସକ ବ୍ୟକ୍ତି—An impotent person.

ଗୋପୀଙ୍କ ବୃଥା ହୋଇବେ ଯେତେକ,
ସେହି ତ ଅଷ୍ଟ ଅଂଶ ବୋଲି ଲେଖ,
ସମସ୍ତେ ହୋଇବେ ନଷ୍ଟ ପୁରୁଷ,
ଭୂମିର ଅକ୍ଷର 'ଗୋ' ତହିଁ ଯାଇ ଏବେ ଅଂଶ । ପ୍ରାଚୀ. ଉତ୍ସବମଞ୍ଜରୀ ।

ନଷ୍ଟପ୍ରଭ—ସଂ. ବିଣ. ପୁଂ. (ବହୁବ୍ରୀହି; ନଷ୍ଟ+ପ୍ରଭା) ଯାହାର ପ୍ରଭା ବା
Nashtaprava ତେଜ ମଳିନ ଯାଇ ଅଛି—One who has
(ନଷ୍ଟପ୍ରଭା—ସ୍ତ୍ରୀ) lost his lustre or glory.

ନଷ୍ଟବୀଜ—ସଂ ବିଣ. (ବହୁବ୍ରୀହି, ନଷ୍ଟବୀଜ)—୧ । ଯାହାର ମଞ୍ଜି ନଷ୍ଟ
Nashtabīja ହୋଇ ଅଛି—Having the seed spoiled.
୨ । ନିଷ୍ଫଳ—2 Fruitless; unproductive.

ନଷ୍ଟ ମତି—ସଂ. ବିଣ. (ନଷ୍ଟ+ମତି; ବହୁବ୍ରୀହି)—୧ । ଜ୍ଞାନଭ୍ରଷ୍ଟ—
Nashta mati 1 Deprived of understanding,
(ନଷ୍ଟବୁଦ୍ଧି—ଅନ୍ୟରୂପ) in tellect or wisdom
୨ । ଦୁର୍ବୁଦ୍ଧି—2. Wicked; perverted.
୩ । ନିର୍ବୁଦ୍ଧିଆ; ମୂଢ଼—3. Foolish.

ନଷ୍ଟ ଭ୍ରଷ୍ଟ—ସଂ. ବିଣ. (ସମାର୍ଥକ ସହଚର, ନଷ୍ଟ+ଭ୍ରଷ୍ଟ)—ସମ୍ପୂର୍ଣ୍ଣରୂପେ
Nashta bhrashta ବିନାଶ ପ୍ରାପ୍ତ; ବିନଷ୍ଟ—Ruined

ନଷ୍ଟ ମାର୍ଗଣ—ସଂ. ବି (ନଷ୍ଟ+ମାର୍ଗଣ=ଅନ୍ୱେଷଣ; ୬ଷ୍ଠୀ ତତ୍)—
Nashta mārgaṇa ନଷ୍ଟ ବସ୍ତୁର ଅନ୍ୱେଷଣ—Searching for a lost thing

ନଷ୍ଟ ସଂସ୍ମୃତି—ସଂ. ବିଣ.—(ନଷ୍ଟ+ସଂସ୍ମୃତି; ବହୁବ୍ରୀହି)—
Nashtasamsmruti ୧ । ବିସ୍ମରଣଶୀଳ—
(ନଷ୍ଟସ୍ମୃତି—ଅନ୍ୟରୂପ) 1. Forgetful.
୨ । ଯେ ପୂର୍ବ କଥା ଭୁଲି ଯାଇଅଛି—2. Oblivious.

ନଷ୍ଟା—ସଂ. ବିଣ. ସ୍ତ୍ରୀ—(ନଷ୍ଟ+ଆ)—ଭ୍ରଷ୍ଟା; ଅସତୀ; କୁଳଟା; ବ୍ୟଭି-
Nashtā ଚାରିଣୀ—Unchaste.
ସଂ ବି. ସ୍ତ୍ରୀ—ଅସତୀ ସ୍ତ୍ରୀ—An unchaste woman.

ନଷ୍ଟାଗ୍ନି—ସଂ. ବିଣ. ପୁଂ (ବହୁବ୍ରୀହି,ନଷ୍ଟ+ଅଗ୍ନି)—ଯେଉଁ ଅଗ୍ନି ହୋତ୍ରୀ-
Nashtāgni ଙ୍କର ଯଜ୍ଞାଗ୍ନି ନଷ୍ଟ ବା ନିର୍ବାପିତ ହୋଇ ଅଛି—
(an agnihotra)Who has had his sacrificial fire extinguished

ନଷ୍ଟାତ୍ମା—ସଂ. ବିଣ. (ବହୁବ୍ରୀହି; ନଷ୍ଟ+ଆତ୍ମନ୍; ୧ମା. ୧ବ.)—ଦୁଷ୍ଟ;
Nashtātmā ଖଳ—Wicked.

ନଷ୍ଟାପ୍ତି—ସଂ. ବି. (୬ଷ୍ଠୀ ତତ୍; ନଷ୍ଟ+ଆପ୍ତି)—ନଷ୍ଟ ବସ୍ତୁର ପ୍ରାପ୍ତି—
Nashtāpti Recovery of a lost article

ନଷ୍ଟାପ୍ତି ସୂତ୍ର—ସଂ. ବି. (୬ଷ୍ଠୀ ତତ୍, ନଷ୍ଟାପ୍ତି+ସୂତ୍ର)—ନଷ୍ଟ ଦ୍ରବ୍ୟର
Nashtāpti sūtra କିଛି ଅଂଶ ପ୍ରାପ୍ତି, ଯହିଁରୁ ଅବଶିଷ୍ଟ ନଷ୍ଟ
ଦ୍ରବ୍ୟ ମିଳିବାର ସୂତ୍ର ମିଳେ—Recovery of a part of a lost article leading to the recovery of the rest

ନଷ୍ଟାମି—ଦେ. ବି. (ସଂ. ନଷ୍ଟରୁ ବଙ୍ଗଳା ବିଶେଷ୍ୟ; ବଙ୍ଗଳାରୁ ଅନୁକୃତ)
Nashtāmi ୧ । ଦୁଷ୍ଟତା; ଦୁଷ୍ଟାମି—1 Wickedness;
नष्टामी turpitude; wantonness; depravity.
नष्टपन ୨ । ଭଣ୍ଡପଣ—2. Buffoonry.

**ନଷ୍ଟାଶ୍ୱ**—ସଂ. ବିଣ. ପୁଂ—(ନଷ୍ଟ+ଅଶ୍ୱ, ବହୁବ୍ରୀହି)—ଯାହାର ଘୋଡ଼ା
Nashṭāśwa ନଷ୍ଟ ଅଛି—Having lost one's horse

**ନଷ୍ଟାଶ୍ୱରଥ ନ୍ୟାୟ**—(ଦୃଷ୍ଟାନ୍ତବିଶେଷ)—ଦୁଇଜଣ ଦୁଇଟି ପୃଥକ୍
Nasṭāśwaratha nyāya ରଥରେ ଚଢ଼ି ପାରିଧି କରିବାକୁ
(ନଷ୍ଟାଶ୍ୱଦଗ୍ଧରଥ ନ୍ୟାୟ—ଅନ୍ୟରୂପ) ଯାଇଥିବା ଅବସ୍ଥାରେ ଦାବାଗ୍ନି ଦ୍ୱାରା ଜଣକର ଘୋଡ଼ା ଓ ଆଉ ଜଣକର ରଥ ନଷ୍ଟ ହୋଇ ଯିବାରୁ, ଦୁର୍ଦ୍ଦୈବାକ ଜଣକର ରଥରେ ଅନ୍ୟ ଜଣକର ଘୋଡ଼ାକୁ ଯୋଚି ବଣରୁ ପଳାଇ ଆସିବାକୁ ସମର୍ଥ ହୋଇଥିଲେ । ଏହିପରି ଦୁଇଜଣଙ୍କର ଉପାୟକୁ ସଂଯୋଗ କରି କୌଣସି ବିପଦରୁ ଉଦ୍ଧାର ପାଇବା ସ୍ଥଳରେ ଏହି ଦୃଷ୍ଟାନ୍ତ ଦିଆଯାଏ—
An analogy applied to the case of two persons suceeding in attaining an object with the help of materials taken from both when either of them is wanting in one of the materials wanted

**ନଷ୍ଟି**—ସଂ ବି. (ନଶ୍ ଧାତୁ=ନାଶ କରିବା+ଭାବ. ତି)—ବିନାଶ—
Nashṭi Ruin; destruction.
ନୋକସାନ ଦେ ବି—ବାଣିଜ୍ୟରେ କ୍ଷତି, ଲୋକସାନ୍—
नुकसान Loss in trade.

**ନଷ୍ଟେନ୍ଦୁକଳା**—ସଂ ବି ସ୍ତ୍ରୀ (ନଷ୍ଟ+ଇନ୍ଦୁ କଳା, ବହୁବ୍ରୀହି)—
Nashṭendukaḷā ଅମାବାସ୍ୟା—New moon; the 15th day of the dark fortnight.

**ନଷ୍ଟୋଦ୍ଧାର**—ସଂ ବି (ନଷ୍ଟ+ଉଦ୍ଧାର; ୬ଷ୍ଠୀ ତତ୍)—
Nashṭoddhāra ହଜିଥିବା ଦ୍ରବ୍ୟକୁ ପାଇବା—
Recovery of a thing lost.

**ନସ୍ (ଧାତୁ)**—ସଂ—୧ । କୁଟିଳ ହେବା—
Nas (root) 1. To bend, to be crooked or curved.
୨ । ଆଡ଼କୁ ଗଡ଼ି କରିବା—
2. To approach; to go towards.
୩ । ରମଣ କରିବା—3. To copulate (Apte).
୪ । ଶବ୍ଦ କରିବା—4. To make a sound.

**ନସ**—ସଂ ବି. (ନସ୍ ଧାତୁ=ଶବ୍ଦ କରିବା; କୁଟିଳ ହେବା+କର୍ତ୍ତୃ. ଅ)—
Nasa ନାସିକା; ନାକ—Nose
(ନସା, ନସ୍ୟା—ଅନ୍ୟରୂପ)

**ନସର ପସର**—ଦେ. ଅ—ଲସର ପସର (ଦେଖ)
Nasara pasara Lasara pasara (See)
लदर फदर × × × ଚୌକିଦାର.ନସରପସର ହୋଇ ଧାଇଁ ଅଛନ୍ତି । ଫକୀରମୋହନ. ଛମାଣଆଠଗୁଣ୍ଠ ।

**ନସରା**—ଦେ ବିଣ—ନବସର; ନଅଖିଅ ବିଶିଷ୍ଟ (ହାର)—
Nasarā Nine-stringed (necklace).
(ନସର; ନସରିଆ, ନଅସର୍ଷା, ନଅସରିଆ—ଅନ୍ୟରୂପ)
ନଲଖା नवलखा

**ନସା**—ସଂ. ବି. (ନସ+ଆ(—ନାସା, ନାକ (ହି. ଶବ୍ଦସାଗର)—
Nasā Nose (Apte)
ଗ୍ରା ବି. (ସଂ ରସ)—ଲସା (ଦେଖ)—Lasā (See)

**ନସାଇବା**—ପ୍ରାଦେ. (ସମ୍ବଲପୁର) କ୍ରି. (ଭୁଲ ଏହି ଅର୍ଥରେ ହି
Nasāibā ନସାନା)—ନଷ୍ଟ କରିବା—To destroy
ଖେଡ଼ ନସାଏ ବଦନ ନା--ଗର ।

**ନସି**—ଦେ. ବି—୧ । (ସଂ. ରସ)—ଲସି (ଦେଖ)
Nasi 1. Lasi (See)
ବଙ୍ଗ ୨ । (ସଂ. ନାସିକା) ଆମ୍ବଆଦି ଫଳର ଡେମ୍ଫ—
নস 2 The stem of a fruit
বোঁটা डंठी

**ନସି ଫିଟିବା**—ଦେ ବି—ସ୍ତନରୁ ପ୍ରଥମ ସ୍ତନ୍ୟୋତ୍କ୍ରମ ହେବା—
Nasi phiṭibā The first coming out of milk
বোঁটাকুলা नसखुलना from the mamma

**ନସିବ୍**—ଦେ. ବି. (ଆ ନସୀବ୍)—ଲସିବ୍; କର୍ମ; ଅଦୃଷ୍ଟ; ଭାଗ୍ୟ
Nasib କପାଳ—Luck; fate; destiny; fortune,
নসীব नसीब lot; chance.

**ନସୀବ୍‌ଦାର**—ବୈଦେ. ବିଣ (ଆ ନସୀବ୍‌ଦର୍. ଆ ନସୀବ୍+ଫା. 
Nasib-dār ପ୍ରତ୍ୟୟ ଦାର)-ଭାଗ୍ୟବାନ୍—
(ଷେଠନସୀବ୍, ଘୋଡ଼ାନସୀବ୍—ବିପରୀତ) Lucky; fortunate
নসীবদার नसीबवर

**ନସିବା**—ଦେ. କ୍ରି. (ସଂ. ଲସ୍ ଧାତୁ—୧ । ଲସିବା; ଉପୂରେ ସଙ୍କୁଚିତ
Nasibā ବା ତ୍ରସ୍ତ ହେବା—1 To be taken aback with
দমা, দমেষাওয়া fear; to shrink with fear.
सहमना ୨ । ତଳକୁ ଲଇଁ ଯିବା—2. To bend downwards

ନସିଯିବା | ପ୍ରାଦେ. (ସମ୍ବଲପୁର) କ୍ରି. (ଭୁଲ. ହି ଏହି
ନହସିବା | —ଅନ୍ୟରୂପ] ଅର୍ଥରେ ନସନା)—ନଷ୍ଟ ହେବା—
ନହସଯିବା | To be destroyed.

**ନସିବୀ**—ବୈଦେ. ବିଣ. (ଆ. ନସୀବୀ)—କପାଳିଆ; ଭାଗ୍ୟବାନ୍—
Nasibī Fortunate; lucky.
নসীবী नसीबी
(ନସିବଦାର, ନସିବମନ୍ତ, ନସିବବନ୍ତ—ଅନ୍ୟରୂପ)

**ନସେଇବା**—ଗ୍ରା. କ୍ରି—୧ । ନସିବା କ୍ରିୟାର ଣିଜନ୍ତରୂପ—
Naseibā 1. Causative of the verb Nasibā.
୨ । (ଘାଆ ଇତ୍ୟାଦି) ରସ ଗ୍ରାସି ହେବା—
2. To ooze (said of a sore).

**ନସ୍ତ**—ସଂ. ବି. ପୁଂ. (ନସ୍ ଧାତୁ—କୁଟିଳ ହେବା+ସଞ୍ଜ୍ଞାର୍ଥେ ତ)—
Nasta ୧ । ନାକ, ନାସିକା 1 Nose.
୨ । ନସ୍ୟ—2. Sternutatory; snuff (Apte).

**ନସ୍ତକରଣ**—ସଂ ବି—ନାକରେ ତରଳ ଔଷଧ ପକାଇବା ପାଇଁ
Nastakaraṇa ବୈଦ୍ୟମାନଙ୍କ ବ୍ୟବହୃତ ଯନ୍ତ୍ର (ହି. ଶବ୍ଦସାଗର)—
A kind of dropper for administering medicine inside the nose

**ନସ୍ତର**—ଦେ. ବିଣ. ( ସ. ଅସ୍ତ୍ର; ଶସ୍ତ୍ର )—ଲସ୍ତର ( ଦେଖ )
Nastara Lastara ( See )
অস্তব **চীংফাড়্**

**ନସ୍ତା**—ସ. ବି. ( ନସ୍ ଧାତୁ+ତ+ଆ )—
Nastā ୧ । ପଶୁମାନଙ୍କ ନାକରେ ଦଉଡ଼ି ଗଳାଇବା ପାଇଁ
(ନସ୍ତବ—ଅନ୍ୟରୂପ) ନାକରେ କରାଯିବା ଫୋଡ଼ ( ହି. ଶ. )—
1. A hole bored in the nose of beasts of burden
୨ । ନାକଦଣ୍ଡିରେ କରାଯିବା ଫୋଡ଼—2. A hole bored in the septum of the nose (Apte)

**ନସ୍ତିତ**—ସ ବି. (ନସ୍ତା+ଇତ, ନସ୍ତ+ଇତ=ସିଆଁ ହୋଇଥିବା; ନସ୍ୟା=ନାସିକା+ଉତ=ସିଆଁ ଯାଇଥିବା)—
Nastita
ନସ୍ତୋତ / ନସ୍ୟୋତ } ଅନ୍ୟରୂପ ନାକଫୋଡ଼ା ବଳଦ, ମଇଁଷି ବା ଓଟ; ଯେଉଁ ବଳଦର ନାକ ଫୋଡ଼ା ହୋଇ ଦଉଡ଼ି ଗଳଥାଏ—Bullock, buffalo or camel whose nose is bored and a string passed through the bore.
ସ ବିଣ—ଯେଉଁ ପଶୁର ନାକ ଫୋଡ଼ା ହୋଇ ରନ୍ଧ୍ରରେ ଦଉଡ଼ି ଗଳଥାଏ—Nozzled (with a string through the nose) (Apte).

**ନସ୍ମ**—ଦେ. ବି(ସ. ଶ୍ଳେଷ୍ମନ୍)—୧ । ନସମ, ଯେଉଁ ଶର୍ଦ୍ଦିରେ ନାକରୁ ପାଣି ବୁହେ—1. Catching cold.
Nasma
ନସମ / ନସ୍ମା } ଅନ୍ୟରୂପ ୨ । କାଶ ସହିତ ଶର୍ଦ୍ଦି—2 Cough and cold.
সর্দি **থৰ্দি**

**ନସ୍ମା**—ଦେ. ବିଣ—ନଶମା (ଦେଖ)
Nasmā Naśamā (See)

**ନସ୍ୟ**—ସ. ବି. (ନସ=ନାସିକା+ପ୍ରୟୋଜନାର୍ଥେ ଯ)—
Nasya ୧ । ନାସ; ନାକଦ୍ୱାରା ବ୍ୟବହାର୍ଯ୍ୟ ଚୂର୍ଣ୍ଣବିଶେଷ—1 Snuff.
୨ । ରୋଗୋପଶମାର୍ଥ ନାକର ରନ୍ଧ୍ର ମଧ୍ୟରେ ଯେଉଁ ଚୂର୍ଣ୍ଣ ବା ରସ ପ୍ରବିଷ୍ଟ କରାଇ ଦିଆଯାଏ—Sternutatory powder or juice.
୩ । ନାକରନ୍ଧ୍ରରେ ଥିବା କେଶ—3. The hairs in the nose (Apte)
ସ. ବିଣ—୧ । ନାସା ସମ୍ବନ୍ଧୀୟ—Pertaining to the nose; nasal.
୨ । ନାସିକାର ହିତଜନକ—2. Beneficial for the nose.

**ନସ୍ୟ ଦାନୀ**—ଦେ. ବି. (ସ. ନସ୍ୟଧାନୀ)—ନାସଦାନୀ—
Nasya dāni Snuff box.

**ନସ୍ୟଧାନୀ**—ସ. ବି ସ୍ତ୍ରୀ. (ନସ୍ୟ+ଧାନୀ=ଅଧାର)—ନାସଦାନୀ—
Nasyadhāni Snuff box.
(ନସ୍ୟାଧାର—ଅନ୍ୟରୂପ)

**ନସ୍ୟା**—ସ ବି. ସ୍ତ୍ରୀ—୧ । (ନସ+ଯ+ଆ)—ନାକ—
Nasyā 1. Nose.
୨ । ନାକରେ କରାଯିବା ଫୋଡ଼ (ହି ଶବ୍ଦସାଗର)—2. A hole bored through the nose
୩ । (ନସ୍ୟ+ଆ)—ପଶୁଅଙ୍କ ନାକଫୋଡ଼ରେ ଗଳାଥିବା ଦଉଡ଼ି—3. String passed through the bore of the nose of a beast.

**ନହ୍** (ଧାତୁ)—୧ । ବନ୍ଧନ କରିବା—
Nah (root) 1. To bind; to tie.
୨ । ଗୁଡ଼ାଇବା, ଶରୀରଚାରିପାଖେ ବୁଲାଇ କରି ବାନ୍ଧିବା—2. To gird round.
୩ । ପୋଷାକଆଦି ପିନ୍ଧିବା; ପରିଧାନ କରିବା—3. To put on one's self; to dress; to arm one's self with(Apte).

**ନହ**—ଗ୍ରା. ବି—୧ । (ପଦ୍ୟ) (ସ. ନଖ) ନଖ—
Naha 1 Finger-nail
नह କୁଟ ହ ମାଧବ ମୁରାରି, ନହେଣ ହିରଣ୍ୟ ବଦାରି ।
**নহ** କମଳଲୋଚନ—ଭଞ୍ଜଚଉତିଶା ।
୨ । (ସ. ଲତା)—ଲହ, ଲତା—2 Creeper.
(ଯଥା—ନହ ବିରି ।)
୩ । (ଶୁଭବାଚକ) ଲହ, ଲମ୍ବ ଜନ୍ତୁ, ସାପ—3. (Euphemism) Serpent.

**ନହକା**—ଦେ ବିଣ. (ସ. ନମ ଧାତୁ)—୧ । ଲହକା; ପତଳା ଓ ଲମ୍ବ—
Nahakā 1. Flexible and thin; long and thin.
नचनचे, छिपछिपे ୨ । ଦୋହୋଲୁ ଥିବା—
**লচকা, লচীলা** 2. Oscillating; swinging.
ଗଛ ନହକା ପତର ବଙ୍କା
ଘା ଫଳଟା ଲଙ୍କେ ଠଙ୍କା । ପ୍ରହେଳିକା । (ଉତ୍ତର—ଖାଳ)
୩ । ଢେଙ୍ଗା ଓ ପତଳା (ବ୍ୟକ୍ତି)—3. Tall and thin (person).

**ନହକା(କେ)ଇବା**—ଦେ. କ୍ରି—ଲହକାଇବା ( ଦେଖ )
Nahakā(ke)ibā Lahakāibā ( See )
नचनच करवा **লচকানা**

**ନହକିବା**—ଦେ. କ୍ରି—ଲହକିବା; ବଙ୍କ ହେବା; ଦୋହଲିବା—
Nahakibā To oscillate.
नचनच हओया ଅମ୍ବ ଡାଳ ଖଣ୍ଡ ନହକଇ, ବାଟେ ବାଟେ ଗନ୍ଧ ଗେଲେଇ ନାଗୀ,
**লচকনা** ଗନ୍ଧ ମଲ୍ଲୀ ଫୁଲ ମହକଇ—କେଳା ଗୀତ ।

**ନହଙ୍ଗା**—ଦେ ବି ଓ ବିଣ—ଲହଙ୍ଗା ( ଦେଖ )
Nahaṅgā Lahaṅgā ( See )
(ନହଙ୍ଗି—ଅନ୍ୟରୂପ)

**ନହଡ଼(ର)**—ଦେ. ଅ ( ସ. ଲହରୀ )—
Naharḍa(ra) ୧ । ଧାରା; ପରମ୍ପରା; ରୀତି—
रीति 1. Custom.
**ৰেৱাজ, রস্ম** ୨ । ଜିଦ୍; ଜଗର—
(ଲଡ଼ଡ଼—ଅନ୍ୟରୂପ) 1 Obstinacy; pertinacity.
जिद, गौं ( ଯଥା—ପିଲାଟା ଆମ୍ବ ଖାଇବ ବୋଲି ଏକା ନହଡ଼ ଧରିଛି । )
**হঠ, জিদ্**

ନହଡ଼ା(ଢ଼)—ଦେ. ବି. ( ସ. ଲହରୀ )—
Nahardā(rdī) ୧ । ଢେଉ; ଲହରୀ—1. Wave.
ଲହର ୨ । ଦେଉଳ ଆଦିରେ ବା ଶିଳ୍ପରେ ଆଗକୁ ଆଗକୁ ମାଡ଼ିଥିବା
ଲହ୍‌ର ସ୍ତର—2. The ascending layers of an arch.

ନହଡ଼ା(ଡ଼େ)ଇବା—ଦେ. କ୍ରି—୧ । ଲହରୀ ପରି କୌଣସି କାର୍ଯ୍ୟ
Nahardā(rde)ibā ଉପର୍ଯ୍ୟୁପରି କରିବା ବା ଅନର୍ଗଳ କଥା
ଘଡ଼ଘଡ଼ାନା, ଲହରାନା କହିବା —1. To do a thing continuously or say something fluently without stopping.
୨ । ନହଡ଼ା ମାରିବା—
2. To billow; to roll in large waves.

ନହଡ଼ା ମାରିବା—ଦେ. ବ ଓ କ୍ରି—ଢେଉ ଉଠିବା; ତରଙ୍ଗାୟିତ
Nahardā māriba ହେବା—To be full of waves;
ঢেউ মাবা, ঢেউ খেলান to billow.
ଲହର ମାରନା

ନହଡ଼ି ଭଙ୍ଗା—ଦେ. ବି—ଲହଡ଼ି ଭଙ୍ଗା ( ଦେଖ )
Nahardi bhangā Lahardi bhangā ( See )

ନହଡ଼ି ଭାଙ୍ଗିବା—ଦେ. କ୍ରି—ନିଜ ଆଡ଼କୁ ଆସୁଥିବା ସମୁଦ୍ର ଲହରୀକୁ
Nahardi bhāngibā ଛାତି ପକାଇ ସମ୍ଭାଳିବା—
ঢেউ ভাঁগা To breast the waves of the sea.
ଲହର ଲେନା

ନହଡ଼ି ମୁଦ—ଦେ.ବି —ଲହଡ଼ି ମୁଦ; ଆଗକୁ ଆଗକୁ ମାଡ଼ି ମାଡ଼ି ପଥରର
Nahardi muda ସ୍ତର ବସି କ୍ରମଶଃ ଉପରକୁ ହୋଇଥିବା ଖିଲାଣ—
ঢেউ খেলান A kind of architecture in which
मेहेरावदार खिलान instead of constructing an arch the successive higher layers are laid to project a little beyond the lower layers.

ନହଣ—ଦେ. ବି—ଲହଣ ( ଦେଖ )
Nahana Lahana ( See )

ନହଣି—ଗ୍ରା. ବି (ସ. ନବନୀ)—ନହୁଣି ( ଦେଖ )
Nahani Nahuni ( See )

ନହନ—ସ. ବି ( ନହ୍ ଧାତୁ=ବାନ୍ଧିବା+ଭାବ. ଅନ )—
Nahana ୧ । ବନ୍ଧନ—1. Binding.
୨ । (ନହ୍ ଧାତୁ+କରଣ. ଅନ) ବନ୍ଧନ ରଜ୍ଜୁ—
2. Binding string.

ନହନହ (ଇତ୍ୟାଦି)—ଦେ. ଅ—ଲହଲହ ଇତ୍ୟାଦି ( ଦେଖ )
Nahanaha (etc) Lahalaha etc. ( See )

ନହନା—ପ୍ରାଦେ. (ସମ୍ବଲପୁର) ବି ( ସ. ନହ ଧାତୁ )—
Nahanā କୁଆଳ ମଝିରେ ଲଙ୍ଗଳ ଈଶକୁ ବାନ୍ଧିବା ଚମ ଦଉଡ଼ି, ଚମଡ଼ାର ଲଙ୍ଗଳ ଦଉଡ଼ି; ଅନ୍ଧ ଦଉଡ଼ି—A hide rope by which the shaft of the plough is tied to the yoke.

ନହନାଙ୍ଗୁଡ଼ିଆ—ଦେ. ବି. ( ସ ଲାଙ୍ଗଲୀ )—
Nahanāngurdiā ଲାଙ୍ଗଳୀ (୧) ( ଦେଖ )
(ନହନାଙ୍ଗୁଳିଆ—ଅନ୍ୟରୂପ) Lāngali (1) ( See )

ନହବତ୍(ତ) (ଇତ୍ୟାଦି)—ବୈଦେ ବି. (ଆ. ନଓବତ୍ )—
Nahabat(ta) etc ନଉବତ୍ ଇତ୍ୟାଦି ( ଦେଖ )
Naubat etc ( See )
ବାଜଣ ଉଠିଲା ନହବତ ଉଠ ନାଦେ ପଡ଼ିହ । ରାଧାନାଥ. ଛଷା ।

ନହବିରି—ଦେ. ବି—ଲଅବିରି ( ଦେଖ )
Nahabiri La-abiri ( See )

ନହମା—ଦେ ବି—ଲହମା ( ଦେଖ )
Nahamā Lahamā ( See )

ନହମାଏ—ଦେ. କ୍ରି ବିଣ—ଲହମାଏ ( ଦେଖ )
Nahamāe Lahamāe ( See )
(ନହମାରେ, ନହମାକେ—ଅନ୍ୟରୂପ)
एक छन একক্ষণে

ନହମାକେ—ଦେ. ଅ—ନିମିଷକେ—
Nahamāke Within a moment; in the twinkling of the eye.
एक छन मे একক্ষণে

ନହମ୍ବର (ଇତ୍ୟାଦି)—ବୈଦେ. ଗ୍ରା. ବି ( ଇଂ. ନମ୍ବର )—
Nahambara (etc) ନମ୍ବର ଇତ୍ୟାଦି (ଦେଖ )
Nambara etc ( See )

ନହମ୍ବରି (ଇତ୍ୟାଦି)—ଦେ. ବିଣ—ନମ୍ବରି ଇତ୍ୟାଦି ( ଦେଖ )
Nahambari (etc) Nambari etc ( See)

ନହର—ଦେ. ବି. ( ସ ନଗର )—
Nahara ୧ । ନଅର; ରାଜପ୍ରାସାଦ—1 Palace.
মহল, বাজ মহল ୨ । ରାଜାଙ୍କ ଅନ୍ତଃପୁର—
नगर 1. The harem of a king.
নব ୩ । ( ସ. ଲହରୀ, କମ୍ବା ସ. ଯଷ୍ଟି=ଗ୍ରା ଲଟ୍ଟି )—
लड़ ହାର ଆଦିର ସର—3. One of the strings of a necklace.

ନହର କୋଲି—ଦେ. ବି—ନରକୋଲି ( ଦେଖ )
Nahara koli Narakoli ( See )

ନହରପଥର—ଦେ. ବି—ନଅରପଥର—
Naharapaara Lingering; loitering.
(ନହରପହର—ଅନ୍ୟରୂପ)

ନହରପଅ(ହ)ରିଆ—ଦେ. ବିଣ—ନଅରପଅରିଆ (ଦେଖ)
Naharapa-a(ha)riā Na-arapa-ariā (See)

ନହରା—ଦେ. ବିଣ.—(ସ. ଲହରୀ)—୧ । ଲହରୀ ପରି ଭାଙ୍ଗ ବା ସ୍ତର
Naharā ବିଶିଷ୍ଟ (ବସ୍ତ୍ର); ଲହରା—1. Having wavy folds
लहरा or layers ( a cloth ).
୨ । ପିନ୍ଧିବା ନିମନ୍ତେ ଆବଶ୍ୟକ ପରିମାଣରୁ ବଳି ପଡ଼ୁଥିବା (ଲୁଗା)—2. (wearing cloth) which bulges out of one's body; being in excess of the cloth required for one's wear.
ପ୍ରାଦେ. (ବାଲେଶ୍ୱର) ବି.—ଭଅଁରି; ଭଅଁରୀ; ଜଳଭଉଁରି—
Whirlpool

ନହରା(ରେ)ଇବା—ଦେ. କ୍ରି.—ନହଡ଼ାଇବା (ଦେଖ)—
Nahara(re)ibā Nahardaibā (See)

ନହଲ—ଦେ. ବ.—୧ । ନଅଲ୍ଲ; ନଅ ବନ୍ଦ ଯୁକ୍ତ ତାସ—
Nahala 1. The nine of card play; the card
ନହଲା containing nine points.
ନହଲା ୨ । ରାଜ ମିସ୍ତ୍ରୀଙ୍କ ଛୋଟ କରଣୀ—
(ନହଲ୍ଲ—ଅନ୍ୟରୂପ) 2. A small mason's trowel.

ନହଲିବା—ଦେ. କ୍ରି.—( ସଂ. ଲହସ )—ଲହସ ପରି ଅନର୍ଗଳ
Nahaliba କଥା କହିବା—To speak on without in-
ଘଡଘଡ଼ାନା termission.

ନହି—ସଂ. ଅ.—( ନ+ହି )—ନାଁ; ନୁହେଁ; ନାହିଁ ନାହିଁ—
Nahi (Interjection) No.

ନହିଲେ—ଦେ. ଅ.—(ସଂ. ନଚେତ୍)—୧ । ନଇଲେ, ନୋଚେତ୍—
Nahile 1. Otherwise; else.
ନହିଲେ (ଯଥା—ତୁ ମତେ ବସି କରି କଥା କହ, ନହିଲେ ମୁ
ନହିତୋ ଜମାରୁ ତୋ ଆଡକୁ ଗୁହିଁବି ନାହିଁ ।)
(ନ ହେଲେ—ଅନ୍ୟରୂପ) ୨ । ଅଥବା—2. Or.
(ଯଥା—ଆମ ଦୁ ଜଣଙ୍କ ଭିତରୁ ମୁଁ ନହିଲେ ସେ, କେହି ଜଣେ କଷ୍ଟେ ଯିବୁଁ ।)
୩ । ଅଥବା ନାହିଁ—3. Nor.
୪ । (ନ ହୋଇଲେ ର ସଂକ୍ଷିପ୍ତ ଉଚ୍ଚାରଣ) (କୌଣସି କଥା) ନ ଘଟିଲେ—4. (any thing) Not taking place or happening; if not.
ଖାଠେବ ମନ୍ଥଣ ଘିଅ ନହିଲେ ଉଧାଁକି ନାଚନ୍ତି । ଭଗ ।

ନହୁ—ଗ୍ରା. ଦେଦେ. ବ. (ଆ)—ଲହୁ; ରୁଧିର; ରକ୍ତ—
Nahu Blood.
ଲହୁ ଲହୂ

ନ ହୁଏ—ଦେ. ଅ.—୧ । ନୋଚେତ୍; ନଇଲେ—
Na hue 1. Otherwise.
ନାହ୍ୟ ହୁଏ ତାହାଙ୍କର କାର୍ଯ୍ୟରେ ସଫଳତ, ନ ହୁଏ ଠିକ୍ ।
ନହିତୋ ଫକୀରମୋହନ ଛମାଣ ଆଠଗୁଣ୍ଠ ।
(ନ ହୁଏ ତ—ଅନ୍ୟରୂପ) ୨ । କିମ୍ବା—2. Or.
୩ । ଅଥବା ନାହିଁ—3. Nor.

ନହୁଡ଼ା—ଦେ. ବ.—ଲହୁଡ଼ା (ଦେଖ)
Nahurda Lahurda (See)

ନହୁଡ଼ି—ଦେ. ବ.—ଲହୁଡ଼ି (ଦେଖ)
Nahurdi Laurdi (See)

ନହୁଣିଆ(ଆଁ)—ଦେ. ଣ.(ସଂ. ନବନୀତ)—୧ । ନବନୀତ ପରି କୋମଳ-
Nahunia(ãñ) 1. Soft as butter
ନନୀବ ମତନ ନୁହା ନହୁଣିଆ ମାଛ; ବରଷାରେ ଯାଏ ଦଲ ଦଲେଇଲେ,
ମକ୍ଖନକେ ଏସା ଖାଇ ହେଲେ ଯାଏ ଫାଟ । ସ୍ୱପ୍ନୁଗ ଗୀତ ।
୨ । ଲହୁଣୀ ମିଶ୍ରିତ—2. Mixed with butter.
ଦେ. ବ.—୧ । ଯେ ଲହୁଣୀ ବିକ୍ରୟ କରେ—
1. Butter seller
୨ । ଏକ ପ୍ରକାର ଦେଶୀ ବ୍ୟାୟାମ—
2. A sort of bodily exercise

ନହୁଣୀ—ଦେ. ବ. (ସଂ. ନବନୀ, ନବନୀତ)—ଲହୁଣୀ; ନବନୀତ—
Nahuni Butter.
ନନୀ ମକ୍ଖନ; ନେଉନ

ନହୁଣୀ କାଢ଼ିବା—ଦେ କ୍ରି.—ଦହି ମୁହାଁଇ ସେଥିରୁ ନବନୀତ ବାହାର
Nahuna kardhiba କରିବା—To churn out butter
ନନୀତୋଲା from sour milk or whey.
ନେଉନ ନିକାଲନା

ନହୁଣୀ ମାରିବା—ଦେ. କ୍ରି.—ଲହୁଣୀରୁ ତରଳାଇ ଘିଅ ବାହାର
Nahuni mariba କରିବା—To clarify butter into
ନନୀମାବା ନେଉନ ବଟକାନା ghee.

ନହୁନୁଆଣ—ଦେ. ବ. ଓ ଣ—ଲହୁଲୁଆଣ (ଦେଖ)
Nahunuana Lahuluana (See)
(ନହୁନୁହାଣ—ଅନ୍ୟରୂପ)

ନହୁରୁଣୀ—ଦେ ବ.—(ସଂ. ନଖରଞ୍ଜନୀ)—ନଉରୁଣୀ (ଦେଖ)
Nahuruni Nauruni (See)

ନହୁଲି—ଦେ. ଣ. ସ୍ତ୍ରୀ ( ସଂ. ନବଳା )—ନଖନା (ସ୍ତ୍ରୀ)—
Nahuli 1. In the prime of her youth.
ନହଲୀ ନବେଲି, ନଯୀ ନବେଲୀ ୨ । ଲହୁଲୀ; ଲହୁଲୀ;
ଯୌବନ ଯୁକ୍ତା—Youthful.
(ଯଥା—ନହୁଲୀ ବୟୁସୀ ବାଳା ।)
୩ । (ସଂ. ନମଧାତୁ)—କୋମଳ; ସୁକୁମାରଥା—
3. Tender; soft; delicate.

ନହୁଷ—ସଂ. ବ. (ନହ୍ ଧାତୁ = ବନ୍ଧନ କରିବା + କର୍ତ୍ତୃ. ଉଷ)—
Nahusha (ନାମ) ଯଯାତିଙ୍କ ପିତା (ପୁଣ୍ୟବଳରେ ଏ ଇନ୍ଦ୍ରତ୍ୱ ଲାଭ କରିଥିଲେ । କିନ୍ତୁ ପରେ ବ୍ରାହ୍ମଣମାନଙ୍କୁ ପୀଡ଼ା ଦେବାରୁ ଅଗସ୍ତିଙ୍କ ଶାପରେ ସ୍ୱର୍ଗଚ୍ୟୁତ ହୋଇ ସର୍ପ ଯୋନି ପ୍ରାପ୍ତ ହେଲେ)—(name) The father of Jajati.

ନହେ—ଦେ. (ପଦ୍ୟ) ଅ.—(ସଂ ନ ଭବତି; ପ୍ରା. ଣ ହୋଇ) ନୁହେଁ—
Nahe Not; is not.
ନୟ ବଳେ ବାନ୍ଧୁ ମୃଣାଳ ସାର; ନହେ ମୁକ୍ତର କୋଳ ।
ନହିଁ କଣ୍ଠୁ ଲଭାର ଶିଖରେ କ ବସେ ଭୃଙ୍ଗ ପରି । ପ୍ରାଚୀ—ଭ୍ରତାପ ଶଶିରେଖା

ନହେଲ୍ଲ ବାଗିର୍—ପ୍ରାଦେ (ସମ୍ବଲପୁର) କ୍ରି. ବିଣ—୧ । ଅନାୟାସରେ;
Nahela bagir ଅବଲୀଳାକ୍ରମେ—1 Easily; without effort.
୨ । ଅକାତରେ—2. Without caring for anything.
୩ । ଅକୁଣ୍ଠିତଭାବରେ—
3. Liberally; without hesitation.
୪ । ଅସଙ୍କୁଚିତରୂପେ—
4. Fearlessly; undauntedly.
( ଯଥା—ସେ ଜଙ୍ଗଲରେ ନ ହେଲ୍ଲ ବାଗିର୍ ବୁଲୁଥାଇଥି; ନହେଲ୍ଲବାଗିର୍ ଯେନ୍ତେନ୍ତା କହିଦେସି । )

ନା—ସଂ. ଅ (ନଞର୍ଥକ)—ନାହିଁ; ନୁହେଁ—
Na No; not

[ ଦ୍ର—ଅ, ମା, ନୋ, ନା ନିଷେଧାର୍ଥେ—ସଂସ୍କୃତ ବ୍ୟାକରଣର ସୂତ୍ର । ]

ଦେ. ବି—(ସଂ ନାବ)—ନାଅ (ଦେଖ)

ନାଓ, ନା Nā-ā (See)

ନାଯ୍ ବୈଦେ—ଅ (ଫା. ନଞର୍ଥକ ଉପପଦ, ଆ. ଲା ଉପପଦ; ଭୁଲ.

ନା ନା ସଂ. ନ; ଅନ୍ୟ ଶବ୍ଦ ପୂର୍ବେ ଲାଗେ ଯଥା—ନାଲାଏକ୍)— Non; not.

[ ଦ୍ର—ଏହାର ବ୍ୟବହାର ଦୁଇପ୍ରକାର—(୧) ବୈପରୀତ୍ୟାର୍ଥ—ଯଥା—ନାକେଶ, ନାଖୁର, ନାବାଲଗ, ନାଚାକର; (୨) ଅଭାବାର୍ଥ—ନାଦାନ, ନାଉଅରସି, ନାକସ୍ । ]

(ନାଁ—ଅନ୍ୟରୂପ) ଦେ ଅ (ସଂ ନ; ସଂ ନା—ନୁହେଁ, ନାହିଁ)—

୧ । (ପ୍ରଶ୍ନାର୍ଥକ; କ୍ରିୟା ପରେ ଲାଗେ)କି, କିବା; କି?— 1. (Interrogative) Is it so?

ସତକେ ଅଛନ୍ତି ନା ଭଲେ
ସୁରୀଗଣଙ୍କ ସଙ୍ଗମେଳେ—ଜଗନ୍ନାଥ, ଭାଗବତ ।

ନା ନହିଁ ୨ । ନିଶ୍ଚେ—2 Surely.

ପଥର ହେଲେ ଫାଟିଯାଆନ୍ତ ନା ଭୁବି—କୃଷ୍ଣସିଂହ ମହାଭାରତ. ବନ ।

୩ । ନାହିଁ; ନୁହେଁ—3 No, not

[ ଦ୍ର—ଅଧିକାଂଶ ଲୋକ ନଞର୍ଥକ 'ନାଁ' ସ୍ଥଳରେ 'ନା'—ଲେଖନ୍ତି । କିନ୍ତୁ ଏହା ଉଚ୍ଚାରଣଦୃଷ୍ଟିରେ ଅଶୁଦ୍ଧ । ଓଡ଼ିଆରେ ନା ଶବ୍ଦର ଅର୍ଥ ନାବ ଓ ନାଁ ର ଅର୍ଥ ନାହିଁ, ନୁହେଁ; ପରନ୍ତୁ ସଂସ୍କୃତରେ 'ନା' ଅବ୍ୟୟ ଶବ୍ଦର ନିଷେଧାର୍ଥକ ଅର୍ଥ ମଧ୍ୟ ଦେଖାଯାଏ । ]

୪ । (କ୍ରିୟା ପରେ ବ୍ୟବହୃତ; ନଞର୍ଥକ) ନାହିଁ— 4. Not.

ଲୁଚି ନା ପାରରେ ତୁ ଲୁଚିବୁ ଯେବେ ଦ୍ରବ୍ୟ—ଉପେନ୍ଦ୍ର. ବୈଦେହୀଶବିଳାସ ।

[ ଦ୍ର—ନଞର୍ଥ 'ନ' କ୍ରିୟା ପୂର୍ବରେ ଲାଗେ । ଯଥା—ନ ଖାଅ, ନ ଶୁଣ; କ୍ରିୟା ପରେ ଲାଗିଲେ ନାଁ ହୁଏ ଯଥା—ଖାଅନାଁ; ଯାଅନାଁ । ]

୫ । ନାଁ; ନାହିଁ (ଅନୁଜ୍ଞାର୍ଥକ କ୍ରିୟା ପରେ ଲାଗେ)— 5. Do not (e. g. eat, go).

ଠୋକର ଛଡ଼ାଉଦେନା—କବିସୂର୍ଯ୍ୟ. କଳୋଇଚଉତିଶା ଠ ଗୀତ ।

(ଯଥା—ଖାଅନାଁ, ଦେନାଁ । )

୬ । (ବିଶେଷ୍ୟ ଓ ବିଶେଷଣ ପୂର୍ବେ ଯୁକ୍ତ ହୋଇ ଆପେକ୍ଷିକ ନଞର୍ଥ ବା ଅନୁପସ୍ଥିତି ବୁଝାଏ ।) ଏହା ନୁହେଁ ବି ତାହା ନୁହେଁ— 6. Neither; nor.

(ଯଥା—ନାଁ ଧଳା, ନାଁ କଳା । )

୭ । ପ୍ରଶ୍ନର ନଞର୍ଥବୋଧକ ଉତ୍ତରରେ ବା ଅସ୍ୱୀକାରାର୍ଥରେ 7. No.

ନାଅ—ଦେ. ବି (ସଂ ନାବ)—ନାବ, ନୌକା, ଡଙ୍ଗା— Nā-ā Boat.

ନାଓ, ନା ନବ ନାଗ ନାସି ନାଅ ଏ ଶବ୍ଦକ ପ୍ରତେ କେବେ ନ ଅସର ।

ନାବ; ନାଯ ସୁଲକ୍ଷଣ, ବର୍ଣ୍ଣବର୍ଣ୍ଣନା ।

ନାଅଁ (ଇତ୍ୟାଦି—ଦେ. ବି. (ସଂ. ନାମନ୍ ଭୁଲ ଫା. ନାମ୍ ଇଂ ନେମ୍; ଲା. ନୋମେନ୍; ଫ୍ରେ. ନମ୍)— Nā-āṅ (etc)

ନାଁଅଁ } ଅନ୍ୟରୂପ ୧ । ନା ଇତ୍ୟାଦି (ଦେଖ)
ନାଁ } 1 Nāñ etc (See)

ନାମ ୨ । ଉଲ୍ଲେଖ—2. Mention

नाम ୩ । ସୁଯଶ; ସୁନାମ—3. Good reputation; good name.

୪ । କଳଙ୍କ; ଦୁର୍ନାମ—4. Ill repute; notoriety.

୫ । ପ୍ରହେଳିକା ବା କୌତୁକ ପ୍ରଶ୍ନ—5. A riddle.

बुझौवल; पहेली

ଝିକ ଝିକ କଣ୍ଟା କପୂରର ବାସ
ଏ ନାଅଁ କହିଦେଲେ ବଳରାମଦାସ । ପ୍ରହେଳିକା ।

୬ । ଖ୍ୟାତି—6 Reputation; celibrity.

[ ଦ୍ର—ନାଅଁ ଶବ୍ଦଯୁକ୍ତ ପଦମାନଙ୍କ ପାଇଁ ନାଁ ଓ ନାମ ପରେ ଦେଖ । ]

ନାଅଁକୁ—ଦେ ଅ (ସଂ. ନାମ)—୧ । ନାମ ମାତ୍ର— Nā āṅku 1 In name; nominally.

नाममात्र ୨ । ଅତି ସାମାନ୍ୟ ମାତ୍ର—

नामकेलिए 2. Very little; almost nothing

ନାଅଁକେ—ପ୍ରାଦେ. (ସମ୍ବଲପୁର) ଅ—ନାଅଁକୁ; ଅଳ୍ପିକିଏ— Nā-āṅke A very little; equal to almost nothing.

ନାଅଁତର—ପ୍ରାଦେ. (ଗଞ୍ଜାମ) ବି (ଇଂ. ଲଣ୍ଠନ୍‌ର ଅଶୁଦ୍ଧ ଉଚ୍ଚାରଣ)— Nā-āṅtarā ଲଣ୍ଠନ୍—Lantern.

ନାଅକା (ଇତ୍ୟାଦି)—ଗ୍ରା ବି ଓ ବିଣ—ନାହାକା ଇତ୍ୟାଦି (ଦେଖ) Nā-ākā (etc) Nāhākā etc (See)

ନାଅଚଲିଆ—ଦେ. ବିଣ—ନାହାଚଲିଆ (ଦେଖ) Nā-āchāḷiā Nāhāchāḷiā (See)

ନାଅପସନ୍ଦ—ବୈଦେ ବିଣ—ନାପସନ୍ଦ (ଦେଖ) Nā-āpasanda Nāpasanda (See)

(ନାଅଁପସନ୍ଦ—ଅନ୍ୟରୂପ)

ନାଅରଜ—ଦେ ବିଣ—ନାରାଜ (ଦେଖ) Nā-ārāja Nārāja (See)

ନାଅରଜି—ଦେ. ବି—ନାରାଜି (ଦେଖ) Nā-ārāji Nārāji (See)

ନାଇ—ଦେ. ବି (ସଂ. ନାଭି)—୧ । ନାହି; ଲାହି; ନାଭି— Nāi 1. Navel.

नाई ढोँढी ୨ । ଚକର ଦାଣ୍ଡି—2. The nave of a wheel.

ना ଗ୍ରା. ଅ (ସଂ ନହି)—ନାହିଁ, ନାଁ, ନୁହେଁ— No, not.

नहिँ

नाई ଗ୍ରା (ନଞର୍ଥକ) କ୍ରି—ନ ଅଛି; ନ ଥାଏ; ନ ଅଛୁ, ନାହିଁ— Is not.

नहिहै

[ ଦ୍ର—ଓଡ଼ିଆରେ କ୍ରିୟା ପୂର୍ବରେ 'ନ' ଓ ପରେ 'ନାହିଁ' ଲାଗେ । ଯଥା—ନ ଯାଏ, ଯାଏନାହିଁ; କିନ୍ତୁ ସମ୍ବଲପୁରରେ 'ନାଇ' ଶବ୍ଦ କ୍ରିୟା ପୂର୍ବରେ ଲାଗେ । ଯଥା—ମୁଁ ନାଇଯାଇ=ଯାଇ ନ ଥିଲି; ନାଇଯାଏଁ=ମୁଁ ଯିବି ନାହିଁ; ନାଇଯିବାର=ଯାଇ ନାହିଁ ।]

ନାଇଅ—ଦେ. ବି (ସଂ. ନାଭି)—ନାହିଆ (ଦେଖ) Nāiā Nāhiā (See).

नाई अलगना

ନାଇଆ ମାରବା—ଦେ. ବି—ଗଛ, ମାଛ ପ୍ରଭୃତିଙ୍କୁ ନାହିଆ ରୋଗ ଧରିବା;
Nāiā māribā ମାଛ ବଉଳଯିବା ଓ ଗଛ ଶୁଖିଆସିବା—
अलगजाना Fishes and trees being struck with the Nāhiā disease.

ନାଇଁ ବା—ଦେ ଅ (ସଂ. ନହି+ବା)—ନାହିଁ ବା, ବିକଳ୍ପେ ନୁହେଁ—
Nāiṅ bā Conjunction used to denote a negation.
नाई वा नहिं तो (ଯଥା—ମୁଁ ଏ କଥା ନାଇଁ ବା କଲି, ମୋର କିଏ କଅଣ କରିବ ?

ନାଇକ—ପ୍ରାଦେ (ଗଡ଼ଜାତ, ସଂ ନାୟକ) ବି (ପାଇକର ସମ୍ବନ୍ଧରେ)—
Nāika ପାଇକ ସରଦାର—The chief of the Pāika-militia,

ପ୍ରାଦେ (ଗଞ୍ଜାମ) ବି—ସରକାରୀ ଖଜଣା ଆଦାୟକାରୀ—
Rent collector (under the direct control of the Government).

(ନାଇକାର—ଅନ୍ୟରୂପ) ଦେ. ବି—ତେଲଙ୍ଗାମାନଙ୍କର ଉପାଧିବିଶେଷ—A family-title of some Telgus.

ନାଇକା—ଦେ. ବିଣ. (ସଂ. ନାୟକ)—ପ୍ରଧାନ (ବୃକ୍ଷର ଚେର)—
Nāikā Main (root of a tree)

ଦେ. ବି. ସ୍ତ୍ରୀ. (ସଂ. ନାୟିକା)—୧ । ନାୟିକା (ଦେଖ)
1 Nāyikā (See)

नायकी ୨ । ବୀଣାର ପ୍ରଧାନ ତନ୍ତ୍ରୀ—
2 The principal string of a harp.

ପ୍ରାଦେ (ଗଞ୍ଜାମ) ବି. (ସଂ. ନାୟକ)—ଖଜଣା ଅସୁଲ କରିବା ଗ୍ରାମ୍ୟ କର୍ମଚାରୀ—Village official for collecting rent.

ନାଇକା ଚେର—ଦେ ବି (ସଂ. ନାୟକ+ଓଡ଼ିଆ ଚେର)—
Nāikā chera ନାହାକାଚେର; ଗଛର ପ୍ରଧାନ ବା ବଡ଼ ଚେର—
ପ୍ରଧାନଶିକଡ़ मुसला The main root of a tree,

ନାଇକିରି ବାଇଗଣ—ଦେ. ବି. (ସଂ. ନାମ-ସୁଦୀର୍ଘ ଫଳକା)—
Nāikiri bāigaṇa ନାରିକେରି ବାଇଗଣ (ଦେଖ)
सिङ्गे बेगुन, कुलीबेगुन, Nārikeri bāigaṇa (See)
सलाबेगुन, शिंखीबेगुन लगवी बैंगन

ନାଇଡୁ—ଦେ. ବି—ତେଲଙ୍ଗା ଶୂଦ୍ର ବା କାୟସ୍ଥମାନଙ୍କର ଉପାଧିବିଶେଷ—A family title amongst Telugu Sūdras or Kāyasthas.
Nāirdu

ନା ଇତ୍ତିଫାକ୍(କି)—ବୈଦେ. ବି. (ଫା. ନା-ଇତ୍ତିଫାକି)—
Nā ittifāk(ki) ପରସ୍ପର ବିରୋଧ; ମେଳର ଅଭାବ—
अमेल नाइत्तिफाक Absence of unity.

ନାଇଦେବା—ଦେ.କ୍ରି. (ଛେଉଁ ଓ ଶୂଦ୍ରାଦିଙ୍କ ବ୍ୟବହୃତ)—
Nāidebā (ଅଳଙ୍କାର, ସିନ୍ଦୂର ଓ ଅଳତା ଆଦି) ଅନ୍ୟକୁ
परान, लागान, ପିନ୍ଧାଇବା; ଅନ୍ୟର ଶରୀରକୁ ଭୂଷିତ କରାଇବା;
लगादेना ବେଶ କରିବା—To put on ornaments etc on another's body

ପ୍ରାଦେ. (ଭଦ୍ରଖ) କ୍ରି—ରଖିବା—
To put; to place.

ନାଇନତାଲ—ଦେ ବି. (ନାମ)—ହିମାଳୟର ପାଦଦେଶସ୍ଥ ସ୍ଥାନବିଶେଷ-
Nāin-tāl Naintal, a town at the foot of the Himalayas.
(ନାଇନିତାଲ, ନାଇନିତାଲ—ଅନ୍ୟରୂପ)
नैनताल नैनताल

ନାଇନତାଲି—ଦେ ବିଣ—ନାଇନତାଲ ଦେଶୀୟ—
Nāin-tāli Belonging to Naintal.
(ନାଇନିତାଳି—ଅନ୍ୟରୂପ) नैनताली नैनताली

ନାଇନତାଲି ଆଳୁ—ଦେ. ବି—ଏକପ୍ରକାର କୋମଳ ଶସ୍ୟଯୁକ୍ତ ବିଲାତି
Nāin-tāli ālu ଆଳୁ—A species of patato grown in North India.
(ନାଇନତାଳିଆଳୁ—ଅନ୍ୟରୂପ)
पहाड़ीआलु

ନାଇନ—ପ୍ରାଦେ (ସମ୍ବଲପୁର; ନଞର୍ଥ) କ୍ରି—ନାହିଁନା, ନୁହେଁହିଁ—
Nāina Is not
ନାଇଁନ, ନାଇନ } ଅନ୍ୟରୂପ ଗ୍ରାମ୍ୟ. ବୈଦେ. ବି—ଲାଇନ୍ (ଦେଖ)
Lāin (See)

ନାଇନି—ପ୍ରାଦେ. (ଢେଙ୍କାନାଳ) ଅ—ନାହିଁ—
Nāini No; not.
ଗ୍ରାମ୍ୟ. (ବୈଦେ) ବି ଓ ପ୍ରାଦେ. (ସମ୍ବଲପୁର) କ୍ରି—ନ ଇନ (ଦେଖ)
Nāina (See)

ନାଇନେ—ପ୍ରାଦେ. (ସମ୍ବଲପୁର) କ୍ରି—ନାଇନ (ଦେଖ)
Nāine Nāina (See)
(ନାଇନୋ—ଅନ୍ୟରୂପ)

ନାଇବ—ଦେ. ବି—ନାଏବ (ଦେଖ)
Nāiba Nāeba (See)

ନାଇବା—ପ୍ରା. କ୍ରି (ଇତର ଓ ଶୂଦ୍ରାଦି ବ୍ୟବହୃତ)—
Nāibā (ଶାଙ୍ଖା, ଅଳଙ୍କାର, ସିନ୍ଦୂର, କଜ୍ଜଳ ଆଦି) ଲଗାଇବା;
पवा, लागान ପିନ୍ଧିବା; ଘେନିବା; ଭୂଷିତ ହେବା—
लगाना To wear; to put on.

× × × କମଳ ଲୋଚନ ନାୟକେ ଚେତେ ବଡ ଖସ୍ତ କାଳରେ
ପାଟଯୋ ପିନ୍ଧି ଯୋଉଶାଳ ଯୋଉ ହୋଇ ହାତରେ
ସୁନାବଳା ନାଇ ମାସେଯାଏ; × × × ବୁଲୁଥିବାର ଦେଖାଗଲା ।
ଫକୀରମୋହନ ଗଳ୍ପସ୍ୱଳ୍ପ ।

ନାଇବି—ଦେ. ବି ଓ ବିଣ—ନାଏବି (ଦେଖ)
Nāibi Nāebi (See)

ନାଇବ(ବି)ତି—ଦେ. ବି—ନାଏବିତି (ଦେଖ)
Nāiba(bi)ti Nāebiti (See)

ନାଇ ମୁଣ୍ଡା—ଦେ. ବି—୧ । ନାହିମୁଣ୍ଡା; ନାଭିର ଚତୁଃପାର୍ଶ୍ୱସ୍ଥ ଅଂଶ—
Nāi muṇḍā 1. The portion of the body surrounding the navel.
नाईकुँड
बँद्री ୨ । ନାଭିକୂପ—2 The depression in the middle of the navel.

**ନାଇଲି ଛାଇଲି ହେବା**— ଦେ କି. (ସ ନମ ଧାତୁ ଓ ଛଳ)—
Nāili chhāili hebā ୧ । ନାଲି ଛଲି ହେବା; ବାକ୍ୟରେ ଅତ୍ଯନ୍ତ ନମ୍ରତା ଭାବ ପ୍ରକାଶ କରିବା; ନେହୁରା ହେବା—
ନମ୍ରପତ କବା **लल्लो पत्तो होना,** 1. To show humility in words; to **नेहुरा करना** coax
(ନାଲି ଛଲି ହେବା—ଅନ୍ୟରୂପ) ୨ । ଖୋସାମଦ କରିବା—
2 To flatter.
୩ । ଛଳପୂର୍ବକ ନମ୍ରତା ପ୍ରକାଶ କରିବା—
3 To show hypocritical humility.

**ନାଇ ହେଲେ**— ପ୍ରାଦେ (ସମ୍ବଲପୁର) ଅ—
Nāi hele ୧ । ନୋହିଲେ—1. If not
୨ । ଅଥବା—2 Else; or; otherwise

**ନାଉ**— ଦେ. ବି. (ସ ଅଲାବୁ)—ଲାଉ (ଦେଖ)
Nāu **लौका, लौकी, सजमन, कद्दु** Lāu (See)
ନାଉ ପ୍ରାଦେ. (କଟୁର) ବି (ଭୁଲ. ହି. ଏହି ଅର୍ଥରେ ନାଇ; ନାଉ)—ଭଣ୍ଡାରୀ—Barber.

**ନାଉଆ**— ଗ୍ରା. ବିଣ – ଲାଉଆ; ଲାଉ ପରି ବଡ଼—
Nāuā Pumpkin-like.
ନେୟେ, ଲେୟେ **सजमनिया**

**ନାଉଆ ଦୁଧୀ**—ଦେ ବିଣ. ସ୍ତ୍ରୀ—୧ । ଅଲାବୁ ପରି ବଡ଼ ସ୍ତନଯୁକ୍ତା (ସ୍ତ୍ରୀ); ଘଟସ୍ତନୀ—1. Having mammas as big as pumpkins
Nāuā dudhi
ଲେୟେ ମାଙ୍ଗୀ
**सजमनिया वाली चुची**

**ନାଉଆ ପେଟା**— ଦେ. ବିଣ. ପୁଂ—ଲାଉ ପରି ବଡ଼ ପେଟ ଯୁକ୍ତ; ଥନ୍ତଲ-ପେଟୁଆ—Pot-bellied.
Nāuā peṭā
(ନାଉଆପେଟୀ—ସ୍ତ୍ରୀ) ନେୟେ ପେଟା **पेटफुल्ला**

**ନା ଉମେଦ୍**— ବୈଦେ ବିଣ. (ଫା. ନାଉମ୍ମେଦ୍)— ନିରାଶ—
Nā umed Hopeless; desperate.
ନାଉମେଦ **नाउमेद**

**ନା ଉମେଦୀ**—ବୈଦେ. ବି. (ଫା. ନା ଉମ୍ମେଦୀ)— ନିରାଶା; ନୈରାଶ୍ୟ—
Nāumedi Hopelessness; desperation.
ନାଉମେଦୀ **नाउमेदी**

**ନାଉଆରସ୍**—ଦେ. ବିଣ. (ଫା. ଲାୱାରିସ; ନାୱାରସ)—
Nāuāras ୧ । ଯେଉଁ ସମ୍ପତ୍ତିର କେହି ଦାୟାଦାର ନାହିଁ; ଅସ୍ୱାମିକ (ସମ୍ପତ୍ତି)—
ନାଓାରିସ
**लावारिस**
1. Unclaimed (property).

ନାଉଆରସ୍, ନାଓଆରସ୍, ନାଓଥରସ, ନାଓୟାରସ, ନାଓୟାରସ, ନାୱାରସ, ନାୱାରସ, ନାଉଆରସି, ନାଓଆରସି, ନାୱାରସି, ନାୱାରସି — ଅନ୍ୟରୂପ

କେହି କେହି ପ୍ରାଣ ଏପରି ନାଉଆରସୀ ଗୋରୁ ଅଣି ବଳବଂସ ସ୍ୱରୂପ ବନ୍ଧ ବନ୍ଧ କେବାର ସଦସ୍ୟରର ଦେଖାଯାଏ । ଫକୀରମୋହନ. ଛମାଣ. ଅଠଗୁଣ୍ଠ ।

୨ । ଯେଉଁ ଲୋକର କେହି ଉତ୍ତରାଧିକାରୀ ନାହାନ୍ତି—2 Heirless (person); dying without leaving heirs.

**ନାଉଆ ଶିଂଘୀ**—ଦେ. ବି—ଲାଉଆ ଶିଂଘୀ, ଧଳା କଣ୍ଟିଆ ମାଛ—
Nauā śimghi A kind of fish.
ଉଜଲୀ ଶିଂଗୀ [ ଦ୍ର—ଏହା ଏକ ପ୍ରକାର ଧଳା ଶିଂଘୀ ମାଛ, ଏହାର କାତି ନ ଥାଏ । ଶଲିସି ପାଖରେ ଦୁଇଟି ଓ ବେକ ଉପରେ ଗୋଟିଏ ଶିଂଘ ବା କଣ୍ଟା ଥାଏ । ଶିଂଘୀ ମାଛ ଦୁଇ ପ୍ରକାର—୧ ମାଟିଆ, ୨ ଧଳା ବା ଲାଉଆ, ଧଳାମାଛ ୮।୧୦ ଅଙ୍ଗୁଳ ବଢନ୍ତି । ]

**ନାଉକା**—ଗ୍ରା. ବି. (ସ. ନାବ; ନୌକା)—
Nāukā ନଉକା, ଡଙ୍ଗା; ନାବ—Boat
**नाव**
ନୌକା
ପ୍ରାଣବନ୍ଧୁ କୁ ସାଙ୍ଗ କଲୁ, ମଦନ ନାଉକା ପରେ ବସାଇ ଭସାଇ ଦେଲୁ । ସଙ୍ଗୀତ ।

**ନାଉକେଶ୍ୱର**—ଦେ. ବି. (ସ. ନୌକେଶ୍ୱର, ବା ଅଲାବୁକେଶ୍ୱର)—
Nāukeśwara ୧ । ପୁରୁଷୋତ୍ତମ କ୍ଷେତ୍ରର ଶିବଲିଙ୍ଗ ବିଶେଷ—
1. Name of an image of Siba of Puri.
୨ । ଭୁବନେଶ୍ୱରର ଶିବଲିଙ୍ଗବିଶେଷ—1. Name of a Siba Linga of Bhubaneśwara.

**ନାଉ ଚିଙ୍ଗୁଡ଼ି**—ଦେ. ବି—ଲାଉ ସଙ୍ଗେ ସାନ ଚିଙ୍ଗୁଡ଼ି ମାଛ ମିଶାଇ ରନ୍ଧା ଯିବା ଏକ ପ୍ରକାର ଭିଅଣ —
Nāu chingurdi
(ନାଉ ଚୁଙ୍ଗୁଡ଼ି—ଅନ୍ୟରୂପ) A curry made of gourd mixed with small shrimps

**ନଉଡ଼**—ଦେ. ବି (ସ ଅନଳ)—
Nāurda ବିଛା, ମହୁମାଛି ଆଦିଙ୍କ ଲାଞ୍ଜର ଅଗରେ ଥିବା ବିଷ କଣ୍ଟକ; ଲାହୁଡ଼—Sting (at the end of the tail of a bee or scorpion).
(ଲାହୁଡ଼—ଅନ୍ୟରୂପ)
ହୁଲ
**डंक, शुंग**

**ନାଉଡ଼ ଗଳା(ଲେ)ଇବା**—ଦେ. କି—ଅନ୍ୟ ଜୀବର ଦେହରେ ଲାହୁଡ଼ ପ୍ରବେଶ କରାଇ ଆଘାତ କରିବା—
Nāurda gaḷā(le)ibā
ହୁଲ ଫୋଟାନ **डंक मारना** To sting.
(ନାଉଡ଼ ଫୁଟାଇବା, ନାଉଡ଼ ଫୁଟେଇବା, ନାଉଡ଼ ବସାଇବା, ନାଉଡ଼ ବସେଇବା, ନାଉଡ଼ ମାରିବା—ଅନ୍ୟରୂପ)

**ନାଉ ଡଙ୍କ**—ଦେ. ବି—୧ । ଲାଉ ଲତାର ଡଙ୍କ—
Nāu dańka 1. Tender portion or tendril of the gourd creeper.
**लौकीकी मुंड़ी**

**ନାଉ ଡଙ୍କିଆ** - ଦେ ବି—ଲାଉ ଡଙ୍କିଆ (ଦେଖ)
Nāu dańkiā Lāu dańkiā (See)

**ନାଉଡ଼ି(ରି)**—ଦେ. ବି. (ସ. ନାବିକ)—ନାବିକ; ନୌକାବାହୀ; ନୌକା-ଚାଳକ—Boatman; sailor.
Nāurdi(ri)
ନାଉଡ଼ିଆ, ନାଉରି, ନାଉରିଆ, ନାହୁରି, ନାହୁରିଆ — ଅନ୍ୟରୂପ

ସେରୂପରେ ନାବକୁ ନାଉଡ଼ିଆ ବନା, ସେ ରୂପେ ସେବାପତ ସ୍ଥାନ ହେଲେ ସେନା । କୃଷ୍ଣସିଂହ. ମହାଭାରତ. ସ୍ୱର୍ଗ ।

**माँझी, मल्लाह, नाबक** ନାଇୟା; ନେୟେ, ନାଉଡ଼ିୟା; ନାଉଡ଼େ ନାଉଡ଼, [ ଦ୍ର—ପୂର୍ବେ ବାଲେଶ୍ୱରରେ ଜାହାଜ ଚଳୁଥିବା ସମୟରେ ନାଉଡ଼ିଆ ମାନଙ୍କ ବ୍ୟବହୃତ କେତେକ ଶବ୍ଦ:—

ଘୋଣ୍—ଉପର; ଗାହ୍ମ ଉଲେଇ—ଉତ୍ତର ପୂର୍ବ,
ଦମାନ—ତଳ; ବେଗଣିଆ ପିଛଡ଼—ଉତ୍ତର ପଶ୍ଚିମ,
ଗାହ୍—ଉତ୍ତର; ଦକ୍ଷିଣ ପିଛଡ଼—ଦକ୍ଷିଣ ପଶ୍ଚିମ,
ଉଦବ୍ରା—ପୂର୍ବ; ଦକ୍ଷିଣ ଉଦବ୍ରା—ଦକ୍ଷିଣ ପୂର୍ବ,
ସୋଇଲ୍—ଦକ୍ଷିଣ; ଉଜା—ଡାହାଣ;
ପିଛଡ଼—ପଶ୍ଚିମ; ଡାବୁ—ବାମ, ]

**ନାଉ ତୁମ୍ବା(ମ୍ବୀ)**—ଦେ ବି.—(ସଂ. ଅଲାବୁ + ତୁମ୍ବା)—୧ । ଲାଉ
Nāu tumbā (mbī) ଭିତରୁ ଶସ କୋରି ସଫା କରି ପ୍ରସ୍ତୁତ କରି
**लकी, तुम्बा** ଥିବା ପାତ୍ର—1. A pot made by scraping the kernel of the gourd.
୨ । ଲାଉର ତୁମ୍ବାରେ ଦଣ୍ଡ ଓ ତାର ବା ସୂତା ଲଗାଇ କରାଯିବା ଏକ ପ୍ରକାର ବାଦ୍ୟ ଯନ୍ତ୍ର—2 A kind of musical instrument.
[ଦ୍ର—ଏଥିରେ ସିତାରର ଦଣ୍ଡ ବସାଇ ସିତାର କରାଯାଏ ।]

**ନାଉ ଥାଳ**—ଦେ ବି.—ଲାଉ ଥାଳ (ଦେଖ)
Nāu thāla Lāuthāla (See)

**ନାଉ ଦଅଣା**—ଦେ ବି.—ଲାଉଦଅଣା; ଲାଉରେ ଦୁଧ ଦିଆ ଯାଇ ରନ୍ଧା
Nāu daaṇā ଯାଇ ଥିବା ଏକ ପ୍ରକାର ସୁସ୍ୱାଦ୍ୟ ତରକାରୀ—
(ନାଉଦୟଣା—ଅନ୍ୟରୂପ) A delicious curry prepared from gourd boiled with milk.

**ନାଉଲ**—ଦେ. ବି.—ସ୍ତ୍ରୀମାନଙ୍କ ପିନ୍ଧିବା ଏକ ପ୍ରକାର ଫମ୍ପା ନୋଳ—
Nāula A kind of hollow earring worn by
**नेउरी, अंती** (ନାତୁଲ—ଅନ୍ୟରୂପ) women.

**ନାଉଲା ଶାକୁଲା ହେବା**—ପ୍ରାଦେ. (ଯାଜପୁର) କ୍ରି—
Nāulā śakulā hebā ନାଇଲି ଛାଇଲି ହେବା (ଦେଖ)
Nāilı chhāilı hebā (See)

**ନାଉଳି**—ଦେ. ବି.—୧ । ଖଣ୍ଡାଇତ ଓ କ୍ଷତ୍ରିୟମାନଙ୍କର ଉପବୀତ ଗ୍ରହଣ
Nāuḷı ବିଧି; ବ୍ରତ—1. The Upanayana or sacred thread ceremony of Khandaets and Kshatriyas.
୨ । (ସଂ. ନାବ)—କେଉଟମାନଙ୍କର ବଂଶୋପାଧିବିଶେଷ—
2. A family-title of fishermen.
[ଦ୍ର—କଟକ ଜିଲ୍ଲାର ଉମ୍ପଡ଼ା ଗ୍ରାମରେ ଏହି ଉପାଧିଧାରୀ କେଉଟ ଅଛନ୍ତି ।]

**ନାଉଲି**—ଦେ. ବି.—(ତୁଲ. ଫା. ଲାୟୁକ୍)—ଠାକୁଲି; ଠାପରା; ଥଟ୍ଟା;
Nāuli ପରିହାସ—1. Jesting
**दिल्लगी** ୨ । ବ୍ୟଙ୍ଗ୍ୟବିଦ୍ରୂପୋକ୍ତି—2 Witticism

**ନାଉଲିଆ**—ଦେ. ବିଣ. (ପୁଂ. ଓ ସ୍ତ୍ରୀ)—ଥଟ୍ଟିଲ; ବ୍ୟଙ୍ଗ୍ୟପ୍ରିୟ—
Nāuliā Jestive; jocular.
**दिल्लगीबाज; ठठ्ठाबज, मसखरा** (ନାଉଲେଇ—ସ୍ତ୍ରୀ)

**ନାଉଳି କରଣ**—ଦେ. ବି.—କରଣମାନଙ୍କ ଶ୍ରେଣୀବିଶେଷ—
Nāuḷi karaṇa A sect of Karaṇas.
[ଦ୍ର—ଏମାନେ ବ୍ରତ ହୁଅନ୍ତି ।]

**ନାଉଳି(ଲି) ଛାଉଳି(ଲି) ହେବା**—ଦେ. କ୍ରି.—ନାଳେଇ ଛାଳେଇ
Nāuḷı (lı) chhāuḷi(li) hebā ହେବା (ଦେଖ)
Nāḷei chhāḷei hebā (See)

**ନାଏକ**—ଦେ ବି. ଓ ବିଣ—(ସଂ. ନାୟକ)—୧ । ନାୟକ (ଦେଖ)
Nāeka 1 Nāyaka (See)
नाएक **लायक** ୨ । ଲାଏକ୍ (ଦେଖ)—2. Lāek (See)

**ନାଏକା**—ଗ୍ରା. ବି. ସ୍ତ୍ରୀ—୧ । ନାୟିକା (ଦେଖ)
Naekā Nāyıkā (See)
ଉପାୟ କରି ସେ—କହାଇ ଅଣିବେ ମାୟାବୀ ଦଶ ନାଏକା ।
ପ୍ରାଚୀ. ରହସ୍ୟ ମଞ୍ଜରୀ ।
୨ । ନାହାକା (ଦେଖ)—2. Nāhākā (See)
ଦେ. ବିଣ ସ୍ତ୍ରୀ—(ସଂ. ନାୟିକା)—ଶ୍ରେଷ୍ଠା, ପ୍ରଧାନା (ସ୍ତ୍ରୀ)—
Chief; greatest; most honoured.
ତାଙ୍କ ମଧ୍ୟରେ ଭୁଲି ଏକା, ଜଗତରେ ହୋଇବ ନାଏକା ।
ପ୍ରାଚୀ ଯଶୋବନ୍ତ. ପ୍ରେମଭକ୍ତି ବ୍ରହ୍ମଗୀତା ।

**ନାଏକା ଚେର**—ଦେ. ବି.—ନାହାକା ଚେର (ଦେଖ)
Nāekā chera Nāhākā chera (See)

**ନାଏବ୍**—ବୈଦେ ବି.—(ଆ ନାୟବ)—୧ । ପ୍ରଧାନ କର୍ମଚାରୀ ବା
Nāeb ମେନେଜରଙ୍କ ଅଧୀନ କର୍ମଚାରୀ—1. Second officer
नायेब under a manager; a Naib.
**नायब** ୨ । ପ୍ରତିନିଧି କର୍ମଚାରୀ—2. A Deputy.
୩ । ଜମିଦାରଙ୍କ ମଫସଲ କଚେରିର ପ୍ରଧାନ ତହସିଲ କର୍ମଚାରୀ—3. The Head Revenue-officer in a zamindar's kutchery.

**ନାଏବ୍ ତହସିଲଦାର**—ବୈଦେ. ବି.—ଗଭର୍ଣ୍ଣମେଣ୍ଟଙ୍କ ରାଜସ୍ୱ ବିଭାଗର
Nāeb tahasıladāra କର୍ମଚାରୀ ବା ତହସିଲଦାରଙ୍କ ଅଧୀନ
नायेब तहसिलदाव ସାହାଯ୍ୟକାରୀ କର୍ମଚାରୀ—Naib Tahasil-
**नायब तहसिलदार** dar; Deputy Tahasildar

**ନାଏବ୍ ନାଜର**—ବୈଦେ. ବି—ନାଜରଙ୍କ ଅଧୀନ କର୍ମଚାରୀ—
Nāeb nājar Naib Nazir; Deputy Nazir.
नायेबनाजीव **नायबनाजीर** (ନାଏବନାଜିର—ଅନ୍ୟରୂପ)

**ନାଏବଳ**—ଦେ. ବି—ନ୍ୟାୟବଳ ଖେଳ; ସତରଞ୍ଜ ଖେଳ—
Nāebaḷa The game of chess.

**ନାଏବି**—ବୈଦେ. ବିଣ—ନାଏବଙ୍କ ଉପଯୁକ୍ତ—
Nāebı Befitting a Naib.
नायेबी (ଯଥା—ନାଏବୀ ବୁଦ୍ଧି; ନାଏବୀ ଢଙ୍ଗ ।)
**नायबी** ବୈଦେ. ବି—ନାଏବଙ୍କ ପଦ ବା କର୍ମ—
The post of a Naib.

**ନାଏବତି**—ଦେ. ବି—ନାଏବି; ନାଏବପଣ; ନାଏବପଣିଆ—
Nāebıti The act of a Naib; the post of a Naib.
ଦେ. ବିଣ—ହାଲାପଟା; ଅସ୍ତବ୍ୟସ୍ତ—Troubled.

**ନାଓଁ**—ପ୍ରାଦେ (ଉତ୍ତର ଭାଷା) ବି—ନାମ—
Nāoñ Name.

**ନାଓସା**—ପ୍ରାଦେ (ଉତ୍ତରଭାଷା)—ଝିଅର ପୁଅ (ନାତି)—
Nāosā Son of one's daughter; grandson.

**ନାଃ**—ଦେ. ଅ (ସଂ. ନ; ନା; ନହି; ଦୃଢଭାଷାପକ)—କଦାପି ନୁହେଁ—
Naḥ No; never [more emphatic or determined than Nā (ନା)]
ନା **नहिं**

**ନାଁ**—ଦେ. ଅ ( ସଂ. ନ, ନା )—୧ । ପ୍ରଶ୍ନାର୍ଥକ—
Nāṅ 1. Interrogative particle.
नय़, नाँ (ଯଥା— ତୁ ସେଠାକୁ ଯିବୁ ନାଁ ? )
**नहिं**, न ୨ । ଅନୁଜ୍ଞାର୍ଥକ—
2. A particle indicating request.
(ଯଥା—ମତେ ଟଙ୍କାଟିଏ ଦେନାଁ ! ମୁଁ ଭଙ୍ଗିକ ଯିବି ବାହାର । )
୩ । ଯଥା; ଯେ ହେତୁ—3. Viz, namely.
( ଯଥା—ମତେ ଆଜ ଏଠା ଛାଡ଼ି ଚାଲିଯିବାକୁ ହେବ—
କାହିଁକି ନାଁ ? ମୋ ନାମରେ ଗୁଆରଣ୍ଟ ବାହାରିଲାଣି । )
୪ । ପ୍ରଶ୍ନ ଓ ଉତ୍ତର ବାକ୍ୟଦ୍ୱୟର ସଂଯୋଜକାର୍ଥ—
4. A conjunctive particle which joins the question and its reply.
(ଠାକୁର ଘରେ କିଏ ରେ ? ନାଁ, ମୁଁ କଦଳୀ ଖାଇନାହିଁ—ଢଗ । )
୫ । କ୍ରିୟା ପରେ ବ୍ୟବହୃତ, ନଞର୍ଥକ—
5. A negative particle used after verbs.
'ତାକୁ ଗୃହେଁ ନାଁ ସେ ମିଚା କହୁଛି ହୃତ' —ସଙ୍ଗୀତ ।
୬ । ଧମକାଣ—6 A particle indicating threat.
( ଯଥା— ଭାତ ଖାଇବୁ ନା, ଗୋଟାକେତେ ଦୁମଦୁମା ବସେଇ-ଦେବି ? )
୭ । ନାସ୍ତ୍ୟର୍ଥ; ଅସ୍ୱୀକାରାର୍ଥ—( ଉତ୍ତର ଦେବାବେଳେ)—
7. A particle indicating disagreement or refusal.
(ଯଥା—ପ୍ରଶ୍ନ—'ତୁ ଭାତ ଖାଇବୁ ? ଉତ୍ତର—ନାଁ । )
୮ । ସଂଶୟସୂଚକ; ପଦ—
8. A particle indicating doubt.
(ଯଥା—ମତେ ସେ କଅଣ କଥାଟିଏ ମାଗିଥିଲା ନାଁ ? ମୁଁ ପାସୋରି ପକାଇଲି । )
୯ । ପାଦପୂରଣାର୍ଥକ; ନାହିଁନାଁ; ଟି—
9 A particle used at the end of a sentence to give emphasis.
ଜାଣି କଦେସ ଅସୁ ନୁହେଁ ନାଁ । ମନ
ଜଣାରେ ଦେଖୁଅଛୁ ଯଥା ସପନ—ମନବୋଧ ଚଉତିଶା ।
[ ଦ୍ର—ନଞର୍ଥକ 'ନାଁ' ଶବ୍ଦ କ୍ରିୟା ପରେ ମଧ୍ୟ ଲାଗେ । ଯଥା—'ତୁ ସେଠାକୁ ଯାଅନାଁ; ମୁଁ ସେଠାକୁ ଯାଏନାଁ । କିନ୍ତୁ ଏହି ନଞର୍ଥକ 'ନାଁ' କ୍ରିୟାର ଆଗକୁ ଆସିଲେ 'ନ' ହୁଏ । ଯଥା —ତୁମ୍ଭେ ଏହା ନ ଖାଅ; ମୁଁ ଏଠାରେ ନ ଶୋଇବି । ]
ଦେ. ବି ( ସଂ. ନାମ )—ନାମ (ଇତ୍ୟାଦି) ( ଦେଖ )
Nāma ( etc ) ( See )
ପୀତପଟ ନଟ ନାଁ ମୋ ଅଗରେ କି ଧର ।
କବିସୂର୍ଯ୍ୟ. ବଳଦେବ ଚମ୍ପୂ ଚ ଗୀତ ।

୨ । ନାଁଆଁ ଦିଆ ( ଦେଖ )
2. Nāṅāṅ diā ( See )

**ନାଁଆଁଦିଆ**—ଦେ ବି—୧ । ପ୍ରହେଳିକା—
Nāṅāṅdiā 1 A riddle.
हिय़ाँलि ଏକେଟିକ କିଣା କସୁରର ବାସ,
**बुझौवल; पहेली; गाहा** ଏ ନାଁଆଁଟି କହିଦେଲେ ବଳସ୍ତମ ଦାସ । ପ୍ରହେଳିକା ।

**ନାଁଆ ଦେବା**—ଦେ. କ୍ରି—୧ । ନାମକରଣ କରିବା—
Nā-āṅdebā 1. To give a name; to name
नामदेओय़ा ୨ । ପ୍ରହେଳିକା ପ୍ରଶ୍ନ କରିବା—
**नामकरन करना; नामरखना** 2. To ask a riddle.
हियाँलिबाला **बुझौवल पुछना**

**ନାଁ ଉଠା(ଠେ)ଇବା**—ଦେ. କ୍ରି—୧ । ଖବରକାଗଜ ଆଦିରେ କୌଣସି ବ୍ୟକ୍ତିର ନାମ ଛାପିବା—
Nāṅ uṭhā(ṭhe)ibā
नामउठान To publish the name of a person in newspapers.
**नामनिकालना**
୨ । ଲୁଟେରି ଆଦିରେ କୌଣସି ବ୍ୟକ୍ତିର ନାମର ଟିକଟ ବାହାରିକରି ଅଣିବା—2 To bring out the ticket in the name of a person in a lottery.

**ନାଁ ଉଠିବା**—ଦେ. କ—୧ । ଖବରକାଗଜ ଆଦିରେ କୌଣସି ବ୍ୟକ୍ତିର ନାମ ମୁଦ୍ରିତ ହେବା—
Nāṅ uṭhibā
नाम उठा 1. The publication of a person's name in the newspapers
**नाम निकलना**
୨ । ଲୁଟେରି ଆଦିରେ କୌଣସି ବ୍ୟକ୍ତିର ନାମର ଟିକଟ ବାହାରିପଡ଼ିବା—2 The coming out of a ticket bearing a person's name in a lottery or ballot.
୩ । ନାଁ ପଡ଼ିବା ( ଦେଖ )
3. Nāṅ paṛḍibā ( See ).

**ନାଁଏ**—ଦେ. ଅ—ନାମରେ—By the name (of)
Nāṅe ନନ୍ଦ ତାହାର ପୁତ୍ର ହୋଏ
(ନାଏଁ—ଅନ୍ୟରୂପ) ତା ପୁତ୍ର ପୂଣ୍ଣସିଂକ ନାଁଏ । ଜଗନ୍ନାଥ. ଭାଗବତ ।
नामे **नामसे**

**ନା କଟା(ଟେ)ଇବା**—ଦେ କ୍ରି. କୌଣସି ଛାତ୍ର)—ବିଦ୍ୟାଳୟର ରେଜିଷ୍ଟରରୁ ଆପଣା ନାମ କଟ୍ଟିତ କରାଇବା—
Nā kaṭā(ṭe)ibā
नामकाटना To get one's name struck off the rolls of a school.
**नामकटाना**

**ନାଁ କମା(ମେ)ଇବା**—ଦେ. କ୍ରି—ଖ୍ୟାତି ଅର୍ଜନ କରିବା—
Nāṅ kamā(me)ibā To earn a reputation.
(ନାଁ ଗମେଇବା—ବିପରୀତ)
नामकामान **नामकमाना**

**ନାଁ କରିବା**—ଦେ. କ୍ରି—୧ । ଆପଣାର ସୁଯଶର ବିସ୍ତାର ହେବାଭଳି ଭଲ କାର୍ଯ୍ୟ କରିବା—
Nāṅ karibā 1. To gain reputation as the result of one's good acts.
( ନାଆଁ କରିବା—ଅନ୍ୟରୂପ )

नामकरवा ୬ । ଦେଶରେ ବିଖ୍ୟାତ ହେବା—
**नामकरना** 2 To become famous.
( ଯଥା—୯ ବିଦ୍ୟାବନ୍ତ ବାବୁ କଟକରେ ଓକାଲତି କରି ଭାରି ଗୋଟାଏ ନାଁ କରିଥିଲେ । )
୩ । କୌଣସି ବ୍ୟକ୍ତି ବା ସ୍ଥାନ ଆଦିର ନାମ ଉଚ୍ଚାରଣ କରିବା-
3. To name a person or place.
(ଯଥା—ପୃଥିବୀର ୩ ଜଣ ବିଖ୍ୟାତ ବ୍ୟକ୍ତିଙ୍କ ନାମ କର । )
୪ । ନାହିଁ କରିବା—4. To deny; to negative.

ନାଁ କାଟିଦେବା—ଦେ. କ୍ରି—୧ । କୌଣସି ବିଦ୍ୟାଳୟର ରେଜିଷ୍ଟରରୁ
Nāṅ kāṭidebā କୌଣସି ଛାତ୍ରର ନାମ କର୍ତ୍ତନ କରିବା—
(ନାଁ କାଟିବା—ଅନ୍ୟରୂପ) 1. To strike off the name of
नामकेटे देओया a student from the roll of a
**नामकाटदेना** school.
୬ । କୌଣସି ତାଲିକାରୁ କୌଣସି ବ୍ୟକ୍ତିର ନାମ କାଟିଦେବା—2. To strike off the name of a person from a list.

ନାଁ କୁ—ଦେ. ଅ—୧ । ନାମ ମାତ୍ର—
Nāṅ ku 1. Nominally; in name only.
(ନାଁଆଁକୁ—ଅନ୍ୟରୂପ) ୬ । ଅମୁକର ନାମ ଉଲ୍ଲେଖ ହେବା ମାତ୍ରେ—
नाममात्र 2. At the mere mention of a
**नामकेलये** person's name
( ଯଥା—ସେ ମୋ ଗୋପାଳର ନାଁକୁ ଚିଡ଼ୁଛି ।)
୩ । ନାମ ମାତ୍ର; ଅତି ସାମାନ୍ୟରେ—
3. Very slightly.
(ଯଥା—ମୁଁ ତା ହାତରେ ନାଁକୁ ହାତ ଲଗାଇ ଦେଇଛି ସେ କାନ୍ଦି ଉଠିଲା ।)
୪ । ବୃଥାରେ—4. In vain.
(ଯଥା—ମୁଁ ନାଁକୁ ଖାଇ ବସିଲୁ, [ଅର୍ଥାତ୍ କିଛି ଖାଇଲୁ ନାହିଁ] ।)
୫ । କାର୍ଯ୍ୟତଃ ନୁହେଁ, କେବଳ ବାକ୍ୟରେ—
5. Not in deed but in name.
( ଯଥା—ଆଜିକାଲି କେବଳ ନାଁକୁ ବାଘଙ୍କ ଘର, ଏଣେ ବିଲରେ ଥରେ ତାଙ୍କର ଚୁଲି ଜଳିବା କଷ୍ଟକର ହେଲାଣି ।)

ନାଁ ଗନ୍ଧ—ଦେ. ବି. (ସ. ନାମ ଓ ଗନ୍ଧ)—୧ । ସାମାନ୍ୟ ମାତ୍ର ସମ୍ପର୍କ—
Nāṅ gandha 1. Slightest connection
(ନାଁଆଁ ଗନ୍ଧ—ଅନ୍ୟରୂପ) ୬ । ନାମ ମାତ୍ର ଉଲ୍ଲେଖ କରିବା; ସୂଚନା—2. Slight mention of a
नामगन्ध matter; slight indication only.
**नामनिशान(ना)**

ନାଁଗର—ପ୍ରାଦେ. (ବସ୍ତର) ବି—ଲଙ୍ଗଳ—
Nāṅgar Plough

ନାଁଗର କାଁଦା—ପ୍ରାଦେ. (ବସ୍ତର) ବି—ଦେଶୀ ଆଳୁ—
Nāṅgar kāṅda Yam.

ନାଁ ଗାଁ—ଦେ ବି. (ସ. ନାମ ଓ ଗ୍ରାମ; ଅନର୍ଥକ ଦ୍ୱିତୀୟପଦଯୁକ୍ତ ଶବ୍ଦ)—
Nāṅ gāṅ ୧ । ସୁନାମ—1. Good name; fame.
नामधाम
**नामगाँव** ୬ । ଦୁର୍ନାମ—2 Bad name; evil repute.
୩ । ନାମୋଲ୍ଲେଖ—3. The mention of one's name.
(ନାଆଁ ଗାଆଁ—ଅନ୍ୟରୂପ)
୪ । (ନାମ+ଗ୍ରାମ) କୌଣସି ବ୍ୟକ୍ତିର ନାମ ଓ ବାସସ୍ଥାନ—
4 The name and address of a person

ନାଁ ଚଢ଼ା(ଢେ)ଇବା—ଦେ କ୍ରି—କୌଣସି ତାଲିକାରେ କୌଣସି
Nāṅ chardha(rdhe)ibā ବ୍ୟକ୍ତିର ନାମ ପୂରଣ କରିବା—
नामचढान **नामचढ़ाना** The enter a person's name in a list.

ନାଁ ଚଢ଼ିବା—ଦେ ବି—କୌଣସି ତାଲିକାରେ କୌଣସି ବ୍ୟକ୍ତିର ନାମ
Nāṅ chardhibā ଦରଜ ହେବା—The inclusion or
नामचढा **नामचढ़ा** entry of a person's name in a list.

ନା ଜଗା(ଗେ)ଇବା—ଦେ. କ୍ରି—ଆପଣାର ସୁନାମରେ କଳଙ୍କ ନ
Nāṅ jagā(ge)ibā ଲାଗିବା ପ୍ରତି ସାବଧାନ ହେବା—
(ନାଁ ଜଗିବା—ଅନ୍ୟରୂପ) To guard one's good repuration; to be careful in preseeving one's good name
नामराखा
**नामरखना; नामजगाना**

ନାଁ ଡାକ୍—ଦେ. ବି—୧ । ଖ୍ୟାତି; ସମ୍ମାନ; ପ୍ରସିଦ୍ଧି, ସୁନାମ—
Nāṅ dak Reputation, good name.
(ନାଁ ଡାକୁ—ଅନ୍ୟରୂପ) ୬ । ଖାତିର; ପଦମର୍ଯ୍ୟାଦା
नामडाक **नामकाडाक** 2 Credit,

ନାଁ ଡୁବା(ବେ)ଇବା—ଦେ. କ୍ରି—ନାଁ ପକାଇବା (ଦେଖ)
Nāṅ dubā(be)ibā Nāṅ pakāibā (See)
नामडुबान **नामडुबाना**

ନାଁ ଦିଆ—ଦେ. ବି. —୧ । ନାମକରଣ—
Nāṅ dia 1. Giving a name to a person
नाम देओया ୬ । ବାଳକର ନାମକରଣ ଉତ୍ସବ—2. The fes-
**नामकरन** tival of giving a name to a baby; baptism.
ନାଆଁ ଦିଆ, ନାଁଆଁ ଦିଆ, ନା ଦିଆ } ଅନ୍ୟରୂପ
୩ । ପ୍ରହେଳିକା—
3 A riddle.
हियालि **बुझौवल**

ନାଁ ଦେବା—ଦେ. କ୍ରି.—୧ । ଶିଶୁର ନାମକରଣ କରିବା—
Nāṅ debā 1. To baptise an infant; to give a
नाम देओया name to an infant.
**नाम देना** ୬ । ପ୍ରହେଳିକା ପ୍ରଶ୍ନ କରିବା—
हिँयालि बला 2. To put a riddle to a person.
**बुझौवल देना** ୩ । କୌଣସି ବ୍ୟକ୍ତିର ବା ବସ୍ତୁର ପରିଚୟ ପାଇଁ ତାକୁ ଗୋଟିଏ ସ୍ୱତନ୍ତ୍ର ନାମ ଦେବା—3 To call a person or thing by a certain name for identification.

ନାଁ ଧରିବା—ଦେ. କ୍ରି.—୧ । କୌଣସି ଅନୁଚ୍ଚାର୍ଯ୍ୟ ନାମ ଉଚ୍ଚାରଣ
Nāṅ dharibā କରିବା—1. To utter a name which one ought not to utter.
ନାଆଁ ଧରିବା, ନାଁଆଁ ଧରିବା } —ଅନ୍ୟରୂପ

[ ଦ୍ର—"ଆତ୍ମ ର୍ନାମ ଗୁରୋ ର୍ନାମ ନାମାତିକୃପଣସ୍ୟ ଚ, ଶ୍ରେୟଃ କାମୋ ନ ଗୃହ୍ଣୀୟାତ୍ ଜ୍ୟେଷ୍ଠାପତ୍ୟକଲତ୍ରୟୋଃ" ଆପଣା ନାମ, ଗୁରୁଜନଙ୍କ ନାମ, କୃପଣ ବା ଅଦାତାର ନାମ, ବଡ଼ ପୁଅର ନାମ ଓ ସ୍ତ୍ରୀର ନାମ ଉଚ୍ଚାରଣ କରିବା ଶାସ୍ତ୍ରରେ ନିଷିଦ୍ଧ । ଏଥିପାଇଁ ସ୍ତ୍ରୀ ଲୋକମାନେ ଗୁରୁଜନଙ୍କ ନାମର ପ୍ରଥମ ଅକ୍ଷରକୁ ବଦଳାଇ ଅନ୍ୟ ଅକ୍ଷର ଲଗାଇ ଉକ୍ତ ନାମ ଉଚ୍ଚାରଣ କରନ୍ତି, ଯଥା ବାସୁ ସ୍ଥାନରେ ନାସୁ, ଗୋପୀ ସ୍ଥାନରେ ନୋପୀ, ରାଧା ସ୍ଥାନରେ ସାଧା ଇତ୍ୟାଦି । କୃପଣର ନାମ ଉଚ୍ଚାରଣ କଲେ ସେ ଦିନ ଭଲ ଖାଇବାକୁ ମିଳେ ନାହିଁ ବୋଲି ଲୋକେ ବିଶ୍ୱାସ କରନ୍ତି ।]

ନାମ ଧରା ୨ । ତତ୍ତ୍ୱ ବୁଝିବା, ଖବର ଅନ୍ତର ବୁଝିବା—
**नामधरना, नामलेना** 2. To take care of; to enquire after.

୩ । ( କୌଣସି କାର୍ଯ୍ୟ କରିବା ପାଇଁ ) ଇଚ୍ଛା ପ୍ରକାଶ କରିବା—3. To express one's will (for doing anything.)

୪ । (କୌଣସି ବିଷୟର) ଉଲ୍ଲେଖ କରିବା—
4. To name; to mention a matter.
(ଯଥା—ତା ଆଗେ ସଂସାର ବିଷୟର ନାମ ଧରିଲେ ସେ ଚିଡ଼ୁଛି ।)

୫ । କୌଣସି କାର୍ଯ୍ୟ ପ୍ରତି ଆଦୌ ମନୋଯୋଗ ଦେବା ବା କୌଣସି କାର୍ଯ୍ୟ ଆଦୌ କରିବା —
5. To attend to a matter at all.
(ଯଥା—ଟୋକାଟା ପାଠର ନାଁ ଧରିନ୍ତି ନାହିଁ ।)

୬ । (ଶୁଆ ଶାରୀ ଆଦି ପକ୍ଷୀ) ସେମାନଙ୍କୁ ଶିଖା ଯିବା ନାମକୁ ଉଚ୍ଚାରଣ କରିବା—6. To lisp the names taught (said of parrots and Myna bird

୭ । କୌଣସି ବ୍ୟକ୍ତିର ସମ୍ପର୍କୀୟ ବ୍ୟକ୍ତିଙ୍କ ନାମ ଧରି ଗାଳି ଦେବା—7. To call names by alluding to a person's relations.

(ଯଥା—ସେ ମୋ ବାପ ଅଜାଙ୍କ ନାଁ ଧରିଲେ ମୁଁ ତାକୁ କଣ୍ଟେ ଛାଡ଼ିବି ନାହିଁ ।)

୮ । କୌଣସି ବ୍ୟକ୍ତିଙ୍କ ନାମ ଉଚ୍ଚାରଣ କରିବା—
8. To utter the name of a person.

ହନୁ ତୁ କାହିଁ ଅଇଲୁ, ଶ୍ରୀରାମ ନାମ ଧରିଲୁ ।
ବିଶ୍ୱନାଥ. ବିଚିତ୍ର ରାମାୟଣ ।

[ଦ୍ର— ସକାଳୁ ଉଠି ଦେବତା, ପୁଣ୍ୟାତ୍ମା ଓ ପୁଣ୍ୟଶ୍ଳୋକ ବ୍ୟକ୍ତିଙ୍କ ନାମ ଉଚ୍ଚାରଣ କରିବା ଶୁଭଜନକ ବୋଲି ହିନ୍ଦୁମାନେ ବିଶ୍ୱାସ କରନ୍ତି ।]

**ନାଁ ପକା(କେ)ଇବା**—ଦେ.କ୍ରି.—ସୁଯଶ ଲୋପ ହେବା ଭଳି କର୍ମ କରିବା; Nāñ pakā(ke)ibā କୁକର୍ମଦ୍ୱାରା ଆପଣାର ବା ପିତୃପିତାମହଙ୍କ ନାମ ଡୁବାନ ସୁଯଶରେ କଳଙ୍କ ଲଗାଇବା—To sully one's **नाम डुबाना** good name or reputation by doing some evil deed or omitting to do a good act.

[ନା (ନାଁ)ଆଁ ପକା(କେ)ଇବା, ନା(ନାଁ) ଆଁ ଟାଁ ପକା(କେ)ଇବା, [ନା (ନାଁ)ଆଁ ଭୁବା(ବୋ)ଇବା, ନା(ନାଁ)ଆଁ ସଗ୍(ରେ)ଇବା, ନାଁଆଁ ସାରିବା—ଅନ୍ୟରୂପ]

**ନାଁ ପଡ଼ିବା** - ଦେ. କ୍ରି.—୧ । କୌଣସି ବ୍ୟକ୍ତିର ସୁଖ୍ୟାତି ରଟନା Nāñ pardibā ହେବା—1. The spreading of one's নামহওয়া **नाम पड़ना** reputation.

ନା(ନାଁ)ଆଁ ପଡ଼ିବା, ନାଁଆଁ ବାଜିବା, ନାଁ ବଜିବା, ନାଁ ଗାଁ ଇତ୍ୟାଦି, ନାଁ ହେବା } ଅନ୍ୟରୂପ

ସଚ୍ଚରିତ୍ରତା ଯୋଗୁଁ ସବୁଠାରେ ତୁମ୍ଭର ନାଁ ପଡ଼ିଅଛି । ରାଧାନାଥ. ବିବେକୀ ।

୨ । କଳଙ୍କ ବା ଅପଯଶର ରଟନା ହେବା—
2. The spreading of one's evil repute; notoriety.

ଦେଖିଲ ଚୋଟ ନେଇଲେ ନାଁ ପଡ଼େ,
ବାଟରେ ହଟିଲେ ନାଁ ପଡ଼େ । ଛଗା ।

**ନାଁ ରଖିବା**—ଦେ. କ୍ରି.—୧ । କୌଣସି ବସ୍ତୁ ବା ବ୍ୟକ୍ତିର ନାମକରଣ Nāñ rakhibā କରିବା—1. To give a name to a person or thing.

[ନା(ନାଁ) ଆଁ ରଖିବା—ଅନ୍ୟରୂପ] ୨ । ନିଜର ସୁକାର୍ଯ୍ୟଦ୍ୱାରା ପୂର୍ବ ନାম রাখা ପୁରୁଷଙ୍କ ଯଶକୁ ବଜାୟ ରଖିବା—2 To maintain **नाम रखना** the reputation of one's ancestors by one's good actions.

୩ । ଦୂର ଭବିଷ୍ୟତ ପର୍ଯ୍ୟନ୍ତ ନିଜର ଖ୍ୟାତି ରହିବା ଭଳି କାମ କରିବା—3. To leave a good name for the future.

**ନାଁ ରହିବା**—ଦେ.କ୍ରି—ବହୁକାଳ ବା ଭବିଷ୍ୟତକୁ ଖ୍ୟାତି ଅକ୍ଷୁଣ୍ଣ ରହିବା-Nāñ rahibā The continuance of one's good নাম থেকে যাওয়া name for a long time to come.
**नाम रहजाना, नाम बना रहना**
[ନାମ ରହିଯିବା, ନା (ନାଁ)ଆଁ ରହିବା—ଅନ୍ୟରୂପ]

**ନାଁରୁ**—ଦେ ଅ—ନାରୁ ( ଦେଖ )
Nāñru Nāru ( See )

**ନାଁରେ**—ଦେ. ଅ—୧ । ଅମୁକ ଲୋକର ବିପକ୍ଷରେ—
Nāñre 1 Against ( a person ).
নামে ( ଯଥା—ତା ନାଁରେ ଭୁଆରଣ ବାହାରିଛି । )
**नामसे** ୨ । ଅମୁକର ନାମ ଉଲ୍ଲେଖ କରି; ଅମୁକ ସମ୍ବନ୍ଧରେ—
ନାଆଁରେ, କାଁଆଁରେ } ଅନ୍ୟରୂପ 2. By mentioning the name of a person; in respect of.
( ଯଥା—ତା ନାଁରେ ଅନେକ ଦାନ ପୁଣ୍ୟ କାର୍ଯ୍ୟ ଲୋକେ କରୁ ଅଛନ୍ତି । )

୩ । ଦେବତା ଓ ରାଜା ଆଦିଙ୍କ ନାମର ଦୁହାଇ ଦେଇ—
3. By invoking the name of a Deity or King.
( ଯଥା—ଇଶ୍ୱରଙ୍କ ନାଁରେ ରୋଗୀ ଉପରେ ମୁନାଏ ପାଣି ଛିଞ୍ଚି ଦେଲାରୁ ରୋଗୀ ଭଲ ହୋଇଗଲା । )

୪ । ଅନ୍ୟକୁ ଅମୁକ ବ୍ୟକ୍ତିର ନାମ ଦେଇ—
4. By giving the name of a person to another.

( ଯଥା—ମୁଁ ଯେବେ ଏ କଥା ନ କରିବି ତେବେ ତୁ ମୋ ନାଁରେ କୁକୁର ପାଳିବୁ ନାହିଁ । )

୫ । ଅମୁକ ବ୍ୟକ୍ତିର ହିସାବରେ—
5. To the account of a person.
( ଯଥା—ଜମାଖରଚ ବହିରେ ମୁଁ ତାଙ୍କ ନାଁରେ ଟ ୨୫୯ ଜମା ଦେଇ ଟ ୨୨୯ ଖରଚ ଲେଖିଲି । )

ନାଁରେ କୁକୁର ନ ପାଳିବା—ଦେ. କ୍ରି—କୌଣସି ବ୍ୟକ୍ତିକୁ ଅତ୍ୟନ୍ତ ଘୃଣା କରିବା—To detest a person.
Nān̐re kuttā na pāḷibā
(ନାଁରେ କୁକୁର ପାଳିବା—ଅନ୍ୟରୂପ)
नाम मे कुत्ता पाला  **नामका कुत्ता न पालना**
[ ଦ୍ର—ସେହି ନାମରେ ଯେବେ କୁକୁର ପାଳିବାକୁ ହେବ ତେବେ କୁକୁରକୁ ଡାକିଲାବେଳେ ତ ସେହି ଦୃଣ୍ୟ ନାମ ଉଚ୍ଚାରଣ କରିବାକୁ ହେବ । ଯାହାକୁ ଘୃଣା କରାଯାଏ ତା ନାମ ମୁହଁରେ ଉଚ୍ଚାରଣ କରିବାକୁ ହେବ ନାହିଁ । ]

ନାଁରୋ—ଦେ. ଅ—ନାରୋ ( ଦେଖ )
Nān̐ro    Nāro ( See )

ନାଁ ଲେଖା(ଖେ)ଇବା—ଦେ. କ୍ରି—କୌଣସି ବିଦ୍ୟାଳୟରେ ଛାତ୍ର ରୂପେ ବା ସଭାରେ ବା ଦଳରେ ସଭ୍ୟ ରୂପେ ଭରତି ହେବା—To get oneself enrolled in a school or company or batch; to be admitted to a brother-hood or sisterhood.
Nān̐ lekhā(khe)ibā
नाम लिखान  **नाम लिखाना**
(ନାଁ ଲେଖା, ନାଁ ଲେଖେଇ—ବ)

ନାଁ ଲେଖିବା—ଦେ. କ୍ରି—୧ । କୌଣସି ବ୍ୟକ୍ତିର ନାମକୁ ତାଲିକାଭୁକ୍ତ କରିବା—1. To enlist a person; to Enteraperson's name.
Nān̐ lekhibā
नाम लेखा  **नाम लिखना**
୨ । କୌଣସି ଛାତ୍ରର ନାମକୁ ବିଦ୍ୟାଳୟର ରେଜିଷ୍ଟରଭୁକ୍ତ କରିବା—2. To admit a boy into a school.
୩ । ନିଜର ନାମ ସ୍ୱୟଂ ଦସ୍ତଖତ କରିବା—
3. To sign one's name.

ନାଁ ସରା—ଦେ. ବ—ବଦନାମି; ଅଖ୍ୟାତି—Evil name, discredit.
Nān̐ sarā  ଦେ. ବିଣ—୧ । ଅଖ୍ୟାତିଜନକ (କର୍ମ)—
**नाम घराइ**  1. Disreputable (act)
(ନାଁ ସରେଇ—ସ୍ତ୍ରୀ)  ୨ । (ପୁଂ)—ଅଖ୍ୟାତିଜନକ କର୍ମକାରୀ—
2. Doing a disgraceful or discreditable act.

ନାଁ ସରା(ରେ)ଇବା—ଦେ. କ୍ରି—ନାଁ ବୁଡାଇବା ( ଦେଖ )
Nān̐ sarā(re)ibā    Nān̐ ḍubāibā ( See )
(ନାଁ ସାରିବା—ଅନ୍ୟରୂପ)

ନାକ୍—ପ୍ରାଦେ. (ସମ୍ବଲପୁର) ବ—ନାକ—
Nāk    Nose.

ନାକ୍ ଘଗ୍‌ରାଇବା—ପ୍ରାଦେ. (ସମ୍ବଲପୁର) ବ—ଘୁଙ୍ଗୁଡ଼ି ମାରିବା—
Nāk ghag-rāibā    To snore.

ନାକ୍ ଘର୍ଡ଼ି—ଦେ. ବ—ଘୁଙ୍ଗୁଡ଼ି—
Nāk gharṛdi    Snoring.
नाक् ड़ाका, **खर्राटा**

ନାକ୍‌ଦମ୍—ଦେ. ବ—ନାକଦମ୍ ( ଦେଖ )
Nāk-dam    Nakadam ( See )

ନାକ—ସ. ବ. ( ନ=ନାହିଁ+ଅକ=ଅସୁଖ ବା ଦୁଃଖ; ଯେଉଁଠାରେ ଦୁଃଖ ନାହିଁ; ବହୁବ୍ରୀହି )—
Nāka
୧ । ସ୍ୱର୍ଗ—1. Heaven.
୨ । ଆକାଶ—2. Sky.
୩ । ନୃପତିବିଶେଷ—3 Name of king.
ଦେ. ବ. ( ସ. ନକ୍ର=ନାକ, ନାସିକା )—
୧ । ନାସା; ନାସିକା—1. Nose.
୨ । ସ୍ତ୍ରୀ ଲୋକମାନଙ୍କର ନାକ ପୁଡ଼ାରେ ପିନ୍ଧାଯିବା ଲବଙ୍ଗ ପରି ଅଳଙ୍କାରବିଶେଷ—2. An ornament for the nose, resembling a clove.
नाक्
**नाक**
[ ଦ୍ର—ସ୍ତ୍ରୀ ଲୋକମାନେ ନାକର ଭିନ୍ନ ଭିନ୍ନ ସ୍ଥାନରେ ଭିନ୍ନ ଭିନ୍ନ ଅଳଙ୍କାର ପିନ୍ଧନ୍ତି । ଯଥା, ନାକଦଣ୍ଡିରେ—ଦଣ୍ଡୀ, ନୃତ୍ୟୁକା ବା ନୋଲକ ବା ବୁଲାକ । ବାଆଁ ନାକ ପୁଡ଼ାରେ—ନୋଥ, ନାକଚଣା, ବସୁଣୀ । ଡାହାଣ ନାକ ପୁଡ଼ାରେ—ଗୁଣା, ବେଶର । ଦୁଇ ନାକ ପୁଡ଼ାରେ—ନାକ ଛବି, ନାକ ମାଛି, ନାକଚଣା, ଫୁଲି । ]
୩ । ବକ୍ର ଅଗ୍ର ଭାଗ—3. Curved tip.
୪ । ବଙ୍କା ମୁନ—4. Curved sharp point.
୫ । ହାତରେ ଧରିବା ପାଇଁ ଜଳପାତ୍ର ଆଗରେ ବାହାରିଥିବା ନାକ ପରି ହାତସା—5. Nozzle of a cup.
୬ । ଛୁଞ୍ଚିର ଛିଦ୍ର ହୋଇଥିବା ଅଂଶ—6 The part or end of the needle having the eye.

ନାକ ଅଗ—ସ. ବ. (ସ. ନାସିକା+ଅଗ୍ର)—ନାସିକାର ଅଗ୍ର ଭାଗ; ନାସାଗ୍ର—The tip of the nose.
Nāka aga
नाकेर डगा  **नाक की नोक**

ନାକ ଅଗରେ ରାଗ—ଦେ. ବ—ନାକଦଣ୍ଡିରେ ରାଗ ( ଦେଖ )
Nāka agare rāga    Nāka danḍire rāga ( See )

ନାକକଟା—ଦେ. ବିଣ—୧ । ଯାହାର ନାକ କଟା ଯାଇଥାଏ; କର୍ତ୍ତିତ-ନାସିକ—1. One whose nose has been lopped off; nose-clipt.
Nākakaṭā
नाककाटी
**नककटा, नकटा**
୨ । ପ୍ରକାଶ୍ୟରେ ଅତ୍ୟନ୍ତ ଅପମାନିତ—
2. Very much insulted in publicly; publicly humiliated.
ଦେ. ବ—୧ । ପ୍ରକାଶ୍ୟରେ ହଅଯିବା ଅପମାନ—
1. Public humiliation.
୨ । ପିଲାମାନଙ୍କୁ ଭୟ ଦେଖାଇବାପାଇଁ ସ୍ତ୍ରୀଲୋକଙ୍କ କଳ୍ପନା ଦ୍ୱାରା ଗଢ଼ିତ ରାକ୍ଷସ; କୋକମିନା (ଏ ଅବୁଝା ପିଲାମାନଙ୍କ ନାକକୁ ଛୁରିରେ କାଟିନେବ ବୋଲି ମାଆମାନେ ଶିଶୁଙ୍କୁ ଡରାନ୍ତି)—2. A bugbear name of an

imaginary demon pictured by women ( represented to be armed with a knife to lop off the nose of wicked children ) to frighten children to sleep.

**ନାକ କାଟିବା**—ଦେ. କ୍ରି—( ଲକ୍ଷଣାର୍ଥ ) ପ୍ରକାଶ୍ୟରେ ଅପମାନିତ କରିବା—To insult publicly.
Nāka kāṭibā
(ନାକ କାଟିଦେବା—ଅନ୍ୟରୂପ) ମୁଁ ଯଦି ଏ କାମ ନ କରିପାରେଁ, ମୋ ନାକ କାଟିଦେବ—ଫକୀରମୋହନ. ଛମାଣଆଠଗୁଣ୍ଠ ।

**ନାକ କାନ**—ଦେ. ବି (ସମାହାର)—ନାସିକା ଓ କର୍ଣ୍ଣ—The nose and the ear.
Nāka kāna
नाककान नाककान

**ନାକ କାନ ମୋଡ଼ିହେବା**—ଦେ. କ୍ରି—୧ । ବଡ଼ ହଇରାଣ ହେବା—1. To be greatly troubled or harassed.
Nāka kāna moṛihebā
नाककानपकड़ना
ମୁଁ ଏଥରେ ପଡ଼ି ନାକ କାନ ମୋଡ଼ି ହେଲଣି ।
ଭୂଦାନ. ଯୌତୁକ ।
୨ । ଆପଣାର ଦୋଷ ବା ତ୍ରୁଟି ସ୍ୱୀକାର କରିବା—2. To confess one's fault.
୩ । ଭବିଷ୍ୟତରେ କୌଣସି ନିର୍ଦ୍ଦିଷ୍ଟ କାମ ନ କରିବାପାଇଁ କବୁଲ୍ କରିବା—3. To promise not to do any particular thing in future.
୪ । ଅନୁତାପ ପ୍ରକାଶ କରିବା—4. To express repentance

**ନାକ କାନ୍ଦଣା**—ଦେ. ବି—୧ । ସାମାନ୍ୟ କଥାରେ କାନ୍ଦିପକାଇବା, ଖକାଇବା; ସକେଇହେବା—1. Crying with a nasal sound on slight provocation.
Nāka kāndaṇā
(କାକକାନ୍ଦୁଣୀ—ସ୍ତ୍ରୀ)
नाकेकान्ना
नकीयाना, नाकमेंबोलना, नकनकाना
୨ । ( ଲକ୍ଷଣାର୍ଥ ) ଅତି ଦୀନତା ଓ ବିନୟପୂର୍ବକ ପ୍ରାର୍ଥନା—2. ( figurative ) Prayer accompanied by much humility.

**ନାକ କାନ୍ଦୁରା**—ଦେ. ବିଣ. ପୁଂ—ଯେଉଁ ଲୋକ ସାମାନ୍ୟ କଥାରେ ସକେଇହୋଇ କାନ୍ଦେ; ସକେଇ—(a person) Who cries with nasal sound on a slight provocation.
Nākakāndurā
नक्रियानेयाला
( ନାକକାନ୍ଦୁରୀ—ସ୍ତ୍ରୀ )

**ନାକ କାନ୍ଦୁରି**—ପ୍ରାଦେ (ପୁରୀ) ବି - ସ୍ତ୍ରୀ—ଲାଜକୁଳିଲତା (ଦେଖ) Lājakuḷi latā (See).
Nāka kānduri

**ନାକ ଖୁଣ୍ଟିବା**—ଦେ. କ୍ରି—ନାକର ରନ୍ଧ୍ର ମଧ୍ୟରେ ଅଙ୍ଗୁଠି ପୂରାଇ ଭିତରେ ଥିବା ମଇଳା ସଫା କରିବା—To cleanse the nostrils with one's finger.
Nāka khunṭibā
नकखोंटा
नाकखेटना
(ନାକଖୋଳିବା—ଅନ୍ୟରୂପ)
[ ମ—ଏହା କେତେକ ଲୋକଙ୍କର ଗୋଟିଏ ମନ୍ଦ ଅଭ୍ୟାସ । ]

**ନାକ ଘଷା**—ଦେ. ବି—୧ । ଭୂଇଁରେ ନାକ ଘଷିବାରୂପ ଦଣ୍ଡ; ( ଚଟଶାଳୀରେ ପିଲାଙ୍କୁ ଶିକ୍ଷକ ଦେବା ପୁରୁଣାକାଳିଆ ଦଣ୍ଡ )—1. A kind of punishment in which the punished rubs his nose against the ground
Nāka ghashā
नाकेखत
नाकघसना, नाकघिशनि
୨ । ହଲପଟା ଅବସ୍ଥା—2. Harassment; botheration.
ଦେ. ବିଣ—ହଲପଟା; ଅସ୍ତବ୍ୟସ୍ତ—Much troubled or harassed.

**ନାକ ଘଷିବା**—ଦେ. କ୍ରି—ଦଣ୍ଡସ୍ୱରୂପ ବା ଦୋଷ ସ୍ୱୀକାର ପୂର୍ବକ ନିଜର ନାକକୁ ଭୂଇଁରେ ବା ପଥରରେ ଘଷିବା—To rub one's nose against the ground or any rough substance as a punishment
Nāka ghashibā
नाकेखत; नाकघषा
नाकरगड़ना; नाकघिसना

**ନାକ ଘଷା(ଷେ)ଇବା**—ଦେ. କ୍ରି—ଦଣ୍ଡ ସ୍ୱରୂପ ଛାତ୍ରଦ୍ୱାରା ନିଜର ନାକ ଭୂଇଁରେ ଘଷିବାରୂପ କର୍ମ କରାଇବା—To cause an offending student to rub his nose on the ground.
Nāka ghashā(she)ibā
नाकेखत देओया
नाकरगड़ाना

**ନାକଚ୍**—ବୈଦେ. ବିଣ ( ଆ. ନାକାସ୍=ମନ୍ଦ; ଖରାପ )—ରଦ; ନାମଞ୍ଜୁର—Set aside; nullified; rejected; cancelled.
Nākach
नाकच रद्द; नाजायज

**ନାକଚ୍ କରିବା**—ଦେ. କ୍ରି—ରଦ୍ଦ୍ କରିବା—To reject; to set aside; to nullify; to concel.
Nākach karibā
नाकचकवा रद्दकरना, नाजायज करना

**ନାକଚଣା**—ଦେ. ବି—୧ । ନାକଫୁଲାରେ ପିନ୍ଧାଯିବା ଏକପ୍ରକାର ଫୁଲ- (ଅଳଙ୍କାର)—1 A small bit of gold with a stem below a bud worn on the bore on the side of the nostril.
Nākachaṇā
(ନାକଛବି, ନାକମାଛି—ଅନ୍ୟରୂପ)
नाककडाई; नाकछवि; नाकचावि; नाकचोना
नाकफुल; नकवेसर
ବକ ନଖ ବାଁ କଳସ୍ଥ ବାଛୁଟି
ହାର ଭାଟକ ନାକଚଣା କର୍ଣ୍ଣି । ପ୍ରାଚୀ. ରଘୁବଂଶମଙ୍ଗଳ ।
[ ଦ୍ର—ଏହାର ପ୍ରକାର —ଓଲଟ ମୁଦି; କଣି; ବଉଳକୋଳଥ; ଅମ୍ବକେରିଥ । ]
୨ । ଏକପ୍ରକାର ଫୁଲ ଗଛ— [ ଦ୍ର—ଲୂପଗନ୍ଧା; ହରଭମଞ୍ଜରୀ; ବିଷଲୁସି ]—2. A kind of flower tree

**ନାକ ଚେପ୍ଟା**—ଦେ. ବିଣ ପୁଂ—ଯାହାର ନାକ ଚେପଟା; ଚେପଟା- ନାକା—Flat-nosed.
Nāka chep-ṭā
खेंदानाक चिपटीनाकवाला; नकपिच्चा
(ନାକଚେପ୍ଟୀ—ସ୍ତ୍ରୀ)

**ନାକ ଛବି**—ଦେ. ବି ( ବଙ୍ଗଳାରୁ ଅନୁକୃତ )—ନାକ ଫୁଲାରେ ପିନ୍ଧିବାର ଛବିଥିବା ଫୁଲ—A kind of nose-pin with a round top.
Nāka chhabi
नाकछवि
नाककालौंग

**ନାକଛୁଙ୍କ(ଙ୍କି)(ଙ୍କୁ)ଣି**—ଦେ ବ ( ସ ନାସିକା+ଛୁଙ୍କନ )—
Nākachhiṅka(ṅki)(ṅku)ni ବିଲନାସ ( ଦେଖ )
नाकछिकनी Bilanāsa ( See ).
**नकछिकनी**

**ନାକ ଛୁଞ୍ଚଡ଼ା**—ଦେ.ବ--ଘୃଣାରେ ନାକ ଦ୍ୱାରା ଉପର୍ଯ୍ୟୁପରି ଶବ୍ଦ କରିବା--
Nāka chhiñcharḍā Sniffing with the nose to
**नाकसिकोड़ना** indicate derision; sneering.
ଦେ. ବିଣ. ପୁଂ---ଯେଉଁ ପୁରୁଷ ସାମାନ୍ୟ କଥାରେ ନାକ
**नाकसिकोड़नेवाला** ଚାଉଁ ଚାଉଁ କରେ, ଅଳ୍ପ କ୍ରୋଧନସ୍ୱଭାବ
(ନାକଛୁଞ୍ଚାଡ଼ୀ—ସ୍ତ୍ରୀ) (ବ୍ୟକ୍ତି)—Given to sniffing with
the nose or sneering at slight thing

**ନାକ ଛୁଞ୍ଚାଡ଼ିବା**—ଦେ. କ୍ରି— ନାକ ଚାଉଁ ଚାଉଁ କରିବା; ଘୃଣା ବା
Nāka chhiñchārḍibā ଅସନ୍ତୋଷପ୍ରକାଶ କରିବାପାଇଁ ନାକକୁ
नाकसिटकाना; नाकबाँकाना ଏ ପାଖ ସେ ପାଖ ବୁଲାଇ ଛିଙ୍କିବା,
**नाकसिकोड़ना; नाकमारना** ନାସିକା କୁଞ୍ଚନ କରିବା--
To make sniffing sounds by moving
the nose indicating hatred or
disapproval; to sneer

**ନାକଛୁଞ୍ଚାଡ଼ୀ**—ଦେ ବିଣ ସ୍ତ୍ରୀ. ( ନାକଛୁଞ୍ଚଡ଼ାର ସ୍ତ୍ରୀଲିଙ୍ଗ )—ଯେଉଁ
Nāka chhiñchārḍi ସ୍ତ୍ରୀ ସାମାନ୍ୟ କଥାରେ ନାକ ଛୁଞ୍ଚାଡେ
ବା ଘୃଣା ପ୍ରକାଶ କରେ ବା ନାସିକା କୁଞ୍ଚନ କରେ—
(a woman ) Given to sniffing or
sneering at little things ( feminine of
Nākachhiñcharḍā)

**ନାକଛିଣ୍ଡୀ**—ଦେ. ବିଣ. ସ୍ତ୍ରୀ—ଯେଉଁ ସ୍ତ୍ରୀର ନାସିକାର ପୁଡ଼ାରେ କରି
Nākachhinḍi ଯାଇଥିବା ରନ୍ଧ୍ର ଯୋଗୁଁ ନାକପୁଡ଼ାର ଆବରଣ
**नककटी** ଛିଣ୍ଡି ଯାଇଥାଏ—( a woman ) Who
(ନାକଛିଣ୍ଡେଇ—ଅନ୍ୟରୂପ) has the wall of her nostril
lacerated at the bore.
[ଦ୍ର—ଦେଖାଯାଏ ଯେ କେତେକ ସ୍ତ୍ରୀଲୋକଙ୍କ ନାକରେ କରିଯାଇ
ଥିବା ଫୋଡ଼ରେ ପିନ୍ଧିଥିବା ଲୋଥ, ଗୁଣା, ବସୁଣୀ ଆଦି
ଏପରି ଭାରି ହୋଇଥାଏ ଯେ ତାହା ଫୋଡ଼କୁ ବର୍ଦ୍ଧିତ କରି
ସେମାନଙ୍କ ନାକପୁଡ଼ାକୁ ଛିଣ୍ଡାଇ ପକାଏ । ]

**ନାକଟା**—ଦେ. ବିଣ. ପୁଂ. ( ସ. ନାସିକା+କୃତ୍; କର୍ତ୍ତିତ )—
Nākaṭā ୧ । ଯାହାର ନାକ ନ ଥାଏ ବା କଟା ହୋଇଅଛି—
नाककाटा 1. Noseless ( Howells ); having the nose
**नकटा** lopped off.
(ନାକଟୀ—ସ୍ତ୍ରୀ) ୨ । ଚେପଟାନାକ—
2. Flat nosed ( Howells )

**ନାକ ଚାଉଁ ଚାଉଁ**—ଦେ. କ—୧ । ନାକ ଛୁଞ୍ଚାଡ଼ିବା; ନାସିକା କୁଞ୍ଚନ—
Nāka tāuñ tāuñ 1. Sniffing with derision.
नाकतोला; नाक बाँकान ଭୁଲାଇବ ଏହେ । ମୁଦ୍ଧ ନାହିଁ ଗୋଡ କରୁଛୁ କେତେ ।
**नाक भौं चढ़ाना** ପିଉଳ ଗୁଣାରେ ନାକ ଚାଉଁ ଚାଉଁ, ସୁନା ଗୁଣା
( ନାକଡାଉଁ—ଅନ୍ୟରୂପ ) ଥିଲେ ତୁଅନ୍ତୁ କେତେ—ଉଗ ।

୨ । କ୍ରୋଧରେ ନାକ ଫୁଲାଇବା—
2 Swelling of the nostrils with rage.

**ନାକ ଟେକିବା**—ଦେ. କ୍ରି—ନାକ ଛୁଞ୍ଚାଡ଼ିବା ( ଦେଖ )
Nāka ṭekibā Nāka chhiñchārḍibā ( See )

**ନାକ ଡାକ**—ଦେ. ବ--ଶୋଇଥିବାବେଳେ ଘରଘିବା ଘୁଙ୍ଗୁଡ଼ି—
Nāka ḍāka Snoring during sleep.
नाकसाट **घर्राटा लेना; नाक मारना**
( ନାକ ଡାକିବା—ଅନ୍ୟରୂପ )

**ନାକଡିଆଁ**—ଦେ. ବିଣ. ଓ ବ. ପୁଂ—ନାକ ଛୁଞ୍ଚଡ଼ା ( ଦେଖ )
Nākaḍiāñ Nāka chhiñcharḍā (See)
(ନାକଡିଆଁଇ; ନାକଡେଇଁ —ସ୍ତ୍ରୀ)

**ନାକ ଡିଆଁଇବା**—ଦେ. କ୍ରି—ନାକ ଛୁଞ୍ଚାଡ଼ିବା ( ଦେଖ )
Nāka ḍiāñibā Nāka chhiñchārḍibā (See)
(ନାକ ଡେଇଁବା; ନାକ ଚାଉଁ ଚାଉଁ କରିବା—ଅନ୍ୟରୂପ)

**ନାକଦଅଣା**—ଦେ. ବ. ( ସ. ନାଗଦମନକ ) —ନାଗଦଅଣା (ଦେଖ)
Nākada-aṇā Nāgada-aṇā (See)
नागदना **नागदौना**

**ନାକ ଦଉଡ଼ି**—ଦେ. ବ - ବଳଦ ଓ ମଇଁଷି ଆଦିଙ୍କୁ ଚଳାଇବା ଓ ବଶରେ
Nāka daurḍi କରିବା ପାଇଁ ସେମାନଙ୍କ ନାକ ଫୋଡ଼ା ହୋଇ
**नथ** ଫୋଡ଼ ମଧ୍ୟରେ ଯେଉଁ ସୂତୁଲି ଗଳା ଯାଇଥାଏ—
नाकेदड़ि Nose-string.

**ନାକ ଦଣ୍ଡା**—ଦେ. ବ—ନାସିକାର ପୃଷ୍ଠଦେଶ; ଭ୍ରୂ ମଧ୍ୟରୁ ନାସାଗ୍ର
Nāka danḍā ପର୍ଯ୍ୟନ୍ତ ଲମ୍ବ ଅଂଶ—The back or bridge
नाकेव दाँड़ा **नाककारीढ़** of the nose.

ଦେଖିଲି ସବୁଙ୍କ ସ୍ଥାନେ ସ୍ଥାନେ ଫୁଲିଅଛି; ନାକଦଣ୍ଡା ଫାଟିଯାଇ
ରକ୍ତ ବହୁଅଛି—ଫକୀରମୋହନ. ଛମାଣ ଅଠଗୁଣ୍ଠ ।

**ନାକ ଦଣ୍ଡି**—ଦେ. ବ. ( ସ. ନାକ+ଦଣ୍ଡ )—
Nāka danḍi ୧ । ଦୁଇ ନାକପୁଡ଼ାର ମଧ୍ୟସ୍ଥ ଅଂଶ—
नाकेव डाँटी 1 The partition wall between
**नाकका बाँसा** the two nostrils.
୨ । ଦଣ୍ଡିନାକ; ନାକର ଯେଉଁ ଅଂଶରେ ଛିଦ୍ର ହୋଇ
ଦଣ୍ଡି ପିନ୍ଧାଯାଏ—
2. The septum of the nose; septulum.
୩ । ନାସିକାଗ୍ର—3. The tip of the nose.

**ନାକଦଣ୍ଡିରେ ରାଗ**—ଦେ. ବାକ୍ୟ. ବ—ସାମାନ୍ୟ କଥାରେ ରାଗିଯିବା
Nākadanḍire rāga ପ୍ରକୃତି—Irritability in slight
**नाकपर गुस्सा** matters.

**ନାକଦମ୍**—ଦେ. ବ. ( ଓ. ନାକ+ଧା. ଦମ୍=ନିଶ୍ୱାସ; ନାକରେ
Nākadam ନିଶ୍ୱାସ ବହିବା ଅବସ୍ଥା )—
( ନାକେଦମ୍—ଅନ୍ୟରୂପ ) ୧ । ଯୁଗରୁଦ୍ଧ ଅବସ୍ଥା; ଅଛ. ଅକ୍ରାନ୍ତ
ଅବସ୍ଥା—1. Overpowered condition; the
state of being cornered.
୨ । ବେଦମ୍ ଅବସ୍ଥା—
2. The state of being out of breath

୩ । ହଇରାଣିଆ ଅବସ୍ଥା—
3. The state of being put to much trouble.

ନାକେଦମ; ନାକାଲ ଦେ. ବଣ ଓ କ୍ରି. ବଣ—୧ । ଅତ୍ୟନ୍ତ ଆକ୍ରାନ୍ତ—
**नाकमेंदम; नाकोदम** 1. Overpowered
୨ । ବେଦମ—
2. Out of breath; at the last gasp
୩ । ଅତ୍ୟନ୍ତ କ୍ଲାନ୍ତ—
3. Fatigued; spent up.
୪ । ହଇରାଣ—
4. Put to much trouble or botheration

**ନାକ ନଠୀ**—ସ. ବ (ଷଷ୍ଠୀ ତତ୍, ନାକ + ନଠୀ)—ଅପ୍ସରା—
Nāka nati Heavenly nymph

**ନାକ ପୁଡ଼ା**—ଦେ. ବ. (ସ. ନାସିକାପୁଟ)—୧ । ନାସାରନ୍ଧ୍ର; ନାସିକାରନ୍ଧ୍ର—1. The nostrils.
Nāka purdā
ନାକେର ପାତା ୨ । ନାସାରନ୍ଧ୍ରର ବାହାରର ଚମଡ଼ା—
**नथुना, नथना** 2. The outer skin of the nostrils; lobes of the nose.

**ନାକ ପୁଡ଼ୁକି**—ଦେ ବ—୧ । ନାକଫୁଲ—
Nāka purduki 1. An ornament for the nose·
(ନାକପୁଡ଼ୁକି— ଅନ୍ୟରୂପ) ୨ । ନାକଦ୍ୱାରା କରାଯିବା ଶବ୍ଦ—
2. A sound produced by the nose.

**ନାକ ପୋଛିବା**—ଦେ. କ୍ରି. (ସ ନାସିକା + ପ୍ରୋଞ୍ଛନ)—ନାକଦ୍ୱାରା ସୁଁ ଶବ୍ଦ କରି ସିଙ୍ଘାଣି ଆଦି ବାହାର କରିବା ପାଇଁ ଆଙ୍ଗୁଠିଦ୍ୱାରା ପୋଛିବା—To clear one's nostrils by blowing and then pressing with the fingers.
Nāka pochhibā
নাকঝাড়া
**नाक सिनकना; नाक सुरकना**

**ନାକ ପୋଛିବାକୁ ସମୟ ନ ଥିବା(ହେବା)**—ଦେ· ବ—କାର୍ଯ୍ୟର ଜଞ୍ଜାଳରେ ଅତ୍ୟନ୍ତ ବ୍ୟତିବ୍ୟସ୍ତ ଥିବା ଯୋଗୁଁ ଅନ୍ୟ ବିଷୟମାନଙ୍କ ପ୍ରତି ମନ ଦେବାକୁ ସମୟ ନ ମିଳିବା; କାର୍ଯ୍ୟର ଭିଡ଼ ଯୋଗୁଁ ଅବସରର ଅଭାବ—There being no leisure even to cleanse one's nostrils; want of even a little leisure.
Nāka pochhibāku samaya na thibā(heba)
নাকানি চোপানি

**ନାକ ଫାଟିଯିବା**—ଦେ. ବ.—କୌଣସି ସ୍ଥାନର ବା ବସ୍ତୁର ଦୁର୍ଗନ୍ଧ ନାସିକାର ଅସହ୍ୟ ହେବା—The arising of a very offensive or unbearable smell from a place or thing.
Nāka phātijibā
নাক ঝাঁঝাঁ করা
**नाक फटने लगना**
(ନାକ ଫାଟି ପଡ଼ିବା—ଅନ୍ୟରୂପ)

**ନାକ ଫଣିଆ**—ଦେ. ବ—ନାକଫୋଡ଼ରେ ପିନ୍ଧାଯିବା ଫାଶିଆ ବା ସାଧା ରିଙ୍ଗ—A thin ring put on the bore of the nostril.
Nāka phāsiā
**नथानी**

**ନାକ ଫୁଡ଼ୁକା(କି)**—ଦେ. ବ. (ସ. ନାସିକା + ଧ୍ୱନ୍ୟନୁକରଣ ଶବ୍ଦ ଫୁଡ଼ୁକା)—ନାକଦ୍ୱାରା କରାଯିବା ଶବ୍ଦ—Sound made by blowing through the nose.
Nāka phurdukā(ki)
**नाक फड़फड़ाना**

**ନାକ ଫୁଲ(ଲି)**—ଦେ ବ—ନାକପୁଡ଼ାର ରନ୍ଧ୍ରରେ ପିନ୍ଧାଯିବା ନାଉପୁଲି ସାନ ଗୁଣା—A kind of small budlike pin for the nostril
Nāka phula(li)
নাকফুল **नाकफुल**

**ନାକ ଫୁଲା**—ଦେ. ବ- କ୍ରୋଧରେ ନାକପୁଡ଼ା ଫୀତ ହେବା—
Nāka phulā The swelling of the nostrils (due to anger).
নাকতোলা **नक्कचढ़ा**
ଦେ. ବଣ. ପୁଂ—ନାକଫୁଲାଈର ପୁଂଲିଙ୍ଗ—
Masculine of Nākaphulāi.

**ନାକ ଫୁଲା(ଲେ)ଇବା**—ଦେ. ବ—୧ । କ୍ରୋଧରେ ଫ ଫଁ ହେବା—
Nāka phulā(le)ibā 1. To snarl or hiss with the nose through anger.
নাক তোলা
**नाक चढ़ाना,** ୨ । ଘୃଣାରେ ନାକ ପୁଡ଼ାକୁ ବଡ଼ କରିବା—
**नथना फुलाना** 2 To sneer; to puff up one's nose, to turn up the nose
୩ । ସ୍ନେହାବେଗରେ ବା ଆନନ୍ଦରେ ନାକ ପୁଡ଼ାକୁ ବଡ଼ କରିବା—
3. To puff up one's nose in affection or delight.

**ନାକ ଫୁଲା(ଲେ)ଈ**—ଦେ ବଣ—୧ । କ୍ରୋଧାନ୍ୱିତା ବା ସ୍ୱଗୋଉ (ସ୍ତ୍ରୀ); ଚଞ୍ଚଳ ସ୍ୱଭାବବିଶିଷ୍ଟା, କ୍ରୋଧନା—
Nāka phulā(le)ī
**नकफुल्ली, नकचढ़ी** 1 Irritable (woman).
୨ । ନାକ ଛୁଆଡ଼ୀ (ସ୍ତ୍ରୀ)—
2 Sneering (woman)

**ନାକ ଫୋଡ**—ଦେ. ବ—ଅଳଙ୍କାର ଆଦି ପିନ୍ଧିବା ପାଇଁ ନାକରେ କରାଯିବା ରନ୍ଧ୍ର—
Nāka phordā
নাকের ছেঁদা, নাকের বিন্দ Perforation made in the nose for wearing ornaments.
**नाक छेद, नथना**
(ନାକ ଫୋଡ—ଅନ୍ୟରୂପ)

**ନାକ ଫୋଡ଼ା**—ଦେ. ବଣ. ପୁଂ—ଯାହାର ନାକପୁଡ଼ାରେ ବା ନାକଦଣ୍ଡିରେ ଛିଦ୍ର କରାଯାଇ ଥାଏ; ନାସାଛିଦ୍ରା—
Nāka phordā
**नक छेदी** One whose nose has been bored through.
ନାକ ଫୋଡ଼ୁ } ଅନ୍ୟରୂପ
ନାକ ଫୋଡ଼ିଆ }
(ନାକଫୋଡ଼ୀ—ସ୍ତ୍ରୀ) ଦେଖନ୍ତୁ ନାକଫୋଡା, ପରନ୍ତୁ ଅପର୍ତ୍ତିଆଣୀ—ରଗ ।
[ ଦ୍ର—ଗୁଣା ଆଦି ପିନ୍ଧିବା ପାଇଁ ସ୍ତ୍ରୀ ଲୋକଙ୍କ ନାକ ଫୋଡ଼ା ଯାଏ । ଅପର୍ତ୍ତିଆଣୀଙ୍କ ନାକ ମଧ୍ୟ ଫୋଡା ହୁଏ । ବଳଦ ଓ ମଇଁଷିଙ୍କ ନାକ ଫୋଡ଼ା ଯାଇ ତହିଁରେ ଦଉଡ଼ି ଗଳା ଯାଏ । ]
ଦେ. ବ—୧ । ଅଳଙ୍କାର ପିନ୍ଧିବା ପାଇଁ ନାକପୁଡ଼ା ବା ନାକ ଦଣ୍ଡିରେ ଛିଦ୍ର କରଣ—1. Boring of the nose.
୨ । (ପୁଂ) ଅପର୍ତ୍ତିଆଣୀଙ୍କ ନାମ—
2. A name given to Aparttiāni boys.

**ନାକ ଫୋଡ଼ିବା**—ଦେ. କ୍ରି—୧ । ଅଳଙ୍କାର ଆଦି ପିନ୍ଧିବା ପାଇଁ ନାକ ପୁଡ଼ାର ଚମରେ ବା ନାକ ଦଣ୍ଡିରେ ଛିଦ୍ରକରିବା—
Nāka phordibā
নাক ফোডা, নাক বিঁধান 1 To bore through the outer skin of the nostrils or the septum
**नाक बींधना, नाक छेदना**
[ନାକ ଫୋଡ଼ା(ଡ଼େ)ଇବା—ଣିଜନ୍ତରୂପ ]

[ ଦ୍ର—ସ୍ତ୍ରୀ ଲୋକମାନଙ୍କର ଓ ଅପତ୍ରିଅଣୀଙ୍କର ନାକ ଫୋଡ଼ା ଯାଏ । ]

୨ । ବଳଦ, ମଇଁଷି ଆଦିଙ୍କ ନାକଦଣ୍ଡିରେ ଦଉଡ଼ି ଗଳାଇବା ପାଇଁ ରନ୍ଧ୍ର କରିବା—2. To bore the nose of beasts of burden for passing a string through it

ନାକ ବକୁଳି—ଦେ. ବି (ସ. ନାସିକା + ବଲ୍କଲ)—ନାକ ଭିତରୁ ଖଡ଼ୁଥିବା ଶୁଖିଲା ଶିଂଘାଣି ଆଦିର ଖୋଳ—Thin dry layers of mucus which settle and then peel off from inside the nostrils
Nāka bakuḷi
ନାକ ବକଳ } ଅନ୍ୟରୂପ
ନାକ ବକଲା }
নাকাবে পোঁটা नकटी

ନାକ ବାଳ—ଦେ. ବି (ସ. ନାସିକା + ବାଳ)—
Nāka bāḷa ନାସିକା ପୁଡ଼ା ମଧ୍ୟରେ ଉଠିଥିବା କେଶ—
নাকের চুল Small hairs growing inside the nostrils
नाक का बाल

ନାକ ବାଳ ଧରା—ଦେ. ବି—ପୂର୍ବ କାଳରେ ଚାଟଶାଳୀର ଅବଧାନମାନେ ବାଳକମାନଙ୍କୁ ଦେଉଥିବା ଏକପ୍ରକାର ଦଣ୍ଡ।
Nāka bāḷa dharā
[ ଏଥିରେ ଅପରାଧୀ ଆପଣାର ଗୋଟିଏ ହାତରେ ନାକ ପୁଡ଼ାକୁ ଚପି ଧରିଥାଏ ଓ ଆଉ ଗୋଟିଏ ହାତରେ ଚୁଟିକୁ ଧରିଥାଏ ଓ ବାରଂବାର ଉଠୁଥାଏ ଓ ବସୁଥାଏ—A punishment formerly given to boys by the village teacher, consisting of the boy being made to sit down and stand up successively while holding his nose with one hand and his tuft of hair on the head with the other,

ନାକ ବାଳ ଧରା(ରେ)ଇବା—ଦେ. କ୍ରି—୧ । ଦଣ୍ଡ ଦେବା—
Nāka bāḷa dharā(re)ibā 1 To punish.
नाक चोटी काटना ୨ । ହଇରାଣ କରିବା; ହୀନସ୍ତା କରିବା—
2. To put to trouble; to harass.

ନା(ନାଁ)କବୁଲ୍—ବୈଦେ ବି.—(ଫା.)—ନାମଞ୍ଜୁର; ଅସମ୍ମତି—
Nā(nāṅ) kabūl Disagreement.
না কবুল ना कबूल

ନାକ ମାଛି—ଦେ. ବି—ମାଛି ପରି ଆକାର ବିଶିଷ୍ଟ କାଡ଼ ବା ଖିଲଯୁକ୍ତ ଅଳଙ୍କାରବିଶେଷ—A nose tip.
Nāka māchhi
নাক মাছি [ ଦ୍ର—ଏହା ନାକ ପୁଡ଼ାରେ ପିନ୍ଧାଯାଏ । ଏଥିର
नक बेसर ଡିମ୍ବରେ ଗୋଟିଏ ଖିଲ ବା କଡ଼ା ଥାଏ, ତାହା
(ନାକ ବେସର—ଅନ୍ୟରୂପ) ନାକର ଫୋଡ଼ା ହୋଇଥିବା ରନ୍ଧ୍ରରେ ଦିଆଯାଏ । ଏଥିର ଅଗ୍ର ଭାଗରେ ମାଛି, ପାନ, ଫୁଲକଢ଼ି, ଲବଙ୍ଗ ଆଦି ଆକାରର ଗୋଟିଏ ଛଡ଼ାକୃତି ଧାତୁ ବା ମଣି ଥାଏ, ତାହା ନାକ ପୁଡ଼ାରେ ଲାଗେ; ବେସର ଫୁଲ ଅପେକ୍ଷା ବଡ଼ । ]

ନାକ ମୋଡ଼ା—ଦେ. ବି—ଦଣ୍ଡ ସ୍ୱରୂପ ବା ଅପରାଧ ସ୍ୱୀକାର ପୂର୍ବକ ନିଜ ହାତରେ ବା ଅନ୍ୟ ଦ୍ୱାରା ନାକକୁ ଚପିବା—
Nāka moṛḍā
নাক মলা Pulling of one's nose.
नाक मैं ऐंठना

ନାକରା—ଦେ ବିଣ. ( ଫା. ନାକାରହ୍ )—
Nākarā ୧ । ଅକାମିକା, ଅବ୍ୟବହାର୍ଯ୍ୟ—1. Worthless, useless, good for nothing.
(ନାଁକରା, ନାକାରା, ନାକେରା—ଅନ୍ୟରୂପ)
(ବିପରୀତ—କାରା)
নাকারা ୨ । ଖରାପ; ମନ୍ଦ—2 Bad; evil.
नकारा, नाकारा ୩ । ନିକୃଷ୍ଟ—3 Inferior; base.
୪ । ଦୁଷ୍ଟ—4. Wicked, dissalute.
୫ । ନଷ୍ଟ—5 Spoiled

ନାକରେ କାଠି ପୂରା(ରେ)ଇ ଛିଙ୍କିବା—ଦେ କ୍ରି—୧ । ସର୍ଦ୍ଦି ପ୍ରଭୃତି ହେଲେ ମସ୍ତକର ସୁରୁଡ଼ା କମାଇବା ପାଇଁ ନାକରେ କାଠି ପ୍ରଭୃତି ଗୁଞ୍ଜି ଛିଙ୍କିବା—1. To cause sneezing by thrusting a reed into the nostrils
Nākare kāṭhi pūrā(re)i chhiṅkibā
नाकमे काठी देकर छींकना
୨ । (ଲକ୍ଷଣାର୍ଥ) କୌଣସି ଆପଦକୁ ବରଣ କରି ଆଣିବା—
2. (figurative) To invite a danger (literally, to sneeze by thrusting a reed into the nostril.
[ନାକରେ କାଠି ପୂରା(ରେ)ଇ ଛିଙ୍କି ହେବା—ଅନ୍ୟରୂପ]

ନାକରେ ଦଉଡ଼ି ଲଗା(ଗେ)ଇ ଟାଣିବା—ଦେ. କ୍ରି—
Nākare dauṛḍi lagā(ge)i ṭāṇibā ୧ । ( ଲକ୍ଷଣାର୍ଥ )
নাকে দড়ী দিএ টানা କୌଣସି ବ୍ୟକ୍ତିକୁ ଅନ୍ୟର ଇଚ୍ଛାମତେ
नाकमे रसी देकर घुमाना, ବାଧ୍ୟ କରାଇ କାମ କରାଇବା—
नथनी खी चना 1. (figurative) To force a person to carry out another's will; to pull one by the nose-string.
୨ । ହଇରାଣ କରିବା—
2 To harass a person.

ନାକରେ ଲଙ୍କାମରିଚପାଣି ଟେଣ୍ଡା(ଣ୍ଡେ)ଇବା—ଦେ. କ୍ରି.—ଅତ୍ୟନ୍ତ ପୀଡ଼ା ଦେଇ ବ୍ୟତିବ୍ୟସ୍ତ କରିବା, ହଇରାଣ କରିବା—
Nākare laṅkāmaricha pāṇi teṇḍā(ṇḍe)ibā
নাকাল করা
नाकमे तीर डालना To harass a person

ନାକରେ ହାତ ଦେବା—ଦେ. କ୍ରି.—୧ । ନାକ ପୁଡ଼ାକୁ ଆଙ୍ଗୁଠିରେ ବନ୍ଦ କରି କୌଣସି ସ୍ଥାନରୁ ବାହାରୁଥିବା ଦୁର୍ଗନ୍ଧକୁ ନାକ ମଧ୍ୟରେ ପ୍ରବେଶ କରାଇ ନ ଦେବା—1. To put the fingers on one's nose to put out any bad smell.
Nākare hāta debā
নাকে হাত দেওয়া
नाकपर उंगुली रखना
୨ । ଘୃଣା କରିବା—2. To hate

ନାକଲମ୍—ଦେ. କ୍ରି. ବିଣ.—(ଫା ନାହକ୍; ଉର୍ଦ୍ଦୁ. ନାକଲାମ୍)—
Nākalām ବୃଥା; ଅକାରଣରେ—In vain; uselessly; without any reason
নাহক্
नाहक, नाकलाम (ଯଥା—ମତେ ହାକମ ନାକଲମ୍ ** ଦନ ଦେଲେ ଜକମା କରାଇ ଦେଲେ ।)

**ନାକସ୍**—ଦେ. ବଣ.—(ଫା. ନାକସ୍; ଆ ନାକସ୍=ମନ୍ଦ)—
Nākas ୧ । ଦୁର୍ବଳ—1. Weak.
नाखच; नाकच् ୨ । ଅନୁପଯୁକ୍ତ—
नाकिस् 2. Unfit.
୩ । ତୁଚ୍ଛ, ହେୟ—3. Despicable; insignificant.
୪ । ଉତ୍ତମରୂପେ ପାଗ ହୋଇ ନ ଥିବା—
4. Not well seasoned.

**ନାକ ସିଟ୍(ଟି)କା**—ଦେ. ବ (ବଙ୍ଗଳାନୁକରଣ) —ନାକ ଛୁଞ୍ଚଡ଼ା (ଦେଖ)
Nāka siṭ(ṭi)kā Nāka chhiñchaṛdā (See)

**ନାକ ସିଟ୍(ଟି)କା(କେ)ଇବା**—ଦେ. କ୍ରି —ନାକ ଛୁଞ୍ଚାଡ଼ିବା (ଦେଖ)
Nāka siṭ(ṭi)kā(ke)ibā Nāka chhiñchāṛdibā (See)

**ନାକା**—ଦେ. ବଣ. ପୁଂ. (ସଂ. ନାସିକା)—୧ । ବଡ ବା ସୁଦୀର୍ଘ ନାକ
Nākā ବିଶିଷ୍ଟ; ନାକୁଆ—Large-nosed; long-nosed.
नाकुआ ପ୍ରାଦେ. (ସମ୍ବଲପୁର) ବ. (ହି. ନାକା)—୧ । ନଗର ଆଦର
ପ୍ରବେଶ ଦ୍ୱାର ବା ଫାଟକ—
नक्क नक्कुआ 1. A gate for entering
into a town; a turnpike.
୨ । ନଗର ଆଦରେ ପଣ୍ୟବାହୀମାନଙ୍କଠାରୁ ଶୁଳ୍କ ବା ମାସୁଲ
ଅସୁଲ କରିବା ପାଇଁ ସିପାହି ଯେଉଁ ସ୍ଥାନରେ ଥାଆନ୍ତି—
2. An outpost where sentries are stationed to realies the town-duty.
नाक ଦେ. ବ.—୧ । ପାତ୍ର ଆଦର ବଙ୍କା ଡାଉସା—
नाका 1. Nozzle of cups and jugs.
୨ । ଛୁଞ୍ଚିର ଛିଦ୍ର ଥିବା ଅଂଶ—2. The end of the
needle having the eye-let.

**ନାକା ଘର**—ପ୍ରାଦେ. (ସମ୍ବଲପୁର)—ବ.—୧ । ସହରର ଫାଟକ
Nākā ghara ନିକଟରେ ପ୍ରହରୀମାନଙ୍କ ଜଗିବା ଘର—1 A
room near the gate where watchmen
keep guard over the town.
୨ । ରାସ୍ତାରେ ପଣ୍ୟବାହୀମାନଙ୍କଠାରୁ ମାସୁଲ ଆଦାୟ
କରିବା କର୍ମଚାରୀ ଯେଉଁ ଘରେ ରହେ—
2 Toll gate-keeper's room.

**ନାକାନ୍ତ**—ଦେ. ବଣ.—(ଆ. ନାକାଲ=ଆଦର୍ଶ ଦଣ୍ଡ—କ୍ଲାନ୍ତେନ୍ଦ୍ର)—
Nākānta ୧ । ନାକେଦମ୍; ଅକାନ୍ତ—1. Overpowered.
नाकाल ୨ । ଅତି କ୍ଲାନ୍ତ—
नाकमें दम 2. Fatigued; overtired.
୩ । ଅତି ବିରକ୍ତ; ହଇରାଣ—3. Harassed; pestered.

**ନାକାବନ୍ଦି**—ଦେ. ବ.—(ସମ୍ବଲପୁର)—(ଭୁଲ. ଏହି ଅର୍ଥରେ ହି. ଏହି
Nākābandi ଶବ୍ଦ)—୧ । ସହରର ପ୍ରବେଶଦ୍ୱାରମାନଙ୍କର
ଅବରୋଧ—1. The closing of the gateways of a town
୨ । ନଗରର ଫାଟକ ଆଦର ପ୍ରହରୀମାନଙ୍କଦ୍ୱାରା ପହରା—
2. The watching of the town-gates or
turnpike gates by sentries.
୩ । ନଗରର ଫାଟକ ଜଗିବା ସିପାହି—
3. A sentry or guard-posted at a town-gate.
୪ । କନଷ୍ଟବଳ, ପହରାବାଲା—
4 Constable; watchman; sentry

**ନାକାବିଲ୍**—ବୈଦେ. ବଣ (ଫା. ନା+ଆ. କାବିଲ୍)—ଅଯୋଗ୍ୟ—
Nākābil Unfit
नाकाबिल नाकाबील (ନାଁ କାବିଲ୍—ଅନ୍ୟରୂପ)

**ନାକି**—ଦେ. ବଣ.—ନାକ ସାହାଯ୍ୟରେ ଉଚ୍ଚାରିତ; ଅନୁନାସିକ—
Nāki Prononunced with nasal intonation;
नाकी नाकी nasal
(ଯଥା—ନାକି ସ୍ୱର, ନାକି ଗାଉଣା ।)
ଦେ. ବ.—୧ । ଜୋକିଆ (ଦେଖ)—1. Jokiā (See)
नाका, नक्का ୨ । ଛୁଞ୍ଚିର ଛିଦ୍ର—2 The eyelet of a needle.
୩ । ବକ୍ରାଗ୍ର—3. A curved point

**ନାକି ଗାଉଣା**—ଦେ. ବ. ( ସଂ. ନାସିକା+ଗାୟନ )—ଅନୁନାସିକ
Nāki gāuṇā ଉଚ୍ଚାରଣ ଯୁକ୍ତ ଗାନ—Nasal singing.
नाकी गाओना नाकी गाना

**ନାକି ଚଣା** - ପ୍ରାଦେ. (ଗଞ୍ଜାମ) ବ —(ସଂ. ନାସିକା+ଚଣକ)—ବୁଟ;
Nāki chaṇā କୁଲ୍ଥ—Grain.
[ବି—ଏହା ଦେଖିବାକୁ ଚଣା ପରି, କିନ୍ତୁ ଏଥିର ମୁଣ୍ଡରେ ନାକ
ପରି ଗୋଟିଏ ବଙ୍କା ମୁନ ବାହାରି ଥିବାରୁ ଏହାର ନାମ ନାକିଚଣା
ହୋଇ ଅଛି ।]

**ନାକି ସ୍ୱର**—ଦେ. ବ. (ସଂ.ନାସିକା+ସ୍ୱର)—୧ । ଅନୁନାସିକ ଶବ୍ଦ—
Nāki swara 1. Nasal sound.
नाकीस्वर ୨ । ଅନୁନାସିକ ଉଚ୍ଚାରଣ—
नाकीसूर 2. Nasal utterance.
(ନାକିସୂର—ଅନ୍ୟରୂପ) ୩ । କେଁ କେଁଇଁ ତୀକ୍ଷ୍ଣ ସ୍ୱର—
3. Shrill note; treble.
ଡାକୀ ଗାଉଣାକୁ ନାକି ସ୍ୱର,
ମାଦଳ ବଜାଳ ଉତ୍ତୁଁ ଗର—ଚଗ ।

**ନାକୀ**—ସଂ. ବ. (ନାକ+ଅସ୍ତ୍ୟର୍ଥେ. ଇନ୍; ୧ମ. ୧ବ.)—ଦେବତା—
Nākī The Gods.

**ନାକୀ ହଂସ**—ଦେ ବି—ଚିଲିକାରେ ଦେଖାଯିବା ଏକପ୍ରକାର ପକ୍ଷୀ—
Nākī hamsa A species of webfooted birds found
in the Chilka lake.

**ନାକୁ**—ସଂ. ବ—( ନ=ନାହିଁ+ଅକ ଧାତୁ=ଗମନ କରିବା+
Nāku କର୍ତ୍ତୃ. ଉ )—୧ । ବଲ୍ମୀକ; ଉଇ ହୁଙ୍କା—
1. Ant-hill.
୨ । ପର୍ବତ—Mountain.
୩ । ମାଟି ଢିପ—3 A high mound of earth.
୪ । (ନମ୍ ଧାତୁ=ବକ୍ର ବା ନମ୍ର ହେବା+କର୍ତ୍ତୃ. ଉ)—
ମୁନିବିଶେଷ—4. The name of a sage.
ଦେ. ବଣ—ନାକୁଆ ( ଦେଖ )
Nākuā ( See ).

ନାକୁଆ —ଦେ. ବିଣ. ପୁଂ ( ସଂ. ନାସିକା )—୧ । ବଡ଼
Nākuā ନାକଯୁକ୍ତ, ଲମ୍ବନାସିକ; ଉନ୍ନତନାସିକ—
1. Long-nosed; large-nosed; having a prominent nose.
ନାକୁଯା, ନାକୂ ସାଧବଘରର ବୋହୂ । ନ କୁଅ କଣ୍ଢ଼ଇ ସାଙ୍ଗେ କେଉଁଠି ବାହାରିଥାଇ ।
**नक्कू, नक्कुआ** କାହାଣୀ ଗୀତ ।
୨ । ଶୁକନାସିକ—2 Having the nose hooked at the tip like the beak of a parrot.
୩ । ବକ୍ରାଗ୍ର ଗୋଲ ବସ୍ତୁ ( ଯଥା—ଆମ୍ବ )—
3. (a roundish thing; e. g. a mango) Having a hooked and pointed end.
୪ । ଯେଉଁ ପାତ୍ରରେ ବଙ୍କା ନାଳଟିଏ ଲାଗିଥାଏ—
4. (a pot) Having a nozzle.
ଦେ. ବି—ଫନ୍ଦରେ ପାଣି ଗଳିବା ପାଇଁ ନାକ ପରି ବାହାରିଥିବା ଫନ୍ଦବିଶିଷ୍ଟ ଜଳପାତ୍ର—A water jug with a nozzle.

ନାକୁଆସୀ—ଦେ. ବି—୧ । ନାକ ଭିତରୁ କେଶ ଉପାଡ଼ିବା ପାଇଁ
Nākuāsi ଭଣ୍ଡାରୀମାନେ ଯେଉଁ ସନ୍ନ ଆସି ପରି ଯନ୍ତ୍ର
नाकाल ବ୍ୟବହାର କରନ୍ତି—1. Nippers or
**मोचना** pincers used by barbers for plucking out the hairs from inside the nostrils.
୨ । ପଶୁମାନଙ୍କ ନାକରେ ଲଗାଇ ଟାଣିବା ଦଉଡ଼ି—
**नकेल** 2. A rope passed through the perforated nostrils of a beast of burden.

ନାକୁଲ—ସଂ. ବିଣ (ନକୁଳ+ସମ୍ବନ୍ଧାର୍ଥେ ଅ)—ନକୁଳସମ୍ବନ୍ଧୀୟ—
Nākula Relating to the mongoose
(ନାକୁଳୀ—ସ୍ତ୍ରୀ) ସଂ. ବି ( ନକୁଳ+ଅ )—୧ । ନକୁଳର ସନ୍ତାନ; ନେଉଳଛୁଆ—1. The young ones of the mongoose.
୨ । ରାସ୍ନା (ଦେଖ)—2. Rāsnā (See)
୩ । ସିମ୍ଳି ମୂଷଳୀ ( ଦେଖ )—
3. Simili mūshali (See).
୪ । ଚବ୍ୟ (ଦେଖ)—4. Chabya See)
୫ । ଯବତିକ୍ତା ( ଦେଖ )—
5 Jabatiktā ( See )

ନାକୁଳୀ—ସଂ. ବି. ସ୍ତ୍ରୀ—୧ । କୁକ୍କୁଟୀ କନ୍ଦ—
Nākuli 1 An esculent root; Ophiorhiza Mungos.
୧ର ଅନ୍ୟ ସଂ. ନାମ—ଗନ୍ଧୋଲୀ, [ ଦ୍ର—ଏହା ଅସାମ ଓ ବ୍ରହ୍ମଦେଶର
ସର୍ପାକ୍ଷୀ ସୁଗନ୍ଧ ବୃକ୍ଷବିଶେଷର ମୂଳ । ]
୨ର ସଂ. ନାମ—ସୁରସା, ନାଗ- ୨ । ଗନ୍ଧନାକୁଳୀ; ଏକପ୍ରକାର ରାସ୍ନା -
ସୁଗନ୍ଧା, ଗନ୍ଧନାକୁଳୀ, ସୁରସା, 2 A herb, Ophioxylon
ଗନ୍ଧନକୁଲୀ, ନକୁଲେଷ୍ଟା, Terpentinum; Acamphe
ଭୁଜଙ୍ଗାକ୍ଷୀ, ସର୍ପାକ୍ଷୀ, ବିଷନାଶିନୀ, Papillosa
ସର୍ପାଙ୍ଗୀ; ରକ୍ତପତ୍ରିକା, ଈଶ୍ୱରୀ [ ଦ୍ର—ଏହା ରସୁଣ ବର୍ଗର
गन्धरास्ना ସୁଗନ୍ଧ ବୃକ୍ଷ । ଏଥିର କନ୍ଦ ସବୁପ୍ରକାର

**नाकुली; पाड़रासन** ବିଷ, ବିଶେଷତଃ ସର୍ପବିଷନାଶକ । ନାକୁଳୀ ୨ ପ୍ରକାର, ୧. ନାକୁଳୀ, ୨ ଗନ୍ଧନାକୁଳୀ । ଦୁହିଁଙ୍କ ଗୁଣ ସମାନ । ଏହା ତିକ୍ତ କଟୁ କଷାୟ ରସ ଓ ଉଷ୍ଣବୀର୍ଯ୍ୟ । ଏହା ସର୍ପ, ମାଙ୍କଡ଼ସା, ବିଛା, ମୂଷା ଆଦିର ବିଷ, ଜ୍ୱର ଓ ବ୍ରଣ-ବିନାଶକ । ]
୩ । ପିପ୍ପଳୀ ଲତା—
3 Long pepper plant.
୪ । ଶ୍ୱେତକଣ୍ଟକାରୀ ଗଛ—
4. White Solanum ( plant )
୫ । ଚବ୍ୟ ( ଦେଖ )—5. Chabya ( See )
୬ । ରାସ୍ନା ( ଦେଖ )—6. Rāsnā ( See )
୭ । ଯବତିକ୍ତା (ଦେଖ)—7 Jabatiktā (See)

ନାକେଇବା—ଦେ. କ୍ରି. ('ନାକ' ଶବ୍ଦରୁ ଓଡ଼ିଆ ନାମଧାତୁର କ୍ରିୟା)—
Nākeibā ୧ । କୌଣସି ଆଶାରେ କୌଣସି ସ୍ଥାନରେ ପାର୍ଶ୍ୱ-ଦେଶରେ ଅପେକ୍ଷା କରିବା—1. To wait or loiter at a place sidewise with some hope of attaining one's object.
ବୃତ୍ତିଆଶା ପାଖେ ନାକେଇଛି
ଗଣ୍ଡିଆ ବଡଉ କାଟେଇଛି—ଶିଶୁମାନଙ୍କ ଖେଳ ଗୀତ ।
नाकाल करना ୨ । ନାକାଳ କରିବା—2 To harass a
**नकीयाना** person; to reduce a person to the last extremities.

ନାକେଇ—ଦେ ବିଣ. ସ୍ତ୍ରୀ—୧ । ଯେଉଁ ସ୍ତ୍ରୀର ନାକ ବଡ଼ ବା ଉନ୍ନତ—
Nākei 1. ( woman ) Having a big or prominent nose.
**नक्कुवी**
ନାକୋଇ } ଅନ୍ୟରୂପ ୨ । ଯେଉଁ ଆମ୍ବର ଅଗ ପାଖରେ ନାକ
ନାକୋଇ୍ } ଭଳି ଗୋଟିଏ ମୁନ ବାହାରି ଥାଏ—
( ନାକୁଆ—ପୁଂ ) 2. A mango having a nose-like protuberance at the end.

ନାକେଦମ—ଦେ. ବିଣ—ନାକଦମ୍ ( ଦେଖ )
Nākedam Nākadam ( See )
नाकेदम **नाकमेंदम** ( ନାକେଦମ୍—ଅନ୍ୟରୂପ)

ନାକ୍କା—ପ୍ରାଦେ. ( ଗଞ୍ଜାମ ) ବି. ( ତେଲୁଗୁ ) —ଠେକୁଆ; ଶଶା—
Nākkā Hare.

ନାକ୍ଷତ୍ର ( ଇତ୍ୟାଦି )—ସଂ. ବିଣ. ( ନକ୍ଷତ୍ର+ଅ )—
Nākshatra (etc) ନାକ୍ଷତ୍ରିକ ଇତ୍ୟାଦି ( ଦେଖ )
( ନାକ୍ଷତ୍ରୀ—ସ୍ତ୍ରୀ ) Nākshatrika etc ( See)

ନାକ୍ଷତ୍ରିକ—ସଂ ବିଣ. ( ନକ୍ଷତ୍ର+ଇକ )—୧ । ନକ୍ଷତ୍ରସମ୍ବନ୍ଧୀୟ—
Nākshatrika 1 Astral; stellar; pertaining to a
( ନାକ୍ଷତ୍ରିକା—ସ୍ତ୍ରୀ ) star; sidereal.
୨ । ( ଜ୍ୟୋତିଷ ) ନକ୍ଷତ୍ରର ଗତିଦ୍ୱାରା ପରିମିତ—
2. (astronomy ) Measured by the apparent motion of a star or stars.
ସଂ. ବି—ନାକ୍ଷତ୍ରିକ ମାସ ( ଦ୍ର. ଶବ୍ଦସାଗର ) ( ଦେଖ )
Nākshatrika māsa ( See )

**ନାକ୍ଷତ୍ରିକ ଦିନ**—ସ. ବି— ଗୋଟିଏ ନକ୍ଷତ୍ର ଦେଇ ଯିବାକୁ ଚନ୍ଦ୍ରଙ୍କୁ ଯେତିକି
Nākshatrika dina ସମୟ ଲାଗେ —A stellar day.
( ନାକ୍ଷତ୍ରିକ ଦିବସ, ନାକ୍ଷତ୍ରିକ ଅହୋରାତ୍ର—ଅନ୍ୟରୂପ )

**ନାକ୍ଷତ୍ରିକ ବର୍ଷ**—ସ. ବି— ବାରଟି ନାକ୍ଷତ୍ରିକ ମାସଯୁକ୍ତ ମାସ—
Nākshatrika barsha Stellar year.
(ନାକ୍ଷତ୍ରିକ ବତ୍ସର, ନାକ୍ଷତ୍ରିକ ସମ୍ବତ୍ସର—ଅନ୍ୟରୂପ)

**ନାକ୍ଷତ୍ରିକ ମାସ**—ସ. ବି ( ଜ୍ୟୋତିଷ )—
Nākshatrika māsa ୨୭ ନକ୍ଷତ୍ରଯୁକ୍ତ ମାସ, ପ୍ରାୟ ୨୭ଦିନ—
A stellar month of 27 days.
[ ଦ୍ର— ଅଶ୍ୱିନୀ ନକ୍ଷତ୍ରଠାରୁ ଆରମ୍ଭ କରି ରେବତୀ ନକ୍ଷତ୍ର ପର୍ଯ୍ୟନ୍ତ ଥରେ ବୁଲି ଆସିବାକୁ ଚନ୍ଦ୍ରଙ୍କୁ ଯେତେ ଦିନ ଲାଗେ ତାକୁ ନାକ୍ଷତ୍ରିକ ମାସ ବୋଲାଯାଏ । ]

**ନାକ୍ଷତ୍ରିକୀ ଦଶା**—ସ. ବି. ( ଫଳିତ ଜ୍ୟୋତିଷ )—
Nākshatrikī dasā ନାକ୍ଷତ୍ରିକ ଗଣନା ଅନୁସାରେ ମନୁଷ୍ୟର ଘଟିବା ଅବସ୍ଥା—( astrology ) A man's condition of life due to astral influence.

**ନାଖ୍‌ରଜ୍ (ଇତ୍ୟାଦି)**—ଦେ ବି. ( ଫା. ଲଖ୍‌ରଜ୍ )—
Nākh-raj (etc) ଲଖରଜ ଇତ୍ୟାଦି( ଦେଖ )
नाखेबाज लाखिराज Lākharāja etc ( See )
(ନାଖ୍‌ରାଜ, ନାଖିରଜ୍, ନାଖିରାଜ, ନାଖେରଜ୍, ନାଖେରାଜ--ଅନ୍ୟରୂପ)
[ ଦ୍ର—ଏ ଶବ୍ଦଯୁକ୍ତ ଅନ୍ୟାନ୍ୟ ଶବ୍ଦ କ୍ରମଲେ ଲଖରଜ ତଳେ ଦେଖ । ]

**ନାଖ**—ଗ୍ରା. ବି ( ସ. ଲକ୍ଷ )—
Nākha ୧ । ଲକ୍ଷ ( ସଂଖ୍ୟା ); ଲକ୍—
लाख 1. Lakh; a hundred thousand.
লাক্ষ ୨ । ( ସ. ଲାକ୍ଷା ) ଲାକ୍ଷାବଟି; ନାଲି ଜଉ—
2. Shell lac; sealing wax.
लक्ष्य, निशाना ୩ । ( ସ. ଲକ୍ଷ୍ୟ ) ବନ୍ଧୁକ ଓ ଶର ଆଦି ମାରିବାର ଶରବ୍ୟ; ଲକ୍ଷ୍ୟ—3. Aim of a gun or bow; target.
୪ । (ସ. ଲକ୍ଷ) ଚିହ୍ନ—4 A distinguishing mark.
୫ । ତୁଳନା—5. Comparision

**ନାଖକରିବା**—ଦେ. କ୍ରି. ( ସ. ଲକ୍ଷ୍ୟ+କୃ ଧାତୁ )—
Nākha kariba ବନ୍ଧୁକ ଆଦି ଦ୍ୱାରା ଲକ୍ଷ୍ୟ କରିବା—
लाखकरा To aim at a target with a bow
लक्ष बाँधना, लक्ष करना or gun.

**ନାଖପତି**—ଦେ. ବି. ସ. ( ଲକ୍ଷ+ପତି )—ଲକ୍ଷପତି, ଲକ୍ଷେଶ୍ୱର—
Nākhapati A millionaire.
लाखपति लाखपति

**ନାଖବତି**—ଦେ. ବି. ( ସ. ଲାକ୍ଷା+ବର୍ତ୍ତୀ)—
Nākhabati ଲାକ୍ଷା ବା ଜଉରେ ତିଆରି ହୋଇଥିବା ଲମ୍ବା ଖଣ୍ଡ—
লাখবাতী Stick of shell lac.
लाखबत्ती

**ନାଖ ଭେଦିବା**—ଦେ. କ୍ରି. ( ସ. ଲକ୍ଷ୍ୟ ଭେଦନ )—
Nākha bhedibā ବନ୍ଧୁକ ବା ଶର ଦ୍ୱାରା ଲକ୍ଷ୍ୟ ଭେଦ
लक्ष्य भेदना, କରିବା —To strike at a target.
निशाना मारना

**ନାଖ ମାରିବା** - ଦେ. କ୍ରି. ( ସ. ଲାକ୍ଷା + ମାରିବା )--
Nākha māribā ୧ । ଲାକ୍ଷ ବା ଜଉ ଦ୍ୱାରା ମୁଦିବା—
লাখমারা 1 To seal with shell lack.
लहाटना ୨ । ନାଖ ଭେଦିବା ( ଦେଖ )
2 Nākha bhedibā ( See )

**ନାଖମୁଦ**—ଦେ ବି ( ସ ଲାକ୍ଷା+ମୁଦ୍ରଣ ) – ଜଉ ମୁଦ—
Nākhamuda Sealing with shell lac or wax
लहीटा ଦେ. ବି-- ଜଉ ଦ୍ୱାରା ମୁଦା ଯାଇଥିବା (ପଦାର୍ଥ)—
Sealed with wax or lac

**ନାଖରା**—ଦେ ବିଣ ପୁଂ—(ଫା. ନାକାର)—୧ । ଦୁଷ୍ଟ; ପାଜି;
Nākharā ବଗୁଲିଆ—1. Wicked; wanton
নাকারা ୨ । ସ୍ତ୍ରୀ ପ୍ରତି କାମ ଚେଷ୍ଟାସୂଚକ ଭାବଭଙ୍ଗି ପ୍ରକାଶ-
नटखट, नकारा, नखरेबाज କାରୀ ପୁରୁଷ—Coquetish; flirting; expressing one's sentiment of
(ନାଖରୀ—ସ୍ତ୍ରୀ) amorous lust towards a woman.
নাখরা নখরা ବୈଦେ ବି. (ଫା. ନଖରା) ନଖରା; କୌଣସି ସ୍ତ୍ରୀ ବା
नखरा ପୁରୁଷକୁ ଦେଖି ଯଥାକ୍ରମେ କୌଣସି ପୁରୁଷର ବା ସ୍ତ୍ରୀର ପ୍ରଣୟ ବା କାମାତୁରଭାବ ବହିଃପ୍ରକାଶିତ ଭାବଭଙ୍ଗି—
Coquetry; flirtation;expression of one's amorous sentiments towards a woman or man.
[ଦ୍ର— ଏହା ବିଶେଷତଃ ସ୍ତ୍ରୀର ପୁରୁଷ ପ୍ରତି ପ୍ରଦର୍ଶିତ ଭାବଭଙ୍ଗି ସମ୍ବନ୍ଧରେ ପ୍ରଯୁକ୍ତ ହୁଏ ।]
ଦେ. ବି. --୧ । (ସ. ଲାକ୍ଷାକର) — ଲାକ୍ଷା ବ୍ୟବସାୟୀ ବ୍ୟକ୍ତି—
1. A dealer in shell lac.

**ନାଖି**—ଦେ. ବିଣ.—(ସ. ନାୟକ; ଭୁଲ. ଫା. ଲାଏକ୍=ଯୋଗ୍ୟ; ଇଂ.
Nākhi ଲାଇକ୍=ପରି, ସମାନ; ସ. ଲକ୍ଷ.=ତୁଳନା)—
লাএক ୧ । ଉପଯୁକ୍ତ; ଯୋଗ୍ୟ—
लायक 1. Befitting; becoming.
(ଯଥା— ଏ ଦାନ ଆପଣଙ୍କ ପରି ବଡ଼ ଲୋକଙ୍କ ନାଖି ହେଲା ନାହିଁ ।)
୨ । ଯଥେଷ୍ଟ—2. Sufficient.

**ନାଖିବା**—ଗ୍ରା କ୍ରି.—(ସ. ଲଗ୍, ଲଗ୍ନ ଧାତୁ)—ଲାଗି ରହିବା;
Nākhibā ଅଟକିବା—To stick to; to adhere to.
লাগা लगना, चिपकना

**ନାଖୁଁ(ଖୁ) ନାଖ**—ଦେ. ବି. ଓ ବିଣ. (ସ. ଲକ୍ଷ ଲକ୍ଷ)—ବହୁ ଲକ୍ଷ—
Nākhuñ (khu) nākh 1. Many lakhs.
লাখ লাখ ୨ । ଅସଂଖ୍ୟ; ଅଗଣିତ—
लाखो लाख 2. Countless.
[ନାଖୋ(ଖୌ)ନାଖ୍. ନାଖଡ଼ିନାଖ୍—ଅନ୍ୟରୂପ]

ନାଖୁ(ଖୋ)ଦା — ଦ୍ଦେ ବ. — (ଫା. ନାଖୁଦା; ନାଖୋଦା—ଜାହାଜର
Nākhu (kho)dā ଅଧ୍ୟକ୍ଷ) — ୧ । ବୋଇତଅଳ; ଜାହାଜ ବା
ନାଖୋଦା, ନାଖୁଦା ବଡ଼ ବୋଇତର ଅଧ୍ୟକ୍ଷ ବା ସ୍ୱାମୀ — 1 The
ନାଖୁଦା owner or captain of a trading ship or boat; supercargo.

୨ । ବଦେଶାଗତ (ବିଶେଷତଃ ବମ୍ବେଇ ଅଞ୍ଚଳର) ଯେଉଁ ମୁସଲମାନ୍ ମହାଜନମାନେ ଏମ ଦେଶକୁ ଆସି ବହୁ ପରିମାଣରେ ଶସ୍ୟାଦ କିଣି ବିଦେଶକୁ ଜାହାଜ ଆଦିରେ ରପ୍ତାନ କରନ୍ତି — 2 A generic name for big Mahomedan export-merchants (hailing from Bombay and dealing with vast quantities of grain for export).

ନାଖୁସ୍ — ବୈଦେ. ବଣ — (ଫା. ନାଖୁସ୍,) ଅ. ଲାଖୁସ =ଅସନ୍ତୁଷ୍ଟ) — ଅସନ୍ତୁଷ୍ଟ; ବିରକ୍ତ — Displeased.
Nākhus
ନାଖୁସ ନାଖୁସ ବୈଦେ. ବ (ଫା. ନାଖୁସୀ; ଅ. ଲାଖୁସୀ)
ନାଖୁସୀ ନାଖୁସୀ ଅସନ୍ତୋଷ, ବିରକ୍ତି — Displeasure
(ନାଖୁସି; ନାଖୋସ -- ଅନ୍ୟରୂପ)

ନାଖେ — ଗ୍ରା. ବ. ଓ ବିଣ (ସ. ଲକ୍ଷ,) (ସଂଖ୍ୟାବାଚକ) — ଏକ ଲକ୍ଷ —
Nākhe One lakh; one hundred thousand.
एकलाख एकलाख

ନାଗ — ସ ବ ପୁଂ (ନଗ=ପର୍ବତ, ବୃକ୍ଷ + ସ୍ୱାର୍ଥେ. ଅ, ଯେଉଁମାନେ
Nāga ପର୍ବତମୟ ସ୍ଥାନରେ ବା ବୃକ୍ଷ କୋଟରରେ ବାସ କରନ୍ତି) —
୧ । ସର୍ପ — 1 Serpent.

ନାଗିନୀ } ସ୍ତ୍ରୀ —
ନାଗୀ }
୨ । କଶ୍ୟପଙ୍କ ଔରସରେ କଦ୍ରୁଙ୍କ ଗର୍ଭରୁ ଉତ୍ପନ୍ନ ପୌରାଣିକ ଜୀବଗଣ — 2. The mythological animals descended from Kaśyapa and his wife Kadru.

[ ଦ୍ର — ପୁରାଣ ମତରେ ନାଗମାନଙ୍କ ପ୍ରକାର ଯଥା —
ଅନନ୍ତୋ ବାସୁକିଃ ପଦ୍ମୋ ମହାପଦ୍ମୋଽଥ ତକ୍ଷକଃ ।
କୁଳୀରଃ କର୍କଟଃ ଶଙ୍ଖୋଽପ୍ୟଷ୍ଟୌ ନାଗାଃ ପ୍ରକୀର୍ତ୍ତିତାଃ ।
ପୁରାଣାନ୍ତରରେ ୧୩ ପ୍ରକାର ଯଥା —
ଶେଷଃ ପଦ୍ମୋ ମହାପଦ୍ମଃ କୁଳିକଃ ଶଙ୍ଖପାଳକଃ
ବାସୁକିସ୍ତକ୍ଷକଶ୍ଚୈବ କାଳୀୟୋ ମଣିଭଦ୍ରକଃ,
ଐରାବତୋ ଧୃତରାଷ୍ଟ୍ରଃ କର୍କୋଟକ ଧନଞ୍ଜୟୌ ॥
ଗରୁଡ଼ ପୁରାଣରେ ୧୨ ପ୍ରକାର ଯଥା —
ଅନନ୍ତଂ ବାସୁକିଂ ଶଙ୍ଖଂ ପଦ୍ମଂ କମ୍ବଳ ମେବ ଚ ।
ତଥା କର୍କୋଟକଂ ନାଗଂ ଧୃତରାଷ୍ଟ୍ରଞ୍ଚ ଶଙ୍ଖକଂ ।
କାଳୀୟଂ ତକ୍ଷକଞ୍ଚାପି ପିଙ୍ଗଳଂ ମଣିଭଦ୍ରକଂ ॥

କୃଷ୍ଣସିଂହ ମହାଭାରତ ସଭାପର୍ବରେ ଅନେକଗୁଡ଼ିଏ ନାଗଙ୍କ ନାମ ଉଲ୍ଲେଖ ଅଛି । ଯଥା — "ପଦ୍ମ ଐରାବତ ଯେ ବାସୁକି ତକ୍ଷକ, ଚନ୍ଦ୍ର କମ୍ବଳ ପ୍ରହ୍ଲାଦ କଣ୍ଡୁକ; କୃଷ୍ଣ ଅଶ୍ୱତର ଲୋହିତ ମଣିମନ୍ତ,ଧୃତରାଷ୍ଟ୍ର ଧନଞ୍ଜୟ ଯେ ପାଣିମନ୍ତ, ମୂଷିକାଦ କୁଣ୍ଡଧାର ଯେ କର୍କୋଟକ, ମହାବଳ ଜନମେଜୟ ବଳାହକ, ଏ ନାଗଙ୍କ ସଙ୍ଗତେ ଅନ୍ୟ ନାଗମାନେ, ଥାଆନ୍ତି ବରୁଣସଭାରେ ସ୍ତରମନେ ।"

ସାପଙ୍କ ସମ୍ବନ୍ଧରେ ଗୋଟିଏ ଢଗ ଅଛି । "ଆଠ ନାଗ, ଷୋଳ ଚିତି, ବାର ବୋଡ଼ା ତେର ଜାତି ।" ଅର୍ଥାତ୍ ସାପ ତେର ଜାତିର; ତହିଁ ମଧ୍ୟରୁ ନାଗ ୮ ଜାତି, ଚିତି ୧୬ ଜାତି ଓ ବୋଡ଼ା ୧୨ ଜାତି । କେଳାମାନେ ନିମ୍ନଲିଖିତ ମତେ ଆଠ ଜାତି ନାଗଙ୍କର ବର୍ଣ୍ଣନା କରନ୍ତି । ଯଥା — ୧ କୁଳକ, ୨ ପଦ୍ମ, ୩ ମହାପଦ୍ମ, ୪ କଟକଟିଆ ୫ ବରୁଣ, ୬ ତକ୍ଷକ ୭ ବାସୁକି ଓ ୮ ଅନନ୍ତ । ନାଗମାନଙ୍କୁ ସାଧାରଣତଃ 'ଗୋଖର' ବୋଲାଯାଏ । ଏମାନେ ନାନା ପ୍ରକାର । ଯଥା — ୧ ସେତ ବା ଭୁଆ ବା ଖଡ଼ିଆ ନାଗ । ( ଏମାନେ ପୁଣି ୨ ପ୍ରକାର ଯଥା -- ବଳରାମଗୋଷ୍ଠୀ, ଏମାନଙ୍କ ଫଣା ଉପରର କଠଉ ଚିହ୍ନ ଫିକା; ଓ ଜଗନ୍ନାଥଗୋଷ୍ଠୀ, ଏମାନଙ୍କ ଫଣା ଉପରର କଠଉଚିହ୍ନ ଗାଢ଼ କୃଷ୍ଣବର୍ଣ୍ଣ । ୨ ପଦ୍ମ ନାଗ — ଏମାନେ ପଦ୍ମ ପରି ଈଷତ୍ ରକ୍ତବର୍ଣ୍ଣ, ଏମାନଙ୍କ ଫଣା ଉପରେ ଗୋଟିଏ କୃଷ୍ଣବର୍ଣ୍ଣ ପରିଧି ମଧ୍ୟରେ ଦର୍ପଣ ଅଣ୍ଡାକୃତି କୃଷ୍ଣ ଚିହ୍ନ ଥାଏ । ୩ । କଟକଟିଆ ( ସ. କର୍କୋଟକ ) ଏମାନେ ବାଉଁଶରେ ବା ଗଛର ଡାଳରେ ମୋଡ଼ି ହୋଇ ରହିଲେ କଟକଟ ଶବ୍ଦ ହୁଏ । ୪ । ଗୁଣ୍ଡୁଚ ନାଗ ଏମାନଙ୍କର ଫଣା ନାହିଁ । ମୁହଁ ଗୁଣ୍ଡୁଚ ମୂଷାର ମୁହଁ ପରି ଓ ଦେହରେ ଡୋରି ଡୋରି ଧଳା ରେଖା ଆଡ଼ବାଗରେ ଥାଏ । ୫ । ଗହମା ନାଗ — ଏମାନଙ୍କ ବର୍ଣ୍ଣ ଗହମ ପରି ଫିକାସିଆ, ୬ । କାନ୍ଥୁଆ ନାଗ — ଏମାନେ ଘରର କାନ୍ଥରେ ରହନ୍ତି । ୭ । ଉଦା ନାଗ — ଏମାନେ ଉଦ ବା ଉଚ୍ଚ ଭୂମିରେ ଓ ବୁଦାରେ ରହନ୍ତି । ୮ । ତେନ୍ତୁଳିଆ ନାଗ — ଏମାନେ ତେନ୍ତୁଳି ମଞ୍ଜି ପରି ଗାଢ଼ ରକ୍ତ ବର୍ଣ୍ଣ । ୯ । ଖଇର ନାଗ — (ସ. କାଳିୟ ନାଗ) ଏମାନେ ଖଇର ପରି ରକ୍ତକୃଷ୍ଣବର୍ଣ୍ଣ । କେଳାମାନେ ନାଗ ସାପକୁ ଧରିବା ପରେ ତାହାର କପାଳର ଚମଡ଼ାକୁ କ୍ଷୁରରେ ଚିରିଦେଇ ଛାଡ଼ି ଦେଲେ ତହିଁରୁ ଦର୍ପଣ ଯୋଗିଏ ପରି ଗାଢ଼ ହଳଦିଆ ବର୍ଣ୍ଣର ଓ ସ୍ୱଚ୍ଛ 'ମଣି' ଖସି ପଡ଼େ । କେଳାମାନେ 'ପଦ୍ମତୋଳା' ବୋଲିବା ବା 'ନାଗେଶ୍ୱରୀ' ବଜାଇବା ବେଳେ ନାଗ ବା ଗୋଖର ଫଣା ଟେକି ଏକ ଧ୍ୟାନରେ କେଳା ମୁହଁକୁ ଚାହିଁ ରହେ । ଶଙ୍ଖଚୂଡ଼ ମଧ୍ୟ ନାଗ ଜାତୀୟ । ପୁରାଣୋକ୍ତ ନାଗମାନଙ୍କର ଯେଉଁ ମୂର୍ତ୍ତି ମନ୍ଦିରମାନଙ୍କର ଗାତ୍ରରେ ଅଛି ତାହାର ଅଣ୍ଟାଠାରୁ ଉପରକୁ ମନୁଷ୍ୟର ଅଙ୍ଗ ଓ ତଳକୁ ସର୍ପର ଅଙ୍ଗ ଅଟେ ।

ବହ୍ନିପୁରାଣରେ ଲେଖାଅଛି ଯେ ସୃଷ୍ଟି ଆରମ୍ଭରେ କଶ୍ୟପ ଋଷି ଉତ୍ପନ୍ନ ହେଲେ । ତାଙ୍କର ଦୁଇ ପତ୍ନୀ ମଧ୍ୟରୁ କଦ୍ରୁଙ୍କଠାରୁ ଅନନ୍ତ, ବାସୁକି, କମ୍ବଳ, କର୍କୋଟକ, ପଦ୍ମ, ମହାପଦ୍ମ, ଶଙ୍ଖ, କୁଳକ ଓ ଅପରାଜିତ ଜାତ ହେଲେ । ଏମାନଙ୍କ ନାମ ନାଗ ହେଲା । ଏମାନଙ୍କ ପୁତ୍ର ପୌତ୍ରମାନେ କ୍ରୂର ଓ ବିଷଧର ହେଲେ । ଏଥିପାଇଁ ସଂସାରରେ ପ୍ରଜାକ୍ଷୟ ହେବାରୁ ବ୍ରହ୍ମା ସେମାନଙ୍କ ବାସ-ସ୍ଥାନ ପାଇଁ ପାତାଳ, ବିତଳ ଓ ସୁତଳ ଏହି ତିନି ସ୍ଥାନ ନିର୍ଦ୍ଦେଶ କଲେ । ଥରେ କଦ୍ରୁ ଓ ବିନତାଙ୍କ ମଧ୍ୟରେ ଜିଦ୍ ପଡ଼ିଲା ଯେ ଉଚ୍ଚୈଃଶ୍ରବା ଅଶ୍ୱର ଲାଙ୍ଗୁଡ଼ କଳା କି ଧଳା । ପ୍ରକୃତରେ ଏହା ଧଳା । ବିନତା କହିଲେ ଏହା ଧଳା, କଦ୍ରୁ କହିଲେ ଏହା କଳା । କଦ୍ରୁ ତାଙ୍କ ପୁଅମାନଙ୍କୁ କହିଲେ ତୁମ୍ଭେମାନେ ଉଚ୍ଚୈଃଶ୍ରବାର ଲାଙ୍ଗୁଡ଼ରେ ଗୁଡ଼େଇ ହୋଇଯିବ ଯେ, ଲାଙ୍ଗୁଡ଼ କଳା ଦେଖାଯିବ । ଏଥିରେ ନାଗମାନେ ଘୋଡ଼ାର ଲାଙ୍ଗୁଡ଼ରେ ଗୁଡ଼େଇ ହୋଇ-

ଯିବାରୁ ଲାଙ୍ଗୁଡ କଳା ଦେଖାଗଲା । ଯେଉଁ ନାଗମାନେ ଲାଙ୍ଗୁଡରେ ଗୁଡ଼େଇ ହେବାପାଇଁ ନାହିଁ କଲେ ସେମାନଙ୍କୁ ନଷ୍ଟ ହେବାପାଇଁ କଦ୍ରୁ ଶାପ ଦେଲେ ଓ ସେମାନେ ଜନମେଜୟଙ୍କ ସର୍ପ ଯଜ୍ଞରେ ନଷ୍ଟ ହେଲେ । ପୁରାଣମାନଙ୍କରେ ଅନେକ ନାଗଙ୍କ ନାମ ଅଛି, କିନ୍ତୁ ସେମାନଙ୍କ ମଧ୍ୟରେ ଆଠଟି ମୁଖ୍ୟ;—ଅନନ୍ତ, ବାସୁକୀ, ପଦ୍ମ, ମହାପଦ୍ମ, ତକ୍ଷକ, କୁଲୀର, କର୍କୋଟକ ଓ ଶଙ୍ଖ । ଏମାନଙ୍କୁ ଅଷ୍ଟ ନାଗ ବୋଲିଯାଏ ଓ ଏମାନଙ୍କ କୁଳକୁ ଅଷ୍ଟକୁଳ ବୋଲିଯାଏ —
ହି. ଶବ୍ଦସାଗର । ]

୩ । ହସ୍ତୀ—3 Elephant.

୪ । ତାମ୍ବୁଲ, ପାନ—4. Betel.

୫ । ମେଘ—5. Cloud.

୬ । ମେରୁର ଉତ୍ତରସ୍ଥ ପର୍ବତବିଶେଷ—
6 Name of a fabulous mountain.

୭ । ନାଗେଶ୍ୱର ବୃକ୍ଷ —
7. Name of a flower tree,Messua Ferra.

୮ । ପୁନ୍ନାଗ ବୃକ୍ଷ; ପୁଲଙ୍ଗ ଗଛ—8 Mast wood; Alexandrian Laurel, Inophylum.

୯ । ସିନ୍ଦୂର—9. Vermillion; red lead

୧୦ । ଦେହସ୍ଥ ବାୟୁବିଶେଷ, ଯେଉଁ ବାୟୁ ଦେହରୁ ହାକୁଟିଦ୍ୱାରା ବାହାରେ—10. Name of a vital air in the human body

୧୧ । ମୁଥା—11. Esculent root of the creeping grass.

୧୨ । ( ଜ୍ୟୋତିଷ ) କରଣବିଶେଷ—
12. Name of an astronomical conjunction.
[ ଦ୍ର—ଏହା କରଣମାନଙ୍କ ମଧ୍ୟରେ ଅନ୍ୟ ଅଟେ ଓ ଏହାର ଅନ୍ୟ ନାମ ଟ୍ରବ । ]

୧୩ । ଅଶ୍ଳେଷା ନକ୍ଷତ୍ର—
13. The 9th lunar mansion.

୧୪ । ଦେଶବିଶେଷ ଓ ତଦ୍ଦେଶବାସୀ ଜାତି—
14. Name of a country of ancient India and its inhabitants

[ ଦ୍ର—ଐତିହାସିକମାନଙ୍କ ମତରେ ନାଗ ଶକ ଜାତିର ଏକ ଶାଖା ଥିଲେ । ଏମାନେ ପ୍ରଥମେ ହିମାଳୟର ଉତ୍ତରରେ ରହୁଥିଲେ । ତିବ୍ବତଦେଶୀୟ ଲୋକେ ଆପଣାକୁ ନାଗବଂଶୀ ଓ ଆପଣା ଭାଷାକୁ ନାଗଭାଷା ବୋଲି କହନ୍ତି । ଜନମେଜୟଙ୍କ ଉପାଖ୍ୟାନରୁ ପୁରୁବଂଶୀୟ ଓ ନାଗବଂଶୀୟମାନଙ୍କ ମଧ୍ୟରେ ବୈର ଥିବାର ଆଭାସ ମିଳେ । ଏ ବୈର ବହୁକାଳ ପର୍ଯ୍ୟନ୍ତ ଲାଗି ରହିଥିଲା । ଯେତେବେଳେ ସିକନ୍ଦର (ଅଲେକ୍‌ଜାଣ୍ଡର) ଭାରତକୁ ଆସିଥିଲେ ସେତେବେଳେ ତାଙ୍କ ସଙ୍ଗେ ତକ୍ଷଶିଳାର ନାଗବଂଶୀ ରାଜାଙ୍କ ସଙ୍ଗେ ଭେଟ ହୋଇଥିଲା । ଉକ୍ତ ରାଜାଙ୍କର ପଞ୍ଜାବର ପୌରବ ରାଜାଙ୍କର ବିଦ୍ରୋହ ଚାଲୁଥିଲା । ତକ୍ଷଶିଳାର ରାଜପୁରରେ ବଡ଼ ବଡ଼ ସାପ ପାଳିତ ହୋଇ ପୂଜା ପାଉଥିଲେ । ଏ ବିଷୟ ସିକନ୍ଦରଙ୍କ ସଙ୍ଗେ ଆସିଥିବା ଲୋକମାନେ ବର୍ଣ୍ଣନା କରି ଯାଇଅଛନ୍ତି – ହି. ଶବ୍ଦସାଗର । ]

୧୫ । ସୀସକ—15 Lead ( metal )
[ ଦ୍ର—ଭାବପ୍ରକାଶରେ ଲେଖାଅଛି କି ବାସୁକି ଏକ ନାଗକନ୍ୟାଙ୍କୁ ଦେଖି ମୋହିତ ହେଲେ ଓ ତାଙ୍କଠାରୁ ସ୍ଖଳିତ ରେତଃରୁ ସୀସକ ଧାତୁର ଉତ୍ପତ୍ତି ହେଲା —ହି. ଶବ୍ଦସାଗର । ]

୧୬ । ରଙ୍ଗ ଧାତୁ; ଟିଣ—16. Tin metal ( Apte ).

୧୭ । ନାଗପୁରର ଦକ୍ଷିଣରେ ବହି ଯାଉଥିବା ନଦବିଶେଷ ( କ୍ଷୀରେନ୍ଦ୍ର )—17 Name of a shallow river flowing by the south of Nagpur,

୧୮ । ( ଅନ୍ୟ ଶବ୍ଦ ସଙ୍ଗେ ସମାସରେ ଶେଷରେ ବସିଲେ ) ଶ୍ରେଷ୍ଠ—18. Chief.

୧୯ । ଆଠ ସଂଖ୍ୟା ( ହି ଶବ୍ଦସାଗର )—
19. The number eight

୨୦ । ଖଳ ଲୋକ ( ହି. ଶବ୍ଦସାଗର )—
20 A wicked person

୨୧ । ଏକପ୍ରକାର ଅଭ୍ର ( ଦ୍ରବ୍ୟଗୁଣ )—
21. A kind of mica.
[ ଦ୍ର—ଏହାକୁ ଅଗ୍ନିରେ ପକାଇଲେ ଏଥିରୁ ନାଗସାପର ଫୁଲାର ପରି ଶବ୍ଦ ହୁଏ ଓ ଏହାକୁ ଖାଇଲେ ଭଗନ୍ଦର ରୋଗ ହୁଏ—ଦ୍ରବ୍ୟଗୁଣ । ]

୨୨ । ପୁନ୍ନାଗ ବୃକ୍ଷ ( କ୍ଷୀରେନ୍ଦ୍ର )—
22. The mast wood tree.

୨୩ । ହାଙ୍ଗର—23 A shark ( Apte ).

୨୪ । ଲୁଗା ଆଦି ରଖିବା ପାଇଁ କାନ୍ଥରେ ମରାଯିବା କାଠି, ନାଗଦନ୍ତ—24 A peg projecting from the wall to hang any thing upon (Apte)

କେଅটিଆ সাপ; গোখুরা ଦେ. ବି—୧ । ଗୋଖରସାପ, ବିଷାକ୍ତ
गेहुअन ଫଣାଯୁକ୍ତ ହଳଦିଆ ସାପ ( ଏହାର ଫଣାରେ ଯୋଡ଼ା କଠଉ ପରି କଳା ଚିହ୍ନ ଥାଏ—
1. Cobra-de-capillo, Naja Aripudian.

୨ । କାଥି ଲଗାଇଲେ ଯେଉଁ ବାଣ ବା ଆତସବାଜିରୁ ନାଗ ପରି ଆଲୋକମୟ ଅଗ୍ନିସ୍ଫୁଲିଙ୍ଗମାନ ବାହାରେ—
2. A fire-work emitting snake-like shoots of sparks.

୩ । ବଙ୍ଗାଳି କାୟସ୍ଥମାନଙ୍କର ଉପାଧିବିଶେଷ —
3 A family-title of Bengalee Kāvasthas.

୪ । ହାଉଇ ଆଦି ଆକାଶକୁ ଉଠିବା ପରେ ତହିଁରୁ ବାହାରିବା ସର୍ପ ଆକାରର ଅଗ୍ନିରେଖା —
4. Long and curved sparks of fire issuing from rockets and other fire-works in the sky.

୫ । ନାଗଲୋକ; ପାତାଳ—5 The nether world.

ବନ୍ଧବାକୁ ନାଗେ ନ ହେ ମଥେକେ ଲାଗିବ ଲାଗେ
ଭେଳେ ବସାଇଁ ଶ୍ଳୋକେ ଚଳୁ ସେ ଥିଏ—ଉଞ୍ଜ. ବୈଦେହୀଶବିଳାସ ।

**ନାଗଅଇର**— ଦେ. ବି.—ଏକ ପ୍ରକାର କଣ୍ଟକୀ ବନ୍ୟକ୍ଷୁପ [କ୍ଷୀରୁଆଗଛ, ଏହାର ପତ୍ର ଓ ଫୁଲ ଖୁବ୍ ଗନ୍ଧବିଶିଷ୍ଟ]—A kind of wild thorny bush with strong scented flowers and leaves; wild sage, Lantna Indica; Lippia Geminata (Haines).
Nāga-airi

**ନାଗ କନ୍ୟକା**—ସଂ. ବି —ପୁରାଣୋକ୍ତ ପାତାଳ ପୁରବାସୀ ନାଗଜାତିର କନ୍ୟା—A virgin or girl of the mythological Nāga tribe inhabiting the nether world.
Nāga kanyakā
(ନାଗ କନ୍ୟା—ଅନ୍ୟରୂପ)
[ଦ୍ର—ମନ୍ଦିରମାନଙ୍କରେ ଅଙ୍କିତ ବା ଖୋଦିତ ଚିତ୍ରରେ ଏମାନଙ୍କର କଟିଠାରୁ ଉପର ଅଙ୍ଗମାନ ମନୁଷ୍ୟ ପରି ଓ ନିମ୍ନ ଅଙ୍ଗ ସର୍ପ ପରି ଗୋଟିଏ ଲାଞ୍ଜଯୁକ୍ତ ହୋଇ ଖୋଦିତ ବା ଚିତ୍ରିତ ହେବାର ଦେଖାଯାଏ ।]

**ନାଗକର୍ଣ୍ଣ**—ସଂ. ବି. (ନାଗ+କର୍ଣ୍ଣ)—୧ । (୬ଷ୍ଠୀ ତତ୍) ହାତୀର କାନ—1. The ear of an elephant
Nāga karnna
୨ । (ନାଗ ଅର୍ଥାତ୍ ହାତୀର କାନ ପରି ପତ୍ର ଯାହାର; ବହୁବ୍ରୀହି)—ନାଲି ଗବ ଗଛ; ରକ୍ତ ଏରଣ୍ଡ ଗଛ—2 The red castor oil seed plant.

**ନାଗ କିଞ୍ଜଳ୍କ**—ସଂ. ବି.—ନାଗକେଶର (ଦେଖ) Nāga kesara (See)
Nāga kinjalka

**ନାଗ କୁମାରିକା**—ସଂ. ବି. ସ୍ତ୍ରୀ—୧ । ଗୁଳୁଚି ଲତା—1 Tinaspora Cordifolia (creeper).
Nāga kumārikā
୨ । ମଞ୍ଜିଷ୍ଠା—2. The Indian madder plant; Rubia Manjishtha.

**ନାଗ କୂପ**—ସଂ.ବି. (ନାଗ+କୂପ)—୧ । ଉଷ୍ଣପ୍ରସ୍ରବଣ—1. A well or fountain emitting hot water; hotspring.
Nāga kūpa
୨ । ଜ୍ୱାଳାମୁଖୀ—2. A geyser; a pit emitting burning or inflammable gas
୩ । ଆଗ୍ନେୟଗିରି—3. Vulcano.

**ନାଗ କେଶର**—ସଂ. ବି. (ନାଗ+କେଶର; ବହୁବ୍ରୀହି)—ନାଗେଶ୍ୱର ଗଛ ଓ ଫୁଲ—Mesua-Ferra (tree and flower)
Nāga kesara
ସଂ. ନାମ—ନାଗ ପୁଷ୍ପ, କେଶର, ନାଗକିଞ୍ଜଲ୍କ, ରୁକ୍ମେଷୁ ଓ କାଞ୍ଚନ ବ ରକ ଶବ୍ଦମାନ, ନାଗଚମ୍ପକ
ଆ. ନାଗମୁସ୍ତ୍
ତେ. ନାଗକେଶରଲୁ
ତା. ନାଗଲ, ସୁରୁପୁନା
ନାଗେଶର, ନାଗେଶ୍ୱର
**नागकेशर, नागचंपा**
[ଦ୍ର—ଏହା ନାଭିବର୍ଷ ଉଦ୍ୟାନଜାତ ପୁଷ୍ପତରୁ; ଏହାର ଫୁଲ ଧଳା, ଚଉଦଳ ଓ ମୃଦୁଗନ୍ଧ । ଏହାର କେଶର ଗୁଚ୍ଛକ ହଳଦିଆ । କେଶରକୁ ଶୁଖାଇ ଭାଙ୍ଗ ସଙ୍ଗେ ବାଟି ଖାଆନ୍ତି । ଏହା ଜ୍ୱର, କୃମି, କଫ, ପିତ୍ତ, କୁଷ୍ଠ, କଣ୍ଡୁ, ତୃଷା, ହୃଲ୍ଲାସ, ବିସର୍ପ, ସ୍ୱେଦ, ବମନ ଓ ଦୌର୍ଗନ୍ଧ୍ୟନାଶକ । ଏହାର କାଠ ଖୁବ୍ ଶକ୍ତ; ଏହାର ଫଳରୁ ୨।୩ ଟି ମଞ୍ଜି ବାହାରେ । ଏ ମଞ୍ଜିରୁ ବାହାରିବା ତେଲ ଘାପରେ ଲଗା ଯାଏ ଓ ବାତ ରୋଗରେ ଉପକାର କରେ ।]

**ନାଗ କେଶୁର**—ଗ୍ରା. ବି. (ସଂ. ନାଗକେଶର)—ନାଗକେଶର (ଦେଖ) Nāgakesara (See)
Nāga kesura
(ନାଗକେଶ୍ୱର, ନାଗେଶ୍ୱର—ଅନ୍ୟରୂପ)

**ନାଗଗର୍ଭ**—ସଂ ବି (ନାଗ=ସୀସା+ଗର୍ଭ=ଉତ୍ପତ୍ତି, ସୀସାରୁ ଯାହାର ଉତ୍ପତ୍ତି; ବହୁବ୍ରୀହି) ମାଟିଆ ସିନ୍ଦୂର—Vermilion; red lead.
Nāga garbha

**ନାଗ ଚତୁର୍ଥୀ**—ସଂ. ବି.—କାର୍ତ୍ତିକ ଶୁକ୍ଳ ଚତୁର୍ଥୀ; ନାଗଲ ଚଉଠି—The 4th day of the bright fortnight of the month of Kārttika.
Nāga chaturthi
[ଦ—ଏଥିରେ ନାଗ ନାଗୁଣୀଙ୍କ ମୂର୍ତ୍ତିର ପୂଜା କରା ଯାଏ ।]

**ନାଗ ଚମ୍ପକ** – ସଂ. ବି.—ନାଗ କେଶର (ଦେଖ) Nāga kesara (See)
Naga champaka

**ନାଗ ଚୁଚୁନ୍ଦ୍ରା ଧରିବା ନ୍ୟାୟ**—ଦେ ବାକ୍ୟ—ବିଷମ ବା ଅସାଧ ସମସ୍ୟାରେ ପଡ଼ିବା ଅବସ୍ଥା—An analogy applied when a person is between the horns of a dilemma.
Nāga chuchundrā dharibā nyāya
(ନାଗ ସାପ ଚୁଚୁନ୍ଦ୍ରା ଧରିବା ନ୍ୟାୟ—ଅନ୍ୟରୂପ) [ଦ୍ର—ଲୋକେ **भईगति साँप छुछुंदर केरी** ବିଶ୍ୱାସ କରନ୍ତି ଯେ ନାଗ ସାପ ଚୁଚୁନ୍ଦ୍ରାକୁ ଧଇଲେ ଚୁଚୁନ୍ଦ୍ରାର ଦେହର ଦୁର୍ଗନ୍ଧ ହେତୁ ତାକୁ ଖାଇ ପାରେ ନାହିଁ; ଅଥଚ ଛାଡ଼ି ପାରେ ନାହିଁ; କାରଣ ପ୍ରବାଦ ଅଛି ଯେ ତାକୁ ଛାଡ଼ି ଦେଲେ ସାପର ଆଖି ଫୁଟି ଯିବ ।]

**ନାଗଚୂଡ଼**—ସଂ. ବି.—(ନାଗ+ଚୂଡ଼ା, ବହୁବ୍ରୀହି; ନାଗ ଯାହାର ଚୂଡ଼ାରେ ଥାଏ)—ଶିବ; ମହାଦେବ—An epithet of Siba.
Nāga chūrda
(ନାଗଧର—ଅନ୍ୟ ନାମ)

**ନାଗଛତ୍ରା**—ସଂ. ବି.—୧ । ବିଛୁଆତି ଗଛ—1. The stinging nettle plant; Fragia Involucrata.
Nāgachhatrā
(ନାଗଦଣ୍ଡିକା—ଅନ୍ୟରୂପ)
୨ । ସୂର୍ଯ୍ୟମୁଖୀ ଫୁଲ—2. The sun flower; Helianthus.
୩ । ନାଗଦନ୍ତୀ (ଦେଖ)—3. Nāgadanti (See)

**ନାଗଜ**—ସଂ.ବି. (ନାଗ=ସୀସା+ଜନ ଧାତୁ=ଜାତ ହେବା+କର୍ତ୍ତୃ.ଅ)—
Nagaja
୧ । ସିନ୍ଦୂର—1. Vermillion; red lead.
୨ । ଦସ୍ତା; ଟିଣ—2. Tin (metal).
ସଂ. ବିଣ.—୧ । ନାଗଠାରୁ ଉତ୍ପନ୍ନ—1 Born of a Nāga.

**ନାଗ ଜିହ୍ୱା**—ସଂ. ବି. ସ୍ତ୍ରୀ (ନାଗ+ଜିହ୍ୱା; ବହୁବ୍ରୀହି; ନାଗ ପରି ଜିହ୍ୱା ଯାହାର)—(ବୈଦ୍ୟକ)—ଅନନ୍ତ ମୂଳ; ଚେମିଡ଼ି ଲଇ—A medicinal creeper, Asclepias; Pseudo sarsa; Hemidesmus Indicus; Indian sarsaparilla.
Nāga jihwā
(ଅନ୍ୟ ସଂ. ନାମ—ଅନନ୍ତା, ଶାରିବା)

**ନାଗ ଜିହ୍ୱିକା**—ସଂ.ବି (ବୈଦ୍ୟକ)—ମନଃଶିଳା—Realgar; red arsenic.
Nāga jihwikā

**ନାଗ ଜୀବନ**—ସଂ. ବି—ଦସ୍ତା ଧାତୁ; ଟିଣ—Tin metal (Apte).
Nāga jibana

**ନାଗ ଦଅଣା**—ଦେ. ବି (ସଂ. ନାଗଦମନକ)—୧ । ପାନଅଇଡ଼ା (ଦେଖ)
Nāga da-aṇā 1 Pāna-airḍa (See).
( ନାଗ ଦୟଣା—ଅନ୍ୟରୂପ ) ୨ । ସୁଗନ୍ଧପତ୍ରଯୁକ୍ତ ଲତାବିଶେଷ—
ସଂ. ନାମ—ନାଗଦମନୀ, ବଳା, ମୋଠା, ବିଷାପହା, ନାଗପୁଷ୍ପୀ, ନାଗପତ୍ରା, ଶ୍ରୀକନ୍ଦା, ମହା-ଯୋଗେଶ୍ୱରୀ, ବିଷପର୍ଣ୍ଣୀ, ସୁନନ୍ଦା, କନ୍ଦଶାଳିନୀ, ଜାଂବବତୀ, ବୃକ୍କା, ଜାଂବବୀ, ମଲଘ୍ନୀ, ଦୁର୍ଦ୍ଧର୍ଷା, ଦୁଃସହା, ଇନ୍ଦ୍ରଫଲା, ବନକୁମାରୀ
2 Artemisia Vulgaris; the Indian wormwood; a kind of plant.
ନାଗଦନା, ଈଶାବମୂଲ, ନାଗଦାନା
**ନାଗଦୌନା, ନାଗଦମନ,**
ତେଲି—ଈଶ୍ୱରଚେଟ୍ଟୁ
ତା—ମାଚପତ୍ରୀ
ମ—ନାଗଦବଣୀ
ଗୁ—ନାଗଡ଼ମଣ
[ଦ୍ର—ଏହା ଘିକୁଆଁରି ପରି; ଏଥିର ଡାଳ ନାହିଁ, କେବଳ ମୂଳରୁ ଘିଅକୁଆଁରି ପରି ଗୁଡ଼ିଏ ଖଡ୍ଗାକାର ଏକ ହାତ ପର୍ଯ୍ୟନ୍ତ ଲମ୍ବ ଓ ୩।୪ ଅଙ୍ଗୁଳି ଚଉଡ଼ା ପତ୍ର ବାହାରିଥାଏ । ପତ୍ର ଉପରେ ଘିକୁଆଁରି ପରି ପତ୍ର କୋମଳ ରସ ନ ଥାଏ । ପତ୍ର ଗାଢ଼ ସବୁଜବର୍ଣ୍ଣ ଓ ମଝିରେ ଧଳା ଚଉଡ଼ା ରେଖାଏ ଚଢ଼ିଥାଏ । ଏହାର ମୂଳ କନ୍ଦମୂଳ ପରି ଭୂମି ଭିତରକୁ ଯାଏ । ଏହା କଟୁ ତିକ୍ତ ରସ, ଲଘୁ ଏବଂ କଫ, ପିତ୍ତ, ତ୍ରିଦୋଷ ଓ ବିଷନାଶକ; ଏହା ବ୍ରଣ, ମୂତ୍ରକୃଚ୍ଛ୍ର, ଉଦରାଧ୍ମାନ, ଜାଳଗର୍ଦ୍ଦଭ ନିବାରକ, କୋଷ୍ଠ-ବିଶୋଧକ, ଗ୍ରହଦୋଷନିବାରକ, ଧନପ୍ରଦ ଓ ସୁମଙ୍ଗଳପ୍ରଦ । ଏହା ଫୁଲ୍ଲ, ପ୍ରମେହ ଓ ଜ୍ୱର ଦୂର କରେ । ]

**ନାଗ ଦଣ୍ଡକ**—ସଂ ବି (ନାଗ+ଦଣ୍ଡକ, ୬ଷ୍ଠୀ ତତ୍)—୧ । ହାତୀଦାନ୍ତ—
Nāga daṇḍaka 1. Ivory.
(ନାଗଦନ୍ତ, ନାଗଦନ୍ତକ—ଅନ୍ୟରୂପ) ୨ । ଘର କାନ୍ଥରେ ମରିଯିବା କାଠି—2. A peg driven into the wall

**ନାଗଦଣ୍ଡୀ**—ସଂ. ବି. ସ୍ତ୍ରୀ (ନାଗ+ଦଣ୍ଡ+ଈ)—୧ । ବେଶ୍ୟା—
Nāgadaṇḍī 1. A whore; prostitute
୨ । ସୂର୍ଯ୍ୟମୁଖୀ ଫୁଲ—
2. Sun flower; Helianthus.
୩ । ହସ୍ତିନୀ—3 A female elephant.

**ନାଗଦତ୍ତ**—ସଂ. ବି. ପୁଂ—୧ । ଧୃତରାଷ୍ଟ୍ରଙ୍କ ପୁତ୍ରବିଶେଷ—
Nāgadatta 1. A son of Dhrutarāshṭra
୨ । ଜଣେକ ରାଜା—2 Name of a king.
୩ । ପ୍ରସିଦ୍ଧ ବୌଦ୍ଧ ଧର୍ମ ସଂସ୍କାରକ ପଣ୍ଡିତ—
3. A famous Buddhist Pandit and reformer.
[ଦ୍ର—ଏହାଙ୍କର ସମ୍ପ୍ରଦାୟ 'ନାଗଦତ୍ତ' ସମ୍ପ୍ରଦାୟ ନାମରେ ପରିଚିତ । ]

**ନାଗ ଦନ୍ତ**—ସଂ. ବି (୬ଷ୍ଠୀ ତତ୍; ନାଗ+ଦନ୍ତ)—୧ । ହାତୀଦାନ୍ତ—
Nāga danta 1. Ivory.
( ନାଗଦନ୍ତକ—ଅନ୍ୟରୂପ ) ୨ । ଲୁଗା ଅଦି ଓହଳାଇବା ପାଇଁ କାନ୍ଥରେ ମରିଯିବା କାଠି; ଖିଲ; ଖିଲା—
2. A peg or bracket projecting from a wall to hang things upon (Apte).

**ନାଗଦନ୍ତିକ**—ସଂ. ବି (ବୈଦ୍ୟକ)—ବୃଶ୍ଚିକାଲୀ, ବଛୁଆତି ଗୁଳ୍ମ—
Nāgadantika The stinging nettle; Fragia Involucrata
(ନାଗଦନ୍ତିକା—ଅନ୍ୟରୂପ)

**ନାଗଦନ୍ତୀ**—ସଂ.ବି (ବୈଦ୍ୟକ)—୧ । ହାତୀଶୁଣ୍ଢ ଗୁଳ୍ମ; ବନ୍ୟ ଖର-ଲୋମଶ ବର୍ଷାୟୁଃ କ୍ଷୁଦ୍ର ଶାକବିଶେଷ—
Nāgadantī 1 Helitropium Indicum (plant).
ସଂ. ପର୍ଯ୍ୟାୟ—ନାଗଶୋଡା, ନାଗିନୀ, ଭୂରୁଣ୍ଡୀ, ଶ୍ରୀହସ୍ତିନୀ, ବିଶଲ୍ୟା, ଦନ୍ତପୁଷ୍ପୀ, ବିଷୌଷଧି, ଶୁକ୍ଳପୁଷ୍ପୀ, ଇନ୍ଦ୍ରଦନ୍ତାହ୍ୱା, କାଣ୍ଡେରୀ, କାମଦୂତିକା, ଶ୍ୱେତପୁଷ୍ପା, ବିଶୋଧିନୀ, ବିଶାଲାକ୍ଷୀ, ନାଗଛତ୍ରା, ବିଦକ୍ଷଣା, ସର୍ପପୁଷ୍ପୀ, ହିତପୁଷ୍ପୀ, ସ୍ୱାଦୁକା, ଶତଦନ୍ତିକା, ଶତଦନ୍ତୀ, ସର୍ପଦନ୍ତୀ
ହାତିଶୁଁଢ଼ୋ
**ନାଗଦନ୍ତୀ**
[ ଦ୍ର—ଏହାର ଫୁଲ ଧଳା ମିଶା ନେଳିଆ; ମଞ୍ଜରୀରେ ଗୁଚ୍ଛ ଧାଡ଼ି ଫୁଲ ଫୁଟେ । ମଞ୍ଜରୀ ହାତୀଶୁଣ୍ଢ ପରି ବଙ୍କାଇ ଥାଏ; ଓଦା ଭୂଇଁରେ ଏ ଗଛ ହୁଏ । ଏହାର ପତ୍ର ଦେହରେ ଲଗିଲେ ଖୁବ କୁଣ୍ଡେଇ ହୁଏ । ଏହା କଟୁ ତିକ୍ତ ରସ, ରୂକ୍ଷ, ପାଚକ, ମେଧା-ବର୍ଦ୍ଧକ, କଫ ଓ ବାୟୁନାଶକ ଏବଂ ଗୁଳ୍ମ, ଶୂଳ ଓ ବିଷଦୋଷରେ ହିତକର । ସର୍ପ ଦଷ୍ଟବ୍ୟକ୍ତିକୁ ଏହାର ମୂଳ ବାଟି ଖୁଆଇଲେ ବିଷଜ୍ୱାଳା କମେ । ବିଛା କାମୁଡ଼ା ଆଦିର ବିଷଜ୍ୱାଳା ଏହାର ରସ ମର୍ଦ୍ଦନରେ କମିଯାଏ । ]
୨ । ନଳୀ ନାମକ ଗନ୍ଧ ଦ୍ରବ୍ୟ ( ଦ୍ର. ଶବ୍ଦସାଗର )—
2 A kind of sweet smelling hell
୩ । ବେଶ୍ୟା—3. Whore.

**ନାଗ ଦମନ**—ସଂ. ବି. ( ଉପପଦ ତତ୍ ପୁରୁଷ, ନାଗ+ଦମନ )—
Nāga damana ୧ । ସର୍ପବଶକାରୀ ବ୍ୟକ୍ତି; ସାପୁଆ—
1 A snake charmer.
୨ । କାଳୀୟ ଦମନ; ଶ୍ରୀକୃଷ୍ଣ—2. Śrīkṛushṇa.
୩ । ନାଗ ଦଅଣା ( ଦେଖ )
3. Nāga da-aṇā ( See )

**ନାଗ ଦମନକ**—ସଂ. ବି. ( ନାଗ+ଦମନକ )—
Nāga damanaka ୧ । ନାଗ ଦଅଣା ( ଦେଖ )
(ନାଗ ଦମନୀ—ଅନ୍ୟରୂପ) 1. Nāga da-aṇā ( See )
୨ । ବଜ୍ରମୂଳୀ ( ଦେଖ )—2. Bajramūḷī ( See )

**ନାଗଦଳ**—ପ୍ରାଦେ. ( ଯାଜପୁର ) ବି ( ଏହାର ପତ୍ରର ନାଗ ସାପ ଫଣା ପରି ଆକୃତି ଥିବାରୁ )—ବିଲାତି ଦଳ—
Nāga daḷa Water hyacinth.

**ନାଗ ଦ୍ୱୀପ**—ସଂ. ବି—ବିଷ୍ଣୁ ପୁରାଣ ଅନୁସାରେ ଭାରତବର୍ଷର ୯ ଭାଗରୁ ଏକ—
Nāga dwipa One of the 9 mythological islands forming the ancient India.

**ନାଗଦ୍ରୁ**—ସଂ. ବି—ନାଗଫେଣିଆ ଗଛ; ଏକପ୍ରକାର ପତ୍ରହୀନ ସିଜ୍—
Nagadru Cactus Indicus.
( ନାଗଦ୍ରୁମ—ଅନ୍ୟରୂପ )

**ନାଗ ନକ୍ଷତ୍ର**—ଦେ. ବି ( ସଂ. ନାଗ+ନକ୍ଷତ୍ର)—ହାବଳ ଆଦି ଆକାଶକୁ
Nāga nakshatra ଉଠିଯିବା ପରେ ଉତ୍ତରରୁ ବାହାରିବା ନାଗସାପ

ଓ ନକ୍ଷତ୍ର ଆକାରର ଅଗ୍ନିକଣାମାନ—
The star-like and serpent-like sparks which shoot forth from rockets when they go up to the sky.

ସଂ ବି—ଅଶ୍ଳେଷା ନକ୍ଷତ୍ର—The 9th asterism in Hindu astrology (Apte).

**ନାଗ ନଳ**—ଦେ.ବି(ସଂ ନାଗ+ନଳ)—ହାଉଇ ଅଗ୍ର ବାଣରେ ବସାଯିବା Nāganali ବାରୁଦପୂର୍ଣ୍ଣ ଛୋଟ ଛୋଟ କାଗଜର ନଳୀ—Small paper tubes of gunpowder put inside rackets which emit long serpent-like sparks high up in the air.

[ ଦ୍ର—ଏହି ନଳୀକୁ ଗୁଡ଼ିଏ ଗୁଡ଼ା କରି ହାଉଇର ମୁଣ୍ଡରେ ବନ୍ଧା ଯାଏ । (ଏ ପ୍ରକ୍ରିୟାକୁ ହାଉଇର ଠେକାବନ୍ଧା କୁହାଯାଏ) । ହାଉଇ ଆକାଶକୁ ଛୁଟିଗଲେ ଏଥିରେ ( ନାଗନଳରେ ) ନିଆଁ ଲାଗିବାରୁ ଏଥିରୁ ନାଗ ପରି ଆକୃତିବିଶିଷ୍ଟ ସ୍ଫୁଲିଙ୍ଗ ସ୍ରୋତମାନ ବାହାରେ । ଏ ଦୃଶ୍ୟକୁ ହାଉଇ ନାଗ ଛାଡ଼ିଲା ବୋଲି କୁହାଯାଏ । ]

**ନାଗ ନାଗୁଣୀ**—ଦେ. ବି. ( ସଂ. ନାଗ+ନାଗିନୀ )—
Nāga nāguṇi ୧ । ଅହିରା ନାଗସାପ ଓ ମାଈ ନାଗସାପ—
नागनागीन 1. A couple of cobra-de-capillo.
नागनागिनी ୨ । ନାଗ-ଚତୁର୍ଥୀ ( ଦେଖ )
2. Nāga-chaturthi ( See)
୩ । ନାଗଫେଣିଆ ଗଛ—3. Cactus Indicus.

**ନାଗ ପଞ୍ଚମୀ**—ସଂ. ବି—ଶ୍ରାବଣ କୃଷ୍ଣପଞ୍ଚମୀ, ମନସା ପଞ୍ଚମୀ—
Nāga pañchami The 5th day of the dark fortnight of the month of Śrābaṇa.

[ ଦ୍ର—ଏ ଦିନ ନାଗପୂଜା ଓ ମନସା ପୂଜା ହୁଏ । ମତାନ୍ତରେ ଶ୍ରାବଣ ଶୁକ୍ଳପଞ୍ଚମୀ ( ନାଗୁଲେଇ ପଞ୍ଚମୀ ) ବା ଦେଶ ପୁରାଣମତେ ଆଷାଢ଼ କୃଷ୍ଣପଞ୍ଚମୀ । ଏ ଦିନ ଅଷ୍ଟନାଗ ବା ତ୍ରୟୋଦଶ ନାଗ ସିଜୁଗଛମୂଳେ ପୂଜା କରାଯାଏ । ଏଦିନ ଘରେ ନିମ୍ବପତ୍ର ଆଣି ରଖାଯାଏ ଓ ଖିଆଯାଏ; ତାହାହେଲେ ବର୍ଷକ ଯାଏଁ ସର୍ପଭୟ ରହେ ନାହିଁ । ]

**ନାଗ ପତି**—ସଂ ବି. (ଷଷ୍ଠୀ ତତ୍; ନାଗ+ପତି)—୧ । ଐରାବତ ହସ୍ତୀ—
Nāga pati 1. Indra's elephant.
୨ । ବାସୁକି—2. The mythological king of serpents

**ନାଗପତ୍ରା**—ସଂ. ବି.—(ବୈଦ୍ୟକ)—ନାଗ ଦଅଣା (ଦେଖ)
Nāgapatrā (ଭାବପ୍ରକାଶ; ଦ୍ରବ୍ୟଗୁଣ)
Nāga da-aṇā (See)

**ନାଗପତ୍ରୀ**—ସଂ. ବି. (ବୈଦ୍ୟକ)—ଲକ୍ଷଣା (ଦେଖ)
Nāgapatri Lakshaṇā (See)

**ନାଗପଦ**—ସଂ. ବି. ପୁଂ ( ନାଗ+ପଦ; ବହୁବ୍ରୀହି )—୧ । ଷୋଡ଼ଶ
Nāgapada ରତିବନ୍ଧାନ୍ତର୍ଗତ ୬ଷ୍ଠ ରତିବନ୍ଧ—
1. One of the 16 postures assumed during sxual congress.

ପଦୌ ସ୍କନ୍ଧେ ତଥା ହସ୍ତେ ଷିପେ ହ୍ରି ଫ୍ରାଂରଗେ ଲଘୁ
କାମସ୍ୱେଚ୍ଛ କାମୁକୋ ନାସ୍ୟଂ ବନ୍ଧୋ ନାଗପଦୋମତଃ—ରତିମଞ୍ଜରୀ ।

୨ । ( ଷଷ୍ଠୀ ତତ୍; ) ହସ୍ତୀର ପଦ—
2. The leg of an elephant.

**ନାଗପର୍ଣ୍ଣୀ**—ସଂ. ବି—ପାନ—
Nāgaparnni Piper betel.

**ନାଗ ପାଶ**—ସଂ. ବି. ( ନାଗ=ହସ୍ତୀ, ସର୍ପ+ପାଶ=ରଜ୍ଜୁ )—
Nāga pāśa ୧ । ଶତ୍ରୁକୁ ଧରିବା ନିମନ୍ତେ ଯୁଦ୍ଧରେ ବ୍ୟବହୃତ ଏକପ୍ରକାର ଫାଶ—1. A kind of noose used in battle to entangle the enemy.

ମେଘ ରଥରେ ଲୁଚ ସେ ରାମ ଲକ୍ଷ୍ମଣଙ୍କୁ ନାଗପାଶ ବାଣ ମାରିଲା—
ଅଧ୍ୟାତ୍ମ. ରାମାୟଣ ।

[ ଦ୍ର—ମେଘନାଦ ଏ ଅସ୍ତ୍ର ଇନ୍ଦ୍ରଙ୍କଠାରୁ ପାଇଥିବା କଥା ରାମାୟଣରେ ଲେଖାଅଛି । ଏତଦ୍ଦ୍ୱାରା ମେଘନାଦ ଲକ୍ଷ୍ମଣଙ୍କୁ ବାନ୍ଧିଥିଲା । ]

୨ । ବରୁଣଙ୍କର ଆୟୁଧ—2 The noose-weapon of the sea-god Baruṇa.

୩ । ନାଗମାନଙ୍କଦ୍ୱାରା ରଚିତ ଏକପ୍ରକାର ଫାଶ ( ଏହାକୁ ଶିବ ଧାରଣ କରନ୍ତି)—3. A coil made by serpents which wind round the body of Śiba.

୪ । ଗ୍ରନ୍ଥିବିଶେଷ—4. A kind of knot

[ ଦ୍ର—ଅଡ଼େଇ ଫେର ବୁଲାଇ ଯେଉଁ ଗ୍ରନ୍ଥି ନିର୍ମିତ ହୁଏ ତାହାକୁ ନାଗପାଶ ଗ୍ରନ୍ଥି କୁହାଯାଏ—ପ୍ରକୃତିବାଦ । ]

**ନାଗପାଶକ**—ସଂ. ବି. ( ନାଗ+ପାଶକ )—ରତିବନ୍ଧବିଶେଷ—
Nāgapāśaku Name of a pose in coition.
( ନାଗବନ୍ଧ—ଅନ୍ୟରୂପ )

ସ୍କନ୍ଧୋପରିସ୍ଥିତୟୋଃ ହସ୍ତାଭ୍ୟାଂ ଧାରୟେତ୍ କୁଚୌ,
ରମେତ୍ ଶନୈଃ କାମୀ ବନ୍ଧୋଽୟଂ ନାଗପାଶକଃ । ରତିମଞ୍ଜରୀ ।

**ନାଗପୁର**—ସଂ. ବି—୧ । ହସ୍ତିନାପୁର, ଦୁର୍ଯ୍ୟୋଧନଙ୍କ ରାଜଧାନୀ—
Nāgapura 1. Hastināpura; the capital of Durjyodhana.
୨ । ପାତାଳ—2 The nether worldt (the abode of the serpents ).

ଦେ. ବି—ମଧ୍ୟପ୍ରଦେଶର ରାଜଧାନୀ ଓ ଜିଲ୍ଲା ଓ ବିଭାଗ—
नागपुर Name of a town, district and division
नागपुर of the Central Provinces of India.

[ ଦ୍ର—ଏହା ମହାରାଷ୍ଟ୍ର ଦେଶରେ ଗଣ୍ଡୱାନା ପ୍ରଦେଶର ରାଜଧାନୀ । ନାଗ ନାମକ ନଦୀ ତୀରରେ ଅବସ୍ଥିତ ।
ଦେଶୀ ଅସ୍ତ୍ର, ଛୁରି, ରେଶମ ଓ ତୁଳା ବ୍ୟବସାୟ ନିମନ୍ତେ ଏ ସ୍ଥାନ ପ୍ରସିଦ୍ଧ । ଅଗ୍ନି ପୁରାଣରେ ଏ ନଗରର ନାମୋଲ୍ଲେଖ ଅଛି । ]

**ନାଗପୁରୀ**—ଦେ. ବିଣ—୧ । ନାଗପୁରବାସୀ—
Nāgapuri 1. Residing in Nagpur.
(ନାଗପୁରିଆ—ଅନ୍ୟରୂପ) ୨ । ନାଗପୁରରେ ଉତ୍ପନ୍ନ ବା ପ୍ରସ୍ତୁତ—
नागपुरी 2. Made in Nagpur.

**ନାଗପୁରୀ** ସଂ ବି—ପାତାଳ—The nether regions
ଦେ. ବି—ବହାର ଭାଷାର ଭୋଜପୁର ଶାଖା—Bhojpuri
**नागपुरी** dialect of the Beharee language.
[ ଦ୍ର—ଏହି ଭାଷା ଯାଶପୁର ଓ ତହିଁର ଉପବିଭାଗରେ କଥିତ । ]

**ନାଗ ପୁଷ୍ପ**—ସଂ. ବି. ( ନାଗ+ପୁଷ୍ପ; ବହୁବ୍ରୀହି; ହସ୍ତୀର ମଦ ଗନ୍ଧ ପରି ଗନ୍ଧଯୁକ୍ତ ପୁଷ୍ପ ଯାହାର )—
Nāga pushpa
୧ । ପୁନ୍ନାଗ ବା ପୁଲଙ୍ଗ ଗଛ—1. Mast wood; Alexandrian Laurel; Calophyllum Inophyllum; Rottleria Tinctoria ( tree ).
୨ । ନାଗେଶ୍ବର ଗଛ—2. Messua Ferra ( tree )
୩ । ଚମ୍ପକ; ଚମ୍ପା ଗଛ—3. The Champaka tree

**ନାଗପୁଷ୍ପ ଫଳା**—ସଂ. ବି—କୁଷ୍ମାଣ୍ଡ ( ଦେଖ )
Nāgapushpa phalā Kushmāṇḍa ( See )

**ନାଗପୁଷ୍ପିକା**—ସଂ. ବି. ସ୍ତ୍ରୀ. ( ନାଗ+ପୁଷ୍ପିକା; ବହୁବ୍ରୀହି )—
Nāga pushpikā ସ୍ବର୍ଣ୍ଣ ଯୂଥିକା; ହଳଦିଆ ଯୂଇ—Jasmimum Heterophylum.

**ନାଗପୁଷ୍ପୀ**—ସଂ. ବି. (ବୈଦ୍ୟକ)—୧ । ଏକ ପ୍ରକାର ଔଷଧ ଗୁଳ୍ମ—
Nāgapushpi 1. A medicinal plant.
ସଂ. ନାମ—ନାଗିନୀ, ରାମଦୂତିକା, ଶ୍ବେତପୁଷ୍ପା
[ ଦ୍ର—ଏହା ତିକ୍ତ ରସ, ଉଷ୍ଣବୀର୍ଯ୍ୟ, ବରେଚକ, ତୀକ୍ଷ୍ଣ, କଫ ଓ ପିତ୍ତ ନାଶକ ଏବଂ ବମନ, କୃମି, ଶୂଳ, ଯୋନିଦୋଷ ଓ ବିଷଦୋଷରେ ଉପକାରକ । ]
୨ । ନାଗ ଦଅଣା ( ଦେଖ )—
2. Nāga daaṇā ( See )
୩ । ମେଣ୍ଢାଶିଂଘୀ; ମେଷ ଶୃଙ୍ଗୀ ( ହି. ଶବ୍ଦସାଗର )—
3. The screw tree; Gymnema Sylvestre

**ନାଗଫଣ(ଣା)**—ସଂ. ବି. ( ୬ଷ୍ଠୀ ତତ୍; ନାଗ+ଫଣ )—
Nāgaphaṇa(ṇā) ନାଗ ସାପର ବିସ୍ତାରିତ ମସ୍ତକ—The hood of a cobra-de-capillo.

**ନାଗଫଣା(ଣୀ)**—ଦେ. ବି ( ସଂ. ନାଗ+ଫଣା; ଏହାର ଡାଳ ନାଗର ଫଣା ପରି ଦେଖାଯିବାରୁ)—ଦକ୍ଷିଣ ଆମେରିକାରୁ ଆନୀତ କଣ୍ଟକୀ କ୍ଷୁପବିଶେଷ—Opuntia Monacantha ( Haines ); Opuntia Dillenii; Cactus; Prickly pear, Euphorbia Nerifollia.
Nāgaphaṇā (ṇī)
ନାଗଫଣିଆ, ନାଗଫେଣ, ନାଗଫେଣିଆ (ଆଁ) } ଅନ୍ୟରୂପ
फनीमनसा, नागफना फेनीमनसा, शातला, मनसासिज नागफना, नागफनी
ମ. ନବଡୁଂଗାଳ୍
ଗୁ. ସାଥେରଂ
ପା. ଏସକ୍
ଆ. ସାଇର
ଛତ୍ରିଦାନେ ଦକ୍ଷ ସହିଁ ନାଗଫେଣୀ—ରାଧାନାଥ. ଚନ୍ଦ୍ରିକା ।
[ଦ୍ର—ଏହାର ପତ୍ର ନାହିଁ । ଡାଳ ଚେପଟା ଓ ନାଗ ସାପର ଫଣା ପରି । ଏଥିରେ କଣ୍ଟକି ଅଧିକ ବାଡ଼ ବୁଲାଯାଏ । ଫୁଲ ଗଢ଼େଇ ଚଲମ ପରି ଓ ହଳଦିଆ ପାଟ୍ଡ୍ରାମ୍ପକୁ ଓ ଛତ୍ରାକାର । ଡାଳରେ ଗୋଛ ଗୋଛ ରୂଦାଳିଆ ସରୁ ଓ ଲମ୍ବ କଣ୍ଟା ବାହାରେ । ଏହା ତିକ୍ତରସ, ଶୀତବୀର୍ଯ୍ୟ, ବାୟୁବର୍ଦ୍ଧକ; ଶୋଥ, କଫ, ଆନାହ, ପିତ୍ତ, ଉଦାବର୍ତ୍ତ ଓ ରକ୍ତଦୁଷ୍ଟିନାଶକ । ଏହା ଆମେରିକାଦେଶୀୟ ଓ ଆଟ୍ଲାଣ୍ଟିକ୍ ମହାସାଗର ଉପକୂଳର ଛେ । ଆମେରିକାରେ ଏହାର ଫଳ ଖୁବ ଓ ସେ ଫଳକୁ ଲୋକେ ଖାଆନ୍ତି । ଏ ଦେଶରେ ଏହା ଫୁଲ ଧରେ ଏବଂ ଡାଳ ପୋଡିଲେ କଞ୍ଚାଯାଏ । ଏହିଜାତୀୟ ଗଛ ପ୍ରାୟ ଶତାଧିକ ପ୍ରକାର ଅଛି । ଏକପ୍ରକାର ଛେ ଭୂମଧ୍ୟସାଗର ଉପକୂଳରେ ଲଗାଯାଇ ସବଂତ୍ର ମାଡ଼ି ଯାଇଅଛି । ଏହାର କଢ଼ରୁ କାଲି ଅଳତା ପରି ରସ ବାହାରେ । ]

**ନାଗଫଳ**—ସଂ. ବି—ପଟୋଳ (ଦେଖ)
Nāgaphala Paṭola (See).

**ନାଗପାଶ**—ଦେ ବି.—(ସଂ. ନାଗପାଶ)—ନାଗପାଶ (ଦେଖ)
Nāgaphāsa Nāgapāsa (See)
नागपास **नागफाँस**

**ନାଗ ଫେଣା**—ଦେ. ବି.—(ସଂ ନାଗ ଫଣା)—୧ । ସର୍ପ ଫଣା—
Nāga pheṇā Hood of serpents.
ଯେବେହେଁ ନାଗ ଫେଣା ଯାଏ,
ସେ ପଦ୍ମ କେବେହେଁ ନ ପାଏ । ଭୂପତି. ପ୍ରେମପଞ୍ଚାମୃତ ।
୨ । ନାଗଫଣା (ଦେଖ)—2. Nāgaphaṇā (See)

**ନାଗଫେଣୀ**—ଦେ. ବି.—ନାଗଫଣା (ଦେଖ)
Nāga pheṇi Nāga phaṇā (See)
[ନାଗଫେଣିଆ(ଆଁ)—ଅନ୍ୟରୂପ]

**ନାଗଫେନ**—ସଂ. ବି.—( ନାଗ+ଫେନ )—ଅହିଫେନ; ଅଫିମ—
Nāgaphena Opium.

**ନାଗବଂଶ**—ସଂ. ବି—୧ । ନାଗମାନଙ୍କର କୁଳ—
Nāgabaṁsa 1. The family or species of the Nāgas.
୨ । ଶକ ଜାତିର ଏକ ଶାଖା—
2. Name of a branch of the Scytheans.
[ ଦ୍ର—ପ୍ରାଚୀନ କାଳରେ ନାଗବଂଶୀମାନଙ୍କ ରାଜ୍ୟ ଭାରତର କେତେକ ସ୍ଥାନରେ ଓ ସିଂହଳରେ ଥିଲା । ପୁରାଣରେ ଭବିଷ୍ୟଦ୍ବାଣୀ ଅଛି ଯେ ନାଗବଂଶୀ ରାଜାମାନେ ମଥୁରା ଭୋଗ କରିବେ । ତାଙ୍କ ପରେ ଗୁପ୍ତବଂଶୀମାନେ ରାଜା ହେବେ । ପୁରୁଣା ନାଗବଂଶୀୟ ଏକଜଣ ରାଜାଙ୍କ ଅମଳର ଯେଉଁ ମୁଦ୍ରା ମିଳୁଅଛି ସେଥିରୁ ଜଣାଯାଏ ଯେ ୧୫୦ ସମ୍ବତ୍‌ରୁ ୨୫୦ ସମ୍ବତ୍ ପର୍ଯ୍ୟନ୍ତ ମଥୁରା, ଗୁଆଲିଅର, ଭରତପୁର ଓ ଜବ୍ବଲପୁର ଅଞ୍ଚଳରେ ଏମାନେ ରାଜତ୍ବ କରୁଥିଲେ । ଗୁପ୍ତବଂଶୀ ରାଜାମାନେ ନାଗବଂଶୀମାନଙ୍କୁ ପରାସ୍ତ କରିଥିଲେ । ପ୍ରୟାଗର ଲିଙ୍ଗା ମଧ୍ୟରେ ଥିବା ସ୍ତମ୍ଭରେ ଲେଖାଅଛି ଯେ ସମୁଦ୍ରଗୁପ୍ତ ନାଗବଂଶୀ ଗଣପତି ନାଗଙ୍କୁ ପରାସ୍ତ କରିଥିଲେ । ମହାଭାରତର କେତେକ ସ୍ଥାନରେ ନାଗମାନଙ୍କର ଉଲ୍ଲେଖ ଅଛି । ପାଣ୍ଡବମାନେ ନାଗମାନଙ୍କଠାରୁ ମଗଧ ରାଜ୍ୟ ଛଡ଼ାଇ ନେଇଥିଲେ । ସିକନ୍ଦରସାହା ଭାରତବର୍ଷକୁ ଆସିବା ସମୟରେ ତକ୍ଷଶିଳାର ନାଗବଂଶୀ ରାଜାଙ୍କ ସଙ୍ଗେ ତାଙ୍କର ଭେଟ ହୋଇଥିଲା ଓ ସେ ପୌରବ ରାଜାଙ୍କ ବିରୋଧରେ ସିକନ୍ଦରଙ୍କୁ ସାହାଯ୍ୟ କରିଥିଲେ । ସେ ସମୟରେ ତକ୍ଷଶିଳାର ରାଜପୁରରେ ବଡ଼ ବଡ଼ ସାପମାନେ ପାଳିତ ଓ ପୂଜିତ ହେଉଥିବାର ଗ୍ରୀକ୍‌ମାନେ ଦେଖିଥିଲେ । ଏହି ନାଗବଂଶୀମାନେ ପ୍ରଥମେ ହିମାଳୟର ଉତ୍ତର ପାଖରେ ଥିଲେ । ]

ନାଗବଂଶୀ—ସଂ. ବିଣ ( ନାଗବଂଶ + ଇନ୍; ୧ମା ୧ବ )—ନାଗବଂଶରୁ
Nāgabaṁśī ଉତ୍ପନ୍ନ—Born of the family or race of the Nāgas.

ନାଗ ବନ୍ଧ— ଦେ. ବି ( ସଂ. ନାଗ=ମସ୍ତକ + ବନ୍ଧ = ବନ୍ଧନ )—
Nāga bandha ୧ । ଚଉକାଠର ଉପର କାଠରେ ମରା ଯାଇ ଥିବା ଲମ୍ବ କାଠ ଖଣ୍ଡ—A long plate of wood attached to the top piece of a door-frame

[ ଦ୍ର—ଡମଣୀ ଦ୍ୱାର ଯେଉଁ କବାଟ ଚଉକାଠର ଦେହରେ ଲଗା ଯାଇଥାଏ ସେ କବାଟ ବନ୍ଦ ହୋଇଥିଲାବେଳେ ତାହାର ତଳ ପାଖରେ ସାବଲର ଠିଅ ଦେଇ ଠେଲି ଦେଲେ ସେ କବାଟ ଡମଣୀରୁ ଉଠିଯାଏ ବା ଚଉକାଠରୁ ବାହାରିଯାଏ; କିନ୍ତୁ ଚଉକାଠର ଉପର କାଠରେ ନାଗବନ୍ଧ ମରା ଯାଇଥିଲେ କବାଟ ଆଉ ଉପରକୁ ଉଠାଯାଇ ପାରେ ନାହିଁ । ନାଗବନ୍ଧ ଦୁଇ ପ୍ରକାର ୧ । ସାପୁଆ=ଲମ୍ବା; ଚଉକାଠର ମୁଣ୍ଡକାଠରେ ଏଥିର ଏ ମୁଣ୍ଡ ସେ ମୁଣ୍ଡ ସଂଲଗ୍ନ । ୨ । ମେଣ୍ଢାମୁଣ୍ଡିଆ=ଚଉକାଠର ଦୁଇ ମୁଣ୍ଡରେ ଦୁଇ ଖଣ୍ଡି ଛିଦ୍ରଯୁକ୍ତ ଗୋଲ କାଠଖଣ୍ଡ । ]

୨ । ସର୍ପର କୁଣ୍ଡଳାକୃତି ଏକପ୍ରକାର ଚିତ୍ର—
2 A drawing representing the coil of a serpent.

୩ । ନାଗପାଶକ ( ଦେଖ )—
3 Nāgapāśaka ( See )

୪ । କବିତା ରଚନାର ନାଗାକୃତି ବନ୍ଧବିଶେଷ—
4. A kind of artistic composition in which the letters can be set in the shape of a coiled serpent.

[ ଦ୍ର—ପୂର୍ବେ ଓଡ଼ିଆ କବିମାନେ ବିବିଧ ବସ୍ତୁର ଚିତ୍ରରେ ନାନା ପ୍ରକାର ବନ୍ଧ କଳ୍ପନା କରି କବିତା ଲେଖୁଥିଲେ । ଯଥା—ପଦ୍ମବନ୍ଧ, ରଥବନ୍ଧ, ନାଗବନ୍ଧ ଇତ୍ୟାଦି । ନାଗବନ୍ଧର କବିତା ଏପରି ରଚିତ ହୋଇଥାଏ ଯେ କୁଣ୍ଡଳିତ ନାଗର ଚିତ୍ର ଉପରେ ଉକ୍ତ ଅକ୍ଷରମାନ ଧାରାବାହିକରୂପେ ସନ୍ନିବେଶିତ କରି ଯାଇପାରେ । ଉପେନ୍ଦ୍ର ଭଞ୍ଜଙ୍କ କୃତ ଚିତ୍ରକାବ୍ୟବନ୍ଧୋଦୟ ନାମକ ଗ୍ରନ୍ଥରେ ଏ ଭଳି ବନ୍ଧ ସହିତ ବନ୍ଧ କବିତା ଅଛି । ]

ନାଗବଳ—ସଂ. ବିଣ. (ନାଗ=ହସ୍ତୀ + ବଳ = ଶକ୍ତି; ବହୁବ୍ରୀହି)—
Nāgabaḷa ହସ୍ତି ତୁଲ୍ୟ ବଳବାନ୍—Powerful as the elephant.

ସଂ. ବି.—ଭୀମସେନ (ଦେଖ) – Bhīmasena (See)

ନାଗବଳା —ସଂ, ବି.—ବୈଦ୍ୟଶାସ୍ତ୍ରୋକ୍ତ ବଳା ଚତୁଷ୍ଟୟ ମଧ୍ୟରୁ
Nāgabaḷā ଏକତମ; ଗରଗଡ଼ ଗୁଳ୍ମ—
**गङ्गेरन, गुलशकरी** Sida Spinosa (plant).
গোরখচাকুলে, পানসাঁড়া [ ବଳା ତଳେ ନୋଟ ଦେଖ ]
ମ. ଗାଙ୍ଗେଟୀ, ଗାଣ୍ଡେ ଝାମନ୍
(ଅନ୍ୟ ସଂ. ନାମ—ଗାଙ୍ଗେରୁକୀ, ହ୍ରସ୍ୱ ଗବେଧୁକା)

ନାଗ ବଲ୍ଲୀ—ସଂ. ବି.—(ନାଗ = ସର୍ପ + ବଲ୍ଲୀ = ଲତା; ନାଗ ପରି ବକ୍ରାକୃତି
Nāga ballī ବଲ୍ଲୀ)—ତାମ୍ବୁଲ ବା ପାନ ଲତା—The betel creeper.
ନାଗବଲ୍ଲରୀ } —ଅନ୍ୟରୂପ
ନାଗବଲ୍ଲିକା }

କନକ ନ ପଡ଼ି ଲଲନାରତନ କଲ ନାଗବଲ୍ଲୀ ଗେଲେ ମାଗ ରେ ।
କ. ମ. ସୂର୍ଯ୍ୟ ସଙ୍ଗୀତ ।

ପ୍ରାଦେ. (ଗଡ଼ଜାତ) ବି.—ନାଗାରି (ଦେଖ)
Nāgari (See)

ନାଗ ବାରିକ—ସଂ. ବି.—(ନାଗ + ବୃ ଧାତୁ = ସେବା କରିବା + କର୍ତ୍ତୃ. ଅକ)— ୧ । ଗରୁଡ଼—1. Garurda.
Nāga bārika

୨ । ପାଟହାତୀ; ରାଜକୀୟ ହସ୍ତୀ; ରାଜକୁଞ୍ଜର—
2. A royal elephant; an elephant used by a king.

୩ । ହସ୍ତିପକ; ମାହୁନ୍ତ—
3. The driver of an elephant.

୪ । ଗଣସ୍ଥ ପ୍ରଧାନ ବ୍ୟକ୍ତି—4. The headman of a community or assembly.

୫ । ମୟୂର— 5 A peacock.

୬ । ହସ୍ତିଯୂଥର ନେତା —6. The chief or leader of a herd of elephants (Apte).

ନାଗ ବୀଥୀ—ସଂ. ବି. (ନାଗବତ୍ ବକ୍ରାକାର ବୀଥୀ=ପଥ,—ଅଶ୍ୱିନୀ,
Nāga bithī ଭରଣୀ (ଦ୍ୱିଜା) ଓ କୃତ୍ତିକା ନକ୍ଷତ୍ରତ୍ରୟ ବାଟ ଦେଇ ଯିବା ବେଳେ ଚନ୍ଦ୍ରଙ୍କର ଗତି ପଥ—
That part of the moon's path which contains the 1st, 2nd and 3rd asterisms (Apte).

ନାଗ ବୃକ୍ଷ—ସଂ. ବି.—ନାଗକେଶର (ଦେଖ)
Nāga bṛuksha Nāgakeśara (See)

ନାଗ ଭଗିନୀ—ସଂ. ବି. (୬ଷ୍ଠୀ ତତ୍; ନାଗ + ଭଗିନୀ)—ବାସୁକିଙ୍କ ଭଉଣୀ;
Nāga bhaginī ଜରତ୍କାରୁ; ମନସା ଦେବୀ —Manasā

ନାଗ ଭୂଷଣ—ସଂ. ବିଣ.—( ନାଗ + ଭୂଷଣ; ବହୁବ୍ରୀହି )—ନାଗଦ୍ୱାରା
Nāga bhūshaṇa ଭୂଷିତ—Adorned with snakes.

ସଂ. ବି.—ମହାଦେବ—Mahādeba.

ନାଗଭୃତ୍—ସଂ. ବି.—(ନାଗ + ଭୃ ଧାତୁ = ପୋଷଣ କରିବା + କର୍ତ୍ତୃ. କ୍ୱିପ୍)
Nāgabhṛut ଢ଼ୋଣ୍ଡ ବା ଧଣ୍ଡ ସାପ—Water snake.

ନାଗମଣ୍ଡଳିକ—ସଂ. ବି. ( ନାଗମଣ୍ଡଳ + ଇକ )—ସାପୁଆ କେଳା—
Nāgamaṇḍaḷika A snake keeper; a snake catcher ( Apte ).

ନାଗମଲ୍ଲ -ସଂ. ବି. ( ନାଗ = ହସ୍ତୀ + ମଲ୍ଲ = ବାହୁଯୋଦ୍ଧା )—ଐରାବତ
Nāgamalla ହସ୍ତୀ—Indra's elephant.

ନାଗମଲ୍ଲୀ —ଦେ. ବି—ପୁଷ୍ପଗୁଳ୍ମବିଶେଷ—A kind of sweet-
Nāgamallī smelling flower and its plant.

[ ଦ୍ର—ଏହାର ଫୁଲ ଧଳା ପରି ଥୋପା ଥୋପା ହୋଇ ଓହ୍ଲାଇ ଥାଏ । ]

ନାଗ ମାତା—ସ. ବ. (ନାଗ+ମାତା; ୬ଷ୍ଠୀ ତତ୍)—୧ । ମନସାଦେବୀ—
Nāga mātā 1. The sister of Bāsuki.
୨ । କଦ୍ରୁ—2. One of the two wives of sage Kaśyapa and the progenitress of serpents.
୩ । ମନଃଶିଳା—3 Red arsenic.

ନାଗମାର—ସ ବ—କେଶଦୁଦୁର୍ବ ( ଦେଖ )
Nāgamāra Keśadudurā ( See )

ନାଗମୁଖ—ସ. ବ. ( ବହୁବ୍ରୀହି; ନାଗ=ହାତୀ+ମୁଖ )—
Nāgamukha ଗଣେଶ—Gaṇeśa.
( ନାଗାନନ—ଅନ୍ୟରୂପ )

ନାଗ ମୂଲିଆ—ଗ୍ରା. ବ ( ଯେ ପ୍ରତିଦିନ ମୂଲ ଲଗେ )—ପ୍ରତିଦିନ
Nāga mūliā ମଜୁରି ନେଇ କାମ କରିବା ପାଇଁ ନିଯୁକ୍ତ ମୂଲିଆ—
দিনমজুৰ रोजनदारी A daily labourer;
( ଲଗମୂଲିଆ—ଅନ୍ୟରୂପ ) a journeyman.

ନାଗ ଯଷ୍ଟି—ସ. ବ. ( ନାଗ=ସର୍ପ+ଯଷ୍ଟି=ଦଣ୍ଡ )—
Nāga jashṭi ୧ । ଭୂମିରେ ବହୁ ଗଭୀରତା ପର୍ଯ୍ୟନ୍ତ ପୋତାଯିବା ଖିଲା—1. A boring rod driven deep into the earth (Apte)
ନାଗ ଯଷ୍ଟିକା, ନାଗାଂଗଲି, ନାଗାଂଜନା } ଅନ୍ୟରୂପ
୨ । ପୁଷ୍କରିଣୀ ମଧ୍ୟରେ ପ୍ରୋଥିତ କାଷ୍ଠ ବା ପ୍ରସ୍ତରର ଦଣ୍ଡ; ଯାଠିଦଣ୍ଡି—2. A centre-post driven in the middle of a pond.
[ ଦ୍ର—ପୁରାଣ ଅନୁସାରେ ଏ ଯଷ୍ଟି ସଳଖ ବେଣ୍ଟ ନ ଥିବା ବେଲ, ପଳାଶ, ନାଗକେଶର, ଜମ୍ବୁ ବା ବରୁଣ କାଠରେ ନିର୍ମିତ ହେବା ଉଚିତ । ଅଷ୍ଟ ନାଗଙ୍କ ନାମ ୮ଟି ପତ୍ରରେ ଲେଖି ଗୋଟିଏ ଜଳ କୁଣ୍ଡରେ ପକାଇ ଯେଉଁ ନାଗର ନାମ ଲେଖା ହୋଇଥିବା ପତ୍ର ହାତରେ ଉଠେ, ସେହି ନାଗ ଖୋଳା ହେଉଥିବା ପୁଷ୍କରିଣୀର ଅଧିଷ୍ଠାତା ଦେବତା ବୁଝନ୍ତି ଓ ତାଙ୍କୁ ପୂଜା କରିବା ପରେ ନାଗଯଷ୍ଟି ପୋତାଯାଏ । ହି. ଶବ୍ଦସାଗର ]

ନାଗର—ସ. ବଣ. ( ନଗର+ଭବାର୍ଥେ. ଅ )—
Nāgara ୧ । ନଗର ସମ୍ବନ୍ଧୀୟ—1. Pertaining to a town or city; municipal.
୨ । ନଗରଜାତ—2 Town-born.
୩ । ନଗରବାସୀ—
3. Residing in a town; town-bred.
୪ । ରସିକ; ସଉକୀ—
4. Pleasure-loving; fashionable.
୫ । ହାସ୍ୟ—5. Humorous; witty.
୬ । ଶଠ; ଖଳ—6. Vile; bad (Apte)
୭ । ବଜାଙ୍ଗ—7. Low and ill mannered person.
୮ । ଚତୁର—8. Clever; sharp (Apte).
୯ । ଭଦ୍ର—9. Polite; civil (Apte).
୧୦ । ସହରର ଦୁର୍ଗୁଣମାନ ଯେ ଗ୍ରହଣ କରିଅଛି—
10. One who has contracted the vices of a town (Apte)
୧୧ । ଅନାମିକ; ନାମହୀନ, ଅଜ୍ଞାତନାମା—
11 Nameless (Apte).
ସ. ବି. ପୁଂ—୧ । ଦେବର; ଦିଅର—
1. Husband's younger brother
୨ । ଦେବନାଗର ଅକ୍ଷର—
2. The Debanāgara character.
(ନାଗରୀ—ସ୍ତ୍ରୀ) ୩ । ଲମ୍ପଟ ବ୍ୟକ୍ତି—3. A lecher.
୪ । ଗୁପ୍ତ ଉପପତି—4 Clandestine lover, secret paramour.
୫ । ନାରଙ୍ଗ ଲେମ୍ବୁ ଗଛ—
5 A kind of orange tree.
୬ । ଅଧ୍ୟାପକ—6 A professor; a lecturer.
୭ । ଶୁଣ୍ଠି—7. Dried ginger.
୮ । ମୁଥା—8. Grass root.
୯ । ନାଗେଶ୍ୱର ଫୁଲ—9 Messua Ferra.
୧୦ । ରତିବନ୍ଧବିଶେଷ; ନାଗରକ ୪ (ଦେଖ)—
10. A kind of pose in coitus.
୧୧ । ପୌରଜନ; ନଗରବାସୀ ବ୍ୟକ୍ତି—
11. A citizen; a townsman.
୧୨ । କ୍ଲାନ୍ତି—12. Fatigue; toil (Apte).
୧୩ । ମୋକ୍ଷର ବାସନା—
13. A desire for final beatitude (Apte).
୧୪ । (ଜ୍ୟୋତିଷ)—ଅନ୍ୟାନ୍ୟ ଗ୍ରହମାନଙ୍କ ବିରୋଧରେ ଥିବା ଗ୍ରହ—14. (astrology) A planet when it is in opposition to other planets (Apte).
୧୫ । କୌଣସି ବିଷୟରେ ଅଜ୍ଞତାପ୍ରକାଶ—
15. Denial of knowledge (Apte).
ପ୍ରାଦେ (ବସ୍ତର) ବ (ସ. ଲଙ୍ଗଲ)—ଲଙ୍ଗଳ—

ନାଗରକ—ସ. ବ—୧ । (ନାଗର+କୁତ୍ସିତାର୍ଥେ. କ)—ଚୋର—
Nāgaraka 1. A thief.
୨ । (ନଗରୀ+ପ୍ରଶଂସାର୍ଥେ. କ)—ନଗରରକ୍ଷକ—
2. A town watchman.
୩ । ଚିତ୍ରକର; କଳାବିଦ୍ ବ୍ୟକ୍ତି—
3 An artist.
୪ । ରତିବନ୍ଧବିଶେଷ—
4. A kind of coitus.
ଉରୁମୂଳୋପରି ସ୍ଥିତ୍ୱା ଯୋଷିଦୂରୁଦ୍ୱୟଂ ରମେତ୍
ଗ୍ରୀବାଂ ଧୃତ୍ୱା କରାଭ୍ୟାଂ ଚ ବନ୍ଧୋନାଗରକୋମତଃ—ରତିମଞ୍ଜରୀ ।
୫ । ଭଦ୍ର ବ୍ୟକ୍ତି—
5. A polite or courteous person.
୬ । ପୌରଜନ—6. Citizen.

୭ । ଅନ୍ୟ ନାରୀଙ୍କ ପ୍ରତି ଆସକ୍ତ ଥିବା ଅବସ୍ଥାରେ ପ୍ରଥମ ନାରୀଙ୍କ ପ୍ରତି ବିଶେଷ ଅନୁରାଗପ୍ରକାଶକାରୀ ନାଗର—
7. One who shows exaggerated attention to his first mistress while he is courting some one else (Apte).

୮ । ନଗରରକ୍ଷିବଳର ଅଧକ୍ଷ —
8 The chief of the Police (Apte).

୯ । ରସିକ ବ୍ୟକ୍ତି—9 A gallant

୧୦ । ସଉକୀନ୍ ଲୋକ—10 Beau

ସ୍ତ୍ରୀ ବିଣ—ନାଗର (ଦେଖ)—Nāgara (See).

**ନାଗରକ୍ତ**—ସଂ. ବି (ବୈଦ୍ୟକ, ନାଗ=ପଙ୍କଜ+ରକ୍ତ)—ସିନ୍ଦୂର—
Nāgarakta Red lead.

**ନାଗରଙ୍ଗ**—ସଂ. ବି ( ନାଗ=ସୀସା+ରଙ୍ଗ; ଏହିଁରୁ ବାହାରୁ ଥିବାରୁ ସିନ୍ଦୂରକୁ ମଧ ନାଗ ବୋଲାଯାଏ, ସିନ୍ଦୂରପରି ଲାଲ ବର୍ଣ୍ଣ) —୧ । ନାରଙ୍ଗ ( ଦେଖ )—
Nāgaranga 1. Nāranga ( See )

୨ । ସିନ୍ଦୂର—2. Vermillion; red lead.

**ନାଗରଚି**—ଦେ. ବି ( ଫା. ନଗାର୍‌ଚୀ, ନକ୍କାରଚୀ )—ଯେ ନାଗରା ବଜାଏ—A drummer.
Nāgarachi
ନାଗବଚୀ, **ନଗାରଚୀ** (ନାଗର୍ଚି—ଅନ୍ୟରୂପ)

**ନାଗର ଦୋଳା**—ଦେ. ବି—ବୃହତ୍ ଦୋଳାବିଶେଷ—
Nāgara dolā A swing; seesaw; a whirlgig.
ନାଗବଦୋଳା, **ଡୋ, ରାମହିଣ୍ଡୋଳା**

[ ଦ୍ର—ଏଥିରେ ଅନେକ ଲୋକ ଏକଥ ଝୁଲି ପାରନ୍ତି । ଏହା ଦୁଇ ପ୍ରକାର—୧ । ଚକାକାର, ୨ । କେନ୍ଦ୍ରରେ ଲଗ୍ନ ଠିଆ ବାଡରେ ଉପରକୁ ଓ ତଳକୁ ଚକାକାରରେ ଗତି କରୁଥିବା । ]

**ନାଗର ବର୍ଣ୍ଣକ**—ସଂ. ବି (ବୈଦ୍ୟକ)—ଗାଜର—
Nāgara barnnaka Carrot.

**ନାଗର ମୁଥା**—ଦେ. ବି (ସଂ. ନାଗର ମୁସ୍ତକ) ( ଦେଖ )
Nāgara muthā Nāgara mustaka ( See )

**ନାଗର ମୁସ୍ତକ**—ସଂ.ବି—ବଡ଼ ମୁଥା; ଏକପ୍ରକାର ଘାସର କନ୍ଦ ବା ମୂଳ—
Nāgara mustaka A kind of grass root, Mariscus Cyprus, Cyperus Scariobus; Cyperus Hexastychius Communis
(ନାଗର ମୁସ୍ତା—ଅନ୍ୟରୂପ)
ସଂ. ନାମ—କ୍ରୋଡ଼, କଟସରୁକ, ଭଦ୍ରମୁସ୍ତ, ଗୁନ୍ଦ୍ରା, ନାଗରୋତ୍ଥା, ଚକ୍ରାଙ୍କା, କାଦେସ୍ତ୍ରୀ, ଭଦ୍ରାଲା, ପିଣ୍ଡମୁସ୍ତା, ଶିଖିର, କଚ୍ଛରୁହା, ଶୁରୁକେଶର, ଜଟା, କଲାପିନୀ, ବୃଷଧ୍ୱାଂକ୍ଷୀ କଲାପିନୀ, ଚକ୍ରାଙ୍କା
-ନାଗରମୁତା, ନାଗରମୁଥା
-**ନାଗରମୋଥା**
ମ. ନାଗରମୋଥେଁ
ଗୁ. ନାଗରମୋଥ୍ୟ

[ଦ୍ର—ଏହା ଏକପ୍ରକାର ଘାସର ମୂଳ; ଏହାର ଡାଳ ନାହିଁ, ମୂଳରୁ ସରୁ ଓ ମୁନିଆଁ ପତ୍ରଗୁଡ଼ିଏ ଓ ଗୋଟିଏ ଦଣ୍ଡ ବାହାରେ । ଦଣ୍ଡର ଅଗରେ ଫୁଲ ପେନ୍ଥା ହୋଇ ବାହାରେ । ଏହାର ମୂଳ ମୁଥାଠାରୁ ବଡ଼ ଓ ସୁଗନ୍ଧ । ଏହା ଅନୂପ ପ୍ରଦେଶ ବା କମ୍ପ ଆର୍ଦ୍ର ଭୂମିରେ ଜନ୍ମେ । ଭେଙ୍ଗ ଅପେକ୍ଷା ପତ୍ର ଛୋଟ । ମୂଳରେ ଗୋଟିଏ ମାତ୍ର ପତ୍ର ଥାଏ । ଏହାର

ହିଂ. ଭୁଇଁଗନ୍ଧଳବିମ୍
ଡା. ମୁଦ୍ରକାଠ, ଗରମୋଥା

ଗୁଣ ତିକ୍ତ, କଟୁ, କଷାୟ ଓ ଶୀତଳ । ଏହା କଫ, ପିତ୍ତଜ୍ୱର, ଅତିସାର, ଅରୁଚି, ତୃଷ୍ଣା, ଦାହ ଓ ଭ୍ରମ ନାଶକ । ]

**ନାଗରା**—ଦେ. ବି. ( ଅ. ନକ୍‌କାରା )—୧ । ମୃତ୍ତିକା ବା ଧାତୁ ନିର୍ମିତ ହାଣ୍ଡି ଆକାରର ଆନନ୍ଦ ବାଦ୍ୟବିଶେଷ; ଡିଣ୍ଡିମ—
Nāgarā 1. Kettle drum.
ନାଗାବା; ନାଗବା
**ନଗାଡ଼ା** ବଜନଘୋଷ ନାଗରା ବାଦନ ଉଚ୍ଛଳ—ଭଞ୍ଜ. ବୈଦେହୀଶବିଳାସ ।

( ନାଗେରା—ଅନ୍ୟରୂପ ) ୨ । ( ବଣିଆ ଶବ୍ଦ ) ବେଣୀ ଉପରେ ପିନ୍ଧାଯିବା ଓ ମୁଣ୍ଡର ଠିକ୍ ମଧସ୍ଥଳରେ ଥିବା, ଅଥଚ ପଛପାଖରୁ ଦେଖାଯିବା ଏକପ୍ରକାର ଅଳଙ୍କାର—
2, A kind of ornament of the head.

୩ । ନାଗରା ଜୋତା ( ଦେଖ )
3. Nāgarā jotā ( See )

**ନାଗରାଜ**—ସଂ. ବି. (ନାଗ=ସର୍ପ, ହସ୍ତୀ+ରାଜନ୍=ରାଜା; ୬ଷ୍ଠୀ ତତ୍)—
Nāgarāja ୧ । ବାସୁକି, ଅନନ୍ତ, ସର୍ପରାଜ—1. Bāsuki.

୨ । ଐରାବତ ହସ୍ତୀ —2. Indra's elephant

**ନାଗରାଜ ଗତେ**—ଦେ. (୧ । ନାଗରାଜ+ଗତି; ସମ୍ବୋଧନ; ୨ । ନାଗରା +ଜଗତେ )—୧ । ( ସଂ. ନାଗରାଜଗତିର ସମ୍ବୋଧନ ) ହେ ହସ୍ତୀ ପରି ଧୀର ମନ୍ଥରଗମନା ସ୍ତ୍ରୀ—
Nāgarāja gate 1 Oh lady having the gait of an excellent elephant.

୨ । ( ଓ. ନାଗରା+ଜଗତେ=ସଂସାରରେ ) ପୃଥିବୀରେ ଲୋକସମାଜରେ ନାଗରା ବା ଡିଣ୍ଡିମ ( ବାଜୁଅଛି )—
2, To matter is widely proclaimed everywhere.
(ନାଗରା ଜଗତେ—ଅନ୍ୟରୂପ)

ନାଗରାଜଗତେ ଅରେ ନାଗରାଜଗତେ
ମୁଁ ତୋର ବୋଲି ବାଜୁଛି ନାଗରା ଜଗତେ—କବିସୂର୍ଯ୍ୟ. ସଙ୍ଗୀତ ।

**ନାଗରା ଜୋତା**—ଦେ. ବି—ହିନ୍ଦୁସ୍ଥାନରେ ବ୍ୟବହୃତ ଏକପ୍ରକାର ଦେଶୀ ଜୋତା—A kind of country-made pump shoes used in North and North western India.
Nāgarā jotā
ନାଗରାଜୁତା
**ନାଗରାଜୁତା**

**ନାଗରା ଦେବା**—ଦେ କ୍ରି—୧ । କୌଣସି ବିଷୟ ଡିଣ୍ଡିମଦ୍ୱାରା ଘୋଷଣା କରିବା—1 To proclaim a matter by beat of drum.
Nāgarā debā
ନାଗବା ଦେଓୟା
**ନାଗଡ଼ା ଦେନା**

୨ । ( ଲକ୍ଷଣାର୍ଥ ) କୌଣସି ବିଷୟ ସର୍ବତ୍ର ପ୍ରଚାର କରିବା—2. ( figurative ) To publish a matter widely.

**ନାଗରା ବାଜିବା**—ଦେ. ବି. ( ଲକ୍ଷଣାର୍ଥ )—ସର୍ବତ୍ର ପ୍ରଚାରିତ ହେବା—
Nāgarā bājibā ( a matter ) Being published or known widely.
ନାଗବା ବାଜା
**ନଗାଡ଼ା ବଜନା** ମୁଁ ତୋର ବୋଲି ବାଜୁଛି ନାଗରା ଜଗତେ - କବିସୂର୍ଯ୍ୟ. ସଙ୍ଗୀତ ।

**ନାଗରାମ୍**—ପ୍ରାଦେ. ( ଗଞ୍ଜାମ ) ବି—ଅଳଙ୍କାରବିଶେଷ—
Nāgarām A kind of ornament.

**ନାଗରିକ**—ସଂ ବିଣ ପୁଂ. ( ନଗର + ଜାତାର୍ଥେ. ଇକ )—
Nāgarika ୧ । ନଗରବାସୀ—1. Living in a town; (ନାଗରିକା—ସ୍ତ୍ରୀ) residing in a town; townbred.
୨ । ନଗର ସମ୍ବନ୍ଧୀୟ—
2 Pertaining to a city, civic, urban.
୩ । ନଗର ରକ୍ଷୀ—3. Guarding a town.
ସଂ. ବି—୧ । ସହରସ୍ଥ ବ୍ୟକ୍ତି—
1 Citizen; townsman.
୨ । ସହରରୁ ଆଦାୟ କରାଯିବା ଶୁଳ୍କ—2 The toll levied from a town; town duty (Apte).
୩ । ନଗର ରକ୍ଷୀ ସେନା—3. Town police.

**ନାଗରୀ**—ସଂ. ବିଣ. ସ୍ତ୍ରୀ—ନଗରଜାତା—
Nāgari Town-bred (woman).
( ନାଗର—ପୁଂ ) ସଂ. ବି. ସ୍ତ୍ରୀ. ( ନାଗର + ସ୍ତ୍ରୀ. ଈ )—
୧ । ରସିକା ନାରୀ—1. A clever intriguing woman; beaux.
୨ । ପରପୁରୁଷାସକ୍ତା ସ୍ତ୍ରୀ—2. A woman who carries on clandestine love-intrigues.
୩ । ପ୍ରଣୟିନୀ—
3. One's beloved; sweet-heart ( woman ).
୪ । ସୁଝୁ; ସିଜୁ—4. Euphorbia
୫ । ଦେବନାଗର ଅକ୍ଷରର ପ୍ରକାର ଭେଦ—
5. A kind of Debanāgari script.

**ନାଗରୀଟ**—ସଂ. ବି. ପୁଂ. ( ନାଗରୀ=ଭ୍ରଷ୍ଟା ସ୍ତ୍ରୀ+ଅଟ୍ ଧାତୁ=ଗମନ କରିବା + ଅ. କର୍ତ୍ତାରେ )—୧ । ନାଗର—
Nāgarita
( ନାଗରାଟ—ଅନ୍ୟରୂପ ) 1. A libertine; a rake.
୨ । ଲମ୍ପଟ—2. A lecher.
ତୁମ୍ଭେ ରତ ମୋତେ ମାଗୁଛ ନାଗରୀଟ । କୃଷ୍ଣସିଂ. ମହାଭାରତ ଅଦି ।
୩ । ବିଟ—3. A catamite.
୪ । ଉପପତି—
4. An illicit lover; a paramour.
୫ । ବିବାହ ବିଷୟରେ ମଧ୍ୟସ୍ଥ; ଭଲଲୋକ—
5. A matchmaker ( Apte ).
ସଂ. ବିଣ—ନଗରଜାତ—
Town bred; produced in town.

**ନାଗରୁକ**—ସଂ. ବି—୧ । ସିନ୍ଦୂର (ଶବ୍ଦ ରତ୍ନାବଳୀ)—
Nāgaruka 1. Vermillion; red lead.
୨ । ନାରଙ୍ଗ ( ଦେଖ )—
2. Nāranga ( Apte ) ( See )

**ନାଗ ରେଣୁ**—ସଂ. ବି—ସୀସକ ଜାତ ସିନ୍ଦୂର (ରାଜ ନିର୍ଘଣ୍ଟ)—
Nāga renu Vermillion; red lead.

**ନାଗରେୟକ**—ସଂ. ବିଣ. ( ନଗର + ଜାତାର୍ଥେ + କ ଯୋଗ; ଏୟ ଆଗମ)—୧ । ନଗର ସମ୍ବନ୍ଧୀୟ—
Nāgareyaka
1. Municipal; relating to a town.
୨ । ନାଗରକ; ନଗରବାସୀ—2. Town-bred.

**ନାଗରୋତ୍ଥା**—ସଂ ବି-- ନାଗରମୁଥା—
Nāgarotthā Cyperus Scariobus.

**ନାଗର୍ଯ୍ୟ**—ସଂ ବି. ( ନାଗର + ଭାବାର୍ଥେ. ଯ )—ଚତୁରତା—
Nāgarjya Cleverness; shrewdness ( Apte)

**ନାଗଲ ଚଉଠୀ**—ଦେ. ବି. ( ସଂ. ନାଗ ଚତୁର୍ଥୀ )—
Nāgala chaturthi ନାଗ ଚତୁର୍ଥୀ ( ଦେଖ )
ନାଗଲ ଚଉଠି } ଅନ୍ୟରୂପ Nāga chaturthi ( See )
ନାଗୁଲ ଚଉଠି }

**ନାଗ ଲତା**—ସଂ ବି. ( ନାଗ + ଲତା )—
Nāga latā ୧ । ପାନଲତା—1. Betel creeper.
୨ । ଉପସ୍ଥ; ଲିଙ୍ଗ—2. Penis.

**ନାଗ ଲୋକ**—ସଂ. ବି. ( ନାଗ + ଲୋକ; ୬ଷ୍ଠୀ ତତ୍ )—
Nāga loka ପାତାଳ; ରସାତଳ—The nether regions; the mythological abode of the serpents
( ଯଥା—ନାଗ ତଳେ ନୋଟ ଦେଖ । )

**ନାଗ ସମ୍ଭବ**—ସଂ. ବି. ( ନାଗ+ସମ୍ଭବ=ଉତ୍ପତ୍ତି, ଜନ୍ମ, ବହୁବ୍ରୀହି )—
Nāga sambhaba ସୀସକ ଜାତ ସିନ୍ଦୂର—
(ନାଗସିନ୍ଦୂର—ଅନ୍ୟରୂପ) Red lead; vermillion.

**ନାଗ ସାପ**—ଦେ ବି. (ନାଗ + ସର୍ପ )—
Nāga sāpa ଗୋଖର ସାପ—
ଗୋଖୁରା, କେଅଟିଆ ସାପ Cobra-de-capillo.
गहुमन
[ ଦ୍ର—ନାଗ ସାପର ମାଂସକୁ ଶୁଖାଇ ଚୂର୍ଣ୍ଣ କରି ସେବନ କଲେ କୁଷ୍ଠ ରୋଗ ନିବାରିତ ହୁଏ—ହରେକୃଷ୍ଣ ଦ୍ରବ୍ୟଗୁଣ । ]

**ନାଗସାହ୍ୱୟ**—ସଂ. ବି. (ବହୁବ୍ରୀହି; ନାଗସ=ହସ୍ତୀ + ଅହ୍ୱୟ=ନାମ)—
Nāgasāhwaya ହସ୍ତିନାପୁର—Hastina, the capital of ancient India.

**ନାଗସୁଗନ୍ଧା**—ସଂ. ବି— ନାକୁଲୀ ( ଦେଖ )
Nāgasugandhā Nākuli ( See )

**ନାଗହଂସ**—ଦେ. ବି—ଶିକୁଳିକୁ ଅଟକାଇବା ନିମନ୍ତେ ଚଉକାଠରେ ଲଗା ଯାଇଥିବା ଅର୍ଦ୍ଧବୃତ୍ତାକାର ଲୌହ ବଳୟ ବା ଝୋଉରିଆ; କୁଣ୍ଡୁଣ୍ଡା—A semi-circular hook or hasp attached to a door-chain, staple; loop for a door-chain.
Nāgahamsa
हाँसकुल
कचड़ा

**ନାଗା**—ଦେ. ବି. ( ସଂ. ନଗ୍ନ )—
Nāgā ୧ । ଉଲଙ୍ଗ ସନ୍ନ୍ୟାସୀ ସମ୍ପ୍ରଦାୟବିଶେଷ—
नांगा 1. A class of anchorites who wear no clothing.
नागा
୨ । ପୁରୀରେ ଦଶହରା ସମୟରେ ଗୋସାଣୀ ଯାତରେ ନାନାବିଧ ସର୍ପ ଓ ବିବିଧ ଅସ୍ତ୍ର ଭୂଷିତ ଶାର ଓ ସନ୍ନ୍ୟାସୀ ବେଶଧାରୀ ବ୍ୟକ୍ତି—2. Persons armed with various weapons and serpents, accompanying the Gosāni jātrā procession in Puri town during the Durgā pūjā festival.

୩ । ଆସାମର ପର୍ବତବିଶେଷ—
3. The Nāgā hills in Assam
୪ । ନାଗା ପର୍ବତବାସୀ ପାର୍ବତ୍ୟ ଜାତିବିଶେଷ –
4 Name of a wild tribe inhabiting the Nāgā hills.
୫ । ନାଗା ଜାତିର କଥିତ ଭାଷା · 4. The spoken language of the Nāgā tribe
ପ୍ରାଦେ. (ଗଡ଼ଜାତ) ବି—ହସ୍ତୀମାନଙ୍କର ରୋଗବିଶେଷ —
A kind of disease of the elephants
[ ଦ୍ର — ଏହି ରୋଗ ହେଲେ ହାତୀ ମାଟି ଖାଆନ୍ତି । ]

**ନାଗାଖ୍ୟ**—ସଂ. ବି. (ନାଗ + ଆଖ୍ୟା; ବହୁବ୍ରୀହି)— ନାଗକେଶର (ଦେଖ)
Nāgākhya Nāgakesara (See)

**ନାଗାଙ୍ଗ**—ସଂ. ବି.—ହସ୍ତିନାପୁର—
Nāgānga A name of the old Delhi.

**ନାଗାଙ୍ଗନା** — ସ ବି· (ନାଗ + ଅଙ୍ଗନା) — ୧ । ହସ୍ତିନୀ—
Nāgāngana 1. A female elephant.
୨ । ହାତୀର ଶୁଣ୍ଢ—2 The proboscis of an elephant (Apte).
୩ । ନାଗ ଜାତୀୟ ସ୍ତ୍ରୀ (ନାଗ ଚଳେ ନୋଟ ଦେଖ)—
3. A female of the Nāga tribe.

**ନାଗାଣି** -- ଗ୍ରା. ବିଣ —ବର୍ଷକ ପାଇଁ ନିଯୁକ୍ତ (ଭୃତ୍ୟ)—
Nāgāni (servant) Employed for a year.
ନାଗ ମହୀନା (ଯଥା—ମୁଁ ମୂଲିଆ ଗୋଟିଏ ନାଗାଣି କରିଛି ।)
**ନାଗୁଆ** ଗ୍ରା. ବି.—୧ । ଲଗେ ଲଗେ କରି ଯିବା କର୍ମ—
ନାଗାଡ, ଲାଗାଡ଼ 1. A continuous work.
**ଲଗାତାର** ୨ । କ୍ରମ; ଅଭଙ୍ଗ କ୍ରମ—
2. Continuity; unbroken series.

**ନାଗାଧିପ** — ସଂ. ବି·—( ନାଗ + ଅଧିପ; ୬ଷ୍ଠୀ ତତ୍ )— ୧ । ନାଗରାଜ; ବାସୁକି—1. Bāsuki.
Nāgādhipa
(ନାଗାଧିପତି—ଅନ୍ୟରୂପ) ୨ । ଐରାବତ—
2. Indra's elephant.

**ନାଗାନନ୍ଦ** —ସ. ବି. (ନାମ)—ଶ୍ରୀହର୍ଷଙ୍କ ରଚିତ ସଂସ୍କୃତ ନାଟକବିଶେଷ—
Nāgānanda The title of a Sanscrit drama by Sriharsha.

**ନାଗାନ୍ତକ**—ସ. ବି.—(ନାଗ+ଅନ୍ତକ=ନାଶକ; ୬ଷ୍ଠୀ ତତ୍)—
Nāgāntaka ୧ । ଗରୁଡ଼—1. Garurda.
ନାଗାରାତି } —ଅନ୍ୟରୂପ ୨ । ମୟୂର—3. Peacock.
ନାଗାଶନ ୪ । ବନ୍ଧ୍ୟା କର୍କୋଟକୀ; ଅଶାଢୁଆ—
ନାଗାରି 4. Memordica Dioecica-mele (fruit and creeper).

**ନାଗାନ୍ତକ ବିଦ୍ୟା**—ଦେ. ବି.—(ନାଗାର୍ଜ୍ଜୁନଙ୍କଦ୍ୱାରା ପ୍ରଥମେ ପ୍ରବର୍ତ୍ତିତ ହୋଇଥିବାରୁ )—୧ । ଗୁଣି ଗାରେଡ଼ି;
Nāgāntaka bidyā
(ନାଗାନ୍ତ ବିଦ୍ୟା— ଅନ୍ୟରୂପ) ମନ୍ତ୍ର ଯନ୍ତ୍ର—
1. Black magic; charms.
୨ । ଧାତୁର ମାରଣ ଜାରଣବିଦ୍ୟା; ହିନ୍ଦୁ ରସାୟନ ତନ୍ତ୍ର—
2. Hindu alchemy
୩ । ସର୍ପ ବଶୀକରଣ ବିଦ୍ୟା—3 Snake-charm.

**ନାଗାବଳୀ**—ପ୍ରାଦେ (ଗଞ୍ଜାମ) ବି (ନାମ)—ଏକ ନଦୀର ନାମ—
Nāgābali The name of a river.

**ନାଗାରି**—ଦେ. ବି—୧ । ବନ୍ୟ ତୃଣବିଶେଷ—
Nāgāri 1 A kind of wild grass.
[ ଦ୍ର—ଏହା ଧଳାଚିତା ଗୁଳ୍ମପତ୍ର; ଫୁଲ ଧଳା; ଏ ଗଛ ନିକଟରେ ସାପ ରହି ପାରନ୍ତି ନାହିଁ । ]
୨ । ନାଗାନ୍ତକ ( ଦେଖ )—2 Nāgāntaka (See)

**ନାଗାର୍ଜ୍ଜୁନ**—ଦେ. ବି (ନାମ)—ବୌଦ୍ଧ ମହାଯାନ ସମ୍ପ୍ରଦାୟର ପ୍ରବର୍ତ୍ତକ ମହାପୁରୁଷବିଶେଷ—Name of a Buddhist reformer.
Nāgārjuna
[ଦ୍ର--ଏ ବିଦର୍ଭ ଦେଶୀୟ ବ୍ରାହ୍ମଣ ବଂଶରେ ଜନ୍ମଗ୍ରହଣ କରିଥିଲେ । ଏ ଖ୍ରୀଷ୍ଟପୂର୍ବ ୧୦୦୦ରୁ ୨୫୦ ବର୍ଷ ମଧ୍ୟରେ ଜୀବିତ ଥିଲେ । ଜ୍ୟୋତିଷ ଗଣନା ଅନୁସାରେ ଏହାଙ୍କର ପରମାୟୁ ୭ବର୍ଷ ଥିବାର ଜଣାଯିବାରୁ ଏହାଙ୍କ ପିତା ମାତା ଦୁଃଖ ହୋଇ ଏହାଙ୍କୁ ନାଳନ୍ଦା ବିଶ୍ୱବିଦ୍ୟାଳୟରେ ଛାଡ଼ିଥିଲେ । ତହିଁ ଏ ବହୁଦିନ ବଞ୍ଚିଲେ । ହିନ୍ଦୁ ରସାୟନଶାସ୍ତ୍ର— ଗୁଣୀ, ମନ୍ତ୍ରଯନ୍ତ୍ର, ଭୁଟୁକା, ଧାତୁର ଜାରଣ, ମାରଣ, ଓ ବୌଦ୍ଧତନ୍ତ୍ର ମତରେ ସାଧନା ଏ ପ୍ରବର୍ତ୍ତାଇ ଥିଲେ ଓ ବୌଦ୍ଧ ମତର ପ୍ରଚାର କରିଥିଲେ । ଏ ବୌଦ୍ଧ ଦର୍ଶନର ପ୍ରଥମ ପ୍ରଣେତା । ଏହାଙ୍କ ପ୍ରଣୀତ ବୌଦ୍ଧ ଦର୍ଶନର ନାମ, ମାଧ୍ୟମିକ ସୂତ୍ର । ଏ ମଧ୍ୟ ଅନେକଗୁଡ଼ିଏ ତନ୍ତ୍ର ଗ୍ରନ୍ଥ ପ୍ରଣୟନ କରିଥିଲେ—ହି. ଶବ୍ଦସାଗର ।]

**ନାଗାଲାବୁ**—ସ ବି --କୁମ୍ଭ ତୁମ୍ବୀ; ବଡ଼ ଲାଉ—
Nāgālābu A kind of circular big gourd.

**ନାଗାଶନ** —ସ. ବି ( ୬ଷ୍ଠୀ ବା ଉପପଦ ତତ୍ ବା ବହୁବ୍ରୀହି;ନାଗ=ସର୍ପ +ଅଶନ=ଭକ୍ଷକ, ଭକ୍ଷଣ)—ଗରୁଡ଼ ( ଦେଖ )
Nāgāsana Garurda ( See )

**ନାଗାହ୍ୱ**—ସ. ବି ( ବହୁବ୍ରୀହି; ନାଗ=ହସ୍ତୀ + ଆହ୍ୱା=ନାମ )—
Nāgāhwa ହସ୍ତିନାପୁର—Hastinā, the ancient capital of India.
(ନାଗାହ୍ୱୟ— ଅନ୍ୟରୂପ)

**ନାଗାହ୍ୱା**—ସ. ବି (ବୈଦ୍ୟକ)—ଲକ୍ଷଣାମୂଳ ( ଦେଖ )
Nāgāhwā Lakshanā mūla ( See )

**ନାଗିନୀ**—ସ. ବି. ସ୍ତ୍ରୀ (ନାଗିନ୍ + ସ୍ତ୍ରୀ ଈ)—୧ । ନାଗଦନ୍ତୀ ( ଦେଖ )
Nāgini 1 Nāgadanti ( See )
୨ । ତାମ୍ବୂଲ; ପାନ—2. Betel plant; piper betel.
୩ । ଦୁର୍ଗା—3. A name of Goddess Durgā.
୪ । (ନାଗ + ଈ) ନାଗୁଣୀ—4. A female serpent.

**ନାଗିବା**—ଗ୍ରା. କ୍ରି—ଲାଗିବା ( ଦେଖ )
Nāgibā Lāgibā ( See )

**ନାଗି ହେବା** – ଗ୍ରା. କ୍ରି —ଲାଗି ହେବା ( ଦେଖ )
Nāgi hebā Lāgi hebā ( See )

| ୧ | ଇ | ଊ | ଋ,ଌ | ´ | | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଘ,ଓ | ଙ୍କ | ଇସ୍ତ | ଉଥ | ଞ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ୠ | ଲ | ଙ୍ଗ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ | ଇଅ | ଈ | ନ୍ |

ନାଗୀ—ସଂ. ବି—୧ । (ନାଗ + ଅସ୍ତ୍ୟର୍ଥେ ଇନ୍; ୧ମା. ୧ବ.)
Nāgi (ଫଣୀଭୂଷଣ) ଶିବ—1. Śiba.
୨ । ସ୍ତ୍ରୀ (ନାଗ + ଈ) ନାଗପତ୍ନୀ; ନାଗୁଣୀ—
2 A female serpent
୩ । ହସ୍ତିନୀ—3. A female elephant.

ନାଗୁଆ—ଗ୍ରା. ବିଣ—୧ । ନିତ୍ୟ ଦିଆ ଯାଉଥିବା ବା ନିଆ ଯାଉଥିବା
Nāguā (ପଣ୍ୟ ଦ୍ରବ୍ୟାଦି)—1. (commodities) Which
ବନ୍ଦେଜ୍ are taken or supplied regularly
ଲଗାର, ବଁଧେଜ every day.
୨ । ନିତ୍ୟ କୌଣସି ପଣ୍ୟ ଦ୍ରବ୍ୟ ଦେଉଥିବା ବା ନେଉଥିବା
(ବ୍ୟକ୍ତି)—2. (a person) Who supplies or takes any article every day.
୩ । କୌଣସି କାର୍ଯ୍ୟକୁ ନିତ୍ୟ କରୁଥିବା ବା କରାଉଥିବା
(ବ୍ୟକ୍ତି)—3 (a person) Who uses to do any work every day.
ଗ୍ରା. ବି—କୌଣସି ବ୍ୟବହାର୍ଯ୍ୟ ପଣ୍ୟଦ୍ରବ୍ୟ (ଦୁଧ, ଦହି, ପରିବା)
କୌଣସି ବ୍ୟକ୍ତିଙ୍କୁ ପ୍ରତିଦିନ ଯୋଗାଇବାର ବ୍ୟବସ୍ଥା—
An arrangement for the regular daily supply of any commodity to a person.

ନାଗୁଣୀ—ଦେ. ବି. ସ୍ତ୍ରୀ (ସଂ. ନାଗୀ, ନାଗିନୀ)—ନାଗ ସ୍ତ୍ରୀ—
Nāguṇi A female serpent.
ନାଗିନୀ ହେମନ୍ତୁଁ ବାହାର କ କାଳୀ ନାଗୁଣୀ—ବିଶ୍ୱନାଥ ବଡ଼ଜେନାରାମାୟଣ ।
ନାଗୀନ

ନାଗୁଲ—ଦେ. ବି—କର୍ଣ୍ଣର ନାଗାକୃତି ଅଳଙ୍କାର—
Nāgula An ear-ring shaped like a serpent

ନାଗେନ୍ଦ୍ର—ସଂ. ବି (ନାଗ + ଇନ୍ଦ୍ର; ୬ଷ୍ଠୀ ତତ୍)—ନାଗରାଜ (ଦେଖ)
Nāgendra Nāgarāja (See)
(ନାଗେଶ, ନାଗେଶ୍ୱର—ଅନ୍ୟରୂପ

ନାଗେଶର—ଦେ ବି (ସଂ. ନାଗକେଶର)—୧ । ନାଗକେଶର (ଦେଖ)
Nāgeśara Nāgakeśara (See).
(ନାଗେଶ୍ୱର—ଅନ୍ୟରୂପ) ୨ । ସାପୁଆକେଳାମାନେ ଯେଉଁ ସୁସ୍ୱର
ନାଗେଶର ବଂଶୀବାଦ୍ୟ ବଜାଇ ସାପଙ୍କୁ ଭୋଳାନ୍ତି ଓ ଗାତରୁ ସାପ
ନାଗକେଶର ବାହାର କରାଇ ଆଣନ୍ତି—
A kind of flute blown by snake charmers and snake catchers.
ତେ—ନାଗକେଶରଲୁ ସଂ. ବି—୧ । (ନାଗ = ହସ୍ତୀ + ଈଶ୍ୱର = ଶ୍ରେଷ୍ଠ) ବଡ଼ ହାତୀ—1. A big elephant.
୨ । ସର୍ପଶ୍ରେଷ୍ଠ—2. The chief of serpents
( ଦେଶଜ ୨ୟ ଅର୍ଥ ଓ ସଂସ୍କୃତ ପ୍ରଥମ ଅର୍ଥର ଶ୍ଳିଷ୍ଟ ପ୍ରୟୋଗ । ଯଥା—
ନହେ ଅକାସ ସର, ମାନସ ସରେବର, ଶୁଭଇ ନାଗେଶ୍ୱର ରବ ।
କବିସୂର୍ଯ୍ୟ. ସର୍ବଜଣାଣ ।)

ନାଗେଶର—ଦେ. ବି ( ସଂ. ନାଗ + ଈଶ୍ୱର )—
Nāgeśarı ସାପୁଆକେଳାମାନେ ବଜାଇବାର
(ନାଗଶର, ନାଗେଶ୍ୱର—ଅନ୍ୟରୂପ) ଏକପ୍ରକାର ପେଁଏକାଳି—
A kind of flute blown by snake charmers
[ଦ୍ର—କେଳାମାନେ ଏହାକୁ ବଜାଇଲେ ନାଗମାନେ ଗାତରୁ ବାହାରନ୍ତି ଓ ଫଣା ଟେକି ଏହା ଶୁଣନ୍ତି । ଏହାର ମୁହଁ ଓ ଅଗରେ ନଳ ଥାଏ ଓ ମଝିରେ ଗୋଟିଏ ଗୋଲାକାର ଲାଉ ଥାଏ । ]

ନାଗେଶ(ଶ୍ୱ)ରିଆ କେଳା—ଦେ. ବି—ସାପୁଆ କେଳା (ଦେଖ)
Nāgeśa(śwa)riā kelā Sāpuā kelā (See).

ନାଗୋଦର—ସଂ. ବି—୧ । ଛାତି ଆବରଣ କରିବା ସାଞ୍ଜୁ—
Nāgodara 1. A breastplate (Apte).
୨ । ଏକପ୍ରକାର ଗର୍ଭୋପଦ୍ରବ; ଗର୍ଭିଣୀର ରୋଗବିଶେଷ—
2 A peculiar disease of pregnancy ( Apte ).

ନାଙ୍କରା—ପ୍ରାଦେ (ବାଲେଶ୍ୱର) ବିଣ—ନାକରା (ଦେଖ)
Nāṅkarā Nākarā (See).

ନାଙ୍ଗ(ଙ୍ଗୁ)ଡ଼େଇବା (ଇତ୍ୟାଦି)—ଗ୍ରା. କ୍ରି—ଲାଙ୍ଗୁଡ଼େଇବା ଇତ୍ୟାଦି
Nāṅg(ṅgu)rḍeibā (etc) ( ଦେଖ )—Lāṅgurḍeibā etc (See .

ନାଙ୍ଗୁଡ଼ (ଇତ୍ୟାଦି)—ଗ୍ରା. ବି—ଲାଙ୍ଗୁଡ଼ ଇତ୍ୟାଦି (ଦେଖ)
Nāṅgurḍa (etc) Lāṅgurḍa etc (See).

ନାଙ୍ଗୁଡ଼ା (ଇତ୍ୟାଦି)—ଗ୍ରା. ବି—ଲାଙ୍ଗୁଡ଼ା ଇତ୍ୟାଦି (ଦେଖ)
Nāṅgurḍā (etc) Lāṅgurḍā etc (See).

ନାଙ୍ଗୁଡ଼ି—ଗ୍ରା. ବିଣ—ଲୁଙ୍ଗୁଡ଼ା (ଦେଖ)
Nāṅgurḍi Luṅgurḍā (See).
(ନାଙ୍ଗୁରୁ—ଅନ୍ୟରୂପ)

ନାଚ୍ ନୁଚା—ଦେ. ବି (ସହଚର)—ନାଚ ତମାସା—
Nāch-nuchā Nācha tamāsā.
ନାଚଟାଚ ନାଚନଚ

ନାଚ—ଦେ. ବି (ସଂ. ନୃତ୍ୟ; ପ୍ରା. ନଚ୍ଚ, ନାଚ)—ନୃତ୍ୟ, ନାଟ—
Nācha Dancing.
ନାଚ ନାଚ

ନାଚକରା—ଦେ. ବିଣ. (ସଂ. ନୃତ୍ୟକର)—ନର୍ତ୍ତନକାରୀ; ନାଚୁଆ—
Nāchakarā Dancer.
ନାଚଓୟାଲା ନଚୁଆ

ନାଚ କୁଦ—ଦେ. ବି. (ସହଚର ଶବ୍ଦ)(ସଂ ନୃତ୍ୟ + କୁର୍ଦ୍ଦନ)—ନାଚକୁଦା
Nāchakuda (ଦେଖ)—Nāchakudā (See)
ନାଚକୁଦ କ କଲେ ପାଣି ଗୋଳିଆ ହୁଏ ?
ଫକୀରମୋହନ. ଛମାଣ ଅଠଗୁଣ୍ଠ ।

ନାଚକୁଦା—ଦେ. ବି (ସହଚର ଶବ୍ଦ) (ସଂ ନୃତ୍ୟ + କୁର୍ଦ୍ଦନ)—
Nāchakudā ନାଚିବା ପରି ଡେଇଁବା; ଲମ୍ଫ ଝମ୍ପ—
ନାଚକୁଁଦା Skipping and capering;
ନାଚନା କୁଦନା dancing and frisking

ସାଧାରଣ ଲୋକେ ଅପର ପୃଷ୍ଠାରେ ଧୃତ ୧ ଚଲ୍ତି ଅକ୍ଷର ଓ ମାତ୍ରା ଏବଂ ୨ ଚଲ୍ତି ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚଲ୍ତି ର କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଚଲ୍ତିର ବଦଳରେ ୨ ବା ୧ ଚଲ୍ତିର ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— ଗାଈ' ନ ମିଳିଲେ 'ଗାଈ' ଖୋଜିବେ, କୁଥ ନ ମିଳିଲେ 'କୁଥ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ; ଅର୍ଘ୍ୟ ନ ପାଇଲେ 'ଅର୍ଘ୍ୟ' ଦେଖିବେ, 'ଅଲବତ୍' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

**ନାଚଖାନା** —ଦେ. ବି.—ସଂ. ନୃତ୍ୟ; ଫା. ଖାନା)— ୧ । ନୃତ୍ୟଶାଳା—
Nāchakhānā 1 Ball-room; a room where dancing takes place.
ନାଚଘର } —ଅନ୍ୟରୂପ
ନାଚମଣ୍ଡଳ }
୨ । ନୃତ୍ୟଶାଳାର ଆମୋଦପ୍ରମୋଦ— 2. Festive party where dancing is performed.
କେତେଥର ହେଉଅଛି ନାଚଖାନା । ରାଧାନାଥ, ଦରବାର ।

**ନାଚ ଖେଳ** —ଦେ. ବି. (ସଂ. ନର୍ତ୍ତନ+ଖେଳ)—ନର୍ତ୍ତନ ଓ କ୍ରୀଡ଼ା କୌତୁକ—Dancing and sport.
Nācha khela
ନାଚାଖେଲା **नाचना खेलना**

**ନାଚ ଗାଉଣା** —ଦେ. ବି. (ସଂ. ନୃତ୍ୟ ଓ ଗାନ; ଅନୁକାର ଶବ୍ଦ)—
Nācha gāuṇā ନୃତ୍ୟ ସହ ଗୀତ—Musical performance consisting of singing and dancing.
ନାଚ ଗାଓନା
**नाचना गाना**

**ନାଚଣି** —ଦେ. ବି.—(ସଂ. ନର୍ତ୍ତନ) - ୧ । ନୃତ୍ୟ; ନର୍ତ୍ତନ—
Nāchaṇi 1. Dancing.
ନାଚମ ୨ । ସ୍ତ୍ରୀ.—ନର୍ତ୍ତକୀ— 2. A female dancer.
**नाचना**
ନାଚନୀ **नाचनेवाली, नटी**

**ନାଚଣି ପକ୍ଷି(କ୍ଷି)** —ଦେ. ବି.—ତନ୍ତ୍ରର ଯନ୍ତ୍ରବିଶେଷ, ନଳବନ୍ଧ ଦଣ୍ଡ ଆକାରର କାଠି, ଯାହାର ଦୁଇ ପ୍ରାନ୍ତରେ ବଅସୂତା ଓହ୍ଲୋଇ ଯାଇ ଥାଏ—
Nāchaṇi pakhi (kshi)
ନାଚନୀ ପାଖୀ
ନାଚୁଣି ପକ୍ଷି } —ଅନ୍ୟରୂପ
ନାଚେଣି ପକ୍ଷି }
A stick from the two ends of which threads hang (a part of weaver's equipment).

**ନାଚଣୀ** —ଦେ. ବି. ସ୍ତ୍ରୀ—(ସଂ. ନର୍ତ୍ତକୀ)—୧ । ନର୍ତ୍ତକୀ—
Nāchaṇi 1. Dancing woman
ନାଚୁଣୀ } —ଅନ୍ୟରୂପ
ନାଚେଣୀ }
୨ । ନାଚଣି ପକ୍ଷି (ଦେଖ) 2. Nāchaṇi pakhi (See)
ନାଚନୀ ୩ । ଆଖି ତୋଳାର ପୁଅ— 3. The pupil of the eye.
**नाचवाली**
ପ୍ରାଦେ. (ଗଞ୍ଜାମ) ବି.—ମାକଡ଼ି (୨) (ଦେଖ) Mākirdi (2) (See)

**ନାଚ ତମାସା** —ଦେ. ବି. (ସଂ. ନୃତ୍ୟ ଓ ଅ. ତମାସା) ଏକାର୍ଥବୋଧକ ସହଚର ଶବ୍ଦ)—୧ । ନୃତ୍ୟଗୀତାଦି; ନାଚ ତାମସା—1. Dance and music.
Nācha tamāsā
ନାଚ ତମାସା
**नाच तमासा** ୨ । ଆମୋଦ ପ୍ରମୋଦ—2. Revelry.
(ନାଚତାମାସା, ନାଚତମାସା, ନାଚରଙ୍ଗ—ଅନ୍ୟରୂପ)

**ନାଚନ** —ଦେ. ବିଣ.—ନୃତ୍ୟ ସମ୍ବନ୍ଧୀୟ—
Nāchana Pertaining to dancing.
ଦେ. ବି.—ନାଚିବାର ବେତନ—
Wages received for dancing.

**ନାଚବାଲ୍** —ଦେ. ବି. ପୁଂ—(ପ୍ରା. ନଚ୍ଚ+ଫା ପ୍ରତ୍ୟୟ ୱାଲ୍)—ନର୍ତ୍ତକ; ନାଚୁଆ—Dancer
Nāchabāḷā
ନାଚଓଲା **नाचवाला**
(ନାଚବୁଅଲ୍—ଅନ୍ୟରୂପ) (ନାଚବାଲି, ନାଚବୁଅଲି—ସ୍ତ୍ରୀ)

**ନାଚାର** —ଦେ. ବିଣ. ( ଫା. ଲାଚାର୍; ନାଚାର୍ )—
Nāchāra ୧ । ନିରୁପାୟ, ଅନନ୍ୟୋପାୟ—
ନାଚାବ 1. Having no other alternative or resource, resourceless.
**लाचार, नाचार**
(ନାଚୁସ—ବ) ୨ । ନିରାଶ୍ରୟ—2. Helpless.
୩ । ନିରାଶ—3. Hopeless.

**ନାଚି କୁଦି ହେବା** —ଦେ. କ୍ରି—ଲମ୍ଫ ଝମ୍ପ କରିବା—
Nāchi kudi hebā To frisk or caper about.
ନାଚା କୁଦା **नाचना कुदना**
(ନାଚିବା କୁଦିବା, ନାଚିବା ଡେଇଁବା—ଅନ୍ୟରୂପ)

**ନାଚିକେତାଃ** - ସଂ. ବି. ( ନାଚିକେତସ୍, ୧ମା. ୧ବ )—
Nāchiketāḥ ୧ । ଅଗ୍ନି—1. Fire.
୨ । ଋଷିବିଶେଷ, ଗୌତମଙ୍କ ପୁତ୍ର—
2 Name of a sage.

**ନାଚିବା** —ଦେ. କ୍ରି. (ସଂ. ନୃତ୍ ଧାତୁ, ପ୍ରା. ନଚ୍ଚ ଧାତୁ )—
Nāchibā ୧ । ନୃତ୍ୟ କରିବା, ତାଲ,ମାନ ଓ ବାଦ୍ୟ ଅନୁସାରେ ପଦକ୍ଷେପ କରିବା—1. To dance.
ନାଚା
**नाचना**
ନାଚିଲେ ସଖୀ ମଧ୍ୟରେ ଉଲ୍ଲ ହୋଇ । କୃଷ୍ଣସିଂହ, ମହାଭାରତ ବନ ।
[ନାଚ୍(ଚେ)ଇବା—ଣିଜନ୍ତରୂପ]
୨ । ଲମ୍ଫଝମ୍ପ କରିବା—2. To caper about; to jump or frisk about.
କେତେ ଲୋକେ ସେ ସୈନ୍ୟେ ନାଚ କଲ୍ଲାଇଲେ ।
କୃଷ୍ଣସିଂହ, ମହାଭାରତ ସଭା ।
୩ । ରାଗରେ କମ୍ପିବା—3. To shake with anger.
୪ । ସ୍ପନ୍ଦିତ ହେବା—4. To vibrate; to oscilate; to throb.
କ୍ଷଣକେ ନାଚ ଉଠିବ ଜୀବନ-ଶୋଣିତ । ମଧୁସୂଦନ, ଉତ୍କଳ ଗାଥା ।
୫ । ( ଲକ୍ଷଣାର୍ଥ ) ସର୍ବଦା କଳ୍ପନା ଚକ୍ଷୁ ଆଗରେ ଉପସ୍ଥିତ ହେବା— 5 ( figurative ) To constantly appear before a person's fancy, to dance before the mind's eye.
( ଯଥା—ଜଗବନ୍ଧୁ ମୋତେ ଛାଡ଼ି ଏଠାରୁ ଯିବା ଦିନଠାରୁ ତା ରୂପ ମୋ ଆଖି ଆଗରେ ନାଚୁଛି । )
[ଦ୍ର—ନାଚିବା କ୍ରିୟା ସଙ୍ଗେ କୁଦିବା, ଖେଳିବା, ଡେଇଁବ କ୍ରିୟା ସହଚରରୂପେ ବ୍ୟବହୃତ ହୁଏ । ନାଚିବା କ୍ରିୟାର ଅସମାପିକାରୂପ ସଙ୍ଗେ ଉଠିବା, ଯିବା କ୍ରିୟାର ସମାପିକାରୂପ ଯୁକ୍ତ ହୁଏ । ]

**ନାଚିବା କୁଦିବା** —ଦେ. କ୍ରି. ( ସହଚର )—ନାଚିକୁଦି ହେବା—
Nāchibā kudibā To frisk or caper about.
ନାଚାକୁଁଦା **नाचना कुदना**

ନାଚଲ୍ଲ ଲୋକକୁ ଲାଜ ନାହିଁ ଦେଖିଲା ଲୋକକୁ ଲାଜ — ଢଗ (ନ୍ୟାୟ)—
Nāchilā lokaku lāja nāhiñ dekhilā lokaku lāja
ନାଚନ୍ତୀବ ନାହିଁ ଲାଜ ଦେଖନ୍ତୀବ ଲାଜ — ଯେଉଁ ସ୍ଥଳରେ କୌଣସି
ନାଚ୍ନେକୋ ଲାଜନ ଦେଖେକୋ ଲାଜ — ଲଜ୍ଜାଜନକ କାର୍ଯ୍ୟ କରିବା ବ୍ୟକ୍ତି ଉକ୍ତ ଲଜ୍ଜାଜନକ କାର୍ଯ୍ୟ କରିବାକୁ ଲଜ୍ଜା ବୋଧ ନ କରେ, କିନ୍ତୁ ଦେଖଣାହାରୀ ତାହା ଦେଖି ଲଜ୍ଜିତ ହୁଏ, ସେ ସ୍ଥଳରେ ଏ ଢଗ କୁହାଯାଏ, ଏହ୍ଯପରି, ନାଚିଲା ଲୋକକୁ ଲାଜ ନାହିଁ ଦେଖିଲା ଲୋକକୁ ଲାଜ—
A proverb uttered when a person doing an act does not feel shame for it but persons who witness it feel ashamed.

ନାଛ - ଦେ ବି—୧ । ( ସଂ. ଲକ୍ଷ୍ୟ ) ଲକ୍ଷ୍ୟଭେଦ କରିବା ପାଇଁ ବନ୍ଧୁକ
Nāchha — ଆଦି ଦାଗିବା—1. Firing of a gun by aiming
ଦାଗା ଲକ୍ଷ, ନିଶାନା — at a target.
ଦାଗ, ଛେଁକା — ୨ । ( ଲକ୍ଷ—ଛଡ଼ ) ତାତିଲା ଲୁହାଦ୍ୱାରା କୌଣସି
ଦାଗ — ଜୀବର ଚମଡ଼ାରେ ଦାଗ ଦେବା, ଚକ୍ଷ—2 Searing of the skin with a red hot iron.
ନସ୍ୟି ନସ — ୩ । ( ସଂ. ନସ୍ୟ ) ନାସ; ନସ୍ୟ—3. Snuff

ନାଛଦାନି—ଦେ. ବି. ( ସଂ. ନସ୍ୟଧାନୀ )—ନାସ ରଖିବା ଡିବା—
Nāchhadāni — Snuff box; a receptacle for snuff.
ନସ୍ୟଦାନ ନସଦାନୀ

ନାଛିବା—ଦେ. କ୍ରି. ( ସଂ. ଲକ୍ଷ୍ୟ )—୧ । ବନ୍ଧୁକ ମାରିବା—
Nāchhibā — 1. To fire a gun.
ବନ୍ଧୁକଦାଗା — ୨ । ବନ୍ଧୁକଦ୍ୱାରା ଲକ୍ଷ୍ୟଭେଦ କରିବା—
ବନ୍ଦୁକ ଚଲାନା — 2. To fire a gun at a target.
( ନାଛ ଦେବା—ଅନ୍ୟରୂପ )
ନିଶାନା କରନା — ୩ । ଲକ୍ଷ୍ୟ କରିବା; ଲକ୍ଷ କରିବା—
3. To aim at a target
ସାକ୍ଷାତ ଅନଙ୍ଗ ପ୍ରାୟେ ସୁକ୍ଷ୍ମ ବସ୍ତ୍ର
ଉଦ୍ଧ ଅନଙ୍ଗ କ ନାଛଇ ଧୂଳିସ୍ତ—ସୁଧାକାଥ, ନନ୍ଦକେଶ୍ୱର ।
ଦାଗା, ଛେଁକା — ୪ । ତାତିଲା ଲୁହା ଦ୍ୱାରା ଦେହରେ ଦାଗଦେବା—
ଦାଗନା — 4 To sear with a red hot iron.
ଲାଗାନ — ୫ । ପ୍ରଦୀପକୁ ଲଗାଇବା ବା ଜଳାଇବା—
ସୁଲଗାନା — 5. To light a lamp.
୬ । ବାଣ ପ୍ରଭୃତିରେ ଅଗ୍ନି ସଂଯୋଗ କରିବା—
6. To set fire to a fire-work.

ନାଛେନା—ପ୍ରାଦେ. (ଅଳ) ବି—ଅପରିଷ୍କାର; ଅଳକିଆ—
Nāchhenā — Unclean; dirty.

ନାଛୋଡ଼୍—ଦେ. ବିଣ. ( ହି. ନାଛୋଡ଼; ଫା. ନଷ୍ଟୋଡ଼ବାନ୍ଦା )—
Nāchhord — ୧ । ଏକ ଜିଦିଆ, ଜିଦଖୋର—
(ନାଛୋଡ଼ବନ୍ଧା—ଅନ୍ୟରୂପ) 1 Importunate,
ନାଛୋଡ଼ବାନ୍ଦା — ୨ । ଯେ କୌଣସି ବସ୍ତୁକୁ ଛାଡ଼େ ନାହିଁ —
ନଛୋଡ଼ ବଂଧା — 2 Pertinacious; presevering; dogged; that which sticks to a thing with tenacity.
ମିଳିଲେ ନାଛୋଡ଼ ବନ୍ଧା ସଙ୍ଗେ ତଲୁରେ । ମଧୁସୂଦନ-କବିତା ୮

ନାଜ (ଇତ୍ୟାଦି)—ଗ୍ରା. ବି (ସଂ ଲଜ୍ଜା)—ଲାଜ ଇତ୍ୟାଦି (ଦେଖ)
Nāja (etc) — Lāja etc. ( See )
ଲାଜ ଲାଜ — ନାଜ ନ ଥାଏ ଚୋର ମୁହଁକୁ, ଭଣ୍ଡାର ନ ଥାଏ ଖଇରିବାକୁ—ଢଗ ।

ନାଜକ୍—ବୈଦେ. ବିଣ. ( ଫା ନାଜୁକ୍ )—
Nājak — ୧ । କୋମଳ— 1. Soft
ନାଜକ — ୨ । ସୁକୁମାର—2 Delicate
ନାଜୁକ — ୩ । ପତଳା—3. Thin
୪ । ଯେ ସହିଷ୍ଣୁ ନୁହେଁ—4. Not capable of enduring hardship or rough usage.

ନାଜକୁରା(ଳା)—ଗ୍ରା. ବିଣ. ପୁଂ (ସଂ ଲଜ୍ଜାକୁଳ; ଲଜ୍ଜାଳୁ)—
Nājakurā (lā) — ସ୍ୱଭାବତଃ ଲଜ୍ଜାଶୀଳ—
ନାଜୁକ ଲଜୀଲା — Modest by nature
[ନାଜକୁରା(ଳ)ଆ —ଅନ୍ୟରୂପ)

ନାଜକୁରି(ଳି)—ଗ୍ରା. ବିଣ. ସ୍ତ୍ରୀ (ସଂ ଲଜ୍ଜାକୁଳା; ଲଜ୍ଜାଳୁ)—
Nājakuri (li) — ଲଜ୍ଜାକୁଳା—Bashful; modest; shy (woman)
ନାଜୁକ ଲଜୀଲା
[ନାଜକୁରା(ଳା)—ପୁଂ) — ଗ୍ରା. ବି—ଲଜ୍ଜାଳୁ ଲତା—
[ନାଜକୁରେ(ଲେ)—ଅନ୍ୟରୂପ) — The thorny mimosa creeper.
[ ଦ୍ର—ନାଜକୁରି ଲତା ଦୁଇ ପ୍ରକାର । ଏକ ପ୍ରକାର ପଡ଼ିଆ ଆଦିରେ ଜନ୍ମେ ଓ କଣ୍ଟକୀ; ଅନ୍ୟ ପ୍ରକାର ପାଣି କୂଳରେ ଜନ୍ମେ ଓ ଅକଣ୍ଟକୀ; ଏହାର ପତ୍ରକୁ ଲୋକେ ଶାଗ କରି ଖାଆନ୍ତି । ]

ନାଜକୁରି ବଦନ—ସଂ. ବି—ଏକ ପ୍ରକାର ଈଷତ୍ ସୁଗନ୍ଧଯୁକ୍ତ ସରୁ
Nājakuri badana — ଚାଉଳର ଧାନ—A kind of fine
(ନାଜକୋଳି ବଦନ—ଅନ୍ୟରୂପ) paddy producing a rice with a mild sweet scent.

ନାଜକୁରି ଲତା—ଗ୍ରା. ବି. ସ୍ତ୍ରୀ. ( ସଂ. ଲଜ୍ଜାଳୁ ଲତା )—
Nājakuri latā — ଲାଜକୁରି ଲତା—
ନାଜୁକ ଲତା — A sensetive throny creeping plant;
ଲଜଵନ୍ତୀ ଲତା — Mimosa Pudica.

ନାଜକୋଲା—ଗ୍ରା. ବିଣ. ପୁଂ—ନାଜକୁରା ( ଦେଖ )
Nājakolā — Nājakurā ( See )
(ନାଜକୋଲଆ—ଅନ୍ୟରୂପ) (ନାଜକୋଲୀ—ସ୍ତ୍ରୀ)

ନାଜକୋଳି—ଗ୍ରା. ବିଣ. ସ୍ତ୍ରୀ ଓ ବି—ନାଜକୁରି ( ଦେଖ )
Nājakoli — Nājakuri ( See )

ନାଜର୍—ବୈଦେ. ବି. ( ଫା. ନାଜାର୍ )—
Nājar — ୧ । କୌଣସି କାର୍ଯ୍ୟ ପରିଦର୍ଶନ ବା ତତ୍ତ୍ୱାବଧାନ
ନାଜୀବ — କରିବା ପାଇଁ ନିଯୁକ୍ତ ବ୍ୟକ୍ତି—
ନାଜୀର — 1. Inspector; supervisor.
(ନାଜିର୍—ଅନ୍ୟରୂପ) — ୨ । ଅଦାଲତରେ ହାକିମମାନଙ୍କ ହୁକୁମ ତାମିଲ୍ କରିବା ନିମନ୍ତେ ନିଯୁକ୍ତ ପିଆଦାମାନଙ୍କ ସର୍ଦ୍ଦାର କର୍ମଚାରୀ—2. Nazir; bailiff of a court; the officer controlling the peons of a court.
[ ଦ୍ର—ଏ ଫାରସୀ ଶବ୍ଦ ଇଂରାଜୀରେ ଚଳୁଅଛି । ]

୨ । ମୁସଲମାନଙ୍କ ନାମବିଶେଷ—
2. A name given to Mahomedan males.

**ନାଜରଖାନା**—ବୈଦେ. ବି.—(ଫା. ନଜାରତ୍; ଫା. ନାଜର୍+ଖାନାହ୍)
Najār-khānā ନଜାରତ; ନାଜରଙ୍କ କାର୍ଯ୍ୟାଳୟ—
नाजीरखाना Nizarat; the office of a Nazir.
**नाजीरखाना** (ନାଜରଖାନା—ଅନ୍ୟରୂପ)

**ନାଜାରତି**—ବୈଦେ. ବି.—(ଫା. ନଜାରତ୍)—୧ । ନାଜରଖାନା;
Najarati ନାଜରଙ୍କ କାର୍ଯ୍ୟାଳୟ—
निजावत The office of a Nazir.
**नजारत, ति**) ୨ । ନାଜରଙ୍କ କର୍ମ—
( ନାଜରତି; ନାଜରୀତି—ଅନ୍ୟରୂପ ) The act of a Nazir.

**ନାଜାରିତ**—ବୈଦେ. ବି. (ବାଇବଲ୍ ଅନୁବାଦ)—ବାଇବଲ୍ଲେଖିତ ଗାଲିଲି
Najāritā ଦେଶର ଗୋଟିଏ ଗ୍ରାମ ବା ନଗର—
A village or town in the district of Galillee; Nazareth; a country mentioned in the Bible.
[ଦ୍ର—ଏହି ଗ୍ରାମରେ ଯିଶୁଖ୍ରୀଷ୍ଟ ଭୂମିଷ୍ଠ ହୋଇ ଥିଲେ, ଏଥିପାଇଁ ଯିଶୁଙ୍କୁ ନାଜାରିତର ଯିଶୁ ବୋଲି ଯାଏ ।]

**ନାଜାରୀୟ**—ବୈଦେ ବିଣ.—( ବାଇବଲ୍ ଅନୁବାଦ )—ନାଜାରିତ
Najāriya ଦେଶବାସୀ – Nazarene

**ନାଜିମ୍**—ବୈଦେ. ବି. (ଫା )—୧ । ମାନେଜର; ତତ୍ତ୍ୱାବଧାରକ—
Najim 1. Manager; supervisor.
नाजिम ୨ । ଭାରତରେ ମୁସଲମାନ୍ ଶାସନ କାଳରେ କୌଣସି ରାଜ୍ୟ
**नाजिम** ବା ପ୍ରଦେଶର ରାଜକୀୟ ଶାସନକର୍ତ୍ତା—2. A governor of a province under the Mahomedan rule of India.
[ଦ୍ର—ଏହାଙ୍କୁ ସମ୍ରାଟ ନିଯୁକ୍ତ କରୁଥିଲେ ଓ ଏହାଙ୍କ ଅଧୀନ ପ୍ରଦେଶର ବା ରାଜ୍ୟର ସମସ୍ତ ଶାସନଭାର ଏହାଙ୍କ ଠାରେ ନ୍ୟସ୍ତ ରହୁଥିଲା ।]

**ନାଜିମାତ୍**—ଦେ. ବି. (ବହୁବଚନ)—ଲଉଆଜିମା (ଦେଖ)
Najimāt Lauājimā (See)
लओयाजिमात **लवाजमा**

**ନାଜିହାଲ**—ଦେ. ବିଣ—( ଫା. ନାଜାହାଲ୍=ଅନ୍ତିମ ଦଶା; ଫା.
Najihāla ନାଜୁକ୍‌ହାଲ୍=ସୁକୁମାର ଅବସ୍ଥା—Delicate
नाजेहाल **नाजाहाल** situation—ଣ୍ଟାଇନେକ୍)
ନାଜୁକହାଲ } —ଅନ୍ୟରୂପ
ନାଜେହାଲ }
୧ । ଅକାଳ; ବିପନ୍ନ; ଅନ୍ତିମଦଶାଗ୍ରସ୍ତ—1. Reduced to extreme wretchedness; at bay
୨ । ଅତ୍ୟନ୍ତ କ୍ଲାନ୍ତ—2. Much tired.
ବୈଦେ. ବି.—ଅତି ବିପନ୍ନ ଅବସ୍ଥା—
A state of extreme wretchedness or misery

**ନାଜୁକ**—ଦେ. ବିଣ. ପୁଂ—(ବଙ୍ଗଳା ନ୍ଯାକୁକରୁ ଅନୁକୃତ)—(ସ. ଲଜ୍ଜାଳୁ)
Najuka ଲଜ୍ଜାଶୀଳ—Coy; shy; modest.
लाजुक ବୈଦେ. ବିଣ.—ନାଜକ (ଦେଖ)—
**लजीला** (ନାଜୁକୀ—ସ୍ତ୍ରୀ) Najaka (See)

**ନାଜୁକୁରା(ଳା)**—ଗ୍ରା. ବିଣ. ପୁଂ —ନାଜକୁରା (ଦେଖ)
Najukurā(lā) Najakurā (See)
[ନାଜୁକୁରୀ(ଳୀ)—ସ୍ତ୍ରୀ]

**ନାଞ୍ଚ (ଇତ୍ୟାଦି)**—ଗ୍ରା. ବି—ଲାଞ୍ଚ ଇତ୍ୟାଦି (ଦେଖ)
Nāñcha (etc) Lāñcha etc (See)

**ନାଞ୍ଜ**—ଗ୍ରା. ବି.—ଲାଞ୍ଜ (ଦେଖ)
Nāñja Lāñja (See)

**ନାଞ୍ଜି**—ଗ୍ରା. ବି – ଲାଞ୍ଜି (ଦେଖ)
Nāñji Lāñji (See)

**ନାଟ୍**—ଗ୍ରା ବୈଦେ ବି.—ଲାଟ୍ (ଦେଖ)
Nāṭ Lāṭ (See)

**ନାଟ**—ସ. ବି (ନଟ୍ ଧାତୁ=ନୃତ୍ୟ କରିବା+ଭାବ. ଅ)—
Nāṭa ୧ । ନୃତ୍ୟ, ନାଚ – 1. Dance
ତେଲସ ନାଟପଡ଼ି ଖଣ୍ଡସାଟ ପରସ୍ତେ ଅବିଚ ଉଠ—ବନମୂର୍ତ୍ତି, ରମ୍ଭା ଗୀତ ।
୨ । ନାଟକାଭିନୟ—2. Theatrical performance.
୩ । କର୍ଣ୍ଣାଟ ଦେଶ—
3. The Carnatic country (in S. India.)
[ଦ୍ର—ଏହା ଦକ୍ଷିଣ ଭାରତର ପୂର୍ବ ଉପକୂଳବର୍ତ୍ତୀ ଅଞ୍ଚଳମାନଙ୍କର ସାଧାରଣ ନାମ; ଏହା କୁମାରିକା ଅନ୍ତରୀପଠାରୁ ଉତ୍ତରକୁ କୃଷ୍ଣା ନଦୀ ପର୍ଯ୍ୟନ୍ତ ଲାଗିଅଛି । ଦାକ୍ଷିଣାତ୍ୟର ପଶ୍ଚିମ ଉପକୂଳବର୍ତ୍ତୀ ଅଞ୍ଚଳକୁ ମାଲବାର ବୋଲାଯାଏ । ]
୪ । କର୍ଣ୍ଣାଟ ଦେଶବାସୀ ବ୍ୟକ୍ତି (ହି. ଶବ୍ଦସାଗର)—
4. An inhabitant of the Carnatic country.
୫ । ସଙ୍ଗୀତର ରାଗବିଶେଷ—
5. Name of a Hindu musical tune.
[ ଦ୍ର—କେହି କେହି ଏହାକୁ ମେଘ ରାଗର ଓ କେହି କେହି ଦୀପକ ରାଗର ପୁତ୍ର ବୋଲି କହନ୍ତି । ଏହି ରାଗରେ ବୀରରସର ଗୀତମାନ ବୋଲାଯାଏ—ହି. ଶବ୍ଦସାଗର । ]
ଦେ. ବି—୧ । କଳି; ଦ୍ୱନ୍ଦ୍ୱ—1. Quarrel.
୨ । ଗୋଳମାଳ, କୋଳାହଳ—2 Ado, bustle.
୩ । କାଣ୍ଡ କାରଖାନା —
3. A series of unusual events or acts.
ଏହି ପେଟ, ଏହି ପେଟ ଲାଗି ଯାଉ ଛୁଟ, ଏହି ପେଟ ଲାଗି କର ନାଟ—ଭଗ ।
୪ । ବସ୍ତ୍ର—4. Wearing cloth.
୫ । କାଣ୍ଡ; ଶର—5 Arrow
୬ । ନୃତ୍ୟଯୁକ୍ତ ତାମାସା; ସୁଆଙ୍ଗ; ଯାତ୍ରା—
6. Pantomine; dancing party
ବୈଦେ. ବି—୧ । (ଇଂ. ଲଟ୍) ଲଟ୍; ଗୁଚ୍ଛ —
लाट Clusters; a lot.
**लाट** ୨ । (ଇଂ ଲର୍ଡ୍) ଲାଟ; ଗଭର୍ଣ୍ଣର—
2 Governor; Viceroy.
[ ଦ୍ର—ଭାରତର ପ୍ରଧାନ ଗଭର୍ଣ୍ଣରଙ୍କୁ ବଡ଼ଲାଟ ଓ ପ୍ରାଦେଶିକ ଗଭର୍ଣ୍ଣରଙ୍କୁ ଛୋଟଲାଟ ବୋଲାଯାଏ । ]
୩ । (ଇଂ ଲଟ୍) ରାଜସ୍ୱ ବାକି ପାଇଁ ଜମିଦାରୀର ନିଲାମ—
3. Revenue-sale of a Zamindary.

**ନାଟ ଆଖଡ଼ା**—ଦେ. ବି ( ସଂ ନୃତ୍ୟ+ଅକ୍ଷବାଟ )—ନାଟ୍ୟ ଶିକ୍ଷାଳୟ; ଯେଉଁ ସ୍ଥାନରେ ନୃତ୍ୟଗୀତାଦି ଶିକ୍ଷା ଦିଆଯାଏ—A place where dancing and music is taught.
Nāṭākhaṛā
नाटशाला
**नाचका अखाड़ा**
(ନାଟ ଆଖେଡ଼ା—ଅନ୍ୟରୂପ)

**ନାଟକ**—ସଂ. ବି (ନଟ୍ ଧାତୁ=ନୃତ୍ୟ କରିବା+ଅଧିକରଣ. ଅକ)—
Nāṭaka ୧ । ଦୃଶ୍ୟ କାବ୍ୟ, ରୂପକ ଓ ଉପରୂପକ ଏହି ଦୁଇ ଭାଗରେ ବିଭକ୍ତ ଦୃଶ୍ୟ କାବ୍ୟର ରୂପକ ଭାଗର ପ୍ରଥମ ପ୍ରଧାନ ପ୍ରକାର; ଅଭିନୟ ଗ୍ରନ୍ଥ—1 A drama

[ ଦ୍ର—ନାଟକ କାବ୍ୟ ମଧ୍ୟରେ ଗଣିତ । କାବ୍ୟ ଦୁଇ ଶ୍ରେଣୀରେ ବିଭକ୍ତ—ଶ୍ରାବ୍ୟ ଓ ଦୃଶ୍ୟ । ନାଟକ ଦୃଶ୍ୟ କାବ୍ୟର ଅନ୍ତର୍ଗତ ଅଟେ । କିନ୍ତୁ ସାଧାରଣତଃ ଦୃଶ୍ୟକାବ୍ୟମାନଙ୍କୁ ନାଟକ ବୋଲି ଯାଇଥାଏ । ଭରତ ମୁନିଙ୍କ ନାଟ୍ୟଶାସ୍ତ୍ର ନାଟକ ବିଷୟକ ପ୍ରାଚୀନତମ ସଂସ୍କୃତ ଗ୍ରନ୍ଥ ବୋଲି ଅନୁମିତ ହୁଏ । ଅଗ୍ନିପୁରାଣରେ ନାଟକର ଲକ୍ଷଣ ଆଦି ନିରୂପିତ ହୋଇଅଛି । ଏଥିରେ ଏକଶ୍ରେଣୀର କାବ୍ୟର ନାମ ପ୍ରକୀର୍ଣ୍ଣ । ପ୍ରକୀର୍ଣ୍ଣ ୨ ପ୍ରକାର—ଅଭିନେୟ ଓ ଶ୍ରାବ୍ୟ; ଅଗ୍ନିପୁରାଣରେ ଦୃଶ୍ୟ କାବ୍ୟ ବା ରୂପକ ୨୭ ପ୍ରକାର ଥିବାର ଉଲ୍ଲେଖ ଅଛି । ସାହିତ୍ୟଦର୍ପଣରେ ନାଟକର ଲକ୍ଷଣ ଓ ପ୍ରକାର ଆଦି ସ୍ପଷ୍ଟରୂପେ ବିବୃତ ହୋଇଅଛି । ଦୃଶ୍ୟ କାବ୍ୟ ପ୍ରଧାନତଃ ୨ ଶ୍ରେଣୀରେ ବିଭକ୍ତ—ରୂପକ ଓ ଉପରୂପକ । ରୂପକ ୧୦ ପ୍ରକାର ଯଥା—ରୂପକ, ନାଟକ, ପ୍ରକରଣ, ଭାଣ, ବ୍ୟାୟୋଗ, ସମବକାର, ଡିମ, ଈହାମୃଗ, ଅଙ୍କବୀଥୀ ଓ ପ୍ରହସନ; ଉପରୂପକ ୧୮ ପ୍ରକାର ଯଥା—ନାଟିକା, ତ୍ରୋଟକ, ଗୋଷ୍ଠୀ, ସଟ୍ଟକ, ନାଟ୍ୟରାସକ, ପ୍ରସ୍ଥାନ, ଉଲ୍ଲାପ୍ୟ, କାବ୍ୟ, ପ୍ରେଙ୍ଖଣ, ରାସକ, ସଂଲାପକ, ଶ୍ରୀଗଦିତ, ଶିଳ୍ପକ, ବିଳାସିକା, ଦୁର୍ମଲ୍ଲିକା, ପ୍ରକରଣିକା, ହଲ୍ଲୀଶ, ଭାଣିକା । ଉକ୍ତ ବିଭାଗ ଅନୁସାରେ ନାଟକ ରୂପକର ଗୋଟିଏ ପ୍ରକାର; କିନ୍ତୁ ସାଧାରଣତଃ ଲୋକେ ଦୃଶ୍ୟ କାବ୍ୟକୁ ନାଟକ ନାମ ଦିଅନ୍ତି । ସାହିତ୍ୟଦର୍ପଣ ଅନୁସାରେ କୌଣସି ଖ୍ୟାତ ବୃତ୍ତକୁ (ପ୍ରସିଦ୍ଧ ଆଖ୍ୟାନ, ଯାହା କଳ୍ପିତ ନୁହେ ତାକୁ) ଅବଲମ୍ବନ କରି ନାଟକ ଲେଖିବା ଉଚିତ । ବହୁପ୍ରକାର ବିଳାସ, ସୁଖ, ଦୁଃଖ ଓ ଅନେକ ରସ ନାଟକରେ ରହିବା ଆବଶ୍ୟକ । ନାଟକରେ ୫ ଠାରୁ ୧୦ ପର୍ଯ୍ୟନ୍ତ ଅଙ୍କ ରହିବା ଉଚିତ । ଧୀରୋଦାତ୍ତ ଓ ପ୍ରଖ୍ୟାତ ବଂଶର କୌଣସି ପ୍ରତାପୀ ପୁରୁଷ, ବା ରାଜର୍ଷି ନାଟକର ନାୟକ ଏବଂ ଶୃଙ୍ଗାର ବା ବୀରରସ ନାଟକର ପ୍ରଧାନ ଅଙ୍ଗୀରସ ହେବା ଉଚିତ । ବୀରରସ ନାଟକରେ ଗୌଣରୂପରେ ଆସେ । ଯେଉଁ ରୂପକରେ ଶାନ୍ତ ଓ କରୁଣ ଆଦି ରସ ପ୍ରଧାନ ହୋଇଥାଏ ତାକୁ ନାଟକ ବୋଲି ଯାଇ ନ ପାରେ । ନାଟକର ସନ୍ଧିସ୍ଥଳରେ କୌଣସି ବିସ୍ମୟଜନକ ବ୍ୟାପାର ଓ ଉପସଂହାରରେ ମଙ୍ଗଳମୟ ବ୍ୟାପାର ଦେଖାଇବା ଆବଶ୍ୟକ । ବିୟୋଗାନ୍ତ ନାଟକ (Tragedy) ସଂସ୍କୃତ ଅଳଙ୍କାର ଶାସ୍ତ୍ରର ବିରୁଦ୍ଧ ଅଟେ । ଅଭିନୟ ଆରମ୍ଭରେ ଯେଉଁ ମଙ୍ଗଳାଚରଣ ବା ନାନ୍ଦୀ ବୋଲିଯାଏ ତାହାର ନାମ 'ପୂର୍ବରଙ୍ଗ' । ପୂର୍ବରଙ୍ଗ ବୋଲିସିବା ପରେ ସୂତ୍ରଧାର ବା ସ୍ଥାପକ 'ରଙ୍ଗମଞ୍ଚକୁ ଆସି ଉପସ୍ଥିତ ସଭ୍ୟମଣ୍ଡଳଙ୍କୁ ପ୍ରଶଂସା କରନ୍ତି ଓ ତତ୍ପରେ ନଟ, ନଟୀ ଓ ସୂତ୍ରଧାର ଉପସ୍ଥିତ ହୋଇ ଅଭିନେୟ ନାଟକର ପ୍ରସ୍ତାବ, କବିଙ୍କ ବଂଶବର୍ଣ୍ଣନ ଆଦି କରନ୍ତି । ଏହାକୁ 'ପ୍ରସ୍ତାବନା' କହନ୍ତି । ଯେଉଁ ଇତିବୃତ୍ତ ବା ବିଷୟ ନେଇ ନାଟକ ରଚିତ ହୋଇଥାଏ ତାକୁ ବସ୍ତୁ ( plot ) କହନ୍ତି । ବସ୍ତୁ ଦୁଇ ପ୍ରକାର, ଆଧିକାରିକ ଓ ପ୍ରାସଙ୍ଗିକ । ସମସ୍ତ ଇତିବୃତ୍ତର ପ୍ରଧାନ ନାୟକଙ୍କୁ 'ଅଧିକାରୀ' ବୋଲିଯାଏ । ଅଧିକାରୀଙ୍କ ସମ୍ବନ୍ଧେ ନାଟକରେ ଯାହା ବର୍ଣ୍ଣିତ ହୁଏ ତାକୁ 'ଆଧିକାରିକ ବସ୍ତୁ' କହନ୍ତି ( ଯଥା—ରାମଲୀଳାରେ ରାମଙ୍କ ଚରିତ) । ଏହି ଅଧିକାରୀଙ୍କ ଉପକାରାର୍ଥ ବା ରସପୁଷ୍ଟି ପାଇଁ ପ୍ରସଙ୍ଗକ୍ରମେ ଯେଉଁ ବର୍ଣ୍ଣନ ହୁଏ ତାକୁ 'ପ୍ରାସଙ୍ଗିକ ବସ୍ତୁ' କହନ୍ତି ( ଯଥା—ରାମଲୀଳାରେ ସୁଗ୍ରୀବ, ବିଭୀଷଣ ଆଦିଙ୍କ ଚରିତ ) । ରଙ୍ଗଭୂମିରେ ଦର୍ଶକମାନଙ୍କ ସମ୍ମୁଖରେ ନାଟକୀୟ ବିଷୟକୁ ଉପସ୍ଥାପିତ କରିବାର ନାମ 'ଅଭିନୟ' । ଅତଏବ ଅବସ୍ଥାନୁରୂପ ଅନୁକରଣ ବା ସ୍ୱାଙ୍ଗର ନାମ ଅଭିନୟ ଅଟେ । ଅଭିନୟ ୪ ପ୍ରକାର—୧ । ଅଙ୍ଗଚେଷ୍ଟାଦ୍ୱାରା ଅଭିନୟର ନାମ ଆଙ୍ଗିକ, ୨ । ବଚନଦ୍ୱାରା ଅଭିନୟ ବାଚିକ, ୩ । ବେଶ ବାନ୍ଧି କରାଯିବା ଅଭିନୟ ଆହାର୍ଯ୍ୟ, ୪ । ଭାବର ଉଦ୍ରେକଦ୍ୱାରା ଜାତ କମ୍ପ, ସ୍ୱେଦ ଆଦିର ନାମ ସାତ୍ତ୍ୱିକ ଅଭିନୟ ଅଟେ । ବୀଜ ( ଫଳସିଦ୍ଧିର ମୂଳକାରଣ), ବିନ୍ଦୁ (ପ୍ରଥମ କଥା ପୂର୍ଣ୍ଣ ହେବା ପରେ ଦ୍ୱିତୀୟ ସଙ୍ଗତ ବିଷୟର ଆନୟନ), ପତାକା ( ମଧ୍ୟରେ କୌଣସି ବ୍ୟାପକ ପ୍ରସଙ୍ଗର ବର୍ଣ୍ଣନ), ପ୍ରକରୀ (ଏକଦେଶବ୍ୟାପୀ ଚରିତ୍ରବର୍ଣ୍ଣନ) ଓ କାର୍ଯ୍ୟ ( ଆରବ୍ଧ ହୋଇଥିବା କ୍ରିୟାର ଫଳସିଦ୍ଧି ପାଇଁ ଅନୁଷ୍ଠିତ କାର୍ଯ୍ୟ ), ଏହି ପାଞ୍ଚୋଟି ସନ୍ଧିଦ୍ୱାରା ନାଟକର ପ୍ରୟୋଜନ ସିଦ୍ଧ ହୁଏ ।

ଆଜିକାଲି ଦେଶୀୟ ଭାଷାରେ ଯେଉଁ ନାଟକମାନ ରଚିତ ହେଉଅଛି ତହିଁରେ ସଂସ୍କୃତ ନାଟକର ନିୟମମାନ ପାଳିତ ହେଉ-ନାହିଁ ।

ଭାରତବର୍ଷରେ ବହୁ ପ୍ରାଚୀନକାଳରୁ ନାଟକର ପ୍ରଚଳନ ଅଛି । ଭରତ ମୁନିଙ୍କ ନାଟ୍ୟଶାସ୍ତ୍ର ବହୁ ପ୍ରାଚୀନ ଗ୍ରନ୍ଥ ଅଟେ । ରାମାୟଣ ମହାଭାରତ ଓ ହରିବଂଶ ଆଦିରେ ନଟ ଓ ନାଟକର ନାମ ମିଳେ । ସଂସ୍କୃତ ବୈୟାକରଣିକ ପାଣିନି, ଶିଳାଲୀ ଓ କୃଶାଶ୍ୱ ନାମକ ଦୁଇ ଜଣ ନଟସୂତ୍ରକାରଙ୍କ ନାମ ଉଲ୍ଲେଖ କରିଅଛନ୍ତି । ଯଜୁର୍ବେଦର ଶତପଥ ବ୍ରାହ୍ମଣ ଏବଂ ସାମବେଦର ଅନୁପଦ ସୂତ୍ରରେ ଶିଳାଲୀଙ୍କ ନାମ ମିଳୁଅଛି । ଶତପଥ ବ୍ରାହ୍ମଣର ରଚନା ୪ ହଜାର ବର୍ଷ ପୂର୍ବରେ ହୋଇଥିବାର ପଣ୍ଡିତମାନେ ସିଦ୍ଧାନ୍ତ କରିଅଛନ୍ତି । ଅତଏବ ସର୍ବପ୍ରଥମେ ଗ୍ରୀକ୍ ବା ୟୁନାନ୍ ଦେଶରେ ନାଟକର ପ୍ରାଦୁର୍ଭାବ ହୋଇଥିବା କଥା ଯାହା କେତେକ ପାଶ୍ଚାତ୍ୟ ପଣ୍ଡିତ କହନ୍ତି ତାହାକୁ ଅଭ୍ରାନ୍ତ ମତ ବୋଲିଯାଇ ନ ପାରେ । ହରିବଂଶରେ ଲେଖାଅଛି ଯେ ପ୍ରଦ୍ୟୁମ୍ନ ଓ ଶାମ୍ବ ପ୍ରଭୃତି ଯାଦବମାନେ ବଜ୍ରନାଭଙ୍କ ପୁରକୁ ଯାଇଥିଲେ, ସେଠାରେ ସେମାନେ 'ରାମଜନ୍ମ' ଓ 'ରମ୍ଭାଭିସାର' ନାଟକ ଦ୍ୱୟ ଅଭିନୟ କରିଥିଲେ ଓ ଭିନ୍ନ ଭିନ୍ନ ବ୍ୟକ୍ତିମାନେ ଭିନ୍ନ ଭିନ୍ନ ଅଭିନେତାର କର୍ମ କରିଥିଲେ । କୁଳସ୍ତ୍ରୀମାନେ ମଧ୍ୟ ପୁରୁଷଙ୍କ ପରି ସ୍ତ୍ରୀଙ୍କ ଅଂଶମାନ ଅଭିନୟ କରୁଥିବାର ପ୍ରମାଣ ମିଳେ । ଉଇଲ୍‌ସନ୍ ଆଦି ପାଶ୍ଚାତ୍ୟ ମନୀଷୀମାନେ ସ୍ୱୀକାର କରିଅଛନ୍ତି ଯେ ହିନ୍ଦୁମାନେ ନିଜେ ନିଜେ ନାଟକର ସୂତ୍ରପାତ କରିଥିଲେ ଓ ପ୍ରାଚୀନ

ହିନ୍ଦୁ ରାଜାମାନେ ବଡ଼ ବଡ଼ ରଙ୍ଗଶାଳାମାନ ନିର୍ମାଣ କରାଇଥିଲେ। ମଧ୍ୟଭାରତର ସରଗୁଜା ରାଜ୍ୟର ଗୋଟିଏ ପର୍ବତ ଗୁମ୍ଫାରେ ରଙ୍ଗଶାଳାର ଚିହ୍ନ ଅବଧି ବିଦ୍ୟମାନ ଅଛି। ଗ୍ରୀକ୍‌ମାନେ ଭାରତକୁ ଆସିବା (ଖ୍ରୀ. ପୂ. ୩୦୦ ଶତାବ୍ଦୀ) ପୂର୍ବେ ଲିଖିତ ହୋଇଥିବା କୌଣସି ସଂସ୍କୃତ ନାଟକ ବର୍ତ୍ତମାନ ପର୍ଯ୍ୟନ୍ତ ମିଳ ନାହିଁ, କିନ୍ତୁ ଏଥିରୁ ତତ୍‌ପୂର୍ବରେ ଭାରତରେ ନାଟକର ଆବିର୍ଭାବ ହୋଇ ନ ଥିଲା ବୋଲି ସିଦ୍ଧାନ୍ତ କରିବା ଠିକ୍ ହେବ ନାହିଁ। ଏହା ଅନୁମାନ କରାଯାଉଅଛି ଯେ ଗ୍ରୀକ୍‌ମାନେ ଭାରତକୁ ଆସିବା ପରେ ଭାରତୀୟ ଓ ଗ୍ରୀକ୍‌ମାନଙ୍କ ମଧ୍ୟରେ ଅନ୍ୟାନ୍ୟ ଶାସ୍ତ୍ର ଓ ଜ୍ଞାନାଲୋଚନାର ଯେଉଁପରି ଆଦାନ ପ୍ରଦାନ ହୋଇଥିଲା, ସେହିପରି ନାଟକୀୟ କଳାଜ୍ଞାନର ମଧ୍ୟ ଆଦାନ ପ୍ରଦାନ ହୋଇଥିଲା। ରଙ୍ଗମଞ୍ଚରେ ପଡ଼ୁଥିବା ପରଦାର ନାମ ଯବନିକା, ଏଥିରୁ କେହି କେହି ଅନୁମାନ କରନ୍ତି ଯେ ହିନ୍ଦୁମାନଙ୍କ ନାଟକାଭିନୟ ଯବନ (ୟୁନାନ୍ ବା ଗ୍ରୀକ୍) ମାନଙ୍କଠାରୁ ଅନୁକୃତ ହୋଇଥିଲା। 'ଅଙ୍କ' ମଧ୍ୟରେ ଯେଉଁ 'ଦୃଶ୍ୟ'ମାନ ସଂସ୍କୃତ ନାଟକରେ ମିଳେ, ସେଥିରୁ ଅନୁମିତ ହୁଏ ଯେ ପରଦା ଉପରେ ଚିତ୍ରମାନ ଅଙ୍କିତ ହେଉଥିଲା। କିନ୍ତୁ ଏତିକି ନିଃସନ୍ଦେହରେ ବୋଲି ଯାଇପାରେ ଯେ ସିକନ୍ଦର (ଆଲେକ୍‌ଜାଣ୍ଡର) ଭାରତକୁ ଆସିବା ପରେ ଭାରତରେ ଅଭିନୟରେ ଚିତ୍ରପଟର ପ୍ରଚାର ହେଲା। ବର୍ତ୍ତମାନ ମଧ୍ୟ ଦେଶୀ ଅଭିନୟମାନ (ଯଥା—ରାମଲୀଳା, କୃଷ୍ଣଲୀଳା, ରାସଲୀଳା) ବିନା ପରଦାରେ ହୋଇ ଆସୁଅଛି—ହି. ଶବ୍ଦସାଗର।]

୨। (+କର୍ତ୍ତୃ. ଅକ) ନୃତ୍ୟକାରୀ; ନର୍ତ୍ତକ—
2. A professional dancer.

୩। ନାଟକାଭିନେତା; ନଟ—3. An actor.

୪। (+ଭାବ ଅକ) ଅଭିନୟ, ରଙ୍ଗମଞ୍ଚରେ ନଟମାନଙ୍କଦ୍ୱାରା ନାଟକୀୟ ବିଷୟର ପ୍ରଦର୍ଶନ—4 Acting of a drama; dramatic performance.

**ନାଟକାବତାର**— ସଂ ବି (୬ଷ୍ଠୀ ତତ୍, ନାଟକ+ଅବତାର)— ବିଷ୍କମ୍ଭକର
Nāṭakābatāra ଅଭିନୟ, କୌଣସି ନାଟକର ଅଭିନୟ କାଳରେ ଅଭିନୟର ଅଙ୍ଗୀଭୂତ, କିନ୍ତୁ ନାଟକୀୟ କଥାବସ୍ତୁର ବହିର୍ଭୂତ କୌଣସି ଅତୀତ ବା ଭବିଷ୍ୟତ ବିଷୟର ଅଭିନୟ—The performance of an interlude between the acts of the main play or drama

[ଦ୍ର—ସଂସ୍କୃତ ଉତ୍ତରରାମଚରିତ ଓ ଅଭିଜ୍ଞାନଶକୁନ୍ତଳରେ ଓ ଇଂରାଜୀ ହାମ୍‌ଲେଟ୍ ନାଟକରେ ନାଟକାବତାରର ଉଦାହରଣ ଅଛି।]

ଏଥିର ସଂଜ୍ଞା ବା ସୂତ୍ର;-ଅବତ୍ତିନ୍ୟୋ ନାଟ୍ୟଂ ନାଟ୍ୟଂ ନାଟ୍ୟ ନିଦର୍ଶକଃ
ସଂଶ୍ଳେଷ୍ଟୁ ବସ୍ତୁ ଆଦାକ୍ଷେପ୍ୟ ଦର୍ଶିତଃ — ସା ହି. ଦର୍ପଣ।

**ନାଟକାରୀ**—ଦେ. ବି. ପୁଂ ଓ ସ୍ତ୍ରୀ (ସଂ. ନାଟ +କାରୀ)— ନର୍ତ୍ତକ,
Nāṭakārī ନାଟୁଆ—A dancer
ନାଚୁଆ ଏହା ଶୁଣି ଗୋପୀଙ୍କ ମଧ୍ୟେ ନାଟକାରୀ
**ନଟୁଆ, ନଚନୀୟା** କହିଲେ ସଖୀଙ୍କୁ ଚକ୍ଷୁ ଠାରି କରି।
କୃଷ୍ଣସିଂହ ମହାଭାରତ ବନ।

**ନାଟକୀ**—ସଂ. ବି ସ୍ତ୍ରୀ (ନାଟକ+ସ୍ତ୍ରୀ. ଈ)—୧। ନର୍ତ୍ତକୀ—
Nāṭakī 1 A dancing girl.

୨। ଇନ୍ଦ୍ର ସଭା—2 The court of Indra.

ସଂ. ବି. ପୁଂ (ନାଟକ+ଇନ୍; ୧ମା. ୧ବ)—୧। ନାଟକ ରଚକ—
1 A dramatist.

୨। ନୃତ୍ୟ ବ୍ୟବସାୟୀ ବ୍ୟକ୍ତି; ନର୍ତ୍ତକ—
2 A professional dancer or actor.

**ନାଟକୀୟ**—ସଂ. ବିଣ (ନାଟକ+ସମ୍ବନ୍ଧାର୍ଥେ. ଈୟ)—୧। ନାଟକ
Nāṭakīya ସମ୍ବନ୍ଧୀୟ—1. Dramatic; relating to drama.
(ନାଟକୀୟା—ସ୍ତ୍ରୀ)

୨। ନାଟକରେ ବର୍ଣ୍ଣିତ—
2. Described or dealt with in a drama.

**ନାଟକୁଟ**—ଦେ. ବି (ସଂ ନାଟ +କୂଟ)—ନଟକୁଟ (ଦେଖ)
Nāṭakuṭa Naṭakuṭa (See)

**ନାଟକୁଟ ଗୋବର୍ଦ୍ଧନ ଦାସ**—ପ୍ରାଦେ (ଯାଜପୁର) ବି—ନାଟର ଗୁରୁ
Nāṭakuṭa gobarddhana dāsa ଗୋବର୍ଦ୍ଧନ ଦାସ (ଦେଖ)
Nāṭara guru gobarddhana dāsa (See)

**ନାଟଗୁରୁ**—ସଂ. ବି—(୬ଷ୍ଠୀ ତତ୍, ସଂ.ନାଟ +ଗୁରୁ)—୧। ନାଟ୍ୟାଚାର୍ଯ୍ୟ;
Nāṭaguru ଓସ୍ତାଦ୍—1. Dancing master.
କେତେ ଅଙ୍ଗ ଭଙ୍ଗୀ ଶିଖାଉଣ ଥାଇ ନାଟଗୁରୁ ସୃଷ୍ଟି ନାଶ—
ରାଧାନାଥ- ଯଯାତି

୨। ସୂତ୍ରଧର—2. Stage manager; stage master.

୩। ନାଟର ଗୁରୁ (ଦେଖ)—Nāṭara guru (See).

**ନାଟଘର**—ଦେ ବି. (ସଂ. ନାଟ +ଗୃହ)—ନାଟ୍ୟଶାଳା, ନାଚଶାଳା—
Nāṭa ghara Dancing room; ball room.
ନାଟଶାଳା; **नाचघर**

**ନାଟ ତମାସା**—ଦେ. ବି. (ସଂ.ନାଟ +ଅ, ତମାସାହ୍)—ନାଚ ତମାସା—
Nāṭa tamāsā (ଦେଖ)—Nācha tamāsā (See).
ନାଚ ତମାସା; **नाचतमाशा** (ନାଚ ତାମସା, ନାଟ ତାମାସା—ଅନ୍ୟରୂପ)

**ନାଟ ପଟୁ**—ସଂ. ବିଣ—(ନାଟ +ପଟୁ; ୭ମୀ ତତ୍)—ନୃତ୍ୟ ନିପୁଣ;
Nāṭa paṭu ବିଳାସ ନିପୁଣ—Sportive; skilful in dancing.
ଗତ ନସ ନାଟପଟୁ ଶଣ୍ଟରେ ପଗୃହେ ଅର୍ପିଲ ଉଡ଼ି।
କବିସୂର୍ଯ୍ୟ—କ. ଶ. ସ ଚମ୍ପୂ—ଗ ଗୀତ।

**ନାଟ ପିଲା**—ଦେ. ବି—ନାଟୁଆପିଲା; ନୃତ୍ୟକାରୀ ବାଳକ—
Nāṭa pilā Dancing boy.
ନାଚଓ୍ୱାଲା ଛୋଁଡ଼ା; **नाचनेवाला लड़का** (ନାଟୁଆପିଲା—ଅନ୍ୟରୂପ)

[ଦ୍ର—ଉତ୍କଳରେ ଅଳ୍ପବୟସ୍କ ସୌମ୍ୟରୂପ ବାଳକମାନଙ୍କୁ ସ୍ତ୍ରୀ ବେଶରେ ସଜ୍ଜିତ କରି ସେମାନଙ୍କ ଦ୍ୱାରା ନୃତ୍ୟ ଗୀତ ଓ ପୌରାଣିକ ଅଭିନୟମାନ କରାଯାଏ। ପୌରାଣିକ ଅଭିନେତା ବାଳକ ଏକାଧିକ ସଂଖ୍ୟକ; ହେଲେ ସେମାନଙ୍କୁ "ସଙ୍ଗୀ ପିଲା" କହନ୍ତି। ସଙ୍ଗୀତ ବୋଲି ନାଚିବା ପିଲାକୁ 'ଗୋଟିପୁଅ' କହନ୍ତି। ଗୋଟିପୁଅମାନେ ନାନାପ୍ରକାର ଅସାଧ୍ୟ 'ବନ୍ଧ' ବା 'ବ୍ୟାୟାମ' ମାନ ଦେଖାନ୍ତି। ନାଟପିଲାମାନେ ଗୀତ ବୋଲିବା ବେଳେ ନାଚନ୍ତି ଓ ଅଙ୍ଗଭଙ୍ଗୀ ଓ କରାଙ୍ଗୁଳି ଚାଳନ (ଠାଉକା) ଦ୍ୱାରା ଗୀତର ଭାବାର୍ଥମାନଙ୍କୁ ପ୍ରକାଶ କରନ୍ତି।]

**ନାଟ ଫାଟ**—ଗ୍ରା. ବି (ସହଚର; ୨ୟ ଶବ୍ଦ ନିରର୍ଥକ)—ନୃତ୍ୟାଦି—
Nāṭa phāṭa — Dancing etc
ନାଚଟାଚ **नाचतच, नाचना कादना**

**ନାଟବନ୍ଧି**—ଦେ ବି—ଲାଟବନ୍ଧି (ଦେଖ)
Nāṭabandi — Lāṭabandi (See).

**ନାଟ ମନ୍ଦିର**—ବୈଦେ. ବି (ସଂ. ନାଟ + ମନ୍ଦିର)—୧ । ଦେବମନ୍ଦିରର ସମ୍ମୁଖସ୍ଥ ପ୍ରାସାଦବିଶେଷ—
Nāṭa mandira
ନାଟମନ୍ଦିର 1. Dancing saloon of a temple; the dancing hall attached to a temple

[ଦ୍ର—ଉତ୍କଳର ପ୍ରସିଦ୍ଧ ଦେବାଳୟମାନଙ୍କରେ ପ୍ରଧାନ ମନ୍ଦିରରେ ଦେବ ବିଗ୍ରହ ଥାଆନ୍ତି, ତହିଁକି ଲାଗିଥିବା ମନ୍ଦିର (ସଂ ମୁଖଶାଳା=ଓ. ମୁଖୁଶିଆଳ) ରେ ଭକ୍ତମାନେ ଦେବଦର୍ଶନାର୍ଥ ଏକତ୍ର ହୁଅନ୍ତି ଓ ମୁଖଶାଳାକୁ ଲାଗି ନାଟମନ୍ଦିର ନିର୍ମିତ ହୋଇଥାଏ; ସେଥିରେ ସମୟ-ସମୟରେ ଗୀତ, ବାଦ୍ୟ ଓ ନୃତ୍ୟଅଭିନୟ କରାଯାଏ । ଏହାଛଡ଼ା କେଉଁ କେଉଁ ମନ୍ଦିରରେ ସ୍ୱତନ୍ତ୍ର 'ଭୋଗମଣ୍ଡପ' ଥାଏ ।]

ସଂ. ବି—ନୃତ୍ୟଶାଳା, ନାଚଘର—
Ball-room; dancing saloon.

**ନାଟମୟୂର**—ସଂ. ବି (ସଂ. ନାଟ + ମୟୂର)—୧ । ନୃତ୍ୟକାରୀ ମୟୂର—
Nāṭamayūra — ଯେଉଁ ଅଣ୍ଡିରା ମୟୂର ଅତି ମନୋହର-ରୂପେ ଲାଞ୍ଜକୁ ପଙ୍ଖା ପରି ବିସ୍ତୃତ କରି ମେଘ ଉଠାଇବା ସମୟରେ ନୃତ୍ୟ କରେ-
ନାଟମୟୂର } ଅନ୍ୟରୂପ
ନାଚମୟୂର }
1. A dancing peacock; a male peacock which struts with its fanlike outstretched tail on the rising of a cloud.

୨ । ବ୍ୟଜନାକାରବିଶିଷ୍ଟ ନୃତ୍ୟକାରୀ ମୟୂର ଆକାରରେ ନିର୍ମିତ ସ୍ୱର୍ଣ୍ଣ ଅଳଙ୍କାରବିଶେଷ—
2. A golden ornament with the figure of peacock strutting with its tail outstretched.

**ନାଟମୟୂର ଗୁଣା**—ଦେ. ବି—ମୟୂରବସା ଗୁଣା; ନାଟମୟୂରର ଆକୃତି-ବିଶିଷ୍ଟ ନାକର ଅଳଙ୍କାରବିଶେଷ—
Nāṭamayūra guṇā
(ନାଚମୟୂର ଗୁଣା—ଅନ୍ୟରୂପ) A nose flower with the figure of a strutting peacock on it

**ନାଟର ଗୁରୁ**—ଦେ. ବି (ସଂ. ନାଟଗୁରୁ)—୧ । ନାଟଗୁରୁ (ଦେଖ)
Nāṭara guru — Nāṭaguru (See)
নাচের ওস্তাদ; **नाचगुरु, आस्ताद्**

୨ । ଯେଉଁ ବ୍ୟକ୍ତି ନାଟ ଆଖଡ଼ାରେ ନୃତ୍ୟାର୍ଥୀମାନଙ୍କୁ ନାଚ ଶିକ୍ଷା ଦିଅନ୍ତି—2. A trainer of dancers in a dancing party

୩ । (ଲକ୍ଷଣାର୍ଥ) କୌଣସି ବିଷୟ ବା ଘଟଣାର ମୌଳିକ ପ୍ରବର୍ତ୍ତକ—3. (figurative)—The originator or founder of some matter.

୪ । (ଲକ୍ଷଣାର୍ଥ)—କୌଣସି ଦଳର ନେତା—
4. The leader of a group; a ringleader

**ନାଟର ଗୁରୁ ଗୋବର୍ଦ୍ଧନ ଦାସ**—ଇଗ—ଯେଉଁ ବ୍ୟକ୍ତି କୌଣସି କାଣ୍ଡକାରଖାନାର ସୂତ୍ରଧର
Nāṭara guru gobarddhana dāsa
নাটের গুরু; **नाचकागुरुगोवरधनदास** ଥାଇ ବାହାରେ ଚିହ୍ନା ପଡେ ନାହିଁ, ଅଥଚ ବାହାରେ କାର୍ଯ୍ୟ କରୁଥିବା ବ୍ୟକ୍ତିଙ୍କୁ ନିୟନ୍ତ୍ରିତ କରେ—The main wire-puller, one who pulls the wire from behind, one who controls a matter from behind.

**ନାଟରେ ଉଠିବା**—ଦେ. କ୍ରି—୧ । ରାଜସ୍ୱ ବାକି ନିମନ୍ତେ କୌଣସି ଜମିଦାରୀ ନିଲାମ ହେବା ପାଇଁ ବିଜ୍ଞାପିତ ହେବା,
Nātare uthibā
নাটেউঠা ଲାଟରେ ଉଠିବା—1. (a zamindary) To be
**लाटपर चढ़ा होना** advertised for sale for arrears of revenue.

୨ । କୌଣସି ଭୂସମ୍ପତ୍ତି ଅଦାଲତରେ ପ୍ରକାଶ୍ୟ ନିଲାମ କରାଯିବାର ବିଜ୍ଞାପିତ ହେବା—2 (any immoveable property) To be advertised for sale by public auction by court

**ନାଟାମ୍ର**—ସଂ. ବି—ତରଭୁଜ (ବିକାଣ୍ଡ ଶେଷ)—
Nāṭāmra — Water melon.

**ନାଟାର**—ସଂ. ବି. ପୁଂ. (ନର୍ତ୍ତୀ+ଅପତ୍ୟାର୍ଥେ ଆର)—ନର୍ତ୍ତୀପୁତ୍ର—
Nāṭāra — The son of a dancing girl or actress.

**ନାଟିଆ**—ଦେ. ବି—ଶୂଦ୍ରମାନଙ୍କର ବଂଶୋପାଧିବିଶେଷ—
Nāṭia — A family-title of some Śūdras

**ନାଟିକା**—ସଂ. ବି. ସ୍ତ୍ରୀ. (ନଟ୍ ଧାତୁ=ନୃତ୍ୟ କରିବା+କର୍ତ୍ତୃ. ଅକ +ସ୍ତ୍ରୀ. ଆ)—
Nāṭikā

୧ । ଚୁରିଗୋଟି ଅଙ୍କବିଶିଷ୍ଟ ନାଟକ—(ଯଥା—ସଂସ୍କୃତ ରତ୍ନାବଳୀ ପ୍ରଭୃତି; ଏଥିର ଲକ୍ଷଣ:—ନାଟିକାକ୍ଲୃପ୍ତବୃତ୍ତସ୍ୟାତ୍ ସ୍ତ୍ରୀପ୍ରାୟା ଚତୁରଙ୍କିକା)—
1. A drama with four acts only.

୨ । ହାସ୍ୟରସ ପ୍ରଧାନ ଛୋଟ ନାଟକ—
2 A light comedy.

୩ । ନର୍ତ୍ତୀ; ନର୍ତ୍ତକୀ—3. A dancing girl; actress.

ଦେ. ବି. (ସଂ. ନାଡ଼ିକା)—୧ । ହାତ ବା ଗୋଡ଼ର ନାଡ଼ି—
1. Pulse.

କର୍ଣ୍ଣାଟକାଙ୍କ ନାଟିକା ଛଳିଲ ନାହିଁ—ଉତ୍କ. ପ୍ରେମସୁଧାନିଧି ।

୨ । ଦେହର ରକ୍ତବାହୀ ଶିରା—2. Vein; artery.

[ଦ୍ର—ଏହି ନାଟିକା ଶବ୍ଦ ସହିତ ଜୀବନ ଓ ପ୍ରାଣ ପ୍ରଭୃତି ଶବ୍ଦ ଯୁକ୍ତ ହୋଇ ଜୀବନ ନାଟିକା, ପ୍ରାଣନାଟିକା ପ୍ରଭୃତି ଶବ୍ଦ ନିଷ୍ପନ୍ନ ହୁଏ ।]

**ନାଟିକା ଚିପିବା**—ଦେ. ବି—ସ୍ୱାସ୍ଥ୍ୟ ପରୀକ୍ଷା କରିବା ପାଇଁ କୌଣସି
Nāṭikā chipibā — ବ୍ୟକ୍ତିର ମଣିବନ୍ଧ ନିକଟସ୍ଥ ନାଡ଼ୀର ସ୍ପନ୍ଦନକୁ
নাড়িটিপা ଅଙ୍ଗୁଳିଦ୍ୱାରା ଅନୁଭବ କରିବା—
**नाड़ीदेखना** To feel the pulse of a person
(ନାଟିକା ଟିପିବା; ନାଟିକା ଦେଖିବା—ଅନ୍ୟରୂପ)

**ନାଟିକା ଛାଡ଼ିଯିବା**—ଦେ. ବ—ରୋଗୀ ବା ମୁମୂର୍ଷୁ ବ୍ୟକ୍ତିର ହାତ ବା
Nāṭikā chhāṛdijibā ଗୋଡ଼ର ନାଡ଼ିର କ୍ଷୀଣ ସ୍ପନ୍ଦନ ଅନ୍ୟ
नाडी नालागा ବ୍ୟକ୍ତିଙ୍କୁ ବୋଧ ନ ହେବା; ରୋଗୀର ନାଡ଼ିର
**नाड़ी डूबजाना** ସ୍ପନ୍ଦନ ଅନ୍ୟ ବ୍ୟକ୍ତିର ହାତର ଅଙ୍ଗୁଠିକୁ ଜଣା ନ ଯିବା—The sinking of the pulse of a dying man; the pulsation of a dying person becoming too feeble to be felt by another person.

**ନାଟିତ**—ସ. ବଣ. ( ନଟ୍ ଧାତୁ=ନୃତ୍ୟ କରିବା+କର୍ମ. ତ )—
Nāṭita ୧ । ଅଭିନୀତ—1 Acted
୨ । କୃତାଭିନୟ; ଯେଉଁ ନାଟକର ଅଭିନୟ ହୋଇଅଛି—
2. A drama which has been staged.
ସ. ବ. (ନଟ ଧାତୁ+ଣିଚ୍+ଭାବ. ତ)—୧ । ନର୍ତ୍ତନ; ନଚାଇବା—
1. Causing another to dance.
୨ । ଅଭିନୟ—2. Acting.

**ନାଟୁ**—ଦେ. ବ. ( ସ. ଲଟ୍ଟୁ )—୧ । ଲଟୁ, ନଟୁ; ଖେଳିବାର ଘେଣ୍ଟୁ—
Nāṭu 1. A play ball, a whirling top.
लाटू ୨ । ( ଲକ୍ଷଣାର୍ଥ ) କ୍ରୀଡ଼ନକ—
**लट्टू** 2. ( figurative ) Plaything.
( ନାଟମ—ଅନ୍ୟରୂପ ) ଅମ୍ଭେ କୁଟୁମ୍ବମାନଙ୍କର ନାଟୁପ୍ରାୟ ହୋଇଥିଲୁ—
ରାଧାନାଥ. ଚନ୍ଦ୍ରଭାଗା. ଯୁବା ।

**ନାଟୁଆ**—ଦେ. ବ. ( ସ. ନର୍ତ୍ତକ; ନଟ )—୧ । ନର୍ତ୍ତକ—
Nāṭuā 1. A dancer.
ଜଣାଇଲେ ସଖୀ ଥିଲି ସେ ଭୁଜଙ୍ଗପଟା ନାଟୁଆ ପ୍ରମାଣ—
କବିସୂର୍ଯ୍ୟ. ସଙ୍ଗୀତ ।
नाटूया ୨ । ଅଭିନେତା; ନଟ—2 An actor.
**नट्टुआ** ୩ । ମଲ୍ଲକ୍ରୀଡ଼ା ଦେଖାଇବା ବ୍ୟକ୍ତି—
3. A wrestler or athlet.

**ନାଟୁଆ ପିଲା (ଟୋକା)**—ଦେ. ବ—ନାଟପିଲା; ନର୍ତ୍ତକ ବାଳକ—
Nāṭuā pilā (ṭokā) Dancing boy.
नाचवाला छोँड़ा **नाचका लड़का**

**ନାଟୁ ବାଟ**—ପ୍ରାଦେ. ( ଗଞ୍ଜାମ ) ବ—ଯାହା ସଡ଼କ ବାଟ ନୁହେଁ; କ୍ଷେତ୍ର
Nāṭu bāṭa ଉପରେ ହୋଇଥିବା ବାଟ, ଲୋକେ ପଦବ୍ରଜରେ ଯେଉଁ ବାଟ ଚାଲନ୍ତି—A path made on the ridges of fields; toot path; footway.

**ନାଟେୟ**—ସ. ବ. ପୁଂ ( ନଟୀ+ଅପତ୍ୟାର୍ଥେ. ଏୟ )—ନଟୀପୁତ୍ର—
Nāṭeya Son of a dancing girl or actress.
( ନାଟେର, ନାଟାର—ଅନ୍ୟରୂପ )
( ନାଟେୟୀ, ନଟେରୀ—ସ୍ତ୍ରୀ )

**ନାଟ୍ଟୁ**—ଦେ. ବ. ( ସ. ନଟ୍ଟୁ )—ନାଟୁ ( ଦେଖ )
Nāṭṭu Nāṭu ( See )

**ନାଟ୍ୟ**—ସ. ବ. ( ନଟ+କର୍ମ ଅର୍ଥରେ. ଯ )—୧ । ନୃତ୍ୟକ୍ରିୟା—
Nāṭya 1. Dancing.
୨ । ତୌର୍ଯ୍ୟତ୍ରିକ; ନୃତ୍ୟ, ଗୀତ ଓ ବାଦ୍ୟ ଏ ତିନୋଟିର ସମବାୟ—
2. Dance, song and music.
[ ଦ୍ର—ଏହାକୁ ବ୍ରହ୍ମା ଚାରି ବେଦରୁ ସଙ୍କଳନ କରିଥିଲେ, ଏହା ଶିବୋକ୍ତ । ବ୍ରହ୍ମାଙ୍କଠାରୁ ଭରତ ମୁନି ପ୍ରାପ୍ତ ହୋଇ ଜଗତରେ ଏହା ପ୍ରଚାର କରିଥିଲେ । ]
୩ । ଅଭିନୟଦ୍ୱାରା ଚରିତ୍ର ପ୍ରଦର୍ଶନ—
3. Acting; dramatic performance.
୪ । ଫଳିତ ଜ୍ୟୋତିଷ ମତରେ ନାଟକ ଆରମ୍ଭ କରିବା ପାଇଁ ଶୁଭ ନକ୍ଷତ୍ର ( ଯଥା—ଅନୁରାଧା, ଧନିଷ୍ଠା, ହସ୍ତା, ଚିତ୍ରା, ସ୍ୱାତୀ, ଜ୍ୟେଷ୍ଠା, ଶତଭିଷା ଓ ରେବତୀ—ବୃ. ଶ. )—
4 Astrologically auspicious asterisms for starting a new drama or theatrical performance.

**ନାଟ୍ୟକାର**—ସ. ବ. ( ନାଟ୍ୟ+କୃ ଧାତୁ+କର୍ତ୍ତୃ ଅ )—
Nāṭyakāra ୧ । ନର୍ତ୍ତକ—1. A dancer.
୨ । ନଟ—2 An actor.
ଦେ. ବ—ନାଟକର ରଚକ—A dramatist

**ନାଟ୍ୟ ପ୍ରିୟ**—ସ. ବଣ. ପୁଂ. ( ନାଟ୍ୟ+ପ୍ରିୟ; ବହୁବ୍ରୀହି )—
Nāṭya priya ନୃତ୍ୟ ଗୀତ ବାଦ୍ୟ ପ୍ରିୟ ଯାହାର—
(ନାଟ୍ୟପ୍ରିୟା—ସ୍ତ୍ରୀ) Loving music.
ସ ବ—ଶିବ; ମହାଦେବ—Siba.

**ନାଟ୍ୟ ବେଦ**—ସ. ବ—ବ୍ରହ୍ମାଙ୍କ ଦ୍ୱାରା ରଚିତ ନୃତ୍ୟ ବାଦ୍ୟ ଗୀତାଦି
Nāṭya beda ବିଷୟକ ଉପବେଦ—Name of a minor Beda dealing with music and dancing and said to have been composed by Brahmā.
( ଯଥା—ଏହାର ନାମ ଗନ୍ଧର୍ବ ବେଦ । )

**ନାଟ୍ୟ ଶାଳା**—ସ. ବ. ( ଷଷ୍ଠୀ ତତ୍; ନାଟ୍ୟ+ଶାଳା=ଗୃହ )—
Nāṭya śālā ୧ । ନାଚଶାଳା—1. Dancing hall; dancing saloon; ballroom.
୨ । ନାଚ ଆଖଡ଼ା—2. The place where dancing is taught or dancers are trained.
୩ । ଥିଏଟର ଘର; ଥିଏଟରର ରଙ୍ଗମଞ୍ଚ—
3. The stage of a theatre
୪ । ନାଟ ମନ୍ଦିର; ମନ୍ଦିର ବା ପ୍ରାସାଦ ଦ୍ୱାର ସମୀପ ଗୃହ—
4. A room adjoining the main temple or palace.

**ନାଟ୍ୟ ଶାସ୍ତ୍ର**—ସ. ବ—୧ । ନୃତ୍ୟ, ଗୀତ ଓ ବାଦ୍ୟ ଅଭିନୟ ବିଷୟକ ଶାସ୍ତ୍ର
Nāṭya śāstra 1. The science of music; dancing and singing and plasing on musical instruments.
୨ । ଭରତ ମୁନିକୃତ ନାଟ୍ୟ ବିଷୟକ ଗ୍ରନ୍ଥ—
2 Name of a musical work by sage Bharata.
[ ଦ୍ର—ଶିବ ବ୍ରହ୍ମାଙ୍କୁ ନାଟ୍ୟ ସମ୍ବନ୍ଧେ ଉପଦେଶ ଦେଇଥିଲେ । ଇନ୍ଦ୍ରଙ୍କ ପ୍ରାର୍ଥନା ଅନୁସାରେ ବ୍ରହ୍ମା ଏହାକୁ ଅବତାର ଗ୍ରହଣ କରି ନାଟ୍ୟବେଦ ନାମକ ଉପବେଦ ରଚନା କଲେ । ବ୍ରହ୍ମାଙ୍କଠାରୁ ଭରତ ମୁନି ଏହା ପ୍ରାପ୍ତ ହୋଇ ସଂସାରରେ ଏହା ପ୍ରଚାର କଲେ । ବୃ. ଶବ୍ଦସାଗର । ]

**ନାଟ୍ୟରସକ**—ସ. ବି—ଏକ ଅଙ୍କବିଶିଷ୍ଟ ଏକ ପ୍ରକାର ଉପରୂପକ
Nāṭya rāsaka ଦୃଶ୍ୟ କାବ୍ୟ—A kind of drama with one act only.
[ ଦ୍ର—ଏଥିରେ ନାୟକ ଉଦାତ୍ତ, ନାୟିକା ବାସକସଜ୍ଜା ଓ ଉପନାୟକ ପୀଠମର୍ଦ୍ଦ ହୁଅନ୍ତି । ଏଥିରେ ଅନେକ ପ୍ରକାର ଗୀତ ଓ ନୃତ୍ୟ ଥାଏ । ହି. ଶ. ]

**ନାଟ୍ୟାଚାର୍ଯ୍ୟ**—ସ. ବି ( ଷଷ୍ଠୀ ତତ୍; ନାଟ୍ୟ + ଆଚାର୍ଯ୍ୟ )—
Nāṭyāchārjya ୧ । ନାଚଗୁରୁ, ଯେ ନାଚ ଶିଖାଏ—
1. A dancing master
୨ । ରଙ୍ଗଭୂମିର ଅଧ୍ୟକ୍ଷ—2. The superintendent of a theatre; stage manager.

**ନାଟ୍ୟାଳଙ୍କାର**—ସ. ବି—ନାଟକର ସୌନ୍ଦର୍ଯ୍ୟ ବୃଦ୍ଧି କରିବା ଅଳଙ୍କାର-
Nāṭyālaṅkāra ବିଶେଷ—Rhetorical figures which enhance the beauty of a drama.
[ ଦ୍ର—ସାହିତ୍ୟ ଦର୍ପଣରେ ନାଟ୍ୟାଳଙ୍କାରର ସଂଖ୍ୟା ୩୩ ବୋଲି ନିର୍ଦ୍ଦିଷ୍ଟ ହୋଇଅଛି । ଯଥା—ଆଶୀର୍ବାଦ, ଆକ୍ରନ୍ଦ, କପଟ, ଅକ୍ଷମା, ଗର୍ବ, ଉଦ୍ୟମ, ଆଶ୍ରୟ, ଉତ୍ପ୍ରାସନ, ସ୍ପୃହା, କ୍ଷୋଭ, ପଶ୍ଚାତ୍ତାପ, ଉପପତ୍ତି, ଆଶଂସା, ଅଧ୍ୟବସାୟ, ବିସର୍ପ, ଉଲ୍ଲେଖ, ଉତ୍ତେଜନ, ପରୀବାଦ, ନୀତି, ଅର୍ଥ ବିଶେଷଣ, ପ୍ରୋତ୍ସାହନ, ସାହାଯ୍ୟ, ଅଭିମାନ, ଅନୁବୃତ୍ତି, ଉତ୍କୀର୍ତ୍ତନ, ଯାଚଞା, ପରିହାର, ନିବେଦନ, ପ୍ରବର୍ତ୍ତନ, ଆଖ୍ୟାନ, ଯୁକ୍ତି, ପ୍ରହର୍ଷ ଓ ଶିକ୍ଷା । ହି. ଶବ୍ଦସାଗର । ]

**ନାଟ୍ୟୋକ୍ତି**—ସ. ବି. ( ନାଟ୍ୟ + ଉକ୍ତି )—
Nāṭyokti ୧ । ନାଟକରେ ପ୍ରଯୁକ୍ତ ହେଉଥିବା ବିଶିଷ୍ଟ ବାକ୍ୟ—
1. Dramatic language.
୨ । ନାଟକରେ ବ୍ୟବହୃତ ଭିନ୍ନ ଭିନ୍ନ ବ୍ୟକ୍ତିଙ୍କୁ ସମ୍ବୋଧନ କରିବାରେ ବ୍ୟବହୃତ ଭିନ୍ନ ଭିନ୍ନ ବିଶିଷ୍ଟ ଶବ୍ଦମାନ—
2. Special words used in addressing particular persons in dramas.
[ ଦ୍ର—ସଂସ୍କୃତ ନାଟକରେ ଭିନ୍ନ ଭିନ୍ନ ବ୍ୟକ୍ତିଙ୍କୁ ଡକାଯିବା ନାମ ବା ସମ୍ବୋଧନ । ଯଥା—ବ୍ରାହ୍ମଣ—ଆର୍ଯ୍ୟ; କ୍ଷତ୍ରିୟ—ମହାରାଜ; ସଖୀ—ହଲା; ନୀଚ ବ୍ୟକ୍ତି—ହଣ୍ଡେ; ଚେଟୀ—ହଞ୍ଜେ; ସ୍ୱାମୀ—ଆର୍ଯ୍ୟପୁତ୍ର; ରାଜାଙ୍କ ଶ୍ୟାଳକ—ରାଷ୍ଟ୍ରୀୟ; ସମାନସ୍ଥ ବ୍ୟକ୍ତି—ହଂହୋ; ରାଜା—ଦେବ, ରାଜକୁମାର—ଯୁବରାଜ; ସାର୍ବଭୌମ—ଭଟ୍ଟ; ଭଗିନୀପତି—ଆବୁତ୍ତ; ବେଶ୍ୟା—ଅଜ୍ଜୁକା, ଅତ୍ତୁକା; ବିଦ୍ୱାନ୍ ବ୍ୟକ୍ତି—ଭାବ; ଜନକ—ଆର୍ଯ୍ୟକ; ରାଜକୁମାର—ଭର୍ତ୍ତୃଦାରକ; ଭଟ୍ଟାରକ; ରାଜପୁତ୍ରୀ—ଭର୍ତ୍ତୃଦାରିକା; କୃତାଭିଷେକାରାଜ୍ଞୀ—ଦେବୀ; ଇତର ରାଜ୍ଞୀ—ଭଟ୍ଟିନୀ; ଅବଧ୍ୟୋକ୍ତି—ଅବ୍ରାହ୍ମଣ୍ୟଂ; ମାତା—ଅମ୍ବା; ବାଳା—ବାସୁ; ଆର୍ଯ୍ୟ—ମାରିଷ; ଜ୍ୟେଷ୍ଠା ଭଗିନୀ—ଅତ୍ତିକା ଇତ୍ୟାଦି ଶବ୍ଦ ପରିବର୍ତ୍ତେ—ନିବର୍ତ୍ତଣ । ]

**ନାଠା**—ଦେ. ବିଣ. ପୁଂ. ( ସ. ନତ )—
Nāṭhā ୧ । ଗେଡ଼ା—1. Dwarfish.
ବେଁଠେ
ନାଟା
୨ । ( ସ. ନଷ୍ଟ ) ଯେଉଁ ବ୍ୟକ୍ତିର ପୁତ୍ର, ପିତାମହାଦି କମ୍ମା ପୁତ୍ର ପୌତ୍ରାଦି କେହି ନ ଥାନ୍ତି—
(ନାଠୀ—ସ୍ତ୍ରୀ) 2 (a person) Having no heirs.
ନାଠା

**ନାଠି**—ଦେ. ବି ଓ ବିଣ. ( ସ. ଯଷ୍ଟି; ପ୍ରା. ଲଟ୍ଠି )—
Nāṭhi ଲାଠି ( ଦେଖ )—Lāṭhi ( See )
ନାଟାଇ ତେଲେ ଛଳ ଭଲ ଭେତ୍, ଉଲେ ଉଲେ ଭୁଲ ଯଥା ନାଠି ସଞ୍ଚାଳନେ ।
ଲଟଖା ଉତ୍କଳ ଦର୍ପଣ ।
ଦେ. ବି—ନଟେଇ; ଯେଉଁ କାଠିରେ ସୂତା ଗୁଡ଼ିଆ ହୋଇଥାଏ—Distaff.

**ନାଠି ଭାଙ୍ଗି ଛିଡ଼ା ହେବା**—ପ୍ରାଦେ. ( ଯୁଗ୍ମ ) କ୍ରି—
Nāṭhi bhāṅgi chhiṛā hebā ଅନ୍ୟ ବ୍ୟକ୍ତିଙ୍କୁ ଅନୁସରଣ କରି ବହୁକାଳ ଆଣ୍ଠୁକୁ ନ୍ୟୁବ୍ଜ କରି ଛିଡ଼ା ହେବା—
To stand before a person with bent knees.

**ନାଡ଼**—ଦେ. ବି.—(ସ. ନାଳ)—୧ । ମୃଣାଳ; ପଦ୍ମ ଆଦି ଫୁଲର
Nāṛa ଡେମ୍ଫ—1 The stalk or long stem of
ବୋଁଟା lotus and other flowers.
ଡାଁଟ ୨ । ପେଶୀ—2 Nerve.
ନାଡ ୩ । ( ସ ନାଡ଼ୀ ) ଦେହ ମଧ୍ୟସ୍ଥ ଅନ୍ତ୍ର—3 Intestine
ନାଡୀଭୁଁଡ଼ି tubular organs inside the body.
ଆଁତଡ଼ୀ, ଆଁତ ୪ । ରକ୍ତବାହକ ଶିରା; ନାଡ଼ୀ—
ନାଡୀ 4. Pulse; vein; artery
ନାଡ଼ୀ ୫ । ଯେଉଁ ଶିରା ନବଜାତ ଶିଶୁର ନାଭି ଓ ଗର୍ଭସ୍ଥ ଫୁଲ
ନାଭୀ ସଙ୍ଗେ ଲାଗି ଥାଏ ଓ ଶିଶୁ ଭୂମିଷ୍ଠ ହେବା ପରେ ଶିଶୁର
ନାଡ଼, ନାର; ଆଁବଲନାଲ ନାଭି ନିକଟରୁ ଯାହାକୁ ଫୁଲ ଠାରୁ ବିଚ୍ଛିନ୍ନ
ଆଁକଡ଼ା କରି କାଟି ଦିଆ ଯାଏ ;ନାଭିନାଳ—5. Umbilical
ଆଁକଡ଼ା cord; the navel string.
୬ । ଲଙ୍ଗଳର ଊର୍ଦ୍ଧ୍ୱାଂଶ ବା ଲଣ୍ଡିର ବେକ; ଲଙ୍ଗଳର ବେକ—6 The neck of a plough; the main portion of the handle-piece of a plough.
୭ । ଗୁଣା ବସୁଣି ଆଦିର ଯେଉଁ ବକ୍ରାଂଶ ନାକ ଛିଦ୍ରରେ ଗଳା ଯାଏ—7. The hooked portion of a nose-ring which is thrust into the bore of the nose.

**ନାଡ଼କଟା**—ଦେ. ବି (ସ. ନାଡ଼ୀ କର୍ତ୍ତନ)—ନବଜାତ ଶିଶୁର ନାଭି
Nāṛa kaṭā ନାଳ ଛେଦନ—The cutting of the
ନାଡ଼ୀକାଟା navel chord of a newly born infant.
ନାଲ କଟାଇ

**ନାଡ଼ କାଟିବା**—ଦେ. କ୍ରି.—(ସ. ନାଡ଼ୀ+କର୍ତ୍ତନ)—ନବଜାତ ଶିଶୁର
Nāṛa kāṭibā ନାଭି ସଂଲଗ୍ନ ନାଡ଼କୁ ଫୁଲରୁ ଛେଦନ କରିବା—
ନାଡ଼ୀ କାଟା To cut the navel string of a newly
ନାଲକାଟନା, ନାଲଛିନ୍‌ନା born baby

**ନାଡ଼ ଛତୁ**—ଦେ. ବି.—(ସ. ନଳ+ଛତ୍ରାକ) ଏକ ପ୍ରକାର ଛତୁ—
Nāṛa chhatu A kind of long stemmed
ପୋଲ ଛାତ ଗୋବର୍ ଛିତା mushroom.

[ଦ୍ର—ଏହା ଭୂଇଁରୁ ଶ୍ରାବଣ ଓ ଭାଦ୍ର ମାସରେ ଜନ୍ମେ । ଏଥିର ନାଡ଼ ବା ଡେମ୍ଫ ସରୁ ଓ ଲମ୍ବା ଏବଂ ଛଇ ଷେଣ ।]

**ନାଡ଼ ଫୁଲ**—ଦେ. ବ—(ସନ୍ଧତର ଶବ୍ଦ)—ଫୁଲ ନାଡ଼, ନବଜାତ ଶିଶୁର ନାଭ ସଙ୍ଗେ ଲାଗି ଥିବା ନାଡ଼ୀ ଓ ଫୁଲ—The placenta and the tube attached to the navel of a newly born baby; the navel string with the placenta attached to it when an infant is born.
Nārḍa phula
ନାଡୀଫୁଲ
**आँवलनाल, नारवेबार, नारापोटी**

**ନାଡ଼ ଫୁଲ କର ଟେକିଦେବା**—ଦେ କ୍ରି.—୧ । ନବଜାତ ଶିଶୁର ନାଭ ସଲଗ୍ନ ନାଡ଼ ଓ ଫୁଲ ଛେଦିତ ହେବା ପୂର୍ବରୁ ପାଳନ କରିବା ନିମନ୍ତେ ପ୍ରସୂତି ଅନ୍ୟ ସ୍ତ୍ରୀ ହାତକୁ ଉକ୍ତ ଶିଶୁକୁ ଅର୍ପଣ କରିବା—1. To hand over a newly born infant (with the placenta still attached),to the hands of another woman for bringing it up
Nārḍa phula kari tekidebā
**नारवेबार समेत उठादेना**

୨ । (ଓଡ଼ିଶାରେ ଏକ ପ୍ରକାର ପୋଷ୍ୟପୁତ୍ର ଗ୍ରହଣ କରିବାର ରୀତି)—ଶିଶୁ ଜନ୍ମ ହେବା ସଙ୍ଗେ ସଙ୍ଗେ ତାହାର ନାଭିଛେଦନ ହେବା ପୂର୍ବରୁ ପୂର୍ବକୃତ ସଙ୍କଳ୍ପ ବା ଅଙ୍ଗୀକାର ଅନୁସାରେ ଉକ୍ତ ଶିଶୁକୁ ପୋଷିଥିଁ ମାତାଙ୍କ ହାତକୁ ଜନ୍ମ କଲା ମାଆ ଟେକି ଦେବା—2. To make over a newly born infant with the navel string still uncut to the woman who had promised to adopt it before it was born (a kind of taking in adoption of a child prevalent in Orissa.

[ଦ୍ର—ମୃତବତ୍ସା ପ୍ରସୂତି ସ୍ତ୍ରୀମାନଙ୍କର ବିଶ୍ୱାସ ଯେ ଶିଶୁ ଜନ୍ମ ହେବା ମାତ୍ରେ ନାଡ଼ ଫୁଲ ସହିତ ଅନ୍ୟ ସ୍ତ୍ରୀଙ୍କୁ ଉକ୍ତ ଶିଶୁକୁ ପାଳନ କରିବାକୁ ଅର୍ପଣ କଲେ ସେ ଶିଶୁଟି ମୃତ୍ୟୁମୁଖରେ ପତିତ ହୁଏ ନାହିଁ । ଆହୁରି ମଧ୍ୟ ଅପୁତ୍ରକା ସ୍ତ୍ରୀ ଗର୍ଭିଣୀ ସ୍ତ୍ରୀଙ୍କ ଠାରୁ ଜନ୍ମର ବହୁଦିନ ପୂର୍ବେ ପୋଷ୍ୟପୁତ୍ର ଗ୍ରହଣ କରିବାର ସ୍ଥିର କରିଥାଆନ୍ତି ଓ ଶିଶୁ ଭୂମିଷ୍ଠ ହେବା ମାତ୍ରେ ତାର ନାଡ଼ କଟା ହେବା ପୂର୍ବରୁ ପ୍ରସୂତିଠାରୁ ଉକ୍ତ ଶିଶୁକୁ ପୋଷ୍ୟପୁତ୍ର ରୂପେ ଗ୍ରହଣ କରି ଆପଣାର ଶିଶୁ ସ୍ୱରୂପ ଲାଳନପାଳନ କରନ୍ତି ।]

**ନାଡ଼ା**—ଦେ. ବ.—(ସ. ନାଡ଼ୀ)—୧ । ଗର୍ଭସ୍ଥ ଅନ୍ତ୍ର; ଅନ୍ତ୍ରବୁଜୁଳା—1. The intestines; the entrails.
Nārḍā
ନାଡ଼ୀଭୁଁଡ଼ି
୨ । ଯେଉଁ ଶିରା ଅନ୍ତ୍ର ଓ ଅଣ୍ଡକୋଷକୁ ସଲଗ୍ନ କରିଥାଏ—2. The duct joining the intestine with the testicle; the inguinal ligament.
**आँत**
नाड़ा

**ନାଡ଼ା ଗଳିବା**—ଦେ. ବ.—ଅଣ୍ଡକୋଷର ସ୍ଫୀତ ରୋଗ; ନାଡ଼ା ମୋଟ ଓ ଦରଜ ହୋଇ ଅଣ୍ଡକୋଷର ସ୍ଫୀତ ଉତ୍ପାଦନ କରିବା—The painful swelling of the testicle due to the thickening of the inguinal ligament or the descent of the intestines into the testicle.
Nārḍā gaḷibā
**आँत गीरना**

**ନାଡ଼ା ଦରଜ ହେବା**—ଦେ. ବ—ନାଡ଼ା ମୋଟା ଓ ଦରଜ ହେବା—The painful swelling of the inguinal ligament.
Nārḍā daraja hebā
ନାଡ଼ା ଦର୍ଦ୍ଦ ହଓଆ; **आँतमे दर्द करना**
[ନାଡ଼ା ଧରିବା, ନାଡ଼ା ହେବା—ଅନ୍ୟରୂପ]

**ନାଡ଼ି**—ସ. ବି. (ନଡ଼ ଧାତୁ. ଣିଚ+କର୍ତ୍ତୃ. ଇ; ଇନ+ଆ;+ଈ)—
Nārḍi ୧ । ନଳ—1 Tube; pipe.
ନାଡ଼କା, ନାଡ଼ୀ } ଅନ୍ୟରୂପ
୨ । ଦେହସ୍ଥ ରକ୍ତବାହିନୀ ଶିରା; (ଏହା ନଳ ପରି ପୋଲା ଓ ଏଥି ମଧ୍ୟରେ ରକ୍ତ ଓ ରସାଦି ଯିବା ଆସିବା କରେ ।]
2. Artery, vein; blood vessel; tubular vessel of the body.

୩ । ହାତଗଣ୍ଠି ଓ ଗୋଡ଼ଗଣ୍ଠି ନିକଟରେ ଥିବା ଶିରା, ଯାହାକୁ ଚିପିଲେ ମନୁଷ୍ୟ ଶରୀରସ୍ଥ କଫ ବାତ ପିତ୍ତର ଅବସ୍ଥା ଓ ହୃତ୍ପିଣ୍ଡର ସ୍ପନ୍ଦନର ପରିମାଣ ଜଣା ପଡ଼େ—
3. Pulse

[ଦ୍ର—ଯେଉଁ ନାଡ଼ିମାନଙ୍କ ଦ୍ୱାରା ଶରୀରର ରକ୍ତ ପ୍ରବାହିତ ହେଉଅଛି ତାହା ଦୁଇ ପ୍ରକାର । ୧ । ଯେଉଁ ନାଡ଼ିମାନ ହୃତ୍ପିଣ୍ଡରୁ ଶୁଦ୍ଧ ରକ୍ତକୁ ନେଇ ଦେହ ତମାମ ପହଞ୍ଚାନ୍ତି । ୨ । ଯେଉଁ ନାଡ଼ିମାନ ସମସ୍ତ ଅଙ୍ଗରୁ ଅଶୁଦ୍ଧ ରକ୍ତକୁ ନେଇ ପ୍ରାଣବାୟୁ ଦ୍ୱାରା ତାହା ଶୋଧିତ ହେବାପାଇଁ ହୃଦପୃରେ ପହଞ୍ଚାନ୍ତି । ପ୍ରଥମ ଶ୍ରେଣୀର ନାଡ଼ିକୁ ବିଶେଷତଃ ନାଡ଼ି ବୋଲାଯାଏ ଓ ତହିଁରେହିଁ ସ୍ପନ୍ଦନ ଅଧିକତର ହେଉଥାଏ । ଅଶୁଦ୍ଧ ରକ୍ତକୁ ହୃଦୟରେ ପହଞ୍ଚାଉଥିବା ନାଡ଼ିମାନଙ୍କର ସ୍ପନ୍ଦନ ଅତି ସାମାନ୍ୟ । ଅଶୁଦ୍ଧ ରକ୍ତବାହୀ ନାଡ଼ିମାନ ଅଶୁଦ୍ଧ ରକ୍ତକୁ ନେଇ ହୃତ୍ପିଣ୍ଡର ଡାହାଣ କୋଠରିରେ ପହଞ୍ଚାନ୍ତି । ସେଠାରୁ ଉକ୍ତ ରକ୍ତ ଫୁସ୍ ଫୁସ୍ ବାଟେ ଯାଇ ଶୁଦ୍ଧ ହୁଏ ଓ ଶୁଦ୍ଧ ରକ୍ତ ହୃତ୍ପିଣ୍ଡର ବାମକୋଠରିରେ ପ୍ରବେଶ କରି ସେଠାରୁ ଶୁଦ୍ଧ ରକ୍ତବାହୀ ନାଡ଼ିମାନଙ୍କ ଦ୍ୱାରା ଦେହ ତମାମକୁ ବାହିତ ହୁଏ । ହୃଦୟ ବରାବର ପ୍ରସାରିତ ଓ ସଙ୍କୁଚିତ ହେଉଅଛି ଓ ଏହି ପ୍ରସାରଣ ସଙ୍କୋଚନ ପ୍ରକ୍ରିୟାଦ୍ୱାରା ତହିଁରେ ସଞ୍ଚିତ ରକ୍ତ ନାଡ଼ିମାନଙ୍କ ମଧ୍ୟକୁ ଯିବା ଆସିବା କରୁଛି । ନାଡ଼ିମାନ ମାଂସ ଓ ହଳଦିଆ ତନ୍ତୁରେ ନିର୍ମିତ ଓ ରବର ନଳ ପରି ସ୍ଥିତିସ୍ଥାପକ । ନାଡ଼ିକୁ ଟାଣିଲେ ବଢ଼ିଯାଏ ଓ ଛାଡ଼ିଦେଲେ ପୂର୍ବାବସ୍ଥା ପ୍ରାପ୍ତ ହୁଏ । ହୃଦୟର ବାମ କୋଠିରି ଥରେ ସଙ୍କୁଚିତ ହେବାବେଳେ ତହିଁରୁ ପ୍ରାୟ ୧୨ ଛଟାଙ୍କି ରକ୍ତ ନାଡ଼ିମାନଙ୍କ ମଧ୍ୟକୁ ଠେଲି ହୋଇଯାଏ । ହୃଦୟର ଏହି ଆକୁଞ୍ଚନ ପ୍ରସାରଣ ଯୋଗୁ ନାଡ଼ିମାନଙ୍କରେ ମଧ୍ୟ ସ୍ପନ୍ଦନ ହୁଏ । ଏହି ସ୍ପନ୍ଦନ ବଡ଼ ନାଡ଼ିମାନଙ୍କର ଅନୁଭୂତ ହୁଏ । ଶୁଦ୍ଧ ରକ୍ତବାହିନୀ ନାଡ଼ିମାନ କଟିଗଲେ ସେଥିରୁ ରକ୍ତ ପିଚକି କରି ବାହାରେ । ଅଶୁଦ୍ଧ ରକ୍ତବାହିନୀ ନାଡ଼ି କଟିଗଲେ ରକ୍ତସ୍ରାବ ଧୀରେ ଧୀରେ ହୁଏ । ଶୁଦ୍ଧ ରକ୍ତ ନାଲିଆ ଓ ଅଶୁଦ୍ଧ ରକ୍ତ କଳା ଅଠାଳିଆ । କାନମୂଳ, ବେକ ମୂଳର ବାମ ଓ ଡାହାଣ, ଊରୁସନ୍ଧିର ମଧ୍ୟଭାଗ, ଗୋଡ଼ର ବୁଢ଼ା ଅଙ୍ଗୁଠି ପାଖ ଓ ଗୋଇଠି ପାଖ, ଲିଙ୍ଗର ଉପରଭାଗ, ହାତର

କଣ୍ଠ, ବାହୁର କହୁଣି ଉପର ଓ କାଖ, ଏହି ସ୍ଥାନମାନଙ୍କୁ ଅଙ୍ଗୁଠି ଦ୍ୱାରା ଚପିଲେ ନାଡ଼ିର ସ୍ପନ୍ଦନ ଅନୁଭୂତ ହୁଏ । ନାଡ଼ିର ସ୍ପନ୍ଦନ ଦ୍ୱାରା ହୃତ୍‌ପିଣ୍ଡର ସ୍ପନ୍ଦନ ଜଣା ପଡ଼େ । ନାଡ଼ିର ସ୍ପନ୍ଦନ ବନ୍ଦ ହେଲେ ହୃତ୍‌ପିଣ୍ଡର ସ୍ପନ୍ଦନ ବନ୍ଦ ହେବାର ଜଣାଯାଏ । ନାଡ଼ି ପରୀକ୍ଷାଦ୍ୱାରା ରୋଗର ନିର୍ଣ୍ଣୟ ମଧ୍ୟ କରାଯାଏ । ଆୟୁର୍ବେଦ ଗ୍ରନ୍ଥମାନଙ୍କରେ ନାଡ଼ିମାନଙ୍କର ବିଭାଗ କରାଯାଇ ନାହିଁ । ସୁଶ୍ରୁତରେ ୭୦୦ ଶିରାର ଉଲ୍ଲେଖ ଅଛି, ତହିଁରୁ ୧୦ ରକ୍ତବାହିନୀ, ୧୦ କଫବାହିନୀ, ୧୦ ପିତ୍ତବାହିନୀ ଓ ୧୦ ବାୟୁବାହିନୀ । ଶୁଦ୍ଧ ଓ ଅଶୁଦ୍ଧ ରକ୍ତର ବିଷୟରେ ଆୟୁର୍ବେଦରେ ନାଡ଼ିବିଭାଗ କରାଯାଇ ନାହିଁ । ସୁଶ୍ରୁତରେ ଶିରା ଓ ଧମନୀର ମୂଳନାଭି ଥିବାର ବୋଲାଯାଇ ଅଛି । ବର୍ତ୍ତମାନ ବିଜ୍ଞାନରେ ଶୁଦ୍ଧ ରକ୍ତବାହିନୀ ନାଡ଼ିମାନଙ୍କୁ କେହି କେହି ଧମନୀ କହନ୍ତି । ନାଡ଼ି ପରୀକ୍ଷା ବିଷୟ ସୁଶ୍ରୁତରେ ନାହିଁ । ପରବର୍ତ୍ତୀ ଆୟୁର୍ବେଦିକ ଗ୍ରନ୍ଥମାନଙ୍କରେ ଏଥିର ଉଲ୍ଲେଖ ଅଛି ଓ ନାଡ଼ି ପରୀକ୍ଷା ଦ୍ୱାରା ରୋଗମାନଙ୍କ ନିର୍ଣ୍ଣୟ ବିଷୟ ବିବୃତ ହୋଇଅଛି ହିନ୍ଦି. ଶବ୍ଦସାଗର ।]

୪ । ଗଛ ବା ଫୁଲ ଆଦିର ସରୁ ଡେଙ୍ଗ ବା ନାଡ଼—
4. The stalk of a flower or a plant.

୫ । ଦେହାଭ୍ୟନ୍ତରସ୍ଥ ଅନ୍ତ; ଅନ୍ତବୁଜୁଳା—
5 Intestines; entrails.

୬ । ନାଡ଼ି; ନାଭି-ନାଡ଼ିକା—6. Navel string.

୭ । ଏକଦଣ୍ଡ ସମୟ; ୬ କ୍ଷଣ ସମୟ; ପ୍ରାୟ ୨୪ ମିନିଟ୍—
7. A period of 24 minutes; a period of 6 moments.

୮ । ନଳୀ ଘାଆ—8. Sinus.

୯ । ଜଳବାହୀ ସୂର୍ଯ୍ୟ ରଶ୍ମି—9. The rays of the sun which cause the waters to evaporate.

୧୦ । ବାଉଁଶର ନଳୀ—10. A bamboo tube.

୧୧ । ବଣିଆଙ୍କ ଫୁଙ୍କନଳୀ—11. Blow-pipe.

୧୨ । ବନ୍ଧୁକର ନଳୀ (ହି. ଶବ୍ଦସାଗର)—
12. The barrel of a gun.

୧୩ । ଗଣ୍ଡଦୂର୍ବା (ହି. ଶବ୍ଦସାଗର) (ଦେଖ)
13. A kind of tubular grass.

୧୪ । କୌଣସି ତୃଣର ପୋଲା ଡାଙ୍ଗ (ହି. ଶବ୍ଦସାଗର)—
14. A hollow stem of grass

୧୫ । ଛଦ୍ମ; କପଟ—15. Deceit

୧୬ । ନାଡ଼ୀ ନକ୍ଷତ୍ର (ଦେଖ) (ହି. ଶବ୍ଦସାଗର)—
16. Nārdi nakshatra (See)

୧୭ । ହଠଯୋଗ ଅନୁସାରେ ଜ୍ଞାନବାହିନୀ, ଶକ୍ତିବାହିନୀ ଓ ଶ୍ୱାସପ୍ରଶ୍ୱାସବାହିନୀ ନାଡ଼ିମାନ—
17. The veins which carry no perception, energy and breath (according to Hatha joga).

[ଦ୍ର—ଯୋଗୀମାନେ କହନ୍ତି ଯେ ପିଠିର ମେରୁଦଣ୍ଡର ବାମ ପାଖେ ଇଡ଼ା ଓ ଡାହାଣପାଖେ ପିଙ୍ଗଳା ଏବଂ ଏ ଦୁହିଙ୍କ ମଝିରେ ସୁଷୁମ୍ନା ନାଡ଼ି ଅଛି । ସ୍ୱରୋଦୟ ଶାସ୍ତ୍ର ମତରେ ନାକର ବାମ ପୁଡ଼ାରେ ବହୁଥିବା ଶ୍ୱାସ ଇଡ଼ା ଓ ଡାହାଣ ନାକ ପୁଡ଼ାରେ ବହୁଥିବା ଶ୍ୱାସ ପିଙ୍ଗଳା ନାଡ଼ିବାଟେ ଯିବା ଆସିବା କରେ ଓ ସୁଷୁମ୍ନା ନାଡ଼ିବାଟେ ଯିବା ଆସିବା ଶ୍ୱାସ ଦୁଇ ନାକପୁଡ଼ା ବାଟେ ସମାନଭାବରେ ବହେ । ନାକରେ ବହୁଥିବା ଶ୍ୱାସକୁ ବାରିକରି ମନୁଷ୍ୟ ଜୀବନର ଦୈନିକ ଶୁଭାଶୁଭ ନିର୍ଣ୍ଣୟ କରାଯାଏ । ଇଡ଼ାରେ ଚନ୍ଦ୍ରଙ୍କ ଅବସ୍ଥିତି, ପିଙ୍ଗଳାରେ ସୂର୍ଯ୍ୟଙ୍କ ଅବସ୍ଥିତି ଓ ସୁଷୁମ୍ନାରେ ତ୍ରିଗୁଣାମୟ ଅଗ୍ନିଙ୍କ ଅବସ୍ଥିତି କଳ୍ପିତ ହୁଏ । ଏହି ନାଡ଼ିମାନଙ୍କର ଜ୍ଞାନ ବିନା ଯୋଗ ସାଧନ ଅସମ୍ଭବ । କେଉଁ ନାଡ଼ିରେ ଶ୍ୱାସ ଯିବା ସମୟରେ କି କି କାର୍ଯ୍ୟ କରାଯିବ ତାହା ଯୋଗଶାସ୍ତ୍ରରେ ନିର୍ଦ୍ଦିଷ୍ଟ ଅଛି, ଯଥା—ଡାହାଣ ପୁଡ଼ାରେ ଶ୍ୱାସ ବହିଲାବେଳେ ଖାଇବ, ବାଆଁ ପୁଡ଼ାରେ ଶ୍ୱାସ ଗଲାବେଳେ ଶୋଇବ । ସୁଷୁମ୍ନାର ନିମ୍ନଦେଶରେ ଗୁହ୍ୟଦ୍ୱାରର ଉପରେ କୁଣ୍ଡଳୀ ଶକ୍ତି ଜାଗ୍ରତ ହୋଇ ସୁଷୁମ୍ନା ନାଡ଼ି ବାଟେ ଶରୀରାଭ୍ୟନ୍ତରସ୍ଥ ଷଟ୍‌ଚକ୍ରଭେଦ କରି କପାଳସ୍ଥ ବ୍ରହ୍ମରନ୍ଧ୍ରରେ ପହଞ୍ଚେ ଓ ସେଠାରେ ପହଞ୍ଚିବାବେଳକୁ ଯୋଗୀ ସିଦ୍ଧିଲାଭ କରି ପରମାନନ୍ଦରେ ମଗ୍ନ ହୁଅନ୍ତି ଓ ତାଙ୍କର ସଂସାରବନ୍ଧନ ଛିନ୍ନ ହୁଏ— ହି. ଶବ୍ଦସାଗର । ]

ଦେ. ବି—୧ । ନାଡ଼ିରଥକୁଣ୍ଡଳିବିଶିଷ୍ଟ ଘୃତପକ୍ୱ ମିଷ୍ଟାନ୍ନବିଶେଷ—
**अमिर्ती** 1 A sweetmeat having coils.

ଚନ୍ଦ୍ର କାନ୍ତି ଜଳ ନାଡ଼ିକା ସୁଶୋଭନ—ଅଭିମନ୍ୟୁ ବିଦଗ୍ଧଚିନ୍ତାମଣି ।

୨ । (ଲକ୍ଷଣାର୍ଥ; ମୂର୍ଚ୍ଛିତ ବ୍ୟକ୍ତିର ନାଡ଼ିର ଗତି ବନ୍ଦ ହୋଇଯିବାରୁ) ଜ୍ଞାନ; ଚେତନା—
2 Consciousness.

ଯଦୁମଣି ଯିବେ ପୂର୍ଣ୍ଣ ଯାମିନୀ କ ସରେ ଆଉ ନାହିଁ ନଡ଼ି
କବିସୂର୍ଯ୍ୟ. ସଙ୍ଗୀତ ।

ପ୍ରାଦେ (ବାଲେଶ୍ୱର) ବି—ସଜନାକୁଇଁ—
The beans of the Indian horse radish.

ପ୍ରାଦେ (ସିଂହଭୂମ) ବି—ଖଡ଼ା (ଦେଖ)
Khardā (See).

**ନାଡ଼ି ଉଡ଼ିଯିବା**—ଦେ. କ୍ରି.—କ୍ଷୁଧାରେ କଲବଲ ହେବା; ଭୋକରେ ଫାଙ୍କାସି ଉଡ଼ିଯିବା—Feeling of extreme pangs of hunger.
Nārdi urdijibā
(ନାଡ଼ି ଜଳିବା—ଅନ୍ୟରୂପ)

**नाड़िजला, नाड़ि शुखजाना**

**ନାଡ଼ିକ**—ସ. ବି (ନାଡ଼ି + କ)—୧ । କଳଡାଶାଗ—
Nārdika 1. The jute leaves used as a potherb.

୨ । ନାଡ଼ି (ଦେଖ)—2 Nārdi (See)

**ନାଡ଼(ଡ଼ୀ)କଳାପକ**—ସ. ବି—ସର୍ପାକ୍ଷୀ (ହି. ଶବ୍ଦସାଗର) (ଦେଖ)
Nārdi (rdi)kalāpaka Sarpākshi (See).

**ନାଡ଼ିକା**—ସ. ବି (ନାଡ଼ିକ + ଆ)—୧ । ଶ୍ୱାସବାହୀ ନଳ; ଗଳା—
Nārdikā 1. Wind pipe; throat (Apte).
(ନାଡ଼ୀକା—ଅନ୍ୟରୂପ) ୨ । ଏକ ଘଡ଼ି ସମୟ (ହି. ଶବ୍ଦସାଗର)—
2. A period of 45 minutes.

୩ । ଏକ ଦଣ୍ଡ ସମୟ (ହି. ଶବ୍ଦସାଗର)—
3. A period of 24 minutes.

୪ । ନାଡ଼ିବ୍ରଣ—4. A fistulous sore (Apte).

୫ । ସୂର୍ଯ୍ୟଙ୍କ କିରଣରେଖା —
5. A ray of the sun (Apte)

୬ । ଘଣ୍ଟା ବାଜୁଥିବା ଦେଖାଇବା ପିଟା ଘଣ୍ଟ—6 A gong on which the hours are struck (Apte).

**ନାଡ଼ କାଟିବା**—ଦେ. କ୍ରି—ନବଜାତ ଶିଶୁର ନାଭି ନାଡ଼ ଛେଦନ କରିବା—To cut the navel string of an infant.
Nārdi kātibā
ନାଡ଼ିକାଟା **नाड़छालना**

**ନାଡ଼କେଳ**—ସ. ବି. ପୁଂ—ନାରିକେଳ, ନଡ଼ିଆ—Cocoanut
Nārdikela (ନାଡ଼ୀକେଳ—ଅନ୍ୟରୂପ)

**ନାଡ଼ ଚରଣ**—ସ. ବି ( ବହୁବ୍ରୀହି, ନାଡ଼+ଚରଣ, ଯାହାର ଗୋଡ଼ ନଳପରି ସରୁ)—ପକ୍ଷୀ—Bird (Apte).
Nārdi charana
(ନାଡ଼ୀଚରଣ—ଅନ୍ୟରୂପ)

**ନାଡ଼ ଚପା**—ଦେ ବି—୧ । ନାଡ଼ ପରୀକ୍ଷା, ନାଡ଼ିର ସ୍ପନ୍ଦନକୁ ହାତ ଦ୍ୱାରା ବୋଧ କରିବା—1. Feeling of the pulse.
Nārdi chipā
ନାଡ଼ିଟେପା, ନାଡ଼ିଧରা, নাড়িদেখা
**नाड़ी देखना**

୨ । (ଯେ ନାଡ଼ ଚପେ) ବୈଦ୍ୟ; କବିରାଜ—2. A physician (one who feels the pulse of patients),
ନାଡ଼ଚପା, ନାଡ଼ଦେଖା } ଅନ୍ୟରୂପ
ନାଡ଼ଧରା }

**ନାଡ଼ ଚପିବା**—ଦେ. କ୍ରି—୧ । ନାଡ଼ ପରୀକ୍ଷା କରିବା; ରୋଗୀର ଅବସ୍ଥା ଜାଣିବା କମରେ ରୋଗୀର ହାତ ଗୋଡ଼ର ନାଡ଼ିର ସ୍ପନ୍ଦନକୁ ଅଙ୍ଗୁଠି ଦ୍ୱାରା ଅନୁଭବ କରିବା—1 To feel the pulse of a patient,
Nārdi chipibā
ନାଡ଼ିଦେଖা
**नाड़ी देखना, नाड़ी पकड़ना**

ନାଡ଼ ଚୁପିବା }
ନାଡ଼ ଦେଖିବା } ଅନ୍ୟରୂପ
ନାଡ଼ ଧରିବା }

୨ । (ଲକ୍ଷଣାର୍ଥ) କୌଣସି ବ୍ୟକ୍ତିର ମତ ବା ପ୍ରକୃତି ଠଉରେଇବା—2. To ascertain a person's opinion or nature.
ନାଡ଼িটেপা, নাড়িদেখা
**नाड़ीदेखाना**

**ନାଡ଼ ଚୀର**—ସ. ବି—୧ । ଛୋଟ ନଳ ଜାତୀୟ ଗୁଳ୍ମ—1 A small reed (Apte).
Nārdi chira
(ନାଡ଼ୀଚୀର—ଅନ୍ୟରୂପ)

୨ । ତନ୍ତୁବାୟର କଣ୍ଡା—2 A tube round which the woof is wound (Apte).

**ନାଡ଼ ଜଂଘ**—ସ. ବି (ବହୁବ୍ରୀହି; ନାଡ଼+ଜଂଘ)—୧ । କାକ; କୁଆ—1 Crow.
Nārdi jamgha
(ନାଡ଼ୀଜଂଘ—ଅନ୍ୟରୂପ)

୨ । ବଗ—2. A kind of crane.

୩ । (ନାମ) ଏକ ମୁନିଙ୍କ ନାମ—3. Name of a sage.

[ ଦ୍ର—ମହାଭାରତ ଅନୁସାରେ ଏ କଶ୍ୟପଙ୍କ ପୁତ୍ର, ବ୍ରହ୍ମାଙ୍କ ପ୍ରିୟପାତ୍ର ଓ ଧାର୍ମିକମାନଙ୍କ ଗୋଷ୍ଠୀରେ ଏକ ଥିଲେ—ହି ଶବ୍ଦସାଗର । ]

**ନାଡ଼ ଛାଡ଼ିବା**—ଦେ. କ୍ରି—୧ । ନାଡ଼ିର ସ୍ପନ୍ଦନ ବନ୍ଦ ହେବା; ରୋଗୀର ନାଡ଼ିର ସ୍ପନ୍ଦନ ପରୀକ୍ଷକଙ୍କ ହାତକୁ ଜଣା ନ ଯିବା—1. The sinking of the pulse of a patient.
Nārdi chhārdibā
(ନାଡ଼ ଛାଡ଼ିଯିବା—ଅନ୍ୟରୂପ)
ନାଡ଼িছাড়া
**नाड़िडुबजाना, नाड़िछुटजाना**

୨ । ପ୍ରାଣବାୟୁ ଶରୀରରୁ ନିର୍ଗତ ହେବା ଅବସ୍ଥା—2 Dying condition.

**ନାଡ଼ ତରଙ୍ଗ**—ସ. ବି—୧ । ( ବହୁବ୍ରୀହି ) ହୋରିକ, ଫଳିତ ଜ୍ୟୋତିଷୀ
Nārdi taranga (ହି. ଶ)—1. An astrologer (Apte).

୨ । କାକୋଲ (ହି. ଶବ୍ଦସାଗର) (ଦେଖ)
2 Kākola ( See )

୩ । ସ୍ତ୍ରୀର ଧର୍ଷକ ବ୍ୟକ୍ତି—
3 A debaucher; a ravisher (Apte).

**ନାଡ଼ ଦେଖା(ଖୋ)ଇବା**—ଦେ. କ୍ରି—ବୈଦ୍ୟଙ୍କଦ୍ୱାରା ନିଜର ନାଡ଼ିର ସ୍ପନ୍ଦନର ପରୀକ୍ଷା କରାଇବା—To have one's pulse examined or felt by a physician.
Nārdi dekhā(kho)ibā
নাড়িদেখান
**नाड़िदिखाना**

**ନାଡ଼ ନକ୍ଷତ୍ର**—ସ ବି ( ନାଡ଼+ନକ୍ଷତ୍ର )—୧ । ( ଫଳିତ ଜ୍ୟୋତିଷ ) ବର ବଧୂଙ୍କ ଜାତକ ଗଣନାର୍ଥେ କଳ୍ପିତ ଚକ୍ରରେ ସ୍ଥିତ ନକ୍ଷତ୍ରବିଶେଷ—1. The title of some asterisms in connection with the astrological calculation of the horoscopes of a bridegroom and bride elect.
Nārdi nakshatra

[ ଦ୍ର—ଯେଉଁ ନକ୍ଷତ୍ରରେ ମନୁଷ୍ୟ ଜନ୍ମଗ୍ରହଣ କରିଥାଏ ତାକୁ ଓ ତହିଁଠାରୁ ଦଶମ, ଷୋଡ଼ଶ, ଅଷ୍ଟାଦଶ, ତ୍ରୟୋଦଶ ଓ ପଞ୍ଚଦଶ ନକ୍ଷତ୍ରକୁ ନାଡ଼ ନକ୍ଷତ୍ର ବା ନାଡ଼ୀ କହନ୍ତି । ଜନ୍ମ ନାଡ଼ିକୁ ଆଦ୍ୟ, ଦଶମ ନାଡ଼କୁ କର୍ମ, ଷୋଡ଼ଶକୁ ସାଂଘାତିକ, ଅଷ୍ଟାଦଶକୁ ସମୁଦାୟ, ତ୍ରୟୋବିଂଶକୁ ବିନାଶ ଓ ପଞ୍ଚବିଂଶକୁ ମାନସ ନାଡ଼ୀ ବୋଲାଯାଏ—ହି. ଶବ୍ଦସାଗର । ]

୨ । ଜନ୍ମ ନକ୍ଷତ୍ର—2. The natal asterism of a person; the star in the ascendant at one's birth.

ନାଡ଼নক্ষত্র ଦେ. ବି ( ସ- ନାଡ଼+ନକ୍ଷତ୍ର )—୧ । ( କୌଣସି ବ୍ୟକ୍ତିର ଶରୀରସ୍ଥ ନାଡ଼ ଓ ଜାତକର ନକ୍ଷତ୍ର ଦେଖି ତାହାର ସ୍ୱାସ୍ଥ୍ୟ ଓ ଶୁଭାଶୁଭ ଫଳ ଜଣା ଯାଇପାରେ ) ( ଲକ୍ଷଣାର୍ଥ )—କୌଣସି ମନୁଷ୍ୟ ସମ୍ବନ୍ଧେ ଯାବତୀୟ ଜ୍ଞାତବ୍ୟ ବିଷୟ—1. All the available informations about a person.
**ख़ाबा**
(ନାଡ଼ୀନକ୍ଷତ୍ର—ଅନ୍ୟରୂପ)

(ଯଥା—ଆରେ ବାପା ! ମୋ ଆଗରେ ଏତେ ବଡ଼ାଇ କର ନାହିଁ; ମତେ ତୋ ନାଡ଼ୀ ନକ୍ଷତ୍ର ସବୁ ଜଣା । )

୨ । (ଲକ୍ଷଣାର୍ଥ) ମନୁଷ୍ୟର ପ୍ରକୃତିଗତ ଅଭ୍ୟାସ ଓ ଗତିବିଧି—2. A person's movements, nature and habits.

୩ । କୌଣସି ବ୍ୟକ୍ତିର ଗୁପ୍ତ ରହସ୍ୟମାନ—
3. All the secrets of a person.

**ନାଡ଼ନ୍ଧମ**—ସ. ବି ( ନାଡ଼ିଂ—ବାଉଁଶନଳୀକୁ+ଧମ୍ ଧାତୁ ଶବ୍ଦ କରିବା, ଫୁଙ୍କିବା+କର୍ତ୍ତୃ. ଅ—ଯେ ନଳୀରେ ଅଗ୍ନି ଫୁଙ୍କେ)—୧ । ସୁନାରି ବଣିଆ—1. Goldsmith.
Nārdindhama
(ନାଡ଼ୀନ୍ଧମ—ଅନ୍ୟରୂପ)

ବିଣ—୧ । ( ଯାହା ଦେଖିଲେ ବା ଶୁଣିଲେ ଲୋକର ଶରୀରସ୍ଥ ନାଡ଼ମାନ ଦୋହଲିଯାଏ ) ଭୟାନକ; ଗ୍ଲାନିଜନକ—1. Terrifying.

୨ । ଶ୍ୱାସକୁ ଶୀଘ୍ର ଶୀଘ୍ର ଚଳାଇବାବାଲା (ହି. ଶ )—
2. Taking or heaving swift gasps and breaths

ନାଡ଼ନ୍ଧୟ—ସଂ. ଵଣ (ନାଡ+ଧେ ଧାତୁ=ପାନକରିବା+କର୍ତ୍ତୃ. ଅ)—
Nārdindhaya ଯେ ନଳ ଦ୍ୱାରା ପାନ କରେ—
( ନାଡ଼ୀନ୍ଧୟ—ଅନ୍ୟରୂପ ) Drinking through a tube.

ନାଡ଼ପତ୍ର—ସ. ବ—ନଳିତା ଶାଗ, ନଳିତାପିତା—
Nārdipatra Leaf of jute plant; the Jew's mallow used as a pot herb
(ନାଡ଼ୀପତ୍ର—ଅନ୍ୟରୂପ)

ନାଡ଼(ଡ଼ୀ)ବଳୟ—ସ. ବ—ସିଦ୍ଧାନ୍ତଶିରୋମଣି ଲିଖିତ ସମୟଜ୍ଞାପକ
Nārdi(rdi)balaya ଯନ୍ତ୍ରବିଶେଷ ( ହି. ଶ. ) —
A kind of clock used in ancient India

ଦେ. ବ—ନାଡ଼ୀର ଗତି ନିର୍ଣ୍ଣାୟକ ଆଧୁନିକ ଯନ୍ତ୍ରବିଶେଷ—
(ଦ୍ର— ଏହାକୁ ନାଡ଼ି ଉପରେ ରଖିଦେଲେ ନାଡ଼ୀର କ୍ଷୀଣତମ ସ୍ପନ୍ଦନ ମଧ୍ୟ ଜଣାପଡ଼େ )—
Sphygmograph.

ନାଡ଼ିବା—ଦେ. କ୍ରି (ସ. ଲଡ଼ ଧାତୁ=ଉପରକୁ ଫିଙ୍ଗିବା; ସ. ନଡ଼,
Nārdibā ଧାତୁ ଣିଚ ନାଡ଼ ଧାତୁ=ଭ୍ରଂଶକରିବା)—
ନାଡ଼ା ୧ । ଦୋହଲିବା; ନଡ଼ ନଡ଼ ହୋଇ ହଲିବା—
**हिलाना, डुलाना** 1 To move; to dangle; to hang down loosely.

ବେଗ ଯାନାନାଜ ବୃଥ କେଲ
ଗୋଡ ଦଣ୍ଡ ନାଡ଼ୁଥିଲା—ଶିଶୁଗୀତ ।

୨ । ( ପୁଚ୍ଛ ଆଦିକୁ ) ଇତସ୍ତତଃ ଚାଳିତ କରିବା; ହଲାଇବା—
2 To wag; to shake.

ନାଡ଼ି(ଡ଼ୀ)ବ୍ରଣ—ସ ବ—ନାଳଘାଆ; ଯେଉଁ ଘାଆର ଉପରି ଅଂଶ ଶୁଖି-
Nārdi(rdi)brana ଗଲା ପରି ଦେଖା ଯାଉଥାଏ, କିନ୍ତୁ ଭିତରେ ପୂଜ ବଢ଼ୁଥାଏ—Sinus; fistulous sore.

ନାଡ଼ଭୁଡ଼—ଦେ. ବ (ବଙ୍ଗଳାରୁ ଅନୁକୃତ)—ଅନ୍ତ୍ରବୁଜୁଳା—
Nardibhurdi Intestines; entrails
ନାଡ଼ିଭୁଡ଼ି ପ୍ରାଦେ ( ବାଲେଶ୍ୱର ଓ ସିଂହଭୂମ )—
**आँतड़ँत** ୧ । ପୋଇଶାଡ଼; ପୋଇଶଡ଼ା—
1. The stem of the Basella creeper.

୨ । ସଜନାଆଦିର ଛୁଇଁ—
2. The pod or legume of the Moringa tree.

ନାଡ଼(ଡ଼ୀ)ମଣ୍ଡଳ—ସ. ବ.—ବିଷୁବତ୍ ରେଖା; ଖଗୋଳରେ କଳ୍ପିତ
Nārdi (rdi) mandala ବିଷୁବ ରେଖା—The celestial equator.

[ ଦ୍ର—ସୂର୍ଯ୍ୟ ଏହି ରେଖା ଉପରେ ଉପସ୍ଥିତ ହେଲେ ପୃଥିବୀର ଦିବା ରାତ୍ରି ସମାନ ହୁଏ । ]

ନାଡ଼(ଡ଼ୀ)ଯନ୍ତ୍ର—ସ ବ.—୧ । ନଳଯୁକ୍ତ ଯନ୍ତ୍ର—Any tubular
Nārdi(rdi) jantra instrument (Apte).

୨ । ସୁଶ୍ରୁତରେ ଶସ୍ତ୍ର ଚିକିତ୍ସାର ଯନ୍ତ୍ରବିଶେଷ, ଯଦ୍ଦ୍ୱାରା ନାଡ଼ି ମଧ୍ୟରେ ପଶି ପାଇଥିବା ବସ୍ତୁକୁ ବାହାର କରି ପାଉଥିଲେ (ହି ଶ.)—² A kind of surgical instrument mentioned in the Susruta by which any foreign thing introduced inside the veins was extracted

ନାଡ଼ି ଲାଗିବା—ଦେ କ—ରୋଗୀର ନାଡ଼ୀର ସ୍ପନ୍ଦନ ପରୀକ୍ଷକଙ୍କ ହାତକୁ
Nārdi lāgibā ଜଣା ଯିବା—The state of the pulse
ନାଡ଼ି ପାଓୟା ଯାଓୟା of a patient being felt by the
**नाड़ी मिलना** (ନାଡ଼ି ମିଳିବା—ଅନ୍ୟରୂପ) examiner.

ନାଡ଼ଶାକ—ସ. ବ (ବୈଦ୍ୟକ)—ନଳିତା (ହରେକୃଷ୍ଣ ଦ୍ରବ୍ୟଗୁଣ)—
Nārdisāka (ନାଡ଼ୀଶାକ—ଅନ୍ୟରୂପ) Jute

ନାଡ଼ ଶୋଧନ—ସ ବ (ନାଡ଼+ଶୋଧନ)—ଯୋଗୀମାନଙ୍କର ଜଳ ଓ
Nārdi sodhana ବାୟୁଦ୍ୱାରା ଶରୀରସ୍ଥ ନାଡ଼ି ଓ ଅନ୍ତ୍ର ପରିଷ୍କାର କରିବା ପ୍ରକ୍ରିୟା—The practice of cleansing the veins and intestine practised by Jogis.

ନାଡ଼(ଡ଼ୀ)ହିଙ୍ଗୁ—ସ. ବ.—ଏକପ୍ରକାର ବୃକ୍ଷ ଓ ତହିଁରୁ ନିର୍ଗତ ନିର୍ଯ୍ୟାସ—
Nārdi(rdi)hingu Dikamallgum; gummy Gardinia and the gum extracted from it.

ସ. ନାମ.—ନାଡ଼(ଡ଼ୀ)ହିଙ୍ଗୁ, ପଳାଶାଖ୍ୟା, ଶିବାଟିକା, ପିଣ୍ଡା ଜନ୍ତୁକା, ସ୍ୱମଠୀ, ବଂଶପତ୍ରୀ, ବେଣୁପତ୍ରୀ, ପିଣ୍ଡାହ୍ୱା, ସୁଖାର୍ଯ୍ୟା, ହିଙ୍ଗୁନାଡ଼ିକା
ମ. ଡକେ ମାଲୀ
ଗୁ. ଡକାମାଲି
ତେ ଚିଟିହିଙ୍ଗବା
କାରୁଇଂଗବା
ଆ. କନଶାଭ
ନାଡ଼ିହିଂ
**काला पितहीङ्ग; डिकामाली**

[ଦ୍ର—ଏହି ଗଛର ଡାଳରୁ ହେଙ୍ଗୁ ପରି ରସ ବାହାରେ । ଏ ରସ ଔଷଧରେ ଲାଗେ । ଏ ଗଛର ପତ୍ର ବାଉଁଶ ପତ୍ର ପରି । ଫୁଲ ଧଳା, ଓ ଫଳ ପୋସ୍ତକ ଫଳ ପରି । ବୈଦ୍ୟଶାସ୍ତ୍ର ମତରେ ଏହା କଟୁ ରସ, ଉଷ୍ଣବୀର୍ଯ୍ୟ ବାୟୁ ଜନିତ ବେଦନା ନାଶକ, ଜାଲବିବନ୍ଧତା ନାଶକ, ଆନାହଘ୍ନ ଓ ଆମପାଚକ ଅଟେ ।]

ନାଡ଼ୀ—ସ. ବ — (ନଡ଼ ଧାତୁ ଣିଚ+ଈ)—ନାଡ଼ି (ଦେଖ)
Nārdi Nārdi (See)
(ନାଡ଼ି, ନାଡ଼ିକା—ଅନ୍ୟରୂପ) ୧ । ଧମନୀ; ଶିରା—1. Vein.
୨ । ଗଣ୍ଡ ଦୂର୍ବା—2. A kind of grass.
୩ । (ବୈଦକ) ନଳିତା (ହରେକୃଷ୍ଣ. ଦ୍ରବ୍ୟଗୁଣ)— 3. Jute.
୪ । ହିଙ୍ଗୁପତ୍ରୀ (ଦେଖ) (ହରେକୃଷ୍ଣ. ଦ୍ରବ୍ୟଗୁଣ)— 4. Hingupatri (See)

ନାଡ଼ୀକ—ସ. ବ.—(ନାଡ଼ୀ+କୈ ଧାତୁ= ପ୍ରକାଶ କରିବା+କର୍ତ୍ତୃ.
Nārdika ଅ)—୧ । କଳା ଶୁଣ୍ଠୁଣ୍ଡା ଶାଗ; କଳା କାସୁନ୍ଦା ଗୁଳୁ,
(ନାଡ଼ିକ, ନାଡ଼ିତ, ନାଡ଼ୀତ—ଅନ୍ୟରୂପ) 1. A species of Cassia or Senna; Cassia Occidentalis
୨ । ନଳିତା ଶାଗ—2. Leaves of jute plant.

ନାଡ଼ୀକେଳ—ସଂ. ବି.—ନାରକେଳ, ନଡ଼ିଆ—
Nardikela Cocoanut

ନାଡ଼ୀଗତି—ସଂ. ବି (ନାଡ଼ୀ+ଗତି, ୬ଷ୍ଠୀ ତତ୍)—ନାଡ଼ୀର ସ୍ପନ୍ଦନ—
Nardi gati Pulsation

ନାଡ଼ୀ ଚକ୍ର—ସଂ. ବି. (୬ଷ୍ଠୀ ତତ୍; ନାଡ଼ୀ+ଚକ୍ର)—୧ । ନାଭିସ୍ଥ ନାଡ଼ୀ
Nardi chakra ମୂଳ—1. The roots of all the arteries at the navel.
୨ । ହଠଯୋଗ ଶାସ୍ତ୍ର ଲିଖିତ ଇଡ଼ା, ପିଙ୍ଗଳା, ସୁଷୁମ୍ନା, ସରମା, ଗାନ୍ଧାରୀ, ହସ୍ତିଜିହ୍ୱା, ପୂଷା, ଯଶା, ଅଲମ୍ବୁଷା, କୁହୁ, ଶଙ୍ଖିନୀ, ଲୋଳଜିହ୍ୱା ( ଜିହ୍ୱା ), ବିଜୟା, କାମଦା, ଅମୃତା, ବହୁଲା, ଶରୀରସ୍ଥ ଏହି ୧୬ଟି ନାଡ଼ୀ—
2. The sixteen arteries inside the human body according to Haṭhajoga treatises

ନାଡ଼ୀଜ୍ଞ - ସଂ. ବିଣ. ପୁଂ. (ନାଡ଼ୀ+ଜ୍ଞା ଧାତୁ=ଜାଣିବା+କର୍ତ୍ତୃ. ଅ)—
Nardijña ନାଡ଼ୀ ସମ୍ବନ୍ଧରେ ଅଭିଜ୍ଞ—Well versed in the
( ନାଡ଼ିଜ୍ଞ—ଅନ୍ୟରୂପ ) action of the pulse.
( ନାଡ଼ୀଜ୍ଞା—ସ୍ତ୍ରୀ ) ସଂ. ବି—ବୈଦ୍ୟ—A physician.

ନାଡ଼ୀ(ଡ଼ି)ତିକ୍ତ—ସଂ. ବି—ନେପାଳୀ ନିମ୍ବ ( ହ୍ର. ଶବ୍ଦସାଗର )—
Nardi(rdi)tikta A kind of Nim of Nepal

ନାଡ଼ୀଦେହ—ସଂ. ବି. (ବହୁବ୍ରୀହି; ନାଡ଼ୀ=ନାଡ଼ୀପରି ସରୁ+ଦେହ)—
Nardideha ମହାଦେବଙ୍କ ଅନୁଚର; ଭୃଙ୍ଗୀ—One of the
( ନାଡ଼ୀବିଗ୍ରହ—ଅନ୍ୟରୂପ ) orderlies of Mahādeba.
( ନାଡ଼ୀଦେହା—ସ୍ତ୍ରୀ ) ସଂ. ବିଣ. ପୁଂ. ( ବହୁବ୍ରୀହି )—ଯାହାର ଶରୀର ଅତ୍ୟନ୍ତ ପତଳା—Slender-bodied

ନାଡ଼ୀ ପରୀକ୍ଷା—ସଂ. ବି. ( ବୈଦ୍ୟକ )—ରୋଗୀର ଡାହାଣ ହାତ
Nardi pariksha ( ସ୍ତ୍ରୀରୋଗୀର ବାମହାତ)ରୁ କହୁଣୀ ତଳୁ ବୈଦ୍ୟ ବାଁ ହାତରେ ଧରି ରୋଗୀର ଖଡ଼୍ଗଣ୍ଠିରେ ଅର୍ଥାତ୍ ହାତର ବୁଢ଼ାଅଙ୍ଗୁଠି ମୂଳର ନିକଟବର୍ତ୍ତୀ ସ୍ଥାନର ଶିରମାନଙ୍କ ଉପରେ ଯଥାକ୍ରମେ ତାଙ୍କର ତର୍ଜନୀ, ମଧ୍ୟମା ଓ ଅନାମିକା ଅଙ୍ଗୁଠିମାନଙ୍କୁ ରଖି ନାଡ଼ୀମାନଙ୍କ ସ୍ପନ୍ଦନବେଗ ନିରୂପଣ କରିବା ପ୍ରକ୍ରିୟା—The feeling of the pulse of a person.
[ ଦ୍ର—ସେ ସ୍ଥାନରେ ୩ ଗୋଟି ନାଡ଼ୀ ଅଛି; ପ୍ରଥମ ବାତନାଡ଼ୀ, ମଧ୍ୟରେ ପିତ୍ତନାଡ଼ୀ ଓ ଅନ୍ତରେ ଶ୍ଳେଷ୍ମା ବା କଫନାଡ଼ୀ । ବାତଯୁକ୍ତା ନାଡ଼ୀ—ବକ୍ରଗତି, ପିତ୍ତଯୁକ୍ତା—ଚପଳା, ଶ୍ଳେଷ୍ମବତୀ—ସ୍ଥିର । ବିଜ୍ଞ ଓ ଅନୁଭବୀ ବୈଦ୍ୟ ନାଡ଼ୀ ଚିପି ରୋଗର ଲକ୍ଷଣମାନ ସ୍ଥିର କରିପାରନ୍ତି । ]

ନାଡ଼ୀମରା—ଦେ. ବି—ଅକ୍ଷୁଧା ରୋଗ—
Nardimara Inappetency; loss of appetite.
नाड़ीमरा ଦେ. ବିଣ—୧ । ଯେଉଁ ଲୋକର କ୍ଷୁଧା ହୁଏ ନାହିଁ—
भूख मरजाना 1. One who has lost his appetite.
୨ । ଅତି ଦୁର୍ବଳ ( ଲୋକ )—
2. Very weak and emaciated ( person ).

୩ । ଅଳ୍ପାହାରୀ—3. Taking small quantities of food; subsisting on scanty rations.

ନାଡ଼ୁକା—ଦେ. ବି—ନାଲୁକା ( ଦେଖ )
Narduka Nāluka ( See )

ନାଡ଼ୁନାଡ଼ୁ—ଦେ. ଅ—୧ । ନଡ଼ନଡ଼, ଢିଲା—
Nardunardu 1. Slackened.
ଲୁଡ଼ଲୁଡ଼; ଝୁନ୍‌ଝୁଡ଼ ୨ । ଢିଲା ହୋଇ ଦୋହଲୁଥିବା—
लड़खड़ 2. Dangling; swinging in a loose fashion.

ନାଡ଼୍କା—ଦେ. ବି—ନାଲୁକା ( ଦେଖ )
Nardkā Nāluka ( See )

ନାଣକ—ସଂ. ବି. ( ନ+ଅଣକ=କୁତ୍ସିତ )—୧ । ମୁଦ୍ରା—
Nāṇaka 1. Coin ( Apte ).
୨ । ଧାତୁ ( ହ୍ର. ଶ. )—2. Metal
୩ । ଜିସ ( ହ୍ର. ଶ. ); ସ୍ୱର୍ଣ୍ଣମୁଦ୍ରାବିଶେଷ—
3. A kind of gold coin
ଦେ. ବି—ଧର୍ମପ୍ରଚାରକବିଶେଷ, ନାନକ ( ଦେଖ )
Nānaka ( See )
ସଂ. ବିଣ—ପ୍ରଶସ୍ତ—Broad.

ନାଣ୍ଟଣ ( ଇତ୍ୟାଦି )—ବୈଦେ. ବି. ( ଇଂ. ଲାଣ୍ଟର୍ନ୍ )—
Nāṇṭaṇa ( etc ) ଲାଣ୍ଟଣ ଇତ୍ୟାଦି ( ଦେଖ )
লাণ্টন लालटेन Lāṇṭaṇa etc ( See )
[ ନାଣ୍ଟନ; ନାଣ୍ଟଣ(କ)—ଅନ୍ୟରୂପ ]

ନାଣ୍ଡି ( ଇତ୍ୟାଦି )—ଦେ. ବିଣ—ଲାଣ୍ଡି ଇତ୍ୟାଦି ( ଦେଖ )
Nāṇḍi ( etc ) Lāṇḍi etc ( See )

ନାତ ଦେ. ବି. ( ସଂ. ଲତ ଧାତୁ=ଆଘାତ କରିବା; ସଂ. ଲତ୍ତା=
Nāta ପଦାଘାତ—ଆପ୍ଟେ )—
লাথ, লাথি, নাথি ୧ । ଗୋଇଠା; ପଦାଘାତ—1. Kick.
लथार ୨ । ପଶୁଙ୍କର ପଛ ଗୋଡ଼ ଦ୍ୱାରା ଆଘାତ—
2. The kick of a beast with its hind legs.

> କୋପେ ଶୋଳଇ ଖୁରେ ମଞ୍ଚ
> କାନ୍ଧ ଥାଉଇ ନାତ ଦେଇ । ଜଗନ୍ନାଥ. ଭା.ଦଶ ।

[ ଦ୍ର—ମନୁଷ୍ୟର ପଦାଘାତକୁ ଗୋଇଠା ଓ ପଶୁମାନଙ୍କ ପଛ ଗୋଡ଼ ଦ୍ୱାରା ଆଘାତକୁ ନାତ ବୋଲାଯାଏ । ବଙ୍ଗଭାଷାରେ ମନୁଷ୍ୟର ଗୋଇଠାକୁ ଲାଥି ଓ ପଶୁର ଦୋଘାତକୁ ଲାଥ୍ ବୋଲାଯାଏ । ହିନ୍ଦିରେ ଗୋଇଠାକୁ ଲାତ୍ ଓ ପଶୁ ପଦାଘାତକୁ ଲଥାର ବୋଲାଯାଏ । ]

ନାତ ଉଠା(ଟୋ)ଇବା—ଦେ. କ୍ରି—(ପଶୁ) ନାତ ମାରିବା କମନ୍ତେ
Nāta uthā(the)iba ପଛ ଗୋଡ଼କୁ ଛୁଆଁଇବା—
লাথ উঠান ( a beast ) To extend or raise the
लथार उठाना hind legs for giving a kick; to be about to kick.
[ ଦ୍ର—ହିନ୍ଦିରେ ଲାତ୍ ଶବ୍ଦର ଅର୍ଥ ଗୋଡ଼ଦ୍ୱାରା ଗୋଇଠା । ]

**ନାଟକ୍**—ବୈଦେ. ବଣ. ( ଅ ନ୍ଲଟକ୍, ଫା॰ ନାଟକ୍ )—
Nātak ୧ । ଅକାଟ୍ୟ; ଯେଉଁ ହୁକୁମକୁ କେହି ଖଣ୍ଡନ କରି ନ
ନାତକ୍ ପାରେ—1. ( order ) Which can not
**ଲାତକ** be set aside
( ଯଥା—ନାଟକ୍ ହୁକୁମ୍ । )
୨ । ଯେଉଁ ହୁକୁମର ଅପିଲ ନାହିଁ—
2. Nonappelable ( order )

**ନାତ** ଖାଇବା—ଦେ. କ୍ରି—ଅନ୍ୟର ପଦାଘାତ ସହ୍ୟ କରିବା—
Nāta khāibā To bear a kick, to be struck
(ନାତ ସହିବା—ଅନ୍ୟରୂପ) with a kick.
ଲାଥ ଖାଓୟା **ଲାତ ଖାନା,ଲଥାଟ ଖାନା**

**ନାତ** ମାରିବା—ଦେ. କ୍ରି—୧ । (ମନୁଷ୍ୟ) ଗୋଇଠା ମାରିବା—
Nāta māribā 1. (a man) To kick; to strike
ନାତ ଦେବା a blow with the leg.
ନାତ ବଜା(ଜେ)ଇବା } ଅନ୍ୟରୂପ ୨ । ( ପଶୁ ) ପଛ ଗୋଡ଼କୁ
ନାତ ଲଗା(ଗେ)ଇବା } ଛୁଞ୍ଚାଇ ଅଘାତ କରିବା—
ଲାତ ମାବା, ଲାତ ଲାଗାନ 2. ( a beast ) To give a back-
**ଲଥାଟ ମାରନା** ward kick with the hind leg.
୩ । (ଲକ୍ଷଣାର୍ଥ) ଦଣ୍ଡ ଦେବା—3. (fig) To punish.
୪ । (ଲକ୍ଷଣାର୍ଥ) (ଗୁରୁ ଶିଷ୍ୟକୁ) ଶିକ୍ଷା ଦେବା—
4 (fig) To give lesson to a pupil
୫ । (ଲକ୍ଷଣାର୍ଥ) ଦୀକ୍ଷା ଦେବା—5. (fig) To initiate.
( ଯଥା—ଯାହାକୁ ସଦ୍‌ଗୁରୁ ନାତ ମାରିଥିବେ ସେ ଶରୀର-
ଭେଦ ଭଜନର ଅର୍ଥ ବୁଝି ପାରିବ । )

**ନାତା**—ପ୍ରାଦେ. (ଗଞ୍ଜାମ) ବି. ( ତେଲୁଗୁ—ନାତା )—
Nātā ଶବ୍ଦମାନଙ୍କର ଭୁକ୍ତି ବା କଥନ ପ୍ରଣାଳୀର ଲେଖନ—
Writing of the spelling of words.

**ନାତା(ତେ)ଇବା**—ଦେ. କ୍ରି. ( ସ ଲତ ଧାତୁ )—ନାତ ମାରିବା—
Nātā(te)ibā To kick.
ଲାଥା, ଲାଥାନ **ଲତିଆନା**

**ନାତି**—ଦେ. ବି. ପୁଂ. ( ସ. ନପ୍ତୃ ପଦର ୧ମା. ୧ବ. ନପ୍ତା; ପ୍ରା. ନତ୍ତି;
Nāti ନତ୍ତି )—୧ । ପୌତ୍ର—1 Son's son;
(ନାତୁଣୀ—ସ୍ତ୍ରୀ) grand-son.
ନାତି ୨ । ଦୌହିତ୍ର—2. Daughter's son.
**ପୋତା, ନାତି** ପୁଅ ନାତି ବଧ ଦେଖିଣ ଗାନ୍ଧାରୀ । କୃଷ୍ଣସିଂହ. ମହାଭାରତ. ଅଦ ।
[ ଦ୍ର—ଆମ ଦେଶରେ ଅଜା ଆଈ ଏବଂ ନାତି ନାତୁଣୀଙ୍କ
ମଧ୍ୟରେ ଥଟ୍ଟା ପରିହାସ ଚଳେ । ହିନ୍ଦିରେ ପୌତ୍ରକୁ ପୋତା ଓ
ଦୌହିତ୍ରକୁ ନାତି ବୋଲାଯାଏ; କିନ୍ତୁ ସଂସ୍କୃତରେ ନପ୍ତୃ ପଦର ୧ମା.
୧ବ ନପ୍ତାର ଅର୍ଥ ଉଭୟ ପୌତ୍ର ଓ ଦୌହିତ୍ର । ]

**ନାତି** ଚେଲା—ଦେ. ବି—ଚେଲାର ଚେଲା—
Nāti chelā Disciple's disciple.

**ନାତି** ଦୀର୍ଘ—ସ. ବଣ. ( ନ+ଅତି+ଦୀର୍ଘ )—
Nāti dirgha ଯାହା ଅତି ଦୀର୍ଘ ବା ଡେଙ୍ଗା ବା ଲମ୍ବା ନୁହେଁ—
Not very long or tall; of moderate
stature

**ନାତିନୀ**—ଦେ. ବଣ. ସ୍ତ୍ରୀ (ସ. ନପ୍ତ୍ରୀ)—ପୁତ୍ରର ବା କନ୍ୟାର ଝିଅ—
Nātini Grand daughter.
(ନାତୁଣୀ—ଅନ୍ୟରୂପ) [ ଦ୍ର—ହିନ୍ଦୀରେ କନ୍ୟାର କନ୍ୟାକୁ
ନାତନୀ, ନାତିନୀ ନାତିନ୍ ଓ ପୁତ୍ରର କନ୍ୟାକୁ ପୋତୀ ବୋଲାଯାଏ ।]
**पाती, नातिन्**

**ନାତି** ଶିଷ୍ୟ—ଦେ. ବି—ଶିଷ୍ୟର ଶିଷ୍ୟ; ନାତି ଚେଲା—
Nāti śishya Disciple's disciple.
ନାମ ଯେ ଶ୍ରୀଦସ୍ୱାକୁ ଦାସ
ଶ୍ରୀ ଅଚ୍ୟୁତମ ନାତି ଶିଷ୍ୟ । ଯାଟୋ. ପୂର୍ଣ୍ଣତମ ଚନ୍ଦ୍ରୋଦୟ ।

**ନାତି** ଶୀତୋଷ୍ଣ · ସ. ବି ( ନ+ଅତି+ଶୀତ+ଉଷ୍ଣ )—
Nāti śitoshṇa ଯାହା ଅତି ଶୀତଳ ବା ଅତି ଗରମ ନୁହେ—
(ଅନତି ଶୀତୋଷ୍ଣ—ଅନ୍ୟରୂପ) Neither very cold nor
very hot; of a moderate temperature

**ନାତୁଆ**· ଦେ. ବଣ ପୁଂ—ଯେ ନାତ ମାରେ; ଯାହାର ନାତ ମାରିବାର
Nātuā ଅଭ୍ୟାସ ଅଛି—Kicking (beast); ( a beast )
ଯେ ଲାଥ ମାବେ having the habit of kicking; given to
**हरपटाह** (ନତୋଇ, ନାତେଇ—ସ୍ତ୍ରୀ) kick ing

**ନାତୁଣୀ**—ଦେ. ବି. ସ୍ତ୍ରୀ. (ସ ନପ୍ତ୍ରୀ, ନାତିର ବିପରୀତ ଲିଙ୍ଗ)—
Nātuṇi ପୌତ୍ରୀ ବା ଦୌହିତ୍ରୀ—
ନାତିନୀ Grand son; son's son or
**पोती, नातीन, नातिनी** daughter's son

**ନାତୁଣୀ** ଜୁଆଁଇଁ—ଦେ. ବି. ପୁଂ. ( ସ. ନପ୍ତ୍ରୀ+ଜାମାତା )—
Nātuṇi juāñiñ ଆପଣା ନାତୁଣୀର ସ୍ୱାମୀ—
ନାତ ଜାମାଈ, ନାତିନଜାମାଈ Husband of one's grand-
**नतीन जमाई** daughter; grand-son-in-law-
(ନାତୁଣୀ ଜୋଇଁ—ଅନ୍ୟରୂପ)

**ନାତୁଣୀ** ବୋହୂ—ଦେ. ବି. ସ୍ତ୍ରୀ. ( ସ. ନପ୍ତୃ ଓ ବଧୂ )—
Nātuṇi bohu ଆପଣା ନାତିର ସ୍ତ୍ରୀ—
**नतीन पुतोहु** One's grand-son's wife; grand
(ନାତୁଣୀ ବୋଉ—ଅନ୍ୟରୂପ) daughter-in-law.
କହି କହି ଅଙ୍କୁର, ନବ ପକାଏ ଛନ ଅଙ୍କୁର, ଦୋଳରେ ଯାଏଁ,
ଦୋଳରେ ଥାଏଁ, ପାଞ୍ଚ ପିଡା ଶଣ୍ଡ ମାଡ ବସେ, ନାତୁଣୀବୋହୂ
ଭାବ ପରଶେ । ଶିଶୁଙ୍କ କହିଫଲ ଗୀତ ।

**ନାତେ(ତୋ)ଇ**—ଦେ. ବଣ. ସ୍ତ୍ରୀ—ନାତୁଆର ସ୍ତ୍ରୀ ଲିଙ୍ଗ—
Nāte(to)i Feminine of Nātuā.

**ନାତ୍ର**—ସ. ବି—୧ । ଶିବ ( ଦ୍ର. ଶବ୍ଦସାଗର )—
Nātra 1. Śiba.
୨ । ଋଷି; ମୁନି—2 Sage (Apte).
୩ । ଆଶ୍ଚର୍ଯ୍ୟ—3. Surprise; wonder (Apte).

**ନାଥ** (ଧାତୁ)—ସ—୧ । ଆଶୀର୍ବାଦ କରିବା—
Nāth (root) 1 To bless.
୨ । ଜିଜ୍ଞାସା କରିବା—2. To ask; to question.
୩ । ପ୍ରାର୍ଥନା କରିବା—3. To beg; to pray
୪ । କ୍ଷମତା ପାଇବା; ପ୍ରଭୁ ହେବା—
4. To have power; to master.

୫ । ବିନାଶ କରିବା—5 To destroy

୬ । ଦୁଃଖିତ ହେବା—
6 To be sorry; to be distressed.

୭ । ଉପତପ୍ତ ହେବା—7 To be heated.

୮ । କଷ୍ଟ ବା ଯନ୍ତ୍ରଣା ଦେବା—
8. To harass; to trouble.

**ନାଥ**—ସଂ. ବି ପୁଂ. ( ନାଥ୍ ଧାତୁ=ପ୍ରଭୁ ହେବା+କର୍ତ୍ତୃ. ଅ )—
**Nātha** ୧ । ପ୍ରଭୁ—1. Lord; master

୨ । ଅଧିପତି; ଦ୍ରବ୍ୟର ମାଲିକ—2 Owner.

୩ । ସହାୟ; ରକ୍ଷକ—3 Protector; guardian.

ସ୍ୱଭାବେ ନିର୍ଜନ ବନସ୍ଥ
ତାହାଙ୍କୁ କେ ହୋଇବ ନାଥ । ଜଗନ୍ନାଥ. ଭାଗବତ ।

୪ । ନାୟକ—4. Leader

୫ । ଶାସକ—5 Ruler.

୬ । ସ୍ୱାମୀ, ପତି—6. Husband.

୭ । ପ୍ରାଣନାଥ, ପ୍ରାଣପ୍ରିୟ ବ୍ୟକ୍ତି—7. The lord of one's life; one's beloved; a woman's lover.

୮ । (+କରଣ.ଅ) ପଶୁଙ୍କର ନାକ ଫୋଡ଼ିରେ ଗଳାଯାଇଥିବା ଦଉଡ଼ି—8. A string passed through the nose of bullocks etc

ଦେ. ବି —୧ । ଭିକ୍ଷୁକ ବା ଯୋଗୀ ଜାତିର ଉପାଧିବିଶେଷ—
1. The title of a beggar caste.

ଲୁହଁ ଲୁହଁ ଲୁହଁ ନୈବେଦ୍ୟ ବାଞ୍ଛିଲ
ନାଥ ଭିକ୍ଷା ମାଗେ ପରି । ନନ୍ଦକିଶୋର. ନିର୍ଝରିଣୀ ।

[ ଦ୍ର—ଏହା ମଧ୍ୟ ଗୋରଖ ପନ୍ଥୀ ସାଧୁମାନଙ୍କର ଉପାଧିବିଶେଷ ଓ ଏ ଉପାଧି ନାମ ପରେ ଲାଗେ ।]

୨ । (ରାଜ୍ୟର) ରାଜା—2. King of a place.

ନାଥ ଅଷ୍ଟଦୁର୍ଗରି ଯେ ନତି ସେ ମୋ ପଦେ ଭଜେ ।
କବିସୂର୍ଯ୍ୟ. କିଶୋରଚନ୍ଦ୍ର ଗୀତ ।

[ ଦ୍ର—ଦେଶର ରାଜାଙ୍କୁ ଉକ୍ତ ଦେଶର ପ୍ରଭୁ, ନାଥ, ସ୍ୱାମୀ, ପତି, ଅଧିପ, ଅଧିପତି ଆଦି ପଦ ଦ୍ୱାରା ବର୍ଣ୍ଣିନା କରାଯାଏ । ]

୩ । ବନ୍ଧୁ—3. Friend.

ତିନ ଲୋକନାଥ ହୋଇଣ ଅନାଥ
ଲେଖି ଅନନ୍ତ କରି ସୁଗ୍ରୀବଙ୍କୁ ନାଥ । କୃଷ୍ଣସିଂହ. ମହାଭାରତ ଆଦି ।

୪ । ଶ୍ରୀନାଥ, ଗୋପୀନାଥ, ଉଦୟନାଥ, ଜଗନ୍ନାଥ ଆଦି ବ୍ୟକ୍ତିଙ୍କୁ ଡାକିବା ନାମ—4. Name by which persons named Śrīnātha, Udayanātha, Jagannātha etc are accosted.

**ନାଥଙ୍ଗ ଠେଙ୍ଗା**—ପ୍ରାଦେ. ( ଯାଜପୁର ) ବି—
**Nathanga thengā** ଜଳଚର ପୋକବିଶେଷ—
A species of aquatic insects.

[ ଦ୍ର—ଏମାନେ ନିବାଳୁଆ ସମ୍ବାଳୁଆ ପରି ଓ ତେଇଁ ତେଇଁ ଗତି କରନ୍ତି । ମାଛଙ୍କ ସଙ୍ଗେ ଖଇଞ୍ଚରେ ପଡ଼ନ୍ତି । ]

**ନାଥନ**—ସଂ. ବି. କ୍ଳୀ. ( ନାଥ ଧାତୁ+ଭାବେ. ଅନ )—
**Nāthana** ୧ । ପ୍ରାର୍ଥନା—1. Prayer.

(ନାଥନା—ଅନ୍ୟରୂପ) ୨ । ପ୍ରାର୍ଥନ—2. Praying; soliciting for a thing.

**ନାଥବତୀ**—ସଂ. ବିଣ. ସ୍ତ୍ରୀ—ସଧବା (ସ୍ତ୍ରୀ); ଅନୁଅ—
**Nāthabatī** (a woman) Having her husband living.

**ନାଥବନ୍ତ**—ଦେ. ବିଣ (ସଂ. ନାଥବତ୍ ଶବ୍ଦର ୧ମା. ୧ବ ନାଥବାନ୍)—
**Nāthabanta** ନାଥବାନ୍ ( ଦେଖ )
Nāthabān ( See )

ନାଥବନ୍ତ ହେଲେହେଁ ଅନାଥ ଲୋକପରି
ସର୍ବ ମଧ୍ୟେ ତାହାଙ୍କ ଅଣିଲେ ଯେ ଧରି । କୃଷ୍ଣସିଂହ. ମହାଭାରତ ଆଦି ।

**ନାଥବାନ୍**—ସଂ ବିଣ. ପୁଂ. (ସଂ. ନାଥବତ୍ ୧ମା. ୧ବ; ନାଥ+
**Nāthabān** ଅଛି ଯାହାର, ଏହି ଅର୍ଥରେ ବତ୍)—୧ । ସନାଥ—
(ନାଥବତୀ—ସ୍ତ୍ରୀ) 1. Having a lord or master.

୨ । ଯାହାର କେହି ରକ୍ଷାକର୍ତ୍ତା ଥାଏ—
2. Having a protector.

୩ । ପରାଧୀନ—3. Dependent; subservient.

**ନାଥହରି**—ସଂ. ବି. (ନାଥ=ନାକଫୋଡ଼ା ଦଉଡ଼ି+ହୃ ଧାତୁ=ଗ୍ରହଣ
**Nāthahari** କରିବା+କର୍ତ୍ତୃ. ଇ)—୧ । ନାକଫୋଡ଼ା ପଶୁ; ଯେଉଁ ପଶୁ ତାହାର ନାକରେ ଫୋଡ଼ା ହେବା ଦଉଡ଼ିଦ୍ୱାରା ଶୃଙ୍ଖଳିତ ହୁଏ—1. A beast bridled by a rope passed through the nose.

୨ । ପଶୁ (ହେ. ଶ)—2. A beast (Apte).

**ନାଥିଆ**—ଦେ. ବି. (ନାମ) (ଅନାଦରାର୍ଥକ)—ସପ୍ତଦଶ ଶତାବ୍ଦୀର
**Nāthiā** ଜନୈକ ଓଡ଼ିଆ ଭକ୍ତକବି—An Oria religious poet of the 17th century.

[ ଦ୍ର—'ଜ୍ଞାନୋଦୟ କୋଇଲି' ଏହାଙ୍କ ଦ୍ୱାରା ରଚିତ । ]

**ନାଦ୍** (ଧାତୁ)—ସଂ.—ମଳତ୍ୟାଗ କରିବା—
**Nād** (root) To expel the faeces

**ନାଦ୍ ମାରିବା**—ପ୍ରାଦେ ( ସମ୍ବଲପୁର ) କ୍ରି—ଅଗମୁନିଆଁ ଖିଲା ଆଦିକୁ
**Nād māribā** ଉପର୍ଯ୍ୟୁପରି କଚାଡ଼ି କଚାଡ଼ି ଭୂମିରେ ପୋତିବା—
To drive a pointed peg into the ground by repeated ramming.

**ନାଦ**—ସଂ. ବି (ନଦ ଧାତୁ=ଶବ୍ଦ କରିବା+ଭାବ. ଅ)—୧ । ଧ୍ୱନି; ଶବ୍ଦ-
**Nāda** 1 Sound; voice.

୨ । ଉଚ୍ଚ ଶବ୍ଦ—2. Din; loud sound.

୩ । ଡାକ—3. Call; cry.

୪ । ଗର୍ଜନ—4. Roar.

୫ । ଅର୍ଦ୍ଧଚନ୍ଦ୍ରାକୃତି ବର୍ଣ୍ଣ; ଚନ୍ଦ୍ରବିନ୍ଦୁ; ँ—
5. The nasal sound represented by a point over a semicircle or crescent.

୬ । ଗବାଦି ପଶୁର ମଳ; ଲଣ୍ଡି—
6. Pillet of dung; droppings of a beast.

୭ । (ସଙ୍ଗୀତ ଶାସ୍ତ୍ର) ପ୍ରାଣୀର ଶରୀରସ୍ଥ ପ୍ରାଣ ବାୟୁ ଓ ଜଠରାଗ୍ନି ସଂଯୋଗରେ ଉତ୍ପନ୍ନ ଧ୍ୱନି—
7. (music) Vocal sound emitted from the belly of animals.

[ ଦ୍ର—ଭାରତର ପ୍ରାଚୀନ ସଙ୍ଗୀତାଗ୍ରନ୍ଥମାନେ କହୁଅଛନ୍ତି ଯେ ଆକାଶସ୍ଥ ଅଗ୍ନି ଓ ମରୁତ୍‌ର ସଂଯୋଗରେ ନାଦର ଉତ୍ପତ୍ତି ହୋଇଅଛି । ଯେଉଁଠାରେ ପ୍ରାଣବାୟୁ ଥାଏ ତାକୁ ବ୍ରହ୍ମଗ୍ରନ୍ଥି କହନ୍ତି । ସଙ୍ଗୀତ-ଦର୍ପଣରେ ଲେଖାଅଛି ଯେ ଆତ୍ମାଦ୍ୱାରା ପ୍ରେରିତ ହୋଇ ଚିତ୍ତ ଦେହଜ ଅଗ୍ନିକୁ ଆଘାତକରେ ଓ ଅଗ୍ନି ବ୍ରହ୍ମଗ୍ରନ୍ଥିଗତ ପ୍ରାଣକୁ ପ୍ରେରିତ କରେ । ଅଗ୍ନିଦ୍ୱାରା ପ୍ରେରିତ ପ୍ରାଣବାୟୁ ଉପରକୁ ଉଠେ । ଉପରକୁ ଗତି କଲାବେଳେ ପ୍ରାଣବାୟୁ ନାଭିରେ ଅତି ସୂକ୍ଷ୍ମ, ହୃଦୟରେ ସୂକ୍ଷ୍ମ, ଗଳଦେଶରେ ପୁଷ୍ଟ, ଶୀର୍ଷରେ ଅପୁଷ୍ଟ ଓ ମୁହଁରେ କୃତ୍ରିମ ନାଦ ଉତ୍ପନ୍ନ କରାଏ । ସଙ୍ଗୀତଦାମୋଦରରେ ନାଦ ୩ ପ୍ରକାର ବୋଲି ଲେଖା ଅଛି—ପ୍ରାଣିଭବ, ଅପ୍ରାଣିଭବ ଓ ଉଭୟସମ୍ଭବ । ଯେଉଁ ନାଦ ମୁଖ ଆଦି ଅଙ୍ଗରୁ ଉତ୍ପନ୍ନ ହୁଏ ତାହା ପ୍ରାଣିଭବ, ଯାହା ବୀଣା ଆଦିରୁ ଉତ୍ପନ୍ନ ତାହା ଅପ୍ରାଣିଭବ ଓ ଯାହା ବଂଶୀରୁ ଉତ୍ପନ୍ନ ହୁଏ ତାହା ଉଭୟସମ୍ଭବ । ନାଦ ବିନା ଗୀତ, ସ୍ୱର, ରାଗ ଆଦି କିଛି ସମ୍ଭବପର ନୁହେ । ଏହା ବିନା ଜ୍ଞାନ ମଧ୍ୟ ଜନ୍ମି ନ ପାରେ । ନାଦ ଉପରେ ଜ୍ୟୋତିଃ ବା ବ୍ରହ୍ମରୂପ ଅବସ୍ଥିତ । ସମଗ୍ର ଜଗତ ନାଦାତ୍ମକ ଅଟେ । ଏ ଦୃଷ୍ଟିରେ ନାଦ ୨ ପ୍ରକାର, ଆହତ ଓ ଅନାହତ । ଅନାହତ ନାଦକୁ କେବଳ ଯୋଗୀମାନେ ଶୁଣିପାରନ୍ତି । ହଠଯୋଗପ୍ରଦୀପିକାରେ ଲେଖାଅଛି ଯେ ଯେଉଁ ମୂଢ଼ ବ୍ୟକ୍ତିର ତତ୍ତ୍ୱବୋଧ ହୋଇ ପାରେ ନାହିଁ ସେ ନାଦୋପାସନା କରିବ । ଶରୀରାଭ୍ୟନ୍ତରସ୍ଥ ନାଦ ଶୁଣିବା ପାଇଁ ଆସନରେ ସ୍ଥିରଚିତ୍ତ ଓ ଶାନ୍ତିପୂର୍ବକ ଏକାଗ୍ରଚିତ୍ତ ହୋଇ ବସିବ; ଆଖି, କାନ, ନାକ ଓ ମୁହଁ ଆଦିର ବ୍ୟାପାର ବନ୍ଦ କରିବ । ଅଭ୍ୟାସର ଅବସ୍ଥାକ୍ରମେ ପ୍ରଥମେ ମେଘଗର୍ଜନ ଓ ଭେରୀ ଆଦିର ନାଦ ପରି ଗମ୍ଭୀରଧ୍ୱନି ଶୁଣାଯିବ । ଅଭ୍ୟାସ କ୍ରମଶଃ ବଢ଼ିଲେ ଏ ଧ୍ୱନି କ୍ରମଶଃ ସୂକ୍ଷ୍ମ ହେବ । ଏହିପରି କରୁ କରୁ ଯେଉଁ ନାଦ ଶୁଣି ଚିତ୍ତ ପ୍ରସନ୍ନ ହେବ ତାହାରହିଁ ସାଧନା କରିବ ଓ ଶେଷରେ ଚିତ୍ତ ନାଦରୂପୀ ବ୍ରହ୍ମରେ ଲୀନ ହୋଇଯିବ । ନାଦ ଶବ୍ଦର ଉତ୍ପତ୍ତି ବିଷୟରେ ନିମ୍ନଲିଖିତ ଶ୍ଳୋକ ଅଛି :—

ନକାରଂ ପ୍ରାଣନାମାନଂ ଦକାର ମନଳଂ ବିଦୁଃ,
ଜାତଃ ପ୍ରାଣାଗ୍ନି ସଂଯୋଗାତ୍ ତେନୋନାଦୋଽଭିଧୀୟତେ ।
ସଙ୍ଗୀତରତ୍ନାକର—ହି. ଶବ୍ଦସାଗର । ]

୮ । ବର୍ଣ୍ଣର ଉଚ୍ଚାରଣ ବିଷୟରେ ଏକ ପ୍ରଯତ୍ନ, ଯହିଁରେ କଣ୍ଠକୁ ଅତ୍ୟନ୍ତ ବିସ୍ତୃତ ନ କରି ବା ଅତି ସଙ୍କୁଚିତ ନ କରି ବାୟୁ ବା ସ୍ୱର ବାହାର କରାଯାଏ (ହି. ଶ.)—
8. The effort of emitting sound or air without inflating or contracting the throat too much.

୯ । ସଙ୍ଗୀତ (ହି. ଶ) (ଯଥା—ନାଦବିଦ୍ୟା=ସଙ୍ଗୀତଶାସ୍ତ୍ର)
9. Music; singing.

୧୦ । ବର୍ଣ୍ଣର ଅବ୍ୟକ୍ତମୂଳ ରୂପ—
10. The primal sound of the letters.

ସ. ବିଣ—ପ୍ରଶଂସାକାରୀ—Praising.

ଦେ. ବି—ଲାଦ (ଦେଖ)—Lāda (See)

**ନାଦ ଦେବା**—ଦେ. କ୍ରି—ଶବ୍ଦ କରିବା—
Nāda debā — To emit a sound.
(ନାଦ କରିବା—ଅନ୍ୟରୂପ) ପୁଣି ଉପାଡ଼ ବୃଷ ଦୃଢ଼ ବେଗେ ଧରଣୀ ନାଦଦେଇ । ଜଗନ୍ନାଥ ଭାଗବତ ।

**ନାଦ ନାଳି**—ପ୍ରାଦେ. (କଟକ) ବି—କଣ୍ଠନାଳ; ଯେଉଁ ବାଟେ ସ୍ୱର
Nāda nāli — ବାହାରେ—The throat; trachea, windpipe

**ନାଦବାନ୍**—ସ. ବିଣ. ପୁଂ. (ନାଦ+ବତ୍; ୧ମା ୧ବ)—
Nādabān — ଶବ୍ଦ ଉତ୍ପାଦନକାରୀ—Sonant; resounding.
(ନାଦବତୀ—ସ୍ତ୍ରୀ)

**ନାଦ ବିନ୍ଦୁ**—ସ. ବି—୧ । ଉପନିଷଦ୍ ବିଶେଷ—
Nāda bindu — 1. Name of an Upanishad.
୨ । ଅନୁନାସିକ ବର୍ଣ୍ଣ; ଚନ୍ଦ୍ରବିନ୍ଦୁ; ' ँ '—
2. The nasal alphabet or mark attached to a letter.

**ନାଦମୁଣ୍ଡା**—ଦେ. ବି. (ଅଠାରଙ୍କ ଭାଷା)—କମାରଙ୍କର ଓ ଅଠାରଙ୍କ
Nādamundā — କଂସା ଆଦି ଆଉଟିବା ଅଗ୍ନିକୁଣ୍ଡର ଗୋଟିଏ ପାର୍ଶ୍ୱରେ ଥିବା ଛିଦ୍ର, ଯେଉଁ ଛିଦ୍ରବାଟେ ଭିତରୁ ବାହାରିବା ପବନ ଅଗ୍ନିକୁ ଉତ୍ତେଜିତ କରେ—
A hole on the side of a potter's or smith's oven through which the bellows blow air in to the fire.

**ନାଦ ମୁଦ୍ରା**—ସ. ବି—ତନ୍ତ୍ରୋକ୍ତ କରମୁଦ୍ରାବିଶେଷ—
Nāda mudrā — A particular pose of the hand during Tantric rites.
[ ଦ୍ର—ଡାହାଣ ହାତକୁ ମୁଠା କରି ବୁଢ଼ା ଆଙ୍ଗୁଠିକୁ ଉପରକୁ ଉଠାଇଲେ ଏ ମୁଦ୍ରା ହୁଏ । ]

**ନାଦାନ୍**—ଦେ. ବିଣ—(ଫା. ନାଦାନ୍)—୧ । ଅତ୍ୟନ୍ତ ଗରିବ; ଅତି
Nādān — କର୍ଙ୍କନ—1. Very poor; indigent.
ନାତୋୟାନ୍ ୨ । ( ଫା. ନାତୁଆନ୍=ଧନ ଦେବାକୁ ଅସମର୍ଥ )
ନାଦାର୍ — ଖଜଣା ବା ଦେୟ ଦେବାକୁ ଅସମର୍ଥ—2. Unable to
( ଖାନ୍‌ଦାନ୍—ବିପରୀତ ) pay one's rents or dues etc.
[ଦ୍ର—ଫା. ନାଦାନ୍‌ର ଅର୍ଥ=ମୂର୍ଖ, ଅଜ୍ଞ—ହି ଶବ୍ଦସାଗର । ]

**ନାଦାନ୍ ଛଅବିଶ୍ୱା**—ଦେ. ବି—ଅତ୍ୟନ୍ତ ଗରିବ ଅବସ୍ଥା—
Nādān chha-abiswā — Indigence.
ସଂଗହାକତ (ଯଥା; ଖୁବର ଯିବା ଦିନଠାରୁ ତାଙ୍କର ନାଦାନ
( ନାଦାନ୍ ଛ ବିଶ୍ୱା—ଅନ୍ୟରୂପ) ଛଅବିଶ୍ୱା ହେଲାଣି)

**ନାଦାନି**—ବୈଦେ. ବି. ( ଫା. ନାଦାନୀ )—ଦୀନତା; ଦାରିଦ୍ର୍ୟ—
Nādāni — Poverty; indigence.
ନାତୋୟାନୀ ନାଦାନୀ

**ନାଦାବି**—ଦେ. ବିଣ (କଚେରିଆ) ( ଫା. ଲଦାବୀ )—ଯେଉଁ ସମ୍ପତ୍ତିକୁ
Nādābi — କେହି ଦାବୀ କରନ୍ତି ନାହିଁ; ଅସ୍ୱାମିକ—Unclaimed.
ନାଦାବୀ -୧ । କୌଣସି ସମ୍ପତ୍ତିରେ ନିଜର ସ୍ୱାମିତ୍ୱ ନ ଥିବା ବିଷୟ
ଲାଦାଷା, ନାଦାବୀ ପ୍ରକାଶ କରିବା (ବ୍ୟକ୍ତି)—1. Giving up claim to a property.

୨ । କୌଣସି ବିଷୟରେ ଅପଣାର ଦାବୀର ତ୍ୟାଗ ।
2. Relinquishment of one's claim to a property.

୩ । ନାଦାବି ପତ୍ର— ( ଦେଖ )
3. Nādābi patra ( see )

**ନାଦାବି ପତ୍ର**—ଦେ. ବି (କଚେରୀ) ( ଫା. ନଦାବୀ ଓ ସଂ. ପତ୍ର )— Nādābi patra କୌଣସି ସମ୍ପତ୍ତିରେ ଅପଣାର ଦାବୀ ବା ସ୍ୱତ୍ୱ ନ ଥିବା ବିଷୟ ସ୍ୱୀକାର କରି ଲେଖିଦେବା ଦସ୍ତାବିଜ— A deed of relinquishment of one's claim to a certain property.
नादावीपत्र **नादाबी दस्तावेज, बेदावे पतर्**
( ନାଦାବିପତର—ଅନ୍ୟରୂପ )

**ନାଦ**—ପ୍ରାଦେ ( ଗଞ୍ଜାମ ) ବି—ଭୂମିରେ ଗାତ କରିବା ନିମନ୍ତେ Nādi ବ୍ୟବହୃତ ଯଷ୍ଟିଖଣ୍ଡ । (ଏହି ବାଡ଼ିକୁ ଭୂମିରେ ପ୍ରଥମେ ଗେଞ୍ଜି ଗାତ କରି ସେହି ଗାତରେ ଉଣ୍ଡାଆଦି ପୋତା ଯାଏ)—A rod or pointed stick used in making holes on the ground before any rod is driven into it.

**ନାଦିତ**—ସଂ. ବିଣ—(ନଦ୍ ଧାତୁ ଣିଚ=ନାଦିଧାତୁ=ଶବ୍ଦିତ ହେବା+ Nādita କର୍ମି.ତ )—୧ । ଶବ୍ଦିତ; ଧ୍ୱନିତ—1. Sounded.
୨ । (ନଦ୍ ଧାତୁ+କର୍ତ୍ତୃ. ତ) ଶବ୍ଦ କରୁଥିବା; ଗର୍ଜୁଥିବା— 2. Sounding; roaring.

**ନାଦିବା**—ଦେ. କ୍ରି.—( ପଦ୍ୟ ) ( ସଂ—ନଦ୍ ଧାତୁ ) ୧ । ଲଦିବା— Nādiba ( ଦେଖ )—1. Lādiba ( See )
( ନାଦହେବା—ଅନ୍ୟରୂପ ) ୨ । ନାଦ କରିବା— 2. To sound.
୩ । ଗର୍ଜନ କରିବା—3. To roar.
ଘାତକ ଅହତ ପରେ ନାଦେ ଦମ୍ଭ ଭରେ । ରଘୁନାଥ. ବେଣୀସଂହାର ।

**ନାଦିମ୍**—ବୈଦେ. ବିଣ ( ଅ )—ଲଜ୍ଜିତ— Nādim Ashamed
नादिन **नादिम**

**ନାଦିର୍ ସାହା**—ଦେ. ବି—( ନାମ ) (ଫା. ନାଦିରର ଅର୍ଥ ଅଦ୍ଭୁତ) Nādir-sāhā ଭାରତ ଆକ୍ରମଣକାରୀ ପାରସ୍ୟର ଜଣେ ରଜା— Name of a Persian king who attacked India in the 18th century A. D.

[ ଦ୍ର—ଏ ଜଣେ ମେଷପାଳକର ସନ୍ତାନ ଥିଲେ ଓ ନିଜ ବାହୁବଳରେ ପାରସ୍ୟ, ଅଫଗାନିସ୍ଥାନ ପ୍ରଭୃତିର ସିଂହାସନ ଅଧିକାର କରିଥିଲେ । ଦିଲ୍ଲୀରେ ମହମ୍ମଦ୍‌ସାହା ସମ୍ରାଟ ଥିବା ସମୟରେ ଏ ଖ୍ରୀ. ୧୭୩୮ରେ ଭାରତ ଆକ୍ରମଣ କରି ଦିଲ୍ଲୀ ସମ୍ରାଟଙ୍କ ମୟୂର ସିଂହାସନ ଓ କୋହିନୂର ଅପହରଣ କରିଥିଲେ ଓ ୧୭୩୯ ଖ୍ରୀଷ୍ଟାବ୍ଦରେ ଦିଲ୍ଲୀବାସୀ ଆବାଳବୃଦ୍ଧବନିତା ଏକ ଲକ୍ଷ ମନୁଷ୍ୟଙ୍କୁ ହତ୍ୟା କରାଇଥିଲେ । ଏଥିପାଇଁ ନାଦିରସାହୀ ଶବ୍ଦର ( ନିଷ୍ଠୁରତା ଓ ଅତ୍ୟାଚାର )ଶବ୍ଦ ଭିତ୍ତିର ଭାରତରେ ପ୍ରଚଳିତ ହୋଇ ରହିଅଛି ] ।

**ନାଦୀ**—ସଂ. ବିଣ. ( ନଦ୍ ଧାତୁ=ଶବ୍ଦ କରିବା+କର୍ତ୍ତୃ. ଇନ୍= Nādī ନାଦିନ୍, ୧ମା. ୧ବ )—
(ନାଦିନୀ—ସ୍ତ୍ରୀ) ୧ । ଶବ୍ଦାୟମାନ; ନାଦବିଶିଷ୍ଟ— 1. Sounding.
୨ । ଶବ୍ଦିତ—2. Sounded.

**ନାଦୁର ବାଦୁର**—ଦେ. ବିଣ—ଲଦୁର ବାଦୁର; ଏକକୁ ଲଗାଲଗି Nādur bādur ହୋଇ ଅସୁନ୍ଦର ରୂପେ ଅବସ୍ଥିତ (ବହୁ ବସ୍ତୁ)-- (too many things)Huddled together.
গোলমেলে **घाल मेल** (ନାଦୁରୁ ବାଦୁରୁ—ଅନ୍ୟରୂପ)

**ନାଦୁ'(ଦୋ)ରସ୍ତ**—ଦେ. ବିଣ. (ଫା. ନଦୁରୁ ସ୍ତ )—ବେଠିକ୍; ଭୁଲ୍— Nādu(do)rasta Wrong; out of order.
নাদুরস্ত **नादुरुस्त**

**ନାଦେୟ**—ଦେ. ବିଣ. ( ନଦ ବା ନଦୀ+ଭବାର୍ଥେ. ଏୟ )— Nādeya ୧ । ନଦୀ ଜାତ · 1. Riverain
(ନାଦେୟୀ—ସ୍ତ୍ରୀ) ୨ । ନଦୀ ସମ୍ବନ୍ଧୀୟ—2. Pertaining to a river; riverine.
୩ । ନଦୀ ଦ୍ୱାରା ( ଦେଖ )— 3 Full of rivers, rivery.
୪ । ନଦୀ କୂଳସ୍ଥ—4 Riverian.
ସ ବି—୧ । ସୈନ୍ଧବ ଲବଣ—1. Rock salt
୨ । ସୌବୀରାଞ୍ଜନ; ସୁରମା—2. Antimony
୩ । କାଶ ତୃଣ—3. A kind of reed grass; Saccharum Spontaneum.
୪ । ବାଆଁର ବା ଜଳ ବେତସ ଗଛ— 4. The aquatic ratan reed.

**ନାଦେୟୀ**—ସଂ. ବି. ସ୍ତ୍ରୀ. ( ନାଦେୟ+ସ୍ତ୍ରୀ. ଈ )— Nādeyī ୧ । ଜଳ ବେତସ—1. A cane growing on the riverside.
୨ । ଭୁଇଁ ଜାମୁ—2. A small blackberry shrub; Premna Herbacia.
୩ । ନାରଙ୍ଗଗଛ—3. Orange tree.
୪ । ଜବା; ମନ୍ଦାର—4. China rose.
୫ । ଅଗ୍ନିମନ୍ଥ ବୃକ୍ଷ (ଦ୍ର. ଶବ୍ଦସାଗର)— 5. Premna Integrifolia (tree).

**ନାଦ୍ୟ**—ସଂ. ବିଣ ( ନଦ, ନଦୀ+ସମ୍ବନ୍ଧ, ଜାତ, ପୂର୍ଣ୍ଣ ଅର୍ଥରେ ଯ )— Nādya ନାଦେୟ ( ଦେଖ ) Nādeya ( See )

**ନାନକର୍**—ବୈଦେ. ବି (ଫା. ନାନ୍‌କାର୍)—ଜମିଦାରଙ୍କ ନିଜ ଦଖଲଜମି; Nān-kar ନିଜ ଜୋତ୍ ବା ଖମାର ଜମି—Zamindar's Nij-chas land; land held by the Zamindar in khas possession (corresponding to the home farms in England).
নানকার **नानकर; जिरात**
ନାନ୍‌କା, ନାନ୍‌କାର୍, ନାନକର } ଅନ୍ୟରୂପ
ଅଫିସ୍‌ମାନେ 'ନାନକର' ନାମରେ ନିଷ୍କରଜମିଭୋଗ କରୁଥିଲେ—କୃପାସିନ୍ଧୁ ଇତିହାସ ।

[ ପୂର୍ବେ ଜମିଦାରମାନେ ବାଦସାହାଙ୍କ କର୍ମଚାରୀ ଥିଲେ ; ରାଜସ୍ୱ ଆଦାୟ କରିବା କାର୍ଯ୍ୟ କର୍ମଚାରୀ ଥିଲେ । ସେମାନଙ୍କୁ ରାଜସ୍ୱ ଅସୁଲ କରିବାର ପାରିଶ୍ରମିକ ସ୍ୱରୂପ ବାଦସାହାମାନେ ଯେଉଁ କରମୁକ୍ତ ଜମି ଦେଉଥିଲେ ତାହାକୁ ନାନ୍‌କାର ବୋଲି ଯାଉଥିଲା । ]

**ନାନ୍‌କିନ** —ବୈଦେ. ବି (ନାମ) ( ଚୀନ ଦେଶୀୟ ଭାଷା )—
Nān-kīn ୧ । ( ନାମ ) ଇୟାଙ୍ଗ୍‌ସି‌କିଆଙ୍ଗ୍ ନଦୀ ଉପରେ ଥିବା
ନାନକୀନ ଚୀନ ଦେଶର ଗୋଟିଏ ବୃହତ୍ ନଗର—1. Nan-
**नानकीन** keen, a big town in China.
୨ । ଏକପ୍ରକାର ମାଟିଆ ରଙ୍ଗର ସୂତା ଲୁଗା—2. Nankeen; a kind of buff-coloured cotton cloth formerly made at Nankeen in China.
[ ଦ୍ର—ଏହା ପୂର୍ବେ ଚୀନଦେଶରୁ ଭାରତକୁ ଓ ବିଲାତକୁ ଆସୁଥିଲା, ଏବେ ଏ ଲୁଗା ଇଉରୋପରେ ଓ ଆମେରିକାରେ ତିଆରି ହେଲାଣି । ]

**ନାନ୍(ମ୍)ଖତା(ତେ)ଇ** —ବୈଦେ. ବି (ଫା. ନାନ୍‌ଖତାଇ)—ଗୁଡ଼ାଖୁଣ୍ଟିଆ
Nān(m)-khatā(te)i ଟିକିଆ ବା ବିସ୍କୁଟ୍ ଆକାରର ଏକପ୍ରକାରର
ନାନଖତାଈ ମିଷ୍ଟାନ୍ନ—A kind of country biscuit.
**नानखताई** [ ଦ୍ର—ଘିଅ ଓ ଚିନିରେ ଗହୂଲଅଟାକୁ ଗୋଳାଇ ତାକୁ ଖଜାପରି ଗୋଟିଏ ଗୋଟିଏ ପତଳା ପିଣ୍ଡ କରି ଗୋଟିଏ ଲୁହାର ଥାଳ ଉପରେ ରଖାଯାଏ । ଏଥିର ଉପରେ ଓ ତଳେ କିଛି ଉଚ୍ଚାରେ ଜଳନ୍ତା ଅଙ୍ଗାର ପୂର୍ଣ୍ଣ ଦୁଇଟି ଅନ୍ୟ ଥାଳ ରଖାଯାଏ । ଏଥିରୁ ଏକପ୍ରକାର ସୁଗନ୍ଧ ବାହାରିବାର ଜଣାଗଲେ ଏହା ସୁପକ୍ୱ ହେଲା ବୋଲି ଜଣାଯାଏ । ]

**ନାନ** —ଦେ. ( ପ୍ରାଚୀନ ) ବି—(ସଂ. ନନ୍ଦନ)—ପୁତ୍ର—
Nāna Son.
ମୋହୋରେ ପ୍ରସନ୍ନ ହୁଅ ପାଙ୍ଗୋନାନ—ପ୍ରାଚୀ. ଶର୍ଣ୍ଣଶୋଣା ।

**ନାନକ** —ଦେ. ବି (ନାମ)—ପଞ୍ଜାବର ଶିଖମାନଙ୍କ ଆଦି ଗୁରୁ; ଶିଖଧର୍ମର
Nānaka ପ୍ରତିଷ୍ଠାତା; ପ୍ରଥମ ଶିଖ ଗୁରୁ—The name of the founder of the sect of the Sikhs of the Punjab.
[ଦ୍ର—ଏ ପଞ୍ଜାବର ଋବୀ ନଦୀର କୂଳରେ ଏକ ଗ୍ରାମ (ଆଧୁନିକ ରାୟପୁର)ରେ କ୍ଷତ୍ରିୟବଂଶରେ ଜନ୍ମଗ୍ରହଣ କରିଥିଲେ । ଏ ପିଲାଦିନରୁ ସାଂସାରିକ ବିଷୟରେ ଉଦାସୀନ ଥିଲେ ଓ ସାଧୁସେବା କରୁଥିଲେ । ଏ ୧୬ ବର୍ଷ ବୟସରେ ବିବାହ କରିଥିଲେ । ଏହାଙ୍କର ୨ ପୁତ୍ର ଜନ୍ମିଥିଲେ । ଏ ୩୬ ବର୍ଷ ବୟସରେ ଗୃହତ୍ୟାଗୀ ହୋଇ ୪ ଜଣ ସଙ୍ଗୀଙ୍କୁ ନେଇ ପଞ୍ଜାବ ଓ ଉତ୍ତରଭାରତରେ ଏହି ମର୍ମରେ ଧର୍ମଉପଦେଶ ଦେବାକୁ ଲାଗିଲେ ଯେ ଈଶ୍ୱର ଏକ ଅଟନ୍ତି ଓ ହିନ୍ଦୁ ଏବଂ ମୁସଲମାନ୍ ସେହି ଏକ ଈଶ୍ୱରଙ୍କ ଉପାସନା କରନ୍ତି । ମୂର୍ତ୍ତିପୂଜା ଓ ବହୁ ଦେବୋପାସନାର ଏ ବିରୋଧୀ ଥିଲେ । ଅନେକ ହିନ୍ଦୁ ଓ ମୁସଲମାନ୍ ଏହାଙ୍କ ଶିଷ୍ୟ ହେଲେ । ଏହାଙ୍କ ଶିଷ୍ୟମାନଙ୍କୁ ଶିଖ୍ ବୋଲଗଲା । ଦିଲ୍ଲୀର ତତ୍କାଳୀନ ବାଦସାହା ଇବ୍ରାହିମ୍ ଲୋଦୀ ଏହାଙ୍କୁ କାରାବଦ୍ଧ କଲେ ଓ ବାବର ପାଣିପଥ ଯୁଦ୍ଧରେ (ଖ୍ରୀ. ୧୫୨୬ ରେ) ଇବ୍ରାହିମ୍‌ଙ୍କୁ ପରାସ୍ତ କରି ଦିଲ୍ଲୀ ସିଂହାସନ ଅଧିକାର କରିବା ପରେ ଏ ବନ୍ଧନମୁକ୍ତ ହେଲେ । ଶେଷଜୀବନରେ ଏ ପୁଣି ଉକ୍ତ ପରିବାରଙ୍କ ସହିତ ବାସକଲେ । ଜଲନ୍ଧର ଜିଲ୍ଲାରେ ଏ କର୍ତ୍ତାରପୁର ନାମରେ ଗୋଟିଏ ସହର ବସାଇ ସେଠାରେ ଗୋଟିଏ ବଡ଼ ଧର୍ମଶାଳା ସ୍ଥାପନ କରିଥିଲେ । ଏ ଶିଖଧର୍ମର ପ୍ରତିଷ୍ଠାତା; ଶିଖମାନେ ଏହାଙ୍କ ଅନ୍ତେ ଏହାଙ୍କ ଉପଦେଶମାନ ସଂଗ୍ରହ କରି ଉକ୍ତ ସଂଗୃହୀତ ଗ୍ରନ୍ଥର ନାମ 'ଗ୍ରନ୍ଥସାହେବ' ରଖି ଏହାକୁ ପୂଜା କରନ୍ତି । ]

**ନାନକନ୍ଦ** —ସଂ. ବି —ପିଣ୍ଡ ଆଳୁ; ଖମ୍ବ ଆଳୁ—
Nānakanda Yam; an esculent root

**ନାନକପନ୍ଥୀ** —ଦେ. ବିଣ—(ଗୁରୁ ନାନକଙ୍କ ଉପଦିଷ୍ଟ ପନ୍ଥାନୁଗାମୀ)—
Nānakapanthī ଶିଖଧର୍ମାବଲମ୍ବୀ—( a Sikh of the
ନାନକପନ୍ଥୀ Punjab), Professing the principles
**नानकपंथी** promulgated by Nānaka.
( ନାନକ ସାହି—ଅନ୍ୟରୂପ )

**ନାନକସାହି ପଇସା** —ଦେ. ବି—ତେମ୍ବା ପଇସା; ପ୍ରାଚୀନ ଶିଖମାନଙ୍କ
Nānakasāhi paisā ଦେଶରେ ପ୍ରଚଳିତ ପଇସା—
A copper pice formerly current in the Sikh count[ry]
[ ଦ୍ର—ଏହି ପଇସାରୁ ୩୨ ଗୋଟି ପଇସାରେ ଏକ ଅଣା ହୁଏ । ]

**ନାନମାନ** —ଦେ. ବି—ପୂରପୂର୍ଣ୍ଣ ଘୃତପକ୍ୱ ପିଷ୍ଟକବିଶେଷ—
Nānamāna A kind of cake containing sweets
**मीठाबगेथा** inside; sandwich in the shape of a ball fried in ghee or oil.
[ଦ୍ର—ଗହୂଲ ଅଟାକୁ ଗୁଡ଼ରେ ପାଗକରି ଖଳ କରାଯାଏ । ଖଳ ମଧ୍ୟରେ ପୂର ଦେଇ ପେଣ୍ଡୁପରି ଗୋଲ ପିଠା କରି ତାହା ଘିଅରେ ଛଣାଯାଏ । ]

**ନାନା** —ସଂ. ଅ ( ନଞ+ନା )—( ବହୁତାସୂଚକ )—
Nānā ୧ । ବହୁବିଧ, ଅନେକପ୍ରକାର, ବିବିଧ—
1 Various; of many kinds.
୨ । ଭିନ୍ନ ଭିନ୍ନ; ପୃଥକ୍ ପୃଥକ୍—
2. Different.
୩ । ଅନେକ—3. Many.

ଦେ. ଅ—(ସଂ. ନ; ନହି ନହି)—୧ । (କଥା ଉପରେ ଜୋର
(ନାଁ ନାଁ—ଅନ୍ୟରୂପ) ଦେବା ପାଇଁ ନିଷେଧାର୍ଥକ, ନଞର୍ଥକ
ନାନା 'ନାଁ' ଶବ୍ଦର ଦୁଇ ଥର ପ୍ରୟୋଗ) କେବେ ନୁହେଁ—
**नहिँ नहिँ; ना ना** 1. ( Doubling of the prohibitive 'No' for emphasis), Oh ! no no; certainly not.
ହରିଣାକ୍ଷିରେ ନାନା ହର ଗଳାକୁ ଯାନା ବୋଲି ସେ କହୁଥାଇଁ ବାରବାର—
କବିସୂର୍ଯ୍ୟ. ସଙ୍ଗୀତ ।
୨ । ଗୀତ ଓ ନାଚରେ ଉଚ୍ଚାରିତ ଧ୍ୱନିବିଶେଷ—
2. A formula repeated during dancing and singing.
ଲୁଚ ମର୍ଦ୍ଦଳ ହୋଇଲା ବାଜିତ, ନାନା ଧିକିଟ ତେନା ତେନା ବାଦ—
ଭକ୍ତ. ପ୍ରେମସୁଧାନିଧି ।

ଦେ. ବି.ପୁଂ (ହିନ୍ଦୁସ୍ତାନୀ, ମୁସଲମାନ୍ ଓ ପଶ୍ଚିମାଙ୍କ ବ୍ୟବହୃତ)—
ନାନା ୧ । ମାତାମହ; ଅଜା—1. Mother's father;
**नाना** maternal grandfather.

( ନାନ୍ନୀ—ସ୍ତ୍ରୀ ) ୨ । (ସ୍ତ୍ରୀ) ବଡ଼ ଭଉଣୀ; ନାନୀ— 2. Elder sister.

ପ୍ରାଦେ (ସିଂହଭୂମ, ବ୍ରାହ୍ମଣମାନଙ୍କ ବ୍ୟବହୃତ) ବ. ପୁଂ—
୧ । ବଡ଼ ଭାଇ; ନନା—1 Elder brother,
୨ । ( ସ୍ତ୍ରୀ ) ( ଭୁଲ. ହୁ. ନାନୀ ଏହି ଅର୍ଥରେ )—ଆଈ;
ମାତାମହୀ—2. Grand mother.

ବୈଦେ. ବି ( ଅ )—ପୁଦିନା—
नाना Mint (plant).
**नाना** (ଯଥା—ଅର୍କନାନା = ପୁଦିନା ଅର୍କ ।)

**ନାନା କନ୍ଦ**—ସଂ. ବି—ପିଣ୍ଡାଳୁ ( ହି. ଶବ୍ଦସାଗର )—
Nānā kanda Yam.

**ନାନା ଜାତି**—ଦେ. ବିଣ—ନାନା ଜାତୀୟ ( ଦେଖ )
Nānā jāti Nānā jātiya ( See )
(ନାନା ଜାତିର—ଅନ୍ୟରୂପ) ନାନା ଜାତି କଥା ବାରତା ସେ ହୋଇଲେ ।
नानाजातेंव କୃଷ୍ଣସିଂହ. ମହାଭାରତ ଅଦି।
**नाना जातका**

**ନାନା ଜାତୀୟ**—ସଂ. ବିଣ. ( ନାନା+ଜାତୀୟ )—ନାନା ପ୍ରକାରର—
Nānā jātiya Of various kinds.

**ନାନାତ୍ମବାଦ**—ସଂ. ବି—ପ୍ରତ୍ୟେକ ଜୀବର ଆତ୍ମା ପରମାତ୍ମାଠାରୁ ଭିନ୍ନ
Nānātmabāda ଥିବା ବିଷୟକ ସାଂଖ୍ୟ ଶାସ୍ତ୍ରର ମତ—
(ନାନାତ୍ମବାଦୀ—ବିଣ) The Sāmkhya doctrine that every being has a soul distinct from the Universal Soul.

**ନାନାଦି**—ଦେ ବିଣ. ( ସଂ. ନାନାବିଧ; ଉତ୍ପା ନାନା+ଆଦି )—
Nānādi ନାନା ବିଧ, ନାନା ପ୍ରକାରର; ଅନେକ—
नानान Of various kinds; diverse; various;
**नाना** many,
[ ଦ୍ର—'ନାନା' ଏହା ଗୋଟିଏ ଅବ୍ୟୟ ପଦ; ତହିଁରେ 'ଆଦି' ଲଗାଇ ବହୁବ୍ରୀହି ସମାସ କରିବା ବ୍ୟାକରଣବିରୁଦ୍ଧ, ତେଣୁ ଏହା ଗୋଟିଏ ଅବ୍ୟାକରଣ ପ୍ରୟୋଗ । ଓଡ଼ିଶାରେ କେହି କେହି ବ୍ୟାକରଣାନଭିଜ୍ଞ ଲେଖକ ଏ ଭଳି ପ୍ରୟୋଗ କରିବାର ଦେଖାଯାଏ । ]

**ନାନାତ୍ୟୟ**—ସଂ. ବିଣ—ନାନା ବିଧ; ନାନା ପ୍ରକାରର—
Nānātyaya Of various kinds (Apte).

**ନାନାଧି**—ଗ୍ରା. ବିଣ—ନାନାଦି ( ଦେଖ )
Nānādhi Nānādi ( See )

**ନାନା ଧ୍ୱନି**—ସଂ. ବି. ( ବହୁବ୍ରୀହି; ନାନା+ଧ୍ୱନି )—
Nānā dhwani ଯେଉଁ ବାଦ୍ୟରୁ ଏକାଧିକ ପ୍ରକାରର ଧ୍ୱନି ବାହାରେ—A musical instrument producing more than one sound (Apte).

**ନାନାନ୍**—ବୈଦେ. ବିଣ. ( ବଙ୍ଗଳାରୁ ଅନୁକୃତ )—ନାନାଦି (ଦେଖ)
Nānān Nānādi ( See )

**ନାନାନ୍ଦ୍ର**—ସଂ. ବି. ପୁଂ. ( ନାନାନ୍ଦୃ+ଅପତ୍ୟାର୍ଥ. ଅ )—
Nānāndra ନଣନ୍ଦର ପୁଅ; ସ୍ୱାମୀଙ୍କ ଭଣଜା—
A husband's sister's son (Apte).

**ନାନା ପ୍ରକାର**—ସଂ. ବିଣ (ବହୁବ୍ରୀହି; ନାନା+ପ୍ରକାର)—ନାନାବିଧ—
Nānā prakāra Of various kinds.
ସଂ. ବି—ଅନେକ ପ୍ରକାର—Various kinds.
[ ଦ୍ର—ଏହିପରି ସଂ. ବି ଓ ବିଣରେ ନାନା ବର୍ଣ୍ଣ, ନାନା ରୂପ ଆଦି ଶବ୍ଦ ନିଷ୍ପନ୍ନ ହୁଏ । ]
नानाप्रकारें ଦେ. କ୍ରି ବିଣ—ନାନା ରୂପରେ; ନାନା ପ୍ରକାରେ—
**नानाप्रकार** In many ways.

**ନାନା ଫର୍ଦ୍ଦ ନବିଶ୍**—ଦେ ବିଣ. (ନାମ) (ମରହଟ୍ଟୀ)—
Nānā phard nabis ଧୁନ୍ଧୁପନ୍ଥ ନାନା; ନାନା ସାହେବ—
(ନାନା ଫର୍ଣ୍ଣବିସ୍—ଅନ୍ୟରୂପ) Nānā Sāhib
नानाफर्नवीस [ଦ୍ର—ଏହାଙ୍କର ପ୍ରକୃତ ନାମ ଧୁନ୍ଧୁପନ୍ଥ ।
**नानाफड़नवीस** ଏ ପେଶବା ବାଜିରାଓଙ୍କର ପୋଷ୍ୟପୁତ୍ର । ପେଶବା ବାଜିରାଓ ଙ୍କ ମରହଟ୍ଟା ଯୁଦ୍ଧ ପରେ ଇଂରାଜଙ୍କଠାରୁ ବାର୍ଷିକ ୮ ଲକ୍ଷ ଟଙ୍କା ପେନ୍‌ସନ୍ ପାଇ କାନପୁର ନିକଟବର୍ତ୍ତୀ ବିଠୁରଠାରେ ରହୁଥିଲେ । ତାଙ୍କ ମୃତ୍ୟୁ ପରେ ଇଂରାଜ ଗଭର୍ଣ୍ଣମେଣ୍ଟ ନାନା ସାହେବଙ୍କୁ ଏ ପେନ୍‌ସନ୍ ଦେଲେ ନାହିଁ । ଏଥିପାଇଁ ସେ ଇଂରାଜଙ୍କ ବିପକ୍ଷରେ ଷଡ଼ଯନ୍ତ୍ର କରୁଥିଲେ । ଏହି ସମୟରେ ସିପାହି ବିଦ୍ରୋହ (ଖ୍ରୀ ୧୮୫୭) ଘଟିବାରୁ ନାନା ସାହେବ କାନପୁରଠାରେ ଗୁଡ଼ିଏ ବିଦ୍ରୋହୀ ସେନାଙ୍କ ନାୟକ ହୋଇ କାନପୁରରେ ଥିବା ସାହେବ ଓ ସେମାନଙ୍କ ପରିବାରଙ୍କୁ ଘେରିଲେ । ଅବଶେଷରେ ସେମାନେ ଆତ୍ମସମର୍ପଣ କରିବାରୁ ନାନାଙ୍କ ଆଦେଶରେ ସେମାନେ ସିପାହିମାନଙ୍କ ଦ୍ୱାରା ନିହତ ହେଲେ । କିନ୍ତୁ ଶେଷରେ ନାନା ସାହେବ ସେଠାରେ ପରାସ୍ତ ହୋଇ ଅଯୋଧ୍ୟାର ବେଗମ ଓ ବେରିଲିର ନବାବଙ୍କ ସୈନ୍ୟଦଳରେ ଯୋଗ ଦେଲେ । କିନ୍ତୁ ସେଠାରେ ପରାଜିତ ହୋଇ ନେପାଳ ପଳାଇଲେ । ଯେ ଏହାଙ୍କୁ ଧରିଦେବ ଇଂରାଜସରକାର ତାଙ୍କୁ ୧ ଲକ୍ଷ ଟଙ୍କା ପୁରସ୍କାର ଦେବେ ବୋଲି ଘୋଷଣା କରିଥିଲେ, କିନ୍ତୁ କେହି ଏହାଙ୍କୁ ଧରି ପାରି ନ ଥିଲେ । ଶେଷରେ ଏ ନେପାଳ ଅରଣ୍ୟରେ ଲୁଚି ଲୁଚି ବୁଲି ସେଠାରେ ଜୀବନତ୍ୟାଗ କଲେ । ]

**ନାନା ବିଧ**—ସଂ. ବିଣ (ନାନା+ବିଧ = ପ୍ରକାର)—ବିବିଧ; ବହୁବିଧ—
Nānā bidha Various; of various kinds.
ସଂ. କ୍ରି. ବିଣ—ଅନେକପ୍ରକାରେ—
In various ways ( Apte ).

**ନାନା ମତ**—ଦେ. ବି—ଭିନ୍ନ ମତମାନ—
Nānā mata Different opinions
(ଯଥା—ନାନା ମୁନିଙ୍କର ନାନା ମତ—ଭଗ । )
नानामत ଗ୍ରାମ୍ୟ. କ୍ରି. ବିଣ—ନାନାମତେ ( ଦେଖ )
**नानाप्रकार** Nānāmate (See).

**ନାନାମତି**—ଗ୍ରା. କ୍ରି. ବିଣ—ନାନାମତେ (ଦେଖ)
Nānāmati Nānāmate (See).

**ନାନା ମତେ**—ଦେ. କ୍ରି. ବିଣ—ଅନେକ ପ୍ରକାରେ; ନାନା ପ୍ରକାରେ—
Nānā mate In many ways; in various ways.
नानामते ଚେତାଇଲେ ମୋତେ କରି ନାନାମତେ
**बहुत किसमसे** ଭୁଞ୍ଜି କାମନା ପୂର୍ବକ । ବଇଷ୍ଣବ. କଣୋପଚନ୍ଦ୍ର. ୫ ଗୀତ ।

ନାନା ମାର୍ଗ—ସଂ. ବି—ବହୁତ ମାର୍ଗ—Many ways
Nānā mārga ବିଣ—ବହୁତ ମାର୍ଗବିଶିଷ୍ଟ—Of various ways.

ନାନା ମାର୍ଗରେ—ଦେ. କ୍ରି. ବିଣ—୧ । ନାନାପ୍ରକାର—
Nānā mārgare 1. In various ways.
ନାନାମାର୍ଗେ, ନାନାମାର୍ଗ କରି—ଅନ୍ୟରୂପ ୨ । ଅନେକ ବାଟରେ—
ନାନାମାର୍ଗେ 2. In various roads.
नानामारगमे
ବୁହାଅଛେ ରଥ ସେ କରି ନାନାମାର୍ଗ
ଭଗ୍ନ ଯୋଦ୍ଧାମାନେ ହୋଇଲେ ହତଭାଗ । —କୃଷ୍ଣସିଂ. ମହାଭାରତ ଦ୍ରୋଣ ।

ନାନାରୂପ—ସଂ. ବିଣ. (ବହୁବ୍ରୀହି; ନାନା+ରୂପ)—
Nānā rūpa ୧ । ନାନାବିଧ (ଦେଖ) 1. Nānābidha (See)
୨ । ଯାହାର ଏକାଧିକ ରୂପ ବା ଆକାର ଅଛି—2. Multiform (Apte).

ନାନା ରୂପେ—ଦେ. କ୍ରି. ବିଣ—ନାନା ମତେ (ଦେଖ)
Nānā rūpe Nānā mate (See)
नानारूपे नानाप्रकार

ନାନାର୍ଥ—ସଂ. ବି. (ନାନା+ଅର୍ଥ)—ଭିନ୍ନ ଭିନ୍ନ ଅର୍ଥମାନ—
Nānārtha Different meanings.
ସଂ. ବିଣ. (ବହୁବ୍ରୀହି; ନାନା+ଅର୍ଥ)—୧ । ବହୁବିଧ ଅର୍ଥ ବିଶିଷ୍ଟ—1. Having various meanings.
୨ । ନାନା ପ୍ରୟୋଜନବିଶିଷ୍ଟ—2. Having various uses.

ନାନାର୍ଥ ସଂଗ୍ରହ—ସଂ. ବି—ନାନାଶବ୍ଦ ସଂଗ୍ରହ (ଦେଖ)
Nānārtha saṃgraha Nānāśabda saṃgraha (See)

ନାନାଶବ୍ଦ ସଂଗ୍ରହ—ସଂ. ବି—୧ । ଅଭିଧାନ, ଭାଷାକୋଷ—
Nānāśabda saṃgraha 1. Dictionary.
୨ । ଶବ୍ଦକୋଷ—2. Lexicon; vocabulary.

ନାନା ସାହେବ୍—ଦେ. ବି. (ନାମ)—ନାନା ଫଡ଼୍ ନବିସ୍ (ଦେଖ)
Nānā sāheb Nānā phard nabiś (See)

ନାନୀ—ଦେ.ବି. ସ୍ତ୍ରୀ—୧ । (ହି. ନାନା+ସ୍ତ୍ରୀଲିଙ୍ଗ ଈ; ମୁସଲମାନ, ହିନ୍ଦୁସ୍ଥାନୀ ଓ ପଶ୍ଚିମାମାନଙ୍କର ବ୍ୟବହୃତ)—ଆଈ; ମାତାମହୀ—
Nānī नानी 1. Grandmother.
(ନନା—ବିପରୀତ ଲିଙ୍ଗ)
दिदी ୨ । ବଡ଼ ଭଉଣୀ—2. Elder sister.
दीदी [ଦ୍ର—ବ୍ରାହ୍ମଣ ପରିବାରରେ ବଡ଼ ଭଉଣୀକୁ ନାନୀ ଓ ବ୍ରାହ୍ମଣେତର ପରିବାରରେ ବଡ଼ ଭଉଣୀକୁ ଦେଈ ବା ଅପା ଡାକନ୍ତି । ଦ୍ର—ନାନୀ=ବଡ଼ଭଉଣୀ; ଦ୍ରାବିଡ଼ ଭାଷାରୁ ଏ ଶବ୍ଦ ଓଡ଼ିଆକୁ ଆସି, ଏହାର ବିପରୀତ ଲିଙ୍ଗରେ 'ନନା' ହୋଇଅଛି । ]
୩ । ଆପଣାଠାରୁ ଅଧିକ ବୟସ୍କ ବ୍ରାହ୍ମଣଙ୍କୁ ଅନ୍ୟ ବ୍ୟକ୍ତିମାନଙ୍କର ଡାକିବା ସମ୍ବୋଧନ—3. A term addressed to a Brāhmaṇa woman older than the person accosting.
୪ । ବ୍ରାହ୍ମଣ କନ୍ୟା—4. A Brāhmaṇa girl
ମଲ୍ଲିଫୁଲ ଫୁଟିଲା, ଗୋଲ୍ଲେଇନାନୀ ଗାଧୋଇ ଯାଇଁ ମାମୁଁଘରେ ଉଠିଲା ।
ଯୌବନେ ମକରୀ ରମ୍ୟା । ପଶାକାଳୀ ବର୍ଜିତା । ବ୍ୟଙ୍ଗ ଉଚ୍ଚ ।
୫ । ରାଜାନ୍ତଃପୁରରେ ପାଚକାରୂପେ ନିଯୁକ୍ତା ବିଧବା ବ୍ରାହ୍ମଣୀ—5. A widow Brāhmaṇī engaged as a cook in the harem of a Raja.
୬ । (ବ୍ୟଙ୍ଗ୍ୟ) ଗୃହସ୍ୱାମିନୀ—
6. (ironical) Housewife
ନନାଙ୍କର ବାଟେ ତ ନାନୀଙ୍କର ବାଟେ ଉଚ୍ଚ ।
ବଲୁଅ ନନାରେ ବଲୁଅ ନନା । ନାନୀ ପିଲିଅଛି ଭୋ ଚଗ୍‌କନା—ଶିଶୁ ଗୀତ
୭ । ପିତୃଷୀ; ପିତୃଷ୍ୱସା—7. Father's sister.
ପ୍ରାଦେ. (ଉତ୍ତର ଭାଷା) ବିଣ. (ସଂ. ନ୍ୟୂନ; ତୁଳ. ହି. ଏହି ଅର୍ଥରେ ପୁଂ ନନ୍ହା ଓ ସ୍ତ୍ରୀ ନନ୍ହୀ)—କ୍ଷୁଦ୍ର; ସାନ—Small; little.

ନାନୀ ଭାତ—ପ୍ରାଦେ. ବି.—(ଉତ୍ତର ଭାଷା) ସାନ ଭାତ (ଦେଖ)—
Nānī bhāta Sānabhāta (See)

ନାନ୍ତ—ସଂ. ବିଣ. (ନ+ଅନ୍ତ)—ଅନନ୍ତ—
Nānta Endless; infinite (Apte).

ନାନ୍ତରୀୟକ—ସଂ. ବିଣ. (ନ+ଅନ୍ତର+ଈୟକ)—ଅଚ୍ଛେଦ୍ୟରୂପେ
Nāntarīyaka ସଂଯୁକ୍ତ; ଅବିଚ୍ଛେଦ୍ୟ—Inseparable, inseparably connected (Apte).

ନାନ୍ତ୍ର—ସଂ. ବି.—ପ୍ରଶଂସା; ସ୍ତୁତି—
Nāntra Praise; eulogy (Apte).

ନାନ୍ଦିକାର—ସଂ. ବି.—ନାଟକାଭିନୟର ଆରମ୍ଭରେ ନାନ୍ଦୀ ବୋଲିବା
Nāndikāra ବ୍ୟକ୍ତି—The speaker of the benedictory sloka before the commencement of a play (Apte).

ନାନ୍ଦୀ—ସଂ. ବି. ସ୍ତ୍ରୀ (ନନ୍ଦ୍ ଧାତୁ ଣିଚ ନାନ୍ଦ ଧାତୁ=ଆନନ୍ଦିତ କରିବା+
Nāndī କରଣ. ଈ; କିମ୍ବା ନନ୍ଦ ଧାତୁ=ଆନନ୍ଦିତ ହେବା+କରଣ. ଈ)—୧ । ନାଟକାଦିର ପ୍ରାରମ୍ଭରେ ଦେବତାଙ୍କ ଆରାଧନା ବା ସ୍ତୁତି ବା ଆଶୀର୍ବାଦସୂଚକ ଶ୍ଳୋକ—
1. A benedictory prologue pronounced before the commencement of a play.
୨ । ମଙ୍ଗଳାଚରଣ—2. Benedictory preface.
୩ । ଚକ୍ରବର୍ତ୍ତୀ ରାଜା—3. Emperor.
୪ । କ୍ଷତ୍ରିୟ—4. A Kshatriya or soldier by caste.
୫ । ଗୋତ୍ର—5. Clan.
୬ । ଅଭ୍ୟୁଦୟ; ସମୃଦ୍ଧି—6. Prosperity.
୭ । ସ୍ତୁତି—
7. Praise; thanksgiving; eulogy.
୮ । ସୌଭାଗ୍ୟ—8. Good-luck.

୯ । ନାନ୍ଦକାର (ଦେଖ)—
9. Nāndikāra (See) (Apte).

**ନାନ୍ଦୀକ**—ସ. ବି. (ନାନ୍ଦୀ=ସୌଭାଗ୍ୟ+କୃ ଧାତୁ+ଅ.)—
Nāndika ୧ । ମଙ୍ଗଳାର୍ଥ ଅନୁଷ୍ଠିତ ତୋରଣ ସ୍ତମ୍ଭ—1. A propitious gateway set up for good luck.

୨ । ମଙ୍ଗଳାର୍ଥ ତୋରଣ ଦ୍ୱାରରେ ସ୍ଥାପିତ ଜଳପୂର୍ଣ୍ଣ ଘଟ—
2. A jug full of water placed at the gateway in religious ceremonies or on festive occasions.

୩ । ନାନ୍ଦୀମୁଖ ଶ୍ରାଦ୍ଧ—3. Propitiatory offering of cakes of boiled rice to the spirits of one's deceased ancestors.

୪ । ସୌଭାଗ୍ୟଲାଭାର୍ଥ ଦୁଆର ମୁହଁରେ ପୋତାଯିବା ଖୁଣ୍ଟି—
4 A post in a doorway set up for good luck (Apte.

**ନାନ୍ଦୀକର**—ସ.ବଣ. ( ନାନ୍ଦୀ+କୃ ଧାତୁ+ଅ )—୧ । ଯେ ଅଭିନୟ
Nāndikara ପୂର୍ବରେ ମଙ୍ଗଳାଚରଣ ବା ବନ୍ଦନା ପାଠ କରେ—
(ନାନ୍ଦୀବାଦୀ—ଅନ୍ୟରୂପ) 1. A person who recites a benediction or prologue before a dramatic performance is begun.

୨ । ଢୋଲିଆ; ବାଦ୍ୟକାର; ବାଇଦକାରିଆ; ବଜନ୍ତ୍ରୀ—
2. A drummer.

**ନାନ୍ଦୀପଟ**—ସ. ବି.—୧ । କୂଅର ନନ୍ଦ; ଘୋଡ଼ା ନନ୍ଦ—1. The
Nāndipaṭa outer protecting ring put on a well.

୨ । କୂଅର ମୁହଁ ଉପରେ ଦିଆ ଯିବା ଆବରଣ—
2. The lid or cover of a well (Apte).

**ନାନ୍ଦୀପାଠକ**—ସ. ବଣ. (ନାନ୍ଦୀ+ପାଠକ)—ନାନ୍ଦକର (ଦେଖ)—
Nāndi pāṭhaka Nāndikara (See)

**ନାନ୍ଦୀମୁଖ**—ସ. ବି.—(ନାନ୍ଦୀ=ସ୍ତୁତି; ସୌଭାଗ୍ୟ+ମୁଖ=ପ୍ରଧାନ; ବା
Nāndimukha ନାନ୍ଦୀ=ଶୁଭ+ମୁଖ=ଆରମ୍ଭ )—୧ ।। କୂଅର ନନ୍ଦ; ଘୋଡ଼ା ନନ୍ଦ—1. The outer protecting ring put on a well.

୨ । ଆଭ୍ୟୁଦୟିକ ଶ୍ରାଦ୍ଧ; ବିବାହାଦି ଅନୁଷ୍ଠାନରେ ପ୍ରଥମେ ପିତୃଲୋକଙ୍କ ଉଦ୍ଦେଶ୍ୟରେ ଯେଉଁ ପାର୍ବଣ ଶ୍ରାଦ୍ଧ କରାଯାଏ—2. Oblation or offering of Pinda to the ancestors, performed at the commencement of festive rites (to propitiate the spirits of one's deceased ancestors.)

[ ଦ୍ର—ପୁରାଣ ମତରେ ଜାତକର୍ମାଦି ଦଶ ବିଧ ସଂସ୍କାର, ନୂତନ ଗୃହ ପ୍ରବେଶ, ଦେବତାଦି ପ୍ରତିଷ୍ଠା, ତୀର୍ଥଯାତ୍ରା, ବୃଷୋତ୍ସର୍ଗାଦି ଶୁଭାନୁଷ୍ଠାନମାନଙ୍କରେ ପ୍ରଥମରେ ନାନ୍ଦୀମୁଖ ଶ୍ରାଦ୍ଧ କରିବା ଉଚିତ । କେବଳ ପୁତ୍ର ଜନ୍ମରେ ଏ ଶ୍ରାଦ୍ଧର ବିଧାନ ନାହିଁ । ଅନ୍ୟ ସବୁ ଶ୍ରାଦ୍ଧ ମଧ୍ୟାହ୍ନରେ କରାଯାଏ; କିନ୍ତୁ ଏ ଶ୍ରାଦ୍ଧ ପୂର୍ବାହ୍ନରେ ବିଧେୟ—ହି. ଶବ୍ଦସାଗର ।]

୩ । ପିତୃଲୋକ; ପିତୃଗଣ—3. The spirits of one's departed ancestors (consisting of 3 paternal and 3 maternal ancestors).

ସ. ବଣ. ପୁଂ—ନାନ୍ଦୀମୁଖୀ (ଦେଖ)—Nāndimukhi (See)

**ନାନ୍ଦୀମୁଖୀ**—ସ. ବି—୧ । ଅବନ୍ତୀନଗରବାସିନୀ ମୁନିକନ୍ୟାବିଶେଷ—
Nāndimukhi 1. Name of a daughter of a sage living in Abanti.

[ ଦ୍ର—ଏ ରାଧାକୃଷ୍ଣଙ୍କ ମିଳନରେ ଦୂତୀ କାର୍ଯ୍ୟ କରିଥିଲେ । ]

୨ । ସଂସ୍କୃତ ଛନ୍ଦୋବିଶେଷ—
2. Name of a Sanskrit metre.

[ ଦ୍ର—ଏହାର ପ୍ରତ୍ୟେକ ଚରଣରେ ୨ନଗଣ, ୨ତଗଣ ଓ ୨ଗୁରୁ ବର୍ଣ୍ଣ ରହେ । ]

ସ. ବଣ. ସ୍ତ୍ରୀ (ନାନ୍ଦୀମୁଖ+ସ୍ତ୍ରୀ. ଈ)—ଯେଉଁ ମାତୃଗଣ ନାନ୍ଦୀମୁଖ ଶ୍ରାଦ୍ଧରେ ତର୍ପିତା ହୁଅନ୍ତି—The female ancestor. who are invoked in a Nāndimukha śraddha.

[ଦ୍ର—ନାନ୍ଦୀମୁଖ ପିତୃଗଣ ଯଥା—ପିତା, ପିତାମହ, ପ୍ରପିତାମହ ଓ ମାତାମହ, ପ୍ରମାତାମହ, ବୃଦ୍ଧ ପ୍ରମାତାମହ । ନାନ୍ଦୀମୁଖୀ ମାତୃଗଣ ଯଥା—ମାତା, ପିତାମହୀ, ପ୍ରପିତାମହୀ ଓ ମାତାମହୀ, ପ୍ରମାତାମହୀ, ବୃଦ୍ଧ ପ୍ରମାତାମହୀ । ]

ଦେ. ବି ( ସ. ନାନ୍ଦୀମୁଖ )—ନାନ୍ଦୀମୁଖ ଶ୍ରାଦ୍ଧ—Propitiatory oblation offered to the spirits of one's departed ancestors before festive rites are begun.

**ନାପ୍**—ପ୍ରାଦେ (ସମ୍ବଲପୁର) ବି (ଭୁଲ. ହି. ଏହି ଅର୍ଥରେ ଏହି ଶବ୍ଦ)—
Nāp ମାପ—Measurement.

**ନାପ୍‌ବା**—ପ୍ରାଦେ (ସମ୍ବଲପୁର) କ୍ରି (ଭୁଲ. ହି. ଏହି ଅର୍ଥରେ ନାପ୍‌ନା)—
Nāp-bā ମାପିବା—To measure.

**ନା(ନାଁ)ପରବା**—ବୈଦେ. ବଣ (ଫା. ନାପର୍‌ବାହ୍)—ନିପରବା ( ଦେଖ )
Nā(nāñ)parabā Niparabā ( See )
[ ନା(ନାଁ)ପରୁଆ—ଅନ୍ୟରୂପ ]

**ନା(ନାଁ)ପରବାଇ(ହି)**—ବୈଦେ. ବଣ ଓ ବି (ଫା. ନାପରବାହୀ)—
Nā(nāñ)parabāi(hi) ନିପରବାଇ ( ଦେଖ )—
(ନାପରେଇ, ନାପରୱାଇ—ଅନ୍ୟରୂପ) Niparabāi ( See )

**ନା(ନାଁ)ପସନ୍ଦ**—ବୈଦେ. ବଣ (ଫା. ନାପସନ୍ଦ୍)—୧ । ଅମନୋନୀତ;
Nā(nāñ)pasanda ଅପସନ୍ଦ, ଗରପସନ୍ଦ—1. Not chosen; rejected

২ । ଅନଭିମତ—2. Not approved; disapproved.

৩ । ବିଶ୍ୱାସର ଅଯୋଗ୍ୟ—
3. Unreliable; incredible.

୪ । ଅଗ୍ରାହ୍ୟ—4. Unacceptable.

୫ । ଅରୁଚିକର—5. Not according to one's taste or liking.

୬ । ଅପ୍ରିୟ—6. Disagreeable.

ବୈଦେ. ବ—୧ । ଅନିଚ୍ଛା—1. Disinclination.
୨ । ଅସମ୍ମତିର ଅଭାବ; ଅନୁକୂଳ ମତ ପ୍ରକାଶ ନ କରିବା—
2. Disapproval.
୩ । ଉଦାସୀନ୍ୟ; ଅନାସ୍ଥା—
3. Indifference; disregard.
୪ । ବିଶ୍ୱାସର ଅଭାବ—
4. Want of faith or trust.

**ନା(ନାଁ)ପାକ୍**—ବୈଦେ. ବିଣ (ପା)—୧ । ଅଶୁଦ୍ଧ; ଅପବିତ୍ର; ଅଶୁଚି—
Nā(nān̐)pāk 1. Impure; unclean.
नापाक २ । ମଇଳା—2. Dirty; filthy.
**ناپاک**

**ନା(ନାଁ)ପାକି**—ବୈଦେ. ବ (ପା)—ଅଶୁଚିତା—
Nā(nān̐)pāki Impurity; uncleanness.
नापाकी, **ناپاکی**

**ନାପିତ**—ସଂ. ବି. ପୁଂ ( ନ=ନୁଦେଁ+ଆପ୍ ଧାତୁ=ସମ୍ମାନ ପାଇବା+ ତ)—ଶୂଦ୍ର ଜାତିବିଶେଷ; ଭଣ୍ଡାରୀ; କ୍ଷୌରକାରକ—
Nāpita Barber; a Śūdra caste among
(ନାପିତୀ—ସ୍ତ୍ରୀ) the Hindus.

[ ଦ୍ର—ପରାଶରସ୍ମୃତିରେ ଅଛି ଯେ ଶୂଦ୍ରା ଗର୍ଭରେ ବ୍ରାହ୍ମଣ ଔରସ ସନ୍ତାନର ଯଦି ବ୍ରାହ୍ମଣ ଦ୍ୱାରା ସଂସ୍କାର ନ ହୁଏ ତେବେ ସେ ନାପିତ ହୁଏ । ପରଶୁରାମଙ୍କ ମତରେ କୁବେର ପୁରୁଷ ଓ ପଟ୍ଟିକାରୀ ସ୍ତ୍ରୀର ସନ୍ତାନ ନାପିତ । ମନୁସଂହିତାରେ ନାପିତଙ୍କ ଗଣନା ଭୋଜ୍ୟାନ୍ନ ଶୂଦ୍ର ଜାତିରେ କରାଯାଇ ଅଛି । ସ୍ମୃତି ଆଦିରେ ନାପିତ ସଙ୍କର ଜାତିରେ ପରିଗଣିତ ଓ ଏ ଜାତି ସ୍ପୃଶ୍ୟ ଶୂଦ୍ର ରୂପେ ଗଣିତ । ଦ୍ର. ଶବ୍ଦସାଗର ।
ନାପିତର ଅନ୍ୟ ସଂ. ପ୍ରତିଶବ୍ଦ—କ୍ଷୁରୀ, ମୁଣ୍ଡୀ, ଦିବାକୀର୍ତ୍ତି, ଅନ୍ତ୍ୟାବସାୟୀ, ଭଣ୍ଡୀ, ନଖକୁଟ୍ଟ, ଗ୍ରାମଣୀ, ଚଣ୍ଡିଲ ଓ ଶ୍ମଶ୍ରୁଧୂର୍ତ୍ତ । ]

**ନାପିତ ଶାଳା**—ସ ବି. ସ୍ତ୍ରୀ ( ଷଷ୍ଠୀ ତତ୍; ନାପିତ+ଶାଳା)—ଭଣ୍ଡାରୀ
Nāpita śālā ଯେଉଁ ଘରେ କ୍ଷୌର କରେ—A barber's
(ନାପିତଶାଳିକା—ଅନ୍ୟରୂପ) shop.

**ନାପିତାୟନି**—ସ. ବି. ପୁଂ. ( ନାପିତ+ଅପତ୍ୟାର୍ଥେ ଆୟନି )—
Nāpitāyani ନାପିତ ସନ୍ତାନ—
The son of a barber.

**ନାପିତାଣୀ**—ଦେ. ବି. ସ୍ତ୍ରୀ. ( ସ. ନାପିତ )—
Nāpitāṇi ଭଣ୍ଡାରୁଣୀ—A barber woman; a woman
नापितानी **نائن** of the barber caste.

**ନାପିତୀ**—ସ. ବି. ସ୍ତ୍ରୀ. ( ନାପିତ+ସ୍ତ୍ରୀ. ଈ )—
Nāpiti ନାପିତାଣୀ ( ଦେଖ )—Nāpitāṇi ( See )

ନାପିତ ବହୁବା ଦୂର୍ବ ବାହ୍ୟା ପଥ ରେ ।
ଭକ୍ତ. କୋଷ୍ଠଚନ୍ଦ୍ରସ୍ତବ ନୃସ ।

**ନାପିତୁଣୀ**—ଦେ. ବି. ସ୍ତ୍ରୀ—ନାପିତାଣୀ ( ଦେଖ )
Nāpituṇi Nāpitāṇi ( See )

**ନାପିତ୍ୟ**—ସ. ବି. ( ନାପିତ+କର୍ମ ଅର୍ଥରେ. ଯ )—
Nāpitya ୧ । ଭଣ୍ଡାରର କାର୍ଯ୍ୟ—1. The duties of a barber; a barber's profession.
୨ । (+ଅପତ୍ୟାର୍ଥେ. ଯ) ନାପିତ ସନ୍ତାନ—
2. The son of a barber (Apte).

**ନାପିବା**—ପ୍ରାଦେ. (ସମ୍ବଲପୁର) କ୍ରି. ( ତୁଳ. ହି. ନାପନା )—
Nāpibā ମାପିବା—To measure

**ନାବ**—ଦେ. ବି. ( ସ. ନୌ ଶବ୍ଦର ବହୁବଚନ ନାବଃ, ପା. ନାବ୍; ତୁଳ ଗ୍ରୀକ୍. ନୌସ୍; ଲାଟିନ୍. ନାଭସ୍; ଜର୍ମାନ୍. ନାଭେ )—
Nāba
नाव ୧ । ନାବ; ନୌକା; ଡଙ୍ଗା—1. Boat.
**ناو** ୨ । ବୋଇତ, ଜାହାଜ—2. Ship; vessel.
ଗ୍ରା. ବି—ଲାବଣ୍ୟ ନାମକ ପୁରୁଷର ଓ ଲାବଣ୍ୟବତୀ ନାମ୍ନୀ ସ୍ତ୍ରୀର ଡାକ୍ ନାମ—The name by which persons named Lābaṇya and Lābaṇyabati are called.

**ନାବକେଳି**—ଦେ. ବି. ( ସ. ନୌ+କେଳି )—
Nābakeli ନୌବିହାର; ନଦୀ ଓ ଜଳାଶୟାଦିରେ ନୌଚାଳନ
**ناور, ناواری** ପୂର୍ବକ କ୍ରୀଡ଼ା—Sports by plying
नावकेलि boats.

**ନାବଡ଼ା**—ଦେ. ବିଣ. ପୁଂ ( ସ. ଲମ୍ପଟ )—
Nābaṛā ୧ । ଲମ୍ପଟ—1. Adulterous.
नावड़ ୨ । ଖଳ; ଦୁଷ୍ଟ—2. Wicked.
**لفنگا** ୩ । ନେଉଡ଼ା; ନିର୍ଲଜ୍ଜ—3. Shameless.
( ନାବଡ଼ୀ—ସ୍ତ୍ରୀ ) ୪ । ମୂର୍ଖ—4. Illiterate.

**ନାବନ(ନ୍ୟ)**—ଗ୍ରା. ବି.—( ସ. ଲାବଣ୍ୟ)—୧ । ଲାବଣ୍ୟ; ମଧୁରତା; ସୌନ୍ଦର୍ଯ୍ୟ—1. Loveliness; charm.
Nābana(nya)
୨ । ନାବ ଗ୍ରା. (ଦେଖ)—2. Nāba (See)

**ନାବନୀତ**—ସ. ବିଣ. ( ନବନୀତ+ଅ )—
Nābanita ୧ । କୋମଳ—1. Soft.
( ନାବନୀତା ସ୍ତ୍ରୀ ) ୨ । ମୃଦୁ—2. Mild; gentle.

**ନାବମିକ**—ସ. ବିଣ. ( ନବମ+ଇକ )—
Nābamika ନବମ—Ninth.
( ନାବମିକା—ସ୍ତ୍ରୀ )

**ନାବର ଦଉଡ଼ି**—ଦେ. ବି. (ଜାହାଜିଆ ଭାଷା)—ଜାହାଜର ଦୁଇ ପାଖରୁ
Nābarā daurḍi ମାସ୍ତୁଲର ବେକ ପର୍ଯ୍ୟନ୍ତ ଲମ୍ବିଥିବା ପର ବନ୍ଧା
ଦଉଡ଼ି—(nautical) Ropes tying the mast to the ends of a ship; stays.

ମୁଁ ନାବର ଦଉଡ଼ି ଧରି ତଳକୁ ଉପରକୁ ଉଠିଯାଇ ଦୂରବୀନ କଷି ଦେଇ ।
ଫକୀରମୋହନ—ଗଳ୍ପସ୍ୱଳ୍ପ ।

**ନାବାଳ(ଲ)କ(ଗ)**—ବୈଦେ. ବିଣ. ( ଫରାସୀ )
Nābāla(la)ka(ga) ( ପା—ନାବାଲଗ୍ )
नाबालक ୧ । ଅପ୍ରାପ୍ତ ବୟସ୍କ—1. Minor.
**نابالغ** ୨ । ପ୍ରାପ୍ତ ବୟସ୍କର ଅଧିକାର ପାଇବା କ୍ଷମନ୍ତେ

( ବିପରୀତ—ସାବାଳକ ) ଆଇନ୍ ଅନୁସାରେ ଉପଯୁକ୍ତ ବୟସରେ ଉପନୀତ ହୋଇ ନ ଥିବା; ଅଳ୍ପବୟସ୍କ—2. Young; who has not yet attained his age of majority in the eye of law.

ଦ୍ର—[ ଏ ଫାର୍ସୀ ଶବ୍ଦ ସ୍ତ୍ରୀ ଓ ପୁରୁଷଙ୍କ ପ୍ରତି ପ୍ରଯୁଜ୍ୟ ହୁଏ । ସାଧୁଭାଷା ବ୍ୟବହାରପ୍ରିୟ ବ୍ୟକ୍ତି ଓ ଲେଖକମାନେ ନାବାଳକ ଶବ୍ଦକୁ ବାଳକ ଶବ୍ଦ ସଙ୍ଗେ ସଂଯୁକ୍ତ ପୁଂଲିଙ୍ଗ ଶବ୍ଦ ବିଚାର କରି ତହିଁର ସ୍ତ୍ରୀଲିଙ୍ଗ ନାବାଳିକା କରନ୍ତି । ଫା. ନାବାଲିଗ୍ ଶବ୍ଦର ବିପରୀତ ବାଲିଗ୍=ବୟଃପ୍ରାପ୍ତ; ବଙ୍ଗ ଭାଷାରେ ବାଳକ ଶବ୍ଦ ସଙ୍ଗେ ଏ ଶବ୍ଦର ସମ୍ପର୍କ ଥିବାର ଭ୍ରମରେ ନାବାଳକର ବିପରୀତ ସାବାଳକ ଶବ୍ଦ ବ୍ୟବହୃତ ହୁଏ । ହିନ୍ଦୁ, ମୁସଲମାନ୍ ଓ ପାଶ୍ଚାତ୍ୟ ଆଇନ ଅନୁସାରେ ଯୁବକ ଯୁବତୀମାନେ ୧୮ ବର୍ଷ ବା ୨୧ ବର୍ଷ ପର୍ଯ୍ୟନ୍ତ 'ନାବାଳକ' (minor) ରହନ୍ତି ଓ ସେ ସମୟରେ ସେମାନଙ୍କର ସମ୍ପତ୍ତିକୁ ଓ ଶରୀରକୁ ରକ୍ଷଣାବେକ୍ଷଣ କରିବା ପାଇଁ ଅଭିଭାବକ ( ଗାର୍ଜିଏନ୍, guardian ) ନିଯୁକ୍ତ ହୁଅନ୍ତି । ବଡ଼ ବଡ଼ ରଜା ଓ ଜମିଦାରମାନଙ୍କର ନାବାଲଗି ସମୟରେ ରାଜସରକାର ( କୋର୍ଟ୍ ଅଫ୍ ୱାର୍ଡସ୍ ( Government, Court of wards ) ସେମାନଙ୍କ ସମ୍ପତ୍ତି ଓ ଶରୀରର ରକ୍ଷଣାବେକ୍ଷଣର ଭାର ନିଅନ୍ତି ଓ ନାବାଳକମାନେ ଆଇନ୍ ଅନୁସାରେ କି କି କାର୍ଯ୍ୟ କରି ପାରିବେ ଓ ନ କରି ପାରିବେ ଭିନ୍ନ ଭିନ୍ନ ଦେଶର ଆଇନରେ ଓ ଶାସ୍ତ୍ରରେ ତହିଁରେ ଭିନ୍ନ ଭିନ୍ନ କାଇଦା କଟକଣା ଅଛି । ];

ବୈଦେ. ବି—ଅପ୍ରାପ୍ତ ବୟସ୍କ ଯୁବା; ଯାହାର ଶରୀର ଓ ସମ୍ପତ୍ତି ରକ୍ଷଣାବେକ୍ଷଣ କରିବା ନିମନ୍ତେ ଅଭିଭାବକ ହୁଅନ୍ତି— A minor; a ward.

**ନାବାଳ(ଲ)କ(ଗି)**—ବୈଦେ. ବି. ( କଟକିଆ )— Nābāla(la)ki(gi) ( ଫା. ନାବାଲିଗୀ )— नाबालकी ଅପ୍ରାପ୍ତ ବୟସ୍କ ଅବସ୍ଥା—Minority; nonage.

**ନାବାଳଗୀ** ( ବିପରୀତ—ସାବାଳକ )

ଦେ. ବିଣ.—ନାବାଳକ ସମ୍ବନ୍ଧୀୟ—Relating to a minor ( ଯଥା—ନାବାଳକ ସମ୍ପତ୍ତି )

**ନାବାଳ(ଲ)କା(ଗା)**—ବୈଦେ. ବିଣ. ଓ ବି—( ଫା. ନାବାଲିଗ୍ ) Nābāli(li)kā(gā) ଅପ୍ରାପ୍ତବୟସ୍କା ବାଳିକା — A minor girl.

**ନାବିକ**—ସଂ. ବି. ( ନୌ+ଶାବକ ଅର୍ଥରେ ଇକ )— Nābika ୧ । ନୌଚାଳକ; ନାଉରି; ମାଝୀ; ନୌକାଜୀବୀ— 1. Boatman; sailor; navigator.
୨ । କର୍ଣ୍ଣଧାର—2. Helmsman.
୩ । ନୌଯାତ୍ରୀ—3. The passenger on board a ship ( Apte).

ସଂ. ବିଣ —ନୌକାସମ୍ବନ୍ଧୀୟ—Naval.

**ନାବିକ ପଞ୍ଜିକା**—ସଂ. ବି.—( ଅଧୁନିକ ବ୍ୟବହାର ) Nābika pañjikā ତିଥି ଓ ନକ୍ଷତ୍ର ଆଦି ନିର୍ଣ୍ଣୟ କରିବା ପାଇଁ ଆଧୁନିକ ଜ୍ୟୋତିଷ ଗଣନାକ୍ରମେ ସମୁଦ୍ରଗାମୀ ନାବିକମାନଙ୍କ ବ୍ୟବହାରାର୍ଥ ସଂକଳିତ ପଞ୍ଜି— Nautical almanac.

**ନାବୀ**—ସଂ. ବି. ସ୍ତ୍ରୀ ( ନୌ+ଈ; ତୁଳ. ଇଂ. ନାଭି )— Nābi ଶ୍ରେଣୀବଦ୍ଧ ଜାହାଜ ବା ନୌକାସମୂହ—Navy; a fleet of ships.

ସଂ. ବି. ପୁଂ ( ନୌ+ଇନ୍; ୧ମା ୧ବ )—ନାବିକ— Sailor (Apte).

ଦେ. ବି—ନାବ ( ଦେ ) ( ଦେଖ )— Nāba ( 3 ) ( See ).

**ନାବୁକେଶ୍ୱର**—ଦେ. ବି ( ସଂ. ଅଲାବୁକେଶ୍ୱର )—ଭୁବନେଶ୍ୱର ଓ Nābukeśwara ପୁରୀରେ ପ୍ରତିଷ୍ଠିତ 'ଅଲାବୁକେଶ୍ୱର' ନାମକ ଶିବବିଗ୍ରହ—Name of 2 images of Śiba at Bhubaneśwara and Purī.

**ନାବ୍ୟ**—ସଂ. ବିଣ ( ନୌ+ଉତ୍ତରଣଯୋଗ୍ୟାର୍ଥେ. ଯ )— Nābya ୧ । ନୌକାଦ୍ୱାରା ପାର ହେବାର ଯୋଗ୍ୟ— 1. Capable of being crossed over with the help of boats.

( ନାବ୍ୟା—ସ୍ତ୍ରୀ ) ୨ । ନୌକାଗମ୍ୟ; ନୌବାହନଯୋଗ୍ୟ; ଯେଉଁ ନଦୀ ଆଦିରେ ଡଙ୍ଗା ଚଳପାରେ— 2. Navigable.
୩ । ପ୍ରଶଂସନୀୟ—3. Praiseworthy (Apte).

ସଂ. ବି (ନବ+ଭାବାର୍ଥେ. ଯ)—୧ । ନବତା; ନୂତନତ୍ୱ— 1. Novelty; newness.
୨ । ଯୁବାବସ୍ଥା—2. Youth; adolescence.
୩ । ନବତରୁଣାବସ୍ଥା; ନବଯୌବନ— 3. Fresh youth; prime of youth.

**ନାଭ**—ଗ୍ରାମ୍ୟ. ବି ( ସଂ. ଲାଭ )—୧ । ଲାଭ— Nābha 1. Profit.

ଦେ. ବି—୨ । ପଦ୍ମନାଭ ନାମକ ବ୍ୟକ୍ତିକୁ ଡାକିବା ସଂକ୍ଷିପ୍ତ ନାମ— 2. An abbreviation of the name of a person named Padmanābha.

ସଂ. ବି—୧ । ଶିବ ( ହେ. ଶ )—1. Śiba.
୨ । ଭଗୀରଥଙ୍କ ପୁତ୍ର— 2. Name of the son of king Bhagīratha.

**ନାଭକ**—ସଂ. ବି—୧ । ହରିତକୀ; ହରିଡ଼ା— Nābhaka 1. Myrobalan.
୨ । ଆମଳକ; ଅଁଳା—2. Emblic Myrobalan.

**ନାଭସ**—ସଂ. ବିଣ ( ନଭସ୍+ଅ )—୧ । ସ୍ୱର୍ଗୀୟ— Nābhasa 1. Heavenly (Apte).
(ନାଭସୀ—ସ୍ତ୍ରୀ) ୨ । ଆକାଶସ୍ଥ—2. Celestial (Apte).

**ନାଭା**—ଦେ. ବି (ନାମ)—୧ । ହିନ୍ଦି ଭକ୍ତମାଳ ଗ୍ରନ୍ଥରେ ଉଲ୍ଲେଖିତ ଜଣେ Nābhā ବୈଷ୍ଣବ ଭକ୍ତ—1. Name of a devoted Baishnaba.
नाभा **नामा**

[ଦ୍ର—ଏ ହିନ୍ଦୀ ଭକ୍ତମାଳ ଗ୍ରନ୍ଥର ପ୍ରଣେତା । ଏ ଖ୍ରୀଷ୍ଟ ଷୋଡ଼ଶ ଶତାବ୍ଦୀରେ ଜୀବିତ ଥିଲେ । ଏହାଙ୍କ ଜନ୍ମ ତୈଲଙ୍ଗ ଦେଶରେ

ଗୋଟିଏ ମଠ ( ଡମ ) କୁଳରେ ହୋଇଥିଲେ । ଏ ଜନ୍ମାନ୍ଧ ଥିଲେ ଓ ଜୟପୁର ନିକଟରେ ସାଧୁମାନଙ୍କ ସେବା କରି ଏ ପୁଣି ଗ୍ରନ୍ଥରଚନା କରିଥିଲେ। ଏ ତୁଳସୀ ଦାସଙ୍କ ସମସାମୟିକ ଥିଲେ —ହି. ଶ । ]

୨ । ପଞ୍ଜାବର ଗୋଟିଏ ଶିଖରାଜଶାସିତ ରାଜ୍ୟ—
2. Name of a state in the Panjab under a Sikh Raja.

**ନାଭାଗ**—ସଂ. ବି ( ନାମ )—୧ । ଇକ୍ଷ୍ୱାକୁବଂଶୀୟ ରାଜବିଶେଷ —
Nābhāga 1. Name of the king of the Ikshwāku dynasty.

ଦ୍ର—ବାଲ୍ମୀକି ରାମାୟଣମତରେ ଏ ଅମ୍ବରୀଷଙ୍କ ପ୍ରପୌତ୍ର, ଯଯାତିଙ୍କ ପୁତ୍ର, ଅଜଙ୍କ ପିତା ଓ ଦଶରଥଙ୍କ ପିତାମହ ଥିଲେ; କିନ୍ତୁ ଭାଗବତରେ ନାଭାଗ ଅମ୍ବରୀଷଙ୍କ ପିତା ଥିବାର ଲେଖା ଅଛି ।

୨ । କାରୁଷ ବଂଶର ବିଷ୍ଟ ରାଜାଙ୍କ ପୁତ୍ର—
2. Name of a king of the Kārusha dynasty.

[ ଦ୍ର— ମାର୍କଣ୍ଡେୟ ପୁରାଣରେ ଅଛି ଯେ ଏ ପିତାଙ୍କ ନିଷେଧ ସତ୍ତ୍ୱେ ଗୋଟିଏ ବୈଶ୍ୟା କନ୍ୟାକୁ ବିବାହ କରି ନିଜର କ୍ଷତ୍ରିୟତ୍ୱ ହରାଇ ଥିଲେ । ପରେ ତାଙ୍କ କନ୍ୟାକୁ ଜଣେ କ୍ଷତ୍ରିୟ ବଳପୂର୍ବକ ଗ୍ରହଣ କରି ବିବାହ କରିବାରୁ ଏ କ୍ଷତ୍ରିୟତ୍ୱ ଲାଭ କଲେ—
ହି. ଶବ୍ଦସାଗର ]

**ନାଭି** (ଭୀ)—ସଂ. ବି (ନହ୍ ଧାତୁ=ବନ୍ଧନ କରିବା+ଇ; ଭ. ଆଦେଶ +ଈ; ଯାହା ନାଡ଼ୀମାନଙ୍କୁ ବାନ୍ଧିରଖେ)—
Nābhi (bhī)

୧ । ଉଦରର ମଧ୍ୟଭାଗରେ ଥିବା ଗର୍ତ୍ତାକାର ଆବର୍ତ୍ତ, ଲାହି—
1. Navel.

[ଦ୍ର—ଏହିଠାରେ ଭ୍ରୂଣର ପେଟ ସଙ୍ଗେ ଜରାୟୁ ନାଳ (ନାଡ଼ି) ଲାଗିଥାଏ ଓ ସେହି ଛିଦ୍ରବାଟେ ଗର୍ଭାବସ୍ଥାରେ ଭ୍ରୂଣର ଦେହକୁ ରକ୍ତ ଯାଏ । ଶିଶୁ ଜନ୍ମିଲା ପରେ ନାଭିଠାରେ ଜରାୟୁନାଳକୁ ଫୁଲରୁ କାଟି ଦିଆଯାଏ । ]

୨ । ଶିଶୁରନାଭି ସଙ୍ଗେ ଫୁଲ ଲାଗିଥିବା ନାଡ଼ି—
2. Naval cord; umbelical cord.
( ଯଥା—ନାଭିଚ୍ଛେଦନ । )

୩ । ଚକ୍ରର ମଧ୍ୟ ପିଣ୍ଡ; ଚକର ଡାଣ୍ଡି—
3. The hob or nave of a wheel.

କାଳଚକ୍ରେ ନାଭି ଯେତ ଭ୍ରମୁ ଥିଲେ
ଗ୍ରହ ବିନ୍ଦୁ ସାଜେ କୋଟିଏ ଅର ତୁଲେ—କୃଷ୍ଣସିଂହ ମହାଭାରତ. ଅ । ]

୪ । ସମ୍ରାଟ—4. Emperor; a paramount sovereign.

୫ । କ୍ଷତ୍ରିୟ—5. A Kshatriya.

୬ । (ନାମ) ପ୍ରିୟବ୍ରତରାଜାଙ୍କ ପୌତ୍ର (ବ୍ରହ୍ମାଣ୍ଡପୁରାଣ)—
6. Name of the grandson of king Priyabrata.

୭ । ଗୋତ୍ର—7. Clan.

୮ । ବୃତ୍ତର କେନ୍ଦ୍ର—
8. The centre of a circle.

୯ । କୌଣସି ପଦାର୍ଥର ମଧ୍ୟଦେଶ—
9. The middle part of a thing.

୧୦ । କସ୍ତୁରୀ—10. Musk.

୧୧ । ମଦ୍ୟ—11. Spirituous liquor.

୧୨ । ଗୃହ—12 House (Apte).

୧୩ । ଯଜ୍ଞଶାଳା (ଜ୍ଞାନେନ୍ଦ୍ର)—
13. A room where vedic sacrifice is performed.

୧୪ । ଦଳପତି—14. Leader or head of a party or body.

୧୫ । ମହାଦେବ (ହି. ଶ.)—15. Siba.

୧୬ । (ଭାଗବତୋକ୍ତ) ଅଗ୍ନୀଧ୍ର ରାଜାଙ୍କ ନଅ ପୁତ୍ର ମଧ୍ୟରୁ ଏକତମ ଓ ଭରତଙ୍କ ପିତାମହ—
16. Name of a son of king Agnidhra.

[ ଦ୍ର—ଅଗ୍ନୀଧ୍ର ରାଜା ତାଙ୍କ ନଅ ପୁତ୍ରଙ୍କୁ ଜମ୍ବୁଦ୍ୱୀପର ନଅ ଖଣ୍ଡ ବାଣ୍ଟିଦେଲେ । ଏହାଙ୍କୁ ଯେଉଁ ଖଣ୍ଡ ଦେଇଥିଲେ ତାହା ନାଭିଖଣ୍ଡ ଓ ପରେ ଭାରତଖଣ୍ଡ ନାମରେ ପ୍ରସିଦ୍ଧ ହେଲା । ଏହାଙ୍କ ପତ୍ନୀ ମେରୁଦେବୀଙ୍କ ସଙ୍ଗେ ପୁତ୍ର କାମନାରେ ଏ ଯଜ୍ଞ କଲେ । ଏ ଯଜ୍ଞରେ ବିଷ୍ଣୁ ପ୍ରସନ୍ନ ହୋଇ ତାଙ୍କୁ ଦେଖାଦେବାରୁ ଏ ବିଷ୍ଣୁଙ୍କ ପରି ଗୋଟିଏ ପୁତ୍ର ପ୍ରାର୍ଥନା କଲେ । ବିଷ୍ଣୁ ଏଥିରେ ସ୍ୱୀକୃତ ହୋଇ ସ୍ୱୟଂ ଋଷଭ ଅବତାରରେ ମେରୁଦେବୀଙ୍କ ଗର୍ଭରେ ଜନ୍ମିଲେ । ଏହି ଋଷଭ ଦେବଙ୍କୁ ଜୈନମାନେ ଆଦି ତୀର୍ଥଙ୍କରରୂପେ ମାନନ୍ତି । ବିଷ୍ଣୁଙ୍କ ୨୪ ଅବତାର ମଧ୍ୟରୁ ଋଷଭ ଏକତମ—ହି. ଶ. । ]

[ଦ୍ର—ନାଭି ଶବ୍ଦ ସମାସରେ ଅନ୍ୟ ଶବ୍ଦ ପରେ ଯୁକ୍ତ ହେଲେ 'ନାଭ' ଆକାର ଧାରଣ କରେ । ଯଥା—ପଦ୍ମନାଭ, ଊର୍ଣ୍ଣନାଭ ।]

**ନାଭିଆଇଁଚି**—ଦେ. ବି—ଲଟାବେଁକୋଳି (ଦେଖ)
Nābhiāiṅchi Laṭābeṅkoḷi (See).

**ନାଭି କଣ୍ଟକ**—ସଂ. ବି—ଉଚ୍ଚନାଭି; ଗାଣ୍ଡୁ; ଫୁଲା ନାହି—
Nābhi kaṇṭaka Protuberant navel.
(ନାଭିଗୁଡ଼କ, ନାଭିଗୁଳକ, ନାଭିଗୋଲକ—ଅନ୍ୟରୂପ)

**ନାଭି କମଳ**—ସଂ. ବି. (ନାଭିରୂପ କମଳ; ରୂପକ)— ନାହିମୁଣ୍ଡା; ନାଭିର ନିମ୍ନଦେଶସ୍ଥ ଶରୀରମଧ୍ୟସ୍ଥ ପ୍ରଦେଶ—
Nabhikamaḷa
ନାଭିପଦ୍ମ, ନାଭିମୂଳ } ଅନ୍ୟରୂପ
The part of the body immediately under the navel.

**ନାଭିକା**—ସଂ. ବି. (ନାଭି+କ+ଆ)—୧ । କଟଭୀ (ଦେଖ) (ହି. ଶ)
Nābhikā 1. Kaṭabhī (See)

୨ । ନାଭିପରି ଗର୍ତ୍ତ—2. A cavity shaped like the navel (Apte).

**ନାଭି କୁଣ୍ଡ**—ସଂ. ବି. (ନାଭି+କୁଣ୍ଡ; ୬ଷ୍ଠୀ ତତ୍ ବା ରୂପକ)—
Nābhi kuṇḍa ନାଭିର ଆବର୍ତ୍ତ; ନାହିଗାତ—
ନାଭିକୁଣ୍ଡଳ, ନାଭିକୂପ, ନାଭିଗର୍ତ୍ତ } ଅନ୍ୟରୂପ
The umbilic cavity; the navel hole; the depression in the middle of the navel.

**ନାଭି ଖଣ୍ଡ**—ସଂ. ବି—ଅଗ୍ନୀଧ୍ର ରାଜା ତାଙ୍କ ପୁତ୍ରଙ୍କୁ ଜଂବୁଦ୍ୱୀପର ଯେଉଁ ଖଣ୍ଡ ବାଣ୍ଟି ଦେଇଥିଲେ; ଭାରତବର୍ଷ—
Nābhi khaṇḍa
The old name of India.

[ ଦ୍ର—ଅଗ୍ନୀଧ୍ର ରାଜା ତାଙ୍କର ନଅ ପୁଅଙ୍କୁ ଜଂବୁଦ୍ବୀପରାଜ୍ୟକୁ ନଅ ଖଣ୍ଡ କରି ବାଣ୍ଟି ଦେଇଥିଲେ । ତାଙ୍କ ପୁତ୍ର ନାଭିଙ୍କୁ ଯେଉଁ ଖଣ୍ଡ ଦିଆ ଯାଇଥିଲା ତାହାର ନାମ ନାଭିଖଣ୍ଡ ହେଲା । ପରେ ନାଭିଙ୍କ ପୌତ୍ର ଭରତଙ୍କ ନାମ ଅନୁସାରେ ଏହା ଭାରତ ଖଣ୍ଡ ବା ଭାରତ-ବର୍ଷ ବୋଲି ପ୍ରସିଦ୍ଧ ହେଲା—ହି. ଶବ୍ଦସାଗର । ]

**ନାଭି ଗୟା**—ସଂ. ବି—ବୈତରଣୀ ତୀରସ୍ଥିତ ଯାଜପୁର ନଗରର ପୌରାଣିକ
Nābhi gayā ନାମ—The mythological name of the town of Jajpur.

ନାଭିଗୟା ପଦେ ବହେ ତରଙ୍ଗିଣୀ । ଯଥା ନାଥ. କର୍ତ୍ତିକେଶ୍ୱର ।

(ଯଥା—ଗୟାସୁର ତଳେ ନୋହି ଦେଖ, ନାଭିଗୟାରେ ପିଣ୍ଡଦାନ କରିବାର ବିଧି ଅଛି ।)

**ନାଭିଚ୍ଛେଦନ**—ସଂ. ବି. (ନାଭି+ଛେଦନ; ୬ଷ୍ଠୀ ତତ୍)—
Nābhichchhedana ଜନ୍ମର ଅବ୍ୟବହିତ ପରେ ଶିଶୁର ନାଭିର ନାଡ଼ୀକୁ ଫୁଲରୁ କାଟିବା କର୍ମ—The cutting of the navel string of a baby.

**ନାଭିଜ**—ସଂ. ବି (ନାଭି+ଜନ୍ ଧାତୁ+କର୍ତ୍ତୃ. ଅ; ଉପପଦ ତତ୍ପୁ. ବିଷ୍ଣୁଙ୍କ
Nābhija ନାଭି ପଦ୍ମରୁ ଜନ୍ମ ଯାହାଙ୍କର)—ବ୍ରହ୍ମା—
(ନାଭିଜନ୍ମା—ଅନ୍ୟରୂପ) Brahmā.

**ନାଭି ଦେଶ**—ସଂ. ବି. (ନାଭି+ଦେଶ; ୬ଷ୍ଠୀ ତତ୍)—
Nābhi desa ନାଭିର ନିକଟସ୍ଥ ପ୍ରଦେଶ; ନାଭିମୁଣ୍ଡା—
Umbilical region; the region about the navel.

**ନାଭି ନାଡ଼ୀ**—ସଂ. ବି—୧ । ଗର୍ଭନାଡ଼ୀ; ଶିଶୁର ନାଭିସଙ୍ଗେ ଫୁଲକୁ
Nābhi nārdi ସଂଯୁକ୍ତ କରିଥିବା ନାଡ଼ୀ—1. Umbilical cord; navel string.
ନାଭିନାଡ଼ୀ ବନ୍ଧ, ନାଭିନାଲା, ନାଭିନାଳ } ଅନ୍ୟରୂପ ୨ । ନାଭିର ନାଡ଼ୀ ଛିଣ୍ଡିଯିବା ରୋଗ ବିଶେଷ; ଅନ୍ତ୍ରକୋଷ—
2. The rupture of the navel; umbilical hernia (Apte)

**ନାଭି ପାକ**—ସଂ.ବି. (୬ଷ୍ଠୀ ତତ୍, ନାଭି+ପାକ)-ଶିଶୁମାନଙ୍କର ନାଭିରେ
Nābhi pāka ଘାଆ ହୋଇ ନାଭି ପାଚିଯିବା ରୋଗ (ହି. ଶ)—
An infantile disease in which the navel becomes ulcerated and gangrenous.

**ନାଭି ବର୍ଦ୍ଧନ**—ସଂ. ବି—୧ । ସ୍ଥୂଳକାୟତ୍ୱ; ଦେହର ମେଦୋବୃଦ୍ଧି—
Nābhi barddhana 1. Corpulence; excessive fatness of the body.

୨ । ଉଦରସ୍ଥ ରୋଗ ବିଶେଷ, ଅନ୍ତ୍ରକୋଷ ରୋଗ—
2. Umbilical hernia; examphales.

୩ । ନାଭିଚ୍ଛେଦନ (ଦେଖ)
3. Nābhichchhedana (See)

**ନାଭି ବର୍ଷ**—ସଂ. ବି—ନାଭିଖଣ୍ଡ (ଦେଖ)
Nābhi barsha Nābhikhanda (See)

**ନାଭିଭୂ**—ସଂ ବି. (ନାଭି+ଭୂ ଧାତୁ+କର୍ତ୍ତୃ. କ୍ୱିପ୍)—ନାଭିଜ (ଦେଖ)
Nābhibhū Nābhija (See)

**ନାଭି ମଣ୍ଡଳ**—ସଂ. ବି. (ନାଭି+ମଣ୍ଡଳ; ୬ଷ୍ଠୀ ତତ୍)—
Nābhi mandala ନାଭି ଦେଶ (ଦେଖ)
Nābhi desa (See)

**ନାଭିଲ**—ସଂ. ବିଣ. ପୁଂ (ନାଭି+ଅସ୍ତି ଅର୍ଥରେ ଲ)—ବଡ଼ ନାଭିଯୁକ୍ତ;
Nābhila ଗାଣ୍ଡୁନା ହୁଆ—Having a protuberant navel.
(ନାଭିଲ—ଅନ୍ୟରୂପ)
(ନାଭିଲା—ସ୍ତ୍ରୀ) ସଂ. ବି. (ନାଭି+ଲ)—୧ । କୋଡ଼ ଗାତ—ସ୍ତ୍ରୀମାନଙ୍କର ଉରୁସନ୍ଧି—1. The groin; inguen of women.
୨ । ଗର୍ଭାଣ୍ଡ; ଗାଣ୍ଡୁ—2 The swelling or enlargement of the navel.
୩ । ଶାରୀରିକ କଷ୍ଟ; ଦୁଃଖ—3. Bodily pain.
୪ । ନାଭିର ଗର୍ତ୍ତ; ନାଭିକୂପ—
4. The hollow of the navel.

**ନାଭି ଶଙ୍ଖ**—ବି.—ଶଙ୍ଖ (ଦେଖ)
Nābhi sankha Sankha (See)
[ଦ୍ର—ଏହାର ଶୋଧନ, ମାରଣ ଓ ଗୁଣ କଉଡ଼ି ଭସ୍ମ ତୁଲ୍ୟ । ଦ୍ରବ୍ୟଗୁଣ—କଳ୍ପଦ୍ରୁମ ।]

**ନାଭି ସରୋବର**—ସଂ. ବି. (ନାଭି+ସରୋବର; ରୂପକ)—
Nābhi sarobara ନାଭିକୁଣ୍ଡ (ଦେଖ)
Nābhikunda (See)

**ନାଭି ସ୍ଥଳ**—ସଂ. ବି. (ନାଭି+ସ୍ଥଳ; ୬ଷ୍ଠୀ ତତ୍)—୧ । ନାଭିଦେଶ—
Nābhi sthala 1. Nābhidesa (See)
୨ । ମଧ୍ୟସ୍ଥଳ—2. Centre.
୩ । ସନ୍ଧିସ୍ଥାନ—3. Juncture; the meeting point.

**ନାଭି ହ୍ରଦ**—ସଂ. ବି. (ନାଭି+ହ୍ରଦ; ରୂପ.)—ନାଭିକୁଣ୍ଡ (ଦେଖ)
Nabhi hrada Nābhikunda (See)

**ନାଭୀଲ**—ସଂ. ବି. (ନାଭି+ଇଲ)—ନାଭିଲ (ଦେଖ)
Nābhila Nābhila (See)

**ନାଭ୍ୟ**—ସଂ. ବିଣ. (ନାଭି+ସମ୍ବନ୍ଧାର୍ଥେ. ଯ)—ନାଭିସମ୍ବନ୍ଧୀୟ—
Nābhya Umbilical; pertaining to the navel.
ସଂ. ବି.—ମହାଦେବ (ହି. ଶ.)—Siba.

**ନାଭ୍ୟାବର୍ତ୍ତ**—ସଂ. ବି.—ନାଭିକୁଣ୍ଡ (ଦେଖ)—
Nābhyābartta Nābhikunda (See)

**ନାମ**—ସଂ. ବି. (ନମ୍ ଧାତୁ ଶବ୍ଦ କରିବା+ମନ୍; କିମ୍ବା ମ୍ନା ଧାତୁ=
Nāma ଅଭ୍ୟାସ କରିବା+କର୍ମ. ମନ; 'ନାମନ୍' ଶବ୍ଦ ୧ମା. ୧ବ; ତୁଳନା କର ଫା. ନାମ୍, ଇଂ.ନେମ୍; ଲାଟିନ୍.ନୋମେନ; ଜର୍ମାନ୍.ନାମେ, ପ୍ରାଚୀନ ଇଂରାଜୀ—ନାମା)—
୧ । ନାଆଁ, ଆଖ୍ୟା—1. Name; personal or individual name.
୨ । ଆଖ୍ୟା ବା ସଂଜ୍ଞାବାଚକ ଶବ୍ଦ—
2. Appellation.
୩ । ସଂଜ୍ଞା—3. Denomination.

୪ । ସୁଖ୍ୟାତି; ପ୍ରସିଦ୍ଧି; ଯଶଃ—4. Fame; renown; reputation; good name.
୫ । ଦୁର୍ନାମ—5. Notoriety; evil name
୬ । ଉଲ୍ଲେଖ—6. Mention.
୭ । ( ବ୍ୟାକରଣ ) ବିଭକ୍ତିହୀନ ବିଶେଷ୍ୟ ଶବ୍ଦ—
7. ( grammar ) The root word of a noun; the substantive.
୮ । ଶବ୍ଦ ବା ଧ୍ୱନି—8. Sound.
୯ । ଭଗବାନଙ୍କ ନାମ—9. Name of God.
୧୦ । ଇଷ୍ଟଦେବତାଙ୍କ ନାମ—
10. Name of one's worshipped Deity.
୧୧ । ଜଳ—11. Water ( Apte ).
୧୨ । ଚିହ୍ନ ମାତ୍ର—12. Trace; mere mark (Apte).
୧୩ । ସମାର୍ଥବାଚକ ଶବ୍ଦ—
13. Synonymous word ( Apte ).
୧୪ । ରୂପ; ପ୍ରକାର; ରୀତି—
14. Form; mode; manner ( Apte ),

ସଂ. ଅ. (ନମ୍ ଧାତୁ=ନତ ହେବା+ଅ)—(ସଂସ୍କୃତରେ ଏହା ଜିମ୍ନଲିଖିତ ଅର୍ଥ ଓ ଉପଲକ୍ଷମାନଙ୍କରେ ବ୍ୟବହୃତ ହୁଏ; କିନ୍ତୁ ଓଡ଼ିଆରେ ଏଥିର ବ୍ୟବହାର ନାହିଁ । ଏହା ମଧ୍ୟ ପ୍ରଶ୍ନାର୍ଥକ ସର୍ବନାମ କଥଂ କଦା କିମ୍ ଆଦି ପରେ ବ୍ୟବହୃତ ହୁଏ—A particle used in various meaning and on various occasions in Sanskrit but scarcely used in Oria).
୧ । ନାମରେ; ନାମକ; ଆଖ୍ୟାତ—1. Named.
( ଯଥା—ହିମାଳୟୋ ନାମ ନଗାଧିରାଜଃ—କୁମାରସମ୍ଭବ । )
୨ । ନିଶ୍ଚେ—2. Certainly; indeed; truly.
( ଯଥା—ମୟା ନାମ ଜିତଂ=କୁମାର ସମ୍ଭବ । )
୩ । ସମ୍ଭବତଃ; ବୋଧହୁଏ—
3. Probably; methinks; it seems.
(ଯଥା—ଭୂୟା ନାମ ମୁନିର୍ବିମାନ୍ୟଃ—ମୃଚ୍ଛକଟିକ । )
୪ । ଛଳନା; ଭାଣ—4. Pretence.
(ଯଥା—କାସ୍ତ୍ରି କୋନାମ ଭୂତ୍ୱା—ଦଶକୁମାରଚରିତ । )
୫ । ଆଶ୍ଚର୍ଯ୍ୟର ବିଷୟ ଏହି କି—5. It is a wonder.
୬ । କ୍ରୋଧ—6. In anger or censure.
(ଯଥା—ମମାପିନାମ ଦଶାନନସ୍ୟପର୍ବୈଃ ପରିଭବ ।)
୭ । ଶୋକ—7. In sorrow.
୮ । ସ୍ମରଣ—8 In remembrance.
(ଯଥା—ଅସ୍ତ୍ୟସ୍ମିନ୍ନକୋ ନାମ ପୁତ୍ରଂ ଦୃଷ୍ଟିଙ୍କ=ଶକୁନ୍ତଳା । )
୯ । ସ୍ୱୀକାର—9. I agree.
(ଯଥା—କରୋତୁ ନାମନୀତିଜ୍ଞୋ ବ୍ୟବସାୟ ମିତସ୍ତତ—ହିତୋପଦେଶ ।)
୧୦ । ନିନ୍ଦା—10. In blame (Apte).
(ଯଥା—ମମାପିନାମ ସର୍ବୈଃ ଇଭତୂୟତେ ଗୃହାଃ—ଶକୁନ୍ତଳା ।)

ନାମକ—ସଂ. ବିଣ ପୁଂ. (ନାମ ବାଚକ ଶବ୍ଦ ସଙ୍ଗେ ବହୁବ୍ରୀହି ସମାସରେ 'ନାମନ୍' ଶବ୍ଦଠାରେ 'କ' ଆଦେଶ ହୁଏ । ଯଥା—ଶ୍ୟାମ ନାମକ ବାଳକ, ସ୍ତ୍ରୀସ୍ତନାମ୍ନୀ ବାଳକା )—
Nāmaka
ନାମିକା } ସ୍ତ୍ରୀ.
ନାମ୍ନୀ
୧ । ଆଖ୍ୟାତ; ଅଭିହିତ; ଉଦାହୃତ; ଅମୁକ ନାମରେ ଡକା ଯାଉଥିବା—1. Called by the name of; named as; denominated.
୨ । ( ନମ ଧାତୁ=ନତ ହେବା+ଣିଚ=ନାମି ଧାତୁ +କର୍ମ. କ )—ଅବନମିତ—
2. Bent down; bowed down.
୨ । (+କର୍ତ୍ତୃ. ଅକ) ଅବନମନକାରୀ—
3, Causing to bend.
୪ । (+କର୍ମ. ଅକ) ନମ୍ୟ—4. Flexible.

ନାମ କଟା—ଦେ. ବି. ( ସଂ. ନାମ କର୍ତ୍ତିତ )—
Nāma kaṭā କୌଣସି ତାଲିକାରୁ କୌଣସି ବ୍ୟକ୍ତିର ନାମ
ନାମ କାଟା ଉଠିଯିବା—The striking off of a name
**नाम काटा** (ନାମ କଟିବା—ଅନ୍ୟରୂପ) from any list.
ଦେ. ବିଣ—ଯେଉଁ ବ୍ୟକ୍ତିର ନାମ କାଗଜ ପତ୍ରରୁ ଉଠା
নামকাটা ଯାଇଥାଏ—1 One whose name has been
**নামকটা** struck off.
୨ । ବରଖାସ୍ତ କରି ଯାଇଥିବା—2. Dismissed.
(ଯଥା—ନାମ କଟା ସିପାହୀ । )

ନାମ କଟା(ଟେ)ଇବା—ଦେ. କ୍ରି—କୌଣସି ସ୍କୁଲରୁ ବା ଦଳରୁ ଆପଣା
Nāma kaṭā(ṭe)ibā ନାମ କର୍ତ୍ତିତ ହେବାର ଉପାୟ କରିବା—
नामकटाना To get one's name struck of a
**নামকটানো** roll or list or society.

ନାମକଟା ସିପାଇ(ହି)—ଦେ.ବି—୧ । ବରଖାସ୍ତ କରାଯାଇଥିବା ସୈନିକ--
Nāma kaṭā sipāi (hi) 1. Dismissed soldier.
नाम काटा सिपाहि ୨ । ଦଳଚ୍ୟୁତ ବ୍ୟକ୍ତି—
**নাম কটা সিপাহি** 2. A person who has been driven anay from any company.
୩ । ଜାତିଚ୍ୟୁତ ବ୍ୟକ୍ତି—
3. An outcasted person.

ନାମ କଟିବା—ଦେ. ବି. ( ସଂ. ନାମ କର୍ତ୍ତନ )—
Nāma kaṭibā କୌଣସି ତାଲିକାରୁ କୌଣସି ବ୍ୟକ୍ତିର ନାମ
নাম কেটে যাওয়া ଉଠାଯିବା—Striking off the name
**नाम कट जाना** of a person from a list.
(ନାମ କଟିଯିବା, ନାମ କଟା ହେବା, ନାମ କଟାଯିବା—ଅନ୍ୟରୂପ)

ନାମ କରଣ—ସଂ. ବି—୧ । ସନ୍ତାନର ପ୍ରଥମ ନାମ ଦେବା ରୂପ ସଂସ୍କାର
Nāma karaṇa ବିଶେଷ—1. The ceremony of
(ନାମ କର୍ମ—ଅନ୍ୟରୂପ) giving a name to a child (=Christian-Baptism ).
[ଦ୍ର—ଏହା ଦ୍ୱିଜାତିମାନଙ୍କର ଗୋଟିଏ ସଂସ୍କାର । ବ୍ରାହ୍ମଣ ଶିଶୁର ଏକାଦଶ ବା ଦ୍ୱାଦଶ ଦିନ, କ୍ଷତ୍ରିୟର ତ୍ରୟୋଦଶ, ବୈଶ୍ୟର ଷୋଡ଼ଶ ଓ ଶୂଦ୍ରର ଦ୍ୱାବିଂଶ ଦିବସରେ ଗୋତ୍ରଙ୍କ ଗୃହ୍ୟସୂକ

ମତରେ ନାମକରଣ ବିଧି ଅନୁଷ୍ଠିତ ହୁଏ । ମାତା ଶିଶୁକୁ ଅଣି ପିତାଙ୍କ କୋଳରେ ଦେବେ ଓ ପିତା ଶିଶୁକୁ କୋଳରେ ଧରିବେ, ଶିଶୁକୁ ନୂଆ ଲୁଗା ପିନ୍ଧାଇବେ, ସେ ଦିନ ଗୌରୀ ଓ ଷୋଡ଼ଶ ମାତୃକାଙ୍କ ପୂଜା କରି ବୃଦ୍ଧିଶ୍ରାଦ୍ଧ କରିସାରି ଶିଶୁର ଡାହାଣ କାନରେ ତାର ନାମ ଉଚ୍ଚାରଣ କରିବେ । ନାମ ଅନ୍ତେ ବ୍ରାହ୍ମଣର ନାମ ପରେ ଶର୍ମା ଓ ଦେବ, କ୍ଷତ୍ରିୟର ବର୍ମା ବା ତ୍ରାତା, ବୈଶ୍ୟର ଭୂତି ବା ଗୁପ୍ତ ଓ ଶୂଦ୍ରର ଦାସ ଉପାଧି ଦିଆଯିବ । ପାରସ୍କର ଗୃହ୍ୟ ସୂତ୍ର ମତରେ ପୁରୁଷର ନାମ ତଦ୍ଧିତାନ୍ତ (ଯଥା ଦାଶରଥି; ଭାଗୀରଥୀ) ହେବା ଉଚିତ ନୁହେଁ । ସ୍ତ୍ରୀର ନାମ ତଦ୍ଧିତାନ୍ତ (ଯଥା କୈକେୟୀ, ଜାନକୀ) ହେଲେ ତେତେ ଦୋଷାବହ ନୁହେ—ହି. ଶ ]

୨ । କୌଣସି ବ୍ୟକ୍ତି ବା ବସ୍ତୁ ବା ଅନୁଷ୍ଠାନର ପରିଚୟାର୍ଥ ତାକୁ ଗୋଟିଏ ନୂଆ ନାମ ଦେବା—2. The act of giving a new name to a person, thing or institution.

**ନାମ କରିବା**—ଦେ କ୍ରି.—୧ । କୌଣସି ଜୀବର ବା ସ୍ଥାନର ନାମ ଉଲ୍ଲେଖ କରିବା—1. To mention the name of an animal or place.
Nāma karibā
ନାମ କরা
नाम करना

୨ । ହରି ନାମ ଭଜନ କରିବା—2. To invoke the name of the Deity.

୩ । ସୁଖ୍ୟାତି ପାଇବା; ପ୍ରସିଦ୍ଧି ଲାଭ କରିବା—3. To earn a reputation.

୩ । ଅନ୍ୟର ସୁଖ୍ୟାତି କରିବା; ପ୍ରଶଂସା କରିବା—3. To praise a person.

**ନାମ କର୍ତ୍ତନ**—ଦେ. ବି.—ନାମ କଟା (ଦେଖ)
Nāma karttana — Nāma kaṭā (See)

**ନାମକା**—ପ୍ରାଦେ. ( ସମ୍ବଲପୁର )—ବିଣ. (ଭୁଲ. ହି. ନାମ୍‌କା)—ପ୍ରସିଦ୍ଧ; ମର୍ଯ୍ୟାଦାଯୁକ୍ତ; ନାମୀ—Famous; reputed.
Nāmakā
নামী
नामवर, नामका

**ନାମ କାଟିବା**—ଦେ. କ୍ରି.—୧ । କାଗଜପତ୍ରରେ କୌଣସି ବ୍ୟକ୍ତିର ନାମ ଉପରେ ଗାର ପକାଇବା; ରଦ୍ଦ କରିବା—1. To strike off a name.
Nāma kāṭibā
নাম কাটা
नाम काटना

୨ । ବିଦ୍ୟାଳୟର ରେଜିଷ୍ଟରରୁ ଛାତ୍ରର ନାମ ଉଠାଇ ଦେବା—2. To strike off the name of a student from the school register.

**ନାମ କୀର୍ତ୍ତନ**—ସଂ. ବି.—(୬ଷ୍ଠୀ ତତ୍; ନାମ + କୀର୍ତ୍ତନ)—୧ । ଭଗବାନଙ୍କ ନାମକୁ ଘୋଷିବା—1. Repeating the name of the Deity.
Nāma kīrttana
(ନାମ ସଂକୀର୍ତ୍ତନ—ଅନ୍ୟରୂପ)

୨ । କୀର୍ତ୍ତନ;ନାମ ସଂକୀର୍ତ୍ତନ—2. Chanting of hymns with music.

**ନାମକୁ**—ଦେ. କ୍ରି ବିଣ—ନାମ ମାତ୍ର (ଦେଖ)
Nāmaku — Nāma-mātra (See)
(ନାମକୁ ମାତ୍ର—ଅନ୍ୟରୂପ)

ମାନବେ କେବଳ ନାମକୁ ମାନବ ଅଛୁ ।
ରାଧାନାଥ. ମହାଯାତ୍ରା ।

**ନାମକେ ବାସ୍ତେ**—ବୈଦେ· ବିଣ.—(ହିନ୍ଦୀରୁ ଅ୍ କୃତ)—ଯେଉଁ ବ୍ୟକ୍ତି କେବଳ ନିଜର ନାମଖ୍ୟାତି ହେବା ଆଶାରେ କୌଣସି କାର୍ଯ୍ୟ ସମ୍ପାଦନ କରୁଥାଏ—Doing rigorous work only for gaining a name and fame.
Nāmake bāste
নামকেওয়াস্তে
नामके वास्ते
(ନାମକେ ଵାସ୍ତେ—ଅନ୍ୟରୂପ)

**ନାମ ଖ୍ୟାତି**—ସଂ. ବି—(୬ଷ୍ଠୀ ତତ୍; ନାମନ୍ + ଖ୍ୟାତି = ପ୍ରଶଂସା)—ସୁଯଶଃ—Reputation.
Nāma khyāti

**ନାମ ଗନ୍ଧ**—ଦେ. ଡ. (ନାମର ଗନ୍ଧ ବା ସମ୍ପର୍କ)—ଅତି ମାତ୍ର; ସାମାନ୍ୟ ମାତ୍ର ନିଦର୍ଶନ ବା ସୂଚନା—Slight indication; slightest trace.
Nāma gandha
নামগন্ধ
नामगन्ध

**ନାମ ଗ୍ରହ**—ସଂ. ବି.—(୬ଷ୍ଠୀ ତତ୍; ନାମ + ଗ୍ରହ = ଗ୍ରହଣ)—ନାମ ଗ୍ରହଣ (ଦେଖ)—Nāma grahaṇa (See)
Nāma graha

**ନାମ ଗ୍ରହଣ**—ସଂ ବି.—(୬ଷ୍ଠୀ ତତ୍; ନାମ + ଗ୍ରହଣ)—୧ । ନାମ ଧରି ଡାକିବା—1. Invoking some one by name
Nāma grahaṇa

୨ । ନାମ ଉଚ୍ଚାରଣ—2 Uttering a name.

ଦେ. ବି.—ନାମ ଘେନିବା (ଦେଖ)—Nāma ghenibā (See)

**ନାମ ଗ୍ରାମ**—ସଂ. ବି. (ସହଚର)—ନାମ ଧାମ (ଦେଖ)
Nāma grāma — Nāma dhāma (See)

**ନାମ ଘେନିବା**—ଦେ. ବି—(ସଂ. ନାମ ଗ୍ରହଣ)—ଗୁରୁଙ୍କ ଠାରୁ ଇଷ୍ଟମନ୍ତ୍ର ଗ୍ରହଣ କରିବା—To be initiated into one's esoteric formula by the spiritual preceptor.
Nāma ghenibā
নাম লওয়া
मन्त्र लेना

ଏଣୁ କରି ସଦଗୁରୁ ଠାରୁ ଘେନ ନାମ ।
ପାଟୀ ଶ୍ରୀ ଗୁରୁଭକ୍ତି ଗୀତା ।

**ନାମ ଘୋଷିବା**—ଦେ. କ୍ରି—୧ । ଇଷ୍ଟଦେବଙ୍କ ନାମ ଆବୃତ୍ତି କରିବା—1. To repeat or mutter the name of one's Deity.
Nāma ghoshibā
নাম বটা
नामघोषना

୨ । କୌଣସି ପ୍ରିୟ ବ୍ୟକ୍ତିଙ୍କ ବିରହରେ ତାଙ୍କ ନାମ ସର୍ବଦା ଆବୃତ୍ତି କରିବା; ଝୁରିବା—2. To pine after an absent beloved person

**ନା(ନାଁ)ମଙ୍ଗ**—ଦେ. ବିଣ. ପୁଂ ଓ ସ୍ତ୍ରୀ—ଅନିଚ୍ଛୁକ; ଅସମ୍ମତ—Unwilling; reluctant
Nā(nāṅ)maṅga

**ନାମ ଚିହ୍ନ(ହ୍ନ)**—ଦେ. ବି. ( ସହଚର ଶବ୍ଦ )—ନାମ ଗନ୍ଧ ( ଦେଖ )
Nāma chihna(nha) — Nāma gandha ( See ).

**ନାମ ଜପିବା**—ଦେ. କ୍ରି .—( ସଂ.ନାମ + ଜପଧାତୁ )—୧ । ଇଷ୍ଟଦେବଙ୍କ ନାମ ମନେ ମନେ ବାରମ୍ବାର ସ୍ମରଣ କରିବା—1 To repeat the name of one's worshipped Deity silently.
Nāma japibā
নামজপা
नाम जपना

୨ । କୌଣସି ଅନୁପସ୍ଥିତ ବ୍ୟକ୍ତିଙ୍କ ବିରହରେ ତାଙ୍କ ନାମକୁ ସର୍ବଦା ମନେ ପକାଇବା; ଝୁରିବା—2. To pine after a dear person.

୩ । ମାଳା ଦ୍ୱାରା ଇଷ୍ଟଦେବଙ୍କ ନାମ ବା ମନ୍ତ୍ର ଜପ କରିବା—
3. To count the name of one's Deity with the beads.

ନାମଜାଦ୍ ( ଦା )—ଦେ. ବିଣ. ( ଫା. ନାମ୍‌ଜଦ୍ )—
Nāmajād ( dā ) ୧ । ଯଶସ୍ୱୀ—1. Reputable.
ନାମ ଜଥାଦା } ଅନ୍ୟରୂପ ୨ । ବିଖ୍ୟାତ; ଖ୍ୟାତିସମ୍ପନ୍ନ—
ନାମ ଜ୍ୟାଦା
नामजादा 2. Celebrated; famous
**नामजद** ଗୋପୀର ଦଳେଇ ଜଣେ ନାମଜାଦା କବିରାଜ ଥିଲେ—
ଫକୀରମୋହନ—ଛ ମାଣ ଅଠଗୁଣ୍ଠ ।
୩ । ( ବ୍ୟଙ୍ଗାର୍ଥ ) ଦୁର୍ନାମଯୁକ୍ତ—3 Notorious.

ନାମ ଜାରି—ବୈଦେ. ବି. ( ଫା. )—
Nāma jārı
ନାମଜାହିର } ଅନ୍ୟରୂପ ୧ । ସ୍ୱନାମ ବିଖ୍ୟାତ ହେବା ବା ସ୍ଥାୟୀ ହେବା-
ନାମଜାହିର୍
ନାମଜାହିରି
ନାମଜାହେର
ନାମଜାହେରି
1. The establishment of a person's reputation.
୨ । ( କଚେରୀଆ ) ପୂର୍ବ ଭୂସ୍ୱାମୀର ନାମ ପରିବର୍ତ୍ତରେ ନୂତନ ଭୂସ୍ୱାମୀଙ୍କ
नामजारी ନାମ କାଗଜପତ୍ରରେ ଉଲ୍ଲେଖ କରିଯିବା; ଦାଖଲ ଖାରଜ-
**नामजारी** 2. Registration or mutation of the name of the present land-holder in the place of the past one

ନା(ନାଁ)ମଞ୍ଜୁର—ବୈଦେ ବିଣ ( ଫା. ନାମଂଜୁର୍ ) ( କଚେରୀଆ )—
Nā(nān)mañjur ୧ । ଅଗ୍ରାହ୍ୟ—1. Disapproved.
नामंजूर ୨ । ଅସ୍ୱୀକୃତ—2. Refused.
**नामंजूर** ୩ । ଅଗ୍ରାହ୍ୟ—3 Rejected.
( ନାମଞ୍ଜୁରି—ଅନ୍ୟରୂପ ) ବୈଦେ. ବି. ( ଫା. ନାମଞ୍ଜୁରୀ )
नामंजूरी ୧ । ଅଗ୍ରାହ୍ୟ କରିବା—1. Rejection.
**नामंजूरी** ୨ । ଅସମ୍ମତି—2. Disapproval.

ନାମଞ୍ଜୁର କରିବା—ଦେ.କ୍ରି ( କଚେରୀଆ )—
Nāmañjura karibā ୧ । ଅଗ୍ରାହ୍ୟ କରିବା—
नामंजूर करना 1. To reject.
**नामंजूर करना** ୨ । ଅସମ୍ମତ ହେବା—2. To disapprove.

ନାମ ଡାକ(କୁ)—ଦେ. ବିଣ.—୧ । ପ୍ରସିଦ୍ଧ—
Nāma ḍāka(ku) 1. Famous; reputed.
नामडाक ୨ । ( ମନ୍ଦ ଅର୍ଥରେ ) ଅପଖ୍ୟାତ—
**नामगिरामी** 2 Notorious.

ନାମ ଡୁବା(ବେ)ଇବା—ଦେ କ୍ରି.—୧ । ଆପଣାର ବା ଆପଣା ବଂଶର
Nāma ḍubā(be)ibā ସୁଖ୍ୟାତିରେ କଳଙ୍କ ଆନୟନ କରିବା—
नामडुबान 1. To bring a stigma on one's good
**नाम डुबाना** name or one's family reputation.
(ନାମ ଡୁବିବା—ବି) ୨ । ନାଁ ପକାଇବା ( ଦେଖ )—
2. Nān pakāibā ( see )

ନାମତଃ—ସଂ. ଅ.—( ନାମନ୍+ସପ୍ତମୀ ଅର୍ଥରେ ତସ୍ )
Nāmatah ନାମରୁ; ନାମମାତ୍ର ( ଦେଖ )—
Nāmamātra ( See ).

ନାମଦାର—ବୈଦେ. ବିଣ. ( ଫା. ନାମ୍‌ଦର୍ )—
Nāmadāra ଯଶସ୍ୱୀ—Famous; renowned.
नामजादा **नामवर**

ନାମ ଦେବା—ଦେ. କ୍ରି—ନାଁ ଦେବା, ନାମକରଣ କରିବା—
Nāma debā To give a new name to an infant.
नामदेओग्रा **नामदेना**
ଏବେ ଗୋପକୁ ତୁମ୍ଭେ ଯାଅ, ମୋର ପୁତ୍ରଙ୍କୁ ନାମ ଦିଅ
ଜଗନ୍ନାଥ—ଭାଗ. ୨ ।

ନାମ ଦ୍ୱାଦଶୀ—ସଂ ବି.—ମାର୍ଗଶିର ଶୁକ୍ଳ ଦ୍ୱାଦଶୀ ଦିନ ଗୌରୀ, କାଳୀ
Nāma dwādasi ଉମା, ଦୁର୍ଗା, ଭଦ୍ରା, କାନ୍ତି, ସରସ୍ୱତୀ, ମଙ୍ଗଳା, ବୈଷ୍ଣବୀ, ଲକ୍ଷ୍ମୀ, ଶିବା ଓ ନାରାୟଣୀ ଏହି ୧୨ଟି ଦେବୀଙ୍କର ଦ୍ୱାଦଶଦଳରେ ଦେବୀପୂଜାରେଁ ବ୍ରତବିଶେଷ ( ହି. ଶ. )
Name of a religious vow in which 12 Goddesses are worshipped

ନାମ ଧରିବା—ଦେ. କ୍ରି—ନାଁ ଧରିବା ( ଦେଖ )—
Nāma dharibā Nān dharibā ( See )
नाम धरना **नाम धरना, नाम लेना**

ନାମ ଧାତୁ—ସଂ. ବି. ( ବ୍ୟାକରଣ )—ଶବ୍ଦରେ ବିଶେଷ ବିଶେଷ
Nāma dhātu ଅର୍ଥରେ ପ୍ରତ୍ୟୟ କରି ଯେଉଁ ଧାତୁ ନିଷ୍ପନ୍ନ ହୁଏ—
A verbal root formed from a noun or an adjective; a nominal verb
ଯଥା—'ପ୍ରବନ୍ଧର ବନ୍ଧବନ୍ଧ ହସିଲେ ଉତ୍କଳେ'
ରାଧାନାଥ—ଦରେଶ୍ରୀସଂହାର ।
[ ଦ୍ର—ସଂସ୍କୃତରେ ନାମ ଧାତୁର ଉଦାହରଣ—ପାର୍ଥ ଶବ୍ଦରୁ ନାମ ଧାତୁ ପାର୍ଥାୟ; ବିଶ୍ୱର ଶବ୍ଦରୁ ନାମ ଧାତୁ ବିଶ୍ୱରାୟ । ଓଡ଼ିଆରେ ନାମଧାତୁର ଉଦାହରଣ ଗୋଡ଼ ଶବ୍ଦରୁ ନାମଧାତୁର କ୍ରିୟା ଗୋଡ଼ା (ଡ଼ୋ)ଇବା, ନଖରୁ ନଖା(ଖୋ)ଇବା; ପେଟରୁ ପେଟା(ଟେ)ଇବା; ଚକଣରୁ ଚକଣା(ଣୋ)ଇବା ଇତ୍ୟାଦି । ]

ନାମ ଧାମ—ଦେ. ବି ( ସହଚର ଶବ୍ଦ; ନାମନ୍+ଧାମନ୍ )—କୌଣସି
Nāma dhāma ବ୍ୟକ୍ତିର ନାମ ଓ ବାସସ୍ଥାନ ବା ଠିକଣା—
नामधाम Name and address of a person.
**नामधाम** ନାମଧାମ ଠିକାନାଦା ନାମ ପଗୁହିଲେ—ନନ୍ଦକିଶୋର. ସୀତାବନବାସ ।

ନାମଧାରକ—ସଂ. ବିଣ. ପୁଂ (ନାମ+ଧୃ ଧାତୁ=ଧରିବା+କର୍ତ୍ତୃ. ଅକ)-
Nāmadhāraka ୧ । ଯେ କୌଣସି ନାମମାତ୍ର ଧାରଣ କରିଥାଏ, କିନ୍ତୁ ନାମାନୁରୂପ କୌଣସି କ୍ରିୟା କରେ ନାହିଁ—
1. Bearing a name only but not doing acts suitable thereto; nominal
୨ । ( ଅମୁକ ) ନାମଧାରୀ—
2. Bearing a name; named as.
[ ଦ୍ର—ଯେଉଁ ବ୍ରାହ୍ମଣ ବେଦପାଠ ଆଦି କର୍ମ ନ କରନ୍ତି ତାଙ୍କୁ ପରାଶର ସ୍ମୃତି ଅନୁସାରେ ନାମଧାରକ ବୋଲାଯାଏ—ହି. ଶ. । ]
(ନାମଧାରିକା—ସ୍ତ୍ରୀ)

ନାମଧାରୀ—ସଂ. ବିଣ. ପୁଂ—ନାମଧାରକ (ଦେଖ)
Nāmadhāri Nāmadhāraka (See)
(ନାମଧାରିଣୀ—ସ୍ତ୍ରୀ)

ନାମଧେୟ—ସ. ବି. ପୁଂ (ନାମ+ସ୍ୱାର୍ଥେ. ଧେୟ)—୧ । ନାମ—
Nāmadheya 1 Name.
କଂସ କାର୍ତ୍ତିକେୟଙ୍କର କ ନାମଧେୟ - କୃଷ୍ଣସିଂହ-ମହାଭାରତ ବନ ।
୨ । ବାଚକ ଶବ୍ଦ; ଯେଉଁ ଶବ୍ଦଦ୍ୱାରା କୌଣସି ବ୍ୟକ୍ତି ବା ବସ୍ତୁକୁ ଡକାଯାଏ—A word which indicates a particular person or thing.
୩ । ଶିଶୁର ନାମକରଣ ଉତ୍ସବ—
3. The ceremony of giving a name to a child (Apte).
ଦେ. ବିଣ—ନାମକ ( ଦେଖ )
Nāmaka ( See )
[ ଦ୍ର—ସଂସ୍କୃତ ବ୍ୟାକରଣରେ ନାମ ଶବ୍ଦରେ ସ୍ୱାର୍ଥରେ ଧେୟ ପ୍ରତ୍ୟୟ ହୋଇ ନାମଧେୟ ଶବ୍ଦ ନିଷ୍ପନ୍ନ ହୋଇଅଛି । ନାମଧେୟର ଅର୍ଥ ନାମ । ଏହା ତତ୍, କମ୍ ଓ ନାମବାଚକ ଶବ୍ଦ ପରେ ସମାସରେ ଯୁକ୍ତ ହୋଇ ତନ୍ନାମଧେୟ, କଂନାମଧେୟ, ଗୋପାଳ-ନାମଧେୟ ଆଦି ବିଶେଷଣ ଶବ୍ଦ ନିଷ୍ପନ୍ନ କରେ ଓ ତହିଁର ସ୍ତ୍ରୀଲିଙ୍ଗାନ୍ତ ଆକାର ନାମଧେୟା । କିନ୍ତୁ ଆଧୁନିକ କେତେକ ଲେଖକ (ଏମନ୍ତ କି ବଙ୍ଗଳା ଅଭିଧାନକାର ଜ୍ଞାନେନ୍ଦ୍ର) ଏହାକୁ (ନାମନ୍+ଧା ଧାତୁ+ଯ) ବିଶେଷଣ ଶବ୍ଦରୂପେ ବ୍ୟବହାର କରନ୍ତି । ଏ ବ୍ୟବହାର ଭ୍ରାନ୍ତ ଅଟେ । ]

ନାମନାମିକ—ସ ବି (ନାମ+ନାମ+ଇକ)—ବିଷ୍ଣୁ—
Nāmanāmika Bishnu (Apte).

ନାମ ନିଶାଣ—ବୈଦେ ବି ( ଫା ନାମ ନିଶାନ )—
Nāma nisāṇa ୧ । ନାମଗନ୍ଧ; ସୂଚନାମାତ୍ର—
नामनिशान 1. Slight indication; trace.
**नामनिशान** ୨ । କୌଣସି ବ୍ୟକ୍ତିର ନାମ ଧାମ ଓ ପରିଚୟସୂଚକ ଚିହ୍ନ—2. Name, address and particular indication of a person.

ନାମ ନେବା—ଦେ. କ୍ରି—୧ । ହରିନାମ ଭଜିବା—
Nāma nebā 1. To mutter the name of God.
নামলওয়া
**नामलेना** ଜଗତପାବନ ନାମ କିଆଁ ନେବେ ପ୍ରାଣୀ । —ଉପେନ୍ଦ୍ର ଭଞ୍ଜ ... ହରଣ
୨ । ସୁଖ୍ୟାତି ପାଇବା—
2. To earn a good name.
୩ । ଗୁରୁଙ୍କଠାରୁ ମନ୍ତ୍ର ଗ୍ରହଣ କରିବା—
3. To be initiated by a spiritual preceptor.

ନାମ ପକା(କେ)ଇବା—ଦେ. କ୍ରି—୧ । ନାଁ ପକାଇବା ( ଦେଖ )
Nāma pakā(ke)ibā 1 Nāñ pakāibā ( See )
নাম ডুবান ୨ । କୌଣସି ବ୍ୟକ୍ତିର ନାମ ଉଲ୍ଲେଖ କରିବା—
**नाम डुबाना** 2. To mention the name of a person.

ନାମ ପଡ଼ିବା—ଦେ. କ୍ରି—ନାଁ ପଡ଼ିବା ( ଦେଖ )
Nāma parḍibā Nāñ parḍibā ( See )
নাম হওয়া **नाम पड़ना**

ନାମ ବଡ଼ା—ବୈଦେ. ବିଣ. (ଫା)—ଯାହାର ନାମଟା ଶୁଣିବାକୁ ବଡ଼
Nāma barḍā କିନ୍ତୁ ଫଳତଃ ଯାହା ଅପଦାର୍ଥ, ନାମ ଶୁଣିବା ମାତ୍ରେ
নাম বড়া ଯାହାକୁ ବଡ଼ ଲୋକ ବୋଲି ଅନୁମାନ କରାଯାଏ
**नाम बड़ा** କିନ୍ତୁ ଦେଖିଲେ ବେଳକୁ ସେ ଅଯୋଗ୍ୟ ବୋଲି ଜଣା ପଡ଼େ—( a person ) Having a high-sounding name but really worth-less.

ନାମ ବଡ଼ା ଦର୍ଶନ ଥୋଡ଼ା—ଦେ. ବିଣ. ( ଫା )—
Nāma barḍā darśana thorḍā ନାମ ବଡ଼ା ( ଦେଖ )
নাম বড়া দর্শন থোড়া Nāma barḍā ( See )
**नाम बड़ा दर्शन थोड़ा**

ନାମ ବର୍ଜିତ—ସ. ବିଣ. ( ବହୁବ୍ରୀହି; ନାମ+ବର୍ଜିତ )—
Nāma barjita ୧ । ଅନାମକ; ଯାହାର ନାମ ନାହିଁ—
1. Nameless.
୨ । ଅପ୍ରସିଦ୍ଧ—2. Unrenowned.
୩ । ନିର୍ବୋଧ—3 Stupid; foolish (Apte).

ନାମ ବାଚକ—ସ. ବିଣ. ( ବ୍ୟାକରଣ )—
Nāma bāchaka ଯେଉଁ ବିଶେଷ୍ୟ ପଦ ନାମକୁ ବୁଝାଏ—
( grammar ) ( a noun ) Indicating the name of a particular person or place

ନାମ ବାଚକ ବିଶେଷ୍ୟ—ସ. ବି ( ବ୍ୟାକରଣ )—କୌଣସି ବ୍ୟକ୍ତିର,
Nāma bāchaka biśeshya ପ୍ରାଣୀର ବା ସ୍ଥାନର ନାମ—
( grammar ) Proper noun

ନାମ ବାଜିବା - ଦେ ବି — ନାମ ବିଖ୍ୟାତ ହେବା—
Nāma bājibā The spread of fame.
নাম ডাক **नाम बजना**

ନାମ ବୁଡ଼ା(ଡ଼େ)ଇବା—ଦେ. କ୍ରି—ନାମ ଡୁବାଇବା ( ଦେଖ )
Nāma burḍā(rḍe)ibā Nāma ḍubāibā ( See )
নাম ডুবন **नाम डुबना** (ନାମ ବୁଡ଼ିବା—ବି)

ନାମ ଭଜିବା—ଦେ. କ୍ରି—ନାମ ଘୋଷିବା ( ଦେଖ )
Nāma bhajibā Nāma ghoshibā ( See )
নাম ভজা **नाम भजना**

ନାମ ମାତ୍ର—ସ. ଅ—୧ । କୌଣସି ବ୍ୟକ୍ତିର ବା ବସ୍ତୁର ନାମର
Nāma mātra ଉଲ୍ଲେଖ ମାତ୍ର—1 The mere mention of a name
୨ । ଫଳତଃ ନୁହେଁ; କେବଳ ନାମରେ; କାଆଁକୁ—
2. In name only, nominally.

ନାମ ମାରିନେବା—ଦେ. କି (ବ୍ୟଙ୍ଗ୍ୟ)—ଖ୍ୟାତିଜନକ କାର୍ଯ୍ୟ ନ କରି
Nāma mārinebā ଲୋକଙ୍କ ଆଖିରେ ଧୂଳି ଦେଇ ବା ଅନ୍ୟର
নাম মেরে লওয়া ଅର୍ଥ ବ୍ୟୟ କରି ସ୍ୱୟଂ ଖ୍ୟାତି ଲାଭ କରିବା-
**नाम करलेना** (ironical) To get a good name without doing anything to deserve it.

ନାମ ମୁଦ୍ରା—ସ. ବି. ( ମ. ପ. ଲୋ; ନାମ+ମୁଦ୍ରା )—
Nāma mudrā ଛପା ମୁଦି, ଯେଉଁ ମୁଦିରେ କୌଣସି ବ୍ୟକ୍ତିର ନାମ ଅଙ୍କିତ ହୋଇଥାଏ—A signet ring; a seal-ring (Apte).

**ନାମ ଯଜ୍ଞ**—ସ. ର—ବହୁକାଳ ପର୍ଯ୍ୟନ୍ତ ନାମ କୀର୍ତ୍ତନ ସ୍ୱରୂପ ଯଜ୍ଞ—
Nāma jajña A religious sacrifice consisting of chanting the name of God for a long period of time.

**ନାମ ଯଶଃ**—ସ. ବ. ( ନାମର ଯଶଃ ବା ପ୍ରଶଂସା, ୬ଷ୍ଠୀ ତତ୍ )—
Nāma jaśah ସୁଖ୍ୟାତି—Reputation.

**ନାମ ରଖିବା**—ଦେ. କ୍ରି—୧ । ସୁନାମ ବା ଦୁର୍ନାମକୁ ବଜାୟ ରଖିବା—
Nāma rakhibā 1. To maintain one's reputation in a good or bad sense.
नामबाखा ୨ । ନାମକରଣ କରିବା—2. To give a name; to name.
**नाम रखना**
( ନାମ ରଖିଯିବା—ଅନ୍ୟରୂପ ) ୩ । ସ୍ଥାୟୀ କୀର୍ତ୍ତି କରିବା ଦ୍ୱାରା ଭବିଷ୍ୟତରେ ଆପଣାର ଖ୍ୟାତି ବଜାୟ ରହିବାର ଉପାୟ କରିବା—3. To leave a name by doing
(ନାମ ରହିବା—ବ) some permanent meritorious act

**ନାମ ରଟିବା**—ଦେ. କ୍ରି—ନାମ ଘୋଷିବା ( ଦେଖ )
Nāma raṭibā Nāma ghoshibā (See)
नामवटा **नामरटना**

**ନାମରଦ**—ଦେ. ବଣ. ପୁଂ (ଅ. ନାମର୍ଦ୍ଦ, କାମର୍ଦ୍ଦ)—୧ । ଅସାର; ଭୀରୁ—
Nāmarada 1. Coward.
नामर्दा ନଗଡ଼ୁଁ ମାଡ ଯାଇ ଅଛ ରହି, ନାମରଦକୁ କେ ଭୁଲେ ବସାଇ ।
**नामर्द** ବ୍ରଜନାଥ. ସମରତରଙ୍ଗ ।
(ନାଁ ମରଦ, ନାମର୍ଦ୍ଦ, କାମର୍ଦ୍ଦା—ଅନ୍ୟରୂପ) ୨ । ଅମନୁଷ୍ୟ; ଦୁର୍ବଳ—
2. Weak (man); unmanly
୩ । ଅଣପୁରୁଷା; ନପୁଂସକ; ପୁରୁଷତ୍ୱ ହୀନ—
3. Impotent; emasculate.
୪ । ମାଇଚିଆ—4 Effiminate (person).

**ନା(ନାଁ)ମରଦୀ**—ବୈଦେ. ବ (ପା. ନାମର୍ଦ୍ଦୀ)—୧ । ନପୁଂସକତ୍ୱ—
Nā(nāñ)maradi 1. Impotence.
नामर्दी ୨ । ଅମନୁଷ୍ୟତା—2 Unmanliness.
**नामर्दी**
(ନାମର୍ଦ୍ଦୀ, ନାମରଦାନା, ନାମର୍ଦ୍ଦାନା—ଅନ୍ୟରୂପ)

**ନାମର୍ତ୍ତା**—ପ୍ରାଦେ. (ଗଞ୍ଜାମ) ବ—ବିଶ୍ୱାସ—
Nāmarttā Faith; confidence; trust.

**ନାମ ଲିଙ୍ଗ**—ସ. ବ ( ୬ଷ୍ଠୀ ତତ୍; ନାମ+ଲିଙ୍ଗ )—(ବ୍ୟାକରଣ)
Nāma liṅga ବିଶେଷ୍ୟ ପଦମାନଙ୍କର ଲିଙ୍ଗ—(grammar) Gender of nouns.

**ନାମ ଲୋପ ହେବା**—ଦେ. ବ—୧ । ମୃତ ହେବା—
Nāma lopa hebā 1 Dying.
নাম লোপ হওয়া ମୋ ବାହୁ ଯୁଦ୍ଧରେ ତା ନାମ ହେବ ଲୋପ
**नाम छिपना** କୃଷ୍ଣସିଂ. ମହାଭାରତ ।
୨ । ଅପଖ୍ୟାତି—
2. Loss of one's good reputation.

**ନାମଶକି**—ବୈଦେ. ବ ( ପା. ନାମୁଶୀ=ବଦ୍‌ନାମୀ ଅ—ନାମୁଶ୍=
Nāmaśaki ଲଜ୍ଜିତ)—୧ । ଅପଖ୍ୟାତି—1. Scandal
नामुसी ୨ । ବଦନାମୀ, ନିନ୍ଦା—2. Blame, ill name.
**नामुसा** ୩ । ଲଜ୍ଜା—3. Shame.
୪ । ଅପମାନ—4. Disgrace.
୫ । ବେଇଜ୍ଜତି—5 Dishonour
ବୈଦେ. ବଣ ( ପା. ନାମୁଶୀକା )—୧ । ନିନ୍ଦାକର—
1. Blameworthy
( ନାମଶିକ—ଅନ୍ୟରୂପ )
୨ । ବେଇଜ୍ଜତିଆ—2 Dishonourable
୩ । ଅଖ୍ୟାତିଜନକ—3. Scandalous.
୪ । ଲଜ୍ଜାଜନକ—4. Shameful.
୫ । ଲଜ୍ଜିତ—5 Ashamed

**ନାମଶିକ**—ପ୍ରାଦେ (ଗଞ୍ଜାମ) ବ ଓ ବଣ—ନାମଶକି ( ଦେଖ )
Nāmaśika Nāmaśaki (See)

**ନାମ ଶେଷ**—ସ. ବ (ବହୁବ୍ରୀହି, ନାମନ୍+ଶେଷ)—ମୃତ୍ୟୁ—
Nāma śesha Death
ସ. ବଣ—୧ । ମୃତ—1 Dead.
୧ । ନଷ୍ଟ; ଧ୍ୱସ୍ତ—2. Ruined.
୩ । ଯାହାର ଅସ୍ତିତ୍ୱ ଲୋପ ହୋଇଅଛି ଓ କେବଳ ନାମ ରହି ଯାଇଅଛି—3. Having only the name left, remaining in name only.

**ନାମ ସଂକୀର୍ତ୍ତନ**—ସ.ବ ( ୬ଷ୍ଠୀ ତତ୍; ନାମ+ସଂକୀର୍ତ୍ତନ )—
Nāma saṁkirttana ୧ । ଦେବତାଙ୍କ ନାମକୁ ପାଟିକରି ବାରମ୍ବାର ଆବୃତ୍ତି କରିବା—1. Loudly repeating the name of the Deity.
୨ । ଖୋଳ କରତାଳ ( ଝାଞ୍ଜ ମୃଦଙ୍ଗ ) ସାହାଯ୍ୟରେ ଦେବତାଙ୍କ ନାମର ସ୍ତବ ଗାନ କରିବା—2. Chanting of hymns with music (drum and cymbals).
[ଦ୍ର—ଶ୍ରୀ ଚୈତନ୍ୟଦେବଙ୍କ ଅମଳରୁ ଖୋଳ କରତାଳ ସାହାଯ୍ୟରେ ଦୁଇ ବା ତତୋଧିକ ବ୍ୟକ୍ତି ଭଗବାନଙ୍କ ସ୍ତବ ଗାନ କରିବା ପ୍ରଥା ଓଡ଼ିଶା ଓ ବଙ୍ଗରେ ବିଶେଷଭାବରେ ପ୍ରଚଳିତ ହୋଇଅଛି । ]

**ନାମ ସଂଗ୍ରହ**—ସ. ବ ( ୬ଷ୍ଠୀ ତତ୍; ନାମ+ସଂଗ୍ରହ )—୧ । ବିଶେଷ୍ୟ
Nāma saṁgraha ପଦମାନଙ୍କର ସଂଗ୍ରହ—1. A glossary
(ନାମମାଳା—ଅନ୍ୟରୂପ) of nouns (Apte).
୧ । ବ୍ୟକ୍ତି, ବସ୍ତୁ ବା ସ୍ଥାନମାନଙ୍କର ନାମର ତାଲିକା—
2. A list of names.

**ନାମ ସର(ରେ)ଇବା**—ଦେ. କ୍ରି—ନାଁ ପକାଇବା ( ଦେଖ )
Nāma sarā(re)ibā Nāñ pakāibā ( See )
নামডুবান, **नाम खोना**
(ନାମ ସାରିବା—ଅନ୍ୟରୂପ) (ନାମ ସରିବା—ବ)

**ନାମସାର**—ଦେ. ବ. ( ସ. ନାମନ୍+ସାର )—ନାମମାତ୍ର—
Nāmasāra Nominal; titular.
নামসার **नाममात्र**

**ନାମସୁଧା**—ସ. ବି. ( ରୂପକ; ନାମ+ସୁଧା )—ଅମୃତ ପରି ମଧୁରନାମ; Nāmasudhā ସୁଧାମୟନାମ—Sweet name; nectarlike name.

**ନାମହୀନ**—ସ. ବିଣ. ( ୩ୟା ତତ୍; ନାମ+ହୀନ )—୧ । ଅଖ୍ୟାତ— Nāmahīna 1 Nameless, not celebrated. ( ନାମବର୍ଜିତ—ଅନ୍ୟରୂପ ) ୨ । ଅନାମକ; ଯାହାର ନାମ ନାହିଁ— 2. Having no name

**ନାମା**—ସ. ବିଣ. (ନାମନ୍ ଶବ୍ଦ; ୧ମା. ୧ବ; ନାମନ୍ ଶବ୍ଦ ବ୍ୟକ୍ତିବାଚକ Nāmā ଅନ୍ୟ ଶବ୍ଦ ସଙ୍ଗେ ଯୋଗ ହୋଇ ବହୁବ୍ରୀହି ସମାସ ହେଲେ (ନାମ୍ନୀ—ସ୍ତ୍ରୀ) ନାମଠାରେ ନାମା ହୁଏ, ଯଥା—ଗୋବିନ୍ଦନାମା ଜନୈକ ବାଳକ )—ନାମକ—By name; named.

ନାମା ବୈଦେ. ପ୍ରତ୍ୟୟ. (ଫା. ନାମାହ୍=ପତ୍ର, ଅନ୍ୟ ଶବ୍ଦ ସଙ୍ଗେ ଯୋଗ **नामा** ହୁଏ; ଯଥା—ହୁକୁମନାମା, ଓକାଲତ୍ନାମା; ଯାଚିନ୍‌ନାମା, ବଏନାମା, ମୋକ୍ତାରନାମା ଓ ରାଜିନାମା )—ନିଦର୍ଶନପତ୍ର; ଦଲିଲ—A letter or document indicating some transaction.

**ନାମାଙ୍କିତ**—ସ. ବି. ( ୩ୟା ତତ୍; ନାମ+ଅଙ୍କିତ )— Nāmāṅkita ୧ । ଯହିଁରେ କୌଣସି ବ୍ୟକ୍ତିଙ୍କ ନାମ ଅଙ୍କିତ ବା ଲିଖିତ ହୋଇଅଛି, ନାମଯୁକ୍ତ—1 Containing the name of some person as authority

୨ । ସ୍ୱାକ୍ଷରିତ—2. Signed

୩ । ନାମ ଚିହ୍ନଯୁକ୍ତ—3. Marked with a name.

୪ । ନାମର ମୋହରଯୁକ୍ତ— 4 Sealed with the name of.

( ଯଥା—ନାମାଙ୍କିତ ମୁଦ୍ରା । )

**ନାମାତ୍ର**—ଦେ. ଅ. ( ସ. ନାମ+ମାତ୍ର )—ନାମମାତ୍ର ( ଦେଖ ) Nāmātra Nāmamātra ( See ) (ନାଁମାତ୍ର, ନାଆଁମାତ୍ର, ନାଁଆଁମାତ୍ର—ଅନ୍ୟରୂପ)

**ନାମାନୁଶାସନ**—ସ. ବି. ( ୬ଷ୍ଠୀ ତତ୍, ନାମ+ଅନୁଶାସନ )— Nāmānuśāsana ୧ । ଶବ୍ଦାର୍ଥବାଚକ ଅଭିଧାନ— (ନାମାଭିଧାନ—ଅନ୍ୟରୂପ) 1. A dictionary containing the import of words.

୨ । ( ବ୍ୟାକରଣ ) ବିଶେଷ୍ୟ ଶବ୍ଦମାନଙ୍କର ଲିଙ୍ଗବିଷୟକ ନିୟମ—2 ( grammar ) Rules on the gender of nouns.

**ନାମାନ୍ତର**—ସ. ବି ( କର୍ମଧା; ଅନ୍ୟ+ନାମ )—ଅନ୍ୟ ନାମ— Nāmāntara Another name, a different name.

**ନାମାପରାଧ**—ସ. ବି (ବୈଷ୍ଣବଧର୍ମ ପାରିଭାଷିକ ଶବ୍ଦ; ମ. ପ. ଲେ, ନାମ Namāparādha ସମ୍ବନ୍ଧୀୟ ଅପରାଧ)—ସାଧୁନିନ୍ଦାରୂପ ପାପ— The sin resulting from defaming sages or great men.

**ନାମାବଲମ୍ବନ**—ସ. ବି. (୬ଷ୍ଠୀ ତତ୍. ନାମ+ଅବଲମ୍ବନ)—ଦେବତାଙ୍କ Nāmābalambana ନାମ ଉଚ୍ଚାରଣ କରି ବିପଦରୁ ଉଦ୍ଧାର ହେବା (ନାମାଶ୍ରୟ—ଅନ୍ୟରୂପ) ରୂପ ଉପାୟ; କୌଣସି ନାମକୁ ଆଶ୍ରୟ କରିବା— Act of placing one's self under the protection of a Deity by invoking His name.

**ନାମାବଳି(ଳୀ)**—ସ. ବି. ( ୬ଷ୍ଠୀ ତତ୍; ନାମ+ଆବଳି )— Nāmābaḷi(ḷī) ୧ । ନାମସମୂହ—1 A number of names; various names or denominations.

୨ । ନାମର ତାଲିକା—2. A list of names.

୩ । କୌଣସି ଦେବତାଙ୍କ ନାମମାନ ଯେଉଁ ବସ୍ତ୍ରରେ ଲେଖା ବା ବୁଣା ଯାଇଥାଏ (ଯାହାକୁ ଦେବପୂଜା କଲାବେଳେ ଭକ୍ତ ଦେହରେ ପକାନ୍ତି )—3. A garment stamped or woven with the name of a Deity written repeatedly on it.

**ନାମାମୃତ**—ସ. ବି —(ରୂପକ, ନାମ+ଅମୃତ )— Namāmruta ୧ । ଅମୃତତୁଲ୍ୟ ଦେବନାମ— 1 Nectar-like name of God.

୨ । ଆପଣାର ଅତି ପ୍ରିୟ ବ୍ୟକ୍ତିର ନାମ—2. The name of one's own beloved person.

**ନାମାଶ୍ରୟ**—ସ. ବି.—ନାମାବଲମ୍ବନ ( ଦେଖ ) Nāmāśraya Nāmābalambana ( See )

**ନାମି**—ସ. ବି—ବିଷ୍ଣୁ— Nāmi Bishṇu ( Apte )

**ନାମିକ**—ସ. ବିଣ. (ନାମନ୍+ସମ୍ବନ୍ଧାର୍ଥେ. ଇକ)—୧ । ନାମସମ୍ବନ୍ଧୀୟ— Nāmika 1. Relating to a name.

୨ । ବିଶେଷ୍ୟସମ୍ବନ୍ଧୀୟ—2 Relating to a noun.

ନାମିକ ଦେ. ବିଣ ( କଚଡ଼ିଆ )—୧ । ନାମଧାରୀ— **नामिक** 1. Named; holding a name. ( ଯଥା—କବି ବାଯ୍ୟାପ୍ତି ନାମିକ ଲକ୍ଷପତି । )

୨ । ନାମମାତ୍ର—2. Nominal. ( ଯଥା—ନାମିକ ଦେବୋତ୍ତର । )

**ନାମିତ**—ସ. ବିଣ. ( ନମ ଧାତୁ ଣିଚ=ନାମି ଧାତୁ+କର୍ମ. ତ )— Nāmita ୧ । ନତ—1 Bent; bowed down.

୨ । ସ୍ଥାପିତ—2 Established.

୩ । ଯାହାକୁ ନତ କରି ଯାଇଅଛି— 3 Caused to be bent.

ଦେ. ବିଣ. ( କଚଡ଼ିଆଁ)—୧ । ନାମଯୁକ୍ତ; ନାମକ— 1. Named; by name.

୨ । ନାମମାତ୍ର—2. Nominal; in name only.

**ନାମୀ**—ସ. ବିଣ. ପୁଂ. (ନାମନ୍+ଅଛି ଅର୍ଥରେ ଇନ୍ ୧ମା. ୧ବ. )— Nāmī ନାମଧାରୀ—Named. ( ନାମିନୀ—ସ୍ତ୍ରୀ ) ଏକ ନାମୀ ଏକ ସ୍ୱାମୀ ଏକାନ୍ତରେ ଥିଲି— ପ୍ରାଚୀ. ବୃନ୍ଦାବନଭୂଷଣଗୀତା ।

ନାମୀ **नामजद** ଦେ. ବିଣ—ପ୍ରସିଦ୍ଧ—Celebrated.

**ନାମୀୟ**—ଦେ ବିଣ. ( କଚଡ଼ିଆ )—ନାମିତ ( ଦେଖ ) Nāmīya Nāmita ( See )

**ନା ମୁନାସିବ୍**—ବିଦେ. ଵଣ ( ଫା, କଚରଥ )—
Nā munāsib ୧ । ଅନୁଚିତ—1. Improper
नामुनासिब् ୨ । ଅନ୍ୟାୟ—2 Wrong
**नामुनासिब** (ନାଁ ମୁନାସିବ୍ - ଅନ୍ୟରୂପ)

**ନା ମୁମ୍କିନ୍**—ବିଦେ. ଵଣ. ( ଫ . କଚଥଥ )—
Nā mum-kin ଅସମ୍ଭବ—Impossible.
नामुमकिन **नामुमकिन** (ନାଁ ମୁମ୍କିନ୍—ଅନ୍ୟରୂପ)

**ନା(ନାଁ)ମୁଶକି**—ବିଦେ. ବି. ଓ ଵଣ—ନାମଶକ ( ଦେଖ )
Nā(nāṅ)muśaki Nāmaśaki ( See )
( ନାମ୍ଶକି, ନାମୁଶକ; ନାମ୍ସକି —ଅନ୍ୟରୂପ)

**ନାମେ** - ଦେ. ଅ —୧ । ବିରୋଧରେ--
Nāme 1, Against.
नामे ଫଉଅଦ ବାହିଁ ତୋ ନାମେ କହବ; ନବା କଲେ ପଛେ କଉରେ ।
**नाममे, नामसे** କବସୂର୍ଯ୍ୟ, କଗୋପ ଚନ୍ଦ୍ରକ ଚମ୍ପୂ, ପ ଗାଁତା
୨ । ନାମୋଲ୍ଲେଖ ପୂର୍ବକ—2 By mentioning some one's name

**ନାମେଣ**—ଦେ(ପଦ୍ୟ)ଅ —( ସ. ନାମ୍ନା)—ନାମଧାରୀ; ନାମରେ—
Namena Named; called by the name of
ବଧୂଷ୍ଣମା ନାମେଣ ତାଙ୍କର ଦୁହିତାଙ୍କି—କୃଷ୍ଣସିଂହ ମହାଭାରତ ଅବ

**ନାମ୍ନା**—ସ. ଵଣ. ପୁଂ.—ନାମଧାରୀ ( ହି. ଶ. )—Named.
Nāmnā ( ନାମ୍ନୀ—ସ୍ତ୍ରୀ )

**ନାମ୍ବୁଦ୍ରୀ**—ଦେ ବି.—ନମ୍ବୁଦ୍ରି ( ଦେଖ )—
Nāmbudri Nambudri ( see )

**ନାମ୍ୟ**—ସ. ଵଣ. ( ନମଧାତୁ ଣିଚ୍=ନାମି ଧାତୁ+କର୍ମ. ଯ ) -ନୁଆଁଁ
Nāmya ହେବାର ଉପଯୁକ୍ତ, ନମନୀୟ—Flexible; pliant.

**ନାୟ**—ସ. ବି ( ନୀ ଧାତୁ+ଭାବ ଅ ) ୧ । ନୟ; ନୀତି—
Nāya 1. Policy.
୨ । ପ୍ରାପଣ; ନେବା—2. Obtaining.
୩ । ଉପାୟ; ଯୁକ୍ତି ( ହି. ଶ. )—
3. Expedient; means; policy.
୪ । ( +କର୍ତ୍ତୃ. ଅ. ) ନାୟକ; ନେତା ( ହି. ଶ. )—
4. Leader; guide.

**ନାୟକ୍**—ଦେ. ଵଣ. ( ଫା. ଲାଏକ୍ )—
Nāyak ୧ । ଲାୟକ୍; ଉପଯୁକ୍ତ—1. Fit.
लाएक ୨ । ପ୍ରଧାନ—2. Chief.
**लायक** ୩ । ଶ୍ରେଷ୍ଠ; ଉତ୍କୃଷ୍ଟ—3 Excellent
( ନାଲାୟକ୍—ବିପରୀତ ) ୪ । ବହୁସୁଗୁଣାଲଙ୍କୃତ—
4 Adorned with many good qualities.
୫ । ଉର୍ବର ( ଭୂମି )—5. Productive (land).

**ନାୟକ**—ସ. ବି. ପୁଂ. ( ନୀ ଧାତୁ=ନେବା+କର୍ତ୍ତୃ ଅକ )
Nāyaka ୧ । କାବ୍ୟ ନାଟକାଦିରେ ବର୍ଣ୍ଣିତ ପ୍ରଧାନ ପୁରୁଷ—
( ନାୟିକା—ସ୍ତ୍ରୀ ) 1. A hero in a drama, novel or story; the principal character in a fiction.

[ଦ୍ର—ସାହିତ୍ୟ ଦର୍ପଣ ଅନୁସାରେ ଦାନଶୀଳ, କୃତୀ, ସୁଶ୍ରୀ, ରୂପବାନ୍, ଯୁବକ, କାର୍ଯ୍ୟକୁଶଳ, ଲୋକରଞ୍ଜକ, ତେଜସ୍ୱୀ, ପଣ୍ଡିତ ଓ ସୁଶୀଲ ପୁରୁଷଙ୍କୁ ନାୟକ ବୋଲାଯାଏ । ନାୟକ ୪ ପ୍ରକାର ଯଥା, ଧୀରୋଦାତ୍ତ, ଧୀରୋଦ୍ଧତ, ଧୀରଲଳିତ ଓ ଧୀରପ୍ରଶାନ୍ତ । ଆତ୍ମଶ୍ଲାଘାରହିତ, କ୍ଷମାଶୀଳ, ଗମ୍ଭୀର, ମହାବଳଶାଳୀ, ସ୍ଥିର ଓ ବିନୟସମ୍ପନ୍ନ ନାୟକ ଧୀରୋଦାତ୍ତ, ( ଯଥା; ରାମ, ଯୁଧିଷ୍ଠିର ); ମାୟାବୀ, ପ୍ରଚଣ୍ଡ, ଅହଂକାରୀ, ଆତ୍ମଶ୍ଲାଘୀ ନାୟକ ଧୀରୋଦ୍ଧତ (ଯଥା; ଭୀମସେନ ଜାମଦଗ୍ନ୍ୟ, କର୍ଣ୍ଣ ), ନିଶ୍ଚିନ୍ତ, ମୃଦୁ ଓ ନୃତ୍ୟଗୀତାଦିପ୍ରିୟ ନାୟକ ଧୀରଲଳିତ ( ଯଥା; ଅର୍ଜ୍ଜୁନ ); ତ୍ୟାଗୀ ଓ କୃତୀ ନାୟକ ଧୀର ପ୍ରଶାନ୍ତ । ଏହି ଚାରିପ୍ରକାର ନାୟକ ଦକ୍ଷିଣ, ଧୃଷ୍ଟ, ଅନୁକୂଳ ଓ ଶଠ ଭେଦରେ ପୁଣି ଚାରି ପ୍ରକାର ହୁଅନ୍ତି । ଶୃଙ୍ଗାର ରସରେ ପ୍ରଥମେ ନାୟକଙ୍କୁ ତିନି ଶ୍ରେଣୀରେ ବିଭକ୍ତ କରାଯାଇଅଛି, ଯଥା, ପତି ଉପପତି ଓ ବୈଶିକ ( ବେଶ୍ୟାନୁରକ୍ତ ) । ପତି ଚାରି ପ୍ରକାର ଯଥା; ଅନୁକୂଳ ( ବିବାହିତା ସ୍ତ୍ରୀ ପ୍ରତି ଏକାନ୍ତ ଅନୁରକ୍ତ ), ଦକ୍ଷିଣ (ଅନେକ ନାରୀଙ୍କ ପ୍ରତି ସମାନ ରୂପେ ଅନୁରାଗୀ), ଧୃଷ୍ଟ ( ଆପଣା ସ୍ତ୍ରୀ ପ୍ରତି ଅପରାଧୀ ହୋଇ ତଦ୍ଦ୍ୱାରା ଅପମାନିତ ହୋଇ ସୁଦ୍ଧା ନିର୍ଲଜ୍ଜଚିତ୍ତ ପୂର୍ବକ ସ୍ତ୍ରୀ ଠାରେ ବିନୟକାରୀ) ଓ ଶଠ ( ଛଳାବଲମ୍ବନ କରି ନିଜର ଅପରାଧ ଗୋପନ କରିବାରେ ଚତୁର ) । ଉପପତି ଦୁଇ ପ୍ରକାର;—ବଚନ ଚତୁର ଓ କ୍ରିୟା ଚତୁର —ହି. ଶ ]
୨ । ପ୍ରଣୟୀ ପୁରୁଷ; ପ୍ରେମାସକ୍ତ ବ୍ୟକ୍ତି—2. A lover.
୩ । ଦଳପତି—3 The head of a band.
୪ । ନେତା—4. Leader.
୫ । ପରିଚାଳକ; ପଥ ପ୍ରଦର୍ଶକ—
5. A conductor; a guide.
୬ । ଅଧ୍ୟକ୍ଷ; ଶ୍ରେଷ୍ଠ ବ୍ୟକ୍ତି—6. A chief.
୭ । ହାରର ମଧ୍ୟମଣି—
7 The central gem of a necklace.
୮ । ପ୍ରଧାନ ବ୍ୟକ୍ତି; ପଧାନ—8 Headman.
୯ । ସେନାପତି—9. Commander of an army
୧୦ । ଗୁରୁ; ଉପଦେଷ୍ଟା—
10 A preceptor; a teacher.
୧୧ । ଗୃହସ୍ୱାମୀ, ଗୃହକର୍ତ୍ତା—11. House-holder; the head of a family.
୧୨ । ସ୍ୱାମୀ—12. Husband.
୧୩ । ଉପପତି—13. A gallant; a paramour.
୧୪ । ଅଗ୍ରେସାରକ—14. A pioneer.
୧୫ । ମଙ୍ଗଳ ଗୀତ ଗାୟକ—
15. A singer of benedictory songs.
୧୬ । ଓସ୍ତାଦ୍; ଯେ ସଙ୍ଗୀତ ଓ ବାଦ୍ୟାଦି ବିଦ୍ୟା ଉତ୍ତମରୂପେ ଶିକ୍ଷା ଦେଇ ପାରନ୍ତି; କଳାବନ୍ତ ବ୍ୟକ୍ତି; ସଙ୍ଗୀତ କଳାରେ ନିପୁଣ ବ୍ୟକ୍ତି—16 An expert music master; an expert musician.
[ଦ୍ର—ଯେ ସଙ୍ଗୀତ ଶାସ୍ତ୍ରର ମର୍ମ ଉତ୍ତମରୂପେ ଜାଣନ୍ତି, ଯେ ମାର୍ଗ ଏବଂ ଦେଶୀ ଏ ଦୁଇ ମତର ସଙ୍ଗୀତ ବୋଲି ପାରନ୍ତି, ଯେ

ଗାନ, ବାଦ୍ୟ ଓ ନୃତ୍ୟ ଉତ୍ତମରୂପେ ଶିଖାଇ ପାରନ୍ତି, ଯେ ରସ ଓ ଅଳଙ୍କାର ଜାଣନ୍ତି, ଯେ ସକଳ ଗୁଣ ଓ ଦୋଷର ପରୀକ୍ଷକ, ଯେ ଅନ୍ୟର ଅଭିପ୍ରାୟ ବୁଝି ପାରନ୍ତି, ଯେ କ୍ଷମାଶୀଳ, ଯଶୋଭିଳାଷୀ, ଦାତା, ପବିତ୍ରାତ୍ମା ଓ ସର୍ବଗୁଣାଳଙ୍କୃତ ବ୍ୟକ୍ତି ଏମାନଙ୍କୁ 'ନାୟକ' ଆଖ୍ୟା ଦିଆ ଯାଏ ।]

୧୭ । ବର୍ଣ୍ଣବୃତ୍ତ ବିଶେଷ (ହି ଶବ୍ଦସାଗର)— 17. A kind of metre.

୧୮ । ଦୀପକ ରାଗର ପୁତ୍ର ରାଗବିଶେଷ (ହି. ଶ.)— 18. Name of a musical tune

୧୯ । ଶ୍ରେଷ୍ଠ ବା ପ୍ରସିଦ୍ଧ ବ୍ୟକ୍ତି—19 A distinguished or pre-eminent personage (Apte).

୨୦ । ଉଦାହରଣ, ଆଦର୍ଶ—20 A paradigm; a leading example (Apte).

୨୧ । ଶାକ୍ୟମୁନି—21. The Buddha (Apte).

ସଂ. ବିଣ. ପୁଂ.—୧ । ନେତା, ଦଳଚାଳନକାରୀ— 1. Leading; conducting, guiding a party

୨ । ଶ୍ରେଷ୍ଠ; ଉତ୍କୃଷ୍ଟ—2 Best; excellent

ଇନ୍ଦ୍ର ବଜ୍ର ପିଙ୍ଗିବା ପର୍ବତେ ବାଜିଲେ ହିଁ,
ଫିଙ୍ଗିଲେ ଭୀମ ଉରେ ଶକତ ନାୟକ । କୃଷ୍ଣସିଂହ ମହାଭାରତ ଦ୍ରୋଣ ।

ଦେ. ବି.—ରାଜା—1. King

କହୁଥିବା ଏବେ ଶୁଣ ହସ୍ତିନା ନାୟକ । କୃଷ୍ଣସିଂହ. ମହାଭାରତ. ଆଦି ।

୨ । ନାହାକ; ଜ୍ୟୋତିଷ ଶାସ୍ତ୍ର ଚର୍ଚ୍ଚାକାରୀ ଜାତି; ଗଣକ ଓ ପ୍ରାଥମିକ ପାଠଶାଳାର ଶିକ୍ଷକ ଓ ଗଣିତ ଶାସ୍ତ୍ରଜ୍ଞ ଜାତିବିଶେଷ- 2. The astrologer caste of Orissa

୩ । ଶୂଦ୍ରମାନଙ୍କର ବଂଶଗତ ଉପାଧିବିଶେଷ— 3. A family-title of some Śūdras.

୪ । କ୍ଷତ୍ରିୟଙ୍କ ବଂଶୋପାଧିବିଶେଷ— 4. A family title of some Kshyatriyas.

୫ । ଆଧୁନିକ ଭାରତୀୟ କତିପୟ ସଂଖ୍ୟକ ସିପାହୀଙ୍କ ସର୍ଦ୍ଦାର; କାପ୍ତାନ୍—5. Nayak; captain of a small unit of soldiers.

୬ । ପାଣ, ଶବର ଆଦିଙ୍କ ବଂଶୋପାଧିବିଶେଷ— 6. A family-title of some Pāṇas and Sabaras.

**ନାୟକ ପଥର**—ଦେ. ବି.—(ସଂ. ନାୟକ+ପ୍ରସ୍ତର)—ହାରର ମଧ୍ୟମଣି-
Nāyaka pathara The central gem of a necklace.

**ନାୟକାଧିପ**—ସଂ. ବି (୬ଷ୍ଠୀ ତତ୍; ନାୟକ+ଅଧିପ)—ନରେନ୍ଦ୍ର; ରାଜା
Nāyakādhipa A king

**ନାୟକୀ**—ସଂ. ବି. ସ୍ତ୍ରୀ—( ନାୟକ+ସ୍ତ୍ରୀ. ଈ )—ବୀଣା ବା ସୀତାରର ପ୍ରଧାନ ତାର—The principal string of a harp or guitar.
Nāyaki

**ନାୟକୀୟ**—ସଂ. ବିଣ. (ନାୟକ ବା ନାୟିକା+ସମ୍ବନ୍ଧାର୍ଥେ. ଈୟ)—
Nāyakiya Relating to a hero or heroine.

**ନାୟବଳ**—ଗ୍ରା. ବି (ସଂ. ନ୍ୟାୟବଳ)—ସତରଞ୍ଚ ଖେଳ; ନ୍ୟାୟବଳ—
Nāyabaḷa The game of chess.

ସତବଂଜଖେଲା — କଥା ଶକୁନି ପାଶ ରଙ୍ଗ
ଚଉପଟଖେଲ — ପଶା ନ୍ୟାୟବଳ ବେଶ୍ୟାସଙ୍ଗ
ଏ ଛଡ଼ରସେ ମାତେ ଯେ
ଭେକେ ମର ଅନାକର ଖାଏ—ଭଗ ।

**ନାୟା**—ପ୍ରାଦେ ( ସିଂହଭୂମ ) ବି. ପୁଂ—ଅନାର୍ଯ୍ୟମାନଙ୍କ ଗ୍ରାମଦେବତାଙ୍କ ପୂଜକ—The priest of a village-Deity of the non-aryans.
Nāyā
(ନାୟାଣୀ—ସ୍ତ୍ରୀ)

[ ଦ୍ର—ସାନ୍ତାଳ, କୋଲ ଓ ଭୂମିଜ ଜାତୀୟ ପୂଜକମାନେ ଗ୍ରାମଦେବତାଙ୍କୁ ପୂଜା କରନ୍ତି । ]

**ନାୟାର**—ଦେ. ବି—ଦକ୍ଷିଣଭାରତର କେରଳ ( ମାଲବାର ଉପକୂଳ ) ଅଞ୍ଚଳବାସୀ ଶୂଦ୍ରଜାତିବିଶେଷ—
Nāyār
নায়ার
नायार
The Nairs; a caste of Śūdras in the Malabar coast South India.

[ଦ୍ର—ନମ୍ବୁଦ୍ରି ତଳେ ନୋଠ୍ ଦେଖ । ଏମାନଙ୍କ ସମାଜରେ ଜଣେ ସ୍ତ୍ରୀ ବହୁ ପତି ଗ୍ରହଣ କରିବାର ପ୍ରଥା ଚଳେ । କିନ୍ତୁ ବର୍ତ୍ତମାନ ଏ ପ୍ରଥା କ୍ରମଶଃ ରହିତ ହେଉଅଛି । ସନ୍ତାନମାନେ ମାତୃ ସମ୍ପତ୍ତିରେ ଉତ୍ତରାଧିକାରୀ ହୁଅନ୍ତି ଓ ମୃତ ବ୍ୟକ୍ତିର ଭଣଜା ଉତ୍ତରାଧିକାରୀ ହୁଏ । କନ୍ୟାର କନ୍ୟା, ତାହାର କନ୍ୟା ଏହିରୂପେ କନ୍ୟାକ୍ରମେ ଏମାନଙ୍କ ବଂଶବୃକ୍ଷ କଳ୍ପିତ ହୁଏ । ନାୟାରମାନଙ୍କ ମଧ୍ୟରେ ଉତ୍ତରାଧିକାର ପ୍ରଥାକୁ ମରୁମକ୍କଥୟମ୍ (Marumakkathayam) ବୋଲାଯାଏ—ମେନ, ହିନ୍ଦୁ ଆଇନ୍ । ]

**ନାୟିକା**—ସଂ. ବି ସ୍ତ୍ରୀ ( ନାୟକ+ସ୍ତ୍ରୀ. ଆ )—୧ । ଶୃଙ୍ଗାରରସର ଅବଲମ୍ବନ ଓ କାବ୍ୟ ନାଟକାଦିରେ ବର୍ଣ୍ଣିତ ରୂପଗୁଣସମ୍ପନ୍ନା ପ୍ରଧାନ ସ୍ତ୍ରୀ—1. The heroine of a, drama, novel or tale or of a love-story.
Nāyikā
(ନାୟକ—ପୁଂ)

[ଦ୍ର—କାବ୍ୟାଦିରେ ଶୃଙ୍ଗାର ରସରେ ପ୍ରକୃତି ଅନୁସାରେ ନାୟିକାଙ୍କୁ ୩ ଶ୍ରେଣୀରେ ବିଭକ୍ତ କରାଯାଏ, ଯଥା—ଉତ୍ତମା, ମଧ୍ୟମା ଓ ଅଧମା; ପ୍ରେମିକ ଅହିତକାରୀ ହେଲେ ମଧ୍ୟ ହିତକାରିଣୀ ନାୟିକା ଉତ୍ତମା; ପ୍ରେମିକ ଅହିତକାରୀ ହେଲେ ଅହିତକାରିଣୀ ଓ ହିତକାରୀ ହେଲେ ହିତକାରିଣୀକୁ ମଧ୍ୟମା, ପ୍ରେମିକ ହିତକାରୀ ହେଲେ ହିଁ ପ୍ରେମିକ ପ୍ରତି ଅହିତକାରିଣୀ ନାୟିକାକୁ ଅଧମା ନାୟିକା ବୋଲାଯାଏ । ଅବସ୍ଥା ଭେଦରେ ଏମାନେ ପୁଣି ଆଠ ପ୍ରକାର । ଯଥା—ସ୍ୱାଧୀନଭର୍ତ୍ତୃକା, ଖଣ୍ଡିତା, ଅଭିସାରିକା, କଳହାନ୍ତରିତା, ବିପ୍ରଲବ୍ଧା, ପ୍ରୋଷିତଭର୍ତ୍ତୃକା, ବାସକସଜ୍ଜା ଓ ବିରହୋତ୍କଣ୍ଠିତା । ସ୍ୱୀୟା ବା ସ୍ୱକୀୟା, ପରକୀୟା ବା ଅନ୍ୟା ଓ ସାଧାରଣୀ ବା ଗଣିକା ଭେଦରେ ନାୟିକାମାନେ ଧର୍ମାନୁସାରେ ତିନି ଭାଗରେ ବିଭକ୍ତ । ବୟଃକ୍ରମ ଅନୁସାରେ ସ୍ୱକୀୟା ନାୟିକା ୩ ପ୍ରକାର ଯଥା—ମୁଗ୍ଧା, ମଧ୍ୟା ଓ ପ୍ରୌଢ଼ା । କାମଚେଷ୍ଟାରହିତା ଅଙ୍କୁରିତଯୌବନା ନାୟିକା ମୁଗ୍ଧା । ମୁଗ୍ଧା ପୁଣି ଦୁଇ ଶ୍ରେଣୀରେ ବିଭକ୍ତ—ଜ୍ଞାତଯୌବନା ଓ ଅଜ୍ଞାତଯୌବନା । ଜ୍ଞାତଯୌବନାଙ୍କର ମଧ୍ୟ ଦୁଇ ଭେଦ ନବୋଢ଼ା (ଲଜ୍ଜା ଓ ଭୟ ଯୋଗୁଁ ପତି ସମାଗମ ପାଇଁ ଅନିଚ୍ଛୁକା) ଓ ବିଶ୍ରବ୍ଧା (ପତି ଉପରେ ଯାହାର ବିଶ୍ୱାସ ଓ ଅନୁରାଗ ଅଛି ) । ଯେଉଁ ନାୟିକାଠାରେ ଲଜ୍ଜା ଓ କାମବାସନା ସମାନ ରୂପେ ଅଛି ସେ

ମଧ୍ୟା । କାମକଳାକୁଶଳା ନାୟିକା ପ୍ରୌଢ଼ା । ସ୍ୱକୀୟା ନାୟିକାମାନଙ୍କୁ ମୁଗ୍ଧା ଓ ମଧ୍ୟା ଶ୍ରେଣୀରେ ବିଭକ୍ତ କରାଯାଇଅଛି, ମଧ୍ୟା ଓ ପ୍ରୌଢ଼ାଙ୍କୁ ତିନି ଶ୍ରେଣୀରେ ବିଭକ୍ତ କରାଯାଇଅଛି; ଧୀରା, ଅଧୀରା ଓ ଧୀରାଧୀରା । ପ୍ରେମିକଠାରେ ଅନ୍ୟ ସ୍ତ୍ରୀ ସମ୍ଭୋଗର ଚିହ୍ନ ଦେଖି ସ୍ୱକୀୟା ଧୈର୍ଯ୍ୟ ସହକାରେ ସାଦର କୋପପ୍ରକାଶିକା ନାୟିକା ଧୀରା, ପ୍ରତ୍ୟକ୍ଷ କୋପପ୍ରକାଶିକା ଅଧୀରା, ଅଂଶତଃ ପ୍ରଚ୍ଛନ୍ନରୂପେ ଓ ଅଂଶତଃ ପ୍ରକାଶ୍ୟରେ କୋପପ୍ରକାଶିକା ଧୀରାଧୀରା ଅଟନ୍ତି । ପରକୀୟାଙ୍କର ଦୁଇ ଭେଦ, ଊଢ଼ା (ବିବାହିତା ଓ ପରପୁରୁଷାନୁରକ୍ତା) ଓ ଅନୂଢ଼ା (ଅବିବାହିତା ଓ ନାୟକଠାରେ ଆସକ୍ତା) । ନାୟିକାମାନଙ୍କର ୨୮ ପ୍ରକାର ଅଳଙ୍କାର ମଧ୍ୟ କାବ୍ୟାଦରେ ବର୍ଣ୍ଣିତ ହୋଇଅଛି; ଯଥା— ଅଙ୍ଗଜ ୩—ଭାବ, ହାବ ଓ ହେଲା; ଅଯତ୍ନସିଦ୍ଧ ୭— ଶୋଭା, କାନ୍ତି, ଦୀପ୍ତି, ମାଧୁର୍ଯ୍ୟ, ପ୍ରଗଲ୍ଭତା, ଔଦାର୍ଯ୍ୟ, ଧୈର୍ଯ୍ୟ; ସ୍ୱଭାବଜ ୧୮—ଲୀଳା, ବିଳାସ, ବିଚ୍ଛିତ୍ତି, ବିବ୍ବୋକ, କିଲକିଂଚିତ, ମୋଟ୍ଟାୟିତ, କୁଟ୍ଟମିତ, ବିଭ୍ରମ, ଲଳିତ, ମଦ, ବିହୃତ, ତପନ, ମୌଗ୍ଧ୍ୟ, ବିକ୍ଷେପ, କୁତୁହଳ, ହସିତ, ଚକିତ ଓ କେଳି — ହି. ଶବ୍ଦସାଗର । ସଂସ୍କୃତର କାବ୍ୟନାଟକକାରମାନେ ପ୍ରେମ, ପ୍ରେମିକ ଓ ପ୍ରେମିକାଙ୍କ ବିଷୟ ପୁଙ୍ଖାନୁପୁଙ୍ଖରୂପେ ପର୍ଯ୍ୟବେକ୍ଷଣ ଓ ସେମାନଙ୍କ ଗତି, ମତି, ଆଚରଣ, ସ୍ୱଭାବଆଦିକୁ ଧାରାବାହିକରୂପେ ଶ୍ରେଣୀବଦ୍ଧ କରିଅଛନ୍ତି । ଓଡ଼ିଆରେ ଉପେନ୍ଦ୍ରଭଞ୍ଜ ଯୁଗର ଓ ବୈଷ୍ଣବଯୁଗର କବିମାନେ ମଧ୍ୟ ଏହି ପଦ୍ଧତି ଅନୁସରଣ କରି ଗ୍ରନ୍ଥମାନ ରଚନା କରିଅଛନ୍ତି ।]

୨ । ପ୍ରଣୟିନୀ; ପ୍ରେମିକା ( ସ୍ତ୍ରୀ )—
2. Mistress; sweetheart.

୩ । ଅନ୍ତଃପୁରଚାରିଣୀ କଞ୍ଚୁକୀବିଶେଷ—
3. A female attendant of the seraglio.

୪ । କୁଳୀନା ବା ଉତ୍କୃଷ୍ଟା ସ୍ତ୍ରୀ—
4. A noble lady.

୫ । ଅଷ୍ଟବିଧ ଦୁର୍ଗାଙ୍କ ଶକ୍ତି (ଉଗ୍ରଚଣ୍ଡା, ପ୍ରଚଣ୍ଡା, ଚଣ୍ଡୋଗ୍ରା, ଚଣ୍ଡନାୟିକା, ଅତି ଚଣ୍ଡା, ଚାମୁଣ୍ଡା, ଚଣ୍ଡା ଓ ଚଣ୍ଡାବତୀ)-
5. The eightfold manifestations of the energy of Goddess Durgā.

୬ । ଭାର୍ଯ୍ୟା; ସ୍ତ୍ରୀ—6. Wife (Apte)

୭ । କସ୍ତୁରୀବିଶେଷ—
7 A kind of musk ( Apte ).

ଦେ. ବି (ଫା. ନାଏକ୍=ଉତ୍କୃଷ୍ଟ) ପିଣ୍ଡିକା; ସାଧାରଣ କସ୍ତୁରୀଠାରୁ ବଡ଼ ବଡ଼ ଦାନାବିଶିଷ୍ଟ କସ୍ତୁରୀ—A kind of musk with bigger grains than ordinary musk

ଦେ. ବିଣ—ନାଇକା (ଦେଖ)—Nāikā (See).

ପ୍ରାଦେ ( ଗଞ୍ଜାମ ) ବି—ନାଇକା ( ଦେଖ )
Nāikā ( See .

**ନାୟେକ**—ଗ୍ରା. ବି—୧ । (ସଂ. ନାୟକ)— ନାୟକ (ଦେଖ)
Nāyeka — Nāyaka (See .

ବୈଦେ. ବିଣ (ଫା. ନାଏକ୍)— ନାୟକ୍ (ଦେଖ)
Nāyak ( See ).

**ନାୟେକା**— ଗ୍ରା. ବି ( ପ୍ରାଚୀନ ପଦ୍ୟ ) ସ୍ତ୍ରୀ—ନାୟିକା (ଦେଖ)
Nāyekā — Nāyikā (See)

ମାୟା କନ୍ୟା ଅଟନ୍ତି ସେ ସଚେ ନାୟେକା—ପ୍ରାଚୀ ପ୍ରଭାତ. ଶଶିରେଖା ।

ବି. ଓ ବିଣ—ନାଏକା ଇତ୍ୟାଦି ( ଦେଖ )
Nāekā etc ( See )

**ନାୟେବ**—ବୈଦେ. ବି ( ଅ. ନାୟବ୍ )—ନାଏବ୍ (ଦେଖ)
Nāyeba नायेब **नायब** — Nāeb (See)

**ନାୟେବଲ**— ଗ୍ରା. ବି—ନାୟବଲ (ଦେଖ)
Nāyebala — Nāyabala (See)

**ନାୟେବି**—ବୈଦେ. ବିଣ ଓ ବି (ଅ. ନାୟବୀ )—ନାଏବି (ଦେଖ)
Nāyebi — Nāebi (See).
(ନାୟେବଗିରି—ଅନ୍ୟରୂପ) नायबी **नायबी**

**ନାର**—ସଂ. ବି (ନର+ଅ) —୧ ।ଜଳ—
Nāra — 1. Water.

୨ । ନବଜାତ ବତ୍ସ; କଅଁଳା ବାଛୁରି—
2 A newly born calf.

୩ । ନର ସମୂହ; ମନୁଷ୍ୟଙ୍କ ଦଳ—3. A multitude of people, an assemblage or crowd of men

୪ । ବାଳକ; ଶିଶୁ—4. Child; infant, boy.

୫ । ଜ୍ଞାନ—5. Knowledge.

୬ । ଶୁଣ୍ଠି (ହି. ଶବ୍ଦସାଗର)—6. Dry ginger.

୭ । ସାରୂପ୍ୟ ମୁକ୍ତି—7. Final beatitude.

ସଂ. ବିଣ—୧ । ନର ସମ୍ବନ୍ଧୀୟ—1 Relating to man, human.

୨ । ପରମାତ୍ମା ସମ୍ବନ୍ଧୀୟ—
2. Relating to the Universal Soul.

୩ । ଆତ୍ମୀୟ—3 Spiritual.

ଗ୍ରା. ବି (ସଂ. ନାରଙ୍ଗ)—ନାରଙ୍ଗ—Orange,

ନୂଆ ପସର ଟାଉ ନାର; ଇକ୍ଷୁ, ରସାଳ ସେତେ ଅର—ସଙ୍ଗୀତକଳ୍ପ. ଦେମଣ୍ଡଳିଗୀତା ।

**ନାରକ**—ସଂ. ବିଣ. (ନରକ+ସମ୍ବନ୍ଧାର୍ଥେ. ଅ)—୧ । ନରକ ସମ୍ବନ୍ଧୀୟ; ନରକ ସମ୍ପର୍କିତ—1. Hellish; pertaining to hell; infernal
Nāraka

୨ । ନରକସ୍ଥ—2. Living or situated in hell.

୩ । ନରକ ଭୋଗୀ—3. Suffering the pangs and punishments of hell.

ସଂ. ବି.—(ନରକ+ସ୍ୱାର୍ଥେ. ଅ)—୧ । ନରକ—1. Hell.

୨ । ନରକଯନ୍ତ୍ରଣା ଭୋଗର ସ୍ଥାନ—2. Place where persons suffer the pangs of hell.

୩ । ନରକବାସୀ ବ୍ୟକ୍ତି (ହି. ଶ)—3. A person living in hell; an inhabitant of hell.

**ନାରକା**—ଦେ. ବି. (ନାମ) (ନରକର ଅନାଦରାର୍ଥକ)—ଭୂମି ପୁତ୍ର, ଅସୁର ବିଶେଷ; ନରକାସୁର—Name of a demon; Narakāsura.
Nārakā
(ନାରକାସୁର—ଅନ୍ୟରୂପ)

ଯେମନ୍ତେ ନାରକା ଅସୁର,
ରଣେ ଜିଣିଲ ଜନପୁର । ଭାଗବତ ।

**ନାରକୀ**—ସଂ ବିଣ. (ନାରକ+ଅସ୍ତ୍ୟର୍ଥରେ ଇନ୍; ୧ମା. ୧ବ)—
Nāraki ୧ । ନରକଭୋଗୀ—
(ନାରକିନୀ—ସ୍ତ୍ରୀ) 1 Undergoing punishment in hell.
୨ । ନରକସ୍ଥ—2 Situated in hell; infernal.
୩ । ପାପିଷ୍ଠ; ନରକଗାମୀ, ଯାହାର ପରିଣାମ ନରକ ଭୋଗ ଅଟେ—3. Sinful; hellish; impious
୪ । ଅସୁର ପ୍ରକୃତିକ—4 Fiendish.
ଦେ. ବି—ପାପୀ ବ୍ୟକ୍ତି—A sinner; a sinful person.

**ନାରକୀଟ**—ସଂ. ବି—୧ । ଅଶ୍ମକୀଟ, ଏକପ୍ରକାର କୀଟ (ହି. ଶ)—
Nārakīta 1. A kind of insect boring through stones.
୨ । କୌଣସି ବ୍ୟକ୍ତିଙ୍କୁ ଆଶା ଦେଇ ପରେ ନିରାଶ କରିବା ବ୍ୟକ୍ତି (ହି. ଶବ୍ଦସାଗର)—2. A person who gives hope but crushes it to the ground afterwards, a deceiver.

**ନାରକୀୟ**—ସଂ. ବିଣ. (ନରକ+ସମ୍ବନ୍ଧାର୍ଥେ ଈୟ)—ନାରକୀ (ଦେଖ)
Nārakīya Nārakī (See)
(ନାରକୀୟା—ସ୍ତ୍ରୀ) (ନାରକିକ—ଅନ୍ୟରୂପ)

**ନାରକେର**—ସଂ. ବି—ନଡ଼ିଆ (ଦେଖ)
Nārakera Nardiā (See)

**ନାରଖାର**—ଦେ. ବି. (ସଂ. କ୍ଷାର=ଭସ୍ମଚୂର୍ଣ୍ଣ)—୧ । ଧ୍ୱଂସ; ଛାରଖାର—
Nārakhāra 1. Spoilation, ruin; devastation; depredation.
(ନରଖର—ଅନ୍ୟରୂପ)
ଛାବଥାବ ୨ । ଦୁର୍ଦ୍ଦଶା—2 Misery.
ଚଉପଟ ୩ । ନଷ୍ଟ—3. Loss.
ଦେ. ବିଣ—୧ । ବିଧ୍ୱସ୍ତ; ବିନଷ୍ଟ—
1 Devastated; destroyed; ruined.
ଯେସନେ ପାଣ୍ଡବ ବଳ କଲା ନାରଖାର । ସ୍ୱଧାନ.ଥ. ବେଣୀଧର ଦାସ ।
୨ । ଯାହାର କେହି ଯତ୍ନ ନିଏନାହିଁ—
2. Uncared for.
୩ । ଦୁର୍ଦ୍ଦଶା ଗ୍ରସ୍ତ—3 Miserable, distressed.
ଏ ଭେଦ ପୂର୍ବରେ ନାରଖାର ହେବ
ଜମ୍ବୁଦ୍ୱୀପ ଆର୍ଯ୍ୟ ଜାତି । ବନ୍ଧକଶୋର—ଶମନ୍ତା ।
୪ । ଅସୁନ୍ଦର—4. Ugly.
ନୁହେଁ ଚମାଳ ଦଡ ଖର ।
ଏଡ଼ିଲେ ହଣେ ନାରଖାର । ପ୍ରାଚୀ ପୂର୍ଣ୍ଣଚନ୍ଦ୍ର ଜନୋଦୟ ।

**ନାରଗୁଣୀ**—ଦେ. ବି. ( ସଂ. ନଖବ୍ରଣ )—୧ । ଆଙ୍ଗୁଳିର ନଖ ମଧ୍ୟରେ
Nāraguṇi ବାହାରିବା କଣ୍ଟକର ବ୍ରଣବିଶେଷ—
आङ्गुलहाडा 1. Whitlow.
घिनही; छिलौरी; डिठौड़ी [ ଦ୍ର—ଅଡାଆଙ୍ଗୁଳ ଆଙ୍ଗୁଠିର ଗଣ୍ଠିରୁ
ମ. ନଖଗୁଡ଼ ବାହାରେ; କିନ୍ତୁ ନାରଗୁଣୀ ନଖ ସନ୍ଧିରୁ ବାହାରେ । ]
୨ । ଏକ ପ୍ରକାର ବନ୍ୟ ଗଛ—
नारगुनी 2. Atlantia Monophylla ( Haines )
[ ଦ୍ର—ଏଥିରେ ସୁନ୍ଦର ଓ ଖୁବ୍ ପାଲିସ୍ ହାଉ ବାଡ଼ି ହୁଏ । ]

**ନାରଙ୍ଗ**—ସଂ.ବି (ନାରୀ+ଅଙ୍ଗ; କ୍ରମଧାରୟ)—୧ । ବିଟ; ଜାର ପୁରୁଷ—
Nāraṅga 1. A lecher; an adulterer; a libertine.
ସଂ. ନାମ—ନାରଙ୍ଗ, ୨ । ଏକପ୍ରକାର ମିଠା ଲେମ୍ବୁ—
ନାଗରଙ୍ଗ, ଭୃଙ୍ଗସୁଗନ୍ଧ, 2. A kind of orange; Citrus
ମୁଖପ୍ରିୟ, ନାର୍ଯ୍ୟଙ୍ଗ, Aurantium ( Haines ); the
ନାଗର, ନାଗରୁକ, sweet orange ( Kirtikar ).
ଐରାବତ [ ଦ୍ର—ଏହା ଉଦ୍ୟାନଜାତ ଅମ୍ଳ ମଧୁର
नारङ्गी, नारंगी ଫଳ ବିଶିଷ୍ଟ ଲେମ୍ବୁଜାତୀୟ ତରୁ; ଫଳ
नारंगी ଗୋଲ ଏବଂ ଫଳର ଉପର ଓ ତଳ ଚେପଟା;
ଗୁ. ନାରଙ୍ଗୀଲିମ୍ବୁ ଫୁଲ ଧଳା । ଫୁଲ କେଶରଯୁକ୍ତ; ଫୁଲରେ
ମ. ନାରଙ୍ଗ ଫଳ ଧରେ । ଫଳ ବର୍ଷକେ ଥରେ ହୁଏ ।
ତେ ଦମ୍ପାକାସ୍ତା, ଗଜ୍ଜନିମ୍ମ, ଫଳ କମଳା ଲେମ୍ବୁ ଅପେକ୍ଷା ଶ୍ରେଷ୍ଠ ।
ନାରଙ୍ଗପାଣ୍ଡୁ, ନାରଞ୍ଜପାଣ୍ଡୁ ବୈଦ୍ୟଶାସ୍ତ୍ର ମତରେ ଏହା ଅମ୍ଳ ମଧୁର
ତା. କିଚିଲି ଅଗ୍ନିଦୀପକ ଓ ବାୟୁନାଶକ—ଏହା ମେହ,
ଆ. ନାରଂଜ ପିତ୍ତଜନିତ କାଶ, ଜ୍ୱରଜନିତ ଦାହ ଓ
ଫା. ନାରଂଜ ତୃଷ୍ଣାନିବାରଣକର । ପାଚିଲା ଫଳର ଶ୍ରେଣୀ
ପର୍ତ୍ତୁଗୀଜ. ଲରଞ୍ଜା ଈଷତ୍ ହଳଦିଆ ମିଶ୍ରିତ ନାଲି । ଆସାମର
ଖାସିଆ ପାହାଡ଼, ଶ୍ରୀହଟ୍ଟ ( ସିଲ୍‌ହଟ୍ ), ମଧ୍ୟପ୍ରଦେଶର ନାଗପୁରରେ
ଯେଉଁ ନାରଙ୍ଗ ହୁଏ ତାହା ପାଚିଲେ ମଧୁରରସ ହୁଏ ଓ ତାହାକୁ
ଲୋକେ ମିଠା କମଳା କହନ୍ତି । ଅଳ୍ପ କାଳ ବାମଣ୍ଡା, କୁଆଗଡ଼ଆଦି
ଗଡ଼ଜାତରେ ମିଠା କମଳା ବୃକ୍ଷ ରୋପଣ କରାଯାଇ ତହିଁରେ
ମିଷ୍ଟରସ କମଳା ଫଳୁଥିବାର ଦେଖାଯାଏ; କଥିତ ଅଛି ଯେ
ସ୍ପେନରେ ମୁସଲମାନ୍ ରାଜତ୍ୱକାଳରେ ଫାରସୀ 'ନାରଂଜ' ଶବ୍ଦ
ସ୍ପେନଭାଷାରେ ଚଳିଲା ଓ କ୍ରମଶଃ ତାହା ଇଂରାଜୀଭାଷାରେ
'a narange' (ଗୋଟିଏ ନାରଙ୍ଗ) ଚଳିଲା ଓ ଲୋକେ 'ଏ
ନାରେଂଜ' କହୁ କହୁ ଆନ୍ ଅରେଞ୍ଜ an orange କଲେ ଓ
ଏଥିରୁ ଇଂରାଜୀ ଭାଷାରେ ଅରେଞ୍ଜ (ଲେମ୍ବୁ) ଶବ୍ଦ ଚଳିଲା । ]
୩ । ପିପ୍ପଳୀ ଗୁଳ୍ମର ରସ—3. The juice of the pepper plant (M. W.)
୪ । ପ୍ରାଣୀ ବା ଜୀବ—4. A living being (M. W.)
୫ । ଯମଜ ମଧ୍ୟରୁ ଏକ—5. A twin (M. W.)
୬ । ଶୁକପକ୍ଷୀ—6 A parrot (M. W.)

**ନାରଙ୍ଗକ**—ସଂ. ବି. ( ନାରଙ୍ଗ+କ )—୧ । ନାରଙ୍ଗ ( ଦେଖ )
Nāraṅgaka 1 Nāraṅga (See)
୨ । ଗାଜର—2 Carrot (Apte).

**ନାରଙ୍ଗା**—ଦେ. ବି—୧ । ବନ୍ୟ କ୍ଷୁପବିଶେଷ—
Nāraṅgā 1. A kind of wild plant; Geolonium Multiflorum.
बननारंगी, नारङ्गि
बनैयानारंगी [ ଦ୍ର—ଏହା ଚିରଶ୍ୟାମଳ ବନ୍ୟତରୁ, ଏହାର ଫଳ
ଶ୍ରେଷ୍ଠ ଶ୍ରେଷ୍ଠ । ପାଚିଲେ ପାଚିଲା ନାରଙ୍ଗ ବର୍ଣ୍ଣ ଏବଂ ନାରଙ୍ଗ
ଲେମ୍ବୁର ବାସନା ହୁଏ ଓ ଖାଇହୁଏ । ଫୁଲ ଶ୍ୱେତ, ପୀତବର୍ଣ୍ଣ ଓ ଗ୍ରୀଷ୍ମ-
କାଳରେ ଫୁଟେ । ଏହ ନାରଙ୍ଗ ପରି ପର, କିନ୍ତୁ ଶ୍ରେଷ୍ଠ । ]
नारङ्ग ୨ । ନାରଙ୍ଗ ( ଦେଖ )
2. Nāraṅga ( See )

୩ । ଗ୍ରାମଦେବତାବିଶେଷ—
3. Name of a Goddess.

ନାବଙ୍ଗୀ ୪ । ଶିଶୁମାନଙ୍କ ଦେହରେ ନାଲି ଚକା ଚକା ଫୁଲ ଦାଗ
**नारंगीशिहुली** ହେବା ଏକପ୍ରକାର ରୋଗ—4. Erysipelas.
[ ଦ୍ର—ଏହା ପାଚିଲେ ନସା ହେବ ଓ ବେଳେ ବେଳେ ମାରା-
ତ୍ମକ ହୁଏ । ]

**ନାରଙ୍ଗୀ**—ଦେ ବିଣ—ପାଚିଲା ନାରଙ୍ଗ ଲେମ୍ବୁପରି ବର୍ଣ୍ଣବିଶିଷ୍ଟ ନାଲି
Nārangī ମିଶା ହଳଦିଆ—Orange-coloured.
ନାବଂଗୀ ଦେ ବି—୧ । ନାଲି ମିଶା ହଳଦିଆ ବର୍ଣ୍ଣ—
**नारंजी** 1 Orange colour
୨ । ନାରଙ୍ଗା (ଦେଖ)—2. Nārangā ( See )

**ନାର ଜୀବନ**—ସ. ବି—ସ୍ୱର୍ଣ୍ଣ—
Nāra jībana Gold (Apte).

**ନାରଣ**—ଦେ. ବି. ପୁଂ ( ଅଦରାର୍ଥକ )—ନାରାୟଣ ନାମକ ବ୍ୟକ୍ତିର
Nārana ଡାକ ନାମ—A name for calling a person
ନାବାନ, **नारन, नह** named Nārāyana
[ନାରଣା, ନାରଣିଆଁ (ଆ), ନାରେଣିଆଁ (ଆ)—ଅନାଦରାର୍ଥକ ରୂପ]

ନାରଦ—ସ. ବି ପୁଂ ( ନାର=ମନୁଷ୍ୟ ସମ୍ବନ୍ଧୀ ବା ଜ୍ଞାନ+ଦା ଧାତୁ+
Nārada **ଅ; ଯେ ମନୁଷ୍ୟମାନଙ୍କୁ ଉପଦେଶ ଦିଅନ୍ତି ବା ଯେ**
**ଜ୍ଞାନ ଉପଦେଶ ଦିଅନ୍ତି** ।)—୧ । ବ୍ରହ୍ମାଙ୍କ ଦଶ ଜଣ
ମାନସ ପୁତ୍ର ମଧ୍ୟରୁ ଏକତମ; ପ୍ରସିଦ୍ଧ ମୁନିବିଶେଷ—
1. Name of a celebrated sage, the son of Brahmā
୨ । ଅଷ୍ଟାଦଶ ପୁରାଣ ମଧ୍ୟରୁ ଗୋଟିଏ ପୁରାଣ—2. Name of one of the eighteen Hindu Purānas.
୩ । ମହାଭାରତୋକ୍ତ ବିଶ୍ୱାମିତ୍ରଙ୍କର ଏକ ପୁତ୍ର—
3. Name of a son of sage Biswāmitra.
୪ । କଶ୍ୟପ ମୁନିଙ୍କ ସ୍ତ୍ରୀଙ୍କଠାରୁ ଉତ୍ପନ୍ନ ଗନ୍ଧର୍ବ ବିଶେଷ —
4. Name a Gandharba, son of sage Kasyapa
୫ । ଏକ ପ୍ରଜାପତିଙ୍କ ନାମ (ହି. ଶବ୍ଦସାଗର) —
5 Name of a progenitor of mankind.
୬ । ମତ୍ସ୍ୟପୁରାଣୋକ୍ତ ଶାକଦ୍ୱୀପର ପର୍ବତବିଶେଷ—
6 Name of a mythological mountain.
୭ । ବୃହନ୍ନାରଦୀୟ ନାମକ ଉପପୁରାଣ—7. Name of a minor Hindu mythological work.
ଦେ. ବିଣ. ପୁଂ ( ରଦ ଅର୍ଥାତ୍ ଦନ୍ତ ନ ଥିବାରୁ )—ଦନ୍ତହୀନ, ପାକୁଆ—Toothless
ଷାଣ ତଣ. ତଟଣ ନାରଦ କଳ ପଦ୍ର—ଅଭିମନ୍ୟୁ. ବତବ୍ୟ୍ଲୋମନି ।
ଦେ. ବି—ଯେ ପର ଘରେ କଳି ମଞ୍ଜି ବୁଣେ—One who
ନାବଦ sows seeds of dissension in another's
**नारद्** family.
[ ଦ୍ର—ନାରଦମୁନି ପୁରାଣ, ବେଦାନ୍ତ, ତନ୍ତ୍ର ଓ ସ୍ମୃତିଶାସ୍ତ୍ରଆଦି
ଅନେକ ଗ୍ରନ୍ଥର ପ୍ରଣେତା । ନାରଦ ସ୍ମୃତି ଗୋଟିଏ ପ୍ରସିଦ୍ଧ ଗ୍ରନ୍ଥ ।
ଏ ମନପବନ ବାହନ (ଡିଙ୍କି ଆକୃତି ବିଶିଷ୍ଟ)ରେ ଚଢ଼ି ଦେବ-
ଲୋକ ଓ ମର୍ତ୍ତ୍ୟଲୋକକୁ ଯିବା ଆସିବା କରି ସ୍ୱର୍ଗର ଖବର ମର୍ତ୍ତ୍ୟରେ
ଓ ମର୍ତ୍ତ୍ୟର ଖବର ସ୍ୱର୍ଗରେ ଦେଇ ସ୍ୱର୍ଗବାସୀ ଓ ମର୍ତ୍ତ୍ୟବାସୀଙ୍କ
ମଧ୍ୟରେ କଳି ଘଟାଉ ଥିବା ବିଷୟ ପୁରାଣମାନଙ୍କରେ ବର୍ଣ୍ଣିତ ହୋଇ-
ଥିବାରୁ ଲୋକେ କଳି ଘଟାଇବା ବ୍ୟକ୍ତିଙ୍କୁ 'ନାରଦ' ନାମ
ଦିଅନ୍ତି । ନାରଦଙ୍କ ହାତରେ ଥିବା ମୁର୍ଣ୍ଣିକୁ ଲୋକେ କଳି ମୁଣି
ବା କଳି ଧୋକଡ଼ି କହନ୍ତି । ଏହାଙ୍କ ବାହାନ ଢିଙ୍କି ପରି ( ସମ୍ଭବତଃ
Aeroplane ବା ଉଡ଼ାଜାହାଜ ) । ଏହାଙ୍କ କାନ୍ଧରେ ବୀଣା,
ହାତରେ ଜପମାଳା, କାଖରେ କଳିଧୋକଡ଼ି । ଏ ବୀଣାଯନ୍ତ୍ରର
ଆବିଷ୍କର୍ତ୍ତା ବୋଲି ବିଖ୍ୟାତ । ଜଟାଜୁଟବିଶିଷ୍ଟ ବୃଦ୍ଧ ଋଷିରୂପେ
ଲୋକେ ଏହାଙ୍କର କଳ୍ପନା କରନ୍ତି । ]

ନାରଦଚମ୍ପା—ଦେ. ବି—ପନାସିଆ ( ଦେଖ )
Nāradachampā Panāsiā ( See )

ନାରଦ ପଞ୍ଚରାତ୍ର—ସ. ବି—ନାରଦମୁନିଙ୍କ କୃତ ଭକ୍ତିଗ୍ରନ୍ଥବିଶେଷ—
Nārada pancharātra Name of a philosophical or devotional treatise ascribed to Nārada

ନାରଦ ପୁରାଣ—ସ.ବି—୧ । ନାରଦ କୃତ ପୁରାଣବିଶେଷ—1. Name
Nārada purāna of a Hindu mythological work.
[ ଦ୍ର—ଏହା ଅଷ୍ଟାଦଶ ମହାପୁରାଣ ମଧ୍ୟରେ ଗଣ୍ୟ । ]
୨ । ବୃହନ୍ନାରଦୀୟ ନାମକ ଉପପୁରାଣ—
2 Name of a secondary mythological work ascribed to sage Nārada.

ନାରଦ ସ୍ମୃତି—ସ. ବି—ନାରଦ କୃତ ହିନ୍ଦୁ ବ୍ୟବସ୍ଥା ଶାସ୍ତ୍ର—
Nārada smruti Name of a treatise on Hindu law and usage by Nārada.

ନାରଦା—ଦେ. ବି—ଏକପ୍ରକାର ଶାରଦ ଧାନର ନାମ—
Nāradā Name of a kind of winter paddy.

ନାରଦୀ—ଦେ. ବି—୧ । ବାଦ୍ୟଯନ୍ତ୍ରବିଶେଷ—
Nāradī 1. A musical instrument.
**नारदी** ମର୍ଦ୍ଦଳ ତାଳ ବଜେ ନାରଦୀ ବାରଣ—ପ୍ରାଚୀ, ଶ୍ରୀଗୁରୁଭକ୍ତିଗୀତା ।
୨ । ସ୍ତ୍ରୀଲୋକଙ୍କୁ ଦିଆଯିବା ଗାଳି—
2. A term of abuse applied to females.
ଦେ. ବିଣ. ସ୍ତ୍ରୀ —ଯେଉଁ ସ୍ତ୍ରୀ ପର ଘରେ କଳହର ସୂତ୍ରପାତ କରେ—
(a woman) Sowing the seeds of dissension in the families of others

ନାରଦୀୟ—ସ. ବିଣ ( ନାରଦ+ସମ୍ବନ୍ଧାର୍ଥେ. ଈୟ )—୧ । ନାରଦ
Nāradīya ସମ୍ବନ୍ଧୀୟ—1. Pertaining to Nārada.
୨ । ନାରଦ କୃତ ବା ରଚିତ —
2 Composed by Nārada.
(ଯଥା—ନାରଦୀୟ ପୁରାଣ, ନାରଦୀୟ ତନ୍ତ୍ର, ନାରଦୀୟ ସ୍ମୃତି ।)

ନାରଦୀୟ ତନ୍ତ୍ର—ସ. ବି.—ନାରଦ ପ୍ରଣୀତ ତନ୍ତ୍ର ଶାସ୍ତ୍ର ବିଶେଷ—
Nāradīya tantra Name of a Tantra treatise attributed to sage Nārada.

ନାରସିଂହ --ଦେ. ବିଣ. ପୁଂ (ନରସିଂହ + ଅ)—୧ । ନରସିଂହ ଅବତାର
Nārasimha ସମ୍ବନ୍ଧୀୟ—1. Relating to Bishnu's in-
(ନାରସିଂହୀ—ସ୍ତ୍ରୀ) carnation as Narasimha.

୨ । ନୃସିଂହ ରୂପ ବିଶିଷ୍ଟ, (ଅର୍ଦ୍ଧ ନର ଓ ଅର୍ଦ୍ଧ ସିଂହ ଶରୀର ବିଶିଷ୍ଟ —2. Having the shape of the fifth incarnation of Bishṇu (lower half man and upper half lion).

ସ. ବି.—୧ । ନରସିଂହ ରୂପଧାରୀ ବିଷ୍ଣୁ—1. Bishṇu in the shape of Narasimha.

୨ । ନରସିଂହ ଅବତାର ବର୍ଣ୍ଣନାତ୍ମକ ଉପପୁରାଣବିଶେଷ—2. Name of a secondary mythological treatise.

୩ । ତନ୍ତ୍ରବିଶେଷ—3 The title of a Tantrik treatise

ନାରସିଂହୀ—ସ. ବି. ସ୍ତ୍ରୀ—ନରସିଂହ ମୂର୍ତ୍ତିଧାରିଣୀ ଦୁର୍ଗାଙ୍କ ମୂର୍ତ୍ତି—
Nārasimhi An incarnation of Durgā, half woman and half lion.

[ଦ୍ର—ଅସୁର ବିନାଶ ସମୟରେ ଏ ଅବିର୍ଭୂତା ହୋଇଥିବା କଥା ଚଣ୍ଡୀ ପୁରାଣରେ ବର୍ଣ୍ଣିତ ଅଛି ।]

ନାରା—ସଂ. ବି —(ନାର+ଆ)—ନାର (ଦେଖ)
Nārā Nāra (See)

ନାରାଏଣୀ—ଗ୍ରା. ବି ସ୍ତ୍ରୀ (ସଂ. ନାରାୟଣୀ)—୧ । ଦେବୀ ବିଶେଷ—
Nāraeṇi 1. Name of a village Goddess.

୨ । ନାରାୟଣୀ (ଦେଖ)—2. Nārāyaṇi (See)

ନାରାଚ—ସଂ. ବି. (ନାର=ନରସମୂହ+ଆ. ଉପସର୍ଗ+ଚମ୍ ଧାତୁ=ଭୋଜନ କରିବା+କର୍ତ୍ତୃ. ଅ; ଯେ ମନୁଷ୍ୟମାନଙ୍କୁ ଖାଏ ବା ମାରି ପକାଏ)—୧ । ଲୌହମୟ ବାଣ—
Nārācha 1. Iron arrow.

ଅଜନ କୁସୁମ ନାରାଚ ଗଜବହୁ ଧା ଲିଳା । ଉଞ୍ଜ. କୋଟୀବ୍ରହ୍ମାଣ୍ଡସୁନ୍ଦରୀ ।

[ଦ୍ର—ସାଧାରଣ ଶରରେ ୪ଟି ପକ୍ଷ ଲଗିଥାଏ, ନାରାଚରେ ୫ଟି ପକ୍ଷ ଲଗିଥାଏ ଓ ଏହା ଚଳାଇବା ଅପେକ୍ଷାକୃତ କଠିନ ।]

୨ । ୨୪ ମାତ୍ରା ବିଶିଷ୍ଟ ଛନ୍ଦୋବିଶେଷ—
2 Name of a Sanskrit metre of 24 syllables.

୩ । ଦୁର୍ଦ୍ଦିନ; ମେଘାଚ୍ଛନ୍ନ ଦିବସ—
3. A bad clody uday

ଦେ. ବି—ବାଣ, ଶର—Arrow.

ନାରାଚୀ—ସଂ. ବି. (ନାରାଚ+ସାଦୃଶ୍ୟାର୍ଥେ. ଈ)—୧ । ନାରାଚ ଆକୃତି ବିଶିଷ୍ଟ ଛୋଟ ତୁଳାଦଣ୍ଡ, ନିକିତି; ତରାଜୁ—
Nārāchi 1. A pair of small scales.

୨ । ବଣାକାଠି—2. Scale-beam.

ନାରାଜ—ଦେ. ବି. (ସଂ. ନାରାଚ)—ବାଣ—
Nārāja Arrow; shaft.

ହରିପଦଧ୍ଵ ଦୁର୍ଜୟ ନାରାଜଗୁଳକରେ ଜୋଡ଼
ପରାଭବ ଏହା କଲେ ପଢ଼ା । କବିସୂର୍ଯ୍ୟ. ସଙ୍ଗୀତ ।

नाराज ବୈଦେ. ବିଣ. (ଫା. ନାରାଜ୍)—୧ । ଅସନ୍ତୁଷ୍ଟ; ଅପ୍ରସନ୍ନ—
नाराज 1. Dissatisfied; displeased.

୨ । ଅସମ୍ମତ—2. Disagreeing; not agreeable.

୩ । ଅନିଚ୍ଛୁକ—3. Unwilling.

୪ । ରୁଷ୍ଟ—4. Angry.

ନାରାଜି—ଦେ. ବି. (ଫା. ନାରାଜୀ; ନାରାଜଗୀ)—
Nārāji ୧ । ଅସନ୍ତୋଷ; ଅପ୍ରସନ୍ନତା—
नाराजी 1 Dissatisfaction; displeasure.
नाराजगी; नाराजी ୨ । ଅନିଚ୍ଛା—2 Unwillingness.

୩ । ଅସମ୍ମତି—3. Disagreement

୪ । କ୍ରୋଧ, ରୋଷ—4 Anger

ନାରାୟଣ—ସ. ବି. ପୁଂ. (ନାର=ଜଳ+ଅୟନ=ସ୍ଥାନ; ନାର=ନରସମୂହ+ଅୟନ=ଆଶ୍ରୟ, ଯେ ସୃଷ୍ଟି ଆଦ୍ୟରେ ବା ପ୍ରଳୟକାଳରେ ଜଳରେ ଶୟନ କରିଥିଲେ, କିମ୍ବା ଯେ ନରମାନଙ୍କର ଆଶ୍ରୟ; ଅଥବା ନାର=ସାରୂପ୍ୟମୁକ୍ତି+ଅୟନ=ସ୍ଥାନ, ଯେ ସାରୂପ୍ୟମୁକ୍ତିର ସ୍ଥାନ)—୧ । ବିଷ୍ଣୁ; ଭଗବାନ୍—1 Name of Bishṇu,
Nārāyaṇa (ନାରାୟଣୀ—ସ୍ତ୍ରୀ)

୨ । ଋଷି ବିଶେଷ ( ନର ତଳେ ନୋଟ୍ ଦେଖ )
2 Name of a sage

୩ । ( ନାମ ) ଅଜାମିଳ ନାମକ ମହାପାପୀର ପୁତ୍ର—
3 Name of the son of a great sinner named Ajāmila.

[ଦ୍ର—ଅଜାମିଳ ଜୀବନ ସାକ ପାପ କରି ମୃତ୍ୟୁ କାଳରେ ପୁତ୍ରକୁ ଡାକିବା ଯୋଗୁଁ ନାରାୟଣ ନାମ ଉଚ୍ଚାରଣ କରିବାରୁ ମୁକ୍ତି ଲାଭ କରିଥିଲେ ।]

୪ । ପୌଷ ମାସ ( ହି ଶବ୍ଦସାଗର )—
4. The month Pausha.

୫ । ଅ ଅକ୍ଷର ( ହି ଶ. )—5 The alphabet 'A'

୬ । କୃଷ୍ଣ ଯଜୁର୍ବେଦାନ୍ତର୍ଗତ ଉପନିଷଦବିଶେଷ—
6 Title of an Upanishad in the Black Jajurbeda.

୭ । ଅସ୍ତ୍ର ବିଶେଷ ( ହି ଶବ୍ଦସାଗର )—
7. Name of a weapon.

ଦେ ବି. ପୁଂ.—ମନୁଷ୍ୟଙ୍କ ନାମ—Name given to males

ନାରାୟଣ ଆଚାର୍ଯ୍ୟ—ଦେ. ବି. ( ନାମ )—ଜନୈକ ଉତ୍କଳୀୟ କବି—
Nārāyaṇa āchārjya An oriya poet.

[ଦ୍ର—ଏ 'ସୁଲକ୍ଷଣା' ନାମକ ଖଣ୍ଡିଏ ଆଦିରସାତ୍ମକ କାବ୍ୟ ରଚନା କରିଥିଲେ—ତାରିଣୀ. ଉତ୍କଳ-ସାହିତ୍ୟ-ଇତିହାସ ]

ନାରାୟଣ କ୍ଷେତ୍ର—ସ. ବି.—୧ । ଗଙ୍ଗା ନଦୀର ପ୍ରବାହରୁ ଚାରିହାତ ପରିମିତ ସ୍ଥାନ ( ଏହି ପରିସରରେ ନାରାୟଣ ସର୍ବଦା ବିରାଜମାନ ଥିବାର କଳ୍ପିତ )—
Nārāyaṇa kshetra 1. The space of four cubits on each side of the water of the Ganges.

୨ । ବିଷ୍ଣୁ କ୍ଷେତ୍ର; ଯେଉଁ କ୍ଷେତ୍ରର ରକ୍ଷକ ବିଷ୍ଣୁ—
2 A sacred place presided over by Bishṇu.

**ନାରାୟଣ ଗାୟତ୍ରୀ**—ସ. ବ.—ତୈତ୍ତିରୀୟ ଆରଣ୍ୟକରେ ଲିଖିତ
Nārāyaṇa gāyatrī ନାରାୟଣ ଦେବଙ୍କ ନାମ ସମ୍ବଳିତ
ଗାୟତ୍ରୀ—An esoteric formula treating of the Deity Nārāyaṇa.
ନାରାୟଣ ବଦ୍ମହେ, ବାସୁଦେବାୟ ଧୀମହି ତନ୍ନୋ ବିଷ୍ଣୁଃ ପ୍ରଚୋଦୟାତ୍
ହି. ଶବ୍ଦସାଗର ।

**ନାରାୟଣ ତୈଳ**—ସ. ବ.—ଆୟୁର୍ବେଦୋକ୍ତ ତୈଳବିଶେଷ—
Nārāyaṇa taila Name of a medicated oil.

**ନାରାୟଣ ପାଇବା**—ଦେ. କ୍ରି.—( ଶୁଭବାଚନ ) ମରିଯିବା—
Nārāyaṇa pāibā ( euphemism ) To die.
(ନାରାୟଣ ଭଜିବା, ନାରାୟଣ ଲଭିବା, ନାରାୟଣ ହେବା—ଅନ୍ୟରୂପ)
वैकुंठ लाभ करना शरन लेना, बैकुण्ठ लाभ करना

**ନାରାୟଣ ପୁରୋହିତ**—ଦେ. ବ. ( ନାମ ) ଜଣେ ଓଡ଼ିଆ କବି—
Nārāyaṇa purohita An Oria poet
[ ଦ୍ର—ଏ 'ବୃତ୍ତରତ୍ନାକର' ନାମକ ଓଡ଼ିଆ ଛନ୍ଦବିଷୟକ ଖଣ୍ଡିଏ ଗ୍ରନ୍ଥ ରଚନା କରିଥିଲେ । ]

**ନାରାୟଣ ବଳି**—ସ. ବ.—ଆତ୍ମଘାତଦ୍ୱାରା ମୃତ ବ୍ୟକ୍ତିର ପଞ୍ଚତ ଆତ୍ମାର
Nārāyaṇa bali ପ୍ରାୟଶ୍ଚିତ୍ତ ପାଇଁ ନାରାୟଣ ଆଦି ପଞ୍ଚଦେବତାଙ୍କ ଉଦ୍ଦେଶ୍ୟରେ ଦିଆଯିବା ବଳି ( ହି. ଶ. )—
An oblation made in expiation of the sin of a suicide after his death.
[ ଦ୍ର—ହିନ୍ଦୁ ଶାସ୍ତ୍ର ଅନୁସାରେ ଆତ୍ମହତ୍ୟା ଗୋଟିଏ ଗୁରୁତର ପାପ । ଆତ୍ମଘାତୀ ଲୋକର ଔର୍ଦ୍ଧଦୈହିକ କ୍ରିୟା ସାଧାରଣ କ୍ରିୟା ପାଇଁ ନିର୍ଦ୍ଧାରିତ ସମୟରେ କରା ନ ଯାଇ ମୃତ୍ୟୁର ଏକ ବର୍ଷ ପରେ ନାରାୟଣ ବଳି ଓ ପର୍ଣ୍ଣନରଦାହ କରାଯାଇ ତତ୍ପରେ ଶ୍ରାଦ୍ଧ ଆଦି କରାଯାଏ । ଆତ୍ମଘାତୀ ଲୋକର ଶବଦାହ କରିବା ବ୍ୟକ୍ତିଙ୍କୁ ମଧ୍ୟ ପ୍ରାୟଶ୍ଚିତ୍ତ କରିବାକୁ ପଡ଼େ । ]

**ନାରାୟଣୀ**—ସ. ବ. ସ୍ତ୍ରୀ (ନାରାୟଣ+ସ୍ତ୍ରୀ. ଈ)—୧ । ଦୁର୍ଗା—
Nārāyaṇī Goddess Durgā.
[ ଦ୍ର—ମାର୍କଣ୍ଡେୟ ଚଣ୍ଡୀରେ ବର୍ଣ୍ଣିତ ଅଛି ଯେ ଏ ନାରାୟଣଙ୍କ ଦେହରୁ ଜାତ ହୋଇଥିଲେ । ]
୨ । ଲକ୍ଷ୍ମୀ—2. Lakshmī.
୩ । ଗଙ୍ଗା—3. The Ganges.
୪ । ମୁଦ୍ଗଲ ମୁନିଙ୍କ ପତ୍ନୀ—
4. The name of the wife of the sage Mudgala.
୫ । ଶତାବରୀ; ଶତମୂଳୀ, ଛତୁଆରୀ—
5. The Indian climbing asparagus; Asparagus Racemocus.
୬ । ନାରାୟଣୀ ସେନା ( ଦେଖ )
6. Nārāyaṇī senā ( See )
୭ । ( ପୁଂ ) ବିଶ୍ୱାମିତ୍ରଙ୍କ ଏକ ପୁତ୍ର—
7. Name of a son of sage Biswāmitra.
ସ ବିଣ. ସ୍ତ୍ରୀ—ନାରାୟଣଙ୍କ ଶରୀରରୁ ଉତ୍ପନ୍ନା—
Born of the body of Nārāyaṇa.
(ଯଥା—ନାରାୟଣୀ ସେନା; ନାରାୟଣୀ ଶକ୍ତି । )
ଦେ. ବ. ସ୍ତ୍ରୀ—ସ୍ତ୍ରୀଲୋକଙ୍କୁ ଦିଆଯିବା ନାମ—
A nama given to females.

**ନାରାୟଣୀୟ**—ସ. ବିଣ (ନାରାୟଣ+ଈୟ)—ନାରାୟଣସମ୍ବନ୍ଧୀୟ—
Nārāyaṇīya Relating to the Deity Nārāyaṇa
[ ଦ୍ର—ମହାଭାରତର ଶାନ୍ତିପର୍ବରେ ନାରାୟଣ ଓ ନାରଦଙ୍କ ମଧ୍ୟରେ କଥୋପକଥନର ନାମ ନାରାୟଣୀୟ ଉପାଖ୍ୟାନ । ]

**ନାରାୟଣୀ ସେନା**—ସ ବ—ନାରାୟଣଙ୍କ ଦେହରୁ ଉଦ୍ଭୂତ ସେନା—
Nārāyaṇī senā An army which was said to come out of the body of Nārāyaṇa.
[ ଦ୍ର—ଦୁର୍ଯ୍ୟୋଧନ କୁରୁକ୍ଷେତ୍ର ଯୁଦ୍ଧରେ ଶ୍ରୀକୃଷ୍ଣଙ୍କଠାରୁ ସାହାଯ୍ୟରୂପେ ଏହି ସେନା ପାଇଥିଲେ କିନ୍ତୁ ସ୍ୱୟଂ ଶ୍ରୀକୃଷ୍ଣ ପାଣ୍ଡବଙ୍କ ପକ୍ଷରେ ସାରଥି ହୋଇଥିଲେ । ]

**ନାରାଶଂସ**—ସ. ବିଣ—୧ । ମନୁଷ୍ୟର ପ୍ରଶଂସାବିଷୟକ (ହି. ଶ.)—
Nārāśaṁsa 1. Eulogistic.
୨ । ସ୍ତୁତିସମ୍ବନ୍ଧୀୟ—2. Relating to praise.
ସ. ବ—୧ । ବେଦରେ ରାଜା ଆଦିଙ୍କ ପ୍ରଶଂସାତ୍ମକ ମନ୍ତ୍ର (ହି.ଶ)
1 Vedic formulas eulogising the kings.
୨ । ପିତୃଲୋକଙ୍କୁ ଯେଉଁ ଚମସରେ ସୋମରସ ଅର୍ପିତ ହୁଏ—
2. A spoon in which the Soma juice is offered to the souls of deceased ancestors.
୩ । ପିତୃଗଣ—3 The spirits of the deceased ancestors.
୪ । ପିତୃଲୋକଙ୍କ ପାଇଁ ରକ୍ଷିତ ସୋମରସ—
4 The Soma juice reserved for the spirits of the deceased ancestors.

**ନାରାଶଂସୀ**—ସ. ବ—୧ । ମନୁଷ୍ୟର ପ୍ରଶଂସା (ହି ଶ.)
Nārāśaṁsī 1 The praise of man.
୨ । ରାଜା ଆଦିଙ୍କ ଦାନର ପ୍ରଶସ୍ତି ଥିବା ବେଦର ମନ୍ତ୍ରାଂଶ ( ହି. ଶ. )—2 The part of the vedic formulas which praise the Rajas for their meritorious donations.

**ନାରିକ**—ସ. ବିଣ. ( ନର+ଇକ )—୧ । ଜଳ ସମ୍ବନ୍ଧୀୟ—
Nārika 1. Relating to water; aquatic.
୨ । ଜଳୀୟ—2 Full of water.
୩ । ଆତ୍ମସମ୍ବନ୍ଧୀୟ; ଆଧ୍ୟାତ୍ମିକ—
3 Spiritual; relating to the soul.
ସ. ବ.—ଜଳମୟ ସ୍ଥାନ—
A place full of water.

**ନାରିକିରି ବାଇଗଣ**—ଦେ. ବ (ସ. ନାରିକେଳରୁ) ସଦାଫଳା (ଦେଖ)
Nārikiri bāigaṇa Sadāphalā ( See )
ନାରକେଳ ବାଇଗଣ } ଅନ୍ୟରୂପ
ନାରକେଳ ବାଇଗଣ }
[ଦ୍ର—ନାରିକେଳ ବା ନଡ଼ିଆପରି ବଡ଼ ବଡ଼ ଗଛରେ ଫଳ ଥିବାରୁ ଏହି ନାମ ହୋଇଅଛି । ]
तगबीसजमन

**ନାରିକେର୍**— ସ ବି.—( ନାରକ=ଜଳମୟ ସ୍ଥାନ+ଇ ଧାତୁ=ଗମନ
Nārikera କରିବା+ସଜ୍ଞାର୍ଥେ ଅ )—ନଡ଼ିଆ ( ଦେଖ )—
Nardiā ( See )

**ନାରିକେରି ବାଇଗଣ**—ଦେ. ବି—ସଦାଫଳା ( ଦେଖ )
Nārikeri bāigaṇa Sadāphaḷā ( See )

**ନାରିକେଳ**—ସ ବି. ( ନାରକ=ଜଳମୟ ସ୍ଥାନ+ଇ ଧାତୁ=ଗମନ
Nārikeḷa କରିବା+ସଜ୍ଞାର୍ଥେ. ଅ )—ନଡ଼ିଆ ( ଦେଖ )
Nardiā ( See )
(ନାରିକେଳ, ନାରିକେଳ(ଳୀ), ନାରକେଲ, ନାରକେର, ନାରି-କେଳ(ଳୀ), ନାଡ଼(ଡି)କେର, ନାଳକେଳ(ଳୀ)—ଅନ୍ୟରୂପ)

**ନାରିକେଳ କ୍ଷୀରି**—ସ ବି ( ନାରିକେଳ+କ୍ଷୀର+ଇ )—
Nārikeḷa kshiri ନଡ଼ିଆ କୋରିରେ ପ୍ରସ୍ତୁତ ଏକପ୍ରକାର ମିଷ୍ଟାନ୍ନ—A sweetmeat made of the scrapings of the cocoanut kernel.
[ ଦ୍ର—ନଡ଼ିଆ କୋରିକୁ ଘିଅ ଓ ଚିନିରେ ମିଶାଇ ଦୁଧରେ ସିଦ୍ଧ କରି ଗାଢ଼ା ହେଲେ ଓହ୍ଲାଇ ଏହା ତିଆରି ହୁଏ । ]

**ନାରିକେଳ ଖଣ୍ଡ**—ସ. ବି—ଆୟୁର୍ବେଦୋକ୍ତ ଔଷଧବିଶେଷ—
Nārikeḷa khaṇḍa A medicinal preparation
[ ଦ୍ର—ଏଥିର ପ୍ରଧାନ ଉପକରଣ ନଡ଼ିଆ । ନଡ଼ିଆ କୋରିରେ ଘିଅ ଓ ଚିନି ମିଶାଇ ନଡ଼ିଆ ପାଣିରେ ଏହାକୁ ସିଝାଇ ଏଥିରେ ଧନିଆ, ପିପ୍ପଳୀ, ବଂଶଲୋଚନା, ଅଳାଇଚ, ନାଗକେଶର ଓ ତେଜପତ୍ରର ଚୂର୍ଣ୍ଣ ମିଶାଇ ଏହା ତିଆରି ହୁଏ । ଏଥିରେ ଅମ୍ଳପିତ୍ତ, ଅରୁଚି, କ୍ଷୟ ରୋଗ, ରକ୍ତପିତ୍ତ ଓ ଶୂଳ ଦୂର ହୁଏ ଓ ପୁରୁଷତ୍ବ ବୃଦ୍ଧି ହୁଏ । ହି. ଶ ]

**ନାରିକେଳ ତୈଳ**—ସ. ବି—ନଡ଼ିଆ ତେଲ ( ଦେଖ )
Nārikeḷa taiḷa Nardiā tela ( See )

**ନାରିକେଳାସବ**—ସ. ବି—ନଡ଼ିଆ ଗଛରୁ ଉତ୍ପନ୍ନ ମଦ୍ୟ ବା ତାଡ଼ି—
Nārikeḷāsaba Wine or toddy produced from cocoanut trees.
[ ଦ୍ର—ମାନ୍ଦ୍ରାଜ ଅଞ୍ଚଳରେ ନଡ଼ିଆ ଗଛର କଞ୍ଚା ଖୋଷା ବା ଫଳକୋଷର ଅଗକୁ କାଟି ସେଥିରୁ ଖଜୁରି ରସ ଭଳି ଏକପ୍ରକାର ତାଡ଼ି ବାହାର କରାଯାଏ । ]

**ନାରିକେଳି ବାଇଗଣ**—ଦେ. ବି—ସଦାଫଳା ( ଦେଖ )
Nārikeḷi bāigaṇa Sadāphaḷā ( See )

**ନାରିକେଳୀ**—ସ. ବି—୧ । ନଡ଼ିଆ ( ଦେଖ )
Nārikeḷi 1. Nardiā ( See )
୨ । ନଡ଼ିଆ ପାଣି ବାସି ହୋଇ ତହିଁରୁ ଉତ୍ପନ୍ନ ମଦ୍ୟ—
2. A fermented liquor made from the water of the cocoanut (Apte).

**ନାରିଗିଣିଆଁ**—ପ୍ରାଦେ. (ଗଡ଼ଜାତ) ବି—ନାରଗୁଣି ( ଦେଖ )
Nāriginiāñ Nāraguṇi ( See )

**ନାରିବା**—ପ୍ରାଦେ. (ସମ୍ବଲପୁର) କି—ପ୍ରତାରଣା କରିବା—
Nāribā To cheat.
ଏକଠାରେ ଥାଇ ନାରୁଅଛ ଦେଖ ଦେଖ ।
ପ୍ରାଚୀ. ବ୍ରହ୍ମକଳ୍ପଣ ଗୀତା ।

**ନାରୀ**—ସ. ବି. ସ୍ତ୍ରୀ. ( ନର+ସମ୍ବନ୍ଧାର୍ଥେ ଅ+ସ୍ତ୍ରୀ. ଈ )—
Nāri ୧ । ସ୍ତ୍ରୀ ଜାତି; ସ୍ତ୍ରୀ ଲୋକ—1. Woman.
୨ । ଭାର୍ଯ୍ୟା; ପତ୍ନୀ—2 Wife
୩ । ୨୩ ଅକ୍ଷର ଯୁକ୍ତ ଛନ୍ଦୋବିଶେଷ—
3. Name of a sanskrit metre of 23 letters.
ଦେ. ବି—୧ । ପରଦାର ଗମନ—1. Adultary.
୨ । (ଅଦରାର୍ଥକ) ନରହରି, ନରସିଂହ ଓ ନାରାୟଣର ଡାକ ନାମ—2. A name for calling persons named Narahari, Narasimha and Nārāyaṇa.

**ନାରୀ କବଚ**—ସ ବି. (ନାମ)—ସୂର୍ଯ୍ୟ ବଂଶୀୟ ରାଜା, ମୂଳକ ରାଜା—
Nāri kabacha Name of a king of the solar dynasty.
[ ଦ୍ର—ଏ ଅଶ୍ମକ ରାଜାଙ୍କ ପୁତ୍ର ଓ ସୌଦାସଙ୍କ ପୌତ୍ର ଥିଲେ । ଯେତେବେଳେ ପରଶୁରାମ କ୍ଷତ୍ରିୟମାନଙ୍କୁ ବିନାଶ କରିବାରେ ଲାଗିଥିଲେ ଏ ଆପଣାକୁ ସ୍ତ୍ରୀମାନଙ୍କ ଦ୍ବାରା ଘେରାଇ ବଞ୍ଚି ଯାଇଥିଲେ । ଏଥିପାଇଁ ଏହାଙ୍କର ଏହି ନାମ । ଏହାଙ୍କଠାରୁ କ୍ଷତ୍ରିୟମାନଙ୍କର ପୁଣି ବଂଶ ବିସ୍ତାର ହେଲା । ଏଥିପାଇଁ ଏହାଙ୍କର ଅନ୍ୟ ନାମ ମୂଳକ । ହି. ଶବ୍ଦସାଗର । ]

**ନାରୀକେଳ(ଳୀ)**—ସ ବି—ନଡ଼ିଆ ( ଦେଖ )
Nārikeḷa(ḷi) Nardiā ( See )

**ନାରୀଚ**—ସ. ବି—ନଳିତା ଶାଗ, ନାଡ଼ୀଚ—
Nāricha Jewsmallow used as pot-herb.

**ନାରୀ ଚଉର**—ଦେ. ବି. (ପଦ୍ୟ) (ସ. ନାରୀ+ଚୌର)—ସ୍ତ୍ରୀଚୋର—
Nāri chaura A kidnapper of woman.
ବୋଲେ କଲୁ କି ବୁଦ୍ଧି ନାରୀଚଉର ସିଦ୍ଧି ମାଗର ହୋଇଲା ପ୍ରସିଦ୍ଧି ।
ଭଞ୍ଜ. ବୈଦେହୀଶବିଳାସ ।

**ନାରୀ ତରଙ୍ଗକ**—ସ. ବିଣ. ପୁଂ. (ନାରୀ+ତରଙ୍ଗ=ଭଙ୍ଗୀ+କ)—
Nāri taraṅgaka ଲମ୍ପଟ; କାମୁକ—Lecherous; amorous.

**ନାରୀ ତୀର୍ଥ**—ସ. ବି—ଏକ ତୀର୍ଥ, ଯେଉଁଠାରେ ୫ଜଣ ଅପ୍ସରା ବ୍ରାହ୍ମଣଙ୍କ ଶାପରେ ଜଳଜନ୍ତୁ ପାଲଟି ଯାଇଥିଲେ—
Nāri tirtha Name a sacred place of the Hindus where five heavenly nymphs were changed to aquatic animals by the curse of Brāhmaṇas.
[ ଦ୍ର—ଅର୍ଜୁନ ଏମାନଙ୍କୁ ଶାପରୁ ଉଦ୍ଧାର କରିଥିଲେ । ମହାଭାରତ—ହି. ଶ. ]

**ନାରୀଦୂଷଣ**—ସ. ବି.—( ୬ଷ୍ଠୀ ତତ୍; ନାରୀ+ଦୂଷଣ )—
Nāridūshaṇa ନାରୀ ପକ୍ଷରେ ଦୋଷାବହ କାର୍ଯ୍ୟ—
A breach of duty of a woman; acts derogatory to the dignity of a woman.
[ ଦ୍ର—ମଦ୍ୟପାନ, କୁସଂସର୍ଗ, ସ୍ୱାମିବିୟୋଗ, ଇତସ୍ତତଃ ଭ୍ରମଣ, ପରର ଗୃହରେ ଶୟନ ଓ ପରର ଗୃହରେ ବାସ ଏହି ଛଅ ଗୋଟି କର୍ମ ନାରୀର ଦୂଷଣ ଅଟେ । ]

**ନାରୀ ଧର୍ମ**—ସ. ବି. —( ଷଷ୍ଠୀ ତତ୍; ନାରୀ+ଧର୍ମ )—
Nārī dharma ୧ । ନାରୀଗଣର ପ୍ରତିପାଲ୍ୟ ଧର୍ମ—1. Womanhood; the duties of a woman or a wife.
୨ । ସତୀତ୍ୱ; ପାତିବ୍ରତ୍ୟ ଧର୍ମ—2. Whole-hearted devotion and fidelity to one's husband
୩ । ସ୍ତ୍ରୀମାନଙ୍କର ଋତୁ—3 Menstrual flux.

**ନାରୀ ପରାୟଣ**—ସ. ବିଣ. ପୁଂ.—( ବହୁବ୍ରୀହି; ନାରୀ+ପର=ଶ୍ରେଷ୍ଠ
Nārī parāyana +ଅୟନ=ଅବଲମ୍ବନ )—
୧ । ସ୍ତ୍ରୀ ଭକ୍ତ—1. Devoted to woman.
୨ । ସ୍ତ୍ରୈଣ—2. Effeminate
୩ । ମାଇପୀ ଛାଡ଼ାଣା—3. Passionately fond of women.
୪ । ସ୍ତ୍ରୀଙ୍କ ଦ୍ୱାରା ଶାସିତ—4. Dominated by wives.

**ନାରୀ ପ୍ରସଙ୍ଗ**—ସ. ବିଣ. ପୁଂ.—ନାରୀତରଙ୍ଗକ ( ଦେଖ )—
Nārī prasaṅga Nārītaraṅgaka ( See ).

**ନାରୀ ପ୍ରିୟ**—ସ. ବିଣ. ପୁଂ.—ନାରୀପରାୟଣ ( ଦେଖ )—
Nārī priya Nāriparāyaṇa ( See ).

**ନାରୀମହଲ**—ଦେ. ବି.—୧ । ସ୍ତ୍ରୀମାନଙ୍କ ରହିବା ଅନ୍ତଃପୁର—
Nārīmahala 1. The female apartments;
অন্দর মহল seraglio.
**रानीमहल** ୨ । ରାଣୀହଂସପୁର—2. The part of the palace where the Ranees live.

ନାରୀ ମହଲକୁ ସନ୍ଦେଶ ପଠାଇ; କୋମଳ କରେ ଏ ଭାର ଅର୍ପିଲେ ।
ନନ୍ଦକିଶୋର. କୃଷ୍ଣକୁମାରୀ ।

**ନାରୀ ରତ୍ନ**—ସ. ବି.—( ୭ମୀ ତତ୍ ନାରୀ+ରତ୍ନ )—
Nārī ratna ସର୍ବଗୁଣ ଭୂଷିତା ସ୍ତ୍ରୀ—A jewel among women; a noble lady.

**ନାରୀଷ୍ଟା**—ସ. ବି.—(ନାରୀ+ଇଷ୍ଟ+ଅ )—
Nārishtā ମଲ୍ଲିକା—Jasminum Sambac.

**ନାରୁ**—ଗ୍ରା. ଅ.—( ଅପଣାଠାରୁ ସାନତର ବ୍ୟକ୍ତି ଯାହାକୁ 'ତୁ' ବୋଲି
Nāru ସମ୍ବୋଧନ କରାଯାଏ, ତା ପ୍ରତି ପ୍ରଯୁଜ୍ୟ; ଅନ୍ୟ ଅସମାପିକା
নি; নাব କ୍ରିୟା ପରେ ଲାଗେ, ଅନୁରୋଧାର୍ଥକ;
**ना** ଅର୍ଥ=ନପାରୁକି ? )—
( ନାରେ—ଆଦରାର୍ଥକ ରୂପ ) ଅମୁକ କାର୍ଯ୍ୟ କରି ପାରୁନାହିଁ କି, ଅର୍ଥାତ୍ ତୋତେ ଅନୁରୋଧ କରୁଛି ତୁ ଅମୁକ କାର୍ଯ୍ୟ କର—
Won't you?

କହୁ ବୋଲ ଯେ ଲକୁ ବୋଉ । ଥାନ ଛକେ ଦେଇ ନାରୁ,
ମୋ କଳନ୍ତୁ ବଡ ଦୁଃଖ . କରୁଣୀ ମାଉର ଲୁହ୍ଲୁଛ
ତୁଟ୍ ପଲା, ତୁଟ୍ ପଲା । ଛପାଶଠି କାହାଣୀ ।

**ନାରୁ** ଦେ. ବି.—୧ । ଆଦରାର୍ଥକ ) ନାରାୟଣ, ନରହରି,
**नारु** ନରସିଂହର ଡାକ ନାମ—1. Name for calling
( ନାରୁଅ—ଅନାଦରାର୍ଥକ )— Nārāyana etc.
୨ । ମନୁଷ୍ୟଙ୍କ ଦେହରେ ହେବା କୃମିଜାତ, ରୋଗବିଶେଷ—
2. A disease accompanied with small eruptions on the body due to thread worms.

[ ଦ୍ର—ଏ ରୋଗରେ ଅଣ୍ଟାଠାରୁ ଗୋଡ଼ ତଳପା ପର୍ଯ୍ୟନ୍ତ ଅଂଶରେ ଛୋଟ ଛୋଟ ବ୍ରଣ ବା ଲୁଣ୍ଡିଆ ବାହାରେ ଓ ଉକ୍ତ ସ୍ଥଳରୁ ୧ ଫୁଟ ଠାରୁ ୪୫ ଫୁଟ ଲମ୍ବ ସୂତା ପରି ସରୁ କୃମି ଟାଣା ହୋଇ ବାହାର କରା ଯାଆନ୍ତି । ଏ କୃମି ଚର୍ମଗତ ହୋଇଥିବା ପର୍ଯ୍ୟନ୍ତ ଏମାନଙ୍କ ମୁଣ୍ଡକୁ ସଣ୍ଡ଼ୁଅସିରେ ଧରି ଏମାନଙ୍କୁ ଟାଣି ବାହାର କରାଯାଏ; କାରଣ ଏମାନେ ରକ୍ତନାଡ଼ି ସଙ୍ଗେ ମିଶିଗଲେ ବାତଜର ଓ ଗୋଦର ରୋଗ ହୁଏ । ଏହା ଗ୍ରୀଷ୍ମପ୍ରଧାନ ଦେଶବାସୀଙ୍କୁ ଧରିବାର ଦେଖାଯାଏ । ଏ କୀଟମାନେ ଅତି ଛୋଟ ଛୋଟ ଥିବାବେଳେ ପାଣିରେ ବା ସନ୍ତସନ୍ତିଆ ଭୂମିରେ ଚରୁଥାଆନ୍ତି ଓ ଖାଲି ଦେହ ବା ଗୋଡ଼ ବାଟେ ଶରୀରକୁ ପ୍ରବେଶ କରନ୍ତି । ଏ ରୋଗ ଆକ୍ରମଣ କଲେ ମନୁଷ୍ୟ ଦୁର୍ବଳ ଓ କ୍ଷୀଣକାୟ ହୋଇଯାଏ । ]

**ନାରୁଗୁଣି**—ଦେ. ବି.—ନାରଗୁଣି ( ଦେଖ )—
Nāruguṇi Nāraguṇi ( See ).

**ନାରୁନ୍ତୁଦ**—ସ ବିଣ.—ଅନାହତ; ଯାହାର ଦେହରେ କୌଣସି
Nāruntuda ପ୍ରକାରର ଆଘାତ ଲାଗି ନ ପାରେ ( ଶ୍ରୁ. ଶ. )
ଅକାଟ୍ଟ—Invulnerable to all sorts of hurt.

**ନାରେଙ୍ଗା**—ଦେ. ବି.—ନାରଙ୍ଗା (ଦେଖ)
Nāreṅgā Nāraṅā (See)

**ନାରେଙ୍ଗି**—ଦେ. ବି.—ନାରଙ୍ଗା (ଦେଖ)
Nāreṅgi Nāraṅgā (See)
ଦେ. ବିଣ. ନାରଙ୍ଗି (ଦେଖ)—Nāraṅgi (See)

**ନାରେଣୀ**—ଗ୍ରା. ବି.—ନାରାଏଣୀ (ଦେଖ)
Nāreṇī Nārāeṇī (See)

**ନାରେ**—ଦେ. ଅ. (ମାନ୍ୟ ବ୍ୟକ୍ତି ପ୍ରତି ଅନୁରୋଧ ସୂଚକ ପ୍ରଶ୍ନ)—ତୁମେ
Nāro (ଅମୁକ କାର୍ଯ୍ୟ କର) ନ ପାର କି ?—
না **ना** Won't you.
[ଦ୍ର—ତୁଳନା କର ବ. ନାର=ଅମି ନା ପାର, ଓଡ଼ିଆ—ମୁଁ ନ ପାରେଁ, ବ—ତୁମି ନା ପାର, ଓ—ମୁଁ ନ ପାରେ ।]

**ନାର୍ପତ୍ୟ**—ସ. ବିଣ (ନୃପତି+ସମ୍ବନ୍ଧାର୍ଥେ. ଯ)—ନୃପତି ସମ୍ବନ୍ଧୀୟ—
Nārpatya Kingly; royal.

**ନାର୍ମଦ**—ସ. ବିଣ. (ନର୍ମଦା+ଅ)—ନର୍ମଦା ନଦୀ ସମ୍ବନ୍ଧୀୟ—
Nārmada Relating to the Nervada river.
ସ. ବି.—ନର୍ମଦା ନଦୀ ଗର୍ଭରୁ ମିଳିବା ଶିବ ଲିଙ୍ଗ—
Phallic images got from the bed of the Nervada river.

**ନାର୍ଯ୍ୟଙ୍ଗ**—ସ. ବି.—(ନାରୀ+ଅଙ୍ଗ; ଏହା ନାରୀର ଅଙ୍ଗ ବା ସ୍ତନ ପରି
Nārjyaṅga ଦେଖା ଯିବାରୁ)—ନାରଙ୍ଗ (ଦେଖ)—
Nāraṅga (See)

**ନାଲ୍‌ଗାଲିଆ**—ଦେ. ବି.—ନେହୁଲିଆ (ଦେଖ)
Nālgāliā Nehuliā (See)

**ନାଲ୍‌ଟେଣ**—ବୈଦେ. ବି.—(ଇଂ. ଲଣ୍ଠର୍ନ୍)—କାଚ ଲାଗିଥିବା ବତୀ
Nāl-ṭana ଯାହାକୁ ହାତରେ ଓହଳାଇ କଥାଥଣା କରାଯାଏ—
লাণ্ঠন **लालटेन** Lantern.
(ନାଲ୍‌ଟିଣ, ନାଲ୍‌ଟିଣୀ—ଅନ୍ୟରୂପ)

**ନାଲ**—ସ. ବି (ନଲ୍ ଧାତୁ—ବନ୍ଧନ କରିବା+କର୍ତ୍ତୃ. ଅ)—୧ । ନଳ-
Nāla 1. Tube.
୨ । ମୃଣାଳ—2. The stem or stalk of lotus.
କରିହ ଛେ ହ କଣେ, ଜନ୍ମିବାର କରସେ
ସାରସ ନାଳେ ଚଳ ସେ । ଉଷ୍ଟ, ବୈଦେହୀଶବିଳାସ ।
୩ । ଶୂନ୍ୟ ଗର୍ଭ ବା ଫମ୍ପା ଡାଙ୍ଗ; ନାଡ଼—
3. A hollow stem or reed.
୪ । ହରିତାଳ—4. Yellow orpiment.
୫ । ଶୈଷ୍ଟ ଗଛର ବଲଡାର ଡାଙ୍ଗ—
5 Stem or stalk of plants and creepers.
୬ । ବନ୍ଧୁକର ନଳ—6. The barrel of a gun
୭ । ଫୁଙ୍କ ନଳ—7. Blow pipe.
୮ । ତନ୍ତୁକ କଣ୍ଡା—8. Weaver's shuttle.
୯ । କଲମକୁ ଛେଲିବା ବେଳେ ତହିଁରୁ ବାହାରିବା ପତଳା ଛୁଲିକା—(ହି. ଶ.)—9 The scraping from a quill pen.

ଦେ ବି. (ସ. ଲାଲା)—୧ । ପାଟିରୁ ବୋହିବା ଲାଳ; ବୃଣିକା— 1. Slaver; saliva
ଲାଳା, ନାଲ ୨ । ଅଠାଳିଆ ରସ—
ଲାର 2. Gummy liquid or juice.
ଆମ ୩ । ଆମ; ପେଟ ମଧ୍ୟରେ ଥିବା ଆମ (ଯାହା ଝାଡ଼ା ବାଟେ
ଲଜ୍ଜା ବାହାରେ)—3 Mucus inside the system.
ନାଳା, କେନାଲ ୪ । (ସ. ନାଲ)—କୃତ୍ରିମ ନଦୀ; କେନାଲ—
ନହର 4. Canal; artificial channel dug for irrigation purposes.
[ଦ୍ର—ନଦୀ ଅବରୁ ପାଣି ନେବା ନିମନ୍ତେ କୃତ୍ରିମ ଜଳନାଳ ଖୋଳ ଲୋକେ ସେ ବାଟେ ଡଙ୍ଗା ଆଦି ଚଳାନ୍ତି ଓ ଜମିଳ ଯେଉଁକୁ ଜଳ ଦିଅନ୍ତି । ପୂର୍ବକାଳରେ ଅନେକ ନାଳ ଖୋଳା ଯାଇଥିଲା ଓ ଆଧୁନିକ ଯୁଗରେ ଅନେକ ନାଲ ଖୋଳା ଯାଇଅଛି । ଭାରତରେ ଇଂରାଜ ଗଭର୍ଣ୍ଣମେଣ୍ଟ ବଡ଼ ବଡ଼ ନଦୀମାନ ବନ୍ଧାଇ ସେଥିରୁ ନାଲ ବାଟେ ପାଣି ନେଇ ବ୍ୟବସାୟ ଓ କୃଷିର ପଥ ସୁଗମ କରି ଅଛନ୍ତି ।]

**ନାଲ**—ବୈଦେ. ବି. (ଫା. ଲାଲ୍)—୧ । ରକ୍ତବର୍ଣ୍ଣ—
Nāla 1. Red colour.
ଲାଲ୍ ୨ । (ଆ. ନାଲ୍) ଘୋଡ଼ା ଓ ଗୋରୁଙ୍କ ଖୁରରେ ମରାଯିବା
ଲାଲ ଅର୍ଦ୍ଧ ଚନ୍ଦ୍ରାକାର ଲୌହ ପଟ୍ଟ—2. Horse-shoe; iron
ନାଲ shoes put to the hoofs of beasts of burden.
ନାଲ [ ଦ୍ର—ଘୋଡାର ତଳା ଘୋର ହୋଇ ନ ଯିବ ବୋଲି ଘୋଡାର ତଳରେ ମଧ୍ୟ ନାଲ ମରାଯାଏ । ]
ଲାଲ ୩ । ଏକ ପ୍ରକାର ଅତି କ୍ଷୁଦ୍ର ଓ ସୁନ୍ଦର ରକ୍ତବର୍ଣ୍ଣ ପକ୍ଷୀ ଓ
ଲାଲସର ବାରମାସୀ ଚଢ଼େଇ—3. A very tiny bird of red colour with white tips on it; the bull finch (Pyrhula Vulgaries.)
[ଦ୍ର—ଏହାର ବେକ ଓ ମୁଣ୍ଡ ରକ୍ତ ବର୍ଣ୍ଣ; ଛାତି ନାନାବର୍ଣ୍ଣ ଚିତ୍ରିତ, ପିଠି କଳା ଓ ଡେଣା ସୁନାର ରଙ୍ଗ । ଲୋକେ ଏ ପକ୍ଷୀମାନଙ୍କୁ ସଉକରେ ପାଳନ୍ତି ।]
ଲାଲ ୪ । ଏକ ପ୍ରକାର ମାଣିକ୍ୟ—
ଲାଲ 4. A kind of jem; ruby.
ହାଲ ୫ । ହାଲ; ଶଗଡ଼ ଉପରେ ଭିଡ଼ା ଯିବା ଲୁହାର ବଳୟ—
ଲାଲ; ହାଲ 5. The iron rim round a wooden wheel.
୬ । (ହି. ଲାଲ୍) ହିନ୍ଦୁ ନାମ ସଙ୍ଗେ ଯୁକ୍ତ ଲାଲ ଶବ୍ଦର ଗ୍ରାମ୍ୟ ଉଚ୍ଚାରଣ (ଯଥା ରାମ ନାଲ; କହ୍ନେଯାଲାଲ)—
6 A pronunciation of the particle 'Lal' used after Hindustanee names (e.g. in Ramlal; Kahneyalal).
ଲାଲ ବିଣ (ଫା. ଲାଲ୍)—ଆରକ୍ତ; ରକ୍ତବର୍ଣ୍ଣବିଶିଷ୍ଟ—
ଲାଲ Red-coloured.

**ନାଳ ଇଲାକା**—ଦେ. ବି—ଗଭର୍ଣ୍ଣମେଣ୍ଟଙ୍କର କେନାଲ ବିଭାଗ—
Nāla ilākā Canal department of Government.

**ନାଲ କର**—ଦେ. ବି—କେନାଲ ପାଣି ବଳରେ ମାଡ଼ିବା ଯୋଗୁଁ ପ୍ରଜା
Nāla kara ଗଭର୍ଣ୍ଣମେଣ୍ଟଙ୍କୁ ଯେଉଁ କର ଦିଏ—
କେନାଲ କର Canal revenue.
ନହରକା କର

**ନାଲକୀ**—ଦେ. ବି (ସ. ନାଲ=ଦଣ୍ଡ)—ମରହଟ୍ଟୀ ପାଲିଙ୍କି—
Nālakí A kind of old fashioned sedan.
ନାଲକୀ ନାଲକୀ [ ଦ୍ର—ଏଥିର ଛାତରେ ନାନା କାରୁକାର୍ଯ୍ୟବିଶିଷ୍ଟ ଗୁରୁକୋଣିଆ ଆବରଣ ଥାଏ ଓ ତାହା ଲମ୍ବା ହୋଇ ଉପରକୁ ବାହାରିଥାଏ । ଗୋଟିଏ ଲମ୍ବ ବଙ୍କା ବାଉଁଶ ସେହି ଛାତର ମଝିରେ ପଶିଥାଏ ଓ ବାଉଁଶର ଆଗପାଖ ଓଠମୁହାଁ । ଆଗ ଓ ପଛପାଖେ ବାହକମାନେ କାନ୍ଧାଇ ନିଅନ୍ତି ଓ ଏଥିର ତଳେ ଗୋଟିଏ ଖଟ ବନ୍ଧା ହୋଇଥାଏ । ଏହାର ଦୁଇ ପାଖ ମେଲା । ଆଜିକାଲି ଏଥିରେ ବର ବସି ଶୋଭାଯାତ୍ରା କରେ । ]

**ନାଲ ଗଡ଼ା(ଡ଼େ)ଇବା**—ଦେ. କ୍ରି—୧ । ନିଜ ମୁଖରୁ ଲାଳ ବହିବାକୁ
Nāla gardā(rde)ibā ଦେବା—1 To let saliva
ଲାଲଗଡ଼ାନ flow out from one's mouth.
ଲାର୍ଟପକାନା ୨ । ଔଷଧ ପ୍ରୟୋଗଦ୍ୱାରା ମୁହଁରୁ ଲାଳ ସ୍ରବିବାର
ନାଲବୁହା(ହେ)ଇବା } ଅନ୍ୟରୂପ ଉପାୟ କରିବା—
ନାଲଟପକା(କେ)ଇବା } 2 To cause salivation.
୩ । କୌଣସି ଲୋଭନୀୟ ବସ୍ତୁ ଦେଖାଇ ଅନ୍ୟଙ୍କୁ ଲାଳାୟିତ କରିବା—3. To cause a person's mouth to water by putting before him something.

**ନାଲଗଡ଼ିବା**—ଦେ. ବି—କୌଣସି ବ୍ୟକ୍ତିର ପାଟିରୁ ଲାଳ ସ୍ରବିବା;
Nālagardibā ଲାଳସ୍ରାବ—Salivation; the flowing
ଲାଲଝରା of saliva from the mouth of
ଲାର୍ଟପକନା a person.

ନାଲବ(ବୋ)ହୁବା
ନାଲପଡ଼ିବା
ନାଲଝଡ଼ିବା
ନାଲସ୍ରବିବା } ଅନ୍ୟରୂପ [ ଦ୍ର—ପ୍ରବାଦ ଅଛି ଯେ ଯେଉଁ ପିଲା ଗର୍ଭରେ ଥିଲାବେଳେ ଗର୍ଭଧାରଣୀର ଦୋହଦ ବା ଅଭିଳାଷ ମେଣ୍ଟି ନ ଥାଏ ସେ ପିଲାର ପାଟିରୁ ନାଲ ଗଡ଼େ । ଖାଦ୍ୟ ଦ୍ରବ୍ୟ ଦେଖିଲେ କେତେକ ଜୀବଙ୍କର ଓ ବିଶେଷତଃ ଖଟା ଜିନିଷ ଦେଖିଲେ ମନୁଷ୍ୟମାନଙ୍କ ପାଟିରୁ ସ୍ୱଭାବତଃ ନାଲ ବହେ; କେତେକ ଲୋକଙ୍କର ଅଖିଆ ଖାଦ୍ୟଦ୍ରବ୍ୟ ଆଗରେ ଦେଖିବା ମାତ୍ରେ ପାଟିରୁ ମନକୁ ନାଲ ଗଡ଼େ; କେତେକ ଲୋକଙ୍କର ମୁହଁରୁ ଶୋଇଲାବେଳେ ବା ଢୁଳେଇଲାବେଳେ ନାଲ ଗଡ଼େ ଓ କେତେକ କଡ଼ା ଦ୍ରବ୍ୟ ମୁହଁରେ ଗ୍ରହଣକଲେ ପାଟିରୁ ନାଲ ଗଡ଼େ, କେତେକ ମୁଖ ଓ ଦନ୍ତରୋଗର ଉପଶମନାର୍ଥ ମୁହଁରେ ଓ ଦାନ୍ତମୂଳରେ ଗୁଡ଼ାଖୁ ଆଦି କଡ଼ା ଔଷଧ ଲଗାଇଲେ ପାଟିରୁ ନାଲ ଗଡ଼େ । ]

**ନାଲ ଗୁଲାଲ**—ଦେ. ବିଣ—ଲାଲଗୁଲାଲ୍ (ଦେଖ)
Nāla gulāl Lālagulāl (See)

**ନାଲଚ (ଇତ୍ୟାଦି)**—ଗ୍ରା. ବି ଓ ବିଣ—ନାଲିସ୍ ଇତ୍ୟାଦି (ଦେଖ)
Nālacha (etc) Nālis etc (See)

**ନାଲଚ**—ଦେ. ବି—ନାଲଚ୍ଛ (ଦେଖ)
Nālacha Nālachā (See)
(ନାଲଛ—ଅନ୍ୟରୂପ) ବୈଦେ. ବି ଓ ବିଣ—ନାଲିସ (ଦେଖ)
Nālisa (See)

**ନାଲ ଚହଚ**—ଦେ. ବିଣ—ଲାଲଗୁଲାଲ୍ (ଦେଖ)
Nāla chahacha Lālagulāl (See)
(ନାଲଚହଚହ—ଅନ୍ୟରୂପ)

**ନାଲଚ୍ଛ**—ଦେ. ବି (ସଂ. ଲାଲସା)—୧ । ସ୍ପୃହା; ଲାଲସା; ଆକାଂକ୍ଷା—
Nālachā 1. Yearning; hankering; longing.
ଲାଲଚ ୨ । ଧନାଶା—2. Yearning after wealth.
ଲାଲଚ ୩ । ଲାଲାୟିତ ଅବସ୍ଥା—3. The state of hankering after a thing.
ଲାଡ଼ ୪ । (ସଂ. ଲାଳକ) ଲାଳନ; ଗେଲବସର ଭଙ୍ଗୀ; ଶିଶୁକୁ
ଲାଡ଼ ମୁହଁ ଦେବା—4. Too much fondling of a child.

ଦେ. ବିଣ—୧ । (ସଂ. ଲାଳମୟ; ଲାଳକ) ଲାଳାମୟ; ନାଲନାଳୁଆ—1 Slimy; gummy.
୨ । (ସଂ. ଲାଳାୟିତ) ତୋଷାମଦିଆ—2. Flattering.
ଲାଲଚୀ ୩ । ପରର ମନ ରଖା ଉଦ୍ଦେଶ୍ୟରେ କହିବା (କଥା)—
ଲାଲଚୀ, ଚାଟୁକାର 3. Uttered with a view to flatter.
ନେଅଟ୍ୟ ୪ । ଲାଳନାୟୁକ୍ତ; ଗେହ୍ଲା; ଗେଲବସରିଆ—
ଲାଡ଼ଲା, ଆଲହଡ୍ଡ 4. Fondled; brought up with excessive fondling.
୫ । ( ସଂ. ଲାଲସା; ଲାଲସିକ ) ଯାହାର ବହୁତ ଲାଲସା ଥାଏ—5. Very much hankering.
୬ । ଯେ ବଢ଼ିଆ ସୁଖାଦ୍ୟ ପ୍ରତି ଅତି ଲାଲାୟିତ—
6. Having excessive fondness for dainties.

**ନାଲ(ଲ)ଚ୍ଛ(ଚେ)ଇବା**—ଦେ. କ୍ରି (ସଂ. ଲାଳାୟିତ) ଲାଲଚ୍ଛଇବା (ଦେଖ)
Nāla(la)chā(che)ibā Lālachāibā (See)

**ନାଲ(ଲ)ଚିଆ**—ଦେ. ବିଣ. ପୁଂ—ନାଲଚ୍ଛ (ଦେଖ)
Nāla(la)chiā Nālachā ( See )
(ନାଲ(ଲ)ଚେଇ, ନାଲ(ଲ)ଚୀ—ସ୍ତ୍ରୀ)

**ନାଲଚିଆ**—ଦେ. ବିଣ—୧ । ଈଷତ୍ ରକ୍ତବର୍ଣ୍ଣବିଶିଷ୍ଟ—
Nālachiā 1. Reddish
୨ । ନାଲଚ୍ଛ (ଦେଖ)—2. Nālachā (See)

**ନାଲ ଚିତା**—ଦେ' ବି ( ଫା. ଲାଲ୍+ସଂ. ଚିତ୍ରକ )—ଚଙ୍ଗ ଚିତା ଗୁଳ୍ମ,
Nāla chitā ରକ୍ତ ଚିତ୍ରକ—Plumbyo Rosia (plant)
ଲାଲଚିତେ, लालचीता
(ନାଲି ଚିତା—ଅନ୍ୟରୂପ)

**ନାଲ ଟକ୍ ଟକ୍**—ଦେ. ବିଣ—ଲାଲଗୁଲାଲ୍ (ଦେଖ)
Nāla tak tak Lālagulāl (See)

**ନାଲଟଣ(ନ୍)**—ବୈଦେ. ବି ( ଇଂ. ଲ୍ୟାଣ୍ଟର୍ନ )—ଲଣ୍ଠନ, କାଚର ବାଡ଼ ଥିବା ପ୍ରଦୀପ—Lantern.
Nālatan(n)
ଲଣ୍ଠନ, लालटेन
(ନାଲଟଣ(ନ୍), ନାଲଟିଣି(ନି), ନାଲଟେଣ(ନ୍)—ଅନ୍ୟରୂପ)

**ନାଲଟହଟ**—ଦେ ବିଣ—ଲାଲଗୁଲାଲ୍ (ଦେଖ)
Nālatahata Lālagulāl (See)
(ନାଲଟହଟହ, ନାଲଟୁକୁଟୁକୁ, ନାଲଟୁକ୍‌ଟୁକ୍, ନାଲଟୁକ୍ଟୁକୁ—ଅନ୍ୟରୂପ)
लालटकटक, लालटेस

**ନାଲଟୁକୁରି**—ଦେ. ବି—ଏକପ୍ରକାର ନାଲବର୍ଣ୍ଣର ସରୁ ସଫା ଗୁଣ୍ଡିଲର ଧାନ—A species of red-chaffed paddy with fine rice.
Nālatukuri
(ନାଲଟୁକୁରି—ଅନ୍ୟରୂପ)
ଲାଲକାମିନୀ हरिनकेर

**ନାଲନ**—ଗ୍ରା. ବି. (ସଂ. ଲାଳନ)—ଲାଳନ (ଦେଖ)
Nālana Lālana (See)

**ନାଲନପାଲନ**—ଗ୍ରା. ବି—ସସ୍ନେହରେ ପାଳିବା—To brought up in fondling.
Nālanapālana

**ନାଲନାଳୁଆ**—ଦେ. ବିଣ. (ସଂ. ଲାଳସୀକ)—ଲାଳାମୟ—
Nālanālua Slimy; gummy.
(ନାଲନାଳଆ—ଅନ୍ୟରୂପ)
ଆଠାଳ गिलगिला

**ନାଲନ୍ଦ(ନ୍ଦା)**—ଦେ. ବି. ( ନାମ )—ପ୍ରାଚୀନ ଭାରତର ଏକ ବିଖ୍ୟାତ ବିଶ୍ୱବିଦ୍ୟାଳୟ—The University of Nālandā.
Nālanda(ndā)

[ ଦ୍ର—ଏହା ପାଟନା ନଗରଠାରୁ ୩୦ କୋଶ ଦକ୍ଷିଣ ଓ ଇ. ଆଇ. ଆର ରାଜଗିର ଷ୍ଟେସନଠାରୁ ଏକ ମାଇଲ ଦୂରରେ ଅବସ୍ଥିତ । ଏଥିର ଡାକ ନାମ ବଡ଼ଗାଁ । ତନ୍ତ୍ର ଏହା ବଡ଼ଗାଁଠାରୁ ୧୦ କୋଶ ଦୂର । ଏଠାରେ ଗୋଟିଏ ପ୍ରକାଣ୍ଡ ଆମ୍ବ ତୋଟା ଥିଲା । ବୌଦ୍ଧ ବଣିକମାନେ ଏହାକୁ କିଣି ନେଇ ଏ ସ୍ଥାନକୁ ବୁଦ୍ଧଦେବଙ୍କୁ ଭେଟି ଦେଇଥିଲେ । ବୁଦ୍ଧଦେବ ଏଠାରେ ତିନି ମାସ ଅବସ୍ଥାନ କରି ଲୋକମାନଙ୍କୁ ଧର୍ମ ଉପଦେଶ ଦେଇଥିଲେ ।
ଜଗନ୍ନାଥରଦେବ ଉତ୍କଳସାହିତ୍ୟ ୩୩-୧୧ ।

ଏଠାରେ ଅଶୋକ ଗୋଟିଏ ସ୍ତୂପ ନିର୍ମାଣ କରାଇ ଗୋଟିଏ ମଠ ସ୍ଥାପନ କରିଥିଲେ । ବୁଦ୍ଧଙ୍କ ନିର୍ବାଣଲାଭର ବହୁ ଶତାବ୍ଦୀ ପରେ ରାଜା ଶକ୍ରାଦିତ୍ୟ ବୁଦ୍ଧଦେବଙ୍କ ସ୍ମାରକସ୍ୱରୂପ ଏଠାରେ ଗୋଟିଏ ସଙ୍ଘାରାମ ଓ ପୁଷ୍କରିଣୀ କରିଥିଲେ । ଏଠାରେ ନାଳନ୍ଦ ନାମକ ଗୋଟିଏ ନାଗ ଥିଲା । ପୁଷ୍କରିଣୀର ଶୁଭ ଦେଲାବେଳେ ନାଗ ମୁଣ୍ଡରେ ହଣାହୋଇ ବାଳ ରକ୍ତ ବୋହିଲା । ପୁଷ୍କରିଣୀ ଓ ସଙ୍ଘାରାମ ହେଲା ଦିନଠାରୁ ନାଗର ନାମ ଅନୁସାରେ ଏ ସ୍ଥାନର ନାମ ନାଳନ୍ଦ ହେଲା । ଶକ୍ରାଦିତ୍ୟଙ୍କ ବଂଶଧରମାନେ ନାଳନ୍ଦର ଶ୍ରୀବୃଦ୍ଧି ସାଧନ କଲେ । ଏ ସ୍ଥଳରେ ପ୍ରତିଷ୍ଠିତ ବିଶ୍ୱବିଦ୍ୟାଳୟରେ ଦଶ ହଜାର ଛାତ୍ର ବୌଦ୍ଧଧର୍ମ ସମ୍ବନ୍ଧରେ ଶିକ୍ଷା ଓ ବାସଭୋଜନାଦି ପାଉଥିଲେ । ନାଳନ୍ଦ ବିଶ୍ୱବିଦ୍ୟାଳୟ ପୁସ୍ତକାଗାରର ନାମ ଥିଲା 'ରତ୍ନୋଦଧି' । ବୌଦ୍ଧଧର୍ମର ଅବସାନ ସଙ୍ଗେ ସଙ୍ଗେ 'ରତ୍ନୋଦଧି' ପୁସ୍ତକାଳୟ ପୋଡ଼ିଗଲା । ଏଠାରୁ ଉତ୍ତୀର୍ଣ୍ଣ ଛାତ୍ରମାନେ ବିଶ୍ୱବିଦ୍ୟାଳୟର ବ୍ୟୟରେ ବିଦେଶ ( ଯଥା—ଚୀନ୍, ଯାପାନ୍, ତିବ୍ବତ)କୁ ଯାଇ ଧର୍ମଜ୍ଞାନ ଓ ଶିକ୍ଷା ବିତରଣ କରୁଥିଲେ । ଚୀନ୍ ପରିବ୍ରାଜକମାନେ ଏଠାରେ ଶିକ୍ଷା ପାଇ ନିଜ ଦେଶକୁ ଫେରି ଧର୍ମ ପ୍ରଚାର ଓ ଜ୍ଞାନ ପ୍ରଚାର କରୁଥିଲେ ଓ ଏଠାରୁ ଅନେକ ସଂସ୍କୃତ ଓ ପାଲି ଗ୍ରନ୍ଥ ନେଇ ଚୀନ୍ ଭାଷାରେ ଅନୁବାଦ କରିଥିଲେ । ନାଳନ୍ଦ ବିଶ୍ୱବିଦ୍ୟାଳୟରେ ଧର୍ମ, ମନୋବିଜ୍ଞାନ, ଅର୍ଥଶାସ୍ତ୍ର, ରାଜନୀତି, ଆଇନ୍ ଓ ଚିକିତ୍ସାଶାସ୍ତ୍ର ଅଧ୍ୟୟନ ବିଷୟ ଥିଲା ଏବଂ ଧର୍ମାଲୋକମାନେ ଏ ବିଶ୍ୱବିଦ୍ୟାଳୟର ଯାବତୀୟ ବ୍ୟୟ ନିର୍ବାହ କରୁଥିଲେ । ଏହି ନାଳନ୍ଦର ଗୋଟିଏ ପ୍ରକାଣ୍ଡ ବରଗଛମୂଳେ ଗୋଟିଏ ପଥରର ଧ୍ୟାନମଗ୍ନ ବୁଦ୍ଧମୂର୍ତ୍ତି ଅଛି । ଏହାକୁ ସ୍ଥାନୀୟ ଲୋକେ ଭୈରୋ (ଭୈରବ) ନାମ ଦେଇ ଏଠାରେ ପ୍ରତି ବର୍ଷ ଆଷାଢ଼ରେ ଗୋଟିଏ ମେଳା କରନ୍ତି ଏବଂ ପ୍ରତି ବର୍ଷ ଏହି ପ୍ରତିମୂର୍ତ୍ତି ଆଗରେ ଗୋଟିଏ ବଳି ଦେବାର ପ୍ରଥା ଅଛି । ବର୍ତ୍ତମାନ ସରକାର ଏ ସ୍ଥଳ ଖୋଳି ପ୍ରାଚୀନ ତତ୍ତ୍ୱର ଉଦ୍ବୋଧକ ବହୁତ ପଦାର୍ଥ ପାଉଅଛନ୍ତି । ଚୀନ ପରିବ୍ରାଜକ ହୁଏନସାଙ୍ଗ୍ ୬୩୭ ଖ୍ରୀଷ୍ଟାବ୍ଦରେ ଏଠାରେ ପ୍ରଜ୍ଞାଭଦ୍ର ନାମକ ଆଚାର୍ଯ୍ୟଙ୍କ ନିକଟରେ ବେଦାଧ୍ୟୟନ କରିଥିଲେ । କଥିତ ଅଛି ଯେ, ଏ ବିଦ୍ୟାଳୟରେ ନାଗାର୍ଜୁନ କିଛି ଦିନ ରହି ଶଙ୍କର ନାମକ ବ୍ରାହ୍ମଣଙ୍କଠାରୁ ବିଦ୍ୟାଧ୍ୟୟନ କରିଥିଲେ । ହୁଏନ୍‌ସାଙ୍ଗଙ୍କ ସମୟରେ ଭାରତରେ ଏପରି ବଡ଼ ମଠ ଓ ବିଦ୍ୟାପୀଠ ଅନ୍ୟ କୁଆଡ଼ି ନ ଥିଲା । ଏଠାରେ ଶତାଧିକ ଆଚାର୍ଯ୍ୟ ଓ ଦଶ ହଜାର ଯାଜକ ଓ ଶିଷ୍ୟ ରହୁଥିଲେ । କାଶୀରେ ବୁଦ୍ଧପକ୍ଷ ନାମକ ରାଜା ରାଜତ୍ୱ କରୁଥିବା ସମୟରେ ଏ ମଠରେ ନିଆଁ ଲାଗି ଅନେକ ଗ୍ରନ୍ଥ ପୋଡ଼ିଗଲା । ବର୍ତ୍ତମାନ ସରକାରଙ୍କ ବ୍ୟୟ ଓ ଯତ୍ନରେ ଭୂଗର୍ଭରୁ ପ୍ରାଚୀନ ବିହାର ଓ ବିଶ୍ୱବିଦ୍ୟାଳୟର ଯେଉଁ ଭଗ୍ନାବଶେଷ ବାହାରୁଅଛି, ତହିଁରୁ ୩୦।୩୨ ହାତ ଉଚ୍ଚ କାନ୍ଥମାନ ଠିଆ ହୋଇଅଛି । ସେଠାରୁ ମିଳିଥିବା ପ୍ରାଚୀନ ବସ୍ତୁମାନଙ୍କୁ ସଂଗ୍ରହ କରି ସରକାର ସେଠାରେ ଗୋଟିଏ ଯାଦୁଘର (Museum) କରି ଅଛନ୍ତି । ଭୂଗର୍ଭରୁ ପ୍ରକାଣ୍ଡ ସ୍ତୂପ ଓ ବୁଦ୍ଧମୂର୍ତ୍ତି ମଧ୍ୟ ବାହାରିଅଛି । ଛାତ୍ର ଓ ସନ୍ନ୍ୟାସୀମାନଙ୍କ ରହିବାର ସୁନ୍ଦର କୋଠରିମାନ ବାହାରି ଅଛି ଓ ଶତ ଶତ ଛାତ୍ର ଉପବେଶନ କରି ପାରିବା ଭଳି ପ୍ରାଙ୍ଗଣମାନ ଅଛି । ଏ ସବୁ ଇଷ୍ଟକନିର୍ମିତ ଅଟେ । ]

**ନାଲ ପଟପଟ**—ଦେ. ବିଣ.—ଲାଳାମୟ—
Nāla paṭa paṭa (ନାଲ ପାଟୁପାଟୁ—ଅନ୍ୟରୂପ) Slimy.
ନାଲଚେ; ଲାଲମୟ गिजगिजा, पचपच

**ନାଲପଟା(ଟ୍ଟା)**—ଦେ. ବି—(ଫା. ଲାଲ୍+ପଟ୍ଟା)—୧ । ଅପରାଧୀ
Nāla paṭā (ṭṭā) ବ୍ୟକ୍ତିକୁ ଦଣ୍ଡରୂପେ ଦିଆଯିବା ବେତ୍ରାଘାତ—
ଲାଲପଟା 1 Whipping given as punishment to a criminal.
बेंत
୨ । ଏକ ପ୍ରକାର ଗୁଳ୍ମ—2. A kind of plant.
[ଦ୍ର—ଏହାର ଅଗ ପତ୍ରମାନ ଡୋଙ୍ଗା ରକ୍ତବର୍ଣ୍ଣ ।]

**ନାଲବଂଶ**—ସଂ. ବି.—୧ । ବେଲଙ୍ଗି ବାଉଁଶ—
Nālabaṁśa 1. A kind of slender bamboo.
୨ । କାଣ୍ଡଶର—2. A kind of reed.

**ନାଲବନ୍ଦ**—ବୈଦେ.ବି.(ଫା. ନାଲ୍‌ବନ୍ଦ୍)—ଘୋଡ଼ା ଓ ଗୋରୁଙ୍କ ଖୁରାରେ
Nālaband ଯେଉଁ ବ୍ୟକ୍ତି ନାଲ ବାନ୍ଧେ—A farrier; shoeing smith
ନାଲବন্দ नालबन्द्

**ନାଲବନ୍ଦି**—ବୈଦେ. ବି (ଫା. ନାଲ୍‌ବନ୍ଦୀ)—ଗୋରୁ ଘୋଡ଼ା ଆଦିଙ୍କ
Nālabandi ଖୁରାରେ ଲୁହାର ନାଲ ମାରିବା କର୍ମ—
ନାଲବন্দি नालबन्दी Shoeing of horses and bullocks.
(ନାଲ ମରିବା—ଅନ୍ୟରୂପ)

**ନାଲ ବ(ବୋ)ହିବା**—ଦେ. ବି.—ନାଲ ଗଡିବା (ଦେଖ)
Nāla ba(bo)hibā Nāla gaḍibā (See)

**ନାଲବାଗ**—ବୈଦେ. ବି—ଲାଲବାଗ (ଦେଖ)
Nālabāga Lālabāga (See)

**ନାଲ ବାନ୍ଧିବା**—ଦେ. କ୍ରି.—ଗୋରୁ ଘୋଡ଼ା ଆଦିଙ୍କ ଗୋଡ଼ରେ ନାଲ
Nāla bāndhibā ବସାଇବା—To shoe horses and bullocks.
ନାଲବান্ধা नाल जड़ना (बाँधना)
(ନାଲ ମାରିବା—ଅନ୍ୟରୂପ)

**ନାଲ ବାବୁ**—ଦେ. ବି.—କେନାଲ ଇଲାକାର ଭାରପ୍ରାପ୍ତ ଦେଶୀୟ
Nālabābu ଊର୍ଦ୍ଧ୍ୱତନ କର୍ମଚାରୀ—Indian officer of the
କେନାল বাবু नहर मुनसी Canal Department.
[ଦ୍ର—ବିଦେଶୀୟ ବା ଇଉରୋପୀୟ କେନାଲ କର୍ତ୍ତୃପକ୍ଷୀୟ କର୍ମଚାରୀଙ୍କୁ ଲୋକେ ନାଲ ସାହେବ ଡାକନ୍ତି ।]

**ନାଲବେଗ୍**—ଦେ. ବି. (ନାମ)—୧ । ଦାର୍ଢ୍ୟତାଭକ୍ତିରେ ବର୍ଣ୍ଣିତ
Nālabeg ଜଣେ ମୁସଲମାନ ବୈଷ୍ଣବର ନାମ—1 Name of
ନালবেগ; लालगुरू a Mahomedan who was a devotee
लालवेग of Bishṇu and whose name is mentioned in the 'Dārḍhyatā bhakti.'
୨ । ମୁସଲମାନମାନଙ୍କ ମେହେନ୍ତରମାନଙ୍କ କଳ୍ପିତ ପୀର ବିଶେଷ—2. Name of a patron saint of Mahomedan sweepers.

**ନାଲବେଲି**—ଦେ. ବି.—ନାହାଲବେଲି (ଦେଖ)
Nālabeli Nāhālabeli (See)

ନାଲଭାଜି—ପ୍ରାଦେ. (ଗଡ଼ଜାତ)ବ.—ଲାଲଭାଜି (ଦେଖ)
Nālabhāji Lālabhāji (See)
ନାଲମନ୍—ଦେ. ବ.—ଏକପ୍ରକାର ଶୁଆ—
Nālaman A kind of parrot
লালমন [ଦ୍ର—ଏ ଶୁଆଙ୍କ ଦେହ ନାଲି, ପକ୍ଷୀ ସାବଜା, ଥଣ୍ଟ
लालमन ଗୋଲାପୀ ଓ ଡେଣା କଳା —ହି. ଶ.]
ନାଲମୋହନ—ବୈଦେ. ବ. (ଫା. ଲାଲ୍‌ମୋହନ୍)—
Lālamohana ଲାଲମୋହନ (ଦେଖ) Lālamohana (See)
(ନାଲ୍‌ମନ୍, ନାଲମହନ, ନାଲ୍‌ମୋହନ୍—ଅନ୍ୟରୂପ)
লালমোহন लालमोहन
ନାଲରକ୍ତ ଝାଡା—ଦେ. ବ.—ଅମଶୂଳା ଝାଡ଼ା; ମଳ ସଙ୍ଗେ ଅମ ଓ
Nālarakta jhārdā ଓ ରକ୍ତ ବାହାରିବା ରୋଗ—
আমাশয় पेचिस Dysentery.
(ନାଲରକ୍ତ ଶୋଷସ୍ତ; ନାଲରକ୍ତ ବାହାରିବା—ଅନ୍ୟରୂପ)
ନାଲଶ୍ (ଇତ୍ୟାଦି)—ନାଲିଶ୍ ଇତ୍ୟାଦି (ଦେଖ)
Nālaś (etc) Nāliś etc. (See)
ନାଲ ସରସର—ଦେ. ବିଣ—ନାଲ ପଟପଟ (ଦେଖ)
Nāla sarasara Nāla paṭapaṭa (See)
ନାଲସା—ଗ୍ରା ବ.—୧ । (ସଂ. ଲାଳସା) ଲାଳସା—
Nālasā 1. Inordinate yearning
লালচা ୨ । (ସଂ. ଲାଳନ) ଲାଳନ; ମୁହଁ ଦେବା—
लालच 2. Fondling a child to excess.
ନାଲ ସାହେବ—ଦେ. ବ—କେନାଲ ଇଲାକାର ଭାରପ୍ରାପ୍ତ ସାହେବ—
Nāla sāheba European officer of the Canal
কেনাল সাহেব Department.
नहरका साहिब
ନାଲସିଆ—ଗ୍ରା. ବିଣ—ଲାଲସିଆ (ଦେଖ)
Nālasiā Lālasiā (See)
(ନାଲସେଇ—ଘ୍ରୀ)
লালচে लालचहा
ନାଲସା(ସେ)ଇବା—ଗ୍ରା. କ୍ରି—ଲାଲଚାଇବା (ଦେଖ)
Nālasā(se)ibā Lālachāibā (See)
ନାଲା—ସଂ. ବି. (ନଲ ଧାତୁ=ବନ୍ଧନ କରିବା+ଅ+ଆ)—
Nālā ନାଳ (ଦେଖ —Nāla (See)
ନାଲ—ଦେ. ବିଣ. (ଫା. ଲାଲ୍)—ରକ୍ତ ବର୍ଣ୍ଣ (ଜୀବ)—
Nāla (an animal) Of red colour.
লাল ବି—୧ । ନାଲିଆ ବଳଦ—
लाल 1. Red bullock.
୨ । ଲାଲ ୧ (ଦେଖ)—2. Lāla (See)
ନାଲାଏକ୍—ବୈଦେ. ବିଣ. (ଫା. ନାଲାଏକ୍)—୧ । ଅନୁପଯୁକ୍ତ—
Nālāek 1. Unfit; not suitable.
ନାଲାୟକ୍ } ଅନ୍ୟରୂପ ୨ । ଅଯୋଗ୍ୟ—
ନାଲାଏକ୍ } 2. Worthless; unworthy.
নালায়েক ମିଥ କହିଲେ—ନାଲାଏକ୍ ନାଲାଏକ୍ ।
नालायक ଫକୀରମୋହନ, ଛମାଣ ଅଠଗୁଣ୍ଠ ।

୩ । ନିକୃଷ୍ଟ—3. Inferior.
ନାଲା ବାବୁ—ଦେ. ବ. (ନାମ)—ଲାଲ ବାବୁ (ଦେଖ)
Nāla bābu Lāla bābu (See)
ନାଳି—ସଂ. ବି. (ନଲ୍ ଧାତୁ=ବନ୍ଧନ କରିବା+ଅ+ଇ)—
Nāḷi ୧ । ଗଣ୍ଡମୂଳା ଘାଆ; ନାଡ଼ୀବ୍ରଣ; ବହୁ ଦ୍ୱାରସଇ
(ନାଳୀ—ଅନ୍ୟରୂପ) ପୁରୁଣା ଘାଆ; ଦୁଷ୍ଟ କ୍ଷତ—
1. Sinus; gangrene.
୨ । ନଳ—2. Tube.
୩ । ନାଡ଼ୀ; ଦେହସ୍ଥ ଶିରା—3. Artery; vein
୪ । ଏକଦଣ୍ଡ କାଳ—4. 24 minutes.
୫ । ଜଳ ବହିଯିବାର ନାଳ; ପଇଣୀ—
5 Water channel; drain
নালা, নালী ଦେ. ବି—୧ । (ସଂ. ନାଳ) କ୍ଷୁଦ୍ର କେନାଲ—
नाली 1. Small canal; a distributary canal.
୨ । (ସଂ. ଲାଲା) ପଇଡ଼ ଭିତରେ ଥିବା ଲହୁଣୀ ପରି କୋମଳ ଶସ—2. A soft layer inside a green coconut.
୩ । ପାତଳା ଓ କୋମଳ ପଦାର୍ଥ—
3. Thin and soft thing.
ପ୍ରାଦେ. (ସିଂହଭୂମ) ବ—କ୍ଷେତ୍ରଟିଆ ଓ ଗଭୀର ଶସ୍ୟକ୍ଷେତ୍ର—
A small and deep plot of corn
ନାଲି—ବୈଦେ. ବ (ଫା. ଲାଲ୍)—
Nāli ୧ । ରକ୍ତବର୍ଣ୍ଣ—1. Red colour.
লাল ୨ । ଏକ ପ୍ରକାର ସୋରିଷ—
लाल 2 Red mustard seed
লাল ୩ । ଶଗଡ଼ର ହାଲ—3 The tire of a cart-wheel.
हाल
লাল ବିଣ—୧ । ରକ୍ତବର୍ଣ୍ଣବିଶିଷ୍ଟ—1. Red coloured.
लाल ୨ । ଆରକ୍ତ—2. Reddish
[ଦ୍ର—ରକ୍ତବର୍ଣ୍ଣ ବିଶିଷ୍ଟ ବୃକ୍ଷ, ବସ୍ତୁ, ଜୀବ, ଫଳ ପୁଷ୍ପାଦି ପୂର୍ବରେ ନାଲି ବିଶେଷଣ ଯୁକ୍ତ କରାଯାଇ ଫଳ ପୁଷ୍ପାଦିର ପ୍ରକାର ଭେଦ ପ୍ରକାଶ କରାଯାଏ । ଯଥା—ନାଲି ପିଆଜ, ନାଲି ଚଢ଼େଇ, ନାଲି କରଣା, ନାଲି କଙ୍କଥର, ନାଲି ବହୁଥିବ, ନାଲି କଞ୍ଚନ, ନାଲି ମୂଳା, ନାଲି ଭଙ୍ଗଣୀ, ନାଲି ପୋଇ, ନାଲି କାଇଞ୍ଚ, ନାଲି କଦଳୀ, ନାଲି ଶିମ୍ବ, ନାଲି କୋବି, ନାଲି ଅଗର, ନାଲି ସିନ୍ଦୂର, ନାଲି ପିମ୍ପୁଡ଼ି, ନାଲି ଝାଉଁ, ନାଲି ଡେଙ୍ଗ (ମାଛ), ନାଲି ଗୃହି (ମାଛ), ନାଲି କଇଁ, ନାଲି କୋଷଳା, ନାଲି ଆଳୁ, ନାଲି ପୁରୁଣୀ (ଶାଗ), ନାଲି କନ୍ଦମୂଳ, ନାଲି ମୁରୁଗା, ନାଲି ବଥୁଆ, ନାଲି ଡାଳ ଓ ନାଲି ଲୁଗା ଇତ୍ୟାଦି ।]

ନାଲି ଅମର ଜଡ଼ା—ପ୍ରାଦେ—(ଅଳ) ବ—ବିଲାତି ବାଇଗବା (ଦେଖ)
Nāli amara jardā Bilāti bāigabā (See).
ନାଲିଆ—ଦେ. ବ.—୧ । ବଡ଼ ଟୋକାଇ; ବେଡ଼ା—
Nāliā 1 Large basket; hamper.

ଟୋକବା ୨ । ( ସ. ନାଳ ) କ୍ଷୁଦ୍ର ଜଳନିର୍ଗମ ପଥ; ପଦ୍ଧଣୀ; ନର୍ଦ୍ଦମା
ढाकी 2. Small drain.
নালা, নালী ୩ । ନଦୀର କ୍ଷୁଦ୍ର ଧାର—3. Very slender
नाली branch of a river; a small channel
୪ । ତୃଣ ବା ଘାସବିଶେଷ—5. Reed like grass.
[ ଦ୍ର—ଏହା କାକୁଆ ଜାଗାରେ ବଢ଼େ ଓ ପାଞ୍ଚ ଫୁଟ ପର୍ଯ୍ୟନ୍ତ ଉଚ୍ଚ ହୁଏ । ]

ଦେ. ବିଣ—( ଫା. ଲାଲ )—୧ । ରକ୍ତବର୍ଣ୍ଣବିଶିଷ୍ଟ—
লাল 1. Red coloured.
लाल ୨ । ଈଷତ୍ ରକ୍ତବର୍ଣ୍ଣ ବିଶିଷ୍ଟ—2. Reddish.
ପ୍ରାଦେ. ( ଯାଜପୁର ) ବି. ( ଇତର ଭାଷା )—
ଚାଉଳଧୁଆ ବାଉଁଶିଆ—Basket for washing rice

**ନାଲି ଆଖି**—ଦେ. ବି. ( ରୋଗ ବା କ୍ରୋଧ ଯୋଗୁଁ ) ରକ୍ତବର୍ଣ୍ଣ ଚକ୍ଷୁ—
Nāli ākhi Red eyes; eyes reddened through
রাঙ্গা চোখ disease or anger.
लाल आंखे

**ନାଲି ଆଖି ଦେଖା(ଖୋ)ଇବା**—ଦେ.କ୍ରି. (ଲକ୍ଷଣାର୍ଥ)—କୌଣସି ବ୍ୟକ୍ତି
Nāli ākhi dekhā(khe)ibā ପ୍ରତି କ୍ରୋଧ ପ୍ରକାଶ କରିବା—
রাঙ্গা চোখ দেখান (Figurative) To express anger (by
लाल आँखे निकालना showing red eyes to a person).
ନାଲି ଆଖି ବାହାର କରିବା—
ନାଲି ଆଖି କାଢ଼ିବା } ଅନ୍ୟରୂପ

**ନାଲିଆ ପଟା**—ଦେ. ବି—ଏକ ପ୍ରକାର ଦେଶୀ ବ୍ୟାୟାମ ବା ଖେଳ;
Nāliāpatā ବାନାପଟା ଖେଳ—A kind of athletic
লাল পাটা लालपट्टा country game with sticks.

**ନାଲି ଆଳୁ**—ଦେ. ବି—ରକ୍ତବର୍ଣ୍ଣବିଶିଷ୍ଟ ଦେଶୀ ଆଳୁ—
Nāli ālu The red variety of yam.
লাল আলু लालआलु

**ନାଲିଆ(ଆଁ)ଶିଆ**—ଦେ. ବିଣ. ( ସ. ଅଶତଃ + ଫା. ଲାଲ୍ ).—
Nāliā(añ)siā ଈଷତ୍ ନାଲି—Reddish.
লালচে लालसा

**ନାଳି(ଳି)କ**—ସ. ବି. —(ନାଳ + କ )—
Nāli(li)ka ୧ । ପଦ୍ମ—1. Lotus.
ଚକା ନୟନକୁ ଚକା(ରେ ମନ) ନାଳିକ ବନ୍ଧ କି ନାଳ କେଉ ଭେକ
କରିପାରନ୍ତି ସେ ଫିକା। ଭଞ୍ଜ ।
[ ନାଳୀ(ଳୀ)କ—ଅନ୍ୟରୂପ ] ୨ । ମହିଷ—2. Buffalo.
୩ । ପ୍ରାଚୀନକାଳରେ ଭାରତରେ ବ୍ୟବହୃତ ନଳବିଶିଷ୍ଟ ଆଗ୍ନେୟାସ୍ତ୍ର—3. A kind of barrelled fire-arm used in ancient India
[ ଦ୍ର—ଆକାର ଓ ବ୍ୟବହାର ଭେଦରେ ଏହା ଦ୍ୱିବିଧ । ଲଘୁନାଳିକ ଓ ବୃହନ୍ନାଳିକ (ଆଧୁନିକ ବନ୍ଧୁକ ଓ ତୋପ) । ଏହା ୨୧ ହାତ ଲମ୍ବା ଲୌହନଳ, ତାହାର ମୂଳରେ ତିର୍ଯ୍ୟକ୍‌ଭାବରେ ଗୋଟିଏ ଛିଦ୍ର, ମୂଳଠାରୁ ଅଗ୍ରପର୍ଯ୍ୟନ୍ତ ଅନ୍ତଃଶୁଷିର (ଗର୍ତ୍ତ), ମୂଳରେ ଓ ଅଗ୍ରଭାଗରେ ଲକ୍ଷ୍ୟ ଠିକ କରିବାର ପାଇଁ ତିଳବିନ୍ଦୁ ଅଛି । ଚକମକିରେ ଅଘାତ ପାଇବା ମାତ୍ରେ ନିଆଁ ବାହାରେ ଓ ସେ ନିଆଁ ଅଗ୍ନିଚୂର୍ଣ୍ଣ(ବାରୁଦ)ରେ ଲାଗି ନଳ ମଧ୍ୟର ବାରୁଦକୁ ଜଳାଏ । ନଳର ମୂଳଛିଦ୍ର ପାଖେ ଅଗ୍ନିଚୂର୍ଣ୍ଣର ଆଧାର ନିମନ୍ତେ ଗୋଟିଏ କର୍ଣ୍ଣ ଥାଏ । ଏଥିର ଉପାଙ୍ଗ ଓ ବୁଧ୍ନ (ମୁଠ) ଉତ୍ତମ କାଠରେ ନିର୍ମିତ । ନଳସ୍ଥ ଗର୍ତ୍ତରେ ମଧ୍ୟମାଙ୍ଗୁଳି ପ୍ରବେଶ କରି ପାରିବ । ନଳରେ ଅଗ୍ନିଚୂର୍ଣ୍ଣ ଭରିବା ପାଇଁ ଦୃଢ଼ ଲୌହଶଲାକା ଥାଏ । ଏ ଯନ୍ତ୍ରର ନାମ ଲଘୁନାଳିକ, ଏହା ପଦାତି ଓ ଅଶ୍ୱାରୋହୀମାନେ ବ୍ୟବହାର କରୁଥିଲେ । ବୃହନ୍ନାଳିକର ଆକାର ଓ ନଳ ବଡ଼ ଓ ତାହାଁରେ କାଠର ମୁଠ ନ ଥିଲା ଓ ତାହା ଶକଟ ଓ ଉଷ୍ଟ୍ରଆଦିଙ୍କଦ୍ୱାରା ବାହିତ ହେଉଥିଲା । ଏଥିରେ ଗୁଳା ଚଳାଯାଉଥିଲା—ଜ୍ଞାନେନ୍ଦ୍ରଙ୍କ ଭୂବୃତ୍ତ ଶୁକ୍ରନୀତି ୪ର୍ଥ ଅଧ୍ୟାୟ । ]

**ନାଲି କଇଁ**—ଦେ. ବି—ରଙ୍ଗ କଇଁ (ଦେଖ)
Nāli kaiñ Ranga kaiñ (See)
লালশালুক लालकुइ

**ନାଲି କଞ୍ଚନ**—ଦେ. ବି. (ସ. ରକ୍ତ କାଞ୍ଚନ)—ରଙ୍ଗ କଞ୍ଚନ ଫୁଲ—
Nāli kañchana Banhina Tomentos; Banhina
কাঞ্চন कचनार purpurea Banhina Povereigata.

**ନାଲିକଣ୍ଟା**—ଦେ. ବି—ଦନ୍ତାରି (ଦେଖ)
Nālikantā Dantāri (See)

**ନାଲି କଦଳୀ**—ଦେ. ବି—ରକ୍ତବର୍ଣ୍ଣ ଏକପ୍ରକାର କଦଳୀ—
Nāli kadali Musa ornata (Haines).
লাল কলা लालकेला

**ନାଳିକା**—ସ. ବି. ସ୍ତ୍ରୀ ( ନାଳକ + ଆ )—
Nālikā ୧ । ନଳିତା ଶାଗ; କାଉଁରିଆ ଗଛ—
1. Jute plant (used as pot herb).
୨ । ନାଡ଼—2. Stalk.
୩ । ଶିରା—3. Vein.
୪ । ନାଳ; ନଳା—4. Drain.
୫ । ହସ୍ତି-କର୍ଣ୍ଣବେଧନିକା; ହାତୀକାନ ଫୋଡ଼ିବା ନିମନ୍ତେ ବ୍ୟବହୃତ ଲୌହଦଣ୍ଡ—5. An iron rod to pierce the ear of an elephant.

**ନାଲି କାଇଞ୍ଚ**—ଦେ. ବି—କାଇଞ୍ଚ (ଦେଖ)
Nāli kāincha Kāincha (See)

**ନାଲି କାଳି**—ଦେ. ବିଣ—ରକ୍ତବର୍ଣ୍ଣ ଓ କୃଷ୍ଣବର୍ଣ୍ଣ ବିଶିଷ୍ଟ—
Nāli kāli Red and black.
লাল কাল लाल काला ବି—ନାଲି ସିଆହି—Red ink
লালকালী लालरोसनाई

**ନାଳିକେର**—ସ ବି—ନଡ଼ିଆ (ଦେଖ)
Nālikera Nardiā (See)

**ନାଳିକେଳ**—ସ. ବି—ନଡ଼ିଆ (ଦେଖ)
Nālikela Nardiā (See)

**ନାଲି କୋଶଳା**—ଦେ. ବି—ରକ୍ତବର୍ଣ୍ଣ କୋଶଳା ଶାଗ—
Nāli kosalā A pot-herb, Amaranthus Purpureus.
লালনটিয়া, গুডনটিয়া [ ଦ୍ର—ଏହା ଦୁଇପ୍ରକାର ଯଥା—ଡେଙ୍ଗା
लालशाग ଓ ଠେକା । ]

ନାଲି ଘର—ପ୍ରାଦେ. (ଗଡ଼ଜାତ) ବି—ତିନିଶେଣିଆ ଖୁଲଘର—
Nāli ghara — A thatched house having with three wall plates.

ନାଲି ଘା—ଦେ. ବି. (ସଂ. ନାଲ, ନାଳୀ, ନାଡ଼ୀ + ଘାତ)—
Nāli ghā — ନାଡ଼ୀବ୍ରଣ; ଗଣ୍ଡପୂଜା ଘା—Sinus.
(ନାଳଘାଆ—ଅନ୍ୟରୂପ) [ ଦ୍ର—ଯେଉଁ ଘାଆ ବାହାରେ ଶୁଖିଲା
नालीघा — ପରି ଦେଖାଯାଉଥାଏ, ମାତ୍ର ଭିତରେ ପୂଜ ଦୂର ରହି
नासोंघाव — ଥାଏ, ତାହାକୁ ନାଲି ଘାଆ କହନ୍ତି । ]

ନାଲିଚ ଚି)—ବୈଦେ. ବି—ନାଲିଶ (ଦେଖ)
Nālicha(chi) — Nālisa (See)

ନାଲି ଚନ୍ଦନ—ଦେ. ବି. (ଫା. ଲାଲ୍ + ସଂ. ଚନ୍ଦନ)—ରକ୍ତଚନ୍ଦନ—
Nāli chandana — Red sandalwood.
लालचन्दन লালচন্দন

ନାଲିଚ୍ଛ—ଦେ. ବିଣ— (ଫ. ଲାଲସା)ନାଲଚ୍ଛ (ଦେଖ)
Nālichā — Nālachā (See)
(ନାଲଚେଇ—ସ୍ତ୍ରୀ) ବୈଦେ.ବି (ଫା.ନୈଚ୍ଛ ସ ନଳ) ହୁକାର ନଳ—
नइचा নৈচা — The tube of a smoking hookah.

ନାଲି ଚିତା—ଦେ. ବି—ରକ୍ତଚିତ୍ରକ ଗୁଳ୍ମ—
Nāli chita — The red variety of Chitraka plant.
लालचिता লালচিতা

ନାଲିଛାଲି ହେବା—ଦେ କ୍ରି—୧ । ନାଇଲିଛାଇଲି ହେବା (ଦେଖ)
Nālichhāli heba — 1 Nāilichhāili hebā (See)
୨ । ନାଲେଇଛାଲେଇ ହେବା (ଦେଖ)
2 Nāleichhālei hebā (See)

ନାଲି ଜଉଆ—ପ୍ରାଦେ ( ଅଳ ) ବି—ବରପାଳ ଆକାରର ନାଲିଆ
Nāli jauā — ଦୁର୍ଗନ୍ଧି ପୋକ—A kind of foetid red insect.
[ ଦ୍ର—ଏମାନେ ବାଇଗଣ, ଜହ୍ନି, ଭେଣ୍ଡି ଗଛର ପତ୍ର ଓ ଫଳକୁ ବହୁ ନଷ୍ଟ କରୁଥାନ୍ତି । ]

ନାଲି ଜମି—ପ୍ରାଦେ (ସିଂହଭୂମି) ବି—ଅଳ୍ପ ଚଉଡ଼ା ଓ ଗଭୀର ଧାନକ୍ଷେତ୍ର
Nāli jami — ଜମି—A paddy field which is very narrow and deep.

ନାଲି ଜୀବକଣା—ଦେ. ବି ( ବିଜ୍ଞାନ ପରିଭାଷା )—ରକ୍ତ ମଧ୍ୟରେ ଥିବା
Nāli jibakanā — ଲାଲବର୍ଣ୍ଣବିଶିଷ୍ଟ କ୍ଷୁଦ୍ର ଅଣୁ—Red corpuscles in the blood (as apposed to) white corpuscles.
[ ଦ୍ର—ଏହା ରକ୍ତର ଉପାଦାନ ଅଟେ । ଅନ୍ୟ ଉପାଦାନ ଧଳା ଜୀବକଣା । ରକ୍ତରେ ନାଲି ଜୀବକଣାର ଅନୁପାତ ବଢ଼ିଲେ ତାହା ସ୍ୱାସ୍ଥ୍ୟର ସୂଚକ ଓ ଶ୍ୱେତ ଜୀବକଣାର ବୃଦ୍ଧି ଅସ୍ୱାସ୍ଥ୍ୟର ସୂଚକ ଅଟେ । ]

ନାଲି ଟକ୍‌ଟକ୍—ଦେ. ବିଣ—ରଙ୍ଗ ଟହଟହ (ଦେଖ)
Nāli ṭak-ṭak — Ranga ṭahaṭaha (See).
लालटकटके লালটেস, লালটকটক
[ନାଲିଟୁକ୍‌ଟୁକ୍, ନାଲିଟୁକୁଟୁକୁ, ନାଲିଟ,
ନାଲିଟହଟହ, ନାଲିଟୁକୁଟୁ, ନାଲିଟୁକୁଟୁକୁ—ଅନ୍ୟରୂପ]

ନାଲିଟୁକୁରି—ଦେ ବି (ସଂ. ଲୋହିତକ)--ରକ୍ତବର୍ଣ୍ଣ ତୁଷବିଶିଷ୍ଟ ସରୁ ଓ
Nāliṭukuri — ଧଳାଗୃହଳବିଶିଷ୍ଟ ଶାରଦ ଧାନ—
लालकामिनी সতরিআ — A sort of fine rice with red chaff.
[ ଦ୍ର—ଏହି ଧାନ ରୋଗୀର ପଥ୍ୟ ଅଟେ । ]

ନାଲିତା—ଦେ ବି—ନାଲିକା ୧ (ଦେଖ)
Nālita — Nālikā 1 (See).
(ନାଲିତାପିତା—ଅନ୍ୟରୂପ)

ନାଲି ଦଉଡ଼ିଆ—ଦେ ବି—ଏକପ୍ରକାର ନାଲି ଲଟାଳିଆ ଘାସ—
Nāli daurdiā — A kind of red creeping grass (of the shape of sugarcane).
[ ଦ୍ର—ଏହା ଘାସ ବିଲର ହିଡ଼ କଡ଼ରେ ମାଡ଼େ ଓ ଦେଢ଼ ହାତ ପର୍ଯ୍ୟନ୍ତ ଲମ୍ବା ହୁଏ । ଏହାର ରୂପ ନାଲି ଆଖୁପରି ଦେଖାଯାଏ । ]

ନାଲିନାଲିକା—ଦେ. ବିଣ (ସ. ଲାଲ) - ଅଠାଳିଆ ଓ ପାଣିଆ—
Nālinālikā — Watery and sticky, gummy.
आठाल গোলগীলা

ନାଲି ନେଳି ପେନ୍‌ସିଲ୍—ଦେ. ବି—ଯେଉଁ ପେନ୍‌ସିଲର ଏକପାଖରେ
Nāli neli pensil — ନାଲିରେ ଓ ଅନ୍ୟପାଖରେ ନେଳିରେ
लालनीलपेनसिल লাল নীলা পেনসিল — ଲେଖାଯାଇ ପାରେ
Red and blue pencil.

ନାଲି ପଇଡ଼—ଦେ. ବି—ଅଚ୍ଛ କଅଁଳିଆ ପଇଡ଼—Raw cocoanut
Nāli pairda — with slimy substance inside it.
(ନାଲିଲଗା ପଇଡ଼—ଅନ୍ୟରୂପ) [ଦ୍ର—ଏଥିରେ ଲାଲ ପରି ଶସ ଲାଗି ଆସୁଥାଏ । ]

ନାଲି ପାଣି—ଦେ. ବି ( ଫା. ଲାଲ୍ + ସଂ. ପାନୀୟ )—
Nāli pāni — ( ବ୍ୟଙ୍ଗ୍ୟାର୍ଥ ) — ସୁରା; ବିଲାତି ମଦ—
लालपानि লালপানী — ( ironical ) Wine; spirituous liquor.
ଛ । ଛ । ମୁଁ ଖାଇବ କାହିଁଲୋ । ନାଲିପାଣି ପରି ବଟେ,
ନାଲି ପାଣିକୁ ଛୋପାଏ ପଡ଼ିଲେ ତ ଉଡ଼ ଭୁବନ ବଟେ,
ସମ୍ପୁର ଗୀତ ।

ନାଲି ପିଆଜ—ଦେ. ବି—୧ । ରକ୍ତବର୍ଣ୍ଣ ପଳାଣ୍ଡୁ—
Nāli piāja — 1. Onion of red colour.
लाल पेयाँज — ଗ୍ରା. (ଅଶିଷ୍ଟ) ସ୍ତ୍ରୀମାନଙ୍କ ଯୋନି—
লাল প্যাঁজ — (ironical) Prolapse of the uterus.

ନାଲି ପିମ୍ପୁଡ଼ି—ଦେ. ବି—୧ । ରଙ୍ଗ ପିମ୍ପୁଡ଼ି—
Nāli pimpurdi — 1. The red ant.
लाल पिम्पड़े — ୨ । କାଇ; ଆମ୍ବ ଗଛର ପତ୍ର ମଧ୍ୟରେ ବସା
লাল পিঁপড়ে — ବାନ୍ଧି ରହୁଥିବା ବଡ଼ ପିମ୍ପୁଡ଼ି—
2. A variety of big red ants living in nests made of leaves in trees.

ନାଲି ପୋଇ—ଦେ. ବି—ରକ୍ତବର୍ଣ୍ଣ ପୂତିକା (ପୋଇ) ଲତା—
Nāli poi — Red Spinach; Basella Rubrā (pot herb)
लालपुई वङपुई লাল পোঁই; লাল-বাছি

ନାଲି ବଙ୍ଗି—ଦେ. ବି—ଏକପ୍ରକାର ମୋଟାଧାନ—
Nāli bangi — A species of coarse paddy.

ନାଲ୍ ବାଇଗବା—ଦେ. ବ. ( ଫା. ନାଲ୍+ଓ. ବାଇଗବା )—
Nālı bāıgabā ରକ୍ତଭ ବାଇଗବା ଗୁଳ୍ମ—
লাল ভেবেণ্ডা Jatropha Gossypıfolıa (plant)
लाल मेरेण्डा, उदर बीवी

ନାଲ୍ ମରଚ—ଦେ. ବ—ଲଙ୍କା ମରଚ—
Nāli maricha Cayenne pepper, red pepper.
লঙ্কা মরিচ लाल मिर्च

ନାଲ୍ ମୂଳା—ଦେ ବ. ( ଫା. ଲାଲ୍+ସ ମୂଳକ )—
Nālı mūlā ୧ । ସାଲଗମ—1 Turnip
লাল মূলো ୨ । ସାଠ୍ ମୂଳା—2. Beet root.
लाल मूली

ନାଲସ(ସି)—ବୈଦେ. ବ. (ଫା. ନାଲଶ୍) ( କଚରଥ )—
Nālıs(sı) ୧ । ମକଦ୍ଦମା—1. Case; suit.
নালিস ୨ । ଅପରାଧୀ ବରୋଧରେ ଅପରାଦ୍ଧ ବ୍ୟକ୍ତିର କର୍ତ୍ତୃପକ୍ଷଙ୍କ-
नालिश ଠାରେ ଅଭିଯୋଗ; ଫେରାଦ—
2. Complaint against an offender.
୩ । ଅପରାଧର ଅଭିଯୋଗ—
3. Charge against a person.
୪ । ଅଭିଯୋଗର ବା ମକଦ୍ଦମାର ବିଷୟ—
4 Subject-matter of a suit or case.
୫ । ଦରଖାସ୍ତ—5. Petition.
ବିଣ. (ଫା. ନାଲଶୀ) ୧ । ନାଲସ କରାଯାଇଥିବା—
নালিসী नालिशी 1. Complained of.
( ଯଥା—ଅମୁର ନାଲସି ଅମୁକ ନାମର ଏତେ ନମ୍ବର ମକଦ୍ଦମା । )
୨ । ମକଦ୍ଦମା ସମ୍ବନ୍ଧୀୟ—
2 Pertaining to a suit.
୩ । ବିବାଦୀୟ—3. Disputed.
( ଯଥା—ନାଲସି ଜମି । )

ନାଲସ(ସି) କରିବା—ଦେ. କ୍ରି. (କଚରଥ; ଫା. ନାଲଶ୍)—
Nālısa(sı) karıbā ୧ । ଫେରାଦ ହେବା—
নালিস করা 1. To complaint.
नालिस करना ୨ । ରାଜଦ୍ୱାରରେ କୌଣସି ବ୍ୟକ୍ତି ବିରୋଧରେ ଅଭିଯୋଗ କରିବା—2. To file a petition against any person; to lodge a complaint.
୩ । ମକଦ୍ଦମା ଦାଏର କରିବା—3 To sue; to file a suit; to prosecute.

ନାଲସ କାରଣ—ଦେ. ବ ( କଚରଥ )—ମକଦ୍ଦମା ଦାଏର କରିବାର
Nālısa kārana ମୁଖ୍ୟ କାରଣ ବା ଘଟଣା—Cause of
(ନାଲସର କାରଣ—ଅନ୍ୟରୂପ) action; the immediate
নালিসের কারণ; नालिसका कारण cause of filing a suit.

ନାଲସ ଦାଏର—ବୈଦେ. ବ. (ଫା) ( କଚରଥ )—
Nālıs dāer ମକଦ୍ଦମାର ପ୍ରଥମ ଉତ୍ଥାପନ—
নালিস দায়ের Institution of a suit; initiation of
नालिस दायर legal proceedings.

ନାଲସ ନୁଲୁସା—ବୈଦେ. ବ. (ଫା) (ଉଭରର୍ଥକ ସହଚର ଶବ୍ଦ)—
Nālisa nulusā ନାଲସ ଇତ୍ୟାଦ—Complaints etc.
নালিস টালিস नालिस उलिस

ନାଲସ ଫେରାଦ(ଦି)—ବୈଦେ. ବ. ( ଫା. ନାଲଶ୍+ଫରଯାଦ )
Nālısa pherāda(dı) (ସହଚର ଶବ୍ଦ)—ମୌଖିକ ଓ ଲିଖିତ
[ନାଲସ ଫିରଆଦ(ଦି)—ଅନ୍ୟରୂପ] ଅଭିଯୋଗ—
নালিস ফিবিয়াদি Complaint oral and written.
नालिस फरियाद्

ନାଲ ସିଆଇ(ହି)—ନାଲ କାଳି ( ଦେଖ )
Nali sıāi hi) Nālı kāli ( See )
[ନାଲ ସେଇ(ହି), ନାଲ ସ୍ୟାଇ(ହି)—ଅନ୍ୟରୂପ]

ନାଳୀ—ସ. ବ. ( ନଲ ଧାତୁ=ବନ୍ଧନ କରିବା+ଅ+ଈ )—
Nāḷi ୧ । ନାଳ ୪ ( ଦେଖ )—1. Nāḷa 4 ( See )
୨ । ନାଳ ( ଦେଖ )—2 Nāḷi ( See )
୩ । ନଳତା ( ହରେକୃଷ୍ଣ. ଦ୍ରବ୍ୟଗୁଣ ) ( ଦେଖ )
3. Naḷıtā ( See )

ନାଳୀକ—ସ ବ. ( ନାଳୀ=ଉତ୍କୃଷ୍ଟ ନାଡ଼+କ )—
Nāḷika ୧ । ଶଲ୍ୟ; ଶର; ବାଣ—1. Arrow; shaft.
୨ । ନଳୀ; ବନ୍ଧୁକ—2 Firearm; a gun
୩ । ନାରିକେଳରେ ନିର୍ମିତ କମଣ୍ଡଳୁ—
3. A water pot made of cocoanut.
୪ । ଶଲ୍ୟାସ୍ତ୍ର; ବର୍ଚ୍ଛା; ଭେଣ୍ଡା; ବଲମ—
4. Javellın; lance.
୫ । ପଦ୍ମ—5 Lotus.
ବହୁବ ଛନ୍ନାଳୀ ନାଳୀ କାଣ୍ଡୀ ନବନାଳୀ ବାଳ ଶ ମ୍ ଭଥ ସେବା ପାଳ ପାଳ ହେ ।
ଭକ୍ତ, ପ୍ରେମସୁଧାନିଧି ।
୬ । ପଦ୍ମର ଡେଣ୍ଟ—
6. Stem or stalk of lotus.
୭ । ପଦ୍ମସମୂହ—
7. A collection of lotus flowers.

ନାଳୀକ—ସ. ବ—ନାଳୀକ ( ଦେଖ )
Nāḷika Nāḷika ( See )
କାଳୀକ କାଶତ ଥିଲେ ଅଣ୍ଡ କର । କୃଷ୍ଣସିଂହ. ମହାଭାରତ ବନ ।

ନାଳୀ ଘାଆ—ଦେ. ବ—ନାଳୀ ବ୍ରଣ ( ଦେଖ )
Nāḷi ghāa Nāḷi brana ( See )
নালী ঘা नासूर (ନାଳୀ ଘା—ଅନ୍ୟରୂପ)

ନାଳୀ ବ୍ରଣ—ସ. ବ—ନାଡୀବ୍ରଣ; ଗଣ୍ଡପୂଜା ଘାଆ—
Nāḷi brana Sınus; fistula.

ନାଲୁ—ଦେ. ବ. ( ଆଦରାର୍ଥକ )—
Nālu ୧ । ନାରାୟଣ, ଲାଲମୋହନ ଆଦିଙ୍କ ଡାକ ନାମ—
লালু 1. A name for callıng Nārāyana etc.
लालु ୨ । ଲାଲ୍ସାହେବ; ରାଜା ଓ ଯୁବରାଜଙ୍କ କନିଷ୍ଠ ଭାଇ-ମାନଙ୍କ ଡାକ ନାମ—2. A name for calling the younger members of a Raj-family.

**ନାଲୁଆ**—ଦେ. ବିଣ. (ସ ଲାଳାକ୍ଳନ୍ନ)—୧ । ଲାଳାମୟ—
Nāluā 1. Slimy.
ନାଲେଇ, ନାଲୋଇ }—ସ୍ତ୍ରୀ ମୀନ ପ୍ରାୟ ନାଲୁଆ ହୋଇଛି ତାଙ୍କ ଦେହ । ପ୍ରାଚୀ. ଚନ୍ଦ୍ରକଳୂପଣ ଗୀତା ।
ଲାଲୁକ, ଲାଲକାଟା ୨ । ଯାହା ମୁହଁରୁ ସର୍ବଦା ନାଳ ବୁହେ—
**ଲସଲସା** 2. One who lets the spittle fall in drops from the mouth; a driveller.
ବି.--୧ । କ୍ଷୁଦ୍ର ନାଳ; ପଘଣୀ; ନର୍ଦ୍ଦମା—
1. Small channel; drain.
୨ । ଓଉଡ଼ାମୁହାଁ ଜଳପାତ୍ରବିଶେଷ—
2. Wide-mouthed water jug.
୩ । ଭଣ୍ଡାରୀମାନେ ଯେଉଁ ସରୁମୁହାଁ ତେଲଭଣ୍ଡରୁ ମଶାଲରେ ତେଲ ଢାଳନ୍ତି—3. A narrow-necked oil-vessel from which barbers pour out oil on a torch; oil-bottle (Beams).

**ନାଲୁଆ**—ଦେ. ବି.—(ଅନାଦରାର୍ଥକ) ଲାଲବିହାରୀ ନାମକ ବ୍ୟକ୍ତିର ଡାକ
Naluā ନାମ—Name for calling Lālabihāri.
(ନାଲୁ—ଅନ୍ୟରୂପ) ପ୍ରାଦେ. (ଯାଜପୁର) ବିଣ.—ଫେଶନା ବା ବାହାନା; ଛଳନା—Feigning; false excuse; pretence.

**ନାଲୁକ(କା)**—ସଂ. ବି.— ଗନ୍ଧନାଲୁକା; ଏଲବାଲୁ (ଦେଖ)
Nāluka(kā) Elabālu (See)

**ନାଲୁକା**—ଦେ. ବି.— ବନ୍ୟ ବୃକ୍ଷବିଶେଷ—
Nalukā A kind of wild tree
[ଦ୍ର—ଏହା ୧୮ ଫୁଟ ପର୍ଯ୍ୟନ୍ତ ବଢ଼େ ।]

**ନାଲେଇ ଛାଲେଇ ହେବା**—ଦେ. କ୍ରି. (ସଂ. ଲାଳାୟିତ)—୧ । ନାଲ ଛାଡ଼ିଲ ହେବା; ଧନ ବା ଅନୁଗ୍ରହ
Nālei chhālei hebā
(ନାଲେଇ ଛଲେଇ ହେବା—ଅନ୍ୟରୂପ) ଆଶାରେ ଅନ୍ୟ ବ୍ୟକ୍ତିର କାକୁତି ମିନତି କରି ସୁଦ୍ଧ କରିବା; ନାଲେଇ ହେବା—1 To
**निहोरा; निहोरकरना** hang on the skirts of a person to satiate one's hankering or avarice.
୨ । ସାନତା ପ୍ରକାଶ କରିବା; ଅତି ବିନୟ କରିବା—
2. To show one's humility; to humiliate one's self before another.
୩ । ନିଜର ଅକ୍ଷମତା ପ୍ରକାଶ କରିବା—
3. To express one's inability.

**ନାଲେଇବା**—ଦେ: କ୍ରି.—(ସଂ. ଲାଲ)—୧ । (ମୁଖ) ଲାଳରେ ପୂର୍ଣ୍ଣ
Nāleibā ହେବା—1. (the mouth) To be full of
ଲାଲବହାନ, ଲାଲକାଟା saliva.
**लालगढ़ाना** ୨ । (ମୁଖ) ବହୁ ପରିମାଣରେ ଲାଳ ସ୍ରବିବା—
ଲାଲଚାନ 2. (the mouth) To salivate.
**लालचाना** ୩ । (ବାସୀ ବା ରନ୍ଧଣୀ ପିଠା ଓ ଦହି ଆଦ ବହୁଦନ ପର୍ଯ୍ୟନ୍ତ ରହିଯିବା ଯୋଗୁଁ) ଲାଳାମୟ ହେବା—
3. (stale cakes and cord) To become slimy or salivous.
୪ । (ସଂ. ଲାଳାୟିତ) କୌଣସି କାର୍ଯ୍ୟ କରିବାକୁ ଲାଳାୟିତ ହେବା—4 To hanker after doing a thing.

**ନାଲ୍କା**— ଦେ. ବି.—ନାଲୁକ (ଦେଖ)
Nālka Nāluka (See)

**ନା(ନାଁ)ୱାକଫ୍**—ବୈଦେ.ବିଣ. (ଫା. ନା+ଅ ୱାକଫ୍)—୧ । ଅଜ୍ଞ—
Nā(nān)wākaph 1. Ignorant.
ନାଓୟାକିଫ ୨ । ଯାହାକୁ ଅବଗତ କରା ହୋଇ ନାହିଁ—
**नावाकिफ** 2 Uninformed.

**ନା(ନାଁ)ୱାର(ରି)ସ୍**—ବୈଦେ. ବିଣ. (ଫା.)—ନା ଉଆରସ୍ (ଦେଖ)
Nā(nān)wāra(ri)s Nā uaras (See)

**ନାଶ୍ (ଇତ୍ୟାଦ)**—ବୈଦେ. ବି. (ତୁର୍କୀ. ଲାଶ୍)—
Nāś (etc) ଲାଶ୍ ଇତ୍ୟାଦ (ଦେଖ)—Lāś etc (See)
ଲାସ **लाश**

**ନାଶ**—ସଂ. ବି. (ନଶ୍ ଧାତୁ+ଭାବ. ଅ)—୧ । ମୃତ୍ୟୁ—
Nāśa 1. Death.
ବାୟୁ ସଙ୍ଗରେ ପଡ଼ିଲେ ସେ କାଳେ ଏ,
ଶାପ ଦେଲେ ସୂତ ମୃତ୍ୟୁ କ ଦେଖି ନାଶରେ । ଉକ୍ତ. ବୈଦେହୀଶବିଳାସ
୨ । ବିନାଶ; ଧ୍ୱଂସ—2. Destruction; spoilation; ruin.
୩ । ଲୋପ—
3 Extinction; annihilation; cessation.
୪ । କ୍ଷତି; ହାନି—4. Injury; loss; damage.
୫ ଅପଚୟ—5. Waste; spoilation.
୬ । ଅଦର୍ଶନ; ଲୁଭେଇଯିବା—6. Disappearance
୭ । ପଳାୟନ—7. Flight.
[ଦ୍ର—ଏହି ଶବ୍ଦ ଅନ୍ୟ ଶବ୍ଦ ପରେ ବ୍ୟବହୃତ ହୁଏ । ଯଥା—କୁଳନାଶ, ବଂଶନାଶ, ଧର୍ମନାଶ, ସର୍ବନାଶ ଇତ୍ୟାଦ ।]
୮ । ଦୂରୀଭୂତ ହେବା—8. Removal.
[ଦ୍ର—ସାଂଖ୍ୟମତରେ କୌଣସି ବସ୍ତୁ ବା କାର୍ଯ୍ୟର କାରଣରେ ଲୟ ହେବାକୁ ନାଶ ବୋଲାଯାଏ । କୌଣସି ବସ୍ତୁ ତହିଁର କାରଣରେ ଲୀନ ହୋଇଗଲେ ତାହା ଏତେ ସୂକ୍ଷ୍ମ ହୋଇଯାଏ ଯେ, ତାହା ଇନ୍ଦ୍ରିୟଦ୍ୱାରା ଅନୁଭୂତ ହୋଇ ନ ପାରେ ।]
ଦେ. ବିଣ— ନଷ୍ଟ; କଳୁଷିତ—Spoilt; contaminated.
ତାହାର ବଶେ ଜଳ ନାଶ
ଜଳୁଏ ନ କରନ୍ତି ଗ୍ରାସ—ଜଗନ୍ନାଥ ଭାଗବତ ।

**ନାଶକ**—ସଂ. ବିଣ ପୁଂ—(ନଶ୍ ଧାତୁ ଣିଚ ନାଶି+କର୍ତ୍ତୃ ଅକ)—
Nāśaka ୧ । ଯେ ନାଶ କରେ—1 Destroying.
(ନାଶିକା—ସ୍ତ୍ରୀ) ୨ । ଧ୍ୱଂସକର—
2. Ruinous; destructive.
୩ । କ୍ଷତିଜନକ—3. Injurious
୪ । ଯାହା ଦୂରୀଭୂତ କରେ—4 Removing.

**ନାଶକର**—ସଂ. ବିଣ. ପୁଂ. ( ନାଶ+କୃ. ଧାତୁ+କର୍ତ୍ତୃ ଅ )—
Nāśakara ନାଶକ ( ଦେଖ )—Nāśaka ( See ).
(ନାଶକରୀ—ସ୍ତ୍ରୀ) ବି—ଯମ—The God of death.

**ନାଶ କରିବା**—ଦେ. କ୍ରି.—୧ । ବିନାଶ କରିବା—
Nāśa karibā 1. To destroy.

ନାশ করা ୨ । ଧ୍ୱଂସ କରିବା—2. To ruin.
नाश करना ୩ । କଳୁଷିତ କରିବା—3. To spoil
୪ । ( ଲକ୍ଷଣାର୍ଥ ) ସମାପ୍ତ କରିବା; ବିତେଇବା—
4. ( figurative ) To pass.
ବେଗେ ଗଲେ ଯିନା ବଧୂଙ୍କର ଦେଶକୁ, ତହିଁ ନାଶ କରିବା ଅଜ୍ଞାତ ବାସକୁ ।
କୃଷ୍ଣସିଂହ. ମହାଭାରତ ଉଦ୍ୟୋଗ ।

ନାଶକାରୀ—ସଂ. ବିଣ. ପୁଂ. ( ନାଶ + କୃ. ଧାତୁ + କର୍ତ୍ତୃ. ଇନ୍, ୧ ମା. ୧ ବ )—ନାଶକ ( ଦେଖ )—
Nāśakārī
( ନାଶକାରିଣୀ—ସ୍ତ୍ରୀ ) Nāśaka ( See ).

ନାଶନ—ସଂ. ବି. ( ନଶ୍ ଧାତୁ ଣିଚ, ନାଶି. ଧାତୁ + ଭାବ. ଅନ )—
Nāśana ୧ । ଉଚ୍ଛେଦନ; ବିନାଶ କରିବା—
1. Act of destroying; causing ruin.
୨ । ବିଲୋପସାଧନ—2. Causing extinction.
ବିଣ—( କର୍ତ୍ତୃ ଅନ ) ନାଶକ; ଉଚ୍ଛେଦକ—Destructive.

ନାଶନୀୟ—ସଂ. ବିଣ.—(ନାଶି ଧାତୁ + କର୍ମ ଅନୀୟ)—ବିନାଶଯୋଗ୍ୟ—
Nāśanīya Perishable; destructible.
( ନାଶନୀୟା—ସ୍ତ୍ରୀ )

ନାଶବାନ୍—ସଂ. ବିଣ. ( ନାଶ + ବତ୍; ୧ମା ୧ବ ) ନଶ୍ୱର—
Nāśabān ( ନାଶବତୀ—ସ୍ତ୍ରୀ ) Destructible.

ନାଶ ଯିବା—ଦେ. କ୍ରି—୧ । ଧ୍ୱଂସପ୍ରାପ୍ତ ହେବା—
Nāśajibā 1. To be ruined or destroyed.
নাশ যাওয়া ୨ । ଉଚ୍ଛନ୍ନ ହେବା—2. To be annihilated.
नाश होना ୩ । ନଷ୍ଟ ହେବା—3. To be spoiled.
ପାଣି ନାଶଯାଏ ଯାଉ୍‌ଛେ. ଗୀତ ନାଶ ଯାଏ ବାଟେ,
ସ୍ତ୍ରିୟା ନାଶ ଯାଏ ଯାଉଥ ପରଘେ, କଥା ନାଶ ଯାଏ ଦାନ୍ତେ ଭଗ
୪ । ଅଦୃଶ୍ୟ ହେବା—4 To disappear.

ନାଶଶୀଳ—ସଂ. ବିଣ.—( ନାଶ + ଶୀଳ = ସ୍ୱଭାବ; ବହୁବ୍ରୀହି )—
Nāśaśīla ନାଶଯୋଗ୍ୟ; ଯାହା ବିନାଶ ପ୍ରାପ୍ତ ହୁଏ; ନଶ୍ୱର—
( ନାଶଶୀଳା—ସ୍ତ୍ରୀ ) Of perishable nature; destructible.

ନାଶ ହେବା—ଦେ. କ୍ରି—ନାଶ ଯିବା ( ଦେଖ )
Nāśa hebā Nāśajibā ( See )

ନାଶି ( ଧାତୁ )—(ନଶ୍ ଧାତୁ ଣିଜନ୍ତ)—ବିନାଶ କରିବା—
Nāśi ( root ) To destroy, to ruin

ନାଶିତ—ସଂ. ବିଣ. ( ନଶ୍ ଧାତୁ ଣିଚ୍ = ନାଶି ଧାତୁ + କର୍ମ. ତ )—
Nāśita ୧ । ନିହତ—1. Killed.
( ନାଶିତା—ସ୍ତ୍ରୀ ) ୨ । ଅନ୍ୟ ଦ୍ୱାରା ବିନାଶ ପ୍ରାପ୍ତ, ବିନଷ୍ଟ—
2. Ruined or destroyed by another

ନାଶିବା—ଦେ. କ୍ରି.—ନାଶ କରିବା ( ଦେଖ )—
Nāśibā Nāśa karibā ( See ).
নাশা नाशना ଅଧିକୁ ସୁଧାଙ୍କର ଦେଇ ଯେ ନାଶ ମୋର
ବଶମଣର କୁହ ଦୃଷାକୁ ରେ ।
କବିସୂର୍ଯ୍ୟ. ସଙ୍ଗୀତ

ନାଶୀ—ସଂ. ବିଣ. ( ନଶ୍. ଧାତୁ ଣିଚ ନାଶି. ଧାତୁ + କର୍ତ୍ତୃ. ଇନ୍; ୧ମା. ୧ବ. )—୧ । ବିନାଶକାରୀ—
Nāśī
( ନାଶିନୀ—ସ୍ତ୍ରୀ ) 1. Destroying.
[ ଦ୍ର—ଏହା ଅନ୍ୟ ଶବ୍ଦ ସହିତ ପ୍ରଯୁକ୍ତ ହୁଏ । ଯଥା—
ଦାରିଦ୍ର୍ୟଦୋଷୋ ଗୁଣରାଶିନାଶୀ ]
୨ । (ନାଶ + କର୍ତ୍ତୃ.ଇନ୍, ୧ମା. ୧ବ) ବିନାଶଶୀଳ, ନଶ୍ୱର—
2. Perishable; mortal.

ନାଶୁକ—ସଂ ବିଣ.—( ନାଶ + ଉକ ) ନଶ୍ୱର ( ବୃ. ଶ. )
Nāśuka Destructible.

ନାଶ୍ୟ—ସଂ ବି ( ନାଶି. ଧାତୁ + କର୍ମ ଯ )—
Nāśya ନାଶଯୋଗ୍ୟ—Perishable; destructible;
( ନାଶ୍ୟା—ସ୍ତ୍ରୀ ) deserving destruction.

ନାଷ୍ଟିକ—ସଂ ବି. ପୁଂ. ( ନଷ୍ଟ + ଇକ )—ନଷ୍ଟ ଦ୍ରବ୍ୟର ସ୍ୱାମୀ—
Nāshṭika
ନାଷ୍ଟିକା / ନାଷ୍ଟିକୀ } ସ୍ତ୍ରୀ. Owner of a lost thing.
ସଂ. ବିଣ. ପୁଂ.—ଅନାଥ; ଅସହାୟ—2. Helpless.

ନାସ୍ (ଧାତୁ)—ସଂ.—ଶବ୍ଦ କରିବା—
Nās (root) To make a sound

ନାସ୍ତା—ବୈଦେ ବି (ଫା)—ନାସ୍ତା (ଦେଖ)
Nās-tā Nāstā (See).

ନାସ୍‌ପାତି—ବୈଦେ. ବି (ତୁର୍କୀ) (ସଂ. ନାମ ଅମୃତଫଳ; ଅମୃତଫଳ)—
Nās-pāti କାବୁଲି ଖାଦ୍ୟଫଳବିଶେଷ —
নাসপাতী नासपाती Pear; Pyrus Communis.
[ ଦ୍ର—ଏହା ସେଓ ଫଳ ପରି ଦେଖାଯାଏ । ଏହାର ଗଛ ହିମାଳୟ ଓ ଦକ୍ଷିଣ ଭାରତର ନୀଳଗିରି ପର୍ବତରେ ଜନ୍ମେ । ]

ନାସ—ଦେ ବି (ସଂ. ନସ୍ୟ)—୧ । ନସ୍ୟ—
Nāśa 1. Snuff.
নাস नास ୨ । ତମାଖୁଚୂର୍ଣ୍ଣ—2. Powdered tobacco.
ଯେଉଁକାଳୁଁ ହେଲ ସୁବାସ ନାସ
ସେହିକାଳୁଁ ଗଲ (ହେଲ) ସୁବାସ ନାଶ,
ସୁବାସ ନାଶ, ସୁବାସ ନାଶ—ଭଗ
୩ । ନାକଦ୍ୱାରା ଭେଣ୍ଡାଯିବା ଚୂନା ଔଷଧ—
3 Medicinal powder adminstered through the nose
୪ । ନାସିକା—4. Nose.
ନାସ ପ୍ରଶଂସା କ୍ଷଣରେ ଧନ୍ୟ ହେବ ତିଳ ସୁମନ ଭୁଣୀର ।
ଅଭିମନ୍ୟୁ. ବିଦଗ୍ଧ. ଚିନ୍ତାମଣି ।
ପ୍ରାଦେ (ସମ୍ବଲପୁର) ବି—ପାନ ସଙ୍ଗେ ବା ଖାଲି ପାଟିରେ ପକାଯିବା ତମାଖୁଚୂର୍ଣ୍ଣ—Tobacco powder used as a chewing gum.

ନାସ ଘୋଟା—ଦେ. ବି—୧ । ନସ୍ୟ ପ୍ରସ୍ତୁତ କରିବାପାଇଁ ତମାଖୁକୁ
Nāsa ghoṭā ଚୂର୍ଣ୍ଣ କରିବା—1. Grinding of
নাসঘোটা नासघुटना tobacco into powder for preparing snuff.
୨ । ଯେଉଁ ଠେଙ୍ଗାର ମୂଳଦ୍ୱାରା ନାସ ଘୋଟାଯାଏ—
2. A stick for grinding tobacco into snuff.
୩ । ଯେଉଁ କୁଣ୍ଡିରେ ନାସ ଘୋଟା ହୁଏ—3. A mortar for grinding tobacco into snuff.

ଦେ ବଣ—ନାସ ଘୋଟବାରେ ବ୍ୟବହୃତ (କୁଣ୍ଡି ଓ ଠେଙ୍ଗା)-(mortar and stick) Used in grinding tobacco into snuff.

**ନାସ ଘୋଟିବା**—ଦେ.କ୍ରି—ଧୂଆଁପତ୍ରକୁ କଅଁରେ ସେକ କୁଣ୍ଡିରେ ପୁରାଇ Nāsa ghoṭibā ବାଢ଼ ବା ଠେଙ୍ଗାର ମୂଳରେ ତାକୁ ଉଗଡ଼ ଚୂନା- (ନାସ ଚୂରବା—ଅନ୍ୟରୂପ) କରିବା—To grind tobacco नास घोंटा नासघुटना into snuff.

**ନାସ ଡିବା**—ଦେ ବ (ସଂ. ନସ୍ୟାଧାନ)—ନସ୍ୟ ରଖିବାର ପାତ୍ର— Nāsa dibā Snuff-box.
(ନାସ ଡବଅ, ନାସ ଦାନ—ଅନ୍ୟରୂପ)
नासदान नासदान

**ନାସତ୍ୟ**—ସଂ. ବ (ନାସା+ତ୍ୟଜ୍ ଧାତୁ=ତ୍ୟାଗ କରିବା+କର୍ତ୍ତ୍ର. ଅ)— Nāsatya ଅଶ୍ୱିନୀକୁମାରଦ୍ୱୟ; ସ୍ୱର୍ଗବୈଦ୍ୟ—The twin heavenly physicians.

ବଣ ( ନ+ଅସତ୍ୟ=ଅସାଧୁ )—ସତ୍ୟଗ୍ରାହୀ—Truthful.

ଦେ. ବଣ ( ସଂ. ନାସତ୍ୟା—ଅଶ୍ୱିନୀ ନକ୍ଷତ୍ର, ଅଶ୍ୱିନୀ ନକ୍ଷତ୍ରର ଆକାର ଅବୃଦ୍ଧ ଘୋଡ଼ାମୁହଁ ପର ଥିବାରୁ )— ଘୋଡ଼ାମୁହାଁ ପୁଅ; କୁଳାଙ୍ଗାର ସନ୍ତାନ—An unworthy son of a family.

ଭଦ୍ରକରକୁଳେ ନାସତ୍ୟ ହୋଇଲି ସତ୍ୟ କହିବାରେ ମୁହିଁ ।
ଉପେ. ବୈଦେହୀଶବିଳାସ ।

**ନାସତ୍ୟା**—ସଂ. ବ (ନାସତ୍ୟ+ଆ)—ଅଶ୍ୱିନୀ ନକ୍ଷତ୍ର ( ଜ୍ୟୋ. ଶ. )— Nāsatyā The 1st asterism in Hindu astrology.

**ନାସନା**—ପ୍ରାଦେ ( ଯାଜପୁର ) ବଣ—ଅସନା; ମଇଳା— Nāsanā Dirty; filthy.

**ନାସ ପତ୍ର**—ଦେ. ବ—ଧୂଆଁପତ୍ର; ତମାଖୁ; ଯେଉଁ ଧୂଆଁପତ୍ରରେ ନାସ Nāsa patra ପ୍ରସ୍ତୁତ ହୁଏ—Tobacco leaf used for तामाक, तम्बाकु preparing snuff.
( ନାସ ପତର—ଅନ୍ୟରୂପ )

**ନା(ନାଁ)ସମଜ**—ବୈଦେ. ବଣ ( ଫା. ନାସମଝ୍ )—୧ । ନିର୍ବୋଧ— Nā(nān)samaja 1. Stupid.
नासमझ नासमझ ୨ । ମୂର୍ଖ—2 Illiterate.
( ନାସମଜା—ବ ) (ନାସମଜିଆ—ଅନ୍ୟରୂପ)

**ନାସ ଶୁଙ୍ଘିବା**—ଦେ. କ୍ରି—ନାସିକାଦ୍ୱାରା ନସ୍ୟ ଗ୍ରହଣ କରିବା; ନସ୍ୟ Nāsa sunghibā ଆଘ୍ରାଣ କରିବା—To take snuff.
नास लेना नासलेना
(ନାସ ଟି[ଟେ]କିବା,ନାସ ଟଣା[ଟେ]ଣିବା, ନାସ ନେବା—ଅନ୍ୟରୂପ)

**ନାସା**—ସଂ. ବ. ( ନସ୍ ଧାତୁ+ଅ+ସ୍ତ୍ରୀ. ଆ )— Nāsā ୧ । ଘ୍ରାଣେନ୍ଦ୍ରିୟ; ନାକ—1. Nose.
୨ । ଚୌକାଠର ଉପର ପଟା;ଖାଇଦୋଳ ପଟା;ସାକର ପଟା—2. The head-piece of a door frame; lintel.
୩ । ନାକ ଉପରେ ହେବା ବ୍ରଣ; ଉଡ଼ା ରୋଗ—3. A tumour in the nostril; polypus.
୪ । ବାସକ ବା ବାସଙ୍ଗ ଗଛ—4. A wild medicinal plant; Justicia Adhatoda.
୫ । ହାତୀଶୁଣ୍ଢ—5. The trunk of an elephant.
୬ । ଶବ୍ଦ—6. A sound
୭ । ନାସାରନ୍ଧ୍ର—7. Nostril.
ଦେ. ବ—ଲସା ( ଦେଖ )—Lāsā ( See )

**ନାସାଗ୍ର**—ସଂ. ବ. ( ୬ଷ୍ଠୀ ତତ୍; ନାସା+ଅଗ୍ର )—ନାକର ଅଗ— Nāsāgra The tip of the nose.

**ନାସାଚ୍ଛିଦ୍ର**—ସଂ. ବ. ( ୬ଷ୍ଠୀ ତତ୍, ନାସା+ଛିଦ୍ର )—ନାସାରନ୍ଧ୍ର(ଦେଖ) Nāsāchchhidra Nāsārandhra ( See )

**ନାସାଜ୍ୱର**—ସଂ. ବ. ( ମ ପ. ଲୋ; ନାସାବ୍ରଣଜନିତ ଜ୍ୱର )— Nāsājwara ଉଡ଼ାଜ୍ୱର—Fever accompanied by polypus or tumour in the nostril.

**ନାସାଦାରୁ**—ସଂ. ବ—ସାକରପଟା; ଚଉକାଠ ଉପରେ ଦିଆଯାଇଥିବା Nāsādāru ପଟା—A piece of wood put on the door frame; the upper piece of door frame; lintel.

**ନାସାନଳୀ**—ଦେ. ବ—୧ । ନାକପୁଡ଼ା— Nāsānalī 1. Nostril.
୨ । ବାଉଁଶ ନଳୀ—2 Bamboo tube.

ବାଇ ନାସାନଳୀ ଯୋଗେ ତହିଁ
ବଶେଚନ ଅନ୍ତ ଜ୍ୟୋଃ ଏଣୁ ବହି—ଉପେ, ବୈଦେହୀଶବିଳାସ ।

**ନାସାନାହ**—ସଂ. ବ. ( ନାସା+ଆନାହ )—ବାୟୁ ଓ କଫ ମିଶ୍ରିତ ହୋଇ Nāsānāha ନାକର ଛିଦ୍ର ବନ୍ଦ ହୋଇଯିବା ରୋଗ, ପ୍ରତିନାହ; ପ୍ରତିନାହ—The stoppage of the nostrils with phlegm and wind.

**ନାସା ପରିଶୋଷ**—ସଂ. ବ—ନାକ ମଧ୍ୟରେ କଫ ଶୁଖିଯାଇ ବଳୁଲ Nāsā pariśosha ବାନ୍ଧିବା ରୋଗ—A disease resulting ( ନାସାଶୋଷ—ଅନ୍ୟରୂପ ) in the drying up of the phlegm inside the nostrils.

**ନାସା ପରିସ୍ରାବ**—ସଂ. ବ—ନାସାସ୍ରାବ (ଦେଖ ) Nāsā parisrāba Nāsā srāba ( See )

**ନାସାପାକ**—ସଂ. ବ—ନାକରେ ଘାଆ ହୋଇ ପାଚିବା ରୋଗ— Nāsāpāka A disease resulting in suppurated boils inside the nose.

**ନାସା ପୁଟ**—ସଂ. ବ. ( ୬ଷ୍ଠୀ ତତ୍; ନାସା+ପୁଟ )—ନାକପୁଡ଼ା— Nāsā puṭa The outer covering skin of the nostril.

**ନାସାପୁଟିଆ**—ଦେ. ବ—ନାସିକାର ଅଳଙ୍କାରବିଶେଷ— Nāsāpuṭiā Name of an ornament for nose.

ମୁକୁତା ପାଞ୍ଚଗୋଟିଅ ମୋର ନାସାପୁଟିଅ, କହ୍ନାଇ ପାଶକୁ ବାଳ
ଯାଉଥିବ ଝମକ ଝମକ ଝୁଲିଥ—ପ୍ରାଚୀ. ରହସ୍ୟମଞ୍ଜରୀ ।

**ନାସାପୁଡ଼ା**—ଦେ. ବ (ସଂ. ନାସାପୁଟ)—ନାସାପୁଟ ( ଦେଖ ) Nāsāpurḍā Nāsāpuṭa ( See ).

ଏତେ ବଣ୍ଡ ଦେଇଣ ପୁଣି ନାସାପୁଡ଼ା
ଉତରକୁ ବନ୍ଧନ୍ତ-ବେଳେ ଘରକୁଡ଼ା—କୃଷ୍ଣସିଂହ. ମହାଭାରତ, ବନ ।

**ନାସାବଂଶ**—ସଂ. ବି. ( ୬ଷ୍ଠୀ ତତ୍; ନାସା + ବଂଶ )—ନାକ ଉପରର
Nāsābamśa ଦଣ୍ଡବତ୍ ଅସ୍ଥି—The bridge of the nose.

**ନାସାବିନ୍ଧ**—ଦେ. ବି.—ନାସାରେ ଫୋଡ଼ାଯିବା ଛିଦ୍ର—
Nāsābindha Bore in the nose.

**ନାସାବିନ୍ଧା**—ଦେ. ବିଣ. ( ସଂ. ନାସା + ବିଦ୍ଧ )—ଯାହାର ନାକ ଫୋଡ଼ା
Nāsā bindhā ହୋଇଅଛି ; ନାକଫୋଡ଼ା—
Having the nose bored.

**ନାସା ବିବର**—ସଂ. ବି. ( ୬ଷ୍ଠୀ ତତ୍; ନାସା + ବିବର )—ନାସାରନ୍ଧ୍ର—
Nāsā bibara Nostril.

**ନାସାମଣି**—ସଂ ବି. ( ୬ଷ୍ଠୀ ତତ୍, ନାସା + ମଣି )—ନାକରେ ପିନ୍ଧାଯିବା
Nāsāmaṇi ଦଣ୍ଡିରେ ଥିବା ରତ୍ନ—
Jewel set in a nosering

**ନାସା ମଳ**—ସଂ. ବି. (୬ଷ୍ଠୀ ତତ୍; ନାସା + ମଳ)—ସିଙ୍ଘାଣି—
Nāsā maḻa The mucus of the nose.

**ନାସା ଯୋନି**—ସଂ. ବି—ସୌଗନ୍ଧିକ ନପୁଂସକ; ଯେଉଁ ନପୁଂସକ ବ୍ୟକ୍ତି
Nāsā joni ଯୋନି ଆଘ୍ରାଣ କରିବା ପରେ କାମୋଦ୍ଦୀପନା ଅନୁଭବ କରେ (ହି. ଶ)—A class of impotent persons who are not sexually irritated unless they smell the female organ.

**ନାସା ରନ୍ଧ୍ର**—ସଂ. ବି. (୬ଷ୍ଠୀ ତତ୍; ନାସା+ରନ୍ଧ୍ର)—
Nāsā randhra ୧ । ନାକପୁଡ଼ା, ନାସିକା ମଧ୍ୟସ୍ଥ ଶ୍ୱାସ ପ୍ରଶ୍ୱାସର ପଥ—1. Nostril.

୨ । ଗୁଣା, ବସୁଣି, ଦଣ୍ଡିଆଦି ପିନ୍ଧିବା ପାଇଁ ନାକରେ କରାଯିବା ଫୋଡ଼—2. Holes bored in the nostril for wearing ornaments and noserings.

**ନାସା ରୋଗ**—ସଂ. ବି. (୬ଷ୍ଠୀ ତତ୍; ନାସା + ରୋଗ)—
Nāsā roga ନାକରେ ହେବା ରୋଗ—
A disease of the nose.

[ ଦ୍ର—ଭାବପ୍ରକାଶ ମତରେ ନାସାରୋଗ ୩୪ ପ୍ରକାର ଓ ସୁଶ୍ରୁତମତରେ ୩୧ ପ୍ରକାର ଯଥା—ଅପୀନସ୍ୟ (ପୀନସ), ପୂତିନସ୍ୟ, ନାସାପାକ, ପୂୟଶୋଣିତ, କ୍ଷବଥୁ, ଭ୍ରଂଶଥୁ, ଦୀପ୍ତି, ପ୍ରତିନାହ, ପରିସ୍ରାବ, ନାସାଶୋଷ, ୪ପ୍ରକାର ନାସାର୍ଶ, ୪ପ୍ରକାର ନାସାଶୋଥ, ୭ପ୍ରକାର ନାସାର୍ବୁଦ, ୫ପ୍ରକାର ପ୍ରତିଶ୍ୟାୟ; ଭାବପ୍ରକାଶରେ ଅଧିକା ୩ ପ୍ରକାର ରକ୍ତପିତ୍ତ । ]

**ନାସାଳୁ**—ସଂ. ବି—କାଫଳ (ଦେଖ)
Nāsāḻu Kāphaḻa (See)

**ନାସା ସ୍ରାବ**—ସଂ. ବି. (୬ଷ୍ଠୀ ତତ୍; ନାସା + ସ୍ରାବ)—
Nāsā srāba ଶରଦ ଯୋଗୁଁ ନାକରୁ ପାଣି ବା ସିଙ୍ଘାଣି ବୋହିବା (ନାସାପରିସ୍ରାବ—ଅନ୍ୟରୂପ) ଅବସ୍ଥା—The running of the mucus through nose (due to cold).

**ନାସି**—ଦେ. ବି. (ସଂ. ନାସା)—୧ । ଫୁଲର ବା ଫଳର ନାଡ଼—
Nāsi 1. The stalk of a fruit or flower.

୨ । ବେତ ବା କିଆ ଆଦିର ବଙ୍କା କଣ୍ଟା—
2. The hooked thorn of the cane creeper, the screwpine leaf etc.

୩ । ପର୍ବତାଦିର ଭୂପୃଷ୍ଠସଂଲଗ୍ନ କ୍ରମସୂକ୍ଷ୍ମ ଅଂଶ, ଯାହା ବେଳେ ବେଳେ ସମୁଦ୍ର ବା ହ୍ରଦମଧ୍ୟକୁ ପଶିଯାଇ ଥାଏ—
3. The nose or projecting end of a mountain.

ନୀଳ ଅଙ୍ଗ ତୋର ତନୁ ଅନ୍ତରାଳେ
ନାସି ନଳବନ ଶୈଳଦ୍ୱୀପ ମାଳେ । ରାଧାନାଥ. ଚିଲିକା ।

୪ । ଅନ୍ତରୀପ—4. A cape; a projecting point.

୫ । ଶଗଡ଼ଚକରେ ଲାଗିଥିବା ଲୁହାଖଣ୍ଡ—
5 A piece of iron attached to the cart-wheel.

୬ । ଦଉଡ଼ିର ଅଗରେ ବଳକା ଥିବା ସରୁ ଅଂଶ—
6. The thin excrescent end of a rope

୭ । ପ୍ରଦୀପର ଅଗ୍ରଭାଗରେ ଜଳି ସାରିଥିବା ସଳିତାର ଅଂଶ—
7. The burnt end of a wick

୮ । ଜଳାଶୟର କ୍ରମସୂକ୍ଷ୍ମ କୋଣ—8. Creek of a lake.

୯ । ଫଳ ଫୁଲର ଡେମ୍ଫ—
9. Stalk of a fruit or flower.

**ନାସିକ**—ସଂ. ବିଣ. ପୁଂ—ନାସିକାବିଶିଷ୍ଟ—
Nāsika Nosed; having such or such a nose.
(ନାସିକା—ସ୍ତ୍ରୀ)

[ ଦ୍ର—ଏହି ଶବ୍ଦ ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ ହୁଏ; ଯଥା—ଉନ୍ନତ ନାସିକ । ]

ଦେ° ବି. (ସଂ. ନାସିକା)—ପୌରାଣିକ ପଞ୍ଚବଟୀର ଆଧୁନିକ ନାମ—
The country of Nāsika in South India.

[ ଦ୍ର—ଏହା ହିନ୍ଦୁମାନଙ୍କର ଗୋଟିଏ ତୀର୍ଥ । ଏଠାରେ ପିତୃପକ୍ଷରେ ବହୁ ସହସ୍ର ହିନ୍ଦୁ ତର୍ପଣ କରିବାକୁ ଯାଆନ୍ତି । ଏହା ମହାରାଷ୍ଟ୍ର ଦେଶରେ ଅବସ୍ଥିତ । ଏହା ନାସିକଠାରୁ ଗୋଦାବରୀ ବାହାରିଅଛି । ଏହି ନଗର ଗୋଦାବରୀ ନଦୀର ଉତ୍ତରରେ ଅବସ୍ଥିତ । ଏଠାରେ ଶ୍ରୀ ରାମଚନ୍ଦ୍ରଙ୍କ ଆଦେଶରେ ଲକ୍ଷ୍ମଣ ସୂର୍ପଣଖାର ନାସାକର୍ଣ୍ଣ ଛେଦନ କରିଥିଲେ । ତେଣୁ ଏ ସ୍ଥାନର ନାମ ନାସିକ ହୋଇଅଛି—
ମଦନମୋହନ. ତୀର୍ଥଦର୍ଶନ ]

**ନାସିକନ୍ଧମ**—ସଂ. ବିଣ. ପୁଂ. (ନାସିକା + ଧ୍ମା ଧାତୁ = ଶବ୍ଦ କରିବା + କର୍ତ୍ତୃ. ଅ)—ଯେ ଶୋଇଲା ବେଳେ ନାକଦ୍ୱାରା ସଶବ୍ଦ ନିଶ୍ୱାସ ବା ଘୁଙ୍ଗୁଡ଼ି ମାରେ—
Nāsikandhama Blowing or breathing through the nose; snoring through the nose during sleep.
(ନାସିକନ୍ଧମା—ସ୍ତ୍ରୀ)

**ନାସିକନ୍ଧୟ**—ସଂ ବିଣ. ପୁଂ (ନାସିକା + ଧେ ଧାତୁ = ପାନ କରିବା + କର୍ତ୍ତୃ. ଅ)—ଯେ ନାକଦ୍ୱାରା ପାନ କରେ ବା ଜଳାଦି ଶୋଷିନିଏ—Drinking or sucking through the nose.
Nāsikandhaya
(ନାସିକନ୍ଧୟା—ସ୍ତ୍ରୀ)

**ନାସିକା**—ସଂ. ବି. (ନାସା + ସ୍ୱାର୍ଥେ. କ + ଆ; ତୁଳନା କର-ରାଧାରୁ ରାଧିକା; ଲତାରୁ ଲତିକା ଇତ୍ୟାଦି)—୧ । ନାସା (ଦେଖ)
Nāsikā 1. Nāsā (See)

[ ଦ୍ର—ନାସା ଶବ୍ଦ ଅନ୍ୟ ଶବ୍ଦ ସଙ୍ଗେ ମିଶି ଯେଉଁ ପଦମାନ ହୁଏ, ନାସିକା ଶବ୍ଦ ସେହି ଶବ୍ଦମାନଙ୍କ ସଙ୍ଗେ ମିଶିଲେ ସେହିପରି ପଦ ନିଷ୍ପନ୍ନ ହୁଏ । ଯଥା—ନାସିକାଗ୍ର, ନାସିକାପୁଟ, ନାସିକାମଳ । ]

୨ । ଅଶ୍ୱିନୀ—2. An epithet of Aświni.
୩ । ପ୍ରୋଥି—3. A pointed projection
ସଂ. ବଣ—ଶ୍ରେଷ୍ଠ; ପ୍ରଧାନ (ହି. ଶ)—Chief; principal.

**ନାସିକାନ୍ଧୟ**—ସଂ. ବିଣ. ପୁଂ—ନାସିକନ୍ଧୟ (ଦେଖ)
Nāsikāndhaya  Nāsikandhaya (See)

**ନାସିକୀୟ**—ସଂ. ବିଣ. (ନାସିକା+ଈୟ)—ନାକ ସମ୍ବନ୍ଧୀୟ—
Nāsikiya  Nasal.

**ନାସିକ୍ୟ**—ସଂ. ବିଣ. (ନାସିକା+ଯ)—୧ । ନାସିକାରୁ ଉତ୍ପନ୍ନ—
Nāsikya  1 Nasal; produced from the nose.
୨ । ନାସିକା ସମ୍ବନ୍ଧୀୟ—2. Relating to the nose.
ସଂ. ବି—୧ । ନାକ—1. Nose.
୨ । ଅଶ୍ୱିନୀକୁମାର ଦ୍ୱୟ—2. The twin sons of Aświni.
୩ । ନାସିକ (ଦେଖ)—3. Nāsika (See).
୪ । ଅନୁନାସିକ ସ୍ୱର—4. Nasal sound.

**ନାସିକ୍ୟକ**—ସଂ. ବି. ( ନାସିକ୍ୟ+କ )—ନାକ; ନାସିକା—
Nāsikyaka  Nose.

**ନାସି ଲଗା**—ଦେ. ବିଣ—ଯେଉଁ ଫଳ ବା ପୁଷ୍ପରେ ଡେମ୍ଫ ଲାଗିଥାଏ—
Nāsi lagā  ( a fruit or flower ) With the stalk attached to it.
(ଦ୍ର—ଶୁଭାନୁଷ୍ଠାନମାନଙ୍କରେ ନାସିଲଗା ପଇଡ଼ କଳସ ଉପରେ ରଖାଯାଏ । )

**ନାସୀର**—ସଂ ବି ( ନାସ୍ ଧାତୁ ଶବ୍ଦ କରିବା+ଈର, ଯେଉଁମାନେ
Nāsira  ସିଂହନାଦ କରନ୍ତି )—
୧ । ସେନାମୁଖ; ଅଗ୍ରବର୍ତ୍ତୀ ସେନା—
1 The vanguard of an army.
୨ । ଅଗ୍ରଗାମୀ ସୈନିକ—2. Pioneer.
ବିଣ—ସେନାଦଳର ଅଗ୍ରଗାମୀ—
Advancing in front of an army.

**ନାସ୍ତା**—ବୈଦେ. ବି. ( ଫା )—ଜଳଖିଆ—
Nāstā  Luncheon; tiffin; light refreshment.
नाश्ता  नास्ता

**ନାସ୍ତାନା(ନୁ)ବୁଦ(ଦ୍)**—ବୈଦେ. ବଣ. ( ଫା. ନସ୍ତ୍ ନାବୁଦ୍ )—
Nāstānā(nu)but(d)  ୧ । ବିଧ୍ୱସ୍ତ; ଜଷ୍ଟଭ୍ରଷ୍ଟ—
नास्तानाबूद  1. Ruined; destroyed; annihilated.
नेस्तनाबुद  ୨ । ଭୂପତିତ; ବିପର୍ଯ୍ୟସ୍ତ—
2. Pulled down; reversed.
୩ । ହଗାଲଗା; ବ୍ୟତିବ୍ୟସ୍ତ; ଅକାଳୁ—
3. Over-powered; at bay.
୪ । ମୂଳୋତ୍ପାଟିତ; ନିର୍ମୂଳ—4. Eradicated.
ବି.—ସର୍ବନାଶ—1. Annihilation.
୨ । ବିନାଶ; ଧ୍ୱଂସ—2. Ruin.
୩ । ସମୂଳ ନାଶ—3. Eradication.

**ନାସ୍ତି**—ସଂ. କ୍ରି. (ନ+ଅସ୍ତି)—(ସେ) ନ ଅଛି; ନାହିଁ—
Nāsti  He or it; Is not; does not exist.

ନେଇ, ନାଇ  ଦେ. ବି.—୧ । ନିଷେଧ; ନାହିଁ କରିବା—
नै, नाही  1. Refusal; denial.
ଅସ୍ତି } ବିପରୀତ
ଆସ୍ତି }
ଶୁଣି ବେଦମନ୍ତ୍ର କନ୍ୟା ଯେ କ୍ଷଣେ ମଉନ ହେଲା,
ନାସ୍ତି କରନ୍ତେଣ ସ୍ୱବଶ ବଳାତ୍କାରେ ଧଇଲା ।
ଜଗନ୍ନାଥ- ତଉତ୍ତମାପୁଣ ।
୨ । ଅଭାବ—2 Want.
୩ । ଅନସ୍ତିତ୍ୱ; ନାସ୍ତିତ୍ୱ—
3. The state of non-existence; absence.
ଶୂନ୍ୟର ଅସ୍ତି ନାସ୍ତି କହୁ,
ଏମ ତୋ ତୁଳନା ଏ ନୋହୁ । ଭୂପତ ପ୍ରେମପଞ୍ଚାମୃତ ।
ଅ.—୧ । ନାହିଁ; ଶୂନ୍ୟ—1. Nil; zero.
( ଯଥା—ଟଙ୍କା ନୂନ ଅଣା ନାସ୍ତି ଛିଲ ପାହୁଲ । )
୨ । ନୁହେଁ—2. No.
(ଯଥା—ଛଅଟଙ୍କା ଗୁରୁଅଣା ପାହୁ ନାସ୍ତି ।)
୩ । (ଗଣିତ) ଅଜ୍ଞାତ; ଜଣା ନାହିଁ—3 (Arithmetic. Not known; unknown.
(ଯଥା—ଦୀର୍ଘ ନାସ୍ତି, ପ୍ରତି ଗୁର ପଣ, ଜମି କେତେ ମାଣେ ।)
[ଦ୍ର—ଏହି ଶବ୍ଦ ଅସ୍ତି (ସଂ. ଅସ୍ତି) ଶବ୍ଦ ସହିତ ବିପରୀତାର୍ଥକ ସହଚରରୂପେ ବ୍ୟବହୃତ ହୁଏ, ଅସ୍ତି ନାସ୍ତି = ହଁ ଓ ନାଁ ।]

**ନାସ୍ତିକ**—ସଂ ବିଣ. ପୁଂ. (ନାସ୍ତି=ନାହିଁ+କ, ପରଲୋକ ଓ ଈଶ୍ୱର
Nāstika  ନାହାନ୍ତି, ଏହା ଯେ କହେ)—୧ । ଈଶ୍ୱରଙ୍କ ଅସ୍ତିତ୍ୱ
(ନାସ୍ତିକା—ସ୍ତ୍ରୀ)  ଅସ୍ୱୀକାରକାରୀ —1. Atheistical.
୨ । ବେଦ, ପରକାଳ ଓ ଦେବତା ଆଦି ନ ମାନିବା (ବ୍ୟକ୍ତି)
2. Infidel; unbeliever; denying the authority of the Bedas, a future existence and the existence of the Creator of the universe.
ବି.—ଯେ ଈଶ୍ୱରଙ୍କୁ ମାନେ ନାହିଁ—An atheist; an infidel; an unbeliever.

**ନାସ୍ତିକତା**—ସଂ. ବି. (ନାସ୍ତିକ+ଭାବ. ତା)—ନାସ୍ତିକର ଭାବ ବା
Nāstikatā  ଧର୍ମ; ଈଶ୍ୱର, ପରଲୋକ ଓ ବେଦ ମିଥ୍ୟା, ଏଭଳି
(ନାସ୍ତିକତ୍ୱ—ଅନ୍ୟରୂପ)  ବିଶ୍ୱାସ—Infidelity; atheism; heresy.

**ନାସ୍ତି କରିବା**—ଦେ. କ୍ରି. (ସଂ. ନାସ୍ତି =ନାହିଁ)—୧ । ନାହିଁ
Nāsti kariba  କରିବା—1 To refuse; to reject.
নাস্তি কবা  अस्वीकार करना  ୨ । ମନା କରିବା—
2. To deny.

**ନାସ୍ତିକେ**—ଦେ. କ୍ରି. ବିଣ.—ଅଭାବରେ—
Nāstike  Without in the absence of,
ମୋର ନାସ୍ତିକେ ସେ କ ଜାଣି ଥିବେ,
ଫେଡ଼ି କାହା ଅଗେ ଦୁଃଖ କହିବେ । ପ୍ରାଚୀ, ରହସ୍ୟ ମଞ୍ଜରୀ ।

**ନାସ୍ତିକ୍ୟ**—ସଂ. ବି.—(ନାସ୍ତିକ+ଭାବ. ଯ)—ନାସ୍ତିକତା (ଦେଖ)
Nāstikya  Nāstikatā (See)

**ନାସ୍ତିଦ**—ସଂ. ବି—ଆମ୍ରଗଛ (ହି. ଶ.)—
Nāstida  The mango tree (Apte).
(ନାସ୍ତିଦଦ—ଅନ୍ୟରୂପ)

**ନାସ୍ତି ବଚନ**—ଦେ. ବ. (ସଂ ନାସ୍ତି + ବଚନ)—୧ । ଅସ୍ୱୀକାର—
Nāsti bachana 1. Denial.
ନାଁ ନାଁ ୨ । ଅଗ୍ରାହ୍ୟ କରିବା ବାକ୍ୟ—
नाह नुह 2. Word of refusal.

**ନାସ୍ତି ବାଦ**—ସଂ. ବ—ଯେଉଁ ମତବାଦ ଅନୁସାରେ ଈଶ୍ୱର, ପରକାଳ ଓ
Nāsti bāda ବେଦର ମୌଳିକତ୍ୱ ସ୍ୱୀକାର କରାଯାଏ ନାହିଁ—
(ନାସ୍ତିକବାଦ—ଅନ୍ୟରୂପ) Atheism; the assertion that there is no God.

**ନାସ୍ୟ**—ସଂ. ବଣ. ( ନାସା + ସମ୍ବନ୍ଧାର୍ଥେ ଯ )—
Nāsya ୧ । ନାସା ସମ୍ବନ୍ଧୀୟ—1 Nasal
୨ । ନାସିକାରୁ ଉତ୍ପନ୍ନ—2 Produced from the nose.

**ନାହ**—ସଂ. ବ. ( ନହ୍. ଧାତୁ = ବାନ୍ଧିବା + ଭାବ. ଅ )—
Nāha ୧ । ବନ୍ଧନ—1 Binding; confinment.
୨ । ( + କରଣ. ଅ ) ରଜ୍ଜୁ—2 Bond, rope.
୩ । ଫାଶ, ଜାଲ, ପାଶ—3 A trap; a snare.
୪ । ମଳରୋଧ—4 Constipation; costiveness.

**ନାହକ୍**—ବୈଦେ. ବଣ. ( ଫା. ନାହକ୍ )—୧ । ଅନ୍ୟାୟ—
Nāhak 1. Wrong; unjust.
নাহক ୨ । ବ୍ୟର୍ଥ; ନିଷ୍ଫଳ; ଅନର୍ଥକ—2 Vain; fruitless.
नाहक ୩ । ନିରର୍ଥକ -3 Useless; meaningless
( ହକ୍—ବିପରୀତ ) ୪ । ଅନୁଚିତ—4 Improper.
୫ । ନିଷ୍ପ୍ରୟୋଜନ—5. Unnecessary.
କ୍ରି. ବଣ—୧ । ଅକାରଣ; ବୃଥା; ଅନର୍ଥକ—
1. In vain, for nothing.
୨ । ଅନ୍ୟାୟରୂପେ—2 Unjustly; wrongly.
୩ । ଅନୁଚିତ ରୂପେ—3. Improperly.
୪ । ପ୍ରୟୋଜନ ନ ଥାଇ—4. Unnecessarily.

**ନାହକ**—ଦେ ବ—ନାହାକ (ଦେଖ)
Nāhaka Nāhāka ( See )

**ନାହା**—ଦେ. ବ. ( ସଂ. ନାଥ)—୧ । ପ୍ରଭୁ—1. Lord; master.
Nāhā ବଳୁରଲେ ଏହା ଦେଖିଲେ ନରନାହା,
নাহা नाह କ ବୋଲିବେ ତାଙ୍କୁ କହିବା ଆମ୍ଭେ କାହା
କୃଷ୍ଣସିଂହ. ମହାଭାରତ ସଭା ।
୨ । ରାଜା—2. King.
ବୋଧ୍ୟ କହେ ଅନ୍ତପୁର ନ ହା—କବିସୂର୍ଯ୍ୟ ସଙ୍ଗୀତ ।
୩ । ସ୍ୱାମୀ—3. Husband
নাও ୪ । ( ସଂ. ନୌକା; ଫା. ନାଓ )—ଡଙ୍ଗା ( ଦେଖ )
नाव 4. Daṅgā ( See )
লাখ ୫ । ( ସଂ. ଲକ୍ଷା ) ଲହା ( ଦେଖ )—
लाह 5. Lahā ( See )
( ସଂ. ନାୟକ ) ବଣ—ଶ୍ରେଷ୍ଠ—Best.
ମୋହଠାରୁ ବଳିଣ ଶୁଣ ଚିକନାହା । କୃଷ୍ଣସିଂହ, ମହାଭାରତ ବନ ।

**ନାହାକ**—ଗ୍ରା. ବ. ପୁଂ. ( ସଂ. ନାୟକ )—୧ । ନାୟକ; ଉତ୍କଳର
Nāhāka ଜ୍ୟୋତିଷ ବ୍ୟବସାୟୀ ଜାତି; ଅବଧାନ ଜାତି—
( ନାହାକାଣୀ—ସ୍ତ୍ରୀ ) 1. The astrologer caste of Orissa.
[ ଦ୍ର—ଏମାନେ ଜ୍ୟୋତିଷ ଗଣନା କରନ୍ତି ଓ ପାଠ ପଢାନ୍ତି । ଆମ ଦେଶରେ ଜ୍ୟୋତିଷ ବା ଗଣକବଂଶ ଓ ମାସ୍ତରବଂଶ ଏହି ଦୁଇ ଶ୍ରେଣୀର ନାହକ ଅଛନ୍ତି । ହିନ୍ଦୁମାନଙ୍କ ସଂସ୍କାରାଦି କର୍ମରେ ନାହାକ, ପୁରୋହିତ ଓ ଭଣ୍ଡାରୀମାନଙ୍କ ଉପସ୍ଥିତି ଆବଶ୍ୟକ ହୁଏ । ]
୨ । ହାଟୁଆ ଜାତିର କୌଣସି ଯାତକର ମୁଖ୍ୟ ବ୍ୟକ୍ତି—
2 The headman of any of the caste-guilds of Hāṭuā castes.
୩ । ଶୂଦ୍ରମାନଙ୍କର ଉପାଧିବିଶେଷ—
3. A family-title of some Śūdras
୪ । ପାଣ, ହାଡ଼ୀ ଓ ଶଅରମାନଙ୍କ ବଂଶୋପାଧିବିଶେଷ—
4. A family-title of some of the low castes.

**ନାହାକା**—ଦେ. ବ.—( ସଂ. ନାୟକ = ପ୍ରଧାନ )—
Nāhākā ୧ । ଏକ ପ୍ରକାର ବଡ଼ ଶୁଆ; ଚୋତା; କାକାତୁଆ—
টীয়া,কাকাতুয়া A big species of parrot, cackatoo;
तोता, काकातुआ macaw.
লম্বা শাকড় ୨ । ଗଛର ପ୍ରଧାନ ଚେର—2. The principal
मुसलीजड़ or main root of a tree.
୩ । କାଠ ପନ୍ତାଳ ମଧ୍ୟରେ ଥିବା ଦୀର୍ଘତମ କାଷ୍ଠ—
3. The longest log in a raft of timbers.

**ନାହାକା ଚେର**—ଦେ. ବ.--ଗଛର ପ୍ରଧାନ ବା ବୃହତ୍ତମ ଚେର; ଗଛରେ
Nāhākā chera ଯେଉଁ ଚେର ଲମ୍ବ ଭାବରେ ମାଟି ଭିତରକୁ
মূল শীকড় ବହୁ ଦୂରକୁ ଯାଇଥାଏ—The principal or
मूसली main root of a tree which goes straight deep into the ground

**ନାହାକାଠି**—ଦେ. ବ. ସ୍ତ୍ରୀ (ଗାଳିବିଶେଷ)—ଅଣ୍ଡିରୁଣ୍ଡି; କଳିହୁଡ଼ୀ (ସ୍ତ୍ରୀ),
Nāhākāṭi କଳହପ୍ରିୟା ସ୍ତ୍ରୀ—A virago; vixen;
উগ্রচণ্ডী लड़ाकीन shrew.

**ନାହାକାଣୀ**—ଦେ. ବ. ସ୍ତ୍ରୀ—୧ । ନାହାକଜାତୀୟା ସ୍ତ୍ରୀ—
Nāhākāṇi 1. A female of a Nāhāka caste.
(ନାହାକଅଣୀ, ନାହାକୁଣୀ— ଅନ୍ୟରୂପ)
୨ । ମାଲିକାଣୀ—Mistress; she owner.
ଶାଠିଏ ବାଛର ନାହାକଅଣୀ ମୁଁ ପର ପଦାତରେ ପଡ଼ିଛି—ଚଗ ।

**ନାହା କ୍ଷଣ କରିବା**—ଦେ.କ୍ରି—ବିପରୀତ କୂଳର ନିର୍ଦ୍ଦିଷ୍ଟ ସ୍ଥାନ ପ୍ରତି ଲକ୍ଷ୍ୟ
Nāhā kshaṇa karibā କରି ଡଙ୍ଗାକୁ ଏକୂଳରୁ ଛାଡ଼ିଦେବା—
To ply a boat by directing it to a fixed point on the opposite bank.

**ନାହା ଗୁଳି**—ଦେ.ବ—୧ । ଡଙ୍ଗା ଉପରେ କରାଯାଇଥିବା ତ୍ରିକୋଣ ଗୁଳି
Nāhā chāli 1. A triangular thatch put on a
(ନାହାଗୁଳିଆ—ଅନ୍ୟରୂପ) country boat, the eaves of which touch the sides of the boat.
(ମଉଡ଼ମଡ଼ି, ଏକଗୁଳିଆ—ବିପରୀତ) ୨ । ଲମ୍ବେ ଲମ୍ବେ ତ୍ରିକୋଣ
দোচালা दुचल्ला ଗୁଳିଥିବା ଅଳ୍ପ ଉଚ୍ଚ ଗୁଳି ଘର ( ଯେଉଁ ଘରର ଗୁଳି ମଉଡ଼ମଡ଼ି ବା ଚତୁଷ୍କୋଣବିଶିଷ୍ଟ ନୁହେଁ ଓ ଯେଉଁ

ଘରର ଢାଞ୍ଚାଅଛି ଥାଏ )—2. Gable-roofed house; a low house with a double roof
ବଣ (ଯେଉଁ ଘରର ଶୃଙ୍ଗ) ନାହାର ଶୃଙ୍ଗ ପରି ଦୁଇଫାଳିଆ—Gable-roofed (house); gabled roofed

ନାହା ଦୁବି—ଦେ. ବି (ସଂ. ନୌ+ବୁଡ଼ ଧାତୁ)—ଡଙ୍ଗା ଜଳମଗ୍ନହେବା—
Nāhā dubi  ନାଓଡୁବୀ **नावडुबी** The sinking of a boat.

ନାହାଣ ପଞ୍ଚମୀ—ଦେ ବି—ଆଶ୍ୱିନ କୃଷ୍ଣ ପଞ୍ଚମୀ; ଅଶ୍ୱ ପଞ୍ଚମୀ—
Nāhāṇa pañchami  The 5th day of the dark fortnight of the month of Āswina when horses are worshipped.
[ ଦ୍ର—ଏ ଦିନ ଘୋଡ଼ାମାନଙ୍କୁ ପୂଜା କରାଯାଏ । ]

ନାହା ପେଲିବା—ଦେ. କ୍ରି—ନୌକାରୋହୀମାନେ ବସିଥିବା ଡଙ୍ଗାକୁ
Nāhā pelibā  ନଦୀର କୂଳ ଆଡ଼କୁ ଘୁସିଯିବାକୁ ଏକ କୂଳରୁ ଠେଲିଦେବା—1. To push away a boat to proceed to the other bank.
୨ । (ଲକ୍ଷଣାର୍ଥ) ସଂସାରଯାତ୍ରା ନିର୍ବାହ କରିବା—
2 (figurative) To eke out one's existence; to carry on one's worldly concerns
[ ଦ୍ର—ଶୁଖିଲାରେ ନାହା ପେଲିବା—ନ୍ୟାୟ=ବିନା ଧନରେ ସଂସାରଯାତ୍ରା ନିର୍ବାହକରିବା ବା କୌଣସି ବ୍ୟୟସାଧ୍ୟ କର୍ମ କରିବା; ଯଥା—ମୋ ହାତରେ ପଇସାଟିଏ ନାହିଁ, ମୁଁ ପୁଅ ବାହାଘର କରିବାକୁ ବସିଛି; ଅତଏବ ଶୁଖିଲାରେ ନାହା ପେଲିବି ବୋଲି ଭାବିଛି । ]
୩ । ( ଲକ୍ଷଣାର୍ଥ )—ଜୀବନର ଅବଶିଷ୍ଟ ଅଂଶ କଷ୍ଟେ ସୃଷ୍ଟେ ଅତିବାହିତ କରିବା—3. ( figurative ) To pass the remaining days of one's life anyhow.

ନାହା ବାହିବା—ଦେ. କ୍ରି (ସଂ. ନୌ+ବାହନ)—ନୌକାକୁ ଚାଳିତ
Nāhā bāhibā  କରିବା—To set a boat agoing; to ply a boat.
ନାହା ଚଳା(ଲେ)ଇବା } ଅନ୍ୟରୂପ
ନାହା ବୋହିବା }
ନୌକାଚାଳାନ  **नावखेना**

ନାହା ବୁଡ଼ିବା—ଦେ.ବି (ସଂ. ନୌ+ବୁଡ଼ ଧାତୁ)—୧ । ଡଙ୍ଗା ଜଳମଗ୍ନ
Nāhā burdibā  ହେବା—1. The founderingor sinking of a boat;
ନାହା ବୁଡ଼ିଯିବା, ନାହା ଡୁବିବା—ଅନ୍ୟରୂପ
ନୌକା ডুবে যাওয়া  ୨ । ( ଲକ୍ଷଣାର୍ଥ ) ଆଶା ଭରସା ଭୁଷ୍ଟ ଯିବା;
**नाव डुब जाना**  ଅଶ୍ରୟ ସ୍ଥାନ ବା ଅରକ୍ଷ ହେବା—
2. ( figurative ) Becoming hopeless and shelterless.

ନାହା ଭସା(ସେ)ଇବା—ଦେ.କ୍ରି(ସଂ.ନୌ+ଭାସମାନ)—ନୂତନ ତିଆରି
Nāhā bhasā(se)ibā  ହୋଇଥିବା ଡଙ୍ଗାକୁ ପ୍ରଥମେ ଜଳରେ
ନାও ভাসান  ଛାଡ଼ିବା—To let a newly constructed boat
**नाव भसाना**  float in the water for the first time.

ନାହା ମେଲିବା—ଦେ. କ୍ରି—ସମୁଦ୍ର ବା ନଦୀକୁ ପାର ହେବା ପାଇଁ
Nāhā melibā  ଡଙ୍ଗାକୁ ପାଣିରେ ଚଳାଇବାକୁ ଆରମ୍ଭ କରିବା—
(ନାହା ଛାଡ଼ିବା—ଅନ୍ୟରୂପ)  To start a boat to cross a river or sea.
ନাও ছাড়া  **नाव चलाना शुरु करना**

ନାହାରି—ପ୍ରାଦେ. (ବାଲେଶ୍ୱର) ବି. ପୁଂ ( ସଂ. ଲାକ୍ଷା+କାର୍ଯ୍ୟ, ଭୁଲ
Nāhāri  ବି. ଲହାର )—ଶଙ୍ଖାରୀ; ଲାଖ ଚୁଡ଼ି ବା ଶଙ୍ଖା
(ନାହାରିଆ—ଅନ୍ୟରୂପ)  ବ୍ୟବସାୟୀ ନୀଚ ଶୂଦ୍ର ଜାତିବିଶେଷ—
ନାହାରିଆଣୀ } ସ୍ତ୍ରୀ.  A kind of low class Sūdra dealing with lac bangles.
ନାହାରୁଣୀ }

ନାହାଲ୍‌ବେ(ଗୁ)ଲି—ଦେ. ବି—ବନ୍ୟ ଗୁଳ୍ମବିଶେଷ—
Nāhāl-be(gu)li  Cipadessa Futicosa (Haines).
[ ଦ୍ର—ଏହା ଏକ ପ୍ରକାର କଣ୍ଟା ନ ଥିବା ଗଛ । ଏଥିର ଫଳ ବା କୋଳ ପାଚିଲେ ନାଲି ଦିଶେ । ବାଳୁଆ ଓ ଗୋବର ଚଢ଼େଇମାନେ ପାଚିଲା କୋଳକୁ ଖାଆନ୍ତି, ଏହାର କାଠ ଭଲ ଜଳେ ଓ ଏଥିରେ ସପ୍ଟି ହୁଏ । ଏହା ହିଦୁଭୂମ, ଗଡ଼ଜାତ ଓ ପୁରୀ ଜଙ୍ଗଲମାନଙ୍କରେ ଦେଖାଯାଏ । ]

ନାହାଳ—ଦେ. ବି—ବନ୍ୟ ଦୃଢ଼ କାଷ୍ଠ ବୃକ୍ଷବିଶେଷ—
Nāhāḷa  A kind of hard-wooded wild tree
ଗୋଲୁ ଚମ ଭୁଣ ଯେ ନାହାଳ ବେନ କାଣ୍ଡ ।
ବାଳ ରାମାୟଣ. ଗୁହକ ମିଳନ ।

ନାହାଳିବା—ଦେ. କ୍ରି. ( ସଂ. ଲହରୀ )—
Nāhāḷibā  ୧ । ତରଳ ପଦାର୍ଥ ବହୁ ପରିମାଣରେ ଢାଳି ଦେବା—
ଢালা  1. To pour out some liquid profusely.
**उँडेलना**
୨ । ବହୁ ପରିମାଣରେ ପତଳା ଝାଡ଼ା ଫେରିବା—
2. To pass liquid stools profusely
୩ । ଅନର୍ଗଳ ଗପିବା—
3 To talk on without stopping.
୪ । (ବାଘ) ଗଳାଗାଜିବା ବା ଗର୍ଜି ଉଠିବା —
4 (a tiger) To roar furiously.
୫ । ନାହାଳି ଯିବା (ଦେଖ)—5. Nāhāḷi jibā (See)

ନାହାଳି ଯିବା—ପ୍ରାଦେ. ( ଗଡ଼ଜାତ ) କ୍ରି—
Nāhāḷi jibā  ୧ । ( ଧାନ ଗଛମାନ ୩।୪ ଫୁଟ ଉଚ୍ଚ ହୋଇଥିବା
ନାଲେଇ ଯିବା } ଅନ୍ୟରୂପ  ଅବସ୍ଥାରେ ବଢ଼ିଆରେ ଧାନ ଗଛର
ନାହାଲେଇ ଯିବା }  ମଧ୍ୟଭାଗ ପର୍ଯ୍ୟନ୍ତ ପାଣି ବହୁକାଳ ଜମି ରହିଲେ ଉକ୍ତ ଧାନ ଗଛମାନ ଅଣ୍ଟାଠାରୁ ତଳକୁ ପାଣିରେ ସଢ଼ିଯିବା ଯୋଗୁଁ) ତଳଆଡ଼କୁ ଝୁଙ୍କି ପଡ଼ିଯିବା—
1. To fall down by breaking at the middle (said of tall paddy plants which remain half submerged in water for a long time.)

ନାହି—ଦେ. ବି (ସଂ. ନାଭି)—୧ । ନାଭି; ନାଇ—
Nāhi  1. Navel.
নাই  ୨ । ଚକର ମଧ୍ୟସ୍ଥ ହାଣ୍ଡି—2. The hub or the
**नाह**  central block of a wheel.

୩ । ଚକର କେନ୍ଦ୍ରସ୍ଥ ରନ୍ଧ୍ର; ଚକ ମଧ୍ୟ—
3. The central hole of a wheel.
୪ । କୋଲପର ଛିଦ୍ରମଧ୍ୟସ୍ଥ କୀଳକ; କୋଲପର ମେରୁ ( ଯହିଁରେ କୁଞ୍ଚିକାଠି ବୁଲେ )—
4. The pin in the centre of the hole of a lock

**ନାହୁଆ**—ଦେ. ବିଣ. ପୁଂ. ଓ ସ୍ତ୍ରୀ ( ସଂ. ନାଭିଲ )—ଗୋଟାଳପର ବଡ଼ Nāhiā ନାଭିବିଶିଷ୍ଟ (ବ୍ୟକ୍ତି)-Having a big or swollen ଗୌଡଓଯାଲା **तुंदीवाला** (ନାହ୍ୟା—ଅନ୍ୟରୂପ) navel
ବି—୧ । ମାଛମାନଙ୍କ ରୋଗବିଶେଷ ( ଏଥିରେ ମାଛମାନଙ୍କ ନାହି ଫୁଲି ଯାଏ, ଏମାନେ କିଛିକାଳ ଚିତ୍ତ ହୋଇ ପହରନ୍ତି ଓ ପରେ ମରିଯାଆନ୍ତି )—1. A kind of disease of fishes by which they float on the water with the belly up and die after some time
୨ । ଗୋରୁମାନଙ୍କ ରୋଗବିଶେଷ—
2 A kind of cattle disease.
୩ । ଶଗଡ଼ ଚକର କେନ୍ଦ୍ରସ୍ଥ ଛିଦ୍ରର ଚାରିପାଖେ ବିଆଯିବା ଲୌହ ବଳୟ, ପନାହୁ—
3. A thick iron ring surrounding the central hole in the navel of a cart wheel.

**ନାହି ଅଙ୍କଡ଼େଇବା**—ଦେ. କ୍ରି—୧ । ନାହି ଗଡ଼େଇବା ( ଦେଖ ) Nāhi ankardeibā 1. Nāhi gardeibā ( See ) नाई आँकड़ा ୨ । କୂଟ ତର୍କ କରିବା—
2. To make hair-splitting arguments.

**ନାହୁଆ ମାରିବା**—ଦେ. ବି—( ମାଛମାନେ ) ନାହୁଆ ରୋଗଦ୍ୱାରା Nāhiā māribā ଆକ୍ରାନ୍ତ ହୋଇ ଭାସିବା—Floating up with the belly up; a fish disease

**ନାହିଁ**—ଦେ. କ୍ରି. ( ସଂ. ନାସ୍ତି, ନ ଭବନ୍ତି; ନାହିଁ ହେବା କ୍ରିୟାର ବର୍ତ୍ତମାନ Nāhiñ କାଳ ତୃତୀୟ ଓ ଉତ୍ତମପୁରୁଷ ୧ ବଚନରୂପ )—
ନ ଥାଇ, ନ ଥିବ; ନୁହେଁ; ଅବସ୍ଥିତ ନୁହେ, ଉପସ୍ଥିତ ନୁହେଁ—Is not; does not exist; is non-existant; am not.

ନ ହେବା କ୍ରିୟାର **ବର୍ତ୍ତମାନ କାଳ**

| ପ୍ରଥମ ବା ଉତ୍ତମପୁରୁଷ ଏକବଚନ . | ବହୁବଚନ, |
|---|---|
| ମୁଁ ନାହିଁ, ଅମ୍ଭେ ନାହୁଁ | ଅମ୍ଭେମାନେ ନାହୁଁ . |
| ଦ୍ୱିତୀୟ ବା ମଧ୍ୟମପୁରୁଷ | |
| ତୁ ନାହୁଁ, ତୁମ୍ଭେ ନାହଁ | ତୁମ୍ଭେମାନେ ନାହଁ, |
| ଆପଣ ନାହାନ୍ତି | ଆପଣମାନେ ନାହାନ୍ତି |
| ତୃତୀୟ ବା ଅଧମପୁରୁଷ | |
| ସେ ନାହିଁ, ସେ ନାହାନ୍ତି | ସେମାନେ ନାହାନ୍ତି |

**ଅତୀତ କାଳ**

| | |
|---|---|
| ୧ମ ପୁ. ମୁଁ ନ ଥିଲି, ଅମ୍ଭେ ନ ଥିଲୁଁ | ଅମ୍ଭେମାନେ ନ ଥିଲୁଁ. |
| ୨ୟ ପୁ. ତୁ ନ ଥିଲୁ, ତୁମ୍ଭେ ନ ଥିଲ, ଆପଣ ନ ଥିଲେ | ତୁମ୍ଭେମାନେ ନ ଥିଲ, ଆପଣମାନେ ନ ଥିଲେ |
| ୩ୟ ପୁ. ସେ ନ ଥିଲା, ସେ ନ ଥିଲେ | ସେମାନେ ନ ଥିଲେ |

**ଭବିଷ୍ୟତ କାଳ**

| | |
|---|---|
| ୧ମ ପୁ. ମୁଁ ନ ଥିବି, ଅମ୍ଭେ ନ ଥିବୁଁ | ଅମ୍ଭେମାନେ ନ ଥିବୁଁ |
| ୨ୟ ପୁ. ତୁ ନ ଥିବୁ, ତୁମ୍ଭେ ନ ଥିବ, ଆପଣ ନ ଥିବେ | ତୁମ୍ଭେମାନେ ନ ଥିବ, ଆପଣମାନେ ନ ଥିବେ |
| ୩ୟ ପୁ. ସେ ନ ଥିବ, ସେ ନ ଥିବେ | ସେମାନେ ନ ଥିବେ । |

ନୁଅଇ, ହୋଇଅଛି } ବିପରୀତ; नयं, नाई **नहि**
[ ଦ୍ର—ଓଡ଼ିଶାରେ କ୍ରିୟା ପରେ ନାହିଁ ଶବ୍ଦ ଲାଗେ, ଯଥା—ମୁଁ ଖାଇ ନାହିଁ, ମୁଁ ଯାଇ ନାହିଁ ଇତ୍ୟାଦି । ମାତ୍ର ସମ୍ବଲପୁରରେ କ୍ରିୟା ପୂର୍ବେ ନାହିଁ ଶବ୍ଦ ଲାଗେ, ଯଥା—ମୁଁ ନାହିଁ ଖାଇ । ଓଡ଼ିଶାରେ ନ ଖାଉଚ, ନଖାଇଛି, ନଖାଇବ ପ୍ରଭୃତି ଶବ୍ଦର ବ୍ୟବହାର ଅଛି । ]
ଅ ( ସଂ. ନ; ନହି )—ନାଁ –
(ହଲ—ବିପରୀତ) No; not
ବି—୧ । ମନା, ବାରଣ—1. Denial.
୨ । ଅସମ୍ମତି—2 Disagreement; refusal.
ବିଣ—ନଥିବା—Non-existing.
( ଯଥା— ନାହିଁ ମାମୁଠାରୁ କଣା ମାମୁଁ ଭଲ—ପ୍ରବଚନ । )

**ନାହିଁ କରିବା**—ଦେ. କ୍ରି—୧ । ଅସ୍ୱୀକାର କରିବା; ଅସମ୍ମତ ହେବା — Nāhiñ karibā 1. To disagree.
बाबणकबा, मानाकबा ତା ନାହିଁ କରିବାର ନୁହେ ମୋ ଉଚିତ—
**न मानना; नामंजूर करना** କୃଷ୍ଣସିଂହ ମହାଭାରତ. ବନ ।
ନାହିଁ ନାହିଁ କରିବା, ନାହିଁ ନାହିଁ ହେବା } ଅନ୍ୟରୂପ
୨ । ନାମଞ୍ଜୁର କରିବା; ଅଗ୍ରାହ୍ୟ କରିବା—2. To reject.
୩ । ମନା କରିବା—3. To refuse; to deny.
ଏକାଳେ ବାହୁକ ମେଳେ ନକର ନାହିଁ—କୃଷ୍ଣସିଂହ. ମହାଭାରତ. ବନ ।

**ନାହିଁତ**—ଦେ. ଅ. ( ସଂ. ନବୁ )—ନୋଚେତ୍; ପକ୍ଷାନ୍ତରରେ—
Nāhiñta Or else; otherwise.
नाईतो **नहिं तो**

**ନାହିଁନି**—ପ୍ରାଦେ. ( ସମ୍ବଲପୁର ) କ୍ରି—ନାହିଁ ( ଦେଖ )
Nāhiñnaï Nāhiñ ( See )
( ନାହିଁକି—ଅନ୍ୟରୂପ ) ଅ—(ପ୍ରଶ୍ନାର୍ଥକ) ଅବଶ୍ୟ; ନିଶ୍ଚୟ—
Must; certainly.

**ନାହିଁନା**—ଦେ. ଅ. ( ନାହିଁ ଶବ୍ଦର ଦୁଇଥର ପ୍ରୟୋଗଦ୍ୱାରା ନାହିଁ ଅର୍ଥ Nāhiñnā ଉପରେ ଗୁରୁତାରୋପ )—୧। ଆଦୌ ନାହିଁ; ନୁହେଁ—
(ନାହିଁକାଁ—ଅନ୍ୟରୂପ) 1. No no.
ଅବର ନାହିଁନା ଉପମ—ସଦାଶିବନ୍ତ. ପ୍ରେମଭକ୍ତିଗୀତା
୨ । (ପ୍ରଶ୍ନାର୍ଥରୂପ) ଅବଶ୍ୟ (ଯଥା—ମୁଁ କାଲି ଘରକୁ ଯିବି ନାହିଁ ନାଁ ? ଅର୍ଥାତ୍ ମୁଁ କାଲି ଘରକୁ ନିଶ୍ଚୟ ଯିବି)—
2. ( interrogative from) Certainly.

**ନାହିଁ ସୂର୍ଯ୍ୟ ନାହିଁ କରିବା**—ଦେ କ୍ରି—କଷ୍ଟ ନାହିଁ କରିବା; କଷ୍ଟିତ
Nāhiñ sūrjya nāhiñ karibā ଭାବରେ ବାରମ୍ବାର ମନା
ନାଁ ନାଁ କବନା; କରିବା—To refuse or deny a thing
**नाह नूह करना** stoutly and repeatedly.

**ନାହିଁ ହ(ହୋ)ଇ**—ଦେ. ଅ. (ଶବ୍ଦଗତ ସମ୍ବନ୍ଧ; ସ ନଞ୍‌ବନ୍ଧ+ଭବନ୍ଧ)—
Nāhiñ ha(ho)i ନାଁ ଓ ହଁ; ଅସ୍ୱୀକାର ବା ସ୍ୱୀକାର —
ନାଁ ହାଁ **नहिँ हाँ** Yes and no; agreement or refusal.

**ନାହି କାଟିବା**—ଦେ କ୍ରି—ନବଜାତ ଶିଶୁର ନାଭିନାଡ଼ି ଛେଦନ କରିବା—
Nāhi kātibā To cut the umbilical cord of an
ନାଇକାଟା **नालकाटना** infant

**ନାହି କୁଣ୍ଡଳ(ଳୀ)**—ଦେ ବି (ସ. ନାଭି କୁଣ୍ଡ)—ନାଭି କୁଣ୍ଡ (ଦେଖ)
Nāhi kundala(li) Nābhi kunda (See)
ନାଇକୁଣ୍ଡଳୀ **तुन्नी; नाभिका गहराई**
( ନାହିକୁଣ୍ଡ; ନାହିକୁଣ୍ଡୁଲୀ—ଅନ୍ୟରୂପ )

**ନାହି ଗଡ଼େ(ଡ଼ା)ଇବା**—ଦେ. କ୍ରି—୧ । ( ଲକ୍ଷଣାର୍ଥ ) ଗରିବ ବୋଲି
Nāhi garde(rdā)ibā ଛଳନା କରିବା—
1 (figurative) To feign poverty.
୨ । (ଲକ୍ଷଣାର୍ଥ) କୌଣସି କାର୍ଯ୍ୟ ନ କରିବା ପାଇଁ ଛଳନା ପୂର୍ବକ ଆପଣାର ଅକ୍ଷମତା ପ୍ରକାଶ କରିବା—
2. (figurative) To feign inability

**ନାହି ଗାଡ଼(ତ)**—ଦେ. ବି. (ସ. ନାଭିଗର୍ତ୍ତ)—ନାଭି କୁଣ୍ଡ ( ଦେଖ )
Nāhi gārda(ta) Nābhi kunda ( See )

**ନାହି ଡେଇଁବା**—ଦେ ବି—୧ । (ଲକ୍ଷଣାର୍ଥ) ଅଭିମାନ୍ବିତ ହେବା, ଚିଡ଼ିବା—
Nāhi deiñbā 1. Becoming enraged or sullen.
( ଯଥା—ତା କଥା ପଡ଼ିଲେ ସ୍ତ୍ରୀ ନାହି ଡେଇଁଛି । )
୨ । ଉଦର ଯନ୍ତ୍ରଣା ଯୋଗୁଁ ନାଭିରେ ସ୍ପନ୍ଦନ ଅନୁଭୂତ ହେବା—
2. The throbbing of the navel on account of pain in the abdomen.

**ନାହି ନାଚିବା**—ପ୍ରାଦେ. (ଯାଜପୁର) ବି—ନାହି ଡେଇଁବା (ଦେଖ)
Nāhi nāchibā Nāhi deiñbā ( See )

**ନାହି ନାଡ଼**—ଦେ. ବି. (ସ. ନାଭି ନାଡ଼ୀ) —ନାଭି ନାଡ଼ୀ (ଦେଖ)
Nāhi nārda Nābhi nārdi ( See )
**नाल**

**ନାହି ନାଡ଼ ଧରି ଟେକି ଦେବା**—ଦେ. କ୍ରି— ନବ ଜାତ ଶିଶୁର ନାହି-
Nāhi nārda dhari teki debā ନାଡ଼ କଟା ନ ହେବା ପୂର୍ବରୁ ତାହାକୁ ପୋଷ୍ୟ ପୁତ୍ର ରୂପେ ଗ୍ରହଣ କରିବାକୁ ଇଚ୍ଛା କରୁଥିବା ସ୍ତ୍ରୀକ ହସ୍ତକୁ ଦତ୍ତକ ପୁତ୍ରରୂପେ ଦାନ କରିବା
( a mode of adoption prevalent in Orissa ) To hand over a child to an adopting mother before it's navel cord is cut.

**ନାହି ଫୁଲ(ଲେ)ଇବା**—ଦେ. କ୍ରି—ନାହି ଗଡ଼େଇବା ( ଦେଖ )
Nāhi phulā(le)ibā Nāhi garde(i)bā ( See )

**ନାହି ମୁଣ୍ଡା**—ଦେ. ବି. ( ସ. ନାଭି କୁଣ୍ଡ )—
Nāhi mundā ୧ । ନାଭିର ଚତୁର୍ଦ୍ଦିଗରେ ଥିବା ଦେହାଂଶ—
ନାଇକୁଣ୍ଡ 1. The part of the body just round
**ढोंढी, तुंं** the navel.
୨ । ନାଭି ଗର୍ତ୍ତ—2. The hole at the navel.

**ନାହିରେ ଓଦା କନା ପକା(କେ)ଇବା**—ଦେ. କ୍ରି—
Nāhire odā kanā pakā(ke)ibā
ପେଟରେ ଓଦା କନା ପକାଇବା ( ଦେଖ )
Petare odā kanā pakāibā ( See )

**ନାହିରେ ତେଲ ପକା(କେ)ଇ ଶୋଇବା**—ଦେ. କ୍ରି. (ଲକ୍ଷଣାର୍ଥ) —
Nāhire tela pakā(ke)i šoibā
ନିଶ୍ଚିନ୍ତ ବା ବେଧଡ଼କ ହୋଇ ରହିବା—
(figurative) To pass one's time without the least care or anxiety.

**ନାହି (ଲେ)ନେଉଟିବା**—ଦେ. ବି—ଅତିରିକ୍ତ ଭୋଜନ ହେତୁ ପେଟ
Nāhi (le) neutibā ଫୁଲି ଯିବା—The swelling of the belly and protrusion of the navel due to over-feeding.
ଗୀତା ପାଠେ ନାହି ଲେଉଟେ ଡେବେ ସେ ବ୍ରାହ୍ମଣ ଠାଅରୁ ହ ଠ—ଭଗ ।

**ନାହି ଶୁଖା(ଖେ)ଇବା**—ଦେ. କ୍ରି—ନାହି ଗଡ଼େଇବା ( ଦେଖ )
Nāhi šukhā(khe)ibā Nāhi gardeibā ( See )

**ନାହୁଡ଼ି**—ପ୍ରାଦେ. (ସିଂହଭୂମ) ବି—ନାଉ—Navel.
Nāhurdi ଦେ ବି.—ନାହୁରି; ନାବିକ—Boatman,

**ନାହୁଷ**—ସ. ବି. ( ନହୁଷ+ଅପତ୍ୟାର୍ଥେ ଅ )—
Nāhusha ନହୁଷ ରାଜାଙ୍କ ପୁତ୍ର; ଯଯାତି—
Jajāti, the son of king Nahusha.
ଗମ୍ଭ ନାହୁଷ ଆଦି ଯେତେ
ଶୁଣ ନାରଦ କହୁ ତୋତେ । ଜଗନ୍ନାଥ, ଭାଗବତ ।

**ନି**—ସ ଅ—ଉପସର୍ଗ ବିଶେଷ, [ନିଷେଧ, ନିବୃତ୍ତି ବା ଅଭାବ, ନିକୃଷ୍ଟତା,
Ni ନିଶ୍ଚୟ, ସାମୀପ୍ୟ ବା ନୈକଟ୍ୟ, ନିଦର୍ଶନ, ସଂଶୟ, ନିନ୍ଦ୍ୟତା, ଆଶ୍ରୟ, ଦାନ, ମୁକ୍ତି, ବନ୍ଧନ, ଅଭାବ, ଅଧୋଭାବ, ବିନ୍ୟାସ, ସାକଲ୍ୟ, ସାମ୍ୟକ୍, ଭୃଶ, କୌଶଳ, ଉପରମ, ଉତ୍କୃଷ୍ଟତା, ସମ୍ପୂର୍ଣ୍ଣତା, ନମ୍ରତା, ଆଦେଶ, ଅତ୍ୟନ୍ତ, ସନ୍ଦେହ, ସ୍ଥିରତା, ଅଙ୍ଗୀକରଣ ଇତ୍ୟାଦି ଅର୍ଥରେ ଧାତୁ ପୂର୍ବରେ ଏହାର ପ୍ରୟୋଗ ହୁଏ ]—
A prefix indicating, prohibition, want, inferiority, certainty, proximity, pointing out, doubt, blame, constancy, refuge, giving, liberation, bidding, bending low, arrangement, whole, speciality, intensity, skill, cessation, excellence, completion, lowness, order, excess.

[ ଦ୍ର—ନି ଉପସର୍ଗର ଭିନ୍ନ ଭିନ୍ନ ଅର୍ଥରେ ପ୍ରୟୋଗର ଉଦାହରଣ—ଅଧୋଭାବ, ଅଧୋଗତି ଯଥା—ନିପାତ, ନିଷାଦ । ସାକଲ୍ୟ, ସମୂହ ଯଥା —ନିକର, ନିକାୟ । ବିଶେଷ ରୂପେ ଯଥା—ନିକାମ, ନିଗୃହିତ । ଅଦେଶ ଯଥା—ନିଦେଶ । ନିତ୍ୟତା, ସ୍ଥାୟିତ୍ୱ ଯଥା—ନିବେଶ । ନୈପୁଣ୍ୟ ଯଥା—ନିପୁଣ । ଅବରୋଧ ବା ବନ୍ଧନ

ଯଥା—ନିବନ୍ଧ । ଅନ୍ତର୍ଭେ କରଣ ଯଥା—ନିପୀଡ । ନୈକଟ୍ୟ ଯଥା—ନିକଟ । ଅପମାନ, ଅନ୍ୟାଯ୍ୟ, ଅତ୍ୟାଗ୍ରହ ଯଥା—ନିକୃଷ୍ଟ, ନିକାର, ନିଗୃହୀତ । ଦେଖାଇବା ଯଥା—ନିଦର୍ଶନ । ନିବୃତ୍ତି ଯଥା—ନିବୃତ୍ତି । ଆଶ୍ରୟ ଯଥା—ନିଳୟ । ଫିଙ୍ଗିବା, ଦେବା ଯଥା—ନିକ୍ଷେପ । ଅର୍ପଣ । ]

୬ । (ନିଷାଦ ସ୍ୱରର ସାଙ୍କେତିକ) ହିନ୍ଦୁ ସଙ୍ଗୀତର ସପ୍ତସ୍ୱର ( ସା ରି ଗା ମା ପା ଧା ନି ) ମଧ୍ୟରୁ ସପ୍ତମ ସ୍ୱର—

2 The abbreviation for 7th tone of the gamut of the Hindu music

ଦେ. ଅ ( ନଞର୍ଥକ ସଂ. ଉପସର୍ଗ ନିର୍ )—

୧ । ବିଶେଷ୍ୟ ଓ ବିଶେଷଣ ଶବ୍ଦ ପୂର୍ବରେ ନାହିଁ ଅର୍ଥରେ ଯୁକ୍ତ ଉପସର୍ଗ—1. Negative prefix attached to words ( corresponding to the Sanskrit prefix 'Nir' )

( ଯଥା—ନିଅଣ୍ଟ, ନିପାରିଲାର, ନିଅଂଶ, ନିଶତ୍ରୁ, ନିପାଠିଆ, ନିପାଣିଆ, ନିଦୟା, ନିଜୋରିଆ ଇତ୍ୟାଦି । ]

୨ । (କରଣିଆ; ସଂ. ନିବେଦନର ସାଙ୍କେତିକ) (ଅମୁକର) ନିବେଦନ ଏହି—2 (an abbreviation used by scribes for) This is the humble request of (so and so).

୩ । ( କରଣିଆ, ସଂ. ନିବେଦକର ସାଙ୍କେତିକ )—ନିବେଦକ—3. (abbreviation) Petitioner.

[ ଦ୍ର—୨ୟ ଓ ୩ୟ ଅର୍ଥ ସମ୍ବନ୍ଧେ ନୋଟ୍—ପତ୍ରର ଶେଷରେ ଲେଖକର ନାମ ପୂର୍ବରେ ଏହା ଲେଖାଯାଏ, ଯଥା—

। ନି ।ଗୋପାଳର=ଗୋପାଳର ନିବେଦନ ଏହି ( ୨ୟ ଅର୍ଥ )

। ନି । ଗୋପାଳ=ଏ ପତ୍ରର ନିବେଦକ ଗୋପାଳ ଅଟେ (୩ୟ ଅର୍ଥ)

୪ । ( କରଣିଆ; ସଂ. ନିବେଦନର ସାଙ୍କେତିକ )—ନିବେଦନ—4. ( abbreviation ) Submission; humble request

[ ଦ୍ର—ପତ୍ରର ଅଗରେ ମଧ୍ୟ କରଣିଆ ଓ କରଣୀ ଲେଖକମାନେ ନିବେଦନ ଶବ୍ଦ ପରିବର୍ତ୍ତେ କେବଳ ଏହି ଅକ୍ଷରଟି ଲେଖନ୍ତି, ଯଥା—ଧର୍ମାବତାର ! । ନି । ତ କାରଣ ଏହିକି; ]

୫ । ( କରଣିଆ; ସାଙ୍କେତିକ )—ନିଶାଣଦାର—

5. (abbreviation) Identifier.

୬ । ( ଅନ୍ୟରୂପ'ଣି' ) ସମାପ୍ତ୍ୟର୍ଥକ ଅଦ୍ୟତନ ଅତୀତକାଳ ବୋଧକ କ୍ରିୟା ସଙ୍ଗେ ଯୁକ୍ତ ଅକ୍ଷର —

6. A particle used after a verb of the past perfect tense indicating completion.

ଯେବେ ଆଦିଲେନ ଅବଶ୍ୟ ଥିଲାଗନ,
କରୁ ଛାଡି କରୁବେ ମୋର ଅପମାନ । କୃଷ୍ଣସିଂହ ମହାଭାରତ ବନ ।

୭ । ( ଅଦ୍ୟତନ ଅତୀତ କାଳର କ୍ରିୟା ପରେ ଯୋଗ ହେବା ନିଶ୍ଚିତାର୍ଥସୂଚକ ଅବ୍ୟୟ ) ନିଶ୍ଚେ—

7. ( A particle used after a verb of the past perfectt tense indicating certainty ) Certainly.

ହେଲନି ଯେ କୁରୁକୁଳ ଦଶନା ଏ ସଭିକ ରେ ।
କବିସୂର୍ଯ୍ୟ ବଳଦେବ ରଥ । ଚ ଗୀତ ।

୮ । ( ତର୍କଣାର୍ଥକ ) ବୋଧ ହୁଏ; ପରା—

8. ( Added to a verb indicating probability ) It seems; perhaps, probably.

କେତେ ହେବନି ଏବେ ପଯୋଧର ? ଭକ୍ତ. ସୁବର୍ଣ୍ଣରେଖା ।

[ ଦ୍ର—୬।୭।୮ ଅର୍ଥ ସ୍ଥଳରେ ଅନ୍ୟରୂପ.'ଣି' ହୁଏ । ]

୯ । ( ସଂ. ନହି ) 'ନାହିଁ' ଶବ୍ଦର ଉଚ୍ଚାରଣଗତ ସଂକ୍ଷିପ୍ତ ଆକାର, ( ନିଁ—ଅନ୍ୟରୂପ )—

9. ( a negative particle joined to verbs in the past, present and future tenses, corresponding to the English abbreviation 'nt' in 'do'nt' ( =do not ), 'did'nt' ( =did not ), 'sha'nt' ( =shall not)—Not

ଯଥା—ମୁଁ ଭାତ ଖାଇନି, ସେ ଘରକୁ ଯାଇନି, ତୁମ ଅଛି ଅସିବନି ଇତ୍ୟାଦି )

ଗ୍ରା· (ଇତର) ଅ—

(ବାଉରି, କଣ୍ଡରା, ପାଣ, ହାଡ଼ି ଆଦି ନୀଚ ଜାତିଙ୍କଦ୍ୱାରା ବ୍ୟବହୃତ) ଭୂତକାଳ, ୧ମ ପୁରୁଷ ଏକବଚନ କ୍ରିୟାରେ ବ୍ୟବହୃତ—Inflection used by low class illiterate people in the 1st person, singular, past tense

[ଦ୍ର—ସାଧାରଣତଃ ଲୋକେ ମୁଁ ଗଲି, ମୁଁ ଖାଇଲି ଇତ୍ୟାଦି କହନ୍ତି, ମାତ୍ର ନୀଚ ଜାତିର ଲୋକେ ମୁଁ ଗଲି, ମୁଁ ଖାଇନି ଇତ୍ୟାଦି କହନ୍ତି ।]

ନା ନ ପ୍ରାଦେ. ଅ.—୧ । ( ଯାଜପୁର ) (କ)—ବାକ୍ୟଶେଷରେ 'ଣି' ଓ ହ ସ୍ଥାନରେ ଅନୁରୋଧ ଓ ଅଳରେ ବ୍ୟବହୃତ—

1. (a particle used in imperative mood to denote pressing request) Will you please do (so and so).

(ଯଥା—ଅମୁକ ବିଷୟ ମତେ କହନି=କହୁନ୍ତୁ ?)

(ଖ) ପ୍ରଶ୍ନାର୍ଥକ—2. ( Interrogative ) Will you not; wont you (do so and so)

୨ । (ସମ୍ବଲପୁର; କରଣିଆ) (ନିବାସୀ ଶବ୍ଦର ସାଙ୍କେତିକ)—ଅମୁକ ସ୍ଥାନର ନିବାସୀ—2. (An abbreviation used by scribes) Resident of.

[ଦ୍ର—ଓଡ଼ିଶାରେ କରଣିଆ ଲେଖାଳମାନେ ସାକିନ୍ ସ୍ଥାନରେ ଯେପରି ପର । ସା । ଲେଖନ୍ତି, ସମ୍ବଲପୁରରେ ସେହିପରି ନିବାସୀ ଶବ୍ଦର ସାଙ୍କେତିକ । ନି । ଲେଖାଯାଏ; ଯଥା—ଗୋପାଳ ଚନ୍ଦ୍ର । ନି । କଟକ=କଟକ ନିବାସୀ ଗୋପାଳଚନ୍ଦ୍ର ।]

୩ । (ଜୟପୁର) ଶିଶୁ ଓ ସାନପିଲାମାନଙ୍କ ପ୍ରତି ସ୍ନେହ ସମ୍ବୋଧନ—

3. (Interjection) A term of endearment applied to children

[ଦ୍ର—ଏହାର ଅନ୍ୟରୂପ, ବାଳିକାଙ୍କ ପ୍ରତି ନମା ଓ ବାଳକଙ୍କ ପ୍ରତି ନନା ]

ନିଃ—ସଂ. ଉପସର୍ଗ—ନଞର୍ଥକ ଉପସର୍ଗ—a negative particle
Nih meaning Not.
(ନିର୍—ଅନ୍ୟରୂପ)

ନିଁ - ଦେ. ଅ—ନି ( ଦେଖ )
Niñ Ni ( See )

ନିଅଂଶ (ଇତ୍ୟାଦି)—ନିରଂଶ ଇତ୍ୟାଦି ( ଦେଖ )
Niamśa Niramśa etc (See)

ନିଅଁ—ଦେ. ବି. (ସଂ. ନେମି=ପୃଥିବୀ; ଭୂମି; ଗ୍ରା. ନେଇଁ)—
Niañ ୧ । ମୂଳଦୁଅ; ମାଟି ତଳେ ଥିବା ଘରର ମୂଳଦୁଅ—
ଗୋଡ଼ା ଭିଟା 1. Foundation of a house or building
ନିବ ୨ । ମୂଳଦୁଅର ଗଭୀରତା—
2 Depth of a foundation
୩ । କାନ୍ଥର ଯେଉଁ ଅଂଶ ଜମି ତଳୁ ଗଢା ହୋଇ ଥାଏ; ମୂଳଭିତ୍ତି—3 Foundation of a wall.

ନିଅଁ ଉଠା(ଠେ)ଇବା—ଖୋଳା ହୋଇଥିବା, ମୂଳଦୁଅକୁ ପୋତିବାର ଭୂମିର
Niañ uṭhā (ṭhe)ibā ସମତଳଠାରୁ ଉଚ୍ଚକୁ କାନ୍ଥ ଉଠାଇବା—
ଭିତ ଉଠାନ To raise up a structure over the
ନୀବଁ उठाना ground level after filling up a foundation.

ନିଅଁ ଖୋଳିବା—ଦେ. କ୍ରି.—୧ । ଘରର କାନ୍ଥ ଉଠାଇବା ପାଇ ଭୂଇଁ
Niañ kholibā ତଳେ ମୂଳଦୁଅ ଖୋଳିବା—1 To dig
ଗୋଡ଼ା a foundation for raising a pucca wall.
ନୀବଁ खोदना ୨ । (ଲକ୍ଷଣାର୍ଥକ) କୌଣସି କାର୍ଯ୍ୟ ଆରମ୍ଭ କରିବା—
2. (figurative) To begin doing a certain thing.

ନିଅଁ ଜମା(ମେ)ଇବା—ଦେ. କ୍ରି.—୧ । କାନ୍ଥ ଆଦିକୁ ଶକ୍ତ କରିବା
Niañ jamā(me)ibā ପାଇଁ ମୂଳଭିତ୍ତିକୁ ଦୃଢ଼ରୂପେ ସ୍ଥାପନ
ଗୋଡା ଜମାନ; ଗୋଡ଼ା ବାଁଧା କରିବା—1. To lay a firm
ନୀବଁ जमाना foundation.
ନିଅଁ ଦେବା
ନିଅଁ ପକା(କେ)ଇବା } — ଅନ୍ୟରୂପ
ନିଅଁ ବାନ୍ଧିବା
୨ । ( ଲକ୍ଷଣାର୍ଥ ) କୌଣସି କାର୍ଯ୍ୟ ଆରମ୍ଭ ହେବା ଅବସ୍ଥାରେ ତାକୁ ଦୃଢ଼ରୂପେ କରିବା—2. (figurative) To begin a work on a firm footing.

ନିଅଁ ପୋତିବା—ଦେ. କ୍ରି—ଖୋଳା ଯାଇଥିବା ମୂଳଦୁଅକୁ ଇଟା ପଥର
Niañ potibā ବା ମାଟିଦ୍ୱାରା ପୂର୍ତ୍ତି କରି ଭୂମି ସହିତ ସମଭୂଲ
ଭିତ ପୁଁତା କରିବା—To fill up a foundation with
ନୀବଁ भरना earth, brick or stones.
(ନିଅଁ ଭରିବା—ଅନ୍ୟରୂପ)

ନିଅଗ୍ନି—ଗ୍ରା. ବି —(ସଂ. ନିର୍ଗୁଣ)—ନିର୍ଗୁଣ (ଦେଖ)
Niagni Nirguṇa (See)
ନିଅଗ୍ନି ବ୍ରହ୍ମସ୍ୱରୂପ ନାମ ବୋଲାଇଛ ।
ପ୍ରାଚୀ, ବ୍ରହ୍ମସ୍ୱରୂପ ଗୀତା ।

ନିଅଙ୍ଗୀ—ଦେ. ବି.— ନିହଙ୍ଗ (ଦେଖ)
Niangi Nihaṅga (See)
ଏତା ନିଅଙ୍ଗୀ ମଠ; ଗୋଟିଏ ମହନ୍ତ ନାଗସୃଣ ପ ଇଲେ ତାଙ୍କ ତେଲ ଗାଦିରେ ବସିଲ୍ଲ । ଫକୀରମୋହନ, ଗଳ୍ପସ୍ୱଳ୍ପ ।

ନିଅଣ—ଗ୍ରା. (ଇତର) ବି —ନିହଣ (ଦେଖ)
Niaṇa Nihaṇa (See)

ନିଅଣ୍ଟ—ଦେ. ବି. (ସଂ. ଅନଷ୍ଟନ)—ଅନଟନ, ଅଭାବ—
Niaṇṭa Want; insufficience
ଅନାଟ नघटती ବିଣ.—୧ । ଅଭାବଗ୍ରସ୍ତ (ବ୍ୟକ୍ତି)—
1 Beset with want.
୨ । ନିଅଣ୍ଟ; ଅଯଥେଷ୍ଟ (ବସ୍ତୁ)—Insufficient.
ଶତ ପ୍ରାୟଶ୍ଚିତ୍ତି କଲେ ହେଁ ଥିବ ଦୋଷକୁ ତାହା ନିଅଣ୍ଟ ।
ପ୍ରଧାନ ଓ ପଧାନ ।

ନିଅଣ୍ଟିଆ—ଦେ. ବିଣ—ନିଅଣ୍ଟ (ଦେଖ)
Niaṇṭiā Niaṇṭa (See)

ନି ଅନଳ ତେଜା —ଗ୍ରା.ବିଣ.—ଯାହା ଅଗ୍ନିପରି ତେଜୋ ବିଶିଷ୍ଟ ନୁହେଁ -
Ni anala teja Not having the lustre of fire.
ଅନଳ ପରିବ ହସେ ନି ଅନଳ ତେଜା ପ୍ରାଚୀ ବ୍ରହ୍ମସ୍ୱରୂପ ଗୀତା

ନିଅପରାଧ—ଗ୍ରା ବିଣ ( ସଂ. ନିରପରାଧ )—ନିରପରାଧ (ଦେଖ)
Niaparādha Niraparādha (See)
( ନି ଅପ୍ରାଧ—ଅନ୍ୟରୂପ ) ନି ଅପରାଧେ ବୋଡ ଠିକୁ,
ଏ ମୋର ଦେବେ ଗତୁ ଭିନ୍ନ ।
ଜଗନ୍ନାଥ, ଭାଗବତ ।
ବି—ଅପରାଧର ଅଭାବ—Absence of any offence.

ନି ଅପରାଧୀ—ଗ୍ରା. ବିଣ.—ନିରପରାଧ ( ଦେଖ )—
Ni aparādhi Niraparādha (See)
( ନି ଅପ୍ରାଧୀ—ଅନ୍ୟରୂପ ) ନିଅପରାଧୀ ମୁଁ ତାହାର,
ଦୁର୍ବାକ୍ୟ କହି ଚରଣାର ।
ଜଗନ୍ନାଥ, ଭାଗବତ ।

ନିଅରୁଣ—ଗ୍ରା. ବିଣ.—ଯାହା ଈଷତ୍ ଲାଲବର୍ଣ୍ଣ ନୁହେ—
Niaruṇa Not light red.
ଅନଳ ପରିବ ହସେ ନିଅରୁଣ କାନ୍ତି ପ୍ରାଚୀ, ବ୍ରହ୍ମସ୍ୱରୂପ ଗୀତା

ନିଅଳସ—ଦେ. ବିଣ. ପୁଂ—ନିରଳସ ( ଦେଖ )—
Nialasa Niralasa (See)
(ନି ଅଳସା, ନି ଅଳସିଅ, ନି ଅଳସୁଆ—ଅନ୍ୟରୂପ)
( ନି ଅଳସୀ, ନି ଅଳସୋଇ—ସ୍ତ୍ରୀ )

ନିଅହଂକାର—ଗ୍ରା. ବିଣ.—ନିରହଂକାର ( ଦେଖ )—
Niahamkāra Nirahamkāra (See)
( ନି ଅହଂକାରୀ —ଅନ୍ୟରୂପ )

ନିଆ—ଦେ. ବି. ( ସଂ. ନୀ ଧାତୁ )—୧ । ନେବା—1. Taking
Niā ୨ । କ୍ରୟ କରିବା—2 Purchasing.
ଲଓୟା, ନେଓୟା लेना ୩ । ( ସଂ. ଲାଜା )—ଲିଆ; ଖଇ—
ଖୈ लावा 3 Fried paddy

ନିଆ ଅଣା—ଦେ. ବି.—( ସଂ. ନୟନ+ଆନୟନ )—ନେବା ଆଣିବା;
Niā aṇā ନେ ଆଣ—Acts of taking and bringing.
ଲଓୟା ଆନା लेना लाना
( ନିଅ ଅଣ—ଅନ୍ୟରୂପ )

**ନିଆଇବା**—ଦେ କି. ( ସ. ନୀ ଧାତୁ ଣିଜନ୍ତ ) ( ନେବା କ୍ରିୟାର ଣିଜନ୍ତ
Niāibā ରୂପ, The causative form of 'Nebā')—
लवाना ଅନ୍ୟଦ୍ୱାରା ନେବା—To cause to be taken by
**ले जाना** another

ଏ ବାହାରେ ଦ୍ରୋପଦୀ କୃଷ୍ଣ ନିଆଇଲା,
ସୁଯୋଧନ ସଙ୍ଗ କୂପରେ ପକାଇଲ । କୃଷ୍ଣସିଂହ ମହାଭାରତ ବନ

**ନିଆଁ**—ଦେ.ବି. ( ସ ଅଗ୍ନିର ଅପଭ୍ରଂଶରୂପ ଅଗ୍ନି, ଅନ୍ନିରୁ ନିଅଁ,ନିଆଁ)-
Niāñ ୧ । ଅଗ୍ନି—1. Fire.
আগুন ୨ । ( ଗାଳରେ ବ୍ୟବହୃତ ) ଅଗ୍ନିଦ୍ୱାରା ନଷ୍ଟ ଅବସ୍ଥା—
**आग** 2. Burnt or spoiled condition
ଯଥା—( ତୋ ମୁହଁରେ ନିଆଁ )
୩ । କ୍ରୋଧାଗ୍ନି—3 Anger ( compared with fire ).
୪ । ବିବାଦାଗ୍ନି—4. Fiery dispute
୫ । କ୍ଷୁଧାଗ୍ନି—5. Very acute hunger
୬ । ଅତ୍ୟାଚାରିତ ବ୍ୟକ୍ତିର ହୃଦୟରୁ ଉଠିବା ଅଭିଶାପ—
6. Imprecations uttered by an oppressed person.
୭ । ଅଶାନ୍ତି—7 Want of tranquility.
୮ । ସର୍ବନାଶ—8 Ruin
୯ । ଚିତାଗ୍ନି—9 Cremation fire
ବିଣ—୧ । ଅଗ୍ନିପରି ପ୍ରଚଣ୍ଡ—1. Fiery.
୨ । କ୍ରୁଦ୍ଧ—2 Angry.
ଯୁଅଁ ଡିକ ନିଆଁ ହୋଇଣ ଯୁଦ୍ଧେ କାଣ୍ଡ
ବାଣ ମୁଣ୍ଡ କାଟଇ ରଥୀ ହେଲ ଖଣ୍ଡ । କୃଷ୍ଣସିଂହ, ମହାଭାରତ ଦ୍ରୋଣ ।
୩ । ଅଗ୍ନିଦଗ୍ଧ—3 Burnt.
୪ । ଉତ୍ତପ୍ତ—4. Heated.
୫ । ଉତ୍ତେଜିତ—5 Irritated.
୬ । (ଗାଳରେ ବ୍ୟବହୃତ) ସମ୍ପୂର୍ଣ୍ଣରୂପେ ନଷ୍ଟ—
6. Ruined; utterly spoiled.

**ନିଆଁ ଅଟା**—ଦେ. ବି. (ସ. ଅଗ୍ନିକୁଣ୍ଡ)—ଧୂଆଁ ଦେବା ନିମନ୍ତେ କିମ୍ବା
Niāñ aṭā କିଛିକାଳ ନିଆଁକୁ ରଖିବା ନିମନ୍ତେ କୁଟାଆଦି ଦାହ୍ୟ
খড়ের বড় ପଦାର୍ଥଦ୍ୱାରା ବଳା ଯାଇଥିବା ଲମ୍ବ ବେଣୀ; ବଡ଼ିଆ—
**लुकारी, लुआठा** A plait of straw in which fire is maintained for lighting cigars or for preserving fire for some time.

**ନିଆଁ ଉଠିବା**—ଦେ. କି—୧ । ଅଗ୍ନିର ଶିଖା ଉଚ୍ଚକୁ ଉଠିବା; ଶିଖା
Niāñ uṭhibā ଉପରକୁ ଉଠିବା—1. Blazing of
আগুন উঠা fire.
**आग उठना** ୨ । କ୍ରୋଧାଗ୍ନି ପ୍ରଜ୍ୱଳିତ ହେବା—
2. Becoming fiery with anger.
୩ । କ୍ଷୁଧାଗ୍ନି ପ୍ରଜ୍ୱଳିତ ହେବା—
3. Feeling of extreme hunger.
୪ । ଅଭିଶାପାଗ୍ନି ଉଠିବା; ମୁଖରୁ ଅଭିଶାପ ଉଚ୍ଚାରିତ ହେବା--
4. Imprecation uttered by the mouth.

**ନିଆଁ ଉମ୍ଭେଇ**—ଦେ ବି—ନିଆଁ ରଖିବା ପାଇଁ ବ୍ୟବହୃତ ଭଙ୍ଗା-
Niāñ umbhei ମୁହାଁ ମାଟିର ପାତ୍ର—Fire-pan, brazier.
আগুনের খুবি **अङ्गीठी**

**ନିଆଁ କରିବା**—ଦେ କି—ନିଆଁ ଜଳାଇବା (ଦେଖ)
Niāñ karibā Niāñ jaḷāibā (See)

**ନିଆଁ କାଠି(ଡ଼ି)**—ଦେ. ବି - ଦିଆସିଲି କାଠି—
Niāñ kāṭhi(ṛḍhi) Match-stick.
(ନିଆ ଖାଡ଼ୁ—ଅନ୍ୟରୂପ) ପ୍ରାଦେ (ଗଞ୍ଜାମ ଓ ଗଡ଼ଜାତ) ଯେଉଁ
দেসলাই କାଠିର ମୁନକୁ ଆଉ ଖଣ୍ଡିଏ କାଠରେ ଥିବା
**दीयासलाइ** ଗାତରେ ମନ୍ଥିଲା ପରି ଘଷିଲେ ନିଆଁ ବାହାରେ,
ଅରଣି—A pointed stick which, when turned over another bit of flat wood, produces fire by friction; firestick.

**ନିଆଁ ଖଡ଼ିକା**—ଦେ. ବି—୧ । ନିଆଁ କାଠି (ଦେଖ)
Niāñ khaṛdikā 1 Niāñ kāṭhi (See)
୨ । ଉତ୍ତପ୍ତ ଧାତୁର କାଠି—2 A heated poker.
ବିଣ (ଲକ୍ଷଣାର୍ଥ)—ସ୍ୱଭାବରେ ପ୍ରଚଣ୍ଡ, ଅତି କ୍ରୁଦ୍ଧ—
(figurative) Very angry

**ନିଆଁ ଖପର**—ଦେ. ବିଣ—ଅତି କ୍ରୁଦ୍ଧ—
Niāñ khaparā Very angry; enraged.
আগুনখোলা, আগুনখপরা ବି—ନିଆଁ ଉମ୍ଭେଇରୂପେ ବ୍ୟବହୃତ
**आगबबुला** ହାଣ୍ଡିର ଭଙ୍ଗା ଖଣ୍ଡ—A broken part of an earthen pot used as brazier

**ନିଆଁ ଖସି ପଡ଼ିବା**—ଦେ. କ୍ର. (ଲକ୍ଷଣାର୍ଥ)—ହଠାତ୍ ଭୟଗ୍ରସ୍ତ ହେବା-
Niāñ khasi paṛḍibā Being frightened or alarmed.
(ହାତରୁ ନିଆଁ ଖସି ପଡ଼ିବା, ଛାତିରୁ ନିଆଁ ଖସି ପଡ଼ିବା—ଅନ୍ୟରୂପ)

**ନିଆଁ ଖାଇ ଅଙ୍ଗାର ହଗିବା**—ଦେ. କି (ନ୍ୟାୟ୍ୟ)—୧ । ଯେଉଁ ପରି
Niāñ khāi angāra hagibā କାମ କରିବ ସେହିପରି ଫଳ
(ନିଆଁ ଗିଳି ଅଙ୍ଗାର ହଗିବା--ଅନ୍ୟରୂପ) ପାଇବା—1 To reap
**आग खाना अङ्गार हगना** the fruit of one's actions. 'As you sow so you reap'
୨ । ସାହସିକ ବ୍ୟକ୍ତିସୁଲଭ ବା ଅସାଧାରଣ କର୍ମ କରି
ଯଶସ୍ୱୀ ହେବା ବା ଉକ୍ତିରୁ ନିରାପଦରେ ଉଦ୍ଧାର ଯିବା—
2 To do an uncommon or hazardous act and to come out of it successful or safe.

**ନିଆଁ ଖୁଣ୍ଟା**—ଦେ. ବି—୧ । ପ୍ରଜ୍ୱଳିତ କାଷ୍ଠଖଣ୍ଡ—1. A piece of
Niāñ khuṇṭā lighted wood; firebrand.
୨ । ଖେଞ୍ଚେଣା କାଠି—2. A poker.

**ନିଆଁ ଗିଳା**—ଦେ. ବିଣ. ପୁଂ—୧ । ଘୋର ମିଥ୍ୟାବାଦୀ; ଗାଲୁଆ—
Niāñ gilā 1. Downright liar; impudent liar.
(ନିଆଁ ଗିଳୀ—ସ୍ତ୍ରୀ) ୨ । ଭୁରୁଡ଼ା; ବାହାପିଆ—
ডাহামিথ্যাবাদী 2 Boastful; bragging.
**लालबुजझक्कड़** ୩ । ଦୁଃସାହସିକ—3. Foolhardy.

**ନିଆଁ ଗିଳବା**—ଦେ. କି. (ଲକ୍ଷଣାର୍ଥ)—ଘୋର ମିଥ୍ୟାକଥା କହିବା—
Niāñ gilibā To speak a downright lie.

ନିଆଁ ଜଳା(ଳେ)ଇବା—ଦେ. କ୍ରି—କାଠ, କୁଟା, କୋଇଲାଆଦି
Niāñ jalā(le)iba ଜଳାଇ ଅଗ୍ନି ପ୍ରସ୍ତୁତ କରିବା—
(ନିଆଁ ଜାଳିବା—ଅନ୍ୟରୂପ) To set ablaze; to get up
আগুন জলান আग लगाना a blazing fire

ନିଆଁ ଜଳିବା—ଦେ ବି (ସ ଅଗ୍ନି + ଜ୍ୱଳନ)—୧ । ଶିଖାସହ ଅଗ୍ନି
Niāñ jaliba ଉଠିବା—1 Bursting into a blaze
আগুন জলা or flame; the burning of a
आग जलना fire.
୨ । (ଲକ୍ଷଣାର୍ଥ) ଅତ୍ୟନ୍ତ କ୍ରୋଧ ବା ଅସନ୍ତୋଷ ମୂଳକ
ହେବା—2. (figurative) The state of wrath or discontent.

ନିଆଁ ଝାଡ଼ିବା—ଦେ କ୍ରି—ଚକମକି ପଥରରୁ ଅଗ୍ନିସ୍ଫୁଲିଙ୍ଗ ଉତ୍ପାଦନ
Niāñ jhārdibā କରିବା—To produce sparks
আগুনঝাড়া from flint stone
आग झाड़ना

ନିଆଁ ଦେବା—ଦେ. କ୍ରି—୧ । ନିଆଁ ଲଗାଇବା (ଦେଖ)
Niāñ debā 1 Niāñ lagāibā (See)
আগুন দেওয়া ୨ । ମୃତବ୍ୟକ୍ତିର ଶବରେ ଅଗ୍ନି ସଂଯୋଗ
आग देना କରିବା, ମୁଖାଗ୍ନି ଦେବା—
2. To set fire to the dead body on the funeral pyre.

ନିଆଁ ଧରା(ରେ)ଇବା—ଦେ. କ୍ରି—କୌଣସି ଦାହ୍ୟ ପଦାର୍ଥରେ ଅଗ୍ନି
Niāñ dharā(re)ibā ସଂଯୋଗ କରି ଜଳାଇବା—
আগুন ধরান To set fire to; to ignite
आग जलाना; आग सुलगाना

ନିଆଁ ଧରିବା—ଦେ. କ୍ରି.—ନିଆଁ ଲାଗିବା (ଦେଖ)
Niāñ dharibā Niāñ lāgibā (See)
আগুন ধরা; आग छूना
ଦେ. କ୍ରି. ଅଗ୍ନି ସଂଯୋଗରେ ଜଳିବା—To be ignited; to catch fire.

ନିଆଁ ଧୂଆଁ ଉଠିଯିବା—ଦେ. କ୍ରି—୧ । ସମ୍ପୂର୍ଣ୍ଣ ଭାବରେ ବିନଷ୍ଟହେବା—
Niāñdhuāñ uthijibā 1. To be completely spoiled
आगलगजाना or destroyed.
অগ্নি মূল্য হওয়া ୨ । ଜିନିଷର ଦର ଅତି ବେଶି ହେବା—
आगके मोलहोना 2. A commodity becoming very dear.

ନିଆଁ ନଥାଇ ଧୂଆଁ—ଦେ (ନ୍ୟାୟ)—୧ । କାରଣ ନ ଥାଇ କାର୍ଯ୍ୟ
Niāñ nathāi dhuāñ ଘଟିବା ରୂପ ଅସମ୍ଭବ ବ୍ୟାପାର—
1. An improbable thing; like smoke coming out from a place having no fire
বিনাআগুনে ধুঁয়া
୨ । ପୂର୍ବରୁ କୌଣସି ସୂଚନା ନ ଥାଇ ହଠାତ୍ ଘଟିବା ଘଟନା—
2. The happening of an event without any previous indication.

ନିଆଁପଥର—ଦେ. ବି—ଝକମକି (ଦେଖ)
Niāñ pathara Jhakamaki (See)

ଚାଟେ ଗୃହ ଗୁଳା ଭାର ଭାର
ରଙ୍ଗକ କାମକ ନିଆଁ ପଥର । ବ୍ରଜନାଥ. ସମର ତରଙ୍ଗ ।

ନିଆଁ ପାଣି—ଦେ. ବି—ଖାଦ୍ୟ ରାନ୍ଧିବା ପାଇଁ ଦୁଇଟି ଅତ୍ୟାବଶ୍ୟକ
Niāñ pāni ବସ୍ତୁ, ଅଗ୍ନି ଓ ଜଳ—Fire and water, the
আগুন জল; आगपानी two necessary materials for cooking.

ନିଆଁପାଣି ଅଟକ—ଦେ. ବି—ଜାତିରୁ ବା ସମାଜରୁ ଏକଘରକିଆ
Niāñ pāni ataka ହେବା ବ୍ୟକ୍ତିଙ୍କୁ ପ୍ରତିବେଶୀମାନଙ୍କ ବ୍ୟବହୃତ
(ନିଆଁପାଣି ବନ୍ଦ—ଅନ୍ୟରୂପ) କୂଅ ବା ପୋଖରୀରୁ ପାଣି ନେବା ଓ
ତାଙ୍କୁ କେହି ରାନ୍ଧିବା ପାଇଁ ନିଆଁ ଦେବା ବନ୍ଦ
କରାଯିବା—Stoppage of the use of water of the village well or tank and of the giving of fire for domestic use to an
জাতে ঠেকো করা excommunicated person.

ନିଆ ପୁଆ(ଆଁ)—ଦେ ବି (ସ ପ୍ରାପଣ)—ଅଗ୍ନି ନିକଟରେ ବସି ଅଗ୍ନିର
Niāñpua(āñ) ଉତ୍ତାପ ଗ୍ରହଣ—Warming one's
আগুন পোয়ান; आग तापना self before a fire.
ପାର୍ଶ ବୃଡା ବଇଛ ନିଆଁ ପୁଆଁରେ ସାଏ—ଭଗ ।

ନିଆଁ ପେ ଡ଼ି—ପ୍ରାଦେ. (ଗଞ୍ଜାମ ଓ ସମ୍ବଲପୁର) ବି—ଦିଆସିଲି ବାକ୍ସ—
Niāñ perdi Match box.
(ନିଆଁ ପେଢ଼ି—ଅନ୍ୟରୂପ)

ନିଆଁ ପୋଇ(ଇଁ)ବା—ଦେ. ବି (ସ. ପ୍ରାପଣ)—ନିଆଁ ପାଖରେ ବସି
Niāñ poi(iñ)bā ଆପଣା ଶରୀରକୁ ଉତ୍ତପ୍ତ କରିବା—
আগুন্ পোয়ান; To warm one's self before a fire;
आग तापना to bask at a genial fire
(ନିଆଁପୁଆଁଇବା; ନିଆଁ ପୁଏଁଇବା; ନିଆଁ ପୁଆଇଁବା—ଅନ୍ୟରୂପ)

ନିଆଁ ବଢ଼ି(ଢି)ଆ—ଦେ ବି—ନିଆଁ ଅଠା (ଦେଖ)
Niāñ bardi (rdhi)a Niān atā (See)
(ନିଆଁ ବଢ଼; ନିଆଁ ବଢ଼ିଆ—ଅନ୍ୟରୂପ)

ନିଆଁ ବରଷିବା—ଦେ. ବି—୧ । ଅସହ୍ୟ ଗ୍ରୀଷ୍ମ ଅନୁଭୂତ ହେବା—
Niāñ barashibā 1 A feeling of extreme heat.
আগুন বৃষ্টি হওয়া; आगबरसना ୨ । ଅସହ୍ୟ ଗ୍ରୀଷ୍ମ ପବନ ବହିବା—
2. The blowing of very hot wind.
(ନିଆଁ ଛୁଟିବା, ନିଆଁ ଛୁଟି ପଡ଼ିବା—ଅନ୍ୟରୂପ)—

ନିଆଁ ବାଣ—ଦେ. ବିଣ—୧ । ଅଗ୍ନି ଶର୍ମା; କ୍ରୋଧରେ ଜଳୁଥିବା—
Niān bāna 1. Fired with anger.
অগ্নিশর্মা; आगबाण, आग बबूला
୨ । କ୍ରୋଧନ ସ୍ୱଭାବ—2. Of fiery temper.

ନିଆଁବାଣ ହେବା—ଦେ. କ୍ରି—ଅତ୍ୟନ୍ତ କ୍ରୋଧ ହେତୁରୁ ଦେହରେ
Niāñ bāna hebā ନିଆଁ ଲାଗିଲି ପରି ହିତାହିତଜ୍ଞାନଶୂନ୍ୟ
জলে আগুন হওয়া ହେବା—To be maddened with
आगबबूलाहोना rage.

ନିଆଁ ରଢ଼ା—ଦେ. ବି—(ଗାଳି ବା କଳିରେ ବ୍ୟବହୃତ)—
Niān rarda ୧ । ଜ୍ୱଳନ୍ତ ଅଗ୍ନିଖଣ୍ଡ ପରି ଉତ୍ତେଜିତ ବ୍ୟକ୍ତି—
1. Any irascible person.

୨ । ଜ୍ୱଳନ୍ତ ଅଗ୍ନି ଖଣ୍ଡ ପରି ଅଖାଦ୍ୟ ବସ୍ତୁ—
2 Anything incapable of being eaten.
[ଦ୍ର—ଗାଳି ଯଥା—ସେ ନିଆଁ ଖଉକୁ ମୁଁ କଥା କହେ ନାହିଁ। ବିରକ୍ତି ଯଥା—ମୁଁ ନିଆଁ ଖାଇବି ।]

**ନିଆଁରେ ମୁତିବା**—ଦେ କ୍ରି ( ଜାଣି ଶୁଣି ନିଜେ କୌଣସି ଦୋଷ କରି ନ ଥିଲେ ଅପମାନପୂର୍ଣ୍ଣ କଥାରେ ବ୍ୟବହୃତ)—କୌଣସି ବିଷୟରେ ଅନ୍ୟ ବ୍ୟକ୍ତି ସହିତ ସମାନ ଅଧିକାର ବା ଅନୁଗ୍ରହ ନ ପାଇବା ଭଳି କିଛି କାର୍ଯ୍ୟ କରିବା—To seem to have done something for which a person does not get the treatment which is meted out to others.
Niāñre mutibā
ଆଗুনে মূতা, **आगमे मुतना**
(ଯଥା—ତୁମେ ସମସ୍ତେ କିଛି କିଛି ପାଇଲ, ଆମେ ପରା ନିଆଁରେ ମୁତିଥିଲୁ ଆମକୁ କାହିଁକି ମିଳନ୍ତା ?)
[ଦ୍ର—ସାଧାରଣତଃ ନିଆଁ ଉପରେ ପ୍ରସ୍ରାବ କଲେ ଲୋକର ପ୍ରସ୍ରାବ ଇନ୍ଦ୍ରିୟରେ ବ୍ରଣ ହୁଏ ଓ ଲିଙ୍ଗ ଫୁଲିଯାଏ ।]

**ନିଆଁଲ(ଲା)ଗା**—ଦେ. ବିଣ—୧ । ପୋଡ଼ା; ଦଗ୍ଧ—1 Burnt.
Niāñ la(lā)gā
ପোড়াৰমুখো; **आग लगाहुआ**
୨ । ( ଗାଳି ବିଶେଷ ) ଅଗ୍ନିଦଗ୍ଧ— 2. Consumed by fire.
(ନିଆଁନଗା—ଅନ୍ୟରୂପ)
(ନିଆଁଲଗୀ—ସ୍ତ୍ରୀ)
୩ । ଦୁର୍ଦ୍ଦଶାଗ୍ରସ୍ତ; ମନ୍ଦ— 3. Cursed; damned.
ଏ ନିଆଁଲଗା ଘରେ ରହିବ ନାହିଁ, କି, ଭାତକାଳ ମାଡ ସହିବ ନାହିଁ—ଉଗ :
୪ । ଗୃହଦାହକ—4 Incendiary
ଦେ. ବି—ଗୃହାଦିରେ ଅଗ୍ନି ସଂଯୋଗ କରିବା ଅପରାଧ— Arson; incendiarism.

**ନିଆଁ ଲଗା(ଗେ)ଇବା**—ଦେ. କ୍ରି—୧ । କୁଟା କାଠି ଆଦିକୁ ଜଳାଇବା—1 To light a fire; to ignite.
Niāñ lagā(ge)ibā
আগুন লাগান
**आग लगाना**
୨ । ଗୃହ ଆଦିରେ ଅଗ୍ନି ସଂଯୋଗ କରିବା— 2. To set fire to; to set on fire
[ ଦ୍ର—ବାଣରେ, ତୋପରେ, ବନ୍ଧୁକରେ, ଚୁଲୀରେ ନିଆଁ ଲଗାଇବା ଶବ୍ଦ ବ୍ୟବହୃତ ହୁଏ । ]
୩ । ପୋଡ଼ିବା—3. To burn
୪ । (ଲକ୍ଷଣାର୍ଥ) ଅନ୍ୟ ବ୍ୟକ୍ତିର ପରିବାରରେ ବିବାଦ ବଢ଼ାଇ ଅଶାନ୍ତି ଉପୁଜାଇବା—4. (figurative) To cause un-rest in another's family.
୫ । (ଲକ୍ଷଣାର୍ଥ ) ଘୋର ଉପଦ୍ରବ ବା ଜଞ୍ଜାଳର ସୃଷ୍ଟି କରିବା—5. To cause confusion and ado
୬ । (ଲକ୍ଷଣାର୍ଥ) ସର୍ବନାଶ ଘଟାଇବା— 6. (figurative) To cause ruin.

**ନିଆଁଲଗିବା**—ଦେ. ବି—୧ । ଅଗ୍ନିସାତ୍ ହେବା— 1. Being on fire.
Niāñ lāgibā
আগুন লাগা
**आग लगना**
୨ । ଦଗ୍ଧ ହେବା—2. Being burnt.
୩ । ଜଳିବା—3. Bursting into a blaze, being lighted; catching fire.
(ନିଆଁ ନାଗିବା—ଅନ୍ୟରୂପ)
୪ । (ଲକ୍ଷଣାର୍ଥ) ଅଶାନ୍ତି ବା ବିବାଦ ଉତ୍ପନ୍ନ ହେବା— 4. (figurative) The creation of dissen-sion, unrest or consternation
୫ । (ଲକ୍ଷଣାର୍ଥ ) ବିଶେଷ ଉଦ୍‌ବେଗ ଲାଭ ହେବା— 5. (figurative) The state of great anxiety.

**ନିଆଁ ଲିଭା(ଭେ)ଇବା**—ଦେ କ୍ରି--ଅଗ୍ନି ନିର୍ବାପଣ କରିବା— To put out a fire, to extinguish a fire.
Niāñ libhā(bhe)ibā
আগুন নিবান
**आग बुझाना**
[ନିଆଁ ନିଭା(ଭେ)ଇବା—ଅନ୍ୟରୂପ]

**ନିଆଁ ଲିଭାଳି**—ଦେ. ବି—ଘରେ ଲାଗିଥିବା ନିଆଁକୁ ଯେଉଁମାନେ ଲିଭାନ୍ତି—Persons who put outa fire when a house is on fire
Niāñ libhāḷi

**ନିଆଁ ଲିଭିବା**—ଦେ. ବି—ଅଗ୍ନି ନିର୍ବାପିତ ହେବା; ଅଗ୍ନିର ନିର୍ବାପଣ— A fire being extinguished the extinction of a fire.
Niāñ libhibā
আগুন নিবা
**आग बुझना**
(ନିଆଁ ନିଭିବା—ଅନ୍ୟରୂପ)

**ନିଆଁଲୁଣ୍ଡା**—ଦେ. ବି (ସ. ଅଗ୍ନି + ଉଲ୍କା)—ଚୁଲିରେ ନିଆଁ ଲଗାଇବା ପାଇଁ ବା ସ୍ଥାନାନ୍ତରରୁ ନିଆଁ ଆଣିବା ପାଇଁ ବ୍ୟବହୃତ କୁଟାର ପୁଳା—A doubled up bunch of straw used in igniting an oven or lighting a fire.
Niāñ lunḍā
পোয়ালের নুড়া
**लुकेठा**

**ନିଆଁହୁଳା** – ଦେ. ବି (ସ. ଅଗ୍ନି + ଉଲ୍କା)—କୁଟା, ନଡ଼ିଆପତ୍ର ପ୍ରଭୃତି ଜଳୁଥିବା ଦାହ୍ୟ ପଦାର୍ଥର ଲମ୍ବ ଗୁଚ୍ଛ; ଉଲ୍କା — Burning faggot.
Niāñ huḷā
আগুনের আঁটী
**लुआठा**

**ନିଆଁ ହେବା**—ଦେ· କ୍ରି —୧ । ନିଆଁବାଣ ହେବା ( ଦେଖ ) Niāñbāṇa hebā ( See )
Niāñ hebā
আগুন হওআ
**आग होना**
ଭୃଗୁଣବା ଯୁଦ୍ଧେ ଚ ଅନନ୍ତ ମନୁଆଁ
ଧାଇଁଲେ ରଥଚଢ଼ି କୋଧେ ହୋଇ ନିଆଁ ।
କୃଷ୍ଣସିଂହ. ମହାଭାରତ ଖଣ୍ଡ ।
୨ । ଅତି ଉତ୍ତପ୍ତ ହେବା— 2. To become very hot.

**ନିଆଚଲ** - ଦେ. ବି —ଖଇ ଚଲ ( ଦେଖ ) Khai chalā ( See )
Niā chalā
(ନିଆ ଛଡ଼ା; ନିଆଁଚଙ୍ଗ—ଅନ୍ୟରୂପ)

**ନିଆଛ(ଛା)**—ଦେ. ବିଣ—ଅନୁତ୍ତମ; ମନ୍ଦ— Not good; bad.
Niāchha(chchhā)

**ନିଆଜ**—ବୈଦେ. ବି (ଫା. ଲିହାଜ୍)—୧ । ଲିହାଜ; ଅନ୍ଦାଜ; ଅନୁମାନ— 1. Tentative estimate; guess.
Niāja
লেহাজ
**लिहाज**
୨ । ସ୍ମରଣ—2. Recollection
୩ । ହେଜ; ଖିଆଲ; ମନୋଯୋଗ—3 Attention.
୪ । ଗୁଡା ବା ଲୁଚ— 4 Appraisement of produce.

୫ । ବିବେଚନା—5 Consideration.

**ନିଅଜିବା**—ଦେ. କ୍ରି—ଅଦାଜ କରିବା
Niājibā To make a tentative estimate

**ନିଅଡ଼**—ଦେ. ବି (ସଂ. ନିରନ୍ତରାଳ)—ସମ୍ମୁଖ—
Niārḍa Front.
ନିଅড় ବିଣ—୧ । ନିରନ୍ତରାଳ; ପ୍ରତ୍ୟକ୍ଷ—1 In front.
**निअर** ୨ । ( ସଂ ନିକଟ ) ନିକଟବର୍ତ୍ତୀ—
2. Adjacent; near; contiguous.

**ନିଅଣ**—ଦେ. ବି—୧ । ନିହଣ ( ଦେଖ )
Niāṇa 1. Nihaṇa (See)
୨ । (ସଂ. ନୟନ) ନେଣ; ନେବା—2. Taking
୩ । (ସଂ. ନୟନ + ଆନୟନ) ନେ ଅଣ; ନେବା ଓ ଆଣିବା—
3. Taking and bringing.

**ନିଅ ଦିଅ**—ଦେ. ବି—୧ । ନେବା ଓ ଦେବା କର୍ମ, ନେଣ ଦେଣ—
Niā diā 1. Taking and giving.
নেওয়াদেওয়া ୨ । ଆଦାନ ପ୍ରଦାନ—
**लेनादेना** 2. Giving and receiving.
୩ । ବେଭାର—3 Transaction.
୪ । ବେପାର; ବଣିଜ—4. Trade.

**ନିଆମ (ଇତ୍ୟାଦି)**—ଗ୍ରା. ବି—ନିୟାମ ଇତ୍ୟାଦି (ଦେଖ)
Niāma (etc) Niyāma etc (See).

**ନିଆମତ୍**—ବୈଦେ. ବି (ଆ)—ଉତ୍ତମ, ଅମୂଲ୍ୟ ଓ ଅଲଭ୍ୟ ବସ୍ତୁ—
Niāmat Any good and priceless thing which is
নিয়ামত **निआमत** not easily available.

**ନିଆମି (ଇତ୍ୟାଦି)**—ଗ୍ରା. ବି. ଓ ବିଣ—ନିୟାମି ଇତ୍ୟାଦି (ଦେଖ)
Niāmi (etc) Niyāmi etc (See)

**ନିଆୟ**—ଗ୍ରା. ବି (ସଂ. ନ୍ୟାୟ)—ନ୍ୟାୟ (ଦେଖ)
Niāya **निआइ** Nyāya (See)

**ନିଆୟୁଧ**—ଦେ. ବିଣ (ସଂ. ନିରାୟୁଧ)—ନିରାୟୁଧ (ଦେଖ)
Niāyudha Nirāyudha (See)

**ନିଆରା**—ଦେ. ବିଣ (ସଂ. ନିର୍ନିକଟ; ପ୍ରା ନିନିଅଡ) —୧ । ପୃଥକ୍—
Niārā 1 Separate.
ନ୍ୟାରା } ଅନ୍ୟରୂପ ୨ । ସ୍ୱତନ୍ତ୍ର—2 Distinct.
ନିଆର } ୩ । ଭିନ୍ନ ଭିନ୍ନ—3. Different.
আলাদা ୪ । ପୃଥଗନ୍ନ ଓ ପୃଥଗ୍‌ବାସ ହେବା (ବ୍ୟକ୍ତି)
**न्यारा, निआरा** 4 Separated in mess and lodging.

**ନିଆରି**—ପ୍ରାଦେ ( ଯାଜପୁର ) ବି—ଯାଜପୁର ଓ ବାଲେଶ୍ୱରର
Niāri ମାଛଧରା କେଉଟଜାତିବିଶେଷ—
A caste of fishermen in Jajpur and Balasore.

**ନିଆଳୀ**—ଦେ. ବି (ସଂ. ନିକୁମ୍ଭଲିକା; ପ୍ରା. ଣୋମାଲିଆ)—୧ । କୁନ୍ଦମଲ୍ଲୀ
Niāḷi 1. Jasminum Arborcscens.
নেয়ালী **नेवारी** [ ଦ୍ର—ଏହା ମଲ୍ଲିକାଦି ବର୍ଗର ବନ୍ୟକ୍ଷୁପ, ଏହାର ଗଛ ସିଧା ଓ ଡେଙ୍ଗା, ପତ୍ର ପଣ୍ଡିପାନ ଓ ସଂ ନାମ—ସପ୍ତଳା, ନବମାଳିକା, ନବମଲ୍ଲିକା ଅଣ୍ଡାକାର ଫୁଲରେ ୭ ଗୋଟି ପାଖୁଡ଼ା ଥାଏ; ଫୁଲ ଧଳା ଓ ସୁଗନ୍ଧଯୁକ୍ତ, ଫୁଲ ବସନ୍ତରେ ଫୁଟେ । ]
୨ । ବନ୍ଦୀ ବ୍ୟକ୍ତିର ଗୋଡରେ ଦିଆଯିବା ଶିକୁଳି—
2 Chain attached to the legs or prisoners, shackles.

**ନିଆଳୀ ସୂତା**—ଦେ. ବି—କଣ୍ଠାଭରଣବିଶେଷ; ଗୋପ—
Niāḷi sūtā A kind of necklace, neck chain.

**ନିଆଶ(ଶା)**—ଦେ. ବିଣ (ସଂ. ନିରାଶ)—ନିରାଶ, ଆଶାହୀନ—
Niāśa(śā) Hopeless; desperate.
**निभरोसा, निभरोस** ବି.—ନୈରାଶ୍ୟ—
Hopelessness

**ନିଆଶିବା**—ଦେ. କ୍ରି ( ସଂ. ନିରାଶ )—୧ । ଆଶା ନ ରଖିବା—
Niāśibā 1. To give up hope.
୨ । ଅନ୍ୟ ବ୍ୟକ୍ତିକୁ ନିରାଶ କରିବା—
2 To shatter al hoples

**ନିଆଶ୍ରି**—ଦେ. ବିଣ ( ସଂ. ନିରାଶ୍ରୟ)—ନିରାଶ୍ରୟ—
Niāśri (ନିଆଶ୍ରିକ—ଅନ୍ୟରୂପ) Helpless; shelterless.

**ନିଇମା**—ଦେ. ବି (ସଂ. ନିମେଷ)—ନିମେଷ; ମୁହୂର୍ତ୍ତ—
Ni-imā One moment.
নিমিষ **निमिख**

**ନିଉଁ(ଉ)ଛଣା**—ଦେ. ବିଣ ପୁଂ ( ସଂ. ନୀଚ; ନିକୃଷ୍ଟ )—
Niuñ(u)chhaṇā ୧ । ତୁଚ୍ଛ; ହୀନ; ଘୃଣ୍ୟ—Dispicable.
ନିଉଁଛୁଣେ }  ଏ ଗୋବିନ୍ଦପୁର ଗାଁର ପୃଥିବୀର ନିଉଛୁଣୀ—
ନୁଉଁଛଣା } ଅନ୍ୟରୂପ  ଫକୀରମୋହନ. ଛମାଣଆଠଗୁଣ୍ଠ
ନୁଉଁଛୁଣା }  ୨ । ନିଷ୍ପ୍ରୟୋଜନ—
( ନିଉଁଛୁଣୀ—ସ୍ତ୍ରୀ ) 3. Unnecessary.
নীচ ୩ । (ଗାଳିବିଶେଷ) ମନ୍ଦପ୍ରକୃତିବିଶିଷ୍ଟ; ହୀନପ୍ରକୃତିକ—
**नीच** 3. Bad; evil; exceptionally bad.

**ନିଉଁ(ଉ)ଛା(ଛେ)ଇବା**—ଦେ. କ୍ରି (ସଂ. ନିର୍ମଞ୍ଛନ; )—
Niuñ(u)chhā(chhe)ibā ୧ । ବନ୍ଦାଇବା; ବନ୍ଦାପନାକରିବା—
ନିଉଁ(ଉ)ଛାଳିବା }  1. To salute or adore by
ନିଉଁ(ଉ)ଛିବା } ଅନ୍ୟରୂପ waving a light before
ନିଉଛିବା }  a new comer
ନିଉଁ(ଉ)ଛାଳିବା }  or guest.
নির্মঞ্ছন, নিছান  ବନକ ନିଉଁଛାଳ କରି ଖଞ୍ଜନ ନିଉଁଛାଳିବାରେ ନେଦେ ।
**निछावरकरना**  ଉଞ୍ଜ. ବୈଦେହୀଶବିଳାସ ।
୨ । ନବାଗତ ବ୍ୟକ୍ତି ବା ବରକନ୍ୟାଙ୍କ ଆଗରେ ଥାଳିରେ ଗଣ୍ଡିଏ ଅନ୍ନ ଧରି ବନ୍ଦାପନା କରିବା—
2 To salute a new comer guest or a bride or bridegroom by formally presenting some boiled rice in a plate.
୩ । ପ୍ରଣାମ କରିବା—
3 To make salutation or obeisance
୪ । ଦେବତାଙ୍କୁ ଉତ୍ସର୍ଗ କରିବା; କୌଣସି ବ୍ୟକ୍ତିର ବା ରୋଗୀର ମଙ୍ଗଳ ଉଦ୍ଦେଶ୍ୟରେ ବା ଅଶୁଭ ନିବାରଣ ଉଦ୍ଦେଶ୍ୟରେ ଉକ୍ତ ବ୍ୟକ୍ତିର ମୁଣ୍ଡରେ ଧନ ବା ଅଳଙ୍କାର

ଛୁଆଇଁ ଉକ୍ତ ବ୍ୟକ୍ତିର ମଙ୍ଗଳ ହେଲେ ବା ରୋଗ ଉପଶାନ୍ତ ହେଲେ ଉକ୍ତ ଧନରତ୍ନାଦି ବା ତତ୍ତୁଲ୍ୟ କଳ୍ପିତ ମୂଲ୍ୟର ଭୋଗ ଆଦି କୌଣସି ଦେବତାଙ୍କୁ ଦେବାପାଇଁ ଉତ୍ସର୍ଗ କରିବା; ପାଣି ଛଡ଼ାଇବା—

4. To set apart some money or ornament to a Diety by touching the head of a patient with it and making a vow that it will be offered to the Deity if the patient comes round.

ନଉଁ(ଉ)ଛଣି(ଳି)—ଦେ. ବି. ( ସଂ. ନିର୍ମଞ୍ଛନ )—୧ । ବନ୍ଦନା—
Niuñ(u)chhaṇi(ḷi) 1. Act of adoration.
(ନଉଁଛଣ—ଅନ୍ୟରୂପ) ନନ୍ଦନ ପେଶଲ ତା ଚରଣ ତଳ ନଉଁଛଣି ଭଲ ହେବ ।
ନିଛନୀ, ନିଛୁନୀ ବ.ସୂ.ସ୍ୟ. ଚନ୍ଦ୍ରୀକର ଦଣ୍ଡ ନ ଗୀତ ।
निछावर, नेउच्छावरि ୨ । ପ୍ରଣାମ—2 Salutation.

ତୋହର ଯଜ୍ଞ କାଳେ ମିଳି
ତୋ ପାଦେ କଲି ନଉଁଛଣି । ଜଗନ୍ନାଥ. ଭାଗବତ ।

୩ । ପୂଜା—3. Worshipping

୪ । ଆରତି; ବନ୍ଦାପନା—4. Act of showing respect by waving a light before a guest.

ପଦ କମଳେ ପରିବୃଢ଼
ନଟ୍ୟେ କରନ୍ତି ନଉଛଣି । ଜଗନ୍ନାଥ, ଭାଗବତ ।

୫ । ଆଶୀର୍ବାଦ—5 Benediction.

୬ । ସାଦର ସମ୍ଭାଷଣ—
6. Congratulation; welcome.

୭ । ମାନ୍ୟ ବ୍ୟକ୍ତିଙ୍କୁ ଉପହାର; ଭେଟି—
7. Present given as a token of respect.

୮ । ରୋଗୀ ଆଦିଙ୍କ ମୁଣ୍ଡ ବା ଦେହରେ ଛୁଆଇଁ କୌଣସି ଧନ ବା ଅଳଙ୍କାରକୁ କୌଣସି ଦେବତାଙ୍କ ନାମରେ ଉତ୍ସର୍ଗ ବା ମାନସିକ କରିବା—9. The setting apart of a sum of money or ornament for being offered to a Deity in case the patient come's round, by touching the head of a patient with it.

ନଉଁ(ଉ)ଛଳ—ଦେ. ବି— ନଉଁଛଣି ( ଦେଖ )
Niuñ(u)chhaḷa Niuñchhaṇi ( See )

ନଉଛଳ ଦେଇ ପଦ୍ମଶ୍ରୀ ମଣାଇ ଝଟନ୍ତି ବ ଶ୍ରୀ ପଦରେ । ଭକ୍ତ. ସର୍ବସ୍ୱଗୀତା

ନଉଁ(ଉ)ଛି ଯିବା—ଦେ. କ୍ରି. (ସଂ. ନିର୍ମଞ୍ଛନ)—୧ । ମୁଗ୍ଧ ହେବା—
Niuñ(u)chhi jibā 1. To be charmed
ନିଛା, ନିଛୁନୀ ଜାଓୟା ୨ । କୌଣସି ବ୍ୟକ୍ତିଙ୍କୁ କଲ୍ୟାଣ କରିବା;
निछावर होना ନିଛି ଯିବା—2. To pour benedictions
(ନିଛିଯିବା—ଅନ୍ୟରୂପ) on a person.

୩ । ଶିଶୁମାନଙ୍କ ସକଳ ଅମଙ୍ଗଳ ଉଚ୍ଚାରକର ଉପରେ ପଡ଼ୁ ବୋଲି କହି ଆଶୀର୍ବାଦ କରିବା—3. To wish good luck to a child by invoking blessings on the child and by invoking the child's evil on the speaker's own head.

ନଉଁତା—ଗ୍ରା. ବି. ( ସଂ ନିମନ୍ତ୍ରଣ )—
Niuñtā ୧ । ବିବାହାଦି ଉତ୍ସବ ଉପଲକ୍ଷରେ ଭୋଜ ( ଯହିଁରେ
ନିଉଁତା ବନ୍ଧୁମାନଙ୍କୁ ଭୋଜନାର୍ଥ ନିମନ୍ତ୍ରଣ କରାଯାଏ );
नेवता, नेउता ଖିଆ ପିଆ—1. Feast given on the occasion of family ceremonies

୨ । ପାରିବାରିକ ଉତ୍ସବ (ବିବାହ, ବ୍ରତ, କର୍ଣ୍ଣବେଧ ଆଦି)—
2 Family festivals

ନଉଛାହ(ହି)—ଦେ. ବିଣ. (ସଂ. ନିରୁତ୍ସାହ) —ନିରୁତ୍ସାହ (ଦେଖ)
Niuchchhāhā(hi) Nirutsāha ( See )

ନଉଞ୍ଛା(ଞ୍ଛେ)ଇବା—ଦେ. କ୍ରି—ନଉଁଛଇବା ( ଦେଖ )
Niuñchhā(ñchhe)ibā Niuñchhaibā ( See )
ନଉଞ୍ଛାଳିବା } ଅନ୍ୟରୂପ
ନଉଞ୍ଛିବ । }
୨ । ନ୍ୟୂନ କରି ତୁଳନା କରିବା—2. To find a thing inferior after comparision.

ବଦନରେ ତାକୁ ଦର୍ପଣ ପଦ୍ମ ନଉଞ୍ଛାଇବା
ବଦନରେ ଏହି ଉକ୍ତି କ ଆନ କ ଲକ୍ଷ ଦେବା ।
ଭକ୍ତ. ବୈଦେହୀଶବିଳାସ ।

ନଉଞ୍ଛାଣି(ଳି)—ଦେ. ବି—ନଉଁଛଣି ( ଦେଖ )
Niuñchhāṇi(ḷi) Niuñchhāṇi ( See )

ନଉଟନ୍—ବୈଦେ. ବି. ( ଇଂ. ନାମ )—
Niuṭan ସପ୍ତଦଶ ଶତାବ୍ଦୀର ଇଂଲଣ୍ଡର ପ୍ରସିଦ୍ଧ ବୈଜ୍ଞାନିକ—
ନିଉଟନ Sir Isac Newton, the celebrated English
न्यूटन scientist of the seventeenth century, A D.

[ ଦ୍ର—ସର୍ ଆଇଜାକ ନଉଟନ୍ ଇଂଲଣ୍ଡରେ ୧୬୪୨ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରିଥିଲେ । ମାଧ୍ୟାକର୍ଷଣ ତତ୍ତ୍ୱ, ଆଲୋକର ଗତି ନିର୍ଣ୍ଣୟ ଓ ଅନ୍ୟାନ୍ୟ ଅନେକଗୁଡ଼ିଏ ବୈଜ୍ଞାନିକ ତତ୍ତ୍ୱ ଏ ଗବେଷଣା ଓ ଅଧ୍ୟବସାୟ ସହକାରେ ଆବିଷ୍କାର କରି ପାଶ୍ଚାତ୍ୟ ବୈଜ୍ଞାନିକ ମଣ୍ଡଳରେ ଶ୍ରେଷ୍ଠ ସ୍ଥାନ ଲାଭ କରିଥିଲେ । ୧୭୨୭ ଖ୍ରୀଷ୍ଟାବ୍ଦରେ ଏହାଙ୍କର ମୃତ୍ୟୁ ହେଲା । ]

ନଉଡ଼ିବା—ଦେ. କ୍ରି. ( ସଂ. ନିଃସାରଣ; ନି+ଚ୍ୟବନ )—
Niurḍibā ୧ । ଇଡ଼ିବା; ଢାଳିବା—1 To pour out.
ନିଚୋଡ଼ା ଭୂମି ଦୋଷ ପାଇଁକି ଦେବତା ଅସ୍ତରେ
निचोड़ना, निचुड़ना ନଉଡ଼ନ୍ତି ବିଷ ସେ ଭୂମିର ମୂଳରେ ।
କୃଷ୍ଣସିଂହ, ମହାଭାରତ. ସଭା ।

୨ । ଚିପୁଡ଼ିବା—2. To squeeze out; to wring out juice by pressing.

୩ । ଛିଞ୍ଚିବା—3 To sprinkle.

ଆନନ୍ଦ ହୋଇ ରଥରୁ ଢେଉଁ ଶିରେ ନଉଡ଼େ ବାଳ ।
ଭକ୍ତଚରଣ. ମଥୁରା ମଙ୍ଗଳ ।

ନଉତ(ଉ)ର—ଦେ. ବିଣ. ( ସଂ. ନିରୁତ୍ତର )—
Niuta(tta)ra ନିରୁତ୍ତର ( ଦେଖ )
ନିରୁତ୍ତର Niruttara ( See )

ନଉତା—ପ୍ରାଦେ. (ସିଂହଭୂମ) ବି.(ଭୁଲ. ହୁ. ଏହି ଅର୍ଥରେ ନେଆତା)—
Niutā ଜାତିଅଣ ଭୋଜି—Caste-dinner

ନଉ(ଊ)ନ—ଦେ. (ପଦ୍ୟ) ବିଣ. (ସଂ. ନ୍ୟୂନ)—
Niu(ū)na ୧। ନ୍ୟୂନ, ଊଣା—1 Lessened; defective.
ଉତାଜର କରନ୍ତୁ କରଇ ନଉନ। କୃଷ୍ଣସିଂହ ମହାଭାରତ ସଭା।
୨। ଅଳ୍ପ—2 Little
୩। କମି—3. Less; wanting
୪। ବିନୀତ—4. Humble.
୫। ହେୟ; ତୁଚ୍ଛ—5 Insignificant.
୬। ଅଳ୍ପତମ—6. Least
ଦେ. ବିଣ—ତେଜୋହୀନତା—Lustrelessness.
ବାଡବାନଳ ନଉନ ଭଜେ ପାଧିବାରେ। ଭକ୍ତ, ଦୈତେଶ୍ୱର ବଳାସ।

ନଉ(ଊ)ନ ହେବା—ଦେ. କ୍ରି. (ସଂ. ନ୍ୟୂନ)—ବିନୀତଭାବ ପ୍ରକାଶ
Niu(ū)na hebā କରିବା—To humiliate one's self; to show humility.

ନଉପରୋଧ—ଦେ. ବି. (ସଂ. ନିର୍ ଓ ଉପରୋଧ)—ଉପରୋଧ ବା ଚକ୍ଷୁ-
Niuparodha ଲଜ୍ଜାର ଅଭାବ—Want of respect to
(ନଉପ୍ରୋଧ—ଅନ୍ୟରୂପ) other people's feeling.
ବିଣ.—ନଉପରୋଧିଆ (ଦେଖ)
Niuparodhiā (See)

ନଉପରୋଧିଆ—ଦେ. ବିଣ. ପୁଂ. ଓ ସ୍ତ୍ରୀ (ସଂ ନିର୍ ଓ ଉପରୋଧ)—
Niuparodhiā ୧। ଯେଉଁ ବ୍ୟକ୍ତିର ଚକ୍ଷୁଲଜ୍ଜା ବା ମୋହବତ
ନଉପରୋଧି, ନଉପ୍ରୋଧ(ଧି), ନଉପ୍ରୋଧିଆ, ନଉପ୍ରୋହୁଆ — ଅନ୍ୟରୂପ
ମୁଲାହଜା ନାହିଁ; ଯେଉଁ ଲୋକ ପରର ମନ ରଖି କରି କାର୍ଯ୍ୟ କରେ ନାହିଁ; ଅଣଉପରୋଧିଆ—
1. Not respecting the feeling of others, unscrupulous.
୨। ନିଷ୍କରୁଣ—2. Unkind.
୩। ନିର୍ମମ—2. Unsympathetic.

ନଉପରୋଧିବା—ଦେ. କ୍ରି—ନପ୍ରୋଧିବା (ଦେଖ)
Niuparodhibā Niprodhibā (See)
(ନଉପରୋହିବା, ନଉପ୍ରୋହିବା, ନଉପ୍ରୋଧିବା—ଅନ୍ୟରୂପ)

ନଉମୋନିଆ(ଆଁ)—ବୈଦେ. ବି. (ଇଂ. ନ୍ୟୁମୋନିଆ)—ଫୁସ୍ଫୁସ୍ର
Niumoniā ā̃) ପ୍ରଦାହ ଜନିତ ସାନ୍ନିପାତିକ ବିକାରବିଶେଷ;
निउमोनिआ ବାତକଫ ଜନିତ ଫୁସ୍ଫୁସ୍ର ଫୁଲା—
निमोनिया Pneumonia.
(ନମୋନିଆ—ଅନ୍ୟରୂପ) [ଦ୍ର—ହୃଦୟର ଦୁଇ ପାଖର ଫୁସ୍ଫୁସ ବା ଫୁସ୍ଫୁସ ଦୁଇ ଫାଳ ଯାକର ପ୍ରଦାହ ଓ ଫୁଲା ହେଲେ ତାକୁ ଡବଲ୍ ନଉମୋନିଆ କହନ୍ତି।]

ନିଃ—ସଂ. (ଉପସର୍ଗ)—ନିର୍ ଉପସର୍ଗ; (ସଂସ୍କୃତ ବ୍ୟାକରଣ ସନ୍ଧିର ନିୟମ
Niḥ ଅନୁସାରେ 'ର୍' ଠାରେ ବିସର୍ଗ ହୋଇ 'ନିଃ' ହୁଏ)—A change of the negative prefix 'nir' when added to words or roots beginning with 'śa', sa and ksha.
[ଦ୍ର—ସଂସ୍କୃତ ବ୍ୟାକରଣର ନିୟମ ଅନୁସାରେ ନିର୍ ଉପସର୍ଗ ଶ, ସ ଓ ଷ ଆଦ୍ୟରେ ଥିବା ପଦ ବା ଧାତୁ ପୂର୍ବେ ଯୁକ୍ତ ହେଲେ ସ୍ଥାନରେ ନିଃ ହୁଏ ପଥା; ନିଃଶବ୍ଦ, ନିଃସାର; ନିଃକ୍ଷତ୍ର।]

ନିଃକ୍ଷତ୍ର—ସଂ. ବିଣ. (ବହୁବ୍ରୀହି; ନିର୍=ନାହିଁ+କ୍ଷତ୍ର=କ୍ଷତ୍ରିୟ ଯହିଁରେ)
Niḥkshatra ନିଃକ୍ଷତ୍ରିୟ (ଦେଖ)—
(ନିଃକ୍ଷତ୍ରା—ସ୍ତ୍ରୀ) Niḥkshatriya (See)

ନିଃକ୍ଷତ୍ରିୟ—ସଂ. ବିଣ—(ନିର୍=ନାହିଁ+କ୍ଷତ୍ରିୟ=ବୀର; ଯହିଁରେ)
Niḥkshatriya କ୍ଷତ୍ରିୟ ଶୂନ୍ୟ; ବୀରଶୂନ୍ୟ (ପୃଥିବୀ)—
(ନିଃକ୍ଷତ୍ରିୟା—ସ୍ତ୍ରୀ) Devoid of all warriors; shorn of all Kshatriyas; (the earth) with all its warriors extirpated.
(ଯଥା—ପରଶୁରାମ ଭାରତବର୍ଷକୁ ୨ ବାର ନିଃକ୍ଷତ୍ରିୟ କରିଥିଲେ।)

ନିଃକ୍ଷିପ୍ତ—ସଂ ବି. (ନିର୍+କ୍ଷିପ୍ ଧାତୁ+କର୍ମ. ତ)
Niḥkshipta ନିକ୍ଷିପ୍ତ (ଦେଖ)—(ଆପ୍ଟେ)—
Nikshipta (See) (Apte).

ନିଃକ୍ଷେପ—ସଂ. ବି. (ନିର୍+କ୍ଷିପ୍ ଧାତୁ+ଭାବ. ଅ)—ନିକ୍ଷେପ (ଦେଖ)
Niḥkshepa Nikshepa (See) (Apte).

ନିଃକ୍ଷୋଭ—ସଂ. ବି.—(ନିର୍+କ୍ଷୋଭ)-କ୍ଷୋଭରହିତ ଅବସ୍ଥା—
Niḥkshobha Serenity; the state of being free from agitation; quietness; tranquility.
(ନିଃକ୍ଷୋଭା—ସ୍ତ୍ରୀ) ବିଣ. ପୁଂ.—୧। କ୍ଷୋଭହୀନ—
1. Undisturbed.
୨। ଅକ୍ଷୁବ୍ଧ, ପ୍ରଶାନ୍ତ—2 Serene; tranquil.

ନିଃଶଙ୍କ—ସଂ. ବିଣ. ପୁଂ-(ବହୁବ୍ରୀହି; ନିର୍+ଶଙ୍କା)—୧। ନିର୍ଭୟ—
Niḥśaṅka 1. Fearless; doubtless.
(ନିଃଶଙ୍କିତ—ଅନ୍ୟରୂପ) ୨। ବେଧଡ଼କ; ନିଶ୍ଚିନ୍ତ—
2. Free from anxiety; careless.
(ନିଃଶଙ୍କା—ସ୍ତ୍ରୀ)୩। ଆଶଙ୍କାରହିତ—
3. Free from apprehension.
୪। ନିରାପଦ—4. Safe.
୫। ଦ୍ୱିଧାହୀନ—
5. Free from hesitation, unhesitating.
ସଂ. ବି. (ସଙ୍ଗୀତ)—ଏକ ପ୍ରକାର ନୃତ୍ୟ ବା ତାଳ—
(music) A kind of music or dance (M.W.)
ସଂ. କ୍ରି. ବିଣ. (ସଂ. ନିଃଶଙ୍କମ୍)—ନିର୍ଭୟରୂପେ; ଆଶଙ୍କାରହିତ ହୋଇ, ନିଶ୍ଚିନ୍ତ ଭାବରେ—Fearlessly; unhesitatingly; securely.

ନିଃଶଙ୍କ ପଲ (ଲ୍ଲି)—ଦେ. ବି.—ନିର୍ଭୀକ ବ୍ୟକ୍ତି—
Niḥśaṅkapali(lli) Indomitable or fearless person.
निडर

ନିଃଶଙ୍କସୁପ୍ତ—ସଂ. ବିଣ. ପୁଂ (ନିଃଶଙ୍କ+ସୁପ୍ତ; ସୁପ୍ ସୁପ୍ ସମାସ)—ନିଶ୍ଚିନ୍ତ
Niḥśaṅka supta ରୂପେ ଶୋଇଥିବା—
(ନିଃଶଙ୍କସୁପ୍ତା—ସ୍ତ୍ରୀ) Sleeping calmly.

ନିଃଶଙ୍କା—ଦେ. ବିଣ. (ସଂ. ନିଃଶଙ୍କ)—ନିର୍ଭୟ—
Niḥśaṅkā Fearless.

ନିଃଶଙ୍କାରେ—ଦେ. କ୍ରି. ବିଂ. (ରେ ଯୋଗେ)—ଭୟଶୂନ୍ୟ ହୋଇ—
Nihśaṅkare Fearlessly.

ଶଙ୍କର ବଡ ପୂଜା କଲେ ନିଃଶଙ୍କାରେ । କୃଷ୍ଣସିଂହ ମହାଭାରତ. ବନ ।

ସଂ. ବି.—୧ । ଭୟଶୂନ୍ୟତା—1. Fearlessness.

୨ । ଦ୍ୱିଧା ଶୂନ୍ୟତା—2 Absence of hesitancy.

ନିଃଶଙ୍କେ—ଦେ. କ୍ରି. ବିଣ—ଶଙ୍କାରହିତ ହୋଇ; ନିର୍ଭୟ ହୋଇ;
Nihśaṅke ଭୟଶୂନ୍ୟ ହୋଇ—Fearlessly.

ଧର୍ମଅଛନ୍ତି ଗୃହେ ଏକ ହେ ନିଃଶଙ୍କେ । କୃଷ୍ଣସିଂହ. ମହାଭାରତ ସଭା ।

ନିଃଶତ୍ରୁ—ସଂ. ବିଣ. ପୁଂ. ଓ ସ୍ତ୍ରୀ (ବହୁବ୍ରୀହି; ନିର୍‌+ଶତ୍ରୁ)—ଶତ୍ରୁରହିତ;
Nihśatru ଯାହାର ବା ଯେଉଁଠାରେ କେହି ଶତ୍ରୁ ନାହିଁ—
Free from enmies.

ନିଃଶବ୍ଦ—ସଂ. ବିଣ ( ବହୁବ୍ରୀହି; ନିଃ+ଶବ୍ଦ )—
Nihśabda ୧ । ନୀରବ—1 Silent, still.

୨ । ଯେଉଁ ସ୍ଥାନରେ କୌଣସି ଶବ୍ଦ ନ ଥାଏ—
2. Still ( place )

୩ । ଯେଉଁ ମନୁଷ୍ୟ ବା ଜୀବ କୌଣସି ଶବ୍ଦ ନ କରେ—
3 Quiet (person); silent.

ସଂ କ୍ରି. ବିଣ. ( ନିଃଶବ୍ଦ )—ନୀରବରେ—
Silently; noiselessly

ନିଃଶବ୍ଦ ପଦବିକ୍ଷେପ—ସଂ. ବି. ( ବହୁବ୍ରୀହି; ୬ଷ୍ଠୀ ତତ୍ ଓ କର୍ମଧା
Nihśabda padabikshepa ନିର୍‌+ଶବ୍ଦ+ପଦ+ବିକ୍ଷେପ)—
( ନିଃଶବ୍ଦ ପଦ ସଞ୍ଚାର—ଅନ୍ୟରୂପ ) ଚାଲିଲାବେଳେ ପଦ ଶବ୍ଦ
ଆଦୌ ନ ହେବା ପାଇଁ ଧୀର ଧୀର ପାଦ ପକାଇବା—
Walking with noiseless steps

ସଂ. ବିଣ. ପୁଂ—ଯେଉଁ ଲୋକର ଚାଲିଲାବେଳେ ପଦ ଶବ୍ଦ ଶୁଣା
(ନିଃଶବ୍ଦପଦବିକ୍ଷେପା—ସ୍ତ୍ରୀ) ଯାଏ ନାହିଁ—Walking with
noiseless footsteps

ନିଃଶମ—ସଂ. ବି. ( ନିର୍‌+ଶମ )—ଉଦ୍‌ବେଗ, ମାନସିକ ଅସ୍ଥିରତା—
Nihśama Uneasiness; anxiety (M. W.)

ନିଃଶରଣ—ସଂ. ବିଣ. ପୁଂ. ( ବହୁବ୍ରୀହି;ନିର୍‌+ଶରଣ )—ଆଶ୍ରୟହୀନ,
Nihśaraṇa ନିରାଶ୍ରୟ—Unprotected; defenceless
( ନିଃଶରଣା—ସ୍ତ୍ରୀ ) ( M W. )

ନିଃଶର୍କର—ସଂ. ବିଣ. ( ନିର୍‌+ଶର୍କରା )—ଯେଉଁ ଗାଧୁଆ ଘାଟରେ
Nihśarkara ଗୋଡି ନାହିଁ—( a bathing place ) Free
from pebbles (M. W. )

ନିଃଶଲାକ—ସଂ ବିଣ. ( ବହୁବ୍ରୀହି; ନିଃ+ଶଲାକା=କାଠି)—
Nihśalāka ୧ । ( ଜୀବବିଜ୍ଞାନ ପରିଭାଷା )—ଯେଉଁ ପକ୍ଷୀ ବା
ମାଛମାନଙ୍କର ଡେଣାରେ ଅସ୍ଥି ଶଲାକା ମାତ୍ର ନ ଥାଏ,
ଅସ୍ଥିରହିତ—
1. ( Physiology ) Anacanthous ( birds
and fishes ); having spineless fins or
wings.

୨ । (ନିଃ+ଶଲାକା=ସାରିକା, ମଇନା ପକ୍ଷୀ; ଯେଉଁ
ସ୍ଥାନକୁ ପକ୍ଷୀମାନେ ସୁଦ୍ଧା ଉଡି ଯାଇ ପାରନ୍ତି ନାହିଁ )—
ନିର୍ଜନ; ବିଜନ—2. Solitary; lonely.
[ ଦ୍ର—ମନୁସଂହିତାରେ ଉପଦେଶ ଅଛି ଯେ ନିଃଶଲାକ
ସ୍ଥାନରେ ମନ୍ତ୍ରଣା କରିବ ]

୩ । ଘାସ ଆଦି ଶଲାକା ଶୂନ୍ୟ—3 ( a place ) Free
faom grass etc (M. W ).

୪ । ପ୍ରତିବନ୍ଧକରହିତ—4. Without impediment
or obstacle.

ନିଃଶଲ୍କ—ସଂ. ବିଣ—(ନିର୍‌+ଶଲ୍କ )—ଅକାତିଆ; ଯେଉଁ ମାଛର କାତି
Nihśalka ନାହିଁ—
( ନିଶଲ୍କକ—ଅନ୍ୟରୂପ ) Scaleless (fish).

ନିଃଶଲ୍ୟ—ସଂ. ବିଣ. (ବହୁବ୍ରୀହି, ନିର୍‌+ଶଲ୍ୟ)—୧ । ଶଲ୍ୟରହିତ—
Nihśalya ( ହ୍ର. ଶ )—1 Dartless; splinterless.

୨ । ନିଷ୍କଣ୍ଟକ; ପ୍ରତିବନ୍ଧକରହିତ—( ହ୍ର. ଶ )—
2. Free from obstacles or thorns.

୩ । ଯନ୍ତ୍ରଣା ଶୂନ୍ୟ—3. Free from pain (M. W)

ସଂ. କ୍ରି. ବିଣ—ବିନା ଯନ୍ତ୍ରଣାରେ—Painlessly (M. W.)

ନିଃଶସ୍ତ୍ର—ସଂ. ବିଣ. ପୁଂ. ( ବହୁବ୍ରୀହି; ନିଃ+ଶସ୍ତ୍ର )—ଶସ୍ତ୍ରହୀନ—
Nihśastra Unarmed; not armed with any weapon
( ନିଃଶସ୍ତ୍ରା—ସ୍ତ୍ରୀ ) weaponless.

ନିଃଶସ୍ତ୍ର ପ୍ରତିରୋଧ—ସଂ. ବି. ( ଆଧୁନିକ ପ୍ରୟୋଗ )—
Nihśastra pratirodha ଶସ୍ତ୍ରାଦିର ବିନା ପ୍ରୟୋଗରେ ଶତ୍ରୁକୁ
ବା ରାଜାଦେଶକୁ ବାଧା ପ୍ରଦାନ କରିବା—Unarmed
passive resistance; offering of resistance
to authority or to the enemy without any arms.

ନିଃଶାଖ—ସଂ. ବି. ( ନିଃ+ଶାଖା; ବହୁବ୍ରୀହି )—ଶାଖାହୀନ—
Nihśākha ( ନିଃଶାଖା—ସ୍ତ୍ରୀ ) Branchless.

ନିଃଶୂକ—ସଂ. ବିଣ.—୧ । ଶୂକରହିତ—1. Having no awn or
Nihśuka beard (said of corn).

୨ । ନିର୍ଦ୍ଦୟ; ନିଷ୍ଠୁର—2. Cruel; merciless (M W)

ସଂ. ବି.—ଧାନ୍ୟବିଶେଷ (ହ୍ର ଶ )—A species of paddy.

ନିଃଶୂନ୍ୟ—ସଂ. ବିଣ ( ନିର୍‌=ସମ୍ପୂର୍ଣ୍ଣରୂପେ+ଶୂନ୍ୟ )—ସମ୍ପୂର୍ଣ୍ଣରୂପେ
Nihśūnya ଶୂନ୍ୟ; ସମ୍ପୂର୍ଣ୍ଣରୂପେ ଖାଲି—Quite empty.

ନିଃଶୃଙ୍ଗ—ସଂ. ବିଣ. ପୁଂ—ଯାହାର ଶୃଙ୍ଗ ନାହିଁ; ଶୃଙ୍ଗହୀନ—
Nihśṛuṅga (ନିଃଶୃଙ୍ଗା—ସ୍ତ୍ରୀ) Hornless

ନିଃଶେଷ—ସଂ. ବିଣ ( ବହୁବ୍ରୀହି, ନିର୍‌+ଶେଷ )—
Nihśesha ୧ । ଶେଷରହିତ, ଯହିଁର କୌଣସି ଅଂଶ ବାକି
(ନିଃଶେଷଣ—ଅନ୍ୟରୂପ) ରହି ଯାଇନାହିଁ—
(ନିଃଶେଷତା—ବି) 1. Without remainder

୨ । ସମସ୍ତ—2. Entire; whole.

୩ । ସମ୍ପୂର୍ଣ୍ଣ—3. Complete.

୪ । ସମ୍ପୂର୍ଣ୍ଣରୂପେ କ୍ଷୟିତ; ବିନଷ୍ଟ—
4. Completely destroyed.

କୋହଲେ ତୁ ପରକ୍ଷଣେ, ନିର୍ଦ୍ଦୟ ମଦନବାଣ ନିଃଶେଷ କଲୁଟି ଦେହଲତା ।
କବିସୂର୍ଯ୍ୟ ବଳଦେବରଥ, ଛ ଗୀତ

୫ । ସମାପ୍ତ—5. Finished.

୬ । ସମ୍ପୂର୍ଣ୍ଣରୂପେ ବ୍ୟୟିତ—6. Exhausted

ଦେ. ତ (ସଂ. ନିଃଶେଷତା) —୧ । ସମାପ୍ତି—
1. Completion.

୨ । ସର୍ବନାଶ—2. Complete destruction; ruin.

୩ । ସରିଯିବା ଅବସ୍ଥା—3. Exhaustion.

ସଂ. କ୍ରି. ବଣ (ନିଃଶେଷଂ)—୧ । ସମ୍ପୂର୍ଣ୍ଣରୂପେ—
1. Completely; totally.

୨ । କିଛି ବାକି ନ ରଖି—
2. Without leaving any remainder.

**ନିଃଶେଷକୃତ**—ସଂ. ବଣ. ପୁଂ—୧ । (ନିଃଶେଷ+କୃ ଧାତୁ+କର୍ତ୍ତୃବାଚ୍ୟ ତ)—ଯେ କିଛି ବାକି ନ ରଖି ସବୁଯାକ ଖାଦ୍ୟ ଖାଇଦିଏ; ଯେ ଖାଇଲା ପରେ କିଛିମାତ୍ର ବସ୍ତୁ ଛାଡ଼ି ନ ଯାଏ—
Nihseshakruta (ନିଃଶେଷକୃତା—ସ୍ତ୍ରୀ)
Eating one's meals without any remainder (M. W.)

୨ । (ନିଃଶେଷ+କୃ ଧାତୁ+କର୍ମବାଚ୍ୟ ତ)—ଯେଉଁ ବସ୍ତୁକୁ ବା ପାତ୍ରକୁ ବା ଭଣ୍ଡାରକୁ ନିଃଶେଷିତ କରି ଯାଇଅଛି—
2. Completely emptied of its contents.

**ନିଃଶେଷତଃ**—ସଂ. କ୍ରି. ବଣ (ନିଃଶେଷ+ତଃ)—୧ । ସମ୍ପୂର୍ଣ୍ଣରୂପେ—
Nihseshatah
1. Completely; wholly; entirely (M. W.)

୨ । କୌଣସି ଅଂଶ ବାକି ନ ରଖି—
2. Without leaving any remainder.

**ନିଃଶେଷମୁଷିତ**—ସଂ. ବ—ଯାହାଙ୍କୁ ବା ଯାହାଠାରୁ ସମସ୍ତ ବସ୍ତୁ ଚୋରି ହୋଇ ଯାଇଅଛି—Totally robbed out (M. W.)
Nihseshamushita

**ନିଃଶେଷିତ**—ସଂ. ବଣ (ନିଃ+ଶେଷ+ଇତ) —୧ । ସମାପ୍ତ—
Nihseshita
1. Completed; finished.

୨ । ଧ୍ୱସ୍ତ—2. Utterly destroyed.

୩ । ଯାହା ସରି ଯାଇଅଛି; ସମ୍ପୂର୍ଣ୍ଣରୂପେ ବ୍ୟୟିତ—
3. Exhausted, totally consumed; drained to the dregs, emptied; spent up.

୪ । ଯାହାର ବା ଯାହାର କିଛି ମାତ୍ର ବଳ ପଡ଼ି ନାହିଁ—
4. Having nothing left.

**ନିଃଶୋକ**—ସଂ. ବଣ. ପୁଂ. (ବହୁବ୍ରୀହି; ନିର୍+ଶୋକ)—ଶୋକଶୂନ୍ୟ—
Nihsoka Free from sorrow or care (M. W.).
(ନିଃଶୋକା—ସ୍ତ୍ରୀ) ( ନିଃଶୋକତା—ବ )

**ନିଃଶୋଧ୍ୟ**—ସଂ. ବଣ. (ନିର୍=ସମ୍ପୂର୍ଣ୍ଣରୂପେ+ଶୋଧ=ନିର୍ମଳ)—
Nihsodhya ୧ । ଧୁଆ ଯାଇଥିବା—1. Washed.

୨ । ନିର୍ମଳ—2. Pure; clean.

୩ । ମାର୍ଜିତ—3. Refined; cleansed; purified.

୪ । (ନିର୍—ନିଷେଧାର୍ଥକ+ଶୋଧ୍ୟ)—ଯାହା ଶୋଧିତ ହେବାର ଆବଶ୍ୟକ ନାହିଁ—4 Not to be cleansed or purified.

**ନିଃଶ୍ୱସନ**—ସଂ. ବ. (ନିଃ+ଶ୍ୱସ ଧାତୁ+ଭାବ. ଅନ)—
Nihswasana ନିଃଶ୍ୱାସ ମାରିବା—Breathing; inhaling and exhaling

**ନିଃଶ୍ୱାସ**—ସଂ. ବ. ୧ । ( ନିର୍=ବାହାରକୁ+ଶ୍ୱାସ )—ପ୍ରାଣବାୟୁ; ନାସାଗତ ବାୟୁ; ନାକଦ୍ୱାରା ବାହାରକୁ ଛଡ଼ାଯିବା ବାୟୁ—
Nihswāsa (ନିଶ୍ୱାସ—ଅନ୍ୟରୂପ)
1. Respiration; breathing of life: exhalation, air expelled by the nostrils.

୨ । (ନିର୍=ଭିତରକୁ+ଶ୍ୱାସ)—ନାକଦ୍ୱାରା ଦେହ ମଧ୍ୟକୁ ନିଆଯିବା ବାୟୁ—2. Inhalation; air inhaled through the nostrils.

[ ଦ୍ର—ନାକ ବାଟେ ଗୃହୀତ ଶ୍ୱାସ ଓ ନାକବାଟେ ତ୍ୟକ୍ତ ଶ୍ୱାସ ଉଭୟକୁ ନିଃଶ୍ୱାସ ବୋଲାଯାଏ, କିନ୍ତୁ ପ୍ରଶ୍ୱାସର ଅର୍ଥ କେବଳ ବାହାରକୁ ଛାଡ଼ିବା ଶ୍ୱାସ । ]

ଦେ. ବ—ଦୀର୍ଘନିଃଶ୍ୱାସ—Sigh.

**ନିଃଶ୍ୱାସ ଛାଡ଼ିବା**—ଦେ. କ୍ରି—ନିଃଶ୍ୱାସ ମାରିବା (ଦେଖ)
Nihswāsa chhārdibā Nihswāsa māribā (See)

**ନିଃଶ୍ୱାସ ନେବା**—ଦେ. କ୍ରି—ପେଟ ଭିତରକୁ ନାକବାଟେ ଦମ୍ ନେବା—
Nihswāsa nebā To inhale.

**ନିଃଶ୍ୱାସ ପ୍ରଶ୍ୱାସ**—ସଂ. ବ. (ଦ୍ୱନ୍ଦ୍ୱ; ନିଃଶ୍ୱାସ+ପ୍ରଶ୍ୱାସ)—ପ୍ରାଣବାୟୁ ଗ୍ରହଣ ଓ ତ୍ୟାଗ; ପୂରକ ଓ ରେଚକ—
Nihswāsa praswāsa Respiration; exhaling and inhaling.

**ନିଃଶ୍ୱାସ ମାରିବା**—ଦେ. କ୍ରି—ଶରୀର ଭିତର ପବନକୁ ନାକବାଟେ ପଦାକୁ ଛାଡ଼ିବା—To breathe; to respire; to exhale.
Nihswāsa māribā

**ନିଃଶ୍ମଶ୍ରୁ**—ସଂ. ବଣ. (ବହୁବ୍ରୀହି, ନିର୍+ଶ୍ମଶ୍ରୁ)—ଯାହାର ମୁଛ ଦାଢ଼ି ନାହିଁ—
Nihsmasru Beardless

**ନିଃଶ୍ରମ**—ସଂ. ବ—ନିଶ୍ରମ (ଦେଖ)
Nihsrama Nisrama (See)

ସଂ. କ୍ରି. ବଣ—ବିନା ପରିଶ୍ରମରେ—without labour.

**ନିଃଶ୍ରମେ**—ଦେ. କ୍ରି. ବଣ (ସଂ ନିଃଶ୍ରମ)—ଅକ୍ଳେଶରେ—
Nihsrame Easily.

ଭଲ ଭାବରେ ଭୁଝେଇ ଅର୍ଜୁନର
ମାଇଲେ ଯେ ନିଃଶ୍ରମେ ଜନ୍ୟୁଦ୍ରଥ ବୀର । କୃଷ୍ଣସିଂହ. ମହାଭାରତ ଦ୍ରୋଣ.

**ନିଃଶ୍ରୟଣୀ**—ସଂ. ବ. (ନିର୍=ନିଶ୍ଚୟ+ଶ୍ରି ଧାତୁ=ଗମନ କରିବା+କରଣେ ଅନ+ସ୍ତ୍ରୀ ଈ)—୧ । ଅଧିରୋହିଣୀ; ସିଡ଼ି; ନିଶୁଣୀ—1. Flight of steps, stair; ladder.
Nihsrayani
ନିଃଶ୍ରୟିଣୀ } ଅନ୍ୟରୂପ
ନିଃଶ୍ରେୟଣୀ }

୨ । ଖଜୁରୀ ଗଛ—2 Date palm tree.

୩ । ଏକପ୍ରକାର ଘାସ—
3. A kind of grass (M. W).

**ନିଃଶ୍ରୀ**—ସଂ ବଣ. ପୁଂ ଓ ସ୍ତ୍ରୀ. (ବହୁବ୍ରୀହି; ନିର୍+ଶ୍ରୀ)—୧ । ଶ୍ରୀହୀନ—
Nihsri 1. Ugly.
(ନିଃଶ୍ରୀକ—ଅନ୍ୟରୂପ ପୁଂ) ୨ । ଯାହାକୁ ଶ୍ରୀହୀନ କରାଯାଇ ଅଛି—
(ନିଃଶ୍ରୀକା—ଅନ୍ୟରୂପ ସ୍ତ୍ରୀ) 2 Deprived of glory or lustre (M. W.).
(ନିଃଶ୍ରୀତା—ବ)

୩ । ଅସୁଖୀ; ଦୁଃଖୀ—3. Unhappy (Apte).
୪ । ହତଭାଗ୍ୟ—4. Unfortunate (M W.).
୫ । ଗୌରବହୀନ—5. Inglorious (M W.).

ନିଃଶ୍ରେଣୀ - ସଂ. ବି. (ନିର୍=ନିଷ୍ପ୍ରୁ+ଶ୍ରେଣୀ=ପଂକ୍ତି)—
Nihśreṇi ନିଃଶ୍ରୟଣୀ (ଦେଖ)
(ନିଶ୍ରେଣୀ; ନିଃଶ୍ରେଣିକା—ଅନ୍ୟରୂପ) Nihśrayaṇi (See)

ନିଃଶ୍ରେୟସ—ସଂ. ବି. (ନିର୍=ନିଶ୍ଚିତ, ଭୂଶ+ଶ୍ରେୟସ୍=ମଙ୍ଗଳ,
Nihśreyasa ଯାହା ଠାରୁ ନିଶ୍ଚିତ ମଙ୍ଗଳ)—୧ । ଜୀବର ପରମ ସୁଖ—1 Final beatitude; summum bonum.
୨ । ମୁକ୍ତି; ମୋକ୍ଷ—2 Salvation; liberation, emancipation
୩ । କୁଶଳ, ମଙ୍ଗଳ; ଶୁଭ, ସୁଖ—
3. Happiness; felicity.
୪ । ଜ୍ଞାନ; ବିଦ୍ୟା—4 Knowledge; learning.
୫ । ଭକ୍ତି—5. Devotion, reverence.
୬ । ବିଶ୍ୱାସ; ପ୍ରତ୍ୟୟ—6 Belief, faith.
୭ । ଶିବ; ମହାଦେବ—7 God Śiba.
୮ । ଜନ୍ମାନ୍ତରରୁ ମୁକ୍ତି—8. Emancipation of the soul from another birth after this life; freedom from rebirth.
ସଂ. ବିଣ. (ବହୁବ୍ରୀହି; ନିର୍+ଶ୍ରେୟସ୍; ଯାହାଠାରୁ ସୁନ୍ଦରତର
(ନିଃଶ୍ରେୟସୀ—ସ୍ତ୍ରୀ) ବା ଉତ୍କୃଷ୍ଟ ଅନ୍ୟ କିଛି ନାହିଁ)—ସର୍ବୋତ୍କୃଷ୍ଟ, ସର୍ବୋତ୍ତମ—Best; most excellent (Apte).

ନିଃଷମ—ସଂ. ଅ. (ବହୁବ୍ରୀହି; ନିର୍=ନାହିଁ+ସମ, ଷତ୍ୱ ବିଧାନ)—
Nihshama ୧ । ଦୁଃସମ, ନିନ୍ଦା—1. Blame.
୨ । ଶୋକ—2. Grief, sorrow.

ନିଃସଂକକ୍ଷ—ସଂ. ବିଣ. (ନିର୍+ସଂକକ୍ଷ)—ଅବ୍ୟାକୁଳ—
Nihsamkaksha Not perplexed or confused (M.W.)

ନିଃସଂକଳ୍ପ—ସଂ. ବିଣ. (ନିର୍+ସଂକଳ୍ପ)—ସଂକଳ୍ପରହିତ—
Nihsamkalpa Having no determination
(ନିଃସଂକଳ୍ପା—ସ୍ତ୍ରୀ) (ନିଃସଙ୍କଳ୍ପ—ଅନ୍ୟରୂପ) or will

ନିଃସଂକ୍ଷୋଭ—ସଂ. ବିଣ. (ନିର୍+ସଂକ୍ଷୋଭ)—ଅବିଚଳିତ—
Nihsamkshobha Unshaken (M. W.)

ନିଃସଂଖ୍ୟ—ସଂ. ବିଣ. (ନିର୍+ସଂଖ୍ୟା)—ଅସଂଖ୍ୟ—
Nihsamkhya Countless, innumerable.

ନିଃସଂଜ୍ଞ—ସଂ. ବି. (ବହୁବ୍ରୀହି, ନିର୍+ନାହିଁ+ସଂଜ୍ଞା)—
Nihsamjña ୧ । ଚେତନାରହିତ—
(ନିଃସଂଜ୍ଞା—ସ୍ତ୍ରୀ) 1. Unconscious, insensible.
୨ । ଅଚେତନ—2 Senseless.

ନିଃସଂଶୟ—ସଂ. ବିଣ. (ବହୁବ୍ରୀହି; ନିର୍=ନାହିଁ+ସଂଶୟ)—
Nihsamśaya ନିଃସନ୍ଦେହ (ଦେଖ)
Nihsandeha (See)

ନିଃସଂସ୍କାର—ସଂ. ବିଣ. ପୁଂ (ବହୁବ୍ରୀହି, ନିର୍+ସଂସ୍କାର)—
Nihsamskāra ୧ । ସଂସ୍କାରରହିତ—1 Unpurified; uninitiated.

୨ । ଅଶିକ୍ଷିତ—2. Uneducated (M. W.)
୩ । ଅଭଦ୍ର—3. Ill mannered (M. W).

ନିଃସଖ—ସଂ. ବିଣ. ପୁଂ. (ବହୁବ୍ରୀହି; ନିର୍+ସଖା=ବନ୍ଧୁ)—
Nihsakha ୧ । ସଖାହୀନ, ବନ୍ଧୁହୀନ—1. Friendless.
(ନିଃସଖା—ସ୍ତ୍ରୀ) ୨ । ନିରାଶ୍ରୟ—2 Helpless

ନିଃସଙ୍ଗ - ସଂ. ବି (ନିର୍+ସଙ୍ଗ)—
Nihsamga ୧ । ସଙ୍ଗ ବା ଅନୁରାଗରାହିତ୍ୟ—
(ନିଃସଙ୍ଗ—ଅନ୍ୟରୂପ) 1. Absence of attachment (M.W.)
୨ । ଏକାଗ୍ରତା—2. Entire concentration (M. W.)
ସଂ ବିଣ (ବହୁବ୍ରୀହି; ନିର୍=ନାହିଁ+ସଙ୍ଗ)—
୧ । ସଙ୍ଗରହିତ—1. Without a companion
୨ । ସମ୍ପର୍କଶୂନ୍ୟ; ନିର୍ଲିପ୍ତ—
2 Unattached; unconnected.
୩ । ନିଃସ୍ୱାର୍ଥ—3. Disinterested.
୪ । ବିଷୟାନୁରାଗରହିତ; ଅନୁରାଗଶୂନ୍ୟ—
4. Indifferent to worldly matters.
୫ । ଏକାକୀ—5. Solitary; alone; separate, single.
୬ । ଅପ୍ରତିବନ୍ଧ; ବାଧାରହିତ—6 Unobstructed.
୭ । ସ୍ୱାଧୀନ ଭାବେ ବିଚରଣକାରୀ—
7 Moving freely

ନିଃସଙ୍ଗତା—ସଂ. ବି. (ନିଃସଙ୍ଗ+ଭାବ. ତା)—
Nihsamgatā ୧ । ବିଷୟବୈରାଗ୍ୟ—1. Indifference to
[ନିଃସଙ୍ଗତ୍ୱ, ନିଃସଙ୍ଗତା(ହ)—ଅନ୍ୟରୂପ] worldly concerns
୨ । ସଙ୍ଗରହିତ ଅବସ୍ଥା—2. Singleness.

ନିଃସଚିବ—ସଂ. ବିଣ ପୁଂ. (ନିର୍+ସଚିବ)—
Nihsachiba ମନ୍ତ୍ରୀହୀନ—Without a minister or councillor.

ନିଃସଞ୍ଚାର—ସଂ. ବିଣ. ପୁଂ (ନିର୍+ସଞ୍ଚାର)—୧ । ଗତିହୀନ—
Nihsañchāra 1. Not moving about.
(ନିଃସଞ୍ଚାରା—ସ୍ତ୍ରୀ) ୨ । ଯେ ଗୃହ ଛାଡ଼ି ଅନ୍ୟତ୍ର ଯାଏ ନାହିଁ—
2. Not leaving one's home.
୩ । ଭ୍ରମଣରହିତ; ପାଦଚାରହୀନ—
3. Not taking a walk (M W.)

ନିଃସତ୍ତ୍ୱ(ତ୍ତ୍ୱ)—ସଂ. ବିଣ. (ବହୁବ୍ରୀହି; ନିର୍+ସତ୍ତ୍ୱ)—
Nihsatwa(ttwa) ୧ । ସାରହୀନ—1. Unsubstantial.
୨ । ସାହସହୀନ—2. Wanting in courage.
୩ । ଦୁର୍ବଳ—3. Weak
୪ । ବଳହୀନ; ଅସମର୍ଥ—4. Powerless; impotent.
୫ । ପ୍ରାଣିଶୂନ୍ୟ—5. Destitute of animate beings.
୬ । ହୀନ—6. Wretched; miserable (M.W.)
୭ । ତେଜୋହୀନ—7. Unenergetic (M. W.);

୮ । ନୀଚ—8 Mean; low (M W.)

୯ । ତୁଚ୍ଛ—9 Insignificant (M.W )

ସ. ବି—୧ । ତେଜୋହୀନତା, ଶକ୍ତିହୀନତା—
1. Want of energy or power (M.W.)

୨ । ତୁଚ୍ଛତା—2. Insignificance (M, W,)

୩ । ଅନସ୍ତିତ୍ୱ—3, Non existence (M, W,)

ଦେ. ବିଣ—ନିଃସତ୍ୱବାନ୍ ( ଦେଖ )
Nihsatwaban ( See )

**ନିଃସତ୍ତ୍ୱ(ତ୍ତ୍ୱ)ବାନ୍**—ଦେ. ବିଣ — ( ତଦ୍ଭବ; ସ. ନିଃସତ୍ୱ )—
Nihsatwa(ttwa)bān ଯାହାର କୌଣସି ସମ୍ପତ୍ତିରେ ସ୍ୱତ୍ୱ ବା ଅଧିକାର ନାହିଁ,—Having no right or title to a property
(ନିସତ୍ତ୍ୱବାନ୍—ଅନ୍ୟରୂପ)

**ନିଃସତ୍ୟ**— ସ. ବିଣ—( ବହୁବ୍ରୀହି, ନିର୍+ସତ୍ୟ )—
Nihsatya ୧ । ଅସତ୍ୟ, ମିଥ୍ୟା—1 Untrue, false
( ନିଃସତ୍ୟା—ସ୍ତ୍ରୀ ) ୨ । ( ପୁଂ. )—ମିଥ୍ୟାବାଦୀ—2. Lying.

୩ । ଯେ ଆପଣାର ସତ୍ୟ ରକ୍ଷା ନ କରେ—
3. Not keeping one's solemn promise.

**ନିଃସତ୍ୟତା**—ସ. ବି.—( ନିଃସତ୍ୟ + ଭାବ ତା )—ଅନୃତ, ମିଥ୍ୟା—
Nihsatyatā Untruth; falsehood.

**ନିଃସନ୍ତାନ**—ସ. ବିଣ. ପୁଂ. ( ବହୁବ୍ରୀହି ନିଃ+ସନ୍ତାନ )—
Nihsantāna ୧ । ଅପୁତ୍ରକ, ଅନପତ୍ୟ; ଅଣ୍ଟକୁଡ଼ା—
( ନିଃସନ୍ତାନା—ସ୍ତ୍ରୀ ) 1. Childless; without issue; issueless.
ନ୍ତ ତ—ଅନ୍ୟରୂପ )

୨ । ନାଉ୍ଅରସ୍; ନିର୍ବଂଶ—2. Destitute of posterity; leaving no heirs to succeed

**ନିଃସନ୍ଦିଗ୍ଧ**—ସ. ବିଣ ପୁଂ. ( ନିର୍+ସମ୍+ଦିହ ଧାତୁ+କର୍ତ୍ତୃ ତ )—
Nihsandigdha ୧ । ସନ୍ଦେହରହିତ; ଯାହାର ମନରେ ସନ୍ଦେହ ନାହିଁ—1. Undoubting.
( ନିଃସନ୍ଦିଗ୍ଧା—ସ୍ତ୍ରୀ )

୨ । ନିଃଶଙ୍କ; ଅଶଙ୍କିତ —2. Unsuspecting; having no apprehension.

୩ । ଯହିଁରେ ସନ୍ଦେହ ନାହିଁ; ନିଶ୍ଚିତ—
3. Not doubtful; certain.

**ନିଃସନ୍ଦେହ**—ସ. ବିଣ. ( ବହୁବ୍ରୀହି, ନିର୍=ନାହିଁ+ସନ୍ଦେହ )—
Nihsandeha ୧ । ନିଶ୍ଚିତ—1 Certain.

୨ । ସୁସ୍ପଷ୍ଟ - 2 Very clear.

୩ । ସନ୍ଦେହ ରହିତ—3. Indubitable, undoubted; doubtless.

୪ । ( ପୁଂ. ) ଯାହା ମନରୁ ସନ୍ଦେହ ଦୂର ହୋଇଅଛି—
(ନିଃସନ୍ଦେହା—ସ୍ତ୍ରୀ) 4. Freed from doubt.

**ନିଃସନ୍ଧି**—ସ. ବିଣ. ( ବହୁବ୍ରୀହି; ନିର୍+ସନ୍ଧି )—
Nihsandhi ୧ । ଯାହାର ସନ୍ଧି ବା ଗଣ୍ଠି ନ ଥାଏ; ଯାହାର ଯୋଡ଼ ନାହିଁ—1. Jointless; seamless.

୨ । ଅଭେଦ୍ୟ; ଅବଚ୍ଛେଦ୍ୟ—2. Inseparable; impervious.

୩ । ଦୃଢ଼—3 Firm; closely knit; compact.

୪ । ଘନ -4. Dense.

**ନିଃସପତ୍ନ**—ସ. ବିଣ. ପୁଂ. ( ବହୁବ୍ରୀହି; ନିର୍+ସପତ୍ନ )—
Nihsapatna ୧ । ଶତ୍ରୁରହିତ—1. Without enemy; having no enemies
( ନିଃସପତ୍ନା—ସ୍ତ୍ରୀ )

୨ । ଯେଉଁ ବ୍ୟକ୍ତିର କୌଣସି ବସ୍ତୁରେ ଅନ୍ୟ ବ୍ୟକ୍ତି ସହିତ ଭାଗମାଲି ସ୍ୱାମିତ୍ୱ ନ ଥାଏ—2 Not having the possession of anything with another (M W)

୩ । ଯେଉଁ ବସ୍ତୁରେ ଏକ ଛଡ଼ା ଅଧିକ ସ୍ୱାମୀ ବା ଦାୱାଦାର୍ ନ ଥାଏ – 3. Not claimed by another; belonging exclusively to one possessor

୪ । ପ୍ରତିଦ୍ୱନ୍ଦ୍ୱରହିତ—4. Unrivalled; having no rival.

୫ । ସମକକ୍ଷ ରହିତ—5 Unparallelled

**ନିଃସମ୍ପର୍କ**—ସ. ବିଣ. ପୁଂ ( ବହୁବ୍ରୀହି; ନିର୍+ସମ୍ପର୍କ )—
Nihsamparka ୧ । ଯାହାର କଛିମାତ୍ର ସମ୍ପର୍କ ବା ସମ୍ବନ୍ଧ ନାହିଁ—
( ନିଃସମ୍ପର୍କା—ସ୍ତ୍ରୀ ) 1. Unconnected; not related.

୨ । ବନ୍ଧୁବାନ୍ଧବହୀନ—2, Destitute of relatives or connections.

୩ । ଯାହା ସଙ୍ଗେ କଥକର କୌଣସି ରିସ୍ତା ନାହିଁ—
3. Not related to the speaker.

୪ । ଯେ ଆପଣାର ନୁହେଁ; ପର—4. Outsider

**ନିଃସମ୍ପର୍କୀୟ**—ଦେ. ବିଣ. ପୁଂ ( ସ. ନିସମ୍ପର୍କ )—୧ । ଯାହାସଙ୍ଗେ
Nihsamparkiya କଛିମାତ୍ର ରକ୍ତ ବା ଯୌନ ସମ୍ବନ୍ଧ ନାହିଁ—
(ନିଃସମ୍ପର୍କୀୟା—ସ୍ତ୍ରୀ) 1. Having no relationship (by blood or marriage) with.

୨ । ସମ୍ପର୍କରହିତ—
2. Unconnected; unconcerned.

**ନିଃସମ୍ପାତ**—ସ. ବିଣ ( ନିର୍+ସମ୍ପାତ=ଗମନାଗମନ )—
Nihsampāta ୧ । ଅବରୁଦ୍ଧ—1. Blocked up.

୨ । ଗମନାଗମନଶୂନ୍ୟ; ଅଗନାଗ୍ନି—
2. Affording no passage.

ବି—୧ । (ବହୁବ୍ରୀହି; ଯେଉଁ ସମୟରେ ଗମନାଗମନ ହୁଏ ନାହିଁ)—ନିଶୀଥ; ଅଧରାତି; ନିଶାର୍ଦ୍ଧ; ଅର୍ଦ୍ଧରାତ୍ର—
1. Midnight; dead of night.

୨ । ଘୋର ଅନ୍ଧକାର—
2. Thick darkness ( M. W )

**ନିଃସମ୍ବନ୍ଧ**—ସ. ବିଣ. ପୁଂ—ନିଃସମ୍ପର୍କ (ଦେଖ)
Nihsambandha Nihsamparka (See)
( ନିଃସମ୍ବନ୍ଧା—ସ୍ତ୍ରୀ )

**ନିଃସମ୍ବଳ**—ସ. ବିଣ. ପୁଂ ( ବହୁବ୍ରୀହି; ନିର୍+ସମ୍ବଳ=ସମ୍ପତ୍ତି )—
Nihsambala ସମ୍ପତ୍ତିହୀନ; ଦରିଦ୍ର; ନାବାନ ଛଅ ବିଶା—
( ନିଃସମ୍ବଳା—ସ୍ତ୍ରୀ ) Poor; penniless; destitute; pocketless.

ନିଃସମ୍ବାଧ—ସଂ. ବିଣ (ନିର୍+ସମ୍ବାଧ)—୧ । ଜନଗହଳଶୂନ୍ୟ—
Nihsambādha 1 Not crowded.
୨ । ନିର୍ଜନ—2. Solitary

ନିଃସମ୍ବାଧ ବେଳା—ସଂ. ବିଣ ( କର୍ମଧା, ନିଃସମ୍ବାଧ+ବେଳା )—
Nihsambādha belā ଯେଉଁ ସମୟରେ ରାସ୍ତା ଆଦିରେ ଲୋକ-ଗହଳ ନ ଥାଏ—A time when there is no crowding in the way or streets.

ନିଃସମ୍ଭ୍ରମ——ସଂ. ବି (ନିର୍+ସମ୍ଭ୍ରମ)—ଅବିଚଳିତ—
Nihsambhrama Not perplexed; unembarassed.

ନିଃସରଣ—ସଂ. ବି (ନିର୍=ବାହାରକୁ+ସୃ ଧାତୁ=ଯିବା+ଅନ)—
Nihsarana ୧ । ବହିର୍ଗମନ—1. Going forth; escaping.
୨ । ବହିର୍ଗମନପଥ—2. Outlet; gate; exit
୩ । ନିର୍ଗମନ; ନିର୍ଗତ ହେବା—
3 Coming out, exit; issuing out.
୪ । ନିର୍ଝରିବା—4. The state of being pressed out trickling; oozing.
୫ । ଗୃହର ଦ୍ୱାର; ଦୁଆରମୁହଁ. ଯେଉଁ ବାଟେ ଘରୁ ପଦାକୁ ନାହାରନ୍ତି—5 Exit of a house; entrance; door.
୬ । ନିର୍ବାଣ—6 Extinction, annihilation.
୭ । ମୋକ୍ଷ; ମୁକ୍ତି—7. Final liberation; salvation; beatitude.
୮ । ମୃତ୍ୟୁ; ମରଣ—8. Death; demise; expiring; decease; dying,
୯ । ପ୍ରତୀକାର—9 Remedy.
୧୦ । ଉପାୟ—10 Means; expedient.
[ଦ୍ର—ଏହି ଶବ୍ଦ ଅନ୍ୟ ଶବ୍ଦମାନଙ୍କ ପରେ ସମାସରେ ପ୍ରାୟ ବ୍ୟବହୃତ ହୁଏ । ଯଥା—ବାୟୁନିଃସରଣ; ପ୍ରାଣବାୟୁନିଃସରଣ ଇତ୍ୟାଦି । ]

ନିଃସରଣି—ସଂ. ବିଣ (ବହୁବ୍ରୀହି; ନିଃ+ସରଣି)—୧ । ପଥଶୂନ୍ୟ—
Nihsarani 1. Pathless
୨ । ଯାହା କାର୍ଯ୍ୟରେ ପରିଣତ କରି ହୁଏ ନାହିଁ—ନ୍ତି
2 Impracticable ( M. W ).

ନିଃସରିବା—ଦେ. କ୍ରି ( ସଂ. ନିଃସରଣ)—୧ । ( ଜଳାଦି ) ଝରିବା; ବୋହିବା—1 To flow
Nihsaribā
ନିଃସରୀ ଉବ ଉବ ବାର ନିଃସରିବା ଗୁର ପହରେ ନସ୍କ ଯୁଗ୍ମ—
ନିଃସରୋହୀନା ନବସ୍ତ୍ୱର୍ଣ, ଜଣେ ସରଷ୍ମ ଉ ଗୀତ ।
୨ । (ଲକ୍ଷଣାର୍ଥ) ନିର୍ଗତ ହେବା; ବାହାରିବା—
2. (figurative) To come out.
ଶ୍ରୀମୁଖ ପଙ୍କଜୁଁ ନିଃସରିଲା ବାଣୀ—ଭକ୍ତଲୀଳ. ନନ୍ଦକେଶ୍ୱସ ।

ନିଃସର୍ପ—ସଂ. ବିଣ (ବହୁବ୍ରୀହି; ନିର୍+ସର୍ପ) ଯେଉଁଠାରେ ସର୍ପ ନାହାନ୍ତି—
Nihsarpa Serpentless; free from snakes.

ନିଃସଲିଳ—ସଂ. ବିଣ (ବହୁବ୍ରୀହି; ନିର୍ + ସଲିଳ)—ଜଳହୀନ; ନିର୍ଜଳ—
Nihsalila Waterless.

ନିଃସହ—ସଂ. ବିଣ (ନିର୍+ସହ ଧାତୁ+କର୍ମ. ଅ)—୧ । ଅସହ୍ୟ; ଦୁଃସହ—1. Unbearable.
Nihsaha
[ନିଃସହତା(ତ୍ତ୍ୱ)—ବି] ୨ । ଅସହନୀୟ—2 Intolerable.
୩ । (+କର୍ତ୍ତୃ ଅ) ଅଧୀର—3 Impatient
୪ । ଯେ ସହି ନ ପାରେ —
4 Unable to bear or suffer.
୫ । ଅଦମ୍ୟ—5. Irresistible
୬ । ଶକ୍ତିହୀନ; ଦୁର୍ବଳ —
6 Powerless; weak ( M. W.)
୭ । (+କର୍ତ୍ତୃ. ଅ) ଯାହା ଭାର ସହି ନ ପାରେ—
7. Not able to support (M W.).
୮ । ଯାହା ବାଧା ଦେଇ ନ ପାରେ—
8 Not able to resist (M W )

ନିଃସହାୟ—ସଂ. ବିଣ ( ବହୁବ୍ରୀହି; ନିର୍+ସହାୟ )—୧ । ଅସହାୟ; ସହାୟହୀନ—1 Helpless
Nihsahāya
(ନିଃସହାୟା—ସ୍ତ୍ରୀ) ୨ । ନିରବଲମ୍ବନ—
[ନିଃସହାୟତା(ତ୍ତ୍ୱ)—ବି] 2. Having no support

ନିଃସାଧ୍ୱସ – ସଂ. ବିଣ. ପୁଂ (ନିର୍+ସାଧ୍ୱସ)—ସାହସୀ; ନିର୍ଭୀକ—
Nihsādhwasa Fearless; bold; undaunted.
[ ନିଃସାଧ୍ୱସତା(ତ୍ତ୍ୱ)—ବି ] (ନିଃସାଧ୍ୱସା—ସ୍ତ୍ରୀ)

ନିଃସାମର୍ଥ୍ୟ - ସଂ. ବିଣ (ବହୁବ୍ରୀହି; ନିର୍+ସାମର୍ଥ୍ୟ)—୧ । ଅଯୋଗ୍ୟ—
Nihsāmarthya 1. Unsuitable, unfit.
(ନିଃସାମର୍ଥ୍ୟା—ସ୍ତ୍ରୀ) ୨ । ଅସମର୍ଥ—2 Incapable.
(ନିଃସ ମର୍ଥ୍ୟତା—ବି)

ନିଃସାମାନ୍ୟ—ସଂ.ବିଣ (ନିର୍+ସାମାନ୍ୟ)—ଅସାମାନ୍ୟ; ଅସାଧାରଣ—
Nihsāmānya Uncommon; extraordinary.
(ନିଃସାମାନ୍ୟା—ସ୍ତ୍ରୀ) (ନିଃସାମାନ୍ୟତା—ବି)

ନିଃସାର—ସଂ. ବିଣ (ବହୁବ୍ରୀହି; ନିର୍+ସାର)—୧ । ରସହୀନ—
Nihsāra 1. Sapless.
(ନିଃସାରା—ସ୍ତ୍ରୀ) ୨ । ସାରହୀନ; ଅସାର—
[ନିଃସାରତା(ତ୍ତ୍ୱ)—ବି] 2. Unsubstantial.
୩ । ନିସ୍ତେଜ—3. Spiritless.
୪ । ମଜ୍ଜାହୀନ—4. Pithless.
୫ । ତୁଚ୍ଛ—5 Worthless.
ବି—୧ । ( ନିର୍+ସୃ ଧାତୁ =ଗତି କରିବା+କରଣ. ଅ )
ନିର୍ଗମ ପଥ—1. Door; exit; outlet.
୨ । ସଙ୍ଗୀତର କାଳ —
2 A kind of time in music
୩ । ବାହାରିଯିବା; ବହିର୍ଗମନ—
3. Going forth; going out (Apte).

ନିଃସାରକ—ସଂ. ବିଣ ( ନିଃ+ସୃ ଧାତୁ ଣିଚ+କର୍ତ୍ତୃ. ଅକ )—ଯାହା କୌଣସି ପଦାର୍ଥକୁ ନିଃସରଣ କରାଏ ବା ଯାହା
Nihsāraka
(ନିଃସାରକା—ସ୍ତ୍ରୀ) ବାହାର କରିଦିଏ; ଯାହା ନିଗାଡ଼ି ଦିଏ—

Emptying; driving (any thing) out, causing to escape.

ବ— ଏକପ୍ରକାର ଅତିସାର — A kind of diarroeha (M. W )

**ନିଃସାରଣ** —ସ ବ. (ନିଃ + ସୃ ଧାତୁ ଣିଚ + ଭାବ. ଅନ)—
Nihsārana ୧ । ନିର୍ବାସନ—1. Exiling
୨ । ବହିଷ୍କରଣ—2. Expelling; driving out
୩ । କାର୍ଯ୍ୟରୁ ବରଖାସ୍ତ କରିବା —3. Dismissal.
୪ । ଗୃହର ପ୍ରବେଶ ଦ୍ୱାର—4. Entrance; door
୫ । ନିର୍ଗମନ ପଥ—5. Exit, outlet
୬ । ନିଷ୍କାସନ, ନିଗାଡ଼ିବା—
6. Emptying; pressing out.

**ନିଃସାରା**- ସ. ବ. ସ୍ତ୍ରୀ. (ନିର୍ + ସାର=ମଜ୍ଜା;+ଆ;ବହୁବ୍ରୀହି) —
Nihsārā କଦଳୀ ଗଛ — Plantain tree

**ନିଃସାରିତ**—ସ. ବିଣ. (ନିର୍+ସୃ ଧାତୁ ଣିଚ + କର୍ମ. ତ)—
Nihsārita ୧ । ବହିଷ୍କୃତ—1. Expelled; driven out.
(ନିଃସାରିତା—ସ୍ତ୍ରୀ) ୨ । ବରଖାସ୍ତ କରାଯାଇଥିବା—2 Dismissed.
୩। ନିଗଡ଼ା ହୋଇଥିବା—3. Emptied; pressed out
୪ । ନିଷ୍କାସିତ—4. Cast out.
୫ । ନିର୍ବାସିତ—5 Exiled.

**ନିଃସାହସ**—ସ. ବିଣ. ପୁଂ (ବହୁବ୍ରୀହି; ନିର୍ + ସାହସ)—ଭୀରୁ—
Nihsāhasa (ନିଃସାହସା—ସ୍ତ୍ରୀ) Coward; timid

**ନିଃସାହସିକ**—ଦେ ବିଣ —ନିଃସାହସ (ଦେଖ)
Nihsāhasika Nihsāhasa (See)
(ନିଃସାହସୀ—ଅନ୍ୟରୂପ)

**ନିଃସାହି**—ଦେ. ବିଣ. (ସ. ନିଃସହାୟ) – ନିରାଶ୍ରୟ; ସହାୟଶୂନ୍ୟ—
Nihsāhi Helpless.

ପୁର୍ବେ ବୋଲନ୍ତି ଲକ୍ଷଣ, ଧର୍ମ କରନ୍ତି ପ୍ରମାଣ
ନିଃସାହି ନବଜଳେକମାନେ—ବଶୂକାଅ. ବରଠସ୍ମମାସୂଣ ।

**ନିଃସୀମ**—ସ. ବିଣ.—(ବହୁବ୍ରୀହି, ନିର୍ + ସୀମନ୍; ନିଃସୀମନ୍ ଶବ୍ଦ ୧ମା.
Nihsima ୧ବ.)—୧ । ଅସୀମ —1 Limitless, boundles
୨ । ଅପରିମେୟ—2. Immeasurable. (M. W.)
୩ । ଅତି ମହତ୍—3. Grand. (M. W.)
୪ । ଅନନ୍ତ—4 Infinite. (M. W.)

**ନିଃସୁଖ**—ସ. ବିଣ. (ବହୁବ୍ରୀହି; ନିର୍ + ସୁଖ)— ୧ । ଦୁଃଖିତ—
Nihsukha Sad.
(ନିଃସୁଖା—ସ୍ତ୍ରୀ) ୨ । ଦୁଃଖୀ—2 Unhappy.
୩ । ନିରାନନ୍ଦ—3. Joyless.
୪ । ଅପ୍ରୀତିକର—4. Disagreeable (M. W.)
୫ । ଦୁଃଖପ୍ରଦ—5 Distressing.

**ନିଃସୃତ**—ସ ବିଣ—(ନିର୍ + ସୃ ଧାତୁ=ଗତି କରିବା + କର୍ତ୍ତୃ. ତ)—
Nihsruta ୧ । ବହିର୍ଗତ—1. Gone out.
(ନିଃସୃତା—ସ୍ତ୍ରୀ) ୨ । ନିର୍ଗତ—2 Issued out.
୩ । ବୋହିଗଲା—3. Trickled out; flown out.

**ନିଃସୁବର୍ଣ୍ଣକ**—ସଂ. ବିଣ (ନିର୍+ସୁବର୍ଣ୍ଣ; କ ଆଗମ)—୧ । ଯାହାଠାରୁ
Nihsubarnnaka ସ୍ୱର୍ଣ୍ଣକାଢ଼ି ନିଆ ଯାଇ ଅଛି—
(ନିଃସୁବର୍ଣ୍ଣିକା—ସ୍ତ୍ରୀ) 1. Deprived of gold. (M W)
୨ । ଯହିଁରେ ବା ଯାହାଠାରେ ସୁନା ନାହିଁ, ସ୍ୱର୍ଣ୍ଣହୀନ—
2. Goldless

**ନିଃସୋମକ**—ସଂ. ବିଣ. (ବହୁବ୍ରୀହି; ନିର୍ + ସୋମ+କ ଆଗମ)—
Nihsomaka ଚନ୍ଦ୍ରହୀନ—Moonless (M W)

**ନିଃସ୍ତମ୍ଭ**—ସଂ. ବିଣ. (ବହୁବ୍ରୀହି; ନିର୍ + ସ୍ତମ୍ଭ) - ଯହିଁର ଖୁଣ୍ଟ ନାହିଁ
Nihstambha Having no post or pillar (M W)

**ନିଃସ୍ନେହ**—ସ ବିଣ. ( ବହୁବ୍ରୀହି; ନିର୍ + ସ୍ନେହ )—୧ । ସ୍ନେହଶୂନ୍ୟ—
Nihsneha 1. Love-less; devoid of affection.
( ନିଃସ୍ନେହା—ସ୍ତ୍ରୀ ) ୨ । ମମତାଶୂନ୍ୟ—
2 Unfeeling; indifferent.
୩ । ତୈଳରହିତ; ଯାହା ତେଲିଆ ବା ଚିକଣା ନୁହେଁ—
3. Not unctuous or greasy.
୪ । ଶୁଖିଲା; ଯାହା ଓଦା ନୁହେ—4 Not wet; dry

**ନିଃସ୍ନେହ ଫଳା**—ସ. ବ. ( ବହୁବ୍ରୀହି; ନିଃସ୍ନେହ + ଫଳ + ସ୍ତ୍ରୀ. ଆ ) —
Nihsneha phalā ଭେଜି ବାଇଗଣ—
Solanum Diffusumo ( M. W )

**ନିଃସ୍ନେହା**—ସ. ବ. ସ୍ତ୍ରୀ—ଅତସୀ, ଛଣି; ପେଶୁଗୁଲ୍ମ—
Nihsnahā Linseed; Linun Usitatissimum. (M.W)

**ନିଃସ୍ପନ୍ଦ**—ସ. ବିଣ. (ନିର୍+ସ୍ପନ୍ଦ)—୧ । ସ୍ପନ୍ଦ ବା କମ୍ପନରହିତ—
Nihspanda 1 Still; without vibrations; no. throbbing.
(ନିଃସ୍ପନ୍ଦୁର—ଅନ୍ୟରୂପ)
( ନିଃସ୍ପନ୍ଦତ୍ୱ—ବ ) ୨ । ଅଚଳ—2. Motionless; firm.

**ନିଃସ୍ପର୍ଶ**—ସ. ବିଣ—( ବହୁବ୍ରୀହି; ନିର୍ + ସ୍ପର୍ଶ )—କଠିନ; ଯାହା
Nihsparśa କୋମଳ ନୁହେ—Hard; rough (M W)

**ନିଃସ୍ପୃହ**—ସ. ବିଣ ( ବହୁବ୍ରୀହି; ନିର୍ + ସ୍ପୃହା )—୧ । ସ୍ପୃହାରହିତ—
Nihspruha 1. Without avidity or anxiety or eagerness.
(ନିଃସ୍ପୃହା—ସ୍ତ୍ରୀ) (ନିଃସ୍ପୃହତା—ବ)
୨ । ଅନିଚ୍ଛୁକ—2 Unwilling.
୩ । ନିଷ୍କାମ; ବାଞ୍ଛାଶୂନ୍ୟ—2 Free from desire.
୪ । ଲାଳସାହୀନ—4. Not longing for. (M. W)

**ନିଃସ୍ୱ**—ସ. ବିଣ. ( ବହୁବ୍ରୀହି; ନିର୍=ନାହିଁ+ସ୍ୱ=ଧନ )—
Nihswa ୧ । ଦରିଦ୍ର; ଗରିବ—1 Poor; indigent.
( ନିଃସ୍ୱା—ସ୍ତ୍ରୀ ) ୨ । ଦୁଃଖୀ; ନିର୍ଦ୍ଧନ—2. Penniless,
ନିଃସ୍ୱତା } ବ ୩ । ଅନାଥ—3. Helpless
ନିଃସ୍ୱତ୍ୱ } ୪ । ଜ୍ଞାତିରହିତ—
4. Having no relatives or connections.

**ନିଃସ୍ୱତ୍ୱ**—ସ. ବ. ( ନିଃସ୍ୱ + ଭାବ. ତ୍ୱ )—ଦାରିଦ୍ର୍ୟ—
Nihswatwa Poverty; indigence
ବିଣ. ( ବହୁବ୍ରୀହି )—୧ । ସମ୍ପତ୍ତିରେ ଅଧିକାର ବା ସ୍ୱାମିତ୍ୱ ରହିତ—1 Having no title or interest in any property.

୨ । ବେ-ଇଲାକାଦାର୍; ସମ୍ପର୍କରହିତ — 2 Unconnected; devoid of all connections.

ନିଃସ୍ୱତ୍ୱବାନ୍ —ଦେ ବିଣ. (କଡ଼ଗ୍ରାଅ) (ସ. ନିଃସ୍ୱତ୍ୱ)—ନିଃସ୍ୱତ୍ୱ ( ଦେଖ ) Nihswatwabān Nihswatwa ( See )

ନିସ୍ୱନ—ସ. ବିଣ. ( ନିର୍=ନାହିଁ+ସ୍ୱନ=ଶବ୍ଦ ଯହିଁରେ )—ସ୍ୱନ ବା Nihswana ସ୍ୱରହୀନ—Soundless.

ବାନ୍ଧନ୍ତି ନିସ୍ୱନ କିଙ୍କିଣୀ—ଭଞ୍ଜ, ବୈଦେହୀଶବିଳାସ ।

ସ. ବି. ( ନିର୍+ସ୍ୱନ୍ ଧାତୁ+ଭାବ. ଅ )—ରବ; ଧ୍ୱନି—Sound. (ଜ୍ଞାନେନ୍ଦ୍ର)

ନିଃସ୍ୱଭାବ—ସ. ବିଣ. ( ବହୁବ୍ରୀହି; ନିର+ସ୍ୱଭାବ )— Nihswabhāba ୧ । ଚରିତ୍ରହୀନ—1. Immoral; unprincipled.

୨ । ବିଶେଷତ୍ୱହୀନ—2. Void of peculiarities.

ବି. ( ୬ଷ୍ଠୀ ତତ୍; ନିଃସ୍ୱ+ଭାବ ) —ଦାରିଦ୍ର୍ୟ, ନିର୍ଦ୍ଧନତା—Poverty, adversity.

ନିଃସ୍ୱାଦୁ—ସ. ବିଣ ( ନିର୍+ସ୍ୱଦ୍ ଧାତୁ+କର୍ତ୍ତୃ. ଉ ) — Nihswādu ୧ । ସ୍ୱାଦରହିତ—1 Tasteless; insipid.

୨ । ସାରଶୂନ୍ୟ; ନିଃସାର—2. Spiritless, vapid.

୩ । ନୀରସ—3. Sapless.

ନିଃସ୍ୱାମିକା—ସ. ବିଣ. ସ୍ତ୍ରୀ ( ନିର୍+ସ୍ୱାମିନ୍+କ ଆଗମ+ସ୍ତ୍ରୀ. ଆ)— Nihswāmikā ସ୍ୱାମୀହୀନା ( ସ୍ତ୍ରୀ ) — Having no husband (M W).

ନିଃସ୍ୱୀକୃତ—ସ. ବିଣ. ପୁଂ. ( ନିଃସ୍ୱ+ଅଭୂତ ତଦ୍ଭାବେ ଚ୍ୱି+କୃତ )— Nihswikrute ଯାହାକୁ ନିଃସ୍ୱ କରାଯାଇଅଛି; ନିର୍ଦ୍ଧନୀକୃତ — (ନିଃସ୍ୱୀକୃତା—ସ୍ତ୍ରୀ) Deprived of one's properties; (ନିଃସ୍ୱୀକରଣ—ବି ) impoverished.

ନିଃସ୍ୟନ୍ଦ—ସ ବିଣ. ( ନିର୍+ସ୍ୟନ୍ଦ୍ ଧାତୁ=କ୍ଷରିତ ହେବା+କର୍ତ୍ତୃ. Nihsyanda ଅ) —୧ । ନିର୍ଗତ—1. Issuing forth.

( ନିସ୍ୟନ୍ଦ—ଅନ୍ୟରୂପ ) ୨ । କ୍ଷରିତ; ଟୋପା ଟୋପା ହୋଇ ବୋହୁଥିବା—2. Dropping; distilled.

ସ ବି—ନିଃସ୍ୟନ୍ଦନ ( ଦେଖ ) Nihsyandana ( See )

ନିଃସ୍ୟନ୍ଦନ - ସ. ବି ( ନିର୍+ସ୍ୟନ୍ଦନ )—୧ । ଟୋପା ଟୋପା ହୋଇ Nihsyandana ଝରିବା—1 Oozing out, coming out ( ନିଃସ୍ୟନ୍ଦନ—ଅନ୍ୟରୂପ ) by drops; trickling; flowing down.

୨ । ଫଳ—2. Consequence; result ( M. W).

ନିଃସ୍ୟନ୍ଦିତ—ସ. ବିଣ ( ନିର୍+ସ୍ୟନ୍ଦ୍ ଧାତୁ+କର୍ତ୍ତୃ. ତ )— Nihsyandita ନିଃସ୍ୟନ୍ଦ ( ଦେଖ )—Nihsyanda (See)

ନିଃସ୍ରବ—( ନିର୍+ସ୍ରୁ ଧାତୁ+ଭାବ. ଅ )—ନିଃସ୍ରବଣ (ଦେଖ) Nihsraba Nihsrabana ( See )

ନିଃସ୍ରବଣ—ସ. ବି. ( ନିଃ+ସ୍ରୁ ଧାତୁ+ଭାବ ଅନ )— Nihsrabana ୧ । ବ୍ୟୟ; ଖରଚ— ( ନିଃସ୍ରାବ—ଅନ୍ୟରୂପ ) 1. Expense; expenditure.

୨ । କ୍ଷରଣ, ଦ୍ରବ ବସ୍ତୁର ପତନ; ବୋହିପଡ଼ିବା — 2. Distillation, dropping, falling by drops; pouring forth of liquid; a discharge of liquid matter.

୩ । ଦ୍ରବବସ୍ତୁ—3. Liquid; lava

୪ । ପରିସ୍ରା; ପ୍ରସ୍ରାବ — 4 Discharge of urine.

୫ । ପେଜ, ଭାତମଣ୍ଡ—5 Rice gruel; water pressed from boiled rice, starchy liquid extracted from boiled rice.

୬ । ଯାହା ବଳିପଡ଼େ -6 Remainder; surplus.

ନିକ୍‌ରାଇବା—ପ୍ରାଦେ. ( ସମ୍ବଲପୁର ) କ୍ରି. ( ଭୁଲ ହି. ଏହି ଅର୍ଥରେ Nik-rāibā ନିକ୍‌ଲ୍‌ନା )—ନିକାଳିବା; ତଡ଼ି ଦେବା— To drive away

ନିକ୍‌ରିବା—ପ୍ରାଦେ ( ସମ୍ବଲପୁର ) କ୍ରି. ( ଭୁଲ. ହି ଏହି ଅର୍ଥରେ Nik-ribā ନିକଲ୍‌ନା )—ନିକଳିବା, ବାହାରି ଯିବା— To go away.

ନିକ—ଦେ ବିଣ. ( ସ. ନିକ୍ତ=ସ୍ୱଚ୍ଛ, ନିର୍ମଳ, ନିଷ୍କଳଙ୍କ, ଭୁଲ. ପ୍ରା· Nika ନିକ୍କଳଙ୍କ; ଫା. ନେକ୍=ସୁନ୍ଦର )— (ନିକ୍—ଅନ୍ୟରୂପ) ୧ । ସରୁ ଓ ସଫା ( ଚାଉଳ )— नीक 1. Fine and clear ( rice ),

नेक, नीक्, निका, ୨ । ଭଲ; ଉତ୍ତମ; ସୁନ୍ଦର— निकि, निको 2. Good; fine; nice.

୩ । ପରିଷ୍କୃତ—3. Neat; clean

୪ । ଦୋଷଶୂନ୍ୟ—4 Faultless.

୫ । ସୁସ୍ଥ—5. Hale; healthy.

୬ । ଅଛିଣ୍ଡ - 6. Whole; unbroken.

୭ । ଅସଲି —7 Genuine.

୮ । ଅମିଶ୍ର—8. Unadulterated.

ନିକଉଡ଼ିଆ—ଦେ. ବିଣ—୧ । ନିର୍ଦ୍ଧନ; କପର୍ଦ୍ଦକ ହୀନ— Nikaurdiā 1. Poor; pennyless. निकड़िया ୨ । ମୂଲ୍ୟହୀନ—2. Of no value.

୩ । ମାଗଣା—3. Gratuitous.

ବି—ଧନହୀନ ବ୍ୟକ୍ତି—Poor man.

ନିକଉଡ଼ିଆ ଥାଆନ୍ତି ଦୂରେ । ଓ ଚୀ. ପରତେ ଗୀତା ।

ନିକ କାମ - ଦେ ବି ( ସ. ନିଷ୍କଳଙ୍କ କର୍ମ—ଦୋଷଶୂନ୍ୟ କାର୍ଯ୍ୟ— Nika kāma Faultless work.

ନିକକ୍ଷ—ସ. ବି. ( ନି+କକ୍ଷ )—କାଖର ଖୋଲ— Nikaksha Armpit (M W,)

ନିକ ଚାଉଳ—ଦେ. ବି—୧ । ସରୁ ସଫା ଚାଉଳ— Nika chāula 1. Fine rice

୨ । ସୁପରିଷ୍କୃତ ଚାଉଳ —2. Well-cleaned rice.

ନିକଟ—ସ. ବିଣ. ( ନି ଉପସର୍ଗ+କଟ ଧାତୁ=ସମୀପକୁ ଯିବା+ଅ; Nikata ଯାହା ପାଖରେ ଥିବାକୁ ତହିଁ ସମୀପକୁ ଯିବାକୁ (ନୈକଟ୍ୟ—ବି) ପଡ଼େ ନାହିଁ )—

୧ । ସମୀପବର୍ତ୍ତୀ—1 Near; proximate.
୨ । ଅଦୂର—2. Adjacent; lying close
୩ । ଆସନ୍ନ—3 Impending.
ସଂ. ବି—ନୈକଟ୍ୟ, ସାମୀପ୍ୟ—
Proximity; nearness (M. W,)
[ ଦ୍ର—ଏହି ଶବ୍ଦ ସଙ୍ଗେ ବିଭକ୍ତ୍ୟନ୍ତ ପ୍ରତ୍ୟୟ ଲଗେ, ଯଥା—
ନିକଟକୁ, ନିକଟରୁ, ନିକଟରେ । ]
ଦେ ଅ. ( ସଂ. ନିକଟେ )—୧ । ସମୀପକୁ; ପାଖକୁ, ପ୍ରତି—
1. Near; to,
(ଦୃଶ—ବ୍ୟପଶ୍ରିତ) ୨ । ସମୀପରେ—2. At; with; at hand.
निकट ୩ । ପାଖରୁ—3. From.
**निकट** ୪ । ଅଦୂର ଭବିଷ୍ୟତ୍‌ରେ; ଶୀଘ୍ର—
4. Very soon; in near future.

**ନିକଟଗ**—ସଂ. ବିଣ ( ନିକଟ+ଗମ୍ ଧାତୁ+କର୍ତ୍ତୃ. ଅ )—
Nikataga ଅଦୂର; ସମୀପବର୍ତ୍ତୀ—Near; at hand.
(ନିକଟଗା—ସ୍ତ୍ରୀ)

**ନିକଟତା**—ସଂ. ବି—୧ । ସାମୀପ୍ୟ—
Nikatatā 1. Nearness; proximity.
(ନିକଟତ୍ୱ—ଅନ୍ୟରୂପ) ୨ । ପାଖ—2. Vicinity.

**ନିକଟବର୍ତ୍ତୀ**—ସଂ ବିଣ. (ନିକଟ+ବୃତ୍ ଧାତୁ କର୍ତ୍ତୃ. ଇନ୍; ୧ମା.୧ବ)—
Nikatabarttī ୧ । ସନ୍ନିହିତ; ସମୀପସ୍ଥ—1. Adjacent.
(ନିକଟବର୍ତ୍ତିନୀ—ସ୍ତ୍ରୀ) ୨ । ପାଖରେ ଥିବା—
ନିକଟବର୍ତ୍ତିତା—ଅନ୍ୟରୂପ) 2. Neighbouring.

**ନିକଟ ଭବିଷ୍ୟତ୍**—ସଂ. ବି—ଅଳ୍ପ ସମୟ ପରବର୍ତ୍ତୀ କାଳ—
Nikaṭa bhabishyat Near future.

**ନିକଟରେ**—ଦେ ଅ—ନିକଟେ ( ଦେଖ );
Nikaṭare Nikaṭe ( See )
निकटे ନିକଟରେ ଆମ୍ଭ ଅଛିନ୍ତୁ ନଳ ଶୋକ ।
କୃଷ୍ଣସିଂହ. ମହାଭାରତ ବନ ।

**ନିକଟ ସମ୍ପର୍କ**—ସଂ ବି—୧ । ଅନ୍ତରଙ୍ଗ ବନ୍ଧୁତା—
Nikaṭa samparka 1. Kinship, nearness of
(ନିକଟ ସମ୍ବନ୍ଧ—ଅନ୍ୟରୂପ) relationship.
ନିକଟ ସମ୍ପର୍କୀ—ପୁଂ ⎫ ୨ । ଘନିଷ୍ଠ ସମ୍ବନ୍ଧ—
ନିକଟ ସମ୍ପର୍କିନୀ—ସ୍ତ୍ରୀ ⎬ ବିଣ 2. Close connection.
ନିକଟ ସମ୍ବନ୍ଧୀ—ପୁଂ ⎪ ସଂ. ବିଣ. ପୁଂ—ଯାହା ସଙ୍ଗେ ନିକଟ
ନିକଟ ସମ୍ବନ୍ଧିନୀ—ସ୍ତ୍ରୀ ⎭ ସମ୍ପର୍କ ଅଛି—Closely related.

**ନିକଟସ୍ଥ**—ସଂ. ବିଣ. ( ନିକଟ+ସ୍ଥା ଧାତୁ+କର୍ତ୍ତୃ. ଅ )—
Nikaṭastha ନିକଟବର୍ତ୍ତୀ ( ଦେଖ )
(ନିକଟସ୍ଥା—ଅନ୍ୟରୂପ) Nikaṭabarttī ( See )

**ନିକ(କି, କୁ)ଟା**—ଦେ. ବି—୧ । ନେହୁରା ହେବା—
Nika(ki, ku)ṭā 1. Supplication.
୨ । ଦାନ୍ତ ନିକୁଟିବା—
2. Partial exhibition of one's teeth

ବିଣ ପୁଂ—୧ । ( ଗାଳିରେ ବ୍ୟବହୃତ ) ଯେ ସର୍ବଦା ଅନ୍ୟକୁ
ନେହୁରା ହୁଏ—1. Supplicating
୨ । ଦାନ୍ତହସା—2. Given to laughing.
୩ । ନିର୍ଲଜ୍ଜ—3. Shameless.
୪ । ନୀଚ; ହୀନ—4. Low, mean.
୫ । କୃପଣ—5. Miserly.
୬ । ଅଳସୁଆ—6. Idle; slothful.
୭ । ଛାଡ଼ବନ୍ଧ—7. Persistent.
୮ । ଯେ କୌଣସି କାର୍ଯ୍ୟକୁ ବିଳମ୍ବରେ କରେ—
8. Dilatory.
୯ । କୌଣସି କାର୍ଯ୍ୟର ସାମାନ୍ୟ ଅଂଶ ମଧ୍ୟ ଯେ ନିରିଖି କରି
[ନିକ(କି, କୁ,)—ସ୍ତ୍ରୀ) ଠିକରେ—9. Doing a work by
attending to minute insignificant details

**ନିକଟା ନିକଟି**—ଦେ. କ୍ରି ବିଣ—୧ । ଆଖପାଖ; ସମୀପତଃ—
Nikaṭā nikaṭi 1 At hand; near by.
निकटा निकटि ୨ । ପ୍ରାୟ—2 Almost, nearly.
**लगचा लगचि** ୩ । ପରସ୍ପରକୁ ଲଗାଲଗି—
3. Close to each other.

**ନିକ(କି,କୁ)ଟା(ଟି) ମାଧିଆ**—ଦେ. ବି. ( ଗାଳି )—
Nika(ki,ku)ṭā(ṭi) mādhiā ୧ । ଯେଉଁ ବ୍ୟକ୍ତି ଦାନ୍ତ
ନିକୁଟି କରି ପରଠାରେ ପ୍ରାର୍ଥନା କରେ—
1. A person who supplicates with
undue humility
୨ । କୃପଣ ବ୍ୟକ୍ତି—2. Miserly person.
୩ । ନିର୍ଲଜ୍ଜ ବ୍ୟକ୍ତି—3 Shameless person.
୪ । ନୀଚ ବ୍ୟକ୍ତି—4. Mean person.
୫ । ଜିଗରଦାର ବ୍ୟକ୍ତି—5. Persistent person.
୬ । ଯେ କୌଣସି କାର୍ଯ୍ୟକୁ ଭିନ୍ନ ଭିନ୍ନ କରି ସାମାନ୍ୟ ସାମାନ୍ୟ
ଅଂଶକୁ ନିରେଖିକରି ଦେଖି ଅତି ବିଳମ୍ବରେ କରେ—
6. A dilatory person; a person who does
a work by attending to the most insignificant details.

**ନିକ(କି,କୁ)ଟିବା**—ଦେ. କ୍ରି (ସଂ. ନିଷ୍କର୍ଷଣ)—( ଦାନ୍ତ ) ନେଫେଡ଼ିବା,
Nika(ki,ku)ṭibā ( ଦାନ୍ତ ) ପଦାକୁ ଦେଖାଇବା—
निकुटा To exhibit; to show out (one's teeth).
**निपुड़ना, निकोसना**
[ ଦ୍ର—ଦୁଇ ଓଠକୁ ମେଲା କରି ହସିବା ବା କାନ୍ଦିବା ବେଳେ
ଓଠ ଅଳ୍ପ ମେଲା ହୋଇ ଦନ୍ତପଂକ୍ତିର କେତେକ ଅଂଶ ଦେଖା
ଗଲେ ତାକୁ ଦାନ୍ତ ନିକୁଟିବା; ଦନ୍ତପଂକ୍ତି ଆହୁରି ବେଶୀ ଦେଖା
ଗଲେ ତାକୁ ଦାନ୍ତ ନେଫେଡ଼ିବା, ସେଥିରୁ ଆହୁରି ବେଶୀ ଦେଖା
ଗଲେ ତାକୁ ଦାନ୍ତ ନିଶିଡ଼ିବା ଓ ସର୍ବାପେକ୍ଷା ଅଧିକ ମେଲା ହୋଇ
ଦାନ୍ତଯାକ ଦେଖାଗଲେ ତାକୁ ଦାନ୍ତ ଖେଞ୍ଚିବା କହନ୍ତି । ଦାନ୍ତ
ଖେଞ୍ଚିବା ଅଶିଷ୍ଟ ବ୍ୟବହାର ଅଟେ । ନିକୁଟିବା ଶବ୍ଦ କେବଳ ଦାନ୍ତ
ପରେ ବ୍ୟବହୃତ ହୁଏ ]

**ନିକ(କି,କୁ)ଟି ମହୁ**—ଦେ. ବି.—୧ । ଏକ ପ୍ରକାର **ଶ୍ରେଷ୍ଠ** ମହୁମାଛି—
Nika(ki,ku)ṭi mahu 1, A kind of small bee, Apis Floria.
[ଦ୍ର—ଏମାନେ ଗଛ ବା କାନ୍ଥର ଖୋଲରେ ଶ୍ରେଷ୍ଠ ଫେଣା ବାନ୍ଧନ୍ତି ।]
୨ । ନିକଟି ମହୁମାଛିଙ୍କ ଦ୍ୱାରା ସଞ୍ଚିତ ମଧୁ—
2. Honey made by the Nikaṭi bees.

**ନିକ(କି,କୁ)ଟି ହେବା** ଦେ. କ୍ରି—ନେହୁରା ହେବା; ସବିନୟ ପ୍ରାର୍ଥନା କରିବା—To supplicate; to humbly pray for something; to ask for something with great humility.
Nika(ki,ku)ṭi hebā
काकुतिमिनतिकरना
**निहोरना**

କେତେ ଯେ ଖାଇ ବାଳ ପିଶାଚ ପଳାଇଲେ,
କେତେ ଲୁହା ଧରଣ ଦାନ୍ତ ନିକୁଟିଲେ । କୃଷ୍ଣସିଂହ. ମହାଭାରତ ଦ୍ରୋଣ ।

**ନିକଟେ**—ଦେ. ଅ.—୧ । ଶୀଘ୍ର—Very soon
Nikaṭe ସୃଜନେ ଶୁଣି କର୍ଣ୍ଣପୁଟେ.
ଛାଡ଼ିବ ସଂସାର ନିକଟେ । ଜଗନ୍ନାଥ. ଭାଗବତ ।
निकटे ୨ । ତୁରନ୍ତ—2. In no time
**निकटसे** ୩ । ଅଳ୍ପକାଳେ—3, Within a short time.
ସେ ଦୃଷ୍ଟିଙ୍କ ସକାଶୁ ଦଳର ଶ୍ରେୟ,
ନିକଟେ ମହର୍ଷି ହୋଇବ ଉଦୟ । କୃଷ୍ଣସିଂହ ମହାଭାରତ. ବନ ।
୪ । ( ଅମୁକର ) ପାଖରେ—4, Near; at.
୫ । (ଅମୁକ)ଠାରେ—5, At, with.
୬ । ଅଳ୍ପ ସମୟରେ—6, Soon after.
ଦେବ ହେଲନ ନଷ୍ଟେ କଲ
ନିକଟେ ସଂକଟ ହେଲା । ଜଗନ୍ନାଥ. ଭାଗବତ ।

**ନିକଣ୍ଟକ**—ଦେ. ବିଣ. ( ସ. ନିଷ୍କଣ୍ଟକ )—ନିଷ୍କଣ୍ଟକ—( ଦେଖ )—
Nikanṭaka **निकण्टक** Nishkanṭaka (See)

**ନିକଣ୍ଟା** ଦେ ବିଣ ( ସ ନିଷ୍କଣ୍ଟକ )—ଯହିଁରେ କଣ୍ଟା ନ ଥାଏ—
Nakanṭā Thornless.
आकाटा **निकण्टक**

**ନିକ ପଣ**—ଦେ. ବି.—୧ । ଉତ୍ତମତା—1. Goodness.
Nika paṇa ୨ । ନିର୍ଦ୍ଦୋଷତା—2 Faultlessnes.
नीकपाना ୩ । ସୌନ୍ଦର୍ଯ୍ୟ—3 Beauty; grace.
**निकाइ** [ ନିକପଣିଆ(ଆଁ)—ଅନ୍ୟରୂପ ]

**ନିକ ପିଲା**—ଦେ. ବି—୧ । ଉତ୍ତମ ପିଲା—
Nika pilā 1 A good child
୨ । ସୁନ୍ଦର ପିଲା—2. A fine child.

**ନିକମା**—ଦେ. ବିଣ (ସ. ନିଷ୍କର୍ମୀ ପ୍ରା. ନିକମ୍ମା)—୧ । ଅଳସୁଆ—
Nikamā 1. Idle; lazy.
( ନିକମୀ, ନିକମ୍ମା—ଅନ୍ୟରୂପ ) ୨ । ଅଯୋଗ୍ୟ—
निकम्मा **निकम्मा** 2. Worthless.
୩ । ଅକାମିକା—3. Unfit for work; unserviceable.
୪ । କାର୍ଯ୍ୟ ବା ବୃତ୍ତିହୀନ—4 Unengaged; without employment; unemployed.
୫ । ବ୍ୟର୍ଥ—5. Fruitless.
୬ । ଲାଭହୀନ—6 Profitless.
୭ । ଅନର୍ବର (ଜମି)—7 Barren (land).
୮ । ଯେଉଁ କାର୍ଯ୍ୟରେ ସମୟ ବୃଥା ଯାଏ—
8. (work) In which time is uselessly spent.

**ନିକମ୍ପ**—ଦେ. ବିଣ ( ସ. ନିଷ୍କମ୍ପ )—କମ୍ପହୀନ, ସ୍ଥିର—
Nikampa Still; calm and quiet; motionless.

**ନିକର**—ସ. ବି (ନି=ଉପରକୁ+କୃ ଧାତୁ=ବିକ୍ଷେପ କରିବା+କର୍ମ. ଅ)-
Nikara ୧ । ସମୂହ—1. A number of things or men; multitude; a body (of men or animals).
୨ । ପଙ୍କ୍ତି; ଦଳ—2. Flock; crowd.
୩ । ସାର—3 Pith; marrow; sap; essence.
୪ । ନ୍ୟାଯ୍ୟ ଦେୟ ଧନ—4. Legitimate dues.
୫ । ଧନ—5 Treasure; riches.
୬ । ନିଧି; ରତ୍ନ—6 Gem.
୭ । ଗଦା—7. Heap; pile (Apte).
୮ । ଗୋଛା—8. A bundle (Apte).
୯ । ବକ୍ସିସ୍—9. Honorarium (Apte).
निकर ଦେ. ବିଣ (ସ. ନିଷ୍କର)—୧ । କରହୀନ; ଲାଖରାଜ—
**खालिस** 1. Rent-free; revenue-free; free from payment of tax.
୨ । ନିଶ୍ଚିତ—2 Sure; certain.
ସୋଗଞ୍ଚ ହେବ ଏହା ଅଟଇ ନିକର—କୃଷ୍ଣସିଂହ ମହାଭାରତ. ଆଦି ।
୩ । ସମସ୍ତ ଖରଚ ଆଦି ବାଦ୍ (ଲାଭ ବା କ୍ଷତି); ନିଟ୍—
3. Net (loss or income).
ଦେ. କ୍ରି. ବିଣ—୧ । କେବେହେଁ; ଆଦୌ—1. At all.
ମଧ୍ୟମଣି ନିକର ଉଥାଙ୍ଗ ସୁଭଦ୍ର
କଥା ବନସ୍ୟ ମୋର ହୁଥା ନ କର ହେ—କବିସୂର୍ଯ୍ୟ ବଳଦେବରଥ. ଖ ଗୀତ ।
୨ । ମୁକର; ନିଶ୍ଚେ—2, Certainly; without fail.
ଦଇବ ଯା କରିବ ହୋଇବ ନିକର—କୃଷ୍ଣସିଂହ ମହାଭାରତ. ବନ

**ନିକର କ୍ଷତି**—ଦେ. ବି—ସମସ୍ତ ହିସାବରେ ଜଣାପଡ଼ିବା କ୍ଷତି—
Nikara kshati Net loss.
निकरक्षति **खालिस नुकसान** (ନିକର ଆୟ—ବିପରୀତ)

**ନିକର ଜମା**—ଦେ. ବି—ଖରଚ ଆଦି ବାଦ୍ ଦେୟ ଖଜଣା; ନିଶ୍ଚିତ ଖଜଣା—Net revenue or rent.
Nikara jamā
निकरजमा **खालिस जमा**

**ନିକର ଲାଭ**—ଦେ. ବି—ଖର୍ଚ୍ଚ ବର୍ଚ୍ଚ ସକଳ ଯିବା ପରେ ଜଣାପଡ଼ିବା ମୋଟ ଲାଭ; ନିଟ୍ ଲାଭ—Net income.
Nikara lābha
निकरलाभ **खालिसलफा**

**ନିକରିବା**—ପ୍ରାଦେ (ବଲେଶ୍ୱର) କ୍ରି ( ଉତ୍ତରଭାଷା ) ( ଭୁଲ. ଏହି ଅର୍ଥରେ ହି. ନିକର୍ନା )—ନିକାଳିବା; କାଢ଼ିବା—
Nikaribā To draw(water).

**ନିକରେ**—ଦେ. କ୍ରି. ବିଣ—ନିକର (ଦେଖ)
Nikare Nikara (See)
କହିଲ ନିକରେ ଛୋଟେ—ଗ୍ରାମନାଥ ସାବଳ୍ପିତରଙ୍ଗ

ନିକର୍ତ୍ତନ—ସ.ବି—(ନି+କର୍ତ୍ତନ)—୧ । ଛେଦନ—1 Cutting off; tearing
Nikarttana
୨ । ମୂଳଚ୍ଛେଦନ—2. Cutting down from the root.

ନିକର୍ଷଣ—ସ. ବି (ନି+କୃଷ୍ ଧାତୁ=ଟାଣିବା+ଅଧି. ଅନ)—
Nikarshaṇa ୧ । ନଗରଦ୍ୱାର ବହିଃସ୍ଥିତ କ୍ରୀଡ଼ାଭୂମି—
1 A playground at one end of a town.
୨ । କ୍ରୀଡ଼ାର୍ଥ ଉନ୍ମୁକ୍ତ ନଗରମଧ୍ୟସ୍ଥ ପଡ଼ିଆ ଜମି—
2. A bit of open field or park in the heart of a town, left for diversion.

ନିକଲ—ଦେ.— ଅ.—(ନିକଳିବା କ୍ରିୟାର ଅନାଦରାର୍ଥ ମଧ୍ୟମ
Nikal ପୁରୁଷ, ଏକବଚନ) (ଭୁ)—ଦୂର୍ ହୋ ! ବାହାରି ଯା—
निकल निकल (Interjection) Get out ! be off !

ନିକଳଙ୍କ(ଙ୍କି)—ଦେ' ବିଣ.—(ସ ନିଷ୍କଳଙ୍କ, ପ୍ରା. ଣିକ୍କଲଙ୍କ)—
Nikalaṅka(ṅki) ନିଷ୍କଳଙ୍କ (ଦେଖ)
निकलंक Nishkalaṅka (See)

ନିକଳପ—ଦେ. ବି. (ସ. ନିଷ୍କଳ୍ପ)—କଳ୍ପନାର ଅଭାବ—
Nikalapa Want of wish or imagination.

ନିକ(କି)ଳ(ଳି)ବା—ଦେ. କ୍ରି. (ସ. ନିର୍ଗଚ୍ଛ; ପ୍ରା. ଣିକ୍କଳଇ) ସ ନିଷ୍କାସନ;
Nika(ki)ḷi(ḷi)bā ହିନ୍ଦୀରୁ ଅନୁକୃତ)—୧ । ବହିର୍ଗତ ହେବା—
(ନିକାଳିବା—ପ୍ରୟୋଜକରୂପ) 1. To come out
निकला ୨ । ବାହାରି ଯିବା; ନିର୍ଗତ ହେବା—
निकलना 2. To issue forth.
୩ । ସ୍ରବିବା—3. To ooze out.
୪ । ବହିଷ୍କୃତ ହେବା—4. To be driven out.
୫ । ଭିତରି ଭେଦ କରି ପୃଷ୍ଠ ଯିବା—
5. To pierce through.
ସେ ବାଣ ବୃକ୍ଷେ ବାଜେ ପଡ଼ଣ ଗମିଲ,
ଶାଳଶାଳ ନିକଳି ପଲକୁ ପସିଲ—କୃଷ୍ଣସିଂହ. ମହାଭାରତ ବନ ।
୬ । ବଳିବା; ବଢ଼ିବା ରହିବା; ଉଦ୍ଗତ ହେବା—
6 To jut out; project.
ଶେଣୀ ମୁଣ୍ଡମାନ ଓଷ୍ଠରୁ ନିକଳି ଅଙ୍ଗୁଳ ଲେଖାଏ ହିବ,
ନୀଳାଦ୍ରି ପ୍ରାଚୀନ ଉକ୍ରଳ ।
୭ । ଖସିଯିବା—7 To slip off.

ନିକଷ—ସ. ବି (ନି+କଷ୍ ଧାତୁ=ଘଷିବା; ବଧ କରିବା+ଅଧି ଅ)—
Nikasha ୧ । ଶାଣ; ଶାଣଣ ପଥର—
1 Polishing stone; whetstone.
୨ । କଷଟି ପଥର—2. Touchstone.
ହେମଂବୃଷ୍ଟି ସ୍ୱର୍ଣ୍ଣ ନିକଷ ସଙ୍ଗାଣ,
ତରମେ ଦୋଳର ବୃଷ୍ଟ ଦେଶ ଶାଣ । - ସଧାନାଥ. ନଦିତବୃଜ
୩ । ସୁନା ରୁପା କଷିବାର ବା ପରୀକ୍ଷା କରିବାର ସ୍ଥାନ—
3. A place for testing gold and silver.
୪ । ନିକଷୋପଲ ରେଖା; କଷ୍ଟି ପଥରରେ ପଡ଼ିଥିବା ସୁନାର ଗାର 4 A line drawn on a touchstone with gold, a streak of gold made on a touch stone (Apte).
୫ । ପରୀକ୍ଷା; ପରଖ—5. Test (Apte).

ନିକଷଣ—ସ. ବି. (ନି+କଷ୍ ଧାତୁ ଭାବ. ଅନ)—୧ । ଘର୍ଷଣ—
Nikashaṇa 1 Rubbing; friction.
୨ । ଉତ୍ଲେଖନ—
2. Act of drawing or painting
୩ । ଖନନ—3. Digging; engraving
୪ । କଷ୍ଟି ପଥରରେ ସୁନା ଘଷିବା—
4 Rubbing of gold over touchstone.
୫ । ଶାଣ ଦେବା—5 Whetting.

ନିକଷା - ସ. ବି ସ୍ତ୍ରୀ (ନାମ)—୧ । ସୁମାଳୀର କନ୍ୟା; ରାବଣର ମାତା;
Nikashā ବିଶ୍ରବାର ସ୍ତ୍ରୀ—1. Name of a demoness, mother of Rābaṇa.
[ଦ୍ର—ଏହାଙ୍କ ପୁତ୍ର ରାବଣ, କୁମ୍ଭକର୍ଣ୍ଣ ଓ ବିଭୀଷଣ ଏବଂ କନ୍ୟା ଶୂର୍ପଣଖା ଥିଲେ । ]
୨ । ରାକ୍ଷସ ମାତା—
2 Mother of imps or demons. (Apte)
ଅ·—୧ । ନିକଟରେ—1 Near.
୨ । ମଧ୍ୟରେ—2 Between; within; in the midst; amidst.

ନିକଷାତ୍ମଜ - ସ ବି. ପୁଂ (୬ଷ୍ଠୀ ତତ୍; ନିକଷା+ଆତ୍ମଜ)—୧ । ରାବଣ—
Nikashātmaja 1 Rābaṇa.
୨ । ରାକ୍ଷସ—2 Demon; goblin.
୩ । କୁମ୍ଭକର୍ଣ୍ଣ ବା ବିଭୀଷଣ—
3 A brother of Rābaṇa.

ନିକଷୋପଲ—ସ. ବି. (ନିକଷ+ଉପଲ)—୧ । ନିକଷ ପଥର; କଷଟି
Nikashopaḷa ପଥର—1 Touchstone.
(ନିକଷଗ୍ରାବ, ନିକଷ ପାଷାଣ—ଅନ୍ୟରୂପ) ୨ । ଶାଣ ପଥର—
2. Whetstone.

ନିକସ—ସଂ. ବି. (ନି+କସ୍ ଧାତୁ+ଅ)—ନିକଷ (ଦେଖ)
Nikasa Nikasha (See)

ନିକା—ଦେ. ବି. (ଇତର) (ସଂ. ନିକ୍ ଧାତୁ=ନିର୍ମଳୀକରଣ; ନିକ୍ତ—
Nikā ନିର୍ମଳୀକୃତ)—୧ । ଘର ଓଳାଇବା—
निकाल 1. Sweeping a house clean.
बुहार ୨ । ଘର ଲିପିବା - 2. Smearing a house with water.
ପ୍ରାଦେ. (ଗଡ଼ଜାତ) ଅ.—ଆଦୌ; ମୂଳରୁ, ଜମାରୁ—
At all; from the beginning; at the outset

निका ବୈଦେ. ବି. (ଫା. ନିକାହ୍) ମୁସଲମାନ୍‌ମାନଙ୍କ ମଧ୍ୟରେ
निकाह ପ୍ରଚଳିତ ବିଧବା ବିବାହ—Widow-marriage amongst the Mahomedans.

ନିକା(କେ)ଇ—ବୈଦେ. ବିଣ (ଫା. ନିକାହୀ)—୧ । ନିକା ସମ୍ବନ୍ଧୀୟ—
Nikā (ke)i 1. Relating to the Nikā form of marriage
निकाही

**निकाहो** ୨ । ନିକା ଦ୍ୱାରା ପୃଷ୍ଟାଚ (ସ୍ୱାମୀ ବା ସ୍ତ୍ରୀ)—
2. (husband or wife) Wedded by the Nikā form of marriage (widow-marriage amongst the Mahomedans)

ନିକା(କେ)ଇବା—ଦେ. କି (ଇତର) (ସଂ. ନିଜ୍ ଧାତୁ=ନିର୍ମଳୀକରଣ. Nikā(ke)ibā ନିକ୍ତ=ନିର୍ମଳୀକୃତ )—୧ । ଗୃହ ମାର୍ଜନ କରିବା; ନିକାନ ଓଳାଇବା—1. To sweep a house clean.
**बुहारना** ୨ । ପରିଷ୍କୃତ କରିବା—2 To cleanse.
୩ । ଘର ଧୋଇ ସଫା କରିବା—
3. To wash the house clean.
୪ । ଘର ଲିପିବା—4. To smear the walls and floor of a house with cowdung and water.

ନିକାଞ୍ଚନ—ଦେ ବଣ - ୧ । (ସଂ. ନିଷ୍କାଞ୍ଚନ) ଧନହୀନ; କାଙ୍ଗାଳ—
Nikāñchana 1. Poor; pennyless.
୨ । (ସଂ. ନିଷ୍କିଞ୍ଚନ) ନିର୍ଜନ; ନିରୋଳା—
2 Solitary; lonely (place)
ଏବେ ଯା ନଗର, ଥିଲା ଅଗେ ତାହା ମହା ନିକାଞ୍ଚନ ସ୍ଥଳ—ରାଧାନାଥ. ସଯାତି ।

ନିକାଞ୍ଚନ ମଠ—ଦେ. ବ—ନିର୍ଜନ ଗୃହ—
Nikāñchana matha An empty or solitary house.

ନିକାଞ୍ଚନିଆ(ଆଁ)—ଦେ. ବଣ—ନିକାଞ୍ଚନ ୨ (ଦେଖ)
Nikāñchaniā(āñ) Nikāñchana 2 (See)

ନିକାଞ୍ଚନେ—ଦେ. କି. ବଣ—୧ । ନିର୍ଜନରେ; ନିରୋଳାରେ—
Nikāñchane 1. Solitarily.
୨ । ଜନଶୂନ୍ୟ ସ୍ଥାନରେ—2. In a lonely place.
ନିକାଞ୍ଚନେ ରହୁ ନାଗଙ୍କେ କହର ଗୃହାନ୍ତ ନାହିଁ,
ବନ୍ଧୁ ହଂସଗଲା ସନ୍ଧ୍ୟେ ଗୋଡ କାଢି ସିବାକୁ ନାହିଁ । ରାଧାନାଥ, ଉଷା ।

ନିକାମ—ସଂ. କି. ବଣ. (ନି+କମ୍ ଧାତୁ=ଇଚ୍ଛା କରିବା+ଅ.)—
Nikāma ୧ । ସ୍ୱେଚ୍ଛାପୂର୍ବକ—1. Voluntarily.
ହରିହର ହରିହର ଜପେ ମନସ୍ଥ ମ
ବରଂଦେ ମରଣ ବହୁ ଅଛନ୍ତି ନିକାମ । ସ୍ୱାମୀ, ରସବୀରଥ
୨ । ଆପଣାର ଇଚ୍ଛାନୁରୂପ—
2 According to one's desire (Apte).
୩ । ଆପଣାର ସନ୍ତୋଷ ମୁତାବକ—3. To one's satisfaction; to the heart's content. (Apte)
୪ । ଅତ୍ୟନ୍ତ—
4. Very much; exceedingly. (Apte)
ବଣ.—୧ । ଯଥେଷ୍ଟ; ପର୍ଯ୍ୟାପ୍ତ—1. Sufficient; plentiful.
୨ । ସାତିଶୟ—2. Excessive.
୩ । ଇଷ୍ଟ; ଅଭିଳଷିତ—3. Wished for.
ବି.—୧ । ଗୃହ—1. House; dwelling, abode.
୨ । ପରମାତ୍ମା; ପରଂବ୍ରହ୍ମ—2. The Supreme Soul.

ନିକାମନ—ସଂ. ବି. (ନି+କମ୍ ଧାତୁ+ଭାବ. ଅନ)—୧ । ଇଚ୍ଛା—
Nikāmana 1. Desire. (Apte)
୨ । ଅଭିଳାଷ; ଲାଳସା—2. Longing after (Apte).

ନିକାମି—ଦେ. ବଣ.—( ସଂ. ନିଷ୍କର୍ମା )—୧ । ଅକାମିକା, ପାଦ' ପ୍ରୟୋଜନରେ ଆସେ ନାହିଁ—
Nikāmi
निकामी **नकाम** 1. Useless; not fit for use.
(ନିକାମିକା—ଅନ୍ୟରୂପ) ୨ । ନିକମା (ଦେଖ)—
2. Nikamā (See)

ନିକାୟ—ସଂ. ବି.—(ନି+ଚି ଧାତୁ=ଏକତ୍ର କରିବା; ତୋଳିବା+ଅଧି ଅ; କପାତନ)—୧ । ଆବାସ, ଗୃହ—1. House;
Nikāya dwelling; habitation
୨ । ସମୂହ—2 Multitude, gathering.
୩ । ଏକ ଜାତୀୟ ପ୍ରାଣୀମାନଙ୍କର ସହଚ୍ଛ; ସମୂହସ୍ଥ; ପଞ୍ଚ—
3 Congregation, crowd; herd; assembly.
୪ । ଲକ୍ଷ୍ୟ—4 Aim; mark, target.
୫ । ପରମାତ୍ମା—5. The Supreme Soul.
୬ । ଗଦା; ରାଶି—6 Heap (Apte).

ନିକାଯ୍ୟ—ସଂ. ବି. (ନି+ଚି ଧାତୁ=ଏକତ୍ର କରିବା+ଅଧି. ଯ, କପାତନ)
Nikājya ନିବାସ; ଗୃହ—House, abode; dwelling.

ନିକାର—ସ ବି.—(ନି+କୃ ଧାତୁ+ଭାବ. ଅ)—୧ । ଅପକାର—
Nikāra 1. Injury.
୨ । ପରାଭବ—2. Defeat; subjugation.
୩ । ହତ୍ୟା—3. Killing, slaughter
୪ । ଅନାଦର—4. Disrespect.
୫ । ତିରସ୍କାର—5. Abuse; reproach.
୬ । ଅପମାନ—6. Insult; humiliation.
୭ । ଅପରାଧ—7. Offence; wrong.
୮ । ପ୍ରତିବନ୍ଧକ—8. Obstruction; opposition.
୯ । ଦୁଃଶୀଳତା—9. Wickedness.
୧୦ । ଦ୍ୱେଷ, ଅସୂୟା—10. Malice; envy.
୧୧ । ଅଶ୍ଳୀଳ ଭାଷା—
11. Obscene language; bad names.
୧୨ । ଧିକ୍କାର—12. Censure; contemptuous words
୧୩ । (+କୃ ଧାତୁ ବିକ୍ଷେପ କରିବା+ଭାବ. ଅ) ଶସ୍ୟାଦିର ତୁଷ ପରିଷ୍କାର କରିବା ନିମନ୍ତେ କୁଲାଦ୍ୱାରା ଉଡ଼ାଇବା—
13. Winnowing of corn.

ନିକାରଣ—ସ ବି ( ନି+କୃ ଧାତୁ=ବଧ କରିବା+ଅନ )—ବଧ;
Nikārana ହତ୍ୟା—Killing; murdering.

ନିକାଲ୍—ଦେ. ଅ ( ହି. ନିକଲ୍ନା ଧାତୁର ଅନୁଜ୍ଞା ନିକଲ୍ )—
Nikāl ନିକଲ୍! ଦୂର୍ ହୋ—(Interjection) Be off!
निकल, **निकल**

ନିକାଲିବା—ଦେ. କି [ସଂ. ନିଷ୍କାଳନ; ନିଷ୍କର୍ଷଣ (Beams; ନିକଲିବାର
Nikālibā ପ୍ରୟୋଜକ ରୂପ] —୧ । ତଡ଼ିଦେବା; ବହିଷ୍କୃତ
बाहिरकरना କରିବା—1. To drive out; to drive away; to expell
**निकालना**
ନିଖାଲିବା } ଅନ୍ୟରୂପ ୨ । ବହିର୍ଗତ କରାଇବା; ବାହାର
ନିକାଳିଦେବା } କରିବା—2. To cause to come out; to bring out

୩ । ଚିପୁଡ଼ିକରି (ରସଆଦି) ବାହାର କରିବା—
3. To wring out; to extract; to press out.
୪ । ଓଟାରି ଆଣିବା—4. To draw out.

ନିକାଶ—ସଂ. ବି (ନି+କାଶ୍ ଧାତୁ=ଶୋଭା ପାଇବା+ଭାବ. ଅ)—
Nikāśa ୧ । ପ୍ରକାଶ—1. Exhibition; appearing.
(ନିକାସ—ଅନ୍ୟରୂପ) ୨ । ଚକ୍ରବାଳ—2 Horizon.
୩ । ସାଦୃଶ୍ୟ—3 Likeness; similarity (Apte)
୪ । ଦୃଷ୍ଟି—4. Sight; appearance.
୫ । ନୈକଟ୍ୟ—5 Vicinity; proximity
୬ । ଦେଖେଇବା—6. Appearance.
୭ । ବିନାଶ; ବଧ—7. Destruction; killing.
ଦେ. ବି (ସଂ. ନିଷ୍କାଶ; ନିଷ୍କାସନ) —୧ । ବହିର୍ଗମନ—
1. Issuing out.
୨ । ସମାଧାନ—2. Accomplishing.
୩ । ସମାପ୍ତି; ଶେଷ—3. Finish; completion
নিকাশ, নিকেশ ୪ । ବିନାଶ, ମୃତ୍ୟୁ—
निकाश, निबटेरा 4 Death; extinction.
୫ । ନିଷ୍ପତ୍ତି—5 Decision; disposal
୬ । ନିର୍ଦ୍ଧାରଣ; ସ୍ଥିରୀକରଣ—
6. Settlement; adjustment; determination.
୭ । ହିସାବ ଆଦି ସଫା କରିବା ବା ବୁଝାଇଦେବା—
7. Clearing off of accounts; final adjustment and clearance of accounts; explaing of accounts.
୮ । ଋଣ ଆଦିର ପରିଶୋଧ—8. Satisfaction of a debt; repayment; discharge.
୯ । ପରିଶୋଧନ ପାଉତି; ସମାପ୍ତି ରସିଦ—
9. Acquittance roll; receipt of full payment; full satisfaction receipt.
୧୦ । ଜଳ ନିର୍ଗମନ—10. Exit of water.
ବିଣ—୧ । ମୃତ—1. Dead.
୨ । ନିଷ୍ପତ୍ତି କରି ଯାଇଥିବା—
2. Decided; disposed of.
୩ । ପରିଶୋଧିତ—3. Liquidated; cleared off.
୪ । ସମାପ୍ତ—4 Finished; completed.
୫ । ବହିର୍ଗତ—5. Come out.

ନିକାଶ କରିବା—ଦେ. କ୍ରି —୧ । ( ହିସାବ ) ମୀମାଂସା କରିବା—
Nikāśa kariba 1. To settle; to dispose of.
নিকাশ করা ହିସାବ କରିଦେଲେ ମୁଁ ନିକାଶ କରିଦେବି—
निबटेरा करना [illegible] ଫକୀର. ସଂସ୍କରଣ।
୨ । ( ଧନ, ବସ୍ତୁ ) ନିକାଶ କରିବା—
2. To destroy; to exhaust.
( ନିକାଶ କରିଦେବା—ଅନ୍ୟରୂପ )—୩ । (ମନୁଷ୍ୟ, ଜୀବ ) ମାରି ପକାଇବା—3 To kill.
୪ । ( ପାଣି ) ଖୋଲାସ କରିବା—4 To discharge.
୫ । ( କାର୍ଯ୍ୟ ) ଶେଷ କରିବା—5. To finish.

ନିକାଶ ପାଇବା—ଦେ. କ୍ରି.—୧ । ବିନଷ୍ଟ ହେବା—
Nikāśa pāiba 1 To be destroyed,
নিকাশ পাওয়া ୨ । ମୃତ ହେବା—2 To die.
निबटना ୩ । ସମାପ୍ତ ହେବା—3. To be finished.
୪ । ବୋହିଯିବା—4. To be discharged; to be drained.

ନିକାଶ ପ୍ରକାଶ—ଦେ ବି. ( ସହଚର ଶବ୍ଦ; ଅନର୍ଥକ ଦ୍ୱିତୀୟ ଶବ୍ଦ )
Nikāśa prakāśa ୧ । ଶେଷ ମୀମାଂସା—
নিকাশ প্রকাশ 1. Final disposal or settlement.
निबटेरा ୨ । କୌଣସି ସ୍ଥାନରୁ ଜଳଯାକ ସମ୍ପୂର୍ଣ୍ଣରୂପେ ବୋହିଯିବାର ବାଟ—2 An exit for water from a place.

ନିକାଶ ହେବା—ଦେ. କ୍ରି.—ନିକାଶ ପାଇବା (ଦେଖ)—
Nikāśa heba Nikāśa pāiba (See)

ନିକାଶି—ଦେ. ବିଣ. ଓ ବି—ନିକାଶ ( ଦେଖ )—
Nikāśi Nikāśa (See)
ନିକାଶି ଉମସୁଲତା ସକାଶେ ଏବେ ଜଗତ କାହିଁକି ?
ଲୀଳା ସଂସାରଚକ୍ର।
ଦେ. ( କଚେରୀ ) ବି—(ଦଲିଲ ଆଦିରେ ବ୍ୟବହୃତ ଯଥା—ବିକ୍ରେୟ ସମ୍ପତ୍ତିରେ କେହି ଦାବୀଦାର ଉପସ୍ଥିତ ହେଲେ ବା କୌଣସି ବାଧା ଜାତ ହେଲେ ତହିଁର ଖଲସି ଓ ନିକାଶିର ଭାର ଆମ୍ଭ ଠାକୁର ଓ ଆମ୍ଭର ଆଲ, ଓାରସ ଉତ୍ତରାଧିକାରୀମାନଙ୍କ ଉପରେ ରହିଲା । )
ମୀମାଂସା—Disposal; settlement

ନିକାଶିବା—ଦେ. କ୍ରି—୧ । ଶେଷ କରିବା—
Nikāśiba 1. To finish.
( ନିକାଶି ଦେବା—ଅନ୍ୟରୂପ ) ୨ । ମୀମାଂସା କରିବା—
নিকাশকরা निबटाना 2. To settle.
ନିକାଶିଦେବାକୁ ଗଲେ ଶମନ ସକାଶେ—ରାଧାନାଥ. ଦେବୀସଂହାର

ନିକାଷ—ସଂ. ବି (ନି+କଷ୍ ଧାତୁ=ଘଷିବା+ଭାବ. ଅ)—୧ । ଘର୍ଷଣ—
Nikāsha 1. Friction; rubbing.
୨ । କର୍ଷଣ—2. Ploughing.

ନିକାସ—ସଂ. ବିଣ (ନି+କାସ୍ ଧାତୁ=ଦୀପ୍ତି ପାଇବା+ଅ)—୧ । ତୁଲ୍ୟ.
Nikāsa (ଣାକାସ—ଅନ୍ୟରୂପ) Similar; like.
ସଂ. ବି—ନିକାଶ (ଦେଖ)—Nikāśa (See).

ନିକି—ଦେ. ଅ ( ସଂ. ନୁ; କମ୍ପା ନନ୍ଦଂ; ନନ୍ଦଂ )—
Niki ୧ । (ପ୍ରଶ୍ନାର୍ଥକ) କି; କଥଣ—
1. Interjection used in interrogative.
ପର ଭୁଆଁ ନକି କାହିଁ ପର—ଭକ୍ତ. ସୁବର୍ଣ୍ଣରେଖା ।
୨ । (ସମ୍ଭାବନାର୍ଥକ) ପରା—
2. Interjection indicating expectation.
ଜିବ ବରହେ କୁଣ ମୋର ମରିବ
ସଙ୍ଗେ ନକି ଉଡ଼ିଥିବ ଯୁବତୀ—ରାଧାନାଥ. ମେଘଦୂତ ।

୩ । (ସନ୍ଦେହାର୍ଥକ) ସତେ ?—3. (doubt) Is it so ?

ବଚନ ମଧୁର ସୁମରୁ ସୁମରୁ ପ୍ରାଣ ନିକି ରହିପାରିବ – ଉକ୍ତଚରଣ. ମଥୁରାମଙ୍ଗଳ ।

୪ । (ନିଶ୍ଚୟାର୍ଥକ) ନିଶ୍ଚେ; ନାହିଁ କି—
4. Certainly; no doubt; is it not ?

ଆଦରେ ଏହାକୁ କରନ୍ତିନିକି ମୁଁ ଗଳାହାର – ରାଧାନାଥ ରଥ

୫ । (ପ୍ରଶ୍ନରୂପରେ ପ୍ରୟୋଗ) ନାହିଁ; କି ?—5. No.

ତା ଶୁଣି ଗଣକେ ବୋଇଲେ ଅମ୍ଭେମାନେ
ଗଣନ୍ତୁଁ ନିକି ତାଙ୍କୁ ଭୂମ୍ୟର ବଚନେ – କୃଷ୍ଣସିଂହ ମହାଭାରତ ବନ ।

୬ । (ଅଶଙ୍କାଜନିତ ପ୍ରଶ୍ନାର୍ଥକ) ସମ୍ଭବତଃ—6. Perhaps

ପାସୋରିଲ ନିକି ମହିମା ପିତୃ ପିତାମହର – ମଧୁସୂଦନ. ଉତ୍କଳଗାଥ

**ନିକିଟା**—ଦେ. ବି ଓ ବିଣ—ନିକୁଟା (ଦେଖ)
Nikiṭā Nikuṭā (See)

**ନିକିଟିବା**—ଦେ. କ୍ରି. (ସ. ନିର୍ + କୃଷ୍ ଧାତୁ; ନିଷ୍କର୍ଷଣ)—
Nikiṭibā ନିକୁଟିବା (ଦେଖ)—Nikuṭibā (See)

[ଦ୍ର—ଏହା ଦାନ୍ତ ଶବ୍ଦ ପରେ ବ୍ୟବହୃତ ହୁଏ ।]

**ନିକିତି**—ଦେ. ବି. (ସ. ନିଷ୍କ=ସ୍ୱର୍ଣ୍ଣ ମୁଦ୍ରା + ମିତି=ପରିମାଣ କରିବା; କିମ୍ବା ନିଷ୍କ + ପାର୍ଶ୍ୱ)—
Nikiti
(ନିକ୍ତି—ଅନ୍ୟରୂପ) ବଣିଆର ତରାଜୁ, ସୁନା ରୁପା ଓଜନ କରିବାର ସୂକ୍ଷ୍ମ ତୁଳାଦଣ୍ଡ; ଛୋଟ ତରାଜୁ—
निकति Goldsmith's balance; a small pair of scales; a small balance

ଜାଣିଥିଲକି ? କବି ସୁନା କବି ପିତଳ ବେଳ
ନିକିତି ପକେଇ ତୁଳ ଥିଲକି ?—ଭଗ ।

**ନିକିର୍**—ପ୍ରାଦେ. (ସମ୍ବଲପୁର) ଅ (ନିକିରିବା କ୍ରିୟାର ଅନୁଜ୍ଞାର୍ଥକ ରୂପ,—
Nikir ନିକଳ୍ ! (ଏଠାରୁ) ବାହାରି ଯା—
Get away from this place.

(ଯଥା—ଇନୁ ନିକିର୍=ଏଠାରୁ ବାହାରି ଯା ।)

**ନିକୁଛ(ଚ୍ଛ)**—ଦେ. ବିଣ. (ସ ନିକୃଷ୍ଟ, କୁତ୍ସିତ)—୧ । ତୁଚ୍ଛ; ହେୟ—
Nikuchha(chchha) 1. Despicable, mean
ନିକୁଛିଆ, ନିକୋଛ, ନିକୋଛିଆ, ନିକୁସ } ଅନ୍ୟରୂପ
୨ । ନଗଣ୍ୟ—
2. Of no value.

ତେବେ କର୍ଣ୍ଣ ବୃଜକାନ୍ତା ନିକୁଛ ଜନ ବନିତା
ହୋଇଣ ଉଚ୍ଛିଷ୍ଟ ଅଙ୍ଗ ପ୍ରଭୁରେ ଦେଇ । ପ୍ରାଚୀ. ରହସ୍ୟମଞ୍ଜରୀ ।

୩ । କୃପଣ; ହୀନଦୃଷ୍ଟିଆ—
3. Miserly; low; niggardly.

୪ । ଅନୁଚିତ—4. Improper

୫ । ଅତି ଊଣା—5. Very little.

ଅତି ନିକୁଛରେ ହବେଲତ ଜାତ ଗୋସାଇଁମାନଙ୍କ ମଣ ଧାଇତ କରିଇବ ।
ଫକୀରମୋହନ. ଗଳ୍ପସ୍ୱଳ୍ପ ।

**ନିକୁଛ(ଚ୍ଛ) ପକ୍ଷରେ**—ଦେ. ଅ—ଅତି ହୀନ ଦୃଷ୍ଟିରେ; ଅତି ସାମାନ୍ୟ ଦୃଷ୍ଟିରେ ମଧ—
Nikuchha(chchha) pakshare At the lowest estimate; in the least.
ନିକୁଛ ପକ୍ଷେ, ନିକୁଛରେ, ନିକୋଛରେ } ଅନ୍ୟରୂପ

**ନିକୁଞ୍ଚ**—ସ. ବି. (ନି + କୁଞ୍ଚ ଧାତୁ=ଆକର୍ଷଣ କରିବା + କରଣ. ଅ)—
Nikuñcha କୁଞ୍ଚି କାଠି—A key.

**ନିକୁଞ୍ଚକ**—ସ. ବି. (ନି+କୁଞ୍ଚ୍ ଧାତୁ=ସଂଯତ କରିବା+କର୍ତ୍ତୃ. ଅକ)—
Nikuñchaka ୧ । ପରିମାଣବିଶେଷ; ଏକ କୁଡ଼ବର ¼ ଅଂଶ—
1. A measure of capacity equal to ¼ of a Kuḍaba.

[ଦ୍ର—ଏଥିର ଅପଭ୍ରଂଶ ଓଡ଼ିଆ ଶବ୍ଦ କୁଞ୍ଚି ।]

୨ । ଜଳ ବେତସ (ହି. ଶବ୍ଦସାଗର)—
2. Aquatic ratan.

**ନିକୁଞ୍ଚିତ**—ସ. ବିଣ. (ନି + କୁଞ୍ଚ ଧାତୁ=ଆକର୍ଷଣ କରିବା + କର୍ମ ତ)—
Nikuñchita ୧ । ସଙ୍କୁଚିତ—1. Contracted.
୨ । କୁଞ୍ଚୁକୁଞ୍ଚିଆ—2. Curled

**ନିକୁଞ୍ଜ**—ସ. ବି. (ନି=ଅର୍ଥହୀନ ଉପସର୍ଗ + କୁଞ୍ଜ)—
Nikuñja ୧ । କୁଞ୍ଜ; ଲତା ଗୃହ; ଲତା ମଣ୍ଡପ—
1. Bower; thicket; an arbour.

୨ । ଖିଲ୍ଲାଣ ଥିବା ଘର—
2 A vault; cavern (Apte)

[ଦ୍ର—ବୃକ୍ଷ ଲତାଦି ଦ୍ୱାରା ଘର ପରି ହୋଇଥିବା ସ୍ଥାନକୁ ଓ ଲତାଦି ଦ୍ୱାରା ସବୁ ଆଡ଼େ ଆଚ୍ଛାଦିତ ବା ମଣ୍ଡିତ ମଣ୍ଡପକୁ ନିକୁଞ୍ଜ ବୋଲାଯାଏ ।]

ଦେ. ବିଣ—କୃପଣ, କାର୍ପଣ୍ୟ—Niggardly; stingy.

**ନିକୁସ**—ଦେ. ବିଣ (ସ. ନିକୃଷ୍ଟ)—ନିକୃଷ୍ଟ; ହୀନ; ହେୟ—
Nikutsa Low; mean

ବଳଙ୍କେ ବର୍ଣ୍ଣିବେ ନିକୁସେ—ଉତ୍କ. ବୈଦେହୀଶବିଳାସ

**ନିକୁମ୍ଭ**—ସ ବି (ନି+କୁ=ପୃଥିବୀ + ଭୂ ଧାତୁ ହେବା + ଅ)—
Nikumbha ୧ । କୁମ୍ଭକର୍ଣ୍ଣର ଏକ ପୁତ୍ର—
1. Name of a son of Kumbhakarṇa.

[ଦ୍ର—ଏହାକୁ ହନୁମାନ୍ ବଧ କରିଥିଲେ; ଏ ରାବଣର ମନ୍ତ୍ରୀ ଥିଲେ—ହି ଶ. ।]

୨ । ଦନ୍ତୀଗୁଳ୍ମ, ଜୟପାଳ—2. Croton plant.

୩ । ଗଣାଧିପ, ଶିବାନୁଚରବିଶେଷ—
3. Name of an attendant of Siba.

୪ । ପ୍ରହ୍ଲାଦର ଏକ ପୁତ୍ର (ହି. ଶ.)—
4. Name of a son of Prahlāda.

୫ । କୃଷ୍ଣଙ୍କଦ୍ୱାରା ହତ ଷଟପୁରର ଅସୁର ରାଜା (ହି. ଶ.)—
5. Name of a demon-king killed by Kṛushṇa.

୬ । ହରିବଂଶଲିଖିତ ହର୍ଯ୍ୟଶ୍ୱ ରାଜାଙ୍କ ପୁତ୍ର (ହି. ଶ.)—
5 Name of a prince mentioned in the Haribaṁsa,

୭ । ବିଶ୍ୱଦେବବିଶେଷ (ହି. ଶ.)—
7. Name of a Biśwadeba Deity

୮ । କୌରବ ସେନାପତି ଜଣେ ରାଜା (ହି. ଶ.)—
8. Name of a king who commanded the force of the Kaurabas.

୯ । କାର୍ତ୍ତିକେୟଙ୍କ ଗଣବିଶେଷ (ହି. ଶ.)—
9. Name of an attendant of Kārttikeya

୧୦ । ସୁନ୍ଦ ଉପସୁନ୍ଦ ରାକ୍ଷସଙ୍କ ପିତା—10. Name of the father of demons Sunda and Upasunda (Apte).

**ନିକୁମ୍ଭିଲା**—ସ. ବ. ସ୍ତ୍ରୀ. ( ନି+କୁମ୍ଭ=ମାଟିଆ+ଇଲ+ଆ ) —
Nikumbhilā ୧ । ଲଙ୍କାର ଉପବନ ବା ଗୁମ୍ଫାବିଶେଷ (ଏଠାରେ ଇନ୍ଦ୍ରଜିତ ଯଜ୍ଞ କରୁଥିଲେ)—
1. The name of a garden or cave in Lankā where Indrajita performed jajña.
[ ଦ୍ର—ଏହା ଲଙ୍କାର ପଶ୍ଚିମାଂଶରେ ଥିଲା ଓ ଏଠାରେ ଭଦ୍ରକାଳୀ ଦେବତା ପୂଜା ପାଉଥିଲେ । ]
୨ । ଲଙ୍କାସ୍ଥ ରାକ୍ଷସମାନଙ୍କର କୁଳଦେବତାବିଶେଷ—
2. Name of a Goddess worshiped by the demons of Lankā.

**ନିକୁମ୍ଭିଲା ବଟ**—ସ. ବି—ନିକୁମ୍ଭିଳା ଉପବନ ମଧ୍ୟସ୍ଥ ବରଗଛ (ଏହା
Nikumbhilā bata ମୂଳରେ ଇନ୍ଦ୍ରଜିତ ଯଜ୍ଞ କରୁଥିଲେ)—
A banyan tree in the Nikumbhilā garden.

**ନିକୁମ୍ଭୀ**—ସ. ବି—୧ । ଦନ୍ତୀଗୁଳ୍ମ—
Nikumbhi 1. Croton plant.
୨ । ( ନାମ ) କୁମ୍ଭକର୍ଣ୍ଣର କନ୍ୟା—
2. Name of Kumbhakarnna's daughter.

**ନିକୁରମ୍ବ**—ସ. ବି. ( ନି+କୁର୍ ଧାତୁ=ଶବ୍ଦ କରିବା+ କର୍ମ. ଅମ୍ବ)—
Nikuramba ୧ । ସମୂହ—1. Multitude.
( ନିକୁରମ୍ବକ—ଅନ୍ୟରୂପ ) ୨ । ପଲ୍ଲ—2. A herd; flock.
୩ । ଗଦା; ରାଶି—3. Heap; mass.

**ନିକୁଲା**—ଦେ.ବିଣ. (ସ. ନିଷ୍କୁଳ) (ଗାଳିରେ ବ୍ୟବହୃତ)—୧ । ଅକୁଳ;
Nikulā ନୀଚକୁଳ ଜାତ—1. Base-born.
ଆକୁଳା ୨ । ଯାହାର କୁଳଶୀଳ ଜଣା ନାହିଁ; ଅଜ୍ଞାତକୁଳ—
ଅଜାତ 2. Of unknown lineage.

**ନିକୂଜିତ**—ସ. ବିଣ.—(ନି+କୂଜ୍ ଧାତୁ+କର୍ମ. ତ)—ପକ୍ଷୀଦ୍ୱାରା ଗୀତ—
Nikūjita Warbled; sung (M. W.)

**ନିକୂଳ**—ସ. ବିଣ. (ନି+କୂଳ)—ପର୍ବତର କୂଳ ଅଭିମୁଖେ ବହି ଯାଉ
Nikūla ଥିବା—Going downhill (M. W.)
(ନିକୂଳା—ସ୍ତ୍ରୀ) (ବିପରୀତ—ଉତ୍କୂଳ)

**ନିକୃତ**—ସ. ବିଣ. ( ନି+କୃ ଧାତୁ+କର୍ମ. ତ )—୧ । ତିରସ୍କୃତ—
Nikṛuta 1. Abused; censured.
(ନିକୃତା—ସ୍ତ୍ରୀ) ୨ । ଅବମାନିତ—2. Insulted; humiliated.
୩ । ନିଗୃହୀତ; ଲାଞ୍ଛିତ—3 Troubled, punished.
୪ । ପରାଜିତ—4. Defeated.
୫ । ଅପକୃତ—5. Injured; wronged.
୬ । ବହିଷ୍କୃତ— [illegible]
6. Driven out; expelled; removed.
୭ । ପ୍ରତାରିତ—7. Deceived; cheated.
୮ । ( ନି+କୃ ଧାତୁ+କର୍ତ୍ତୃ. ଅ ) ବଞ୍ଚକ—
8. Deceptive; dishonest.
୯ । ନୀଚ—9. Mean; low; base.
୧୦ । ଦୁଷ୍ଟ—10 Wicked; vile.
ସ. ବି. ( ନି+କୃ ଧାତୁ+ଭାବ. ତ )—ନିକୃତି ( ଦେଖ )
Nikṛuti ( See )

**ନିକୃତ ମତି**—ସ. ବିଣ. ପୁଂ ଓ ସ୍ତ୍ରୀ ( ବହୁବ୍ରୀହି, ନିକୃତ+ମତି )—
Nikṛuta mati ଦୁଷ୍ଟବୁଦ୍ଧି—Depraved in mind.
( ନିକୃତପ୍ରଜ୍ଞ, ନିକୃତପ୍ରଜ୍ଞ—ଅନ୍ୟରୂପ )

**ନିକୃତି**—ସ. ବିଣ. ( ନି+କୃ ଧାତୁ+ଭାବ. ତ )—ନିକୃତ ( ଦେଖ )
Nikṛuti Nikṛuta (See)
ବି—୧ । ନିକାର ( ଦେଖ )—1. Nikāra (See)
୨ । ନିର୍ଧନତା—2. Poverty; indigence.
୩ । ଶାଠ୍ୟ—3. Deceit.
୪ । ଘୃଣା—4 Contempt.
୫ । ତିରସ୍କାର—5. Abuse, reproach.
୬ । ଅପକାର—6 Injury.
୭ । ନିନ୍ଦା—7. Blame.
୮ । ବସୁବିଶେଷ—8 Name of a Basu Deity
୯ । ନୀଚତା; ହୀନତା—9. Meanness.
୧୦ । ଦୈନ୍ୟ—10. Wretchedness; misery.
୧୧ । ଦୁଷ୍ଟତା; ଖଳତା—11. Wickedness.
୧୨ । ଅବମାନନା—12. Insult.
୧୩ । ଲାଞ୍ଛନା—13. Humiliation.
୧୪ । ବହିଷ୍କରଣ—14 Removal; expulsion.
୧୫ । ଅସ୍ୱୀକରଣ—15. Rejection, disavowal.
୧୬ । ପୃଥିବୀ—16. The earth (Apte).
୧୭ । ପ୍ରତାରଣା; ଠକାମି—
17. Fraud, dishonesty.

**ନିକୃତି ଜୀବନ**—ସ. ବିଣ. ପୁଂ ( ବହୁବ୍ରୀହି; ନିକୃତି+ଜୀବନ )—
Nikṛuti jībana ୧ । ପ୍ରତାରଣାଦ୍ୱାରା ଜୀବନୋପାୟ ନିର୍ବାହକାରୀ—
( ନିକୃତି ଜୀବନା—ସ୍ତ୍ରୀ ) 1 Subsisting by fraud or dishonesty
୨ । ପ୍ରତାରଣକାରୀ—2. Acting deceitfully.

**ନିକୃତୀ**—ସ. ବିଣ. ପୁଂ ( ନିକୃତ+ଇନ୍; ୧ମା, ୧ବ )—
Nikṛuti ନିକୃତ ୮।୯।୧୦ ( ଦେଖ )
( ନିକୃତିନୀ—ସ୍ତ୍ରୀ ) Nikṛuta 8, 9, 10 ( See )
( ନିକୃତିମାନ୍—ଅନ୍ୟରୂପ )

**ନିକୃତ୍ତ**—ସ. ବିଣ ( ନି+କୃତ୍ ଧାତୁ=ଛେଦନ କରିବା+କର୍ମ. ତ )—
Nikṛutta ୧ । ଛିନ୍ନ—1. Torn; severed.
୨ । ଖଣ୍ଡିତ—2. Broken; cut off; rent.
୩ । ମୂଳରୁ ଛିନ୍ନ ( ଦ୍ର ଶବ୍ଦସାଗର )—
3. Cut from the root; uprooted.

**ନିକୃତ୍ତମୂଳ**—ସ. ବିଣ (ବହୁବ୍ରୀହି; ନିକୃତ୍ତ+ମୂଳ)—ମୂଳରୁ ଛେଦିତ—
Nikṛuttamūla Cut up by the roots
( ନିକୃତ୍ତମୂଳା—ସ୍ତ୍ରୀ )

ନିକୃନ୍ତନ—ସ. ବି. ( ନି+କୃତ୍ ଧାତୁ+ଭାବ. ଅନ ) —
Nikṛuntana ୧ । ଘର୍ଷଣ—1. Scratching
୨ । ଛେଦନ—2 Cutting down
୩ । ବିନାଶନ—3 Destroying
ଯା ଝଡକ କେବେ ଲବେ ନ ପରଇ ମ୍ଳାନ
କୁରକାବ ନଖ ରଜ କାନ୍ତି ନିକୃନ୍ତନେ—ଘୋଳାମ, ମହାସାନ ।
୪ । ଛେଦନ ଯନ୍ତ୍ର—
4 An instrument for cutting ( Apte ).
୫ । ନରକବିଶେଷ—
5 Name of a hell ( M W ).

ନିକୃନ୍ତୀ—ସ. ବିଣ. ପୁଂ (ନି+କୃତ୍ ଧାତୁ+କର୍ତ୍ତୃ ଇନ; ୧ମା. ୧ବ)—
Nikṛunti ଛେଦନକାରୀ—Tearing asunder.
( ନିକୃନ୍ତମା—ସ୍ତ୍ରୀ ) ସ. ବିଣ ପୁଂ—୧ । ଛେଦନକାରୀ—
1 Cutting down.
୨ । ବିନାଶକ—2. Destroying

ନିକୃଷ୍ଟ—ସ. ବିଣ. ( ନି+କୃଷ୍ ଧାତୁ=କର୍ଷଣ କରିବା, ଅବଜ୍ଞା କରିବା
Nikṛushṭa +କର୍ମ. ତ )—
(ନିକୃଷ୍ଟା—ସ୍ତ୍ରୀ) ୧ । ସମାଜରୁ ତାଡ଼ିତ—1. Excommunicated
ଅପକୃଷ୍ଟ, ପ୍ରକୃଷ୍ଟ } ବିପରୀତ ୨ । ଅଧମ—2. Vile; debased.
୩ । ନୀଚ—3. Low, mean.
୪ । ମନ୍ଦ—4 Bad; wicked.
୫ । ଜଘନ୍ୟ—5. Ugly.
୬ । ଅପକୃଷ୍ଟ—6. Deteriorated, inferior.
୭ । ଘୃଣିତ—7. Despised.
୮ । ଇତର—8 Vulgar.
୯ । ନିକଟବର୍ତ୍ତୀ—9 Near; adjacent.
ସ. ବି—ନୈକଟ୍ୟ—Proximity (Apte

ନିକୃଷ୍ଟତା—ସ. ବି ( ନିକୃଷ୍ଟ+ଭାବ. ତା )—୧ । ନୀଚତା—
Nikrushtatā 1 Vileness, lowness
( ନିକୃଷ୍ଟତ୍ୱ—ଅନ୍ୟରୂପ ) ୨ । ଅପକୃଷ୍ଟତା—2. Inferiority.
୩ । ମନ୍ଦତା—3. Badness

ନିକୃଷ୍ଟ ପ୍ରବୃତ୍ତି—ସ. ବି—କାମ, ବୁଭୁକ୍ଷା, ସ୍ୱାର୍ଥପରତା, ଜିଘାଂସା,
Nikṛushṭa prabṛutti ଆସଙ୍ଗଲିପ୍ସା ପ୍ରଭୃତି ମନୁଷ୍ୟର ନୀଚ
ଓ ସ୍ୱାର୍ଥପର ପ୍ରବୃତ୍ତି ସକଳ; ପାଶବ ବୃତ୍ତି—
The lower or animal propensities in man
[ ଦ୍ର—ଆତ୍ମରକ୍ଷା ଓ ପରିବାର ପ୍ରତିପାଳନ ଏହି ବୃତ୍ତିର ପ୍ରଧାନ ପ୍ରୟୋଜନ-ପ୍ରକୃତିବାଦ । ]

ନିକେତ—ସ. ବି. ( ନି+କିତ୍ ଧାତୁ=ବାସ କରିବା+ଅଧିକରଣ.
Niketa ଅ)—ନିକେତନ ( ଦେଖ )—Niketana (See)

ନିକେତନ—ସ. ବି. ( ନି+କିତ୍ ଧାତୁ=ବାସ କରିବା+ଅଧିକରଣେ.
Niketana ଅନ )—୧ । ଗୃହ—1. House; home.
୨ । ଆବାସ—2. Abode; residence; habitation; dwelling.

୩ । ପଲାଣ୍ଡୁ: ପିଆଜ—3. Onion.

ନିକେଲ୍—ବୈଦେ. ବି (ଇଂ) —ଏକପ୍ରକାର ମିଶ୍ରଧାତୁ—
Nikel Nickel
निकेल [ ଦ୍ର—ଏହା ସୁରମା, କୋଇଲା, ଗନ୍ଧକ ଓ ଶଙ୍ଖୁଆ
निकल ମିଶ୍ରିତ ଅବସ୍ଥାରେ ଖଣିରୁ ମିଳେ । ଏହା ଶୋଧିତ ହେଲେ ରୂପା ପରି ଉଜ୍ଜ୍ୱଳ ଦିଶେ । ରୂପା ଅପେକ୍ଷା ଏହା ଟାଣୁଆ ଓ ଅଧିକ ଉତ୍ତାପରେ ତରଳେ ଓ ଏହା ଲୁହା ପରି ଚୁମ୍ବକ ଶକ୍ତି ଗ୍ରହଣ କରେ । ୧୭୫୧ ଖ୍ରୀଷ୍ଟାବ୍ଦରେ ଜଣେ ଜର୍ମାନ୍ ଏହା ଆବିଷ୍କାର କରିଥିଲେ । ଏ ଧାତୁ କାନାଡ଼ାର, ଯୁକ୍ତରାଷ୍ଟ୍ର ଓ ସିଂହଳରେ ମିଳେ । ଏଥିରେ ଅଙ୍ଗାରକାମ୍ଳ ଅଣି, ଦୋଓଣି, ସୁକି ଓ ଅଧୁଲି ତିଆରି ହେଉଅଛି । ତମ୍ବା ସଙ୍ଗେ ଏହାକୁ ମିଶାଇଲେ ଏଥିରେ ରୂପା ପରି ଉଜ୍ଜ୍ୱଳ ଧାତୁ ହୁଏ ( ଜର୍ମାନ୍ ସିଲ୍‌ଭର୍ ) ଓ ଏହା ଆଲୁମିନିଅମ୍ ସହିତ ମଧ୍ୟ ମିଳାଯାଏ—ହି. ଶବ୍ଦସାଗର । ]

ନିକୋ—ପ୍ରାଦେ. ( ସମ୍ବଲପୁର ) ବିଣ—ନିକ ( ଦେଖ )
Niko Nika ( See )

ନିକୋଚ—ସ ବି—ନିକୋଚନ ( ଦେଖ )
Nikocha Nikochana ( See )

ନିକୋଚକ—ସ ବି—ଅଙ୍କୋଠବୃକ୍ଷ; ଧଳାଅଙ୍କୁ ଗଛ—A tree;
Nikochaka Alungium Hexapetalum.

ନିକୋଚନ—ସ. ବି. (ନି+କୁଚ୍ ଧାତୁ=ଶବ୍ଦ କରିବା+ଭାବ. ଅନ)—
Nikochana ସଙ୍କୋଚନ—Sensitiveness; modesty.

ନିକୋଟିନ୍—ବୈଦେ ବି ( ଇଂ )—ତମାଖୁରେ ଥିବା ବିଷ—
Nikotin The poison found in tobacco; nicotine.
निकोटीन निकोटीन

ନିକୋଠକ—ସ. ବି—ନିକୋଚକ ( ଦେଖ )
Nikoṭhaka Nikochaka ( See )

ନିକୋପୀ—ଦେ. ବିଣ. ( ସ. ନିଷ୍କୋପୀ )—କୋପ ବା କ୍ରୋଧହୀନ—
Nikopi Having no anger; of sweet and mild temper.

ନିକ୍କ—ଦେ. ବିଣ—ନିକ ( ଦେଖ )
Nikka Nika ( See )

ନିକ୍କା—ବୈଦେ. ବି—ନିକା ( ଦେଖ )
Nikkā Nikā ( See )

ନିକ୍ତ—ସ. ବିଣ. ( ନିଜ୍ ଧାତୁ=ଧୋଇବା+କର୍ମ. ତ )—
Nikta ୧ । ଧୌତ—1. Washed.
୨ । କ୍ଷାଳିତ; ପରିଷ୍କୃତ—2. Cleansed.

ନିକ୍ୱଣ—ସ. ବି. ( ନି+କ୍ୱଣ ଧାତୁ=ଶବ୍ଦ କରିବା+ଭାବ. ଅ )—
Nikwaṇa ୧ । ବୀଣା ଧ୍ୱନି; ତନ୍ତ୍ରୀର ଝଙ୍କାର—
ନିକ୍ୱାଣ, ନିକ୍ୱାଣନ, ନିକ୍ୱାଣନା } ଅନ୍ୟରୂପ 1. Musical note of stringed instruments; the twanging sound of a harp.
୨ । ଧ୍ୱନି; ନିନାଦ—2. Sound; tone; tune.

ନିକ୍ରମଣ—ସ. ବି. (ନି+କ୍ରମ ଧାତୁ=ସଞ୍ଚରଣ କରିବା+ଅଧି. ଅନ)—
Nikramaṇa ଦେଶ; ସ୍ଥାନ—Place; locality.

**ନିକ୍ରାଇବା**—ପ୍ରାଦେ. ( ସମ୍ବଲପୁର ) କ୍ରି. ( ଭୁଲ ହି. ଏହି ଅର୍ଥରେ
Nikrāibā ନିକ୍‌ରାନା )—ନିକାଳିବା ( ଦେଖ )
Nikālibā ( See )

**ନିକ୍ରିବା**—ପ୍ରାଦେ. ( ସମ୍ବଲପୁର ) କ୍ରି. ( ଭୁଲ, ଏହି ଅର୍ଥରେ
Nikribā ନିକରୁନା )—ନିକଳିବା ( ଦେଖ )
Nikalibā ( See )

**ନିକ୍ରୋଧ**—ଦେ ବିଣ. ( ସ. ଅକ୍ରୋଧନ, ନିକ୍ରୋଧନ )—
Nikrodha ଅକ୍ରୋଧନ—Not habituated to rage;
(ନିକ୍ରୋଧୀ—ଅନ୍ୟରୂପ) unruffled.

ନିଷ୍କାମ ନିକ୍ରୋଧ ନିର୍ଲୋଭ
ଭୁବନ ଶୋଭନ ଦୁର୍ଲଭ । ଭୂପତି. ପ୍ରେମପଞ୍ଚାମୃତ ।

**ନିକ୍ଷ (ଧାତୁ)**—ସ—ଚୁମ୍ବନ କରିବା—
Niksha (root) To kiss.

**ନିକ୍ଷଣ**—ସ. ବି. ( ନିକ୍ଷ୍ ଧାତୁ+ଭାବ. ଅନ )—ଚୁମ୍ବନ—
Nikshana Kissing.

**ନିକ୍ଷତ୍ର**—ସ, ବିଣ. ( ନି+କ୍ଷତ୍ର )—ନିଃକ୍ଷତ୍ରିୟ ( ଦେଖ )
Nikshatra Nihkshatriya ( See )

ଯେ ଦୋଷେ କଲେ ଶସ୍ତ୍ର ଧର
ନିକ୍ଷତ୍ର କଲେ ବସୁନ୍ଧରା । ଜଗନ୍ନାଥ. ଭାଗବତ ।

**ନିକ୍ଷା**—ସ. ବି. ସ୍ତ୍ରୀ. ( ନିଶ୍ ଧାତୁ=ଲାଗି ରହିବା+କର୍ତ୍ତୃ. ଅ+ଆ; କିମ୍ବା
Nikshā ନିକ୍ଷ୍ ଧାତୁ+କର୍ତ୍ତୃ ଅ+ଆ )—
୧ । ନିଶ; ଉକୁଣିର ଡିମ୍ବ—
1. The egg of louse; a nit.
୨ । ଉକୁଣି—2 Louse.

**ନିକ୍ଷିପ୍ତ**—ସ. ବିଣ. ( ନି+କ୍ଷିପ୍ ଧାତୁ=ଫୋପାଡ଼ିବା+କର୍ମ. ତ )—
Nikshipta ୧ । ଫୋପଡ଼ା ହୋଇଥିବା; ଫିଙ୍ଗାଯାଇଥିବା—
(ନିକ୍ଷେପ—ବି) 1. Cast off; thrown away.
୨ । ଇତସ୍ତତଃ ବୁଣାଯାଇଥିବା—2. Thrown about; scattered about.
୩ । ବର୍ଜ୍ଜିତ; ତ୍ୟକ୍ତ—
3. Left; abandoned; rejected
୪ । ସମର୍ପିତ; ନ୍ୟସ୍ତ—
4 Entrusted; kept in trust.
୫ । ସ୍ଥାପିତ; ଗଚ୍ଛିତ—5 Deposited; placed.
୬ । ଯାମିନ ସ୍ୱରୂପ ଅବନ୍ଧ ରଖାଯିବା; ବନ୍ଧକ ରଖାଯିବା—
6 Pledged; pawned.
୭ । ପ୍ରେରିତ—7, Sent; sent off (Apte).
୮ । ଅତିବାହିତ (ସମୟ)—8. Spent (time).

**ନିକ୍ଷୁଭା**—ସ. ବି. ( ନାମ )—୧ । ସୂର୍ଯ୍ୟ ପତ୍ନୀ (ଭବିଷ୍ୟ ପୁରାଣ)—
Nikshubhā 1. Name of a wife of the Sun-god.
୨ । ବ୍ରାହ୍ମଣୀ—
2. A woman of the Brāhmana caste.

**ନିକ୍ଷେପ**—ସ. ବି. ( ନି+କ୍ଷିପ୍ ଧାତୁ+ଭାବ. ଅ )—
Nikshepa ୧ । ଫିଙ୍ଗିବା; କ୍ଷେପଣ—
1. Throwing out; casting away.
୨ । ବୁଣାଯିବା—
2. Scattering about, dispersion.
୩ । ନ୍ୟାସ; ସମର୍ପଣ; ଗଚ୍ଛିତରକ୍ଷଣ—3. Deposit.
୪ । ତ୍ୟାଗ—4. Desertion; abandonment.
୫ । ବନ୍ଧକ—5. Pledge; pawning
୬ । ସମୟ କ୍ଷେପଣ—6. Spending of time.
୭ । ( ଲୁହ ) ପୋଛିବା—
7. Wiping away ( of tears )
୮ । ସଂସ୍କାର କରିବା ନିମନ୍ତେ ଶିଳ୍ପୀ ନିକଟରେ ଦ୍ରବ୍ୟର ଅର୍ପଣ—
8 Entrusting an article to an artist for repair.
୯ । (+କର୍ମ. ତ) ଗଚ୍ଛିତ ବସ୍ତୁ ବା ଧନ—
9 Deposited thing or sum.
୧୦ । ବନ୍ଧକ ପଦାର୍ଥ—10. Pledged article.

**ନିକ୍ଷେପକ**—ସ. ବିଣ. ପୁଂ. (ନି+କ୍ଷିପ୍ ଧାତୁ+କର୍ତ୍ତୃ. ଅକ; ୧ମା.୧ବ)—
Nikshepaka ଯେ ନିକ୍ଷେପ କରେ—Depositing; pledging;
(ନିକ୍ଷେପିକା—ସ୍ତ୍ରୀ) (ନିକ୍ଷେପୀ—ଅନ୍ୟରୂପ) one who throws.

**ନିକ୍ଷେପଣ**—ସ. ବି. ( ନି+କ୍ଷିପ୍ ଧାତୁ+ଭାବ. ଅନ)—
Nikshepana ନିକ୍ଷେପ (ଦେଖ)—Nikshepa (See)

**ନିକ୍ଷେପଣୀୟ**—ସ. ବିଣ. ( ନି+କ୍ଷିପ୍ ଧାତୁ+କର୍ମ. ଅନୀୟ )—
Nikshepaniya ନିକ୍ଷେପଣ ଯୋଗ୍ୟ—Fit to be thrown,
(ନିକ୍ଷେପ୍ୟ—ଅନ୍ୟରୂପ) entrusted or pledged.

**ନିକ୍ଷେପ୍ତା**—ସ. ବିଣ. ପୁଂ. (ନି+କ୍ଷିପ୍ ଧାତୁ+କର୍ତ୍ତୃ. ତୃ; ୧ମା. ୧ବ)—
Nikshepta ନିକ୍ଷେପକ ( ଦେଖ )
(ନିକ୍ଷେପ୍ତ୍ରୀ—ସ୍ତ୍ରୀ) Nikshepaka ( See )

**ନିଖ**—ଦେ. ବି. (ସ. ନିକ୍ଷା; ଲିକ୍ଷା)—୧ । ଉକୁଣୀଙ୍କ ଡିମ୍ବ; ଲିଖ—
Nikha 1. The eggs of lice; a nit.
(ନିଖୀ—ଅନ୍ୟରୂପ) [ ଦ୍ର—ଉକୁଣୀମାନଙ୍କର ୩ଗୋଟି ଅବସ୍ଥା
ନିକୀ, ନୀକ ହୁଏ, ଯଥା—୧ । ନିଖ—ଡିମ୍ବ ଅବସ୍ଥା, ୨ । ଗଳୀ—
लीख ଡିମ୍ବ ଫୁଟିଥିବା ସାନ ଉକୁଣୀ, ୩ । ଉଙ୍ଗା—ବଡ଼ ଉକୁଣୀ । ]
୨ । ବାଳକ ବାଳକାଙ୍କୁ ଡାକିବା ନାମ—
2 Name given to boys and girls.
ବିଣ—ଅତି କ୍ଷୁଦ୍ର—Tiny; minute.

**ନିଖଟୁ**—ଦେ. ବିଣ—୧ । ଅସମର୍ଥ—1. Incapable.
Nikhatu ୨ । କୁଣ୍ଠି, ଆଳସ୍ୟପରାୟଣ—2. Idle.
(ନିଖାଟୁ—ଅନ୍ୟରୂପ) ୩ । ନିକମା; କର୍ମକୋଢ଼ି—
निखाटू 3. Lazy; doing no work worthless.
निखट्टू ୪ । ଶକ୍ତିହୀନ—4. Powerless.
୫ । ଅପରିଶ୍ରମୀ; ଅଖଟୁ; ପରିଶ୍ରମକାତର—
5. Disliking work; afraid op work.

ହୋଇ ସମଦଶାପନ୍ନ ନିଖଟୁ ପଣରେ
ଅଧୋଗତକୁ ପ୍ରାଧାନ୍ୟ ମଣିଭାନ୍ତେ ହାସ୍ୟ । ଚିନ୍ତାମଣି. ବଜ୍ରନାଭବଧ ।

୬ । ନିକମା; ଅଯୋଗ୍ୟ—6. Worthless.

୬ । ଯେ ଏଣେ ତେଣେ ବୁଲି ବୃଥାରେ ସମୟ ନଷ୍ଟକରେ—
6 Loafing

ନିଖଡ଼ା—ଦେ. ବି—ଜଳଜାତ ଫଳବିଶେଷ—
Nikhardā A kind of aquatic fruit (resembling pineapple).
[ ଦ୍ର—ଏହାର ପତ୍ର ପଦ୍ମ ପତ୍ର ପରି, ତେଣ୍ଟା କଣ୍ଟାଯୁକ୍ତ ଓ ଫଳ ସପୁରି ପରି । ]

ନିଖତର—ଦେ ବିଣ. ପୁଂ ( ସଂ. ନିସ୍ତର )—
Nikhatarā ୧ । ନିଃସହାୟ, ଅସହାୟ (ବ୍ୟକ୍ତି)— 1. Helpless ( person )
୨ । ନିରାଶ୍ରୟ – 2. Without protection or support.
୩ । ଅତି ହୀନ ବା ସାନ (ବ୍ୟକ୍ତି)— 3 Very low (person).
୪ । ନିଖଟୁ ( ଦେଖ ) 4. Nikhatu ( See )
ନିଖଟା, ନିଖତରିଆ, ନିଖତିରିଆ, ନିଖଟିଆ, ନିଖେତର, ନିଖେତେର, ନିଖେଟା, ନିଖେଟ୍ଟିଆ — ଅନ୍ୟରୂପ
( ନିଖତରୀ, ନିଖଟୀ—ସ୍ତ୍ରୀ )

ନିଖନନ—ସଂ. ବି ( ନି+ଖନ୍ ଧାତୁ+ଭାବ. ଅନ )—
Nikhanana ୧ । ମୃତ୍ୟୁର ପୋତିବା; କବର ଦେବା— 1. Burial; interment
୨ । ଖୋଳିବା—2 Digging.
୩ । (+କର୍ମ.ଅନ) ମାଟି; ମୃତ୍ତିକା—(ହି.ଶ)—3 Soil; earth.

ନିଖର(ରେ)ଇବା—ଦେ. କ୍ରି—ନିଖାରିବା (ଦେଖ)
Nikharā(re)ibā Nikhāribā (See)

ନିଖର୍ଚ୍ଚା—ଦେ ବିଣ—ବେଖରଚ୍; ବିନା ବ୍ୟୟରେ ସମ୍ପାଦିତ; ମାଗଣା—
Nikharchā Free of cost; got or done gratis.
(ନିଖରଚ୍—ଅନ୍ୟରୂପ) ଦେ. କ୍ରି. ବିଣ—ବିନା ବ୍ୟୟରେ;
ନିଖରଚା **बेखरचा** ମାଗଣାରେ—Gratis.

ନିଖର୍ବ—ସଂ. ବି. ଓ ବିଣ (ସଂଖ୍ୟାବାଚକ)—ଦଶ ଖର୍ବ ସଂଖ୍ୟା;
Nikharba ୧୦୦୦୦୦୦୦୦୦୦୦୦; ଦଶ ହଜାର କୋଟି ସଂଖ୍ୟା— Hundred thousand millions; huudred billions.
[ଦ୍ର—ସଂଖ୍ୟା ଗଣନାର ବାକ୍ୟ ଯଥା—
ଏକଂ ଦଶଂ ଶତଂ ଚୈବ ସହସ୍ର ମଯୁତଂ ତଥା
ଲକ୍ଷଂ ଚ ନିଯୁତଂ ଚୈବ କୋଟି ରର୍ବୁଦ ମେବଚ
ବୃନ୍ଦଂ ଖର୍ବଂ ନିଖର୍ବଂ ଚ ଶଙ୍ଖଂ ପଦ୍ମଂ ଚ ସାଗରଂ
ଅନ୍ତ୍ୟଂ ମଧ୍ୟଂ ପରାର୍ଦ୍ଧଂ ଚ କ୍ରମାଦଶଗୁଣୋତ୍ତରଂ । ]
[ ଦ୍ର—ମନିଅରୱିଲିଅମ୍ସ ଓ ଆପ୍ଟେନଙ୍କର ଇଂରାଜି Billion (ସଂ. ବୃନ୍ଦ) ଲେଖିଅଛନ୍ତି । ]

୨ (ନିଖର୍ବା—ସ୍ତ୍ରୀ) ବିଣ. ପୁଂ (ନି=ଅତିଶୟ+ଖର୍ବ=ହ୍ରସ୍ୱ)—
୧ । ଅତି ଛୋଟ—1. Dwarfish; very small; tiny.
୨ । ବାଙ୍ଗୁରି; ହ୍ରସ୍ୱ, ଗେଡ଼ା—2. Stunted.

ନିଖଲିଆ—ଦେ. ବିଣ.—(ସଂ. ନିଷ୍କଳ ଓ ଖଳ)—୧ । ଅଖଳା; ନିଷ୍କପଟ
Nikhaliā (ବ୍ୟକ୍ତି)—1. Frank; open-hearted (person).
ଅଖଳୁଆ **खरा**
(ନିଖଳା, ନିଖଲୁଆ—ଅନ୍ୟରୂପ) ୨ । ଉତ୍ତମ ସ୍ୱଭାବ (ବ୍ୟକ୍ତି)
(ନିଖଳୀ, ନିଖଲେଇ—ସ୍ତ୍ରୀ) 2. Good natured (person).
୩ । ଯେ ପରର ଅନିଷ୍ଟ କରେ ନାହିଁ--3. Unoffending.

୪ । ଖଲଅ ବା ନରମ ହୋଇ ନ ଥିବା (ଅନ୍ନ)—
4. Not become gruelly (boiled rice).

ନିଖାଇଲା—ଦେ. ବିଣ.—୧ । ଅଖାଇ; ଯେଉଁ ବ୍ୟକ୍ତି ବେଶି ଖାଇପାରେ
Nikhāilā ନାହିଁ; ଯାହାର ଖୋରାକ ଅଳ୍ପ—1. Unable to eat too much.
ନିଖାଓନ୍ତା **नखानेवाला**
୨ । ଅଖାଇଲା; ଯାହାକୁ ବେଶି ଖାଇବାକୁ ମିଳେ ନାହିଁ—
2. Not getting enough to eat.
(ଯଥା—ନିଖାଇଲା ଘରର ପିଲା ଖଲଅ କାହିଁକି ହୁକଲା ହେଉଛି ?)

ନିଖାତ—ସଂ. ବିଣ. (ନି+ଖନ ଧାତୁ=ଖୋଳିବା+କର୍ମ. ତ)—
Nikhāta ୧ । ଖନିତ, ଖୋଳା ହୋଇଥିବା—1. Dug.
୨ । ନିବେଶିତ; ସ୍ଥାପିତ—2 Placed; fixed.
୩ । ପ୍ରୋଥିତ; ପୋତା ଯାଇଥିବା— 3. Buried; interred.
୪ । ଖୋଳା ହୋଇ ବାହାର କରି ଯାଇଥିବା— 4 Dug up; excavated.
୫ । ଭୂମିରେ ଗାତ ଖୋଳାଯାଇ ପୋତା ଯାଇଥିବା; ରୋପିତ— 5 Planted; infixed.
ବି —୧ । ଜମିର ସୀମା ନିରୂପକ ପରିଖା—1 A trench dug round a field as landmark or boundary.
୨ । ଖାଇ; ନାଳୀ—2. A ditch; a long pit.
ଦେ. ବି (ନିଖାତିଆ)—(କବଲା ଆଦିରେ ବ୍ୟବହୃତ)—ପୋତା ଥିବା ଧନ ଓ ବସ୍ତୁ—Buried treasure and things; treasure trove.
(ଯଥା—ଏ ଜମି ଓ ତହିଁରେ ଥିବା ପୋତା, ନୋତା, ନିଧି, ନିଖାତ, କାଷ୍ଠ, ପାଷାଣ, ତରୁ, ଲତା, ଶଯ୍ୟା, ଉପଶଯ୍ୟା ସମସ୍ତ ସମ୍ପତ୍ତିକୁ ଏ କବାଲା ଦ୍ୱାରା ବିକ୍ରି କଲୁଁ ।)

ନିଖାଦ—ଦେ. ବି—(ସଂ ନିଷାଦ, ଉତ୍ତର ପଶ୍ଚିମ ପ୍ରଦେଶରେ ଓ
Nikhāda ହିନ୍ଦୀରେ 'ଷ' ସ୍ଥଳରେ 'ଖ' ଉଚ୍ଚାରଣ)—୧ । ନିଷାଦ;
ନିଖାଦ ହାତୀର ଗର୍ଜନ ଶବ୍ଦ--1. The deep roaring soud of an elephant.
**निखाद्**
୨ । 'ସା, ରେ, ଗା, ମା, ପା, ଧା, ନି' ର ଶେଷ ସ୍ୱର; ସଙ୍ଗୀତର ୭ମ ସ୍ୱର; 'ନି' ନାମକ ସ୍ୱର—2. The 7th note in the Hindu vocal or instrumental music
୩ । ବେହେଲାର ୪ର୍ଥ ତାର ଘର୍ଷଣର ଶବ୍ଦ—
3. The bass (tone) in violin.

ନିଖାରିବା—ଦେ. କ୍ରି--୧ । (ସଂ ନି+ରେଖା) କୌଣସି ବସ୍ତୁକୁ କାଟିଆଦି
Nikhāribā ଦ୍ୱାରା ରେଖାଙ୍କିତ କରି ଚରିବା ବା ପରୀକ୍ଷା କରିବା--
**निखारना** 1. To examine a thing by scratching it with a pointed stick etc.
ନିଖରାଇବା, ନିଖରେଇବା, ନିଖୁରାଇବା, ନିଖୁରେଇବା —ଅନ୍ୟରୂପ
୨ । (ସଂ. ନିରୀକ୍ଷଣ) ନିରିଖିବା; ନିରୀକ୍ଷଣ କରିବା; ଭଲ ଭଲ କରି ଦେଖିବା; ଲେଉଟପାଉଟ
**निगाहकरना, निगरानी करना** କରି ଦେଖିବା—2. To examine very closely; to scrutinise.

ନିଖାର୍ ନିଖାର୍ ଦେଖେ ସେ କାଗଜ । ଗ୍ରାମ୍ୟ. ଉଦ୍‌ବାର

**ନିଖିଏ**—ଦେ. ବି. (ସଂ ନିଗ୍ଧା)—ଅତି ସାମାନ୍ୟ ପରିମାଣ—
Nikhie A particle; very small quantity
ଏତଟୁକୁ ବିଣ.—ଅତି ସାମାନ୍ୟ—Very little; a bit of; a
ज़रासा particle of; minute.
ଝଙ୍କର ନିଖିଏ ବଥାକୁ ଏତେ ବଡ଼ କରିବା ନ୍ୟାଯ୍ୟ । ଉଗ
କ୍ରି. ବିଣ.—ଅତି ସାମାନ୍ୟ ପରିମାଣରେ—Minutely.
[ଦ୍ର—ଏହି ଶବ୍ଦ ଝଙ୍କର ଶବ୍ଦ ପରେ ସହଚର ରୂପେ ବ୍ୟବହୃତ ହୁଏ; ଝଙ୍କର ନିଖିଏ । ]

**ନିଖିଏ ନା(ନାଁ)ଆଁକୁ**—ଦେ. ବି. ଓ ବିଣ ଓ କ୍ରି. ବିଣ—ଅତି ସାମାନ୍ୟ
Nikhie nā (nān̐) ān̐ku ପରିମିତ ବା ମାତ୍ରାଯୁକ୍ତ—A bit;
ଏତଟୁକୁ a bit of; a little.
ज़रासा
(ନିଖେ ନାଆଁକୁ, ନିଖେ ନାଁକୁ—ଅନ୍ୟରୂପ)

**ନିଖିରି**—ଦେ ବିଣ. ସ୍ତ୍ରୀ (ସଂ ନିଗ୍ଧା)—ଅତି କ୍ଷୁଦ୍ର—
Nikhirī (ନିଖେଇ—ଅନ୍ୟରୂପ) Tiny; minute.
ଦେ. ବି. ସ୍ତ୍ରୀ.—ସ୍ତ୍ରୀମାନଙ୍କୁ ଦିଆଯିବା ନାମ—
A name given to females

**ନିଖିଳ**—ସ. ବିଣ. (ନି+ଖିଲ=ପରିଶିଷ୍ଟ, ଯାହାର କିଛି ମାତ୍ର ପରିଶିଷ୍ଟ
Nikhila ନାହିଁ)—ଅଖିଳ; ସମସ୍ତ; ସମୁଦାୟ; ସମସ୍ତ, ସକଳ,
ସାରା—All; entire; whole.
(ଯଥା—ନିଖିଳ ବ୍ରହ୍ମାଣ୍ଡ, ନିଖିଳ ଜଗତ ।)

**ନିଖୁଣ**—ଦେ. ବିଣ. (ସ. ନିର୍ ଓ କ୍ଷୁଣ୍ଣ)—୧ । ଅକ୍ଷୁଣ୍ଣ; ସମସ୍ତ; ପୂର୍ଣ୍ଣାଙ୍ଗ-
Nikhuṇa 1 Entire; whole.
ନିଖୁଁଣି } ଅନ୍ୟରୂପ ୨ । ଅଖଣ୍ଡ; ଅଭଗ୍ନ—2. Unbroken.
ନିଖୁଣ୍ଟ }
ନିଖୁଣ ସେ ଲେଖିଥିଲ କର ଓଡ଼ଲରେ ।
निखुत् ଅଜୟଚନ୍ଦ୍ର. ଶର ଓ ଗୀତ ।
निखोट ୩ । ଦୋଷ ବା ତ୍ରୁଟିଶୂନ୍ୟ; ନିର୍ଦ୍ଦୋଷ—
3. Flawless; unblemished; free from defects
(ଯଥା—ନିଖୁଣ ରୂପ ।)
୪ । ଅସ୍ପୃଷ୍ଟ—4. Untouched.
୫ । ନୀରୋଗ; ଅନାମୟ—
5. Healthy; free from illness.
୬ । ଯାହାକୁ କେହି ଖୁଣି ପାରେ ନାହିଁ—
6. In which no one can find any fault
୭ । ଅତୁଳନୀୟ—7 Incomparable; nonparell
୮ । ଅନିନ୍ଦ୍ୟ—8. Unblamable; irreproachable.

**ନିଖୁତି**—ଦେ. ବି—ସନ୍ଦେଶ; ଏକପ୍ରକାର ମିଷ୍ଟାନ୍ନ—
Nikhuti A kind of sweetmeat.
निखुँति निखुति (ନିଖୁନ୍ତି—ଅନ୍ୟରୂପ)

**ନିଖୁନ୍**—ପ୍ରାଦେ (ସମ୍ବଲପୁର) ବିଣ—ନିଖୁଣ (ଦେଖ)
Nikhun Nikhuṇa (See)

**ନିଗଡ଼**—ସ. ବି (ନି+ ଗଡ଼ ଧାତୁ=ବନ୍ଧନ କରିବା+କରଣ. ଅ)—
Nigaṛa ୧ । ଲୁହା ଶିକୁଳି—1 Iron chain.
୨ । ଗୋଡ଼ର ବେଡ଼ି—2. Shackles; fetters; foot-chain.
ଦକ୍ଷିଣରୁ ପଡ କର୍ଣ୍ଣ ଲ ଚରଣ ସ୍ଥେଉଡ ଲୌହ ନିଗଡ—ଗ୍ରାମ୍ୟ. ପାଦଙ୍କ ।
୩ । ହସ୍ତୀର ପଦବନ୍ଧନ ରଜ୍ଜୁ—
3. The heel-chain of an elephant.
୪ । ହରକାଠ—4 A pair of stocks.
ବିଣ—୧ । ଦୃଢ଼ବଦ୍ଧ—1. Firmly tied.
୨ । ଶୃଙ୍ଖଳାଦ୍ୱାରା ବଦ୍ଧ—2. Fettered; chained.
ଦେ. ବିଣ (ସ. ଗାଢ଼) ଘୋର, ଗଭୀର (ନିଦ)—
Deep (slumber).

**ନିଗଡ଼ନ**—ସ. ବି (ନି+ଗଡ଼ ଧାତୁ+ଭାବ. ଅନ)—ଶୃଙ୍ଖଳାଦ୍ୱାରା ବନ୍ଧନ—
Nigaṛana (ନିଗଡ଼ିତ—ବିଣ) Chaining; fettering

**ନିଗଡ଼ନିଦ**—ଦେ. ବି (ସ. ଗାଢ଼ନିଦ୍ରା)—ଘୋର ନିଦ୍ରା—
Nigaṛa nida Deep sleep; heavy slumber.
(ନିଘୋଡ଼ ନିଦ, ନିଘଡ଼ ନିଦ, ନିଘାଡ଼ ନିଦ—ଅନ୍ୟରୂପ)

**ନିଗଡ଼ବଦ୍ଧ**—ସ. ବିଣ. ପୁଂ—୧ । (ତତ୍ପୁ ତତ୍; ନିଗଡ଼ଦ୍ୱାରା ବଦ୍ଧ)—
Nigaṛabadhda ଲୌହଶୃଙ୍ଖଳାବଦ୍ଧ—
(ନିଗଡ଼ବଦ୍ଧା—ସ୍ତ୍ରୀ) Tied with an iron chain.
(ନିଗଡ଼ବନ୍ଧନ—ବି) ୨ । ଦୃଢ଼ରୂପେ ଆବଦ୍ଧ—
2. Tied strongly or tightly.
୩ । ଗୋଡ଼ରେ ଶିକୁଳି ପଡ଼ିଥିବା ( ବ୍ୟକ୍ତି )—
3 Fettered.

**ନିଗଡ଼ ବନ୍ଧନ**—ସ. ବି—୧ । ଦୃଢ଼ ଶିକୁଳି ବା ଦଉଡ଼ି—
Nigaṛa bandhana 1. A strong chain or rope.
୨ । ଦୃଢ଼ ବନ୍ଧନ; ଯେଉଁ ଗଣ୍ଠି ସହଜେ ଫିଟାଯାଇ ନ ପାରେ—
2. A knot which can not be untied.
୩ । ଲୌହ ଶିକୁଳିଦ୍ୱାରା ବନ୍ଧନ—
3. Tying with an iron chain.

**ନିଗଡ଼ା**—ଦେ. ବି ( ସ. ନିର୍ଦ୍ଦଳନ )—୧ । ଚିପୁଡ଼ାଯାଇ ରସ
Nigaṛā ବାହାର କରାଯିବା; ଚିପୁଡ଼ିବା କର୍ମ—
(ନିଗିଡ଼ା, ନିଗଡ଼ା, ନିଗିଡ଼ା—ଅନ୍ୟରୂପ) 1. Squeezing out of the juice; the pressing out of the juice from a thing
୨ । ରସ କ୍ଷରଣ ହେବା; ରସକ୍ଷରଣ—
2. Oozing out of the juice.
[ଦ୍ର—'କାର୍ତ୍ତିକନିଗଡ଼ା' ଶବ୍ଦର ଅର୍ଥ.—ଓଡ଼ିଶାରେ ଅଘରହୁଥିବା କାର୍ତ୍ତିକ ମାସରେ ବ୍ୟାପିବା ଏକପ୍ରକାର ମାଲେରିଆ ଜ୍ୱର । ବର୍ଷାଦିନେ ଅତ୍ୟଧିକ ଜଳସଂସର୍ଗଦ୍ୱାରା ମନୁଷ୍ୟଦେହରେ ଯେଉଁ ରସାଧିକ୍ୟ ହୋଇଥାଏ, କାର୍ତ୍ତିକ ମାସରେ ଅର୍ଥାତ୍ ବର୍ଷା ପରେ ଶରତ୍‌କାଳରେ ପୃଥିବୀର ରସ ଶୁଖିଆସିବା ( ନିଗିଡ଼ିବା ) ସଙ୍ଗେ ସଙ୍ଗେ ମନୁଷ୍ୟ ଦେହରୁ ମଧ୍ୟ ଉକ୍ତ ରସ ଶୁଖିଯାଏ(ନିଗିଡ଼େ) ଓ ତନ୍ନିମିତ୍ତ ତାପବୃଦ୍ଧି ଓ ଜ୍ୱର ହୁଏ । ସେହି ଜ୍ୱରକୁ କାର୍ତ୍ତିକନିଗଡ଼ା ବୋଲାଯାଏ । ଶରତ୍‌କାଳରେ ଦେହରୁ ରସ ଶୁଖିବା ସ୍ୱାଭାବିକ; କିନ୍ତୁ ଆମ୍ଭେମାନେ ସେହି ସମୟରେ ବର୍ଷାଋତୁର ଅଭ୍ୟାସବଶତଃ ରସାଧିକ ଖାଦ୍ୟ ଗ୍ରହଣକରୁଁ,

ଏଥିପାଇଁ ବର୍ଷାଦିନେ ଦେହରେ ସଞ୍ଚିତ ରସ ଶୁଖି ନ ପାରି ରସାଧିକ୍ୟ ଯୋଗୁଁ ଏ ଜ୍ୱର ହୁଏ । ଏଥିଯୋଗୁଁ କାର୍ତ୍ତିକ ମାସରେ ଖାଦ୍ୟ ସମ୍ବନ୍ଧେ ସଂଯମ (ହବିଷ୍ୟବ୍ରତ) ବା ଦିନାନ୍ତେ ଥ ର ଭୋଜନ ହିନ୍ଦୁମାନଙ୍କ ଶାସ୍ତ୍ରରେ ନିର୍ଦ୍ଦିଷ୍ଟ ହୋଇଅଛି । ]

ନିଂଡା ୩ । ଯେଉଁ ରସ କୌଣସି ପାତ୍ରରୁ ଝର ପଡ଼ୁଥାଏ—
**निचोड़; गाड़ला** 3. Dropping; a liquid dropped from a pot.

୪ । ନିଷ୍କ୍ରିୟ ପାତ୍ରରେ ରହିଯିବା ରସାବଶେଷ— 4. Dregs.

୫ । ଶେଷ ରହିଯିବା ବସ୍ତୁ— 5. Remains; leavings.

୬ । ଯେଉଁ ନାଳଦ୍ୱାରା କୌଣସି ଅଞ୍ଚଳର ସମସ୍ତ ଜଳ ନିଗିଡ଼ିକରି ବୋହିଯାଏ; ସପେଇ ନାଳ— 6. Drainage channel.

୭ । ଜଳମୟ ବସ୍ତୁ ଥିବା ପାତ୍ରକୁ ଅଣେଇଦେଇ ବା ଓଲଟାଇଦେଇ କିଛିକ୍ଷଣ ରଖିବା ଦ୍ୱାରା ଉକ୍ତ ପାତ୍ରରୁ ଜଳୀୟ ବସ୍ତୁ ନିଃଶେଷିତ ହେବା— 7 Emptying out of a liquid from a pot by inverting it or holding it aslant for some time.

୮ । ( ଲକ୍ଷଣାର୍ଥ ) ସାର ବସ୍ତୁ; ସାରାଂଶ— 8 ( figurative ) Essence.

୯ । ( ଲକ୍ଷଣାର୍ଥ )—ସାର ମର୍ମ, ତାତ୍ପର୍ଯ୍ୟ— 9 (figurative) Purport, substance.

ବିଣ—୧ । ଚିପୁଡ଼ା ଯାଇଥିବା ( ରସ )— 1. Squeezed out ( juice ).

୨ । ଗାଲୁ (ଜମି); ଯେଉଁ ଜମିରୁ ପାଣିଯାକ ନିଗଡ଼ିଯାଏ— 2 Slopping (land).

୩ । ସମ୍ପୂର୍ଣ୍ଣରୂପେ ଯହିଁରୁ ପାଣି ନିଗିଡ଼ି ଥାଏ; ଜଳାଦି ନିଃଶେଷିତ ହୋଇଥିବା (ପାତ୍ରାଦି)— 3. Drained out; squeezed out.

୪ । ପାତ୍ରାଦିକୁ ଅଣାଇ ଦେବା ବା ଲେଉଟାଇ ଦେବାଦ୍ୱାରା ଯହିଁରୁ କ୍ଷରିତ (ରସାଦି)—4. (liquid) Dropped or oozed from an inverted or inclined pot.

ନିଗ(ଗି)ଡ଼ା(ଡ଼େ)ଇବା—ଦେ. କ୍ରି—୧ । (ନିଗଡ଼ିବାର ଣିଜନ୍ତ)—
Niga(gi)rdā(rde)ibā ନିଗାଡ଼ିବା ( ଦେଖ ) 1 Nigārdibā ( See )

୨ । ( ନିଗାଡ଼ିବାର ଣିଜନ୍ତରୂପ )— 2. Causative of Nigārdibā.

ନିଗଡ଼ା ନିଗଡ଼ି — ଦେ ବି—୧ । ପାନୀୟ ପଦାର୍ଥର ପାନାବଶେଷ—
Nigardā nigardi 1. Dregs left in a drinking cup; (ନିଟିଡ଼ାନିଟିଡ଼ି—ଅନ୍ୟରୂପ) the remains of a liquid
ନିଂଡ଼ାନିଂଡ଼ି **तलछट** left in the cup after drinking.

୨ । କୌଣସି ପାତ୍ରରୁ ଜଳାଦି ନିଗିଡ଼ିବା ପରେ ଯାହା ଅବଶିଷ୍ଟ ରହିଯାଏ—2. Remains.

ନିଗଡ଼ା ମାଟି—ଦେ ବି—ଯେଉଁ ମାଟିରୁ ପାଣି ନିଗିଡ଼ି ଯାଇଥାଏ—
Nigardā māti Soil from which water has fully percolated or has been fully drained out

ନିଗଡ଼ିତ—ସଂ. ବିଣ ( ନିଗଡ଼+ଅସ୍ତି ଅର୍ଥରେ. ଇତ )—
Nigardita ୧ । ଶୃଙ୍ଖଳାବଦ୍ଧ—1 Chained; fettered.

୨ । ଦୃଢ଼ବଦ୍ଧ—2. Tightly fixed or bound

୩ । ହରିକାଠରେ ଆବଦ୍ଧ— 3. Confined in the stocks.

୪ । ଲୁହା ଶିକୁଳିଦ୍ୱାରା ଯେଉଁ ହାତୀର ଗୋଡ଼ ବନ୍ଧା ଯାଇଥାଏ—4. (an elephant) Tied with the leg-chain; shackled

ନିଗଣ — ସଂ. ବି. (ନି=ନିଶ୍ଚୟ+ଗଣ୍ ଧାତୁ=ଜାଣିବା+ଅ; ଯାହାଦ୍ୱାରା
Nigana ଅଗ୍ନିର ଅସ୍ତିତ୍ୱ ଜଣାପଡ଼େ) ·ଯଜ୍ଞଧୂମ; ହୋମଧୂମ— The smoke from 'Homa' or burnt offerings; the smoke of a sacrificial fire.

ନିଗଦ — ସଂ. ବି. (ନି=ନିଶ୍ଚୟ+ଗଦ୍ ଧାତୁ=କହିବା+କର୍ମ. ଅ)—
Nigada ୧ । କଥନ, ଭାଷଣ—1. Speech; talk.
(ନିଗାଦ—ଅନ୍ୟରୂପ) ୨ । କଥୋପକଥନ— 2 Conversation.

୩ । ଶବ୍ଦ—3 Sound.

୪ । ଉଚ୍ଚୈର୍ଜପ; ଉଚ୍ଚୈଃସ୍ୱରରେ ପ୍ରାର୍ଥନା— 4. Loud prayer; prayer recited aloud.

୫ । କଥିତ ଭାଷା—5. Spoken language; a vernacular.

୬ । କୌଣସି ବିଷୟର ଉଲ୍ଲେଖ—6. Mention.

ନିଗଦିତ—ସଂ. ବିଣ (ନି+ଗଦ୍ ଧାତୁ=କହିବା+କର୍ମ. ତ)—
Nigadita ୧ । ଭାଷିତ; କଥିତ; ଉକ୍ତ — 1. Spoken; told; said.

୨ । ଉଚ୍ଚାରିତ—2. Uttered; pronounced.

୩ । ନିର୍ଦ୍ଦିଷ୍ଟ—3 Specified; defined.

୪ । ଉଲ୍ଲିଖିତ—4. Mentioned.

୫ । ବର୍ଣ୍ଣିତ—5. Described.

୬ । ପ୍ରାର୍ଥିତ—6. Prayed for.

ବି. (+ଭାବ. ତ)—୧ । ଭାଷଣ — 1. Speech; talking.

୨ । ଉଚ୍ଚାରଣ—2. Utterance.

ନିଗନ୍ଧ—ଦେ. ବି—ସୁଗନ୍ଧ ପୁଷ୍ପବିଶେଷ—
Nigandha A kind of sweet-scented flower.

ରଙ୍ଗଣୀ ଭୃଙ୍ଗ ଅଳ୍ପର ଅରବିନ୍ଦ
ନିଗନ୍ଧ କୁନ୍ଦ ପୁନ୍ନାଗ । ପ୍ରାଚୀ. ରହସ୍ୟମଞ୍ଜରୀ ।

**निगन्ध** ଦେ ବିଣ. (ସଂ. ନିର୍ଗନ୍ଧ)—ନିର୍ଗନ୍ଧ; ଗନ୍ଧହୀନ—
**निगन्ध** Scentless.

ନିଗମ—ସଂ. ବି. (ନି=ସର୍ବଦା; ସର୍ବତୋଭାବରେ+ଗମ୍ ଧାତୁ=ଯିବା
Nigama +ଅଧିକରଣେ. ଅ)—୧ । ଯେଉଁଠାରେ ସବୁବେଳେ

ଲୋକେ ଯିବା ଆସିବା କରନ୍ତି; ସାଧାରଣ ଗମନାଗମନ ସ୍ଥାନ—1. A public thoroughfare; a frequented place.

୨ । ଲୋକାଳୟ, ପୁରୀ; ନଗର—2. Town; city.

୩ । ଜନପଦ; ଗ୍ରାମ—3 Village.

୪ । ରାଜଦାଣ୍ଡ; ରାସ୍ତା; ସରଣି; ପଥ—
4. Road; highway.

୫ । ବଜାର; ହାଟ; ଗଞ୍ଜ—
5 Market; mart; bazar.

୬ । ବାଣିଜ୍ୟ—6. Traffic; trade.

୭ । ବେଦ—7. The Bedas.
ଏମନ୍ତ ବଚନ ମନର
ନିଗମ କହ ସେ ଅଗୋଚର । ଉପେନ୍ଦ୍ର. ପ୍ରେମସୁଧାନିଧି ।

୮ । ଧର୍ମଗ୍ରନ୍ଥ—8 The holy writ; scripture; secred ordinance.

୯ । ତନ୍ତ୍ରବିଶେଷ—9. Name of a Tantra or Hindu esotoric treatise.

୧୦ । ନିଶ୍ଚୟ—10. Certainly.

୧୧ । ପ୍ରତିଜ୍ଞା—11. Promise; vow.

୧୨ । ନିର୍ଣ୍ଣୟ—12. Determination, ascertainment.

୧୩ । ନ୍ୟାୟଶାସ୍ତ୍ର—13. Logic.

୧୪ । ନ୍ୟାୟାନୁମୋଦିତ ସିଦ୍ଧାନ୍ତ—
14 Logical conclusion.

୧୫ । ବେଦରୁ ଉଦ୍ଧୃତ ବାକ୍ୟ ବା ଶବ୍ଦ—
15. Any passage or word quoted from the Bedas (M W.)

୧୬ । ବେଦର ବ୍ୟାଖ୍ୟାମୂଳକ ଗ୍ରନ୍ଥ—16. A work auxiliary to or explanatory of the Bedas (Apte).

୧୭ । (ବ୍ୟାକରଣ) ଧାତୁ—
17. (grammar) The root of word (Apte.)

୧୮ । ଯାଯାବର ବଣିକ୍ ଦଳ—18. A caravan of wandering merchants.

୧୯ । ବୈଦିକ ଅନୁଷ୍ଠାନରେ ସଙ୍କଳ୍ପ ଆଦି ବାକ୍ୟରେ କୌଣସି ଦେବତାଙ୍କ ନାମୋଲ୍ଲେଖ—19. Insertion of the name of a Deity into a liturgical formula.

୨୦ । ମେଳା (ହି. ଶ.)—20. A fair.

୨୧ । କାୟସ୍ଥମାନଙ୍କର ଏକ ଶ୍ରେଣୀ (ହି. ଶ.)—
21. Mame of a sect or class of the Kāyasthas.

୨୨ । ନିର୍ଗମନ; ବହିର୍ଗମନ (କ୍ଳୀବେଜ୍)—
22. Going out; issuing.

ଦେ. ବିଣ.—୧ । ଗଭୀର; ଗୋପ୍ୟ; ଗମ୍ଭୀର—
ନଗ 1. Deep; profound
(ଯଥା—ନିଗମ ହ୍ରଦ; ନିଗମ କଥା ।)

୨ । ନିରୋଳା—2. Solitary; lonely.
ନିଗମେ ବସିଲା କରେ ନିଦଗଟ ମସୀ ।
ପ୍ରାଚୀ. ଶିଶୁଶଙ୍କର ଉଷାଅଭିଳାଷ ।

୩ । ଗୁହ୍ୟ; ଅତ୍ୟନ୍ତ ଗୋପନୀୟ—
3. Secret; confidential.

ଦେ. ବି.— ନିର୍ଜନ ସ୍ଥାନ—3. Lonely place.
ନିଗମ ଦେଖିଣ ଉଚ୍ଛୁଁ ମଦନ ଲୁଚେ ।
ପ୍ରାଚୀ. ଶିଶୁଶଙ୍କର. ଉଷାଅଭିଳାଷ ।

**ନିଗମନ**—ସଂ. ବି ( ନି + ଗମନ )—୧ । ଚଳନ; ବାଟ ଚାଲିବା—
Nigamana 1. Going; walking.

୨ । ନ୍ୟାୟଶାସ୍ତ୍ରାନୁଗତ ନିର୍ଦ୍ଧାରଣ—
2. Logical conclusion; the winding up of a syllogism; summing up of an argument or conclusion in a syllogisom.

[ ଦ୍ର—ଆର୍ଯ୍ୟ ନ୍ୟାୟଶାସ୍ତ୍ରରେ ଅନୁମାନର ୫ଟି ଅବୟବ ନିର୍ଦ୍ଦିଷ୍ଟ ହୋଇ ଅଛି । ଯଥା—ପ୍ରତିଜ୍ଞା, ହେତୁ; ଉଦାହରଣ; ଉପନୟ ଓ ନିଗମନ । ୧ । ଏଠାରେ ନିଆଁ ଅଛି ( ପ୍ରତିଜ୍ଞା ), ୨ । କାରଣ, ଏଠାରେ ଧୂଆଁ ଅଛି (ହେତୁ), ୩ । ଯେଉଁଠାରେ (ଯଥା—ରୋଷେଇ ଘରେ) ଧୂଆଁ ଥାଏ ସେଠାରେ ଅବଶ୍ୟ ନିଆଁ ଥାଏ; ( ଉଦାହରଣ ), ୪ । ବର୍ତ୍ତମାନ ଆମ୍ଭେ ଦେଖୁଥାଉଁ ଯେ ଏଠାରେ ଧୂଆଁ ଅଛି ( ଉପନୟ ) ୫ । ଅତଏବ ଏଠାରେ ଅବଶ୍ୟ ନିଆଁ ଅଛି ( ନିଗମନ ) । ଶେଷୋକ୍ତ ୪ଟି ସୋପାନଦ୍ୱାରା ପ୍ରତିଜ୍ଞାରେ ପହଞ୍ଚିବାକୁ ହେବ । ନିଗମନର ଅନ୍ୟ ନାମ ପ୍ରତ୍ୟାମ୍ନାୟ—ହି. ଶବ୍ଦସାଗର । ]

୩ । ଉପସଂହାର—3. Conclusion.

୪ । ଛଳ—4 Pretence

**ନିଗମାଗମ**—ସଂ. ବି. (ଦ୍ୱନ୍ଦ୍ୱ; ନିଗମ + ଆଗମ)—୧ । ବେଦ ଓ ତନ୍ତ୍ର—
Nigamāgama 1. The Bedas and the Tantras.

୨ । ପ୍ରବେଶ ଓ ବହିର୍ଗମନ—2. Coming in and going out; ingress and egress.

**ନିଗର**—ସଂ. ବି. ( ନି + ଗୃ ଧାତୁ = ଗିଳିବା, ଖାଇବା + ଭାବ. ଅ )—
Nigara ୧ । ଭୋଜନ—1. Eating.
( ନିଗାର—ଅନ୍ୟରୂପ ) ୨ । ଗିଳିବା; ଗଳାଧଃକରଣ—
2. Swallowing; gulping; devouring

୩ । ( + କରଣ. ଅ ) ତୋଣ୍ଟି; ଗଳଦେଶ—
3. Throat.

୪ । ନିଗଣ; ହୋମଧୂମ—4. The smoke issuing from a sacrificial fire.

୫ । ଏକ ସମାନ ଓଜନର ୫୫ଟି ମୋତିର ସମୂହ (ହି. ଶ.)—
5 An aggregate of 55 pearls of the same weight.

ଗ୍ରାଦେ. ( ଯାଜପୁର ). ବିଣ—ଖାଣ୍ଟି—Genuine.

ଦେ. ବିଣ— ନିଶ୍ଚିତ—Certain; definite.

ନିଗରଣ—ସ. ବି. ( ନି + ଗୃ ଧାତୁ + ଭାବ. ଅନ )—
Nigaraṇa ନିଗର ( ଦେଖ )—Nigara ( See )
( ନିଗଲନ—ଅନ୍ୟରୂପ )

ନିଗର ମାଲ୍—ପ୍ରାଦେ. ( ଯାଜପୁର ) ବିଣ—ଖାଣ୍ଟି ଜିନିଷ—
Nigara māl Pure or unadulterated article.

ନିଗରୁ—ଦେ. ବିଣ ( ସ. ନି + ଗୁରୁ )—ହାଲୁକା; ଯାହା ଭାରି ନୁହେଁ—
Nigaru No heavy; in weight
हालका **निगरु** ( ନିଗରୁଆ—ଅନ୍ୟରୂପ )

ନିଗଲ—ସ. ବି. ( ନି+ଗଲ ଧାତୁ + ଭାବ. ଅ )—୧ । ଗିଳିବା—
Nigaḷa 1. Swallowing.
୨ । ( + କରଣ. ଅ ) ଅଶ୍ୱର ଗଳଦେଶ —
2. The throat of a horse

ନିଗା—ବୈଦେ. ବି. ( ଫା ନିଗାହ୍; ମୂଳ. ସ. ନିରୀକ୍ଷଣ )—
Nigā ୧ । ଦୃଷ୍ଟି; ନଜର—1. Sight; look; glance.
निघा ୨ । ତତ୍ତ୍ୱନେବା; ତଦାରଖ—2 Supervision.
**निगाह, निगह** ୩ । ମନୋଯୋଗପୂର୍ବକ ଦୃଷ୍ଟି—
(ନିଂଘା, ନିଘା—ଅନ୍ୟରୂପ) 3. Scrutinising look.
୪ । ଯତ୍ନ—4. Care.
୫ । ଜଗିବା—5. Watching.
୬ । ମନୋଯୋଗ—6. Attention.
୭ । ଖିଆଲ; ଧ୍ୟାନ—
7. Thought; concentration of thought.
୮ । ଅନୁଗ୍ରହ, ସ୍ନେହମୟ ଦୃଷ୍ଟି—
8. A look of favour or kindness.

ନିଗା କରିବା—ଦେ. କ୍ରି. ( ଫା. ନିଗାହ୍ )—୧ । ଚାହିଁବା—
Nigā karibā 1. To look at.
निघा करा ୨ । ତତ୍ତ୍ୱ ନେବା—2. To look after.
**निगाह करना,** ୩ । ଜଗିବା—3. To watch.
**निगाह रखना** ୪ । ଦୃଷ୍ଟି ରଖିବା—4. To keep an eye on.
୫ । ଦେଖାଶୁଣା କରିବା—5. To take care of.
୬ । ତତ୍ତ୍ୱାବଧାନ କରିବା—6 To supervise.

ନିଗା(ଘା) ଦେବା, ନିଗା(ଘା) ରଖିବା
ନିଗା(ଘା)ପାନି କରିବା; ନିଗା(ଘା)ବାନି କରିବା } ଅନ୍ୟରୂପ
ନିଗା(ଘା)ମାନି କରିବା; ନିଗା(ଘା) ନେବା

ନିଗାଡ଼ିବା—ଦେ. କ୍ରି. ( ସ ନିର୍ଗଳନ )—
Nigāṛdibā ୧ । ନିଗିଡ଼ିବା କ୍ରିୟାର ଣିଜନ୍ତ ରୂପ—
ନିଗଡ଼ା(ଡ଼େ)ଇବା } ଅନ୍ୟରୂପ 1. The causative form
ନିଗିଡ଼ା(ଡ଼େ)ଇବା } of 'Nigiṛdibā'.
निंड़ान, निगड़ान ୨ । କୌଣସି ରସଯୁକ୍ତ ବସ୍ତୁରୁ ରସ ଚିପୁଡ଼ିବା;
**निचोड़ना; गाड़ना** ଝୁରେଇବା—2 To squeeze or press out the juice; to express juice.
୩ । ରସ ବା ଜଳକୁ ଗାଳିବା—3 To cause liquid to ooze or drop out of a thing; to pour off liquid to the last drop.
୪ । କୌଣସି ପାତ୍ରକୁ ଅଣେଇ ବା ଓଲଟାଇ ତହିଁରେ ଥିବା ଦ୍ରବ ପଦାର୍ଥକୁ ସବୁଡ ବା ନିଃଶେଷିତ କରିବା—
4. To empty a receptacle of its liquid contents

ନିଗାଦ—ସ. ବି—ନିଗଦ ( ଦେଖ )
Nigāda Nigada ( See )

ନିଗାଦୀ—ସ. ବିଣ. ପୁଂ (ନି + ଗଦ୍ ଧାତୁ + କର୍ତ୍ତୃ. ଇନ୍; ୧ମା .ଏକ)—
Nigādi କଥକ; ବକ୍ତା—Speaking; uttering.
(ନିଗାଦିନୀ—ସ୍ତ୍ରୀ)

ନିଗା(ଘା) ପଡ଼ିବା—ଦେ. କ୍ରି—କୌଣସି ବସ୍ତୁ ଉପରେ ଦୃଷ୍ଟିପାତ—
Nigā(ghā) paṛdibā The coming of a thing to a person's view.
**निगाह पड़ना**

ନିଗା(ଘା)ବା(ମା)ନ୍—ବୈଦେ. ବିଣ· (ଫା. ନିଗାହ୍‌ବାନ୍)—
Nigā(ghā)bā(mā)n ୧ । ସତର୍କ—1. Watchful.
निघावान ୨ । ଯତ୍ନଶୀଳ—2. Careful.
**निगहवान** ୩ । ତତ୍ତ୍ୱାବଧାରକ—3. Supervising.
୪ । ଯେ ଦେଖାଶୁଣା କରେ—4 Taking care.
ବି—୧ । ଜଗୁଆଳ—1. A watchman.
୨ । ଜଗାରଖା କରିବା ଲୋକ; ଜିମାଦାର—2 Custodian.

ନିଗା(ଘା)ବା(ମା)ନି—ବୈଦେ. ବି. ( ଫା. ନିଗାହ୍‌ବାନୀ )—
Nigā(ghā)bā(mā)ni ୧ । ବିଶେଷ ଦୃଷ୍ଟି—
1. Watchful look.
ନିଗା(ଘା)ବା(ମା)ନ୍
ନିଗା(ଘା)ନିସ୍ତା(ସ୍ଥା) } ଅନ୍ୟରୂପ
ନିଂଘାମା(ବା)ନ୍(ନି)
ନିଂଘାନିସ୍ଥା(ସ୍ତା)
୨ । ଦେଖାଶୁଣା; ତତ୍ତ୍ୱାବଧାନ—
2. Taking care, supervising.
୩ । ଜଗିବା—3. Watching.
निघापना, निगावानी **निगहबानी** ୪ । ଜିମାରେ ନେବା—
4. Taking into custody.

ନିଗାର—ସ ବି—ନିଗର ( ଦେଖ )
Nigāra Nigara ( See )

ନିଗାରୀ—ସ ବିଣ.ପୁଂ.(ନି + ଗୃ ଧାତୁ = ଗିଳିବା + କର୍ତ୍ତୃ. ଇନ୍ ୧ମା. ଏକ)-
Nigāri ଗଳାଧଃକରଣକାରୀ; ଯେ ଗିଳି ଦିଏ—
[ନିଗାଳୀ, ନିଗାର(ଳ)କ—ଅନ୍ୟରୂପ] Swallowing; devouring.
(ନିଗାରଣୀ—ସ୍ତ୍ରୀ)
ଜସ୍ୟ ବନ ମଧ୍ୟ ଅନଳ ନିଗାରୀ । କୃଷ୍ଣସିଂହ, ମହାଭାରତ ବନ ।

ନିଗାଲ—ସ. ବି. ( ନି + ଗଲ୍ ଧାତୁ = ଖାଇବା + କରଣ ଅ )—
Nigāḷa ୧ । ଅଶ୍ୱର ଗଳଦେଶ—1. The throat of a horse; horse's neck,
୨ । (+ଭାବ ଅ) ଗିଳିବା—2.Swallowing (Apte).

ନିଗିଡ଼ା (ଇତ୍ୟାଦି)—ଦେ. ବି. ଓ ବିଣ—ନିଗଡ଼ା ଇତ୍ୟାଦି (ଦେଖ)
Nigirḍā (etc) Nigarḍā etc (See)

ନିଗିଡ଼ି—ପ୍ରାଦେ. ( ଗଞ୍ଜାମ ) ବି—ଶୀତ କାଳରେ ନିଆଁ ଲଗାଇବା ପାଇଁ ବ୍ୟବହୃତ କାଠଖଣ୍ଡ—
Nigirḍi Big logs of wood for kindling firen in winter.

**ନିଗିଡ଼ିବା**—ଦେ. କ୍ରି. ( ସ. ନିର୍ଗଳନ )—
Nigirdiba ୧ । ଚିପୁଡ଼ା ହୋଇ (ରସ) ଗଳିତ ହେବା; (ନିଗିଡ଼ିଯିବା—ଅନ୍ୟରୂପ) ରସ ଝରିବା—
নিংড়া, নিঙ্গড়ন 1. To ooze out; to drop on
टपकना, गड़ना, चूना being squeezed
୨ । କୌଣସି ବସ୍ତୁରୁ ବା ବିପର୍ଯ୍ୟସ୍ତ ପାତ୍ରରୁ ଜଳୀୟ ପଦାର୍ଥ ବିବାକ୍ ନିଃଶେଷିତ ହୋଇ ବୋହି ଯିବା —
2. (liquid) To be drained out of a thing or an upturned receptacle,
୩ । ଅଳ୍ପ ମାତ୍ରାରେ ଜଳକୁ ବୋହିଯିବା ।—3. To flow down in feeble current; to drip
[ ଦ୍ର—ପାତ୍ରରୁ ଜଳୀୟ ପଦାର୍ଥ ବେଶି ପରିମାଣରେ ଢାଳ ହୋଇଯାଏ ଓ ଅଳ୍ପ ପରିମାଣରେ କ୍ରମଶଃ ନିଗିଡ଼ି ଯାଏ । ]

**ନିଗିଧା**—ଦେ. ବିଣ —କୃପଣ—Niggardly; miserly.
Nigidha ( ନିଗଧା, ନିଗ୍ଧା ) ଅନ୍ୟରୂପ—

**ନିଗୀତ**—ସ. ବିଣ. ( ନି+ଗୈ ଧାତୁ+କର୍ମ.ତ )—ପରିଗୀତ; ଗାନ
Nigita କରି ଯାଇଥିବା—Sung.

**ନିଗୀର୍ଣ୍ଣ**—ସ. ବି.—( ନି+ଗୃ. ଧାତୁ=ଗିଳିବା+କର୍ମ.ତ )—
Nigirnna ୧ । ଭକ୍ଷିତ—1. Eaten
୨ । ଗିଳା ଯାଇଥିବା —2. Swallowed; devoured.
୩ । ଅନ୍ତର୍ଭୁକ୍ତ; ଅନ୍ତର୍ଭୁକ୍ତ କରି ଯାଇଥିବା—
3. Included.

**ନିଗୁ**—ସ. ବି. ( ନି=ନିଶ୍ଚୟ+ଗମ୍. ଧାତୁ+କର୍ତ୍ତୃ. ଉ )—
Nigu ୧ । ଚିତ୍ତ; ମନ—1. Mind.
୨ । ବିଚାରଶକ୍ତି—2. Judgment; discrimination.
୩ । ଅନୁଭବଶକ୍ତି; ବୋଧଶକ୍ତି—3. Conception; feeling; emotion.
୪ । ବିଷ୍ଠା; ମଳ—4. Ordure.
୫ । ମୂଳ ଚେର – 5. Root.
୬ । ମନୋଜ୍ଞତା—6. Agreeableness.
୭ । ଚିତ୍ରାଙ୍କନ କର୍ମ—7. Drawing; painting.
ସ. ବିଣ.—ମନୋଜ୍ଞ; ସୁନ୍ଦର—Pleasing; charming (M. W.).
ପ୍ରାଦେ ( ଗଞ୍ଜାମ ଓ ତେଲଗୁ ) ବିଣ—( ମୂଳ. ସ. ନିଗୂ )—
( ନିଗୁ—ଅନ୍ୟରୂପ ) ୧ । ଅତୁଳ; ଭଲ; ଉତ୍କୃଷ୍ଟ —
1. Excellent; of first class.
୨ । ଭଲ; ଉତ୍ତମ—2. Good.
( ଯଥା—ନିଗୁ ମାଲ )

**ନିଗୁଣ୍ଡି**—ଦେ. ବି. ( ସ. ନିର୍ଗୁଣ୍ଡୀ )—ନିର୍ଗୁଣ୍ଡୀ ( ଦେଖ )—
Nigundi Nirgundi (See)

**ନିଗୁଡ଼ି**—ପ୍ରାଦେ ( ଗୁଣ୍ଡ ) ବି । ପଣ ବା ଗଞ୍ଜାଇ ସଙ୍ଗେ ମରିଚ ପ୍ରଭୃତି
Nigudi ମିଶି ବଟା ହୋଇଥିବା ଭାଙ୍ଗର ଗୁଳା; ପାଣିରେ ଗୋଳା ହୋଇ ନ ଥିବା ବଟା ଭାଙ୍ଗର ଗୁଳା—
A ball of pasted Ganja and black pepper etc. (before it is mixed with water)

**ନିଗୁମ୍ଫ** – ସ. ବି.(ନି+ଗୁମ୍ଫ ଧାତୁ+କର୍ମ.ଅ)—ସମୂହ; ଗୁଚ୍ଛ (ହ୍ରସ୍ୱ)—
Nigumpha Bundle; collection, cluster.

**ନିଗୁରୁଆ**—ଦେ· ବିଣ. ( ସ. ନି+ଗୁରୁ ) ୧ । ଅଗୁରୁଆ ( ଦେଖ )
Nigurua 1 Agurua (See)
निगुरा ୨ । ଯେ ଗୁରୁଙ୍କଠାରୁ ମନ୍ତ୍ର ଗ୍ରହଣ କରି ନାହିଁ—
2. Not having been initiated by any spiritual preceptor.

**ନିଗୂଢ଼** —ସ. ବିଣ.—(ନି+ଗୁହ୍ ଧାତୁ=ଗୋପନ କରିବା+କର୍ମ. ତ)
Nigurdha ୧ । ଆବୃତ; ଆଚ୍ଛାଦିତ—1. Covered; closed.
୨ । ଲୁକ୍କାୟିତ; ପ୍ରଚ୍ଛନ୍ନ; ଗୁପ୍ତ—2. Hidden; secret; concealed.
निगूढ ୩ । ଅପ୍ରକାଶିତ—3 Not discovered; unpublished.
୪ । ରହସ୍ୟମୟ; ଦୁର୍ଜ୍ଞେୟ—4. Mysterious, incomprehensible.
୫ । ଦୁର୍ବୋଧ୍ୟ – 5. Obscure; abstruse.
୬ । ଘୋର; ଗମ୍ଭୀର —6. Profound; deep.
୭ । ଆଲିଙ୍ଗିତ—7. Embraced.
୮ । ଦୃଢ଼—8. Fast; tightly set.
ବି.—୧ । ବନ୍ୟ ମୁଗ—1. A sort of wild bean.
ଦେ. ବି – ୧ । ତାତ୍ପର୍ଯ୍ୟ; ସାର—1. Purport.
୨ । ମର୍ମ—2. Gist.
୩ । ନିଗଡ଼—3. Chain; fetters.
ଦୂତ ବଚନ ଶୁଣି କଣ୍ଠେ,
ସ୍ୱଜାଏ ନିଗୂଢ଼ ଦିନକେ । ଜଗନ୍ନାଥ, ଭାଗବତ ।

**ନିଗୂଢ଼ କଥା**—ସ ବି—୧ । ରହସ୍ୟ ବିଷୟ; ଗୁପ୍ତ କଥା—
Nigurdha katha 1. Secret; mystery.
୨ । ନିଗୂଢ଼ାର୍ଥ—2. Mysterious meaning.

**ନିଗୂଢ଼ଚାରୀ**—ସ. ବିଣ. ପୁଂ (ନିଗୂଢ଼+ଚରଧାତୁ+କର୍ତ୍ତୃଇନ୍; ୧ମା ୧ବ)
Nigurdhachari ୧ । ଗୋପନରେ ବିଚରଣକାରୀ—
(ନିଗୂଢ଼ଚାରିଣୀ—ସ୍ତ୍ରୀ) 1. Walking concealed.
୨ । ଛଦ୍ମ ବେଶ ଧାରଣ କରି ଯେ ବୁଲେ—
2. Walking in disguise. (M, W.)

**ନିଗୂଢ଼ ନିଶ୍ଚୟ**—ସ. ବିଣ. ପୁଂ (ବହୁବ୍ରୀହି; ନିଗୂଢ଼+ନିଶ୍ଚୟ)—
Nigurdha nischaya ଯାହାର ଉଦ୍ଦେଶ୍ୟ ଗୁପ୍ତ—
(ନିଗୂଢ଼ ନିଶ୍ଚୟା—ସ୍ତ୍ରୀ) Whose design is concealed.

**ନିଗୂଢ଼ ସତ୍ୱ**—ଦେ. ବି (ନିଗୂଢ଼ଭାବ)—ସମ୍ପୂର୍ଣ୍ଣ ସ୍ୱତ୍ୱ—
Nigurdha satwa Absolute title
(ଯଥା—ଏ ଜମିରେ ପ୍ରଜାମାନଙ୍କ ବାର ବର୍ଷରୁ ଊର୍ଦ୍ଧ୍ୱ କାଳ ନିର୍ବିରୋଧେ ଦଖଲକାର ଥିବାରୁ ତହିଁରେ ତାହାର ନିଗୂଢ଼ ସତ୍ୱ ଉଦ୍ଭବ ହୋଇଅଛି ।).

**ନିଗୂଢ଼ାର୍ଥ**—ସ. ବିଣ (ନିଗୂଢ଼+ଅର୍ଥ)—(ବହୁବ୍ରୀହି) ଯାହାର ଅର୍ଥ ବା
Nigurdhartha ଭାବ ଗୁପ୍ତ ବା ଦୁର୍ବୋଧ—1. Having a
(ନିଗୂଢ଼ାର୍ଥକ—ଅନ୍ୟରୂପ) hidden meaning; occult.

ସ. ବି ୧ । ( କର୍ମଧା ) ଗୁପ୍ତ ଉଦ୍ଦେଶ୍ୟ —
1. Hidden purpose; mysterious or abstruse purpose.
୨ । ଅବୋଧ ଅର୍ଥ—2. Abstruse meaning.

**ନିଗୂଢ଼ାର୍ଥକ**—ସ. ବିଣ. ( ବହୁବ୍ରୀହି; ନିଗୂଢ଼+ଅର୍ଥ+କ ) --
Nigūṛhārthaka ୧ । ଯହିଁରେ ଗୁପ୍ତ ଅର୍ଥ ଥାଏ—
1 Having a secret or hidden meaning.
୨ । ଅବୋଧ; ରହସ୍ୟମୟ—
2. Abstruse; mysterious.

**ନିଗୂହକ**—ସ. ବିଣ. ପୁଂ. ( ନି+ଗୁହ ଧାତୁ+କର୍ତ୍ତୃ ଅକ )—
Nigūhaka ଗୋପନକାରୀ—Concealing, hiding.
( ନିଗୂହିକା—ସ୍ତ୍ରୀ )

**ନିଗୂହନ**—ସ. ବି. (ନି+ଗୁହ ଧାତୁ+ଭାବ. ଅନ)—ଗୋପନ କରିବା—
Nigūhana Concealing; hiding; secreting.

**ନିଗୂହନୀୟ**—ସ ବିଣ ( ନି+ଗୁହ ଧାତୁ+କର୍ମ. ଅନୀୟ)—ଗୋପନୀୟ—
Nigūhaniya Secret; worth concealing; to be hidden.

**ନିଗୃହୀତ**—ସ. ବିଣ. ( ନି+ଗ୍ରହ ଧାତୁ=ଗ୍ରହଣ କରିବା, ଅଥବା
Nigṛuhita କରିବା+କର୍ମ. ତ )—୧ । ଆକ୍ରମିତ—
(ଅନୁଗୃହୀତ—ବିପରୀତ) 1. Attacked; seized; assailed.
୨ । ବଶୀକୃତ—2. Brought under control.
୩ । ପରାଜିତ; ଦମିତ—3. Subdued; vanquished.
୪ । ନିୟମିତ—4. Restrained; regulated.
୫ । ଶାସିତ; ଦଣ୍ଡିତ—5. Punished.
୬ । ଅଭିଯୁକ୍ତ—6 Prosecuted; charged.
୭ । ନିବର୍ତ୍ତିତ—7. Stopped; prevented.
୮ । ଉତ୍ପୀଡ଼ିତ—8. Harassed; pestered; persecuted; maltreated.
୯ । ରୁଦ୍ଧ; ନିରୁଦ୍ଧ—
9. Imprisoned; obstructed; confined.
୧୦ । ନିର୍ବାସିତ; ବିତାଡ଼ିତ—10. Expelled.
୧୧ । କ୍ଲିଷ୍ଟ; ଆକ୍ରାନ୍ତ—11. Afflicted.
୧୨ । ଅବମାନିତ—12. Insulted.
୧୩ । ଗୃହୀତ—13. Seized; caught.

**ନିଗୋସିଆଁ**—ପ୍ରାଦେ. ( ସମ୍ବଲପୁର ) ବିଣ—ଅସ୍ୱାମିକ—
Nigosiāñ Masterless; ownerless.
( ନିଗୁସିଆଁ—ଅନ୍ୟରୂପ )

**ନିଗୋସେଇଁଆଁ**—ଦେ. ବିଣ ( ସ. ନିର୍+ଗୋ+ସ୍ୱାମୀ )—ଅସ୍ୱାମିକ;
Nigoseiñāñ ଯାହାର କେହି ମାଲିକ ବା ସ୍ୱାମୀ ନ ଥାଏ—
ବେଓ୍ୱାରିସ **ନାବାରିସ** (ନିଗୋସେଇଁ--ଅନ୍ୟରୂପ)Ownerless.
ପଡ଼ିଆ କୁ ବୁଲୁଥାଏ ନିଗୋସେଇଁଆଁ ଗୋରୁ—ଉକ୍ତି ।

**ନିଗ୍ରହ**—ସ. ବି ( ନି+ଗ୍ରହ୍ ଧାତୁ+ଭାବ. ଅ )—୧ । ଅନନୁଗ୍ରହ;
Nigraha ବେ-ଅନୁଗ୍ରହ—1. Disfavour.
( ଅନୁଗ୍ରହ—ବିପରୀତ ) ୨ । ବନ୍ଧନ—2. Binding.
୩ । ଭର୍ତ୍ସନା—3. Censure; abuse; reprimand.
୪ । ସୀମା—4. Limit

ନିଗୃହୀତ, ନିଗ୍ରହୀତବ୍ୟ, ନିଗ୍ରହ୍ୟ } ବିଣ

୫ । ପ୍ରହାର—5 A blow.
୬ । ଚିକିତ୍ସା—6 Medical treatment; physicking.
୭ । ନିଷ୍କାସନ—7 Expulsion
୮ । ଶାସନ—
8 Enforcing discipline; controlling.
୯ । ଯୁଲମ, ପୀଡ଼ନ, ଅତ୍ୟାଚାର—
9. Oppression; repression.
୧୦ । ତାଡ଼ନା; ଦମନ—10 Persecution.
୧୧ । ବଳାତ୍କାର; ଜବରଦସ୍ତି—11. Coercion.
୧୨ । ଦଣ୍ଡ—12. Punishment; chastisement
୧୩ । ଯାତନା; କ୍ଲେଶ—
13. Severe or harsh treatment; harassment.
୧୪ । ନିନ୍ଦା, ଅବକ୍ରୋଶ—14. Blaming.
୧୫ । ଅସନ୍ତୋଷ—15. Discontent.
୧୬ । ଘୃଣା—16 Hatred; aversion; dislike.
୧୭ । ଅଟକ, ରୋକ—
17. Restraint; obstruction.
୧୮ । ଅବରୋଧ; କଏଦ କରିବା—
18. Confinement; imprisonment
୧୯ । ଅଣନ୍ଥିଆ ଅବସ୍ଥା, ବିଡ଼ମ୍ବନା—19 The state of being driven to a corner, a fix; critical position; crisis.
୨୦ । ନିରୁତ୍ସାହ; ନୈରାଶ୍ୟ—20. Discouragement.
୨୧ । ଅସଙ୍ଗତି; ଅନୌଚିତ୍ୟ—21. Impropriety.
୨୨ । ବାନ୍ଧୁଣୀ—22. Tie, bond.
୨୩ । ନିରୋଧ; ସଂଯମ—23. Restraint.
୨୪ । ଅନ୍ୟାୟ—24. Injustice, unrighteousness.
୨୫ । ନିବାରଣ—25. Prevention.
୨୬ । ବିଷ୍ଣୁ ( ଦ୍ର. ଶ. )—26. A name of Bishṇu.
୨୭ । ଶିବ ( ଦ୍ର. ଶ. )—27. A name of Śiba.
୨୮ । ପରାଜୟ—
28. Subjugation; defeat ( M. W. ).
୨୯ । ବିନାଶ—
29. Destruction; overthrow ( M. W. ).
୩୦ । ( +କରଣ. ଅ; ଯାହାଦ୍ୱାରା କୌଣସି ବସ୍ତୁକୁ ଧରି ଯାଏ )—ବେଣ୍ଟ; ହାତଲା—।
30. Handle ( M. W. ).
୩୧ । ( ନ୍ୟାୟ ) ଯୁକ୍ତିରେ ଦୋଷ—31. ( Logic ) A weak point in argument; a fault in syllogism ( M. W. ).
୩୨ । ଧରିବା; ଗିରଫ କରିବା—
32. Capturing; seizing; arresting.

**ନିଗ୍ରହଣ**—ସ. ବି. ( ନି+ଗ୍ରହ୍ ଧାତୁ+ଭାବ. ଅନ )—
Nigrahaṇa ୧ । ନିଗ୍ରହ (ଦେଖ)—1 Nigraha (See)
୨ । ଯୁଦ୍ଧ—2 Fight; war.

**ନିଗ୍ରହଣୀୟ**—ସ. ବିଣ. ( ନି+ଗ୍ରହ୍ ଧାତୁ+କର୍ମ. ଅନୀୟ )—ନିଗ୍ରାହ୍ୟ;
Nigrahaṇiya ଦଣ୍ଡନୀୟ—Punishable.

**ନିଗ୍ରହ ପୁଲିସ**—ଦେ. ବି. ( ଆଧୁନିକ ପ୍ରୟୋଗ )—କୌଣସି ଅଞ୍ଚଳର
Nigraha pulis ସମସ୍ତ ବ୍ୟକ୍ତିଙ୍କୁ ଦଣ୍ଡ ଦେବା ଉଦ୍ଦେଶ୍ୟରେ
ପିଟୁନିପୁଲିସ ସେମାନଙ୍କ ବ୍ୟୟରେ ସେ ସ୍ଥାନରେ ରଖାଯିବା
**निग्रहपुलिस** ପୁଲିସ ଫଉଜ—Punitive Police.

**ନିଗ୍ରହ ସ୍ଥାନ**—ସ. ବି—୧ । ଯୁକ୍ତିରେ ହାରିବା—
Nigraha sthāna 1 Failure in argument
୨ । ଯୁକ୍ତି ଦ୍ୱାରା ନାକାଳ ବା ଅପ୍ରତିଭ ହେବା ଅବସ୍ଥା—
2. The state of being driven to a corner in argument.
୩ । ସଙ୍କଟାପନ୍ନ ଦଶା—3 Critical position.
୪ । ( ନ୍ୟାୟ ) ଯୁକ୍ତି ତର୍କର ଅବସ୍ଥା ବିଶେଷ; ଯେଉଁ ଅବସ୍ଥାରେ ଦୁଇ ଜଣ ଯୁକ୍ତିକାରୀ ପରସ୍ପରବିରୁଦ୍ଧ କଥା କହନ୍ତି, କିମ୍ବା ଏକ ପକ୍ଷ ପରସ୍ପରବିରୁଦ୍ଧ କଥା କହେ—
4. (Logic) The position of being unfit to carry on an argument from impossibility of agreeing about first principles ( M W. )

**ନିଗ୍ରହାନୁଗ୍ରହ**—ସ. ବି. ( ନିଗ୍ରହ+ଅନୁଗ୍ରହ; ଦ୍ୱନ୍ଦ୍ୱ; ବିପରୀତାର୍ଥକ
Nigrahānugraha ସହଚର )—୧ । ଦଣ୍ଡ ଓ ଅନୁଗ୍ରହ—
1. Punishment and favour.
୨ । ନିଷ୍ଠୁରତା ଓ ଦୟା—
2. Cruelty and kindness.

**ନିଗ୍ରାହ**—ସ. ବି. ( ନି+ଗ୍ରହ୍ ଧାତୁ+ଭାବ. ଅ )—
Nigrāha ୧ । ଦଣ୍ଡ—1. Punishment; chastisement.
୨ । ଆକ୍ରୋଶ; ଶାପ—2 Imprecation.

**ନିଗ୍ରାହକ**—ସ. ବି. ( ନି+ଗ୍ରହ୍ ଧାତୁ+କର୍ତ୍ତୃ. ଅକ )—
Nigrāhaka ଯେ ନିଗ୍ରହ କରେ; ନିଗ୍ରହକାରୀ—
(ନିଗ୍ରାହିକା—ସ୍ତ୍ରୀ) Punishing; punitive; repressive; oppressive; persecuting; coercive; treating severely.

**ନିଗ୍ରାହୀ**—ସ. ବିଣ. ପୁଂ(ନି+ଗ୍ରହ୍ ଧାତୁ+କର୍ତ୍ତୃ. ଇନ୍, ୧ମା. ୧ବ.)—
Nigrāhi ନିଗ୍ରାହକ ( ଦେଖ ) Nigrāhaka ( See ).
(ନିଗ୍ରାହିଣୀ—ସ୍ତ୍ରୀ)

**ନିଗ୍ରାହ୍ୟ**—ସ. ବିଣ. ( ନି+ଗ୍ରହ୍ ଧାତୁ+କର୍ମ. ଯ )—
Nigrāhya ନିଗୃହୀତ ହେବାର ଯୋଗ୍ୟ—
Punishable; deserving punishment or harsh treatment.

**ନିଗ୍ରୋ**—ବୈଦେ. ବି. ( ଇଂ. ନିଗ୍ରୋ, ଲାଟିନ୍-ନାଇଗର୍=କୃଷ୍ଣକାୟ,
Nigro ସ୍ପେନ୍ ଦେଶୀୟ ଭାଷା-ନେଗ୍ରୋ )—
ନିଗ୍ରୋ ଦକ୍ଷିଣ ଅଫ୍ରିକାର ଗ୍ରୀଷ୍ମ ପ୍ରଧାନ ଦେଶର ଆଦିମ
**निग्रो** ଅଧିବାସୀ; କୃଷ୍ଣକାୟ ଜାତି—The Negro.
[ ଦ୍ର—ଏମାନଙ୍କର ଦେହର ବର୍ଣ୍ଣ ଗାଢ କୃଷ୍ଣବର୍ଣ୍ଣ, ମସ୍ତକର କେଶ କୁଞ୍ଚିତ, ଓଠ ମୋଟା ଓ ମୋଟ । ଏମାନଙ୍କୁ ପାଶ୍ଚାତ୍ୟ ଶ୍ୱେତାଙ୍ଗମାନେ ପୂର୍ବେ ବଳପୂର୍ବକ ଧରି ନେଇ ଦାସ ରୂପେ କାମରେ ଲଗାଉଥିଲେ ଓ ବିକ୍ରି କରୁଥିଲେ । ଆମେରିକାବାସୀ ଶ୍ୱେତାଙ୍ଗମାନେ ଏହି କ୍ରୀତ ନିଗ୍ରୋଦାସ ଓ ସେମାନଙ୍କ ବଂଶଧରମାନଙ୍କ ଦ୍ୱାରା ଭାବତୀୟ ଗୃହକର୍ମ ଓ ମୂଲିଆ କାମ କରାଉଥିଲେ, କିନ୍ତୁ ଇଂରେଜମାନଙ୍କ ପ୍ରରୋଚନା ଓ ଚେଷ୍ଟା ଯୋଗୁଁ ସଭ୍ୟ ଦେଶମାନଙ୍କରୁ ଦାସମାନଙ୍କୁ ମୁକ୍ତି ଦିଆଗଲା ଓ ଏବେ ଏ ପ୍ରଥା ଉଠି ଯାଇଅଛି । ଦାସ ରୂପେ ଆମେରିକାକୁ ଯାଇଥିବା ଅନେକ ନିଗ୍ରୋଙ୍କ ବଂଶଧରମାନେ ବର୍ତ୍ତମାନ ଆମେରିକାର ସ୍ଥାୟୀ ଅଧିବାସୀ ହୋଇ ଅଛନ୍ତି । ଆଧୁନିକ ମନୁଷ୍ୟବିଜ୍ଞାନବିତ୍ ପଣ୍ଡିତମାନେ ପୃଥିବୀର ଅଧିବାସୀମାନଙ୍କୁ ୫ ଶାଖା ବା ଜାତିରେ ବିଭକ୍ତ କରି ଅଛନ୍ତି;—ଯଥା—କକେସୀୟ, ମଙ୍ଗୋଲୀୟ, ଇଥିଓପୀୟ ବା ନିଗ୍ରୋ, ମାଲୟ ଓ ଆମେରିକ । ତହିଁ ମଧ୍ୟରୁ ନିଗ୍ରୋ ଗୋଟିଏ ଶାଖା ଅଟେ । ]

**ନିଘଞ୍ଚ**—ଦେ. ବିଣ. ( ସ. ନି=ବିଶେଷ ରୂପେ+ଘନ )—
Nighañcha ୧ । ନିବିଡ଼—1. Dense, thickly set,
**गहनघना** ଝିଲ୍ଲୀ ଝଙ୍କାରିତ ମଣ୍ଡୁଳ ବଣ୍ଟୁଳ ନିଘଞ୍ଚ କୁଞ୍ଜବନ ।
**घना, निघन** ନନ୍ଦକିଶୋର, ଶର୍ମିଷ୍ଠା ।
୨ । ଏକକାବସ୍ଥିତ; ପରସ୍ପର ସଲଗ୍ନ, ଗାଢ଼—
2. Crowded; situated side by side.
ଥରେ ଏତେ ନିଘଞ୍ଚ କରି ସେଉଲେ ଜଣ ଧାନ ଫଳେ?
ଫକୀରମୋହନ. ଛମାଣ ଆଠଗୁଣ୍ଠ ।

**ନିଘଞ୍ଚନ**—ଦେ. ବିଣ—ନିଘଞ୍ଚ ( ଦେଖ )
Nighañchana Nighañcha ( See )
ମିଥିଲେ ଛଡା କକଡା ହୁଡା, ନନ୍ଦେ ନିଘଞ୍ଚନ ସେ
ଅଭ ସେତିକ ଭେଳ ନ ପାଉଛ ବିନ୍ଦ ଆଗରେ ଥୋ । କୃଷିବିଜନ ।

**ନିଘଣ୍ଟିକା**—ସ. ବି. (ନି+ଘଣ୍ଟ୍ ଧାତୁ=ପ୍ରାପ୍ତି ପାଇବା+ଇକ+ଆ)—
Nighaṇṭikā ଗୁଳୁଚି ଲତାର ମୂଳ; ଗୁଳଞ୍ଚ ମୂଳ—
The root of 'Guḷañcha' creeper; Plumeria Acuminata.

**ନିଘଣ୍ଟୁ**—( ନି+ଘଣ୍ଟ୍ ଧାତୁ=ପ୍ରାପ୍ତି ପାଇବା+ଉ )—
Nighaṇṭu ୧ । ନାମ ସଂଗ୍ରହ—1. List of names.
ନିଘଣ୍ଟ } ଅନ୍ୟରୂପ ୨ । ନିର୍ଘଣ୍ଟ; ସୂଚୀପତ୍ର—2 Index.
ନିଘଣ୍ଟକ } ୩ । ଶବ୍ଦକୋଷ; ଶବ୍ଦସଂଗ୍ରହ—
3. Vocabulary; lexicon; glossary.
୪ । ବୈଦିକ ଅଭିଧାନ ବା ଶବ୍ଦକୋଷ—
4. A vocabulary or glossary of vedic terms.
[ ଦ୍ର—ଯାସ୍କ ତାଙ୍କ ରଚିତ 'ନିରୁକ୍ତ' ଗ୍ରନ୍ଥରେ ନିଘଣ୍ଟୁର ଟୀକା କରି ଅଛନ୍ତି । ]

**ନିଘନ**—ଦେ. ବିଣ ( ସ. ଘନ )—୧ । ଘନିଷ୍ଠ ସମ୍ପର୍କୀୟ—
Nighana 1. Closely related.
**घना सघन** ଶ୍ୟାମ ସାହୁ ବଦେଇର ନିଘନ ମଳାଶୁର ।
ଫକୀରମୋହନ. ଗଳ୍ପସ୍ୱଳ୍ପ ।

୨ । ଘନ ନିବିଡ଼; ସଘ—2. Dense.

ନବଘନ ରୁଚିର ନଘନ କେଶ ମୋର । ପ୍ରାଚୀ ରସବାରିଧି ।

୩ । ମୋଟ; ସ୍ଥୂଳ—3 Thick

ଧ୍ୱସ୍ତ ଅଂଘ୍ରି ଗୁରୁ ଉର

ନଘନ ଜାନୁ ଶୋଭାକର । ଜଗନ୍ନାଥ, ଭାଗବତ ।

ପ୍ରାଦେ. (ବାଲେଶ୍ୱର) ବି—ଅତି ନିକଟ ସମ୍ପର୍କ—
Close relationship.

**ନିଘମ**—ଦେ ବିଣ (ସଂ. ଘନ)—ଗମ୍ଭୀର, ଘୋର—
Nighama Deep; profound.
घोर **घोर, बिभोर** (ଯଥା—ନିଘମ ନିଦ ।)

**ନିଘରବାସ**—ଦେ. ବିଣ (ସଂ. ନି+ଗୃହ+ବାସ)—ଯାହାର ଗୃହ
Nigharabāsa ନାହିଁ; ଗୃହହୀନ; ବାସହୀନ—Homeless;
**निघर घट, निघरा** having no place to live in.
(ନିଘରୁଆ—ଅନ୍ୟରୂପ)

**ନିଘସ**—ସଂ ବି (ନି+ଅଦ୍ ଧାତୁ+କର୍ମ. ଅ; ନିପାତନ)—ଭୋଜନ,
Nighasā ଭକ୍ଷଣ—Eating.

**ନିଘା** (ଇତ୍ୟାଦି)—ଦେ. ବି.—ନିଗା ଇତ୍ୟାଦି (ଦେଖ)
Nighā (etc) Nigā etc. (See)

ପ୍ରାଦେ. (ସିଂହଭୂମ) ବି—ଶଗଡ଼ର ଅକ୍ଷ—
The axle of a cart.

**ନିଘାତ**—ସଂ. ବି.—(ନି+ହନ୍ ଧାତୁ+ଭାବ. ତ)—୧ । ଆହନନ;
Nighāta ପ୍ରହାର—1. A blow; a stroke.

୨ । ଉଦାତ୍ତ ସ୍ୱରକୁ ହନନ କରି ଅନୁଦାତ୍ତ କରିବା—
2. Suppression of the accent of a letter.

୩ । (+କର୍ମ. ଅ) ଅନୁଦାତ୍ତ ସ୍ୱର—
3. Unaccented letter.

**ନିଘାତି**—ସଂ. ବି (ନି+ହନ୍ ଧାତୁ=ବଧ କରିବା+କରଣ. ତି)—
Nighāti ୧ । ଲୌହମୟ ଦଣ୍ଡ—1. An iron rod; a club of iron.

୨ । (+ଅଧିକରଣ. ତି) କମାରଙ୍କ ନିହାଇ—2. Anvil.

୩ । (+ଭାବ. ତି)—ହତ୍ୟାକରଣ; ବିନାଶକରଣ; ମାରି ପକାଇବା—3. Striking down; killing; destroying (M. W.)

**ନିଘାବା(ମା)ନ୍**—ବୈଦେ. ବି. (ଫା. ନିଗାହ୍‌ବାନ୍)—ନିଗାବାନ୍ (ଦେଖ)
Nighābā(mā)n Nigābān (See)

**ନିଘାବା(ମା)ନି**—ବୈଦେ. ବି. (ଫା. ନିଗାହ୍‌ବାନୀ)—
Nighābā(mā)ni ନିଗାବାନି (ଦେଖ)
Nigābāni (See)

**ନିଘିନିଘିଆ**—ପ୍ରାଦେ. (ଗଡ଼ଜାତ) ବିଣ.—ଉଦୁଉଦିଆ (ଦେଖ)
Nighinighiā Udu-udiā (See)

**ନିଘୁଷ୍ଟ**—ସଂ. ବିଣ. (ନି+ଘୁଷ୍ ଧାତୁ=ଶବ୍ଦ କରିବା+କର୍ମ. ତ)—
Nighushṭa ୧ । ଶବ୍ଦିତ—1. Sounded.

୨ । ଉଚ୍ଚାରିତ—2. Uttered.

ବି. (+ଭାବ. ତ)—ନିନାଦ; ନିର୍ଘୋଷ; ଧ୍ୱନି—
Sound; noise.

**ନିଘୃଣ**—ଦେ. ବିଣ.—(ସଂ. ନିଘୃଣ)—ଘୃଣାରହିତ—
Nighruṇa Having no feeling of repulsion
निघिन्ने or antipathy.

**ନିଘୃଷ୍ୱ**—ସଂ. ବି. (ନି+ଘୃଷ୍ ଧାତୁ=ଘର୍ଷିବା; ଟାପୁ ମାରିବା+କରଣ,
Nighrushwa ବନ୍; ୧ମା. ୧ବ)—ଖୁରା; ଟାପୁ—1 Hoof.

୨ । (କର୍ତ୍ତୃ ବନ୍) ବାୟୁ—2. Air; wind.

୩ । ମାର୍ଗ—3. Road.

୪ । ଭଲ୍ଲୁକ—4 A bear.

୫ । ଖର; ଅଶ୍ୱତର; ଖଚର—5. A mule.

୬ । ଗର୍ଦ୍ଦଭ, ଗଧ—6. Ass. (M. W.)

୭ । ଖୁରର ଚିହ୍ନ—
7. The mark of a hoof (M. W.)

ସଂ ବିଣ.—୧ । ଘୋରି ହୋଇ ଛିଣ୍ଡି ଯାଇଥିବା—
1. Rubbed off; worn away (M. W.)

୨ । କ୍ଲେଶିତ; ଉଦ୍ବେଜିତ—
2. Harassed; afflicted (M. W.)

୩ । ହେୟ—3. Insignificant (M. W.)

୪ । କ୍ଷୁଦ୍ର—4. Small (M W.)

**ନିଘୋଟ**—ଦେ. ବିଣ.—ନିଘୋଡ଼ ୪ (ଦେଖ)
Nighota Nighorda 4 (See)

**ନିଘୋଡ଼**—ଦେ ବିଣ.—୧ । ଅନାଚ୍ଛାଦିତ—
Nighorda 1 Uncovered.

୨ । ଅରକ୍ଷିତ—2. Unprotected.

୩ । ନିଘନ; ପୂର୍ଣ୍ଣ—3. Full.

ଚତୁର୍ଥ ପାବଚ୍ଛ ଗୋଟା ନଘୋଡ ଅନାମିକା—ପ୍ରାଚୀ. ବ୍ରହ୍ମନବୁଦେଣ ଶୀତା

୪ । (ସଂ. ଗାଢ଼, ଘୋର)—ଗାଢ଼ (ନିଦ)—
4 Deep (slumber); profound.

କ୍ରି. ବିଣ.—ଗମ୍ଭୀରରୂପେ; ଅତ୍ୟନ୍ତ—Profoundly.

**ନିଘୋଡ଼ ଶୋଇବା**—ଦେ. କ୍ରି.—ଖୁବ୍ ଗମ୍ଭୀର ଭାବରେ ନିଦ୍ରା ଯିବା—
Nighorda śoibā To sleep very soundly.
**बिभोरशोना**

**ନିଘୋଡ଼େଣ**—ଦେ. (ପ୍ରାଚୀନ ପଦ୍ୟ) କ୍ରି. ବିଣ.—ନିଘୋଡ଼ (ଦେଖ)
Nighordeṇa Nighorda (See)

**ନିଘ୍ନ**—ସଂ. ବିଣ. (ନି+ହନ୍ ଧାତୁ=ବଧ କରିବା+କର୍ମ. ଅ)—
Nighna ୧ । ଅଧୀନ—1. Dependent.

୨ । ଆୟତ୍ତ; ବଶୀଭୂତ—
2 Subservient; subjugated

୩ । ଗୃହପାଳିତ; ପୋଷା—3. Domesticated; tamed

୪ । ଆଜ୍ଞାବର୍ତ୍ତୀ—4. Obedient.

୫ । ଅନୁଗତ—5. Devoted.

୬ । ପୂର୍ଣ୍ଣ—6. Full of.

୭ । (ଗଣିତ) ଗୁଣିତ—7. (Arithmetic) Multiplied.

୮ । (କର୍ତ୍ତୃ. ଅ) ଘାତକ—8. Slaying; killing; murderous.

ନିଘ୍ନତ—ସଂ. ବିଣ.—(ନି+ହନ୍ ଧାତୁ+କର୍ତ୍ତୃ. ତ)—ହତ୍ୟାକାରୀ—
Nighnata Slaying; killing (M. W.)
(ନିଘ୍ନମାନ, ନିଘ୍ନାନ—ଅନ୍ୟରୂପ)

ନିଙ୍ଗର(ଡା)—ପ୍ରାଦେ. (ଗଡ଼ଜାତ) ବି.—ଯୋଡ଼ ବା ଶ୍ରେଷ୍ଠ ନଦୀ
Ning-ra (rda) (ଯହିଁରେ ଉଚ୍ଚଭୂମି ଓ ପର୍ବତରୁ ନିଗିଡ଼ି ଆସୁଥିବା ପାଣି ବୋହି ଯାଏ।—A hill streamlet hill spring.

ନିଙ୍ଗିର(ଡ଼ି)ବା—ପ୍ରାଦେ. (ଗଡ଼ଜାତ) କ୍ରି.—ନିଗିଡ଼ିବା (ଦେଖ)
Ning-ri(rdi)ba Nigirdiba (See)

ନିଙ୍ଗ (ଇତ୍ୟାଦି)—ଗ୍ରା. ବି—ଲିଙ୍ଗ ଇତ୍ୟାଦି (ଦେଖ)
Ninga (etc) Linga etc (See).

ନିଙ୍ଗା—ଗ୍ରା. ବି—ଲିଙ୍ଗା (ଦେଖ)
Ninga Linga (See).
(ନିଚଯ୍ୟେ—ଅନ୍ୟରୂପ)

ନିଚ୍‌ପଟା—ପ୍ରାଦେ. (ସମ୍ବଲପୁର)—ବିଣ.—ନିଷ୍ପଟ୍ (ଦେଖ)
Nich-pata Nishpat (See)

ନିଚମନ—ସଂ. ବି. (ନି+ଚମ୍ ଧାତୁ+ଭାବ. ଅନ)—ଆଚମନ; ଅଳ୍ପ
Nichamana ଅଳ୍ପ କରି ପାଣି ପିଇବା—Sipping.

ନିଚୟ—ସଂ. ବି (ନି+ଚି ଧାତୁ=ତୋଳିବା; ଏକତ୍ର କରିବା+
Nichaya କର୍ମ. ଅ) ୧। ସମୂହ; ସକଳ, ନିବହ—
1. Multitude; assemblage; collection.
୨। ଗଦା; ରାଶି—2 Heap; mass.
୩। (+ଭାବ ଅ) ସଞ୍ଚୟ—3. Gathering; storing; store.
୪। ଉପଚୟ; ବୃଦ୍ଧି—4 Increase.
୫। ନିଶ୍ଚୟ (ଦୁ. ଶ.)—5. Certainty (Apte).
ଗ୍ରା. ଅ. ନିଶ୍ଚେ—Certainly.
ଅଭ ନ ଗାଇବ ନିଚୟେ ମରିବ—ହରିକ ମନର ବେଦନା।
(ନିଚଯ୍ୟେ—ଅନ୍ୟରୂପ) ପ୍ରାଚୀ. ପ୍ରଭାସ ଶର୍ମି ଶେଣା।

ନିଚଳ—ଦେ. ବିଣ. (ସଂ. ନିଶ୍ଚଳ)—ନିଶ୍ଚଳ (ଦେଖ)—
Nichala Nischala (See)
ଅଳ ନିଚଳ ଲୁବ୍‌ଧ ମଧୁପାନେ ମଧୁପ ନିଚଳ—ପ୍ରାଚୀ ରହସ୍ୟମଞ୍ଜରୀ।

ନିଚାୟ—ସଂ. ବି. (ନି+ଚି ଧାତୁ=ଗଦା କରିବା+କର୍ମ. ଅ)—
Nichaya ଧାନଗଦା—A heap of paddy.

ନିଚିକୀ—ସଂ. ବି. ସ୍ତ୍ରୀ—ଉତ୍କୃଷ୍ଟା ଗୌ—An excellent cow.
Nichiki (ନୈଚିକୀ—ଅନ୍ୟରୂପ)

ନିଚିତ—ସଂ. ବିଣ. (ନି+ଚି ଧାତୁ—ଏକତ୍ର କରିବା+କର୍ମ. ତ)
Nichita ୧। ଗଦା କରାଯିବା—1. Gathered; collected; heaped; piled up; accumulated.
୨। ପରିପୂର୍ଣ୍ଣ—2. Full of; filled with.
୩। ବ୍ୟାପ୍ତ; ଆକୀର୍ଣ୍ଣ—3. Pervaded.
୪। ରଚିତ—4. Fabricated; composed; made.
୫। ଆବୃତ—5. Covered; overcast.
୬। ସଞ୍ଚିତ—6. Stored; hoarded.
୭। ଉପାର୍ଜିତ—7. Earned.
୮। ଉତ୍ତୋଳିତ—8. Raised up (Apte).
୯। ସଙ୍କୀର୍ଣ୍ଣ (ଦୁ. ଶ.)—9. Narrow.

ନିଚିନ୍ତ—ଗ୍ରା. ବିଣ. (ସଂ. ନିଶ୍ଚିନ୍ତ)—ନିଶ୍ଚିନ୍ତ (ଦେଖ))—
Nichinta Nischinta (See)
ନିଚିନ୍ଦି ନିଚିନ୍ତ ସେହୁ ଭୁବନେ ନିଚିନ୍ତେ ରହିଲେ—ପ୍ରାଚୀ. ପ୍ରଭାସଶର୍ମିଶେଣା।
[ ନିଚନ୍ତା, ନିଚନ୍ତ, ନିଚନ୍ଦ, ନିଚିନ୍ତ(ନ୍ତା,ନ୍ତ)—ଅନ୍ୟରୂପ ]

ନିଚପଡ—ପ୍ରାଦେ. (ପୁରୀ) ବିଣ—୧। ନିଶ୍ଚିନ୍ତ—1. At ease.
Nichiparda ୨। ସ୍ୱଚ୍ଛନ୍ଦ—2. Comfortable.
୩। ପରିଷ୍କୃତ ପରିଚ୍ଛନ୍ନ—3. Neat and clean.
ଘରେ ସାବୁନ ଲଗାଇ ପତ୍ତରେ କାଳ ନିଚପଡ ହୋଇ ଗାଧୁଆ ପାଧୁଆ ସାରି ଜଳଖିଆଖାଏ ବଳେ—ପାଠାମ୍ବର ଜାଉନ୍ସନ୍।

ନିଚୁ—ଦେ. ବି.—ଲିଚୁ (ଦେଖ)—
Nichu Lichu (See)

ନିଚୁଳ—ସଂ. ବି. (ନି+ଚୁଲ୍ ଧାତୁ=ଉନ୍ନତ ହେବା+କର୍ତ୍ତୃ. ଅ)—
Nichula ୧। ବେତ ଲତା—1. Cane; ratan creeper; Calamus Rotang.
୨। ଇଜ୍ଜଳ; ହିଜ୍ଜଳ ଗଛ—2. Barringtonia Acutangula (tree).
୩। ନିଚୋଳ (ଦେଖ)—3. Nichola (See).
୪। (ନାମ) କାଳିଦାସଙ୍କ ବନ୍ଧୁ ଓ କବି—
4 Name of a poet and friend of Kalidasa (Apte).

ନିଚୁଳକ—ସଂ. ବି. (ନି+ଚୁଲ୍ ଧାତୁ+ଅକ)—ନିଚୋଳ (ଦେଖ)
Nichulaka Nichola (See)

ନିଚେଁ—ଗ୍ରା. ଅ. (ସଂ. ନିଚୟ)—ନିଶ୍ଚେ; ଅବଶ୍ୟ—
Nicheñ Certainly; surely.
निचय निचै, निज ଗୃଲ ନିଚେଁ ବନ ଯିବା ଗମନ କର—ପ୍ରାଚୀ ରସକାଉଁ।
(ନିଚେ, ନିଛେ, ନିଛେଁ—ଅନ୍ୟରୂପ)

ନିଚେଷ୍ଟ(ଷ୍ଟ)—ଗ୍ରା. ବିଣ (ସଂ. ନିଶ୍ଚେଷ୍ଟ)—୧। ଚେଷ୍ଟାହୀନ—
Nicheshta(shtha) 1. Without exertion.
ନିଚେଷ୍ଟା(ଷ୍ଟା), ନିଚେରେଷ୍ଟା(ଷ୍ଟା) } ଅନ୍ୟରୂପ
୨। ନିଶ୍ଚଳ—2 Motionless.
निचेष्ट ୩। ଅଜ୍ଞାନ—3. Insensible; unconscious
ନିଚେଷ୍ଟ କରି ପ୍ରଚେଷ୍ଟ ପରି ଯାଇ ସୁଲୋଚନା ପାଶେ ରହି। ଉପେ. କୋଟିବ୍ରହ୍ମାଣ୍ଡସୁନ୍ଦରୀ।

ନିଚୋଳ—ସଂ. ବି(ନି+ଚୁଲ ଧାତୁ=ଅବଗୁଣ୍ଠନ କରିବା; ଆବୃତ କରିବା
Nichola +କରଣ. ଅ)—୧। ଚୋଗା—
1. A toga; overcoat.
୨। ଘାଘରା; ଉତ୍ତରଚ୍ଛଦ—
2. Surtout; petticoat; apron.
୩। ଶାଢ଼ୀ—3. Cloth worm by women.
୪। ଉତ୍ତରୀୟ—4. Upper garment; mantle.
୫। ପ୍ରଚ୍ଛଦପଟ; ପାଛୁଡ଼ା; ଏକପଟା; ଦୋପଟା; ଦୋସଡ଼ା—
5. A sheet; wrapper.
୬। ସାଞ୍ଜୁ—6. Armour; cuirass; breastplate.
୭। ଦୋଳିକାବରଣ; ସବାରିଆଦିର ଘଟାଟୋପ—
7. A cover for a litter or palky.
୮। କାଞ୍ଚୁଳି; ଜାକେଟ; ଫତେଇ—
8. A jacket; bodice.

୯ । ଓଢ଼ଣା; ଓଢ଼ଣୀ—9 A veil
ନଚୋଳ ଷର ନଚୋଳ ମଣ୍ଡନାରେ ସହ—ଭକ୍ତ. ପ୍ରେମସୁଧାନିଧି
୧୦ । ବାକସ—10. A case; a box (M.W.)
୧୧ । ବିଛଣା ଗୁଦଡ଼—11 A bed cover.
ଦେ. ବିଣ. ପୁଂ—କାଞ୍ଚୁଲହୀନ—Jacketless

ନଚୋଳକ—ସ. ବି (ନି+ଚୁଲ୍ ଧାତୁ+ଅକ)—ନଚୋଳ (ଦେଖ)
Nicholaka Nichola (See).

ନଚୋଳୀ—ସ. ବି (ନି+ଚୁଲ୍ ଧାତୁ+ଅ+ଈ)—ନଚୋଳ (ଦେଖ)
Nicholi Nichola (See)

ନଚ୍ଚୟ—ପ୍ରାଦେ (ମେଦନାପୁର) କ୍ରି. ବିଣ—ନିଶ୍ଚୟ; ଅବଶ୍ୟ—
Nichchaya Certainly

ନଚ୍ଛବ—ସ. ବି (ନି+ଛବି=ପ୍ରାପ୍ତି)—୧ । ତ୍ରିହୁତ ଦେଶ—
Nichchhabi 1. Tirhoot (Division).
୨ । ବର୍ଣ୍ଣସଙ୍କରଜାତିବିଶେଷ—
2. Name of a mixed caste.
[ ଦ୍ର—ସବର୍ଣ୍ଣା ସ୍ତ୍ରୀଠାରୁ ଉତ୍ପନ୍ନ ବ୍ରାତ୍ୟ କ୍ଷତ୍ରିୟଜାତିକୁ ନଚ୍ଛବ ବୋଲଯାଏ—ହି. ଶ । ]

ନଚ୍ଛେଦ—ସ. ବି (ନି+ଛିଦ୍ ଧାତୁ+ଭାବ. ଅ)—ଛେଦନ; କର୍ତ୍ତନ—
Nichchheda Cutting.

ନଚ୍ଛେଦ୍ୟ—ସ ବିଣ (ନି+ଛିଦ୍ ଧାତୁ+କର୍ମ. ଯ)—୧ । ଅଚ୍ଛେଦ୍ୟ—
Nichchhedya 1. Inseparable.
୨ । ଅଭେଦ୍ୟ—2. Inpenetrable.
୩ । ଅବିଭାଜ୍ୟ—3 Indivisible.

ନଛକ୍—ଦେ. ବିଣ—୧ । (ସ. ନିସର୍ଗଜ)—ଅବିମିଶ୍ର; ଶୁଦ୍ଧ, ଖାଣ୍ଟି—
Nichhak Unalloyed; pure; genuine.
(ନଛକ୍—ଅନ୍ୟରୂପ) ୨ । (ସ ନିଷ୍ଟକ)-ଅଦ୍ଭୁତ, ନିଚୋଲା; ନିର୍ଜନ-
निछक निछक्का Solitary; lonely.
निबाला **नछक** ଦେ. କ୍ରି. ବିଣ—୧ । ନିଶ୍ଚୟ; ନିଃସନ୍ଦେହରୂପେ—
1. ndoubtedly.
୨ । ପରିଶୁଦ୍ଧରୂପେ—2. Purely

ନିଛତ୍ର—ଦେ. ବିଣ. ସ. ନିଃକ୍ଷତ୍ର ) ୧ । କ୍ଷତ୍ରିୟଶୂନ୍ୟ—
Nichhatra 1. Devoid of all warriors; with all
निक्षत्र **निच्छत्र** its warriors killed.
( ନଛତ୍ରି, ନଛତ୍ର, ନିଛତ୍ରି—ଅନ୍ୟରୂପ)
୨ । ଅରାଜକ (ଦେଖ)—2. Kingless; anarchical.
୩ । ନିଃକ୍ଷତ୍ରିୟ—3. Destitute of Kshatriyas or warriors.
୪ । ଛାରଖାର; ଧ୍ୱଂସପ୍ରାପ୍ତ—
4. Devastated; destroyed.
ବି—ଏକ ପ୍ରକାର ଘର—A kind of house

ନଛଳ—ଦେ. ବି. (ସ. ଛଳ)—କପଟତା—
Nichhala Knavery; deceitfulness.
(ନଛଳା—ଅନ୍ୟରୂପ) ଦେ. ବିଣ. (ସ. ନିଶ୍ଛଳ)—୧ । ଛଳନାହୀନ;
निछल ସରଳ—1. Frank.
**निछल** ୨ । ନଛଳିଆ (ଦେଖ)—2 Nichhalia (See)

ନିଛଳିଆ—ଦେ. ବିଣ. ପୁଂ—୧ । ଯେଉଁ ବ୍ୟକ୍ତି ସାମାନ୍ୟ କଥାରେ ବା
Nichhalia ଗାଳିରେ ଅଯଥା ଛଳ ବା ଅପମାନ କରେ ନାହିଁ—
(ନଛଳେଇ—ସ୍ତ୍ରୀ 1 (a person) Who does not take
(ନଛଳା, ନଛଳୁଆ—ଅନ୍ୟରୂପ) offence at petty matters.
(ନଛଳୀ, ନଛଳୋଇ—ସ୍ତ୍ରୀ) ୨ । ନିଷ୍କପଟ—2. Frank.
निछल **निच्छल**

ନଛାଟ—ଦେ. ବି—ନିର୍ଜନତା—Solitude.
Nichhata ବିଣ—୧ । ନିର୍ଜନ—1 Solitary; lonely.
(ନଛାଟ—ଅନ୍ୟରୂପ) ୨ । ଏକାକୀ; ଏକୁଟିଆ—2. Alone.
निबाला ଗୋଇଅଛ ପୁଣି ଏହୁ ବେଖାଉଲେ ଖାର 'ଲସଡେଲ'
**निछक्का** ନଛାଟ ବୁଲେ । ଉଜସ୍ୱତନ୍ତ୍ର. ଶ୍ରେତବୀପବାଣୀ ।

ନଛାଟିଆ—ଦେ. ବି—ନିର୍ଜନତା—Solitude.
Nichhatia ବିଣ—୧ । ନିର୍ଜନ—1. Solitary; lonely.
(ନଛାଟିଆ—ଅନ୍ୟରୂପ) ୨ । ଏକୁଟିଆ; ଏକାକୀ—Single; walking alone.

ନଛିବା—ପ୍ରାଦେ. (ସମ୍ବଲପୁର) କ୍ରି—ଚାଞ୍ଛିବା—
Nichhiba To scrape off.

ନଛୁଣା—ଦେ. ବିଣ. ପୁଂ—ନିଉଛୁଣା (ଦେଖ)
Nichhuna (ନଛୁଣୀ—ସ୍ତ୍ରୀ) Niuchhuna (See)

ନିଜ୍ (ଧାତୁ)—ସ—୧ । ଧୋଇବା—1. To wash.
Nij (root) ୨ । ଶୋଧନ କରିବା—2. To rectify.

ନିଜ୍—ଦେ. କ୍ରି. ବିଣ ( କଚରଆ; ସ. ନିଜ )—ସ୍ୱୟଂ; ଆପେ—
Nij One's self; self.
ନିଜ } ଅନ୍ୟରୂପ (ଯଥା—ଦାଖଲ ଖଜଣା ଗ୍ରାମ ସାକ୍ଷ୍ ଟ ୫୯
ନିଜେ } । ଦ୍ର । ନିଜ୍ ।)
निज **खुद, निज** ବିଣ—ସେହି; ଏକମାତ୍ର—Selfsame.

ନିଜ—ସ. ବିଣ. (ନି+ଜନ୍ ଧାତୁ+କର୍ତ୍ତୃ ଅ)—
Nija ୧ । ଆପଣାର, ସ୍ୱକୀୟ; ସ୍ୱୀୟ—1 One's own.
(ନିଜା—ସ୍ତ୍ରୀ) ୨ । ସ୍ୱାଭାବିକ—2. Natural; proper.
(ନିଜତ୍ୱ—ବି) ୩ । ଅନାଦି; ନିତ୍ୟ—3. Eternal.
୪ । ଅନନ୍ତ—4 Endless.
୫ । ଅକ୍ଷୟ—5 Imperishable; inexhaustible.
୬ । ଅସୀମ—6. Unlimited.
୭ । ସନାତନ; ସନ୍ତତ; ଚିର—7. Perpetual.
୮ । ସ୍ଥାୟୀ—8. Constant; permanent.
ଦେ. ବି—ସ୍ୱୟଂ—One's self.
निज [ ଦ୍ର—ସଂସ୍କୃତରେ ନିଜ ଶବ୍ଦ ବିଣ; କିନ୍ତୁ ଓଡ଼ିଆରେ,
**निज** ବଙ୍ଗଳାରେ ଓ ହିନ୍ଦିରେ ନିଜ ଶବ୍ଦ ସଙ୍ଗେ ବିଭକ୍ତ୍ୟନ୍ତ ପ୍ରତ୍ୟୟ
(ନିଜ—ଅନ୍ୟରୂପ) ଯୋଗ କରି ନିଜର, ନିଜକୁ, ନିଜଠାରୁ ଆଦି ଶବ୍ଦ ବ୍ୟବହୃତ ହୁଏ । ]

ନିଜ କର୍ମ—ସ. ବି—ଆପଣାର କାମ—One's own duties; one's
Nija karma (ନିଜକାର୍ଯ୍ୟ—ଅନ୍ୟରୂପ) peculiar work.

ନିଜ ଖରଚ—ଦେ. ବି—ଆପଣାର ବ୍ୟକ୍ତିଗତ ଆବଶ୍ୟକ ବ୍ୟୟ—
Nija kharacha One's private expenses.
निजखरच **निजखर्च** ( ନିଜ ଖରଚ; ନିଜଖର୍ଚ୍ଚ—ଅନ୍ୟରୂପ )

ନିଜ ଗାଁ—ଦେ. ବି. (କଟକଥା)—୧ । ଏହି ଗ୍ରାମ—
Nija gā̃
1. The same village.
(ନିଜଗାଆଁ; ନିଜଗାଁ—ଅନ୍ୟରୂପ) ୨ । ପୂର୍ବୋକ୍ତ ଗ୍ରାମ—
নিজগাঁ
2. The said village
**निजगाँव** ୩ । ଆପଣା ଗ୍ରାମ—3. One's own village.
[ ଦ୍ର—କୌଣସି ଗ୍ରାମର ଜମି ବିକି କରାଯାଉଥିଲେ ଉକ୍ତ କବାଲାରେ ଯେବେ ସେହି ଗ୍ରାମ ଅଧିବାସୀ କେହି ବ୍ୟକ୍ତି ସାକ୍ଷୀ ପଡ଼େ ତେବେ ଲେଖାଯାଏ ଇସାଦ, ଅମୁକ, ସାକିନ—ନିଜଗାଁ । ]

ନିଜଚାଷ—ଦେଦେ. ବି ( ସଂ. ନିଜ+କୃଷି )—ଜମିଦାର ନିଜେ
Nijachāsha
ଚାଷ କରିବା ଜମି; ଖମାର ଚାଷ—
নিজজোত
Land cultivated by the zamindar himself; nijchas; nijjote.
**खुदकाश्त; जिरात**
(ନିଜଚାଷ—ଅନ୍ୟରୂପ) [ ଦ୍ର—ଓଡ଼ିଶା ପ୍ରଜାସ୍ୱତ୍ୱ ଆଇନର ବିଧାନ ଅନୁସାରେ ଜମିଦାରଙ୍କ ନିଜର ହଲ ଓ ମୂଲିଆଙ୍କଦ୍ୱାରା ଚାଷ କରାଯାଉଥିବା ଜମି ମଧ୍ୟରୁ ଯେଉଁ ଜମି ୧୮୯୮ ସାଲର ପ୍ରୋଭିନସିଆଲ୍ ବନୋବସ୍ତରେ ଜମିଦାରଙ୍କ ନିଜଚାଷ ବୋଲି ବନ୍ଦୋବସ୍ତ ରେକର୍ଡରେ ଦରଜ ହୋଇଥିଲା ଓ ପରବର୍ତ୍ତୀ ବନୋବସ୍ତରେ ମଧ୍ୟ ନିଜଚାଷ ବା ନିଜଯୋତ ବୋଲି ଦରଜ ହୋଇଅଛି ତାହା ନିଜଯୋତ ବୋଲି ଗୃହୀତ ହେବ । ଏହା ଛଡ଼ା ଜମିଦାରଙ୍କ ଖାସ୍ ଦଖଲରେ ଥିବା ଅନ୍ୟ ଜମିମାନ ନିଜଚାଷ ଅଟେ । ନିଜ ଯୋତ ଜମି ପ୍ରଜାଙ୍କୁ ବିକି କରାଗଲେ ତହିଁରେ ପ୍ରଜାର ସ୍ଥିତିବାନ୍ ସ୍ୱତ୍ୱ ଉଦ୍ଭବ ହୋଇ ନ ପାରେ, କିନ୍ତୁ ନିଜଚାଷ ଜମିରେ ପ୍ରଜାର ସ୍ଥିତିବାନ୍ ସ୍ୱତ୍ୱ ଉଦ୍ଭବ ହୁଏ । ]

ନିଜଞ୍ଜାଳ—ଦେ. ବିଣ ( ସଂ. ନିର୍+ଜଞ୍ଜାଳ )—୧ । ଯହିଁରେ
Nijañjāla
କୌଣସି ଗୋଳମାଳ ବା କଷ୍ଟ ନାହିଁ—
নিজংজালী
1. Free from difficulty or trouble or complications.
**निर्जंजाली**
୨ । ( ପୁଂ )—ନିଜଞ୍ଜାଳ ( ଦେଖ )
(ନିଜଞ୍ଜାଳୀ—ସ୍ତ୍ରୀ)
Nijañjāli ( See )

ନିଜଞ୍ଜାଳି—ଦେ. ବିଣ. ପୁଂ—୧ । ନିଶ୍ଚିନ୍ତ—
Nijañjāli
1. Free from anxiety or care.
(ନିଜଞ୍ଜାଳିଆ—ଅନ୍ୟରୂପ) ୨ । ଶାନ୍ତ—2. Tranquil; at ease.
( ନିଜଞ୍ଜାଳୀ, ନିଜଞ୍ଜାଳେଇ—ସ୍ତ୍ରୀ ) ୩ । ଯେଉଁ ବ୍ୟକ୍ତି ସାଂସାରିକ
নিজংজালী **निर्जंजाली** ଜଞ୍ଜାଳରୁ ମୁକ୍ତ—3. Having no worldly encumbrance; unencumbered.
୪ । ଗୋଳମାଳରୁ ନିଶ୍ଚିନ୍ତ—4 Free from trouble or complication or confusion.

ନିଜ ତନ୍ତ୍ରୀ—ସଂ. ବିଣ (ନିଜ+ତନ୍ତ୍ର+ଇନ୍, ୧ମା. ୧ବ)—୧ । ସ୍ୱାଧୀନ—
Nijatantri
1. Independent.
୨ । ସ୍ୱତନ୍ତ୍ର—2. Autocratic.

ନିଜଦିଆ—ପ୍ରାଦେ. (ସାଜପୁର) ବି—କୃଷକମାନଙ୍କର ସଙ୍ଗ ପ୍ରଥମେ ବର୍ଷର
Nijadiā
ପାଚିଲା ଧାନ କାଟି ଘରକୁ ଆଣିବା ଉପଲକ୍ଷରେ ଅନୁଷ୍ଠିତ ଉତ୍ସବବିଶେଷ—A feast observed by cultivators on the first day when they bring the year's ripe paddy home.
[ ଦ୍ର—ଧାନ ପାଚିବାର ଦେଖାଗଲେ ସେ ଦିନ କମ୍ପା ଯେଉଁ ଦିନ କୃଷକ ପ୍ରଥମେ ଧାନ କାଟି ଘରକୁ ଆଣେ ସେ ଦିନ ସେହି ନୂଆ ଧାନର ଗୁଣ୍ଡଲଡ଼ୁରେ ଖୀରି କରି କୃଷକ ପରିବାରର ସମସ୍ତେ ଖାଆନ୍ତି । ]

ନିଜ(ଜ୍ଜ)ନ—ଗ୍ରା. ବିଣ. ( ସଂ. ନିର୍ଜନ )—
Nija(jja)na
୧ । ନିର୍ଜନ; ଜନଶୂନ୍ୟ—1. Solitary
নির্জন
୨ । ନିସ୍ତବ୍ଧ; ନୀରବ—1 Silent; quiet.
**निस्तब्धा, सुनसान**

ନିଜନ ରାତି—ଗ୍ରା. ବି—୧ । ନିସ୍ତବ୍ଧ ରାତ୍ରି—
Nijana rāti
1. Dead of night; silence of night.
নির্জন রাত
**सुनसान रात** ୨ । ଅର୍ଦ୍ଧ ରାତ୍ରି—2. Midnight

ନିଜ ନିଜ—ଦେ. ବିଣ. ( ବହୁବଚନ, ବିଶେଷଣ ପୂର୍ବରେ ଲାଗେ)—
Nijanija
ଆପଣା ଆପଣାର, ଯେ ଯାହାର—
নিজে নিজের, নিজনিজ
Respective; pertaining to each respectively.
**निजका, अपना अपना**
(ନିଜ ନିଜର—ଅନ୍ୟରୂପ)

ନିଜ ମତ—ସଂ. ବି (କର୍ମଧା; ନିଜ+ମତ)—ଆପଣାର ମତ—
Nija mata
One's own view or opinion.

ନିଜ ମୌଜା—ଦେ ବି. ( ସଂ. ନିଜ+ଫା. ମୌଜା)—
Nija mauja
୧ । ଆପଣାର ବାସସ୍ଥାନ ଗ୍ରାମ—
1. One's residential village.
ନିଜ୍ ମୌଜା
ନିଜ ମୌଜା } ଅନ୍ୟରୂପ
ନିଜ ମଉଜା
୨ । ନିଜଗାଁ ( ଦେଖ )
নিজ মৌজা **निज मौजा**
2. Nijagā̃ (See)

ନିଜ ଯୋତ—ଦେ. ବି—ନିଜ ଚାଷ ( ଦେଖ )
Nija jota
Nija chāsha ( See )
(ନିଜ ଯୋତ—ଅନ୍ୟରୂପ) [ ନିଜଚାଷ ତଳେ ନୋଟ୍ ଦେଖ ]

ନିଜ ରୂପ ଦେଖା(ଖୋ)ଇବା—ଦେ. କ୍ରି (ଆକ୍ଷରିକ ଅର୍ଥ ଓ ଲକ୍ଷଣାର୍ଥ)—
Nija rūpa dekhā(khe)ibā
୧ । ଛଦ୍ମ ରୂପ ଛାଡ଼ି ଆପଣାର
(ନିଜ ରୂପ ଧରିବା—ଅନ୍ୟରୂପ) ପ୍ରକୃତ ଚେହେରା ଦେଖାଇବା—
নিজের রূপ দেখান
1 ( literary and figurative ) To come out in one's true colours.
**निज रूप दिखाना**
୨ । (ଲକ୍ଷଣାର୍ଥ) ଅତ୍ୟନ୍ତ କ୍ରୋଧାନ୍ୱିତ ହେବା—
2. (figurative) To become very angry.
୩ । ( ଲକ୍ଷଣାର୍ଥ ) ନିଜର ଆନ୍ତରିକ ମତ ଗୋପନ ନ କରି ପ୍ରକାଶ କରିବା—3. ( figurative ) To show one's colours to express one's sincere views.

ନିଜସ୍ୱ—ସଂ. ବି. ( ୬ଷ୍ଠୀ ତତ୍; ନିଜ+ଧନାର୍ଥେ. ସ୍ୱ; ଭୁଲ—ନିଜସ୍ୱ,
Nijaswa
ଦେବସ୍ୱ, ସର୍ବସ୍ୱ )—
ସ୍ୱକୀୟ ଧନ—One's own property.
ବିଣ—ସ୍ୱକୀୟ—One's own.

ନିଜା—ସଂ. ବି ସ୍ତ୍ରୀ. ( ନିଜ+ସ୍ତ୍ରୀ. ଆ )—
Nijā ପତିବ୍ରତା—Devoted to her husband; chaste ( woman ).

ନିଜାମ୍—ବୈଦେ. ବି (ଆ)—୧ । ରାଜପ୍ରତିନିଧି; ଶାସନକର୍ତ୍ତା—
Nijām 1. Governor; Viceroy.
ନିଜାମ ୨ । ଦକ୍ଷିଣ ଭାରତରେ ହାଇଦ୍ରାବାଦ ରାଜ୍ୟର ମୁସଲମାନ
निज़ाम ରାଜାଙ୍କ ଉପାଧି—2 Nizam; the title of the Mohamedan ruler of the Hyderabad State in South India.
ଯବନ ନିଜାମ ଦାକ୍ଷିଣାତ୍ୟେଶ୍ୱର । ରାଧାନାଥ. ଦରବାର ।
[ଦ୍ର—ଏ ରାଜାଙ୍କ ଉପାଧି ନିଜାମ୍ ଉଲ୍ ମୁଲ୍କ୍ ଅଟେ । ନିଜାମ୍ ଶବ୍ଦ ଇଂରାଜି ଭାଷାରେ ଚଳନ୍ତି ।]

ନିଜାମତ୍—ବୈଦେ ବି (ଆ)—ରାଜ୍ୟଶାସନ—
Nijāmat Administration; judicial and executive
ନିଜାମତ निज़ामत् government of a country.
[ଦ୍ର—ବଙ୍ଗବିହାର ଓଡ଼ିଶାର ରାଜସ୍ୱ ଆଦାୟର ଭାର (ଦେବାନୀ) ମୋଗଲ ସମ୍ରାଟ ସାହାଆଲମଙ୍କ ଠାରୁ ଇଷ୍ଟ ଇଣ୍ଡିଆ କୋମ୍ପାନି କ୍ଲାଇବଙ୍କ ଅମଳରେ ୧୭୬୫ ଖ୍ରୀଷ୍ଟାବ୍ଦରେ ୨୬ ଲକ୍ଷ ଟଙ୍କା ବାର୍ଷିକ ଜମାରେ ସନନ୍ଦଦ୍ୱାରା ପାଇଥିଲେ ଓ ନିଜାମତ୍ ( ରାଜ୍ୟ ଶାସନ ଓ ବିଚାର ) ବଙ୍ଗର ନବାବଙ୍କଠାରେ ପୂର୍ବପର ରହିଯାଇଥିଲା । ଏହାକେତେ ଏହି ଦ୍ୱୈତଶାସନ ଚଳିଲା ପରେ ବଙ୍ଗ ବିହାର ଓଡ଼ିଶାର ନିଜାମତ୍ ମଧ୍ୟ ଇଂରାଜଙ୍କର ହସ୍ତଗତ ହେଲା ।]

ନିଜାମତ୍ ଅଦାଲତ—ବୈଦେ. ବି (ଆ)—ଶାସନବିଭାଗୀୟ ବିଚାରାଳୟ—
Nijāmat adālata Court of the executive govern-
ନିଜାମତ ଆଦାଲତ निज़ामतअदालत ment of a country.

ନିଜାମତି—ବୈଦେ. ବି. (ଫା. ନିଜାମତ୍)—ନିଜାମଙ୍କ ପଦବୀ—
Nijāmati The position of a Nizam.
ନିଜାମତି निज़ामती

ନିଜାରତ୍—ବୈଦେ. ବି. (ଫା)—ନାଜରଙ୍କ କାର୍ଯ୍ୟ—
Nijārat The duties or post of a Nazir.
(ନିଜାରତ, ନାଜରତି—ଅନ୍ୟରୂପ)
ନିଜାରତ; ନାଜରାତି निज़ारत

ନିଜା(ଜ୍ଞା)ସ—ଦେ. ବିଣ. (ସଂ. ନିର୍ଯ୍ୟାସ)—ନିଶ୍ଚିତ—
Nijā (jñā)sa Certain.
ନିଜାସ ବି.—୧ । ଅନ୍ତରର ଭାବ—
नियुक्त बात् 1. Actual wish.
୨ । ସାର ମର୍ମ—2. Gist; purport.
୩ । ନିଶ୍ଚୟ—3. Certainty; fixity.
୪ । ଶେଷ ସିଦ୍ଧାନ୍ତ—4 Final decision.

ନିଜେ—ଦେ ଅ.—(ସଂ. ନିଜ)—୧ । ସ୍ୱୟଂ, ଖୋଦ୍—
Nije 1. By one's self.
ନିଜେ ୨ । ସ୍ୱେଚ୍ଛାରେ—2. Voluntarily; of one's own
खुद्, निज accord.

ନିଜେଇ—ଦେ. ଅ. (ସଂ. ନିଜ+ହି)—(ବଙ୍ଗଳାରୁ ଅନୁକୃତ)—
Nije i ନିଜେବ ନିଜେ (ଦେଖ)—Nije (See)

ନିଜେ ନିଜେ—ଦେ ଅ.—୧ । ଆପଣା ଇଚ୍ଛାରେ; ସ୍ୱେଚ୍ଛାରେ—
Nije nije 1. Of one's own accord; voluntarily
ନିଜେ ନିଜେ ୨ । ସେମାନେ କିମ୍ବା ଆମ୍ଭେମାନେ ବା ତୁମ୍ଭେମାନେ
खुद्, निजनिज ସ୍ୱୟଂ—Themselves, ourselves or yourselves.

ନିଜୋର—ଦେ. ବିଣ୍ (ସଂ. ନିର୍+ଅ. ଜୋର୍)—୧ । ଦୁର୍ବଳ; ବଳ-
Nijora ହୀନ; ଦୁର୍ବଳ—1. Powerless; weak
(ନିର୍ଜୋର; ନିଜୋରଆ—ଅନ୍ୟରୂପ) ୨ । ଅସମର୍ଥ—2 Unable.
କମଜୋର निजोर

ନିଜୋରି—ଦେ. ବି.—( ଓ. ନିଜୋରର ବିଶେଷ୍ୟ )—ବଳହୀନତା;
Nijori ଦୁର୍ବଳତା— Weakness.
କମଜୋରୀ कमजोरी (ନିର୍ଜୋରି—ଅନ୍ୟରୂପ)

ନିଜ୍ଜନ—ଦେ. ବିଣ. (ସଂ. ନିର୍ଜନ; ପ୍ରା ନିଜ୍ଜନ)—ନିର୍ଜନ (ଦେଖ)
Nijjana Nirjana (See)
ନିଝୁମ ନିଜ୍ଜନ ନିକୁଞ୍ଜେ କରି ଅଭିସାରେ ଗୃହ ତେଜି ହେଲି ବାହାର—ଗ୍ରାମ୍ୟ ଉଦବାଉର
छका

ନିଜ୍ୟମାନ—ସଂ. ବିଣ. ( ନିଜ୍ ଧାତୁ=ଶୋଧନ କରିବା+କର୍ମବାଚ୍ୟ. ଶାନଚ୍ ) ୧ । କ୍ଷାଳିତ—1. Washed.
Nijyamāna
୨ । ଶୋଧିତ—2. Rectified; refined.

ନିଝାନ ମାରିବା—ପ୍ରାଦେ. (ଜୟପୁର) କ୍ରି—(ଧାନ) ବେଉଷଣ କରିବା—
Nijhāna māribā To puddle paddy plants.

ନିଝାମ—ପ୍ରାଦେ. (ପୁରୀ) ବି—ଜାଗାଘରେ ଭୁସ୍ତି କରିବାର ଯନ୍ତ୍ରବିଶେଷ-
Nijhāma An appliance used in athletic exercises.

ନିଝୁମ—ସଂ. ବିଣ. (ସଂ ନିର୍ଧୂତ)—୧ । ନିଷ୍ପନ୍ଦ; ନିଶ୍ଚଳ—
Nijhum 1. Motionless; still.
ନିଜ୍ ଝୁମ ୨ । ନିର୍ବାତ—2. Calm; serene; windless.
सुनसान ୩ । ନିଃଶବ୍ଦ; ନିସ୍ତବ୍ଧ 3. Silent; quiet.
( ଯଥା—ନିଝୁମ୍ ରାତି । )

ନିଝୋଲିଆ—ପ୍ରାଦେ. (ଯାଜପୁର) ବିଣ—ଦୁର୍ବଳ—
Nijholiā Weak.

ନିଟ୍—ବୈଦେ. ବି. (ଇଂ ନେଟ୍, ଭୁଲ. ସଂ ନିଷ୍ଠା)—
Nit ୧ । ବାଦବାକି; ଖରଚଖର୍ଚ୍ଚ ବାଦ୍ ବାକି ପଡ଼ିଥିବା—
(ନିଟି—ଅନ୍ୟରୂପ) 1 Nett.
ନିଟ ୨ । ନିଶ୍ଚିତ—2. Certain.
खालिस ୩ । ( ଇଂ. ନାଟ୍ ) ଠିକ୍; ଯଥାର୍ଥ—
3. Exact; neat

ନିଟ୍ ଆୟ—ଦେ. ବି—ଖର୍ଚ୍ଚ ଓ କ୍ଷତି ବାଦ୍ ବାକି ମିଳିବା ଆୟ—
Nit āya Nett profit; clear profit.
(ନିଟ୍ଲାଭ, ନିଟ୍ଲଭ୍ୟ, ନିଟ୍ମୁନାଫା—ଅନ୍ୟରୂପ).
(ମୋଟଆୟ—ବିପରୀତ) ନିଟଲାଭ खालिसनफा

ନିଟଳ—ସଂ. ବି. (ନି+ଟଲ୍ ଧାତୁ=କମ୍ପିବା+କର୍ତ୍ତୃ. ଅ)—
Niṭala କପାଳ; ଭାଲଦେଶ—Forehead.
(ନିଟାଳ, ନିଟିଳ—ଅନ୍ୟରୂପ) ଦେ. ବିଣ. (ସଂ. ଅଟଳ)—ଅଟଳ,
ଅଟଳ अटल ସ୍ଥିର—Steady; fixed.

**ନିଟଲା**—ଦେ. ବି. ( ସଂ. ନିଟଲ )—କପାଳ; ଭାଲ ଦେଶ—
Niṭala̲ Forehead
ମିଳେ ଏକ କଣ୍ଠଲା ଅର୍ଦ୍ଧଚନ୍ଦ୍ର ନିଟଲା,
ଗୋରୋଚନା କରୁ ବନ୍ଦେଜନ । ଉକ୍ତ କୋଟିବ୍ରହ୍ମାଣ୍ଡସୁନ୍ଦରୀ ।

**ନିଟଲାକ୍ଷ**—ସଂ. ବି. ପୁଂ ( ବହୁବ୍ରୀହି; ନିଟଲରେ ଅକ୍ଷି ଯାହାର )—
Niṭa̲lāksha ମହାଦେବ—Siba.
( ନିଟଲାକ୍ଷୀ—ସ୍ତ୍ରୀ ) ବିଣ. ପୁଂ.—ଯାହାର ଗୋଟିଏ ଆଖି ଭାଲ ଦେଶରେ ଥାଏ—Having one eye on the brow.

**ନିଟା**—ଦେ ବିଣ. ପୁଂ.—ନିଠା ( ଦେଖ )—
Niṭā Niṭhā ( See ).

**ନିଟାଣୁଆ(ଆଁ)**—ଦେ. ବିଣ.—୧ । ଅଟାଣୁଆ; ଯେ ଟାଣ ନୁହେଁ—
Niṭāṇuā(āñ) 1. Not hard.
୨ । ହାଲୁକା—2. Light.
୩ । ଦୁର୍ବଳ—3. Weak

**ନିଟା(ଟି)ଲ**—ସଂ. ବି.—ନିଟଲ ( ଦେଖ )—
Niṭā(ṭi)la Niṭala ( See )
ନିଟଲେ ମୃଗମଦ ବହୁ ଉହୁଛି ଜାତ ହୋଇ ସ୍ୱେଦପତ୍ରରେ । ଉକ୍ତ· ଲାବଣ୍ୟବତୀ ।

**ନିଟିଲାକ୍ଷ**—ସଂ. ବି. ପୁଂ.—ନିଟଲାକ୍ଷ ( ଦେଖ )—
Niṭilāksha Niṭalāksha (See).

**ନିଟୋଲ**—ଦେ. ବି. ( ସଂ. ନିଟଲ )—କପାଳ; ଭାଲ ପ୍ରଦେଶ—
Niṭola Forehead
ଦେ. ବିଣ. ( ସଂ. ନିସ୍ତୁଲ; ପାଲି—ନିତ୍ତୁଲ = ବର୍ତ୍ତୁଳ )—
୧ । ପ୍ରଶସ୍ତ—1. Broad; spacious
নিটোল ଶୁଭ୍ର ସମୁଜ୍ଜ୍ୱଳ ନଟୋଳ ଲଲାଟ ତଳେ ନବା ଅଛ ଦୁଃଖ ।—ରାଧାନାଥ
୨ । ସୁଗୋଲ—2. Round.

**ନିଠା**—ଦେ. ବିଣ. ପୁଂ.—୧ । ଯେ ଦାନ୍ତ ଚିପିକରି କଥା କହେ—
Niṭhā 1. One who speaks by shutting the teeth.
নিটপিটে, নিড়বিড় ୨ । (ନିନ୍ଦାସୂଚକ) ଯେ ସବୁ କଥା ତନ୍ନ ତନ୍ନ
ধীমা କରି ଦେଖେ—2. Fastidious; thorough-going; unduly scrupulous; over-nice
ନିଠେଇ } ସ୍ତ୍ରୀ
ନିଠେଇ }
୩ । ମଠୁଆ; ଅଳସୁଆ; ଦୀର୍ଘସୂତ୍ରୀ—
( ନିଠା, ନିଠୁଆ—ଅନ୍ୟରୂପ ) 3 Lazy; slow; tardy.
ଗ୍ରା. ବି. ( ସଂ. ନିଷ୍ଠା )—ନିଷ୍ଠା; ଅଧ୍ୟବସାୟ—
Devotion; perseverance.
ପ୍ରାଦେ. ( ସମ୍ବଲପୁର ) ବିଣର ବିଣ—୧ । ଅତି; ଅତ୍ୟନ୍ତ—
1. Very; much.
(ଯଥା—ନିଠା ବିଲମ୍ବ ହେଲା ନେ = ଅତ୍ୟନ୍ତ ବିଳମ୍ବ ହେଲାଣି )
୨ । ଅତ୍ୟଧିକ—2. Excessively.

**ନିଠାଇ**—ଦେ. କ୍ରି. ବିଣ—୧ । ଅଳସୁଆଭାବରେ—
Niṭhāi 1. Lazily.
ନିଠାଇ, ନିଠେଇ, ନିଠାଇ କରି, ନିଠିଆଇ, ନିଠେଇ, ନିଠେଇକରି } ଅନ୍ୟରୂପ
୨ । ଧୀରେ ଧୀରେ ଓ ସୂକ୍ଷ୍ମରୂପେ—
2. Thoroughly and slowly; slowly and surely; fastidiously.
୩ । ଦାନ୍ତ ଚିପି କରି ଧୀର ଭାବରେ ( କଥା କହିବା )—
নিটিস নিটিস 3. ( to speak ) By shutting the jaws.
ধীমেসে ୪ । ଜୋର୍ କରି—4 Forcibly; with force.
ଟଙ୍କାରିଲେ ଯେ ଧନୁକୁ ନିଠାଇ—କୃଷ୍ଣସିଂହ. ମହାଭାରତ. ବନ ।
୫ । ବାରମ୍ବାର—5. Repeatedly
ଅନୁକ୍ରମରେ ତା ଘୋଷିଲେ ନିଠାଇ—କୃଷ୍ଣସିଂହ ମହାଭାରତ, ବନ ।
୬ । ଦୃଢ଼ ଭାବରେ—6 Firmly.
ଦ୍ରୌପଦୀଙ୍କର କେଶ ଧରିଲେ ନିଠାଇ—କୃଷ୍ଣସିଂହ. ମହାଭାରତ, ସଭା ।
୭ । ଧୀରେ ସୁସ୍ଥେ; ବିଳମ୍ବରେ—7. Slowly.
୮ । ଭଲ କରି; ଅଭିନିବେଶପୂର୍ବକ—8. Closely.
ନିଠାଇ ଚାହିଁଲେ ମନେ ହୁଏ ପ୍ରଭେ—ମଧୁସୂଦନ, ଉତ୍ତରରାମଚରିତ ।
୯ । ଯତ୍ନପୂର୍ବକ—9. Carefully
ଚାହିଁ ପିଠା ବ୍ୟଞ୍ଜନ ଥୋଇଲେ ନିଠାଇ—କୃଷ୍ଣସିଂହ, ମହାଭାରତ, ବନ
୧୦ । ତନ୍ନ ତନ୍ନ କରି—10. Minutely; thoroughly.
ଖୋଜିଲେ ଗୃହପଟେ ସେ ଫୁଲ ନିଠାଇ—କୃଷ୍ଣସିଂହ, ମହାଭାରତ, ବନ ।
୧୧ । ଜୋରରେ; ବିଶେଷରୂପେ—11 Strongly.
ବହିଲା ସମୀରଣ ଅତି ନିଠିଆଇ—କୃଷ୍ଣସିଂହ, ମହାଭାରତ, ବନ ।
୧୨ । ବହୁ ପରିମାଣରେ—12. Profusely.
ଗୋପାଳେ ଦୁର୍ଯ୍ୟୋଧନ ବାକ୍ୟେ ବଶ ହୋଇ
ଦୁଧ ଛେନା ଯେ ବହି ଦେଲେ ନିଠିଆଇ—କୃଷ୍ଣସିଂହ, ମହାଭାରତ, ବନ ।
୧୩ । ( ସଂ. ନିଷ୍ଠୁର ) ନିଷ୍ଠୁର ଭାବରେ—13. Cruelly.
ତାହାଙ୍କୁ ତୁମ୍ଭେ ଦଣ୍ଡ ଦେବ ନିଠିଆଇ—କୃଷ୍ଣସିଂହ, ମହାଭାରତ, ବନ ।
୧୪ । ନିଷ୍ଠାସହକାରେ—14. Perseveringly.

**ନିଠାଇବା**—ଦେ. କ୍ରି. ( ସଂ. ନିଷ୍ଠା; ପ୍ରା. ନିଟ୍ଠା )—
Niṭhāibā ୧ । ଦୃଢ଼ଭାବରେ କୌଣସି କଥା କରିବା—
নিড়বিড় করা, ধীমানো 1. To do a thing thoroughly or firmly.
ନିଟାଇବା, ନିଠେଇବା, ନିଠିଆଇବା, ନିଠେଇବା } ଅନ୍ୟରୂପ
୨ । ଧୀରଭାବରେ ଦୃଢ଼ ଉଚ୍ଚାରଣପୂର୍ବକ କଥା କହିବା—
2. To speak a thing with emphasis and slowness.
୩ । କୌଣସି କାର୍ଯ୍ୟ ତନ୍ନ ତନ୍ନ କରି ବୁଝି କରିବା—
3 To do a thing deliberately.
୪ । ଦାନ୍ତ ଚିପି କରି କଥା କହିବା—
4. To speak by shutting the jaws.
୫ । ନିଷ୍ଠାର ସହିତ କାର୍ଯ୍ୟ କରିବା—
5. To persevere.
୬ । ମଠେଇବା; ବିଳମ୍ବ କରିବା—
6. To do a thing slowly or tardily.
୭ । ଜୋର୍ କରିବା—7. To use force.
ବାଜନ୍ତେ ମାଇଗଣ ଗଣ ନିଠିଆଇ
ପଳାଇଲେ ଦାନବେ ଭୟେ ପିଠିଆଇ—କୃଷ୍ଣସିଂହ, ମହାଭାରତ, ବନ ।

**ନିଠାର୍**—ପ୍ରାଦେ. ( ସମ୍ବଲପୁର ) ବିଣର ବିଣ—୧ । ଅତି; ଖୁବ୍—
Niṭhār 1. Very; much.
୨ । ଅନ୍ୟୂନ—2 Big; great; large,

**ନିଠୁଆ**—ଦେ. ବିଣ. ପୁଂ. —୧ । ନିଠା ( ଦେଖ )
Niṭhuā 1. Niṭhā ( See).

(ନିଠୁରପଣ—ବି ୨ । ସାର୍ଘସୂତ୍ରିତା—2 Tardiness
(ନିଠୋଇ—ସ୍ତ୍ରୀ) ୩ । ଧୀଠପଣ; ନିର୍ଲଜ୍ଜତା—3. Shamelessness.

ନିଠୁର—ଦେ. ବିଣ. ( ସ ନିଷ୍ଠୁର; ପ୍ରା. ନିଟ୍ଠୁର )—
Niṭhura ୧ । ନିର୍ଦ୍ଦୟ; ନିଷ୍ଠୁର—
ନିଠୁର निठुर 1 Cruel, hard-hearted.
(ନିଠୁରିଆ—ଅନ୍ୟରୂପ) ( ନିଠୁରପଣ, ନିଠୁରପଣିଆ[ଆଁ]—ବି )

ନିଡର—ଦେ ବିଣ ( ସ· ନିର୍+ଡର )—୧ । ନିର୍ଭୟ; ନିଃଶଙ୍କ—
Niḍara 1. Fearless; undaunted.
ନିଃଶଙ୍କ ୨ । ଧୀଠ—2 Brozen-faced; impudent.
निडर ୩ । ନିର୍ଲଜ୍ଜ—3. Shameless
(ନିଡରୁଆ—ଅନ୍ୟରୂପ) ( ନିଡରପଣ; ନିଡରପଣିଆ[ଆଁ]—ବି )

ନିଡୀନ—ସ. ବି. ( ନି+ଡୀ ଧାତୁ+ଭାବ. ତ )—ପକ୍ଷୀମାନଙ୍କର ତଳ
Niḍīna ଆଡ଼କୁ ମୁହଁ କରି ଉଡ଼ିବା—The downward flight or swoop of a bird (Apte)

ନିତମ୍ବ—ସ. ବି. ( ନି+ତମ୍ବ୍ ଧାତୁ=ଗମନ କରିବା+କର୍ମ. ଅ )—
Nitamba ୧ । ପାଣ୍ଡି; ପିଚ୍ଛ—
1. Buttocks; rump; hips
୨ । ସ୍ତ୍ରୀ କଟୀର ପଶ୍ଚାଦ୍‌ଭାଗ—2. Buttocks of a woman; the posteriors of a woman.
୩ । କଟିଦେଶ—3. Side or flank; the loins.
୪ । ପର୍ବତର ସାନୁ ବା ପାର୍ଶ୍ୱଦେଶ; ପର୍ବତର ଗଳୁଆ ବା ଗଡ଼ାଣିଆ ପାଖ—4. The side or slope or swell of a mountain
୫ । କୁଜ—5. Gibbosity.
୬ । ଡୂଳ—6. Hump.
୭ । ସ୍କନ୍ଧ—7. Shoulder.
୮ । ନଦୀର ଗଳୁଆ ତୀର ବା କୂଳ—8. The sloping bank or shore of a river ( M. W ).
୯ । ବୀଣାର ଯେଉଁ ପଟା ଉପରେ ତାରମାନ ଟଣା ହୋଇଥାଏ—
9. The sounding board of a harp (Apte)
୧୦ । ଅତଡ଼ା—10. Precipice ( Apte ).
୧୧ । ତୀର; ତଟ ( ହି. ଶବ୍ଦସାଗର )—
11. Shore; bank
୧୨ । ନୃତ୍ୟକାଳରେ ହସ୍ତର ମୁଦ୍ରାବିଶେଷ—
12. A particular pose of the hand during dancing ( M W ).

ନିତମ୍ବ ଗୁର୍ବୀ—ସ. ବିଣ ସ୍ତ୍ରୀ. (ବହୁବ୍ରୀହି; ନିତମ୍ବ+ଗୁରୁ+ସ୍ତ୍ରୀ. ଈ )—
Nitamba gurbī ଗୁରୁ ବା ପୃଥୁଳ ନିତମ୍ବଯୁକ୍ତା ( ସ୍ତ୍ରୀ )—
(ନିତମ୍ବବତୀ—ଅନ୍ୟରୂପ) ( a woman ) Having big or
(ନିତମ୍ବଗୁରୁ—ପୁଂ) heavy buttocks; having beautiful hips.
[ଦ୍ର—ଭାରତରେ ନିତମ୍ବଗୁର୍ବୀ ସ୍ତ୍ରୀ, ସୁନ୍ଦରୀ ମଧ୍ୟରେ ପରିଗଣିତା]

ନିତମ୍ବ ଦେଶ—ସ. ବି. ( ଷଷ୍ଠୀ ତତ୍; ନିତମ୍ବ+ଦେଶ )—ଶରୀରର
Nitamba deśa ଯେଉଁ ଅଂଶରେ ନିତମ୍ବ ବା ପିଚ୍ଛ ଥାଏ—
( ନିତମ୍ବସ୍ଥଳ, ନିତମ୍ବସ୍ଥଳୀ—ଅନ୍ୟରୂପ ) The region of the buttocks or hips ( M. W ).

ନିତମ୍ବ ବିମ୍ବ—ସ ବି. ( ନିତମ୍ବ+ବିମ୍ବ=ମଣ୍ଡଳ ପରି ଗୋଲାକାର )—
Nitamba bimba ଗୋଲାକୃତିବିଶିଷ୍ଟ ସ୍ତ୍ରୀମାନଙ୍କ ପିଚ୍ଛ—
Round hips of women.

( ନିତମ୍ବବିମ୍ବା—ସ୍ତ୍ରୀ ) ସ. ବିଣ ପୁଂ. ( ତମ୍ବ=ମଣ୍ଡଳ ପରି ଗୋଲ
( ନିତମ୍ବବାନ୍—ଅନ୍ୟରୂପ ) ନିତମ୍ବ ଯାହାର; ବହୁବ୍ରୀହି )—ବର୍ତ୍ତୁଳ ନିତମ୍ବବିଶିଷ୍ଟ 'ବ୍ୟକ୍ତି)—Having round hips.

ନିତମ୍ବିନୀ—ସ. ବିଣ. ସ୍ତ୍ରୀ. ( ନିତମ୍ବ+ଅସ୍ତି ଅର୍ଥରେ ଇନ୍+ସ୍ତ୍ରୀ.ଈ )—
Nitambinī ପ୍ରଶସ୍ତ ନିତମ୍ବଯୁକ୍ତା ( ସ୍ତ୍ରୀ )—( a woman )
(ନିତମ୍ବୀ—ପୁଂ) Having round and prominent ( and thus fascinating ) hips.
ସ ବି. ସ୍ତ୍ରୀ—୧ । ସୁନ୍ଦର ନିତମ୍ବବତୀ ସ୍ତ୍ରୀ—
1. A woman with handsomely large hips.
୨ । ସ୍ତ୍ରୀ—2. A woman (in general) (Apte )

ନିତରାଂ—ସ. ଅ—୧ । ସର୍ବଦା—
Nitarāṁ 1. Always.
୨ । ସର୍ବଥା; ସର୍ବତୋଭାବରେ—2. Continuously.
୩ । ଅତ୍ୟନ୍ତ—3. Much; excessively
୪ । ଅବଶ୍ୟ—4. Of course.
୫ । ଅଧିକନ୍ତୁ—5. Moreover.
୬ । ବିଶେଷରୂପେ—6. Specially.
[ ଦ୍ର—ଏ ଶବ୍ଦର ବ୍ୟବହାର ଭାଷାରେ ବିରଳ । ]

ନିତଳ—ସ. ବି. ( ନି=ଅଙ୍କିତ+ତଳ )—ବିଷ୍ଣୁପୁରାଣ ମତରେ ପାତାଳ
Nitaḷa ମଧ୍ୟସ୍ଥ ଅନ୍ୟ ପାତାଳ—One of the 7 infernal regions of the Hindu mythology.

ଏଥିରେ ନୁହନ୍ତାଠାବ ବଳେ ପଶି ତଳେ ସିବ
ଅତଳ ନିତଳ ବିତଳକୁ ହେ—ଭଞ୍ଜ. ଲାବଣ୍ୟବତୀ ।

[ ଦ୍ର—ପାତାଳ ତଳେ ଟୀକା ଦେଖ । କେବଳ ବିଷ୍ଣୁପୁରାଣରେ 'ନିତଳ' ନାମକ ପାତାଳର ନାମୋଲ୍ଲେଖ ମିଳେ । ଅନ୍ୟ ପୁରାଣମାନଙ୍କରେ ମିଳେ ନାହିଁ । ]

ନିତା(ତେ)ଇ—ଦେ. ବି. ପୁଂ ( ନାମ )—୧ । ଚୈତନ୍ୟଙ୍କ ସହଚର; 
Nitā(te)i ନବଦ୍ୱୀପର ମହାପୁରୁଷ ନିତ୍ୟାନନ୍ଦଙ୍କ ଡାକ ନାମ —
1. Name for calling Nityānanda, the associate of Śrī Chaitanya.
ନିତା } ଅନାଦରାର୍ଥକରୂପ ୨ । (ଆଦରାର୍ଥକ) ନିତ୍ୟାନନ୍ଦର ଡାକ
ନିତିଆ } ନାମ—2 A name for calling Nityānanda.
[ ଦ୍ର—ସାଧାରଣତଃ ନିତ୍ୟାନନ୍ଦ ଶ୍ରୀ ଚୈତନ୍ୟଙ୍କ ଅଗ୍ରଜ ବୋଲି ପରିଚିତ । କିନ୍ତୁ ପ୍ରକୃତରେ ଏ ବୀରଭୂମ ଜିଲ୍ଲାର ଏକଚକ୍ରା ଗ୍ରାମର ହାଡ଼ାଇ ପଣ୍ଡିତଙ୍କର ପୁତ୍ର ଥିଲେ । ପରେ ଏକ ସନ୍ନ୍ୟାସୀଙ୍କ ସଙ୍ଗେ ବହୁତୀର୍ଥ ଭ୍ରମଣ କରି ନବଦ୍ୱୀପରେ ଗୌରାଙ୍ଗ (ଚୈତନ୍ୟ)ଙ୍କ

ସଙ୍ଗେ ମିଳିତ ହେଲେ । ଶ୍ରୀ ଗୌରାଙ୍ଗ ଏହାଙ୍କୁ ଦାଦା ବା ବଡ଼ ଭାଇ ବୋଲି ସମ୍ବୋଧନ କରୁଥିଲେ । ନିତ୍ୟାନନ୍ଦ ଗୃହୀ ଥିଲେ । କଥିତ ଅଛି ଯେ ଚୈତନ୍ୟଦେବଙ୍କ ଅଗ୍ରଜ ବିଶ୍ୱରୂପ ସନ୍ନ୍ୟାସ ଗ୍ରହଣ କରିବା ପରେ ଦେହତ୍ୟାଗ କରି ସ୍ୱକୀୟ ଚେତନାକୁ ନିତ୍ୟାନନ୍ଦଙ୍କଠାରେ ସଂଗୁପ୍ତ କରିଥିଲେ । ଶଚୀ ଦେବୀ ନିତ୍ୟାନନ୍ଦଙ୍କୁ ବିଶ୍ୱରୂପଙ୍କଠାରୁ ଅଭିନ୍ନ ଜ୍ଞାନ କରୁଥିଲେ— ଯୋଗେଶ୍ଚନ୍ଦ୍ର । ]

• **ନିତା(ତେ)ଇ ଗୌର**—ଦେ. ବି. ( ନାମ; ନିତ୍ୟାନନ୍ଦ + ଗୌରାଙ୍ଗ )—
Nitā(te)i gaura ( ନବଦ୍ୱୀପର ମହାପୁରୁଷ ଦ୍ୱୟ )
[ନିତା(ତେ)ଇ ଗଉର—ଅନ୍ୟରୂପ] ନିତ୍ୟାନନ୍ଦ ଓ ଗୌରାଙ୍ଗ;
ନିতাই গৌর ସଂକୀର୍ତ୍ତନରେ ମତ୍ତ ନବଦ୍ୱୀପର ମହାପୁରୁଷ ସହଚର ଦ୍ୱୟ ଶ୍ରୀ ନିତ୍ୟାନନ୍ଦ ଓ ଶ୍ରୀଚୈତନ୍ୟ—
The two devoted apostles of Nabadwipa ( viz. Nityānanda and Gaurānga ).

**ନିତା(ତେ)ଇ ଗୌର ରାଧେ ଶ୍ୟାମ**—ଦେ. ଅ—
Nitā(te)i gaura rādhe śyāma ସ୍ୱର୍ଗୀୟ ରାଧାରମଣ ଚରଣ
নিতাই গৌর রাধে শ্যাম ଦାସ ବାବାଜୀଙ୍କ ପ୍ରବର୍ତ୍ତିତ ସଂକୀର୍ତ୍ତନ ପଦର ଶେଷ ଚରଣ—The last line of a couplet of Sankirtan promulgated by the late Bābājī Rādhāramaṇa Charaṇa Dāsa.
[ ଦ୍ର—ଏହାର ପୂର୍ବପଦ :—(ଜପ) ହରେ କୃଷ୍ଣ ହରେ ରାମ (ବୋଲ) ନିତାଇ ଗୌର ରାଧେ ଶ୍ୟାମ । ]

**ନିତାନ୍ତ**—ସଂ. ଅ ( ନି + ତମ୍ ଧାତୁ + ତ )—
Nitānta ୧ । ଅତ୍ୟନ୍ତ; ଅତିଶୟ—
নিতান্ত 1 Very much; too much.
**नितान्त** ୨ । ଆଦୌ—2. At all.
୩ । ସୁତରାଂ—3. Of course; as a matter of course.
୪ । ଫଳତଃ; କାର୍ଯ୍ୟତଃ—
4. Consequently; at any rate.
୫ । ନିଶ୍ଚୟ; ଅବଶ୍ୟ—
5. Certainly; surely; verily.
୬ । ଅତ୍ୟଧିକ ରୂପେ—
6. Excessively; exceedingly.
ବି. ବିଣ—୧ । ଅତ୍ୟଧିକ; ନିବାଡ—
1. Excessive; intense; very much.
୨ । ନିଶ୍ଚିତ—2. Certain; true.
୩ । ଅସାଧାରଣ—3. Extraordinary.
୪ । ନିପଟ—4. Downright.
ଦେ. ଅ—କୌଣସି ପ୍ରକାରେ ଯାହା ଘଟୁ ନା କାହିଁକି—
At any cost.
( ଯଥା—ମୁଁ ସେଠାକୁ ନିତାନ୍ତ ନ ଗଲେ ସେବେ କାମ ନ ହେବ ତେବେ ବାଧ୍ୟ ହୋଇ ମୁଁ ଯିବି । )

**ନିତାନ୍ତ ପକ୍ଷରେ**—ଦେ ଅ—୧ । ଅତି ସାମାନ୍ୟରେ; ଅଳ୍ପକରେ—
Nitānta pakshare 1. In the least; at least.
(ନିତାନ୍ତ ପକ୍ଷେ—ଅନ୍ୟରୂପ) ୨ । ଖୁବ ଅଧିକ ହେଲେ—
নিতান্ত পক্ষে **कमसेकम** 2. At the utmost.

**ନିତି**—ଦେ. ଅ. ( ସଂ. ନିତ୍ୟ )—
Niti ୧ । ପ୍ରତି ଦିନ; ଅହରହଃ; ପ୍ରତ୍ୟହ—
নিতি, নিত্ 1. Every day; daily.
**नित, निति** ନାଥ ଏଣୁ ଦୂରେ ମେ ନିତି ସେ ମୋ ପଦେ ଭଜେ ।
କବିସୂର୍ଯ୍ୟ. ଉଦ୍ଧବଗୀତ, ୮ ଗୀତ ।
୨ । ସର୍ବଦା, ନିରନ୍ତର—2. Constantly; always.
ନବ ହେମ ଦ୍ରୁମ ଅନୁପମ ନିତି ନଅନ୍ତ ଫଳ ଏ ବନ୍ତ ।
କବିସୂର୍ଯ୍ୟ. ଉଦ୍ଧବଗୀତ, ୮ ଗୀତ ।
ଦେ. ବିଣ—ଦୈନିକ (ମୂଲିଆ)—Daily (labourer).
ବି—(ନାମ)ଭାରତରୁ ତିବ୍ବତକୁ ଯିବା ଆସିବାର ପଥ, ହିମାଳୟର ଗୋଟିଏ ଗିରିସଙ୍କଟ—Name of a pass in the Himalayan mountain.
[ ଦ୍ର—ଏହା ଭାରତରୁ ତିବ୍ବତକୁ ପ୍ରବେଶ କରିବାର ଦ୍ୱାର; ଏହି ବାଟେ ସାଧୁମାନେ ଭାରତରୁ ତିବ୍ବତକୁ ଯିବା ବେଳେ ତିବ୍ବତର ରାଜଧାନୀ ଲାସାରୁ ପ୍ରଚାରିତ ରାଜାଦେଶ ଅନୁସାରେ ସେମାନଙ୍କୁ ଜାମିନ୍ ଦେବା ପାଇଁ ପଡ଼େ । ]

**ନିତି ଦିନ**—ଦେ. ଅ—ନିତି ନିତି ( ଦେଖ )
Niti dina Niti niti ( See )

**ନିତି ନିତି**—ଦେ. ଅ. ( ସଂ. ନିତ୍ୟ ର ଦ୍ୱିବ୍ୟବହାର )—
Nitiniti ୧ । ପ୍ରତି ଦିନ; ସର୍ବଦା—
ନିତିପ୍ରତି, ନିତିପ୍ରତିଦିନ } ଅନ୍ୟରୂପ 1. Every day; daily.
নিতি নিতি ୨ । ଦିନକୁ ଦିନ—2 Day by day; day after day
୩ । ବାରଂବାର ପ୍ରତିଦିନ—3 Repeatedly for days.
**नितनित** ଦେଖୁଥିଲେ ଦେଖିବାକୁ ମୋ ମନ ଧାଇଁ ଆଏ ନିତିନିତି ।
କବିସୂର୍ଯ୍ୟ. ସଙ୍ଗୀତ ।

**ନିତି ବାପା**—ପ୍ରାଦେ. (ଗଡ଼ଜାତ) ବି—ସଙ୍ଗାତଙ୍କ ପିତା—
Niti bāpa The father of one's Saṅgāta.

**ନିତିବାର**—ଦେ. ବି—ଉତ୍କଳର ନୂତନ ବ୍ୟାୟାମ ପଦ୍ଧତିର ପ୍ରବର୍ତ୍ତକ
Nitibāra ଯୁବକ ଶ୍ରୀ ରାଧାଶ୍ୟାମ ଦାସଙ୍କ ପ୍ରବର୍ତ୍ତିତ ସକଳ ଶ୍ରେଣୀର ଓ ସକଳ ବୟସର ବ୍ୟକ୍ତି ( ବିଶେଷତଃ ଯୁବକ )ଙ୍କର ପ୍ରତିଦିନ ୨୦ ମିନିଟ ପାଇଁ କର୍ତ୍ତବ୍ୟ ବାର ଗୋଟି ବ୍ୟାୟାମ ସାଧନ—The daily dozen; a dozen special physical exercises to be practised daily by persons old and young, devised by the young Oria physical expert Rādhāsyāma Dāsa.
[ଦ୍ର—ଏହା ୧୯୨୫ ମସିହାରେ ଶ୍ରୀମାନ୍ ରାଧାଶ୍ୟାମ ଦାସଙ୍କଦ୍ୱାରା ଉଦ୍‌ଭାବିତ । ଭାରତୀୟ ଯୋଗ ଆସନ, ନାଟ୍ୟକଳାର ଭାବଭଙ୍ଗୀ ଓ ଅଙ୍ଗପ୍ରତ୍ୟଙ୍ଗର ସାଧାରଣ ପ୍ରାକୃତିକ ସଞ୍ଚାଳନ ଉପରେ ଏହି ନିତିବାରର ବାରଗୋଟି ବ୍ୟାୟାମ ଗୁଡ଼ିକ ପ୍ରତିଷ୍ଠିତ । ପ୍ରତ୍ୟେକ

ବ୍ୟାୟାମରେ 'ପ୍ରାଣାୟାମ' ବା ନିଶ୍ୱାସଦ୍ୱାରା ପବନ ନେବା ଓ ଛାଡ଼ିବାର ବ୍ୟବସ୍ଥା ଅଛି । ଶରୀରର ସକଳ ଅଙ୍ଗପ୍ରତ୍ୟଙ୍ଗର ସୁଗଠନ ଓ ଉନ୍ନତି ବିଧାନ ନିମନ୍ତେ ଏଗୁଡ଼ିକ ବିଶେଷ ଉପଯୋଗୀ । ଶରୀରର ବାହ୍ୟ ଓ ଆଭ୍ୟନ୍ତରିକ ସକଳ ଅଙ୍ଗପ୍ରତ୍ୟଙ୍ଗ ଓ ଯନ୍ତ୍ର ସମୂହ (ଯଥା—ମାଂସପେଶୀ; ଚର୍ମ, ଅସ୍ଥି, ସ୍ନାୟୁମଣ୍ଡଳୀ, ଫୁସ୍ ଫୁସ୍, ହୃତ୍‌ଯନ୍ତ୍ର, ପାକସ୍ଥଳୀ, ଅନ୍ତ୍ର, ଯକୃତ୍, ପ୍ଳୀହା ଓ ବିଭିନ୍ନ ଗ୍ରନ୍ଥି ସକଳ), ଏପରି କି ଦୃଷ୍ଟିଶକ୍ତି ଓ ମସ୍ତିଷ୍କ ପ୍ରଭୃତିକୁ ସୁସ୍ଥ, ସବଳ ଓ କାର୍ଯ୍ୟକ୍ଷମ ରଖିବା ନିମନ୍ତେ ଏହି ନିତବାର ବ୍ୟାୟାମ ପ୍ରଣାଳୀଟି ବଡ଼ ଉପାଦେୟ ଅଟେ । ଶରୀର ଓ ମନର କ୍ରମବିକାଶ ଏହାଦ୍ୱାରା ସାଧିତ ହୁଏ । ଶାରୀରିକ ସ୍ୱାସ୍ଥ୍ୟ, ଶକ୍ତି ଓ ସୌନ୍ଦର୍ଯ୍ୟ ରକ୍ଷା ଓ ବୃଦ୍ଧି ଏହି ବ୍ୟାୟାମର ପ୍ରଧାନ ଉଦ୍ଦେଶ୍ୟ । ଆବାଳ-ବୃଦ୍ଧ-ବନିତା ସମସ୍ତେ ବିଭିନ୍ନ ବୟସରେ ବିଭିନ୍ନ ବ୍ୟାୟାମ ଏହି ପ୍ରଣାଳୀରେ କରି ପାରନ୍ତି । ଏହା ସମୟ, ଅର୍ଥ ଓ ଉପକରଣସାପେକ୍ଷ ନୁହେଁ ।

ଉତ୍କଳରେ ଓ ଉତ୍କଳର ବାହାରେ ବହୁ ଶତ ଲୋକଙ୍କ ଦ୍ୱାରା ଏହା ଅଭ୍ୟାସ କରା ଯାଉଅଛି । କେବଳ ଓଡ଼ିଶାର ଗଡ଼ଜାତ ରାଜ୍ୟମାନଙ୍କରେ ଓ ମୋଗଲବନ୍ଦିର କେତେକ ମ୍ୟୁନିସିପାଲିଟିର ସ୍କୁଲମାନଙ୍କରେ ଏହି ବ୍ୟାୟାମ ବାଧ୍ୟତାମୂଳକ ଭାବରେ ପ୍ରଚଳିତ ହେବା ଦ୍ୱାରା ଏହି ଅଳ୍ପ ସମୟ ମଧ୍ୟରେ ପ୍ରାୟ ତିରିଶ ହଜାର ଛାତ୍ର ନିତ୍ୟ ନିୟମିତ ଭାବରେ ଏହା ଅଭ୍ୟାସ କରୁଅଛନ୍ତି—ଶ୍ରୀମାନ୍ ରାଧାଶ୍ୟାମଙ୍କ ଲିଖିତ ନୋଟ୍ ।]

**ନିତ ମଲ୍ଲି**—ଦେ. ବି.—ବର୍ଷଯାକ ଫୁଲ ଫୁଟିବା ମଲ୍ଲୀ ଗଛ—
Niti malli A kind of jasmine flowering throughout the year

**ନିତ ମଲୁ**—ଦେ. ବିଣ.—ଚିର ରୋଗୀ, ଚିର ରୁଗ୍ଣ—
Nitimalu Suffering from chronic disease; a confirmed patient.
**दिनि रोगी**
ନିତ ମଲୁକୁ ଗୁହାରି ନାହିଁ । ଢଗ ।

**ନିତ ମାଗଣ୍ଡା**—ଦେ. ବିଣ.—ଯେଉଁ ବ୍ୟକ୍ତି ପ୍ରତି ଦିନ ମାଗିବାକୁ ଆସେ
Niti māgantā (a person) Who comes to beg for any thing every day
(ନିତମଗା—ଅନ୍ୟରୂପ)
ନିତ ମାଗଣ୍ଡାକୁ ବିଅଣ୍ଡା ନାହିଁ । ଢଗ ।

**ନିତ ମୂଲିଆ**—ଦେ. ବି.—ପ୍ରତିଦିନ ମୂଲ ଲାଗି ମଜୁରି ଆଣି ଯେ ପେଟ ପୋଷେ—Day labourer, a journeyman.
Niti mūliā
दिनमजूर **रोजीना मजदूर**

**ନିତୁଟିବା**—ଦେ. କ୍ରି.—କ୍ଷୟ ନ ହେବା—
Nitutibā Not to decay.
तुटे ना याओआ **नतूटना**
ଅପେ ତୁଟ ଲୋକ ତୋତ ଆପଣେ ନିତୁଟେ ।
ପ୍ରାଚୀ. ଚୈତନ୍ୟଭାଗବତ ଗୀତା ।

**ନିତେ**—ଦେ. ବି.—ଏକପ୍ରକାର କଣ୍ଟାଳିଆ ଲମ୍ବ ଲତା—
Nite A kind of thorny long creeper; Meneuron Cucullatum.

**ନିତେଇ**—ଦେ. ବି.—୧ । ନିତେ (ଦେଖ)
Nitei 1. Nite (See)

୨ । ନିତ୍ୟାନନ୍ଦର ଡାକ ନାମ—2 The name by which a person named Nityānanda is called.
নিতাই

**ନିତ୍ୟ**—ସଂ. ଅ. (ନି=ନିୟତ+ତବାର୍ଥେ. ତ୍ୟ)—୧ । ଅନନ୍ତକାଳ—
Nitya 1 Eternally; perpetually
୨ । ସର୍ବଦା; ନିରନ୍ତର; ସତତ—
2. Constantly; always
୩ । ଅହରହଃ, ପ୍ରତିଦିନ—3 Daily; everyday.
ବିଣ. ୧ । ଚିରସ୍ଥାୟୀ—1. Perpetual; permanent; constant.
(ନିତ୍ୟା—ସ୍ତ୍ରୀ)
(ନିତ୍ୟତା, ନିତ୍ୟତ୍ୱ—ବି)
୨ । କାଳତ୍ରୟ ବ୍ୟାପୀ; ଚିରନ୍ତନ—
2 Eternal; ever-lasting.
୩ । ଅବିରାମ; ଧାରାବାହିକ—
3. Continuous; uninterrupted; incessant.
୪ । ପ୍ରାତ୍ୟହିକ; ଦୈନନ୍ଦିନ—4 Daily; diurnal.
୫ । ଅକ୍ଷୟ; ଅବିନଶ୍ୱର—
5. Imperishable; indestructible
୬ । ଯାହାର ଉଲ୍ଲଙ୍ଘନ ବା ଅନ୍ୟଥାଭାବ ଘଟେ ନାହିଁ—
6 Not admitting of transgression or transformation; invariable.
୭ । ଯାହା ନିୟମିତରୂପେ ଘଟେ ବା କରାଯାଏ ( ବିପରୀତ ନୈମିତ୍ତିକ )—
7. Regular; usual; ordinary.
୮ । ଯାହା ପ୍ରତିଦିନ କରିବାର ବିଧାନ ଅଛି ( ବିପରୀତ—କାମ୍ୟ )—8. Prescribed to be performed regularly; fixed for everyday.
୯ । ଯାହା ଅବଶ୍ୟ କର୍ତ୍ତବ୍ୟ—
9. Obligatory; compulsory; not optional.
୧୦ । ଅପରିହାର୍ଯ୍ୟ; ଅତ୍ୟାବଶ୍ୟକ—
10. Necessary; essential ( Apte ).
ବି.—ସମୁଦ୍ର—The Ocean.
ଦେ. ବି. ( ସଂ. ନିତ୍ୟସ୍ଥଳ )—ନିତ୍ୟସ୍ଥଳ; ବୈକୁଣ୍ଠ —
Heaven; Bishnu's abode.
ତାଙ୍କ ମଧ୍ୟରେ ତୁହି ଏକା, ନିତ୍ୟରେ ହୋଇବୁ ନାୟିକା ।
ଯଶୋବନ୍ତ. ପ୍ରେମଭକ୍ତିଗୀତା ।

[ ଦ୍ର—ନିତ୍ୟ ଶବ୍ଦ ଅନ୍ୟ ଶବ୍ଦ ପରେ ସମାସରେ ଯୁକ୍ତ ହେଲେ ଅମୁକ ସ୍ଥାନରେ ସତତ ବାସ କରୁଥିବା ( ଯଥା—ଅରଣ୍ୟନିତ୍ୟ, ଜାହ୍ନବୀତୀରନିତ୍ୟ), ଅମୁକ କାର୍ଯ୍ୟ ସତତ କରୁଥିବା (ଯଥା—ଧ୍ୟାନ ନିତ୍ୟ, ଅଧ୍ୟାନ ନିତ୍ୟ ଅର୍ଥ ହୁଏ—ଆପ୍ଟେ ]

**ନିତ୍ୟ କର୍ମ**—ସଂ. ବି. ( ନିତ୍ୟ କରାଯିବା କର୍ମ )—
Nityakarma ୧ । ମନୁଷ୍ୟ ଜୀବନର ଦୈନନ୍ଦିନ କର୍ତ୍ତବ୍ୟ କର୍ମ—
1. The daily duties of a man; daily routine.
ନିତ୍ୟକୃତ୍ୟ, ନିତ୍ୟକ୍ରିୟା }—ଅନ୍ୟରୂପ
ଯାଅ ହେ ଯାଦୁ ଲ କୃଷ୍ଣ । ନିତ୍ୟ କର୍ମରେ ଦିଅ ମନ ।
ଭୂପତି. ପ୍ରେମପଞ୍ଚାମୃତ ।

୨ । ଦୈନିକ ସନ୍ଧ୍ୟାବନ୍ଦନାଦି—2. Daily prayers.

୩ । ଦନ୍ତଧାବନ, ବହିର୍ଦେଶ ଗମନ ଓ ସ୍ନାନ ଆଦି ଦୈନିକ କାର୍ଯ୍ୟମାନ—
3. Washing of face and body, answering calls of nature and ablution wich one performs daily.

[ ଦ୍ର—ଯେଉଁ ସବୁ କର୍ମ ମନୁଷ୍ୟର ଶକ୍ତି ଥାଉ ଥାଉ କରା ନ ଗଲେ ପ୍ରତ୍ୟବାୟ ହୁଏ, ଅଥଚ ପ୍ରତ୍ୟହ ଅନୁଷ୍ଠିତ ଭାବରେ କଲେ ପୁଣ୍ୟ ଲାଭ ହୁଏ ନାହିଁ ସେ ସବୁ କର୍ମ ନିତ୍ୟକର୍ମ ନାମରେ ଅଭିହିତ—ପ୍ରକୃତିବାଦ ।

ହିନ୍ଦୁଶାସ୍ତ୍ର ( ଯଥା ମୀମାଂସା ) ଅନୁସାରେ ଧର୍ମାନୁଷ୍ଠାନ ବା କର୍ମକୁ ୩ ଶ୍ରେଣୀରେ ବିଭକ୍ତ କରା ଯାଇଅଛି ଯଥା—୧ । ନିତ୍ୟ କର୍ମ—ଯାହା ପ୍ରତିଦିନ କରିବାକୁ ହେବ ଓ ନ କଲେ ପ୍ରତ୍ୟବାୟ ବା ପାପ ହୁଏ,ଯଥା—ପଞ୍ଚ ଯଜ୍ଞ, ସନ୍ଧ୍ୟା ବନ୍ଦନାଦି; ୨ । ନୈମିତ୍ତିକ କର୍ମ—ଯାହା ବିଶିଷ୍ଟ ଉପଲକ୍ଷରେ ଅନୁଷ୍ଠିତ ହୁଏ, ଯଥା—ଦ୍ବିଜାତିର ସଂସ୍କାରାଦି କର୍ମ, ବିଭିନ୍ନ ଯଜ୍ଞ କର୍ମ, ପ୍ରାୟଶ୍ଚିତ୍ତ ଓ ୩ । କାମ୍ୟକର୍ମ—ଯାହା କୌଣସି ବିଶିଷ୍ଟ କାମନା ବା ଉଦ୍ଦେଶ୍ୟ ଲାଭ ଆଶାରେ ଅନୁଷ୍ଠିତ ହୁଏ, ଯଥା—ପୁତ୍ରେଷ୍ଟି ଯଜ୍ଞ, ପ୍ରଦ୍ୟଯଜ୍ଞ—ହି. ଶ]

**ନିତ୍ୟ କ୍ଷୌର**—ସଂ. ବି. ( ନିତ୍ୟ+କ୍ଷୌର ) ୧ । ପ୍ରତିଦିନ କ୍ଷୁର ହେବା—1. Daily shave.
Nitya kshaura

୨ । ଅବୈଧ କେଶାଦି ଛେଦନ (ପ୍ରକୃତିବାଦ)—2 Shaving of the hair on prohibited days.

**ନିତ୍ୟଗତି**—ସଂ. ବି. ( ବହୁବ୍ରୀହି; ନିତ୍ୟ+ଗତି )—ବାୟୁ; ପବନ—
Nityagati — Air; wind.

ବିଣ. ( ବହୁବ୍ରୀହି ) ଅନବରତ ଗମନଶୀଳ—
Constantly moving

**ନିତ୍ୟ ଜ୍ୱର**—ସଂ.ବି.-ଅବିରାମ ଜ୍ୱର;ଯେଉଁ ଜ୍ୱରରେ ତାପ ଓହ୍ଲାଏ ନାହିଁ—
Nitya jwara Uninterrupted fever; unremittent fever; fever which has no remission.

**ନିତ୍ୟଦା**—ସଂ ଅ. ( ନିତ୍ୟ+କାଳାର୍ଥେ ଦା. )—ସଦା; ସର୍ବଦା—
Nityadā Always. ( M. W ).

**ନିତ୍ୟ ଧାମ**—ସଂ. ବି.—ନିତ୍ୟବୈକୁଣ୍ଠ; ଭଗବାନଙ୍କର ନିତ୍ୟଲୀଳାସ୍ଥଳ—
Nitya dhāma The place of eternal pleasure; the abode of Bishṇu.

ସେଠାରେ ମୋ ଅଙ୍ଗ ବିଜାନେ,
ବାହୁଡ଼ିଲେ ଆଉ ନିତ୍ୟଧାମେ । ଉପେନ୍ଦ୍ର. ପ୍ରେମପଞ୍ଚାମୃତ ।

**ନିତ୍ୟନର୍ତ୍ତ**—ସଂ. ବି.( ନିତ୍ୟ+ନୃତ୍ ଧାତୁ+ କର୍ତ୍ତୃ ଅ )—
Nityanartta — ଶିବ—Siba.

**ନିତ୍ୟ ନାରୀ**—ଦେ. ବି.—ନିତ୍ୟସ୍ଥଳୀରେ ବିଷ୍ଣୁଙ୍କ ସହିତ ନିତ୍ୟଲୀଳା କରୁଥିବା ନାରୀଗଣ—The nymphs keeping company of Bishṇu in his eternal abode.
Nitya nāri

ଶୁଣିଲେ ନିତ୍ୟ ନାରୀ ସର୍ବ,
ବିଜୟ ସୁହାଗିଙ୍କ ଗର୍ବ । ଉପେନ୍ଦ୍ର. ପ୍ରେମପଞ୍ଚାମୃତ ।

**ନିତ୍ୟ ନିତ୍ୟ**—ଦେ. କ୍ରି. ବିଣ—ପ୍ରତିଦିନ—
Nityanitya — Every day; daily.

**ନିତ୍ୟନୈମିତ୍ତିକ**—ସଂ. ବିଣ. ( ଦ୍ୱନ୍ଦ୍ୱ; ନିତ୍ୟ+ନୈମିତ୍ତିକ )—
Nitya naimittika ପ୍ରତିଦିନର ଅନୁଷ୍ଠେୟ ଓ ବିଶେଷ ବିଶେଷ ନିମିତ୍ତ ବା ଅନୁଷ୍ଠାନ ଉପଲକ୍ଷରେ ଅନୁଷ୍ଠେୟ (କ୍ରିୟା)—
Daily and occasional (ceremonies).

[ ଦ୍ର—ପ୍ରତିଦିନ ଅନୁଷ୍ଠେୟ ସନ୍ଧ୍ୟା ବନ୍ଦନାଦି ନିତ୍ୟ ଓ ବିଶେଷ କାର୍ଯ୍ୟ ଉପଲକ୍ଷରେ ଅନୁଷ୍ଠେୟ ବ୍ରତ, ପ୍ରାୟଶ୍ଚିତ୍ତାଦି ନୈମିତ୍ତିକ କ୍ରିୟା ଅଟେ । ]

୨ । ଯେଉଁ ଅନୁଷ୍ଠାନ ବା କର୍ମ ବିଶେଷ ଉପଲକ୍ଷରେ ନିୟମିତ-ରୂପେ କରାଯାଏ ( ଯଥା—ପାର୍ବଣ ଶ୍ରାଦ୍ଧ, ମହାଳୟା, ବାର୍ଷିକ ପିତୃଶ୍ରାଦ୍ଧ)—2. Occasional (act) and regularly recurring (Apte).

**ନିତ୍ୟପ୍ରତି**—ସଂ. ଅ (ନିତ୍ୟ+ପ୍ରତି)—ପ୍ରତିଦିନ (ହି ଶ.)—
Nityaprati — Every day.

**ନିତ୍ୟ ପ୍ରତ୍ୟକ୍ଷ**—ସଂ. ବିଣ—ପ୍ରତିଦିନ ଆଖି ଆଗରେ ଘଟୁଥିବା—
Nitya pratyaksha Happening daily before one's eyes

**ନିତ୍ୟପ୍ରବୃତ୍ତ ବର୍ତ୍ତମାନ**—(ବ୍ୟାକରଣ)—ଯେଉଁ ବର୍ତ୍ତମାନ କାଳବାଚକ କ୍ରିୟାଦ୍ୱାରା ସର୍ବଦା ଘଟିବା ବିଷୟ ବୁଝାଏ—(grammar) The first aorist; the indefinite present tense.
Nityaprabrutta barttamāna

( ଯଥା—ଅଷାଢ଼ ମାସରେ ବର୍ଷା ହୁଏ; ବର୍ଷାଦିନେ ନଈ ବଢ଼େ; କୁକୁଡ଼ା ବାସ ପାହେ ଶୁଏ । )

**ନିତ୍ୟ ପ୍ରଳୟ**—ସଂ.ବି (କର୍ମଧା; ନିତ୍ୟ+ପ୍ରଳୟ)—୧ । ନିଦ୍ରା, ସୁଷୁପ୍ତି—
Nitya pralaya — 1. Sleep.

୨ । ପ୍ରତିଦିନ ଘଟୁଥିବା ଜୀବମାନଙ୍କର ମୃତ୍ୟୁ—
2. The constant dissolution of living beings (M. W.).

**ନିତ୍ୟ ବୈକୁଣ୍ଠ**—ସଂ. ବି—ଗୋଲୋକଧାମ; ବିଷ୍ଣୁଙ୍କ ବାସସ୍ଥାନ—
Nityabaikuṇṭha The perpetual abode of Bishṇu in heaven.

**ନିତ୍ୟବ୍ୟୟ**—ସଂ. ବିଣ. ପୁଂ( ବହୁବ୍ରୀହି; ନିତ୍ୟ+ବ୍ୟୟ)—ଯେ ସର୍ବଦା ବ୍ୟୟ କରୁଥାଏ—
Nitya byaya Always expending; ever laying out (M. W.).
(ନିତ୍ୟବ୍ୟୟା—ସ୍ତ୍ରୀ)

**ନିତ୍ୟ ବ୍ରତ**—ସଂ ବି—ଆମରଣ ଅନୁଷ୍ଠିତ ବ୍ରତ—
Nitya brata A prepetual observance; penance lasting for life (M W.).

**ନିତ୍ୟ ମୁକ୍ତ**—ସଂ. ବିଣ. ପୁଂ—ନିତ୍ୟନିର୍ଲିପ୍ତ; କାଳାତୀତଭାବରେ ବନ୍ଧନ ମୁକ୍ତ—
Nitya mukta Emancipated or freed from all bonds for all time.
(ନିତ୍ୟମୁକ୍ତା—ସ୍ତ୍ରୀ)

ବି—ପରମାତ୍ମା—The Universal or Supreme Soul.

**ନିତ୍ୟ ଯଜ୍ଞ**—ସଂ. ବି ( ସ. ପ. ଲୋ. )—ପ୍ରତିଦିନ ଅନୁଷ୍ଠେୟ ଯଜ୍ଞ କର୍ମ (ଯଥା—ଅଗ୍ନିହୋତ୍ର)—
Nitya jajña Regular or daily religious sacrifice.

**ନିତ୍ୟ ଯୁକ୍ତ**—ସଂ. ବିଣ—ସର୍ବଦା କାର୍ଯ୍ୟରେ ଲାଗିଥିବା—
Nitya jukta Always engaged; ever active; always busy.

ନିତ୍ୟ ଯୌବନ—ସ. ବି—ଚିରଯୌବନ; ଚିରକାଳ ବାର୍ଦ୍ଧକ୍ୟରହିତ
Nitya jaubana ଅବସ୍ଥା; ସ୍ଥିରଯୌବନ—
Perpetual youth; unfading youth
(ନିତ୍ୟଯୌବନା—ସ୍ତ୍ରୀ) ବିଣ. ପୁଂ (ବହୁବ୍ରୀହି)—ଯେ ସର୍ବଦା ଯୁବା
ଥାଏ; ଯାହାର ବାର୍ଦ୍ଧକ୍ୟ ହୁଏନାହିଁ; ଚିର ଯୁବା—
Ever youthful; possessing perpetual youth

ନିତ୍ୟଯୌବନା—ସ. ବିଣ ( ସ୍ତ୍ରୀ )—( ନିତ୍ୟଯୌବନ+ଆ )—
Nityajaubanā ନିତ୍ୟଯୌବନର ସ୍ତ୍ରୀଲିଙ୍ଗ—
The feminine of Nityajaubana.
ବି. ସ୍ତ୍ରୀ—ଦ୍ରୌପଦୀ—An epithet of 'Draupadi'.

ନିତ୍ୟ ରାସ—ସ. ବି—( ବୈଷ୍ଣବ ସାହିତ୍ୟ )—ଗୋଲୋକଧାମ ବା
Nitya rāsa ବୈକୁଣ୍ଠରେ ଶ୍ରୀକୃଷ୍ଣ ଓ ଗୋପୀମାନଙ୍କ ଦ୍ୱାରା ପ୍ରତିଦିନ
ଅହରହଃ ସମ୍ପାଦିତ ରାସକ୍ରୀଡ଼ା—The ball dance said to be performed every day in the Baikuntha by Bishnu and his consorts.

ନିତ୍ୟ ରହାସ—ଦେ. ବି. (ସ. ନିତ୍ୟରାସ)—୧ । ନିତ୍ୟ ରାସ (ଦେଖ)—
Nitya rahāsa 1. Nitya rāsa (See)
ନିତ୍ୟ ରହାସ ଭୁଞ୍ଜୁ ହୋଇଛ ପ୍ରାପତ ।
ଗ୍ରାମୀ ଗୁରୁରଙ୍କୁ ଗୀତା ।
୨ । (ବ୍ୟଙ୍ଗ୍ୟାର୍ଥ) କୌଣସି ଠାରେ ପ୍ରତି ଦିନ ହେଉଥିବା ମଉଜ ଓ ଆନନ୍ଦ ଉତ୍ସବ—2 (ironical) A daily round of festivities and merrymaking.

ନିତ୍ୟରେ—ଗ୍ରା କ୍ରି. ବିଣ (ପଦ୍ୟ)—ସର୍ବଦା; ନିରନ୍ତର—
Nityare Constantly.
ନିତ୍ୟରେ ମୋର ପ୍ରଭୁପଣ । ଉପେନ୍ଦ୍ର. ପ୍ରେମପଞ୍ଚାମୃତ ।

ନିତ୍ୟର୍ତ୍ତୁ—ସ. ବିଣ. (ନିତ୍ୟ+ଋତୁ)—ପ୍ରତିବର୍ଷ ନିର୍ଦ୍ଦିଷ୍ଟ ଋତୁରେ
Nityartu ଘଟୁଥିବା—Regularly recurring at the seasons; annual (M. W.).

ନିତ୍ୟଶଃ—ସ. କ୍ରି. ବିଣ. (ନିତ୍ୟ+ଶସ୍)—୧ । ସର୍ବଦା—
Nityasah 1. Constantly.
୨ । ଚିରକାଳ—2. Perpetually; ever; eternally.
୩ । ଅହରହଃ—3. Every day; daily.

ନିତ୍ୟ ଶ୍ରାଦ୍ଧ—ସ. ବି—ପ୍ରତିଦିନ କରାଯିବା ଶ୍ରାଦ୍ଧ—
Nitya śrāddha A daily performed Srāddha.

ନିତ୍ୟଶ୍ରୀ—ସ. ବିଣ. ପୁଂ ଓ ସ୍ତ୍ରୀ (ବହୁବ୍ରୀହି; ନିତ୍ୟା+ଶ୍ରୀ)—
Nityaśri ଚିରସୁନ୍ଦର; ଯାହାର ସୌନ୍ଦର୍ଯ୍ୟ ମଉଳେ ନାହିଁ—
Of lasting beauty (M. W.).

ନିତ୍ୟସଙ୍ଗୀ—ସ. ବି. ପୁ—ଯେ ସର୍ବଦା ସଙ୍ଗରେ ଥାଏ—
Nitya sangi Constant companion.
(ନିତ୍ୟସହଚର—ଅନ୍ୟରୂପ) (ଯଥା—ବସନ୍ତ କାମଦେବଙ୍କର ନିତ୍ୟ
(ନିତ୍ୟସଙ୍ଗିନୀ—ସ୍ତ୍ରୀ) ସଙ୍ଗୀ ।)

ନିତ୍ୟ ସମାସ—ସ. ବି. (ବ୍ୟାକରଣ)—ଏକପ୍ରକାର ସମାସ; ଯେଉଁ
Nitya samāsa ସମାସରେ ସମସ୍ତ ପଦର ଅବୟବୀଭୂତ ପଦମାନଙ୍କୁ
ସ୍ୱତନ୍ତ୍ର ବ୍ୟବହାର କଲେ ଅର୍ଥବୋଧ ହୁଏ ନାହିଁ—
(Sanscrit grammar) A class of compound, a compound of which the meaning cannot be expressed by its component members used separately, the separate ideas having merged in one.
[ ନିତ୍ୟସମାସର ଉଦାହରଣ—ପ୍ରତିଦିନ;—ଏଠାରେ ସମସ୍ତ ପଦର ଅବୟବୀଭୂତ ୨ଟି ଶବ୍ଦ ପ୍ରତି ଓ ଦିନକୁ ସ୍ୱତନ୍ତ୍ର ବ୍ୟବହାର କଲେ ଦିନେ ଦିନେ ଏହି ଅର୍ଥର ବୋଧ ହେବ ନାହିଁ । ଖଟ୍ୱାରୂଢ଼;—୨ୟ ତତ୍ପୁରୁଷ ନିୟମ ଖଟ୍ୱାରୂଢ଼ ଶବ୍ଦର ଅର୍ଥ ଯେ ଖଟରେ ଚଢ଼ିଛି । କିନ୍ତୁ ନିତ୍ୟସମାସ ନିୟମ ଖଟ୍ୱାରୂଢ଼ ଶବ୍ଦର ଅର୍ଥ ମାତ । ଭୋଜନାର୍ଥ—ଏଠାରେ ଭୋଜନ ଓ ଅର୍ଥ ଏ ଦୁଇ ଶବ୍ଦର ସ୍ୱତନ୍ତ୍ର ପ୍ରୟୋଗଦ୍ୱାରା ସମସ୍ତ ପଦର ଅର୍ଥର ବୋଧ ହେବ ନାହିଁ । ଏ ପଦର ଅର୍ଥ ଭୋଜନ ନିମନ୍ତେ । ଗତ୍ୟନ୍ତର—ଏଥିର ଅର୍ଥ ଅନ୍ୟ ଗତି । ]

ନିତ୍ୟ ସିଦ୍ଧ—ସ. ବିଣ. ପୁଂ—ଯେ ସର୍ବଦା ସିଦ୍ଧିଯୁକ୍ତ—
Nitya siddha Ever perfect; ever accomplished.

ନିତ୍ୟ ସେବକ—ସ. ବି. ପୁଂ. (କର୍ମଧା; ନିତ୍ୟ+ସେବକ)—
Nitya sebaka ୧ । ଅହରହଃ ସେବାକାରୀ ବ୍ୟକ୍ତି; ଦିନଯାକ
ନିତ୍ୟସେବକା } ସ୍ତ୍ରୀ ପ୍ରଭୁଙ୍କ କାର୍ଯ୍ୟରେ ନିଯୁକ୍ତ ଭୃତ୍ୟ—
ନିତ୍ୟସେବିକା } 1. A whole time servant.
୨ । ଯେ ସର୍ବଦା ପରର ସେବାରେ ନିଯୁକ୍ତ—
2. Always serving others (M. W.).

ନିତ୍ୟସ୍ନାୟୀ—ସ. ବିଣ. ପୁଂ. ନିତ୍ୟ+ସ୍ନା ଧାତୁ+କର୍ତ୍ତୃ ଇନ୍, ୧ମା.
Nityasnāyi ୧ବ)—ଯେ ପ୍ରତିଦିନ ସ୍ନାନ କରନ୍ତି—
(ନିତ୍ୟସ୍ନାୟିନୀ—ସ୍ତ୍ରୀ) Bathing daily or constantly.
(ନିତ୍ୟସ୍ନାନ—ବି)

ନିତ୍ୟ ହୋମ—ସ. ବି. (କର୍ମଧା; ନିତ୍ୟ=ପ୍ରତିଦିନ+ହୋମ)—
Nitya homa ପ୍ରତିଦିନ କରାଯିବା ହୋମ—
(ନିତ୍ୟହୋତ୍ରୀ—ବିଣ) Burnt offerings offered daily; daily performed sacrifice.

ନିତ୍ୟା—ସ. ବି. ସ୍ତ୍ରୀ. (ନିତ୍ୟ+ସ୍ତ୍ରୀ+ଆ)—୧ । ପାର୍ବତୀ—
Nityā 1. Goddess Pārbati.
୨ । ମନସା ଦେବୀ—2. Goddess Manasā.
୩ । ଶକ୍ତିବିଶେଷ—3 The name of the Generating Power of the universe.
୪ । ଲଙ୍ଗଳ ଲୁହା—4. Ploughshare. (M. W.).
୫ । ନିତ୍ୟ ଅବଶ୍ୟ କର୍ତ୍ତବ୍ୟ କର୍ମ—Constant and indispensable rite or act (M. W.).
ସ. ବିଣ. ସ୍ତ୍ରୀ—ନିତ୍ୟର ସ୍ତ୍ରୀଲିଙ୍ଗ—Feminine of Nitya.

ନିତ୍ୟାଚାର—ସ. ବି. (କର୍ମଧା; ନିତ୍ୟ+ଆଚାର)—୧ । ସର୍ବଦା କରଣୀୟ
Nityāchāra ସଦାଚାର—1. Constant good conduct.

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ସ୍ଥାନରେ ନ ମିଳେ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଚିହ୍ନର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଡ଼' ନ ମିଳିଲେ ଗାଢ଼' ଖୋଜିବେ, କୂଷ ନ ମିଳିଲେ 'କୂଶ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ, ଅର୍ଘ୍ୟ ନ ପାଇଲେ 'ଅର୍ଘ' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍ତ' ଦେଖିବେ

୨ । ପ୍ରତିଦିନ କର୍ତ୍ତବ୍ୟ କର୍ମ—
2. Daily acts and rituals.

**ନିତ୍ୟାନଧ୍ୟାୟ**—ସଂ. ବି (କର୍ମଧା; ନିତ୍ୟ+ଅନଧ୍ୟାୟ)—
Nityānadhyāya ବେଦାଧ୍ୟୟନ ଓ ବେଦାଧ୍ୟାପନର ନିତ୍ୟ ନିବୃତ୍ତି; ଯେଉଁ ଅବସ୍ଥାରେ ବା ସ୍ଥାନରେ ନିତ୍ୟ (ସର୍ବଦା) ବେଦାଧ୍ୟୟନ ଓ ବେଦାଧ୍ୟାପନ ନିଷିଦ୍ଧ—
Invariable suspension of the study of the Bedas.
[ଦ୍ର—ଅନଧ୍ୟାୟ ଶବ୍ଦ ତଳେ ଟୀକା ଦେଖ । ମନୁସଂହିତାର ୪ର୍ଥ ଅଧ୍ୟାୟ ୧୦୭ ଶ୍ଳୋକରେ ନିତ୍ୟାନଧ୍ୟାୟ ବିଷୟକ ଉପଦେଶ ଅଛି । ଧର୍ମନୈପୁଣ୍ୟକାମୀ ଲୋକମାନଙ୍କ ପକ୍ଷରେ ଗ୍ରାମ, ନଗର ଓ ପୂତିଗନ୍ଧମୟ ସ୍ଥାନରେ ନିତ୍ୟାନଧ୍ୟାୟ ହୁଏ । ଅର୍ଥାତ୍ ଗ୍ରାମରେ, ନଗରରେ ଓ ଯେଉଁଠାରୁ ପୂତିଗନ୍ଧ ବାହାରୁଥିବ ସେଠାରେ କେବେହେଁ ବେଦାଧ୍ୟୟନ ବା ବେଦାଧ୍ୟାପନ କରିବ ନାହିଁ । ]

**ନିତ୍ୟାନନ୍ଦ**—ସଂ. ବି. ପୁଂ. (ବହୁବ୍ରୀହି; ନିତ୍ୟ+ଆନନ୍ଦ)—
Nityānanda ସଦାନନ୍ଦ; ଯାହାର ଚିତ୍ତ ସର୍ବଦା ସନ୍ତୁଷ୍ଟ—
(ନିତ୍ୟାନନ୍ଦା—ସ୍ତ୍ରୀ) Ever happy.
ବି. (କର୍ମଧାରୟ)—ଚିରସ୍ଥାୟୀ ସୁଖ—
Eternal happiness.
ଦେ. ବି (ନାମ) ସଂ—୧ । ଶ୍ରୀ ଚୈତନ୍ୟ ଦେବଙ୍କର ପ୍ରଧାନ
নিত্যানন্দ ଭକ୍ତ ଓ ସଙ୍ଗୀ—1. Name of the principal
नित्यानन्द associate of Śrī Chaitanya.
[ଦ୍ର—ନିତାଇ ତଳେ ନୋଟ୍ ଦେଖ । ଏହାଙ୍କ ପିତାଙ୍କ ନାମ ହାଡ଼ାଇ ପଣ୍ଡିତ । ]
୨ । (ନାମ) ସିଦ୍ଧାନ୍ତତତ୍ତ୍ୱ ଗ୍ରନ୍ଥର ପ୍ରଣେତା (୧୬୨୧ ଶକାବ୍ଦ; ଗୌଡ଼ ବ୍ରାହ୍ମଣ)—2. Name of a Sanscrit author.
୩ । ପୁରୁଷଙ୍କୁ ଦିଆଯିବା ନାମ—
3. A name given to males.

**ନିତ୍ୟାନି**—ଦେ. ଅ. (ସଂ ନିତ୍ୟ)—ପ୍ରତିଦିନ—
Nityāni Every day.
নিত, নিতি ବିଣ—ପ୍ରତିଦିନ ଘଟୁଥିବା—
नित, निति Occuring daily.
ପ୍ରାଦେ (ସୁମ୍ବ ଓ ଗଡ଼ଜାତ) ବି. ଦୁଧ—Milk.
[ଦ୍ର—ଦୁକ୍ଷିଣ ସୁମ୍ବରେ ଦୁଧ ନ କହି 'ନିତ୍ୟାନି', 'କ୍ଷୀର' ଓ ଗଡ଼ଜାତରେ 'ନିତ୍ୟାନି', 'କ୍ଷୀର', 'ଓଖର', 'ନଳାପାଣି' ଆଦି ଶବ୍ଦ ଲୋକେ ବ୍ୟବହାର କରି ଥାଆନ୍ତି । ଦୁଧ ଶବ୍ଦ ଗଡ଼ଜାତରେ ସ୍ତ୍ରୀ ସ୍ତନକୁ ବୁଝାଏ । ]

**ନିତ୍ୟାନିତ୍ୟ**—ସଂ. ବିଣ. (ଦ୍ୱିପଦାର୍ଥବୋଧକ ସମାହାର ଶବ୍ଦ; ନିତ୍ୟ+
Nityānitya ଅନିତ୍ୟ)—ସ୍ଥାୟୀ ଓ ଅସ୍ଥାୟୀ; ସ୍ଥିର ଓ ଅଚିର—
Permanent and transient; eternal and temporal (matters).

**ନିତ୍ୟାନିତ୍ୟ ବସ୍ତୁ ବିବେକ**—ସଂ. ବି—ବ୍ରହ୍ମ ଏକମାତ୍ର ସତ୍ୟ, ତଦ୍‌ଭିନ୍ନ
Nityānitya bastu bibeka ସମସ୍ତ ଅନିତ୍ୟ, ଏହିଭଳି ବିଚାର—
The differentiation between the Eternal Brahma and the perishable universe.

**ନିତ୍ୟାନି ଭୋଗ**—ଦେ. ବି.—୧ । ପ୍ରତିଦିନ ଦେବତାଙ୍କ ନିକଟରେ ଖଞ୍ଜା
Nityāni bhoga ଥିବା ନୈବେଦ୍ୟ—
1. Daily offerings fixed for a Deity.
୨ । ଦେବତାଙ୍କୁ ନୈବେଦ୍ୟ ଦିଆଯିବା ଦୁଗ୍ଧ—
2 Milk offered to a Deity.

**ନିତ୍ୟାଭିଯୁକ୍ତ**—ସଂ. ବିଣ. ପୁଂ. (ନିତ୍ୟ+ଅଭିଯୁକ୍ତ)—ଯେଉଁ ଯୋଗୀ
Nityābhijukta ଯେତିକି ପରିମିତ ଖାଦ୍ୟରେ ଦେହ ରକ୍ଷା
(ନିତ୍ୟାଭିଯୁକ୍ତା—ସ୍ତ୍ରୀ) ହେବ ସେତିକିମାତ୍ର ଭୋଜନ କରି ଓ ତହିଁ ଅଧିକ ପରିତ୍ୟାଗ କରି ଯୋଗସାଧନ କରନ୍ତି (ହି. ଶ)—
(an ascetic) Subsisting on the minimum quantity of food necessary for living and practising penance.

**ନିତ୍ୟାରିତ୍ର**—ସଂ. ବିଣ (ବହୁବ୍ରୀହି; ନିତ୍ୟ+ଅରିତ୍ର)—(ବୈଦିକ)
Nityāritra ଯେଉଁ ବୋଇତ ବା ନାବ ତତ୍‌ସଂଲଗ୍ନ ଆହୁଲଦ୍ୱାରା ଚଳେ (ଋଗ୍‌ବେଦ)—
(a boat or ship) Propelled by its own oars; self-propelled having its own oars. (M.W.).

**ନିତ୍ୟୋଦକ**—ସଂ. ବିଣ (ବହୁବ୍ରୀହି; ନିତ୍ୟ+ଉଦକ)—
Nityodaka ଯେଉଁ ଜଳାଶୟରେ ସବୁଦିନେ ପାଣି ଥାଏ—
Always having water; perennial (river or reservoir)

**ନିତ୍ୟୋଦ୍ୟୁକ୍ତ**—ସଂ. ବିଣ. ପୁଂ (ନିତ୍ୟ+ଉଦ୍ୟୁକ୍ତ)—ସର୍ବଦା
Nityodyukta ଉଦ୍ୟମଶୀଳ; ସର୍ବଦା ଉଦ୍‌ଯୋଗୀ—
(ନିତ୍ୟୋଦ୍ୟୁକ୍ତ—ଅନ୍ୟରୂପ) Always energetic.
(ନିତ୍ୟୋଦ୍ୟୁକ୍ତା—ସ୍ତ୍ରୀ) (ନିତ୍ୟୋଦ୍ୟୁକ୍ତତା—ବି)

**ନିଦ୍(ଧାତୁ)**—ସଂ.—ନିନ୍ଦା କରିବା—
Nid(root) To blame.

**ନିଦ**—ସଂ. ବି.(ନି=ନିଶ୍ଚୟ+ଦୋ. ଧାତୁ=ଛେଦନ କରିବା+
Nida କର୍ତ୍ତୃ. ଅ)—ବିଷ—Poison; venom. (M. W.)
নিদ, নীদ ଦେ. ବି. (ସଂ. ନିଦ୍ରା; ପ୍ରା. ନିଦ)—
निंद ନିଦ୍ରା; ଶୟନ—Sleep.
[ଦ୍ର—ଅବସ୍ଥାବିଶେଷରେ ନିଦର ନାନାପ୍ରକାର ନାମ ଅଛି, ଯଥା—କଞ୍ଚା ନିଦ, ଘୋର ନିଦ, ଘମ୍ପୋଚ୍ଚ ବା କମ୍ପୋଡ଼ ନିଦ ଗହମ ନିଦ, ଖିଅ ନିଦ ଇତ୍ୟାଦି । ]

| ି | ଇ | ଉ | ଋ,ୠ | ୢ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ୍ଞ | ଶ,ଷ | ଙ୍କ | ଇ୍ୟ | ତ୍ଥ | ଓ |
|---|---|---|---|---|---|---|---|---|---|---|---|---|---|---|
| ୀ | ଈ | ଊ | ରୁ | ଳୃ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | କ୍ଷ୍ୟ | ଯ୍ | ଯ | ଙ୍ୟ | ଇଅ | ଓ | ନ୍ |

ନିଦକ(କା)—ଦେ. ବି. (ସଂ. ନିର୍ଦର)—ନିର୍ଭୟ; ଭୟଶୂନ୍ୟତା—
Nidaka(kā) Fearlessness.
( ନିଦକୀ—ସ୍ତ୍ରୀ ) ଦେ. ବିଣ ପୁଂ—୧ । ନିର୍ଭୟ—1. Fearless.
**निडर** ୨ । ନିଶ୍ଚିନ୍ତ—Free from anxiety.

ନିଦ ଘାରିବା—ଦେ. କ୍ରି.—ନିଦ୍ରାସକ୍ତ ହୋଇ ଢୁଳାଇବା—
Nida ghāribā Dozing.
( ନିଦ ଝାଙ୍କିବା, ନିଦ ସାଲିବା—ଅନ୍ୟରୂପ )

ନିଦଦ୍ରୁ—ସଂ. ବି. (ନିଦ=ବିଷ+ଦ୍ରୁ=ବୃକ୍ଷ) —ମନୁଷ୍ୟ (ଶବ୍ଦକଳ୍ପଦ୍ରୁମ)—
Nidadru Man.
ସଂ. ବିଣ. (ନି=ନାହିଁ+ଦଦ୍ରୁ=ଦାଦ୍)—ଦଦ୍ରୁଶୂନ୍ୟ—
Free from ringworm.

ନିଦ ଧୂଳି—ଦେ. ବି. ( ସଂ. ନିଦ୍ରା+ଧୂଳି )—ନିଦ ମାଟି ( ଦେଖ )
Nida dhūli Nida māti ( See )

ନିଦ ନିଦ—ଦେ. ବିଣ—ନିଦ ମଳ ମଳ ( ଦେଖ )
Nida nida Nida maḷa maḷa ( See )

ନିଦ୍‌ବାଉଳା—ଦେ. ବି. ( ସଂ. ନିଦ୍ରା ଓ ବାତୁଳ )—
Nida bāuḷā ଗାଢ଼ ନିଦ୍ରାରେ ଶୋଇଥିବା ବ୍ୟକ୍ତି କୌଣସି
ঘুমের ঘোর ଶବ୍ଦ ବା ଡାକ ଆଦି ଶୁଣି ହଠାତ୍ ନିଦରୁ
**नींदका घबराहट** ଉଠିଲେ ତାହାର ଯେଉଁ କିଂକର୍ତ୍ତବ୍ୟବିମୂଢ଼ ଅବସ୍ଥା
ଓ ହାତ ଏଣେ ତେଣେ ବୁଲାଇ ଦଉଡ଼ିବା ଅବସ୍ଥା ଘଟେ—
The dazed condition of a person suddenly roused from deep slumber.

ମାଇକିନିଆଁ ମାନେ ନିଦ ବାଉଳାରେ ହାଉଳି ଖାଇ
ଦେହ ଲୁଗା ଘେନି × × × ଗଛ ମୂଳରେ ବସି ଅଛନ୍ତି ।
ଫକୀରମୋହନ, ଛମାଣ ଅଠଗୁଣ୍ଠ ।

ନିଦ ଭଙ୍ଗା(ଙ୍ଗେ)ଇବା—ଦେ. କ୍ରି—ସୁପ୍ତ ବ୍ୟକ୍ତିକୁ ନିଦ୍ରାରୁ ଉଠାଇବା—
Nida bhaṅgā(ṅge)ibā To awaken a sleeping
ঘুমভাঁগান **जगाना, नींद उचाटना** person.

ନିଦ ଭାଙ୍ଗିବା—ଦେ. କ୍ରି—୧ । ନିଦ ଭଙ୍ଗାଇବା ( ଦେଖ )
Nida bhāṅgibā 1. Nida bhaṅgāibā ( See )
ঘুম ভাঁগা ୨ । ନିଜେ ଚେଷ୍ଟା ପୂର୍ବକ ନିଦ୍ରାର ଆଳସ୍ୟକୁ ତ୍ୟାଗ
**जगना** କରିବା—2. To shake off one's slumber.
ঘুম ভাঁগা ଦେ. ବି. ( ସଂ. ନିଦ୍ରା ଭଙ୍ଗ )—
**नींद छटना, नींद उचटना** ୧ । ଜାଗରଣ; ନିଦ୍ରାଭଙ୍ଗ ହେବା—
1. Awaking from sleep.
୨ । ( ଲକ୍ଷଣାର୍ଥ ) ପ୍ରକୃତ ଅବସ୍ଥାର ଉପଲବ୍ଧି—
2. ( figurative ) Realisation of one's actaul position.
( ଯଥା—ତେଣେ ମାହାଲ ଲାଟରେ ଗଲାଣି, ବାବୁଙ୍କର ଏତେ ବେଳଯାଏଁ ନିଦ ଭାଙ୍ଗୁ ନାହିଁ । )

ନିଦ ମନ୍ତର—ଦେ. ବି. ( ସଂ. ନିଦ୍ରା+ମନ୍ତ୍ର )—
Nida mantra ଗାଢ଼ ନିଦ୍ରାଜନକ ମନ୍ତ୍ର; ଚୋରମାନେ ଯେଉଁ
(ନିଦ ମନ୍ତ୍ର—ଅନ୍ୟରୂପ) ମନ୍ତ୍ରରେ ମାଟି ବା ଧୂଳି ଅଭିମନ୍ତ୍ରିତ କରି
নিঝুটী; নিদালী ଗୃହରେ ଶୋଇ ଥିବା ବ୍ୟକ୍ତିମାନଙ୍କ ଦେହକୁ
ଫିଙ୍ଗିଲେ ସେମାନେ ଗାଢ଼ ନିଦ୍ରାଭିଭୂତ ହୁଅନ୍ତି ଓ ଚୋର-
ମାନେ ଏହି ଅବସରରେ ନିରାପଦରେ ଚୋରି କରନ୍ତି—
Esoteric formulæ with which thieves are said to consecrate dust which they throw on the sleeping inmates of a house and which is said to induce profound sleep in them.

ନିଦ ମଳମଳ—ଦେ. ବିଣ. ( ସଂ. ନିଦ୍ରାଳୁ )—
Nida maḷa maḷa ନିଦ୍ରାଳୁ; ନିଦ୍ରାସକ୍ତ; ସମ୍ପୂର୍ଣ୍ଣ ରୂପେ
নিদন্ত ନିଦ୍ରାସକ୍ତି ଛାଡ଼ି ନ ଥିବା ( ବ୍ୟକ୍ତି )—
**निंदासा** Sleepy ( persons ).

ସେ ନିଦ ମଳ ମଳ ଆଖିରେ ତାଙ୍କୁ କେତେବେଳେ
ଚାହିଁ ପଚାରିଲେ, ମୋତେ କାହିଁକି ଉଠାଇଲ ?—ନୀଳକଣ୍ଠ ପିଲ୍ଲଙ୍କ ସ୍ୱମ୍ବୁଣ ।

ନିଦ ମାଟି—ଦେ. ବି—ମୋହଚୂର୍ଣ୍ଣ; ମନ୍ତୂରା ହୋଇଥିବା ଯେଉଁ ଧୂଳିକୁ
Nida māti ଚୋରମାନେ ଶୋଇଥିବା ବ୍ୟକ୍ତିଙ୍କ ଉପରେ ପକାଇ
নিদাটি ଚୋରି କରନ୍ତି—Charmed dust used by thieves to throw on sleeping inmates of a house and which is said to induce profound sleep, thus giving the thieves opportunity to steal.
ପ୍ରାଦେ. ( ଗଡ଼ଜାତ ) ବି—ପୂର୍ବଦିଗରେ ପଡ଼ିଥିବା ଇନ୍ଦ୍ରଧନୁର
କୋଣି ବା ଅଗ୍ରଭାଗ, ଯେଉଁଠାରେ ଭୂମିରେ ଛୁଇଁ
ଥିବାପରି ଦିଶେ, ଚୋରମାନେ ସେହିଠାରୁ ଆଣିଥିବା
ମାଟି—The earth collected by thieves from the place where a rainbow appears to touch the earth.
[ ଦ୍ର—ଏହି ମାଟିକୁ ସାଧାରଣତଃ ଚୋରମାନେ ନିଦ ମାଟିରୂପେ ବ୍ୟବହାର କରନ୍ତି । ଯେଉଁ ଘରୁ ସେମାନେ ଚୋରି କରିବାକୁ ଇଚ୍ଛା କରନ୍ତି, ସେ ଘରେ ଶୋଇଥିବା ଲୋକଙ୍କ ଉପରେ ଏହି ମାଟିକୁ ପକାଇ ଦେଲେ ସେମାନେ ଗାଢ଼ ନିଦ୍ରାରେ ଶୋଇ ପଡ଼ନ୍ତି ଓ ଚୋରମାନେ ସେହି ସୁଯୋଗରେ ଘରର ସମସ୍ତ ପଦାର୍ଥ ଚୋରି କରି ନିଅନ୍ତି । ]

ନିଦ ମାଡ଼ିବା—ଦେ. ବି—ନିଦ୍ରାକର୍ଷଣ—
Nida māṛibā Drowsiness; feeling sleepy.
ঘুম পাওয়া **नींद आना**

ନିଦମ୍ଭ—ଦେ. ବିଣ. ( ସଂ. ନିର୍ ଓ ଦମ୍ଭ )—୧ । ଯାହା ଶକ୍ତ ନୁହେ
Nidambha ( ପଦାର୍ଥ ); ଭରମହୀନ; ଅଦୃଢ଼—
বেমজবুত 1. Not strong ( thing ).

गरमजबुत ୨ । ଧୈର୍ଯ୍ୟହୀନ ( ବ୍ୟକ୍ତି ); ଅଧୀର—
( ନିଦମ୍ଟିଲ—ଅନ୍ୟରୂପ ) 2. Impatient ( person ); having no patience.

୩ । ସାହସହୀନ ( ବ୍ୟକ୍ତି )—
3. Courageless ( person ).

**ନିଦୟ**—ସ. ବିଣ. ( ନି+ଦୟା )—ନିର୍ଦ୍ଦୟ—
Nidaya Cruel; unkind; inhuman; merciless.
নিদয় **निदय**

**ନିଦୟା**—ସ୍ତ୍ରୀ. ବିଣ. (ପୁଂ. ଓ ସ୍ତ୍ରୀ)—ନିଦୟ (ଦେଖ)
Nidayā Nidaya (See)
নিদয়া ବି.—ନିର୍ଦ୍ଦୟତା; ଦୟାହୀନତା; ନିଷ୍ଠୁରତା—
**निदई, निर्दई** Unkindness; cruelty.

**ନିଦୟା ପୁରୁଷ**—ଗ୍ରା. ବି.—ନିଷ୍ଠୁର ବ୍ୟକ୍ତି—
Nidayā purusha Hard-hearted person.

**ନିଦ ଯିବା**—ଦେ କ୍ରି.—ନିଦ୍ରିତ ହେବା; ଶୋଇ ରହିବା—
Nida jibā To go on sleeping; to lie asleep.
घुमान **नींद्जाना** ମୋହନ ମାଧୁରୀ ଦେଖିଥିବା ନାରୀ ନିଦ ଯିବ କି ଅଛିର । ସଙ୍ଗୀତ

**ନିଡର**—ଦେ ବିଣ. ପୁଂ. (ସ. ନିର୍+ଦର)—୧ । ନିର୍ଭୟ—
Nidara 1. Fearless.
নিডর ବୋଲେ ସୁମା ଘୋଡର ବଡାଇ କି ଆଦରେ ନିଡର ନହିବୁ କଦାଚି ।
**निडर** ଭଞ୍ଜ ବୈଦେହୀଶବିଳାସ ।

୨ । ନିଶ୍ଚିନ୍ତ—2. Free from anxiety.
ବି.— ଭୟଶୂନ୍ୟତା—Want of fear.

**ନିଦର୍ଶନ**—ସ. ବି. (ନି =ସମ୍ୟକ୍ ବା ନିଶ୍ଚୟରୂପେ+ଦୃଶ୍ ଧାତୁ+ଅଣ୍, ଅନ)—୧ । ପ୍ରମାଣ—1. Proof; evidence.
Nidarśana
୨ । ଚିହ୍ନ—2. Sign; vestige; mark.
୩ । ଉଦାହରଣ; ଦୃଷ୍ଟାନ୍ତ—3. Example; instance; illustration.
୪ । ପ୍ରତିରୂପ; ନମୁନା—
4. Sample; type; specimen.
୫ । ଆଦର୍ଶ—5. Model; pattern.
୬ । ଆଜ୍ଞା; ବିଧାନ—6. Order; ordinance; injunction; precept; statute.
୭ । ବିବରଣ—7. Description.
୮ । ଦେଖାଇଦେବା—8. Pointing; showing.
୯ । ପ୍ରକଟନ; ଘୋଷଣା କରିବା—
9. Announcing; proclaiming.
୧୦ । ପ୍ରଣାଳୀ; ଯୋଜନା—
10. Scheme; system ( M W. ).
୧୧ । ଶାସ୍ତ୍ରପ୍ରମାଣ; ପ୍ରାମାଣିକ ଶାସ୍ତ୍ର [illegible]—
11. Text; authority; scriptural authority ( Apte ).
୧୨ । ଦୃଷ୍ଟି; [illegible]—
12. View; sight; vision (Apte).
୧୩ । ବିପକ୍ଷ ପ୍ରଦର୍ଶିତ ବା ଯୁକ୍ତିର ପ୍ରତିବାଦ—[illegible]
13 Refutation of a stated argument ( M. W. ).
୧୪ । ଅର୍ଥ୍ୟ ନ୍ୟାୟଶାସ୍ତ୍ରରେ ଅନୁମାନର ୫ଟି ଅବୟବ ମଧ୍ୟରୁ ତୃତୀୟ ଅବୟବ ( ନିଗମନ ୨ ତଳେ ଟୀକା ଦେଖ )—
14. ( logic ) Name of the 3rd member of a complete syllogism.
୧୫ । ପୂର୍ବ ଲକ୍ଷଣ; ଶକୁନ—
15. Prognostic; omen ( M. W. ).
ସ. ବିଣ—୧ । ପ୍ରଦର୍ଶନକାରୀ; ଯେ ଦେଖାଇଦିଏ—
1. Showing; pointing to.
୨ । ଯେ ଶିକ୍ଷାଦିଏ—2. Teaching.
୩ । ପ୍ରକଟନକାରୀ—
3. Proclaiming; announcing.
୪ । ସନ୍ତୋଷଦାୟକ; ପ୍ରିୟ—
4. Suiting; pleasing ( Apte ).

**ନିଦର୍ଶନ ପତ୍ର**—ସ. ବି— କୌଣସି ବିଷୟ ପ୍ରମାଣିତ କରିବା ନିମନ୍ତେ ବ୍ୟବହୃତ ଦଲିଲ ବା ଲେଖା—
Nidarśana patra
(ନିଦର୍ଶନଲିପି—ଅନ୍ୟରୂପ) A document in proof of some fact, a writing which is evidence of a certain fact (e. g. of payment ).

**ନିଦର୍ଶନା**—ସ. ବି—କାବ୍ୟାଳଂକାରବିଶେଷ—
Nidarśanā A kind of rhetorical figure; a kind of simile or comparision.

[ ଦ୍ରି—ବିଷୟର ବିଷୟାନ୍ତର ସହିତ ସମ୍ବନ୍ଧ ସଙ୍ଗତ ହେବା ନିମନ୍ତେ ସାଦୃଶ୍ୟଙ୍କ ଅଧ୍ୟାହାର ହେଉଥିଲେ ନିଦର୍ଶନାଲଙ୍କାର ହୁଏ । ଏହି ନିଦର୍ଶନାଲଙ୍କାର ଦ୍ୱିବିଧ ଯଥା—ସମ୍ଭବଦ୍‌ବସ୍ତୁସମ୍ବନ୍ଧ ନିଦର୍ଶନା ଓ ଅସମ୍ଭବଦ୍‌ବସ୍ତୁସମ୍ବନ୍ଧ ନିଦର୍ଶନା । ଯେଉଁଠାରେ ପ୍ରସ୍ତୁତ ପଦାର୍ଥର ବର୍ଣ୍ଣନାରେ ଅପ୍ରସ୍ତୁତ ପଦାର୍ଥର ଗୁଣ ଓ କ୍ରିୟାଦି ଭୂଷଣରୂପେ କଳ୍ପିତ ହୁଏ, ସେଠାରେ ସମ୍ଭବଦ୍‌ବସ୍ତୁସମ୍ବନ୍ଧ ନିଦର୍ଶନା ହୁଏ । ଯଥା—

ପରପୀଡ଼ାକାରୀ କେଉଁ ଜନ ଏ ସଂସାରେ
ଚିରଦିନ ସୁଖଭୋଗ କରିଣ ନ ପାରେ;
ଜଣାଇ ଏ ଭାବ ସନ୍ଧ୍ୟା ମୁଖେ ଦିବାକର
ଅସ୍ତ କରନ୍ତି ଅସ୍ତ ପର୍ବତଶିଖର ।

ଯେଉଁଠାରେ ଯଥାଶ୍ରୁତ ଅର୍ଥର ଅନ୍ୱୟ ଅସମ୍ଭବ ଦେଖି ଗୋଟିଏ ଉପମା କଳ୍ପନା କରାଯାଏ ସେଠାରେ ଅସମ୍ଭବଦ୍‌ବସ୍ତୁସମ୍ବନ୍ଧ ନିଦର୍ଶନା ହୁଏ । ଯଥା—

ରବିକରେ ଦର ଫୁଲ୍ଲଅରବିନ୍ଦେ ଯେଉଁ ଅଳି କରେ କ୍ରୀଡ଼ା
ସେ ଆଖି ସଂଗତେ ସ୍ତ୍ରୀଡ଼ାବତୀ ଗଣ୍ଡେ ବୋଳ ଦେଇଥିଲ କ୍ରୀଡ଼ା—
ରାଧାନାଥ ଯଯାତିକେଶରୀ ।

ନିଦର୍ଶନା ଓ ଦୃଷ୍ଟାନ୍ତର ଭେଦ—ନିଦର୍ଶନାରେ ଉପମାନ ଓ ଉପମେୟର ବିମ୍ବ ପ୍ରତିବିମ୍ବ ଭାବ ବ୍ୟଂଜିତ ବାକ୍ୟାର୍ଥ ପର୍ଯ୍ୟବସିତ ହୁଏ ନାହିଁ; ମାତ୍ର ଦୃଷ୍ଟାନ୍ତରରେ ସାମର୍ଥ୍ୟ ବଶତଃ ପର୍ଯ୍ୟବସିତ ବାକ୍ୟାର୍ଥଦ୍ୱାରା ବିମ୍ବ ପ୍ରତିବିମ୍ବ ଭାବ ପ୍ରତ୍ୟାୟିତ ହୁଏ ।
ଭୁଲିମଣି. ଅଲଙ୍କାରତରଙ୍ଗିଣୀ । ]

ଯେଉଁ ଅଳଙ୍କାରରେ ପରି, ତୁଲ୍ୟ, ସଦୃଶ ଆଦି ଶବ୍ଦର ପ୍ରୟୋଗ ନ କରି ପ୍ରସଙ୍ଗ ବିଷୟକୁ ଅନ୍ୟ ସମ୍ଭବ ବା ଅସମ୍ଭବ ବିଷୟର ନିଦର୍ଶନଦ୍ୱାରା ବାକ୍ୟାର୍ଥ ସମାପ୍ତ ହେବା ପୂର୍ବରୁ ବିମ୍ବ ପ୍ରତିବିମ୍ବ ଭାବଦ୍ୱାରା ବୁଝାଇ ଦିଆଯାଏ ତାହାକୁ ନିଦର୍ଶନା ଅଳଙ୍କାର ବୋଲି ଯାଏ । କିନ୍ତୁ ଯଦି ଏହା ଏକାଧିକ ବାକ୍ୟରେ ବୁଝାଇ ଦିଆଯାଏ ତେବେ ଦୃଷ୍ଟାନ୍ତ ଅଳଙ୍କାର ହୁଏ । ପ୍ରତିବସ୍ତୂପମା, ଦୃଷ୍ଟାନ୍ତ ଓ ନିଦର୍ଶନା ଏ ତିନିଗୋଟି ଅଳଙ୍କାର ଏକଜାତୀୟ ।

କାଳିଦାସ ରଘୁବଂଶ କାବ୍ୟର ପ୍ରଥମ ସର୍ଗ ୨ୟ ଶ୍ଳୋକରେ କହିଅଛନ୍ତି 'କାହିଁ ସୂର୍ଯ୍ୟପ୍ରଭବ ରଘୁବଂଶ ? କାହିଁ ବା ମୋର ସ୍ୱଳ୍ପ ବୁଦ୍ଧି ? ମୋହ ବଶତଃ ମୁଁ ଭେଳାଦ୍ୱାରା ଦୁସ୍ତର ସାଗର ପାର ହେବାକୁ ଇଚ୍ଛା କରୁଅଛି କିନା ।' ଏଠାରେ କାଳିଦାସଙ୍କ ରଘୁବଂଶ ବର୍ଣ୍ଣନେଚ୍ଛା ଓ ଭେଳାଧାରୀ ବ୍ୟକ୍ତିର ସମୁଦ୍ରତରଣେଚ୍ଛା ଏହି ଦୁଇ ବିଷୟର ସାମ୍ୟ ବିମ୍ବାନୁବିମ୍ବଭାବରେ ପ୍ରଣିଧାନଯୋଗ୍ୟ ଥିବାରୁ ଏଠାରେ ନିଦର୍ଶନା ଅଳଙ୍କାର ହୋଇଅଛି—

**ନିଦ ଲାଗିବା**—ଦେ. କ୍ରି—୧ । ନିଦ ମାଡ଼ିବା; ନିଦ୍ରାକର୍ଷଣ; ଘୁମ ମାଡ଼ିବା—
Nida lāgibā 1. Sleepiness; drowsiness.
ଘୁମଲାଗା ୨ । ନିଦ୍ରିତ ହେବା; ଗାଢ଼ ନିଦ୍ରାରେ ଶୋଇବା ଅବସ୍ଥା—
**नींद लगना** 2. Being asleep.

**ନିଦା**—ଦେ. ବିଣ. ( ସଂ. ନିର୍ଦ୍ଧିଂ—କ୍ଷୀରେନ୍ଦ୍ର; ନିର୍ଦ୍ଧିଂ=ଦୃଢ଼—
Nidā ଯୋଗେଶଚନ୍ଦ୍ର; ସଂ. ନିର୍ଦ୍ଧାରଣ=ଛିଦ୍ରଶୂନ୍ୟ M. W. )—
निरेट ୧ । ଘନ; ଯାହା ଫମ୍ପା ନୁହେଁ; ନିବିଡ଼—
**ठोस, निगरा** 1. Solid; thick; not hollow; compact.
(ଫମ୍ପା, ପୋଲ—ବିପରୀତ) ନିଦାମଣି ତୁମେ କଣ୍ଠା ନିଅ ପୋଲ—
ରାଧାନାଥ. ଦରବାର ।
୨ । ଦୃଢ଼; ଅଟଳ; ସ୍ଥିର—2. Firm; fixed.
ଭୀମର ସୁଅ ମଧ ଭୁଲିଗଲେ ଗଦା
ଅଛି ତ ତାଙ୍କର ବୁଦ୍ଧି ଯୁଦ୍ଧେ ନିଦା—କୃଷ୍ଣସିଂହ, ମହାଭାରତ, ଶଲ୍ୟ
କ୍ରି. ବିଣ—୧ । ନିତାନ୍ତ, ଅତ୍ୟନ୍ତ—1. Very much.
୨ । ଘନଭାବରେ—2. Thickly.
୩ । ଦୃଢ଼ରୂପେ—3. Firmly.
( ନିଦେଇ—ସ୍ତ୍ରୀ ) ଦେ. ବିଣ. ପୁଂ. ( ସଂ. ନିଦ୍ରାଳୁ )—
ନିଦ୍ରାଳୁ ( ଦେଖ )—Nidrāḷu ( See )

**ନିଦା(ଦେ)ଇବା**—ପ୍ରାଦେ. ( ଗଡ଼ଜାତ ) କ୍ରି—୧ । ଶୋଇପଡ଼ିବା—
Nidā(de)ibā 1. To fall asleep.
( ନିଦା[ଦେ]ଇ ପଡ଼ିବା—ଅନ୍ୟରୂପ ) ୨ । ଘୁମାଇବା—
2. To doze.
୩ । ନିଦ୍ରାସକ୍ତ ହେବା—3. To feel sleepy.

**ନିଦା ଗୁଆ**—ଦେ. ବି—ଯେଉଁ ଗୁଆ ଭିତରେ ପୋଲ ନାହିଁ—
Nidā guā 1. A nut which is not hollow inside.
୨ । ( ଲକ୍ଷଣାର୍ଥ ) ଟଙ୍କା—
2. ( figurative ) Coin; money; rupee.
ଏ ପରିରେ ତାକେ ସୁଅ
କାହା ଘରେ ଅଛି ନିଦାଗୁଆ—ପ୍ରହେଳିକା ।

**ନିଦାଘ**—ସଂ. ବି. ( ନି=ନିଶ୍ଚିତ+ଦହ୍ ଧାତୁ=ପୋଡ଼ିବା+କର୍ତ୍ତୃ.ବା
Nidāgha ଅଧିକରଣେ+ଅ )—୧ । ଖରାଦିନ; ଗ୍ରୀଷ୍ମକାଳ—
1. Summer; the hot season.
୨ । ( +କରଣ. ଅ ) ଘର୍ମ; ଝାଳ—
2. Sweat; perspiration.
୩ । ଉତ୍ତାପ—3 Heat
୪ । ଉଷ୍ମା—4. Warmth
ବିଣ—୧ । ( +କର୍ମ. ଅ ) ଉଷ୍ଣ—1. Hot; warm.
୨ । ତପ୍ତ—2. Heated
ଦେ. ବିଣ—୧ । କୃପଣ—1. Niggardly.
୨ । ନିଦା ମୂର୍ଖ ( ଦେଖ )—
2. Nidā mūrkha ( See )
୩ । ( ସଂ. ନିର୍ଦ୍ଦୟ ) ନିଷ୍ଠୁର; ନିର୍ଦ୍ଦୟ—
3. Cruel; hard hearted.

**ନିଦାଘକର**—ସଂ. ବି. ( ନିଦାଘ=ଗ୍ରୀଷ୍ମକାଳ+କୃ ଧାତୁ+କର୍ତ୍ତୃ. ଅ)—
Nidāghakara ସୂର୍ଯ୍ୟ, ତପନ—The sun.
( ନିଦାଘଧାମା—ଅନ୍ୟରୂପ )

**ନିଦାଘ କାଳ**—ସଂ. ବି—ଗ୍ରୀଷ୍ମକାଳ; ଖରାଦିନ—
Nidāgha kāḷa The summer season.

**ନିଦାଘ ମୂର୍ଖ**—ଦେ. ବିଣ—ନିଦା ମୂର୍ଖ ( ଦେଖ )
Nidāgha mūrkha Nidā mūrkha ( See )

**ନିଦାଘ ରୁଚି**—ସଂ. ବିଣ. (ବହୁବ୍ରୀହି; ନିଦାଘ+ରୁଚି ) —ଯାହାର କିରଣ
Nidāgha ruchi ଗରମ—Hot-rayed ( M. W ).
ସଂ. ବି.—ସୂର୍ଯ୍ୟ—The sun.

**ନିଦାଘ ସିନ୍ଧୁ**—ସଂ. ବି—୧ । ଗ୍ରୀଷ୍ମକାଳରେ ଯେଉଁ ନଦୀରେ ( ବରଫ
Nidāgha sindhu ତରଳିବା ଯୋଗୁଁ ) ଜଳ ବଢ଼େ—
1 A river rising in summer ( due to melting snow ).
୨ । ଖରାଦିନେ ଶୁଖିଲା ନଈ; ଶୁଷ୍କ ନଦୀ —
2. A river nearly dry in summer.

**ନିଦା ଦି(ଦେ)ହ**—ଦେ. ବି—ବଳିଷ୍ଠ ଶରୀର—
Nidā di(de)ha Muscular body.

**ନିଦାନ୍**—ପ୍ରାଦେ. ( ସମ୍ବଲପୁର ) ଅ ( ଭୁଲ. ହି. ନିଦାନ୍=ପରି-
Nidān ଶେଷରେ )—
୧ । ନିଶ୍ଚୟ; ଅବଶ୍ୟ—1. Certainly; surely.
୨ । ନିଃସନ୍ଦେହରେ —2 Doubtlessly.
୩ । ପରିଶେଷରେ; ଆଖିର —3. At last.
ବିଣ—ନିଶ୍ଚିତ—Certain.
ବିଣର ବିଣ—ଅତ୍ୟନ୍ତ; ନିତାନ୍ତ—
Much; very; very much
(ଯଥା—ଭୁଇଁ ନିଦାନ୍ ଗରୁଲଥିଛେ =ଭୂ ନିତାନ୍ତ ଗାରିଲ ଥାଏ ।)

**ନିଦାନ**—ସଂ. ବି ( ନି=ନିଶ୍ଚୟ ରୂପେ+ଦା ଧାତୁ+କରଣ. ଅନ)—
Nidāna ୧ । ମୂଳ କାରଣ; ଆଦି କାରଣ—
1. Root cause; primary cause.
୨ । କାରଣ—2. Cause.

୩ । ( ନି+ଦୋ ଧାତୁ=ଛେଦନ କରିବା+କରଣ ଅନ.) ବସ୍ତଦାମ; ବାଛୁରି ବାନ୍ଧିବା ଦଉଡ଼ି –
3. A rope to tie a calf.
୪ । ଅନ୍ତିମ ଅବସ୍ଥା —
4. Last extremity; last stage.
୫ । ( +ଭାବ. ଅନ ) ଅବସାନ, ଅନ୍ତ—
5. End; termination.
୬ । ସୂକ୍ଷ୍ମତା—6. Minuteness.
୭ । ବିରାମ; ନିବୃତ୍ତି—7 Cessation.
୮ । ( ନି+ଦୈ ଧାତୁ=ଶୁଦ୍ଧ କରିବା+ଭାବ. ଅନ ) ପବିତ୍ରତା, ବିଶୁଦ୍ଧତା—8. Purity.
୯ । ରୋଗର ଲକ୍ଷଣ ଦେଖିବା ଦ୍ୱାରା ରୋଗର କାରଣ ନିର୍ଣ୍ଣୟ; ରୋଗ ନିର୍ଣ୍ଣୟ—9. Diagnosis; the ascertainment of the causes of a disease by observing its symptoms.
୧୦ । ରୋଗର ସମସ୍ତ କାରଣ, ଲକ୍ଷଣ ଓ ଅବସ୍ଥା ବର୍ଣ୍ଣନାତ୍ମକ ଶାସ୍ତ୍ର—10 Pathology (M. W.); the science of the nature, causes and remedies of a disease
୧୧ । ମାଧବ କର କୃତ ରୋଗମାନଙ୍କ ମୂଳ କାରଣ ଓ ଲକ୍ଷଣ ନିର୍ଣ୍ଣାୟକ ସଂସ୍କୃତ ଗ୍ରନ୍ଥବିଶେଷ -
12. A Sanscrit work on pathology by Mādhaba Kara.
୧୩ । ରୋଗର ଆନୁପୂର୍ବିକ ଓ ଆନୁସଙ୍ଗିକ ଲକ୍ଷଣମାନ—
13. The whole of the morbid conditions of a disease.
୧୪ । ପବିତ୍ରୀକରଣ; ଶୋଧନ—
14. Purification (Apte).
୧୫ । ଯଥାର୍ଥତା—15. Correctness (M. W.).
୧୬ । ତପଃ ଫଳ କାମନା ( ହି. ଶବ୍ଦସାଗର )—
16 Claiming the reward of penitential acts. (M. W.)
୧୭ । ମୌଳିକ ଆକାର ବା ସାର—
17 Original form or essence. (M. W)
ଦେ. ବି—୧ । ଶେଷ ଫଳ—1 Ultimate result.
୨ । ସ୍ଥିରୀକୃତ ଶେଷ ବିଷୟ—
2. Finally settled matter.
୩ । ମରିବାର ପୂର୍ବ ଲକ୍ଷଣ—3. Sure symptoms of a dying person.
ବିଣ—୧ । ନିଃସନ୍ଦେହ—1. Doubtless.
୨ । ନିଶ୍ଚୟ—2. Certain.
ଏଇ । ଭଣ କାବ୍ୟ ।
ଅସ୍ତରଙ୍କ କମାଣ ନିଦାନ । ଥିବାର. ବାଙ୍କ ବଜୟ ।

**ନିଦାନ କାଳ**– ଦେ. ବି—ମୃତ୍ୟୁ ସମୟ; ଅନ୍ତିମ କାଳ—
Nidāna kāla The time of death.

**ନିଦାନ ପୂରିବା**—ଦେ. ହି – ଆସନ୍ନ ମୃତ୍ୟୁ ଅବସ୍ଥା ପଡ଼ିଥିବା—
Nidāna pūribā Appearance of the symtoms or conditions of one's approaching death
ନିଦାନ ଘୋଟିବା } —ଅନ୍ୟରୂପ
ନିଦାନପଡ଼ିଥିବା }

**ନିଦାନ ସଙ୍କଟ**—ସଂ. ବି—ରୋଗର ମାରାତ୍ମକ ଅବସ୍ଥା—
Nidāna sankaṭa The mortal or critical condition of a disease; a crisis during illness.

**ନିଦାନ ସ୍ଥାନ**—ସଂ. ବି—ଆୟୁର୍ବେଦ ଚିକିତ୍ସା ଶାସ୍ତ୍ର ବର୍ଣ୍ଣିତ ୮ଟି ଶାଖା ମଧ୍ୟରୁ ଏକତମ; ରୋଗର କାରଣ ସମ୍ବନ୍ଧୀୟ ବିଷୟ—
Nidāna sthāna Pathology; the subject of the detection of the causes of a disease; one of the 8 departments of Hindu medical science.
[ ଦ୍ର—ଚରକ ତଳେ ନୋଟ୍ ଦେଖ । ]

**ନିଦାନୁଆ**—ଦେ. ବିଣ—୧ । ଅକାମିକା—
Nidānuā 1. Worthless.
୨ । ଅବ୍ୟବହାର୍ଯ୍ୟ—2. Useless.

**ନିଦାବିଷ୍ଣୁ**—ଦେ. ବି—୧ । ( ଓଡ଼ିଆ ନହିଁ ପ୍ରତ୍ୟୟୋଗରୁ ) ପ୍ରକୃତରେ ବିଷ୍ଣୁ ନ ହୋଇ ଆପଣାକୁ ବିଷ୍ଣୁଙ୍କ ଅବତାର ବୋଲି ପରିଚୟ ଦେଉଥିବା ଜଣେ ବ୍ୟକ୍ତି—
Nidābishṇu 1 The name of a person passing himself off as an incarnation of Bishṇu.
୨ । ଧର୍ମଧ୍ୱଜ; ବିଡ଼ାଳ ବ୍ରତିକ; ଯେ ଆପଣାର କପଟତାକୁ ଘୋଡ଼ାଇ ବାହାରେ ଭଲପଣ ଦେଖାଇ ହୁଏ—
2. A hypocrete.
୩ । ଅଳସୁଆ ଲୋକ—3. An idle person.
୪ । ଉଦାସୀନ ବ୍ୟକ୍ତି—
4 An indifferent person.

**ନିଦା ମୂର୍ଖ**—ଦେ. ବିଣ—ଗଣ୍ଡମୂର୍ଖ; ନିପଟ ମୂର୍ଖ; ଯି ଅକ୍ଷର ବର୍ଜିତ ( ବ୍ୟକ୍ତି )—Totally illiterate; ignorant.
Nidāmūrkha
ମୁଖଖୁ ସୁଖଖୁ (ନିଦାମୂରଖ—ଅନ୍ୟରୂପ)
ସେହୁ ନିଦାମୂର୍ଖ ଅଣ ଅନୁଭବୀ
ବେଦ ଭେଦ ବରେ କବକୁଳେ ରବ । ଚନ୍ଦ୍ରାମଣି, ମହୋଦଧି ।

**ନିଦାରୁଣ**—ସଂ. ବିଣ. ( ନି=ବିଶେଷ ରୂପେ+ଦାରୁଣ )—
Nidāruṇa ୧ । ଘୋର; ଅତି ଭୟାନକ—
(ନିଦାରୁଣତା—ବି) 1. Fierce; awful.
୨ । ଅତି ନିଷ୍ଠୁର—2. Very cruel.
୩ । ଅତି କଠିନ—3. Very hard; very harsh.
୪ । ଅସହ୍ୟ—4 Unbearable; severe.

**ନିଦଗ୍ଧ**—ସଂ. ବିଣ. ( ନି=ବିଶେଷ ରୂପେ+ଦିହ୍ ଧାତୁ=ଲେପିବା+କର୍ମ. ତ )—୧ । ଲେପିତ; ପ୍ରକ୍ଷିପ୍ତ; ବୋଳା ହୋଇଥିବା—1. Smeared; anointed; plastered.
Nidigdha
୨ । ଉପଚିତ; ସଞ୍ଚିତ—2. Stored up.

୩ । ଗଦା କରି ଯାଇଥିବା, ସ୍ତୂପୀକୃତ — 3. Heaped up; piled up.

ନିଦଗ୍ଧା ସ ବି. (ସ୍ତ୍ରୀ) —ଛୋଟ ଅଳାଇଚ— Nidigdhā 'Small cardamom.

ନିଦଗ୍ଧିକା — ସ ବି ସ୍ତ୍ରୀ — ୧ । କଣ୍ଟକାରିକା; (ଦେଖ) — Nidigdhikā 1 Kaṇtakārikā (See)

୨ । ଛୋଟ ଅଳେଇଚ — 2 Small cardamom.

ନିଦଦ୍ରାସୁ—ସ ବିଣ. [ନି+ଦ୍ରା ଧାତୁ ଇଚ୍ଛାର୍ଥେ. ଅ; (ସନ୍)+ଉ]— Nididrāsu ଶୋଇବାକୁ ଇଚ୍ଛୁକ—Wishing to sleep; sleepy (M W.)

ନିଦଧ୍ୟାସ — ସ. ବି. (ନି + ଧ୍ୟୈ ଧାତୁ = ଚିନ୍ତା କରିବା + ସନ୍ + ଭାବ. ଅ)— ୧ । ପ୍ରଗାଢ଼ ଭାବରେ ଧାରାବାହିକ ଚିନ୍ତା; ଏକାଗ୍ର ଗମ୍ଭୀର ଧ୍ୟାନ —1. Profound and concentrated meditation.
Nididhyāsa

୨ । ପୁନଃ ପୁନଃ ପରମାର୍ଥ ଚିନ୍ତା—2. Repeated spiritual contemplation.

୩ । ସତତ ଚିନ୍ତନ; ନିରନ୍ତର ବିଚାର— 3. Constant musing.

ନିଦଧ୍ୟାସନ—ସ. ବି. (ନି + ଧ୍ୟୈ ଧାତୁ = ଚିନ୍ତା କରିବା + ସନ୍ + ଭାବ ଅନ)— ୧ । ନିଦଧ୍ୟାସ (ଦେଖ) 1. Nididhyāsa (See)
Nididhyāsana

[ ଦର୍ଶନ, ଶ୍ରବଣ, ମନନ ଓ ନିଦଧ୍ୟାସନ ଆତ୍ମଜ୍ଞାନ ପାଇଁ ଆବଶ୍ୟକ ଥିବାର ଶ୍ରୁତିରେ ଲେଖା ଅଛି— ହି. ଶ । ]

ନିଦଧ୍ୟାସୁ—ସ. ବିଣ. (ନି+ଧ୍ୟୈ ଧାତୁ + ସନ୍ + କର୍ତ୍ତୃ. ଉ) —ପୁନଃ ପୁନଃ ସ୍ମରଣେଚ୍ଛୁ; ଗାଢ଼ ଚିନ୍ତା କରିବାକୁ ଇଚ୍ଛୁକ— Bent on concentrated meditation, desirous of meditating on.
Nididhyāsu

ନିଦଷ୍ଟ—ସ. ବିଣ. (ନି+ଦିଶ୍ ଧାତୁ =କହିବା+କର୍ମ. ତ)— Nidishṭa ୧ । ଆଦିଷ୍ଟ; ନିର୍ଦ୍ଦେଶିତ— 1. Ordered; enjoined.

୨ । କଥିତ—2 Spoken.

୩ । ନିରୂପିତ — 3. Fixed

୪ । ଉପଦିଷ୍ଟ—4. Instructed.

୫ । ପ୍ରଦର୍ଶିତ; ନିଦର୍ଶିତ— 5 Pointed out.

ନିଦେଶ—ସ ବି. (ନି+ଦିଶ୍ ଧାତୁ=କହିବା; ଅନୁମତି କରିବା+ ଭାବ. ଅ)—୧ । ଆଦେଶ; ଆଜ୍ଞା— 1. Order; command.
Nideśa

୨ । ଅନୁମତି—2. Permission.

୩ । ଉକ୍ତି; କଥନ— 3. Saying; speech; utterance.

୪ । ଉପଦେଶ –4 Advice; instruction.

୫ । ଅନୁରୋଧ—5. Request.

୬ । ଉପାନ୍ତ; ସାମୀପ୍ୟ; ନୈକଟ୍ୟ— 6. Vicinity; precincts; proximity.

୭ । ବର୍ଣ୍ଣନ —7. Description; relation.

୮ । ପାତ୍ର—8. Receptacle; vessel.

୯ । କଥୋପକଥନ — 9. Conversation.

ନିଦେଶକାରକ—ସ. ବିଣ. ପୁଂ ( ନିଦେଶ+କୃ ଧାତୁ + କର୍ତ୍ତୃ. ଅକ ) Nideśakāraka —୧ । ଯେ ଆଜ୍ଞା ଦିଏ—1. Directing; ordering.

(ନିଦେଶୀ – ଅନ୍ୟରୂପ) ୨ । ନିର୍ଦ୍ଦେଶକ—2. Pointing out; (ନିଦେଶ କାରିକା, ନିଦେଶିନୀ — ସ୍ତ୍ରୀ) showing.

ନିଦେଶକାରୀ—ସ. ବିଣ. ପୁଂ—୧ । ଆଜ୍ଞାନୁବର୍ତ୍ତୀ; ଆଜ୍ଞାବହ— Nideśakārī 1 Obedient; servile; subservient.

ନିଦେଶକୃତ୍, ନିଦେଶବର୍ତ୍ତୀ, ନିଦେଶଭାକ୍ } ଅନ୍ୟରୂପ ୨ । ଯେ ଆଜ୍ଞା ଅନୁସାରେ କାର୍ଯ୍ୟ କରେ—2 Carrying out an order.

(ନିଦେଶକାରିଣୀ, ନିଦେଶବର୍ତ୍ତିନୀ—ସ୍ତ୍ରୀ)

ନିଦେଶିନୀ—ସ. ବି. ସ୍ତ୍ରୀ. (ନିଦେଶ+ଇନ୍+ସ୍ତ୍ରୀ. ଈ)—୧ । ଦିକ୍; ଦିଗ- Nideśinī 1. A point of the compass.

୨ । ଦେଶାଂଶ; ଅଞ୍ଚଳ—2. A region (Apte).

ନିଦେଶ୍ୟ - ସ ବିଣ. (ନି+ଦିଶ ଧାତୁ+କର୍ମ. ଯ)—ଆଦେଶ ଯୋଗ୍ୟ Nideśya (ବସ୍ତୁ ବା ବ୍ୟକ୍ତି)—(a person or matter ) Fit to be commanded or ordered.

ନିଦେଷ୍ଟା —ସ. ବିଣ ପୁଂ (ନି+ଦିଶ୍ ଧାତୁ + କର୍ତ୍ତୃ ତୃ; ନିଦେଷ୍ଟୃ ଶବ୍ଦ Nideshṭā ୧ମା. ୧ବ.)—୧ । ନିଦେଶକାରକ; ଯେ ଆଜ୍ଞା (ନିଦେଷ୍ଟ୍ରୀ — ସ୍ତ୍ରୀ) ଦିଏ—1. Giving orders; commanding.

୨ । ଯେ ଦେଖାଇ ଦିଏ—2 Pointing out.

ନିଦୋଷ—ଗ୍ରା. ବି. ( ସ. ନିର୍ଦ୍ଦୋଷ ) —୧ । ଦୋଷଶୂନ୍ୟତା; ଅପରାଧ- Nidosha ଶୂନ୍ୟତା— Want of fault; freedom from vice.
ନିଦୋଷ निदोष

ବିଣ.—ନିଦୋଷୀ (ଦେଖ) —Nidoshī (See)

ନିଦୋଷୀ—ଦେ. ବିଣ. ପୁଂ ଓ ସ୍ତ୍ରୀ (ସ. ନିର୍ଦ୍ଦୋଷ) — ନିରପରାଧ— Nidoshī Not guilty; innocent.
ନିଦୋଷୀ निदोषी

ନିଦ୍ରା—ସ. ବି. ସ୍ତ୍ରୀ—(ନି+ଦ୍ରା ଧାତୁ = ଶୋଇବା+ଭାବ. ଅ)— Nidrā ୧ । ଶୟନ; ସୁପ୍ତି; ଶୋଇବା; ନିଦ—1. Sleep.

[ଦ୍ର—ନିଦ୍ରାର ଗାଢ଼ ଅବସ୍ଥାକୁ ନିଦ୍ରା ଓ କ୍ଷୀଣ ନିଦ୍ରାକୁ ତନ୍ଦ୍ରା ବୋଲି ଯାଏ ।]

୨ । ଆଳସ୍ୟ—2 Idleness.

୩ । ଉନ୍ମୀଳନ—3. Closing; the budding state of a flower.

ନିଦ୍ରାକର — ସ. ବି.—ଯେଉଁ ପଦାର୍ଥ ବା କାର୍ଯ୍ୟଦ୍ୱାରା ନିଦ ମାଡ଼େ — Nidrākara Soporific; inducing sleep; narcotic.

ନିଦ୍ରାକର୍ଷଣ—ସ. ବି. (୬ଷ୍ଠୀ ତତ୍; ନିଦ୍ରା+ ଆକର୍ଷଣ)—ନିଦ ମାଡ଼ିବା— Nidrākarshaṇa Sleepiness; drowsiness.

ନିଦ୍ରାକାରକ—ସ. ବି.— ନିଦ୍ରାକର (ଦେଖ) Nidrākāraka Nidrākara (See)

(ନିଦ୍ରାକାରୀ, ନିଦ୍ରାକୃତ୍—ଅନ୍ୟରୂପ)

**ନିଦ୍ରାକାଳ**—ସଂ. ବି. ( ୬ଷ୍ଠୀ ତତ୍; ନିଦ୍ରା+କାଳ )—
Nidrākāla ଶୟନ କାଳ; ଶୋଇବାର ସମୟ—
Time of sleep; time for going to bed.

**ନିଦ୍ରାକୁଳ**—ସଂ. ବିଣ. ପୁଂ. ( ୩ୟା ତତ୍; ନିଦ୍ରା+ଆକୁଳ )—
Nidrākula ନିଦ ଯୋଗୁଁ କାତର ବା ବ୍ୟସ୍ତ )—
ନିଦ୍ରାକୁଳିତ, ନିଦ୍ରାକ୍ରୁଷ୍ଟ, ନିଦ୍ରାକ୍ରାନ୍ତ } ଅନ୍ୟରୂପ
Distressed with sleep; feeling sleepy.
(ନିଦ୍ରାକୁଳା—ସ୍ତ୍ରୀ)

**ନିଦ୍ରାଗମ**—ସଂ. ବି. ( ୬ଷ୍ଠୀ ତତ୍; ନିଦ୍ରା+ଆଗମ )—
Nidrāgama ୧ । ନିଦ ମାଡ଼ିବା ଅବସ୍ଥା—
1 The approach of sleep.
୨ । ଶୋଇବା ବେଳ—2 The time of sleep.

**ନିଦ୍ରାଗତ**—ସଂ. ବିଣ. ପୁଂ. ( ୨ୟା ତତ୍; ନିଦ୍ରା+ଗତ )—ଯେ ନିଦରେ
Nidrāgata ଶୋଇଅଛି; ନିଦ୍ରିତ; ନିଦ୍ରାକ୍ରାନ୍ତ—Asleep; sleepy;
( ନିଦ୍ରାଗତା—ସ୍ତ୍ରୀ ) drowsy.

**ନିଦ୍ରାଗାର**—ସଂ. ବିଣ. ( ମ. ପ. ଲୋ; ନିଦ୍ରା+ଆଗାର )—
Nidrāgāra ଶୟନ କକ୍ଷ; ଯେଉଁ ଘରେ ଲୋକେ ଶୁଅନ୍ତି;
ଶୋଇଲା ଘର—Bedroom; dormitory.

**ନିଦ୍ରାଗ୍ରସ୍ତ**—ସଂ. ବିଣ. ପୁଂ.—( ୩ୟା ତତ୍; ନିଦ୍ରା+ଗ୍ରସ୍ତ )—
Nidrāgrasta ୧ । ନିଦ୍ରାକୁଳ ( ଦେଖ )—
( ନିଦ୍ରାଗ୍ରସ୍ତା—ସ୍ତ୍ରୀ ) 1. Nidrākula (See).
୨ । ନିଦ୍ରାଗତ ( ଦେଖ )—2. Nidrāgata (See).

**ନିଦ୍ରାଜନକ**—ସଂ. ବି.—ନିଦ୍ରାକର ( ଦେଖ )—
Nidrājanaka Nidrākara (See).

**ନିଦ୍ରାଣ**—ସଂ. ବିଣ. ପୁଂ. ( ନି+ଦ୍ରା ଧାତୁ=ଶୋଇବା+କର୍ତ୍ତୃ ତ )—
Nidrāṇa ୧ । ନିଦ୍ରିତ—1. Asleep.
( ନିଦ୍ରାଣା—ସ୍ତ୍ରୀ ) ୨ । ଅଳସ—2. Lazy; idle.
୩ । ନିମୀଳିତ—3 Closed; shut.
୪ । ଘୁମାଉଥିବା—4. Dozing.
୫ । ଯାହାକୁ ନିଦ ମାଡ଼ୁଅଛି—5. Drowsy.

**ନିଦ୍ରାତୁର**—ସଂ. ବିଣ. ପୁଂ. ( ୩ୟା ତତ୍; ନିଦ୍ରା+ଆତୁର )—
Nidrātura ନିଦ୍ରାକୁଳ ( ଦେଖ )—
( ନିଦ୍ରାତୁରା—ସ୍ତ୍ରୀ ) Nidrākula (See)
( ନିଦ୍ରାତୁରତା—ବି )

**ନିଦ୍ରାଦରିଦ୍ର**—ସଂ. ବିଣ. ପୁଂ. ( ୭ମୀ ତତ୍; ନିଦ୍ରା+ଦରିଦ୍ର )—
Nidrādaridra ଯେ ଶୋଇ ନ ପାରିବାରୁ କ୍ଳିଷ୍ଟ ହୋଇଥାଏ—
( ନିଦ୍ରାଦରିଦ୍ରା—ସ୍ତ୍ରୀ ) Suffering from want of sleep.
(M. W).

**ନିଦ୍ରାନ୍ୱିତ**—ସଂ. ବିଣ. ପୁଂ. ( [illegible]; ନିଦ୍ରା+ଅନ୍ୱିତ )—
Nidrānwita ନିଦ୍ରାଗତ ( ଦେଖ )—
( ନିଦ୍ରାନ୍ୱିତା—ସ୍ତ୍ରୀ ) Nidrāgata (See).

**ନିଦ୍ରା ପଦ**—ସଂ. ବି. (୬ଷ୍ଠୀ ତତ୍; ନିଦ୍ରା+ପଦ)—ନିଦ୍ରାବସ୍ଥା—
Nidrā pada The state of sleep.

ଅର୍ଦ୍ଧରାତ୍ରକାଳେ ବର୍ଣ୍ଣନା ନାଶବତ,
ହୋଇଲେ ସକଳ ନ ଭଞ୍ଜ ନିଦ୍ରାପଦ । କୃଷ୍ଣସିଂହ ମହାଭାରତ ଶାନ୍ତି ।

**ନିଦ୍ରା ପ୍ରିୟ**—ସଂ ବିଣ. ପୁଂ. ( ବହୁବ୍ରୀହି; ନିଦ୍ରା+ପ୍ରିୟ )—
Nidrā priya ଯେ ଶୋଇବାକୁ ସୁଖ ପାଏ—Loving sleep.
( ନିଦ୍ରାପ୍ରିୟା—ସ୍ତ୍ରୀ; ନିଦ୍ରାପ୍ରିୟତା —ବି)

**ନିଦ୍ରାବତୀ**—ସଂ. ବି. ସ୍ତ୍ରୀ—ନିଦର ଅଧିଷ୍ଠାତ୍ରୀ ଦେବୀ—
Nidrābatī The Goddess of sleep.

ନିଦ୍ରାବତୀ ଯେଣି ଧାଇଁକାର, ବନେ ଖଲେ ଲକ୍ଷ୍ମଣ ନେତ୍ରର ।
ବିଶ୍ୱନାଥ. ବିଚିତ୍ରରାମାୟଣ ।

**ନିଦ୍ରାବସ୍ଥା**—ସଂ ବି ( ୬ଷ୍ଠୀ ତତ୍; ନିଦ୍ରା+ଅବସ୍ଥା )—
Nidrābasthā ଶୋଇବା ଅବସ୍ଥା—The state of sleep

**ନିଦ୍ରା ବିମୁଖ**—ସଂ. ବିଣ. ( ୭ମୀ ବା ୫ମୀ ତତ୍; ନିଦ୍ରା+ବିମୁଖ )—
Nidrā bimukha ଉନ୍ନିଦ୍ର, ଅନିଦ୍ର—
( ନିଦ୍ରାବିମୁଖା—ସ୍ତ୍ରୀ ) Keeping awake.

**ନିଦ୍ରା ବିରହିତ**—ସଂ. ବିଣ ( ୩ୟା ତତ୍; ନିଦ୍ରା+ବିରହିତ)—
Nidrābirahita ନିଦ୍ରାଶୂନ୍ୟ—Sleepless.
( ନିଦ୍ରାବିହୀନ, ନିଦ୍ରାରହିତ )—ଅନ୍ୟରୂପ

**ନିଦ୍ରାବିଷ୍ଟ**—ସଂ. ବିଣ. ପୁଂ. (୩ୟା ତତ୍, ନିଦ୍ରା+ଆବିଷ୍ଟ )—
Nidrābishṭa ନିଦ୍ରାଗତ ( ଦେଖ )—
( ନିଦ୍ରାବିଷ୍ଟା—ସ୍ତ୍ରୀ ) Nidrāgata (See).

**ନିଦ୍ରା ବୃକ୍ଷ**—ସଂ. ବି (୬ଷ୍ଠୀ ତତ୍; ନିଦ୍ରା+ବୃକ୍ଷ; ଶୋଇବା ଯାହାର ଫଳ)-
Nidrā bruksha ଅନ୍ଧକାର—Darkness. (Apte)

**ନିଦ୍ରାବେଶ**—ସଂ ବି ( ୬ଷ୍ଠୀ ତତ୍; ନିଦ୍ରା+ଆବେଶ )—
Nidrābeśa ୧ । ନିଦ୍ରାର ଉପକ୍ରମ; ନିଦ ମାଡ଼ିବା—
1. Tendency to sleep; drowsiness.
୨ । ଶୋଇପଡ଼ିବା—2. Falling asleep.

**ନିଦ୍ରା ଭଙ୍ଗ**—ସଂ. ବି ( ୬ଷ୍ଠୀ ତତ୍; ନିଦ୍ରା+ଭଙ୍ଗ )—
Nidrā bhaṅga ୧ । ନିଦ ଭାଙ୍ଗିଯିବା; ଜାଗରଣ—
1. Waking up.
୨ । ନିଦ୍ରାରେ ବାଧା—
2. Interruption in sleep.
ବିଣ (ବହୁବ୍ରୀହି)—୧ । ଜାଗରିତ; ଅସୁପ୍ତ—1. Awake.
୨ । ପ୍ରବୋଧିତ—2. Aroused; awakened

**ନିଦ୍ରା ଭଞ୍ଜନ**—ସଂ. ବି—କୌଣସି ବ୍ୟକ୍ତିଙ୍କୁ ନିଦରୁ ଉଠାଇବା—
Nidrā bhañjana Awakening.

**ନିଦ୍ରା ଭାଙ୍ଗିବା**—ଦେ. କ୍ରି. ଓ ବି—ନିଦ ଭାଙ୍ଗିବା (ଦେଖ)
Nidrā bhāṅgibā Nida bhāṅgibā (See)

**ନିଦ୍ରାଭାବ**—ସଂ. ବି (୬ଷ୍ଠୀ ତତ୍; ନିଦ୍ରା+ଅଭାବ)—ଅନିଦ୍ରା; ଜାଗରଣ—
Nidrābhāba Wakefulness.
ଦେ. ବି (ସଂ. ନିଦ୍ରା+ଭାବ)—ନିଦ୍ରାବେଶ—
Sleepiness; drowsiness.

**ନିଦ୍ରାଭିଭୂତ**—ସଂ. ବିଣ. ପୁଂ ( ୩ୟା ତତ୍; ନିଦ୍ରା+ଅଭିଭୂତ )—
Nidrābhibhūta ନିଦ୍ରାଗତ ( ଦେଖ ).
(ନିଦ୍ରାଭିଭୂତା—ସ୍ତ୍ରୀ) Nidrāgata (See).

**ନିଦ୍ରାମଗ୍ନ**—ସ. ବଣ. ପୁଂ (୭ମୀ ତତ୍, ନିଦ୍ରା+ମଗ୍ନ) ନିଦ୍ରାରେ ଅଭିଭୂତ—
Nidrāmagna Immersed in sleep.
(ନିଦ୍ରାମଗ୍ନା—ସ୍ତ୍ରୀ)

**ନିଦ୍ରାୟମାନ(ଣ)**—ସ ବଣ. ପୁଂ [ ନିଦ୍ରା+ଯ=ନିଦ୍ରାୟ ନାମଧାତୁ+କର୍ତ୍ତୃ. ମାନ ( ଶାନଚ୍ ]—
Nidrāyamāna(na)
[ନିଦ୍ରାୟମାନା(ଣା) —ସ୍ତ୍ରୀ] ୧ । ନିଦ୍ରାଣ; ନିଦ୍ରିତ; ଯେ ଶୋଇଅଛି—1. A sleep; sleeping.

**ନିଦ୍ରା ଯିବା**—ଦେ. କ୍ରି—ଶୋଇବା—
Nidrā jibā To sleep; to lay asleep.
নিদ যাওআ ।ଫକୀରମୋହନ ଏ ଶୁଭ ରଜନୀ
नींद जाना କେତେ ନିଦ୍ରାଯାଉଛ ଚେତୁନାହିଁ—ପ୍ରଭାତ ଅବକାଶ ଭଜନ ।

**ନିଦ୍ରାଳସ**—ସ. ବଣ. ପୁଂ—୧ । ନିଦ ମାଡ଼ିବା ଯୋଗୁଁ ଅଳସ—
Nidrālasa 1 Slothful from drowsiness (M W.)
(ନିଦ୍ରାଳସା—ସ୍ତ୍ରୀ) ୨ । ଘୋରନିଦ୍ରାଭିଭୂତ; ଖୁବ୍ ନିଦ୍ରିତ—
(ନିଦ୍ରାଳସ୍ୟ, ନିଦ୍ରାଳସତା—ବି) 2. Fast asleep (M. W.)

**ନିଦ୍ରାଳୁ**—ସ. ବଣ ( ନିଦ୍ରା+ଶୀଳାର୍ଥେ. ଆଳୁ, ଲୁଳ. ଦୟାଳୁ, ଭୟାଳୁ)—୧ । ନିଦ୍ରାସକ୍ତ—1. Sleepy.
Nidrālu
୨ । ଘୁମା—2. Drowsy.
୩ । ଅଳସୁଆ—3 Lethargic.
୪ । ନିଦ୍ରାଶୀଳ; ଯେ ଅଧିକାଂଶ ସମୟ ଶୋଇବାକୁ ସ୍ୱଭାବ—4. Fond of sleep, given to sleep.
୫ । ନିଦ୍ରାବିଷ୍ଟ, ଯେ ଶୋଇଅଛି—5. Asleep.
ବି—୧ । ବାଇଗଣ; ବାର୍ତ୍ତାକୀ—
1. Brinjal; eggplant; Solanum Melongena ( M. W. )
୨ । ବନ ବବୁରିକା; ଏକପ୍ରକାର ବଣ ତୁଳସୀ ଗୁଳ୍ମ—
2. A kind of wild Basil plant

**ନିଦ୍ରାଶୀଳ**—ସ. ବଣ. ପୁଂ ( ବହୁବ୍ରୀହି, ନିଦ୍ରା ଅଟେ ଶୀଳ=ସ୍ୱଭାବ ଯାହାର )—୧ । ଯେ ଅଧିକାଂଶ ସମୟ ଶୁଏ—
Nidrāśila
(ନିଦ୍ରାଶୀଳା—ସ୍ତ୍ରୀ) 1. Sleepy; habituated to passing
(ନିଦ୍ରାଶୀଳତା—ବି) most of one's time in sleeping.
୨ । ଘୁମା—2. Drowsy.

**ନିଦ୍ରାସଂଜନ**—ସ. ବ (ନିଦ୍ରା+ସମ୍+ଜନ ଧାତୁ+କର୍ତ୍ତୃ. ଅ)—
Nidrāsamjana କଫର ବୃଦ୍ଧି ନିଦ୍ରାକାରକ ଥିବାରୁ)—
କଫ, ଶ୍ଳେଷ୍ମା—Phlegm.

**ନିଦ୍ରିତ**—ସ. ବ. ପୁଂ. ( ନି+ଦ୍ରା ଧାତୁ+କର୍ତ୍ତୃ. ତ, ବା ନିଦ୍ରା+ସଞ୍ଜାତାର୍ଥେ ଇତ )—୧ । ସୁପ୍ତ; ଶୋଇ ପଡ଼ିଥିବା;
Nidrita
(ନିଦ୍ରିତା—ସ୍ତ୍ରୀ) ଶୋଇଥିବା—1. Asleep.
୨ । ଘୁମାଉଥିବା—2. Drowsy.
୩ । ଅଳସ—3. Idle.

**ନିଧଡ଼କ**—ଦେ. ବଣ—୧ । ବେଧଡ଼କ; ନିର୍ଭୟ; ନିଃଶଙ୍କ—
Nidhardaka 1. Fearless.
বেধড়ক ୨ । ନିଶ୍ଚିନ୍ତ; ବେପରୁଆ—
निधड़क 2. Free from anxiety or care.
୩ । ନିଃସନ୍ଦେହ—3. Doubtless.
୪ । ଅଶଂକାଶୂନ୍ୟ—4. Free from apprehension.
୫ । ଅପ୍ରତିବନ୍ଧ—5. Free from any impediment.
ବି—ଭୟଶୂନ୍ୟତା—Want of fear, fearlessness.
କ୍ରି. ବଣ—ନିର୍ଭୟଭାବରେ—Fearlessly.

**ନିଧନ**—ସ. ବ. (ନି+ଧନ୍ ଧାତୁ=ନଷ୍ଟ ହେବା+ଭାବ ଅ)—
Nidhana ୧ । ମୃତ୍ୟୁ—1. Death.
୨ । ବିନାଶ—2. Destruction; annihilation.
୩ । ଲୋପ—3 Disappearance.
୪ । ଶେଷ; ସମାପ୍ତି—4. End; finish; conclusion.
୫ । କୁଳ—5. Race; family.
୬ । କୁଳର ପ୍ରଧାନ ବ୍ୟକ୍ତି; କୁଳର ଅଧିପତି—
6. The head of a family.
୭ । (ଫଳିତ ଜ୍ୟୋତିଷ)—ଲଗ୍ନର ୮ମ ସ୍ଥାନ—
7 (astrology) The eighth mansion counted from one's Lagna.
୮ । (ଫଳିତ ଜ୍ୟୋତିଷ) ଜନ୍ମ ନକ୍ଷତ୍ରର ୭ମ, ଷୋଡ଼ଶ ଓ ତ୍ରୟୋବିଂଶ ନକ୍ଷତ୍ର—8 (astrology) The 7th, 16th and 23rd asterisms counted from one's natal asterism.
୯ । ବିଷ୍ଣୁ (ହି. ଶ)—9. Bishnu.
୧୦ । ପାଞ୍ଚ ବା ସାତ ଅବୟବ ଯୁକ୍ତ ସାମର ଅନ୍ତିମ ଅବୟବ (ହି. ଶ)—10. The concluding passage at the end of a Sāma sung in chorus (Apte).
ସ. ବଣ. (ନି+ଧନ=ଅର୍ଥ; ବହୁବ୍ରୀହି)—ଧନହୀନ; ଦରିଦ୍ର—Poor; indigent.
ନିଧନତା } ବି ନିଧନ ସଙ୍ଗାତ ମୋର ଦରିଦ୍ର ପସରା । ଅଭିମନ୍ୟୁ. ଦେବୀନୀଳୋନତି ।
ନିଧନତ୍ୱ }
ବ. (ସ. କର୍ଷନ)—ଧନାଭାବ; ଧନହୀନତା—
Want; poverty; no property.
କଂସାଧନ ଅଥ ଧନ, ଗୋରୁଧନ ନିଧନ । ଢଗ ।
ପ୍ରାଦେ. (ଯାଜପୁର) ବଣ—ଯାହା ଫମ୍ପା ନୁହେଁ; ନିଦା—
Solid; which is not hollow inside.
ସାବୁରେ ଶୁଆ । କାହା ହାତରେ ଅଛ ନିଧନ ଗୁଆ । ପ୍ରହେଳିକା ।

**ନିଧନ ତାରା**—ସ. ବ. (ଫଳିତ ଜ୍ୟୋତିଷ)—ଜନ୍ମ ଲଗ୍ନଠାରୁ ୭ମ ସ୍ଥାନରେ ଥିବା ତାରା; ବଧତାରା—(astrology)
Nidhana tāra
(ନିଧନତାରା—ଅନ୍ୟରୂପ) The 7th stellar mansion reckoned from one's star of nativity.

**ନିଧନତା**—ସ. ବ—ନିର୍ଧନତ୍ୱ; ଦରିଦ୍ରତା—
Nidhanatā Poverty.
(ନିଧନତ୍ୱ—ଅନ୍ୟରୂପ)

**ନିଧନାଧିପତି**—ସ. ବି. ( ଫଳିତ ଜ୍ୟୋତିଷ )—ମନୁଷ୍ୟର ଜନ୍ମଲଗ୍ନଠାରୁ ଅଷ୍ଟମ ସ୍ଥାନରେ ଥିବା ଗ୍ରହ—
Nidhanādhipati
(astrology) The planet situated in the 8th mansion from one's 'lagna'.

[ ଦ୍ର—ନିଧନାଧ୍ୟାତ ଭିନ୍ନ ଭିନ୍ନ ଗ୍ରହଙ୍କ ଅବସ୍ଥାନ ଅନୁସାରେ ମନୁଷ୍ୟ ସ୍ୱଳ୍ପାୟୁଃ ବା ଦୀର୍ଘାୟୁଃ ହୁଏ ।]

**ନିଧନୀ**—ଦେ. ବିଣ. (ସଂ ନିର୍ଦ୍ଧନ)—ଗରିବ, ନିର୍ଦ୍ଧନ—
Nidhani Poor; penniless.
निद्धनी **निधनी**

**ନିଧାନ**—ସ. ବି. ( ନି=ଭିତରେ+ଧା ଧାତୁ=ଧାରଣ କରିବା+କର୍ମ.
Nidhāna ଅନ)—୧ । ରତ୍ନ—1. A gem.
୨ । ଭୂଗର୍ଭସ୍ଥ ଅସ୍ୱାମିକ ଧନରତ୍ନାଦି—
2. Treasure trove; hidden treasure.
୩ । କୁବେରଙ୍କ ସମ୍ପତ୍ତିବିଶେଷ—
3. One of Kubera's treasure.
୪ । ( +ଅଧିକରଣ. ଅନ ) ପାତ୍ର; ଆଧାର; ଭଣ୍ଡାର—
4. Receptacle.
୫ । ଧନ; ସମ୍ପତ୍ତି—5. Wealth; riches.
୬ । ବିଶ୍ରାମ ସ୍ଥାନ—6. Resting place.
୭ । (+ଭାବ. ଅନ) ଅର୍ପଣ; ନ୍ୟାସ —7. Depositing.
୮ । ତିରୋଧାନ—8 Disappearance.
୯ । ରକ୍ଷଣ—9. Preserving.

**ନିଧାନୀ**—ଦେ. ବିଣ. ସ୍ତ୍ରୀ. ( ସ. ନିଧାନ )—ବହନ ବା ଧାରଣ କରୁଥିବା
Nidhāni (ସ୍ତ୍ରୀ)—Containing or carrying anything.
ନିଧାନୀ ନିଧାନ ଭଳିଟି ନିଧାନୀ ନୋହେ ସାବଧାନୀ ହୋଇଲେ ।
ଉକ୍ତ. ବୈଦେହୀଶବିଳାସ ।
ସ. ବିଣ. (ନିଧାନ+ଇନ୍; ୧ମା. ୧ବ)—ଯାହା ମଧ୍ୟରେ କୌଣସି ବସ୍ତୁ ଥାଏ—Containing anything in itself (M. W ).

**ନିଧାନୁଆ**—ଦେ. ବିଣ. ( ସ. ନିର୍ ଓ ଧାନ୍ୟ)—ଯେଉଁ ଚାଉଳ ସଙ୍ଗେ
Nidhānuā ଧାନ ରହି ଯାଇ ନ ଥାଏ, ଯେଉଁ ଚାଉଳରୁ ସବୁଧାନ ଯାକ ବାଛି ହୋଇଥାଏ—Husked (rice); free from any admixture of grains of paddy.

**ନିଧାନ୍ୟ**—ସ. ବିଣ. (ନି+ଧା ଧାତୁ+କର୍ମ. ଯ)—ରଖାଯିବାର ଯୋଗ୍ୟ—
Nidhānya Fit for being laid or put down

**ନିଧାର୍ଯ୍ୟ**—ଦେ. ବିଣ. ( ସଂ. ନିର୍ଧାର୍ଯ୍ୟ)—ନିର୍ଦ୍ଧାର୍ଯ୍ୟ (ଦେଖ)
Nidhārjya Nirdhārjya (See)
ନିଧାର୍ଯ୍ୟ, ନିଧାରିତ } ଅନ୍ୟରୂପ (ଯଥା—ମତେ ସିନା ଗୋଟାଏ ନିଧାର୍ଯ୍ୟ ଜବାବ ମିଳିଲେ ମୁଁ ସ୍ଥିର ହୋଇ ବସନ୍ତି ।)

**ନିଧାସ**—ଦେ. ବିଣ—ନିର୍ଧାର୍ଯ୍ୟ (ଦେଖ)
Nidhās Nirdhārjya (See)

**ନିଧି**—ସ. ବି. (ନି+ଧା ଧାତୁ+କର୍ମ. ଇ)—୧ । ରତ୍ନ—
Nidhi 1. Gem
୨ । ଧନ; ସମ୍ପତ୍ତି—2. Wealth; riches; treasure.
୩ । (+ଅଧି.ଅ)—ଆଧାର, ଭଣ୍ଡାର—3. Receptacle.
୪ । ଆଶ୍ରୟ ସ୍ଥାନ—4. Asylum.
୫ । ନାଲିକା ନାମକ ଗନ୍ଧ ଦ୍ରବ୍ୟ—
5. Name of a perfume.
୬ । ଜୀବକ ନାମକ ଔଷଧ—
6. Name of a rare medicinal herb.
୭ । ବହୁମୂଲ୍ୟ ଦ୍ରବ୍ୟ—7 Valuable thing.
୮ । ସମୁଦ୍ର—8. Ocean
୯ । ଧାନାଗାର, ଅମାର—9 Granary; treasury.
୧୦ । ନୀଡ଼; ପକ୍ଷୀର ବସା—10 Bird's nest.
୧୧ । ଭୂଗର୍ଭସ୍ଥ ଅସ୍ୱାମିକ ଧନ—
11. Treasure trove.
୧୨ । ଗଚ୍ଛିତ ବସ୍ତୁ—12 A deposit; a trust.
୧୩ । ବନ୍ଧକ—13. A pledge.
୧୪ । କୁବେରଙ୍କ ନିକଟରେ ଥିବା ୯ ପ୍ରକାର ରତ୍ନ—
14 The nine gems said to be in possession of 'Kubera', the God of wealth.
[ଦ୍ର—ପଦ୍ମ, ମହାପଦ୍ମ, ଶଙ୍ଖ, ମକର, କଚ୍ଛପ, ମୁକୁନ୍ଦ, କୁନ୍ଦ, ନୀଳ ଓ ଖର୍ବ ଏମାନଙ୍କୁ ନବନିଧି ବୋଲାଯାଏ । ]
୧୫ । ନିକ୍ଷେପ; ନ୍ୟାସ; ଗଚ୍ଛିତ ରଖିବା—
15. Depositing; entrusting.
ଦେ. ବି.—୧ । (ପ୍ରିୟତମ ବ୍ୟକ୍ତି ପ୍ରତି ବାତ୍ସଲ୍ୟାର୍ଥେ ପ୍ରଯୁକ୍ତ ଶବ୍ଦ) ନିଧି ପରି ପ୍ରିୟତମ ବ୍ୟକ୍ତି (ପୁରୁଷ ଓ ସ୍ତ୍ରୀ)—
1. (a term addressed to one's dearest person My treasure).
୨ । (ପୁଂ) ଲୋକଙ୍କୁ ଡକାଯିବା ନାମ—
2. A name given to males.
୩ । (ପୁଂ) ଦୟାନିଧି, ଗୁଣନିଧି, ବାଞ୍ଛାନିଧି ଆଦିଙ୍କ ଡାକ ନାମ—
3. A name used for calling persons whose names end with nidhi.

**ନିଧିଗୋପ**—ସ. ବି. (ନିଧି+ଗୁପ ଧାତୁ+କର୍ତ୍ତୃ. ଅ)—୧ । ଧନରକ୍ଷକ-
Nidhigopa 1. A guardian or protector of riches.
୨ । ନିଧୀଶ (ଦେଖ)—2. Nidhīsa (See)

**ନିଧି ନାଥ**—ସ. ବି. (୬ଷ୍ଠୀ ତତ୍; ନିଧି+ନାଥ)—ନିଧୀଶ (ଦେଖ)
Nidhi nātha Nidhīsa (See)
(ନିଧିପ, ନିଧିପତି, ନିଧିପାଳ—ଅନ୍ୟରୂପ)

**ନିଧି ନିଖାତ**—ଦେ. ବି. (କଟଦିଆ; କବଲା ଆଦିରେ ବ୍ୟବହୃତ)—
Nidhi nikhāta ୧ । କୌଣସି ଜମିର ପୃଷ୍ଠ ଦେଶରେ ବା ଗର୍ଭରେ ଥିବା ଧନ—1. ( a term used in conveyances ) Riches on the surface of or inside any land.
୨ । ଗୁପ୍ତ ଧନ; ପ୍ରୋଥିତ ଧନରତ୍ନାଦି—2 Hidden treasure to be found in any land; treasure trove.
(ଯଥା—ଏ ଜମି ମଧ୍ୟ ତହିଁରେ ଥିବା ପୋତା କୋଡା, ନିଧିନିଖାତ, କାଷ୍ଠ ପାଷାଣ, ତରୁ ଲତା, ଛାୟା ଉପଚ୍ଛାୟା କୁଲ୍ ହକୁବାଦିକୁ ଶହେ ଟଙ୍କା ଜରସମନରେ ଆପଣ ମୁ ସୁରଙ୍କ ହସ୍ତେ ବିକି କଲୁଁ ।)

**ନିଧି ରଥ**—ଦେ. ବି. (ନାମ)—ଜଣେକ ଉତ୍କଳୀୟ ପ୍ରାଚୀନ କବି—
Nidhi ratha Name of a classic poet of Orissa
[ଦ୍ର—ଗଞ୍ଜାମ ଜିଲ୍ଲାରେ ଏହାଙ୍କର ଘର । କବି କାଳିଦାସଙ୍କ 'ଋତୁସଂହାର' କାବ୍ୟ ଏହାଙ୍କଦ୍ୱାରା ଓଡ଼ିଆଭାଷାରେ ଅନୁବାଦିତ ହୋଇଅଛି । ତାରିଣୀ ଉତ୍କଳ ସାହିତ୍ୟ. ଇତିହାସ । ଏ ୩୦୦ ବର୍ଷ ତଳର କବି । ଜଗବନ୍ଧୁ. ପ୍ରାଚୀନ ଉତ୍କଳ ।]

**ନିଧୀୟମାନ**—ସଂ. ବି [ ନି+ଧା ଧାତୁ+କର୍ମମାନ; (ଶାନଚ)]—
Nidhiyamāna ସ୍ଥାପ୍ୟମାନ; ଯାହା ରଖା ଯାଇଅଛି ବା ଗଚ୍ଛିତ ରଖାଯାଇଅଛି—Which has been placed or deposited.

**ନିଧୀଶ**—ସଂ ବି. ( ୬ଷ୍ଠୀ ତତ୍, ନିଧି+ଈଶ )—କୁବେର—
Nidhiśa The Hindu God of wealth; the Lord of treasures.
(ନିଧୀଶ୍ୱର—ଅନ୍ୟରୂପ)

**ନିଧୁବନ**—ସଂ. ବି. (ନି=ନିଶ୍ଚିତ+ଧୁବନ=କମ୍ପନ)—୧ । କମ୍ପନ—
Nidhubana 1. Trembling; shaking.
୨ । ମୈଥୁନ, ରମଣ; ରତିକ୍ରୀଡ଼ା—
2. Coition, copulation.
୩ । ଉପଭୋଗ—3. Enjoyment.
୪ । କ୍ରୀଡ଼ା; ବିଳାସ—
4. Sport; pastime; dalliance.
୫ । ଆଲୋଡ଼ନ; ଘାଣ୍ଟିବା; ମନ୍ଥନ—
5. Agitation; churning.
୬ । ହସ କୌତୁକ—6. Merriment.
ଦେ. ବି—ବୃନ୍ଦାବନସ୍ଥ ଉଦ୍ୟାନବିଶେଷ—Name of a garden in Bṛundābana.
[ଦ୍ର—ଏ ଉଦ୍ୟାନ ତମାଲ, କଦମ୍ବ ଓ ଏକଜାତୀୟ କ୍ଷୁଦ୍ର କଣ୍ଟକଯୁକ୍ତ ନିତଶାଖ ବୃକ୍ଷରେ ପୂର୍ଣ୍ଣ । ଏ ଉଦ୍ୟାନ ମଧ୍ୟରେ ଖଣ୍ଡିଏ ଷୋଟ ପକ୍କା ( କୁଟୀର ) ଅଛି । ଏହା ରାଧାକୃଷ୍ଣଙ୍କର ନିତ୍ୟ ମିଳନସ୍ଥଳ ( ସେବାକୁଞ୍ଜ ) ବୋଲି ଲୋକବିଶ୍ୱାସ । ଏଠାରେ ରାତ୍ରିରେ କେହି ରହନ୍ତି ନାହିଁ । ଏମନ୍ତ କି, ସୂର୍ଯ୍ୟାସ୍ତ ପୂର୍ବରୁ ଏ ଉଦ୍ୟାନରୁ ଯାତ୍ରୀମାନଙ୍କୁ କ୍ଷିପ୍ର ବୁଝି, ତଣା ଆଦି ଖାଇବା ଲୋଭରେ ବନଯାକ ଆସି ବୁଲୁଥିବା ଶତ ଶତ ମାଙ୍କଡ଼ ଏ ଉଦ୍ୟାନ ଛାଡ଼ି ଗୁଲିଯିବାର ଦେଖାଯାଏ । ]

**ନିଧୂମ**—ଦେ. ବିଣ—ନିର୍ଧୂମ ( ଦେଖ )
Nidhūma Nirdhūma ( See )

**ନିଧେୟ**—ସଂ. ବିଣ. ( ନି+ଧା ଧାତୁ+କର୍ମ ଯ )—
Nidheya ୧ । ସ୍ଥାପନଯୋଗ୍ୟ; ସ୍ଥାପନୀୟ—1. Capable of being placed; fit to be laid in a receptacle.
୨ । ଗଚ୍ଛିତ ରଖିବାର ଯୋଗ୍ୟ—
2. Fit to be deposited.

**ନିଧୋଇଆ**—ଦେ. ବିଣ. (ସଂ. ନିର୍+ଧୌତ )—ଯେଉଁ ସ୍ଥାନ, ଜମି ବା ଅଞ୍ଚଳ ଧୋଇ ବା ନଈବଢ଼ି ବା ଅତିବୃଷ୍ଟି ଦ୍ୱାରା ନଷ୍ଟ ବା ଅନାନ୍ତ ହୁଏ ନାହିଁ—(a place )
Nidhoiā
( ନିଧୋୟା—ଅନ୍ୟରୂପ )
( ଧୋଇଆ—ବିପରୀତ ) Which is not ravaged or visited by floods, uninundated; not subject to the ravages of flood and rain
( ଯଥା—କଟକ ଜିଲ୍ଲାର ସିବେଶ୍ୱରପୁର ନିଧୋଇଆ ମଉଜା ଅଟେ । )

**ନିଧ୍ୱାନ**—ସଂ. ବି. ( ନି+ଧ୍ୱନ୍ ଧାତୁ=ଶବ୍ଦ କରିବା+ଭାବ. ଅ )—
Nidhwāna ଧ୍ୱନି, ଶବ୍ଦ—Sound.

**ନିଧ୍ୟାତ**—ସଂ. ବିଣ. ( ନି+ଧ୍ୟୈ ଧାତୁ+କର୍ମ. ତ )—
Nidhyāta ୧ । ଅବଲୋକିତ—1 Observed.
୨ । ଧ୍ୟାତ—2. Meditated; thought of

**ନିଧ୍ୟାନ**—ସଂ. ବି. ( ନି+ଧ୍ୟୈ ଧାତୁ+ଭାବ. ଅନ )—
Nidhyāna ୧ । ଦର୍ଶନ; ଅବଲୋକନ—1. Seeing; observing
୨ । ଗଭୀର ଧ୍ୟାନ—2 Meditation.

**ନିନ୍ବ** ( ଧାତୁ )—ସଂ—ପାଣି ଛିଞ୍ଚିବା—
Nin-ba ( root ) To sprinkle water.

**ନିନଂକ୍ଷୁ**—ସଂ. ବିଣ. ( ନି+ନଶ୍ ଧାତୁ+ସନ୍+କର୍ତ୍ତୃ. ଉ )—ନାଶ କରିବାକୁ ଇଚ୍ଛୁକ—Desirous of killing; intending to destroy.
Ninaṁkshu

**ନିନଦ**—ସଂ. ବି. ( ନି+ନଦ୍ ଧାତୁ=ଶବ୍ଦ କରିବା+ଭାବ. ଅ )—
Ninada ୧ । ଶବ୍ଦ—1. Sound; cry
୨ । ଗର୍ଜନ—2. Roar.
୩ । ଗୋଳମାଳ—3. Noise.
୪ । ଗୁଣୁ ଗୁଣୁ ଶବ୍ଦ—
4. Buzzing; humming.

**ନିନଦ୍ଧ**—ସଂ. ବିଣ. ( ନି+ନହ ଧାତୁ=ବାନ୍ଧିବା+କର୍ମ. ତ )—
Ninaddha ବନ୍ଧା ଯାଇଥିବା—Fastened on; tied to.

**ନିନୟ**—ସଂ. ବି. ( ନି+ନୀ ଧାତୁ+ଭାବ. ଅ )—ନମ୍ରତା (ହି.ଶ.)—
Ninaya Humility.

**ନିନୟନ**—ସଂ. ବି. ( ନି+ନୀ ଧାତୁ+ଭାବ. ଅନ )—
Ninayana ୧ । ନିଷ୍ପାଦନ; ସମ୍ପାଦନ—
1. Performance; accomplishing.
୨ । ଅଜାଡ଼ିବା—2. Pouring out.
୩ । ପ୍ରଣୀତାର ଜଳରୁ କୁଶ ଦ୍ୱାରା ଯଜ୍ଞବେଦି ଉପରେ ଛିଞ୍ଚିବା କର୍ମ ( ହି. ଶ. )—3. The act of sprinkling water on the sacrificial altar.

**ନିନା**—ପ୍ରାଦେ. ( ଗଡ଼ଜାତ ଓ ରାଜପରିବାର ) ବି—୧ । ନନା; ବଡ଼ ଭାଇ—1. Elder brother (used by some Raj families in the Orissa States).
Ninā
୨ । ଆପଣାଠାରୁ ବୟସରେ ବା ମର୍ଯ୍ୟାଦାରେ ବଡ଼ ବ୍ୟକ୍ତିଙ୍କ ପ୍ରତି ସମ୍ମାନ ଓ ଗୌରବସୂଚକ ସମ୍ବୋଧନ—
2. An address of respect addressed to one's elder or superior.

**ନିନାଦ**—ସଂ. ବି. ( ନି=ନଦ୍ ଧାତୁ=ଶବ୍ଦ କରିବା+ଭାବ. ଅ )—
Nināda ନିନଦ ( ଦେଖ )—Ninada ( See )

**ନିନାଦିତ**—ସଂ. ବିଣ. (ନି+ନଦ୍ ଧାତୁ ଣିଚ୍=ନାଦି ଧାତୁ+କର୍ମ.ତ)—
Ninādita ୧ । ଶବ୍ଦିତ—1. Sounded; noised.
୨ । ଶବ୍ଦପୂର୍ଣ୍ଣ—2. Noisy.
୩ । ମୁଖରିତ—3. Resounding; resonant.
୪ । ଯେଉଁ ବାଦ୍ୟଯନ୍ତ୍ର ବଜା ଯାଇଅଛି; ବାଦିତ—
4. ( a musical instrument ) Set to music, played upon.

**ନିନାଦୀ**—ସଂ. ବି. ( ନି+ନଦ୍ ଧାତୁ+କର୍ତ୍ତୃ. ଇନ୍; ୧ମା. ୧ବ )—
Ninādi ୧ । ଶବ୍ଦାୟମାନ—1. Sounding; resounding.
(ନିନାଦିନୀ—ସ୍ତ୍ରୀ) ୨ । କାନ୍ଦୁଥିବା—2. Crying.
୩ । ବାଦ୍ୟାଦିକୁ ବଜାଉଥିବା—3 Tuning; playing upon (a musical instrument). (M W.)

**ନିନା ବାବୁ**—ପ୍ରାଦେ. (ଜୟପୁର) ବି—ଶିଶୁମାନଙ୍କ ପ୍ରତି ସ୍ନେହ ସମ୍ବୋଧନ-
Ninā bābu A term of endearment for small boys.
(ନିନମା--ସ୍ତ୍ରୀ)

**ନିନି**—ପ୍ରାଦେ. ( ଗଡ଼ଜାତ, ଜୟପୁର ଓ ସିଂହଭୂମ ) ବି. ପୁଂ ଓ ସ୍ତ୍ରୀ—
Nini ଶିଶୁ ବା ସାନ ପିଲାମାନଙ୍କ ପ୍ରତି ସ୍ନେହ ସମ୍ବୋଧନ—
A term of endearment applied to children.

**ନିନୀଷା**—ସଂ. ବି. (ନୀ ଧାତୁ=ନେବା+ସନ୍+ଭାବ. ଅ+ଆ )—
Ninishā ସ୍ଥାନାନ୍ତରକୁ ନେବାର ଇଚ୍ଛା; ଗ୍ରହଣେଚ୍ଛା—
Desire to take a thing from one place to another; desire to take.

**ନିନୀଷୁ**—ସଂ. ବିଣ. ( ନୀ ଧାତୁ+ସନ୍+କର୍ତ୍ତୃ. ଉ )—ଗ୍ରହଣେଚ୍ଛୁ—
Ninishu Desirous of taking.

**ନିନ୍ଦ୍ (ଧାତୁ)**—ସଂ—ଭୁଷା କରିବା; ଦୁର୍ନାମ କରିବା—
Nind (root) To blame; to revile.

**ନିନ୍ଦହା**—ପ୍ରାଦେ ( ବସ୍ତର) ବିଣ—ଅକୃତଜ୍ଞ; କୃତଘ୍ନ—
Nind-hā Ungrateful.

**ନିନ୍ଦ**—ପ୍ରାଦେ. (କଟକ) ବି ( କଟକ ସହରରଅଙ୍କ ବ୍ୟବହାର; ସଂ. ନିଦ୍ରା ଭୁଲ. ହିନ୍ଦି ନିନ୍ଦ୍ )—ନିଦ ( ଦେଖ )
Ninda Nida ( See )

**ନିନ୍ଦକ**—ସଂ. ବିଣ. ପୁଂ. ( ନିନ୍ଦ୍ ଧାତୁ+କର୍ତ୍ତୃ. ଅକ )—
Nindaka ୧ । ନିନ୍ଦାକାରୀ; ଅପବାଦକ—1. One who
(ନିନ୍ଦିକା—ସ୍ତ୍ରୀ) blames; blasphemous; reviling.
୨ । ଭର୍ତ୍ସନାକାରୀ—2. Abusive; censorious.
[ ଦ୍ର—କେତେକ ଲେଖକ 'ନିନ୍ଦୁକ' ଶବ୍ଦ ବ୍ୟବହାର କରନ୍ତି । ତାହା ଭ୍ରାନ୍ତ ଅଟେ । ]

**ନିନ୍ଦନ**—ସଂ. ବି. ( ନିନ୍ଦ୍. ଧାତୁ+ଭାବ. ଅନ )—
Nindana ୧ । ନିନ୍ଦା; ଅପବାଦ—1 Defamation.
୨ । ଭୁଷା କରିବା—2. Reviling;
୩ । ଭର୍ତ୍ସନା—Censure; rebuke.

**ନିନ୍ଦନୀୟ**—ସଂ. ବିଣ ( ନିନ୍ଦ୍. ଧାତୁ+କର୍ମ. ଅନୀୟ )—
Nindaniya ୧ । ନିନ୍ଦିତ ହେବାର ଉପଯୁକ୍ତ; ନିନ୍ଦା ଯୋଗ୍ୟ—
( ନିନ୍ଦନୀୟା—ସ୍ତ୍ରୀ ) 1. Blameworthy; blameable
୨ । ଦୂଷଣୀୟ—2 Reproachable.
୩ । ଘୃଣ୍ୟ—3 Contemptible

**ନିନ୍ଦା**—ସଂ. ବି ( ନିନ୍ଦ୍. ଧାତୁ+ଭାବ. ଅ+ଆ )—
Nindā ୧ । ଦୁର୍ନାମ; ଅପବାଦ—1. Libel; slander, defamation
ପ୍ରଶଂସା } ବିପରୀତ
ସ୍ତୁତି }
୨ । ଭୁଷା—2. Accusation; reviling.
୩ । ଗାଳି; ଭର୍ତ୍ସନା—3. Reproach; censure, abuse
୪ । ଦୋଷ ଦେବା—4. Blaming; condemnation, vilification.
[ ଦ୍ର—ଅବିଦ୍ୟମାନ ଦୋଷର ପ୍ରକାଶକୁ ନିନ୍ଦା ଓ ବିଦ୍ୟମାନ ଦୋଷର ପ୍ରକାଶକୁ ପରୀବାଦ ବୋଲାଯାଏ—ମନୁ, କୁଲ୍ଲୁକ ଭଟ୍ଟ ]
ଦେ. ବିଣ.--ନିନ୍ଦ୍ୟ; ନିନ୍ଦିତ—Blameworthy.
ବଡ଼ କ୍ଷତ୍ରିୟ ବେନି ବର୍ଣ୍ଣ,
ବର୍ଜିବ ନିନ୍ଦା ବୃତ୍ତିମାନ । ଜଗନ୍ନାଥ ଭାଗବତ ।
ପ୍ରାଦେ ( ସମ୍ବଲପୁର ) ବି ( ଭୁଲ. ଏହି ଅର୍ଥରେ ହି. ନିଂଦାଇ ) ଧାନ ବିଲରୁ ଘାସ ବଛା—The weeding out of grass etc from paddy fields.

**ନିନ୍ଦାଉଲି**—ଦେ. ବିଣ. ( ସଂ. ନିନ୍ଦାର୍ହ )—ନିନ୍ଦନୀୟ—
Nindāuli Blameable

**ନିନ୍ଦାକର**—ସଂ. ବି. (ଉପପଦ ତତ୍ପୁରୁଷ; ନିନ୍ଦା+କୃ ଧାତୁ+କର୍ତ୍ତୃ. ଅ)
Nindākara —ନିନ୍ଦାଜନକ—Blameworthy.

**ନିନ୍ଦା କରିବା**—ଦେ.କ୍ରି (ସଂ. ନିନ୍ଦ. ଧାତୁ) —୧ । ଦୋଷ ଦେବା—
Nindā kariba 1. To blame.
निन्दाकरा ୨ । ଅପବାଦ କରିବା—2. To defame.
**निन्दा करना** ୩ । ଅନ୍ୟ ବସ୍ତୁ ବା ବ୍ୟକ୍ତିକୁ ଗୁଣରେ ପରାଜିତ କରିବା ବା ଜିଣିବା—3. To excel another in good quality or grace.
ତାହା ଶୁଣି କରଇ ରହିଲ ତାହାଙ୍କୁ,
ଦେଖିଲ ମୁଖ ନିନ୍ଦା କରୁଛି ଚନ୍ଦ୍ରକୁ । କୃଷ୍ଣସିଂହ. ମହାଭାରତ ବନ ।
୪ । ବଳ ପଡ଼ିବା; ବଳିଯିବା—4. To surpass.

**ନିନ୍ଦା ସ୍ତୁତି**—ସଂ. ବି· ( ସହଚର ବିପରୀତାର୍ଥକ ଶବ୍ଦ ସଂ· ନିନ୍ଦାସ୍ତୁତି )—
Nindā tusti ନିନ୍ଦା ଓ ସାଧୁବାଦ—Blame and praise.

**ନିନ୍ଦା ଦେବା**—ଦେ. କ୍ରି.—ଅନ୍ୟଠାରେ କଳଙ୍କ ବା ଅପବାଦ ଆରୋପ
Nindā debā କରିବା—To lay the blame on
निन्दा देओया **निन्दा करना** another.

**ନିନ୍ଦାନ୍ୱିତ**—ସଂ. ବିଣ. ( ୩ୟା ତତ୍; ନିନ୍ଦା+ଅନ୍ୱିତ )—
Nindānwita ନିନ୍ଦିତ—Reviled; blamed.

**ନିନ୍ଦାବାଦ**—ସଂ ବି· ( ନିନ୍ଦା+ବଦ୍ ଧାତୁ=କହିବା+ଭାବ. ଅ )—
Nindābāda ନିନ୍ଦନ; ଭୁଷା; ନିନ୍ଦା କରିବା—
Reviling; raillery.

ନିନ୍ଦା ବିହୁଡ଼ା—ପ୍ରାଦେ ( ସମ୍ବଲପୁର ) ବି.—( ତୁଳନା କର. ହି. ନିଂଦା'ଇ=ବିଲବଣ୍ଟ )—ଧାନବିଲର ବଣ୍ଟ ଓ ବେଉଷଣ ଆଦି କାର୍ଯ୍ୟ—The agricultural operations of weeding and puddling of paddy fields.
Nindā bihurḍā

—ର୍ହ ବିଣ. ପୁଂ. ନିନ୍ଦା+ଅର୍ହ୍ ଧାତୁ+କର୍ତ୍ତୃ. ଅ)—
Nindārha ନିନ୍ଦା ପାଇବାର ଯୋଗ୍ୟ—Blamable
( ନିନ୍ଦାର୍ହା—ସ୍ତ୍ରୀ ) ( ନିନ୍ଦାର୍ହତା—ବି )

ନିନ୍ଦାସୂଚକ—ସଂ. ବିଣ—ଯାହା ଦ୍ୱାରା ନିନ୍ଦା ହୁଏ—
Nindā sūchaka Causing blame; which brings blame on a person.

ନିନ୍ଦା ସ୍ତୁତି—ସଂ. ବି—୧ । ( ଅଳଙ୍କାରବିଶେଷ) ଯେଉଁ ସ୍ଥଳରେ ନିନ୍ଦା-
Nindāstuti ଛଳରେ ପ୍ରଶଂସା ଓ ପ୍ରଶଂସା ଛଳରେ ନିନ୍ଦା କରାଯାଏ 1. A figure of speech in which a person is praised under the guise of raillry and vice versa;
୨ । ନିନ୍ଦା ଓ ପ୍ରଶଂସା—2. Blame and praise.
୩ । ବ୍ୟାଜସ୍ତୁତି, ନିନ୍ଦା କରିବା ବାହାନାରେ ପ୍ରଶଂସା—Praising a person while feigning to revile him.

ନିନ୍ଦିତ—ସଂ. ବିଣ. ( ନିନ୍ଦ୍ ଧାତୁ+କର୍ମ. ତ )—୧ । ଗର୍ହିତ—
Nindita 1. Blameworthy; reproachable.
ନିନ୍ଦିତ କର୍ମେ ଯେ ରତଇ,
ଉଦ୍ଧବ ତାକୁ ଲଜ୍ଜା କହି । ଜଗନ୍ନାଥ. ଭାଗବତ ।
୨ । ତିରସ୍କୃତ—2. Reproached; censured.
୩ । ଯାହାଙ୍କୁ ନିନ୍ଦା କରାଯାଏ—3. Blamed; vilified.
୪ । ଅନୁଚିତ—4. Improper.
୫ । ନୀଚ; ମନ୍ଦ; ଅଧମ—5 Low; mean; bad; vile.
୬ । ଘୃଣିତ 6 Despicable.
୭ । ନିଷିଦ୍ଧ—7 Forbidden, prohibited.

ନିନ୍ଦିତବ୍ୟ—ସଂ. ବିଣ. ( ନିନ୍ଦ୍ ଧାତୁ+କର୍ମ ତବ୍ୟ )—ନିନ୍ଦନୀୟ—
Ninditabya ( ନିନ୍ଦିତବ୍ୟା- ସ୍ତ୍ରୀ ) Reproachable.

ନିନ୍ଦିବା—ଦେ. କ୍ରି. ( ପଦ୍ୟ ) (ସଂ. ନିନ୍ଦ୍ ଧାତୁ)—୧ । ନିନ୍ଦା କରିବା—
Nindibā 1. To blame.
ନିନ୍ଦା
निंदना
ନିନ୍ଦବନ୍ତ ନିନ୍ଦିଲେ ଲୁ ତାହା—କବିସୂର୍ଯ୍ୟ ବଳୋଗଲକୃଷ୍ଣ, ଛ-ଗୀତ ।
୨ । ବଳିପଡ଼ିବା—2 To exceed.
ଲୁଣ୍ଠବାଳକୁ ନିନ୍ଦିବା ହାସକୁ ଖେଳାଇ ଦେଲୁଛ ଲଗେଲେ—
କବିସୂର୍ଯ୍ୟ. ସଙ୍ଗୀତ ।
୩ । ଉତ୍କୃଷ୍ଟତର ହେବା—3 To excel.
ଚରୁପର୍ଣ୍ଣେ ସାପ ନିନ୍ଦେ ଉତ୍ପଳ—ରାଧାନାଥ, ନନ୍ଦିକେଶ୍ୱରୀ ।
ପ୍ରାଦେ. ( ସମ୍ବଲପୁର ) କ୍ରି—ଧାନବିଲ ବାଛିବା—
To weed out grass etc from paddy fields.

ନିନ୍ଦୁ—ସଂ. ବି. ସ୍ତ୍ରୀ. ( ନିନ୍ଦ୍ ଧାତୁ+କର୍ମ. ଉ; ଏପରି ସ୍ତ୍ରୀ ସଂସାରରେ
Nindu ଲୋକମୁଖରେ ନିନ୍ଦା ଶୁଣିବାରୁ )—ମୃତବତ୍ସା ସ୍ତ୍ରୀ—A woman who brings forth still-born children.

ନିନ୍ଦୁକ—ଦେ. ବିଣ. ପୁଂ (ସଂ. ନିନ୍ଦକ,—ନିନ୍ଦକ ( ଦେଖ )
Ninduka Nindaka ( See )
( ନିନ୍ଦୁକା—ସ୍ତ୍ରୀ ) [ ଦ୍ର—ସଂସ୍କୃତ ଭାଷାରେ 'ନିନ୍ଦୁକ' ଶବ୍ଦର ପ୍ରୟୋଗ ନାହିଁ, ବଙ୍ଗଳାରେ ଏ ଶବ୍ଦର ପ୍ରୟୋଗ ଦେଖି କେହି କେହି ଓଡ଼ିଆରେ 'ନିନ୍ଦକ' ଅର୍ଥରେ ଏ ଶବ୍ଦ ପ୍ରୟୋଗ କରୁଅଛନ୍ତି; କିନ୍ତୁ ଏହା ଭ୍ରାନ୍ତ ପ୍ରୟୋଗ । ]

ନିନ୍ଦେଇବା—ପ୍ରାଦେ. ( କଟକ ସହର ) କ୍ରି ( ସଂ ନିଦ୍ରା; ତୁଳ. ବଂ.
Nindeibā ନିନ୍ଦାନ )—୧ । ନିଦେଇବା; ଢୁଲାଇବା, ନିଦ୍ରାସକ୍ତ ହେବା—1. To feel sleepy or drowsy.
୨ । ଶୋଇ ପଡ଼ିବା—2. To fall asleep.

ନିନ୍ଦ୍ୟ—ସଂ. ବିଣ. ( ନିନ୍ଦ୍ ଧାତୁ+କର୍ମ ଯ )—୧ । ନିନ୍ଦନୀୟ—
Nindya 1. Blameable
( ନିନ୍ଦ୍ୟା—ସ୍ତ୍ରୀ ) ୨ । ଦୂଷିତ, ଗର୍ହିତ, ଅନୁଚିତ—
2. Bad; improper

ନିପ—ସଂ. ବି. ( ନି=ନିଯୁକ୍ତ+ପା ଧାତୁ=ପିଇବା+କରଣେ. ଅ )—
Nipa ୧ । କଳସ; ଘଟ; ମାଠିଆ—1. Water jug.
୨ । କଦମ୍ବଗଛ—2. A tree; Nauclea Cadumba.

ନିପଟ—ଦେ ଅ.( ସଂ. ନିତାନ୍ତ )—୧ । ନିତାନ୍ତ; ଅତ୍ୟନ୍ତ; ଅତିଶୟ—
Nipata 1. Very; quite.
निपट
निपट
ନିପଟ ନିସ୍ତେଜ ଦଶୁଛ ତ ଆଜ ନିରଳସ ଚକ୍ରମୁକ୍ତ—
କବିସୂର୍ଯ୍ୟ, ବଳୋଗଲକୃଷ୍ଣ, ଛ-ଗୀତ ।
୨ । ସମ୍ପୂର୍ଣ୍ଣରୂପେ; ସମ୍ୟକ୍‌ରୂପେ—
2. Wholly; utterly; completely.
କେଉଁ ସଖୀ ସେ ପୁଚ୍ଛ ଭେଦକେ ଅଛି ନଚ ଦିଇ ସ୍ନେହ ନିପଟ ହୋଇ ନିଘଣ
କବିସୂର୍ଯ୍ୟ. ସଙ୍ଗୀତ ।
୩ । ନିଶ୍ଚେ; ନିଃସନ୍ଦେହରେ; ସ୍ପଷ୍ଟରୂପେ—
3. Clearly; undoubtedly; certainly.
ଚିତ୍ରୋପୀନସ୍ତନୀ ସେ ଗୁଣକୁ ମନା କରି ଦେଲୁ କି ନିପଟ—
କବିସୂର୍ଯ୍ୟ. ସଙ୍ଗୀତ ।
୪ । କେବଳମାତ୍ର; ଖାଲି—4 Only.
ବଚନ ସୁଧାସାର ପ୍ରଚଉଚ, ପେଟୁଟ୍ଟସାକ ନିପଟ କପଟ—
କବିସୂର୍ଯ୍ୟ, କବିତା ।
୫ । କେବେହେଁ; ଆଦୌ—
5. Ever; at all; at any time.
ଚ ହୁଁ ବୋଲିବା ବାଣୀ, ନିପଟ ନାହିଁ ଶୁଣି
କବିସୂର୍ଯ୍ୟ, ବଳୋଗଲକୃଷ୍ଣ, ନଂଗୀତ ।
୬ । ପ୍ରକୃତରେ; ସତେ—
6. Truly; indeed.

ନିପଟ ଗାଲୁ—ଦେ. ବି—ଅତ୍ୟନ୍ତ ଭୁରୁଡ଼ି ବା ମିଥ୍ୟା ବାହାଦୁରି—
Nipaṭa gālu Empty or vain bragging.

ନିପଟ ଗାଲୁଆ—ଦେ. ବିଣ—୧ । ନିପଟ ମିଛୁଆ; ବଡ଼ ମିଛୁଆ—
Nipaṭa gāluā 1 One who is an inveterate liar.
( ନିପଟ ଗାଲେ[ଲ୍ଲେ]ଇ—ସ୍ତ୍ରୀ ) ୨ । ଭୁରୁଡ଼ା—
2. Vainglorious; braggart.

**ନିପଟ ମିଛ**—ଦେ. ବଣ—ସମ୍ପୂର୍ଣ୍ଣରୂପେ ମିଥ୍ୟା; ଡାହା ମିଥ୍ୟା, କଳାମିଛ—
Nipaṭa michha Totally false.
ଡାହାମିଥ୍ୟା ବି—ସମ୍ପୂର୍ଣ୍ଣରୂପେ ମିଥ୍ୟା କଥା—A black lie.

**ନିପଟ ମିଛୁଆ**—ଦେ. ବଣ ପୁଂ—କାଁଟିଲା; ସମ୍ପୂର୍ଣ୍ଣରୂପେ ମିଥ୍ୟାବାଦୀ
Nipaṭa michhuā (ବ୍ୟକ୍ତି)—Inveterate liar.
ডাহা মিথ্যাবদী लालबुजक्कड (ନିପଟ ମିଛେ[ଛେ]ଇ—ସ୍ତ୍ରୀ)

**ନିପଟି**—ଦେ ଅ—ନିପଟ (ଦେଖ)
Nipaṭi (ନିପଟଅ ଅନ୍ୟରୂପ) Nipaṭa (See)

**ନିପଟୁ**—ଦେ. ବଣ. (ସ. ନିଷ୍ଠ)—୧। ଅକର୍ମଣ୍ୟ—
Nipaṭu 1. Worthless.
୨। ଅଯୋଗ୍ୟ—2. Unfit.
୩। ଅଳସୁଆ; ନିଶଠ—3. Idle; indolent; lazy.

**ନିପଠ**—ସ. ବି. (ନି=ସମ୍ୟକ+ପଠ୍ ଧାତୁ=ପଢ଼ିବା+ଭାବ ଅ)—
Nipaṭha ୧। ଅଧ୍ୟୟନ; ପାଠ—1. Reading; studying.
(ନିପାଠ—ଅନ୍ୟରୂପ) ୨। ଆବୃତ୍ତି—2. Reciting

**ନିପଠିତ**—ସ. ବଣ (ନି=ସମ୍ୟକ୍+ପଠିତ)—
Nipaṭhita ୧। ପଠିତ—1. Read.
୨। ଅଧୀତ—2. Learnt, studied
୩। ଆବୃତ୍ତ—3. Recited.
ବି—(+ଭାବ. ତ)—ଅଧ୍ୟୟନ; ପଢ଼ିବା—Reading

**ନିପଣ**—ଦେ. ବଣ. (ସ ନିର୍ବାଣ)—୧। ନିସ୍ତେଜ—
Nipaṇa 1 Lustreless
୨। ହତବୁଦ୍ଧି—2. Dumbfounded; at a loss.

**ନିପତ**—ସ. ବି. (ନି=ସାକଲ୍ୟାର୍ଥକ+ପତ୍ ଧାତୁ=ପଡ଼ିବା+ଭାବ ଅ)—୧। ମୃତ୍ୟୁ—1 Death.
Nipata
୨। ବିନାଶ—2. Destruction.
୩। ଧ୍ୱଂସ, ଅଧଃପତନ—3. Ruin; down fall.

**ନିପତନ**—ସ. ବି. (ନି=ସାକଲ୍ୟାର୍ଥକ+ପତ ଧାତୁ+ଭାବ. ଅନ)—
Nipatana ୧। ତଳକୁ ପଡ଼ିବା—1 Falling down
୨। ଅଧଃପତନ, ଧ୍ୱଂସ—2 Down-fall; ruin
୩। କ୍ଷୟ ପାଇବା—3. Decay

**ନି ପତିଆରା**—ଦେ. ବି (ସ. ନିର୍+ପ୍ରତ୍ୟୟ)—ଅବିଶ୍ୱାସ; ବିଶ୍ୱାସର
Ni patiārā ଅଭାବ, ଅପତିଆରା—Want of confidence, credit or trust.
(ନିପତ୍ୟାରା—ଅନ୍ୟରୂପ)
নিপতিয়াৰা ବଣ—୧। ଅବିଶ୍ୱାସୀ—1. Faithless.
बेपतियारा ୨। ବିଶ୍ୱାସର ଅଯୋଗ୍ୟ—2 Not deserving to be trusted.
୩। ନିରାଶ୍ରୟ—3. Helpless.
୪। ଯାହାଠାରୁ ପତିଆରା ବା ଆସ୍ଥା ଉଠି ଯାଇଅଛି—
4 Having no credit

**ନିପତିତ**—ସ. ବଣ. (ନି=ସାକଲ୍ୟାର୍ଥକ+ପତିତ)—
Nipatita ୧। ବିଧ୍ୱସ୍ତ—1. Ruined; overthrown.
(ନିପତିତା—ସ୍ତ୍ରୀ) ୨। ତଳକୁ ଖସିଥିବା—2 Descended.
୩। ଅଧଃ ପତିତ—3 Fallen down.
୪। ସ୍ଥାନ ଚ୍ୟୁତ; ଭ୍ରଷ୍ଟ—4. Fallen; displaced.

**ନିପତୁରିଆ**—ଦେ. ବଣ (ସ. ନିଷ୍ପତ୍ର)—ନିପତ୍ରିଆ (ଦେଖ)
Nipaturiā Nipatriā (See)
(ନିପତୁରିଆ—ଅନ୍ୟରୂପ)

**ନିପତ୍ୟା**—ସ ବି. (ନି+ପତ୍ ଧାତୁ+ଅଧିକରଣେ ଯ+ସ୍ତ୍ରୀ ଆ)—
Nipatyā ୧। ଯୁଦ୍ଧ ଭୂମି—1. Battle field
୨। କର୍ଦ୍ଦମ—2 Mud
୩। ପିଚ୍ଛିଳ ବା ଖସଡ଼ା ଭୂମି—3. Slippery ground

**ନିପତ୍ରିଆ**—ଦେ ବଣ—୧। ପତ୍ରହୀନ—
Nipatriā 1. Leafless
ନିପତ୍ର } ଅନ୍ୟରୂପ ୨। ଧୂଆଁ ପତ୍ର ବା ଗୁଣ୍ଡି ଦିଆଯାଇ ନଥିବା
ନିପତର } (ପାନ ଖିଲ)—
निपाती, निपत्र 2 (betel packet) Having no tobacco or tobacco mixture in it.

**ନିପଦ**—ଦେ. ବଣ (ସ ନିଷ୍ପଦ) ପଦହୀନ, ନିଷ୍ପଦ—
Nipada Footless.
କି ପଦ ତତ୍ତ୍ୱପଦ ଯେତେ
ନିପଦେ ତାହାଙ୍କ ଆଶ୍ରୟେ। ଜଗନ୍ନାଥ ଭାଗବତ।

**ନିପରବା**—ବୈଦେ. ବଣ. ପୁଂ ଓ ସ୍ତ୍ରୀ (ଫା ନାପରୱାହ୍)—
Niparabā ୧। ବେପରୁଆ; ନିଶ୍ଚିନ୍ତ—
বেপৰোৱা 1. Free from anxiety.
लापरवा ୨। ଅସାବଧାନ—2 Careless.
ନିପରୁଆ } ଅନ୍ୟରୂପ ୩। ନିର୍ଭୀକ—3. Fearless; undaunted.
ନିପରେଇ }

**ନିପରବାଇ(ୟ)**—ବୈଦେ. ବି. (ଫା. ନାପରୱାହି)—
Niparabāi(ya) ୧। ନିଶ୍ଚିନ୍ତ ହେବାର ଅବସ୍ଥା—
বেপৰোৱাই 1. Freedom from anxiety.
लापरवाही ୨। ଅସାବଧାନତା—2. Carelessness.
ନିପରେଇ } ଅନ୍ୟରୂପ ୩। ନିର୍ଭୀକତା—3. Fearlessness.
ନିପରୱାଇ }
ବୈଦେ. ବଣ (ଫା. ନାପରୱାହ୍)—ନିପରବା (ଦେଖ)
Niparabā (See)

**ନିପା** (ଇତ୍ୟାଦି)—ଗ୍ରା. ବି ଓ ବଣ—ଲିପା ଇତ୍ୟାଦି (ଦେଖ)
Nipā (etc) Lipā etc. (See)
নেপা लिपाइ

**ନିପା(ପେ)ଇବା**—ଗ୍ରା. କ୍ରି. (ସ ଲିପ ଧାତୁର ଣିଜନ୍ତ)—
Nipā(pe)ibā ଲିପାଇବା (ଦେଖ)—Lipāibā (See)
নেপান लिपवाना

**ନିପାକ**—ସ. ବି. (ନି=ସମ୍ପୂର୍ଣ୍ଣ+ପଚ ଧାତୁ+ଭାବ. ଅ)—
Nipāka ୧। ଅନ୍ନାଦି ପାକ କରିବା—1. Cooking food.
୨। ପରିପକ୍ୱତା—2. Ripeness; development.

**ନିପାଠି(ଠୁ)ଆ**—ଦେ. ବଣ. ପୁଂ. (ସ. ନିର୍ ଓ ପାଠ)—
Nipāṭhi(ṭhu)ā ଅପାଠୁଆ; ମୂର୍ଖ—Illiterate.
অপঢ় अनपढ़ [ନିପାଠେ(ଠୋ)ଇ—ସ୍ତ୍ରୀ]

**ନିପାଣିଆ(ଆଁ)**—ଦେ. ବଣ—୧ । ବିରସ; ନିସ୍ତେଜ—
Nipāṇiā(āṅ) 1 Lustreless; pale.

ହୋଇ ଯାଇଥିଲା ବଦନ ନିପାଣିଆ ।
କୃଷ୍ଣସିଂହ. ମହାଭାରତ ଉଦ୍ୟୋଗ ।

୨ । ନିର୍ଜଳ; ଜଳଶୂନ୍ୟ—2 Waterless.
୩ । ନୀରସ; ରସଶୂନ୍ୟ—3 Devoid of juice.
୪ । ଶୁଷ୍କ—4. Dry.
୫ । ଯହିଁରୁ ଜଳୋଦ୍ଗମ ନ ହୁଏ—
5 Not emitting water.
୬ । ଯେଉଁ ବଳଦ ଗୋରୁକୁଣ୍ଡରେ କୁଣ୍ଡା ପାଣି ପିଏ ନାହିଁ—
6. ( a bullock ) Which does not take food and water from a trough.

**ନିପାତ**—ସ. ବି. ( ନି=ସମ୍ପୂର୍ଣ୍ଣ ରୂପେ+ପତ୍ ଧାତୁ+ଭାବ. ଅ )—
Nipāta ୧ । ମୃତ୍ୟୁ—1. Death.
୨ । ବିନାଶ—2. Destruction.
୩ । ଅଧଃପତନ—3. Downfall; overthrow.
୪ । ଅବତରଣ—4 Alighting
୫ । (ବ୍ୟାକରଣ) ନିପାତନ; ସାଧାରଣ ନିୟମର ବ୍ୟତିକ୍ରମ—
5. (grammar) Anomaly; grammatical exception or irregularity.
୬ । ସମୂଳେ ବିନାଶ, ସମ୍ପୂର୍ଣ୍ଣ ଲୋପ; ଯେଉଁ ବିନାଶରେ ଚିହ୍ନ ମାତ୍ର ବାକି ନ ଥାଏ—6 Eradication; extinction.
୭ । ଆକ୍ରମଣ—7. Attack; onslaught.
୮ । ପତନ—8. Fall.

ବ୍ରହ୍ମ ହତ୍ୟା କଲେ ବରଷ ଶତ ଶତ
ଘୋର ନରକରେ ସେ ହୁଅଇ ନିପାତ । କୃଷ୍ଣସିଂହ. ମହାଭାରତ ଶାନ୍ତି ।

୯ । ନିପାତନ ( ଦେଖ )—9. Nipātana ( See )
निपात
निपात
ଦେ ବଣ—୧ । ନିପତିତ ( ଦେଖ )
1. Nipatita ( See )
୨ । ମୃତ—2. Dead.
୩ । ସମୂଳେ ଉଚ୍ଛିନ୍ନ—3. Eradicated; extinct.

**ନିପାତ କରିବା**—ଦେ. କ୍ରି—୧ । ନାଶ କରିବା; ବିନାଶ କରିବା; ବିଧ୍ୱଂସ କରିବା—1 To annihilate; to destroy; to ruin.
Nipāta karibā
निपात करा
निपात करना ୨ । ବଧ କରିବା—2. To kill.
୩ । ମୂଳରୁ ମାରିବା; ମୂଳୋତ୍ପାଟନ କରିବା—
3. To uproot; to eradicate.

**ନିପାତନ**—ସ. ବି. (ନି+ପତ ଧାତୁ ଣିଚ୍ ପାଡ ଧାତୁ=ପକାଇବା+ଭାବ. ଅନ)—୧ । ଉନ୍ମୂଳନ; ମୂଳୋଚ୍ଛେଦନ—
Nipātana 1. Uprooting; eradication.
୨ । କୌଣସି ବସ୍ତୁକୁ ତଳେ ପକାଇବା—2. Causing a thing to fall down; knocking down.
୩ । ବିନାଶ ବା ଧ୍ୱଂସ କରଣ—3. Over-throw; causing ruin.
୪ । ମାରି ପକାଇବା; ବଧ; ହନନ—
4 Killing; slaughter.
୫ । ପ୍ରହାର; ଆଘାତ—5. Stroke; blow.
୬ । (ବ୍ୟାକରଣ) ସାଧାରଣ ନିୟମର ବ୍ୟତିକ୍ରମ—
6. (grammar) Anomaly; an exception; irregularity in grammatical form.

**ନିପାତନ ସିଦ୍ଧ**—ସ. ବଣ (୩ୟା ତତ୍; ନିପାତନ+ସିଦ୍ଧ )—ବ୍ୟାକରଣର ସାଧାରଣ ନିୟମଦ୍ୱାରା ଯାହା ନିଷ୍ପନ୍ନ ହୁଏ ନାହିଁ—grammatically anomalous; exceptional; irregular in formation.
Nipātana siddha

**ନିପାତନୀୟ**—ସ.ବଣ.—(ନି=ସମ୍ପୂର୍ଣ୍ଣ+ପତ୍ ଣିଚ ପାଡ ଧାତୁ+କର୍ମ. ଅନୀୟ )—ଧ୍ୱଂସନୀୟ—Capable of being overthrown, cast down, killed or destroyed.
Nipātaniya

**ନିପାତିତ**—ସ. ବଣ. (ନି=ସମ୍ପୂର୍ଣ୍ଣରୂପେ+ପତ୍ ଧାତୁ ଣିଚ୍ ପାଡ ଧାତୁ କର୍ମ+ତ.)—୧ । ଅଧୋନୀତ—
Nipātita 1. Brought down
୨ । ପାତିତ—2. Thrown down.
୩ । ହତ—3. Killed
୪ । ବିନାଶିତ—4. Destroyed; ruined.
୫ । ବ୍ୟତିରିକ୍ତ—5 Excepted.

**ନିପାତିବା**—ଦେ. (ପଦ୍ୟ) କ୍ରି. (ସ. ନିପାତନ)—ନିପାତ କରିବା; ବିନାଶ କରିବା—To destroy; to eradicate.
Nipātibā
निपाता ଗଦା ପ୍ରହାରେଣ ଶ୍ୟାମ ମାରଇ ନିପାତି ।
निपातना ମଧୁସୂଦନ—ବିବିଧ ।

**ନିପାତି ହେବା**—ଦେ. କ୍ରି.—ସମ୍ପୂର୍ଣ୍ଣରୂପେ ବିନଷ୍ଟ ହେବା—
Nipāti hebā To be destroyed or eradicated.
निपात हओया ଯେ ସବୁ ଭୂପପତି ତାଙ୍କୁ ଭଜି ବସନ୍ତି ନିପାତ ନୋହିଲେ କପାଇ ।
निपात होना (ନିପାତ ହେବା—ଅନ୍ୟରୂପ) ଭକ୍ତ କୋଷ୍ଠବ୍ରହ୍ମାଣ୍ଡସ୍ତୁତି ।

**ନିପାତୀ**—ସ. ବଣ. ପୁଂ (ନି+ପତ୍ ଧାତୁ; ଣିଚ ପାଡ ଧାତୁ+କର୍ତ୍ତୃ. ଇନ୍, ୧ମା. ୧ବ)—୧ । ଯେ ପକାଇ ଦିଏ—
Nipāti
(ନିପାତିନୀ—ସ୍ତ୍ରୀ) 1. Overthrowing.
୨ । ବିନାଶକାରୀ—2. Ruining; destroying.
୩ । ମୂଳ ଉତ୍ପାଟନକାରୀ—3 Eradicating.
ସ. ବି.—ଶିବ (ହ ଣ )—Śiba

**ନିପାଦ**—ଦେ. ବଣ. (ସ. ନିଷ୍ପଦ)—ପାଦ ନ ଥିବା—
Nipāda Footless; having no legs.

ତର ଅତର ଅବ ଯେତେ, ପାଦ ନିପାଦକ ସହିତେ—ଜଗନ୍ନାଥ ଭାଗବତ ।

**ନିପାନ**—ସ. ବି. (ନି+ପା ଧାତୁ=ପିଇବା+ଅଧିକରଣ. ଅନ)—
Nipāna ୧ । କୂପ ସମୀପରେ ପଶୁମାନଙ୍କ ଜଳପାନାର୍ଥ ନିର୍ମିତ କୁଣ୍ଡ—1. A water trough made near a well for cattle drinking water therefrom.

୨ । ପରିଖା—2 Trench.
୩ । କୂପ—3. Well
୪ । କ୍ଷୁଦ୍ର ଜଳାଧାର—4 Small cistern or tank.
୫ । ଚୌବାଚ୍ଚା; ଶ୍ରେଷ୍ଠ ଗଡ଼ିଆ—
5. Water reservoir; tank.
୬ । (+ଅପାଦାନ.ଅନ)ଦୁଧ ଦୋହିବା ପାତ୍ର—
6. Milking pail
୭ । ଦୁଗ୍ଧ ଭାଣ୍ଡ—7. Milk pail.
୮ । (+ଭାବ. ଅନ) ପାନ—8. Drinking.

**ନିପାନିପି**—ଗ୍ରା. ବି. (ସମ୍ବଲପୁର ଶବ୍ଦ)—ଲିପାପୋଛା (ଦେଖ)
Nipānipi (ନିପାପୋଛା—ଅନ୍ୟରୂପ) Lipāpochhā (See)

**ନିପାରିଲା**—ଦେ. ବିଣ.—୧ । କାର୍ଯ୍ୟ କରିବାକୁ ଅଶକ୍ତ; ଅକ୍ଷମ;
Nipārilā ଅଯୋଗ୍ୟ—1 Unfit or unable to do any work
নালায়েক
নালায়েক ୨ । ଦୁର୍ବଳ; ଦୁର୍ବଳ—2. Weak.
(ନିପାରିବାର, ନିପାରିଲାର—ଅନ୍ୟରୂପ) ୩ । ଅସମର୍ଥ—
3. Incapable

**ନିପୀଡ଼କ**—ସଂ. ବିଣ. (ନି+ପୀଡ଼୍ ଧାତୁ=କ୍ଳେଶ ଦେବା+କର୍ତ୍ତୃ. ଅକ)-
Nipirdaka ୧ । ପୀଡ଼ାଦାୟକ; ଅତ୍ୟନ୍ତ କଷ୍ଟଦାୟକ—
(ନିପୀଡ଼କା—ସ୍ତ୍ରୀ) 1. Hurtful; vexatious; troublesome; painful; afflicting.
୨ । ଉତ୍ପୀଡ଼ନକାରୀ—2. Persecuting; oppressive
୩ । ଯେ କୌଣସି ବସ୍ତୁକୁ ଚିପି ଜଳ ବା ରସ ବାହାର କରେ—3. Squeezing; wringing out juice.

**ନିପୀଡ଼ନ**—ସଂ. ବି.—(ନି+ପୀଡ଼୍ ଧାତୁ+ଭାବ. ଅନ)—୧ । ଦଳନ;
Nipirdana ମର୍ଦ୍ଦନ; ଚିପିବା; ମଳିବା; ପେଶିବା—
1. Squeezing; pressing.
୨ । ନିଷ୍ପୀଡ଼ନ; ଚିପୁଡ଼ିବା—2 Wringing out.
୩ । ଉତ୍ପୀଡ଼ନ; ଅତ୍ୟାଚାର—
3 Oppression; persecution
୪ । ଅଭିବାଦନ—4. Bowing; saluting.
୫ । କଷ୍ଟ ଦେବା; ପୀଡ଼ା ଦେବା—
5 Hurting; giving pain
୬ । ଆଲିଙ୍ଗନ—6 Embracing

**ନିପୀଡ଼ିତ**—ସ. ବିଣ—( ନି+ପୀଡ଼୍ ଧାତୁ+କର୍ମ. ତ )—
Nipirdita ୧ । ଦଳିତ; ମର୍ଦ୍ଦିତ—1. Squeezed; pressed.
୨ । ଉତ୍ପୀଡ଼ିତ—2. Oppressed.
୩ । ପୀଡ଼ା ପ୍ରାପ୍ତ; ଆହତ—3. Hurt.
୪ । ଆଲିଙ୍ଗିତ—4 Embraced.

**ନିପୀତ**—ସ. ବିଣ—( ନି+ପା ଧାତୁ+କର୍ମ. ତ )—
Nipita ୧ । ନିଃଶେଷ ରୂପେ ପାନ କରାଯାଇଥିବା—
1. Imbibed; drunk or quaffed to the last drop.
୨ । ଉପଲବ୍ଧ; ଗ୍ରସ୍ତ—2 Absorbed.

**ନିପୁଣ**—ସ. ବିଣ. ପୁଂ ( ନି+ପୁଣ୍ ଧାତୁ=ସତ୍କର୍ମ କରିବା+
Nipuna କର୍ତ୍ତୃ. ଅ )—୧ । କୁଶଳ; ପଟୁ; ଦକ୍ଷ—
( ନିପୁଣା—ସ୍ତ୍ରୀ ) 1. Dexterous; skilful; expert;
( ନୈପୁଣ୍ୟ—ବି ) adroit.
୨ । କାର୍ଯ୍ୟକ୍ଷମ; ସମର୍ଥ—2 Able.
୩ । ବିଚକ୍ଷଣ; ଚାଲାକ—3. Clever
୪ । ପ୍ରଧାନ—4. Eminent.
ବସ୍ତ୍ର ଚିବିବେବା କାହା ଭାବରେ ନିପୁଣ—ଭଞ୍ଜ. ବୈଦେହୀଶବିଳାସ ।

**ନିପୁଣତା**—ସ. ବି—( ନିପୁଣ+ଭାବ. ତା )—
Nipunatā ନୈପୁଣ୍ୟ; ବିଚକ୍ଷଣତା; ପଟୁତା—
( ନିପୁଣତ୍ୱ—ଅନ୍ୟରୂପ ) Expertness, cleverness; skilfulness.

**ନିପୁଣଦୃକ୍**—ସ. ବିଣ—( ନିପୁଣ+ଦୃଶ୍ ଧାତୁ+କର୍ତ୍ତୃ. କ୍ୱିପ୍ )—
Nipunadruk କୃତଜ୍ଞ—Grateful.

**ନିପୁତ୍ରୀ**—ଦେ. (ପ୍ରାଚୀନ) ବିଣ ପୁଂ. ଓ ସ୍ତ୍ରୀ—(ସ. ନିଷ୍ପୁତ୍ର )—ପୁତ୍ରହୀନ
Niputri ନିଃସନ୍ତାନ—Issueless; having no son.
অপুত্রিক
**নিপূত, নিপুত্রী** ନିପୁତ୍ରୀ ହୋଇ ଏ ସଂସାରେ,
କେ ଅବା ଦେହ ଧରିପାରେ । ଗ୍ରାଡୀ, ନର୍ମଦାମାହାତ୍ମ୍ୟ ।
( ନିପୁତ, ନିପୁତ୍ର, ନିପୁତା-ପୁଂ, ନିପୁତୀ-ସ୍ତ୍ରୀ—ଅନ୍ୟରୂପ)

**ନିପୁର**—ସ. ବି. ( ନି+ପୁର )—୧ । (ଦର୍ଶନ) ଲିଙ୍ଗ ଶରୀର—
Nipura (philosophy The subtle frame in which the soul is settled.
୨ । (ଦର୍ଶନ ଶାସ୍ତ୍ର) ସୂକ୍ଷ୍ମ ଶରୀର—2. The etherial body; the subtle vehicle of the sentien soul.

**ନି : ପ୍ରା**—ଦେ. ବିଣ—(ସାଙ୍କେତିକ) ନିମ୍ନ ପ୍ରାଥମିକ(ସ୍କୁଲ)ର ସାଙ୍କେତିକ
Ni : prā ରୂପ—Lower primary; ( school ) L P.

**ନିପ୍ରୋଧ**-ଦେ. ବି. ଓ ବିଣ- ନିଉପରୋଧ ( ଦେଖ )—
Niprodha Niuparodha (See)

**ନିପ୍ରୋଧିଆ**—ଦେ. ବିଣ ପୁଂ. ଓ ସ୍ତ୍ରୀ—ନିଉପରୋଧିଆ ( ଦେଖ )—
Niprodhiā Niuparodhiā (See)
( ନିପ୍ରୋଧି, ନିପ୍ରୋଧି )—ଅନ୍ୟରୂପ

**ନିପ୍ରୋଧିବା**—ଦେ. କ୍ରି. ( ପଦ୍ୟ ) ( ସ. ନିର୍ ଓ ଉପରୋଧ )—
Niprodhibā ୧ । ଅନ୍ୟର ଅନୁରୋଧ ନ ରକ୍ଷିବା—
( ନିପ୍ରୋଧିବା—ଅନ୍ୟରୂପ ) 1 Not to respond to the requests of others.
୨ । ଚକ୍ଷୁଲଜ୍ଜା ବା ମୁଲାହିଜା ନ କରିବା—
2. Not to respect other peoples' feelings; to have no scruples.
୩ । ମମତା ନ ରଖି କାର୍ଯ୍ୟ କରିବା—
3. To act without respect or sympathy for others.

ନିଫଡ଼ିବା – ଦେ. କ୍ରି. ( ସଂ. ନିଷ୍ଟ, ପ୍ରା. ନିଫୁଡ଼ ) — Nıphardıbā
ଲେଫଡ଼ିବା ( ଦେଖ ) — Lephardıbā ( See )
निपुरना
ନିଫିଡ଼ିବା, ନିଫେଡ଼ିବା } ଅନ୍ୟରୂପ [ ଦ୍ର— ଦାନ୍ତ ପରେ ଏ ଶବ୍ଦ ବ୍ୟବହୃତ ହୁଏ ]

ନିଫଳ(ଳା)— ଦେ. ବିଣ ( ସଂ. ନିଷ୍ଫଳ )— ନିଷ୍ଫଳ ( ଦେଖ )— Nıphala(lā) Nıshphala (See).
অফল নফল

ନିଫଳା—ସଂ. ବି. ସ୍ତ୍ରୀ—( ବହୁବ୍ରୀହି; ନି=ନିକୃଷ୍ଟ+ଫଳ+ଆ )— Nıphalā ଜ୍ୟୋତିଷ୍ମତୀ ଲତା; ଫୁଟଫୁଟିକା— A creeper; the heartpea; Helicacabum.
ଦେ. ବିଣ—ନିଫଳ ( ଦେଖ )—Nıphala (See).

ନିଫାଳନ—ସଂ. ବି. ( ନି+ଫଲ୍ ଧାତୁ+ଭାବ. ଅନ )— Nıphālana ୧ । ଦେଖିବା —1. Seeing.
୨ । ଦୃଷ୍ଟି—2. Sight; vision.
୩ । ଦେଖାଇବା—3 Showing, exhibiting.

ନିଫେନ—ସଂ. ବି— ( ବହୁବ୍ରୀହି; ନି=ନିକୃଷ୍ଟ+ଫେନ )— Nıphena ଅଫେନ; ଅହିଫେନ; ଅଫିମ—Opium

ନିବ୍—ବୈଦେ. ଵ. ( ଇଂ )—ଲେଖିବାର କଲମରେ ଲଗାଯିବା ଅଣ୍ଟ ପତ୍ର ପତଳା ମୁନିଆ ଧାତୁ ଫଳକ; ଧାତୁମୟ ଲେଖନୀମୁଖ— Nıb
नीब निब Nıb.
[ ଦ୍ର—କାଠ, ଧାତୁ ଓ କାଚ ଆଦିର ସରୁବେଣ୍ଟର ମୁହଁ ପାଖେ ଗୋଟିଏ ଚଉଡ଼ା ବାଲସ୍ୟ ( ହୋଲ୍ଡର ) ଥାଏ; ସେହି ହୋଲ୍ଡରରେ ଘସି ହୋଇଥାଏ, ସେହି ଘସି ମଧ୍ୟରେ ଅଣ୍ଟ ପତ୍ର ଦୁଇ ଫାଳିଆ ଓ ମୁନିଆ ଲମ୍ବା ଯେଉଁ ଲେଖନୀକୁ ଭରାଇ କରି ଯାଇପାରେ ଓ କାଢ଼ି ଯାଇପାରେ ତାକୁ ନିବ୍ କହନ୍ତି । ଲେଖକର ସରୁ ବା ମୋଟା ଅକ୍ଷର ଲେଖିବା ଅଭ୍ୟାସକୁ ଦେଖି ନିବ୍‌ର ମୁନ ସରୁ ବା ମୋଟା କରି ତିଆରି କରାଯାଏ ।]

ନିବକ୍ଷଃ —ସଂ. ବି —ଯଜ୍ଞ ନିମନ୍ତେ ଉତ୍ସୃଷ୍ଟ ପଶୁ ( ହ. ଶ )— Nıbakshaḥ Victim, a beast offered or consecrated for sacrifice (M. W.).

ନିବଡ଼ା(ଡ଼େ)ଇବା—ଦେ. କ୍ରି ( ସ ନି+ବୃତ୍ ଧାତୁ—ନିବର୍ତ୍ତିନ; ପ୍ରା. ନିବଟ୍ଟନ )— ୧ । (କାର୍ଯ୍ୟ) ନିଷ୍ପାଦନ କରିବା; ସମାଧା କରିବା—1. To accomplish. Nıbardā(rde)ibā
निवड़ान ୨ । ସାରିବା, ତୁଲାଇବା; ସମାପ୍ତ କରିବା—
निबटाना 2. To bring to a successful termination; to complete a work.

ନିବଡ଼ିବା—ଦେ. କ୍ରି. ( ସଂ. ନିବାହ; ନିବର୍ତ୍ତିନ; ପ୍ରା. ନିବଟ୍ଟନ )— Nıbardibā ୧ । ( କାର୍ଯ୍ୟ ) ସମାପ୍ତ ହେବା—
निबड़ा 1. To terminate.
निबटना, निबड़ना ୨ । ଶେଷ ହେବା; ସରିବା—2. To be
(ନିବଡ଼ିବା—ଅନ୍ୟରୂପ) finished; to end; to be brought to a close.
୩ । ସମ୍ପାଦିତ ହେବା—3. To be accomplished.

ନିବଦ୍ଧ—ସଂ. ବିଣ. ( ନି+ବନ୍ଧ୍ ଧାତୁ=ବାନ୍ଧିବା+କର୍ମ. ତ )— Nibaddha ୧ । ଆବଦ୍ଧ; ବନ୍ଦୀକୃତ—1. Confined; shut up.
୨ । ରଚିତ—2. Composed.
୩ । ଖୁଣ୍ଟ ଆଦିରେ ଛନ୍ଦା ଯାଇଥିବା— 3. Fastened to
୪ । ଆବଦ୍ଧ—4. Bound; tied.
୫ । ପିନ୍ଧା ଯାଇଥିବା ( ପୋଷାକ; ସାଜ ); ପରିହିତ— 5. Worn; put on
୬ । ଆଲୋଚିତ—6. Discussed.
୭ । ମୀମାଂସିତ –7. Decided.
୮ । ଆବୃତ— 8 Coverd with; vieled in; enveloped.
୯ । ସଂଯତ—9. Restrained, controlled.
୧୦ । ଆଶ୍ରିତ—10 Dependent; relying on.
୧୧ । ଗ୍ରଥିତ—11. Arranged orderly
୧୨ । ନିବେଶିତ —12. Inserted; placed.
୧୩ । ସ୍ଥିରୀକୃତ— 13. Resolved; ascertained; settled.
୧୪ । ନିବେଶିତ; ଜଡ଼ା ହୋଇଥିବା — 14. Set in; inlaid with.
୧୫ । ଶୃଙ୍ଖଳିତ—15. Chained; fettered (M. W.)
୧୬ । ଅମୁକ ଉପରେ ନିର୍ଭର କରୁଥିବା — 16. Dependent on (M. W.)
୧୭ । ଅମୁକ ମଧ୍ୟରେ ଅବସ୍ଥିତ— 17. Contained in (M. W).
୧୮ । ଅମୁକ ସମ୍ବନ୍ଧୀୟ— 18. Relating to (M. W ).
୧୯ । ଅଳଙ୍କୃତ—19. Adorned with (M. W.)
୨୦ । ବାଧାପ୍ରାପ୍ତ—20. Obstructed.
୨୧ । ମୁଦା ଯାଇଥିବା—21. Closed (M. W.).
୨୨ । ନିର୍ମିତ—22. Constructed, built (M. W).
୨୩ । ବ୍ୟବହୃତ ( ଯଥା—ବାକ୍ୟ )— 23. Used; employed (as a word.) (M. W.)
୨୪ । ସାକ୍ଷୀ ମନା ଯାଇଥିବା ( ବ୍ୟକ୍ତି )— 24. Called as a witness (M. W.)
୨୫ । ସଫା ହୋଇ ଝାଡ଼ା ହେଉ ନଥିବା; କୋଷ୍ଠବଦ୍ଧ— 25. Costive (M. W.)
୨୬ । ଜିମା ଦିଆ ଯାଇଥିବା; ନ୍ୟସ୍ତ— 26. Committed; entrusted (M. W.)

ନିବନ୍ଧ—ସଂ. ବି. ( ନି+ବନ୍ଧ୍ ଧାତୁ+କର୍ମ. ଅ )—୧ । ପ୍ରବନ୍ଧ— Nibandha 1. Essay.
( ନିବନ୍ଧିତ—ବିଣ ) ୨ । ସାହିତ୍ୟିକ ରଚନା— 2. Literary composition.
୩ । ଗ୍ରନ୍ଥ—3. Treatise; monograph.

୪ । ଗ୍ରନ୍ଥବୃତ୍ତି; ଟୀକା—4. Commentary.
୫ । ପ୍ରସ୍ତାବ—5. Proposal.
୬ । ସଂଗ୍ରହ —
6 Compilation; compendium.
୭ । ନିୟମିତକାଳରେ ଦେୟ ଅର୍ଥାଦି—
7. Money or due payable periodically.
୮ । ନିର୍ଦ୍ଦିଷ୍ଟ ବୃତ୍ତି; ଵଙ୍କା; ପେନ୍ସନ୍—
8 Stipend; a grant of money; pension; allowance
୯ । ଦାନ—9. Gift; grant of property.
୧୦ । କୌଶଳ—10. Stratagem.
୧୧ । ଉପାୟ—11. Means.
୧୨ । ବାଧ୍ୟତା—12. Obligation.
୧୩ । ନିୟମ—13. Rule.
୧୪ । ବ୍ୟବସ୍ଥା—14 Law; statute; regulation.
୧୫ । ( +ଭାବ. ଅ ) ନିର୍ଦ୍ଧାରଣ; ସ୍ଥିରୀକରଣ—
15. Ascertainment, resolution.
୧୬ । ଏକାଗ୍ରତା—
16. Close or concentrated attention.
୧୭ । ବାନ୍ଧିବା କର୍ମ—
17. Binding; tying; fastening.
୧୮ । ଗୀତ; ଗାନ—18. Song, singing.
୧୯ । ପଦ୍ୟ—19. Verse; poetry.
୨୦ । ମୂତ୍ରକୃଚ୍ଛ୍ର ରୋଗ; ଆନାହ ରୋଗ —
20. Strangury; constipation or suppression of urine.
୨୧ । ନିମ୍ବଗଛ—
21. The Neem tree; Melia Azadirechta
୨୨ । ବ୍ରତ; ସଙ୍କଳ୍ପ—
22. A voluntary obligation; a vow.
୨୩ । କର୍ତ୍ତବ୍ୟ କର୍ମ—23. Duty.
୨୪ । ବୀଣା ଆଦି ତାର ଗୁଡ଼ାଯିବା ଦୁଣ୍ଡି; ଉପନାହ—
24. The peg to which the string of a lute is tied.
୨୫ । ଶୃଙ୍ଖଳ; ବନ୍ଧନ—
25. Chain; fetter; bondage. (M. W.)
୨୬ । ଅନୁରକ୍ତି; ଆସକ୍ତି—
26. Attachment to; intentness (M. W).
୨୭ । ମୂଳ—
27. Basis; root; origin; foundation. (M.W).
୨୮ । ଧନ ବା ଗବାଦିର ବନ୍ଧକ—
28. Assignment of cattle or money (M. W).
୨୯ । ନିର୍ଦ୍ଦିଷ୍ଟ ସମ୍ପତ୍ତି—29. Fixed property (M. W).
୩୦ । ପ୍ରତିବନ୍ଧକ; ଅଟକ—
30. Restraint; obstruction (M. W.).
୩୧ । କାରଣ, ହେତୁ—
31. Cause; reason ( Apte ).
୩୨ । ଶବ୍ଦସଂଗ୍ରହ—32 Compilation of words

**ନିବନ୍ଧକାର**—ସଂ. ବିଶ ( ନିବନ୍ଧ + କୃ ଧାତୁ + କର୍ତ୍ତୃ ଅ )—
Nibandhakāra ୧ । ଗ୍ରନ୍ଥକାର—1. Author
୨ । ରଚୟିତା—2. Essayist; composer.
୩ । ଟୀକାକାର—3 Commentator.
୪ । ସଂଗ୍ରାହକ—4. Compiler.
୫ । ଶବ୍ଦସଂଗ୍ରାହକ—5 Lexicographer.

**ନିବନ୍ଧନ**—ସଂ. ବି. ( ନି + ବନ୍ଧ୍ ଧାତୁ + ଭାବ. ଅନ )—
Nibandhana ୧ । ବନ୍ଧନ—1 Binding; fastening; fettering
୨ । ଶୃଙ୍ଖଳ—2. Band, bond, fetter.
୩ । ରୁଦ୍ଧ କରିବା, ଅଟକାଇବା—
3 Confining; restraining.
୪ । ( +କର୍ତ୍ତୃ. ଅନ ) କାରଣ; ହେତୁ—
4. Cause, origin.
୫ । ଉପଲକ୍ଷ—5. Occasion.
୬ । ଉଦ୍ଦେଶ୍ୟ—6. Motive.
୭ । ଅବସ୍ଥା—7. Condition.
୮ । (ବ୍ୟାକରଣ) ବାକ୍ୟରେ ଶବ୍ଦର ସ୍ଥାନାଦି ନିର୍ଣ୍ଣୟ—
8. (grammar) Syntax.
୯ । ( +କର୍ମ. ଅ ) ଗ୍ରନ୍ଥ—
9. Literary work; treatise.
୧୦ । ନିୟମ; ବ୍ୟବସ୍ଥା—10. Rule; regulation.
୧୧ । ରଚନା; ଗ୍ରଥନ—
11. Composition; arrangement
୧୨ । ବୀଣାର ତାର ଗୁଡ଼ାଯିବା ଦୁଣ୍ଡି—
12. The peg of a lute (Apte).
୧୩ । ପାରିତୋଷିକ ଦାନ—
13 Giving of a prize; awarding.
୧୪ । ନିୟମିତ କାଳରେ ଦେୟ ବସ୍ତୁ ବା ଧନ—
14 Money or thing payable at a fixed time.
୧୫ । ନିର୍ମାଣ—
15. Construction; building. ( M.W. )
୧୬ । ଅବଲମ୍ବନ; ଭରା—16. Support;stay (M.W.)
୧୭ । ମୂଳ—17. Basis, foundation ( M. W. )
୧୮ । ଆଧାର—18. Receptacle; seat ( M. W. ).
୧୯ । ବୃତ୍ତି; ଖଞ୍ଜା—
19. Grant; assignment of royal gift,
୨୦ । ଟୀକା—20. Commentary.
୨୧ । ସମ୍ପର୍କ—
21. Dependence; connection ( Apte ).
ସଂ. ବିଶ—୧ । ବନ୍ଧନକାରୀ; ଯାହା ବାନ୍ଧେ ଭରସେ—
1. Binding; fastening ( M W. )

୨ । ଅମୁକ ଉପରେ ନିର୍ଭର କରୁଥିବା —
2. Dependent on ( M. W )
୩ । ଅମୁକ ସଙ୍ଗେ ସଂଯୁକ୍ତ —
3. Connected with; relating to ( M.W. )
୪ । ଅମୁକ ସଙ୍ଗେ ବନ୍ଧା ଯାଇଥିବା —
4 Fastened to.

निबन्धन କେ. ଅ — ହେତୁରୁ; କାରଣରୁ —
का वास्ते On account of.
( ଯଥା — ମୁଁ ସେଠାକୁ କାର୍ଯ୍ୟ ନିବନ୍ଧନ ଯାଇଥିଲି । )

ନିବନ୍ଧନୀ — ସଂ. ବି. ( ନିବନ୍ଧନ + ଈ ) — ଶୃଙ୍ଖଳ; ବେଡ଼ି —
Nibandhani Bond; fetter.

ନିବନ୍ଧା — ସଂ. ବିଣ. ପୁଂ. ( ନି + ବନ୍ଧ୍ ଧାତୁ + କର୍ତ୍ତୃ. ତୃ = ନିବନ୍ଧୃ
Nibandhā ଶବ୍ଦ, ୧ମା. ୧ବ ) — ନିବନ୍ଧକାର (ଦେଖ)
(ନିବନ୍ଧ୍ରୀ — ସ୍ତ୍ରୀ) Nibandhakāra ( See )

ନିବନ୍ଧିତ — ସଂ ବିଣ. (ନି + ବନ୍ଧ୍ ଧାତୁ + କର୍ମ. ତ ) —
Nibandhita ୧ । ବଦ୍ଧ — 1. Tied; bound; fastened.
୨ । ଆବଦ୍ଧ — 2. Confined.

ନିବନ୍ଧୀ — ସଂ. ବିଣ. ପୁଂ. (ନି + ବନ୍ଧ୍ ଧାତୁ + କର୍ତ୍ତୃ. ଇନ୍, ୧ମା. ୧ବ) —
Nibandhi ୧ । ଯେ ବାନ୍ଧେ; ବନ୍ଧନକାରୀ —
(ନିବନ୍ଧିନୀ — ସ୍ତ୍ରୀ) 1. Binding; fastening.
୨ । ଯେ ଆବଦ୍ଧ ରଖେ — 2. Confining.
୩ । ସଂପୃକ୍ତ; ସମ୍ବଦ୍ଧ — 3 Connected with.
୪ । ସଂଯୁକ୍ତ — 4 Joined by.
୫ । ଯାହା ଘଟାଏ —
5 Causing; producing. ( M. W. )

ନିବପନ — ସଂ. ବି. ( ନି + ବପ୍ ଧାତୁ + କର୍ମ. ଅନ ) —
Nibapana ୧ । ପିତୃଲୋକଙ୍କ ଉଦ୍ଦେଶ୍ୟରେ ଦାନ —
1. Gifts in honour of one's deceased ancestors
୨ । ଶ୍ରାଦ୍ଧ — 2 Offering of cakes to the manes.
୩ । ତଳକୁ ଅଡ଼େ ବୁଣିବା —
3 Scattering down ( Apte ).
୪ । ମଞ୍ଜି ବୁଣିବା — 4. Sowing (Apte).
୫ । ଅଜାଡ଼ିବା; ଢାଳିବା — 5. Pouring out (Apte).

ନିବର — ସଂ. ବିଣ. ପୁଂ — ଯେ ବାଧା ଦିଏ —
Nibara Preventing; warding off.
(ନିବରା — ସ୍ତ୍ରୀ) ସଂ. ବି — ୧ । ରକ୍ଷଣ — 1. Protection.
୨ । ଆବରଣ — 2. Covering (Apte).

ନିବରତି(ତୁ)ଆ — ଗ୍ରା. ବିଣ — ଅବରତିଆ ( ଦେଖ )
Nibarati(tu)ā Abaratiā ( See )
[ନିବର୍ତ୍ତି(ତୁ)ଆ — ଅନ୍ୟରୂପ]

ନିବରତିବା — ଗ୍ରା. (ପଦ୍ୟ) କ୍ରି ( ସଂ. ନି + ବୃତ୍ ଧାତୁ ) —
Nibaratibā ନିବର୍ତ୍ତିବା ( ଦେଖ ) — Nibarttibā ( See )

निबवता ଦୁର୍ଯ୍ୟୋଧନ ବୋଇଲେ ଶୁଣ ନିବରତ
निवटना ମୋହର କାର୍ଯ୍ୟ ଆସି ପଡ଼ିଛି ମହତ । କୃଷ୍ଣସିଂହ, ମହାଭାରତ ଉଦ୍ୟୋଗ ।

ନିବରା — ସଂ. ବି. ସ୍ତ୍ରୀ. ( ନି + ବର + ଆ ) —
Nibarā କୁମାରୀ, ଅବିବାହିତା ବାଳିକା — A virgin; an unmarried girl (Apte).

ନିବର୍ତ୍ତ — ଦେ. ବିଣ. ( ସଂ ନିବୃତ୍ତ ) —
Nibartta ୧ । ନିବୃତ୍ତ; ଶାନ୍ତ; ବିରତ — 1. Ceased; stopped.
ଏ ବାଣୀ ଯେବେ ନ ହିଁ ବୋଇଲ । କୃଷ୍ଣସିଂହ, ମହାଭାରତ ଆଦି ।
୨ । ପ୍ରତ୍ୟାବୃତ୍ତ — 2. Returned.
୩ । ଶାନ୍ତ, ଶାନ୍ତ ପ୍ରକୃତିକ — 3. Mild; serene.
୪ । ଫଳକାମନାରହିତ — 4. Having no hankering for the result of one's action
ତପ୍ୟା ନିୟମ ଦାନ ଶମ, ନିବର୍ତ୍ତ କର୍ମ ପ୍ରେମ ସୀମା ।
ଉପେନ୍ଦ୍ର, ପ୍ରେମପଞ୍ଚାମୃତ ।
ଦେ. ବି — ନିବୃତ୍ତି — Cessation; restraint.

ନିବର୍ତ୍ତକ — ସଂ. ବିଣ. ପୁଂ. (ନି + ବୃତ୍ ଧାତୁ + କର୍ତ୍ତୃ ଅକ) —
Nibarttaka ୧ । ନିବୃତ୍ତିକାରୀ — 1. Preventing.
( ନିବର୍ତ୍ତିକା — ସ୍ତ୍ରୀ ) ୨ । ଯେ ପଛକୁ ବୁଲି ପଡ଼େ —
2. Turning back.
୩ । ପଳାତକ — 3. Fleeing (M. W.)

ନିବର୍ତ୍ତନ — ସଂ. ବି. ( ନି + ବୃତ୍ ଧାତୁ + ଭାବ. ଅନ ) —
Nibarttana ୧ । ଶାନ୍ତି; ନିବୃତ୍ତି —
1. Cessation; abstention.
୨ । ଶାନ୍ତ କରାଇବା; ନିବାରଣ —
2. Causing to cease; prevention.
୩ । ଅକ୍ରିୟତା — 3 Inactivity.
୪ । ରଦ କରିବା — 4. Undoing; rescinding.
୫ । ପ୍ରତ୍ୟାବର୍ତ୍ତନ — 5. Return; coming back.
୬ । ଫେରାଇ ଆଣିବା — 6 Bringing back.
୭ । ନିବାରଣ — 7. Preventing; restraining.
୮ । ପ୍ରତ୍ୟର୍ପଣ — 9. Giving back.
୯ । (+ ଅଧି. ଅନ) କୋଡ଼ିଏ ପଦିକା ଲମ୍ବ ଓ ଚଉଡ଼ା ଜମି; ଯେଉଁ ଜମିର ଦୈର୍ଘ୍ୟ ୨୦୦ ଓ ପ୍ରସ୍ଥ ୨୦୦ ହାତ —
10 A land 20 poles long and 20 poles broad or 200 cubits square.
୧୦ । (+ ଭାବ. ଅନ) ପଶ୍ଚାତ୍ପଦ ହେବା; ପଛଆଡ଼କୁ ଲେଉଟିବା — 10. Turning back; retreating
୧୧ । ପଳାୟନ — 11. Flying away (M. W.)
୧୨ । ଅନୁତାପ କରିବା — 12. Repenting (M. W.).
୧୩ । ପଛକୁ ହଟାଇବା — 13. Pushing back.

ନିବର୍ତ୍ତ(ର୍ତ୍ତେ)ଇବା — ଦେ. କ୍ରି. (ସଂ. ନି + ବୃତ୍ ଧାତୁ ଣିଜନ୍ତ) —
Nibarttā (rte)ibā ୧ । ନିବୃତ୍ତ କରାଇବା —
निवर्तन निवटाना 1. To dissuade.
(ପ୍ରବର୍ତ୍ତିଇବା — ବିପରୀତ) ୨ । ବାରଣ କରିବା —
2. To prevent.

୩ । ସ୍ଥାନ କରାଇବା—3. To cause to stop.

ଦେବେ ନ ପାରିଲେ ସେ ସ୍ନେହ ନିବର୍ତ୍ତାଇ ।
କୃଷ୍ଣସିଂହ, ମହାଭାରତ, ବନ ।

୪ । ଶାନ୍ତ କରାଇବା—
4 To assuage; to calm.

କହିଲେ ନଳଠାରୁ କ୍ରୋଧ ନିବର୍ତ୍ତାଇ ।
କୃଷ୍ଣସିଂହ, ମହାଭାରତ, ବନ ।

୫ । ଫେରାଇବା—5. To cause to come back.

ପ୍ରତଗ୍ରହରୁ ଯେଣୁ ନିବର୍ତ୍ତାଇ ମନ ।
କୃଷ୍ଣସିଂହ, ମହାଭାରତ, ବନ ।

**ନିବର୍ତ୍ତିତ**—ସଂ. ବିଣ.—(ନି+ବର୍ତ୍ତିତ)—୧ । ସ୍ଥାନ; ବିରତ; ଅନ୍ୟ-Nibarttita ଦ୍ୱାରା କୌଣସି କାର୍ଯ୍ୟରୁ ରହିତ—1. Stopped.
୨ । ପ୍ରତ୍ୟାବୃତ୍ତ—2. Returned.
୩ । ଅଟକା ଯାଇଥିବା—3. Restrained.
୪ । ନିବାରିତ—4. Prevented; dissuaded.

**ନିବର୍ତ୍ତିବା**—ଦେ. କି.—(ସଂ. ନି+ବୃତ୍ ଧାତୁ)—୧ । ନିବୃତ୍ତ ହେବା; Nibarttiba ସ୍ଥାନ ହେବା—1. To cease; to stop
निवर्त्ती **निबटना**

ନିବର୍ତ୍ତି ରହିଛନ୍ତି ବେନ ମୋ କହିବାର ।
କୃଷ୍ଣସିଂହ ମହାଭାରତ, ବନ ।

୨ । ପଶ୍ଚାତ୍ପଦ ହେବା—2. To fall back; to shrink.

ଭାବଲେ ରଣେ କି କୂଳପଣେ ନିବର୍ତ୍ତେ ନାହିଁ ଷଣ୍ଡିସ୍ ।
ଭଞ୍ଜ, ବୈଦେହୀଶବିଳାସ ।

୩ । ଶାନ୍ତ ହେବା—3. To become calm.

ଶବର ଦେହ ଭୂଷଣକ ଭସ୍ମ କଲେ,
ବ୍ୟାଧ ନାଶେ ସେକ୍ଷଣି ନିବର୍ତ୍ତି ସେ ଗଲେ । କୃଷ୍ଣସିଂହ, ମହାଭାରତ, ବନ ।

**ନିବର୍ହଣ**—ସଂ. ବି.—(ନି+ବର୍ହ ଧାତୁ=ବଧ କରିବା+ଭାବ. ଅନ)—Nibarhana ୧ । ମାରଣ; ବଧ—
2. Slaughter; killing.
୨ । ବିନାଶସାଧନ; ଉଚ୍ଛେଦସାଧନ—
2. Crushing; destruction; overthrow.
ବିଣ.—(+କର୍ତ୍ତୃ. ଅନ) ଉଚ୍ଛେଦକ—
1. Ruinous; crushing.
୨ । ବିନାଶକ—2. Destroying.

**ନିବର୍ହିତ**—ସଂ. ବିଣ.—(ନି+ବର୍ହ ଧାତୁ+କର୍ମ. ତ)—୧ । ଅପହୃତ—Nibarhita 1. Stolen; plundered.
୨ । ନିହତ—2. Killed; murdered.
୩ । ବିନଷ୍ଟ; ଉଚ୍ଛନ୍ନ—
3. Ruined; crushed; destroyed.

**ନିବଳ**—ଦେ. ବିଣ. ପୁଂ ଓ ସ୍ତ୍ରୀ—(ସଂ. ନିର୍ବଳ)—ବଳହୀନ—
Nibala Powerless; impotent.
निर्बल **निबर, निबल**
(ନିବଳୁଆ— ଅନ୍ୟରୂପ) [ନିବଳେ(ଳୋ)ଇ—ସ୍ତ୍ରୀ]

**ନିବସତି**—ସଂ. ବି. (ନି+ବସ୍ ଧାତୁ+ଅଧିକରଣେ. ଅତି)—ଗୃହ; Nibasati ବାସସ୍ଥାନ; ଆବାସ—Residence; dwelling; habitation.

**ନିବସଥ**—ସଂ. ବି. (ନି+ବସ୍ ଧାତୁ+ଅଧିକରଣେ. ଅଥ)—
Nibasatha ୧ । ଜନପଦ, ଗ୍ରାମ; ବସ୍ତି—1. Village.
୨ । ସୀମା, ସରହଦ (ହି. ଶ)—2. Boundary.

**ନିବସନ**—ସଂ. ବି.—(ନି+ବସ୍ ଧାତୁ=ବାସ କରିବା+ଅଧିକରଣେ. Nibasana ଅନ)—୧ । ନିବାସ; ଗୃହ—1. Dwelling.
୨ । (+ଭାବ. ଅନ)ବିଦେଶବାସ; ପ୍ରବାସ—2. Sojourn.
୩ । (+ବସ୍ ଧାତୁ=ଆଚ୍ଛାଦନ କରିବା+କରଣ. ଅନ) ପରିଚ୍ଛଦ; ବସ୍ତ୍ର; ପୋଷାକ—
3. Clothes; dress, garment.
୪ । (+ଭାବ. ଅନ) ବସ୍ତ୍ରାଦି ପରିଧାନ—
4. Putting on clothes; wearing.

**ନିବସିବା**—ଦେ ପଦ୍ୟ) (ସଂ. ନି+ବସ୍ ଧାତୁ)—୧ । ବାସକରିବା—
Nibasiba 1 To dwell.
निवसना **निबसना**

ଧର୍ମନିଷ୍ଠ ବିଜସୁତ ନିବସୁଣ ଥିଲେ ମହୀଁ ।
ବିଧାନାଥ, ଘାଳମୀଚିନ୍ତ ।

**ନିବହ**—ସଂ. ବି. (ନି+ବହ୍ ଧାତୁ+କର୍ମ. ଅ)—୧ । ସମୂହ; ରାଶି—
Nibaha 1. Collection; crowd; heap; multitude of.
୨ । (+କର୍ତ୍ତୃ. ଅ) ବାୟୁବିଶେଷ, ନାତି ପ୍ରଖର ବାୟୁ—
2. Name of a moderately high wind, moderate tempest.
[ ଦ୍ର—ଜ୍ୟୋତିଷଶାସ୍ତ୍ର ୭ ବାୟୁ ମଧ୍ୟରୁ ଏହା ଏକତମ । ଏହା ଖୁବ୍ ଜୋରରେ ବହେ ନାହିଁ; କିମ୍ବା ଖୁବ୍ ଧୀର ନୁହେଁ । ଯେଉଁ ବର୍ଷ ଜ୍ୟୋତିଷ ଗଣନାମତେ ଏ ବାୟୁ ପୃଥିବୀରେ ବହେ, ସେ ବର୍ଷ ସଂସାରରେ କେହି ସୁଖୀ ହୁଅନ୍ତି ନାହିଁ—ହି. ଶ.]

**ନିବହନ**—ଦେ. ବି. (ପଦ୍ୟ) ( ସଂ. ନିବହ )—ନିଧନ; ମାରଣ—
Nibahana Killing, murdering; slaughter.

ଜୟ ମ୍ଲେଚ୍ଛ ନିବହନେ ପରବଳ,
ମୋକ୍ଷ ଦେବା ପାଇଁ କରେ କରବାଳ । ପ୍ରାଚୀ ରସବାରିଧି

**ନିବାଡ଼**—ଦେ. ବିଣ. ( ସଂ. ନିବିଡ଼ )—୧ । ମଜବୁତ; ଦୃଢ—
Nibarda 1. Strong; firm.
निबेट

ଅସେ ଅସେ ଗର୍ଭ ଣ ହୋଇଛି ନବୀନ—ପ୍ରାଚୀ. ବୃନ୍ଦାବନଭୂଷଣଗୀତା ।

**अच्छा, निपा, निपट** ୨ । ଘନ—2. Thick set.
୩ । ଅତ୍ୟନ୍ତ; ଅତ୍ୟଧିକ—3. Excessive; great.

ଅବଲମ୍ବିକ କରି ଗରୁଡ ଗାଡ,
ଭଣ୍ଡଭରୁ ହେଲେ ଭସ୍ମ ନିବାଡ । କବିସୂର୍ଯ୍ୟ, କବିତା ।

୪ । ନିଶ୍ଚିତ—4 Ascertained.
୫ । ସୁସଜ୍ଜିତ; ରଚିତ—5. Arranged; arrayed; set in order.

ନିବାଡ ହୋଇଛି ମହା ନିଦ୍ୟର ମଣ୍ଡନ—ପ୍ରାଚୀ. ବୃନ୍ଦାବନଭୂଷଣ ଗୀତା

୬ । (ସଂ.ନିର୍ବାହିତ)ସୁସମ୍ପନ୍ନ—6. Complete; thorough (Howells).
୭ । ସୁନ୍ଦର—7. Beautiful; graceful.
निवड़ाई ବି—୧ । ସମାପନ—1. Completion.
**निबटारा** ୨ । ସମାପ୍ତି—2. Conclusion ( Howells ).
୩ । ରଚନା—3. Composition.
୪ । ସୁସମ୍ପନ୍ନତା—4. Thoroughness (Howells).

**ନିବାଢ଼ିବା**—ଦେ. କ୍ରି. ( ସ. ନିବର୍ଦ୍ଧନ, ପ୍ରା. ନିବଡ୍ଢନ )—
Nibārdibā ୧ । ଉଢ଼ିବା—1. To tighten.
निबड़ान ୨ । ଦୃଢ଼ କରିବା—2. To make firm.
**निवटाना** ୩ । ଟାଣ କରିବା—3. To strengthen.
୪ । ସମ୍ପନ୍ନ କରିବା; ସିଦ୍ଧ କରିବା—
4. To bring about; to complete; to do a work thoroughly, to accomplish.
୫ । ନିର୍ମାଣ କରିବା—5. To make; to construct.
ଉଚ୍ଚ ନୀଚ ସବୁ କ୍ରିଗୁଣ ଉଦ୍ଧ,
କାଯ୍ୟ ନିବାଡ଼ନ୍ତି ଓଁକାର ଧର । ପ୍ରାଚୀ ପରବେଗୀତା ।
୬ । ନିର୍ବାହ କରିବା; ଚଳାଇବା –6. To conduct.
ବନ୍ଧ ଅନ୍ତଣୀ ଅଛି ଆଡମ୍ବରେ,
ନିବାଢ଼ ଯାଚ ସାକ୍ଷସ ଗଲେ ଗଲେ । ଉକ୍ତ ବୈଦେସ୍ଖଣ ବିଳାସ ।

**ନିବାତ**—ସ. ବି.(ନି=ନିବୃତ୍ତ ହୋଇଅଛି+ବାତ=ବାୟୁ, ଯହିଁରୁ;ବହୁ-
Nibāta ବ୍ରୀହି)—୧ । ଯେଉଁ ସ୍ଥାନ ପବନର ଆଢ଼ୁଆଳରେ ଥାଏ—
1. A place sheltered from the wind.
୨ । ବାୟୁଶୂନ୍ୟ ସ୍ଥାନ—2. Airless place.
୩ । ବାୟୁ ନିଷ୍ଚଳ ଥିବା ଅବସ୍ଥା—
3. A calm (Howells); calmness (Apte).
୪ । ଦୃଢ଼ ବା ଅଭେଦ୍ୟ କବଚ—4 A strong or impenetrable armour.
୫ । ନିରାପଦ ସ୍ଥାନ—5. A place of security.
୬ । ଆଶ୍ରୟ ସ୍ଥାନ—6. A place of refuge; asylum.
୭ । ବାସସ୍ଥାନ—7. Residence; abode; dwelling.
ବିଣ.—୧ । ବାୟୁଶୂନ୍ୟ—1. Airless; vacuous.
୨ । ପବନର ଆଢ଼ୁଆଳ—2. Sheltered from the wind (Howells).
୩ । ଦୃଢ଼; ଘନ—3. Dense; firm.
୪ । ଅଭେଦ୍ୟ—4. Impenetrable.
୫ । ଅନାହତ—5. Unhurt; uninjured (Apte).
୬ । ଅପ୍ରତିବନ୍ଧ—6. Unobstructed (Apte).
୭ । ନିରାପଦ—7. Safe, secure (Apte).
୮ । କବଚ ଦ୍ୱାରା ସୁରକ୍ଷିତ—8. Well armed; accoutred in strong mail (Apte).

**ନିବାତ କବଚ**—ସ. ବି. ( ବହୁବ୍ରୀହି; ନିବାତ+କବଚ; ଯାହାର
Nibāta kabacha କବଚ ବା ସାଞ୍ଜୁ ଅଭେଦ୍ୟ )—
୧ । ଦୈତ୍ୟବିଶେଷ; ହିରଣ୍ୟକଶିପୁର ପୌତ୍ର; ପ୍ରହ୍ଲାଦର ପୁତ୍ର—1. Name of a demon; a grandson of Hiraṇyakaśipu.
୨ । ସମୁଦ୍ର ତୀରବାସୀ ମହାପରାକ୍ରମୀ ୩ କୋଟି ଅସୁର—
2. A collective name of 30 millions of mythological demons said to live in the seacoast.
ନିବାତ କବଚେ ଅଛନ୍ତି ତିନକୋଟି,
କେତେକ ମଲେ କେତେ ନ ଗଣି ଯୁଝନ୍ତି । କୃଷ୍ଣସିଂହ। ମହାଭାରତ ବନ ।

**ନିବାନ୍ୟା**—ସ. ବି. ସ୍ତ୍ରୀ—ଯେଉଁ ଗାଈର ବାଛୁରି ମରିଅଛି ଓ ଯାହାଠାରୁ
Nibānyā ଅନ୍ୟ ବାଛୁରି ସାହାଯ୍ୟରେ ଦୁଧ ଦୁହାଁ ଯାଉଥିଛି—
A cow whose calf is dead and which is milked by means of another calf (Apte.)

**ନିବାପ**—ସ. ବି. ( ନି+ବପ୍ ଧାତୁ+କର୍ମ. ଅ )—
Nibāpa ୧ । ପିତୃଲୋକଙ୍କ ଉଦ୍ଦେଶ୍ୟରେ ଦାନ—
1 A gift in honour of one's departed ancestors.
୨ । ପିତୃତର୍ପଣ—2 An oblation to the manes.
୩ । ଦାନ—3. Gift.

**ନିବାର**—ସ ବି. ( ନି+ବୃ ଧାତୁ=ଆଚ୍ଛାଦନ କରିବା+ଭାବ. ଅ)—
Nibāra ୧ । ନିଷେଧ; ବାରଣ; ମନା କରିବା—
1. Prohibitation; restriction.
୨ । ପ୍ରତିବନ୍ଧକ—
2. Obstruction; obstacle; hindrance.
୩ । ପ୍ରତିରୋଧ; ଅଟକାଇବା—
3. Restraint; hindering; checking.
୪ । ବାଧା ଦେବା—4. Resistance.
୫ । ନିରାକରଣ; ପ୍ରତିଷେଧ; ଆଡ଼ିବା—
5. Opposing; warding off.
୬ । ବନ୍ଦ କରିବା—6. Stopping; prevention.
୭ । ଦମନ—7. Controlling; check
କ୍ରୋଧ ହୋଇଲେ ବୃଦ୍ଧିରେ ନିବାର ଯେ କରେ ।
ତେଜସ୍ୱୀ ଯେ ତାକୁ ବୋଲନ୍ତି ବୁଧ ନରେ । କୃଷ୍ଣସିଂହ. ମହାଭାରତ ବନ ।

**ନିବାରକ**—ସ. ବିଣ. ପୁଂ. (ନି+ବୃ ଧାତୁ ଣିଚ+କର୍ତ୍ତୃ. ଅକ)—
Nibāraka ୧ । ଯେ ନିବାରଣ କରେ—
(ନିବାରିକା—ସ୍ତ୍ରୀ) 1. Prohibiting; preventing.
୨ । ବିରୋଧୀ—2. Opposing; resisting.
୩ । ପ୍ରତିବନ୍ଧକ—3. Obstructing.
୪ । ଯେ ଅଟକାଏ—4. Restraining.
୫ । ଯାହା ଦୂର କରେ—5. Removing.

**ନିବାରଣ**—ସ. ବି. (ନି+ବୃ ଧାତୁ ଣିଚ+ଭାବ. ଅନ)—
Nibāraṇa ନିବାର (ଦେଖ)—**Nibāra** (See)

**ନିବାରଣୀୟ**—ସ. ବିଣ. (ନି+ବୃ ଧାତୁ ଣିଚ+କର୍ମ. ଅନୀୟ)—
Nibāraṇiya ଯାହା ନିବାରଣ କରାଯାଇ ପାରେ; ନିବାରଣ
(ନିବାର୍ଯ୍ୟ—ଅନ୍ୟରୂପ) କରିବାର ଯୋଗ୍ୟ—Preventible; resistible; deserving to be checked

**ନିବାରିତ**—ସ. ବିଣ. (ନି+ବୃ ଧାତୁ ଣିଚ୍ ବାର ଧାତୁ+କର୍ମ. ତ)—
Nibārita ୧ । ପ୍ରତିଷିଦ୍ଧ; ନିଷିଦ୍ଧ—1 Prevented.
୨ । ବିରୁଦ୍ଧ—2. Resisted; opposed; obstructed.

**ନିବାରିବା**—ଦେ. (ପଦ୍ୟ) କ୍ରି. (ସ. ନିବାରଣ)—
Nibāribā ୧ । ନିବାରଣ କରିବା; ଦମନ କରିବା—
निबारा 1. To control; to check.
**निबारना** ଏ ଦୁଃଖ ସୁଖ ସମ କର, ଇନ୍ଦ୍ରିୟମାନଙ୍କୁ ନିବାରି ।
ଜଗନ୍ନାଥ. ଭାଗବତ ।

୨ । ନିଷେଧ କରିବା—2. To prohibit.
ଏଥିଅନ୍ତେ ଧୃଷ୍ଟଦ୍ୟୁମ୍ନ ମହାବୀର
ନିବାରିଲେକ ବାଦ୍ୟମାନ ସେ ସମର । କୃଷ୍ଣସିଂହ. ମହାଭାରତ ଆଦି ।
୩ । ଅଟକାଇବା; ପ୍ରତିରୋଧ କରିବା; ବାଧାଦେବା—
2. To restrain; to obstruct; to oppose.
ତେବେ ସବୁ ଯୋଦ୍ଧାମାନଙ୍କୁ ନିବାରିଲେ
କେହି ତାଙ୍କୁ କିଛି କରି ନ ପାରିଲେ । କୃଷ୍ଣସିଂହ. ମହାଭାରତ ଆଦି ।
୪ । ବିନାଶ କରିବା—4. To kill; to destory.
ବୋଲେ ଏହା ଦେବଙ୍କ ଦେବ ସକଳ ପର ପରମ ଶକ୍ତିସୁ ନିବାରି ।
ଉପେ. ବୈଦେହୀଶବିଳାସ ।

**ନିବାରି**—ସ. ବିଣ. (ନି+ବୃ ଧାତୁ+କର୍ତ୍ତୃ. ଇନ୍, ୧ମା. ୧ବ)—
Nibāri ଯେ ନିବାରଣ କରେ; ନିବାରଣକାରୀ—
(ନିବାରଣୀ—ସ୍ତ୍ରୀ) Preventing; checking; obstructing
ଦସ୍ୟୁ ବିପତ୍ତିରୁ ଦାନବ ନିବାରି । କୃଷ୍ଣସିଂହ ମହାଭାରତ ବନପର୍ବ ।

**ନିବାର୍ଯ୍ୟ**—ସ. ବିଣ. (ନି+ବୃ ଧାତୁ+କର୍ମ. ଯ)—ନିବାରଣୀୟ (ଦେଖ)
Nibārjya Nibāraṇiya (See)

**ନିବାର୍ଯ୍ୟମାଣ**—ସ. ବିଣ. ପୁଂ [ ନି+ବୃ ଧାତୁ ଣିଚ୍+କର୍ମ. ଶାନଚ୍
Nibārjyamāṇa (ମାନ) ]—ଯାହାକୁ ବାରଣ କରୁଅଛି—
(ନିବାର୍ଯ୍ୟମାଣା—ସ୍ତ୍ରୀ) Being prevented or checked.

**ନିବାସ**—ସ ବି.—( ନି+ବସ୍ ଧାତୁ=ବାସକରିବା+ଅଧିକରଣ. ଅ )
Nibāsa ୧ । ଗୃହ; ବାସସ୍ଥାନ—1. House, dwelling place; residence; abode.
୨ । ଆଧାର—2. Receptacle.
୩ । (+ଭାବ. ଅ)—ବିଦେଶ ବାସ; ପ୍ରବାସ—
3. Sojourn.
୪ । କୌଣସିସ୍ଥାନରେ ରାତ୍ରି ଯାପନ—
4. Passing the night (Apte).
୫ । ଆଶ୍ରୟ—
5. Refuge; asylum; support.
୬ । କୌଣସିସ୍ଥାନରେ ବାସ କରିବା—
6. Residing; living.
୭ । (ବସ ଧାତୁ=ପିନ୍ଧିବା+କର୍ମ ଅ) ପୋଷାକ; ପରିଚ୍ଛଦ—
7. Dress; cloth; garment (Apte).
୮ । ରାତ୍ରିରେ ରହିବା ସ୍ଥାନ—
8 Night quarters (Apte).

**ନିବାସୀ**—ସ. ବିଣ. ପୁଂ. (ନି+ବସ୍ ଧାତୁ+ଇନ୍; ନିବାସିନ୍; ୧ମା.
Nibāsi ୧ବ)—୧ । ଯେ ବାସ କରେ—
(ନିବାସିନୀ—ସ୍ତ୍ରୀ) 1. Dwelling; residing.
୨ । ପରିଧାନକାରୀ—2 Wearing; dressed or clothed in.
ବି—ବାସିନ୍ଦା ବ୍ୟକ୍ତି—A resident; an inhabitant.

**ନିବିଡ଼**—ସ ବିଣ.(ନି=ନାହିଁ+ବିଲ=ଛିଦ୍ର, ଯାହାରେ ଯହିଁରେ; ଲ ସ୍ଥାନରେ
Nibirḍa ଡ଼ ଆଗମ)—୧ । ସାନ୍ଦ୍ର; ଘନ; ନୀରନ୍ଧ୍ର; ନିବାଡ଼—
ନିବିଡ଼ତା } ବିଶେଷ୍ୟ 1. Impervious; thick set; close-set; compact.
ନିବିଡ଼ତ୍ୱ }
୨ । ଦୁର୍ଭେଦ୍ୟ; ଗହନ—2. Impenetrable; dense.
୩ । ଦୃଢ଼—3. Strong; tight; firm; fast.
ରମଣୀସୁ ଦେମଙ୍କୁ ସୁଦୃଶାତେ,
ରଖିଲୁ କେତେ ନିବଡେ ମସାରେ । କବିସୂର୍ଯ୍ୟ. କଶୋରଚନ୍ଦ୍ର. ର. ଗୀତ ।
୪ । ସ୍ଥୂଳ; ମୋଟା—4 Thick; coarse; gross.
୫ । ବକ୍ର ନାସିକ; ବଙ୍କା ନାକୁଆ—
5. Having a crooked nose.
୬ । ବୃହତ୍—6 Bulky; large.
୭ । ଚେପଟା ନାକ; ନତ ନାସିକ ( ହୁ. ଶ. )—
7. Flat-nosed; snub-nosed.

**ନିବିଡ଼ ଅନ୍ଧକାର**—ସ. ବି —ଙ୍କିଟ କଟିଆ ଅନ୍ଧାର; ଘନ ଅନ୍ଧକାର—
Nibirḍa andhakāra Deep darkness.
(ନିବିଡାନ୍ଧକାର—ସନ୍ଧିନିଷ୍ପନ୍ନ ରୂପ)

**ନିବିଡ଼ କାନନ**—ସ. ବି.—ଗହନ ବନ—Dense forest.
Nibirḍa kānana (ନିବିଡ଼ାରଣ୍ୟ—ଅନ୍ୟରୂପ)

**ନିବିଷ୍ଟ**—ସ. ବି. (ନି+ବିଶ୍ ଧାତୁ=ପ୍ରବେଶ କରିବା+କର୍ତ୍ତୃ. ତ)—
Nibishṭa ୧ । ପ୍ରବିଷ୍ଟ; ଯାହା ଭିତରକୁ ପଶି ଅଛି—
(ନିବିଷ୍ଟା—ସ୍ତ୍ରୀ) 1. Entered; thrust; gone into
(ନିବିଷ୍ଟତା—ବି) ୨ । (କାର୍ଯ୍ୟରେ) ଲାଗିଥିବା; ଅଭିନିବିଷ୍ଟ—
2. Engaged in; devoted to.
୩ । ସଲଗ୍ନ—3. Joined; attached; fixed.
୪ । ବସିଥିବା; ଉପବିଷ୍ଟ; ଅଧିରୂଢ଼—
4 Seated; sitting upon; installed on.
୫ । ପ୍ରାପ୍ତ; ଲବ୍ଧ—
5. Gained; obtained; acquired; got.
୬ । ମନୋଯୋଗୀ; ଏକାଗ୍ର—
5. Concentrated; intent; attentive.
୭ । ନିମଜ୍ଜିତ—7. Plunged into.
୮ । ଅସ୍ଥାୟୀଭାବରେ ରହିଥିବା—
8. Encamped (Apte).
୯ । ବଶୀକୃତ—9. Subdued; controlled (Apte).
୧୦ । ବ୍ୟବସ୍ଥିତ—10. Arranged.

**ନିବିଷ୍ଟ ଚିତ୍ତ**—ସ. ବି. ପୁଂ (କର୍ମଧା. ନିବିଷ୍ଟ+ଚିତ୍ତ)—ଏକାଗ୍ର ଚିତ୍ତ—
Nibishṭa chitta Concentrated attention.
(ନିବିଷ୍ଟଚିତ୍ତା—ସ୍ତ୍ରୀ) ବିଣ. ପୁଂ. (ବହୁବ୍ରୀହି) ଦତ୍ତମନାଃ—
Having the heart set on any matter; with concentrated mind.

**ନିବିଷ୍ଟତା**—ସ. ବି.—ଏକାଗ୍ରତା; ମନୋଯୋଗ—
Nibishṭatā Concentration; close attention.

**ନିଷାଭ**—ସ. ବି.—(ନି=ଅଧଃ+ବି ଉପସର୍ଗ+ଇ ଧାତୁ=ଗମନ
Nibita କରିବା+କର୍ତ୍ତୃ ତ)—୧ । କଣ୍ଠ ଲମ୍ବିତ ଯଜ୍ଞସୂତ୍ର; କଣ୍ଠରେ ମାଳ ପରି ଲମ୍ବି ଥିବା ବ୍ରାହ୍ମଣର ପଇତା—
1. A Brāhmaṇa's sacred thread suspended from the neck like a garland.

୨ । (ନି+ବେୟ ଧାତୁ=ଆଚ୍ଛାଦନ କରିବା+କରଣେ. ତ) ଉତ୍ତରୀୟ; ଚଦର—2. A sheet.
୩ । ଓଢ଼ଣୀ—3. A veil.
୪ । ଆଚ୍ଛାଦନ ବସ୍ତ୍ର—4. A cover; a wrapper.
୫ । ଘୋଡ଼—5. A mantle.
୬ । (+ଭାବ. ତ) ପଇତାକୁ ବେକରେ ମାଳା ପରି ଲମ୍ବାଇବା—6. Wearing the sacred thread round the neck, making it hang down like a garland (Apte).

ବିଣ.—୧ । (+କର୍ମ. ତ) ଆଚ୍ଛାଦିତ—1. Covered.
୨ । ମାଳାକାରରେ କଣ୍ଠରୁ ଲମ୍ବିତ—2. Suspended from the neck like a garland.

**ନିସାଗୀ**—ସଂ. ବିଣ. ପୁଂ (ନିବୀତ+ଅସ୍ତି ଅର୍ଥରେ ଇନ୍; ୧ମା. ୧ବ.)—
Nibiti ଯେଉଁ ଲୋକ ପଇତାକୁ ମାଳା ପରି ବେକରୁ ଲମ୍ବାଇ ଥାଏ—Wearing the sacred thread like a garland.
[ଦ୍ର—ତର୍ପଣ ଓ ଶ୍ରାଦ୍ଧାଦିରେ ଋଷିମାନଙ୍କ ଉଦ୍ଦେଶ୍ୟରେ ତର୍ପଣ କରିବା ସମୟରେ ପଇତାକୁ 'ନିବୀତ' କରିବାକୁ ହୁଏ, ଅର୍ଥାତ୍ ମାଳ ପରି ବେକରେ ଲମ୍ବାଇବାକୁ ହୁଏ ।]

**ନିବୁଜ୍**—ଦେ. ବିଣ. (ସଂ. ନିବଡ଼)—୧ । ନିବିଡ଼; ଯହିଁରେ ଫାଙ୍କ ନ
Nibuj ଥାଏ—1 Dense; close; without vent or opening.
୨ । ଯେଉଁ ସ୍ଥାନର ଚାରିଆଡ଼େ ଘନ ବା ସାନ୍ଦ୍ର ହୋଇ ବାଡ଼ ବୁଜା ଯାଇ ଥାଏ—2. (a place) Enclosed with thick-set fencing.

**ନିବୃତ**—ସଂ. ବିଣ (ନି+ବୃ ଧାତୁ=ଆବରଣ କରିବା+କର୍ମ. ତ)—
Nibruta ୧ । ଆବୃତ; ଆଚ୍ଛାଦିତ—1. Covered.
୨ । ପରିବେଷ୍ଟିତ—2 Surrounded; enclosed.

ବି—୧ । (+କରଣ ତ) ଓଢ଼ଣା—1. Veil.
୨ । ଘୋଡ଼—2. Mantle.
୩ । ଉତ୍ତରୀୟ ବସ୍ତ୍ର—3. A sheet; scarf.

**ନିବୃତ୍ତ**—ସଂ. ବିଣ (ନି+ବୃତ ଧାତୁ=ଶାନ୍ତ ହେବା+କର୍ତ୍ତୃ. ତ)—
Nibrutta ୧ । ବିରତ; ଶାନ୍ତ—1. Ceased; desisted; discontinued.
(ନିବୃତ୍ତା—ସ୍ତ୍ରୀ)
(ପ୍ରବୃତ୍ତ—ବିପରୀତ) ୨ । ଶମିତ—2. Appeased; assuaged; moderated.
୩ । ସଂଶୋଧିତ—3. Corrected; reformed.
୪ । ବନ୍ଦ କରି ଯାଇଥିବା—4. Stopped.
୫ । ଦମିତ—5. Checked; controlled; subdued.
୬ । ବାଧାପ୍ରାପ୍ତ—6. Obstructed; hindered.
୭ । ପ୍ରତ୍ୟାବୃତ୍ତ—7. Returned; turned back.
୮ । ସମାପ୍ତ—8. Finished; completed.
୯ । ଗତ; ଚଳିତ—9. Gone; departed.
୧୦ । ସଂସାର ବିଷୟରେ ବିରକ୍ତ; ଉଦାସୀନ—10. Abstaining from worldly concerns; abstracted from worldly affairs (Apte).
୧୧ । ଅନୁଚିତ କର୍ମ ପାଇଁ ଅସନ୍ତୁଷ୍ଟ; ଅନୁତପ୍ତ—11. Repenting of improper conduct (Apte).
୧୨ । ଅନ୍ତର୍ହିତ—12. Disappearing; vanished (Apte)

ବି—(+ଭାବ. ତ)—୧ । ନିବୃତ୍ତି—1. Cessation; stoppage.
୨ । ପ୍ରତ୍ୟାବର୍ତ୍ତନ—2. Return (Apte).
୩ । ରିପୁଗଣର ପରାକ୍ରମରୁ ମୁକ୍ତ ମନ—3. A mind free from the influence of passions (Apte).

**ନିବୃତ୍ତ କରା(ରେ)ଇବା**—ଦେ. କ୍ରି—୧ । ଶାନ୍ତ କରାଇବା;
Nibrutta karā(re)ibā ନିବର୍ତ୍ତାଇବା; ବନ୍ଦକରିବା; ଫେରାଇବା—1. To stop; to check; to bring back.
निवृत्त करवाना
**निवटाना**
୨ । ଶାନ୍ତ କରାଇବା—2. To appease; to moderate.

**ନିବୃତ୍ତ କାରଣ**—ସଂ. ବିଣ (ବହୁବ୍ରୀହି; ନିବୃତ୍ତ+କାରଣ)—
Nibrutta kārana ୧ । ନିଷ୍ପ୍ରୟୋଜନ—1 Needless.
୨ । ନୀଚ ପ୍ରବୃତ୍ତି ବିହୀନ—2. Without any mean motive.
(ନିବୃତ୍ତ କାରଣା—ସ୍ତ୍ରୀ) ସଂ. ବି. ପୁଂ—୧ । ଧର୍ମପ୍ରାଣ ବ୍ୟକ୍ତି—1 A virtuous man (Apte)
୨ । ସଂସାର କାମନା ବିରହିତ ବ୍ୟକ୍ତି—2. A man uninfluenced by worldly desires (Apte)

**ନିବୃତ୍ତ କୋପ**—ସଂ. ବିଣ. ପୁଂ (ବହୁବ୍ରୀହି; ନିବୃତ୍ତ+କୋପ)—
Nibrutta kopa ୧ । ସଦୟ—1. Kind.
(ନିବୃତ୍ତକୋପା—ସ୍ତ୍ରୀ) ୨ । ପ୍ରସନ୍ନ—2. Gratified; pleased; gracious.
୩ । ଯାହାର ରାଗ ଥଣ୍ଡା ପଡ଼ିଅଛି—3. With one's anger abated; appeased.
୪ । ଅନୁକୂଳ—4. Favourable.

**ନିବୃତ୍ତ ପାପ**—ସଂ. ବିଣ. (ପୁଂ) (ବହୁବ୍ରୀହି; ନିବୃତ୍ତ+ପାପ)—
Nibrutta pāpa ଗତପାପ; ଶୁଦ୍ଧୀକୃତ—Purged of sin; purified.
(ନିବୃତ୍ତ ପାପା—ସ୍ତ୍ରୀ)

**ନିବୃତ୍ତ ବୃତ୍ତି**—ସଂ. ବିଣ. (ପୁଂ ଓ ସ୍ତ୍ରୀ) (ବହୁବ୍ରୀହି; ନିବୃତ୍ତ+ବୃତ୍ତି)—
Nibrutta brutti ଯେ ଆପଣାର ବୃତ୍ତି ବା ବ୍ୟବସାୟ ଛାଡ଼ିଅଛି; ବେକାର—Having given up one's trade or profession; quitting any practice or occupation.

**ନିବୃତ୍ତ ମାଂସ**—ସଂ. ବିଣ. (ପୁଂ) (ବହୁବ୍ରୀହି; ନିବୃତ୍ତ+ମାଂସ)—ଯେ
Nibrutta māmsa ମାଂସାହାର ତ୍ୟାଗ କରି ଅଛି; ନିରାମିଷାଶୀ—One who has abstained from eating meat.
(ନିବୃତ୍ତ ମାଂସା—ସ୍ତ୍ରୀ)

**ନିବୃତ୍ତ ରାଗ**—ସଂ. ବିଣ. ପୁଂ. ( ବହୁବ୍ରୀହି; ନିବୃତ୍ତ+ରାଗ )—
Nibrutta rāga ବୀତରାଗ—Having one's passions subdued.
( ନିବୃତ୍ତରାଗା —ସ୍ତ୍ରୀ )

**ନିବୃତ୍ତ ହେବା**—ଦେ. କ୍ରି—ଶାନ୍ତ ହେବା—
Nibrutta hebā To desist; to cease.

**ନିବୃତ୍ତାତ୍ମା**—ସଂ. ବିଣ. ( ବହୁବ୍ରୀହି; ନିବୃତ୍ତ+ଆତ୍ମନ୍; ୧ମା. ୧ବ)—
Nibruttātmā ୧ । ପରାଙ୍ମୁଖ—1. Reluctant.
୨ । ବିଷୟ ବିରକ୍ତ; ବୈରାଗୀ—
2. Retired from worldly concerns.
ବି.—ବିଷ୍ଣୁଙ୍କ ନାମ—A name of Bishṇu.

**ନିବୃତ୍ତି**—ସଂ. ବି. ( ନି+ବୃତ୍ ଧାତୁ+ଭାବ. ତି )—
Nibrutti ୧ । ବିରତି; ଶାନ୍ତି—1. Cessation; stoppage.
( ପ୍ରବୃତ୍ତି—ବିପରୀତ ) ୨ । ବିଶ୍ରାମ—2. Repose; rest.
୩ । ଉପଶମ, ଶାନ୍ତଭାବ ଧାରଣ—3. Relaxation; appeasement.
୪ । ବନ୍ଦ ହେବା—4. Suspension; abstaining from; abolition; discontinuance.
୫ । କର୍ମରୁ ବିରତି—5. Inaction; inactivity.
୬ । ସମାପନ; ନିଷ୍ପତ୍ତି—6 Finish; completion; termination; final disposal.
୭ । ଅସ୍ୱୀକାର—7. Denial; refusal.
୮ । ଅମତ—8. Dissent.
୯ । ସାଂସାରିକ କାର୍ଯ୍ୟରୁ ବିରତି, ବିଷୟ ବୈରାଗ୍ୟ—
9. Retirement from worldly concerns; cessation of worldly ties.
୧୦ । ପ୍ରତ୍ୟାବର୍ତ୍ତନ; ଫେରି ଆସିବା—
10. Return; coming back.
୧୧ । ଅନ୍ତର୍ଦ୍ଧାନ—11. Disappearance; vanishing (Apte).
୧୨ । କୌଣସି କର୍ମର ତ୍ୟାଗ—12. Leaving off; desisting from; resignation.
୧୩ । ମୋକ୍ଷ; ମୁକ୍ତି—13. Beatitude (Apte).
୧୪ । ନିବାରଣ—14. Prevention; (Apte).
୧୫ । ( ନ୍ୟାୟ ମତରେ ) ଯତ୍ନ ବିଶେଷ—
15. (Logic) A kind of effort.
୧୬ । ମତ୍ସ୍ୟ ଦେଶ ( ପ୍ରବୃଦ୍ଧବାଦ )—
16. The name of an ancient kingdom of India.

**ନିବେଦ**—ସଂ ବି. ( ନି+ବିଦ୍ ଧାତୁ. ଣିଚ୍ ବେଦ. ଧାତୁ=ଜଣାଇବା +ଭାବ. ଅ )—ନିବେଦନ ( ଦେଖ )—
Nibeda Nibedana (See);
ମନ ବଚନ ତା ଚରଣେ,
ନିବେଦ କରି ଅନୁକ୍ଷଣେ । କଲ୍ପ. ଲତା ।

**ନିବେଦକ**—ସଂ. ବିଣ. ପୁଂ. ( ନି+ବିଦ. ଧାତୁ ଣିଚ+କର୍ତ୍ତୃ. ଅକ )—
Nibedaka ୧ । ଦେବତାଙ୍କୁ ଭୋଗ ଅର୍ପଣକାରୀ—
( ନିବେଦିକା—ସ୍ତ୍ରୀ ) 1. One who offers 'Bhoga' or offering to a Deity.
୨ । ନିବେଦନକାରୀ; ଦରଖାସ୍ତକାରୀ—
2. Soliciting; applying; petitioning.
୩ । ଜ୍ଞାପକ—3. Informing; communicating
[ ଦ୍ର—ଏଥିର ସାଙ୍କେତିକ । ନି । ପ୍ରବନ୍ଧରେ ଲେଖାଯାଏ ଯଥା—। ନି । ଅମୁକ ପତ୍ରଲେଖକ । ]

**ନିବେଦନ**—ସଂ. ବି. (ନି+ବିଦ୍. ଧାତୁ. ଣିଚ ବେଦ ଧାତୁ=ଜଣାଇବା+ଭାବ. ଅନ )—୧ । ଜଣାଇବା; ଜ୍ଞାପନ; ବିଜ୍ଞାପନ—
Nibedana 1. Giving of information; reporting.
୨ । ଭୋଗ ବା ପୂଜା କରିବା—2. Offering; oblation.
୩ । ସମର୍ପଣ—3. Entrusting; delivering.
୪ । କଥନ; ବର୍ଣ୍ଣନ—4 Describing.
୫ । ପ୍ରାର୍ଥନା; ସବିନୟ ଅନୁରୋଧ—
5. Humble request,
୬ । ଜଣାଣ—6. Prayer, soliciting,
୭ । ଆବେଦନ; ଦରଖାସ୍ତ—
7 Application; petition; representation.
୮ । ଉତ୍ସର୍ଗ କରିବା—8. Dedication.
[ ଦ୍ର—ପତ୍ରାଦିରେ ନିବେଦନର ସାଙ୍କେତିକ । ନି । ଲେଖାଯାଏ । ଯଥା, । ନି । ଉ କାରଣ ଏହିକ ।]

**ନିବେଦନ କରିବା**—ଦେ. କ୍ରି—୧ । (ଭୋଗାଦି ଦେବତାଙ୍କୁ) ସମର୍ପଣ କରିବା—1. To offer.
Nibedana karibā
নিবেদন করা ୨ । ଦରଖାସ୍ତ କରିବା—2 To petition.
**निवेदनकरना** ୩ । ପ୍ରାର୍ଥନା କରିବା—3. To pray.
୪ । (କୌଣସି ବିଷୟ) ଜଣାଇବା; ଜ୍ଞାପନ କରିବା—
4. To inform; to report; to represent.

**ନିବେଦନ ପତ୍ର**—ସଂ ବି—ଯେଉଁ ପତ୍ର ବା କାଗଜ ପ୍ରଭୃତିରେ ପ୍ରାର୍ଥନା ଲେଖା ହୋଇ ଥାଏ—
Nibedana patra Written application; petition.

**ନିବେଦନା**—ଦେ. ବି. ( ପ୍ରାଚୀନ ପଦ୍ୟ)—ନିବେଦନ (ଦେଖ)
Nibedanā Nibedana ( See )
ବେଦନା ନିବେଦନା କଲେ ଯେତେକ
ବେଦ ପରମେ ହେବ କର୍ଣ୍ଣ ପୁସ୍ତକ ଯେ । ଉଷ୍ଣ. ବୈଦେହୀଶବିଳାସ ।

**ନିବେଦନୀୟ**—ସଂ. ବିଣ ( ନି+ବିଦ୍ ଧାତୁ ଣିଜନ୍ତ ବେଦ ଧାତୁ+କର୍ମ ଅନୀୟ )—୧ । ଜ୍ଞାପନୀୟ—1. Reportable.
Nibedaniya
୨ । ନିବେଦନ କରିବା ଯୋଗ୍ୟ; ସମର୍ପଣୀୟ (ବିଷୟ)—
2 Fit to be offered.
୩ । ଯାହା ଜଣାଇବାକୁ ହେବ—
3. What is to be reported.

**ନିବେଦିତ**—ସଂ. ବିଣ. ( ନି+ବିଦ୍ ଧାତୁ ଣିଚ+କର୍ମ. ତ )—
Nibedita ୧ । ବିଜ୍ଞାପିତ—1. Reported; represented; made known.

୨ । ସମର୍ପିତ—2. Offered; delivered.
୩ । ପ୍ରକାଶିତ; କଥିତ—3. Announced; stated.
୪ । ପ୍ରାର୍ଥିତ—4. Solicited.
୫ । ଅନୁରୁଦ୍ଧ—5. Requested; entreated.

**ନିବେଦିବା**—ଦେ. କ୍ରି (ପଦ୍ୟ)—ନିବେଦନ କରିବା ( ଦେଖ )
Nibedibā — Nibedana karibā ( See )
କଣ୍ଠିବ୍ୟର ଅନୁରୋଧେ ନିବେଦିଲି ସବୁ । ନନ୍ଦକିଶୋର, ସୀତାବନବାସ ।

**ନିବେଦ୍ୟ**—ସ. ବିଣ ( ନି+ବଦ୍ ଧାତୁ ଣିଚ ବେଦି ଧାତୁ+କର୍ମ. ଯ )—
Nibedya ନିବେଦନୀୟ ( ଦେଖ )—Nibedanīya ( See )
ସ. ବି—ଦେବତାଙ୍କୁ ଭୋଗ ଅର୍ପଣ, ନୈବେଦ୍ୟ—
Offering of food to a Deity (Apte).

**ନିବେଶ**—ସ ବି (ନି+ବିଶ୍ ଧାତୁ=ପ୍ରବେଶ କରିବା+ଭାବ. ଅ)—
Nibeśa ୧ । ପ୍ରବେଶ—1. The entering into a thing; entry.
୨ । ସଜ୍ଜୀକରଣ; ବିନ୍ୟାସ—
2. Arrangement; array; equipment.
୩ । ଉପବେଶନ—3. Sitting.
୪ । ଲିଖନ; ଲେଖିବା—
4. Insertion; entering in a book.
୫ । ଅଭିନିବେଶ; ମନୋଯୋଗ—
5. Attention; concentration of mind.
୬ । ଏକାଗ୍ରତା—6. Devotion; devotedness to a pursuit.
୭ । ସୈନ୍ୟବିନ୍ୟାସ—7. Battle array; military array.
୮ । ଔତ୍ସୁକ୍ୟ; ବ୍ୟଗ୍ରତା—8. Earnestness.
୯ । ସମର୍ପଣ—9 Offering.
୧୦ । (+ଅଧିକରଣେ. ଅ) ତମ୍ବୁ, ଶିବିର; ଡେରା—
10 Camp; halting place, encampment.
୧୧ । ସ୍ଥାନ—11 Place; position.
୧୨ । ବିବାହ—12. Marriage
୧୩ । ଯୁଦ୍ଧ—13. Fight
୧୪ । (+କରଣ. ଅ)—ପ୍ରବେଶଦ୍ୱାର
14. Entrance.
୧୫ । ନକଲ; ପ୍ରତିଲିପି—
15. Impression; copy (Apte).
୧୬ । ଗୃହ; ଆବାସ—16. House; abode ( Apte ).
୧୭ । ଅଳଙ୍କାର—
17. Ornament; decoration (Apte).
୧୮ । ନଗରାଦିର ପ୍ରତିଷ୍ଠା—
18. Founding of a town (Apte).
୧୯ । ପରିସର—
19. Expanse; contour (of the breast) (Apte)

ଦେ. ବିଣ. ( ପ୍ରାଚୀନ ପ୍ରୟୋଗ )—ବ୍ୟଗ୍ର—
ପୁଣି କୁଞ୍ଜେ ତାପ ପାଇ ପୁଣି ଶଯ୍ୟା ଅତରଇ
ପୁଣି ହିଁ ପର୍ଯ୍ୟା ଆକୁଳେ ଅତ ନିବେଶେ—ଗ୍ରାଚୀ. ରସବାରିଧି ।

**ନିବେଶନ**—ସ ବି. ( ନି+ବିଶ୍ ଧାତୁ ଣିଚ ବେଶି ଧାତୁ+ଅଧିକରଣେ.
Nibeśana ଅନ )—
୧ । ଗୃହ; ନିବାସ—1. House; residence; abode.
୨ । ବସିବା ସ୍ଥାନ—2. Seat.
୩ । ନଗର—3. Town; city.
୪ । (+କରଣେ. ଅନ) ପ୍ରବେଶ ଦ୍ୱାର—4. Entrance.
୫ । ( +ଭାବ. ଅନ ) ବିନ୍ୟାସକରଣ—
5 Arrangement; array.
୬ । ହିସାବ ଚଢ଼ାଇବା, ଲେଖି ରଖିବା—
6 Entering into account; inscribing.
୭ । ଉପବେଶନ—7. Sitting.
୮ । ( ନି+ବିଶ୍ ଧାତୁ+ଭାବ ଅନ )
ସ୍ଥାପନ—8. Placing; fixing.
ମଧ୍ୟ କର ନିବେଶନ ଧର୍ଯ୍ୟ ଶୋଷିବା ସେନ
ବରଙ୍ଗ କେଶ ବସନ କେତେ ପ୍ରସନ୍ନ—ଭକ୍ତ, ପ୍ରେମସୁଧାନିଧି ।
୯ । ସଙ୍କ୍ରମଣ—9. Passing by.
୧୦ । କିଛିକାଳ ପାଇଁ ବାସ କରିବା—
10 Halting; encamping (Apte).
୧୧ । ବସା, ଡେରା—11. Lodgings; camp.
୧୨ । ନୀଡ଼—12. Nest.

**ନିବେଶନାର୍ହ**—ସ. ବିଣ. ( ନିବେଶନ+ଅର୍ହ ଧାତୁ+କର୍ତ୍ତୃ. ଅ)—
Nibeśanārha ୧ । ନିବେଶ କରିବାର ଯୋଗ୍ୟ—1. Fit to be
(ନିବେଶନୀୟ—ଅନ୍ୟରୂପ) entered, engaged in, inserted, placed or fixed
୨ । ମନୋଯୋଗ କରିବା ଯୋଗ୍ୟ—
2. Deserving attention.

**ନିବେଶନୀ**—ସ. ବି. ( ନି+ବିଶ୍ ଧାତୁ. ଣିଚ୍+ଅଧିକରଣ ଅନ+
Nibeśanī ସ୍ତ୍ରୀ. ଈ )—ପୃଥିବୀ—The earth (Apte).

**ନିବେଶୟ**—ସ. କ୍ରି. (ନି+ବିଶ୍ ଧାତୁ, ଅନୁଜ୍ଞା; ୨ୟ ପୁ. ୧ବ; ସଂସ୍କୃତରୁ
Nibeśaya ଅନୁକୃତ )—ସ୍ଥାପିତ କର—Do place.
ମମ ହୃଦେ ନିବେଶୟ କୁଚ କୁମ୍ଭ ବେନି—ପ୍ରାଚୀ, ରସବାରିଧି ।

**ନିବେଶିତ**—ସ. ବିଣ. ( ନି+ବିଶ୍ ଧାତୁ ଣିଚ. ବେଶି ଧାତୁ=ପ୍ରବେଶ
Nibeśita କରାଇବା+କର୍ମ. ତ )—
୧ । ସଂସ୍ଥାପିତ—1. Placed; fixed.
୨ । ବିନ୍ୟସ୍ତ—2. Arranged; arrayed.
୩ । ପ୍ରବେଶିତ—3. Thrust into; thrown into.
୪ । ପ୍ରେରିତ—4. Sent.
୫ । ଲେଖା ଯାଇଥିବା—5. Inscribed; wirtten.
୬ । ସଙ୍କ୍ରାମିତ—
6. Passed; made to come in contact.
୭ । ଏକାଗ୍ରଭାବରେ ଲାଗିପଡ଼ିଥିବା—
7. Devoted to; bent upon.

୮ । ବିଜ୍ଞାପିତ—3. Communicated

**ନିବେଶିବା**—ଦେ. ( ପଦ୍ୟ ) କ୍ରି. ( ନି+ବିଶ୍ ଧାତୁ ଣିଚ ) —
Nibesiba ୧ । ପୂରାଇବା—1 To thrust.
निवेशना
ସେହି ଅସ୍ତ୍ରକୁ ଧନୁ ମଧ୍ୟରେ ନିବେଶି – କୃଷ୍ଣସିଂହ, ମହାଭାରତ, ବନ ।

୨ । ସ୍ଥାପନ କରିବା; ରଖିବା—
2 To place; to set
ଚାହିଁରେ ମନ କେଣେ ଏକା ନିବେଶିଲେ—କୃଷ୍ଣସିଂହ, ମହାଭାରତ ବନ ।

୩ । ନିୟୋଜିତ କରିବା—3. To apply.
ପୁଣି ବସଇ ପଦ୍ମ ପରେ, ଚିତ୍ତ ନିବେଶଇ ଶୂନ୍ୟରେ—
ଭୂପତି. ପ୍ରେମପଞ୍ଚାମୃତ ।

୪ । ଅର୍ପଣ କରିବା—4 To entrust.
ବୃଦ୍ଧତା ପ୍ରାପ୍ତିଲେ ଧରଣୀ, ପୁତ୍ରେ ନିବେଶି ନୃପମଣି—
ଜଗନ୍ନାଥ, ଭାଗବତ ।

**ନିବେଶ୍ୟ**—ସଂ. ବିଣ ( ନି+ବିଶ୍ ଧାତୁ ଣିଚ+କର୍ମ୍ମ. ଯ )—
Nibesya ନିବେଶନାର୍ହ ( ଦେଖ ) —Nibesanārha (See)

**ନିବେଷ୍ଟ**—ସଂ. ବି—ଯେଉଁ ଲୁଗାରେ କୌଣସି ବସ୍ତୁ ଘୋଡ଼ାଯାଏ ( ହି. Nibeshta ଶ. )—Covering cloth.

**ନିବେଷ୍ୟ**—ସଂ. ବି —୧ । ବ୍ୟାପ୍ତି ( ହି. ଶବ୍ଦସାଗର ) —
Nibeshya 1. Expanse.
୨ । ବରଫରୁ ଉତ୍ପନ୍ନ ଜଳ ( ହି. ଶ. )—
2. Water got from ice.
୩ । ଜଳସ୍ତମ୍ଭ ( ହି. ଶ. )—3. Waterspout.

**ନିବ୍ୟୂଢ଼**—ସଂ. ବି. ( ନି+ବି+ବହ୍ ଧାତୁ =ଶ୍ରେଣୀବଦ୍ଧ କରିବା+ Nibyūrdha ଭାବ. କ )— ୧ । ଅଭିନିବେଶ—
1. Close attention
୨ । ଅଧ୍ୟବସାୟ—2. Observance.

**ନିଭ**—ସଂ. ବିଣ. ପୁଂ ( ନି+ଭା ଧାତୁ =ଦୀପ୍ତି ପାଇବା+କର୍ତ୍ତୃ. ଅ )—
Nibha ତୁଲ୍ୟ; ସଦୃଶ; ସମାନ; ପରି—
( ନିଭା—ସ୍ତ୍ରୀ ) Resembling; like; similar.
[ ଦ୍ର—ଏହି ଶବ୍ଦ ଅନ୍ୟ ଶବ୍ଦ ପରେ ବ୍ୟବହୃତ ହୁଏ । ଯଥା—ଦୁଗ୍ଧଫେନନିଭ, ପୂର୍ଣ୍ଣଚନ୍ଦ୍ରନିଭାନନା । ]
ବି—୧ । ( +କରଣେ. ଅ ) ପ୍ରକାଶ—
1. Display; manifestation.
୨ । ତେଳେବ୍ୟ—2. Appearance (Howells).
୩ । ଆଲୋକ; ତେଜଃ—
3. Light; illumination; lustre.
୪ । କପଟ—4. Disguise; mask; deceit.
୫ । ବ୍ୟାଜ—5. Fraud; guise.
୬ । ଦୀପ୍ତି; ପ୍ରଭା—6. Brightness; lustre.

**ନିଭୟ**—ଗ୍ରା. ବି. ଓ ବିଣ—ନିର୍ଭୟ ( ଦେଖ ).
Nibhaya (ନିଭୟା—ଅନ୍ୟରୂପ) Nirbhaya (See)

**ନିଭର**—ଗ୍ରା. ବି. ଓ ବିଣ—ନିର୍ଭର ( ଦେଖ ).
Nibhara Nirbhara ( See )

**ନିଭରସା**—ଦେ. ବି ଓ ବିଣ—ନିର୍ଭରସା ( ଦେଖ )
Nibharasā Nirbharasā ( See )
निभरसा निभरोसा

**ନିଭା**—ସଂ. ବିଣ ( ସମାସରେ ବ୍ୟବହୃତ )—
Nibhā ( ସଂ. ନିଭ ଶବ୍ଦର ସ୍ତ୍ରୀ ଲିଙ୍ଗାକୃତି ) ତୁଲ୍ୟ—
Like: similar.
ପୂର୍ଣ୍ଣଶୀ-ଏର-ବଲ୍ଲଭା ନିଭା । କବିସୂର୍ଯ୍ୟ, କବିତା ।
ଦେ. ବି. ( ସଂ. ନିର୍ବାହ )—ନିର୍ବାହ ( ଦେଖ )
निबडान निभाव Nirbāha ( See )

**ନିଭା(ଭେ)ଇବା** —ଦେ. କ୍ରି. ( ସଂ. ନିର୍ବାପଣ )—
Nibhā(bhe)iba ୧ । ନିଭିବା କ୍ରିୟାର ଣିଜନ୍ତ ରୂପ—
निवान, निभान 1. The causative from of 'Nibhiba'
बुझाना
୨ । (ପ୍ରଦୀପ ଅଗ୍ନି ଆଦି) ଲିଭେଇବା; ନିର୍ବାଣ କରିବା—
2 To extinguish; to put out; to blow out ( a light or fire ).
ନିଭାଇ ଦାବାନଳ ବସନ୍ତବାଦ । ରାଧାନାଥ, ମେଘଦୂତ ।
୩ । ପୋଛି ଅଦୃଶ୍ୟ କରି ଦେବା—3 To cause to disappear, to rub out; to suppress.
୪ । ଲେଖାକୁ ପୋଛି ଦେବା—
4. To wipe out; to blot out.
निभाना ୫ । ( ସଂ. ନିର୍ବାହ ) କୌଣସି କାର୍ଯ୍ୟକୁ ନିର୍ବାହ କରିବା; ପରିଚାଳିତ କରିବା—5. To conduct.
୬ । ଅନୁଭବ କରିବା—6. To experience.
ଦୁଃଖ କହିବ କି ସୁଖ କହିବ
ଯାହା ଅଙ୍ଗେ ନିଭେଇଛି ତାହା କହିବ—ଢଗ ।
୭ । ପୋଷିବା; ପାଳନ କରିବା—
7 To maintain; to cherish.
୮ । ( ଲକ୍ଷଣାର୍ଥ ) (ସୁନାମ) ଲୋପ କରିବା—
8. ( figurative ) To blot out ( one's good name ).

**ନିଭାନିଭି କରିବା**—ଦେ. କ୍ରି—୧ । ନିର୍ବାପିତ କରିବା—
Nibhānibhi kariba 1. To extinguish; to put out.
बुझा बुझि करना ୨ । ପୋଛି ଦେବା—2. To wipe out.

**ନିଭାଳନ**—ସଂ. ବି. ( ନି+ଭାଲ ଧାତୁ =ଦେଖିବା+ଭାବ. ଅନ )—
Nibhālana ଦର୍ଶନ; ଅବଲୋକନ—Seeing; sight.

**ନିଭିବା** —ଦେ. କ୍ରି ( ସଂ. ନିର୍ବାଣ ) —
Nibhiba ୧ । ଲିଭିବା; ନିର୍ବାପିତ ହେବା—
(ନିଭିଯିବା—ଅନ୍ୟରୂପ) 1. To go out; to be extinguished ( as a light or fire ).
निवा, निभा
ଏକ ଏକ ହୋଇ ପ୍ରଦୀପ ଆଲୋକ ନିଭିଗଲା ଘରେ ଘରେ ।
ରାଧାନାଥ ପାର୍ବତୀ ।
बुझना ୨ । ପୋଛି ହେବା—2. To be wiped off.
୩ । ଅନ୍ତର୍ହିତ ହେବା; ଅଦୃଶ୍ୟ ହେବା—
3. To vanish; to disappear.
୪ । ଲୁଚିଯିବା—4. To be hidden.

୫ । ଲୁପ୍ତ ହେବା—5. To be extinct.

୬ । (ସ. ନିର୍ବାହ) ନିର୍ବାହ ହେବା; ନିର୍ଭର ହେବା; ଚଳିବା—
ନଭନା 6. To get on.

ନ ବୃତ ଓ ପ୍ରଫୁଲ୍ଲ ନ ହେଲେ ନଭିବାର କଠିନ ।
ଜ୍ଞାନାଥ, ଚବେକା ।

ନିଭିଲା—ଦେ· ବିଣ—୧ । ନିର୍ବାପିତ—1. Extinguished
Nibhilā ( ଯଥା—ନିଭିଲା ନିଆଁ । )
ନିଭାଉ ୨ । ଅନ୍ତର୍ହିତ—2 Disappeared; vanished.
ବୁଝାହୁଆ ଦେ. କି ( ନିଭିବା କ୍ରିୟାର ଅତୀତକାଳ, ୩ୟ ପୁରୁଷ ଅନାଦରାର୍ଥ; ୧ ବଚନରେ ବ୍ୟବହୃତ ରୂପ )—
ନିର୍ବାପିତ ହେଲା—Was extinguished.

ନିଭୁଲ—ସ. ବିଣ. ( ସ. ନିର୍+ଭୁଲ )—ଭ୍ରମଶୂନ୍ୟ—
Nibhula Correct; free from mistake
ନିର୍ଭୁଲ ନିର୍भूल

ନିଭୃତ—ସ. ବିଣ. ( ନି+ଭୃ ଧାତୁ ହେବା+କର୍ତ୍ତୃ. ତ )—
Nibhūta ୧ । ଅତୀତ; ଗତ—1. Past; gone.
୨ । ପରୋକ୍ଷ; ଅନୁପସ୍ଥିତ—2. Absent.
୩ । ବିନୀତ—3. Humble; modest.
୪ । ନିର୍ଜନ—4 Solitary.
୫ । ଗୁପ୍ତ; ଲୁକ୍କାୟିତ—
5. Hidden; concealed; secret; private.
୬ । ପ୍ରଚ୍ଛନ୍ନ—6. Disguised; latent.
୭ । ଅସ୍ତମିତ—7. Set.
୮ । ନିଶ୍ଚଳ—8. Fixed; stationary.

ନିଭୃତ—ସ. ବିଣ. ( ନି+ଭୃ ଧାତୁ=ପୋଷିବା+କର୍ମ. ତ )—
Nibhṛuta ୧ । ଲୁକ୍କାୟିତ; ଗୁପ୍ତ—
1. Secret; hidden; secluded; private.
୨ । ବିରଳ; ନିର୍ଜନ—2. Solitary; lonely.
୩ । ବିନୀତ; ନମ୍ର—0. Humble; modest.
୪ । ଅପ୍ରକାଶିତ—4 Latent; not apparent.
୫ । ନିଶ୍ଚଳ—5 Fixed
୬ । ଧୃତ; ସ୍ଥାପିତ; ରକ୍ଷିତ (ପ୍ର. ଶ.)—7. Placed.
୭ । ବନ୍ଦ କରି ଯାଇଥିବା (ପ୍ର. ଶ.)—8 Closed.
୯ । ନିଶ୍ଚିତ (ପ୍ର. ଶ )—9. Ascertained.
୧୦ । ଅସ୍ତୋନ୍ମୁଖ (ପ୍ର)—10. About to set.
ଦେ. କି. ବିଣ—୧ । ନିର୍ଜନରେ—
1. In a lonely manner.
୨ । ଗୁପ୍ତ ଭାବରେ—2. Secretly.
୩ । ଗୋପନରେ—3. In private; aside.

ନିଭେଳା—ଦେ. ବିଣ—ନିରାଶ୍ରୟ; ଅଶରଣ—
Nibhelā Helpless.

ଭାବିଲି କାମ କଲେ ନିଭେଳା ହୋଇ । ଭଞ୍ଜ. କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ।

ନିମ୍‌କି—ବୈଦେ. ବ ଓ ବିଣ—ନିମକି ( ଦେଖ )
Nim-ki Nimaki ( See )

ନିମ୍-ଆସ୍ତିନ୍—ବୈଦେ. ବ. ( ଫା. ନିମ୍=ଅର୍ଦ୍ଧ+ଆସ୍ତିନ୍=ହାତ )—
Nim-āstin ୧ । କୁର୍ତ୍ତିର ଅଧ ହାତ—
निमास्तिन 1. Half sleeves of a coat.
निमास्तीन ୨ । ଯେଉଁ କୁର୍ତ୍ତିର ହାତ ଅଧେ ଥାଏ, ଫତେଇ;
ଜାକେଟ୍—2 Half-sleeved jacket.

ନିମ୍‌ରାଜି—ବୈଦେ.ବିଣ.(କଟରଆ) (ଫା)—ଅର୍ଦ୍ଧସ୍ୱୀକୃତ; ପ୍ରାୟ ସ୍ୱୀକୃତ—
Nim-rāji Nearly agreed; half agreed.
নিমরাজি निमराजी

ନିମ—ସ. ବ.—ଶଳାକା; ଶଂକୁ (ପ୍ର. ଶ.)—
Nima Stake; pin (M. W.)

ଦେ. ବ.—(ସ. ନିମ୍ବ)—ନିମ୍ବ; ତିକ୍ତପତ୍ର ପ୍ରସିଦ୍ଧ ଗ୍ରାମ୍ୟ ତରୁ-
নিম ବିଶେଷ—The margosa; Neem tree;
निम; निम्ब, कडुनिम्ब Melia Azadirachta

ସ—ନିମ୍ବ, ଅରିଷ୍ଟ, ସର୍ବତୋଭଦ୍ର, ହିଙ୍ଗୁନିର୍ଯ୍ୟାସ, ମାଲକ, ପିଚୁମର୍ଦ୍ଦ, ପକ୍ୱକୃତ, ପୂଯାରି, ଛର୍ଦ୍ଦନ, ଶୀତକ, ଅର୍କପାଦପ, ପୂକମାଲକ, ଶବକ, ନିମ୍ବକ, କୈଟର୍ଯ୍ୟ, ବରତ୍ୱକ୍, ଛର୍ଦ୍ଦିଘ୍ନ, ପ୍ରଭଦ୍ର, ନେତା ପାରିଭଦ୍ରକ, କାକଫଳ, ବରେଷ୍ଟ, ସୁମନା, ବିଶୀର୍ଣ୍ଣପତ୍ର ଯବନେଷ୍ଟ; ପୀତସାରକ, ଶୀତ, ଶୁଭଭଦ୍ରକ, ପିଚୁମନ୍ଦକ, ତିକ୍ତକ ।
ମ. ନିମ୍ବ, କଡୁନିମ୍ବ
ତେ ସେପଚେଟ୍ଟୁ, ବେୟ୍ୟ, ବେମ୍ବୁ
ତା. ବେପ୍ପମ ଗରମ
ଫା. ନେନବ୍, ନିମ୍

[ ଦ୍ର—ଏହାର ପତ୍ର ଓ ଛାଲ ପିତା, ଫୁଲ ଧଳା ଓ ଶ୍ରେଷ୍ଠ ଏବଂ ସୁଗନ୍ଧଯୁକ୍ତ, ମଞ୍ଜି କାଠ ନାଲିଆ । ଫଳ କୋଳି ପରି । ପାଚିଲା ନିମ ଫଳକୁ ଶୁଆ ଗିଳି ଦେଇ ବିଷ୍ଠା ସଙ୍ଗରେ ଯେଉଁ ନିମ ମଞ୍ଜି ତ୍ୟାଗ କରେ ସେହି ମଞ୍ଜିରୁ ଗଛ ଉଠିବାର ଦେଖା ଯାଏ । ନିମର ପତ୍ର, ମଞ୍ଜି ଓ ଛେଲି ଔଷଧରେ ଲାଗେ । ବୈଦ୍ୟଶାସ୍ତ୍ର ମତରେ ଏହା ଶୀତବୀର୍ଯ୍ୟ, ଲଘୁ, ଧାରକ, କଟୁବିପାକ, ଅଗ୍ନି, ଓ ବାୟୁନାଶକ, ଅହୃଦ୍ୟ । ଏହା ଶ୍ରାନ୍ତି, ତୃଷ୍ଣା, କାସ, ଜ୍ୱର, ଅରୁଚି, କୃମି, ବ୍ରଣ, ପିତ୍ତ, କଫ, ବମି, କୁଷ୍ଠ, କୃଚ୍ଛ୍ରାସ ଓ ପ୍ରମେହନାଶକ । ନିମ ପତ୍ରର ରସ ଚକ୍ଷୁର ହିତକର । ନିମଫଳ ତିକ୍ତ ରସ, ଭେଦକ, ସ୍ନିଗ୍ଧ । ଏହା ଗୁଲ୍ମ, ଅର୍ଶ, କୃମି ଓ ପ୍ରମେହନାଶକ । ଗୃହ ନିକଟରେ ଥିବା ନିମଗଛର ପବନ ଦେହରେ ବାଜିଲେ ଶରୀର ରୋଗଶୂନ୍ୟ ହୁଏ; ଏପରି କି, ବହୁଦିନ ନିମ୍ବଗଛ ନିକଟରେ ବାସ କଲେ କୁଷ୍ଠରୋଗ ଭଲ ହୁଏ । ନିମକାଠକୁ କେହି କେହି ଚନ୍ଦନ କାଠ ଅଭାବରେ ଘୋରି ଚନ୍ଦନ ପରି ବ୍ୟବହାର କରନ୍ତି । ନିମକାଠକୁ ଘୋରିଲେ ଚନ୍ଦନପରି ଈଷତ୍ ସୁବାସଯୁକ୍ତ ଲେପ ବାହାରେ । ନିମ ଫୁଲ ଓ ପତ୍ରକୁ ଭାତ ଓ ତରକାରୀରେ ମିଶାଇ ଖାଇଲେ ଚର୍ମରୋଗ ଭଲ ହୁଏ । ନିମ ପତ୍ରକୁ ହଳଦୀ ସଙ୍ଗେ ବାଟି ଲଗାଇଲେ ଚର୍ମରୋଗ ଭଲ ହୁଏ । ବସନ୍ତ ରୋଗୀର ଦେହରେ ରୋଗର ୭ମ ଦିନ ହଳଦୀ ସଙ୍ଗେ ନିମ୍ବକୁ ବାଟି ଲଗାନ୍ତି । ନିମପତ୍ର ବା ଛାଲକୁ ପାଣିରେ ସିଝାଇ ସେଥିରେ ଦୁଷ୍ଟ ବ୍ରଣ, କାଛୁ ଓ କ୍ଷତ ଧୋଇଲେ ତାହା ଦୁଷ୍ଟ-ଶୀଘ୍ରଶୂନ୍ୟ ହୁଏ । ବସନ୍ତ ରୋଗୀକୁ ନିମ ଡାଳରେ ବିଞ୍ଚା ଯାଏ । ନିମକାଠରୁ କମାରମାନେ ଅଙ୍ଗାର ତିଆରି କରନ୍ତି । ବୈରାଗୀ-ମାନେ ନିମ ଡାଳ ଦାନ୍ତକାଠି ଘଷନ୍ତି ଓ ତଦ୍ୱାରା ନାମ କୋଧାଦ

ରସ୍ତ ବର୍ଣ୍ଣାଭୂତ ହୁଅନ୍ତି । ଜଗନ୍ନାଥ ବଳଭଦ୍ର ଓ ସୁଭଦ୍ରାଙ୍କର ଦାରୁମୂର୍ତ୍ତି ନିମ କାଠରେ ତିଆରି ହୁଏ । ମହାଲ (ମହାନିମ୍ବ) ଏକପ୍ରକାର ନିମ ଗଛ । ]

ନିମକ—ବୈଦେ. ବି. (ଫା. ନମକ୍)—୧ । ଲବଣ; ଲୁଣ—
Nimaka 1 Salt
निमक ୨ । (ଲୁଣ ଅନ୍ନର ପ୍ରଧାନ ସହାୟ ଥିବାରୁ ଲକ୍ଷଣାର୍ଥ) ଦାନା ପାଣି—2. (figurative) Fooding; maintenance.
नमक निमक
୩ । (ଲକ୍ଷଣାର୍ଥ) ଜୀବିକା—
3 (figurative) Livelihood.
୪ । (ଲକ୍ଷଣାର୍ଥ)—ଚାକିରି—
4. (figurative) Service.
ବିଣ.—ନିମକି (ଦେଖ)—Nimaki (See)

ନିମକ ଉଠିବା—ଦେ. କ୍ରି.—୧ । କୌଣସି ବ୍ୟକ୍ତିର ଚାକିରି ଯିବା—
Nimaka uṭhibā 1. Loss of service.
निमक उठा ୨ । ଚାକିରି ଯିବାର ଆସନ୍ନ ଅବସ୍ଥା ଘଟିବା—
निमक उठना 2. Imminent loss of service

ନିମକ ଖାଇବା—ଦେ. କ୍ରି.—୧ । ଅନ୍ୟ ବ୍ୟକ୍ତିଙ୍କ ଅଧୀନରେ ଚାକିରି କରି ଜୀବିକା ନିର୍ବାହ କରିବା—
Nimaka khāibā
निमक खाओया 1. To eat the salt of another; to get a living under a person.
नमक खाना
୨ । ପ୍ରଭୁଙ୍କର ଅଧୀନରେ ଚାକିରି କରିବା—
2. To serve a master.

ନିମକ(କି) ଗୋଲା—ବୈଦେ. ବି. (ଫା)—ଲୁଣ ପ୍ରସ୍ତୁତ ହୋଇ ଯେଉଁ ଠାରେ ବ୍ୟବସାୟ ପାଇଁ ଜମା ହୋଇ ରହେ—Salt golah; salt warehouse; a salt mart.
Nimaka(ki) golā
निमकीगोला
निमक गोला

ନିମକଣ୍ଟା—ଦେ. ବି. (ଫା ନିମ୍=ଶ୍ରେଷ୍ଠ+ସଂ. କଣ୍ଟକ)—
Nima kanṭā କବାଟର ପଟାମାନ ଯୋଡ଼ିବା ପାଇଁ ବ୍ୟବହୃତ ଦୁଇ ଆଡ଼ ମୁନିଆଁ ଲୁହାକଣ୍ଟା; ଗୋଜିଶାଳ—
निमकांटा, गर्भकीला
नीमकाटा Nails pointed on both ends and used in joining the planks of a door.

ନିମକଦାନ୍—ବୈଦେ ବି. (ଫା ନମକ୍ ଦାନ୍)—
Nimakadān ୧ । ଯେଉଁ ପାତ୍ରରେ ଲୁଣ ରଖାଯାଏ—
निमकदान 1. A pot for keeping salt.
नमकदान ୨ । ଲୁଣ ରହିବାସ୍ଥାନ—2. Salt cellar.
( ନିମକଦାନୀ—ଅନ୍ୟରୂପ )

ନିମକ(କି) ଦାରୁ(ରୋ)ଗା—ବୈଦେ. ବି. (ଫା. ନମକ୍+ଦାରୋଗା)—
Nimaka(ki) dāru(ro)gā ନିମକ ବିଭାଗୀୟ ତତ୍ତ୍ୱାବଧାରକ କର୍ମଚାରୀ—Salt Inspector.
निमकी दारोगा
नमकदारोगा

ନିମକ ପୋକ୍ତାନ(ନି)—ବୈଦେ. ବି. (ଫା. ନମକ୍ ପୋଖ୍ତନୀ)—
Nimaka poktāna(ni) ସମୁଦ୍ର ପାଣିରୁ ଲୁଣ ତିଆରି ହେବା—
निमक पोक्तानी Manufacture or preparation of salt from sea water.
नमकपोखतानी

କାଲେକ୍ଟର ବନ୍ଦରର ଦୁର୍ଦ୍ଦଶାର ମୂଳ କାରଣ ନିମକ ପୋକ୍ତାନ ବନ୍ଦ ।
ଫକୀରମୋହନ ଗଳ୍ପସ୍ୱଳ୍ପ ।

ନିମକ(କି) ବିଭାଗ—ଦେ. ବି.—ସଲ୍ଟ ବିଭାଗ; ଯେଉଁ ସରକାରୀ ବିଭାଗରେ ଲବଣର ପୋକ୍ତାନ,
Nimaka(ki) bibhāga
निमकीविभाग ଆମଦାନି ଓ ରପ୍ତାନି ସମ୍ବନ୍ଧେ କଡ଼ାକଡ଼ି କରାଯାଏ—
नमकी विभाग The Salt Department of Government.
[ନିମକ(କି) ମହକୁମା—ଅନ୍ୟରୂପ ]

ନିମକ ମାରିବା—ଦେ. କ୍ରି—୧ । କୃତ୍ରିମ ଉପାୟରେ ସମୁଦ୍ର ପାଣିରୁ
Nimaka māribā ନିଆଁରେ ବା ସୂର୍ଯ୍ୟ କିରଣରେ ଶୁଖାଇ ଲୁଣ
निमक मारा ପ୍ରସ୍ତୁତ କରିବା—
निमक तयार करना 1 To manufacture salt.
[ ଦ୍ର—ସମୁଦ୍ର ପାଣିକୁ ନିଆଁ ଉପରେ ବସାଇ ତହିଁରୁ ପାଣି ମାରି ଯେଉଁ ଲୁଣ ପ୍ରସ୍ତୁତ କରାଯାଏ ତାକୁ 'ପଙ୍ଗାଲୁଣ' ଓ କିଆରି କରି କିଆରିକୁ ସମୁଦ୍ର ପାଣି ମଡ଼ାଇ ତକ୍ତ କିଆରିରୁ ପାଣି ଶୁଖି ଗଲା ପରେ ଯେଉଁ ଲୁଣ ଦାନା ବାନ୍ଧି ଜମିଯାଏ ତାକୁ 'ଗୋଡ଼ାଲୁଣ' କହନ୍ତି । ]
୨ । ଦାନା ମାରିବା; ଚାକିରି ଛଡ଼ାଇବା—
2 To cause loss of service to a person,

ନିମକ(କି)ମାହାଲ—ବୈଦେ. ବି. ( ଫା. ନମକ୍ ମହଲ୍ )—
Nimaka(ki)māhāla ୧ । ଯେଉଁ ଅଞ୍ଚଳରୁ ସରକାରଙ୍କ
निनकमहाल ତତ୍ତ୍ୱାବଧାନରେ ଲୁଣ ମରାଯାଏ ଓ ଗଭର୍ଣ୍ଣମେଣ୍ଟଙ୍କର
नमकमहल ଶୁଳ୍କ ଆମଦାନି ହୁଏ—
1. An estate from which Government derives salt revenue for manufacture of salt.

ଅନ୍ୟାନ୍ୟ ମହକୁମାରେ ନିଯୁକ୍ତ କର୍ମଚାରୀଠାରୁ ନିମକ ମାହାଲରେ ନିଯୁକ୍ତ ଅମଲା ସଂଖ୍ୟା ଅଧିକ । ଫକୀର ମୋହନ, ଗଳ୍ପସ୍ୱଳ୍ପ ।

୨ । ନିମକ ବିଭାଗ—2. Salt Department.

ନିମକର ଚାକର—ଦେ. ବି.—ପ୍ରଭୁଙ୍କ ଅନ୍ନରେ ପ୍ରତିପାଳିତ ଆଜ୍ଞାକାରୀ
Nimakara chākara ଭୃତ୍ୟ—A servant true to
निमकेव चाकर his salt; a servant dependent on the
निमकका नौकर master's salt.

ନିମକ ଶୁଝିବା—ଦେ. କ୍ରି.—କାର୍ଯ୍ୟରେ ପ୍ରଭୁବତ୍ସଳ ହେବା—
Nimaka śujhibā To be faithful to one's master.
नमक अदाकरना ଏବେ ମୋର ନିମକ ଶୁଝିବାର ପାଇଁ,
ଥିଅ ହେ ସୁଗ୍ରୀବଙ୍କୁ ଯୁଦ୍ଧରେ ବଞ୍ଚାଇ ।
କୃଷ୍ଣସିଂହ ମହାଭାରତ ୨ କ ।

ନିମକ ସଚ୍ଚ(ଚା)—ବୈଦେ ବିଣ. ( ଫା; ନମକ୍ ସଚ୍ଚା)—
Nimaka sachā chhā) କୃତଜ୍ଞ ବା ବିଶ୍ୱାସୀ ( ଭୃତ୍ୟ )—
निमक साचा Faithful or grateful; loyal ( servant )
नमकसना, नमकहलाल true to one's salt

ନିମକ ଛଚ୍ଚ(ଚା), ନିମକ ଛଚ୍ଚା, ନିମକ ସଚ୍ଚା, ନିମକ ସଚ୍ଚିଆ, ନିମକ ସଚ୍ଚ୍ୟା, ନିମକ ସଚ୍ଚକ } ଅନ୍ୟରୂପ

କୋଡ଼ିଏ ବର୍ଷର ଚାକର ଖୁବ୍ ବିଶ୍ୱାସୀ, ଖୁବ୍ ନିମକ ସଚ୍ଚା ।
[ନିମକ ସଚ୍ଚା(ଚ୍ଚେ)ଇ, ନିମକ ସଚ୍ଚାପଣ—ବି] ଫକୀର ମୋହନ ଗଳ୍ପସ୍ୱଳ୍ପ ।

ନିମକ ହରାମ୍—ବୈଦେ. ବିଣ—( ଫା. ନମକ୍ ହରାମ୍ )—
Nimaka harām ଯେ ପ୍ରଭୁର ଦାନା ଖାଇ କୃତଘ୍ନତା କରେ;
निमक हराम କୃତଘ୍ନ (ଭୃତ୍ୟ)—Ungrateful; disloyal;
**नमक हराम** treacherous ( servant ).

ନିମକ ହାରାମ୍ } ଅନ୍ୟରୂପ — ଆମ୍ଭେମାନେ କେମନ୍ତ ନିମକହରାମ୍ । ।
ନିମକା ହାରାମ୍ } — ଃ ଉକାର ସଂସାର ଚକ୍ର ।

ନିମକହରାମ୍ ଜାଗିର୍‌ଦାର୍—ବୈଦେ. ବି.ଫା.—ପ୍ରଭୁଙ୍କ ଅପକାର କରିବା
Nimakaharām jāgirdār ଯୋଗୁଁ ପ୍ରଭୁଙ୍କ ବିପକ୍ଷଙ୍କ ଠାରୁ
ପୁରସ୍କାର ସ୍ୱରୂପ ଜାଗିର ପାଇଥିବା ନିମକହରାମ ଭୃତ୍ୟ—
A service-tenureholder who has got his tenure as a reward from his master's enemy for his perfidious action.

[ ଦ୍ର—ମରହଟ୍ଟାଙ୍କର ଉତ୍କଳାଧିକୃତ ରାଜ୍ୟର ଚିଲିକା ନିକଟବର୍ତ୍ତୀ ସୀମାନ୍ତକୁ ରକ୍ଷା କରିବା ନିମନ୍ତେ ଚିଲିକା ମଧ୍ୟସ୍ଥ ମାଲୁଦ ଦ୍ୱୀପକୁ ପ୍ରଥମେ ଜଣେ ବ୍ୟକ୍ତି ଜାଗିରସ୍ୱରୂପ ପାଇଥିଲେ । ୧୮୦୩ ସାଲରେ ସେହି ମରହଟ୍ଟା ଜାଗିରଦାର୍ ଇଂରେଜ ସୈନିକମାନଙ୍କୁ ବାସ୍ତା ଛାଡ଼ି ଦେଇ ସକଳ ରହସ୍ୟ ଖୋଲି ଦେଇଥିବାରୁ ମରହଟ୍ଟାମାନଙ୍କଠାରୁ ଏହି ନାମ ପାଇଥିଲେ । ]

ନିମକ ହ(ହା)ରାମୀ—ବୈଦେ. ବି. ( ଫା. ନମକ୍ ହରାମୀ )—
Nimaka ha(hā)rāmi ପ୍ରଭୁଙ୍କ ନିକଟରେ ଭୃତ୍ୟର କୃତଘ୍ନତା—
निमकहरामी Ingratitude of a servant to a master;
**नमकहरामी** disloyalty; perfidy; treachery of a servant.

ନିମକ ହରାମୀ ଜାଗିର୍(ରି)—ବୈଦେ.ବି. (ଫା. ନମକ୍ ହରାମୀ ଜାଯ୍‌ଗୀର୍)
Nimaka harāmi jāgir(ri) —ପ୍ରଭୁଙ୍କ ଅପକାର କରିବା
(ନିମକହରାମ ଜାଗିର—ଅନ୍ୟରୂପ) ଯୋଗୁଁ ପ୍ରଭୁଙ୍କ ଶତ୍ରୁଠାରୁ ନିମକହରାମ୍ ଭୃତ୍ୟ ପୁରସ୍କାର ସ୍ୱରୂପ ଯେଉଁ ଜାଗିର ପାଇ ଥାଏ—Service-tenure got by a servant as a reward from the enemy of his master for betraying the latter.

ହଲାଲ୍—ବୈଦେ. ବିଣ. (ଫା. ନିମକ୍+ଆ.ହଲାଲ୍)—
Nimaka halāl ନିମକ ସଚ୍ଚା (ଦେଖ)
(ନିମକହାଲାଲ—ବି) Nimaka sachchā (See)

ନିମ କାଠି—ଦେ. ବି. (ସଂ. ନିମ୍ବ+କାଷ୍ଠ)—୧ । ନିମଡାଳର କ୍ଷୁଦ୍ର
Nima kāṭhi ଡାଙ୍ଗ—1. Twig from a small branch
निमकाड़ि of a Nimba tree.
୨ । ଅଳଙ୍କାର ପିନ୍ଧିବା ପାଇଁ ଫୋଡ଼ା ଯାଇଥିବା କାନ ଓ ନାକର ଛିଦ୍ରରେ ଅଳଙ୍କାର ଅଭାବରେ ଦିଆଯାଇ ଥିବା ନିମ୍ବକାଠି—2. A small bit of nimba twig thrust into the bore of the nose or ear so that it remains open·

ଅଳଙ୍କାର ମଧ୍ୟେ ନାକରେ ନିମ୍ବକାଠି ଥାଳେ । ଉଗ ।

[ ଦ୍ର—କାନ ଓ ନାକରେ ଅଳଙ୍କାର ପିନ୍ଧିବା ଉଦ୍ଦେଶ୍ୟରେ କରାଯାଇ ଥିବା ଫୋଡ଼ ବା ଛିଦ୍ରରେ ଯଦି ଅଳଙ୍କାର ପିନ୍ଧା ନ ହୁଏ ତେବେ କେତେଦିନ ପରେ ତାହା ରୁଦ୍ଧ ବା ବୋର ହୋଇଯାଏ । ଏଥିପାଇଁ ଅଳଙ୍କାର ପିନ୍ଧିବା ପର୍ଯ୍ୟନ୍ତ ସେ ରନ୍ଧ୍ରରେ ଖଣ୍ଡିଏ ନିମକାଠି ବା ସୋଲ ପୂରାଇ ଦିଆଯାଇ ଥାଏ । ]

ନିମକି—ବୈଦେ. ବି. (ଫା. ନମକ୍ଦାନ୍; ନମକୀ)—
Nimaki ୧ । ସରକାରୀ ସଲ୍ଟ ବିଭାଗ—
निमकी 1. The Salt Department of Government.
**नमकीन, निमका** ୨ । ମଇଦା, ଘିଅ, ଲୁଣ, କଳାଜୀରାଦ୍ୱାରା ପ୍ରସ୍ତୁତ ଏକପ୍ରକାର ଲୁଣିଆ ଗଜା—2. A kind of biscuit flavoured with salt.
ବିଣ—୧ । ନିମକ ବିଭାଗ ସମ୍ବନ୍ଧୀୟ—
1. Appertaining to the Salt Department.
୨ । ଲବଣ ସଂଯୁକ୍ତ, ଲବଣ ଘଟିତ—
2. Seasoned with salt.
୩ । ଲୁଣିଆ; ଖାରିଆ—
3. Saline; having a saline taste.

ନିମଗନ—ଗ୍ରା. (ପଦ୍ୟ) ବିଣ—ନିମଗ୍ନ (ଦେଖ)
Nimagana Nimagna (See)

ଶର ସୌରକରେ ତାରକା ଯେସନ
ଅଗ୍ନି ତା ଦସ୍ତୁ ହେଲେ ନିମଗନ । ସ୍ୱଧାନାଥ. ଚିଲିକା ।

ନିମଗ୍ନ—ସଂ. ବି. (ନି+ମସ୍ଜ୍ ଧାତୁ=ବୁଡ଼ିବା+କର୍ତ୍ତୃ. ତ)—
Nimagna ୧ । ବୁଡ଼ିଯାଇ ଥିବା—
(ନିମଗ୍ନା—ସ୍ତ୍ରୀ) 1. Drowned; sunk; immersed.
(ନିମଜ୍ଜନ—ବି) ୨ । ଅନ୍ତଃ ପ୍ରବିଷ୍ଟ—2. Absorbed in.
୩ । ଏକାଗ୍ରଭାବରେ ନିବିଷ୍ଟ; ତନ୍ମୟ (ଚିତ୍ତ; ମନ)—
3. Devoted to a particular thing.

ନିମଗ୍ନ ହେବା—ଦେ. କ୍ରି. (ସଂ. ନିମଗ୍ନ)—୧ । ବୁଡ଼ିଯିବା—
Nimagna hebā 1. To sink down.
निमग्नहओया ୨ । ଅତ୍ୟନ୍ତ ଶୋକ ବା ଚିନ୍ତାରେ ଅଭିଭୂତ ବା ଆକ୍ରାନ୍ତ
**निमग्न होना** ହେବା—2. To be overwhelmed with grief or anxiety.
୩ । ଏକାଗ୍ରଭାବରେ ଚିନ୍ତା କରିବା—
3. To be absorbed in thought.

ନିମଗ୍ନେ—ଦେ. କ୍ରି. ବିଣ—ଏକାଗ୍ରଚିତ୍ତରେ; ମନୋଯୋଗ ସହକାରେ—
Nimagne Intently; very attentively.

ଶୁଣ୍ଠ ଦେବ ସଖାଗଣ ଯେନ ସଙ୍ଗେଣ
ନିମଗ୍ନେ ଶୁଣନ୍ତୁ ହରଷ ମନେଣ । ପ୍ରାଚୀ. ଶ୍ରୀ ସୁରୁଭକ୍ତିଗୀତା ।

ନିମଜ୍ଜକ—ସଂ. ବି. ପୁଂ ( ନି+ମସ୍ଜ୍ ଧାତୁ+କର୍ତ୍ତୃ. ଅକ )—
Nimajjaka ଡୁବରୀ; ଯେ ସମୁଦ୍ର, କୂପଆଦି ଗଭୀର ଜଳରେ ବୁଡ଼ି
( ନିମଜ୍ଜିକା—ସ୍ତ୍ରୀ ) କୌଣସି ବସ୍ତୁ ଖୋଜେ ବା ଆଣେ—Diver.

ନିମଜ୍ଜଥୁ—ସଂ. ବି. (ନି+ମସ୍ଜ୍ ଧାତୁ+ଭାବ. ଅଥୁ)—୧ । ଶୟନ—
Nimajjathu 1. Sleeping.
୨ । ଅବଗାହନ; ସ୍ନାନ. ପାଣିରେ ମୁଣ୍ଡ ବୁଡ଼ାଇ ଗାଧୋଇବା—
2. Bathing; bathing by immersion in water.
୩ । ଅନ୍ତର୍ନିବେଶ; ନିମଜ୍ଜନ; ବୁଡ଼ିଯିବା—
3. Immersion; sinking.

ନିମଜ୍ଜନ—ସ. ବି (ନି+ମସ୍ଜ୍ ଧାତୁ+ଭାବ. ଅନ)—
Nimajjana ୧ । ନିମଗ୍ନ ହେବା—1. Immersion.
୨ । ବୁଡ଼ିଯିବା—2. Sinking; drowning.
୩ । ସ୍ନାନ, ଅବଗାହନ—3. Bathing.
୪ । (ନି+ମସ୍ଜ ଧାତୁ ଣିଚ୍ ମଜ୍ଜି ଧାତୁ+ଅନ)—
ବଳପୂର୍ବକ ପାଣିରେ ବୁଡ଼ାଇବା—
4. The act of drowning or immersing a person

ନିମଜ୍ଜିତ—ସ. ବିଣ. (ନି+ମସ୍ଜ ଧାତୁ+କର୍ତ୍ତୃ. ତ, ଓ ନି+ମସ୍ଜ
Nimajjita ଧାତୁ ଣିଜନ୍ତ ମଜ୍ଜି ଧାତୁ+କର୍ମ. ତ)—
୧ । ନିମଗ୍ନ—1. Drowned.
୨ । ପାଣିରେ ବୁଡ଼ାଇ ଦିଆଯାଇ ଥିବା—
2. Made to sink; immersed.
୩ । ସ୍ନାତ—4. Bathed.

ନିମଜ୍ଜିବା—ଦେ. (ପଦ୍ୟ) କ୍ରି. (ସ. ନି+ମସ୍ଜ୍ ଧାତୁ; ନିମଜ୍ଜନ)—
Nimajjibā ୧ । ନିମଗ୍ନ ହେବା—1. To sink.
निमजा ୨ । ଏକାନ୍ତଚିତ୍ତରେ ମଗ୍ନ ହେବା—
निमजना 2. To be intent on.

ନିମଞ୍ଜା(ଞ୍ଜେ)ଇ—ଦେ. ବି. ସ୍ତ୍ରୀ—ଗ୍ରାମଦେବୀବିଶେଷ—
Nimañjā(ñje)i Name of a popular village-Goddess.

ନିମତା—ଦେ. ବି. (ସ. ନିମନ୍ତ୍ରଣ)—ନିଉଁତା (ଦେଖ)
Nimatā Niuñtā
ତୁମ ବନ୍ଧୁବାନ୍ଧବ ଘରେ ନିମତା ଦେଇ ଆସିବ ନାଁ ?
ଫକୀରମୋହନ, ଗଳ୍ପସ୍ୱଳ୍ପ ।

ନିମତେ—ଗ୍ରା. ଅ (ସ. ନିମିତ୍ତ)—ନିମନ୍ତେ (ଦେଖ)
Nimate Nimante (See)

ନିମତ୍ରଣ—ଗ୍ରା. ବି (ସ. ନିମନ୍ତ୍ରଣ)—ନିମନ୍ତ୍ରଣ—
Nimatraṇa (ନିମିତ୍ରଣ—ଅନ୍ୟରୂପ) Invitation.

ନିମନ୍ତରେ—ଦେ (ସ. ନିମିତ୍ତ)—ନିମନ୍ତେ (ଦେଖ)
Nimantare Nimante (See)
निमित्त ତନୁ ଇଚ୍ଛାସା ନିମନ୍ତରେ
के निमित्त ଗୁଣ ଯେ ଥାଏ ଶ୍ରଦ୍ଧାରେ । ଜଗନ୍ନାଥ, ଭାଗବତ ।

ନିମନ୍ତେ—ଦେ. ଅ (ସ. ନିମିତ୍ତ)—୧ । (ଅମୁକ) ଯୋଗୁଁ—
Nimante 1. Owing to; on account of; for the sake of.
निमित्त
के निमित्त ୨ । (ଅମୁକ) ପାଇଁ; ଲାଗି—2. For.
୩ । (ଅମୁକର) ଉଦ୍ଦେଶ୍ୟରେ—3. For the purpose of; with a view to.

ନିମନ୍ତେଣ—ଦେ. ଅ (ପ୍ରାଚୀନ ପଦ୍ୟ) (ସ. ନିମିତ୍ତ)—ନିମିତ୍ତ (ଦେଖ)
Nimanteṇa Nimitta (See)

ନିମନ୍ତ୍ର—ସ. ବି ( ନି+ମନ୍ତ୍ର ଧାତୁ=ଡାକିବା+ଭାବ. ଅ )—
Nimantra ନିମନ୍ତ୍ରଣ (ଦେଖ)—Nimantraṇa (See)

ନିମନ୍ତ୍ରକ—ସ. ବିଣ. ପୁଂ (ନି+ମନ୍ତ୍ର. ଧାତୁ+କର୍ତ୍ତୃ. ଅକ)—ଯେ ନିମନ୍ତ୍ରଣ
Nimantraka କରେ—Inviting; one who invites
(ନିମନ୍ତ୍ରିକା—ସ୍ତ୍ରୀ) guests to a feast.

ନିମନ୍ତ୍ରଣ—ସ. ବି (ନି+ମନ୍ତ୍ର ଧାତୁ=ଡାକିବା+ଭାବ. ଅନ)—
Nimantraṇa ୧ । ଭୋଜନ ବା ଉତ୍ସବରେ ଯୋଗ ଦେବାପାଇ ସବିଧି ଆହ୍ୱାନ—1. Ceremonial or formal invitation to a dinner or social function.
(ଯଥା—ମହଲା ନିମନ୍ତ୍ରଣ; ଚୋଖିଁ ନିମନ୍ତ୍ରଣ ଇତ୍ୟାଦି ।)
୨ । ଆବାହନ; ଆହ୍ୱାନ, ଡାକ; ଡାକରା—
2. A call; summons.
[ଦ୍ର—ସଚରାଚର ଭୋଜନ ନିମିତ୍ତ ଆହ୍ୱାନ ଅର୍ଥରେ 'ନିମନ୍ତ୍ରଣ' ଶବ୍ଦ ପ୍ରଯୁକ୍ତ ହୁଏ, ପ୍ରକୃତ ଯାହାର ଅକରଣରେ ପ୍ରତ୍ୟବାୟ ହୁଏ ତାହାକୁ ନିମନ୍ତ୍ରଣ କୁହାଯାଏ ଓ ଯାହା ନ କଲେ ପ୍ରତ୍ୟବାୟ ନ ହୁଏ ତାହା ଆମନ୍ତ୍ରଣ । ]

ନିମନ୍ତ୍ରଣ କରିବା—ଦେ କ୍ରି (ସ. ନିମନ୍ତ୍ରଣ) ସାଦର ଆହ୍ୱାନ କରିବା—
Nimantraṇa karibā To invite.
निमन्त्रनकवा **निमंत्रनकरना**

ନିମନ୍ତ୍ରଣ କାର୍ଡ଼—ଦେ. ବି ( ଆଧୁନିକ ପ୍ରୟୋଗ; ସ. ନିମନ୍ତ୍ରଣ
Nimantraṇa kārrḍa ଓ ଇଂ. କାର୍ଡ଼)—ଉତ୍ସବାଦି
(ନିମନ୍ତ୍ରଣ କାର୍ଡ଼—ଅନ୍ୟରୂପ) ଉପଲକ୍ଷରେ ନିମନ୍ତ୍ରିତ
निमन्त्रन कार्ड ବ୍ୟକ୍ତିମାନଙ୍କ ନିକଟକୁ ପଠାଯିବା ଶୁଣିକଥା
**निमंत्रन कारड** ପତ୍ର କାଗଜ ବା କାର୍ଡ଼—
Invitation card.
[ ଦ୍ର—ଆଜିକାଲି ନବ୍ୟ ସଭ୍ୟତାପାଶିତ ଓ ଟେକଟେକ ଧନୀ ବ୍ୟକ୍ତି ପାଶ୍ଚାତ୍ୟ ରୀତି ଅନୁସାରେ କାର୍ଡ଼ ବା ପତ୍ରଦ୍ୱାରା ନିମନ୍ତ୍ରଣ କରିବା ପ୍ରଥା ଚଳାଉଅଛନ୍ତି । ]

ନିମନ୍ତ୍ରଣ ପତ୍ର—ସ. ବି ( ୬ଷ୍ଠୀ ତତ୍; ନିମନ୍ତ୍ରଣ+ପତ୍ର )—
Nimantraṇa patra ୧ । ଉତ୍ସବାଦିରେ ଯୋଗ ଦେବା ନିମନ୍ତେ ବନ୍ଧୁଆଦିଙ୍କ ଠାକୁ ପ୍ରେରିତ ଅନୁରୋଧ ପତ୍ର—
1. Invitation letter; a letter of invitation.
୨ । ( ହିନ୍ଦୁ ସ୍ମୃତି; ଯାଜ୍ଞବଲ୍କ୍ୟ )—କଚେରୀଆଦିରେ ଉପସ୍ଥିତ ହେବାପାଇଁ କୌଣସି ବ୍ୟକ୍ତି ନିକଟକୁ ପଠାଯିବା ଆଦେଶପତ୍ର; ସମନ—
2. (Hindu law) Summons ( Apte ).

ନିମନ୍ତ୍ରିତ—ସ. ବିଣ (ନି+ମନ୍ତ୍ର୍ ଧାତୁ+କର୍ମ. ତ )—୧ । ଆହୂତ—
Nimantrita Summoned.
( ନିମନ୍ତ୍ରିତା—ସ୍ତ୍ରୀ ) ୨ । ଯାହାକୁ ନିମନ୍ତ୍ରଣ କରାଯାଇଅଛି—
2. Invited.

ନିମନ୍ତ୍ରିବା—ଦେ. କ୍ରି (ପଦ୍ୟ )—( ସ. ନି+ମନ୍ତ୍ର୍ ଧାତୁ )—
Nimantribā
निमन्त्रा **निमंत्रना** ୧ । ନିମନ୍ତ୍ରଣ କରିବା—
1. To invite.
୨ । ଔଷଧ ବା ତାନ୍ତ୍ରିକ ପ୍ରୟୋଗାର୍ଥ ବୃକ୍ଷାଦି ନିକଟକୁ ଯାଇ ତାକୁ ସଜୀବ ଜ୍ଞାନକରି ଆବାହନ କରିବା—
2. To invite a tree or inanimate being formally by means of incantations.

ନିମନ୍ତ୍ର୍ୟ—ସଂ. ବିଣ. ପୁଂ ( ନି+ମନ୍ତ୍ର୍ ଧାତୁ+କର୍ମ. ଯ )—
Nimantrya ଯାହାଙ୍କୁ ନିମନ୍ତ୍ରଣ କରାଯିବ—
(ନିମନ୍ତ୍ର୍ୟା—ସ୍ତ୍ରୀ) To be invited or called.

ନିମ ପିତା—ଦେ. ବିଣ—ନିମ ପତ୍ର ପରି ତିକ୍ତସ୍ୱାଦବିଶିଷ୍ଟ—
Nima pitā Of a bitter taste ( like the Nimba leaves).
( ନିପିତା—ଅନ୍ୟରୂପ ).

ଶୁକ୍ତନୀ ତୀତଶାଗ ବି—ନିମପତ୍ରକୁ ଭଜା ମିଶାଇ ତିଆର କରାଯିବା ତିକ୍ତ ବ୍ୟଞ୍ଜନ—
Curry made bitter by adding fried Nimba leaves to it.

ନିମ ଭଜା—ଦେ. ବି ( ସଂ. ନିମ୍ବ+ଭର୍ଜିତ )—ନିମ ପତ୍ରର ଭଜା—
Nima bhāji Roasted or fried Nimba leaves.
নিমভাজা नीमभाजी

ନିମୟ—ସଂ. ବି ( ନି+ମି ଧାତୁ=ମାପିବା+ଭାବ. ଅ )—
Nimaya ୧ । ବିନିମୟ; ବଦଳ—
1. Exchange; barter.
୨ । ପରିବର୍ତ୍ତନ—2. Change; alteration.

ନିମସାର—ଦେ. ବି ( ସଂ. ନୈମିଷାରଣ୍ୟ )—
Nimasāra ନୈମିଷାରଣ୍ୟ ( ନଦେ ) ( ଦେଖ )
Naimishāranya (See).

ନିମ ହଳଦୀ—ଦେ. ବି ( ସଂ. ନିମ୍ବ ଓ ହରିଦ୍ରା )—
Nima haladi ନିମ ପତ୍ର ମିଶାଇ ବଟା ଯାଇଥିବା ହଳଦୀ—
(ନିମ୍ବିହଳଦୀ—ଅନ୍ୟରୂପ) Turmeric paste mixed with margosa leaves.
নিমহলুদ नीमहल्दी
[ ଦ୍ର—କାହା ଭୁଣ୍ଡିଆ ବା ବସନ୍ତ ହେଲେ ରୋଗୀର ଦେହରେ ନିମ ହଳଦୀ ଲଗାନ୍ତି । ବସନ୍ତ ରୋଗାକ୍ରମଣର ନବମ ବା ଦ୍ୱାଦଶ ଦିବସରେ ରୋଗୀ ନିମ ହଳଦୀ ଲଗାଇ ସ୍ନାନ କରେ । ]

ନିମା—ଦେ. ବି. ପୁଂ—୧ । ନିମାଇ ( ଦେଖ)
Nimā Nimāi (See).
୨ । ( ସ୍ତ୍ରୀ )—ନିମାଇ ( ଦେଖ )
2. Nimāi ( See ).

নিমা नीमा ବୈଦେ. ବି ( ଫା )—କୁର୍ତ୍ତା ତଳେ ପିନ୍ଧାଯିବା ଏକପ୍ରକାର କୁର୍ତ୍ତା—
A kind of long under-garment.

ପିନ୍ଧିଥିବା ଜାମା ନିମା ଗଞ୍ଜିକ
ଗୁପତ ଅଙ୍ଗ ଢାଙ୍କିଲେ ଝଲକ—ବଜସୂର୍ଯ୍ୟ । ବଉଳା

[ ଦ୍ର—ନିମାକୁ ଜାମାର ତଳେ ମୁସଲମାନ୍‌ମାନେ ପିନ୍ଧନ୍ତି । ଏହାର ବେକ ପାଖେ ବୋତାମ ନ ଥାଏ ଓ ଏହା ଅଣ୍ଟା ଉପରକୁ ଲମ୍ବିଥାଏ । ଏହାର ହାତ (ଆସ୍ତିନ୍ ) ଅଧା । ଏହାର ଦୁଇପାଖରେ କଲି ଥାଏ—ହି. ଶବ୍ଦସାଗର
ଭାଷାକୋଷର ୩ୟ ଖଣ୍ଡରେ 'ଜାମାଜିମା' ଶବ୍ଦର ବ୍ୟୁତ୍ପତ୍ତି ରୂପେ 'ଜିମା' ଶବ୍ଦକୁ ଜାମାର ଅନର୍ଥକ ସହଚର ଶବ୍ଦ ବୋଲି ଯାହା ଲେଖା ଯାଇଅଛି ତାହା ଠିକ୍ ନୁହେଁ । ]

ନିମାଇ—ଦେ. ବି—୧ । ଶ୍ରୀଚୈତନ୍ୟ ଦେବଙ୍କ ପାଲ୍ୟଦର ନାମ—
Nimāi 1. A name by which Srī Chaitanya was called.
(ନିମେଇ—ଅନ୍ୟରୂପ)
নিমাই ୨ । ପୁରୁଷଙ୍କୁ ଦିଆଯିବା ନାମ—
2. A name given to males.
[ ଦ୍ର—ବଙ୍ଗଦେଶରେ ଅପତ୍ତିଆଣୀ ପିଲାଙ୍କୁ 'ନିମାଇ' (=ନିମ ପରି ତିକ୍ତ ) ନାମ ଦିଆଯାଏ । ଶ୍ରୀଚୈତନ୍ୟ ଦେବଙ୍କ ମାଆ ତାଙ୍କୁ ନିମାଇ ନାମ ଦେଇଥିଲେ । ]

ନିମାଇ ସନ୍ନ୍ୟାସୀ—ଦେ. ବି—ଶ୍ରୀଚୈତନ୍ୟ ଦେବଙ୍କ ଶ୍ରଦ୍ଧା ନାମ—
Nimāi sannyāsi A name by which Chaitanya was fondly called
নিমাই সন্ন্যাসী

ନିମାଈ—ଦେ. ବି. ସ୍ତ୍ରୀ. ( ସଂ. ନିମିଷ୍ଠା )—ଗ୍ରାମଦେବୀବିଶେଷ—
Nimāi Name of a popular Goddess

ନିମାଉତ(ତି)—ଦେ. ବି—ନିମ୍ବାଦିତ୍ୟ ବା ନିମ୍ବାର୍କଙ୍କ ପ୍ରତିଷ୍ଠିତ ବୈଷ୍ଣବ
Nimāuta(ti) ସମ୍ପ୍ରଦାୟ—A sect of Baishnabas.
নিমাইৎ निमावत [ ଦ୍ର—ନିମ୍ବାଦିତ୍ୟ ତଳେ ନୋଟ ଦେଖ । ]
( ନିମଉତ[ତି], ନିମାଇତ[ତି], ନିମାବତ[ତି]—ଅନ୍ୟରୂପ )

ନିମାଜ ( ଇତ୍ୟାଦି )—ବୈଦେ. ବି ( ଆ. ନିମାଜ୍ ହି. ଶ. )—
Nimāja (etc) ନମାଜ ଇତ୍ୟାଦି ( ଦେଖ )
নমাজ निमाज Namāja etc (See)

ନିମାଜୀ—ବୈଦେ. ବିଣ ଓ ବି. ( ଆ. )—ନମାଜୀ ( ଦେଖ )
Nimāji Namāji (See)
নমাজী निमाजी (ନିମାଜିଆ—ଅନ୍ୟରୂପ)

ନିମାନ—ସଂ. ବି. ( ନି+ମା ଧାତୁ=ମାପିବା+କରଣ. ଅନ )—
Nimāna ୧ । ମୂଲ୍ୟ; ଦାମ—1. Price; value.
୨ । ପରିମାଣ; ମାପ—
2. Measure ( M. W. ).
ଦେ. ବିଣ—ସମାନ—Equal.

ନିମାନୁ—ପ୍ରାଦେ. ( ଗଞ୍ଜାମ ) ଅ—ମୋଟେ; ଆଦୌ; ଜମାରୁ—
Nimānu At all.

ନିମାୟା—ଗ୍ରା. ବିଣ ( ସଂ. ନିର୍ମାୟ )—୧ । ଅମାୟିକ—
Nimāyā 1. Simple.
নিমায়া ୨ । ସରଳ—2. Guileless; frank.
निमाया, निर्मोह ( ଯଥା—ନିମାୟା ପୁରୁଷ । )

ନିମାୟା ପୁରୁଷ—ଦେ. ବି. (ସଂ. ନିର୍ମାୟ ଓ ପୁରୁଷ)—ଅମାୟିକ ବ୍ୟକ୍ତି—
Nimāyā purusha Guileless person.

ନିମାସ୍ତିନ୍—ବୈଦେ. ବି ( ଫା. )—ନିମ୍ ଆସ୍ତିନ୍ ( ଦେଖ )
Nimāstin Nim āstin (See)

ନିମି—ସଂ. ବି. ( ନାମ )—୧ । ଇକ୍ଷ୍ୱାକୁ ରାଜପୁତ୍ର; ଦଶରଥଙ୍କର ପୂର୍ବ-
Nimi ପୁରୁଷ—Name of a king; ancestor of king Dasaratha and son of Ikshwāku.
[ ଦ୍ର—ନିମି ବଶିଷ୍ଠଙ୍କ ଅଭିଶାପରେ ନିଜର ଦେହକୁ ହରାଇ-ବାରେ ଦେବତାମାନଙ୍କ ବରରେ ସେ ସବୁ ଜୀବଙ୍କର ଆଖିର ପଲକରେ ରହିଲେ; ଏଥିପାଇଁ ଆଖିର ପଲକର ନାମ ନିମିଷ । ହି.ଶ]

୨ । ଦତ୍ତାତ୍ରେୟ ଋଷିଙ୍କ ପୁତ୍ର (ମହାଭାରତ)—
2. Name of a son of sage Dattātreya. (M.W)

୩ । ବର୍ତ୍ତମାନ ଅବସର୍ପିଣୀର ଏକବିଂଶ ଜୈନ ଅର୍ହତ୍—
3. Name of the 21st. Jaina Arhat of the present Abasarpiṇī. (M. W)

୪ । ଭଜମାନ ଋଷିଙ୍କ ପୁତ୍ର—
4. Name of a son of sage Bhajamāna.(M.W)

୫ । ଦଣ୍ଡପାଣିଙ୍କ ପୁତ୍ର—
5. Name of a son of Daṇḍapāṇi. (M.W)

୬ । ଦିତିବଂଶ ଜାତ ଦାନବବିଶେଷ—
6 Name of a Dānaba.

୭ । ଆଖି ପିଛୁଳା—7. The shutting and opening of the eyes; twinkling (M, W.)

**ନିମିକି**—ବୈଦେ. ବି. ଓ ବିଣ.—ନିମକି (ଦେଖ)
Nimiki Nimaki (See)

**ନିମିତି**—ପ୍ରାଦେ. (ଗଡ଼ଜାତ) ବି.—ଏକ ପ୍ରକାର ଛୋଟ ଡାଉଁଶ—
Nimiti A kind of small gadfly.

**ନିମିତି ବାଘ**—ପ୍ରାଦେ. (ଗଡ଼ଜାତ) ବି.—ଏକ ପ୍ରକାର ଛୋଟ ବାଘ; ନେପାଳୀ ବାଘ—A kind of small leopard.
Nimiti bāgha

[ଦ୍ର—ଏମାନେ ରାତିରେ ଘରେ ପଶି ଛେଳି, ମେଣ୍ଢା, ବାଛୁରି, ଶିଶୁ ଆଦିଙ୍କ ତଣ୍ଟି ଚପି ମାରି ପକାନ୍ତି ଓ ତଣ୍ଟିର କଣାରେ ମୁହଁ ଲଗାଇ ରକ୍ତ ପିଇସାରି ଶବକୁ ବୋହି ନେଇ ଜଙ୍ଗଲକୁ ଚାଲି ଯାଆନ୍ତି (ଗଡ଼ଜାତବାସିନୀ. ୨୮.୭. ୧୯୩୦)]

**ନିମିତା**—ଗ୍ରା. ବି.—ନିମନ୍ତ୍ରଣ—
Nimitā Invitation.
(ଯଥା—ଆପେ ବର୍ମାଙ୍କୁ ଆପଣା ଘର ଭିତରକୁ ନିମିତା କରି ତାଙ୍କ ଆଣିଛୁ । ସହକାର ପତ୍ରିକା ।)

**ନିମିତ (ଇତ୍ୟାଦି)**—ଦେ. ବି.—ନିମିତ୍ୟ ଇତ୍ୟାଦି (ଦେଖ)
Nimita (etc) Nimitya etc (See)

**ନିମିତା ନିମିତ**—ଦେ. ବି. (ସହଚର ଶବ୍ଦ)—୧ । ପାରିବାରିକ ଶୁଭାନୁଷ୍ଠାନ ବା ଉତ୍ସବ; ବିବାହ ବ୍ରତ ଆଦି ଶୁଭକର୍ମମାନ—1. Social ceremonies.
Nimitā nimita

୨ । ଉତ୍ସବ ଓ ବ୍ରତାଦି—
2. Festivals and religious ceremonies.

न्योतान्योतो; परबत्योहार
(ନିମନ୍ତ୍ରଣନିମିତ୍ୟ; ନିତିତ୍ୟାନିମିତ୍ୟ—ଅନ୍ୟରୂପ)

**ନିମିତ୍ତ**—ସଂ. ବି. (ନି+ମିଦ୍ ଧାତୁ=ସ୍ନିଗ୍ଧ ହେବା+କରଣ. ତ)—
Nimitta ୧ । ହେତୁ; କାରଣ—1. Cause; reason; ground.

ଏ ନିମିତ୍ତ ମାନବ ପାର୍ଥ ହାତେ ବଧ,
ହେବେ କର୍ଣ୍ଣବୋଲି ସବୁର ହେବ ବୋଧ । କୃଷ୍ଣସିଂହ. ମହାଭାରତ. କର୍ଣ୍ଣ ।

୨ । ଉପଲକ୍ଷ—2 Occasion.

୩ । ଅଭିପ୍ରାୟ; ଉଦ୍ଦେଶ୍ୟ—3. Motive; intention.

୪ । ପ୍ରୟୋଜନ—4. Need; necessity.

୫ । ଲକ୍ଷଣ; ଚିହ୍ନ—
5. Sign; mark; indication; token

୬ । ଉତ୍ପତ୍ତି—6. Source; rise.

୭ । ଶକୁନ; ଶୁଭାଶୁଭ ଲକ୍ଷଣ, ଯେଉଁ ଲକ୍ଷଣଦ୍ୱାରା ଘଟଣା ଘଟିବା ପୂର୍ବରୁ ଶୁଭାଶୁଭ ସୂଚିତ ହୁଏ—
7. Omen; premonitory sign.

୮ । ଦାଗ—8. Spot; speck.

୯ । ଶରବ୍ୟ; ଲକ୍ଷ୍ୟ—9. Aim, target; butt.

୧୦ । (ଦର୍ଶନ ଶାସ୍ତ୍ର) କୌଣସି ଘଟଣାର ମୁଖ୍ୟ ବା କାର୍ଯ୍ୟକାରୀ କାରଣ—10. (Hindu philosophy) Instrumental or efficient cause (opposed to ଉପାଦାନ the operative or material cause). ( M. W. )

୧୧ । ପ୍ରକାଶ୍ୟ କାରଣ—
11. Any apparent cause (Apte).

ଦେ. ଅ—୧ । ନିମନ୍ତେ—1. For; on account of.

୨ । ଲାଗି; ପାଇଁ—2. For the sake of.

୩ । ହେତୁରୁ; କାରଣରୁ—3. Owing to.

ଦେ. ବି—ନିମିତ୍ୟ ( ଦେଖ )—Nimitya ( See )

**ନିମିତ୍ତକ**—ସଂ. ବି. ( ନିମିତ୍ତ+ସ୍ୱାର୍ଥେ. କ )—
Nimittaka ୧ । ନିମିତ୍ତ; କାରଣ—1. Cause.

୨ । ଚୁମ୍ବନ—2. Kissing.

ବିଣ—ଜନିତ; ଉତ୍ପନ୍ନ—
Caused, occasioned; produced.

**ନିମିତ୍ତ କାରଣ**—ସଂ. ବି—୧ । ଉପକରଣ; କୌଣସି କାର୍ଯ୍ୟରେ ତୃତୀୟ କାରଣ, କର୍ତ୍ତା ଯାହା ସାହାଯ୍ୟରେ କର୍ମ ସାଧନ କରେ; ସମବାୟୀ ଓ ଅସମବାୟୀ କାରଣ ଭିନ୍ନ ତୃତୀୟ କାରଣ—Instrumental cause; immediate agent.
Nimitta kāraṇa

( ଯଥା—ବଢେଇ ( କର୍ତ୍ତା ) ବାଉଁଶର ଦ୍ୱାରା ( ନିମିତ୍ତ କାରଣ ଦ୍ୱାରା) ଚଉକି (କର୍ମ) ତିଆରି କଲା । ଏ ସ୍ଥଳରେ ଯେଉଁ କାଠ ଦ୍ୱାରା ଚଉକି ତିଆରି ହେଲା ତାହା ସମବାୟୀ କାରଣ ଓ ଭିନ୍ନ ଭିନ୍ନ କାଠମାନଙ୍କର ସଂଯୋଗ ଅସମବାୟୀ କାରଣ ଓ ବାଉଁଶର ନିମିତ୍ତ କାରଣ । )

**ନିମିତ୍ତ କାଳ**—ସଂ. ବି—ନିର୍ଦ୍ଧାରିତ ସମୟ—
Nimitta kāla Fixed time.

**ନିମିତ୍ତକୃତ୍**—ସଂ. ବି. ( ନିମିତ୍ତ=କୃ ଧାତୁ+କର୍ତ୍ତୃ. କ୍ୱିପ୍; ଏହାର ଶବ୍ଦ ଶୁଭ ଅଶୁଭ ଶକୁନ ଜ୍ଞାପକ ଥିବାରୁ )—
Nimittakṛut କାକ; କୁଆ—A crow; a raven.

**ନିମିତ୍ତଜ୍ଞ**—ସଂ. ବି. ପୁଂ ( ନିମିତ୍ତ+ଜ୍ଞା ଧାତୁ+କର୍ତ୍ତୃ. ଅ )—
Nimittajña ଦୈବଜ୍ଞ; ଗଣକ—
(ନିମିତ୍ତଜ୍ଞା—ସ୍ତ୍ରୀ) A seer; astrologer, an auger.

ସଂ. ବିଣ. ପୁଂ—୧ । ଯେ ଶକୁନ ବିଷୟ ଜାଣେ—1. Versed in the interpretation of omens.

୨ । ଯେ କାରଣ ଜାଣେ—
2. Having knowledge of the causes.

ନିମିତ୍ତତା—ସ. ବ (ନିମିତ୍ତ+ତା)—କାରଣ ସମ୍ବନ୍ଧ—
Nimittatā Casualty
(ନିମିତ୍ତତ୍ୱ—ଅନ୍ୟରୂପ)

ନିମିତ୍ତ ଧର୍ମ—ସ. ବ. (୬ଷ୍ଠୀ ତତ୍; ନିମିତ୍ତ+ଧର୍ମ)—
Nimitta dharma ୧ । ପାପ ମାର୍ଜନା—1. Absolution.
୨ । ପ୍ରାୟଶ୍ଚିତ୍ତ—2 Expiation

ନିମିତ୍ତବିତ୍—ସ. ଵଣ. ପୁଂ ( ନିମିତ୍ତ+ବିଦ୍ ଧାତୁ+କର୍ତ୍ତୃ. କ୍ୱିପ୍ )—
Nimittabit ନିମିତ୍ତଜ୍ଞ ( ଦେଖ )—Nimittajña ( See )

ନିମିତ୍ତ ମାତ୍ର—ସ. ବ—କାରଣ ମାତ୍ର; କାରଣ ରୂପେ ପ୍ରତୀୟମାନ—
Nimitta mātra Immediate cause; patent cause; apparent cause
[ଦୃ—'କ' ସଙ୍ଗେ 'ଖ' ର ବହୁକାଳରୁ ବିବାଦ ଅଛି, ଓ 'କ'କୁ ଯବତ କରିବା ପାଇଁ 'ଖ' ନିମିତ୍ତ ଖୋଜୁଛି । ଦିନେ ହଠାତ୍ ବାଟରେ ଯାଉଁ ଯାଉଁ ଅଜାଣତରେ 'କ'ର ଦେହ 'ଖ'ର ଦେହରେ ବାଜି ଗଲା । ଏଥିରେ 'ଖ' କୋପାନ୍ୱିତ ହୋଇ 'କ'କୁ ପ୍ରହାର କଲା । ଏଠାରେ 'କ'ର ଦେହ 'ଖ'ର ଦେହରେ ବାଜିବା ଏ ମାତ୍ରର ନିମିତ୍ତ ମାତ୍ର ହେଲା । ]

ନିମିତ୍ତେ—ଦେ. ଅ. ( ସ. ନିମିତ୍ତଂ )—ନିମନ୍ତେ ( ଦେଖ )
Nimitte Nimante (See)

ନିମିତ୍ୟ—ଗ୍ରା. ବ. ( ସ. ନିମନ୍ତ୍ରଣ )—୧ । ପାରିବାରିକ ଶୁଭାନୁଷ୍ଠାନ—
Nimitya 1. Family ceremonies and festivals.
निमन्त्रन, भोज ୨ । କର୍ତ୍ତିଷ୍ଟ ସମୟରେ ନିର୍ଦ୍ଧାରିତ ସ୍ଥାନରେ
त्योहार ଭୋଜନାର୍ଥ ଉପସ୍ଥିତ ହେବା ପାଇଁ ନିମନ୍ତ୍ରଣ—
( ନିମିତ୍ୟଘର—ଅନ୍ୟରୂପ ) 2. Invitation to a dinner.
୩ । ଭୋଜି—3. Feast
୪ । ଆଶୀର୍ବାଦଘର; ଦ୍ୱିବାହିତ ଅନୁଷ୍ଠାନ—
4. Consummation of marriage.
ଗ୍ରା ଅ. ( ସ. ନିମିତ୍ତଂ )—ନିମନ୍ତେ; ପାଇଁ—For.

ନିମିତ୍ୟ ଗ୍ରାହୀ—ଦେ. ଵଣ—ମାଙ୍ଗଳିକ ଅନୁଷ୍ଠାନର ଗୃହକର୍ତ୍ତା—
Nimitya grāhi The host in a festival.
निमित्तेव भागी, कर्ता मोजो

ନିମିତ୍ୟ ଚଳା(ଲେ)ଇବା—ଗ୍ରା.କ୍ରି—୧ । କୌଣସି ଉତ୍ସବରେ ଗୃହସ୍ୱାମୀଙ୍କୁ
Nimitya chalā(le)ibā ସାହାଯ୍ୟଦେଇ ତାହା ସମାଧା କରାଇବା—
मोज संभालना 1. To help the host in bringing a festival to a successful termination.
ନିମିତ୍ୟ ଗୁଳିବା } ଅନ୍ୟରୂପ
ନିମିତ୍ୟ ଚଲା(ଲେ)ଇବା }
୨ । ଉତ୍ସବରେ ଗୃହସ୍ୱାମୀଙ୍କୁ ସାହାଯ୍ୟ କରିବା—
2. To render help to the host of a festival.

ନିମିତ୍ୟ ପର୍ବ—ଗ୍ରା. ବ. ( ସହରର ଶବ୍ଦ )—ନିମିତା ନିମିତ୍ୟ ( ଦେଖ )
Nimitya parba Nimitā nimitya (See)

ନିମିତ୍ୟରେ—ଗ୍ରା. ଅ—ନିମନ୍ତେ ( ଦେଖ )
Nimityare Nimante (See)

ନିମିତ୍ରଣ—ଗ୍ରା. ବ. ( ସ. ନିମନ୍ତ୍ରଣ )—ନିମନ୍ତ୍ରଣ —
Nimitrana Invitation.

ନିମିଷ—ସ. ବ. ( ନି+ମିଷ୍ ଧାତୁ=ସ୍ପର୍ଦ୍ଧା କରିବା; ଆଖି ପିଛୁଳିବା +ଭାବ. ଅ )—
Nimisha
(ନିମେଷ—ଅନ୍ୟରୂପ) ୧ । ଆଖି ପିଛୁଳିବା; ଚକ୍ଷୁପଲକ; ଆଖିବୁଜିବା—
1. Twinkling of the eye; shutting of the eye; wink.
୨ । କାଳମାପ ସମୟ; ଅତି ସୂକ୍ଷ୍ମ ସମୟ; ଆଖି ପିଛୁଳିବାକୁ ଯେତିକି ସମୟ ଲାଗେ ସେତିକି ସମୟ—
2 A moment; twinkling; twinkle; an instant.
୩ । ବିଷ୍ଣୁ—3. Bishnu.

ନିମିଷ କ୍ଷେତ୍ର—ସ. ବ—ନୈମିଷାରଣ୍ୟ ( ଦେଖ )
Nimishakshetra Naimishāranya (See)

ନିମିଷିତ—ସ. ବ. ( ନି+ମିଷ୍ ଧାତୁ+ଭାବ. ତ)—ଆଖି ପିଛୁଳିବା—
Nimishita Momentary shutting of the eye; blink.
ସ. ଵଣ—ନିମୀଳିତ ( ଚକ୍ଷୁ )—Closed (eyelid).

ନିମିଷେ—ଦେ. କ୍ରି . ଵଣ—୧ । ଆଖି ପିଛୁଳିବା ମାତ୍ରକେ—
Nimishe 1. At the twinkling of an eye.
एकनिमिष ଯେବେ ବଢ଼ୁଅଛି ଶେ ଦିନେ ନସ୍ତ ନମିଷେ ମିଶେ
एकनिमिख ବେଗେ ଉଦ କଲ ଆସେ ଆସେ—ଲକ୍ଷ୍ମ. ପ୍ରେମସୁଧାନିଧି
୨ । ଏକ ମୁହୂର୍ତ୍ତ ମାତ୍ର—2. Only a moment

ନିମୀଳ—ସ. ବ. ( ନି+ମୀଲ୍ ଧାତୁ+ଭାବ. ଅ )—ନିମୀଳନ (ଦେଖ)
Nimila Nimilana (See)

ନିମୀଳକ—ସ. ଵଣ. ( ନି+ମୀଲ୍ ଧାତୁ+କର୍ତ୍ତୃ. ଅକ )—ଯାହା ମୁଦ୍ରିତ କରେ—Which shuts; shutting.
Nimilaka
( ନିମୀଳକା—ସ୍ତ୍ରୀ ) ବ. (ଆଧୁନିକ ବିଜ୍ଞାନ ପରିଭାଷା)—ସଙ୍କୋଚକ ପେଶୀ; ଯେଉଁ ପେଶୀ ଚଳିକରିଥି ଶରୀରର ଛିଦ୍ରକୁ ମୁଦ୍ରିତ କରେ—
A sphincter; contracting muscle.

ନିମୀଳନ—ସ· ବ. (ନି+ମୀଲ୍ ଧାତୁ=ଆଖି ବୁଜିବା+ଭାବ. ଅନ)—.
Nimilana ୧ । ( ଆଖି ) ବୁଜିବା; ମୁଦିବା—1. Closing or
( ଉନ୍ମୀଳନ—ବିପରୀତ ) shutting ( as of the eyes ); winking.
୨ । ନିମେଷ, ନିମିଷମାତ୍ର ସମୟ; କ୍ଷଣ—
2. Twinkling of the eye; an instant.
୩ । ଫୁଟିଲା ଫୁଲର ମୁଦ ହେବା—
3. Closing of a flower.
୪ । ସଙ୍କୋଚନ—4. Contracting.
୫ । ମୋହ—5 Stupefaction; fainting.
୬ । ସମ୍ମୋହନ—6. Fascination; enchantment.
୭ । ମରଣ—7. Death.
୮ । (ଣିଜନ୍ତ+ଭାବ ଅନ) ବନ୍ଦ କରିବା; ମୁଦ୍ରିତ କରିବା—
8. Closing; shutting.

ନିମୀଳିକା—ସ. ବି. ସ୍ତ୍ରୀ. ( ନିମୀଳକ + ସ୍ତ୍ରୀ. ଆ )—
Nimīlikā ୧ । ବ୍ୟାଜ; ଛଳ—1 Pretence
୨ । ନିମୀଳନ; ଆଖିମିଟିକା—
2 Winking; twinkling.
ବିଣ ସ୍ତ୍ରୀ—ନିମୀଳକର ସ୍ତ୍ରୀଲିଙ୍ଗ—
The feminine of Nimīlakā.

ନିମୀଳିତ—ସ. ବିଣ. ( ନି + ମୀଲ୍ ଧାତୁ + କର୍ମ ତ )—୧ । ମୁଦ୍ରିତ—
Nimīlita 1. Closed; shut.
୨ । ସଙ୍କୁଚିତ—2 Contracted.
୩ । ଆଚ୍ଛାଦିତ—3. Covered.
୪ । ମୃତ—4. Dead.
୫ । ନିସ୍ପନ୍ଦ—5. Still; motionless.
୬ । ବିମୋହିତ—6. Fascinated; stupefied.
୭ । ମୂର୍ଚ୍ଛିତ—7. Fainted.
୮ । ଅବନତ—8. Bent.
୯ । (ଣିଜନ୍ତ + କର୍ମ ତ) ଯାହା ମୁଦ୍ରିତ କରାଯାଇଅଛି—
9. Which has been shut up.
ସ. ବି. ( + ଭାବ. ତ ) ନିମୀଳନ—
Closing; winking; twinkling.

ନିମୁଣ୍ଡିଆ—ଦେ. ବିଣ. ପୁଂ—୧ । ଅନାଥ—1. Protectorless.
Nimuṇḍiā ୨ । ବନ୍ଧୁହୀନ—2. Friendless.
(ନିମୁଣ୍ଡୀ—ସ୍ତ୍ରୀ) ୩ । ନିରାଶ୍ରୟ—3. Helpless.
निमुंडिआ, निमूड़े, निमूड्या ୪ । ପରିତ୍ୟକ୍ତ—4. Forlorn.
अनाथ
ନିମୁଣ୍ଡି ଲୋ ତୋର କେହି ନାହିଁ । ମୋର କେହିନାହିଁ
ମୋ ତ ମାଈ ହୋଇ ଗୋ—ଗୀତ ।
୫ । ଅଭିଭାବକହୀନ—5. Guardianless.

ନିମୂଳ—ସ ବିଣ—ମୂଳରହିତ; ମୂଳହୀନ ( ହି. ଶ. )—
Nimūla Rootless.
ସ. ବି—ପ୍ରକାଶକ ( ହି. ଶବ୍ଦସାଗର )—
Exhibition; manifestation.

ନିମେଷ—ସ. ବି—ନିମିଷ ( ଦେଖ )
Nimesha Nimisha ( See )
ନୟନ ବୋଇଲେ ହେ ଗୋଇଲେ ନିମେଷ
ନ ପକାଏ ଏହା ଜାଣ ହେ ଋଷି ଈଶ । କୃଷ୍ଣସିଂହ. ମହାଭାରତ, ବନ ।

ନିମେଷକ—ସ. ବି. ( ନିମେଷ + ସ୍ୱାର୍ଥେ କ )—୧ । ନିମିଷ ( ଦେଖ )
Nimeshaka 1. Nimisha ( See )
୨ । ( ନି + ମିଷ୍ ଧାତୁ + କର୍ତ୍ତୃ. ଅକ ) ଖଦ୍ୟୋତ—
2. Firefly.

ନିମେଷକୃତ୍—ସ. ବି. ( ନିମେଷ + କୃ ଧାତୁ + କର୍ତ୍ତୃ. କ୍ୱିପ୍; ଯାହା
Nimeshakṛut ଆଖିକୁ ବୁଜାଇ ଦିଏ )—ବିଦ୍ୟୁତ୍; ବିଜୁଳି—
Lightning.

ନିମେଷଣ—ସ. ବି. (ନି=ନାହିଁ + ମିଷ୍ ଧାତୁ=ବୁଜିବା + ଭାବ. ଅନ)-
Nimeshaṇa ୧ । ଚକ୍ଷୁରୁନ୍ମୀଳନ; ଆଖି ଫିଟେଇବା—
1. Opening of the eyelids.
୨ । (ନି + ମିଷ୍ ଧାତୁ + ଭାବ. ଅନ) ଆଖି ବୁଜିବା—
2. Shutting of the eyelids.

ନିମେଷ ପକା(କେ)ଇବା—ଦେ. କ୍ରି—ଆଖି ମିଟିକିବା—
Nimesha pakā(ke)ibā To twinkle the eyelids.
চোখ মটকান अंख मिचना

ନିମେଷରୁକ୍—ସ. ବି. ( ନିମେଷ=ଚକ୍ଷୁରୁନ୍ମୀଳନ + ରୁଚ୍ ଧାତୁ=
Nimesha ruk ଦୀପ୍ତି ପାଇବା + କର୍ତ୍ତୃ. କ୍ୱିପ୍ )—
ଜୁଳୁଜୁଳିଆ ପୋକ; ଖଦ୍ୟୋତ—Firefly.

ନିମେଷଶୂନ୍ୟ—ସ. ବିଣ. ( ତୃତୀୟା ତତ୍, ନିମେଷ + ଶୂନ୍ୟ)—
Nimesha śūnya ପଲକ ରହିତ; ଅନିମେଷ; ନିର୍ନିମେଷ—
ନିମେଷହୀନ } ଅନ୍ୟରୂପ Winkless; with a fixed or
ନିମେଷରହିତ steadfast gaze; staring

ନିମ୍ନ—ସ. ବିଣ. (ନି + ମ୍ନା ଧାତୁ=ଅଭ୍ୟାସ କରିବା + କର୍ତ୍ତୃ. ଅ)—
Nimna ୧ । ତଳ; ଅନୁଚ୍ଚ, ନୀଚ—1. Low.
୨ । ଅଗାଧ; ଗମ୍ଭୀର—2. Deep.
୩ । ନତ; ଖାଲୁଆ—3. Depressed; sunk.
୪ । ହୀନ—4. Base; mean.
୫ । ନିକୃଷ୍ଟ—5. Inferior
୬ । ତଳେ ଅବସ୍ଥିତ; ଅଧସ୍ଥ—
6. Low lying; placed below; lowly.
ବି—୧ । ଉତ୍ସଙ୍ଗ; କୋଳ—1. Lap; the part of the legs between the thighs and hips.
୨ । ପ୍ରବଣ ଭୂମି; ଅତଡ଼ା—2. Precipice.
ଦେ. ବି—୧ । ନିମ୍ନଲିଖିତ ବା ତଳଲିଖିତ ସ୍ଥାନ—
1 The following place.
୨ । ଭୂତଳ; ତଳ ଦେଶ—2. Ground; earth.
নিম্ন ଦେ. ବିଣ—ତଳଲିଖିତ—Written below;
नीचा specified below.

ନିମ୍ନ ଅଦାଲତ—ଦେ. ବି. ( ସ. ନିମ୍ନ + ଫା. ଅଦାଲତ୍ )—
Nimna adālata ଅପିଲ ଅଦାଲତର ନିମ୍ନସ୍ଥାନୀୟ ବା ତଳ
নিম্ন আদালত ଅଦାଲତ—Subordinate court;
निम्न अदालत lower court.

ନିମ୍ନଗ—ସ. ବିଣ. ( ନିମ୍ନ + ଗମ ଧାତୁ + କର୍ତ୍ତୃ. ଅ )—
Nimnaga ୧ । ନିମ୍ନଗାମୀ; ଯାହା ତଳ ଆଡ଼କୁ ବୋହି
(ନିମ୍ନଗା—ସ୍ତ୍ରୀ) ଯାଉଅଛି; ଅଧୋଗାମୀ—
1. Flowing downwards; descending.
୨ । ଗମ୍ଭୀର—2. Deep.

ନିମ୍ନଗା—ସ. ବି. ସ୍ତ୍ରୀ. ( ନିମ୍ନଗ + ସ୍ତ୍ରୀ. ଆ )—
Nimnagā ନଦୀ—A river
ବିଣ. ସ୍ତ୍ରୀ—ଯାହା ତଳ ଆଡ଼କୁ ଗତି କରେ ବା ବୋହିଯାଏ—
Flowing downwards.

ନିମ୍ନ ଜାତି—ଦେ. ବି—୧ । ନୀଚ ଜାତି—1. Low caste.
Nimna jāti ୨ । ନୀଚ ଶ୍ରେଣୀ—2. Low class
নীচ জাতি नीच जात (ନିମ୍ନ ଜାତୀୟ—ବିଣ)

ନିମ୍ନତା – ସଂ. ବି. ( ନିମ୍ନ + ଭାବ. ତା ) –
Nimnatā ୧ । ନୀଚତା—2. Lowness.
(ନିମ୍ନତ୍ୱ – ଅନ୍ୟରୂପ) ୨ । ଗମ୍ଭୀରତା—2. Depth.
୩ । ଖାଲ—3 Depression; cavity.

ନିମ୍ନ ପ୍ରବଣ – ସଂ. ବିଣ— ନିମ୍ନଗ; ନିମ୍ନାଭିମୁଖ; ତଳ ଆଡ଼କୁ ଗଡ଼ି କରୁ-
Nimna prabaṇa ଥିବା—Going downwards.
(ନିମ୍ନ ପ୍ରବଣା—ସ୍ତ୍ରୀ) ( ନିମ୍ନ ପ୍ରବଣତା—ବି )

ନିମ୍ନ ପ୍ରାଇମେରୀ —ଦେ. ବିଣ. ( ଆଧୁନିକ ବ୍ୟବହାର; ସଂ. ନିମ୍ନ ଓ ଇଂ.
Nimna prāimeri ପ୍ରାଇମେରୀ )—
ନିମ୍ନ প্রাইমেরী ଲୋଅର୍ ପ୍ରାଇମେରୀ (ବିଦ୍ୟାଳୟ); ଯେଉଁଠାରେ
**निम्न प्राइमेरी** ଛୋଟ ଛାତ୍ରମାନେ ବିଦ୍ୟାରମ୍ଭ କରନ୍ତି—
(ନିମ୍ନପ୍ରାଥମିକ—ଅନ୍ୟରୂପ) Lower primary (school).

ନିମ୍ନରେ – ଦେ. କ୍ରି. ବିଣ. ( ସଂ. ନିମ୍ନ ) –
Nimnare ୧ । ତଳେ—1. Below.
नीचे ୨ । ଏଥି ପରେ—Further on; afterwards.
**नीचे**

ନିମ୍ନ ଲି(ଲେ)ଖିତ —ଦେ ବିଣ. ( ସଂ. ନିମ୍ନଂ + ଲିଖିତ )—
Nimna li(le)khita ପରେ ଲେଖା ଯାଉଥିବା—
ନିମ୍ନ লিখিত Mentioned below; under-
**नीचे लिखाहुआ** mentioned.

ନିମ୍ନ ଶ୍ରେଣୀ—ଦେ. ବି. (ସଂ. ନିମ୍ନ+ଶ୍ରେଣୀ)—୧ । ନିମ୍ନ ଜାତି (ଦେଖ)
Nimna śreṇi 1. Nimna jāti (See)
ନିମ୍ନଶ୍ରେଣୀ ୨ । ବିଦ୍ୟାଳୟର ପ୍ରାଥମିକ ଶ୍ରେଣୀ—
**निच श्रेणी** 2. Primary class of a school.
୩ । ବିଦ୍ୟାଳୟର ନୀଚତର ଶ୍ରେଣୀ—
3. Lower class of a school.

ନିମ୍ନାଙ୍କିତ—ସଂ. ବି.—ନିମ୍ନଲିଖିତ (ଦେଖ)
Nimnāṅkita Nimna likhita (See)

ନିମ୍ନାଭିମୁଖ —ସଂ. ବିଣ. —ନିମ୍ନ ପ୍ରବଣ (ଦେଖ)
Nimnābhimukha Nimna prabaṇa (See)
(ନିମ୍ନାଭିମୁଖୀ—ସ୍ତ୍ରୀ) (ନିମ୍ନାଭିମୁଖୀ—ଅନ୍ୟରୂପ)

ନିମ୍ନେ—ଦେ କ୍ରି. ବିଣ. (ସଂ. ନିମ୍ନ)—ନିମ୍ନରେ (ଦେଖ)
Nimne Nimnare (See)
নিম্নে **निचे**

ନିମ୍ନୋଦ୍ଧୃତ—ସଂ ବିଣ. ( ନିମ୍ନ+ଉଦ୍ଧୃତ ) —ଏଥି ପରେ ଉଦ୍ଧୃତ କରାଯିବା
Nimnoddhṛuta ବିଷୟ—Quoted below.

ନିମ୍ନୋନ୍ନତ—ସଂ. ବିଣ. (ବିପରୀତ ସହଚର ଶବ୍ଦ) —୧ । ଉଚ୍ଚ ନୀଚ;
Nimnonnata ଉଚ୍ଚାବଚ; ଉଚ୍ଚାବଚ — 1. High and
low; up and down
୨ । ବନ୍ଧୁର—2. Uneven; undulating.

ନିମ୍ବ—ସଂ. ବି.—(ନିବ୍ ଧାତୁ=ପାଣି ଛିଞ୍ଚିବା+କର୍ତ୍ତୃ. ଅ)—
Nimba ନିମ (ଦେଖ)—Nima (See)

ନିମ୍ବକ—ସଂ. ବି. (ନିମ୍ବ+ସ୍ୱାର୍ଥେ କ)—୧ । ନିମ (ଦେଖ)
Nimbaka 1. Nima (See)
୨ । ମହାନିମ୍ବ (ଦେଖ)—2 Mahānimba (See)

ନିମ୍ବ ତରୁ—ସଂ. ବି.—୧ । ନିମ (ଦେଖ)
Nimba taru 1. Nima (See)
୨ । ପାରିଭଦ୍ର; ପାଲଧୁଆ—
2. The Indian coral tree

ନିମ୍ବ ତୈଳ—ସଂ. ବି.—ନିମ୍ବ ମଞ୍ଜିରୁ ନିଷ୍କାଷିତ ତୈଳ—
Nimba taila Oil extracted from Nimba seeds

ନିମ୍ବାଦିତ୍ୟ—ସଂ. ବି. (ନାମ) ବୈଷ୍ଣବ ଧର୍ମ ସମ୍ପ୍ରଦାୟବିଶେଷ (ନିମାଇତ)
Nimbāditya ର ପ୍ରବର୍ତ୍ତକ—Name of a Baishṇaba
reformer.

[ଦ୍ର—ନିମ୍ବାଦିତ୍ୟ ବୃନ୍ଦାବନ ପାଖରେ ଧ୍ରୁବ ନାମକ ପାହାଡ଼ରେ ବାସ କରୁଥିଲେ । ଏଠାରେ ଏହାଙ୍କ ଶିଷ୍ୟମାନେ ଗୋଟିଏ ମଠ ସ୍ଥାପନ କରି ଅଛନ୍ତି । ଏହାଙ୍କ ପିତାଙ୍କ ନାମ ଜଗନ୍ନାଥ । ବାଲ୍ୟାବସ୍ଥାରେ ଏହାଙ୍କ ନାମ ଭାସ୍କରାଚାର୍ଯ୍ୟ ଥିଲା । ଏହାଙ୍କର ଅନ୍ୟ ନାମ ଅରୁଣି ଥିଲା । ଏହାଙ୍କୁ କେହି କେହି ରାଧିକାଙ୍କ କଙ୍କଣର ଅବତାର ଓ କେହି କେହି ସୂର୍ଯ୍ୟଙ୍କ ଅଂଶରୁ ଜାତ ବୋଲି କହନ୍ତି । ଏ ବିଶେଷ କୃଷ୍ଣ ଭକ୍ତ ଥିଲେ । ଏହାଙ୍କ ସମ୍ବନ୍ଧେ ହିନ୍ଦୀ ଭକ୍ତମାଳ ଗ୍ରନ୍ଥରେ ଲେଖା ଅଛି ଯେ ଥରେ ଜଣେ ସନ୍ନ୍ୟାସୀ ବା ଜୈନ ସାଧୁ ଏହାଙ୍କ ସଙ୍ଗେ ଧର୍ମଶାସ୍ତ୍ର ବିଷୟକ ଶାସ୍ତ୍ରବିଚାର କରୁ କରୁ ସୂର୍ଯ୍ୟାସ୍ତ ସମୟ ଉପସ୍ଥିତ ହେଲା । ନିମ୍ବାଦିତ୍ୟ ଉକ୍ତ ସାଧୁଙ୍କୁ ଭୋଜନ କରିବା ପାଇଁ ଅନୁରୋଧ କରିବାରୁ ସାଧୁ ସୂର୍ଯ୍ୟାସ୍ତ ପରେ ଭୋଜନ କରନ୍ତି ନାହିଁ ବୋଲି ପ୍ରକାଶ କଲେ । ଏହା ଶୁଣି ନିମ୍ବାଦିତ୍ୟ ସ୍ୱୀୟ ସୁଦ୍ଧ ବଳରେ ଅସ୍ତୋନ୍ମୁଖ ସୂର୍ଯ୍ୟଙ୍କୁ ଅଟକାଇ ରଖିଲେ ଓ ସନ୍ନ୍ୟାସୀଙ୍କର ଭୋଜନ ଶେଷ ନ ହେବା ପର୍ଯ୍ୟନ୍ତ ସୂର୍ଯ୍ୟଦେବତା ଗୋଟିଏ ନିମ୍ବ ଗଛ ଉପରେ ଅଟକି ରହିଲେ । ଏଥିପାଇଁ ଏହାଙ୍କ ନାମ ନିମ୍ବାଦିତ୍ୟ ବା ନିମ୍ବାର୍କ ହୋଇ ଥିଲା । ଏ ନିମାଇତ୍ ନାମକ ଗୋଟିଏ ବୈଷ୍ଣବ ସମ୍ପ୍ରଦାୟର ଆଦି ଗୁରୁ । (ହି. ଶବ୍ଦସାଗର)

ଏହି ସମ୍ପ୍ରଦାୟର ବୈଷ୍ଣବମାନେ ବ୍ରହ୍ମବୈବର୍ତ୍ତପୁରାଣ ବର୍ଣ୍ଣିତ ରାଧାକୃଷ୍ଣ ଯୁଗଳ ମୂର୍ତ୍ତିଙ୍କର ଉପାସନା କରନ୍ତି । ଏମାନେ କପାଳରେ କେଶ ମୂଳଠାରୁ ଭ୍ରୂ ମୂଳ ପର୍ଯ୍ୟନ୍ତ ଦୁଇଟି ସମାନ୍ତର ଗୋପୀଚନ୍ଦନ ରେଖା ସାମ୍ପ୍ରଦାୟିକ ଚିହ୍ନ ସ୍ୱରୂପ ଧାରଣ କରନ୍ତି । ଗୀତଗୋବିନ୍ଦରଚୟିତା ଜୟଦେବ ଗୋସ୍ୱାମୀ ଏହି ସମ୍ପ୍ରଦାୟଭୁକ୍ତ ଥିଲେ । ମାଧବାଚାର୍ଯ୍ୟ ମଧ୍ୟ ଏହି ସମ୍ପ୍ରଦାୟଭୁକ୍ତ ଥିଲେ । କେହି କେହି ନିମାଇତ ସମ୍ପ୍ରଦାୟକୁ ମାଧବାଚାର୍ଯ୍ୟଙ୍କ ସମ୍ପ୍ରଦାୟ ନାମରେ ଡାକନ୍ତି ।]

ନିମ୍ବାର୍କ—ସଂ. ବି. (ନାମ) —ନିମ୍ବାଦିତ୍ୟ (ଦେଖ)
Nimbārka Nimbāditya (See)

ନିମ୍ବୁ(ମ୍ବୂ)—ସଂ. ବି. (ନିବ ଧାତୁ+ଉ; ଊ) —୧ । ନେମ୍ବୁ; ଲେମ୍ବୁ—
Nimbu (mbū) 1. Lemon; citron; Citrus Medica.
ସଂ. ଅମ୍ଳଜମ୍ବୀର, ବହ୍ନି, ୨ । କାଗଜି—2. Lime (fruit
ଦୀପ୍ତ, ବହ୍ନିବୀଜ, ଅମ୍ଳସାର and tree.)
ଦନ୍ତାଘାତ, ଶୋଧନ, ୩ । ନାରଙ୍ଗ; କମଳା—
ଜନ୍ତୁମାରି, ରେଚନ । 3. Orange.

ନିମ୍ବୁ(ମ୍ବୂ)କ—ସଂ. ବି. (ନିମ୍ବୁ: ନିମ୍ବୂ+ସ୍ୱାର୍ଥେ. କ)— ନିମ୍ବୁ (ଦେଖ)
Nimbu (mbū)ka Nimbu (See)

**ନିମ୍ବୁ ପାନକ**—ସ. ବ. (ବୈଦ୍ୟକ) (ନିମ୍ବୁ+ପାନକ)—ଛଅ ଭାଗ ଚିନି
Nimbu pānaka ସଙ୍ଗେ ଏକ ଭାଗ ଲେମ୍ବୁ ରସ ମିଶା ଯାଇ ମରିଚ ଓ ଲବଙ୍ଗ ଗୁଣ୍ଡା ପଡ଼ି ପ୍ରସ୍ତୁତ ହୋଇଥିବା ପଣା ବା ସର୍ବତ୍—Lemonade; lemon syrup.

**ନିମ୍ଲୋଚ**—ସ. ବ.-(ନି+ମ୍ଲୁଚ୍ ଧାତୁ+ଭାବ.ଅ)-ସୂର୍ଯ୍ୟଙ୍କର ଅସ୍ତହେବା
Nimlocha (ହି. ଶ )—The setting of the sun.

**ନିମ୍ଲୋଚନୀ**—ସ. ବ.—(ନାମ)—ବରୁଣଙ୍କ ନଗରୀ ବା ରାଜଧାନୀ—
Nimlochani The name of the capital of Baruṇa.
[ଦ୍ର—ଏହା ମାନସୋତ୍ତର ପର୍ବତର ପଶ୍ଚିମରେ ଅବସ୍ଥିତ— ହି. ଶବ୍ଦସାଗର ।]

**ନିୟତ**—ସ. ବଣ. (ନି+ଯମ୍ ଧାତୁ=ନିବୃତ୍ତି କରିବା+କର୍ମ. ତ)—
Niyata ୧ । ବଦ୍ଧ—1. Restrained.
୨ । ଅଟକା ଯାଇଥିବା—2. Checked.
୩ । ଦମିତ; ସଂଯତ—
3. Curbed; suppressed.
୪ । ଶାସିତ—4. Controlled
୫ । ବଶୀକୃତ—5. Subdued.
୬ । ସ୍ଥିରୀକୃତ; ସ୍ଥିର—6. Settled; fixed.
୭ । ନିଶ୍ଚିତ—7. Sure; certain.
୮ । ମନୋଯୋଗୀ—8 Attentive: intent.
୯ । ଜିତେନ୍ଦ୍ରିୟ—9. Continent; temperate; abstemious; having self control.
୧୦ । ଅବଶ୍ୟମ୍ଭାବୀ—10. Inevitable; unavoidable; doomed.
୧୧ । ଅବିଶ୍ରାନ୍ତ; ଅବିଚ୍ଛିନ୍ନ—11. Incessant; continuous.
୧୨ । ନିୟମିତ; ନିୟମ ଦ୍ୱାରା ପରିମିତ—
12. Regulated; regular.
୧୩ । ସସୀମ; ନିର୍ଦ୍ଦିଷ୍ଟ—13. Limited.
୧୪ । ନିତ୍ୟ; ସର୍ବଦା ଘଟୁଥିବା—14. Perpetual; constant; eternal.
୧୫ । ନିଯୋଜିତ; ନୈନାତ୍ ( ହି. ଶ. )—
15. Employed; engaged; deputed.
୧୬ । ପାଳିତ ( ବ୍ରତାଦି )—16. Observed; maintained ( as a vow) (Apte.)
୧୭ । ସ୍ଥାପିତ; ପ୍ରତିଷ୍ଠିତ ( ହି. ଶ. )—
17 Established; set; placed.
ସ. ବ—୧ । ନିତ୍ୟକର୍ମ (ପ୍ରକୃତିବାଦ)—1. One's daily rituals; one's daily round of duties.
୨ । ଶିବ; ମହାଦେବ ( ହି. ଶ )—2. Siba.
ଦେ. ବଣ.—ଶେଷ; ଅନ୍ତିମ—Final.
ଏମନ୍ତେ ମରଣ ନିୟତ—କାଳ ହୋଇବ ଉପଗତ । ଜଗନ୍ନାଥ- ଭାଗବତ ।
ଦେ. ବ.—୧ । ମୃତ୍ୟୁ—1. Death.
ମୋ ସଙ୍ଗରେ ଯୁଦ୍ଧ ଇଚ୍ଛା ଯେତେ ସୁତ,
କରିବାକୁ ଜାଣୁଛି ହେବ ତା ନିୟତ । କୃଷ୍ଣସିଂହ. ମହାଭାରତ ଉଦ୍‌ଯୋଗ ।
୨ । ଶେଷ—2 End.
୩ । ( ସ. ନିୟତି ) ଅଦୃଷ୍ଟ; ଭାଗ୍ୟ—
3 Providence; luck
ସ. କ୍ରି. ବଣ. ( ସ. ନିୟତଂ ) ୧ । ସତତ; ସର୍ବଦା—
1. Constantly.
୨ । ଚିରକାଳ ପାଇଁ—2. Perpetually; eternally.
୩ । ନିତ୍ୟ—3. Daily; every day.
୪ । ଅବିଶ୍ରାନ୍ତ ଭାବରେ—4 Continually; uninterruptedly.
୫ । ଅବଶ୍ୟ; ଅନିବାର୍ଯ୍ୟରୂପେ—5. Inevitably.
୬ । ବଳପୂର୍ବକ—6. Forcibly ( Apte ).
ବୈଦେ. ବ. ( ଆ. ନୀୟତ୍=ସଂକଳ୍ପ; ଲକ୍ଷ୍ୟ)—
नियत ୧ । ସଂକଳ୍ପ ପାଳନ—1. Acting up to one's resolution.
**निवत** ୨ । କର୍ତ୍ତବ୍ୟ ପାଳନ—2. Discharge of one's duties.
୩ । ବ୍ରତ ପାଳନ; ସତ୍ୟ ପାଳନ—3. Fidelity; strictly following one's vow.
୪ । ଧର୍ମାନୁମୋଦିତ ଭାବରେ ବା ବିଶ୍ୱାସର ସହକାରେ କାର୍ଯ୍ୟ କରିବା—4. Righteousness.
୫ । ଉଦ୍ଦେଶ୍ୟ; ଲକ୍ଷ୍ୟ—5. Aim; intention; motive.
୬ । ସଂକଳ୍ପ; ବ୍ରତ—6 Resolution; vow.
ବଣ.—୧ । କର୍ତ୍ତବ୍ୟପରାୟଣ—1. Dutiful.
୨ । ଧର୍ମପରାୟଣ—2 Righteous.

**ନିୟତ(ତି) କରିବା**—ଦେ. କ୍ରି—୧ । ଧର୍ମ ଅନୁସାରେ କାର୍ଯ୍ୟ କରିବା—
Niyata(ti) karibā 1. To act according to righteousness.
नियत करा
**नियत करना** ୨ । ଏକମାତ୍ର ଧର୍ମାନୁମୋଦିତ ପନ୍ଥାକୁ ଅବଲମ୍ବନ କରିବା—2. To stick to the righteous path.
ନିୟତ ଜଗିବା } ଅନ୍ୟରୂପ
ନିୟତ ରଖିବା }
୩ । ମନରେ ସତ୍‌ସଂକଳ୍ପ କରିବା—3. To form righteous resolution in the mind.
୪ । ଦେବତାଙ୍କ ଉଦ୍ଦେଶ୍ୟରେ ମାନସିକ କରିବା—
4. To make a religious vow.

**ନିୟତ(ତି)କୁ ବରକତ**—ଦେ. ପ୍ରବଚନ ( ଫା. ନୀୟତ୍+ଫା. ବରକତ୍ =ଲାଭ, ବୃଦ୍ଧି )—
Niyata(ti)ku barakata
नियते बरकत ଯେ ଧର୍ମ ପ୍ରମାଣେ ବା କର୍ତ୍ତବ୍ୟ ପାଳନ କରି କାର୍ଯ୍ୟ
**नियतकी बरकत** କରେ ତାକୁ ଧର୍ମ ସହେ, ଅର୍ଥାତ୍ ତାର ବୃଦ୍ଧି ହୁଏ—(Proverb) God favours one who faithfully discharges his duties; 'Righteousness exalteth a person'.

ନିୟତ(ତି)ଖରାପ କରିବା—ଦେ. କ୍ରି. ( ଫା. ନାସୃତ୍+ଫା. ଖରାବ୍ )
Nıyata(tı) kharāpa karıbā ବଦନୀୟତ କାମ କରିବା;
निय़त खाराप करा ଆପଣାର ଦୃଢ଼ ବ୍ରତ ବା ସଙ୍କଳ୍ପ ଭଙ୍ଗ କରିବା—
नीयत बिगाड़ना To infringe strict principles of
[ ନିୟତ(ତି)ବିଗାଡ଼ିବା—ଅନ୍ୟରୂପ ] morality or righteousness.

ନିୟତ(ତି)ଖରାପ ହେବା—ଦେ. କ୍ରି.—୧ । ବଦନୀୟତ ହେବା; ନିଜର
Nıyata(tı)kharāpa heba ସୁସଙ୍କଳ୍ପ ଅଟଳ ନ ରହିବା—
नीयतडोलना, नीयतबिगड़ना 1 Infringement of one's strict principles of morality, righteousness or fidelity.
ନିୟତ(ତି) ବିଗିଡ଼ିବା } ଅନ୍ୟରୂପ
ନିୟତ(ତି) ବଦ୍ ହେବା }

୨ । ମନରେ ମନ୍ଦ ସଙ୍କଳ୍ପ ଜନ୍ମିବା—2. The arising of bad resolutions in the mind

ନିୟତ(ତି)ପୂରିବା—ଦେ. କ୍ରି ( ସଂ. ନିୟତି )—ମୃତ୍ୟୁ ନିକଟବର୍ତ୍ତୀ
Nıyata(tı) pūrıbā ହେବା, ଆୟୁଷ ପୂରିବା—
Being on the point of death.

ନିୟତ ମାନସ—ସଂ ବିଣ. ପୁଂ (ବହୁବ୍ରୀହି; ନିୟତ + ମାନସ)—
Nıyata mānasa ଜିତାତ୍ମା; ଜିତେନ୍ଦ୍ରିୟ—Continent; of
(ନିୟତମାନସା—ସ୍ତ୍ରୀ) subdued passions, having one's passions under control.

ନିୟତାତ୍ମା—ସଂ ବିଣ. (ବହୁବ୍ରୀହି; ନିୟତ+ଆତ୍ମନ୍; ୧ମା. ୧ବ)—
Nıyatātmā ନିୟତ ମାନସ (ଦେଖ)
Nıyata mānasa (See)

ନିୟତାଶନ—ସଂ ବିଣ. ପୁଂ (ବହୁବ୍ରୀହି; ନିୟତ+ଅଶନ=ଭୋଜନ)—
Nıyatāśana ନିୟତାହାରୀ (ଦେଖ)
(ନିୟତାଶନା—ସ୍ତ୍ରୀ) Nıyatāhārī (See)

ନିୟତାହାର—ସଂ. ବିଣ. ପୁଂ. (ବହୁବ୍ରୀହି; ନିୟତ+ଆହାର)—
Nıyatāhāra ନିୟତାହାରୀ (ଦେଖ)
(ନିୟତାହାରା—ସ୍ତ୍ରୀ) Nıyatāhāri (See)
ସଂ. ବି. (କର୍ମଧା)—ପରିମିତ ଆହାର—
Regulated dıet.

ନିୟତାହାରୀ—ସଂ. ବିଣ. ପୁଂ. (ନିୟତ+ଆହାର+ଇନ୍ ୧ମା ୧ବ)—
Nıyatāhārī ପରିମିତାହାରୀ—Abstemious; regular in
(ନିୟତାହାରିଣୀ—ସ୍ତ୍ରୀ) matters of diet.

ନିୟତି—ସଂ. ବି. (ନି+ଯମ୍ ଧାତୁ+କରଣ. ତି)—
Nıyatı ୧ । ଅଦୃଷ୍ଟ; ଭାଗ୍ୟ—1 Luck.
୨ । ବିଧାତାଙ୍କ ନିର୍ଦ୍ଧାରିତ ବିଷୟ; ଐଶିକ ନିୟମ—
2. Pre-ordained matter.
୩ । ଦୈବ; କର୍ମବନ୍ଧ—
3. Destiny; Fate; Providence.
୪ । ପୂର୍ବଜନ୍ମରେ ଅନୁଷ୍ଠିତ ଶୁଭାଶୁଭ କର୍ମାନୁସାରେ ତତ୍ତତ୍ କର୍ମର ଈଶ୍ୱର ନିର୍ଦ୍ଧାରିତ ଫଳଭୋଗାବସ୍ଥା—
4. Preordination; the enjoyment of the result of one's actions in a previous existence, as ordained by God.
୫ । ନିର୍ଦ୍ଧାରିତ ଶୃଙ୍ଖଳା—5. Fixed order of things.
୬ । ନିୟମ—6. Regulation; law.
୭ । ମୃତ୍ୟୁ—7. Death
୮ । ଅନିବାର୍ଯ୍ୟ ଘଟନା—
8. Inevitable circumstance.
୯ । ଆକସ୍ମିକ ଘଟନା; ଅତର୍କିତ ବା ଅନପେକ୍ଷିତ ଘଟନା—
9. Accident.
୧୦ । (+ଭାବ. ତି) ସଂଯମ; ଦମନ—
10. Restraint; restriction (Apte).
୧୧ । ଜିତେନ୍ଦ୍ରିୟତା—
11. Self-restraint; self-control (Apte).
୧୨ । ଧର୍ମଦୃଷ୍ଟିରେ କର୍ତ୍ତବ୍ୟ କର୍ମ—
12. Religious duty or obligation (Apte).
୧୩ । ସ୍ଥିରତା—13. Fixity.

ନିୟତିକୁ ବଳ କାହାର—ଦେ. ପ୍ରବଚନ (ସଂ. ନିୟତିଃ କେନ
Nıyatıku bala kāhāra ? ବାଧ୍ୟତେ)—ଦୈବ ଉପରେ
नियतिव उपव बल काव ? ମନୁଷ୍ୟର ହାତ ନାହିଁ—
(proverb) Who can stay the course of Fate ?

ନିୟତା—ସଂ. ବି. ସ୍ତ୍ରୀ. (ନିୟତ+ସ୍ତ୍ରୀ. ଆ)—ଦୁର୍ଗା—
Niyatā Goddess Durgā,

ନିୟତେନ୍ଦ୍ରିୟ—ସଂ ବିଣ. ପୁଂ. (ବହୁବ୍ରୀହି; ନିୟତ+ଇନ୍ଦ୍ରିୟ)—
Nıyatendriya ନିୟତ ମାନସ (ଦେଖ)
(ନିୟତେନ୍ଦ୍ରିୟା—ସ୍ତ୍ରୀ) Nıyata mānasa (See)

ନିୟନ୍ତବ୍ୟ—ସଂ. ବିଣ. (ନି+ଯମ୍ ଧାତୁ+କର୍ମ. ତବ୍ୟ)—
Nıyantabya ନିୟନ୍ତ୍ରିତ ହେବାର ଯୋଗ୍ୟ—
Fit to be regulated or restrained

ନିୟନ୍ତା—ସଂ. ବି. (ନି+ଯମ୍ ଧାତୁ=ବିରତ ହେବା+କର୍ତ୍ତୃ. ତୃ;
Nıyantā ନିୟନ୍ତୃ ଶବ୍ଦ; ୧ମା. ୧ବ)—୧ । ନିୟାମକ—
(ନିୟନ୍ତ୍ରୀ—ସ୍ତ୍ରୀ) 1 Controller; regulator; controller.
୨ । ଶାସ୍ତା; ଶାସକ—2. Governor; ruler.
୩ । ପରିଚାଳକ; ନେତା—3 Leader.
୪ । ବ୍ୟବସ୍ଥାପକ—4. Legislator; lawmaker.
୫ । ଦଣ୍ଡଦାତା—5. Punisher; chastiser (Apte).
୬ । ସାରଥି; ରଥଚାଳକ—6 Driver; charioteer.
୭ । ବିଷ୍ଣୁଙ୍କ ନାମ (ସହସ୍ର ନାମ)—
7. A name of Bishnu.
୮ । ପରମାତ୍ମା—8. The Supreme Being (Apte).

ନିୟନ୍ତ୍ରଣ—ସଂ. ବି. (ନି+ଯନ୍ତ୍ର୍ ଧାତୁ=ବିରତ ହେବା; ସଙ୍କୁଚିତ ହେବା
Nıyantraṇa +ଭାବ. ଅନ)—୧ । ସଂଯମନ—
1. Checking; controlling; restraint.
୨ । ଶାସନ—2. Governing.
୩ । ନିୟମନ—3. Regulating; restricting.
୪ । ପ୍ରତିବନ୍ଧ ଦୂରୀକରଣ—
4. Removal of obstruction

୫ । ସଜ୍ଞା ନିରୂପଣ—5. Defining.
୬ । ନିବାରଣ—6. Preventing.
୭ । ଅନେକାର୍ଥ ଶବ୍ଦର ଏକ ଅର୍ଥ ନିରୂପଣ—
7. Confining of a word to a particular sense (Apte).
୮ । ପରିଚାଳନ—8. Conducting.

**ନିୟନ୍ତ୍ରିତ**—ସ. ଣ. (ନି+ଯନ୍ତ୍ର୍ ଧାତୁ=ସଙ୍କୁଚିତ ହେବା+କର୍ମ.ତ)—
Niyantrita ୧ । ନିୟମିତ—1. Rugulated.
୨ । ଦମିତ; ସଂଯତ—
2. Controlled; checked; curbed; restrained.
୩ । ଶୃଙ୍ଖଳିତ; ବଦ୍ଧ—3 Tied; bound.
୪ । ନିବାରିତ—4. Prevented.
୫ । ପରିଚାଳିତ—5. Guided.
୬ । ଶାସିତ—6 Governed.
୭ । ସଙ୍କୋଚିତ—7. Caused to contract.
୮ । ଗୋଟିଏ ଅର୍ଥରେ ଅବଦ୍ଧ ହୋଇଥିବା (ଶବ୍ଦ)—
8. ( a word ) Confined to a particular sense.

**ନିୟମ**—ସ. ବ.—(ନି+ଯମ୍ ଧାତୁ=ଅଙ୍ଗୀକାର କରିବା+ଭାବ. ଅ)—
Niyama ୧ । ବିଧି—1. Rule; maxim.
୨ । ନିର୍ଦ୍ଦିଷ୍ଟ ବିଧି—2 Fixed rule; discipline.
୩ । ଆଇନ୍—3 Regulation; law.
୪ । ପ୍ରତିଜ୍ଞା; ଅଙ୍ଗୀକାର—4. Promise; resolution; agreement; vow.
୫ । ବ୍ରତ; ଧର୍ମାନୁଷ୍ଠାନ—5. Penance; devotion; religious austerities.
[ଦ୍ର—ଶୌଚ, ସନ୍ତୋଷ, ତପସ୍ୟା, ବେଦାଧ୍ୟୟନ, ଈଶ୍ୱରପ୍ରଣିଧାନ ଏହି ପାଞ୍ଚ ଗୋଟି କର୍ମ ନିୟମର ଅନ୍ତର୍ଭୁକ୍ତ ।]
୬ । ଉପବାସାଦି ବ୍ରତ—
6. Religious vow; penance.
୭ । ପ୍ରକୃତି; ସ୍ୱଭାବ—7. Nature.
୮ । ଅଭ୍ୟାସ—8. Habit.
୯ । ରୀତି; ପ୍ରଥା—9. Custom; usage.
୧୦ । ଆଜ୍ଞା; ଆଦେଶ; ଅନୁଶାସନ—
10. Precept; edict; order.
୧୧ । ଦମନ—11. Restraint; restraining; checking
୧୨ । ଇନ୍ଦ୍ରିୟନିରୋଧ; ସଂଯମ—12. Self-control; self-denial; forbearance.
୧୩ । ନିରୋଧ—13. Obstruction; restriction.
୧୪ । ଶୃଙ୍ଖଳା; ଧାରା; ରୀତି; ପଦ୍ଧତି; ପ୍ରଣାଳୀ—
14. Mode; system; method.
୧୫ । ସୂତ୍ର—14. Thread; clue.
୧୬ । ଲକ୍ଷଣ—15. Sign.
୧୭ । ବଶୀଭୂତ କରିବା; ଆୟତ୍ତ କରିବା—
17. Taming; subduing (Apte).
୧୮ । ଆବଦ୍ଧ କରିବା—18. Confining (Apte).
୧୯ । ବାଧା ଦେବା—19 Preventing (Apte).
୨୦ । ନିୟନ୍ତ୍ରଣ; ସୀମା ନିର୍ଦ୍ଦେଶ—
20. Restriction; limitation (Apte).
୨୧ । ନିୟମାନୁବର୍ତ୍ତିତା—21. Regularity (Apte).
୨୨ । ସ୍ଥିରତା—22. Certainty.
୨୩ । ନିର୍ଦ୍ଧାରଣ—23. Ascertainment.
୨୪ । ଆବଶ୍ୟକତା—24. Necessity.
୨୫ । ବାଧ୍ୟତା—25. Obligation.
୨୬ । ଓଷା; ଯେଉଁ ବ୍ରତ ଯମ ପରି ଅବଶ୍ୟକରଣୀୟ ନୁହେଁ କିନ୍ତୁ ଯାହା ପାଳନ କରିବା ପାଇଁ ଶାସ୍ତ୍ର ନିର୍ଦ୍ଦେଶ ଅଛି—
26. Any minor observance or lesser vow; a duty prescribed to be done but which is not so obligatory as Jama (Apte)
୨୭ । (ପୁରାଣ) ଧର୍ମରାଜଙ୍କ ପୁତ୍ର; ଧୃତିଙ୍କ ଗର୍ଭରେ ଧର୍ମଙ୍କ ଔରସରେ ଜାତ ପୁତ୍ର—27. Name of the son of Dharmarāja; necessity or law personified; The God of Justice as a son of Dharma and Dhṛuti.
୨୮ । କବିପ୍ରସିଦ୍ଧି—28. Poetic usage; a poetical common place or convention.
[ ଦ୍ର—କବିମାନେ କଳ୍ପନାରେ ଯାହା ଯାହା ବର୍ଣ୍ଣନା କରିଥାନ୍ତି ତାହାକୁ ନିୟମ ବୋଲାଯାଏ । ଯଥା—ଚକୋର ଚନ୍ଦ୍ର କିରଣ ପାନ କରେ; ଚାତକ ବର୍ଷା ଜଳ ମାତ୍ର ପାନ କରେ; ଯଶଃ, କୀର୍ତ୍ତି ଓ ହାସ୍ୟ ଧବଳବର୍ଣ୍ଣ; ରାଗ ରକ୍ତବର୍ଣ୍ଣ; ରମଣୀମାନେ ଗୋଇଠା ମାରିଲେ ଅଶୋକ ଫୁଲ ଫୁଟେ ଓ କୁଳୁକୁଞ୍ଚା ପାଣି ପକାଇଲେ ବଉଳ ଫୁଲ ଫୁଟେ; ସ୍ତ୍ରୀମାନଙ୍କ କଟାକ୍ଷରେ ଯୁବକର ହୃଦୟ ଶରବିଦ୍ଧ ହୋଇଥାଏ; କନ୍ଦର୍ପର ଧନୁ କୁସୁମନିର୍ମିତ; କୋକିଳମାନେ ଆମ୍ବ ବଉଳର ରସ ପାନ କରି ମଧୁର ନାଦ କରନ୍ତି; ଚନ୍ଦ୍ର ସଙ୍ଗେ କୁମୁଦମାନ ଓ ସୂର୍ଯ୍ୟଙ୍କ ସଙ୍ଗେ ପଦ୍ମମାନ ପ୍ରୀତି; ଚକ୍ରବାକ ମିଥୁନ ରାତ୍ରି ହେଲାରୁ ବିରହ ଭୋଗ କରନ୍ତି; ବିରହତାପରେ ଦେହ ଜଳିଯାଏ; ଇତ୍ୟାଦି । ଏଗୁଡ଼ିକ କବିପ୍ରସିଦ୍ଧିର ଉଦାହରଣ । ]
୨୮ । ( ଯୋଗ ଦର୍ଶନ )—ମନୋନିରୋଧ—
28. Restraint of the mind; the second of the eight principal steps of meditation in Joga (Apte).
୨୯ । ( ମୀମାଂସାଦର୍ଶନ ) ଯେଉଁ ଅନ୍ୟଥା ଇଚ୍ଛାଧୀନ ନିୟମ ପାଳନ କରିବାପାଇଁ ଶାସ୍ତ୍ରନିର୍ଦ୍ଦେଶ ଅଛି—
29. A rule or precept which lays down something which, but for the rule, would be optional (Apte).

୩୦ । ସଜ୍ଞା ନିର୍ଦ୍ଦେଶ —
30. Defining; definition ( Apte ).
୩୧ । ସ୍ୱରକୁ କମାଇବା—
31. Keeping down or lowering (as of the voice ( Apte ).
୩୨ । ବିଷ୍ଣୁଙ୍କର ନାମ ( ସହସ୍ରନାମୋକ୍ତ )—
32. One of the names of Bishṇu.
ଦେ. ବି—ଶପଥ; ରାଣ; ହଲପ—Oath.
ପୁଣି ସାହସେ ନିୟମକୁ ହଠ—କବିସୂର୍ଯ୍ୟ. କଳଙ୍କା ।

**ନିୟମ କରିବା**—ଦେ. କ୍ରି—୧ । ବିଧି ପ୍ରଣୟନ କରିବା—
Niyama karibā — 1. To make a rule.
नियमकरना ୨ । ବିଧି ପ୍ରକଟନ କରିବା—
**नियमकरना** 2. To publish a rule
୩ । ହଲପ କରିବା—
3. To swear; to take oath.
ଅନାୟତ୍ତ ବନା ସିବାକୁ ନିୟମ କରିବ ଦୃଂସଗମନା—ଭକ୍ତ. ପ୍ରେମସୁଧାନିଧି ।

**ନିୟମ ଜାରି**—ଦେ. ବି (ସଂ. ନିୟମ+ଫା. ଜାରି)—ବିଧି ପ୍ରକଟନ—
Niyama jāri — Publication or promulgation of rules.
नियमजारी **नियमजारी**

**ନିୟମ ତନ୍ତ୍ର**—ସଂ. ବିଣ—୧ । କଡ଼ା—1. Strict.
Niyama tantra ୨ । ନିର୍ଦ୍ଦିଷ୍ଟ ନିୟମର ବଶୀଭୂତ—
2. Constitutional; following certain fixed rules.
୩ । ଆଇନର ବଶୀଭୂତ—
3. Subject to law.
ବି—ନିର୍ଦ୍ଦିଷ୍ଟ ନିୟମ ଅନୁସାରେ ପରିଚାଳିତ ରାଜ୍ୟଶାସନ ପ୍ରଣାଳୀ—
Constitutional form of government; limited form of monarchy.

**ନିୟମ ଧର୍ମ**—ସଂ. ବି (ହିନ୍ଦୁସ୍ମୃତି)—ପ୍ରତିଷେଧାତ୍ମକ ବିଧାନ ବା ନିୟମ—
Niyama dharma — (Hindu law)—A law prescribing restraint ( M.W.).

**ନିୟମନ**—ସଂ. ବି ( ନି+ଯମ୍ ଧାତୁ+ଭାବ. ଅନ )—
Niyamana ୧ । ନିୟମ ବନ୍ଧନ—
1. Laying down rules.
୨ । ବିଧି; ବିଧାନ—2. Regulation.
୩ । ଦମନ—3. Checking; restraining.
୪ । ବାରଣ—4 Prevention; restriction.
୫ । ବନ୍ଧନ—5. Binding; tying down.
୬ । ନିୟମ—6 Fixed rule.
୭ । ବଶୀଭୂତକରଣ—7. Subduing.
୮ । ଅବମାନନ—8. Humiliation (Apte).
୯ । ଉପଦେଶ—9. Precept.

**ନିୟମନିଷ୍ଠ**—ସଂ. ବିଣ. ପୁଂ ( ବହୁବ୍ରୀହି; ନିୟମ+ନିଷ୍ଠା )—
Niyamanishṭha ୧ । ନିୟମରକ୍ଷ—
( ନିୟମନିଷ୍ଠା—ସ୍ତ୍ରୀ ) 1. Strict in following fixed rules.
( ନିୟମନିଷ୍ଠତା—ବି )
୨ । ବ୍ରତପାଳନକାରୀ—
2. Strict in the observance of religious rites.

**ନିୟମ ନିଷ୍ଠା**—ସଂ. ବି—୧ । ନିୟମ ପାଳନରେ ଦୃଢ଼ତା—
Niyama nishṭhā — 1. Strictness in following rules; rigid observance of prescribed rites
ଦେ. ବି—୧ । ବ୍ରତାଚରଣ—
1. Observance of religious vows
୨ । ବ୍ରତ ଓ ଉପବାସାଦି —
2. Religious vows and austerities.

**ନିୟମ ପତ୍ର**—ସଂ. ବି ( ମ. ପ ଲୋ; ନିୟମନିର୍ଦ୍ଦେଶକ ପତ୍ର )—
Niyama patra — (ହିନ୍ଦୁସ୍ମୃତି) ଚୁକ୍ତିପତ୍ର; ସ୍ୱୀକାରପତ୍ର—
(Hindu law) Covenant; deed of agreement.

**ନିୟମ ପର**—ସଂ. ବିଣ. ପୁଂ ( ବହୁବ୍ରୀହି; ନିୟମ+ପର )—
Niyama para — ନିୟମନିଷ୍ଠ ( ଦେଖ )
(ନିୟମପରା—ସ୍ତ୍ରୀ) Niyamanishṭha ( See )
(ନିୟମପରତା—ବି) ( ନିୟମପରତନ୍ତ୍ର—ଅନ୍ୟରୂପ)

**ନିୟମ ପରାୟଣ**—ସଂ. ବିଣ. ପୁଂ (ବହୁବ୍ରୀହି; ନିୟମ+ପର+ଅୟନ)—
Niyamaparāyaṇa — ନିୟମନିଷ୍ଠ ( ଦେଖ )
(ନିୟମପରାୟଣା—ସ୍ତ୍ରୀ) Niyamanishṭha (See)
(ନିୟମପରାୟଣତା—ବି)

**ନିୟମପାଳ**—ସଂ ବି. ପୁଂ ( ନିୟମ+ପାଳ ଧାତୁ+କର୍ତ୍ତୃ. ଅ )—
Niyamapāla ୧ । ବ୍ରତପାଳନକାରୀ ବ୍ୟକ୍ତି—
1. Observer of vows.
୨ । ଏକ ଋଷିଙ୍କ ନାମ—
2. Name of a sage (M. W ).
[ ଦ୍ର—ଏହାଙ୍କ ନାମ ଅନୁସାରେ ନେପାଳ ଦେଶର ନାମକରଣ ହୋଇଅଛି—M. W. । ]

**ନିୟମ ପାଳନ**—ସଂ. ବି—ନିୟମ ଅନୁସାରେ କାର୍ଯ୍ୟକରଣ—
Niyama pālana — Observance of a rule.

**ନିୟମପୂର୍ବକ**—ଦେ. କ୍ରି. ବିଣ—ନିୟମାନୁସାରେ ( ଦେଖ )
Niyamapūrbaka — Niyamānusāre ( See )

**ନିୟମ ପ୍ରମାଣ**—ଦେ. ବି—ଶପଥ କରି ପ୍ରମାଣ କରିବା; ହଲପାନ୍
Niyama pramāṇa — ଜବାନବନ୍ଦୀ—Evidence on oath

**ନିୟମ ପ୍ରମାଣେ**—ଦେ. କ୍ରି. ବିଣ—ନିୟମାନୁସାରେ ( ଦେଖ )
Niyama pramāṇe — Niyamānusāre ( See )

**ନିୟମବତୀ**—ସଂ. ବି. ସ୍ତ୍ରୀ. ( ନିୟମ+ବତ୍+ସ୍ତ୍ରୀ. ଈ )—ଯେଉଁ ସ୍ତ୍ରୀର
Niyamabatī — ମାସିକ ଋତୁସ୍ରାବ ଘଟୁଅଛି—A woman having
(ନିୟମବାନ୍—ପୁଂ) the monthly courses ( Apte ).
ସଂ. ବିଣ. ସ୍ତ୍ରୀ—ନିୟମ ବା ବ୍ରତ ପାଳନକାରିଣୀ ସ୍ତ୍ରୀ—
( woman) Practising religious observances.

**ନିୟମ(ମା)ବଦ୍ଧ**—ସଂ. ବିଣ ( ତୃତୀୟା ତତ୍; ନିୟମ+ଆବଦ୍ଧ )—
Niyama(mā)baddha ୧ । ବିଧିବଦ୍ଧ—1. Regulated.
୨ । ନିୟମିତ—2. Regular.

୩ । ବିଧିଦ୍ୱାରା ପରିଚାଳିତ—
3. Guided or controlled by rules.

ନିୟମ ବାନ୍ଧିବା—ଦେ. କ୍ରି—ନିର୍ଦ୍ଦିଷ୍ଟ ବିଧି ପ୍ରଣୟନ କରିବା—
Niyama bāndhibā 'To lay down certain rules.
নিয়ম বাঁধা नियम बाँधना ( ନିୟମ ବନାଇଦେ[ଯି]ବା—ବ )

ନିୟମ ବିଧାନ—ସଂ. ବ (୬ଷ୍ଠି ତତ୍; ନିୟମ+ବିଧାନ)—୧ । ବିଧି
Niyama bidhāna ବାନ୍ଧିବା—1. Act of framing rules.
୨ । ବ୍ୟବସ୍ଥା ପ୍ରଣୟନ—
2. Legislation; act of framing laws

ନିୟମ ବିଧି—ସଂ. ବ—ଦୈନିକ ଧର୍ମାନୁଷ୍ଠାନ—Daily ritual,
Niyama bidhi Religious rites ( M W ).

ନିୟମ ବିରୁଦ୍ଧ—ସଂ. ବଣ. (୪ର୍ଥୀ ତତ୍; ନିୟମ+ବିରୁଦ୍ଧ)—
Niyama biruddha ୧ । ଅବୈଧ—1 Illegal; ultra vires.
୨ । ଅନିୟମିତ—2. Irregular.

ନିୟମ ଭଙ୍ଗ—ସ. ବ. (୬ଷ୍ଠୀ ତତ୍; ନିୟମ+ଭଙ୍ଗ)—
Niyama bhaṅga ୧ । ନିର୍ଦ୍ଦିଷ୍ଟ ନିୟମର ବ୍ୟତିକ୍ରମ—
(ନିୟମ ଭଞ୍ଜନ—ଅନ୍ୟରୂପ) 1. Deviation from fixed rules.
୨ । ବିଧାନକୁ ଲଙ୍ଘିବା—2 Violating a rule.
୩ । ବ୍ରତ ପାଳନରେ ବ୍ୟାଘାତ—
3. Interruption of a religious observance.
୪ । ଚୁକ୍ତିଭଙ୍ଗ—
4. Breach of a contract or stipulation.

ନିୟମ ଭଙ୍ଗନ—ଦେ ବ (ସଂ. ନିୟମଭଙ୍ଗ)—ନିୟମଭଙ୍ଗ (ଦେଖ)
Niyama bhaṅgana Niyamabhaṅga ( See )

ନିୟମ ଲଙ୍ଘନ—ସଂ. ବ—୧ । ବିଧିକୁ ଅତିକ୍ରମ କରିବା; ବିଧିଅତିକ୍ରମଣ—
Niyama laṅghana 1. Infringement of rules; transgression of a fixed rule or obligation.
୨ । ଅନିୟମ—
2. Irregularity; doing ultra vires acts.
୩ । ପ୍ରତିଜ୍ଞାର ଅନ୍ୟଥା କରଣ; ଚୁକ୍ତିଭଙ୍ଗ—3 Violation of a covenant; breach of a contract.

ନିୟମ ଲଙ୍ଘିବା—ଦେ. କ୍ରି—ବିଧିକୁ ଅତିକ୍ରମ କରିବା—
Niyama laṅghibā To infringe a rule.
নিয়ম লংঘা नियम लंघना

ନିୟମ ସେବା—ସଂ. ବ—କାର୍ତ୍ତିକ ମାସରେ ଶାସ୍ତ୍ରବିଧି ପାଳନପୂର୍ବକ ବିଷ୍ଣୁ
Niyama sebā ବା ଦାମୋଦରଙ୍କ ଉପାସନା—Worship of Bishnu during the month of Kārttika according to sastric rules.

ନିୟମ ସ୍ଥିତ—ସଂ. ଣ. (୭ମୀ ତତ୍; ନିୟମ+ସ୍ଥିତ)—
Niyama sthita ତପଶ୍ଚରଣ; ତପସ୍ୟା (ହ୍. ସ.)— Steady observance of religious obligations; asceticism (M.W.).

ନିୟମ ହେତୁ—ସଂ. ବ.—(ନ୍ୟାୟଶାସ୍ତ୍ର) ନିୟାମକ କାରଣ—
Niyama-hetu (logic) A regulating cause (M.W).

ନିୟମାତିକ୍ରମ—ସ. ବ (୬ଷ୍ଠୀ ତତ୍, ନିୟମ+ଅତିକ୍ରମ)—
Niyamātikrama ନିୟମ ଲଙ୍ଘନ—Infraction of rules.
(ନିୟମାତିକ୍ରମଣ—ଅନ୍ୟରୂପ)

ନିୟମାନନ୍ଦ—ସଂ. ବ. (ନାମ)—ନିମ୍ବାଦିତ୍ୟଙ୍କର ଅନ୍ୟ ନାମ—
Niyamānanda Another name of Nimbāditya (M.W.).

ନିୟମାନୁଯାୟୀ—ସ. ବଣ (ନିୟମ+ଅନୁ+ଯା+କର୍ତ୍ତୃ ଇନ୍)—
Niyamānujāyi ୧ । ନିୟମାନୁସାରେ କୃତ, ଅନୁଷ୍ଠିତ
ନିୟମାନୁସାରୀ } ଅନ୍ୟରୂପ ସମ୍ପାଦିତ—1. Done according to fixed rules.
ନିୟମାନୁବର୍ତ୍ତୀ }
ନିୟମାନୁଯାୟିନୀ } ୨ । ଯେ ନିୟମାନୁସାରେ ଚଳେ—
ନିୟମାନୁସାରିଣୀ } ସ୍ତ୍ରୀ 2 Following fixed rules.
ନିୟମାନୁବର୍ତ୍ତିନୀ }

ନିୟମାନୁସାରେ—ଦେ. କ୍ରି. ବଣ—୧ । ବିଧିପୂର୍ବକ—
Niyamānusāre 1. Methodically; according to rules.
୨ । ଶପଥପୂର୍ବକ—2. On oath; solemnly.

ନିୟମିତ—ସ. ବଣ. (ନି+ଯମ୍ ଧାତୁ+କର୍ମ. ତ)—
Niyamita ୧ । ବ୍ୟବସ୍ଥାପିତ—1 Prescribed.
୨ । ଧରା ବନ୍ଧା; ନିୟମ ବଦ୍ଧ; ନିର୍ଦ୍ଦିଷ୍ଟ—
2. Regulated; regular
୩ । ବଦ୍ଧ—3. Bound.
୪ । ସଂଯତ—4 Controlled; checked.
୫ । ନିବାରିତ—5. Restrained.
୬ । ଦମିତ; ଶାସିତ—6 Governed
୭ । ନିରୂପିତ, ଅବଧାରିତ—7. Settled; fixed on, appointed.
୮ । ଚୁକ୍ତି କରାଯାଇଥିବା—8. Stipulated; agreed upon.
୯ । ଅଙ୍ଗୀକାର ଦ୍ୱାରା ଚିହ୍ନିତ—9. Covenanted.
୧୦ । ପରିଚାଳିତ—10. Guided; conducted.
୧୧ । ଭାଗ୍ୟକ୍ରମେ ଅଭିପ୍ରେତ—11. Destined to be (M. W.)
୧୨ । ଆକୃଷ୍ଟ—12. Attracted.
୧୩ । ବନ୍ଦ କରି ଯାଇଥିବା—13 Stopped; suppressed. (M.W.)
୧୪ । ପାଳିତ (ବ୍ରତ)—14. Observed as a vow or penance. ( Apte )
୧୫ । ନିର୍ଦ୍ଦିଷ୍ଟ ସୀମାଦ୍ୱାରା ଆବଦ୍ଧ—
15. Moderated; tempered. ( Apte )
୧୬ । କମାଇ ଦିଆ ଯାଇଥିବା; ହ୍ରସ୍ୱୀକୃତ—
16. Lessened. (Apte).
୧୭ । ଅପସାରିତ—17. Removed (Apte).

ନିୟମିତ ସମୟ—ସଂ. ବ—ନିର୍ଦ୍ଧାରିତ ସମୟ—
Niyamita samaya Appointed or fixed time.

ନିୟମିତ ରୂପେ—ଦେ. କ୍ରି. ବଣ.—ନିର୍ବାଚିତମତେ—
Niyamita rupe Regularly, as a rule; without variation.
নিযমিত রূপে **नियमितरुपसे**

ନିୟମିବା—ଦେ. କ୍ରି. ( ସଂ. ନିୟମ )—ଦୃଢ ସଙ୍କଳ୍ପ କରିବା—
Niyamibā To make a firm resolve.
ଆଜେ କଲ ଜଳକୁ ନିୟମି କଞ୍ଚି ଭାବୁ—ପ୍ରାଚୀ ଶିବସ୍ତୋତ୍ର ।

ନିୟମୀ—ସଂ. ବଣ. ପୁଂ (ନିୟମ+ଇନ୍; ୧ମା.୧ବ.)—୧ ସଂଯମୀ—
Niyamī 1. Practising self control or self denial.
୨ । ନିୟମ ପାଳକ—2 Obeying rules.
୩ । ନିୟମ ପ୍ରବର୍ତ୍ତକ—3. Diciplinariam.
୪ । କଡା—4. Strict.
ଦେ. ବଣ.—ଶପଥକାରୀ; ହଲପିଆ—Habituated to taking oath.

ନିୟମୋପମା—ସଂ. ବି—ଉପମାଳଙ୍କାରବିଶେଷ; ଯେଉଁ ଉପମାଳଙ୍କାରରେ
Niyamopamā ଶଂସିତ ବସ୍ତୁକୁ କେବଳ ଅନ୍ୟ ଗୋଟିଏ ମାତ୍ର ବସ୍ତୁ ସଙ୍ଗେ ତୁଳନା କରାଯାଏ—A simile which expressly states that some thing can be compared only with some thing else. ( M. W. ).

ନିୟମ୍ୟ—ସଂ. ବଣ. ( ନି+ଯମ୍ ଧାତୁ+କର୍ମ. ଯ )—
Niyamya ୧ । ଶିକ୍ଷଣୀୟ—1. Teachable.
୨ । ଶାସନୀୟ—2. Corrigible; governable; controllable.
୩ । ନିୟମ ଯୋଗ୍ୟ—
3. To be defined or limited.
୪ । ନିଗ୍ରାହ୍ୟ—4 To be restrained or restricted.

ନିଯାତନ—ସଂ. ବି. ( ନି+ଯତ୍ ଧାତୁ ଣିଜନ୍ତ ଯତ ଧାତୁ=ବଧ କରିବା +ଭାବ. ଅନ )—
Nijātana
ବିନାଶକରଣ; ନିପାତନ—Destruction.
ସଂ. ବଣ. ( +କର୍ତ୍ତୃ. ଅନ )—ଭୟଯୁକ୍ତ ( ପ୍ରକୃତିବାଦ )—Fearful.

ନିଯାନ—ସଂ. ବି. ( ନି+ଯା ଧାତୁ+ଅଧିକରଣ. ଅନ )—
Nijāna ୧ । ଗୋଚାରଣ ସ୍ଥାନ—1 Cow-pasture.
୨ । ଗୋଷ୍ଠ—2. An enclosure for cows.

ନିୟା ( ଇତ୍ୟାଦି )—ନିଆ ଇତ୍ୟାଦି ( ଦେଖ )
Niyā ( etc ) Niā etc ( See )

ନିୟାମ—ସଂ. ବି. (ନି+ଯମ୍ ଧାତୁ=ପ୍ରତିରୋଧ କରିବା+ଭାବେ. ଅ)—
Niyāma ୧ । ନିୟମ ( ଦେଖ )—1. Niyama (See)
୨ । (+କର୍ତ୍ତୃ. ଅ) ନାବିକ—
2. A sailor; boatman (M. W).
ଗ୍ରା. ବି—
୧ । ବନ୍ଧା ନିୟମ; କଡ଼ା ନିୟମ—
1. Strict or rigid rule.
୨ । ଶପଥ—2. Oath.
୩ । ଆଚାରନିଷ୍ଠା—
3. Observance of religious purity.
୪ । ଧର୍ମ ଶପଥ; ମାନସିକ—4. Religious vow.

ନିୟାମକ—ସଂ. ବଣ. ପୁଂ ( ନି+ଯମ୍ ଧାତୁ+କର୍ତ୍ତୃ. ଅକ; ଯେ
Niyāmaka ନିୟମ କରେ; ନିୟମର ସମସ୍ତ ଅର୍ଥ ଦେଖ )—
(ନିୟାମିକା—ସ୍ତ୍ରୀ) ୧ । ପରିଚାଳନକାରୀ—
1. Controlling; regulating.
୨ । ଦମନକାରୀ—2 Restraing; checking.
ବି—୧ । ପଥପ୍ରଦର୍ଶକ; ଚାଳକ—1. Guide; leader
୨ । ନୌକାର କର୍ଣ୍ଣଧାର—
2. Helmsman; steersman.
୩ । ଜଳପଥ ପ୍ରଦର୍ଶକ; କଡ଼ୁଆଳ—3. A pilot.
୪ । ବ୍ୟବସ୍ଥାପକ—4. Legislator.
୫ । ସାରଥି—5. Charioteer.
୬ । ନାବିକ—6. Sailor; boatman. (M. W).
୭ । ଶାସକ—7 A ruler. (M.W).
୮ । ନିଷ୍କାସକ; ନିରୂପକ—8. Ascertainer

ନିୟାମକ ଗଣ—ସଂ. ବି. (ବୈଦ୍ୟକ)—ରସାୟନରେ ପାରଦକୁ ଶୋଧନ
Niyāmaka gaṇa କରିବାରେ ବ୍ୟବହୃତ ଦ୍ରବ୍ୟମାନ—
(Hindu medicine) A generic name of the herbs used in purifying mercury.

ନିୟାମ କରିବା—ଗ୍ରା କ୍ରି—ହଲପ କରିବା—
Niyāma karibā To swear; to take oath.
হলপ করা ମୁଁ ଖାଇ ନାହିଁ, ପାଞ୍ଚ ଖାଇବ ନିୟାମ କରିବା ଆସ—ଡଗ ।
**सौगतखाना** (ନିୟାମ ଖାଇବା—ଅନ୍ୟରୂପ)

ନିୟାମ ଦେବା—ଦେ. କ୍ରି—ଅନ୍ୟକୁ ହଲପ ଦେବା—
Niyāma debā To administer oath.
হলপ দেওয়া **शपथ देना**

ନିୟାମ ଲଙ୍ଘିବା—ଦେ. କ୍ରି—ହଲପ ଅନୁସାରେ କାର୍ଯ୍ୟ ନ କରିବା; ଶପଥ
Niyāma laṅghibā କରି ମିଥ୍ୟା କହିବା—To forswear, not to actaccording to one's vow.

ନିୟାମୀ—ଦେ ବଣ. ପୁଂ. ଓ ସ୍ତ୍ରୀ ( ସଂ. ନିୟମୀ )— ୧ । ଆଚାରନିଷ୍ଠ—
Niyāmi 1. Orthodox; rigidly adhering to religious observances.
୨ । ଅତି ଧାର୍ମିକ—2. Very religious.
୩ । ହଲପିଆ—3. Habituated to take oath and speak falsehood.

ନିୟାମୀ ନାନୀ—ଦେ. ବି. ସ୍ତ୍ରୀ. (ବ୍ୟଙ୍ଗୋକ୍ତି)—ଯେଉଁ ସ୍ତ୍ରୀ ଅତିରିକ୍ତ
Niyāmi nāni ଭାବରେ ଆଚାର ନିଷ୍ଠା ପାଳନ କରେ—
(ironical expression) A woman who is given to excessive observance of purity; a rigidly orthodox woman.
ନିୟାମୀ ନାନୀ, ହାତରେ ମାରୁଛ ଗୋବର ପାଣି—ଡଗ ।

ନିୟାର ( ଇତ୍ୟାଦି )—ଦେ. ବଣ. ଓ କ୍ରି. ବଣ. ( ସଂ. ନିର୍ନିକଟ; ପ୍ରା.
Niyārā (etc) ନିନ୍ନିଅଡ଼ )—ନିଆର ଇତ୍ୟାଦି ( ଦେଖ )
Niārā etc (See)
আলাদা **नियारा**

**ନିୟାରିଆ**—ଦେ. ବି. ଓ ସ୍ତ୍ରୀ—୧ । ଯେଉଁ ବ୍ୟକ୍ତି ବଣିଆ ଦୋକାନର ଝଡ଼ା
Nıyārıā ଧୂଳି, ଅଙ୍ଗାର, ପାଉଁଶରୁ ସୁନା, ରୁପା ଗୁଣ୍ଡ ବାଛେ—
**नियारिआ** 1. One who searches for tiny grains of
(ନିଆରି—ସ୍ତ୍ରୀ) gold and silver out of the dust and sweepings of a goldsmith's shop.

୨ । ଯେ ବହୁ ମିଶ୍ରିତ ପଦାର୍ଥ ବା ଅଳିଅରୁ ଭିନ୍ନ ଭିନ୍ନ ବସ୍ତୁମାନ ପୃଥକ କରେ—
2. A person who picks out different articles from a miscellaneous heap.

**ନିଯୁକତ**—ଗ୍ରା. (ପଦ୍ୟ) ବିଣ ( ସ. ନିଯୁକ୍ତ) —ନିଯୁକ୍ତ (ଦେଖ)
Nijukata Nijukta (See)

ନବୃହିତ ବ୍ରାହ୍ମଣମାନଙ୍କୁ ଡାକଲେ
ସେ ଘର ଗୃହପତେ ନିଯୁକତ କଲେ—କୃଷ୍ଣସିଂହ. ମହାଭାରତ. ଆଦ ।

**ନିଯୁକ୍ତ**—ସ. ବିଣ. ( ନି+ଯୁଜ୍ ଧାତୁ=ଆଜ୍ଞା କରିବା, ଯୋଗ କରିବା +କର୍ମ. ତ )—୧ । ପ୍ରବୃତ୍ତ; ବ୍ୟାପୃତ—
Nijukta
(ନିଯୁକ୍ତା—ସ୍ତ୍ରୀ) 1. Devoted to; engaged in.

୨ । କାର୍ଯ୍ୟରେ ମୁକରର ହୋଇଥିବା; ନିଯୋଜିତ—
2. Appointed to an office; employed.

୩ । ବିଶିଷ୍ଟ କର୍ମ ପାଇଁ ଅଧିକାର ବା କ୍ଷମତାପ୍ରାପ୍ତ—
3. Authorised; deputed.

୪ । ଆଦେଶପ୍ରାପ୍ତ, ଆଦିଷ୍ଟ; ଆଜ୍ଞପ୍ତ—4. Directed; ordered; commanded; commissioned.

୫ । ଅଧିକୃତ—5. Possessed, enjoyed.

୬ । ପ୍ରବର୍ତ୍ତିତ – 6 Constituted.

୭ । ସଂଯୁକ୍ତ—7 Joined to

୮ । ଅନୁମତି ପ୍ରାପ୍ତ—8 Permitted, allowed.

୯ । ନିର୍ଦ୍ଦିଷ୍ଟ, ଅବଧାରିତ—
9. Fixed; settled; prescribed.

୧୦ । ଉତ୍ତେଜିତ—10. Prompted, incited (Apte).

୧୧ । ଆବଦ୍ଧ; ବନ୍ଧା ହୋଇଥିବା—
11. Bound; chained; fettered (M. W).

୧୨ । ସଂଲଗ୍ନ—
12. Fastened; attached (M. W).

୧୩ । ସ୍ଥାପିତ—13 Put; placed (M W).

୧୪ । କୌଣସି କାର୍ଯ୍ୟରେ ବ୍ୟବହୃତ—
14. Used or employed for; utilised (M.W).

୧୫ । ( ହିନ୍ଦୁ ସ୍ମୃତି ) ନିଯୋଗ ବିଧି ଅନୁସାରେ ଅପୁତ୍ର ସ୍ତ୍ରୀ ଗର୍ଭରେ ସନ୍ତାନ ଉତ୍ପାଦନ କରିବା ପାଇଁ ଅନୁମତି ପ୍ରାପ୍ତ—
15. (Hindu law) Permitted to raise issue on a childless widow (Apte).

**ନିଯୁକ୍ତି**—ସ. ବି. ( ନି+ଯୁଜ୍ ଧାତୁ+ଭାବ. ତି )—
Nijukti ୧ । କୌଣସି ଚାକିରି ପାଇବା; କାର୍ଯ୍ୟରେ ମୁକରର ହେବା—
1. Appointment; employment.

୨ । ଅଧିକାର ପ୍ରାପ୍ତି—
2. Commission; authority.

୩ । ପ୍ରବର୍ତ୍ତନ; ଗଠନ—3. Constitution.

୪ । କୌଣସି ବିଶିଷ୍ଟ କର୍ମ ପାଇଁ ପ୍ରେରିତ ହେବା—
4. Deputation.

୫ । ବିଶିଷ୍ଟ ଆଦେଶ—5. Injunction; order; command; charge (M. W.)

**ନିଯୁକ୍ତି ପତ୍ର**—ସ. ବି ( ଆଧୁନିକ ବ୍ୟବହାର )—
Nijukti patra କୌଣସି କାର୍ଯ୍ୟରେ ନିଯୁକ୍ତ ହେବା ବ୍ୟକ୍ତିକୁ କର୍ତ୍ତୃପକ୍ଷଙ୍କଠାରୁ ମିଳିବା ଲେଖା; ପରୱାନା—
Appointment letter; a writ of appointment, a writ of commission.

**ନିଯୁଜ୍ୟ**—ସ. ବିଣ. ( ନି+ଯୁଜ୍ ଧାତୁ+କର୍ମ. ଯ )—
Nijujya ନିଯୁକ୍ତ ହେବାର ଯୋଗ୍ୟ—
Fit for being appointed or attached.

**ନିଯୁଞ୍ଜାନ**—ସ. ବିଣ. ପୁଂ ( ନି+ଯୁଜ୍ ଧାତୁ+କର୍ତ୍ତୃ. ଶାନଚ୍ )—
Nijuñjāna ୧ । ନିଯୋଜକ—1 Engaging;
(ନିଯୁଞ୍ଜାନା—ଅନ୍ୟରୂପ) appointing.

୨ । ଆଦେଶକ—2. Commanding.

**ନିଯୁତ**—ସ. ବି ଓ ବିଣ—ନିୟୁତ ( ଦେଖ )
Nijuta Niyuta (See)

ଗ୍ରା. ବିଣ—ନିଯୁକ୍ତ ( ଦେଖ )—Nijukta (See)

**ନିୟୁତ**—ସ. ବି. ( ନି+ଯୁ ଧାତୁ=ମିଶ୍ରିତ ହେବା+କର୍ତ୍ତୃ. ତ )—
Niyuta ଦଶ ଲକ୍ଷ—One million; ten lakhs.

ବିଣ—ଦଶ ଲକ୍ଷ ସଂଖ୍ୟକ—
Numbering a million.

**ନିଯୁଦ୍ଧ**—ସ. ବି. (ନି+ଯୁଧ ଧାତୁ=ଯୁଦ୍ଧ କରିବା+ଭାବ. ତ)—
Nijuddha ୧ । ମଲ୍ଲ ଯୁଦ୍ଧ; ବାହୁ ଯୁଦ୍ଧ; ନିରସ୍ତ୍ର ଯୁଦ୍ଧ—
1. Hand to hand fight; a fight without weapon; boxing; wrestling.

୨ । ଦ୍ୱନ୍ଦ୍ୱ ଯୁଦ୍ଧ—2. Duel.

**ନିଯୁଦ୍ଧଭୂ**—ସ. ବି ( ୬ଷ୍ଠୀ ତତ୍; ନିଯୁଦ୍ଧ+ଭୂ )—ମଲ୍ଲ ଯୁଦ୍ଧ ଭୂମି—
Nijuddhabhū A place for pugilistic combat.

**ନିଯୋ(ଯ୍ୟୋ)କ୍ତବ୍ୟ**—ସ. ବି. ( ନି+ଯୁଜ ଧାତୁ=ଯୋଗ କରିବା +କର୍ମ. ତବ୍ୟ )—
Nijo(yo)ktabya
୧ । ନିଯୋଗ କରିବାର ଯୋଗ୍ୟ—1. Fit to be appointed, placed or joined.

୨ । ଯାହାକୁ ଦଣ୍ଡିତ ବା ଅତ୍ୟାଚାରିତ କରାଯିବ—
2. To be harassed or persecuted (M. W.)

**ନିଯୋ(ଯ୍ୟୋ)କ୍ତା**—ସ. ବିଣ. ପୁଂ. ( ନି+ଯୁଜ୍ ଧାତୁ+କର୍ତ୍ତୃ. ତୃ ୧ମା. ୧ବ )—୧ । ସଂଯୋଗକାରୀ
Nijo(yo)ktā
(ନିଯୋକ୍ତ୍ରୀ—ସ୍ତ୍ରୀ) 1. Joining; fastening; attaching.

୨ । ନିଯୋଗକର୍ତ୍ତା—2. Appointing; employing; a person who appoints another to any office.

୩ । ଆଦେଷ୍ଟା; ଆଦେଶକ—3. Commanding.

୪ । ଯେ ଉପଭୋଗ କରେ—4. Enjoying.
୫ । ପ୍ରବର୍ତ୍ତକ—5 Stimulating; inciting.
୬ । କୌଣସି ବିଷୟର ଭାର ଅର୍ପଣକାରୀ—
6 Commissioning; authorising; charging.
ବି—୧ । ଚାକରରେ ମୁକରର କରିବା ବ୍ୟକ୍ତି—
1. Employer.
୨ । ଆଦେଶ ଦେବା ବ୍ୟକ୍ତି—
2 Commander; director.
୩ । ପ୍ରଭୁ, ମୁନିବ; ଖାମିନ୍ଦ—3. Lord; master.
୪ । ଶାସନକର୍ତ୍ତା—4. Ruler.

ନିଯୋ(ୟୋ)ଗ—ସଂ. ବି (ନି+ଯୁଜ୍ ଧାତୁ+ଭାବ. ଅ)—
Nijo(yo)ga ୧ । ହୁକୁମ; ଆଜ୍ଞା; ଆଦେଶ—
1. Order, command, injunction.
୨ । ଉପଦେଶ—2. Advice; precept.
୩ । ଅନୁମତି—3 Permission; authority.
୪ । କୌଣସି ଭାରାର୍ପଣ—4. Charge; Commission.
୫ । ପ୍ରେଷଣ; ପ୍ରେରଣ—5. Sending.
୬ । ନିବେଶ; ମନୋଯୋଗ—6. Attention.
୭ । ପ୍ରବୃତ୍ତି—7. Propensity.
୮ । ଅଧିକାର—8. Authority; possession.
୯ । ବିଧାନ; ବ୍ୟବସ୍ଥା—9. Rule; regulation.
୧୦ । ବ୍ୟବହାର—10. Use.
୧୧ । ଅଧିକତା—11. Supremacy.
୧୨ । ଚେଷ୍ଟା—12. Effort; exertion (Apte)
୧୩ । ନିଶ୍ଚୟ—13 Certainty.
୧୪ । ଅବଧାରଣ; ସ୍ଥିରୀକରଣ—14. Settlement, resolution, ascertainment; determination.
୧୫ । କୌଣସି କାମରେ ନିଯୁକ୍ତି, ଚାକିରି—
15 Employment; appointment.
୧୬ । ସ୍ୱଭାବ—16. Constitution; nature.
୧୭ । (ବ୍ୟାକରଣ) ଅନୁଜ୍ଞା—
17. (grammar) Imperative mood.
୧୮ । (ହିନ୍ଦୁ ସ୍ମୃତି) ନିଯୋଗ ଧର୍ମ (ଦେଖ)
18. Nijoga dharma (See)
୧୯ । କୌଣସି କାର୍ଯ୍ୟରେ ପ୍ରେରଣ—19. Deputation.
୨୦ । କୌଣସି ବିଷୟରେ ନିଯୁକ୍ତି; ବ୍ୟବହାର—
20. Application; use (M. W.)
୨୧ । ନିର୍ଦ୍ଦିଷ୍ଟ କର୍ତ୍ତବ୍ୟ କର୍ମ—
21. Appointed task or duty (M. W.)
୨୨ । ଆବଶ୍ୟକତା—22. Necessity (M. W.)
୨୩ । ଅଦୃଷ୍ଟ; ଭାଗ୍ୟ—23. Fate; destiny (M. W.)
୨୪ । ପ୍ରେରଣା (ହି. ଶ.)—24 Urging; impulse.
୨୫ । ଅନ୍ୟ ଉପରେ କୌଣସି କ୍ଷମତା ଅର୍ପଣ—
25. Authorisation.
ଦେ. ବି—କୌଣସି ଦେବତା ବା ରାଜାଙ୍କ ନିକଟରେ ସେବା କରୁଥିବା ଏକ ଶ୍ରେଣୀର ସେବକମାନଙ୍କର ଦଳ—
The society of one class of servants serving a particular Deity or a king.
(ଯଥା—ଜଗନ୍ନାଥଙ୍କ ସୁଆର ନିଯୋଗ; ଲିଙ୍ଗରାଜଙ୍କ ବଡୁ ନିଯୋଗ ।)

ଗଲେ ଗଜେନ୍ଦ୍ର ସହ ଲକ୍ଷ ଲକ୍ଷ ପ୍ରଜା
ପାତ୍ର, ମନ୍ତ୍ରୀ, ସଭାସଦ ନବର ନିଯୋଗ । ରାଧାନାଥ, ମହାଯାତ୍ରା ।

ବିଣ.—ଉଦ୍ଦିଷ୍ଟ; ଅମୁକଙ୍କ ପାଇଁ ଅଭିପ୍ରେତ ବା ଉତ୍ସର୍ଗୀକୃତ—
Meant for; dedicated.

ରେ କୃଷ୍ଣାଧର ନିଯୋଗ ପାନ ଧରି କଲାରୁ ସକାଳ ସାଇସ ।
ଭଞ୍ଜ- କୋଟିବ୍ରହ୍ମାଣ୍ଡସୁନ୍ଦରୀ ।

ନିଯୋ(ୟୋ)ଗ ଧର୍ମ—ସଂ. ବି.—(ହିନ୍ଦୁ ସ୍ମୃତି)—ଅସ୍ୱାମିକା ସ୍ତ୍ରୀ ବା
Nijo(yo)ga dharma ଅସ୍ୱାମିକା (ମୃତ ଭର୍ତ୍ତୃକା ଜାୟା ଆଦି)ର ଗର୍ଭରେ
ନିଯୋଗ ପ୍ରଥା } ଅନ୍ୟରୂପ ଅନ୍ୟପୁରୁଷ (ଦେବର ଆଦି) ଦ୍ୱାରା
ନିଯୋଗ ବିଧି } ପୁତ୍ର ଉତ୍ପାଦନ ପୂର୍ବକ ବଂଶରକ୍ଷା
କରିବାର ପ୍ରଥା—(Hindu jurisprudence)
The custom of begetting an heir or a child on a childless widow through the husband's brother (formerly prevalent amongst the Hindus).
[ ଦ୍ର—ମୃତ ଅପୁତ୍ରକ ବ୍ୟକ୍ତିଙ୍କ ବିଧବା ସ୍ତ୍ରୀଙ୍କ ଗର୍ଭରେ ବିଧବାଙ୍କ ଦେବର ବା ସ୍ୱାମୀଙ୍କ ସପିଣ୍ଡ କୌଣସି ବ୍ୟକ୍ତିଙ୍କ ଔରସରେ ସନ୍ତାନ ଉତ୍ପାଦନ କରି ବଂଶ ରକ୍ଷା କରିବା ପ୍ରଥା ପ୍ରାଚୀନ ଆର୍ଯ୍ୟ ସମାଜରେ ଚଳୁ ଥିଲା ଓ ଏହି ପ୍ରଥା ଅନୁସାରେ ବ୍ୟାସଙ୍କ ଔରସରେ ଅପୁତ୍ରକ ମୃତ ରାଜା ବିଚିତ୍ରବୀର୍ଯ୍ୟଙ୍କ ଦୁଇ ସ୍ତ୍ରୀ ଅମ୍ବା ଓ ଅମ୍ବାଳିକାଙ୍କ ଗର୍ଭରେ ଯଥାକ୍ରମେ ଧୃତରାଷ୍ଟ୍ର ଓ ପାଣ୍ଡୁ ଉତ୍ପାଦିତ ହୋଇ ବିଚିତ୍ରବୀର୍ଯ୍ୟଙ୍କ ବଂଶ ରକ୍ଷା କରିଥିଲେ । ହିନ୍ଦୁ ସ୍ମୃତିମାନଙ୍କରେ (ଯଥା ମନୁ ୯।୫୯ ଇତ୍ୟାଦି) ଏହି ପ୍ରଥାର ବର୍ଣ୍ଣନା ଅଛି, କିନ୍ତୁ କଳିଯୁଗରେ ଏ ପ୍ରଥା ନିଷିଦ୍ଧ ଥିବାର ପରାଶର ଉଲ୍ଲେଖ କରିଅଛନ୍ତି । ]

ନିଯୋ(ୟୋ)ଗପତ୍ର—ସଂ. ବି. (ଆଧୁନିକ ବ୍ୟବହାର)—୧ । ଆଦେଶ
Nijo(yo)ga patra ପତ୍ର—1. An order slip.
(ନିଯୋଗ ଲିପି—ଅନ୍ୟରୂପ) ୨ । ନିଯୁକ୍ତି ପତ୍ର; ପରୱାନା—
2. Appointment letter.
୩ । ସନନ୍ଦ—3. Sanad; firman.

ନିଯୋ(ୟୋ)ଗିବା—ଦେ. (ପଦ୍ୟ) କ୍ରି.—(ସଂ. ନିଯୋଗ)—ନିଯୁକ୍ତ
Nijo(yo)gibā କରିବା—To appoint; to engage.
ନିଯୋଗା ନାବ ବୋହିବାକୁ ନିଯୋଗିଲେ ପିତା ।
ନିୟୋଗକରନା କୃଷ୍ଣସିଂହ- ମହାଭାରତ- ଆଦି ।

ନିଯୋଗୀ—ସଂ. ବିଣ. ପୁଂ (ନି+ଯୁଜ ଧାତୁ+କର୍ତ୍ତୃ, ଇନ୍ ୧ମା. ୧ବ.)
Nijogi ୧ । ନିଯୁକ୍ତ; ନିଯୋଜିତ—1. Appointed; authorised; commissioned
(ନିୟୋଗୀ—ଅନ୍ୟରୂପ)

[ ନିଯୋ(ୟୋ)ଜିତା—ସ୍ତ୍ରୀ ] ୨ । ଆଦିଷ୍ଟ—
2. Directed; deputed; ordered.

ସଂ. ବି.—୧ । କର୍ମସଚିବ—1. Minister; officer.

୨ । ଦଲ୍ଲାଲ୍—2 Commission agent.

୩ । ନିଯୁକ୍ତ କର୍ମଚାରୀ—3. A functionary.

୪ । (ହିନ୍ଦୁ ସ୍ମୃତି) ନିୟୋଗ ବିଧି ଦ୍ୱାରା ଅପୁତ୍ର ବିଧବା ଗର୍ଭରେ ସନ୍ତାନ ଉତ୍ପାଦନାର୍ଥ ନିଯୋଜିତ ବ୍ୟକ୍ତି(ହି.ଶା.)
4. (Hindu law) A person authorised to raise issue on a childless widow.

ଦେ. ବି.—ଭୃତ୍ୟ—Servant.

> କଂସର ଅଟଇ ନିଯୋଗୀ
> କରଇ ଦେହେ ଗନ୍ଧ ଲାଗି । ଜଗନ୍ନାଥ. ଭାଗବତ ।

ନିଯୋ(ୟୋ)ଗ୍ୟ—ସଂ. ବି —(ନି+ଯୁଜ୍ ଧାତୁ+କର୍ତ୍ତୃ. ଯ)—ନିୟୋଗ
Nijo(yo) gya
କର୍ତ୍ତା; ପ୍ରଭୁ—Lord; master; employer.
(ନିୟୋଗ୍ୟା—ସ୍ତ୍ରୀ);

ବିଣ.— (ନି+ଯୁଜ୍ ଧାତୁ+କର୍ମ. ଯ)—ନିୟୋଗାର୍ହ—
Worthy or fit to be appointed.

ନିୟୋ(ଯୋ)ଜକ—ସଂ. ବିଣ. ( ନି+ଯୁଜ୍. ଧାତୁ+କର୍ତ୍ତୃ. ଅକ )—
Niyo(jo jaka ନିଯୋକ୍ତା—Appointing; commanding; enjoining.

[ନିୟୋ(ଯୋ)ଜିକା—ସ୍ତ୍ରୀ] ବି—୧ । ପ୍ରଭୁ; ଶାସକ; ଯେ ଭୃତ୍ୟ ନିଯୁକ୍ତ କରେ—1. Employer; master.

୨ । ଆଦେଶକର୍ତ୍ତା—2 Commander.

ନି(ଯୋ)ୟୋଜନ—ସଂ. ବି. ( ନି+ଯୁଜ୍. ଧାତୁ+ଭାବ. ଅନ )—
Ni(jo)yojana ୧ । ମୁକରର; ନିୟୋଗକରଣ—
1. Appointment; employing.

୨ । କର୍ମରେ ପ୍ରତିଷ୍ଠିତ କରିବା—
2. Establishing some one in a work.

୩ । ପ୍ରେରଣ—3. Sending; entrusting; commissioning.

୪ । ଆଜ୍ଞା ଦେବା—4. Commanding; enjoining; ordering.

୫ । ବାନ୍ଧିବା; ବନ୍ଧନ କର୍ମ—5. Act of tying or fastening.

୬ । ପ୍ରେରଣା—6. Urging; impelling.

୭ । ( +କରଣ. ଅନ ) ଯାହାଦ୍ୱାରା ବନ୍ଧା ଯାଏ—
7. That with which any thing is tied or fastened.

ନିଯୋ(ୟୋ)ଜନୀ—ସଂ. ବି. (ନି+ଯୁଜ୍. ଧାତୁ+କରଣ. ଅନ+ଈ )—
*Ni(jo yojani* ପଘା —Halter (M.W.).

ନିଯୋ(ୟୋ)ଜନୀୟ—ସଂ. ବିଣ. (ନି+ଯୁଜ୍. ଧାତୁ+କର୍ମ. ଅନୀୟ )—
Nijo(yo)janiya ନିଯୋଜ୍ୟ ( ଦେଖ )—
[ ନିଯୋ(ୟୋ)ଜନୀୟା—ସ୍ତ୍ରୀ ] Nijojya (See).
[ ନିୟୋ(ଯୋ)ଜୟିତବ୍ୟ—ଅନ୍ୟରୂପ ]

ନିଯୋ(ୟୋ)ଜୟିତା—ସଂ. ବିଣ. ପୁଂ. ( ନି+ଯୁଜ୍. ଧାତୁ. ଣିଚ ଯୋଗେ
Nijo(yo)jayitā ଧାତୁ+କର୍ତ୍ତୃ. ତୃ ୧ମା. ୧ବ)—୧ । ନିଯୋକ୍ତା—
( ନିୟୋଜୟିତ୍ରୀ—ସ୍ତ୍ରୀ ) 1. Employing; engaging; appointing.

୨ । ପ୍ରବର୍ତ୍ତକ—2. Prevailing upon.

ନିଯୋ(ୟୋ)ଜିତ —ସଂ. ବିଣ. ( ନି+ଯୁଜ୍. ଧାତୁ. ଣିଚ+କର୍ମ ତ )—
Nijo(yo)jita ୧ । ଅନ୍ୟ ଦ୍ୱାରା କର୍ମରେ ନିଯୁକ୍ତ କରା ଯାଇଥିବା—
( ନିୟୋଜିତା—ସ୍ତ୍ରୀ ) 1. Appointed to an office.

୨ । ନିଯୁକ୍ତ—2 Engaged.

୩ । ପ୍ରବର୍ତ୍ତିତ—3. Stimulated.

୪ । ପ୍ରେରିତ—4 Sent.

୫ । ଭାର ପ୍ରାପ୍ତ; କ୍ଷମତା ପ୍ରାପ୍ତ—5. Entrusted; authorised.

୬ । ଆଦିଷ୍ଟ—6. Commanded, enjoined; commissioned.

୭ । ସଂଯୁକ୍ତ; ପ୍ରଯୁକ୍ତ—7. Connected with; joined to; attached to; tied on.

୮ । ବ୍ୟବହୃତ—8 Used; utilised.

୯ । ଆଦେଶ ଦ୍ୱାରା ବ୍ୟବହୃତ—9. Commandeered.

୧୦ । ସ୍ଥାପିତ—10. Placed; laid.

୧୧ । କୌଣସି କର୍ମ କରିବାକୁ ଉତ୍ତେଜିତ—
11 Urged; impelled; incited; instigated.

ନିଯୋ(ୟୋ)ଜିବା—ଦେ. କ୍ରି ( ପଦ୍ୟ ) ୧ । ନିଯୁକ୍ତ କରିବା—
Nijo(yo)jibā 1. To employ.

> ଦଶ ଶତ ଧନ୍ୱୀ ପଦାତି ସଙ୍ଗରେ ନିୟୋଜିଲେ କରସାଇଁ—
> ରଘୁନାଥ. ପାଙ୍କତି ।

ନିୟୋଜା ୨ । ଯୋଗାଇବା—2 To supply

**ନିୟୋଜନା** ତାଙ୍କ ତାମ୍ବୁଳ ନିଯୋଜନ୍ତି,
ମଧ୍ୟରେ ସେବକ ବୋଲନ୍ତି । ଜଗନ୍ନାଥ. ଭାଗବତ ।

୩ । ଯୁକ୍ତ କରିବା—3 To attached

> ସେ ମାର୍ଗ ମୋତେ ଦେଖାଇଲେ,
> ବିଷ୍ଣୁ ଶରଣରେ ନିୟୋଜିଲେ । ଜଗନ୍ନାଥ. ଭାଗବତ ।

ନିଯୋ(ୟୋ)ଜ୍ୟ—ସଂ. ବିଣ. ( ନି+ଯୁଜ୍. ଧାତୁ+କର୍ମ ଯ )—
Nijo(yo)jya ୧ । ଯାହାକୁ ନିଯୁକ୍ତ କରାଯିବ—
( ନିୟୋଜ୍ୟା—ସ୍ତ୍ରୀ ) 1. To be employed.

୨ । ନିଯୁକ୍ତ ହେବାର ଯୋଗ୍ୟ—2. Fit to be employed.

୩ । ଉପଦେଶାର୍ହ—3. Requiring to be advised.

୪ । ଦଣ୍ଡ୍ୟ—4. To be punished; punishable.

୫ । ସଂଲଗ୍ନ ହେବାର ଯୋଗ୍ୟ—5. To be fastened or attacted to; fit to be joined with.

ବି.—୧ । ଭୃତ୍ୟ—1. Servant; employee.

୨ । କାରପରଦାଜ; ଏଜେଣ୍ଟ—2. Agent.

୩ । ଦାସ—3. A slave.

୪ । କର୍ମଚାରୀ—4. Functionary; official.

**ନିଯୋଦ୍ଧା**—ସଂ. ବି. ( ନି=ସମ୍ମୁଖରେ+ଯୁଧ୍ ଧାତୁ=ଯୁଦ୍ଧ କରିବା + କର୍ତ୍ତୃ ତୃ, ନିଯୋଦ୍ଧୃ. ଶବ୍ଦ ୧ମା ୧ବ)—
Nijoddhā ( ନିଯୋଧକ—ଅନ୍ୟରୂପ ) ୧ । କୁକ୍କୁଟ—1. A cock.
୨ । ମଲ୍ଲ ଯୋଦ୍ଧା; ପହିଲ୍‌ବାନ୍—2. A wrestler; a pugilist.
୩ । ଯୋଦ୍ଧା—3. Combatant; warrior.

**ନିର୍**—ସଂ. ( ଉପସର୍ଗ ) ଅ—( ନୃ ଧାତୁ=ନେଇଯିବା+କର୍ତ୍ତୃ. କ୍ୱିପ୍ )
Nir ଏହି ଉପସର୍ଗ ଧାତୁ ପୂର୍ବେ ନିମ୍ନଲିଖିତ ଅର୍ଥମାନଙ୍କରେ ବ୍ୟବହୃତ ହୁଏ—A prefix denoting the following senses and corresponding to the English prefix un as in uncertain, in as in incessant and to the particle less as in formless.
୧ । ନିଶ୍ଚୟ—( ଯଥା—ନିରତ )—1. Certainty.
୨ । ନିଷେଧ— ( ଯଥା—ନିରସ୍ତ୍ର, ନିରସନ )—
2. Prohibition.
୩ । ନିକୃଷ୍ଟ—( ଯଥା—ନିରସ୍ତ )—3. Inferior.
୪ । ଅଭାବ—( ଯଥା—ନିରଂଶ )—
4. Want; negation; absence; privation.
୫ । ନିଃଶେଷ—( ଯଥା—ନିର୍ବଂଶ )—
5. Without remainder
୬ । ଅତ୍ୟନ୍ତ; ନିତାନ୍ତ (ଯଥା—ନିଷ୍ପୀଡ଼ନ)—
6. Too much; excessive.
୭ । ବହିଷ୍କରଣ (ଯଥା—ନିର୍ବାସିତ)—
7. Expulsion.
୮ । ପଦାକୁ ବାହାରିବା; (ଯଥା—ନିର୍ଗମନ)—
8. Going out.
୯ । ବହିଃ; ବାହାର (ଯଥା—ନିରବହାଳକା)—
9. External.
୧୦ । ସମ୍ପୂର୍ଣ୍ଣତା ( ଯଥା—ନିରବଶେଷ )—10. Totality; entirety; completeness.

[ଦ୍ର—ନିଃ ବା ନିସ୍ ଉପସର୍ଗ ପରେ ସ୍ୱରବର୍ଣ୍ଣ, ଗ, ଘ, ଜ, ଝ, ଦ, ଧ, ନ, ବ, ଭ, ମ, ଯ, ର, ଲ, ୱ ଓ ହ ଥିଲେ ନିଃ ବା ନିସ୍ ସ୍ଥାନରେ ନିର୍ ହୁଏ ।]

**ନିର୍‌ଖିବା**—ଗ୍ରା. କ୍ରି.—ନିରେଖିବା (ଦେଖ)
Nir-khibā Nirekhibā (See)

**ନିରଂକୁଶ**—ସଂ. ବିଣ.—ନିରଙ୍କୁଶ (ଦେଖ)
Niramkuśa Nirankuśa (See)

**ନିରଂଶ**—ସଂ. ବିଣ. (ବହୁବ୍ରୀହି; ନିର୍=ନାହିଁ+ଅଂଶ; ଯାହାର)—
Niramśa ୧ । ଅଂଶରହିତ; ଭାଗହୀନ—1. Destitute of a share; not entitled to a share
୨ । ଶାସ୍ତ୍ର ଅନୁସାରେ ଯେଉଁ ଉତ୍ତରାଧିକାରୀ ପୈତୃକ ସମ୍ପତ୍ତିରୁ ହିଂସା ପାଏ ନାହିଁ—2. Not entitled to a share in the ancestral property.
[ ଦ୍ର—ଯାଜ୍ଞବଲ୍କ୍ୟଙ୍କ ମତରେ—ପତିତ, ପତିତର ପୁତ୍ର, କ୍ଲୀବ, ପଙ୍ଗୁ, ଉନ୍ମତ୍ତ, ଜଡ଼, ଅଚିକିତ୍ସ୍ୟ ରୋଗରେ ପୀଡ଼ିତ—ଏମାନେ ନିରଂଶ ଅର୍ଥାତ୍ ପୈତୃକ ସମ୍ପତ୍ତିରୁ ଭାଗ ପାଆନ୍ତି ନାହିଁ । ]
୩ । ସମୁଦାୟ—3. Whole; entire; (Apte).
ବି· (ଜ୍ୟୋତିଷ) ରାଶିର ଭୋଗ କାଳର ପ୍ରଥମ ଓ ଶେଷ ଦିନ; ସଂକ୍ରାନ୍ତି; ସୂର୍ଯ୍ୟଙ୍କର ଏକ ରାଶିରୁ ଅନ୍ୟ ରାଶିକୁ ଗମନ—
3. (Astronomy) The sun's entering into a new sign; the passage of the sun from one sign to the next.
ଦେ. ବିଣ.—ନିରଂଶିଆ (ଦେଖ)—Niramśiā (See)
ବି —ନିର୍ବଂଶ ଅବସ୍ଥା—Issueless condition.

**ନିରଂଶ ଡିହ**—ଦେ. ବି.— ଯେଉଁ ଡିହ ବା ଘରଡିହ ଜମିର ମାଲିକ
Niramśa ḍiha ନିଃସନ୍ତାନ ହୋଇ ମରିଯିବା ପରେ ତାହାର କେହି ଉତ୍ତରାଧିକାରୀ ନ ଥାଏ—
A homestead, the owner of which died leaving no heirs.

**ନିରଂଶିଆ**—ଦେ ବିଣ. ପୁଂ ( ସଂ· ନିର୍ବଂଶ )—
Niramśiā ୧ । ନିର୍ବଂଶ, ଯାହାର ବଂଶ ଲୋପ ପାଇଥାଏ—
निर्वंश 1. One who leaves no family member.
(ନିରଂଶୀ—ସ୍ତ୍ରୀ) ୨ । ବେୱାରସ—
2. Heirless; leaving no successor.
୩ । ନାୱାରସ; ଯେଉଁ ସମ୍ପତ୍ତିର କେହି ଉତ୍ତରାଧିକାରୀ ନାହିଁ—3. Having no body to succeed to it ( property ).
୪ । ( ଗାଳି ବା ଅଭିଶାପ ) ଅଣ୍ଟୁକୁଡ଼ା; ଅପୁତ୍ରକ—
5. ( a term of cursing ) Childless.
୬ । ( ଗାଳି ) ଅଳ୍ପାୟୁଷ—
6. ( a term of cursing ) Short lived.
କେ ବାରଣ ବର୍ଷିଆ କେ ପନ୍ଦର ବର୍ଷିଆ
କେ ସାତ ସତର କେ ଅଠର ନିରଂଶିଆ—ପୀତାମ୍ବର ନୃସିଂହପୁରାଣ ।

**ନିରଂଶିଘର ଝିଅ**—ଦେ ବି. ସ୍ତ୍ରୀ ( ଗାଳି )—ଯେଉଁ କନ୍ୟାର ପିତୃ-
Niramśighara jhia ବଂଶରେ ଆଉ କେହି ଉତ୍ତରାଧିକାରୀ ନାହିଁ—(a term of abuse) A woman whose father's family is or will become extinct.

**ନିରଂଶୀ**—ସଂ. ବିଣ ପୁଂ ( ନିରଂଶ+ଇନ୍; ୧ମା. ୧ବ. )—
Niramśi ୧ । ଅଂଶ ବା ଭାଗଶୂନ୍ୟ—
( ନିରଂଶିନୀ—ସ୍ତ୍ରୀ ) 1. Destitute of a share.
୨ । ଏକାକୀ—2. Single; unattended (M, W).

**ନିରଂଶୁ**—ସଂ. ବିଣ ( ବହୁବ୍ରୀହି; ନିର୍+ଅଂଶୁ )—
Niramśu ୧ । ନିଷ୍ପ୍ରଭ; ଜ୍ୟୋତିଶୂନ୍ୟ—1. Pale; lustreless.
୨ । କିରଣହୀନ—2. Rayless.

**ନିରକତ**—ଗ୍ରା (ପଦ୍ୟ) ବିଣ—ନିରକ୍ତ (ଦେଖ)
Nirakata Nirakta (See)
ନିରକଚ } ଅନ୍ୟରୂପ
ନିରକଚିଆ }
ନିରକଚ ଲୋକ ସହିତ ସିନା ଏହା
ଉଚିତ ଅଲେ କିହା କ ଯାଏନ୍ତ କାହା
କୃଷ୍ଣସିଂ. ମହାଭାରତ. ସଭା ।

ନିରକ୍ତ—ଦେ. ବଣ ପୁଂ (ସଂ. ନୀରକ୍ତ)—୧ । ରକ୍ତହୀନ—
Nirakta 1 Bloodless; sallow,
ନିରକ୍ତ } ଅନ୍ୟରୂପ — ୨ । ଦୁର୍ବଳ; ନିର୍ବଳ—
ନିରକ୍ତିଆ } 2, Having no strength; weak.
(ନିରକ୍ତା, ନିରକ୍ତେଇ—ସ୍ତ୍ରୀ) ୩ । ସାହସହୀନ; ଭୀରୁ—
3, Timid; having no courage.

ନିରକ୍ଷ —ସଂ. ବଣ (ନିର୍+ଅକ୍ଷ)—୧ । ଅକ୍ଷଶୂନ୍ୟ—
Niraksha 1. Without dice.
୨ । (ଜ୍ୟୋତିଷ) ଯେଉଁ ସ୍ଥାନର ଅକ୍ଷାଂଶ ନାହିଁ —
2. ( astronomy ) ( a place ) Of no latitude.
ବି—(ଭୂଗୋଳ ପରିଭାଷା) ନିରକ୍ଷବୃତ୍ତ (ଦେଖ) Nirakshabrutta(See)
ଦେ. ବଣ (ସଂ. ନିର୍+ରକ୍ଷକ)—୧ । ରକ୍ଷକବିହୀନ—
1. Having no protector.
୨ । ଅସହାୟ—2 Helpless.

ନିରକ୍ଷ ଦେଶ—ଦେ. ବି ( ଭୂଗୋଳ ପରିଭାଷା )—୧ । ବିଷୁବ ରେଖାର
Niraksha desa ସନ୍ନିହିତ ସ୍ଥାନ; ଯେଉଁଠାରେ ଦିବା ଓ ରାତ୍ରି ସମାନ—1. The equatorial regions.
୨ । ଯେଉଁଠାରୁ ଜ୍ୟୋତିଷ ମତରେ ୧ମ ଦ୍ରାଘିମା ଗଣନା କରାଯାଏ—2. The first meridian (as Lanka in Hindu astronomy (Apte)

ନିରକ୍ଷ ବୃତ୍ତ—ସଂ. ବି (ଭୂଗୋଳପରିଭାଷା )—୧ । ଭୂମଧ୍ୟରେଖା; ବିଷୁବ
Niraksa brutta ରେଖା; ନାଡ଼ୀମଣ୍ଡଳ—
(ନିରକ୍ଷରେଖା—ଅନ୍ୟରୂପ) 1 The terrestrial equator.
[ ଦ୍ର—ଯେଉଁ ରେଖାଦ୍ୱାରା ପୃଥିବୀକୁ ଉତ୍ତରାର୍ଦ୍ଧ ଓ ଦକ୍ଷିଣାର୍ଦ୍ଧ ଏହି ଦୁଇ ଭାଗରେ ବିଭକ୍ତ କରାଯାଏ, ସେ ରେଖାକୁ ନିରକ୍ଷ ବୃତ୍ତ ବା ନିରକ୍ଷ ରେଖା କହନ୍ତି । ଏହି ରେଖାର ଉତ୍ତର ଓ ଦକ୍ଷିଣର କିଯଦଂଶ ସ୍ଥାନକୁ ନିରକ୍ଷଦେଶ ବୋଲଯାଏ । ]
୨ । ଅକ୍ଷାଂଶ—2. Latitude (Apte).

ନିରକ୍ଷ ମଣ୍ଡଳ—ଦେ. ବି (ଭୂଗୋଳପରିଭାଷା)—୧ । ନିରକ୍ଷବୃତ୍ତ—
Niraksha mandala 1. The equator.
୨ । ନିରକ୍ଷ ଦେଶ—2, The equatorial region.
ନିରକ୍ଷମଣ୍ଡଳ-ଅନ୍ତେନ୍ଦୁ ଉଦଗେ—ରାଧାନାଥ. ଚିଲିକାବଳୀ ।

ନିରକ୍ଷର—ସଂ. ବଣ. ପୁଂ (ବହୁବ୍ରୀହି; ନିର୍+ଅକ୍ଷର)—ମୂର୍ଖ; ଅକ୍ଷର ଜାଣି
Nirakshara ନ ଥିବା; ଆଦୌ ବିଦ୍ୟାଭ୍ୟାସ କରି ନ ଥିବା
(ନିରକ୍ଷରା—ସ୍ତ୍ରୀ) (ବ୍ୟକ୍ତି)—Unlettered (ନିରକ୍ଷରତା—ବି)

ନିରକ୍ଷାନ୍ତର—ସଂ. ବି ( ଭୂଗୋଳପରିଭାଷା, ନିରକ୍ଷ+ଅନ୍ତର )—
Nirakshāntara ବିଷୁବରେଖାଠାରୁ ପୃଥିବୀର କୌଣସି ଗୋଟିଏ ସ୍ଥାନର ଦୂରତ୍ୱ—The latitude of a place.
[ ଦ୍ର—ଏହି ସ୍ଥାନ ବିଷୁବରେଖାର ଉତ୍ତରରେ ହେଲେ ଉତ୍ତର ନିରକ୍ଷାନ୍ତର ଓ ଦକ୍ଷିଣରେ ହେଲେ ଦକ୍ଷିଣ ନିରକ୍ଷାନ୍ତର ପରିଗଣିତ ହୁଏ । ]

ନିରଖ —ବୈଦେ. ବି ( ଫା. ନିର୍ଖ୍; ଭୁଲ. ସଂ. ନିରୀକ୍ଷଣ )—
Nirakha ୧ । କୌଣସି ପଦାର୍ଥର ସ୍ଥିରୀକୃତ ଦର—
निरिख, दर 1 Tariff; fixed price of a thing;
निरख authorised market-rate.
୨ । ବଜାର ଦର; ଭାଉ—
2 Market rate; current price.
୩ । ନିଶ୍ଚୟତା—3. Certainty.
୪ । ସ୍ଥିରୀକରଣ —4. Ascertainment.
ବଣ—୧ । ଅରକ୍ଷକ—1 Protectorless.
୨ । ଅସହାୟ—2. Helpless.

ନିରଖନାମା—ବୈଦେ. ବି ( ଫା. ନିର୍ଖ୍ ନାମାହ୍ )—ଭିନ୍ନ ଭିନ୍ନ
Nirakhanāmā ପଣ୍ୟଦ୍ରବ୍ୟର ବଜାରଭାଉର ତାଲିକା—
निरिखनामा निर्खनामा A list of the market-rates of commodities.

ନିରଖ ବନ୍ଦି—ବୈଦେ. ବି. ( ଫା. ନିର୍ଖ୍ ବନ୍ଦୀ )—
Nirakha bandi ବଜାର ପ୍ରଚଳିତ ଦରର ନିର୍ଦ୍ଧାରଣ—
निरिख बन्दी Fixing of the market price of
निर्ख् बन्दी commodities.

ନିରଗ୍ନି—ସଂ. ବଣ. (ବହୁବ୍ରୀହି; ନିର୍=ନାହିଁ+ଅଗ୍ନି)—
Niragni ୧ । ଅଗ୍ନି ଶୂନ୍ୟ; ଅନଗ୍ନି—1. Fireless.
୨ । ନିସ୍ତେଜ—2. Devoid of vigour or brightness.
ବି—ଯେଉଁ ବ୍ରାହ୍ମଣର ଗୃହରେ ଯଜ୍ଞାଗ୍ନି ସଞ୍ଚିତ ହୋଇ ରଖାଯାଇ ନ ଥାଏ—A Brāhmana who does not maintain the consecrated sacrificial fire in his home.

ନିରଙ୍କୁଶ—ସଂ. ବଣ. ପୁଂ. ( ବହୁବ୍ରୀହି; ନିର୍=ନାହିଁ+ଅଙ୍କୁଶ=
Nirankusa ହସ୍ତି ଶାସନ ଦଣ୍ଡ )—
(ନିରଙ୍କୁଶା—ସ୍ତ୍ରୀ) ୧ । ଅନିବାର୍ଯ୍ୟ—1. Unavoidable;
(ନିରଙ୍କୁଶତା—ବି) irresistible.
୨ । ବାଧା ଶୂନ୍ୟ; ପ୍ରତିବନ୍ଧକଶୂନ୍ୟ—
2. Unrestricted; unchecked; uncontrolled; unrestrained; unfettered.
୩ । ସ୍ୱେଚ୍ଛାଗ୍ରସ୍ତ—3. Wilful.
୪ । ସ୍ୱାଧୀନ—4. Independent; free.
୫ । ଅଶାସ୍ୟ—5. Unruly ( M. W. )
୬ । ଅପବ୍ୟୟୀ—6. Extravagant.

ନିରଙ୍କୁଶତା(ତ୍ୱ)—ସଂ. ବି. (ନିରଙ୍କୁଶ+ଭାବ. ତା; ତ୍ୱ)—୧ । ସ୍ୱାଧୀନତା—
Nirankusatā(twa) 1. Freedom; liberty.
(ନିରଙ୍କୁଶତ୍ୱ—ଅନ୍ୟରୂପ) ୨ । ବାଧା ଶୂନ୍ୟତା—
2. Want of restraint.
୩ । ସ୍ୱେଚ୍ଛାଗ୍ରସ୍ତତା—3. Wilfulness.

ନିରଙ୍ଗ—ସଂ. ବଣ. ( ବହୁବ୍ରୀହି; ନିର୍+ଅଙ୍ଗ )—
Niranga ୧ । ଅଙ୍ଗହୀନ—1. Limbless.

୨ । ନିରାକାର—
2 Shapeless; without form.
୩ । ଅଶରୀରୀ; ନିରବୟବ—3. Incorporeal,
୪ । ଅସମ୍ପୂର୍ଣ୍ଣ—4. Incomplete ( M, W, )
୫ । ନିରୁପାୟ; ଉପାୟାନ୍ତର ହୀନ—5. Having no resources or expedients. ( M.W. )
ସ. ବି—ଏକ ପ୍ରକାର ରୂପକ ଅଳଙ୍କାର (ହି. ଶ.)—
A kind of simile.
[ ଦ୍ର—ଯେଉଁ ରୂପକ ଅଳଙ୍କାରରେ ଉପମେୟର ସବୁ ଅଙ୍ଗ ନିର୍ଦ୍ଦେଶ କରାଯାଏ ନାହିଁ ତାକୁ ନିରଙ୍ଗ ରୂପକ ବୋଲାଯାଏ—ହି. ଶବ୍ଦସାଗର । ]
ପ୍ରାଦେ. (ଗଡ଼ଜାତ) ବି—ମହର୍ଘ କାଳ, କାନ୍ତାର; ଦୁର୍ଭିକ୍ଷ—
Famine; a time of rise in prices of food grains,

**ନିରଙ୍ଗୁଳ**—ସ. ବି. ( ନିର୍+ଅଙ୍ଗୁଳ )—
Nirangula ୧। ଯାହା ଅଙ୍ଗୁଳିରୁ ନିର୍ଗତ ହୋଇଅଛି (ପ୍ରକୃତିବାଦ)-
(ନିରଙ୍ଗୁଳ—ଅନ୍ୟରୂପ) 1. Growing out of the fingers.
୨ । ଅଙ୍ଗୁଳିହୀନ—2. Fingerless.

**ନିରଙ୍ଗ ରୂପକ**—ସ. ବି—ଏକ ପ୍ରକାର ରୂପକ ଅଳଙ୍କାର—
Niranga rūpaka A kind of simile.
( ଯଥା— ରୂପକ ତଳେ ନୋଟ ଦେଖ । )

**ନିରଜନ**— ଗ୍ରା. (ପଦ୍ୟ) ବିଣ. ଓ ବି.—ନିର୍ଜନ (ଦେଖ)
Nirajana Nirjana (See)
(ନିରଜନ—ଅନ୍ୟରୂପ) ଲୁଷ୍ଟଦମ କେମାନେ କଷାବନ୍ଧ,
ନିରଜନେ ଯେଣୁ ଯାପିବ ଯାମିନୀ । ଅଜୟଚନ୍ଦ୍ର . ଶେଷବନ୍ଦୀ ।

**ନିରଜିନ**—ସ. ବିଣ. ( ବହୁବ୍ରୀହି, ନିର୍+ଅଜିନ )—ଯାହାର ଚମଡ଼ା
Nirājina ନାହିଁ—Without a skin or hide.

**ନିରଞ୍ଜନ**—ସ. ବିଣ. ପୁଂ (ବହୁବ୍ରୀହି; ନିର୍=ନାହିଁ+ଅଞ୍ଜନ=କଜ୍ଜଳ
Nirañjana ବା ମଳ)—୧ । ବିଶୁଦ୍ଧ—1. Pure.
(ନିରଞ୍ଜନା—ସ୍ତ୍ରୀ) ୨ । ନିଷ୍କଳଙ୍କ—2. Stainless; spotless; unstained.
୩ । କଜ୍ଜଳହୀନ—3. Free from or having no collyrium.
୪ । ପବିତ୍ର—4. Holy; sacred.
୫ । ଅନ୍ଧକାରହୀନ—5. Free from darkness.
୬ । ନିଷ୍ପାପ; ପାପହୀନ—6. Sinless.
୭ । ରାଗାଦି ଦୋଷ ରହିତ—
7. Free from passions or emotion.
୮ । ତେଜୋମୟ—8. Bright; luminous.
ବି.—୧ । ଭଗବାନ୍—
1. God.
[ଦ୍ର—'କୁମ୍ଭୀପାଟିଆ' ବା ଅଲେଖ ଧର୍ମାବଲମ୍ବୀମାନେ ନିରାକାର ନିରଞ୍ଜନ ଠାକୁରଙ୍କୁ ପୂଜା କରନ୍ତି ।]
୨ । ମହାଦେବ—2. God Siba.
୩ । ପରଂବ୍ରହ୍ମ—3. The Suprime Brahma.

**ନିରଞ୍ଜନା**—ସ. ବି. ସ୍ତ୍ରୀ (ନିରଞ୍ଜନ+ଆ)—୧ । ପୂର୍ଣ୍ଣିମା ତିଥି—
Nirñjanā 1. Fullmoon day.
୨ । ଦୁର୍ଗା—2. Durgā

**ନିରଞ୍ଜନୀ**—ଦେ. ବି. (ନିରଞ୍ଜନଙ୍କ) ଉପାସକ ସମ୍ପ୍ରଦାୟବିଶେଷ—
Niranjani Name of a sect of devotees.
[ଦ୍ର—ନିତ୍ୟାନନ୍ଦ ସ୍ୱାମୀ ଏହି ସମ୍ପ୍ରଦାୟର ପ୍ରବର୍ତ୍ତକ; ସେ ନିରଞ୍ଜନ ନିରାକାର ପରବ୍ରହ୍ମଙ୍କର ଉପାସନା କରୁଥିଲେ, ତେଣୁ ତତ୍ପ୍ରବର୍ତ୍ତିତ ଶାଖା ନିରଞ୍ଜନୀ ନାମରେ ଅଭିହିତ; କିନ୍ତୁ ଆଜିକାଲି ନିରଞ୍ଜନୀ ସାଧୁମାନେ ରାମାନନ୍ଦଙ୍କ ମତାନୁସାରେ ସାକାର ଉପାସନା ଗ୍ରହଣ କରି ଉଦାସୀ ବୈଷ୍ଣବ ହୋଇ ଅଛନ୍ତି ଓ କୌପୀନ, ତିଳକ ଓ କଣ୍ଠି ଧାରଣ କରୁ ଅଛନ୍ତି । ମାରବାଡ଼ ଦେଶରେ ଏମାନଙ୍କର ଅନେକ ଆଖଡ଼ା ଅଛି । ହି. ଶ.]

**ନିରତ**—ସ. ବିଣ. ସ୍ତ୍ରୀ—(ନି+ରମ୍ ଧାତୁ+କର୍ତ୍ତୃ. ତ)—୧ । ବ୍ୟାପୃତ;
Nirata ନିଯୁକ୍ତ—1. Engaged; engrossed.
(ନିରତା—ସ୍ତ୍ରୀ) ୨ । ପ୍ରବୃତ୍ତ—2. Commenced; engaged in; occupied with.
୩ । ଆସକ୍ତ—3. Attached.
୪ । ଅନୁରକ୍ତ—4. Devoted to; very fond of.
୫ । ଅତି ଆନନ୍ଦିତ—
5. Extermely delighted with.
୬ । ସନ୍ତୁଷ୍ଟ—6. Pleased; satisfied.
୭ । ବିରତ—7. Rested; ceased (Apte).
(ନିରତେ—ଅନ୍ୟରୂପ) ଦେ. କ୍ରି. ବିଣ. (ସ ନିରନ୍ତର)—
୧ ସର୍ବଦା—1. Incessantly.
ନିରତେ ଅଛି ତ ଦେଖା, ଆସନ୍ତୁ ଅସନେ,
ନିରତେ କରନ୍ତୁ ସ୍ଥିତି, ସୁଖରେ ବସନ୍ତି—ସ୍ଥାନୀୟ ମହାପାତ୍ର ।
୨ । ଦିବା ରାତ୍ରି—2. Day and night.

**ନିରତି**—ସ. ବି.—(ନି+ରମ୍ ଧାତୁ+ଭାବ. ତି)—ଅତିଶୟ; ଅନୁରକ୍ତି
Nirati Excessive fondness or attachment.

**ନିରତିଚାର**—ସ. ବିଣ. ( ବହୁବ୍ରୀହି, ନିର୍+ଅତିଚାର )—
Niratichāra ଯାହାକୁ ଅପବିତ୍ର କରି ଯାଇ ନ ପାରେ—
Inviolable.

**ନିରତିଶୟ**—ସ. କ୍ରି. ବିଣ. ଓ ବିଣ ( ନିର୍=ନିତାନ୍ତ+ଅତିଶୟ=
Niratiśaya ଆଧିକ୍ୟ )—୧ । ଅତ୍ୟଧିକ—
1. Excessive; greatest; extreme; too much.
୨ । ଅନତିକ୍ରମଣୀୟ—2. Unsurpassable; insurmountable.
୩ । ଅତ୍ୟନ୍ତ; ଅତିରିକ୍ତ ରୂପେ—3. Exceedingly.
ବି.—ପରମେଶ୍ୱର—God.

**ନିରତେ**—ଦେ. କ୍ରି. ବିଣ—ନିରତ ( ଦେଖ ) —
Nirate Nirata ( See )
ମୋହନ ତୋଳାଙ୍କି ନିରତେ ଛନ୍ଦିଛରେ—ସଙ୍ଗୀତ ।

**ନିରତ୍ୟୟ**—ସ. ବିଣ. ( ବହୁବ୍ରୀହି; ନିର୍=ନାହିଁ+ଅତ୍ୟୟ=ଦୋଷ,
Niratyaya ବିନାଶ )—୧ । ନିର୍ଦ୍ଦୋଷ—
1. Faultless; flawless.

୨ । ନିଷ୍ପାପ; ଅନଘ—2, Sinless.
୩ । ଅବିନଶ୍ୱର—3. Immortal; indestructible.
୪ । ବାଧାଶୂନ୍ୟ—4. Unrestrained; unchecked;
୫ । ଅନିବାର୍ଯ୍ୟ—5. Irresistible.
୬ । ବିପଦଶୂନ୍ୟ; ନିରାପଦ—6. Free from danger; secure (M. W.)
୭ । ଯାହା କୌଣସି କଷ୍ଟ ଦିଏ ନାହିଁ—
7. Causing no pain (M.W.)

ନିରଦୟ—ଗ୍ରା. ( ପଦ୍ୟ ) ବିଣ—ନିର୍ଦ୍ଦୟ ( ଦେଖ )—
Niradaya Nirddaya (See)
निरदय निरद्दय (ନିରଦୟା—ଅନ୍ୟରୂପ)

ନିରଦୟା—ଗ୍ରା (ପଦ୍ୟ) ବିଣ—୧ । ନିର୍ଦ୍ଦୟ—
Niradayā 1. Not merciful.
ବି—ନିର୍ଦ୍ଦୟତା—Unkindness; cruelty.

ନିର ଦୋଷ—ଗ୍ରା. ( ପଦ୍ୟ ) ବିଣ—ନିର୍ଦ୍ଦୋଷ ( ଦେଖ )—
Nira dosa Nirddosha (See)

ନିରଧିକାର—ସ. ବିଣ ( ବହୁବ୍ରୀହି; ନିର୍=ନାହିଁ+ଅଧିକାର—
Niradhikāra ୧ । ଅଧିକାର ବିହୀନ—
1. Having no authority.
୨ । ବେଦଖଲ—2. Disposessed.
୩ । ସମ୍ବନ୍ଧବିହୀନ—3. Having no connection.

ନିରଧ୍ୱ—ସ. ବିଣ. ପୁଂ. ( ବହୁବ୍ରୀହି, ନିର୍+ଅଧ୍ୱନ୍ )—
Niradhwa ଯେ ବାଟ ଭୁଲିଛି; ଯେ ଭୁଆଁ ବୁଲୁଛି—
One who has lost one's way.

ନିରନୁକ୍ରୋଶ—ସ. ବିଣ. ପୁଂ (ବହୁବ୍ରୀହି; ନିର୍+ଅନୁକ୍ରୋଶ )
Niranukrośa ୧ । ନିଷ୍କରୁଣ—
( ନିରନୁକ୍ରୋଶା—ସ୍ତ୍ରୀ ) 1. Unkind; hardhearted.
( ନିରନୁକ୍ରୋଶତା—ବି ) ୨ । ନିଷ୍ଠୁର; ନିର୍ଦ୍ଦୟ; କଠୋର—
2. Cruel; pitiless.
୩ । ନିଃସ୍ନେହ; ସ୍ନେହବିହୀନ—3. Unfeeling.
ସ. ବି.—ନିଷ୍ଠୁରତା—Cruelty; hardheartedness.

ନିରନୁଗ—ସ. ବିଣ. ପୁଂ. ( ବହୁବ୍ରୀହି; ନିର୍+ଅନୁଗ )—
Niranuga ଯାହାର କେହି ଅନୁଚର ବା ସଙ୍ଗୀ ଭୃତ୍ୟ ନାହିଁ—
( ନିରନୁଗା—ସ୍ତ୍ରୀ ) Having no followers;
(ନିରନୁଚର—ଅନ୍ୟରୂପ) unattended.

ନିରନୁଗ୍ରହ—ସ. ବିଣ. ( ବହୁବ୍ରୀହି; ନିର୍+ଅନୁଗ୍ରହ)—
Niranugraha ୧ । ଅନୁଗ୍ରହଶୂନ୍ୟ—1. Ungracious.
(ନିରନୁଗ୍ରହା—ସ୍ତ୍ରୀ) ୨ । ପ୍ରତିକୂଳ—2. Unfavourable.
(ନିରନୁଗ୍ରହତା—ବି) ୩ । ନିର୍ଦ୍ଦୟ—3. Unkind.

ନିରନୁନାସିକ—ସ. ବିଣ. ( ନିର୍—ନିର୍ଦ୍ଦେଶ+ଅନୁନାସିକ )—
Niranunāsika ଅନନୁନାସିକ; ଯାହାଁ ନାସିକାର ସାହାଯ୍ୟରେ ଉଚ୍ଚାରିତ ହୁଏ ନାହିଁ—Not nasal.

ନିରନୁବନ୍ଧ—ସ. ବିଣ. ପୁଂ ( ବହୁବ୍ରୀହି; ନିର୍+ଅନୁବନ୍ଧ )—
Niranubandha ଅନନୁବନ୍ଧ; ବେମୋହବନ୍ଧଥିଆ—
(ନିରନୁବନ୍ଧା—ସ୍ତ୍ରୀ) Having no symptomatic
( ନିରନୁବନ୍ଧତା—ବି ) affection.

ନିରନୁଯୋଜ୍ୟ—ସ ବି. ( ନିର୍+ଅନୁଯୋଜ୍ୟ)—
Niranujojya ୧ । ନିର୍ଦ୍ଦୋଷ 1. Faultless
(ନିରନୁଯୋଜ୍ୟା—ସ୍ତ୍ରୀ) ୨ । ଅନିନ୍ଦ୍ୟ—2. Unblamable.
(ନିରନୁଯୋଜ୍ୟତା—ବି)

ନିରନୁଯୋଜ୍ୟାନୁଯୋଗ—ସ. ବି ( ଷଷ୍ଠୀ ତତ୍; ନିରନୁଯୋଜ୍ୟ+ଅନୁଯୋଗ )—
Niranujojyānujoga
ନିର୍ଦ୍ଦୋଷ ବସ୍ତୁର ନିନ୍ଦା—The blaming of any thing faultless ( M. W. )

ନିରନୁରୋଧ—ସ. ବିଣ. ( ବହୁବ୍ରୀହି; ନିର୍=ନାହିଁ+ଅନୁରୋଧ )—
Niranurodha ୧ । ଯେ ଅନୁରୋଧର ଅପେକ୍ଷା ନ ରଖେ;
[ନିରନୁରୋଧତ୍ୱ(ତା)—ବି] ବେମୋହବନ୍ଧଥିଆ; ଯେ ମୁଲାହିଜାକୁ
(ନିରନୁରୋଧା—ସ୍ତ୍ରୀ) ଗୁହେଁ ନାହିଁ; ନିରପେକ୍ଷ—
1. One who does not accede to request; having no regard for the request or feeling of others.
୨ । ଅପ୍ରିୟ—2. Disagreeable; unamiable.
୩ । ନିଷ୍ଠୁର; ନିର୍ଦ୍ଦୟ—3. Unkind.
୪ । ପ୍ରତିକୂଳ—4. Unfavourable.

ନିରନ୍ତର—ସ. ବିଣ (ବହୁବ୍ରୀହି; ନିର୍=ନାହିଁ+ଅନ୍ତର=ଅବକାଶ)—
Nirantara ୧ । ସାନ୍ଦ୍ର; ନିବିଡ଼; ଘନ—1. Thick; dense; compact; close.
୨ । ନିରବକାଶ; ଅନବସର—
2. Without leisure; having no interval in space or time ( M. W. )
୩ । ଅସୀମ—3. Unlimited.
୪ । ଅପରିଧାନ; ନଗ୍ନ—4. Naked.
୫ । ଅଛିଦ୍ର—5. Impervious.
୬ । ଅନାତ୍ମୀୟ—
6. Not pertaining to one's self.
୭ । ଅମଧ୍ୟ; ବ୍ୟବଧାନରହିତ—7. Having no space between.
୮ । ପ୍ରକାଶିତ—
8. Manifest; not hidden from view.
୯ । ଅଭ୍ୟନ୍ତରିକ—
9. Inner; internal.
୧୦ । ଅବିରତ—
10. Incessant; continuous; uninterrupted.

୧୧ । ବିଶ୍ୱାସୀ—11. Faithful; true. ( M.W. )

୧୨ । (ଅମୁକରେ) ପୂର୍ଣ୍ଣ—
12. Abounding in; full of. ( M.W. )

୧୩ । ସେହି; ଅପୃଥକ୍—
13. Not different; same; identical. ( M.W. )

୧୪ । ମୋଟା—14. Coarse; gross. (Apte).

୧୫ । ସରଳ; ନିଷ୍କପଟ—15 Sincere. (Apte)

କ୍ରି. ବିଣ—୧ । ଅବିରତ—
1 Incessantly; continually.

୨ । ସତତ; ନିରନ୍ତ; ସର୍ବଦା—2. Always.

୩ । ନିରବଚ୍ଛିନ୍ନ ରୂପେ—
3. Continuously; uninterruptedly.

୪ । ଦୃଢ଼ରୂପେ—
4. Closely, tightly; firmly ( M.W. )

୫ । ତତ୍‌କ୍ଷଣାତ୍—
5. Immediately; at once ( M. W. )

ନିରନ୍ତର ଗୃହବାସୀ—ସଂ ବିଣ. ପୁଂ—ପ୍ରତିବେଶୀ; ସନ୍ନିକଟବର୍ତ୍ତୀ ଘରେ ରହୁଥିବା—Living in the next house ( M. W. )
Nirantara gṛuhabāsī
(ନିରନ୍ତର ଗୃହବାସିନୀ—ସ୍ତ୍ରୀ)

ନିରନ୍ତରାଳ—ସଂ. ବିଣ. ( ବହୁବ୍ରୀହି; ନିର୍=ନାହିଁ+ଅନ୍ତରାଳ=ବ୍ୟବଧାନ )—୧ । ଗାଢ଼; ଘନ; ନିବିଡ଼; ସାନ୍ଦ୍ର-
Nirantarāla
1. Thick; close set; solid impervious.

୨ । ଅଭେଦ୍ୟ—2. Inpenetrable.

୩ । ବ୍ୟବଧାନରହିତ—
3. Having no intervening space.

୪ । ସଙ୍କୀର୍ଣ୍ଣ—4. Narrow.

ନିରନ୍ନ—ସଂ ବିଣ. ( ବହୁବ୍ରୀହି; ନିର୍=ନାହିଁ+ଅନ୍ନ=ଖାଦ୍ୟ )—
Niranna ୧ । ଖାଦ୍ୟାଭାବଗ୍ରସ୍ତ—
1. Foodless; destitute of food.

୨ । ଅତି ଗରିବ—2. Very poor; needy.

୩ । ଅନ୍ନ ସଂସ୍ଥାନ ହୀନ—3. Having no provision for one's meals.
(ନିରନ୍ନତା—ବି)

୪ । ନିରାହାର; ଉପବାସୀ—
4. Wanting food; starving.

ନିରନ୍ୱୟ—ସଂ. ବିଣ. ପୁଂ (ବହୁବ୍ରୀହି; ନିର୍=ନାହିଁ+ଅନ୍ୱୟ )—
Niranwaya ୧ । ଅସଲଗ୍ନ; ସମ୍ବନ୍ଧହୀନ—1. Unrelated; unmethodical; unconnected.
(ନିରନ୍ୱୟା—ସ୍ତ୍ରୀ)

୨ । (ବ୍ୟାକରଣ) ଅନ୍ୱୟରହିତ—2. ( grammar ) Not agreeing with the context of a sentence.
(ନିରନ୍ୱୟତା—ବି)

୩ । ନିରପତ୍ୟ; ନିଃସନ୍ତାନ—3. Childless; issueless; having no descendants.

୪ । ବଂଶହୀନ; ନିର୍ବଂଶ—4. Without posterity.

୫ । ଅଯୌକ୍ତିକ—5. Illogical; without logical sequence.

୬ । ଅନୁଚରହୀନ—
6. Without retinue; unattended ( M,W )

୭ । ଅଦୃଶ୍ୟ—
7. Without being seen; out of sight(Apte)

୮ । ଅପ୍ରତ୍ୟାଶିତ—8. Sudden; unexpected.

ନିରପ—ସଂ. ବିଣ (ବହୁବ୍ରୀହି; ନିର୍=ନାହିଁ+ଅପ=ଜଳ)—ନିର୍ଜଳ—
Nirapa Waterless ( M. W, )

ନିରପତ୍ୟ—ସଂ. ବିଣ. ପୁଂ ( ବହୁବ୍ରୀହି; ନିର୍=ନାହିଁ+ଅପତ୍ୟ)—
Nirapatya Childless; issueless.
(ନିରପତ୍ୟା—ସ୍ତ୍ରୀ) (ନିରପତ୍ୟତା—ବି)

ନିରପତ୍ରପ—ସଂ. ବିଣ. ପୁଂ. ( ବହୁବ୍ରୀହି; ନିର୍=ନାହିଁ+ଅପତ୍ରପା=ଲଜ୍ଜା)—୧ । ନିର୍ଲଜ୍ଜ; ବେହିୟା—
Nirapatrapa
1 Shameless; immodest.
(ନିରପତ୍ରପା—ସ୍ତ୍ରୀ)
(ନିରପତ୍ରପତା—ବି) ୨ । ଧୃଷ୍ଟ—2. Insolent.

ନିରପବର୍ତ୍ତ—ସଂ. ବିଣ.—(ବହୁବ୍ରୀହି; ନିର୍+ଅପବର୍ତ୍ତ)—
Nirapabartta ୧ । ଅପ୍ରତ୍ୟାବୃତ୍ତ—
(ନିରପବର୍ତ୍ତିନ—ଅନ୍ୟରୂପ) 1. Not turning back. (Apte)

୨ । (ଗଣିତ) ଯେଉଁ ସଂଖ୍ୟାର ଲଘିଷ୍ଠ ସାଧାରଣ ବିଭାଜକ ନାହିଁ—1. ( arithmetic ) Leaving no common deviser; reduced to the lowest terms (Apte).

ନିରପରାଧ—ସଂ. ବିଣ. ପୁଂ (ବହୁବ୍ରୀହି; ନିର୍=ନାହିଁ+ଅପରାଧ)—
Niraparādha ୧ । ଅକୃତାପରାଧ; ନିର୍ଦୋଷ; ବେକସୁର—
(ନିରପରାଧା—ସ୍ତ୍ରୀ) 1. Faultless; innocent; guiltless.
(ନିରପରାଧତା—ବି) ୨ । ନିରୀହ—2. Harmless.

ସଂ. ବି.—ଅପରାଧହୀନତା—Faultlessness.

କ୍ରି. ବିଣ.—ବିନାପରାଧରେ; ବିନା ଦୋଷରେ—
Without any fault.

ନିରପରାଧୀ—ଦେ. ବିଣ. ପୁଂ (ଅଶୁଦ୍ଧ ବ୍ୟବହାର)—ନିର୍ଦୋଷ—
Niraparādhi Innocent; guiltless.
(ନିରପରାଧିନୀ—ସ୍ତ୍ରୀ) [ଦ୍ର—ନିରପରାଧୀ ଓ ନିରପରାଧିନୀ ଶବ୍ଦ ସଂସ୍କୃତ ଭାଷାରେ ଚଳେ ନାହିଁ, 'ନିର୍' ଉପସର୍ଗ ସଙ୍ଗେ ବହୁବ୍ରୀହି ସମାସ ହେଲେ 'ନିରପରାଧ' ଶବ୍ଦ ବିଶେଷ୍ୟ ରୂପେ ସିଦ୍ଧ ହୁଏ, ଅତଏବ 'ନିରପରାଧ' ଏହି ବିଶେଷ୍ୟରେ ଇନ୍ ପ୍ରତ୍ୟୟ କରି ବିଶେଷଣ ପଦ ସିଦ୍ଧ କରିବା ବ୍ୟାକରଣବିରୁଦ୍ଧ; ସେହିପରି ନିର୍ଦୋଷୀ ଓ ନିରୋଗୀ ପ୍ରଭୃତି ମଧ୍ୟ ଅଶୁଦ୍ଧ ।]
निरपराधी
**निरपराधी**

ନିରପାୟ—ସଂ. ବିଣ. ( ନିର୍+ଅପାୟ; ବହୁବ୍ରୀହି )—୧ । ଅନିଷ୍ଟହୀନ; ନିରାପଦ—1. Free from harm or evil. (Apte).
Nirapāya
(ନିରପାୟା—ସ୍ତ୍ରୀ)

୨ । ଅକ୍ଷୟ; ଅବିନାଶୀ; ଅବିନଶ୍ୱର—
2. Imperishable; infallible; free from decay.

ନିରପାୟୀ—ଦେ. ବିଣ.ପୁଂ (ଅଶୁଦ୍ଧ ବ୍ୟବହାର; ସଂ. ନିରପାୟ)—ଅକ୍ଷୟ;
Nirapāyi ଅବିନାଶୀ; ଅବିନଶ୍ୱର—Imperishable; unfailing.

ନିରପେକ୍ଷ—ସଂ. ବିଣ (ବହୁବ୍ରୀହି; ନିର୍=ନାହିଁ+ଅପେକ୍ଷା)—
Nirapeksha ୧ । ଅନପେକ୍ଷ; ଅପେକ୍ଷାରହିତ—
(ନିରପେକ୍ଷା—ସ୍ତ୍ରୀ) 1. Not expecting anything
[ନିରପେକ୍ଷତା(ତ୍ୱ)—ବି] from any one, regardless.
୨ । ତଟସ୍ଥ; ଉଦାସୀନ—2. Indifferent.
୩ । ଅନବହିତ—3. Inattentive.
୪ । ସ୍ୱାଧୀନ; ସ୍ୱତନ୍ତ୍ର—4. Independent of; unconnected with; unencumbered by.
୫ ଅପକ୍ଷପାତ—5 Impartial; upright.
୬ । ସଂସାର ବନ୍ଧନ ପ୍ରତି ବୀତସ୍ପୃହ—6. Indifferent to worldly attachments or pursuits. (Apte).
୭ । ଅସ୍ୱାର୍ଥପର—7. Disinterested (Apte)
୮ । ଯେ ଅନ୍ୟ କାହା ଠାରୁ ପୁରସ୍କାର ପ୍ରତ୍ୟାଶା କରେ ନାହିଁ—8. Not expecting any reward from another. (Apte)
୯ । ଉଦ୍ଦେଶ୍ୟହୀନ—9. Without purpose (Apte).

ନିରପେକ୍ଷ ଗତି—ସଂ. ବି.—ଅନ୍ୟ ବସ୍ତୁର ଗତି ସଙ୍ଗେ ଯେଉଁ ଗତିର
Nirapeksha gati କୌଣସି ସମ୍ବନ୍ଧ ନ ଥାଏ; ସ୍ୱତନ୍ତ୍ର ଗତି—Free motion.
ବିଣ.—ସ୍ୱାଧୀନ ଗତିବିଶିଷ୍ଟ—Having free motion.

ନିରପେକ୍ଷତା(ତ୍ୱ)—ସଂ. ବି.—୧ । ସ୍ୱାଧୀନତା—
Nirapekshatā(twa) 1. Independence.
୨ । ଉଦାସୀନତା—2. Indifference.
୩ । ଅପକ୍ଷପାତିତା—3. Impartiality.

ନିରପେକ୍ଷ ବିଚାର—ସଂ. ବି.—ଅପକ୍ଷପାତ ବିଚାର—
Nirapeksha bichāra Impartial consideration.

ନିରପେକ୍ଷା—ସଂ. ବି.—ନିରପେକ୍ଷତା (ଦେଖ)
Nirapekshā Nirapekshatā (See)

ନିରପେକ୍ଷିତ—ସଂ. ବିଣ. (ନିର୍+ଅପେକ୍ଷିତ)—୧ । ଉପେକ୍ଷିତ—
Nirapekshita 1. Disregarded.
୨ । ଉପେକ୍ଷାକାରୀ—2. Regardless.

ନିରପେକ୍ଷୀ—ସଂ. ବିଣ. ପୁଂ (ନିରପେକ୍ଷ+ଇନ୍; ୧ମା. ୧ବ.)—
Nirapekshi ୧ । ଉପେକ୍ଷାକାରୀ—
(ନିରପେକ୍ଷିଣୀ—ସ୍ତ୍ରୀ) 1. Disregarding (Apte).
୨ । ଉଦାସୀନ—2. Indifferent (Apte).

ନିରବ—ସଂ. ବିଣ. (ବହୁବ୍ରୀହି; ନି=ନାହିଁ+ରବ=ଶବ୍ଦ)—
Niraba ୧ । ଶବ୍ଦହୀନ; ନୀରବ; ମୌନୀ—
(ନୀରବ—ଅନ୍ୟରୂପ) 1. Silent; quiet.
(ନିରବତା—ବି) ୨ । ଗୋଳମାଳଶୂନ୍ୟ—2. Noiseless.

ନିରବକାଶ—ସଂ. ବିଣ. ପୁଂ (ବହୁବ୍ରୀହି; ନିର୍=ନାହିଁ+ଅବକାଶ)—
Nirabakāsa ୧ । ଅବସରହୀନ—
(ନିରବକାଶା—ସ୍ତ୍ରୀ) 1. Having no leisure.
୨ । ସୁବିଧାହୀନ—2. Without any opportunity.
୩ । ସାନ୍ଦ୍ର; ନିରନ୍ତର—3. Dense; close set.
୪ । ଗହଳିଆ—4. Crowded (M.W.)
୫ । ଅସୁବିଧାଜନକ—5. Inconvenient. (M. W.)
୬ । ଅସମୟ ବା ଅସ୍ଥାନରେ ଘଟିବା—6. Unseasonable; out of place or time (M. W.)
ବି.—ଅବସରର ଅଭାବ—Want of leisure.

ନିରବଗ୍ରହ—ସଂ. ବିଣ. (ବହୁବ୍ରୀହି; ନିର୍=ନାହିଁ+ଅବଗ୍ରହ=ଅବ-
Nirabagraha ରୋଧ)—୧ । ଅପ୍ରତିହତ; ବାଧାହୀନ; ପ୍ରତିବନ୍ଧକଶୂନ୍ୟ—1. Unchecked; unrestrained; unobstructed.
୨ । ବିଘ୍ନରହିତ—2. Without any obstacle.
୩ । ଅବ୍ୟାହତ—3. Uncontrolled; irresistible.
୪ । ସ୍ୱଚ୍ଛନ୍ଦ; ସ୍ୱାଧୀନ—4. Independent.
୫ । ଏକଗୁଁଆ; ଏକଜିଦିଆ—
5. Self-willed; headstrong (M.W.).
ବି—ଅବିରତ ବୃଷ୍ଟି—Incessant raining.

ନିରବଚ୍ଛିନ୍ନ—ସଂ. ବିଣ. ( ନିର୍+ନୁହେଁ=ଅବଚ୍ଛିନ୍ନ )—
Nirabachchhinna ୧ । ନିରନ୍ତର—1. Uninterrupted.
( ନିରବଚ୍ଛିନ୍ନତା—ବିଶେଷ୍ୟ ) ୨ । ଧାରାବାହିକ—
2. Incessant; constant; continuous.
୩ । ଶୁଦ୍ଧ; କେବଳ—3. Pure and simple.
୪ । ବିଶୁଦ୍ଧ—4. Pure; unalloyed.
୫ । ଅବ୍ୟବହିତ—5. Immediate.
କ୍ରି. ବିଣ—ନିରନ୍ତେ; ନିରନ୍ତର—Incessantly.

ନିରବଦ୍ୟ—ସଂ. ବିଣ. ( ବହୁବ୍ରୀହି; ନିର୍+ଅବଦ୍ୟ=ଅକଥ୍ୟ )—
Nirabadya ୧ । ନିର୍ଦ୍ଦୋଷ—1. Faultless.
( ନିରବଦ୍ୟା—ସ୍ତ୍ରୀ ) ୨ । ବିଶୁଦ୍ଧ—2. Pure.
( ନିରବଦ୍ୟତା—ବିଶେଷ୍ୟ ) ୩ । ଅନିନ୍ଦ୍ୟ—3. Blameless.
୪ । ଅତୁଚ୍ଛ—4. Not mean or low.
୫ । ସମ୍ପୂର୍ଣ୍ଣ—5. Complete.
୬ । ଉତ୍କୃଷ୍ଟ—6. Excellent.
ସଂ. ବି.—ପରମେଶ୍ୱର; ପରମାତ୍ମା—The Supreme Being (Apte).

ନିରବଧି—ସଂ. ବିଣ. ( ବହୁବ୍ରୀହି; ନିର୍=ନାହିଁ+ଅବଧି=ସୀମା )—
Nirabadhi ୧ । ଅନନ୍ତ; ଅସୀମ—1. Unlimited; without bounds; unbounded; endless.
୨ । ନିରବଚ୍ଛିନ୍ନ—2. Uninterrupted; continuous.
କ୍ରି. ବିଣ—୧ । ନିରନ୍ତର; ସର୍ବଦା—1. Incessantly.
ଋଷିସ୍ୱାମୀଙ୍କ ଅଟେ ଦୃଢ଼ ବଚ୍ଚ,
ବୋଲ କରି ଦୁଃଖେ କହନ୍ତି ନିରବଧି । କୃଷ୍ଣସିଂହ. ମହାଭାରତ, ଉଦ୍‌ଯୋଗ ।

୨ । ସର୍ବଦା; ସର୍ବକ୍ଷଣ—2. Continually; always.
ସର୍ବେ ଧର୍ମରେଭ ରହିଲେ ନିରବଧି—କୃଷ୍ଣସିଂହ. ମହାଭାରତ. ସଭା ।

ନିରବନ୍ଧ—ଗ୍ରା ( ପଦ୍ୟ ) ବି—ନିର୍ବନ୍ଧ ( ଦେଖ )—
Nirabandha Nirbandha (See)
ବଳାଇ ମାଡସମାନ ଅନା ପ୍ରାଣବନ୍ଧୁ,
ବନ୍ଧୁକ ଭଞ୍ଜନ ଅଛ ଭଙ୍ଗ ନିରବନ୍ଧୁ । ଭଞ୍ଜ. ବୈଦେହୀଶ ବିଳାସ ।

ନିରବୟବ—ସଂ. ବିଣ ( ବହୁବ୍ରୀହି; ନିର୍—ନାହିଁ + ଅବୟବ )—
Nirabayaba ୧ । ନିରାକାର—1. Shapeless.
( ନିରବୟବା —ସ୍ତ୍ରୀ ) ୨ । ଅଙ୍ଗପ୍ରତ୍ୟଙ୍ଗ ବିହୀନ—
( ନିରବୟବତା—ବି ) 2. Destitute of limbs.
୩ । ଅବୟବହୀନ—3. Destitute of component parts.
୪ । ସରଳ; ସହଜ—4. Simple.
୫ । ଅସଙ୍କୀର୍ଣ୍ଣ—5. Not narrow.
୬ । ଅବିଭାଜ୍ୟ—6. Indivisible (Apte).
ବି—୧ । ପରମାଣୁ—2. Molecule; atom.
୨ । ପରଂବ୍ରହ୍ମ—2. The Supreme Being.

ନିରବରୋଧ—ସଂ. ବିଣ. ( ବହୁବ୍ରୀହି; ନିର୍ = ନାହିଁ + ଅବରୋଧ =
Nirabarodha ବାଧା )—୧ । ଅବିରୁଦ୍ଧ—
1 Not opposed to a thing; unopposed.
୨ । ଅପ୍ରତିହତ—2. Unrestrained.

ନିରବଲ୍—ପ୍ରାଦେ. ( ବସୁର ) ବିଣ—( ଭୁଲ. ହି. ନିରବଲ୍ )—
Nirabal ନିର୍ବଳ; ଦୁର୍ବଳ—Weak.

ନିରବଲମ୍ବ—ସଂ. ବିଣ. ( ବହୁବ୍ରୀହି; ନିର୍+ଅବଲମ୍ବ=ଆଶ୍ରୟ—
Nirabalamba ୧ । ଅବଲମ୍ବନବିହୀନ—
1. Having nothing to depend upon.
( ନିରବଲମ୍ବା—ସ୍ତ୍ରୀ ) ୨ । ଆଶ୍ରୟ ବିହୀନ—2. Shelterless.
( ନିରବଲମ୍ବତା—ବି ) ୩ । ନିରୁପାୟ—3. Resourceless.
୪ । ନିଃସହାୟ—4. Helpless.
୫ । ଯାହା ଅନ୍ୟକୁ ଆଶ୍ରୟ ଦିଏ ନାହିଁ—
5 Not affording support (Apte).
୬ । ସ୍ୱାଧୀନ; ଯେ ଅନ୍ୟ ଉପରେ ନିର୍ଭର କରେ ନାହିଁ—
6. Not depending or relying on another; independent; free. (Apte).

ନିରବଲମ୍ବନ—ସଂ. ବିଣ.—୧ । ନିରବଲମ୍ବ ( ଦେଖ )—
Nirabalambana Nirabalamba ( See )
( ନିରବଲମ୍ବନା—ସ୍ତ୍ରୀ ) ୨ । ଅସ୍ୱାମିକ—
2. Belonging to nobody (M. W ).
ବି—( ନିର୍ + ଅବଲମ୍ବନ )—୧ । ଅବଲମ୍ବନ ବା ଆଶ୍ରୟର ଅଭାବ—1. Lack of support or protection.
୨ । ଆସ୍ଥାର ଅଭାବ—2. Want of reliance (M. W.).
ଦେ. ବିଣ—ବେକାର; ଯାହାର କୌଣସି ବ୍ୟବସାୟ ବା ବୃତ୍ତି ନାହିଁ; ଜୀବିକାହୀନ—Unemployed; having no means of living.

ନିରବଲମ୍ବୀ—ଦେ. ବିଣ. ପୁଂ. ( ସଂ· ନିରବଲମ୍ବନ )—୧ । ସ୍ୱାଧୀନ—
Nirabalambi 1 Independent.
୨ । ବେକାର—2. Unemployed.

ନିରବଶେଷ—ସଂ. ବିଣ. ( ବହୁବ୍ରୀହି; ନିର୍=ନାହିଁ+ଅବଶେଷ )—
Nirabasesha ୧ । ସମ୍ପୂର୍ଣ୍ଣ; ସମଗ୍ର—
1. Whole; entire; complete.
୨ । ନିଃଶେଷ—2. Without a remainder.
୩ । ଯହିଁରୁ କିଛି ବଳି ନାହିଁ—
3. Leaving no remnant.
ଦେ. କ୍ରି. ବିଣ. ( ସଂ. ନିରବଶେଷେଣ )—
୧ । ସମ୍ପୂର୍ଣ୍ଣରୂପେ—1. Completely.
୨ । ନିଃଶେଷରୂପେ—2. Without leaving any remainder.

ନିରବଶେଷିତ—ସଂ. ବିଣ ( ନିରବଶେଷ+ସମ୍ବନ୍ଧେ ଇତ )—
Nirabaseshita ଯାହାର ଶେଷ ରଖା ଯାଇନାହିଁ; ନିଃଶେଷିତ—
Emptied to the dregs; exhausted to last remains.

ନିରବସନ୍ନ—ସଂ. ବିଣ (ନିର୍+ଅବ+ସଦ୍ ଧାତୁ+କର୍ତ୍ତୃ. ତ)—
Nirabasanna ୧ । ଅବସାଦରହିତ; ଅନବସନ୍ନ—1. Not
ନିରବସନ୍ନା—ସ୍ତ୍ରୀ) dejected; not cast down.
୨ । ଅକ୍ଲାନ୍ତ; କ୍ଲାନ୍ତିହୀନ—
2. Not fatigued; not wearied,
୩ । ପ୍ରଫୁଲ୍ଲ—3. Cheerful.
୪ । ଉଦ୍ବିଗ୍ନ—4. Anxious; eager (M. W.)

ନିରବସର—ସଂ. ବିଣ (ବହୁବ୍ରୀହି; ନିର୍+ଅବସର)—୧ । ଅନବକାଶ;
Nirabasara ଅବସରହୀନ—1. Leisureless.
(ନିରବସରା—ସ୍ତ୍ରୀ) ୨ । ବ୍ୟସ୍ତ; ବ୍ୟାପୃତ—2. Busy.

ନିରବସାଦ—ସଂ. ବିଣ (ନିର୍+ଅବସାଦ; ବହୁବ୍ରୀହି)-ନିରବସନ୍ନ (ଦେଖ)
Nirabasāda Nirabasanna (See)

ନିରବସିତ—ସଂ. ବିଣ. ପୁଂ(ନିର୍+ଅବ+ସୋ ଧାତୁ=ନାଶ କରିବା+
Nirabasita କର୍ମ. ତ)—୧ । ବହିଷ୍କୃତ—1. Expelled;
(ନିରବସିତା—ସ୍ତ୍ରୀ) exiled; driven out.

ନିରବସ୍ତାର—ସଂ. ବିଣ (ନିର୍+ଅବସ୍ତାର)—୧ । ଅନାବୃତ—
Nirabastāra 1. Uncovered; bare.
୨ । ଯାହା ବିଛା ଯାଇ ନାହିଁ—
2. Not strewn. (M. W.)
୨ । ଜାତିଭ୍ରଷ୍ଟ—2. Excommunicated.
୩ । ଅତି ନୀଚଜାତୀୟ—3 Of very low caste.
[ ଦ୍ର—ଯେ ଭୋଜନ କଲେ କୌଣସି ପାତ୍ରରେ ଭୁକ୍ତ ପାତ୍ର ସଂସ୍କାର ଦ୍ୱାରା ମଧ୍ୟ ଶୁଦ୍ଧ ହୁଏ ନାହିଁ, ତାହାକୁ ନିରବସିତ ଶୂଦ୍ର ବୋଲାଯାଏ—ପ୍ରକୃତିବାଦ । ]

ନିରବହାଳିକା—ସଂ. ବି (ନିର୍=ବାହାରେ+ଅବହାଳିକା=ବାଡ଼)
Nirabahālikā ୧ । ଘେରବନ୍ଦୀ—1. Enclosure.

୨ । ପ୍ରାକାର; ବହିଃପ୍ରାଚୀର—2. Outer wall.
୩ । ବାଡ଼—3. Fence; hedge.

ନିରବା – ପ୍ରାଦେ (ବସ୍ତୁର) ବିଣ (ଭୁଲ. ହି. ନିରା)—ଅକୃତ୍ରିମ—
Niraba Natural.

ନିରବାଁ—ପ୍ରାଦେ (ବସ୍ତୁର) ବିଣ—ଅଖଣ୍ଡ—
Nirabān Unbroken; uncut.

ନିରବ୍ୟୟ—ସଂ. ବିଣ (ବହୁବ୍ରୀହି; ନିର୍+ଅବ୍ୟୟ)—୧ । ଅଜାତ କ୍ଷୟ; ଅଶୀର୍ଣ୍ଣ—1. Undecayed
Nirabyaya
(ନିରବ୍ୟୟା—ସ୍ତ୍ରୀ) ୨ । ଅକ୍ଷୟ; ଅବିନାଶୀ—
(ନିରବ୍ୟୟତା—ବି) 2. Undecaying.
୩ । ଚିରସ୍ଥାୟୀ—3. Eternal (M. W.)

ନିରଭିପ୍ରାୟ—ସଂ. ବିଣ (ବହୁବ୍ରୀହି, ନିର୍+ଅଭିପ୍ରାୟ)—ଉଦ୍ଦେଶ୍ୟଶୂନ୍ୟ;
Nirabhipraya ଅଭିପ୍ରାୟଶୂନ୍ୟ—Purposeless.
(ନିରଭିପ୍ରାୟା—ସ୍ତ୍ରୀ)
[ନିରଭିପ୍ରାୟତା(ତ୍ୱ)—ବି]

ନିରଭିମାନ—ସଂ. ବିଣ. ପୁଂ (ବହୁବ୍ରୀହି; ନିର୍+ଅଭିମାନ)—
Nirabhimāna ନିରହଂକାର (ଦେଖ)
(ନିରଭିମାନା-ସ୍ତ୍ରୀ; ନିରଭିମାନତା—ବି) Nirahamkāra (See)

ନିରଭିମାନୀ—ଦେ. ବିଣ. ପୁଂ (ସଂ. ନିରଭିମାନ; ଅଶୁଦ୍ଧ ପ୍ରୟୋଗ)—
Nirabhimānī ନିରହଂକାର (ଦେଖ)
(ନିରଭିମାନିନୀ—ସ୍ତ୍ରୀ) Nirahamkāra (See)

ନିରଭିଳପ୍ୟ—ସଂ. ବିଣ (ନିର୍+ଅଭିଳପ୍ୟ)—ଅକଥ୍ୟ—
Nirabhilapya Inexpressible, unutterable.

ନିରଭିସନ୍ଧାନ—ସଂ. ବି (ବହୁବ୍ରୀହି; ନିର୍+ଅଭିସନ୍ଧାନ)—ଅଭିସନ୍ଧି
Nirabhisandhāna ବା ସ୍ୱାର୍ଥପୂର୍ଣ୍ଣ ଉଦ୍ଦେଶ୍ୟର ଅଭାବ—
Absence of design (M. W.)
(ନିରଭିସନ୍ଧି—ଅନ୍ୟରୂପ) ସଂ. ବିଣ. ପୁଂ—ଅଭିସନ୍ଧି ରହିତ;
(ନିରଭିସନ୍ଧାନା—ସ୍ତ୍ରୀ) ସ୍ୱାର୍ଥପର ଉଦ୍ଦେଶ୍ୟ ବିହୀନ—Free from egoistic designs.

ନିରଭ୍ର—ସଂ. ବିଣ—୧ । ଅଭ୍ରରହିତ—
Nirabhra 1. Micaless.
୨ । ମେଘରହିତ—2. Cloudless.

ନିରମାଖୀ—ଦେ (ପଦ୍ୟ) ବିଣ—ନିର୍ମାଖୀ (ଦେଖ)
Niramākhī Nirmākhī (See)
ନିରମାଖୀ ନିରନ୍ତରସ୍ୱ ଫଳମୂଳାହାରୀ—ରାଧାନାଥ. ସାବିତ୍ରୀଚରିତ ।

ନିରମ୍ବର—ସଂ. ବିଣ. ପୁଂ (ବହୁବ୍ରୀହି; ନିର୍+ଅମ୍ବର)—ନଗ୍ନ; ଲଙ୍ଗଳା—
Nirambara Naked; undressed; nude.
(ନିରମ୍ବରା—ସ୍ତ୍ରୀ) (ନିରମ୍ବରତା—ବି)

ନିରମ୍ବୁ—ସଂ. ବିଣ (ବହୁବ୍ରୀହି; ନିର୍+ଅମ୍ବୁ)—୧ । ନିର୍ଜଳ; ଶୁଷ୍କ—
Nirambu 1. Waterless; dry.
୨ । ଜଳବର୍ଜିତ; ଜଳହୀନ—
2. Without water; destitute of water.
୩ । ଯେ ଜଳ ପାନ କରେ ନାହିଁ—
3. Abstaining from water. (M. W.)
(ନିରମ୍ବୁ ଉପବାସ=ଯେଉଁ ଉପବାସରେ ଉପବାସୀ ବ୍ୟକ୍ତି ଜଳ ସୁଦ୍ଧା ପାନ କରେ ନାହିଁ ।)

ନିରୟ—ସଂ. ବି. (ନିର୍=ନିକୃଷ୍ଟ+ଅୟ=ଗତି, ସ୍ଥାନ; କିମ୍ବା ନିର
Niraya =ନିର୍ଗତ ହୋଇଅଛି+ଅୟ=ଶୁଭ, ସୌଭାଗ୍ୟ ଯେଉଁଠାରୁ; ବହୁବ୍ରୀହି)—୧ । ନରକ; ପରଲୋକରେ ପାପର ଦଣ୍ଡଭୋଗ ସ୍ଥାନ—1. Hell.
୨ । ଦୁର୍ଗତି—2. Misery; distress.
ଜାଣନ୍ତୁ ଏ ନିରୟେ ସିନ୍ଧୁ ବୁଡ଼ି । କୃଷ୍ଣସିଂହ. ମହାଭାରତ ସଭା ।

ନିରୟଗାମୀ—ସଂ. ବିଣ. ପୁଂ. (ନିରୟ+ଗମ୍ ଧାତୁ+କର୍ତ୍ତୃ. ଇନ୍;
Nirayagāmī ୧ମା. ୧ବ)—୧ । ପାପୀ—1. Sinful.
(ନିରୟଗାମିନୀ—ସ୍ତ୍ରୀ) ୨ । ନରକଗାମୀ; କୃତକୃତ ପାପ ଯେ ନରକକୁ ଯାଏ—2 Going to be punished in hell for one's sins.

ନିରର୍ଗଳ—ସଂ. ବିଣ (ବହୁବ୍ରୀହି; ନିର୍=ନାହିଁ+ଅର୍ଗଳ=ପ୍ରତିବନ୍ଧକ)—
Nirargala ୧ । ଅର୍ଗଳଶୂନ୍ୟ; ଅନର୍ଗଳ—1. Unbarred.
୨ । ଅପ୍ରତିବନ୍ଧକ; ନିର୍ବିଘ୍ନ—
2. Without indepedement; without obstacles.
୩ । ଅବାଧ; ମୁକ୍ତ; ଉଦ୍ଦାମ—
3 Unrestrained; wild; free.
୪ । ଅବାଧ—4. Uncontrollable; irresistible. (M. W.).
କ୍ରି. ବିଣ—୧ । ଅବାଧରେ; ଅନର୍ଗଳ ରୂପେ—1. In an unrestrained manner; irresistibly.
ଜ୍ୱାଳାବଳି-ଜିହ୍ୱା ଲୁଳି ଲୁଳେ ଖରବେଗେ
ଦାବାନଳ ନିରର୍ଗଳ ଯେସନ୍ତେ ମହାବନେ । ରାଧାନାଥ, ମହାଯାତ୍ରା ।
୨ । ସ୍ୱାଧୀନ ଭାବରେ—2 Freely.

ନିରର୍ଥକ—ସଂ. ବିଣ. (ବହୁବ୍ରୀହି; ନିର୍=ନାହିଁ+ଅର୍ଥ=ପ୍ରୟୋଜନ+କ)—୧ । ଯାହାର ଅର୍ଥ ବା ମାନେ ନାହିଁ—
Nirarthaka
(ନିରର୍ଥ—ଅନ୍ୟରୂପ) 1. Meaningless; nonsensical.
ନିରର୍ଥିକା } ସ୍ତ୍ରୀ ୨ । ଅନର୍ଥକ; ନିଷ୍ପ୍ରୟୋଜନ—
ନିରର୍ଥା } 2. Useless; vain; unnecessary.
୩ । ନିଷ୍ଫଳ; ପଣ୍ଡ—4. Futile; unsuccessful.
୪ । ଉଦ୍ଦେଶ୍ୟବିହୀନ—4. Aimless.
୫ । ପାଦପୂରଣାର୍ଥ ବ୍ୟବହୃତ ଅର୍ଥବିହୀନ (ବାକ୍ୟ)—
5. Expletive (word) (M. W.).
କ୍ରି. ବିଣ—ବୃଥା; ଅକାରଣେ—
In vain; unnecessarily.

ନିରର୍ଥକତା—ସଂ. ବି—ରଚନାର ଦୋଷବିଶେଷ—A defect in
Nirarthakatā composition where an unnecessary and unsuitable word is used.
[ ଦ୍ର—ରଚନାରେ ପ୍ରକୃତ ବିଷୟର ଅନୁପଯୋଗୀ ଓ ନିଷ୍ପ୍ରୟୋଜନ ଶବ୍ଦ ପ୍ରଯୁକ୍ତ ହେଲେ ନିରର୍ଥକତା ଦୋଷ ହୁଏ । ]

ଅସ୍ତ ହେଲେ ତେବେ ଗ୍ରହରାଜ ଦିନମଣି
ତାରାମଣ୍ଡଳର ପନ୍ଥ ଆସିଲ ରଜନୀ । ରାଧାନାଥ, କବିତାବଳୀ ।
ଏଠାରେ 'ଗ୍ରହରାଜ' ଶବ୍ଦର ପ୍ରୟୋଗ ନିରର୍ଥକ । ]

**ନିରଳଙ୍କାର**—ସଂ. ବିଣ. (ବହୁବ୍ରୀହି; ନିର୍+ଅଳଙ୍କାର)—
Niralankāra  ୧ । ଆଭରଣବିହୀନ—Without ornaments, plain; unadorned.
(ନିରଳଙ୍କାରା—ସ୍ତ୍ରୀ)
(ନିରଳଙ୍କୃତ—ବି)  ୨ । ଶବ୍ଦାଳଂକାର ବା ଅର୍ଥାଳଂକାର ଯେଉଁ ରଚନାରେ ନ ଥାଏ—2. (composition) In which there is no rhetorical figure.

**ନିରଳସ(ସି)**—ଦେ. ବିଣ. ପୁଂ. ( ସଂ. ନିରାଳସ୍ୟ )—୧ । ଆଳସ୍ୟଶୂନ୍ୟ—
Niralasa(si)  1. Not idle.
(ନିରଳସୀ—ସ୍ତ୍ରୀ)  ତା ସଙ୍ଗେ ବୁଝି ହୋଇ ନିରଳସି ।
निरालस्य  କୃଷ୍ଣସିଂହ, ମହାଭାରତ, ବନ ।
**निरालस, निरालसी**  ୨ । ଶ୍ରମଶୀଳ, ଅଧ୍ୟବସାୟୀ—
2. Diligent; persevering.

**ନିରଲୋଭ**—ପ୍ରାଦେ. (ବସ୍ତର) ବିଣ—ନିର୍ଲୋଭ (ଦେଖ)
Niralobhā  Nirlobha (See)

**ନିରଶନ**—ସଂ. ବି. (ନିର୍=ନାହିଁ+ଅଶନ=ଭୋଜନ)—
Niraśana  ଅନଶନାବସ୍ଥା—Fasting, starvation; abstinence.
ବିଣ. ପୁଂ (ବହୁବ୍ରୀହି)—୧ । ଯେ ଭୋଜନ କରି ନାହିଁ;
(ନିରଶନା—ସ୍ତ୍ରୀ)  ନିରାହାର—1. Going without food; fasting.
୨ । ସଂଯତାହାର—2. Abstaining from food.

**ନିରଶନୀ**—ସଂ. ବିଣ. (ନିରଶନ+ଇନ୍; ୧ମା. ୧ବ)—୧ । ଅନାହାରୀ—
Niraśanī  1. Fasting, starving.
୨ । ଉପବାସୀ—2. Abstaining from food.

**ନିରସ**—ସଂ ବିଣ (ବହୁବ୍ରୀହି; ନି=ନାହିଁ+ରସ)—
Nirasa  ୧ । ରସଶୂନ୍ୟ; ନୀରସ—1. Juiceless, sapless, insipid.
(ନିରସା—ସ୍ତ୍ରୀ)
(ସରସା—ବିପରୀତ)  ୨ । ଶୁଷ୍କ—2. Dry.
(ନୀରସ—ଅନ୍ୟରୂପ)  ୩ । ଅରସିକ—3. Unwitty
୪ । ଅପ୍ରୀତିକର—4. Unplesant.
୫ । କଠୋର—5. Hard.
୬ । ବିସ୍ୱାଦ—6. Insipid.
ଦେ ବିଣ—ନିରସା (ଦେଖ)  Nirasā (See)

**ନିରସନ**—ସଂ. ବି (ନିର୍=ବାହାରକୁ+ଅସ୍ ଧାତୁ=କ୍ଷେପଣ କରିବା+
Nirasana  ଭାବ. ଅନ)—୧ । ନିରାକରଣ; ଦୂରୀକରଣ; ବହିଷ୍କରଣ—1. Driving away; expulsion.
୨ । ନିକ୍ଷେପ—2. Throwing.
୩ । ପ୍ରତ୍ୟାଖ୍ୟାନ; ମନା କରିବା - 3. Denial.
୪ । ଖଣ୍ଡନ; ପ୍ରତିବାଦ—
4. Contradiction; refutation.
୫ । ସ୍ଥାନାନ୍ତରକରଣ, ନିର୍ବାସନ—
5. Removal; banishment (M. W.).
୬ । ହନନ—6. Killing.
୭ । ନାମଞ୍ଜୁର କରିବା—7. Rejection; refusal.
୮ । ନିବାରଣ—8. Remonstrance.
୯ । ପ୍ରତ୍ୟାଦେଶ—9. Oracular saying; revelation.
୧୦ । ନିଷ୍ଠୀବନ; ଛେପ ପକାଇବା—10. Spitting out.
୧୧ । ବମନ—11. Vomiting.
୧୨ । ବୁଣି ଦେବା; ଇତସ୍ତତଃ ବିକ୍ଷେପକରଣ—
12. Scattering; dispersing ( M. W. ).
୧୩ । ବିନାଶନ—13. Destruction; extermination ( M W. ).
ସଂ. ବିଣ. ପୁଂ—ଯେ ବହିଷ୍କରଣ କରେ—
( ନିରସନୀ—ସ୍ତ୍ରୀ )  Expelling; driving out ( M. W. ).

**ନିରସନୀୟ**—ସଂ. ବିଣ (ନିର୍+ଅସ୍ ଧାତୁ+କର୍ମ. ଅନୀୟ)—
Nirasanīya  ୧ । ନିରସନ ଯୋଗ୍ୟ; ବହିଷ୍କରଣୀୟ—
(ନିରସନୀୟା—ସ୍ତ୍ରୀ)  1. Deserving expulsion; fit to to be driven away.
୨ । ନିବାରଣୀୟ, ନିବର୍ତ୍ତନୀୟ—2 Preventible.
୩ । ଖଣ୍ଡନ କରାଯିବା ଯୋଗ୍ୟ—
3 Fit to be refuted.

**ନିରସା**—ଦେ. ବିଣ (ସଂ. ନିରସ)—୧ । ରସହୀନ—
Nirasā  1. Sapless.
(ସରସା—ବିପରୀତ)  ୨ । ମନ୍ଦ; ଅନୁତ୍ତମ—
(ନିରସିଆ—ଅନ୍ୟରୂପ)  2. Not good; bad.
निरसा  ୩ । ଦୁଃଖିତ; ବିରସ—3. Sorry; morose.
**निरस**  ୪ । ନିକୃଷ୍ଟ; ଅନୁତ୍କୃଷ୍ଟ—4 Inferior.
୫ । ଊଣା—5. Less than; defective.
୬ । ସାମାନ୍ୟ—6. Petty.
୭ । ଅପ୍ରଫୁଲ୍ଲ—7. Not cheerful.

**ନିରସ୍ତ**—ସଂ. ବିଣ (ନିର୍=ବାହାରେ+ଅସ୍ ଧାତୁ=କ୍ଷେପଣ+କର୍ମ. ତ)
Nirasta  ୧ । ଖଣ୍ଡିତ; ମୀମାଂସିତ—1. Refuted; decided.
(ନିରସ୍ତା—ସ୍ତ୍ରୀ)  ୨ । କ୍ଷାନ୍ତ; ବିରତ; ନିବୃତ୍ତ—
2. Desisting; desisted; ceasing.
୩ । ନିକ୍ଷିପ୍ତ—3. Thrown.
୪ । ବର୍ଜିତ; ପରିତ୍ୟକ୍ତ—4 Abandoned.
୫ । ତ୍ୱରିତୋଚ୍ଚାରିତ; ଶୀଘ୍ର ଉଚ୍ଚାରିତ (ବାକ୍ୟ)—
5. Ejaculated; uttered rapidly.
୬ । ପ୍ରତ୍ୟାଖ୍ୟାତ—6. Disowned.
୭ । ପରାସ୍ତ; ପ୍ରତିହତ—7. Defeated.
୮ । ବହିଷ୍କୃତ; ଦୂରୀକୃତ—
8. Expelled; driven away.
୯ । ନିଷ୍ଠ୍ୟୂତ; ବମିତ—9. Spit out; vomited.
୧୦ । ଦମିତ; ନିବାରିତ—
10. Prevented; restrained.

୧୧ । ଶମିତ—11. Calmed; appeased.
୧୨ । କ୍ଷିପ୍ତ—12. Thrown out.
୧୩ । ହତ; ଧ୍ୱଂସିତ—
13. Killed; exterminated.
୧୪ । ନାମଞ୍ଜୁର କରା ଯାଇଥିବା—14. Rejected.
୧୫ । ଭର୍ତ୍ସିତ—15, Censured; reviled.
୧୬ । ପ୍ରେରିତ—16. Sentforth.
(ନିରସ୍ତି—ସ୍ତ୍ରୀ) ୧୭ । ଅତୀତ; ଗତ—17. Past.
୧୮ । ନଷ୍ଟ—28. Destroyed; devoid

**ନିରସ୍ତକ**—ସଂ ବିଣ (ନିରସ୍ତ+କ)—
Nirastaka ୧ । ବିଜୟୀ—1 Victorious.
୨ । ଶାନ୍ତିକାରୀ—2. Calming; appeasing; allaying.
୩ । ନିବର୍ତ୍ତକ—3 Preventing.

**ନିରସ୍ତ କୁହକ**—ସଂ ବିଣ. (ବହୁବ୍ରୀହି; ନିରସ୍ତ=ଦୂରୀଭୂତ+କୁହକ=ମାୟା)—
Nirasta kuhaka
ମାୟା ସମ୍ବନ୍ଧରୁ ବହିର୍ଭୂତ—
Removed from the connection of delusion
ଆତ୍ମ-ପ୍ରଭାବେ ସଦା ଥାଇ
ନିରସ୍ତ କୁହକ ବୋଲଇ । ଜଗନ୍ନାଥ. ଭାଗବତ ।

**ନିରସ୍ତ ପାଦପ**—ସଂ. ବିଣ. (ବହୁବ୍ରୀହି; ନିରସ୍ତ=ହତ ହୋଇଅଛି+ପାଦପ=ବୃକ୍ଷ; ଯହିଁରେ)—ବୃକ୍ଷହୀନ—
Nirasta pādapa
Treeless; devoid of trees.

**ନିରସ୍ତ ବିଷୟ**—ସଂ. ବିଣ. ପୁଂ. (ବହୁବ୍ରୀହି; ନିରସ୍ତ=ବିରତ ହୋଇଅଛି ବିଷୟରୁ ଯେ)—
Nirasta bishaya
(ନିରସ୍ତ ବିଷୟା—ସ୍ତ୍ରୀ) ପାର୍ଥିବ ବସ୍ତୁ ବିଷୟରେ ସ୍ପୃହାହୀନ; ବିଷୟ ବୈରାଗୀ—Indifferent to mundane matters.

**ନିରସ୍ତ ହେବା**—ଦେ. କ୍ରି—ଥକ୍କା ହେବା—To be overpowered;
Nirasta hebā to be at one's wits end.
निवस्त हओआ ନିରସ୍ତ ହେବାରୁ ଘେନେ ହେଲା ପୁଣି ବାଲୁଙ୍କ କୋପରସ୍ତୁ ।
निरस्त होना ରଧାନାଥ, ପାର୍ବତୀ ।

**ନିରସ୍ତ୍ର**—ସଂ. ବିଣ. (ନିର୍=ନାହିଁ+ଅସ୍ତ୍ର ଯାହାର)—
Nirastra ୧ । ଅସ୍ତ୍ରହୀନ—1. Weaponless; unarmed.
(ନିରସ୍ତ୍ରା—ସ୍ତ୍ରୀ) ୨ । ଯାହାଠାରୁ ଅସ୍ତ୍ର କାଢ଼ି ନିଆ ଯାଇଅଛି—
2. Disarmed

**ନିରସ୍ତ୍ର କରିବା**—ଦେ. କ୍ରି—ଅସ୍ତ୍ର କାଢ଼ି ନେବା—
Nirastra kariba To disarm.

**ନିରସ୍ତ୍ରୀ କରଣ**—ସଂ. ବି. (ନିରସ୍ତ୍ର+ଅଭୂତ ତଦ୍ଭାବେ ଚ୍ୱି+କରଣ)—
Nirastrī karaṇa କୌଣସି ବ୍ୟକ୍ତିଠାରୁ ଅସ୍ତ୍ର ଶସ୍ତ୍ର କାଢ଼ି ନେବା—
(ନିରସ୍ତ୍ରୀକୃତ—ବିଣ) Disarming (any person).

**ନିରସ୍ଥି**—ସଂ. ବିଣ. (ନିର୍=ନାହିଁ+ଅସ୍ଥି ଯାହାର ବା ଯହିଁରୁ)—
Nirasthi ୧ । ଅସ୍ଥିହୀନ; ଯହିଁରୁ ହାଡ଼ ବାହାର କରି ଯାଇଅଛି—
1. Boneless; from which bone has been taken away.
୨ । ଯାହାର ଦେହରେ ହାଡ଼ ନାହିଁ—
2. Having no bone in the body.

**ନିରସ୍ୟ**—ସଂ. ବିଣ. (ନିର୍+ଅସ୍ ଧାତୁ+କର୍ତ୍ତୃ. ଯ)—
Nirasya ୧ । ଯେ ଫିଙ୍ଗି ଦେଇଅଛି—1. Having cast or thrown out (M. W.)
(ନିରସ୍ୟା—ସ୍ତ୍ରୀ)
୨ । (+କର୍ମ. ଯ) ନିରସ୍ତ କରାଯିବା ଯୋଗ୍ୟ (ହି. ଶ.)—
2. Fit to be expelled or thrown out.

**ନିରସ୍ୟମାନ**—ସଂ. ବିଣ. ପୁଂ. (ନିର୍+ଅସ୍ ଧାତୁ=କ୍ଷେପଣ କରିବା+କର୍ମ. ଶାନଚ୍)—ଖଣ୍ଡ୍ୟମାନ—
Nirasyamāna
(ନିରସ୍ୟମାନା—ସ୍ତ୍ରୀ) 1. Which is being refuted.
୨ । ଦୂରୀକ୍ରିୟମାଣ—2. Abandoned.
୩ । ନିବାର୍ଯ୍ୟମାଣ—3. Prohibited.

**ନିରହଂ**—ସଂ. ବିଣ. (ବହୁବ୍ରୀହି; ନିର୍+ଅହଂ)—
Niraham̐ ଅହଂକାରଶୂନ୍ୟ, ଅହଂଭାବଶୂନ୍ୟ (ହି. ଶ.)—
Free from self-conceit or selfishness (M. W.).

**ନିରହଂକାର**—ସଂ. ବିଣ. ପୁଂ (ବହୁବ୍ରୀହି; ନିର୍+ଅହଂକାର)—
Nirahaṁkāra ୧ । ଅହଂକାରଶୂନ୍ୟ; ଗର୍ବଶୂନ୍ୟ—
(ନିରହଂକାରା—ସ୍ତ୍ରୀ) 1. Free from egotism or arrogance.
(ନିରହଂତ୍ୱମ୍, ନିରହଂଭାବ—ଅନ୍ୟରୂପ)
୨ । ନିରଭିମାନ—2. Humble; modest.
ବି—ଗର୍ବଶୂନ୍ୟତା—Freedom from egotism or pride.

**ନିରହଂକାରୀ**—ଦେ. ବିଣ. ପୁଂ (ସଂ. ନିରହଂକାର)—ଗର୍ବଶୂନ୍ୟ—
Nirahaṁkārī Modest.
(ନିରହଂକାରିଣୀ—ସ୍ତ୍ରୀ)

**ନିରହଂକୃତ**—ସଂ. ବିଣ. ପୁଂ (ନିର୍+ଅହଂକୃତ) ଅହଂକାରଶୂନ୍ୟ—
Nirahaṁkṛuta Humble; modest.
(ନିରହଂକୃତା—ସ୍ତ୍ରୀ)
(ନିରହଂକ୍ରିୟ—ଅନ୍ୟରୂପ)

**ନିରା**—ଗ୍ରା (ଉତ୍ତର) ବି (ଉତ୍ତରଭାଗରେ ଳ ସ୍ଥାନରେ ର ଉଚ୍ଚାରଣଜନିତ ବ୍ୟବହାର)—୧ । ନୀଳା (ଦେଖ)—
Nirā 1 Nilā (See)
୨ । ଲୀଳା (ଦେଖ)—2. Lilā (See)
୩ । (ପୁଂ) ନୀଳମଣି ନାମକ ପୁରୁଷର ଡାକ ନାମ—
3. Name for calling a male named Nilamaṇi.
୪ । (ସ୍ତ୍ରୀ) ନୀଳମଣି, ଲୀଳାବତୀ ନାମ୍ନୀ ସ୍ତ୍ରୀର ଡାକନାମ—
4. Name for calling a woman named Nilamaṇi or Lilābati.

**ନିରା ଆହାର(ରୀ)**—ଗ୍ରା. ବିଣ (ସଂ. ନିରାହାର)—ନିରାହାର (ଦେଖ)
Nirā āhāra(rī) Nirāhāra (See)
ଯଜ୍ଞ ଦାନ ତପ କର୍ମ ଅତନ୍ତ୍ର
ନାନା ଅର୍ଥ ବ୍ରତ ନିରା ଅହାରୀ—ପ୍ରାଚୀ, ରହସ୍ୟମଞ୍ଜରୀ ।

ନିରାଇଁଷ —ଗ୍ରା. ବିଣ ଓ ବି (ସଂ. ନିରାମିଷ)—ନିରାମିଷ (ଦେଖ)
Nirāiṅsha Nirāmisha (See)
(ନିରେଇଁଷ—ଅନ୍ୟରୂପ) ଚଂ. ଅଇଁଷ ଦେଖ ନିରାଇଁଷ – ଚଗ

ନିରାଇନିରା—ଗ୍ରା ( ଇତର ) ବି ( ଇତରଜନସୁଲଭ ଉଚ୍ଚାରଣଦୋଷ ଲ
Nirāinirā ସ୍ଥାନରେ ର ଉଚ୍ଚାରଣ ଓ ଗ୍ରାମ୍ୟଭାଷାରେ ଲ ସ୍ଥାନରେ
(ନିରେଇନିରା—ଅନ୍ୟରୂପ) ନ ଉଚ୍ଚାରଣ ସ ଲୀଲାହିଁ ଲୀଲା )—
ଅବିଶ୍ରାନ୍ତ ମଉଜ ମଜଲିସ—A round of merriment or festivities.
( ଯଥା—ଗମ୍ଭିରସାଆନ୍ତଙ୍କ ଜନମଦିନଠାରୁଁ ଏବେଯାଏଁ ସିଆ ଯାଏ ସାରିଜାଣାକ ନିରାଇନିରା ନାଚିଛି । )

ନିରାକରଣ—ସଂ ବି (ନିର୍+ଆ+କୃ ଧାତୁ+ଭାବ. ଅନ)—
Nirākaraṇa ୧ । ନିରସନ ( ଦେଖ )
(ନିରାକୃତ; ନିରାକରଣୀୟ—ବିଣ) 1. Nirasana (See)
୨ । ବହିଷ୍କରଣ—2. Expulsion; driving out.
୩ । ବିନାଶନ—3. Exterminating.
୪ । ଦୂରୀକରଣ—4 Driving away.
୫ । ନିବାରଣ—5. Prevention; restraining.
୬ । ପ୍ରତିବନ୍ଧ – 6. Obstruction.
୭ । ଖଣ୍ଡନ—7 Refutation.
୮ । ସିଦ୍ଧାନ୍ତ; ମୀମାଂସା –
8. Arriving at a conclusion.
୯ । ପୃଥକ୍କରଣ—9. Separating.
୧୦ । ରଦ୍ଦ କରିବା ( ହି. ଶବ୍ଦସାଗର )—
10. Setting aside, nullifying.

ନିରାକରିଷ୍ଣୁ—ସଂ. ବିଣ (ନିର୍+ଆ+କୃ ଧାତୁ+ଶୀଳାର୍ଥେ ଇଷ୍ଣୁ)—
Nirākarishṇu ୧ । ନିରାକରଣଶୀଳ—
1. Exterminative; destructive; refuting, removing
୨ । ବ୍ୟାଘାତଜନକ—
2. Obstructive, preventive

ନିରାକାଙ୍କ୍ଷ—ସଂ. ବିଣ. ପୁଂ (ବହୁବ୍ରୀହି; ନିର୍+ଆକାଙ୍କ୍ଷା)—୧ । ସ୍ପୃହା
Nirākāṅksha ରହିତ, ବାଞ୍ଛାଶୂନ୍ୟ—1. Indifferent; desireless.
(ନିରାକାଙ୍କ୍ଷା—ସ୍ତ୍ରୀ)
ନିରାକାଙ୍କ୍ଷତା } ବି— ୨ । ନିଷ୍କାମ— 2. Expecting
ନିରାକାଙ୍କ୍ଷତ୍ୱ } nothing; having no desire.
୩ । ସନ୍ତୁଷ୍ଟ—3. Contented.
୪ । ନିର୍ଲୋଭ—4 Free from lust or desire.
୫ । ଆଶାରହିତ—5. Expecting or wishing nothing (M. W.)
୬ । (ବ୍ୟାକରଣ) ଯେଉଁ ବାକ୍ୟର ପୂରଣାର୍ଥ ଆଉ କିଛି ଲୋଡ଼ା ନ ଥାଏ—6 (grammar) Wanting nothing to fill up; complete.

ନିରାକାଙ୍କ୍ଷା—ସଂ. ବି. (ନିର୍+ଆକାଙ୍କ୍ଷା)—୧ । ଆକାଙ୍କ୍ଷାରହିତ ଅବସ୍ଥା
Nirākāṅkshā 1. Indifference
୨ । ସନ୍ତୋଷ—2. Contentment.
ସଂ. ବିଣ. ସ୍ତ୍ରୀ – (ନିରାକାଙ୍କ୍ଷ+ସ୍ତ୍ରୀ. ଆ)—ନିରାକାଙ୍କ୍ଷର ସ୍ତ୍ରୀଲିଙ୍ଗ-
Feminine of Nirākāṅksha.

ନିରାକାଙ୍କ୍ଷୀ—ସଂ. ବିଣ. ପୁଂ (ନିରାକାଙ୍କ୍ଷା+ଇନ୍; ୧ମା. ୧ବ.)—
Nirākāṅkshī ୧ । ଆକାଙ୍କ୍ଷାରହିତ—1 Indifferent.
(ନିରାକାଙ୍କ୍ଷିଣୀ—ସ୍ତ୍ରୀ) ୨ । ସନ୍ତୁଷ୍ଟ—2. Contented

ନିରାକାର—ସଂ. ବିଣ. ପୁଂ (ବହୁବ୍ରୀହି, ନିର୍+ଆକାର)—୧ । ଅକାର
Nirākāra ବିହୀନ—1. Shapeless, formless.
(ନିରାକାରା—ସ୍ତ୍ରୀ) ୨ । ମୂର୍ତ୍ତିହୀନ—
(ନିରାକାରତା(ତ୍ୱ)—ବି) 2. Incorporeal.
ସଂ ବି.—୧ । ଆକାଶ—1. The sky.
୨ । ବିଷ୍ଣୁ—2 A name of Bishṇu.
୩ । ଶିବ—3 Siba.
୪ । ପରମାତ୍ମା—4. The Supreme Soul.
୫ । (ନିର୍+ଆକାର=ଆହ୍ୱାନ) ନିର୍ଗତାହ୍ୱାନ; ଯାହାଙ୍କୁ ଆହ୍ୱାନ କରାଯାଏ ନାହିଁ ( ପ୍ରକୃତିବାଦ )—
5. Uninvited.
୬ । ତିରସ୍କାର—6. Rebuke; reprimand.
୭ । ହେୟ—7 Insignificant; unimportant (M. W.)
୮ । ସ୍ୱର୍ଗ—8. Heaven (M. W.)

ନିରାକାରତା—ସଂ. ବି. (ନିରାକାର+ଭାବ. ତା)—ମୂର୍ତ୍ତିହୀନତା—
Nirākāratā Shapelessness.
(ନିରାକାରତ୍ୱ—ଅନ୍ୟରୂପ)

ନିରାକାର ଦାସ—ଦେ. ବି (ନାମ)—ପ୍ରାଚୀନ ଓଡ଼ିଆ କବିବିଶେଷ—
Nirākāra dāsa Name of an ancient Oria poet.
[ଦ୍ର—ଏ 'ଭ୍ରମର ସଂହିତା' ନାମକ ପୁସ୍ତକ ଲେଖି ଅଛନ୍ତି—ପ୍ରାଚୀନ. ଉତ୍କଳ । ]

ନିରାକାର ବାଦ—ସଂ. ବି.—ଈଶ୍ୱର ନିରାକାର ଅଟନ୍ତି ବୋଲି ଯେଉଁ
Nirākāra bāda ଧର୍ମମତ ସଂସାରରେ ଚଳେ—The belief in the incorporeal nature of God.

ନିରାକାର ବାଦୀ—ସଂ. ବିଣ. ପୁଂ—ଈଶ୍ୱର ନିରାକାର ଥିବାର ମତ ଯେଉଁ
Nirākāra bādī ମାନେ ଗ୍ରହଣ ବା ପ୍ରଚାର କରନ୍ତି—
(ନିରାକାରବାଦିନୀ—ସ୍ତ୍ରୀ) Preaching the incorporeal nature of God; believing in the incorporeality of the Godhead.

ନିରାକୁଳ—ସଂ ବିଣ. ପୁଂ (ନିର୍=ନୁହେଁ+ଆକୁଳ)—୧ । ଅବ୍ୟାକୁଳ
Nirākula 1. Unperplexed,
(ନିରାକୁଳା—ସ୍ତ୍ରୀ) ୨ । ଧୀର; ଅବ୍ୟଗ୍ର—2. Temperate; deliberate.
୩ । ନମ୍ର—3. Docile.

୪ । ଯେଉଁ ସ୍ଥାନକୁ ବହୁଲୋକ ଗମନାଗମନ କରନ୍ତିନାହିଁ—
4, Not frequented (M W )
୫ । ପ୍ରଶାନ୍ତ—5. Calm.
୬ । ନିର୍ମଳ—6. Clear
୭ । ସ୍ଥିର—7. Steady (M. W )
ସଂ. ଭ.—୧ । ସ୍ଥିରତା—1. Steadiness
୨ । ପ୍ରଶାନ୍ତତା—2. Calmness (M. W.)

**ନିରାକୁଳଦ୍ୱାର**—ସଂ. ବିଣ. ( ବହୁବ୍ରୀହି; ନିରାକୁଳ+ଦ୍ୱାର )—
Nirākula dwāra ଯେଉଁ ଗୃହ ବା ନଗରର ଦ୍ୱାର ବା ଫାଟକରେ ବେଶି ଲୋକ ଗହଳ ନାହିଁ—
( a house or city ) Whose gates are not too much crowded ( M. W. ).
୨ । ( ନିର୍=ଅତିଶୟ+ଆକୁଳ ପରିପୂର୍ଣ୍ଣ )—
ଅତ୍ୟନ୍ତ ଆକୁଳ ବା ପରିପୂର୍ଣ୍ଣ—2. Full of.
( ଯଥା—କୁସୁମ ସନ୍ଦୋହ ନିରାକୁଳ ବକୁଳ କଳାପେ—
ଗୀତଗୋବିନ୍ଦ )

**ନିରାକୃତ**—ସଂ. ବିଣ. (ନିର୍+ଆ+କୃ. ଧାତୁ+କର୍ମ. ତ )—
Nirā kruta ୧ । ନିବାରିତ; ପ୍ରତ୍ୟାଖ୍ୟାତ; ନିରସ୍ତ—
1. Prevented; disowned.
୨ । ବହିଷ୍କୃତ—2. Expelled.
୩ । ଖଣ୍ଡିତ—3. Refuted.
ନିର୍ଣ୍ଣିତ; ଅବଧାରିତ—4. Ascertained.
୫ । ମୀମାଂସିତ; ସିଦ୍ଧାନ୍ତିତ—5. Settled

**ନିରାକୃତି**—ସଂ. ଭ. ( ନିର୍+ଆ+କୃ ଧାତୁ+ଭାବ. ତି )—
Nirākruti ନିରାକରଣ ( ଦେଖ )—
Nirākarana (See).
ବିଣ—( ବହୁବ୍ରୀହି; ନିର୍=ନାହିଁ+ଆକୃତି )—
୧ । ନିରାକାର; ଆକାରହୀନ—
1. Shapeless; incroporeal.
୨ । ଉତ୍ପାଟିତ—2. Eradicated; uprooted.
୩ । ଧ୍ୱସ୍ତ—3. Ruined.
୪ । ବହିଷ୍କୃତ—4. Expelled.
୫ । ବେଦାଧ୍ୟୟନହୀନ; ସ୍ୱାଧ୍ୟାୟହୀନ—
5. Not given to meditating on or studying the vedas.
୬ । ପଞ୍ଚଯଜ୍ଞ ତ୍ୟାଗୀ—6. Forsaking the five daily duties of a Hindu householder.

**ନିରାକ୍ରୋଶ**—ସଂ. ବିଣ. ( ବହୁବ୍ରୀହି; ନିର୍=ନାହିଁ+ଆକ୍ରୋଶ )—
Nirākrośa ୧ । ସନ୍ତୁଷ୍ଟ—1. Contented.
୨ । ଆନନ୍ଦିତ—2. Pleased.
୩ । ଆକ୍ରୋଶହୀନ—3. Free from malice or grudge.
୪ । ଅନଭିଯୁକ୍ତ; ଅନିନ୍ଦିତ—
4. Unaccused; unreviled (M. W.).

**ନିରାଚାର**—ସଂ. ବିଣ. ପୁଂ. ( ବହୁବ୍ରୀହି; ନିର୍+ଆଚାର )—
Nirāchāra ୧ । ଅନାଚାର—1. Impure; unclean.
( ନିରାଚାରା—ସ୍ତ୍ରୀ ) ୨ । ଆଚାରଭ୍ରଷ୍ଟ—
2. Depraved; corrupt.
୩ । ନିରାଚାର, ସଦାଚାରହୀନ—3. Barbarian.
୪ । ବ୍ୟବସ୍ଥାହୀନ—4. Lawless.

**ନିରାଚ୍ଛନ୍ନ**—ସଂ. ବିଣ. ( ବହୁବ୍ରୀହି; ନିର୍+ଆଚ୍ଛନ୍ନ )—
Nirāchchhanna ୧ । ଅନାଚ୍ଛାଦିତ—
1. Bare; uncovered.
୨ । ନଗ୍ନ—2 Naked.

**ନିରାଟ**—ଦେ. ବିଣ. ( ସଂ. ନିର୍ଦ୍ଦିଷ୍ଟ=ଦୃଢ଼ )—୧ । ଅଛିଦ୍ର—
Nirāta 1. Having no holes.
ନବାଟି, ନିବେଟ ୨ । ଟାଣ; ଦୃଢ଼—2. Solid; firm; hard.
निराट ୩ । ନିଦା; ଯାହା ଫମ୍ପା ନୁହେ—
3. Not hollow; substantial
୪ । ଯାହା ଦଦରା ନୁହେଁ—4. Sound.
୫ । ନିର୍ଦ୍ଦୟ—5. Cruel; merciless.
୬ । ତୀକ୍ଷ୍ଣ—6. Sharp.
ତୁମ୍ଭ ବୁଦ୍ଧିବଳ ପର ନିରାଟ, ନାଇ ଫିଙ୍ଗି ଦେଲ ଚୋର ଖରାଟ ।
କବିସୂର୍ଯ୍ୟ, କବିତାକଲ୍ଲୋଳ ।
୭ । ପ୍ରଖର—7. Acute, keen.
ଅଦୃଶ୍ୟ ଘରରେ କେଣେ ଲୁଚଇ ସେ ନିଦାଘ ନିରାଟ ଖରା ।
ନନ୍ଦକିଶୋର, ନିର୍ଝରଣୀ ।

୮ । ଶୁଷ୍କ; ନୀରସ; ନିର୍ଜଳ—8. Dry; waterless
ନିରାଟ ସେ ଦେଶ ନ ମିଳେ ଜଳ
ହସ ମୃଗ ତୃଷ୍ଣା ଦେଖାଏ ଛଳ । ନନ୍ଦକିଶୋର ନିର୍ଝରଣୀ ।
କ୍ରିଣର ବିଣ ଓ କ୍ରି ବିଣ—୧ । ଅତ୍ୟନ୍ତ ନିପଟ—
1. Very much.
୨ । କେବଳ ମାତ୍ର; ଭୁଛା—2. Solely; merely.
୩ । ସମ୍ପୂର୍ଣ୍ଣ ରୂପେ—3. Wholy; completely.

**ନିରାଟଙ୍ଗ**—ଦେ. ବିଣ ( ନିରାତଙ୍କ )—ନିରାତଙ୍କ ( ଦେଖ )
Nirātanga Nirātanka ( See )

**ନିରାଣ**—ଦେ. ବିଣ—୧ । ନିରାଶ୍ରୟ—
Nirāna 1. Helpless, shelterless.
୨ । ଆଶ୍ରୟହୀନ—2. Without protection.

**ନିରାତଙ୍କ**—ସଂ. ବିଣ. ( ବହୁବ୍ରୀହି; ନିର୍+ଆତଙ୍କ )—
Nirātanka ୧ । ନିଃଶଙ୍କ; ନିର୍ଭୟ—
(ନିରାତଙ୍କା—ସ୍ତ୍ରୀ) 1. Undaunted; fearless.
୨ । ଯାହା ଠାରୁ କୌଣସି ଶଙ୍କା ନାହିଁ—
2. Safe; sensure.
୩ । ନିଶ୍ଚିନ୍ତ—
3. Free from anxiety or care.
୪ । ନୀରୋଗ—
4. Free from ailment; hale.

୫ । ଯେ କଷ୍ଟପ୍ରଦ ନୁହେଁ—
5. Not causing pain ( M. W. )
୬ । ଯେ କଷ୍ଟ ବୋଧ ନ କରେ—
6 Not feeling pain ( M. W ).
ସ. ବି—ଶିବ—Siba ( M. W )

**ନିରାତପ**—ସ. ବଣ. ( ବହୁବ୍ରୀହି, ନିର୍ + ଆତପ )—
Nirātapa ୧ । ଆତପଶୂନ୍ୟ—1. Heatless.
୨ । ରୌଦ୍ରହୀନ, ଖରା ନଥିବା—2 Sunless; not penetrated by sun's rays.
୩ । ଛାୟାଯୁକ୍ତ—3. Shady.

**ନିରାତ ପତ୍ର**—ସ. ବଣ. ପୁଂ. ( ବହୁବ୍ରୀହି, ନିର୍ + ଆତପତ୍ର )—
Nirāta patra ଛତ୍ରହୀନ—
(ନିରାତପତ୍ରା—ସ୍ତ୍ରୀ) Without umbrella (M. W.).

**ନିରାତପା**—ସ. ବି. ସ୍ତ୍ରୀ. ( ନିର୍ = ନାହିଁ + ଆତପ = ସୂର୍ଯ୍ୟ )—
Nirātapā ରାତ୍ରି—Night

**ନିରାଦର**—ସ. ବଣ. ପୁଂ ( ବହୁବ୍ରୀହି, ନିର୍ + ଆଦର )—
Nirādara ଆଦରଶୂନ୍ୟ—Disrespectful; showing
(ନିରାଦରା—ସ୍ତ୍ରୀ) no respect.

**ନିରାଦେଶ**—ସ. ବି—୧ । ଋଣ ପରିଶୋଧ—
Nirādesa 1. Payment of debt; liquidation.
୨ । ପ୍ରତିଦାନ—2. Repayment.
୩ । ପ୍ରତ୍ୟର୍ପଣ—3. Discharge.

**ନିରାଧାର**—ସ. ବଣ. ( ବହୁବ୍ରୀହି, ନିର୍ + ଆଧାର )—
Nirādhara ୧ । ନିରାଶ୍ରୟ—1 Helpless
(ନିରାଧାରା—ସ୍ତ୍ରୀ) ୨ । ଆଧାର ବା ପାତ୍ର ଶୂନ୍ୟ—
2. Destitute of a reception.
୩ । ନିରାଲମ୍ବ, ଅବଲମ୍ବନଶୂନ୍ୟ—3 Having no prop or support; self supporting; having no fulcrum; not relying on others.

ଦେ. ବଣ. ( ସ. ନିର୍ଦ୍ଧାରିତ )—୧ । ନିର୍ଦ୍ଧାରିତ, ନିଶ୍ଚିତ—
1. Certain; sure; categorical; determined; undoubted.
ଅଷ୍ଟ ସେ କଥା ଅଟଇ ନିରାଧାର । କୃଷ୍ଣହିଁ ହ. ମହାଭାରତ. ଅଦି ।
୨ । ( ଯାହାର ରହିବାର ନିର୍ଦ୍ଦିଷ୍ଟ ସ୍ଥାନ ନାହିଁ ) ଯେ ସବୁଠାରେ ଅଛି—2. Omnipresent.
ହେ ନିରଞ୍ଜନ ନିରାକାର
ନିରାଲମ୍ବ ନିରାଧାର । ଭୂପତ. ପ୍ରେମପଞ୍ଚାମୃତ ।
୩ । ( ସ. ନିରାହାର ) ଯେ ଆଧାର ଅର୍ଥାତ୍ ଆହାର ଗ୍ରହଣ କରି ନାହିଁ, ଅଭୁକ୍ତ, ଉପବାସୀ, ନିରାହାର—
3. Fasting; having had no food.
ଯଥା—ଏକାଦଶୀ ନିରାଧାର, ଭାତରେ ଭାତରେ ଚୂଡ଼ା ମାର—ପ୍ରବଚନ ।

**ନିରାଧାର ବାଣୀ**—ଦେ. ବି—୧ । ନିଶ୍ଚିତ ଭାବପ୍ରକାଶକ ବାକ୍ୟ—
Nirādhāra bāṇi 1. Certain expression; categorical words.
୨ । ନିରପେକ୍ଷ କଥା, ଯାହା କୌଣସି ଉତ୍ତରକୁ ଅପେକ୍ଷା କରେ ନାହିଁ—2. A saying which does not wait for any reply.
୩ । ସଂକଳ୍ପପ୍ରକାଶକ ବାକ୍ୟ—3. Words giving vent to a determination.
ସୀତାର ଏପରି ନିରାଧାର ବାଣୀ ଶୁଣି
କରେ କର ଦେଇ ଅଶ୍ୱାସନ୍ତି ରଘୁମଣି । ବଳରାମଦାସ. ରାମାୟଣ ।

**ନିରାଧାରିବା**—ଦେ. କ୍ରି. ( ସ. ନିର୍ଦ୍ଧାରଣ )—ନିର୍ଦ୍ଧାରଣ କରିବା, ନିଶ୍ଚୟ
Nirādhāriba କରିବା—To ascertain; to fix; to
নিৰ্ধাৰ্য্য কৰা निरधारना settle to decide.
ଯେଣିକି ସେ ଅଙ୍କ ମହିଁ ଦେଲଇ ନିରାଧାର
ସାଙ୍ଗେହେଁ ପ୍ରଧାନ ହୁଅ ଦ୍ରୁପଦ କୁମାର । ସ ରଳା, ମହାଭାରତ. ଆଦ ।

**ନିରାଧି**—ସ. ବଣ. ( ବହୁବ୍ରୀହି, ନିର୍ + ଆଧି )—
Nirādhi ୧ । ରୋଗଶୂନ୍ୟ—1. Free from disease.
୨ । ନିଶ୍ଚିନ୍ତ—2. Free from anxiety; secure ( M. W. ).

**ନିରାନନ୍ଦ**—ସ. ବଣ. ( ବହୁବ୍ରୀହି, ନିର୍ + ଆନନ୍ଦ )—
Nirānanda ୧ । ଆନନ୍ଦହୀନ—1. Joyless; cheerless.
( ନିରାନନ୍ଦା ବା ୨ । ଦୁଃଖିତ—2. Sad; sorrowful.
ନିରାନନ୍ଦୀ—ସ୍ତ୍ରୀ ) ୩ । ଯାହା ଆନନ୍ଦଦାୟକ ନୁହେଁ—
3. Causing no pleasure ( M. W. ).
ଦେ. ବି.—୧ । ବିଷାଦ—1. Sadness; gloom; sorrow.
୨ । ଅସନ୍ତୋଷ—2. Displeasure.
୩ । ଶୋକ—3. Sorrow.

**ନିରାନନ୍ଦିତ**—ଦେ. ବଣ. ପୁଂ.—ନିରାନନ୍ଦୀ ( ଦେଖ )—
Nirānandita Nirānandi ( See ).
( ନିରାନନ୍ଦୀ—ଅନ୍ୟରୂପ )—

**ନିରାପକ୍ଷ**—ଗ୍ରା. ବଣ—( ସ. ନିରପେକ୍ଷ )—୧ । ନିର୍ଦ୍ଦୟ; ନିଷ୍ଠୁର—
Nirāpaksha 1. Unkind; cruel; hardhearted.
ଏହିହାରେ ପ୍ରବେଶିଲ ନିରାପକ୍ଷ ସିନ୍ଧ—ଶାରଳା, ମହାଭାରତ. ସଭ ।
( ସାହାପକ୍ଷ—ବିପରୀତ ) ୨ । କଠିନ—2. Hard.
୩ । ଅପକ୍ଷପାତୀ—3 Impartial; righteous.
୪ । ବିପକ୍ଷ, ପ୍ରତିକୂଳ—
4. Opposing; unfavourable

**ନିରାପଦ**—ସ. ବଣ. ( ବହୁବ୍ରୀହି, ନିର୍ + ଆପଦ )—
Nirāpada ୧ । ଆପଦରହିତ—
1. Free from danger or mishap.
୨ । ବିପନ୍ମୁକ୍ତ—2. Free from calamity.
୩ । ନିର୍ବିଘ୍ନ—3. Safe; secure.
୪ । ନିଷ୍କଣ୍ଟକ—4. Free from trouble.
୫ । ଯାହାଠାରୁ କୌଣସି ଆପଦ ବିପଦର ଆଶଙ୍କା ନାହିଁ—
5. (a person) From whom no danger is apprehended.

୬ । ଯେଉଁଠାରେ ବିପତ୍ତିର ଆଶଙ୍କା ନାହିଁ—
6. ( a place ) Where there is no fear of danger or mishap.

**ନିରାପଦରେ**—ଦେ. କ୍ରି. ବିଣ—ନିର୍ବିଘ୍ନରେ—
Nirāpadare Safely; freely; in safety, without
নিরাপদে any mishap.

**ନିରାବରଣ**—ସ. ବିଣ. ( ବହୁବ୍ରୀହି, ନିର୍ + ଆବରଣ )—
Nirābaraṇa ୧ । ଯାହାର ଘୋଡ଼ଣୀ ବା ଓଢ଼ଣା ନାହିଁ—
1. Unveiled; uncovered.
୨ । ପ୍ରକାଶିତ—2. Manifest; evident. (M. W.).

**ନିରାବର୍ଷ**—ସ. ବିଣ. (ବହୁବ୍ରୀହି, ନିର୍ + ଆବର୍ଷ)—ଯାହା ଯୋଗୁଁ
Nirābarsha ତଳେ ଥିବା ବ୍ୟକ୍ତି ବା ବସ୍ତୁରେ ବର୍ଷା ପାଣି ପଡ଼େ ନାହିଁ (ଯଥା—ଗଛ, ଛତା)—(a tree or umbrella) Sheltering from rain (M. W)

**ନିରାବାଧ**—ସ. ବିଣ—୧ । ବାଧାହୀନ—
Nirābādha 1 Unobstructed; unopposed
୨ । ବ୍ୟାଧିଶୂନ୍ୟ—2 Free from disease.
୩ । ଯାହାକୁ କେହି ବାଧା ଦେଉନାହିଁ—
3. Undisturbed; unmolested (M.W )
୪ । ଛଳଶୂନ୍ୟ—4. Guileless ( M.W ).
୫ । ଯାହା ଅନିଷ୍ଟକର ନୁହେଁ—5. Harmless (M. W.)

**ନିରାବୃତ**—ଦେ. ବିଣ—୧ । ଅନାବୃତ—
Nirābṛuta 1. Uncovered; bare.
୨ । ଅନାଚ୍ଛାଦିତ—2 Exposed.
୩ । ବିବସ୍ତ୍ର—3. Naked, nude.

**ନିରାଭରଣ**—ସ. ବିଣ. ପୁଂ (ବହୁବ୍ରୀହି; ନିର୍ + ଆଭରଣ)—ଅଳଙ୍କାର
Nirābharaṇa ଶୂନ୍ୟ—Without any ornaments
(ନିରାଭରଣା—ସ୍ତ୍ରୀ)

**ନିରାମୟ**—ସ. ବିଣ. ପୁଂ. ( ବହୁବ୍ରୀହି, ନିର୍ + ଆମୟ = ରୋଗ )—
Nirāmaya ୧ । ନୀରୋଗ, ରୋଗରହିତ—
1 Free from sickness.
୨ । ସୁସ୍ଥ—2. Healthy; well.
୩ । ସ୍ୱାସ୍ଥ୍ୟକର— Salubrious; wholesome.
୪ । ଅକଳୁଷିତ; ପବିତ୍ର—4. Untainted; pure ( M. W. ).
ବି—୧ । ବନ୍ୟଛାଗ—1 Wild goat.
୨ । ଶୂକର—2. A hog; boar.
୩ । ସ୍ୱାସ୍ଥ୍ୟ—3. Health.
୪ । ମଙ୍ଗଳ—4. Welfare.

**ନିରାମିଷ**—ସ. ବିଣ (ବହୁବ୍ରୀହି; ନିର୍ + ଆମିଷ )—
Nirāmisha ୧ । ଆମିଷଶୂନ୍ୟ, ମାଛମାଂସହୀନ—
( ନିରାମିଷା—ସ୍ତ୍ରୀ ) 1. Meatless; fishless.
୨ । ଆମିଷବର୍ଜିତ—2. Destitute of flesh; fleshless
୩ । ଯହିଁରେ ମାଛ ମାଂସ ଆଦି ପଡ଼ି ନାହିଁ (ତରକାରି)—
3 (curry ) Not composed of fish or meat; without animal food.
୪ । ଯେ ବେତନ ନିଏ ନାହିଁ, ମାଗଣା—
4. Receiving no booty or wages (M.W ).
୫ । ନିର୍ଲୋଭ—5. Free from covetousness (M W.).
୬ । ନିଷ୍କାମ—6. Free from sensual desires (M.W )
୭ । ପୁରସ୍କାର ନିମନ୍ତେ ଯେ ଲାଳାୟିତ ନୁହେଁ—
7. Not striving after any reward (M. W ).
ବି—ଆମିଷପରିଶୂନ୍ୟ ଖାଦ୍ୟ—
Vegetable diet; meatless food

**ନିରାମିଷ ମହୁର**—ଦେ. ବି—ଯେଉଁ ମହୁର ଢିଅଣରେ ଆମିଷ ମିଶି ନ
Nirāmisha mahura ଥାଏ—Meatless curry.

**ନିରାମିଷାଶୀ**—ସ. ବିଣ. ସ୍ତ୍ରୀ. ( ନିରାମିଷ + ଅଶ୍ ଧାତୁ = ଭକ୍ଷଣ କରିବା
Nirāmishāshi + କର୍ତ୍ତୃ ଇନ୍, ୧ମା ୧ବ )—
( ନିରାମିଷାଶିନୀ—ସ୍ତ୍ରୀ ) ୧ । ନିରାମିଷ ଭୋଜୀ, ଯେଉଁ ବ୍ୟକ୍ତି ଆମିଷ
(ନିରାମିଷ ଭୋଜୀ ଅନ୍ୟରୂପ) ଛଡ଼ା ଅନ୍ୟ ବସ୍ତୁ ଆହାର କରେ—
1. Vegetarian; living on a meatless diet
୨ । ମିତାହାରୀ—2 Temperate in diet.

**ନିରାମୋଦ**—ସ. ବି—( ବହୁବ୍ରୀହି, ନିର୍ + ଆମୋଦ )—ଆମୋଦଶୂନ୍ୟ,
Nirāmoda ଆନନ୍ଦରହିତ—Joyless; gloomy.

**ନିରାୟ**—ସ. ବିଣ ( ବହୁବ୍ରୀହି, ନିର୍ + ଆୟ )—୧ । ଆୟରହିତ—
Nirāya Yielding no income; profitless
୨ । ଯହିଁରୁ ସୁଧ ମିଳେ ନାହିଁ—
2. Yielding no interest

**ନିରାୟତ**—ସ. ବିଣ. ( ନିର୍ + ଆୟତ )—୧ । ଅବିସ୍ତୃତ—
Nirāyata 1. Not expanded; unextended.
୨ । ସଙ୍କୁଚିତ—2. Contracted.

**ନିରାୟତି**—ସ. ବିଣ. ( ବହୁବ୍ରୀହି, ନିର୍ + ଆୟତି )—ଯାହାର ବିନାଶ
Nirāyati ବା ଅନ୍ତ ଅତି ନିକଟ—One whose end or destruction is at hand.

**ନିରାୟାସ**—ସ. ବିଣ. ( ବହୁବ୍ରୀହି, ନିର୍ + ଆୟାସ )—
Nirāyāsa ୧ । ଅନାୟାସ, ସୁସାଧ୍ୟ—1 Easy; not causing trouble or fatigue (M. W. ).
୨ । ସୁପ୍ରସ୍ତୁତ—2. Ready.
୩ । ସଦୟ—3. Kind ( M. W. )

**ନିରାୟୁଧ**—ସ. ବିଣ. ( ବହୁବ୍ରୀହି, ନିର୍ + ଆୟୁଧ )—
Nirāyudha ୧ । ଆୟୁଧହୀନ—1. Weaponless; destitute
(ନିରାୟୁଧା—ସ୍ତ୍ରୀ) of weapons.
୨ । ଅଶସ୍ତ୍ର—2. Unarmed.
୩ । ନିରସ୍ତ୍ର—3. Disarmed.
ନିରାୟୁଧ ହୋଇବା ଲୋକେ ତହୁଁ ଅସ୍ତ୍ର
ଧର ନାଶୁ ଅଛନ୍ତି ଶତ୍ରୁ କର ଗାନ—କୃଷ୍ଣସିଂହ. ମହାଭାରତ. କର୍ଣ୍ଣ ।

**ନିରାରମ୍ଭ**—ସଂ. ବିଣ. ପୁଂ. (ବହୁବ୍ରୀହି, ନିର୍ + ଆରମ୍ଭ)—ଅଶକ୍ତ, କର୍ମ—
Nirārambha କୋଡ଼ିଆ—Abstaining from all work
(ନିରାରମ୍ଭା—ସ୍ତ୍ରୀ) M. W ).

**ନିରାଲମ୍ବ**—ସଂ. ବିଣ. ପୁଂ. ( ବହୁବ୍ରୀହି, ନିର୍=ନାହିଁ+ଆଲମ୍ବ= 
Nirālamba ଅବଲମ୍ବନ )—୧ । ଅବଲମ୍ବନରହିତ—
(ନିରାଲମ୍ବା—ସ୍ତ୍ରୀ) 1 Having no support
(ନିରାଲମ୍ବତା(ତ୍ୱ)—ବି) ୨ । ସମସ୍ତଙ୍କଠାରୁ ପୃଥକ, ଏକାକୀ—
ନିରାଲମ୍ବନ } ଅନ୍ୟରୂପ 2. Isolated; alone.
ନିରବଲମ୍ବ ୩ । ନିରାଶ୍ରୟ—3 Helpless
ନିରବଲମ୍ବନ ୪ । ଶୂନ୍ୟରେ ଝୁଲୁଥିବା—
4 Suspended in the air
୫ । ଆତ୍ମାବଲମ୍ବ, ସ୍ୱାଧୀନ—
5. Self-relying; not depending on another, self-supported; independent
୬ । ବାସଶୂନ୍ୟ—
6. Having no habitation or domicile.
୭ । ବନ୍ଧୁହୀନ—7. Friendless.
ଦେ. ବିଣ—ନିର୍ଜନ—Solitary; lonely.

**ନିରାଲମ୍ବା**—ସଂ. ବି—କ୍ଷୁଦ୍ର ଜଟାମାଂସୀ—
Nirālambā Spikenard.

**ନିରାଲୟ**—ସଂ. ବିଣ. ପୁଂ. ( ବହୁବ୍ରୀହି, ନିର୍+ଆଲୟ )—
Nirālaya ୧ । ବାସଶୂନ୍ୟ—1 Homeless.
(ନିରାଲୟା—ସ୍ତ୍ରୀ) ୨ । ଗୃହଶୂନ୍ୟ, ମରୁମୟ—2. Desert
୩ । ଉଦାସୀନ—3 Wandering.

**ନିରାଲସ୍ୟ**—ସଂ. ବିଣ. ( ବହୁବ୍ରୀହି, ନିର୍+ଆଲସ୍ୟ )—ଅନଳସ,
Nirālasya ଅଳସହୀନ—Diligent, not idle; not slothful.
(ନିରାଲସ୍ୟା—ସ୍ତ୍ରୀ)
ସଂ. ବି—ଆଲସ୍ୟର ଅଭାବ (ହି. ଶ. )—
Absence of idleness.

**ନିରାଲାପ**—ସଂ. ବିଣ. ପୁଂ.—(ବହୁବ୍ରୀହି, ନିର୍+ଆଲାପ)—ଯେ କଥା
Nirālāpa କହୁ ନାହିଁ—Not talking (M W ).
(ନିରାଲାପା—ସ୍ତ୍ରୀ)

**ନିରାଲୋକ**—ସଂ. ବିଣ.—(ବହୁବ୍ରୀହି, ନିର୍+ଆଲୋକ)—୧ । ଆଲୋକ-
Nirāloka ହୀନ—1 Devoid of light; lightless.
୨ । ଅନ୍ଧାରୁଆ—2. Dark; gloomy.
୩ । ଅନ୍ଧ—3 Blind (M. W.).

**ନିରାଶ**—ସଂ. ବିଣ. (ବହୁବ୍ରୀହି, ନିର୍+ଆଶା)—୧ । ଆଶାଶୂନ୍ୟ—
Nirāsa 1. Hopeless
(ନିରାଶା—ସ୍ତ୍ରୀ) ୨ । ହତାଶ—2. Despairing; despondent; disappointed,
(ନୈରାଶ୍ୟ, ନିରାଶତ୍ୱ—ବି)
୩ । ନିସ୍ପୃହ—3 Free from desire; indifferent
ନିଷ୍କାମ ନିର୍ମୋହ ନିରାଶ
ଯହିଁ ଶୁଣିଲେ ଯୀବବାସ । ଭୂପତି. ପ୍ରେମ ପଞ୍ଚାମୃତ ।
୪ । ବଞ୍ଚିତ—4. Deprived of; denied.
କେଉଁ ସଖୀ ସେ ସୁଖ, ଭେଦକେ ଅଛ୍ର ନଃ ବର ସେହୁ ନୀତ ହୋଇ ନିରାଶ ।
କବିସୂର୍ଯ୍ୟ. ସଙ୍ଗୀତ ।
୫ । ନିର୍ମମ—5. Pitiless.
ଦାସୀ ଶ୍ରାଦ୍ଧେ ମୁହିଁ ମୋରେ କାହିଁକି ନିରାଶ । ଭଞ୍ଜ. ପ୍ରେମସୁଧାନିଧି ।
୬ । ନିଷ୍କାମ; କାମନାବିରହିତ—6. Without any wish or desire (M W.).
ଦେ. କ୍ରି ବିଣ.—୧ । ନିଷ୍ଠୁର ଭାବରେ, ନିର୍ଦ୍ଦୟ ରୂପରେ—
1. Cruelly.
ନିରକ୍ଷ ବଳାଇ ଡାକେ ଯହୁଁ ନାଇ,
ଅନ୍ତରେ ବଡ ନିରାଶ ଗୋ । କବିସୂର୍ଯ୍ୟ. ସଙ୍ଗୀତ ।
ଦେ. ବି.—୧ । କୌଣସି ବସ୍ତୁରୁ ବଞ୍ଚିତ ହେବା ଅବସ୍ଥା—
1. Deprivation.
୨ । ଜଙ୍ଗଲୀ ତରୁବିଶେଷ—
2 Memocylon Eonla (Haines)

**ନିରାଶ କରିବା**—ଦେ. କ୍ରି.—୧ । ଆକାଂକ୍ଷିତ ବ୍ୟକ୍ତିର ଆଶାକୁ ପୂର୍ଣ୍ଣ ନ
Nirāsa kariba କରିବା —1. Not to fulfil another
নিৰাশ কৰা person's hopes or expectations.
**निराश करना** ୨ । ଅନ୍ୟ ବ୍ୟକ୍ତିକୁ ହତାଶ କରିବା—
2. To disappoint another.
୩ । ନିର୍ଦ୍ଦୟ ହେବା—
3 To be unkind; to another.
କଲେ ନିରାଶ ହୋଇ ଗ୍ରୀଷମ କାଳ,
ତାକୁ ଜାଳ ଦେହ ବିରହାନଳ । ଭଞ୍ଜ. ଲାବଣ୍ୟବତୀ ।
୪ । ତ୍ୟାଗ କରିବା—4. To forsake.
ନିରାଶ କଲ ମୋର ଘର,
ମୁଁ ଏବେ ଶରଣ ତୁମ୍ଭର । ଭାଗବତ ।
୫ । କୌଣସି ବ୍ୟକ୍ତିର ତତ୍ତ୍ୱ ନ ନେବା—
5. Not to take care of.
[ପ୍ର—ସ୍ତ୍ରୀଅମାନେ ଶାଶୁ ଘରକୁ ଗଲାବେଳେ ଅର୍ଥାତ୍ ବାପ ମାଆ ଆଦିଙ୍କ ଠାରୁ ବିଦାୟ ହେଲା ବେଳେ ବାହୁନି କରି କାନ୍ଦି କହନ୍ତି, ବାପା ହେ ! ମତେ ନିରାଶ କରିବ ନାହିଁ ।]

**ନିରାଶ କୋଳି**—ପ୍ରାଦେ. (ଗଡଜାତ) ବି.—ଏକ ପ୍ରକାର ବନ୍ୟ କୋଳି-
Nirāsa koli A kind of wild plum
[ପ୍ର—ଏହି କୋଳି ନେଳଆ ଦଶେ ଓ ପାଚିଲେ ମଧୁର ଲାଗେ ।]

**ନିରାଶଙ୍କ**—ସଂ. ବିଣ. (ବହୁବ୍ରୀହି, ନିର୍+ଆଶଙ୍କା)—ନିଃଶଙ୍କ—
Nirāsanka Fearless.
(ନିରାଶଙ୍କା—ସ୍ତ୍ରୀ)

**ନିରାଶୟ**—ସଂ.ବିଣ.—(ବହୁବ୍ରୀହି, ନିର୍+ ଆଶୟ)—୧ । ଉଦ୍ଦେଶ୍ୟହୀନ—
Nirāsaya 1. Aimless; having no object or view.
୨ । ଅଗଭୀର (କ୍ଷତ)—
2. Superficial; not deep (wound) (M.W).
ବି.—ଉଦ୍ଦେଶ୍ୟହୀନତା—Aimlessness.

**ନିରାଶ ହେବା**—ଦେ. କ୍ରି.—ହତାଶ ହେବା—
Nirāsa heba To despair of a thing; to be disappointed
নিৰাশ হওয়া **निराश होना**

**ନିରାଶା**—ସଂ. ବି. ( ନିର୍+ଆଶା, ଆଶାର ଅଭାବ, ପ୍ରାଦିସମାସ )—
**Nirāśā** ୧ । ନୈରାଶ୍ୟ—1 Despair; disappointment.
( ଯଥା—ନିରେଖି ନିରାଶା-ବଶେ ଦ କ୍ଷୁଅ ଜର୍ଜର—ମଧୁସୂଦନ. ଜୀବନଚନ୍ଦ୍ରା । )
୨ । ବିଷାଦ—2. ejection.
୩ । ଚିତ୍ତବୈକ୍ଳବ୍ୟ—3 Despondency.
ବିଣ ସ୍ତ୍ରୀ.—ନିରାଶର ସ୍ତ୍ରୀଲିଙ୍ଗ—
The feminine of Nirāśa.
ଦେ. ବିଣ.—(ସଂ. ନିରାଶ)—ହତାଶ, ଆଶାଶୂନ୍ୟ, ନିରାଶ—
Desperate; hopeless.

ସଂଜିଭାଳ ଜୀବନେ ହୋଇଣ ନିରାଶା,
ଛାଡ଼ି ଦେଲେହେ କରିଥିଲେ ଯେ ଭରସା । କୃଷ୍ଣସିଂହ ମହାଭାରତ, ଦ୍ରୋଣ

**ନିରାଶିଆ**—ଦେ. ବିଣ. (ସଂ. ନିରାଶ)—୧ । ଆଶାହୀନ—
**Nirāśiā** 1 Hopeless; desperate.
୨ । ନିର୍ମମ, ନିର୍ଦ୍ଦୟ—
2 Unkind; cruel; unsympathetic.
(ଯଥା—ନିରାଶିଆ ପ୍ରହାର ।)
୩ । ନୈରାଶ୍ୟପୂର୍ଣ୍ଣ—3 Causing despondency.
(ଯଥା—ନିରାଶିଆ କଥା ।)

**ନିରାଶିତ୍ୱ**—ସଂ. ବି.—ନିରାଶ ହେବାର ଅବସ୍ଥା—
**Nirāśitwa** Hopelessness; despair.

**ନିରାଶୀଃ**—ସଂ. ବିଣ.—୧ । ( ବହୁବ୍ରୀହି, ନିର୍+ଆଶିସ୍ —ଆଶୀର୍ବାଦ-ରହିତ)—1 Without a blessing.
**Nirāśih** (ନିରାଶୀଷ୍ମ—ବି. M W.) ୨ । (ନିର୍+ଆଶା) ଆଶାହୀନ, ନିରାଶ, ହତାଶ—2. Hopeless; Despairing (M. W.)
୩ । ନିଷ୍କାମ—3 Free from desire (M. W.).
୪ । ନିର୍ମମତାହୀନ—4. Indifferent (M. W.).

**ନିରାଶେ**—ଦେ. କ୍ରି. ବିଣ—୧ । ନିର୍ଦ୍ଦୟଭାବରେ, ନିର୍ମମଭାବରେ—
**Nirāśe** 1 Cruelly.

ପୁଣି ଶ୍ରୀମ ସୁଯୋଧନଙ୍କ ଉପଦେଶେ
ଭୃଷଇ ଗଦାବର ଫିଙ୍ଗିଲେ ନିରାଶେ । କୃଷ୍ଣସିଂହ. ମହାଭାରତ. ଶଲ୍ୟ

**ନିରାଶ୍ୱାସ**—ସଂ. ବି. (ନିର୍+ଆଶ୍ୱାସ)—୧ । ଆଶାଭଙ୍ଗ—
**Nirāśwāsa** 1 Discouragement.
୨ । ନୈରାଶ୍ୟ—2. Hopelessness.

**ନିରାଶ୍ୱାସୀ**—ସଂ. ବିଣ. ପୁଂ. (ନିର୍+ଆଶ୍ୱାସିନ୍ ୧ମା. ୧ବ)—
**Nirāśwāsi** ୧ । ହତାଶ—1. Despairing.
(ନିରାଶ୍ୱାସିନୀ—ସ୍ତ୍ରୀ) ୨ । ବିଷଣ୍ଣ, ଖିନ୍ନ—2. Dejected.
୩ । ନୈରାଶ୍ୟ ଜର୍ଜ୍ଜରିତ—3. Disconsolate.

**ନିରାଶ୍ରୟ**—ସଂ. ବିଣ. (ବହୁବ୍ରୀହି; ନିର୍+ଆଶ୍ରୟ)—
**Nirāśraya** ୧ । ଆଶ୍ରୟହୀନ; ନିଃସହାୟ; ଆଶ୍ରୟରହିତ—
(ନିରାଶ୍ରୟା—ସ୍ତ୍ରୀ) 1. Destitute; helpless; shelterless.
୨ । ଅଶରଣ—2. Without a refuge.
୩ । ଏକାକୀ—3. Alone.
୪ । ଅଗଭୀର (କ୍ଷତ)—4. Not deep (sore) (M.W.).

**ନିରାଶ୍ରିତ**—ସଂ. ବିଣ. ପୁଂ. ( ନିର୍+ଆଶ୍ରିତ )—ଯେ ଅନ୍ୟର ଆଶ୍ରିତ ନୁହେଁ—Unprotected; unsupported.
**Nirāśrita** (ନିରାଶ୍ରିତା—ସ୍ତ୍ରୀ)

**ନିରାସ**—ସଂ. ବି. (ନିର୍=ବାହାରକୁ+ଅସ୍ ଧାତୁ=କ୍ଷେପଣ କରିବା+
**Nirāsa** ୧ । ନିରସନ, ନିରାକରଣ, ବିନାଶନ—
1, Destruction; rejection; extermination.
୨ । ଦୂରୀକରଣ—2. Expulsion.
୩ । ନିଃକ୍ଷେପ—4. Throwing away.
୪ । ତ୍ୟାଗ—4. Abandonment; desertion.
୫ । ଖଣ୍ଡନ—5. Refutation, contradiction; dashing to pieces.
୬ । ବିଫଳକରଣ—6. Thwarting.
ସଂ. ବିଣ—୧ । ନିରାଶ୍ରୟ—1. Shelterless (M. W.).
୨ । ଆସନହୀନ—2. Seatless (M. W ).

**ନିରାସକ**—ସଂ. ବିଣ. ପୁଂ. ( ନିର୍+ଅସ୍ ଧାତୁ=କ୍ଷେପଣ+କର୍ତ୍ତୃ. ଅକ)—ବହିଷ୍କର୍ତ୍ତ୍ର—Repulsive; repelling.
**Nirāsaka** (ନିରାସିକା—ସ୍ତ୍ରୀ)

**ନିରାସଙ୍ଗ**—ସଂ. ବିଣ. ପୁଂ. (ବହୁବ୍ରୀହି, ନିର୍+ଆସଙ୍ଗ)—
**Nirāsanga** ନିଜ ଶକ୍ତିର ବ୍ୟବହାର କରିବା ବିଷୟରେ ବାଧା ପାଇ ନ ଥିବା (ବ୍ୟକ୍ତି)—Unhindered in the use of one's forces (M. W.).
(ନିରାସଙ୍ଗା—ସ୍ତ୍ରୀ)

**ନିରାସନ**—ସଂ. ବିଣ. ପୁଂ. (ନିର୍+ଆସନ)—ଆସନଶୂନ୍ୟ, ଉପବେଶନ ସ୍ଥାନ ଶୂନ୍ୟ—Without a seat; seatless.
**Nirāsana**
ସଂ ବି—ନିରାସ (ଦେଖ)—Nirāsa (See)

**ନିରାସ୍ଥ**—ସଂ. ବିଣ. ପୁଂ. (ବହୁବ୍ରୀହି, ନିର୍+ଆସ୍ଥା)—
**Nirāstha** ୧ । କୌଣସି ବିଷୟରେ ଯାହାର ଆସ୍ଥା ନାହିଁ—
(ନିରାସ୍ଥା—ସ୍ତ୍ରୀ) 1. Not interested in any thing (M W.).
୨ । ଯେ ଦତ୍ତଚିତ୍ତ ନୁହେଁ—2. Not intent upon (M W.).

**ନିରାସ୍ପଦ**—ସଂ. ବିଣ. ପୁଂ. (ବହୁବ୍ରୀହି, ନିର୍+ଆସ୍ପଦ)—
**Nirāspada** ୧ । ସତତ ଗତିବିଶିଷ୍ଟ, ଚଞ୍ଚଳ—
(ନିରାସ୍ପଦା—ସ୍ତ୍ରୀ) 1. Restless; constantly moving.
୨ । ଅଶାନ୍ତ—2. Unstable.
୩ । ନିରାଳୟ, ବାସହୀନ—3. Homeless.
୪ । ଭାଗହୀନ, ନିରଂଶ—4. Portionless.
୫ । ଉଦ୍ଦେଶ୍ୟବିହୀନ—5. Objectless (M W.).

**ନିରାସ୍ୱାଦ**—ସଂ. ବିଣ. (ବହୁବ୍ରୀହି; ନିର୍+ଆସ୍ୱାଦ)—୧ । ସ୍ୱାଦହୀନ—
**Nirāswāda** 1. Tasteless; insipid.
୨ । ଅରୁଚିକର—2. Unsavoury (M. W.).

**ନିରାହାର**—ସଂ. ବିଣ. ( ବହୁବ୍ରୀହି; ନିର୍+ଆହାର )—
**Nirāhāra** ଅନାହାରୀ ଉପବାସୀ—
(ନିରାହାରା—ସ୍ତ୍ରୀ) Fasting; abstaining from food.

(ନିରାହାରତା—ବି) ବି—୧ । ଭୋଜନାଭାବ, ଉପବାସ—
1 Starvation; fasting; want of food.
୨ । ଲଙ୍ଘନ—2. Abstaning from food.

**ନିରାହାରୀ**—ଦେ. ବିଣ. ପୁଂ. ( ସଂ. ନିରାହାର )—୧ । ଅନାହାରୀ—
Nirāhārī 1. Fasting; starving.
୨ । ଜଳମାତ୍ରାହାରୀ—
2. Subsisting on water only.

**ନିରାହ୍ଲାଦ**—ସଂ. ବିଣ. ( ବହୁବ୍ରୀହି, ନିର୍ + ଆହ୍ଲାଦ )—ନିରାନନ୍ଦ—
Nirāhlāda Cheerless

**ନିରିଖ**—ବୈଦେ. ବି—ନିରଖ୍ ( ଦେଖ )
Nirikh Nirakh (See)

**ନିରିଖା**—ଦେ. ବି. ( ସଂ. ନିରୀକ୍ଷଣ )—୧ । ନିରୀକ୍ଷଣ, ଅବଲୋକନ ସହକାରେ—1. Observation.
Nirikhā
निरखा ୨ । ତନ୍ନତନ୍ନ କରି ଦେଖିବା—
निरखना 2. Minute inspection, insight.

**ନିରିଖା ନିରିଖି**—ଦେ. ବି. ( ସଂ. ନିରୀକ୍ଷଣ )—ବାରମ୍ବାର ନିରୀକ୍ଷଣ—
Nirikhā nirikhi Repeated observation.

**ନିରିଖିବା**—ଦେ. କ୍ରି. (ନିରୀକ୍ଷଣ)—୧ । ନିରୀକ୍ଷଣ କରିବା, ଦେଖିବା—
Nirikhibā 1. To look at.
निरखा ୨ । ମନୋଯୋଗ ସହକାରେ ଦେଖିବା—
निरखना 2. To observe.
୩ । ତନ୍ନ ତନ୍ନ କରି ଦେଖିବା—
3 To inspect minutely.
୪ । ଏକଦୃଷ୍ଟିରେ ଚାହିଁବା—4. To stare at.

**ନିରିଗୁଣ** - ଗ୍ରା. ( ପଦ୍ୟ ) ବିଣ—ନିର୍ଗୁଣ ( ଦେଖ )
Niriguṇa Nirguṇa ( See )
निरिगुन ନିର୍ଗୁଣ ନୁହଇ ବ୍ରହ୍ମ ମହା ନିରିଗୁଣ—ଗ୍ରାଚୀ· ବ୍ରହ୍ମନିରୂପଣଗୀତା ।
निरगुन

**ନିରିଘାତ**—ଗ୍ରା. ( ପଦ୍ୟ ) ବି - ନିର୍ଘାତ ( ଦେଖ )
Nirighāta Nirghāta ( See )
( ନିରଘାତ—ଅନ୍ୟରୂପ ) ୧ । ବଜ୍ର—1. Thunder.
ଗୋବିନ୍ଦ ଶିରେ ଗଦାଘାତ
ପଡ଼ଇ ଯେସନ୍ତେ ନିରିଘାତ—ଜଗନ୍ନାଥ. ଭାଗବତ ।
୨ । ବଜ୍ରଧ୍ୱନି—2 The sound of thunder,
୩ । ବଜ୍ର ପରି ବିକଟ ଶବ୍ଦ—
3. A thundering sound.
ବୋଲେ ତେଣା ହାରିଲି ମୁଁ ନିରିଘାତ ଶୁଣି – ସାରଳା, ମହାଭାରତ, ବ
ବିଣ—ନିରିଘାତିଆ ( ଦେଖ )—Nirighātiā ( See )
କ୍ରି. ବିଣ—୧ । ନିଷ୍ଠୁରଭାବରେ—1. Cruelly.
୨ । ଭୟଙ୍କରରୂପେ—2 Seriously.
ବେନି ବୃକ୍ଷ ହସ୍ତେ ଧରି ପିଟେ ନିରିଘାତ—ସାରଳା ମହାଭାରତ ଅନ୍ତ ।

**ନିରିଘାତିଆ**—ଗ୍ରା. ବିଣ (ସଂ. ନିର୍ଘାତ)—୧ । ନିଷ୍ଠୁର—
Nirighātiā 1. Cruel.
୨ । ଭୟଙ୍କର—2. Frightful; terrific.
୩ । ନିଦାରୁଣ—3 Severe; violent.

**ନିରିଙ୍ଗ**—ସଂ. ବିଣ—୧ । ଅଚଳ—
Niringa 1. Immovable (M. W.)
୨ । ନିଷ୍କମ୍ପ—2. Not fleckering (M W.).

**ନିରିଙ୍ଗିଣୀ**—ସଂ. ବି—ପରଦା, ଚିକ, ଝିଲମିଲି (ହି. ଶ.)—
Niringiṇī Screen.

**ନିରିଚ୍ଛା**—ସଂ. ବିଣ (ବହୁବ୍ରୀହି, ନି + ଇଚ୍ଛା)—୧ । ନିଷ୍କାମ—
Nirichchhā 2. Without wish or desire (M. W.)
୨ । ଉଦାସୀନ—2. Indifferent (M. W.)

**ନିରିଜଳ**—ଗ୍ରା. ବିଣ (ସଂ. ନିର୍ଜଳ)—ନିର୍ଜଳ (ଦେଖ)
Nirijaḷa Nirjaḷa (See)
निरजल निरजल

**ନିରିଜୋର୍**—ଗ୍ରା. ବିଣ—ନିଜୋର୍ (ଦେଖ)
Nirijor Nijor (See)
निजोर निजोर
(ନିରିଜୋରିଆ—ଅନ୍ୟରୂପ)

**ନିରିଦୟ**—ଗ୍ରା (ପଦ୍ୟ) ବିଣ—(ସଂ. ନିର୍ଦ୍ଦୟ) – ନିର୍ଦ୍ଦୟ—
Niridaya Cruel.
निरदय निरदय

**ନିରିଦୟା** - ଗ୍ରା. ବି ( ସଂ. ନିର୍ଦ୍ଦୟତା )—ଦୟାହୀନତା, ନିର୍ଦ୍ଦୟତା; ନିଷ୍ଠୁରତା—Cruelty; unkindness
Niridayā
ବିଣ ( ସ ନିର୍ଦ୍ଦୟ )—Unkind; cruel.

**ନିରିନ୍ଦ୍ରିୟ**—ସ. ବିଣ ପୁଂ—୧ । ଚକ୍ଷୁକର୍ଣ୍ଣାଦି ଇନ୍ଦ୍ରିୟରହିତ—
Nirindriya 1. Devoid of the organs of sense.
(ନିରିନ୍ଦ୍ରିୟା – ସ୍ତ୍ରୀ) ୨ । ନିର୍ବଳ, ଦୁର୍ବଳ—
(ନିରିନ୍ଦ୍ରିୟତା—ବି) 2 Weak; frail.
୩ । ବିକଳାଙ୍ଗ—3. Maimed; multilated.
୪ । ନପୁଂସକ—4. Eunoch; neuter impotent; destitute of manly vigour or strength.
୫ । ବନ୍ଧ୍ୟ—5. Barren (M.W.)
୬ । ପ୍ରମାଣରହିତ—
6 Without evidence (M. W)
୭ । ବ୍ୟକ୍ତିତ୍ୱହୀନ—
7. Without status or individuality.
[ ଦ୍ର—ଜନ୍ମାନ୍ଧ, ପତିତ, କ୍ଲୀବ, ଜନ୍ମବଧିର, ଉନ୍ମତ୍ତ, ଜଡ଼, ମୂକ ଓ ନିରିନ୍ଦ୍ରିୟ ( ବିକଳାଙ୍ଗ ବ୍ୟକ୍ତି ) ଏମାନେ ପିତୃଧନରେ ଅଧିକାରୀ ହୋଇ ପାରନ୍ତି ନାହିଁ—ମନୁସଂହିତା ୯।୨୦୧ । ]

**ନିରିବଂଶ**—ଗ୍ରା. ବିଣ (ସଂ. ନିର୍ବଂଶ)—ନିର୍ବଂଶ (ଦେଖ)
Niribaṁśa Nirbaṁśa (See)
(ନିରିବଂଶି, ନିରିବଂଶିଆ—ଅନ୍ୟରୂପ)
ପ୍ରଜାଙ୍କୁ ନିଦାକଲେ ହୁଅଇ ନିରିବଂଶି—ସାରଳା ମହାଭାରତ. ଅନ୍ତ

**ନିରିବାଣ** - ଗ୍ରା. ବି—ଦେବୀବିଶେଷ—
Niribāṇa Name of a Goddess.

ମହାନଦୀ ଉପରେଣ ନିଗମ ଭୁବନ
ଶମ୍ଭୁ ଅଗ୍ରେ ବିରଣ ସେ ଦେବୀ ନିରିବାଣ—ଶ୍ରୀଗୁରୁଭକ୍ତିଗୀତା ।

ଗ୍ରା—୧ । ନିର୍ମାଣ (ଦେଖ)—Nirmāṇa (See)

୨ । ନିର୍ବାଣ (ଦେଖ)—Nirbāṇa (See)

**ନିରଭ** (ଇତ୍ୟାଦି)—ଗ୍ରା. ବି (ସଂ. ନିର୍ବାହ)—ନିର୍ଭ ଇତ୍ୟାଦି (ଦେଖ)
Niribhā (etc) Nirbhā etc (See)

**ନିରଭ(ଭେ)ଇବା**—ଗ୍ରା. କ୍ରି. (ସଂ. ନିର୍ବାହ)—ନିର୍ବାହିବା, ସମ୍ପାଦନ
Niribhā(bhe)ibā କରିବା, ନିର୍ବାହ କରିବା, ସମ୍ପାଦନ କରିବା—
To make; to accomplish.

ମାସ ଶତ ଭିତରେ ଦେଉଳ ନିରଭଇ । ପ୍ରତାପ. ଶଶିସେଣା ।

**ନିରଭ ପଡ଼ିବା**—ଗ୍ରା. (ପଦ୍ୟ) କ୍ରି—ସମ୍ଭାଳି ହୋଇ ଥିବା—
Niribhā pardibā To subsist; to exist

କର୍ମିକୁ ନ କଲେ ଶରୀର ରହିବାର
ନିରଭ ନ ପଡ଼ିବ କେବେହେଁ ଜୁହାର । କୃଷ୍ଣସିଂହ. ମହାଭାରତ ଶାନ୍ତି ।

**ନିରମଳ**—ଗ୍ରା. (ପଦ୍ୟ) ବିଣ. (ସଂ. ନିର୍ମଳ)—ନିର୍ମଳ (ଦେଖ)
Nirimala Nirmala (See)
निरमल
निरमल

ବସନ୍ତ ବାସନ୍ତୀ ଚନ୍ଦ୍ର ମହାନିରମଳ । ସାରଳା. ମହାଭାରତ ଆଦି ।

**ନିରମଳା**—ଦେ. ବି—କତକ ଫଳ, ଜଳ ପରିଷ୍କାରକ ଫଳବିଶେଷ—
Nirimalā Strychnos Potatorun; the clearing nut.

ସଂ. ନିର୍ମଳା, କତ, କତକ
ପୟଃପ୍ରସାଦ, ଅମ୍ବୁପ୍ରସାଦ
ଛିନ୍ନଫଳ, ଗୁଚ୍ଛଫଳ
निर्मला, निर्मली
निर्मली, पयपसारी
ମ. ନିବଲୀଚ୍ୟା,
ତ୍ୟାଗଜର
ଗୁ. ନିର୍ମଳୀ

[ ଦ୍ର—ଏହି ଫଳ କୋଚିଲା ପରି ବିହାର, ଓଡ଼ିଶା, ମଧ୍ୟ ଓ ପଶ୍ଚିମ ଭାରତର ଅରଣ୍ୟରେ ଜନ୍ମେ । ଏହାର ଫଳ କୃଷ୍ଣବର୍ଣ୍ଣ, ମଞ୍ଜି ଗୋଲ ଓ ଚେପ୍ଟା ଓ କୋଚିଲା ମଞ୍ଜିଠାରୁ ସାନ । ଏହି ମଞ୍ଜିକୁ ଘୋରି ଗୋଳିଆ ପାଣିରେ ପକାଇଲେ, ପାଣିରେ ଥିବା କାଦୁଅ ପାଉଁର ତଳକୁ ବସିଯାଏ, ତେଣୁ ପାଣି ସ୍ୱଚ୍ଛ ହୁଏ । ବୈଦ୍ୟକମତରେ ଏହା ଚକ୍ଷୁର ହିତକର, ବାତଘ୍ନ, କଫନାଶକ, ମଧୁରକଷାୟରସ ଓ ଗୁରୁ । ]

**ନିରମାଇଲ**—ଗ୍ରା. ବି. (ସଂ. ନିର୍ମାଲ୍ୟ)—୧ । ନିର୍ମାଲ୍ୟ (ଦେଖ)
Nirimāila 1. Nirmālya (See)
(ନିରମାଲ୍ୟ—ଅନ୍ୟରୂପ)
निरमायल

ଅଙ୍ଗେ ମହାର୍ଘ ଛୁଇଁଲେ ଯେ,
କଣିକାଏ ନିରମାଇଲ ଛୁଇଁଲେ ସେ । ଛଗ ।

୨ । ଦୁଇଜଣ ବ୍ୟକ୍ତି ପରସ୍ପରଙ୍କୁ ନିର୍ମାଲ୍ୟ ଶୁଖା ଯାଇଥିବା ଜଗନ୍ନାଥଙ୍କ ଅନ୍ନ ମହାପ୍ରସାଦ କଣିକା ଆଦାନ ପ୍ରଦାନଦ୍ୱାରା କରିଥିବା ବନ୍ଧୁତା—2 The friendship set up between two persons by exchange of dried boiled rice which hasbeen offered to the Deity Jagannath of Puri or Lingaraj of Bhubaneswar

ନିରମାଇଲ । କାହିଁ କଥା କେଉଁ କାହିଁ ଥୋଇଲି ? ଛଗ ।

**ନିରମାଖୀ**—ଦେ. ବିଣ. (ପୁଂ ଓ ସ୍ତ୍ରୀ) (ସଂ. ନିର୍+ରକ୍ଷକ)—୧ । ନିରାଶ୍ରୟ
Nirimākhi 1. Helpless.
(ନିରମାଖୀ—ଅନ୍ୟରୂପ)

ବିପ୍ର ବ୍ରାହ୍ମଣ ନିରମାଖୀ, ତ୍ରିସ୍ୱାବାଳକ ଗୋବୁ ଭୁଖୀ ।
ଜଗନ୍ନାଥ, ଭାଗବତ ।

୨ । ପରିତ୍ୟକ୍ତ—2. Abandoned.

**ନିରମାଣ**—ଗ୍ରା. (ପଦ୍ୟ)—ନିର୍ମାଣ (ଦେଖ)
Nirimāṇa Nirmāṇa (See)

ସବୁ ଦ୍ରବ୍ୟେ ସଭାକୁ ନିରମାଣ କଲା,
ସ୍ୱାମୀଙ୍କୁ ଗଦା ଅର୍ଜୁନଙ୍କୁ ଶଙ୍ଖ ଦେଲା । କୃଷ୍ଣସିଂହ, ମହାଭାରତ ସଭା ।

**ନିରୀକ୍ଷକ**—ସଂ. ବିଣ. ପୁଂ. (ନିର୍=ବିଶେଷଭାବରେ+ଈକ୍ଷ ଧାତୁ=
Nirikshaka ଦେଖିବା+କର୍ତ୍ତୃ. ଅକ)—ନିରୀକ୍ଷଣକାରୀ, ପରିଦର୍ଶନକାରୀ, ପର୍ଯ୍ୟବେକ୍ଷଣକାରୀ—Observing; visiting; viewing; seeing.

ବି.—୧ । ଦର୍ଶକ, ଦେଖଣାହାରୀ—
1. Visitor; spectator.

୨ । ପରିଦର୍ଶକ—2 Inspector.

୩ । ତତ୍ତ୍ୱାବଧାରକ—3 Supervisor.

**ନିରୀକ୍ଷଣ**—ସଂ. ବି. (ନିର୍=ବିଶେଷ ଭାବରେ+ଈକ୍ଷ ଧାତୁ=ଦେଖିବା
Nirikṣnaṇa +ଭାବ. ଅନ)—୧ । ଅବଲୋକନ, ସମ୍ୟକ୍
(ନିରୀକ୍ଷା—ଅନ୍ୟରୂପ) ଦର୍ଶନ, ବିଶେଷଭାବରେ ପରିଦର୍ଶନ—
1. Inspection; observation; the looking at a thing steadily.

୨ । ଦୃଷ୍ଟି—2. Sight; view.

୩ । (ଜ୍ୟୋତିଷ)—ଗ୍ରହମାନଙ୍କର ପରିଦୃଶ୍ୟମାନ ଅବସ୍ଥା—
3 (astronomy) The aspect of the planets.

୪ । ଏକ ଦୃଷ୍ଟିରେ ବା ମନୋଯୋଗ ସହକାରେ ଦେଖିବା—
4. Gazing at.

**ନିରୀକ୍ଷମାଣ**—ସଂ. ବିଣ. ପୁଂ (ନିର୍+ଈକ୍ଷ ଧାତୁ+କର୍ତ୍ତୃ. ଶାନଚ୍)—ଯେ
Nirikshamāṇa ଦେଖୁଅଛି—Gazing; inspecting
(ନିରୀକ୍ଷମାଣା—ସ୍ତ୍ରୀ) carefully; observing; observant.

**ନିରୀକ୍ଷା**—ସଂ. ବି. (ନିର୍+ଈକ୍ଷ ଧାତୁ+ଭାବ. ଅ+ଆ)—୧ । ପରିଦର୍ଶନ,
Nirikshā ଚାହିଁବା—Looking at; regarding.

୨ । ଆଶା—2 Hope; expectation (M, W)

**ନିରୀକ୍ଷିତ**—ସଂ. ବିଣ. (ନିର୍+ଈକ୍ଷ ଧାତୁ+କର୍ମ. ତ)—ଅବଲୋକିତ;
Nirikshita ଦୃଷ୍ଟ—Observed; seen; looked at.

**ନିରୀକ୍ଷ୍ୟ**—ସଂ ବିଣ. (ନିର୍+ଈକ୍ଷ ଧାତୁ+କର୍ମ. ଯ)—ଯାହାକୁ ନିରୀକ୍ଷଣ
Nirikshya କରାଯିବ—To be looked at.
(ନିରୀକ୍ଷ୍ୟା—ସ୍ତ୍ରୀ)

**ନିରୀକ୍ଷ୍ୟମାଣ**—ସଂ. ବିଣ. (ନିର୍+ଈକ୍ଷ ଧାତୁ+କର୍ମ ବାଚ୍ୟରେ ଶାନଚ୍)
Nirikshyamāṇa ଦୃଶ୍ୟମାନ, ଯାହାକୁ ନିରୀକ୍ଷଣ କରାଯାଉ
(ନିରୀକ୍ଷମାଣା—ସ୍ତ୍ରୀ) ଅଛି—Seen; being looked at; which is being gazed at.

**ନିରୀଖା**—ଦେ. ବି. (ସଂ. ନିରୀକ୍ଷଣ)—ନିରୀକ୍ଷଣ—
Nirikhā Observation.
(ନିରେଖା—ଅନ୍ୟରୂପ)

**ନିରୀଖିବା**—ଦେ. କ୍ରି—ନିରେଖିବା (ଦେଖ)
Nirikhibā Nirekhibā (See)
(ନିରୀଖେଇବା, ନିରୀକ୍ଷିବା—ଅନ୍ୟରୂପ)

**ନିରୀତ**—ସଂ. ବିଣ (ବହୁବ୍ରୀହି, ନିର୍+ଇତି=କୃଷିପ୍ରତିବନ୍ଧକ)—
Niriti ଇତିଶୂନ୍ୟ, କୃଷିପ୍ରତିବନ୍ଧକ ବୃଷ୍ଟ୍ୟାଦିରହିତ—
Free from agricultural calamities or afflictions.

**ନିରୀତିକ**—ସଂ. ବିଣ (ନିର୍+ଇତି+କ)—ଶୁଭସୂଚକ, ଶୁଭଲକ୍ଷଣବିଶିଷ୍ଟ—
Niritika Auspicious (M. W.)
(ନିରୀତିକା—ସ୍ତ୍ରୀ)

**ନିରୀଶ**—ସଂ. ବି (ବହୁବ୍ରୀହି, ନିର୍=ନିର୍ଗତ ହୋଇଅଛି+ଈଶା=ଲଙ୍ଗଳଦଣ୍ଡ ଯହିଁରୁ)—ଲଙ୍ଗଳମୁଣ୍ଡା—
Nirīsa The body of a plough without the pole or shaft (M. W)
ବି. ଓ ବିଣ (ନିର୍+ଈଶ)—ନିରୀଶ୍ୱର (ଦେଖ)
Nirīswara (See)

**ନିରୀଶ୍ୱର**—ସଂ. ବିଣ (ବହୁବ୍ରୀହି, ନିର୍+ଈଶ୍ୱର)—୧। ଈଶ୍ୱରଶୂନ୍ୟ—
Nirīswara 1. Godless; destitute of God.
୨। ନାସ୍ତିକ—2. Denying the existence of God; atheistic.
ବି—ଈଶ୍ୱରଙ୍କ ଅସ୍ତିତ୍ୱ ଅସ୍ୱୀକାର, ନିରୀଶ୍ୱରବାଦ, ନାସ୍ତିକତା—
Denial of the existence of God, atheism.

**ନିରୀଶ୍ୱରବାଦ**—ସଂ. ବି—୧। ଈଶ୍ୱର ନାହାନ୍ତି ଏହି ମତ ବା ସିଦ୍ଧାନ୍ତ—
Nirīswarabāda 1. Denial of the existence of God; atheism; materialism; atheistic doctrine.

**ନିରୀଶ୍ୱରବାଦୀ**—ସଂ. ବିଣ. ପୁଂ (ନିରୀଶ୍ୱରବାଦ+ଇନ୍)—
Nirīswarabādi ଈଶ୍ୱର ନାହାନ୍ତି ଏହି ମତ ଯେ ସିଦ୍ଧାନ୍ତ କରେ;
(ନିରୀଶ୍ୱରବାଦିନୀ—ସ୍ତ୍ରୀ) ନାସ୍ତିକ—Atheist; ascerting the nonexistence of God; holding atheistic doctrine.

**ନିରୀଷ**—ସଂ. ବି—ନିରୀଶ (ଦେଖ)
Nirisha Nirīsa (See)

**ନିରୀହ**—ସଂ. ବିଣ. ପୁଂ (ବହୁବ୍ରୀହି, ନିର୍=ନାହିଁ+ଈହା=ଚେଷ୍ଟା ଯାହାର)—୧। ନିଶ୍ଚେଷ୍ଟ, ନିଶ୍ଚଯତ୍ନ—
Nirīha 1. Destitute of exertion; inactive.
(ନିରୀହା—ସ୍ତ୍ରୀ)
ନିରୀହତା, ନିରୀହତ୍ୱ } ବି
୨। ଗତିହୀନ—2 Motionless.
୩। ଯେ ଅନ୍ୟ ବିଷୟରେ ହସ୍ତକ୍ଷେପ କରେ ନାହିଁ, ଯେ ଅନଧିକାର ଚର୍ଚ୍ଚା କରେ ନାହିଁ—
3. One who does not pry into others affairs.
୪। ନିର୍ବିରୋଧ, ଯେ ଅନ୍ୟର ହିଂସା କରେ ନାହିଁ—
4. Harmless.
୫। ଧୀର, ଶିଷ୍ଟ, ଶାନ୍ତ, ସ୍ଥିର—
5. Quiet; still; peaceful.
୬। ନିସ୍ପୃହ; ଉଦାସୀନ—
6. Disinterested; indifferent.
୭। ନିର୍ମଳ—7. Fine; clear.
୮। ଶାନ୍ତିପ୍ରିୟ ( ହି. ଶ. )—8. Loving peace.
୯। ତଟସ୍ଥ ( ହି. ଶ. )—7 Neutral.
ବି—୧। ବିଷ୍ଣୁ—1. Bishṇu.
୨। ପରମାତ୍ମା—2. The supreme soul.

**ନିରୁଆଁ**—ପ୍ରାଦେ. (ସମ୍ବଲପୁର) ବିଣ. (ଭୁଲ. ହି. ନିର୍=ବିଶୁଦ୍ଧ)—
Niruāñ ନିରୋଳା, ଅମିଶ୍ରିତ, ଖାଣ୍ଟି; ନିଘୋଡା—
Unadulterated.

**ନିରୁକତ**—ଗ୍ରା. (ପଦ୍ୟ) ବି. (ସଂ. ନିରୁକ୍ତ)—ନିରୁକ୍ତ ( ଦେଖ )
Nirukata Nirukta ( See )

ଶିକ୍ଷା କଳ୍ପ ବ୍ୟାକରଣ ଯେ ନିରୁକତ
ଜ୍ୟୋତିଷ ଛନ୍ଦ ଷଡ ଅଙ୍ଗରେ ଅଧୀତ । କୃଷ୍ଣସିଂହ, ମହାଭାରତ, ସଭା ।

**ନିରୁକ୍ତ**—ସଂ. ବିଣ. ( ବହୁବ୍ରୀହି, ନିର୍=ନିଶ୍ଚୟ+ଉକ୍ତ=କଥିତ )—
Nirukta ୧। ସମ୍ୟକ୍ କଥିତ, ବ୍ୟାଖ୍ୟାତ—
1. Explained; interpreted.
୨। ବର୍ଣ୍ଣିତ—2. Defined; described.
୩। ଚତୁର—3. Crafty.
୪। କୁଟିଳ - 4. Wicked.
୫। ଅବ୍ୟବହାର୍ଯ୍ୟ—5. Obsolete; uncommon.
୬। ପୁରାତନ—6. Old.
୭। ଉଚ୍ଚାରିତ—7. Uttered; pronounced.
୮। ପ୍ରକାଶିତ—8. Expressed; declared.
୯। ( ନିର୍+ଉକ୍ତ ) ଅକଥିତ—
9. Unspoken; unmentioned.
୧୦। ଅପ୍ରକାଶିତ—10. Unpublished.
୧୧। ଦୁର୍ବୋଧ୍ୟ—11. Abstruse; obstinate.
୧୨। ମୀମାଂସିତ—12. Adjudged; decided; settled.
ବି—୧। ବୈଦିକ ଅଭିଧାନ; ବେଦୋକ୍ତ ନିଘଣ୍ଟୁ ବା ଶବ୍ଦମାନଙ୍କର ଯାସ୍କକୃତ ବ୍ୟାଖ୍ୟାଗ୍ରନ୍ଥ—1. A treatise by Jāska explaining the meaning of abstruse or obsolete words used in the Vedas; a glossary of the Vedas.
୨। ଶବ୍ଦର ପ୍ରକୃତିଗତ ଅର୍ଥବାଦ—2. Etymological interpretation of a word.
୩। ଯେଉଁ ଗ୍ରନ୍ଥରେ ଏକ ଶବ୍ଦର ଏକାଧିକ ଅର୍ଥ ବା ପର୍ଯ୍ୟାୟ ଲେଖାଯାଇଥାଏ ( ସାମ୍ପ୍ରଦାୟିକ )—
3. A compilation giving the words which have more than one meaning and synonyms of words.

**ନିରୁକ୍ତକାର**—ସଂ. ବି. ( ନିରୁକ୍ତ+କୃ ଧାତୁ+କର୍ତ୍ତୃ. ଅ )—
Niruktakāra ନିରୁକ୍ତ ଗ୍ରନ୍ଥକର୍ତ୍ତା ମୁନି—
The author of the Vedic Dictionary.

[ ଦ୍ର—ବୈଦିକ ଶବ୍ଦମାନଙ୍କର ନିଘଣ୍ଟୁର ଯେଉଁ ବ୍ୟାଖ୍ୟା ଯାସ୍କ ମୁନି ସଙ୍କଳନ କରିଥିଲେ, ତାହା ନିରୁକ୍ତ ନାମରେ ଖ୍ୟାତ । ଯାସ୍କ ମୁନି ତାଙ୍କ ଗ୍ରନ୍ଥରେ ଶାକପୂଣି, ଔର୍ଣ୍ଣନାଭ ଓ ସ୍ଥୌଲଷ୍ଠୀବି ବା ସ୍ଥାଲାଷ୍ଠୀବି ନାମକ ତିନି ଜଣ ପ୍ରାଚୀନ ନିରୁକ୍ତକାରଙ୍କ ନାମ ଉଲ୍ଲେଖ କରିଅଛନ୍ତି । କିନ୍ତୁ ସେମାନଙ୍କ ଗ୍ରନ୍ଥ ଆଜିକାଲି ମିଳୁ ନାହିଁ । ସାୟନାଚାର୍ଯ୍ୟ କହିଅଛନ୍ତି ଯେ, ଯେଉଁ ଗ୍ରନ୍ଥରେ ଏକ ଶବ୍ଦର ଏକାଧିକ ଅର୍ଥ ଓ ପର୍ଯ୍ୟାୟ ଲେଖାଯାଏ, ତାହା ନିରୁକ୍ତ । କାଶିକା ବୃତ୍ତି ଅନୁସାରେ ନିରୁକ୍ତ ୫ ପ୍ରକାର । ଯଥା—ବର୍ଣ୍ଣାଗମ (ଅକ୍ଷର ବଢ଼ାଇବା) ବର୍ଣ୍ଣବିପର୍ଯ୍ୟୟ ( ଅକ୍ଷରମାନଙ୍କୁ ଆଗ ପଛ କରିବା ), ବର୍ଣ୍ଣବିକାର (ଅକ୍ଷର ପରିବର୍ତ୍ତନ), ବର୍ଣ୍ଣ ନାଶ (ଅକ୍ଷରର ଲୋପ ଓ ଧାତୁର ଗୋଟିଏ ଅର୍ଥ ସିଦ୍ଧ କରିବା) । ଯାସ୍କଙ୍କ ନିରୁକ୍ତରେ ୧୨ଟି ଅଧ୍ୟାୟ ଅଛି । ୧ମରେ ବ୍ୟାକରଣ ଓ ଶବ୍ଦଶାସ୍ତ୍ର ସମ୍ବନ୍ଧୀୟ ସୂକ୍ଷ୍ମ ବିଚାର ଅଛି । ୨ୟ ଓ ୩ୟ ଅଧ୍ୟାୟରେ ଯାସ୍କଙ୍କ ପୂର୍ବବର୍ତ୍ତୀ ୩ ଜଣ ନିରୁକ୍ତକାରଙ୍କ ନିଘଣ୍ଟୁରେ ଥିବା ଶବ୍ଦମାନଙ୍କ ବ୍ୟାଖ୍ୟା ସହିତ ଅର୍ଥ ଅଛି । ୪ର୍ଥ ଓ ୬ ଅଧ୍ୟାୟରେ ସାଙ୍କଙ୍କ ପ୍ରଣୀତ ନବ୍ୟ ନିଘଣ୍ଟୁର ଶବ୍ଦ ବିଷୟ ଅଛି । ୭ମଠାରୁ ଦ୍ୱାଦଶ ଅଧ୍ୟାୟରେ ବୈଦିକ ଦେବତାମାନଙ୍କର ବ୍ୟାଖ୍ୟା ଅଛି । ହି· ଶବ୍ଦସାଗର । ]

**ନିରୁକ୍ତି**—ସଂ. ବି. ( ନିର୍+ଉକ୍ତି )—
Nirukti ୧ । ନିରୁକ୍ତ, ବେଦାଙ୍ଗବିଶେଷ—
1. A glossary of the Vedas.
୨ । ନିଃଶେଷରେ କଥନ—
2. Exposition; description.
୩ । ପଦଭଞ୍ଜନ, ପଦର ପ୍ରକୃତି ପ୍ରତ୍ୟୟ ନିର୍ଣ୍ଣୟ—
3. Derivation of a word
୪ । ନିର୍ବାଚନ— 4 Election.
୫ । ନିର୍ଣ୍ଣୟ; ମୀମାଂସା—
5. Decision; determination of a question.

**ନିରୁଚ୍ଛାହ(ହା)**—ଗ୍ରା. ବିଣ. ( ସଂ. ନିରୁତ୍ସାହ )—ନିରୁତ୍ସାହ ( ଦେଖ )
Niruchchhāha(hā) Nirutsāha ( See )

**ନିରୁଚ୍ଛ୍ୱାସ**—ସଂ. ବି. ( ବହୁବ୍ରୀହି, ନିଃ+ଉଚ୍ଛ୍ୱାସ )—
Niruchchhwāsa ୧ । ଲହରୀ ରହିତ—
1. Waveless; without upheaval.
୨ । ନିଶ୍ୱାସରହିତ; ବିଚେତନ—2. Breathless.
୩ । ଅପ୍ରଶସ୍ତ; ସଙ୍କୀର୍ଣ୍ଣ—3. Narrow; scanty.
୪ । ଜନାକୀର୍ଣ୍ଣ—4. Crowded.

**ନିରୁଜ**— ଦେ. ବିଣ—ରୋଗରହିତ, ସୁସ୍ଥ—
Niruja Hale; free from disease; healthy ( M. W. )

ମାରା ଭୁସ୍ତ ବଧୂ ଅଙ୍କ ମତା ନିରୁଜ । ଅନ୍ତିମଶେଲୁ ଦିବୁଷିଷ୍ଟଦ୍ରୀମର୍ଣି ।

**ନିରୁତା**—ଦେ. ବିଣ.—୧ । ନିର୍ମେଳା; ଅମିଶ୍ରିତ; ଖାଣ୍ଟି—
Nirutā 1. Unalloyed; unadulterated.
(ନିମେଶତା—ଅନ୍ୟରୂପ) ଲକ୍ଷ ଝେଲ ନିରୁତା ଦ୍ରୁଷ ଅଙ୍କ ଅଙ୍କ ପାଷେଲ ଲ୍ଲିକ୍ଷିବା ।
ଖାଁଟୀ ନିଖ ଫକୀରମୋହନ, ଲଛ୍ମନ୍ତ ।
୨ । ବିଶୁଦ୍ଧ—2. Pure.

୩ । ଅସଲ, ଅକୃତ୍ରିମ—3. Geunine.

**ନିରୁତ୍ତର**—ସଂ. ବିଣ. ପୁଂ (ବହୁବ୍ରୀହି, ନିର୍=ନାହିଁ+ଉତ୍ତର ଯାହାର)—
Niruttara ୧ । ଯେ ଉତ୍ତର ଦେଇ ପାରେ ନାହିଁ—
(ନିରୁତ୍ତରା—ସ୍ତ୍ରୀ) 1. Unable to give an answer.
୨ । ନିର୍ବାକ୍, ଯାହାକୁ ଚୁପ କରି ଦିଆଯାଏ—
2. Answerless, silenced; nonplussed
୩ । ପ୍ରତ୍ୟୁତ୍ତରରହିତ—3. Unable to answer.
୪ । ମୂକ—4. Speechless; mute.
୫ । ମୌନୀ —5 Silent.
୬ । ଯାହା ଅପେକ୍ଷା ବଡ଼ କେହି ନାହିଁ—
6 Having no superior (M. W.)

**ନିରୁତ୍ତାପ**—ସଂ. ବିଣ. (ବହୁବ୍ରୀହି, ନିର୍+ଉତ୍ତାପ)—୧ । ଉତ୍ତାପଶୂନ୍ୟ —
Niruttāpa 1. Free from heat.
୨ । ଶୀତଳ—2. Cool; cold.
୩ । ରାଗଦ୍ୱେଷାଦିଶୂନ୍ୟ—
3. Free from passion.

**ନିରୁତ୍ପାତ**—ସଂ. ବିଣ. ( ବହୁବ୍ରୀହି,=ନିର୍+ଉତ୍ପାତ )—୧ । ଉପଦ୍ରବ-
Nirutpāta ଶୂନ୍ୟ—1 Free from oppression or complications.
୨ । ଦୁଃଖ ଶୂନ୍ୟ—2 Free from distress.

**ନିରୁତ୍ସାହ**—ସଂ. ବିଣ. ପୁଂ (ବହୁବ୍ରୀହି, ନିର୍+ଉତ୍ସାହ)—
Nirutsāha ୧ । ଉତ୍ସାହଶୂନ୍ୟ—
(ନିରୁତ୍ସାହା—ସ୍ତ୍ରୀ) 1. Devoid of zeal.
୨ । ଉଦ୍ୟମଶୂନ୍ୟ—2. Having no exertion.
୩ । ଅଳସ—3. Indolent.
ବି —ଉତ୍ସାହର ଅଭାବ—Want of zeal.

**ନିରୁତ୍ସାହା**—ଗ୍ରା. (ପଦ୍ୟ) ବିଣ.—ନିରୁତ୍ସାହ (ଦେଖ)
Nirutsāhā Nirutsāha (See)

ତୁମ୍ଭେ ସହାୟରୁ ସହିଲୁ ଅମ୍ଭେ ଯାହା,
ସୁଯୋଧନ ଜାଣ ହେଲେ ନିରୁତ୍ସାହା—କୃଷ୍ଣସିଂହ. ମହାଭାରତ ବନ ।

**ନିରୁତ୍ସୁକ**—ସଂ. ବିଣ. ପୁଂ (ନିର୍=ଅତିଶୟ+ଉତ୍ସୁକ)+
Nirutsuka ୧ । ନିରତିଶୟ ବା ଅତ୍ୟନ୍ତ ଆଗ୍ରହଯୁକ୍ତ—
(ନିରୁତ୍ସୁକା—ସ୍ତ୍ରୀ) 1. Very ardent; over zealous.
୨ । (ନିର୍=ନାହିଁ+ଉତ୍ସୁକ)—ଆଗ୍ରହହୀନ—
2. Without eagerness.
ସଂ. ବି.—୧ । (ନାମ)—ରୈବତକ ମନୁଙ୍କର ପୁତ୍ରବିଶେଷ—
1. Name of a son of Raibataka manu.
୨ । ତ୍ରୟୋଦଶ ମନ୍ୱନ୍ତରରେ ସପ୍ତର୍ଷି ମଧ୍ୟରେ ଭାର୍ଗବ ଋଷି—
2. Name of a Sage.

**ନିରୁଦ୍ଦେଶ**—ସଂ. ବିଣ.—(ନିର୍+ଉଦ୍ଦେଶ=ସନ୍ଧାନ, ବାର୍ତ୍ତା, ସମ୍ବାଦ,
Niruddesa ବହୁବ୍ରୀହି)—୧ । ଅଜ୍ଞାତ—1. Unknown.
୨ । ଯାହାର କୌଣସି ସନ୍ଧାନ ମିଳୁ ନାହିଁ—
2. Untraceable

**ନିରୁଦ୍ଦେଶ ହେବା**— ଦେ. କ୍ରି — ଅଜ୍ଞାତବାସ କରିବା, ପଳାତକ ହେବା—
Niruddesa heba To go away and live at a place which cannot be traced; to abscond.

**ନିରୁଦ୍ଧ**—ସଂ. ବିଣ. ପୁଂ (ନି=ସମ୍ୟକ୍+ରୁଧ୍ ଧାତୁ=ରୋଧ କରିବା+କର୍ମବାଚ୍ୟରେ. ତ)—୧ । ଆବଦ୍ଧ, ଅବରୁଦ୍ଧ—
Niruddha
(ନିରୁଦ୍ଧା—ସ୍ତ୍ରୀ) 1. Confined.
୨ । ବାଧାପ୍ରାପ୍ତ—
2 Restrained; obstructed; impeded.
୩ । ନିବାରିତ—3. Prevented; hindered.
୪ । ବେଷ୍ଟିତ—4. Encompassed; blockaded, besieged; surrounded on all sides.
୫ । ପ୍ରତିବଦ୍ଧ—5. Blocked up.
୬ । ସ୍ଥଗିତ— 6. Stopped.

**ନିରୁଦ୍ବିଗ୍ନ** - ସଂ. ବିଣ. ପୁଂ (ନିର୍=ନାହିଁ+ଉଦ୍ବିଗ୍ନ)—୧ । ନିରାକୁଳ—
Nirudbigna 1. Not perplexed.
(ନିରୁଦ୍ବିଗ୍ନା—ସ୍ତ୍ରୀ) ୨ । ନିଶ୍ଚିନ୍ତ, ସ୍ଥିର, ଶାନ୍ତ—2. Sedate; free from alarm or anxiety.
୩ । ଅଶଙ୍କିତ —3. Unalarmed.

**ନିରୁଦ୍ବେଗ**—ସଂ. ବିଣ ପୁଂ (ବହୁବ୍ରୀହି, ନିର୍+ଉଦ୍ବେଗ)—୧ । ନିଶ୍ଚିନ୍ତ
Nirudbega 1. Free from anxiety.
(ନିରୁଦ୍ବେଗା ସ୍ତ୍ରୀ) ୨ । ସ୍ଥିର—2. Calm; tranquil.
୩ । ଅକାତର, ଅଚଞ୍ଚଳ—3. Unperturbed; undisturbed; unagitated.
ବି.- ନିରୁଦ୍ବିଗ୍ନତା—Freedom from perplexity or anxiety or sorrow.
ଦେ. କ୍ରି. ବିଣ.—୧ । ଉଦ୍‌ବେଗରହିତ ହୋଇ—
1. Being free from anxiety.
ଯବନର ଭୋଗ ଲାଗି ତଷ ନିରୁଦ୍‌ବେଗ,
ଯବନର ଛାଇ ତଳେ ପୈତୃକ ଅବନୀ— ରାଧାନାଥ, ମହାଯାତ୍ରା ।
୨ । ସ୍ଥିରଭାବରେ—2. Calmly.

**ନିରୁଦ୍ୟତ**—ସଂ. ବିଣ. ପୁଂ. (ନିର୍+ଉଦ୍ୟତ)—୧ । ଅନୁଦ୍ୟତ, ଅପ୍ରସ୍ତୁତ-
Nirudyata 1. Unready; not ready for; not prepared for.
(ନିରୁଦ୍ୟତା—ସ୍ତ୍ରୀ)
୨ । ଅପ୍ରବୃତ୍ତ -2 Not engaged in.

**ନିରୁଦ୍ୟତି** - ସଂ. ବିଣ. (ନିର୍+ଉଦ୍ୟତି=ଉଦ୍ୟୋଗ)—
Nirudyati ୧ । ନିରୁଦ୍ୟୋଗ —1 Without zeal; having no eagerness or effort.
୨ । ନିରୁଦ୍ୟତ—2 Unready.
୩ । ଅପ୍ରସ୍ତୁତ—3 Unprepared.
ବି -ନିରୁଦ୍ୟମ—Want of zeal or exertion.

**ନିରୁଦ୍ୟମ**--ସଂ. ବିଣ. ପୁଂ. (ବହୁବ୍ରୀହି, ନିର୍+ଉଦ୍ୟମ)—
Nirudyama ୧ । ଉଦ୍ୟମହୀନ, ନିଶ୍ଚେଷ୍ଟ —
(ନିରୁଦ୍ୟମା ସ୍ତ୍ରୀ) 1. Zealless; effortless.
(ନିରୁଦ୍ୟମତା—ବି) ୨ । ଅଳସ—2. Lazy; idle.
ବି—୧ । ନିଶ୍ଚେଷ୍ଟତା—1. Want of effort or exertion.
୨ । ଆଳସ୍ୟ—2 Laziness.

**ନିରୁଦ୍ୟମି**—ସଂ. ବିଣ. ପୁଂ. (ନିର୍+ଉଦ୍ୟମିନ୍, ୧ମା ୧ବ)
Nirudyami ନିରୁଦ୍ୟମ ( ଦେଖ )
Nirudyama ( See )

**ନିରୁଦ୍ୟୋଗ**—ସଂ. ବିଣ. ପୁଂ. (ବହୁବ୍ରୀହି, ନିର୍+ଉଦ୍ୟୋଗ)—
Nirudyoga ୧ । ଉଦ୍ୟମଶୂନ୍ୟ, ନିରୁଦ୍ୟମ—
(ନିରୁଦ୍ୟୋଗା—ସ୍ତ୍ରୀ) 1. Making no effort or exertion.
୨ । ଅଳସ —2. Lazy.
ବି —୧ । ଉଦ୍ୟମର ଅଭାବ —
1. Want of zeal or effort.
୨ । ଆଳସ୍ୟ—2 Laziness.

**ନିରୁପକାରୀ**—ସଂ. ବିଣ. ପୁଂ. (ନିର୍+ଉପକାରିନ୍, ୧ମା. ୧ବ) —
Nirupakāri ଅନୁପକାରୀ—Not benefiting; not helping.
(ନିରୁପକାରିଣୀ ସ୍ତ୍ରୀ)

**ନିରୁପଚାର**—ସଂ. ବିଣ. ପୁଂ —୧ । ଚିକିତ୍ସାହୀନ, ସେବାଶୂନ୍ୟ—
Nirupachāra 1. Without medical attendance or treatment.
(ନିରୁପଚାରା—ସ୍ତ୍ରୀ)
୨ । ସଜ୍ଜାହୀନ —2 Unequipped.
୩ । ଅପ୍ରଚଳିତ—3. Not in vogue.
୪ । ଉପାୟହୀନ—4. Helpless; remediless.
ବି—୧ । ଅନଭ୍ୟାସ—1 Want of practice.
୨ । ସେବାଶୂନ୍ୟତା—
2. Want of service or attendance.

**ନିରୁପଦ୍ରବ** - ସଂ. ବି. (ନିର୍+ଉପଦ୍ରବ, ବହୁବ୍ରୀହି)—
Nirupadraba ୧ । ଉତ୍ପାତରହିତ, ଆପଦ୍‌ହୀନ, ଦୌରାତ୍ମ୍ୟହୀନ—
1. Free from outrage or oppression or distress.
୨ । ଶାନ୍ତ—2 Tranquil; peaceful.
(ନିରୁପଦ୍ରବା—ସ୍ତ୍ରୀ) ୩ । (ପୁଂ.) ଯେ ଉତ୍ପାତ କରେ ନାହିଁ—
3. Not committing any oppression.
ବି ୧ । ବିଷ୍ଣୁ—1. A name of Bishnu.
୨ । ଶାନ୍ତି—2. Security.
୩ । ଉପଦ୍ରବର ଅଭାବ—3 Absence of oppression or outrage.

**ନିରୁପଦ୍ରବୀ**—ସଂ ବିଣ. ପୁଂ. (ନିର୍+ଉପଦ୍ରବିନ୍, ୧ମା. ୧ବ)—
Nirupadrabi ଯେ ଉପଦ୍ରବ କରେ ନାହିଁ (ହି. ଶ)—
Not oppressive.

**ନିରୁପଦ୍ରୁତ**—ସଂ. ବିଣ. (ନିର୍+ଉପ+ଦ୍ରୁ ଧାତୁ+କର୍ତ୍ତୃ. ତ)—
Nirupadruta ଉପଦ୍ରବଶୂନ୍ୟ—
(ନିରୁପପ୍ଲବ—ଅନ୍ୟରୂପ) Free from outrage or distress.

ବି—୧ । ଉପଦ୍ରବର ଅଭାବ—1 Absence of outrage.
୨ । ଶାନ୍ତି—2. Security; peace.

**ନିରୁପମ**—ସଂ. ବିଣ. ପୁଂ. (ବହୁବ୍ରୀହି, ନିର୍=ନାହିଁ+ଉପମା ଯାହାର)—
Nirupama ଅନୁପମ, ଅତୁଳନୀୟ, ଅପ୍ରତିମ —
(ନିରୁପମା—ସ୍ତ୍ରୀ) Incomparable; matchless; peerless; paragon; unparalleled; unequalled.

**ନିରୁପରୋଧ**—ସଂ. ବି—ଉପରୋଧଶୂନ୍ୟତା—
Niruparodha Impartiality.
(ନିରୁପରୋଧା—ସ୍ତ୍ରୀ) ବିଣ—୧ । ଅପକ୍ଷପାତୀ—1. Impartial.
୨ । ମଧ୍ୟସ୍ଥ—2. Situated between.

**ନିରୁପାଖ୍ୟ**—ସଂ. ବିଣ. (ବହୁବ୍ରୀହି, ନିର୍+ଉପ+ଆଖ୍ୟା)—
Nirupākhya ୧ । ଅନିର୍ବଚନୀୟ—1. Indescribable;
(ନିରୁପାଖ୍ୟା—ସ୍ତ୍ରୀ) unutterable; unspeakable.
୨ । ଅବାସ୍ତବ—2. Unreal.
ବି—୧ । ପରଂବ୍ରହ୍ମ—1. Supreme Soul.
୨ । ଅବାସ୍ତବ ପଦାର୍ଥ—2 Any unreal thing.

**ନିରୁପାଧି**—ସଂ. ବିଣ. (ବହୁବ୍ରୀହି, ନିର୍+ଉପାଧି)—
Nirupādhi ୧ । ଉପାଧିବର୍ଜିତ—1. Destitute of selfishness.
(ନିରୁପାଧିକ - ଅନ୍ୟରୂପ)
୨ । ନିର୍ଗୁଣ—2 Selfless; unselfish.
୩ । ଉଦ୍ଦେଶ୍ୟଶୂନ୍ୟ—3. Disinterested.
୪ । ନିର୍ଦ୍ଦୋଷ—4. Blameless.
୫ । ଅକାରଣ; ଅହେତୁକ—5. Causeless.
୬ । ସତ୍‌ପ୍ରକୃତିକ—6. Honest.
୭ । ଅକପଟ, ଅମାୟିକ—7. Sincere; guileless.
୮ । ପରଶୁଦ୍ଧ—8. Pure.
ବି—୧ । ବିଷ୍ଣୁ—1. A name of Bishṇu.
୨ । ପରଂବ୍ରହ୍ମ—2. The Supreme Sou.

**ନିରୁପାମ**—ଗ୍ରା. (ପଦ୍ୟ) ବିଣ. (ସଂ. ନିରୁପମ)—ନିରୁପମ (ଦେଖ)
Nirupāma Nirupama (See)

ଶବଦ ବ୍ରହ୍ମ ତୋର ନାମ
ସେ ନିତ୍ୟ ସତ୍ୟ ନିରୁପାମ । ଲୁପଟ. ପ୍ରେମପଞ୍ଚାମୃତ ।

**ନିରୁପାୟ**—ସଂ. ବିଣ. ପୁଂ. (ବହୁବ୍ରୀହି; ନିର୍+ଉପାୟ)—
Nirupāya ୧ । ଉପାୟରହିତ—
(ନିରୁପାୟା—ସ୍ତ୍ରୀ) 1. Left without resources.
୨ । ଉପାୟଶୂନ୍ୟ—2. Remediless.
୩ । ନିରାଶ୍ରୟ—3. Helpless.
୪ । ଆୟଶୂନ୍ୟ—
4. Without resource or expedients.
୫ । ନିରବଲମ୍ବନ—
5. Having no means of support.
ବି.—ଉପାୟର ଅଭାବ—Resourcelessness.

**ନିରୁପେକ୍ଷ**—ସଂ. ବିଣ. ପୁଂ (ବହୁବ୍ରୀହି, ନିର୍+ଉପେକ୍ଷା)—
Nirupeksha ୧ । ଉପେକ୍ଷାଶୂନ୍ୟ—
(ନିରୁପେକ୍ଷା—ସ୍ତ୍ରୀ) 1 Free from indifference.
୨ । ସାଧୁ—2. Honest; righteous.

**ନିରୁପେକ୍ଷା**—ସଂ. ବି. (ନିର୍+ଉପେକ୍ଷା)—୧ । ଆଦର, ସମ୍ମାନ—
Nirupekshā 1 Regard; respect.
୨ । ମନୋଯୋଗ—2. Attention.

**ନିରୁଢ଼**—ସଂ. ବିଣ. ପୁଂ (ନି+ରୁହ୍ ଧାତୁ+ତ, କିମ୍ବା ନିର୍+ଊଢ=
Nirūrdha ବିବାହିତ)—୧ । ଅବିବାହିତ—
(ନିରୂଢା—ସ୍ତ୍ରୀ) 1 Unmarried.
୨ । ଉତ୍ପନ୍ନ—2. Produced, grown.
୩ । ପ୍ରସିଦ୍ଧ—3. Famous.
୪ । ଲୋକପ୍ରଚଳିତ, ସର୍ବସାଧାରଣ—
4. Current; common; conventional; usual; in popular usage.
୫ । ସମବେତ—5. Assembled.
୬ । ମିଶ୍ରିତ—6. Mixed.
୭ । ସ୍ୱତଃସିଦ୍ଧ—7. Inherent.
୮ । ( ବ୍ୟାକରଣ ) ଯେଉଁ ଶବ୍ଦର ଅର୍ଥ ପ୍ରକୃତିପ୍ରତ୍ୟୟଗତ ଅର୍ଥ ସଙ୍ଗେ ମିଳେ ନାହିଁ—8. ( grammar ) Unetymological; not etymologically explainable.
ବି.—୧ । ରୂଢ଼ି ଲକ୍ଷଣଦ୍ୱାରା ଅର୍ଥ ପ୍ରତିପାଦକ ଶବ୍ଦ—
1. A word with metaphorical meaning.
୨ । ଶବ୍ଦର ଲୋକପ୍ରଚଳିତ ଅର୍ଥ—2. A word having a conventional meaning; the common acceptance of words.
୩ । ପଶୁଯାଗବିଶେଷ—3. Name of a kind of animal sacrifice.

**ନିରୁଢ ମୂଳ**—ସଂ. ବିଣ.—ଯାହାର ମୂଳ ଦୃଢ଼ଭାବରେ ଥାଏ—
Nirūrdha mūla Firmly rooted.

**ନିରୁଢ଼ ଲକ୍ଷଣା**—ସଂ. ବି.—(ବ୍ୟାକରଣ;—୧ । ଶକ୍ତି ତୁଲ୍ୟ ଲକ୍ଷଣା—
Nirūrdha lakshaṇā 1. A metaphor.
୨ । ଯେଉଁ ଲକ୍ଷଣା ପ୍ରକୃତିପ୍ରତ୍ୟୟ ସଙ୍ଗେ ସମ୍ପର୍କରହିତ—
2. Conventional nature; the secondary use of a word which is based not on the particular intention of the speaker but on its accepted and popular usage. (M. W.)

**ନିରୁଢ଼ା**—ସଂ. ବି. (ବ୍ୟାକରଣ)—୧ । ରୁଢ଼ି ହେତୁକ ଲକ୍ଷଣା—
Nirūrdhā 1. A sort of metaphor or ellipsis in composition.
୨ । ନିରୁଢ଼ ଲକ୍ଷଣା (ଦେଖ)
2. Nirūrdha lakshaṇā (See)

ନିରୂଢ଼ି—ସଂ. ବି. (ନି+ରୁହ୍+ଭାବ କ୍ତି)—୧ । ଲୋକପ୍ରସିଦ୍ଧି—
Nirūrdhi Celebrity; convention; popular usage.
୨ । ଯୋଗ୍ୟତା, ପାରଗତା—
2 Proficiency (Apte)

ନିରୂପ—ସଂ. ବି.—୧ । ବାୟୁ (ହି ଶ.)—
Nirūpa 1 Air.
୨ । ଦେବତା (ହି. ଶ.)—2 Deity
୩ । ଆକାଶ (ହି. ଶ.)—3 Sky

ନିରୂପକ—ସଂ. ବିଣ. (ନି+ରୂପ୍ ଧାତୁ=ରୂପ ଯୁକ୍ତ କରିବା, ଣିଚ୍ ରୂପି ଧାତୁ+କର୍ତ୍ତୃ. ଅକ)—୧ । ନିରୂପଣକାରୀ; ନିର୍ଣ୍ଣାୟକ—
Nirūpaka 1. Ascertaining, determining.
୨ । ନିୟାମକ—
2 Regulation, directing; agreeing.
ବି—ନିୟାମକ ବ୍ୟକ୍ତି—
A director; a regulator.

ନିରୂପଣ—ସଂ. ବି. (ନି+ରୂପ୍ ଧାତୁ ଣିଚ ରୂପି ଧାତୁ+ଭାବ. ଅନ)—
Nirūpana ୧ । ନିର୍ଣ୍ଣୟ, ନିର୍ଦ୍ଧାରଣ, ସ୍ଥିରୀକରଣ, ଅବଧାରଣ—
(ନିରୂପଣା—ଅନ୍ୟରୂପ) 1. Ascertaining; determination; fixing.
୨ । ନିୟୋଗ—2 Prescription; appointing.
୩ । ବିବରଣ—3 Description; discussion.
୪ । ଅବଲୋକନ, ଦର୍ଶନ—
5. Sight; looking at.
୬ । ବିତର୍କ—6. Inference; reasoning
୭ । ଅନୁସନ୍ଧାନ, ଅନ୍ୱେଷଣ—
7 Search; inquiry; investigation.
୮ । ରୂପ, ଆକାର—
8 Form; shape (Apte).

ନିରୂପଣୀୟ—ସଂ. ବିଣ. (ନି+ରୂପି ଧାତୁ+କର୍ମ. ଅନୀୟ)—
Nirūpaniya ୧ । ନିରୂପଣ ଯୋଗ୍ୟ, ଅବଧାରଣ ଯୋଗ୍ୟ—
(ନିରୂପ୍ୟ—ଅନ୍ୟରୂପ) 1. Fit to be determined; ascertainable.
(ନିରୂପଣୀୟା—ସ୍ତ୍ରୀ)
୨ । ଅବଲୋକନୀୟ—2. Fit to be looked at.
୩ । ଚିନ୍ତନୀୟ, ବିଚାର୍ଯ୍ୟ—
3 Worthy of consideration.
୪ । ନିର୍ଦ୍ଦେଶନୀୟ—4. Assignable.
୫ । ବିତର୍କନୀୟ—5. Inferable.
୬ । ବର୍ଣ୍ଣନୀୟ—6 Describable.
୭ । ନିୟୋଗ୍ୟ—
7. Fit to be regulated or appointed.

ନିରୂପିତ—ସଂ. ବିଣ. (ନି+ରୂପି ଧାତୁ+କର୍ମ. ତ)—
Nirūpita ୧ । ନିର୍ଣ୍ଣୀତ, ନିଶ୍ଚିତ, ସ୍ଥିରୀକୃତ—
(ନିରୂପିତା—ସ୍ତ୍ରୀ) 1. Ascertained, determined.
(ନିରୂପିତ—ବି) ୨ । ଅବଧାରିତ—
2. Confirmed, fixed; settled; prescribed.
୩ । ଦୃଷ୍ଟ—3. Observed; seen; beheld.
୪ । ବିଗୃହୀତ, ବିବେଚିତ—
4. Judged; considered.
୫ । ଆଲୋଚିତ—5. Discussed.
୬ । ନିଯୁକ୍ତ—
6. Appointed; regulated; deputed.
୭ । ଆରୋପିତ—7. Assigned
୮ । ସ୍ଥାପିତ—8 Established.

ନିରେଇଁଶ - ଦେ. ବି ଓ ବିଣ - ନିରଇଁଶ ( ଦେଖ )
Nireiñsa Nirāiñsa ( See )
(ନିରେଇଁଶି—ଅନ୍ୟରୂପ)

ନିରେଖ—ବୈଦେ. ବି—ନିରଖ ( ଦେଖ )
Nirekha Nirakha ( See )
ଦେ. ବିଣ. ( ସଂ. ନୀରକ୍ଷ )—ନିରାଶ୍ରୟ, ଅରକ୍ଷକ—
Helpless.

ନିରେଖା -ଦେ ବି. ( ସଂ. ନିରୀକ୍ଷଣ )—ନିରୀକ୍ଷଣ ( ଦେଖ )
Nirekhā Nirikshana ( See )

ନିରେଖିବା—ଦେ. କ୍ରି. ( ସଂ. ନିରୀକ୍ଷଣ )—
Nirekhibā ୧ । ନିରୀକ୍ଷଣ କରିବା, ଚାହିଁବା—
निरीक्षण करना 1 To look at.
निरखना, ୨ । ଅତ୍ୟନ୍ତ ମନୋଯୋଗପୂର୍ବକ ଚାହିଁବା—
निरच्छना 2. To observe.

ନିରେଖି ଉଚାନ୍ତୁ ଥରେ ଅହା । କବିସୂର୍ଯ୍ୟ. କଳୋ.ସ୍ୱଚନ୍ଦ୍ର. ୫ ଗୀତ ।

ନିରୋ—ଦେ ବି ( ନାମ )—ରୋମର ଜନୈକ ନିଷ୍ଠୁର ରାଜା—
Niro Name of a very cruel Emperor of Rome.
निरो निरो [ ଦ୍ର—ରୋମ ନଗର ନିଆଁ ଲାଗି ଭସ୍ମୀଭୂତ ହେଉଥିବେଳେ ଏ ତାହା ଦେଖି ଆନନ୍ଦିତ ହୋଇ ବେହେଲା ବଜାଉ ଥିଲେ ]—

ନିରୋଗ(ଗା)—ଦେ. ବି—ନୀରୋଗ ( ଦେଖ )—
Niroga(ga) Niroga (See).
निरोग ବିଣ—ନୀରୋଗୀ ( ଦେଖ )—
Nirogi (See).

ନିରୋଗୀ(ଗୀ)—ଦେ. ବିଣ.—ନୀରୋଗୀ (ଦେଖ)—
Nirogā(gi) Nirogi (See).
निरोगी ନିରୋଗୀ ହୋଇଣ ବରଷ ଶତ ଜୀବ ।
निरोग, निरोगी କୃଷ୍ଣସିଂହ. ମହାଭାରତ. ଭୀଷ୍ମ ।

ନିରୋଧ—ସଂ. ବି. (ନି=ବିଶେଷ ଭାବରେ+ରୁଧ୍ ଧାତୁ=ବନ୍ଦ କରିବା—+ଭାବ ଅ)—
Nirodha
୧ । ବାଧା, ବିଘ୍ନ, ଅଟକ—
1. Obstruction; restraint; hindrance.
୨ । ଅବରୋଧ, ଚାରିଆଡେ ଘେରିବା, ଘେର—
2. Beseiging, blocking up.
୩ । କ୍ଷତି, ବିନାଶ, ଧ୍ୱଂସ—
3. Injury; destruction, loss.

୪ । ବାରଣ—4. Prohibition; prevention.
୫ । ନିଗ୍ରହ—5 Persecution
୬ । ପ୍ରତିରୋଧ, ପ୍ରତିକୂଳତା—6 Opposition.
୭ । ବାଧ୍ୟକରଣ—7. Coercion.
୮ । ଘୃଣା - 8 Antipathy; abhorrence.
୯ । କାରାବନ୍ଦନ—9 Confinement; imprisonment.
୧୦ । ପ୍ରଳୟ—10 Dissolution

ସହର ଅପାର ଶକତ, ଜଳେ ଶୟନ ଯୋଗପଥ,
ନିରୋଧ ବୋଲି ତାର ନାମ, ନିଜ ସ୍ୱଭାବେ ପୂର୍ଣ୍ଣକାମ । ଜଗନ୍ନାଥ. ଭାଗବତ ।

୧୧ । ଯୋଗସାଧନର ଅଙ୍ଗବିଶେଷ, ସମସ୍ତ ଚିତ୍ତବୃତ୍ତିମାନଙ୍କୁ ବିଷୟମାନଙ୍କରୁ ଫେରାଇ ଆଣିବା—
11. Restraining one's mind from following any object; suspension of mental operations.

**ନିରୋଧକ**—ସଂ. ବିଣ ( ନି+ରୁଧ୍ ଧାତୁ+କର୍ତ୍ତୃ. ଅକ )—
Nirodhaka ପ୍ରତିରୋଧକ, ବାଧା ଦେଉଥିବା—
( ନିରୋଧିକା—ସ୍ତ୍ରୀ ) Obstructing; restraining; preventing; persecuting; blocking up.

**ନିରୋଧନ**—ସଂ. ବି. ( ନି+ରୁଧ୍ ଧାତୁ+ଭାବ. ଅନ )—
Nirodhana ନିରୋଧକରଣ—Obstruction.
ରୋକିବା—Restraining.

**ନିରୋଧିବା**—ଦେ. କ୍ରି ( ସଂ ନି+ରୁଧ୍ ଧାତୁ )—
Nirodhibā ୧ । ଅଟକାଇବା, ବାଧା ଦେବା—
1. To restrain; to obstruct.

ନିରୋଧନ୍ତେ ପାଣ୍ଡୁ ସେନାଙ୍କୁ ଜୟଦ୍ରଥ,
ମହଡସୃଷ୍ଟ ପ୍ରବର୍ତ୍ତିଗ କରନାଥ । କୃଷ୍ଣସିଂହ. ମହାଭାରତ. ଦ୍ରୋଣ

निरोधा ୨ । ବନ୍ଦୀ କରିବା—2. Confine.
**निरोधना** ୩ । ଅବରୋଧ କରିବା—
3. To beseige; to block up.
୪ । ବାରଣ କରିବା—4. To prohibit.
୫ । ବାଧ୍ୟ କରିବା—5. To coerce

**ନିରୋଧୀ**—ସଂ. ବିଣ. ପୁଂ ( ନି+ରୁଧ୍ ଧାତୁ+କର୍ତ୍ତୃ ଇନ୍, ୧ମା ୧ବ )
Nirodhi ନିରୋଧକ ( ଦେଖ )—
( ନିରୋଧିନୀ—ସ୍ତ୍ରୀ ) Nirodhaka ( See ).

**ନିରୋପିବା**—ଦେ. ( ପଦ୍ୟ ) କ୍ରି. ( ସଂ ନିରୂପଣ )—
Niropibā ୧ । ନିରୂପଣ କରିବା; ନିର୍ଣ୍ଣୟ କରିବା—
(ନିରୁପିବା—ଅନ୍ୟରୂପ) 1. To ascertain; to settle.
निरोपा
**निरूपना**

ସକଳ ଧର୍ମ ସଙ୍ଗ ଅଟେ, ନିରୋପି ଜାଣ ଅନୁଗେ—
ଜଗନ୍ନାଥ. ଭାଗବତ ।

୨ । ଯୁକ୍ତ କରିବା—
2. To fix; to join to; to attach.

ଏରୂପେ ସାଧନ ସେ କଲେ
ଚକ୍ଷୁରେ ଅସ୍ତ୍ର ନିରୋପିଲେ—ଜଗନ୍ନାଥ. ଭାଗବତ ।

୩ । ନିଶ୍ଚଳରୂପେ ସ୍ଥାପିବା—
3. To place any thing fixedly.

ପଣ୍ଡିତସ୍ୱରୂପ ମୁନିଗଣେ
ମନ ନିରୋପି ତୋ ଚରଣେ— ଜଗନ୍ନାଥ, ଭାଗବତ ।

୪ । ନିରୀକ୍ଷଣ କରିବା—4 To observe

ଅଙ୍ଗକୁ ବୁଡ଼ଇ ଅଙ୍ଗ ଅଙ୍ଗୁ ଆକାର
ନିରୋପି ଚାହିଁଲେ ଦିଶେ ବ୍ରହ୍ମର ଆକାର—ଦ୍ୱାରୀ, ବ୍ରହ୍ମନିରୂପଣଗୀତା ।

**ନିରୋଲ୍**—ପ୍ରାଦେ ( ସମ୍ବଲପୁର ) ବିଣ—ନିରୋଲା, ଅମିଶ୍ରିତ, ଖାଣ୍ଟି—
Nirol Genuine; unadulterated.

**ନିରୋଳ(ଳା)**—ଦେ ବିଣ ( ସଂ ମାରୋଲ ବା ନିରାଳୟ )—
Nirola(lā) ୧ । ବିଜନ, ନିର୍ଜନ—1. Solitary; lonely.
निवाला ୨ । ସୁସ୍ପଷ୍ଟ—2. Conspicuous
**निरा, निराला** ୩ । ଅବିମିଶ୍ରିତ, ନିରୁତା—
3. Unadulterated; pure.

**ନିରୋଳିବା**—ଦେ. କ୍ରି—୧ । ଉନ୍ମୀଳନ କରିବା—
Nirolibā 1. To open.
ताकान ୨ । ପ୍ରକାଶ କରିବା—2. To exhibit.
**घूरना, ताकना** ୩ । ଏକ ଦୃଷ୍ଟିରେ ଚାହିଁ ରହିବା, ନିରେଖିବା—
3. To gaze at; to stare; to look at with a fixed look.

ଉର୍ଦ୍ଧ୍ୱେ ସେ ବେନକର ତୋଳି
ଚାହିଁଲ ଗଗନେ ନିରୋଳି—ଜଗନ୍ନାଥ, ଭାଗବତ ।

**ନିରୋଳେ**—ଦେ. କ୍ରି. ବିଣ—୧ । ନୀରବ ହୋଇ, ନିଃଶବ୍ଦରେ—
Nirole 1. Silently; without making any noise

ଜାଡ କୋଡେ ବସି ସାରସ-ଦମ୍ପତି ହୁଁ ନିରୋଳେ
ପାଂଶୁ-ଭୂଷଣେ ବୋଲୁଥାନ୍ତି ସିକ୍ତ-ବାୟୁ-ହିଲ୍ଲୋଳେ—
ରାଧାନାଥ, ଉଷା ।

୨ । ଏକାଗ୍ର ଚିତ୍ତରେ—
2. Attentively; with close attention.

ବାଗ୍‌ଦେବୀଚରଣେ ମୁଞ୍ଜିକ ନିରୋଳେ—ରାଧାନାଥ, ଉଷା ।

୩ । ଏକୁଟିଆ ହୋଇ, ନିର୍ଜନରେ—
3. Alone; in a solitary place

ଯୁବତୀ ଦେଖିଲେ ନିରୋଳେ ଲକ୍ଷଣେ ଥୁଅଇ ତରୁଣ—
ଭୂପତି, ପ୍ରେମପଞ୍ଚାମୃତ ।

୪ । ଉଦାସୀନଭାବରେ—4. Unconcernedly.

ଉତ୍ତୁତ ଜନ ଗୁଣାମେଳେ
ଅସାରୁ ରଖଇ ନିରୋଳେ—ଜଗନ୍ନାଥ, ଭାଗବତ ।

**ନିରୋଷ୍ଠକ**—ଦେ. ବି—୧ । ଶବ୍ଦାଳଙ୍କାରବିଶେଷ; ଯେଉଁ ପଦ୍ୟରେ
Niroshthaka ବ୍ୟବହୃତ ଶବ୍ଦମାନଙ୍କରେ ଓଷ୍ଠ୍ୟ ବର୍ଣ୍ଣର ଅକ୍ଷର ( ଅର୍ଥାତ୍ ଉ, ଊ, ପ, ଫ, ବ, ଭ, ମ—ଏ ସବୁ ) ନ ଥାଏ—1. A kind of composition in which no labial letter is used.
୨ । ଓଷ୍ଠ୍ୟବର୍ଣ୍ଣରହିତ ବାକ୍ୟ—
2 A word having no labial letter.

**ନିର୍‌ଋତି**—ସଂ ବି. ସ୍ତ୍ରୀ ( ନିର୍=ବିପରୀତ+ଋତି=ଶୁଭ )—
Nir-ṛuti ୧ । ଅଲକ୍ଷ୍ମୀ, ଉଦ୍ଦାଳକ ଋଷିପତ୍ନୀ, ଲକ୍ଷ୍ମୀଙ୍କ ବଡ଼ ଭଉଣୀ—
1. The elder sister of Lakshmi and the wife of sage Uddālaka.

୬ । ଅସୌଭାଗ୍ୟ—
2. Misfortune; adversity; calamity.
୩ । ଦୁଃଖ –
3. Affliction; distress; calamity.
୪ । ଉପଦ୍ରବ—4. Oppression. harassment
୫ । ଦକ୍ଷିଣପଶ୍ଚିମ କୋଣର ଅଧିଷ୍ଠାତ୍ରୀ ଦେବୀ—
5. The goddess presiding over the south western corner of the earth.
ପୁଂ—ନୈଋତ ଦିକ୍‌ପାଳ—
The God guarding the S. W. quarter of the earth.
ବି—ଉପଦ୍ରବପୂର୍ଣ୍ଣ—
Full of harassment or oppression

**ନିଋଥ**—ସଂ ବି ( ନିର୍+ଋ ଧାତୁ=ଗତି କରିବା+ସଜ୍ଞାର୍ଥେ ଥ )—
Nirrutha — ସାମବେଦ—The Sāma beda

**ନିର୍ଗ**—ସଂ. ବି—ଦେଶ ( ହି. ଶବ୍ଦସାଗର )—
Nirga — Country.

**ନିର୍ଗତ**—ସଂ. ବିଣ. (ନିର୍+ଗମ୍ ଧାତୁ+କର୍ତ୍ତି ତ)—୧ । ବହିର୍ଗତ—
Nirgata — 1. Gone forth; issued.
( ନିର୍ଗତା—ସ୍ତ୍ରୀ ) ୨ । ଅପଗତ, ନିଷ୍କୃତ
1. Gone out; extracted.
୩ । ନିଷ୍କ୍ରାନ୍ତ—3 Expelled.
୪ । ଏକଆଡ଼େ ଭିତରେ ପଶି ଅନ୍ୟଆଡ଼େ ବାହାରିଯିବା—
5. Entered at one side and come out at the other.

**ନିର୍ଗତି**—ସଂ. ବି. ( ନିର୍+ଗତି )—ନିର୍ଗମ, ବହିର୍ଗମନ ସ୍ଥାନ—
Nirgati — An outlet; an exit

**ନିର୍ଗନ୍ଧ**—ସଂ. ବିଣ. ( ବହୁବ୍ରୀହି, ନିର୍+ଗନ୍ଧ )—ଗନ୍ଧହୀନ; ଗନ୍ଧଶୂନ୍ୟ—
Nirgandha (ନିର୍ଗନ୍ଧତା—ବି) Scentless; odourless.

**ନିର୍ଗମ**—ସଂ. ବି. ( ନିର୍+ଗମ୍ ଧାତୁ+କରଣ. ଅନ )—
Nirgama ୧ । ବହିର୍ଗମନଦ୍ୱାର—1. An exit, an outlet.
( ନିର୍ଗମନ—ଅନ୍ୟରୂପ ) ୨ । ( +ଭାବ. ଅ ) ବାହାରିକୁ ଯିବା —
2. Going out; out-flow.
୩ । ନିଷ୍କ୍ରମଣ—3. Departure; issue
୪ । ନାଶ—4. Loss.

**ନିର୍ଗମିବା**—ଦେ. (ପଦ୍ୟ) କ୍ରି—ବାହାରିବା—
Nirgamibā — To go out.
**ନିର୍ଗମା** କଣ୍ଠକ୍ଷେ ବର୍ଣ୍ଣ ଅବଗାହନ
**ନିର୍ଗମନା** ନିର୍ଗମନ ଲଭନ୍ତି ପ୍ରଭାମଣ୍ଡଳ । ନନ୍ଦକଶୋର. ସୀତାବନବାସ ।

**ନିର୍ଗର୍ବ**—ସଂ. ବିଣ. ( ବହୁବ୍ରୀହି, ନିର୍+ଗର୍ବ )—ଗର୍ବହୀନ—
Nirgarba — Free from pride.

**ନିର୍ଗଳନ**—ସଂ. ବି. ( ନିର୍+ଗଳନ )—
Nirgalana ୧ । ଦ୍ରବୀକରଣ, ତରଳାଇବା, ବିଗଳନ—
1. Act of melting or dissolving.
୨ । ନିଗାଡ଼ିବା—2. Pouring out.

**ନିର୍ଗୁଣ**—ସଂ. ବିଣ. ( ବହୁବ୍ରୀହି, ନିଃ+ଗୁଣ )—
Nirguna ୧ । ଗୁଣରହିତ, ଗୁଣହୀନ—
(ନିର୍ଗୁଣା—ସ୍ତ୍ରୀ) 1. Without qualities or attributes.
ନିର୍ଗୁଣତା } ବି
ନିର୍ଗୁଣତ୍ୱ }
୨ । ଅଯୋଗ୍ୟ—2. Worthless, useless
୩ । ସତ୍ତ୍ୱ, ରଜ, ତମ ଏହି ତ୍ରିଗୁଣରହିତ—
3. Destitute of attributes.
୪ । ଯହିଁରେ ଗୁଣ ବା ରଜ୍ଜୁ ନାହିଁ—
4. Stringless.
୫ । ଧନୁର୍ଗୁଣରହିତ—
5. Destitute of the bow string.
୬ । ସ୍ୱଗୁଣହୀନ—
6. Destitute of good qualities.
ବି—ତ୍ରିଗୁଣାତୀତ ପରମେଶ୍ୱର—God who is above worldly attributes; the Supreme Being.

**ନିର୍ଗୁଣତା**—ସଂ. ବି—ଗୁଣହୀନ, ନୈର୍ଗୁଣ୍ୟ—
Nirgunatā Freedom from all mortal passions
(ନିର୍ଗୁଣତ୍ୱ—ଅନ୍ୟରୂପ) or attributes; worthlessness.

**ନିର୍ଗୁଣ୍ଠୀ**—ସଂ. ବି—ନିର୍ଗୁଣ୍ଡୀ ( ଦେଖ )
Nirgunthi — Nirgundi ( See )

**ନିର୍ଗୁଣ୍ଡୀ**—ସଂ. ବି. ( ନିର୍=ବାହାରେ+ଗୁଣ୍ଡ୍ ଧାତୁ=ବେଷ୍ଟନ କରିବା+ଅ+ସ୍ତ୍ରୀ. ଈ )—
Nirgundi
ସଂ. ନୀଲପୁଷ୍ପୀ, ଶେଫାଳୀ, ସୁବହା
ଓ. ବେଗୁନିଆ
ନିଲନିସିନ୍ଦା
**निर्गुण्डी; मेउडी; सम्भालु**
ଫା. ମିସ୍‌ବାନ
ଲେ. ଭାଇଟେକ୍ସ ନେଗୁଣ୍ଡୋ, ଡେଲବ
ସଂ. ସିନ୍ଧୁବାର, ଶ୍ୱେତପୁଷ୍ପ, ଅର୍ଥସିନ୍ଧକ, ସିନ୍ଧକ, ସିନ୍ଧୁକ, ସିନ୍ଧୁବାରକ, ଇନ୍ଦ୍ରସୁରସ, ସ୍ଥିରସାଧକ, ଇନ୍ଦ୍ରାଣିକା, ସିନ୍ଧୁକ, ଅନନ୍ତ ସିନ୍ଧୁବାର, ସିନ୍ଧୁବାରକ, ଇନ୍ଦ୍ରାଣୀ, ପୌଲମୀ, ଶକ୍ରାଣୀ, କାଶନାଶିନୀ
ଓ. ବେଗୁନିଆଁ
ଶ୍ୱେତ ନିର୍ସିନ୍ଦା
**सम्भालु, सिहरु**
ପା. ଫଞ୍ଜନ୍‌ଙ୍କୁଷ୍ଟ
ଆ. ଅସଲୁକ୍

୧ । ନେଳ ବେଗୁନିଆଁ; ଭୃଣ୍ଡୀବୃନ୍ଦ ବର୍ଗର କ୍ଷୁପବିଶେଷ—
1. Vitex Negundo.
[ ଦ୍ର—ଏ ଗଛର ଫୁଲ ନେଳିଆ ବା ବାଇଗଣୀ ରଙ୍ଗର ଓ ପତ୍ର ସୁଗନ୍ଧଯୁକ୍ତ ଅଟେ । ]
୨ । ଧଳା ବେଗୁନିଆଁ, ଭୃଣ୍ଡୀବୃନ୍ଦ ବର୍ଗର ବଡ଼ କ୍ଷୁପବିଶେଷ—
2. Vitex Trifolia; a wild plant; five leaved chaste tree.
[ ଦ୍ର—ଏହାର ଡାଳ ଶ୍ଲେଷ୍ମଘ୍ନ, ପତ୍ର ସୁଗନ୍ଧ ଓ ୩ ରୁ ୫ ଅଙ୍ଗୁଳି ପର୍ଯ୍ୟନ୍ତ ଲମ୍ବ ହୁଏ । ଫୁଲ ଛୋଟ ଛୋଟ ଧଳା ରଙ୍ଗର ଓ ଗ୍ରୀଷ୍ମକାଳରେ ଫୁଟେ । ଏହି ଦୁଇ ଗଛର ପତ୍ର ଓ ଫଳ ବାତ ରୋଗର ଔଷଧରେ ଲାଗେ । ଏହାର ପତ୍ର ସଙ୍ଗେ ପାଚିଁଶ ମିଶାଇ ମୁଗରେ ପକାଇଲେ ସେଥିରେ ପୋକ ଲାଗନ୍ତି ନାହିଁ ।

ତେ. ନୀବାବଲ୍ଲ ବୈଦ୍ୟଶାସ୍ତ୍ରରେ ଆଉ ଦୁଇ ପ୍ରକାର
ତା. ନିମ୍ମିଣ ସିନ୍ଦୁବାରର ଉଲ୍ଲେଖ ଅଛି । କର୍ଣ୍ଣିଶ
ମ. ନିଗଣ୍ଡ ସିନ୍ଦୁବାର ଓ ଆରଣ୍ୟ ସିନ୍ଦୁବାର ।
ଏମାନଙ୍କର ପତ୍ର ଓ ପୁଷ୍ପ ଔଷଧରେ ଲାଗେ ।

ବୈଦ୍ୟଶାସ୍ତ୍ର ମତରେ ଏହା କଟୁତିକ୍ତ, ଲଘୁ, କଫ, ବାତ, ଶୋଥ, କୁଷ୍ଠ, କଣ୍ଡୂ ଓ ଶୂଳନାଶକ, କାମୁସିଦ୍ଧକ, ସ୍ମୃତିଦ, କେଶବର୍ଦ୍ଧକ, ନେତ୍ରହିତକର, ବାତଶ୍ଳେଷ୍ମହର ଓ କଫଘ୍ନ ଅଟେ ।

**ନିର୍ଗୂଢ଼**—ସଂ. ବିଣ. (ନିର୍=ଭିତରେ+ଗୁହ୍ ଧାତୁ=ଆଚ୍ଛାଦନ+କର୍ମ. ତ)—୧ । ସମ୍ବୃତ, ସମାଚ୍ଛାଦିତ—
Nirgūrdha 1 Covered; enveloped
୨ । ଅତିଶୟ ଗୂଢ଼—
2. Very secret; confidential.
ସଂ. ବି—ବୃକ୍ଷକୋଟର —The hollow of a tree

**ନିର୍ଗ୍ରନ୍ଥ**—ସଂ. ବିଣ. ( ନିର୍=ନାହିଁ+ଗ୍ରନ୍ଥ=ଗଣ୍ଠି ଯହିଁରେ )—
Nirgrantha ୧ । ଗ୍ରନ୍ଥିଶୂନ୍ୟ—1 Without knots, knotless.
୨ । ଯାହାର ପରିଧେୟ ବାସ ଗ୍ରନ୍ଥିହୀନ —
2 Wearing cloth with no knots.
୩ । ସଂସାରବନ୍ଧନହୀନ, ଅନାସକ୍ତ, ଉଦାସୀନ —
3. Free from worldly ties or hindrances.
୪ । ଦିଗମ୍ବର—4. Naked, nude
୫ । ନିଃସହାୟ—5. Helpless.
୬ । ନିର୍ବେଦଗ୍ରସ୍ତ, ଉଦାସୀନ—6 Indifferent.
୭ । ଦରିଦ୍ର; ନିଃସମ୍ବଳ—7 Poor.
୮ । ମୂର୍ଖ – 8. Illiterate.
ବି -୧ । କ୍ଷପଣକ, ନଗ୍ନ ମୁନି —
1. A mendicant; a nude sage.
୨ । ପରିଚ୍ଛଦବସ୍ତ୍ରହୀନତା—2. Want of cloth or covering for one's body.
୩ । ଦ୍ୟୂତକର, ଜୁଆଖେଳ—3. A gamester.
୪ । ନିର୍ବୋଧ ବ୍ୟକ୍ତି—4. A fool; an idiot.
୫ । ନରହତ୍ୟା—
5 Murder; man-slaughter ( M. W. )

**ନିର୍ଗ୍ରନ୍ଥ(ନ୍ଥି)କ**—ସଂ. ବି. (ନିର୍+ଗ୍ରନ୍ଥ+କ)—କ୍ଷପଣକ, ନଗ୍ନ ସନ୍ନ୍ୟାସୀ—
Nirgranthaka, nthika A nude ascetic.
ସଂ. ବିଣ—୧ । ନିପୁଣ; ଦକ୍ଷ —
1 Skilful; clever; expert.
୨ । ହୀନ; ନୀଚ—2. Mean; low.
୩ । ଏକାକୀ—3. Alone; unattended.
୪ । ନିଷ୍ଫଳ—4. Fruitless.

**ନିର୍ଗ୍ରନ୍ଥନ**—ସଂ. ବି. (ନିର୍+ଗ୍ରନ୍ଥ ଧାତୁ=ବଧ କରିବା+ଭାବ. ଅନ)—
Nirgranthana ମାରଣ; ବଧ—Killing; slaughter.

**ନିର୍ଗ୍ରନ୍ଥି**—ସଂ ବିଣ. (ନିର୍+ଗ୍ରନ୍ଥି)—୧ । ଗ୍ରନ୍ଥିହୀନ—
Nirgranthi 1. Free from knots.
୨ । ନିର୍ଦ୍ଦୋଷ—2 Without blemish; perfect

**ନିର୍ଗ୍ରାହ୍ୟ**—ସଂ. ବିଣ. (ନିର୍+ଗ୍ରହ୍ ଧାତୁ=ଗ୍ରହଣ କରିବା+କର୍ମ. ଘ୍ୟ)+
Nirgrāhya ଯାହାକୁ ନିଶ୍ଚୟରୂପେ ଗ୍ରହଣ କରାଯାଏ—
Which is accepted definitely

**ନିର୍ଘଟ୍ଟ**—ସଂ ବି. (ନିର୍+ଘଟ୍ଟ ଧାତୁ ଚେଷ୍ଟା କରିବା+ଅ)+
Nirghaṭa ୧ । ରାଜକରଶୂନ୍ୟ ହଟ୍ଟ—A market where no toll is taken.
୨ । ହାଟ, ବଜାର ପ୍ରଭୃତି—2 Market, bazar.
୩ । ଯେଉଁଠାରେ ଘାଟ ବା ପାହାଚ ନାହିଁ—3. A place having no quay or steps (M. W.)

**ନିର୍ଘଣ୍ଟ**—ସଂ. ବି. (ନିର୍+ଘଣ୍ଟ୍ ଧାତୁ=ଚେଷ୍ଟା କରିବା+କରଣ. ଅ)—
Nirghaṇṭa ୧ । ସୂଚିପତ୍ର—1. Index; table of contents
ନିର୍ଘଣ୍ଟକ } ଅନ୍ୟରୂପ । ୨ । ତାଲିକା—
ନିର୍ଘଣ୍ଟୁ } 2 List, catalogue.
୩ । ନିର୍ଣ୍ଣୟ, ମୀମାଂସା, ସିଦ୍ଧାନ୍ତ—
3. Thorough investigation.
୪ । ଶବ୍ଦସଂଗ୍ରହ—4. Vocabulary; a collection of words (M. W.)

**ନିର୍ଘାତ**—ସଂ. ବି. (ନିର୍=ସମ୍ୟକ୍, ଅତିଶୟ+ହନ୍ ଧାତୁ+ଭାବ. ଅ)—
Nirghāta ୧ । ବାୟୁର ପରସ୍ପର ସଂଘାତଜନିତ ଉତ୍ପାତକ ଶବ୍ଦ—
1 The roaring sound caused by the conflict of opposite winds; noise of contending winds in the sky.
୨ । ଦୃଢ଼ ଆଘାତ—
2. Violent stroke; severe blow.
୩ । ଗମ୍ଭୀର ଶବ୍ଦ—3 Rumbling sound.
୪ । (+କରଣ+ଅ) ବଜ୍ର—4. Thunderbolt.
ଉଲ୍କାଭୁଲେ ନିର୍ଘାତ ଆକାଶୁ ପଡ଼ଇ—କୃଷ୍ଣସିଂହ. ମହାଭାରତ. ଉଦ୍ଯୋଗ
୫ । ବଜ୍ରାଘାତ—5. Thunder stroke
୬ । ପ୍ରଚଣ୍ଡ ବାୟୁ, ପ୍ରଭଞ୍ଜନ—6. Tempest; gust of wind; hurricane.
୭ । ଶୂନ୍ୟ ଗର୍ଜ୍ଜନ—
7. A roar heard from the wind.
ଶତ ଶତ ହୋଇଣ ଶୁଭଇ ନିର୍ଘାତ—କୃଷ୍ଣସିଂହ. ମହାଭାରତ. ବନ ।
୮ । ଘୂର୍ଣ୍ଣିବାୟୁ—8. Whirl wind.
୯ । ଘଡ଼ଘଡ଼ି—9. Thunder.
ନିର୍ଘାତ ଭୁଲେ ଯହିଁ ପଡ଼ଇଲେ ଉଲ୍କା ।
କୃଷ୍ଣସିଂହ. ମହାଭାରତ. ବନ ।
୧୦ । ବିନାଶ—10. Destruction; ruin.
୧୧ । ଭୂମିକମ୍ପ—11. Earthquake (M. W.).
ବିଣ.—୧ । ବିଷମ; ପ୍ରବଳ, ପ୍ରଚଣ୍ଡ—1. Violent.
୨ । ଭୟାନକ, ଭୀଷଣ—
2. Fierce; terrible; ferocious.
୩ । ନିଷ୍ଠୁର—3. Cruel.
୪ । ବିନାଶକ—4. Destructive.

**ନିର୍ଘାତନ**— ସଂ. ବି.—(ନିର୍‌+ଘାତନ)—ଜୋରରେ ବାହାର କରିବା—
Nirghātana Forcing out; bringing out (M.W)

**ନିର୍ଘାତେ**—ଦେ କ୍ରି. ବିଣ.—୧ । ଭୀଷଣଭାବରେ; ଭୟଙ୍କରରୂପେ—
Nirghāte 1 Terribly

ଏତେବେଳେ କହେ ଭୀମ ଗର୍ଜନ ନିର୍ଘାତେ—ରଘୁନାଥ, ବେଣୀସଂହାର ।

୨ । ଜୋରରେ—2. With force

ନ କହୁ ସନ୍ତବଶ କାଶ
ନିର୍ଘାତେ ଛାଡ଼ଇ ନିଶ୍ୱାସ— ଜଗନ୍ନାଥ, ଭାଗବତ ।

**ନିର୍ଘୃଣ**—ସଂ. ବିଣ. ପୁଂ (ବହୁବ୍ରୀହି, ନିର୍‌+ଘୃଣା)—୧ । ଘୃଣାଶୂନ୍ୟ—
Nirghruna 1 Having no repulsion
(ନିର୍ଘୃଣା—ସ୍ତ୍ରୀ) ୨ । ନିର୍ଲଜ୍ଜ—2 Shameless; immodest
(ନିର୍ଘୃଣତା—ବି) ୩ । ନିଷ୍ଠୁର; ନିର୍ଦ୍ଦୟ—
3 Cruel; pitiless; unmerciful

**ନିର୍ଘୋଷ**—ସଂ. ବି. (ନିର୍‌=ବିଶେଷ+ଘୁଷ୍ ଧାତୁ=ଶବ୍ଦ କରିବା+ଭାବ
Nirghosha ଅ)—୧ । ନିନାଦ, ଗମ୍ଭୀର ଶବ୍ଦ—1 Rumbling sound; rattling sound

(ଯଥା— ବଜ୍ର ନିର୍ଘୋଷ ।)

୨ । ଭୀଷଣ ଶବ୍ଦ—2. Terrible sound.

ସଂ ବିଣ.—(ନିର୍‌+ଘୋଷ, ବହୁବ୍ରୀହି)—ଶବ୍ଦଶୂନ୍ୟ—
Soundless, noiseless.

**ନିର୍ଘୋଷଣା**—ଦେ ବି. (ସଂ. ନିର୍ଘୋଷ)—ଗମ୍ଭୀରଧ୍ୱନି ବା ଶବ୍ଦ—
Nirghoshanā Loud sound

ମୃଦଙ୍ଗ ଶଙ୍ଖ ଭେରୀ ବୀଣା,
ଘଣ୍ଟ ଦୁନ୍ଦୁଭି ନିର୍ଘୋଷଣା । ଜଗନ୍ନାଥ ଭାଗବତ ।

**ନିର୍ଜଞ୍ଜାଳୀ**—ଦେ. ବିଣ—ନିର୍ଜଂଜାଳ ( ଦେଖ )—
Nirjanjāli Nijanjāla ( See ).

ବରଷା ଶୀତ ଖରା ଋତୁରେ କାକଳ,
ରହିଥାନ୍ତି ପଦାରେ ହୋଇ ନିର୍ଜଞ୍ଜାଳୀ ; କୃଷ୍ଣସିଂହ. ମହାଭାରତ. ଶାନ୍ତି ।

**ନିର୍ଜ(ର୍ଜ୍ଜ)ନ**—ସଂ ବିଣ. ( ବହୁବ୍ରୀହି, ନିର୍‌+ଜନ )—
Nirja(rjja)na ୧ । ଜନଶୂନ୍ୟ, ନିଭୃତ—
1 Lonely; deserted; desolate.

୨ । ଏକାକୀ—2 Solitary.

୩ । ବିଜନ—3 Uninhabited.

ବି—ବିଜନସ୍ଥାନ—Lonely place; solitude; wilderness

ଦେ. ବିଣ—ନିସ୍ତବ୍ଧ—Silent.

ନିର୍ଜ୍ଜନ **ନିର୍ଜନ** ( ଯଥା—ନିର୍ଜନ ସ୍ଥିତି )

**ନିର୍ଜନ କାରାବାସ**—ଦେ. ବି—ଗୁରୁତର ଅପରାଧୀ ପ୍ରଭୃତି ପ୍ରଯୁଜ୍ୟ ଅନ୍ୟ
Nirjana kārābāsa ବନ୍ଦୀମାନଙ୍କଠାରୁ ପୃଥକ୍ ବାସରୂପ
କାରାବାସ—Solitary confinement.

[ ଦ୍ର—ଏଥିରେ ବନ୍ଦୀ କାହାରି ସଙ୍ଗେ ଦେଖା ହେବାର ସୁବିଧା ପାଏ ନାହିଁ । ]

**ନିର୍ଜ(ର୍ଜ୍ଜ)ୟ**—ସଂ. ବି—୧ । ଅଜେୟତ୍ୱ—
Nirja(rjja)ya 1 Unconquerableness;
( ନିର୍ଜି(ର୍ଜ୍ଜି)ତ—ଅନ୍ୟରୂପ ) invincibility

୨ । ପୂର୍ଣ୍ଣ ଜୟ—Complete victory or subjugation (Apte).

**ନିର୍ଜ(ର୍ଜ୍ଜ)ର**—ସଂ. ବିଣ. ପୁଂ. ( ବହୁବ୍ରୀହି, ନିର୍‌+ଜର୍‌=ବୃଦ୍ଧତ୍ୱ )—
Nirja(rjja)ra ୧ । ଜରାରହିତ—1 Undecaying.
( ନିର୍ଜ(ର୍ଜ୍ଜ)ରା—ସ୍ତ୍ରୀ ) ୨ । ବିନାଶ ବା କ୍ଷୟରହିତ—
2 Free from decrepitude; imperishable.

୩ । ଯୁବକ—3. Young

୪ । ମରଣରହିତ, ଅମର—4. Immortal.

ବି—୧ । ଦେବତା—1 Deity

୨ । ସୁଧା, ଅମୃତ—2. Nectar; ambrosia.

ଦେ. ବି—ଯୁବକ—Grown-up man.

ବାଲ୍ୟ ଅବସ୍ଥା ମୁରବି । ନିର୍ଜରେ ସାରଥୀ ଫିଙ୍ଗିଲା ପଦ୍ମ ରେ—
ଉତ୍କ. ବୈଦେହୀଶବିଳାସ ।

**ନିର୍ଜ(ର୍ଜ୍ଜ)ରା**—ସଂ. ବି. ( ନିର୍ଜର+ଆ )—୧ । ଗୁଳୁଚ ଲତା—
Nirja(rjja rā 1. A medicinal plant, Cocculus Cordifolius; Menispermum Glabrum.

୨ । ତାଳପର୍ଣ୍ଣୀ ( ଦେଖ )—2 Tālaparnni (See)

**ନିର୍ଜ(ର୍ଜ୍ଜ)ଳ**—ସଂ. ବିଣ—( ନିର୍‌+ଜଳ )—
Nirja(rjja)la ୧ । ଜଳଶୂନ୍ୟ
( ନିର୍ଜଳା—ସ୍ତ୍ରୀ ) 1. Waterless.

ଏ ବାହାରେ ପୁଣ ପୁଣି ନ ରହେ ଘରେ,
ଯେ ପରକାରେ ମାଛ ନିର୍ଜଳ ପଙ୍କରେ ।। କୃଷ୍ଣସିଂହ. ମହାଭାରତ. ଶାନ୍ତି ।

୨ । ଶୁଷ୍କ—2 Dry; arid.

୩ । ଜଳଦ୍ୱାରା ଅବିମିଶ୍ରିତ—3. Unadulterated with water; not mixed with water.

୪ । ନିରମ୍ବୁ, ଜଳପାନରହିତ, ଯେଉଁ ବ୍ରତ ଆଦି ଉପଲକ୍ଷରେ ବ୍ରତଧାରୀ ବ୍ୟକ୍ତି ଜଳସୁଦ୍ଧା ପାନ କରେ ନାହିଁ—
4. Subsisting without even taking water.

କରନ୍ତୁ ଏକାଦଶୀ ବ୍ରତ, ନିର୍ଜଳ ଯାମିନୀ ଜାଗ୍ରତ—ଭୂପତି. ପ୍ରେମପଞ୍ଚାମୃତ ।

ବି—ଜଳଶୂନ୍ୟ ମରୁଭୂମି—Waterless desert.

ଦେ. ବି—ନିର୍ଜଳା ( ଦେଖ )—Nirjalā (See).

**ନିର୍ଜ(ର୍ଜ୍ଜ)ଳା**—ଦେ. ବି. (ସଂ. ନିର୍ଜଳ)—ନିରମ୍ବୁବ୍ରତ ବା ଉପବାସାଦି—
Nirja(rjja)lā Religious fasting in which not a drop of water should be taken.

**ନିର୍ଜ(ର୍ଜ୍ଜ)ଳୈକାଦଶୀ**—ସଂ. ବି—( ନିର୍ଜଳ+ଏକାଦଶୀ )—
Nirja(rjja)laikādasi ଜ୍ୟୈଷ୍ଠ ଶୁକ୍ଳ ଏକାଦଶୀ—
The eleventh day of the bright fortnight of Jyeshtha.

**ନିର୍ଜି(ର୍ଜ୍ଜି)ତ**—ସଂ. ବିଣ. ( ନିର୍‌=ନିଶ୍ଚୟ+ଜି. ଧାତୁ=ଜୟ କରିବା+
Nirji(rjji)ta କର୍ମ. ତ )—୧ । ପରାଭୂତ, ପରାଜିତ—
( ନିର୍ଜିତା—ସ୍ତ୍ରୀ ) 1. Defeated; vanquished; overcome; crushed.

୨ । ବଶୀକୃତ—2. Entirely subdued

କୋଟିକନ୍ଦର୍ପକୁ ରୂପ ଅଗୋଚର ରମଣୀ ଉରରେ ନିର୍ଜିତ—
ଗୋପୀ. ଚସବାବଳ ।

୩ । ଅର୍ଜିତ—3 Acquired; gained.
୪ । ଯାହା ଜିଣି କର ଅର୍ଜନ କରାଯାଇ ଥାଏ—
4. Won.
୫ । ଦାବି କରାଯିବା—5. Claimed (Apte).
ଦେଖ, ସଂଘାତ ତୋ ଜାତାରେ ନିର୍ଜିତ ମୂର୍ଚ୍ଛିତ ମୋର ଶସର—
ଗ୍ରାମୀ ରସବାଳାଅ।

**ନିର୍ଜିହ୍ୱ**—ସଂ ବିଣ ପୁଂ ( ବହୁବ୍ରୀହି, ନିର୍+ଜିହ୍ୱା )—
Nirjihwa ୧ । ଯାହାର ଜିଭ ନାହିଁ—1 Tongueless.
( ନିର୍ଜିହ୍ୱା—ସ୍ତ୍ରୀ ) ୨ । ଯାହାର ଜିହ୍ୱା ନିର୍ଗତ ହୋଇଅଛି—
2. Having a protruding tongue.
ସଂ ବି. ( ନିର୍=ନାହିଁ+ଜିହ୍ୱା )—
ଭେକ, ବେଙ୍ଗ—Frog

**ନିର୍ଜୀ(ର୍ଜ୍ଜୀ)ବ**—ସଂ ବିଣ ପୁଂ. ( ବହୁବ୍ରୀହି, ନିର୍+ଜୀବ )—
Nirji(rjji)ba ୧ । ଜୀବନଶୂନ୍ୟ—
( ନିର୍ଜୀବା—ସ୍ତ୍ରୀ ) 1 Lifeless; inanimate
୨ । ନିସ୍ତେଜ—2. Vigourless; lanquid.
୩ ଅତି ଦୁର୍ବଳ—3. Very weak.
୪ । ମୃତ—4 Dead.

**ନିର୍ଜୀବା**—ଦେ. ବି. ( ପୁଂ ଓ ସ୍ତ୍ରୀ ) ( ସଂ. ନିର୍ଜୀବ )—
Nirjiba ୧ । ନିସ୍ତେଜ—1. Lanquid.
निर्जीव ୨ । ଅତି ଦୁର୍ବଳ—2. Very weak.
निजोव ୩ । ଅତି କ୍ଷୀଣ—3 Very emaciated.
( ଯଥା—ନିର୍ଜୀବା ପିଲା )

**ନିର୍ଜୋର**—ବୈଦେ ବିଣ ( ସଂ. ନିଃ. ଉପସର୍ଗ+ଆ. ଜୋର )—
Nirjora ନିଜୋର ( ଦେଖ )—
निजोर निर्जोर Nijora (See).
( ନିଜୋରିଆ—ଅନ୍ୟରୂପ )—

**ନିର୍ଝର**—ସ. ବି (ନିର୍+ଝୃ ଧାତୁ=କ୍ଷୀଣ ହେବା+କର୍ତ୍ତୃ ଅ)—
Nirjhara ୧ । ଝରଣା, ଉତ୍ସ—1. A spring; fountain; a cascade.
୨ । ଜଳପ୍ରପାତ—2. Waterfall.
୩ । ତୁଷାନଳ—3. Fire of chaff.
୪ । ବାରିପ୍ରବାହ—4. A current of water.
୫ । ସୂର୍ଯ୍ୟଙ୍କ ଘୋଟକ—
5. A horse of the Sun-god.
୬ । ହସ୍ତୀ—6. An elephant (Apte).

**ନିର୍ଝରିଣୀ**—ସ. ବି. ସ୍ତ୍ରୀ (ନିର୍ଝର+ଇନ୍+ସ୍ତ୍ରୀ. ଈ)—୧ । ଗିରି ନଦୀ—
Nirjharini 1. A mountain torrent.
୨ । ପ୍ରବାହବତୀ ନଦୀ—2. River; stream.
୩ । ଝରଣା—3. A spring.

**ନିର୍ଝରୀ**—ସ. ବି. (ନିର୍ଝର+ଇନ୍; ୧ମା. ୧ବ.)—୧ । ନିର୍ଝର—
Nirjhari 1. A fountain.
୨ । ନଦୀ—2. A river.
୩ । ପର୍ବତ—3. Mountain.

**ନିର୍ଣ୍ଣୟ**—ସ. ବି ( ନିର୍=ନିଶ୍ଚୟ+ନୀ ଧାତୁ=ଗ୍ରହଣକରିବା+ଭାବ. ଅ )—୧ । ନିୟୋଗ —
Nirnnaya
(ନିର୍ଣ୍ଣୟନ, ନିର୍ଣ୍ଣିତ—ଅନ୍ୟରୂପ) 1. Engagement.
୨ । ଅବଧାରଣ—2. Ascertaining, settlement.
୩ । ନିୟମପତ୍ର—3. Agreement.
୪ । ସ୍ଥିରତା—4. Certainty.
୫ । ପ୍ରମାଣ—5 Demonstration.
୬ । ତର୍କ, ନିଷ୍ପତ୍ତି, ସିଦ୍ଧାନ୍ତ—
6. Determination, resolution; conclusion, deduction; inference.
୭ । ତର୍କ—7. Argument, discussion
୮ । ରାଏ, ଫଏସଲା—8. Decree; judgment.
୯ । ବିଚାରପତିଙ୍କ ଶେଷ ହୁକୁମ—
9. The verdict or sentence of a judge.
୧୦ । ଅପସାରଣ—10. Removal (Apte).
୧୧ । ଶେଷ ନିଷ୍ପତ୍ତି—11. Decision.
୧୨ । ଅନୁସନ୍ଧାନ—12 Investigation (Apte).
୧୩ । ବିବେଚନା—13. Consideration
୧୪ । ( ଅଲଙ୍କାରଶାସ୍ତ୍ର )—ଘଟନାର ବର୍ଣ୍ଣନ—
14 ( rhetoric ) Narration of events ( Apte ).

**ନିର୍ଣ୍ଣୟପାଦ**—ସ. ବି ( ନ୍ୟାୟଶାସ୍ତ୍ର )—୧ । ସମବେତ ସଭ୍ୟସଦମାନଙ୍କର
Nirnnayapada ନିଷ୍ପତ୍ତି—1. A verdict of assembled persons.
୨ । (ହିନ୍ଦୁସ୍ମୃତି) ବିଚାରପତିଙ୍କ ଶେଷ ଆଦେଶ—
2. A sentence; decree; verdict ( Apte ).

**ନିର୍ଣ୍ଣାୟକ**—ସ ବିଣ. ପୁଂ ( ନିର୍=ନିଶ୍ଚିତରୂପେ+ନୀ ଧାତୁ= ନେବା+କର୍ତ୍ତୃ. ଅକ )—
Nirnnayaka
( ନିର୍ଣ୍ଣାୟିକା—ସ୍ତ୍ରୀ ) ୧ । ନିରୂପକ—1. Determining, ascertaining.
୨ । ନିର୍ଦ୍ଧାରକ—2. Certifying.
୩ । ନିଷ୍ପାଦକ—3. Ascertaining; leading to a decision.
୪ । ମୀମାଂସକ—4. Deciding; decisive.
୫ । ଯହିଁରୁ କୌଣସି ବିଷୟ ନିର୍ଣ୍ଣୟ କରାଯାଏ—
5. Leading to a decision; conclusive.

**ନିର୍ଣ୍ଣିକ୍ତ**—ସ. ବିଣ ( ନିର୍=ନିଃଶେଷରୂପେ+ନିଜ୍ ଧାତୁ ପରିଷ୍କାର କରିବା+କର୍ମ. ତ )—
Nirnnikta
( ନିର୍ଣ୍ଣିକ୍ତ—ବିଶେଷ୍ୟ ) ୧ । ଅପଗତ ମଳ, ପ୍ରକ୍ଷାଳିତ—
1, Washed.
୨ । ପରିଷ୍କୃତ—2. Cleansed.
୩ । ଶୋଧିତ—3, Rectified.
୪ । ପବିତ୍ରୀକୃତ—4. Purified.
୫ । ବିଗତପାପ—5. Purged of sin.

**ନିର୍ଣ୍ଣିମେଷ**—ସଂ. ବିଣ ପୁଂ ( ନିର୍+ନିମେଷ, ବହୁବ୍ରୀହି )—
Nirṇṇimesha ୧ । ନିମେଷଶୂନ୍ୟ—1. Winkless.
( ନିର୍ଣ୍ଣିମେଷା—ସ୍ତ୍ରୀ ) ୨ । ଯାହା ଆଖିରେ ପଲକ ପଡ଼େ ନାହିଁ —
( ନିର୍ନିମେଷ—ଅନ୍ୟରୂପ ) 2. One whose eyes do not wink.
ସଂ. ବି—ବିଷ୍ଣୁ—A name of Bishṇu.

**ନିର୍ଣ୍ଣୀତ**—ସଂ. ବିଣ (ନିର୍+ନୀ ଧାତୁ=ନେବା+କର୍ମ. ତ)—
Nirṇṇita ୧ । ଅବଧାରିତ, ନିର୍ଦ୍ଦିଷ୍ଟ, ସ୍ଥିରୀକୃତ—
1. Ascertained; settled; fixed upon; confirmed, decided.
୨ । ନିରୂପିତ—2. Determined.
୩ । ସଂସ୍ଥାପିତ—3. Established.
୪ । ପ୍ରମାଣିତ—4. Demonstrated; proved.
୫ । ଅନୁସନ୍ଧାନଦ୍ୱାରା ଯାହାର ପତା ମିଳିଅଛି—
5 Traced out.

**ନିର୍ଣ୍ଣେ**—ଗ୍ରା. ବି. (ପ୍ରାଚୀନ ବ୍ୟବହାର)—ନିର୍ଣ୍ଣୟ, ଅବଧାରଣ—
Nirṇṇe Ascertainment.
ଏରୂପେ ବେଦେ ବ୍ରହ୍ମପୁରି
ବେଦ ନ ଜାଣେ ନିର୍ଣ୍ଣେ କରି । ଭୂ. ଚ. ରାମପଞ୍ଚାମୃତ ।
କ୍ରି. ବିଣ—ସମ୍ପୂର୍ଣ୍ଣରୂପେ, ବିଶଦ ଭାବରେ—
Clearly; fully.
ଥୋକାଏ ଥୋକାଏ ଜାଣନ୍ତି
ନିର୍ଣ୍ଣେ ବଖାଣି ନ ପାରନ୍ତି । ଦ୍ୱାରୀ ନିର୍ଗୁଣମାହାତ୍ମ୍ୟ ।

**ନିର୍ଣ୍ଣେଜକ**—ସଂ. ବି. ପୁଂ. (ନିର୍+ନିଜ୍ ଧାତୁ+କର୍ତ୍ତୃ. ଅକ)—
Nirṇṇejaka ଧୋବା, ରଜକ—Washerman.
ସଂ. ବିଣ—ପରିଷ୍କାରକ—Clearing; cleansing.

**ନିର୍ଣ୍ଣେଜନ**—ସଂ ବି. (ନିର୍+ନିଜ ଧାତୁ+ଭାବ ଅନ)—୧ । ପ୍ରକ୍ଷାଳନ—
Nirṇṇejana 1. Washing.
୨ । ପରିଷ୍କାର କରିବା—2. Cleansing.
୩ । (+କରଣ. ଅନ) ଶୁଦ୍ଧି—
3. Purification; expiation.

**ନିର୍ଣ୍ଣେତବ୍ୟ**—ସଂ. ବିଣ. (ନିର୍+ନୀ ଧାତୁ+କର୍ମ ତବ୍ୟ)—
Nirṇṇetabya ନିର୍ଦ୍ଧାରଣୀୟ—Ascertainable; assignable; determinable.

**ନିର୍ଣ୍ଣେତା**—ସଂ. ବିଣ. ପୁଂ. (ନିର୍+ନୀ ଧାତୁ+କର୍ତ୍ତୃ. ତୃ ୧ମା. ୧ବ)—
Nirṇṇetā ନିର୍ଣ୍ଣୟକାରୀ—Demonstrating; ascertaining
(ନିର୍ଣ୍ଣେତ୍ରୀ—ସ୍ତ୍ରୀ) ବି - ୧ । ନାୟକ—1 Hero.
୨ । ଚାଳକ—2. A guide.
୩ । ବିଚାରକ—3. Judge; umpire; arbitrator.
୪ । (+କରଣ.ତୃ) ରସିଦ—4. A receipt; voucher.
୫ । ଦଲିଲ—5. A document.
୬ । ପ୍ରମାଣକ—6. A demonstrator.

**ନିର୍ଣ୍ଣେୟ**—ସଂ. ବିଣ. (ନିର୍+ନୀ ଧାତୁ+କର୍ମ. ଯ)—
Nirṇṇeya ନିର୍ଦ୍ଧାରଣଯୋଗ୍ୟ—Ascertainable; capable of being ascertained.

**ନିର୍ଦ୍ଦଣ୍ଡ**—ସଂ. ବିଣ. (ବହୁବ୍ରୀହି, ନିର୍+ଦଣ୍ଡ)—ସର୍ବଥା ଦଣ୍ଡାର୍ହ (ବ୍ୟକ୍ତି)
Nirdaṇḍa Punishable in all ways.
(ନିର୍ଦ୍ଦଣ୍ଡ—ଅନ୍ୟରୂପ) ସଂ. ବି—ଶୂଦ୍ର । ଯାହା ଉପରେ ସବୁ ପ୍ରକାର ଦଣ୍ଡ ପ୍ରୟୋଗ କରାଯାଏ)—A Śūdra.

**ନିର୍ଦ୍ଦୟ**—ସଂ. ବିଣ ପୁଂ. (ବହୁବ୍ରୀହି, ନିର୍=ନାହିଁ+ଦୟା)—
Nirddaya ୧ । ନିଷ୍କରୁଣ—1. Merciless; unkind; unfeeling.
(ନିର୍ଦୟ—ଅନ୍ୟରୂପ)
(ନିର୍ଦ୍ଦୟା—ସ୍ତ୍ରୀ) ୨ । ନିଷ୍ଠୁର, କ୍ରୂର, ହିଂସ୍ର—
(ନିର୍ଦ୍ଦୟତା—ବି) 2. Cruel; hard-hearted.
୩ । କଠୋର—3. Severe; harsh.
ବି—(ପ୍ରାଚୀନପଦ୍ୟ) ନିର୍ଦ୍ଦୟତା, ନିଷ୍ଠୁରତା—
Cruelty; hard heartedness.
ସେହି ହୃଦୟ ଏବେ ଉଦୟ ଭଇଁ ନିର୍ଦ୍ଦୟ ବାର ।
ଭଞ୍ଜ ପ୍ରେମସୁଧାନିଧି ।

**ନିର୍ଦ୍ଦୟା(ୟୀ)**—ଗ୍ରା. ବିଣ. (ସଂ. ନିର୍ଦ୍ଦୟ)—ନିଷ୍ଠୁର, ଦୟାହୀନ—
Nirddayā(yi) Cruel; merciless.
[ନିର୍ଦ୍ଧୟା(ୟୀ)—ଅନ୍ୟରୂପ] ହା ହା ଦଇବ ରୁ ନିର୍ଦ୍ଦୟା
ନିର୍ଦ୍ୟ ନିର୍ଦ୍ୟୀ ମୋର ବଶେ ବଲୁ ମାୟା । ଜଗନ୍ନାଥ, ଭାଗବତ ।

**ନିର୍ଦ୍ଦୟାବନ୍ତ**—ଗ୍ରା ବିଣ—ନିର୍ଦ୍ଦୟ (ଦେଖ)
Nirddayābanta Nirddaya (See)
(ନିର୍ଦ୍ଦୟାବନ୍ତ—ଅନ୍ୟରୂପ) ମହାପାପୀ ନିର୍ଦ୍ଦୟାବନ୍ତ ସେ ହୋଇବ ।
କୃଷ୍ଣସିଂହ. ମହାଭାରତ. ଅଦ ।

**ନିର୍ଦ୍ଦର**—ସଂ.ବିଣ (ନିର୍=ନାହି+ଦୃ ଧାତୁ=ଆଦର କରିବା+କର୍ମ.ଅ)—
Nirddara ୧ । ନିର୍ଭୟ—1. Fearless.
(ନିର୍ଦର—ଅନ୍ୟରୂପ) ୨ । କଠୋର—2 Harsh.
୩ । ନିର୍ଲଜ୍ଜ—3. Shameless; immodest.
ସଂ. ବି—ନିର୍ଝର, ଝରଣା—Fountain; spring.

**ନିର୍ଦ୍ଦଳ**—ସଂ. ବିଣ. ( ବହୁବ୍ରୀହି, ନିର୍+ଦଳ=ପତ୍ର )—
Nirddaḷa ଦଳ ବା ପତ୍ରରହିତ—
(ନିର୍ଦଳ—ଅନ୍ୟରୂପ) Leafless, petalless.

**ନିର୍ଦ୍ଦଶନ**—ସଂ. ବିଣ. ପୁଂ ( ବହୁବ୍ରୀହି, ନିର୍+ଦଶନ )—
Nirddaśana ଯାହାର ଦାନ୍ତ ବାହାରି ନାହିଁ ବା ପଡ଼ିଯାଇ ଅଛି;
(ନିର୍ଦଶନ—ଅନ୍ୟରୂପ). ଦନ୍ତହୀନ—Toothless.
(ନିର୍ଦଶନା—ସ୍ତ୍ରୀ)

**ନିର୍ଦ୍ଦହନ**—ସଂ. ବି. ( ନିର୍+ଦହ୍ ଧାତୁ+କର୍ତ୍ତୃ. ଅନ )—
Nirddahana ଭଲିଆ ( ହି. ଶବ୍ଦସାଗର )—
(ନିର୍ଦହନ—ଅନ୍ୟରୂପ) The marking nut tree

**ନିର୍ଦ୍ଦିଗ୍ଧ**—ସଂ. ବିଣ. ( ନିର୍+ଦିହ୍ ଧାତୁ+କର୍ମ. ତ )—
Nirddigdha ୧ । ଲେପିତ—1. Anointed.
(ନିର୍ଦିଗ୍ଧ—ଅନ୍ୟରୂପ) ୨ । ବଳବାନ୍—2. Powerful; strong.

**ନିର୍ଦ୍ଦିଶ୍ୟମାନ**—ସଂ. ବିଣ. ( ନିର୍+ଦିଶ୍ ଧାତୁ+କର୍ମ. ଶାନଚ୍ )—
Nirddiśyamāna ୧ । ଯାହା ଉଲ୍ଲେଖ କରି ଯାଉଅଛି—
(ନିର୍ଦିଶ୍ୟମାନ—ଅନ୍ୟରୂପ) 1. Which is being mentioned.

୨ । ଆଦିଷ୍ଟ୍ୟମାନ—
2. Under orders; being ordered

**ନିର୍ଦ୍ଦିଷ୍ଟ**—ସ. ବଣ. ( ନିର୍+ଦିଶ୍ ଧାତୁ=ଦେଖାଇବା+କର୍ମ. ତ )—
Nirddishta ୧ । ନିଶ୍ଚିତ—1. Certain.
(ନିର୍ଦ୍ଦିଷ୍ଟ—ଅନ୍ୟରୂପ) ୨ । ଅବଧାରିତ—2 Determined;
(ନିର୍ଦ୍ଦିଷ୍ଟତା—ବିଶେଷ୍ୟ) settled; ascertained; fixed upon.
୩ । କଥିତ, ଉଲ୍ଲିଖିତ—3. Aforesaid; mentioned.
୪ । ବର୍ଣ୍ଣିତ—4. Described.
୫ । ପ୍ରଦର୍ଶିତ—5. Pointed out.
୬ । ଉପଦିଷ୍ଟ, ଆଦିଷ୍ଟ—6. Commanded; ordered.

**ନିର୍ଦ୍ଦେଶ**—ସ. ବି. ( ନିର୍+ଦିଶ୍ ଧାତୁ+ଭାବ. ଅ )—
Nirddesa ୧ । ଆଦେଶ, ଆଜ୍ଞା—1. Command;
(ନିର୍ଦେଶ—ଅନ୍ୟରୂପ) order, mandate.
ଦେଖ ବୋଲି ନୃପତି ଦେଲେ ସେ ନିର୍ଦ୍ଦେଶ । କୃଷ୍ଣସିଂହ- ମହାଭାରତ. ସଭା ।
୨ । ଅବଧାରଣ, ନିରୂପଣ—2. Determination
୩ । କଥନ—3. Mention; statement.
୪ । ପ୍ରଦର୍ଶନ—4 Exhibition.
୫ । ଉପଦେଶ—5. Advice.
୬ । ଉଲ୍ଲେଖ—6 Reference.
୭ । ବର୍ଣ୍ଣନ—7. Description; narration.
୮ । ସାକ୍ଷ୍ୟ—8. Testimony.
୯ । ନିଯୋଜନ—9 Appointment
୧୦ । ବେତନ—10 Salary.
୧୧ । ସଂଜ୍ଞା—11 Definition; designation.
୧୨ । ( +କରଣ. ଅ ) ନାମ—12. Name.
ବି—ନିର୍ବାସିତ—Exiled; banished.

**ନିର୍ଦ୍ଦେଶକ**—ସ. ବଣ. ପୁଂ. ( ନିର୍+ଦିଶ୍ ଧାତୁ+କର୍ତ୍ତୃ. ଅକ )—
Nirddesaka ୧ । ଆଜ୍ଞାପକ—1. Commanding;
(ନିର୍ଦ୍ଦେଶିକା- ସ୍ତ୍ରୀ) ordering.
(ନିର୍ଦେଶକ- ଅନ୍ୟରୂପ) ୨ । ବର୍ଣ୍ଣନକାରୀ—2. Describing.
୩ । ପରିଚାଳକ—3. Guiding; conducting.
୪ । ପ୍ରଦର୍ଶକ—4 Showing.
୫ । ଉପଦେଶକ—5. Instructing.
୬ । ଅବଧାରକ; ନିର୍ଣ୍ଣାୟକ—
6. Ascertaining; settling; determining.
୭ । ଯାହା ବା ଯେ କୌଣସି ପଦାର୍ଥର ସଂଜ୍ଞା ନିର୍ଦ୍ଦେଶ କରେ-
7. Designating; defining.

**ନିର୍ଦ୍ଦେଶକାରୀ**—ସ. ବଣ. ପୁଂ.—ଆଜ୍ଞାକାରୀ—
Nirddesakari Obedient.
( ନିର୍ଦ୍ଦେଶକାରିଣୀ—ସ୍ତ୍ରୀ ) (ନିର୍ଦ୍ଦେଶକାରିତା—ବି)

**ନିର୍ଦ୍ଦେଶନ**—ସ. ବି. ( ନିର୍+ଦିଶ୍. ଧାତୁ+ଭାବ. ଅନ )—
Nirddesana ୧ । ନିର୍ଣ୍ଣୟକରଣ—1. Ascertainment.
( ନିର୍ଦେଶନ—ଅନ୍ୟରୂପ ) ୨ । ନିଯୋଗକରଣ—
2. Appointing
୩ । ବର୍ଣ୍ଣନ—3 Description.
୪ । ଆଦେଶ—4. Command; order.
୫ । କୌଣସି ବିଶେଷ କାର୍ଯ୍ୟ ନିମନ୍ତେ ବିଷୟ ସମ୍ପତ୍ତିକୁ ନିଯୋଜିତ କରିବା—5. Appropriation of property to a particular purpose.

**ନିର୍ଦ୍ଦେଶନୀୟ**—ସ. ବଣ. ( ନିର୍+ଦିଶ୍. ଧାତୁ+କର୍ମ. ଅନୀୟ )—
Nirddesaniya ୧ । ବର୍ଣ୍ଣନୀୟ—1. Describable.
( ନିର୍ଦେଶନୀୟ—ଅନ୍ୟରୂପ ) ୨ । ପ୍ରମାଣସାଧ୍ୟ—
2 Capable of proof
୩ । ବ୍ୟାଖ୍ୟେୟ—3 Explicable; explainable.

**ନିର୍ଦ୍ଦେଶିବା**—ଦେ. ( ପଦ୍ୟ ) କ୍ରି. (ସ. ନିର୍ଦ୍ଦେଶ )—
Nirddesiba ନିର୍ଦ୍ଦେଶ କରିବା, ପ୍ରଦର୍ଶନ କରିବା—
(ନିର୍ଦ୍ଦେଶିବା —ଅନ୍ୟରୂପ) To point out.
ନିଦେଶୀ ଦେବ ବୈଶ୍ୱାନର ଛନ୍ତି
ନିଦେଶନା ବୋଇଲେ ବାରୁଣୀଦିଗେ ଅଙ୍ଗୁଳି ନିର୍ଦ୍ଦେଶି ।
ରଘୁନାଥ. ମହାଯାତ୍ରା

**ନିର୍ଦ୍ଦେଶୀ**—ସ. ବଣ. ପୁଂ. ( ନିର୍ଦ୍ଦେଶ+ଇନ୍. ୧ମା. ୧ବ )—
Nirddesi ପ୍ରଦର୍ଶକ—One who shows.
( ନିର୍ଦେଶୀ—ଅନ୍ୟରୂପ, ନିର୍ଦ୍ଦେଶିନୀ—ସ୍ତ୍ରୀ )—

**ନିର୍ଦ୍ଦେଶ୍ୟ**—ସ. ବଣ. ( ନିର୍+ଦିଶ୍ ଧାତୁ+କର୍ମ. ଯ )—
Nirddesya ୧ । ବର୍ଣ୍ଣନୀୟ—1 Describable.
( ନିର୍ଦେଶ୍ୟ—ଅନ୍ୟରୂପ ) ୨ । ନିର୍ଣ୍ଣେୟ—2. Ascertainable.

**ନିର୍ଦ୍ଦେଷ୍ଟା**—ସ. ବଣ. ପୁଂ. ( ନିର୍+ଦିଶ୍. ଧାତୁ+କର୍ତ୍ତୃ. ତୃ. ୧ମା.
Nirddeshta ୧ବ )—୧ । ନିର୍ଦ୍ଦେଶକ ( ଦେଖ )—
( ନିର୍ଦେଷ୍ଟା—ଅନ୍ୟରୂପ ) 1. Explaining; showing.
( ନିର୍ଦ୍ଦେଷ୍ଟ୍ରୀ—ସ୍ତ୍ରୀ ) ୨ । ଉପଦେଶକ—2. Advising.

**ନିର୍ଦ୍ଦୋଷ**—ସ ବଣ. ପୁଂ ( ବହୁବ୍ରୀହି, ନିର୍+ଦୋଷ )—
Nirddosha ୧ । ଦୋଷଶୂନ୍ୟ—1. Faultless; free from
( ନିର୍ଦୋଷ—ଅନ୍ୟରୂପ ) blemish or complications.
(ନିର୍ଦ୍ଦୋଷା—ସ୍ତ୍ରୀ) ୨ । ନିରପରାଧ—2 Innocent, guiltless.
(ନିର୍ଦ୍ଦୋଷତା—ବି) ୩ । ବିଶୁଦ୍ଧ—3 Pure.
୪ । ଅନିନ୍ଦ୍ୟ—4 Blameless.
୫ । ଠିକ୍—5. Accurate.
୬ । ସମ୍ପୂର୍ଣ୍ଣ—6 Complete; radical.
୭ । ନିଷ୍ପାପ—7. Sinless.
୮ । ରୋଗଶୂନ୍ୟ—8. Free from illness.

**ନିର୍ଦ୍ଦୋଷୀ**—ଦେ. ବଣ ( ସ. ନିର୍ଦ୍ଦୋଷ )—୧ । ଦୋଷଶୂନ୍ୟ—
Nirddoshi Faultless.
ନିର୍ଦୋଷୀ ୨ । ନିରପରାଧ—2. Innocent; faultless.
ନିଦୋଷୀ [ ଦ୍ର—ଏ ପ୍ରୟୋଗ ଶିଷ୍ଟସମ୍ମତ ନୁହେଁ । ]

**ନିର୍ଦ୍ୱନ୍ଦ** - ଦେ. ବଣ. ( ସ. ନିର୍ଦ୍ୱନ୍ଦ )—୧ । ନିର୍ଦ୍ୱନ୍ଦ୍ୱ ( ଦେଖ )—
Nirddwanda 1 Nirddwandwa ( See )
( ନିର୍ଦ୍ୱନ୍ଦ—ଅନ୍ୟରୂପ ) ୨ । ନିଶ୍ଚିନ୍ତ—
2 Free from care or anxiety.
୩ । ବିବାଦରହିତ—2 Free from dispute.
୪ । ନିଃସନ୍ଦେହ—4 Doubtless

**ନିର୍ଦ୍ୱନ୍ଦ୍ୱ**—ସ. ବଣ. ( ବହୁବ୍ରୀହି, ନିର୍+ଦ୍ୱନ୍ଦ୍ୱ )—
Nirdwandwa ୧ । ଦ୍ୱନ୍ଦ୍ୱ ବା ବିବାଦଶୂନ୍ୟ, ନିର୍ବିବାଦ—
(ନିର୍ଦ୍ୱନ୍ଦ୍ୱ—ଅନ୍ୟରୂପ) 1. Free from troubles; undisputed.
୨ । ଦ୍ୱିତୀୟରହିତ—2. Unequable.
୩ । ସୁଖ ଦୁଃଖ ବା ଶୀତୋଷ୍ଣାଦି ପ୍ରଭୃତି ମମତାରହିତ—
3 Indifferent in regard to opposite pairs of feelings and sensations.
୪ । ଉଦାସୀନ, ମମତାଶୂନ୍ୟ—4. Indifferent.
୫ । ଈର୍ଷାରହିତ—5. Free from jealousy
୭ । ବାଧାରହିତ—7. Free from obstacles.

**ନିର୍ଧନ**—ସ. ବଣ. ପୁଂ (ବହୁବ୍ରୀହି, ନିର୍+ଧନ)—୧ । ଧନଶୂନ୍ୟ—
Nirdhana 1. Penniless; without riches.
(ନିର୍ଦ୍ଧନ—ଅନ୍ୟରୂପ) ୨ । ଦରିଦ୍ର—2 Indigent; poor,
[ନିର୍ଧନତା(ତ୍ୱ)—ବି] (ନିର୍ଦ୍ଧନା—ସ୍ତ୍ରୀ) needy.
ବି.—ଜରଦ୍‌ଗବ, ବୃଦ୍ଧ ବୃଷ—An old bull.

**ନିର୍ଧାର**—ସ. ବି. (ନି+ଧୃ ଧାତୁ+ଭାବ. ଅ)—ନିର୍ଧାରଣ (ଦେଖ)
Nirdhara Nirdhārana (See)
(ନିର୍ଦ୍ଧାର—ଅନ୍ୟରୂପ)

**ନିର୍ଧାରକ**—ସ. ବଣ. ପୁଂ (ନିର୍+ଧୃ ଧାତୁ+କର୍ତ୍ତୃ. ଅକ)—ନିର୍ଦ୍ଧାରଣ-
Nirdhāraka କାରୀ, ମୀମାଂସକ—Ascertaining; deter-
(ନିର୍ଦ୍ଧାରକ—ଅନ୍ୟରୂପ) mining; resolving; settling;
(ନିର୍ଦ୍ଧାରିକା—ସ୍ତ୍ରୀ) deciding.

**ନିର୍ଧାରଣ**—ସ ବି. (ନିର୍+ଧୃ ଧାତୁ+ଭାବ. ଅନ)—୧ । ନିରୂପଣ,
Nirdhāraṇa ନିର୍ଣ୍ଣୟ—1. Ascertainment.
(ନିର୍ଦ୍ଧାରଣ—ଅନ୍ୟରୂପ) ୨ । ସ୍ଥିରୀକରଣ—2. Determination.
୩ । ସଭା ଆଦିର ସିଦ୍ଧାନ୍ତ—
3 Resolution of a meeting; decision.
୪ । ଅନେକ ବିଷୟରୁ ଗୋଟିଏ ସ୍ଥିର କରିବା—
4 Specification or choice of one out of many.
୫ । ବଇନା ନେବା—
5. Advancing of earnest money
୬ । ଚୁକ୍ତି—
6. Agreement; contract; covenant.

**ନିର୍ଧା(ର୍ଦ୍ଧା)ରଣ ପୁସ୍ତକ**—ଦେ. ବି.—ଯେଉଁ ପୁସ୍ତକରେ ସଭାର ନିର୍ଦ୍ଧାରଣ
Nirdhā (rddhā)raṇa pustaka ମାନ ଲିପିବଦ୍ଧ ହୁଏ—
Proceeding-books of a meeting.

**ନିର୍ଧା(ର୍ଦ୍ଧା)ରଣୀୟ**—ସ. ବଣ.—(ନିର୍+ଧୃ ଧାତୁ+କର୍ମ. ଅନୀୟ)—
Nirdhā(rddhā)raṇiya ୧ । ନିରୂପଣୀୟ—
1. Ascertainable.
୨ । ଅନିବାର୍ଯ୍ୟ—2 Unavoidable; irresistible.

**ନିର୍ଧା(ର୍ଦ୍ଧା)ରିତ**—ସ. ବଣ. (ନିର୍+ଧୃ ଧାତୁ+କର୍ମ. ତ)—୧ । ସ୍ଥିରୀକୃତ—
Nirdhā (rddhā)rita 1 Ascertained; confirmed-ratified; fixed.
୨ । ମୀମାଂସିତ—2 Determined; settled; resolved; decided.
୩ । ନିଶ୍ଚିତ—3 Sure; certain.

**ନିର୍ଧା(ର୍ଦ୍ଧା)ରିତବ୍ୟ**—ସ. ବଣ.—ନିର୍ଦ୍ଧାରଣୀୟ—
Nirdhā (rddhā)ritabya Ascertainable.

**ନିର୍ଧାରିବା**—ଦେ (ପଦ୍ୟ) କ୍ରି. (ସ. ନିର୍ଧାରଣ)—ନିର୍ଦ୍ଧାରଣ କରିବା—
Nirdhāribā To ascertain.
ନିର୍ଦ୍ଧାରିବା ୨ । ସ୍ଥିର କରିବା—To determine to fix

**ନିର୍ଧା(ର୍ଦ୍ଧା)ର୍ଯ୍ୟ**—ସ. ବଣ.—(ନିର୍+ଧୃ ଧାତୁ+କର୍ମ. ଯ)—୧ । ନିର୍ଣ୍ଣେୟ—
Nirdhā(rddhā)rjya 1 Ascertainable.
୨ । ନିଶ୍ଚିତ—2. Certain; settled.
୩ । ନିଶ୍ଚିତ୍ତ ଯୋଗ୍ୟ—
3 Capable of being decided.
୪ । ନିର୍ଭୟ କର୍ମକର୍ତ୍ତା—4 Acting fearlessly
୫ । ଅନଳସ, ପରିଶ୍ରମୀ—5 Industrious.
୬ । ଉଦ୍ୟୋଗୀ—6 Active, energetic.
୭ । ଅଟଳ; ଅଭଙ୍ଗନୀୟ—7. Inviolable.
୮ । ନିଶ୍ଚିତ—8 Sure, certain.
୯ । ସାହସୀ—9 Bold (M W )
୧୦ । ନିର୍ଭୟ—10 Fearless (M W )

**ନିର୍ଧୂ(ର୍ଦ୍ଧୂ)ତ**—ସ. ବଣ (ନିର୍+ଧୂ ଧାତୁ=କମ୍ପିତହେବା+କର୍ତ୍ତୃ.ତ)—
Nirdhū(rddhū)ta ୧ । ବିଧୂନିତ, ବିକମ୍ପିତ—
1. Shaken; agitated.
୨ । ପରିବର୍ଜିତ, ତ୍ୟକ୍ତ—
2. Abandoned; deserted
୩ । ଦୂରୀକୃତ; ବିଦୂରିତ—3. Removed; cast off.
୪ । ନିରାକୃତ, ବିନଷ୍ଟ—
4 Exterminated, eradicated.
୫ । ବହିଷ୍କୃତ—5. Expelled; removed.
୬ । ଖଣ୍ଡିତ—6 Refuted.
୭ । ବିନଷ୍ଟ—7. Destroyed.
୮ । ବଞ୍ଚିତ—8 Deprived; bereft of (M. W.).
୯ । ଅନୁଭୂତ—9. Sufferd; undergone (M. W.).
ସ. ବି. ପୁଂ—ବନ୍ଧୁମାନଙ୍କଦ୍ୱାରା ପରିତ୍ୟକ୍ତ ବ୍ୟକ୍ତି—A man, abandoned by his relatives and friends (M. W.).

**ନିର୍ଧୂ(ର୍ଦ୍ଧୂ)ତ ପାପ**—ସ. ବଣ. ( ବହୁବ୍ରୀହି, ନିର୍ଧୂତ+ପାପ )—ଯାହାର
Nirdhū(rddhū)ta pāpa ପାପ ଖଣ୍ଡିତ ହୋଇଅଛି—
(ନିର୍ଧୂ[ର୍ଦ୍ଧୂ]ତ କଲ୍ମଷ—ଅନ୍ୟରୂପ ) Having one's sins
( ନିର୍ଧୂତପାପା—ସ୍ତ୍ରୀ ) wholly removed.

ନିର୍ଧୂ(ର୍ଦ୍ଧୂ)ମ—ସଂ. ବିଣ. ( ବହୁବ୍ରୀହି, ନିର୍+ଧୂମ )—୧ । ଧୂମରହିତ—
Nirdhū(rddhū)ma 1. Smokeless.

ମଲେ ହେଲେ ଶଲ୍ୟଙ୍କ ଦେହୁଁହର ଶୋଭ
ଭାଙ୍ଗି ପକାଇଲ ନିର୍ଧୂମାନଳ ପ୍ରଭା—କୃଷ୍ଣସିଂହ. ମହାଭାରତ. ଶଲ୍ୟ ।

୨ । ନିର୍ମଳ—2. Clear.
୩ । ନିଃଶେଷ—3. Emptied.
୪ । ଶାନ୍ତ—4. Calm

ଖୁବ ଖୁବ ଦେ. ବିଣ—୧ । ଅତ୍ୟନ୍ତ—1. Excessive

ଶୋଇ କରୁ ହୁଏ ଅନାଠିଆ ହୋଇ ମଚ
ନିର୍ଧୂମ ଶଶରେ ପିଲି କନାଇବ କୋଃ – ଫକୀରମୋହନ ଉତ୍କଳଭ୍ରମଣ ।

୨ । ବେଦମ୍—2 Breathless
ବିଣର ବିଣ. ଓ କ୍ରି. ବିଣ—ଅତ୍ୟନ୍ତରୂପେ—Excessively.
( ଯଥା—ନିର୍ଧୂମ ମାଡ଼ୁଥା । )

ନିର୍ଧୌ(ର୍ଦ୍ଧୌ)ତ—ସଂ. ବିଣ. ( ନିର୍=ନିଶ୍ଚୟ+ଧୌତ=କ୍ଷାଳିତ )—
Nirdhau(rddhau)ta ୧ । ପ୍ରକ୍ଷାଳିତ—1. Washed off.
୨ । ପାଲିସ୍ କରାଯାଇଥିବା—2. Polished
୩ । ପରିମାର୍ଜିତ—3 Refined; rectified.
୪ । ପରିଷ୍କୃତ—4 Cleansed
୫ । ଉଜ୍ଜ୍ୱଳ—5. Bright (M. W.)

ନିର୍ଧ୍ୱଂସ—ସଂ. ବି. ( ନିର୍+ଧ୍ୱନ୍ସ୍ ଧାତୁ+ଭାବ. ଅ )—
Nirdhwamsa ନିଃଶେଷରେ ନାଶ, —Sure ruin.
ଦେ. ବିଣ—ନିଶ୍ଚିତ—Certain.

ଦେବତା ଅସୁର ହେଉ ଅଥବା ମନୁଷ୍ୟ
ନଷ୍ଟେ ନାଶ ହୋଇଯିବ ଏକଥା ନିର୍ଧ୍ୱଂସ—ଗ୍ରାଚୀ. ବିଷ୍ଣୁଷେବସ୍ ।

ନିର୍ନମସ୍କାର—ସଂ. ବିଣ ପୁଂ. ( ବହୁବ୍ରୀହି, ନିର୍+ନମସ୍କାର )—
Nirnamaskāra ୧ । ଯେ ଦେବତା ଓ ଗୁରୁ ଆଦିଙ୍କୁ ନମସ୍କାର
( ନିର୍ନମସ୍କାର୍—ସ୍ତ୍ରୀ ) କରେ ନାହିଁ—1 Offering no homage ( to the Gods or elders ).
୨ । ଅଭଦ୍ର—
2 Disrespectful; uncourteous ( M. W. ).
୩ । ଅସମ୍ମାନିତ—3 Unrespected ( M. W. )
୪ । ସମସ୍ତଙ୍କଦ୍ୱାରା ଘୃଣିତ—
Despised by all ( M W )

ନିର୍ନର—ସଂ. ବିଣ. ( ନିର୍+ନର, ବହୁବ୍ରୀହି )—ମନୁଷ୍ୟମାନଙ୍କଦ୍ୱାରା
Nirnara ପରିତ୍ୟକ୍ତ—Abandoned by man; deserted by man.

ନିର୍ନାଥ—ସଂ. ବିଣ. ପୁଂ. ( ବହୁବ୍ରୀହି, ନିର୍+ନାଥ )—ଅନାଥ—
Nirnātha Without protector or guard; without
( ନିର୍ନାଥା—ସ୍ତ୍ରୀ ) ( ନିର୍ନାଥତା—ବି ) master.

ନିର୍ନାଥତା—ସଂ. ବି—୧ । ବୈଧବ୍ୟ ଦଶା—
Nirnāthatā 1. Widowhood.
୨ । ଅସ୍ୱାମିକ ଅବସ୍ଥା—
2. The state of being masterless.
୩ । ପିତୃମାତୃହୀନତା; ଛେଉଣ୍ଡପଣ—
3 Orphanage ( Apte ).

ନିର୍ନାଭି—ସଂ. ବିଣ. ( ନିର୍+ନାଭି, ବହୁବ୍ରୀହି )—ଯେଉଁ ପିନ୍ଧା ଲୁଗା
Nirnābhi ନାଭି ପର୍ଯ୍ୟନ୍ତ ପିନ୍ଧା ଯାଇ ନାହିଁ—( a cloth ) Not reaching to the navel ( M. W ).

ନିର୍ନାମ—ସଂ. ବିଣ ( ବହୁବ୍ରୀହି, ନିର୍+ନାମନ୍ —
Nirnāma ୧ । ନାମହୀନ—1. Nameless.
୨ । ସମ୍ମାନହୀନ—2. Without honour.
୩ । ଅପ୍ରସିଦ୍ଧ—3. Unreputed
୪ । ସାମାନ୍ୟ, କ୍ଷୁଦ୍ର—4. Insignificant

ନିର୍ନାୟକ—ସଂ. ବିଣ (ବହୁବ୍ରୀହି, ନିର୍+ନାୟକ)—୧ । ନେତାହୀନ—
Nirnāyaka 1. Having no leader.
(ନିର୍ନାୟକା—ସ୍ତ୍ରୀ) [ନିର୍ନାୟକତା(ତ୍ୱ)—ବି] ୨ । ଅରାଜକ—
2 Anarchic (M. W.)

ନିର୍ନିଦ୍ର—ସଂ. ବିଣ. ପୁଂ (ବହୁବ୍ରୀହି, ନିର୍+ନିଦ୍ରା)—ଉନ୍ନିଦ୍ର—
Nirnidra Sleepless, wakeful.
( ନିର୍ନିଦ୍ରା—ସ୍ତ୍ରୀ ) [ ନିର୍ନିଦ୍ରତା(ତ୍ୱ)—ବି ]

ନିର୍ନିମିତ୍ତ—ସଂ. ବିଣ ( ବହୁବ୍ରୀହି, ନିର୍+ନିମିତ୍ତ )—
Nirnimitta ୧ । ଅକାରଣ, ହେତୁଶୂନ୍ୟ—1. Causeless
୨ । ନିରର୍ଥକ—2. Useless
୩ । ଆକସ୍ମିକ, ଅପ୍ରତ୍ୟାଶିତ—3 Unexpected, produced without a visible cause.
୪ । ନିଃସ୍ୱାର୍ଥ—4. Having no egoistic motive; disinterested (M. W.)

ନିର୍ନିମେଷ—ସଂ. ବିଣ ( ବହୁବ୍ରୀହି, ନିର୍+ନିମେଷ )—
Nirnimesha ୧ । ନିମେଷଶୂନ୍ୟ, ପଲକହୀନ (ଦୃଷ୍ଟି)—
(ନିର୍ନିମେଷା—ସ୍ତ୍ରୀ) 1 Winkless; staring, with a
[ନିର୍ନିମେଷତା(ତ୍ୱ)—ବି] fixed gaze.
୨ । ଯେ ଚକ୍ଷୁ ବୁଜେ ନାହିଁ—
2. Not closing the eyes.

ନିର୍ନିମେଷ ଲୋଚନ—ସଂ. ବିଣ. ପୁଂ ( ବହୁବ୍ରୀହି, ନିର୍ନିମେଷ+ଲୋଚନ
Nirnimesha lochana ଯାହାର )—ଯାହାର ପଲକ ପଡ଼ୁନାହିଁ,
(ନିର୍ନିମେଷଲୋଚନା—ସ୍ତ୍ରୀ) ଆଖିପଲକ ନ ପକାଇ ଚାହିଁବା ବ୍ୟକ୍ତି—
With a fixed gaze; one who does not wink.
ବି—୧ । ( କର୍ମଧା ) ଅନିମେଷ ଦୃଷ୍ଟି—1 Fixed gaze.
୨ । ( ବହୁବ୍ରୀହି ) ଦେବତା—2 The Gods.

ନିର୍ବଂଶ—ସଂ. ବିଣ. ପୁଂ ( ବହୁବ୍ରୀହି, ନିର୍+ବଂଶ )—
Nirbamsa ୧ । ବଂଶହୀନ—1 Leaving no progeny;
( ନିର୍ବଂଶା—ସ୍ତ୍ରୀ ) without posterity.
[ନିର୍ବଂଶତା(ତ୍ୱ)—ବି] ୨ । ନିଃସନ୍ତାନ, ଯାହାର କେହି ବଂଶଧର ନ ଥାଏ—2. Issueless; childless.

ନିର୍ବଂଶ ଯିବା—ଦେ. କ୍ରି ( ଗାଳିରେ ବ୍ୟବହୃତ )—
Nirbamsa jibā ବଂଶହୀନ ହେବା—To leave no issue.

ନିର୍বংশ যাওয়া to become extinct in progeny.
**निर्वंश होना** ( ନିର୍ବଂଶ ହେବା — ଅନ୍ୟରୂପ )

**ନିର୍ବଂଶିଆ** — ଦେ. ବଣ. ପୁଂ. ( ଗାଳିରେ ବ୍ୟବହୃତ, ସଂ. ନିର୍ବଂଶ )—
Nirbamsia ନିର୍ବଂଶ ( ଦେଖ )—Nirbamsa (See)
নির্বংশে ( ନିର୍ବଂଶୀ—ସ୍ତ୍ରୀ )

**ନିର୍ବକ୍ତବ୍ୟ** — ସଂ. ବଣ. ( ନିର୍ + ବକ୍ତବ୍ୟ ) — ଯାହା ବ୍ୟାଖ୍ୟାତ ହେବ—
Nirbaktabya To be interpereted or explained (M W).

**ନିର୍ବ(ର୍ବ)ଚନ** ସଂ. ବି ( ନିର୍=ନିଶ୍ଚୟ + ବଚନ = ବାକ୍ୟ ) —
Nirba(rbba)chana ୧ । କଥନ—
1 Speaking out; utterance; pronouncement.
୨ । ନିଶ୍ଚୟ ବାକ୍ୟ —2. Sure promise.
୩ । ମୀମାଂସା —3. Settlement; decision.
୪ । ନିରୂପଣ—4. Ascertainment.
୫ । ବ୍ୟାଖ୍ୟା—5 Explanation; interpretation.
୬ । ପ୍ରବଚନ, ଆପ୍ତବାକ୍ୟ —
6. Proverb; a saying; adage.
୭ । ଶବ୍ଦ ବ୍ୟୁତ୍ପତ୍ତି ବିଦ୍ୟା—
7. Etymology ( M. W ).
( ନିର୍ବଚନା - ସ୍ତ୍ରୀ ) ସଂ. ବଣ—୧ । ନିର୍ବାକ୍, ମୌନ—
1. Speechless; silent.
୨ । ଅନିନ୍ଦ୍ୟ—2. Blameless; unobjectionable.

**ନିର୍ବଚନୀୟ** — ସଂ. ବଣ. ( ନିର୍ + ବଚ୍ ଧାତୁ + କର୍ମ. ଅନୀୟ )—
Nirbachaniya ୧ । ଯାହା ବାକ୍ୟରେ ପ୍ରକାଶ କରାଯାଇ ନ
(ନିର୍ବାଚ୍ୟ—ଅନ୍ୟରୂପ) ପାରେ—1 Not capable of being expressed or described; inexpressible; indescribable.
[ ଦ୍ର— ନିର୍ବଚନୀୟ ଓ ଅନିର୍ବଚନୀୟର ଏକ ଅର୍ଥ । ]
୨ । ଯାହା ବ୍ୟାଖ୍ୟାତ ହେବ—
2 To be explained ( M. W ).

**ନିର୍ବ(ର୍ବ)ନ୍ଧ** — ସଂ. ବି ( ନିର୍ + ବନ୍ଧ ଧାତୁ = ବାନ୍ଧିବା + ଭାବ. ଅ )
Nirba(rbba)ndha ୧ । ଆଗ୍ରହ, ଔତ୍ସୁକ୍ୟ; ବ୍ୟଗ୍ରତା—
1. Eagerness; zeal.
ବ୍ରାହ୍ମଣ କୁଳରେ ସ ଉଚ୍ଚ ବନ୍ଧରେ
ମାତ୍ର ବହନ୍ତିଲେ ଗୃହସ୍ଥ ନିର୍ବନ୍ଧରେ—କୃଷ୍ଣସିଂହ, ମହାଭାରତ, ଶାନ୍ତି ।
୨ । ଅତିଶୟ ଅନୁରୋଧ, ଅତିଶୟ ପ୍ରାର୍ଥନା—2. Importunity; pressing request; pertinacity.
୩ । ବ୍ୟବସ୍ଥା, ବିଧାନ—
3. Arrangement; settlement
୪ । ଅଭିନିବେଶ—4. Close attention; devotion; tenacity of purpose; pertinacity in the pursuit of an object.
୫ । ଜିଦ୍, ଜିଗର -5 Zid.
୬ । ଚିତ୍ତୋଦ୍ଭବ ଅକସ୍ମାତ୍ ବାସନା, ଖାମଖିଆଲ—
6. Whim; caprice.
୭ । ବାଧ୍ୟତା—7. Obligation
୮ । ଦାସତ୍ୱ—8. Slavery; bondage.
୯ । କାରାବନ୍ଧନ—
6. Imprisonment; confinement.
୧୦ । ନିଶ୍ଚୟ—10. Certainty.
୧୧ । ସଂଯୋଗ, ଘଟନା—
11. Conjunction; occurrence.
୧୨ । ଅଟକ—12. Restraint.
ଦେ. ବି—୧ । ବରକନ୍ୟା ବିବାହ ସମ୍ବନ୍ଧରେ ଉଭୟ ପକ୍ଷର କର୍ତ୍ତାମାନଙ୍କ ମଧ୍ୟରେ ବାଗ୍ଦାନ —
1. Marriage engagement, betrothal (between the guardians of the bride and the bridegroom elect ); engagement for marriage.
ଉତ୍ତର ଫାଲଗୁନୀ ନକ୍ଷତ୍ର ଯେଉଁ ଦିନ
ସେ ଦିନକୁ ନିର୍ବନ୍ଧ କଲେ ତପୋଧନ—କୃଷ୍ଣସିଂହ, ମହାଭାରତ, ଆଦି ।
୨ । ବନ୍ଧନ—2. Bond; binding.
ରୁଧିର ମାଂସ ମଜ୍ଜା ଅଛି
ଶିର ନିର୍ବନ୍ଧ ମଧ୍ୟ ସ୍ଥିତ — ଜଗନ୍ନାଥ, ଭାଗବତ ।
ବିଣ—( ସଂ. ନିର୍ବନ୍ଧ ) ବନ୍ଦୀ— Confined.
ଗୋତ୍ର ଗର୍ଦ୍ଦଭ ଅଶ୍ୱରୂପେ
ନିର୍ବନ୍ଧ ଗୃହ ଅନ୍ଧକୂପେ — ଜଗନ୍ନାଥ, ଭାଗବତ ।

**ନିର୍ବ(ର୍ବ)ନ୍ଧନ** — ସଂ. ବି. ( ନିର୍ + ବନ୍ଧ୍ ଧାତୁ + ଭାବ. ଅନ )—
Nirba(rbba)ndhana ୧ । ପ୍ରତିବନ୍ଧକଦ୍ୱାରା ବନ୍ଧକରଣ; ଅଟକାଇବା —1. Restraining; obstructing.
୨ । ଅଭିପ୍ରାୟ—2. Intention.
୩ । ନିୟମ—3. Rule; maxim.
୪ । ଦାସ୍ୟ—4. Servitude.
୫ । ଦାସତ୍ୱ—5. Slavery.

**ନିର୍ବ(ର୍ବ)ନ୍ଧାତିଶଯ୍ୟ** — ସଂ. ବି. ( ୬ଷ୍ଠୀ ତତ୍, ନିର୍ବନ୍ଧ + ଆତିଶଯ୍ୟ )—
Nirba(rbba)ndhātisajya ଅତ୍ୟନ୍ତ ଜିଗର; ପ୍ରାର୍ଥନାତିଶଯ୍ୟ—
Pressure; importunity; pressing request.

**ନିର୍ବ(ର୍ବ)ନ୍ଧିତ** — ସଂ. ବଣ. ( ନିର୍ବନ୍ଧ + ସଞ୍ଜାତାର୍ଥେ. ଇତ )—
Nirba(rbba)ndhita ୧ । ସନିର୍ବନ୍ଧ—
1 Importune; pertinacious.
୨ । ନିଶ୍ଚିତ—2. Certain.
୩ । ନିୟମିତ—3. Regular.

**ନିର୍ବ(ର୍ବ)ପଣ(ନ)** — ସଂ. ବି. ( ନିର୍ + ବପ ଧାତୁ = ଦାନ କରିବା + ଭାବ. ଅନ ) — ୧ । ଦାନ—
Nirba(rbba)pana(na)
1. Giving; donation.
୨ । ଅନ୍ନାଦି ପରିବେଷଣ—2. Serving of food.
୩ । ଶ୍ରାଦ୍ଧରେ ପିଣ୍ଡାଦି ଦାନ—3. Offering of cooked rice balls to the manes of the deceased ancestors.

ନିର୍ବର—ସଂ. ବିଣ. ପୁଂ. ( ନିର୍ + ବର )—୧ । ନିର୍ଲଜ୍ଜ (ହି. ଶ.)—
Nirbara    1 Shameless.
(ନିର୍ବରା—ସ୍ତ୍ରୀ)    ୨ । ନିର୍ଭୟ (ହି. ଶ.)—2 Fearless.

ନିର୍ବ(ର୍ବ)ର୍ଣ୍ଣନ—ସଂ. ବି. ( ନିର୍ + ବର୍ଣ୍ଣନ )—ଦର୍ଶନ—
Nirba(rbba)rnnana    Act of seeing

ନିର୍ବ(ର୍ବ)ର୍ତ୍ତକ—ସଂ. ବିଣ. ( ନିର୍ + ବୃତ୍ ଧାତୁ + କର୍ତ୍ତୃ. ଅକ )—
Nirba(rbba)rttaka    ନିର୍ବାହକ, ସମ୍ପାଦନକର୍ତ୍ତା—
Accomplishing.

ନିର୍ବର୍ତ୍ତନ—ସଂ ବି. ( ନିର୍ + ବୃତ୍ ଧାତୁ + ଭାବ. ଅନ )—
Nirbarttana    ସମ୍ପାଦନ; ନିଷ୍ପାଦନ—Accomplishment.

ନିର୍ବର୍ତ୍ତିତ—ସଂ. ବିଣ. (ନିର୍ + ବୃତ୍ ଧାତୁ ଣିଚ୍ = ବର୍ତ୍ତି ଧାତୁ + କର୍ମ. ତ)—
Nirbarttita    ସମ୍ପାଦିତ, ନିଷ୍ପାଦିତ—Accomplished.

ନିର୍ବର୍ଷ - ସଂ. ବିଣ. ( ବହୁବ୍ରୀହି, ନିର୍ + ବର୍ଷ = ବୃଷ୍ଟି )—
Nirbarsha    ବୃଷ୍ଟିହୀନ—Rainless.

ନିର୍ବର୍ହଣ—ସଂ. ବି. (ନିର୍ + ବର୍ହ ଧାତୁ = ହିଂସା କରିବା + ଭାବ. ଅନ)—
Nirbarhana    ୧ । ମାରଣ—1 Killing; slaughter.
୨ । ସମାପ୍ତି—2. Completion.

ନିର୍ବ(ର୍ବ)ଳ—ସଂ. ବିଣ. ( ବହୁବ୍ରୀହି, ନିର୍ + ବଳ )—୧ । ବଳହୀନ—
Nirba(rbba)la    1 Powerlees; impotent
(ନିର୍ବଳା—ସ୍ତ୍ରୀ)    [ନିର୍ବଳତା(ତ୍ୱ)—ବି]
୨ । ଦୁର୍ବଳ—2 Weak, feeble.
୩ । କ୍ଷୀଣ—3. Emaciated
୪ । ନିସ୍ତେଜ—4. Vigourless.
୫ । ଅସହାୟ—5 Helpless.

ନିର୍ବଳୁଆ—ଦେ. ବିଣ. ( ସଂ. ନିର୍ବଳ )—ଦୁର୍ବଳ—
Nirbalua    Powerless; weak; impotent.
निर्बल **निबल** •
(ନିର୍ବଳିଆ—ଅନ୍ୟରୂପ) • [ନିର୍ବଳେ(ଳୋ)ଇ—ସ୍ତ୍ରୀ]

ନିର୍ବ(ର୍ବ)ହଣ(ନ)—ସଂ. ବି. ( ନିର୍ + ବହ୍ ଧାତୁ + ଭାବ. ଅନ )—
Nirba(rbba)hana(na)    ୧ । ହିଂସା; ମାରଣ (ଗାଙ୍ଗୁଲୀ)—
1. Killing; slaughter.
୨ । ନିର୍ବାହ (ହି. ଶ.)—2 Carrying on.
୩ । ସମାପ୍ତି ( ହି. ଶ. )—3. Completion;
accomplishment.
୪ । ନାଟକାଦିର ସମାପ୍ତି (ପ୍ରକୃତିବାଦ)—
4. The end of a drama.

ନିର୍ବା(ର୍ବା)କ୍—ସଂ. ବିଣ. ପୁଂ ସ୍ତ୍ରୀ (ବହୁବ୍ରୀହି; ନିର୍ + ବାକ୍; ୧ମା. ୧ବ)—
Nirba(rbba)k    ବାକ୍ୟ ଶୂନ୍ୟ; ମୂକ—Silent; speechless.
କସ୍ତୁରସ୍ୟ ସମ ନିର୍ବାକ । ଭାଷ, ବୈଦେହୀଶବିଳାସ ।

ନିର୍ବା(ର୍ବା)କ୍ୟ—ସଂ. ବିଣ. ପୁଂ. (ବହୁବ୍ରୀହି; ନିର୍ + ବାକ୍ୟ)—
Nirba(rbba)kya    ବାକ୍‌ଶକ୍ତିରହିତ; ମୂକା (ହି. ଶ.)—
(ନିର୍ବାକ୍ୟା - ସ୍ତ୍ରୀ)    (ନିର୍ବାକ୍ୟତା—ବି)    Dumb.

ନିର୍ବା(ର୍ବା)ଚନ—ସଂ. ବି. ( ନିର୍ + ବଚ୍ ଧାତୁ ଣିଚ୍ ବାଚ ଧାତୁ =
Nirba(rbba)chana    ବୋଲାଇବା + ଭାବ. ଅନ )—
୧ । ନିର୍ଦ୍ଧାରଣ, ସ୍ଥିରୀକରଣ—1. Determination.
୨ । ଅନେକଙ୍କ ମଧ୍ୟରୁ ବାଛି ବାହାର କରିବା—
2. Selection from amongst many, picking
out; choice; election.

ନିର୍ବା(ର୍ବା)ଚିତ—ସଂ. ବିଣ. ( ନିର୍ + ବାଚ ଧାତୁ + କର୍ମ. ତ )—
Nirba(rbba)chita    ସ୍ଥିରୀକୃତ, ବଛା ଯାଇଥିବା—
(ନିର୍ବାଚିତା—ସ୍ତ୍ରୀ)    Selected; elected; appointed.

ନିର୍ବା(ର୍ବା)ଚ୍ୟ—ସଂ.. ବି. ( ନିର୍ + ବାଚ ଧାତୁ + କର୍ମ. ଯ )—
Nirba(rbba)chya    ୧ । ନିରୂପଣୀୟ—1. Ascertainable.
(ନିର୍ବାଚ୍ୟା—ସ୍ତ୍ରୀ)    ୨ । ବ୍ୟାଖ୍ୟେୟ—2. Explainable.
୩ । ଅନିନ୍ଦନୀୟ—3. Unblamable.
୪ । ଅକଥ୍ୟ—4. Improper to be said.
୫ । ଅନିର୍ବଚନୀୟ—5 Unspeakable.
୬ । ନିର୍ବାଚିତ ହେବା ଯୋଗ୍ୟ—
6 Fit to be selected.
୭ । ନିର୍ବଚନୀୟ (ଦେଖ)—Nirbachaniya (See)

ନିର୍ବା(ର୍ବା)ଣ—ସଂ. ବି. (ନିର୍ + ବା ଧାତୁ = ନାଶ କରିବା + ଭାବ. ତ)—
Nirba(rbba)na    ୧ । ବିଲୋପ, ବିନାଶ—
1. Extinction; annihilation.
୨ । ଭବ ଯନ୍ତ୍ରଣାରୁ ନିବୃତ୍ତି ଲାଭ—2. Emancipation
from the material existence.
୩ । ମୁକ୍ତି, ମୋକ୍ଷ—3. Salvation; liberation,
final beatitude.
୪ । ଶାନ୍ତି—4. Quetitude; peace.
୫ । ବିଶ୍ରାମ—5. Rest; repose.
୬ । ସମାପ୍ତି—
6 Completion; finish, the end.
୭ । ହସ୍ତୀର ସ୍ନାନ—
7 The bathing of an elephant.
୮ । ମୃତ୍ୟୁ—8. Death; dissolution.
୯ । ମିଳନ—9. Union.
୧୦ । ଜୀବାତ୍ମାର ପରମାତ୍ମାରେ ମିଳନ—
10 Absorption of the individual soul
with the Universal Soul (God).
୧୧ । ସଙ୍ଗମ—11. Association; confluence.
୧୨ । ମିଶ୍ରଣ—12. Blending; absorption.
୧୩ । ପ୍ରସ୍ଥାନ—13. Departure
୧୪ । ନିଭିଯିବା—14. Extinction (of a light).
୧୫ । ( ଜ୍ୟୋତିଷ୍କଙ୍କର ) ଅସ୍ତଗମନ—
15. Setting down ( of luminaries ).
୧୬ । ଅଦୃଶ୍ୟ ହେବା—16. Disappearance.
୧୭ । ଉପଦେଶ—17. Instruction.
୧୮ । ନିରସ୍ତ ହେବା—18. Desisting; cessation.
୧୯ । ଶୂନ୍ୟତା—11. Vacuity; space; vacum.

ଦେ ବି. ( ସଂ. ନିର୍ମାଣ )—ନିର୍ମାଣ—
Formation; making.
ପାବେର୍ କାଙ୍ଗ୍ରେ ନିର୍ବାଣ । ରଣେବନ୍ତ. ପ୍ରେମଭକ୍ତି ଗୀତା ।
ସଂ. ବିଣ ( +କର୍ତ୍ତୃ. ତ )—୧ । ମୁକ୍ତ, ମୋକ୍ଷପ୍ରାପ୍ତ—
1. Liberated; emancipated.
୨ । ନିଶ୍ଚଳ—2. Fixed; still; stationary
୩ । ନିର୍ବାପିତ; ନିଭି ଯାଇଥିବା—
3 Extinguished; blown out
ଦ୍ରୁଣର ପବନ ଯେ ଅଗାଧ ଜଳ ।
ଅଗ୍ନି ନିର୍ବାଣ ହୋଇଲା ନାହିଁ ଘୋର ବଳ ହେ । ବଣ୍ଣନାଥ, ବଡ଼ଚନ୍ଦ୍ରମାସୁଣ ।
୪ । ପ୍ରଶାନ୍ତ—4 Appeased; reposed.
୫ । ନିବୃତ୍ତ, ସନ୍ତୁଷ୍ଟ—5. Contented; satisfied.
୬ । ( ନିର୍+ବାଣ ) ଯାହାର ବାଣ ସରଯାଇଅଛି—
6. With the arrows exhausted.
୭ । ପ୍ରସ୍ଥିତ—7 Gone; departed.
୮ । ମୃତ—8 Defunct; dead.
୯ । ବିଲୁପ୍ତ—9. Extinct; annihilated.
୧୦ । ଅବସନ୍ନ –10 Worn out.
୧୧ । ନିବୃତ୍ତ—11 Stopped; ceased.
୧୨ । ଅସ୍ତଗତ –12. Set down
୧୩ । ନଷ୍ଟ—13. Spoiled.
୧୪ । ନିମଗ୍ନ—14. Immersed.

**ନିର୍ବାଣ ଭୂୟିଷ୍ଠ**—ସଂ. ବିଣ.—ନିର୍ବାଣୋନ୍ମୁଖ (ଦେଖ)
Nirbāṇa bhūyishṭha Nirbāṇonmukha (See)

**ନିର୍ବାଣ ମଣ୍ଡପ** – ସଂ. ବି.—କାଶୀସ୍ଥିତ ମୁକ୍ତିମଣ୍ଡପ ନାମକ ତୀର୍ଥ—
Nirbāṇa maṇḍapa Name of a holy platform or shrine at Benares.

**ନିର୍ବାଣୀ** –ସଂ. ବିଣ. (ବହୁବ୍ରୀହି; ନିର୍=ନାହିଁ+ବଣୀ=ବାକ୍ୟ)—
Nirbāṇi ବାକ୍ୟହୀନ, ମୌନ—Silent; speechless
ସଂ. ବି.—ଜୈନମାନଙ୍କର ଦେବତାବିଶେଷ—
Name of a Jaina Deity.
ଦେ. ବି.—ସନ୍ନ୍ୟାସୀ ବା ବୈରାଗୀମାନଙ୍କ ଶାଖାବିଶେଷ—
A sect of anchorites.

**ନିର୍ବାଣୋନ୍ମୁଖ**—ସଂ. ବିଣ.—ନିର୍ବାଣପ୍ରାପ୍ତ, ଯାହା ନିଭି ଗଲା ପରି ହୋଇଅଛି—About to be extinguished.
Nirbāṇonmukha

**ନିର୍ବା(ର୍ବ୍ବା)ତ**—ସଂ. ବିଣ. (ବହୁବ୍ରୀହି, ନିର୍+ବାତ)—୧ । ବାୟୁଶୂନ୍ୟ—
Nirbā rbbā)ta 1. Windless.
୨ । ପବନ ଆଡୁଆଳରେ ଥିବା—
2. Sheltered from wind.
୩ । ଅଚଞ୍ଚଳ; ସ୍ଥିର—3. Calm, still.
୪ । ନିଭି ଯାଇଥିବା—4. Blown out.

**ନିର୍ବା(ର୍ବ୍ବା)ଦ**—ସଂ. ବି. (ନିର୍+ବାଦ=କଥା)—୧ । ଅପବାଦ, ନିନ୍ଦା—
Nirbā(rbbā)da 1 Accusation; slander; blame.
୨ । ତିରସ୍କାର—2. Reproach.
୩ । ଅବଜ୍ଞା, ଅନାଦର—
3 Contempt; slight; disregard
୪ । ଜନରବ—4. Rumour.
୫ । ପରମ୍ପରାଗତ ଜନଶ୍ରୁତି—5 Tradition.
୬ । ନିଶ୍ଚିତ ବାଦ—6. Affirmation.
୭ । ବିବାଦ, କଳହ—7. Dispute; quarrel.
୮ । ନିର୍ବିବାଦ, ଅବିରୋଧ —
8. Absence of dispute or opposition.
୯ । (ଅବ୍ୟୟୀଭାବ)—ବାଦାଭାବ—Want of dispute.
ବିଣ.—(ବହୁବ୍ରୀହି) ବିବାଦଶୂନ୍ୟ—Undisputed

**ନିର୍ବା(ର୍ବ୍ବା)ଧ**—ସଂ. ବିଣ. (ବହୁବ୍ରୀହି, ନିର୍+ବାଧା)—୧ । ଅବାଧ; ବାଧାହୀନ—1 Undisturbed, without obstacles; unobstructed, unfettered; without hindrance.
Nirbā(rbbā)dha
(ନିର୍ବାଧତା—ବି)
୨ । ସ୍ୱାଧୀନ—2. Free; independent

**ନିର୍ବା(ର୍ବ୍ବା)ପ**—ସଂ. ବି. (ନିର୍+ବପ୍ ଧାତୁ=ବୁଣିବା, ଦାନ କରିବା+ଭାବ. ଅ)—୧ । ନିବାପ, ମୃତ ବ୍ୟକ୍ତିର ଉଦ୍ଦେଶ୍ୟରେ ଦାନ—1 Offerings to one's dead ancestors; funeral gifts; oblation.
Nirbā(rbbā)pa
୨ । ଦାନ—2 Gift
୩ । ନିଭାଇ ଦେବା—
3 Extinguishing (of a light).
୪ । ବିନାଶ, ବଧ—
4 Killing; murder; slaughter.
୫ । ଶାନ୍ତ କରିବା—5. Satiating; allaying.
୬ । ବିନାଶନ—6 Destruction
୭ । ସୁଖୀ କରିବା—
7 Satisfying; making happy.

**ନିର୍ବା(ର୍ବ୍ବା)ପକ**—ସଂ. ବିଣ. ପୁଂ (ନିର୍+ବପ୍ ଧାତୁ+କର୍ତ୍ତୃ ଅକ)—
Nirbā(rbbā)paka ୧ । ବିନାଶକ—1. Destroying
(ନିର୍ବାପିକା—ସ୍ତ୍ରୀ) ୨ । ହନ୍ତା—2. Killing; murdering.
୩ । ଯେ ନିଭାଇ ଦିଏ—3 Extinguishing

**ନିର୍ବାପକ ଘଣ୍ଟା**—ଦେ. ବି. (ଆଧୁନିକ ବ୍ୟବହାର)—ଘରୁ ଅଗ୍ନି ନିଭାଇବା ପାଇଁ ପ୍ରାଚୀନ କାଳରେ ଇଂଲଣ୍ଡରେ ବାଜୁଥିବା ଘଣ୍ଟା—The curfew bell of old England.
Nirbāpakaghaṇṭā

ବଜୀ ଅଂସାକେ ଆଗତ ଉଜନୀ,
ନିର୍ବାପକ ଘଣ୍ଟା ବାଜିବ ଏଥିଣି । ଅଜୟଚନ୍ଦ୍ର, ଶେଷବେଳୀ ।

[ଦ୍ର—ପୂର୍ବେ ଇଂଲଣ୍ଡରେ ବହୁତ ଘରପୋଡ଼ି ହେଉଥିଲା । ଇଂଲଣ୍ଡର ପ୍ରସିଦ୍ଧ ରାଜା ପ୍ରଥମ ୱିଲିୟାମ୍ ଏହି ଗୃହଦାହ ନିବାରଣାର୍ଥ ଆଜ୍ଞା ପ୍ରଚାର କରିଥିଲେ ଯେ ସନ୍ଧ୍ୟା ୮ ଘଣ୍ଟା ବେଳେ ପ୍ରତ୍ୟେକ ଗୃହରେ ନିଆଁ ଓ ଆଲୁଅ ନିଭାଇବାକୁ ହେବ । ଏଥିପାଇଁ ବଡ଼ ବଡ଼ ସହରରେ ସନ୍ଧ୍ୟା ୮ଟା ବାଜିଲାକ୍ଷଣି ରାଜକର୍ମଚାରୀମାନେ ଗୋଟିଏ ଘଣ୍ଟା ବଜାଉଥିଲେ । ଏହି ଘଣ୍ଟା ଶୁଣି ଗୃହସ୍ଥମାନେ

ଆପଣା ଆପଣା ଘରର ନିଆଁ ଲିଭାଇ ଦେଉଥିଲେ । ଯେ ଏହି ନିୟମ ଭଙ୍ଗ କରୁଥିଲେ ତାଙ୍କୁ ରାଜଦଣ୍ଡ ଭୋଗିବାକୁ ହେଉଥିଲା ।]

**ନିର୍ବା(ର୍ବ୍ବା)ପଣ**—ସଂ. ବି.—(ନିର୍+ବାପି ଧାତୁ ଗମନ କରିବା+ଭାବ. ଅନ)—ନିର୍ବାପ ( ଦେଖ )—Nirbāpa ( See )
Nirbā (rbbā)pana

**ନିର୍ବା(ର୍ବ୍ବା)ପିତ**—ସଂ. ବିଣ. (ନିର୍+ବପ୍ ଧାତୁ ଣିଚ୍. ବାପି ଧାତୁ+କର୍ମ.ତ)
Nirbā (rbbā)pita ୧ । ନାଶିତ—1. Destroyed.
୨ । ନିହତ—2. Killed, slaughtered.
୩ । ଦତ୍ତ—3. Given up; offered.
୪ । ଲିଭାଇ ଦିଆ ଯାଇଥିବା—
4. Extinguished; put out.
୫ । ପ୍ରଶମିତ—5 Cooled; allayed; alleviated.

**ନିର୍ବା(ର୍ବ୍ବା)ର୍ଯ୍ୟ**—ସଂ ବିଣ. (ନିର୍+ବୃ ଧାତୁ+କର୍ମ. ଯ)—୧ । ନିଃଶଙ୍କ—
Nirbā (rbbā)rjya 1. Fearless.
୨ । ଦୁଃସାହସୀ—2. Fool hardy.

**ନିର୍ବାଳ**—ସଂ. ବିଣ. (ବହୁବ୍ରୀହି; ନିର୍+ବାଳ)—ବାଳ ବା ଲୋମଶୂନ୍ୟ—
Nirbāḷa Hairless; woolless
ମେଣ୍ଢା ଧୋଇ ଧୋଇ ନିର୍ବାଳ—ଛଡ଼ା ।

**ନି(ର୍ବ୍ବା)ବାସ**—ସଂ. ବି. (ନିର୍+ବସ୍ ଧାତୁ=ବାସ କରିବା+ଅ)—
Nirbā(rbbā)sa ୧ । ଦୂରୀକରଣ—1 Expulsion; exile.
୨ । ନିର୍ବାସନ, ଦେଶାନ୍ତରୀକରଣ—2 Exile.
୩ । ପ୍ରବାସ, ବିଦେଶବାସ—3. Sojourn.

**ନିର୍ବା(ର୍ବ୍ବା)ସକ**—ସଂ. ବିଣ. ପୁଂ, ( ନିର୍+ବସ୍. ଧାତୁ ଣିଚ୍. ବାସି. ଧାତୁ =ବାସ କରାଇବା+କର୍ତ୍ତୃ. ଅକ )—
Nirbā(rbbā)saka
( ନିର୍ବାସିକା—ସ୍ତ୍ରୀ ) ନିର୍ବାସନକାରୀ—Exiling; banishing.

**ନିର୍ବା(ର୍ବ୍ବା)ସନ**—ସଂ. ବି. ( ନିର୍+ବାସି. ଧାତୁ+ଭାବ. ଅନ )—
Nirbā(rbbā)sana ୧ । ଦେଶାନ୍ତରୀକରଣ—1. Banishment; expulsion from one's country.
୨ । ଅପରାଧୀର ଦଣ୍ଡସ୍ୱରୂପ ସ୍ୱଦେଶରୁ ବିତାଡ଼ନ—
2. Expatriation; exile; transportation of an offender.
୩ । ବଧ—3. Slaughter.
୪ । ତଡ଼ି ଦେବା—4. Driving away; expulsion.
୫ । ବିସର୍ଜନ—5. Abandonment.

**ନିର୍ବା(ର୍ବ୍ବା)ସିତ**—ସଂ. ବିଣ. ( ନିର୍+ବାସି. ଧାତୁ+କର୍ମ. ତ )—
Nirbā(rbbā)sita ୧ । ଦେଶାନ୍ତର ଦଣ୍ଡରେ ଦଣ୍ଡିତ; ଦେଶରୁ
( ନିର୍ବାସିତା—ସ୍ତ୍ରୀ ) ବିତାଡ଼ିତ; ରାଜ୍ୟବାହାର—
1. Transported; exiled; banished.
୨ । ବହିଷ୍କୃତ—2. Expelled; driven away.
୩ । ବିନାଶିତ—3. Exterminated.

**ନିର୍ବାସିବା**—ଦେ. ( ପଦ୍ୟ ) କ୍ରି—ବାହାର କରିଦେବା—
Nirbāsibā To exile.
ନିର୍ବାସନା
देशनिकाला करना
ଅବଶେଷେ ମନ୍ତ୍ରୀଙ୍କୁ ଜନକ ଜାଣିଲେ,
ନିର୍ବାସିବେ ବୋଲି ରାଜା ସ୍ଥିର କଲେ ମନେ ।
ନନ୍ଦକିଶୋର. ସୀତାବନବାସ ।

**ନିର୍ବାସ୍ୟ**—ସଂ. ବିଣ. ( ନିର୍+ବାସି. ଧାତୁ+କର୍ମ. ଯ )—
Nirbāsya ୧ । ନିର୍ବାସିତ ହେବାର ଯୋଗ୍ୟ—
1 Deserving to be exiled.
୨ । ଯାହାଙ୍କୁ ନିର୍ବାସିତ କରାଯିବ—
2. To be exiled or transported

**ନିର୍ବା(ର୍ବ୍ବା)ହ** - ସଂ. ବି. ( ନିର୍+ବହ୍. ଧାତୁ=ବହନ କରିବା+ଭାବ. ଅ )—୧ । ନିଷ୍ପାଦନ, ସମ୍ପାଦନ, ସମାପନ—
Nirbā(rbbā)ha
1. Accomplishing
୨ । ସମାପ୍ତି—2. Completion.
୩ । ଜୀବିକା—3 Livelihood.
୪ । ନିଷ୍ପତ୍ତି—4. Decision.
୫ । ପ୍ରାଚୁର୍ଯ୍ୟ—5. Sufficiency; abundance.
୬ । କାର୍ଯ୍ୟ ଚାଳନ—6 Carrying on of a work.
୭ । କାର୍ଯ୍ୟସାଧନର ଉପକରଣ—
7. Provision for supply for a work.
ଦେ. ବିଣ—୧ । ନିର୍ବାହିତ, ସମ୍ପାଦିତ—Accomplished.
ଏ କଥା କେହି ମୋରେ ନିର୍ବାହ ହୋଇବ—କୃଷ୍ଣସିଂହ. ମହାଭାରତ ଅଦି ।
୨ । ନିର୍ମାଣ—2. Construction; build.
ଘର ମଧ୍ୟ ସ୍ୱର୍ଣ୍ଣ ରତ୍ନରେ ନିର୍ବାହ,
କହିବେ କି କିଙ୍କି ରୂପେ ବହି ସ୍ନେହ । କୃଷ୍ଣସିଂ. ମହାଭାରତ. ଦ୍ରୋଣ ।

**ନିର୍ବାହକ**—ସଂ. ବିଣ. ( ନିର୍+ବହ୍. ଧାତୁ+କର୍ତ୍ତୃ. ଅକ )—
Nirbāhaka ସମ୍ପାଦୟିତା, ଯେ ନିର୍ବାହ କରେ—
( ନିର୍ବାହିକା—ସ୍ତ୍ରୀ ) Accomplishing; finishing; performing.
ବି—ସମ୍ପାଦକ, ମେନେଜର—Manager; secretary.

**ନିର୍ବାହ କରିବା**—ଦେ. କ୍ରି—୧ । ସମ୍ପାଦନ କରିବା—
Nirbāhakaribā 1 To accomplish.
निर्वाहकरना ୨ । କୌଣସି କାର୍ଯ୍ୟ ସାମାଧନ କରିବା; ନିର୍ଭା କରିବା—
निबाहना 2. To bring about a work to an end; to accomplish; to manage; to carry on.
[ଦ୍ର—ଏହା ଅନ୍ୟ ଶବ୍ଦ ପରେ ପ୍ରାୟଶଃ ବ୍ୟବହୃତ ହୁଏ, ଯଥା—ବ୍ୟୟ ନିର୍ବାହ କରିବା, ଜୀବିକା ନିର୍ବାହ କରିବା; କାର୍ଯ୍ୟ ନିର୍ବାହ କରିବା ଇତ୍ୟାଦି ।

**ନିର୍ବାହିତ**—ସଂ. ବିଣ. ( ନିର୍+ବହ୍. ଧାତୁ ଣିଚ୍ ବାହି. ଧାତୁ= ସମ୍ପାଦନ କରାଇବା+କର୍ମ. ତ )—
Nirbāhita
୧ । ସମ୍ପାଦିତ—1 Finished.
୨ । ନିଷ୍ପାଦିତ—2. Accomplished; brought to a close.

**ନିର୍ବି(ର୍ବ୍ବି)କଳ୍ପ**—ସଂ. ବିଣ. ( ବହୁବ୍ରୀହି, ନିର୍=ନାହିଁ+ବିକଳ୍ପ=ନାଶ, ଶେଷ )—୧ । ପରିବର୍ତ୍ତନରହିତ—
Nirbi(rbbi)kalpa
( ସବିକଳ୍ପ—ବିପରୀତ ) 1. Not admitting of an alteration.
୨ । ନିତ୍ୟ, ଅପରିବର୍ତ୍ତନୀୟ 2. Unchangeable; constant; changeless

୩ । ଅଭ୍ରାନ୍ତ, ସନ୍ଦେହରହିତ—3. Unconditional; free from doubt.

୪ । ଜ୍ଞାତୃ ଜ୍ଞେୟବୃନ୍ଦ ଭେଦରହିତ, ବିଶେଷ୍ୟ ବିଶେଷଣତା ସମ୍ବନ୍ଧରହିତ—4. Having no difference between the subject and object; indifferentiated.

୫ । ସ୍ଥିର, ନିଶ୍ଚିତ—5. Settled; certain.

ସଂ. ବି—ଅଖଣ୍ଡ ଜ୍ଞାନ—Fixed knowledge,

**ନିର୍ବିକଳ୍ପକ**— ସଂ. ବିଣ ( ନିର୍+ବିକଳ୍ପ+କ )—ନିର୍ବିକଳ୍ପ (ଦେଖ)—
Nirbikalpaka Nirbikalpa (See).

ସଂ. ବି—୧ । ବେଦାନ୍ତ ଅନୁସାରେ ଯୋଗସାଧକର ଯେଉଁ ଅବସ୍ଥାରେ ଜ୍ଞାତା ଓ ଜ୍ଞେୟର ଭେଦ ରହେନାହିଁ, ଅର୍ଥାତ୍ ଯହିଁରେ ଜ୍ଞାତା ଜ୍ଞେୟରେ ତନ୍ମୟ ହୋଇଥାଏ—
1. A state of contemplation in which the devotee becomes one with God.

୨ । ଅତୀନ୍ଦ୍ରିୟଜ୍ଞାନ, ଅଲୌକିକ ଆଲୋଚନାତ୍ମକ ଜ୍ଞାନ—
2. Knowledge which transcends the senses.

**ନିର୍ବିକଳ୍ପ ସମାଧି**—ସଂ. ବି—ଯୋଗସାଧନାର ଅବସ୍ଥାବିଶେଷ, ଜୀବାତ୍ମା
Nirbikalpa samādhi ପରମାତ୍ମାରେ ପୂର୍ଣ୍ଣଭାବରେ ଲୀନ ହେବାର ଅବସ୍ଥା—Total absorption of the soul into the Divine Spirit; absolute identification of the human soul with God (i.e. when man in God is one with God in man,-Tennyson).

[ ଦ୍ର—ଯୋଗସାଧକର ଏହି ଅବସ୍ଥା ଉପସ୍ଥିତ ହେଲେ ସେ ସଚ୍ଚିଦାନନ୍ଦ ବ୍ରହ୍ମର ଅତିରିକ୍ତ ଅନ୍ୟ କୌଣସି ସତ୍ତା ଅନୁଭବ କରେ ନାହିଁ ଓ ନିର୍ବାଣ ଲାଭକରେ । ]

**ନିର୍ବିକାର**—ସଂ.ବିଣ.ପୁଂ(ବହୁବ୍ରୀହି, ନିର୍+ବିକାର)—୧ । ଅପରିବର୍ତ୍ତନୀୟ—
Nirbikāra 1. Unchangeable
(ନିର୍ବିକାରା—ସ୍ତ୍ରୀ) ୨ । ବିକାରହୀନ—2. Immutable; un-
(ନିର୍ବିକାରତା—ବି) affected.

୩ । ଅବିକୃତ—3. Uniform; undeteriorated.

୪ । ଘୃଣାହୀନ—4. Free from hatred.

ବି— ପରଂବ୍ରହ୍ମ—The Universal Soul, God.

**ନିର୍ବିକାଲୀ(ରୀ)**—ଦେ. ବିଣ(ସଂ. ନିର୍ବିକାର)—ବିକାରରହିତ—
Nirbikāli(ri) Unaffected.

ସେ ଗୁରୁପାଶେ ଅଗ୍ନି ଜାଳ
ମଧ୍ୟେ ବସିଲେ ନିର୍ବିକାଲୀ। ଜଗନ୍ନାଥ, ଭାଗବତ ।

**ନିର୍ବିଘ୍ନ**—ସଂ. ବି. (ନିର୍+ବିଘ୍ନ)—ବିଘ୍ନର ଅଭାବ—
Nirbighna Absence of impediment (Apte).

ବିଣ. (ବହୁବ୍ରୀହି)—୧ । ବାଧାରହିତ—
1. Without hinderance; unobstructed.

୨ । ନିରାପଦ, ନିରୁପଦ୍ରବ—
2. Safe; free from calamity.

**ନିର୍ବିଘ୍ନରେ**—ଦେ. କ୍ରି ବିଣ—୧ । ନିରାପଦରେ—
Nirbighnare 1. Without danger; safely.
ନିର୍ବିଘ୍ନେ ୨ । ଅବାଧରେ—2. Without obstacle.
**ନିର୍ବିଘ୍ନ** ୩ । ସ୍ୱଚ୍ଛନ୍ଦରେ—3. Voluntarily; spontaneously.

୪ । ସହଜରେ—4. Easily.

**ନିର୍ବିଚାର**—ସଂ. ବିଣ. (ବହୁବ୍ରୀହି, ନିର୍+ବିଚାର)—ବିବେଚନା ଶୂନ୍ୟ—
Nirbichāra Thoughtless; indiscreet.

**ନିର୍ବି(ର୍ବି)ଣ୍ଣ**—ସଂ ବିଣ. (ନିର୍+ବିଦ୍ ଧାତୁ=ଜାଣିବା+କର୍ତ୍ତୃ. ତ)—
Nirbi(rbbi)nna ୧ । ଚେତନାଶୂନ୍ୟ—1. Senseless.
ନିର୍ବିଦ / ନିର୍ବିନ୍ନ } ଅନ୍ୟରୂପ ୨ । ଭୟଶୋକାଦିଦ୍ୱାରା ଅତି କାତର—
2. Overcome with grief or fear.

୩ । ଦୁର୍ଦ୍ଦଶାଗ୍ରସ୍ତ, କ୍ଲିଷ୍ଟ—3. Afflicted; distressed.

୪ । ଅନୁତପ୍ତ, ଖିନ୍ନ—4. Sorrowing, penitent; despondent; depressed.

**ନିର୍ବିଦ୍ୟ**—ସଂ. ବିଣ. ପୁଂ. (ବହୁବ୍ରୀହି; ନିର୍+ବିଦ୍ୟା)—
Nirbidya ଅଳ୍ପବିଦ୍ୟ, ବିଦ୍ୟାହୀନ—Illiterate.
(ନିର୍ବିଦ୍ୟା—ସ୍ତ୍ରୀ) (ନିର୍ବିଦ୍ୟତା—ବି)

**ନିର୍ବିବର**—ସଂ. ବିଣ. (ବହୁବ୍ରୀହି, ନିର୍+ବିବର)—
Nirbibara ୧ । ସମୀପ; ସନ୍ନିକଟ—
1. Approximate; contiguous.

୨ । ନୀରନ୍ଧ୍ର, ନିଶ୍ଛିଦ୍ର—2 Not porous, impervious.

**ନିର୍ବିବାଦ**— ସଂ. ବିଣ. (ବହୁବ୍ରୀହି, ନିର୍+ବିବାଦ)—
Nirbibāda ୧ । ବିବାଦରହିତ—1. Free from strife; undisputed.

୨ । ନିଃସନ୍ଦେହ—2. Undoubted.

୩ । ଆପତ୍ତିହୀନ—3 Without objection.

ବି ବିବାଦର ଅଭାବ—Absence of contention or dispute.

**ନିର୍ବିବାଦୀ**—ଦେ ବିଣ (ସଂ. ନିର୍ବିବାଦ)—୧ । ନିଃସନ୍ଦେହ—
Nirbibādi 1 Undoubted.

ସୁଗନ୍ଧା ଶତକୃତ୍ୟା ଜେପଷା ନଦୀ
ସେ ଦେଖନ୍ତେ ତା ପୁଣ୍ୟ ହୁଏ ନିର୍ବିବାଦୀ । କୃଷ୍ଣସିଂହ, ମହାଭାରତ ବନ ।

୨ । ଶତ୍ରୁଶୂନ୍ୟ—2. Free from enemies.

ଶତେକ ଅଶ୍ୱମେଧ ବାଜପେୟ ଅତି
ଯାଗ ଶ୍ରମ କଲେ ହୋଇଣ ନିର୍ବିବାଦୀ । କୃଷ୍ଣସିଂହ, ମହାଭାରତ ବନ ।

**ନିର୍ବିବେକ**—ସଂ. ବିଣ. ପୁଂ. (ବହୁବ୍ରୀହି, ନିର୍+ବିବେକ)—
Nirbibeka ୧ । ବିବେକ ବା ହିତାହିତ ଜ୍ଞାନଶୂନ୍ୟ, ଅବିବେକୀ—
(ନିର୍ବିବେକା—ସ୍ତ୍ରୀ) 1 Unconscientious; indiscriminating.
[ନିର୍ବିବେକତା(ତ୍ୱ)—ବି]

୨ । ନିର୍ବୋଧ, ଅବିଚକ୍ଷଣ—2. Foolish,

୩ । ଅବିଜ୍ଞ, ଅଜ୍ଞ—3. Ignorant; stupid.

**ନିର୍ବିଭେଦ** – ସଂ ବିଣ. (ବହୁବ୍ରୀହି, ନିର୍+ବିଭେଦ)—ଅଭିନ୍ନ—
Nirbibheda Without distinction or difference.

**ନିର୍ବିରୋଧ**—ସ. ବିଣ. (ବହୁବ୍ରୀହି, ନିର୍+ବିରୋଧ)—
Nirbirodha ୧ । ବିରୋଧରହିତ—1. Unopposed; undisputed; free from strife or opposition.
୨ । ଶାନ୍ତ—2 Calm, peaceful; peacable.

**ନିର୍ବିଶଙ୍କ**—ସ. ବିଣ. ପୁଂ. (ବହୁବ୍ରୀହି, ନିର୍+ବିଶଙ୍କା)—ନିଃଶଙ୍କ—
Nirbisanka Fearless; undaunted
(ନିର୍ବିଶଙ୍କା—ସ୍ତ୍ରୀ) [ନିର୍ବିଶଙ୍କତା(ତ୍ୱ)—ବି]

**ନିର୍ବିଶେଷ**—ସ. ବିଣ. (ବହୁବ୍ରୀହି, ନିର୍+ବିଶେଷ)—
Nirbisesha ୧ । ଅଭିନ୍ନ, ପ୍ରଭେଦରହିତ—1. Without any distinction being made, same.
୨ । ଅବିଶେଷ—2 Indiscriminate.
୩ । ସଦୃଶ—3 Similar.

**ନିର୍ବିଷ**—ସ. ବିଣ (ବହୁବ୍ରୀହି, ନିର୍+ବିଷ)—ବିଷହୀନ—
Nirbisha Free from venom; innocuous; non-poisonous.
(ନିର୍ବିଷା—ସ୍ତ୍ରୀ) [ନିର୍ବିଷତା(ତ୍ୱ)-ବି]

**ନିର୍ବିଷୟ**—ସ ବିଣ ପୁଂ (ବହୁବ୍ରୀହି, ନିର୍+ବିଷୟ)—
Nirbishaya ୧ । ଚକ୍ଷୁରାଦି ବହିରିନ୍ଦ୍ରିୟର ଅଗୋଚର—
(ନିର୍ବିଷୟା—ସ୍ତ୍ରୀ) 1. Imperceptible to the senses.
୨ । ବିଷୟବିମୁଖ, ବିଗତସ୍ପୃହ—
2 Indifferent to worldly affairs.

**ନିର୍ବିଷା(ଷୀ)**—ସ. ବି—ତୃଣବିଶେଷ—
Nirbishā(shī) A kind of grass.
ସ. ପର୍ଯ୍ୟାୟ—ନିର୍ବିଷା(ଷୀ), ଅବିବିଷା ବିବିଷା, ବିଷହା, ବିଷହନ୍ତ୍ରୀ, ବିଷାଭାବା, ଅବିଷା, ବିଷବୈରିଣୀ—जदवार [ ଦ୍ର—ଏହା ପଶ୍ଚିମୋତ୍ତର ହିମାଳୟ, କାଶ୍ମୀର ଓ ମଳୟଗିରିରେ ଜନ୍ମେ । ଏହାର ମୂଳ ସର୍ପାଦିଙ୍କର ଓ ଅନ୍ୟପ୍ରକାର ବିଷର ଦୋଷ ନାଶ କରେ । ବୈଦ୍ୟକ ମତରେ ଏହାର ତେଜ କଟୁ, ଶୀତଳ, ବ୍ରଣାରୋଗ୍ୟକାରୀ, ବିଷହର, କଫ, ବାତ, ପିତ୍ତ ଓ ରୁଧିର ବିକାରନାଶକ—ଛ. ସାଗର । ]

**ନିର୍ବିଷ୍ଟ**—ସ. ବିଣ.(ନିର୍+ବିଶ୍ ଧାତୁ=ପ୍ରବେଶ କରିବା+କର୍ତ୍ତୃ. ତ)—
Nirbishta ୧ । ଲବ୍ଧ—1. Gained; attained.
୨ । ଅନୁଭୂତ—2 Felt; experienced.
୩ । ଉପଭୁକ୍ତ—3. Enjoyed.
୪ । ପ୍ରାପ୍ତ—4 Got.
୫ । ସ୍ଥିତ—5. Situated.
୬ । ନିଯୁକ୍ତ—6. Engaged; employed.
୭ । ଉପାର୍ଜିତ—7. Earned.
୮ । ବିବାହିତ—8. Married.
୯ । ପୁଷ୍ଟ—9. Nourished; brought up.
୧୦ । ଯେ ଅଗ୍ନିହୋତ୍ର କରିଅଛନ୍ତି—
10. One who has performed the Agnihotra sacrifice.
୧୧ । ଯେ ଭୋଗ କରି ସାରିଅଛି—
11 One who has enjoyed already.

**ନିର୍ବୀଜ**—ସ. ବିଣ. (ବହୁବ୍ରୀହି, ନିର୍+ବୀଜ)—୧ । ବୀଜଶୂନ୍ୟ—
Nirbija 1. Seedless.
୨ । ପୁରୁଷତ୍ୱହୀନ—2. Impotent.
୩ । କାରଣରହିତ—3. Causeless.
ସ. ବି—ଯୋଗର ସମାଧିବିଶେଷ—
A kind of mental concentration in Joga
[ ଦ୍ର—ଏ ଅବସ୍ଥାରେ ମନୁଷ୍ୟର ସୁଖ ଦୁଃଖର ଅନୁଭୂତି ରହେ ନାହିଁ ଓ ମୋକ୍ଷଲାଭ ହୁଏ—ଛ. ଶବ୍ଦସାଗର । ]

**ନିର୍ବୀଜା**—ସ ବି. (ନିର୍ବୀଜ+ଆ)—କାକଳୀ ଦ୍ରାକ୍ଷା, କିସମିସ୍—
Nirbijā Seedless grape; raisin.

**ନିର୍ବୀର**—ସ ବିଣ ପୁଂ (ବହୁବ୍ରୀହି, ନିର୍+ବୀର)—୧ । ବୀରଶୂନ୍ୟ—
Nirbira 1. Destitute of heroes.
(ନିର୍ବୀରା—ସ୍ତ୍ରୀ) ୨ । ଭୀରୁ—2. Timid.

**ନିର୍ବୀରା**—ସ. ବି. ସ୍ତ୍ରୀ—ପତିପୁତ୍ରହୀନା ସ୍ତ୍ରୀ; ଅବୀରା—
Nirbirā A childless widow.

**ନିର୍ବୀର୍ଯ୍ୟ**—ସ. ବି. (ବହୁବ୍ରୀହି, ନିର୍+ବୀର୍ଯ୍ୟ)—୧ । ଦୁର୍ବଳ, ବଳହୀନ—
Nirbirjya 1 Powerless.
(ନିର୍ବୀର୍ଯ୍ୟା—ସ୍ତ୍ରୀ) ୨ । ପୁରୁଷତ୍ୱହୀନ—2. Impotent.
୩ । କ୍ଷୀଣ—3. Feeble; weak.
୪ । ନିସ୍ତେଜ—4 Vigourless.

**ନିର୍ବୁଦ୍ଧି**—ସ. ବିଣ (ବହୁବ୍ରୀହି, ନିର୍+ବୁଦ୍ଧି)—୧ । ବୁଦ୍ଧିହୀନ—
Nirbuddhi 8. Witless; foolish.
୨ । ବୋକା, ଓଲୁ—2. Silly; stupid.

**ନିର୍ବୁଦ୍ଧିଆ**—ଦେ. ବିଣ. (ସ. ନିର୍ବୁଦ୍ଧି)—ନିର୍ବୁଦ୍ଧି (ଦେଖ)
Nirbuddhiā Nirbuddhi (See)
(ନିର୍ବୁଦ୍ଧିଆଣୀ—ସ୍ତ୍ରୀ)
ନିର୍ବୁଦ୍ଧିଆ ଲୋକମାନେ ବୁଦ୍ଧିମନ୍ତ ହେବେ ।
ପ୍ରାଚୀ· ନିର୍ଗୁଣ ମାହାତ୍ମ୍ୟ

**ନିର୍ବୁଦ୍ଧିତା**—ସ. ବି. (ନିର୍ବୁଦ୍ଧି+ଭାବ. ତା)—ବୁଦ୍ଧିହୀନତା—
Nirbuddhitā Folly; dulness; want of intellect; silliness.
(ନିର୍ବୁଦ୍ଧିତ୍ୱ—ଅନ୍ୟରୂପ)

**ନିର୍ବୃତ**—ସ. ବିଣ. (ନିର୍+ବୃ ଧାତୁ=ବରଣ କରିବା+କର୍ମ. ତ)—
Nirbruta ୧ । ସନ୍ତୁଷ୍ଟ—1. Contented; satisfied.
୨ । ସୁଖୀ—2. Happy.
୩ । କୁଶଳ—3. Good; proficient
୪ । ଅବସନ୍ନ—4. Decayed; worn; out.
ସ. ବି.- ଗୃହ—House.

**ନିର୍ବୃତି**—ସ. ବି. (ନିର୍+ବୃ ଧାତୁ+ଭାବ. ତି)—୧ । ସନ୍ତୋଷ—
Nirbruti 1. Contentment; satisfaction.
୨ । ଶାନ୍ତି—2. Peace; tranquility.
୩ । ସୁଖ—3. Happiness; bliss.

୪ । ନିର୍ବାଣ, ମୁକ୍ତି—4 Emancipation; liberation; deliverance.

୫ । (ଅଲୋକାଦି) ନିଭି ଯିବା, ନିର୍ବାଣ—
5. Extinction (of a light).

୬ । ମୃତ୍ୟୁ—6 Death.

୭ । ମୋକ୍ଷ—7. Beatitude; final emancipation.

୮ । ବିରାମ - 8. Cessation.

୯ । ବିଶ୍ରାମ—9. Repose; rest.

୧୦ । ଅଭୟ, ନିରାପଦ—10 Safety.

୧୧ । ସିଦ୍ଧି—11. Accomplishment.

୧୨ । ଅସ୍ତଗମନ—12. Setting down.

୧୩ । ଅକ୍ଷୟତା—13 Imperishableness.

୧୪ । ବେଶ୍ୟା—14 Harlot.

**ନିର୍ବୃତ୍ତ**—ସଂ. ବିଣ. (ନିର୍+ବୃତ୍ ଧାତୁ+କର୍ମ. କ୍ତ)—୧। ସମ୍ପନ୍ନ, ସୁସିଦ୍ଧ—1 Accomplished; completed
Nirbrutta

୨ । (+କର୍ତ୍ତୃ. କ୍ତ) ଜାତ, ଉତ୍ପନ୍ନ—
2. Born; engendered.

୩ । ସମାପ୍ତ, ବିରତ—3 Ceased; come to an end.

୪ । ଯାହାର ନିଷ୍ପତ୍ତି ହୋଇ ଅଛି—
4. Disposed of; decided

**ନିର୍ବୃତ୍ତି**- ସଂ. ବି. (ନିର୍+ବୃତ୍ ଧାତୁ+ଭାବ. କ୍ତି)—୧। ସମାପ୍ତି, ନିଷ୍ପତ୍ତି—1 Completion; final accomplishment; disposal.
Nirbrutti

୨ । ସିଦ୍ଧି—2. Success.

୩ । ଶେଷ—3. Cessation.

୪ । ଆଗମନ—4 Approach.

୫ । ସନ୍ତୋଷ—
5. Satisfaction, contentment.

୬ । ତୃପ୍ତି—6 Gratification

୭ । ମୋକ୍ଷ, ମୁକ୍ତି—7. Emancipation; beatitude.

ବିଣ. (ବହୁବ୍ରୀହି, ନିର୍+ବୃତ୍ତି)—ବୃତ୍ତି ବା ଜୀବିକା ରହିତ, ଜୀବିକା ଶୂନ୍ୟ—Destitute of livelihood or employment; resourceless.

**ନିର୍ବୃଷ୍ଟି**—ସଂ. ବି. (ବହୁବ୍ରୀହି, ନିର୍+ବୃଷ୍ଟି)—ଅନାବୃଷ୍ଟି—Drought.
Nirbrushti

**ନିର୍ବେଦ**—ସଂ. ବି. ( ନିର୍+ବିଦ୍ ଧାତୁ+ଭାବ. ଅ )—
Nirbeda ୧ । ଆତ୍ମଗ୍ଲାନି, ବିରକ୍ତି, ସ୍ୱାବମାନନା, ଆପଣାକୁ ଧିକ୍କାର ଦେବା—1. Mortification; regret; disgust; self reproof.

ଏଣ ନିର୍ବେଦକୁ ପାଇ ସେ ନରସାଇଁ । କୃଷ୍ଣସିଂହ, ମହାଭାରତ ସଭା ।

୨ । ଔଦାସୀନ୍ୟ—
2. Indifference; faintheartedness.

କମ୍ପିଥି ପଥରେ ସଂଙ୍କ ଅଭଯାତ ହେଲେ
ଅଲେଶ ପୁରୁଷ ସ୍ୱାମୀ ନିର୍ବେଦେ ରହିଲେ । ପ୍ରାଚୀ, ବ୍ରହ୍ମନିରୂପଣ ଗୀତା ।

୩ । ବୈରାଗ୍ୟ—3 Apathy; indifference to mundane affairs.

ବଳ ନ ଥିବାର ଲୋକନ୍ତ ନିର୍ବେଦକୁ
ସହାଘ୍ରକୁ କରୁଣ ହରନ୍ତ ଧନକୁ । କୃଷ୍ଣସିଂହ, ମହାଭାରତ ବନ ।

୪ । ଅନୁତାପ—4. Repentance; remorse.

୫ । ନିରହଙ୍କାର—5. Humility.

୬ । ଖେଦ, ଦୁଃଖ--6. Sorrow; grief.

ବିଣ ( ବହୁବ୍ରୀହି, ନିର୍+ବେଦ )—୧ । ବେଦ ବହିର୍ଭୂତ—
1. Not according to the Bedas

୨ । ବେଦର ସୀମା ବହିର୍ଭୂତ—
2. Beyond the jurisdiction of the Bedas

ନିର୍ବେଦ ଭୁବନ ସେ ଯେ ନ ସପଇ ବେଦ । ପ୍ରାଚୀ, ବ୍ରହ୍ମନିରୂପଣ ଗୀତ ।

ଦେ. ବି—କିଂକର୍ତ୍ତବ୍ୟବିମୂଢ଼ତା—
Being at a loss; bewilderment.

ଏ ସକାଶେଁ ନିର୍ବେଦ ହେଲ ଲୋକଙ୍କର
ମନେ କଲେ କାହିଁକି ଛାଡ଼ଲାଁ ଘର । କୃଷ୍ଣସିଂହ, ମହାଭାରତ, ବନ ।

ବିଣ—୧ । କିଂକର୍ତ୍ତବ୍ୟବିମୂଢ଼—1 Dumbfounded; at a loss; taken aback; bewildered.

୨ । ଅତି ଦୁଃଖିତ—2. Afflicted; distressed

ନିର୍ବେଦ ହୋଇ ପୁଣି ବିନନ୍ତୁ ବାହୁଡ଼ିଲେ
ଏହୁ କଥାମାନ ଯେ ବଚନେ ବୋଲିଲେ । କୃଷ୍ଣସିଂହ, ମହାଭାରତ ଅଦ ।

୩ । କ୍ଲାନ୍ତ, ଶ୍ରାନ୍ତ—3. Tired; overpowered.

୪ । ସ୍ଥିର—4. Motionless; calm, quiet.

**ନିର୍ବେଦନ**—ସଂ. ବିଣ. ପୁଂ ( ବହୁବ୍ରୀହି, ନିର୍+ବେଦନା )—
Nirbedana ୧ । ବେଦନା ରହିତ—1. Painless.

୨ । ଅଚେତନ—2 Insensible.

(ନିର୍ବେଦନା—ସ୍ତ୍ରୀ, ୩ । ନିଷ୍କେନ୍ଦ୍ରିୟ—
3. Destitute of sensibility or organ.

ବି—୧ । ବିବାହ—1. Marriage.

୨ । ଭୋଗ—2. Enjoyment.

୩ । ମୂର୍ଚ୍ଛା—3. Fit, insensibility.

୪ । ଲାଭ—4. Profit.

**ନିର୍ବେଧିମ**—ସଂ. ବି—ସୁଶ୍ରୁତରେ ବର୍ଣ୍ଣିତ କାନ ଫୋଡ଼ିବାର ଯନ୍ତ୍ରବିଶେଷ ( ହି. ଶବ୍ଦସାଗର )—
Nirbedhima
A kind of ear-boring needle.

**ନିର୍ବେଶ**—ସଂ. ବି. (ନିର୍+ବିଶ୍ ଧାତୁ=ପ୍ରବେଶ କରିବା+ଭାବ.ଅ) —
Nirbesa ୧ । ଭୋଗ—1. Enjoyment.

୨ । ବେତନ—2. Salary; wages.

୩ । ବିବାହ—3 Marriage.

୪ । ଭୋଜନ—4. Eating.

୫ । ସୁଖ—5. Felicity.

୬ । ପାଳନ—6. Supporting; bringing up.

୭ । ମୂର୍ଚ୍ଛା—7. Fainting.

୮ । ଲାଭ—8. Gain.

**ନିର୍ବେଷ୍ଟନ**—ସଂ. ବିଣ. ( ବହୁବ୍ରୀହି, ନିର୍+ବେଷ୍ଟନ )—
Nirbeshṭana ବେଷ୍ଟନ ରହିତ—Girdless; beltless.
ବି—ତନ୍ତୁମାନଙ୍କ ବ୍ୟବହୃତ ସୂକ୍ଷ୍ମ ଯନ୍ତ୍ର—
A small reed used by weavers as a shuttle

**ନିର୍ବୈର**—ସଂ. ବିଣ. ପୁଂ. ( ବହୁବ୍ରୀହି, ନିର୍+ବୈର )—
Nirbaira ଦ୍ୱେଷରହିତ—Free from malice.
( ନିର୍ବୈରା—ସ୍ତ୍ରୀ, ନିର୍ବୈରତା—ବି )

**ନିର୍ବୋଧ**—ସଂ. ବିଣ. ( ବହୁବ୍ରୀହି, ନିର୍+ବୋଧ=ବୁଦ୍ଧି; ଜ୍ଞାନ )—
Nirbodha ୧ । ବୁଦ୍ଧିହୀନ—
1. Void of intellect; dull; silly; foolish.
୨ । ମୂଢ଼, ଅଜ୍ଞ—2. Ignorant.
୩ । ମେଧାହୀନ—3. Idiotic; stupid.

**ନିର୍ବଇର**—ଦେ. ବିଣ. ( ସଂ. ନିର୍+ବୈରୀ )—
Nirbbaira ଶତ୍ରୁଶୂନ୍ୟ—Free from enemies.
( ନିର୍ବଇର, ନିର୍ବଇରୀ—ଅନ୍ୟରୂପ)
ଜଗତ ନିର୍ବଇର ହେଲେ
ନିରତେ ରହେ ଅସ୍ତ୍ରେ । ଜଗନ୍ନାଥ, ଭାଗବତ ।

**ନିର୍ବ୍ୟଥ**—ସଂ. ବିଣ. ( ବହୁବ୍ରୀହି; ନିର୍+ବ୍ୟଥା )—
Nirbyatha ବ୍ୟଥା ବା ଦୁଃଖଶୂନ୍ୟ—Free from pain.
ବି.—ନିର୍ବ୍ୟଥା ( ଦେଖ )—Nirbyathā (See).

**ନିର୍ବ୍ୟଥନ**—ସଂ. ବି. ( ନିର୍+ବ୍ୟଥ୍ ଧାତୁ=ପୀଡ଼ା ଦେବା, ଭୟ ପାଇବା+ଅଧିକରଣ. ଅନ )—୧ । ଛିଦ୍ର—
Nirbyathana 1. Hole.
୨ । ଖୋଲ, ବିବର—2. Chasm; cavity; cave.
୩ । ଗାତ; ଗର୍ତ୍ତ—3. Excavation; pit.
୪ । (ଭାବ. ଅନ)—ପୀଡ଼ନ, ନିଗ୍ରହ—4. Persecution; pain.
୫ । ବ୍ୟଥାର ଅଭାବ—5. Want of pain.

**ନିର୍ବ୍ୟଥା**—ସଂ. ବି. ( ନିର୍+ବ୍ୟଥା )—୧ । ସୁଖ; ସ୍ୱାଚ୍ଛନ୍ଦ୍ୟ—
Nirbyathā 1. Ease; comfort.
୨ । ସ୍ୱାସ୍ଥ୍ୟ—2. Health.
୩ । ବେଦନାଶୂନ୍ୟତା—3. Freedom from pain.

**ନିର୍ବ୍ୟଳୀକ**—ସଂ. ବିଣ. ପୁଂ. ( ନିର୍+ବ୍ୟଳୀକ=ଛଳ; ବହୁବ୍ରୀହି )—
Nirbyalīka ୧ । ଛଳହୀନ—1. Free from guile.
( ନିର୍ବ୍ୟଳୀକା—ସ୍ତ୍ରୀ ) ୨ । ନିଷ୍କପଟ—
( ନିର୍ବ୍ୟଳୀକତା—ବି ) 2. Frank.

**ନିର୍ବ୍ୟାଜ**—ସଂ. ବିଣ. ( ବହୁବ୍ରୀହି; ନିର୍+ବ୍ୟାଜ )—୧ । ଅକପଟ—
Nirbyāja 1. Sincere; upright; guileless.
୨ । ନିର୍ବିବାଦ—2 Undisputed.
୩ । ବାଧାରହିତ—3. Free from obstacles.

**ନିର୍ବ୍ୟାଧି**—ସଂ. ବିଣ. ( ବହୁବ୍ରୀହି; ନିର୍+ବ୍ୟାଧି )—୧ । ସୁସ୍ଥ—
Nirbyādhi 1. Healthy.
୨ । ନୀରୋଗ—2. Free from disease.

**ନିର୍ବ୍ୟୂଢ଼**—ସଂ. ବିଣ. ( ନିର୍+ବି+ବହ୍ ଧାତୁ+କର୍ମ. ତ )—
Nirbyūrdha ୧ । ନିର୍ଣ୍ଣୀତ—1. Ascertained.
୨ । ପ୍ରମାଣିତ—2 Demonstrated; proved.
୩ । ପରିତ୍ୟକ୍ତ—3 Abandoned; deserted.
୪ । ସମାପ୍ତ—4 Ended; finished.
୫ । ପର୍ଯ୍ୟାପ୍ତ—5. Sufficient.
୬ । ସମ୍ୟକ୍, ପୂର୍ଣ୍ଣ—6. All; whole; entire; absolute

**ନିର୍ବ୍ରଣ**—ସଂ. ବିଣ. ( ବହୁବ୍ରୀହି, ନିର୍+ବ୍ରଣ )—୧ । ବ୍ରଣରହିତ—
Nirbraṇa 1. Free from abscess.
୨ । ଅକ୍ଷତ, ଅନାହତ—2. Unhurt; not smitten.

**ନିର୍ଭୟ**—ସଂ. ବିଣ. ( ବହୁବ୍ରୀହି; ନିର୍+ଭୟ )—
Nirbhaya ୧ । ନିର୍ଭୀକ; ନିଃଶଙ୍କ—1. Fearless; undaunted.
(ନିର୍ଭୟା—ସ୍ତ୍ରୀ )
( ନିର୍ଭୟତା—ବି ) ୨ । ସାହସୀ—2. Bold.
୩ । ଅଭୟ, ଭୟଶୂନ୍ୟ—3. Free from fear.
ବି. ପୁଂ—୧ । ଶ୍ରେଷ୍ଠ ଅଶ୍ୱ—1 An excellent horse.
୨ । ଭୟଶୂନ୍ୟତା—2. Security; fearlessness.

**ନିର୍ଭୟରେ**—ଦେ. କ୍ରି. ବିଣ—ଭୟଶୂନ୍ୟ ଭାବରେ—
Nirbhayare Fearlessly; without fear.
নির্ভয়ে बेधड़क

**ନିର୍ଭୟା**—ଦେ. ବିଣ. ପୁଂ. ଓ ସ୍ତ୍ରୀ (ସଂ. ନିର୍ଭୟ)—ନିର୍ଭୀକ—
Nirbhayā Fearless
নিডর निडर

**ନିର୍ଭର**—ସଂ. ବିଣ ( ନିର୍+ଭୃ ଧାତୁ=ଭରଣ, ପୂରଣ କରିବା+କର୍ମ. ଅ )—୧ । ପରିପୂର୍ଣ୍ଣ—1. Full; filled up.
Nirbhara
୨ । ପ୍ରତ୍ୟୟୀ—2. Confident; relying on.
୩ । ଅତିରିକ୍ତ—3. Excessive.
୪ । ସ୍ଥାୟୀ—4. Permanent.
୫ । ଅବଲମ୍ବିତ (ହି. ଗ.)—6. Resorted to.
୬ । ଯୁକ୍ତ, ମିଳିତ (ହି. ଗ.)—7. Joined to.
ବି—୧ । ସାରଭାଗ—1 Essence.
୨ । ଅତିରେକ—2. Surplus.
୩ । ଗୋଟିଏ ଭାର ଯେଉଁ ବିନ୍ଦୁ ଉପରେ ସମାନଭାବରେ ରହେ; ଭାରକେନ୍ଦ୍ର—
3. Fulcrum; centre of gravity.
୪ । ଅବଲମ୍ବନ—4. Prop; hinge.
୫ । ବିଶ୍ୱାସ, ଆସ୍ଥା—5. Confidence; trust; reliance.
୬ । ଦାୟିତ୍ୱ, ଭାର—6. Responsibility.
୭ । ବେଠିଆ, ବେଗାରୀ—7. An impressed labourer.

निभव निभर ଦେ. ବିଣ -୧ । ସ୍ଥିର, ଅଟଳ — Unchanging; fixed.
( ଯଥା—ନିର୍ଭର ଯବାବ । )
୨ । ନିର୍ଭୟ—2. Fearless.

भरोसा ବି (ସ. ଭରସା) – ୧ । ଆଶା, ଭରସା —1. Hope.
भरोसा ୨ । ଆଶ୍ରୟ—2. Shelter.
୩ । ଅବଲମ୍ବନ —3. Dependence.

**ନିର୍ଭର କରିବା**—ଦେ. କ୍ରି— ୧ । କୌଣସି ବ୍ୟକ୍ତି ଉପରେ ପୂର୍ଣ୍ଣଭାବରେ ଆସ୍ଥା ରଖିବା —1. To solely rely or depend on a person.
Nirbhara kariba
निभव कवा
भरोसाकरना ୨ । ଅନ୍ୟଠାରେ ଭାର ରଖିବା—
2. To rest on; to hinge on.

**ନିର୍ଭରସା**—ସ ବି.— ନିର୍ + ଭରସା)—ନୈରାଶ୍ୟ—
Nirbharasā Despair; hopelessness.
ବିଣ.—ନିରାଶ—
Hopeless; desperate.

**ନିର୍ଭର ସାକ୍ଷୀ**—ଦେ. ବି—ଏକପକ୍ଷର ଯେଉଁ ସାକ୍ଷୀ ଯାହା କହିବ ସେଥିରେ ଅପର ପକ୍ଷ ବାଧ୍ୟ ହେବା ପାଇଁ ରାଜି ହେବାରୁ ଯେଉଁ ସାକ୍ଷୀ ଜବାନବନ୍ଦି ଦିଏ—A witness of one party whose evidence is, by agreement, binding on the opposite party.
Nirbhara sākshi

**ନିର୍ଭରିବା**– ଦେ. ( ପଦ୍ୟ ) କ୍ରି—ନିର୍ଭର କରିବା—
Nirbhariba To rely; to depend
ନିର୍ଭରେ ଜୀବନେ ଯାଉ କଉତ ଜୀବନ
ବାଞ୍ଛାମୟ ସିନା ତର ଜୀବନ ତାହାର—ଚନ୍ତାମଣି, ଚନ୍ଦ୍ରମାବତୀ ।

**ନିର୍ଭରେ**—ଦେ. କ୍ରି. ବିଣ—୧ । ନିଶ୍ଚୟ—
Nirbhare 1. Surely.
କରବେ ପଡ଼ିବ ନିର୍ଭରେ
ଅଜାତ ହୋଇବ କାଳରେ—ଭୂଅ. ପ୍ରେମପଞ୍ଚାମୃତ ।
୨ । ଭୟଙ୍କରଭାବରେ; ଅତ୍ୟନ୍ତ—
2. Very much; excessively.
ଉତ୍ପାତ ଦେଖି ଗୁରୁତରେ
ପ୍ରକାଶ କର୍ମିଲେ ନିର୍ଭରେ—ଜଗନ୍ନାଥ. ଭାଗବତ ।

**ନିର୍ଭର୍ତ୍ସନ(ନା)**—ସ. ବି. ( ନିର୍ + ଭର୍ତ୍ସନ )— ୧ । ତିରସ୍କାର —
Nirbhartsana(nā) 1. Rebuke; reproach; reprimand; abuse.
୨ । ନିନ୍ଦା—2. Blame.
୩ । ଅଲକ୍ତକ, ଅଲତା—3. Lac-dye.

**ନିର୍ଭା**— ଦେ. ବି. ( ସ. ନିର୍ବାହ )—୧ । ନିଷ୍ପତ୍ତି, ମୀମାଂସା—
Nirbhā 1. Decision.
निर्वान ୨ । ସମ୍ପାଦନ, ନିର୍ବାହ—2. Completion; accomplishment.
निभाओ
ମଁ ଦେଲେ ଯାଗ ନିର୍ଭା କେବେହେଁ ନୋହିବ—
କୃଷ୍ଣସିଂହ. ମହାଭାରତ. ସଭା ।
ଦେ. ବିଣ—୧ । ନିଷ୍ପନ୍ନ, ସମ୍ପାଦିତ —1. Accomplished
୨ । ପରିଚାଳିତ—2. Managed.
୩ । ନିର୍ମିତ—3. Made.

**ନିର୍ଭା(ର୍ଭେ)ଇବା**—ଦେ. କ୍ରି—ନିର୍ଭା କରିବା ( ଦେଖ )
Nirbhā(rbhe)iba Nirbhā kariba (See)

**ନିର୍ଭା କରିବା**—ଦେ. କ୍ରି. ( ସ. ନିର୍ବାହ )—୧ । ନିଷ୍ପନ୍ନ କରିବା —
Nirbhā kariba 1. To accomplish.
निर्वाह कवा ଯେଉଁ ପ୍ରକାରେ ତୋତେ ହୋଇବ ବର୍ଯା
निभाना ' ଦଣ୍ଡେ କହୁଅଛି ମୁଁ କରିବ ନିର୍ଭା—ପ୍ରାଚୀ. ନଳଚରିତ ।
୨ । ଚଳାଇବା, ପରିଚାଳନ କରିବା —
2. To manage; to carry on.
ତାହାଙ୍କୁ ଦେବତା ହୋଇଣ ପ୍ରସନ୍ନ
ଦଅନ୍ତି ନିର୍ଭା କରୁ ସବୁ କାର୍ଯ୍ୟମାନ—କୃଷ୍ଣସିଂହ. ମହାଭାରତ. ଉଦ୍ୟୋଗ
୩ । ନିର୍ମାଣ କରିବା—3. To build.
ଶିଳ୍ପୀ ଏ ଦେବତାମାନଙ୍କ ଘର ଘର
ଦେଲେ ଯାଗଶାଳା ନିର୍ଭା କରି—କୃଷ୍ଣସିଂହ ମହାଭାରତ ସଭ ।

**ନିର୍ଭାଗତ**—ଦେ. ବିଣ. ( ସ. ନିର୍ବାହିତ )— ୧ । ନିଷ୍ପାଦିତ, ନିଷ୍ପନ୍ନ—
Nirbhāgata 1. Accomplished.
୨ । ପ୍ରଚଳିତ —2 Current.
୩ । ସଂସାରରେ ବା ସମାଜରେ ଚଳି ଯାଉଥିବା—
3. Getting on in the world or society.

**ନିର୍ଭାଗ୍ୟ**—ସ. ବିଣ. ପୁଂ ( ବହୁବ୍ରୀହି, ନିର୍ + ଭାଗ୍ୟ )—ଦୁର୍ଭାଗ୍ୟ—
Nirbhāgya Unfortunate; unlucky.
(ନିର୍ଭାଗ୍ୟା—ସ୍ତ୍ରୀ)

**ନିର୍ଭାଜନ**—ସ. ବିଣ. ( ବହୁବ୍ରୀହି, ନିର୍ + ଭାଜନ )—୧ । ପାତ୍ରହୀନ—
Nirbhājana 1 Destitute of vessel.
୨ । ପଦଚ୍ୟୁତ—2 Dismissed; discharged; degraded from an office.

**ନିର୍ଭାବନା**—ସ. ବି. ( ନିର୍+ଭାବନା )—ନିଶ୍ଚିନ୍ତତା—
Nirbhābana Freedom from anxiety.

**ନିର୍ଭା ହେବା**—ଦେ. କ୍ରି—୧ । ଚଳାଚଳ ହେବା—
Nirbhā heba 1 To get on in the world.
୨ । ସମ୍ପନ୍ନ ହେବା—2. To be accomplished.
ଏ ମର୍ତ୍ତ୍ୟରେ ଅନ ହାତରେ ଏହି କଥା
ନିର୍ଭା ହେବା ଅସମ୍ଭବ ହେବ ବଳବନ୍ତ—କୃଷ୍ଣସିଂହ. ମହାଭାରତ, ବନ ।
୩ । ଜୀବନ ଯାପନ କରିବା—
3. To pass one's time.
୪ । ସମାପ୍ତ ହେବା—4. To be completed.
କେଉଁ ନିର୍ଭା ହେବେ ଭାରତ ମୋ ମୁହେ—
କୃଷ୍ଣସିଂହ. ମହାଭାରତ. ସଭା ।
୫ । ନିର୍ମିତ ହେବା—5 To be built.

**ନିର୍ଭିନ୍ନ**—ସ ବିଣ (ନିର୍ + ଭିନ୍ନ)—୧ । ଅଭିନ୍ନ—1. Unseparated; alike, selfsame; identical.
Nirbhinna
୨ । ଯୁକ୍ତ - 2 Joined.
୩ । ବିଭକ୍ତ; ଖଣ୍ଡିତ—3 Cleft; divided.
୪ । ବିଦଳିତ - 4 Trodden.
୫ । ବିଦ୍ଧ —5 Pierced.

୬ । ବିକସିତ—
6 Expanded; unfolded; blown.

**ନିର୍ଭୀକ**—ସ ବିଣ ( ବହୁବ୍ରୀହି, ନିର୍=ନାହିଁ+ଭୀ=ଭୟ+କ )—
Nirbhika ୧ । ନିଃଶଙ୍କ—1. Fearless; undaunted.
( ନିର୍ଭୀକା—ସ୍ତ୍ରୀ ) ୨ । ସାହସୀ—2 Bold.
( ନିର୍ଭୀକତା—ବି ) ( ନିର୍ଭିତ—ଅନ୍ୟରୂପ )

**ନିର୍ଭୁଲ**—ଦେ. ବିଣ—୧ । ଅଭ୍ରାନ୍ତ—
Nirbhula 1. Free from error or mistake.
ନିର୍ଭୁଲ ଠୀକ ୨ । ଶୁଦ୍ଧ—2. Correct; right.

**ନିର୍ଭୃତି**—ସ. ବିଣ. ( ବହୁବ୍ରୀହି, ନିର୍=ନାହିଁ+ଭୃତ=ବେତନ )—
Nirbhruti ବିନା ମୂଲ୍ୟରେ କାମ କରିବାବାଲା, ବେଠିଆ—
Working without remuneration.
ବି—ବେଠି—Impressed labour.

**ନିର୍ଭେଇବା**—ପ୍ରାଦେ (ଯାଜପୁର) କ୍ରି—ନିଭେଇବା, ଅନୁଭବ କରିବା—
Nirbheiba To experience.
( ଯଥା—ମୁଁ ଅଙ୍ଗରେ ନିର୍ଭେଇଛି । )

**ନିର୍ଭେଦ**—ସ. ବି. ( ନିର୍+ଭେଦ )—୧ । ବିଦାରଣ—
Nirbheda 1. Tearing; piercing
୨ । ଫାଟିଯିବା—2. Cracking; bursting.

**ନିର୍ଭ୍ରମ**—ସ. ବିଣ.—(ବହୁବ୍ରୀହି; ନିର୍+ଭ୍ରମ)—୧ । ଭ୍ରମରହିତ—
Nirbhrama 1. Free from error
(ନିର୍ଭ୍ରାନ୍ତ—ଅନ୍ୟରୂପ) ୨ । ନିଃସନ୍ଦେହ—
2. Doubtless; unmistaken.
ପୁଂ—୩ । ଯେ ଭ୍ରମ କରେ ନାହିଁ—
(ନିର୍ଭ୍ରମା—ସ୍ତ୍ରୀ) 3. Not committing mistakes.

**ନିର୍ମକ୍ଷିକ**—ସ. ବିଣ. (ବହୁବ୍ରୀହି; ନିର୍+ମକ୍ଷିକା)—୧ । ମକ୍ଷିକା ଶୂନ୍ୟ—
Nirmakshika 1. Free from fleas.
୨ । ନିଭୃତ; ନିର୍ଜନ—2. Lonely; private
ସ. ବି.—୧ । ମକ୍ଷିକାର ଅଭାବ—1. Want of flies.
୨ । ମକ୍ଷିକାଶୂନ୍ୟ ସ୍ଥାନ—
2. A place free from fleas.
୩ । ନିର୍ଜନ ସ୍ଥାନ—3. Lonely place.

**ନିର୍ମଞ୍ଛନ**—ସ. ବି. (ନିର୍+ମଞ୍ଛ ଧାତୁ=ଆରାଧନା କରିବା, ପୋଛିବା+ଭାବ. ଅନ)—୧ । ନୀରାଜନ, ଆଳତିକରିବା—
Nirmañchhana 1. Waving of lamps before an image during worship.
୨ । ପୋଛିବା—2. Wiping.
୩ । ସେବା; ପୂଜନ—3. Worship.

**ନିର୍ମତ୍ସର**—ସ. ବିଣ. ପୁଂ (ବହୁବ୍ରୀହି; ନିର୍+ମତ୍ସର)—୧ । ନିରହଙ୍କାର; ଗର୍ବଶୂନ୍ୟ—1. Free from arrogance
Nirmatsara or pride.
(ନିର୍ମତ୍ସରା—ସ୍ତ୍ରୀ) (ନିର୍ମତ୍ସରତା—ବି)
୨ । ଦ୍ୱେଷଶୂନ୍ୟ—
2. Free from envy or malice.

**ନିର୍ମଥ**—ସ. ବି. (ନିର୍+ମଥ୍ ଧାତୁ+ଅଧିକରଣ. ଅ)—ଅରଣୀ, ଯେଉଁ
Nirmatha କାଠ ଦୁଇଖଣ୍ଡକୁ ଘଷିକରି ଯଜ୍ଞ ପାଇଁ ଅଗ୍ନି ବାହାର କରାଯାଏ—A contrivance consisting of a stick and plank which produce fire by friction.

**ନିର୍ମଦ**—ସ ବିଣ. ପୁଂ (ବହୁବ୍ରୀହୀ, ନିର୍+ମଦ)—୧ । ମତ୍ତତାଶୂନ୍ୟ—
Nirmada 1. Sober, unintoxicated.
(ନିର୍ମଦା—ସ୍ତ୍ରୀ) ୨ । ଗର୍ବଶୂନ୍ୟ—2. Free from pride.
୩ । ମଦ ଜଳ ରହିତ (ହସ୍ତୀ)—3. (elephant) Destitute of the juice which flows from its temples when in rut.
ସ. ବି. ପୁଂ—ମଦକ୍ଷରଣରହିତ ହସ୍ତୀ—
A male elephant which emits no juice from its temples when in rut.

**ନିର୍ମନୁଷ୍ୟ**—ସ. ବିଣ (ବହୁବ୍ରୀହି, ନିର୍+ମନୁଷ୍ୟ)—୧ । ଜନଶୂନ୍ୟ—
Nirmanushya 1. Depopulated
୨ । ନିର୍ଜନ—2. Solitary; lonely.
୩ । ଜନବସତିଶୂନ୍ୟ—3. Desolate; uninhabited.

**ନିର୍ମନ୍ଥ**—ସ. ବି.—(ନିର୍+ମନ୍ଥ୍ ଧାତୁ+ଭାବ. ଅ)—୧ । ମନ୍ଥିବା,
Nirmantha ଆଲୋଡ଼ନ, ମୋହିଁବା—1. Churning.
୨ । ମର୍ଦ୍ଦନ—2. Act of rubbing.
୩ । ନିଗାଡ଼ିବା; ଚପୁଡ଼ିବା—
3. Act of wringing out or squeezing.

**ନିର୍ମନ୍ଥନ**—ସ. ବି.—(ନିର୍+ମନ୍ଥ୍ ଧାତୁ+ଭାବ. ଅନ)—
Nirmanthana ନିର୍ମନ୍ଥ (ଦେଖ)—Nirmantha (See)

**ନିର୍ମନ୍ଥ୍ୟ**—ସ. ବି. ( ନିର୍+ମନ୍ଥ ଧାତୁ+କର୍ମ. ଯ )—ଯଜ୍ଞାଗ୍ନି
Nirmanthya ଉତ୍ପାଦନାର୍ଥ ବ୍ୟବହୃତ ଘୃଷ୍ୟମାଣ ମନ୍ଥନକାଷ୍ଠ—
A piece of drywood used to procure fire for vedic sacrifice by friction.

**ନିର୍ମମ**—ସ. ବିଣ.ପୁଂ (ବହୁବ୍ରୀହି, ନିର୍=ନାହିଁ+ମମ=ମମତା ଯାହାର)—
Nirmama ୧ । ମମତାଶୂନ୍ୟ, ନିଃସ୍ୱାର୍ଥ—1. Unselfish.
(ନିର୍ମମା—ସ୍ତ୍ରୀ) ୨ । ବାସନାରହିତ—
2. Disinterested; having no desire.
୩ । ନିର୍ଦ୍ଦୟ—3. Cruel; unkind.
୪ । କୃପାହୀନ—4 Pitiless; relentless; severe.

**ନିର୍ମମତା**—ସ. ବି. (ନିର୍ମମ+ଭାବ.ତା)—୧ । ମମତାହୀନତା; ନିଃସ୍ୱାର୍ଥତା-
Nirmamatā 1. Unselfishness; disinterestedness.
(ନିର୍ମମତ୍ୱ—ଅନ୍ୟରୂପ) ୨ । ସ୍ନେହହୀନତା—
2. Want of attachment or affection

**ନିର୍ମର୍ଯ୍ୟାଦ**—ସ. ବିଣ. (ବହୁବ୍ରୀହି, ନିର୍+ମର୍ଯ୍ୟାଦା)—ମଯ୍ୟାଦା ବା
Nirmarjyāda ସମ୍ଭ୍ରମଶୂନ୍ୟ—Destitute of honor; dishonourable.
(ନିର୍ମର୍ଯ୍ୟାଦା—ସ୍ତ୍ରୀ)

**ନିର୍ମର୍ଯ୍ୟାଦା**—ଦେ. ବି. ( ସ. ଅମର୍ଯ୍ୟାଦା )—ମର୍ଯ୍ୟାଦାର ଅଭାବ;
Nirmarjyāda ଅମର୍ଯ୍ୟାଦା—Want of due respec

ପୁଣି ନିର୍ମର୍ଯ୍ୟାଦାରେ ପ୍ରବର୍ତ୍ତିଲି ଯୁଦ୍ଧ
ହେଲେ ସେ କୁରୁକୁଳ ସାରମାନେ ବଧ । କୃଷ୍ଣସିଂହ, ମହାଭାରତ, କର୍ଣ୍ଣ

ଦେ. ବିଣ—ନିମର୍ଯ୍ୟାଦ ( ଦେଖ )—Nımarjyāda (See)

ଏଥିରୁ ଯେବେ ଆଉ ହୁଅଇ ବେଭାର,
ଲେବେ ତ ନିର୍ମର୍ଯ୍ୟାଦା ହୁଅଇ ସଂସାର । କୃଷ୍ଣସିଂହ, ମହାଭାରତ, ବନ ।

**ନିର୍ମଳ**—ସଂ. ବି. (ବହୁବ୍ରୀହି, ନିର୍+ମଳ)—୧ । ମଳଶୂନ୍ୟ, ବିମଳ—
Nirmala 1. Clear; pellucid.
(ନିର୍ମଳା – ସ୍ତ୍ରୀ) ୨ । ଯହିଁରେ ଦାଗ ନ ଥାଏ—2. Spotless; stainless.
(ନିର୍ମ୍ମଳ—ଅନ୍ୟରୂପ)
୩ । ସ୍ୱଚ୍ଛ—3. Transparent; lucid.
୪ । ଶୁଦ୍ଧ—4. Purified.
୫ । ପରିଷ୍କୃତ—5. Clean.
୬ । ବିଶୁଦ୍ଧ, ପବିତ୍ର—6. Pure.
୭ । ଦୋଷଶୂନ୍ୟ—7. Faultless;
୮ । ଉଜ୍ଜ୍ୱଳ—8. Bright; limpid.
୯ । ସୁନ୍ଦର—9. Fair.
୧୦ । ନିଷ୍ପାପ, ପାପଶୂନ୍ୟ—10 Sinless.

ହୃଦତରଣୀ ଯୁଗ ଦେଖି
ନିର୍ମ୍ମଳ ଫଳ କର୍ମ ଅଛି । ଜଗନ୍ନାଥ, ଭାଗବତ ।

ବି.—୧ । ନିର୍ମାଲ୍ୟ, ଠାକୁରଙ୍କ ଛଡ଼ାଫୁଲ—1. Flowers taken out from the body of an image
୨ । ଅଭ୍ର—2. Mica; talc.
୩ । ନିରମଳା (ଦେଖ)—3 Nirimaḷā (See)

**ନିର୍ମଳ ଝର**— ଦେ. ବି—ଖଲ୍ଲିକୋଟ ରାଜଧାନୀର ନିକଟବର୍ତ୍ତୀ ପାର୍ବତ୍ୟ
Nirmaḷa jhara ଝରଣାବିଶେଷ—Name of a mountain-
(ନିର୍ମଳା ନିର୍ଝର—ଅନ୍ୟରୂପ) spring near Khallikota in Ganjam.

ଖଲ୍ଲିକୋଟ ଯହିଁ ରେଖେ ମନ୍ତ୍ରମାନେ, ନିର୍ମଳା ନିର୍ଝର ଜାହ୍ନବୀ ପାନେ ।
ରାଧାନାଥ, ଚନ୍ଦ୍ରଭାଗା ।

[ ଦ୍ର—ଏହା ପର୍ବତରୁ ବାହାରି କିଛି ଦୂର ବହି ଅଦୃଶ୍ୟ ହୋଇ ନିମ୍ନ ଦେଶକୁ ଗଡ଼ି ଯାଉଅଛି । ଖଲ୍ଲିକୋଟର ଭୂତପୂର୍ବ ରାଜା ଏଠାରେ ଗୋଟିଏ ନହର ତୋଳାଇଥିଲେ । ଝର ପାଣି ନହରର ସବୁ ଘର ବାଟେ କୃତ୍ରିମ ନାଳଦ୍ୱାରା ଯାଇ ଆବଶ୍ୟକ ସ୍ଥାନମାନଙ୍କରେ ପାଣି ଯୋଗାଉଥିଲା । ]

**ନିର୍ମଳତା**—ସଂ. ବି. ( ନିର୍ମଳ+ଭାବ. ତା )—
Nirmaḷatā ୧ । ବୈମଲ୍ୟ, ବିମଳତା—1. Clearness.
(ନିର୍ମଳତ୍ୱ—ଅନ୍ୟରୂପ) ୨ । ଶୁଦ୍ଧତା—2. Purity.

**ନିର୍ମଳା**—ଦେ. ବି. ( ନିର୍ମଳ+ଆ )—୧ । ନିରମଳା ( ଦେଖ )
Nirmaḷā 1. Nirimaḷā ( See )
୨ । ନିର୍ମଳ ଝର ( ଦେଖ )
2. Nirmaḷa jhara ( See )

ନିର୍ମଳା-ନିର୍ଝର-ଜାହ୍ନବୀ-ପାନେ । ରାଧାନାଥ, ଚନ୍ଦ୍ରଭାଗା ।

**ନିର୍ମଳୀ**—ସଂ. ବି—ନିରମଳା ( ଦେଖ )
Nirmaḷi Nirimaḷā ( See )

**ନିର୍ମଳୋପଳ**—ସଂ ବି—ସ୍ଫଟିକ—
Nirmaḷopaḷa Crystal.
(ନିର୍ମଳୋପଳ—ଅନ୍ୟରୂପ)

**ନିର୍ମାଇବା**—ଦେ. (ପଦ୍ୟ) କ୍ରି. ( ସଂ. ନିର୍ମାଣ )—
Nirmāibā ନିର୍ମାଣ କରିବା, ସୃଷ୍ଟି କରିବା—
निर्माणकरना To build; to raise; to construct; to create.
**निर्माना**

ବିଶାଳ ପୁର ସେ ନିର୍ମାଇ
ତା ଉପରେ ହେମ ଭଳି ହୋଇ । ଜଗନ୍ନାଥ, ଭାଗବତ ।

**ନିର୍ମାଇଲ**—ଗ୍ରା. ବି. (ସଂ ନିର୍ମାଲ୍ୟ)—ନିରମାଇଲ ( ଦେଖ )
Nirmāila Nirimāila ( See )

**ନିର୍ମାଂସ**—ସଂ. ବିଣ (ବହୁବ୍ରୀହି, ନିର୍+ମାଂସ)—୧ । ମାଂସଶୂନ୍ୟ—
Nirmāṁsa 1. Fleshless, meatless
୨ । ଖାଦ୍ୟାଭାବରୁ ଅତି କ୍ଷୀଣଶରୀର—
2. Emaciated for want of food.

**ନିର୍ମାକ୍ଷୀ**—ଦେ. ବିଣ. ( ପୁଂ ଓ ସ୍ତ୍ରୀ ) ( ସଂ. ନିରକ୍ଷକ )—
Nirmākshi ୧ । ନିରାଶ୍ରୟ—1 Helpless; shelterless
(ନିର୍ମାଖୀ—ଅନ୍ୟରୂପ)
बेचारा(री) ୨ । ଅରକ୍ଷିତ—2. Unprotected.
**बेचारा**

ସେ ଯେ ସେବକ ଯେତେ ନିର୍ମାକ୍ଷୀ ।
ପ୍ରୀତି ପ୍ରତାପ ଶର୍ଣିସେଣା ।

**ନିର୍ମାଣ**—ସଂ ବି. ( ନିର୍+ମା ଧାତୁ=ମାପିବା+ଭାବ. ଅନ )—
Nirmāṇa ୧ । ଗଠନ—1. Formation; creation.
୨ । ପ୍ରସ୍ତୁତକରଣ—2. Making.
୩ । ରଚନା—3. Construction; make
୪ । ଗ୍ରନ୍ଥନ—4. Raising; fabrication
୫ । ଘର ତିଆରି—5 Building of a house
୬ । ସାର—6. Essence, similarity.
୭ । ସାମଞ୍ଜସ୍ୟ—7. Fitness.
୮ । ପରିଚ୍ଛେଦ—8. Chapter.
ଦେ. ବିଣ—ନିର୍ମିତ—Made; constructed.

ବଧିବ ? ଭଣ ଉପମା ପୁଣ ନିର୍ମାଣ ପଶୁ ବର୍ମେ ।
ଉପେନ୍ଦ୍ର, ବୈଦେହୀଶବିଳାସ ।

**ନିର୍ମାଣ ବିଦ୍ୟା**—ସଂ. ବି—ବାସ୍ତୁ ବିଦ୍ୟା—
Nirmāṇa bidyā Engineering; the art of building construction.

**ନିର୍ମାଣିବା**—ଦେ. କ୍ରି—ନିର୍ମାଇବା ( ଦେଖ )
Nirmāṇibā Nirmāibā ( See )

ଅନେକ ବାସ ଗୃହ ଥିଲେ ଯେ ନିର୍ମାଣି ।
କୃଷ୍ଣସିଂହ, ମହାଭାରତ ସଭା ।

**ନିର୍ମାତା**—ସଂ. ବିଣ. ପୁଂ (ନିର୍+ମା ଧାତୁ+କର୍ତ୍ତୃ. ତୃ, ୧ମା. ୧ବ)—
Nirmātā ୧ । ନିର୍ମାଣକାରୀ—1. Building.
(ନିର୍ମାତ୍ରୀ—ସ୍ତ୍ରୀ) ୨ । ରଚୟିତା—2. Composing.
ବି—୧ । ସ୍ରଷ୍ଟା; ସୃଷ୍ଟିକର୍ତ୍ତା—
1 Builder; creator; maker.
୨ । କାରିଗର—2. Architect; artisan.

୩ । ଗ୍ରନ୍ଥକାର, ରଚକ ବ୍ୟକ୍ତି—
3 Composer; author

**ନିର୍ମାତ୍ରିକ**—ସଂ. ବିଣ (ନିର୍+ମାତ୍ରା+ଇକ) – ଯହିଁରେ ମାତ୍ରା ନ ଥାଏ—
Nirmātrika Having no mātrā.

**ନିର୍ମାୟ**—ସ ବିଣ ପୁଂ. ( ବହୁବ୍ରୀହି, ନିର୍=ନାହିଁ+ମାୟା )—
Nirmāyā ୧ । ଅମାୟିକ, ମାୟା ବିରହିତ, ଛଳହୀନ—
(ନିର୍ମାୟା—ସ୍ତ୍ରୀ) 1 Not deceitful.
୨ । ସରଳ—2. Frank

**ନିର୍ମାୟା**—ଦେ ବିଣ. ( ସ ନିର୍ମାୟ )—୧ । ନିର୍ମାୟ ( ଦେଖ )
Nirmāyā 1. Nirmāya ( See )
निमाया अହେ ଧୂର୍ତ୍ତରେଷ୍ଣ ଏହିରୂପେ ନିର୍ମାୟା
निमाया ବଚନ କହୁଣ ଗଲେ ସେ ମହାମାୟା ।
କୃଷ୍ଣସିଂହ. ମହାଭାରତ. ଶାନ୍ତି ।
୨ । ଯାହାଙ୍କୁ ସଂସାରର ମାୟା ଛୁଇଁ ନାହିଁ—
2. Free from worldly illusion; not concerned with the worldly concerns.

**ନିର୍ମାଲି(ଲୀ)**—ଦେ. ବି—ନାନକ ପନ୍ଥୀ ଶିଖ ସମ୍ପ୍ରଦାୟବିଶେଷ;
Nirmāli(li) (ଏମାନେ ଏକାନ୍ତ ଈଶ୍ୱରନିଷ୍ଠ ଓ ଜୀବହିଂସାଦି
निर्माली ନ କରି ଅତି ପବିତ୍ର ଭାବରେ ଜୀବନ ଅତି-
निर्मली ବାହିତ କରନ୍ତି, କେହି କେହି ଏମାନଙ୍କୁ ବୈଷ୍ଣବ ସମ୍ପ୍ରଦାୟଭୁକ୍ତ ବୋଲି କହନ୍ତି, ଏଥିର ପ୍ରବର୍ତ୍ତକ ରାମ ଦାସ ନାମକ ଜଣେ ସାଧୁ ଥିଲେ, ଏମାନେ ଗେରୁଆ ଲୁଗା ପିନ୍ଧନ୍ତି ଓ ସନ୍ନ୍ୟାସୀଙ୍କ ପରି ଚଳନ୍ତି )—
A sect of Sikhs.

**ନିର୍ମାଲ୍ୟ**—ସଂ. ବି. ( ନିର୍+ମାଲ୍ୟ )—
Nirmālya ୧ । ଦେବତାଙ୍କର ପ୍ରସାଦୀ ମାଳା ଓ ଫୁଲ ଆଦି—
1. Garlands and flowers taken out from the immage of a Deity.
[ ଦ୍ର—ଦେବତାଙ୍କୁ ଅର୍ପିତ ବସ୍ତୁ ବିସର୍ଜନ ପୂର୍ବରୁ ନୈବେଦ୍ୟ ଓ ବିସର୍ଜନ ପରେ ନିର୍ମାଲ୍ୟ ହୁଏ । ହି ଶ. ]
୨ । ଦେବତାଙ୍କ ଛଡ଼ାଫୁଲ—
2 Flowers put off from a Deity.
୩ । ଦେବତାଙ୍କ ପ୍ରସାଦ—
3. Offerings to a Deity.
ଦେବତାର ନିର୍ମାଲ୍ୟ ଦେଇ ପିତା ପାଶେ,
ଠିଆ ହୋଇଲେ ଦୁଇ ଯୋଡ଼ ଭକ୍ତିବଶେ । କୃଷ୍ଣସିଂହ. ମହାଭାରତ. ବନ ।
୪ । ( ନିର୍ମଳ+ଭାବ. ଯ )—ନିର୍ମଳତା—
4 Purity; stainlessness.
ଦେ. ବି—ପୁରୀର ଜଗନ୍ନାଥ ବା ଭୁବନେଶ୍ୱରର ଲିଙ୍ଗରାଜ ମହାପ୍ରଭୁଙ୍କ ମହାପ୍ରସାଦ ଅନ୍ନକୁ ଶୁଖାଇ କରି ରଖାଯିବା ପ୍ରସାଦ—Boiled rice-offering of the Deity Jagannātha (of Puri) and of Limgarāja of Bhubaneswar) which is dried in the sun and kept for being partaken of in lieu of Mahāprasāda when it is not available.
[ ଦ୍ର—ଦୂର ଦେଶରେ ଓ ଯେଉଁ ସ୍ଥାନରେ ବା ସମୟରେ ଅନ୍ନ ମହାପ୍ରସାଦ ମିଳିବ ନାହିଁ ଏପରି ସ୍ଥଳରେ ମହାପ୍ରସାଦ ପରିବର୍ତ୍ତରେ ବ୍ୟବହାର କରାଯିବା ଲାଗି ଲୋକେ ଅନ୍ନ ମହାପ୍ରସାଦକୁ ଶୁଖାଇକରି ରଖି ଥାଆନ୍ତି । କେହି କେହି ପ୍ରତିଦିନ ପୂଜା ବନ୍ଦନାଦି କରି ସାରି କଣିକାଏ ନିର୍ମାଲ୍ୟ ସେବନ କରନ୍ତି । ଏହି ନିର୍ମାଲ୍ୟ ପରଶ୍ରରଙ୍କ ମୁଖରୁ ଦିଆହେଉ ହୋଇ ଲୋକେ 'ନିର୍ମାଲ୍ୟ' ବୋଲୁଥା ବସନ୍ତି । ]
ବିଣ—୧ । ( ନିର୍+ମଳ+ଯ ) ନିର୍ମଳ, ପରିଷ୍କୃତ—
1. Clean; limpid.
୨ । ( ନିର୍+ମାଲ୍ୟ ) ମାଲ୍ୟରହିତ—
2. Destitute of garland.

**ନିର୍ମାଲ୍ୟା** ସ. ବି · ନିର୍ମଳୀ ଫଳ—
Nirmālyā The clearing nut.

**ନିର୍ମିତ୍ସା**—ସ ବି. ( ନିର୍+ମା. ଧାତୁ+ଇଚ୍ଛାର୍ଥେ. ସନ୍+ଭାବ. ଅ +ଆ )—ନିର୍ମାଣେଚ୍ଛା—Intention to build.
Nirmitsā

**ନିର୍ମିତ**—ସଂ. ବିଣ. ( ନିର୍+ମା. ଧାତୁ+କର୍ମ. ତ )—
Nirmita ୧ । ଗଠିତ, ରଚିତ—1. Made; consrutcted.
୨ । କୃତ; ତିଆରି—2. Manufactured.

**ନିର୍ମିତ୍ସୁ** - ସ. ବିଣ ( ନିର୍+ମା ଧାତୁ ଇଚ୍ଛାର୍ଥେ ସନ୍+କର୍ତ୍ତୃ. ଉ )—
Nirmitsu ନିର୍ମାଣେଚ୍ଛୁକ—Intending to build.

**ନିର୍ମିତି**—ସ. ବି. ( ନିର୍+ମା. ଧାତୁ+ଭାବ. ତି )—୧ । ନିର୍ମାଣ—
Nirmiti 1. Construction.
୨ । ରଚନା—2. Make.
୩ । ଔଚିତ୍ୟ—3. Fitness; propriety.

**ନିର୍ମିବା**—ଦେ. ( ପଦ୍ୟ ) କ୍ରି—ନିର୍ମାଇବା ( ଦେଖ )—
Nirmibā Nirmāibā (See).
ରଖିଥିଲେ ସ୍ୱର୍ଗିଳ ନିର୍ମି ଯାଗ ପାଇଁ
ଏଣ୍ କାଣ ଅଛ ମୁଁ କର୍ମୁ କର ନାହିଁ । କୃଷ୍ଣସିଂହ. ମହାଭାରତ ଶାନ୍ତ ।

**ନିର୍ମୁକ୍ତ**—ସ. ବି ( ନିର୍+ମୁଚ୍ ଧାତୁ+କର୍ମ. ତ )—୧ । ବିମୁକ୍ତ—
Nirmukta 1. Freed.
୨ । ପୃଥକ୍‌ଭୂତ—2. Separated; disjoined.
୩ । ସଙ୍ଗବର୍ଜିତ—3. Isolated from company.
୪ । ନିର୍ମୋକଶୂନ୍ୟ; ଖୋଳ ବା କାଞ୍ଚ ଛାଡ଼ିଥିବା (ସାପ)—
4. Having cast the slough or skin ( a serpent ).
୫ । ବନ୍ଧନମୁକ୍ତ—5. Released; set free.
୬ । ମୁକ୍ତିପ୍ରାପ୍ତ—6. Liberated.
୭ । ବହିର୍ଗତ—7. Departed; come out.

**ନିର୍ମୁଟ**—ସ. ବି. ( ନିର୍+ମୁଟ୍ ଧାତୁ=ଚୂର୍ଣ୍ଣ କରିବା+କର୍ତ୍ତୃ. ଅ )—
Nirmuta ୧ । ସୂର୍ଯ୍ୟ – 1. The sun.
୨ । ଅପୁଷ୍ପ ବୃକ୍ଷ, ବନସ୍ପତି—2. A tree bearing fruits without flowers.
୩ । ନିଷ୍କର ହାଟ—3 Rentfree fair or market.
୪ । ଖର୍ପର—4. Skull.
୫ । ଶଠବ୍ୟକ୍ତି, ଠକ—5 A knave; a cheat.

୬ । ତସ୍କର—6. A thief.

**ନିର୍ମୂଳ**—ସଂ. ବି. ( ବହୁବ୍ରୀହି; ନିର୍ + ମୂଳ )— ୧ । ମୂଳହୀନ—
Nirmūla 1. Destitute of root, origin or foundation.
୨ । ସମୂଳେ ବିନଷ୍ଟ—2. Extinct, eradicated, extirpated.
୩ । ମୂଳୋତ୍ପାଟିତ, ଉତ୍ଖାତ—3. Uprooted; pulled up by the root.
କଢ଼ଦେବ ସମସ୍ତ ପ୍ରାଣୀଙ୍କି ନିର୍ମୂଳ—କୃଷ୍ଣସିଂହ, ମହାଭାରତ, ସଭା ।
ଦେ ବିଣ—ନିର୍ବଂଶ—Issueless

**ନିର୍ମୂଳ କରିବା**—ଦେ. କ୍ରି—ଉତ୍ପାଟନ କରିବା—
Nirmūla kariba To extirpate; to eradicate; to uproot.
**निर्मूल करना जड़से उखाड़ना**

**ନିର୍ମୂଳନ**—ସଂ. ବି. ( ନିର୍ + ମୂଳନ )— ୧ । ସମୂଳ ଉତ୍ପାଟନ—
Nirmūlana 1. Eradication; uprooting.
୨ । ବିନାଶନ—2 Extirpation.

**ନିର୍ମୂଳ ହେବା**—ଦେ. କ୍ରି—୧ । ସମୂଳେ ବିନଷ୍ଟ ହେବା—
Nirmūla heba 1 To become extinct, root and all.
**निर्मूल होना** ୨ । ନିର୍ବଂଶ ହେବା—
**जड़से उखड़ना** 2. To be extinct in progeny.

**ନିର୍ମୂଳିଆ**—ଦେ ବିଣ. ପୁଂ. ( ଗାଳିରେ ବ୍ୟବହୃତ ) —୧ । ନିର୍ବଂଶିଆ—
Nirmūlia 1 Issueless; progenyless.
( ନିର୍ମୂଳୀ—ସ୍ତ୍ରୀ ) ୨ । ଯାହାର ମୂଳ ନାହିଁ—
2. Having no root.
ବି—ନିର୍ମୂଳୀ ଲତା ( ଦେଖ )—Nirmūli latā (See).

**ନିର୍ମୂଳୀ**—ସଂ. ବି—ନିର୍ମୂଳୀ ଲତା (ଦେଖ)—
Nirmūli Nirmūli latā (See).

**ନିର୍ମୂଳୀ ଲତା**—ସଂ. ବି—ପରାଙ୍ଗପୁଷ୍ଟ ଲତାବିଶେଷ; ଗଛ ଉପରେ ମାଡ଼ି
Nirmūli latā ଥିବା ମୂଳହୀନ ଲତାବିଶେଷ; ଆକାଶ ବଲ୍ଲୀ—
ସଂ. ଆକାଶବଲ୍ଲୀ, ଅମ୍ବରବଲ୍ଲୀ A sort of parasite creeper; Cuscuta Reflexa.
আলগালতা, অমরবেল [ ଦ୍ର—ଏହା ସରୁ ହଳଦିଆ ତେନ୍ତା-
**गगनबेल, अमरबेल** ବିଶିଷ୍ଟ ଏକପ୍ରକାର ଲତା । ଏହାର ପତ୍ର
ଗଞ୍ଜାମ—ଗଗନସିନ୍ଦୁ ନାହିଁ । ଏହା ବିନାଚେରରେ ଗଛ ଉପରେ
ମାଡ଼େ । ଏହା ଧାରକ, ତିକ୍ତ କଷାୟ ରସ, ପିଚ୍ଛିଳ, ନେତ୍ରରୋଗଘ୍ନ, ଅଗ୍ନିବର୍ଦ୍ଧକ ଓ ପିତ୍ତକଫ ଓ ଆମନାଶକ । ]

**ନିର୍ମୃଷ୍ଟ**—ସଂ. ବିଣ (ନିର୍ + ମୃଜ୍ ଧାତୁ=ମାଜିବା + କର୍ମ. ତ)—
Nirmrushta ୧ । ମାର୍ଜିତ—1. Rubbed out.
୨ । ପାଲିସ୍ କରାଯାଇଥିବା—2. Polished.
୩ । ପୋଛି ହୋଇଥିବା—3. Wiped out

**ନିର୍ମେଦ**—ସଂ. ବିଣ. (ବହୁବ୍ରୀହି, ନିର୍ + ମେଦ)—୧ । ଚର୍ବିହୀନ—
Nirmeda 1. Without fat.
୨ । କୃଶ—2. Weak; emaciated.

**ନିର୍ମେଧା**—ସଂ. ବିଣ. ( ନିର୍ + ମେଧସ୍, ୧ମା.୧ବ )—୧ । ମେଧାହୀନ—
Nirmedhā 1. Dull; blunt.
୨ । ମୂଢ଼—2. Stupid.

**ନିର୍ମୋକ**—ସଂ. ବି. (ନିର୍ + ମୁଚ୍ ଧାତୁ=ତ୍ୟାଗ କରିବା + କର୍ମ. ଅ)—
Nirmoka ୧ । ସାପର କାତି—1. Slough of a serpent.
୨ । ସାଞ୍ଜୁ—2. Coat of arms; armour; mail.
୩ । ଆକାଶ—3. The sky.
୪ । (+ଭାବ.ଅ)—ମୁକ୍ତି, ମୋକ୍ଷ—
4. Final beatitude
୫ । (ନାମ) ସାବର୍ଣ୍ଣି ମନୁଙ୍କର ଏକ ପୁତ୍ର—
5. Name of a son of Sābarnni Manu.

**ନିର୍ମୋକ୍ଷ**—ସଂ. ବି. (ନିର୍ + ମୋକ୍ଷ)—୧ । ତ୍ୟାଗ—
Nirmoksha 1. Abandonment; renunciation.
୨ । ପୂର୍ଣ୍ଣ ମୋକ୍ଷ—2. Complete emancipation.

**ନିର୍ମୋଚ୍ୟ**—ସଂ. ବିଣ. (ନିର୍ + ମୁଚ୍ ଧାତୁ + କର୍ମ. ଯ)—
Nirmochya ମୁକ୍ତିପାଇବାର ଯୋଗ୍ୟ—
Deserving to be liberated.

**ନିର୍ମୋହ**—ସଂ. ବିଣ. ପୁଂ. (ନିର୍ + ମୋହ, ବହୁବ୍ରୀହି)—ମୋହହୀନ—
Nirmoha Free from illusion.
(ନିର୍ମୋହା—ସ୍ତ୍ରୀ) (ନିର୍ମୋହତା—ବି)

**ନିର୍ଯନ୍ତ୍ରଣ**—ସଂ.ବି. (ନିର୍ + ଯନ୍ତ୍ର ଧାତୁ=ସଙ୍କୁଚିତ କରିବା + ଭାବ. ଅନ)—
Nirjantrana ସ୍ୱାତନ୍ତ୍ର୍ୟ—Independence.
ବିଣ—୧ । (ବହୁବ୍ରୀହି, ନିର୍ + ଯନ୍ତ୍ରଣା)—ଉଚ୍ଛୃଙ୍ଖଳ—
1. Unrestrained; perverse
୨ । ଅବାଧ, ଅନର୍ଗଳ—
2. Without hindrance; unimpeded.
୩ । ଅନିବାରିତ—3. Unobstructed; uncontrolled.
୪ । ଯନ୍ତ୍ରଣାରହିତ—4 Painless.

**ନିର୍ଯନ୍ତ୍ରିତ**—ସଂ. ବିଣ. (ନିର୍ + ଯନ୍ତ୍ରିତ)—୧ । ଉଚ୍ଛୃଙ୍ଖଳ—
Nirjantrita 1. Loose; irregular.
୨ । ବାଧାରହିତ—2. Unobstructed.
୩ । ଅନିବାରିତ—3. Unrestricted.

**ନିର୍ଯା(ର୍ଯ୍ୟା)ଣ**—ସଂ. ବି. (ନିର୍ + ଯା ଧାତୁ=ଯିବା + ଭାବ. ଅନ)—
Nirjā(rjyā)na ୧ । ନିର୍ଗମନ, ବହିର୍ଗମନ—
1. Setting out; going forth.
୨ । ନିଷ୍କ୍ରମଣ, ନିଃସରଣ; ପ୍ରସ୍ଥାନ—2. Departure.
୩ । ଲୋପ ହେବା—3. Vanishing.
୪ । ନିର୍ବାଣ, ମୁକ୍ତି—4. Emancipation, beatitude.
୫ । ପ୍ରାଣବାୟୁର ଦେହ ପରିତ୍ୟାଗ, ମୃତ୍ୟୁ—5. Death.
୬ । (+ଅଧିକରଣ. ଅନ)—ପଶୁର ପୃଷ୍ଠାସନ; ଜିନ—
6. Saddle
୭ । ଗଜାପାଙ୍ଗ, ହସ୍ତୀର ଚକ୍ଷୁ କୋଣର ପ୍ରାନ୍ତ—
7. The outer corner of an elephant's eye.
୮ । (+କରଣ. ଅନ) ପଶୁର ପାଦ ବାନ୍ଧିବା ରଜ୍ଜୁ—
8. Rope for tying the feet of animals.
୯ । ଗଦି—9. Pad; cushion.

**ନିର୍ଯା(ର୍ଯ୍ୟା)ତ**—ସ. ବଣ. (ନିର୍+ଯା ଧାତୁ+କର୍ତ୍ତୃ. ତ)—୧ । ନିର୍ଗତ; ବହିର୍ଗତ—1. Gone forth; gone out; started; departed.
Nirjā(rjyā)ta
୨ । ନିଃସାରିତ—2. Extracted.
୩ । ଅପସାରିତ—3 Expelled
୪ । ଲୁପ୍ତ—4 Vanished.
୫ । ମୃତ—5. Deceased.

**ନିର୍ଯା(ର୍ଯ୍ୟା)ତନ**—ସ. ବି. (ନିର୍+ଯତ୍ ଧାତୁ=ଶିକ୍ଷାଦେବା, ଯାତ ଧାତୁ+ଭାବ. ଅନ,—୧ । ପ୍ରତିଶୋଧ, ପ୍ରତିହିଂସା; ବୈରି ଶୁଦ୍ଧି—1 Revenge; requital.
Nirjā(rjyā)tana
୨ । ନିଗ୍ରହ—2. Persecution.
୩ । ମାରଣ, ବଧ—3. Slaughter.
୪ । ପ୍ରହାର—4. Beating.
୫ । ଦାନ—5. Gift; donation.
୬ । ପ୍ରତ୍ୟର୍ପଣ—6. Redelivery.
୭ । ପୁନଃ ସ୍ଥାପନ—7. Replacing.
୮ । ଋଣ ପରିଶୋଧ—
8 Repayment of a loan; liquidation.
୯ । ଅର୍ଥଦାନ—9. Payment.
୧୦ । ବହିଷ୍କରଣ—10. Removal
୧୧ । ତ୍ୟାଗ—
11 Abandonment; renunciation.

**ନିର୍ଯା(ର୍ଯ୍ୟା)ମ**—ସ. ବି.—(ନିର୍+ଯମ୍ ଧାତୁ=ନିବୃତ୍ତ କରିବା+କର୍ତ୍ତୃ. ଅ)—ପୋତବାହ, ନାବିକ—Sailor.
Nirjā(rjyā)ma

**ନିର୍ଯା(ର୍ଯ୍ୟା)ସ**—ସ ବି. (ନିର୍+ଯସ୍ ଧାତୁ=ଚେଷ୍ଟା କରିବା+କର୍ମ.ଅ)—୧ । କ୍ଷରଣ, ନିସ୍ୟନ୍ଦ—1. Exudation; infusion; oozing of juice.
Nirjā(rjyā)sa
୨ । ପାଚନ; କ୍ୱାଥ—2. Decoction; solution.
୩ । ଅଠା—3. Gum; resin.
୪ । ଗଛର ରସ—4. Juice; sap.
୫ । ଗୂଢ଼ାର୍ଥ—5. Implied or secret meaning.
୬ । ସାର ମର୍ମ—6. Purport.
୭ । ନିଷ୍କର୍ଷ, ସିଦ୍ଧାନ୍ତ—7. Final decision.

**ନିର୍ଯାଶ** ଦେ. ବଣ.—୧ । ଠିକ୍; ସତ୍ୟ—
**ନିର୍ଯାସ** 1. True; correct.
୨ । ସୁଦୃଢ଼—2. Firm.
୩ । କଠିନ—3 Hard; harsh.
୪ । ସ୍ପଷ୍ଟ—4. Plain; clear; positive.
୬ । ନିଶ୍ଚିତ—6. Certain; conclusive

**ନିର୍ଯୂ (ର୍ଯ୍ୟୂ)ହ**—ସ. ବି.—୧ । ଗବାକ୍ଷ—1 Latticed window.
Nirju(jyu)ha
୨ । ଦ୍ୱାର—2. Door
୩ । ମୁକୁଟ, ପାଗ—3 Crown; turban.

**ନିର୍ଲକ୍ଷ**—ଦେ. ବଣ.—ଅନିଶ୍ଚିତ—Indefinite
Nirlaksha
ଦେ. ବି ବେଖାତିର, ଅନାସ୍ଥା—Disregard

**ନିର୍ଲକ୍ଷଣ**—ସ. ବଣ. (ବହୁବ୍ରୀହି, ନିର୍+ଲକ୍ଷଣ)—୧ । ସୁଲକ୍ଷଣହୀନ, ଅଲକ୍ଷଣ—1 Without any auspicious sign.
Nirlashana
(ନିର୍ଲକ୍ଷଣା—ସ୍ତ୍ରୀ)
୨ । ଅଲକ୍ଷିତ—2. Unmarked.

**ନିର୍ଲଜ୍ଜ**—ସ ବଣ. ପୁଂ. (ବହୁବ୍ରୀହି, ନିର୍+ଲଜ୍ଜା)—୧ । ଲଜ୍ଜାହୀନ—1 Shameless; impudent; brazenfaced.
Nirlajja
(ନିର୍ଲଜ୍ଜା-ସ୍ତ୍ରୀ) ୨ । ମାନହୀନ, ଅମାନିଆ—2. Immodest.
୩ । ଅଶ୍ଳୀଳ—3. Indecent.

**ନିର୍ଲଜ୍ଜତା**—ସ ବି. (ନିର୍ଲଜ୍ଜ+ଭାବ. ତା)—୧ । ଲଜ୍ଜାହୀନତା—1. Impudence; shamelessness.
Nirlajjatā
(ନିର୍ଲଜ୍ଜତ୍ୱ—ଅନ୍ୟରୂପ) ୨ । ଅଶ୍ଳୀଳତା—2. Indecency.

**ନିର୍ଲିପ୍ତ**—ସ. ବଣ. (ନିର୍+ଲିପ୍ ଧାତୁ=ଲେପନ କରିବା+କର୍ମ. ତ)—୧ । ନିଃସମ୍ପର୍କ, ସମ୍ବନ୍ଧଶୂନ୍ୟ—1. Unconnected; unrelated; unconcerned.
Nirlipta
୨ । ଅନାସକ୍ତ—2. Indifferent; unattached.
୩ । ପ୍ରଲେପହୀନ—3. Unanointed; unsmeared.
୪ । ସ୍ୱାଧୀନ, ମୁକ୍ତ—4. Freed; liberated.
୫ । ନିର୍ମଳ—5 Undefiled; stainless.
୬ । ସ୍ୱତନ୍ତ୍ର—6. Separate.
୭ । ରାଗ ଦ୍ୱେଷ ଆଦିରୁ ମୁକ୍ତ—7. Free from passions.

**ନିର୍ଲିପ୍ସ**—ସ. ବଣ. (ବହୁବ୍ରୀହି, ନିର୍+ଲିପ୍ସା)—ସ୍ପୃହାଶୂନ୍ୟ, ନିସ୍ପୃହ—Free from desire; indifferent.
Nirlipsa
(ନିର୍ଲିପ୍ସା—ସ୍ତ୍ରୀ, ନିର୍ଲିପ୍ସତା—ବି)

**ନିର୍ଲିପ୍ସୁ**—ସ. ବଣ. (ନିର୍+ଲିପ୍ସୁ)—୧ । ଲୋଭଶୂନ୍ୟ—1. Not covetuous.
Nirlipsu
୨ । ଅନିଚ୍ଛୁକ—2. Unwilling.
୩ । ସନ୍ତୁଷ୍ଟ—3. Contented.

**ନିର୍ଲୁବ୍ଧ**—ସ. ବଣ. ପୁଂ. (ନିର୍+ଲୁବ୍ଧ)—ନିର୍ଲୋଭ—Not covetuous.
Nirlubdha
(ନିର୍ଲୁବ୍ଧା—ସ୍ତ୍ରୀ; ନିର୍ଲୁବ୍ଧତା—ବି)—

**ନିର୍ଲେଖନ**—ସ. ବି. (ନିର୍+ଲେଖନ)—୧ । କୌଣସି ବସ୍ତୁ ଉପରୁ ମଳ ଚାଞ୍ଛିବା—1 Scraping off of dirt from a thing.
Nirlekhana
୨ । ଚାଞ୍ଛିବା ଯନ୍ତ୍ର—2. Scraping instrument.

**ନିର୍ଲେପ**—ସ. ବଣ. (ବହୁବ୍ରୀହି, ନିର୍+ଲେପ)—୧ । ନିର୍ମଳ, କଳଙ୍କହୀନ—1. Spotless; stainless
Nirlepa
୨ । ନିର୍ଲିପ୍ତ—2. Unconcerned.
୩ । ତୈଳ ବା ଚର୍ବିରୁ ମୁକ୍ତ—3. Free from greasy or oily matter.

୪ । ଲିପ୍ତ—4 Anointed.
୫ । ସ୍ୱତନ୍ତ୍ର—5 Separate.
୬ । ପାପଶୂନ୍ୟ—6. Sinless.
୭ । ଲେପନଶୂନ୍ୟ – 7 Unsmeared.
ବି—୧ । ସମ୍ବନ୍ଧଶୂନ୍ୟତା - 1. Unconcern; want of connection; indifference.
୨ । ମୁନି, ସାଧୁ—2. A sage, a saint.

**ନିର୍ଲୋଡ଼ିତ**—ସ. ବିଣ. ( ନିର୍ + ଲୋଡିତ )—୧ । ସମାଲୋଚିତ—
Nirlordita 1. Criticised
୨ । ସମ୍ୟକ୍ ବିବେଚିତ—2. Well considered.
୩ । ତଦନ୍ତ କରି ଯାଇଥିବା—3. Investigated.

**ନିର୍ଲୋଭ**—ସ. ବିଣ ପୁଂ. ( ବହୁବ୍ରୀହି; ନିର୍ + ଲୋଭ )—
Nirlobha ୧ । ଲୋଭଶୂନ୍ୟ—1. Uncovetuous; free
( ନିର୍ଲୋଭା – ସ୍ତ୍ରୀ ) from covetuousness or avarice.
୨ । ସନ୍ତୁଷ୍ଟ—2. Contented.
ବି—ସନ୍ତୋଷ, ତୁଷ୍ଟି—Contentment.

**ନିର୍ଲୋଭୀ**—ଦେ ବିଣ ( ସ. ନିର୍ଲୋଭ )—ଲୋଭଶୂନ୍ୟ—
Nirlobhi Free from avarice.
निर्लोभी **নির্লোভী**

**ନିର୍ଲୋମ**—ସ. ବିଣ. ପୁଂ. ( ବହୁବ୍ରୀହି, ନିର୍ + ଲୋମନ୍ )—
Nirloma ୧ । ଲୋମଶୂନ୍ୟ—1. Furless, devoid of
( ନିର୍ଲୋମା—ସ୍ତ୍ରୀ ) furs or downs.
୨ । ମାଖୁନ୍ଦା, ଟାଙ୍ଗରା, କେଶଶୂନ୍ୟ—
2. Hairless; bald.

**ନିର୍ସା**—ଗ୍ରା. ବିଣ. ( ସ. ନୀରସ )—ନୀରସା ( ଦେଖ )
Nirsa निरसा; **নিরসা** Nirasa ( See )

**ନିର୍ହରଣ**—ସ. ବି. ( ନିର୍ = ନିଃଶେଷ ରୂପେ + ହରଣ )—
Nirharana ୧ । ଦାହାର୍ଥ ଶବକୁ ଘରୁ ବାହାର କରି ନେବା—
1. Carrying a dead body out of the house for cremation.
୨ । ନିଷ୍କାସନ—2 Bringing out
୩ । ଶବ ଦାହ—3. Cremation.

**ନିର୍ହାର**—ସ. ବି. ( ନିର୍ + ହୃ ଧାତୁ + ଭାବ. ଅ )—
Nirhara ୧ । ବହିଷ୍କରଣ—1. Bringing out.
୨ । ଉତ୍ପାଟନ—2. Taking out by the root
୩ । ଦାହାର୍ଥ ଶବ ବହିଷ୍କରଣ—
3 Bringing out a dead body of the house for cremation.
୪ । ମୂଳୋତ୍ପାଟନ—4. Eradication.
୫ । ଶବଦାହ—5. Cremation
୬ । ଅଗ୍ନିଦାହ—6. Combustion; burning.
୭ । ବିଦ୍ଧ ଶଲ୍ୟାଦି ଶରୀରରୁ ବାହାର କରିବା—
7 Extraction of arrow etc. pierced into the body.
୮ । ଯଥେଷ୍ଟ ବିନିଯୋଗ—
8 Sufficient application.
୯ । ମଳ ମୂତ୍ରାଦି ତ୍ୟାଗ—9. Answering the calls of nature; discharge of refuse matters from the body.
୧୦ । ବହୁ ଦୂର ପ୍ରସାରିତ ସୁଗନ୍ଧ—
10. A far diffused fragrance.
୧୧ । ସମ୍ପତ୍ତି—11. Wealth

**ନିର୍ହାରକ**—ସ. ବିଣ. ( ନିର୍ + ହୃ ଧାତୁ + କର୍ତ୍ତୃ. ଅକ )—
Nirharaka ୧ । ବହୁ ଦୂରବ୍ୟାପକ ଗନ୍ଧବିଶିଷ୍ଟ—
(ନିର୍ହାରିକା—ସ୍ତ୍ରୀ) 1. With fragrance diffused far.
୨ । ନିର୍ହରଣକର୍ତ୍ତା; ଯେ ବାହାର କରେ—
2. Extracting; bringing out; drawing out.
୩ । ମଡ଼ାବାହାଙ୍ଗିଆ, ଶବବାହକ—
3 Carrying the dead body.
୪ । ଶବଦାହକ—4 Cremating.
୫ । ଧନୀ—5 Wealthy.
୬ । ଅପହାରକ—6 Stealing.

**ନିର୍ହାରୀ**—ସ. ବିଣ. ( ନିର୍ + ହୃ ଧାତୁ + କର୍ତ୍ତୃ. ଇନ୍; ୧ମା. ୧ବ )—
Nirhari ନିର୍ହାରକ ( ଦେଖ )
(ନିର୍ହାରିଣୀ—ସ୍ତ୍ରୀ) Nirharaka ( See )

**ନିର୍ହୃତ**—ସ. ବିଣ. ( ନିର୍ + ହୃତ )—
Nirhruta ୧ । ଅପହୃତ—1 Stolen.
୨ । ଉଦ୍ଧୃତ—2. Extracted.

**ନିର୍ହେତୁକ**—ସ. ବିଣ. ( ବହୁବ୍ରୀହି; ନିର୍ + ହେତୁ + କ )—
Nirhetuka ଅହେତୁକ; ଅକାରଣ; ବୃଥା—
(ନିର୍ହେତୁ—ଅନ୍ୟରୂପ) Without cause or reason.

**ନିର୍ହ୍ରାଦ**—ସ. ବି. ( ନିର୍ + ହ୍ରାଦ ଧାତୁ = ଶବ୍ଦ କରିବା + ଭାବ. ଅ )—
Nirhrada ନିନାଦ, ଧ୍ୱନି—Sound
ଉଠେ . ନିର୍ହ୍ରାଦ କର୍ଣ୍ଣ ବଧିର କରାଇ । ଜଗନ୍ନାଥ, ମହାଯାତ୍ରା ।

**ନିଲ୍** (ଧାତୁ)—ସ—ବହୁ କଷ୍ଟରେ ବୁଝି ପାରିବା—
Nil (root) To understand with difficulty.

**ନିଳ**—ସ. ବି. (ନାମ)—ବିଭୀଷଣର ମନ୍ତ୍ରୀ, ରାକ୍ଷସବିଶେଷ—
Nila Name of a demon.
[ ଦ୍ର—ଏ ମାଳୀ ରାକ୍ଷସ ଓ ବସୁଦା ରାକ୍ଷସୀର ପୁତ୍ର ଥିଲେ । ବୃ. ଶବ୍ଦସାଗର । ]

**ନିଲକ୍ଷଣ**—ଦେ. ବିଣ. ପୁଂ. ( ସ. ନିର୍ଲକ୍ଷଣ )—୧ । ସୁଲକ୍ଷଣହୀନ—
Nilakshana 1. Having no auspicious sign.
( ନିଲକ୍ଷଣା—ଅନ୍ୟରୂପ ) ନିଲକ୍ଷଣୀ ପାଇଁ କଷ୍ଟ ଏତେ ବୃଥା ସହୁ—
( ନିଲକ୍ଷଣୀ—ସ୍ତ୍ରୀ ) ଅଭିମନ୍ୟୁ. ବିଦଗ୍ଧଚିନ୍ତାମଣି ।
୨ । ଅଲକ୍ଷଣା, ମନ୍ଦ ଆଚରଣବିଶିଷ୍ଟ—
2. Having bad or cursed habits.
ମୁଁ ସ୍ୱାକ ନିଲକ୍ଷଣୀ ମଲି,
ତୋତେ ଏକାକୀ ଛାଡ଼ି ଗଲି—ରାମଦାସ. ଦାର୍ଢ୍ୟତାଭକ୍ତି ।

୩ । କୁତ୍ସିତ—3 Bad; evil.
୪ । ହୀନ, ତୁଚ୍ଛ—4. Mean, low.

**ନିଲଜ(ଜ୍ଜ)**—ଦେ. ବିଣ ( ସଂ. ନିର୍ଲଜ୍ଜ )—ନିର୍ଲଜ୍ଜ ( ଦେଖ )
Nilaja(jja) Nirlajja ( See )
निलाज निलज ନସ୍ୱନୁ ଉପୃତ ଗଲା ନିଲଜ ଚାଳୁଣି—ପ୍ରାଚୀ, ଉତ୍ସବମଣ୍ଡଳ ।
( ନିଲଜା, ନିଲଜଥା, ନିଲଜ୍ଯା—ଅନ୍ୟରୂପ ) ( ନିଲଜୀ—ସ୍ତ୍ରୀ )

**ନିଲଜପଣ**—ଦେ. ବି—ଲଜ୍ଜାହୀନତା—
Nilajapaṇa Shameless-ness.
निलाजपना ଉଠାଉଁ ନିଲଜପଣେ ପ୍ରହୃତ ମୁହିଁ—ପ୍ରାଚୀ, ଉତ୍ସବମଣ୍ଡଳ ।
निलजई (ନିଲଜପଣିଆ[ଆଁ]—ଅନ୍ୟରୂପ)

**ନିଲଠା**—ଦେ. ବିଣ. ପୁଂ. ଓ ସ୍ତ୍ରୀ ( ସଂ. ନିର୍ଲଜ୍ଜ ) ( ଗାଳିବିଶେଷ )—
Nilaṭhā ଅଲଜ୍ଜୁକ, ଲଜ୍ଜାହୀନ—Shameless.
(ନିଲଠିଆ—ଅନ୍ୟରୂପ) (ନିଲଠୀ, ନିଲଠେଇ—ସ୍ତ୍ରୀ)

**ନିଲଠାପଣିଆ(ଆଁ)** ଦେ. ବି—ଲଜ୍ଜାହୀନତା—
Nilaṭhāpaṇiā(āṅ) Shameless-ness.
(ନିଲଠାପଣ—ଅନ୍ୟରୂପ) କରଣ ଘର ବୋଲି ଥିଲେ ୧ବୃତ୍ତ କର ଘରେ ରଖିବା ସେଇଟା ନିହାତ ନିଲଠାପଣିଆ—ଫକୀରମୋହନ, ଗଳ୍ପସ୍ୱଳ୍ପ ।

**ନିଲ(ଲ)ୟ**—ସଂ. ବି. ( ନି=ମଧ୍ୟରେ+ଲୀ ଧାତୁ=ଆଲିଙ୍ଗନ କରିବା; Nila(la)ya ଲୀନ ହେବା+ଅଧିକରଣେ. ଅ )—
୧ । ନିକେତନ; ଗୃହ—1. House; habitation, habitat; dwelling; abode.
କାଣ୍ଡ ଏ ନିଲୟ ନରସ୍ୱେ ସିବ ଭୃତ—କୃଷ୍ଣସିଂହ ମହାଭାରତ, ସଭା ।
୨ । ( ନି+ଲୟ ) ନିଃଶେଷ ଲୟ, ଅଦର୍ଶନ—
2. Disappearance; the state of being out of sight.
୩ । ଆଧାର—3 Receptacle.
୪ । ବିଶ୍ରାମ ନେବାର ସ୍ଥାନ—
4. A resting place ( M. W. ).
୫ । ପଶୁପକ୍ଷୀଙ୍କ ବସା—5. Lair; nest; den
୬ । ଲୁଚିବାର ସ୍ଥାନ—6. A hiding place

**ନିଲ(ଲ)ୟନ**—ସଂ. ବି. ( ନି=ମଧ୍ୟରେ+ଲୀ ଧାତୁ=ଲୀନ ହେବା+ Nila(la)yana ଅଧି. ଅନ )—୧ । ନିବାସ—
1. Habitation; abode.
୨ । (+ଭାବ ଅନ) ନାଶ, ବିଲୟ—
2. Annihilation; perdition; ruin.
୩ । ଶୋଷଣ—3. Imbibing; sucking.
୪ । ମୋକ୍ଷ—4. Final beatitude.
୫ । ଉର୍ଦ୍ଧ୍ୱରୁ ତଳକୁ ଓହ୍ଲାଇବା; (ପକ୍ଷୀ) ତଳେ ବସିବା—
5. Settling down; alighting in or on (said of a bird). ( M.W. )
୬ । ଲୁଚିବାର ସ୍ଥାନ—6. Hiding place. (M W.)

**ନିଲା**—ଗ୍ରା. ବି.—୧ । (ସଂ. ଲୀଳା)—ଲୀଳା (ଦେଖ)
Nilā 1. Līlā (See)
୨ । (ସଂ. ନୀଳ)—ନୀଳା (ଦେଖ)—2 Nīlā (See)

୩ । ନୀଳମଣି ନାମକ ପୁରୁଷ ବା ସ୍ତ୍ରୀର ଡାକନାମ—
3. A name for calling a male or fema'e named Nīlamani.

**ନିଲାଇ**—ଗ୍ରା. ବି—ନିଲେଇ (ଦେଖ)
Nilāi Nilei (See)

**ନିଲାଜ୍**—ପ୍ରାଦେ (ସିଂହଭୂମ) ବିଣ (ତୁଳ. ହି. ନିଲାଜ)—ନିର୍ଲଜ୍ଜ—
Nilāj Shameless

**ନିଲାମ**—ବୈଦେ. ବି (ଆ. ନିଲାମ୍, ତୁଳ. ପର୍ତ୍ତୁଗୀଜ୍. ଲିଲାମ୍, ଲିଲାମ୍)—
Nilāma ପୂର୍ବରୁ ସର୍ବସାଧାରଣଙ୍କୁ ଜଣାଇବା ପରେ ନିର୍ଦ୍ଦିଷ୍ଟ
निलाम निलाम ଅବସରରେ ଓ ସ୍ଥାନରେ କୌଣସି ବସ୍ତୁ ବା ସମ୍ପତ୍ତିକୁ କିଣିବାକୁ ଇଚ୍ଛୁକ ଉପସ୍ଥିତ ବ୍ୟକ୍ତିମାନଙ୍କ ମଧ୍ୟରୁ ଯେ ସର୍ବୋଚ୍ଚ ମୂଲ୍ୟରେ କିଣିବାକୁ ଡାକ ଦିଅନ୍ତି ତାଙ୍କୁ ପ୍ରକାଶ୍ୟରେ ବିକ୍ରୟ କରିବାର ରୀତି-
Auction sale; public sale.
ବିଣ—ନିଲାମି (ଦେଖ)—Nilāmi (See).

**ନିଲାମ ଅସିଦ୍ଧ**—ଦେ ବିଣ (କଚେରିଆ)—ନିଲାମ ରଦ୍ (ଦେଖ)
Nilāma asiddha Nilāma rad (See).

**ନିଲାମ(ମି) ଇସ୍ତି(ସ୍ତା)ହାର**—ବୈଦେ ବିଣ (ଆ) (କଚେରିଆ) (ଆ ନିଲାମ୍
Nilāma(mi) isti(stā)hāra +ଇସ୍ତାହାର୍ )—କୌଣସି
निलामईस्तिहाव निलामइश्तहार ସମ୍ପତ୍ତି ନିଲାମ ହେବା ସମ୍ବନ୍ଧେ ପୂର୍ବରୁ ସର୍ବସାଧାରଣଙ୍କୁ ନିଲାମର ତାରିଖ ଓ ସର୍ତ୍ତ ଓ ସ୍ଥାନ ଆଦି ଜଣାଇବା ପାଇଁ ପ୍ରକାଶିତ ବିଜ୍ଞାପନ—Proclamation for sale by auction of a certain property.

**ନିଲାମ ଉଠା(ଠେ)ଇବା**—ଦେ. କ୍ରି (କଚେରିଆ)—ଆପଣାର ପ୍ରାପ୍ୟ ଆଦାୟ
Nilāma uṭhā(ṭhe)ibā ନିମନ୍ତେ ଅନ୍ୟ ବ୍ୟକ୍ତିର କୌଣସି
निलामे ऊठान निलामपरचढ़ाना ସମ୍ପତ୍ତି ନିଲାମ ହେବାର ଉପାୟ
ନିଲାମରେ ଉଠା(ଠେ)ଇବା / ନିଲାମରେ ଆଣିବା } ଅନ୍ୟରୂପ କରିବା—To bring another's property to auction.

**ନିଲାମ ଉଠିବା**—ଦେ. କ୍ରି. ( କଚେରିଆ )—(କୌଣସି ସମ୍ପତ୍ତି) ନିଲାମରେ
Nilāma uṭhibā ବିକ୍ରି କରାଯିବା ନିମନ୍ତେ ବିଜ୍ଞାପିତ ହେବା—
निलाम ऊठा ( any property) To be advertised
निलामपर चढ़ना for being sold by auction.
( ନିଲାମରେ ଉଠିବା; ନିଲାମରେ ଆସିବା—ଅନ୍ୟରୂପ )

**ନିଲାମ କରିବା**—ଦେ. କ୍ରି. ( କଚେରିଆ )—କୌଣସି ସମ୍ପତ୍ତିକୁ ନିଲାମ
Nilāma karibā ରୀତିରେ ବିକ୍ରୟ କରିବା—To sell a
निलाम कवा निलाम करना property by auction.
( ନିଲାମ କରାଇବା—ଣିଜନ୍ତରୂପ )

**ନିଲାମ କାଏମ**—ବୈଦେ. ବି. (କଚେରିଆ) (ଆ. ନିଲାମ୍+ଫା. କାଏମ୍)—
Nilāma kāema ନିଲାମ ହୋଇଥିବା ସମ୍ପତ୍ତିର ନିଲାମ ଡାକ
निलाम कायेम ହେବା ପରେ ନିଲାମ ଖରିଦଦାର୍ ନିର୍ଦ୍ଧାରିତ
निलाम कायेम ଜରସମନ ଦାଖଲ କଲେ ଓ ଦେଣଦାର ନିର୍ଦ୍ଧାରିତ ସମୟ ମଧ୍ୟରେ ଟଙ୍କା ଦାଖଲ ନ କଲେ ବା ନିଲାମ

୨ । ନିବାରକ—2. Preventing.

୩ । ବଧକାରକ—3. Killing.

**ନିଷେକ**—ସଂ. ବି. (ନି+ସିଚ୍ ଧାତୁ=ପାଣି ଛିଞ୍ଚିବା+ଭାବ. ଅ)—
Nisheka ୧ । ସେଚନ; ଛିଞ୍ଚିବା—1. Sprinkling.

୨ । ବର୍ଷଣ—2. Raining; showering.

୩ । କ୍ଷରଣ, ନିଃସ୍ରାବ—3 Effusion; exudation.

୪ । ଗର୍ଭଧାରଣାର୍ଥ ସ୍ତ୍ରୀ ଗର୍ଭରେ ପୁରୁଷର ବୀର୍ଯ୍ୟ ସେଚନ—
4 Coition for the purpose of impregnation.

୫ । ହିନ୍ଦୁମାନଙ୍କର ଦଶବିଧ ସଂସ୍କାର ମଧ୍ୟରୁ ଏକ, ଗର୍ଭାଧାନ—
5. One of the 10 rituals of a Hindu.

୬ । ଆଶୀର୍ବାଦ୍ ଘର—6. A ceremony to ensure conception; consummation of marriage

୭ । ସେବନ—7. Serving; partaking.

୮ । ଆଧାନ—8. The containing or being put in possession of a thing.

୯ । ରେତଃ, ବୀର୍ଯ୍ୟ (ହି. ଶ)—9 Semen; virile.

**ନିଷେଚନ**—ସଂ. ବି. (ନି+ସିଚ୍ ଧାତୁ+ଭାବ. ଅନ)—
Nishechana ୧ । ଛିଞ୍ଚିବା—1 Sprinkling.

୨ । ଓଦା କରିବା—2 Moistening.

**ନିଷେଦିବାନ୍** ସଂ. ବିଣ ପୁଂ [ନି+ସଦ୍ ଧାତୁ+କର୍ତ୍ତୃ.ବସ୍ (କ୍ୱସୁ)
Nishedibān ନିଷେଦିବସ୍, ]—
(ନିଷେଦୁଷୀ—ସ୍ତ୍ରୀ) ୧ । ଆସୀନ, ଉପବିଷ୍ଟ—1 Seated.

୨ । ସ୍ଥିତ—2 Situated.

**ନିଷେଦ୍ଧା**—ସଂ. ବିଣ. ପୁଂ (ନି+ସିଧ୍ ଧାତୁ=ନିଷେଧ କରିବା+କର୍ତ୍ତୃ. ତୃ, ୧ମା. ୧ବ)—ନିବାରକ—
Nisheddhā Prohibiting; forbidding
(ନିଷେଦ୍ଧ୍ରୀ—ସ୍ତ୍ରୀ)

**ନିଷେଧ**—ସଂ. ବି. (ନି+ସିଧ୍ ଧାତୁ+ଭାବ. ଅ)—
Nishedha ୧ । ନିବାରଣ, ବାରଣ, କୌଣସି କାର୍ଯ୍ୟ କରିବାକୁ ମନା କରିବା—1 Forbidding; prohibition.

୨ । ପ୍ରତିଷେଧ, ବିଧିବୈପରୀତ୍ୟ—
2 Exception to a rule; restriction.

୩ । ନିବୃତ୍ତି—3 Stoppage; cessation

୪ । ବାଧା, ରୋଧ—4 Prevention; restraint.

୫ । ତିରସ୍କାର—5 Censure.

ଗ୍ରା. ବି. (ସଂ. ନିଷଧ)—ନଳଙ୍କ ରାଜ୍ୟ, ନିଷଧ—
The kingdom of King Naḷa.

ବାସବନ କଲ ପ୍ରାପ୍ତ ନିଷେଧ ଅଧିପ । ଭଞ୍ଜ ବୈଦେହୀଶବିଳାସ ।

**ନିଷେଧକ**—ସଂ ବିଣ ପୁଂ. (ନି+ସିଧ୍ ଧାତୁ+କର୍ତ୍ତୃ ଅକ)—
Nishedhaka ୧ । ନିବାରକ—1 Prohibiting; forbidding; preventing.
(ନିଷେଧିକା—ସ୍ତ୍ରୀ)

୨ । ପ୍ରତିରୋଧକ—2 Obstructing

**ନିଷେଧନ**—ସଂ ବି. (ନି+ସିଧ୍ ଧାତୁ+ଭାବ ଅନ)—
Nishedhana ବାରଣ, ମନା କରିବା—Prevention, forbidding.

ଯାହାଣ ଜନନ ଘନ ଜଲ ନିଷେଧନ ଧନ ନହେ ତାହା ଭେଡ ପୁନଃ ପୁନଃ ।
ଭଞ୍ଜ. ପ୍ରେମସୁଧାନିଧି ।

**ନିଷେଧ ବିଧି**—ସଂ ବି (ହିନ୍ଦୁ ସ୍ମୃତି)—କୌଣସି ନିଷେଧ ଥିବା ବିଧି—
Nishedha bidhi A prohibitory rule

**ନିଷେଧିତ**—ସଂ ବିଣ (ନି+ସିଧ୍ ଧାତୁ+କର୍ମ. ତ)—ନିବାରିତ—
Nishedhita Prohibited; forbidden.

**ନିଷେଧିନୀ**—ସଂ ବି ସ୍ତ୍ରୀ (ନି+ସିଧ୍ ଧାତୁ+କର୍ତ୍ତୃ. ଇନ୍, ସ୍ତ୍ରୀ ଈ)—
Nishedhinī ୧ । ନିବାରଣକର୍ତ୍ତ୍ରୀ—1 Preventing; prohibiting (female).
(ନିଷେଧୀ—ପୁଂ)

୨ । ଯେ କୌଣସି ବସ୍ତୁକୁ ନ ଦେଇ ଅଟକାଏ—
2. Withholding; keeping back

୩ । ଯେ ବାଧା ଦିଏ—3. Obstructing

**ନିଷେଧିବା**—ଦେ. (ପଦ୍ୟ) (ସଂ ନି+ସିଧ୍ ଧାତୁ)—
Nishedhibā ନିବାରଣ କରିବା—To prevent.
निषेधो
निषेधना

ନବ ଲତା ରୋଳ ଶାଖେ ନିଷେଧିଲେ, ଲଭି ସମୀରଣ ସଙ୍ଗ;
ମକରନ୍ଦ ପାନ ଉତ୍ସବରେ ମନ ନ କରଇ ନାକ ଭୃଙ୍ଗ ।
କବିସୂର୍ଯ୍ୟ. ସଙ୍ଗୀତ ।

**ନିଷେଧ୍ୟ**—ସଂ. ବିଣ. (ନି+ସିଧ୍ ଧାତୁ+କର୍ମ ଯ)—ନିବାର୍ଯ୍ୟ—
Nishedhya Prohibitable.

**ନିଷେବଣ(ନ)**—ସଂ. ବି (ନି+ସେବ୍ ଧାତୁ=ଶୁଶ୍ରୂଷା କରିବା+ଭାବ. ଅନ)—୧ । ସେବା, ଶୁଶ୍ରୂଷା, ପରିଚର୍ଯ୍ୟା—
Nishebaṇa(na) 1. Service

୨ । ସେବନ, ଖାଇବା—2 Eating; partaking;

୩ । ରୋଗିଚର୍ଯ୍ୟା—
3. Attendance on a patient, tending.

୪ । ଅଭ୍ୟାସନ, ଆଚରଣ—
4 Observance; practice.

୫ । ଉପାସନା, ଆରାଧନା—
5 Worshipping; praying; adoration,

୬ । ବ୍ୟସନାଦିରେ ରତ ହେବା—
6 Addictedness to

୭ । ବ୍ୟବହାର—7 Use

**ନିଷେବଣୀ(ନୀ)ୟ**—ସଂ. ବିଣ (ନି+ସେବ୍ ଧାତୁ=ସେବା କରିବା+କର୍ମ. ଅନୀୟ)—ଉପାସନୀୟ—
Nishebaṇi(ni)ya 1. Worshipable.
[ନିଷେବଣୀ(ନୀ)ୟା—ସ୍ତ୍ରୀ]

୨ । ସେବନୀୟ—2 Fit to be partaken of.

୩ । ଆଚରଣୀୟ—
3. Fit to be observed or practised.

**ନିଷେବିତ**—ସଂ. ବିଣ (ନି+ସେବ୍ ଧାତୁ=ସେବା କରିବା+କର୍ମ. ତ)—
Nishebita ୧ । ସେବିତ—1. Attended upon; served.
(ନିଷେବିତା—ସ୍ତ୍ରୀ)

୨ । ଉପାସିତ, ଆରାଧିତ—2 Worshipped.

୩ । ଆଚରିତ—3. Practised; observed.

୪ । ଅନୁସୃତ—4. Pursued.

୫ । ଅନୁଯାତ—Followed;

୬ । ବ୍ୟବହୃତ—6 Used.

୭ । ଭୁକ୍ତ—7 Partaken; eaten

**ନିଷେବୀ**—ସ. ବିଣ. ପୁଂ (ନି+ସେବ୍ ଧାତୁ+କର୍ତ୍ତୃ. ଇନ୍, ୧ମା. ୧ବ)—
Nishebi (ନିଷେବିନୀ—ସ୍ତ୍ରୀ) ସେବାକାରୀ—Serving.

**ନିଷେବ୍ୟ**—ସ. ବିଣ (ନି+ସେବ୍ ଧାତୁ+କର୍ମ. ଯ)—ସେବନୀୟ—
Nishebya That which should be served, followed, practised or observed.

**ନିଷ୍କ(ଧାତୁ)**—ସ—ପରିମାଣ କରିବା, ମାପିବା—
Nishka (root) To measure.

**ନିଷ୍କ**—ସ. ବି. ପୁଂ ଓ କ୍ଳୀ (ନିର୍+କୈ ଧାତୁ=ଦୀପ୍ତିପାଇବା+କର୍ତ୍ତୃ. ଅ; ନିପାତନ)—୧ । ସ୍ୱର୍ଣ୍ଣମୁଦ୍ରା, ମୋହର—
Nishka 1. Gold coin; gold mohar.

୨ । ପାନାର୍, ୩୨ ରତିପରିମିତ ସ୍ୱର୍ଣ୍ଣ—
2. Gold weighing 32 Ratis.

୩ । ୧୦୮ ମଷା ସୁବର୍ଣ୍ଣର ପରିମାଣ—
3. Gold weighing 108 Mashās

୪ । ୧୬ କାହାଣ କଉଡ଼ି ପରିମାଣ—
4. A sum equal to 16 Kāhāṇas of cowries or shell-money.

୫ । ସୁବର୍ଣ୍ଣ—Gold

୬ । ସ୍ୱର୍ଣ୍ଣର ଉରୋଭୂଷଣ—
6. A gold ornament for the breast.

୭ । ସ୍ୱର୍ଣ୍ଣର କଣ୍ଠଭୂଷଣ—
7. A gold ornament for the neck.

୮ । ୪ର ମଷା ଓଜନ—
8. A standard weight of 4 Mashās.

୯ । ସ୍ୱର୍ଣ୍ଣପାତ୍ର ( ହି. ଶ )—9. Golden utensil.

୧୦ । ହୀରା (ହି ଶ.)—10. Diamond.

**ନିଷ୍କଣ୍ଟକ**—ସ. ବିଣ ( ବହୁବ୍ରୀହି; ନିର୍=ନାହିଁ+କଣ୍ଟକ=ବାଧା )—୧ । କଣ୍ଟକରହିତ, ଅକଣ୍ଟା—
Nishkaṇṭaka 1. Thornless.

୨ । ଶତ୍ରୁଶୂନ୍ୟ—2. Free from enemies.

୩ । ନିର୍ଦ୍ୱନ୍ଦ୍ୱ—3. Undisputed.

୪ । ପ୍ରତିବନ୍ଧକରହିତ; ବାଧାହୀନ, ନିର୍ବିଘ୍ନ—
4. Free from obstacles or impedements.

୫ । ନିରୁପଦ୍ରବ—
5. Painless; free from trouble or danger.

୬ । ନିରାପଦ—6. Safe.

୭ । ପ୍ରତିଦ୍ୱନ୍ଦ୍ୱୀଶୂନ୍ୟ—
7 Having no rival; unrivalled.

**ନିଷ୍କଣ୍ଟକ ରାଜତ୍ୱ**—ସ. ବି ( ନିଷ୍କଣ୍ଟକ+ରାଜତ୍ୱ )—ଯେଉଁ ରାଜାଙ୍କର ରାଜତ୍ୱ କରିବାରେ କେହି ଶତ୍ରୁ ବା ପ୍ରତିଦ୍ୱନ୍ଦ୍ୱୀ ନ ଥାଏ—
Nishkaṇṭaka rājatwa (ନିଷ୍କଣ୍ଟକ ରାଜ୍ୟ—ଅନ୍ୟରୂପ)
A reign free from enemies or rivals.

**ନିଷ୍କଣ୍ଟକ ହେବା**—ଦେ. କ୍ରି—ଶତ୍ରୁଶୂନ୍ୟ ହେବା, ବାଧାଶୂନ୍ୟ ହେବା—
Nishkaṇṭaka hebā To be free from enemies.
নিষ্কণ্টকহওআ निष्कंटकहेमा

> ନିକଟରେ ତୁମ୍ଭେ ତ ନିଷ୍କଣ୍ଟକ ହୋଇ
> ହେବ ସୁଖ ରାଜ୍ୟପାଳରେ ନରସାଇଁ ।
> କୃଷ୍ଣସିଂହ ମହାଭାରତ, ବନ ।

**ନିଷ୍କଣ୍ଠ**—ସ. ବି. (ବହୁବ୍ରୀହି; ନିର୍+ନାହିଁ=କଣ୍ଠ)—ବରୁଣ ଗଛ—
Nishkaṇṭha A tree, Caparis Trifoliata.

**ନିଷ୍କପଟ**—ସ. ବିଣ. ପୁଂ (ବହୁବ୍ରୀହି, ନିର୍=ନାହିଁ+କପଟ)—
Nishkapaṭa ଅକପଟ—Sincere; guileless.
(ନିଷ୍କପଟା—ସ୍ତ୍ରୀ) (ନିଷ୍କପଟତା—ବି)

**ନିଷ୍କପଟୀ**—ଦେ. ବିଣ. ପୁଂ ଓ ସ୍ତ୍ରୀ. (ସ. ନିଷ୍କପଟ)—ନିଷ୍କପଟ—
Nishkapaṭī Sincere, free from hypocricy, frank.
নিষ্কপট निष्कपटी
(ନିଷ୍କପଟିଆ—ଅନ୍ୟରୂପ)

**ନିଷ୍କପି**—ସ. ବିଣ—ମର୍କଟ ଶୂନ୍ୟ—Monkey-less; devoid of all monkeys.
Nishkapi

> ଦେବ ଦେଖ କରଇ ନିଷ୍କପି କରିବ ଆଜ ସମ୍ବାଦ ।
> ଉପେ. ବୈଦେହୀଶବିଳାସ ।

**ନିଷ୍କମ୍ପ**—ସ ବିଣ. (ବହୁବ୍ରୀହି, ନିର୍=ନାହିଁ+କମ୍ପ)—୧ । କମ୍ପହୀନ—
Nishkampa 1 Motionless; unshaking.

୨ । ସ୍ଥିର; ନିଶ୍ଚଳ—2. Still; calm; steady.

**ନିଷ୍କର**—ସ. ବିଣ. (ବହୁବ୍ରୀହି, ନିର୍+କର)—ଯେଉଁ ରଏତ୍ତି ଜମିର ଖଜଣା ଦେବାକୁ ହୁଏ ନାହିଁ; ମିଆ—
Nishkara Rent-free (land).

ଦେ. ବି—ଖଜଣା ଦେବା ଦାୟିତ୍ୱରୁ ମାଫ୍ ପାଇଥିବା ରଏତ୍ତି ବୃତ୍ତି—Rent-free holding.

[ ଦ୍ର—ଯେଉଁ ଜମିର ଖଜଣା ଜମିଦାର ପ୍ରଜାଙ୍କୁ ମାଫ୍ ଦିଅନ୍ତି ତାହାକୁ ନିଷ୍କର ଓ ଯେଉଁ ଜମି ନିମନ୍ତେ ରାଜାଙ୍କୁ ବା ସରକାରଙ୍କୁ ରାଜସ୍ୱ ଦିଆଯାଏ ନାହିଁ, ତାକୁ ଲାଖେରାଜ (revenue free) ବୃତ୍ତି ବୋଲାଯାଏ । ]

**ନିଷ୍କରୁଣ**—ସ. ବିଣ. (ବହୁବ୍ରୀହି; ନିର୍+କରୁଣା)—୧ । ନିର୍ଦ୍ଦୟ—
Nishkaruṇa 1. Unkind; merciless.
(ନିଷ୍କରୁଣା—ସ୍ତ୍ରୀ) ୨ । ନିଷ୍ଠୁର—2. Cruel;
(ନିଷ୍କରୁଣତା—ବି)

**ନିଷ୍କର୍ମକ**—ସ. ବିଣ. ପୁଂ. (ବହୁବ୍ରୀହି, ନିର୍+କର୍ମନ୍+କ)—
Nishkarmaka ଅକର୍ମା; କର୍ମରହିତ—
(ନିଷ୍କର୍ମିକା—ସ୍ତ୍ରୀ) Without work; unemployed.
(ନିଷ୍କର୍ମଣ୍ୟ—ଅନ୍ୟରୂପ) ସ. ବି—ଅଳସୁଆ ଲୋକ—
A loafer; an idle fellow.

**ନିଷ୍କର୍ମା**—ସ ବିଣ (ନିଷ୍କର୍ମନ୍, ବହୁବ୍ରୀହି; ନିର୍=ନାହିଁ+କର୍ମନ୍=କାର୍ଯ୍ୟ)—୧ । ନିର୍ବ୍ୟାପାର, କର୍ମରହିତ, ନିକମା—
Nishkarmā 1 Unemployed; unoccupied.

୨ । ଅଳସ, ଅକର୍ମଣ୍ୟ—
2. Lazy; slothful; indolent; idle

୩ । ନିଶ୍ଚେଷ୍ଟ, ନିରୁତ୍ସାହ—3. Destitute of exertion
[ ଦ୍ର—ଏଥିର ଅପଭ୍ରଂଶ—ନିକମା । ]
ଦେ. ବିଣ—ଅକାମିକା—
Worthless; useless; fit for nothing.

ନି -- ସ. ବି. (ନିର୍ + କୃଷ୍ ଧାତୁ = ଟାଣିବା + ଭାବ. ଅ)—
Nishkarsha ୧ । ନିଶ୍ଚୟ—1. Certainty.
୨ । ଇୟତ୍ତା, ସ୍ଥିରୀକରଣ—2. Ascertainment.
୩ । ସାର, ନିର୍ଯ୍ୟାସ -
3. Essence; extract, substance.
୪ । ନିଃସାରଣ, ନିଗାଡ଼ିବା, ବାହାର କରିବା—
4. Extraction, drawing out.
୫ । ସାରମର୍ମ—5. Essential meaning or import.
ଦେ. ବିଣ—୧ । ନିଶ୍ଚିତ—1. Certain.
୨ । ସ୍ଥିର, ଅଟଳ—2. Firm; fixed.

**ନିଷ୍କର୍ଷ ଜବାବ**—ଦେ. ବି—୧ । ସ୍ଥିର ଉତ୍ତର—
Nishkarsha jababa 1. Certain reply.
୨ । ଅନ୍ତିମ ଉତ୍ତର—2. Final reply.

**ନିଷ୍କର୍ଷଣ**—ସ. ବି. (ନିର୍ + କୃଷ୍ ଧାତୁ = କୃଷ କରିବା + ଭାବ ଅନ)—
Nishkarshana ୧ । ନିଷ୍ପତ୍ତିକରଣ, ମେଣ୍ଢାଇବା—
1. Deciding; coming to a decision.
୨ । ଉଦ୍ଧାରଣ, ନିଃସାରଣ—
2. Act of drawing or pulling out; extraction; extrication.
୩ । ନିଯୋଜନ—3. Appointing.
୪ । ବିଶ୍ୱାସ କରିବା—4. Trusting.
୫ । ନିଶ୍ଚୟୀକରଣ—5. Ascertaining.
୬ । ନିଷ୍କାସନ, ବହିଷ୍କରଣ—6. Expelling.
୭ । ଅପନୋଦନ, ଅପନୟନ—
7. Obliteration; removal.

**ନିଷ୍କଳ**—ସ. ବିଣ. ପୁଂ. (ବହୁବ୍ରୀହି, ନିର୍ = ନାହିଁ + କଳା = ଅଂଶ)—
Nishkala ୧ । କଳାଶୂନ୍ୟ—1. Waned.
(ନିଷ୍କଳା, ନିଷ୍କଳୀ—ସ୍ତ୍ରୀ) ୨ । ଅଙ୍ଗହୀନ—2 Lacking limbs.
[ନିଷ୍କଳତା(ତ୍ୱ)—ବି] ୩ । କ୍ଷୟପ୍ରାପ୍ତ—3. Diminished; decayed.
୪ । ନିରଂଶ, ଅଂଶଶୂନ୍ୟ—4. Without parts.
୫ । ବନ୍ଧ୍ୟ, ନିଷ୍ପୁଂସ୍ତ୍ୱ—5. Barren; impotent.
୬ । ବୃଦ୍ଧ—6. Old; decrepit.
୭ । ନିଷ୍ଫଳ—7. Fruitless.
୮ । ଅସଂଶୟ—8. Sure; certain.
୯ । ପୂର୍ଣ୍ଣ; ଅବିଭକ୍ତ—9. Whole; undivided.
୧୦ । ଅବିନାଶୀ—10. Indestructible.
ସ. ବି—୧ । ଆଧାର—1. Receptacle.
୨ । ବ୍ରହ୍ମ, ଈଶ୍ୱର—2 God.
୩ । ବ୍ରହ୍ମା (ହି. ଶ)—3. Brahmā.

**ନିଷ୍କଳଙ୍କ**—ସ. ବିଣ. (ବହୁବ୍ରୀହି, ନି + କଳଙ୍କ)—୧ । କଳଙ୍କଶୂନ୍ୟ—
Nishkalanka 1. Spotless; flawless; stainless;
(ନିଷ୍କଳଙ୍କା—ସ୍ତ୍ରୀ, ନିଷ୍କଳଙ୍କତା—ବି) unblemished.
୨ । ନିର୍ଦ୍ଦୋଷ—2. Faultless.
୩ । ଶୁଦ୍ଧ—3 Immaculate.

**ନିଷ୍କଳଙ୍କି**—ଦେ. ବିଣ. (ସ. ନିଷ୍କଳଙ୍କ)—କଳଙ୍କଶୂନ୍ୟ—
Nishkalanki Unblemished; faultless
निष्कलङ्की निष्कलङ्क

**ନିଷ୍କଳା**—ସ. ବିଣ. ସ୍ତ୍ରୀ. ( ନିଷ୍କଳ + ସ୍ତ୍ରୀ. ଆ )—୧ । ବନ୍ଧ୍ୟା—
Nishkala 1. Barren (woman ).
( ନିଷ୍କଳୀ – ଅନ୍ୟରୂପ ) ୨ । ବିଗତାର୍ତ୍ତବା; ନିବୃତ୍ତରଜସ୍କା—
2. ( a woman ) Past menstruation; past childbearing.
ସ. ବି. ସ୍ତ୍ରୀ—୧ । ନିବୃତ୍ତରଜସ୍କା ସ୍ତ୍ରୀ—1. A woman whose menses have ceased to appear; a woman past menstruation or child bearing.
୨ । ବୃଦ୍ଧା—2. An old woman.

**ନିଷ୍କଳ୍ମଷ**—ସ. ବିଣ. ( ନିର୍ + କଳ୍ମଷ; ବହୁବ୍ରୀହି )—
Nishkalmasha ୧ । କଳ୍ମଷ ବା ପାପଶୂନ୍ୟ—1. Sinless.
୨ । ନିଷ୍କଳଙ୍କ—2 Spotless

**ନିଷ୍କାମ୍**—ପ୍ରାଦେ. ( ସମ୍ବଲପୁର ) ଅ—ବିଲ୍‌କୁଲ୍, ଆଦୌ, ଜମାରୁ—
Nishkām At all, totally.

**ନିଷ୍କାମ**—ସ. ବିଣ ( ବହୁବ୍ରୀହି, ନିର୍ + କାମ = ସ୍ପୃହା )—
Nishkāma ୧ । କାମନାଶୂନ୍ୟ, କାମନାରହିତ—
(ନିଷ୍କାମା—ସ୍ତ୍ରୀ) 1. Free from lust or desire.
(ନିଷ୍କାମତା—ବି) ୨ । ନିସ୍ପୃହ, ନିର୍ମମ—
2. Indifferent, disinterested
୩ । ବିଷୟ ଭୋଗେଚ୍ଛାଶୂନ୍ୟ—
3. Free from the desire of worldly enjoyment
୪ । ଅନିଚ୍ଛୁକ—4. Unwilling, reluctant.

**ନିଷ୍କାମ କର୍ମ** - ସ. ବି. ( କର୍ମଧା, ନିଷ୍କାମ + କର୍ମ ) – ଫଳଲାଭର ଆଶା ନ
Nishkāma karma ରଖି ଯେଉଁ କାର୍ଯ୍ୟ କରାଯାଏ—
Disinterested action.

**ନିଷ୍କାମ ଧର୍ମ**—ସ ବି ( ନିଷ୍କାମ + ଧର୍ମ ) – କୌଣସି କାମନା ପ୍ରତି ଲକ୍ଷ
Nishkāma dharma ନ ରଖି ଯେଉଁ ଧର୍ମ ସାଧନ କରାଯାଏ—
Virtue practised for its own sake, and not for any ultimate reward.

**ନିଷ୍କାମୀ**—ସ. ବିଣ. ପୁ.—୧ । ନିଷ୍କାମ, କାମନାରହିତ—
Nishkāmi 1. Free from lust or irregular desire.
(ନିଷ୍କାମିନୀ—ସ୍ତ୍ରୀ) ୨ । ନିଃସ୍ୱାର୍ଥ—2. Unselfish, selfless.

**ନିଷ୍କାରଣ**—ସ. ବିଣ. ( ବହୁବ୍ରୀହି; ନିର୍ + କାରଣ )—
Nishkārana ୧ । ଅକାରଣ, କାରଣଶୂନ୍ୟ; ଅହେତୁକ—
1. Causeless; groundless.

( ଯଥା—ନିଷ୍କାରଣ ଶତ୍ରୁ, ନିଷ୍କାରଣବନ୍ଧୁ । )
ଗୁରୁ ଯେବେ ଶିଷ୍ୟକୁ ନିଷ୍କାରଣେ ମାରେ
ହଂସ୍ର ଜନ୍ତୁ ହୋଇଣ ଜନ୍ମଇ ମହୀରେ—
କୃଷ୍ଣସିଂହ. ମହାଭାରତ. ଅନୁଶାସନ ।
୨ । ନିଷ୍କାମ—2. Disinterested.
୩ । ବ୍ୟର୍ଥ, ବୃଥା—3. Vain.

**ନିଷ୍କାଳକ**—ସ. ବଣ. ପୁଂ. ( ବହୁବ୍ରୀହି, ନିର୍=ନିର୍ଗତ+କାଳକ=Nishkālaka କେଶାଦି )—ମୁଣ୍ଡିତମସ୍ତକ, ଘୃତାକ୍ତ ଦେହ, (ନିଷ୍କାଳକା—ସ୍ତ୍ରୀ) ପ୍ରାୟଶ୍ଚିତ୍ତ ଯୋଗ୍ୟ (ବ୍ୟକ୍ତି)—( a penitent ) Shaved and besmeared with ghee, preparatory to undergoing a penance.

**ନିଷ୍କାଳନ**—ସ. ବି. ( ନିର୍+କଲ୍ ଧାତୁ+ଅନ )—
Nishkālana ୧ । ଚଳାଇବା କର୍ମ ( ହି. ଶ. )—
1. Act of conducting.
୨ । ମାରଣ ( ହି. ଶବ୍ଦସାଗର )—
2. Killing; slaughter.

**ନିଷ୍କାଶ**—ସ. ବି. ( ନିର୍+କଶ୍ ଧାତୁ=ଗମନ କରିବା+ଅଧି. ଅ )—
Nishkāsa ୧ । ପ୍ରାସାଦର ବାହାରକୁ ଥିବା ଅଂଶ, ପ୍ରାସାଦର (ନିଷ୍କାସ—ଅନ୍ୟରୂପ) ବାରଣ୍ଡା, ପିଣ୍ଡା—
1. Varanda; a portico; porch; balcony.
୨ । ( +ଭାବ. ଅ ) ନିଃସରଣ—2. Coming out.
୩ । ବହିର୍ଦ୍ୱାରସ୍ଥ ମଣ୍ଡପ ( ଜ୍ଞାନେନ୍ଦ୍ର )—
3. A pavillion outside a house.
୪ । ନିଷ୍କାଶନ ( ଜ୍ଞାନେନ୍ଦ୍ର ) ( ଦେଖ )
4. Nishkāsana (See)

**ନିଷ୍କାଶନ**—ସ. ବି. ( ନିର୍=ବାହାରକୁ+କଶ୍ ଧାତୁ=ଗମନ କରିବା
Nishkāsana +ଭାବ. ଅନ )—
(ନିଷ୍କାସନ—ଅନ୍ୟରୂପ) ୧ । ପଦ୍ମାଦ୍ଦି ବାହାରିବା; ଫୁଟିବା—
1. Blowing (as of a flower).
୨ । ବହିଷ୍କରଣ, ଦୂରୀକରଣ—
2. Expelling; driving away; turning out.
୩ । ନିଃସାରଣ—3. Expulsion.
୪ । ନିର୍ବାସନ—
4 Act of exiling or banishing.

**ନିଷ୍କାଶିତ**—ସ. ବଣ. (ନିର୍+କଶ୍ ବା କସ୍ ଧାତୁ, ଣିଚ୍+କର୍ମ. ତ)—
Nishkāsita ୧ । ବହିଷ୍କୃତ, ଦୂରୀକୃତ; ତାଡ଼ିତ—1. Expelled;
( ନିଷ୍କାସିତ—ଅନ୍ୟରୂପ) driven out; turned out.
ନିଷ୍କାଶିତା } ସ୍ତ୍ରୀ
ନିଷ୍କାସିତା }
୨ । ନିର୍ବାସିତ—
2. Exiled; banished.
୩ । ନିଃସାରିତ—3. Drawn out; removed.
୪ । ସ୍ଥାପିତ—4. Established; placed.
୫ । ଅଧିକୃତ—5. Possessed.
୬ । ବିକଶିତ; ପ୍ରସ୍ଫୁଟିତ—
6 Blown; expanded.
୭ । ଭର୍ତ୍ସିତ—7. Censured.
୮ । ନିନ୍ଦିତ—8. Blamed; reviled.

**ନିଷ୍କାଶିନୀ**—ସ. ବି. ସ୍ତ୍ରୀ (ନିର୍+କଶ୍ ଧାତୁ+କର୍ତ୍ତୃ. ଇନ୍+ସ୍ତ୍ରୀ. ଈ)—
Nishkāsini ଅବାରିତା ଦାସୀ, ଯେଉଁ ଗୃହକର୍ମୀ ଅନ୍ତଃପୁରରୁ ବାହାରକୁ ଯିବା ବିଷୟରେ ସ୍ୱାଧୀନା—A female servant who freely goes outside the harem.

**ନିଷ୍କାଶୀ**—ସ. ବଣ. ପୁଂ. (ନିର୍+କଶ୍ ଧାତୁ ଣିଚ୍+କର୍ତ୍ତୃ. ଇନ୍, ୧ମା. Nishkāsi ୧ବ. )—ନିଃସାରକ, ବହିଷ୍କାରକ—Expelling.
( ନିଷ୍କାଶିନୀ—ସ୍ତ୍ରୀ)

**ନିଷ୍କିଞ୍ଚନ**—ସ. ବଣ. ପୁଂ. ( ବହୁବ୍ରୀହି; ନିର୍=ନିର୍ଗତ+କିଞ୍ଚନ=Nishkinchana ଧନମାତ୍ର )—୧ । ଦରିଦ୍ର, ଅକିଞ୍ଚନ—
( ନିଷ୍କିଞ୍ଚନା—ସ୍ତ୍ରୀ ) 1. Poor.
୨ । ଧନହୀନ—2 Penniless.
୩ । ବିଷୟବିରାଗୀ—
3. Indifferent to worldly affairs.

**ନିଷ୍କିଲ୍ବିଷ**—ସ. ବଣ. ପୁଂ. (ବହୁବ୍ରୀହି, ନିର୍+କିଲ୍ବିଷ)—କିଲ୍ବିଷଶୂନ୍ୟ;
Nishkilbisha (ନିଷ୍କିଲ୍ବିଷା—ସ୍ତ୍ରୀ) ପାପରହିତ—Sinless.

**ନିଷ୍କୁଟ**—ସ. ବି. ( ନିର୍+କୁଟ=ଗୃହ )—
Nishkuta ୧ । ଗୃହସମୀପସ୍ଥ ଉପବନ, ନଜର ବଗିଚା—
1. A grove adjoining a house; pleasure-garden attached to a mansion.
୨ । କୁଞ୍ଜ—2. Grove; arbour.
୩ । କ୍ଷେତ୍ର, ବିଲ—3. Field.
୪ । କବାଟ—4. Door.
୫ । ଅନ୍ତଃପୁର, ଅବରୋଧ, ଜହ୍ନାଟ—
5. Female apartment; seraglio; the Zenana.

**ନିଷ୍କୁମ୍ଭ**—ସ. ବଣ. ( ବହୁବ୍ରୀହି, ନିର୍+କୁମ୍ଭ )—କୁମ୍ଭଶୂନ୍ୟ—
Nishkumbha Without vessel.

**ନିଷ୍କୁଳ**—ସ. ବଣ (ନିର୍=ନାହିଁ+କୁଳ=ସପିଣ୍ଡାଦି, ବଂଶ, ବହୁବ୍ରୀହି)-
Nishkula ୧ । ନିର୍ବଂଶ, କୁଳରହିତ; ଜ୍ଞାତିହୀନ—
1. Having no family or agnates; having no family connection.
୨ । ନିରବୟବ—2 Limbless.
୩ । କୁଳଚ୍ୟୁତ—
3. Expelled from the family.
୪ । ବିଷୟତ୍ୟାଗୀ, ସଂସାରତ୍ୟାଗୀ—
4. One who has renounced the world.

**ନିଷ୍କୁଷିତ**—ସ. ବଣ. (ନିର୍+କୁଷ୍ ଧାତୁ=ନିର୍ଗତ କରିବା+କର୍ମ.ତ)—
Nishkushita ୧ । ନିଷ୍କାଶିତ, ଦୂରୀକୃତ—1. Expelled;
(ନିଷ୍କୁଶିତ—ଅନ୍ୟରୂପ) banished; driven out.
୨ । ଗତ—2 Departed.
୩ । ନିଃସାରିତ—3. Drawn out.
୪ । ଆକୃଷ୍ଟ—4. Drawn; attracted.
୫ । ନିଷ୍ତ୍ୱଚୀକୃତ, ଚମଡ଼ା ଉତାରି ଯାଇଥିବା—
5. Flayed; skinned.

୬ । ବହୁର୍ଗତ—5 Issued.

୭ । କ୍ଷତବିକ୍ଷତ—7. Wounded.

୮ । ଖଣ୍ଡିତ—8 Cut

**ନିଷ୍କୁହ**—ସଂ. ବି. (ନିର୍+କୁହ ଧାତୁ=ବିସ୍ମୟାପନ୍ନ କରିବା+କର୍ତ୍ତୃ. ଅ)—
Nishkuha ବୃକ୍ଷର କୋଟର—The hollow of a tree.

**ନିଷ୍କୂଳ**—ସଂ. ବିଣ. ( ବହୁବ୍ରୀହି, ନିର୍+କୂଳ )—
Nishkūla କୂଳଶୂନ୍ୟ, ତଟଶୂନ୍ୟ, ଅକୂଳ—
Shoreless; having no visible shore.

**ନିଷ୍କୃତ**—ସଂ. ବିଣ. ( ନିର୍+କୃତ )—
Nishkruta ୧ । ଅସମ୍ପାଦିତ, ଅକୃତ—
1. Undone; unperformed.

୨ । ଅସମାପ୍ତ—2. Unfinished.

୩ । ପରିତ୍ୟକ୍ତ—3. Neglected; abandoned.

୪ । ମୁକ୍ତ—4 Relieved; freed; liberated.

୫ । ଅବ୍ୟାହତି ପ୍ରାପ୍ତ—5. Excused.

**ନିଷ୍କୃତି**—ସଂ. ବି. ( ନିର୍+କୃତି )—
Nishkruti ୧ । ନିର୍ମୁକ୍ତି, ନିସ୍ତାର, ପରିତ୍ରାଣ—
1. Acquittance; salvation.

୨ । ଉଦ୍ଧାର, ମୁକ୍ତି, ଅବ୍ୟାହତି—
2. Liberation; deliverance; relief.

୩ । ପରିତ୍ରାଣୋପାୟ—3. Means of deliverance.

୪ । କ୍ଷମା, ମାର୍ଜନା—4 Excuse; pardon.

୫ । ମୋଚନ, ଉଦ୍ଧାର —
5. Discharge; clearance; remission.

୬ । ଅକୃତି—6. Undoing.

୭ । ଉପେକ୍ଷା—7. Neglect.

୮ । କ୍ଷତି ପୂରଣ—8 Compensation.

୯ । ପୂର୍ବାବସ୍ଥାରେ ଉପସ୍ଥାନ—9. Restitution; restoration to the status quo ante.

୧୦ । ଋଣ ପରିଶୋଧ—10. Discharge of a debt or obligation; acquittance.

୧୧ । ଉପକାରର ପ୍ରତିଶୋଧ, ପ୍ରତ୍ୟୁପକାର—
11. Return of kindness or benefit received.

୧୨ । ପ୍ରାୟଶ୍ଚିତ୍ତ—12. Expiation.

**ନିଷ୍କୃତି ଲାଭ କରିବା**—ଦେ. କ୍ରି—ପରିତ୍ରାଣ ପାଇବା; ଉଦ୍ଧାର ପାଇବା, ମୁକ୍ତିଲାଭ କରିବା—
Nishkruti lābha karibā
निस्कृतिलाभकरना To obtain liberty; to be liberated or
**निष्कृतिलाभकरना** discharged.
(ନିଷ୍କୃତିପାଇବା, ନିଷ୍କୃତିଲଭିବା—ଅନ୍ୟରୂପ)

**ନିଷ୍କୃତ୍ରିମ**—ସଂ. ବିଣ (ନିର୍+କୃତ୍ରିମ)—ଅକୃତ୍ରିମ, ପ୍ରକୃତ—
Nishkrutrima Genuine, true; not artificial

**ନିଷ୍କୃଷ୍ଟ**—ସଂ. ବିଣ ( ନିର୍+କୃଷ୍ ଧାତୁ=ନିର୍ଗତକରିବା+ତ)—
Nishkrushta ୧ । ନିଷ୍ପୀଡ଼ିତ; ମର୍ଦ୍ଦିତ—
1. Pressed; squeezed; wrung out.

୨ । ନିର୍ଗଳିତ—2. Extracted; drawn forth.

୩ । କ୍ଷରିତ—3 Distilled; dripping; oozing.

୪ । ସ୍ଥିରୀକୃତ, ନିଶ୍ଚିତ—
4. Certain; ascertained; sure.

୫ । ପ୍ରକୃତ, ଯଥାର୍ଥ—5. Real.

୬ । ସାରଭୂତ—6. Essential.

୭ । ନିଃସନ୍ଦେହ—7. Undoubted; doubtless.

୮ । ସ୍ପଷ୍ଟ, ପରିସ୍ଫୁଟ—
8. Clear; plain; patent.

୯ । ପ୍ରମାଣିତ—9. Evident; proven.

**ନିଷ୍କୃଷ୍ଟାର୍ଥ**—ସଂ. ବି (କର୍ମଧା; ନିଷ୍କୃଷ୍ଟ+ଅର୍ଥ)—ସ୍ପଷ୍ଟାର୍ଥ, ପରିସ୍ଫୁଟାର୍ଥ—
Nishkrushtārtha A clear import; an ascertained or decided meaning; the plain meaning of an obscure passage; the long and short of a matter.

**ନିଷ୍କେଶ**—ସଂ. ବିଣ ( ବହୁବ୍ରୀହି, ନିର୍=ନାହିଁ+କେଶ ଯାହାର )—
Nishkesa କେଶଶୂନ୍ୟ—Without hair; hairless.
[ନିଷ୍କେଶତା(ତ୍ୱ)—ବି] (ନିଷ୍କେଶା—ସ୍ତ୍ରୀ)

**ନିଷ୍କୋଷ**—ସଂ. ବି ( ନିର୍=ବାହାରକୁ+କୁଷ୍ ଧାତୁ=ବାହାର କରିବା +ଭାବ. ଅ )—୧ । ବହିଷ୍କରଣ—
Nishkosha
1. Expelling, drawing forth.

୨ । ବହିର୍ନିଃସାରଣ—2. Pulling out.

୩ । କୋଷମୁକ୍ତକରଣ—3. Unsheathing.

ସଂ. ବିଣ (ନିର୍+କୁଷ୍ ଧାତୁ=ବାହାରକରିବା+କର୍ମ. ଅ)—

୧ । ବହିଷ୍କୃତ—1. Driven out; expelled.

୨ । କୋଷାଗତ—
2. Drawn or pulled out from the sheath.

**ନିଷ୍କୋଷଣ**—ସଂ. ବି (ନିର୍+କୁଷ୍ ଧାତୁ=ବାହାରକରିବା+ଭାବ. ଅନ)-
Nishkoshana ନିଷ୍କୋଷ (ଦେଖ)—Nishkosha (See)

**ନିଷ୍କୋଷିତ**—ସଂ ବିଣ (ନିର୍+କୁଷ୍ ଧାତୁ=ବାହାରକରିବା+କର୍ମ.ତ)-
Nishkoshita ନିଷ୍କୋଷ (ଦେଖ)—Nishkosha (See)

**ନିଷ୍କ୍ୱାଥ**—ସଂ. ବି (ନିର୍+କ୍ୱଥ୍ ଧାତୁ=ପାକ କରି ରସ ବାହାର କରିବା+କର୍ମ. ଅ )—ସୋରୁଆ, ମାଂସାଦିର ଝୋଳ—
Nishkwātha Soup.

**ନିଷ୍କ୍ରମ**—ସଂ. ବି (ନିର୍+କ୍ରମ୍ ଧାତୁ=ଗମନକରିବା+ଭାବ. ଅ) —
Nishkrama ୧ । ବୁଦ୍ଧିବୃତ୍ତି, ଧୀଶକ୍ତି—1. Intelligence.

୨ । ନିଷ୍କ୍ରମଣ (ଦେଖ)—2. Nishkramana (See)

୩ । ନୀଚତା—3. Lowness, inferiority.

**ନିଷ୍କ୍ରମଣ**—ସଂ. ବି (ନିର୍=ବାହାରକୁ+କ୍ରମ୍ ଧାତୁ=ଗମନ କରିବା+ଭାବ. ଅନ )—୧ । ବହିର୍ଗମନ—
Nishkramana
1. Coming out; going out.

୨ । ପ୍ରସ୍ଥାନ—2. Departure.

୩ । ଶିଶୁର ଜନ୍ମହେବାର ୪ର୍ଥ ମାସରେ କର୍ତ୍ତବ୍ୟ —ଶିଶୁର ସୂତିକାଗୃହରୁ ବାହାରକୁ ଆସିବା ଉପଲକ୍ଷେ କରାଯିବା—

ସଂସ୍କାରବିଶେଷ—3. A ceremony performed on the 4th month of a child's birth on the occasion of its being taken out of the lying-in room
୪ । ନିର୍ଗମ, ବହିର୍ଗମନ ଦ୍ୱାର—4. outlet; exit.

**ନିଷ୍କ୍ରୟ**—ସ. ବି —(ନିର୍ = ନିଃଶେଷରେ + କ୍ରୀ ଧାତୁ = କିଣିବା + Nishkraya କରଣ. ଅ)—୧ । ବେତନ—1. Salary.
୨ । ମୂଲ, ମଜୁରି—2. Wages.
୩ । ଭଡ଼ା—3. Hire; rent.
୪ । ମୂଲ୍ୟ, ଦାମ—4. Value; price.
୫ । (+ଭାବ. ଅ) ମନୋଯୋଗ—5. Attention.
୬ । ସାମର୍ଥ୍ୟ—6. Strength; ability, power.
୭ । ନିଷ୍କୃତି—
7. Liberation; deliverance; acquittal.
୮ । ବିନିମୟ—8. Exchange; barter.
୯ । ବିକ୍ରୟ—9 Sale.
୧୦ । ନିର୍ଗମନ—10. Going forth.
୧୧ । ପ୍ରସ୍ଥାନ - 18. Departure.
୧୨ । ପ୍ରତ୍ୟୁପକାର—12. Return for benefits received; a kind return

**ନିଷ୍କ୍ରାନ୍ତ**—ସ. ବିଣ.—(ନିର୍+କ୍ରମ୍ ଧାତୁ+କର୍ତ୍ତୃ. ତ)—୧ । ନିର୍ଗତ—
Nishkrānta 1. Gone out; come out
୨ । ପ୍ରସ୍ଥିତ—2. Departed.
୩ । (କ୍ରମ୍ ଧାତୁ ଣିଚ୍+କର୍ମ. ତ )—ବହିଷ୍କୃତ, ବିତାଡ଼ିତ; ନିଃସାରିତ—3. Expelled; driven out; removed.

**ନିଷ୍କ୍ରାମକ**— ସ. ବିଣ. ପୁଂ— (ନିର୍+କ୍ରମ୍ ଧାତୁ+କର୍ତ୍ତୃ. ଅକ)—
Nishkrāmaka ନିଃସାରକ; ବିତାଡ଼କ—Expelling.
(ନିଷ୍କ୍ରାମିକା—ସ୍ତ୍ରୀ)

**ନିଷ୍କ୍ରିୟ**—ସ. ବିଣ. ପୁଂ—(ବହୁବ୍ରୀହି; ନିର୍ = ନାହିଁ + କ୍ରିୟା = କାର୍ଯ୍ୟ)-
Nishkriya ୧ । କ୍ରିୟାହୀନ; କର୍ମରହିତ—
(ନିଷ୍କ୍ରିୟା—ସ୍ତ୍ରୀ) 1. Without any work or action.
୨ । ନିଷ୍କର୍ମୀ; ନିକମା—2. Inactive; useless.
୩ । ଅଳସୁଆ; ଜଡ଼—3. Idle; indolent.
୪ । ନିରର୍ଥକ—4. Useless.
ସ. ବି.—ପରଂବ୍ରହ୍ମ; ଈଶ୍ୱର—God.

**ନିଷ୍କ୍ରିୟ ପ୍ରତିରୋଧ** - ସ. ବି.—(ଆଧୁନିକ ପ୍ରୟୋଗ; କର୍ମଧା; ନିଷ୍କ୍ରିୟ+
Nishkriya pratirodha ପ୍ରତିରୋଧ)—କୌଣସି କାର୍ଯ୍ୟ ନ କରିବାଦ୍ୱାରା ଆଦେଶ ପାଳନ ହେବାରେ କାର୍ଯ୍ୟତଃ ବାଧା ଦେବା—Passive resistance.

**ନିଷ୍କ୍ରିୟାତ୍ମତା** ସ. ବି. (ନିଷ୍କ୍ରିୟ+ଆତ୍ମନ୍+ଭାବାର୍ଥେ. ତା)—ଜଡ଼ତା—
Nishkriyātmata Idleness; indolence.

**ନିଷ୍ଟ**—ଗ୍ରା ବି.— (ଇଂ. ଲିଷ୍ଟ)—୧ । ନିର୍ଦ୍ଧାରିତ ଦୃଢ଼ ନିୟମ—
Nisht 1. Fixed rule
निष्ट लिष्ट **लिष्ट** ୨ । ନିୟମାଧୀନତା—
(ନିଷ୍ଟି—ଅନ୍ୟରୂପ) 2 Regularity
୩ । ତାଲିକା —3 A list or schedule.
୪ । ନିର୍ଦ୍ଧାରିତ ସମୟ—4 Fixed time.
୫ । ( କଚେରିଆ ) ଶୁଣାଣି ତାରିଖରେ ଅଦାଲତ ଯେଉଁ ଯେଉଁ ମକଦମାମାନ ଶୁଣିବେ ତାହାର ତାଲିକା—
5. Daily cause-list of cases to be heard by a court.

**ନିଷ୍ଠା** —ଗ୍ରା ବି. ( ସ ନିଷ୍ଠା )—ନିଷ୍ଠା ( ଦେଖ )
Nishta Nishṭha ( See )

**ନିଷ୍ଟା ନାହିଁ କରିବା**—ଗ୍ରା. କ୍ରି—ନିଷ୍ଠା ନାହିଁ କରିବା ( ଦେଖ )—
Nishta nāhiñ karibā Nishtha nāhiñ karibā (See).

**ନିଷ୍ଟାପର**—ଗ୍ରା. ବିଣ. ( ସ. ନିଷ୍ଠାପର )—ନିଷ୍ଠାପର ( ଦେଖ )—
Nishtāpara Nishthāpara ( See )

**ନିଷ୍ଟି ଉଠିବା**— ଦେ. ବି. ( କଚେରିଆ, ଇଂ. List. )
Nishti uthibā ୧ । କୌଣସି ତାଲିକାରେ କୌଣସି ବିଷୟ
लिष्टे उठा ପ୍ରକାଶିତ ହେବା—1. Appearing in a list.
୨ । ( କଚେରିଆ ) କୌଣସି ତାରିଖରେ ଶୁଣାଣି ହେବା ମକଦମାମାନ ତାଲିକାରେ ଉଠିବା—2. The appearing in the cause-list of cases to be heard by a court on a certain date.

**ନିଷ୍ଟି କଣ୍ଟା**— ଦେ. ବି. ( ସ. ମେନ୍ଧିକା, ମେନ୍ଦୀ )—କଣ୍ଟା ମେହେନ୍ଦି—
Nishti kanta Henna; Lawssonia Alba.
मेन्दि [ ଦ୍ର—ଏହା ଧାତକ୍ୟାଦିବର୍ଗର କଣ୍ଟାଳ କ୍ଷୁପ, ବଗିଚାରେ ବାଡ଼
ଉ. ମେହେନ୍ଦି ଫା. ହେନା ଦିଆଯାଏ । ]

**ନିଷ୍ଟି କରିବା**—ଦେ. କ୍ରି—୧ । ଦୃଢ଼ ନିୟମ କରିବା—
Nishti karibā 1. To make a hard and fast rule.
लिष्टि करवा ୨ । ତାଲିକା ପ୍ରସ୍ତୁତ କରିବା—
**लिष्ट करना** 2 To prepare a list.

**ନିଷ୍ଟି ମୁତାବକ୍**—ବୈଦେ. କ୍ରି. ବିଣ (ଇଂ. ଓ ଫା.)—୧ । ଧାରା ଅନୁସାରେ;
Nishti mutābak ଠିକ ସମୟ ଅନୁସାରେ—1 Regularly.
लिष्टे मोताबेक ୨ । ନିୟମ ଅନୁସାରେ—
**लिष्ट मोताबक** 2. According to rules.
୩ । ତାଲିକା ଅନୁସାରେ—3. As per list.

**ନିଷ୍ଟ୍ୟ**—ସ. ବି—୧ । ଗୁଣ୍ଡାଳ ( ହି. ଶବ୍ଦସାଗର )—
Nishtya 1. The sweeper caste.
୨ । ବେଦରେ ଉଲ୍ଲେଖିତ ମ୍ଳେଚ୍ଛଜାତିବିଶେଷ ( ହି. ଶ. )—
2. A class of Mlechchhas mentioned in Bedas.

**ନିଷ୍ଠ** - ସ. ବିଣ. ପୁଂ ( ନି = ନିଶ୍ଚୟରୂପେ+ସ୍ଥା ଧାତୁ+କର୍ତ୍ତୃ. ଅ )—
Nishtha ୧ । ସ୍ଥିତ—1. Established, fixed.
୨ । ଅବସ୍ଥାପିତ—2 Situated; placed.
୩ । ବିଶ୍ୱସ୍ତ—3. Trusted; trusty.

୪ । ଆସକ୍ତ, ପରାୟଣ, ଅଭିନିବିଷ୍ଟ, ନିଷ୍ଠାବାନ୍—
4. Devoted to; bent on; attached to.
୫ । ତତ୍ପର—5. Prompt; diligent; sedulous.
୬ । ଧାର୍ମିକ—6. Religious.
୭ । ନ୍ୟାୟପରାୟଣ—7. Upright.
୮ । ମଗ୍ନ—8. Sunk; immersed.
[ ଦ୍ର—ଏହି ଶବ୍ଦ ସମାସରେ ଅନ୍ୟ ଶବ୍ଦ ପରେ ଯୁକ୍ତ ହୋଇ ବ୍ୟବହୃତ ହୁଏ । ନ୍ୟାୟ, କର୍ମ, ଧର୍ମ ଆଦି ଶବ୍ଦ ପରେ ତତ୍ତଦ୍ ବିଷୟ ପ୍ରତି ନିଷ୍ଠାବାନ୍ ବା ଶ୍ରଦ୍ଧାବାନ୍ ଏହି ଅର୍ଥରେ ପୁଂଲିଙ୍ଗରେ ଏହି ଶବ୍ଦମାନଙ୍କ ସଙ୍ଗେ ଯୁକ୍ତ ହୁଏ । ଯଥା—କର୍ମନିଷ୍ଠ, ନ୍ୟାୟନିଷ୍ଠ, ଧର୍ମନିଷ୍ଠ, ଆଗ୍ରହନିଷ୍ଠ, ସ୍ୱାମିନିଷ୍ଠ, କର୍ତ୍ତବ୍ୟନିଷ୍ଠ । ]

**ନିଷ୍ଠା**—ସ. ବି. ସ୍ତ୍ରୀ. (ନି=ନିଶ୍ଚୟ ରୂପେ+ସ୍ଥା ଧାତୁ=ରହିବା+ଭାବ. ଅ Nishtha +ସ୍ତ୍ରୀ ଆ)—୧ । ନିଶ୍ଚୟ—1. Decision.
୨ । ନାଶ, ଧ୍ୱଂସ—2. Destruction; annihilation; ruin.
୩ । ଅନ୍ତ, ଶେଷ, ସମାପ୍ତି—3. Completion, finish; termination, end.
୪ । ଯାଚଞ୍ଚା—4. Begging.
୫ । ଧର୍ମାଦିରେ ଶ୍ରଦ୍ଧା, ଭକ୍ତି—
5. Religious devotion.
୬ । ଦୃଢଜ୍ଞାନ—
6 Firm knowledge; conviction.
୭ । ଏକାଗ୍ରତା—7. Constancy; devotedness to a pursuit.
୮ । ଅଟଳ ବିଶ୍ୱାସ, ପ୍ରତ୍ୟୟ—8. Firm belief; reliance; faith; confidence.
୯ । ପୂର୍ଣ୍ଣ ଜ୍ଞାନ—9. Perfect knowledge.
୧୦ । ଧର୍ମ ଜ୍ଞାନ—10. Firm religious belief; stability of faith.
୧୧ । ଦୃଢ଼ତା—11 Steadiness; firmness.
୧୨ । ଏକାନ୍ତ ଭକ୍ତି, ଦୃଢ଼ ଭକ୍ତି—12. Devotion.
୧୩ । ଏକାନ୍ତ ଶ୍ରଦ୍ଧା—
13 Firm attachment or love.
୧୪ । ନିଶ୍ଚୟ—14. Certainty.
ପ୍ରୀତ ହୋଇ ଯେ ନିଷ୍ଠା ସେ ଫଳ ।
ଉଚ୍ଚ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।
୧୫ । ନିଶ୍ଚିତ ସ୍ଥିତି—15 Stability.
୧୬ । ଉତ୍କର୍ଷ—16 Excellence.
୧୭ । ପ୍ରତିଷ୍ଠା—17. Establishment.
୧୮ । ବ୍ୟବସ୍ଥା, ଆଇନ୍; ବିଧି; ନିୟମ—
18 Statute; law; rule.
୧୯ । ବ୍ରତାଙ୍ଗ କ୍ଳେଶ—19. Penance; suffering undergone for a religious vow.
୨୦ । ମନୋଯୋଗ—2. Attention; intentness.
୨୧ । ନିର୍ବହଣ, ନାଟ୍ୟୋକ୍ତିର ପ୍ରସ୍ତୁତ କଥା ବା ସମାପ୍ତି—
21. The catastrophe of a drama.
୨୨ । (ବ୍ୟାକରଣ) କ୍ତ (ତ) ଓ କ୍ତବତୁ (ତବତ୍) ପ୍ରତ୍ୟୟ—
22 ( Grammar ) The sufixes 'kta and 'ktabatu'.
୨୩ । ସ୍ଥିତି, ଅବସ୍ଥା, (ହି. ଶ.)—
23. Condition; state of being.
୨୪ । ସିଦ୍ଧାବସ୍ଥାର ଅନ୍ତିମ ସ୍ଥିତି, ଜ୍ଞାନର ଯେଉଁ ଚରମ ଅବସ୍ଥାର ଆତ୍ମା ଓ ବ୍ରହ୍ମର ଏକତା ହୁଏ (ହି ଶବ୍ଦସାଗର)—
24. The final state attained in spiritual exercise when the soul is immersed in God.
୨୫ । ନିର୍ବାହ (ହି. ଶ.)—25 Accomplishment; management; carrying on or out.
ଦେ. କ୍ରି ବିଣ – (ସ ନିଷ୍ଠା=ସମାପ୍ତି, ନିଶ୍ଚୟ)—୧ । ନିଶ୍ଚିତଭାବରେ—1. Certainly.
୨ । ପରିଶେଷରେ—2 Finally; once for all.
(ଯଥା—ସେ ମତେ ୮ ଦିନ ଦେଲି ଦମ୍ଦିଲାସା ଦେଇ ଦେଇ ଆଜି ନିଷ୍ଠା ନାହିଁ କରି ଦେଲା ।)
୩ । ପ୍ରକୃତରେ, ଠିକ୍, ଯଥାର୍ଥରେ—
3 Surely, rightly; truly
ଉତ୍ତର କରେ କେ ହୁଏ ନିଷ୍ଠା ।
ଉଚ୍ଚ କୋଟିବ୍ରହ୍ମାଣ୍ଡସୁନ୍ଦରୀ ।
ଦେ. ବିଣ.—୧ । ଦୃଢ଼, ଅଟଳ—1. Firm.
୨ । ନିଶ୍ଚିତ—2. Certain; final.
(ଯଥା—ମୁଁ ଗୁରୁବାରଦିନେ ମହାଜନକୁ ଟଙ୍କା ପରିଶୋଧ କରିବି ବୋଲି ନିଷ୍ଠା ଜବାବ୍ ଦେଇଛି ।)
ଦେ ବି.—ଧର୍ମ ବିଧିମାନ ପାଳନ କରିବାରେ ଦୃଢ଼ତା—
Strict observance of religious ceremonials and forms.

**ନିଷ୍ଠାନ**—ସ. ବି.—(ନି+ସ୍ଥା ଧାତୁ+ଅଧି ଅନ)—୧ । ବ୍ୟଞ୍ଜନର Nishṭhāna ଉପକରଣ, ଛୁଅଣର ମସଲା — (ନିଷ୍ଠାନକ—ଅନ୍ୟରୂପ) 1. Condiments.
୨ । ଚଟ୍ଣୀ—2. Sauce; pickle.
୩ । ବ୍ୟଞ୍ଜନ, ତରକାରୀ; ଛୁଅଣ—3 Curry.
୪ । (ନି+ସ୍ଥା ଧାତୁ+ଭାବ. ଅନ)—ମୃତ୍ୟୁ—
4 Death; dissolution

**ନିଷ୍ଠା ନାହିଁ କରିବା**—ଦେ. କ୍ରି.—ନାହିଁ ସୂଚ୍ୟ ନାହିଁ କରିବା, ନିଶ୍ଚିତ-Nishṭhā nāhin̐ karibā ଭାବରେ ମନା କରି ଦେବା—
ନିଶ୍চିত বাৰণ কৰা To finally or repeatedly
আখের মনা করদেনা refuse or deny a thing.

**ନିଷ୍ଠା ନିଷ୍ଠି** - ଦେ. ଅ.—ସାବ୍ୟସ୍ତ, ନିଷ୍ଠା—
Nishṭhā nishṭhi Settled; finally.
ঠিক ঠাক (ଯଥା—ଏ ଜିନିଷର ଦାମ ନିଷ୍ଠା ନିଷ୍ଠି ପଦେ କହି ଦେ ।)
ठीकठाक

**ନିଷ୍ଠାପର**—ସଂ. ବିଣ. ପୁଂ—(ବହୁବ୍ରୀହି; ନିଷ୍ଠା+ପର)—
Nishthāpara ୧ । ଐକାନ୍ତିକ—1. Firmly devoted to a pursuit.
( ନିଷ୍ଠାପରା—ସ୍ତ୍ରୀ,ନିଷ୍ଠାପରତା—ବି )
୨ । ଗୋଁଡ଼ ଧାର୍ମିକ—2 Orthodox; rigid
୩ । ଯେ ସମସ୍ତ ଧର୍ମବିଧି ପାଳନ କରେ—3. Scrupulous in observing religious forms and practices; fulfilling all religious duties.

**ନିଷ୍ଠାବାନ୍**—ସଂ ବିଣ. ପୁଂ—(ନିଷ୍ଠା+ଅସ୍ତି ଅର୍ଥରେ ବତ୍)—
Nishṭhābān ନିଷ୍ଠାପର (ଦେଖ)—Nishṭhāpara (See)
(ନିଷ୍ଠାବତୀ—ସ୍ତ୍ରୀ, ନିଷ୍ଠାବତ୍ତା—ବି )

**ନିଷ୍ଠିତ**—ସଂ. ବିଣ. ( ନି+ସ୍ଥା ଧାତୁ+କର୍ମ. ତ )—
Nishṭhita ୧ । ସ୍ଥାପିତ, ପ୍ରତିଷ୍ଠିତ—1. Established.
୨ । ନିଷ୍ଠାପର—2. Religiously devoted to a matter.
୩ । ନିଶ୍ଚିତ—3. Certain.
୪ । ଦୃଢ଼ ଭକ୍ତିଯୁକ୍ତ—
4. Deeply and religiously devoted
୫ । ନିବିଷ୍ଟ, ଅନୁରକ୍ତ—5 Devoted; attached.
୬ । ଅବଗାହିତ – 6 Immersed; plunged into.

**ନିଷ୍ଠୀବ**—ସଂ. ବି. ( ନି+ଷ୍ଠୀବ୍ ଧାତୁ=ଛେପ ପକାଇବା+କର୍ମ. ଅ )—
Nishṭhiba ୧ । ( +କର୍ମ. ଅ ) ଛେପ, ପାଟିର ନାଳ ଆଦି;
(ନିଷ୍ଠୀବନ— ଅନ୍ୟରୂପ) ଖଙ୍କାର, ମୁଖ କଣ୍ଠ ନିର୍ଗତ ଶ୍ଳେଷ୍ମାଦି, ଥୁକ—
1. Spitted phlegm; spit; saliva.
୨ । (+ଭାବ. ଅ) ଛେପ ପକାଇବା, ଥୁକିବା —
2. Act of spitting.
୩ । ଉଦ୍ଗିରଣ; ବମନ—3. Vomiting.
୪ । (+କରଣ. ଅ) ଯେଉଁ ଔଷଧ ଦ୍ୱାରା ପାଟିରୁ ଖୁବ ଛେପ ଓ ଖଙ୍କାର ବାହାରେ ( ଦ୍ର. ଶବ୍ଦସାଗର )—
4. Expectorative medicine.

**ନିଷ୍ଠୀବନ ତ୍ୟାଗ**—ସଂ. ବି. ( ୬ଷ୍ଠୀ ତତ୍, ନିଷ୍ଠୀବନ+ତ୍ୟାଗ )—
Nishṭhibana tyāga ଛେପ ପକାଇବା, ଥୁକିବା—
Act of spitting; salivating

**ନିଷ୍ଠୀବନ ପାତ୍ର**—ସଂ. ବି. ( ନିଷ୍ଠୀବନ+ପାତ୍ର )—ପିକଦାନୀ—
Nishṭhibana pātra Spitting vessel; spittoon.
(ନିଷ୍ଠୀବନ ସରାପ - ଅନ୍ୟରୂପ)

**ନିଷ୍ଠୁର**—ସଂ ବିଣ. ( ନି+ସ୍ଥା ଧାତୁ+କର୍ତ୍ତୃ. ଉର )—
Nishṭhura ୧ । କ୍ରୂର—1. Cruel.
(ନିଷ୍ଠୁରା—ସ୍ତ୍ରୀ) ୨ । ନୃଶଂସ—2. Inhuman.
(ନିଷ୍ଠୁରତା, ନିଷ୍ଠୁରତ୍ୱ, ନୈଷ୍ଠୁର୍ଯ୍ୟ – ବି) ୩ । ନିର୍ଦ୍ଦୟ; ନିଦାରୁଣ—
3. Unfeeling; merciless; hard hearted; ruthless.
୪ । କଠିନ; ପରୁଷ; କର୍କଶ—3. Harsh; hard
୫ । କଠୋର—5. Rough; severe; coarse.
୬ । ହୃଦୟବିଦାରକ—6. Heart-rending.
୭ । ବର୍ବର—7. Barbarous; rude.
ସଂ. ବି. ( ନି+ସ୍ଥା ଧାତୁ+ଭାବ. ଉର )—
୧ । କଠୋର ବଚନ—1. Harsh words; heart-rending or cruel words.
ଜୀବନ ହରିଲୁ ଅସ୍ତୁର
ଏବେ ତ କହିଲୁ ନିଷ୍ଠୁର । ଜଗନ୍ନାଥ. ଭାଗବତ ।
୨ । ଅଶ୍ଳୀଳ ବାକ୍ୟ—
2 Indecent words; obscene language.

**ନିଷ୍ଠୁରତା**—ସଂ. ବି. ( ନିଷ୍ଠୁର+ଭାବାର୍ଥେ. ତା )—
Nishthuratā ୧ । କ୍ରୂରତା—1. Cruelty; hard-heartedness.
(ନିଷ୍ଠୁରତ୍ୱ—ଅନ୍ୟରୂପ)
୨ । କର୍କଶତା—2. Harshness.
୩ । ନିଦାରୁଣତା—3. Severity.
୪ । ନିର୍ଦ୍ଦୟତା—4. Inhumanity.
୫ । ବର୍ବରତା—5. Barbarity

**ନିଷ୍ଠେବ(ବା)**—ସଂ. ବି. ( ନି+ଷ୍ଠୀବ୍ ଧାତୁ=ଛେପ ପକାଇବା+କର୍ମ ଓ ଭାବ. ଅ )—ନିଷ୍ଠୀବ ( ଦେଖ )
Nishṭheba (bā) Nishṭhiba ( See )
(ନିଷ୍ଠେବନ, ନିଷ୍ଠେବ, ନିଷ୍ଠେବନ—ଅନ୍ୟରୂପ)

**ନିଷ୍ଠ୍ୟୂତ**—ସଂ. ବି. ( ନି+ଷ୍ଠୀବ୍ ଧାତୁ=ଛେପ ପକାଇବା+କର୍ମ. ତ )—
Nishṭhyūta ୧ । ପ୍ରେରିତ—1. Sent.
୨ । ନିକ୍ଷିପ୍ତ—2 Cast out.
୩ । ଉଦ୍ଗୀର୍ଣ୍ଣ—3 Vomitted.
୪ । ଛେପ ପକା ଯାଇଥିବା, ପାଟିରୁ କଢ଼ା ଯାଇଥିବା, ପାଟି କଢ଼ା—4 Spit out
ସଂ. ବି ( ନି+ଷ୍ଠୀବ୍ ଧାତୁ+ଭାବ. ତ )—ଛେପ ପକାଇବା—
Act of spitting out.

**ନିଷ୍ଠ୍ୟୂତି**—ସଂ. ବି. ( ନି+ଷ୍ଠୀବ୍ ଧାତୁ+ଭାବ. ତି )—
Nishṭhyūti ନିଷ୍ଠ୍ୟୂତ ( ଦେଖ )—Nishṭhyūta (See)

**ନିଷ୍ଣ**—ସଂ. ବିଣ. ପୁଂ. ( ନି+ସ୍ନା ଧାତୁ=ସ୍ନାନ କରିବା+କର୍ତ୍ତୃ. ଅ )—
Nishṇa ୧ । ନିପୁଣ, କୁଶଳ, ପଟୁ—
(ନିଷ୍ଣା—ସ୍ତ୍ରୀ) 1 Expert; clever; skilful.
(ନିଷ୍ଣତା—ବି) ୨ । ବିଜ୍ଞ; ବିଚକ୍ଷଣ—2. Learned; wise.
୩ । ପାରଙ୍ଗମ, ପ୍ରବୀଣ—3. Experienced; deeply versed in; conversant with.
୪ । ପ୍ରଧାନ—4. Eminent

**ନିଷ୍ଣାତ**—ସଂ ବିଣ. ପୁଂ. (ନି+ସ୍ନା ଧାତୁ=ସ୍ନାନ କରିବା+କର୍ତ୍ତୃ. ତ )—
Nishṇāta ନିଷ୍ଣ ( ଦେଖ )—Nishṇa ( See )
(ନିଷ୍ଣାତା—ସ୍ତ୍ରୀ)

**ନିଷ୍ପକ୍ୱ**—ସଂ. ବିଣ. ( ନିର୍=ଅତିଶୟ+ପକ୍ୱ )—
Nishpakwa ୧ । ସୁପକ୍ୱ, ଅତି ପକ୍ୱ—1. Very ripe.
୨ । ଉତ୍ତମ ରୂପେ ପାକ ହୋଇଥିବା, ସୁସିଦ୍ଧ—
2. Well boiled; well cooked.

୩ । କ୍ୱଥିତ, ଜଳସିଦ୍ଧ—3 Decocted.
୪ । ( ନିର୍—ନୁହେଁ+ପକ୍ୱ )—ଅପକ୍ୱ; କଞ୍ଚା—
4 Unripe; raw.

**ନିଷ୍ପକ୍ଷ**—ସଂ ବିଣ ପୁଂ—ପକ୍ଷପାତରହିତ, ଅପକ୍ଷପାତୀ—
Nishpaksha Impartial
( ନିଷ୍ପକ୍ଷା—ସ୍ତ୍ରୀ, ନିଷ୍ପକ୍ଷତା—ବି )

**ନିଷ୍ପକ୍ଷପାତ**—ସଂ ବି. ( ନିର୍+ପକ୍ଷପାତ )—
Nishpakshapāta ଅପକ୍ଷପାତ—Impartiality
ସଂ ବିଣ—ନିଷ୍ପକ୍ଷ ( ଦେଖ )—Nishpaksha (See).

**ନିଷ୍ପକ୍ଷପାତିତା**—ସଂ ବି ( ବହୁବ୍ରୀହି, ନିର୍+ପକ୍ଷପାତିତା )—
Nishpakshapātitā ଅପକ୍ଷପାତ—Impartiality.
(ନିଷ୍ପକ୍ଷପାତିତ୍ୱ—ଅନ୍ୟରୂପ)

**ନିଷ୍ପକ୍ଷପାତୀ**—ଦେ ବିଣ ପୁଂ. ( ସଂ ନିଷ୍ପକ୍ଷପାତ )—
Nishpakshapāti ଅପକ୍ଷପାତୀ, ଯେ ପକ୍ଷପାତୀ ନୁହେଁ—
(ନିଷ୍ପକ୍ଷପାତିନୀ—ସ୍ତ୍ରୀ) Impartial

**ନିଷ୍ପଙ୍କ**—ସଂ ବିଣ ( ବହୁବ୍ରୀହି, ନିର୍=ନାହିଁ+ପଙ୍କ )—
Nishpanka ୧ । ପଙ୍କରହିତ—1 Free from filth or mud.
୨ । ବିମଳ, ନିର୍ମଳ—2 Clean
୩ । ପବିତ୍ର—3. Pure

**ନିଷ୍ପଟ୍**- ପ୍ରାଦେ. ( ସମ୍ବଲପୁର ) ବିଣ—
Nishpat ୧ । ନିପଟ—1. Entire.
୨ । ଅତ୍ୟନ୍ତ—2. Very much.
୩ । ଗାଢ଼ତମ—3 Thickest.

**ନିଷ୍ପତନ**—ସଂ. ବି ( ନିର୍=ବାହାରକୁ+ପତ୍ ଧାତୁ=ପଡ଼ିବା+ଭାବ. ଅନ )—ନିର୍ଗମନ, ନିଃସରଣ; ନିଷ୍କ୍ରମଣ—
Nishpatana Issuing forth.

**ନିଷ୍ପତି**—ଗ୍ରା. ବି (ସଂ. ନିଷ୍ପତ୍ତି) - ନିଷ୍ପତ୍ତି (ଦେଖ)
Nishpati Nishpatti (See)

**ନିଷ୍ପତିଷ୍ଣୁ**—ସଂ. ବିଣ (ନିର୍+ପତ୍ ଧାତୁ+କର୍ତ୍ତୃ. ଇଷ୍ଣୁ)—
Nishpatishnu ପତନଶୀଳ, ଯାହା ନିପତିତ ହେଉଅଛି—
Falling down; issuing forth.

**ନିଷ୍ପତ୍ତି**—ସଂ. ବି ( ନିର୍+ପଦ୍ ଧାତୁ=ଗମନ କରିବା+ଭାବ. ତି )—
Nishpatti ୧ । ସମାପ୍ତି—1 Completion, accomplishment.
୨ । ସିଦ୍ଧି—2. Success.
୩ । ସିଦ୍ଧାନ୍ତ, ମୀମାଂସା, ଫଏସଲା—
3 Final adjudication; settlement; decision; decree; award
(ନିଷ୍ପନ୍ନ- ବିଣ) ୪ । ଅବଧାରଣ, ନିଷ୍କର୍ଷ—
4. Ascertainment; determination.
୫ । ନିର୍ବାହ—
5 Finishing; carrying on; management.
୬ । ଉତ୍ପତ୍ତି—6 Birth.
୭ । ଆଦେଶ—
7. Injunction; precept; ordinance; order.
୮ । ପୂରଣ—8. Filling up
୯ । ନିର୍ଗଲନ; ନିର୍ଗମନ—
9 Going out; issuing forth.
୧୦ । ପୁରସ୍କାର—10. Reward.
୧୧ । ଅନୁପାତ—11. Ratio.
୧୨ । ଚୁକ୍ତି—12. Agreement; contract.

**ନିଷ୍ପଦ**—ସଂ. ବିଣ (ବହୁବ୍ରୀହି, ନିର୍+ପଦ)—ପଦଶୂନ୍ୟ—
Nishpada Having no legs.
(ନିଷ୍ପଦା- ସ୍ତ୍ରୀ, ନିଷ୍ପଦତା—ବି)

**ନିଷ୍ପନ୍ଦ**—ସଂ. ବିଣ (ବହୁବ୍ରୀହି, ନିର୍=ନାହିଁ+ସ୍ପନ୍ଦ=କମ୍ପ )—
Nishpanda ସ୍ପନ୍ଦ ବା କମ୍ପରହିତ, ସ୍ଥିର, ସ୍ତବ୍ଧ—
(ନିଷ୍ପନ୍ଦତା—ବି) (ନିଷ୍ପନ୍ଦା—ସ୍ତ୍ରୀ) Motionless; still.

**ନିଷ୍ପନ୍ନ**—ସଂ. ବିଣ (ନିର୍+ପଦ୍ ଧାତୁ=ଯିବା+କର୍ମ. ତ)—
Nishpanna ୧ । ସମ୍ପାଦିତ, ସମ୍ପନ୍ନ; ସିଦ୍ଧ—
1. Accomplished; brought about; effected.
୨ । ସମାପ୍ତ—2. Finished; ended.
୩ । ସମ୍ପୂର୍ଣ୍ଣ—3. Completed.
୪ । ନିବୃତ୍ତ—4. Concluded.
୫ । ଅବଧାରିତ, ନିଶ୍ଚିତ—
5. Ascertained.
୬ । ପୁରସ୍କୃତ—6. Rewarded.
୭ । ମୀମାଂସିତ—
7. Decided; settled; awarded; adjudicated.
୮ । ଆଦିଷ୍ଟ—8. Ordered; decreed.
୯ । ଉତ୍ପନ୍ନ—9. Produced; derived.
୧୦ । ଅଚଳ—10. Motionless.
୧୧ । ରଚିତ—11. Formed; composed.

**ନିଷ୍ପରାକ୍ରମ**—ସଂ. ବିଣ. ପୁଂ (ବହୁବ୍ରୀହି, ନିର୍+ପରାକ୍ରମ )—
Nishparākrama ୧ । ପରାକ୍ରମଶୂନ୍ୟ, ଦୁର୍ବଳ—
( ନିଷ୍ପରାକ୍ରମତା—ବି ) 1. Weak; feeble
୨ । ଅକ୍ଷମ—2 Unfit
(ନିଷ୍ପରାକ୍ରମା —ସ୍ତ୍ରୀ) ୩ । କୃଶ—3 Lean.

**ନିଷ୍ପରିଗ୍ରହ**—ସଂ. ବି. ପୁଂ. (ବହୁବ୍ରୀହି; ନିର୍=ନାହିଁ+ପରିଗ୍ରହ=
Nishparigraha ଅଧୀନବ୍ୟକ୍ତି, ସ୍ତ୍ରୀ)—୧ । ପରିବ୍ରାଜକ—
1. A wandering mendicant.
୨ । ପରମହଂସ—2 An ascetic.
୩ । ବାନପ୍ରସ୍ଥ—
3. Hermit; a householder who has retired from the world.
୪ । ଯତି, ମୁନି—4. Sage.

୫ । ସନ୍ନ୍ୟାସୀ—
5 One who has renounced the world.
ସଂ. ବିଣ ପୁଂ—୧ । ପତ୍ନୀଶୂନ୍ୟ, ନଷ୍ଟପତ୍ନୀକ—
1. Widower.
୨ । ଅବିବାହିତ, ଅକୃତଦାର—
2 Bachelor; unmarried.
୩ । ନିର୍ଲିପ୍ତ—3. Indifferent; unconcerned.
୪ । ମୁକ୍ତସଙ୍ଗ, ବୈରାଗୀ, ବିଷୟାସକ୍ତିଶୂନ୍ୟ—
4. Having renounced the world.
୫ । ସମ୍ପତ୍ତିହୀନ—5. Without property.
୬ । ଯାହାର କେହି ପୋଷ୍ୟ ବା ପରିବାର ନାହିଁ—
6. Having no family or dependent.

**ନିଷ୍ପଲକ**—ସଂ. ବି (ନିର୍+ପଲକ)—୧ । ଏକଦୃଷ୍ଟି—
Nishpalaka 1 Fixed gaze.
ସଂ ବିଣ ( ବହୁବ୍ରୀହି; ନିର୍+ପଲକ )—
୧ । ନିର୍ନିମେଷ; ପଲକଶୂନ୍ୟ ( ଦୃଷ୍ଟି )—
1. Steady or fixed (gaze); winkless.
୨ । ଅବିରତ—2. Incessant;
uninterrupted.

**ନିଷ୍ପାଦ**—ଦେ. ବିଣ (ନିର୍+ପାଦ, ବହୁବ୍ରୀହି)—ପାଦବିହୀନ—
Nishpāda Having no legs, without legs.
କେ ଏକ ହସ୍ତ କେନ ପାଦ
କହୁ ଚଲାଇ କେ ନିଷ୍ପାଦ । ଜଗନ୍ନାଥ, ଭାଗବତ ।

**ନିଷ୍ପାଦକ**—ସଂ. ବିଣ ପୁଂ (ନିର୍+ପଦ୍ ଧାତୁ ଣିଚ=ପାଦି ଧାତୁ+କର୍ତ୍ତୃ. ଅକ)—୧ । ନିର୍ବାହକ—1 Accomplishing
Nishpādaka
(ନିଷ୍ପାଦିକା—ସ୍ତ୍ରୀ) managing.
୨ । ନିଷ୍ପତ୍ତିକାରକ—2. Deciding, determining.
୩ । ସମ୍ପାଦନକାରୀ—3. Completing.
୪ । ଆଦେଶକାରୀ—4. Ordering; directing.

**ନିଷ୍ପାଦନ**—ସଂ.ବି (ନିର୍+ପାଦି ଧାତୁ=ଗମନ କରାଇବା+ଭାବ. ଅନ)—
Nishpādana ୧ । ନିଷ୍ପତ୍ତିକରଣ—1. Settlement; deciding; award of a decision or decree.
୨ । ସାଧନ; ସମ୍ପାଦନ, ନିର୍ବାହ—2. Accomplishing; management.
୩ । ସମାପନ—3. Finishing; completing.
୪ । ପ୍ରତିଜ୍ଞା ପୂରଣ—4. Fulfilling of a promise or vow.
୫ । ସୁବନ୍ଦୋବସ୍ତ କରିବା—
5. Rugulating of a work.

**ନିଷ୍ପାଦନୀୟ**—ସଂ. ବିଣ ( ନିର୍+ପାଦି ଧାତୁ+କର୍ମ. ଅନୀୟ )—ନିଷ୍ପନ୍ନ
Nishpādaniya ହେବାର ଯୋଗ୍ୟ; ସାଧନଯୋଗ୍ୟ—Accomplishable; capable of being accomplished or brought about; to be decided or brought to a completion.

**ନିଷ୍ପାଦିତ**—ସଂ. ବିଣ.—(ନିର୍+ପାଦି ଧାତୁ+କର୍ମ. ତ)—୧ । ସମ୍ପାଦିତ,
Nishpādita ନିର୍ବାହିତ—1. Accomplished
୨ । ସମାପ୍ତ—2. Brought to completion; finished; concluded.

**ନିଷ୍ପାଦ୍ୟ**—ସଂ. ବିଣ (ନିର୍+ପାଦି ଧାତୁ+କର୍ମ ଯ)—
Nishpādya ନିଷ୍ପାଦନୀୟ ( ଦେଖ )
Nishpādaniya (See).

**ନିଷ୍ପାଦ୍ୟମାନ**—ସଂ. ବିଣ. (ନିର୍+ପଦ୍ ଧାତୁ ଣିଚ୍+କର୍ମ. ମାନ)—
Nishpādyamāna ଯାହା ସମ୍ପାଦିତ ହେଉଅଛି—Being accomplished.

**ନିଷ୍ପାନ**—ସଂ ବି ( ନିର୍=ନିଃଶେଷରେ+ପାନ )—ନିଃଶେଷରେ
Nishpāna ପାନ, ପାତ୍ରରେ ଅବଶେଷ ନ ରଖି ପିଇବା—
Drinking to the last drop.

**ନିଷ୍ପାପ**—ସଂ. ବିଣ. ପୁଂ (ବହୁବ୍ରୀହି, ନିର୍+ପାପ)—୧ । ପାପଶୂନ୍ୟ—
Nishpāpa 1. Sinless; innocent; guiltless.
(ନିଷ୍ପାପା—ସ୍ତ୍ରୀ, ନିଷ୍ପାପତା—ବି) ୨ । ପବିତ୍ର—2. Pure.

**ନିଷ୍ପାପୀ**—ଦେ. ବିଣ (ସଂ. ନିଷ୍ପାପ)—ନିଷ୍ପାପ—
Nishpāpi Sinless; pure
ସବୁ ବିକି ପାଇବା ହୋଇଣ ନିଷ୍ପାପୀ—କୃଷ୍ଣସିଂହ. ମହାଭାରତ, ବନ ।

**ନିଷ୍ପାବ**—ସଂ. ବି ନିର୍+ପୂ ଧାତୁ=ଧୂଷ ଉଡ଼ାଇବା, ପବିତ୍ର କରିବା+ଭାବ
Nishpāba ଅ )—୧ । ଶସ୍ୟାଦି ନିତୁଷୀକରଣ, ଶସ୍ୟରୁ ଧୂଷ
ସଂ. ନାମାନ୍ତର:—ରାଜଶିମ୍ବୀ, ପରିଷ୍କାର କରିବା, ପାଛୁଡ଼ିବା—
ବଲ୍ଲକ, ନିଷ୍ପାବକ, 1. Winnowing or clearing
ଶ୍ୱେତଶିମ୍ବିକ the chaff from the corn.
ସାଧାଶୀମ ୨ । ରାଜଶିମ୍ବୀ; ଧଳାଶିମ୍ବ—
ମେଟରାଷ୍ଟ 2. White bean, Phaseolus
ଡେ. ଆନପଟେଟ୍ଟ Radiatus (a sort of pulse).
[ ଦ୍ର—ଏହା ଏକପ୍ରକାର ଲତା ଓ ଲତାଜାତ ଛୁଇଁ । ଏହା ମଧୁରକଷାୟ, ପାଚକ ଅମ୍ଳ, ରୂକ୍ଷ, ଉଷ୍ଣବୀର୍ଯ୍ୟ, ଗୁରୁପାକ, ସାରକ, ବିଦାହୀ, ଶୁକ୍ରନାଶକ, ବାତନାଶକ, ଦୃଷ୍ଟି ହାନିକର, ମୂତ୍ରଶୋଧକ, କଫ, ଶୋଥ ଓ ବିଷଦୋଷରେ ଉପକାରକ, ଏହାର ଭଜା ମଞ୍ଜି ଗୁରୁପାକ ଓ ମଳଶୋଧକ । ]
୩ । (+କରଣ ଅ) ସମୀରଣ; ପବନ—3 Wind
୪ । ( +କର୍ମ. ଅ ) ଶସ୍ୟର ଧୂଷ ବା ଭୂଷି, କଡ଼ଙ୍ଗର, ଅଗାଡ଼ି—4. Chaff; husk of corn.
୫ । ନଡ଼ା—5 Straw.
୬ । ( +କରଣ. ଅ ) ସୂର୍ପବାୟୁ; କୁଲାବାଆ, ଶସ୍ୟର ଭୁଷ ଉଡ଼ାଇବା ନିମନ୍ତେ କୁଲାହାରା ବତାସ—6. Wind produced by the winnowing fan while moved for cleansing grains.
ସଂ ବିଣ—୧ । ନିର୍ବିକଳ୍ପ, ନିଶ୍ଚିତ—1. Positive; certain.
୨ । ପର୍ବ ବା ଗଣ୍ଠିହୀନ—
2. Without knots or joints.

**ନିଷ୍ପାବି**—ସ. ବି. (ନିଷ୍ପାବ+ଇ)—୧ । ବରଗୁଡ଼ି (ଦେଖ)
Nishpābi 1. Baragurdi (See)
(ନିଷ୍ପାବୀ—ଅନ୍ୟରୂପ) ୨ । ବରଗଡ଼ା (ଦେଖ)
ଓ. ବରଗୁଡ଼ି 2. Baragarda (See)
ବର୍ବଟୀ, ବୋଡା, ବବବୁଟୀ लोबिया, बबटो, बोड़ा
ମ. ଗୁଡ଼ୁବର୍ଣ୍ଣି ତେ. ତଡ଼ୁବରେ

**ନିଷ୍ପି**—ବୈଦେ. ବି. (ଆ. ନିସ୍ଫ୍=ଅର୍ଦ୍ଧ)—୧ । ଅର୍ଦ୍ଧେକ—
Nishpi 1. Half.
निष्पी ୨ । ଯେଉଁ ଜମିରେ ପୂର୍ଣ୍ଣ ଖଜଣାର ଅର୍ଦ୍ଧେକ ପରିମାଣରେ
निस्फो ଜମା ଧାର୍ଯ୍ୟ ହୋଇଅଛି—2 A holding on which
(ନିଷ୍ଫି—ଅନ୍ୟରୂପ) half of the full rent is assessed.
ଦେ ବିଣ—ପୂର୍ଣ୍ଣ ଖଜଣାର ଅର୍ଦ୍ଧେକ ପରିମିତ ଖଜଣା ଧାର୍ଯ୍ୟ ହୋଇଥିବା (ଯୋତ)—( tenure ) Assessed with half the full rent.

**ନିଷ୍ପି ବାଯ୍ୟାପ୍ତି**—ଦେ. ବି (ଆ ନିସ୍ଫ୍+ଫା. ବାଜେୟାପ୍ତ୍)—
Nishpi bājyāpti ଯେଉଁ ଲାଖରାଜ ଜମି ବା ମଧ୍ୟସ୍ୱତ୍ୱକୁ ଇଂରାଜ
निस्फीबायाप्ति ଗଭର୍ଣ୍ଣମେଣ୍ଟ ବାଯ୍ୟାପ୍ତି କରି ତହିଁ ଉପରେ
निस्फोबाजेयाप्त ଅଧାଜମା ଧାର୍ଯ୍ୟ କରି ଅଛନ୍ତି—
(ନିଷ୍ଫି ବାଯ୍ୟାପ୍ତି—ଅନ୍ୟରୂପ) Resumed Lakhraj holding or undertenure assessed with half the full rate of rent by the British Government.

**ନିଷ୍ପିତି**—ଗ୍ରା. ବି. (ସ ନିଷ୍ପତ୍ତି)—ନିଷ୍ପତ୍ତି, ମୀମାଂସା, ଫଏସଲ—
Nishpiti Decision; final settlement.
निष्पत्य निबटेरा (ନିଷ୍ଫିତି, ନିଷ୍ପିପତ୍ତି—ଅନ୍ୟରୂପ)

**ନିଷ୍ପିଷ୍ଟ**—ସ. ବିଣ. (ନିର୍=ନିଃଶେଷରେ+ପିଷ୍ ଧାତୁ=ଚୂର୍ଣ୍ଣ କରିବା+ କର୍ମ. ତ)—୧ । ବିଚୂର୍ଣ୍ଣିତ —1 Powdered; ground to dust; pulverised.
Nishpishta
୨ । ବିମର୍ଦ୍ଦିତ, ବିଦଳିତ—
2. Pressed; trampled; crushed.
୩ । ଘୃଷ୍ଟ—3. Pounded; bruised.

**ନିଷ୍ପୀଡ଼ନ**—ସ. ବି. (ନିର୍+ପୀଡ଼୍ ଧାତୁ=କ୍ଳେଶଦେବା+ଭାବ. ଅନ)—
Nishpirdana ୧ । ଚିପୁଡ଼ିବା—1. Act of squeezing or wringing out.
୨ । ମର୍ଦ୍ଦନ, ନିଷ୍ପେଷଣ, ବାଟିବା—
2. Pressing; pounding.
୩ । ଗୁଣ୍ଡିବା—3. Pulverising; grinding.
୪ । ଅତ୍ୟାଚାର, ଜୁଲମ—4 Oppression.
୫ । କଠୋରତା—5. Severity.

**ନିଷ୍ପୀଡ଼ିତ**—ସ. ବିଣ. (ନିର୍+ପୀଡ଼୍ ଧାତୁ+କର୍ମ. ତ)—
Nishpirdita ୧ । ଚିପୁଡ଼ାଯାଇଥିବା—
1. Squeezed; wrung.
୨ । ଚୂର୍ଣ୍ଣଯାଇଥିବା—2. Ground to powder; pulverised.
୩ । ଅତ୍ୟାଚାରିତ—3. Oppressed.

**ନିଷ୍ପୁତ୍ର**—ସ. ବିଣ. ପୁଂ. (ବହୁବ୍ରୀହି, ନିର୍+ପୁତ୍ର)—ଅପୁତ୍ରକ—
Nishputra Sonless.
(ନିଷ୍ପୁତ୍ରା—ସ୍ତ୍ରୀ) (ନିଷ୍ପୁତ୍ରତା—ବି)

**ନିଷ୍ପୁରୁଷ**—ସ. ବିଣ. ପୁଂ. (ନିର୍+ପୁରୁଷ, ବହୁବ୍ରୀହି)—୧ । ନପୁଂସକ—
Nishpurusha 1. Eunoch.
୨ । କାପୁରୁଷ—2, Coward.

**ନିଷ୍ପେଷ**—ସ. ବି. (ନିର୍+ପିଷ୍ ଧାତୁ+ଭାବ. ଅ)—୧ । ଘର୍ଷଣ—
Nishpesha 1. Friction.
ନିଷ୍ପିଷ୍ଟ } ବିଣ ୨ । ପେଷଣ, ବାଟିବା—
ନିଷ୍ପେଷିତ } 2. Rubbing; pressing, bruising.
(ନିଷ୍ପେଷଣ—ଅନ୍ୟରୂପ) ୩ । ଚୂରିବା, ଚୂର୍ଣ୍ଣନ—
3. Pounding, grinding; pulverising.

**ନିଷ୍ପେଷକ**—ସ. ବିଣ. ପୁଂ. (ନିର୍+ପିଷ୍ ଧାତୁ=ପେଷିବା+କର୍ତ୍ତୃ. ଅକ)—୧ । ଅତ୍ୟାଚାରୀ—1. Oppressing.
Nishpeshaka
(ନିଷ୍ପେଷିକା—ସ୍ତ୍ରୀ) ୨ । ଚୂର୍ଣ୍ଣିକାରୀ—2. Pounding.
୩ । ବାଟୁଥିବା—3. Bruis.

**ନିଷ୍ପ୍ରଚାର**—ସ. ବିଣ. (ବହୁବ୍ରୀହି, ନିର୍+ପ୍ରଚାର)—ଗତିଶୂନ୍ୟ—
Nishprachāra Motionless.

**ନିଷ୍ପ୍ରତିଭ**—ସ. ବିଣ. ପୁଂ. (ବହୁବ୍ରୀହି; ନିର୍+ପ୍ରତିଭା)—
Nishpratibha ୧ । ପ୍ରଭାଶୂନ୍ୟ, ଦୀପ୍ତିରହିତ—
(ନିଷ୍ପ୍ରତିଭା—ସ୍ତ୍ରୀ) 1 Destitute of radiance or
(ନିଷ୍ପ୍ରତିଭତା—ବି) splendour; lustreless, gloomy.
୨ । ନିର୍ବୁଦ୍ଧି—2 Stupid.
୩ । ନିସ୍ତେଜ—3. Dull.
୪ । ଅସ୍ୱଚ୍ଛ—4. Opaque.
୫ । ପ୍ରତିଭାଶୂନ୍ୟ—5. Having no talent or genius; untalented.
୬ । ଅଜ୍ଞ, ମୂର୍ଖ—6. Illiterate; ignorant.

**ନିଷ୍ପ୍ରତ୍ୟୂହ**—ସ ବିଣ. (ବହୁବ୍ରୀହି, ନିର୍=ନାହିଁ+ପ୍ରତ୍ୟୂହ=ବିଘ୍ନ)—
Nishpratyūha ନିର୍ବିଘ୍ନ—Unobstructed; free from hinderance.

**ନିଷ୍ପ୍ରଦୀପ**—ସ. ବିଣ (ବହୁବ୍ରୀହି, ନିର୍+ପ୍ରଦୀପ)—୧ । ପ୍ରଦୀପଶୂନ୍ୟ—
Nishpradipa 1 Without a lamp, not lighted by a lamp.
୨ । ଆଲୋକଶୂନ୍ୟ, ଅନ୍ଧକାର—
2. Dark; without a light.

**ନିଷ୍ପ୍ରବାଣି**—ସ. ବିଣ. (ବହୁବ୍ରୀହି, ନିର୍=ନିର୍ଗତ+ପ୍ରବାଣି=ତନ୍ତୁବାୟ ଶଳାକା)—ତନ୍ତୁରୁ ନୂତନ ବହିର୍ଗତ; ତନ୍ତୁନିର୍ମିତ (ବସ୍ତ୍ର), ନବ (ବସ୍ତ୍ର)—New and unbleached ( cloth ); recently woven (cloth).
Nishprabāni
(ନିଷ୍ପ୍ରବାଣ—ଅନ୍ୟରୂପ)

**ନିଷ୍ପ୍ରଭ**—ସ. ବିଣ. ପୁଂ. (ବହୁବ୍ରୀହି, ନିର୍+ପ୍ରଭା=ତେଜ)—
Nishprabha ୧ । ପ୍ରଭା ବା ଦୀପ୍ତିଶୂନ୍ୟ, ତେଜୋଶୂନ୍ୟ—
(ନିଷ୍ପ୍ରଭା—ସ୍ତ୍ରୀ) 1. Deprived of splendour or radiance
(ନିଷ୍ପ୍ରଭତା—ବି) ୨ । ନିଷ୍ପ୍ରତିଭ—2. Dull; stupid.

**ନିଷ୍ପ୍ରୟୋଜନ**—ସ. ବି (ବହୁବ୍ରୀହି, ନିର୍+ପ୍ରୟୋଜନ)—୧ । ଅନର୍ଥକ;
Nishprayojana ଅକାରଣ—1. Causeless; groundless.
୨ । ବ୍ୟର୍ଥ, ବୃଥା—2. Serving no purpose; needless; unnecessary; useless
୩ । ଉଦ୍ଦେଶ୍ୟ ହୀନ—
3 Having no intention; aimless.

**ନିଷ୍ପ୍ରାଣ**—ସ. ବିଣ (ବହୁବ୍ରୀହି, ନିର୍+ପ୍ରାଣ)—୧ । ନିର୍ଜୀବ—
Nishprāṇa 1. Lifeless
(ନିଷ୍ପ୍ରାଣତା—ବି) ୨ । ମୃତ—2. Dead.

**ନିଷ୍ଫଳ**—ସ. ବିଣ (ବହୁବ୍ରୀହି, ନିର୍+ଫଳ)—୧ । ଫଳ ନ ଥିବା—
Nishphaḷa 1. Not bearing fruit.
(ନିଷ୍ଫଳା—ସ୍ତ୍ରୀ) ୨ । ଫଳଶୂନ୍ୟ—2. Fruitless; abortive
(ନିଷ୍ଫଳତା—ବି) ୩ । ବିଫଳ; ନିରର୍ଥକ—
3. Ineffective; futile; ineffectual.
୪ । ବ୍ୟର୍ଥ, ଅକୃତକାର୍ଯ୍ୟ—4. Unsuccessfull.
୫ । ବୃଥା—5. Useless; vain.
୬ । ବନ୍ଧ୍ୟ—6. Barren; impotent.
୭ । ଅଣ୍ଡକୋଷରହିତ (ହି. ଶବ୍ଦସାଗର)—
7. Having no testicle.
ସ ବି—ନଡ଼ା, ପାଳ—Straw.
ଦେ ବି—କୌଣସି କାର୍ଯ୍ୟରେ ଫଳର ଅପ୍ରାପ୍ତି—Fruitlessness; infructuous condition; the state of abortiveness.

**ନିଷ୍ଫଳତା(ତ୍ୱ)**—ସ. ବି (ନିଷ୍ଫଳ+ଭାବାର୍ଥେ. ତା)—୧ । ଫଳହୀନତା—
Nishphaḷatā(twa) 1. Fruitlessness.
୨ । ନିଷ୍ପ୍ରୟୋଜନତା—2. Uselessness.
୩ । ବନ୍ଧ୍ୟତ୍ୱ—3. Barrenness; sterility.

**ନିଷ୍ଫଳ ହେବା**—ଦେ. କ୍ରି—୧ । ବିଫଳ ହେବା, ଫଳ ନ ଫଳିବା—
Nishphaḷa hebā 1. To be abortive; not to bear any fruit.
নিষ্ফল্ হওয়া
निफल होना ୨ । କୌଣସି ଫଳ ନ ପାଇବା—
2. To get nothing in the long run.
୩ । ବ୍ୟର୍ଥ ମନୋରଥ ହେବା—
3. To fail in attaining one's wishes
୪ । ଅଭିପ୍ସିତ ଫଳ ଉତ୍ପାଦନ ନ କରିବା—
4. Not to produce the desired result
୫ । ଅକୃତକାର୍ଯ୍ୟ ହେବା—
5. To fail; not to succeed.

**ନିଷ୍ଫଳା**—ସ. ବି. ସ୍ତ୍ରୀ (ନିଷ୍ଫଳ+ସ୍ତ୍ରୀ. ଆ)—୧ । ବନ୍ଧ୍ୟା ନାରୀ—
Nishphaḷā 1. A barren woman.
(ନିଷ୍ଫଳୀ—ଅନ୍ୟରୂପ) ୨ । ନିବୃତ୍ତ ରଜସ୍ୱଳା ନାରୀ—
2. A woman past child-bearing or menstruation.
[ ଦ୍ର—ସାଧାରଣତଃ ୫୦ଠାରୁ ୫୫ବର୍ଷ ବୟସ ପରେ ସ୍ତ୍ରୀମାନଙ୍କର ମାସିକ ରଜଃସ୍ରାବ ବନ୍ଦ ହୁଏ । ]

ସ. ବିଣ. ସ୍ତ୍ରୀ—ନିଷ୍ଫଳର ସ୍ତ୍ରୀ ଲିଙ୍ଗ—Feminine of Nishphaḷa.
নিষ্ফলা ଦେ. ବିଣ (ସ. ନିଷ୍ଫଳ)—ନିଷ୍ଫଳ (ଦେଖ)
निरफल Nishphaḷa (See)

**ନିଷ୍ଫଳି**—ସ. ବି—ଅସ୍ତ୍ରମାନଙ୍କୁ ନିଷ୍ଫଳ କରିବା ଅସ୍ତ୍ର ( ହି. ଶ.)—
Nishphaḷi A weapon which makes other weapons futile.
[ ଦ୍ର—ବିଶ୍ୱାମିତ୍ର ରାମ ଲକ୍ଷ୍ମଣଙ୍କୁ ଆପଣା ସଙ୍ଗେ ବନକୁ ନେବା ବେଳେ ରାମଚନ୍ଦ୍ରଙ୍କୁ ଅନ୍ୟ ଅସ୍ତ୍ରମାନଙ୍କ ସହିତ ଏହି ଅସ୍ତ୍ର ପ୍ରଦାନ କରିଥିଲେ । ହି. ଶବ୍ଦସାଗର । ]

**ନିଷ୍ଫେନ**—ସ ବିଣ (ବହୁବ୍ରୀହି, ନିର୍+ଫେନ)—ଫେନରହିତ—
Nishphena Foamless; frothless.

**ନିଷ୍ୟନ୍ଦ**—ସ. ବି (ନି+ସ୍ୟନ୍ଦ୍ ଧାତୁ=କ୍ଷରଣ ହେବା+ଭାବ. ଅ)—
Nishyanda ୧ । ଝରିବା, ଗଳନ, କ୍ଷରଣ—
1. Leaking; oozing out; exudation.
୨ । ବର୍ଷଣ—2. Raining; dribbling.
୩ । ଧାରା ବହିବା—
3. Flowing down in current.
୪ । ନିର୍ଝର—4. Fountain.

**ନିଷ୍ୟନ୍ଦିତ**—ସ ବିଣ (ନି+ସ୍ୟନ୍ଦ୍ ଧାତୁ+କର୍ତ୍ତୃ ତ)—୧ । କ୍ଷରିତ—
Nishyandita 1. Oozing; leaking.
୨ । ବର୍ଷିତ—2. Raining.
୩ । ନିଷ୍ୟନ୍ଦଯୁକ୍ତ, ଧାରାରେ ବହି ଯାଉଥିବା—
3. Flowing down.

**ନିଷ୍ୟୂତ**—ସ. ବିଣ (ନି+ସିବ୍ ଧାତୁ=ସୁଚିବା+କର୍ମ. ତ)—ସୁଗ୍ରଥିତ—
Nishyūta 1. Well strung; well sewn.
୨ । ଉତ୍ତମରୂପେ ବୁଣାଯାଇଥିବା—2. Well woven.

**ନିସ୍‌ବତ୍**—ବୈଦେ. ବି (ଆ)—୧ । ସମ୍ବନ୍ଧ, ସମ୍ପର୍କ—
Nis-bat 1. Connection.
নিসবত ୨ । ତୁଳନା—2. Comparision.
निसबत

**ନିସ୍ସୀମ**—ସ. ବିଣ (ବହୁବ୍ରୀହି; ନିଃ+ସୀମା)—ଅସୀମ—
Nissima Boundless; limitless.
(ନିଃସୀମ—ଅନ୍ୟରୂପ, ନିସ୍ସୀମତା—ବି)

**ନିସଂଶିଆ**—ଦେ. ବିଣ. ପୁଂ—୧ । (ସ. ନିର୍ବଂଶ; ନିରଂଶ)—ନିରଂଶିଆ—
Nisaṁsiā 1. Niraṁsiā (See)
নির্বংশী ୨ । (ସ. ନୃଶଂସ)—କ୍ରୂର, ଖଳ, ନିଷ୍ଠୁର—
निर्बंश 2. Wicked; cruel.
निसंस (ନିସଂସୀ, ନିସଂସେଇ—ସ୍ତ୍ରୀ)

**ନିସଖା**—ଦେ. ବିଣ.—(ସ. ନିଃସଖ)—ନିରାଶ୍ରୟ, ବନ୍ଧୁହୀନ—
Nisakhā Friendless; helpless.
নিসখা, ନିସଖା ହୋଇ ପାଣ୍ଡୁସୁତେ ତ ଅଛନ୍ତି,
निराश्रय ବାହାଙ୍କୁ ଦେଖାଇବା ଅଛେ ପ୍ରେତପତି—କୃଷ୍ଣସିଂହ, ମହାଭାରତ ବନ

**ନିସଙ୍କୁଡ଼ି**—ଦେ. ବିଣ.—(ସଂ. ନିର୍+ସଂସ୍କୃତ ବା ସଙ୍କର ବା ସଂସ୍କାର)—
Nisaṅkuṛdi ଯାହା ସଙ୍କୁଡ଼ି ନୁହେଁ, ଯାହା ଜଳ ଓ ଲବଣଦ୍ୱାରା ପକ୍ୱ କରାଯାଇ ନାହିଁ—1 (food) Which has not been boiled in water nor seasoned with salt.
যা সঁকড়ি নয়
**निखरी**
(ନିସଙ୍ଖୁଡ଼ି - ଅନ୍ୟରୂପ)
(ସଙ୍କୁ[ଙ୍ଖୁ]ଡ଼ି—ବିପରୀତ) ୨। ଯାହା ଅଇଁଠା ନୁହେଁ—
2. (food) Which has not been previously partaken of by any one.

ଦେ. ବି—(ଜଳ ପକ୍ୱ ଓ ଲବଣମିଶ୍ରିତ) ଅନ୍ନ ତରକାରୀ ଆଦି ଛଡ଼ା ଅନ୍ୟାନ୍ୟ (ଘୃତପକ୍ୱ) ମିଷ୍ଟାନ୍ନାଦି—
Sweetmeats and food other than rice and curry boiled in water and seasoned into salt.

[ଦ୍ର - ଯେଉଁ ଖାଦ୍ୟ ଜଳରେ ପକ୍ୱ ହୋଇ ଥାଏ ବା ଯହିଁରେ ଲୁଣ ମିଶା ଯାଇ ପାକ କରା ଯାଇ ଥାଏ ତାହା ସଙ୍କୁଡ଼ି (ଯଥା ଅନ୍ନ, ଡାଲି, ଉତ୍ତରଭାରତରେ ରୁଟିକୁ ମଧ୍ୟ ସଙ୍ଖୁଡ଼ି କହନ୍ତି) ଓ ଯାହା ଘୃତପକ୍ୱ ହୋଇ ନ ଥାଏ କିମ୍ବା ଜଳ ଓ ଲୁଣରେ ସିଦ୍ଧ ହୋଇ ନ ଥାଏ ତାହା ନିସଙ୍କୁଡ଼ି (ଯଥା ପୁରୀ, ମିଠାଇ)। ଅଇଁଠା ଓ ସଙ୍ଖୁଡ଼ି ପୃଥକ୍ ଅଟେ। ଉଚ୍ଛିଷ୍ଟ ଖାଦ୍ୟ ଦ୍ରବ୍ୟକୁ ଅଇଁଠା ବୋଲାଯାଏ।]

**ନିସତ୍**—ପ୍ରାଦେ. (ସମ୍ବଲପୁର) ବିଣ. (ସଂ. ନିଃସତ୍ତ୍ୱ)—ଅଳସୁଆ—
Nisat Idle; lazy.

**ନିସତ**—ଦେ. ବିଣ.—(ସଂ. ନିଃସତ୍ତ୍ୱ)—୧। ନିର୍ବଳ, ବଳହୀନ—
Nisata 1. Powerless.

ନୃପ ଯୁଦ୍ଧେ କେବେହେଁ ନୋହିବ ନିସତ। କୃଷ୍ଣସିଂହ. ମହାଭାରତ ସଭା।

୨। ଅସମର୍ଥ—2 Unable.
୩। ଆଶ୍ରୟହୀନ—3. Helpless.
୪। ନିରୁପାୟ, ନାଚାର—4. Having no other alternative or expedient.

ଦଣ୍ଡେ ଏକ ବାର ଏ ନିସତ ଗିରି ଟଙ୍କେର କି ଗତି। ଭଞ୍ଜ. ବୈଦେହୀଶବିଳାସ।

୫। ବିପନ୍ନ—5. In danger; involved in trouble.
୬। (ସଂ. ନିର୍+ସତ୍ୟ)—ନିମକହାରାମ; ବିଶ୍ୱାସଘାତକ—
6 False to one's salt; perfidious; faithless.
ନିସତିଆ, ନିସତୁଆ, ନିସତ୍ୟ, ନିସତ୍ୟା — ଅନ୍ୟରୂପ
୭। ମିଥ୍ୟାବାଦୀ—7. Lying.
୮। ଅସତ୍ୟ, ସତ୍ୟହୀନ—8. Untrue; false.
অসত
**निसत**
୯। ସତ୍ୟ ପାଳନରେ ପରାଙ୍ମୁଖ, ସତ୍ୟ ଲଙ୍ଘନକାରୀ—
9. Untrue to one's words, infringing one's promise
୧୦। (ସଂ. ନିଃସତ୍ତ୍ୱ) କ୍ଳାନ୍ତ, ଅବସନ୍ନ—10 Tired.

ସେହିକାଳେ ଅର୍ଜୁନ ବୋଇଲେ ହେ ଭ୍ରାତ,
ତୁମ୍ଭେ ଯେବେ ଯୁଦ୍ଧରେ ହୋଇଲ ନିସତ। କୃଷ୍ଣସିଂହ ମହାଭାରତ ଆଦି।

ଦେ. ବି. (ସଂ. ନିଃସତ୍ତ୍ୱ)—୧। ନାଚାର ଅବସ୍ଥା, ନିରୁପାୟ ଅବସ୍ଥା—1 Helpless condition, a condition in which there is no other alternative.

ନିସତକୁ ଟର୍ଣ୍ଣିଅ ଘଇତା
ପେଲାପେଲି କରି ବନ ନଉଥାଁ। ତଗ।

୨। ବଳହୀନ ଅବସ୍ଥା—2 Powerless condition.
୩। ଅସାମର୍ଥ୍ୟ, ଅକ୍ଷମତା, ଶକ୍ତିରାହିତ୍ୟ—
3. Want of strength; inability.

କ୍ଷତ୍ରିୟ କୁଳରେ ତ ହୋଇଅଛୁ ଜାତ
ଯୁଦ୍ଧ କରିବାକୁ ନାହିଁ ମୋ ନିସତ। କୃଷ୍ଣସିଂହ ମହାଭାରତ ସଭା।

୪। (ସଂ. ନିର୍+ସତ୍ୟ) ଅସତ୍ୟ—
4. Untruth; falsehood

ଯେବେ ତୁମ୍ଭେ ମାଗିଲ ଜୀବନ ନେବାକୁ
ତେବେ ଆମ୍ଭେ ଭଜନ୍ତୁ ନିଜ ନିସତକୁ। କୃଷ୍ଣସିଂହ ମହାଭାରତ ବନ।

୫। ପ୍ରତିଜ୍ଞାପାଳନ ନ କରିବା, ପ୍ରତିଜ୍ଞାଲଙ୍ଘନ—
5. Breach of promise.

ତୁ ଯେ ପ୍ରିୟେ ସତ୍ୟ କରି ନିସତ ଅଟନ୍ତୁ
ମଉନ ହୋଇଲୁ କୁଳେ କଳଙ୍କ ଦେବୁରେ। ପ୍ରାଚୀ. ପ୍ରତାପ ଶଶିରେଖା।

**ନିସତୀ**—ଦେ ବିଣ. ସ୍ତ୍ରୀ. (ସଂ. ନିଃସତ୍ୟା)—୧। ମିଥ୍ୟାବାଦିନୀ—
Nisatī 1 Lying (woman)
(ନିସତେଇ—ଅନ୍ୟରୂପ) ୨। ସତ୍ୟ ପାଳନରେ ପରାଙ୍ମୁଖୀ—
2. (a woman) Not true to her words.
୩। ଅସତୀ—3. Unchaste (woman).
ପ୍ରାଦେ. (ସମ୍ବଲପୁର) ବିଣ. ସ୍ତ୍ରୀ—ଅଳସେଇ (ସ୍ତ୍ରୀ)—
Idle (woman).

**ନିସତ୍ତ୍ୱ**—ଦେ ବିଣ. (ସଂ. ନିଃସତ୍ତ୍ୱ)—
Nisatwa ୧। ସତ୍ତ୍ୱ ବା ସାରହୀନ, ଅସାର—
নিসত্ব 1. Marrowless; unsubstantial.
**निसत्व**

ଏ କୁଳେ ନାହିଁ ବଳହୀନ, ନିସତ୍ତ୍ୱ କୃପଣ ଜୀବନ। ଜଗନ୍ନାଥ, ଭାଗବତ।

୨। (କଚିତ୍ତ୍ଥ) ସଂ. ନିଃସ୍ୱତ୍ୱ) ନିଃସତ୍ତ୍ୱବାନ୍ (ଦେଖ)
2. Nihsatwabān (See)

**ନିସତ୍ତ୍ୱବାନ୍**—ଦେ. ବିଣ. (କଚିତ୍ତ୍ଥ; ସଂ. ନିଃସ୍ୱତ୍ୱ)—
Nisatwabān ଯାହାର କୌଣସି ସମ୍ପତ୍ତିରେ କିଛି ସ୍ୱତ୍ୱ ନଥାଏ—
নিসত্ববান Having no proprietory right over a property.
**निसत्ववान**

[ଯଥା— ଆଜିଠାରୁ ଏ ବିକ୍ରି ସମ୍ପତ୍ତିରେ ଆମ୍ଭେ ନିସତ୍ତ୍ୱବାନ୍ ଓ ବେଦଖଲଦାର୍ ହେଲୁଁ (କବଲାର ସରେଦ)]

**ନିସନ୍ତାନ**—ଗ୍ରା. ବିଣ. (ସଂ. ନିଃସନ୍ତାନ)—
Nisantāna ୧। ଅପୁତ୍ରକ—1 Sonless
নিসন্তান ୧। ସନ୍ତାନ ସନ୍ତତିହୀନ—1. Issueless.
**निसन्तान**

ପଶ୍ଚିମେ ହେଲ ନିସନ୍ତାନ, କହିବା କନ୍ଦ୍ରୁ ବଂଶ ଗୁଣ। ଜଗନ୍ନାଥ, ଭାଗବତ।

**ନିସନ୍ଦେହ**—ଗ୍ରା. ବିଣ. (ସଂ ନିଃସନ୍ଦେହ)—
Nisandeha ନିଃସନ୍ଦେହ (ଦେଖ)
নিসন্দেহ Nihsandeha (See)

ନିସନ୍ଧି—ଦେ. ବଣ. ( ସଂ. ନିଃସନ୍ଧି )—
Nisandhi ୧ । ଯହିଁରେ ସନ୍ଧି ବା ବ୍ୟବଧାନ ନ ଥାଏ—
ଘନ 1. Having no interstics.
ঘনা ୨ । ଅଗଣ୍ଠିଆ—2. Jointless; seamless.
୩ । ଘନ, ସାନ୍ଦ୍ର—3. Dense.
୪ । ଯହିଁରେ ଆଦୌ ଛିଦ୍ର ନ ଥାଏ—
4. Poreless; impervious.

ନିସମ୍ପର୍କ—ଗ୍ରା. ବଣ. ( ସଂ. ନିଃସମ୍ପର୍କ )—
Nisamparka ନିଃସମ୍ପର୍କ ( ଦେଖ )
নিসম্পর্ক Nihsamparka ( See )
(ନିସମ୍ପର୍କୀୟ—ଅନ୍ୟରୂପ)

ନିସର୍ଗ—ସଂ. ବି. (ନି=ନିଶ୍ଚୟ+ସୃଜ୍ ଧାତୁ=ସୃଷ୍ଟି କରିବା+ଭାବ. ଅ)—
Nisarga ୧ । ସ୍ୱଭାବ; ପ୍ରକୃତି—1. Nature.
୨ । ସ୍ୱାଭାବିକ ଅବସ୍ଥା—2. Natural condition.
୩ । ସ୍ୱାଭାବିକ ଗୁଣ—3. Natural property.
୪ । ରୂପ—4. Form; shape.
୫ । ସୃଷ୍ଟି—5. Creation.
୬ । ତ୍ୟାଗ—6. Abandonment; relinquishment.
୭ । ବଦଳ; ବଦଳା ବଦଳି—7. Barter; exchange.

ନିସର୍ଗ କୃପାଳୁ—ସଂ. ବଣ. (ନିସର୍ଗ+କୃପାଳୁ)—ସ୍ୱଭାବତଃ ଦୟାଶୀଳ—
Nisarga krupālu Kind by nature.
ଦଧିବସୁ ନିସର୍ଗ କୃପାଳୁ । କବିସୂର୍ଯ୍ୟ. କଳୋପାସକମ୍ଭୁ ବ ଗୀତ ।

ନିସର୍ଗଜ—ସଂ. ବଣ. ( ନିସର୍ଗ+ଜନ୍ ଧାତୁ=ଜନ୍ମିବା+କର୍ତ୍ତୃ. ଅ )—
Nisargaja ସ୍ୱାଭାବିକ, ନୈସର୍ଗିକ—Natural.

ନିସସ୍ତ(ସ୍ର)—ଗ୍ରା. ବଣ. ( ସଂ. ନିଃଶସ୍ତ୍ର )—ନିଃଶସ୍ତ୍ର ( ଦେଖ )
Nisastra(sra) Nihsastra ( See )

ନିସହାୟ—ଗ୍ରା. ବଣ. ( ସଂ. ନିଃସହାୟ )—
Nisahāya ନିଃସହାୟ ( ଦେଖ )
Nihsahāya ( See )

ନିସାଖା—ଦେ. ବଣ—୧ । (ସଂ. ନିଃସହାୟ)—ନିଃସହାୟ; ଅସହାୟ—
Nisākhā 1. Helpless; shelterless.
নিশাখা নিসহায; লাবার ୨ । (ସଂ. ନିଃସଖ)—ବନ୍ଧୁହୀନ—
. Friendless.
୩ । ନିରାଶ୍ରୟ—3. Supportless.
୪ । (ସଂ. ନିଃଶାଖ) ଶାଖାହୀନ (ବୃକ୍ଷ ବା କାଣ୍ଡ)—
4. Branchless (tree or trunk).
୫ । ଉପାୟାନ୍ତରହୀନ—5. Resourceless.

ନିସାସ (ଇତ୍ୟାଦି)—ଗ୍ରା. ବି (ସଂ. ନିଃଶ୍ୱାସ)—ନିଶ୍ୱାସ ଇତ୍ୟାଦି (ଦେଖ)
Nisāsa (etc) Niswāsa etc (See)
নিসাস নিসাঁস; নিসাস

ନିସାହା—ଗ୍ରା. ବଣ (ସଂ. ନିଃସହାୟ)—ନିଃସହାୟ; ଅସହାୟ—
Nisāhā Helpless.

ନିସାହାସି—ଦେ. ବଣ (ସଂ. ନିଃସାହସ)—୧ । ସାହସହୀନ; ଅସାହସିକ—
Nisāhāsi 1. Courageless.
নিসাহস ( ନିସାହାସିଆ—ଅନ୍ୟରୂପ )
୨ । ଭୟାଳୁ, ଭୀରୁ—
2. Coward, timid.

ନିସାହି—ଦେ. ବଣ. ପୁଂ ଓ ସ୍ତ୍ରୀ (ସଂ. ନିଃସହାୟ)—୧ । ଅସହାୟ—
Nisāhi 1. Helpless.
অসহায় ୨ । (ସଂ. ନିଃସଖ) ବନ୍ଧୁଶୂନ୍ୟ—2. Friendless.
নিসহায

ନିସିବା—ପ୍ରାଦେ ( ସମ୍ବଲପୁର ) କ୍ରି ( ସଂ. ନିଶ୍ ଧାତୁ )—
Nisibā ଶାଣିତକରିବା, ଧାରକରିବା, ପଜେଇବା—
To sharpen; to whet.

ନିସୁଆସ (ଇତ୍ୟାଦି) ଗ୍ରା. ବି (ସଂ. ନିଃଶ୍ୱାସ)—୧ । ନିଶ୍ୱାସ ଇତ୍ୟାଦି (ଦେଖ)
Nisuāsa (etc) 1. Niswāsa etc (See)
নিসাস ୨ । ବେଦନାଜନିତ ଦୀର୍ଘନିଶ୍ୱାସ—
নিসাঁস 2. Sigh of pain.
୩ । ଅଭିଶାପ—3. Curse

ନିସୁନ ରାତି—ଦେ. ବି ( ସଂ. ନିଃସ୍ୱନ+ରାତ୍ରି )—
Nisun rāti ନିର୍ଜ୍ଜନ ଅର୍ଦ୍ଧରାତ୍ରି—
নিশুতিবাত সুনসানরাত Dead of night.

ନିସୂଦକ—ସଂ. ବଣ. ପୁଂ ( ନି+ସୂଦ୍ ଧାତୁ=ବଧକରିବା+କର୍ତ୍ତୃ.
Nisūdaka (ନିସୂଦକା—ସ୍ତ୍ରୀ) ଅକ)—ବଧକାରୀ—Killing.

ନିସୂଦନ—ସଂ. ବି ( ନି+ସୂଦ୍ ଧାତୁ=ବଧ କରିବା+ଭାବ ଅନ)
Nisūdana ବଧ, ମାରଣ—Killing; slaughter.
ସଂ. ବଣ ( ନି+ସୂଦ୍ ଧାତୁ+କର୍ତ୍ତୃ. ଅନ )—
ବଧକାରକ, ବଧକାରୀ—Killing, slaying.
( ଅନ୍ୟ ଶବ୍ଦ ସଙ୍ଗେ ବ୍ୟବହୃତ—ଯଥା—କଂସନିସୂଦନ । )

ନିସୃତା—ସଂ. ବି—ତିହୁଡ଼ି (ଦେଖ)
Nisrutā Tihurdi (See)

ନିସୃଷ୍ଟ—ସଂ. ବଣ ( ନି+ସୃଜ୍ ଧାତୁ=ସୃଷ୍ଟି କରିବା, ତ୍ୟାଗ କରିବା
Nisrushta +କର୍ମ. ତ )—୧ । ଦତ୍ତ; ଅର୍ପିତ—
1. Bestowed; given.
୨ । ନ୍ୟସ୍ତ—2. Deposited; entrusted.
୩ । ସମର୍ପିତ—3. Delivered
୪ । ପ୍ରେରିତ—4. Sent; commissioned.
୫ । ମଧ୍ୟସ୍ଥ—5. Standing between; intermediate; acting as an intermediary.
୬ । ତ୍ୟକ୍ତ—6. Abandoned.

ନିସୃଷ୍ଟାର୍ଥ—ସଂ ବି ପୁଂ—(ବହୁବ୍ରୀହି, ନିସୃଷ୍ଟ=ପ୍ରେରିତ ହୋଇଅଛି;
Nisrushtārtha ଅର୍ଥ=ଅଭିପ୍ରାୟ ଯାହାଦ୍ୱାରା)—୧ । ଉତ୍ତମଦୂତ;
ଯେଉଁ ଦୂତ ପ୍ରେରକ ଓ ଯାହାଙ୍କ ନିକଟକୁ ପ୍ରେରିତ ହୋଇ ଅଛି, ଏହି ଉଭୟଙ୍କ ଅଭିପ୍ରାୟ ବୁଝି ସ୍ୱୟଂ ଉତ୍ତର ଦାନରେ ସମର୍ଥ—1. Ambassador; envoy: a messenger who is able to answer all questions put to him, by understanding the intention of both parties.

୨ । ମେନେଜର, କର୍ମାଧ୍ୟକ୍ଷ; ଧନର ଆୟବ୍ୟୟ, କୃଷି ଓ ବାଣିଜ୍ୟାଦି ବିଷୟ ତଦାରଖିବା କର୍ମଚାରୀ—2. Manager.
୩ । ଧୀର, ସ୍ଥିରମତି, ଶୂର ଓ ସ୍ୱାମିକାର୍ଯ୍ୟବାଧ୍ୟକ ଓ ସ୍ୱପୌରୁଷପ୍ରକାଶୀ ଭୃତ୍ୟ ବା ଏଜେଣ୍ଟ—3. A servant who is calm, steady, brave and loyal to his employer; a very able agent.

**ନିସୋର**—ଦେ. ବିଣ—( ସଂ. ନିଃସ୍ୱର )—ନିଃଶବ୍ଦ—
Nisora Calm and quiet
**ନିଦର୍ଶନ** ଅଧଗତ ବେଳେ ଗ୍ରାମ ନିସୋର ହେବାରେ ସେମାନଙ୍କୁ ଡାକଅଣି ପଚାରିଲ— ଫକୀରମୋହନ ଛମାଣ ଆଠଗୁଣ୍ଠ ।

**ନିଷ୍କିଞ୍ଚନ**—ଦେ. ବିଣ—( ସଂ. ନିଷ୍କିଞ୍ଚନ ) ନିର୍ଲିପ୍ତ—
Niskiñchana Indifferent

ନିଷ୍କିଞ୍ଚନ ଯେ ଆତ୍ମାରାମ
ଏମନ୍ତ ଯେଉଁ ମୁନି ଜନ
ମୋକ୍ଷ ନିମନ୍ତେ ସେହି ଧର୍ମୀ
କରନ୍ତି ନିତ୍ୟେ ଉପାସନ । ଜଗନ୍ନାଥ, ଭାଗବତ ।

**ନିସ୍ତନିତ**—ଦେ. ବିଣ (ନିର୍+ସ୍ତନିତ)—ମେଘଗର୍ଜନରହିତ—
Nistanita Having no roar of cloud.
ହୋଇ ତୁମ୍ଭେ ନିସ୍ତନିତ ନ କର ସମ୍ପାତ ପାତ ନ ଦେଖାଅ ନିକ୍ଷ୍ଟ ସ୍ୱରଃ— ଭକ୍ତ, ପ୍ରେମସୁଧାନିଧି ।

**ନିସ୍ତନୀ**—ସଂ. ବିଣ. ସ୍ତ୍ରୀ—(ବହୁବ୍ରୀହି, ନିର୍+ସ୍ତନ+ଈ)—
Nistani ସ୍ତନହୀନା—(Woman) Having no breasts.
ସଂ. ବି—ବଟିକା—Pill.

**ନିସ୍ତନ୍ତୁ**—ସଂ. ବିଣ—ନିଃସନ୍ତାନ ( ହି. ଶବ୍ଦସାଗର )—
Nistantu Issueless.

**ନିସ୍ତନ୍ଦ୍ର**—ସଂ. ବିଣ ପୁଂ. ( ବହୁବ୍ରୀହି, ନିର୍+ତନ୍ଦ୍ରା )—
Nistandra ୧ । ଅତନ୍ଦ୍ରିତ; ଅନିଦ୍ର—1. Sleepless.
( ନିସ୍ତନ୍ଦ୍ରା—ସ୍ତ୍ରୀ ) ୨ । ଅନଳସ—2 Vigilant; diligent
( ନିସ୍ତନ୍ଦ୍ରତା—ବି ) ୩ । ବଳବାନ୍ ( ହି. ଶ. )—3. Strong.

**ନିସ୍ତନ୍ଦ୍ରି**—ସଂ. ବିଣ. ପୁଂ. ( ବହୁବ୍ରୀହି, ନିର୍+ତନ୍ଦ୍ରି=ଆଳସ୍ୟ )—
Nistandri ନିସ୍ତନ୍ଦ୍ର ( ଦେଖ )—Nistandra (See).

**ନିସ୍ତବ୍ଧ**—ସଂ. ବିଣ. (ନି+ସ୍ତନ୍ଭ୍ ଧାତୁ=ସ୍ଥିର ହେବା+କର୍ତ୍ତୃ. ତ)—
Nistabdha ୧ । ନିଷ୍ପନ୍ଦ, ନିଶ୍ଚଳ—
( ନିସ୍ତବ୍ଧତା—ବି ) 1. Motionless; still; fixed.
୨ । ଜଡ଼ବତ୍, ଚଳତ୍‌ଶକ୍ତି ରହିତ—
2. Paralysed; numbed.
୩ । ମୌନ, ନିଃଶବ୍ଦ—3. Silent; still.
୪ । ସ୍ତମ୍ଭିତ—4. Benumbed; stopped.
୫ । ଗଠି ଗଠି ହୋଇଯିବା—5 Stiffened.

**ନିସ୍ତରଙ୍ଗ**—ସଂ. ବିଣ (ବହୁବ୍ରୀହି; ନିର୍+ତରଙ୍ଗ)—ତରଙ୍ଗହୀନ—
Nistaranga Waveless.
(ନିସ୍ତରଙ୍ଗା—ସ୍ତ୍ରୀ) ନିସ୍ତରଙ୍ଗ ତୁଙ୍ଗପର ଗମ୍ଭୀର ମୂରତ 'ବ୍ୟାସଦେବ'— ରାଧାନାଥ. ମହାଯାତ୍ରା ।

**ନିସ୍ତରଣ**—ସଂ. ବି.—(ନିର୍+ତୃ ଧାତୁ=ପାର ହେବା+ଭାବ. ଅନ)—
Nistarana ୧ । ପାର ହେବା; ଉତୁରିବା—1. Crossing.
୨ । ଉଦ୍ଧାର—2. Deliverance; rescue
୩ । ମୁକ୍ତି—3. Liberation; salvation.
୪ । ନିର୍ଗମନ—4. Outlet.
୫ । ସିଦ୍ଧି—5. Success.
୬ । ରକ୍ଷା—6. Preservation.
୭ । (ନିର୍+ତୃ ଧାତୁ=ପାର ହେବା+କରଣ. ଅନ )—କାର୍ଯ୍ୟ ସିଦ୍ଧିର ଉପାୟ—7 Expedient. means for attaining the end.

**ନିସ୍ତରିବା**—ଦେ. କ୍ରି.—(ନିର୍+ତୃ ଧାତୁ)—୧ । ପାର ହେବା—
Nistariba 1 To cross over.
**ନିଦର୍ଶନ** ଏ କଥା ଏକମନେ ଶୁଣି, ନିସ୍ତର ଦୁଃଖ ତରଙ୍ଗିଣୀ । ଜଗନ୍ନାଥ, ଭାଗବତ ।
୨ । ଉଦ୍ଧାର ପାଇବା—2. To be delivered.
୩ । ମୁକ୍ତି ପାଇବା—3. To be liberated.
୪ । ମୋକ୍ଷଗତି ପ୍ରାପ୍ତ ହେବା—
4. To attain salvation.
କ କରବ କାହିଁ ଯିବ, କେମନ୍ତେ ହେ ନିସ୍ତରିବ । ମଧୁସୂଦନ. ସଙ୍ଗୀତମାଳା ।

**ନିସ୍ତଳ**—ସଂ. ବିଣ.—(ବହୁବ୍ରୀହି, ନିର୍+ତଳ)—୧ । ଅତଳ; ତଳଶୂନ୍ୟ
Nistala ସୁଗଭୀର—1. Bottomless; very deep.
୨ । ନିମ୍ନ—2. Low.
୩ । ବର୍ତ୍ତୁଳ; ଗୋଲାକାର—3. Round; spherical.
୪ । ଚଞ୍ଚଳ—4. Moving quickly; fickle.
୫ । କମ୍ପମାନ—5 Trembling.

**ନିସ୍ତଳୀ**—ସଂ. ବି. ସ୍ତ୍ରୀ—(ନିସ୍ତଳ+ସ୍ତ୍ରୀ. ଈ)—ବଟିକା—
Nistali Pill.

**ନିସ୍ତାଇବା**—ପ୍ରାଦେ. (ସମ୍ବଲପୁର) କ୍ରି—(ସଂ. ନିସ୍ତେଜାଃ)—ନିସ୍ତେଜ
Nistaiba ହେବା—To grow or become dull.

**ନିସ୍ତାର**—ସଂ. ବିଣ.—(ନିର୍+ତୃ ଧାତୁ=ପାର ହେବା+ଭାବ. ଅ)—
Nistara ୧ । ପାର ହେବା—1. Crossing; passing over.
୨ । ଉଦ୍ଧାର; ତ୍ରାଣ—2. Salvation; deliverance.
୩ । ସମୁଦ୍ର ପାର ହେବା—
3 Crossing the sea.
୪ । ମୁକ୍ତି—4. Liberation; emancipation.
୫ । ଅବ୍ୟାହତି—5 Release; escape.
୬ । ନିର୍ଗମନ—6 Issuing forth.
୭ । କାର୍ଯ୍ୟ ସିଦ୍ଧି—7. Accomplishment; success.
୮ । ରକ୍ଷା—8. Preservation.
୯ । ମୋକ୍ଷ; ପରିତ୍ରାଣ—9. Salvation.
୧୦ । ଉପାୟ—10. Means; expedient.

୧୧ । ଦେଣା ପରିଶୋଧ—
11. Liquidation; repayment of debt.
ଦେ. ବିଣ.—ମୁକ୍ତ—Delivered.
ସାଧୁ ମହତ ଜନ ତୁମ୍ଭେ, ଦେଖି ନିସ୍ତାର ହେଲୁ ଅମ୍ଭେ ।
ପ୍ରାଚୀ. ନର୍ମଦା ମାହାତ୍ମ୍ୟ ।
ପ୍ରାଦେ. ( ସମ୍ବଲପୁର ) ବି.—ଗୁଡ ବା କୋଠିଅକୁ ଧାନଜମି ଦେବା ପରିବର୍ତ୍ତରେ ବର୍ଷ ଶେଷରେ ଦଆଯିବା ଧାନର ବର୍ତ୍ତନ—Allowance of paddy given to a labourer at the end of the year instead of service-holding.

**ନିସ୍ତାରକ**—ସ ବିଣ. ପୁଂ— (ନିର୍+ତୃ ଧାତୁ+କର୍ତ୍ତୃ. ଅକ)—
Nistāraka ୧ । ତ୍ରାଣକର୍ତ୍ତା—1. Delivering.
(ନିସ୍ତାରିକା—ସ୍ତ୍ରୀ) ୨ । ରକ୍ଷାକର୍ତ୍ତା—2. Preserving.
ସ. ବି.—୧ । ତ୍ରାଣକାରୀ ବ୍ୟକ୍ତି—1. Savior
୨ । ରକ୍ଷାକାରୀ ବ୍ୟକ୍ତି—2. Preserver.

**ନିସ୍ତାର କରିବା**—ଦେ. କ୍ରି.—ମୁକ୍ତ କରିବା, ଉଦ୍ଧାର କରିବା—
Nistārakaribā To liberate; to deliver.
(ନିସ୍ତାରିବା—ଅନ୍ୟରୂପ)
নিস্তার করা निस्तारना; निस्तार करना

**ନିସ୍ତାରଗତି ପାଇବା**—ଦେ. କ୍ରି.—ଗତି ମୁକ୍ତି ପାଇବା—
Nistāragati pāibā To be delivered; to attain salvation.
নিস্তারগতি পাওয়া निस्तारगति पाना
ସେ ବନ୍ଧୁ ଚର୍ଚ୍ଚିଲେ ସେ ନିସ୍ତାର ଗତି ପାଇଁ ।
ପ୍ରାଚୀ. ଶ୍ରୀ ଗୁରୁଭକ୍ତି ଗୀତା ।

**ନିସ୍ତାରଣ**—ସ. ବି.—(ନିର୍+ତୃ ଧାତୁ ଣିଚ=ପାର କରିବା+ଭାବ. ଅନ)—୧ । ଉଦ୍ଧାରକରଣ—
Nistāraṇa
1. Delivering; rescuing.
୨ । ଖଲାସ କରିବା—2. Acquitting.
୩ । ରକ୍ଷାକରଣ—3 Preserving.

**ନିସ୍ତାର ପର୍ବ**—ଦେ. ବି. (ବାଇବଲ୍ର ଓଡ଼ିଆ ଅନୁବାଦରେ ବ୍ୟବହୃତ)—
Nistāra parba ଯିହୁଦୀମାନଙ୍କର ପର୍ବବିଶେଷ—The feast of Pass over amongst the Jews.
নিস্তার পর্ব

**ନିସ୍ତାର ପାଇବା**—ଦେ. କ୍ରି.—୧ । ଉଦ୍ଧରିବା; ନିସ୍ତରିବା—
Nistāra pāibā 2. To be released.
নিস্তারপাওয়া ୨ । ଅବ୍ୟାହତି ଲାଭ କରିବା—
निस्तारपाना 2. To be relieved.

**ନିସ୍ତାରିବା**—ଦେ. କ୍ରି.—(ସ. ନିସ୍ତାରଣ) ନିସ୍ତାର କରିବା; ଉଦ୍ଧାର କରିବା; ରକ୍ଷା କରିବା; ମୁକ୍ତ କରିବା—
Nistāribā To deliver; to save; to liberate.
নিস্তারা
निस्तारना
ଜଗତ୍କୁ ନିସ୍ତାରିବ ସାଧୁ ସଜ୍ଜନ ।
ଜଗନ୍ନାଥ—ମେଘଦୂତ

**ନିସ୍ତାରୀ**—ସ. ବିଣ. ପୁଂ. (ନିର୍+ତୃ ଧାତୁ ଣିର୍+କର୍ତ୍ତୃ.ଇନ୍; ୧ମା. ୧ବ; ଅନ୍ୟ ଶବ୍ଦ ସହିତ ବ୍ୟବହୃତ)—ଉଦ୍ଧାରକାରୀ—
Nistārī Delivering; saving.
(ନିସ୍ତାରିଣୀ—ସ୍ତ୍ରୀ)
ଜୟ ଜଗବନ୍ଧନ ପାତକ ନିସ୍ତାରୀ । କୃଷ୍ଣସିଂହ—ମହାଭାରତ—ବନପର୍ବ ।

**ନିସ୍ତି**—ଦେ. ବି.—ନିଷ୍ଠିକଣ୍ଟା ( ଦେଖ)
Nisti Nishtikanṭā (see)

**ନିସ୍ତିଅ**—ପ୍ରାଦେ (ସମ୍ବଲପୁର) ବିଣ—ନିସତ୍ (ଦେଖ)
Nistiā Nisat (See)

**ନିସ୍ତିମିର**—ସ. ବିଣ—(ବହୁବ୍ରୀହି; ନିର୍+ତିମିର)—ଅନ୍ଧକାରଶୂନ୍ୟ—
Nistimira Free from darkness.

**ନିସ୍ତୀର୍ଣ୍ଣ**—ସ. ବିଣ.—(ନିର+ତୃ ଧାତୁ+କର୍ତ୍ତୃ. ତ)—
Nistirṇṇa ୧ । ପାରହୋଇ ଯାଇଥିବା—1. Crossed over.
୨ । ମୁକ୍ତ, ଉଦ୍ଧାର ପାଇଥିବା—
2. Delivered; liberated.
୩ । ରକ୍ଷା ପାଇଥିବା—3. Saved; rescued.

**ନିସ୍ତୁକ**—ଦେ. ବିଣ—ନିର୍ଧୂମ; ଅତ୍ୟଧିକ—
Nistuka (ନିସ୍ତୋକ – ଅନ୍ୟରୂପ) Excessive; severe.
খুব, বিলক্ষণ अच्छा, खूब (ଯଥା—ମୁଁ ତାକୁ ନିସ୍ତୁକ ଚାପେ ଛେଚିଲି)

**ନିସ୍ତୁକ ମାଡ଼**—ଦେ. ବିଣ.—ଗୋଗଚ୍ଛବାଡ଼ଆ, ଖୁବ୍ ପ୍ରହାର—
Nistuka mar̤da A shower of blows.
গোবাড্ডান [ଦ୍ର—ଏହିପରି ନିସ୍ତୁକ ଛେଚ୍ଚ; ନିସ୍ତୁକପିଟା; ନିସ୍ତୁକ
बेहदमार ପାହାର ଆଦ ହୁଏ ।]

**ନିସ୍ତୁଷ**—ସ. ବିଣ (ବହୁବ୍ରୀହି, ନିର୍+ତୁଷ)—୧ । ତୁଷ ମୁକ୍ତ—
Nistusha 1. Freed from chaff.
୨ । ପାଛୁଡ଼ା ହୋଇ ଅଗାଡ଼ୁ ସଫା ହୋଇଥିବା—
2. Husked; cleansed.
୩ । ନିର୍ମଳ—3. Clean; cleansed.

**ନିସ୍ତୁଷିତ**—ସ. ବିଣ. (ନିର୍+ତୁଷ୍ ଧାତୁ+କର୍ମ ତ)—ନିସ୍ତୁଷ (ଦେଖ)
Nistushita Nistusha (See)

**ନିସ୍ତେଜ**—ଦେ. ବିଣ—(ସ. ନିସ୍ତେଜାଃ)—୧ । ତେଜୋହୀନ, ଅପ୍ରଭ—
Nisteja 1. Lustreless.
নিস্তেজ ୨ । ଦୁର୍ବଳ—2. Feeble; weak.
निस्तेज ୩ । ସ୍ଫୂର୍ତ୍ତିହୀନ—3. Without vigour.
୪ । ପ୍ରଭାବଶୂନ୍ୟ—4. Spiritless.
୫ । ନିର୍ବୀର୍ଯ୍ୟ—5. Impotent.
୬ । ଅତୀକ୍ଷ୍ଣ; ମୁଣ୍ଡା—6 Blunt.
୭ । ଅନୁଜ୍ଜ୍ୱଳ—7. Gloomy; not bright.

**ନିସ୍ତେଜାଃ**—ସ. ବିଣ. (ବହୁବ୍ରୀହି; ନିର୍+ତେଜସ୍) ୧ । ତେଜୋହୀନ—
Nistejāh 1 Vigourless; destitute of energy.
୨ । ପ୍ରଭାବଶୂନ୍ୟ—2 Spiritless.
୩ । ଦୀପ୍ତିଶୂନ୍ୟ—3. Lustreless; devoid of lustre.
୪ । ଭୀରୁ—4. Coward
୫ । ଅବସନ୍ନ—5. Pulled down; dull.
୬ । ଦୁର୍ବଳ—6. Weak.

**ନିସ୍ତ୍ରପ**—ସ. ବିଣ. ପୁଂ. (ବହୁବ୍ରୀହି, ନିର୍+ତ୍ରପା=ଲଜ୍ଜା)—ନିର୍ଲଜ୍ଜ; ଅଲଜ୍ଜକ—Shameless; immodest.
Nistrapa
(ନିସ୍ତ୍ରପା—ସ୍ତ୍ରୀ, ନିସ୍ତ୍ରପତା—ବି)

**ନିସ୍ତ୍ରିଂଶ**—ସଂ. ବି.—(ନିର୍+ତ୍ରିଂଶତ୍+ଅ)—୩୦ ଅଙ୍ଗୁଳରୁ ଅଧିକ
Nistrimsa ଲମ୍ବ ଶସ୍ତ୍ର, ଖଡ୍ଗ—A sword measuring more than 30 digits; scimitar.
ସଂ. ବିଣ.—ନିର୍ଦ୍ଦୟ (ହ୍ନି. ଶ.)—Unkind

**ନିସ୍ତ୍ରିଂଶତ୍**—ସଂ. ବିଣ.—(ନିର୍+ତ୍ରିଂଶତ୍)—୧। ନିର୍ଦ୍ଦୟ—
Nistrimsat 1. Merciless.
୨। ନିଷ୍ଠୁର—2 Cruel.

**ନିସ୍ତ୍ରିଂଶ ପତ୍ରିକା**—ସଂ. ବି. (ବୈଦ୍ୟକ)—ପତ୍ରସିଜୁ ଗଛ, ସ୍ନୁହୀ ବୃକ୍ଷ—
Nistrimsa patrika Euphorbia Ligularia.

**ନିସ୍ତ୍ରୈଗୁଣ୍ୟ**—ସଂ. ବିଣ. (ବହୁବ୍ରୀହି, ନିର୍+ତ୍ରୈଗୁଣ୍ୟ=ଗୁଣତ୍ରୟ)—
Nistraigunya ସତ୍ତ୍ୱ; ରଜଃ ଓ ତମଃ ଏହି ଗୁଣତ୍ରୟରୁ ଅତୀତ—
Above or beyond the three primodial attributes of matter.

**ନିସ୍ନେହ**—ସଂ. ବିଣ. (ବହୁବ୍ରୀହି; ନିର୍+ସ୍ନେହ)—
Nisneha ୧। ଯାହା ତେଲିଆ ବା ଚିକ୍କଣ ନୁହେଁ—
1. Not unctuous; not oily.
୨। ସ୍ନେହ ବା ଅନୁରାଗଶୂନ୍ୟ—2 Unkind; unfeeling
(ନିଃସ୍ନେହ—ଅନ୍ୟରୂପ) ୩। ଯାହାକୁ ସ୍ନେହ କରାଯାଏ ନାହିଁ—
3. Not loved

**ନିସ୍ପନ୍ଦ**—ସଂ. ବିଣ. (ନି+ସ୍ପନ୍ଦ୍ ଧାତୁ=ଈଷତ୍ କମ୍ପିତ ହେବା+କର୍ତ୍ତୃ. ଅ)—୧। ସ୍ପନ୍ଦନ ବା କମ୍ପନରହିତ; ନିଷ୍କମ୍ପ—
Nispanda
ନିଃସ୍ପନ୍ଦ, ନିସ୍ପନ୍ଦ } ଅନ୍ୟରୂପ 1 Motionless, without vibration.
୨। ସ୍ଥିର—2. Calm; still.
ସଂ. ବି—ସ୍ପନ୍ଦନ—Vibration; fluttering.

**ନିସ୍ପୃହ**—ସଂ. ବିଣ. ପୁଂ. (ବହୁବ୍ରୀହି; ନିର୍+ସ୍ପୃହା=ବାଞ୍ଛା)—
Nispruha ୧। ନିଷ୍କାମ—1. Having no desire.
(ନିଃସ୍ପୃହ—ଅନ୍ୟରୂପ) ୨। ସ୍ପୃହାଶୂନ୍ୟ—
(ନିସ୍ପୃହା—ସ୍ତ୍ରୀ) 2. Free from hankering.
(ନିସ୍ପୃହତା—ବି) ୩। ନିର୍ଲୋଭ—
3. Free from covetuousness or avarice.

**ନିସ୍ପୃହା**—ସଂ. ବି. (ନିର୍+ସ୍ପୃହା)—୧। ସ୍ପୃହାର ଅଭାବ—
Nispruha 1. Want of hankering.
(ନିଃସ୍ପୃହା—ଅନ୍ୟରୂପ) ୨। ଅଳସି; ପେଶୁ- 2. Linseed.
ସଂ. ବିଣ. ସ୍ତ୍ରୀ. (ନିସ୍ପୃହ+ସ୍ତ୍ରୀ. ଆ)—ନିସ୍ପୃହର ସ୍ତ୍ରୀଲିଙ୍ଗ—
Feminine of Nispruha.

**ନିସ୍ପୃହୀ**—ଦେ. ବିଣ. (ସଂ. ନିସ୍ପୃହ)—ସ୍ପୃହାଶୂନ୍ୟ—
Nispruhi Free from desire.
(ନିସ୍ପୃହୀ—ଅନ୍ୟରୂପ) ଉତ୍ତ୍ୱସ୍ୱାମୀଙ୍କର ଅର୍ଥେ ନିସ୍ପୃହୀ। ଧରଜେଗୀତା।

**ନିସ୍ୱ**—ସଂ. ବିଣ. ପୁଂ. (ବହୁବ୍ରୀହି, ନିର୍=ସ୍ୱ=ଧନ)—
Niswa ଧନଶୂନ୍ୟ; ଗରିବ; ନିର୍ଦ୍ଧନ—
(ନିସ୍ୱା—ସ୍ତ୍ରୀ) Penniless; destitute; poor.

**ନିସ୍ୱନ**—ସଂ. ବି. (ନି+ସ୍ୱନ୍ ଧାତୁ=ଶବ୍ଦ କରିବା+ଭାବ. ଅ)—
Niswana ୧। ଧ୍ୱନି, ଶବ୍ଦ—1. Sound; noise.
(ନିସ୍ୱାନ ଅନ୍ୟରୂପ) ୨। ଉଚ୍ଚ ଶବ୍ଦ—2. Loud sound.
୩। ନାଦ, ଗର୍ଜ୍ଜନ—3. Bellow; roar.
୪। ନିଃଶବ୍ଦତା—4 Silence

**ନିସ୍ୱନିତ**—ସଂ. ବିଣ. (ନି+ସ୍ୱନିତ)—୧। ଶବ୍ଦିତ—
Niswanita 1. Sounded.
୨। ସ୍ୱରିତ—2. Accented
୩। ଉଚ୍ଚାରିତ—3 Articulated; uttered.

**ନିସ୍ୟନ୍ଦ**—ସଂ. ବି—ନିଷ୍ୟନ୍ଦ (ଦେଖ)—
Nisyanda Nishyanda (See)
ଦେ. ବି—ନିସ୍ୟନ୍ଦିତ; କ୍ଷରିତ—Flowing down.
ଏ ସଂସାର ପର୍ବତ ଜଳରେ ଅନନ୍ତ
ଗଳିତ ଜଳ ହୃଦ ଗିରିରୁ ନିସ୍ୟନ୍ଦ। କୃଷ୍ଣସିଂହ. ମହାଭାରତ ବନଃ।

**ନିସ୍ରବ**—ସଂ ବି. (ନି+ସ୍ରୁ ଧାତୁ=ଗଳିତ ହେବା+କର୍ମ ଅ)—
Nisraba ୧। ଭାତର ପେଜ—1. Rice gruel.
(ନିସ୍ରାବ—ଅନ୍ୟରୂପ) ୨। (ନି+ସ୍ରୁ ଧାତୁ=ଗଳିତ ହେବା+ଭାବ ଅ)—ତଳକୁ ବୋହିଯିବା—2. Flowing down.
୩। ସ୍ରାବ; କ୍ଷରଣ—3. Oozing out; trickling.
୪। ନିର୍ଗମନ—4. Issuing forth.

**ନିସ୍ସଙ୍କୋଚ**—ସଂ. ବିଣ—ନିଃସଙ୍କୋଚ (ଦେଖ)
Nissankocha Nihsankocha (See)

**ନିସ୍ସନ୍ତାନ**—ସଂ. ବିଣ—ନିଃସନ୍ତାନ (ଦେଖ)
Nissantana Nihsantana (See)
[ ଦ୍ର—ଏହିପରି ନିସ୍ସଙ୍ଗ, ନିସ୍ସରଣ, ନିସ୍ସାର, ନିସ୍ସାରିତ, ନିସ୍ସୀମ, ନିସ୍ସୃତ, ନିସ୍ସ୍ୱାଦୁ, ନିସ୍ସ୍ୱାର୍ଥ ଶବ୍ଦମାନ ହୁଏ। ]

**ନିହଙ୍ଗ(ଙ୍ଗୀ)**—ଦେ. ବି. (ସଂ. ନିଃସଙ୍ଗ)—
Nihanga(ngi) ବୈଷ୍ଣବମାନଙ୍କ ସମ୍ପ୍ରଦାୟବିଶେଷ—
ଚିରକୁମାର A class of Baishnabas who do not
निहंग marry; celibate anchorites.
[ ଦ୍ର—ଏମାନେ ବିବାହ କରନ୍ତି ନାହିଁ। ]
ଦେ. ବିଣ—ଯାବଜ୍ଜୀବନ ଅବିବାହିତ (ବୈଷ୍ଣବ); ଚିରକୁମାର—
Celibate; observing celibacy.

**ନିହଙ୍ଗ(ଙ୍ଗୀ) ମଠ**—ଦେ. ବି—ଯେଉଁ ମଠର ବାବାଜୀ ଓ ମହନ୍ତମାନେ
Nihanga(ngi) matha ଚିରକୁମାର ବ୍ରତଧାରଣ କରନ୍ତି—
ब्रह्मचारीमठ A Matha where the Mahants observe
निहंगमठ celibacy.

**ନିହଣ**—ଦେ. ବି. (ସଂ. ନୈଦ୍ଧ କିମ୍ବା ନିଖନିତ୍ରୀ)—ବଢ଼େଇମାନଙ୍କର
Nihana ଚଉଡ଼ା ଦାନ୍ତ ଥିବା ବେଧନାସ୍ତ୍ର (ଏଥିରେ କାଠର
ବେଣ୍ଟ ନ ଥାଏ), ଲୁହାର ବଠାଳ—Iron chisel.
ନିହାନୀ; ନୀନ; ନିୟାନି ପ୍ରାଦେ. (ଗଞ୍ଜାମ) ବି—କଡ଼ଗ, ପାଚଲାଧାନ
निहानी ଗଛକୁ ମୂଳରୁ ଦାଆରେ କାଟି ସେଥିରୁ ନଡ଼ା-
ଅଂଶ କଟା ନ ଯିବା ପୂର୍ବରୁ କିଆରିରେ ଶ୍ରେଣୀବଦ୍ଧ
ଭାବରେ ଖେଳଆ ହୋଇ ରଖାଯାଇ ଥିବା ଅବସ୍ଥା—
The state of the paddy plants being spread in rows in the field immediately.

after they are reaped and before the lower portions are cut out from them for straw.

**ନିହତ**—ସ. ବଣ. ପୁଂ. (ନି=ନିଃଶେଷ+ହନ୍ ଧାତୁ=ବଧ କରିବା+କର୍ମ. ତ)—୧ । ବିନାଶିତ, ହତ—1. Killed; slain.
Nihata
(ନିହତା—ସ୍ତ୍ରୀ) ୨ । ଆହତ, ଆଘାତପ୍ରାପ୍ତ—2 Smitten; struck.
୩ । ନଷ୍ଟ—3 Spoiled; destroyed.
୪ । ଫିଙ୍ଗା ଯାଇଥିବା (ହି ଶ)—4 Thrown away.

**ନିହନନ**—ସ. ବ (ନି+ହନ୍ ଧାତୁ=ବଧ କରିବା+ଭାବ. ଅନ)—
Nihanana ହତ୍ୟା, ବଧ—Killing; slaying.

**ନିହନ୍ତା**—ସ. ବଣ. ପୁଂ (ନି+ହନ୍ ଧାତୁ=ବଧ କରିବା+କର୍ତ୍ତୃ ତୃ=
Nihantā ନିହନ୍ତୃ; ୧ମା. ୧ବ)—ଘାତକ, ହନନକାରୀ, ବିନାଶକ—
(ନିହନ୍ତ୍ରୀ—ସ୍ତ୍ରୀ) Killing; destroying, slaughtering.
ଦୁଷ୍ଟମାନଙ୍କର ଅନ୍ତେ ସେ ନିହନ୍ତା । କୃଷ୍ଣସିଂହ. ମହାଭାରତ ଉଦ୍‌ଯୋଗ ।

**ନିହନ୍ୟମାନ**—ସ. ବଣ. ପୁଂ. (ନି+ହନ୍ ଧାତୁ=ବଧ କରିବା+କର୍ମ. ଆନ)—ଯାହାକୁ ବଧ କରାଯାଉ ଅଛି—
Nihanyamāna
(ନିହନ୍ୟମାନା—ସ୍ତ୍ରୀ) Being killed

**ନିହାଇ**—ଦେ. ବ. (ସ. ନିହାମା, ନିଘାତ, ଭୁଲ. ଫା ନିହାଲୀ)—
Nihāi ନେହାଇ, ନେହି; ଲେହି; ଯେଉଁ ଲୌହ ମୁଣ୍ଡା ଉପରେ ତାତଲା ଲୁହା, ସୁନା, ରୁପାଆଦିକୁ ରଖି କମାର ଓ ବଣିଆମାନେ ହାତୁଡ଼ିରେ ପିଟନ୍ତି—Anvil.

**ନିହାଇତ(ତ)**—ବୈଦେ. ଅ. (ଅ ନିହାଯତ)—ନିହାତି (ଦେଖ)
Nihāit(ti) Nihāti (See)
নেহাত, নেহাইত ଶୁଣିବା କଥା ବା ଅନୁମାନ କଥା ପ୍ରମାଣରୂପେ,
निहायत ଗ୍ରହଣ କରିବାକୁ ଆମ୍ଭେମାନେ ନିହାଏତ୍ କାଙ୍କେ ।
ଫକୀରମୋହନ. ଛମାଣଆଠଗୁଣ୍ଠ ।
(ନିହାଏତ୍, ନିହାଏତ ନ୍ୟାହାତ, ନ୍ୟାହତି, ନିହେଇତ—ଅନ୍ୟରୂପ)

**ନିହାକା**—ସ. ବ. (ନି+ହା ଧାତୁ=ପରିତ୍ୟାଗ କରିବା+କର୍ତ୍ତୃ. ଅକ
Nihākā +ଆ; ଯେ କେତେବେଳେ ଜଳଭାଗ କେତେବେଳେ ସ୍ଥଳଭାଗ ପରିତ୍ୟାଗ କରେ)—ଉଭୟଚର ଜନ୍ତୁ ବିଶେଷ, ଗୋଧିସାପ—An iguana.

**ନିହାଜ**—ଦେ ବ—ନିଆଜ (ଦେଖ)
Nihāja Niāja (See)

**ନିହାଣ(ଣି)**—ଦେ ବ—ନିହଣ (ଦେଖ)
Nihāna(ni) Nihana (See)

**ନିହାତି**—ବୈଦେ. ଅ. (ଅ. ନିହାୟତ=ଆଧିକ୍ୟ)—
Nihāti ୧ । ଅତ୍ୟନ୍ତ; ଅତ୍ୟଧିକ—1. Excessive.
নেহাত, নিহায়ত ୨ । ଅତ୍ୟ; ନିତାନ୍ତ—
निहायत 2. Very, very much, extremely, excessively.
[illegible]
[illegible] ଛମାଣଆଠଗୁଣ୍ଠ ।
୩ । ଅବଶେଷରେ—3. At last, finally.
୪ । ନିଶ୍ଚିତ ଭାବରେ—4. Certainly.
୫ । ନିତାନ୍ତ ପକ୍ଷରେ—5. At all.

ଦେ. ବଣ.—୧ । ନଗଣ୍ୟ—1 Insignificant.
୨ । ଅଯୋଗ୍ୟ—2. Unfit.
୩ । ଯତ୍ପରୋନାସ୍ତି, ଅତ୍ୟଧିକ—
3. Excessive; too much; very much.

**ନିହାନି**—ସ. ବି.—୧ । କର୍ଣ୍ଣାଭ୍ୟନ୍ତରସ୍ଥ ଅସ୍ଥିବିଶେଷ—
Nihāni 1. The incus; the largest and the strongest of the bones of the ear in the tympanum (shaped like the anvil)
୨ । ନିହାଇ—2. Anvil.

**ନିହାର**—ସ. ବ. (ନି+ହୃ ଧାତୁ+କର୍ତ୍ତୃ ଅ)—୧ । ଜାକର—
Nihara 1. Dew.
(ନୀହାର—ଅନ୍ୟରୂପ) ୨ । ତୁଷାର, ବରଫ—2 Snow; ice.
୩ । କୁହୁଡ଼ି (ହି. ଶ.)—Fog.
ଯେରୂପେ ନିହାରେ ଆବୃତ ହୋଇ ସୂର୍ଯ୍ୟ,
ସେ ରୂପରେ ସେ ଶରେ ହୋଇଲେ ଆବର୍ଯ୍ୟ । କୃଷ୍ଣସିଂହ. ମହାଭାରତ କର୍ଣ୍ଣ ।

**ନିହାର କର**—ସ. ବ.—( ବହୁବ୍ରୀହି, ନିହାର+କର )—ଚନ୍ଦ୍ର—
Nihāra kara The moon.
ଓଷ୍ଟେ ସୁଧା ସୁଦେହାର ଥାଇଁ ଅମ୍ବରେ ନିହାରକର କରନ୍ତି ଆହାର ତାଙ୍କ ଜହାର
ଭକ୍ତ. ପ୍ରେମସୁଧାନିଧି

**ନିହାରିକା**—ସ. ବ (ନିହାର+କ+ସ୍ତ୍ରୀ. ଆ, ନିହାର ବା କୁହୁଡ଼ି ପରି
Nihārikā ଆଖିକୁ ଦେଖା ଯିବାରୁ)—ଆକାଶରେ ଥିବା ଏକ
(ନିହାରିକା—ଅନ୍ୟରୂପ) ପ୍ରକାର କ୍ଷୀଣାଲୋକବିଶିଷ୍ଟ କ୍ଷୁଦ୍ର ଜ୍ୟୋତିଷ୍କପୁଞ୍ଜ—Nebula

**ନିହାରିବା**—ଦେ. କ୍ରି,—(ସ. ନିରୀକ୍ଷଣ, ନିଭାଳନ)—ନିରେଖିବା—
Nihāribā To gaze; to look at with attention
କଂସର ମିତ୍ର ବକାସୁର,
ସର୍ଥାରେ ନିହାରଇ କାର — ଜଗନ୍ନାଥ. ଭାର୍ଗବତ ।

**ନିହାଲ୍**—ବୈଦେ. ବଣ. (ଫା )—୧ । ଐଶ୍ୱର୍ଯ୍ୟଶାଳୀ, ଧନବାନ—
Nihāl 1 Rich.
নেহাল, निहाल ୨ । ସୁଖୀ—2. Happy.
निहाल ୩ । ସୌଭାଗ୍ୟବାନ—3. Fortunate; prosperous.
୪ । କୃତାର୍ଥ; ପୂର୍ଣ୍ଣମନୋରଥ—Having one's wishes fulfilled; satisfied; sucessful; having nothing more to hanker after.
୫ । ଯାହାକୁ ଯଥେଷ୍ଟ ବସ୍ତୁ ମିଳିଅଛି—
5. Blessed with plenty.

**ନିହାଲି**—ପ୍ରାଦେ. (ଗଡ଼ଜାତ) ବ. (ଫା. ନିହାଲୀ=ଗଦି, ତୋଷକ)—
Nihāli ତୁଳି; ରେଜେଇ—Quilt.

**ନିହଂସନ**—ସ. ବ.+(ନି+ହନ୍ ସ ଧାତୁ=ବଧ କରିବା+ଭାବ ଅନ)—ବଧ; ବିନାଶନ; ମାରଣ—
Nihimsana Killing; slaying.

**ନିହିତ**—ସ. ବଣ.—(ନି+ ଧା ଧାତୁ=ଧାରଣ କରିବା+କର୍ମ. ତ)—
Nihita ୧ । ସ୍ଥାପିତ—1. Placed; laid.

୨ | ଅର୍ପିତ—2. Deposited; entrusted to; delivered.
୩ | ଗୁପ୍ତ—3. Private; secluded.
୪ | କ୍ଷିପ୍ତ—4. Cast away.
୫ | କୃତ—5. Performed.
୬ | ସମାପ୍ତ—6. Finished.
୭ | ପ୍ରଦତ୍ତ—7. Bestowed on; given unto.
୮ | ଅଭିହିତ—8. Named; said; denominated.

**ନିହିବା**—ଦେ. (ପଦ୍ୟ) କ୍ରି.—( ସଂ. ନି+ଧା ଧାତୁ, ନିହିତ )—
Nihibā ସ୍ଥାପନ କରିବା—To place.
ନିହା ଦେବାଦେଶ ମତେ ମୂହିଁ ତାଙ୍କ ପାଶେ ଯାଇ ଅର୍ଥ, ହେ ପାଣ୍ଡବଗଣ.
ଧରନା ନିହିବି ଇଚ୍ଛଲେ । ସ୍ୱଧାକାଥ, ମହାଯାତ୍ରା ।

**ନିହିମା**—ଦେ. ବି. ( ସଂ ନିମିଷ, ଆ, ଲହମହ୍ )—
Nihimā ନିମିଷ, ମୁହୂର୍ତ୍ତ, କ୍ଷଣମାତ୍ର—
ଲହମା ଲହମା Moment.
(ନିହିମା—ଅନ୍ୟରୂପ) ଅ.—ନିହିମାଏ (ଦେଖ)—Nihimāe (See)

**ନିହିମାଏ**—ଦେ. କ୍ରି ବିଣ ( ସଂ. ନିମିଷ, ଆ. ଲହମହ୍ )—
Nihimāe ୧ | ପଲକମାତ୍ରେ, ମୁହୂର୍ତ୍ତକେ—
ଲହମାୟ 1. In a trice; in a moment; in a twinkle.
ଏକଲହମାମେ ୨ | ହଠାତ୍—2. At once.
ନିହିମାକେ / ନିହିମାଯ୍ୟେ } ଅନ୍ୟରୂପ ୩ | ଢିଲାରେ, ଅବସର୍କ୍ରମେ—3 At leisure.
୪ | ଏକ ମୁହୂର୍ତ୍ତମାତ୍ର—4. For a moment.

**ନିହିଲିଷ୍ଟ**—ବୈଦେ. ବି. (ଇଂ, ଲାଟିନ୍. ନିଲ୍=କିଛି ନୁହେଁ)—
Nihilisht ଆଧୁନିକ ସମାଜକୁ ସମୂଳ ବିନାଶ ସାଧନକାରୀ ରୁଷିଆର
ନିହିଲିଷ୍ଟ ରାଜନୀତିକ ଦଳବିଶେଷ—
ନିହିଲିଷ୍ଟ Nihilist; a revolutionary socialistic party in Russia aiming at the overthrow of all the existing institutions in society.
[ ଦ୍ର—ଏମାନଙ୍କ ପ୍ରଚ୍ଛଳିତ ବାଦକୁ Nihilism ନିହିଲିଜ୍ମ ବୋଲାଯାଏ । ]

**ନିହୀନ**—ସଂ. ବିଣ. ( ନି+ହୀନ )—୧ | ଇତର, ନୀଚ—
Nihīna 1. Low; mean; base.
୨ | ବର୍ଜିତ—2, Shunned.
୩ | ପାମର—3. Vile; wretched.

**ନିହେ**—ପ୍ରାଦେ. ( ଗଡ଼ଜାତ ) ଅ—ନାଁ, ନାହିଁ, ନୁହେଁ—
Nihe No; not.

**ନିହେତାଲ୍**—ପ୍ରାଦେ. ( ସମ୍ବଲପୁର ) ବାକ୍ୟ—ଏତେବେଳ ପର୍ଯ୍ୟନ୍ତ
Nihetāl ନୁହେଁ, ଏତାବତ୍କାଳ ପର୍ଯ୍ୟନ୍ତ ନୁହେଁ—
Not up to this time; not yet.
(ଯଥା—ସେ ନିହେତାଲ୍ ଦେଖିବାକେ=ସେ ଏତେବେଳଯାକେ ଦେଖାଯାଇ ନାହାନ୍ତି । )

**ନିହ୍ନବ**—ସଂ. ବି. ( ନି+ହ୍ନୁ ଧାତୁ=ସତ୍ୟ ଗୋପନ କରିବା+ଭାବ ଅ )
Nihnaba ୧ | କୌଣସି ବିଷୟ ଗୋପନ କରିବା—
1. Concealment of a fact.
୨ | ଅପହ୍ନୁତି, ଅସ୍ୱୀକାର—2. Denial.
୩ | ଅବିଶ୍ୱାସ—3 Mistrust; distrust.
୪ | କ୍ରୂରତା—4. Wickedness.
୫ | ବଞ୍ଚନା—5. Deception
୬ | ବକ୍ରବାଦ—6. Prevarication; insinuation, innuendo.
୭ | ଶୁଦ୍ଧ, ପବିତ୍ରତା ( ହ୍ରି. ଶ. )—7 Purity.

**ନିହ୍ନବ ବାଦୀ**—ସଂ. ବିଣ. ପୁଂ. ( ନିହ୍ନବ+ବାଦିନ୍, ୧ମା, ୧ବ )—
Nihnababādi ବକ୍ରବାଦୀ—Prevaricating; evasive;
( ନିହ୍ନବବାଦିନୀ—ସ୍ତ୍ରୀ. ) insinuating.

**ନିହ୍ନବାପହାର**—ସଂ ବି. ( ମ. ପ ଲୋ. ନିହ୍ନବ+ଅପହାର )—
Nihnabāpahāra ଛଦ୍ମବଳ ତୋଷରଫ—Defalcation; embezzlement; misappropriation.

**ନିହ୍ନବୋତ୍ତର**—ସଂ. ବି. (ମ. ପ. ଲୋ, ନିହ୍ନବ+ଉତ୍ତର)—ଛଦ୍ମବାଦ;
Nihnabottara ଛଳପୂର୍ଣ୍ଣ ଉତ୍ତର—Evasive answer.

**ନିହ୍ନୁତ**—ସଂ ବିଣ. (ନି+ହ୍ନୁ ଧାତୁ+କର୍ମ. ତ)—୧ | ଅସ୍ୱୀକୃତ—
Nihnuta 1. Denied.
୨ | ଗୋପିତ, ଅପ୍ରକାଶିତ—2 Kept secret.
୩ | ଲୁକ୍କାୟିତ—3. Concealed.

**ନିହ୍ନୁତି**—ସଂ. ବି. (ନି+ହ୍ନୁ ଧାତୁ+ଭାବ. ତି)—୧ | ନିହ୍ନବ; ଗୋପନ-
Nihnuti କରଣ—1. Concealment of a fact.
୨ | ଅସ୍ୱୀକାର—2. Denial
୩ | ଅବିଶ୍ୱାସ—3. Mistrust

**ନିହ୍ନୁବାନ**—ସଂ. ବିଣ. ପୁଂ. (ନି+ହ୍ନୁ ଧାତୁ+କର୍ତ୍ତୃ. ଆନ)—
Nihnubāna ୧ | ଅପହ୍ନବକାରୀ, ଅସ୍ୱୀକାରକାରୀ—
( ନିହ୍ନୁବାନା—ସ୍ତ୍ରୀ ) 1. Denying.
୨ | ବକ୍ରୋକ୍ତିକାରୀ—2. Insinuating; evasive

**ନିହ୍ରାଦ**—ସଂ. ବି. (ନି+ହ୍ରାଦ୍ ଧାତୁ=ଶବ୍ଦ କରିବା+ଭାବ. ଅ)—ଶବ୍ଦ;
Nihrāda ନିନାଦ—Sound; noise.

**ନିକାର**—ସଂ. ବି. (ନି+କୃ ଧାତୁ=କରିବା+ଭାବ. ଅ)—୧ | ଘୃଣା—
Nikāra 1 Disgust; hatred; contempt; abhorrence; loathing.
୨ | ଅବଜ୍ଞା—2. Disregard; disrespect.
୩ | ଅବମାନନ—
3. Humiliation, degradation.
୪ | ଓକାର, ବମନେଚ୍ଛା—4 Nausea.

**ନିକାଶ**—ସଂ. ବିଣ. (ନି+କାଶ୍ ଧାତୁ=ଦୀପ୍ତି ପାଇବା+ଭାବ. ଅ)—
Nikāsa ସଦୃଶ, ତୁଲ୍ୟ—Like; resembling; similar.
(ନିକାସ—ଅନ୍ୟରୂପ) , ଯାହା ତ କହ ନାହିଁ ତା ନିକାଶ,
କରୁପେ ହେବ ସେପରି ପ୍ରକାଶ । କବିସୂର୍ଯ୍ୟ ସଙ୍ଗୀତ ।

ସ ବି.—ସାଦୃଶ୍ୟ, ତୁଲ୍ୟତା—Likeness, resemblance.

**ନୀକୋ**—ପ୍ରାଦେ (ଉକ୍ତି) ବିଣ.—(ସ. ନିକ୍ତ=ସ୍ୱଚ୍ଛ, ସଫା, ଭଲ. ଏହି
Niko ଅର୍ଥରେ ମା ନେକ୍, ହି. ନୀକୋ)—ସରୁ, ନିକ—Fine.

**ନୀଚ**—ସ ବିଣ. (ନି=ନ୍ୟୁନେ+ଈ=ସୌଭାଗ୍ୟ+ଚ ଧାତୁ=ଏକବିଧ
Nicha କରିବା+କର୍ତ୍ତୃ. ଅ)—୧ । ନିକୃଷ୍ଟ—
(ଉଚ୍ଚ—ବିପରୀତ) 1 Inferior; base; mean.
(ନୀଚତା[ତ୍ୱ]—ବି) ୨ । ଇତର—2. Vulgar; plebian.
୩ । ଅଶ୍ଳୀଳ—3 Indecent.
୪ । ଘୃଣ୍ୟ, ତୁଚ୍ଛ—4 Vile; despicable
୫ । ଅତି ମନ୍ଦ, ଅଧମ—5. Wretched.
୬ । ବର୍ବର 6 Barbarian.
୭ । ଖର୍ବ, ବାମନ, ହ୍ରସ୍ୱ—
7 Dwarfish; stunted.
୮ । ନିମ୍ନ, ଅନୁଚ୍ଚ—8 Low; depressed.
୯ । ଗଭୀର—9 Deep.
୧୦ । ନ୍ୟୁନ—10. Small; defective.

**ନୀଚକ**—ସ ବିଣ. ପୁଂ (ନୀଚ+ସ୍ୱାର୍ଥେ. କ)—୧ । ଖର୍ବ, ବାମନ—
Nichaka Dwarfish.
୨ । ହୀନ, ନୀଚ—2 Mean; vile.
୩ । ନିମ୍ନ—3. Low; depressed.
୪ । ଗଭୀର—4. Deep.

**ନୀଚ କଥା**—ସ ବି (ନୀଚ+କଥା)—୧ । ଇତର ଜନ ବ୍ୟବହୃତ କଥା—
Nicha kathā 1. Vulgar expression
୨ । ଅଶ୍ଳୀଳ ଭାଷା—2 Vile language; indecent language.

**ନୀଚକା**—ସ. ବି. ସ୍ତ୍ରୀ (ନୀଚକ+ସ୍ତ୍ରୀ. ଆ)—ଉତ୍କୃଷ୍ଟା ଗାଈ—
Nichakā An excellent cow.
(ନୀଚକୀ, ନୈଚକୀ—ଅନ୍ୟରୂପ)

**ନୀଚକୀ**—ସ. ବିଣ. ପୁଂ. (ନୀଚକା+ଇନ୍)—୧ । ଉଚ୍ଚ, ଶ୍ରେଷ୍ଠ, (ହି.ଶ)
Nichaki 1. High; excellent.
(ନୀଚକିନୀ—ସ୍ତ୍ରୀ) ୨ । ଯାହା ପାଖରେ ଭଲ ଗାଈ ଅଛି—
2. Owning an excellent cow.
ସ. ବି.—ଉପରଭାଗ (ହି. ଶବ୍ଦସାଗର)—The upper part.

**ନୀଚ କୁଳ**—ସ. ବି. (ନୀଚ+କୁଳ)—ନିମ୍ନଶ୍ରେଣୀ, ନିକୃଷ୍ଟ ଜାତି—
Nicha kula Low caste; the depressed class; person of humble birth.

**ନୀଚଗ**—ସ ବିଣ. ପୁଂ. (ନୀଚ+ଗମ୍ ଧାତୁ+କର୍ତ୍ତୃ. ଅ)—
Nichaga ୧ । ନିମ୍ନଗାମୀ; ଅଧୋଗାମୀ—1. Descending;
[ନୀଚଗା—ସ୍ତ୍ରୀ) running downwards.
୨ । ଅଧମ; ପାମର—2. Low; mean; base; vile.
ବି. (ଯାହା ତଳଆଡ଼କୁ ବହେ) ଜଳ—Water.

**ନୀଚଗା**—ସ. ବି. ସ୍ତ୍ରୀ. (ନୀଚଗ+ସ୍ତ୍ରୀ. ଆ)—ନିମ୍ନଗା; ନଦୀ—
Nichagā River; stream.

**ନୀଚଗାମୀ**—ସ. ବିଣ. ପୁଂ. (ନୀଚ+ଗମ ଧାତୁ+କର୍ତ୍ତୃ ଇନ)—
(ନୀଚଗାମିନୀ—ସ୍ତ୍ରୀ) ୧ । ନିମ୍ନଗାମୀ—1 Descending;
[ନୀଚଗାମିତା(ତ୍ୱ)ବି ] proceeding downwards.
୨ । ଯେଉଁ ପୁରୁଷ ନିମ୍ନଜାତୀୟା ସ୍ତ୍ରୀ ସଙ୍ଗେ ସହବାସ କରେ—
2 Cohabiting with a woman of lower caste.

**ନୀଚ ଗୃହ**—ସ. ବି—(ଫଳିତ ଜ୍ୟୋତିଷ)—କୌଣସି ଗ୍ରହର ଉଚ୍ଚସ୍ଥାନ
Nicha gruha ବା ରାଶିରୁ ୭ମ ଗୃହ—(astrology) The 7th house from the highest altitude of a planet.

**ନୀଚ ଗ୍ରହ**—ସ. ବି (ଫଳିତ ଜ୍ୟୋତିଷ)—ଗ୍ରହର ଉଚ୍ଚ ସ୍ଥାନ ଠାରୁ ୭ମ
Nicha graha ରାଶିସ୍ଥ ରବିଗ୍ରହ ପ୍ରଭୃତି—(Astrology) A planet (sun etc) situate on the 7th sign from its highest altitude.

**ନୀଚ ଜାତ**—ସ. ବିଣ. ପୁଂ. (ନୀଚ+ଜାତ)—୧ । ନୀଚକୁଳୋଦ୍ଭବ—
Nicha jāta 1. Of low caste.
(ନୀଚଜାତୀୟ—ଅନ୍ୟରୂପ) ୨ । ନିମ୍ନତରଜାତୀୟ—
(ନୀଚଜାତା, ନୀଚଜାତୀୟା—ଅନ୍ୟରୂପ) 2. Belonging to a lower caste.

**ନୀଚ ଜାତି**—ସ. ବି. (ନୀଚ+ଜାତି)—ନୀଚକୁଳ (ଦେଖ)
Nicha jāti Nichakula (See)

**ନୀଚତର**—ସ. ବିଣ. (ନୀଚ+ତୁଳନା ଅର୍ଥରେ ତର)—
Nichatara ଦୁଇଙ୍କ ମଧ୍ୟରେ ନିମ୍ନ—Lower.

**ନୀଚତମ**—ସ. ବିଣ. (ନୀଚ+ତୁଳନା ଅର୍ଥରେ ତମ)—
Nichatama ଅନେକଙ୍କ ମଧ୍ୟରେ ସର୍ବନିମ୍ନ—Lowest.

**ନୀଚତା(ତ୍ୱ)**—ସ. ବି. (ନୀଚ+ଭାବାର୍ଥେ ତା, ତ୍ୱ)—୧ । ହୀନତା;ନିକୃଷ୍ଟତା
Nichatā(twa) 1. Inferiority.
୨ । ନିମ୍ନତା—2. Lowness.

**ନୀଚ ପଦ**—ସ. ବି. (କର୍ମଧା, ନୀଚ+ପଦ)—ଅଧମ ପଦ—
Nicha pada Low station or position; humble position.

**ନୀଚ ପ୍ରଦେଶ**—ସ. ବି. (କର୍ମଧା; ନୀଚ+ପ୍ରଦେଶ)—ନିମ୍ନଭୂମି—
Nicha pradesa Low country; low land.

**ନୀଚ ବୁଦ୍ଧି**—ସ. ବି. (ନୀଚ+ବୁଦ୍ଧି)—ହୀନବୁଦ୍ଧି—
Nicha buddhi Mind bent on insignificant or mean things.
ସ. ବିଣ—ହୀନବୁଦ୍ଧି (ବ୍ୟକ୍ତି)—Mean-minded.

**ନୀଚ ଭାବ**—ସ. ବି. (କର୍ମଧା, ନୀଚ+ଭାବ)—ହୀନଚିନ୍ତା—
Nicha bhāba Lowly or mean thoughts.
୨ । ନୀଚତା—2. Lowness.

**ନୀଚ ଭାଷା**—ସ. ବି. (ନୀଚ+ଭାଷା)—୧ । ଇତର ଜନ ବ୍ୟବହୃତ ଭାଷା—
Nicha bhāshā 1 Vulgar or rustic language.
୨ । ଅଶ୍ଳୀଳ ଭାଷା—2. Indecent language.

**ନୀଚ ଭୋଜ୍ୟ**—ସ. ବିଣ. (ନୀଚ+ଭୋଜ୍ୟ)—୧ । (କର୍ମଧା) ହୀନ (ଖାଦ୍ୟ)
Nicha bhojya Nasty or despicable (food).

୨ । (କର୍ମ୍ମ ତତ୍) ନୀଚ ବ୍ୟକ୍ତିଙ୍କ ବ୍ୟବହୃତ (ଖାଦ୍ୟ)—
2 (food) Eaten by low people.
ସଂ. ବି—ପଲାଣ୍ଡୁ, ପିଆଜ—Onion.

ନୀଚମନା(ନାଃ)—ସଂ. ବିଣ. (ବହୁବ୍ରୀହି, ନୀଚ+ମନସ୍)—ହୀନବୁଦ୍ଧି
Nichamanā(nāḥ) ବିଶିଷ୍ଟ—Low minded; mean minded.

ନୀଚ ଯୋନି—ସଂ ବି. (କର୍ମଧା, ନୀଚ+ଯୋନି)—
Nicha joni ନିକୃଷ୍ଟଜୀବର ବା ଜାତିର ବା ମନୁଷ୍ୟର ଗର୍ଭ—The uterus of base animal or caste or people

ନୀଚଯୋନିଜ—ସଂ. ବିଣ. (ନୀଚ+ଯୋନି+ଜନ୍ ଧାତୁ+ କର୍ତ୍ତୃ. ଅ)—
Nichajonija ୧ । ନୀଚକୁଳ ସମ୍ଭୂତ—
1. Base born, of humble birth.
୨ । ପଶ୍ୱାଦି ନିମ୍ନ ପ୍ରାଣିସମ୍ଭୂତ—
2. Born of low animals or beings.

ନୀଚଯୋନୀ--ସଂ ବିଣ. (ନୀଚ+ଯୋନି+ଅସ୍ତ୍ୟର୍ଥେ ଇନ୍)—
Nichajoni ନୀଚଯୋନିଜ (ଦେଖ)
Nichajonija (See)

ନୀଚ ଲୋକ—ସଂ. ବି. (ନୀଚ+ଲୋକ)—୧ । ଇତର ଲୋକ—
Nicha loka 1 A man who does not belong to a higher caste, a vulgar person
୨ । ନିମ୍ନବଂଶରେ ଜାତ ବ୍ୟକ୍ତି—
2. Man of low birth.
୩ । ମନ୍ଦବୁଦ୍ଧି ବା ନୀଚପ୍ରକୃତିକ ବ୍ୟକ୍ତି—
3 A mean minded person

ନୀଚୁ—ଦେ. ବିଣ—୧ । ନିମ୍ନ—1. Low, depressed.
Nichu ୨ । ନିକୃଷ୍ଟ—2. Inferior; base; mean.
निचु ସ ବିଣ—ନୀଚର ସ୍ତ୍ରୀଲିଙ୍ଗ—
नीचा (ନୀଚୁଆ—ଅନ୍ୟରୂପ) Feminine of Nicha.

ନୀଚାଚାର--ସଂ. ବି. (କର୍ମଧା, ନୀଚ+ଆଚାର)—୧ । ହୀନ ବ୍ୟବହାର—
Nichāchāra 1. Low or mean conduct.
୨ । ଇତରଜନୋଚିତ ବ୍ୟବହାର—
2. Vulgar conduct.

ନୀଚାଶୟ - ସଂ. ବିଣ. ପୁଂ. (ବହୁବ୍ରୀହି, ନୀଚ+ଆଶୟ)—୧ । ନୀଚମନା—
Nichāsaya 1 Mean minded.
(ନୀଚାଶୟା—ସ୍ତ୍ରୀ) ୨ । ସଙ୍କୀର୍ଣ୍ଣମନା—
(ନୀଚାଶୟତା—ବି) 2. Narrow minded
୩ । ହୀନ ସ୍ୱାର୍ଥପର—3. Lowly selfish.
୪ । ଦାସବୃତ୍ତିସମ୍ପନ୍ନ—4. Servile; having a slave mentality.

ନୀଚେ—ଦେ ଅ. (ସ ନୀଚୈଃ)—ନିମ୍ନରେ, ଅଧୋଭାଗରେ—
Niche Below; lower down.
नीचे निचे

ନୀଚୈଃ—ସଂ. ଅ—୧ । ଆସ୍ତେ; ଧୀରେ ଧୀରେ—
Nichaiḥ 1. Softly; slowly.
୨ । ଅନୁଚ୍ଚ ସ୍ୱରରେ—2. In a low voice.
୩ । ଅଳ୍ପ ଅଳ୍ପ, ଅଳ୍ପଶଃ—3. Little by little.

ନୀଡ - ସଂ. ବି. (ନି+ଈଡ୍ ଧାତୁ=ସ୍ତୁତି କରିବା+ଅଧି ଅ, କିମ୍ବା ନି+
Nirda ଇଲ୍ ଧାତୁ=ଗମନ, କ୍ଷେପଣ, ଶୟନ କରିବା+ଅଧି. ଅ)—୧ । ପକ୍ଷୀର ବସା—1. Bird's nest.
୨ । ସ୍ଥାନ—2 Place.
୩ । ଆଶ୍ରୟ ସ୍ଥାନ—3 Shelter.
୪ । ରଥମଧ୍ୟରେ ଆରୋହୀଙ୍କ ବସିବା ସ୍ଥାନ (ହ୍ର ଶ)—
4 The place inside a car where the passengers sit.

ନୀଡକ—ସଂ ବି. (ନୀଡ+କୈ ଧାତୁ=ପ୍ରକାଶିତ ହେବା+କର୍ତ୍ତୃ. ଅ)—
Nirdaka ପକ୍ଷୀ—A bird

ନୀଡଜ—ସଂ ବି. (ନୀଡ଼+ଜନ୍ ଧାତୁ=ଜନ୍ମ ହେବା+କର୍ତ୍ତୃ. ଅ)—
Nirdaja ପକ୍ଷୀ—A bird.

ନୀଡୋଦ୍ଭବ - ସଂ. ବି. (୫ମୀ ତତ୍, ନୀଡ଼+ଉଦ୍ଭବ)—ପକ୍ଷୀ—
Nirdodbhaba A bird.

ନୀତ - ସଂ. ବିଣ (ନୀ ଧାତୁ=ନେବା+କର୍ମ ତ)—୧ । ପ୍ରାପ୍ତ; ଗୃହୀତ—
Nita 1 Obtained, gained; received.
୨ । ନିଆ ହେବା, ବାହିତ—2 Taken; carried.
୩ । ଅତିବାହିତ—3. Spent, passed.
୪ । ଉତ୍ତମାଚରଣବିଶିଷ୍ଟ—4. Well behaved.
ସଂ ବି.—୧ । ଅର୍ଥ; ଧନ—1. Wealth; riches.
୨ । ଶସ୍ୟ—2. Corn

ନୀତି—ସଂ ବି. (ନୀ ଧାତୁ=ନେବା+ଭାବ. ତି)—୧ । ନୟ; ରାଜନୀତି
Niti ଶାସ୍ତ୍ର, ରାଜା ଓ ପ୍ରଜାଙ୍କ ରକ୍ଷା ପାଇଁ ନିର୍ଦ୍ଧାରିତ ବ୍ୟବସ୍ଥା—
1. Polity; politics.
୨ । ହିତାହିତ ବିଚାର ବିଷୟକ ଶାସ୍ତ୍ର—
2 Ethics; morals
୩ । ଚାଲିଚଳନ—3. Conduct; course of action
୪ । ନ୍ୟାୟ—4. Justice; right.
୫ । ନ୍ୟାୟାନୁଗତ ଆଚରଣ—
5. Just or righteous conduct.
୬ । ସାଧୁତା; ଧାର୍ମିକତା—6. Righteousness.
୭ । ପ୍ରଥା, ରୀତି, ପ୍ରଥା, ଆଚାର ପଦ୍ଧତି—
7 Custom; manners.
୮ । ପ୍ରାପ୍ତି—8 Obtaining; receipt; attainment.
୯ । ସାଂସାରିକ ସଦାଚରଣ, ଲୋକମର୍ଯ୍ୟାଦାନୁଗତ ବ୍ୟବହାର—
9. Practical morality; approved course of action.
୧୦ । ଯାପନ—10. Passing, whiling away; causing to pass.
୧୧ । ସଦାଚରଣ—
11. Good behaviour; morality.
ନୀତ ଇତ ଯେବେ ଅନୀତ ଲୋକ କରେ । କୃଷ୍ଣସିଂହ, ମହାଭାରତ ବନ

୧୨ । ସାଂସାରିକ ଜ୍ଞାନ, ବିଷୟ ଜ୍ଞାନ—
12. Worldly wisdom.
୧୩ । ବିଶିଷ୍ଟ ଉଦ୍ଦେଶ୍ୟ ପାଇଁ ଅବଲମ୍ବିତ ପନ୍ଥା—13. Policy.
୧୪ । ନିୟମ—14. Rule; code
୧୫ । ଦୈନନ୍ଦିନ କାର୍ଯ୍ୟକ୍ରମ—15. Daily duties.
୧୬ । ନେବା କର୍ମ ବା ରୀତି—16. The act or mode of taking or carrying.
୧୭ । କାର୍ଯ୍ୟ ସିଦ୍ଧି ପାଇଁ ଅବଲମ୍ବିତ ଉପାୟ—
17. Means; expedient

ସେବା ଦେ. ବି.—(ସଂ. ନିତ୍ୟ)—୧ । ରାଜା ଓ ଦେବତାଙ୍କର
**सेवा, रसम** ଦୈନିକ କାର୍ଯ୍ୟାବଳି—1. Daily routine of
नीति kings or Deities; ritual.
**नीति** ୨ । (ସଂ. ନୀତି) ଭଲ କାର୍ଯ୍ୟ—2. Good act
নিত ଦେ. ଅ. (ସଂ. ନିତ୍ୟ)—
**नितम्र** Daily; every day.

**ନୀତି କଥା**—ସଂ. ବି. (ମ ପ ଲୋ. ନୀତି+କଥା)—୧ । ହିତୋପଦେଶ—
Niti katha 1. A moral discourse; moral precept.
ନୀତିବଚନ } ଅନ୍ୟରୂପ ୨ । ନ୍ୟାୟ ବାକ୍ୟ—2 Polity;
ନୀତିବାକ୍ୟ morals; a discourse on ethics.
୩ । ଢଗ; ପ୍ରବଚନ—3. Proverb; a wise saying.
୪ । ନୀତି ଉପଦେଶକ କାହାଣୀ—4. Moral tale; fable.

**ନୀତି କୁଶଳ**—ସଂ. ବିଣ. ପୁଂ. (୭ମୀ ତତ୍, ନୀତି+କୁଶଳ)—ନୀତିଶାସ୍ତ୍ରଜ୍ଞ—
Niti kusala Well versed in ethics or politics; politic; prudent.
(ନୀତିକୁଶଳତା—ବି)
(ନୀତିବିଶାରଦ, ନୀତିନିପୁଣ, ନୀତିଦକ୍ଷ—ଅନ୍ୟରୂପ)
(ନୀତିକୁଶଳା, ନୀତିବିଶାରଦା, ନୀତିନିପୁଣା, ନୀତିଦକ୍ଷା—ସ୍ତ୍ରୀ)

**ନୀତିଜ୍ଞ**—ସଂ. ବିଣ. ପୁଂ. ( ନୀତି+ଜ୍ଞା ଧାତୁ=ଜାଣିବା+କର୍ତ୍ତୃ. ଅ )—
Nitijna ନୀତିଶାସ୍ତ୍ରଜ୍ଞ—Well versed in ethics or politics; prudent.
( ନୀତିଜ୍ଞା—ସ୍ତ୍ରୀ; ନୀତିଜ୍ଞତା—ବି )

**ନୀତି ତତ୍ତ୍ୱ**—ସଂ. ବି. ( ନୀତି+ତତ୍ତ୍ୱ )—୧ । ନୟଶାସ୍ତ୍ର; ହିତୋପଦେଶକ
Niti tattwa ଶାସ୍ତ୍ର—1. Ethics; the science of morals.
ନୀତିବିଦ୍ୟା } ଅନ୍ୟରୂପ ୨ । ରାଜନୀତି ଶାସ୍ତ୍ର—
ନୀତିଶାସ୍ତ୍ର 2. Politics; polity.
[ ଦ୍ର—ଶରଶଯ୍ୟାରେ ଆସୀନ ଭୀଷ୍ମ ଯୁଧିଷ୍ଠିରଙ୍କୁ ନୀତିଶାସ୍ତ୍ର ସମ୍ବନ୍ଧେ ଉପଦେଶ ଦେଇଥିବା ବିଷୟ ମହାଭାରତରେ ଅଛି । ପ୍ରଜାମାନେ ସୁଖରେ କିପରି ରହିବେ ଓ ରାଜା କିପରି ଭାବରେ ରାଜ୍ୟପାଳନ, ରାଜ୍ୟଶାସନ ଓ ରାଜ୍ୟ ରକ୍ଷା କରିବେ ଏ ବିଷୟ ଭୀଷ୍ମ କହିଛନ୍ତି । ]

**ନୀତି ପ୍ରୟୋଗ**—ସଂ. ବି. ( ୬ଷ୍ଠୀ ତତ୍; ନୀତି+ପ୍ରୟୋଗ )—
Niti prayoga ଦୈନନ୍ଦିନ ବ୍ୟାପାରରେ ନୀତିଶାସ୍ତ୍ରର ନିର୍ଦ୍ଦିଷ୍ଟ ନିୟମମାନ ଖଟାଇବା—The practical application of moral, political or ethical principles in daily life.

**ନୀତି ବଢ଼ାଇ(ଢେ଼)ଇବା**—ଦେ. କ୍ରି—( ରାଜାଙ୍କର ବା ଦେବତାଙ୍କର
Niti bardha(rdhe)iba ନିତ୍ୟକର୍ମ ସମାପନ କରିବା—
ସେବା ଶେଷ କରୀ To finish the daily personal rites and services (of an idol or a Raja.)
ତକ୍ଷର ଗଳେ ଉଦେ ହୋଇ,
ସକ୍ଷର ନୀତି ବଢାଇ ଦେଇ । ଭକ୍ତ. କୋଇନ୍ଦ୍ରୋଣସ୍ ଦେଖ ।

**ନୀତି ବଢ଼ିବା**—ଦେ. ବି—ରାଜା ଓ ଦେବତାଙ୍କର ଦୈନନ୍ଦିନ ନିର୍ଦ୍ଧାରିତ
Niti bardhiba କାର୍ଯ୍ୟବିଶେଷର ସମାଧା ହେବା—
ସେବା ଶେଷ ହଓଥା The completion or finish of the items of daily routine of a Raja or a Deity.

**ନୀତି ବହିର୍ଭୂତ**—ସଂ. ବିଣ. ( ୫ମୀ ତତ୍, ନୀତି+ବହିର୍ଭୂତ )—
Niti bahirbhuta ୧ । ଅନୈତିକ—
ନୀତିବିରୁଦ୍ଧ
ନୀତିବିରୋଧୀ } ଅନ୍ୟରୂପ 1. Immoral; impolitic.
ନୀତିଗର୍ହିତ ୨ । ନୈତିକ ବିଧିବିରୁଦ୍ଧ—
ନୀତିବିଗର୍ହିତ 2 Against a policy.

**ନୀତିବିତ୍**—ସଂ. ବିଣ. ( ନୀତି+ବିଦ୍ ଧାତୁ+କର୍ତ୍ତୃ କ୍ୱିପ୍ ୧ମା. ୧ବ )—
Nitibit ନୀତିଶାସ୍ତ୍ରଜ୍ଞ—Well versed in politics.

**ନୀତିବେତ୍ତା**—ସଂ. ବିଣ. ପୁଂ. ( ନୀତି+ବିଦ୍ ଧାତୁ=ଜାଣିବା+କର୍ତ୍ତୃ. ତୃ
Nitibetta ୧ମା. ୧ବ )—ନୀତିଶାସ୍ତ୍ରଜ୍ଞ—
( ନୀତିବେତ୍ରୀ—ସ୍ତ୍ରୀ ) Well versed in ethics or politics.

**ନୀତିବେଦୀ**—ସଂ ବିଣ. ପୁଂ. ( ନୀତି+ବିଦ୍ ଧାତୁ ଜାଣିବା+କର୍ତ୍ତୃ. ଇନ
Nitibedi ୧ମା. ୧ବ )—ନୀତିବେତ୍ତା ( ଦେଖ )—
( ନୀତିବେଦିନୀ—ସ୍ତ୍ରୀ ) Nitibetta (See).

**ନୀତିମନ୍ତ**—ଦେ. ବିଣ. ( ସଂ. ନୀତିମାନ୍ )—ନୀତିଜାଣିଥିବା (ବ୍ୟକ୍ତି)—
Nitimanta (person) Well versed in ethics.
( ନୀତିବନ୍ତ—ଅନ୍ୟରୂପ ) କାର୍ତ୍ତିମନ୍ତ ସେ ନୀତିମନ୍ତ ସେ ହୋଇବ,
नीतिमन्त ଶନିଦ୍ରଙ୍କର ବଳ ବଳରେ ଚକ୍ଷିବ ।
**नीतिवंत** କୃଷ୍ଣସିଂହ, ମହାଭାରତ ଆଦ ।

**ନୀତିମାନ୍**—ସଂ. ବିଣ. ପୁଂ. (ନୀତି+ମତ୍, ୧ମା. ୧ବ)—ନୀତିକୁଶଳ—
Nitiman Well versed in politics or ethics.
(ନୀତିମତୀ—ସ୍ତ୍ରୀ, ନୀତିମତ୍ତା—ବି)

**ନୀତି ଶିକ୍ଷା**—ସଂ. ବି ( ୭ମୀ ତତ୍, ନୀତି+ଶିକ୍ଷା )—ଧର୍ମ ଓ ନ୍ୟାୟ
Niti siksha ସମ୍ବନ୍ଧୀୟ ଶିକ୍ଷା—Moral instruction.

**ନୀତି ସଙ୍ଗତ**—ସଂ. ବିଣ. ( ନୀତି+ସଙ୍ଗତ )—ନୀତିର ଅନୁକୂଳ—
Niti sangata Conformable to morality;
( ନୀତିସମ୍ମତ—ଅନ୍ୟରୂପ ) consistent with right; ethical.

**ନୀତ୍ତ**—ସଂ. ବିଣ. ( ନି+ଦା ଧାତୁ+କର୍ମ. ତ )—ଦତ୍ତ—
Nitta Given away

**ନୀଧ୍ର**—ସଂ. ବି. ( ନି+ଧୃ ଧାତୁ=ଧାରଣ କରିବା, ପିନ୍ଧିବା+କର୍ମ ଅ )—
Nidhra ୧ । ଘର ଚାଳର ଧାର—1. The eaves of a house; the drip; the lower edge of a thatch.
୨ । ବନ—2. Wood; forest.

୩ । ନେମି, ଚକ୍ରଧାର; ପଞ୍ଝି—
3 The circumference or rim of a wheel.
୪ । ଚନ୍ଦ୍ର—4 The moon
୫ । (ଜ୍ୟୋତିଷ) ରେବତୀ ନକ୍ଷତ୍ର—
5. (astronomy) The last or 27th lunar mansion

**ନୀନାଗୀତ**—ପ୍ରାଦେ (ଗଞ୍ଜାମ) ବି—ଶିଶୁରଞ୍ଜନ ଗୀତ; ନାନାବାୟୁଗୀତ—
Nināgita Infant song; lullaby.
(ନାନାଗୀତ—ଅନ୍ୟରୂପ).

**ନୀପ**—ସଂ. ବି ( ନୀ ଧାତୁ=ପାଇବା+ଅପାଦାନ ଅ; ଯହିଁରୁ ସନ୍ତୋଷ
Nipa ମିଳେ)—୧ । କଦମ୍ବଗଛ ଓ ଫୁଲ—1. The Kadamba tree and its flower; Nauclea Cadumba.
୨ । ପର୍ବତର ପାଦଦେଶ—2 The foot of a mountain.
୩ । ବନ୍ଧୂକ ପୁଷ୍ପ, ବଧୂଲି (ଦେଖ) (ହି. ଶବ୍ଦସାଗର)—
3. Badhūli ( See )
୪ । ଅଶୋକ ( ଦେଖ ) (ହି. ଶବ୍ଦସାଗର)—
4. Asoka ( See )

**ନୀବାର**—ସଂ. ବି ( ନି+ବୃ ଧାତୁ=ପ୍ରାର୍ଥନା କରିବା+କର୍ମ. ଅ)—
Nibāra ବାଲୁଙ୍ଗାଧାନ—Paddy growing wild or without culture.

**ନୀବି**—ସଂ. ବି (ନି+ବ୍ୟେ ଧାତୁ=ଆଚ୍ଛାଦନ କରିବା+କରଣ. ଇ)—
Nibi ୧ । ବଣିକର ମୂଳଧନ, ପୁଞ୍ଜି, ପାର୍ଣ୍ଣି—1. Capital, stock in trade; the principal invested in a business.
(ନୀବୀ—ଅନ୍ୟରୂପ)
୨ । ବାଜି; ପଣ—2. Wager.
୩ । କଟିବସ୍ତ୍ର ଗ୍ରନ୍ଥି—3. Cloth tied round the waist; waist cloth; the knot which keeps loin cloth tight.
୪ । ସ୍ତ୍ରୀ କଟିବସ୍ତ୍ର ବା ବନ୍ଧନୀ —
4. Girdle worn by females.
୫ । ସ୍ତ୍ରୀ କଟିଦେଶସ୍ଥ ପରିଧାନ ବସ୍ତ୍ରର ଗଣ୍ଠି, କଛା, ଖୋସଣୀ—
5. A knot into which a woman's cloth is gathered at the waist.
୬ । ଶାଢ଼ୀ ( ହି. ଶବ୍ଦସାଗର )—
6. The cloth worn by women.

**ନୀବିବନ୍ଧ**—ସଂ. ବି (ସଂ. ନୀବି+ବନ୍ଧ)—ଅଣ୍ଟାରେ ଥିବା ପିନ୍ଧା ଲୁଗାର
Nibibandha ଗଣ୍ଠି, ସ୍ତ୍ରୀମାନଙ୍କ ଲୁଗାର ଖୋସଣୀ; କଣ୍ଟମୁଠି—
The knot into which the cloth round a woman's waist is gathered together or tied securely.
(ନୀବିବନ୍ଧନ—ଅନ୍ୟରୂପ)
ସୁହିନ ଶାଢୀ କାଛ ଡିଲିଛନ୍ତି
ନୀବିଭ ସାଗାରକେ ଜଗତ ମେ ହନ୍ତି । କୃଷ୍ଣସିଂହ, ମହାଭାରତ. ଅଦ ।

**ନୀବି ମୋକ୍ଷଣ**—ସଂ. ବି. ( ୬ଷ୍ଠୀ ତତ୍, ନୀବି+ମୋକ୍ଷଣ )—
Nibi mokshaṇa କଣ୍ଟମୁଠି ଫିଟାଇବା—The loosening of the waist-knot of the loin cloth.
(ନୀବିମୋଚନ—ଅନ୍ୟରୂପ)

**ନୀବ୍ର**—ସଂ. ବି (ନି+ବୃ ଧାତୁ=ବିଦ୍ୟମାନ ଥିବା+କର୍ତ୍ତୃ. ଅ)—
Nibra ୧ । ବନ—1 Wood; forest.
୨ । ଘାଞ୍ଜି, ଘରର ଓଳି—
2. The eaves of the thatch.
୩ । ଚକ୍ରଧାର—3. The rim of a wheel.
୪ । ଚନ୍ଦ୍ର—4. The moon
୫ । ରେବତୀ ନକ୍ଷତ୍ର—5. The 27th lunar mansion.

**ନୀମାଂସା**—ଗ୍ରା. ବି—(ସଂ. ମୀମାଂସାର ଅପଭ୍ରଷ୍ଟ)—ମୀମାଂସା—
Nimāmsā Decision.

**ନୀୟନ୍ତା**—ସଂ. ବିଣ. ପୁଂ ( ନୀ ଧାତୁ+କର୍ତ୍ତୃ ତୃ, ୧ମା ୧ବ )—
Niyantā ୧ । ଗ୍ରହୀତା—1. Receiving.
(ନୀୟନ୍ତ୍ରୀ—ଅନ୍ୟରୂପ) ୨ । ବହନକାରୀ—2. Carrying.
୩ । ନେତା—3. Leading.
ସଂ. ବି—୧ । ବେପାରୀ—1. Trader
୨ । ନେବା ବ୍ୟକ୍ତି —2. Leader
୩ । ଗ୍ରହଣକାରୀ ବ୍ୟକ୍ତି—3 Receiver.
୪ । ବହନକାରୀ ବ୍ୟକ୍ତି—4. Carrier.
୫ । ବିଷ୍ଣୁଙ୍କ ନାମ—5. A name of Bishṇu.

**ନୀୟମାନ**—ସଂ. ବିଣ. ପୁଂ ( ନୀ ଧାତୁ+କର୍ମ. ଅନ )—୧ । ଯାହା ନିଆ
Niyamāna ହେଉଅଛି—1. Being led; being taken or conveyed.
(ନୀୟମାନା—ସ୍ତ୍ରୀ)
୨ । ଗୃହ୍ୟମାନ—2. Being received.

**ନୀର**—ସଂ. ବି (ନୀ ଧାତୁ=ପାଇବା+କର. ର, କିମ୍ବା ନିର୍=ନିର୍ଗତ+
Nira ର=ଅଗ୍ନି, ଯହିଁରୁ ବାଡ଼ବାଗ୍ନି ଉଠେ)—୧ । ଜଳ, ପାଣି—
1. Water.
୨ । ରସ—2 Juice
୩ । ଦ୍ରବପଦାର୍ଥ—3. Liquid.
[ ଦ୍ର—ଏହା ଦ୍ରାବିଡ଼ ଭାଷା ନୀରୁ (ଜଳ)ରୁ ସଂସ୍କୃତକୁ ଆସିଅଛି ବୋଲି ପଣ୍ଡିତମାନେ କହନ୍ତି । ]

**ନୀରକ୍ତ**—ସଂ. ବିଣ. ପୁଂ (ବହୁବ୍ରୀହି; ନିର୍+ରକ୍ତ)—୧ । ରକ୍ତହୀନ—
Nirakta 1. Bloodless; anaemic.
( ନୀରକ୍ତା—ସ୍ତ୍ରୀ ) ୨ । ପାଣ୍ଡୁରବର୍ଣ୍ଣ—
2. Pale; livid; sallow.

**ନୀରକ୍ତିଆ**—ଦେ. ବିଣ. ପୁଂ ଓ ସ୍ତ୍ରୀ (ସଂ. ନୀରକ୍ତ)—ନୀରକ୍ତ (ଦେଖ)
Niraktiā Nirakta (See)
(ନୀରକ୍ତୀ, ନୀରକ୍ତେଇ—ସ୍ତ୍ରୀ).

**ନୀରକ୍ଷ**—ଦେ. ବିଣ—ଅରକ୍ଷିତ, ଆଶ୍ରୟଶୂନ୍ୟ, ଅରକ୍ଷ, ନିରାଶ୍ରୟ—
Niraksha Helpless.
ଅବଞ୍ଚିତ ଅରକ୍ଷ ତଣ ଏ ନୀରକ୍ଷକେ ଘୋର ସଙ୍କଟୁ ଉଦ୍ଧାର ।
ମଧୁସୂଦନ, ସଙ୍ଗୀତମାଳା ।

**ନୀରଜ**—ସଂ.ବି (ନୀର୍=ଜଳ+ଜନ୍ ଧାତୁ=ଜାତହେବା+କର୍ତ୍ତୃ. ଅ)—
Niraja ୧ । ପଦ୍ମ, ଜଳଜ—1. Lotus.

୨ । ମୁକ୍ତା—2. Pearl.
୩ । ଓଧ; ଉଦ୍‌ବିଡ଼ାଲ—3 Otter.
୪ । କୁଡ—4 A medicinal herb.
ସଂ. ବିଣ—ଜଳଜାତ—Aquatic.

**ନୀରଜା**—ସଂ. ବିଣ ପୁଂ (ବହୁବ୍ରୀହି, ନିର୍=ନାହିଁ+ରଜସ୍=ଧୂଳି)—
Niraja ୧ । ରଜୋହୀନ; ଧୂଳିଶୂନ୍ୟ—
( ନୀରଜ, ନୀରଜସ୍କ—ଅନ୍ୟରୂପ ) 1 Free from dust.
( ନୀରଜାଃ—ସ୍ତ୍ରୀ ) ୨ । ପରାଗହୀନ ( ଫୁଲ )—
3. Pollenless
୪ । ରଜୋଗୁଣବର୍ଜିତ—4. Free from darkness or gross worldly passions and attributes.
ସଂ. ବି. ପୁଂ – ମହାଦେବ—God Śiba
ସ୍ତ୍ରୀ—୧ । ଯେଉଁ ସ୍ତ୍ରୀ ଋତୁମତୀ ହୋଇ ନାହିଁ—
1. A woman who has not had her menses.
୨ । ଯେଉଁ ସ୍ତ୍ରୀର ରଜୋଦ୍‌ଗମ ସ୍ଥଗିତ ହୋଇଅଛି—
2. A woman whose menstrual flow has ceased.

**ନୀରଜାଃ**—ସଂ. ବିଣ. ସ୍ତ୍ରୀ (ନୀରଜସ୍, ନିର୍=ନାହିଁ+ରଜସ୍=ଧୂଳି)—
Nirajāḥ ୧ । ଅରଜସ୍କା ( ନାରୀ ), ଯେଉଁ ସ୍ତ୍ରୀର ଋତୁସ୍ରାବ
( ନୀରଜସ୍କା – ଅନ୍ୟରୂପ ) ହୁଏ ନାହିଁ—1. Not menstruating ( woman ). ( a woman ) who has no menses.
୨ । ଧୂଳିରହିତା—2 Free from dust
୩ । ରଜୋଗୁଣରହିତା—3. Free from gross worldly passions or attributes
୪ । ଅନାଗତାର୍ତ୍ତବା; ଯେଉଁ ବାଳକାର ରଜୋଦର୍ଶନ ହୋଇ ନାହିଁ, ଅରଜସ୍ୱଳା—4. Not yet menstruated ( girl ).
ସଂ. ବି—୧ । ଦୁର୍ଗା—1. Goddess Durgā.
୨ । କୁମାରୀ—2. Maiden.
୩ । ଅନାଗତାର୍ତ୍ତବା କନ୍ୟା—
3. A girl before the age of puberty.

**ନୀରଥୀ**—ସଂ. ବିଣ. (ନିର୍+ରଥିନ୍ )—ରଥସ୍ୱାମିହୀନ, ଯେଉଁ ରଥର ରଥୀ
Nirathi ନ ଥାଏ—Destitute of a charioteer; driverless (car).

**ନୀରଦ**—ସଂ. ବି (ନୀର+ଦା ଧାତୁ=ଦାନ କରିବା+କର୍ତ୍ତୃ. ଅ)—
Nirada ୧ । ମେଘ—1. Cloud.
୨ । ମୁଥା—2. Bulbous rooted grass; Cyperus Rotundus.
(ନୀରଦା—ସ୍ତ୍ରୀ) ସଂ. ବିଣ. ପୁଂ—୧ । (ବହୁବ୍ରୀହି; ନି=ନାହିଁ+ରଦ=ଦନ୍ତ)—୧ । ଦନ୍ତହୀନ—1. Toothless.
୨ । (ନୀର+ଦା ଧାତୁ+କର୍ତ୍ତୃ. ଅ)—ଜଳ ଦାତା—
2. Giving water.

**ନୀରଧର**—ସଂ ବି. (ନୀର+ଧୃ ଧାତୁ=ଧାରଣ କରିବା+କର୍ତ୍ତୃ. ଅ)—
Niradhara ଜଳଧର, ମେଘ—Cloud.
ସାଥ ମୋ ବାର୍ତ୍ତା ଶୁଣ ହେ ନୀରଧର ।
ରଘୁନାଥ. ମେଘଦୂତ ।

**ନୀରଧି**—ସଂ ବି. (ନୀର+ଧା ଧାତୁ=ଧାରଣ କରିବା+କର୍ତ୍ତୃ. ଇ)—
Niradhi ଜଳଧି, ସମୁଦ୍ର—Ocean.

**ନୀରନିଧି**—ସଂ. ବି. (ନୀର+ନି+ଧା ଧାତୁ=ଧାରଣ କରିବା+କର୍ତ୍ତୃ. ଇ)
Niranidhi ଜଳଧି, ସମୁଦ୍ର—Ocean.

**ନୀରନ୍ଧ୍ର**—ସଂ. ବିଣ. (ବହୁବ୍ରୀହି, ନିର୍+ରନ୍ଧ୍ର)—୧ । ଛିଦ୍ରରହିତ—
Nirandhra 1. Without a hole.
୨ । ନିବିଡ଼, ଘନ—2. Thick; dense.
ମହାବେଗେ ଶରଜାଳ ଅର୍ଜ୍ଜୁନ ପ୍ରବଳ ବର୍ଷନ୍ତେ,
ନୀରନ୍ଧ୍ର ସେ ଶର ଦଳ ପକାଇଲେ ଘାଣ୍ଟି । ରଘୁନାଥ. ମହାଯାତ୍ରା ।
୩ । ଗାଢ଼—3. Solid.
୪ । ଦୋଷହୀନ—
4 Faultless; flawless; defectless.

**ନୀରପତି**—ସଂ. ବି. (୬ଷ୍ଠୀ ତତ୍, ନୀର+ପତି)—ବରୁଣ ଦେବ—
Nirapati Baruṇa, the God of water.

**ନୀରବ**—ସଂ. ବିଣ. (ବହୁବ୍ରୀହି, ନିର୍+ରବ)—୧ । ଅବାକ୍—
Niraba 1. Mute; speechless
(ନୀରବା – ସ୍ତ୍ରୀ) ୨ । ନିଃଶବ୍ଦ—2. Silent; noiseless.
(ନୀରବତା – ବି) ୩ । ନିସ୍ତବ୍ଧ—3. Calm; still; quiet.

**ନୀରବିବା**—ଦେ. (ପଦ୍ୟ) କ୍ରି.—(ସଂ. ନୀରବ)—ନୀରବ ହେବା—
Nirabibā To be silent.
ନୀରବନ୍ତେ ଆଶଙ୍କନ, ସେହି ମୁହୂର୍ତ୍ତିରେ, ଖସି ଅଭ୍ରଗ୍ର ସ୍ୱର୍ଗ କ୍ଷୀଣପୁଣ୍ୟ ଯଥା—
ଚନ୍ଦ୍ରାମଣି. ବହ୍ରମାଚରିତ ।

**ନୀରସ**—ସଂ. ବିଣ. (ବହୁବ୍ରୀହି, ନିର୍+ରସ)—୧ । ରସହୀନ—
Nirasa 1. Sapless; juiceless.
(ନୀରସା—ସ୍ତ୍ରୀ) ୨ । କାମନାଶୂନ୍ୟ—
(ନୀରସତା – ବି) 2. Free from desire
୩ । ଶୁଷ୍କ—3 Dry.
୪ । ରାଗହୀନ—4. Passionless.
୫ । ସ୍ୱାଦହୀନ, ବିସ୍ୱାଦ—5. Insipid; tasteless.
୬ । ମାଧୁର୍ଯ୍ୟହୀନ—6. Devoid of charm
୭ । ନିରସ (ଦେଖ)—7. Nirasa (See)
ସଂ. ବି.—ଡାଳିମ୍ବ—
Pomegranate; Punica Granata.

**ନୀରସା**—ଦେ. ବିଣ. (ସଂ ନୀରସ)—ନିରସା (ଦେଖ)
Nirasā Nirasā (See)
(ନୀରସିଆ – ଅନ୍ୟରୂପ)

**ନୀଲ** ଗ୍ରା. ବି. (ଇତର ଜନୋଚ୍ଚାରିତ; ଲ ସ୍ଥାନରେ ନ ଓ ଲ ସ୍ଥାନରେ
Nirā ର ଉଚ୍ଚାରଣ)—୧ । ଲୀଳା (ଦେଖ)—1. Līlā (See)
୨ । ନୀଳା (ଦେଖ)—2. Nīlā (See)
ପ୍ରାଦେ. (ମେଦନୀପୁର) ବି.—ମହୁରାଳି ମାଛ (ଦେଖ)
Mahurāli māchha (See)

**ନୀରାଜନ**— ସଂ. ବି. (ବହୁବ୍ରୀହି, ନୀର=ଶାନ୍ତ ଜଳ+ଅଜନ=କ୍ଷେପଣ; **Nirājana** ଯେଉଁ ସମୟରେ ଶାନ୍ତ ଜଳ କ୍ଷେପଣ ହୁଏ )—
୧ । ଆରତ୍ରିକ, ଆରତି, ଦେବତାଙ୍କୁ ଓ ନବବିବାହିତ ବରକନ୍ୟାଙ୍କୁ ଦୀପ ଦେଖାଇବା ପୂର୍ବକ ଆରାଧନା, ବନ୍ଦାପନା—1. The ritual of waving lighted or a newly marrud couple wicks before an idol.
[ଦ୍ର—ଦୀପମାଳା, ସଜଳ ପଦ୍ମ, ଧୌତ ବସ୍ତ୍ର, ତୁଳସୀ ବା ବିଲ୍ୱଦଳାଦି ଓ ସାଷ୍ଟାଙ୍ଗ ପ୍ରଣାମ ଏହି ପଞ୍ଚ ଉପଚାରଦ୍ୱାରା ଆରାଧନାକୁ ନୀରାଜନ ବା ନୀରଜନା ବୋଲି ଯାଏ ।]
୨ । (ନିର୍=ସମ୍ୟକ୍‌ରୂପେ+ରାଜ୍ ଧାତୁ=ଦୀପ୍ତି ପାଇବା+ଭାବ. ଅନ)— ଅସ୍ତ୍ରଶସ୍ତ୍ରାଦି ପରିଷ୍କାରକରଣ—
2. Cleansing of arms and weapons; polishing of weapons
୩ । ପ୍ରତିମା ବିସର୍ଜନ—
3 The ceremonial casting off of an image.
୪ । ଶାନ୍ତ ଜଳ ସେଚନ କର୍ମ— The ceremony of sprinkling consecrated water for purification.
୫ । ଆଶ୍ୱିନ ବା କାର୍ତ୍ତିକ ମାସରେ ରାଜା ଓ ସେନାପତିଙ୍କ ଦ୍ୱାରା ଯୁଦ୍ଧାସ୍ତ୍ରାଦିର ମନ୍ତ୍ର ଦ୍ୱାରା ପବିତ୍ରୀକରଣ—
5. Lustration or consecrated polishing of arms; a kind of military and religious ceremony performed by kings or generals of armies in the month of Āswina or Kārttika before they took the field (Apte).
[ଦ୍ର— ରାଜା ଓ ସେନାପତିମାନେ ପୂର୍ବେ ଯୁଦ୍ଧଯାତ୍ରା କରିବାକୁ ଅନୁକୂଳ କରିବା ପୂର୍ବରୁ ଆଶ୍ୱିନ ବା କାର୍ତ୍ତିକ ମାସରେ ସମସ୍ତ ଅସ୍ତ୍ରଶସ୍ତ୍ରାଦିକୁ ପୁରୋହିତଙ୍କଦ୍ୱାରା ଅଭିମନ୍ତ୍ରିତ ଓ ପରିଷ୍କୃତ କରୁଥିଲେ । ଏହି ବିଧିକୁ ନୀରାଜନ ବୋଲାଯାଉଥିଲା ।]

**ନୀରାଜନା**— ସଂ. ବି. ସ୍ତ୍ରୀ. (ନୀରାଜନ+ଆ)— ନୀରାଜନ ( ଦେଖ ). **Nirājanā** Nirājana ( See )
ସନ୍ଧ୍ୟାବେଳେ ହେଲି ରାଣୀ ନୀରାଜନା ବିଧି । ରଥାନାଥ. ମହାଯାତ୍ରା ।

**ନୀରାଜିତ**—ସଂ. ବିଣ. ( ନୀର+ଅଜ୍ ଧାତୁ+କର୍ମ. ତ )— **Nirājita** ୧ । ବନ୍ଦାପନା କରି ଯାଇଥିବା (ଦେବତା)—
1. (a Deity) Worshipped with the waving of lights.
୨ । ମନ୍ତ୍ରାଦି ଦ୍ୱାରା ପବିତ୍ରୀକୃତ ଓ ପରିଷ୍କୃତ (ଅସ୍ତ୍ରଶସ୍ତ୍ରାଦି)—
2. Lustrated (weapons).

**ନୀରିନ୍ଦୁ**—ସଂ. ବି—ଏକ ପ୍ରକାର ସିଝୁ— **Nirindu** A kind of Euphorbia; Trophis Aspera.

**ନୀରୁଜ**—ସଂ. ବିଣ. ପୁଂ ( ବହୁବ୍ରୀହି, ନିର୍+ରୁଜା=ରୋଗ )— **Niruja** ୧ । ନୀରୋଗ; ସୁସ୍ଥ—1. Well; hale.
(ନୀରୁଜା—ସ୍ତ୍ରୀ) ୨ । ପୀଡ଼ାଶୂନ୍ୟ—2. Free from disease.

**ନୀରୂପ** ସଂ. ବିଣ. ପୁଂ. (ବହୁବ୍ରୀହି, ନିର୍=ନିର୍ଗତ ବା ନାହିଁ+ରୂପ)— **Nirūpa** ୧ । ରୂପଶୂନ୍ୟ—1 Shapeless; formless; incorporeal.
(ନୀରୂପା—ସ୍ତ୍ରୀ)
(ନୀରୂପତା—ବି) ୨ । ସୌନ୍ଦର୍ଯ୍ୟଶୂନ୍ୟ, ଅସୁନ୍ଦର—
2 Destitute of beauty.
ସଂ. ବି—୧ । ବ୍ରହ୍ମ—1 The Supreme Soul.
୨ । ଆକାଶ—2 The heavens.
୩ । ଶୂନ୍ୟ—3. The etherial space.

**ନୀରୋ** —ବୈଦେ. ବି (ନାମ) — ପ୍ରାଚୀନ ରୋମର ନିଷ୍ଠୁର ସମ୍ରାଟବିଶେଷ— **Niro** Nero; name of a cruel emperor of ancient Rome.
नीरो **नीरो**

**ନୀରୋଗ**—ସଂ. ବିଣ. ( ବହୁବ୍ରୀହି, ନିର୍+ରୋଗ )— **Niroga** ୧ । ସୁସ୍ଥ—1. Healthy; hale.
୨ । ରୋଗଶୂନ୍ୟ—2 Free from disease.
ସଂ. ବି—ସ୍ୱାସ୍ଥ୍ୟ— Health.

**ନୀରୋମ**—ସଂ. ବିଣ ( ବହୁବ୍ରୀହି, ନିର୍+ରୋମନ୍ )—ରୋମ ଶୂନ୍ୟ— **Niroma** Devoid of fur or down.
ନୀରୋମ ହୋଇ ହୋଇଛି ସେ ମନୋରମ
ଧା ଦେଖି ଏହି ବନ ପଶୁଙ୍କ ମୋ ପ୍ରେମ । କୃଷ୍ଣସିଂହ, ମହାଭାରତ ବନ ।

**ନୀର୍ବନ୍ଧ** —ଗ୍ରା ବିଣ—ନିବୁଜ— **Nirbandha** Dense; compact.
निबुँज
ठोस
ଅଧୁଗିରି ଯେଣେ ମେରୁ ନଗିଲା, ନୀର୍ବନ୍ଧ କରି ଝର ଓଗୋଳଲା । ଗ୍ରାତୀ, ପରଚେ ଗୀତା ।

**ନୀଲ୍** (ଧାତୁ)—ସଂ—୧ । ଅନ୍ଧକାରମୟ ହେବା— **Nil** (root) 1. To be dark ( M. W. ).
୨ । କଳା ରଙ୍ଗ କରିବା—2. To dye dark

**ନୀଲ୍ ଡାଉନ୍**—ବୈଦେ. ବି ( ଇଂ ନୀଲ୍ ଡାଉନ୍=କ୍ରିୟା, ଆଣ୍ଠୁ ମାଡ଼ି ବସିବା )—ଶିଶୁ ଛାତ୍ରମାନଙ୍କୁ ଦଣ୍ଡ ସ୍ୱରୂପ **Nil dāun** ବିଧାଯିବା ଆଣ୍ଠୁ ମାଡ଼ି ବସିବା ଦଣ୍ଡ—
नील डाउन्
Kneeling down for some time meted as a punishment to offending children in schools.
ବୈଦେ ବିଣ—ଆଣ୍ଠୁ ମାଡ଼ି ବସିବା ଦଣ୍ଡ ପ୍ରାପ୍ତ (ଛାତ୍ର)—
( a child student ) Punished by being made to kneel down

**ନୀଳ**—ସଂ. ବି. ( ନୀଲ୍ ଧାତୁ=କଳା ରଙ୍ଗ କରିବା+କରଣ. ଅ )— **Nila** ୧ । ନେଳ ରଙ୍ଗ—1. Blue colour
୨ । ନୀଳ ଗୁଳ୍ମ—2. Indigo plant; Indigofera Tinctoria.
[ ଦ୍ର—ନୀଳ ଗୁଳ୍ମ ଉଚ୍ଚରେ ୨।୩ ହାତ ହୁଏ । ଏହା ଶିମ୍ବାଦି ବର୍ଗର କୃଷିଜାତ ଗୁଳ୍ମ; ଏ ଗୁଳ୍ମ ପ୍ରାୟ ୩୦୦ ଜାତିର । ପତ୍ରମାନ ଡାଳର ଦୁଇ ପାଖରେ ପଂକ୍ତିବଦ୍ଧ ହୋଇ ଲାଗିଥାଏ । ମଞ୍ଜରୀରେ ଫୁଲ ଧରେ ଓ ମୋଟ ମୋଟ ଛୁଇଁ ହୁଏ । ପ୍ରତ୍ୟେକ ଛୁଇଁରେ ୮।୧୦ଟି ଶିମ୍ବ ମଞ୍ଜି ପରି ମଞ୍ଜି ଥାଏ । ଏ ଗଛକୁ ଶୁଖାଇ କଞ୍ଚା ହିନ ପାଣିରେ

ବଭୁଗ୍ରଇ ସଡାଇଲେ ନୀଳ ରଙ୍ଗ ତଳେ ବସିଯାଏ ଓ ସେ ପାଣିକୁ ନିଗାଡ଼ି କରି ରଙ୍ଗ ବାହାର କରାଯାଏ । ବହୁ ପୂର୍ବ କାଳରେ ଭାରତରେ ପ୍ରଥମେ ଏ ଗୁଳ୍ମରୁ ନୀଳ ରଙ୍ଗ ଆମଦାନି କରି ଯାଉଥିଲା । ଖ୍ରୀଷ୍ଟ ଜନ୍ମର ୮୦ ଅବ୍ଦରେ ଭାରତରୁ ବିଦେଶକୁ ନୀଳ ରଙ୍ଗ ପଠା-ଯାଉଥିବାର ଗ୍ରୀକ୍ ଲେଖକମାନେ ଲେଖି ଅଛନ୍ତି । ପୂର୍ବେ ଗୁଜରାଟ ଅଞ୍ଚଳରୁ ଇଉରୋପକୁ ନୀଳ ରଙ୍ଗ ପଠା ଯାଉଥିଲା । ଇଷ୍ଟ ଇଣ୍ଡିଆ କୋମ୍ପାନି ବଙ୍ଗ ବିହାର ଓଡିଶାରେ ନୀଳର କୃଷି କରି ଅନେକ ସ୍ଥାନରେ ନୀଳ ତିଆରି କରିବା ପାଇଁ କୋଠିମାନ କଲେ । ନୀଳ ଫସଲ ଗଛର ଜାତି ଓ ଦେଶ ଅନୁସାରେ ୩ ମାସଠାରୁ ୧୮ ମାସ ପର୍ଯ୍ୟନ୍ତ ରହେ ଓ ଥରେ ଗଛକୁ କାଟି ନେଲେ ପୁଣି ସେଥିରୁ କୁଆଁ ବାହାରେ । କଞ୍ଚା ବା ଶୁଖିଲା ଗଛକୁ ୧୨।୧୪ ଘଣ୍ଟା ବଭୁଗ୍ରଇଲେ ପାଣି ନେଳ ହୁଏ, ସେ ପାଣିକୁ ମନ୍ଥନ କରି ନିଆଁ ଉପରେ ରଖି ଫୁଟାଇଲେ ନୀଳ ପାତ୍ରର ତଳକୁ ବସି ଯାଏ । ସେହି କାଦୁଆ ନୀଳକୁ ପଟ୍ଟ ଉପରେ ରଖି ଚାପ ଦେଲେ ପାଣି ନିଗିଡ଼ି ଯାଏ ଓ ନୀଳ ପରସ୍ତ ପରସ୍ତ ହୋଇ ବସି ଯାଏ । ତାହାକୁ ଖଣ୍ଡ ଖଣ୍ଡ କରି କାଟି ବାଣିଜ୍ୟାର୍ଥ ପଠାଯାଏ । ବଙ୍ଗଦେଶର ସାହେବମାନେ ୧୫୦।୨୦୦ ବର୍ଷ ତଳେ ନୀଳ ଚାଷ ଓ ଆମଦାନି କରିବାର ଏକଚେଟିଆ ଅଧିକାର ସରକାରଙ୍କଠାରୁ ପାଇ ପ୍ରଜାମାନଙ୍କ ଦ୍ୱାରା ନୀଳ ଚାଷ କରାଇ ଆପଣାର କୋଠିମାନଙ୍କରେ ନୀଳ ତିଆରି କରାଉଥିଲେ । ବର୍ତ୍ତମାନ ବୈଜ୍ଞାନିକ ପ୍ରଣାଳୀରେ ନୀଳ ରଙ୍ଗ ତିଆରି ହେବାରୁ ଭାରତରୁ ନୀଳର କୃଷି ଉଠି ଯାଇଅଛି । ]

୩ । ନୀଳାଚଳ—3 Name of a range of mountains; the Nilgiris.

[ ଦ୍ର—ଆସାମରେ ଉତ୍ତର ନୀଳାଚଳ ଓ ଓଡ଼ିଶାରେ ଦକ୍ଷିଣ ନୀଳାଚଳ ଓ ଦାକ୍ଷିଣାତ୍ୟର ନୀଲଗିରି ପର୍ବତମାଳାକୁ 'ନୀଳ' ନାମରେ ଅଭିହିତ କରାଯାଏ । ]

୪ । ଇନ୍ଦ୍ର ନୀଳମଣି—4. A gem; sapphire.

୫ । କୁବେରଙ୍କର ନୀଳ ନାମକ ନିଧି—5. One of the 9 divine treasures God Kubera.

[ ଦ୍ର— କୁବେରଙ୍କର ନବ ନିଧି ମଧ୍ୟରୁ ଏହା ଏକ । ]

୬ । ରାମାୟଣ ବର୍ଣ୍ଣିତ ବାନର ସେନାପତି—

6. Name of a monkey general mentioned in the Rāmāyaṇa.

[ ଦ୍ର—ଏ ଅଗ୍ନିଙ୍କର ପୁତ୍ର ଥିବାର କଥିତ । ]

୭ । ନିର୍ଗୁଣ୍ଡୀ ବା ବେଗୁନିଆ ଗଛ—

7. A small tree; Vitex Nigundi.

୮ । ଲାଞ୍ଛନ; ଚିହ୍ନ—8. A spot or mark.

୯ । ବଟ ବୃକ୍ଷ—9. The banyan tree; Ficus Indica.

୧୦ । କାଚ ଲବଣ—10. The black salt.

୧୧ । ବିଷ—11. Poison

୧୨ । ଭୁଇଁଅଇଁଲା; ତାଳୀଶପତ୍ର—

12. A species of plant; Flacourtia Cataphracta.

୧୩ । ସୌବୀରାଞ୍ଜନ —13. Antimony; collyrium.

୧୪ । ତୁତ୍ଥ, ତୁତିଆ—14. Blue vitriol.

୧୫ । ଏକପ୍ରକାର ନେଳଆ ଶାରୀ—

15. The blue or hill maina bird. (M.W.)

୧୬ । କଳା ରଙ୍ଗର ଷଣ୍ଢ ବା ବଳଦ—

16. An ox or bull of dark colour (M.W).

୧୭ । (ନାମ) ରାଜା ଯଦୁଙ୍କର ଏକ ପୁତ୍ର—

17. Name of a son of king Jadu.

୧୮ । (ନାମ) ଅଜାମୀଢ଼ର ଏକ ପୁତ୍ର—

18. Name of a son of Ajāmirdha.

୧୯ । ( ନାମ ) ଇଲାବୃତ ଦେଶର ଉତ୍ତରକୁ ଲାଗିଥିବା ପୌରାଣିକ ପର୍ବତବିଶେଷ—19 Name of a mythological mountain immediately north of Ilābruta or the central division of ancient India.

୨୦ । ( ମହାଭାରତୋକ୍ତ ) ମାହିଷ୍ମତୀର ଏକ ରାଜା—

20. Name of a king of Mahishmatī.

୨୧ । ଦଶ ହଜାର ଅର୍ବୁଦ ସଂଖ୍ୟା (ହି ଶ.)—

21. A number; ten trillions.

[ ନୀଲତା ( ଭି )—ବି ] ସଂ. ବିଣ—୧ । ନୀଳବର୍ଣ୍ଣବିଶିଷ୍ଟ— 1. Blue.

୨ । କାଳିଆ—2. Of a dark colour.

୩ । ନୀଳ ରଙ୍ଗରେ ରଞ୍ଜିତ—

3. Dyed with indigo.

ଦେ ବି. ପୁଂ—୧ । ନୀଳମଣିର ଡାକନାମ—

1. Name for calling Nīlamaṇi.

୨ । ଆଫ୍ରିକାର ବୃହତ୍ତମ ନଦୀ—

2 The river Nile of Africa.

[ ଦ୍ର—ଏହା ଭିକ୍ଟୋରିଆ ନାଏଞ୍ଜା ହ୍ରଦରୁ ବାହାରି ମିଶର ବାଟେ ଆଲେକ୍‌ଜାଣ୍ଡ୍ରିଆଠାରେ ଭୂମଧ୍ୟସାଗରରେ ପଡ଼ିଅଛି । ]

( ନୀଲ୍—ଅନ୍ୟରୂପ ) ୩ । ନୀଳ ଗାଇ ( ଦେଖ ) 3. Nilagāi ( See )

**ନୀଲଂ**—ଦେ. ବି ( ନାମ )—ହିମାଳୟର ଗିରିସଙ୍କଟବିଶେଷ— (ନୀଲମ୍—ଅନ୍ୟରୂପ) A pass in the Himalayas.

[ ଦ୍ର—ଏହି ବାଟରେ ଭାରତରୁ ତିବ୍ବତକୁ ଯାଆନ୍ତି । ଏହା ୬ ମାସ ଖୋଲାଥାଏ । ଏଥିର ନିମ୍ନରେ ଶତଦ୍ରୁ ନଦୀ ପ୍ରବାହିତ ବରଫ ପଡ଼ିଲେ ଏଠାର ବାସିନ୍ଦାମାନେ ଗଙ୍ଗୋତ୍ରୀକୁ ଗୁଳିଆସନ୍ତି । ସ୍ୱାମୀ ରାମାନନ୍ଦ । ]

**ନୀଳକ**—ସଂ ବି (ନୀଳ+ସଂଜ୍ଞାର୍ଥେ. କ)—୧ । କାଚ ଲବଣ— Nīlaka 1. The black salt.

୨ । ତୁତିଆ— . Blue vitriol.

୩ । ବୀଜଗଣିତର ଅଜ୍ଞାତ ରାଶିବିଶେଷ, ତୃତୀୟ ଅଜ୍ଞାତ ରାଶି ବା ତହିଁର ବର୍ଗ—3. An unknown quantity in Algebra; the third unknown quantity or its square.

୪ । ଅସନ ବୃକ୍ଷ—4. Name of a timber tree; Terminalia Tomentosa.
୫ । ପିଆଶାଳ ଗଛ—5 A timber tree; Pentaptera Tomentosa.
୬ । କୃଷ୍ଣସାର ମୃଗ—6 A species of antelope.
୭ । (ନୀଳ+କୈ ଧାତୁ=ଶୋଭାପାଇବା+କର୍ତ୍ତୃ. ଅ)—ଭ୍ରମର—7. Black bee.
୮ । କଳା ରଙ୍ଗର ଘୋଡ଼ା—
8. A dark coloured horse (M.W )
୯ । ନୀଳ ଗୁଳ୍ମ—9 Indigo plant. (M.W )
୧୦ । ଶେଫାଳିକା, ଗଙ୍ଗଶିଉଳି ଫୁଲ--
10 Nyctanthes Arbortrestes (M. W.)
୧୧ । ମୁହଁରେ କଳା ଓ ନେଳି ଦାଗ ହେବା ; ରୋଗବିଶେଷ—
11. A kind of malady; black and blue marks in the face (M.W.)
୧୨ । ଆଖିର ଡୋଳାର ରୋଗବିଶେଷ—
12. A particular disease of the lens of the eye. ( M.W )
୧୩ । ନେଳି ଇସ୍ପାତ, ବର୍ତ୍ତ ଲୌହ (ହି ଶ)—
13. Blue steel ( M. W. )
ସଂ. ବିଣ—ନେଳିଆ, ନୀଳବର୍ଣ୍ଣବିଶିଷ୍ଟ—Blue.

**ନୀଳ କଇଁ**—ଦେ. ବି ( ସଂ. ନୀଳ+କମଳ, କୁମୁଦ )—
Nīḻa kaiṅ ନୀଳୋତ୍ପଳ, ନୀଳବର୍ଣ୍ଣ କଇଁ ଫୁଲ—
नीलकमल Blue waterlily, Nymphæa
**नीलकमल, नीलोफर** Cyana.

**ନୀଳକଣା**—ସଂ ବି—କଳାଜୀରା ( ହି. ଶ )—
Nīḻakaṇā Black cumin seed. (M.W.)

**ନୀଳକଣ୍ଠ**—ସଂ. ବି (ବହୁବ୍ରୀହି, ନୀଳ=ନୀଳବର୍ଣ୍ଣବିଶିଷ୍ଟ+କଣ୍ଠ)—
Nīḻakaṇṭha ୧ । ମହାଦେବ—1. God Mahādeba.
[ ଦ୍ର—ସମୁଦ୍ର ମନ୍ଥନ ସମୟରେ ମହାଦେବ ସମୁଦ୍ରୋତ୍ଥିତ କାଳକୂଟ ପାନ କରିବାରୁ ବିଷଜ୍ୱାଳାରେ ତାଙ୍କର କଣ୍ଠଦେଶ ନୀଳବର୍ଣ୍ଣ ଧାରଣକଲା । ]
୨ । ମୟୂର—2. Peacock.
ବରଳରେ ନୀଳକଣ୍ଠ ନୃତ୍ୟେ ଶ୍ରବାପର ।
ଉପେ. ବୈଦେହୀଶବିଳାସ ।
୩ । ଚନ୍ଦନବିଶେଷ—
3. A kind of sandal wood.
୪ । ଦାତ୍ୟୂହ, ଡାହୁକ ପକ୍ଷୀ—
4. The gallinule (bird); the water hen.
୫ । ଏକପ୍ରକାର ଗଦ—
5. A kind of medicinal root.
[ ଦ୍ର—ଏହାର ମୂଳ ନୀଳବର୍ଣ୍ଣ । ]
୬ । ଘରଚଟିଆ ଚଢ଼େଇ—6. Sparrow.
୭ । ଭଦଭଦଳିଆ, ଗୃଷ ପକ୍ଷୀ—
7. The blue-necked jay; the Indian roller bird; Coracis Indica.
୮ । ଖଞ୍ଜନ ପକ୍ଷୀ—
8. The common wagtail; Motacilla Alba.
୯ । ଏକପ୍ରକାର ବଗ—
9. Ardea Sibirica. ( M. W. )
୧୦ । ମୂଳା ( ହି. ଶ. )—10. Radish (M. W.)
୧୧ । ( ନାମ ) ମହାଭାରତର ପ୍ରସିଦ୍ଧ ଟୀକାକାର—
11. Name of a commentator of the Mahābhārata.
ସଂ ବିଣ—ନୀଳକଣ୍ଠଯୁକ୍ତ—
Having a blue neck.
ଦେ. ବି—୧ । ଦେଶୀ ଆଳୁ—1. Yam.
୨ । ଲୋକଙ୍କ ନାମ—
2 A name given to males

**ନୀଳକଣ୍ଠ ନାଥ**– ଦେ ବି—ପ୍ରତିଷ୍ଠିତ ଶିବଲିଙ୍ଗଙ୍କ ନାମବିଶେଷ—
Nīḻakaṇṭha nātha Name of an idol of Śiba
(ନୀଳକଣ୍ଠେଶ୍ୱର, ନୀଳକଣ୍ଠଦେବ—ଅନ୍ୟରୂପ)

**ନୀଳକଣ୍ଠ ବଂଶ**—ଦେ. ବି (ନାମ)–ଷୋଡ଼ଶ ଶତାବ୍ଦୀର ବିଦର୍ଭ (ବେରାର)
Nīḻakaṇṭha baṁśa ଦେଶବାସୀ ଜ୍ୟୋତିଷଙ୍କ ବ୍ରାହ୍ମଣ ବଂଶ—
Name of a family of successive astrologers of Berar of the 16th century.

**ନୀଳକଣ୍ଠା**—ଦେ. ବିଣ—ନୀଳକଣ୍ଠଯୁକ୍ତ—
Nīḻakaṇṭhā Blue necked.
ଗୋଚରୁ ନୀଳକଣ୍ଠା ଉଦଳଥ—ପ୍ରାଚୀ ପ୍ରଭାତ ଶଶିରେଣୀ ।

**ନୀଳକଣ୍ଠୀ**—ସଂ. ବି. ସ୍ତ୍ରୀ (ନୀଳକଣ୍ଠ+ସ୍ତ୍ରୀ. ଈ)—ମୟୂରୀ—
Nīḻakaṇṭhi Peahen. (M.W.)

**ନୀଳକନ୍ଦ**—ସଂ. ବି—ଏକପ୍ରକାର ଆଳୁ—
Nīḻakanda A species of edible bulbous root.

**ନୀଳ କନ୍ଦର**—ସଂ. ବି—ନୀଳଗିରି ପର୍ବତର କନ୍ଦର ବା ଗୁମ୍ଫା—
Nīḻa kandara The cave of the Nīḻagiri mountain.

**ନୀଳକନ୍ଦର ବିହାରୀ**—ସଂ. ବି ( ନୀଳକନ୍ଦର+ବିହାରୀ )—
Nīḻakandara bihārī ପୁରୀର ଜଗନ୍ନାଥ ମହାପ୍ରଭୁ—
A name of the idol Jagannātha of Puri.

**ନୀଳକନ୍ୟା**—ଦେ. ବି—ଲକ୍ଷ୍ମୀ—
Nīḻakanyā Goddess Lakshmī.
[ ଦ୍ର—ସତ୍ୟଯୁଗରେ ଦୈତ୍ୟମାନଙ୍କ ଭୟରେ ବ୍ରହ୍ମାଙ୍କ ଅଙ୍ଗରୁ ଶ୍ରମବାରି ବୋହି ଶ୍ରୀରସମୁଦ୍ରରେ ପଡ଼ିଲାରୁ ଗୋଟିଏ କନ୍ୟା ଜାତ ହେଲା । ତାହାର ନାମ ଲକ୍ଷ୍ମୀ—ବୈଷ୍ଣବ ସାହିତ୍ୟ । ]

**ନୀଳ କମଳ**—ସଂ. ବି ( ନୀଳ+କମଳ )—ନୀଳୋତ୍ପଳ, ନୀଳକଇଁ—
Nīḻa kamaḻa Blue lotus; blue water lily.
(ନୀଳକୁମୁଦ—ଅନ୍ୟ ନାମ)

ନୀଳକର—ଦେ. ବ. (ଭୁଲନାକର—ଖୁହାକର)—ନୀଳଗଛରୁ ନୀଳରଙ୍ଗ
Nīlakara ଅବାଦକାରୀ ବ୍ୟକ୍ତି—Indigo planter.
नीलकर नीलकर

ନୀଳକାନ୍ତ—ସଂ ବ. (ନୀଳ + କାନ୍ତ = କମନୀୟ)—ନୀଳମଣି, ଇନ୍ଦ୍ରନୀଳମଣି
Nīlakānta Sapphire.

ନୀଳକୁନ୍ତଳା—ସଂ. ବଣ. ସ୍ତ୍ରୀ. (ବହୁବ୍ରୀହି, ନୀଳ + କୁନ୍ତଳ + ସ୍ତ୍ରୀ. ଆ)—
Nīlakuntalā ଯେଉଁ ସ୍ତ୍ରୀର କେଶ ଗାଢ ନୀଳବର୍ଣ୍ଣ—
(a woman) Having dark-blue hair.
ସଂ ବ. ସ୍ତ୍ରୀ—ଦୁର୍ଗାଙ୍କ ସଖୀବିଶେଷ—
Name of a female friend of Durgā.

ନୀଳକେଶୀ—ସଂ. ବ—ନୀଳଗୁଳ୍ମ—
Nīlakesī The indigo plant

ନୀଳ କୋଠି—ଦେ. ବ. (ସଂ. ନୀଳ + କୋଷ୍ଠ)—ଯେଉଁ କାରଖାନାରେ
Nīla kothi ନୀଳ ଗଛରୁ ନୀଳରଙ୍ଗ ଆମଦାନୀ କରାଯାଏ—
नीलकुठि नीलकोठी Indigo factory.

ନୀଳକ୍ରାନ୍ତା—ସଂ. ବ—ନେଳି ଅପରାଜିତା—Clitoria Ternatia
Nīlakrāntā (the blue-flowering variety).

ନୀଳ କ୍ରୌଞ୍ଚ—ସଂ ବ—କାଣ୍ଡିବଗ—The blue heron (M. W.);
Nīla krauñcha Ardea Sibirica.

ନୀଳଗଦ—ଦେ. ବ—ଏକପ୍ରକାର ଗଦ—
Nīlagada A kind of medicinal root.
[ ଦ୍ର—ଏହାର ମୂଳ ନେଳି, ଏହାର ଅନ୍ୟନାମ ନୀଳକଣ୍ଠ । ]

ନୀଳଗାଈ—ଦେ. ବ. (ସଂ ନୀଳଗୌ)—କୃଷ୍ଣସାର ଜାତୀୟ ଗବାଦ ପଶୁ
Nīlagāi ପରି ଘନନୀଳାଭ ଧୂସରବର୍ଣ୍ଣ ବନ୍ୟପଶୁବିଶେଷ—
निलगाई A large species of Asiatic antelope
नीलगाय Boselaphus Tragocamelus; the Nylghau.

[ଦ୍ର—ଏମାନଙ୍କ ଦେହର ବର୍ଣ୍ଣ ନୀଳାଭ ପାଉଁଶିଆ, କାନ ଗାଈ ପରି, ଶିଂଘ ବଙ୍କା ଓ ଶ୍ରେଷ୍ଠ, ବେକ ଉପରେ କଳାବାଳର କ୍ଷୁଦ୍ର କେଶର ଅଛି । ବେକ ତଳେ କେତେବେ ୮।୧୦ ଅଙ୍ଗୁଳ ଲମ୍ବ ବାଳ ଓହଳ ଥାଏ, ଏହାର ଚମଡ଼ା ଖୁବ ଟାଣୁଆ, ବେକର ଚମଡ଼ାରେ ଢାଲ ହୁଏ । ବୈଦ୍ୟକମତରେ ଏହାର ମାଂସ ମଧୁର, ବଳକାରକ, ଉଷ୍ଣବୀର୍ଯ୍ୟ, କଫ ଓ ପିତ୍ତବର୍ଦ୍ଧକ ଓ ସ୍ନିଗ୍ଧ; ଏମାନେ ଭାରତରେ ଅଧିକ ବଢ଼ନ୍ତି ଓ ପୋଷା ମାନନ୍ତି । ]

ନୀଳଗିରି—ସଂ. ବ. (ନୀଳ + ଗିରି)—୧ । ଉତ୍କଳର ଦକ୍ଷିଣଦିଗସ୍ଥ ପର୍ବତ
Nīlagiri ବିଶେଷ; ଦାକ୍ଷିଣାତ୍ୟର ପର୍ବତବିଶେଷ—
1. A range of hills to the south of Orissa, the Nilgiris.
୨ । ପୁରାଣାଦିରେ ବର୍ଣ୍ଣିତ ପୁରୀର ଜଗନ୍ନାଥ ଯେଉଁ ଗିରିରେ ବିରାଜିତ—2. A mythological mountain said to be the seat of Jagannātha of Puri.
୩ । ଆସାମର କାମାଖ୍ୟା ଦେଶସ୍ଥ ପାହାଡ଼—
3. A range of hills in Assam.
ଦେ ବ—୧ । ଓଡ଼ିଶାର ଗଡ଼ଜାତବିଶେଷ—
1. Name of a hilly state of Orissa.
[ ଦ୍ର—ଏହା ବାଲେଶ୍ୱରର ପଶ୍ଚିମରେ । ଛୋଟନାଗପୁରର ଜଣେ ରାଜପୁତ୍ର ଆସି ଉତ୍କଳର ସ୍ୱାଧୀନ ରାଜା ପ୍ରତାପରୁଦ୍ରଦେବଙ୍କ କନ୍ୟାଙ୍କ ପାଣିଗ୍ରହଣ କରି, ରାଜାଙ୍କ ସାହାଯ୍ୟରେ ଉକ୍ତ ରାଜ୍ୟ ସ୍ଥାପନ କରିଥିଲେ । କୃପାସିନ୍ଧୁ—ଉତ୍କଳ ଇତିହାସ । ]
୨ । ଖଣ୍ଡଗିରିକୁ ଲାଗିଥିବା ଗୋଟିଏ ଅନୁଚ୍ଚ ପାହାଡ଼—
2. Name of a hill adjoining the Khandagiri hill.
[ ଦ୍ର—ଏଥିରେ କୌଣସି ବୌଦ୍ଧକୀର୍ତ୍ତି ନାହିଁ । ଏହି ପାହାଡ଼ ଓ ଖଣ୍ଡଗିରି ପାହାଡ଼ର ମଧ୍ୟଦେଇ ଖୋରଧା ସଡ଼କ ଯାଇଅଛି । ]

ନୀଳଗୌ—ସଂ. ବ. (କର୍ମଧା, ନୀଳା + ଗୌ)—ନୀଳଗାଈ (ଦେଖ)
Nīlagau Nīlagāi (See)

ନୀଳଗ୍ରୀବ—ସଂ. ବ ଓ ବଣ. (ବହୁବ୍ରୀହି, ନୀଳ = ନୀଳବର୍ଣ୍ଣ ବିଶିଷ୍ଟ + ଗ୍ରୀବା)—ନୀଳକଣ୍ଠ (ଦେଖ)
Nīlagrība Nīlakantha (See)

ନୀଳ ଚକ୍ର—ସଂ. ବ—୧ । ପୁରୀର ଜଗନ୍ନାଥ ମନ୍ଦିର ଓ ବିଷ୍ଣୁମନ୍ଦିରମାନଙ୍କର
Nīla chakra ଶିଖରରେ ଥିବା ଧାତୁମୟ ଚକ୍ର—The metal discus put on the top of the temple of Jagannātha of Puri and of other temples of Bishṇu.
୨ । ୩୦ ଅକ୍ଷରର ଦଣ୍ଡକବୃତ୍ତ (ହି. ଶବ୍ଦସାଗର)—
2. Name of a Sanscrit metre.

ନୀଳଚୋଳି—ଦେ. ବ. (ସଂ. ନୀଳ + ଚୋଳକ)—ନୀଳବର୍ଣ୍ଣ କାଞ୍ଚୁଲା—
Nīlacholi A jacket of blue-colour.
କଞ୍ଚୁକ ସ୍ୱର୍ଣ୍ଣଜଳ-ନୀଳଚୋଳି । ଭଞ୍ଜ ବୈଦେହୀଶବିଳାସ ।

ନୀଳଚ୍ଛଦ—ସଂ. ବଣ. (ବହୁବ୍ରୀହି, ନୀଳ + ଛଦ, ସନ୍ଧି ଯୋଗୁଁ ଛର ଦ୍ୱିତ୍ୱ)
Nīlachchhada ୧ । ନେଳିଆ ପତ୍ରବିଶିଷ୍ଟ—
1. Blue leaved.
୨ । ନେଳିଆ ପକ୍ଷବିଶିଷ୍ଟ—2. Blue-winged.
ସଂ. ବ—୧ । ଖଜୁରିଗଛ—1. The date tree. (M.W.).
୨ । ଗରୁଡ଼—2. A name of Garurda. (M. W.).

ନୀଳଝିଣ୍ଟୀ—ସଂ. ବ—ନେଳି ଫୁଲବିଶିଷ୍ଟ କୁରଣ୍ଟ ଗୁଳ୍ମ; ବାଣା—
Nīlajhinti The blue flowered variety of Barleria.

ନୀଳ ତରୁ—ସଂ. ବ—୧ । ନଡ଼ିଆଗଛ; ନାରକେଳ ବୃକ୍ଷ—
Nīla taru 1. The cocoanut tree.
୨ । ନୀଳବର୍ଣ୍ଣ ବୃକ୍ଷ—2. A blue tree.

ନୀଳତାଳ—ସଂ. ବ—ହେନ୍ତାଳ—Xanthochymus Pictorius or
Nīlatāla (ନୀଳଧ୍ୱଜ—ଅନ୍ୟରୂପ) Palludosa. (M. W.).

ନୀଳତୁତ୍ଥ—ସଂ. ବ—ତୁତିଆ—
Nīlatuttha Blue vitriol.

ନୀଳଦୂର୍ବା—ସଂ. ବ—ଅମୀଳ ଦୂବଘାସ—
Nīladūrbā. A species of Dūba grass.

ନୀଳଧର—ଦେ ବି ( ସ. ନୀଳ ମହୀଧର )—ନୀଳପର୍ବତ—
Niladhara Blue mountain.
ଏବେ ନୀଳଧର ବରଣତ ତା ଅଙ୍ଗନେ । ରାଧା, ରସବାରଧି ।

ନୀଳନ୍ଦି—ଗ୍ରା ବି (ସ. ନୀଳେନ୍ଦୀବର)—ନୀଳପଦ୍ମ—
Nilandi The blue water lily

ନୀଳନ୍ଦିଦଳ—ଦେ. ବି. (ସ. ନୀଳେନ୍ଦୀବର ଦଳ)—ନୀଳକଇଁର ପାଖୁଡ଼ା—
Nilandidala The petal of a blue water lily.
ନୀଳନ୍ଦିଦଳ ପଦ୍ମ ଅଶିଂ ନୀଳା କରନ୍ତୁ ସବେ ଦେଖି ।
( ନୀଳେନ୍ଦୀଦଳ—ଅନ୍ୟରୂପ ) କମଳଲୋଚନ, ଚଉତିଶା ।

ନୀଳପକ୍ଷୀ—ଦେ ବି. (ନୀଳ + ପକ୍ଷୀ)—ଭଦଭଦଳିଆ (ଦେଖ)
Nilapakshi Bhadabhadalia (See)
ଜୟପାଖୀ ଦେଶିସ୍ୱୀ । ଅବସ୍ଥା ଉତ୍ତଗସ୍ଥ ନୀଳପକ୍ଷୀ ।
ଚାଷପକ୍ଷୀ ଅଭିମନ୍ୟୁ— ହଦଗ୍ରନ୍ଥଚନ୍ଦ୍ରାମଣି ।

ନୀଳପଙ୍କ—ସ ବି. (ନୀଳ ପଙ୍କ)—୧ । ନେଳିଆପଙ୍କ—
Nilapanka 1. Black mud.
୨ । ଅନ୍ଧକାର—2. Darkness (M W.).

ନୀଳପତ୍ର—ସ ବିଣ. (ବହୁବ୍ରୀହି, ନୀଳ+ପତ୍ର)—ନେଳିଆପତ୍ରବିଶିଷ୍ଟ—
Nilapatra Dark or blue-leaved.
ସ ବି—୧ । ନୀଳକମଳ ( ହି. ଶବ୍ଦସାଗର )—
1. The blue water-lily.
୨ । କେଶୁର ତୃଣ ( ହି. ଶବ୍ଦସାଗର )—
2 Scirpus Kysor grass. (M. W.).
୩ । ଏକପ୍ରକାର ସାଲଗଛ—
3. Bauhinea Tomentosa tree. (M. W.).
୪ । ଡାଳିମ୍ବ ( ହି. ଶ )—4 Pomegranate. ( M. W. ).

ନୀଳପତ୍ରୀ—ସ ବି—ନୀଳଗୁଳ୍ମ—Indigo plant.
Nilapatri ( ନୀଳପତ୍ରିକା—ଅନ୍ୟରୂପ )

ନୀଳପଦ୍ମ—ସ. ବି. ( ନୀଳ+ପଦ୍ମ ) – ନୀଳ କମଳ—
Nilapadma Blue waterlily.

ନୀଳପିଚ୍ଛ—ସ ବି (ବହୁବ୍ରୀହି, ନୀଳ + ପିଚ୍ଛ )—ବାଜ ପକ୍ଷୀ—
Nila pichchha Falcon.

ନୀଳପୁଷ୍ପା—ସ. ବି. (ବହୁବ୍ରୀହି; ନୀଳପୁଷ୍ପ + ଆ) ନେଳ ଅପରାଜିତା—
Nila pushpa Clitoria Ternatea ( plant and flower ).

ନୀଳ ପୁଷ୍ପିକା—ସ. ବି. ( ନୀ+ପୁଷ୍ପ+କ+ଆ )—
Nila pushpika ୧ । ନୀଳ ଗୁଳ୍ମ—1. Indigo plant.
୨ । ଅତସୀ ଗୁଳ୍ମ—
2. Linum Usitatissimum ( plant ).

ନୀଳ ପୃଷ୍ଠ—ସ.ବି. (ବହୁବ୍ରୀହି, ନୀଳ + ପୃଷ୍ଠ)—ଅଗ୍ନି (ହି.ଶବ୍ଦସାଗର) —
Nila prushtha Fire. ( M. W. )

ନୀଳ ବଡ଼ି—ଦେ. ବି. ( ସ. ନୀଳ+ବର୍ତ୍ତୀ )—
Nila bardi ନୀଳ ରଙ୍ଗର ବୁନ୍ଦି ବା ଗୋଳା —
ନୀଳବଡ଼ି A ball of indigo.
ନୀଳବଟୀ [ ଦ୍ର— ପୂର୍ବେ ଧୋବାମାନେ ବାସିଧୋବ ଲୁଗାକୁ ନେଳ ରଙ୍ଗ କରିବା ପାଇଁ ଏହାକୁ ବ୍ୟବହାର କରୁଥିଲେ । ]

ନୀଳବର୍ଣ୍ଣ—ସ ବି (ନୀଳ + ବର୍ଣ୍ଣ, କର୍ମଧା)—ନେଳ ରଙ୍ଗ—
Nila barnna Blue colour.
ସ. ବିଣ (ବହୁବ୍ରୀହି) - ନେଳିଆ—Blue.

ନୀଳବଲ୍ଲୀ—ସ. ବି—ନିର୍ମୂଳୀ, ମଲ୍ଲଙ୍ଗ—
Nilaballi Parasitic plant.

ନୀଳ ବସନ—ସ. ବି. ( ବହୁବ୍ରୀହି, ନୀଳ+ବସନ )—
Nila basana ୧ । ବଳରାମ—1 A name of Balarama.
୨ । ଶନିଗ୍ରହ—2 The planet Saturn.
[ ଦ୍ର - ପୁରାଣ ମତରେ ଏହାଙ୍କର ପରିଧାନ ନୀଳବସ୍ତ୍ର । ଏ ଗ୍ରହର ବର୍ଣ୍ଣ ମଧ୍ୟ ନୀଳାଭ । ]
ସ. ବିଣ ପୁଂ— ଯାହାର ବସନ ନୀଳ ବର୍ଣ୍ଣ—
(ନୀଳବସନା—ସ୍ତ୍ରୀ) Wearing a blue cloth.

ନୀଳ ବାନର—ଦେ. ବି—ଏକ ପ୍ରକାର ନୀଳ ବର୍ଣ୍ଣ ମର୍କଟ—
Nila banara A kind of monkey of blue colour.

ନୀଳ ବାସାଃ—ସ. ବି ଓ ବିଣ (ନୀଳ + ବାସସ୍=ବହୁବ୍ରୀହି)
Nila basah ନୀଳ ବସନ ( ଦେଖ )
Nila basana ( See )

ନୀଳବୃନ୍ତ—ସ. ବି. (ବହୁବ୍ରୀହି,ନୀଳ + ବୃନ୍ତ)—ତୂଳା (ହି.ଶବ୍ଦସାଗର) —
Nilabrunta Cotton.

ନୀଳବୃଷ—ସ ବି—ଶ୍ରାଦ୍ଧରେ ଉତ୍ସର୍ଗ କରାଯିବା ଏକ ପ୍ରକାର ବୃଷ, ଯାହାର
Nila brusha ବର୍ଣ୍ଣ ନାଲି, ପୁଚ୍ଛ ଓ ଖୁରା ଶଙ୍ଖ ବର୍ଣ୍ଣ (ହି ଶ.)—
A bull of red colour with white tail and hoofs.

ନୀଳବୃଷା—ସ ବି—ବାଇଗଣ ( ହି ଶ. )—
Nila brusha Brinjal; egg plant.

ନୀଲମ୍—ବୈଦେ ବି ( ଫା. ଭୁଲ. ସ. ନୀଳ )—ଇନ୍ଦ୍ରନୀଳମଣି—
Nilam Sapphire.

ନୀଳମଣି—ସ. ବି—ନୀଳକାନ୍ତ ବା ନୀଳା—
Nilamani Sapphire.
[ ଦ୍ର – ରତ୍ନ ତଳେ ନୋଟ ଦେଖ । ]
ନୀଳମଣି ଦେ ବି—୧ । ସ୍ତ୍ରୀ ଓ ପୁରୁଷଙ୍କ ନାମ—
1. Name given to males and females.
୨ । ଶ୍ରୀକୃଷ୍ଣଙ୍କର ବାତ୍ସଲ୍ୟ ସୂଚକ ନାମ—
2. A term of endearment given to Srikrushna while a boy.

ନୀଳମଣି ବିଦ୍ୟାରତ୍ନ - ଦେ. ବି. (ନାମ)—ଉତ୍କଳର ଜଣେକ ସୁପରିଚିତ
Nilamani bidyaratna ସ୍ୱର୍ଗୀୟ ସାହିତ୍ୟ ସେବକ—
Name of a well known literate man of Orissa.
[ଦ୍ର—ସେ 'ସମ୍ବଲପୁର ହିତୈଷିଣୀ'ର ଭୂତପୂର୍ବ ପ୍ରଖ୍ୟାତ ସମ୍ପାଦକ ବୋଲି ଉତ୍କଳରେ ପରିଚିତ ଥିଲେ । ସେ ଉତ୍କଳ ସାହିତ୍ୟର ଉନ୍ନତି ପାଇଁ ଆଜୀବନ ଚେଷ୍ଟା କରୁଥିଲେ । କେତେକ ଉପାଦେୟ ପୁସ୍ତକ ଏହାଙ୍କଦ୍ୱାରା ରଚିତ ହୋଇଥିଲା । ଭାରତୀ—ଉତ୍କଳସାହିତ୍ୟ ।
କଟକ ଜିଲ୍ଲାର ଡମପଡ଼ା ରାଜ୍ୟରେ ତାଙ୍କର ଜନ୍ମ ହୋଇଥିଲା । ସେ ଓଡ଼ିଆ ବ୍ରାହ୍ମଣ । ବାମଣ୍ଡାର ସର୍ ସୁଢ଼ଳଦେବଙ୍କ ରାଜସଭାରେ

ତହୁଁ ସେ ପ୍ରଥମେ ସମ୍ବଲପୁର ହ୍ୱର୍ଦ୍ଦୌଷିଣୀ ପରେ ଖଲ୍ଲିକୋଟର ହରହର ମର୍ଦ୍ଦରାଜ ରାଜାଙ୍କ ନିକଟରେ ରହି ପ୍ରଜାବନ୍ଧୁ ଓ ତତ୍ପରେ ବଡ଼ ଖେମୁଣ୍ଡିର ରାଜା କୃପାମୟ ଅନଙ୍ଗଭୀମଦେବଙ୍କ ନିକଟରେ ରହି ଗଞ୍ଜାମ ଗୁଣଦର୍ପଣ ସମ୍ବାଦପତ୍ର ପ୍ରକାଶ କରୁଥିଲେ । ଅନେକଗୁଡ଼ିଏ ଗଦ୍ୟ ଓ ପଦ୍ୟ ପୁସ୍ତକ ଏହାଙ୍କ ରଚିତ, କଚ୍ଛନ୍ଦନ ଏ କଟକର ଉତ୍କଳ ଦୀପିକାର ସମ୍ପାଦକ କର୍ମ କରୁଥିଲେ ।]

**ନୀଳମାଧବ** - ସଂ ବ (କର୍ମଧା, ନୀଳ + ମାଧବ)—୧ । ଶ୍ରୀକୃଷ୍ଣ; ବିଷ୍ଣୁ—
Nilamādhaba 1 Bishṇu; Srikrushṇa.
[ଦ୍ର ଖଣ୍ଡପଡ଼ା ଅନ୍ତର୍ଗତ ମହାନଦୀ ତୀରବର୍ତ୍ତୀ ସୁପ୍ରସିଦ୍ଧ କଣ୍ଟିଲୋପାଟଣାଗ୍ରାମର ଗୋଟିଏ ପର୍ବତର ଶିଖର ଦେଶରେ ନୀଳମାଧବଙ୍କ ମନ୍ଦିର ପ୍ରତିଷ୍ଠିତ ।]
୨ । ପ୍ରୟାଗରେ ଥିବା ବିଷ୍ଣୁ ପ୍ରତିମା—
2. An image of Bishṇu at Allahabad.
[ଦ୍ର—ତ୍ରିବେଣୀରେ ସ୍ନାନ କରି ସାରି ନୀଳମାଧବଙ୍କୁ ଦର୍ଶନ କଲେ ଯାତ୍ରୀ ତ୍ରିବେଣୀ ସ୍ନାନର ଫଳ ଲାଭ କରେ ।]
ଦେ. ବ. ପୁଂ—ପୁରୁଷଙ୍କ ନାମ—
A Name given to males

**ନୀଳମୀଳକ**—ସଂ. ବ. (ନୀଳ = ଗାଢ଼ କୃଷ୍ଣବର୍ଣ୍ଣ ବା ନୀଳବର୍ଣ୍ଣ + ମୀଲ୍ ଧାତୁ ଚକ୍ଷୁ ମୁଦ୍ରିତ କରିବା + କର୍ତ୍ତୃ. ଅକ)—ଖଦ୍ୟୋତ, ଜୁଳୁଜୁଳିଆ ପୋକ—
Nilamilaka Firefly

**ନୀଳମେଘୀ**—ଦେ. ବଣ.—(ସଂ. ନୀଳ + ମେଘ)—ନୀଳମେଘର ବର୍ଣ୍ଣ ବିଶିଷ୍ଟ (ଶାଢ଼ୀ)—Azure coloured (cloth).
Nilameghi
ନୀଳାମ୍ବର ନୀଳମେଘୀ ଶାଢ଼ୀ ଗଳାପର ଉଡ଼ି ଖସାଇ ଲହସା ଖୋସା ।
ନୀଳାମ୍ବର କବିସୂର୍ଯ୍ୟ ସଙ୍ଗୀତ ।

**ନୀଳରାଜି**—ସଂ. ବ (ଷଷ୍ଠୀ ତତ୍, ନୀଳ + ରାଜି)—ଘନାନ୍ଧକାର—
Nilarāji Deep darkness.

**ନୀଳ ଲୋହିତ**—ସଂ. ବ (ବହୁବ୍ରୀହି, ନୀଳ = କଣ୍ଠ ନୀଳବର୍ଣ୍ଣ + ଲୋହିତ = କେଶ ଲୋହିତ ବର୍ଣ୍ଣ ଯାହାର)—
Nila lohita
୧ । ମହାଦେବ; ଶିବ—1 God Siba.
୨ । ( ଯେ ନୀଳ ସେ ମଧ୍ୟ ଲୋହିତ ) ନୀଳ ଓ ଲୋହିତବର୍ଣ୍ଣ; ବାଇଗଣୀ ରଙ୍ଗ—2 Violet colour.

**ନୀଳଲୋହିତା**—ସଂ. ବ. ସ୍ତ୍ରୀ. (ନୀଳଲୋହିତ + ଆ)—୧ । ପାର୍ବତୀ (ହି.ଶ.)
Nilalohitā 1. Pārbati.
୨ । ଭୁଇଁଜାମୁ (ହି. ଶବ୍ଦସାଗର)—
. A kind of blackberry

**ନୀଳସନ୍ଧ୍ୟା**—ସଂ. ବ.—ନୀଳ ଅପରାଜିତା (ହି. ଶବ୍ଦସାଗର)—
Nilasandhyā The flowered variety of Aparājitā.

**ନୀଳସାର**—ସଂ. ବ.—କେନ୍ଦୁ (ଦେଖ)
Nilasāra Kendu (See)
[ଦ୍ର—ଏହାର ମଞ୍ଜରୁ ଅବଲୁସ୍ କାଠ ବାହାରେ ।]

**ନୀଳା**—ସଂ. ସ୍ତ୍ରୀ.—(ନୀଳ + ସ୍ତ୍ରୀ. ଆ)—୧ । ନୀଳବର୍ଣ୍ଣ ମକ୍ଷିକା—
Nilā 1. The blue bottle.
୨ । ନୀଳ ପୁନର୍ନବା—2. A kind of pot-herb.
୩ । ନୀଳ ଗୁଲ୍ମ—3. Indigo plant.
୪ । ମାଳବ ରାଗର ପତ୍ନୀ, ରାଗିଣୀବିଶେଷ—
4 Name of a minor musical tune.
ଦେ. ବ. (ସଂ ନୀଳମଣି)—ନୀଳମଣି—
Sapphire
ଗ୍ରା—୧ । (ସଂ ଲୀଳା), କ୍ରୀଡ଼ା—1 Sport.
୨ । ଯାତ୍ରା, ପୌରାଣିକ ଆଖ୍ୟାନର ନାଟ—2. Dance representing mythological subjects.
( ଯଥା—ରାମନୀଳା, କୃଷ୍ଣନୀଳା, ଭାରତନୀଳା ଇତ୍ୟାଦି )
୩ । ନୀଳମଣି ନାମକ ପୁରୁଷର ଓ ସ୍ତ୍ରୀର ଡାକନାମ—
3. Name for calling a male or female named Nilamaṇi.
ଦେ ବଣ—( ସଂ ନୀଳ ) ନେଳିଆ, ନୀଳବର୍ଣ୍ଣଯୁକ୍ତ—
ନୀଳା ନୀଲା Blue.
ନୀଳା ଭେଳା କରିବାକୁ ବହାର—ଉକ୍ତ କୋଟିବ୍ରହ୍ମାଣ୍ଡସୁନ୍ଦରୀ ।

**ନୀଳାଇ**—ଗ୍ରା ବ ପୁଂ.—ନୀଳମଣି ବା ନୀଳାଦ୍ରିର ଡାକନାମ—
Nilāi Name for calling Nilamaṇi or Nilādri.
ନୀଳା (ନୀଳେଇ—ଅନ୍ୟରୂପ )

**ନୀଳାଇ ନୀଳା**—ଦେ. ବ —ଆମୋଦ ଉତ୍ସବର ସ୍ରୋତ—
Nilāi nilā A round of festivities
( ନୀଳେଇନୀଳା—ଅନ୍ୟରୂପ ) (ଯଥା—ରାଜାଙ୍କ ବିଭାଘରେ ରାଇଜଯାକ ନୀଳାଇନୀଳା ଲାଗିଛି । )

**ନୀଳାଚଳ**—ସଂ. ବ—(କର୍ମଧା, ନୀଳ + ଅଚଳ) —୧ । ଆସାମର ନୀଳ ଗିରି ପର୍ବତ—1. The Nilgiri hills in Assam
Nilāchala
୨ । ପୁରୀ ଜଗନ୍ନାଥ ଯେଉଁ ପୌରାଣିକ ପର୍ବତରେ ଅବସ୍ଥିତ—
2. A mythological hill on which the temple of Jagannātha at Puri is said to stand
୩ । ପୁରୀ ଶ୍ରୀକ୍ଷେତ୍ର—3. The town of Puri.
୪ । ଦକ୍ଷିଣଭାରତର ପୂର୍ବଘାଟ ପର୍ବତ—
4. The Eastern ghat mountains in South India.
[ଦ୍ର— ପୌରାଣିକ ନୀଳାଚଳ ପୁରୀରେ, ଉତ୍ତରନୀଳାଚଳ ଆସାମର କାମାଖ୍ୟା ପାହାଡ଼ ଓ ଦକ୍ଷିଣ ନୀଳାଚଳ ଦାକ୍ଷିଣାତ୍ୟ ପୂର୍ବଘାଟ ନୀଳଗିରି ପର୍ବତ; ସମ୍ଭବତଃ ଏହି ପୂର୍ବଘାଟ ପାହାଡ଼ର ଉତ୍ତରସୀମା ପୁରୀ ଜିଲ୍ଲାକୁ ଲାଗି ଥିବାରୁ ପୁରୀର ନାମ ନୀଳାଚଳ ହୋଇଅଛି । ]

**ନୀଳାଚଳ ଚନ୍ଦ୍ର**—ସଂ. ବ ( ଷଷ୍ଠୀ ତତ୍, ନୀଳାଚଳ + ଚନ୍ଦ୍ର )—
Nilāchala chandra ପୁରୀରେ ବିରାଜିତ ଜଗନ୍ନାଥ ମହାପ୍ରଭୁ—
The idol Jagannātha of Puri.
ନୀଳାଚଳନାଥ, ନୀଳାଚଳବିହାରୀ } ଅନ୍ୟରୂପ
ନୀଳାଚଳ ଚନ୍ଦ୍ର କ୍ରେ; କଁ କି ଦୁଃଜନାଥ ବଡ଼ଯେତେ ରସେ ଏ ନେଇ ରଡ଼ସ୍ତୁତ ।
ବ୍ରଜନାଥ ସମରତରଙ୍ଗ ।

**ନୀଳାଞ୍ଚଳ**—ଗ୍ରା ବ. ( ସଂ. ନୀଳାଚଳ )—ପୁରୀ, ଶ୍ରୀକ୍ଷେତ୍ର—
Nilānchala Puri, the seat of Lord Jagannath.
ନୀଳାଚଳ, ନୀଲାଚଲ
କପୋତେଶ୍ୱର ଶିବ ଥିବ,
ଜବଟେ ପୁରୀ ନୀଳାଞ୍ଚଳ । ଭୂପତି ପ୍ରେମପଞ୍ଚାମୃତ

**ନୀଲାଞ୍ଜନ** – ସଂ. ବ ( କର୍ମଧା, ନୀଳ+ଅଞ୍ଜନ )—୧ । ତୁତ୍ଥ, ତୁତିଆ·
Nīlāñjana 1. The blue vitriol.
ସ ନାମ—ସୌବୀରାଞ୍ଜନ, ୨ । ସୌବିରାଞ୍ଜନ—
ପାର୍ବତେୟା, ବାରିସମ୍ଭବ 2. Antimony.
नीलशर्मा ୩ । ନେଳ ସୁରମା—
नीलशर्मा 3. Collyrium.
ତେ.– ନୀଲାଞ୍ଜନମ୍

**ନୀଲାଞ୍ଜନା**—ସ ବ. ସ୍ତ୍ରୀ. (ନୀଲାଞ୍ଜନ+ସ୍ତ୍ରୀ ଆ) – ବିଦ୍ୟୁତ୍—
Nīlāñjanā Lightning.

**ନୀଲାଦ୍ରି**—ସଂ. ବ. (କର୍ମଧା, ନୀଳ+ଅଦ୍ରି)—୧ । ନୀଳାଚଳ (ଦେଖ)
Nīlādri 1. Nīlāchala (See)
୨ । (ପୁଂ) ଲୋକଙ୍କ ନାମ—2. A name given to males.

**ନୀଲାଦ୍ରି ନାଥ**—ସଂ. ବ —(ନୀଲାଦ୍ରି+ନାଥ)—ନୀଳାଚଳନାଥ—
Nīlādri nātha The idol Jagannātha at Puri.
(ନୀଲାଦ୍ରିଚନ୍ଦ୍ର, ନୀଲାଦ୍ରିବିହାରୀ—ଅନ୍ୟରୂପ)

**ନୀଲାଦ୍ରି ମହୋଦୟ**—ସ. ବ.—ପୁରୀ ଶ୍ରୀ ଜଗନ୍ନାଥ କ୍ଷେତ୍ରର ମାହାତ୍ମ୍ୟ ଓ
Nīlādri mahodaya ଜଗନ୍ନାଥଙ୍କ ପୂଜା ଓ ଉତ୍ସବ ବିଧି ଆଦି
ବର୍ଣ୍ଣିତ ହୋଇଥିବା ସଂସ୍କୃତ ଗ୍ରନ୍ଥବିଶେଷ—Name of
a Sanskrit work dealing with the
sacred pilgrimage centre of Puri.

**ନୀଲାପରାଜିତା**—ସ. ବ. (ନୀଲା+ଅପରାଜିତା)—ନୀଳବର୍ଣ୍ଣ ଅପରାଜିତା—
Nīlāparājitā The blue Clitoris flower.

**ନୀଲାବ୍ଜ**—ସ. ବ. (ନୀଳ+ଅବ୍ଜ)—ନୀଳକଇଁ—
Nīlābja The blue water lily
(ନୀଲାମ୍ବୁଜ, ନୀଳେନ୍ଦୀବର, ନୀଳୋତ୍ପଳ, ନୀଳକମଳ—ଅନ୍ୟରୂପ)

**ନୀଲାଭ**—ସ. ବଣ. (ବହୁବ୍ରୀହି, ନୀଳ+ଆଭା)—ନୀଳବର୍ଣ୍ଣବିଶିଷ୍ଟ—
Nīlābha (ନୀଲାଭା—ସ୍ତ୍ରୀ, ନୀଲାଭତା—ବ) Blue.

**ନୀଲାମ୍ବର**—ସ ବ. (କର୍ମଧା, ନୀଳ+ଅମ୍ବର)—୧ । ନେଳିଆଲୁଗା—
Nīlāmbara 1. A blue cloth
୨ । (ବହୁବ୍ରୀହି) ଭୁଇଁ ଅଁଳା—2. A species of
plant; Flacourtia Cataphracta
୩ । (ନେଳିଲୁଗା ପିନ୍ଧୁଥିବାରୁ) ବଳରାମ—3 Balarāma;
the elder step brother of Śrīkṛushna
୪ । ଶନିଗ୍ରହ—4 The planet Saturn.
୫ । ରାକ୍ଷସ—5. A giant; a cannibal.
୬ । (କର୍ମଧା) ନୀଳ ଆକାଶ—6. The blue sky.
(ନୀଲାମ୍ବରୀ—ସ୍ତ୍ରୀ) ସ. ବଣ. ପୁଂ—ନୀଳବସ୍ତ୍ରଧାରୀ—
Dressed in blue

**ନୀଲାମ୍ବର ଦାସ**—ଦେ. ବ (ନାମ)—ଜନୈକ ଓଡ଼ିଆ କବି—
Nīlāmbara dāsa An Oria poet
[ଦ୍ର—ଏ କବି 'ଜୈମିନି ଭାରତ', ଓ 'ପଦ୍ମପୁରାଣ' ଓଡ଼ିଆ
ଭାଷାରେ ଅନୁବାଦ କରିଥିଲେ । 'ରୁଦ୍ରସୁଧା', ଓ 'ପୁରୁଷୋତ୍ତମ
ଦେଉଳ କାର୍ଯ୍ୟ' ଏହାଙ୍କର ଅନ୍ୟତମ ଗ୍ରନ୍ଥ ।
ଭାରତୀ—ଉତ୍କଳ. ଇତିହାସ ।]

**ନୀଲାମ୍ବର ଭଞ୍ଜ**—ଦେ ବ. (ନାମ)—ଜନୈକ ଓଡ଼ିଆ କବି—
Nīlāmbara bhañja An Oria poet.
[ଦ୍ର—ଏ କବି ହଳଦିଆର ରାଜା ଥିଲେ । 'କୃଷ୍ଣଲୀଳାମୃତ' ଓ
'ପଞ୍ଚସାପୃକ' ନାମକ ଦୁଇଟି ଗ୍ରନ୍ଥ ଏହାଙ୍କଦ୍ୱାରା ରଚିତ ।
ଭାରତୀ—ଉତ୍କଳ. ଇତିହାସ ।]

**ନୀଲାମ୍ବର ଶର୍ମା**—ସ. ବ. (ନାମ)—ଜନୈକ ପଣ୍ଡିତ—
Nīlāmbara śarmā Name of a learned man.
[ଦ୍ର—ପାଶ୍ଚାତ୍ୟ ପଦ୍ଧତି ଅନୁସାରେ ଏ ଗୋଲ ପ୍ରକାଶ ନାମକ
ସଂସ୍କୃତ ଗଣିତ ଗ୍ରନ୍ଥ ରଚନା କରିଥିଲେ, ଆହୁରି ମଧ୍ୟ ଲୀଳାବତୀଙ୍କ
ପ୍ରଣୀତ ଗଣିତ ଶାସ୍ତ୍ରର ଟୀକା କରିଥିଲେ । ଏହାଙ୍କର ଜନ୍ମସ୍ଥାନ
ପାଟନା ଗଡ଼ଜାତ ।]

**ନୀଲାମ୍ବରୀ**—ଦେ. ବ (ସ. ନୀଲାମ୍ବର)—ନୀଳ ଶାଢ଼ୀ—
Nīlāmbarī A blue cloth for ladies.
नीलाम्बरी नीला कपड़ा

**ନୀଲାମ୍ବୁ**—ସ. ବ. (ବହୁବ୍ରୀହି; ନୀଳ+ଅମ୍ବୁ)—ସମୁଦ୍ର—
Nīlāmbu The ocean.
ସ. ବଣ.—ଯାହାର ପାଣି ନୀଳବର୍ଣ୍ଣ—
Having the water of blue colour.

**ନୀଲାମ୍ବୁଜ**—ସ. ବ. (ନୀଳ+ଅମ୍ବୁଜ)—ନୀଳକଇଁ—
Nīlāmbuja The blue lily; the blue water-lily.
(ନୀଲାମ୍ବୁଜନ୍ମ - ଅନ୍ୟରୂପ)

**ନୀଲା ରତ୍ନ** - ଦେ. ବ.—ନୀଳମଣି, ଇନ୍ଦ୍ରନୀଳମଣି—
Nīlā ratna Sapphire.
नीलारत्न नीलम

**ନୀଲାସୁଣୀ**—ଦେ. ବ ସ୍ତ୍ରୀ—ଦେବୀବିଶେଷ—
Nīlāsuṇī Name of a popular Goddess.

**ନୀଳି**—ଦେ. ବଣ ଓ ବ. (ସ. ନୀଳ)—ନେଳି—(ଦେଖ)
Nīli Neḷi (See)
ଦେ ବ. (ସ. ନୀଳ)—ପାଣି ଉପରେ ମାଡ଼ିବା ଅତି କ୍ଷୁଦ୍ର ନେଳୀ;
ଶିଉଳି—A kind of blue moss consisting of
भाङ्ग small particles spread over the
surface of water.

**ନୀଳିଆ**—ବଣ. (ସ. ନୀଳ)—ନେଳିଆ, ନୀଳବର୍ଣ୍ଣବିଶିଷ୍ଟ—
Nīliā नील नीला Blue; indigo-coloured.

**ନୀଳିକା**—ସ. ବ. ସ୍ତ୍ରୀ. (ନୀଳ+କ+ଆ)—୧ । ନୀଳ ଗଛ—
Nīlikā 1 The indigo plant.
୨ । ଆଖିର ମୋତିଆବିନ୍ଦୁ ରୋଗ—
2. Cataract of the eye.
( ଦ୍ର—ଯେଉଁ ରୋଗରେ ଆକାଶରେ ସୂର୍ଯ୍ୟ, ଚନ୍ଦ୍ର, ନକ୍ଷତ୍ର, ତାରା,
ବିଦ୍ୟୁତ୍ ଆଦି ଦେଖା ଯାଏ କିନ୍ତୁ ପୃଥିବୀର ବସ୍ତୁମାନ ଦେଖାଯାଏ
ନାହିଁ ତାକୁ ନୀଳିକା କହନ୍ତି । ହି. ଶବ୍ଦସାଗର ।)
୩ । ବେଗୁନିଆ (ଦେଖ)—3. Beguniā (See)

**ନୀଳିମା**—ସ. ବ. (ନୀଳ+ଭାବାର୍ଥେ. ଇମନ୍; ୧ମା. ୧ବ.)—
Nīlimā ୧ । ନୀଳବର୍ଣ୍ଣ—1. Blue colour.

୨ । ନୀଳତ୍ୱ—2 Blueness; the state of being blue.

**ନୀଳୀ**— ସ. ବଣ (ନୀଳ+ଅସ୍ତ୍ୟର୍ଥେ ଇନ୍, ନୀଳନ୍, ଙୀ. ଟବ.)—
Nili ନୀଳବର୍ଣ୍ଣବିଶିଷ୍ଟ—Blue.
ସ. ବି.—୧ । ନୀଳ ଗୁଳ୍ମ—1. Indigo plant.
୨ । ନୀଳରଙ୍ଗ—2. Indigo colour.

**ନୀଳୀରାଗ**—ସ. ବି. ( କର୍ମଧା, ନୀଳୀ+ରାଗ )—
Niliraga ୧ । ସ୍ଥିର ସୌହାର୍ଦ୍ଦ୍ୟ—
1. Firm attachment; constant friendship.
୨ । ନୀଳବର୍ଣ୍ଣ—2. Blue colour.
୩ । ନାୟକ ନାୟିକାଙ୍କର ମିଳନ ପୂର୍ବରୁ ପୂର୍ବରାଗବିଶେଷ—
3. Attachment between the lover and the beloved before they are actually united.

**ନୀଳୋତ୍ପଳ**—ସ. ବି. ( କର୍ମଧା, ନୀଳ+ଉତ୍ପଳ )—ନୀଳ କଇଁ—
Nilotpala The blue water-lily.

**ନୀଳୋପଳ**—ସ. ବି. ( କର୍ମଧା, ନୀଳ+ଉପଳ )—ନୀଳମଣି—
Nilopala Sapphire

**ନୀଶାର**—ସ. ବି. ( ନି+ଶୃ ଧାତୁ=ହିଂସା କରିବା+କର୍ମ. ଅ )—
Nisara ୧ । କମ୍ବଳ—1 Blankeg.
୨ । କନାତ, ପର୍ଦ୍ଦା—2. Screen.
୩ । ମଶାରୀ—3. Mosquito-curtain.
୪ । ଶୀତ ଲୁଗା, ଶୀତନିବାରକ ବସ୍ତ୍ର—
4. Winter-clothing.
ଘୋଡାଇ ଦେଇ ହେଲେ ସସ୍ତା ନଶାରେ । ଭକ୍ତ. ପ୍ରେମସୁଧାନିଧି ।

**ନୀହାର**—ସ.ବି. (ନି+ହୃ ଧାତୁ=ହରଣ କରିବା+କର୍ମ.ଅ, ଦୀର୍ଘାଗମ)—
Nihara ୧ । ହିମ, ଶିଶିର—1. Dew.
୨ । ତୁଷାର—2. Snow.
୩ । ବରଫ—3. Ice.
୪ । କୁହୁଡ଼ି; କୁଜ୍ଝଟିକା—
4. Hoarfrost; fog; mist.

**ନୀହାର ସ୍ଫୋଟ**—ସ. ବି. ( ୬ଷ୍ଠୀ ତତ୍; ନୀହାର+ସ୍ଫୋଟ )—
Nihara sphota ବରଫର ବିଶାଳ ଖଣ୍ଡ ବା ଚଟାଣ—
An avalanche.

**ନୀହାରିକା**—ସ. ବି. ( ନୀହାର+କ+ସ୍ତ୍ରୀ. ଆ )—
Niharika ନୀହାର ସ୍ତୂପବତ୍ ପ୍ରତୀୟମାନ ଘନସନ୍ନିବିଷ୍ଟ ନକ୍ଷତ୍ରପୁଞ୍ଜ— The Nebula.
[ ଦ୍ର—ହିନ୍ଦୁ ଜ୍ୟୋତିଷର ୨୭ ନକ୍ଷତ୍ର ମଧ୍ୟରୁ ପ୍ରଥମ ବା ଅଶ୍ୱିନୀ ନକ୍ଷତ୍ର ଗୋଟିଏ ନୀହାରିକା ଅଟେ । ]

**ନୀହେଲେ**—ପ୍ରାଦେ. ( ସମ୍ବଲପୁର ) ଅ—
Nihele ୧ । ନୋହିଲେ—1. Otherwise; if not.
୨ । ଅଥବା—2. Or; else.

**ନୁ** (ଧାତୁ)—ସ—୧ । ସ୍ତବ କରିବା—
Nu (root) 1. To pray.
୨ । ପ୍ରଶଂସା କରିବା—2. To praise.

**ନୁ** (ନୁଁ)—ପ୍ରାଦେ. ( ସମ୍ବଲପୁର ) ବିଭକ୍ତ୍ୟନ୍ତ ପ୍ରତ୍ୟୟ—
Nu (nuñ) ୧ । ରୁଁ; ଠାରୁ, ରୁ—1. From.
୨ । ଅମୁକ ସମୟରୁ ଆରମ୍ଭ କରି—2. Since.
୩ । ଅପେକ୍ଷା—3 Than.

**ନୁ(ନୋ)ଆଇଁବା**—ଦେ. କ୍ରି. (ସ. ନମ୍ ଧାତୁ; ନଇଁବାର ଣିଜନ୍ତ ରୂପ)—
Nu(no)ainba ୧ । ନମ୍ର କରିବା; ନତ କରିବା—
(ନୋଇଁବା—ଅନ୍ୟରୂପ) 1. To bend.
ଝୁକାନା, ନୋୱାନା ୨ । ବଙ୍କାଇବା—2. To curve; to make
ନିବାନା crooked.
୩ । ତଳକୁ କରିବା—3. To lower.
ସବନରେ ନଜ ପରତସ୍ଥ ଦେଇ ଶିର ନୁଆଁଇ । ରାଧାନାଥ. ଉଷା ।

**ନୁଆ(ଆଁ)ଣ**—ଦେ. ବି. ( ସ. ନମ୍ ଧାତୁ )—
Nua(an)na ୧ । ନମ୍ର କରଣ; ନତ କରିବା—
ଝୁକନ, ଝୁକାନ 1. Act of bending.
ନିବାନ ୨ । ନିମ୍ନ ସ୍ଥାନ—2. Low place.
ଦେ. ବଣ—୧ । ନମ୍ର; ନତ—1. Bent.
୨ । ନୁଆଣିଆଁ ( ଦେଖ )—2 Nuaniañ ( See )

**ନୁଆ(ଆଁ)ଣି**—ଦେ. ବଣ—ନୁଆଣିଆଁ ( ଦେଖ )
Nua(an)ni Nuaniañ ( See )

**ନୁଆ(ଆଁ)ଣିଆଁ**—ଦେ. ବଣ. ( ସ. ନତ )—୧ । ଈଷତ୍ ନତ—
Nua(an)niañ 1. Slightly bent.
ନୋଆନା ୨ । ଯେଉଁ ଘରର ଛାତର ନିମ୍ନତା ଯୋଗୁଁ ମୁଣ୍ଡକୁ ନୁଆଇଁ
ନୀଚା ସେ ଘରେ ପଶିବାକୁ ହୁଏ—
2. Low-roofed (house); where a person has to bend his head before entering.

**ନୁଆରିବା**—ଦେ. କ୍ରି—୧ । ନ ପାରିବା; ସମର୍ଥ ନ ହେବା—
Nuariba 1. Not to be able.
ନାରା ୨ । ଜାଣି ନ ପାରିବା—
2. Not to be able to know.
୩ । ନିବେଦନ କରିବା, କହିବା—
3. To speak; to inform.

**ନୁଉଙ୍ଗା**—ଦେ. ବି—ମେହେଙ୍ଗା ( ଦେଖ )
Nu-unga Mehenga ( See )

**ନୁକ୍(କୁ)ସାନ୍(ନି)**—ପ୍ରାଦେ. (ସମ୍ବଲପୁର, ମେଦିନୀପୁର; ବାଲେଶ୍ୱର)—
Nuk(ku)san(ni) ବୈଦେ. ( ଅ. ନୁକ୍‌ସାନ୍ ) ବି—
୧ । ଲୋକସାନ; କ୍ଷତି; ଷଢ଼—1. Loss; injury.
୨ । ହାନି—2. Mischief.
୩ । ବ୍ୟବସାୟରେ ଷଢ଼—3. Loss in business.

**ନୁକା(କେ)ଇବା**—ପ୍ରାଦେ. ( ସମ୍ବଲପୁର ଓ ବାଲେଶ୍ୱର ) କ୍ରି. ( ସ. ଲୁକ୍
Nuka(ke)iba ଧାତୁ, ନୁକିବାର ଣିଜନ୍ତ ରୂପ; ତୁଳ. ହି. ନୁକାନ )—ଲୁଚାଇବା—
To conceal; to hide.

ନୁକବା—ପ୍ରାଦେ. ( ସମ୍ବଲପୁର ଓ ବାଲେଶ୍ୱର ) କ୍ରି. ( ସଂ. ଲୁକ୍କ ଧାତୁ
Nukibā ଭୁଲ. ବ. ନୁକା )—ଲୁଚିବା—
To hide one's self.

ନୁକୋ—ପ୍ରାଦେ (ସମ୍ବଲପୁର) ବିଣ—୧ । ଭଲ, ସୁନ୍ଦର—
Nuko 1. Good; fine.
୨ । ଉତ୍କୃଷ୍ଟ—2. Superior; excellent.

ନୁଖୁରା—ଦେ. ବିଣ. ( ସଂ. ରୁକ୍ଷ )—
Nukhurā ୧ । ତୈଳହୀନ—1. Destitute of oil; not oily
ଉଷ୍କାଖୁଷ୍କା
ଶୁଖା ୨ । ଯହିଁରେ ତେଲ ମିଶି ନ ଥାଏ—
(ନୁଖୁରୀ—ସ୍ତ୍ରୀ) 2. Not mixed with oil.
୩ । ଅଚିକ୍କଣ; ଅସ୍ନିଗ୍ଧ—
3 Unsmooth; not glossy.
୪ । ଯେ ଦେହରେ ତେଲ ଲଗାଇ ନ ଥାଏ—
4. Not anointed with oil

ନୁଖୁରା ହଳଦି—ଦେ. ବି ( ସଂ. ରୁକ୍ଷ ଓ ହରିଦ୍ରା )—ଦେହରେ ବୋଳା
Nukhurā haḷadi ହେବାପାଇଁ ଉଦ୍ଦିଷ୍ଟ ଯେଉଁ ବଟା ହଳଦୀରେ ତେଲ ଗୋଳିଆ ହୋଇ ନ ଥାଏ—
Pasted turmeric not mixed with oil.

ନୁଗା (ଇତ୍ୟାଦି)—ଗ୍ରା. ବି—ଲୁଗା ଇତ୍ୟାଦି (ଦେଖ)
Nugā (etc) Lugā etc (See)

ନୁଙ୍ଗ୍( ଙ୍ଗୁ )ପୁଙ୍ଗ୍( ଙ୍ଗୁ )ହେବା—ଦେ. କ୍ରି—୧ । ଗତାଗତ ହେବା;
Nuṅg(ṅgu)puṅg(ṅgu)hebā ଫେର୍ ଫାର୍ ହେବା—
[ନୁଙ୍ଗୁର୍(ରୁ)ପୁଙ୍ଗୁର୍(ରୁ)ହେବା—ଅନ୍ୟରୂପ] 1. To go about.
୨ । ଲୁକ୍କାୟିତଭାବରେ ବୁଲିବା—
2. To walk to and fro stealthily.
୩ । କିଛି କାର୍ଯ୍ୟ ନ ଥାଇ କୌଣସି ସ୍ଥାନରେ ବୁଲିବା—
3. To rove; to loiter; to loaf about.

ନୁଙ୍ଗୁଡ଼ା—ଦେ ବିଣ. ପୁଂ—୧ । ଲୁଙ୍ଗୁଡ଼ା; ଯେଉଁ ଲୋକ ସାନ ସାନ
Nuṅgurḍā ବସ୍ତୁ ଚୋରିକରେ ( ବ୍ୟକ୍ତି )—
(ନୋଙ୍ଗଡ଼ା—ଅନ୍ୟରୂପ) 1. Pilfering.
( ନୁଙ୍ଗୁଡ଼ୀ, ନୋଙ୍ଗଡ଼ୀ—ସ୍ତ୍ରୀ ) ୨ । ଲମ୍ପଟ—
2. Lewd; lecherous.
୩ । ଦୁଷ୍ଟ, ମନ୍ଦ—3. Wicked; vile.
ଦେ. ବି—୧ । କ୍ଷୁଦ୍ର କ୍ଷୁଦ୍ର ବସ୍ତୁ ଚୋରି କରିବା ବ୍ୟକ୍ତି—
1. Pilferer
୨ । ଲମ୍ପଟ ବ୍ୟକ୍ତି—2. Lecher.
୩ । ମନ୍ଦ ବା ଖଳ ଲୋକ—
3. Vile or wicked person.

ନୁଙ୍ଗୁରା—ଦେ. ବିଣ. ପୁଂ—୧ । ଅପରିଷ୍କୃତ; ଅପରିଚ୍ଛନ୍ନ; ଅତି ମଇଳା—
Nuṅgurā 1. Very filthy; dirty; soiled
( ନୋଙ୍ଗରା—ଅନ୍ୟରୂପ ) ୨ । ନିନ୍ଦ୍ୟ—
( ନୁଙ୍ଗୁରୀ, ନୋଙ୍ଗରୀ—ସ୍ତ୍ରୀ ) 2. Foul; blame-worthy.
ନୋଂରା ମନ୍ଦ
୩ । ମନ୍ଦ, ଦୁଷ୍ଟ—3. Wicked; bad.
୪ । ଘୃଣ୍ୟ—4. Detestible
୫ । ହୀନ—5. Mean.
୬ । ନୁଙ୍ଗୁଡ଼ା (ଦେଖ)—6 Nuṅgurḍā (See)
୭ । ଅଳିଆପୂର୍ଣ୍ଣ—
7. Full of refuse matter.
ଦେ. ବି—୧ । ଅଳିଆ—1. Refuse.
୨ ନୁଙ୍ଗୁଡ଼ା (ଦେଖ)—2. Nuṅgurḍā (See)

ନୁଚ(ଚୁ)କାଳି (ଇତ୍ୟାଦି)—ଦେ. ବି—ଲୁଚକାଳି ଇତ୍ୟାଦି (ଦେଖ)
Nucha(chu)kāḷi (etc) Luchakāḷi etc (See)

ନୁଚା (ଇତ୍ୟାଦି)—ଦେ. ବି. ଓ ବିଣ—ଲୁଚା ଇତ୍ୟାଦି (ଦେଖ)
Nuchā (etc) Luchā etc (See)

ନୁଚା(ଚେ)ଇବା—ଦେ. କ୍ରି—ଲୁଚାଇବା (ଦେଖ)
Nuchā(che)ibā Luchāibā (See)

ନୁଚିଏ(କ)—ଦେ. ବିଣ—ଲୁଚିଏ (ଦେଖ)
Nuchie(ka) Luchie (See)

ନୁଚିକା(କୁ)ଚି(ଛି) ହେବା—ଦେ. କ୍ରି—ଲୁଚିକୁଚି ହେବା (ଦେଖ)
Nuchikā(ku)chi(chhi)hebā Luchikuchi hebā (See)

ନୁଛିଯିବା—ଦେ. କ୍ରି—୧ । ଅନ୍ୟର ସୌନ୍ଦର୍ଯ୍ୟରେ ମୁଗ୍ଧ ହେବା—
Nuchhi jibā 1 To be charmed with another's beauty.
୨ । ଅନ୍ୟର ମଙ୍ଗଳ କାମନା କରି ତାହାର ଅମଙ୍ଗଳକୁ ଆପଣା ଉପରକୁ ପକାଇବା ପାଇଁ ମନାସିବା—
2 To invoke blessings on a person by wishing his evil to descend upon one's self.

ନୁଟ୍ (ଇତ୍ୟାଦି)—ଦେ. ବି—ଲୁଟ୍ ଇତ୍ୟାଦି (ଦେଖ)
Nuṭ (etc) Luṭ etc (See)

ନୁଟ(ଡ଼)—ଦେ. ବି—ସ୍ତ୍ରୀଲୋକମାନଙ୍କର ଏକପ୍ରକାର ଖେଳ—
Nuṭa(rḍa) A kind of indoor game at hazards.
[ ଦ୍ର—ଏଥିରେ ଚୌକୋଣିଆ ଖଣ୍ଡିଏ କାଠିର ୪ ପାଖେ ଚିହ୍ନ ଥାଏ । ତାକୁ ଭୂଇଁରେ ପକାଇଲେ ଯେଉଁ ପାଖ ଉପରକୁ ରହେ ସେଥିରେ ଥିବା ସଂଖ୍ୟା ଅନୁସାରେ ପାଳାରେ ସାର ଚଳାଯାଏ । ]

ନୁଟି (ଇତ୍ୟାଦି)—ଦେ. ବି—ଲୁଟି ଇତ୍ୟାଦି (ଦେଖ)
Nuṭi (etc) Luṭi etc (See)

ନୁଟୁରୁ—ପ୍ରାଦେ (ଗଡ଼ଜାତ) ବି—ବନ୍ୟଲତାବିଶେଷ—
Nuṭuru A kind of wild creeper.
(ନୁଟୁରୁ ନଇ —ଅନ୍ୟରୂପ) [ଦ୍ର—ବର୍ଷାକାଳରେ ଏହାର ଡଙ୍କ କଅଁଳେ । ଏହା ଭାରି ମସକା ଓ ଖାଇବାକୁ ଖଟା । ଲୋକେ ଏହାକୁ ତିଅଣରେ ପକାଇ ଖାଆନ୍ତି । ]

ନୁଡ଼ୁ(ଡ଼ୁ)କା(କି)—ଲୁଡ଼ୁକା (ଦେଖ)
Nurḍ(rḍu)kā(ki) Lurḍukā (See)

ନୁଡ଼୍(ଡ଼ୁ)ନୁଡ଼ି—ପ୍ରାଦେ (ସିଂହଭୂମ) ବ (ଭୁଲ. ବଂ. ନୁଲୁଡ଼ି)—ଘଣ୍ଟିକା—
Nurd(rdu)nurdı Uvula.
ନୁଣ (ଇତ୍ୟାଦି)—ଗ୍ରା. ବ—ଲୁଣ ଇତ୍ୟାଦି (ଦେଖ)
Nuna (etc) Luna etc (See)
ନୁଣା (ଇତ୍ୟାଦି)—ଦେ. ବ ଓ ବଣ—ଲୁଣା ଇତ୍ୟାଦି (ଦେଖ)
Nunā (etc) Lunā etc (See)
ନୁଣି (ଇତ୍ୟାଦି)—ଦେ. ବ. ଓ ବଣ—ଲୁଣି ଇତ୍ୟାଦି (ଦେଖ)
Nuni (etc) Luni etc (See)
ନୁଣିଆ(ଆଁ) ଦେ. ବଣ ଓ ବ— ଲୁଣିଆ ଇତ୍ୟାଦି (ଦେଖ)
Nuniā(ān̐) Luniā etc (See)
ନୁଣ୍ଡା (ଇତ୍ୟାଦି)—ଦେ. ବ (ସ. ନଡ଼)—ଲୁଣ୍ଡା ଇତ୍ୟାଦି (ଦେଖ)
Nundā (etc) Lundā etc (See)
ନୁଣ୍ଡି (ଇତ୍ୟାଦି) - ଦେ ବ—ଲୁଣ୍ଡି ଇତ୍ୟାଦି (ଦେଖ)
Nundı (etc) Lundı etc (See)
ନୁତ—ସ. ବଣ. (ନୁ ଧାତୁ=ସ୍ତବ କରିବା+କର୍ମ. ତ)—୧ । ପୂଜିତ—
Nuta 1. Worshipped.
୨ । ପ୍ରଶଂସିତ; ସ୍ତୁତ—
2. Praised; eulogised; extolled.
୩ । ପ୍ରଣତ—3. Humble; obedient.
ନୁତି—ସ. ବ. (ନୁ ଧାତୁ+ଭାବ. ତି)—୧ । ସ୍ତୁତି, ପ୍ରଶଂସା—
Nuti 1. Praise, eulogy.
୨ । ପୂଜା—2. Worship; adoration.
୩ । ପ୍ରଣାମ—3. Obeisance; bowing in respect
ନୁତ୍ତ—ସ. ବଣ. (ନୁଦ୍ ଧାତୁ=ପ୍ରେରଣ କରିବା+କର୍ମ. ତ)—
Nutta ୧ । ପ୍ରେରିତ—1. Sent.
(ନୁନ୍ନ—ଅନ୍ୟରୂପ) ୨ । ପରିତ୍ୟକ୍ତ—2. Abandoned.
୩ । କ୍ଷିପ୍ତ—3. Scattered; thrown.
୪ । ନିରସ୍ତ—4. Ceased; stopped.
୫ । ଛିନ୍ନ—5. Torn.

ନୁଦ୍(ଦୁ)ବୁଦ୍(ଦୁ)—ଦେ. ବଣ—୧ । ଲୁଦ୍‌ବୁଦ୍, ପେଟୁଆ, ସ୍ଥୂଳୋଦର—
Nud-(du)bud(du) 1. Pot-bellied.
ତୁନ୍ଦି, नाद्‌सनूद्‌स ୨ । ପୃଥୁଳ; ସ୍ଥୂଳକାୟ—
मोटा 2. Fat; corpulent.
ନୁଦ୍‌ବୁଦ୍ ବ୍ୟାଧି—ଦେ. ବ—ସ୍ଥୂଳକାୟ ହେବା ବା ଚର୍ବି ବଢ଼ିବା ରୋଗ-
Nud-bud byādhi ବିଶେଷ, ମେଦବୃଦ୍ଧି—A disease ending in corpulence; obesity; corpulency.
ନୁନ୍—ପ୍ରାଦେ. (କଳାହାଣ୍ଡି) ବ—ଲୁଣ—
Nun Salt.
ନୁନ୍‌ଚୂନ୍—ପ୍ରାଦେ. (ସମ୍ବଲପୁର) ବ—ଗୁଣ୍ଡ; ଗୁଣ୍ଡା—
Nun-chūn Powder.
ନୁନ୍ ନଗେଇବା—ପ୍ରାଦେ. (କଳାହାଣ୍ଡି) କ୍ରି—ତରକାରିଆଦିରେ ଲୁଣ
Nun nageibā ପକାଇବା—To put salt into curry etc.

ନୁନ—ପ୍ରାଦେ (ଗଡ଼ଜାତ) ବ—ଲୁଣ; ଲବଣ—
Nuna Salt.
ନୁନି(ନ୍ନି)—ଦେ. ବ (ସ. ନନ୍ଦ ଧାତୁ=ଆନନ୍ଦିତ କରିବା, ଶିଶୁବଚନ)—
Nuni(nni) ୧ । ସ୍ତ୍ରୀମାନଙ୍କ ସ୍ତନ—1 The breasts of young women.
थनी
नूनी ୨ । ଶିଶୁବାଳକଙ୍କର ଲିଙ୍ଗ—
2. The penis of infants.
ପ୍ରାଦେ. (ସମ୍ବଲପୁର) ବ ସ୍ତ୍ରୀ—୧ । ପରିବାରର ବଡ଼ ଝିଅ—
1. The eldest daughter in the family.
୨ । ଅବ୍ରାହ୍ମଣ ପରିବାରର ଶ୍ରେଷ୍ଠ କନ୍ୟା—
2. A small non-Brāhmana girl
ନୁନିଆରି—ପ୍ରାଦେ. (ଅନୁଗୁଳ) ବ—କାଠ ମଡ଼ମଡ଼ି (ଦେଖ)
Nuniārı Kātha mardamardı (See)
ନୁନିଆ(ଆଁ)ଶାଗ୍—ପ୍ରାଦେ (ସମ୍ବଲପୁର) ବ—ବର୍ଷାରିତୁ ପରେ ପଡ଼ିଆରେ
Nuniā(ān̐) śāg ମନକୁ ଉଠିବା ଶାକବିଶେଷ—A kind of
(ନୁନଶାଗ୍—ଅନ୍ୟରୂପ) wild kitchen herb.
ନୁନୁ—ପ୍ରାଦେ. (ସିଂହଭୂମ) ବ—ପୁଅ—
Nunu Son.
[ ଦ୍ର—ରାଜପରିବାରରେ ଏ ଶବ୍ଦ ପ୍ରଚଳିତ । ]
ନୁବାଡ଼ି—ପ୍ରାଦେ. (ଗଡ଼ଜାତ) ବ—ବନ୍ୟ ଗୁଳ୍ମବିଶେଷ—
Nubārdi Dalbergia Volubılıs (Haines).
ନୁର—ବୈଦେ. ବ. (ଫା. ନୂର୍=ଜ୍ୟୋତିଃ)—୧ । ଜ୍ୟୋତିଃ—
Nur 1. Radiance.
नूर नूर ୨ । ଦାଢ଼ି—2. Beard.
୩ । ଈଶ୍ୱର—3. God.
୪ । ଶ୍ରୀ, ସୌନ୍ଦର୍ଯ୍ୟ—4. Grace; beauty.
ନୁର ଅଲ୍ଲା—ବୈଦେ. ବ. (ଆ)—ଐଶ୍ୱରିକ ଜ୍ୟୋତିଃ—
Nur allā Divine light.
ନୁରଜାହାନ୍—ବୈଦେ. ବ. (ଫା. ନାମ)—ମୋଗଲ ସମ୍ରାଟ ଜାହାଙ୍ଗିରଙ୍କ
Nur-jahān ପାଟରାଣୀ—The queen of Jahangir, the
नूरजाहान Moghal Emperor of India.
नूरजाहान [ ଦ୍ର—ଏ ଶବ୍ଦର ବ୍ୟୁତ୍ପତ୍ତିଗତ ଅର୍ଥ ଜଗଜ୍ଜ୍ୟୋତିଃ । ଏହାଙ୍କର ବାଲ୍ୟକାଳର ନାମ ଥିଲା ମେହେରୁନ୍ନିସା, ଏ ଜଣେ ଦରିଦ୍ର କନ୍ୟା ଥିଲେ । ଆକବରଙ୍କ ଉଆସରେ ଆବାଲ୍ୟ ପ୍ରତିପାଳିତ ହୋଇ ଏ ନିଜର ଅପୂର୍ବ ସୌନ୍ଦର୍ଯ୍ୟରେ ରାଜକୁମାର ସେଲିମଙ୍କର ପ୍ରୀତି ଆକର୍ଷଣ କରିଥିଲେ । ଆକବର ଏହା ଜାଣିପାରି ଏ ବୟଃପ୍ରାପ୍ତା ହେଲା ପରେ ଏହାଙ୍କୁ ସେର୍‌ଅଫଗାନ୍ ନାମକ ଆପଣାର ଜଣେ ସେନାପତିଙ୍କ ସଙ୍ଗେ ବିବାହ ଦେଇ ଦମ୍ପତିଙ୍କୁ ବଙ୍ଗପ୍ରଦେଶକୁ ପଠାଇ ଦେଲେ । ଆକବରଙ୍କ ପରେ ଜାହାଙ୍ଗିର ସମ୍ରାଟ ହୋଇ ସେର୍‌ଅଫଗାନଙ୍କୁ ଷଡ଼ଯନ୍ତ୍ରଦ୍ୱାରା ହତ୍ୟା କରାଇ ମେହେରୁନ୍ନିସାଙ୍କୁ ବିବାହ କରି ପାଟରାଣୀରୂପେ ନିଜ ଉଆସକୁ ଆଣିଲେ । ତହୁଁରେ ଏହାଙ୍କର ନୁରଜାହାନ୍ ନାମ ହେଲା । ଏ ବଡ଼ ବୁଦ୍ଧିମତୀ ଓ ବିଳାସପ୍ରିୟା ଥିଲେ । ରାଜକାର୍ଯ୍ୟର ଅର୍ଦ୍ଧେକ ଭାର ଏହାଙ୍କ ଉପରେ ନ୍ୟସ୍ତ ଥିଲା ।

ଜାହାଙ୍ଗିରଙ୍କ ଛବି ସଙ୍ଗେ ଏହାଙ୍କ ମୂର୍ତ୍ତି ମଧ୍ୟ ମୋଗଲ ମୁଦ୍ରା ଉପରେ ଅଙ୍କିତ ହୋଇଥିଲା, ଏ ଗୋଲାପ ଅତରର ପ୍ରଥମ ଆବିଷ୍କର୍ତ୍ତ୍ରୀ ବୋଲି ପ୍ରସିଦ୍ଧା । ]

**ନୁଲା**—ଦେ. ବିଣ. (ସଂ. ଲୁଳିତ=ମର୍ଦ୍ଦିତ, ବା ଲୂନ=ଛିନ୍ନ, ଭୁଲ ଫା. ଲୁନ୍‌ଜା)—ଯାହାର ହାତ ଭଙ୍ଗା, କେଣ୍ଟା—
Nulā — Having a disabled hand; maimed in the hand.
ନୁଲା; ନୁଲୋ ଲୁଲା

**ନୁହ** (ଇତ୍ୟାଦି)~ ଗ୍ରା. ବି—ଲୁହ ଇତ୍ୟାଦି (ଦେଖ)
Nuha (etc) — Luha etc (See)

**ନୁହିଲେ**—ପ୍ରାଦେ. (ସମ୍ବଲପୁର) ଅ—ନୋହିଲେ; ନଭୁବା—
Nuhile — Otherwise, else; if not.

**ନୂ** (ଧାତୁ)—ସଂ—୧ । ସ୍ତବ କରିବା—
Nū (root) — 1 To pray
୨ । ପ୍ରଶଂସା କରିବା—2. To praise.

**ନୂଆ**—ଦେ.ବିଣ (ସଂ ନବ, ନୂତନ, ଭୁଲ ଫା ନୌ, ଲାଟିନ୍-ନୋଭମ୍)—
Nūā — ୧ । ନୂତନ—1. New.
ନୂତୁନ, ନୟା — ୨ । ନବ୍ୟ, ନବଜାତ—2 Novel.
ନୟା — ୩ । ଅଳ୍ପଦିନ ହେଲା ଘଟିଥିବା—3. Recent
୪ । ଅଳ୍ପବୟସ୍କ—4 Young.
୫ । ତଟକା—5 Fresh.
ଦେ. ବି—ଚଳିତବର୍ଷର ପ୍ରଥମ ଉତ୍ପନ୍ନ ଧାନ୍ୟ—
Newly harvested paddy for the current year.
(ଯଥା—ନୂଆଖିଆ ।)

**ନୂଆ କଳେବର**—ଦେ ବି (ସଂ. ନବ ଓ କଳେବର)—୧୨ ବର୍ଷରେ ଥରେ ଦୋ-ଆଷାଢି ପଡିଲେ ଶ୍ରୀଜଗନ୍ନାଥଆଦି ଠାକୁରଙ୍କ କାଷ୍ଠପ୍ରତିମାର ପରିବର୍ତ୍ତନରୂପ ଉତ୍ସବ—
Nūākalebara (ନୂଆକଳବର[ଳ]—ଗ୍ରାମ୍ୟରୂପ) — The ceremony of renewing the wooden image of the idols Jagannātha, Balabhadra and Subhadrā once in 12 years.

**ନୂଆ ଖବର**—ଦେ. ବି—ନୂତନ ସମ୍ବାଦ, ସଜ ଖବର—
Nūā khabara — Fresh or recent news.
नूतनखबर नयाखबर

**ନୂଆ ଖାଇ**—ପ୍ରାଦେ (ସମ୍ବଲପୁର) ବି (ଭୁଲ. ହି. ଏହି ଅର୍ଥରେ ନୟା କରନା)—ନବାନ୍ନ ଉତ୍ସବ; ନୂଆଖିଆ—
Nūā khāi — The ceremony of taking the new rice for the year.

[ଦ୍ର—ଗ୍ରାମର ସବୁ ଗୃହସ୍ଥ ପ୍ରତିବର୍ଷ ଭାଦ୍ର ଶୁକ୍ଳପକ୍ଷରେ ଶୁଭଦିନ ସ୍ଥିର କରି ସେ ବର୍ଷର ନୂଆଧାନର ଚାଉଳ ରାନ୍ଧି ଭୋଜି କରନ୍ତି ଏବଂ ଗାଉଣା ବାଜଣା କରି ଉତ୍ସବ ପାଳନ୍ତି । ସନ୍ଧ୍ୟାବେଳେ ସମସ୍ତେ ଆମିଷ ଭୋଜନ କରି ଶୁଅନ୍ତି । ଆମିଷ ଖାଇ ନ ଥିବା ବ୍ୟକ୍ତି ପର ଜନ୍ମରେ ବକ ଯୋନିରେ ଜନ୍ମ ହେବ ବୋଲି ସେମାନଙ୍କର ବିଶ୍ୱାସ ।]

**ନୂଆ ଖାଇବା**—ଦେ. କ୍ରି.—ବର୍ଷର ପ୍ରଥମ ଅମଦାନି ନୂତନ ଧାନର ଚାଉଳର ଅନ୍ନ ବା ଚୂଡ଼ା ଆଦି ଦେବତାଙ୍କୁ ପୂଜା କରି ପ୍ରଥମେ ଭୋଜନ କରିବା—
Nūā khāibā — To take the new rice for the first time in the year.

**ନୂଆ ଖିଆ**—ଦେ. ବି.—ନବାନ୍ନ ଭକ୍ଷଣ, ବର୍ଷର ପ୍ରଥମ ଲବ୍ଧ ଧାନ୍ୟର ଅନ୍ନଭୋଜନରୂପ ଗୃହସ୍ଥର ଉତ୍ସବବିଶେଷ—
Nūā khiā — The feast of taking the new rice for the year.

**ନୂଆଗଡ଼**—ଦେ. ବି. (ନାମ)—ଓଡ଼ିଶାର ଗଡ଼ଜାତବିଶେଷ—
Nūāgarda — A State of Orissa.

[ଦ୍ର—ଖ୍ରୀଷ୍ଟ ଚତୁର୍ଦ୍ଦଶ ଶତାବ୍ଦୀ ବା କିଛି ପୂର୍ବରୁ ରେବା ରାଜବଂଶର ଜଣେ ରାଜପୁତ୍ର ମହାନଦୀ ବାଟେ ଜଗନ୍ନାଥ ଦର୍ଶନ କରିବାକୁ ଆସୁଥିଲେ । ପଥରେ ଏହି ଅଞ୍ଚଳର ଲୋକେ ବାଘ ଭୟରେ ବଡ଼ ଆତୁର ହେଉଥିବାର ଜାଣି ରାଜପୁତ୍ର ବାଘକୁ ମାଇଲେ । ଆଦିମ ଅଧିବାସୀମାନେ କୃତଜ୍ଞତା ସ୍ୱୀକାର କରି ସେମାନଙ୍କର ରାଜା ହେବାକୁ ତାହାଙ୍କୁ ଅନୁରୋଧ କରିବାରୁ ସେ ଏ ରାଜ୍ୟର ରାଜା ହୋଇଥିଲେ । ବର୍ତ୍ତମାନ ସୁଦ୍ଧା ବ୍ୟାଘ୍ରମସ୍ତକ ଏ ରାଜବଂଶର ସଙ୍କେତ ହୋଇ ଅଛି । (କୃପାସିନ୍ଧୁ ଇତିହାସ) ।]

**ନୂଆ ଡାହାଣ(ଣୀ)**—ଦେ. ବି. ସ୍ତ୍ରୀ—(ସଂ. ନବ+ଡାକିନୀ)—ଯେଉଁ ସ୍ତ୍ରୀଲୋକ ଅଳ୍ପଦିନ ହେଲା ଡାହାଣୀ ହୋଇଅଛି—
Nūā dāhāṇa(ṇi) — A woman who has recently taken to witchcraft.
ନୂଆ ଡାହାଣୀ ଗୁହ ଖାଏ । ଢଗ ।

**ନୂଆ ନଈ**—ପ୍ରାଦେ. (ଯାଜପୁର) ବି—କେନାଲ୍—
Nūā nai — Canal.

**ନୂଆ ପାଞ୍ଜି**—ଦେ. ବି. (ସଂ. ନବ ପଞ୍ଜିକା)—ନବ ବର୍ଷର ପଞ୍ଜିକା—
Nūā pāñji — The almanac for the new year.

**ନୂଆ ପାଣି**—ଦେ ବି—ନୂତନ ବର୍ଷାଜଳ, ବର୍ଷା ଋତୁର ଆରମ୍ଭରେ ହେବା ବର୍ଷାର ପାଣି—
Nūā pāṇi — Water of the first shower of the rains.

**ନୂଆ ବୋହୂ**—ଦେ ବି. ସ୍ତ୍ରୀ. (ସଂ. ନବବଧୂ)—୧ । ନବବଧୂ—
Nūā bohū — 1 A bride newly come to her husband's house.
୨ । ବଡ଼ଭାଇଙ୍କ ସ୍ତ୍ରୀ, ଭାଉଜ—
2. Elder brother's wife.

**ନୂଆ ଭୂଆ**—ଦେ. ବିଣ. (ସହଚର; ୨ୟ ଶବ୍ଦ ନିରର୍ଥକ)—ନୂତନ ଓ ଅନଭିଜ୍ଞ (ବ୍ୟକ୍ତି)—
Nūā bhuā — Stranger; (a man) new to a place.

**ନୂତନ**—ସଂ. ବିଣ. (ନବ+ସ୍ୱାର୍ଥରେ ତନ, 'ନବ' ସ୍ଥାନରେ 'ନୂ')—
Nūtana — ୧ । ନବୀନ, ଅଭିନବ; ନୂଆ—
(ନୂତ୍ନ—ଅନ୍ୟରୂପ) — 1. New; novel; recent.
(ନୂତନତା, ନୂତନତ୍ୱ—ବି) — ୨ । ସଦ୍ୟ, ତଟକା—2. Fresh.
(ନୂତନା—ସ୍ତ୍ରୀ) — ୩ । ଅପୂର୍ବ, ଅଦ୍ଭୁତ—
3. Extraordinary; wonderful.

**ନୂତନ** ବ୍ରତୀ—ସ. ବିଣ ପୁଂ (ନୂତନ+ବ୍ରତ+ଇନ୍, ୧ମା. ୧ବ.)—
Nūtana brati ନୂତନ ବ୍ରତଧାରୀ—A person newly initiated into a vow.

**ନୂତ୍ନ**—ସ ବିଣ. (ନବ+ସ୍ୱାର୍ଥରେ ତ୍ନ)—ନୂତନ (ଦେଖ)
Nūtna Nūtana (See)

**ନୂନ**—ଦେ. ଅ. (ସ. ନୂନଂ)—ନିଃସନ୍ଦେହଭାବରେ—
Nūna Undoubtedly.

ନୂନ ଭବେ ଯୋଗକନା ଅଙ୍କ ଭୋଜ ସଙ୍ଗ । ପ୍ରାଚୀ. ରସବାରିଧ ।

**ନୂପୁର**—ସ. ବି (ନୂ=ନୂନମ୍=ନିଶ୍ଚିତ+ପୃ ଧାତୁ=ପୂରଣ କରିବା+କର୍ତ୍ତୃ. ଅ)—ନେପୁର, ଘୁଙ୍ଗୁରଲଗା ବଳା—
Nūpura A tinkling ring or ornament for the ankle; a tinkling anklet.

**ନୃ**—ସ. ବି. ପୁଂ. (ନୀ ଧାତୁ=ନେବା+ସଂଜ୍ଞାର୍ଥରେ ଋ)—
Nṛu ନର, ମନୁଷ୍ୟ—Man.

[ ଦ୍ର—ଏହା ନର ଅର୍ଥରେ ଅନ୍ୟ ଶବ୍ଦ ସଙ୍ଗେ ସମାସରେ ଲାଗେ ଯଥା—ନୃଘ୍ନ, ନୃମୁଣ୍ଡ, ନୃସିଂହ, ନୃକେଶରୀ, ନୃପତି ଇତ୍ୟାଦି । ]

**ନୃକପାଳ**—ସ. ବି (୬ଷ୍ଠୀ ତତ୍; ନୃ+କପାଳ)—
Nṛukapāla ୧ । ନରପାଳ, ନରମୁଣ୍ଡ—1. Human head.
(ନୃକରୋଟିକା—ଅନ୍ୟରୂପ) ୨ । ନରମୁଣ୍ଡର ଖପୁରି—
2. Human skull.

**ନୃକେଶରୀ**—ସ. ବି—ନରକେଶରୀ (ଦେଖ)—
Nṛukesari Narakesari (See)

**ନୃତ୍** (ଧାତୁ)—ସ.—ନାଚିବା—
Nṛut (root) To dance.

**ନୃତି**—ସ. ବି (ନୃତ୍ ଧାତୁ+ଭାବେ. ଇ)—ନୃତ୍ୟ, ନାଟ—
Nṛuti Dance.

**ନୃତୁ**—ସ. ବି (ନୃତ୍ ଧାତୁ+କର୍ତ୍ତୃ. ଉ)—୧ । ନର୍ତ୍ତକ—
Nṛutu 1. A dancer.
୨ । (+ଅଧିକରଣ.ଉ) ଭୂମି—2. Earth.
୩ । କୃମି—3. A worm.
୪ । ଦୈର୍ଘ୍ୟ—4. Length.

**ନୃତୂ**—ସ. ବି. (ନୃ ଧାତୁ+କର୍ତ୍ତୃ. ଊ)—୧ । ନର୍ତ୍ତକ—
Nṛutū 1 Dancer.
୨ । ନରହିଂସକ ବ୍ୟକ୍ତି—2. Murderer; assassin.

**ନୃତ୍ତ**—ସ. ବି (ନୃତ୍ ଧାତୁ+ଭାବ. ତ)—୧ । ଅଭିନୟ—
Nṛutta 1. An acting.
୨ । ନାଟ—2. Dancing
ସ. ବି (+କର୍ତ୍ତୃ ତ) ନର୍ତ୍ତନକାରୀ—Dancing.

**ନୃତ୍ୟ**—ସ. ବି (ନୃତ୍ ଧାତୁ+ଭାବ. ଯ)—୧ । ତାଲ; ମାନ; ରସାଶ୍ରୟ ଓ
Nṛutya ବିଲାସସମନ୍ୱିତ ଅଙ୍ଗବିକ୍ଷେପ; ନାଟ; ନାଚ; ନର୍ତ୍ତନ—
1. Dancing.

[ଦ୍ର—ପୁରୁଷର ନୃତ୍ୟକୁ 'ତାଣ୍ଡବ' ଓ ସ୍ତ୍ରୀର ନୃତ୍ୟକୁ 'ଲାସ୍ୟ' ବୋଲାଯାଏ ।]

୨ । ତାମସା—Mimicry, sports.
୩ । ଅଚେତନ ପଦାର୍ଥର କମ୍ପନ—
3. The shaking of an inanimate object.
ଦେ ବି—୧ । ଅଙ୍ଗବିକ୍ଷେପ ସହ କଳହ—
ନୃତ୍ୟ 1. A quarrel accompanied with jumping and waving of the limbs
୨ । ଲୀଳା, ଖେଳ, କ୍ରୀଡ଼ା—2. Game; sport.

**ନୃତ୍ୟ କାରକ**—ସ. ବି. ପୁଂ (ନୃତ୍ୟ+କୃ ଧାତୁ+କର୍ତ୍ତୃ ଅକ)—ନାଟୁଆ—
Nṛutya kāraka A dancer.
(ନୃତ୍ୟକାରୀ—ଅନ୍ୟରୂପ) (ନୃତ୍ୟକାରିକା, ନୃତ୍ୟକାରିଣୀ—ସ୍ତ୍ରୀ)
ସ ବିଣ. ପୁଂ—ନାଚୁଥିବା—Dancing.

**ନୃତ୍ୟକୀ**—ସ. ବି. ସ୍ତ୍ରୀ (ନୃତ୍ୟ+କ+ସ୍ତ୍ରୀ. ଈ)—ନର୍ତ୍ତକୀ—
Nṛutyakī Female dancer.

**ନୃତ୍ୟ ଗୁରୁ**—ସ. ବି (୬ଷ୍ଠୀ ତତ୍, ନୃତ୍ୟ+ଗୁରୁ)—ନାଟର ଗୁରୁ—
Nṛutya guru Dancing master.

**ନୃତ୍ୟ ବିଦ୍ୟା**—ସ. ବି (ରୂପକ; ନୃତ୍ୟ+ବିଦ୍ୟା)—ନାଚବାବିଦ୍ୟା—
Nṛutya bidyā The science or art of dancing.

**ନୃତ୍ୟ ରାମାୟଣ**—ଦେ ବି. (ନାମ)—କେଶବଚନ୍ଦ୍ରଙ୍କ କୃତ ନାଟ୍ୟ
Nṛutya rāmāyaṇa ରାମାୟଣ (କେଶବଚନ୍ଦ୍ର ପଟ୍ଟନାୟକ ଦେଖ)—The name of the Oria Rāmāyaṇa composed by Kesabachandra. (See Kesabachandra paṭṭanāyaka.)

**ନୃତ୍ୟ ଶାଳା**—ସ. ବି. (୬ଷ୍ଠୀ ତତ୍, ନୃତ୍ୟ+ଶାଳା)—୧ । ନାଟଘର,
Nṛutya śālā ନାଚଶାଳା—1. Dancing hall; ball-room.
(ନୃତ୍ୟାଗାର—ଅନ୍ୟରୂପ)
୨ । ଅଭିନୟାଗାର, ଥିଏଟର୍, ରଙ୍ଗଶାଳା—
2. Theatrical stage.

**ନୃତ୍ୟାଗାର**—ସ. ବି. (୬ଷ୍ଠୀ ତତ୍; ନୃତ୍ୟ+ ଆଗାର)—ନୃତ୍ୟଶାଳା
Nṛutyāgāra (ଦେଖ)—Nṛutyaśālā (See).

**ନୃତ୍ୟାଚାର୍ଯ୍ୟ**—ସ. ବି. (୬ଷ୍ଠୀ ତତ୍, ନୃତ୍ୟ+ଆଚାର୍ଯ୍ୟ)—
Nṛutyāchārjya ନୃତ୍ୟଗୁରୁ—Dancing master.

**ନୃଦୁର୍ଗ**—ସ. ବି (ମ ପ. ଲୋ.)—ସେନାର ଗୁରପାଖେ ଘେରିଯିବା
Nṛudurga ମନୁଷ୍ୟରୂପ ଦୁର୍ଗ—Surrounding an army on all sides; an impenetrable barrier formed by men.

**ନୃଦେବ**—ସ. ବି. (୭ମୀ ତତ୍; ନୃ+ଦେବ)—
Nṛudeba ୧ । ନରଦେବ; ରାଜା—1. King.
୨ । ବ୍ରାହ୍ମଣ—2 A Brāhmaṇa.

**ନୃପ**—ସ. ବି. (ନୃ=ମନୁଷ୍ୟ+ପା ଧାତୁ=ପାଳନ କରିବା+କର୍ତ୍ତୃ. ଅ)—
Nṛupa ୧ । ରାଜା, ନୃପତି—1. King; a ruler of men.
୨ । କୁବେର (ପ୍ରକୃତିବାଦ)—
2. The Hindu God of riches.

**ନୃପକନ୍ଦ**—ସ. ବି.—ପିଆଜ (ହି. ଶ.)—
Nṛupakanda Onion.

ନୃପତା(ତ୍ୱ)—ସଂ. ବି. (ନୃପ+ଭାବ ତା, ତ୍ୱ)—ରାଜତ୍ୱ; ରାଜପଣ—
Nṛupatā (twa) Kingship; reign.

ନୃପତି—ସଂ. ବି. (୬ଷ୍ଠୀ ତତ୍, ନୃ+ପତି)—୧ । ନରପତି, ରାଜା—
Nṛupati 1 King (literally the lord of men)
୨ । କୁବେର (ପ୍ରକୃତିବାଦ)—
2. The Hindu God of riches.

ନୃପପ୍ରିୟ—ସଂ. ବିଣ. ପୁଂ. (୬ଷ୍ଠୀ ତତ୍, ନୃପ+ପ୍ରିୟ) ରାଜାଙ୍କ ପ୍ରିୟ—
Nṛupa priya Beloved or liked by the king; in the favour of a king.
ସଂ. ବି—୧ । ବଂଶବିଶେଷ, ଏକଜାତୀୟ ବାଉଁଶ ଗଛ—
1. A kind of bamboo.
୨ । ରାଜପଲାଣ୍ଡୁ—2. Onion.
୩ । ଶାଳି ଧାନ୍ୟ—3. Winter paddy.
୪ । ଆମ୍ବ—4 Mango.
୫ । ପାହାଡ଼ୀଶୁଆ, ନାହାକ ଶୁଆ (ହି. ଶ)—
5. A kind of big parrot.
୬ । କାଣ୍ଡଶର (ହି ଶ)—6. A kind of reed.

ନୃପ ବଲ୍ଲଭ—ସଂ. ବିଣ ପୁଂ—ନୃପପ୍ରିୟ (ଦେଖ)
Nṛupa ballabha Nṛupa priya (See).

ନୃପ ମଣି—ସଂ. ବି (୭ମୀ ତତ୍, ନୃପ+ମଣି)—ଶ୍ରେଷ୍ଠ ରାଜା—
Nṛupa maṇi A great king.

ନୃପମାନ—ସଂ. ବି—ପୂର୍ବେ ରାଜାଙ୍କ ଭୋଜନ ସମୟରେ ବଜା ଯାଉଥିବା
Nṛupamāna ଏକପ୍ରକାର ବାଜା (ହି. ଶବ୍ଦସାଗର)—
(ନୃପାଭୀର—ଅନ୍ୟରୂପ) A kind of musical instrument which was sounded during royal meal in ancient times.

ନୃପ ସୁତା—ସଂ. ବି ସ୍ତ୍ରୀ (୬ଷ୍ଠୀ ତତ୍, ନୃପ+ସୁତା)—୧ । ରାଜକନ୍ୟା—
Nṛupasutā (ନୃପସୁତ—ପୁଂ.) 1. A king's daughter.
୨ । ଛୁଚୁନ୍ଦୁରୀ (ହି. ଶ)—2. Shrew; mole.

ନୃପାମୟ—ସଂ. ବି. (ନୃପ+ଆମୟ)—ରାଜଯକ୍ଷ୍ମା (ହି. ଶ)—
Nṛupāmaya Pthisis; consumption.

ନୃପାଳ—ସଂ ବି (୬ଷ୍ଠୀ ତତ୍; ନୃ+ପାଳ=ପାଳକ)—ରାଜା—
Nṛupāla King.

ନୃପାସନ—ସଂ. ବି (୬ଷ୍ଠୀ ତତ୍, ନୃପ+ଆସନ)—ରାଜସିଂହାସନ—
Nṛupāsana Throne.

ନୃବାହନ—ସଂ. ବି (ବହୁବ୍ରୀହି, ନୃ+ବାହନ)—(ମନୁଷ୍ୟମାନେ ଏହାଙ୍କର
Nṛubāhana ଶିବିକା ବହନ କରିବା ହେତୁ) କୁବେର—
Kubera.

ନୃମଣି—ସଂ. ବି (୭ମୀ ତତ୍; ନୃ+ମଣି)—୧ । ନରଶ୍ରେଷ୍ଠ—
Nṛumaṇi 1. Chief amongst men.
୨ । ନୃପତି, ରାଜା—2. King.

ନୃମୁଣ୍ଡ—ସଂ. ବି (୬ଷ୍ଠୀ ତତ୍; ନୃ+ମୁଣ୍ଡ)—୧ । ନରମୁଣ୍ଡ—
Nṛumuṇḍa 1. Man's head.
୨ । ନରକପାଳ—Human skull.

ନୃମୁଣ୍ଡମାଳିନୀ—ସଂ. ବି ସ୍ତ୍ରୀ (ନୃମୁଣ୍ଡମାଳା+ଇନ୍+ସ୍ତ୍ରୀ. ଈ)—କାଳୀ—
Nṛumuṇḍmāḷini Goddess Kāḷi.

ନୃମେଧ—ସଂ. ବି—ନରମେଧ (ଦେଖ)
Nṛumedha Naramedha (See).

ନୃଯଜ୍ଞ—ସଂ ବି. (୬ଷ୍ଠୀ ତତ୍, ନୃ+ଯଜ୍ଞ)—ଗୃହସ୍ଥର ପ୍ରତ୍ୟହକର୍ତ୍ତବ୍ୟ
Nṛujajña ପଞ୍ଚଯଜ୍ଞର ଅନ୍ତର୍ଗତ ଅତିଥିପୂଜନରୂପ କର୍ମ—
Hospitality; one of the five duties enjoined on a householder.

ନୃଲୋକ—ସଂ ବି. (୬ଷ୍ଠୀ ତତ୍, ନ+ଲୋକ)—ପୃଥିବୀ; ମର୍ତ୍ତ୍ୟଲୋକ—
Nṛuloka The inhabited earth.

ନୃଶଂସ—ସଂ. ବିଣ. ପୁଂ. (ନୃ=ନର+ଶନ୍ସ ଧାତୁ=ହିଂସା କରିବା+
Nṛuśaṁsa କର୍ତ୍ତୃ. ଅ)—୧ । ନିର୍ଦ୍ଦୟ, କ୍ରୂର—
(ନୃଶଂସା—ସ୍ତ୍ରୀ) 1. Cruel; unkind; merciless; noxious.
(ନୃଶଂସତା—ବି) ୨ । ହିଂସ୍ର, ହିଂସାପରାୟଣ—2. Malicious.
୩ । ପରାନିଷ୍ଟକାରୀ—3. Malevolent; malignant.

ନୃଶଂସକ—ସଂ ବିଣ. (ନୃଶଂସ+ସ୍ୱାର୍ଥେ. କ)—ନୃଶଂସ (ଦେଖ)
Nṛuśaṁsaka Nṛuśaṁsa (See)
ଜାତ ସ୍ୱଭାବେ ନୃଶଂସକ
ଅସୁରେ କହନ୍ତି ବଚନ । ଜଗନ୍ନାଥ. ଭାଗବତ ।

ନୃଶୃଙ୍ଗ—ସଂ. ବି—ମନୁଷ୍ୟଶୃଙ୍ଗ ପରି ଅସମ୍ଭବ ବସ୍ତୁ (ହି. ଶ)—
Nṛuśṛuṅga An impossibility, a chimera.

ନୃସିଂହ—ସଂ. ବି. (୭ମୀ ତତ୍, ନୃ+ସିଂହ)—୧ । ନରସିଂହ; ବିଷ୍ଣୁଙ୍କର
Nṛusiṁha ଚତୁର୍ଥ ଅବତାର (ଅର୍ଦ୍ଧାଙ୍ଗ ନରାକାର ଓ ଅପରାର୍ଦ୍ଧ ସିଂହାକାର)—1. The 4th incarnation of Bishṇu (half man and half lion).
[ ଦ୍ର—ଏ ଅବତାରରେ ବିଷ୍ଣୁ ହିରଣ୍ୟକଶିପୁ ଓ ମୁରାସୁରଙ୍କୁ ବଧ କରିଥିଲେ । ]
୨ । ବିଷ୍ଣୁ—2. Bishṇu
୩ । ନରଶ୍ରେଷ୍ଠ—3 Chief among men; an excellent man.
୪ । ରତିବନ୍ଧବିଶେଷ—4 A kind of posture at the time of coition.
ଦେ. ବି. ପୁଂ—ଲୋକଙ୍କ ନାମ—
Name given to males.

ନୃସିଂହ ଚତୁର୍ଦ୍ଦଶୀ—ସଂ. ବି—ବୈଶାଖ ଶୁକ୍ଳ ଚତୁର୍ଦ୍ଦଶୀ—
Nṛusiṁha chaturddaśi The 14th day of the bright lunar fortnight of the month of Baiśākha.
[ ଦ୍ର—ଏ ଦିନ ନୃସିଂହ ଅବତାରରେ ବିଷ୍ଣୁ ପୃଥିବୀରେ ଜନ୍ମ ଗ୍ରହଣ କରିଥିଲେ । ଏହା ହିନ୍ଦୁଙ୍କର ଗୋଟିଏ ପବିତ୍ର ଉତ୍ସବଦିବସ । ]

ନୃସିଂହ ଜନ୍ମ—ସଂ. ବି—୧ । ନୃସିଂହ ଅବତାରରେ ବିଷ୍ଣୁଙ୍କର ପୃଥିବୀରେ ଜନ୍ମଗ୍ରହଣ—
Nṛusiṁha janma
1. The incarnation of Bishṇu in his Nṛusiṁha form.

୨ । ନୃସିଂହ ଚତୁର୍ଦ୍ଦଶୀ ( ଦେଖ )
2. Nrusimha chaturddasi ( See )

**ନୃସିଂହ ପୁରାଣ**—ସଂ ବି—ବିଷ୍ଣୁଙ୍କ ନୃସିଂହ ଅବତାରର ଲୀଳା ବର୍ଣ୍ଣନାତ୍ମକ ଉପପୁରାଣବିଶେଷ—Name of a secondary Purana enumerating the exploits of the incarnation of Nrusimha.
Nrusimha purana
[ ଦ୍ର—ପୀତାମ୍ବର ଦାସଙ୍କ ରଚିତ ସପ୍ତବ୍ୟୂହାକର ବା ଖଣ୍ଡବିଶିଷ୍ଟ ଓଡ଼ିଆଭାଷାର ନୃସିଂହ ପୁରାଣରେ ନୃସିଂହ ଅବତାରରେ ମୁରାସୁରବଧ ବିଷୟ ବର୍ଣ୍ଣିତ ହୋଇଅଛି, କିନ୍ତୁ ହିରଣ୍ୟକଶିପୁ ବଧ ବିଷୟ ନାହିଁ । ଏହା କୌଣସି ସଂସ୍କୃତ ଗ୍ରନ୍ଥର ଅନୁବାଦ ନୁହେଁ ବୋଲି ଅନୁମିତ ହୁଏ, କିନ୍ତୁ ନୃସିଂହପୁରାଣ ନାମରେ ସଂସ୍କୃତରେ ଏକ ଉପପୁରାଣ ଥିବାର ହି. ଶବ୍ଦସାଗରରେ ଉଲ୍ଲେଖ ଅଛି । ]

**ନୃହରି**—ସଂ. ବି—ନୃସିଂହ ୧।୨ (ଦେଖ)
Nruhari Nrusimha 1 2 (See)

**ନେ**—ପ୍ରାଦେ. (କଳାହାଣ୍ଡି) ଅ—ରେ—
Ne At; in.
(ଯଥା—ହାତନେ=ହାତରେ ।)

**ନେଆଣ**—ଦେ. ବି—ନିଆ ଅଣା (ଦେଖ)
Neana Nia'ana (See)

**ନେଇ**—ଦେ. ବି—ଲେଇ (ଦେଖ)
Nei Lei (See)
ଦେ. ଅ—ବିଷୟରେ, ସମ୍ବନ୍ଧରେ, ସଂପର୍କରେ—Concerning.
(ଯଥା—ଏ କଥା ନେଇ ତାଙ୍କର ମୋର ବହୁତ ବିବାଦ ଲାଗିଲା ।)
ପ୍ରାଦେ. (ସମ୍ବଲପୁର) ଅ—ନଞର୍ଥକ ନ; ନାଁ, ନାହିଁ—Not.
(ନେଇଁ—ଅନ୍ୟରୂପ)
[ଦ୍ର—ଏହା କ୍ରିୟାର ପୂର୍ବରେ ଲାଗେ ଯଥା—ଇସୁଲେ କଁଠି (ଲଗଲ କର୍ଣ୍ଣିରେ) ହାତ ନେଇ ଦେଲେ ଆର୍ କାମ୍ ନେଇ ଚଲେ । କ୍ରିୟାପରେ ମଧ୍ୟ ଏହା ଲାଗେ ଯଥା କହନେଇଁ—କହନା ।]

**ନେଇ ଆଣି ଥୋଇବା**—ଦେ. କ୍ରି—୧ । କୌଣସି ପଦାର୍ଥକୁ ଯତ୍ନପୂର୍ବକ ନେବା, ଅଣିବା ଓ ରଖିବା—1. To take, to bring and to keep a thing with care.
Nei anithoiba
୨ । ସାବଧାନତାସହ କାର୍ଯ୍ୟ କରିବା—
2. To act with care and caution.
ନେଇ ଅଣି ଥୋଇ ଜାଣିଲେ ଶ୍ରେଷ୍ଠବିଦ୍ୟା ଭଲ । —କାହାଣୀ

**ନେଇ ଆଣିବା**—ଦେ କ୍ରି—ନେବା ଓ ଆଣିବା—
Nei aniba To take and bring.
नेव्या आना लेना लाना

**ନେଇ କରିବା**—ଦେ. କ୍ରି—ପହଞ୍ଚାଇବା—
Nei kariba To cause to reach.
[ନେଇ ପହଞ୍ଚା (ଞ୍ଚେ) ଇବା—ଅନ୍ୟରୂପ] ସ୍ନେହବଶ କରନ ସାରଥି ବେନଲ
निम्ने पहुंचाना ଭିଡ଼ି ସେନା ମଧ୍ୟରେ ରଥ ନେଇ କଲା ।
लेकर पहुंचाना କୃଷ୍ଣସିଂ ଦ. ମହାଭାରତ; କର୍ଣ୍ଣ

**ନେଇ ଛାଡ଼ିବା**—ପ୍ରାଦେ. (ଗଡ଼ଜାତ) କ୍ରି—କୌଣସି ସ୍ଥାନରୁ ଚାଲି ଯାଉଥିବା ବ୍ୟକ୍ତିଙ୍କୁ ବାଟେଇଦେବା, ବାଟ ବଳେଇ ଦେବା—To see a man off; to accompany a departing man to a certain distance.
Nei chhardiba

**ନେଉ(ହୁ)ଆ**—ବୈଦେ. ବି (ପର୍ତ୍ତୁଗୀଜ୍ ଆନୋନା)—ଆତଜାତୀୟ ଫଳବିଶେଷ, ଲେଉଆ—A kind of apple; the bullock's heart; Anona Reticulata.
Neu(hu)a
নোনা, নোআত
रामफल
ଗୁ ରାମଫଲ
ତା ରାମ ସୀତା, ରାମସୀତ୍ତ ପଲମ
ତେ. ରାମପାଣ୍ଡୁ, ରାମ ଫଲମ
ରାମଚନ୍ଦ୍ରର ପାଣ୍ଡୁ
[ଦ୍ର—ଏ ଗଛ ପୂର୍ବେ ବିଦେଶରୁ ଅଣାଯାଇ ଏ ଦେଶରେ ବର୍ତ୍ତମାନ ଉଠୁଥିବାର ପଣ୍ଡିତମାନେ କହନ୍ତି; ଏହାର ମଞ୍ଜି ଆତମଞ୍ଜି ପରି କିନ୍ତୁ ଉପର ଚୋପା ମସୃଣ ।]

**ନେଉଆର**—ବୈଦେ. ବି ( ଫା. ନେବାର୍ )—୧ । ଲେବାର୍, ସୂତାର ମୋଟ ଓ ଚଉଡ଼ା ଫିତା—1 Cotton tape.
Neuar
[ଦ୍ର—ଏଥିରେ ପଲଙ୍କ ଆଦି ବୁଣାଯାଏ ।]
নেযাড ୨ । ନେପାଳର ଆଦିମ ଅଧିବାସୀଗଣ—
नेवार,निवार 2. The orginal inhabitants of Nepal.
(ନେଓ୍ୱାର୍, ନେବାର୍—ଅନ୍ୟରୂପ)

**ନେଉଟ** (ଇତ୍ୟାଦି)—ଦେ. ବି ଓ ବିଣ—ଲେଉଟ ଇତ୍ୟାଦି (ଦେଖ)
Neuta (etc.) Leuta etc. (See)

**ନେଉଟିଆ** (ଇତ୍ୟାଦି)—ଦେ. ବି—ଲେଉଟିଆ ଇତ୍ୟାଦି (ଦେଖ)
Neutia (etc) Leutia etc. (See)

**ନେଉଟିବା**—ଦେ. କ୍ରି—ଲେଉଟିବା (ଦେଖ)
Neutiba Leutiba (See)

**ନେଉତା**—ପ୍ରାଦେ. (ସମ୍ବଲପୁର) ବି. (ସଂ. ନିମନ୍ତ୍ରଣ; ଭୁଲ.ହି.ନେଓ୍ୱତା)—
Neuta ୧ । ନିମନ୍ତ୍ରଣ—1. Invitation
୨ । ଭୋଜି—2 Feast.
୩ । ବିବାହଆଦି ଉତ୍ସବରେ ଯୋଗ ଦେବାପାଇଁ ବନ୍ଧୁବାନ୍ଧବଙ୍କୁ ନିମନ୍ତ୍ରଣ—3. Invitation to friends & relatives to attend a family-festival.

**ନେଉର୍ ମୂଷା**—ପ୍ରାଦେ (ଗଡ଼ଜାତ) ବି—ନେଉଳ—
Neur musha An ichneumon

**ନେଉର** (ଇତ୍ୟାଦି)—ଗ୍ରାମ୍ୟ (ଇତର) ବି. (ନୀଚଲୋକଙ୍କ ଉଚ୍ଚାରଣ ଦୋଷରୁ ଳ ସ୍ଥାନରେ ର ଉଚ୍ଚାରଣ)—ନେଉଳ (ଦେଖ)—Neula etc. (See).
Neura (etc.)

**ନେଉର(ଳ) ମାଛ**—ଦେ. ବି—ବାଲିଗରଡ଼ାମାଛଙ୍କର ଜାଆଁଳ—
Neuri(li)machha The fry of Baligararda fish.
[ନେଉର(ଳ)—ଅନ୍ୟରୂପ] [ଦ୍ର—ଏମାନେ ପଞ୍ଝା ପଞ୍ଝା ହୋଇ ଅଳ୍ପ ସ୍ରୋତୋବିଶିଷ୍ଟ ଅଗଭୀର ଜଳରେ ସ୍ରୋତର ପ୍ରତିକୂଳରେ ଗତି କରନ୍ତି । ଏମାନେ ପ୍ରାୟ ଏକ ଇଞ୍ଚ ଲମ୍ବ ହୁଅନ୍ତି ।]

**ନେଉଳ**—ଦେ ବ (ସଂ ନକୁଲ, ପ୍ରା. ନଉଲ)--ସର୍ପନାଶକ ବଲେଶୟ
Neuḷa ଚତୁଷ୍ପଦ ଜନ୍ତୁବିଶେଷ—An ichneumon;
नेउल,बेंजी mongoose; Herpestes Mongo
बीजी,नेवला [ଦ୍ର—ନେଉଳ ଲମ୍ବରେ ହାତେ ଦେଢହାତ
ହୁଏ । ଏହାର ଲାଞ୍ଜ ଦେହଠାରୁ ଲମ୍ବ ଓ ମୁହଁ ଗୋଲିଆ, ରୋମ
ପାଣ୍ଡୁର । ଏହା ମାଂସାହାରୀ । ଏହାର ଦାନ୍ତ ଖୁବ୍ ଦାଢୁଆ, ଏମାନେ
ପୁରୁଣାଘର, ବୁଦା, ନଈଅଛଡ଼ା ଆଦିରେ ଗାଡ ଖୋଳି ରହନ୍ତି ।
ବସନ୍ତ ଋତୁରେ ମାଈନେଉଳ ଏକାଥରକେ ୨।୩ ଟି ଛୁଆ ଦିଏ ।
ନେଉଳ ସାଧାରଣତଃ ମୂଷା, ମାଛଆଦି ଖାଆନ୍ତି । କିନ୍ତୁ ସାପକୁ
ମାରିବା ବିଷୟରେ ଏମାନଙ୍କର ପ୍ରସିଦ୍ଧି ଅଛି । ସାପକୁ ଏମାନେ ଖଣ୍ଡ
ଖଣ୍ଡ କରି ଦାନ୍ତରେ କାଟି ପକାନ୍ତି । ନେଉଳଙ୍କୁ ପାଳଲେ ନେଉଳ
ପୋଷା ମାନେ । ଯେଉଁ ଘରେ ପୋଷା ନେଉଳ ଥାଏ ସେ ଘରେ
ସାପ ଓ ମୂଷାଙ୍କ ଉପଦ୍ରବ ରହେ ନାହିଁ ।]

**ନେଉଳ ଫାଶ**—ଦେ. ବ—ନେଉଳ ଧରିବା ସକାଶେ ଶିକାରୀର ବସାଇବା
Neuḷa phāsa ଫାଶ—A trap set to entrap an ichneumon.

**ନେଉଳ ଭାଇ**—ଦେ ବ—(କାହାଣୀ)—ଯେଉଁ ବ୍ୟକ୍ତି କାହାଣୀକଥିତ
Neuḷa bhāi ନେଉଳ ପରି ଅପ୍ରତ୍ୟାଶିତ ଭାବରେ ସବୁଠାରେ
ଉପସ୍ଥିତ ହେବାର ଦେଖାଯାଏ—A person
(like the mongoose in the folktale) who
is found wherever and whenever he is
wanted to save a situation.
[ଦ୍ର—କାହାଣୀରେ ଅଛି ଯେ ନେଉଳ ଭାଇକୁ ଅନ୍ୟ ସଙ୍ଗୀ
ଭାଇମାନେ ଆଦର କରନ୍ତି ନାହିଁ ଏବଂ ସାଙ୍ଗରେ ଯିବାକୁ ଡାକନ୍ତି
ନାହିଁ, କିନ୍ତୁ ଯେତେବେଳେ ସେମାନଙ୍କୁ ଅସମୟ ବା ଆପଦ ପଡ଼େ
ସେତେବେଳେ ପୁଣି ସେମାନେ ନେଉଳଭାଇକୁ ଖୋଜନ୍ତି ଓ
ଖୋଜିଲାବେଳକୁ ନେଉଳଭାଇ ଖୋଜାପଡ଼ିବା ସ୍ଥାନରେ ହାଜର
ହୁଏ ଏବଂ ସେମାନଙ୍କୁ ଆପଦରୁ ରକ୍ଷା କରେ ।]

**ନେଉଳ ମୁହାଁ**—ଦେ. ବିଣ.—ଯେଉଁ ବଳଦ ଶଗଡ ବା ହଳରେ ମୁଣ୍ଡ
Neuḷa muhā̃ ତଳକୁ ପୋଇ ଟାଣେ—(a bullock)
Dragging loads with its head bent downwards.

**ନେଉଳା**—ଦେ. ବିଣ. ପୁଂ.—୧ । ନେଉଳମୁହାଁ (ଦେଖ)
Neuḷā 1. Neuḷa muhā̃ (See
ଦେ. ବ.—ଦୀପିଦଣ୍ଡୀ—
The central post in a tank.

**ନେଉଳା ଦାଣ୍ଡି**—ଦେ. ବ.—ଦୀପିଦଣ୍ଡୀ (ଦେଖ)
Neuḷā dāṇḍi Dipidaṇḍi (See

**ନେକ୍**—ବୈଦେ. ବିଣ. (ଫା )—୧ । ଅଚ୍ଛା, ଉତ୍ତମ—
Nek 1. Good.
नेक २ । ସଦାଚରଣବିଶିଷ୍ଟ—
नेक 2. Of good conduct
[ଦ୍ର—ଏହା ଅନ୍ୟ ଶବ୍ଦ ପୂର୍ବେ ଯୁକ୍ତ ହୋଇ ବ୍ୟବହୃତ ହୁଏ;
ଯଥା—ନେକ୍ ନଜର, ନେକ୍ ନାମ ।]

**ନେକ୍ ଚଲନ**—ଦେ ବିଣ (ଫା ନେକ୍+ସଂ. ଚଳନ)—
Nek chaḷana ସଦାଚାରୀ (ବ୍ୟକ୍ତି)—
নেকচলন नेकचलन (a person) Of good conduct.

**ନେକ୍ ଚଳଣୀ**—ଦେ. ବ. (ଫା. ନେକ୍+ସଂ. ଚଳନ)—ସଦାଚରଣ—
Nek chaḷani নেক চলনী नेकचलनी Good conduct.

**ନେକ୍ଟାଇ**—ବୈଦେ. ବ. (ଇଂ )—ସାହେବଙ୍କ କମିଜ ଉପରେ ବେକ
Nektāi ଗୁଡ଼ଉପାଖେ ବନ୍ଧା ହେବା ଲମ୍ବ ସରୁଆ କନା, ଗଳାବନ୍ଧ—
নেকটাই नेक टाइ Neck-tie.

**ନେକ୍ ନଜର୍**-ବୈଦେ. ବ. (ଫା. ନେକ୍=ଉତ୍ତମ+ନଜର୍=ଦୃଷ୍ଟି)-
Nek najar ୧ । ଶୁଭ ଦୃଷ୍ଟି—
সুনজর 1 Auspicious look.
नेक नज़र २ । ଅନୁଗ୍ରହ ଦୃଷ୍ଟି—2. Favourable look.
୩ । କୃପାଦୃଷ୍ଟି—3. Kind eye
୪ । ଅନୁଗ୍ରହ—4. Favour; good grace.
୫ । କୃପା, ଦୟା—5 Kindness; mercy.

**ନେକ୍ନାମ୍(ମି)**—ବୈଦେ. ବ. (ଫା. ନେକ୍ନାମୀ)—୧ । ସୁନାମ,
Neknām(mi) ସୁଯଶଃ, ସୁଖ୍ୟାତି—1. Good name;
নেক নাম नेक नामी reputation.
୨ । ଯଶଃ, ପ୍ରସିଦ୍ଧି—2. Fame; renown.
୩ । ବାହାଦୁରି, ପ୍ରଶଂସା—3 Praise.
ହଜୁରଙ୍କ କେବଳମାତ୍ର ନେକ୍ନାମି ବୁଝିଅଛେ କାହେର ।
ଫକୀରମୋହନ. ଛମାଣଆଠଗୁଣ୍ଠ ।

নেকনামী ବୈଦେ. ବିଣ (ଫା. ନେକ୍ନାମ)—ସୁଖ୍ୟାତିଯୁକ୍ତ—
नेकनाम Renowned.

**ନେକ(ଙ୍କ)(ଙ୍କୁ)ଡା(ଡ଼ି)** (ଇତ୍ୟାଦି)—ଦେ. ବ. ଓ ବିଣ—
Neka(ṅka) (ṅku) ṛdā (ṛdi) (etc)
ଲେଙ୍କଡ଼ା ଇତ୍ୟାଦି(ଦେଖ)—Leṅkaṛdā etc (See)

**ନେକ୍ନିୟତ୍(ତୀ)**—ବୈଦେ. ବିଣ (ଫା. ନେକ୍+ଆ. ନିୟତ୍=ସଙ୍କଳ୍ପ)
Nek-niyat(ti) ୧ । ଉତ୍ତମ ସଙ୍କଳ୍ପକାରୀ ବ୍ୟକ୍ତି; ଯାହାର ଉଦ୍ଦେଶ୍ୟ
নেক্‌নিয়ত (তী) ସାଧୁ—1 Of good intention.
नेकनियत(ती) २ । ବିଶ୍ୱାସୀ—2. Faithful.
ବୈଦେ. ବ. (ଫା. ନେକ୍ନୀୟତୀ)—୧ । ସଦୁଦ୍ଦେଶ୍ୟ—
1. Good intention
୨ । ବିଶ୍ୱାସିତା—
2. Trustworthiness; faithfulness.

**ନେକା(ଙ୍କା)**—ଦେ. ବ.—ଲେଙ୍କା (ଦେଖ)
Nekā(ṅkā) Leṅkā (See)

**ନେକା(ଙ୍କା)ପ**—ଦେ ବ.—ମେକାପ (ଦେଖ)
Nekā(ṅkā)pa (ନେପାଳ—ଅନ୍ୟରୂପ) Mekāpa (See)

**ନେକାର**—ଦେ. ବ. (ସଂ. ନ୍ୟକ୍କାର)—୧ । ବମନ—
Nekāra 1. Vomiting.
নেকার, ন্যাকার २ । (ସଂ. ଧିକ୍କାର) ଧିକ୍କାର, ଅବଜ୍ଞା—
कै 2. Disregard; contempt.
୩ । ଧିକ୍କାର ବଚନ—3. Contemptuous words.

୪ । ଜ୍ୱାର, ବମନେଚ୍ଛା—
3. Tendency to vomit; nausea.

**ନେକ**—ବୈଦେ. ବ. (ଫା. ନେକୀ)—୧ । ଭଲପଣ—
Neki 1. Goodness
ନେକୀ ୨ । ସୁନାମ—2 Good name.
**नेकी** (ନେକେଇ—ଅନ୍ୟରୂପ)

**ନେକ ବଦ**—ବୈଦେ. ବ.(ଫା. ନେକୀ ବଦୀ)—୧ । ପ୍ରଶଂସା ଓ ନିନ୍ଦା -
Neki badi 1. Praise and blame.
ନେକବଦ, ନେକବଦି, ନେକେଇବଦେଇ } ଅନ୍ୟରୂପ
୨ । ଦାୟିତ୍ୱ—2 Responsibility.
୩ । ହିତ ଓ ଅହିତ—3. Benefit and injury.
ନେକୀବଦୀ **नेकीबदी**

**ନେଖନ** (ଇତ୍ୟାଦି)—ଗ୍ରା. ବ.—ଲେଖନ ଇତ୍ୟାଦି (ଦେଖ)
Nekhana (etc) Lekhana etc (See)

**ନେଖା** (ଇତ୍ୟାଦି)—ଗ୍ରା. ବ.—ଲେଖା (ଇତ୍ୟାଦି) (ଦେଖ)—
Nekhā (etc) Lekhā etc (See)

**ନେଖା(ଖୋ)ଇବା** - ଗ୍ରା. କ୍ରି.—ଲେଖାଇବା (ଦେଖ)
Nekhā(khe)ibā Lekhāibā (See)

**ନେଖିବା**—ଗ୍ରା. କ୍ରି.—ଲେଖିବା (ଦେଖ)
Nekhibā Lekhibā (See)

**ନେଗି**—ପ୍ରାଦେ. (ସମ୍ବଲପୁର) ବ.—କିରାଣି—
Negi A clerk.

[ଦ୍ର—ହିନ୍ଦୀରେ ନେଗ୍ ଶବ୍ଦର ଅର୍ଥ ଶୁଭ କର୍ମରେ ଭୃତ୍ୟାଦିଙ୍କୁ ଦିଆ ଯିବା ବକ୍ସିସ୍ ବା ବଧେଇ ଓ ନେଗୀ ଶବ୍ଦର ଅର୍ଥ ଯେଉଁମାନଙ୍କୁ ବଧେଇ ଦିଆଯାଏ ଅର୍ଥାତ୍ ଭୃତ୍ୟାଦି ।]

**ନେଙ୍କଡ଼ା** (ଇତ୍ୟାଦି)—ଦେ. ବ—ଲେଙ୍କଡ଼ା ଇତ୍ୟାଦି ( ଦେଖ )
Neṅkarḍā (etc) Leṅkarḍā etc ( See )

**ନେଙ୍କ(ଙ୍କି)(ଙ୍କୁ)(ଙ୍କେ)ଡ଼ିଆ** ଦେ. ବଣ—ଲେଙ୍କଡ଼ିଆ ( ଦେଖ )
Neṅka(ṅki)(ṅku)(ṅke)rḍiā Leṅkarḍiā ( See )

**ନେଙ୍ଗ(ଙ୍ଗେ)ଡ଼ା** (ଇତ୍ୟାଦି)—ଦେ. ବ ଓ ବଣ —
Neṅga(ṅge)rḍā (etc) ଲେଙ୍ଗଡ଼ା ଇତ୍ୟାଦି ( ଦେଖ )
Lengarḍā etc. ( See )

**ନେଙ୍ଗୁଟି** (ଇତ୍ୟାଦି)—ଦେ. ବ—ଲେଙ୍ଗୁଟି ଇତ୍ୟାଦି ( ଦେଖ )
Neṅguṭi (etc) Leṅguṭi etc. ( See )

**ନେଜକ**—ସଂ. ବ. ପୁଂ (ନିଜ୍ ଧାତୁ=ଧୌତ କରିବା+କର୍ତ୍ତୃ. ଅକ)—
Nejaka ଧୋବା, ରଜକ—Washerman
(ନେଜକା—ସ୍ତ୍ରୀ) ସଂ. ବିଣ. ପୁଂ—ଶୋଧକ, ପରିଷ୍କାରକ—
Purifying; cleansing.

**ନେଜନ**—ସଂ. ବ. ( ନିଜ୍ ଧାତୁ=ଧୌତ କରିବା+ଭାବ. ଅନ )—
Nejana ୧ । ଶୋଧନ, ପରିଷ୍କରଣ—
1. Purification; cleansing.
୨ । ଧୌତକରଣ; ଧୋଇବା—2. Washing.
୩ । ପ୍ରକ୍ଷାଳନ—3. Rinsing.
୪ । ( +ଅଧିକରଣ. ଅନ ) ଯେଉଁଠାରେ ଲୁଗା ଧୁଆଯାଏ; ଧୋବା ଘର—4. Washing house; washerman's house.
୫ । ଧୋବା ଗୁଠ—5. Washing place.

**ନେଞ୍ଚ**—ଗ୍ରା (ଉତ୍ତର) ବଣ - ନୀଚ ( ଦେଖ )
Neñcha Nicha ( See )
**नींच** (ନୀଞ୍ଚ—ଅନ୍ୟରୂପ)

**ନେଞ୍ଜ**—ପ୍ରାଦେ. (ସିଂହଭୂମ) ବ ( ସଂ. ଲଞ୍ଜ=ପୁଚ୍ଛ, ବଂ. ନେଜ )—
Neñja ୧ । ଲାଙ୍ଗୁଡ଼—1. Tail.
୨ । ଢିଙ୍କି ଲାଞ୍ଜି—
2. The back end of a threshing jack.

**ନେଞ୍ଜରା** (ଇତ୍ୟାଦି)—ଦେ ବ—ଲେଞ୍ଜରା ଇତ୍ୟାଦି ( ଦେଖ )
Neñjarā (etc) Leñjarā etc. ( See )

**ନେଞ୍ଜରା(ରେ)ଇବା**—ଦେ କ୍ରି—ଲେନ୍ଦରାଇବା ( ଦେଖ )
Neñjarā(re)ibā Lendarāibā ( See )

**ନେଟ୍**—ବୈଦେ. ବ. ( ଇଂ. ନେଟ୍ )—
Net ୧ । ଜାଲ —1. Net.
नेट ୨ । ଜାଲ ପରି ଛିଦ୍ର ରଖି ବୁଣା ହୋଇଥିବା ଲୁଗା—
**नेट** 2 Net cloth
नीट ବୈ. ବଣ (ଇଂ. ନେଟ୍)—ନୀଟ୍ ( ଦେଖ )
**नीट** Niṭ ( See )

**ନେଟ୍ରିବା**—ପ୍ରାଦେ. (ସମ୍ବଲପୁର) କ୍ରି. (ସଂ. ନେତ୍ର)—
Neṭribā ଅପଲକ ନେତ୍ରରେ ଗୃହିଁ ରହିବା—
To stare at.
( ଯଥା—ମୋଭିଦ ( ମୋ ଆଡ଼କୁ ) କାହିଁ ଯେ ( କପାଇଁ ) ନେଟ୍ରୁଛେ (ଅପଲକଦୃଷ୍ଟିରେ ଗୃହିଁ ରହୁଛ ? )
[ ଦ୍ର—ଏହା ଘୃଣାର୍ଥରେ ପ୍ରଯୁକ୍ତ ହୁଏ । ]

**ନେଡ** (ଇତ୍ୟାଦି)—ଦେ. ବ—ଲେଡ ଇତ୍ୟାଦି ( ଦେଖ )
Nerḍa (etc) Lerḍa etc. ( See )

**ନେଡା**—ଦେ. ବ—ଲେଡ଼ା ( ଦେଖ )
Nerḍā Lerḍā ( See )

**ନେଢ଼ି** (ଇତ୍ୟାଦି)—ଦେ. ବ—ଲେଢ଼ି ଇତ୍ୟାଦି ( ଦେଖ )
Nerḍi (etc) Lerḍi etc. ( See )

**ନେଢ଼େଇବା**—ପ୍ରାଦେ (ସିଂହଭୂମ) କ୍ରି—ଖୋଟେଇବା—
Nerḍheibā To limp.

**ନେଣ୍(ଣା)(ଣୀ)**—ଦେ ବ. ( ସଂ. ନୀ ଧାତୁ, ନୟନ )—
Neṇ(ṇā)(ṇi) ୧ । ନେବା କ୍ରିୟା—
लेन, लेना 1. Act of taking.
**लेन, लेना** ୨ । ପ୍ରାପ୍ୟ ଧନ ବା ବସ୍ତୁ—2. Money or thing which is due.
[ଦେଣ୍(ଣା)(ଣୀ) – ବିପରୀତ]
(ନେବଣ, ନେବଣା, ନେବଣୀ—ଅନ୍ୟରୂପ)

**ନେଣ୍ ଦେଣ୍**—ଦେ. ବ. ( ସହଚର, ସଂ. ନୟନ ଓ ଦାନ, ସଂ. ଲଭନ ଓ ଦାନ )—
Neṇ deṇ
लेनदेन, लेनादेना ୧ । ନେବା ଓ ଦେବା, ନିଆଦିଆ—
**लेनदेन** 1. Giving and taking.
ନେବଣ ଦେବଣ, ନେଣା ଦେଣା, ନେଣି ଦେଣି } ଅନ୍ୟରୂପ
୨ । ବ୍ୟବସାୟଗତ ଅଦଳବଦଳ—2. Exchange; barter.

୩ । ବାଣିଜ୍ୟ, ବ୍ୟବସାୟ, କାରବାର ( ଯହିଁରେ ପଣ୍ୟ ଓ ଧନାଦିର ଆଦାନ ପ୍ରଦାନ ହୁଏ )—
3. Business transaction; trade; mercantile transaction
୪ । ବିକ୍ରି ଖରିଦ—
4. Sale and purchase of things.
୫ । ବିକ୍ରି ସମ୍ପତ୍ତି ପାଇଁ କ୍ରେତା ବିକ୍ରେତା ମଧ୍ୟରେ ମୂଲ୍ୟର ଆଦାନ ପ୍ରଦାନ—5. Passing of consideration for a property sold
୬ । ପାଉଣା ଦେଣା, କୌଣସି ବ୍ୟକ୍ତିର ଅନ୍ୟଠାରୁ ପ୍ରାପ୍ୟ ଓ ଅନ୍ୟକୁ ଦେୟ ଧନ ବା ବସ୍ତୁ—
6 Dues and debts of a person, assets and liabilities of a person.

**ନେଣ୍ଟ(ଣ୍ଟା)**—ଦେ ବି—୧ । ଲେଞ୍ଜରା ( ଦେଖ )
Nenta(ṇṭā) 1 Leñjarā ( See )
नेटा, लाठा ୨ । ଅଳଆ—2 Refuse matter
टंटा ୩ । ଗୋଳମାଳ—3. Noise, confusion

**ନେଣ୍ଟି**- ଦେ. ବି ଓ ବିଣ - ଲେଣ୍ଟି ( ଦେଖ )
Nenṭi Lenṭi ( See )

**ନେଣ୍ଡ**—ପ୍ରାଦେ (ବାଲେଶ୍ୱର, ପାରଳୁଦ ଓ ଭୁଜଙ୍ଗ) ବି (ସଂ. ଲେଣ୍ଡ)—
Nenḍa ଲେଣ୍ଡ ( ଦେଖ )—Lenḍa ( See )

**ନେତ**—ଦେ. ବି. ( ସଂ. ନେତ୍ର=ବସ୍ତ୍ରବିଶେଷ, ଓଢ଼ଣା )—
Neta ୧ । ବାଳିକାମାନଙ୍କର ପିନ୍ଧିବା ଏକ ପ୍ରକାର ସୂକ୍ଷ୍ମ ପଟ୍ଟବସ୍ତ୍ର,
नेत ଅଂଶୁକ—1. A kind of thin silk cloth worn
खौड़का by girls.
କେ କାଛ ପିନ୍ଧିଥିବ ନେତ—ଭୂପତି, ପ୍ରେମପଞ୍ଚାମୃତ ।
पताका झुमरनी ୨ । ପତାକା—2. Flag.
୩ । ( ସ୍ୱନେତ୍ର=ମନ୍ଥନରଜ୍ଜୁ, ଏହା ମନ୍ଥନରଜ୍ଜୁ ପରି ଲମ୍ବ ଥିବାରୁ ) ଦେଉଳ ଉପରେ ପତାକା ତଳେ ବନ୍ଧା ଯିବା ୧୦-୧୫ ହାତ ଲମ୍ବ ସରୁଆ ପତାକା—
3. A long and narrow flag, streamer.
ସେ ତଳେ ନେତ ବନ୍ଧା ହୋଇ,
ପତିତ ଜନଙ୍କ ପାଇଁ । ଯଶୋବନ୍ତ, ପ୍ରେମଭକ୍ତି ବ୍ରହ୍ମଗୀତା ।
୪ । ବିଷ୍ଣୁଙ୍କ ରଥଯାତ୍ରାର ପୂର୍ବଦିନ ହେବା ଉତ୍ସବବିଶେଷ, ନେତ୍ରଉତ୍ସବ—4. A festival of the Deity Jagannātha on the eve of the car festival.
୫ । ( ସ୍ତ୍ରୀ ) ସ୍ତ୍ରୀଲୋକଙ୍କ ନାମ, ନେତ୍ରମଣି ନାମ୍ନୀ ସ୍ତ୍ରୀର ଡାକନାମ—5. A name given to females.
୬ । ( ପୁଂ. ) ନେତ୍ରାନନ୍ଦର ଡାକନାମ—
6. Name for calling Netrānanda.
ପ୍ରାଦେ. ( ପୁରୀ ସହର ) ବି - କନ୍ୟାମାନଙ୍କ ଉତ୍ସବବିଶେଷ—
Name of a festival observed by girls.
କୋଠାଲି ସୁନ୍ଦର ବସନ୍ତପଞ୍ଚମୀ କୋଠାଲି ସୁନ୍ଦର ନେତ । ଚଉ ।
[ ଦ୍ର—ପୁରୀ ଜଗନ୍ନାଥ ମହାପ୍ରଭୁଙ୍କ ପଣ୍ଡା ସେବକଙ୍କ କନ୍ୟାମାନେ ଏ ଉତ୍ସବ ପାଳନ୍ତି । ଆଶ୍ୱିନ ଶୁକ୍ଳ ଚତୁର୍ଥୀଠାରୁ ସପ୍ତମୀ ପର୍ଯ୍ୟନ୍ତ ଖର ଦିନ ଅବିବାହିତା କନ୍ୟାମାନେ ବେଶଭୂଷା ପିନ୍ଧି ମାର୍କଣ୍ଡେଶ୍ୱରଙ୍କୁ ଦର୍ଶନ କରି ଆପଣା ଆପଣା ବନ୍ଧୁବାନ୍ଧବଙ୍କ ଘରକୁ ଯାଆନ୍ତି । ସେଠାରେ ସେମାନେ ଭୋଜନ କରି ସୁନ୍ଦର ଛନ୍ଦଅଛି ଗୀତ ବୋଲନ୍ତି । ]

**ନେତା**—ସଂ ବିଣ ପୁଂ. ( ନୀ ଧାତୁ=ନେବା+କର୍ତ୍ତୃ. ତୃ; ୧ମା. ୧ବ )
Netā ୧ । ନାୟକ -1 Leader.
( ନେତ୍ରୀ—ସ୍ତ୍ରୀ ) ୨ । ପରିଚାଳକ ବ୍ୟକ୍ତି—2 Conductor.
୩ । ପଥ ପ୍ରଦର୍ଶକ ବ୍ୟକ୍ତି—3 Guide.
୪ । ସ୍ୱାମୀ, ମାଲିକ—4 Owner.
୫ । ପ୍ରଭୁ, ଖାମିନ୍ଦ—5 Master.
୬ । ସର୍ଦ୍ଦାର—6. Headman.
୭ । କାର୍ଯ୍ୟନିର୍ବାହକ ବ୍ୟକ୍ତି—
7 Superintendent, manager.
୮ । ନିମ ଗଛ ( ହ୍ର. ଶ. )—8. The Nim tree.
୯ । ବିଷ୍ଣୁଙ୍କର ଏକନାମ ( ସହସ୍ରନାମୋକ୍ତ )—
9 A name of Bishṇu
ସଂ. ବିଣ—୧ । ଯେ ନିଏ—1 Taking.
୨ । ପଥପ୍ରଦର୍ଶକ—
2. Leading; guiding; conducting.
୩ । ପ୍ରେରକ—3 Sending.
୪ । ପ୍ରାପକ—4. Receiving; procuring
୫ । କାର୍ଯ୍ୟ ନିର୍ବାହକ—5. Superintending a work.

**ନେତାରଂମନ୍ୟ**—ସଂ. ବିଣ. ପୁଂ. ( ନେତାରଂ—'ନେତୃ' ଶବ୍ଦର ୨ୟା, ୧ବ+ମନ୍ ଧାତୁ+କର୍ତ୍ତୃ. ଯ )—
Netāram-manya ଯେ ପ୍ରକୃତରେ ନେତା ନୁହନ୍ତି ଅଥଚ ନେତା ବୋଲି ଗର୍ବ କରନ୍ତି—One who gives one's self the airs of a leader; one who calls himself a leader though he is not actually so.

**ନେତି**—ସଂ. ବି. ( ସଂ. ନ. ଇତି, ଯାହାଙ୍କର ଇତି ବା ଅନ୍ତ ନାହିଁ )
Neti ଈଶ୍ୱର, ପରଂବ୍ରହ୍ମ—The Supreme Spirit; God

**ନେତି(ତୀ) ଧୋ(ଧୌ)ତି(ତୀ)**—ଦେ ବି. ( ସଂ. ନେତ୍ର=ମନ୍ଥନରଜ୍ଜୁ+ଧୋତ=ଧୋଇବା) —
Neti(tī) dho(dhau)ti(tī) ନେତିଧୋତି ହଠ ଯୋଗ ସାଧନର ପ୍ରକ୍ରିୟାବିଶେଷ, ଖଣ୍ଡିଏ ସରୁ ଲମ୍ବକନା
नेती धोती ପେଟରେ ଭରିତ କରି ଅନ୍ତ ସଫା କରିବାର ଯୌଗିକ ପ୍ରଣାଳୀ—An exercise done by Jogis by thrusting a long and narrow strip of cloth into the belly and bringing it out to cleanse the intestines.
( ଧୋତି ୪ ଦେଖ )

**ନେତୃତ୍ୱ**—ସଂ. ବି. ( ନେତୃ+ଭାବାର୍ଥରେ ତ୍ୱ )—୧ । ନାୟକତ୍ୱ—
Netṛutwa 1. Leadership.
( ନେତୃତା—ବି )

୨ । ତତ୍ତ୍ୱାବଧାରଣ—
2. Guidance; management.

**ନେତ୍ର**—ସଂ. ବି (ନୀ ଧାତୁ=ପାଇବା+କରଣ. ତ୍ର) ୧ । ଚକ୍ଷୁ, ଆଖି—
Netra 1. The eye.
୨ । ସୂକ୍ଷ୍ମ ପଟ୍ଟବସ୍ତ୍ରବିଶେଷ—
2. A kind of fine silk cloth.
୩ । ବସ୍ତ୍ର; ଅଂଶୁକ—3 Cloth.
୪ । ବୃକ୍ଷମୂଳ—4. The root of a tree.
୫ । ରଥ—5. Car; chariot; carriage.
୬ । ପଥ—6. Path; road.
୭ । ମନ୍ଥନଦଣ୍ଡବନ୍ଧ ରଜ୍ଜୁ—7. Churning string; the string of a churning stick.
୮ । ନାଡ଼ୀ—8. Tubular blood vessel; vein.
୯ । ବସ୍ତିଶଳାକା—9. Enema pipe.
୧୦ । ଜଟା—10. Matted hair.
୧୧ । ୩ ସଂଖ୍ୟା—11 The number '3'.
୧୨ । ଦୃଷ୍ଟି—12. Sight; view.
୧୩ । କସ୍ତୁରୀ—13 Musk
୧୪ । ଦୁଇ ସଂଖ୍ୟା—14 The number two. (Apte).
୧୫ । ନକ୍ଷତ୍ରପୁଞ୍ଜ; ତାରକା—
15. A constellation; star (Apte).
ସଂ ବିଣ.—୧ । ପଥପ୍ରଦର୍ଶକ—1 Leading.
୨ । ଚାଳକ—2. Guiding.
୩ । ପ୍ରେରକ—3. Sending
୪ । ପ୍ରାପକ—4 Procuring.
୫ । ରକ୍ଷକ—5 Guarding.
୬ । ପ୍ରବର୍ତ୍ତକ—6 Engaging.
ଦେ. ବି—୧ । ଛିଦ୍ର—1. Hole.

ଗଣ୍ଡି ସ୍ଥଳରେ ନବ ନେତ୍ର,
ବସାଇ ହୋଇ ବଣ ପତ୍ର । ଜଟାରାଘ, ଭାଗବତ ।

୨ । (ପୁଂ ଓ ସ୍ତ୍ରୀ) ନେତ୍ରାନନ୍ଦ ଓ ନେତ୍ରମଣିର ଡାକନାମ—
2. Name for calling (male) Netrānanda and (female) Netramaṇi.

**ନେତ୍ର କୋଣ**—ସଂ. ବି. (୬ଷ୍ଠୀ ତତ୍; ନେତ୍ର+କୋଣ)—ନାକକୁ
Netra koṇa ଲାଗିଥିବା ଆଖିର ଶେଷଭାଗ—The inner corner of the eye.
ନେତ୍ର ପର୍ଯ୍ୟନ୍ତ } ଅନ୍ୟରୂପ
ନେତ୍ର ସନ୍ଧି

**ନେତ୍ର କୋଷ**—ସଂ. ବି (୬ଷ୍ଠୀ ତତ୍; ନେତ୍ର+କୋଷ)—ନେତ୍ରପଟଳ—
Netra kosha Eyelid.

**ନେତ୍ର ଗତ**—ସଂ. ବିଣ -୧ । ନେତ୍ର ଗୋଚର (ଦେଖ)
Netra gata Netra gochara (See)
୨ । ଆଖିରେ ପଶିଥିବା—2. Which has entered into the eye

**ନେତ୍ର ଗୋଚର**—ସଂ ବିଣ (୬ଷ୍ଠୀ ତତ୍, ନେତ୍ର+ଗୋଚର)—ଦେଖା
Netra gochara ଯାଉଥିବା, ଦୃଷ୍ଟିଗୋଚର—Seen; visible; come under sight.

**ନେତ୍ରଗୋଚର କରିବା**—ଦେ. କ୍ରି—ଦେଖିବା—
Netragochara karibā To see.
নেত্রগোচর করা नेत्रगोचर करना

**ନେତ୍ର ଗୋଚର ହେବା**—ଦେ. କ୍ରି—ଦେଖା ଯିବା—
Netra gochara hebā To be seen; to come to view.
নেত্রগোচর হওয়া नेत्रगोचर होना

**ନେତ୍ର ଗୋଲକ**—ସଂ. ବି (ନେତ୍ର+ଗୋଲକ)—୧ । (୬ଷ୍ଠୀ ତତ୍)—
Netra golaka ଆଖିର ଡୋଳା—1. Eyeball
ନେତ୍ର ପିଣ୍ଡ } ଅନ୍ୟରୂପ
ନେତ୍ର ମଣ୍ଡଳ
୨ । (ବହୁବ୍ରୀହି)—ବିରାଡ଼ି—
2. The cat.

**ନେତ୍ରଛଦ**—ସଂ. ବି (୬ଷ୍ଠୀ ତତ୍, ନେତ୍ର+ଛଦ୍ ଧାତୁ=ଆଚ୍ଛାଦନ
Netrachchhada କରିବା+କରଣ ଅ)—ଆଖିପତା; ଚକ୍ଷୁ-
(ନେତ୍ରପଟଳ, ନେତ୍ରପତ୍ର, ନେତ୍ରପଲ୍ଲବ—ଅନ୍ୟରୂପ) ପକ୍ଷ୍ମ—Eyelid.

**ନେତ୍ରଜ**—ସଂ. ବି (ନେତ୍ର+ଜନ୍ ଧାତୁ+କର୍ତ୍ତୃ. ଅ)—ଅଶ୍ରୁ; ଲୋତକ,
Netraja ନେତ୍ରଜଳ—Tear.

**ନେତ୍ର ଜଳ**—ସଂ ବି (୬ଷ୍ଠୀ, ନେତ୍ର+ଜଳ)—ନେତ୍ରଜ (ଦେଖ)
Netra jala Netraja (See)

**ନେତ୍ର ତାରା**—ସଂ. ବି (୬ଷ୍ଠୀ ତତ୍; ନେତ୍ର+ତାରା)—ନୟନ ତାରା (ଦେଖ)
Netra tārā Nayana tārā (See)
(ନେତ୍ର କନୀନିକା—ଅନ୍ୟରୂପ) ବୋଲଇଲ ଏଥକ ନାମ ତାଧ
ବହୁ ବର୍ଷୁଁ ହୋଇଲ ନେତ୍ରତାରା । ଉକ୍ତ ବୈଦେହୀଶବିଳାସ—

**ନେତ୍ରନାଡ଼ୀ**—ସଂ. ବି—ଚକ୍ଷୁରୋଗବିଶେଷ—Lacchrymal fistula;
Netra nāṛi a disease of the eye.

**ନେତ୍ର ପଥ**—ସଂ. ବି (୬ଷ୍ଠୀ ତତ୍, ନେତ୍ର+ପଥ)—ନୟନ ପଥ (ଦେଖ)
Netrapatha Nayana patha (See).

**ନେତ୍ରପଥରେ ପଡ଼ିବା**—ଦେ. କ୍ରି—ଦୃଷ୍ଟିଗୋଚର ହେବା—
Netrapathare paṛibā To be seen.
নেত্রপথে পড়া ନେତ୍ରପଥେ ପଡ଼ି ଗଲେ କ ସେ ଘଟ୍ଟ ।
नेत्रपथमेंपड़ना କବିସୂର୍ଯ୍ୟ, କଣୋଇ ଚମ୍ପୂ, ଝ ଗୀତ ।

**ନେତ୍ର ପାତ**—ସଂ. ବି (୬ଷ୍ଠୀ ତତ୍, ନେତ୍ର+ପାତ)—ଦୃଷ୍ଟିପାତ—
Netra pāta Casting an eye upon.

**ନେତ୍ର ପିତୁଳା**—ଦେ. ବି (ସଂ.ନେତ୍ର+ପୁତ୍ତଳ)—ନୟନ ପିତୁଳା (ଦେଖ)
Netra pitulā Nayanapitulā (See)
ପ୍ରିୟମୁଖ, ତୁହି ମୋ ନେତ୍ରପିତୁଳା ।
କବିସୂର୍ଯ୍ୟ, ବେଢାକଲ୍ଲୋଳ—

**ନେତ୍ରପୁଷ୍କର**—ସଂ. ବି—ରୁଦ୍ରଜଟା ନାମକ ଲତା (ହ୍ର ଶ)—
Netra pushkara A kind of creeper

**ନେତ୍ର ପ୍ରାନ୍ତ**—ସଂ. ବି (୬ଷ୍ଠୀ ତତ୍, ନେତ୍ର+ପ୍ରାନ୍ତ)—
Netra prānta ନୟନୋପାନ୍ତ; ଆଖି ଲାଞ୍ଜି—
(ନେତ୍ରୋପାନ୍ତ—ଅନ୍ୟରୂପ) The outer corner of the eye.

**ନେତ୍ରବନ୍ଧ**—ସଂ ବି—ଆଖି ବୁଜାବୁଜି ଖେଳ (ହ୍ର. ଶ.)—
Netrabandha The Blind man's Buff (game).

**ନେତ୍ରମଣି**—ସଂ. ବି. (୬ଷ୍ଠୀ ତତ୍; ନେତ୍ର + ମଣି)—ଚକ୍ଷୁର ତାରା—
Netramaṇi The pupil of the eye.
ଦେ. ବି—ସ୍ତ୍ରୀ ଲୋକଙ୍କ ନାମ—
A name given to females.

**ନେତ୍ର ମଳ** – ସଂ ବି. (୬ଷ୍ଠୀ ତତ୍, ନେତ୍ର + ମଳ)—
Netra maḷa ଆଖିର ଲେନେଟ୍, ଆଖିମଧ୍ୟରୁ ବାହାରିବା ମଳ—
(ନେତ୍ରବିଟ୍—ଅନ୍ୟରୂପ) The concrete rheum of the eyes

**ନେତ୍ର ମାର୍ଗ**—ସଂ. ବି—୧ । ନେତ୍ରଗୋଲକକୁ ମସ୍ତିଷ୍କ ସଙ୍ଗେ ସଂଯୁକ୍ତ କରି
Netra mārga ଥିବା ସୂତ୍ର (ହି. ଶ)—The nerve connecting the eyeball with the brain.
୨ । ନୟନପଥ (ଦେଖ)—2 Nayanapatha (See)

**ନେତ୍ର ଯୋନି**—ସଂ. ବି—୧ । (ବହୁବ୍ରୀହି, ନେତ୍ର + ଯୋନି = ଉତ୍ପତ୍ତିସ୍ଥାନ)
Netra joni (ଅତ୍ରିମୁନିଙ୍କ ନୟନରୁ ଚନ୍ଦ୍ରଙ୍କ ଉତ୍ପତ୍ତି ହୋଇଥିବାରୁ) ଚନ୍ଦ୍ର—1 The moon
୨ । (ଯୋନି ଚିହ୍ନମାନ ନେତ୍ରରୂପେ ପରିଣତ ହେଲା ଯାହାଙ୍କର)—ଇନ୍ଦ୍ର—2. Indra.
[ଦ୍ର – ଗୁରୁ ଗୌତମଙ୍କ ଶାପରୁ ଇନ୍ଦ୍ରଙ୍କ ଶରୀରସାକ ସହସ୍ର ଯୋନିଚିହ୍ନଦ୍ୱାରା ଆବୃତ ହୋଇଥିଲା । ପରେ ଉକ୍ତ ଚିହ୍ନମାନ ନେତ୍ରରୂପେ ପରିଣତ ହେଲା । ]

**ନେତ୍ର ରଞ୍ଜନ**—ସଂ. ବି. (୬ଷ୍ଠୀ ତତ୍, ନେତ୍ର + ରଞ୍ଜନ)—ଅଞ୍ଜନ, କଜ୍ଜ୍ୱଳ—
Netra rañjana Collyrium.
ସଂ. ବିଣ—ନୟନ ପ୍ରୀତିକର—
Pleasing to the eye.

**ନେତ୍ର ରୋଗ**—ସଂ. ବି. (୬ଷ୍ଠୀ ତତ୍, ନେତ୍ର + ରୋଗ)—ଚକ୍ଷୁର ରୋଗ—
Netra roga Disease of the eye.
[ ଦ୍ର—ବୈଦ୍ୟଶାସ୍ତ୍ର ଅନୁସାରେ ନେତ୍ରରୋଗ ୭୬ ପ୍ରକାର । ତହିଁମଧ୍ୟରୁ ୧୦ ବାୟୁଜନ୍ୟ, ୧୩ କଫଜନ୍ୟ, ୧୬ ରକ୍ତଜନ୍ୟ, ୧୦ ପିତ୍ତଜ, ୨୫ ସନ୍ନିପାତଜ ଓ ୨ ବାହ୍ୟ ଅଟେ । ଏହି ୭୬ ରୋଗମଧ୍ୟରୁ ୯ ସନ୍ଧିଗତ, ୨୧ ବର୍ତ୍ମଗତ, ୧୧ ଶୁକ୍ଳଭାଗ ସ୍ଥିତ, ୪କୃଷ୍ଣଭାଗ ସ୍ଥିତ, ୧୭ ସର୍ବଗତ, ୧୨ ଦୃଷ୍ଟିଗତ ଓ ୨ ବାହ୍ୟ ଅଟେ ।
ହି. ଶବ୍ଦସାଗର । ]

**ନେତ୍ରରୋଗହା**—ସଂ. ବିଣ. (ନେତ୍ର+ରୋଗ+ହନ ଧାତୁ+କ୍ୱିପ୍) —
Netrarogahā ନେତ୍ରରୋଗର ଆରୋଗ୍ୟକର—
Curing eye-diseases.
ସଂ. ବି—ବିଛୁଆତି ଗୁଳ୍ମ (ହି. ଶବ୍ଦସାଗର)—
The stinging nettle plant.

**ନେତ୍ର ସ୍ତମ୍ଭ**—ସଂ. ବି. (୬ଷ୍ଠୀ ତତ୍, ନେତ୍ର + ସ୍ତମ୍ଭ)—
Netra stambha ଆଖିର ପଲକ ପଡିବା ବନ୍ଦ ହେବା—
(ନେତ୍ରସ୍ତମ୍ଭ—ଅନ୍ୟରୂପ) The stoppage of the winking or twinkling of the eye

**ନେତ୍ର ସ୍ରାବ**—ସଂ. ବି. (୬ଷ୍ଠୀ ତତ୍, ନେତ୍ର + ସ୍ରାବ)—
Netra srāba ଆଖିରୁ ପାଣି ବୋହିବା—
The watering of the eyes

**ନେତ୍ରା**—ଦେ. ବି. ପୁଂ—ନେତ୍ରାନନ୍ଦର ଅନାଦରାର୍ଥକ ଡାକନାମ—
Netrā A name for calling Netrānanda.

**ନେତ୍ରାଞ୍ଚଳ**—ସଂ. ବି. (୬ଷ୍ଠୀ ତତ୍, ନେତ୍ର+ଅଞ୍ଚଳ)—୧ । ନେତ୍ରପ୍ରାନ୍ତ—
Netrāñchaḷa 1 The outer corner of the eye.
(ନେତ୍ରାନ୍ତ – ଅନ୍ୟରୂପ) ୨ । ଚକ୍ଷୁର ପ୍ରାନ୍ତ ଓ କାନର ମଧ୍ୟବର୍ତ୍ତୀ ଅଂଶ—2. The part between the outer corner of the eye and the ear.

**ନେତ୍ରାନନ୍ଦ**—ସଂ ବିଣ (ବହୁବ୍ରୀହି, ନେତ୍ର + ଆନନ୍ଦ)—ନେତ୍ର ପ୍ରୀତିକର—
Netrānanda Pleasing to the eye.
**नेत्रानन्द** ଦେ. ବି. ପୁଂ—ଲୋକଙ୍କ ନାମ—
A name given to males.

**ନେତ୍ରାଭିଷ୍ୟନ୍ଦ**—ସଂ. ବି—ଆଖିଥିବା ରୋଗ—
Netrābhishyanda Ophthalmia.
[ ଦ୍ର—ଏ ରୋଗରେ ଆଖି ଡୋଳା ନାଲି ହୁଏ ଓ ବଢେ, ଆଖିଭିତରେ ବାଲି ପଶିଲାପରି ପୀଡ଼ା ଜଣାଯାଏ, ଆଖିଭିତରକୁ ଛୁଞ୍ଚିମାରିଲାଭଳି ବେଦନା ହୁଏ, ମୁଣ୍ଡ ବିନ୍ଧେ, ଆଖିରୁ ପାଣି ଓ ଲେନ୍ଦା ବୁହେ । ଏ ରୋଗର ଚିକିତ୍ସା ନ କଲେ ଏହା ମାରାତ୍ମକ ଅଧିମନ୍ଥ ରୋଗରେ ପରିଣତ ହୋଇ ଆଖି ପାଚିଯାଏ ଓ ଆଖି ଫୁଟିଯାଏ । ଏ ରୋଗ ଉଆଁ ରୋଗ । ]

**ନେତ୍ରାମୟ**—ସଂ ବି (୬ଷ୍ଠୀ ତତ୍, ନେତ୍ର+ଆମୟ) – ଚକ୍ଷୁର ରୋଗ—
Netrāmaya Eye-disease.

**ନେତ୍ରାମ୍ବୁ**—ସଂ. ବି. (୬ଷ୍ଠୀ ତତ୍, ନେତ୍ର + ଅମ୍ବୁ)—ଅଶ୍ରୁ; ଲୋତକ—
Netrāmbu Tear.

**ନେତ୍ରାରି**—ସଂ. ବି (୬ଷ୍ଠୀ ତତ୍, ନେତ୍ର + ଅରି, ଏଥିର କ୍ଷୀର ଆଖିରେ
Netrari ପଡ଼ିଲେ ଆଖି ଫୁଟିଯାଏ)—ସିଜୁ—Enphorbia.

**ନେତ୍ରିକ**—ସଂ. ବି—ଏକପ୍ରକାର ଛୋଟ ପିଚକାରୀ (ସୁ. ଶ୍ରୁ. ତ)—
Netrika A kind of small syringe.

**ନେତ୍ରୀ** – ସଂ. ବିଣ ଓ ବି (ନୀ ଧାତୁ + କର୍ତ୍ତୃ ତୃ = ନେତୃ + ସ୍ତ୍ରୀ ଈ)—
Netrī ନେତାର ସ୍ତ୍ରୀଲିଙ୍ଗ—Feminine of Netā.
ବି. ସ୍ତ୍ରୀ—୧ । ଶିକ୍ଷୟିତ୍ରୀ—1. A female teacher.
୨ । ଲକ୍ଷ୍ମୀ—2 Goddess Lakshmī.
୩ । ନଦୀ—3. River.

**ନେତ୍ରୋତ୍ସବ**—ସଂ. ବି. (୬ଷ୍ଠୀ ତତ୍, ନେତ୍ର + ଉତ୍ସବ)—
Netrotsaba ୧ । ଚକ୍ଷୁର ଆନନ୍ଦଦାୟକ ବସ୍ତୁ—
1. A feast to the eyes; any beautiful object; a delight of the eye.
୨ । ଦେଖିବାର ମଜା—2 Delightful feeling experienced on seeing a lovely object.
ଦେ. ବି—ରଥଯାତ୍ରାର ପୂର୍ବଦିନ ଜଗନ୍ନାଥ ମହାପ୍ରଭୁଙ୍କର ହେବା ଉତ୍ସବ—A festival of the Deity Jagannātha on the eve of the car festival.
[ ଦ୍ର—ଏ ଦିନ ନୂତନ ଚିତ୍ରିତ ଜଗନ୍ନାଥ ପ୍ରତିମାଙ୍କର ଚକ୍ଷୁ ରଙ୍ଗାଯାଏ (ଚକ୍ଷୁର୍ଦାନ ହୁଏ) । ]

**ନେତ୍ରୋପମ ଫଳ**— ସଂ. ବି—ବାଦାମ (ଭାବପ୍ରକାଶ)—
Netropama phala Almond.

**ନେତ୍ର୍ୟ**—ସଂ ବିଣ (ନେତ୍ର+ଯ)—୧ । ନେତ୍ରର ହିତକର—
Netrya 1. Beneficial to the eye
୨ । ନେତ୍ରରୋଗର ହିତକର—
2. Effective in the cure of eye-diseases.

**ନେଥେଇ ଫୁଲ୍ଲି** ପ୍ରାଦେ. (କଟକ ଓ ପୁରୀ) ବି—
Nethei phuli ୧ । ଅହଂକାରିଣୀ ନାରୀ; ଗର୍ବିଣୀ ସ୍ତ୍ରୀ —
(ନେଥେଇ ଫୁଲେଇ—ଅନ୍ୟରୂପ) 1. An arrogant woman
୨ । ଯେଉଁ ସ୍ତ୍ରୀ ନିଜର ବିଭବ ବା ନିଜର ଅନ୍ୟ ପ୍ରତି ସ୍ନେହ ବାହାରେ ଦେଖାଇ ହୁଏ — 2. A vain glorious woman

**ନେଦ(ଦା)**— ଦେ ବି. (ସଂ. ଲେଣ୍ଡ)—୧ । ବିଷ୍ଠାର ଲଣ୍ଡ, ମଳୋତ୍ସର୍ଗ ସମୟରେ ଗୁହ୍ୟଦ୍ୱାରରୁ ନିର୍ଗତ ବନ୍ଧ ମଳପିଣ୍ଡ—
Neda(da) 1. A solid cylindrical piece of nightsoil
न्याद, नेद
ନେଁଡ୍, ନେଁଡ୍
୨ । ବିଷ୍ଠାର ପୁଳା ବା ମେଦ—
2. A mass of ordure.

**ନେଦି**—ଦେ ବି. (ସଂ. ଲେଣ୍ଡ)—ଲେଦି, ଘୋଡ଼ାଆଦି ପଶୁଙ୍କ ଲଣ୍ଡି—
Nedi Circular bits of the dung of horses and other beasts
नेदी ଲେଁଡ଼ୀ

**ନେଦି କାଢ଼ିବା** - ଦେ. କ୍ରି.—(ଘୋଡ଼ା) ହଗିବା, ଲେଦି କାଢ଼ିବା—
Nedi kārdhibā (a horse) To pass dung.
नेदिछाडा ଲେଁଡ଼ୀଛୋଡ଼ନା

**ନେଦିଷ୍ଠ**—ସଂ. ବିଣ (ଅନ୍ତିକ=ସମୀପ+ଅତିଶୟାର୍ଥେ ଇଷ୍ଠ, ନିପାତନସିଦ୍ଧ)
Nedishtha ୧ । ଅତି ନିକଟବର୍ତ୍ତୀ, ନିକଟତମ—
(ନେଦିଷ୍ଠା—ସ୍ତ୍ରୀ) 1. Nearest; adjacent.
୨ । ନିପୁଣ—2 Clever.
ସଂ. ବି ଅଙ୍କୋଟ ବୃକ୍ଷ (ଦେଖ)—
Ankota tree (See)

**ନେଦିଷ୍ଠୀ**— ସଂ. ବିଣ –ନିକଟସ୍ଥ (ହି. ଶ)—Adjacent.
Nedishthi ସଂ ବି ପୁଂ—ସହୋଦର ଭାଇ (ହି. ଶ)—
Uterine brother.

**ନେଦୀୟାନ୍**—ସଂ. ବିଣ. ପୁଂ. (ଅନ୍ତିକ+ଅତ୍ୟର୍ଥେ. ଈୟସ୍; ନେଦାଦେଶ ଶବ୍ଦ ୧ମା. ୧ବ.)—ନିକଟତର—
Nediyān Nearer.
(ନେଦୀୟସୀ—ସ୍ତ୍ରୀ)

**ନେନ୍ଥା(ଥା)**—ଦେ. ବି.—ଲେନ୍ଥା (ଦେଖ)
Nentā (nthā) Lentā (See)

**ନେନ୍ଦ(ନ୍ଦେ)ରା**— ଦେ. ବି —ଲେନ୍ଦରା (ଦେଖ)
Nenda(nde)rā Lendarā (See)

**ନେପ୍‌ଚୁନ୍**—ବୈଦେ. ବି. (ଫାରସୀ ଭାଷା)—ଗ୍ରହବିଶେଷ—
Nep-chun. Neptune, the name of a planet.
नेपचुन नेपचुन [ଦ୍ରି—ଏ ଗ୍ରହର ଅବସ୍ଥିତି ପୂର୍ବେ ଜଣା ନ ଥିଲା, ୧୮୪୬ ଖ୍ରୀଷ୍ଟାବ୍ଦରେ ପାଶ୍ଚାତ୍ୟ ପଣ୍ଡିତମାନେ ଦୂରବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ଏ ଗ୍ରହର ଅବସ୍ଥିତି ଆବିଷ୍କାର କଲେ । ଏହା ଆକାରଦୃଷ୍ଟିରେ ଗ୍ରହମାନଙ୍କ ମଧ୍ୟରେ ତୃତୀୟ ଶ୍ରେଣୀର । ଏହା ସୌର ଜଗତରେ ସୂର୍ଯ୍ୟଙ୍କଠାରୁ ଦୂରତମ ଗ୍ରହ ଅଟେ । ଏଥିର ବ୍ୟାସ ୩୭ ହଜାର ମାଇଲ୍, ଏହା ସୂର୍ଯ୍ୟଙ୍କ ଠାରୁ ୨୮୦ କୋଟି ମାଇଲ୍ ଦୂରରେ ଅବସ୍ଥିତ । ଏହା ୧୬୪ ବର୍ଷରେ ସୂର୍ଯ୍ୟଙ୍କ ଘେର ଥରେ ଥରେ ଘୂରି ଆସେ । ପୃଥିବୀ ଘେର ପାଖେ ଚନ୍ଦ୍ର ବୁଲିଲା ପରି ଏ ଗ୍ରହର ମଧ୍ୟ ଗୋଟିଏ ଚନ୍ଦ୍ର ଅଛି, ଏହି ଚନ୍ଦ୍ର ନେପଚୁନ୍‌ର ଘେରପାଖେ ୫ ଦିନ ୨୧ ଘଣ୍ଟାରେ ଥରେ ଘୂରିଆସେ । (ହି ଶବ୍ଦସାଗର ।)]

**ନେପ**—ଗ୍ରା. ବି. ଲେପ (ଦେଖ)
Nepa Lepa (See)

**ନେପଟିବା**—ଗ୍ରା କ୍ରି—ଲେପଟିବା (ଦେଖ)
Nepatibā Lepatibā (See)
[ନେପଟା(ଟେ)ଇବା—ଅନ୍ୟରୂପ]

**ନେପଥ୍ୟ**—ସଂ. ବି. (ନେ=ନାୟକ+ପଥ୍ୟ=ଯୋଗ୍ୟ ବା ମନୋହର)--
Nepathya ୧ । ବେଶ, ସଜ୍ଜା—1. Dress; attire
୨ । ଅଳଙ୍କାର—2. Ornament.
୩ । ବେଶ ରଚନା ଗୃହ, ଅଭିନେତୃ ଦଳ ଯେଉଁ ଘରେ ସଜ୍ଜିତ ହୁଅନ୍ତି—3. Dressing room, green room.
୪ । ରଙ୍ଗଭୂମି, ରଙ୍ଗଶାଳା—4. Stage; theatre.
୫ । ଅଭିନୟ ସ୍ଥଳର ଅନ୍ତରାଳ—5. The part of the theatre behind the scene.
୬ । ନଟ ଓ ନଟୀଙ୍କ ବେଶ—6 Stage costume.

**ନେପଥ୍ୟ ବିଧାନ**—ସଂ. ବି—ସଜ୍ଜା ଗୃହରେ ଅଭିନେତା ଓ ଅଭିନେତ୍ରୀମାନଙ୍କର ବେଶ ପରିଧାନ—
Nepathya bidhāna Dressing in the tiring room.

**ନେପଥ୍ୟେ**—ସଂ. ଅ.— ରଙ୍ଗମଞ୍ଚର ଅନ୍ତରାଳରେ ଅର୍ଥାତ୍ ବେଶ ଗୃହ ମଧ୍ୟରେ—Behind the scene.
Nepathye
[ଦ୍ରି—ଅଭିନୟ ହେବା ସମୟରେ ରଙ୍ଗମଞ୍ଚର ପଛ ଆଡ଼ୁ କେହି କିଛି କଥା କହିବାର ହେଲେ ତାହାକୁ ନାଟକୀୟ ଭାଷାରେ 'ନେପଥ୍ୟେ' ବୋଲାଯାଏ ।]

**ନେପାଳ**—ସଂ. ବି. (ନେ+ପାଳ)—ହିମାଳୟ ପର୍ବତର ସାନୁଦେଶସ୍ଥ ଭାରତୀୟ ସ୍ୱାଧୀନ ରାଜ୍ୟବିଶେଷ—Nepal; an independent kingdom in the Himalayas.
Nepāla
[ଦ୍ରି—ଏ ରାଜ୍ୟ ଭାରତ ସରକାରଙ୍କର ଗୋଟିଏ ସ୍ୱାଧୀନ ମିତ୍ର ରାଜ୍ୟ; ଏହାର ଉତ୍ତରରେ ତିବ୍ବତ୍, ପଶ୍ଚିମରେ ଯୁକ୍ତପ୍ରଦେଶ, ଦକ୍ଷିଣରେ ଯୁକ୍ତପ୍ରଦେଶ ଓ ବିହାର ପ୍ରଦେଶ, ପୂର୍ବରେ ବିହାର ପ୍ରଦେଶ ଓ ସିକିମ, କାଠମାଣ୍ଡୁ ଏ ରାଜ୍ୟର ରାଜଧାନୀ, ଏ ରାଜ୍ୟବାସୀ ଗୁରୁଖାମାନେ ଇଂରାଜଙ୍କ ଭାରତୀୟ ସେନା କର୍ମ କରନ୍ତି । ଏଠାର ରଜା କ୍ଷତ୍ରିୟ । ହିମାଳୟର ଧବଳଗିରି ଓ ଏଭେରେଷ୍ଟ (ଗୌରୀଶଙ୍କର) ଶୃଙ୍ଗ ଏହି ରାଜ୍ୟରେ ଅବସ୍ଥିତ । ନେମିପାଲ ନାମକ ଋଷିଙ୍କ ନାମରୁ ଏ ଦେଶର ନାମ ନେପାଳ ହୋଇଥିବାର କେହି କେହି ଅନୁମାନ କରନ୍ତି । କେହି କେହି କହନ୍ତି ତିବ୍ବତବାସୀମାନେ ଗୁରୁଖାଙ୍କ ଅଧ୍ୟୁଷିତ ଦେଶକୁ ପାଲ କହନ୍ତି ଓ ସିକିମ ଓ ଭୁଟାନ ଅଧିବାସୀମାନେ ନେପାଳର ପୂର୍ବ ଭାଗକୁ ନେ କହନ୍ତି । ଏହି ଦୁଇ

ଶବ୍ଦର ମିଶ୍ରଣରେ ନେପାଳ ଶବ୍ଦ ହୋଇଅଛି । ତିବ୍ବତ ଭାଷାରେ ପାଲ ଶବ୍ଦର ଅର୍ଥ ପଶମ ଓ ଲେପଚ୍ଚ ଭାଷାରେ ନେ ଶବ୍ଦର ଅର୍ଥ ଗିରିଗୁହା, ଏହି ଦୁଇ ଶବ୍ଦର ସମ୍ମିଶ୍ରଣରେ ଏ ନାମ ହେବାର କେହି କେହି କହନ୍ତି । ରାମାୟଣ ମହାଭାରତ ଆଦିରେ ନେପାଳ ନାମ ମିଳେ ନାହିଁ । ସ୍କନ୍ଦ ପୁରାଣର ରେବା ଖଣ୍ଡ, ନାଗର ଖଣ୍ଡ ଓ ସହ୍ୟାଦ୍ରି ଖଣ୍ଡରେ ଓ ଗରୁଡ଼ ପୁରାଣରେ ଏ ଦେଶର ଉଲ୍ଲେଖ ଅଛି । ଶକ୍ତି ସଂଗମ ତନ୍ତ୍ର, ବୃହନ୍ନୀଳତନ୍ତ୍ର ଓ ବାରାହୀତନ୍ତ୍ରରେ ଏ ଦେଶର ନାମ ଓ ବର୍ଣ୍ଣନ ମିଳେ । ନେପାଳରେ ବୌଦ୍ଧ ଧର୍ମ ପ୍ରଚଳିତ, ହଜାରେ ବର୍ଷ ପୂର୍ବେ ଏଠାକୁ ଓଡ଼ିଆ କୃଷ୍ଣାର୍ଗ୍ୟ ବା କାହ୍ନୁ ପାଦ ଆଗ୍ର୍ଯ୍ୟ ଯାଇ ତାନ୍ତ୍ରିକ ମତ ପ୍ରଚାର କରିଥିବାର ପ୍ରମାଣ ଅଛି । ନେପାଳର ସେନାପତି ରାଜାଙ୍କ ନାମରେ ରାଜ୍ୟ ଶାସନ କରନ୍ତି । ରାଜାମାନେ ହିନ୍ଦୁ । ଏବେ ଓଡ଼ିଶାର ନୂଆଗଡ଼ ରାଜାଙ୍କ ସଙ୍ଗେ ନେପାଳର ରାଜବଂଶର ବିବାହ ସମ୍ବନ୍ଧ ସ୍ଥାପିତ ହୋଇଅଛି । ]

**ନେପାଳ ନମ୍ବ** ସଂ ବି—ନେପାଳ ଜାତ ତିକ୍ତ ତରୁବିଶେଷ—
Nepāla nimba Dirachta tree of Nepal.
[ ଦ୍ର—ଏହାର ଅନ୍ୟ ସଂ. ନାମ ନୈପାଳ, ଜ୍ୱରାନ୍ତକ, ଅର୍ଦ୍ଧତିକ୍ତ ସନ୍ନିପାତହା ଓ ଜ୍ୱରନମ୍ବ, ଏହା ଜ୍ୱରର ପ୍ରଧାନ ଔଷଧ । ]

**ନେପାଳି**—ଦେ. ବିଣ—୧ । ନେପାଳଦେଶବାସୀ—
Nepāli 1. Nepalese.
नेपाली ୨ । ନେପାଳଦେଶୀୟ—
**नेपाली** 2. Belonging to Nepal.
ବାନନ୍ଦ ଇଲ୍ଲଣି ଖଣ୍ଡା ନେପାଳି କଟାରି । ରଘୁନାଥ. ମହାଯାତ୍ରା ।

**ନେପାଳିକା**—ସଂ. ବି. ( ନେପାଳ+କ+ସ୍ତ୍ରୀ. ଆ, ନେପାଳ ଦେଶରେ ଏହାର ଉତ୍ପତ୍ତି ହୁଏ ବୋଲି )—
Nepālikā
୧ । ମନଃଶିଳା—Red arsenic.

**ନେପାଳ ବାଘ**—ଦେ. ବି. ( ଭୁଲ. ଇଂ. ଲି(ଲେ)ଓପାର୍ଡ଼ = କେନ୍ଦୁଆ ବାଘ )—
Nepāli bāgha
ଚିତାବାଘ ୧ । ହେଣ୍ଟା ବାଘ—1 Hyena.
**नेपाली बाघ** ୨ । ( ସଂ ଚିତ୍ର ବ୍ୟାଘ୍ର, ଦ୍ୱୀପୀ )—କେନ୍ଦୁଆ, କଲରା ପତ୍ରିଆ ବାଘ, ଚିତା ବାଘ—2. Leopard; Felis Pardus; Felis Leopardus
[ ଦ୍ର—ଏମାନେ ମହାବଳ ବାଘ ଅପେକ୍ଷା ଶ୍ରେଷ୍ଠ ଓ ଏମାନଙ୍କ ଦେହସାକ କଲରା ପତ୍ର ପରି କଳା ଚେକା ଚେକା ଦାଗ ଥାଏ । ]

**ନେପାଳି ମୂଷା**—ଦେ. ବି—ଏକ ପ୍ରକାର ବଡ଼ ପାର୍ବତ୍ୟ ମୂଷା—
Nepāli mūshā A species of big mountain-
**नेपाली चूहा** पाहाडी इन्दुर mouse.

**ନେପାଳୀ**—ସଂ. ବି. (ବୈଦ୍ୟକ) (ପ୍ରା. ଶୋମାଳିଆ)—
Nepāli ୧ । ନବ ମାଳିକା, ନିଆଳି ଫୁଲ—
ସଂ. ପର୍ଯ୍ୟାୟ—ସପ୍ତଳା 1 Zambac Floribus
ନବମାଳିକା, ବାସନ୍ତୀ Multifli.
୨ । ମନଃଶିଳା—2 Red arsenic.

**ନେପୁର**—ଦେ. ବି—ନୂପୁର ( ଦେଖ )
Nepura Nūpura ( See )
नेपुर ପ୍ରାଦେ. ( ଗଞ୍ଜାମ ) ବି—ଗୁଣ୍ଡିଚିମୂଷା—
**नेपुर** A squirrel.

**ନେପୋଲିଅନ୍** - ବୈଦେ. ବି. (ନାମ)—ଖ୍ୟାତନାମା ଫ୍ରାନ୍ସ-ସମ୍ରାଟ—
Nepolian The Emperor Nepoleon of
नेपोलिअन **नेपोलियन** France.
(ନେପୋଲିଅନ୍ ବୋନାପାର୍ଟ—ଅନ୍ୟରୂପ) [ ଦ୍ର—ଏ ଖ୍ରୀ.୧୭୬୯ ରେ କର୍ସିକା ଦ୍ୱୀପରେ ଜନ୍ମଗ୍ରହଣ କରି ୧୦ ବର୍ଷ ବୟସରେ ସୈନିକ ବିଦ୍ୟାଳୟରେ ପ୍ରବିଷ୍ଟ ହୋଇ ୧୫ ବର୍ଷ ଶିକ୍ଷା ଲାଭକରି ଫ୍ରାନ୍ସର ସେନାଭୁକ୍ତ ହୋଇ ପରେ ସେନାପତି ହେଲେ । ୧୭୯୬ ଖ୍ରୀଷ୍ଟାବ୍ଦରେ ପାରିସନଗରର ବିଦ୍ରୋହ ଦମନ କରି ଏ ବିଖ୍ୟାତ ହେଲେ ଓ ଫରାସୀ ସେନାପତିରୂପେ ଇଟାଲୀକୁ ଜୟ କଲେ । ଖ୍ରୀ:୧୭୯୮ରେ ଏ ମିଶର ଦେଶ ଜୟ କଲେ । ଖ୍ରୀ:୧୭୯୯ରେ ଏ ଫ୍ରାନ୍ସରେ 'କନ୍ସଲ୍' ଉପାଧି ଗ୍ରହଣ କରି ରାଜକାର୍ଯ୍ୟ ପରିଚାଳନର ଭାର ନେଲେ । ୧୮୦୪ ଖ୍ରୀଷ୍ଟାବ୍ଦରେ ଏ ନିଜକୁ ଫ୍ରାନ୍ସର ସମ୍ରାଟ ଘୋଷଣା କଲେ ଓ ଇଉରୋପର ରାଜାମାନଙ୍କୁ କ୍ରମଶଃ ପରାସ୍ତ କଲେ । ଖ୍ରୀ:୧୮୧୨ ରେ ଏ ରୁଷିଆ ଆକ୍ରମଣ କରି ଅକୃତକାର୍ଯ୍ୟ ହେଲେ । ଖ୍ରୀ. ୧୮୧୪ ରେ ଇଉରୋପର ରାଜଗଣ ଏହାଙ୍କ ବିରୋଧରେ ସମ୍ମିଳିତ ହେଲେ ଓ ଏହାଙ୍କୁ ପରାସ୍ତ କରି ଏଲବା ଦ୍ୱୀପକୁ ପଠାଇଲେ । ଏ ସେଠାରୁ ପଳାଇ ଆସିଲେ । ବିଖ୍ୟାତ ଓ୍ୱାଟର୍ଲୁ ଯୁଦ୍ଧକ୍ଷେତ୍ରରେ ଇଂରାଜ ସେନାନାୟକ ଓ୍ୱେଲିଙ୍ଗଟନଙ୍କ ଦ୍ୱାରା ୧୮୧୫ ଖ୍ରୀଷ୍ଟାବ୍ଦରେ ନେପୋଲିଅନ୍ ପରାସ୍ତ ହୋଇ ଇଂରେଜମାନଙ୍କଠାରେ ଆତ୍ମସମର୍ପଣ କଲେ ଓ ଇଂରେଜମାନଙ୍କ ଦ୍ୱାରା ସେଣ୍ଟହେଲେନା ଦ୍ୱୀପକୁ ନିର୍ବାସିତ ହୋଇ ସେଠାରେ ବନ୍ଦୀ ଅବସ୍ଥାରେ ୧୮୨୧ ଖ୍ରୀଷ୍ଟାବ୍ଦରେ ଇହଲୀଳା ସାଙ୍ଗ କଲେ । ]

**ନେଫ(ଫେ)ଡ଼ା**—ଦେ. ବି ଓ ବିଣ—ଲେଫଡ଼ା (ଦେଖ)
Nepha(phe)rdā Lephardā (See).

**ନେଫ(ଫେ)ଡ଼ିବା**—ଦେ. କ୍ରି—ଲେଫଡ଼ିବା (ଦେଖ)
Nepha(phe)rdibā Lephardibā (See)

**ନେବା**—ଦେ. କ୍ରି (ସଂ. ନୀ ଧାତୁ)—୧ । ଗ୍ରହଣ କରିବା—
Nebā 1. To take or receive.
नेओया लओआ ୨ । ସ୍ଥାନାନ୍ତର କରିବା—2. To remove.
**लेना** ୩ । (ଦିନ ବା କାଳ) କଟାଇବା, ସାରିବା—
(ଦେବା—ବିପରୀତ) 3. To spend or pass (time).
(ନବା—ଗ୍ରାମ୍ୟରୂପ) କବୁଳା ସଙ୍ଗେ ନାନା ଭବରଙ୍ଗେ ରଜନୀ ଦିବସ ନେଥିଲେ—ଉକ୍ତିହରଣ—ମଧୁସ୍ୱରମଙ୍ଗଳ ।
୪ । ବଳପୂର୍ବକ ହରଣ କରିବା—
4 To snatch away by force; to kidnap.

**ନେବା ଆଣିବା**--ଦେ. କ୍ରି (ବିପରୀତାର୍ଥକ ସହଚର, ନୟନ+ଆନୟନ)
Nebā ānibā କୌଣସି ପଦାର୍ଥକୁ ଏକ ସ୍ଥାନରୁ ସ୍ଥାନାନ୍ତରକୁ
लओयाआना ନେବା ଓ ତାହା ପୁଣି ଫେରାଇ ଆଣିବା—To
**लेनालाना** take and bring back a thing
(ନବା ଆଣିବା—ଗ୍ରାମ୍ୟରୂପ) from one place to another.

**ନେବା ଦେବା**—ଦେ. କ୍ରି (ବିପରୀତାର୍ଥକ ସହଚର)—କୌଣସି ପଦାର୍ଥକୁ
Nebā debā କୌଣସି ବ୍ୟକ୍ତିଠାରୁ ନେବା ଓ ତାହା ପୁଣି ଫେରାଇ
लओया देओया ଦେବା—To take and give back a
**लेनादेना** (ନବା ଦବା—ଗ୍ରାମ୍ୟରୂପ) thing.

ଦେ ବି—୧ । ଆଦାନ ପ୍ରଦାନ—
1 Taking and giving.
୨ । ବ୍ୟବସାୟରେ ବିନିମୟ—
2 Exchange in business; barter.
୩ । କରଜ ନେବା ଓ ସୁଝିବା—
3. Taking a loan and repaying it.
୪ । ବ୍ୟବସାୟୀ ଓ ଖରିଦଦାରଙ୍କ ମଧ୍ୟରେ ଧନ ଓ ପଣ୍ୟ ଦ୍ରବ୍ୟାଦିର ପରସ୍ପର ଆଦାନ ପ୍ରଦାନ—
4. Business transaction.

**ନେଭ(ଭେ)ଡ଼ା(ଢ଼ା)**—ଦେ. ବିଣ—ଲେଭେଡ଼ା (ଦେଖ)
Nebha(bhe)rdā(rā) Lebherdā (See)

**ନେମ**—ସଂ. ବି (ନୀ ଧାତୁ+କର୍ମ. ଅମ୍)—
Nema ୧ । କାଳ, ସମୟ—1 Time.
୨ । ଅବଧି, ସୀମା—2 Limit.
୩ । ଖଣ୍ଡ—3. Piece.
୪ । ପ୍ରାକାର, କାନ୍ଥ—4. Wall.
୫ । କୈତବ, ଛଳ—5. Guile.
୬ । ଅର୍ଦ୍ଧ, ଅଧ—6 Half.
୭ । ଗର୍ତ୍ତ, ଗାତ—7 Hole, pit.
୮ । ସାୟଂକାଳ—8 Evening.
୯ । ମୂଳ, ଚେର—9. Root.
୧୦ । ଅନ୍ୟ (ହି. ଶ)—10. Another.

**ନେମା**—ଗ୍ରା. କ୍ରି.—ନେବା (ଦେଖ)—
Nemā Nebā (See)
ଏ ଭବସାଗରୁ ମତେ ଉଦ୍ଧାରଣ ନେମା । ପ୍ରାଚୀ. ରହସ୍ୟମଞ୍ଜରୀ ।
ଯୁଝୁଅଣ୍ଡି ଗ ବାଦୁଆ ଗଛା, ତଥା ବୋଲେ ଧାନ ହାଟକୁ ନେମା ।
କୃଷିବଚନ ।

**ନେମା(ମ୍ବା)ଳ**—ଦେ. ବି. (ନାମ)—ଲେମାଳ (ଦେଖ)
Nemā(mbā)la Lemāla (See)
ନେମ୍ବାଳ ଭୁବନେ ଉଦ୍ଧୋପ୍ରକାର ଯେ ଗ୍ରାମ । ପ୍ରାଚୀ. ଗୁରୁଭକ୍ତି ଗୀତା ।

**ନେମି (ମୀ)**—ସଂ. ବି (ନୀ ଧାତୁ=ପାଇବା+କରଣ. ମି)—
Nemi (mī) ୧ । ଚକ୍ରର ପରିଧି, ପଟ୍ଟି, ଚକ୍ରର ଧାର ବା ପ୍ରାନ୍ତ—
1. Circumference of a wheel; rim of a wheel.
ଚକ୍ର ନେମି କ୍ରମେ ସ୍ୱର୍ଗ ଭ୍ରମେ ଏ ଜଗତେ
କେବେ ତଳେ ଉପରେ ବା କେବେ ଏହିମତେ । ମଧୁସୂଦନ—କର୍ଣ୍ଣବଧ ।
୨ । କୂଅନନ୍ଦର ଫନ, ଘୋଡ଼ାନନ୍ଦ—
2. The edge of the upper ring surrounding well.
୩ । କୂପୋପରିସ୍ଥ କାଠର ତ୍ରିକାଠ ବା ଚୌକାଠ—
3. The triangular or rectangular wooden frame fitted on the mouth of a well (for facility of drawing water).
୪ । ତିନିଶ ଗଛ, ବାନ୍ଧଣ ଗଛ (ଏହାର ରଥ ଓ ଶଗଡ଼ ଚକର ନେମୀ ତିଆରି ହେଉଥିବାରୁ)—
4. A timber tree; Ougenia Dalbergioides.
୫ । (+ଅଧି ମୀ)—ତୀର୍ଥସ୍ଥାନ—
5. A place of pilgrimage.
୬ । ବଜ୍ର—6. Thunder.

**ନେମ୍ବୁ**—ଦେ. ବି (ସଂ. ଜମ୍ବୁକ)—ଲେମ୍ବୁ (ଦେଖ)
Nembu Lembu (See)
नेबू नीबु

**ନେମ୍ବୁର**—ପ୍ରାଦେ (ଗଡ଼ଜାତ) ବି—ଲେମ୍ବୁର (ଦେଖ)
Nembura Lembura (See)

**ନେୟାର୍ଥତା**—ସଂ ବି ଶବ୍ଦଦୋଷବିଶେଷ (କବି ସଙ୍କେତ କରି ଯେଉଁ କଳ୍ପିତାର୍ଥ ପ୍ରୟୋଗ କରନ୍ତି ତାହା ଯେବେ କୌଣସି ବିଶେଷ ଶବ୍ଦ-ଶକ୍ତିଦ୍ୱାରା ଗୃହୀତ ନ ହୁଏ, ଅର୍ଥାତ୍ ଯେଉଁଠାରେ ଟେଣା ଓଟରି କରି ଅର୍ଥ କଢ଼ାଯାଏ ସେଠାରେ ନେୟାର୍ଥତା ଦୋଷ ହୁଏ)—
Neyārthatā A defect in composition where the meaning is farfetched.

**ନେଣ୍ଡ଼ି**—ପ୍ରାଦେ (ଯାଜପୁର) ବି—ଲେଣ୍ଡ଼ି, କରତଳ—
Neri Palm of the hand.
ଗ୍ରା (ଉତ୍ତର) ବିଣ—ନେଳି (ଦେଖ)
Neḷi (See)

**ନେଳ**—ଦେ. ବି (ସଂ. ନୀଳ)—ନୀଳ ଗଛ
Neḷa Indigo plant.

**ନେଳି**—ଦେ. ବି—୧ । (ସଂ. ନୀଳ)—ନୀଳବର୍ଣ୍ଣ—
Neḷi 1. Blue colour.
नील ୨ । ନୀଳବଟି—2. Indigo-ball.
नील ୩ । (ସଂ ନୀଳୀ)—ପାଣି ଉପରେ ମାଡ଼ିଯିବା ଏକପ୍ରକାର ଅତି କ୍ଷୁଦ୍ର ଦଳ ବା ଶିଉଳି—
ତେ ନୀଲୀ (ସଂ.ପର୍ଯ୍ୟାୟ—ନୀଳକା, ରଙ୍ଗପତ୍ରୀ, ନୀଳପୁଷ୍ପୀ)
3. A kind of bluish moss which spreads rapidly on the surface of stagnant water.
[ଦ୍ର—ସାନ ବଡ଼ ଭେଦରେ ଏହା ୨ ପ୍ରକାର । ]
ଦେ. ବିଣ—ନେଳିଆ—Blue.

**ନେଳିଆ**—ଦେ. ବିଣ (ସଂ. ନୀଳ)—୧ । ନୀଳବର୍ଣ୍ଣବିଶିଷ୍ଟ—
Neḷiā 1. Blue.
नील ୨ । ଈଷତ୍ ନୀଳ—
नीला 2. Bluish.

**ନେଳି କଇଁ**—ଦେ. ବି (ସଂ. ନୀଳକୁମୁଦ)—ନୀଳକଇଁ, ନୀଳୋତ୍ପଳ—
Neḷi kaĩ A kind of water-lily blue in colour; Nymphea Stellatta (Kirtikar)
नील कमल
नील कमल
ଗୁଜରାଟି. ନୀଳକମଳ
ମ. ପେଣ୍ଡ଼ାଳ, କୃଷ୍ଣକମଳ
[ଦ୍ର—ଭାରତର ଗ୍ରୀଷ୍ମପ୍ରଧାନ ଅଞ୍ଚଳ ଓ ଲଙ୍କାରେ ଏହା ଜନ୍ମେ । ଅଳ୍ପ ପାଣିଥିବା ପୋଖରୀରେ ସନ୍ଧ୍ୟାବେଳେ ଓ ସୂର୍ଯ୍ୟୋଦୟର ଅବ୍ୟବହିତ ପୂର୍ବରୁ ଓ ପରେ ଏହାର ଫୁଲ ଫୁଟେ । ଫୁଲ ଈଷତ୍ ନୀଳ ଏବଂ ସାଧାରଣ କଇଁ ଫୁଲଠାରୁ ଶ୍ରେଷ୍ଠ । ଏଥିର ଚେର ଓ ମଞ୍ଜି ଔଷଧରେ ବ୍ୟବହୃତ ହୁଏ । ]

**ନେଲଛ**—ପ୍ରାଦେ (ଗଡ଼ଜାତ) ବ —ଖାସୀ (ଦେଖ)
Nelichha Khāsi (See)

**ନେଲ ଦଳ**—ଦେ. ବ ( ସଂ. ମାଳ ) - ପାଣିରେ ଭାସିବା ଏକପ୍ରକାର ସୂକ୍ଷ୍ମ
Neli dala ଉଦ୍ଭିଦ—A kind of minute weed
**हड़ीअड़ो, हुरीयाली** floating on water; duck weed; Lemna.
[ ଦ୍ର—ଏହାର ଧଳା ଧଳା ଓ ସୂତା ପରି ସୂକ୍ଷ୍ମ ଚେର ଥାଏ, ପକ୍ଷ ମାଛ କାଛ ପରି ଅଛ ଛୋଟ । ଏହା ପାଣି ଉପରେ ବଡ଼ ବେଗରେ ମାଡ଼ିଯାଏ—Kirtikar ]

**ନେଶମା**—ଦେ. ବଣ ( ସଂ. ଶ୍ଳେଷ୍ମନ୍ )—୧ । ଲେଶମା,
Nesamā ଯାହାର ଫୂର୍ତ୍ତି ନ ଥାଏ—
**माँदा** 1. Inactive; dull; lethargic.
[ନେଶମାପଣ, ନେଶମାପଣିଆ(ଆଁ)—ବ] ୨ । ଶରଦ ଯୋଗୁଁ ଆଳସ୍ୟଯୁକ୍ତ—2 Feeling lazy on account of cold.

**ନେଷ୍ଟୁ**—ସଂ. ବ—ମାଟିଢେଲା, ଲୋଷ୍ଟ୍ର—
Neshtu A clod of earth (M. W )

**ନେସ(ସେ)ଡ଼ିବା**—ଦେ. କ୍ରି—ଲେସେଡ଼ିବା (ଦେଖ)
Nesa(se)rdibā Leserdibā (See)

**ନେସନ୍**—ବୈଦେ. ବ (ଇଂ.)—ଏକଦେଶ ବା ରାଜ୍ୟବାସୀସମୂହଙ୍କ ଜାତି—
Nesan নেসন **नेसन** Nation.

**ନେସନ(ନା)ଲ**—ଦେ. ବଣ ( ଇଂ. ନେସନାଲ୍ )—ଜାତୀୟ;
Nasana(nā)l ଜାତିସମ୍ବନ୍ଧୀୟ—National.
নেসনাল **नेसनोल**

**ନେସିବା**—ଦେ. କ୍ରି.—ଲେସିବା (ଦେଖ)
Nesibā Lesibā (See)

**ନେହର୍ ବିନ୍ତି**—ପ୍ରାଦେ. (ସିଂହଭୂମ) ବ. (ଭୁଲ. ହି. ଏହି ଅର୍ଥରେ ନିହୋର ବିନତୀ)—ନେହୁରା ନମସ୍ତେ; ବାରମ୍ବାର ସବିନୟ ପ୍ରାର୍ଥନା—Repeated humble requests.
Nehar bin-ti

**ନେହାଇ**—ଦେ. ବ.—୧ । ନିହାଇ (ଦେଖ)
Nehāi 1. Nihāi (See)
(ନେହି—ଅନ୍ୟରୂପ) ୨ । ଲେହି (ଦେଖ)
2. Lehi (See)

**ନେହାତି**—ବୈଦେ. ଅ. ( ଆ. ନିହାୟତ୍ )—ନିହାତି; ଅତ୍ୟନ୍ତ—
Nehāti Very much; excessive.
নেহাত **निहायत** (ନିହାତି, ନିହାଇତି—ଅନ୍ୟରୂପ)

**ନେହୁଡ଼ା(ଡ଼ି)**—ଦେ. ବ—୧ । ଆଣ୍ଠୁ ମାଡ଼ି ବସିବା—
Nehurdā (rdi) 1. Kneeling down.
হাঁটু গাড়া ୨ । ନେହୁଡ଼ିବା (ଦେଖ)
**निहुड़ना, घुटनाटेकना** 2 Nehurdibā (See)
୩ । ହେଟାଗୁଡ଼ି (ଦେଖ)—3. Hetāgurdi (See)

**ନେହୁଡ଼ା(ଡ଼େ)ଇବା**—ଦେ. କ୍ରି.—'ନେହୁଡ଼ିବା'ର ଣିଜନ୍ତ ରୂପ—
Nehurdā(rde)ibā Causative form of Nehurdibā.
(ନେଉଡ଼ା[ଡ଼େ]ଇବା—ଅନ୍ୟରୂପ)
হাঁটু গাড়ান **निहुड़ादेना, घुटना टेकाना**

**ନେହୁଡ଼ିବା**—ଦେ. କ୍ରି—ନେଉଡ଼ିବା; ଆଣ୍ଠୁ ମାଡ଼ି ବସିବା—
Nehurdibā 1. To kneel down.
(ନେଉଡ଼ିବା—ଅନ୍ୟରୂପ) ଦେ. ବ.—୨ । ପୂର୍ବକାଳରେ ଚାଟଶାଳୀରେ ହାଟୁଗାଡା ପିଲାଙ୍କୁ ଦିଆଯିବା ଦଣ୍ଡବିଶେଷ—2. A kind of
**निहुड़कर बैठना, घुटना टेकना** punishment for children of village schools in olden times.
[ଦ୍ର—ଏ ଦଣ୍ଡ ଭୋଗିବା ପିଲା ଗୋଡ଼କୁ ସିଧା କରି ବା ଅଣ୍ଟାରେ କରି ଅଣ୍ଟା ଲୁଆଇଁ ଦୁଇ କରତଳକୁ ଭୂଇଁରେ ରଖି ନିର୍ଦ୍ଦିଷ୍ଟକାଳପର୍ଯ୍ୟନ୍ତ ଅବସ୍ଥାନ କରେ ।]

**ନେହୁରା**—ଦେ ବ. (ସଂ. ମନୋହରଣ)—୧ । ସବିନୟ ପ୍ରାର୍ଥନା—
Nehurā 1. Humble prayer; humble request.
(ନେଉରା—ଅନ୍ୟରୂପ) ୨ । ଗୁହାରି, ଖୋସାମତ—
অনুনয় বিনয়, কাকুতি মিনতি 2 Flattery.
**निहोरा** ଦେ ବଣ · ସବିନୟ ପ୍ରାର୍ଥନାକାରୀ, ଯାଚକ—
Beseeching.

**ନେହୁରା କରିବା**—ଦେ. କ୍ରି.—ବିନୀତ ପ୍ରାର୍ଥନା କରିବା, ସ୍ତୁତି କରିବା—
Nehurā karibā To beseech; to request humbly.
(ନେଉରା କରିବା—ଅନ୍ୟରୂପ) মিনতি করা **निहोरना**

**ନେହୁରା ନମସ୍ତେ ହେବା**—ଦେ. କ୍ରି—ଅତି ଦୀନ ଭାବରେ ପ୍ରାର୍ଥନା କରିବା, ଲଳସୁକ ହେବା—To pray in a very humiliating tone.
Nehurā namaste hebā
(ନେହୁରା ନମସ୍ ହେବା—ଅନ୍ୟରୂପ)
কাকুতি মিনতি করা **निहोरा बिनति करना**

**ନେହୁରା ପଡ଼ିବା**—ଦେ କ୍ରି.—ବିନୀତ ପ୍ରାର୍ଥନା କରିବା—
Nehurā pardibā To request humbly.
ଦେ. ବ.—ଖୋସାମତ, ବିନତି—
Beseeching; humble request.

**ନେହୁରା ହେବା**—ଦେ. କ୍ରି—ନେହୁରା କରିବା (ଦେଖ)
Nehurā hebā Nehurā karibā (See)
(ନେଉରା ହେବା—ଅନ୍ୟରୂପ)

**ନେହୁରି(ଲି)ଆ**—ଦେ. ବଣ. ପୁଂ—ଯେ ଖୋସାମଦ୍ କରେ, ଖୁସାମଦିଆ
Nehuri(li)ā (ପୁରୁଷଙ୍କୁ ଦିଆଯିବା ଗାଳି)—(a term of abuse applied to males)
খুশামুদে **चापलूस** (ନେହୁରା[ଲୀ]—ସ୍ତ୍ରୀ)
Flathering.

**ନୈଁ**—ପ୍ରାଦେ. (ସମ୍ବଲପୁର) ଅ.—ନେଇ (ଦେଖ)
Naiñ Nei (See)

**ନୈକ**—ସଂ. ବଣ. (ନ + ଏକ)—ଅନେକ, ବହୁ—
Naika Many; various; more than one.
ସଂ. ବ.—ବିଷ୍ଣୁ—Vishnu (M. W )

**ନୈକଚର**—ସଂ. ବଣ ପୁଂ—ଯେ ଦଳବଦ୍ଧ ହୋଇ ରହିବାକୁ ସୁଖ ପାଏ—
Naikachara Living in society; gregarious
(ନୈକଚରୀ—ସ୍ତ୍ରୀ) (M W.)

**ନୈକଟିକ**—ସଂ. ବଣ. (ନିକଟ + ସ୍ଥିତାର୍ଥେ. ଇକ)—୧ । ନିକଟବର୍ତ୍ତୀ—
Naikatika 1. Near by.
୨ । ସନ୍ନିହିତ—2. Adjacent; contiguous.

ସଂ. ବି —ଗ୍ରାମ ନିକଟସ୍ଥ ଆଶ୍ରମବାସୀ ଋଷି—A sage having his hermitage near a village.

**ନୈକଟ୍ୟ**—ସଂ. ବି (ନିକଟ+ଭାବାର୍ଥରେ ଯ)—ସାମୀପ୍ୟ; ସନ୍ନିଧି — Naikatya Vicinity; nearness; proximity.

**ନୈକଧା**—ସଂ. ଅ. (ନୈକ+ପ୍ରକାରାର୍ଥେ. ଧା)—ନାନାପ୍ରକାରେ— Naikadhā Variously.

**ନୈକଭେଦ**—ସଂ. (ବିଣ. ନ+ଏକ ଭେଦ)—୧ । ନାନାବିଧ— Naikabheda 1. Many; several; various.

୨ । ଉଚ୍ଚାବଚ, ଉଚ୍ଚାନୀଚ, ଉଚ୍ଚନୀଚ— 2 Uneven; irregular.

**ନୈକରୂପ**—ସଂ. ବିଣ(ବହୁବ୍ରୀହି, ନ+ଏକରୂପ)— ୧ । ବହୁପ୍ରକାରର— Naikarūpa 1. Various; multifarious.

୨ । ନାନାକୃତିବିଶିଷ୍ଟ— 2. Multiform

ସଂ. ବି—ବିଷ୍ଣୁଙ୍କ ନାମ—A name of Bishṇu.

**ନୈକଷେୟ**—ସଂ. ବି. ପୁଂ (ନିକଷା=ରାକ୍ଷସୀବିଶେଷ+ଅପତ୍ୟାର୍ଥରେ ଏୟ)—୧ । ରାବଣ—1. Rābaṇa, Naikasheya

୨ । କୁମ୍ଭକର୍ଣ୍ଣ—2. Kumbhakarṇṇa (brother of Rābaṇa.)

୩ । ବିଭୀଷଣ –3 Bibhishaṇa.

୪ । ରାକ୍ଷସ—4. A cannibal; a demon.

**ନୈକଷେୟୀ**—ସଂ ବି. ସ୍ତ୍ରୀ ( ନୈକଷେୟ+ସ୍ତ୍ରୀ. ଈ )— Naikasheyī ରାବଣର ଭଉଣୀ ସୂର୍ପଣଖା ରାକ୍ଷସୀ— Sūrpaṇakhā; sister of Rābaṇa.

**ନୈକୃତିକ**—ସଂ. ବିଣ. ପୁଂ. ( ନିକୃତି+ଜୀବିକାର୍ଥେ. ଇକ; ଯେ ନିଷ୍ଠୁର କାର୍ଯ୍ୟ କରି ଜୀବିକା ଚଳାଏ )— Naikṛutika (ନୈକୃତିକୀ—ସ୍ତ୍ରୀ) ୧ । ନିଷ୍ଠୁର—1. Cruel

୨ । ନିକୃଷ୍ଟ—2 Bad; inferior.

୩ । ରୁକ୍ଷ ସ୍ୱଭାବବିଶିଷ୍ଟ— 3. Harsh; surly; sullen.

୩ । ଅଧାର୍ମିକ—4. Irreligious.

୫ । ପାପୀ—5. Sinful.

୬ । ଅସତ୍—6. Dishonest.

୭ । କଟୁଭାଷୀ—7. Harsh-speaking.

୮ । ନୀଚ; ହୀନ, ନିକୃଷ୍ଟ— 8. Low; vile; wicked. ( M. W. )

**ନୈଗମ**—ସଂ. ବିଣ. ( ନିଗମ+ଅ )— Naigama ୧ । ନିଗମ ସମ୍ବନ୍ଧୀୟ; ବେଦ ସମ୍ବନ୍ଧୀୟ— 1. Pertaining to Nigama or the Bedas.

୨ । ବାଣିଜ୍ୟକାରୀ—2 Trading.

୩ । ନାଗରିକ—3 Living in a town.

ସଂ. ବି—୧ । ( +ସ୍ୱାର୍ଥେ. ଅ ) ବେଦାନ୍ତ ଶାସ୍ତ୍ର, ଉପନିଷଦ୍— 1. Theology.

୨ । ନଗରବାସୀ; ନାଗରିକ— 2. Citizen; townsman.

୩ । ନୟ ଶାସ୍ତ୍ର—3 Politics

୪ । ନୀତି ଶାସ୍ତ୍ର—4. Ethics.

୫ । ସୁଖ—5 Felicity

୬ । ସମୃଦ୍ଧି—6 Prosperity; affluence

୭ । ପଥ—7. Road; way.

୮ । ଗତି—8 Going; motion

୯ । ଦୁର୍ଭାଗ୍ୟ—9. Misfortune, ill luck

୧୦ । ଈର୍ଷା—10 Envy.

୧୧ । ନିନ୍ଦା—11. Reproach; blame.

୧୨ । ନାୟକ— 12. A leader; the hero of a plot.

୧୩ । ବେଦର ବ୍ୟାଖ୍ୟାକାରୀ ବ୍ୟକ୍ତି— 13. An interpreter of the Bedas.

୧୪ । କାର୍ଯ୍ୟସାଧନୋପାୟ— 14. Means; expedient. ( M.W.)

୧୫ । ଦୂରଦୃଷ୍ଟିଯୁକ୍ତ ଆଚରଣ— 15. Prudent conduct ( M. W. )

୧୬ । ବଣିକ—16. Trader; merchant ( M. W. )

**ନୈଚ**—ବୈଦେ. ବି. (ଫା)—ନଇଚ ( ଦେଖ ) Naichā नैचा نیچا Naichā ( See )

**ନୈଚିକ**—ସଂ. ବି. ( ନୀଚୈଃ+ଚର୍ ଧାତୁ+ଅକ, ନିପାତନ )— Naichika ବୃଷର ଶିରୋଦେଶ— The head of an ox or bull.

**ନୈଚିକୀ**—ସଂ. ବି ସ୍ତ୍ରୀ. ( ନୈଚିକ+ସ୍ତ୍ରୀ. ଈ )— Naichikī ନୀଚକୀ, ନୀଚକା; ଉତ୍ତମ ଗାଈ; ସୁଧାର ଗାଈ— (ନୈଚକୀ—ଅନ୍ୟରୂପ) An excellent cow.

**ନୈଜ**—ସଂ. ବିଣ. ( ନିଜ+ସମ୍ବନ୍ଧାର୍ଥରେ ଅ )— Naija ନିଜର, ନିଜ ସମ୍ବନ୍ଧୀୟ, ସ୍ୱୀୟ— Own; pertaining to one's self.

**ନୈତିକ**—ସଂ. ବିଣ. ( ନୀତି+ସମ୍ବନ୍ଧେ. ଇକ )— Naitika ନୀତି ସମ୍ବନ୍ଧୀୟ— Relating to morality; moral.

**ନୈତିକ ଜୀବନ**—ସଂ ବି. ( ଆଧୁନିକ ପ୍ରୟୋଗ )— Naitika jibana ୧ । ଯେଉଁ ଜୀବନ ସୁନୀତି ଅନୁସରଣ କରି ଅତିବାହିତ ହୁଏ—1 A life passed in following morality.

୨ । ନୀତି ଦୃଷ୍ଟିରେ ପରଖିଲେ ଜୀବନ, ସୁନୀତି ବା କୁନୀତି ଅନୁସରଣ କରୁଥିବା ବ୍ୟକ୍ତିର ଜୀବନ— 2. Life as judged from a moral standpoint.

**ନୈତିକ ବଳ**—ସଂ ବି. ( ଆଧୁନିକ ପ୍ରୟୋଗ )— Naitika bala ୧ । ସୁନୀତି ଅନୁସାରେ କର୍ମ କରିବା ମନୁଷ୍ୟର ଯେଉଁ ବଳ ଜାତ ହୁଏ—1. Moral force; moral strength.

୨ । ମାନସିକ ବଳ—2. Mental strength.

ନୈତିକ ସାହସ—ସଂ ବି. ( ଆଧୁନିକ ପ୍ରୟୋଗ )—
Naitika sāhasa ୧ । ସୁନୀତି ଅବଲମ୍ବନ କରିବା ଯୋଗୁଁ ମନୁଷ୍ୟର ମନରେ ଯେଉଁ ସାହସ ଜାତ ହୁଏ—
1. Moral courage.
୨ । ଉଦ୍ୟମ ବା ସୁନୀତି-ଅନୁମୋଦିତ କର୍ମ କରିବା ପାଇଁ ମନୁଷ୍ୟ ମନରେ ଯେଉଁ ନିର୍ଭୀକତା ଜନ୍ମେ—
2 Courage of one's convictions; fearlessness to do or die, resulting from one's adherance to morality.

ନୈତ୍ୟ—ସଂ. ବି. ( ନିତ୍ୟ+ଭାବାର୍ଥରେ ଅ )—
Naitya ୧ । ନିତ୍ୟତା—1. Perpetuity; eternity.
୨ । ସ୍ଥୈର୍ଯ୍ୟ—2 Constancy.
୩ । ନିତ୍ୟ କର୍ତ୍ତବ୍ୟ କର୍ମ ( ହି ଶବ୍ଦସାଗର )—
3 Daily duty.
ସଂ. ବିଣ—ନୈତିକ ( ଦେଖ )—Naitika ( See )

ନୈତ୍ୟକ—ସଂ. ବିଣ ( ନିତ୍ୟ+ଭାବାର୍ଥେ ଇକ )—
Naityika ୧ । ପ୍ରତିଦିନ କର୍ତ୍ତବ୍ୟ—
1. Performable daily.
୨ । ଦୈନିକ—2. Repeated daily
୩ । ସତତ, ନିୟମିତ ରୂପେ ବା ପ୍ରତିଦିନ ଘଟୁଥିବା—
3 Perpetual; constant; regularly recurring.

ନୈଦାଘ—ସଂ. ବିଣ. ( ନିଦାଘ+ସମ୍ବନ୍ଧେ. ଅ )—
—Naidāgha ଗ୍ରୀଷ୍ମକାଳ ସମ୍ବନ୍ଧୀୟ—
ନୈଦାଘିକ } ଅନ୍ୟରୂପ
ନୈଦାଘୀୟ }
Pertaining to the summer eason.

ନୈଦାନ—ସଂ. ବିଣ. ( ନିଦାନ+ସମ୍ବନ୍ଧେ. ଅ )—
Naidāna ୧ । ନିଦାନ ସମ୍ବନ୍ଧୀୟ—
(ନୈଦାନିକ—ଅନ୍ୟରୂପ) 1. Pertaining to Nidāna.
୨ । ନିଦାନାଧ୍ୟାୟୀ—
2. Reading the Nidāna.
୩ । ନିଦାନାଭିଜ୍ଞ—
3 Versed in the Nidāna.

ନୈଦେଶିକ—ସଂ. ବି ( ନିଦେଶ+କରିବା ଅର୍ଥରେ. ଇକ )—
Naidesika କିଙ୍କର, ଦାସ; ଅର୍ଦ୍ଦଲୀ—
Slave; servant; orderly.

ନୈଦ୍ର—ସଂ. ବିଣ. ପୁଂ (ନିଦ୍ରା+ଅ)—ନିଦ୍ରାଳୁ—
Naidra (ନୈଦ୍ରୀ—ସ୍ତ୍ରୀ) Sleepy.

ନୈଧାନ—ସଂ. ବିଣ (ନିଧାନ+ଅ)—ନିଧାନସମ୍ବନ୍ଧୀୟ—
Naidhāna Pertaining to Nidhāna.
(ନୈଧାନିକ—ଅନ୍ୟରୂପ)

ନୈଧାନୀ—ସଂ. ବି ( ନିଧାନ+ଈ )—( ସ୍ମୃତି )—ଯେଉଁ ସୀମାର ଚିହ୍ନ ଭୂମିରେ ପୋତାଯିବା କୋଇଲା ବା ଭୁଷଦ୍ୱାରା ଚିହ୍ନିତ ହୁଏ ( ହି. ଶ. )—
Naidhāni
(ନୈଧାନିକ—ଅନ୍ୟରୂପ)
(Hindu Law) A boundary line which is distinguished by carbon or chaff buried in the ground.

ନୈପାଳ—ସଂ. ବିଣ ( ନେପାଳ+ଭବାର୍ଥେ. ଅ )—
Naipāla ନେପାଳୀ, ନେପାଳଦେଶୀୟ—
Nepalese.
ସଂ. ବି—୧ । ନେପାଳୀ ନିମ୍ବ ଗଛ—
1. The Dirachta tree of Nepal.
୨ । ଏକପ୍ରକାର ଆଖୁ—
2. A species of sugarcane.

ନୈପାଳିକ-ସଂ. ବିଣ (ନେପାଳ+ଭବାର୍ଥେ. ଇକ)-ନେପାଳଦେଶୀୟ—
Naipālika Nepalese.
ସଂ ବି – ତାମ୍ର, ତମ୍ବା—Copper.

ନୈପାଳୀ—ସଂ. ବି. ସ୍ତ୍ରୀ (ବୈଦ୍ୟକ) (ନେପାଳ+ଅ+ସ୍ତ୍ରୀ. ଈ)—
Naipāli ୧ । ଶେଫାଳିକା, ଗଙ୍ଗଶିଉଳୀ ଗଛ—
1 A flowering tree, Nyctanthes Arbortrestes.
୨ । ନୀଳ ଗୁଳ୍ମ—2. Indigo plant.
୩ । ମନଃଶୀଳା—3. Red arsenic.
୪ । ନବମଲ୍ଲିକା, ନିଆଳୀ—
4. Double jasmine.

ନୈପୁଣ—ସଂ. ବି ( ନିପୁଣ+ଭାବାର୍ଥରେ. ଅ )—
Naipuna ୧ । ନିପୁଣତା; ଦକ୍ଷତା, ପଟୁତା—
( ନୈପୁଣ୍ୟ—ଅନ୍ୟରୂପ ) 1 Skill; dexterity; cleverness.
୨ । ଯୋଗ୍ୟତା—2 Ability.
୩ । ପ୍ରାଧାନ୍ୟ, ଉତ୍କୃଷ୍ଟତା—
3. Superiority; eminence.
୪ । ପାରିପାଟ୍ୟ—
4. Neatness; elegance; method; orderliness.

ନୈବିଡ୍ୟ—ସଂ. ବି (ନିବିଡ଼+ଭାବାର୍ଥରେ. ଯ)—୧ । ନିବିଡ଼ତା—
Naibidya 1. Denseness.
୨ । ଘନତା—2. Compactness.

ନୈବେଦ୍ୟ—ଦେ. ବି (ସଂ. ନୈବେଦ୍ୟ)—ଦେବତାଙ୍କୁ ଭୋଗକରାଯିବା ଖାଦ୍ୟବସ୍ତୁ—Offerings of food to a Deity.
Naibidya
नैविद्दि निबेद
[ ଦ୍ର—ଦେବତାଙ୍କୁ ଭୋଗ ଦେବାପାଇଁ ଅଭିପ୍ରେତ ସାମଗ୍ରୀ ନୈବେଦ୍ୟ କହାଯିବା ପୂର୍ବରୁ ଅମୁହାଁ ଏବଂ ନିବେଦିତ ହୋଇ ସାରିଲେ ନୈବେଦ୍ୟ, ନିର୍ମାଲ୍ୟ ବା ପ୍ରସାଦ ଆଖ୍ୟା ପାଏ । ]

ନୈବେଦ୍ୟ କରିବା—ଦେ. କ୍ରି (ସଂ. ନୈବେଦ୍ୟ)—ଦେବତାଙ୍କୁ ଭୋଗ ଲଗାଇବା—To offer food to a Deity.
Naibidya kariba
ନୈବେଦ୍ୟଦେବା } ଅନ୍ୟରୂପ
ନୈବେଦ୍ୟ ଲଗା(ଗେ)ଇବା }
नैविद्दिअर्पणकबा नोबेद्चढ़ाना

**ନୈବିଦ୍ୟ ସାମଗ୍ରୀ**—ଦେ ବ. ( ସ ନୈବେଦ୍ୟ ସାମଗ୍ରୀ )—ଦେବତାଙ୍କୁ
Naibidya sāmagrī ଭୋଗ ଦଆଯିବା ପାଇଁ ପ୍ରସ୍ତୁତ ବସ୍ତୁଚୟ, ଅମୁଣ୍ଡିଆ—Things kept ready for being offered to a Deity.

**ନୈବେଦ୍ୟ**—ସ. ବ. ( ନିବେଦ+ଯୋଗ୍ୟାର୍ଥେ ଯ )—
Naibedya ୧ । ଦେବତାଙ୍କ ଭୋଗ—
1. Offering to a Deity; oblation.
[ ଦ୍ର—ଦେବତାଙ୍କୁ ଅର୍ପିତ ହେବା ପରେ ନୈବେଦ୍ୟ ନିର୍ମାଲ୍ୟ ହୁଏ । ]
୨ । ଉପହାର—2 Present

**ନୈବେଶିକ**—ସ. ବଣ. ( ନିବେଶ+ହିତାର୍ଥେ ଇକ)—ବିବାହସମ୍ବନ୍ଧୀୟ,
Naibeśika ବୈବାହିକ—Marital; matrimonial.
ସ. ବ—୧ । ଉପହାର—1. Present.
୨ । ନିବେଶ ବା ବିବାହ ଉଦ୍ଦେଶ୍ୟରେ କନ୍ୟାଦାନ—
2. Act of presenting one's daughter to a man for marriage

**ନୈମୟ**—ସ. ବ. ( ନିମୟ+ଅ )—ବଣିକ୍, ବେପାରୀ—
Naimaya Trader; merchant.

**ନୈମିତ୍ତିକ**—ସ. ବଣ. ( ନିମିତ୍ତ+କୃତ ବା ଦତ୍ତ ଅର୍ଥରେ ଇକ )—
Naimittika ୧ । ନିମିତ୍ତ ବା କାରଣଦ୍ୱାରା ଉତ୍ପନ୍ନ—
1. Produced by a cause.
୨ । ପ୍ରୟୋଜନାର୍ଥକ—2. Casual, incidental.
୩ । ସାମୟିକ—3. Occasional.
୪ । ଯାହା କୌଣସି ନିମିତ୍ତ ବା ପ୍ରୟୋଜନ ଉପସ୍ଥିତ ହେଲେ କରାଯାଏ—4. Done for some present purpose or occasion.
( ଯଥା—ନୈମିତ୍ତିକ ଦାନ, ନୈମିତ୍ତିକ ସ୍ନାନ; ନୈମିତ୍ତିକ କର୍ମ )
୫ । ନିମିତ୍ତଜ୍ଞ; ଶକୁନଜ୍ଞ—
5. Expert in divining into auguries.

**ନୈମିତ୍ତିକ ଅନୁଷ୍ଠାନ**—ସ. ବ. (କର୍ମଧା, ନୈମିତ୍ତିକ+ଅନୁଷ୍ଠାନ)—
Naimittika anushṭhāna ଶାସ୍ତ୍ର-ନିର୍ଦ୍ଦିଷ୍ଟ ବିଶିଷ୍ଟ ଘଟଣା ଉପଲକ୍ଷେ ଆଚରିତ କ୍ରିୟା—Ceremonies prescribed by the Śāstras for particular occasions.
ନୈମିତ୍ତିକ କ୍ରିୟା, ନୈମିତ୍ତିକ କର୍ମ } ଅନ୍ୟରୂପ

**ନୈମିତ୍ତିକ ପ୍ରଳୟ**—ସ. ବ—ବ୍ରହ୍ମାଙ୍କ ଦିନର ଅବସାନରେ ଯେଉଁ ପ୍ରଳୟ
Naimittika pralaya ହୁଏ, କଳ୍ପାନ୍ତ ପ୍ରଳୟ—
The incidental deluge which takes place at the end of one day of God Brahmā (when Brahmā, the Creator slumbers).

**ନୈମିଷ**—ସ. ବଣ. ( ନିମିଷ=ସୂକ୍ଷ୍ମ ସମୟ ବା ଚକ୍ଷୁର ପଲକ ପଡ଼ିବା
Naimisha ସମୟ+ଭବାର୍ଥେ. ଅ )—
୧ । କ୍ଷଣିକ—1. Momentary; transient.
୨ । ନିମିଷମାତ୍ର ସ୍ଥାୟୀ—2. Lasting for a moment or twinkling of the eye.
ସ ବ—ନୈମିଷାରଣ୍ୟ ( ଦେଖ )
Naimishāraṇya ( See )

**ନୈମିଷାରଣ୍ୟ**—ସ. ବ. ( ନୈମିଷ+ଅରଣ୍ୟ, ନେମି+ଶୃ ଧାତୁ+
Naimishāraṇya ଅନ୍ୟ, ନିପାତନ )—ଋଷିଗଣ ଅଧ୍ୟୁଷିତ ପ୍ରାଚୀନ ଅରଣ୍ୟବିଶେଷ—Name of a sacred forest inhabited by sages.
[ ଦ୍ର—ଏହା ହିନ୍ଦୁମାନଙ୍କର ଗୋଟିଏ ତୀର୍ଥ । କଥିତ ଅଛି ଯେ ଏଠାରେ ଶୁକ, ଶୌନକାଦି ଋଷିମାନେ ସମବେତ ଋଷିବୃନ୍ଦଙ୍କୁ ମହାଭାରତ, ଭାଗବତ ଓ ପୁରାଣାଦି ଶୁଣାଇଥିଲେ ।
ବରାହ ପୁରାଣ ମତରେ ଭଗବାନ୍ ଦାନବ-କୁଳ ନିର୍ମୂଳ କରି ଗୌରମୁଖ ନାମକ ଋଷିଙ୍କୁ କହିଥିଲେ, "ମୁଁ ଏହି ସ୍ଥାନରେ ନିମିଷ ମଧ୍ୟରେ ଦୈତ୍ୟକୁଳକୁ ନାଶ କଲି । ଅତଏବ ଆଜିଠାରୁ ଏହି ସ୍ଥାନ ନୈମିଷାରଣ୍ୟ ନାମରେ ପ୍ରସିଦ୍ଧ ହେବ ।"
ବାୟୁ, ବ୍ରହ୍ମାଣ୍ଡ ଓ କୂର୍ମପୁରାଣ ମତରେ ଭଗବାନ୍ ସୂର୍ଯ୍ୟଙ୍କ ସମ ପ୍ରଭାବଶାଳୀ ଗୋଟିଏ ଚକ୍ର ସୃଷ୍ଟି କରି ତାହା ଚାଳନପୂର୍ବକ ଋଷିମାନଙ୍କୁ କହିଥିଲେ ଯେ ଏ ଚକ୍ରର ନେମି ଯେଉଁଠାରେ ଶୀର୍ଣ୍ଣ ହେବ ସେହି ସ୍ଥାନହିଁ ତପଶ୍ଚରଣର ଉପଯୁକ୍ତ ସ୍ଥାନ ବୋଲି ଜଣାଯିବ । ଏହା ଶୁଣି ବ୍ରାହ୍ମଣ ଓ ଋଷିମାନେ ସେହି ଚକ୍ରର ପଛେ ପଛେ ଦଉଡ଼ିଲେ ଏବଂ ଯେଉଁ ସ୍ଥାନରେ ଚକ୍ରନେମି ଶୀର୍ଣ୍ଣ ହେଲା ସେହି ସ୍ଥାନରେ ତପସ୍ୟା କଲେ । ଏହା ନୈମିଷାରଣ୍ୟ ନାମରେ ବିଖ୍ୟାତ ହେଲା । (ହି. ଶ )
ଏହା ହାବଡ଼ା ରେଲଷ୍ଟେସନଠାରୁ ଇ. ଆଇ. ଆର୍ ରେଲର ମୋଗଲସରାଇ ଜଙ୍କସନ୍ ବାଟେ ୭୨୫ ମାଇଲ ଦୂର । ଅଯୋଧ୍ୟାର ସୀତାପୁର ଜିଲ୍ଲାରେ ଏହା ଅବସ୍ଥିତ । ବିଷ୍ଣୁପୁରାଣ ମତରେ ଏ କ୍ଷେତ୍ରସ୍ଥ ଗୋମତୀ ନଦୀରେ ସ୍ନାନ କଲେ ସକଳ ପାପ କ୍ଷୟ ହୁଏ । ]

**ନୈମିଷି**—ସ ବଣ—ନୈମିଷାରଣ୍ୟବାସୀ—
Naimishi Inhabiting the Naimishāraṇya.

**ନୈମିଷିକ**—ସ. ବଣ. ( ନିମିଷ+ଇକ )—ନିମିଷ ସମ୍ବନ୍ଧୀୟ—
Naimishika Relating to a Nimisha.
( ନୈମିଷୀୟ—ଅନ୍ୟରୂପ )

**ନୈମେୟ**—ସ. ବ. ( ନି+ମି ଧାତୁ=ମାପିବା+କର୍ମ. ଏୟ=ନିମେୟ,
Naimeya ନିମେୟ+ଅ )—
୧ । ବିନିମୟ, ବଦଳ—1. Exchange; barter
୨ । ବାଣିଜ୍ୟ—2 Trade.

**ନୈୟଗ୍ରୋଧ**—ସ. ବ. ( ନ୍ୟଗ୍ରୋଧ=ବରଗଛ+ଭବାର୍ଥେ ଅ )—
Naiyagrodha ୧ । ବରଫଳ—
1. The fruit of Ficus Indica.
୨ । ବଟବୃକ୍ଷ—2 Banyan tree; Ficus Indica

**ନୈୟଙ୍କବ**—ସ. ବଣ. ( ନ୍ୟଙ୍କୁ=ମୃଗଚର୍ମ+ଅ )—ମୃଗଚର୍ମ ନିର୍ମିତ—
Naiyankaba Made of deer skin.

**ନୈୟତ୍ୟ**—ସ. ବ. ( ନିୟତ+ଯ )—ଆତ୍ମସଂଯମ—
Naiyatya Self control.

**ନୈୟମିକ**—ସ. ବଣ. (ନିୟମ+ଆଗତ ଅର୍ଥେ ଇକ)—୧ । ନିୟମିତ—
Naiyamika 1. Regular.

୨ । ବିଧିକର୍ତ୍ତୃକ—2. Enjoined by rules
୩ । ବୈଧ—3 Conformable to rules.

**ନୈୟାୟିକ**—ସ. ବଣ (ନ୍ୟାୟ+ଜ୍ଞାତାର୍ଥେ. ଇକ)—
Naiyāyika ୧ । ତାର୍କିକ, ନ୍ୟାୟଶାସ୍ତ୍ରଜ୍ଞ—
1. Versed in logic; dialectic
୨ । ନ୍ୟାୟଶାସ୍ତ୍ର ସମ୍ବନ୍ଧୀୟ—
2. Pertaining to logic
ସ. ବି—ନ୍ୟାୟଶାସ୍ତ୍ର ଅଧ୍ୟୟନକାରୀ ବ୍ୟକ୍ତି, ନ୍ୟାୟଦର୍ଶନ ବେତ୍ତା ବ୍ୟକ୍ତି—Follower of the Nyāya system of Hindu philosophy; a student of the Nyāya philosophy; a logician

**ନୈରନ୍ତର୍ଯ୍ୟ**—ସ. ବ. (ନିରନ୍ତର+ଭାବେ ଯ)—୧ । ଅବିଚ୍ଛିନ୍ନତା—
Nairantorjya 1. Continuity

**ନୈରପେକ୍ଷ୍ୟ**—ସ. ବ. (ନିରପେକ୍ଷ+ଭାବ. ଯ)—ନିରପେକ୍ଷତା—
Nairapekshya Independence; impartiality

**ନୈରୟିକ**—ସ. ବଣ (ନିରୟ+ସମ୍ବନ୍ଧାର୍ଥେ. ଇକ)—
Nairayika ୧ । ନିରୟ ବା ନରକ ସମ୍ବନ୍ଧୀୟ—
1 Hellish
୨ । ପାପୀ—2 Sinful.
୩ । (ବାସକାରୀ ଅର୍ଥରେ ଇକ —ନରକବାସୀ—
3. Living in hell.

**ନୈରର୍ଥ୍ୟ**—ସ. ବ. (ନିରର୍ଥ+ଯ)—ନିରର୍ଥକତା—
Nairarthya The state of being meaningless.

**ନୈରାକାର**—ସ. ବ. (ନିରାକାର+ଅ)—ନିରାକାର ଅବସ୍ଥା—
Nairākāra The state of being incorporeal.

**ନୈରାଶ(ଶ୍ୟ)**—ସ. ବ. (ନିରାଶ+ଅ; ଯ)—ଆଶାଶୂନ୍ୟତା, ଅଭରସା—
Nairāśa(sya) Desperation; hopelessness; despair; despondency; disappointment.

**ନୈରୁକ୍ତ**—ସ. ବଣ (ନିରୁକ୍ତ+ସମ୍ବନ୍ଧାର୍ଥେ ଅ)—
Nairukta ୧ । ନିରୁକ୍ତ ସମ୍ବନ୍ଧୀୟ (ନିରୁକ୍ତ ଦେଖ)—
(ନୈରୁକ୍ତିକ—ଅନ୍ୟରୂପ) 1. Pertaining to the glossary of the Bedas.
୨ । ନିରୁକ୍ତାଧ୍ୟାୟୀ—2 Studying the Nirukta.

**ନୈରୁତ**—ଦେ. ବ. (ସଂ. ନୈର୍ଋତ)—ଦକ୍ଷିଣପଶ୍ଚିମ କୋଣ —
Nairuta The south-western point of the compass.
ଦେ. ବଣ—ନୈର୍ଋତକୋଣସ୍ଥ—Pertaining to the south western corner; southwestern

**ନୈଋତ**—ସଂ. ବ. (ନିର୍ଋତି=ଦକ୍ଷିଣ ପଶ୍ଚିମ ଦିଗ+ଅପତ୍ୟାର୍ଥେ. ଅ)—
Nairṛuta ୧ । ରାକ୍ଷସ—1 A demon; giant.
୨ । ଦକ୍ଷିଣ ପଶ୍ଚିମ କୋଣ—
2. The southwest.
୩ । (ଜ୍ୟୋତିଷ) ନୈର୍ଋତ କୋଣାଧିପତି ରାହୁ—
3. The ascending node or Dragon's head.
୪ । ଦକ୍ଷିଣ ପଶ୍ଚିମକୋଣର ଅଧିପତି ଦେବ—
4. The Deity presiding over the south-west quarter of the globe.
୫ । ଅସଭ୍ୟ ଜାତିବିଶେଷ—
5 Name of a wild tribe.
୬ । ମୂଳାନକ୍ଷତ୍ର (ହ୍ର. ଶ)—6. The 19th asterism

**ନୈର୍ଋତୀ**—ସ. ବ. ସ୍ତ୍ରୀ (ନୈର୍ଋତ+ସ୍ତ୍ରୀ. ଈ)—ନୈର୍ଋତ କୋଣ—
Nairṛuti The south west quarter.

**ନୈର୍ଗୁଣ୍ୟ**—ସ. ବ. (ନିର୍ଗୁଣ+ଭାବେ. ଯ)—
Nairgunya ୧ । ନିର୍ଗୁଣତ୍ୱ, ଗୁଣହୀନତା—
1. Absence of attributes.
୨ । ମୂର୍ଖତା—2 Illiteracy

**ନୈର୍ବାହିକ**—ସ ବଣ (ନିର୍ବାହ+ଇକ)—ନିର୍ବାହଯୋଗ୍ୟ—
Nairbāhika Accomplishable.

**ନୈର୍ମଲ୍ୟ**—ସ ବ. (ନିର୍ମଳ+ଭାବେ ଯ)—୧ । ନିର୍ମଳତା —
Nairmalya 1. Transparency.
୨ । ବିଶୁଦ୍ଧତା—2. Purity; spotlessness
୩ । ବିଷୟ ବୈରାଗ୍ୟ—3 Indifference to worldly affairs.

**ନୈର୍ଲଜ୍ଜ**—ସ. ବ. (ନିର୍ଲଜ୍ଜ+ଭାବେ. ଅ)—ନିର୍ଲଜ୍ଜତା—
Nairlajja Shamelessness.

**ନୈଶ**—ସ ବ (ନିଶା+ଭବ ବା ସମ୍ବନ୍ଧାର୍ଥେ ଅ)—
Naiśa ୧ । ରାତ୍ରି ବା ନିଶାସମ୍ବନ୍ଧୀୟ—
1 Nocturnal; nightly
୨ । ରାତ୍ରିକାଳୀନ—2 Taking place in the night.

**ନୈଶ ବିଦ୍ୟାଳୟ**—ଦେ. ବ. (ଆଧୁନିକ ବ୍ୟବହାର)—
Naiśa bidyālaya ଯେଉଁ ବିଦ୍ୟାଳୟରେ ରାତ୍ରିରେ ଶିକ୍ଷା ଦିଆଯାଏ—Night school
[ ଦ୍ର—ଶିଳ୍ପୀ, ମୂଲିଆ ଓ କୃଷକ ଶ୍ରେଣୀର ଲୋକେ ଦିନଯାକ ନିଜ ନିଜ ଧନ୍ଦାରେ ଲାଗିଥିବାରୁ ପାଠ ପଢ଼ିବାକୁ ଅବସର ପାଆନ୍ତି ନାହିଁ । ଏଣୁ ସେମାନଙ୍କ ଲାଗି ଏହିସବୁ ବିଦ୍ୟାଳୟରେ ସନ୍ଧ୍ୟା ପରେ ପାଠପଢାର ସୁବିଧା କରାଯାଏ । ]

**ନୈଶିକ**—ସ. ବଣ (ନିଶା+ଭବାର୍ଥେ. ଇକ)—ନୈଶ (ଦେଖ)
Naiśika Naiśa (See)

**ନୈଶୀଥ**—ସ. ବଣ (ନିଶୀଥ+ଭବାର୍ଥେ. ଅ) ନିଶାକାଳୀନ—
Naiśitha Happening in the mid-night.

**ନୈଶ୍ଚିତ୍ୟ**—ସ. ବ. (ନିଶ୍ଚିତ+ଭାବେ. ଯ)—୧ । ନିଶ୍ଚୟ -
Naiśchitya 1. Certainty.
୨ । ସ୍ଥିରତା—2. Fixedness

**ନୈଷଦକ**—ସ ବଣ. ( ନି+ସଦ୍ ଧାତୁ+କର୍ତ୍ତୃ. ଇକ ) —
Naishadika ୧ । ଉପବେଶନକାରୀ—1. Sitting.
୨ । ନିଷଦ ଦେଶବାସୀ (ହ ଶ)—
2. Residing in the Nishada country.

**ନୈଷଧ**—ସଂ. ବଣ. (ନିଷଧ+ଇଦମର୍ଥେ. ଅ)—୧ । ନିଷଧଦେଶୀୟ—
Naishadha Pertaining to the country of Nishadha.

୨ । ନିଷଧ ଦେଶବାସୀ—
2 Residing in the Nishadha country

ସଂ. ବି—୧ । ନିଷଧଦେଶର ରାଜା—
1 A king of Nishadha

୨ । ନଳ ରାଜା—2. King Nala, the husband of Damayanti

୩ । ଶ୍ରୀହର୍ଷରଚିତ ନଳଚରିତ ସମ୍ବଳିତ ସଂସ୍କୃତ ମହାକାବ୍ୟ-ବିଶେଷ—3 Title of a Sanskrit poem written by poet Sriharsha.

**ନୈଷଧକାର**—ସଂ. ବି- ନୈଷଧ କାବ୍ୟ ପ୍ରଣେତା ଶ୍ରୀହର୍ଷ କବି—
Naishadhakāra The poet Śriharsha, the author of Naishadha.

**ନୈଷାଦ(ଦି)**—ସଂ. ବି. ପୁଂ (ନିଷାଦ+ଅପତ୍ୟାର୍ଥରେ ଅ, ଇ)—
Naishāda(di) ନିଷାଦ ବା ବ୍ୟାଧର ପୁତ୍ର—
Son of a hunter.

**ନୈଷ୍କର୍ମ୍ୟ**—ସଂ. ବି (ନିଷ୍କର୍ମନ୍+ଭାବେ. ଯ)—୧ । ନିଷ୍କର୍ମତା –
Naishkarmya 1. Neglect of work.

୨ । ନିକମାପଣ; ଆଳସ୍ୟ -
2 Laziness; inactivity; idleness

୩ । ସର୍ବକର୍ମ ତ୍ୟାଗ—3. The giving up of work, complete cessation of activity.

୪ । ମୁକ୍ତି—4. Final beatitude; liberation

**ନୈଷ୍କିକ**—ସଂ. ବି. ପୁଂ. (ନିଷ୍କ=ସୁନା ମୋହୋର+ରକ୍ଷାର୍ଥେ ଇକ)—
Naishkika ୧ । ଟଙ୍କାଶାଳାର ଅଧ୍ୟକ୍ଷ—1 Mint-master

୨ । କୋଷାଧ୍ୟକ୍ଷ—2. Treasurer.

ସଂ. ବଣ—୧ । ନିଷ୍କକ୍ରୀତ—
1. Purchased with a Nishka.

୨ । ନିଷ୍କସମ୍ବନ୍ଧୀୟ—2 Relating to Nishka.

**ନୈଷ୍କିଞ୍ଚନ୍ୟ**—ସଂ. ବି. (ନିଷ୍କିଞ୍ଚନ+ଭାବ. ଯ)—ନିଷ୍କିଞ୍ଚନତା, ଦରିଦ୍ରତା—
Naishkiñchanya Poverty; indigence.

**ନୈଷ୍କୃତିକ**—ସଂ. ବଣ. ପୁଂ. (ନିଷ୍କୃତି+ଇକ)—୧ । ନୈକୃତିକ,
Naishkrutika ଅଧାର୍ମିକ, ପାପୀ—Impious, wicked; sinful.
(ନୈଷ୍କୃତିକା, ନୈଷ୍କୃତିକୀ—ସ୍ତ୍ରୀ)

୨ । ପରବୃତ୍ତି ଛେଦନତତ୍ପର, ଯେ ପରର ଦାନାରେ ଧୂଳି ଦିଏ (ହି. ଶ)—3. Bent on depriving others of their livelihood.

୩ । ଅନ୍ୟର ହାନି କରି ଆପଣାର ସ୍ୱାର୍ଥସାଧନରେ ରତ—
3. Engaged in furthering one's self interest by harming others.

**ନୈଷ୍ଠିକ**—ସଂ. ବଣ. (ନିଷ୍ଠା+ଇକ)—୧ । ନିଷ୍ଠାପର—
Naishṭhika 1. Devoted; given to strict observance of rites.
ନୈଷ୍ଠିକା } ସ୍ତ୍ରୀ
ନୈଷ୍ଠିକୀ }

୨ । ଦୃଢ଼ ଭାବରେ ପ୍ରତିଷ୍ଠିତ—
2. Firmly established.

୩ । ଦୃଢ଼—3. Firm; strict; fixed

୪ । ଯେ ଚିରକାଳ ପାଇଁ ସଂଯମ ବ୍ରତ ଗ୍ରହଣ କରେ, ଆଜୀବନ ବ୍ରହ୍ମଚାରୀ—4. Vowing life long abstention and continence.

୫ । ସ୍ଥାୟୀ—5. Constant

୬ । ଅନ୍ତିମ—6 Ulterior; last; final.

୭ । ମରଣକାଳରେ କର୍ତ୍ତବ୍ୟ (କର୍ମ) (ହି. ଶ)—
7. (acts) Proper to be done at the time of one's death.

ସଂ. ବି.—ଗୁରୁଗୃହରେ ଯାବଜ୍ଜୀବନ ବାସ କରି ବ୍ରହ୍ମଚର୍ଯ୍ୟ ଅବଲମ୍ବନ କରିବା ଛାତ୍ର—A student who lives at his preceptor's house for life and observes lifelong continence.

**ନୈଷ୍ଠୁର୍ଯ୍ୟ**—ସଂ. ବି. (ନିଷ୍ଠୁର+ଭାବେ. ଯ)—ନିଷ୍ଠୁରତା, କ୍ରୂରତା—
Naishthurjya Cruelty; severity.

**ନୈଷ୍ଠ୍ୟ**—ସଂ. ବି (ନିଷ୍ଠା+ଭାବେ ଯ)—୧ । ସ୍ଥାୟିତ୍ୱ—
Naishṭhya 1. Permanence.

୨ । ସ୍ଥିତି—2 Establishment.

**ନୈସର୍ଗିକ**—ସଂ. ବଣ (ନିସର୍ଗ+ଇଦମର୍ଥେ. ଇକ)—୧ । ସ୍ୱାଭାବିକ,
Naisargika ପ୍ରାକୃତିକ—1 Natural; constitutional.
(ନୈସର୍ଗିକୀ—ସ୍ତ୍ରୀ) ୨ । ନିସର୍ଗଜାତ, ସ୍ୱଭାବଜ—1. Inborn; innate; inherent; instinctive

**ନୈସର୍ଗିକ ପ୍ରବୃତ୍ତି**—ସଂ. ବି. ( କର୍ମଧା, ନୈସର୍ଗିକୀ+ପ୍ରବୃତ୍ତି)—ଜୀବ
Naisargika prabrutti ଜନ୍ମରୁ ଯେଉଁ ପ୍ରବୃତ୍ତି ପାଇ ଥାଏ—
(ନୈସର୍ଗିକ ବୃତ୍ତି—ଅନ୍ୟରୂପ)· Instinct.

**ନୈସର୍ଗିକ ବିଧାନ**—ସଂ. ବି. – ଈଶ୍ୱରଙ୍କ ନିୟମ, ପ୍ରାକୃତିକ ବିଧି—
Naisargike bidhāna Natural or divine law; law of nature.
(ନୈସର୍ଗିକ ବିଧି—ଅନ୍ୟରୂପ)

**ନୈସ୍ତ୍ରିଂଶିକ**—ସଂ. ବଣ. (ନିସ୍ତ୍ରିଂଶ+ଧାରଣାର୍ଥେ. ଇକ)—
Naistrimśika ଖଡ୍ଗଧାରୀ—Bearing a sword.

ସଂ ବି.—ଖଡ୍ଗଧାରୀ ଯୋଦ୍ଧା—Swordsman.

**ନୈସ୍ନେହ**—ସଂ. ବି. (ନିସ୍ନେହ+ଭାବେ. ଅ)—୧ । ଶୁଷ୍କତା—
Naisneha 1. Dryness,

୨ । ବିରସତା—2. Juicelessness

୩ । ନିଃସ୍ନେହତା, ସ୍ନେହହୀନତା—3 Disaffection.

**ନୈହାରିକ ନକ୍ଷତ୍ର**—ସଂ. ବି. ( ଆଧୁନିକ ବିଜ୍ଞାନ ପରିଭାଷା; ନିହାରିକା+
Naihārika nakshatra ଅ=ନୈହାରିକ+ନକ୍ଷତ୍ର )--
ନିହାରିକା ଅନ୍ତର୍ଗତ ନକ୍ଷତ୍ରପୁଞ୍ଜ—
Nebulous stars.

[ ଦ୍ର—ହିନ୍ଦୁ ଜ୍ୟୋତିଷୋକ୍ତ ମୂଳ ବା ପୁଷ୍ୟା ନକ୍ଷତ୍ର ନୈହାରିକ ନକ୍ଷତ୍ର ଅଟେ । ]

**ନୋଇ**—ଦେ ବି. ( ସଂ. ନାବିକ, ନୌବାହ )—
Noi ୧ । ନାବିକ, ନାଉରିଆ—1 Boatman.
ନାଉଡ଼େ ୨ । ନାବିକଙ୍କ ସର୍ଦ୍ଦାର—2. Head boatman.
ମଲ୍ଲାହ

ନୋକ୍ସାନ୍(ନ) - ବୈଦେ. ବ. ( ଅ. ନୁକ୍ସାନ୍ )—କ୍ଷତି—
Noksān(nı) নোকসান नुकसान Loss.

ନୋକ (ଇତ୍ୟାଦି) ଗ୍ରା (ଇତର) ବ—ଲୋକ ଇତ୍ୟାଦି ( ଦେଖ )
Noka (etc) Loka etc. ( See )

ନୋଚା(ଛ) (ଇତ୍ୟାଦି)— ଦେ. ବ ଓ ବଣ —
Nochā(chı) (etc) ଲୋଚା ଇତ୍ୟାଦି ( ଦେଖ )
Lochā etc ( See )

ନୋଚା(ଚେ)ଇବା—ଗ୍ରା. କ୍ରି - ଲୋଚାଇବା ( ଦେଖ )
Nochā(che)ıbā Lochāibā ( See )

ନୋଚେତ୍—ସ ଅ (ନୋ+ଚେତ୍) - ୧ । ନୋହିଲେ, ନଚେତ୍—
Nochet 1. If not.
୨ । ଅନ୍ୟଥା ନୁହେଁ—2 Otherwise; or else not

ନୋଟ୍— ବୈଦେ. ବ. ( ଇଂ. )—୧ । ସ୍ମାରକ ଲିପି—
Noṭ 1 Memorandum notes
নোট ୨ । ଟିପ୍ପଣୀ—2 Notes; jottings
नोट ୩ । ଟିପ୍ପଣୀ ବହି—3. Note book.
୪ । ମୁଦ୍ରା ପରିବର୍ତ୍ତରେ ପ୍ରଚଳିତ ସରକାରୀ କାଗଜ —
4 Bank note; currency note.

ନୋଟ୍ କରିବା—ଦେ. କ୍ରି—ଟିପି ରଖିବା, ଟିପି ନେବା, ଟିପାଟିପି କରିବା-
Noṭ karıbā To jot down; to note down.
নোট করা नोट करना
(ନୋଟ୍ ରଖିବା, ନୋଟ୍ ଲେଖିବା, ନୋଟ୍‌ନାଟ୍ କରିବା—ଅନ୍ୟରୂପ)

ନୋଟ୍ ପେପର୍—ବୈଦେ. ବ ( ଇଂ )—
Noṭ pepar ଚିଠି ଲେଖିବା ପାଇଁ ଅଭିପ୍ରେତ କାଗଜ—
নোট পেপর नोट पेपर Note paper; letter paper.

ନୋଟ୍ ବନ୍ଧା(ନ୍ଧେ)ଇବା—ଦେ. କ୍ରି—ମୁଦ୍ରା ଆଦିକୁ ବଦଳାଇ ନୋଟ୍
Noṭ bandhā(ndhe)ıbā ରୂପେ ପରିଣତ କରିବା—
নোট বাঁধান नोट भंजाना To change money into notes.

ନୋଟ୍ ବହି—ବୈଦେ. ବ (ଇଂ ନୋଟ୍ ଓ ଆ. ବହି)
Noṭ bahı ୧ । ଟିପ୍ପଣୀ ବହି—1 Note book
নোট বহি ୨ । ପକେଟ୍ ବହି—2 Pocket book
नोट बही ( ନୋଟ୍ ବୁକ୍—ଅନ୍ୟରୂପ )

ନୋଟ୍ ଭଙ୍ଗା(ଙ୍ଗେ)ଇବା —ଦେ କ୍ରି—ନୋଟକୁ ବଦଳାଇ ଟଙ୍କାରେ
Noṭ bhaṅgā(ṅge)ıbā ପରିଣତ କରିବା—
নোটভাঙ্গান To exchange notes into money.
नोट भंजाना

ନୋଟଣ(ଣି) (ଇତ୍ୟାଦି)—ଦେ ବ ଓ ବଣ—
Noṭaṇa(ṇı) (etc) ଲୋଟଣ ଇତ୍ୟାଦି ( ଦେଖ )
Loṭana etc ( See )

ନୋଟଣି ଲଇ—ପ୍ରାଦେ. (ଗଡଜାତ) ବ ବନ୍ୟ ଲତାବିଶେଷ -
Noṭaṇı laı A kind of wild creeper.
[ଦ୍ର—ଏହାର ଡାଙ୍ଗ ଖଟା ଏବଂ ତରକାରୀରେ ବ୍ୟବହୃତ ହୁଏ ।]

ନୋଟା—ଦେ. ବ—ଲୋଟା, ଗଡ଼ୁ—
Noṭā घटी लोटा A small brass water jug.

ନୋଟି—ଦେ ବ—୧ । ଛୋଟ ଲୋଟା, ଅବଖୋରା; ଗାମଗେଇ —
Noṭı 1. A small metal jug.
घटी ୨ । ନୁଟୀ, ନଟେଇ; ନଟୀ—2 A wooden reel for
लोटिया winding silk or cotton thread.
୩ । ଲୁଟ, ଡକାଇତି—3 Dacoity; looting.

ନୋଟିଆ —ଦେ. ବ—ନୋଟି (୧) (ଦେଖ)
Noṭıā Noṭı (1) (See)

ନୋଟିଫିକେସନ୍—ବୈଦେ. ବ (ଇଂ ନୋଟିଫିକେଶନ୍)— ବିଜ୍ଞାପନ,
Notiphıkesan ନୋଟିସ୍—Notification.
নোটিফিকেসন नोटिफिकेशन्

ନୋଟିବା—ଗ୍ରା. କ୍ରି—ଲୋଟିବା (ଦେଖ)
Noṭıbā Loṭıbā (See)

ନୋଟିସ୍(ସି)—ବୈଦେ. ବ ଇଂ ନୋଟିସ୍)- ୧ । ବିଜ୍ଞାପନ—
Notıs sı) 1 A notice; advertisement.
নোটিস ୨ । ଇସ୍ତାହାର୍—2. A notice issued by a
नोटिस public servant; proclamation.

ନୋଟିସ୍ ଜାରି—ବୈଦେ. ବ (ଇଂ. ନୋଟିସ୍ ଓ ଫା ଜାରି)—କୌଣସି
Notıs jārı ବିଜ୍ଞାପନକୁ ପକ୍ଷମାନଙ୍କଠାରେ ବା ସର୍ବସାଧାରଣରେ
নোটিসজারী ପ୍ରକାଶ କରିବା—Publication or service of
नोटिसजारी a notice.

ନୋଟିସ୍ ବୋର୍ଡ୍—ବୈଦେ ବ (ଇଂ)—କଚେରି ଆଦିର ବାରଣ୍ଡାରେ
Notıs borḍ ବା କୌଣସି ପ୍ରକାଶ୍ୟ ସ୍ଥାନରେ ଯେଉଁ ପଟାରେ
নোটিসবোর্ড ସାଧାରଣଙ୍କ ଅବଗତି ନିମନ୍ତେ ନୋଟିସ୍‌ମାନ
नोटिसबोर्ड ମରାଯାଏ—Notice board.
(ନୋଟିସବୋର୍ଡ—ଅନ୍ୟରୂପ)

ନୋଟିସୁ—ପ୍ରାଦେ (ଗଞ୍ଜାମ) ବୈଦେ ବ (ଇଂ) ନୋଟିସ୍ (ଦେଖ)
Noṭisu Notıs (See)

ନୋଡା(ଇତ୍ୟାଦି)—ଗ୍ରା ବ - ଲୋଡ଼ା ଇତ୍ୟାଦି (ଦେଖ)
Norḍā (etc) Lorḍā etc (See).

ନୋଡିବା—ଗ୍ରା କ୍ରି - ଲୋଡିବା (ଦେଖ)
Norḍıbā Lorḍıbā (See)

ନୋତକ—ଗ୍ରା ବ (ସ ଲୋତକ) ଲୁହ—
Notaka নোতক Tears.

ନୋତରା(ଇତ୍ୟାଦି)—ଦେ. ବଣ—ଲୋତରା ଇତ୍ୟାଦି (ଦେଖ)
Notarā (etc) (ନୋତରୀ - ସ୍ତ୍ରୀ) Lotarā etc (See).

ନୋତରିବା—ଦେ. କ୍ରି—ଲୋତରିବା (ଦେଖ)
Notarıbā Lotarıbā (See)

ନୋତା—ଦେ. ବଣ (ସ. ଲୋତ୍ର)—୧ । ଚୋରା (ମାଲ)—
Nota 1. Stolen (property).
୨ । ଗୁପ୍ତ (ଧନ)—2. Hidden (property).
୩ । ପ୍ରୋଥିତ (ଧନ)—3 Buried (treasure).
ଦେ. ବ—୧ । ଗୁପ୍ତଧନ—1. Hidden treasure
୨ । ପ୍ରୋଥିତ ଧନ —2. Buried treasure.
[ଦ୍ର - କବିତାରେ ଏହି ଅର୍ଥରେ ନୋତା ଶବ୍ଦ ଯୋତା ଶବ୍ଦର ସହଚରରୂପେ ବ୍ୟବହୃତ ହୁଏ । ଯଥା, ଯୋତାନୋତା ନୀଧିକଖାତ । ]

**ନୋଥ**—ଦେ. ବ (ସଂ. ନସ୍ତ=ନାସିକା)—ନୋଥ, ନଥ, ସ୍ତ୍ରୀଲୋକଙ୍କର ବାଆଁ ନାକରେ ପିନ୍ଧାଯିବା ଗୋଲାକାର ଅଳଙ୍କାର—
Notha
**नथ**
**नथ**
ମ. ନଥ
A kind of circular nose ring.
[ଦ୍ର—ନୋଥ ଅନେକ ପ୍ରକାର, ଯଥା—କଡ଼ି ନୋଥ, ଦକ୍ଷିଣୀ ନୋଥ, ଯାଇଁଙ୍କ ନୋଥ, ଢାଲି ନୋଥ, ତାର ନୋଥ ଓ ରତ୍ନ ନୋଥ ।]

**ନୋଥ ନାକ**—ଦେ. ବ—ନାକର ଯେଉଁ ପୁଡ଼ାରେ ନୋଥ ପିନ୍ଧାଯାଏ --
Notha nāka
**नथनाक**
**नथपुड़ा**
The outer skin of that side of the nostril in which Notha is worn
[ଦ୍ର—ଦେଶବଦେଶରେ ନାକର ଭିନ୍ନ ଭିନ୍ନ ପୁଡ଼ାରେ ନୋଥ ପିନ୍ଧାଯାଏ । ଓଡ଼ିଶାରେ ସ୍ତ୍ରୀଲୋକମାନେ ଡାହାଣ ପୁଡ଼ାରେ ଗୁଣା ଓ ବାଆଁ ପୁଡ଼ାରେ ନୋଥ ଓ ବସଣୀ ପିନ୍ଧନ୍ତି, କୌଣସି କୌଣସି ଅଞ୍ଚଳରେ ଡାହାଣ ପୁଡ଼ାରେ ମଧ୍ୟ ନୋଥ ପିନ୍ଧାଯାଏ ।]

**ନୋଥ(ଥୁ)ରା**—ଦେ. ବ. ପୁଂ. (ସଂ. ସ୍ଥୂଳକାୟ)—୧ । ନପୁଂସକ ବ୍ୟକ୍ତି—1 Impotent person; eunoch.
Notha(thu)rā
[ନୋଥ(ଥୁ) (ଥେ)(ଥୋ)ରୀ—ସ୍ତ୍ରୀ]
୨ । ଅଧିକ ବୟସ୍କ ହୋଇ ସୁଦ୍ଧା ଯେ ବିବାହ କରି ନ ଥାଏ—
2. A grown up bachelor.
୩ । ଅତି ସ୍ଥୂଳକାୟ ବ୍ୟକ୍ତି—
3. A fat or corpulent person

**ନୋଥ(ଥି)(ଥୁ)(ଥେ)(ଥୋ)ରି ପଟା**—ଦେ. ବ.—ଶଗଡ଼ ଉପରେ ଛାଞ୍ଚ ରକ୍ଷିବା ସକାଶେ ଯେଉଁ କାଠର ବା ବାଉଁଶର ଫର୍ମା ବା ଚଉକାଠ ସଗଡ଼ର ଦଣ୍ଡା ଉପରେ ଭିଡ଼ା ହୋଇଥାଏ—A wooden frame put on and tied to the beams of a bullock cart over which a thatch is adjusted.
Notha(thi)(thu)(the)(tho)ri patā
**गाड़ीकाढाला**

**ନୋଥ(ଥି)(ଥୁ)(ଥେ)(ଥୋ)ରୀ**—ଦେ ସ୍ତ୍ରୀ—('ନୋଥରା'ର ସ୍ତ୍ରୀଲିଙ୍ଗ)—
Notha(thi)(thu)(the)(tho)rī
**हिजरी**
୧ । ସ୍ତ୍ରୀସ୍ୱଭାବରହିତା ନାରୀ; ହେଣ୍ଡେଲ୍ଢ଼ୀ—1 A woman showing no external signs of femininity
୨ । ବୟସ୍କା କୁମାରୀ, ଅଭିଆଡ଼ୀ ଦରବୁଢ଼ୀ—
2. A grown up maid
୩ । ଅତି ସ୍ଥୂଳକାୟା ସ୍ତ୍ରୀ—
3. Very corpulent woman.
୪ । ନୋଥରି ପଟା (ଦେଖ)—4. Nothari patā (See).

**ନୋଦ**—ସଂ ବ. ( ନୁଦ୍ ଧାତୁ=ପ୍ରେରଣ କରିବା+କର୍ମ. ଅ )—
Noda ୧ । ଆଜ୍ଞା —1. Command; order
୨ । ଅନୁମତି —2. Permission.
୩ । (+ଭାବ. ଅ) ପ୍ରେରଣା—3. Commissioning.

**ନୋଦ ଦୁ(ଡୁ)କା**—ଦେ. ବଣ. ପୁଂ.- ଲଡୁକା ( ଦେଖ )—
Nodadu(du)kā [ ନୋଦ(ଦୁ)କୀ—ସ୍ତ୍ରୀ ] Lādukā (See).

**ନୋଦନ**—ସଂ ବ ( ନୁଦ୍ ଧାତୁ+ଭାବ. ଅନ )—୧ । ଛେଦନ—
Nodana 1. Cutting.
୨ । ନିବାରଣ—2. Prevention; prohibition.
୩ । ଅପସାରଣ, ତଡ଼ିଦେବା—
3. Removing; driving away
୪ । ପ୍ରେରଣ—4. Sending
୫ । (+କର୍ମ ଅନ) ଆଦେଶ—5 Command, order.
୬ । ଚାଳନ—6. Conducting.
୭ । ଯାନାଦିରେ ଯୋଜିତ ପଶୁମାନଙ୍କୁ ଚଳାଇବା କର୍ମ (ହି ଶ ), ଅଡ଼ାଇବା—7. The act of driving beasts yoked to a conveyance
୮ । ମଡ଼ାଇବା—8 Impelling; goading.
୯ । ( +କରଣ ଅନ ) ପାଞ୍ଚଣ, ପ୍ରତୋଦ (ହି. ଶ )—
9. A stick used for goading beasts yoked to a conveyance or plough.

**ନୋଦା(ଧା)**—ଦେ. ବ—ନଡ଼ିଆ ବା ତାଳଗଛର ଗଣ୍ଡିକୁ ଲମ୍ବ ଭାବରେ ମଝିରୁ ଚିରି ତହିଁ ମଧ୍ୟରୁ ଶସ ଯାକ କାଢ଼ି ଯେଉଁ ଫାଳକଟିଆ ନଳା ପ୍ରସ୍ତୁତ କରାଯାଏ ( ଯହିଁରେ ପାଣି ଯିବା ଆସିବା କରିପାରେ ) ଧୋଧା—A semicircular tunnel or pipe made from the trunk of a palm or cocoanut tree by splitting it lengthwise into two and grooving it and which is used for the purpose of passing water through it
Nodā(dhā)
**सिउनी**
**कड़ीन**
[ଦ୍ର—ଏହି ନୋଦାକୁ ଗୋଲର ଓଳତଳେ ଓଳର ସମାନ୍ତରରେ ଲମ୍ବ ଭାବରେ ବାନ୍ଧି ଦେଲେ ଓଳରୁ ଗଡ଼ିବା ବର୍ଷାଜଳ ନୋଦା ଉପରେ ପଡ଼ି ନୋଦାର ମୁଣ୍ଡକୁ ଗଡ଼ି ଯାଇ ତଳକୁ ପଡ଼େ ।
କ୍ଷେତ୍ରକୁ ପାଣି ବୋହିବା ବେଳେ ଏହି ନୋଦାର ଏକ ମୁଣ୍ଡରେ ଜଳାଶୟରୁ ଟେଣ୍ଡାରେ ପାଣି ଉଠାଇ ଢାଳି ଦେଲେ ସେ ପାଣି ବୋହି ଆସି ଅନ୍ୟ ମୁଣ୍ଡରେ ଥିବା ପାଣି ମାଡ଼ାରେ ପଡ଼େ । ନୋଦାର ମଝିକୁ ଗୋଟିଏ ଆଡ଼ଧାରଣୀ ଉପରେ ସଲଗ୍ନ କରି ଏବଂ ତାହାର ଗୋଟିଏ ମୁଣ୍ଡକୁ ବନ୍ଦ କରି ପାଣିରେ ବୁଡ଼ାଇ ଟେକିଦେଲେ ସେ ପାଣି ସେହି ନୋଦାରେ ଗଡ଼ି ଆସି ନୋଦାର ଅନ୍ୟ ମୁଣ୍ଡରେ ଖୋଲା ହୋଇଥିବା ପହଣୀରେ ଜମା ହୋଇ କିଆରିରେ ମାଡ଼େ । ଏହିପରି ଏକମୁଣ୍ଡ ବୁଜା ନୋଦାକୁ ଜନ୍ତ କହନ୍ତି । ]

**ନୋଦିତ**—ସଂ. ବଣ (ନୁଦ୍ ଧାତୁ ଣିଚ୍+କର୍ମ ତ)—୧ । ଆଜ୍ଞପ୍ତ—
Nodita 1. Commanded.
୨ । ପ୍ରେରିତ—2. Sent; commissioned.
୩ । ଅପସାରିତ—3. Removed, driven away
୪ । ଉତ୍ତେଜିତ—4. Goaded; impelled.

**ନୋପସ୍ଥାତା**—ସଂ. ବଣ (ନ=ନୁହେଁ+ଉପ+ସ୍ଥା ଧାତୁ+କର୍ତ୍ତୃ. ତୃ, ୧ମା. ୧ବ )—ଅସମୀପସ୍ଥ, ଦୂରସ୍ଥ—Distant, remote.
Nopasthātā
( ନୋପସ୍ଥାତ୍ରୀ ସ୍ତ୍ରୀ)

**ନୋବେଲ୍ ପୁରସ୍କାର**—ବୈଦେ.ବ (ସ୍ୱିଡେନ୍‌ଦେଶୀୟ ନାମ ନୋବେଲ୍+ସଂ. ପୁରସ୍କାର)—ସ୍ୱିଡେନ୍ ରାଜ୍ୟରେ ପ୍ରତିଷ୍ଠିତ ୫ଟି ବାର୍ଷିକ ପୁରସ୍କାର—
Nobel puraskāra
**नोबेलप्राइज** **नोबेमप्राइज**
Nobel prize; five annual prizes given in Sweden
(ନୋବେଲ ପ୍ରାଇଜ୍ ଅନ୍ୟରୂପ)

[ ଦ୍ର—ଏହି ପୁରସ୍କାର ସ୍ୱର୍ଗୀୟ ଡାକ୍ତର ଆଲ୍‌ଫ୍ରେଡ୍ ବ ନୋବେଲ୍ ( ମୃତ ଖ୍ରୀ ୧୮୯୬) ଙ୍କ ଦ୍ୱାରା ପ୍ରତିଷ୍ଠିତ । ସେ ସ୍ୱିଡେନ ରାଜ୍ୟର ସରକାରଙ୍କ ହସ୍ତରେ ଗୁଡ଼ାଏ ଧନ ସମର୍ପଣ କରି ଯାଇଅଛନ୍ତି ଓ ଉକ୍ତ ଦ୍ୱାରା ସେଥିର ସୁଧରୁ ପ୍ରତିବର୍ଷ ୫ଟି ବୃତ୍ତି ଦଆଯିବାର ଖଞ୍ଜା କରଅଛନ୍ତି । ପ୍ରତ୍ୟେକ ବୃତ୍ତିର ପରମାଣ ୮ ହଜାର ପାଉଣ୍ଡ ବା ପ୍ରାୟ ଏକଲକ୍ଷ ଟଙ୍କା । ତାଙ୍କ ନିଯୁକ୍ତ କମିଟି ନିମ୍ନଲିଖିତ ୫ଟି ବିଷୟରେ ଯାହାଙ୍କୁ ପୃଥିବୀରେ ସର୍ବୋତ୍କୃଷ୍ଟ ବ୍ୟକ୍ତି ବୋଲି ସ୍ଥିର କରିବେ ସେମାନଙ୍କୁ ପ୍ରତିବର୍ଷ ଏହି ପୁରସ୍କାର ଦେବେ ବୋଲି ସେ କଟକଣା କରି ଯାଇ ଅଛନ୍ତି ଓ ତଦନୁସାରେ ଏ ପୁରସ୍କାର ପ୍ରତିବର୍ଷ ଦିଆ ଯାଉଅଛି ।

୧ ବୈଜ୍ଞାନିକ ଆବିଷ୍କାର, ୨. ରସାୟନିକ ଆବିଷ୍କାର, ୩. ଜୀବ ବିଜ୍ଞାନ ସମ୍ବନ୍ଧୀୟ ଆବିଷ୍କାର, ୪. ଆଦର୍ଶ ସାହିତ୍ୟିକ ଗ୍ରନ୍ଥର ରଚନା, ୫ ପୃଥିବୀରେ ଶାନ୍ତି ପ୍ରତିଷ୍ଠିତ ହେବା ପାଇଁ ସର୍ବୋତ୍କୃଷ୍ଟ ଉଦ୍ୟମ । ଭାରତବାସୀଙ୍କ ମଧ୍ୟରେ କବିବର ରବୀନ୍ଦ୍ରନାଥ ଓ ବୈଜ୍ଞାନିକ ସର ରମଣ ଏ ପୁରସ୍କାର ପାଇଅଛନ୍ତି । ]

**ନୋଭ** (ଇତ୍ୟାଦି )— ଗ୍ରା. ବି—ଲୋଭ ଇତ୍ୟାଦି (ଦେଖ)
Nobha (etc) Lobha etc (See)

**ନୋଭି**— ଗ୍ରା ବିଣ—ଲୋଭି ( ଦେଖ )
Nobhi Lobhi ( See )

**ନୋଳ**—ପ୍ରାଦେ. ( ଗଡ଼ଜାତ ) ବି—ଓଳିଆରେ ବ୍ୟବହୃତ ମଲା ପର
Noḷa ଛାଆର କରାଯାଇଥିବା ପାଳ ଦଉଡ଼ିର ମୋଡ଼ା—
Coiled rope of straw used for tying up Olias or straw packets for storing corn.

**ନୋଳକ**—ଦେ. ବି. ( ସଂ ଲୋଳକ )—୧ । ନାକପୁଡ଼ାର ମଝି ଦଣ୍ଡିରେ
Noḷaka କରାଯାଇଥିବା ଛିଦ୍ରରେ ପିନ୍ଧାଯିବା ଏକପ୍ରକାର ଦଣ୍ଡୀ
ନୋଲକ (ଯହିଁରେ ଗୋଟିଏ ନୁଡ଼ୁକା ଲାଗିଥାଏ), ନୁଡ଼ୁକା—1. A
**ଲୋଲକ** kind of nose ring with a pendant gem.
ନୁଲକ, ନୁଲୁକ / ନୁଳକ, ନୁଳୁକା } ଅନ୍ୟରୂପ ୨ । କାନ ଓ ନାକର ଦଣ୍ଡି ବା ଫାଶିଆରେ ଝୁଲୁଥିବା କ୍ଷୁଦ୍ର ଅଣ୍ଡାକାର ସୁନା ବା ରତ୍ନଖଣ୍ଡ—2. A bit of gem or gold hanging as a pendant from an ear-ring or nose-ring

**ନୋଳା** -- ଦେ ବି—( ସ. ଲୋଳ = ଶିଥିଳ )—
Noḷā ୧ । ମାଛ ପେଟରେ ଥିବା ମଞ୍ଜିର ଏକ ଚରୁଡ଼ା—
ଦାଗ 1. One of the twin cylinder-like cells of
**ବଦ୍ଧୀ** the roe or spawn found in the belly of big fishes.
**ଦ୍ରାଗ; ନୀଲ** ୨ । ବେତ ପ୍ରହାରଦ୍ୱାରା ଦେହରେ ବସିଯିବା ଲମ୍ୱ ନେଳ ନେଳ ଦାଗ—2 The long bluish marks left on the body after a cane beating.

**ନୋଳା ଫଟା(ଟେ)ଇବା**—ଦେ କ୍ରି—ବେତଦ୍ୱାରା ଖୁବ୍ ମାଡ଼ ଦେବା,
Noḷā phaṭā(ṭe)iba ସେପରି କ ଦେହରେ ପ୍ରହାରର ଲମ୍ୱ
ଦାଗ ବସାନ **ନୀଲ ଡାଲନା** ଲମ୍ୱ ଦାଗମାନ ରହିଯାଏ —
[ନୋଳା ବସା(ସେ)ଇବା—ଅନ୍ୟରୂପ] To leave marks on the body after a cane-thrashing.

**ନୋଳା ଫାଟିଯିବା**— ଦେ. ବି - ବେତମାଡ଼ର ଫଳସ୍ୱରୂପ ଦେହରେ
Noḷā phāṭijibā ଦାଗ ରହିଯିବା—The marks on the
ଦାଗ ବାସା body being left as a result of
**ଦ୍ରାଗ ପଡ଼ନା** cane beating.
[ନୋଳା ବସିଯିବା, ନୋଳା ଫାଟିବା, ନୋଳା ରହିବା—ଅନ୍ୟରୂପ]

**ନୋଳି**—ଦେ ବି. ( ସଂ ଲୁଲ ଧାତୁ = ଦୋହଲିବା, ଦୋଳିବା )—
Noḷi କାନରେ ପିନ୍ଧାଯିବା ବଳୟାକାର ଅଳଙ୍କାରବିଶେଷ—
ମାକଡ଼ୀ Ear-ring, a ring for the ear.
**ବାଲୀ** ଯାହାରଠାରେ ଦେଖୁଥିଲେ କର୍ଣ୍ଣୀ ନୋଳି
ନେଉଥିଲେ ତାହା ଛଡ଼ାଇ ଦେଇ ଗାଳି । କୃଷ୍ଣସିଂହ. ମହାଭାରତ ଶାନ୍ତି

**ନୋଳିଆ**—ଦେ ବି. ପୁଂ—ତେଲଙ୍ଗା ଅନାର୍ଯ୍ୟ ଧୀବରଜାତିବିଶେଷ—
Noḷiā A class of Telgu fishermen.
**ନୁଲିଆ** ହୃପାଦାଠି ପୁଣ୍ଣେ ତରଙ୍ଗେ ନୋଳିଆ ଗାବ 'ଜୟ ଗଙ୍ଗେଶ୍ୱର' ।
( ନୋଳିଆଣୀ—ସ୍ତ୍ରୀ ) ରଘୁ ନାଥ, ଚାନ୍ଦଗ ।
**ବାଲୀ ପହନନେବାଲା** ଦେ ବିଣ—କାନରେ ନୋଳି ପିନ୍ଧିଥିବା ( ବ୍ୟକ୍ତି )—( a person ) Wearing ear-rings.

**ନୋହୁ(ହୁ)(ହୋ)ତି**—ଦେ ବି ( ସଂ ନ ଭବତି )—
Noha(hu)(ho)ti ୧ । ନ ହେବା କଥା—1. Negation; no,
ନାଁ; ନା ହଓଆ ( ଯଥା—ସେ ମୋତେ ହୋତି ନୋହତି କିଛି
**ନହୋନା** କହିଲା ନାହିଁ । )
[ ନହୁ(ହୋ)ତି—ଅନ୍ୟରୂପ ] ୨ । ( ଅଶୁଭ କଥାର ଶୁଭବାଚନ )
(ହୋତି—ବିପରୀତ) ଅନହୋତି; ହଇଜା, ଓଲାଉଠା, ଝାଡ଼ାବାନ୍ତି—2. (euphemism) Cholera.
( ଯଥା—ସେ ନୋହୋତିରେ ଗଲା । )

**ନୋହି**—ଗ୍ରା. ବି—ଲୋହି ( ଦେଖ )
Nohi Lohi (See)

**ନୋହିବା**—ଦେ କ୍ରି. ( ସଂ ନ+ଭୂ ଧାତୁ )—୧ । ନ ହେବା—
Nohibā 1. Not to be.
**ନା ହଓଆ** ଅଳଙ୍କାର ନୋହି କଳାନାଗକୁ ଗୁଳଲୁ ବେ—କବିସୂର୍ଯ୍ୟ କଂଶୋଯାଚମ୍ପୁ ।
**ନହୋନା; ଅନହୋତ** ୨ । ନ ଘଟିବା—2 Not to happen.
ଦେ. ବିଣ—ହୋଇ ନଥିବା—Undone; unperformed.
ନୋହୁବା କଥା କେଜ୍ଞ ହୋଇବ ମୋହତ —
କୃଷ୍ଣସିଂହ. ମହାଭାରତ. ଆଦ ।

**ନୋହିଲେ**—ଦେ. ଅ ( ସ. ନୋଚେତ୍ )—ନ ହେଲେ, ନତୁବା—
Nohile It not; otherwise, not; else.
**ନାହଲେ** ତାହା ପାଇଲେ ମୋତେ କହ. ନୋହିଲେ ଭୁଜ ହୋଇ ରହ—
**ନହିଁ ତୋ** ଭୂପତି, ପ୍ରେମପଞ୍ଚାମୃତ ।

**ନୋହିଲେ ନାହିଁ**—ଦେ. ଅ—ନ ହେଲେ ନାହିଁ—
Nohile nāhin Or else not; if not no.
ନା ହଲେ ନେଇ **ନହୀତୋ ନହୀଁ**

**ନୋହୁ**—ଗ୍ରା. ବି. ( ସ. ଲୋହ )—ଲହୁ, ରକ୍ତ —
Nohu ( ନହୁ -- ଅନ୍ୟରୂପ ) Blood.
ନା ହଉକ ଦେ. କ୍ରି ( ଭବିଷ୍ୟତ ଇଚ୍ଛାସୂଚକ ଅନାଦରାର୍ଥ ଅନ୍ୟ ପୁ.
**ନେହୁଁ** ୧ବ )—( ସେ ବା ତାହା ) ନ ହେଉ —
Let ( him ) be not; be it not.

( ଯଥା—ମୁଁ ଈଶ୍ୱରଙ୍କୁ ଡାକୁଛି ମୋ ପିଲାଟି ଅନ୍ୟ ଇସ୍କୁଲିଆ ପିଲାଙ୍କ ପରି ଅମାନିଆ ନୋହୁ । )

ଦେ ଅ—ନୋହୁଣୁ ( ଦେଖ )—Nohuṇu (See)

**ନୋହୁଁ**—ଦେ କ୍ରି ( ବର୍ତ୍ତମାନ କାଳ, ୧ମ ପୁ. ମାନ୍ୟାର୍ଥରେ 'ନ ହେଉଁ' Nohuñ ଏହି କ୍ରିୟାର ସଂକ୍ଷିପ୍ତ ଆକାର—
ନଇ ୧ । (ଆମ୍ଭେ) ନ ଅଟୁଁ—1. ( I ) Am not.
**नहुँ** ୨ । ( ଆମ୍ଭେମାନେ ) ନ ଅଟୁଁ—2 ( we ) Are not.
( ଯଥା—ଆମ୍ଭେମାନେ ପରର ଅନୁଗ୍ରହକାରୀ ନୋହୁଁ । )
ନାହତେ ଦେ ଅ —ନୋହୁଣୁ (ଦେଖ)
**नेइहोते** Nohunu (See)

ସେକାଳ ନୋହୁଁ ଆସ ସମସ୍ତେ ଭଲବା,
ପାଣ୍ଡବଙ୍କ ସଙ୍ଗରେ ବଇରେ ରହିବା ; କୃଷ୍ଣସିଂହ. ମହାଭାରତ ବନ ।

**ନୋହୁଣୁ(ଣୁଁ)**—ଦେ ଅ.—ନ ହେଉଣୁ, ନ ହେବା ପୂର୍ବେ—
Nohuṇu(ṇuñ) Before (such a thing) happens or takes place
ନାହତେ ହତେ
**नहोते होते** (ଯଥା—ଏ ବର୍ଷ କାର୍ତ୍ତିକ ମାସ ନୋହୁଣୁ ଶୀତ ପଡ଼ିଗଲା ।)

**ନୌ**—ସଂ ବି (ନୁଦ୍ ଧାତୁ=ପ୍ରେରଣ କରିବା+କର୍ମ. ଊ)—ନୌକା, ଡଙ୍ଗା—Boat.
Nau
[ଦ୍ର—ସଂସ୍କୃତ 'ନୌ' ଶବ୍ଦ ସଙ୍ଗେ ତୁଳନା କର ଗ୍ରୀକ୍ ଭାଷାର ନୌସ୍, ଲାଟିନ୍ ନାଭିସ୍ (Navis), ପ୍ରାଚୀନ ଜର୍ମାନ୍ (Nacho) ନାଚେ । ଇଂରାଜୀରେ ନାଭି (Navy)ର ଅର୍ଥ ରଣତରୀ ସମୂହ ।]

ନବ୍ବଇ ଦେ. ବି. ଓ ବିଣ. (ସଂ. ନବତି)—ନଉ; ନବେ; ୯୦—
**नब्बे** Ninety; 90.

**ନୌଆ**—ଦେ ବିଣ. (ସଂ. ନବମ)—ନବମ—
Naua Ninth.

ନଅଈ ଦେ ବି.—ନଅଟି ବିନ୍ଦୁଯୁକ୍ତ ତାସ୍, ନହଲା, ନହ—
**नवाँ** A playing card with 9 points on it.
ନହଲା **नहला**

**ନୌଆଶଏ(ହେ)**—ଦେ. ବି. ଓ ବିଣ. (ସଂ. ନବତ୍ୟୁତ୍ତର ଶତ) (ସଂଖ୍ୟାବାଚକ)—ଏକଶତ ନବେ—One hundred and ninety.
Nauāśae(he)
ଏକଶ ନବ୍ବଇ **नौसै**
(ଯଥା- ଉଣେଇଶି ବର୍ଷା ନୌଆଶହେ ପଣ ଏଗାର କାହାଣ ତଉଦ ପଣ— ପଣିକିଆ ।)

**ନୌକର**—ବୈଦେ. ବି. (ଫା. ନଉକର; ନୌକର)—୧ । ଚାକର — 1. Servant.
Naukara
ନୋକର, ନୌକବ ୨ । ଗୃହ କର୍ମକାରୀ ଭୃତ୍ୟ—
**नौकर** 2. Domestic menial servant.
(ନୌକରାଣୀ—ସ୍ତ୍ରୀ)

**ନୌକର ଚାକର**—ଦେ. ବି. (ଏକାର୍ଥକ ସହଚର)—ପରିଜନ; ଭୃତ୍ୟାଦି—Servants; attendants; retinue
Naukara chākara
ନୋକର ଚାକର **नौकर चाकर**

**ନୌକର ସାହି**—ଦେ. ବି. (ଆଧୁନିକ ପ୍ରୟୋଗ)—ଭୃତ୍ୟତନ୍ତ୍ର, ଭୃତ୍ୟ ସମାଜ; ରାଜକୀୟ ଶାସନ ଚଳାଇବା ଭୃତ୍ୟ ମଣ୍ଡଳୀ—Bureaucracy; the body of officials and servants carrying on administration; officialdom
Naukara sāhi
ନୌକର ସାହୀ **नौकर साही**

**ନୌକରାଣୀ**—ଦେ ବି. ସ୍ତ୍ରୀ (ଫା. ନୌକର+ଓଡ଼ିଆ ପ୍ରତ୍ୟୟ ଆଣୀ), ଦାସୀ, ଚାକରାଣୀ— Maid servant
Naukarāṇi
ନୋକରାନୀ **नौकरानी**

**ନୌକରାନ୍**—ବୈଦେ. ବିଣ. (ଫା)—୧ । ନୌକର ବା ଚାକରଗଣ ସମ୍ବନ୍ଧୀୟ—1 Relating to servants.
Naukarān
୨ । ଚାକରୀ ସମ୍ବନ୍ଧୀୟ—2. Relating to service.
(ଯଥା—ନୌକରାନ୍ ଜାଗିରୀ ।)
ବି – (ବହୁବଚନ)—ଚାକରମାନେ—Servants.

**ନୌକରି**—ଦେ. ବି. (ଫା. ନୌକର୍+ଓ. ଇ ପ୍ରତ୍ୟୟ)—୧ । ଦାସତ୍ୱ— 1. Slavery.
Naukari
ନୋକରି ୨ । ଚାକରି—2 Service.
**नौकरी** ୩ । ଚାକର ବୃତ୍ତି—3 The profession of service, service as a profession.

**ନୌକରେନ୍**—ପ୍ରାଦେ. (ସମ୍ବଲପୁର)—ବି. (ଭୁଲ ହି ନୌକରାଣୀ)—ଚାକରାଣୀ—A maid servant.
Naukaren

**ନୌକା**—ସଂ. ବି (ନୌ+ସ୍ୱାର୍ଥରେ କ+ସ୍ତ୍ରୀ ଆ)—୧ । ନାବ, ଡଙ୍ଗା—Boat.
Nauka
୨ । ଜାହାଜ --2. Ship.

**ନୌକା ଦଣ୍ଡ**—ସଂ. ବି (୬ଷ୍ଠୀ ତତ୍, ନୌକା+ଦଣ୍ଡ)—୧ । କ୍ଷେପଣୀ, କାତ—1 A bamboo to propel a boat.
Naukā daṇḍa
୨ । ଅହୁଲା—2. An oar; paddle

**ନୌକା ପଟ**—ସଂ. ବି. (୬ଷ୍ଠୀ ତତ୍, ନୌକା+ପଟ)—ଡଙ୍ଗାରେ ଟଣା ଯିବା ପାଲ—The sail of a boat.
Naukā paṭa

**ନୌଚର**—ସଂ. ବିଣ. ପୁଂ. (ନୌ+ଚର୍ ଧାତୁ+କର୍ତ୍ତୃ. ଅ)—ନାବିକ, ନୌକାରେ ବିଚରଣକାରୀ—Using boats for travelling
Nauchara
(ନୌଚରୀ—ଅନ୍ୟରୂପ)

**ନୌଚାଳନ**—ସଂ. ବି. (୬ଷ୍ଠୀ ତତ୍, ନୌ+ଚାଳନ)—ଡଙ୍ଗା ଚଳାଇବା କର୍ମ ବା କୌଶଳ—Navigation; the art of plying a boat.
Nauchālana

**ନୌଜୀବକ**—ସଂ. ବି ପୁଂ. (ବହୁବ୍ରୀହି, ନୌ+ଜୀବିକା)—ଯେ ନୌକା ସାହାଯ୍ୟରେ ଜୀବିକା ନିର୍ବାହ କରେ—A sailor; a boatman.
Naujībika
(ନୌଜୀବୀ—ଅନ୍ୟରୂପ)

**ନୌତନ**—ଗ୍ରା. ବିଣ. (ସଂ. ନୂତନ, ନବତନ)—୧ । ନୂତନ— 1. New.
Nautan
ନୌତନ **नौतुन** ୨ । ତାଜା; ଟଟକା—2. Fresh.

**ନୌତା(ତି)**—ଦେ ବି — ନଉତି (ଦେଖ)
Nautā ti) Nauti (See)

**ନୌତାର୍ଯ୍ୟ**—ସଂ. ବିଣ. (୭ମୀ ତତ୍, ନୌ=ନୌକା+ତାର୍ଯ୍ୟ)—ନାବ୍ୟ, ନୌକାଦ୍ୱାରା ପାର ହେବା ଯୋଗ୍ୟ—Navigable.
Nautārjya

**ନୌବତ୍** (ଇତ୍ୟାଦି) ବୈଦେ ବି (ଅ. ନଓବତ୍, ଫା ନୌବତ୍)—
Naubat (etc) ନଉବତ୍ ଇତ୍ୟାଦି ( ଦେଖ )
ନୌବତ **नौबत** Naubat etc ( See )

**ନୌବଳ**—ସଂ ବି ( ରୂପକ ବା ୬ଷ୍ଠୀ ତତ୍, ନୌ+ବଳ )—
Naubala ୧। ନୌକାରୋହୀ ସୈନ୍ୟ, ଯୁଦ୍ଧାର୍ଥ ପ୍ରସ୍ତୁତ ନୌକାସମୂହ—Naval force, navy; armada
୨। ସତରଞ୍ଜ ଖେଳ—2. A game of chess.

**ନୌବାହ**—ସଂ. ବି. ( ନୌ+ବହ୍ ଧାତୁ ଣିଚ୍+କର୍ତ୍ତୃ ଅ )—
Naubāha ୧। ଯେ ଡଙ୍ଗା ଚଳାଏ, ନାବିକ—
1. Sailor; navigator.
ନୌବାହକ } ଅନ୍ୟରୂପ
ନୌବାହୀ }
୨। ଆହୁଲା—2 An oar.
ସଂ. ବିଣ—ଯେ ଡଙ୍ଗା ଚଳାଉ ଥାଏ—
Plying a boat.

**ନୌବାହିନୀ**—ସଂ. ବି. ( ରୂପକ କର୍ମଧା, ନୌ+ବାହିନୀ )—
Naubāhini ୧। ନୌସେନା ( ଦେଖ )
1. Nausenā ( See )
୨। ନୌସେନାବାହୀ ନୌକା ସମୂହ—2 The navy

**ନୌବିଦ୍ୟା**—ସଂ. ବି. ( ମ ପ. ଲୋ. କର୍ମଧା, ନୌ+ବିଦ୍ୟା )—
Naubidyā ନୌକା ଚାଳନ ବିଦ୍ୟା—The science or art of navigation

**ନୌବୁତ**—ପ୍ରାଦେ (ଗଞ୍ଜାମ) ବି—ଭଣ୍ଡାରି ଆଦି ଦାଣ୍ଡୁଆ ଜାତିଙ୍କ ବିବାହ
Naubuti ଉପଲକ୍ଷରେ ଜାତିଭୋଜି ବେଳେ ବର ଓ କନ୍ୟା ପକ୍ଷର ଲୋକଙ୍କ ମଧ୍ୟ ସ୍ଥଳରେ ଖଣ୍ଡିଏ ପୀଢ଼ା ଉପରେ ଉଭୟ ପକ୍ଷରୁ ଭେଟି ସ୍ୱରୂପ ଯେଉଁ ଧନ ରଖାଯାଏ, କୁଳମର୍ଯ୍ୟାଦା ସ୍ୱରୂପ ଦିଆଯିବା ଭେଟି ଧନ—
A present of cash put on a wooden board by the bride's and bride-groom's parties on the occassion of a marriage before the feast is held, amongst some Śūdra castes. ( e.g barbers ).

[ ଦ୍ର—ଏହି ଧନ ପୀଢ଼ା ଉପରେ ରଖି ଦେଇ ବର ଓ କନ୍ୟା ଉଭୟଙ୍କ ପକ୍ଷୀୟ ମୁରବୀ ପ୍ରଣାମ କରନ୍ତି । ବ୍ରାହ୍ମଣ ସମାଜରେ ମଧ୍ୟ ଏହିପରି ସ୍ଥଳରେ ସମ୍ମାନିତ ମର୍ଯ୍ୟାଦା ଦିଆ ଯାଏ । ] —

**ନୌ ବ୍ୟସନ**—ସଂ. ବି. ( ୬ଷ୍ଠୀ ତତ୍, ନୌ+ବ୍ୟସନ=ବିପଦ୍ )—
Nau byasana ଜାହାଜ ଭାଙ୍ଗିଯିବା ବା ଜାହାଜର କୌଣସି ପ୍ରକାର ବିପଦ—Shipwreck or any calamity befalling a ship.

**ନୌ ଯାତ୍ରୀ**—ସଂ. ବି ( ନୌ+ଯାତ୍ରିନ୍, ୧ମା ୧ବ )—
Nau jātri ନୌକାରେ ଯେଉଁମାନେ ଯାତ୍ରା କରନ୍ତି—
The passengers of a boat.
ସଂ. ବିଣ.—ନୌକାରେ ଗମନକାରୀ—
Travelling by boat

**ନୌ ଯାନ**—ସଂ. ବି. ( ନୌ+ଯାନ )—
Nau jāna ୧। ( ୩ୟା ତତ୍ )ନୌକାଦ୍ୱାରା ଗମନ—
1 Navigation
୨। (ରୂପକ କର୍ମଧା) ଜଳରେ ଯିବା ଆସିବା ପାଇଁ ବ୍ୟବହୃତ ନାବ ଆଦି—2 Boats used as conveyance on water.

**ନୌଯାୟୀ**—ସଂ ବି. ଓ ବିଣ (ନୌ+ଯା ଧାତୁ+କର୍ତ୍ତୃ ଇନ୍, ୧ମା.୧ବ)
Naujāyi ନୌଯାତ୍ରୀ ( ଦେଖ )—Naujātri ( See )

**ନୌରୋଜ୍**—ବୈଦେ ବି. (ଫା)—୧। ପାରସିକମାନଙ୍କର ନବବର୍ଷାରମ୍ଭ,
Nauroj ମୁସଲମାନମାନଙ୍କର ବର୍ଷର ପ୍ରଥମ ଦିନ—
**नौरोज** 1 Mahomedan or Persian New Year's day.
୨। ମୁସଲମାନମାନଙ୍କ ନବବର୍ଷାରମ୍ଭ ଦିନ କରାଯିବା ଉତ୍ସବ—
2. The festival observed by the Mahomedans on the Persian New year's day.

**ନୌଲଖା**—ଦେ ବିଣ. ( ସଂ. ନବ+ଲକ୍ଷ, ଯହିଁର ମୂଲ୍ୟ ନଅ ଲକ୍ଷ
Naulakhā ମୁଦ୍ରା )—
न लाखेब ବହୁ ମୂଲ୍ୟ ( ହାର ଆଦି )—
**नौलखा** Very valuable ( necklace etc )
(ନୌଲଖୀ—ଅନ୍ୟରୂପ)

**ନୌସେନା**—ସଂ ବି ( ମ ପ. ଲୋ. କର୍ମଧା; ନୌ+ସେନା )—
Nausenā ଜଳଯୁଦ୍ଧକାରୀ ସୈନ୍ୟ, ନୌବଳ—
(ନୌସୈନ୍ୟ—ଅନ୍ୟରୂପ) Naval force; navy

**ନ୍ତ**—ଗ୍ରା. ବି. (ପ୍ରାଚୀନ ପଦ୍ୟ)—୧। ପ୍ରତ୍ୟୟ (ବହୁବଚନ) ମାନ, ଗଣ—
Nta Plural suffix.

ସୁରେ ସୁରେ ଅନୁସର ବାଟ ଲୋଡନ୍ତ ପେର
ଧ୍ୟାନ ଦେଇ ମାଲୁଣୀକି ଦେଖିଲେ ଯାଉ । ପ୍ରଭାତ, ଗଣ ସେଣା ।

୨। ଦ୍ୱିତୀୟା ବିଭକ୍ତିର ପ୍ରତ୍ୟୟ—
2 An inflection for the dative case.

**ନ୍ୟକ୍କାର**—ସଂ. ବି. (ନ୍ୟକ୍=ଘୃଣାର୍ଥରେ ଅବ୍ୟୟ+କୃ ଧାତୁ+ଭାବ ଅ)
Nyakkāra ୧। ଘୃଣା, ଅବଜ୍ଞା—
1. Abhorrence; contempt.
୨। ବମନ, ବାନ୍ତି—2. Vomiting
୩। ଧିକ୍କାର—3. Contemptuous words.

**ନ୍ୟକ୍କାର ଜନକ**—ସଂ. ବିଣ. ( ନ୍ୟକ୍କାର+ଜନ ଧାତୁ+ଅକ )—
Nyakkāra janaka ୧। ଘୃଣାଜନକ—1 Contemptuous; producing aversion.
୨। ବମନୋଦ୍ବେଗକାରକ—2. Producing a tendency to vomit.

**ନ୍ୟକ୍କୃତ**—ସଂ. ବିଣ. ( ନ୍ୟକ୍+କୃତ )—ଧିକ୍କୃତ, ଅବଜ୍ଞାତ—
Nyakkṛuta Abhorred; loathed.

**ନ୍ୟକ୍ଷ**—ସଂ. ବିଣ. ( ନି+ଅକ୍ଷ )—
Nyaksha ୧। ନିକୃଷ୍ଟ—1. Base; inferior.
୨। ନୀଚ—2. Low; mean; vile.

୩ । ସମଗ୍ର—3 Whole; entire
ସ. ବି—୧ । ମହିଷ—1 Buffalo
୨ । ପରଶୁରାମ—2 Paraśurāma.
୩ । ତୃଣ—3. Grass.

**ନ୍ୟଗ୍ରୋଧ**—ସ. ବି. ( ନ୍ୟକ୍=ନମ୍ର+ରୁଧ୍ ଧାତୁ=ରୋଧ କରିବା+ କର୍ତ୍ତୃ. ଅ, ଯେ ବନ୍ଧ୍ୟ ମୂଳ ଦ୍ୱାରା ନିମ୍ନଦେଶକୁ ରୋଧ କରେ )—୧ । ବଟ ବୃକ୍ଷ, ବର ଗଛ—
Nyagrodha
1 The Banyan tree; Indian fig; Ficus Indica.
୨ । ଶମୀ ବୃକ୍ଷ—2. A tree, Accacia Suma
୩ । ଚାରି ହାତ ପରିମାଣ—
3 A measure of 4 cubits; fathom.
୪ । ବିଷ୍ଣୁ— 4. A name of Bishṇu.
୫ । ଉଗ୍ରସେନ ରାଜାଙ୍କର ପୁତ୍ର—
5. Name of a son of Ugrasena.
୬ । ଦୁଇ ବାହୁକୁ ସମ୍ପୂର୍ଣ୍ଣରୂପେ ବିପରୀତ ଦିଗକୁ ବିସ୍ତୃତ କଲେ ଯେଉଁ ପରିମିତ ଦୂରତା ହୁଏ ( ହି. ଶ. )—
6. A measure of the two arms extended in opposite directions
୭ । ମହାଦେବ (ହି. ଶ )—7. Siba.
୮ । ମୂଷିକପର୍ଣ୍ଣୀ, ମୂଷାକାଣୀ (ହି ଶ.) ( ଦେଖ )
8. Mūshākāni ( See )

**ନ୍ୟଗ୍ରୋଧନ**—ସ. ବି (ନ୍ୟକ୍+ରୁଧ୍ ଧାତୁ+ଭାବ. ଅନ)—ଅବଜ୍ଞାନ—
Nyagrodhana Despising.

**ନ୍ୟଗ୍ରୋଧ ପରିମଣ୍ଡଳ**—ସ ବି. ପୁଂ (ବହୁବ୍ରୀହି, ନ୍ୟଗ୍ରୋଧ+ପରିମଣ୍ଡଳ)- ସୁନ୍ଦର ବପୁଷ୍ମାନ୍ ପୁରୁଷ; ୪ ହାତ ଉଚ୍ଚ ପରମସୁନ୍ଦର ପୁରୁଷ—
Nyagrodha parimaṇḍaḷa
A tall man with proportionate limbs.

**ନ୍ୟଗ୍ରୋଧପରିମଣ୍ଡଳା**—ସ. ବି. ସ୍ତ୍ରୀ—ବିଶାଳନିତମ୍ବା, କ୍ଷୀଣମଧ୍ୟା, କଠିନ- କୁଚ, ସୁନ୍ଦରୀ ଅଙ୍ଗନା —
Nyagrodhaparimaṇḍaḷa
A fair woman with symmetrical and graceful limbs, firm brests and lean waist.
[ବି—ଏପରି ସ୍ତ୍ରୀର ଶରୀରର ସ୍ପର୍ଶ ଗ୍ରୀଷ୍ମକାଳରେ ଶୀତଳ ଓ ଶୀତକାଳରେ ଉଷ୍ଣ ବୋଧହୁଏ । ]

**ନ୍ୟଗ୍ରୋଧା(ଧୀ)**—ସ. ବି ସ୍ତ୍ରୀ (ବୈଦ୍ୟକ,—ମୂଷାକାଣୀ ଗୁଳ୍ମ—
Nyagrodhā(dhī) A medicinal plant; Mimosa Albida.
(ନ୍ୟଗ୍ରୋଧିକା—ଅନ୍ୟରୂପ)

**ନ୍ୟଙ୍କୁ**—ସ. ବି (ନି=ନିଶ୍ଚିତ+ଅନ୍ଚ୍ ଧାତୁ=ଗମନକରିବା+କର୍ତ୍ତୃ ଉ).
Nyaṅku ୧ । ବହୁଶୃଙ୍ଗ ମୃଗବିଶେଷ; ଶାଖାପ୍ରଶାଖାବିଶିଷ୍ଟ ଶୃଙ୍ଗଯୁକ୍ତ ମୃଗ—1. A sort of antelope, a deer with branching antlers.
୨ । ଖୁରୁଣ୍ଡି, ଅତି କ୍ଷୁଦ୍ରଦେହ ମୃଗବିଶେଷ—
2 A very small variety of deer; Oragulus Meminna.
[ବି—ଏହା ପ୍ରାୟ ୮ ଅଙ୍ଗୁଳ ଉଚ୍ଚ ହୁଏ । ଏହାର ଗୋଡ଼ ଅତି ସରୁ; ପଛଆଡ଼ ଉଚ୍ଚା, ଗଳାର ଲୋମ ଦେହ ଲୋମ ଅପେକ୍ଷା ବଡ଼ । ଏହା ଶୃଙ୍ଗହୀନ । ]
୩ । ମୁନିବିଶେଷ—3 The name of a sage
ସ. ବିଣ—ନିତାନ୍ତ ଗମନଶୀଳ—Moving swiftly

**ନ୍ୟଚ୍ଛ**—ସ. ବି – ଚର୍ମରୋଗବିଶେଷ, ଯହିଁରେ ଦେହରେ ଚକା ଚକା କଳା ଦାଗମାନ ଦେଖାଯାଏ, ଭଙ୍ଗରୋଗ (ହି ଶ )-
Nyachchha
A skin disease in which black circular spots appear on the body.

**ନ୍ୟଞ୍ଚ୍**—ସ. ବିଣ (ନି+ଅନ୍ଚ୍ ଧାତୁ+କର୍ତ୍ତୃ. କ୍ୱିପ୍)—୧ । ନୀଚ –
Nyañch 1 Vile; mean.
୨ । କ୍ଷୁଦ୍ର—2. Little.
୩ । ନିମ୍ନ—3. Low.
୪ । ( +କର୍ମ. କ୍ୱିପ୍ ) - ହେୟ—
4. Contemptible.
୫ । ଖର୍ବ—5. Dwarfish; short.

**ନ୍ୟଞ୍ଚିତ**— ସ. ବିଣ (ନି+ଅନଚ୍ ଧାତୁ+କର୍ମ. ତ) —ଅଧଃକ୍ଷିପ୍ତ –
Nyañchita Thrown down.

**ନ୍ୟଞ୍ଜଳିକା**—ସ. ବି (ନି+ଅଞ୍ଜଳି+କ+ଆ) —ତଳଆଡ଼କୁ ପ୍ରସାରିତ ଅଞ୍ଜଳି ( ହି. ଶ )—
Nyañjaḷikā The folded palms extended downwards.

**ନ୍ୟୟ**—ସ. ବି (ନି+ଇ ଧାତୁ+ଭାବ. ଅ) —୧ । ଅପଚୟ, କ୍ଷତି –
Nyaya 1. Loss.
୨ । ବ୍ୟୟ—2. Expense.
୩ । ନାଶ—3. Destruction.

**ନ୍ୟସନ**—ସ. ବି (ନି+ଅସ୍ ଧାତୁ=କ୍ଷେପଣ କରିବା+ଭାବ. ଅନ)—
Nyasana ୧ । ଦାନ—1. Giving
(ନ୍ୟସ୍ତ—ବିଣ) ୨ । ଅର୍ପଣ—2. Depositing
୩ । ତ୍ୟାଗ—3. Abandonment; relinquishment.
୪ । ରଖିବା, ସ୍ଥାପନ—4 Placing; putting.

**ନ୍ୟସ୍ତ**—ସ. ବିଣ. (ନି+ଅସ୍ ଧାତୁ+କର୍ମ. ତ)—୧ । ନିହିତ;ସ୍ଥାପିତ —
Nyasta 1. Placed, set down.
(ନ୍ୟସ୍ତା—ସ୍ତ୍ରୀ) ୨ । ପ୍ରେରିତ —2. Sent.
୩ । କ୍ଷିପ୍ତ—3. Thrown.
୪ । ନ୍ୟାସରୂପେ ରକ୍ଷିତ—4. Placed in trust.
୫ । ସମର୍ପିତ—5 Deposited.
୬ । ବିନ୍ୟସ୍ତ, ସଜ୍ଜିତ—6. Arranged, arrayed.
୭ । ତ୍ୟକ୍ତ —7. Abandoned; relinquished
୮ । ହସ୍ତାନ୍ତରିତ—8 Assigned; transferred.

୯ । ରଚିତ—9 Composed.
୧୦ । ବିସ୍ତାରିତ—10 Expanded, spread.
୧୧ । ବନ୍ଧକ ରଖାଯାଇଥିବା—
11 Pledged; pawned.

**ନ୍ୟସ୍ତ ଶସ୍ତ୍ର**—ସଂ. ବିଣ ପୁଂ (ବହୁବ୍ରୀହି, ନ୍ୟସ୍ତ + ଶସ୍ତ୍ର)—୧ । ଯେଉଁଲୋକ
Nyasta śastra ଶସ୍ତ୍ରାଦି କାଢ଼ିପକାଇ ଅଛି—1 Unarmed, having laid down one's arms
୨ । ଯୁଦ୍ଧ କରିବାକୁ ପରାଙ୍ମୁଖ—
2 Averse from strife.
ସଂ. ବି—ପିତୃଲୋକ—The souls of the departed ancestors

**ନ୍ୟସ୍ୟ**—ସଂ. ବିଣ. (ନି + ଅସ୍ ଧାତୁ + କର୍ମ ଯ)—୧ । ତ୍ୟକ୍ତବ୍ୟ, କ୍ଷେପ୍ୟ—
Nyasya 1. Fit to be thrown away or abandoned
୨ । ନ୍ୟସ୍ତହେବାର ଯୋଗ୍ୟ—
2 Fit to be deposited
୩ । ସ୍ଥାପନୀୟ—3 Fit to be placed

**ନ୍ୟାଏ**—ଗ୍ରା. (ପ୍ରାଚୀନ ପଦ୍ୟ) ବି ଓ ବିଣ— ନ୍ୟାୟ (ଦେଖ)
Nyāe Nyāya (See)
**न्याए नयाई** ଅଦେ ନଭୁଥାଇ ବୋଷ ଅଦେ ଲୁଚଇ ନ୍ୟାଏ । ପାଳୀ ବୃନ୍ଦାବନଭୂଷଣଗୀତା ।

**ନ୍ୟାକ୍ୟ**—ସଂ. ବି—ଭୃଷ୍ଟତଣ୍ଡୁଳ, ଗୁଣ୍ଡୁଳଭଜା, ମୁଢ଼ି—
Nyākya Fried rice

**ନ୍ୟାଙ୍କବ**—ସଂ. ବି. (ନ୍ୟଙ୍କୁ + ଅ) ନ୍ୟଙ୍କୁ ମୃଗଚର୍ମ—
Nyāṅkaba The hide of Nyaṅku deer.

**ନ୍ୟାଜ**—ବୈଦେ. ବି. ଓ ବିଣ. (ଫା ଲିହାଜ୍)—ନିଆଜ (ଦେଖ)
Nyāja Niāja (See)
**लिहाज** ଚନ୍ଦ୍ରମାବଦନୀ ଶ୍ୟାମ ବୃନ୍ଦଙ୍କର ପ୍ରେମ ହେଲା ନବଜେ ନ୍ୟାଜ ।
**लिहाज** ଚଉପଦୀ, ସଙ୍ଗୀତ ।

**ନ୍ୟାଦ**—ସଂ. ବି. (ନି + ଅଦ୍ ଧାତୁ + କର୍ମ. ଅ)—ଆହାର (ହି. ଶ)—
Nyāda Food.

**ନ୍ୟାୟ**—ସଂ. ବି. (ନି = ନିଶ୍ଚୟ, ସତ୍ୟ + ଇ ଧାତୁ = ଗମନ କରିବା + କର୍ତ୍ତୃ ଅ, ଯାହା ମନୁଷ୍ୟଙ୍କୁ ସତ୍ୟଆଡ଼କୁ ନେଇଯାଏ) ୧ । ବିଷ୍ଣୁ—1 Bishṇu
Nyāya
୨ । ଯୁକ୍ତି; ବିତର୍କ—2. Reasoning, argument.
୩ । ବିଚାର—3. Judgment, consideration; adjudication.
୪ । ଯାଥାର୍ଥ୍ୟ, ଔଚିତ୍ୟ—4. Propriety; fitness.
୫ । ସୁବିଚାର, ଧର୍ମବିଚାରଣା—
5. Righteousness; equity; justice
୬ । ଆଇନ୍—6. Law.
୭ । ସତ୍ୟ—7. Truth
୮ । ସତ୍ୟ ନିର୍ଦ୍ଧାରଣ—
8. Ascertainment of truth.
୯ । ଷଡ଼୍‌ଦର୍ଶନାନ୍ତର୍ଗତ ଗୌତମ ପ୍ରଣୀତ ଦର୍ଶନଶାସ୍ତ୍ର ବା ଅନ୍ୱୀକ୍ଷିକୀ ଶାସ୍ତ୍ର—9. One of the six systems of Hindu philosophy.
୧୦ । ତର୍କଶାସ୍ତ୍ର, ନ୍ୟାୟଶାସ୍ତ୍ର, ନ୍ୟାୟଦର୍ଶନ—,
10. Logic; dialectics.
[ ଦ୍ର - ଯୁକ୍ତି ଓ ତର୍କଦ୍ୱାରା କୌଣସି ବିଷୟର ଖଣ୍ଡନମଣ୍ଡନ ଓ ସିଦ୍ଧାନ୍ତ ନ୍ୟାୟଶାସ୍ତ୍ରର ଉଦ୍ଦେଶ୍ୟ । ଏହି ଶାସ୍ତ୍ର ପ୍ରତିଜ୍ଞା, ହେତୁ, ଉଦାହରଣ, ଉପନୟ ଓ ନିଗମନ ଏହି ପଞ୍ଚାଙ୍ଗବିଶିଷ୍ଟ ।]
୧୧ । ଯୁକ୍ତିମୂଳକ ଦୃଷ୍ଟାନ୍ତବିଶେଷ, ନୀତି - 11. Moral precept; the moral of a tale or subject.
(ଯଥା—ଗଡ୍ଡୁଳିକା ପ୍ରବାହ ନ୍ୟାୟ, କାକତାଳୀୟ ନ୍ୟାୟ ।)
୧୨ । ଦୃଷ୍ଟାନ୍ତଦ୍ୱାରା ଆରୋପିତ ତୁଳନା ବା ସାଦୃଶ୍ୟ—
12. Analogy.
୧୩ । ଭିନ୍ନ ଭିନ୍ନ ପ୍ରସଙ୍ଗ ବା ଘଟଣା ସମ୍ପର୍କରେ ତୁଳନା ବା ସାଦୃଶ୍ୟ ସୂଚନାକାରୀ ଦୃଷ୍ଟାନ୍ତବାକ୍ୟ—13. Analogical sayings establishing comparision or similarity of one matter with another.
[ ଦ୍ର—ଉପସ୍ଥିତ ଘଟଣା ବା ବିଷୟ ସଙ୍ଗେ ଅନ୍ୟ ସମ୍ଭବ ବା ଅସମ୍ଭବ ବିଷୟର ଦୃଷ୍ଟାନ୍ତଦ୍ୱାରା ତୁଳନା ବା ଉପମା ଓ ସାଦୃଶ୍ୟସୂଚକ ଯେଉଁ ଆପ୍ତବଚନମାନ ଦେଶରେ ବହୁକାଳରୁ ପ୍ରଚଳିତ ଅଛି ତାକୁ ନ୍ୟାୟ ବୋଲାଯାଏ । ଏହି ନ୍ୟାୟବଚନମାନଙ୍କର ବ୍ୟାଖ୍ୟା ଏ ଗ୍ରନ୍ଥର ଅକ୍ଷରାନୁକ୍ରମରେ ଦିଆଯାଇ ଅଛି । ]
ଦେ. ବି—୧ । ଇନସାଫ, ପଞ୍ଚାୟତ ବିଚାର—1. Arbitration
**इनसाफ; न्याय** ୨ । ବିଚାରଣା—2. Adjudication
ଦେ. ବିଣ —୧ । ପରି—1. Like; similar; resembling; analogous.
**मतन**
**माफिक** ୨ । ନ୍ୟାଯ୍ୟ—2. Proper; reasonable.
ଦେ କ୍ରି. ବିଣ—ସଦୃଶ— Similarly; like.

**ନ୍ୟାୟକ**—ସଂ. ବି. ପୁଂ. (ନ୍ୟାୟ + କୃ ଧାତୁ + କର୍ତ୍ତୃ. ଅ)—
Nyāyaka ୧ । ବିଚାରକ—1. Judge.
୨ । ତାର୍କିକ—2. A reasoner; logician.

**ନ୍ୟାୟକର୍ତ୍ତା**—ସଂ. ବିଣ. ପୁଂ. ( ଉପପଦ ତତ୍, ନ୍ୟାୟ + କର୍ତ୍ତୃ )—
Nyāyakarttā ସୁବିଚାରକ—One who does justice; just; equitable.
(ନ୍ୟାୟକର୍ତ୍ତ୍ରୀ—ସ୍ତ୍ରୀ)
ସଂ. ବି—ବିଚାରପତି—Judge.

**ନ୍ୟାୟଗତ**—ସଂ.ବିଣ. (୨ୟା ତତ୍; ନ୍ୟାୟ + ଗତ)—ନ୍ୟାଯ୍ୟ; ନ୍ୟାୟସଙ୍ଗତ—
Nyāyagata Equitable; righteous.

**ନ୍ୟାୟତଃ**—ସଂ. ଅ. (ନ୍ୟାୟ + ତସ୍)—୧ । ନ୍ୟାୟାନୁସାରେ—
Nyāyataḥ 1. Equitably.
୨ । ଧର୍ମତଃ—2 In justice.
୩ । ଯୁକ୍ତିସଙ୍ଗତରୂପେ— 3. Reasonably; rationally.

**ନ୍ୟାୟତା**—ସଂ. ବି. (ନ୍ୟାୟ + ତା)—୧ । ଉପଯୁକ୍ତତା—1. Fitness
Nyāyatā ୨ । ଔଚିତ୍ୟ—2. Propriety.

**ନ୍ୟାୟନିଷ୍ଠ**—ସଂ. ବିଣ ପୁଂ. (ବହୁବ୍ରୀହି; ନ୍ୟାୟ + ନିଷ୍ଠା)—
Nyāyanishṭha ୧ । ନ୍ୟାୟପରାୟଣ—
(ନ୍ୟାୟନିଷ୍ଠା—ସ୍ତ୍ରୀ) 1. Righteous; just.

ନ୍ୟାୟନିଷ୍ଠତା | ବି ୨ । ଅପକ୍ଷପାତ—
ନ୍ୟାୟନିଷ୍ଠତ୍ୱ | 2 Impartial in judgment.

**ନ୍ୟାୟନିଷ୍ଠା**—ସଂ. ବି (୭ମୀ ତତ୍, ନ୍ୟାୟ+ନିଷ୍ଠା)—
Nyāyanishthā ୧ । ନ୍ୟାୟପରାୟଣତା
1. Justice; righteousness; rectitude.
୨ । ଅପକ୍ଷପାତିତା—2 Impartiality; equity.
ସଂ ବିଣ—'ନ୍ୟାୟନିଷ୍ଠ'ର ସ୍ତ୍ରୀଲିଙ୍ଗ—
Feminine of Nyāyanishtha.

**ନ୍ୟାୟ ନିସାପ**—ଦେ. ବି. (ଏକାର୍ଥକ ସହଚର)—ପଞ୍ଚାଏତ ବିଚାର—
Nyāyanisāpa Arbitration
ন্যায়নিসাপ **न्यायनिसाफ**

**ନ୍ୟାୟ ନିସାପ କରିବା**—ଦେ କ୍ରି. ( ସଂ. ନ୍ୟାୟ, ଫା. ଇନ୍‌ସାଫ୍ )—
Nyāya nisāpa karibā କୌଣସି ବିଷୟକୁ ପଞ୍ଚାୟତରେ
(ନ୍ୟାୟ କରିବା ଅନ୍ୟରୂପ) ପକାଇ ବିଚାରଣା କରିବା—
ন্যায় নিসাপ করা To arbitrate; to judge a matter
**न्याय निसाफ करना** by arbitration.

**ନ୍ୟାୟ ପଥ**—ସଂ. ବି. ) ୬ଷ୍ଠୀ ତତ୍, ନ୍ୟାୟ+ପଥ )—
Nyāya patha ୧ । ଧର୍ମ ମାର୍ଗ, ନ୍ୟାଯ୍ୟ ଉପାୟ, ନ୍ୟାୟସମ୍ମତ ମାର୍ଗ—
1 The path of rectitude; the way of
(ନ୍ୟାୟମାର୍ଗ—ଅନ୍ୟରୂପ) righteousness.
୨ । ଆଇନ୍ ସଙ୍ଗତ ଉପାୟ—2 Legitimate means

**ନ୍ୟାୟପର** ସଂ. ବିଣ (ବହୁବ୍ରୀହି, ନ୍ୟାୟ+ପର)—ନ୍ୟାୟପଥଗାମୀ—
Nyāyapara Righteous; just; equitable
(ନ୍ୟାୟପରା—ସ୍ତ୍ରୀ) (ନ୍ୟାୟପରତା—ବି)

**ନ୍ୟାୟ ପରାୟଣ** ସଂ. ବିଣ ପୁଂ. ( ବହୁବ୍ରୀହି, ନ୍ୟାୟ+ପର=ପ୍ରଧାନ,
Nyāya parāyana ଶ୍ରେଷ୍ଠ+ଅୟନ )—ନ୍ୟାୟପର (ଦେଖ)
(ନ୍ୟାୟପରାୟଣା—ସ୍ତ୍ରୀ, ନ୍ୟାୟପରାୟଣତା—ବି) Nyāyapara (See)

**ନ୍ୟାୟବନ୍ତ**—ଦେ. ବିଣ. ( ସଂ. ନ୍ୟାୟବାନ୍ )—ନ୍ୟାୟପରାୟଣ—
Nyāyabanta Just; equitable.
ন্যায়বন্ত ନ୍ୟାୟବନ୍ତ ହୋଇ ଯେ ହୁଅନ୍ତି ଜନ
**न्यायवन्त** ମାଗିଲେ ଅର୍ଥ ଦେଉଥିବ ଦୁଃଖୀ ଜନ । କୃଷ୍ଣସିଂହ-ମହାଭାରତ ୮ବ ।

**ନ୍ୟାୟ ବଳ**—ଦେ. ବି—ସତରଞ୍ଜ ଖେଳ ପରି ଏକ ପ୍ରକାର ଖେଳ—
Nyāya bala A kind of game at chess
ଚଳୁଥିଲେ ଅନୁକ୍ଷଣ କ୍ରୀଡ଼ାରେ ଯାଙ୍କର
ନ୍ୟାୟବଳ ବଳ ରୂପେ କୋଟି କୋଟି ପ୍ରାଣୀ । ରାଧାନାଥ, ମହାଯାତ୍ରା ।

[ ଦ୍ର—ସତରଞ୍ଜ ଖେଳରେ ବିପକ୍ଷ ଖେଳାଳିର ସାରିର ବଳ ଥିଲେ ମଧ୍ୟ ତାକୁ ମାରିବାକୁ ହୁଏ, କିନ୍ତୁ ନ୍ୟାୟବଳ ଖେଳରେ ତାହା ମନା । ବିପକ୍ଷ ପକ୍ଷର ସାରିକୁ ନ୍ୟାୟାନୁମୋଦିତ ଭାବରେ ମାରିବାକୁ ହୁଏ ବୋଲି ଏହାର ନାମ ନ୍ୟାୟବଳ । ]

**ନ୍ୟାୟବାନ୍**—ସଂ. ବିଣ. ପୁଂ: ( ନ୍ୟାୟ+ବତ୍; ୧ମା. ୧ବ )—
Nyāyabān ନ୍ୟାୟପରାୟଣ—Just; righteous.
(ନ୍ୟାୟବତୀ—ସ୍ତ୍ରୀ) (ନ୍ୟାୟବତ୍ତ୍ୱ - ବି)

**ନ୍ୟାୟ ବିଚାର**—ସଂ. ବି. ( ମ. ପ. ଲୋ; ନ୍ୟାୟାନୁମୋଦିତ ବିଚାର )—
Nyāya bichāra ୧ । ଧର୍ମ ବିଚାରଣା—1. Adjudication
୨ । ଅପକ୍ଷପାତ ବିଚାରଣା—
2. Impartial adjudication.

**ନ୍ୟାୟ ବିରୁଦ୍ଧ**—ସଂ. ବି. (୩ୟା ତତ୍, ନ୍ୟାୟ+ବିରୁଦ୍ଧ)—୧ । ଅନ୍ୟାଯ୍ୟ—
Nyāya biruddha 1. Unfair; opposed to fairness.
(ନ୍ୟାୟ ବିରୋଧୀ—ଅନ୍ୟରୂପ) ୩ । ଅଯୌକ୍ତିକ—
3. Unreasonable; absurd; irrational
୪ । ଅବୈଧ—4. Illegitimate; illegal.
(ନ୍ୟାୟବିରୁଦ୍ଧତା—ବି)

**ନ୍ୟାୟ ବୁଦ୍ଧି**—ସଂ. ବି. ( ମ ପ. ଲୋ. କର୍ମଧା ବା ୬ଷ୍ଠୀ ତତ୍, ନ୍ୟାୟ+
Nyāya buddhi ବୁଦ୍ଧି )—ନ୍ୟାୟାନ୍ୟାୟ ବୋଧଶକ୍ତି, ବିବେକ—
Conscience.

**ନ୍ୟାୟରତ୍ନ**—ଦେ. ବି.-୧ । ନ୍ୟାୟଶାସ୍ତ୍ର ପାରଦର୍ଶୀ ପଣ୍ଡିତଙ୍କୁ ପ୍ରଦତ୍ତ
Nyāya ratna ଉପାଧିବିଶେଷ—1. A title given to
ন্যাযরত্ন Sanskrit scholars for proficiency in
**न्यायरत्न** logic.
(ନ୍ୟାୟଭୂଷଣ, ନ୍ୟାୟାଲଙ୍କାର, ନ୍ୟାୟବାଗୀଶ, ନ୍ୟାୟତୀର୍ଥ—ଅନ୍ୟରୂପ)
୨ । ଶ୍ରେଷ୍ଠ ନୈୟାୟିକ—2. A master logician.

**ନ୍ୟାୟ ଶାସ୍ତ୍ର**—ସଂ. ବି.—୧ । ଗୌତମ ଋଷି ପ୍ରଣୀତ ତର୍କଶାସ୍ତ୍ରବିଶେଷ—
Nyāya sāstra 1. The Hindu philosophy started
by sage Gautama.
୨ । ଯୁକ୍ତିଶାସ୍ତ୍ର—Logic; dialectics.

**ନ୍ୟାୟଶୀଳ**—ସଂ. ବିଣ (ବହୁବ୍ରୀହି, ନ୍ୟାୟ+ଶୀଳ)—
Nyāyasila ନ୍ୟାୟପର (ଦେଖ)—Nyāyapara (See).
(ନ୍ୟାୟଶୀଳା—ସ୍ତ୍ରୀ) (ନ୍ୟାୟଶୀଳତା—ବି)

**ନ୍ୟାୟସଙ୍ଗତ**—ସଂ ବିଣ (୩ୟା ତତ୍, ନ୍ୟାୟ+ସଙ୍ଗତ)—୧ । ନ୍ୟାଯ୍ୟ;
Nyāya sangata ନ୍ୟାୟାନୁଗତ—1. Right; conform-
(ନ୍ୟାୟସମ୍ମତ—ଅନ୍ୟରୂପ) able to the rules of logic or
the dictates of justice and equity.
୨ । ଯୁକ୍ତିଯୁକ୍ତ, ଯୁକ୍ତିସଙ୍ଗତ—1 Reasonable.
equitable, rational

**ନ୍ୟାୟ ସଭା**—ସଂ. ବି.—୧ । ଅଦାଲତ—
Nyāya sabhā 1. Court of justice
୨ । ପଞ୍ଚାଏତ ବିଚାରସ୍ଥାନ—2. Court of arbitration.

**ନ୍ୟାୟସାରୀ**—ସଂ. ବିଣ. ପୁଂ (ନ୍ୟାୟ+ସୃ ଧାତୁ+କର୍ତ୍ତୃ ଇନ୍)—ନ୍ୟାୟ
Nyāyasāri ବା ଯୁକ୍ତିପୂର୍ବକ କାର୍ଯ୍ୟ କରିବା ବ୍ୟକ୍ତି—Acting
(ନ୍ୟାୟସାରିଣୀ—ସ୍ତ୍ରୀ) rightly, justly or reasonably.

**ନ୍ୟାୟ ସୂତ୍ର**—ସଂ. ବି. (୬ଷ୍ଠୀ ତତ୍; ନ୍ୟାୟ+ସୂତ୍ର)—ନ୍ୟାୟଶାସ୍ତ୍ରୋକ୍ତ
Nyāya sūtra ଯୁକ୍ତିଯୁକ୍ତ ପଦ ବା ବାକ୍ୟ—Syllogism;
logical proposition or aphorism.

**ନ୍ୟାୟାଗତ**—ସଂ. ବିଣ (୩ୟା ତତ୍, ନ୍ୟାୟ+ଆଗତ)—ନ୍ୟାଯ୍ୟ—
Nyāyāgata Rational; equitable.

**ନ୍ୟାୟାଚାର**—ସଂ. ବି (ମ ପ. ଲୋ କର୍ମଧା; ନ୍ୟାୟାନୁଗତ ଆଚାର)—
Nyāyāchāra ସଦାଚାର, ଧର୍ମାଚରଣ—Virtuous course
of action; good conduct

**ନ୍ୟାୟାଧିକରଣ**—ସ. ବି. (୬ଷ୍ଠୀ ତତ୍, ନ୍ୟାୟ+ଅଧିକରଣ)—କୋର୍ଟ, ଅଦାଲତ—A court of justice.
Nyāyādhikaraṇa

**ନ୍ୟାୟାଧୀଶ**—ସ. ବି (୬ଷ୍ଠୀ ତତ୍, ନ୍ୟାୟ+ଅଧୀଶ) ବିଚାରପତି, ଜଜ- (ନ୍ୟାୟାଧିପତି—ଅନ୍ୟରୂପ) A judge
Nyāyādhīśa

**ନ୍ୟାୟାନୁଗତ**—ସ ବିଣ. (୭ମୀ ତତ୍, ନ୍ୟାୟ+ଅନୁଗତ)—
Nyāyānugata ୧ । ଯୁକ୍ତିଯୁକ୍ତ—1. Rational, logical.
ନ୍ୟାୟାନୁମତ } ଅନ୍ୟରୂପ ୨ । ବିବେକସମ୍ମତ—
ନ୍ୟାୟାନୁମୋଦିତ } 2 Conscientious
୩ । ନ୍ୟାୟସମ୍ମତ—3. Conformable to the principles of justice, equity or logic.

**ନ୍ୟାୟାନ୍ୟାୟ**—ସ. ବି (ଦ୍ୱନ୍ଦ୍ୱ, ନ୍ୟାୟ+ଅନ୍ୟାୟ)—୧ । ନ୍ୟାୟ ଓ ଅନ୍ୟାୟ—1 Right and wrong
Nyayanyāya
୨ । ବିଚାର ଓ ଅବିଚାର—2. Justice and injustice
ବିଣ—ନ୍ୟାଯ୍ୟ ଓ ଅନ୍ୟ —Right & wrong.

**ନ୍ୟାୟାଳୟ**—ସ. ବି. ( ୬ଷ୍ଠୀ ତତ୍, ନ୍ୟାୟ+ଆଳୟ )—କଚେରି; ଅଦାଲତ—A court of justice.
Nyāyalaya

**ନ୍ୟାୟୀ**—ସ. ବିଣ. ପୁଂ. (ନ୍ୟାୟ+ଅସ୍ତ୍ୟର୍ଥେ ଇନ୍, ୧ମା ୧ବ. )—
Nyāyī ୧ । ନ୍ୟାୟପର—1 Righteous; just.
( ନ୍ୟାୟିନୀ—ସ୍ତ୍ରୀ ) ୨ । ନ୍ୟାୟକର୍ତ୍ତା—2. Doing justice

**ନ୍ୟାୟୋପେତ**—ସ. ବିଣ ପୁଂ. ( ୩ୟା ତତ୍; ନ୍ୟାୟ+ଉପେତ=ଗତ, ପ୍ରାପ୍ତ )—ନ୍ୟାୟନିଷ୍ଠ—Righteous
Nyāyopeta
(ନ୍ୟାୟୋପେତା—ସ୍ତ୍ରୀ)

**ନ୍ୟାଯ୍ୟ**—ସ. ବିଣ. ( ନ୍ୟାୟ+ଅନପେତାର୍ଥେ. ଯ )—୧ । ନ୍ୟାୟସଙ୍ଗତ, ଯୁକ୍ତିଯୁକ୍ତ—1. Reasonable; just, equitable, right
Nyājya
(ନ୍ୟାଯ୍ୟତା, ନ୍ୟାଯ୍ୟତ୍ୱ—ବି)
୨ । ଯଥାର୍ଥ—2 True
୩ । ଯୋଗ୍ୟ—3 Fit
୪ । ଉଚିତ—4. Proper.
୫ । ବୈଧ, ଆଇନସଙ୍ଗତ—
5. Legitimate; legal
୬ । ଯାହା ନ୍ୟାୟ ବା ଆଇନଦ୍ୱାରା ଲଭ୍ୟ—
6 Legally recoverable or receivable

**ନ୍ୟାଯ୍ୟ ଦାବି**—ଦେ. ବି. ( କଚେରିଆ )—ଆଇନ୍‌ସଙ୍ଗତ ଦାବି—
Nyājya dābi Legitimate claim.

**ନ୍ୟାଯ୍ୟ ଦେଣ(ଣା)**—ଦେ ବିଣ ( କଚେରିଆ )—ଯେଉଁ ଧନ ଆଇନ ଅନୁସାରେ ଦେୟ ଅଟେ—
Nyājya de-eṇa(ṇā)
[ନ୍ୟାୟ ଦେୟ (ଣ)(ଣା)—ଅନ୍ୟରୂପ] Legally payable (due).
ଦେ. ବି (କଚେରିଆ)—ଆଇନ ଅନୁସାରେ ଦେୟ ଧନ—
Legally enforceable due

**ନ୍ୟାଯ୍ୟ ପାଉଣା**—ଦେ. ବି. (କଚେରିଆ)—ଆଇନଦ୍ୱାରା ଲଭ୍ୟ ପ୍ରାପ୍ୟ—
Nyājya pāuṇā Legally recoverable dues; legitimate dues
(ନ୍ୟାଯ୍ୟପ୍ରାପ୍ୟ—ଅନ୍ୟରୂପ)
ଦେ. ବିଣ. (କଚେରିଆ)—ଆଇନ ଅନୁସାରେ ଯାହା କୌଣସି ବ୍ୟକ୍ତିର ପ୍ରାପ୍ୟ—Legally due to a person.

**ନ୍ୟାସ**—ସ. ବି. ( ନି+ଅସ୍ ଧାତୁ=କ୍ଷେପଣ କରିବା+ଭାବ. ଅ )—
Nyāsa ୧ । ଅର୍ପଣ, ଉପାଚ୍ଛନ୍ନ, ସଂରକ୍ଷଣାର୍ଥ ଧନାଦି ଅର୍ପଣ—
1. Commitment; depositing; entrusting.
୨ । ସ୍ଥାପନ; ଥୋଇବା, ରଖିବା—
2. Setting down; placing.
୩ । ନିକ୍ଷେପ—3. Throwing.
୪ । ଶ୍ୱାସ-ପୂରଣ, ଧାରଣ ଓ ରେଚନପୂର୍ବକ ମନ୍ତ୍ରଜପ;ପୂରକ, କୁମ୍ଭକ ଓ ରେଚକପୂର୍ବକ ମନ୍ତ୍ରଜପ—
4. The act of repeating a formula while regulating the breath.
୫ । ( +କର୍ମ. ଅ ) ଗଚ୍ଛିତ ଦ୍ରବ୍ୟ—
5 A deposit; a pledge
୬ । ବନ୍ଧକ ଦେବା—6 Mortgaging, pledging
୭ । ବନ୍ଧକ ଦିଆଯିବା ସମ୍ପତ୍ତି—
7. Mortgaged property, pledge; pawn.
୮ । ତ୍ୟାଗ, ବର୍ଜନ—
8. Abandonment; renunciation.
୯ । ମନରେ କୌଣସି ଭାବର ଦୃଢ଼ାଧିଷ୍ଠାନ, ଧାରଣା—
9 Mental impression; conviction
୧୦ । ସନ୍ନ୍ୟାସ—10 Renunciation of the world.
୧୧ । ( ସଙ୍ଗୀତ ) ରାଗର ସମାପକ ସ୍ୱର (ପ୍ରକୃତିବାଦ)—
11 ( music ) The tune which ends a musical air
୧୨ । ପୂଜା କରିବା ସମୟରେ ତାନ୍ତ୍ରିକ ପଦ୍ଧତି ଅନୁସାରେ ମନ୍ତ୍ରପାଠପୂର୍ବକ ଦେବତାଙ୍କ ଭିନ୍ନ ଭିନ୍ନ ଅଙ୍ଗରେ (ଯଥା—କର, ହୃଦୟ, ଶିରଃ, ଶିଖା, କବଚ, ନେତ୍ରାଦି ଧ୍ୟାନପୂର୍ବକ ଉକ୍ତ ଅଙ୍ଗମାନଙ୍କରେ) ଭିନ୍ନ ଭିନ୍ନ ବର୍ଣ୍ଣ ସ୍ଥାପନ—
12. The symbolical placing of different letters in the different parts of the body of a Deity during esoteric worship.
୧୩ । ଯଥାସମୟରେ ପ୍ରତ୍ୟର୍ପିତ ହେବା ବା ବ୍ୟୟିତ ହେବାପାଇ କୌଣସି ବ୍ୟକ୍ତିଙ୍କଠାରେ ଅର୍ପିତ ଧନ—13. Deposit on trust for a particular purpose.
୧୪ । କୌଣସି ବାଧା ବା ରୋଗର ଶାନ୍ତ୍ୟର୍ଥେ ବାଧାଗ୍ରସ୍ତ ବା ରୋଗୀର ଭିନ୍ନ ଭିନ୍ନ ଅଙ୍ଗରେ ହସ୍ତ ସ୍ଥାପନପୂର୍ବକ ମନ୍ତ୍ରପାଠ (ହି. ଶ)—14. The act of reciting set formulae by touching the different parts of the body of a patient or a person affected by evil influence, to drive away the evil influence; the act of making hypnotic passes with the hand.
ଦେ. ବି – ପରମ୍ପରାଗତ ବ୍ୟବସ୍ଥା—Rule obtaining from time immemorial

କଥି ଅଧିକ କି ଶାଶୁଠାବରୁ
ବୋଧ ତାକୁ ବାଣୀ ଏହି ନ୍ୟାସରୁ । ଉଜ୍ଜ. ବୈଦେହୀଶବିଳାସ ।

**ନ୍ୟାସ ଧାରକ**—ସଂ. ବି. ପୁଂ (ଉପପଦତତ୍, ନ୍ୟାସ+ଧାରକ)—
Nyāsa dhārka ୧ । ବନ୍ଧକଗ୍ରାହୀ—1. Mortgagee; pledgee
(ନ୍ୟାସଧାରୀ, ନ୍ୟାସରକ୍ଷକ—ଅନ୍ୟରୂପ)
୨ । ଗଚ୍ଛିତବସ୍ତୁର ଜମ୍ମାଦାର—
2. Trustee; a holder of a deposit

**ନ୍ୟାସ ଧାରଣ**—ସଂ. ବି (୬ଷ୍ଠୀ ତତ୍, ନ୍ୟାସ+ଧାରଣ)—୧ । ଗଚ୍ଛିତ
Nyāsa dhāraṇa ବସ୍ତୁର ସଂରକ୍ଷଣ—1. Holding in trust.
ନ୍ୟାସରକ୍ଷଣ, ନ୍ୟାସରକ୍ଷା } ଅନ୍ୟରୂପ
୨ । କୌଣସି ବସ୍ତୁକୁ ନ୍ୟାସରୂପେ ରକ୍ଷିବା—2. Safe custody of a deposit, keeping in trust.

**ନ୍ୟାସାପହ୍ନବ**—ସଂ. ବି (୬ଷ୍ଠୀ ତତ୍, ନ୍ୟାସ+ଅପହ୍ନବ=ଅସ୍ୱୀକାର)—
Nyāsāpahnaba ୧ । ନ୍ୟାସର ଅସ୍ୱୀକାର—1. The denial of a deposit
(ନ୍ୟାସାପହ୍ନୁତି—ଅନ୍ୟରୂପ)
୨ । ନ୍ୟସ୍ତ ବସ୍ତୁ ବା ଧନର ଅପବ୍ୟବହାର—
2. Abuse of trust; breach of trust

**ନ୍ୟାସିକ**—ସଂ. ବି ପୁଂ (ନ୍ୟାସ+କ, ଇ ଆଗମ)—
Nyāsika ୧ । ଗଚ୍ଛିତ ବସ୍ତୁ ବା ଧନର ରକ୍ଷକ—1. Trustee.
(ନ୍ୟାସିକା—ସ୍ତ୍ରୀ) ୨ । ବନ୍ଧକଗ୍ରହୀତା—2 Mortgagee.
୩ । ସନ୍ନ୍ୟାସୀ—3. A person who has renounced the world.
୪ । ନ୍ୟାସକାରୀ—4 A person who entrusts a thing with another.
ସଂ. ବିଣ—ଯାହା ନିକଟରେ ଗଚ୍ଛିତ ବସ୍ତୁ ରଖାଯାଏ—
Entrusted with a trust property

**ନ୍ୟାସିବା**—ଦେ. (ପଦ୍ୟ) କ୍ରି (ସଂ. ନ୍ୟାସ)—୧ । (କଥା) ପ୍ରୟୋଗ
Nyāsibā କରିବା—To apply (words).
न्यासना
ବାଣୀ ନ୍ୟାସେ କେ ଅନ୍ୟାସେ ସେ ଭାରତୀ ଉତ ସେ । ଉଣ, ବୈଦେହୀଶବିଳାସ ।
୨ । ଯଥା ସ୍ଥାନରେ ସନ୍ନିବେଶିତ କରିବା—
2. To place or adjust in the proper place
ପଦକ ନ୍ୟାସି ସମୀରଣେ
ସେ ବକ୍ଷ ଦେହାଦ ଧାରଣେ । ଜଗନ୍ନାଥ, ଭାଗବତ ।
୩ । ଅର୍ପଣ କରିବା—3. To entrust
ସେ ମୂର୍ତ୍ତି ଶରୀର ଧାରଣେ
ନ୍ୟାସିବ ପରମକାରଣେ । ଜଗନ୍ନାଥ, ଭାଗବତ
୪ । ଦେବା; ଦାନ କରିବା—
4 To give; to make over.

**ନ୍ୟାସୀ**—ସଂ. ବି ଓ ବିଣ. ପୁଂ. (ନ୍ୟାସ+ଅସ୍ତ୍ୟର୍ଥେ ଇନ୍, ୧ମା. ୧ବ)—
Nyāsi ନ୍ୟାସିକ (ଦେଖ)—Nyāsika (See)
(ନ୍ୟାସିନୀ—ସ୍ତ୍ରୀ)

**ନ୍ୟାହି**—ଦେ. ବି—ନିହାଇ (ଦେଖ)
Nyāhi Nihāi (See)

**ନ୍ୟୁବ୍ଜ**—ସଂ. ବିଣ (ନି=ନୁହେଁ+ଉବ୍ଜ୍ ଧାତୁ=ସରଳ ହେବା+କର୍ତ୍ତୃ. ଅ)—୧ । ବଙ୍କା, ବକ୍ର—1. Crooked; bent.
Nyubja
(ନ୍ୟୁବ୍ଜା—ସ୍ତ୍ରୀ) ୨ । ଉପରଆଡ଼କୁ ବାଙ୍କିଥିବା ବା ଗୋଲ ହୋଇଥିବା—2 Bent upwards; convex
(ନ୍ୟୁବ୍ଜତା - ବି)
୩ । ଅଧୋମୁଖ—3 Stooping; looking downwards
୪ । ବକ୍ରୀକୃତ—4. Warped
୫ । ଓଲଟି ପଡ଼ିଥିବା—5. Reversed
୬ । କୁଜା—6 Hump-backed; crook-backed
ସଂ. ବି—୧ । ଚଟୁ, ଅଣକ—1. A ladle
୨ । ଗୋଲାକାର ପଦାର୍ଥର ପିଠିଭାଗ—
2. The convex surface of a round thing.
୩ । କରମଙ୍ଗା (ଫଳ) (ଦେଖ)
3 Karamaṅgā (fruit) (See)
୪ । କୁଶ—
4. A kind of sacrificial grass; Poa Cynosuroides
୫ । ମାଳା (ଜପ ଇ) (ଜପ ଶ)—Rosary of beads

**ନ୍ୟୁବ୍ଜଦେହ** - ସଂ. ବିଣ (ବହୁବ୍ରୀହି, ନ୍ୟୁବ୍ଜ+ଦେହ) - ୧ । କୁଜା
Nyubjadeha ପିଠିଆ—1. Hump backed
ନ୍ୟୁବ୍ଜଦେହା - ସ୍ତ୍ରୀ
ନ୍ୟୁବ୍ଜପୃଷ୍ଠ, ନ୍ୟୁବ୍ଜଦେହୀ—ଅନ୍ୟରୂପ
୨ । ଉପର ଆଡ଼କୁ କୁଜା—2. Convex.

**ନ୍ୟୂନ**—ସଂ ବିଣ (ନି+ଊନ୍ ଧାତୁ=କମ୍ ହେବା+କର୍ତ୍ତୃ. ଅ)—
Nyūna ୧ । ଜଘନ୍ୟ—2. Vile; detestable.
(ନ୍ୟୂନା—ସ୍ତ୍ରୀ) ୨ । ହୀନ, ନୀଚ—2 Low; mean
(ନ୍ୟୂନତା, ନ୍ୟୂନତ୍ୱ—ବି) ୩ । ଅଳ୍ପ, କ୍ଷୁଦ୍ର—3 Small; little
୪ । ଅଭାବଯୁକ୍ତ—4 Deficient.
୫ । ଅକୁଳାନ, କମତି—5 Wanting, deficient.
୬ । ଅଳ୍ପତର—6. Less

**ନ୍ୟୂନକଳ୍ପେ**—ଦେ. କ୍ରି. ବିଣ—୧ । ନିତାନ୍ତ ପକ୍ଷରେ; ଅତି କମରେ—
Nyūnakalpe 1. At the least computation.
न्यूनकल्पे; न्यूनपक्षे
कमसे कम
୨ । ଅତି କ୍ଷୁଦ୍ରଭାବରେ—
2. On a small scale.
(ନ୍ୟୂନକଳ୍ପରେ, ନ୍ୟୂନପକ୍ଷରେ, ନ୍ୟୂନପକ୍ଷେ—ଅନ୍ୟରୂପ)

**ନ୍ୟୂନଧୀ**—ସଂ. ବିଣ. (ବହୁବ୍ରୀହି; ନ୍ୟୂନ+ଧୀ)—୧ । ଅଜ୍ଞ—
Nyūnadhi 1. Ignorant.
୨ । ହୀନବୁଦ୍ଧିଆ—2. Lowminded, ignoble.

**ନ୍ୟୂନପଞ୍ଚାଶଦ୍ଭାବ**—ସଂ. ବିଣ—୧ । ଊନପଞ୍ଚାଶତ୍ ବାୟୁଗ୍ରସ୍ତ, ପାଗଳ;
Nyūnapañchāśadbhāba ବାତୁଳ—1. Mad; lunatic.
୨ । ହତଜ୍ଞାନ—2. Idiotic; stupid

**ନ୍ୟୂନାଙ୍ଗ**—ସଂ. ବିଣ. ପୁଂ. (ବହୁବ୍ରୀହି; ନ୍ୟୂନ+ଅଙ୍ଗ)—ବିକଳାଙ୍ଗ—
Nyūnāṅga (ନ୍ୟୂନାଙ୍ଗୀ—ସ୍ତ୍ରୀ) Maimed; mutilated.

**ନ୍ୟୂନାତିରିକ୍ତ**—ସଂ. ବିଣ. (କର୍ମଧା; ନ୍ୟୂନ+ଅତିରିକ୍ତ)—ଅଳ୍ପାଧିକ;
Nyūnātirikta କମ ବେଶୀ; ଅଳ୍ପ ବହୁତ—More or less.
ବିଣ ର ବିଣ—ପ୍ରାୟ—Nearly; almost; about.

ନ୍ୟୂନାତିରେକ—ସଂ. ବି. ( ନ୍ୟୂନ+ଅତିରେକ )—ସାମାନ୍ୟରେ କମ
Nyūnātireka ବେଶୀ ଅବସ୍ଥା, ଅଳ୍ପାଧିକ୍ୟ, କମ ବେଶୀ, ତାରତମ୍ୟ—Deficiency or excess, desparity

ନୂ୍ୟନାଧିକ—ସଂ. ବିଣ. ( ନ୍ୟୂନ+ଅଧିକ )—ନ୍ୟୂନାତିରିକ୍ତ ( ଦେଖ )
Nyūnādhika Nyūnātirikta ( See )

ନ୍ୟୂନାଧିକ୍ୟ—ସଂ. ବି. (ନ୍ୟୂନ+ଆଧିକ୍ୟ)—ନ୍ୟୂନାତିରେକ ( ଦେଖ )
Nyūnādhikya Nyūnātireka ( See )

ନ୍ୟୂନେନ୍ଦ୍ରିୟ—ସଂ. ବିଣ. ପୁଂ (ବହୁବ୍ରୀହି, ନ୍ୟୂନ+ଇନ୍ଦ୍ରିୟ )—ବିକଳେନ୍ଦ୍ରିୟ, ଯାହାର କେତେକ ଇନ୍ଦ୍ରିୟ ନାହିଁ
Nyūnendriya
( ନ୍ୟୂନେନ୍ଦ୍ରିୟତା—ବି ) Deprived of some organs;
(ନ୍ୟୂନେନ୍ଦ୍ରିୟା—ସ୍ତ୍ରୀ) wanting some of the organs.

# ପ

ପ—ଏକବିଂଶ ବ୍ୟଞ୍ଜନବର୍ଣ୍ଣ, 'ପ' ବର୍ଗର ପ୍ରଥମ ବର୍ଣ୍ଣ—The 21st
Pa consonant of the alphabet corresponding to 'P'.

[ ଦ୍ର—ଏହାର ଉଚ୍ଚାରଣ ସ୍ଥାନ ଓଷ୍ଠ । ଏଥିପାଇଁ ଏହାକୁ ଓଷ୍ଠ୍ୟ ବର୍ଣ୍ଣ ବୋଲାଯାଏ । ଏହା ଦୁଇ ଓଷ୍ଠ ସାହାଯ୍ୟରେ ଉଚ୍ଚାରିତ ହୁଏ । ଏହାକୁ ସ୍ପର୍ଶ ବର୍ଣ୍ଣ ବୋଲାଯାଏ । ]

ସଂ. ବି. ( ପା ଧାତୁ=ପାଳନ କରିବା+କର୍ତ୍ତୃ ଅ )—
୧ । ରାଜା—1 King.
୨ । ରାଜପୁତ୍ର—2 Prince
୩ । ଶାସ୍ତା, ଶାସନକର୍ତ୍ତା—3 Ruler.
୪ । ( ପବ୍ ଧାତୁ=ପବିତ୍ର+କର୍ତ୍ତୃ ଅ ) —୧ । ବାୟୁ—4 Air
୫ । ଅଣ୍ଡ—5. Egg.
୬ । ( ପା ଧାତୁ=ପାନ କରିବା+ଭାବ ଅ ) ପାନ—6. Drinking.
୭ । (+କରଣ. ଅ) ପାତ୍ର—7. Vessel.
୮ । ରକ୍ଷା—8 Protection.

(ପା—ସ୍ତ୍ରୀ) [ ଦ୍ର—ଏହା ଅନ୍ୟ ଶବ୍ଦ ପରେ ପଦାଂଶରୂପେ ବ୍ୟବହୃତ ହୋଇ ପୁଂଲିଙ୍ଗ ବିଶେଷଣ ଶବ୍ଦ ହୋଇ ନିମ୍ନଲିଖିତ ଅର୍ଥ ପ୍ରକାଶ କରେ—୧. ଯେ ପାନ କରେ ( ଯଥା—ମଧୁପ, ଦ୍ଵିପ, ପାଦପ ), ୨ ଯେ ପାଳନ କରେ ବା ରକ୍ଷା କରେ ( ଯଥା—ଗୋପ, ନୃପତି ); ୩. ଯେ ଶାସନ କରେ ( ଯଥା—ନୃପ, ଭୂପ । ]

ଦେ. ବି—ପଅ ( ଦେଖ )—Pa-a ( See )

ପଅ—ଦେ ବି ( ସଂ. ପାଦ )—ପୁଅ, ପଶାଖେଳରେ କାଠିରେ ପଡିବା
Pa-a ଏକସଂଖ୍ୟକ ଦାନ—The turn of dice representing the number 1 ( one )
ପୋଆ
ପଅ ( ଯଥା—ପଅ ବାଆର=୧+୧୨=୧୩ । )

ପଅଁ—ଦେ ଅ (ଧ୍ଵନ୍ୟନୁକରଣ)—ପଁ (ଦେଖ) Paṅ (See)
Pa-aṅ (ପଅଁ ପଅଁ—ଅନ୍ୟରୂପ)

ପଅଁଜମ୍—ବୈଦେ. ବି ( ଫା ) ପାଞ୍ଜିମ୍ ( ଦେଖ )
Pa-aṅjam Pāuṅjam ( See )

ପଅଁତିରଶ(ଶି)—ଦେ. ବି ଓ ବିଣ. (ସଂଖ୍ୟାବାଚକ) —ପଇଁତିରିଶ (ଦେଖ)
Pa-aṅtisa si) Paiṅtirisa ( See )
( ପଅଁତିରଶ[ଶି], ପଅଁତିଶ[ଶି] ଅନ୍ୟରୂପ )

ପଅଁତିଶାଶଏ(ହେ)—ଦେ. ବି ଓ ବିଣ (ସଂଖ୍ୟାବାଚକ)—ଏକଶତ ପଞ୍ଚତିରିଶ -- One hundred thirtyfive
Pa-aṅtisāsae(he)
[ପଅଁତିରଶାଶଏ(ହେ); ପଅଁତିଶାଶଏ(ହେ)—ଅନ୍ୟରୂପ]

ପଅଁର (ଇତ୍ୟାଦି)—ଦେ ବି —ପହଁର ଇତ୍ୟାଦି ( ଦେଖ )
Pa-aṅra (etc) Pahaṅrā etc (See)

ପଅଁରି—ପ୍ରାଦେ. (ସମ୍ବଲପୁର) ବି (ଭୁଲ. ହି. ପୈଞ୍ଜୀ) —ଗୋଡ଼ର ବଳା—
Pa-aṅri Anklet

ପଅଁଷଠାଶଏ(ହେ)—ଦେ ବି ଓ ବିଣ. ( ସଂ ପଞ୍ଚଷଷ୍ଟ୍ୟୁତ୍ତରଶତ )—
Pa-aṅshaṭhāsae(he) ଏକଶ ପଅଁଷଠି, ୧୬୫—One hundred and sixty five

ପଅଁଷଠି—ଦେ ବି ଓ ବିଣ (ସଂଖ୍ୟାବାଚକ, ସଂ. ପଞ୍ଚଷଷ୍ଟି; ପ୍ରା ପଞ୍ଚସଠ୍ଠି)—
Pa-aṅshaṭhi ଷାଠିଏ ଅପେକ୍ଷା ୫ ଊର୍ଦ୍ଧ୍ଵ ସଂଖ୍ୟା, ୬୫—
ପଯଁଷଠି **पैंसठ** (ପଁଷଠି - ଅନ୍ୟରୂପ) Sixty five; 65

ପଅଣ୍ଡ—ଦେ ବି —ପରଣ୍ଡ ( ଦେଖ )
Pa-anda Paranda ( See )

ପଅ ଫାଟିବା—ପ୍ରାଦେ ( ସାକ୍ଷୀପୁର ) ବି —ପସର ଫାଟିବା—
Pa-a phāṭiba Daybreak, dawn

ପଅ ବାଆର—ଦେ. ବି. ( ସଂ ପାଦ )—୧ । ପଶାଖେଳର କାଠିରେ
Pa-a bā-āra ପଡିବା ୧୩ ସଂଖ୍ୟକ ଦାନ—1. The turn
ପୋଆବାର, ପଅ'ବାର; ପ'ବାର of dice resulting in 13.
**पअबार** [ ଦ୍ର—୩ଖଣ୍ଡ ପଶାକାଠି ମଧ୍ୟରୁ ଏକ ଖଣ୍ଡରେ '୧' ଏବଂ ଅନ୍ୟ ଦୁଇଖଣ୍ଡରେ ପ୍ରତ୍ୟେକରେ '୬' ଦାନ ପଡିଲେ ପଅ ବାଆର ହୁଏ । ଏପରି ଦାନ ସହଜରେ ପଡ଼େ ନାହିଁ । ]
ପଅବାର, ପ ବାର, ପଦ୍ମବାର, ପୁଅବାର, ପୋବାଆର, ପୋବାର — ଅନ୍ୟରୂପ

୨ । ( ଲକ୍ଷଣାର୍ଥ ) ଆନନ୍ଦର ସମୟ, ସୌଭାଗ୍ୟବେଳ, ସୁଯୋଗ; ମଉଜ ମଜଲସର ବେଳ—2 A good opportunity; a time of merriment or joy.
( ଯଥା ଅବଧାନେ ଆଜ ଗାଆଁକୁ ଯାଇଛନ୍ତି ବୋଲି ପିଲାଙ୍କ ପଅ ବାଆର ପଡିଛି । )

ପଅରଦିନ—ଦେ. ବି. ( ସଂ. ପରେଦ୍ୟୁଃ )—ପରଦିନ, ଗତ କାଲର ପୂର୍ବ
Pa-aradina ଦିନ ଓ ଆଗାମୀ କାଲିର ପର ଦିନ—Day after
ପରଶୁ **परसों** tomorrow; day before yesterday.
( ପଅରଦିନ—ଅନ୍ୟରୂପ ) ମୋ ବାଇଧନ । ପିଠା କରଦେବ ପଅରଦିନ—କେବାଙ୍କ ଧୂକ ଜା ଗୀତ ।

ସାଧାରଣ ଲେକେ ଅପର ପୃଷ୍ଠାରେ ୧ଠର ୧ ଚକ୍ଷ୍ଣ ଅକ୍ଷର ଓ ମାତ୍ରା ଏବଂ ୨ ଚକ୍ଷ୍ଣ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚକ୍ଷ୍ଣର କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଅଭିଧାନରେ ନ ମିଳେ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚକ୍ଷ୍ଣର ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ଼' ନ ମିଳିଲେ 'ଗାଢ' ଖୋଜିବେ, 'କୁଅ' ନ ମିଳିଲେ 'କୂଅ' ଦେଖିବେ, 'ବଧୂ' ନ ପାଇଲେ 'ବଧୁ' ଦେଖିବେ, 'ଅର୍ଘ୍ୟ' ନ ପାଇଲେ 'ଅର୍ଘ' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ।

**ପଇ**—ଦେ ବି. (ସଂ ପ୍ରଧି)—୧ । ପହି, ଶଗଡ଼ଚକର ପରିଧିକୁ ଘେରି ଥିବା ଲୌହମୟ ବଳୟ—1. The iron-ring surrounding the rim of a cart.
Pai
ସାମା
**पहियेका घुरा, पहिया**
୨ । ଶଗଡ଼ ଚକର ପରିଧିରେ ଯୋଡ଼ା ହୋଇଥିବା କାଠ ଖଣ୍ଡମାନ, ନେମି—2. The wooden arcs forming the circumference of a wheel
୩ । ଶଗଡ଼ ଚକଦ୍ୱାରା ଭୂମିରେ ଅଙ୍କିତ ରେଖା—3 The track or mark left by the wheels of a cart; cart-track.
୪ । (ସଂ. ପରିଧି) କ୍ଷେତର ଚତୁର୍ଦ୍ଦିଗରେ ଦିଆ ଯିବା ମାଟିର ଉଚ୍ଚ ହିଡ଼—4. A high wall of earth raised round a field with crops in it.
বড়আল
**टीला**

**ପଇଆ**—ଦେ. ବି (ସଂ. ପରିଧି)—ଶଗଡ଼ ଚକ—Cart wheel; the whole circumference of the wheel.
Paia
চাকা (ପୈଆ, ପହିଆ—ଅନ୍ୟରୂପ)

**ପଇଆ ମାରିବା**—ଦେ କ୍ରି.—ଶଗଡ଼ର ଚକ ପଙ୍କରେ ଲାଗି ଗଲେ ଓ ବଳଦ ଥକି ଗଲେ ଶଗଡ଼କୁ ଚଳାଇବା ନିମନ୍ତେ ଚକର ପରିଧିକୁ ହାତଦ୍ୱାରା ଠେଲିବା—To push on a cart by applying the hands to the wheel.
Paia māriba
চাকাঠেলা
**पहिया मारना**
(ପଇଆ ଠେଲିବା—ଅନ୍ୟରୂପ)

**ପଇ ଆମ୍ବଗଛ**—ପ୍ରାଦେ. (ଗଞ୍ଜାମ)—ବି.—କଲମୀ ଆମ୍ବଗଛ—Mango graft.
Pai āmba gachha

**ପଇ ଉଠା(ଠେ)ଇବା**—ଦେ. କ୍ରି.—କ୍ଷେତର ଚତୁର୍ଦ୍ଦିଗରେ ମାଟିର ଚେକା ଦ୍ୱାରା ବାଡ଼ କରିବା—To raise a wall or high ridge of sods round a field.
Pai uṭhā(ṭhe)iba
আল দেওয়া
(ପଇ ଚେକିବା, ପଇ ଦେବା; ପଇ ବସା[ସେ]ଇବା—ଅନ୍ୟରୂପ)

**ପଇଁଚାଳିଶ(ଶି)** (ଇତ୍ୟାଦି)—ଦେ.ବି ଓ ବିଣ—ପଞ୍ଚଚାଳିଶ ଇତ୍ୟାଦି (ଦେଖ)
Paiñchālisa(si) (etc) Pañchālisa etc (See)

**ପଇଁତିରିଶ(ଶି)**—ଦେ. ବି ଓ ବିଣ (ସଂଖ୍ୟାବାଚକ) (ସଂ ପଞ୍ଚତ୍ରିଂଶ, ପ୍ରା. ପଞ୍ଚତ୍ତିଁସ)—ତିରିଶ ଅପେକ୍ଷା ୫ ଊର୍ଦ୍ଧ୍ୱ ସଂଖ୍ୟା; ୩୫ ସଂଖ୍ୟା—35; Thirty five.
Paiñtirisa(si)
পয়ঁত্রিশ **पैंतीस**
ପଇଁତିଶ(ଶି),ପଞ୍ଚତିରିଶ(ଶି)ପୈଁତିଶ, ପୈଁତିରିଶ(ଶି), ପୈଁତିଶ, ପଇଁତିଶ(ଶି) } ଅନ୍ୟରୂପ

**ପଇଁତିରିଶାଶଏ(ହେ)**—ଦେ. ବି ଓ ବିଣ (ସଂଖ୍ୟାବାଚକ, ସଂ. ପଞ୍ଚତ୍ରିଂଶୋତ୍ତରଶତ)—ଏକ ଶତ ପଇଁତିରିଶ; ୧୩୫—135; One hundred and thirtyfive.
Paiñ tirisā sae(he)
[ପଇଁତିଶାଶଏ(ହେ)—ଅନ୍ୟରୂପ]
(ଯଥା—ପନ୍ଦର କୁଆଁ ପଇଁତିରିଶାଶହେ ପଣ ଆଠ କାହାଣ ସାତପଣ—ପଣିକିଆ, ଏଥିପର ପଇଁତିରିଶା ତୁଇଶ (ଶ,ଶଅ,ଶହ.)=୧୩୫)

**ପଇଁରି**—ପ୍ରାଦେ. (ସମ୍ବଲପୁର) ବି.—ପଅଁରି (ଦେଖ)
Paiñri Pa-añri (See)

**ପଇକାର(ରୀ)**—ବୈଦେ. ବି. (ଫା ପୈକାର୍)—କୋଠ୍ ବିକ୍ରି କରିବା ବେପାରି, ଯେଉଁ ବେପାରି ବଡ଼ ମହାଜନ ଠାରୁ ସଉଦା ଆଣି ଗ୍ରାହକମାନଙ୍କୁ ଅଳ୍ପ ଅଳ୍ପ ପରିମାଣରେ ବିକ୍ରି କରେ—1. Retail trader; a hawker trading in retail.
Paikār (rī)
পাইকারি
**पैकार(री)**
(ପଇକାରିଆ—ଅନ୍ୟରୂପ)
୨ । ଅଳ୍ପ ମୂଳ ଧନ ଥିବା ବେପାରି—2 A petty trader
ଦେ. ବିଣ.—କୋଠ୍ ବିକ୍ରି ସମ୍ବନ୍ଧୀୟ—Relating to retail sale or trade.

**ପଇକାରି**—ବୈଦେ. ବି. (ଫା. ପୈକାରୀ)—୧ । କୋଠ୍ ବିକ୍ରି, ପଣ୍ୟ ଦ୍ରବ୍ୟର ଅଳ୍ପ ଅଳ୍ପ ପରିମାଣରେ ବିକ୍ରୟ—1. Retail sale or trade
Paikāri
পাইকারী; পইকারী **पैकारी**
(ପଇକାରିଆ—ଅନ୍ୟରୂପ) ୨ । ଯେଉଁ ପ୍ରଜା ଅନ୍ୟର ଜମିକୁ ଭାଗରେ ଚାଷ କରେ—2. A royat holding another person's land on half of the produce rent

**ପଇକାସ୍ତ**—ବୈଦେ ବି. (କଚରିଆ) (ଫା. ପୈକାସ୍ତ)—ପାହି ରଇତ, ଆପଣା ନିବାସ ମଉଜା ଛଡ଼ା ଅନ୍ୟ ମଉଜାରେ ଜମି ଚାଷ କରିବା ପ୍ରଜା—A non-resident royat.
Paikāsta
পয়কাস্ত **पैकास्त**

**ପଇଖାନା**—ବୈଦେ ବି. (ଫା. ପାଖାନା, ପାୟଖାନା)—୧ । ପାଇଖାନା, ମଳ ତ୍ୟାଗର ସ୍ଥାନ—1. Latrine; privy.
Paikhānā
পায়খানা
**पाखाना, पायखाना, पैखाना**
୨ । ଝାଡ଼ା ଫେରିବା—2. Passing of stools
(ଯଥା—ପଇଖାନାକୁ ଯିବା ।)
୩ । ମଳ, ବିଷ୍ଠା—3. Ordure; stools
(ଯଥା—ପଇଖାନା ଫେରିବା ।)

**ପଇଖାନାକୁ ଯିବା**—ଦେ. କ୍ରି.—୧ । ଝାଡ଼ା ଫେରିବାକୁ ଯିବା—To go to the latrine to ease oneself.
Paikhānā ku jibā
পায়খানায় যাওয়া **पाखाना फिरना**
୨ । ଝାଡ଼ା ଫେରିବା—2 To ease one self.
(ପାଇଖାନା ଫେରିବା—ଅନ୍ୟରୂପ)

**ପଇଖାନା ଖଟିବା**—ଦେ. କ୍ରି.—(ମେହେନ୍ତର ବା ମେହେନ୍ତରାଣୀ) ପାଇଖାନାର ବିଷ୍ଠା ଆଦି ସଫା କରିବା—To cleanse a privy
Paikhānā khaṭibā
পায়খানা সাফ করা **पाखना साफ करना**
(ପଇଖାନା ସଫା [ସାଫ୍] କରିବା - ଅନ୍ୟରୂପ)

**ପଇଖାନା ତଲବ**—ବୈଦେ. ବି. (ଫା) - ମଳୋତ୍ସର୍ଗର ବେଗ—A tendency to pass stools; call of nature.
Paikhānā talaba
পায়খানা তলব **पाखाना लगना**

**ପଇଖାନା ପରିସ୍ରା**—ଦେ. ବି (ଫା. ପାଖାନା ଓ ସଂ. ପ୍ରସ୍ରାବ)—୧ । ମଳ ତ୍ୟାଗ ଓ ପ୍ରସ୍ରାବ ତ୍ୟାଗ—1 Passing of stools and urine.
Paikhānā parisrā
পায়খানা পিসাব
**पाखाना पेसाब** ୨ । ମଳ ଓ ପରିସ୍ରା—2. Stools and urine.

**ପଇଗମ୍ବର**—ବୈଦେ. ବି. (ଫା) - ପଏଗମ୍ବର୍ (ଦେଖ)
Paigambar Paegambar (See)

| ୧ | ଠ | ଓ | ଋ,ୠ | ୮ | ଏ | ଯସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଞ | ଙ | ଶ,ଷ | ଛ୍ମ | ଇମ୍ | ଉଅ | ଖି |
|---|---|---|---|---|---|---|---|---|---|---|---|---|---|---|
| ୨ | ଛ | ଊ | ଗ୍ର | ନ | ପ୍ଟେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଘ | ଯ | ତ୍ୟ | ଇଅ | ଔ | ନ୍ |

ପଇଚଲା—ପ୍ରାଦେ (ହିନ୍ଦୋଳ) ବ—କନ୍ଦଳ, ଶଗଡ଼ ଦଣ୍ଡାର ଶେଷ ଫଳ-
Paichalā The uttermost long bit of wood joining the hind ends of the poles of a cart

ପ(ପା)ଇଚ୍ଛାରି କରିବା—ଦେ. କ୍ରି. ( ସ. ପାଦଚାରୀ )—
Pa‹pa ichāri karibā ଗୋଡ଼ରେ ଚାଲିବା, ପାଦଚାରଣକରିବା–
पाइचाबी करा दल चलना To walk on foot

ପଇଜାର—ବୈଦେ. ବ (ଫା. ପୈଜାର)—
Paijār ୧ । ଜୋତା—1 Shoes.
पयजाव पैज़ार ୨ । ଚଟି ଜୋତା—2 Slippers.

ପଇଞ୍ଚ(ଞ୍ଚି)—ଦେ. ବ (ସ. ପ୍ରକୋଷ୍ଠ=ହାତର ମଣିବନ୍ଧ ବା କଲତି)—
Paiñcha(ñchi) ପହୁଁଚ, ଏକ ପ୍ରକାର ଖଡ଼ୁ—
ପଇଁଚ(ଚା), ପଉଞ୍ଚି, ପହୁଁଚ, ପୈଞ୍ଚି } ଅନ୍ୟରୂପ A kind of bracelet.
ଜଡ଼ରେ ପଇଞ୍ଚ ଖଡ଼ୁ ନ ଥାଇ
पइंछा, पईछा(छी) ବାହାରିଲେ ବାହାମାନଙ୍କ ତେତାଇ ।
पौंछी, पहुंची, पहुंचा ବୃନ୍ଦବତୀ-ମହାଭାରତ ବନ୍ଦନ ।

ପଇଞ୍ଚାଳିଶ(ଶି)—ଦେ. ବ ଓ ବଣ (ସଂଖ୍ୟାବାଚକ) ( ସ ପଞ୍ଚଚତ୍ୱା-
Paiñchalisa(si) ରିଂଶତ୍, ପ୍ରା. ପଞ୍ଚଚତ୍ତାଲିସଭି, ପଞ୍ଚଚାଳିସା )—
पर्यतालिस ଚାଳିଶ ଅପେକ୍ଷା ପାଞ୍ଚ ଅଧିକ, ୪୫—
पैंतालिस Forty five, 45.

ପଇଞ୍ଚାଳିଶଶଏ(ହେ)—ଦେ. ବ ଓ ବଣ. ( ସଂଖ୍ୟାବାଚକ )
Paiñchālisāsae(he) ( ସ ପଞ୍ଚଚତ୍ୱାରିଂଶଦ୍ଭ୍ୟୁତ୍ତରଶତ)—
ଏକ ଶହ ପଇଞ୍ଚାଳିଶ, ୧୪୫ —
One hundred forty five, 145.
( ଏହିପରି ପଇଞ୍ଚାଳିଶଦୁଇଶ=ଦୁଇଶ ପଇଞ୍ଚାଳିଶ, ୨୪୫ )

ପଇଞ୍ଚେଇବା—ପ୍ରାଦେ ( ସିଂହଭୂମ ) କ୍ରି—ଖଇଞ୍ଚେଇବା, ମାଛ ଆଦ
Paiñcheiba ଧରିବା ପାଇଁ ପାଣିରେ ଖଇଞ୍ଚି ଚଳାଇବା—
To stir a fishing contrivance or trap in water for catching fish.

ପଇଠ—ଦେ. ବ. ( ସ ପୁନରାବୃତ୍ତି, ସ ପ୍ରବିଷ୍ଟ ) —
Paiṭa ( କୌଣସି ପାଠ ବା ବିଦ୍ୟା ) ମୁଖସ୍ଥ ହେବା—
मुखस्थ The state of being got by heart or
पइठ, बरजबान committed to memory.
ଦେ ବଣ - ମୁଖସ୍ଥ, କଣ୍ଠସ୍ଥ—Learnt or got by heart.

ପଇ ।—ଦେ ବ ( ସ. ପୁନରାବୃତ୍ତି )—ପୁନରାବୃତ୍ତି; ମୁଖସ୍ଥୀକରଣ—
Paiṭā Getting by heart
(ପଇଠା, ପୈଠା—ଅନ୍ୟରୂପ) ବଣ—ମୁଖସ୍ଥ—Got by heart;
मुखस्थ पइठ learnt by rote.

ପଇଠା(ଟେ)ଇବା—ଦେ କ୍ରି. (ସ. ପୁନରାବୃତ୍ତି)—୧ । ମୁଖସ୍ଥ କରିବା—
Paiṭā(ṭe)ibā 1 To get by heart; to commit to memory; to learn by rote.
ପଇଠାଇବା, ପେଠାଇବା, ପୈଠାଇବା } ଅନ୍ୟରୂପ
୨ । କୌଣସି ପାଠକୁ ବାରମ୍ବାର ଘୋଷିବା—
मुखस्थ करना 2. To go on reading a passage till it
पइठाना is mastered.

ପଇଣ୍ଟିଣ୍(ନ୍)—ବୈଦେ. ବ. ( ଇଂ. Pointing ପଏଣ୍ଟିଙ୍ଗ୍ )—
Paiṭin(n) କାନ୍ଥର ଇଟା ଉପରେ ବକାଳ୍ ଚୂନ ପଲସ୍ତରା ନ
ପଇଣ୍ଟିଣି, ପଇଣ୍ଟନ୍, ପେଣ୍ଟନ୍ } ଅନ୍ୟରୂପ
କରି ଇଟା ବା ପଥରର ସନ୍ଧି ରେଖା ଗୁଡ଼ିକ ଚୂନ ବା ସିମେଣ୍ଟ ଦ୍ୱାରା ପରିଷ୍କୃତ ଭାବରେ ଦେଖାଇବା କର୍ମ—
पएंटिंग् The act of 'pointing' the edges of
टीपकारो the bricks or stones in a brick or stone masonry.

ପଇଟିବା—ଦେ କ୍ରି ( ସ. ପ୍ରବିଷ୍ଟ )—୧ । ମୁଖସ୍ଥ ହେବା—
Paiṭibā 1 To be committed to memory; to be
(ପଇଠିବା—ଅନ୍ୟରୂପ) got by heart.
मुखस्थ हाेआ ୨ । (କୌଣସି ବିଦ୍ୟା) ଆୟତ୍ତ ହେବା —
बरजबान होना, पइठजाना 2. To come under one's control, so that one can recite the passage; to be mastered.
मने आसा ୩ । (ଘୋଷିଥିବା ବିଷୟ) ସ୍ମୃତିପଥାରୂଢ଼ ହେବା —
(ପଇଟ୍ଟିବା - ଅନ୍ୟରୂପ) 3. To be remembered, to occur to one's memory.
( ଯଥା—ଶ୍ଳୋକଟି ମତେ ପଇଟୁ ନାହିଁ । )

ପଇଠ—ଦେ. ବ. (ସ. ପୀଠ, ପୃଷ୍ଠ) —୧ । କର ପୃଷ୍ଠ, ହାତ ପାପୁଲି—
Paiṭha 1 The back of the palm
हातेर पिठ ୨ । ହାତର ତଳକୁ କୌଣସି ସ୍ଥାନରେ ସ୍ଥାପନ କରି
हथेलीकि पीठे भाग କର ପୃଷ୍ଠକୁ ଉପର ଆଡ଼କୁ ରଖିବା—
ପଇଟ୍ଠ, ପୈଠ, ପଇଠି, ପଏଠ, ପୈଠି } ଅନ୍ୟରୂପ 2. Placing of the palm of the hand on a place with its back upwards.
पैठान, दाखल
जमा, दाखिल ୩ । (ସ. ପ୍ରବିଷ୍ଟ, ପ୍ରା. ପାଇଠ୍ଠ; ତୁଳ. ଫା. ପଏଠ୍)
( ଧନ ବା ବସ୍ତୁର ) ଦାଖଲ—
3. Paying; depositing; delivering
୪ । ମହାଜନୀ ଖାତାର ଯେଉଁ ଅଂଶରେ ଅନ୍ୟ ବ୍ୟକ୍ତି ଦେବା ଟଙ୍କା ବା ଜମା ଲେଖାଯାଏ—4 The credit side of a business-account
୫ । ଖାତକର ମହାଜନକୁ ଦେବା ଧନ—5. Payments made to a creditor or trader by a debtor.
୬ । ଟଙ୍କା ଦେବାର ଥର, କିସ୍ତି—
6 Instalment of payment of money
[ ଦ୍ର—ମହାଜନମାନଙ୍କଠାରୁ ଖାତକମାନେ ଯେଉଁ ପଦାର୍ଥ ବା ଧନ ନିଅନ୍ତି ତାହା 'ବସୁ' ବା 'ବଏ'—ଏବଂ ସେ ଯାହା ଧନ ଦିଏ ତାହା 'ପଇଠ' ଘରେ ଲେଖାଯାଏ । ]
୭ । ପଇଟ୍ଠ ( ଦେଖ )—7. Paiṭa ( See )
ବଣ—୧ । ମୁଖସ୍ଥ—1. Got by heart; learnt by rote.

୨ । ଦାଖଲ କରି ଯାଇଥିବା—
2. Paid; handed over; delivered

**ପଇଠ କରିବା**— ଦେ. କ୍ରି—(ସଂ. ପ୍ରବିଷ୍ଟ)— ୧ । ଦାଖଲ କରିବା—
Paitha karibā 1. To make payment
पैठान ୨ । ଅନ୍ୟ ବ୍ୟକ୍ତି ନିକଟରେ ପହଞ୍ଚାଇବା, ଅର୍ପଣ କରିବା—
**दाखलकरना; जमाकरना** 2. To deliver
(ପଏଠ କରିବା—ଅନ୍ୟରୂପ) (ଯଥା—ଟ୍ରେଜେରିରେ ଖଜଣା ପଇଠ କରିବା)
मुखस्थकरा ୩ । ମୁଖସ୍ଥ କରିବା, କଣ୍ଠସ୍ଥ କରିବା—
**बरजबानकरना, पठ्ठना** 3. To get by heart.

**ପଇଠ ଦେବା**—ଦେ କ୍ରି—୧ । ଅନ୍ୟ ବ୍ୟକ୍ତି ନିକଟରେ ଧନ ବା ବସ୍ତୁ
Paitha debā ପହଞ୍ଚାଇବା—1. To pay or deliver a
पैठान thing or money to a person.
**जमादेना, दाखलदेना** ୨ । (ଖାତକ) ଋଣ କାଗଜର ପୃଷ୍ଠରେ
[ପଇଠ ପକା(କେ)ଇବା—ଅନ୍ୟରୂପ] ମହାଜନ ନିକଟରେ ଦାଖଲ
କରିଥିବା ଋଣ ବାବଦ୍ ଟଙ୍କା ବା ଧାନର ପରିମାଣ
ଉଲ୍ଲେଖ କରିବା—2. To endorse the part-
payment of a loan on the back of a bond

**ପଇଠ ନେବା**—ଦେ. କ୍ରି—ଅନ୍ୟ ବ୍ୟକ୍ତିଠାରୁ ଧନ ବା ବସ୍ତୁ ଗ୍ରହଣ
Paitha nebā କରିବା—To receive payment; to
पैठलओ **दाखललेना** take delivery of a thing

**ପଇଠି**—ଦେ. ବି (ସଂ. ପ୍ରତିଷ୍ଠା, ପ୍ରା. ପଇଠ୍ଠା)—୧ । ଭରସା, ନିର୍ଭର—
Paithi 1 Reliance; dependance
भाव ୨ । କରତଳର ଭର—2. Support by means of the
**सहारा** palms; resting or propping on the palms.
ସଖୀଙ୍କ ପଇଠି ଧର, ଚଳନ୍ତି ସୁର ସେ । ପ୍ରାଚୀ. ପ୍ରତାପ—ଶଶିରେଣା ।
पईठा ୩ । (ସଂ. ପାଦପୀଠ) ସିଡ଼ି ବା ପାହାଚର ଧାପ—
**पैड़ी, खड़ी** 3. A step of a stair-case
୪ । ପଇଠ (ଦେଖ)—4. Paitha (See)
ବିଣ—ପଇଠ (ଦେଖ)—Paitha (See)

**ପଇଠିଏ**—ଦେ. କ୍ରି. ବିଣ—ନିରୂପିତ ସମୟମାନଙ୍କରେ— At stated
Paithie periods; periodically (Howells)
ठिकसमये **ठिकवखतमें**

**ପଇଠି ବୋଝ**—ଦେ. ବି—ଝିଅ ଶାଶୁଘରକୁ ଯିବାର ୧ ସପ୍ତାହ
Paithi bojha ମଧ୍ୟରେ ବାପଘରୁ ଝିଅର ଶାଶୁଘରକୁ ପଠାଯିବା
प्रथमतत्व ସଉଖଲା ବେଭାର । (ଏଥିରେ ଗୋଟିଏ ପେଡ଼ିରେ ଅଳତା
**भरफौरिकासन्देस** ଫରୁଆ, ସିନ୍ଦୂର, ହଳଦୀ ଆଦି ଦିଆଯାଏ ଓ
ତହିଁ ସଙ୍ଗେ ଜାଇ, କଣ୍ଢି, ପରିବା, ମିଷ୍ଟାନ୍ନ ଆଦି ଦ୍ରବ୍ୟ ମଧ୍ୟ
ପଠାଯାଏ)—A tray or basket of presents
sent to a daughter by her father within
the first week of her going to her
husband's house for the 1st time

**ପଇଡ଼**—ଦେ. ବି [ସଂ. ପୟଃ—ନଡ଼ିଆ ଗଛ (Apte); ପୟୋଧର—
Pairda ନଡ଼ିଆ (M W); ପୟଃପେଟକ; ପୟଃପେଟୀ—ନଡ଼ିଆ (ହି.
ଭାବ ଶ); ପଇଡ଼ର ସଂ. ନାମ—ଶ୍ୱେତ (ଦ୍ରବ୍ୟଗୁଣ)]—କଅଁଳ ନଡ଼ିଆ
डाब ଫଳ, କଚି ନଡ଼ିଆ—Young cocoanut fruit.
ମଣ୍ଡ ୯ ଲେଖିଲେ ପଇଡ଼ପାନ । ବଇଦ ବୋଇଲେ ଠିକ ହୋଇବନି । ଚଳ—
[ଦ୍ର—ନଡ଼ିଆର ଗୋଟିମା ବଡ଼ ହୋଇଗଲେ ତା ମଧ୍ୟରେ ଥିବା
ଶସ କ୍ରମଶଃ ଟାଣୁଆ ହେଉଥାଏ ଓ ତହିଁ ମଧ୍ୟରେ ଥିବା ଜଳର
ପରିମାଣ କମି ଯାଉଥାଏ । ଶସ ଲହୁଣୀପରି କୋମଳ ଥିବା
ଅବସ୍ଥାରେ ଓ ନଡ଼ିଆ ମଧ୍ୟରେ ବେଶି ଜଳଥିବା ଅବସ୍ଥାରେ ଉକ୍ତ
ନଡ଼ିଆକୁ ପଇଡ଼ ବୋଲାଯାଏ । ଏହାର ଜଳ ସୁସ୍ୱାଦୁ ଓ କାନ୍ତି-
କାରକ । ପଇଡ଼ ଘଡରେ ଥିବା କୋମଳ ଶସ ବା ନାଳ ମଧ୍ୟ
ଖାଇବାକୁ ରୁଚିକର ହୁଏ, ପଇଡ଼ ପାଣିରେ କର୍ପୂର ମିଶାଇ ତାକୁ
କଳଙ୍କଣ କଂସାପାତ୍ରରେ ରଖିଲେ ତାହା ବିଷାକ୍ତ ହୁଏ, ଯେଉଁ
ପଇଡ଼ରେ ନାଳ ଲାଗି ନ ଥାଏ ତହିଁର ପାଣି କଷାଳିଆ ଓ ବିସ୍ୱାଦ ।
ନାଳପଇଡ଼—ଯେଉଁ ପଇଡ଼ର ମଧ୍ୟସ୍ଥ ଶସ ଅତି କୋମଳ ଓ
ନାଳୁଆ ହୋଇଥାଏ—A raw cocoanut, the kernel of
which is very soft. ]

**ପଇଡ଼ା**—ଗ୍ରା ବି. (ସଂ. ପ୍ରତିହାସ)—ଶୂଦ୍ରଙ୍କ ଉପାଧି ପରିଡ଼ା ଶବ୍ଦର
Pairdā ଅନ୍ୟତର ଆକାର—The family title of some
Śūdras.

**ପଇତକ୍ ପଡ଼ା**—ଦେ ବି (ସଂ ପୈତ୍ତିକ + ପ୍ରଦାହ)—ପ୍ରସ୍ରାବଜ୍ୱାଳା,
Paitak pardā ପ୍ରସ୍ରାପୋଡ଼ା, ପ୍ରସ୍ରାବ ଯନ୍ତ୍ରଣା ରୋଗ, ପରିସ୍ରା
ପଇତୁକ ପଡ଼ା, ପଇତୁକ ପୋଡ଼ା, | କରିବା ସମୟରେ
ପଇତକ୍ ପଡ଼ିବା, ପଇତୁକ ପୋଡ଼ିବା, }—ଅନ୍ୟରୂପ] ପରିସ୍ରାନଳୀରେ
ପୈତ୍ତିକ ପୋଡ଼ା, ପୈତକ ପୋଡ଼ା | ଯନ୍ତ୍ରଣା ବୋଧ—
प्रस्राव जाला Painful urination.
**पेसाब जलन** ( ଦ୍ର—ଏହା ମେହରୋଗର ପୂର୍ବାବସ୍ଥା । ]

**ପଇତା**—ଦେ. ବି. (ସଂ. ପବିତ୍ର, ଉପବୀତ)—୧ । ବ୍ରାହ୍ମଣ କ୍ଷତ୍ରିୟ ଓ
Paitā ବୈଶ୍ୟଙ୍କର ଯଜ୍ଞସୂତ୍ର, ଯଜ୍ଞୋପବୀତ—1 The sacred
(ପୈତା—ଅନ୍ୟରୂପ) thread worn by Brāhmaṇas,
पैता Kshatriyas and Baiśyas.
**जनेउ** ବଡ଼ୁ କଲେ ପଇତାରେ ହାତ ଦେଇ । କୃଷ୍ଣସିଂହ. ମହାଭାରତ ବନ ।
୨ । ଯଜ୍ଞୋପବୀତ ଗ୍ରହଣ ଅନୁଷ୍ଠାନ; ବ୍ରତରୂପ ସଂସ୍କାର—
2 The ceremony of being invested with
the sacred thread.
[ ଦ୍ର—ବ୍ରାହ୍ମଣମାନଙ୍କର ପିନ୍ଧିବା ପଇତାକୁ ୩ଖିଅ ଲେଖାଏଁ
କରି ଗଣ୍ଠି ପକାଇବାକୁ ହୁଏ । ଯେଉଁମାନଙ୍କର ପିତା ବଞ୍ଚିଥାନ୍ତି
ସେମାନେ ୨ଗଣ୍ଠିଯୁକ୍ତ ୬ ଖିଅ ଓ ମୃତ ପିତୃକମାନେ ୩ଗଣ୍ଠିଯୁକ୍ତ ୯
ଖିଅ ପଇତା ପିନ୍ଧନ୍ତି । ବେଦଭେଦରେ ଓ ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟ
ଭେଦରେ ପଇତାର ଗଣ୍ଠି ବଦଳେ । ପଇତାରେ ଗଣ୍ଠି ପକାଇବା ପରେ
ତାହାକୁ ଅଭିମନ୍ତ୍ରିତ କରି ପିନ୍ଧିବାକୁ ହୁଏ । ସାଧାରଣତଃ ପଇତା
ବାମକାନ୍ଧରୁ ଡାହାଣ ପାଖ ଅଣ୍ଟା ପର୍ଯ୍ୟନ୍ତ (ଶାସ୍ତ୍ରୋକ୍ତମତେ ନାଭି-
ପର୍ଯ୍ୟନ୍ତ ଲମ୍ବା ହୋଇ) ଲମ୍ବିଥାଏ । ଏ ପ୍ରକାର ପରିଧାନକୁ 'ସବ୍ୟ'
ବୋଲାଯାଏ । ପ୍ରେତକର୍ମ ଓ ପିତୃକର୍ମ କରିବାବେଳେ କେବେ
କେବେ ପଇତାକୁ ଡାହାଣ କାନ୍ଧରୁ ବାଆଁ ଅଣ୍ଟା ପର୍ଯ୍ୟନ୍ତ ଲମ୍ବାଇବାକୁ
ପଡ଼େ, ଏହାକୁ 'ଅପସବ୍ୟ' ବୋଲାଯାଏ ଏବଂ ସନକାଦି ମୁନିମାନଙ୍କୁ
ତର୍ପଣ କରିବା ସମୟରେ ଓ ଶୁଦ୍ଧଶ୍ରାବରେ ମଧ୍ୟେ ମଧ୍ୟେ କର୍ମ-
ବିଶେଷରେ ପଇତାକୁ ମାଳପରି ବେକରେ ଲମ୍ବାଇବାକୁ ହୁଏ,

ଏହାକୁ ନିଗାତ ବୋଲାଯାଏ । ପ୍ରସ୍ରାବ କରିବା ଓ ଝାଡ଼ା ଫେରି ବସିବା ସମୟରେ ପଇତା କାଳେ ଭୂମିରେ ଲାଗିବ, ଏଥିପାଇଁ ପଇତାକୁ ଅଣ୍ଟାପାଖରୁ ଟେକି ଡାହାଣ କାନରେ ଝୁଲାଇ ରଖିବାକୁ ହୁଏ । ସବୁ ବ୍ରାହ୍ମଣଙ୍କର ୬ଖିଅ ପଇତାଦ୍ୱାରା ଧର୍ମାନୁଷ୍ଠାନ କରାଯାଏ । ମୃତପିତୃକଙ୍କର ନଅଖିଅ ପଇତା ମଧ୍ୟରୁ ୩ଖିଅ 'ଉତ୍ତରୀୟ' ରୂପେ କଳ୍ପିତ ହୁଏ ।

ବିବେକାନନ୍ଦ ସ୍ୱାମୀ କହୁଅଛନ୍ତି ଯେ ବେଦରେ ସୂତ୍ରନିର୍ମିତ ଉପବୀତ ବିଷୟରେ କୌଣସି ଉଲ୍ଲେଖ ନାହିଁ । ବେଦର ପରବର୍ତ୍ତୀ ଗୋଭିଲ ଗୃହ୍ୟସୂତ୍ରରେ ମଧ୍ୟ ସୂତ୍ରନିର୍ମିତ ଉପବୀତର ଉଲ୍ଲେଖ ନାହିଁ । ମାତ୍ର ତତ୍‌ପରବର୍ତ୍ତୀ ପୁରାଣାଦିରେ ଏହାର ଉଲ୍ଲେଖ ଦେଖାଯାଏ ।

ବୈଦିକଯୁଗରେ ଆଠବର୍ଷ ପୂରିବା ଆଗେ ପିତା ବା ଅଭିଭାବକ ବାଳକକୁ ଗୁରୁଗୃହରେ ଛାଡ଼ିଦେଇ ଆସୁଥିଲେ । ସେହିଠାରେ ରହି ବାଳକ ବ୍ରହ୍ମଚର୍ଯ୍ୟବ୍ରତ ପାଳନ କରୁଥିଲା । ଗୁରୁ ଶିଷ୍ୟକୁ ପାଇ ପ୍ରଥମେ ତାହାର ସଂସ୍କାରବିଧାନ କରୁଥିଲେ । ଏହାହିଁ ଆଜିକାଲିର ଉପନୟନ । ଏହି ଉପନୟନର ମନ୍ତ୍ର ଓ ଶ୍ଳୋକଗୁଡ଼ିକରୁ ମଧ୍ୟ ପ୍ରମାଣ ମିଳେ ଯେ ଶିଷ୍ୟକୁ ତାହାର ବ୍ରହ୍ମଚର୍ଯ୍ୟାବସ୍ଥାରେ କିପରି କଠୋର ସଂଯମମୟ ଜୀବନ ଯାପନ କରିବାକୁ ହେବ ସେ ସମ୍ବନ୍ଧରେ ତାହାର ବ୍ୟବସ୍ଥା ମାତ୍ର ।

ଏହି ସଂସ୍କାର ସମୟରେ ଗୁରୁ ଶିଷ୍ୟର ଅଣ୍ଟାରେ ତ୍ରିବୃତ୍ ମୁଞ୍ଜମେଖଳ ବାନ୍ଧି ଦେଉଥିଲେ । ଶିଷ୍ୟ ଏହି ବ୍ରହ୍ମଚର୍ଯ୍ୟାବସ୍ଥାରେ 'କାୟେନ ମନସା ବାଚା' ଅର୍ଥାତ୍ ଶରୀରଦ୍ୱାରା, ମନଦ୍ୱାରା ଓ ବାକ୍ୟଦ୍ୱାରା ଅସତ୍ ବା ଅନ୍ୟାୟ କରିବ ନାହିଁ, ଏହି ସ୍ମୃତିର ଉଦ୍‌ବୋଧନ ପାଇଁ ଦୀକ୍ଷିତ ବାଳକକୁ ଏହି ତ୍ରିବୃତ୍ ମେଖଳା ପିନ୍ଧାଇ ଦିଆଯାଉଥିଲା । କ୍ରମେ ବୈଦିକଯୁଗ ପରେ ଯେତେବେଳେ ସନାତନ ବୈଦିକ ଧର୍ମର ଅବନତି ଘଟିଲା, ଏହି ତ୍ରିବୃତ୍ ମୁଞ୍ଜମେଖଳା ପରିବର୍ତ୍ତେ ସୂତ୍ରୋପବୀତର ସୃଷ୍ଟି ହେଲା । ମାତ୍ର ତହିଁରେ ସୂତ୍ରସଂଖ୍ୟା (୩) ଠିକ୍ ରଖାଗଲା—ସ୍ୱାମୀ ବିବେକାନନ୍ଦଙ୍କ ସ୍ୱାମିଶିଷ୍ୟ ସମ୍ବାଦ । ]

**ପଇତା କାଟିବା**—ଦେ କ୍ରି—ତୂଳାରୁ ସୂତା କାଟି ଉକ୍ତ ସୂତାରେ ପଇତା ତିଆରି କରିବା—To spin and prepare the thread for Paitā from cotton.
Paitā kātibā
पैताकाटा **जनेउकातना**

**ପଇତା ଗଣ୍ଠି**—ଦେ. ବି—ଯଜ୍ଞୋପବୀତର ୩ ଖିଅରେ ପକାଯିବା ବିଶିଷ୍ଟ ଗ୍ରନ୍ଥି—The knot with which 3 rounds or strings of thread are made up into one garland to form Paitā.
Paitā ganthi
(ପୈତାଗଣ୍ଠି—ଅନ୍ୟରୂପ)
पैताक गाँठ
**जनेउका गाँठ**

[ ଦ୍ର—ଭିନ୍ନ ଭିନ୍ନ ବେଦୀୟ ବ୍ରାହ୍ମଣମାନଙ୍କର ପଇତାର ଗଣ୍ଠି ଭିନ୍ନ ଭିନ୍ନ ପ୍ରକାର ଅଟେ । ଗୋଟିଏ ଅଖଣ୍ଡ ସୂତାକୁ ୩ ମୋଡ଼ କରି ଗଣ୍ଠି ପକାଇ ପଇତା ଉପଯୋଗୀ କରାଯାଏ ।]

**ପଇତା ଘର**—ଦେ. ବି—ବ୍ରତ ଉତ୍ସବ, ଉପନୟନ ଉତ୍ସବ; ଦ୍ୱିଜବାଳକର ଯଜ୍ଞୋପବୀତ ସଂସ୍କାର—The ceremony of a twice-born boy of wearing the sacred thread for the 1st time.
Paitā ghara
(ପୈତାଘର—ଅନ୍ୟରୂପ)
पैताघर **जनेउ**

**ପଇତା ପି(ପେ)ନ୍ଧିବା**—ଦେ. କ୍ରି—ଯଜ୍ଞୋପବୀତ ଧାରଣ କରିବା—To put on a new set of sacred threads.
Paitāghi(ghe)nibā
पईतापवा **जनेउपहिनना**
(ପଇତା ପିନ୍ଧିବା—ଅନ୍ୟରୂପ)

**ପଇତା ଧାରୀ**—ଦେ. ବିଣ—ପଇତା ପକାଇଥିବା (ବ୍ୟକ୍ତି)—(a person) Wearing the sacred thread.
Paitā dhārī
पैताधारी **जनेउधारी**

**ପଇତା ପକା(କେ)ଇବା**—ଦେ. କ୍ରି—୧ । ଦେହରେ ଯଜ୍ଞୋପବୀତ ଧାରଣ କରିବା—1. To put on the sacred thread.
Paitā pakā(ke)ibā
पैतापवा **जनेउपहिनना**
पईताफेल देओआ ୨ । ପିନ୍ଧିଥିବା ପଇତାକୁ କାଢ଼ି ପକାଇବା—
**जनेउ फेंकदेना** 2 To put off the sacred thread.

**ପଇତା ମନ୍ତ୍ର**—ଦେ ବି—ଯଜ୍ଞୋପବୀତରେ ଗଣ୍ଠି ପକାଇ ସାରି ପିନ୍ଧିବା ପୂର୍ବରୁ ଯେଉଁ ମନ୍ତ୍ରଦ୍ୱାରା ତାକୁ ସଂସ୍କାର କରାଯାଏ—The incantations with which the sacred thread is consecrated before being worn.
Paitā mantra
(ପଇତାମନ୍ତ୍ର—ଅନ୍ୟରୂପ)
पैतामन्त्र
**जनेउका मंतर**

**ପଇତା ସୂତା**—ଦେ. ବି—ଯେଉଁ ସୂତାରେ ପଇତା ତିଆରି ହୁଏ—The yarn with which the Paitā is made.
Paitā sūtā
पैताव सुतो **जनेउका सूत**

**ପଇତି**—ଦେ. ବି—ମୁଗ, କିମ୍ବା କୋଳଥ ଆଦିର ପାଣିଆ ଡାଲି—Soup or broth of moong or other pulse.
Paiti
(ପୈତି—ଅନ୍ୟରୂପ) ମାଘକଣ୍ଣର ବକାପଥର ଉଡଉଲ ମୁଗକାଇ
जूस **पतलीदाल** ସେହି ମୁଗକାଇ ପଇତି କରି ଖାଇଗଲେ ବାପ ଭାଇ । ଚଗ ।

**ପଇତୃକ**—ଗ୍ରା ବିଣ. (ସଂ. ପୈତୃକ)—ପୈତୃକ (ଦେଖ)
Paitṛuka Paitṛuka (See)

**ପଇତ୍ରିକ**—ପ୍ରାଦେ. (ମେଦିନୀପୁର, ବଙ୍ଗଳା ତୃ ର ତ୍ରି ଉଚ୍ଚାରଣ) ବିଣ—
Paitrika ପୈତୃକ (ଦେଖ)—Paitṛuka (See)

**ପଇଦ**—ଦେ. ବି. ( ସଂ. ପଦାତିକ )—ରାଜସେବକବିଶେଷ, ପିଆଦା—A peon; a class of servants attending on a king.
Paida
পেয়াদা **पइदल सिपाही**

**ପଇଦଲ(ଳ)**—ଦେ. ବି. (ସଂ. ପାଦଚଳନ, ପ୍ରା—ପାୟଚଲ; ଭୁଲ—ଫା. ପୈଦଲ୍)—୧ । ପାଦରେ ଚାଲିବା, ପାଦଚାରଣ—1. Walking by foot.
Paidala(la)
(ପୈଦଲ—ଅନ୍ୟରୂପ)
পয়দল ୨ । ଗୋଡ଼ରେ ଚାଲିବା ବ୍ୟକ୍ତି—
**पैदल** 2. Walker; foot passenger.
୩ । ପଦାତି ସୈନ୍ୟ—3. Infantry regiment.
ଦେ. ବିଣ—୧ । ପାଦଚାରୀ—1. Walking.
(ଯଥା—ପଇଦଲ ସିପେଇ ।)
୨ । ଯେଉଁ ରାସ୍ତା ଗୋଡ଼ରେ ଚାଲିବା ଲୋକଙ୍କ ବ୍ୟବହାର ପାଇଁ ବ୍ୟବହୃତ (ଯାନାଦିର ବ୍ୟବହାର ପାଇଁ ନୁହେଁ)—
2 (road) Intended for foot passengers
(ଯଥା—ପଇଦଲ ବାଟ; ପଇଦଲ ରାସ୍ତା) ।

କ୍ରି. ବିଣ—ପାଦରେ ଚାଲିକରି—By walking; going on foot.

(ଯଥା—ମୁଁ କଟକରୁ ପଇଦଲ୍ ପୁରୀ ଗଲି ।)

ପଇଦା—ବୈଦେ. ବି (ଫା. ପୈଦା =ଉତ୍ପନ୍ନ, ପୈଦା ଇସ୍=ଉତ୍ପତ୍ତି)—
Paidā ୧ । ଜନ୍ମ, ଉତ୍ପତ୍ତି—1. Birth; production.
ପଯଦା,ପୟଦାଇସ ୨ । ଲାଭ, ଆୟ—2. Profit; income
पैदा, पदाइस् ବିଣ—୧ । ଜାତ, ପ୍ରସୂତ—1. Born; begotton.
୨ । ପ୍ରାପ୍ତ, ଅର୍ଜିତ—2. Earned; got.
(ପଇଦାସ୍, ପୈଦା, ପୈଦାସ୍—ଅନ୍ୟରୂପ)

ପଇଦା କରିବା—ଦେ. କ୍ରି—୧ । ଜନ୍ମ କରିବା—1. To give
Paidā kariba birth; to beget.
ପଯଦାକବା ୨ । ଉତ୍ପାଦନ କରିବା—2. To produce.
पैदाकरना ନଜ ବୁଦ୍ଧି, ନଜ ବାହୁବଳରେ ମାଟିରୁ ସୁନା ପଇଦା କରୁଅଛନ୍ତି ।
ଫକୀରମୋହନ—ଛମାଣ ଅଠଗୁଣ୍ଠ ।
(ପଇଦାସ୍ କରିବା—ଅନ୍ୟରୂପ) ୩ । ଆୟ କରିବା; ଅର୍ଜନ କରିବା—
3. To get; to earn

ପଇଦାୱାର୍(ରି)—ବୈଦେ. ବି. (ଫା. ପୈଦୱାର୍)—କ୍ଷେତ୍ରର ଉତ୍ପନ୍ନ
Paidāwār(ri) ଦ୍ରବ୍ୟ, ଫସଲ—Produce of a field.
ପୟଦାବାବ पैदावार(री)

ପଇଦା ହେବା—ଦେ. କ୍ରି—୧ । ଜନ୍ମିବା—1. To be born.
Paidā hebā ୨ । ଉତ୍ପନ୍ନ ହେବା—2. To be produced.
ପୟଦାହଓଯା ୩ । ଉପାର୍ଜିତ ହେବା—
पैदाहोना 3. To be earned.

ପଇଡ଼ି—ପ୍ରାଦେ. (ମାନ୍ଦ୍ରାଜ) ବି—୧ । ମାନ୍ଦ୍ରାଜ ପ୍ରଦେଶରେ ପଇଡ଼ି ନାମକ
Paidi ଅଞ୍ଚଳରେ ପ୍ରଚଳିତ ଏକପ୍ରକାର ବିକୃତ ଓଡ଼ିଆ ଭାଷା ।
(ମାନ୍ଦ୍ରାଜ ୧୯୨୧ସାଲର ସେନ୍ସସ୍ ରିପୋର୍ଟ)—1. A form of the Oriya language spoken by the inhabitants of Paidi in the Madras presidency. (Census Report of 1921).
ପ୍ରାଦେ. (ପୁରୀ) ବି—୨ । ପିଆଦା, ପୁଲିସ୍ କନଷ୍ଟବଲ—
2. Peon; constable.

ପଇନା—ପ୍ରାଦେ. (ଗଞ୍ଜାମ) ବି—କମାଣ—
Painā Cannon.

ପଇନ୍ତରା—ଦେ. ବି (ସଂ. ପଣାନ୍ତର; ପ୍ରା. ପଣାଇତ; ହି. ପୈଁତ୍=
Paintarā ଖେଳରେ ବାଜି ରଖିବା)—ମଲ୍ଲଯୁଦ୍ଧ କରିବା ପୂର୍ବରୁ
ପାଁତରା ପ୍ରତ୍ୟେକ ଯୋଦ୍ଧା ବା ମଲ୍ଲଙ୍କର ଛକାଛକ ହୋଇ ବାହୁରେ
तालठोंकना,तलकाया ଫଟ୍କି ମାରି ଭିନ୍ନ ଭିନ୍ନ ସ୍ଥାନରେ ଠିଆହେବା
(ପଇଁତର୍—ଅନ୍ୟରୂପ) ଠାଣି—The preparatory pose of wrestlers before wrestling.

ପଇବନ୍ଦ—ବୈଦେ. ବି. (ଫା)—୧ । ଲଥା; ତଳିଭି; ଲୁଗାର ଛିଦ୍ର ବନ୍ଦ
Paiband କରିବାପାଇଁ ବ୍ୟବହୃତ କ୍ଷୁଦ୍ର ବସ୍ତ୍ରଖଣ୍ଡ—1. A small
ପୟବନ୍ଦ patch of cloth sewn o'ver a hole in a
पैबन्द cloth.
୨ । ଏକ ଗଛର ଡାଳକୁ କଲମ କରି କାଟି ଅନ୍ୟ ଗଛର
ଡାଳରେ ଯୋଡ଼ି ଉତ୍କୃଷ୍ଟ ଫଳ ଉତ୍ପାଦକ ଗଛ ଉତ୍ପାଦନ କରିବାର ରୀତି—3 The system of grafting of a branch on the branch or trunk of another tree for producing good fruits

ପଇବସ୍ତ(ସ୍ତି)—ବୈଦେ ବି (କଚେରୀଆ) (ଫା. ପୈବସ୍ତ୍=ଜଳ ଆଦି
Paibasta(sti) ଦ୍ରବ ପଦାର୍ଥ କୌଣସି ଭୂମିରେ ବା ପଦାର୍ଥରେ
ପଯସ୍ତି, ପୈଯସ୍ତି ମାଡ଼ିଯିବା ବା ଭେଦିବା)—ପଟୁ ପଡ଼ି ଆବାଦ ଯୋଗ୍ୟ
पयवस्त, पैबस्त ହୋଇଥିବା ଭୂମି—Alluvion; land be-
(ପଇବସ୍ତି—ଅନ୍ୟରୂପ) come fit for cultivation by the
(ପଏବସ୍ତ, ପୟୂବସ୍ତ; ପୈବସ୍ତ—ଅନ୍ୟରୂପ) deposit of riversilt
(ସିକସ୍ତ—ବିପରୀତ) on it.
(ସିକସ୍ତ ପଇବସ୍ତ—ନଈବଢ଼ିରେ ଧୋଇ ହୋଇ ନଦୀ ଗର୍ଭରେ ଯାଇଥିବା ଜମି ଓ ନଈବଢ଼ି ଦ୍ୱାରା ପଟୁ ପଡ଼ିଥିବା ଜମି= Alluvion & diluvion).

ପଇମାସ୍—ବୈଦେ. ବି. (ଫା. ପୈମାଇସ୍=ଭୂମିମାପ, ସେଟଲମେଣ୍ଟ
Paimās ଯୋଗୁଁ ପ୍ରଚଳିତ ଶବ୍ଦ)—ରାଜସ୍ୱ ବନ୍ଦୋବସ୍ତସଂକ୍ରାନ୍ତ ଭୂମିର
ପୟମାସ ଜରିବ—Revenue survey of land; cadastra.
पयमाइस् survey
(ପୈମାସ, ପଇମାଶ, ପଏମାସ୍—ଅନ୍ୟରୂପ)

ପଇମାସ୍ କମ୍ପାସ୍—ବୈଦେ. ବି (ଫା. ପୈମାଇସ୍+ଇଂ. କମ୍ପାସ୍)—
Paimās kampās ରାଜସ୍ୱ ସମ୍ବନ୍ଧୀୟ ବନ୍ଦୋବସ୍ତର ଭୂମି-
पैमाइस जरीब ଜରିବ—Cadastral survey.
(ପଇମାସ କୁମ୍ପାସ, ପଇମାସ ମାପ, ପଇମାସ ଜରିବ—ଅନ୍ୟରୂପ)

ପଇମାସ୍ ବନ୍ଦୋବସ୍ତ—ଦେ ବି—ରାଜସ୍ୱ ବନ୍ଦୋବସ୍ତ ସଂକ୍ରାନ୍ତ ଭୂମି-
Paimās bandobasta ମାପ—Cadastral measure-
ପଏମାସ ବନ୍ଦୋବସ୍ତ ment in connection with Revenue
पैमाइस प्रबन्ध settlement.

ପଇମାସି—ବୈଦେ. ବିଣ. ( ଫା. ପୈମାଇସୀ )—ପଇମାସ୍ ସମ୍ବନ୍ଧୀୟ—
Paimāsi Cadastral; relating to cadastral survey.
পৈমইসী ( ପଇମାସିଆ—ଅନ୍ୟରୂପ )
पैमाइसी ବି—ପଇମାସ୍ ( ଦେଖ )—Paimās (See)

ପଇରନ—ପ୍ରାଦେ. ( ସମ୍ବଲପୁର ) ବି—ପଏରନ୍ ( ଦେଖ )
Pairan Paeran (See)

ପଇରବ(ବୀ)—ବୈଦେ. ବି. ( କଚେରୀଆ ) (ଫା)—ପଏରବ୍ ( ଦେଖ )
Pairab(bi) Paerab (See)

ପଇରି—ପ୍ରାଦେ. ( ସମ୍ବଲପୁର ) ବି—୧ । (ଭୁଲ. ହି. ପୈରୀ) ବେଙ୍ଗଲା
Pairi (ଦେଖ)—1. Bengala (See)
୨ । (ହି. ପୈଁରୀ)—ପାଇଁରି (ଦେଖ)—2. Paīnri (See)

ପଇଲମ୍—ଦେ. ବି (ସଂ. ପାତିଲୀ; ପ୍ରା. ପାଇଲୀ)—ପଲମ; ମାଟିର ବଡ଼
Pailam ସରା—An earthen pan.
ପଳମ पैली; ढँकना (ପଏଲମ୍—ଅନ୍ୟରୂପ)

ପଇଲା—ପ୍ରାଦେ. ( ସିଂହଭୂମ ) ବି. ( ଭୁଲ. ହି. ପୈଲା=୪ ସେର ମାପ-
Pailā ପାତ୍ର)—ଏକସେର ଓଜନର ଶସ୍ୟ ମାପିବା ଗଉଣୀ—
A measure (of one seer only) of corn.
ପୟଲା ଗ୍ରା. ବି—୧ । ମାସର ପ୍ରଥମ ତାରିଖ—
पहला 2. The first day of a month.

୨ । ପ୍ରଥମ ବସ୍ତୁ ବା ବ୍ୟକ୍ତି—2. The first one.
ବିଣ—ପ୍ରଥମ—First; earliest.
( ଯଥା—ପହିଲି କଚେରୀରେ ଏ ମୋକଦ୍ଦମା ପଡ଼ିଲି; ପହିଲି ନମ୍ବର । )
ଗ୍ରାମ୍ୟ ( ଇତର ) କ୍ରି.—ପଡ଼ିବା କ୍ରିୟାର ଇତର ଜନ ବ୍ୟବହୃତ ଅତୀତ କାଳର ରୂପ, ପଡ଼ିଲି—( a form of the verb to 'fall' in the past tense used by the lower class people) Fell; did fall; has fallen.
[ ଦ୍ର—ଏହା ତୃତୀୟ ପୁରୁଷ ଏକବଚନର କ୍ରିୟା, ଯଥା—ଏହା ବା ସେ ପଇଲି, ସେମାନେ ପଇଲେ, ମୁଁ ପଇଲି, ତୁ ପଇଲୁ, ତୁମେ ପଇଲ, ଆମେ ପଇଲୁଁ । ]

**ପଇଲି**—ଦେ ବିଣ.—ପହିଲି ( ଦେଖ )
Paili Pahili ( See )
( ପଇଲୁ[ଲେ]—ଅନ୍ୟରୂପ ) ଦେ. ଅ—ପହିଲୁ ( ଦେଖ )
Pahilu ( See )

**ପଇଶ୍**—ଦେ. ବି. ( ସଂ. ପ୍ରବେଶ, ପ୍ରା. ପଇସ )—୧ । ପ୍ରବେଶ (ଦେଖ)
Pais 1. Prabesa (See)
ପ୍ରବେଶ ପଇସାର ୨ । ପୟସ୍ ( ଦେଖ )—2. Payas ( See )
ବିଣ—ପଶ୍ୟ ( ଦେଖ )—Pasya (See)

**ପଇସା**—ଦେ. ବି ( ସଂ. ପାଦରୁ ପାହୁ, ପାହୁ ସଦୃଶ=ପଇସା, ବା ସଂ. ପାଦ+ଅଂଶ=ପାଦାଂଶ, ତୁଲ. ଇଂ. ପାଇସ )—
Paisā
ପୟସା ୧ । ଏକ ଅଣାର ଚତୁର୍ଥାଂଶ ଓ ଟଙ୍କାର ୬୪ଭାଗରୁ ଏକଭାଗ
ପୈସା ମୂଲ୍ୟର ତାମ୍ରମୁଦ୍ରା—1. One pice.
୨ । ଧନ—2. Wealth; riches.
ଅଲେ ମଲଣା, ଲଭ ପଇସା – ଢଗ ।
୩ । ନଗଦ ଅର୍ଥ—3. Cash; money.
( ଯଥା—ତା ହାତରେ ବର୍ତ୍ତମାନ ବିସ୍ତର ପଇସା ଅଛି । )

**ପଇସା ଅଜାଡ଼ିବା**—ଦେ. କ୍ରି—ଅଜସ୍ର ଧନ ବ୍ୟୟ କରିବା—To
Paisā ajārdibā spend money copiously or
ଅଜସ୍ର ପୟସା ଖରଚ କରା unceasingly; to pour out money
ପୈସା ଉଡେଲନା (ପଇସା ଲୁଚା(ଚେ)ଇବା—ଅନ୍ୟରୂପ) like water.

**ପଇସା ଉଡ଼ା(ଡେ)ଇବା**—ଦେ. କ୍ରି—ବିସ୍ତର ଅର୍ଥ ଅପବ୍ୟୟ କରିବା—
Paisā urdā(rde)ibā To squander away money.
ଟାକା ଉଡାନ ପୈସା ଉଡ଼ାନା
( ପଇସା ଉଜାଡ଼ିବା, ପଇସା ବୁହାଇବା—ଅନ୍ୟରୂପ )
( ପଇସା ଉଡ଼ା, ପଇସା ଉଡ଼ିବା; ପଇସା ଉଡ଼ିଯିବା, ପଇସା ଉଜୁଡ଼ିବା, ପଇସାରେ ପକ୍ଷି ଲାଗିବା—ବିଶେଷ୍ୟରୂପ )

**ପଇସାକ**—ଦେ. ବି—ଏକ ପଇସା ମାତ୍ର—
Paisāka ଏକ ପୟସା ଏକ ପୈସା One pice only.

**ପଇସା କଉଡ଼ି**—ଦେ. ବି (ସହଚର ଶବ୍ଦ)—୧ । ଟଙ୍କା ଠୋକର, ଧନ—
Paisā kaurdi 1. Riches
ପୟସା କଡ଼ି ୨ । ମୁଦ୍ରା ଆଦି ଧନ—2. Money.
ପୈସା କୌଡ଼ି ୩ । ନଗଦ ଟଙ୍କା—3. Hard cash.
(ପଇସା ପଇସି, ପଇସା ଫଇସା, ପୈସା କଉଡ଼ି—ଅନ୍ୟରୂପ)

**ପଇସା କମା(ମେ)ଇବା**—ଦେ. କ୍ରି—୧ । ଧନ ଅର୍ଜନ କରିବା—
Paisā kamā(me)ibā 1 To earn money.
ପୟସା କାମାନ ୨ । ଅନ୍ୟକୁ ଦିଆ ଯାଉଥିବା ଧନର ପରିମାଣ ଊଣା
ପୈସା କମାନା କରିଦେବା—2 To diminish the amount
ପଯସାକମାନ of money which one is in the habit of
ପୈସାଘଟାନା paying to another

**ପଇସାକର**—ଦେ ବିଣ—ଏକ ପଇସା ମୂଲ୍ୟର—
Paisākara ଏକ ପୟସାର ପୈସାକା Worth one pice only.
( ପଇସାକର, ପଇସ୍ଟକର, ପଇସିକର—ଅନ୍ୟରୂପ )

**ପଇସା କରିବା**—ଦେ. କ୍ରି—୧ । ଧନ ଅର୍ଜନ କରିବା—
Paisa karibā 1. To earn money.
ପୟସା କରା ୨ । ବହୁଧନ ସଞ୍ଚୟ କରିବା—
ପୈସା କରନା 2. To hoard up a large amount.

**ପଇସା କାଢ଼ିବା**—ଦେ. କ୍ରି—ଧନ ବ୍ୟୟ କରିବା, ଧନ ମୁକୁଳିବା—
Paisā kārdhibā To spend money; to be liberal in spending money.
ପୟସା ବାହିର କରା ଅଣ୍ଟାରୁ ପଇସା କାଢ଼ିବ ନାହିଁ, କ ଜଉ ଲୁଡଉଡ
ପୈସା ନିକାଲନା ଛଡ଼ିବ ନାହିଁ—ଢଗ ।
(ପଇସା ବାହାର କରିବା—ଅନ୍ୟରୂପ)

**ପଇସା କାଢ଼ୁଆ**—ଦେ. ବିଣ—ଯେ ଅକୁଣ୍ଠ ଭାବରେ ଧନ ବ୍ୟୟ କରେ—
Paisā kārdhuā Spending money without
ଖରଚୀ ପୈସା ଉଡ଼ାନେବାଲା murmur.
ଅଗ୍ରିମ ଦାଦନୀ ବି—କାମ କରିବା ପାଇଁ ଆଣିବା ଆଗତୁରା ମୂଲ ବା କୌଣସି ଦ୍ରବ୍ୟ ବିକିବା ପାଇଁ ଆଣିବା ଆଗତୁରା ମୂଲ—Money taken in advance towards one's wages or towards the price of things to be sold.

**ପଇସାକିଆ**—ଦେ. ବିଣ—୧ । ଏକ ପଇସା ମୂଲ୍ୟର—
Paisākia 1. Worth one pice only.
ପୟସା ପୟସା,ଏକ ଏକ ପୟସାର ୨ । ଯାହାର ପ୍ରତ୍ୟେକର ମୂଲ୍ୟ ଏକ
ପୈସିକା ପଇସା—2. Worth one pice each.
(ପଇସ୍କିଆ, ପଇସିକିଆ, ପୈସାକିଆ—ଅନ୍ୟରୂପ)

**ପଇସା ଖାଇବା**—ଦେ. କ୍ରି—୧ । ଅବୈଧଭାବରେ ଅନ୍ୟର ଧନ
Paisā khāibā ଅପହରଣ ବା ଆତ୍ମସାତ୍ କରିବା—
ପୟସା ଖାଓୟା 1. To misappropriate another's money.
ପୈସାଖାନା, ପୈସା ଠୌ ଲେନା ୨ । ଲାଞ୍ଚ ନେବା—2. To take
(ପଇସା ବୁହାଇବା, ପଇସା ବୋହିବା – ଅନ୍ୟରୂପ) bribe
୩ । ଆୟକୁ ନିଜେ ନେବା—3. To appropriate the income.

**ପଇସାଖିଆ**—ଦେ. ବିଣ—ଘୁଷ୍ଖୋର୍, ଉତ୍କୋଚଗ୍ରାହୀ—
Paisākhiā Addicted to taking bribe.
ପୈସା ଖାନେବାଲା ଦେ. ବି—ଘୁଷ୍ଖୋରୀ—Bribery.

**ପଇସାଖୋର୍**—ଦେ. ବିଣ—୧ । ଧନ ଅର୍ଜନରେ ଅନୁରକ୍ତ—
Paisākhor 1. Addicted to earning money.
ପୟସାଖୋର ୨ । ପଇସାଖିଆ ( ଦେଖ )
ପୈସାଖୋର Paisākhiā (See)

**ପଇସା ଗର୍ବ**—ଦେ. ବି—ଧନଗର୍ବ, ଧନମଦ—Pride of wealth.
Paisā garba
ପୟସାର ଗର୍ବ **पइसेकी गर्मी**
ପଇସା ଗରବ, ପଇସା ଗରମ, ପଇସା-ଗରମି, ପଇସା ଦମ୍ଭ, ପଇସା ଦମାକ } ଅନ୍ୟରୂପ

**ପଇସା ଗମା(ମେ)ଇବା**—ଦେ. କ୍ରି—୧ । ଆପଣା ଧନ ନଷ୍ଟ କରିବା—
Paisā gamā(me)ibā 1. To lose one's money.
ପୟସା ଉଡ଼ାନ **पैसा गँवाना** ୨ । ଅପବ୍ୟୟ କରିବା—
2. To squander away money

**ପଇସା ଜୋର୍**—ଦେ ବି—ଧନବଳ—
Paisā jor Power of wealth.
ପଵସାର ଜୋର **पैसाका जोर** (ପଇସାର ଜୋର୍—ଅନ୍ୟରୂପ)

**ପଇସା ଧାଉଡ଼ି**—ଦେ. ବି.—୧ । ଅପବ୍ୟୟ—1. Extravagant
Paisā dhāurdi expenditure (Howells).
ଖରଚେର ସ୍ରୋତ ୨ । ଖର୍ଚ୍ଚର ସ୍ରୋତ—2 A flow of expendi-
**पैसाका वहाव** ture; successive expenditures
( ପଇସା ସୁଅ, ପଇସାବୁହା—ଅନ୍ୟରୂପ )

**ପଇସା ପଇସି**—ଦେ. ବି. (ନିରର୍ଥକ ଧ୍ୱନ୍ୟନୁକାରୀ ସହଚର ଶବ୍ଦ)—ପଇସା
Paisā paisi କଉଡ଼ି; ନଗଦ ଧନ—Cash.
(ପୈସା ପୈସି—ଅନ୍ୟରୂପ) ଟାକା ପୟସା **रुपैया पयसा**

**ପଇସା ପାଣିକି ପକେଇବା**—ଦେ. କ୍ରି.—ଧନ ଅପବ୍ୟୟ କରିବା—
Paisā pāniki pakeibā To squander away money.
ଟାକା ପୟସା ଜଲେ ଫେଲା **पैसाको पानि करना, पैसापानिमे फेकना**
ପଇସା ପାଣିକି ଫୋପାଡ଼ି ଦେବା, ପଇସା ପାଣିକି ଫିଙ୍ଗିବା, ପଇସା ପାଣିରୁ ଫୋପଡ଼େଇ ଦେବା } ଅନ୍ୟରୂପ

**ପଇସା ପାଣିରେ ପଡ଼ିବା**—ଦେ. ବି.—ଖର୍ଚ୍ଚ କରିବାଦ୍ୱାରା ଇପ୍ସିତ ଫଳ
Paisā pānire pardibā ଲାଭ ନ ହେବା, ଅକାରଣ ଅର୍ଥ
ଟାକା ପୟସା ଜଲେ ପଡ଼ା ବ୍ୟୟ ହେବା—Useless expendi-
**पैसा पानीमे पड़जाना** ture; expenditure incurred without bearing any fruit.

**ପଇସା ପାରି(ଡ଼ି) ଶୋଇବା**—ଦେ. କ୍ରି. (ଆକ୍ଷରିକ ଅର୍ଥ—ପଇସାକୁ
Paisā pāri(rdi) soibā ବିଛଣାରେ ବିଛାଇ ଶୋଇବା)—
**पैसापर सोना** ୧ । ଖୁବ୍ ଧନୀ ହେବା—1. To be immen-
ପୟସା ବିଛିୟେ ଶୋଆ sely rich.
୨ । ଧନ ପ୍ରତି ଅତ୍ୟନ୍ତ ଲୋଭାସକ୍ତ ବା ମାୟାଗ୍ରସ୍ତ ହେବା—
2. To have an inordinate attachment for money.
୩ । ଅତି କୃପଣ ହେବା—3. To be very parsimonious or miserly.

**ପଇସା ପୋକ**—ପ୍ରାଦେ. (ସମ୍ବଲପୁର) ବି.—ତେଲୁଣି ପୋକ (ଯାହାକୁ
Paisā poka ଧଇଲେ ବା ଆଘାତ କଲେ ପଇସା ପରି ଚକ୍ରାକାରରେ କୁଣ୍ଡଳିତ ହୋଇ ଯାଏ)—Galley worm.

**ପଇସା ଫଣ୍ଡ୍**—ଦେ. ବି.—କୌଣସି ଦେଶହିତକର କାର୍ଯ୍ୟ ପାଇଁ ଦେଶର
Paisā phand ପ୍ରତ୍ୟେକ ବ୍ୟକ୍ତିଙ୍କଠାରୁ ଗୋଟିଏ ଲେଖାଏଁ
ପୟସା ଫଣ୍ଡ, **पैसाफण्ड** ପଇସା ଆଦାୟ କରି ଯାଇ ସଞ୍ଚିତ ପାଣ୍ଠି—Pice-fund.

**ପଇସା ବନ୍ଧା (ନ୍ଧେ)ଇବା**—ଦେ. କ୍ରି.—ପଇସାକୁ ଦେଇ ତହିଁ ବଦଳରେ
Paisā bandhā(ndhe)ibā ଟଙ୍କା ଆଣିବା, ଟଙ୍କା ବନ୍ଧାଇବା—
ଟାକା ବାନ୍ଧାନ To exchange copper into silver or
**पैसा बन्धाना** other coins, to change copper into currency notes.

**ପଇସା ବାଲା**—ଦେ. ବିଣ. ପୁଂ—୧ । ଧନବାନ୍, ଧନୀ—
Paisā bālā 1. Wealthy; rich.
(ପଇସା ବୁଆଲା—ଅନ୍ୟରୂପ) ୨ । ଯାହାଠାରେ ଅନେକ ନଗଦ
(ପଇସାବାଲୀ, ପଇସାବୁଆଲୀ—ସ୍ତ୍ରୀ) ଟଙ୍କା ଅଛି—2 Possessing
ପୟସାଆଲା **पैसावाला** a large amount of ready cash.
୩ । ମୂଲ୍ୟବାନ୍—3. Costly; valuable.

**ପଇସା ବୁଡ଼ା(ଡ଼େ)ଇବା**—ଦେ କ୍ରି.—୧ । ଅନ୍ୟର ପ୍ରାପ୍ୟ ଧନକୁ ଚାପି
Paisā burdā(rde)ibā ନ ଦେବା—1 To permanently
ପୟସା ଡୁବାନା withhold paying a person his dues.
**पैसा डुबाना** ୨ । ଅନ୍ୟର ପ୍ରାପ୍ୟ ଧନକୁ ତମାଦି କରାଇବା—
(ପଇସା ଡୁବା(ବେ)ଇବା—ଅନ୍ୟରୂପ) 2. To cause another's dues to become time-barred or unrealisable.
୩ । ପଇସା ଗମାଇବା (ଦେଖ)—
3. Paisā gamāibā (See)

**ପଇସା ବୁଡ଼ି ଯିବା**—ଦେ. ବି.—ଆପଣାର ପ୍ରାପ୍ୟ ଧନ ଅନ୍ୟ ବ୍ୟକ୍ତିଠାରୁ
Paisā burdi jibā ଆଦାୟ ହେବାର ସମ୍ଭାବନା ଲୋପ ହେବା—
ପୟସା ଡୁବା **पैसाडुवाना** The state of one's dues becoming barred or unrealisable.
ପଇସା ବୁଡ଼ିବା, ପଇସା ଡୁବିବା, ପଇସା ଡୁବିଯିବା } ଅନ୍ୟରୂପ
୨ । ଧନରେ ବିଶେଷ କ୍ଷତିଗ୍ରସ୍ତ ହେବା—2. Suffering of a great loss of money.

**ପଇସାବୁହାଇବା**—ଦେ. କ୍ରି—୧ । ପଇସା ଉଡ଼ାଇବା (ଦେଖ)
Paisā buhāibā 1. Paisā urdāiba (See)
(ପଇସା ବୋହିବା—ଅନ୍ୟରୂପ) ୨ । ଅନ୍ୟଠାରୁ ବହୁପରିମାଣରେ ଅର୍ଥ ନେବା—2. To take a large amount of money from another.
୩ । ଅନ୍ୟକୁ ବହୁଧନ ଦେବା—
3. To give a large sum to another.
(ପଇସା ବୁହା—ବିଶେଷ୍ୟରୂପ)

**ପଇସା ଭଙ୍ଗା(ଙ୍ଗେ)ଇବା**—ଦେ. କ୍ରି.—ଟଙ୍କା ବା ନୋଟ ଦେଇ ତହିଁ
Paisā bhangā(nge)ibā ପରିବର୍ତ୍ତରେ ପଇସା ଆଣିବା, ଟଙ୍କା
ଟାକା ଭାଙ୍ଗାନ ଭଙ୍ଗାଇବା—To exchange notes or
**रुपिया तोड़वाना** silver coins into copper coins.
[ଦ୍ର—ଏହା ପ୍ରକୃତରେ ଟଙ୍କା ବା ନୋଟ ଭଙ୍ଗାଇବା ଅଟେ ।]

**ପଇସା ମାଡ଼ି ବସିବା**—ଦେ. କ୍ରି—ଅନ୍ୟର ପ୍ରାପ୍ୟକୁ ଜବରଦସ୍ତି ନେଇ
Paisā mārdi basibā ଯିବା ବା ନ ଦେବା—To forcibly
ପାଉନା ଚେପେରାଖା take another's money; to undeser-
**पैसा पचारखना** vingly refuse or hush up or appropriate another's money or dues; wrongfully not to pay one's dues.

ପଇସା ମୁଡ଼ୀ—ପ୍ରାଦେ. (ସମ୍ବଲପୁର) ବି (ଯେ ପଇସା ପାଇଁ ମୁଣ୍ଡ ବିକେ, Paisā murḍi ଭୁଲ. ହି ପୈସା ମୁଁଡୀ—ଯେଉଁ ସ୍ତ୍ରୀ ଠକ କରି (ପଇସା ମୁଁଡ଼ୀ—ଅନ୍ୟରୂପ) ଧନ ନିଏ)—ବେଶ୍ୟା, ଦାସୀ—Prostitute.

ପଇସା ରଖିବା—ଦେ. କ୍ରି—ପ୍ରଭୂତ ଧନ ସଞ୍ଚୟ କରିବା—Paisā rakhiba To hoard money or cash. (ପଇସା ସଞ୍ଚିବା - ଅନ୍ୟରୂପ) পয়সা বাখা **पैसा बटोरना**

ପଇସା ଲଢ଼ା(ଢ଼େ)ଇ—ଦେ. ବି—ଦୁଇ ଜଣ ଧନୀଙ୍କ ମଧ୍ୟରେ ଧନ Paisā larḍhā(rḍhe) ବ୍ୟୟରେ ପ୍ରତିଯୋଗିତା—Rivalry পযসাব লড়াই **पैसेकि लड़ाइ** between two rich men as regards financial matters.

ପଉଗଣ୍ଡ – ଗ୍ରା. (ପଦ୍ୟ)—ପୌଗଣ୍ଡ ( ଦେଖ ) Pauganda Pauganda ( See )
ଯାହିଁ ପଉଗଣ୍ଡ କୁମାରେ, ପ୍ରକାଶ ହୋଇ ସେ କଶୋରେ । ପ୍ରାଚୀ. ପୂର୍ଣ୍ଣଚନ୍ଦ୍ର ଚନ୍ଦ୍ରୋଦୟ ।

ପଉଚ—ଗ୍ରା. ବିଣ—ବିସ୍ତୃତ ବା ଉଚ୍ଚ—Paucha Extensive or high.
ଅଲେଖ ମଣ୍ଡଳ ଷୋଳ ଯୋଜନ ପଉଚ । ବ୍ରହ୍ମନିରୂପଣ ଗୀତା ।

ପଉଞ୍ଚା(ଞ୍ଚେ)ଇବା -- ଗ୍ରାମ୍ୟ. କ୍ରି—ପହଞ୍ଚାଇବା ( ଦେଖ ) Pauñchā(ñche)iba Pahañchaiba ( See )

ପଉଞ୍ଚି – ଦେ. ବି—ପଇଁଚି ( ଦେଖ ) Pauñchi Paiñchi ( See )

ପଉଞ୍ଚିବା—ଗ୍ରା. କ୍ରି—ପହଞ୍ଚିବା ( ଦେଖ ) Pauñchibā Pahañchibā ( See )

ପଉଟି– ଦେ. ବି. ( ସଂ. ପୌତବ )—Pauṭi ଶସ୍ୟାଦିର ୨୦ ଗୌଣି ପରିମାଣ—A measure of পৌটী, পউটী corn measuring 20 Gaunis.

ପଉତ୍ର – ଗ୍ରା. ବି. (ପଦ୍ୟ) (ସଂ. ପୌତ୍ର)—ପୋଇ, ନାତି—Pautra Grand-son; son's son.
ଏହାଙ୍କଠାରୁ ବଂଶ ଯେତେ ପୁତ୍ର ପଉତ୍ର ଅନ୍ତର୍ଭୁକ୍ତ । ଜଗନ୍ନାଥ ଭାଗବତ ।

ପଉନେ—ଦେ. ବିଣ. ( ସଂ. ପାଦୋନ, ପ୍ରା. ପାଉନ )—Paune ପାଏ ଊଣା, ଏକ ପାଆ କମ—পৌনে Less by one quarter.
**पौन, पौने** ( ଯଥା – ମୋଟେ ପଉନେ ଦୁଇ ଟଙ୍କା ଦିଅ= (ପୌନେ -- ଅନ୍ୟରୂପ) ଟ ୧¾ ଦିଅ । )
[ ଦ୍ର—'ପଉନେ' ଶବ୍ଦ ଓଡ଼ିଆରେ ଚଳୁ ନଥିଲା । ଏବେ ହିନ୍ଦି ଓ ବଙ୍ଗଳା ଅନୁକରଣରେ ଗଣିତର ପାଠ୍ୟ ପୁସ୍ତକମାନଙ୍କରେ ଏହି ଶବ୍ଦର ବ୍ୟବହାର ଦେଖାଯାଏ । ]

ପଉରବ – ଗ୍ରା ବି (ପଦ୍ୟ)—ପୌରବ ( ଦେଖ ) Pauraba Pauraba ( See )
ପଉରବ ବଂଶର ବରଧନ ହୋଇ । କୃଷ୍ଣସିଂହ-ମହାଭାରତ ଆଦି ।

ପଉରଷ—ଦେ. ବିଣ. ( ପଦ୍ୟ ) ( ସଂ. ପୌରୁଷ )—Paurasha ୧ । ପ୍ରଶଂସା—1. Praise.
ପଉରୁଷ } ଅନ୍ୟରୂପ
ପୌରିଷ }
ବନ୍ଧୁଜନଙ୍କୁ ଅଣାଇଣ ପାଶ କରି ତାହାଙ୍କୁ ବହୁତ ପଉରୁଷ ଜଗନ୍ନାଥ, ବଡ଼ଦେଉଳ ରାମାୟଣ ।

পৌৰুস ୨ । ବାହାଦୁରି—2 Excellence; credit.
**पुरुषार्थ** ପଉରୁଷ ମୋହର ନାହିଁ କିଛି ତୋହର ଚରଣ ମଣ୍ଡନର ସୁଣିଲାରେ । କବିସୂର୍ଯ୍ୟ ସଙ୍ଗୀତ ।
୩ । ସାମର୍ଥ୍ୟ; ଶକ୍ତି—3. Power; might
ଦେଖାଅ ଅଛ କେତେ ତୋର ଅଛ ପଉରୁଷ । କୃଷ୍ଣସିଂହ, ମହାଭାରତ, ବନ ।

ପଉର୍ଣ୍ଣମୀ—ଗ୍ରା. ବି (ପଦ୍ୟ) ( ସଂ. ପୌର୍ଣ୍ଣମୀ )—Paurnnami ଶୁକ୍ଳ ମାସର ଶେଷ ଦିନ, ଯେଉଁ ଦିନ ଚନ୍ଦ୍ର পূর্ণিমা ପୂର୍ଣ୍ଣକଳାବିଶିଷ୍ଟ ହୋଇ ଉଦିତ ହୁଅନ୍ତି—**पूर्णिमा** Full-moon day.

ପଉଲିବା—ପ୍ରାଦେ. ( ସମ୍ବଲପୁର ) କ୍ରି - ପରିବା ଆଦିକୁ ପନିକିରେ Paulibā କାଟି ରନ୍ଧନୋପଯୋଗୀ କରିବା – To chop the kitchen vegetables with a Paniki ( stationary chopper ).

ପଏଁରି—ପ୍ରାଦେ. (ସମ୍ବଲପୁର) ବି. (ଭୁଲ ହି. ଏହି ଅର୍ଥରେ ପୈଁଜି)—Paeñri ଗୋଡ଼ର ବଳା, ଅଳଙ୍କାରବିଶେଷ—A species of anklet for the leg.

ପଏଁଶିଲା—ପ୍ରାଦେ (ସମ୍ବଲପୁର, ଲରିଆ) ବି. (ଭୁଲ ହି ପହଁସୁଲ)—Paeñsilā ପନିକି—Fish knife; stationary chopper.

ପଏକାର - ଦେ. ବି. ( ସଂ. ପଦାତି )—ପଦାତି ସୈନ୍ୟ—Paekāra Infantry soldier.
পদাতিক **पैदल**

ପଏଖ—ପ୍ରାଦେ. (ସମ୍ବଲପୁର) ବି—ଶୁକ୍ଳପକ୍ଷ, ଶୁକ୍ଳମାନ ମାସର ପ୍ରଥମ ବା Paekh ଶେଷ ୧୫ ଦିନ—Lunar fortnight.

ପଏଖ୍ ପାତର – ପ୍ରାଦେ (ସମ୍ବଲପୁର) ବି (ସଂ. ପକ୍ଷପାତ)—୧ । ପକ୍ଷପାତ—Paekh pātar 1 Partiality.
ବିଣ—ପକ୍ଷପାତୀ—Partial.

ପଏଗମ୍ବର୍—ବୈଦେ. ବି (ଫା. ପୈଗମ୍ବର୍)—ପୟଗମ୍ବର (ଦେଖ)—Paegambar Payagambara (See)
(ପଏମ୍ବର୍, ପୈଗମ୍ବର୍, ପଇଗମ୍ବର୍—ଅନ୍ୟରୂପ)
পযগম্বব **पैगम्बर**

ପଏଗୁ—ଦେ. ବି (ସ୍ଥାନର ନାମ)—ପେଗୁ (ଦେଖ) Paegu Pegu (See)

ପଏଟିଣ୍ – ବୈଦେ. ବି (ଇଂ. ପଏଣ୍ଟିଙ୍ଗ୍)—ପଇଟିଣ୍ (ଦେଖ) Paeṭin Paiṭin (See)
(ପଏଟିଣି, ପଏଣ୍ଟିଙ୍ଗ୍—ଅନ୍ୟରୂପ)

ପଏଠ—ଦେ. ବି—ପଇଠ (ଦେଖ) Paeṭha Paiṭha (See)

ପଏଡ଼୍—ଦେ. ବି (ସଂ. ପ୍ରତିବନ୍ଧକ)—Paerd ୧ । ବ୍ୟାଘାତ, ବାଧା; ପ୍ରତିବନ୍ଧକ—**रोक** 1 Obstacle; obstruction.
**दाब** ୨ । କୌଣସି ପଦାର୍ଥ ଉପରେ ମାଡ଼ିବସିବା ରୂପ—2 A pressure put on a thing or covering it.
**पग; डेग** ୩ । (ସଂ ପଦକ, ପ୍ରା ପଅଗ, ପଗ) ପାଦ ଦ୍ୱାରା ଥରକେ ଯେତେ ସ୍ଥାନ ଆକ୍ରାନ୍ତ ହୁଏ; ପାହୁଣ୍ଡ—3 The space enclosed by one step of a person while walking; one step; a pace.

**ପଏଣ୍ଟ**— ବୈଦେ.ବ (ଇଂ.ପଏଣ୍ଟ) — ୧ ।(ରେଲଲ୍ଲେ ଶବ୍ଦ) ଯେଉଁ ସ୍ଥାନରେ
Paent ଗୋଟିଏ ରେଲ୍‌ଲାଇନ୍ ସଙ୍ଗେ ଅନ୍ୟ ଗୋଟିଏ ରେଲ୍‌ଲାଇନ୍
पएन्ट ମିଶିଥାଏ—1. The point of railway line.
**पॉइंट, पॉइंट** ୨ । (କ୍ରିକେଟ୍‌ଖେଲ) ବାହୁ ଧର ଖେଳୁଥିବା ଖେଳାଳର ସମ୍ମୁଖର ଦକ୍ଷିଣ ଦଗରେ ଯେଉଁ ବିପକ୍ଷ ପକ୍ଷର ଲୋକ ଜଗିଥାଏ—
2. The point of a cricket ground.
୩ । କୌଣସି ବିଷୟର ନିର୍ଦ୍ଦିଷ୍ଟ ତର୍କସ୍ଥଳ, କୌଣସି ତର୍କର ବିବାଦାସ୍ପ ସ୍ଥଳ—
3. The point of an argument or dealing.
ଯଥା—(ମୁଁ ପଏଣ୍ଟ୍ ଛଡ଼ା କଥା କହିବ ନାହିଁ)

**ପଏଣ୍ଟର୍**—ବୈଦେ ବ (ଇଂ. ପଏଣ୍ଟର୍)—୧ । ଏକପ୍ରକାର ଶିକାରୀ
Paentar ଶ୍ରେଷ୍ଠ ବିଲାତି କୁକୁର—1. A pointer (dog).
पएन्टर ୨ । ଯହିଁରେ କୌଣସି ସ୍ଥାନ ବା ବସ୍ତୁ ନିର୍ଦ୍ଦେଶ କରାଯାଏ ---
**पॉइंटर** 2. Pointer; a pointing stick.

**ପଏଣ୍ଟମାନ**—ବୈଦେ ବ. (ଇଂ. ପଏଣ୍ଟସ୍‌ମାନ)—ଯେଉଁ ଲୋକ ଦୁଇ
Paent-mān ରେଲଲାଇନର ସଂଯୋଗସ୍ଥଳକୁ ଜଗିବାର ଭାର ଗ୍ରହଣ
पएन्टस्मान् କରିଥାଏ —Pointsman.
**पॉइंट्समैन** [ ଦ୍ର—ପଏଣ୍ଟସମାନ୍ ପଏଣ୍ଟରେ ଥାଇ ଗୃହ (ପଏଣ୍ଟସ୍‌ମାନ୍—ଅନ୍ୟରୂପ) ମୋଡ଼ଦେଲେ ରେଲଗାଡ଼ି ନିର୍ଦ୍ଦିଷ୍ଟ ଲାଇନ୍ ବାଟେ ଗତି କରେ ।]

**ପଏଣ୍ଟିଙ୍ଗ୍(ଣ୍)**—ବୈଦେ. ବ (ଇଂ. ପଏଣ୍ଟିଙ୍ଗ୍)—ପଇଣ୍ଟଣ୍ (ଦେଖ)
Paenting(n) Paitin (See)

**ପଏତା**—ପ୍ରା. ଦେ (ସମ୍ବଲପୁର) ବ—ପଇତା—
Paetā Sacred thread.

**ପଏଦଲ୍**—ଦେ. ବ—ପଇଦଲ ( ଦେଖ )
Paedal Paidala ( See )

**ପଏଦା**—ବୈଦେ. ବ. ( ଫା )—ପଇଦା ( ଦେଖ )
Paedā (ପଏଦାଇସ୍—ଅନ୍ୟରୂପ) Paidā ( See )

**ପଏଦାର**—ଦେ. ବ. ( ସଂ. ପଦାତିକ )—ପାଇକ—
Paedāra A foot soldier.
**प्याइक** ସବୁତ ମାତ୍ରନ୍ତ ପାଇକ ଯେ ପଏଦାର
**पैदल** ସୈନ୍ୟ ସେବା ପଦମାନେ ହୋଇଲେ ବାହାର—ସାରଳା, ମହାଭାରତ ।

**ପଏପାଟି**—ଦେ. ବଣ—ପରିପାଟି ( ଦେଖ )
Paepāti Paripāti (See)

**ପଏର୍(ରି)**—ପ୍ରାଦେ. (ସମ୍ବଲପୁର)ବ. (ଭୁଲ. ହି. ଏହି ଅର୍ଥରେ ପୈରା)—
Paer(ri) ବେଙ୍ଗଲା—Threshing or treading of paddy sheaves by bullocks.

**ପଏରଚ୍ଛ**—ପ୍ରାଦେ. ( ସମ୍ବଲପୁର ) ବଣ. ( ସଂ. ପ୍ରତ୍ୟକ୍ଷ, ଭୁଲ. ହି. 
Paer-chhā ଫରଚ୍ଛହିଁ )—୧ । ଫରଚ୍ଛ; ନିର୍ମଳ—1 Clear.
୨ । ସ୍ୱଚ୍ଛ—2. Transparent.
୩ । ଅମ୍ଳାନ—3. Not pale.
୪ । ଉଜ୍ଜ୍ୱଳ—4. Bright.
୫ । ମେଘଦ୍ୱାରା ଅନାବୃତ—5. Unclouded.

**ପଏରନ୍**—ପ୍ରାଦେ. ( ସମ୍ବଲପୁର )ବ -ଠାକୁରଙ୍କଠାରେ ଅଧିଆ ପଡ଼ିବା—
Paeran Lying prostrate before a Deity till one's wishes are granted.

**ପଏରବ(ବି)**—ବୈଦେ ବ. ( କଚରିଆ ) (ଫା)—୧ । ଯତ୍ନ, ତଦ୍‌ବିର୍,
Paerab(bi) ଯୋଗାଡ଼—1 Suitable arrangements
पयरबी **पैरवी** taken for an aim
୨ । ମକଦମା ପାଇଁ ଆନୁସଙ୍ଗିକ ଉଦ୍ୟମ ବା ତଦ୍‌ବିର୍—
2. Arrangements necessary for the conduct of a case.

**ପଏରବ୍(ବି)କାର୍**—ଦେ ବ (କଚରିଆ) (ଫା. ପୈରବ୍+ସଂ କାର)—
Paerab(bi)kār ମକଦମାରେ ଯେଉଁ ଲୋକ ସମସ୍ତ ଆନୁସଙ୍ଗିକ
पयरबीकार ତଦ୍‌ବିର୍ କରେ, ତଦ୍‌ବିରକାର—A person who
**पैरवीकार** looks after the necessary arrangements of a case.

**ପଏଶ୍**—ଦେ. ବ. ( ସଂ. ପ୍ରବେଶ )—୧ । ପଇଶ୍ (ଦେଖ)
Paes **हुँस ख़याल, याद** Pais (See)
୨ । ସ୍ମରଣ—2 Rememberance; recollection.

**ପଏଶ୍ ହେବା**—ଦେ.କ୍ରି—୧ । ମନେ ପଡ଼ିବା, ସ୍ମୃତିପଥାରୂଢ଼ ହେବା—
Paes hebā To be remembered.
**हुँस हओआ याद होना** ୨ । ପ୍ରବେଶ ହେବା—2 To arrive; to enter.

**ପଏଶନ୍**—ପ୍ରାଦେ ( ସମ୍ବଲପୁର ) ବ—ଲୁଗାର ଭରଣୀ ସୂତା—
Paesan The woof of a cloth.
ଦେ ବ. ( ଲରିଆ, ଭୁଲ ହି. ପସୀନା )—ଝାଳ; ସ୍ୱେଦ—
Sweat; perspiration

**ପଏଶା** (ଇତ୍ୟାଦି)—ପ୍ରାଦେ. (ସମ୍ବଲପୁର) ବ—ପଇସା ଇତ୍ୟାଦି (ଦେଖ)
Paesā (etc) Paisā etc (See)

**ପଁ**—ଦେ. ଅ ( ଧ୍ୱନ୍ୟନୁକରଣ )—ଅଧୋବାୟୁ ନିଃସରଣକାଳୀନ ନାତ୍ୟୁଚ୍ଚ
Pan ଶବ୍ଦ—A moderate sound due to the issuing
**पॅं पैं** out of wind through the anus.
[ ଦ୍ର—'ପୁଁ' ଶବ୍ଦ 'ପଁ' ଶବ୍ଦଠାରୁ କ୍ଷୀଣତର । 'ପେଁ' ଶବ୍ଦ 'ପଁ' ଅପେକ୍ଷା ବହୁକାଳସ୍ଥାୟୀ । ]

**ପଁଥୁ**—ପ୍ରାଦେ. (ବାଲେଶ୍ୱର) ବ (ଭୁଲ. ହି. ପଁଖୁଡ଼ୀ)—ମାଛର ଡେଣା—
Panthu The fins of fishes.

**ପକଡ଼**—ଦେ. ବ—ପଗଡ଼ (ଦେଖ)
Pakarda Pagarda (See)

**ପକଡ଼ା**—ଦେ. ବ—ପଗଡ଼ା (ଦେଖ)
Pakardā Pagardā (See)

**ପକଡ଼ା(ଡ଼େ)ଇବା**—ଦେ. କ୍ରି—ପଗଡ଼ାଇବା (ଦେଖ)
Pakardā(rde)ibā Pagardibā (See)
ବୃଷ୍ଟି-ବାରଣ ଛତ୍ର ନ ପକଡ଼
ନ ମାନେ କଇମାସ ନଶାଇତ । କବିସୂର୍ଯ୍ୟ, କବିତା ।

**ପକା(କ୍କା)**—ଦେ.ବ.(ସଂ. ପକ୍ୱ)—କୋଠାଘର—Masonry building.
Pakā(kkā) ଦେ ବଣ(ସଂ.ପକ୍ୱ)—୧ । ସୁପରିପକ୍ୱ—1. Ripe.
**पाका** ୨ । ଘୃତପକ୍ୱ —2. Boiled or fried in ghee.

**ପକ୍କା** ୩ । ରନ୍ଧା ହୋଇଥିବା—3 Cooked.
(କଚ୍ଚା - ବିପରୀତ) ୪ । (ଫା.ପକ୍କା) ଚିରସ୍ଥାୟୀ—4 Permanent.
୫ । ଚୂନ ଓ ପଥର ବା ଇଟାରେ କାମ କରାଯାଇଥିବା—
5 Masonry; brick-and-lime built
୬ । ମଜଭୁତ୍, ସୁଦୃଢ—6. Strong; substantial; firm.
୭ । ପ୍ରବୀଣ, ସୁଦକ୍ଷ—7 Experienced; expert.
୮ । ଯେ ସବୁକଥାକୁ ଭଲ ଭଲ କରି ଦେଖି କରେ—
8 Thorough; square
୯ । ଉତ୍ତମରୂପେ କରାଯାଇଥିବା—9. Well done.
୧୦ । ଉତ୍କୃଷ୍ଟ—10. Excellent.

**ପକା(କେ)ଇବା**—ଦେ. କ୍ରି. (ସଂ. ପ୍ରକ୍ଷେପ, ଭୁଲ. ପାଲ. ପକ୍ଖିଅ, Pakā(ke)iba ପଡ଼ିବାର ଣିଜନ୍ତରୂପ) —୧ । ସ୍ଥାପନ କରିବା—
ଫେକ୍ନା 1 To place, to put.
**ଫେଙ୍କନା** ୨ । ପିନ୍ଧିବା—2. To put on, to wear.
୩ । ଫୋପାଡ଼ିବା, ଫିଙ୍ଗିବା, ନିକ୍ଷେପ କରିବା—
3 To throw away.
ସେ ଧନ ହସ୍ତୁଁ ପକାଇଲ
ଦେଖି ଅଭିଗମ୍ୟ କର୍ମ ଫଳ । ଜଗନ୍ନାଥ. ଭାଗବତ ।
୪ । ଭୂମିସାତ୍ କରିବା—4 To fell; to throw down on the ground.
(ଯଥା – ଦୁଇଜଣ ଯୋଦ୍ଧା ଗଛଟାକୁ ପକାଇଲେ ।)
୫ । ଖାଇବା - 5 To eat; to take.
(ଯଥା--ସେ ଆଜି ଅଫିମ ଚେଲାଏ ପକାଇଛି ।)
୬ । କୌଣସି ପ୍ରସଙ୍ଗ ଉପସ୍ଥାପିତ କରିବା, ଉତ୍ଥାପନ କରିବା—
6 To put up or introduce a subject; to broach a matter.
ଦେବାର୍ଚ୍ଚନକୁ ଯେବେ ଗଲେ
ପଣ୍ଡିତ କଥା ପକାଇଲେ । ଭୂପତି. ପ୍ରେମପଞ୍ଚାମୃତ ।
୭ । (ପଙ୍ଖାଆଦି) ସଞ୍ଚାଳନ କରିବା—7. To wave; to move.
ଗ୍ରୀଷ୍ମର ପଙ୍ଖା ମାନସ ଜଳ ପୂର୍ଣ୍ଣି । କୃଷ୍ଣସିଂହ. ମହାଭାରତ. ବନ ।
୮ । ପୋତିବା, ରୋପିବା—8. To plant.
(ଯଥା— ସେ ବଗିଚାରେ ବହୁତ କଦଳୀ ପୁଅ ପକାଇଛି ।)
୯ । (ଶତରଞ୍ଜିଆଦି) ଭୂମିରେ ବିଛାଇବା, ପାରିବା—
9 To spread on the ground
ଯେଣ୍ଣା ସୁଖେ କମ୍ବଳ ପକାଇ ଶୋଇଲେ । କୃଷ୍ଣସିଂହ. ମହାଭାରତ. ବନ ।
୧୦ । (ଅନ୍ୟ କ୍ରିୟାର ଅସମାପିକାରୂପ ସଙ୍ଗେ ଲାଗେ; ଯଥା:—କରି ପକାଇବା, କୁଣ୍ଢାଇ ପକାଇବା)—ଶୀଘ୍ର କୌଣସି କ୍ରିୟା କରିବା—10. To do an act without delay.
ଦୁହିତା ଭୁଲେ ମାତା କୁଣ୍ଢାଇ ତାଙ୍କୁ
ପକାଇ ଲ ନୟନ ବରଜ ବନକୁ । କୃଷ୍ଣସିଂହ. ମହାଭାରତ. ବନ ।
୧୧ । ବୁଜିବା—11. To close; to shut.
ଜନକ ବୋଇଲେ କେ ଚୋଇଲେ ନମେଷ
ନ ପକାଏ, ଏହା ଜାଣଇ ସୃଷ୍ଟିଈଶ । କୃଷ୍ଣସିଂହ. ମହାଭାରତ. ବନ ।
୧୨ । (ଧୋବାକୁ ଲୁଗାଆଦି) ଦେବା—12.
(ଯଥା—ସେ ଆଜି ଧୋବାଘରେ ଲୁଗା ପକାଇଛି ।)
୧୩ । ଖଡ଼ିରେ ଲେଖି ଗଣନା କରିବା,—
13 To calculate by writing
(ଯଥା—ହରନାହାକ କାଲି ଖଡ଼ି ପକାଇବ ।)
୧୪ । ତ୍ୟାଗ କରିବା—14 To part with.
(ଯଥା -- ସେ ଗର୍ତ୍ତରେ ନଖବାଲ ପକାଇବ ।)
୧୫ । ବିସ୍ତୃତ କରିବା—15. To cast; to spread; to lay.
(ଯଥା – କେଉଟ ନଈରେ ଜାଲ ପକାଇବ ।)
୧୬ । ଆଘାତ କରିବା—16 To strike.
(ଯଥା—କାହିଁକି ପିଲାଟାକୁ ବାଡ଼ିଏ ପକେଇଲୁ ?)
୧୭ । ଜନ୍ମ କରିବା, ଉତ୍ପାଦନ କରିବା—
17 To give birth to; to bring forth.
(ଯଥା—ଗାଈଟି ଏଥର ମାଈ ବାଛୁରିଟିଏ ପକେଇଛି, ଏ ବର୍ଷ ନାଲି କଦଳୀ ଗଛ କାନ୍ଦିଏ କଦଳୀ ପକାଇଛି ।)
୧୮ । ମଳ ନିଃସାରଣ କରିବା—
18 To discharge faeces or ordure.
(ଯଥା—ପିଲାଟି ପାଣିଆ ପାଣିଆ ପକାଉଛି ।)
୧୯ । ନିଯୁକ୍ତ କରିବା, ଲଗାଇବା—19. To engage; to employ.
(ଯଥା—ଦଶ ଜଣ ଲୋକ ପକାଇଲେ ଏକା ଦିନେକେ ଏ କିଆରିଟି ଧାନ କଟା ସରି ଯିବ ।)
୨୦ । ଯୋଗ କରିବା—20 To join; to add to
(ଯଥା - ତମ୍ବାରେ ଦସ୍ତା ପକାଇ ଆଉଟିଲେ ପିତ୍ତଳ ହୁଏ ।)
୨୧ । ସ୍ଥାପନ କରିବା—21. To place, to put.
(ଯଥା—ସେ ବଳଦ ଉପରେ ପଲାଣ ପକାଇଲା, ସେ ତା ପିଠିରେ ହାତ ପକାଇ ଚାଲିଲା ।)
୨୨ । ଦୁଃଖ ଆଦି ଭୋଗ କରାଇବା—22 To cause to suffer or undergo.
(ଯଥା—ମତେ ତୁମେ ଆଣି ଏ ଦଣ୍ଡରେ ପକାଇଲ ।)
୨୩ । ଉଦ୍ଦେଶ୍ୟରେ ବା ଦିଗରେ ପ୍ରେରଣ କରିବା—23. To direct towards.
(ଯଥା—ସେ ମୋ ଉପରେ ବକ୍ରଦୃଷ୍ଟି ପକେଇଲା ।)

**ପକା ଉଠା**—ଦେ. ବି.—ବାରମ୍ବାର ପକାଇବା ଓ ଉଠାଇବା କର୍ମ—
Pakāuṭhā The acts of repeatedly throwing
ଫେକାତୁଲା **उठापटक** down and lifting up.

**ପକାଉଠା କରିବା**—ଦେ. କ୍ରି.—୧ । ଲକ୍ଷଣାର୍ଥ) କୌଣସି ସ୍ଥାନକୁ
Pakā uṭhā karibā ଉପର୍ଯ୍ୟୁପରି ଗର୍ଜନ ବା ଉଚ୍ଚ ଶବ୍ଦଦ୍ୱାରା
ଫେକାତୁଲା କମ୍ପମାନ କରିବା—1. (fig) To shake a place
**उठाना पटकना** by repeated roarings and loud
(ପକାଇବା ଉଠାଇବା—ଅନ୍ୟରୂପ) sounds.
(ଯଥା—ସେ ଦୁହେଁ କଳି କଜିଆରେ ଗାଆଁକୁ ପକାଉଠା କରୁଛନ୍ତି ।)
୨ । (ଲକ୍ଷଣାର୍ଥ) ବିଶେଷ ଭାବରେ ଆନ୍ଦୋଳିତ କରିବା—
2. (fig) To create a violent agitation or commotion.

୩ । (ରୋଗର ଯନ୍ତ୍ରଣା) କୌଣସି ବ୍ୟକ୍ତିକୁ ଅସ୍ଥିର କରିବା, ଛଟପଟ କରାଇବା—3 To make a person restless through pangs.
(ଯଥା—ଏ ରୋଗ ପିଲାଟିକୁ ଭାରି ପକା ଉଠା କରୁଛି ।)

**ପକା ଉ(ଓ)ପର**—ଦେ ବି—୧ । କୋଠାର ଛାତ—1 The roof of a building
Pakā u(o) para
পাকাঘরের ছাত ୨ । କୋଠାର ଦ୍ୱିତୀୟ ତଳ—
**पक्काऊपर** 2. The second storey of a building.

**ପକା କୋଠା**—ଦେ. ବି—ପଥର ବା ଇଟା ଓ ଚୂନ ଗାନ୍ଥିଣିରେ ନିର୍ମିତ କୋଠା—Brick or stone and lime masonry building.
Pakā koṭhā
পাকাবাড়ি **पक्काकोठा**

**ପକା ଗାନ୍ଥ(ନ୍ଥି)ଣି**—ଦେ ବି—କାନ୍ଥ ପ୍ରଭୃତିରେ ଚୂନ ସାହାଯ୍ୟରେ ଇଟା ବା ପଥର ବସିବା—Brick and lime masonry
Pakā gāntha(nthi)ṇi
পাকাগাঁথনী **पक्कामिलेवा**

**ପକା ଘର**—ଦେ ବି—୧ । ଇଟା ଓ ଚୂନ ଦ୍ୱାରା ପ୍ରସ୍ତୁତ କାନ୍ଥବିଶିଷ୍ଟ ଛପରଘର—1. A thatched house of brick and lime masonry.
Pakā ghara
পাকাবাড়ি
**पक्काघर** ୨ । ଘର—2. A masonry building.

**ପକା ଡୋଲା**—ଦେ. ବି (ସଂ ପ୍ରକ୍ଷେପ+ଡୋଳନ)—
Pakā ḍolā ୧ । ପକାଉଠା (ଦେଖ)—1. Pakā uṭhā (See)
(ପକାଡୋଳା—ଅନ୍ୟରୂପ) ୨ । (ଲକ୍ଷଣାର୍ଥ) ଅଣଦେଖା—
2. (fig). Neglect.

**ପକାଣ**—ଦେ. ବି (ସଂ. ପକ୍କଣ)—ଶଉରପଲ୍ଲୀ, ଶବରମାନଙ୍କ କୁଡ଼ିଆ—
Pakāṇa A woodman's hut;a hamlet of woodmen's huts.

**ପକାପକି**—ଦେ. ବି—୧ । ଦୁଇଜଣ ଧସ୍ତାଧସ୍ତି ହୋଇ ପରସ୍ପରକୁ ତଳେ ପକାଇବା—1. Mutual throwing down of two combatants.
Pakāpaki
ফেলাফেলি
**फेंकाफेंकी** ୨ । ଦୁଇଜଣ ପରସ୍ପର ଉପରକୁ କୌଣସି ପଦାର୍ଥ ପକାଇବା—2. Mutual throwing of things at each other.
পাক্কাপাক্কী ଦେ. ବିଣ—ପକ୍କା ବା ଠିକଣା ହୋଇଥିବା (ବିଷୟ); ସୁସ୍ଥିରୀକୃତ—(any matter) Made permanent or fixed; well settled.
**पक्कापक्की**

**ପକା(କ୍କା) ମାଲ**—ଦେ. ବି—୧ । ଅତି ଉତ୍କୃଷ୍ଟ ପଦାର୍ଥ—1. Very excellent thing.
Pakā(kkā) māla
পাকামাল ୨ । ଘିଅପକ୍ୱ ସୁଖାଦ୍ୟ—2. Ghee-boiled food
**पक्का(क्की)माल** ୩ । ସୁଦୃଢ଼ ବସ୍ତୁ—3. A strong built thing.
[ପକ୍ୱ(କ୍କ)ମାଲ—ଅନ୍ୟରୂପ]

**ପକୁ**—ଗ୍ରା. ବିଣ - (ସଂ ପକ୍ୱ)—ସୁଜୀର୍ଣ୍ଣ, ପରିପକ୍ୱ (ଖାଦ୍ୟଦ୍ରବ୍ୟ)—
Paku Well digested (food).

**ପକେଟ୍**—ବୈଦେ. ବି (ଇଂ)—ପାକେଟ୍; ଜାମାରେ ଲାଗି ଥିବା ଥଳି ବା ମୁଣି—Pocket of a coat.
Paket
পকেট **जेब, पाकीट**

**ପକେଟ୍ ଅଭିଧାନ**—ଦେ ବି (ଇଂ ପକେଟ୍ ଓ ସଂ. ଅଭିଧାନ) କୁଢ଼ୁଡ଼ାର ପକେଟ୍‌ରେ ରହି ପାରିବାଭଳି ଆକାରର ଅଭିଧାନ—A pocket dictionary.
Paket abhidhāna
পকেট অভিধান **देवी अभिधान**
(ପକେଟ ଡିକ୍ସନାରୀ—ଅନ୍ୟରୂପ)

**ପକେଟ୍ ଆଲାଓାନ୍ସ**—ବୈଦେ, ବି (ଇଂ)—ପକେଟ ଖରଚ, ବଡ଼ଲୋକଙ୍କ ପିଲାଙ୍କୁ ଖୁଚୁରା ଖରଚ କରିବା ପାଇଁ ଅଭିଭାବକଙ୍କ ଦ୍ୱାରା ଦଆଯିବା ନିର୍ଦ୍ଦିଷ୍ଟ ଧନ—Pocket allowance.
Paket ālāwāns
পকেটআলাউআনস
**जेब खरच**

**ପକେଟ୍ ଏଡସନ୍**—ବୈଦେ ବି (ଇଂ.)—କୌଣସି ପୁସ୍ତକର ପକେଟ୍‌ରେ ରହି ପାରିବାଭଳି ଛୋଟ ଆକାରରେ ପ୍ରକାଶିତ ହୋଇଥିବା ସଂସ୍କରଣ—
Paket edisan
পকেট এডিসন
**जेबी सँस्करण** Pocket edition
(ପକେଟ୍ ସଂସ୍କରଣ—ଅନ୍ୟରୂପ)

**ପକେଟ୍ ୱାଚ୍**—ବୈଦେ ବି (ଇଂ)—ପେଟ୍‌ରେ ଛୋଟ ଘଣ୍ଟା କୁର୍ତ୍ତା-ପକେଟ୍‌ରେ ରଖାଯାଏ—Pocket watch
Paket wāch
পকেটওয়াচ **जेबघडी** (ପକେଟ୍‌ଘଡ଼ି—ଅନ୍ୟରୂପ)

**ପକେଟ୍‌କଟା**—ଦେ ବି—୧ । କୌଣସି ବ୍ୟକ୍ତିର ପିନ୍ଧିଥିବା ଜାମାର ପକେଟରୁ କୌଶଳ କ୍ରମେ କୌଣସି ଦ୍ରବ୍ୟ ଚୋରି କରିବା ଚୋର—1 A pickpocket
Paket kaṭa
পকেটকাটা
**पाकिटमार** ୨ । ପକେଟ୍‌ରୁ କୌଶଳ ପୂର୍ବକ ଚୋରି କରିବା—2. Pick pocketing.
(ପକେଟ୍‌ମାରୁ, ପକେଟ୍ ଚୋର, ପକେଟ୍‌ମାର୍—ଅନ୍ୟରୂପ)

**ପକେଟ୍ ଖରଚ**—ବୈଦେ. ବି (ଇଂ. ପକେଟ୍ ଓ ଅ ଖର୍ଚ୍ଚ)—
Paket kharacha ୧ । ବଡ଼ଲୋକଙ୍କ ପିଲାଙ୍କୁ ବାଜେ ବା ସଉକୀନ କରିବାପାଇଁ ଦଆଯିବା ନିର୍ଦ୍ଦିଷ୍ଟ ଧନ—1 Pocket allowance.
পকেট খরচ
**जेबखर्च**
୨ । ବଡ଼ ଲୋକଙ୍କ ଖାଦ୍ୟ, ପୋଷାକ ଓ ବହିପତ୍ର ଆଦି ପାଇଁ ନିର୍ଦ୍ଧାରିତ ଖରଚ ଛଡ଼ା ବାଜେ ଖରଚ—2. Private expenses; miscellaneous expenses

**ପକେଟ୍ ଗୀତା**—ଦେ. ବି (ଇଂ. ପକେଟ୍ ଓ ସଂ. ଗୀତା)—ପକେଟରେ ରହିପାରିବା ଭଳି ଆକୃତିର ଛୋଟ ଭଗବଦ୍‌ଗୀତା ଗ୍ରନ୍ଥ, ଭଗବଦ୍ଗୀତାର ପକେଟ୍ ସଂସ୍କରଣ—
Paket gitā
পকেটগীতা
**पकेटगीता** Pocket Gita
[ଦ୍ର—ଏହିପରି 'ପକେଟ୍‌ଚିଣ୍ଡି' ଆଦି ଶବ୍ଦ ମଧ୍ୟ ହୁଏ ।]

**ପକେଟ ଘଡ଼ି**—ବୈ. ବି (ଇଂ. ପକେଟ୍ ଓ ସଂ. ଘଟି)—ଢ଼ିଆର, ଶୁନ୍
Paket ghaṛi ଘଡ଼ି—Pocket watch
পকেটঘড়ি **जेबघाड़** (ପକେଟ୍ ଘଣ୍ଟା—ଅନ୍ୟରୂପ)

**ପକେଟ ବହି**—ବୈଦେ ବି—ପକେଟରେ ରହି ପାରିବାଭଳି ପୁସ୍ତକ—
Paket bahi Pocket book.
পকেটবই **पकेटबही** (ପକେଟବୁକ୍—ଅନ୍ୟରୂପ)

**ପକେଟ୍ ମାରିବା**—ଦେ. କ୍ରି—କୌଶଳପୂର୍ବକ ମନୁଷ୍ୟର ପକେଟରୁ ଧନ ଚୋରି କରିବା—To pick one's pocket.
Paket māribā
পকেটমাবা **पकेटमारना** (ପକେଟ କାଟିବା—ଅନ୍ୟରୂପ)

ପକୋଡ଼—ଦେ ବ ( ସଂ ପକ୍ୱବଟକ )—ଫେଣ୍ଟା ହୋଇଥିବା ବୁଟ
Pakoṛi ବେଶନ ବା ବୁଟ ବଟାକୁ ଘିଅ ବା ତେଲରେ ଛାଙ୍କି
ପକୋଡ଼ୀ; ଫୁଲୁରୀ ଫୁଲବଡ଼ି ଆକାରରେ ତିଆର କରବା ଖାଦ୍ୟ—
**पकौड़ी** Small globules of gram-flour mixed with water, made into paste and fried in ghee or oil
[ ଦ୍ର—ଦାକ୍ଷିଣାତ୍ୟରେ ଲଙ୍କାମରଚ ଫଳକୁ ବୁଟବେସନ ଆଦରେ ବୁଡାଇ ତାକୁ ଘିଅ ବା ତେଲରେ ଛାଣନ୍ତି । ସମୟେ ସମୟେ ବୁଟ ସଙ୍ଗେ ଲଙ୍କା ଓ ପିଆଜ ଆଦ ବଟା ହୋଇ ମଧ୍ୟ ପକୋଡ଼ ତିଆର ହୁଏ । ]

ପକ୍କଣ—ସଂ. ବ. (ପଚ୍ ଧାତୁ=ପାକ କରବା+ଅଧିକରଣ କଣ=ଚଣ୍ଡାଲ-
Pakkaṇa କଣା, ଯେଉଁ ଘରେ ଚଣ୍ଡାଲକଣା ବା ଖାଦ୍ୟ ରନ୍ଧା ଯାଏ )—୧ । ଶବରଗୃହ—1. Woodman's hut
୨ । ଚଣ୍ଡାଲ କୁଟୀର —2 A poor man's hut
୩ । (+କରଣ. କଣ)ଅଗ୍ନି—3 Fire

ପକ୍କା—ଦେ ବଣ ସଂ ପକ୍ୱ—୧ । ଚିରସ୍ଥାୟୀ, ସ୍ଥାୟୀ—
Pakkā 1 Permanent
पाका ୨ । ମଜଭୁତ୍—2. Strong.
**पक्का** ୩ । ଚୂନ ଗାନ୍ତିନରେ ତିଆର—
3. Made with lime masonry.
(କଚା—ବିପରୀତ) ୪ । ଘୃତପକ୍ୱ—4 Fried in ghee
୫ । ନିପୁଣ, ଚତୁର—5 Clever, skilful.
୬ । ଦେଶଜାତ ବସ୍ତୁରୁ କୌଶଳ ପ୍ରୟୋଗପୂର୍ବକ ନିର୍ମିତ—
6 Manufactured from raw articles.
୭ । ଚାକରରେ ସ୍ଥାୟୀ ଭାବରେ ନିଯୁକ୍ତ—
7. Confirmed in a service.

ପକ୍କି—ବୈଦେ ବଣ ( ଫା. ପକ୍କୀ )—୧ । ଅତି ଉତ୍କୃଷ୍ଟ—
Pakki 1. Excellent
पाकी **पक्की** ୨ । ଘୃତପକ୍ୱ—2 Boiled in ghee.

ପକ୍କିମାଲ୍—ଦେ. ବ—୧ । ଘୃତପକ୍ୱ ଉତ୍କୃଷ୍ଟ ଖାଦ୍ୟ—
Pakkimāl 2. Excellent or rich food fried in ghee.
पाकीमाल ୨ । ଉତ୍କୃଷ୍ଟ ପଦାର୍ଥ —2. Excellent thing.
୩ । ଦେଶଜାତ ମୌଳିକ ଦ୍ରବ୍ୟରୁ କୌଶଳ ପ୍ରୟୋଗଦ୍ୱାରା ନିର୍ମିତ—
**पक्कीमाल** 3. Manufactured articles manufactured from raw materials.

ପକ୍ତା—ସଂ. ବଣ ପୁଂ. ( ପଚ୍ ଧାତୁ=ପାକ କରବା+କର୍ତ୍ତୃ. ତୃ )—
Paktā ( ପକ୍ତ୍ରୀ—ସ୍ତ୍ରୀ ) ପାକକାରୀ, ପାଚକ—One who cooks.

ପକ୍ତି—ସଂ. ବ (ପଚ୍ ଧାତୁ+ଭାବ. ତି )—୧ । ପାକ, ରନ୍ଧନ—
Pakti 1. Cooking
୨ । ପାଚବା—2. Ripening.

ପକ୍ୱ—ସଂ ବଣ. ( ପଚ୍ ଧାତୁ=ପାକ କରବା+ତ )—
Pakwa ୧ । ପରଣତ, ପାଚିଲା—1. Ripe; mature.
(ପକ୍ୱତା, ପକ୍ୱତ୍ୱ—ବ) ୨ । ସମ୍ପୂର୍ଣ୍ଣରୂପେ ବର୍ଦ୍ଧିତ—
2 Fully developed.
୩ । ପାକନିଷ୍ପନ୍ନ, ସୁସିଦ୍ଧ—3. Well boiled; baked.
୪ । ସୁଜୀର୍ଣ୍ଣ—4. Digested.
୫ । ଦୃଢ଼—5. Strong.
୬ । ସାରଯୁକ୍ତ—6. Substantial.
୭ । ବିନାଶୋନ୍ମୁଖ—7 Decadent
୮ । ଶୁଭ୍ର (କେଶ)—8 Grey; white (hair).
୯ । ବୁଦ୍ଧିମାନ୍—9 Intelligent.

ପକ୍ୱଣ—ସଂ. ବ. ( ପଚ୍ ଧାତୁ+ଅଧିକରଣ ବଣ, ଯେଉଁଠାରେ ପାକ
Pakwana କରାଯାଏ )—କୁଟୀର—Hut; cottage.

ପକ୍ୱାଧାନ—ସଂ ବ. (ମ. ପ. ଲୋ, କର୍ମଧା, ପକ୍ୱ+ଆଧାନ)—ପାକସ୍ଥଳୀ;
Pakwādhāna ପାକାଶୟ—The stomach, the digestive organs.
( ପକ୍ୱାଧାର, ପକ୍ୱାଶୟ—ଅନ୍ୟରୂପ )

ପକ୍ୱାନ୍ନ—ସଂ. ବ (କର୍ମଧା, ପକ୍ୱ+ଅନ୍ନ)—୧ । ରନ୍ଧା ଯାଇଥିବା ଖାଦ୍ୟ—
Pakwānna 1. Cooked food.
୨ । ଘୃତପକ୍ୱ ମିଷ୍ଟାନ୍ନ, ପଲଉ—2. Dainty sweets prepared with ghee; rich food.

ପକ୍ଷ୍ ( ଧାତୁ )—ସଂ—ଗ୍ରହଣ କରବା—
Paksh (root) To take

ପକ୍ଷ—ସଂ. ବ. ( ପକ୍ଷ୍ ଧାତୁ=ଗ୍ରହଣ କରବା+କର୍ମ. ଅ )—
Paksha ୧ । ମାସାର୍ଦ୍ଧ; ପଞ୍ଚଦଶ ଦିବାରାତ୍ରି—1 Fortnight.
[ ଦ୍ର ଶୁକ୍ଳ ପ୍ରତିପଦଠାରୁ ପୂର୍ଣ୍ଣିମୀ ପର୍ଯ୍ୟନ୍ତ ଶୁକ୍ଳପକ୍ଷ ଓ କୃଷ୍ଣ ପ୍ରତିପଦଠାରୁ ଅମାବାସ୍ୟା ପର୍ଯ୍ୟନ୍ତ କୃଷ୍ଣପକ୍ଷ । ]
୨ । ପକ୍ଷୀର ଡେଣା—2 Wing of a bird.
୩ । ବାଣ ବା ଶରରେ ଲାଗିଥିବା ପକ୍ଷ ବା ପୁଚ୍ଛ—
3 The feather of an arrow.
୪ । ପାଖ, ପାର୍ଶ୍ୱ—4. Side; flank.
୫ । ଗୁଚ୍ଛ, ସମୂହ—5. Collection; cluster.
୬ । ଭିତ୍ତି; କାନ୍ଥ—6. Wall.
୭ । ବରଣ୍ଡା; ପିଣ୍ଡା—7. Varanda, aisle.
୮ । ପାର୍ଶ୍ୱଗୃହ—8. Side room.
୯ । ରାଜହସ୍ତୀ—9. A king's elephant.
୧୦ । ବିରୋଧ 10 Opposition.
୧୧ । ଥର; ବାର—11 Time.
୧୨ । ସୈନ୍ୟ, ବଳ—12 Army.
୧୩ । ପ୍ରଶ୍ନ ବା ଉତ୍ତର—13. Question or answer.
୧୪ । ପ୍ରତ୍ୟୁତ୍ତର —14. Reply.
୧୫ । ସହାୟ—15. Help; support.
୧୬ । ସମ୍ପ୍ରଦାୟ; ଗଣ; ଦଳ, ୨ଟି ବିପକ୍ଷ ଦଳ ମଧ୍ୟରୁ ଏକ—
16. Party; one of the contending parties.
୧୭ । ଏକପକ୍ଷଭୁକ୍ତ ବ୍ୟକ୍ତି—17. Partisan.
୧୮ । ଚୁଲିର ପଙ୍ଖା ବା ମୁହଁ—
18. The mouth of an oven.
୧୯ । ଦୁଇ ସଂଖ୍ୟାବୋଧକ ଅଙ୍କ—19. Dual number; two.

୨୦ । ମତ—20 Opinion.
୨୧ । ଦ୍ୱନ୍ଦ୍ୱ, ଯୋଡ଼ା—21. Couple; pair.
୨୨ । ବିରୁଦ୍ଧ ଯୁକ୍ତିର ଏକ ଦିଗ –
22 One side of an argument.
୨୩ । (ନ୍ୟାୟଦର୍ଶନ) ଅନୁମେୟ ବସ୍ତୁର ଆଧାର—
23 The subject of a logical proposition.
ଦେ. ବି.—୧ । ଏକ କଡ଼ାର ୨ ଭାଗରୁ ଏକ ଭାଗ—
1. ½ of a karda.
୨ । ଘଟଣା, ଅବସ୍ଥା—2. State; event.
ହେବାରୁ ଭୂପେ ସ୍ନେହେ ଲଟପଟ,
ହେଉ · ପକ୍ଷ ଭଣିବାର ଘଟ । କବିସୂର୍ଯ୍ୟ. କବଳାକଲ୍ଲୋଳ ।
୩ । ଚକ୍ଷୁର ଡୋଳା—3 Eye-ball.
ଏମନ୍ତ ଜଗ୍ନକ ମଧ ପକ୍ଷ ଅନ୍ତରେ ରଞ୍ଜନ ।
ଭଞ୍ଜ. ପ୍ରେମସୁଧାନିଧି ।
ଦେ. ବିଣ.—ବିପକ୍ଷ; ପ୍ରତିକୂଳ—Unfavourable.
ଏବେ ମୁ କହାଷ ଫିଙ୍ଗ ନାହିଁ ପକ୍ଷ ହେଉଛୁ ଅହଂକାର ।
କବିସୂର୍ଯ୍ୟ. ସଙ୍ଗୀତ ।

**ପକ୍ଷକ**—ସ. ବି.—୧ । ସହାୟ; ସପକ୍ଷ—
Pakshaka 1. Partisan; supporter
୨ । ପାର୍ଶ୍ୱଦ୍ୱାର, ବାଡ଼ି ଦୁଆର—2. Back door; side door.
୩ । ପାର୍ଶ୍ୱ—3. Side; flank.

**ପକ୍ଷକ ଲୋକ**—ଦେ. (ପଦ୍ୟ) ବି.—ଭକ୍ତ—
Pakshaka loka A devotee.
ପକ୍ଷେର ଲୋକ ବଇଷ୍ଣବ-ପକ୍ଷକ-ଲୋକ ଘୋଷିତ ।
**पक्षका आदमी** ଭଞ୍ଜ. ବୈଦେହୀଶବିଳାସ ।

**ପକ୍ଷ ଗ୍ରହଣ**—ସ. ବି (୬ଷ୍ଠୀ ତତ୍, ପକ୍ଷ+ଗ୍ରହଣ)—୧ । ଦୁଇ ବିପକ୍ଷୀୟ
Paksha grahana ପକ୍ଷ ମଧ୍ୟରୁ ଗୋଟିଏ ପକ୍ଷକୁ ଆଶ୍ରୟ କରିବା
( ପକ୍ଷାବଲମ୍ବନ—ଅନ୍ୟରୂପ ) 1. Taking one of the two sides.
୨ । ପକ୍ଷପାତ—2. Partiality towards one party.

**ପକ୍ଷଚର**—ସ. ବି. (ପକ୍ଷ+ଚର୍ ଧାତୁ+କର୍ତ୍ତୃ. ଅ)—୧ । ଚନ୍ଦ୍ର—
Pakshachara 1. The moon.
୨ । ଅନୁଚର –2 Follower; attendant.
୩ । ସହଚର—3. Companion.
୪ । ଚକ୍ରବାକ, ଚକ୍ରବାକ ପକ୍ଷୀ—4. The ruddy gooes.
୫ । ହସ୍ତୀ – 5. Elephant

**ପକ୍ଷତି**—ସ. ବି. (ପକ୍ଷ+ମୂଳାର୍ଥରେ. ତି) – ୧ । ପକ୍ଷୀ ଡେଣାର ମୂଳ—
Pakhsati 1. The root of a brid's wing.
୨ । ପ୍ରତିପଦ—2. The Ist. day of the moon's wane or increase.

**ପକ୍ଷ ଦ୍ୱାର**—ସ. ବି. (ପକ୍ଷ+ଦ୍ୱାର)—୧ । ବାଡ଼ିଦୁଆର, ଗଳି କବାଟ—
Paksha dwara 1. Back door,
୨ । ପାର୍ଶ୍ୱ ଦ୍ୱାର—2. Side door,
୩ । ଗଳି କବାଟ; ଗୁପ୍ତ କବାଟ—3. Trap door.

**ପକ୍ଷଧର**—ସ. ବି. (ପକ୍ଷ+ଧୃ ଧାତୁ+କର୍ତ୍ତୃ. ଅ)—୧ । ଚନ୍ଦ୍ର—
Pakshadhara 1. The moon.
୨ । ପକ୍ଷୀ 2. Bird.
ସ. ବିଣ.—ପକ୍ଷଯୁକ୍ତ—Winged

**ପକ୍ଷ ଧରିବା**—ଦେ. କ୍ରି.—୧ । ବିବାଦରେ କୌଣସି ପକ୍ଷ ଗ୍ରହଣ କରିବା–
Paksha dhariba 1. To take a side in a dispute.
पक्ष धवा ପାଣ୍ଡୁସୁତଙ୍କର ଭୃତ୍ୟର ହେଲେ ଗୋଟ,
पक्ष धरना ପକ୍ଷ ଧରି ରହିବାକୁ ମୋର ନାହିଁ ବଳ । କୃଷ୍ଣସିଂହ ମହାଭାରତ ।
(ପକ୍ଷ ନେବା—ଅନ୍ୟରୂପ) ୨ । ପକ୍ଷପାତୀ ହେବା; ଏକ ପକ୍ଷ ପ୍ରତି ଅନ୍ୟାୟରେ ଆସକ୍ତ ହେବା—2. To be partial to one party.

**ପକ୍ଷପାତ**—ସ ବି. (ପକ୍ଷ+ପାତ)—୧ । ଏକ ପକ୍ଷ ପ୍ରତି ଅନ୍ୟାୟ ଆସକ୍ତି
Pakshapata 1. Partiality.
୨ । ଗୋଟିଏ ପାଖକୁ ଆଉଜିବା–2. Inclining to ones
ଦେ. ବିଣ —ପକ୍ଷପାତୀ—
Partial; one sided; prejudiced.

**ପକ୍ଷପାତୀ**—ସ ବିଣ. ପୁଂ. (ପକ୍ଷ+ପାତିନ୍; ୧ମା. ୧ବ.)—ଏକ ପକ୍ଷ
Pakshapati ପ୍ରତି ଅନ୍ୟାୟଭାବରେ ଆସକ୍ତ—Partial;
(ପକ୍ଷପାତିନୀ—ସ୍ତ୍ରୀ) (ପକ୍ଷପାତିତା—ବି.) biased.

**ପକ୍ଷପୁଟ**—ସ. ବି (୬ଷ୍ଠୀ ତତ୍, ପକ୍ଷ+ପୁଟ)—ଡେଣା —
Paksha puta Wing.

**ପକ୍ଷବାନ୍**– ସ. ବିଣ. ପୁଂ (ପକ୍ଷ+ବତ୍, ୧ମା. ୧ବ.)—ପକ୍ଷବିଶିଷ୍ଟ—
Pakshaban Winged.

**ପକ୍ଷ ମୂଳ**—ସ. ବି (୬ଷ୍ଠୀ ତତ୍, ପକ୍ଷ+ମୂଳ)—ପକ୍ଷତି (ଦେଖ) --
Paksha mula Pakshati (See)

**ପକ୍ଷ ସଞ୍ଚାଳନ**—ସ ବି. (୬ଷ୍ଠୀ ତତ୍; ପକ୍ଷ+ସଞ୍ଚାଳନ)—ଡେଣାକୁ
Paksha sanchalana ଇତସ୍ତତ ଚଳାଇବା, ଡେଣା ହଲାଇବା—
Moving the wings to and fro.

**ପକ୍ଷ ସମର୍ଥନ**—ସ. ବି. (୬ଷ୍ଠୀ ତତ୍, ପକ୍ଷ+ସମର୍ଥନ)—ଏକ ପକ୍ଷର
Paksha samarthana ସହାୟତା—Supporting one party.
(ପକ୍ଷସମର୍ଥକ—ବିଣ)

**ପକ୍ଷାଘାତ**—ସ. ବି. ୬ଷ୍ଠୀ ତତ୍; ପକ୍ଷ+ଆଘାତ)—ବାତ ବ୍ୟାଧିବିଶେଷ;
Pakshaghata ଏକାଙ୍ଗୀ ବାତ ( ଯହିଁରେ ଅଙ୍ଗପ୍ରତ୍ୟଙ୍ଗ ଅବଶ ହୁଏ)—Paralysis; palsey.

**ପକ୍ଷାଘାତୀ**—ସ ବିଣ. ପୁଂ. (ପକ୍ଷାଘାତ+ଇନ୍; ୧ମା. ୧ବ )—ପକ୍ଷାଘାତ
Pakshaghati (ପକ୍ଷାଘାତିନୀ—ସ୍ତ୍ରୀ) ରୋଗାକ୍ରାନ୍ତ—
Paralytic; paralysed.

**ପକ୍ଷାନ୍ତ**—ସ. ବି. ( ୬ଷ୍ଠୀ ତତ୍, ପକ୍ଷ+ଅନ୍ତ )—ପକ୍ଷର ଶେଷ ଦିନ,
Pakshanta ପୌର୍ଣ୍ଣମୀ ବା ଅମାବାସ୍ୟା—The last day of a lunar fortnight.

**ପକ୍ଷାନ୍ତର**—ସ. ବି. (ନିତ୍ୟ ସମାସ, ଅନ୍ୟ ପକ୍ଷ=ପକ୍ଷାନ୍ତର )—
Pakshantara ଅନ୍ୟ ପକ୍ଷ; ଅପର ପକ୍ଷ—The other side, another view of an argument.

**ପକ୍ଷାନ୍ତରେ**—ଦେ. କ୍ରି. ବିଣ —ଅପର ପକ୍ଷରେ, ଅନ୍ୟଥା, ପରନ୍ତୁ—
Pakshantare Otherwise; on the other side;
(ପକ୍ଷାନ୍ତରରେ—ଅନ୍ୟରୂପ) on the other hand.
पक्षान्तरे पक्षान्तरमें

ପକ୍ଷିଆ—ପ୍ରାଦେ (ଗଡ଼ଜାତ) ବି—ଡେଣ୍ତାର ଦୁଇ ଖମ୍ବ ଉପରେ ପଡ଼ିଥିବା
Pakshiā ଆଡ଼ୁଧାରଣା—
ଦେ ବି—ପକ୍ଷିଆ ( ଦେଖ )—Pakhiā ( See )

ପକ୍ଷିଚ(ଜ)ଟା—ଦେ ବି. ( ସଂ ପକ୍ଷୀ ଓ ଜଟାୟୁ )—
Pakshicha ja)ṭā ସମାସୃଣବର୍ଣ୍ଣିତ ଜଟାୟୁ ନାମକ ଗୃଧ୍ରରାଜ—
ଜଟାୟୁ **जटायु** Name of the King of vultures mentioned in the Rāmāyaṇa
[ ଦ୍ର— ଏ ଦଶରଥଙ୍କର ମିତ୍ର ଥିଲେ । ]

ପକ୍ଷିଣୀ—ସଂ ବି ସ୍ତ୍ରୀ. ( ପକ୍ଷ + ଇନ୍ + ସ୍ତ୍ରୀ ଈ )—
Pakshiṇī ୧ । ସ୍ତ୍ରୀ ପକ୍ଷୀ - 1. A she-bird.
(ପକ୍ଷୀ—ପୁଂ) ୨ । ଦୁଇ ଦିବା ଓ ତନ୍ମଧ୍ୟସ୍ଥ ରାତ୍ରି—
2. Two days and the night between them, a period of 36 hours beginning from dawn.

ପକ୍ଷି ଧର—ଦେ ବି—ବ୍ୟାଧ, ଚଢ଼େଇମାରୁ—
Pakshi dharā A bird-catcher; a fowler
(ପକ୍ଷିମର—ଅନ୍ୟରୂପ) ପକ୍ଷିମାର **पक्षी पकड़ने वाला**

ପକ୍ଷି ପାଣି—ଦେ ବି—ଗୁଣ୍ଡୁକାଳକା ଓ କୋଚିଲଖାଇ ଆଦି ପକ୍ଷୀଙ୍କ
Pakshi pāṇi ପକ୍ଷକୁ ପାଣିରେ ସିଦ୍ଧ କରି ସନ୍ନିପାତ ଓ ଆମବାତ
**पाखीब सुरुआ** ଆଦି ରୋଗରେ ଦିଆଯିବା ପାନୀୟବିଶେଷ—
A broth prepared by boiling the wing of certain birds and used as a medicine for certain diseases (e g rheumatism).

ପକ୍ଷି ବିଦ୍ୟା—ସଂ. ବି—ପକ୍ଷୀମାନଙ୍କ ବିବରଣ ସମ୍ବନ୍ଧିତ ବିଦ୍ୟାବିଶେଷ—
Pakshi bidyā Ornithology

ପକ୍ଷି ମଞ୍ଜାରୀ—ପ୍ରାଦେ. ( ଗଡ଼ଜାତ ) ବି—ରାତିରେ ବୋବାଳି ଛାଡ଼ିବା
Pakshi mañjāri ପକ୍ଷୀବିଶେଷ—A kind of wild bird whose scream is heard in night and is deemed ominous
[ ଦ୍ର— ଏମାନଙ୍କ ଡାକ ଅଶୁଭ ସୂଚକ । ]

ପକ୍ଷିରା—ଦେ. ବିଣ. ( ସଂ. ପକ୍ଷ, ପକ୍ଷ ପରି ପତଳା ହେବା ଯୋଗୁଁ )—
Pakshirā ଜୀର୍ଣ୍ଣ ଶୀର୍ଣ୍ଣ ( କବାଟ, ଝରକା ଆଦି )—
ପାତଳା **खिआया हुआ** Worn out and emaciated
( ଯଥା— କବାଟଟି ପକ୍ଷିରା ହୋଇ ଗଲାଣି । )
ଦେ. ବି - ଜୀର୍ଣ୍ଣ ଶୀର୍ଣ୍ଣ ଅବସ୍ଥା—
The state of being worn out.
( ଯଥା —ଏ କବାଟକୁ ପକ୍ଷିରା ବାଧିଲାଣି । )

ପକ୍ଷିରାଜ—ସଂ. ବି. ପୁଂ. ( ୬ଷ୍ଠୀ ତତ୍, ପକ୍ଷିନ୍+ରାଜନ୍, ୧ମା. ୧ବ ) -
Pakshirāja ୧ । ଶ୍ରେଷ୍ଠ ପକ୍ଷୀ—1. An excellent bird
୨ । ଗରୁଡ଼—2. Garurda.
୩ । ମୟୂର—3 Peacock.
ଦେ. ବି—କାହାଣୀରେ ବର୍ଣ୍ଣିତ ପକ୍ଷବିଶିଷ୍ଟ ଘୋଟକ—
The winged horse of the folktales.

ପକ୍ଷିରାଜ ଘୋଡ଼ା—ଦେ.ବି—କାହାଣୀ ଓ ପୁରାଣରେ ବର୍ଣ୍ଣିତ ଉଡ଼ୁଯୁନଶୀଳ
Pakshirāja ghorḍa ପକ୍ଷଯୁକ୍ତ ଘୋଟକବିଶେଷ—
ପକ୍ଷିରାଜ ଘୋଡ଼ା The winged horse of mythology and folktales.
**पक्षिराज घोड़ा**

ପକ୍ଷି ଶାବକ—ସ ବି—ଚଢେଇ ଛୁଆ—
Pakshi śābaka The young ones of a bird.

ପକ୍ଷିଶାଳା—ସ ବି. ( ୬ଷ୍ଠୀ ତତ୍, ପକ୍ଷୀ+ଶାଳା )—ଚଢ଼େଇଖାନା—
Pakshiśāḷā An aviary; a bird-house.

ପକ୍ଷୀ—ସଂ ବି. ପୁଂ ( ପକ୍ଷ+ଇନ୍, ୧ମା. ୧ବ )—
Pakshī ୧ । ଚଢେଇ, ବିହଗ, ବିହଙ୍ଗମ—1 Bird.
(ପକ୍ଷିଣୀ—ସ୍ତ୍ରୀ) ୨ । ବାଣ, ଶର—2. Arrow
ଦେ ବି - ପକ୍ଷୀ ( ଦେଖ )—Pakhī ( See )
ପ୍ରାଦେ (ଯାଜପୁର) ବି—ମୁଖା (ଦେଖ)—Mukhā (See)

ପକ୍ଷୀନ୍ଦ୍ର ସଂ. ବି. ( ୭ମୀ ତତ୍; ପକ୍ଷୀ+ଇନ୍ଦ୍ର )—ଗରୁଡ଼, ଖଗେଶ୍ୱର—
Pakshīndra Garurda; the king of birds.

ପକ୍ଷୀୟ—ସଂ. ବିଣ ପୁଂ. ( ପକ୍ଷ + ସମ୍ବନ୍ଧାର୍ଥରେ ଈୟ )—
Pakshīya ପକ୍ଷଭୁକ୍ତ; ଦଳଭୁକ୍ତ— Belonging to a party or side

ପକ୍ଷୋଦ୍ଗମ—ସଂ ବି ( ୬ଷ୍ଠୀ ତତ୍, ପକ୍ଷ+ଉଦ୍ଗମ )—
Pakshodgama ପକ୍ଷୀର ଦେହରେ ପକ୍ଷର ଉତ୍ପତ୍ତି—The coming out of the wings on the body of a bird
ପକ୍ଷୋଦ୍ଭବ, ପକ୍ଷୋଦ୍ଭେଦ } ଅନ୍ୟରୂପ

ପକ୍ଷ୍ମ—ସଂ ବି ( ପକ୍ଷ୍ ଧାତୁ=ଗ୍ରହଣ କରିବା+କର୍ମ. ମନ୍, ପକ୍ଷ୍ମନ୍ ଶବ୍ଦ
Pakshma ୧ମା ୧ବ )—୧ । ନେତ୍ରଚ୍ଛଦ ଲୋମ; ଆଖିର ପତାର ଲୋମ —1. The eyelashes
୨ । ଲୋମ —2 Small hair
୩ । ପକ୍ଷୀର ପାଲକ—3. The down of a bird.
୪ । ପୁଷ୍ପକେଶର —4. The filaments of a flower.
୫ । ସୂକ୍ଷ୍ମାଂଶ—5 Fibre.
୬ । ସୂତାର ଅଗ୍ରଭାଗ—6. The end of a thread.

ପକ୍ଷ୍ମଳ - ସଂ. ବିଣ. ( ପକ୍ଷ୍ମନ୍ + ଅସ୍ତି ଅର୍ଥରେ. ଲ )—
Pakshmaḷa ନେତ୍ରଲୋମବିଶିଷ୍ଟ—
ଗହଳ ପକ୍ଷ୍ମଳ ଉଜ୍ଜ୍ୱଳ ପକ୍ଷ । ଭଞ୍ଜ, ପ୍ରେମସୁଧାନିଧି ।

ପଖ—ଦେ ବି. (-ସଂ. ପକ୍ଷ, ପ୍ରା. ପକ୍ଖ )—ମାସାର୍ଦ୍ଧ—
Pakha Fortnight
पख ସେ ଚନ୍ଦ୍ରମାଙ୍କର ଶାପ ପାଇ, ବଢ଼ଇ ପଖରେ ଛଡାଇ ।
पक्ष ଯଶୋବନ୍ତ, ପ୍ରେମଭକ୍ତି ବ୍ରହ୍ମଗୀତା ।
୨ । ଶୁକ୍ଳମାନ ପକ୍ଷ—2. Lunar fortnight.

ପଖ(ଖା)ଉଜ—ଦେ. , ବି. ( ସଂ. ପକ୍ଷ = ପାର୍ଶ୍ୱ + ଆ ଅଭାଜ୍ = ଶବ୍ଦ,
Pakha(khā)uja ପାର୍ଶ୍ୱ ଦେଶରେ ଏହା ବାଜିବା ହେତୁ ) -
ପଖୋଜ, ପଖାଉଜ୍ } ଅନ୍ୟରୂପ ଦୁଇ ପାଖରେ ଚର୍ମାନଦ୍ଧ ଗୋଲ ଓ ଲମ୍ବ ବାଦ୍ୟ-ବିଶେଷ; ଢୋଲକ୍, ମର୍ଦ୍ଦଳ—
ପାଖୋୟାଜ A cylindrical drum covered with skin on both ends; Tambourine.
**पखावज**

ପଖଡ଼—ଦେ. ବି (ସଂ ପର୍କଟ; ପ୍ଲକ୍ଷ)—ପର୍କଟ (ଦେଖ)
Pakharḍa ପାକୁଡ଼ **पाकर** Parkaṭa (See)

ପଖନ—ପ୍ରାଦେ. (ସମ୍ବଲପୁର) ବି (ସଂ. ପାଷାଣ, ଭୁଲ୍, ହି. ପାଖାନ୍, ଷ
Pakhan ସ୍ଥାନରେ ଖ ଉଚ୍ଚାରଣ)—ପାଷାଣ; ପଥର—Stone.
ଗଇଡ ବୁଡ଼ି ଥରେ, ପଖନ୍ ବୁଡ଼େ ଥରେ —ପ୍ରବଚନ ।

ପଖନା—ପ୍ରାଦେ. (ବସ୍ତର) ବ (ସଂ. ପାଷାଣ, ଭୂଲ ହି. ପାଖାନ୍)—ପଥର,
Pakhanā ପାଷାଣ—Stone.

ପଖଲ—ପ୍ରାଦେ. (ମେଦନୀପୁର) ବ (ବ. ପାଖାଲ) - ପଖାଳ (ଦେଖ)
Pakhal Pakhāḷa (See)

ପଖଳା—ଦେ. ବ. (ସଂ. ପ୍ରକ୍ଷାଳନ)—୧ । ପ୍ରକ୍ଷାଳନ, ଧୋଇବା—
Pakhaḷā Washing.
ପାখলান ୨ । ଭାତ ପଖାଳିବା—
ପखारना 2. Wetting boiled rice.
ଦେ. ବିଣ—ଧୌତ, ପ୍ରକ୍ଷାଳିତ—Washed

ପଖଳା(ଳେ)ଇବା—ଦେ. କ୍ରି—'ପଖାଳିବା'ର ଣିଜନ୍ତରୂପ—
Pakshḷā(ḷe)ibā Causative form of pakhāḷibā.
পাখলান पखराना

ପଖା—ଦେ. ବ. (ସଂ. ପକ୍ଷ)—୧ । କଡ଼; ପାର୍ଶ୍ୱ—
Pakhā 1. Side; flank
খাখা ପଖା ପିଠି ମୁଣ୍ଡ ନାକ କାନରେ ଶର,
पाँखुरा ମର୍ମି ହୋଇଲେ ବୁଦ୍ଧିଭୂଳ ଯୋଦ୍ଧା ନର । କୃଷ୍ଣସିଂହ, ମହାଭାରତ, ଦ୍ରୋଣ—
୨ । ଖୁଆମୁଣ୍ଡି; ବାହୁର ମୂଳ—2. The root of the arm
୩ । କାନ୍ଧପାଖ ହାଡ଼—3. Shoulder blade.
पाखा ୪ । ଚୁଲିର ରନ୍ଧ୍ର ବା ମୁଖ—
4. The mouth of an oven
पंखा ୫ । ବ୍ୟଜନ, ପଙ୍ଖା—5. Fan
ଦ୍ୱିଜମାନେ ଯେ ପଙ୍ଖାମାନ ପକାଇଲେ ।
ଘୃତେବ୍ରହ୍ମ ସାମଗାନ ଆରମ୍ଭିଲେ—କୃଷ୍ଣସିଂହ. ମହାଭାରତ ।

ପଖାଇବା—ପ୍ରାଦେ. (ଗଞ୍ଜାମ) କ୍ରି (ସଂ. ପାର୍ଶ୍ୱ)—ପାଖେଇବା, ଏକପାଖକୁ
Pakhāibā ଘୁଞ୍ଚିଯିବା; ଆଡ଼େଇଯିବା—To move to a side.

ପଖା କାଢ଼ିବା—ପ୍ରାଦେ (ଗଞ୍ଜାମ) କ୍ରି—୧ । ଗାଡ଼ିକୁ ରାସ୍ତାର ଏକପାଖକୁ
Pakhā kāṛhibā ଚଲାଇବା—2. To move a cart to a side of the road.
୨ । ବାଟର ଗୋଟିଏ ପାଖକୁ ଘୁଞ୍ଚିଯିବା, ପାଖେଇବା—
2. To move to a side of the road.

ପଖା ଖସା(ସେ)ଇବା—ଦେ. କ୍ରି—ମାଡ଼ ଦ୍ୱାରା ହାତର ଡେଣାକୁ
Pakhā khasā(se)ibā ସ୍ଥାନଚ୍ୟୁତ କରିବା—To displace
ডেনাভাঙ্গা the arm from its socket by blows.
पाँखुरतोड़ना ଗଜଙ୍କ ଉଣ୍ଡାଳ ଚୋଟ, କେତ ଭାଙ୍ଗିଥିବ ପଖା—
ଦେଖିବେ ସେ ଯାଇ ଦେବେ ଦେଖା । ଚଉ ।
[ପଖା ଖସା(ସେ)ଇ ଦେବା, ପଖା ଭାଙ୍ଗିବା] } ଅନ୍ୟରୂପ
ପଖା ଭାଙ୍ଗିଦେବା,

ପଖା ପଡ଼ିବା—ଦେ ବି.—ବ୍ୟଜନ ଚାଳନ—
Pakhā paṛibā The going on of a fan
পাখাচলা पंखाचलना

ପଖାବାଡ଼—ଦେ. ବ (ଜାହାଜର ସ୍ଥିୟରିଂ ହ୍ୱିଲ୍)—ଚକ୍ରସୂତ୍ର ଯନ୍ତ୍ରର ପରିଧିରେ
Pakhā bāṛi ଧରିବାପାଇଁ ବାହାରିଥିବା କାଠି—nautical;
पंखाडाँड़ The handles on the periphery of the wheel which controls the rudder of a ship.
ବାଇର ପଖାବାଡ଼ ଧରିଥିବା ଚଳଣ କରିବି ଶିଖିଲେ । ଫକୀରମୋହନ, ଉତ୍କଳ ।

ପଖାଳ—ଦେ. ବ. (ସଂ ପ୍ରକ୍ଷାଳ, ଭୂଲ. ପ୍ରା. ପକ୍‌ଖାଳ)—୧ । ପାଣିରେ
Pakhāḷa ବଉଳି ହୋଇ ପରେ ଖିଆ ଯିବା ପାଇଁ ରଖାଯାଇ-
পান্তাভাত, পখাল, ভিজাভাত্‌, পাকাল্‌ ଥିବା ଭାତ, ପ୍ରକ୍ଷାଳିତ
पखाल्, पन्भात, पन्भता ଅନ୍ନ—1. Stale watered rice;
(ତଦ୍‌ଭବ—ବ୍ୟପଦ୍ଧାତ) boiled rice moistened with water.
[ଦ୍ର—ଆଜ ପଖାଳ ହୋଇଥିବା ଭାତକୁ ସଜ ପଖାଳ ଏବଂ ଗତ କାଲି ପଖାଳ ହୋଇଥିବା ଭାତକୁ ବାସୀ ପଖାଳ ବୋଲାଯାଏ । ଗରମ ଭାତରେ ପାଣି ଢଳା ଯିବା ପରେ ସଙ୍ଗେ ସଙ୍ଗେ ତାକୁ ବ୍ୟବହାର କଲେ ତାକୁ ଗୁଣ୍ଡି ପଖାଳ କୁହାଯାଏ ।]
୨ । ପ୍ରକ୍ଷାଳନ, ଧୋଇବା—2 Washing.

ପଖାଳ କରିଆ—ଦେ. ବ. (ସଂ. ପ୍ରକ୍ଷାଳନ) - ଘରେ ପିନ୍ଧା ଯିବା ଲୁଗା,
Pakhāḷa kariā ଧୁଡ଼ିପିନ୍ଧା, ଯେଉଁ ଲୁଗା ପ୍ରତିଦିନ ଧୁଆଯାଏ —
আটপৌরে A cloth worn every day at home and washed daily.
ପଖାଳକେରି } ଅନ୍ୟରୂପ
ପଖାଳକେରିଆ

ପଖାଳଖିଆ—ଦେ ବ. (ସଂ ପ୍ରକ୍ଷାଳନ ଓ ଖାଦ୍ୟ)—ପଖାଳଭାତ ଖାଇବା
Pakhāḷa khiā Eating of stale watered rice.
পকালখাওয়া ଦେ. ବିଣ.—୧ । ଯେ ପଖାଳଭାତ ଖାଇବାରେ
पनभात खाना ଅଭ୍ୟସ୍ତ—1. Habituated to taking stale water rice.
୨ । ମୋଟାବୁଦ୍ଧିଆ—2. Dull headed.
୩ । ଗରିବ—3. Poor.

ପଖାଳିଆ—ଦେ. ବିଣ.—ପଖାଳଖିଆ (ଦେଖ)
Pakhāḷiā Pakāḷakhiā (See).
ଖାଇବାକୁ ରୁଚି ହମ ଅଛରେ ମାଉଁସ,
ପଖାଳିଆ ଆମେ ଯାଇ କରିବା କି କସ । ରାଧାନାଥ, କଟକକେନ୍ଦ୍ର ।

ପଖାଳିବା—ଦେ କ୍ରି (ସଂ. ପ୍ରକ୍ଷାଳନ)—୧ । ଧୋଇବା, ପ୍ରକ୍ଷାଳନ
Pakhāḷibā କରିବା—1. To wash.
পাখালা କର ନିର୍ମଳ ଜଳେ ମୁଖ ପଖାଳି
पखालना, पखारना ବାଳକୃଷ୍ଣ. ଉତ୍କଳଲକ୍ଷ୍ମୀ ।
୨ । ତତ୍‌କ୍ଷଣ ଭାତରେ ପାଣି ପୂରାଇବା—2. To moisten boiled rice with water

ପଖାହାଡ଼—ଦେ. ବ — ପିଠି ଓ ପେଟ ମଧ୍ୟରେ ଥିବା ହାଡ଼—
Pakhā haṛda Ribs.
ହାତୀ ଘୋଡ଼ା ପଦାତି ପନ୍ତି ଉଭରାଜ,
ନ ରହିଲେ କେହି ଗୋଟିଏ ପଖା ହାଡ଼ । କୃଷ୍ଣସିଂହ, ମହାଭାରତ, କର୍ଣ୍ଣ ।

ପଖିଆ—ଦେ. ବ. (ସଂ. ପକ୍ଷ; ଏହା ପକ୍ଷ ଆକୃତିର ଥିବାରୁ)—
Pakhiā ୧ । ବର୍ଷାରୁ ରକ୍ଷା ପାଇବା ନିମନ୍ତେ ବ୍ୟବହୃତ ମୁଣ୍ଡ ଠାରୁ
পাঁখা; পখিআ ଜଙ୍ଘ ପର୍ଯ୍ୟନ୍ତ ପଡ଼ୁଥିବା ତାଳପତ୍ର ନିର୍ମିତ ଏକପ୍ରକାର
ଘୋଡ଼ଣୀ—1. A covering made of palm-leaves matted together extending from the head to the thighs for protecting the body from rain.

୬ । ଘରର କାନ୍ଥ ଓ ଖୁଣ୍ଟ ଉପରେ ଥିବା କାଷ୍ଠଖଣ୍ଡ—
2 A plate of wood passing over the wall and the pillars of a house.
ପ୍ରାଦେ. (ସମ୍ବଲପୁର) ବ.— ଆନୁକୂଲ୍ୟ—Favourableness
ପ୍ରାଦେ. (ସମ୍ବଲପୁର) ବଣ —୧ । ଅନୁକୂଳ—
1 Favourable.
୨ । ପକ୍ଷୀୟ—2 Belonging to a party.

**ପକ୍ଷିଆ ଘୋଡ଼ା**—ପ୍ରାଦେ. ( ଯାଜପୁର ) ବ —ପକ୍ଷିଆ ଅଳ୍ପଭର ପୂର
Pakhiā ghor̲ḏā ଇଣ୍ଡୁର —A kind of steamboiled sandwich.

**ପକ୍ଷୀ**—ଦେ ବ (ସଂ ପକ୍ଷୀ)— ୧ । ଚଢେଇ—
Pakhi 1 Bird.
ପାଖୀ **पंछी(खी)** ୨ । ଚଢେଇର ପକ୍ଷ —2. Bird's wing.
କଦମ୍ବ ଗଛରେ ନଚ ପକ୍ଷୀ ପ୍ରସାର—ପ୍ରାଚୀ. ରହସ୍ୟମଞ୍ଜରୀ ।
୩ । ପୁଚ୍ଛ—3. Tail.
୪ । ଢିଙ୍କି ଲାଞ୍ଜି—4 The tail of a husking-jack
୫ । ଲଙ୍ଗଳର ପଶାଳ୍ପଛ ଫଳ (ଯାହା ଭୂମି ଉପରେ ଘୁସୁରେ)—
5. The blade of a plough.
୬ । କବାଟର ଉପର ଦଣ୍ଡୀ—6. The lintel.
ପ୍ରାଦେ. (ଅଳ) ବ.— କହୁଣିଆ (ଦେଖ)
Kahunia (See)

**ପଗ**—ଦେ. ବ (ସଂ ପର୍ବ)— ୧ । ପବ, ଆଙ୍ଗୁଳର ଦୁଇ ଗଣ୍ଠିର ମଧ୍ୟସ୍ଥ
Paga ଅଂଶ—1. Inter-node; phalanx of fingers.
ପାବ, ପବ ୨ । ବାଉଁଶ ଓ ବେତର ଦୁଇ ଗଣ୍ଠି ମଧ୍ୟରେ ଥିବା ଅଂଶ–
**पोर** 2 The part between two joints of a piece of bamboo or cane
(ପବ—ଅନ୍ୟରୂପ)

**ପଗ ଛଡ଼ା**— ଦେ. ବ—(ଆଖୁ ବେତ ଆଦ ଗଛର) ପବ ଡେଙ୍ଗା ହୋଇ
Paga chhar̲ḏā ବଢିଯିବା ଅବସ୍ଥା—The state of the
**पाड़दार** stem of a growing tree becoming long or tall
(ପବଛଡ଼ା—ଅନ୍ୟରୂପ)
ଦେ. ବଣ—ପଗ ଡେଙ୍ଗା ହୋଇ ବଢିଥିବା:(ବୃକ୍ଷ ଆଦ)—With the stem growing tall.
୨ । ଯେଉଁ ଲୋକ ଲମ୍ୱରେ ବେଶି ବଢ଼ିଯାଏ—(a person) Who grows taller than ordinary people.

**ପଗଛଡ଼ା ଦେବା**—ଦେ. କ୍ରି—୧ । ଗଛର ପବ ଡେଙ୍ଗା ହୋଇ ବଢିବା–
Pagachhr̲ḏā debā 1. ( the stem of a plant ) To grow tall.
(ପବଛଡ଼ା ଦେବା—ଅନ୍ୟରୂପ)
୨ । ଡେଙ୍ଗା ହୋଇ ବଢିବା—
2. To grow tall; to grow in tallness

**ପଗଡ଼**—ଦେ. ବ. ( ସଂ ପ୍ରଗ୍ରହ )— ୧ । ବଡ଼ ବଡ଼ ଦାନା; ଗୋଲା,
Pagar̲ḏa ପାକଡ଼ାନ **पकड** ଗୁଳା—1. A ball.
୨ । ଅପରାଧୀଙ୍କୁ ଧରିବନ୍ଧା କରିବା—
2. Arresting; seizure.
୩ । ଧରିବା; ଧରାଧରି—3. Catching; holding.
[ ଦ୍ର—ଏହା 'ଧର' ଶବ୍ଦ ସଙ୍ଗେ ସହଚରରୂପେ ବ୍ୟବହୃତ ହୁଏ । ]
୪ । ମାଡ଼ ଆଦର ବୃଷ୍ଟି—
4 A shower or volley of blows or beating.
( ଯଥା—ସେ ତାଙ୍କୁ ଅଷ୍ଟ ପଗଡ଼େ ମାଡ଼ ଦେଲା । )

**ପଗଡ଼ା**—ଦେ ବ—୧ । ଧରିବା, ଆୟତ୍ତାଧୀନ କରିବା—
Pagar̲ḏā 1. Holding tight.
ପାକଡା **पकड़ा** ୨ । ଗିରଫଦାର କରିବା—
2 Arresting; seizing.

**ପଗଡ଼ା(ଡ଼େ)ଇବା**—ଦେ କ୍ରି—ପଗଡ଼ିବାର ଣିଜନ୍ତରୂପ—
Pagar̲ḏā(r̲ḏe)ibā Causative form of pagar̲ḏibā.
ପାକଡାନ **पकडाना**

**ପଗଡ଼ି**—ଦେ. ବ ( ସଂ ପ୍ରଗ୍ରହ )—୧ । ପାଗ, ଠେକା, ଉଷ୍ଣୀଷ—
Pagar̲ḏi 1. Turban; head-dress; a pugree.
ପାଗଡୀ, ପାଗ୍, ପଗ ଚଣିବ ନାହିଁ ତୋ ସାଲର ପଗଡ଼ି – ଘଧାନାଥ ଦରବାର ।
**पगड़ि, पगया, पाग, पगरी**
୨ । କାନର ନୋଳ—2 A kind of ear-ring.
[ ଦ୍ର—ଏହା ତଳ କାନରେ ପିନ୍ଧାଯାଏ । ଏହା ସାଧାରଣତଃ ବଡ଼ ବଡ଼ ହୋଇଥାଏ । ]

**ପଗଡ଼ିବା**—ଦେ କ୍ରି (ସଂ. ପ୍ରଗ୍ରହ) --୧ । ଧରିବା, ଗିରଫଦାର କରିବା—
Pagar̲ḏibā 1 To arrest; to seize.
ପାକଡା ଗଡ଼ଣ କିଳକୁ ବାଟରେ ପଗଡ଼
**पकड़ना** ଅଇଲେ ବାହୁଠାକୁ କୋପେ ଦାନ୍ତ ଘଡ଼ – କୃଷ୍ଣସିଂ. ମହାଭାରତ. ବନ ।
୨ । ଜୋର କରି ଧରିବା—2. To hold tight.
୩ । ଆକ୍ରମଣ କରିବା—3 To attack.

**ପଗତା**—ଦେ. ବଣ—ପୋଖତ, ପ୍ରବୀଣ—Experienced.
Pagatā ପୋଖତା **पोख्ता**

**ପଗର**—ଦେ. ବ. ( ବଣିଆ ଶବ୍ଦ ) –ସୁନା ରୁଦ୍ରାକ୍ଷ କଣ୍ଠି କମ୍ବା ସୁନା ବା
Pagarā ରୁପା କଙ୍କଣ ସୁନ୍ଦର ଦଶିବା ଲାଗି ଯେଉଁ ସରୁ ସରୁ ଗାର
**नक्काशी** କଟା ଯାଇଥାଏ, ନକାସୀ—Artistic lines drawn on ornaments consisting of golden balls.

**ପଗଲା(ଲ୍ଲା)**—ଦେ. ବଣ. ପୁଂ.(ସଂ. ପାଗଲ) —ବାୟା, ପାଗଲ, ବାଉଳ—
Pagalā(lā) ପାଗଲ୍ଲା **पगला** Mad; lunatic.
( ପଗଲୀ – ସ୍ତ୍ରୀ )

**ପଗଲ୍(ଲେ)ଇବା**—ଦେ. କ୍ରି —୧ । ବାଉଳି ଭଳି କଥା କହିବା,
Pagalā(le)ibā ପାଗଲ ପରି କଥା କହିବା—1 To talk like
ପାଗଲାମିକବା **पागलपना करना** a mad man.
(ପଗଲା(ଲ୍ଲା)ମି କର – ଅନ୍ୟରୂପ) ୨ । କଥାରେ ଭଣ୍ଡାଇ ଦେବା—
2. To inveigle.

**ପଗଲ କୋଠି**—ଦେ ବ—ବାଉଳାଶ୍ରମ, ପାଗଲମାନଙ୍କର ରହିବା ସ୍ଥାନ—
Pagalā kothi Lunatic assylum.
ପାଗଲଖାନା, ପାଗଲା ଗାରଦ **पागलखाना**
( ପାଗଲଖାନା, ପାଗଲ ଗାରଦ—ଅନ୍ୟରୂପ )

**ପଗଲ ବୁଦ୍ଧିଆ**—ଦେ. ବଣ - ବାଉଳବୁଦ୍ଧିଯୁକ୍ତ—
Pagalā buddhiā Idiotic; lunatic.
ପାଗଲ **पागलबुद्धिका**

**ପଗଲା(ଲା)ମି**—ଦେ. ବି. ( ବଙ୍ଗଳାରୁ ଅନୁକୃତ )—ବାଉଳତା—
Pagalā(lā)mi — Madness; lunacy.
पगलामि पागलपना
( ପଗଲା(ଲା)ପଣ, ପଗଲା ପଣିଆ[ଆଁ]—ଅନ୍ୟରୂପ )

**ପଗାର**—ଦେ ବି. (ସଂ. ପ୍ରାକାର ବା ପ୍ରାଗାର)—୧ । କ୍ଷେତ୍ରର ହୁଡ଼ା, ସୀମାବନ୍ଧ—1 Ridge round a field
Pagāra
पगार ୨ । କ୍ଷେତ୍ରର ସୀମା ହୁଡ଼ା ଉପରେ ଦିଆଯାଇଥିବା ବାଡ଼—
मेड़ 2. A fence raised over the ridge of a field.
ପ୍ରାଦେ. (ମେଦିନୀପୁର) ବି—ଉଦ୍ୟାନ ବା କ୍ଷେତ୍ରର ଚାରିପାଖେ ଖୋଳାଯିବା ଗଭୀର ଓ ଓସାର ଗାତ—Deep and wide ditch round a cornfield or a garden.

**ପଗୁ(ବୁ)ଆରି** - ଦେ ବି—ହାଡଭଙ୍ଗା (ଦେଖ)
Pagu(bu)āri — Hārdabhangā (See)
(ପଗ(ବ)ଅଇରି; ପଗୌ(ବୌ)ରି—ଅନ୍ୟରୂପ)

**ପଘା**—ଦେ. ବି. (ସଂ. ପ୍ରଗ୍ରହ)—ଗୋମେଷାଦି ବାନ୍ଧିବା ରଜ୍ଜୁ—
Paghā — A halter or rope for tying cattle.
पागा, पागादड़ि ଲୋଚ କୁମ୍ଭକାର ଦୋଇଲକ ପଗାଡ଼ୋର ।
पगहा, पाघा ପ୍ରଭାତ. ଗଣିସେଣୀ ।

**ପଘାରିବା**—ପ୍ରା. ଦେ. (ସିଂହଭୂମ) କ୍ରି—ବଘାରିବା, ଛୁଙ୍କିବା—
Pághāribā — To smoke curry with condiments and ghee or oil.

**ପଙ୍କ୍**—ପ୍ରାଦେ. (ସମ୍ବଲପୁର) ବି – ପଙ୍କ, କାଦୁଅ —
Pank — Mud; soft clay.

**ପଙ୍କ୍ତି**— ଦେ. ବି.—(ରାଧାଶ୍ୟାମ ଦାସଙ୍କ)—ବ୍ୟାୟାମ ଆଦେଶ ବଚନ—
Pankti — A term of drill-fall in.

**ପଙ୍କ**—ସଂ. ବି (ପଚ୍‌ର ଧାତୁ=ବିସ୍ତାର କରିବା+ଅ)—୧ । କର୍ଦ୍ଦମ, କାଦୁଅ—1. Mud; mire; soft clay.
Panka
୨ । ଚନ୍ଦନାଦି କାଷ୍ଠ ମର୍ଦ୍ଦନରୁ ଜାତ ପଙ୍କବତ୍ ପ୍ରଲେପ —
2. Soft paste.
୩ । ପାପ—3. Sin; guilt.

**ପଙ୍କ ଉଝା(ଝୁ)ଲା**—ଦେ. ବି ( ସଂ. ପଙ୍କ ଓ ଉଦ୍ଧାର )—
Panka ujha(jhu)lā ପୋଖରୀ ବା କୂଅର ତଳରୁ ପଙ୍କ କାଢ଼ିବା କର୍ମ, ପଙ୍କୋଦ୍ଧାର—Cleaning of mud from the bottom of a tank or well.
पंकोद्धार
पंकउड़ाह

**ପଙ୍କଉଝାଲା ଏକାଦଶୀ**—ଦେ. ବି—ଫାଲ୍ଗୁନ କୃଷ୍ଣ ଏକାଦଶୀ—
Pankaujhalā ekādasi — The 11th day of the black fortnight in the month of Fālguna.

**ପଙ୍କ ଉଝାଳିବା**—ଦେ. କ୍ରି ( ସଂ. ପଙ୍କ ଓ ଉଦ୍ଧାର )—ପୋଖରୀ ବା କୂଅ ତଳୁ ପଙ୍କ ଭୁଠାଇବା—To clear mud from the bottom of a tank or well.
Panka ujhāliba
पंकोद्धारकरना पङ्कउड़ाहना

**ପଙ୍କଗ୍ରାହ**—ସଂ. ବି (ପଙ୍କ+ଗ୍ରହ୍ ଧାତୁ+କର୍ତ୍ତୃ. ଅ)—ହିଂସ୍ର ଜଳଜନ୍ତୁ-ବିଶେଷ; ମକର; ମଗର—Shark.
Pankagrāha

**ପଙ୍କଜ**—ସଂ. ବି ( ପଙ୍କ+ଜନ୍ ଧାତୁ+କର୍ତ୍ତୃ. ଅ )—୧ । ପଦ୍ମ—
Pankaja — 1. Lotus.
୨ । ସାରସପକ୍ଷୀ—2. A kind of Indian crane
ଦେ. ବି ପୁଂ—ଲୋକଙ୍କ ନାମ— Name given to males.
[ ଦ୍ର—ଏହା ଯୋଗରୂଢ଼ ଶବ୍ଦ । ]

**ପଙ୍କଜନୟନ**—ସଂ. ବିଣ. ପୁଂ ( ବହୁବ୍ରୀହି, ପଙ୍କଜ + ନୟନ )—ପଦ୍ମ ପରି ସୁନ୍ଦର ଚକ୍ଷୁଯୁକ୍ତ—Lotus-eyed; with eyes as beautiful as the lotus petals.
Pankajanayana
ପଙ୍କଜନୟନା, ପଙ୍କଜନୟନୀ—ସ୍ତ୍ରୀ)

**ପଙ୍କଜନ୍ମ**—ସଂ. ବି (ପଙ୍କ+ଜନ୍ ଧାତୁ+ମନ୍)—ପଙ୍କଜ (ଦେଖ)
Pankajanma — Pankaja (See).

**ପଙ୍କଜିନୀ**—ସଂ. ବି. ସ୍ତ୍ରୀ (ପଙ୍କଜ+ଇନ୍+ସ୍ତ୍ରୀ. ଈ)—୧ । ପଦ୍ମିନୀ—
Pankajini — 1. Collection of lotuses.
୨ । ପଦ୍ମ ପୋଖରୀ—2. A tank grown with lotuses.

**ପଙ୍କତି**—ଦେ ( ପଦ୍ୟ ) ବି ( ସଂ. ପଂକ୍ତି )—ପଂକ୍ତି (ଦେଖ)
Pankati — Pankti (See)
। ଚିଗଲ ହୃଦରେ ଚୋଢ-ପଙ୍କତ—ଭାଗବତ ।

**ପଙ୍କପର୍ପଟୀ**—ସଂ. ବି ( ୬ଷ୍ଠୀ ତତ୍, ପଙ୍କ+ପର୍ପଟୀ=ପିଠା )—କାଦୁଅ ଶୁଖିଗଲେ ତା ଉପରେ ପିଠା ଭଳି ଯେଉଁ ଖୋଳ ବା ଚେପା ହୁଏ—Cakes formed on the surface of dried mud.
Pankaparpati

**ପଙ୍କପ୍ରକ୍ଷାଳନ ନ୍ୟାୟ**—ସଂ ନ୍ୟାୟ—ପ୍ରଥମେ ପଙ୍କରେ ପଶି ଦେହରେ ପଙ୍କ ବୋଳ ହୋଇ ପରେ ଦେହରୁ ତାହା ଛଡ଼ାଇବାଲାଗି ଧୋଇଧାଇ ହେବା ଅପେକ୍ଷା ପଙ୍କରେ ନ ପଶିବା ଭଲ; ଏହିପରି କୌଣସି ଜଟିଳ ବା ଅନିଷ୍ଟଜନକ ବିଷୟରେ ପ୍ରବେଶ ନ କଲେ ପରେ ତଜ୍ଜନିତ ଆପଦ ବିପଦରୁ ନିଜକୁ ମୁକ୍ତ କରିବା ଦରକାର ପଡ଼େ ନାହିଁ, 'କାଦୁଅରେ ପଶ ରେ ଗୋଡ଼ ଧୋ ରେ' ନ୍ୟାୟ—A simile used in a case where a man should not enter into any inextricable difficulty.
Pankaprakshālana nyāya

**ପଙ୍କରୁହ**—ସଂ. ବି. (ପଙ୍କ+ରୁହ୍ ଧାତୁ=ଜନ୍ମିବା+କର୍ତ୍ତୃ. ଅ; ଯୋଗରୂଢ଼ ଶବ୍ଦ)—ପଙ୍କଜ (ଦେଖ)—Pankaja (See)
Pankaruha
(ପଙ୍କେରୁହ—ଅନ୍ୟରୂପ)

**ପଙ୍କା**—ପ୍ରାଦେ. (ସମ୍ବଲପୁର) ବି—ଅନାର୍ଯ୍ୟ ଗଣ୍ଡାଜାତିଙ୍କ ଗୁରୁ ଓ ପୁରୋହିତଜାତିବିଶେଷ—A caste which officiate as priests for Gandās of Sambalpur.
Pankā

**ପଙ୍କିଳ** – ସଂ. ବିଣ. (ପଙ୍କ+ଯୁକ୍ତାର୍ଥରେ ଇଲ) – ପଙ୍କଯୁକ୍ତ –
Pankila — Muddy; miry.

**ପଙ୍କୁ**— ଦେ. ବି. (ସଂ. ପଙ୍କ)—ପଙ୍କ—
Panku পাংক — Mud; mire.

**ପଙ୍କୁଆ**—ଦେ. ବିଣ—ପଙ୍କିଳ, ପଙ୍କଯୁକ୍ତ—
Pankuā — Muddy; miry.
পেঁকো कीचड़वाला; गदला

**ପଙ୍କେଇ**—ଦେ. ବି. (ପାନବରଜା)—ପାନର ରୋଗବିଶେଷ—
Pankei — A disease attacking betel creepers.

[ ଦ୍ର—ପାନ ବରଜ ଘରରେ ପାଣି ଜମିଗଲେ ପାନଲତାମୂଳ ସଢ଼ିଯାଇ ଏହି ରୋଗ ଜନ୍ମେ । ]

**ପଙ୍କେଇ ଯିବା**—ଦେ. କ୍ରି. (ପାନବରଜ)—ବରଜରେ ବହୁତ ପାଣି
Pankei jibā ଜମିଗଲେ ପାନଗଛ ରୋଗାକ୍ରାନ୍ତ ହେବା—(betel plant) To be attacked with a disease on account of excess watering.

**ପଙ୍କେରୁହ**—ସ. ବି. (ପଙ୍କେ=ପଙ୍କରେ+ରୁହ୍ ଧାତୁ+ଅ,—
Pankeruha ପଙ୍କଜ (ଦେଖ)—Pankaja (See)

**ପଙ୍କୋଦ୍ଧାର**—ସ. ବି. (୬ଷ୍ଠୀ ତତ୍, ପଙ୍କ+ଉଦ୍ଧାର)—ପଙ୍କଉଦ୍ଧାର—
Pankoddhāra Clearing a tank or well of its mud or mire.

**ପଙ୍କ୍ତି**—ସ.ବି.(ପନ୍ଚ ଧାତୁ=ବିସ୍ତୃତ ହେବା+ଭାବ.ତି—୧ । ଶ୍ରେଣୀ—
Pankti 1. Row; range.
(ପଂକ୍ତି—ଅନ୍ୟରୂପ) ୨ । ଦଳ—2 Cluster.
୩ । ସମୂହ—3. Collection.
୪ । ପନ୍ତି, ଧାଡ଼ି—4. Line.
୫ । ପାକ—5 Cooking.
୬ । ପଞ୍ଚାକ୍ଷରପରିମିତ ଚରଣବିଶିଷ୍ଟ ସଂସ୍କୃତ ଛନ୍ଦୋବିଶେଷ—6. A sort of Sanskrit metre
[ ଦ୍ର—ଏହାର ଦ୍ୱିତୀୟ ଓ ତୃତୀୟ ବର୍ଣ୍ଣ ଲଘୁ । ]
୭ । ପୃଥିବୀ—7 The earth.
୮ । ଜାତିଆଣ ଭୋଜନରେ ଖାଇ ବସିବା ଲୋକଙ୍କ ଧାଡ଼ି—8 Row of eaters in a caste-feast.
୯ । ଗୌରବ—9. Respect.

**ପଙ୍କ୍ତି ଦୂଷକ**—ସ. ବିଣ. (ପଂକ୍ତି+ଦୂଷକ)—ପତିତ ବା ସମାଜଚ୍ୟୁତ
Pankti dūshaka (ବ୍ୟକ୍ତି); ଯେ ପଂକ୍ତିଭୋଜନରେ ବସିଲେ ତା ସଙ୍ଗେ ବସିବା ବ୍ୟକ୍ତିମାନେ ପତିତ ବା ଦୂଷିତ ହୁଅନ୍ତି—Excommunicated (person).

**ପଙ୍କ୍ତିପାବନ**—ସ. ବି ପୁଂ. (ବହୁବ୍ରୀହି, ପଂକ୍ତି+ପାବନ —ସର୍ବବେଦଜ୍ଞ
Pankti pābana ବ୍ରାହ୍ମଣ, ଯେଉଁ ବ୍ୟକ୍ତି ପଂକ୍ତିରେ ଭୋଜନ
(ପଂକ୍ତିଶୋଧନ—ଅନ୍ୟରୂପ) କଲେ ତାଙ୍କ ସଙ୍ଗେ ବସିବା ବ୍ୟକ୍ତିମାନେ ପବିତ୍ର ହୁଅନ୍ତି, ଯେଉଁ ବ୍ରାହ୍ମଣ ସମଗ୍ର ବେଦବେଦାଙ୍ଗରେ ବ୍ୟୁତ୍ପନ୍ନ ଓ ଯାହାଙ୍କର ୧୦ ପୁରୁଷ ମଧ୍ୟରେ ବେଦାଧ୍ୟୟନ ଅବିଚ୍ଛିନ୍ନଭାବରେ ଚଳି ଆସୁଅଛି—A Brāhmaṇa versed in all the Bedas and in whose family the study of the Bedas has become an ancestral pursuit

[ ଦ୍ର—ଶୁକ୍ଳବେଦରେ ଅଗ୍ରଗାମୀ, ସମୁଦାୟ ବେଦାର୍ଥବେତ୍ତା, ବ୍ରହ୍ମଚାରୀ, ବହୁପ୍ରଦ ଓ ଷଡ଼ଶତବର୍ଷବୟସ୍କ ବେଦାଙ୍ଗରେ ବ୍ୟୁତ୍ପନ୍ନ, ବଂଶପରମ୍ପରାକ୍ରମେ ବେଦାଧ୍ୟୟନଶୀଳ, ଶ୍ରୋତ୍ରିୟ, ପଞ୍ଚାଗ୍ନିକାରୀ, ବ୍ରାହ୍ମବିବାହଜାତ ସନ୍ତାନ ଓ ସାମବେଦ ଆରଣ୍ୟକ ବ୍ରାହ୍ମଣ, କଠୋପନିଷଦ୍ କଥିତ ନାଚିକେତ ବ୍ରତଧାରୀ ବ୍ରାହ୍ମଣଙ୍କୁ ପଂକ୍ତିପାବନ ବୋଲାଯାଏ । ଏ ବ୍ରାହ୍ମଣମାନେ ଯେଉଁ ପଂକ୍ତିରେ ବସି ଭୋଜନ କରନ୍ତି, ତାହା ପବିତ୍ର ହୁଏ । ମନୁ ୩।୧୮୪—୧୮୬ । ]

**ପଙ୍କ୍ତି ଭୋଜନ**—ଦେ. ବି (୭ମୀ ତତ୍, ପଂକ୍ତି+ଭୋଜନ)—ଭୋଜ ଓ
Pankti bhojana ମହୋତ୍ସବରେ ବହୁ ଲୋକ ଏକ ଧାଡ଼ିରେ ଭୋଜନ କରିବା—Taking food while sitting in a row; eating seated in a row.

**ପଙ୍ଖା**—ଦେ. ବି (ସ ପକ୍ଷ)—୧ । ପକ୍ଷ—1 Wing.
Pankhā ୨ । ପଖା, ବ୍ୟଜନ—2. Fan.
ପାଂଖା ୩ । ପକ୍ଷାକୃତି ଅହୁଲି—
ପଙ୍ଖା ପଙ୍ଖ 3 An oar shaped like a wing.
୪ । ଘରର ଛାତରୁ ଝୁଲୁଥିବା ବ୍ୟଜନ—4. The pankhā.
୫ । କାନ୍ଧର ହାଡ଼—5 Shoulder blade.
୬ । ବାହୁର ମୂଳ, ଖୁଆମୁଣ୍ଡି—6. The root of the arms.
୭ । ଚୁଲିର ଋଣ୍ଡ—7. The mouth of an oven.

**ପଙ୍ଖୁ**—ଦେ. ବି—ନଡ଼ିଆ ଫଳର ଶୁଷ୍କ ବା ଅସାର ଅଂଶ—The dried
Pankhu and useless portion of a cocoanut.

**ପଙ୍ଗତ**—ଦେ. ବି (ସ ପଂକ୍ତି)—୧ । ପଂକ୍ତି ଭୋଜନ—
Pangata 1 Dining while seated in a row.
ପଙ୍ଗত ୨ । ଅନେକ ଲୋକଙ୍କର ଏକତ୍ର ଭୋଜନ—
ପଙ୍ଗତ 2 Dining together
୩ । ଜାତିଆଣ ଭୋଜିରେ ଓ ବାବାଜି ବୈଷ୍ଣବଙ୍କ ମହୋତ୍ସବରେ ବହୁ ଲୋକଙ୍କର ଏକତ୍ର ଭୋଜନ—3 Dining together of many persons in a feast.
ଅପରାହ୍ଣ ସମୟରେ ଥିଲେ ମାନ ପଙ୍ଗତ ହୁଏ । ପଙ୍କାରମୋହନ, ଗଳ୍ପସ୍ୱଳ୍ପ ।

**ପଙ୍ଗତ ବଢ଼ିବା**—ଦେ. ବି - ବହୁ ବ୍ୟକ୍ତିଙ୍କର ଏକ ପଂକ୍ତିରେ ଭୋଜନକ୍ରିୟା
Pangata barḍhibā ସମାପନ—The finishing of a
ପଙ୍ଗତଶେଷ ହଓଆ caste dinner in a row.

**ପଙ୍ଗପାଳ**—ଦେ. ବି—(ସ. ପତଙ୍ଗ ଓ ପାଳ=ପଂକ୍ତି)—ଝିଣ୍ଟିକା, ଋଞ୍ଜୁ ।
Pangapāla ପକ୍ଷୀ ଶସ୍ୟଭୋଜୀ ପତଙ୍ଗବିଶେଷ—Locust;
ପଙ୍ଗপাল ঢীড়ী grasshopper; Acridium
[ ଦ୍ର—ଏମାନେ ଦଳ ଦଳ ହୋଇ ଦେଶଦେଶାନ୍ତରରୁ ଉଡ଼ି ଆସି ଶସ୍ୟକ୍ଷେତ୍ରରେ ପଡ଼ି ଶସ୍ୟଆଦି ଖାଇ ନିଃଶେଷ କରନ୍ତି । ଏମାନେ ୬୫ 'ଗ୍ରାଡ଼' ବା ଷଟ୍‌ପଦ ମଧ୍ୟରୁ ଏକତମ । ]

**ପଙ୍ଗା**—ଦେ. ବି—୧ । ଉଦ୍ଭିଦ ପାଂଶୁରୁ ଉତ୍ପନ୍ନ ଲୁଣ—
Pangā 1 A kind of salt manufactured from
ପାଙ୍গা নুন vegetable ashes.
ପଙ୍ଗା ୨ । ସମୁଦ୍ରପାଣିକୁ ନିଆଁରେ ସିଝାଇଲେ ପାତ୍ର ତଳେ ଯେଉଁ ଲୁଣ ବସିଯାଏ—2 Salt prepared by boiling.
[ଦ୍ର—ଗୋଡ଼ା ଲୁଣ ରୁଅରୁଆ ଓ ଈଷତ୍ ପାଣ୍ଡୁର, ମାତ୍ର ପଙ୍ଗା ଲୁଣ ସଫା ଓ ଚକ୍‌ଚକ୍ ଚୂନା ।]
୩ । ପଙ୍ଗା ମାଛ (ଦେଖ)—Pangā māchha (See)

**ପଙ୍ଗା ମାଛ**—ଦେ. ବି (ସ. ପିଙ୍ଗଶ, ପିଙ୍ଗାଶ)—ଜଳଙ୍ଗ ବା ଆର୍ଦ୍ରାକାରୀୟ
Pangā māchha ଏକପ୍ରକାର · ମଧୁର ମାଛ—A kind of
ପାଙ୍গাস বুলা, ঘুআড়ি fresh-water-fish; Pangasius
( ପହଙ୍ଗା, ପହଙ୍ଗା ମାଛ—ଅନ୍ୟରୂପ ) Buchanani.
[ ଦ୍ର—ଏମାନେ ପଙ୍କରେ ରହନ୍ତି । ଏମାନଙ୍କ ଦେହ ପାହୁଁଶିଆ । ଏମାନେ ଅକାତିଆ ବଡ଼ ମାଛ; ଏମାନଙ୍କ ମୁହଁ ଚଉଡ଼ା, ପ୍ରାୟ

୬୫ ହାତ ଲମ୍ବ ଓ ୪୫୦ ସେର ଓଜନ । ଏମାନଙ୍କ ମୁହଁ ଚଉଡ଼ା ଏବଂ ୪ଟା ନଖ ଥାଏ । ଏମାନେ ଭାରି ଚେଇଁଥା ମାଛ । ଏମାନଙ୍କୁ ଉଚ୍ଚଶ୍ରେଣୀର ଲୋକେ ଖାଆନ୍ତି କିନ୍ତୁ ଏମାନେ ବିଷ୍ଠା ଓ ଶବ ଭକ୍ଷଣ କରନ୍ତି । ]

ପଙ୍ଗିବା ପ୍ରାଦେ ( ସମ୍ବଲପୁର ଓ ଗଡ଼ଜାତ )—ଅଯଥା ଗପିବା—
Pangibā To talk inconsistently.

ପଙ୍ଗୁ - ସଂ. ବିଣ—୧ । ଖଞ୍ଜ, ଛୋଟା—1. Lame; halt
Pangu (ପଙ୍ଗୁଡ଼ା—ବ)
୨ । ପାଦବିକଳ; ଯାହାର ପାଦ କେଙ୍ଗା ହୋଇଥାଏ—
2. Maimed in the leg; crippled.
୩ । କୁଷ୍ଠରୋଗଜନିତ ବିକଳପାଦ—
3 Maimed by leprosy.
ସଂ. ବି—ଶନିଗ୍ରହ—The planet Saturn.

ପଚ୍‌(ଧାତୁ)—ସଂ—ପାକ କରିବା—
Pach (root) (ପଚମ୍ପଚ—ବିଣ) To cook

ପଚ୍‌ପଚ୍‌—ଦେ. ଅ ( ଧ୍ୱନ୍ୟନୁକରଣ )—୧ । କାଦୁଅ ପରି ଲଡ଼ଲଡ଼ ଓ କୋମଳ—1. Miry and soft.
Pach pach
पचपच पचपच ୨ । ଭୂମିରୁ ବାରମ୍ବାର ଛେପ ପକାଇବାର ଶବ୍ଦ—
( ପଚପଚ, ପଚର୍‌ପଚର୍‌—ଅନ୍ୟରୂପ ) 2. The sound of spitting repeatedly.
୩ । କର୍ଦ୍ଦମମୟ (ସ୍ଥାନ)—3. Muddy (place).

ପଚ—ସଂ. ବିଣ ପୁଂ (ପଚ୍‌ ଧାତୁ+କର୍ତ୍ତୃ. ଅ)—ପାଚକ—
Pacha Cook.

ପଚକିଲା—ଦେ. ବି. (ସଂ. ଛିଦ୍ର+କୀଲକ)—ସଂ ପଚଉ=ସୁସଂଲଗ୍ନ+କୀଲକ)—ଶଗଡ଼ଚକର ଭିନ୍ନ ଭିନ୍ନ ଖଣ୍ଡମାନ କମ୍ପା
Pachakilā
ପଚକିଲା, ପିଚକିଲା, ପିଢକିଲା, ପୁଚକିଲା, ପୁଚକିଲା, ପୁଚୁକିଲା } ଶଗଡ଼ ଚକରୁ ଲୁହା ହାଲ ହୁଗୁଳିଗଲେ ଅଥବା ଶଗଡ଼ର କୌଣସି ଅଂଶ ହୁଗୁଳା ହୋଇଗଲେ ସେ ସ୍ଥାନକୁ ଦୃଢ଼ କରିବାପାଇଁ ତା ନିକଟରେ
गौंजाखील पीचकीला पच्चर ଥିବା ଛିଦ୍ରରେ ଯେଉଁ ପତଳା କାଠ ଖିଲ ବାଡ଼ଉଥ ହୋଇ ଭର୍ତ୍ତି କରାଯାଏ—Thin wooden wedges driven into the holes or slackned parts of a cart to make them tight

ପଚକିଲା ମାରିବା—ଦେ. କ୍ରି. ( ଲକ୍ଷଣାର୍ଥ )—କୌଣସି ବ୍ୟକ୍ତିକୁ କଷ୍ଟ ଦେବାର ଉପାୟ କରିବା—To take up means of putting a person in trouble.
Pachakilā māribā
गौंजाखील मारा
पच्चर ठुँकना

ପଚନ—ସଂ. ବି. ( ପଚ୍‌ ଧାତୁ+ଅନ )—୧ । ରନ୍ଧନ, ପାକ—
Pachana 1. Cooking.
୨ । ଅଗ୍ନି—2. Fire.
୩ । ପାଚକ—3. Cook.
୪ । ପଚିଯିବା; ସଢ଼ିଯିବା—4. Rotting; putrefaction.
୫ । ପାଚିଯିବା—5. Ripening.
୬ । ପରିପକ୍ୱ ହେବା—6. Maturing.

ପଚନାଗାର—ସଂ ବି. ( ପଚନ+ଆଗାର )—ପାକଶାଳା—
Pachanāgāra Cook room

ପଚନାଗ୍ନି—ସଂ. ବି ( ବହୁବ୍ରୀହି, ପଚନ କର୍ମ ସମ୍ପନ୍ନ ହୁଏ ଯେଉଁ ଅଗ୍ନିଦ୍ୱାରା )—ଜଠରାଗ୍ନି—The gastric heat; the digestive fire of the belly.
Pachanāgni

ପଚନିକା—ସଂ. ବି. ( ପଚନ+ଇକ+ଆ )—କରେଇ (ହି ଶ.)—
Pachanikā Frying pan.

ପଚନି—ସଂ. ବି ( ପଚ୍‌ ଧାତୁ+କରଣ ଅନ )—କାଗଜା, କାଗଜୀନେମ୍ବୁ ( ହି. ଶ )—Lime fruit
Pachani

ପଚପଚିଆ -- ଦେ ବିଣ—୧ । ଘିଅରେ ଓ କୋମଳ ( ଖାଦ୍ୟ ) (ଯାହାକୁ ଚିପିଲେ ଘିଅ ବାହାରେ )—1. ( food ) Soaked with ghee; rich ( food ).
Pachapachiā
पचपचे
पचपचा ୨ । କର୍ଦ୍ଦମାକ୍ତ—2 Muddy.
୩ । କାଦୁଅ ପରି ଲଡ଼ପଡ଼—
3 Soft and yielding like mud

ପଚପଚିଆ ମାଲ—ଦେ ବି. ( ବ୍ୟଙ୍ଗୋକ୍ତି ବା ରସୋକ୍ତି )—ଘୃତପକ୍ୱ ବା ଘୃତଦୁଗ୍ଧାଦି ମିଶ୍ରିତ କୋମଳ ସୁଖସେବ୍ୟ ମିଷ୍ଟାନ୍ନାଦି—( witticism ) Delicacies and sweets soft to the taste and fried in or mixed with ghee, milk etc.
Pachapachiā māla
पचपचे माल
पचपचा माल

ପଚମ୍ପଚ -- ସଂ ବି. ( ବୈଦ୍ୟକ ) - ଦାରୁହରିଦ୍ରା ( ଦ୍ରବ୍ୟଗୁଣ )—
Pachampachā Cascinium Fenestratum.

ପଚର୍‌—ଦେ. ବିଣ. ( ସଂ. ପଚ୍‌ ଧାତୁ )—୧ । ପଚା, ପୋଚଆ, ପୋଚର୍‌, ସଢ଼ା, ପର୍ଯ୍ୟୁଷିତ—1 Rotten; putrefied; putrid.
Pacharā
पचा सड़ाहुआ ୨ । ମଇଳା—2 Dirty; filthy.
( ପୋଚର୍‌—ଅନ୍ୟରୂପ )
जिज्ञासा पचरा ଦେ. ବି. ( ସଂ ପ୍ରଚ୍ଛ୍‌ ଧାତୁ )—୧ । ପ୍ରଶ୍ନ କରିବା, ପଚାରିବା—1. Enquiring; questioning.
ବୋଲେ ଜଗଦେବ ସଙ୍କୋଚରେ ବାଳା କଣ୍ଠଶୋଇବର ପଚାରେ—
କବିସୂର୍ଯ୍ୟ, ସଙ୍ଗ ୨ ।
कूँची कूंची ୨ । ( ସଂ. କୂର୍ଚ୍ଚୀ, କୂର୍ଚ୍ଚିକା ) କାନ୍ଥ ଆଦିକୁ ଚୂନପାଣିଦ୍ୱାରା ସଫେଦ କରିବା ପାଇଁ ବ୍ୟବହୃତ ଗୁମର ପରି ଝୋଟର ବ୍ରୁସ୍‌—2 A brush made of jute fibres used in white-washing walls; a white-washing brush.
पच्चर ୩ । ଶଗଡ଼ଚକର ପୁଠିକୁ ଅର ସହିତ ଦୃଢ଼ଭାବରେ ଆବଦ୍ଧ ରଖିବା ପାଇଁ ବ୍ୟବହୃତ ଖିଲ—3. A peg used to set the spokes tightly to the rim.

ପଚର୍‌(ରେ)ଇବା—ଦେ. କ୍ରି—ପଚାରିବାର ଣିଜନ୍ତରୂପ—
Pacharā(re)ibā Causative form of Pachāribā.
जिगिसाना ଏମ ନେ କୁଶଳରେ ଥାଉଣ ଭୁଯୁଙ୍କ୍—
पुच्छवाना ପଚରାଇଲନ୍ତି କାଣ କୁଶଳକୁ — କୃଷ୍ଣସିଂହ, ମହାଭାରତ, ବନ ।

ପଚର୍‌ ଉଚର୍‌ -- ଦେ ବି. ( ସହଚର, ଦ୍ୱିତୀୟ ଶବ୍ଦ ଅନର୍ଥକ )—
Pacharā ucharā ୧ । କୁହାବୋଲା, ଗପ; ଗଳ୍ପ—1. Talk.

ବଳାକହା ୨ । ତଦାରଖ, ତତ୍ତ୍ୱ ନେବା —
**पुच्छताछ** 2. Enquiry; interrogatories.

ପଚର୍‌ ପଚର୍‌—ଦେ. ବ – ୧ । ଅନ୍ୟୋନ୍ୟରେ ପ୍ରଶ୍ନ କରିବା —
Pacharā pacharī 1. Mutual questioning or interrogating
ବଳାବଳି **पुच्छताछ**
୨ । ଉପର୍ଯୁପରି ପ୍ରଶ୍ନ କରିବା—
2 Repeated questionings.

ପଚର୍‌ ମାରିବା—ଦେ. କ୍ରି - ୧ । ପଚର୍‌ଦ୍ୱାରା କାନ୍ଥ ଆଦିରେ ଚୂନପାଣି
Pacharā māribā ବୋଳିବା—1. To whitewash a
**कूंची लगाना** wall with a brush made of jute fibres.
**पच्चर मारना** ୨ । ଶଗଡ଼ର ପୁଠୀ ସଙ୍ଗେ ଅରକୁ ଖିଲଦ୍ୱାରା ଦୃଢ଼ଭାବରେ ସଂଲଗ୍ନ କରିବା—2. To tightly set a pin to the rim of a wheel by means of a peg.

ପଚା—ଦେ. ଵଣ. ( ସଂ. ପଚ୍‌ ଧାତୁ )—୧ । ପୋଚଆ, ସଢ଼ା, ଗଳିତ—
Pachā 1 Putrid, rotten.
ପଚା **सड़ा** ୨ । ନଷ୍ଟ, ବିକୃତ—
2. Spoiled, decayed; putrefied.
ତଥିବେ ଭୃଙ୍ଗଶ୍ରେଣୀ ନିଷ୍ପନ୍ନ ହୋଇ
ତତ୍ପରୁ ପଚା ହୋଇ ବହିଲ ରକତ—କୃଷ୍ଣସିଂହ ମହାଭାରତ ବନ ।
ପଚା **आसमान** ୩ । ପୂଜପୂର୍ଣ୍ଣ ହୋଇଥିବା କ୍ଷତ—
3 Gangrenous.
୪ । ଈଷତ୍‌ ନୀଳବର୍ଣ୍ଣ—
4. Bluish; of bluish colour
ଦେଖ ଗଜଗଜର ବସନ୍ତବନ, ପଚା ଭୂଷଣେ ଅତି ଗୋରକ୍ୟ ଦେହ—
ବ୍ରଜନାଥ, ସମରତରଙ୍ଗ ।
ଦେ ବ – ୧ । ରତ୍ନବିଶେଷ —1. A kind of gem.
ପଚାନ **सड़ाना** ୨ । ପଚାଇବା କ୍ରିୟା—
2. The act of ripening

ପଚା(ଚେ)ଇବା—ଦେ କ୍ରି ( ସଂ. ପଚ୍‌ ଧାତୁ ଣିଜନ୍ତ ) – ୧ । (ପାଚିବାର
Pachā(che)ibā ଣିଜନ୍ତ ) ପକ୍ୱ କରାଇବା—
ପାକାନ **पचाना** 1. To cause to ripen.
୨ । ( ଲକ୍ଷଣାର୍ଥ ) ଫଳରେ ପରିଣତ କରାଇବା —
2 ( fig ) To cause to be effected.
ମୋ ସୁକୃତ ଫଳ ପଚାଇ—କନ୍ଦର୍ପ. ସଙ୍ଗୀତ ।
ପଚାନ ୩ । (ପଚିବାର ଣିଜନ୍ତ) ସଢ଼ାଇବା—3. To cause to
**सड़ाना** rot; to promote putrefaction.
**रंगाना** ୪ । ('ପାଚିବା'ର ଣିଜନ୍ତ) — ରଞ୍ଜିତ କରିବା —
4. To dye.
ଲାକ୍ଷାଦାନ୍ତ ଭସେ ପଚାଇ ଦନ୍ତ-ଘନ । ଉଜ୍ଜ. ଲାବଣ୍ୟ. ଗା ।
**छिपाना** ୫ । ଲୁହାକୁ ନିଆଁରେ ନାଲି କରିବା—
**लालकरना** 5 To redden a piece of iron by fire
୬ । କଉଡ଼ି ଓ ପଶାଖେଳରେ ଖେଳାଳିର ଦାନ ପକାଇବାଦ୍ୱାରା ଆପଣାର ସାର ପାଚିବାର ଉପାୟ କରିବା—
6. To cause one's bits to pass the ring in a game of dice or cowries.
ହେମ ପଣସାଦ ପଲ୍ଲବ ପାଳରେ ଦେଇବା ସାର ଶିଖାଇଲୁ ।
କନ୍ଦର୍ପ. ସଙ୍ଗୀତ ।
**पचाना** ୭ । ଶରୀରକୁ ଦରଜ କରାଇବା—
7. To cause the body to be painful.
ପ୍ରାଦେ. ( ସମ୍ବଲପୁର) କ୍ରି—ଗୋଡ଼ ହାତଆଦି ଘଷିବା—
To massage.
ଗଢ଼ଆ ଉପରେ ଗୋଡ଼ ନ ରଖ
ପଚାଇ ପଚାଇ ଦନ୍ଦ ମଣ । ଗୀ ।

ପଚା ଘା—ଦେ ବ—ଯେଉଁ ଘା ଅନେକଦିନ ପର୍ଯ୍ୟନ୍ତ ନ ଶୁଖି ଦୂଷିତ
Pachā ghā ହୋଇଯାଇ ଥାଏ ଏବଂ ଯାହାର ନିକଟସ୍ଥ ମାଂସଆଦି
(ପଚାଘାଆ—ଅନ୍ୟରୂପ) ସଢ଼ି ଯାଇଥାଏ—Gangrene; mortification.
ପଚାଘା **सड़ाघव**

ପଚାଦି—ସଂ. ଵଣ. (ସଂ. ବ୍ୟାକରଣ)—ସଂସ୍କୃତରେ ପଚ୍‌ଆଦି କେତେକ
Pachādi ଧାତୁ—A class of verbal roots in Sanscrit
(ପଚାଦିଗଣ, ପଚାଦିଗଣୀୟ—ଅନ୍ୟରୂପ) Grammar.

ପଚା ପତ୍ର—ଦେ. ବ. (ସଂ. ବାଲେନ୍ଦ୍ର ପତ୍ର)—୧ । ଏକପ୍ରକାର ସୁବାସିତ
Pachā patra ପତ୍ର—1. A kind of scented leaf;
ପଚାପାତ। Pagostemon Patchouli.
**पंचपात, पँचौली, पंचपानड़ी** [ ଦ୍ର—ଏହା ତୁଳସୀଆଦି ବର୍ଗର କଦାକାର ଶାକବିଶେଷ । ପତ୍ର ଶୁଖିଲେ ମଧ୍ୟ ତହିଁରେ ସୁଗନ୍ଧ ଥାଏ ଏହାକୁ ତେଲରେ ପକାଇଲେ ତେଲ ସୁଗନ୍ଧିତ ହୁଏ—ଯୋଗେଶଚନ୍ଦ୍ର ।
ଏ ଗୁଳ୍ମ ପଶ୍ଚିମଘାଟ, ମଧ୍ୟପ୍ରଦେଶ, ବୋମ୍ବାଇ ଓ ବେଙ୍ଗଲରେ ଜନ୍ମେ । ଏହାର ପତ୍ରରୁ ଓ ଡାଳରୁ ଏକପ୍ରକାର ସୁବାସିତ ତେଲ ବାହାରେ । ଏ ତେଲର ଇଉରୋପରେ ଖୁବ୍‌ ଆଦର । ଏ ଗଛ ପାକ ବରଜର ଉଚ୍ଚ ଉର୍ବ ଜମିରେ ଦୁଇହାତ ଛଡ଼ାରେ ପୋତାଯାଏ । ଏକ ଗଛରୁ ୬ମାସ ଅନ୍ତରରେ ଦୁଇଥର ଡାଳ କଟାଯାଏ ଓ ଶୁଖିଲା ଡାଳକୁ ବଡ ବଡ ଗୋଛ ବାନ୍ଧି ବିଦେଶକୁ ରପ୍ତାନି କରାଯାଏ । ୬୨ ସେର ଡାଙ୍ଗ ଓ ପତ୍ରରୁ ୧୫ ସେର ପର୍ଯ୍ୟନ୍ତ ତେଲ ବାଷ୍ପଆଣିଦ୍ୱାରା ବାହାର କରାଯାଏ—ହି. ଶବ୍ଦସାଗର । ]
୨ । ସଢ଼ା ପତ୍ର—2. Putrefied or rotten leaf.

ପଚା ପାଡ଼ିଆ—ଦେ. ଵଣ—ପିଚା ପାଡ଼ିଆ (ଦେଖ)
Pachā pārdiā Pichā pārdiā (See)
ପାଚାପାଡ଼ **तोनपढ़िया**

ପଚା ପାଣି—ଦେ. ବ – ୧ । ପଚାଫଳଆଦିରୁ ବୋହିବା ପାଣି—
Pachā pāni 1. Water oozing out from rotten fruits.
ପଚାନି
**सड़ापानी** ୨ । ପୂତିଗନ୍ଧଯୁକ୍ତ ମଇଳା ପାଣି—
2. Foetid water.

ପଚା ପ୍ରବନ୍ଧ—ଦେ. ବ (ସଂ. ପକ୍ୱ + ପ୍ରବନ୍ଧ)—ଉତ୍କୃଷ୍ଟ ରୀତି ବା ପଦ୍ଧତି—
Pachā prabandha Excellent mode or arrangement.
ସ୍ନେହେ ବୋଲ ପଚା ପ୍ରବନ୍ଧେ ଭ୍ରମି ସଖୀ
ରଖିଲେ ବଦଥ ବେଶ । ଶ୍ରୀଚୀ. ରହସ୍ୟମଞ୍ଜରୀ ।

ପଚୁରିବା—ପ୍ରାଦେ. (ଭଞ୍ଜି) କ୍ରି – ପଚାରିବା (ଦେଖ)
Pachārba Pachāribā (See)

**ପଚ୍ଚରିବା**— ଦେ. କ୍ରି. (ସ. ପ୍ରଚ୍ଛ୍ ଧାତୁ)—୧। ପ୍ରଶ୍ନ କରିବା—
Pachāriba 1. To question; to ask.
ଜିଜ୍ଞାସା କରିବା ପଚ୍ଚରିବନ୍ତି କହ କୃଷ୍ଣାଙ୍କୁରେ। କବିସୂର୍ଯ୍ୟ. ସଙ୍ଗୀତ।
**पूछना** ୨। ତତ୍ତ୍ୱ ନେବା—2 To enquire; to make enquiries.
ଗୋ ପ୍ରସୂ ସଙ୍ଗ, ବଗୁଡଲେ ପଚ୍ଚରିଲେ ନାହିଁ।
ଗୋଲୋକ ଉଦ୍ଧରେଖା।

**ପଚ୍ଚ(ଞ୍ଚା)ଶ**— ଦେ ବି ଓ ବିଣ. (ସ ପଞ୍ଚାଶତ୍, ପ୍ରା. ପଞ୍ଚାସା)—
Pachā(ñchā)sa ପାଞ୍ଚର ଦଶଗୁଣ ସଂଖ୍ୟା, ୫୦—
पञ्चाश **पचास** Fifty; 50.
ଆଉ ପଚ୍ଚଶ ସୁନସାନ୍
ତାହାଙ୍କ କଲେ ଜ୍ୟେଷ୍ଠ ସାନ୍ୟ। ଜଗନ୍ନାଥ ଭାଗବତ।

**ପଚିବା**—ଦେ. କ୍ରି. (ସ ପଚ୍ ଧାତୁ)—ସଢିବା, ପର୍ଯ୍ୟୁଷିତ ହେବା—
Pachibā To rot; to putrefy.
पचा **सड़ना** [ପଚ୍ଚ(ଚେ)ଇବା—ଣିଜନ୍ତ]

**ପଚିଶ(ଶି)**—ଦେ. ବି ଓ ବିଣ (ସ. ପଞ୍ଚବିଂଶ, ପ୍ରା. ପଚୀସ)—୨୫—
Pachisa(si) 25; Twentyfive.
[ପଞ୍ଚଶ(ଶି)—ଅନ୍ୟରୂପ) ଦେ. ବି—କଉଡ଼ିଖେଳରେ ୫ଟି ସାକ
पचिस କଉଡ଼ି ଚିତ୍ ହୋଇ ପଡ଼ିବା ସାର—The number
**पचीस** or value assigned to 5 cowries being thrown with the ventral side up in a game of cowries.

**ପଚିଶ ସଓ୍ୱାଲ୍**—ଦେ. ବି. (ଓ. ପଚିଶ ଓ ଫା. ସଓ୍ୱାଲ୍=ପ୍ରଶ୍ନ)—
Pachisa sawāl ଗଡ଼ଜାତ ମାହାଲର ସୁପରିଣ୍ଟେଣ୍ଡେଣ୍ଟ ବା କମିଶନର
पचिस सओयाल ସାହେବ ଓଡ଼ିଶାର ଗଡ଼ଜାତ ରାଜ୍ୟମାନଙ୍କର ଉତ୍ତରାଧି-
**पचीस सवाल** କାରିତ୍ୱ ବିଷୟକ ପ୍ରଚଳିତ ପ୍ରଥା ସମ୍ବନ୍ଧରେ ୧୮୧୪ ସାଲରେ ଉଦାହରଣ ୧୭ ଗୋଟି ଗଡ଼ଜାତର ରାଜାଙ୍କୁ ପଚ୍ଚରିଥିବା ୨୫ଟି ପ୍ରଶ୍ନ ଓ ରାଜାମାନେ ଦେଇଥିବା ଉକ୍ତ ପ୍ରଶ୍ନମାନଙ୍କର ଉତ୍ତର—The answers to 25 questions put by the Superintendent of the Orissa Tributary Māhāls to the Rājās in 1814 and the replies thereto regarding succession and customs which are taken as authority in questions of succession in the States of Orissa.

[ ଦ୍ର—ଏ ପ୍ରଶ୍ନ ଓ ଉତ୍ତରମାନ ଲିପିବଦ୍ଧ ହୋଇ ଖଣ୍ଡିଏ ପୁସ୍ତକ ସଙ୍କଳିତ ହୋଇଅଛି। ଗଡ଼ଜାତର ରାଜଗାଦିର ଉତ୍ତରାଧିକାରିତ୍ୱ ବା ରାଜବଂଶ ପ୍ରଚଳିତ ପ୍ରଥା ସମ୍ବନ୍ଧେ କୌଣସି ପ୍ରଶ୍ନ ଉଠିଲେ ତାହା ଏହି 'ପଚିଶ ସଓ୍ୱାଲ' ଅନୁସାରେ ମୀମାଂସା କରାଯାଏ ଏବଂ କଲିକତା ହାଇକୋର୍ଟ ମଧ୍ୟ ଉକ୍ତ ପୁସ୍ତକକୁ ଗଡ଼ଜାତ ପ୍ରଚଳିତ ପ୍ରଥା ସମ୍ବନ୍ଧେ ନଜିର ବୋଲି ଗ୍ରହଣ କରି ଅଛନ୍ତି। ଭିନ୍ନ ଭିନ୍ନ ରାଜାଙ୍କର ମଧ୍ୟ କେତେକ ପ୍ରଥା ଭିନ୍ନ ଭିନ୍ନ। ଉଦାହରଣ ସ୍ୱରୂପ ଗୋଟିଏ ପ୍ରଥା ଏହି କି କୌଣସି ମୃତ ରାଜାଙ୍କର ବିବାହିତା ରାଣୀଙ୍କ ଗର୍ଭଜାତ ପୁତ୍ର ନ ଥିଲେ ତାଙ୍କ ସହୋଦର ରାଜଗାଦି ପାଇବେ; ସହୋଦର ନଥିଲେ ସହୋଦରଙ୍କ ପୁତ୍ର ପୌତ୍ର, ସେମାନେ ନ ଥିଲେ ଫୁଲବାଈ ( ଗାନ୍ଧର୍ବ ମତରେ ବିବାହିତା ସ୍ତ୍ରୀ ) ର ପୁତ୍ର ପାଇବେ। ଗଡ଼ଜାତ ରାଜାଙ୍କର ପୋଇଲି ପୁଅ ବା ଦାସୀପୁତ୍ର ରାଜା ହୋଇ ପାରିବ ନାହିଁ, କିନ୍ତୁ ଖୋର୍ଦ୍ଧା ଛଡ଼ା ଅନ୍ୟ କଟକଜାତ ବା ମୋଗଲବନ୍ଦି ମାହାଲରେ ଦାସୀ ପୁତ୍ର ରାଜା ହୋଇ ପାରିବେ। ]

**ପଚିଶା କୁଟା**—ଦେ. ବି—'କୁଟା' ତଳେ ନୋଟ୍ ଦେଖ—
Pachisā kutā See notes under 'Kutā'.
ଦେ. ବି—୨୫ ଗୌଣୀ ଧାନ କୁଟାଳକୁ ଦେଲେ ସେ ୧୦ ଗୌଣୀ ଉସୁନା ଚାଉଳ ଦେବାର ରୀତି—
The practice of delivery of 10 measures of parboiled rice on receipt of 25 measures of paddy.

**ପଚୁରି**—ପ୍ରାଦେ. ( ଗଡ଼ଜାତ ଓ ଅନୁଗୁଳ ) ବି—ଧାନକୁ ବର୍ଷକୁ ସୱାଇ
Pachuri ( ¼ ) ସୁଧରେ କରଜ ଲଗାଇବା—
Investment of paddy on 25 per cent interest per season.

**ପଚେଲିମ**— ସ. ବିଣ. ( ପଚ+ଏଲିମ )—ସ୍ୱୟଂ ପକ୍ୱ—
Pachelima That which ripens of its own accord.

**ପଚ୍ଛ-ବୁଲ୍**—ଦେ. ବି— ଯୁବକ ସ୍ୱାଧୀନତାଦଳ ବ୍ୟାୟାମକ୍ଷେତ୍ରରେ ପ୍ରଚଳିତ ଡ୍ରିଲ୍‌ସମ୍ବନ୍ଧୀୟ
Pachh-bul ଆଦେଶ ବଚନ—A term of Drill 'Aboutturn.

**ପଛ୍ରା**— ପ୍ରାଦେ. ( ସମ୍ବଲପୁର ଓ ବାମଣ୍ଡା ) ବି. ( ଭୁଲ. ହି. ପଛୌରା, ସ
Pachhrā ପକ୍ଷ, ପଟ୍ଟ, ପ୍ରା. ପଚ୍ଛ ବଡ଼ )—୧। ପାଛୁଡ଼ା, ଚଦର—
1. An upper cloth.
୨। ବିଛଣା ଚଦର—2 Bed-sheet.

**ପଛ**—ଦେ. ବି ( ସ. ପଶ୍ଚାତ୍, ପ୍ରା. ପଚ୍ଛା )—୧। ପୃଷ୍ଠ ଦେଶ—
Pachha 1 Back; hind part.
**पेछुन, पिछु** ୨। ପୂର୍ବବର୍ତ୍ତୀ କାଳ—2. Past time.
**पीछा, पीछे** ୩। ପରବର୍ତ୍ତୀ କାଳ—3. Future time.
(ଆଗ—ବିପରୀତ) ୪। ଶେଷ ଭାଗ—4 The latter part.
ଦେ. ବିଣ—୧। ପଶ୍ଚାଦ୍ବର୍ତ୍ତୀ—1. Situate behind.
**पेछली** ୨। ପଶ୍ଚାଦ୍ ଗମନକାରୀ—2. Following.
**छिपला** ୩। ପରେ ଆସିବା—3. Coming later.
୪। ଅତୀତ; ପୂର୍ବେ ଘଟିଥିବା—4. Past; previous.
୫। ଅନ୍ୟର ପରେ ବା ବିଳମ୍ବରେ କୌଣସି କାର୍ଯ୍ୟକାରୀ(ବ୍ୟକ୍ତି)-
5. Performing a work later than another; behind hand; tardy.
( ଯଥା—ଆଗ ସୁନା ପାଗ, ପଛ ଗୁହ ପୋଛ—ଶିଶୁବଚନ)

**ପଛଆଡ଼**—ଦେ. ବି—୧। ପଶ୍ଚାତ୍ ଭାଗ—
Pachha ārda 1. Hind part; back side.
ପଛ ପଟ } ଅନ୍ୟରୂପ ସେକ୍ଷଣି ଉଠି ମୃଗେନ୍ଦ୍ର ନୃକ ବାଳକ
ପଛ ବାଗ } ଅଗ ଦାନ୍ତ ପଛ ଆଡକୁ ଟେକି ଦେଲା।
पेछन दिग କୃଷ୍ଣସିଂହ ମହାଭାରତ, ଦ୍ରୋଣ।
**पिछे तरफ, पिछाड़ी, पिछवाड़ा, पिछला तरफ**
(ଆଗଆଡ଼—ବିପରୀତ) ୨। ବାଡ଼ିଆଡ଼; ଘରର ସଦର ପାଖର ବିପରୀତ ଦିଗର ଅଂଶ—2. The back part of a house.

**ପଛ ଆଡୁଆ**—ଦେ. ବି—୧ । ପଶ୍ଚାଦ୍ଭାଗ ସମ୍ବନ୍ଧୀୟ—
Pachha ārduā 1. Pertaining to the back side.
ପେଛନ ଦିଗେର ୨ । ପଶ୍ଚାଦ୍‌ବର୍ତ୍ତୀ—2. Back ward.
**पिछला तरफका**

**ପଛ ଓରିଆ**—ଦେ ବି—ବଡ଼ ଲୋକଙ୍କ ଘରେ ଗୃହର ଚାକରଙ୍କୁ ଯେଉଁ
Pachha oriā ମୋଟା ଭାତ ଖାଇବାକୁ ଦିଆଯାଏ—
ମୋଟା ଭାତ Coarse boiled rice served to the
**मोटा भात** servants in rich families.

**ପଛ କଥା**—ଦେ ବି—୧ । ଅତୀତ ବିଷୟ, ଅତୀତ ଘଟଣା, ପୂର୍ବବର୍ତ୍ତୀ
Pachha kathā ବିଷୟ—1 Things of the past,
ଗତକଥା previous matters
**पिछेकी बात** ୨ । ଯେଉଁ ବିଷୟ ପରେ କରିବା ଉଚିତ—
1. A thing which should be done afterwards.

**ପଛ କରିବା**—ଦେ. କ୍ରି—୧ । ପିଠି ବୁଲାଇ ଦେବା—
Pachha karibā 1. To turn one's back upon.
(ପଛ ଫେରାଇବା—ଅନ୍ୟରୂପ) ୨ । (ଲକ୍ଷଣାର୍ଥ) ଅନାସ୍ଥା କରିବା—
ପେଛନ ଫିବା 2. (figurative) To neglect.
**पिछा दिखाना** ନୂଆ ନୂଆ ଧନ ଦେଖିଲେ, ନୂଆ ଦେଖି ପୁରୁଣା ପାସୋରି ଦେଲୁ,
ପଛ କରି ଦେଲୁ ମନେ—ଗୀତ ।

**ପଛକରେ**—ଦେ. ଅ—ପଛକେ ( ଦେଖ )
Pachhakare Pachhake ( See )
ପଛ ପଛକରେ କରିବ ପ୍ରୀତଶୋକ । କୃଷ୍ଣସିଂହ, ମହାଭାରତ. ଦ୍ରୋଣ ।

**ପଛ କାଟ**—ଦେ ବିଣ—ପଛେ କଟା ହେବା (ଫଳ)—
Pachha kāṭa (fruit) Taken latterly.
ପିଛୁକାଟ **पिछे काटा हुआ, देंजी**

**ପଛକୁ**—ଦେ. ଅ—୧ । ପଶ୍ଚାତ୍; ପରେ—1. Afterwards.
Pachhaku ୨ । ପୃଷ୍ଠ ଦିଗକୁ—2. Backwards.
ପବେ ୩ । (ଅମୁକର) ପୃଷ୍ଠ ଦେଶରେ—
**बाद** 3. To the back of; behind.
(ବିପରୀତ—ଆଗକୁ) ୪ । ଶେଷରେ—4. At last.
ପିଠେ ୫ । ତତ୍ ପଶ୍ଚାତ୍—5. After that.
**पीछे** ୬ । ଭବିଷ୍ୟତକୁ—6. In future.
୭ । ଅମୁକର ଉତ୍ତରାଧିକାରୀ ରୂପେ—
7 As one's successor
(ଯଥା—ଓଡ଼ିଶାରେ ମଧୁବାବୁଙ୍କ ପଛକୁ ଆମ ଆଖିରେ କେହି ପଡ଼ୁ ନାହିଁ ।)

**ପଛକୁ ପକା(କେ)ଇବା**—ଦେ. କ୍ରି—୧ । ନିକୃଷ୍ଟ ବୋଲି ବିଚାର କରିବା-
Pachhaku pakā(ke)ibā 1 To consider as
ପେଛୁ ଫେଲା inferior.
**पीछे छोड़ना** ୨ । ଅନାଦର କରିବା—2 To disregard.
ବଧିବଦେକେ ଅଛ ପଛେ ପକାଇ ଅବଧାନକୁ ନ ଥିଲି—
ଭଞ୍ଜ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।
୩ । ମନରେ ନ ଧରିବା—3. Not to mind.
ପାସୋର କାସର ଲକ, ପଛକୁ ପକାଇ ନ ଦେଲେ—
ନ ଚଳେ, କଥି ନିଷେଧକୁ ଅଳ । କବିସୂର୍ଯ୍ୟ, ଛାନ୍ଦଗୀତ ।
୪ । ପାସୋରି ଦେବା—4. To forget.

୫ । କୌଣସି କାର୍ଯ୍ୟକୁ ପରେ କରିବା ପାଇଁ ସ୍ଥଗିତ ରଖିବା—
5 To put off a work to be done afterwards.
୬ । କୌଣସି ବ୍ୟକ୍ତିକୁ ଛାଡ଼ି ଚାଲିଯିବା, କୌଣସି ବ୍ୟକ୍ତିକୁ ପଛରେ ଛାଡ଼ି ଚାଲିଯିବା—6. To go ahead of a person by leaving him behind.

**ପଛ କୁହା**—ଦେ ବିଣ—୧ । ଯେ ସମସ୍ତଙ୍କ ପଛରେ କଥା କହେ—
Pachha kuhā 1. One who opens one's mouth last.
**चुगलखोर; पीछेमे बोलनेवाला**
୨ । ଯେ ପରୋକ୍ଷରେ ନିନ୍ଦା କରେ, ଚୁଗୁଲିଆ, ଚୁଗୁଲିଖୋର—
2. Back-biting, tell-tale.
ଏଣୁ ଏ ପଛକୁହା ଲୋକ, ତେଣୁ ଅଛ ଅନେକେ ।
ଭୂପତି, ପ୍ରେମପଞ୍ଚାମୃତ ।

**ପଛକେ**—ଦେ. ଅ—୧ । କାଳେ—1. Lest.
Pachhake ୨ । ଯଦ୍ୟପି—2 Even if.
ବବଂ, ପାଛେ ୩ । ସୁଦ୍ଧା—3. Even
**बरन्, शायद्** ଯଛେ ପଛକେ ଯିବ ଉହ୍ନି କବନ୍ଧ—କୃଷ୍ଣସିଂହ, ମହାଭାରତ. ବନ ।
(ପଛକେ—ଅନ୍ୟରୂପ) ୪ । ହେଲେ ମଧ୍ୟ—4. Inspite of.

**ପଛ ଗୋଡ଼ାଣିଆ(ଆଁ)**—ଦେ ବିଣ—୧ । ଅନୁସରଣିଆ—
Pachha gordāniā(ān) 1. Dancing attendance on another.
୨ । ଖୋସାମଦିଆ, ସ୍ତାବକ—2. Flattering; meanly servile.

**ପଛ ଘୁଞ୍ଚା**—ଦେ ବି—୧ । ପଶ୍ଚାତ୍ପଦ ହେବା—1 Back sliding; shrinking back.
Pachha ghunchā
ସବେ ପଡା ୨ । (ଲକ୍ଷଣାର୍ଥ) ଅନିଚ୍ଛା ପ୍ରକାଶ—
**पीछे घुस्नुना** 2. (fig) Unwillingness
ପ୍ରାସମାନଙ୍କରେ ପରସ କେତେ ହ୍ରାସ, ପାଉ ପଛଘୁଞ୍ଚା ତେବେ ଅଛ ।
କୃଷ୍ଣସିଂହ. ମହାଭାରତ. ଶାନ୍ତି ।

**ପଛଘୁଞ୍ଚା ଦେବା**—ଦେ. କ୍ରି—୧ । ପଶ୍ଚାତ୍ପଦ ହେବା—
Pachhaghunchā deba 1. To shrink back; backslide.
ସବେପଡା ୨ । କୁଣ୍ଠିତ ହେବା; ଅନିଚ୍ଛା ପ୍ରକାଶ କରିବା—
2. To be unwilling.
୩ । ଅସ୍ୱୀକୃତ ହେବା—3. To disagree.

**ପଛ ଦେଖା(ଖୋ)ଇବା**—ଦେ. କ୍ରି (ସଂ. ପଶ୍ଚାଦ୍ଭାଗ + ପ୍ରଦର୍ଶନ)—ପୃଷ୍ଠ
Pachha dekhā(kho)ibā ପ୍ରଦର୍ଶନ କରିବା—ହାରି କରି ଯୁଦ୍ଧ
ପିଟ୍ରାନ ଦେଓୟା ଭୂମିରୁ ପଳାଇବା—To run away from the
**पीछ दीखाना** field.

**ପଛ ଧରିବା**—ଦେ. କ୍ରି—୧ । କୌଣସି ବ୍ୟକ୍ତିର ପଛରେ ଯିବା,
Pachha dharibā ଅନୁସରଣ କରିବା—1. To follow
ପିଛନ ଧରା person; to walk behind a person.
**पीछ पकड़ाना पीछे छुटना** ୨ । କୌଣସି ବ୍ୟକ୍ତିଙ୍କ ନିକଟରେ ଫଳପ୍ରାପ୍ତି ବା ଆଶ୍ରୟାର୍ଥ ଅନୁସରଣ କରିବା—2. To follow a person for help; to attend upon a person for help.
୩ । ପଛରେ ଲାଗିବା (ଦେଖ)—
3. Pachhare lāgibā (See).

୪ । କୌଣସି କାର୍ଯ୍ୟ ପାଇଁ ବାରମ୍ବାର କୌଣସି ବ୍ୟକ୍ତିକୁ ଜଗର କରିବା—4 To insist on a person doing anything.

**ପଛନ୍ତେ**—ଦେ ଅ (ସଂ. ପଶ୍ଚାତ୍)—୧ । ପଛରେ, ପୃଷ୍ଠଭାଗରେ—
Pachhante 1 On the back.
**पाछे** ୨ । ପରେ—2. Afterwards.
**पिछे** ବୃନ୍ଦାବନକୁ ଆଗ ଏ ସୁବଧାନ ଥିଲେ,
ପଛନ୍ତେ ଦେବଗଣେ ପ୍ରକାଶ ହୋଇଲେ ।
୩ । ଶେଷକୁ—3. At last; in the long run.
୪ । ପଛେ ପଛେ, ପଛରେ—4. Behind.

**ପଛନ୍ଦ**—ଦେ ବି—ପସନ୍ଦ (ଦେଖ)
Pachhanda Pasanda (See)

**ପଛ ପକେଇ ନେବା**—ଦେ. କ୍ରି (ନାବିକଙ୍କ ଭାଷା)—ଡଙ୍ଗାର ପଛମଙ୍ଗକୁ
Pachha pakei nebā କୂଳ ଅଡ଼କୁ ଆଉଜାଇବା—
(nautical) To ply a boat in such a manner that the back end will approach the shore.

**ପଛ ବୁଣା**—ଦେ. ବିଣ—(ସଂ. ପଶ୍ଚାତ୍ ବପନ)—୧ । ପଛରେ ବୁଣାଯାଇ-
Pachha buṇā ଥିବା—1. Sown after the proper
पवे बुणां season.
**पिछे बोआवुआ** ୨ । ପଛରେ ବପନ କରିଥିବା (ବ୍ୟକ୍ତି)—
2 One who has sown seeds after season

**ପଛ ବୁଦ୍ଧି(ଧି)ଆ**—ଦେ. ବିଣ—ଯାହାର ଉପସ୍ଥିତ ବୁଦ୍ଧି ନ ଥାଏ, ଯଥା—
Pachha buddhi(dhi)ā ସମୟରେ ଯାହାକୁ ବୁଦ୍ଧି ଦିଶେ ନାହିଁ—
**पीछुबुधिया; बुद्धू** One who has no presence of mind; not ready-witted.

**ପଛ ବୁହା**—ଦେ. ବିଣ—ଯାହା ହାତ ପଛଆଡ଼କୁ ବନ୍ଧା ହୋଇଥାଏ—
Pachha buhā 1. With hands pinioned.
पिछमोड़ा, पटमोड़ा ଦେ କ୍ରି—୧ । ପଛଆଡ଼ୁଆ—
**उल्टा बाँध** Backward.
୨ । ଦୁଇ ହାତକୁ ପିଠିଆଡ଼କୁ ବୁଲାଇ ବାନ୍ଧିବା ବା ଧରିବା ଅବସ୍ଥାରେ —2. With hands pinioned or tied at the back.

**ପଛଭର**—ଦେ. ବିଣ—୧ । ପଶ୍ଚାଦ୍‌ବର୍ତ୍ତୀ—1. Behindhand;
Pachha bhara situated to the rear; going to
पेछिए पड़ा the rear or back side.
**पच्छ्लग** ୨ୟ ଚରଣ ପଛ ଭର, ହେଲେ କଂସେଶ୍ୱ ମୂଳାଧାର ।
ଜଗନ୍ନାଥ. ଭାଗବତ ।
୨ । ପଛରେ ଅସୁଥିବା—2. Following.

**ପଛରେ**—ଦେ. ଅ (ସଂ. ପଶ୍ଚାତ୍)—୧ । ଅମୁକ ଉଦ୍ଦେଶ୍ୟ ସାଧନ ପାଇଁ—
Pachhare (ଯଥା—ପିଲାର ପଢ଼ାପଢ଼ି ପଛରେ ବାପ ଶହ ଶହ
([illegible]) ଟଙ୍କା ଖର୍ଚ୍ଚ କରୁଛି—1. For; in.
**पिछे [illegible] पाछे** ୨ । ଅମୁକର ଲାଗିରେ—2. For.
୩ । ଅମୁକକୁ ପ୍ରବର୍ତ୍ତାଇବା ବା ମଙ୍ଗାଇବା ପାଇଁ—
( ଯଥା—ଅମୁକଙ୍କ ପାଇଁ ଭୋଟ ଦେବାକୁ ଲୋକ ପଛରେ ୪ ଜଣ ଗୋଡ଼େଇଛନ୍ତି । )
୪ । ଅମୁକର ପାଳନ, ରକ୍ଷଣ ବା ବ୍ୟୟ ନିର୍ବାହାର୍ଥ—
( ଯଥା—ନାତୁଆଙ୍କ ପଛରେ ବାବୁଙ୍କର ଶହ ଶହ ଟଙ୍କା ଉଡ଼ୁଛି )
୫ । ପୃଷ୍ଠ ଭାଗରେ—5 On the back; on the back side of.
୬ । ପରବର୍ତ୍ତୀ କାଳରେ, ଭବିଷ୍ୟତରେ—
6 In future.
( ଯଥା - ସେ ତାକୁ ପଛରେ ଶୋଧିବ । )
୭ । ଅମୁକର ଅନୁପସ୍ଥିତିରେ, ପରୋକ୍ଷରେ—7. In the absence of; behind the back of.
୮ । ଅମୁକର ଅଧିନାୟକତ୍ୱରେ—
8. Under the leadership of.
୯ । ଅମୁକକୁ ସାହାଯ୍ୟ ଦେବା ପାଇଁ—
9. In the support of; to support him.
୧୦ । ବହୁ ପୂର୍ବବର୍ତ୍ତୀ କାଳରେ—
10 Far behind in time.
୧୧ । ବହୁ ଦୂରରେ—
11. Far behind in place.

**ପଛରୁ ଡାକିବା**—ଦେ. କ୍ରି—ଗମନୋଦ୍ୟତ ବା କୌଣସି ଉଦ୍ଦେଶ୍ୟରେ
Pachharu ḍākibā ଅନୁକୂଳ କରୁଥିବା ବ୍ୟକ୍ତିକୁ ପଛଆଡ଼ୁ
पेछूने डाका ଡାକ ଦେବା (ଏହା ଅଶୁଭ ସୂଚକ ଓ ଏପରି କେହି
**पीछेसे फुकारना** ପଛରୁ ଡାକଲେ ଅନୁକୂଳ ବିଗିଡ଼େ ବୋଲି ଲୋକେ ବିଶ୍ୱାସ କରନ୍ତି— To call a person from behind while he is going on some mission.

**ପଛରେ କହିବା**—ଦେ କ୍ରି—୧ । ପରୋକ୍ଷରେ କୌଣସି ବ୍ୟକ୍ତିର ନିନ୍ଦା
Pachhare kahibā କରିବା—1. To blame a person
पेछने बोला behind his back.
**पीछेसे कहना** ୨ । ଚୁଗୁଲି କରିବା—2. To back-bite a person.
୩ । କୌଣସି ବ୍ୟକ୍ତି କଥା କହି ସାରିବା ପରେ କଥା କହିବା—
3. To speak after a person.

**ପଛରେ ଗୋଡ଼ା(ଡ଼େ)ଇବା**—ଦେ. କ୍ରି—୧ । ପ୍ରାର୍ଥନା ସିଦ୍ଧି ପାଇଁ
Pachhare gorḍā(rḍe)ibā କୌଣସି ବ୍ୟକ୍ତିର ଅନୁସରଣ
पेछू दौड़न କରିବା—1. To dance attendance on a
**पीछे छुटना** person for the fulfilment of one's
(ପଛରେ ଲୁଚିବା—ଅନ୍ୟରୂପ) prayer; to be tied to the purse-strings of another.
୨ । ସ୍ତାବକତା କରିବା, ଖୋସାମତ କରିବା—
2. To flatter a person
୩ । ଶିକାରକୁ ଆକ୍ରମଣ କରିବା ପାଇଁ ପଶ୍ଚାଦ୍ଧାବନ କରିବା—
3 To chase a prey.

**ପଛରେ ଛାଡ଼ିବା**—ଦେ. କ୍ରି—୧ । ଚାଲିବା ସମୟରେ କୌଣସି ସ୍ଥାନକୁ
Pachhare chhārḍibā ବା ବ୍ୟକ୍ତିକୁ ବହୁ ଦୂର ପଛରେ ରଖି
पेछने छाड़ा ଚାଲି ଆସିବା—1. To leave a place or
**पीछे छोड़ना** person far behind.

୨ । କୌଣସି ସ୍ଥାନ ତ୍ୟାଗ କରିବା ସମୟରେ ସେ ସ୍ଥାନକୁ ରକ୍ଷା କରିବା ବା ସେଠାର ତତ୍ତ୍ୱ ନେବା ପାଇଁ କୌଣସି ବ୍ୟକ୍ତିକୁ ରଖି ଆସିବା—2. To leave a person at a place to look after the affairs there.

**ପଛରେ ପଡ଼ିବା**—ଦେ. କ୍ରି—୧ । ସଙ୍ଗୀ ଲୋକମାନଙ୍କ ସଙ୍ଗେ ଚାଲି ନ ପାରି ପଛରେ ରହିଯିବା—
Pachhare phrdiba
ପେଛନେ ପଡା 1. To lag behind.
**ପୀଛେ ପଡ଼ନା(ରହନା)** ୨ । ସଙ୍ଗୀମାନଙ୍କ ସଙ୍ଗେ ପ୍ରତିଯୋଗିତାରେ ନ ପାରିବା—2 To be behindhand one's mates in progress.

**ପଛରେ ଲଗା(ଗେ)ଇବା**—ଦେ. କ୍ରି—୧ । କୌଣସି ବ୍ୟକ୍ତିର ଗତିବିଧି ପ୍ରତି ଦୃଷ୍ଟି ରଖିବା ପାଇଁ ଅନ୍ୟ ବ୍ୟକ୍ତିକୁ ନିଯୁକ୍ତ କରିବା—1. To employ a person to watch the movements of another
Pachhare lagā(ge)ıbā
ପେଛନେ ଲାଗାନ
**ପୀଛେ ଲଗାନା**
୨ । କୁକୁର ଆଦିକୁ ଶିକାର ପଛରେ ଦଉଡ଼ାଇବା—
2. To set a dog on a prey.
୩ । ଅମୁକ କାର୍ଯ୍ୟ ବା ବ୍ୟକ୍ତି ପାଇଁ ଧନ ବ୍ୟୟ କରିବା—
3. To spend money for a certain thing or person.

**ପଛରେ ଲାଗିବା**—ଦେ. କ୍ରି—୧ । କୌଣସି ବ୍ୟକ୍ତିର ଗତିବିଧିକୁ ସାବଧାନତା ସହକାରେ ଓ ତାହାର ଅଜ୍ଞାତରେ ଲକ୍ଷ୍ୟ କରିବା—1. To watch the movements of a person.
Pachhare lāgibā
ପିଛନେ ଲାଗା
**ପୀଛେ ଲଗନା**
( ଯଥା—ସନ୍ଦେହୀ ଆସାମୀ ପଛରେ ଡିଟେକ୍ଟିଭ୍ ଲାଗିଛନ୍ତି । )
୨ । କୌଣସି ବ୍ୟକ୍ତି ବା ଜୀବ ଯେଉଁ ବାଟେ ଯାଇଛି ତାହାର ଖୋଜ ବା ଚିହ୍ନକୁ ଲକ୍ଷ୍ୟ କରି ଅନୁସରଣ କରିବା—
2. To track a person.
( ଯଥା—ଘାଇଆ ବାଘ ପଛରେ ଶିକାରୀମାନେ ଲାଗିଛନ୍ତି । )
୩ । କୌଣସି ବ୍ୟକ୍ତିର ଅନିଷ୍ଟାଚରଣ କରିବାକୁ ତାହାର ଛିଦ୍ର ଓ ଦୋଷ ସନ୍ଧାନ କରିବା —3 To be on the look out for the faults of another with a view to injure him.
( ଯଥା—ଜଣକ ପଛରେ ଅଫିସଯାକ ସମସ୍ତେ ଲାଗିଲେ ସେ କେତେଦିନ ଚଳିପାରିବ ? )
୪ । କୌଣସି ବ୍ୟକ୍ତିର ସେବାରେ ନିଯୁକ୍ତ ହେବା—
4. To be engaged in serving a person
( ଯଥା—ଧନବନ୍ତ ରଜାଙ୍କ ପଛରେ ୧୦ ଜଣ ସେବକାଏ ଲାଗିଛନ୍ତି । )
୫ । କୌଣସି ବ୍ୟକ୍ତି ବା ବସ୍ତୁ ପାଇଁ ( ଏତେ ଧନ ) ବ୍ୟୟିତ ହେବା—5. To be spent for a certain purpose.
( ଯଥା—ଏ ପିଲାର ପଢ଼ା ପଛରେ ମୋର ବର୍ଷକେ ହଜାରେ ଟଙ୍କା ଲାଗୁଛି । )

୬ । ପଛରେ ଗୋଡ଼ାଇବା (ଦେଖ)
6. Pachhare gordaiba (See)
୭ । କୌଣସି ବ୍ୟକ୍ତିକୁ ବାରମ୍ବାର ଅନୁରୋଧ କରିବା ବା ପ୍ରବର୍ତ୍ତାଇବା—7. To be engaged in pressing or requesting or inducing or inciting a person to do something.
( ଯଥା – ଭୋଟ ପ୍ରାର୍ଥୀମାନେ ଇଲେକ୍ସନ ପୂର୍ବରୁ ଭୋଟରମାନଙ୍କ ପଛରେ ଲାଗନ୍ତି । )

**ପଛ ମଙ୍ଗ**—ଦେ. ବି—ଡଙ୍ଗାର ପଛଭାଗର ତ୍ରିକୋଣାକାର ମୁଣ୍ଡ—
Pachha manga The triangular head of a boat on the hind side.
**ପୀଛେକା ମାଥା**
(ଆଗ ମଙ୍ଗ—ବିପରୀତ) [ ଦ୍ର—ଏହା ଉପରେ ପଟା ପଡିଥାଏ । ଏହାର ମୁଣ୍ଡରେ ମଙ୍ଗଧରା ବା ସୁକାନ ଲାଗିଥାଏ ଏବଂ ମଙ୍ଗଧରା ବ୍ୟକ୍ତି ଏହିଠାରେ ବସେ । ]

**ପଛଲା(ଲି)**—ଦେ. ବିଣ—ପିଛଲା(ଲି) (ଦେଖ)
Pachhalā(li) Pichhalā(li) (See)

**ପଛ ହେବା**—ଦେ. କ୍ରି—ଦୂର ହେବା—
Pachha hebā To be gone.
ପିଛିଏ ଯାଓଆ
**ପିଛେ ହଟନା**
କମଳଙ୍କର୍ଥେ ରୂପାସୁନାବର୍ଣ୍ଣ ମାଛ
ଅଛ ଦେଖିଲେ ତାହା ହୁଏ ତୁଏ ପଛ—କୃଷ୍ଣସିଂହ. ମହାଭାରତ. ବନ

**ପଛା**—ପ୍ରାଦେ. ( ସିଂହଭୂମ ) ବି—ଶଗଡ଼ର ପଛ ଫଳ—
Pachhā The back side cross-bits put across the shafts of a bullock cart.

**ପଛା(ଛେ)ଇବା**—( ସ. ପଶ୍ଚାତ୍ )—୧ । ପିଛେଇବା, ପଛଆଡ଼କୁ ଘୁଞ୍ଚିବା, ପଛକୁ ହଟିବା—1. To back up; to move backward.
Pachhā(chhe)ibā
ପେଛେନ, ପିଛାନ
**ପିଛେ ଚଲଜାନା** ୨ । ପଶ୍ଚାତ୍‌ପଦ ହେବା—
2. To shrink from a work.
୩ । ଅନ୍ୟମାନଙ୍କ ପଛରେ ଆସିବା—
3 To be late; to be behindhand.
୪ । ଅନ୍ୟ ସଙ୍ଗୀମାନଙ୍କ ସଙ୍ଗେ ଚାଲି ନ ପାରି ସେମାନଙ୍କ ପଛରେ ରହିବା—4. To lag behind.
୫ । ନିୟମିତ ଋତୁରେ ନ ହୋଇ ବହୁ ବିଳମ୍ବରେ ହେବା—
5 To be late in the season than ordinary.
( ଯଥା—ଏ ବର୍ଷ ଚଇତ୍ର ମାସରେ ବର୍ଷା ନ ହେବାରୁ ଧାନବୁଣା ଖୁବ୍ ପଛେଇଲା । )

**ପଛାଡ**—ଦେ. ବିଣ—ପଛଆଡ଼; ପଶ୍ଚାଦ୍‌ଭାଗ –
Pachhārda ପିଛେବଦିକ **ପିଛାଡ଼ୀ** Back side

**ପଛି**—ଦେ. ( ପ୍ରାଚୀନ ପଦ୍ୟ ) ବି. ( ଭୁଲ. ହି. ପଞ୍ଛୀ, ପଞ୍ଛୀ )—ପକ୍ଷୀ—
Pachhi Bird.
ଯେସନେ ଚକୋରୀ ପଛି କାରୁଣ କରଇ ଜଣ ଭେଟକ ମୋ
ଅଭ୍ୟର୍ଥନା ବଂଶୋଦରେ । ପ୍ରାଚୀ. ଇଶ୍ୱରାବଧ ।

**ପଛୁ(ଛୁ)ଆଣି**—ଦେ. ବି—ପଛଆଡ଼—
Pachhi(chhu)āni Back side.

ଦେ ବିଣ—୧ । ପଛୁଆଡ଼ୁ ଆସିଥିବା—1. That which has come or entered through the back side. ( ଯଥା—ଆମ ଗ୍ରାମକୁ ନଈବଢ଼ିର ପଛୁଆଣି ପାଣି ମାଡ଼େ । )
୨ । ପଛୁଆଡ଼େ ଥିବା—2 Situated behind.

**ପଛୁ(ଛୁ)ଆଣି ପାଣି**—ଦେ. ବି—ନଈବଢ଼ିର ଯେଉଁ ପାଣି ବନ୍ଧବାଟେ ବୁଲି Pachhu(chhu)āṇi pāṇi ଆସିବାରୁ ସ୍ରୋତର ବିପରୀତ ଦିଗ ପେଛୁନ ଦିଗର ଜଳ ଦେଇ ଗ୍ରାମ ବା କ୍ଷେତ୍ର ମଧ୍ୟକୁ ଆସେ—Back **पिछला पानी** water of a flood.

**ପଛିମ**—ଦେ ବି ଓ ବିଣ (ସଂ ପଶ୍ଚିମ)—ପଶ୍ଚିମ (ଦେଖ)
Pachhima পশ্চিম, পশ্চিম **पश्चिम** Paśchima (See)

**ପଛିମା**—ଦେ ବି ଓ ବିଣ ପୁଂ.—ପଶ୍ଚିମା (ଦେଖ)
Pachhimā পশ্চিমা **पश्चिमाँ** Paśchimā (See)
(ପଛିମାଣୀ—ସ୍ତ୍ରୀ)

**ପଛିଲ**—ଦେ. ବି ଓ ବିଣ—ପିଚ୍ଛିଲ (ଦେଖ)
Pachhila Pichhilā (See)

**ପଛୁଆ**—ଦେ. ବିଣ. ପୁଂ— ୧ । ପଶ୍ଚାଦ୍‌ବର୍ତ୍ତୀ—
Pachhuā 1. Backward.
পেছনের ୨ । ପଶ୍ଚାତ୍ ଆଗତ—2. Arrived later.
**पिछला, फिसड्डी** ୩ । ଯେ ପଛଘୁଞ୍ଚା ଦିଏ—
3 One who moves backward.
୪ । ଯେ ସବୁ କାର୍ଯ୍ୟ ସମସ୍ତଙ୍କ ପଛରେ କରେ, ଅଳସୁଆ—
4. Lazy; laggard.
ପ୍ରାଦେ. (ସମ୍ବଲପୁର) ବି—ଅନୁଚର, ଭୃତ୍ୟ—
Attendant; retinue.
ପ୍ରାଦେ. (ଗଡ଼ଜାତ) ବି—ମଞ୍ଚା ଉପରେ ବାଘୁଆଙ୍କୁ ସାହାଯ୍ୟ କରିବାପାଇଁ ଓ ବିପଦବେଳେ ଗୁଳି ଆଦି ଚଳାଇବା ସକାଶେ ସମର୍ଥ ଅର୍ଦ୍ଦଳିବିଶେଷ—An orderly to help the hunter on the manchā.
ପ୍ରାଦେ (ଗଡ଼ଜାତ) ବିଣ—ଯେ ବିଳମ୍ବରେ ଶେଯରୁ ଉଠେ—
Rising from bed late in the morning.

**ପଛୁଆ(ଏ)ଇବା**—ପ୍ରାଦେ. (ସମ୍ବଲପୁର) କ୍ରି—୧ । ପଛେଇ ଯିବା—
Pachhuā(e)ibā 1. To fall back.
**पिछान** ୨ । ସମସ୍ତଙ୍କ ପଛରେ ଯିବା—
**पिछलना** 2. To go behind

**ପଛେ**—ଦେ. ଅ. (ସଂ. ପଶ୍ଚାତ୍, ପ୍ରା. ପଚ୍ଛା)—୧ । ପଛକୁ (ଦେଖ)
Pachhe 1. Pachhaku (See)
পরে; পাছে ପଛେ ମାରିଣ ନନ୍ଦା ଦେଇକୁ ଅନୁକୁ ।
**पीछे** କୃଷ୍ଣସିଂ. ମହାଭାରତ. ବନ ।
୨ । ପଛକେ (ଦେଖ)—2. Pachhake (See)
ଯେବେ ଶୁଦ୍ଧ ହେବ ପଛେ ରଚନା ଭୁଷିର ।
ମଧୁସୂଦନ. ଉତ୍ତରରାମଚରିତ ।

**ପଛେ ପଛେ**—ଦେ. ଅ—୧ । ପଛରେ—1. Behind.
Pachhe pachhe ୨ । ଅବ୍ୟବହିତ ପରେ—
পাছে পাছে; পেছনে পেছনে 2. Immediately after.
**पीछे पीछे** ୩ । ଅନୁସରଣ କରି—3. Following.

ଅସୁରକୁ ଯେଝା ବେଗେ କଳ ପଚ୍ଛେ ପଚ୍ଛେ ଜଳ-ଅନୁଚରବୃନ୍ଦ ।
ରାଧାନାଥ. ମହାଯାତ୍ରା ।

**ପଜା**—ଦେ. ବି. (ସଂ ପିଜ୍ ବା ପିଞ୍ଜ୍ ଧାତୁ=ଦୀପ୍ତି ପାଇବା)—୧ । ଶସ୍ତ୍ରାଦିକୁ Pajā ଦାଢ଼ କରିବା—1. Sharpening or whetting an শাণ দেওয়া instrument.
**पैजाना** ୨ । ପଝା (ଦେଖ)—2. Pajhā (See)

**ପଜା(ଜେ)ଇବା**—ଦେ କ୍ରି. (ସଂ. ପିଜ ଧାତୁ)—୧ । ଶସ୍ତ୍ରାଦିକୁ ପଥର Pajā(je)ibā ଉପରେ ଘଷି ଦାଢ଼ୁଆ କରିବା—1. To whet পাজন, শানদেওয়া or sharpen an instrument.
**टेना; पैनाना** ୨ । ଲୁହା ଶସ୍ତ୍ରାଦିର ଦନ୍ତୁରା ଅଗକୁ ନିଆଁରେ ପୋଡ଼ି ପିଟି ବାଢ଼େଇ ଦାଢ଼ୁଆ କରିବା—2. To whet a blunt weapon by heating and beating its edge.

**ପଜ୍ଝଟି**—ଦେ. ବି. (ସଂ. ପଜ୍ଝଟିକା)—ପଜ୍ଝଟିକା (ଦେଖ)
Pajjhati Pajjhaṭikā (See)
[ଦ୍ର—ଏ ଛନ୍ଦର କବିତା ଭାଷାରେ ସୁଲଭ ନୁହେଁ । ଫକୀରମୋହନଙ୍କ 'ଛମାଣଆଠଗୁଣ୍ଠ'ରେ ଏ ଛନ୍ଦର ଗୋଟିଏ ଉଦାହରଣ ଦିଆଯାଇଅଛି, କିନ୍ତୁ ତାହା ଛନ୍ଦଟିର ଅବିକଳ ଅନୁରୂପ ହୋଇ ନାହିଁ । ଏଠାରେ ଉଦାହରଣସ୍ୱରୂପ ପଜ୍ଝଟିକା ଛନ୍ଦାନୁକରଣରେ ଗୋଟିଏ ଓଡ଼ିଆ ଶ୍ଳୋକ ଦିଆଗଲା :— ଧାଇଁଛି ସୁନ୍ଦରୀ ମୁକୁଳିତ-କେଶା
ବହୁଅଛି ଲୋତକ ସୁମଳିନ-ବେଶା
ଧାଇଁଛି ଗୁଳୁଛି ଗଢ଼ି କରି ଦାଣ୍ଡେ
କବିତା ରଚନ ଶୁଣ ପଜ୍ଝଟି ଛନ୍ଦେ । ]

**ପଜ୍ଝଟିକା**—ସଂ. ବି. ସ୍ତ୍ରୀ—ମାତ୍ରାବୃତ୍ତ ସଂସ୍କୃତ ଛନ୍ଦୋବିଶେଷ—
Pajjhaṭikā A Sanskrit metre with 16 syllables.
[ ଦ୍ର—ଏହାର ପ୍ରତିପଦରେ ୧୬ ମାତ୍ରା । ହ୍ରସ୍ୱବର୍ଣ୍ଣ ହେଲେ ୧ ମାତ୍ରା, ଦୀର୍ଘବର୍ଣ୍ଣ ୨ ମାତ୍ରା ଓ ବ୍ୟଞ୍ଜନବର୍ଣ୍ଣ ଅର୍ଦ୍ଧମାତ୍ରା ଏହିପରି ୧୬ ମାତ୍ରା ଗଣନା କରାଯାଏ । ଏଥିରେ ୯ମ ମାତ୍ରା ଗୁରୁ ହେବା ଆବଶ୍ୟକ । ଏହାର ଲକ୍ଷଣ :—
ପ୍ରତିପଦ ଯମକିତ ଷୋଡ଼ଶ ମାତ୍ରା
ନବମ ଗୁରୁତ୍ୱ ବିଭୂଷିତ ଗାତ୍ରା । ]

**ପଝା**—ଦେ. ବି—ପଜା; ରୋମନ୍ଥ; ଚର୍ବିତଚର୍ବଣ; ପାଗୁଳି—
Pajhā Ruminating; chewing the cud.
জাবর **पागुर**

**ପଝା କରିବା**—ଦେ. କ୍ରି. (ଭୁଲ. ସଂ ପର୍ ଧାତୁ)—ପାଗୁଳି କରିବା;
Pajhā karibā ପାଗୁଳିବା; ରୋମନ୍ଥ କରିବା—
জাবর কাটা To chew the cud; to ruminate.
**पागुर करना**

**ପଝା ଗଡ଼େଇବା**—ପ୍ରାଦେ. (ସିଂହଭୂମ) କ୍ରି—ପାଗୁଳିବା—
Pajhā gaṛeibā To ruminate.

**ପଝାରି**—ଦେ. ବି—ଡଙ୍ଗାରେ ଚଢ଼ି ପାର ହେଉଥିବା ଯାତ୍ରୀ, ନୌକା-
Pajhāri ରୋହୀ ବ୍ୟକ୍ତିଗଣ—Passengers in a ferry
যাত্রী **सवार** boat.
ପାହାଡ଼ିଆ ଲଗ ଛଡ଼ ନାହିଁଥ
କହୁଛ ପଝାରି ପାର । ନନ୍ଦକିଶୋର. କର୍ଣ୍ଣଫୁଲୀ ।

**ପଞ୍ଚ** (ଧାତୁ)—ସଂ—ବିସ୍ତାର କରିବା -- 
Pañch (root) To spread.

**ପଞ୍ଚ**—ବୈଦେ ବି (ଇଂ. ପଞ୍ଚ)—ଛେଣି ୨ (ଦେଖ)
Pañch पञ्च **पंच** Chheṇi 2 (See)

**ପଞ୍ଚ କରିବା**- ଦେ କ୍ରି—ବ୍ୟବହୃତ କାଗଜ କୋର୍ଟଫିସ୍ ଆଦିରେ ଲୌହ-
Pañch kariba ଯନ୍ତ୍ରଦ୍ୱାରା ଛିଦ୍ର କରିବା—To punch a
पञ्चकवा **पंच करना** paper or used courtfees.

**ପଞ୍ଚ ଲାଇଟ୍**—ବୈଦେ. ବି. (ଇଂ. ପଞ୍ଚ = ଗୁଚ୍ଛ + ଲାଇଟ୍ = ଆଲୋକ; 
Pañch lāit ଆଧୁନିକ ବ୍ୟବହାର)—କେରୋସିନ୍ ବା ପେଟ୍ରୋଲ୍
पञ्चलाईट ତେଲର ବାଷ୍ପକୁ ଜଳାଇ ଅତି ଉଜ୍ଜ୍ୱଳ ଆଲୋକ
**पंचलाइट** ଜନ୍ମାଇବା ପ୍ରଦୀପବିଶେଷ—A very bright incandescent petrol lamp.

**ପଞ୍ଚ** ସଂ. ବି. (ପଚର୍ ଧାତୁ + ଅନ, ପଞ୍ଚନ୍ ଶବ୍ଦ ୧ମା. ୧ବ)—
Pañcha ଚାରିରୁ ଏକ ଅଧିକ ସଂଖ୍ୟା, ପାଞ୍ଚ ସଂଖ୍ୟା— Five; 5.

ସଂ ବିଣ—ପଞ୍ଚସଂଖ୍ୟକ—Numbering five.

पञ्चयत् ଦେ. ବି—୧ । ପଞ୍ଚାୟତ—1. Panchayet; a
**पंच** board of arbitrators.

[ ଦ୍ର—ଏ ଶବ୍ଦ ପାଞ୍ଚ ସଂଖ୍ୟାରୁ ଉତ୍ପନ୍ନ ହୋଇଥିଲେ ମଧ୍ୟ ଏଥିରେ ପାଞ୍ଚରୁ ଅଧିକ ବା କମ୍ ମେମ୍ବର ରହନ୍ତି । ]

୨ । ଚଉକିଦାରୀ ପଞ୍ଚାୟତ—2. The body of members of a chawkidari union.

୩ । ଗ୍ରାମ୍ୟ ସହଯୋଗ ସମିତିର ପଞ୍ଚାୟତ—3. The body of members of village co-operative society.

୪ । ସାଲିସ, କୌଣସି ମକଦ୍ଦମାକୁ ଆପୋସିରେ ନିଷ୍ପତ୍ତି କରିବାପାଇଁ ଉଭୟ ପକ୍ଷ ରାଜି ହୋଇ ଯାହାଙ୍କୁ ଭଲଲୋକ ମାନି ଥାଆନ୍ତି—4. Arbitrators.

୫ । ଏକ ସ୍ଥାନରେ ଏକ ଉଦ୍ଦେଶ୍ୟରେ ବସିଥିବା ୫ଜଣ ବ୍ୟକ୍ତି --
5. Five persons sitting together to discuss a particular subject

ପଞ୍ଚମୁଖେ ପରମେଶ୍ୱର । ଡଗ ।

୬ । ଏକାଧିକ ବ୍ୟକ୍ତି—6. Many persons.

୭ । ସାମାଜିକ ଅପରାଧ ବିଚାରାର୍ଥ ମନୋନୀତ ଜାତିଭାଇଙ୍କ ମଧ୍ୟରୁ କେତେଜଣ—7. A board of members of a society who judge about social offences

ଜାତି ମଧ୍ୟରେ କେହି ଭଲମନ୍ଦ କଲେ
ପଞ୍ଚମାନେ ତାହାକୁ ଜରିମାନା କରନ୍ତି । ଫକୀରମୋହନ. ଛମାଣଆଠଗୁଣ୍ଠ ।

ପ୍ରାଦେ. (ସମ୍ବଲପୁର) ବି—ଚାରିଗୋଟି ଗ୍ରାମର ଗ୍ରାମବାସିଙ୍କ ଦ୍ୱାରା ମନୋନୀତ ପଞ୍ଚାୟତ—A board of members elected by the villagers of four different villages

[ ଦ୍ର—ଏଥିରେ ଗଉନ୍ତିଆଙ୍କର ମେମ୍ବର ହୋଇ ରହିବା ଆବଶ୍ୟକ ବୋଲି ବିବେଚିତ ହୁଏ । ]

**ପଞ୍ଚଇ**—ଦେ ବିଣ (**ସଂ. ପଞ୍ଚ ଓ ହିଁ**)—ପାଞ୍ଚଗୋଟି ମାତ୍ର; କେବଳ ୫ଟି—
Pañchai Five only (neither more nor less)
**पाँचई पाञ्चही**

**ପଞ୍ଚକ**—ସଂ. ବିଣ. (ପଞ୍ଚନ୍ + କ)—୧ । ପାଞ୍ଚସଂଖ୍ୟା ସମ୍ବନ୍ଧୀୟ—
Pañchaka 1 Pertaining to the number 5.

୨ । ପାଞ୍ଚସଂଖ୍ୟକ—2. Five in number; consisting of five.

୩ । ପାଞ୍ଚଜଣଙ୍କ ଦ୍ୱାରା କ୍ରୀତ—
3. Purchased by 5 persons.

୪ । ପଞ୍ଚଦିବସ ବୟସ୍କ—4 Five days old (Howells)

୫ । ପଞ୍ଚପରିମିତ—5. Measuring five.

୬ । ପଞ୍ଚଅଙ୍ଗ, ଅବୟବ ବା ଭାଗବିଶିଷ୍ଟ—6. Having five limbs or parts or components.

ସଂ. ବି—୧ । ପାଞ୍ଚର ସମୂହ—1. A collection of fives.

୨ । ପାଞ୍ଚର ସମାହାର—2. An aggregate of five, a pentad.

୩ । ପଞ୍ଚାୟତ—3. A board of arbitrators.

୪ । ପଞ୍ଚାୟତ—4. Arbitration

୫ । ଅନେକ ଲୋକଙ୍କୁ ନେଇ କରାଯିବା ପରାମର୍ଶ--
5. Consultation amongst many persons.

୬ । ପଞ୍ଚକ, କାର୍ତ୍ତିକମାସର ଶେଷ ପାଞ୍ଚଦିନ—6. The last 5 days of the month of Kartik.

୭ । ଜାତିବିଶେଷ—7. A particular caste (M. W)

୮ । ସ୍କନ୍ଦଙ୍କ ଅନୁଚରବିଶେଷ—8. Name of an attendant of Skanda (M.W)

୯ । ନହୁଷଙ୍କ ପୁତ୍ରବିଶେଷ—
9. Name of a son of King Nahusha (M. W)

୧୦ । ଗୌତମ ବୁଦ୍ଧଙ୍କର ପ୍ରଥମ ପାଞ୍ଚଜଣ ଶିଷ୍ୟ—10. The first five disciples of the Buddha

୧୧ । ପଞ୍ଚାଧ୍ୟାୟବିଶିଷ୍ଟ ଗ୍ରନ୍ଥ—
11. A book consisting of five chapters (M.W)

୧୨ । ପାଞ୍ଚକଉଡ଼ିରେ ଖେଳାଯିବା ଖେଳ, କସିପାଞ୍ଚ—
12 Name of a game played with five shells (M. W)

୧୩ । ଯୁଦ୍ଧଭୂମି—13. A field of battle (M. W)

୧୪ । ଶତକଡ଼ା ପାଞ୍ଚ ହିସାବେ ସୁଧ—
14. Interest at five per cent.

୧୫ । ଶକୁନ ଶାସ୍ତ୍ର—15. The science of augery.

**ପଞ୍ଚକନ୍ୟା**—ସଂ. ବି—(ଦ୍ୱିଗୁ, ପଞ୍ଚ + କନ୍ୟା) ଗୌତମପତ୍ନୀ ଅହଲ୍ୟା,
Pancha kanyā ପାଣ୍ଡବପତ୍ନୀ ଦ୍ରୌପଦୀ, ବାଳୀପତ୍ନୀ ତାରା, ପାଣ୍ଡୁପତ୍ନୀ କୁନ୍ତୀ ଓ ରାବଣପତ୍ନୀ ମନ୍ଦୋଦରୀ—Names of 5 women named in Hindu mythology as ever virgins

[ଦ୍ର—ପ୍ରତିଦିନ ସକାଳେ ପଞ୍ଚକନ୍ୟାଙ୍କ ନାମ ସ୍ମରଣ କଲେ ମନୁଷ୍ୟର ପାତକ ନାଶ ହୁଏ । ଏ ପାଞ୍ଚଜଣଯାକ ଏକାଧିକ ସ୍ୱାମୀଙ୍କ ଭୋଗ୍ୟା ହୋଇଥିଲେହେଁ ଏମାନଙ୍କର ସତୀତ୍ୱ ନଷ୍ଟ ହୋଇ ନ ଥିଲା ବୋଲି ପୁରାଣରେ କଥିତ ।]

ପଞ୍ଚ କବଳ—ସଂ ବ (ଦ୍ୱିଗୁ, ପଞ୍ଚ+କବଳ)—ସ୍ମୃତି ଅନୁସାରେ ଭୋଜନ
Pañch kabaḷa ପୂର୍ବରୁ ଗୃହସ୍ଥ କୁକୁର, ପତିତ ବା ଚଣ୍ଡାଳ, କୋଢ଼ୀ, ରୋଗୀ ଓ କୁଆଙ୍କ ପାଇଁ ଯେଉଁ ପାଞ୍ଚଗ୍ରାସ ବା ପାଞ୍ଚ ଗୁଣ୍ଡା ଅନ୍ନ କାଢ଼ି ଦିଏ (ହି. ଶ)—The five handfuls of rice kept separate for the dogs, the pariah, the lepers, the sick & the crows by every Hindu house-holder.

ପଞ୍ଚକର୍ଣ୍ଣ—ସଂ. ବିଣ (ବହୁବ୍ରୀହି, ପଞ୍ଚ+କର୍ଣ୍ଣ)—ଯେଉଁ ଗୋରୁର କାନରେ
Pañcha karṇṇa ପାଞ୍ଚ ଅଙ୍କପରି ଚିହ୍ନରେ ଛିଙ୍କ ଦିଆଯାଏ—Branded in the ear with the figure five (as cattle) (M. W)

ପଞ୍ଚକର୍ମ—ସଂ. ବିଣ (ଦ୍ୱିଗୁ, ପଞ୍ଚ+କର୍ମ)—ଆର୍ଯ୍ୟ ଚିକିତ୍ସା ଶାସ୍ତ୍ରମତରେ
Pañcha karma ରୋଗ ଚର୍ଯ୍ୟାର ପାଞ୍ଚ ଗୋଟି କ୍ରିୟା—The five-kinds of medical treatment (1. giving emetics, 2. purging, 3. giving strenutatories, 4. administering oily enema & 5. administering an emena which is not oily.

ପଞ୍ଚ କଲ୍ୟାଣ(ଣୀ)—ସଂ. ବ (ବହୁବ୍ରୀହି, ପଞ୍ଚ+କଲ୍ୟାଣ)—୧ । ଯେଉଁ
Pañha kalyāṇa(ṇī) ଘୋଡ଼ାର ଖୁର ଗୋଡ଼ ଓ କପାଳରେ (ପଞ୍ଚ କଲ୍ୟାଣକ—ଅନ୍ୟରୂପ) ଧଳା ଲୋମ ଥାଏ—1. A horse with 5 patches of white hair at 5 places (e g. the 4 legs and the brow)

୨ । ଯେଉଁ ଘୋଡ଼ାର ଖୁରଗୋଡ଼ର ଲୋମ ଓ ମୁଖରଲୋମ ଧଳା—2. A horse with white feet & a white mouth (M.W)

ବି. ବିଣ—ଖୁର ଗୋଡ଼ ଓ କପାଳରେ ଧଳାଲୋମ ଥିବା (ଘୋଡ଼ା)—Having white hair on the brow and the 4 legs.

ପଞ୍ଚ କଷାୟ—ସଂ. ବ (ସମାହାର ଦ୍ୱିଗୁ)—ବୈଦ୍ୟ ଶାସ୍ତ୍ରୋକ୍ତ କଷାୟ
Pañcha kashāy ସ୍ୱାଦଯୁକ୍ତ ପାଞ୍ଚ ଗୋଟି ବସ୍ତୁ (ଯଥା—ଜାମୁ, ଶିମିଳ, ବାଡ଼ିଅଁଳା, ବଉଳ ଓ ବରକୋଳି ଏହି ପାଞ୍ଚଟି ବୃକ୍ଷର ବକଳ ବା ଫଳ)ର କ୍ୱାଥ—A decoction prepared by boiling in water 5 particular astringent fruits or barks.

[ ଦ୍ର—ମତାନ୍ତରେ—ବାସଙ୍ଗ, ପଟୋଳ, ବର, ପ୍ରିୟଙ୍ଗୁ ଓ ନିମ୍ବ, ଏହି ପାଞ୍ଚ ଦ୍ରବ୍ୟର କ୍ୱାଥ । ]

ପଞ୍ଚ କୃତ୍ୟ—ସଂ. ବ. (ଦ୍ୱିଗୁ)—୧ । ଈଶ୍ୱରଙ୍କ ସୃଷ୍ଟି ସମ୍ବନ୍ଧେ ପାଞ୍ଚଟି
Pañcha kṛutya କର୍ମ (ସୃଷ୍ଟି, ସ୍ଥିତି ବା ପାଳନ, ଧ୍ୱଂସ ବା ସଂହାର, ତିରୋଭାବ ଓ ଅନୁଗ୍ରହ କର୍ମ)—1. The five actions by which the Supreme Being manifests itself.

୨ । ପ୍ଲକ୍ଷ (ଦେଖ)—2. Plaksha (See)

ପଞ୍ଚକୋଣ—ସଂ ବ. (ବହୁବ୍ରୀହି; ପଞ୍ଚ+କୋଣ)—୧ । ପାଞ୍ଚକୋଣ ବା
Pañchakoṇa ପାଞ୍ଚବାହୁବିଶିଷ୍ଟ କ୍ଷେତ୍ର—1. A pentagon.

୨ । (ଜ୍ୟୋତିଷ) ଲଗ୍ନଠାରୁ ୯ମ ଓ ୫ମ ସ୍ଥାନ—2. (astrology) The 9th and the 5th places computed from the 'Lagna'.

ସଂ. ବିଣ—ପାଞ୍ଚକୋଣିଆ, ପାଞ୍ଚକୋଣବିଶିଷ୍ଟ—Pentagonal.

ପଞ୍ଚକୋଳ - ସଂ. ବ. (ସମାହାର ଦ୍ୱିଗୁ, ପଞ୍ଚ=୫+କୋଳ=ପିପ୍ପଳ)—
Pañchakoḷa ବୈଦ୍ୟଶାସ୍ତ୍ରୋକ୍ତ ୫ ଗୋଟି ପିପ୍ପଳଜାତୀୟ ଔଷଧ (ପଞ୍ଚକୋଳକ—ଅନ୍ୟରୂପ) ଦ୍ରବ୍ୟ (ଯଥା—ପିପ୍ପଳ, ବଣପିପଳୀମୂଳ, ଗୁଇକାଠ, ଧଳାଚିତାମୂଳ ଓ ଶୁଣ୍ଠି)ର ସମାହାର—A collection or aggregate of 5 bitter drugs mentioned in Hindu medical books (viz long pepper, its root, piper chaba, plumbago; and dry ginger ).

ପଞ୍ଚକୋଶୀ—ଦେ. ବିଣ (ସଂ. ପଞ୍ଚକ୍ରୋଶୀ)—୧ । ତୀର୍ଥଠାରୁ ୫ କ୍ରୋଶ
Pañchakosi ସୀମା ମଧ୍ୟରେ ଅବସ୍ଥିତ—1. Situated
पाँचकुशी within 5 kros or 10 miles of a sacred place.
**पचकोसी, पंचकोसी** ୨ । ତୀର୍ଥଠାରୁ ୫ କୋଶ ସୀମା ମଧ୍ୟରେ (ପଞ୍ଚକୋଶୀ—ଅନ୍ୟରୂପ) ବାସ କରୁଥିବା—2. Inhabiting a tract of country within 10 miles of a sacred place.

୩ । ପୁରୀଠାରୁ ୫ କ୍ରୋଶ ମଧ୍ୟରେ ବାସ କରୁଥିବା—3. Inhabiting or hailing from within a radius of 10 miles from Puri.

ଦେ. ବ—କାଶୀତୀର୍ଥର ପରିକ୍ରମା—Circumambulation of the sacred city of Benares.

ପଞ୍ଚକୋଷ(ଶ) - ସଂ. ବ. ( ପଞ୍ଚ+କୋଷ=ଆବରଣ )—ବେଦାନ୍ତ-
Pañchakosha(sa) ବର୍ଣ୍ଣିତ ଆତ୍ମାର ୫ ଗୋଟି ଆବରଣ (ଯଥା—ଅନ୍ନମୟ କୋଷ, ପ୍ରାଣମୟ କୋଷ, ମନୋମୟ କୋଷ, ବିଜ୍ଞାନ କୋଷ ଓ ଆନନ୍ଦମୟ କୋଷ—( vedanta ) The five fold vestures sheathing the human soul in a living man.

ପଞ୍ଚକ୍ରୋଶ—ସଂ. ବ—୧ । ପାଞ୍ଚକ୍ରୋଶ ଦୂରତ୍ୱ—
Pañchakrosa 1. A distance of 5 krosas or 10 miles

୨ । ବନାରସ ବା କାଶୀର ଚାରି ଦିଗରେ ୫ କ୍ରୋଶ ଅକ୍ରାନ୍ତ ଭୂମି—2. The ground extending to 5 kros around Benares (M. W.).

୩ । କାଶୀ; ବାରାଣସୀ—3. The name of the sacred city of Benares (Apte).

ପଞ୍ଚକ୍ରୋଶୀ—ସଂ. ବିଣ.( ବହୁବ୍ରୀହି; ପଞ୍ଚ+କ୍ରୋଶ )—ପଞ୍ଚକ୍ରୋଶ ପରିମିତ
Pañchakrosi ଦୈର୍ଘ୍ୟ ଓ ପ୍ରସ୍ଥରେ ୫ କ୍ରୋଶବ୍ୟାପୀ—Extendning over a length and breadth of 10 miles.

ସଂ. ବ—ବାରାଣସୀ, ପଞ୍ଚକ୍ରୋଶୀ କାଶୀ—Benares (counted as a sacred place with a radius of 10 miles).

ପଞ୍ଚ କ୍ଷାର—ସଂ. ବି—ପଞ୍ଚ ଲବଣ ( ଦେଖ )—
Pañcha kshāra Pañcha labaṇa (See)

ପଞ୍ଚଗଙ୍ଗା—ସଂ ବି. (ପଞ୍ଚ + ଗଙ୍ଗା = ନଦୀ)—୧ । ହିନ୍ଦୁଶାସ୍ତ୍ରୋକ୍ତ ୫ଗୋଟି
Pañcha gangā ତୀର୍ଥନଦୀ ( ଯଥା - ଗଙ୍ଗା, ଗୋମତୀ, କୃଷ୍ଣା, ପିନାକିନୀ ଓ କାବେରୀ. ମତାନ୍ତରେ ଗଙ୍ଗା, ଯମୁନା, ଗୋଦାବରୀ, କୃଷ୍ଣା ଓ କାବେରୀ, ମତାନ୍ତରେ ଗଙ୍ଗା, ଯମୁନା, ସରସ୍ୱତୀ, କିରଣା ଓ ଧୂତପାପା )—
1. The 5 sacred rivers according to the Hindu śāstras

୨ । କାଶୀକ୍ଷେତ୍ର ମଧ୍ୟସ୍ଥ ତୀର୍ଥବିଶେଷ ( ହି. ଶବ୍ଦସାଗର)—
2. Name of a sacred place in Benares.

ପଞ୍ଚଗତ—ସଂ. ବିଣ. ( ବୀଜଗଣିତ )—ଯେଉଁ ରାଶିକୁ ପଞ୍ଚଗୁଣିତ କରି
Pañchagata ଯାଇଅଛି—(algebra) Raised to the fifth power (M. W. .

ପଞ୍ଚଗବ୍ୟ—ସଂ. ବି । ସମାହାର ଦ୍ୱିଗୁ, ପଞ୍ଚ + ଗବ୍ୟ = ଗୋଠାରୁ ଉତ୍ପନ୍ନ
Pañchagabya ବସ୍ତୁ )—ପଞ୍ଚଗୋବର, ପଞ୍ଚଗୋବର, ଗୋରୁଠାରୁ ପ୍ରାପ୍ତ ୫ ଗୋଟି ଦ୍ରବ୍ୟର ସମ୍ମିଶ୍ରଣରେ ପ୍ରସ୍ତୁତ ପବିତ୍ର ପଦାର୍ଥ -
A mixture of the 5 productions of the cow (milk, curd, ghee, urine and dung ).

[ ଦ୍ର—ଦଧି, ଦୁଗ୍ଧ, ଘୃତ, ଗୋମୂତ୍ର ଓ ଗୋମୟ ଏହି ୫ ଗୋଟି ଦ୍ରବ୍ୟର ସମ୍ମିଶ୍ରଣରେ ପଞ୍ଚଗବ୍ୟ ପ୍ରସ୍ତୁତ ହୁଏ । ଏହା ପାନ କଲେ ପ୍ରାୟଶ୍ଚିତ୍ତୀ ବ୍ୟକ୍ତି ପାପମୁକ୍ତ ହୁଏ । ଏଥିରେ ଘିଅ, ଦୁଧ ଓ ଗୋମୂତ୍ର ଏକଏକ ପଲ, ଦହି ପାଞ୍ଚ ସେର ଓ ଗୋବର ୩ ତୋଲା ମିଶାଯାଏ—ହି. ଶବ୍ଦସାଗର । ]

ଦେ ବି—ପଞ୍ଚଗବ୍ୟ ପାନପୂର୍ବକ ପ୍ରାୟଶ୍ଚିତ୍ତ ବିଧିବିଶେଷ—
An expiatory ceremony consisting of taking a mixture of the above 5 ingredients.

ପଞ୍ଚଗୁଣ—ସଂ. ବି—ପଦାର୍ଥର ୫ ଗୋଟି ଇନ୍ଦ୍ରିୟଗ୍ରାହ୍ୟ ଗୁଣ ( ଯଥା—
Pañchaguṇa ରୂପ, ରସ, ଗନ୍ଧ, ସ୍ପର୍ଶ ଓ ଶବ୍ଦ )—The five attributes of a thing perceptible to the organs of sense; the five objects of sense

ସଂ. ବି—ପାଞ୍ଚଗୁଣା—Five fold.

ପଞ୍ଚ ଗୁପ୍ତ—ସଂ ବି ( ବହୁବ୍ରୀହି )—୧ । ପାଞ୍ଚଟି ଅଙ୍ଗ ଯାହାର ଗୁପ୍ତ,
Pañcha gupta କଚ୍ଛପ - 1. Tortoise.

୨ । ( ଯହିଁରେ ପଞ୍ଚ ଇନ୍ଦ୍ରିୟର ଗୋପନ ଉପଦିଷ୍ଟ ହୋଇଅଛି ) ଚାର୍ବାକ୍ ଦର୍ଶନ—2. The materialistic system of philosophy; the doctrines of Chārbāka.

ପଞ୍ଚ ଗୋବରି—ଦେ. ବି. (ସଂ. ପଞ୍ଚଗବ୍ୟ)—ପଞ୍ଚଗବ୍ୟ ( ଦେଖ )
Pañcha gobari Pañchagabya ( See )
ପଞ୍ଚଗବ୍ୟ पंचगव्य

ପଞ୍ଚ ଗୋସାଇଁ—ଦେ. ବି—ପଞ୍ଚ ( ଦେଖ )
Pañcha gosāiñ Pañcha ( See )
ପଞ୍ଚାଏତ । କେହି ଗର୍ବକ ଜାତ ଭଳ ଦେଇ ନ ପାରିଲେ ପଞ୍ଚ ଗୋସାଇଁ
पञ्च କରୁ ମାନ୍ୟ ନେଇ ତାହାଙ୍କୁ ଉଠାଇ ଦଅନ୍ତି ।
ଫକୀରମୋହନ, ଛ ମାଣ ଆଠଗୁଣ୍ଠ ।

ପଞ୍ଚ ଗୌଡ଼—ସଂ. ବି—୧ । ପ୍ରାଚୀନ ଗୌଡ଼ ବା ବଙ୍ଗ ଦେଶର ୫ଗୋଟି
Pañcha gaurda ପ୍ରଦେଶ ( ଯଥା—ସୁହ୍ମ, ବରେନ୍ଦ୍ର, ବଙ୍ଗ, ବାଗଡ଼ି ଓ ମିଥିଳା )—1. The five provinces of ancient Bengal.

୨ । ବିନ୍ଧ୍ୟ ପର୍ବତର ଉତ୍ତରରେ ବାସ କରୁଥିବା ବ୍ରାହ୍ମଣମାନଙ୍କର ୫ ଭେଦ ( ଯଥା—ସାରସ୍ୱତ, କାନ୍ୟକୁବ୍ଜ, ଗୌଡ଼, ମୈଥିଳ ଓ ଉତ୍କଳ ( ହି.ଶ. )—2. Five classes of Brāhmaṇas inhabiting the north of the Bindhyas.

ପଞ୍ଚ ଗୌଡ଼ୀୟ —ଦେ. ବିଣ—ପଞ୍ଚ ଗୌଡ଼ସମ୍ବନ୍ଧୀୟ—
Pañcha gaurḍiya Pertaining to the Pañcha Gaurda.

ପଞ୍ଚଗ୍ରାସ—ସଂ ବି—୧ । ପଞ୍ଚ କବଳ ( ଦେଖ )
Pañcha grāsa 1. Pañcha kabaḷa ( See )

୨ । ବ୍ରାହ୍ମଣ ଚକ୍ର କରି ସାର ଭୋଜନ ପୂର୍ବରୁ ପଞ୍ଚପ୍ରାଣ ବାୟୁଙ୍କ ନାମ ଧରି ଯେଉଁ ୫ ଗୁଣ୍ଡା ଅନ୍ନ ଖାଏ—2 The five morsels of food taken by a Brāhmaṇa before taking his meal.

ପଞ୍ଚ ଗ୍ରାସୀ—ଦେ. ବି. ( ସଂ. ପଞ୍ଚଗ୍ରାସ )—ପଞ୍ଚୁଗ୍ରାସୀ ( ଦେଖ )
Pañcha grāsi Pañchugrāsi ( See )

ପଞ୍ଚ ଚକ୍ଷୁଃ—ସଂ ବି. ( ବହୁବ୍ରୀହି, ପଞ୍ଚ + ଚକ୍ଷୁ )—ବୁଦ୍ଧଙ୍କ ନାମ—
Pañcha chakshuḥ A name of the Buddha.

[ ଦ୍ର— ଏହାଙ୍କର ମାଂସ ଚକ୍ଷୁଃ, ଧର୍ମ ଚକ୍ଷୁଃ, ପ୍ରଜ୍ଞା ଚକ୍ଷୁଃ, ଦିବ୍ୟ ଚକ୍ଷୁଃ ଓ ବୁଦ୍ଧ ଚକ୍ଷୁଃ ଥିବାରୁ ଏହି ନାମ । ]

ପଞ୍ଚ ଚତ୍ୱାରିଂଶ—ସଂ. ବି—ପଇଁଚାଳିଶ ସଂଖ୍ୟାର ପୂରକ—
Pañcha chatwārimśa Forty five
(ପଞ୍ଚ ଚତ୍ୱାରିଂଶୀ—ସ୍ତ୍ରୀ)

ପଞ୍ଚ ଚତ୍ୱାରିଂଶତ୍—ସଂ. ବି ଓ ବିଣ (ସଂଖ୍ୟାବାଚକ, ପଞ୍ଚ+ଚତ୍ୱାରିଂଶତ୍)-
Pañcha chatwārimśat ଚାଳିଶରୁ ପାଞ୍ଚ ଅଧିକ ସଂଖ୍ୟା, ପଇଁଚାଳିଶ—Forty-five.

ପଞ୍ଚ ଚାମର—ସଂ. ବି—ଷୋଡ଼ଶାକ୍ଷରଯୁକ୍ତ ୪ ପାଦବିଶିଷ୍ଟ ସଂସ୍କୃତ
Pañcha chāmara ଛନ୍ଦୋବିଶେଷ—A Sanscrit metre of 16 syllables in each of the 4 lines.

[ ଦ୍ର—ଉଦାହରଣ—
ପ୍ରସୀଦ ଲୋକଲୋଚନ, ତ୍ରିଶାଂପତେ କଲେବର ।
ପ୍ରସୀଦ ଲୋକମୋଚନ, ପ୍ରଭୋ ସୁଧାଂଶୁ ଶୋଚନ ॥ ]

ପଞ୍ଚ ଚାଳିଶ(ଶି)—ଦେ. ବି ଓ ବିଣ. ( ସଂ. ପଞ୍ଚଚତ୍ୱାରିଂଶତ୍, ପ୍ରା. ପଞ୍ଚ-
Pañcha chāḷisa(si) ଚତ୍ତାଳିଶା ) - ପଇଁଚାଳିଶ; ୪୫—
पयँतालीश 45; Forty-five.
पैँतालीस ପଞ୍ଚ ଚାଳିଶେ ନବକାନ, ସ.ପକ୍କ ସମାଶସ୍ତ ଜାଣ ।
ସ୍ଥାଚୀ. ପୂର୍ଣ୍ଣଚନ୍ଦ୍ରୋଦୟ ।

ପଞ୍ଚଚୂଡ଼—ସଂ ବିଣ. ( ବହୁବ୍ରୀହି, ପଞ୍ଚ + ଚୂଡ଼ା )—
Pañcha churda ପାଞ୍ଚଟି ଶିଖାବିଶିଷ୍ଟ; ପଞ୍ଚଶିଖ—
(ପଞ୍ଚଚୂଡ଼କ—ଅନ୍ୟରୂପ) Five-tufted.
(ପଞ୍ଚଚୂଡ଼ା—ସ୍ତ୍ରୀ)

**ପଞ୍ଚଚୂଡ଼ା**—ସଂ. ବ ସ୍ତ୍ରୀ—ସ୍ୱର୍ଗର ଅପ୍ସରାବିଶେଷ—The name
Pancha churda of a heavenly nymph.
( ପଞ୍ଚଶିଖା—ଅନ୍ୟରୂପ)

**ପଞ୍ଚଜନ**–ସଂ. ବିଣ ( ପଞ୍ଚ=ପଞ୍ଚଭୂତ+ଜନ୍ ଧାତୁ=ଜନ୍ମିବା+କର୍ତ୍ତି. ଅ,
Pancha jana ଯେ ପଞ୍ଚଭୂତରୁ ଜନ୍ମିଅଛି)—ପଞ୍ଚ ମହାଭୂତରୁ ଜାତ–
Born of the 5 elements.

ସଂ ବି—୧ । ପ୍ରାଣୀ—1. Animal.
[ ଦ୍ର—ଏମାନେ ୫ ଶ୍ରେଣୀରେ ବିଭକ୍ତ । ଯଥା—ଜରାୟୁଜ, ଅଣ୍ଡଜ, ସ୍ୱେଦଜ, ଉଦ୍ଭିଜ ଓ ଉଦ୍ଭିଜ୍ଜ । ]
୨ । ମନୁଷ୍ୟ—2 Man.
୩ । ଦୈତ୍ୟବିଶେଷ—3. Name of a demon killed by Sree Krushna
[ ଦ୍ର—ଏ ହିରଣ୍ୟକଶିପୁର ପୌତ୍ର; ଶଙ୍ଖରୂପେ ସମୁଦ୍ରରେ ବାସ କରୁଥିଲା ଓ ଶ୍ରୀକୃଷ୍ଣଙ୍କ ଗୁରୁ ସାନ୍ଦୀପନାଚାର୍ଯ୍ୟଙ୍କ ପୁତ୍ରକୁ ଚୋରି କରି ନେଇ ଯାଇଥିଲା । ଶ୍ରୀକୃଷ୍ଣ ଏହାକୁ ବଧ କରି ଗୁରୁପୁତ୍ରଙ୍କୁ ଉଦ୍ଧାର କଲେ । ଏହାର ଅସ୍ଥିକୁ ପାଞ୍ଚଜନ୍ୟ ଶଙ୍ଖ କରି ସ୍ୱୟଂ ବଜାଉଥିଲେ । ]
୪ । ମନୁଷ୍ୟ—4 Mankind ( M. W. )
୫ । ଆତ୍ମା—5 The soul ( M. W. )
୬ । ପାଞ୍ଚ ପ୍ରକାର ମହାପ୍ରାଣୀ—
6. The five classes of sentient beings.
( ଯଥା—ଦେବ, ଗନ୍ଧର୍ବ, ମନୁଷ୍ୟ, ନାଗ (ମତାନ୍ତରେ ଅସୁର) ଓ ପିତୃଗଣ । )
୭ । ପ୍ରାଚୀନ ଆର୍ଯ୍ୟମାନଙ୍କ ଗଣନାକ୍ରମେ ୫ ଜାତି—7. The 5 castes according to the calculation of the ancient Aryans
( ଯଥା—ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର ଓ ନିଷାଦ ବା ଅନାର୍ଯ୍ୟ । )
୮ । ରାଜା ସଗରଙ୍କର କେଶିନୀଙ୍କ ଗର୍ଭଜାତ ଏକ ପୁତ୍ର—
8. The name of a son of King Sagara.
୯ । ପଞ୍ଚ ମହାଭୂତ—9. The five elements ( M. W. )
୧୦ । ଏକ ପ୍ରଜାପତିଙ୍କ ନାମ ( ହ. ଶ. )—
10. Name of a progenitor of mankind.

**ପଞ୍ଚଜନୀ**—ସଂ. ବି. (ସମାହାର ଦ୍ୱିଗୁ; ପଞ୍ଚ+ଜନ)—ପାଞ୍ଚଜଣ ମନୁଷ୍ୟଙ୍କ
Panchajani ମଣ୍ଡଳୀ; ପଞ୍ଚାଏତ—An assemblage of 5 persons.

**ପଞ୍ଚଜନୀନ**—ସଂ. ବିଣ. (ପଞ୍ଚଜନ+ଈନ)—ପାଞ୍ଚ ଜଣସମ୍ବନ୍ଧୀୟ; ପାଞ୍ଚଜଣିଆ–
Pancha janina Pertaining to 5 person.
ସଂ. ବି. ପୁଂ.—୧ । ଅଭିନେତା—1. An actor.
୨ । ବିଦୂଷକ—2. A buffoon

**ପଞ୍ଚଜନ୍ୟ**—ସଂ. ବି.—୧ । ଶଙ୍ଖାସୁରର ପୁତ୍ର—1. Name of the
Pancha janya son of Sankhasura.
ନାମ ତାହାର ପଞ୍ଚଜନ୍ମ ମହାମାଂ ଅସୁର ନନ୍ଦନ । ଜଗନ୍ନାଥ, ଭାଗବତ ।

୨ । ଶଙ୍ଖରୂପଧାରୀ ପଞ୍ଚଜନ୍ୟ ଅସୁରର ଅସ୍ଥି ଯାହାକୁ ଶ୍ରୀକୃଷ୍ଣ ଶଙ୍ଖରୂପେ ବ୍ୟବହାର କରୁଥିଲେ (ହ. ଶ.)—2 Name of the conch which Krushna was in the habit of carrying with him and blowing.

**ପଞ୍ଚିଆ**—ଦେ. ବିଣ —ପାଞ୍ଚୋଟି ବସ୍ତୁ ବା ସଂଖ୍ୟା ସମ୍ବନ୍ଧୀୟ—
Panchatia Relating to the number five or five things

**ପଞ୍ଚତତ୍ତ୍ୱ**—ସଂ. ବି.—(ପଞ୍ଚ+ତତ୍ତ୍ୱ)—୧ । କ୍ଷିତି, ଅପ୍, ତେଜ, ମରୁତ୍ ଓ
Pancha tattwa ବ୍ୟୋମ ଏହି ପଞ୍ଚ ମହାଭୂତ—1. The five primary or essential elements of the universe
୨ । ତନ୍ତ୍ରୋକ୍ତ ବାମ ମାର୍ଗର ପଞ୍ଚ ମକାର ( ଯଥା—ମତ୍ସ୍ୟ, ମାଂସ, ମଦ୍ୟ, ମୈଥୁନ ଓ ମୁଦ୍ରା)—2. The five rituals prescribed in the 'Tantras
୩ । ତନ୍ତ୍ରୋକ୍ତ ୫ଟି ତତ୍ତ୍ୱ ( ଯଥା—ଗୁରୁତତ୍ତ୍ୱ, ମନ୍ତ୍ରତତ୍ତ୍ୱ, ମନସ୍ତତ୍ତ୍ୱ, ଦେବତତ୍ତ୍ୱ ଓ ଧ୍ୟାନତତ୍ତ୍ୱ)—3. The five essentials of the Tantric exercise.

**ପଞ୍ଚତନ୍ତ୍ର**—ସଂ. ବି. (ପଞ୍ଚ+ତନ୍ତ୍ର=ନୀତି) –ପ୍ରାଚୀନ ମହିଳାରୋପ୍ୟନଗରର
Pancha tantra ରାଜପୁତ୍ରମାନଙ୍କ ନୀତିଶିକ୍ଷା ନିମନ୍ତେ ପଣ୍ଡିତ ବିଷ୍ଣୁଶର୍ମାଙ୍କ କର୍ତ୍ତୃକ ରଚିତ (ମିତ୍ରଭେଦ,ମିତ୍ରପ୍ରାପ୍ତି,କାକୋଲୁକ, ଲବ୍ଧକଷ୍ଟ ଓ ଅସମ୍ପ୍ରେକ୍ଷକାରିତା ) ଏହି ପଞ୍ଚଭାଗରେ ବିଭକ୍ତ ନୀତିଶାସ୍ତ୍ରବିଶେଷ—Title of a Sanskrit moral reader by Bishun Sarma.
[ଦ୍ର—ଏହି ଗ୍ରନ୍ଥ ବହୁ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଭାଷାରେ ଅନୁଦିତ ହୋଇଅଛି । ୬ଷ୍ଠ ଶତାବ୍ଦୀରେ ପାରସ୍ୟ ଭାଷାରେ, ୯ମ ଶତାବ୍ଦୀରେ ଆରବୀ ଭାଷାରେ ଏବଂ ପରେ ହିବ୍ରୁ, ଗ୍ରୀକ୍, ଲାଟିନ, ସିରୀୟ ପ୍ରଭୃତି ଏବଂ ଆଧୁନିକ ଜର୍ମାନ୍, ଇଂରାଜୀ, ଫରାସୀ ଆଦି ଇଉରୋପୀୟ ପ୍ରାୟ ସମସ୍ତ ଭାଷାରେ ଏହା ଅନୁଦିତ ହୋଇ ଇଂରାଜରେ 'ପିଲ୍ପେଙ୍କ ଗଳ୍ପ' (Pilpay's fable) ନାମରେ ପ୍ରଚଳିତ ହେଲା । ଏହାର ଆରବୀ ଅନୁବାଦର ନାମ 'ବିଦ୍ ପାଇ' । ଏହି ଗ୍ରନ୍ଥରୁ ସଂସ୍କୃତ ହିତୋପଦେଶର କାହାଣୀମାନ ସଂଗୃହୀତ ।]

**ପଞ୍ଚତନ୍ତ୍ରୀ**—ସଂ. ବି.–(ପଞ୍ଚ+ତନ୍ତ୍ର+ଈ)—ପାଞ୍ଚଟି ତାରଯୁକ୍ତ ବୀଣା (ହ.ଶ.)–
Pancha tantri A five stringed harp.

**ପଞ୍ଚତନ୍ମାତ୍ର**—ସଂ. ବି.—( ପଞ୍ଚ+ତନ୍ମାତ୍ର = ସୂକ୍ଷ୍ମଭୂତାଦି )—(ସାଂଖ୍ୟଦର୍ଶନ)
Pancha tanmatra ପଞ୍ଚ ମହାଭୂତ (କ୍ଷିତି, ଅପ୍, ତେଜ, ମରୁତ୍ ଓ ବ୍ୟୋମ) ଓ ସେମାନଙ୍କର ଯଥାକ୍ରମ ଗୁଣ (ରୂପ, ରସ, ଗନ୍ଧ, ସ୍ପର୍ଶ ଓ ଶବ୍ଦ)—(sankhya philosophy) The five primordial matters and their respective attributes.

**ପଞ୍ଚତପ**—ସଂ. ବି. (ପଞ୍ଚ+ତପ = ଅଗ୍ନି)—୧ । (ବହୁବ୍ରୀହି) ଊର୍ଦ୍ଧ୍ୱରେ
Panchatapa ଗ୍ରୀଷ୍ମର ମଧ୍ୟାହ୍ନ ସୂର୍ଯ୍ୟ ଓ ଭୂତଳରେ ଆପଣାର ଚତୁପାଖେ ଚାରି ଦଗରେ ଅଗ୍ନିରାଶି ସ୍ଥାପନ କରି ତପସ୍ୟାସାଧନ କରିବା—Practising austerities with the burning noon-sun overhead and four fires lit on one's 4 sides.

୬ । ଆପଣା ଚାରି ପାଖେ ୪ଟା ନିଆଁ ଓ ମୁଣ୍ଡ ଉପରେ ସୂର୍ଯ୍ୟ ଏହି ପର ପଞ୍ଚାଗ୍ନି—2. The five fires to which an ascetic exposes himself.

ପଞ୍ଚ ତପାଃ—ସଂ. ବିଣ. (ବହୁବ୍ରୀହି; ପଞ୍ଚ+ତପସ୍)—ପଞ୍ଚାଗ୍ନି ସ୍ଥାପନପୂର୍ବକ Pañcha tapāh ତପଃସାଧନକାରୀ—Practising austerities with five burning bodies (viz the sun over head and fire burning on 4 sides) around and above.

ପଞ୍ଚ ତରୁ—ସଂ ବି. (ଦ୍ୱିଗୁ)—ସ୍ୱର୍ଗରେ ଥିବା ୫ଟି ବୃକ୍ଷ (ଯଥା—ମନ୍ଦାର, Pañcha taru ପାରିଜାତ, ସନ୍ତାନ, କଳ୍ପବୃକ୍ଷ ଓ ହରିଚନ୍ଦନ)—Five heavenly trees said to thrive in the heavenly garden of Indra.

ପଞ୍ଚତା(ତ୍ୱ)—ସଂ ବି (ପଞ୍ଚ+ଭାବ. ତା [ତ୍ୱ])—୧ । ପାଞ୍ଚ ସଂଖ୍ୟକ Pañchatā (twa) ହେବା ଅବସ୍ଥା—1. Fiveness.

୨ । ପଞ୍ଚଭୂତରେ ମିଶିବା, ପଞ୍ଚଭୂତରେ ଶରୀରର ମିଶ୍ରଣ, ମୃତ୍ୟୁ—2 Death; dissolution into the 5 elements of which the animal body is composed.

୩ । ପାଞ୍ଚ ଅଂଶରେ ବିଭାଗ—3. Division of a thing into five parts

ପଞ୍ଚତିକ୍ତ—ସଂ. ବି. (ସମାହାର ଦ୍ୱିଗୁ, ପଞ୍ଚ+ତିକ୍ତ)—୧ । ବୈଦ୍ୟଶାସ୍ତ୍ରୋକ୍ତ Pañcha tikta ୫ ଗୋଟି ତିକ୍ତ ପଦାର୍ଥ (ନିମ୍ବର ଚେରର ବକଳ, ଗୁଳୁଚି, ବାସଙ୍ଗ, ଶୁଣ୍ଠି ଓ ଚିରେଇତା; ମତାନ୍ତରରେ ଗୁଳୁଚି, କଣ୍ଟକାରୀ, ଶୁଣ୍ଠି, ପୋଟଲ ପତ୍ର ବା ଚେର ଓ କଣ୍ଟକାରୀର ସମ୍ମିଶ୍ରଣ—1. A combination of five bitter drugs mentioned in the Hindu medical science.

[ଦ୍ର—ଏହା ଜ୍ୱର, ବିସର୍ପ ଓ କୁଷ୍ଠ ଆଦି ଚର୍ମ ରୋଗରେ ଉପକାରୀ ।]

୨ । (ମତାନ୍ତରେ) ମହିଷ, ବରାହ, ଛାଗ, ମୟୂର ଓ ରୋହିତକ ମତ୍ସ୍ୟ ଏମାନଙ୍କ ପିତ୍ତର ସମ୍ମିଶ୍ରଣରେ ଉତ୍ପନ୍ନ ଦ୍ରବ୍ୟ—2. A combination of the bile of five animals.

ପଞ୍ଚତିରିଶ(ଶି)—ଦେ. ବି ଓ ବିଣ—ପଇଁତିରିଶ (ଦେଖ) Pañchatirisa(si) Paintirisa (See)

[ପଞ୍ଚତିରିଶି(ଶି), ପଞ୍ଚତିଶ(ଶି)—ଅନ୍ୟରୂପ]

ପଞ୍ଚତିରିଶାଶଏ(ହେ)—ଦେ. ବି ଓ ବିଣ—ପଇଁତିରିଶାଶଏ (ଦେଖ) Pañchatirisāsae(he) Paintirisāsae (See)

[ପଇଁତିରିଶାଶଏ(ହେ), ପଞ୍ଚତିଶାଶଏ(ହେ)—ଅନ୍ୟରୂପ]

ପଞ୍ଚ ତୀର୍ଥ—ସଂ. ବି. (ପଞ୍ଚ+ତୀର୍ଥ=ପୁଣ୍ୟସ୍ଥାନ)—୧ । ବରାହପୁରାଣ Pañchatīrtha ମତରେ ୫ ଗୋଟି ପୁଣ୍ୟ ସ୍ଥାନ (ଯଥା—ବିଶ୍ରାନ୍ତ, ଶୌକର, ନୈମିଷ, ପ୍ରୟାଗ ଓ ପୁଷ୍କର—1. The five sacred places mentioned in the Barāha Purāṇa.

୨ । କାଶୀସ୍ଥ ୫ ଗୋଟି ଶିବାଧିଷ୍ଠିତ ପୁଣ୍ୟସ୍ଥାନ (ଯଥା—ଜ୍ଞାନବାପୀ, ନନ୍ଦିକେଶ୍ୱର, ତାରକେଶ୍ୱର, ମହାକାଳେଶ୍ୱର ଓ ଦଣ୍ଡପାଣି—2. The five sacred places in Benares.

୩ । ପୁରୁଷୋତ୍ତମସ୍ଥ ୫ଗୋଟି ପୁଣ୍ୟସ୍ଥାନ (ଯଥା—ମାର୍କଣ୍ଡେୟ, ଶ୍ୱେତଗଙ୍ଗା, ରୋହିଣୀକୁଣ୍ଡ, ସମୁଦ୍ର ଓ ଇନ୍ଦ୍ରଦ୍ୟୁମ୍ନ)—3. The five sacred places in Puri

[ଦ୍ର ଏଥିର ବଚନ—ମାର୍କଣ୍ଡେୟ ବଟାକୃଷ୍ଣ ରୋହିଣୀ ଚ ମହୋଦଧି, ଇନ୍ଦ୍ରଦ୍ୟୁମ୍ନ ସରଃସ୍ନାୟୀ ପୁନର୍ଜନ୍ମ ନ ଲଭ୍ୟତେ ।]

ପଞ୍ଚତୀର୍ଥ କରିବା—ଦେ କ୍ରି—ପଞ୍ଚତୀର୍ଥ-ଦର୍ଶନ ବା ପଞ୍ଚତୀର୍ଥରେ ସ୍ନାନଦାନାଦି Pañchatīrtha karibā କରିବା—To visit or bathe পঞ্চতীর্থ করা **पंचतीरथ करना** in the 5 sacred places

ପଞ୍ଚ ତୃଣ—ସଂ. ବି. (ବୈଦ୍ୟକ) (ସମାହାରଦ୍ୱିଗୁ, ପଞ୍ଚ+ତୃଣ)—କୁଶ, Pañcha truṇa କାଶତଣ୍ଡି, ଶରଖୁଆ, କାଣ୍ଡଶର ଓ ଆଖୁ ଏହି ପାଞ୍ଚଗୋଟି ତୃଣଜାତୀୟ ଗୁଳ୍ମ-ମୂଳର ସମାହାର—A collection of three roots of 5 grasses (plants) used in medicine.

[ଦ୍ର—ଏହା ପାଚନରୂପେ ବ୍ୟବହୃତ ହୁଏ । ଭାବପ୍ରକାଶମତରେ ଶାଳ, ଆଖୁ, କୁଶ, କାଶ ଓ କାଣ୍ଡଶରକୁ ପଞ୍ଚତୃଣ ବୋଲାଯାଏ ।]

ପଞ୍ଚତୃଣ କଷାୟ—ସଂ. ବି. (ବୈଦ୍ୟକ) (୬ଷ୍ଠୀ ତତ୍, ପଞ୍ଚତୃଣ+କଷାୟ)—Pañchatruṇa kashāya ପଞ୍ଚତୃଣର ସମାନ ଓଜନ (ପ୍ରତ୍ୟେକ ୨ ଭରି)ର ମୂଳ ସିଦ୍ଧ ହୋଇ ପ୍ରସ୍ତୁତ ହେବା କଷାୟଜଳ ବା ପାଚନବିଶେଷ—A decoction made of the roots of Pañchatruṇa boiled in water.

ପଞ୍ଚତ୍ରିଂଶ—ସଂ. ବିଣ (ପଞ୍ଚତ୍ରିଂଶତ୍+ପୂରଣାର୍ଥେ. ଅ)—Pañchatrimsa ପଇଁତିରିଶ ସ୍ଥାନୀୟ—Thrity fifth.

ପଞ୍ଚତ୍ରିଂଶତ୍—ସଂ. ବି ଓ ବିଣ (ସଂଖ୍ୟାବାଚକ, ପଞ୍ଚ ଅଧିକ ତ୍ରିଂଶତ୍)—Pañchatrimsat ତିରିଶରୁ ପାଞ୍ଚ ଅଧିକ ସଂଖ୍ୟା; ୩୫—Thirtyfive; 35

ପଞ୍ଚଥୁ—ସଂ ବି—କୋକିଳ; କୋଇଲି (ହି. ଶ)—Pañchathu Indian cuckoo.

ପଞ୍ଚଦଶ—ସଂ. ବି ଓ ବିଣ. (ପଞ୍ଚନ୍+ଦଶନ୍)—୧ । ୧୫, ପନ୍ଦର—Pañchadasa 1. 15; fifteen

୨ । ପନ୍ଦରସ୍ଥାନୀୟ—2. Fifteenth.

ପଞ୍ଚଦଶାହ—ସଂ. ବି. (ପଞ୍ଚଦଶ+ଅହନ୍)—ପନ୍ଦରଦିନ ବ୍ୟାପୀ କାଳ, Pañchadasāha ପକ୍ଷ—Fortnight; a period of fifteen days.

ପଞ୍ଚଦଶାହିକ—ସଂ. ବିଣ. (ପଞ୍ଚଦଶାହ+ଇକ)—୧ । ୧୫ ଦିନରେ ସାଧ୍ୟ Pañchadasāhika ବା କରଣୀୟ—1. Performable in a fortnight.

୨ । ପାକ୍ଷିକ—2. Fortnightly

୩ । ପକ୍ଷବ୍ୟାପୀ—3. Extending over a fortnight.

ପଞ୍ଚଦଶୀ—ସଂ. ବି. ସ୍ତ୍ରୀ. (ପଞ୍ଚଦଶ+ଈ)—୧ । ବେଦାନ୍ତଗ୍ରନ୍ଥବିଶେଷ—Pañchadasī 1. Name of a treatise on vedānta.

୨ । ପକ୍ଷର ପଞ୍ଚଦଶ ତିଥି, ଅମାବାସ୍ୟା ଓ ପୂର୍ଣ୍ଣିମା—2. The new-moon and the full moon of a mouth.

ପଞ୍ଚ ଦେବତା—ସଂ. ବି—ସୂର୍ଯ୍ୟ, ଗଣେଶ, ପାର୍ବତୀ, ମହାଦେବ ଓ ବିଷ୍ଣୁ—Pañcha debatā The five Deities :—the Sun, Gaṇesha, Pārbatī, Mahādeba and Bishṇu.

ପଞ୍ଚଦେବ
ପଞ୍ଚଦେବତ } ଅନ୍ୟରୂପ

[ ଦ୍ର—ଏଥିମଧ୍ୟରୁ ଆଦିତ୍ୟ ରୁଦ୍ର (ମହାଦେବ) ଓ ବିଷ୍ଣୁ ବୈଦିକ ଦେବତା ଅଟନ୍ତି । ]

**ପଞ୍ଚ ଦ୍ରବିଡ଼**—ସଂ. ବି—ବିନ୍ଧ୍ୟାଚଳର ଦକ୍ଷିଣବାସୀ ବ୍ରାହ୍ମଣମାନଙ୍କର ୫ଟି Pañcha drabirda ଶାଖା (ଯଥା—ମହାରାଷ୍ଟ୍ର, ତୈଲଙ୍ଗ, କର୍ଣ୍ଣାଟ, (ପଞ୍ଚଦ୍ରାବିଡ—ଅନ୍ୟରୂପ) ଗୁର୍ଜ୍ଜର ଓ ଦ୍ରାବିଡ)—The five different sects of Brāhmaṇas inhabiting the south of the Bindhya range

**ପଞ୍ଚ ଦ୍ରାବକ**—ସଂ ବି. (ପଞ୍ଚ + ଦ୍ରାବକ = ରସସାର)—ଗୁଞ୍ଜା, ଟାଙ୍ଗଣା, ମଧୁ, Pañcha drābaka ଘିଅ ଓ ଗୁଡ଼—The five solvents (red and black berry borax, honey, ghee and molasses)

**ପଞ୍ଚଧା**—ସଂ. ବି. (ପଞ୍ଚ + ପ୍ରକାରାର୍ଥରେ ଧା)—୧ । ପାଞ୍ଚପ୍ରକାର—
Pañchadhā 1. Five kinds of; of five kinds.
୨ । ପାଞ୍ଚଥର—2 Five times.
୩ । ପାଞ୍ଚଦିଗକୁ—3. To five directions.
୪ । ପାଞ୍ଚଭାଗରେ—4. Into five parts.
୫ । ପାଞ୍ଚବିଷୟ—5. Five subjects
୬ । ପାଞ୍ଚଗୁଣ—6 Fivefold.

**ପଞ୍ଚ ଧାର**—ଦେ. ବି—ଓଡ଼ିଶା ଗଡ଼ଜାତ ଆଠମଲ୍ଲିକର ସର୍ବୋଚ୍ଚ ପର୍ବତ-Pañchadhāra ବିଶେଷ—The highest mountain in Āthamallik State of Orissa.

ପଞ୍ଚଧାର ଜଳଦର କେଳି-ମଞ୍ଚରୂପୀ । ସ୍ୱାନାଥ- ମହାଯାତ୍ରା ।

**ପଞ୍ଚ ନଖ**—ସଂ. ବିଣ (ବହୁବ୍ରୀହି, ୫ ପଞ୍ଚ + ନଖ)—ଯେଉଁ ଜୀବର ପ୍ରତ୍ୟେକ Pañcha nakha ହାତ ବା ଗୋଡ଼ରେ ୫ ଗୋଟି ନଖ ଥାଏ—Having 5 nails on each foot and hand.
ସଂ, ବି—ପଞ୍ଚନଖବିଶିଷ୍ଟ ଜନ୍ତୁ (ଯଥା—ମନୁଷ୍ୟ, ବାନର, କୂର୍ମ, ହସ୍ତୀ, ବ୍ୟାଘ୍ର, କୁକ୍କୁର ଆଦି)—An animal having 5 nails or claws (e.g. man, ape, tortoise, elephant, tiger and dog).
[ ଦ୍ର—ପଞ୍ଚନଖଯୁକ୍ତ ୫ ପ୍ରକାର ପଶୁ ମନୁସଂହିତା ମତେ ଭକ୍ଷ୍ୟ, ଯଥା—ଠେକୁଆ, କୂର୍ମ, ଗଣ୍ଡାର, ଗୋଧି ଓ ସଜାରୁ ବା ଝିଙ୍କ । ଅନ୍ୟ ପଞ୍ଚନଖ ଜୀବମାନଙ୍କ ମାଂସ ଅଖାଦ୍ୟ । ]

**ପଞ୍ଚ ନଦ**—ସଂ. ବି. (ପଞ୍ଚ + ନଦ = ନଦୀ)—ଶତଦ୍ରୁ (ବା ସତଲଜ୍) Pañcha nada ବିପାଶା (ବା ବ୍ୟାସ ବା ସିନ୍ଧୁ), ଇରାବତୀ (ବା ରାବୀ), ଚନ୍ଦ୍ରଭାଗା (ବା ଚେନାବ) ଓ ବିତସ୍ତା (ବା ଝେଲମ୍) ନାମକ ୫ ଗୋଟି ନଈ ସିନ୍ଧୁନଦ ଓ ତାହାର ୪ଟି ଶାଖା—The five rivers—The Sutlej, the Indus or the westernmost branch, the Rabi, the Chenab and the Jhelum.
୨ । ପଞ୍ଚନଦୀ-ମିଳନ-ପ୍ରଦେଶ; ଯେଉଁ ଦେଶରେ ୫ ଗୋଟି ନଦୀ ମିଳିତ ହୋଇଅଛନ୍ତି—2. A country of 5 rivers
୩ । ପଞ୍ଜାବ ପ୍ରଦେଶ—3. The province of Punjab
୪ । ହିନ୍ଦୁମାନଙ୍କର ତୀର୍ଥବିଶେଷ—
4. A sacred place for the Hindus

ପଞ୍ଚନଦେ ଗଲେଟ ତେସାଗ ଫଳ । କୃଷ୍ଣସିଂହ, ମହାଭାରତ ବନ ।

୫ । ପଞ୍ଚଗଙ୍ଗା, କାଶୀର ଅନ୍ତର୍ଗତ ତୀର୍ଥବିଶେଷ—
5 Name of a sacred place in Benares

**ପଞ୍ଚନବତ**—ସଂ ବିଣ. (ପଞ୍ଚନବତି + ପୂରଣାର୍ଥେ. ଅ)—ପଞ୍ଚାନବେ ସ୍ଥାନୀୟ—
Pañchanabata Ninety fifth

**ପଞ୍ଚନବତି**—ସଂ ବି ଓ ବିଣ ସଂଖ୍ୟାବାଚକ, ପଞ୍ଚ ଅଧିକ ନବତି)—
Pañchanabati ପଞ୍ଚାନବେ, ନବେରୁ ପାଞ୍ଚ ଅଧିକ ସଂଖ୍ୟା, ୯୫—Ninety-five, 95.

**ପଞ୍ଚନାଥ**—ଦେ. ବି. (ସଂ ପଞ୍ଚ + ନାଥ)—ଭାରତରେ ଥିବା ପ୍ରସିଦ୍ଧ ୫ Pañchanātha ଗୋଟି ଦେବ—Five famous idols in India.
ପଞ୍ଚନାଥ पंचनाथ
(ଯଥା—ପୁରୀରେ ଜଗନ୍ନାଥ, ବଦରିକାରେ ବଦରୀନାଥ, ଦ୍ୱାରକାରେ ଦ୍ୱାରକାନାଥ, ସେତୁବନ୍ଧରେ ରାମନାଥ ଓ ଶ୍ରୀରଙ୍ଗପଟ୍ଟନରେ ରଙ୍ଗନାଥ ।)

**ପଞ୍ଚନାମା**—ଦେ. ବି. (ଧଂ. ପଞ୍ଚ + ଫା ପ୍ରତ୍ୟୟନାମାହ୍)—
Pañchanāmā ପଞ୍ଚାଏତ ଫଇସଲା—Arbitrator's award.
ପଞ୍ଚାୟତ ଫୟସଲା पंचनामा

**ପଞ୍ଚନିମ୍ବ**—ସଂ. ବି. ( ବୈଦ୍ୟକ )—ନିମ୍ବଗଛର ମୂଳ, ଛାଲ, ପତ୍ର, ଫୁଲ Pañchanimba ଓ ଫଳ ଏହି ୫ଟି ଅଙ୍ଗ—The root, bark, leaves, flower and fruit of the neem tree.
[ ଦ୍ର—ଏହା ଔଷଧରେ ବ୍ୟବହୃତ ହୁଏ । ]

**ପଞ୍ଚ ନୀରାଜନ**—ସଂ ବି. ( ପଞ୍ଚ + ନୀରାଜନ = ଆରତି )—ପ୍ରଦୀପ, ପଦ୍ମ, Pañcha nirājana ବସ୍ତ୍ର, ତାମ୍ର ବା ତାମ୍ବୁଳପତ୍ର ଏହି ଚତୁର୍ବିଧ ଦ୍ରବ୍ୟ ଓ ସାଷ୍ଟାଙ୍ଗ ପ୍ରଣିପାତଦ୍ୱାରା ଦେବତାଙ୍କର ଆରତି—The worship of a deity with a lamp, lotus, cloth and betel leaf and with recumbent posture.

**ପଞ୍ଚପକ୍ଷୀ**—ସଂ. ବି ( ପଞ୍ଚ=୫ + ପକ୍ଷିନ୍, ୫ ଗୋଟି ପକ୍ଷୀ ଅଭିଧେୟ ଗଣିତ Pañchapakshi ଯହିଁରେ ଅଛି )—ଶୁଭାଶୁଭ ପ୍ରଶ୍ନସମାଧାୟକ ଶକୁନ ଗ୍ରନ୍ଥବିଶେଷ—Name of a treatise or augury or divination.
[ ଦ୍ର—ଅ, ଇ, ଉ, ଏ, ଓ ଏହି ୫ଟି ବର୍ଣ୍ଣ ଯଥାକ୍ରମେ ଶ୍ୟେନ, ପେଚକ, ବାୟସ, କୁକ୍କୁଟ ଓ ମୟୂରରୂପେ କଳ୍ପନା କରାଯାଇ ଏହି ପଞ୍ଚସ୍ୱର ସାହାଯ୍ୟରେ ବର୍ଣ୍ଣ, ଗ୍ରହ, ନକ୍ଷତ୍ର, ବାର, ତିଥି, ଦେବତା ଆଦି ପ୍ରାପ୍ତ ହୋଇ ବିବିଧ ପ୍ରଶ୍ନସମାଧାନର ଉପାୟ ଏ ଗ୍ରନ୍ଥରେ ବର୍ଣ୍ଣିତ ହୋଇଅଛି । ଇଂରାଜୀର ଆଗରୀ ( augury ) ଶକୁନ ଶାସ୍ତ୍ରର ଦୃଷ୍ଟିପ୍ରବୃତ୍ତ ପକ୍ଷୀମାନଙ୍କ ଗତିବିଧିରୁ ହୋଇଥିବା ବିଷୟ ଏ ସମ୍ବନ୍ଧେ ତୁଳନୀୟ । ]

**ପଞ୍ଚ ପବନ**—ସଂ. ବି—ପଞ୍ଚପ୍ରାଣ ( ଦେଖ )
Pañcha pabana Pañchaprāṇa ( See )

**ପଞ୍ଚ ପରମେଶ୍ୱର**—ଦେ. ବି—୧ । ଧର୍ମଚର୍ଚ୍ଚାର୍ଥ ପାଞ୍ଚ ବା ଏକାଧିକ ବ୍ୟକ୍ତିଙ୍କର Pañcha parameśwara ସମାଗମ—1. A religious gathering of 5 or many persons.
ପଞ୍ଚପରମେଶ୍ୱର
पंचपरमेश्वर
୨ । ପଞ୍ଚାଏତ—2. Arbitrators.
(ପଞ୍ଚପରମେଶ୍ୱର—ଅନ୍ୟରୂପ)

ଏହି ପଞ୍ଚପରମେଶ୍ୱର ଶୁଣନ୍ତୁ, ମୁଁ ପଢ଼ିଲା ଛୁଇଁ ଅଛି—ଫକୀରମୋହନ. ଗଳ୍ପସ୍ୱଳ୍ପ ।

**ପଞ୍ଚ ପର୍ବ**—ସଂ. ବି—ମାସମଧ୍ୟସ୍ଥ ୫ ଗୋଟି ବିଶିଷ୍ଟ ତିଥି ( ଯଥା—ଅଷ୍ଟମୀ, ଚତୁର୍ଦ୍ଦଶୀ, ଅମାବାସ୍ୟା, ପୂର୍ଣ୍ଣିମା ଓ ସଂକ୍ରାନ୍ତି )—
Pañcha parba
Five special ceremonial days of the month.

**ପଞ୍ଚ ପଲ୍ଲବ**—ସଂ. ବି—୧ । ( ବୈଦିକ କର୍ମରେ ପ୍ରଯୁକ୍ତ ) ଆମ୍ବ, ଅଶ୍ୱତ୍ଥ, ବଟ, ପ୍ଳକ୍ଷ ( ଜରିଗଛ ) ଓ ଯଜ୍ଞଡୁମ୍ବିର ଏହି ଗଛମାନଙ୍କ ପତ୍ର—1 The five kinds of leaves sanctified to be used in vedic rites.
Pañcha pallaba

୨ । (ତାନ୍ତ୍ରିକ କର୍ମରେ) ପଣସ, ଆମ୍ବ, ଅଶ୍ୱତ୍ଥ, ବଟ ଓ ବଉଳ ଗଛର ପତ୍ର—2 The 5 kinds of leaves to be used on special occasions as prescribed in the Tantras.

[ ଦ୍ର—ଏ ଗଛମାନଙ୍କ ପତ୍ର ପୂଜାବେଳେ କଳସ ଉପରେ ସ୍ଥାପିତ କରାଯିବାର ବିଧି ଅଛି । ]

୩ । ( ଔଷଧରେ ) ଆମ୍ବ, ଜାମ୍ବୁ, କଇଥ, ଟଭି ଓ ବେଲଗଛର ପତ୍ର—3 The 5 kinds of leaves specified to be used in medicine.

**ପଞ୍ଚପଲ୍ଲବ ଲାଗି**—ଦେ. ବି—ମାଘ ଶୁକ୍ଳ ଶ୍ରୀପଞ୍ଚମୀ ଦିନ ପୁରୀ ଶ୍ରୀଜଗନ୍ନାଥଙ୍କ ଉପରେ ୫ ଗୋଟି ଗଛର ପତ୍ର ଅର୍ପଣ କରିବାର ଉତ୍ସବବିଶେଷ—A ceremony of putting the leaves of 5 trees on the idol Jagannātha of Puri on the bright 5th day of Māgha.
Pañchapallaba lāgi

**ପଞ୍ଚ ପାଣ୍ଡବ**—ସଂ. ବି. (ଦ୍ୱିଗୁ, ପଞ୍ଚ+ପାଣ୍ଡବ)—ଯୁଧିଷ୍ଠିର, ଭୀମ, ଅର୍ଜୁନ, ନକୁଳ ଓ ସହଦେବ ଏହି ପାଞ୍ଚଜଣ ପଣ୍ଡୁପୁତ୍ର—The five Pāṇḍaba brothers.
Pañcha pāṇḍaba

**ପଞ୍ଚ ପାଣ୍ଡବା**—ଦେ. ବି—ନୂଆଗଡ଼ ଓ ଦଶପଲ୍ଲା ମଧ୍ୟରେ ଥିବା ୫ ଗୋଟି ଶୃଙ୍ଗଯୁକ୍ତ ପର୍ବତବିଶେଷ—A mountain with 5 peaks between Nūāgaṛda and Daśapallā.
Pañcha pāṇḍabā

**ପଞ୍ଚ ପାତକ**—ସଂ. ବି.—ପଞ୍ଚ ମହାପାତକ (ଦେଖ)
Pañcha pātaka — Pañcha mahāpātaka (See)

**ପଞ୍ଚ ପାତ୍ର**—ସଂ. ବି.—୧ । ଅମାବାସ୍ୟା ଓ ପିତୃପକ୍ଷରେ ଏବଂ ମୃତ ବ୍ୟକ୍ତିର ସାମ୍ବତ୍ସରିକ ପିଣ୍ଡୀକରଣ ଶ୍ରାଦ୍ଧରେ ଯେଉଁ ୫ଟି ପାତ୍ର ବା ପକ୍ଷ (ଯଥା—୨ ଦେବପକ୍ଷ ଓ ୩ ପିତୃପକ୍ଷ) ପିଣ୍ଡ ଦିଆ ଯାଏ—1. The five parties to whom oblations are made at śrāddhas.
Pañcha pātra

୨ । ପୂଜାର୍ଥ ବ୍ୟବହୃତ ପଞ୍ଚ ଧାତୁ (ତମ୍ବା, ସୁନା, ରୁପା, ପିତଳ ଓ କଂସା ) ନିର୍ମିତ ଜଳପାତ୍ର, ପଞ୍ଚପାତ୍ରୀ—2. A glass made of 5 metals used during worship.

୩ । ୫ ଗୋଟି ପାତ୍ର—3. A collection of 5 water vessels or pots.

୪ । ପାର୍ବଣ ଶ୍ରାଦ୍ଧ (ଦେଖ) (ହି. ଶବ୍ଦସାଗର)
4. Pārbaṇa śrāddha (See)

**ପଞ୍ଚପିତୃ**—ସଂ. ବି.—ପିତା ଓ ପିତୃସ୍ଥାନୀୟ ଆଉ ୪ ଜଣ ଗୁରୁଜନ (ଯଥା—ଜନ୍ମଦାତା, ଭୟତ୍ରାତା, ଶ୍ୱଶୁର, ବିଦ୍ୟାଗୁରୁ ଓ ଅନ୍ନଦାତା—Five persons ( father, protector from danger, father-in-law, religious preceptor and master), standing in relation of a father to a person
Pañcha pitṛu
(ପଞ୍ଚପିତା—ଅନ୍ୟରୂପ)

[ଦ୍ର—ଜନ୍ମଦାତା ଭୟତ୍ରାତା ଯସ୍ୟ କନ୍ୟା ବିବାହିତା
ବିଦ୍ୟାଦାତାନ୍ନଦାତା ଚ ପଞ୍ଚୈତେ ପିତରଃ ସ୍ମୃତାଃ । ]

**ପଞ୍ଚ ପିତ୍ତ**—ସଂ ବି.—ଔଷଧାର୍ଥ ବ୍ୟବହୃତ ବୈଦ୍ୟଶାସ୍ତ୍ରୋକ୍ତ ୫ ଗୋଟି ଜୀବ (ଯଥା—ବରାହ, ଛାଗ, ମହିଷ, ରୋହିମାଛ ଓ ମୟୂରର ପିତ୍ତ—The gall or bile of 5 animals used as medicine.
Pañcha pitta

**ପଞ୍ଚ ପୁଷ୍ପ**—ସଂ ବି (ଦ୍ୱିଗୁ)—ଦେଖ ପୁରାଣ ମତରେ ଦେବତାଙ୍କ ପ୍ରିୟ ୫ ପ୍ରକାର ଫୁଲ (ଯଥା—ଚମ୍ପା, ଆମ୍ବ, ଶମୀ, ପଦ୍ମ ଓ କନିଅର)—Five kinds of flowers of which the Deities are very fond.
Pañcha pushpa

**ପଞ୍ଚ ପ୍ରଦୀପ**—ସଂ. ବି.—ପାଞ୍ଚ ଗୋଟି ପ୍ରଦୀପଯୁକ୍ତ ଆଳତିଦାନ; ଆଳତି କର୍ମରେ ବ୍ୟବହୃତ ପଞ୍ଚମୁଖ ପ୍ରଦୀପବିଶେଷ—A lamp with 5 wicks used at the time of the ceremonial waving of lights before a deity.
Pañcha pradīpa

**ପଞ୍ଚ ପ୍ରାଣ**—ସଂ. ବି—ଶରୀରସ୍ଥ ପାଞ୍ଚଗୋଟି ପବନ (ଯଥା—ପ୍ରାଣ, ଅପାନ, ବ୍ୟାନ, ଉଦାନ ଓ ସମାନ)—The 5 internal winds essential to the life of man.
Pañcha prāṇa
(ପଞ୍ଚପ୍ରାଣବାୟୁ—ଅନ୍ୟରୂପ)

[ ଦ୍ର—ହୃଦୟସ୍ଥ ପ୍ରାଣବାୟୁଦ୍ୱାରା ରକ୍ତସଞ୍ଚାଳନ, ଗୁହ୍ୟସ୍ଥ ଅପାନବାୟୁଦ୍ୱାରା ଆହାର୍ଯ୍ୟଗଳନ, କଣ୍ଠସ୍ଥ ଉଦାନବାୟୁଦ୍ୱାରା ସର୍ବାଙ୍ଗରେ ସାମଞ୍ଜସ୍ୟରକ୍ଷା ଏବଂ ନାଭିସ୍ଥ ସମାନବାୟୁଦ୍ୱାରା ପାଚନକ୍ରିୟା ସାଧିତ ହୁଏ । ]

**ପଞ୍ଚ ବଲ୍କଲ**—ସଂ. ବି. ( ବୈଦ୍ୟକ) (ଦ୍ୱିଗୁ, ପଞ୍ଚ+ବଲ୍କଲ)—ଅଶ୍ୱତ୍ଥ, ପ୍ଳକ୍ଷ (ଜରିଗଛ) ଓ ବେତ (ମତାନ୍ତରରେ ପଲାଶ, ଶିରିଷ), ବଟ, ଯଜ୍ଞଡୁମ୍ବିର ଏହି ଗଛମାନଙ୍କ ଛେଲି—The barks of 5 specified trees.
Pañcha balkala

**ପଞ୍ଚବକ୍ତ୍ର**—ସଂ. ବି ପୁଂ (ବହୁବ୍ରୀହି, ପଞ୍ଚ+ବକ୍ତ୍ର)—୧ । ପଞ୍ଚାନନ, ମହାଦେବ—1 Mahādeba.
Pañcha baktra

୨ । ପଞ୍ଚମୁଖି ରୁଦ୍ରାକ୍ଷ —
2. A rudrāksha with 5 heads.

ସଂ. ବିଣ.—ପଞ୍ଚମୁଖବିଶିଷ୍ଟ—Having five faces.

**ପଞ୍ଚ ବଟ**—ସଂ. ବି. (ଦ୍ୱିଗୁ, ପଞ୍ଚ+ବଟ)—୧ । ଅଶ୍ୱତ୍ଥ, ବେଲ, ବର, ଅଁଳା ଓ ଅଶୋକ ଏହି ପାଞ୍ଚଗୋଟି ଗଛ—1. The five specified trees.
Pañcha baṭa

୨ । ପଞ୍ଚବଟୀ (ଦେଖ)—2. Pañchabaṭī (See)

**ପଞ୍ଚବଟୀ**— ସ. ବ. ( ସମାହାର ଦ୍ୱିଗୁ, ପଞ୍ଚ+ବଟ )—
Pañchabati ୧ । ପଞ୍ଚବଟ ରୋପିତ ହୋଇଥିବା ବନ—
1. A forest where the five specific trees are planted side by side.
[ ଦ୍ର—ପୂର୍ବରେ ଅଶ୍ୱତ୍ଥ, ଉତ୍ତରରେ ବେଲ, ପଶ୍ଚିମରେ ବର, ଦକ୍ଷିଣରେ ଅଁଳା ଓ ଅଗ୍ନିକୋଣରେ ଅଶୋକ ରୋପଣ କଲେ ପଞ୍ଚବଟୀ ହୁଏ । ]
୨ । ଦଣ୍ଡକାରଣ୍ୟର ଅନ୍ତର୍ଗତ ଗୋଦାବରୀ ତୀରସ୍ଥ ଜନସ୍ଥାନ ମଧ୍ୟବର୍ତ୍ତୀ ବନବିଶେଷ—2 Name of the forest whence Rāvana carried off Sitā
[ ଦ୍ର—ଏହି ବନରେ ରାମଚନ୍ଦ୍ର ବାସ କରୁଥିବା ସମୟରେ ରାବଣ ସୀତାଙ୍କୁ ହରଣ କରିଥିଲା । ଏହା ଆଧୁନିକ ମଧ୍ୟଭାରତର ନାଗପୁର ଅଞ୍ଚଳସ୍ଥ ନାସିକ ବିଭାଗ ବୋଲି ଅନୁମିତ ହୁଏ । ]

**ପଞ୍ଚ ବର୍ଗ**—ସ. ବ.( ଦ୍ୱିଗୁ; ପଞ୍ଚ+ବର୍ଗ )—୧ । ବ୍ୟଞ୍ଜନବର୍ଣ୍ଣମାଳା ମଧ୍ୟସ୍ଥ
Pañcha barga କ, ଚ, ଟ, ତ, ପ ଏହି ପାଞ୍ଚଗୋଟି ବର୍ଗ—
1 The 5 classes or groups of consonants containing 5 letters each
୨ । ପାଞ୍ଚୋଟି ବସ୍ତୁର ସମୂହ—
2. A collection or aggregate of 5 articles.

**ପଞ୍ଚ ବର୍ଣ୍ଣ**— ସ. ବ—୧ । ( ଦ୍ୱିଗୁ; ପଞ୍ଚ+ବର୍ଣ୍ଣ )—ଧଳା, କଳା, ନାଲି,
Pañcha barṇṇa ହଳଦି ଓ ନେଳି ଏହି ପାଞ୍ଚଗୋଟି ରଙ୍ଗ—
1 The five colours ( e. g. white, black, red, yellow and blue )·
୨ । ( ବହୁବ୍ରୀହି ) ପାଞ୍ଚବର୍ଣ୍ଣର ମୁରୁଜ; ପଞ୍ଚବର୍ଣ୍ଣୀ ମୁରୁଜ—
2. Powders of 5 colours.
୩ । ଓଁକାର ପ୍ରଣବର ୫ ଗୋଟି ବର୍ଣ୍ଣ ( ଯଥା—ଅ, ଉ, ମ ନାଦ ଓ ବିନ୍ଦୁ—ହି. ଶବ୍ଦସାଗର )—3. The five component letters of sound of the mystic syllable 'Om'.
୪ । ଅରଣ୍ୟବିଶେଷ ( ହି. ଶବ୍ଦସାଗର )—
4. Name of a forest.
୫ । ପର୍ବତବିଶେଷ ( ହି. ଶବ୍ଦସାଗର )—
5. Name of a mountain.
୬ । ପଞ୍ଚମହାଯଜ୍ଞ ( ଦେଖ )—
6. Pañcha mahājajña (See)
୭ । ଶରୀରର ପଞ୍ଚେନ୍ଦ୍ରିୟ—
7. The five organs of sense (Apte).
୮ । ଶରୀରର ପାଞ୍ଚଟି ଉପାଦାନ; ପଞ୍ଚଭୂତ—
8. The 5 essential elements of the body(Apte)

**ପଞ୍ଚ ବଳା**—ସ. ବ—ବୈଦ୍ୟଶାସ୍ତ୍ରୋକ୍ତ ବଳା, ଅତିବଳା, ମହାବଳା,
Pañcha balā ନାଗବଳା ଓ ରାଜବଳା (ହି.ଶବ୍ଦସାଗର)—
Five particular herbs prescribed in Hindu medical treatises.

**ପଞ୍ଚବର୍ଷ ଦେଶୀୟ**— ସ. ବଣ ପୁଂ—ଯାହାର ବୟସ ଅନ୍ଦାଜ ୫ ବର୍ଷ—
Pañchabarsha deśiya About 5 years old.
(ପଞ୍ଚବର୍ଷ ଦେଶୀୟା—ସ୍ତ୍ରୀ)

**ପଞ୍ଚବାଣ** - ସ. ବ—୧ । ( ବହୁବ୍ରୀହି, ପଞ୍ଚ+ବାଣ )—ମଦନ, କାମ,
Pañchabāṇa କନ୍ଦର୍ପ—1 Cupid; the God of amour.
ପଞ୍ଚବିଶିଖ, ପଞ୍ଚଶାୟକ, ପଞ୍ଚଶର } ଅନ୍ୟରୂପ
୨ । ( ଦ୍ୱିଗୁ ) କନ୍ଦର୍ପଙ୍କର ସମ୍ମୋହନ ( ଅରବିନ୍ଦ ), ଉନ୍ମାଦନ ( ଅଶୋକ ), ଶୋଷଣ (ଆମ୍ର), ତାପନ (ନଅାଳି) ଓ ସ୍ତମ୍ଭନ ( ନାଲିକଇଁ ବା ନୀଳୋତ୍ପଳ ) ନାମକ ୫ ଗୋଟି ପୁଷ୍ପଯୁକ୍ତ ବାଣ—2. The arrow of cupid consisting of 5 flowers with 5 amorous attributes.

**ପଞ୍ଚ ବାତ**—ସ. ବ—ପଞ୍ଚ ପ୍ରାଣ ( ଦେଖ )—
Pañcha bāta Pañcha prāṇa ( See )
( ପଞ୍ଚବାୟୁ—ଅନ୍ୟରୂପ )

**ପଞ୍ଚ ବାହୁ**—ସ ବଣ ( ବହୁବ୍ରୀହି, ପଞ୍ଚ+ବାହୁ )—ଯେଉଁ କ୍ଷେତ୍ରର
Pañcha bāhu ପାଞ୍ଚଟି ବାହୁ ଥାଏ—Pentagonal.
ସ ବ - ପଞ୍ଚବାହୁବିଶିଷ୍ଟ କ୍ଷେତ୍ର—Pentagon.

**ପଞ୍ଚ ବିଂଶ**—ସ. ବ. ଓ ବଣ. ( ପଞ୍ଚବିଂଶତି+ପୂରଣାର୍ଥେ. ଅ )—ପଚିଶି
Pañcha bimśa ସ୍ଥାନୀୟ—Twenty-fifth.

**ପଞ୍ଚ ବିଂଶତି**—ସ. ବଣ. ଓ ବ (ସଂଖ୍ୟାବାଚକ, ପଞ୍ଚ ଅଧିକ ବିଂଶତି)—
Pañcha bimśati କୋଡିଏ ଅପେକ୍ଷା ପାଞ୍ଚ ଅଧିକ ସଂଖ୍ୟା, ପଚିଶ; ୨୫—Twenty five.

**ପଞ୍ଚ ବିଂଶତିକା**—ସ. ବ—ପଚିଶ ସଂଖ୍ୟା ବା ବସ୍ତୁର ସଂଗ୍ରହ—
Pañcha bimśatikā A collection of twenty five.
(ଯଥା—ବେତାଳ ପଞ୍ଚବିଂଶତିକା ।)

**ପଞ୍ଚ ବିଧ**—ସ. ବଣ. (ବହୁବ୍ରୀହି, ପଞ୍ଚ + ବିଧା )— ପାଞ୍ଚପ୍ରକାରର—
Pañcha bidha (ପଞ୍ଚବିଧା—ସ୍ତ୍ରୀ) Of five kinds.

**ପଞ୍ଚ ଭଦ୍ର**—ସ. ବ. ( ବହୁବ୍ରୀହି, ପଞ୍ଚ+ଭଦ୍ର=ଶୁଭଚିହ୍ନ )—
Pañcha bhadra ୧ । ଯେଉଁ ଘୋଡ଼ାର ମୁହଁ, ପିଠି, ହୃଦୟ ଓ ଦୁଇ ପାର୍ଶ୍ୱରେ ଶୁଭଲକ୍ଷଣସୂଚକ ଆବର୍ତ୍ତ ବା ରୋମଭଉଁରୀ ଥାଏ—1. A horse having 5 gyrating fur on 5 specified spots of the body (considered as auspicious to its owner ).
୨ । ପାଚନବିଶେଷ ( ଏଥିରେ ୫ଟି ଉପାଦାନ ଥାଏ, ଯଥା—ଗୁଳୁଚି, କ୍ଷେତପାପଡ଼ା, ମୁଥା, ଚିରେଇତା ଓ ଶୁଣ୍ଠି )—
2. Name of a particular decoction made from 5 ingredients
୩ । ପଞ୍ଚ କଲ୍ୟାଣ ( ଦେଖ )—
3. Pañcha kalyāṇa ( See )

**ପଞ୍ଚ ଭୁଜ**—ସଂ. ବ. ଓ ବଣ—ପଞ୍ଚ ବାହୁ ( ଦେଖ )
Pañch bhuja Pañcha bāhu (See)

**ପଞ୍ଚଭୂତ**—ସଂ. ବ. ( ପଞ୍ଚ+ଭୂତ )—ସୃଷ୍ଟିର ୫ ଗୋଟି ମୌଳିକ
Pañchabhūta ଉପାଦାନ(ଯଥା—କ୍ଷିତି, ଅପ, ତେଜଃ, ଓ ମରୁତ୍

ବ୍ୟୋମ )—The 5 primary elements of matter in the creation (e. g. earth, water, light, air and ether )

**ପଞ୍ଚଭୂତାତ୍ମା**—ସଂ. ବ. ( ପଞ୍ଚଭୂତ+ଆତ୍ମନ୍ )—ଜୀବାତ୍ମା, ପଞ୍ଚଭୂତରେ
Pancha bhūtātmā ଗଠିତ ଆତ୍ମା ବା ଶରୀର—
The individual or the body consisting of the 5 primary elements of matter.

**ପଞ୍ଚ ଭୌତିକ ଚିକିତ୍ସା**—ସ. ବ ( ଆଧୁନିକ ପ୍ରୟୋଗ )—
Pancha bhautika chikitsā ସ୍ୱଭାବ ଚିକିତ୍ସା ( ଦେଖ )
Swabhāba chikitsā ( See )

**ପଞ୍ଚମ**—ସ. ବିଣ. ( ପଞ୍ଚନ୍+ପୂରଣାର୍ଥରେ ମ )—
Panchama ୧ । ପାଞ୍ଚ ସଂଖ୍ୟାର ପୂରକ —1. Fifth
(ପଞ୍ଚମୀ—ସ୍ତ୍ରୀ) ୨ । ଦକ୍ଷ—2. Skilful; clever
୩ । ସୁନ୍ଦରୀ; ମନୋହର, ସୁନ୍ଦର—2. Beautiful, pleasing.
ସ. ବି—୧ । ସଙ୍ଗୀତର ସପ୍ତ ସ୍ୱର, ଗ୍ରାମର ପଞ୍ଚମ ସ୍ୱର, 'ପା'ସ୍ୱର—
1 The 5th of the 7 musical notes of the gamut
[ ଦ୍ର—ଏହି ସ୍ୱର ନାଭିରୁ ବାହାରି ବକ୍ଷ, ହୃଦୟ, କଣ୍ଠ ଓ ମସ୍ତକ ଏପରି ପାଞ୍ଚ ସ୍ଥାନରେ ବିଚରଣ କରେ । ଏହା କୋକିଳ କଣ୍ଠରୁ ଶୁଣାଯିବା ସ୍ୱରର ଅନୁରୂପ ବୋଲି କଳ୍ପିତ । ]
୨ । ଛଅ ରାଗ ମଧ୍ୟରୁ ତୃତୀୟ ରାଗ—
2 The 3rd of the 6 tunes of music.
[ ଦ୍ର - କେହି କେହି ଏହାକୁ ହିନ୍ଦୋଳ ରାଗର, କେହି କେହି ଏହାକୁ ଭୈରବ ରାଗର ପୁତ୍ର କହନ୍ତି । ଏହାର ଗାନ ସମୟ ଶରତ୍ ଋତୁର ପ୍ରାତଃକାଳ ବୋଲି କଥିତ । ]
୩ । ମୈଥୁନ—3. Copulation.

ପଇଞ୍ଚମ } ଅନ୍ୟରୂପ ଦେ. ବ (ଧ୍ୱନ୍ୟନୁକରଣ) -- ପାହୁଡ ଉପରେ
ପଞ୍ଚମ } ଗୋଡ଼ର ପେଣ୍ଡାରେ ପିନ୍ଧାଯିବା ଅଳଂକାର
ପଞ୍ଚମ ବିଶେଷ—A kind of ornament worn over the anklet round the tibia.

ପାଞ୍ଜର ବୈଦେ. ବ. (ଫା. ପାଜେବ୍; ଭୁଲ ସ ପାଦ ପଞ୍ଜର)—
**ପୈଁଜଣୀ** ପାଉଁଜମ; ଏକ ପ୍ରକାର ନୂପୁର—A kind of broad tinkling anklet.

**ପଞ୍ଚମ ଅବସ୍ଥା**—ଦେ. —ଶେଷାବସ୍ଥା, ମୃତ୍ୟୁ—
Panchama abasthā ପଞ୍ଚମ ଦଶା Death.
ପତିର ଦେଖି କର ପଞ୍ଚମ ଅବସ୍ଥା, ହୃଦୟରେ ସେନଲେ ମହାଶୋକ ବ୍ୟଥା ।
କୃଷ୍ଣସିଂହ, ମହାଭାରତ. ବନ ।

**ପଞ୍ଚ ମକାର**—ସ. ବ. (ବହୁବ୍ରୀହି, ପଞ୍ଚ+ମକାର='ମ' ବର୍ଣ୍ଣ )—
Pancha makāra ତନ୍ତ୍ରୋକ୍ତ ବାମ ମାର୍ଗ ଅନୁସାରେ ଉପାସନାରେ ବ୍ୟବହୃତ ମଦ୍ୟ, ମାଂସ, ମତ୍ସ୍ୟ, ମୈଥୁନ ଓ ମୁଦ୍ରା ନାମକ ସାଧନାବିଶେଷ—A tantric ritual consisting of wine, meat, fish, cohabitation and money.

**ପଞ୍ଚମ ତାନ**—ସ. ବ—ପଞ୍ଚମ ୧ ( ଦେଖ )
Panchama tāna Panchama 1 ( See )

**ପଞ୍ଚ ମନ**—ଦେ ବ—ପଞ୍ଚଭୂତାତ୍ମା ( ଦେଖ )
Pancha mana Pancha bhūtātmā ( See )
ବସ୍ତ୍ରାର ପଞ୍ଚକୁ ଏହିକଣି ହେବ ପଞ୍ଚ ମନେ ଏହା କ୍ରେ ।
ଭକ୍ତ. ବୈଦେହୀଶବିଳାସ ।

**ପଞ୍ଚମ ବେଦ**—ଦେ. ବ—ମହାଭାରତ—
Panchama beda The epic Mahābhārata

**ପଞ୍ଚମ ସ୍ୱର**—ସ ବ—୧ । (ଫଳିତ ଜ୍ୟୋତିଷ ଗଣନା) ସ୍ୱରୋଦୟ ଶାସ୍ତ୍ର
Panchama swara ଅନୁସାରେ ମୃତ୍ୟୁ ସ୍ୱର –
1 (astrology) Name of an inauspicious astrological combination.
[ ଦ୍ର ଜ୍ୟୋତିଷର ସ୍ୱରୋଦୟ ଶାସ୍ତ୍ରରେ ୫ ସ୍ୱର । ବାଲସ୍ୱର, କୁମାର ସ୍ୱର, ଯୁବା ସ୍ୱର, ବୃଦ୍ଧ ସ୍ୱର ଓ ମୃତ୍ୟୁ ସ୍ୱର । ]
୨ । ପଞ୍ଚମ ୧ ( ଦେଖ )—1 Panchama ( See )
ପଞ୍ଚମ ବେଳରେ ଡେରିଛନ୍ତି ସ୍ୱରେ ପଞ୍ଚମ ପଞ୍ଚକୁ ଅଦରେ ସେ ।
ଭଞ୍ଜ, ବୈଦେହୀଶବିଳାସ ।

**ପଞ୍ଚ ମହାପାତକ**—ସ ବ. ( ଦ୍ୱିଗୁ; ପଞ୍ଚ+ମହାପାତକ )—
Pancha mahāpātaka ବ୍ରହ୍ମ ହତ୍ୟା, ସୁରାପାନ, ବ୍ରହ୍ମସ୍ୱ ହରଣ,
ପଞ୍ଚ ମହାପାତକୀ—ପୁଂ } ବିଣ ଗୁରୁ ପତ୍ନୀ ଗମନ ଓ ଉପରୋକ୍ତ
ପଞ୍ଚ ମହାପାତକିନୀ—ସ୍ତ୍ରୀ } ପାପରେ ଲିପ୍ତ ବ୍ୟକ୍ତି ସହିତ ବାସ-
ରୂପ ୫ ଗୋଟି ଗୁରୁତର ପାପ ( ମନୁସଂହିତା ୧୧।୫୪ )—The five great sins ( viz. murdering a Brāhmana, drinking spirits, stealing from a Brāhmana, adultery with the wife of one's elders and association with the above 4 classes of offenders.

**ପଞ୍ଚ ମହାବ୍ୟାଧି**—ସ. ବ—ବୈଦ୍ୟଶାସ୍ତ୍ର ମତରେ ପାଞ୍ଚଟି ବଡ଼ ରୋଗ
Pancha mahā byādhi (ଯଥା—ଅର୍ଶ, କୁଷ୍ଠ, ଯକ୍ଷ୍ମା, ପ୍ରମେହ ଓ ଉନ୍ମାଦ )—Five major diseases according to Hindu Medical books (e.g. piles, leprosy, pthisis, gonorrhoea and insanity).

**ପଞ୍ଚ ମହାବ୍ରତ**—ସ. ବ—ଯୋଗଶାସ୍ତ୍ର ମତରେ ଯତିମାନଙ୍କର ୫ଟି ଅବଶ୍ୟ
Pancha mahābrata ଆଚରଣୀୟ କର୍ମ ( ଯଥା—ଅହିଂସା, ସୂନୃତା, ଅସ୍ତେୟ, ବ୍ରହ୍ମଚର୍ଯ୍ୟ, ଅପରିଗ୍ରହ )—The duties strictly enjoined on ascetics (viz. want of hurtfulness, truthfulness, freedom from stealing, continence and non-acceptance of gifts from others).

**ପଞ୍ଚ ମହାଭୂତ**—ସ. ବ—ପଞ୍ଚଭୂତ ( ଦେଖ )
Pancha mahābhūta Pancha bhūta ( See )

**ପଞ୍ଚ ମହାଯଜ୍ଞ**—ସ. ବ. ( ଦ୍ୱିଗୁ; ପଞ୍ଚ+ମହାଯଜ୍ଞ )—
Pancha mahājajna ବ୍ରହ୍ମଯଜ୍ଞ ( ବେଦାଧ୍ୟୟନ ), ଦେବଯଜ୍ଞ ( ଅଗ୍ନିହୋତ୍ର ), ପିତୃଯଜ୍ଞ ( ତର୍ପଣ ), ଭୂତଯଜ୍ଞ (ବୈଶ୍ୱଦେବ) ଓ ନୃଯଜ୍ଞ (ଅତିଥି ପୂଜା) ଗୃହସ୍ଥର ଅନୁଷ୍ଠେୟ ଏହି ୫ ଗୋଟି ଯାଗ ବା ପୂଜା—The five great sacraments enjoined on every house-holder by

the vedas (viz. reading the vedas, performing vedic sacrifice, offering manes, offering oblations to the spirits and hospitality).

[ଦ୍ର—ଗୃହ କର୍ମ ପାଇଁ—୧. ଚୁଲୀ, ୨. ଚକୀ ଓ ଶିଳ ଶିଳପୁଆ, ୩ ପଟେଁୟା (ଝାଡୁ), ୪ ଢିଙ୍କି ଓ ଉଦୁଖଳ ମୂଷଳ ଓ ୫ ପାଣି ମାଠିଆ ଏସବୁକୁ ଗୃହସ୍ଥଙ୍କୁ ପ୍ରତ୍ୟହ ବ୍ୟବହାର କରିବାକୁ ହୁଏ । ଏମାନଙ୍କର ନାମ ପଞ୍ଚ ସୂନା,—ଏହି ସବୁରେ ବହୁ ଜୀବହତ୍ୟା ବା ଜୀବହିଂସା ଅଜ୍ଞାତ ଭାବରେ କରାଯାଏ. ଗୃହସ୍ଥଙ୍କୁ ଏହି ପଞ୍ଚସୂନାଜନିତ ଜୀବହତ୍ୟା ପାପରୁ ମୁକ୍ତ କରିବା ପାଇଁ ମହର୍ଷିମାନେ ପଞ୍ଚଯଜ୍ଞର ବ୍ୟବସ୍ଥା କରିଅଛନ୍ତି । ବେଦାଧ୍ୟୟନ ଓ ବେଦାଧ୍ୟାପନ ବ୍ରହ୍ମଯଜ୍ଞ, ଶ୍ରାଦ୍ଧ ଓ ତର୍ପଣ ପିତୃଯଜ୍ଞ, ହୋମ-ଦେବଯଜ୍ଞ, ଅନ୍ନଦାନ ଓ ବୈଶ୍ୱଦେବ-ଭୂତଯଜ୍ଞ ଓ ଅତିଥି ସେବା ନୃଯଜ୍ଞ । ଯେଉଁ ଗୃହସ୍ଥ ଆପଣା ଶକ୍ତି ଅନୁସାରେ ପ୍ରତିଦିନ ଏହି ପଞ୍ଚଯଜ୍ଞ କରନ୍ତି ସେ ଗୃହରେ ବାସକରି ସୁଦ୍ଧା ପଞ୍ଚସୂନା ଦୋଷରେ ଲିପ୍ତ ହୁଅନ୍ତି ନାହିଁ (ମନୁ ୩ । ୬୯—୭୧ ଓ ୮୦—୮୧)

**ପଞ୍ଚ ମହାଶବ୍ଦ**—ସଂ. ବି.—ଶଙ୍ଖ, ଭେରୀ, କାହାଳୀ, ଢକ୍କା ଓ ଦୁନ୍ଦୁଭି ବା **Pañcha mahāśabda** ଡମରୁ ଏହି ପଞ୍ଚବାଦ୍ୟର ଶବ୍ଦ—The sounds of five kinds of musical instruments.

[ଦ୍ର—ପୂର୍ବେ ଏହି ପଞ୍ଚବାଦ୍ୟ ରାଜମର୍ଯ୍ୟାଦା ଥିଲା ।]

**ପଞ୍ଚ ମହିଷ**—ସଂ. ବି —ସୁଶ୍ରୁତ ଅନୁସାରେ ମଇଁଷିଠାରୁ ପ୍ରାପ୍ତ ପାଞ୍ଚ ପଦାର୍ଥ **Pañcha mahisha** (ଯାହା ଔଷଧରୂପେ ବ୍ୟବହୃତ ହୁଏ, ଯଥା—ଗୋବର, ମୂତ୍ର, ଦୁଧ, ଦହି ଓ ଘିଅ)—Five things got from the buffaloes and used as medicine.

**ପଞ୍ଚମା**—ପ୍ରାଦେ. (ଗଞ୍ଜାମ) ବି. (ସଂ. ପଞ୍ଚମ; ହିନ୍ଦୁର ଚାରିବର୍ଣ୍ଣରୁ ବହିର୍ଭୂତ **Pañchamā** ଥିବାରୁ)—ନୀଚ ଅସ୍ପୃଶ୍ୟ ଚଣ୍ଡାଳାଦି ଜାତି (ଯଥା—ଦଣ୍ଡାସୀ ଜାତି)—Pariah; the untouchables.

**ପଞ୍ଚ ମାଥ**—ଦେ. ବି. (ସଂ. ପଞ୍ଚ+ମସ୍ତକ)—ପଞ୍ଚାନନ, ଶିବ, ମହାଦେବ—**Pañcha mātha** Siba.

ଭୂମି ଦେହ କ୍ଷୀଣ କରିଁ ବଶେ ପଞ୍ଚମାଥ । ବିଶ୍ୱନାଥ. ବିଚିତ୍ର ରାମାୟଣ ।

**ପଞ୍ଚମାସ୍ୟ**—ସଂ. ବିଣ —୧ । (ପଞ୍ଚମାସ+ଯ)—ପ୍ରତି ପାଞ୍ଚ ମାସରେ **Pañchamāsya** ଘଟୁଥିବା—1. Happening every fifth month.

୨ । ପଞ୍ଚମାସ ବ୍ୟାପୀ—Containing five months (M. W.)

୩ । (ବହୁବ୍ରୀହି; ପଞ୍ଚମ+ଆସ୍ୟ)—ପଞ୍ଚମ ସ୍ୱରରେ ଗୀତ ଗାଉଥିବା—3. Singing in the fifth note of the gamut.

ସଂ. ବି.—କୋକିଳ—The Indian cuckoo.

**ପଞ୍ଚମୀ**—ସଂ. ବି. ସ୍ତ୍ରୀ (ପଞ୍ଚମ+ସ୍ତ୍ରୀ ଈ)—୧ । ଶୁକ୍ଲ ବା କୃଷ୍ଣପକ୍ଷର ଚତୁର୍ଥୀର **Pañchami** ପର ତିଥି—1. The 5th. day of the lunar fortnight.

[ଦ୍ର—ନିମ୍ନଲିଖିତ ପଞ୍ଚମୀମାନଙ୍କରେ ବ୍ରତ ଓ ଉପବାସାଦି କରାଯାଏ । ଜ୍ୟେଷ୍ଠ ଶୁକ୍ଳପଞ୍ଚମୀ—ମହାଦେବଙ୍କ ବିବାହ । ଶ୍ରାବଣ କୃଷ୍ଣ ପଞ୍ଚମୀ—ନାଗ ପଞ୍ଚମୀ ବା ମନସା ପଞ୍ଚମୀ—ନାଗପୂଜା । ଶ୍ରାବଣ ଶୁକ୍ଳ ପଞ୍ଚମୀ—ଜାଗରଦ୍‌ଗୌରୀ ପଞ୍ଚମୀ, ଗ୍ରାମଦେବତା ପୂଜା । ଭାଦ୍ର କୃଷ୍ଣ ପଞ୍ଚମୀ—ରକ୍ଷା ପଞ୍ଚମୀ ବା ରେଖା ପଞ୍ଚମୀ, କବାଟରେ ଚିତ୍ରିତ ଘଣ୍ଟାକର୍ଣ୍ଣ ଓ ଭୈରବପୂଜା, ଜଗନ୍ନାଥଙ୍କର ରେଖା ଲାଗି । ଭାଦ୍ର ଶୁକ୍ଳ ପଞ୍ଚମୀ—ଋଷିପଞ୍ଚମୀ । ଗୁରୁପଞ୍ଚମୀ—ଶୁକ୍ଳପକ୍ଷ ଗୁରୁବାର ଦିନ ପଞ୍ଚମୀ ତିଥି ପଡ଼ିଲେ ଲକ୍ଷ୍ମୀ ପୂଜା । ଆଶ୍ୱିନ କୃଷ୍ଣପଞ୍ଚମୀ—ଅଶ୍ୱପଞ୍ଚମୀ ବା ନାରାଣ ପଞ୍ଚମୀ—ଅଶ୍ୱପୂଜା । ଆଶ୍ୱିନ ଶୁକ୍ଳ ପଞ୍ଚମୀ—ନଡପଞ୍ଚମୀ, ଦୁର୍ଗାପୂଜାରମ୍ଭ (ପଞ୍ଚମୀଠାରୁ ନବମୀ ପର୍ଯ୍ୟନ୍ତ) । ମାଘ ଶୁକ୍ଳ ପଞ୍ଚମୀ—ବସନ୍ତପଞ୍ଚମୀ ବା ଶ୍ରୀପଞ୍ଚମୀ—ସରସ୍ୱତୀ ପୂଜା, ଜଗନ୍ନାଥ ମହାପ୍ରଭୁଙ୍କ ପଞ୍ଚପଲ୍ଲବ ଲାଗି । ]

୨ । ପଞ୍ଚମୀ ବିଭକ୍ତି—2. The ending of the 5th or ablative case of a noun.

୩ । ସଂଗୀତର ରାଗିଣୀବିଶେଷ—3. Name of a musical tune.

୪ । ପଶାର ଛକ—4. corner-spots of a dice-plate.

୫ । ବ୍ରତବିଶେଷ ( ଏହାକୁ ପ୍ରଥମେ ଶ୍ରୀପଞ୍ଚମୀ ଆରମ୍ଭ କରି ୬ ବର୍ଷ ପର୍ଯ୍ୟନ୍ତ ପ୍ରତି ଶୁକ୍ଳ ପଞ୍ଚମୀରେ କରିବାକୁ ହୁଏ)—5. A ceremony observed on every 5th day of the bright fortnight of every month for 6 years beginning from śripañchami.

୬ । ଦ୍ରୌପଦୀ (ହି. ଶବ୍ଦସାଗର)—6 A name of Draupadi (M. W. ).

୭ । (ତାନ୍ତ୍ରିକ ପଞ୍ଚମକାରର ପଞ୍ଚମ ତତ୍ତ୍ୱ)—ମୈଥୁନ—7. Copulation (as the 5th tantrik tatwa) (M. W.)

୮ । ଏକ ପୁରୁଷର ଦୈର୍ଘ୍ୟର ଏକ ପଞ୍ଚମାଂଶପରିମିତ ଇଷ୍ଟକ (ଏହା ଯଜ୍ଞବେଦୀର ନିର୍ମାଣରେ ବ୍ୟବହୃତ ହେଉଥିଲା.—8. A brick having the length of $\frac{1}{5}$ of a man's height (used in the construction of sacrificial altar) (M. W.)

୯ । ପଶାପାଲି—10. A chequered board for playging at draugts (M. W.)

**ପଞ୍ଚମୀ ତିଥି**—ସଂ. ବି. ସ୍ତ୍ରୀ—ଶୁକ୍ଳ ବା କୃଷ୍ଣପକ୍ଷର ୫ମ ଦିନ—**Pañchami tithi** The 5th day of lunar fortnight.

**ପଞ୍ଚମୀ ବିଭକ୍ତି**—ସଂ. ବି. ସ୍ତ୍ରୀ.—(ବ୍ୟାକରଣ) ବିଶେଷ୍ୟର ଅପାଦାନ **Pañchami bibhakti** ବିଭକ୍ତି (ଏହାର ଚିହ୍ନ 'ରୁ', 'ଠାରୁ')—The ending of the 5th or ablative case of a noun

**ପଞ୍ଚ ମୁଖ**—ସଂ. ବିଣ. ପୁଂ. (ବହୁବ୍ରୀହି; ପଞ୍ଚ+ମୁଖ)—ପାଞ୍ଚଗୋଟି ମୁଖ **Pañcha mukha** (ପଞ୍ଚମୁଖୀ) ବିଶିଷ୍ଟ—Five-faced.

ସଂ. ବି.—୧ । ପଞ୍ଚାନନ, ମହାଦେବ, ଶିବ—1 Siba.

[ଦ୍ର—ଏହାଙ୍କର ୪ ଦିଗରୁ ୪ ମୁହଁ ଓ ଆକାଶ ଆଡ଼କୁ ଏକ ମୁହଁ ଥାଏ ।]

୨ । ପଞ୍ଚାସ୍ୟ, ସିଂହ (ହି. ଶବ୍ଦସାଗର)— 2. The lion (M. W.)

୩ । ପାଞ୍ଚଟି ମୁନ ଥିବା ଶର— 3. An arrow with 5 points (M. W.)

୪ । ପାଞ୍ଚ ରେଖାବିଶିଷ୍ଟ ରୁଦ୍ରାକ୍ଷ ମାଳ (ହି ଶବ୍ଦସାଗର)— 4. A rudrāksha seed with five lines on it.

ଦେ. ବି —ପାଞ୍ଚଜଣଙ୍କ ମୁହଁ ବା କଥା, ଏକାଧିକ ବ୍ୟକ୍ତିଙ୍କ ମୁଖନିଃସୃତ ବାକ୍ୟ—Words uttered by five i.e. many persons.

ପଞ୍ଚମୁଖେ ପରମେଶ୍ୱର । ଢଗ ।

**ପଞ୍ଚମୁଖୀ**—ସଂ. ବି. (ପଞ୍ଚମୁଖ+ସ୍ତ୍ରୀ. ଈ) —୧ । (ଏହାର ୫ ଟି ପାଖୁଡ଼ା ଥିବାରୁ )—ସାଧାରଣ ଗେଣ୍ଡୁ କୁସୁମ ଫୁଲ— Pañcha mukhī
ପଞ୍ଚମୁଖୀ Gendarusa vulgaris (M. W.)
(ପଞ୍ଚମୁଖା—ଅନ୍ୟରୂପ) ୨ । ଜବା, ମନ୍ଦାରଫୁଲ— 2. China rose.

ଦେ. ବି—୧ । ପାଞ୍ଚଗୋଟି ଥଳିଯୁକ୍ତ ପୂଜା କୋଥଳି— 1. A bag of cloth with 5 pockets used in storing the ingredients of pūjā.

୨ । ପଞ୍ଚମୁଖୀ ମନ୍ଦାର (ଦେଖ) 2. Pañcha mukhī mandāra (See)

୩ । ବାସଙ୍ଗ (ହି. ଶ.) (ଦେଖ)—3. Bāsañga.

୪ । ପାର୍ବତୀ (ହି ଶ )—4. Pārbatī.

୫ । ସିଂହୀ (ହି. ଶ ) —5. A lioness.

ସଂ. ବିଣ. ସ୍ତ୍ରୀ ପଞ୍ଚମୁଖର ସ୍ତ୍ରୀଲିଙ୍ଗ— Feminine of pañchamukha.

**ପଞ୍ଚମୁଖୀ ମନ୍ଦାର**—ସଂ. ବି (ସଂ. ପଞ୍ଚମୁଖୀ ଓ. ମନ୍ଦାର)—ଏକ ପରସ୍ତିଆ ନାଲି ମନ୍ଦାର ଫୁଲ —A kind of single petalled china rose. Pañchamukhī mandāra
(ପଞ୍ଚମୁଖୀ ଜବା—ଅନ୍ୟରୂପ)

[ଦ୍ର—ଏହାର ପାଞ୍ଚଟି ପାଖୁଡ଼ା; ଏଥିରୁ ଯେଉଁ ଗର୍ଭକାଣ୍ଡ ବାହାର ଥାଏ ତାହାର ଅଗ୍ରଭାଗରେ ପାଞ୍ଚଟି ଶାଖା ଥାଏ ।]

**ପଞ୍ଚମୁଣ୍ଡୀ**—ସଂ. ବି (ପଞ୍ଚମୁଣ୍ଡ+ସମାହାରାର୍ଥରେ. ଈ)—ତନ୍ତ୍ରମତରେ ପାଞ୍ଚଟି ମୁଣ୍ଡ (ଦୁଇଟି ଚଣ୍ଡାଳର+ଏକ ଶୃଗାଳର+ଏକ ବାନରର+ଏକ ସର୍ପର) ଉପରେ ଆସନ ପ୍ରସ୍ତୁତ କରି ଯୋଗସାଧନ—A kind of performing joga while sitting on a seat supported by 5 heads or skulls of dead persons and animals. Pañchamuṇḍī

[ଦ୍ର—ତନ୍ତ୍ରଶାସ୍ତ୍ରମତରେ ଏହା ଏକ ବିଶିଷ୍ଟ ଯୋଗସାଧନ ।]

**ପଞ୍ଚମୁଦ୍ରା**—ସଂ. ବି (ଦ୍ୱିଗୁ, ପଞ୍ଚ+ମୁଦ୍ରା)—ତନ୍ତ୍ରୋକ୍ତ ପାଞ୍ଚପ୍ରକାର ଅଙ୍ଗୁଳିବିନ୍ୟାସ—(ଯଥା—ଆବାହନୀ, ସ୍ଥାପନୀ, ସନ୍ନିଧାପନୀ, ସମ୍ବୋଧନୀ ଓ ସମ୍ମୁଖୀକରଣୀ )—Five poses of the fingers or gestures exhibited during worship of a Deity Pacñha mudrā

**ପଞ୍ଚ ମୁଷ୍ଟିକ**—ସଂ. ବି—ବୈଦ୍ୟକ ମତରେ ସନ୍ନିପାତ ରୋଗପାଇଁ ବ୍ୟବହୃତ ପାଞ୍ଚଟି ପଦାର୍ଥ ଏକମୁଠା ଲେଖାଏଁ ଏକତ୍ର ସିଝିଥିବା ପାଚନ (ଯଥା—ଯଅ, ବରକୋଳି, କୋଳଥ, ମୁଗ, ଓ ଅଁଳା କୋଳି)—A decoction made of one handful of each of 5 particular ingredients used as antedote for collapse. Pañcha mushṭika

**ପଞ୍ଚ ମୂତ୍ର**—ସଂ. ବି (ପଞ୍ଚ+ମୂତ୍ର)—ଔଷଧାର୍ଥେ ବ୍ୟବହୃତ ପାଞ୍ଚ ପ୍ରକାର ସ୍ତ୍ରୀ ପଶୁ ( ଗୋରୁ, ମେଷ, ମହିଷ, ଗଧ ଓ ଛାଗଳ)ଙ୍କ ମୂତ୍ର—The urines of 5 female animals (cow, sheep, buffalo, ass and goat) used as medicine. Pañcha mūtra

**ପଞ୍ଚମୂଳ**—ସଂ. ବି—୧ । (ବହୁବ୍ରୀହି; ପଞ୍ଚ +ମୂଳ) ବୈଦ୍ୟଶାସ୍ତ୍ରମତେ ପାଞ୍ଚ ପ୍ରକାର ବଉଦ୍ଧ ଗଛର ମୂଳଦ୍ୱାରା ପ୍ରସ୍ତୁତ ପାଚନବିଶେଷ—1. A decoction made up of 5 roots. Pañcha mūla

୨ । (ସମାହାର ଦ୍ୱିଗୁ) (ବୈଦ୍ୟଶାସ୍ତ୍ର) ପାଞ୍ଚ ଗୋଟି ବଣିଷ୍ଟ ମୂଳର ସମଷ୍ଟି—2. A collection of 5 kinds of roots for medicinal purposes.

[ ଦ୍ର—ଆୟୁର୍ବେଦରେ ୯ ପ୍ରକାର ପଞ୍ଚମୂଳ ବର୍ଣ୍ଣିତ ଅଛି— ୧ । ସ୍ୱଳ୍ପ ପଞ୍ଚମୂଳ ବା ସାନ ପଞ୍ଚମୂଳ—ଶାଳପର୍ଣ୍ଣୀ, କୃଷ୍ଣପର୍ଣ୍ଣୀ, ଲଟାବେଁକୋଳି, ଅଙ୍କରାନ୍ତି ଓ ଗୋଖରା ମୂଳ—୨ । ବୃହତ୍ ପଞ୍ଚମୂଳ—ବେଲ, ପାଟେଲି, ଗମ୍ଭାରି, ଫଣଫଣା ଓ ଅଗବଥୁ ମୂଳ—୩ । ତୃଣ ପଞ୍ଚମୂଳ—କୁଶ, କାଶ, ଶର, ଆଖୁ ଓ ଶାଳିଧାନ ମୂଳ —୪ । ଶତାବର୍ଯ୍ୟାଦି ପଞ୍ଚମୂଳ—ଛତୋଶିରି, ଭୁଇଁକଖାରୁ, ଜୀବନ୍ତୀ, କ୍ଷୀରକାକୋଲି ଓ ଜୀବକ ବୃକ୍ଷର ମୂଳ—୫ । ଜୀବକାଦି ପଞ୍ଚମୂଳ—ଜୀବକ, ମେଦା, ମହାମେଦା, ଋଷଭକ ଓ ଜୀବନ୍ତୀମୂଳ— ୬ । ବଲାଦି ପଞ୍ଚମୂଳ – ବାଡ଼ି ଅଁଳା, ପୁରୁଣୀ, ଗବ, ମୁଗପର୍ଣ୍ଣୀ ବା ମୁଦ୍ଗପର୍ଣ୍ଣୀ ଓ ମାଷପର୍ଣ୍ଣୀ ମୂଳ - ୭ । ଗୋକ୍ଷୁରାଦି ପଞ୍ଚମୂଳ—ଗୋଖରା, ଶୋଷ୍ଠାଲୁଳ, ମହାକାଳ, ସୋରିଷ ଓ ଶୁକ୍ଲୁଣ୍ଡୀମୂଳ—୮ । ଗୁଡୁଚ୍ୟାଦି ବା ବଲ୍ଲୀ ପଞ୍ଚମୂଳ—ଗୁଳୁଚ, ମେଣ୍ଢାଶୃଙ୍ଗୀ, ଚେମେଣ୍ଡିଲଇମୂଳ, ଭୁଇଁକଖାରୁ ଓ ହଳଦୀମୂଳ—୯ । କଣ୍ଟକ ପଞ୍ଚମୂଳ—କରଞ୍ଜ, ଗୋଖରା, ଶତମୂଳୀ ବ୍ରାହ୍ମଣଷ୍ଟାଟିଆ ଓ କଣ୍ଟାଲେଉଟିଆ ମୂଳ ।

**ପଞ୍ଚ ମୂଳୀ**—ସଂ. ବି—୧ । ପଞ୍ଚମୂଳ ୨ (ଦେଖ)— Pañcha mūlī 1. Pañchamūla 2 (See)

୨ । ସ୍ୱଳ୍ପ ପଞ୍ଚମୂଳ ବା ଲଘୁ ପଞ୍ଚମୂଳ (ଶାଳପର୍ଣ୍ଣୀ, କୃଷ୍ଣପର୍ଣ୍ଣୀ, ଲଟାବେଁକୋଳି, ଅଙ୍କରାନ୍ତି ଓ ଗୋଖରା ମୂଳ— 2. An aggregate or decoction of 5 herbs.

**ପଞ୍ଚ ଯଜ୍ଞ**—ସଂ. ବି—ପଞ୍ଚ ମହାଯଜ୍ଞ (ଦେଖ) Pañcha jajña Pañcha mahājajña (See)

**ପଞ୍ଚ ଯାମ**—ସଂ. ବି. (ବହୁବ୍ରୀହି, ପାଞ୍ଚ+ଯାମ; ଯହିଁରେ ୫ଟି ଯାମ ବା ପ୍ରହର ଅଛି; ରାତ୍ରର ପ୍ରଥମ ୪ ଦଣ୍ଡ ଓ ଶେଷ ୪ ଦଣ୍ଡକୁ ଦିନ ମଧ୍ୟରେ ଗଣାଯାଏ)—ଦିନ; ଦିବସ— Day Pañcha jāma

ପଞ୍ଚ ରଙ୍ଗ—ଦେ. ବି. (ସଂ. ପଞ୍ଚ ଓ ରଙ୍ଗ)—୧ । ଏକପ୍ରକାର ସତରଞ୍ଚ
Pañcha ranga ଖେଳ—1. A kind of game at chess
পঞ্চরংগ [ ଦ୍ର—ଏଥିରେ ରାଜା କ୍ରମଶଃ ହସ୍ତୀ, ପଦାତି, ଦାବା, ଅଶ୍ୱ
पञ्चरंग ଓ ନୌକା ଏହି ୫ ବଳର ୫ କସ୍ତିରେ ମାତ୍ ହୋଇ-
ଯାଏ । ]
୨ । ରଙ୍ଗରସ, ରହସ୍ୟ, ତାମସା—2 Sports.
୩ । ପାଞ୍ଚପ୍ରକାର ବର୍ଣ୍ଣ—3 Five colours

ପଞ୍ଚ(ଞ୍ଚୁ)ରଙ୍ଗା(ଙ୍ଗୀ)—ଦେ ବିଣ. (ସଂ ପଞ୍ଚ ଓ ରଙ୍ଗ)—ବିବିଧବର୍ଣ୍ଣରଞ୍ଜିତ—
Pañcha(ñchu)rañgā(ṅgī) Multicoloured.
পাঁচরংগী पंचरंगा [ପଞ୍ଚ(ଞ୍ଚୁ)ରଙ୍ଗିଆ—ଅନ୍ୟରୂପ]

ପଞ୍ଚ ରତ୍ନ—ସଂ. ବି—୫ ପ୍ରକାର ଉତ୍କୃଷ୍ଟ ମଣି, (ଯଥା— ହୀରା, ନୀଳା, ମୋତି
Pañcha ratna ମାଣିକ ଓ ପୋହଳା)—The five gems
(viz. diamond, sapphire, ruby, pearl and coral).

ପଞ୍ଚ ରସା—ସ ବି. (ପଞ୍ଚ+ରସ+ଆ)—ଅଁଳା (ହି. ଶ)—
Pañcha rasā Embellic Myrobalan.

ପଞ୍ଚ ରାତ୍ର—ସଂ. ବି—୧ । ୫ ଦିନ ଓ ୫ ରାତ୍ରି-ବ୍ୟାପୀ ହରିକୀର୍ତ୍ତନ—
Pañcha rātra 1. The chanting of hymns for 5 days and nights continually
୨ । ପାଞ୍ଚପ୍ରକାର ଜ୍ଞାନ-ଉପଦେଶକ ବେଦାନ୍ତ ଗ୍ରନ୍ଥ—
2. A treatise on Vedānta.
[ ଦ୍ର—ଏଥିମଧ୍ୟରେ ନାରଦ, ବ୍ରାହ୍ମ, ଗୌତମ, ବାଶିଷ୍ଠ, ଶୈବ, କୌମାର ଓ କାପିଳ ଏହି ୭ଟି ପଞ୍ଚରାତ୍ର ଗ୍ରନ୍ଥମାନ ପ୍ରସିଦ୍ଧ । ]
୩ । ପାଞ୍ଚ ଦିନ ଓ ପାଞ୍ଚ ରାତ୍ରିବ୍ୟାପୀ ସମୟ—
3. A period of 5 successive days and nights.
୪ । ପାଞ୍ଚ ଦିନରେ ସମ୍ପାଦନୀୟ ଯଜ୍ଞବିଶେଷ—
4. A vedic sacrifice performable in 5 days.
ଦେ ବି—ଦିବାରାତ୍ରିବ୍ୟାପୀ କିଛି ସମୟ—
A continuous period of time.
(ଯଥା—ମୁଁ ତ ତାଙ୍କ ସଙ୍ଗେ ପଞ୍ଚରାତ୍ର ଚଳିଛି, ମୁଁ ତାଙ୍କ ପ୍ରକୃତି ଉତ୍ତମରୂପେ ଜାଣିଛି ।)

ପଞ୍ଚ ରାଶିକ—ସ.ବି. (ପଞ୍ଚ+ରାଶି+କ)—ଗଣିତରେ ୪ ରାଶି ଦତ୍ତ ଥିଲେ
Pañcha rāśika ଅଜ୍ଞାତ ପଞ୍ଚମ ରାଶି ବାହାର କରିବାର ପ୍ରଣାଳୀ—
(mathematics) The method by which an unknown number is found when 4 numbers are given; the mathematical Rule of Five.

ପଞ୍ଚଳ—ସ ବି—ଶକରକନ୍ଦ (ଦେଖ)
Pañchaḷa Śakarakanda (See)

ପଞ୍ଚ ଲବଣ—ସ. ବି. (ବୈଦ୍ୟକ) (ସମାହାର ଦ୍ୱିଗୁ; ପଞ୍ଚ+ଲବଣ—
Pañcha labaṇa ୫ ପ୍ରକାର ଲୁଣ (ଯଥା—ସୈନ୍ଧବ, ସୌବର୍ଚ୍ଚଲ, ବିଟ, ଖଡ଼ୀ ବା ଔଦ୍ଭିଦ ଓ ସାମୁଦ୍ର—The five salts.

ପଞ୍ଚ ଲୁଣ—ଦେ. ବି—ପଞ୍ଚଲବଣ (ଦେଖ)
Pañcha luṇa Pañchalabaṇa (See)

ଲୋକପାଳ—ସ. ବି. (ଦ୍ୱିଗୁ, ପଞ୍ଚ+ଲୋକପାଳ)—ଗଣେଶ, ଦୁର୍ଗା
Pañcha lokapāla ବାୟୁ, ଆକାଶ ଓ ଅଶ୍ୱିନୀକୁମାରଦ୍ୱୟ—
Five protectors of the creation according to the Hindus

ପଞ୍ଚ ଲୋହି—ଦେ ବି. (ସ. ପଞ୍ଚଲୌହ)—ପଞ୍ଚଲୌହ (ଦେଖ)
Pañcha lohi Pañchalauha (See)
ଦେ. ବିଣ—ପଞ୍ଚଲୌହ ମିଶାଯାଇ ପ୍ରସ୍ତୁତ (ଡେଇଁରିଆ)—
Made of five metals.

ପଞ୍ଚ ଲୌହ—ସ. ବି—୧ । ୫ ପ୍ରକାର ଧାତୁ (ଯଥା— ସୁନା,ରୁପା, ତମ୍ବା,
Pañcha lauha ରଙ୍ଗ ଓ ସୀସା)—1. The 5 metals
(ପଞ୍ଚଲୋହ; ପଞ୍ଚଲୋହକ—ଅନ୍ୟରୂପ) gold, silver, copper, tin and lead
୨ । ପଞ୍ଚପ୍ରକାର ଲୁହା (ଯଥା— ବଜ୍ରଲୌହ, କାନ୍ତଲୌହ, ପିଣ୍ଡଲୌହ, କ୍ରୌଂଚଲୌହ ଓ ସାଧାରଣ ଲୌହ)—
2. Five kinds of iron.

ପଞ୍ଚଶବ୍ଦ—ସ. ବି —୧ । ମଙ୍ଗଳ କାର୍ଯ୍ୟରେ ବାଦିତ ୫ ପ୍ରକାର ବାଦ୍ୟର
Pañcha śabda ଶବ୍ଦ (ଯଥା—ତନ୍ତ୍ରୀ, ତାଳ, ଝାଂଜ, ନାଗରା ଓ ତୁରୀ)—1. The sounds of 5 musical instruments sounded on festive occasions.
୨ । (ବ୍ୟାକରଣ) ସୂତ୍ର, ବାର୍ତ୍ତିକ, ଭାଷ୍ୟ, କୋଷ ଓ ମହାକବି ପ୍ରୟୋଗ ନାମକ ପାଞ୍ଚପ୍ରକାର ଶବ୍ଦ—2. (grammar)The classification of words into 5 classes.
୩ । ବେଦଧ୍ୱନି, ବନ୍ଦୀଧ୍ୱନି, ଜୟଧ୍ୱନି, ଶଂଖଧ୍ୱନି ଓ ବାଦ୍ୟଧ୍ୱନି—
3 Five kinds of sounds produced by men

ପଞ୍ଚ ଶର—ସ. ବି—ପଞ୍ଚବାଣ (ଦେଖ)
Pañcha śara Pañchabāṇa (See)

ପଞ୍ଚ ଶସ୍ୟ—ସଂ. ବି—୫ପ୍ରକାର ଶସ୍ୟ (ଯଥା ଧାନ, ବିରି, ଯବ, ରାଶି ବା
Pañcha śasya ଶ୍ୱେତସର୍ଷପ ଓ ମୁଗ)—The 5 grains (viz. paddy, biri, barey, linseed or white mustard and mung.

ପଞ୍ଚ ଶାଖ—ସଂ. ବିଣ (ବହୁବ୍ରୀହି, ପଞ୍ଚ+ଶାଖା)—ପଞ୍ଚଶାଖାବିଶିଷ୍ଟ—
Pañcha śākha Having 5 branches; five-branched.
(ପଞ୍ଚଶାଖା—ସ୍ତ୍ରୀ) ସଂ. ବି—୧ । (୫ଟି ଅଙ୍ଗୁଠି ଥିବାରୁ) କର, ହସ୍ତ—
Hand.
୨ । ପାଞ୍ଚଶାଖାଯୁକ୍ତ ମସାଲ (ହି. ଶ.)—
2. A torch with 5 prongs.

ପଞ୍ଚ ଶାଖା—ସଂ. ବି—ପଞ୍ଚଶାଖାଯୁକ୍ତ ମସାଲ (ହି. ଶ.)—
Pañcha śākhā A torch with five prongs.

ପଞ୍ଚ ଶାସନ—ଦେ. ବି—ପଞ୍ଚାଏତ— Pañchayet; a board of
Pañcha śāsana arbitrators.
ଅଦାଲତ ଅଦାଲତ ହୁଅଉ ମେଳ
ପଞ୍ଚଶାସନ କବ ମାନୁଛ । ଫକୀରମୋହନ- ଛମାଣଅଠଗୁଣ୍ଠ ।

ପଞ୍ଚ ଶିଖ—ସଂ. ବିଣ. ପୁଂ. (ବହୁବ୍ରୀହି; ପଞ୍ଚ+ଶିଖା) — ପଞ୍ଚଚୂଡ଼, ଯାହାର
Pañcha śikha ୫ ଗୋଟି ଚୂଡ଼ା ବା ଅଗ୍ରଭାଗ ଅଛି—
Having five tufts.
ସଂ. ବି—୧ । ସିଂହ—1. Lion.

୨ । ଧର୍ମଙ୍କ ଔରସରେ ହଂସାର ଗର୍ଭସଂଭୂତ ମୁନିବିଶେଷ— 2. Name of a sage.
୩ । ଶିଂଘା ବାଜା (ହି. ଶ.)—3 Horn blown as a musical instrument.
୪ । ମହର୍ଷି କପିଳଙ୍କ ପୁତ୍ର ଓ ସାଂଖ୍ୟଦର୍ଶନର ଜଣେ ପ୍ରଧାନ ଆଚାର୍ଯ୍ୟ (ହି. ଶ)—4. Name of a son of sage Kapila and a great philosopher

**ପଞ୍ଚ ଶିଖୀ**—ସଂ ବିଣ (ପଞ୍ଚନ୍+ଶିଖା+ଇନ୍)—ପଞ୍ଚଶିଖ— Pañcha sikhi Having five tufts.

**ପଞ୍ଚଶୀର୍ଷ**—ସଂ. ବିଣ (ବହୁବ୍ରୀହି, ପଞ୍ଚ+ଶୀର୍ଷ)—ପାଞ୍ଚ ମୁଣ୍ଡିଆ— Pañcha sirsha Five headed
ସଂ. ବି—ମହାଦେବ—Siba.

**ପଞ୍ଚ ଷଠି**—ଦେ. ବି ଓ ବିଣ (ସଙ୍ଖ୍ୟାବାଚକ)—ପଞ୍ଚଷଷ୍ଟି (ଦେଖ) Pañcha shathi Pañcha shashti (See)
पचँसठी पैंसठ (ପଅଁଷଠି—ଅନ୍ୟରୂପ)
(ପଞ୍ଚଷଠାଶଏ(ହେ)=ଏକଶତ ପଞ୍ଚଷଠି=One hundred and sixty five.

**ପଞ୍ଚଷଷ୍ଟ**—ସଂ.ବିଣ (ପଞ୍ଚଷଷ୍ଟି+ପୂରଣାର୍ଥେ ଅ)—ପଞ୍ଚଷଷ୍ଟି ସଙ୍ଖ୍ୟାର ପୂରକ— Pañcha shashta Sixty fifth

**ପଞ୍ଚଷଷ୍ଟି**—ସଂ. ବି. ଓ ବିଣ (ସଂଖ୍ୟାବାଚକ, ପଞ୍ଚ ଅଧିକ ଷଷ୍ଟି)—ପଅଁଷଠି, Pañcha sha° ଷାଠିଏରୁ ୫ ଅଧିକ—Sixty five.

**ପଞ୍ଚସୁରୀ**—ଦେ ବି ଓ ବିଣ—(ସଂଖ୍ୟାବାଚକ ପଞ୍ଚସପ୍ତତି) ପଞ୍ଚସ୍ତରୀ (ଦେଖ) Pañchasturi Pañchastari (See)

**ପଞ୍ଚସପ୍ତତ**—ସଂ. ବିଣ. (ପଞ୍ଚସପ୍ତତି+ପୂରଣାର୍ଥେ. ଅ)—ପଞ୍ଚସପ୍ତତି ସ୍ଥାନୀୟ- Pañcha saptata Seventy fifth.

**ପଞ୍ଚସପ୍ତତି**—ସଂ. ବି. ଓ ବିଣ.—(ସଂଖ୍ୟାବାଚକ, ପଞ୍ଚ ଅଧିକ ସପ୍ତତି)— Pañcha saptati ପଞ୍ଚସ୍ତୁରୀ; ସତୁରି ଅପେକ୍ଷା ପାଞ୍ଚ ଅଧିକ ସଂଖ୍ୟା ୭୫—Seventy five; 75.

**ପଞ୍ଚସିଦ୍ଧାନ୍ତିକା**—ସଂ ବି—ଶକ ୫ମ ଶତାବ୍ଦୀର ମଧ୍ୟଭାଗରେ ବରାହ-ମିହିର ବ୍ରାହ୍ମ, ବାଶିଷ୍ଠ, 'ରୋମକ, ପୌଲିଶ ଓ ସୌର ଏହି ପୁରାତନ ପଞ୍ଚସିଦ୍ଧାନ୍ତ ଅବଲମ୍ବନରେ ଯେଉଁ ଜ୍ୟୋତିଷ-କରଣ ଗ୍ରନ୍ଥ ରଚନା କରିଥିଲେ— Pañcha siddhāntikā The title of a Sanskrit astronomical treatise compiled by Barāhamihira and based on the conclusions of five ancient Indian and foreign astronomical systems in the 5th century of Saka era.

**ପଞ୍ଚ ସୁଗନ୍ଧକ**—ସଂ. ବି (ଦ୍ୱିଗୁ; ପଞ୍ଚ+ସୁଗନ୍ଧକ) ପାଞ୍ଚ ଗୋଟି ସୁଗନ୍ଧଦ୍ରବ୍ୟ Pañcha sugandhika (ଯଥା—କର୍ପୂର, କଙ୍କୋଲ ବା ଶୀତଲ ପଞ୍ଚସୁଗନ୍ଧକ—ଅନ୍ୟରୂପ) ଚନ୍ଦନ, ଲବଙ୍ଗ, ଗୁଆ ଓ ଜାଇଫଳ; ମତାନ୍ତରରେ ଲବଙ୍ଗ, ଶୀତଲ ଚନ୍ଦନ, ଅଗର ଚନ୍ଦନ, ଜାଇଫଳ ଓ କର୍ପୂର)—Five scented things.

**ପଞ୍ଚ ସୂନା**—ସଂ. ବି. (ଗୃହସ୍ଥର ନିତ୍ୟ କର୍ତ୍ତବ୍ୟ ଗୃହକାର୍ଯ୍ୟ କରିଯିବା Pañcha sūnā ଉପଲକ୍ଷରେ ପାଞ୍ଚଟି ଦ୍ରବ୍ୟ ବ୍ୟବହାର କରିବା-ବେଳେ (ଅର୍ଥାତ୍ ୧ ଚୁଲ୍ଲୀ ଜାଳିବା, ୨. ଚକି ପେଷିବା ବା ବାଟିବା, ୩ ଘର ଓଳାଇବା, ୪. ଢିଙ୍କି କୁଟିବା ଓ ୫. ପାଣି ମାଠିଆ ବ୍ୟବହାର କରିବାରେ) ଗୃହସ୍ଥ ଅଜ୍ଞାତରୂପେ ଯେଉଁ ଜୀବହିଂସା କରେ (ପଞ୍ଚ ମହାଯଜ୍ଞ ତଳେ ନୋଟ ଦେଖ)— The unintentional injury to animals which a person commits daily while performing his domestic dutes (viz 1. lighting the oven 2. grinding & pestling, 3 sweeping the floors 4 husking corn etc. 5. Using the water jar)
[ଦ୍ର—ଏ ପଞ୍ଚସୂନାଜନିତ ପାପରୁ ମୁକ୍ତ ହେବା ପାଇଁ ପଞ୍ଚ ମହାଯଜ୍ଞ କରିବାଏ ।]

**ପଞ୍ଚସ୍ତରୀ**—ଦେ ବି ଓ ବିଣ (ସଙ୍ଖ୍ୟାବାଚକ, ସଂ ପଞ୍ଚସପ୍ତତି, ପ୍ରା ପଚହତର Pañchastari ୭୫, ସତୁରିରୁ ୫ ଅଧିକ—75, seventy five.
पंचहत्तर पचहत्तर
(ପଞ୍ଚ ସତୁରି, ପଞ୍ଚସ୍ତୁରି, ପଞ୍ଚସ୍ତୋରି—ଅନ୍ୟରୂପ)

**ପଞ୍ଚ ସ୍ନେହ**—ସଂ. ବି—ପାଞ୍ଚପ୍ରକାର ଚିକ୍କଣଦ୍ରବ୍ୟ (ଯଥା—ଘିଅ, ତେଲ, Pañcha sneha ଚର୍ବି, ମଜ୍ଜା ଓ ମହମ)—Five kinds of oily things (viz. ghee, oil, fat, marrow and wax.

**ପଞ୍ଚ ସ୍ୱର**—ସଂ. ବିଣ (ବହୁବ୍ରୀହି, ପଞ୍ଚ+ସ୍ୱର୍+ଆ)—ପଞ୍ଚସ୍ୱରଯୁକ୍ତ Pañch swara (ରାଗିଣୀ)—(a melody) With 5 tunes.
ସଂ. ବି—ଫଳିତ ଜ୍ୟୋତିଷ ଗ୍ରନ୍ଥବିଶେଷ—Name of a work on astrology

**ପଞ୍ଚ ସ୍ୱରୋଦୟ**—ସଂ. ବି—ଅ, ଇ, ଉ, ଏ, ଓ ଏହି ୫ଟି ସ୍ୱରଘଟିତ Pañcha swarodaya ଗଣନାଧିକୃତନିର୍ଣ୍ଣୟାତ୍ମକ ଜ୍ୟୋତିଷ ଗ୍ରନ୍ଥ-ବିଶେଷ—Name of a treatise on astrology.

**ପଞ୍ଚସ୍ୱେଦ**—ସଂ ବି—ହିନ୍ଦୁବୈଦ୍ୟଶାସ୍ତ୍ର ମତରେ ପାଞ୍ଚ ପ୍ରକାରର ସେକ Pañchasweda (ଯଥା—ଲୋଷ୍ଟ୍ରସ୍ୱେଦ, ବାଲୁକା ସ୍ୱେଦ, ବାଷ୍ପ ସ୍ୱେଦ, ଘଟସ୍ୱେଦ ଓ ଜ୍ୱାଳାସ୍ୱେଦ)—Five kinds of heating operations prescribed in the Hindu medical treatises.

**ପଞ୍ଚ ହତା**—ଦେ ବିଣ (ସଂ ପଞ୍ଚହସ୍ତ)—୧ । ପାଞ୍ଚହାତ ଉଚ୍ଚ— Pañcha hatā 1. Five cubits high.
पाँचहात लम्बा ୨ । ଖୁବ୍ ଲମ୍ବ; ଅତି ଢେଙ୍ଗା—2. Very tall.
पचहत्ता ପଞ୍ଚହତା ମର୍ଦ୍ଦ, ଗାଲ ଓଠ ଝଡରେ ଉଡିଯାଇଛି— ଫକୀରମୋହନ ଗଳ୍ପସ୍ୱଳ୍ପ ।

**ପଞ୍ଚା**—ଦେ. ବିଣ (ସଂ. ପଞ୍ଚନ୍)—'ପାଞ୍ଚ' ସଙ୍ଖ୍ୟା ଦ୍ୱାରା ଗୁଣିତ— Pañchā Multiplied by 5.
पाँचे पाँचे ଚାର ପଞ୍ଚା ଚଉଡ଼ିଏ—ପଣକଥା ।
पंजा ଦେ. ବି—୧ । ପାଞ୍ଚଟିପ ଯୁକ୍ତ ତାସ୍—
पंजा 1 A card with 5 points.
୨ । ପଶାଖେଳରେ ୫ ସଙ୍ଖ୍ୟକ ସାର୍—2. A throw of dice resulting in 5 points.
विचार ୩ । ବିଚାର, ପାଞ୍ଚ—
बजार 3. Consultation; adjudication.

ବଧିରେ ପଲଣ ରୂଧିର ସଙ୍ଗା, ଲକଶିଲ ପୃଷ୍ଠ ପରସ୍ପେ ପଞ୍ଚା— ଭଞ୍ଜ, ବୈଦେହୀଶବିଳାଶ ।

ଚାନ୍ଦା ୪ । ଗ୍ରାମର ପାଞ୍ଚଜଣ ବା ସମସ୍ତଙ୍କଠାରୁ ସାଧାରଣ କାର୍ଯ୍ୟ
**चंदा** ନିମନ୍ତେ ଆଦାୟ କରାଯିବା ଭେଦା, ଗୂନ୍ଦା— 4 Subscription raised from villagers for a common purpose.

ବାହିବେବ କୁଠବୀ ୫ । ଗୃହର ଚାଳକୁ ବଢ଼ାଇ ପିଣ୍ଡାରେ କରାଯାଇଥିବା
**पौली** କୋଠରୀ— 5. A room made in the veranda by elongating the thatch, out room.

**दुबधा** ୬ । ସନ୍ଦେହ—6. Doubt.

ଏହି ସକାଶରୁ ବାଡରେ ବସା ସଙ୍ଗା
କରୁଅ ତାଙ୍କ ପାଇଁ ନ କର କଛ ପଞ୍ଚା—କୃଷ୍ଣସିଂହ. ମହାଭାରତ ଉଦ୍ଯୋଗ

**ପଞ୍ଚାଅଶି**—ଦେ. ବି. ଓ ବିଣ ( ସଂଖ୍ୟାବାଚକ, ସଂ. ପଞ୍ଚାଶୀତି; ପ୍ରା. ପଞ୍ଚାସାଇ,
Pañchāasi ପଚାସୀ )—୮୫, ଅଶିରୁ ୫ ଅଧିକ—Eighty
ପଚାଁଶୀ **पचासी** (ପଞ୍ଚାଶି—ଅନ୍ୟରୂପ) five; 85.
( ଯଥା—ପଞ୍ଚାଅଶିଆଶଏ(ହେ)=ଏକଶହ ପଞ୍ଚାଅଶି=୧୮୫ )

**ପଞ୍ଚା(ଞ୍ଚେ)ଇବା**—ଦେ. କ୍ରି—୧ । ( ପଞ୍ଚିବାର ଣିଜନ୍ତରୂପ ) ଦୋଳରେ
Pañchā(ñche)ibā ବସାଇ ହଲାଇବା—
ଦୋଲାନ **हिलाना** 1. To rock as in a cradle.
(ପଥଞ୍ଚା(ଞ୍ଚେ)ଇବା—ଅନ୍ୟରୂପ) ୨ । ଜାଲବୁଣା ସୂତାକୁ ବଳିବା—
2. To prepare threads for nets by rolling.
୩ । ଜାଲବୁଣା ସୂତାକୁ ବଳିବା ପାଇଁ ଡାକୁଡ଼ିକୁ ଘୁରାଇବା—
3. To roll a spindle in order to prepare threads for nets.
୪ । ପାଞ୍ଚିବାର ଣିଜନ୍ତରୂପ—
4. To cause to think or infer.

**ପଞ୍ଚାଏତ**—ଦେ. ବି. ( ସଂ. ପଞ୍ଚାୟତନ=ପାଞ୍ଚ ଦେବତାଙ୍କ ସମୂହ )—
Pañchāeta ୧ । କୌଣସି ବିବାଦ ଆପୋସିରେ ତୁଟାଇବା ପାଇଁ
ପଞ୍ଚାୟତ ଏକାଧିକ ( ସାଧାରଣତଃ ୫ ବା ଅଯୁଗ୍ମସଂଖ୍ୟକ ) ବ୍ୟକ୍ତିଙ୍କ
**पञ्चायत** ଦଳ—1. A board of arbitrators.
[ ଦ୍ର—ପୂର୍ବକାଳରେ ଭାରତର ଗ୍ରାମପ୍ରାଚୀର ମଧ୍ୟରେ ୫ ଜାତି ( ସଂ. ପଞ୍ଚଜାତି ) ( ଯଥା—ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର ଓ ଶଙ୍କର ) ବାସ କରୁଥିଲେ । ଏ ୫ ଜାତି ମଧ୍ୟରୁ ପ୍ରତିନିଧିରୂପେ ନିର୍ବାଚିତ ୫ ଜଣଙ୍କଦ୍ୱାରା ଗଠିତ ସଭାକୁ ପଞ୍ଚାଏତ ବୋଲାଯାଉଥିଲା । ସେହି ସଭା ଗ୍ରାମର ବିଷୟ ବୁଝାସୁଝା କରୁଥିଲେ । ସେହି ପ୍ରଥାରୁ ସାଧାରଣ ବିବାଦ ମୀମାଂସା ପାଇଁ ଉପଯୁକ୍ତ ନିର୍ବାଚିତ ଏକାଧିକ ବ୍ୟକ୍ତିଙ୍କ କମିଟିକୁ ପଞ୍ଚାଏତ ବୋଲାଯାଏ । Havell's Indian allegory in art ].
୨ । କୌଣସି ବିଷୟର ବିଚାର ନିମନ୍ତେ ନିର୍ବାଚିତ ଏକାଧିକ ଭଲଲୋକଙ୍କ ବୈଠକ—
2. Panchayet; a meeting of arbitrators.
୩ । ଏ ଶବ୍ଦର ଅବଶିଷ୍ଟ ଅର୍ଥ ପାଇଁ ପଞ୍ଚ ଶବ୍ଦର ଅନ୍ୟ ଅର୍ଥମାନ ଦେଖ—3. For the other meanings see under the word Pañcha

**ପଞ୍ଚାଏତଦାର୍**—ଦେ. ବି. ( ପଞ୍ଚାଏତ୍+ଫା. ପ୍ରତ୍ୟୟ ଦାର୍ )—ପଞ୍ଚାଏତର
Pañchāetadār ସଭ୍ୟ—Members of a Pañchāyata.
ପଞ୍ଚାଏତ **पञ्चायतदार**

**ପଞ୍ଚାଏତ ନାମା**—ଦେ. ବି. ( ପଞ୍ଚାଏତ୍+ଫା. ନାମାହ୍ )—ଯେଉଁ
Pañchāeta nāmā ଦଲିଲଦ୍ୱାରା ପକ୍ଷମାନେ କୌଣସି ବିବାଦ ନିଷ୍ପତ୍ତି
ପଞ୍ଚାଏତ ନାମା ନିମିତ୍ତ ପଞ୍ଚାଏତ ମୁକରର କରନ୍ତି—A deed
**पञ्चायतनामा** appointing a board of arbitrators.

**ପଞ୍ଚାଏତ(ତି) ଫଇସଲ**—ଦେ. ବି—୧ । ପଞ୍ଚାଏତଙ୍କ ମୀମାଂସା—
Pañchāeta(ti) phaisalā 1. Adjudication by
ପଞ୍ଚାଏତ ଫୟସଲା **पञ्चायती फैसला** arbitrators.
୨ । ପଞ୍ଚାୟତମାନଙ୍କ ରାୟ—
2. Arbitrator's award or judgment.

**ପଞ୍ଚାଏତି**—ଦେ. ବି—୧ । ପଞ୍ଚାଏତଙ୍କ ବୈଠକ—
Pañchāeti 1 A meeting of arbitrators.
ପଞ୍ଚାୟତି ୨ । ଭଲଲୋକଙ୍କଦ୍ୱାରା ବିବାଦ ମୀମାଂସା—
**पञ्चायती** 1 Arbitration.
ଦେ ବିଣ—ପଞ୍ଚାୟତ ସମ୍ବନ୍ଧୀୟ—
Pertaining to a Pañchāyet.

**ପଞ୍ଚାକ୍ଷର**—ସଂ. ବିଣ ( ବହୁବ୍ରୀହି, ପଞ୍ଚ+ଅକ୍ଷର )—ପାଞ୍ଚଟି ଅକ୍ଷରଯୁକ୍ତ
Pañchākshara ( ମନ୍ତ୍ର )—( a mantra ) Consisting
(ପଞ୍ଚାକ୍ଷରୀ—ସ୍ତ୍ରୀ) of 5 letters.
[ ଦ୍ର—ଶିବ ପଞ୍ଚାକ୍ଷର ମନ୍ତ୍ରଃ—ନମଃ ଶିବାୟ, ବିଷ୍ଣୁ ପଞ୍ଚାକ୍ଷର—ବିଷ୍ଣବେ ନମଃ । ]
ସଂ. ବି—୧ । ପଞ୍ଚ ଅକ୍ଷରବିଶିଷ୍ଟ ପ୍ରତିଷ୍ଠା ନାମକ ବୃତ୍ତ (ହ.ଶ.)—
1. Name of a Sanscrit metrie.
୨ । ଶିବ ପଞ୍ଚାକ୍ଷର ମନ୍ତ୍ରଃ; ନମଃ ଶିବାୟ—
2. A formula of Siba coosisting of 5 letters.

**ପଞ୍ଚାଗ୍ନି**—ସଂ ବି—୧ । ( ଦ୍ୱିଗୁ, ପଞ୍ଚ+ଅଗ୍ନି ) ବେଦୋକ୍ତ ୫ ଗୋଟି
Pañchāgni ଯଜ୍ଞାଗ୍ନି—1. The five sacrificial fires.
[ ଦ୍ର—ଅନ୍ୱାହାର୍ଯ୍ୟ, ପଚନ ବା ଗାର୍ହପତ୍ୟ, ଆହବନୀୟ, ସଭ୍ୟ ଓ ଆବସଥ୍ୟ ଏହି ପାଞ୍ଚଗୋଟି ଅଗ୍ନି । ]
୨ । ତପସ୍ୱୀମାନଙ୍କର ଚାରି ଦିଗରେ ଜଳୁଥିବା ଚାରିଗୋଟି ଅଗ୍ନି ଓ ଉପରେ ସୂର୍ଯ୍ୟ ଏପରି ପାଞ୍ଚଗୋଟି ଉତ୍ତାପଦାୟକ ତେଜ—
2 The four fires lighted on the 4 sides of a devotee and the blazing sun overhead.
୩ । ( ବହୁବ୍ରୀହି ) ତପସ୍ୱୀବିଶେଷ, ଚାରିପାଖରେ ଚାରି ଗଦା ନିଆଁ ଜାଳି ଉପରେ ସୂର୍ଯ୍ୟଙ୍କୁ ରଖି ଯେଉଁ ତପସ୍ୱୀ ତପଃ ସାଧନ କରନ୍ତି—3. A devotee performing austerities with 4 fires around and with the sun overhead.

**ପଞ୍ଚାଙ୍ଗ**—ସଂ. ବିଣ. ପୁଂ. ( ବହୁବ୍ରୀହି, ପଞ୍ଚ+ଅଙ୍ଗ )—
Pañchānga ୧ । ପଞ୍ଚ ଅବୟବବିଶିଷ୍ଟ—
1 Having 5 limbs or parts.
୨ । ବାହୁଦ୍ୱୟ, ଜାନୁଦ୍ୱୟ, ମସ୍ତକ, ବକ୍ଷସ୍ଥଳ ଓ ଚକ୍ଷୁଦ୍ୱାରା ସାଧନୀୟ ( ପ୍ରଣାମ )—2 ( obeisance ) Done with the 5 parts of the body.

ସ. ବି—୧ । ରାଜ୍ୟ ରକ୍ଷାର ୫ଟି ଉପାୟ—1. The five expendients for maintaining a kingdom, the 5 terms of political expedients

[ ଦ୍ର—ସହାୟ, ସାଧନୋପାୟ, ଦେଶକାଳ ଭେଦ, ବିପଦ୍ର ପ୍ରତିକାର ଓ ସିଦ୍ଧି ଏହି ପାଞ୍ଚ ଗୋଟି ରାଜ୍ୟରକ୍ଷାର ଉପାୟ ବା ପଞ୍ଚାଙ୍ଗ, ମତାନ୍ତରରେ ସହାୟ, ସାଧନ ଉପାୟ, ଦେଶକାଳ ଭେଦ, ବିପଦ୍ ପ୍ରତିକାର ପଞ୍ଚାଙ୍ଗ ଅଟେ । ]

୨ । କଚ୍ଛପ—2. Tortoise

୩ । ଘୋଡ଼ା—3. Horse

୪ । ଜପ, ତପ (ବା ହୋମ), ତର୍ପଣ, ଅଭିଷେକ ଓ ବ୍ରାହ୍ମଣ ଭୋଜନ ଏହି ପାଞ୍ଚ ଗୋଟି ତାନ୍ତ୍ରିକ କର୍ମ—4 The fivefold duties of a devotee according to the Tantric rites.

୫ । (ବୈଦ୍ୟକ) ଗଛର ମୂଳ, ଛାଲ, ପତ୍ର, ଫୁଲ ଓ ଫଳ—
5 The five parts of a tree.

୬ । ମନୁଷ୍ୟର ପାଞ୍ଚଟି ଅଙ୍ଗ—6. The 5 limbs of man.

[ ଦ୍ର— ବାହୁ, ଜାନୁ, ମସ୍ତକ, ବକ୍ଷସ୍ଥଳ ଓ ଚକ୍ଷୁ, ମନୁଷ୍ୟର ଏହି ପାଞ୍ଚ ଗୋଟି ଅଙ୍ଗ ପ୍ରଣାମ କରିବା ସମୟରେ ଭୂମିରେ ଲଗା ଯାଇଥାନ୍ତି । ]

୭ । (ଜ୍ୟୋତିଷ) ତିଥି, ବାର, ନକ୍ଷତ୍ର, ଯୋଗ ଓ କରଣ—
7. (astrology) The five ascertainable data of a particular time.

୮ । ଦୁଇ ହାତ, ଦୁଇ ଆଣ୍ଠୁ ଓ ମୁଣ୍ଡକୁ ଭୂମିରେ ଲଗାଇ କରାଯିବା ପ୍ରଣାମ (ହି ଶ.)—8 Obeisance done by touching the ground with one's two hands, two knees and the head

୯ । ପଞ୍ଚକଲ୍ୟାଣ ଘୋଡ଼ା (ହି. ଶ.)—9. A horse whose 4 legs and head are white.

୧୦ । ନ୍ୟାୟ ଶାସ୍ତ୍ରର ୫ଟି ଅଙ୍ଗ (ପ୍ରତିଜ୍ଞା, ହେତୁବାଦ, ଉଦାହରଣ ଉପନୟ ଓ ନିଗମନ)—10 (Logic) The 5 component processes of arriving at a logical conclusion, the 5 members of a syllogism

**ପଞ୍ଚାଙ୍ଗ ପ୍ରଣାମ**—ସ. ବି. (ମ ପ. ଲୋ, ପଞ୍ଚାଙ୍ଗ ଯୁକ୍ତ ପ୍ରଣାମ)—
Panchānga pranāma ୧ । ବାହୁ, ଜାନୁ, ମସ୍ତକ, ବକ୍ଷସ୍ଥଳ ଓ ଚକ୍ଷୁ ଦ୍ୱାରା ପ୍ରଣତି—1. Obeisance with the 5 limbs of the body.

୨ । ଦୁଇ ହାତ, ଦୁଇ ଆଣ୍ଠୁ ଓ ମୁଣ୍ଡକୁ ଭୂମିରେ ଲଗାଇ କରାଯିବା ପ୍ରଣାମ – 2 The obeisance done by touching the ground with one's two hands, two knees and the brow.

**ପଞ୍ଚାଙ୍ଗ ଯୋଗ**—ସ. ବି. (ଜ୍ୟୋତିଷ)—ବାର, ତିଥି, ନକ୍ଷତ୍ର, ଯୋଗ ଓ କରଣ ଏହି ପାଞ୍ଚ ଗୋଟିର ଅନୁକୂଳ ଅବସ୍ଥା—
Panchanga joga Auspicious time as regards the 5 items required by astrology.

**ପଞ୍ଚାଙ୍ଗ ଶୁଦ୍ଧି**—ସ. ବି. ( ୬ଷ୍ଠୀ ତତ୍; ପଞ୍ଚାଙ୍ଗ+ଶୁଦ୍ଧି )—
Panchānga suddhi ନ୍ୟାସବିଶେଷ, ପୂଜା ସମୟରେ ହୃଦୟ, ଶିରଃ, ଶିଖା, ବାହୁମୂଳ ଓ ନେତ୍ର ଏହି ୫ ଗୋଟି ଅଙ୍ଗକୁ ମନ୍ତ୍ର ଦ୍ୱାରା ଶୋଧନ କରିବା ପ୍ରକ୍ରିୟା—The ritual of consecrating the 5 limbs of the worshipper.

**ପଞ୍ଚାଙ୍ଗୀ**—ସ. ବି—ହାତୀର ଅଣ୍ଟାରେ ବନ୍ଧାଯିବା ରଜ୍ଜୁବିଶେଷ—
Panchāngi A rope for tying an elephant on the waist.

**ପଞ୍ଚାଙ୍ଗୁଳ**—ସ ବି (ଦ୍ୱିଗୁ; ପଞ୍ଚ+ଅଙ୍ଗୁଳ)—୧ । ପଞ୍ଚ ଅଙ୍ଗୁଳ ପରିମିତ
Panchāngula ଦୈର୍ଘ୍ୟ—1 A length of five digits.

୨ । (ବହୁବ୍ରୀହି) ଗବ ଗଛ, ଏରଣ୍ଡ ବୃକ୍ଷ –
2. The castor seed plant.

[ ଦ୍ର—ଏହାର ପତ୍ରର ଆକୃତି ୫ଟି ଅଙ୍ଗୁଳ ପରି । ]

୩ । ତେଜପତ୍ର (ହି. ଶ.)—3. Cassia leaves.

**ପଞ୍ଚାଣ**— ଦେ ବି. ( ସ. ପଞ୍ଚାନନ )—
Panchāna ୧ । ସିଂହ—1. Lion.

୨ । ପାଞ୍ଚ, ବିଚାର—2 Adjudication; consideration.

୩ । ଆଲୋଚନା—3. Consultation; review

୪ । ପଞ୍ଚାଣ ଉରା ( ଦେଖ )—4. Panchāna urā (See)

୫ । ଯେଉଁ ତାକୁଡ଼ି ଦ୍ୱାରା ଜାଲ ବୁଣା ସୂତା ବଳାଯାଏ—
5 A spindle to spin thread for fishing nets.

ଦେ. ବିଣ – ଶ୍ରେଷ୍ଠ, ଉତ୍କୃଷ୍ଟ—Excellent.

**ପଞ୍ଚାଣ ଉରା** —ଦେ. ବି—ପାଞ୍ଚ ଶୋଳିଆ ଖଲଘରର ଉପରର ଶ୍ରେଷ୍ଠ ଉରା—
Panchāna urā The topmost cross-beam of a thatched house.

**ପଞ୍ଚାତପା**—ସ. ବି. (ବହୁବ୍ରୀହି; ପଞ୍ଚ+ଆତପ+ଆ)—
Panchātapā ଯୋଗୀର ଆସନର ୧ ହସ୍ତ ପରିମିତ ଦୂରରେ ୪ ଦିଗରେ ୪ ଗଦା ନିଆଁ ଓ ଊର୍ଦ୍ଧ୍ୱରେ ସୂର୍ଯ୍ୟ, ଏପରି ୫ଟି ଆତପ ଯୁକ୍ତ ସ୍ଥାନରେ ତପସ୍ୟା—Austerity undergone in the midst of 4 fires around and with the blazing sun overhead.

**ପଞ୍ଚାତ୍ମକ**—ସ. ବିଣ. ( ପଞ୍ଚ+ଆତ୍ମନ୍+କ )—
Panchātmaka ୧ । ପଞ୍ଚଭୂତ ସମ୍ବନ୍ଧୀୟ—1. Pertaining to (ପଞ୍ଚାତ୍ମିକା – ସ୍ତ୍ରୀ) the five primary elements of the creation.

୨ । ସାଂସାରିକ—2. Material; mundane.

୩ । ପାଞ୍ଚ ସଂଖ୍ୟକ—3. Consisting of five.

**ପଞ୍ଚାନ**—ଦେ. (ପ୍ରାଚୀନ ପଦ୍ୟ) ବି ଓ ବିଣ—ପଞ୍ଚାବନ ( ଦେଖ )
Panchāna Panchābana ( See )

ପଞ୍ଚାନ ଗୁଣ ଯେ ଯୁଗଳ ସମସ୍ତ ସିଦ୍ଧି ନିଶେଷତ ।
ପ୍ରାଚୀ. ପୂର୍ଣ୍ଣତମଚନ୍ଦ୍ରୋଦୟ ।

**ପଞ୍ଚାନନ**—ସ. ବିଣ. (ବହୁବ୍ରୀହି, ପଞ୍ଚ+ଆନନ)—ପଞ୍ଚମୁଖବିଶିଷ୍ଟ—
Panchānana Five-faced.
(ପଞ୍ଚାସ୍ୟ—ଅନ୍ୟରୂପ) ସ. ବି—୧ । ମହାଦେବ; ଶିବ—Siba.

୨ । ସିଂହ—2. Lion.

[ଦ୍ର—ଶିବଙ୍କୁ ପଞ୍ଚାନନ ବୋଲାଯିବାର ବ୍ୟୁତ୍ପତ୍ତି କେହି କେହି 'ପଞ୍ଚ ଅର୍ଥାତ୍ ବିସ୍ତୃତ ଆନନ ଯାହାର' ଏପରି କରନ୍ତି, କେହି କେହି ଶିବର ଏକମୁଖ ଓ ପଞ୍ଚ ପଞ୍ଚା ତାହାର ମୁଖର କାର୍ଯ୍ୟ କରେ- ବୋଲି କହନ୍ତି—(ହି ଶ.)।]

୩। ସଙ୍ଗୀତରେ ସ୍ୱରସାଧନର ଏକ ପ୍ରଣାଳୀ—3. A kind of exercise of the scales of music.

[ଦ୍ର—ଆରୋହୀ ପଞ୍ଚାନନ ଯଥା,—ସାରେଗମପ, ରେଗମପଧ, ଗମପଧନ, ମପଧନସା

ଅବରୋହୀ ପଞ୍ଚାନନ ଯଥା,—ସାନଧପମ, ନଧପମଗ, ଧପମଗରେ, ପମଗରେସା—ହି. ଶବ୍ଦସାଗର।]

**ପଞ୍ଚାନନ ମେଳା** ପ୍ରାଦେ (ଯାଜପୁର)ବି.—ପାଞ୍ଚଅଣାର ବା ପାଞ୍ଚ ପଇସାର Panchānana melā ୫ଟି ଜିନିଷ (ଯଥା—ଗଞ୍ଜେଇ,ପାଚିଲାକଦଳୀ, ପାନ, ଗୁଆ ଓ ତେଲ) ମହାଦେବଙ୍କୁ ଭୋଗ କରିବା ଉତ୍ସବବିଶେଷ — A festival of offering 5 articles (ganja, ripe plantain, betel, areca nut and oil) each worth five pice or five annas to God Śiba

[ଦ୍ର—କଟକ ଜିଲ୍ଲାର କେତେକ ସ୍ଥାନରେ ତ୍ରିନାଥ ମେଳା ହେବା ପରି ଏ ମେଳାରେ ତେଲ ଡକ ଧାପରେ ଜଳା ଯାଏ, ସମବେତ ଭକ୍ତମାନେ ଗଞ୍ଜେଇଲୁ ଧୂଆଁ ଖାଆନ୍ତି ଓ ଶେଷରେ କଦଳୀ, ପାନ ଓ ଗୁଆ ଖାଆନ୍ତି ଓ ଏ ମେଳା ବିଷୟକ ରଚିତ ଗୀତ ବୋଲନ୍ତି।]

**ପଞ୍ଚାନନୀ**—ସଂ. ବି. ସ୍ତ୍ରୀ (ପଞ୍ଚାନନ+ସ୍ତ୍ରୀ ଈ)—ପାର୍ବତୀ, ଦୁର୍ଗା— Panchānani Goddess Durgā.

**ପଞ୍ଚାନବେ**—ଦେ.ବି. ଓ ବିଣ. (ସଂ. ପଞ୍ଚନବତି, ପ୍ରା.ପଞ୍ଚନଉଇ)—୯୫— Panchānabe पँचानबबेई **पंचानबे** 95.

(ପଞ୍ଚାନୋଇ, ପଞ୍ଚାଣୋଇ, ପଞ୍ଚାଁଳୋଇ, ପଞ୍ଚାଲବେ, ପଞ୍ଚାନବେ—ଅନ୍ୟରୂପ)

**ପଞ୍ଚାପଞ୍ଚି**—ଦେ. ବି.—୧। ଅନ୍ୟୋନ୍ୟରେ ବଳ କଷାକଷି ହୋଇ ଯୁଦ୍ଧ Panchāpanchi କରିବା—1. Hand to hand fight; **बल कसाकसि; पाञ्जापाञ्जि** duel.

(ପାଞ୍ଚାପାଞ୍ଚ—ଅନ୍ୟରୂପ) ୨। ଅନ୍ୟୋନ୍ୟରେ ବିଚାର— 2. Consultation; taking counsel of each other.

***ପଞ୍ଚାପ୍ସରଃ**—ସଂ. ବି. (ପଞ୍ଚ+ଅପ୍ସରସ୍, ୧ମା. ୧ବ)—୧। ଦଣ୍ଡକାରଣ୍ୟସ୍ଥ Panchāpsarah ସରୋବରବିଶେଷ—1. Name of a tank in the forest of Dandakā.

[ଦ୍ର—ମନ୍ଦକର୍ଣ୍ଣି ଋଷି ଏହି ସରୋବର ଖନନ କରାଇଥିଲେ— (ଆପ୍ଟେ)। କେହି କେହି ଏହାକୁ ପମ୍ପା ସରୋବର ବୋଲି କହନ୍ତି। ଏହା ଦାକ୍ଷିଣାତ୍ୟରେ ଅବସ୍ଥିତ। ଏଠାରେ ଶାତକର୍ଣ୍ଣି ବା ମନ୍ଦକର୍ଣ୍ଣି ନାମକ ଋଷି ତପସ୍ୟା କରୁଥିଲେ, ତାଙ୍କ ତପସ୍ୟାର କଠୋରତାରେ [illegible] ପାଇଁ ଇନ୍ଦ୍ର ପଞ୍ଚୋଟି ଅପ୍ସରାଙ୍କୁ ପଠାଇଥିଲେ;(ହି. ଶ.)। ଏହି ସରୋବରର ଜଳ ତଳରେ ଶାତକର୍ଣ୍ଣି ଋଷି ଇନ୍ଦ୍ର [illegible] ପାଞ୍ଚୋଟି ଅପ୍ସରାଙ୍କ ପାଇଁ ଗୋଟିଏ ଗୁପ୍ତ ଘର ନିର୍ମାଣ କରି ଥିଲେ (M. W.)। ଏହି କୁଣ୍ଡ ଗର୍ଭରୁ ସର୍ବଦା ଅପ୍ସରାମାନଙ୍କ ଗୀତବାଦ୍ୟ ଧ୍ୱନି ଶୁଣା ଯାଏ ବୋଲି ପ୍ରବାଦ ଅଛି। ମଧୁସୂଦନ ତାଙ୍କ କବିତାବଳୀର 'ଅଯୋଧ୍ୟା ପ୍ରତ୍ୟାଗମନ'ରେ ଏହି ଧ୍ୱନିକୁ ଲକ୍ଷ କରି ଲେଖି ଅଛନ୍ତି—

ପଞ୍ଚାପ୍ସର ସରେ ରମ୍ୟ ରମଣୀ;
ସାଣାଧ୍ୱନି ଶୁଣି ଏଣୀ ନୟନୀ]

୨। ପଞ୍ଚତୀର୍ଥ (ଯଥା—ଦକ୍ଷିଣସାଗର ସନ୍ନିହିତ ଅଗସ୍ତ୍ୟ ତୀର୍ଥ, ସୌଭଦ୍ର ତୀର୍ଥ, ପୌଲୋମ, କାରନ୍ଧ ଓ ଭାରଦ୍ୱାଜ ତୀର୍ଥ, ୫ ଟି ଅପ୍ସରା ଏହିଠାରେ ବାସ କରୁଥିବାରୁ), ବାରିତୀର୍ଥ—2 Name of a sacred place in South India

**ପଞ୍ଚାବଟ**—ସଂ ବି.—ଯଜ୍ଞୋପବୀତ—The sacrificial cord worn Panchābata across the shoulder (Apte)

**ପଞ୍ଚାବନ** ଦେ ବି. ଓ ବିଣ (ସଂ. ପଞ୍ଚ ପଞ୍ଚାଶତ୍, ପ୍ରା ପଞ୍ଚପଣ୍ଣା)—୫୫, Panchābana ପଚାଶରୁ ୫ ଅଧିକ—Fifty five; 55.

पँचान्न **पचपन**

**ପଞ୍ଚାବୟବ**—ସଂ. ବି.—ପଞ୍ଚାଙ୍ଗ ୧୦ (ଦେଖ) Panchābayaba Panchānga 10 (See)

**ପଞ୍ଚାମର**—ସଂ. ବି. (ପଞ୍ଚ=୫+ଅମର=ଦୀର୍ଘଜୀବୀ ଗଛ)—ପାଞ୍ଚ ଗୋଟି Panchāmara ଦୀର୍ଘଜୀବୀ ବୃକ୍ଷ [ଯଥା—ଦୁବ, ବିଜୟା (ଗଞ୍ଜେଇ) ବେଲ, ନିର୍ଗୁଣ୍ଡୀ (ବେଗୁନିଆ) ଓ କଳା ତୁଳସୀ]—Five long-lived plants and trees.

**ପଞ୍ଚାମୃତ**—ସଂ. ବି (ଦ୍ୱିଗୁ, ପଞ୍ଚ+ଅମୃତ)—୧। ଦହି, ଦୁଧ, ଘିଅ, ମହୁ Panchāmruta ଓ ଗୁଡ଼ ମିଶ୍ରିତ ପାନୀୟବିଶେଷ—1. A drink prepared by mixing together milk, curd, honey, ghee and molasses.

[ଦ୍ର—ଏଥିରେ ଦେବତାମାନଙ୍କୁ ସ୍ନାନ ଓ ପ୍ରତିଷ୍ଠା କରାଯାଏ। ଏହା ମଧ୍ୟ ଗର୍ଭବତୀମାନଙ୍କୁ ଗର୍ଭ ଶୋଧନାର୍ଥ ସେବନ କରିବାକୁ ଦିଆଯାଏ।]

୨। (ବୈଦ୍ୟକ) ଗୁଳୁଚ, ଗୋଖର, ତାଳମୂଳୀ, ଗୋରଖମୁଣ୍ଡୀ ଓ ଶତାବରୀ, ଗୁଣକର ୫ ଦ୍ରବ୍ୟ—2. Five particular herbs prescribed in the Hindu medical books.

**ପଞ୍ଚାମୃତ ଯୂଷ**—ସଂ ବି. (ବୈଦ୍ୟକ) (ପଞ୍ଚାମୃତ+ଯୂଷ)—କୋଳଥ, ମୁଗ, Panchāmruta jūsha ବିରି, ହରଡ଼ ଓ ବିରିଗୁଡ଼ିକୁ ସିଝାଇ ପ୍ରସ୍ତୁତ କରାଯିବା କ୍ୱାଥବିଶେଷ—A decoction made by boiling together 5 kinds of particular pulse.

**ପଞ୍ଚାମ୍ନାୟ**—ସଂ. ବି. (ପଞ୍ଚ+ଆମ୍ନାୟ=ବେଦ)—ଶିବଙ୍କ ପଞ୍ଚମୁଖରୁ ଜାତ Panchāmnāya ତନ୍ତ୍ର ଶାସ୍ତ୍ର—The Tantras.

**ପଞ୍ଚାମ୍ର**—ସଂ. ବି. (ଦ୍ୱିଗୁ; ପଞ୍ଚ+ଆମ୍ର)—୧। ଅଶ୍ୱତ୍ଥ, ଜାମ୍ବ, ଚମ୍ପକ, Panchāmra ବକୁଳ ଓ ନାରିକେଳ ଏହି ୫ଟି ଗଛ— 1. Five particular trees.

୨। ୧ ଅଶ୍ୱତ୍ଥ, ୧ ଜାମ୍ବ, ୨ ଚମ୍ପା, ୩ ନାଗେଶ୍ୱର, ୭ ତାଳ ଓ ୯ ନଡ଼ିଆ, ଏହିପରି ଏକତ୍ର ଲଗାଯିବା ୨୩ ଗଛ (ଜ୍ଞାନେନ୍ଦ୍ର ଓ ପ୍ରକୃତିବାଦ)—2 Five kinds of trees planted together and 23 in number.

ପଞ୍ଚାମ୍ଳ—ସଂ. ବ (ଦ୍ୱିଗୁ, ପଞ୍ଚ + ଅମ୍ଳ)—ପାଞ୍ଚଗୋଟି ଖଟା ଜିନସ—
Pañchāmḻa Five acid vegetables.
[ଦ୍ର—ବରକୋଳି, ଡାଳିମ୍ବ, ଟଭା, ଖଟାପାଳଙ୍ଗ ଓ ଭନ୍ତୁଳ ଏମାନେ ପଞ୍ଚାମ୍ଳ, ମତାନ୍ତରରେ ଅମ୍ଳ ବେତସ, ତନ୍ତୁଳ, ଜଂଭୀରଲେମ୍ବୁ କାଗଜୀ ଓ ଟଭା ପଞ୍ଚାମ୍ଳ ଅଟେ – ହି ଶ]

ପଞ୍ଚାୟତ (ଇତ୍ୟାଦି) – ଦେ. ବ ପଞ୍ଚାଏତ ଇତ୍ୟାଦି (ଦେଖ)
Pañchāyata (etc) Pañchāeta etc (See).

ପଞ୍ଚାୟତନ—ସଂ. ବ.—କୌଣସି ଦେବତାଙ୍କ ୫ଟି ମୂର୍ତ୍ତିର ସମାହାର—
Pañchāyatana A collection of five idols or (ଯଥା—ଶିବ ପଞ୍ଚାୟତନ) images of a Deity.

ପଞ୍ଚାୟତି (ଇତ୍ୟାଦି) ଦେ ବ ଓ ବଣ—ପଞ୍ଚାଏତି ଇତ୍ୟାଦି (ଦେଖ)
Pañchāyati (etc) Pañchāeti etc (See).

ପଞ୍ଚାରୀ—ସଂ ବ—ପଶା ପାଲି—
Pañchārī Chess-board (Apte).

ପଞ୍ଚାଳ—ସଂ ବ (ପଞ୍ଚ୍ ଧାତୁ = ବିସ୍ତାର କରିବା + ସଂଜ୍ଞାର୍ଥରେ ଆଳ, କମ୍ବା
Pañchāḻa ପଞ୍ଚ+ଅଲ)—୧ । ଗଙ୍ଗାର ଉତ୍ତର ଓ ଦକ୍ଷିଣରେ (ପଞ୍ଚାଳକ—ଅନ୍ୟରୂପ) ଅବସ୍ଥିତ ପ୍ରାଚୀନ ଦେଶବିଶେଷ, ଦ୍ରୁପଦ ରାଜ୍ୟ—1. Name of an ancient kingdom on both sides of the Ganges

[ଦ୍ର- ବର୍ତ୍ତମାନ ବେରେଲିଠାରୁ ବୁନ୍ଦେଲଖଣ୍ଡ, ସିନ୍ଧିଆ ଇତ୍ୟାଦି ଏ ଦେଶର ଅନ୍ତର୍ଗତ । ସରସ୍ୱତୀ ଓ ଦୃଷଦ୍ୱତୀ ନଦୀ ଦ୍ୱୟର ମଧ୍ୟବର୍ତ୍ତୀ ଦେଶର ନାମ ବ୍ରହ୍ମାବର୍ତ୍ତ, କୁରୁକ୍ଷେତ୍ର, ମତ୍ସ୍ୟ, ପଞ୍ଚାଳ ଓ ଶୂରସେନକ ଦେଶର ନାମ ବ୍ରହ୍ମର୍ଷି ଦେଶ । ଏମାନ ବ୍ରହ୍ମାବର୍ତ୍ତର ସମୀପସ୍ଥ ଦେଶ । ଏତଦ୍ଦେଶପ୍ରସୂତ ବ୍ରାହ୍ମଣମାନଙ୍କଠାରୁ ପୃଥିବୀର ସମଗ୍ର ଲୋକମାନେ ସ୍ୱ ସ୍ୱ ଚରିତ୍ର ଶିକ୍ଷା କରିବେ । ମନୁସଂହିତା ୨ । ୧୮—୨୦ । ରାଜା ହର୍ଯ୍ୟକ୍ଷ ଅଯୋଧ୍ୟାର ପଶ୍ଚିମ ଦେଶର ରାଜ୍ୟ ଅଧିକାର କଲେ ଏବଂ କହିଲେ ଯେ ମୋର ପଞ୍ଚ ପୁତ୍ର (ମୁଦ୍ଗଳ, ସୃଂଜୟ, ବୃହଦିଷୁ, ପ୍ରବୀର ଓ କାଂପିଲ୍ଲ) ମୋ ରାଜ୍ୟ ରକ୍ଷା ପାଇଁ ଅଲଂ (ଯଥେଷ୍ଟ) ଅଟନ୍ତି । ଏହି ଉପାଖ୍ୟାନରୁ (ପଞ୍ଚ + ଅଲଂ) ପଞ୍ଚାଳ ଶବ୍ଦର ଉତ୍ପତ୍ତି ହୋଇ ଥିବାର ପଣ୍ଡିତମାନେ କହନ୍ତି । ମହାଭାରତରେ ହିମାଳୟଠାରୁ ଚର୍ମଣ୍ୱତୀ ବା ଚମ୍ବଲ ନଦୀପର୍ଯ୍ୟନ୍ତ ବିସ୍ତୃତ ଗଙ୍ଗାର ଉଭୟ ପାର୍ଶ୍ୱସ୍ଥ ଦେଶକୁ ପଞ୍ଚାଳ ଦେଶ ବୋଲି ପାଇଅଛୁ । ଦ୍ରୁପଦ ପଞ୍ଚାଳର ରାଜା ଥିବାରୁ ତାଙ୍କ କନ୍ୟା ଦ୍ରୌପଦୀଙ୍କୁ ପାଞ୍ଚାଳୀ ବୋଲାଯାଏ ।]

୨ । ପଞ୍ଚାଳଦେଶବାସୀ ବ୍ୟକ୍ତି—
2 An inhabitant of Pañchāḻa

୩ । ପଞ୍ଚାଳ ଦେଶର ରାଜା—3. A king of Pañchāḻa.

୪ । ମହାଦେବ, ଶିବ (ହି. ଶ)—4. Siba

୫ । ବଢ଼େଇ ଓ କମାର କାମ କରୁଥିବା ଦକ୍ଷିଣ ଦେଶର ଏକ ଜାତି (ହି ଶ)—5. Name of a caste of men of S. India who work as carpenters & smiths.

୬ । ଋଷିବିଶେଷ—6 Name of a sage.

୭ । ବିଷଧର କୀଟବିଶେଷ (ହି. ଶ)—
7. A particular venomous insect (M. W).

୮ । ଛନ୍ଦ ବା ଛନ୍ଦବିଶେଷ—
8. Name of a metre (M. W)

୯ । ନାଗ ରାକ୍ଷସବିଶେଷ—
9 Name of a serpent demon.

ସଂ. ବଣ – ୧ । ପଞ୍ଚାଳ ଦେଶୀୟ—
1. Pertaining to the Pañchāḻa country.

୨ । ପଞ୍ଚାଳ ଦେଶବାସୀ—
2. Residing in the Pañchāḻa country.

ପଞ୍ଚାଳି—ଦେ. କ୍ରି—୧ । ବିଷମ ସମସ୍ୟା; ଦୋଧାଇ—
Pañchāḻi 1. Dilemma.
ହେୟାଁଲୀ ଶୁଣି ଚକିତ ଗୋପବାଳୀ, ବୋଲନ୍ତି ପଡ଼ିଲୁଁ ପଞ୍ଚାଳି—
भंवरजाल, पहेली ଜଗନ୍ନାଥ, ଭାଗବତ ।

୨ । ପ୍ରହେଳିକା, ପଦ୍ଦଲ—2. Riddle.

ପଞ୍ଚାଳିକା—ସଂ ବ (ପଞ୍ଚାଳ + ଇକ + ସ୍ତ୍ରୀ. ଆ) ୧ । ପିତୁଳା; ପୁତ୍ତଳ—
Pañchāḻikā 1 A doll
(ପଞ୍ଚାଳୀ—ଅନ୍ୟରୂପ) ୨ । ପଶାର ଛକ—2. The corner posts of a dice board.

୩ । ଗୀତବିଶେଷ—3. A popular song.

ପଞ୍ଚାଳିବା—ଦେ. କ୍ରି—ଦୁଇ ହାତରେ ମନ୍ଥିବା ବା ମଳିବା, ମଞ୍ଚାଳିବା;
Pañchāḻiba ଚକଟିବା—To work or press a thing
कचलान with both palms into a mass; to knead.
गुंधना, सानना

ପଞ୍ଚାଳିଶ(ଶି)—ଦେ ବ ଓ ବଣ (ସଂ. ପଞ୍ଚ ଚତ୍ୱାରିଂଶ ପ୍ରା. ପଞ୍ଚଚତ୍ତାଳିଶ)
Pañchāḻisa(si) ୪୫; ଚାଳିଶରୁ ୫ ଅଧିକ—Fortyfive; 45.
[ପଞ୍ଚାଁ(ଇଁ)ଚାଳିଶ(ଶି), ପେଁଞ୍ଚାଳିଶ(ଶି), ପେଁଚାଳିଶ(ଶି)—ଅନ୍ୟରୂପ]
ପଯ୍ଁତାଲିଶ୍ पैंतालिस

ପଞ୍ଚାଳୀ—ସଂ. ବ (ପଞ୍ଚାଳ + ଈ)—୧ । ପିତୁଳା, କଣ୍ଢେଇ—1 Doll.
Pañchāḻī ଦେଇ ପଞ୍ଚାଳୀ ଛଟକେ ନାହିଁ କି—କବିସୂର୍ଯ୍ୟ, କଳାବତୀ ୯ ଗୀତ ।

୨ । ଦ୍ରୌପଦୀ—2. A name of Draupadi.

୩ । ପଶାଖେଳର ପାଲି—3 Diceboard; mat on which the dice is played.

୪ । ଏକପ୍ରକାର ଗୀତ, ପାଞ୍ଚାଳୀ—
4 A kind of popular song or poem.

ପଞ୍ଚାଶ—ଦେ. ବ ଓ ବଣ (ସଂଖ୍ୟାବାଚକ, ସଂ. ପଞ୍ଚାଶତ୍—ପଚାଶ (ଦେଖ)
Pañchāsa (ପଞ୍ଚାଶୀ – ସ୍ତ୍ରୀ) Pachāsa (୨୦୪୪)
ସଂ. ବଣ –(ପଞ୍ଚାଶତ୍ + ପୂରଣାର୍ଥେ. ଅ)—ପଚାଶ ସ୍ଥାନୀୟ—
Fiftyfifth.
(ପଞ୍ଚାଶିତ—ଅନ୍ୟରୂପ) [ ଦ୍ର—ହିନ୍ଦୀ ଶବ୍ଦସାଗରରେ 'ପଞ୍ଚାସ' ଶବ୍ଦର ଏହି ଅର୍ଥ ଲେଖା ଯାଇଅଛି, କିନ୍ତୁ ବର୍ଣ୍ଣକ୍ରମରେ ଏହା 'ପଞ୍ଚାଶତ୍' ଶବ୍ଦର ପୂର୍ବେ ସ୍ଥାନ ପାଇଥିବାରୁ 'ପଞ୍ଚାଶ' ସ୍ଥଳରେ 'ପଞ୍ଚାସ' ମୁଦ୍ରାକର ପ୍ରମାଦରୁ ଘଟିଅଛି । ମନଅର୍ଦ୍ଧି ଲିଅମ୍ସଙ୍କ ଶବ୍ଦକୋଷରେ 'ପଞ୍ଚାଶ' ଶବ୍ଦର ଏହି ଅର୍ଥ ଅଛି । ]

ପଞ୍ଚାଶକ – ସଂ. ବ. ( ପଞ୍ଚାଶତ୍ + କ )—
Pañchāsaka ପଚାଶ ସଂଖ୍ୟକ ବସ୍ତୁର ସମାହାର—
(ପଞ୍ଚାଶିକା—ସ୍ତ୍ରୀ) A collection or aggregate of fifty.

**ପଞ୍ଚାଶତ୍**—ସଂ ବି ଓ ବିଣ. ( ପଞ୍ଚ ଗୁଣିତ ଦଶତ୍, ପଞ୍ଚନ୍+ଦଶତ୍; ଭୂଲ.
Pañchāśat ତ୍ରିଂଶତ୍, ଚତ୍ୱାରିଂଶତ୍ ଇତ୍ୟାଦି —ପଚାଶ—
Fifty; 50

**ପଞ୍ଚାଶୀତି**—ଦେ. ବି ଓ ବିଣ (ପଞ୍ଚ+ଅଶୀତି) - ପଞ୍ଚାଅଶୀ, ୮୫—
Pañchāśiti Eighty five; 85.
(ପଞ୍ଚାଶି, ପଞ୍ଚାଅଶି—ଦେଶଜ ରୂପ)

**ପଞ୍ଚାସ୍ୟ**—ସଂ. ବି ଓ ବିଣ. (ବହୁବ୍ରୀହି, ପଞ୍ଚ+ଆସ୍ୟ=ମୁଖ) —
Pañchāsya ୧ । ପଞ୍ଚାନନ ( ଦେଖ ) —
1. Pañchānana ( See )
୨ । ପାଞ୍ଚଟି ମୁନଥିବା (ଶର)—2. Five-pointed (arrow).

**ପଞ୍ଚାସ୍ର**—ସଂ. ବି ( ବହୁବ୍ରୀହି, ପଞ୍ଚ+ଅସ୍ର=କୋଣ ) —
Pañchāsra ପଞ୍ଚଭୁଜ କ୍ଷେତ୍ର—Pentagon.
ସଂ. ବିଣ—ପଞ୍ଚଭୁଜସମ୍ବନ୍ଧୀୟ; ପଞ୍ଚଭୁଜାକୃତି, ପାଞ୍ଚ କୋଣିଆଁ—
Five cornered; pentagonal.

**ପଞ୍ଚାହ**—ସଂ. ବି. (ପଞ୍ଚ+ଅହନ୍)—୧ । ପାଞ୍ଚ ଦିନ ସମୟ—
Pañchāha 1. A period of 5 days. (M.W.)
୨ । ପାଞ୍ଚ ଦିନରେ ସମ୍ପାଦନୀୟ ଯଜ୍ଞବିଶେଷ ( ବୃ ଶ. )—
2. A vedic sacrifice performable in 5 days
ସଂ. ବିଣ — ପାଞ୍ଚ ଦିନ ସମୟ ବ୍ୟାପୀ—
Lasting five days ( M W ).

**ପଞ୍ଚାହିକ**—ସଂ. ବିଣ. ( ପଞ୍ଚାହ+ଇକ )—
Pañchāhika ପାଞ୍ଚ ଗୋଟି ପର୍ବ ବା ଉତ୍ସବ ଦିନ ସହିତରେ ଥାଏ—
Containing 5 feast days or festivals. (M W)

**ପଞ୍ଚି ତନମାତ୍ର**—ଗ୍ରା. (ପଦ୍ୟ) ବି—ପଞ୍ଚତନ୍ମାତ୍ର ( ଦେଖ )
Pañchi tanamātra Pañchatanmātra ( See )
ମହତ୍ତୁ ଅହଂକାର ଜାତ, ତା ତତ୍ତୁଁ ପଞ୍ଚ ତନମାତ୍ର ।
ପ୍ରାଚୀ. ପୂର୍ଣ୍ଣତମ ଚନ୍ଦ୍ରୋଦୟ ।

**ପଞ୍ଚୀ**—ସଂ. ବିଣ. ( ପଞ୍ଚନ୍+ଇନ୍ )—ପଞ୍ଚ ପରିମାଣ ଯୁକ୍ତ—
Pañchi Measuring 5; pertaining to 5.

**ପଞ୍ଚୀକରଣ**—ସଂ. ବି. ( ପଞ୍ଚ+ଅଭୂତ, ତଦ୍ଭାବେ ଚ୍ୱି+କରଣ )—
Pañchikaraṇa ବେଦାନ୍ତ ମତରେ ପଞ୍ଚଭୂତର ବିଭାଗବିଶେଷ—
(ପଞ୍ଚୀକୃତ—ବିଣ) ( in Bedānta philosophy ) The combination of the 5 primary elements of nature in certain definite proportions.

**ପଞ୍ଚୁ**—ଦେ. ବି. ( ସଂ. ପଞ୍ଚ )—
Pañchu ୧ । ପଞ୍ଚାଏତ—1. Panchayet.
ପଞ୍ଚାଏତ ୨ । '୫' ସଂଖ୍ୟା—2 The number '5'.
ପଞ୍ଚାୟତ ୩ । ବୈଷ୍ଣବମାନଙ୍କର ଏକତ୍ର ପଙ୍ଗତ—
3. The dining together of Baishṇabas.
୪ । ୫ ଜଣ ଭଲଲୋକ—4. Five arbitrators.
୫ । (ଆଦରାର୍ଥକ) (ସଂ. ପଞ୍ଚାନନ) ଲୋକଙ୍କ ନାମ -
5. Name given to males.
(ପଞ୍ଚୁଆ- ଅନାଦରାର୍ଥକ) [ ଦ୍ର- ଅପଞ୍ଚିଆଣୀ ବାଳକମାନଙ୍କୁ ଛକଡ଼ିଆ, (ପଞ୍ଚୀ, ପଞ୍ଚେଇ ସ୍ତ୍ରୀ) ନକଡ଼ିଆ ନାମ ଦିଆଯିବା ପରି ପାଞ୍ଚକଡ଼ିଆ ବା ପଞ୍ଚୁ ନାମ ଦିଆଯାଏ । ବାଳିକାଙ୍କୁ ପଞ୍ଚୀ, ପଞ୍ଚେଇ ନାମ ଦିଆଯାଏ । ]
ଗ୍ରା ବିଣ—ପାଞ୍ଚ ସଂଖ୍ୟକ—Numbering five.
ସ୍ୱେ ସ୍ଥାନେ ପଞ୍ଚୁ ତୀର୍ଥ ଦିଶେ ପଞ୍ଚୁଅ ପାତକ ହରାଇଲେ ।
ଯଶୋବନ୍ତ. ପ୍ରେମଭକ୍ତିବ୍ରହ୍ମଗୀତ ।
(ପଞ୍ଚୁଆ—ଅନ୍ୟରୂପ)

**ପଞ୍ଚୁଆତ**—ଗ୍ରା. ବି. ( ସଂ. ପଞ୍ଚ ଜାତି )—ପଞ୍ଚାଏତ—
Pañchuāta Panchayet
ଅଭ ପଞ୍ଚୁଆତଙ୍କ ଅଗିରେ ଧୂଳ ପକାଇବାର ବାଟ ନାହିଁ ।
ଫକୀରମୋହନ, ଛମାଣ ଆଠଗୁଣ୍ଠ ।

**ପଞ୍ଚୁଆତି**—ଦେ ବି ( ସଂ ପଞ୍ଚମ ଓ ଷଷ୍ଠି )—
Pañchuāti ୧ । ନବଜାତ ଶିଶୁର ଜନ୍ମର ୫ମ ଦିବସ—
1 The 5th day of an infant's birth.
୨ । ପଞ୍ଚମ ଷଷ୍ଠ କୃତ୍ୟ ଜାତକର୍ମବିଶେଷ, ଶିଶୁର ଜନ୍ମର ୫ମ ଦିବସରେ ପ୍ରତିବେଶୀ ଓ ବାଳକ ବାଳିକାମାନଙ୍କୁ ଗୁଡ଼ୁଲଭଜା ଆଦି ବାଣ୍ଟିବା ଉତ୍ସବବିଶେଷ—2 A ceremony performed on the 5th day of a child's birth when fried rice is distributed.
ପଞ୍ଚୁଆତି ଷଠୀ ଘ.ର ଉତ୍ସବ ଗଲା, ଏକବିଂଶ ଦିବସ ପ୍ରବେଶ ହୋଇଲା ।
ବିଶ୍ୱନାଥ, ଚନ୍ଦ୍ରଗମୀଦ୍ୱର ।
୩ । ଶିଶୁର ଜନ୍ମର ୫ମ ଦିବସରେ ବଣ୍ଟାଯିବା ଭର୍ଜିତ ପଞ୍ଚ ଶସ୍ୟ ମିଶ୍ରିତ ଭୋଗ—3. An offering of 5 kinds of fried grain distributed on the 5th day of a child's birth.
ବ୍ରୀହି ଆଦି ପଞ୍ଚବୀଜ ପଞ୍ଚୁଆତ ସେ । ଲକ୍ଷ୍ମୀ, ବୈଦେହୀଶବିଳାସ ।
୪ । ପଶା ଖେଳରେ ୫ ସଂଖ୍ୟକ ଦାନ - 4. The turning up of the dice resulting in 5 points.

**ପଞ୍ଚୁଆତି ଚାଉଳ**—ଦେ. ବି—୧ । ଶିଶୁ ଜନ୍ମର ୫ମ ଦିବସରେ ବଣ୍ଟାଯିବା
Pañchuāti chāuḷa ମୁଢ଼ି ଆଦି—1. Fried rice distributed on the 5th day of a child's birth.
୨ । ପଞ୍ଚୁଆତି ୩ (ଦେଖ)—2. Pañchuāti 3 (See)

**ପଞ୍ଚୁଆ ଫତୁରି**—ପ୍ରାଦେ. (ଖୁର୍ଦ୍ଧା) ବି—ଇଂରାଜ ସରକାରଙ୍କ ବିପକ୍ଷରେ
Pañchuā phaturi ୧୮୧୮ ସାଲରେ ଘଟିଥିବା ଖୋର୍ଦ୍ଧା ବାଣପୁରର ପାଇକ ବିଦ୍ରୋହ—The name of the rising of the Pāikas of Khurda ( in Puri district ) in the year 1818.
[ ଦ୍ର—'ପଞ୍ଚୁ' ନାମକ ଜଣେ ବ୍ୟକ୍ତି ଏହାର ନେତା ଥିବାରୁ ଏହାର ଏପରି ନାମ ହୋଇଅଛି । ]

**ପଞ୍ଚୁଆଳ**—ଗ୍ରା. ବି. ଓ ବିଣ. ( ସଂ. ପଞ୍ଚ )—ପାଞ୍ଚ, ୫—
Pañchuāḷa Five; 5.
ପଞ୍ଚୁଆଳ ବର୍ଷ ସେଠାରେ ଗଲା ସବୁ । କୃଷ୍ଣସିଂହ, ମହାଭାରତ, ବନ ।

**ପଞ୍ଚୁକ**—ଦେ. ବି. ( ସଂ. ପଞ୍ଚକ )—ପଞ୍ଚକ ( ଦେଖ )
Pañchuka Pañchaka ( See )
पंचक पञ्चक

**ପଞ୍ଚୁ କୁ(କୋ)ଳ**—ଦେ ବି. (ସଂ. ପଞ୍ଚକୋଲ)—ପଞ୍ଚକୋଲ (ଦେଖ)
Pañchu ku(ko)ḷa Pañchakoḷa ( See)

ପଞ୍ଚୁକୋଶ(ଶୀ)—ଗ୍ରା ବିଣ. (ସଂ. ପଞ୍ଚକ୍ରୋଶୀ)—ପଞ୍ଚକୋଶୀ (ଦେଖ)
Pañchukosa (si) Pañchakosi (See)
ପାଞ୍ଚକୁଶୀ ପଞ୍ଚକୋଶ ପୁଣ୍ୟକ୍ଷେତ୍ର ବିଦିତ ଅଟେ,
पचकोशी ତାଙ୍କୁ ରୂପେ ବଳେ ଘର ଦେବଙ୍କ ଶ୍ରେଷ୍ଠ । ପ୍ରାଚୀ ଶଶିସେଣା ।

ପଞ୍ଚୁଗବ୍ୟ—ଗ୍ରା ବି. (ସଂ. ପଞ୍ଚଗବ୍ୟ)—ପଞ୍ଚଗବ୍ୟ (ଦେଖ)
Pañchugabya Pañchagabya (See)

ପଞ୍ଚୁଗୋବର—ଗ୍ରା. ବି. (ସଂ. ପଞ୍ଚଗବ୍ୟ)—ପଞ୍ଚଗବ୍ୟ (ଦେଖ)
Pañchu gobari Pañchagabya (See)
(ପଞ୍ଚୁଗୁବୁର, ପଞ୍ଚୁଗୋବୁର—ଅନ୍ୟରୂପ) পঞ্চগব্ব पञ्चगव्य

ପଞ୍ଚୁଗ୍ରାସୀ—ଗ୍ରା. ବି. (ସଂ. ପଞ୍ଚଗ୍ରାସୀ) ୧ । ବିବାହ ଦିନ ବରକନ୍ୟାଙ୍କର
Pañchugrāsi ବିବାହ ବେଦିରୁ ଉଠିଗଲା ପରେ ଏକତ୍ରରେ ୫
পঞ্চগ্রাসী ଗୁଣ୍ଡା ଭୋଜନ କରିବା—1 The taking of 5 handfuls of food by the married couple just after the marriage rites

୨ । ବ୍ରାହ୍ମଣମାନେ ଚଳୁ କରି ସାରିବା ପରେ ଭୋଜନ କରିବା ପୂର୍ବରୁ ପଞ୍ଚ ପ୍ରାଣବାୟୁଙ୍କ ଉଦ୍ଦେଶ୍ୟରେ ଯେଉଁ ପ୍ରଥମ ୫ ଗୁଣ୍ଡା ଅନ୍ନ ଖାଆନ୍ତି—2. The first five morsels of rice taken by a Brāhmaṇa before beginning his meal.

୩ । ବ୍ରତଘର ଦିନ ସନ୍ଧ୍ୟୋପସନା ଗ୍ରହଣ ପରେ ନୂଆ ବ୍ରାହ୍ମଣ ଯେଉଁ ୫ ଗୁଣ୍ଡା ଅନ୍ନ ଖାଏ—3 The first five morsels of rice taken by the newly initiated Brāhmaṇa just after his initiation

ପଞ୍ଚୁତୀର୍ଥ—ଗ୍ରା. ବି. (ସଂ. ପଞ୍ଚତୀର୍ଥ)—ପଞ୍ଚତୀର୍ଥ (ଦେଖ)
Pañchutirtha Pañchatirtha (See)

ପଞ୍ଚୁଦୋଳ—ଦେ. ବି.—ଦୋଳପୂର୍ଣ୍ଣିମା ପରେ ପ୍ରତିପଦାଠାରୁ ୫ ଦିନ ଭିନ୍ନ
Pañchu dola ଭିନ୍ନ ସ୍ଥାନରେ ରାଧାକୃଷ୍ଣ ବିଗ୍ରହମାନଙ୍କର ମିଳନ—
পঞ্চদোল Exhibitions of the images of Rādhā and Krushṇa during the five days after Dolapūrṇṇimā.

ପଞ୍ଚୁନରିଆ—ଦେ ବିଣ. (ସଂ. ପଞ୍ଚନ୍+ସଂ ଲହରୀ)—ପାଞ୍ଚନରି, ପାଞ୍ଚ-
Pañchu naria ସରିଆ, ପାଞ୍ଚ ସୂତ୍ରବିଶିଷ୍ଟ—Five stringed
পাঁচনরী पचलड़ी (necklace).
ପଞ୍ଚୁନରି, ପଞ୍ଚୁସରି, ପଞ୍ଚୁସରିଆ } ଅନ୍ୟରୂପ ଦେ. ବି.—ପାଞ୍ଚସରିଆ ହାର—Five stringed necklace.

ପଞ୍ଚୁପରାଣ—ଗ୍ରା. ବି. (ସଂ. ପଞ୍ଚପ୍ରାଣ)—ପଞ୍ଚପ୍ରାଣ (ଦେଖ)
Pañchu parāṇa Pañcha prāṇa (See)
ତୁହି ମୋ ଜୀବନେ ଭୂଷଣ, ତୁହି ମୋ ପଞ୍ଚୁପରାଣ । ପ୍ରାଚୀ, ରସବାରିଧି ।

ପଞ୍ଚୁପଲବ—ଗ୍ରା. ବି. (ସଂ ପଞ୍ଚପଲ୍ଲବ)—ପଞ୍ଚପଲ୍ଲବ (ଦେଖ)
Pañchu palaba Pañcha pallaba (See)
পঞ্চপল্লব

ପଞ୍ଚୁପାଣ୍ଡବ(ବେ)—ଗ୍ରା. ବି. (ସଂ. ପଞ୍ଚପାଣ୍ଡବ)—୧ । ପଞ୍ଚପାଣ୍ଡବ (ଦେଖ)
Pañchu paṇḍaba(be) 1. Pañcha pāṇḍaba (See)
পঞ্চপাণ্ডব ୨ । (ପ୍ରହେଳିକା) ୫ ଫଡ଼ାବିଶିଷ୍ଟ ଔଉ ଫଳ—
2. (a riddle) Dillenia Speciosa (a sour fruit with 5 petals).

ବଳାଧର କହେ ଜଳଧରକୁ ଚକ୍ରଧର କାହିଁ ଗଲେ
ସ୍ୱର୍ଗରୁ ପଡ଼ିଲେ ପଞ୍ଚୁପାଣ୍ଡବ ମାଡ଼ି ବସିବ ସ ଗଲେ । ପ୍ରହେଳିକା ।

ପଞ୍ଚୁପାତ୍ରୀ—ଗ୍ରା ବି. (ସଂ. ପଞ୍ଚପାତ୍ର)—ପଞ୍ଚପାତ୍ର (୨) (ଦେଖ)
Pañchu pātri Pañchapātra (2) (See)

ପଞ୍ଚୁବଟୀ—ଗ୍ରା ବି (ସଂ ପଞ୍ଚବଟୀ)—ପଞ୍ଚବଟୀ (ଦେଖ)
Pañchubati Pañchabati (See)

ପଞ୍ଚୁବଣୀ(ନ୍ନୀ)—ଗ୍ରା ବିଣ. (ସଂ. ପଞ୍ଚବର୍ଣ୍ଣ)—୫ ବର୍ଣ୍ଣର (କଳା, ଧଳା,
Pañchubani (nni) ନେଳି, ରଙ୍ଗ ଓ ହଳଦିଆ) (ମୁରୁଜ)—
পঞ্চগুঁড়ি पचरंग (powder) Of 5 colours.
(ପଞ୍ଚୁବର୍ଣ୍ଣୀ, ପଞ୍ଚବନ୍ନୀ—ଅନ୍ୟରୂପ) ଗ୍ରା. ବି.—ପାଞ୍ଚପ୍ରକାର ଭିନ୍ନ ଭିନ୍ନ ବର୍ଣ୍ଣର ମୁରୁଜ—Powder of five different colours.

ପଞ୍ଚୁବାଣ—ଗ୍ରା. ବି (ସଂ. ପଞ୍ଚବାଣ)—ପଞ୍ଚବାଣ (ଦେଖ)
Pañchubāṇa Pañchabāṇa (See)
ମଳୟାନିଳ ପଞ୍ଚୁବାଣ ହାସ୍ୟେକ ପାଶେ ଗଳୁଛଇବାରେ ।
ପ୍ରାଚୀ. ରସବାରିଧି ।

ପଞ୍ଚୁଭୂତ—ଗ୍ରା ବି. (ସଂ ପଞ୍ଚଭୂତ)—ପଞ୍ଚଭୂତ (ଦେଖ)
Pañchubhūta Pañchabhūta (See)

ପଞ୍ଚୁମନ—ଦେ ବି—ପଞ୍ଚଭୂତାତ୍ମା (ଦେଖ)
Pañchu mana Pañchabhūtātmā (See)
ଜୀବଆତ୍ମା ପଞ୍ଚ ମନ ହୋଇଅଛି ଯୋଧ ।
ପ୍ରାଚୀ. ବ୍ରହ୍ମନିରୂପଣ ଗୀତା ।
[ଦ୍ର—ପାଞ୍ଚ ମନ, ଯଥା—ମନ; ସୁମନ, ବିମନ, କୁମନ ଓ ଅମନ ।]

ପଞ୍ଚୁମୁଖ—ଗ୍ରା. ବି (ସଂ ପଞ୍ଚମୁଖ,—ପଞ୍ଚମୁଖ (ଦେଖ)
Pañchu mukha Pañchamukha (See)
ପଞ୍ଚମୁଖେ ହରି । ପ୍ରବଚନ ।

ପଞ୍ଚୁମୂଲ(ଳି)—ଗ୍ରା. ବି. (ସଂ. ପଞ୍ଚମୂଲ)—ପଞ୍ଚମୂଳ (ଦେଖ)
Pañchu mūla(li) পঞ্চমূল Pañchamūla (See)

ପଞ୍ଚୁମେଳ—ଗ୍ରା ବି—ପାଞ୍ଚ ଗୋଟି ଭିନ୍ନ ଭିନ୍ନ ବସ୍ତୁର ସମ୍ମିଶ୍ରଣ—
Pañchumela The mixing together of 5 different
পঞ্চমেল पचमेल things.
ଗ୍ରା. ବିଣ—୧ । ଯହିଁରେ ପାଞ୍ଚୋଟି ବସ୍ତୁ ମିଶ୍ରିତ ହୋଇଥାଏ —
1. Consisting of a mixture of 5 things
୨ । ବହୁ ପଦାର୍ଥର ସମ୍ମିଶ୍ରଣରେ ପ୍ରସ୍ତୁତ —
2. Consisting of a mixture of many things.

ପଞ୍ଚୁରଙ୍ଗ(ଙ୍ଗା, ଙ୍ଗୀ)—ଗ୍ରା. ବିଣ—୧ । ପାଞ୍ଚବର୍ଣ୍ଣବିଶିଷ୍ଟ—
Pañchuranga(ngā, ngi) 1. Having 5 colours.
পাঞ্চ রঙ্গের ୨ । ବହୁବର୍ଣ୍ଣବିଶିଷ୍ଟ, ବହୁରଙ୍ଗୀ—
पचरङ्गा (ପଞ୍ଚୁରଙ୍ଗିଆ—ଅନ୍ୟରୂପ) 2 Multicoloured.

ପଞ୍ଚୁଲବଣ—ଗ୍ରା. ବି—(ସଂ. ପଞ୍ଚଲବଣ)—ପଞ୍ଚଲବଣ (ଦେଖ)
Pañchulabaṇa Pañchalabaṇa (See)
পঞ্চলবণ पचलोना

ପଞ୍ଚେଇ—ଦେ. ବି. ସ୍ତ୍ରୀ—୧ । 'ପଞ୍ଚୁଆ'ର ସ୍ତ୍ରୀଲିଙ୍ଗରୂପ—
Pañchei 1. Feminine form of 'Pañchuā'.

୨ । ବାଟମଙ୍ଗଳା (ଦେଖ)—2. Bāṭamangaḷā (See).

**ପଞ୍ଚେନ୍ଦ୍ରିୟ**—ସ ବ. (ଦ୍ୱିଗୁ ; ପଞ୍ଚ+ଇନ୍ଦ୍ରିୟ)—୧ । ଚକ୍ଷୁ, କର୍ଣ୍ଣ, ନାସିକା
Panchendriya ଜିହ୍ୱା ଓ ତ୍ୱକ୍, ପ୍ରାଣୀର ଏହି ୫ଟି ଜ୍ଞାନେନ୍ଦ୍ରିୟ—1 The five organs of sense, ( viz the eye, the ear, the nose, tongue and the skin ).
[ଦ୍ର— ଚକ୍ଷୁ— ଦର୍ଶନେନ୍ଦ୍ରିୟ, କର୍ଣ୍ଣ—ଶ୍ରବଣେନ୍ଦ୍ରିୟ, ନାସିକା—ଘ୍ରାଣେନ୍ଦ୍ରିୟ, ଜିହ୍ୱା— ରସନେନ୍ଦ୍ରିୟ, ତ୍ୱକ୍ —ସ୍ପର୍ଶେନ୍ଦ୍ରିୟ । ]
୨ । ବାକ୍ ବା ଗଳା, ପାଣି, ପାଦ, ପାୟୁ ଓ ଉପସ୍ଥ, ପ୍ରାଣୀର ଏହି ୫ ଗୋଟି କର୍ମେନ୍ଦ୍ରିୟ—2. The five organs of action, ( viz the layrnx, the hands, the legs, the anus and the organ of generation)
(ପଞ୍ଚେନ୍ଦ୍ରିୟା— ସ୍ତ୍ରୀ) ସ. ବଣ. ପୁଂ (ବହୁବ୍ରୀହି) ଯାହାର ୫ ଇନ୍ଦ୍ରିୟ ଅଛି—Having the five organs of sense.

**ପଞ୍ଚେଷୁ**—ସ ବ ( ବହୁବ୍ରୀହି; ପଞ୍ଚ+ଇଷୁ=ବାଣ )—ପଞ୍ଚଶର, କନ୍ଦର୍ପ
Pancheshu ମଦନ—Cupid.

**ପଞ୍ଚୋପଚାର**—ସ. ବ. (ପଞ୍ଚ+ଉପଚାର)—ପାଞ୍ଚପ୍ରକାର ଉପକରଣସଯୁକ୍ତ
Panchopachāra ଦେବପୂଜା—1. Worshipping a
(ପଞ୍ଚୋପଚାରକ—ଅନ୍ୟରୂପ) Deity with five kin s of oblations.
୨ । ଦେବପୂଜାରେ ବ୍ୟବହୃତ ୫ ପ୍ରକାର ଉପକରଣ, ଯଥା—ଆସନ, ଅର୍ଘ୍ୟ, ଗନ୍ଧ, ପୁଷ୍ପ ଓ ନୈବେଦ୍ୟ—2. The five kinds of oblations offered to a Deity.
[ ଦ୍ର—ଦେବପୂଜା ନିମନ୍ତେ ଷୋଡ଼ଶ ଉପଚାରର ବିଧି ଅଛି, କିନ୍ତୁ ସାଧାରଣରେ ସଂକ୍ଷେପରେ ଲୋକେ ପଞ୍ଚୋପଚାରର ଦେବପୂଜା କରି ଥାଆନ୍ତି । ]

**ପଞ୍ଚୋଷଣ**—ସ. ବ. (ଦ୍ୱିଗୁ ; ପଞ୍ଚ+ଉଷଣ)—ପିପ୍ପଳୀ, ପିପ୍ପଳୀ ମୂଳ, ଚବ୍ୟ,
Panchoshaṇa ମରଚ ଓ ଚିତକ ଏହି ୫ଟି ଔଷଧ ଦ୍ରବ୍ୟ—Five particular medicinal articles mentioned in the Hindu medical treatises.

**ପଞ୍ଜ୍** (ଧାତୁ)—ସ—ବାସ କରିବା—To live.
Panj (root)

**ପଞ୍ଜ୍ନା**—ପ୍ରାଦେ. (ସମ୍ବଲପୁର) ବ—ଗୋଡ଼ ବଳାଗଣ୍ଠି ଉପରେ ପିନ୍ଧାଯିବା
Panj-nā ଏକପ୍ରକାର ଅଳଙ୍କାର—A kind of anklet.

**ପଞ୍ଜଡ଼**—ଦେ. ବ—୧ । ପଞ୍ଜଢ଼ି (ଦେଖ)—
Panjarda 1. Panjardi (See)
୨ । ପଞ୍ଜମ (ଦେଖ) —2. Panjama (See)

**ପଞ୍ଜଡ଼ା**—ଦେ. ବ. (ସ. ପଞ୍ଚ)—୧ । ମହୋତ୍ସବ ବା ଆମୋଦ ପ୍ରମୋଦ
Panjardā ଉପଲକ୍ଷରେ ବହୁଲୋକଙ୍କର ମେଳ—1. A gathering for the sake of an amusement or a festival.
୨ । ପଞ୍ଜଢ଼ି (ଦେଖ)—2. Panjardi (See)
୩ । ପଞ୍ଜର ୪ (ଦେଖ)—3. Panjarā 4 (See)

**ପଞ୍ଜଢ଼ି**—ଦେ. ବ ୧ । ପଞ୍ଜମ (ଦେଖ)—
Panjardi 1. Panjama (See)

୨ । (ସ. ପଞ୍ଚ; ଫା. ପଞ୍ଜ୍)—ପଶା ଓ କଉଡ଼ି ଖେଳରେ ୫ ସଂଖ୍ୟକ
ପଞ୍ଜଡୀ; ପଞ୍ଜୁଡୀ ଦାନ—2 The throw of dice or cowrie
पँजड़ो, पांज्ुरी resulting in the turning up of 5
(ପଞ୍ଜୁଡ଼ି—ଅନ୍ୟରୂପ)

**ପଞ୍ଜମ**—ଦେ ବ. (ସ. ପାଦମଞ୍ଜୀର, ଫା. ପାଜେବ୍)—ପାଉଞ୍ଜମ୍, ପାଉଞ୍ଜବ୍;
Panjama ପାଉଞ୍ଜେର, ପାଦନୂପୁର; ବାଜେଣୀ—A woman's
पांझब, पांझड़ पैंजना tinkling anklet.
(ପଞ୍ଜବ, ପଞ୍ଜେବ, ପଞ୍ଜଢ଼ି, ପଞ୍ଜଡ଼—ଅନ୍ୟରୂପ)

**ପଞ୍ଜର୍**—ପ୍ରାଦେ. (ସମ୍ବଲପୁର) ବ. (ସ ପଞ୍ଜର)—ପିଞ୍ଜରାହାଡ଼—
Panjar Rib.

**ପଞ୍ଜର**—ସ. ବ. (ପଞ୍ଜ୍ଧାତୁ+ଅଧିକରଣେ ଅର, ଯହିଁ ମଧ୍ୟରେ ମନୁଷ୍ୟ
Panjara ବାସ କରେ)—୧ । ଅସ୍ଥି କଙ୍କାଳ—
1. Skeleton.
୨ । ଶରୀର, ଆଟ—2 Body; frame.
ଫେନିଳ ଲହରୀ ତୋହଲାଉ ଥାଉ ଯୋଡ ପଞ୍ଜର । ରାଧାନାଥ. ଉଷା ।
୩ । ପଞ୍ଜୁରି—3. A cage; aviary.
୪ । ପିଞ୍ଜରାହାଡ଼—4. The ribs.
୫ । ଜାଲ—5. Net (M. W.).
୬ । କେତେକ ସ୍ତବ ଓ କବଚର ନାମ (ଯଥା—ବଜ୍ରପଞ୍ଜର)—6. Name of particular prayers and formularies (M. W.).
୭ । କଳିଯୁଗ—7. The Kaḷi Age (M. W ).
୮ । ଗାଈମାନଙ୍କର ସଂସ୍କାରବିଶେଷ (ହି. ଶ.)—8. A purificatory ceremony performed on cows (M. W.).
୯ । କୋଳକନ୍ଦ, ବାରାହୀକନ୍ଦ, ଭୁଇଁକାଖାରୁ (ହି. ଶ.)—9. A kind of bulbous plant (M.W.); Disocorea.
ଦେ. ବ—୧ । ଗୃହ—1. House; abode.
ଶ୍ରୀ ଜଗନ୍ନାଥଙ୍କୁ ଚିନ୍ତା ଲଗ୍ନ ଧ୍ୟାନ କର
ଦୁଃଖଦଳନ ହେତୁ ଅଭୟ ପଞ୍ଜର । ପ୍ରତାପ. ଶଶିସେଣା ।
୨ । ଜଳାକବାଟି; ଝରକା—2. Window; latticed window.
୩ । ସ୍ଥାନ—3. Place.
୪ । ଭାଜନ, ପାତ୍ର—4. Receptacle.
ପ୍ରାଦେ. (ଗଡ଼ଜାତ) ବ—କୌଣସି ବଡ଼ କିଆରୀର ଚାରିପଟରେ ଥିବା ଛୋଟ କିଆରୀମାନ,ଯହିଁରୁ ପାଣି ବହି ଆସି ବଡ଼ କିଆରୀରେ ପଡ଼େ—Sloping fields on the sides of a big field from which water flows down into the latter.

**ପଞ୍ଜରକ**—ସ. ବ—(ପଞ୍ଜର+ସ୍ୱାର୍ଥେ କ)—୧ । ପଞ୍ଜୁରି—1. Cage.
Panjaraka ୨ । ପଞ୍ଜୁରି ପରି ବୁଣା ଯାଇଥିବା ଟୋକେଇ—A basket woven like a cage

**ପଞ୍ଜର ଖେଟ**—ସ. ବ—ଖଇଣ୍ଟି—A sort of basket or wicker
Panjara kheṭa trap in which fish are caught. (M. W.)

**ପଞ୍ଜର ଚାଳନ ନ୍ୟାୟ**—ସ (ଉଦାହରଣ ବଚନ ବା ନ୍ୟାୟ)—ପଞ୍ଜୁରି
Pañjara chālana nyāya ମଧ୍ୟରେ ଥିବା ଅନେକଗୁଡ଼ିଏ ପକ୍ଷୀଙ୍କ ଦ୍ୱାରା ପଞ୍ଜୁରି ହଲିବା ନ୍ୟାୟ—The analogy of many birds being able to shake a cage.

**ପଞ୍ଜର ମୂଳ** ଦେ. ବି—୧ । ଝରକାର ପାଖ—1. The side of a
Pañjara mūla window.
ঝরকার পাশ ୨ । ଝରକାର ଭିତର ପାଖ—
झरकाका पास 2. The inner side of a window.
(ଯଥା—ବଡ଼ଲୋକଙ୍କ ମାଇପେ ପଞ୍ଜର ମୂଳେ ଠିଆ ହୋଇ ଦାଣ୍ଡରେ ହେଉଥିବା ତମାସା ଦେଖୁଛନ୍ତି ।)

**ପଞ୍ଜରା**—ଦେ. ବି—(ସ. ପଞ୍ଜର)—୧ । ଅସ୍ଥି କଙ୍କାଳ—
Pañjarā 1. Skeleton
পাজরা, পাঁজরা ୨ । କଙ୍କାଳ ହାଡ଼—2 The ribs.
पसलि, पंजरी ୩ । ଜଳାକବାଟ—2. Window.
୪ । ଘର ଚାଳର ଏକପାଖ—
4. One of the sloping halves of a thatch.

**ପଞ୍ଜରା ହାଡ଼**—ଦେ. ବି (ସ. ପଞ୍ଜର)—ଅସ୍ଥି କଙ୍କାଳ—
Pañjarā hāṛda পাঁজর ठठरी The skeleton

**ପଞ୍ଜରି**—ଦେ. ବି ( ସ. ପଞ୍ଜର )—ପଞ୍ଜୁରି, ଆବଦ୍ଧ ପକ୍ଷୀର ବନ୍ଧନଶାଳା,
Pañjari ପିଞ୍ଜରା—Cage; aviary.
পিঞ্জরা ବନ୍ଧର ମାଳଢ଼ ଶୁଆ ପଞ୍ଜର ଦେଳବେ—
पिंजड़ा; पञ्जरी ପ୍ରାଚୀ—ଶ୍ରୀଗୁରୁଭକ୍ତି ଗୀତା ।
ପ୍ରାଦେ (ସିଂହଭୂମ) ବି—ଶଗଡ଼ର ଫଳ—The rib-like cross pieces in the ground-frame of a cart.

**ପଞ୍ଜରିଆ**—ଦେ. ବିଣ—ଶଠ, ଧୂର୍ତ୍ତ; ଠକ—
Pañjariā Deceptive; fraudulent.
ଦେ. ବି—ଅନେକ ଗୋବର ଚଢ଼େଇଙ୍କୁ ଜିଣିଥିବା ଯେଉଁ ଗୋବରକୁ ପିଞ୍ଜରାରେ ରଖାଯାଏ—
The bulbul kept in a cage after having vanquished many other rival birds.
[ଦ୍ର—ଯେଉଁ ଚଢ଼େଇ ହାରିଯାଏ ତାର ପେଟକୁ କାଟି ତାକୁ ଉଡ଼ାଇ ଦିଅନ୍ତି; ତାକୁ ପେଟକଟା ବୋଲାଯାଏ ।]

**ପଞ୍ଜା (ଇତ୍ୟାଦି)**—ଦେ. ବି (ସ. ପଞ୍ଚ; ଫା. ପଂଜା)—୧ । ପଞ୍ଝା
Pañjā (etc) (ଇତ୍ୟାଦି) (ଦେଖ)—1. Pañjhā (etc) (See)

**ପଞ୍ଜାବ୍**—ବୈଦେ. ବି. (ଫା. ପଂଜାବ୍; ଭୁଲ ସ ପଞ୍ଚ+ଅପ୍=ଜଳ ବା
Pañjāb ଜଳଭାଗ; ଯେଉଁ ପ୍ରଦେଶରେ ପାଞ୍ଚ ଗୋଟି ନଦୀ ବହି ଯାଉଅଛି)—୧ । ଭାରତର ଉତ୍ତର ପଶ୍ଚିମସ୍ଥ ପଞ୍ଚନଦ ପ୍ରଦେଶ-
1. The Pañjāb; the country of the five rivers in N. W. India
[ଦ୍ର—ଭାରତର ମାନଚିତ୍ରରୁ ଦେଖାଯାଏ ଯେ ପଞ୍ଜାବ ବା ପଞ୍ଚନଦ ପ୍ରଦେଶରେ ଯେଉଁ ୫ଟି ନଦୀ ବହି ଯାଉଅଛି ତନ୍ମଧ୍ୟରୁ ସବୁଠୁ ପଶ୍ଚିମରେ ସିନ୍ଧୁ (ଯହିଁରେ କାବୁଲ ନଦୀ ପଡ଼ୁଅଛି) ତହିଁର ପୂର୍ବକୁ ଝେଲମ(ବିତସ୍ତା, ଯାହା ଚେନାବ୍ ସଙ୍ଗେ ମିଶି ଅଛି), ତା ପୂର୍ବକୁ ଚେନାବ(ଚର୍ମନ୍ୱତୀ ବା ଚନ୍ଦ୍ରଭାଗା, ଝେଲମ ଓ ଚେନାବ ଦୁଇ ନଦୀ ମିଳିତ ହୋଇ ଚେନାବ ନାମ ଧାରଣ କରିଅଛି ), ତା ପୂର୍ବକୁ ରାଭୀ (ଇରାବତୀ), ତା ପୂର୍ବକୁ ସତଲେଜ ଶତଦ୍ରୁ (ଏହାହିଁ ପୂର୍ବତମ ନଦୀ ଅଟେ) ଅଛି । ଶତଦ୍ରୁର ବିୟାସ ନାମରେ ଗୋଟିଏ କ୍ଷୁଦ୍ର ଉପନଦୀ ଅଛି, କିନ୍ତୁ ତାହା ଅତି କ୍ଷୁଦ୍ର ନଦୀ ଅଟେ । ଏପରି ଅବସ୍ଥାରେ ବିପାସା ବା ବ୍ୟାସା ନଦୀର ଠିକଣା କରି ହେଉ ନାହିଁ, ସମ୍ଭବତ ୫ସିନ୍ଧୁ ନଦର ପଶ୍ଚିମତମ ଧାରର ଅନ୍ୟ ନାମ ବିପାସ ଅଟେ ?]
୨ । ଇଂରେଜ ସରକାରଙ୍କ ପ୍ରତିଷ୍ଠିତ ପଞ୍ଜାବ ପ୍ରଦେଶ—
2. The Province of Panjab.
[ଦ୍ର—ଏଥିର ଉତ୍ତରରେ କାଶ୍ମୀର ରାଜ୍ୟ, ପୂର୍ବରେ; ଆଗ୍ରା ଓ ଅଯୋଧ୍ୟା ଯୁକ୍ତପ୍ରଦେଶ, ଦକ୍ଷିଣରେ ରାଜପୁତାନା ଓ ସିନ୍ଧୁ ପ୍ରଦେଶ ଓ ପଶ୍ଚିମରେ ଉତ୍ତରପଶ୍ଚିମ ସୀମାନ୍ତ ପ୍ରଦେଶ ଓ ବେଲୁଚସ୍ଥାନ ଅବସ୍ଥିତ । ଏହା ଜଣେ ଲାଟଙ୍କ ଦ୍ୱାରା ଶାସିତ । ଏଥିର ରାଜଧାନୀ ଲାହୋର ।]

**ପଞ୍ଜାବି**—ଦେ ବିଣ—୧ । ପଞ୍ଜାବ ଦେଶୀୟ—
Pañjābi 1 Pertaining to the Panjab.
পাঞ্জাবী ୨ । ପଞ୍ଜାବ ଦେଶବାସୀ—
पञ्जाबी 2. Inhabiting the Panjab.
ଦେ ବି—୧ । ପଞ୍ଜାବ ଦେଶବାସୀ—1 A Panjabese.
୨ । ଫରଖମୁହାଁ ଆସ୍ତୀନ୍ (ହାତ) ଓ ବେକ ପାଖେ ବୋତାମ ଥିବା ଏକପ୍ରକାର କୁର୍ତ୍ତା—2. A kind of coat with wide sleeves.

**ପଞ୍ଜାରି**—ଦେ ବି—ପଦାଡ଼ି (ଦେଖ)
Pañjāri Pandārdi (See)

**ପଞ୍ଜି (ଞ୍ଜୀ)**—ସ. ବି. (ପିନ୍ଜ ଧାତୁ=ସ୍ପଷ୍ଟ ହେବା+ଇ, ଈ)—
Pañji (ñji) ୧ । ପାଞ୍ଜି; ଦିବସ ଓ କାଲଜ୍ଞାପକ ଗ୍ରନ୍ଥ; ପଞ୍ଜାଙ୍ଗ
(ପଞ୍ଜିକା—ଅନ୍ୟରୂପ) ପଞ୍ଜିକା—1. Calendar; almanac.
୨ । ହିସାବ ଖାତା—2. Account book.
୩ । ପ୍ରତ୍ୟେକ ଶବ୍ଦର ବ୍ୟାଖ୍ୟାଯୁକ୍ତ ନୋଟ୍—3. Commentary explaining and analysing every word.
୪ । ତୁଳାର ବଲଣା—4. A roll of carded cotton.
୫ । ପ୍ରସ୍ତାବନା—5. Prologue.
୬ । ବ୍ୟାକରଣର ବୃତ୍ତିଗ୍ରନ୍ଥ ବିଶେଷ—
6 A grammatical commentary.

**ପଞ୍ଜି (ଞ୍ଜୀ)କ(କା)ର**—ସ.ବି—(ପଞ୍ଜୀ+କୃ ଧାତୁ+କର୍ତ୍ତୃ.ଅ)—୧ । ପଞ୍ଜିକା
Pañji(ñjī)ka(kā)ra ପ୍ରଣେତା—1. The author or
(ପଞ୍ଜିକାକାର—ଅନ୍ୟରୂପ) compiler of an almanac.
୨ । ପାଞ୍ଜିଆ କରଣ—2. An accountant; a clerk in charge of accounts

**ପଞ୍ଜିରି**—ପ୍ରାଦେ. ( ସମ୍ବଲପୁର ) ବି—ପଇଁରି ( ଦେଖ )
Pañjiri Paiñri ( See )

**ପଞ୍ଜୁଡ଼ି(ରି)**—ଦେ. ବି. ( ସ. ପିଞ୍ଜର )—୧ । ଆବଦ୍ଧ ପକ୍ଷୀ ରହିବାର
Pañjurdi(ri) ଆଧାର; ପିଞ୍ଜରା—1. Cage.
পিঞ্জরা; খাঁচা ୨ । ଅଟା ସଙ୍ଗେ ଚିନି ଓ ଧନିଆ ପ୍ରଭୃତି ମସଲାର ଚୂର୍ଣ୍ଣ
पिंजरा, पंजीरी ମିଶାଯାଇ ପ୍ରସ୍ତୁତ ହୋଇଥିବା ଏକପ୍ରକାର ଖାଦ୍ୟ—
2. A kind of powder made of coriander seeds and sugar pounded together.

[ ଦ୍ର—ଏହା ପଶ୍ଚିମା ବାବାଜୀମାନେ ହରିଜନ୍ମାଷ୍ଟମୀ ଓ ସତ୍ୟ-ନାରାୟଣ ପୂଜା ସମୟରେ ଠାକୁରଙ୍କୁ ଭୋଗ କରନ୍ତି । ଅଟାକୁ ଘିଅରେ ଭାଜି ଚିନ୍ନିରେ ଧନିଆଁ, ଚନ୍ଦ, ଶୁଣ୍ଠି, କଷ୍ଟର ଚୂନା ମିଶାଇ ଏହା କରାଯାଏ । ଏହା ଉତ୍ତର ପଶ୍ଚିମ ଭାରତରେ ପ୍ରସୂତା ସ୍ତ୍ରୀମାନଙ୍କ ପାଇଁ ମଧ୍ୟ ଛଅଦିନ ଭୂଷ ଓ ଭାର ବେଭାର ଆଦିରେ ମଧ୍ୟ ପଠାଯାଏ । ହି ଶବ୍ଦସାଗର । ]

ପଞ୍ଜୁରିଆ – ଦେ. ବି—ପଞ୍ଜରିଆ ( ଦେଖ )
Pañjuriā — Pañjariā ( See )

ପଞ୍ଜୁରିପାଣି – ପ୍ରାଦେ. ( ପୁରୀ ) ବି—ସ୍ବଚ୍ଛ ଓ ନିର୍ମଳ ତରଳ ବସ୍ତୁ—
Pañjuripāṇi — Clear and transparent liquid.
( ଯଥା—ଏ ମାଲପା ପଞ୍ଜୁରିପାଣି ଭଳି ଦିଶୁଛି । )

ପଞ୍ଝା—ଦେ. ବି. ( ସଂ ପୁଞ୍ଜ ବା ପଞ୍ଚ; ଫା. ପଂଜା )—୧ । ପାଞ୍ଚ ଅଙ୍ଗୁଠି ଯୁକ୍ତ କରତଳର ଦାଗ ବା ଛାପ—1. The mark or impression left on a surface by the extended palm.
Pañjhā
পঞ্জা, পাঞ্জা
पंजा

୨ । ଦଳ, ସମୂହ—
2 A herd; group; a party; flock; club; crowd.
ପଞ୍ଝାଏ ଗଣ୍ଡ ବଧ କର୍ଣ୍ଣ, କଥା କହନ୍ତି ହସି ହସି—
ମଧୁସୂଦନ, ବର୍ଣ୍ଣବୋଧ ।

୩ । ପାଞ୍ଚ ଅଙ୍ଗୁଠିଯୁକ୍ତ କରତଳ—3. The palm of the hand with the five fingers.

୪ । ଦୁଇ ଜଣ ମଲ୍ଲ ପରସ୍ପରଙ୍କ ହାତର ପଞ୍ଝା ଉଡ଼ାଉଡ଼ି ଓ ଚପାଚପି କରି ଅନ୍ୟୋନ୍ୟରେ ବଳ ପରୀକ୍ଷା କରିବା—
4. The squeezing and twisting of the palms of each other by two athlets.

[ ଦ୍ର—ଏଥିରେ ଦୁହେଁ ପରସ୍ପରର ଅଙ୍ଗୁଳମାନ ଛନ୍ଦାଛନ୍ଦି କରନ୍ତି ଓ କରତଳକୁ ଜୋରରେ ଚପନ୍ତି, ଯେ ସମ୍ଭାଳି ନ ପାରେ ସେ ହାରିଯାଏ । ]

୫ । ଗଞ୍ଜପା ବା ତାସ ଖେଳର ପାଞ୍ଚ ଟିପଯୁକ୍ତ ସାର—
5. The card with five points

୬ । ପଶା ଖେଳରେ ପାଞ୍ଚ ସଂଖ୍ୟକ ଦାନ—
6 The throw of dice resulting in five.

୭ । ପଶୁପକ୍ଷୀଙ୍କ ନଖଯୁକ୍ତ ପାଦତଳ—
7. The claw of birds and the paw of beasts.

୮ । ଦୋମୁହାଁ କୋଡ଼ ବା ଖୁରୁପି—2. Fork-hoe.

୯ । ମନୁଷ୍ୟର ହାତର ପଞ୍ଝା ଆକାରରେ କଟା ହୋଇ ଲମ୍ବ ବେଣ୍ଟ ଲାଗିଥିବା ଧାତୁମୟ ପତ୍ର—
9. A thin metal plate cut in the shape of the extended palm and carried in the Tajia procession by the Mahomedans.

[ ଦ୍ର— ଏହାକୁ ପତାକା ପରି ମୁସଲମାନମାନେ ତାଜିଆ ଶୋଭାଯାତ୍ରାରେ ବହନ କରନ୍ତି । ]

୧୦ । ଦେହରେ ଯେଉଁ ଅଂଶକୁ ହାତ ନ ପାଇବ ( ଯଥା ପିଠି ) ସେ ଅଂଶକୁ କୁଣ୍ଡାଇବା ପାଇଁ ମନୁଷ୍ୟର ପଞ୍ଝା ଆକାରର ଲମ୍ବ ବେଣ୍ଟଲଗା ଯନ୍ତ୍ର—
10 A kind of twiglike pick shaped liked the extended palm with which men scratch the itching back.

ପ୍ରାଦେ ( ସିଂହଭୂମ )—ପଝା ( ଦେଖ )—
Pajhā ( See )

ପଞ୍ଝାଏ—ଦେ ବି ଓ ବିଣ – ଏକଦଳ—
Pañjhāe — A herd or company of.

ପଞ୍ଝା ଛକା(କ୍କା)—ଦେ. ବି—୧ । ଦୁଇ ଜଣଙ୍କର ପରସ୍ପର ପ୍ରତି ସତର୍କ ଓ କପଟ ବ୍ୟବହାର, ଖେଳ୍‌ବାଜୀ—
Pañjhā chhakā(kkā)
পংজা ছক্কা
छक्का पंजा
1. Mutual tactics between two persons.

୨ । ଓଃଆର, ପରସ୍ପରଙ୍କୁ ଜିତିବା ପାଇଁ ବା ହଇରାଣରେ ପକାଇବା ପାଇଁ ସୁବିଧା ବା ଦାଉ ଅନ୍ବେଷଣ—2 Being on the look-out to over reach one another.

ପଞ୍ଝା ଧରିବା—ଦେ. କ୍ରି.—ତାସ ଖେଳରେ ଉପର୍ଯ୍ୟୁପରି ପାଞ୍ଚ ଥର ଜୟ ଲାଭ କରିଥିବା ଦଳ ଜୟର ଚିହ୍ନ ସ୍ବରୂପ ପାଞ୍ଚ ବିନ୍ଦୁ ଯୁକ୍ତ କାଗଜ ଖଣ୍ଡେ ରଖିବା—To put a card with five tips as a trophy to show that a party has been the winning party for five times consecutively.
Pañjhā dharibā
পংজাধরা
पंजा धरना
(ପଞ୍ଝା ଧରିବା—ଅନ୍ୟରୂପ)

ପଞ୍ଝା ପଞ୍ଝା—ଦେ. କ୍ରି. ବିଣ.—ଦଳ ଦଳ ହୋଇ—
Pañjhā pañjhā — In clusters or groups.

ପଞ୍ଝା ମାରିବା – ଦେ. କ୍ରି.—ପଶୁପକ୍ଷୀଙ୍କର ପଞ୍ଝା ସାହାଯ୍ୟରେ ଥାପ୍ପଡ଼ ମାରିବା
Pañjhā māribā — To strike with the claws or talons or paw
পংজামারা
पंजा मारना

ପଞ୍ଝା ଲଡ଼ା (ଡା,ଢେ)ଇ—ଦେ ବି (ସଂ. ପଞ୍ଚ+ଫା. ଲଡ଼ାଇ) ଦୁଇ-ଜଣଙ୍କର ବଳ କଷାକଷି ହେବା ପାଇଁ ପରସ୍ପରର ପଞ୍ଝା ଚିପା ଚିପି—Mutual squeezing of the palms to test each other's strength.
Pañjhā larḍā(rḍhā, rḍhe)i
পংজা লড়ান
पंजा लड़ाइ
ପଞ୍ଝା ଲଢ଼ା(ଢେ, ଢା ଡେ)ଇବା } ଅନ୍ୟରୂପ
ପଞ୍ଝା ପକା(କୋ)ଇବା

ପଟ୍ – ଦେ. ବି. (ସଂ. ପଟ ଧାତୁ ବା ପଶ୍ଚାତ୍)— କୌଣସି ଚେପ୍ଟା ପଦାର୍ଥର ପଛଭାଗ—The back side of a flat thing.
Paṭ

ଦେ. ଅ.—(ଧ୍ବନ୍ୟନୁକରଣ) —ପଟ୍ ପଟ୍ (ଦେଖ)
Paṭ paṭ (See)

ପ୍ରାଦେ. ସମ୍ବଲପୁର)—ବି. (ସଂ. ପଟ୍ଟ; ତୁଳ. ହି. ପଟ୍)—
୧ । ଝୋଟ—1. Flax.
୨ । ଅଂଶୁ— 2 Fibre.

ପଟ୍‌କନ (ଣ)(ଣି – ଦେ. ବି.—(ସଂ ପତ୍ ଧାତୁ ) (ସଂ. ପାତନ)—
Paṭ-kan(ṇa) (ṇi) — ୧ । ଫୋପାଡ଼ି ଦେବା, କଚାଡ଼ିବା—
পটকন
पटकन(नी)
1. Dashing of a thing on the ground.

୨ । (ସଂ ପତନ) ଭୂମିରେ ପତିତ ହେବା; କଚଡ଼ା—
2 Falling down; being dashed to the ground with a thud.

ପଟ୍‌କା—ଦେ ବି —୧ । ପଟ୍‌କନ୍ (ଦେଖ)
Paṭkā
पटका पुटकी 1 Paṭ-kan (See)
୨ । ଅଗ୍ନି ସଂଯୋଗରେ ପଟ୍ ଶବ୍ଦପୂର୍ବକ ଫୁଟୁଥିବା ତାଳ-ପଟକା, ତାଳପଟକା, ଫୁଟକା, ଫୋଟକା—2. A cracker.
୩ । ପତାକା (ଦେଖ —3. Patakā (See)
୪ । (ଧ୍ୱନ୍ୟନୁକରଣ) ଉଚ୍ଚ ପଟ୍ ଶବ୍ଦ—
4 A loud cracking or bursting sound.
ପ୍ରାଦେ (ସମ୍ବଲପୁର)—ବି.—ଗାମୁଛା—Napkin.

ପଟ୍‌କନି—ଦେ କ୍ରି ବିଣ (ଧ୍ୱନ୍ୟନୁକରଣ, ସ ପଟ୍ଟ)—୧ । ପଟ୍ ଶବ୍ଦ
Paṭ-kini କରି, ପଟାପଟ୍, ପଟ୍‌ପଟ୍ (ପଡ଼ିଯିବା)—
पटकवे, पटापटकवे 1. With a snapping sound.
पटकरने, पटसे ୨ । ଉପର୍ଯ୍ୟୁପରି ଅବିଶ୍ରାନ୍ତ—2. In quick succession.
ପଟ୍‌କରି, ପଟ୍‌କରି, ପଟ୍‌କନା, ପଟାକ୍‌କନ୍, ପଟ୍‌ପାଟ, ପଟ୍‌ଦସ୍, ପଟାକ୍‌ଦସ୍, ପଟାଡ୍‌ଦସ୍ } ଅନ୍ୟରୂପ

ପଟ୍‌କୁଟି—ପ୍ରାଦେ (କଟକ) ବି —୧ । ପିଠି—
Paṭ-kuti 1 Back.
୨ । ପିଠି ଆଡ଼—2 Back side.

ପଟ୍‌ନି—ପ୍ରାଦେ. (ସମ୍ବଲପୁର) ବି.—୧ । ଫଲି (ଦେଖ)
Paṭ-ni 1. Phali (See)
୨ । ଅଟୁ ବା ଛପର ଘରର ଛାତରେ ପକାଯିବା ରୁଅ, ଯହିଁ ଉପରେ ମାଟି ବା ଟାଇଲ ଦିଆଯାଏ —2. The beams or rafters of a two-thatched house, on which tiles are fixed.
୩ । ଅଡ଼ି କାଠ (ଦେଖ)—3. Ardi kaṭha (See)

ପଟ୍‌ପଟ୍—ଦେ. ଅ. (ଧ୍ୱନ୍ୟନୁକରଣ) (ସ. ପଟତ୍, ପଟ୍ଟ)—୧ । ଅଠାଳିଆ
Paṭ-paṭ ବା ନାଳୁଆ ପଦାର୍ଥରେ ଘନ ବସ୍ତୁ ଲାଗି ଓ ଛାଡ଼ି
पट पट, पट ଛାଡ଼ି ଘସିହେବାର ଶବ୍ଦ, ପଟ୍ ପଟ୍ ଶବ୍ଦ—
पट 1 The sound of a hard substance rolling (ପଟର ପଟର—ଅନ୍ୟରୂପ) or moving along a gummy substance by coming in contact with it and by being separated from it at times.
୨ । ଦଉଡ଼ି ଆଦି ଜୋରରେ ଛିଣ୍ଡିଯିବା ଶବ୍ଦ—
2. Snapping sound of a rope.

ପଟ୍ (ଧାତୁ)—ସ.—୧ । ବେଷ୍ଟନ କରିବା—
Paṭ (root) 1. To envelop; to surround.
୨ । ଛେଦନ କରିବା—2. To cut.
୩ । ବିଦାରଣ କରିବା—3 To pierce.
୪ । ଗମନ କରିବା—4. To go.

ପଟ—ସ. ବି. (ପଟ୍ ଧାତୁ=ବେଷ୍ଟନ କରିବା+କରଣ. ଅ)—(ତୁଳ. Paṭa ଡା. ପଟ୍ଟଇ)—୧ । ବସ୍ତ୍ର—1 Cloth
୨ । (+କର୍ତ୍ତୃ ଅ) ଯେଉଁ ବସ୍ତ୍ର ବା କାଗଜ ଆଦି ଉପରେ ଛବି ଅଙ୍କା ଯାଏ —2. Ground of a picture; plate; canvas or screen or paper on which a picture is drawn
୩ । ଚିତ୍ରପଟ, ଛବି—3 Picture
ଆପଣ ସେ ଚ ପଟ ପଟକେ ହୋଇଅଛ ଘୁଷ୍ଟ ହେ—
କବିସୂର୍ଯ୍ୟ—କବିତା ।
୪ । ପିଆଳ ଗଛ—4. A timber tree; Buchanania Latifolia.
୫ । ଅଖା, ଘାଲି—5 Canvas, gunny.
୬ । ଛାତ, ଛାଲ—6 Thatch; roof.
୭ । ଗଛର ଛାଲ; ବଲ୍କଲ—7. Bark of a tree.
୮ । ପରଦା—8 Screen.
୯ । ଗଛର ଅଂଶୁମୟ ବଲ୍କଲ—
9 Fibrous bark of a tree
ଦେ. ବି. ( ସ. ପଟ୍ଟ )—୧ । ପଶା ଖେଳରେ ପଶା କାଠିକୁ
दांव ଗଡ଼ାଇଲେ ଯେଉଁ ଦାନ ପଡ଼େ—1 The throw of
पट dice resulting in the turning up of certain points.
୨ । ଦିଗ, ତରଫ, ଆଡ଼—2. Direction; quarter
ସେହି ବନର ଘୋର ପଟ ଯାକ ମାଡ଼ି । କୃଷ୍ଣସିଂହ. ମହାଭାରତ. ବନ ।
୩ । କଦଳୀ ଗଛର ଛାଲ, ପଟୁକା, ବାସୁଙ୍ଗା—3. The fibre of the bark of a plantain tree.
୪ । ଫୁଲ ଗୁନ୍ଥାଯିବାର ପଟୁକା—4. The fibre or thread with which flowers are strung into a garlan d
୫ । ପାର୍ଶ୍ୱ; ପାଖ—5. Side.
ଘୋର ଗଦା ନାଶ ଘୋର ପଟରେ କାଳ
ସୂର୍ଯ୍ୟଙ୍କୁ ଗ୍ରାହି ତପ କଲେ ଧରି ମାଳ । କୃଷ୍ଣସିଂହ. ମହାଭାରତ. ବନ ।
୬ । ବ୍ୟକ୍ତି—6. Person.
୭ । ପକ୍ଷ, ତରଫ—7. Party; side.
ବହୁ ଯୀହାକୁ ରଚ ବାହାପଟ
କହୁ ବ ଦୋଷେ ନୁହଁ ଭାଗ୍ୟ ପଟ । କବିସୂର୍ଯ୍ୟ, କବିତା।
୮ । ଅଖା, ବସ୍ତା; ପଲ୍ଲଣ; ଅଖାରେ ନିର୍ମିତ ମୁଣା—
8. Gunny bag.
୯ । ଦୁଇ ବା ବହୁ ଖଣ୍ଡ ମଧ୍ୟରୁ ଏକ ଖଣ୍ଡ, ଏକ ଗୋଟା—
9. One piece of many or a pair of things.
( ଯଥା—ଏକ ପଟ ଚକ, ପଟେ ବଳଦ, ଏକ ପଟ ନଦ । )
୧୦ । କବାଟର ଏକ ଖଣ୍ଡ—
10. A piece or panel of a door.
୧୧ । ସୁବିଧା—11. Opportunity.
୧୨ । କିଆପଟ, କିଆ ଗଛର ଶିଅ—
12 The aereal root of a screwpine tree.
୧୩ । ଛଣ ପଟ—13. Hemp.
୧୪ । ଥର, ବାର—14. Times.
ଅଗଙ୍କୁ ଅଭୁର ନାହିଁ, ଦୁଇ ଘୋର ପଟ ସହ । ଜଗନ୍ନାଥ, ସମରତରଙ୍ଗ ।
୧୫ । ପଟୁ ( ଦେଖ )—15. Paṭu ( See )
୧୬ । ପ୍ରତିଯୋଗିତା—16. Rivalry; competition.
( ଯଥା—ସେ ମୋ ସଙ୍ଗେ ପଟ ପକାଇ ପାରିବ ନାହିଁ । )

୧୭ । ପ୍ରତିଯୋଗୀ ବା ସହକର୍ମୀମାନଙ୍କ ମଧ୍ୟରେ ସମାନସ୍ଥଳତା—
17 Equality between rivals or calleagues.

୧୮ । ଏକ ସଂଖ୍ୟା, ଗୋଟା—18. Unit; individual.
( ଯଥା—ପଦ୍ମରାଜେ ସ୍ୱହାଙ୍କ ଶାସନରେ ଭଟ୍ଟମିଶ୍ରଙ୍କ ଘରେ ୩ ପଟ ବକ୍ଷ ବାନ୍ଧିଲେ । )

୧୯ । (ସଂ. ପୃଷ୍ଠ) ଦୁଇ ପାଖଥିବା ବସ୍ତୁର ପୃଷ୍ଠ ଭାଗ, ପିଠି—
19. The back side of a double-faced thing.

୨୦ । କୁସ୍ତି କଲାବେଳେ ପହଲ୍ୱାନ୍‌ର ଭୂମିକୁ ମୁହଁ ବା ପେଟ (ଚିତ—ବିପରୀତ) ପାଖ ରହିବା ଅବସ୍ଥିତି—20 The position of a wrestler when he faces downwards and not upwards.

[ ଦ୍ର—ଖେଳାଳୀ ପ୍ରତିଦ୍ୱନ୍ଦ୍ୱୀକୁ ଚିତ କରି ନ ପାରିଲେ ଅର୍ଥାତ୍ ପ୍ରତିଦ୍ୱନ୍ଦ୍ୱୀର ପଟ ହୋଇଥିବା ପର୍ଯ୍ୟନ୍ତ ପ୍ରତିଦ୍ୱନ୍ଦ୍ୱୀ ହାରିଲା ବୋଲି ବୁଝାଯାଏ ନାହିଁ । ]

ଦେ. ବିଣ. ( ସଂ ପଟ )—ଶ୍ରେଷ୍ଠ, ଉତ୍କୃଷ୍ଟ—
Best, excellent.

ଦଶରେ ଲକ୍ଷପଟ ଏ ନନ୍ଦେ କପଟ ବହେ ଅମୂଲ୍ୟ ପଟ ମକୁଟ ।
ଉପେ, ବୈଦେହୀଶବିଳାସ ।

ପ୍ରାଦେ ( ପୁରୀ ) ବି—ନଡ଼ିଆର ସଂଖ୍ୟାବିଶେଷ, ଚୁରି ପଣ ୧୦ ଗଣ୍ଡା ବା ୩୬୦ କଡ଼ା ନଡ଼ିଆ—A unit of 360 cocoanuts.
[ ଦ୍ର—୨ ପଟ = ୧ ଛେଲି = ୯ ପଣ (ନଡ଼ିଆ) ]

ପ୍ରାଦେ., ( ଗଡ଼ଜାତ ) ବି—ଜଙ୍ଗଲରେ ବାଘ୍ୱା ସମ୍ବର ଆଦି ଗଡ଼ୁଥିବା କାଦୁଆ ଭୂମି—Muddy soil where deer and wild hogs wallow.

**ପଟକ**—ସଂ. ବି ( ପଟ୍ ଧାତୁ + କର୍ତ୍ତୃ. ଅକ )—
Paṭaka ୧ । ତମ୍ବୁ, ଶିବିର—1. Tent.
୨ । ସୂତା ଲୁଗା (ହ୍ରି. ଶ )—2. Cotton cloth.
ଦେ. ବି—ଏକପଟ ବା ଗୋଟାମାତ୍ର—
One only; one piece only.

**ପଟ କରିବା**—ଦେ. କ୍ରି—୧ । ପଟକିବା ( ଦେଖ )
Paṭa karibā 1. Paṭakibā ( See )
୨ । (ତୁମ୍ବ ବାଣର) ତୁମ୍ବ କାଠକୁ ସମତଳ ଭାବରେ ଭୂମିଉପରେ ସଂଲଗ୍ନ କରି ସ୍ଥାପନ କରିବା—2. To place the log of a tumba firework horizontally on the ground.

**ପଟକା**—ଦେ. ବି. ( ସଂ. ପଟ୍ଟ )—୧ । କଟି ବସ୍ତ୍ର, କମର ପଟ୍ଟ—
Paṭakā 1. A cloth tied at the waist; belt.
पटका ୨ । କଦଳୀ ଗଛର ଅଂଶୁମୟ ସୂକ୍ଷ୍ମ ବଲ୍କଲ—
2. The fibre of plantain tree.
୩ । ମସ୍ତକରେ ବନ୍ଧା ହେବା ପାଗ—
3. Turban tied round the head.

ବନ୍ଧୁସରେ ଅତ ବୃଦ୍ଧତ ଭର୍ଗ ବର ...
ଚଞ୍ଚଳ ହୋଇଥାଏ ଚର୍ମରେ ଅବୃତ ...

ଏ ସକାଶୁ ସେ ଚର୍ମ ଟେକ କରିଲେଁ
ବାନ୍ଧିଥାନ୍ତି କପାଳେ ପଟକା ଗୋଟିଏ । କୃଷ୍ଣସିଂହ. ମହାଭାରତ. ଦ୍ରୋଣ ।

୪ । ପଟ୍‌କା (ଦେଖ)—4. Paṭ-kā (See)

**ପଟକା(କେ)ଇବା**—ଦେ. କ୍ରି—୧ । ପଟକିବା ( ଦେଖ )
Paṭakā(ke)ibā 1 Paṭakibā ( See )
୨ । ପଟକିବାର ଣିଜନ୍ତ ରୂପ—
2. Causative of Paṭakibā.

**ପଟକାଣିଆ**—ଦେ. ବିଣ—ଦୁଇ ପଟ ବା ଏକ ଯୋଡ଼ା ପଦାର୍ଥ ମଧ୍ୟରୁ
Paṭakāṇiā ଏକ ପଟ ପଦାର୍ଥ ନ ଥିବା ଅବସ୍ଥା ଯୁକ୍ତ—
Wanting one thing out of a pair

**ପଟକା ପଟକି କରିବା**—ଦେ.କ୍ରି—୧ । ବହଲାଇବା, ଭଣ୍ଡାଇବା, ଫୁସୁଲାଇବା—
Paṭakā paṭaki karibā 1. To inveigle.
୨ । ଭୁଲାଇ ଦେବା, ଭଣ୍ଡାଇ କରି ରାଜି କରାଇବା—
2. To persuade a person by sweet words.
୩ । ଖୋସାମତ କରିବା—3 To flatter.

**ପଟକାର**—ସଂ. ବି. ( ପଟ୍ + କୃ ଧାତୁ + କର୍ତ୍ତୃ ଅ )—
Paṭakāra ୧ । ଚିତ୍ରକର—1. Painter.
୨ । ତନ୍ତୁବାୟ—2. Weaver.

**ପଟକିବା**—ଦେ. କ୍ରି— (ସଂ. ପତନ)—୧ । ଅନ୍ୟକୁ ଭୂମିରେ କଚାଡ଼ିବା—
Paṭakibā 1. To dash another on the ground; to
पटकाना throw down on the ground with force.
पटकना ୨ । (ଲକ୍ଷଣାର୍ଥ) କୌଣସି ବ୍ୟକ୍ତିକୁ ଫୁସୁଲାଇ ନିଜର ପକ୍ଷକୁ ଟାଣି ଆଣିବା; ପଟକାଇବା—
2. ( figurative ) To bring a person to one's party by persuation or fraud.

ପଟକ ଦେବା, ପଟକାଇବା, ପଟକେଇବା } ଅନ୍ୟରୂପ

୩ । (ଲକ୍ଷଣାର୍ଥ) କୌଣସି ଦ୍ରବ୍ୟକୁ କଳ କୌଶଳରେ ବିକ୍ରି ଆଦି ଦ୍ୱାରା ଆପଣା ହସ୍ତରୁ ଛଡ଼ାଇ ଦେବା—3. (figurative) To get rid of a thing by hook or crook.
୪ । ଭୂମିରେ (ନିଜର ମୁଣ୍ଡ ଆଦି) ବାଡ଼େଇବା—
4. To strike (one's head) on the ground.
୫ । କୁସ୍ତିରେ ପ୍ରତିଦ୍ୱନ୍ଦ୍ୱୀ ମଲ୍ଲକୁ ଭୂମିରୁ ଟେକି ଭୂମିରେ କଚାଡ଼ି ଦେବା—5. To dash one's adversary wrestler on the ground after making him lose his foothold.

**ପଟଚର**—ସଂ. ବି—(ପଟତ୍ = ଶବ୍ଦାନୁକରଣ + ଚର୍ ଧାତୁ = ଆଚରଣ
Paṭachchara କରିବା + କର୍ତ୍ତୃ. ଅ)—୧ । ଚୋର—1. Thief.
୨ । ଜୀର୍ଣ୍ଣ ବସ୍ତ୍ର—
2. Rag; worn grament; torn cloth.
୩ । ମହାଭାରତ ଓ ପୁରାଣରେ ବର୍ଣ୍ଣିତ ଭାରତର ପ୍ରାଚୀନ ଦେଶବିଶେଷ—3. Name of a country of ancient India.

[ଦ୍ର—ମହାଭାରତରେ ଏ ଦେଶର ଉଲ୍ଲେଖ ଅଛି । କେହି କେହି ଏହାକୁ ପ୍ରାଚୀନ ଚେଦି, କେହି କେହି ମଦ୍ର ଦେଶର ଅଂଶ,

କେହି କେହି ମତ୍ସ୍ୟ ଦେଶର ଦକ୍ଷିଣରେ ଓ ଚେଦି ଦେଶ ନିକଟରେ ଥିବାର କହନ୍ତି—ହି. ଶ ।]

୪ । ଉକ୍ତ ଦେଶର ଅଧିବାସୀ—
4. Name of the people residing in the above country.

**ପଟ୍ଟଣା(ନା)** — ଦେ. ବି (ସଂ. ପତ୍ତନ) - ୧ । ପାଟ୍ଟଣା, ଗ୍ରାମ—
Paṭaṇā(ṇā) 1. Village.
ପାଟ୍ନା ୨ । ବଡ଼ ଗ୍ରାମକୁ ଲାଗିଥିବା କ୍ଷୁଦ୍ର ଗ୍ରାମ—2. A hamlet
**पटना** on the outskirts of a big village.
୩ । ନଗର—3. Town.
(ଯଥା—ବିଶାଖା ପଟ୍ଟଣା)
୪ । ଅନେକ ପାହି ଜମିର ରଇତଙ୍କ ସମ୍ମିଶ୍ରଣରେ ଗଠିତ ଉପନିବେଶ—4. A colony of non-resident tenants.
୫ । (ନାମ) ( ପ୍ରାଚୀନ ସଂସ୍କୃତ ନାମ ପାଟଳିପୁତ୍ର ) ବିହାର ପ୍ରଦେଶାନ୍ତର୍ଗତ ପାଟ୍ଣା ବିଭାଗ, ଜିଲ୍ଲା ଓ ବିହାର ପ୍ରଦେଶର ରାଜଧାନୀ—5 Patna; the name of a town, district and division in the Province of Bihar and Orissa.
[ ଦ୍ର—ପ୍ରାଚୀନ ନାମ 'ପାଟଳୀ ପୁତ୍ର ପତ୍ତନ' ଶବ୍ଦରୁ 'ପାଟଳୀ ପୁତ୍ର' ଲୋପ ପାଇ କେବଳ 'ପତ୍ତନ' ବା 'ପଟ୍ଟଣା' ବାକି ରହି ପାଇଅଛି । ]

**ପଟ୍ଟତନ** — ଦେ. ବି ( ସଂ. ପଟ୍ଟତଳ ବା ପଟ୍ଟାଚ୍ଛାଦନ )—୧ । ନୌକାରେ
Paṭatana ବା ଗାଡ଼ି ଆଦିରେ ସୁବିଧାରୂପେ ବସିବା ବା
ପାଟାତନ ଶୋଇବା ନିମନ୍ତେ ବିଛା ହୋଇଥିବା ପଟା—1. Planks
**तख्ता, पाटरा** spread over a boat or in carts and
ପଟ୍ଟାତନ, ପଟ୍ଟୋତନ } ଅନ୍ୟରୂପ carriages to enable men to sit or lie down at ease.
ପାଟୋନୀ ୨ । ପଟା ବିଛା ହୋଇଥିବା ବଡ଼ ଡଙ୍ଗା—2. A big
**पटेला** country-boat spread over with planks.
( ଯଥା—ଏ ଡଙ୍ଗାରେ ଘୋଡ଼ା, ଗୋରୁ ଓ ଗାଡ଼ି ଆଦିଙ୍କୁ ପାର କରାଯାଏ । )
୩ । ଘର ଆଦିର ତଳରେ ପଟା ବିଛାଇବା —
3. Planking of a floor.

**ପଟ୍ଟତନ କରିବା**—ଦେ. କ୍ରି—ଡଙ୍ଗାରେ ପଟା ବିଛାଇବା—
Paṭatana kariba To spread planks over a boat.
ପାଟାତନ କରା **पटरा बिछाना**

**ପଟ୍ଟ ଧରିବା**—ଦେ. କ୍ରି—୧ । ଏକପକ୍ଷ ପ୍ରତି ଅଯଥା ଆସକ୍ତି ଦେଖାଇବା;
Paṭa dhariba ପକ୍ଷପାତ କରିବା—1. To be partial; to
ପକ୍ଷଧରା **पक्ष लेना** lean to one party.
ପଟ୍ଟ ନେବା, ପଟ୍ଟ ମାଡ଼ିବା } ଅନ୍ୟରୂପ ୨ । ପକ୍ଷ ସମର୍ଥନ କରିବା—2 To take sides; to support a party.

ସାଧିଏ ପଟ୍ଟ ଧରି ଅବଶ୍ୟ କହନ୍ତି
ତହିଁକି ଜାଗରୂକ ଥିବ ନରପତି
କୃଷ୍ଣସିଂହ. ମହାଭା. ଡ-ଶାନ୍ତି ।

୩ । ସାହାଯ୍ୟ କରିବା, ସହାୟତା କରିବା—3 To support.

**ପଟ୍ଟନାୟକ**—ଦେ. ବି (ସଂ. ପଟ୍ଟ ଓ ନାୟକ)—ଉଚ୍ଚବଂଶୀୟ କରଣମାନଙ୍କ
Paṭanāyaka ଉପାଧିବିଶେଷ The family-title of
ପଟ୍ଟନାୟକ, ପଟ୍ଟନାଏକ, ପଟ୍ଟନାହାକ } ଅନ୍ୟରୂପ some high class Karaṇas of Orissa

**ପଟ୍ଟ ପକା(କେ)ଇବା**—ଦେ. କ୍ରି—୧ । ସମକକ୍ଷ ହେବା—
Paṭa pakā(ke)iba **बाजी बाधा** 1. To compete.
**होड़ करना** ୨ । ସମକକ୍ଷ ହେବାକୁ ଯତ୍ନ କରିବା, ପ୍ରତିଯୋଗିତା
(ପଟ୍ଟ ମାରିବା—ଅନ୍ୟରୂପ) 2. To emulate; to vie; to try to be equal.

**ପଟ୍ଟପଟ୍ଟ** — ଦେ. ବିଣ. ( ଏହା ନାଳ ଶବ୍ଦ ପରେ ଯୁକ୍ତ ହୁଏ, ଯଥା—
Paṭapaṭa ନାଳ ପଟ୍ଟପଟ୍ଟ )—ସରସର, (ଲାଳଦ୍ୱାରା) ଦେହ ତମାମ ଆବୃତ—Covered over with ( saliva or slime )
ପଟପଟ ଦେ ଅ. ( ଧ୍ୱନ୍ୟନୁକରଣ )—୧ । ଲାଳାମୟ ମସୃଣ ବସ୍ତୁ
**पटपट** କୌଣସି ଛିଦ୍ରରେ ଉପର୍ଯ୍ୟୁପରି ପଶିବା ଓ ବାହାରିବାବେଳେ ଉତ୍ପନ୍ନ ଶବ୍ଦ—1. The sound produced by a slimy thing being thrust into and brought out from a hole.
୨ । ପଟ୍ଟପାଟ୍ଟ (ଦେଖ) —2. Paṭapāṭa (See)

**ପଟ୍ଟପାଟ୍ଟ**—ଦେ ଅ.( ଧ୍ୱନ୍ୟନୁକରଣ )—୧ । ଦଉଡ଼ି ଛିଣ୍ଡିଯିବାର ଶବ୍ଦ—
Paṭapāṭa 1. Snapping sound.
ପଟପାଟ ୨ । ଉପର୍ଯ୍ୟୁପରି ଠକଠାକ ଶବ୍ଦ କରିବା—
**पटापट, पटापट** 2. Producing repeated snapping
(ପଟ୍ଟପଟ୍ଟ, ପଟ୍ଟପାଟେ, ପଟ୍ଟାପଟ୍ଟ—ଅନ୍ୟରୂପ) sounds.

ତୁମେ ପଟ୍ଟପାଟେ ଛେଦହେଲେ ପିଠିହାଡ—କୃଷ୍ଣସିଂହ. ମହାଭାରତ. ସଭା ।

୫ । ଉପର୍ଯ୍ୟୁପରି—3. In quick succession.

ତା ହସ୍ତ ସ୍ୱରବେ ଧନୁଶର ପିଣ୍ଡି
ପଟ୍ଟପାଟେ ଗଳକେଁ ସୁଗ୍ରୀବ ଗର୍ଜିନ୍ତି—କୃଷ୍ଣସିଂହ. ମହାଭାରତ. ବନ ।

୪ । ( ସଂ. ଝଟିତି ) ଝଟ୍ଟପଟ୍ଟ, ଅତିଶୀଘ୍ର—4. Quickly.

**ପଟ୍ଟବାଦ୍ୟ**—ସଂ. ବି—ଗୀତ ଆଦି ବୋଲା ଯିବାବେଳେ ତାଳ ଦେବା ପାଇଁ
Paṭa bādya ପ୍ରାଚୀନକାଳରେ ବ୍ୟବହୃତ ଏକପ୍ରକାର ଝାଞ୍ଜ ( ହି. ଶବ୍ଦସାଗର )—A kind of cymbals used in ancient times to beat measure during singing

**ପଟ୍ଟ ବାସ** — ସଂ. ବି. ( ମଧ୍ୟପଦଲୋପୀ କର୍ମଧା, ପଟ୍ଟ ନିର୍ମିତ ବାସ )—
Paṭa bāsa ୧ । ବସ୍ତ୍ରଗୃହ, ତମ୍ବୁ; ରାଉଟି—1. Tent.
(ପଟ୍ଟବାସକ—ଅନ୍ୟରୂପ) ୨ । ଚଉଡ଼ା ଧଡ଼ି ଥିବା ପାଟଶାଢ଼ୀ—
2. A broad bordered silk cloth for women.
୩ । ଗନ୍ଧଚୂର୍ଣ୍ଣ; ଫଗୁଚୂର୍ଣ୍ଣ, ସୁଗନ୍ଧ ଅବିର—
3. Scented powder ( which is sprinkled over people in festivals ).
୪ । ପିଠଉ; ବଟା ଚାଉଳ—
4. Rice paste; dough for preparing cake.

୫ । ଲୁଗା ଆଦିକୁ ସୁଗନ୍ଧିତ କରାଯିବା ବସ୍ତୁ ( ହି. ଶ. )—
5 Thing used for perfuming clothes.
୬ । ଲହଙ୍ଗା ( ହି. ଶବ୍ଦସାଗର ) ( ଦେଖ )
6 Lahaṅgā ( See )

**ପଟ ବେଶ୍ମ**—ସଂ ବି. ( ମ. ପ ଲୋ. କର୍ମଧା, ପଟନିର୍ମିତ ବେଶ୍ମ )—
Paṭa beśma ବସ୍ତ୍ରଗୃହ, ତମ୍ବୁ—Tent.

**ପଟଭକ୍ଷ**-ସଂ. ବି—ଦେଖିବା ବିଷୟରେ ଆଖିକୁ ସାହାଯ୍ୟ କରିବା ପାଇଁ
Paṭabhāksha ପ୍ରାଚୀନକାଳରେ ବ୍ୟବହୃତ ଯନ୍ତ୍ରବିଶେଷ ( ହି. ଶବ୍ଦସାଗର )—A kind of optical instrument used in ancient India.

**ପଟମ୍**—ଦେ. ବି ( ସଂ. ପତ୍ତନ, ଏହା ଅନ୍ୟ ଶବ୍ଦ ପରେ ଲାଗି ସ୍ଥାନ ବା
Paṭam ନଗରମାନଙ୍କ ନାମରୂପେ ବ୍ୟବହୃତ ହୁଏ )—ନଗର—
**ପାଟିନା ପଟନା** Town.
ପଟଣ, ପାଟଣା, ପଟନ, ପଟନା, ପଟ୍ଟମ୍, ପଟ୍ଟନ, ପଟାମ, ପାଟମା, ପଟନା } ଅନ୍ୟରୂପ ( ଯଥା—ବିଶାଖାପଟମ୍ ବା ବିଶାଖାପଟଣ, ମଛଲିପଟମ୍ । )

**ପଟ ମଞ୍ଜରୀ**—ସଂ. ବି—ରାଗିଣୀବିଶେଷ—
Paṭa mañjari Name of a secondary musical air.
[ ଦ୍ର—ଏହା ସମ୍ପୂର୍ଣ୍ଣ ଜାତିର ଏକ ଶୁଦ୍ଧ ରାଗିଣୀ । ଏହା ପଞ୍ଚମ ରାଗର, ମତାନ୍ତରେ ଶ୍ରୀରାଗର ଓ ମତାନ୍ତରରେ ହିଣ୍ଡୋଲରାଗର ପତ୍ନୀରୂପେ କଳ୍ପିତ । ଦିନର ୬ ଦଣ୍ଡଠାରୁ ୧୦ ଦଣ୍ଡ ପର୍ଯ୍ୟନ୍ତ ଏହା ଗେୟ, କେହି କେହି କହନ୍ତି ଯେ ନଟ ଓ ମାଳଶ୍ରୀ ରାଗଦ୍ୱୟର ମିଳନରେ ଏହା ଉତ୍ପନ୍ନ—ହି. ଶ. । ]

**ପଟ ମଣ୍ଡପ**—ସଂ. ବି.(ମ. ପ. ଲୋ. କର୍ମଧା, ପଟ ବା ବସ୍ତ୍ର ନିର୍ମିତ ମଣ୍ଡପ)—
Paṭa maṇḍapa ତମ୍ବୁ, ରାଉଟି, ବସ୍ତ୍ରଗୃହ—Tent.
( ପଟ୍ଟଶାଳା—ଅନ୍ୟରୂପ )

**ପଟମସୁ**—ପ୍ରାଦେ. ( ଗଡ଼ଜାତ ) ବି—ଦେବଦାରୁଜାତୀୟ ବନ୍ୟବୃକ୍ଷ-
Paṭamasu ବିଶେଷ—Pinus Ceraceoides. ( Haines).
**କୁଡୁମୀ**

**ପଟମୁ**—ଦେ. ବି (ସଂ. ପତ୍ତନ=ନଗର, ପତ୍ତନବାସୀ)—କୁମୁଟୀମାନଙ୍କ
Paṭamu ଉପାଧିବିଶେଷ—A family title of a trading caste.

**ପଟର ପଟର୍**—ଦେ. ଅ (ଧ୍ୱନ୍ୟନୁକରଣ)—ଚଟି ଯୋତା ମାଡ଼ି ଚଞ୍ଚଳ
Paṭara paṭara ଚାଲିଯିବାର ଶବ୍ଦ—The sound
**ଚଟର ପଟର** produced by briskly walking with slippers on.
[ଦ୍ର—ଗୋଡ଼ର ଗୋଇଠି ଚଟିଜୋତାର ତଳାର ଉପର ଅଂଶରେ ବାରଂବାର ବାଜି ଏହି ଶବ୍ଦ ଉତ୍ପନ୍ନ ହୁଏ । ]

**ପଟଳ**—ସଂ ବି (ପଟ୍ ଧାତୁ=ଭେଦନ, ବିଦାରଣ, ଆଚ୍ଛାଦନ+କରଣେ.
Paṭala ଅଲ)—୧ । ଅଂଶ; ବିଭାଗ—1. Part; division.
(ପଟଳକ—ଅନ୍ୟରୂପ) ୨ । ଗ୍ରନ୍ଥର ପରିଚ୍ଛେଦ—2 Chapter of a Tantra.
୩ । ବେଦାଂଶ—3. A portion of the Bedas.
୪ । ଧାନ୍ୟାଦି ରଖିବାର ଆଧାର—
4. A receptacle for storing corn.
୫ । ଚାନ୍ଦୁଆ—5 Canopy.
୬ । ବହୁ – 6 Many; multitude; assemblage.
୭ । ରାଶି, ସ୍ତୂପ—7 Heap; conglomeration; mass.
ମଧୁ ଲକ୍ଷ୍ୟ ପ୍ରାପ୍ତେ କପଟ ପଟଳ ତ । ଉକ୍ତ, ପ୍ରେମସୁଧାନିଧି ।
୮ । ଛାତ, ଚାଳ—8 Roof; thatch of a house.
୯ । ପେଟରା—9 A wooden box or trunk.
୧୦ । ତିଳକ, ଚିତା—10. A mark of sandal paste put on the forehead.
୧୧ । ଗ୍ରନ୍ଥର ଅଂଶ—11. Section of a book
୧୨ । ନେତ୍ରରୋଗବିଶେଷ, ପରଳ, ମୋତିଆ ବିନ୍ଦୁ—12. Film in the eye; cataract; pearl in the eye.
୧୩ । ଓଢ଼ଣା, ଘୋଡ଼ଣ—13. A veil or cover.
୧୪ । ଟୋକେଇ—14 A basket.
୧୫ । ସିନ୍ଦୁକ, ବାକ୍ସ—15 A chest; a box.
୧୬ । ରାଜାଙ୍କ ସଙ୍ଗରେ ଥିବା ଲୋକର ବାକର, ପରିଚର, ଅନୁଚରବର୍ଗ—
16 Train; retinue.
୧୭ । ଗଛ, ବୃନ୍ତ—17. Tree; stalk.
୧୮ । ପରଦା (ହି. ଶ)—18 Screen.
୧୯ । ପରସ୍ତ, ଭାଙ୍ଗ (ହି. ଶ)—19. Layer; fold.
୨୦ । ପହଲ, ପାର୍ଶ୍ୱ, ବସ୍ତୁର ଭିନ୍ନ ଭିନ୍ନ ପାଖ (ହି. ଶ.)—
20. Face or side of a thing.
୨୧ । କାଠର ପଟା (ହି ଶ)—21 Wooden plank.
ଦେ ବି—ଚିଲିକାରେ ମିଳୁଥିବା ଏକପ୍ରକାର ମାଛ—
A kind of fish found in Chilkā.
ପ୍ରାଦେ (ଆଠମଲ୍ଲିକ) ବି.—ଛଞ୍ଚିନ୍ଦା, ଛଚିନ୍ଦା—
Snake gourd.

**ପଟଳପ୍ରାନ୍ତ**—ସଂ. ବି. (ଷଷ୍ଠୀ ତତ୍, ପଟଳ+ପ୍ରାନ୍ତ)—୧ । ଚାଳର ଶେଷ-
Paṭala prānta ଭାଗ, ଓଳି—1. The eaves of a
(ପଟଳାନ୍ତ—ଅନ୍ୟରୂପ) thatch.
୨ । ଛାତର ଶେଷଭାଗ—2. The edge of a roof.
୩ । ଆଚ୍ଛାଦନ ବସ୍ତ୍ରର ଶେଷଭାଗ —3. The end or hem of a covering cloth.

**ପଟଲ**—ପ୍ରାଦେ (ଭଦ୍ରକ) ବି.—ପଟତଳ ଡଙ୍ଗା—A boat covered
Paṭalā over with planks; a boat with a planked deck.

**ପଟଳୀ**—ସଂ. ବି. (ପଟଳ+ଈ)—୧ । ସମୂହ; ଗଣ—
Paṭali Many; assemblage; collection.
ଲୁଅ ନଟ ପଟଳୀ ମୁକୁଟ ହେ । କବିସୂର୍ଯ୍ୟ, ସଙ୍ଗୀତ ।
୨ । ବେଦାଂଶ—2. A portion of Beda.
୩ । ତନ୍ତ୍ରର ପରିଚ୍ଛେଦ—3. A chapter of Tantra.
୪ । ସଞ୍ଚୟ—4. Saving.
୫ । ବାକ୍ସ -5 Box.
୬ । ପେଟରା—6. Trunk.
୭ । ଛପର, ଛାତ (ହି. ଶ )—7 Thatch; roof.

**ପଟହ**—ସଂ. ବି (ପଟ୍=ଫଟଶବ୍ଦ+ହା ଧାତୁ=ତ୍ୟାଗ କରିବା+କର୍ତ୍ତୃ. ଅ, Paṭaha ଯେ ପଟ୍ ପଟ୍ ଶବ୍ଦ କରେ)—୧ । ନାଗରା, ଢୋଲ; ଡାଙ୍ଗି—1. Drum; kettle drum.

୨ । ରଣ ଡଙ୍କା—2. War-drum.

୩ । (ଅଧିକରଣ. ଅ) ଆଡ଼ମ୍ବର—3 Ado.

୪ । ମାରଣ, ବଧ—4 Killing; murder.

୫ । କର୍ଣ୍ଣ ପଟହ, କାନ ଭିତରର ଝିଲ୍ଲି, ଯହିଁରେ ଶବ୍ଦ ଯାଇଁ ବାଜେ—5 Ear-drum; tympanum; the drum-like membrane of the ear on which external sounds strike, tympanic membrane of the ear.

**ପଟା(ଟ୍ଟା)**—ଦେ. ବି (ସଂ. ପଟ୍ଟ)—୧ । କାଠର ପତଳା ଲମ୍ବଖଣ୍ଡ— Paṭā(ttā) 1. Plate; wooden plank.

ପାଟା ୨ । ଅଧିକାର ପତ୍ର, ସନନ୍ଦ (ପୂର୍ବେ ଧାତୁ ଫଳକ ଉପରେ ଏହା **पटा, पटड़ा, पटरा** ଅଙ୍କିତ ହେଉଥିଲା)—2. Sanad; a deed of gift or authority.

୩ । ପାଢ଼ିଆ—3 Strip.

୪ । ଲମ୍ବା ଓ ସରୁଆ ଭୂଖଣ୍ଡ—4. A long and narrow strip of land; a narrow belt of land.

୫ । ଚଉଡ଼ା ରେଖା—5 A broad line.

୬ । ଓଢ଼ଣୀ; ଗୁଦଡ଼—Sheet; scarf.

୭ । (ସଂ. ପଟ୍ଟ) ଜମିଦାର ରୟତଙ୍କୁ ରୟତି ଭୂମି ଦେବାର ସନନ୍ଦ ପତ୍ର—7. Lease of rayati holding given by the landlord.

ପଟା ଦେଇ ପରଜାଙ୍କୁ ବୁଝଗୁଣ ନେବେ—ପ୍ରାଚୀ ଶାଗଳୁ ଉକ୍ତି ଗୀତା ।

୮ । ଲମ୍ବା ଓ ଚଉଡ଼ା ଦାଗ—
8. A long broad line; a stripe.
(ଯଥା—ତା ଦେହରେ ନାଲି ପଟା ବସିଛି ।)

୯ । ଥର—9. Time.
(ଯଥା—ଏ ଖେଳରେ ଗୁର ପଟା ମଇ ଦେଲିଣି ।)

୧୦ । ବସ୍ତ୍ରାଦି—10. Clothes.
(ଯଥା—ଲୁଗାପଟା; କନାପଟା ।)

୧୧ । ରଙ୍ଗ ବା ନାଲି ପାଟଲୁଗା—11 Red silk cloth.

ଦୁଇ ସେନା ଯାବର ବସନେ ଉକତେ
ଦୁଉକ୍ରେ ପଟାପର ବଶିଲେ ସେ କେତେ । କୃଷ୍ଣସିଂହ ମହାଭାରତ ଦ୍ରୋଣ ।

୧୨ । ଏକପ୍ରକାର ଲୁଣି ମାଛ—
12. A kind of sea fish.

ଦେ. ବିଣ—ପଟା ପରି ସମତୁଲ ବା ଚେପଟା—
Flat or level like a plank.

(ଯଥା—ଟ୍ରେଗ ଓ ବୟସ ଯୋଗୁଁ ତା ହାତହାତ ପଟା ହୋଇ ଗଲାଣି ।)

ଦେ. ବି—ତରବାରି ଖେଳ ଶିଖିବାପାଇଁ ବ୍ୟବହୃତ ଅଦାରୁଆ **पटा** ଖଣ୍ଡା—Foil; blunt sword used in fencing.

ପ୍ରାଦେ. (ଗଡ଼ଜାତ) ବି—ମଲ୍ଲକ୍ରୀଡ଼ାରେ ଆତ୍ମରକ୍ଷା ବା ଶତ୍ରୁକୁ ଆକ୍ରମଣ କରିବା ପାଇଁ ମଲ୍ଲର ଦୁଇ ହାତରେ ଧରୁଥିବା ଯଷ୍ଟିଦ୍ୱୟ—A pair of sticks held by both hands for defence and attack in fencing.

ପ୍ରାଦେ (ସମ୍ବଲପୁର) ବି—୧ । ମଇ (ଦେଖ)—
1 Mai (See)

୨ । ସଙ୍ଗା, ଭାଡ଼—2. Scaffolding used as a loft.

**ପଟା ଅଟୁ**—ଦେ. ବି—ପଟା ଭାଡ଼ (ଦେଖ)—
Paṭā āṭu Paṭā bhāṛi (See)

**ପଟାଇ**—ଦେ ବିଣ. (କଟକିଆ)—୧ । ପଟ୍ଟାସଂକ୍ରାନ୍ତ—
Paṭāi 1. Appertaining to a lease.
ପାଟାଈ ୨ । ପଟ୍ଟାଦ୍ୱାରା ରଇତଙ୍କୁ ଦତ୍ତ—2. Leased out.
**पट्टाई** (ଯଥା—ପଟାଇ ଜମି; ପଟାଇ ସ୍ୱତ୍ୱ ।)

**ପଟା(ଟେ)ଇବା**—ଦେ. କ୍ରି (ସଂ. ପୁଟ୍ ଧାତୁ=ମିଳନ)—
Paṭā(ṭe)ibā ୧ । ଧନ ବା ବସ୍ତୁଆଦି ଦାଖଲ କରିବା—
ପଟାଇଦେବା, ପଟେଇଦେବା } ଅନ୍ୟରୂପ 1 To pay or deliver money or things.
ପଟାନ (ଯଥା—ଖଜଣାଖାନାରେ ମୁଁ ଲାଟବନ୍ଦୀ ଖଜଣା ପଟାଇ
**पटाना** ଦେଲି ।)

୨ । ମିଷ୍ଟବାକ୍ୟ ବା ପ୍ରଲୋଭନଦ୍ୱାରା କୌଣସି ବ୍ୟକ୍ତିଙ୍କୁ କରାୟତ୍ତ କରିବା; ପଟକାଇବା—2. To win over a person by oily words; to seduce.

୩ । ସମ୍ମତ କରାଇବା—3. To make one agree.

**ପଟାଏ**—ଦେ ଅ—ଥରେ—Once.
Paṭāe ଏଥରକ ଦୃଢାକୁ ଅଚ୍ଛା କରି ପଟାଏ ଶିକ୍ଷାଦେବାକୁ ହେବ ।
ଏକବାର **एकदफा** . ଉକାସ. ଗୌରୁଙ୍କ ।

**ପଟାଏତ**—ପ୍ରାଦେ (ଗଡ଼ଜାତ) ବି. (ସଂ. ପଟ୍ଟପୁତ୍ରକ)—
Paṭāeta ରାଜାଙ୍କର ମଝିଆଁ ପୁଅ ବା ଜ୍ୟେଷ୍ଠପୁତ୍ରଙ୍କ ତଳପୁଅ—
Younger prince; a Raja's second son.
(ପଟାଇତ, ପଟେଇତ, ପଟ୍ଟାଇତ, ପଟ୍ଟାଏତ, ପଟ୍ଟାଯତ, ପଟ୍ଟାୟିତ, ପଟ୍ଟାୟେତ୍—ଅନ୍ୟରୂପ)

**ପଟାକ୍**—ଦେ ଅ. (ଧ୍ୱନ୍ୟନୁକରଣ)—୧ । ପଟ୍ ପଟ୍ ଶବ୍ଦ, ଦୁଇଟି କୋମଳ
Paṭāk ପଦାର୍ଥର ବସ୍ତୁର ଉପର୍ଯ୍ୟୁପରି ଆଘାତ ଜନିତ ଶବ୍ଦ—
ପଟାଡ, ପଟାକ୍(ଡ଼)ଦ(ଧ)ସ୍ } ଅନ୍ୟରୂପ 1. With a plattering sound.
ପଟାଂ ୨ । କୋରଡ଼ା ମାରିବାର ଶବ୍ଦ—
**पटाक्** 2. Smacking sound of whipping.

**ପଟା କରି ଦେବା**—ଦେ. କ୍ରି—ରଇତଙ୍କୁ ଜମି ପଟା ଦେବା—
Paṭā kari debā To lease out a land.
ପାଟା ଦେଓଆ **पट्टा देना**

**ପଟା କରିବା**—ଦେ. କ୍ରି—ପଟ୍ଟାଦ୍ୱାରା ଜମି ଗ୍ରହଣ କରିବା; ପଟ୍ଟାନେବା—
Paṭā karibā To take a piece of land on lease.
ପାଟାକବା **पट्टालेना** (ପଟା କରିନେବା—ଅନ୍ୟରୂପ)

**ପଟା କବୁଲିୟତ୍**—ଦେ. ବି. (କଟକିଆ; ବିପରୀତ ସନ୍ଧତରଶବ୍ଦଦ୍ୱୟ)
Paṭā kabuliyat (ସଂ. ପଟ୍ଟା+ପା. କବୁଲିୟତ୍)—ଜମିଦାର

ପଟ୍ଟା କବୁଲିୟତ୍ — ରଏତଙ୍କୁ ଲେଖିଦେବା ରଇତଜମିର ସନନ୍ଦ
पट्टा कबुलियत — ଓ ରଇତ ଜମିଦାରଙ୍କୁ ଲେଖିଦେବା ସ୍ୱୀକାର
ପଟା କବଲତ
ପଟା କବୁଲତ
ପଟା କବୁଲ୍ୟତ
ପଟା କବୁଲଅତ } ଅନ୍ୟରୂପ — ପତ୍ର—Lease and counterpart of a lease; Patta and Kabuliat

**ପଟା କବୁଲ୍ୟତ ଆଦାନ ପ୍ରଦାନ**—ଦେ. ବ (କଚେରୀ)—ରଏତଭୂମି
Pata kabulıyata ádāna pradāna ପ୍ରଜାଙ୍କୁ ଦିଆଯିବା
ପାଟ୍ଟା ଓ କବୁଲିଯତେବ ଆଦାନପ୍ରଦାନ ସମୟରେ ଜମିଦାର ଓ ପ୍ରଜା
पट्टा कबुलियतोंका आदान प्रदान ମଧ୍ୟରେ ପଟା ଓ କବୁଲ୍ୟତର
ଦିଆ ନିଆ—The exchange of Patta and Kabuliat between the landlord and the tenant on the occassion of granting a lease.

**ପଟା ଖେଳ**—ପ୍ରାଦେ. (ଗଡ଼ଜାତ) ବ—୧। ଦୁଇ ହାତରେ ଯଷ୍ଟିଦ୍ୱୟ
Pata khela ବା ଅଦାଢ଼ୁଆ ଖଣ୍ଡାଦ୍ୱୟ ଏକ ସମୟରେ ବୁଲାଇବା
ରୂପ ମଲ୍ଲ କ୍ରୀଡ଼ା—1. Athletic sport consisting of braudishing two sticks or foils simultaneously with both hands.
୨। ଦୁଇ ମଲ୍ଲଙ୍କର ଅଦାଢ଼ୁଆ ଖଣ୍ଡା ଦ୍ୱାରା କ୍ରୀଡ଼ା—
2 Fencing with foils.

**ପଟା ଗଜ**—ଦେ. ବ—ରାଜମିସ୍ତ୍ରୀମାନେ ଯେଉଁ ପଟା ଖଣ୍ଡ ଦ୍ୱାରା
Pata gaja ପଲସ୍ତରାକୁ ସମତଳ କରନ୍ତି—A long and thin plank of wood used by masons to plane a plastering

**ପଟା ଗ୍ରହୀତା**—ଦେ. ବ. (କଚେରୀ, ସଂ. ପଟ୍ଟ+ଗ୍ରହୀତା)—
Pata grahıtā ଯେ ପଟା ନେଇ ଥାଏ—A lessee; lease-
ପାଟ୍ଟା ଗ୍ରହୀତା पट्टादार holder.

**ପଟାଙ୍ଗିର**—ଦେ. ବ (ବଣିଆ ଶବ୍ଦ)—ଏକପ୍ରକାର ମୁନିଆ ଚିମୁଟା—
Patāngir A kind of pointed tongs.

**ପଟା ଚାନ୍ଦୁଆ**—ଦେ. ବ—କାଠ ପଟାରେ ତିଆରି ହେବା ଚାନ୍ଦୁଆ—
Pata chāndua An awning made of planks.

**ପଟା ଜଗତି** ଦେ. ବ—ଯେଉଁ ଜଗତି ବା ଦୁଇ ଘରର ଛାତ ପଟାରେ
Pata jagatı ତିଆରି ହୋଇଥାଏ—A room thatched with planks.

**ପଟା ଝାଉଁ**—ଦେ. ବ—ଏକ ପ୍ରକାର ଝାଉଁ ଗଛ—
Pata jhāun Thurja Orientalıs (tree)
[ ଦ୍ର—ଏହାର ପତ୍ର ଚେପ୍ଟା ଓ ଏହା ଚିରହରିତ୍। ]

**ପଟା ଟପ୍**—ଦେ. କ୍ରି. ବଣ. (ଧ୍ୱନ୍ୟନୁକରଣ)—
Pata tap ୧। ପଟ୍‌ପାଟ୍, ପଟ୍ ପଟ୍ ଶବ୍ଦ କରି; ଟପଟପ ଶବ୍ଦ କରି—
पटापट 1 With a plattering sound
पटापट ୨। କ୍ରମାଗତ ପଟ୍ ପାଟ୍ ଶବ୍ଦ କରି—2. With
(ପଟାପଟ୍—ଅନ୍ୟରୂପ) repeated clattering sounds.
୩। ଅତି ଶୀଘ୍ର; ଟପାଟପ; ଝଟ ପଟ—
3 Quickly; in quick succession.

ଅଗ ଦୁଇ ଲଙ୍ଗର ପଛ ଲଢାଇ ପକେଇ ଦେଲ, ପଟାପଟ୍ ଛିଡ଼ିଗଲା।
ଫକୀରମୋହନ. ଛମାଣ ଆଠଗୁଣ୍ଠ।

୪। ବାରଂବାର—4. Repeatedly

**ପଟା ଟପ**—ଦେ. ବ. ଓ ଅ (ସଂ. ପଟ୍ଟ ଓ ଆଟୋପ)—
Pata tapa ଆଡ଼ମ୍ବର, ଘନଘଟା—Ado; pomp; ostentation; grandeour

**ପଟା ଟୋପ**—ଦେ ବ ଓ ଅ—୧। ପଟା ଟପ (ଦେଖ)
Pata topa 1. Pata tapa (See)
ସଭାରେ କଥା ପଡ଼ିଥିଲେ ଗୁରୁ କୋପ
କରି କହୁବାକୁ ଅସନ୍ତି ପଟା ଟୋପ। କୃଷ୍ଣସିଂ. ମହାଭାରତ ବନ୍ଦୀ।
୨। ଘରର ଚଟାଣ ତଳେ ଧନ ଆଦି ଲୁଚାଇ ରଖିବା ପାଇଁ ଖୋଳା ଯାଇଥିବା ଗର୍ତ୍ତ (ଯାହା ଉପରେ ପଟା ପଡ଼ିଥାଏ)—
2 A hole dug in the floor of a house to conceal things, over which planks are laid
[ ଦ୍ର—ଲୋକେ ପୂର୍ବକାଳରେ ଘର ତଳେ ଗାତ ଖୋଳି ସେଥିରେ ଧନ ଆଦି ଲୁଚାଇ ରଖୁଥିଲେ ଓ ସେ ଗାତର ମୁହଁକୁ ପଟା ଦ୍ୱାରା ଘୋଡ଼ାଇ ରଖୁଥିଲେ। ଧନ ଆଦି କାଢିବାର ଦରକାର ହେଲେ ପଟାକୁ କାଢୁଥିଲେ। ଅନ୍ୟ ସମୟରେ ଉକ୍ତ ଟୋପରର ମୁହଁ ପଟାରେ ବନ୍ଦ ରହୁଥିଲା ଓ ବାହାରର ଲୋକେ ଏହାକୁ ଠଉରାଇ ପାରୁ ନ ଥିଲେ।]

**ପଟା ତାଲିକା**—ଦେ ବ—ଜମିଦାରଙ୍କର ରଏତମାନଙ୍କଠାରୁ ଅସୁଲ ହେବା
Pata talıkā ଖଜଣାର ତାଲିକା—Rent roll; list of assests realisable from rayats of an estate.

**ପଟା ଦାତା**—ଦେ. ବ. (କଚେରୀ)—ଯେ ପଟା ଦେଇ ଥାଏ—
Pata dāta ପାଟ୍ଟାଦାତା पट्टा देने वाला A lessor.
(ପଟାଗ୍ରହୀତା—ବିପରୀତ)

**ପଟାଦାର**—ଦେ. ବ. (କଚେରୀ)—ପଟା ଗ୍ରହୀତା (ଦେଖ)
Patadāra Pata grahita (See)
ପାଟ୍ଟାଦାବ पट्टादार

**ପଟା ଦେବା**—ଦେ. କ୍ରି—ପଟ୍ଟା ଦ୍ୱାରା ରଏତଙ୍କୁ ଜମି ବନ୍ଦି କରିବା—
Pata deba To lease out a land to a tenant.
ପାଟ୍ଟା ଦେଓଆ पट्टा देना

**ପଟା ଦୋଳି**—ଦେ. ବ. (ସଂ. ପଟ୍ଟ+ଦୋଳ)—
Pata dolı ପଟା ଲାଗିଥିବା ଦୋଳି—A swing with a planked seat.

**ପଟା ନେବା**—ଦେ. କ୍ରି—ପଟା ଦ୍ୱାରା ଜମିକୁ ଗ୍ରହଣ କରିବା—
Pata neba To take a land on lease.
ପାଟ୍ଟା ନଓଆ पट्टा लेना

**ପଟାନ୍ତର**—ଦେ. ବ. (ସଂ. ପଟ୍ଟ=ଚିତ୍ରପଟ+ଅନ୍ତର=ଅନ୍ୟ, ଏଥିର
Patāntara ଅକ୍ଷରିକ ଅର୍ଥ, ଏକ ବସ୍ତୁର ଚିତ୍ରର ଅନ୍ୟ ଚିତ୍ର)—
୧। ତୁଳନା, ଉପମା—1. Comparision.
ଦେଖ ଏ ବେହୁଣୀ ଭୂମର
କୋଛ କନ୍ଦର୍ପ ପଟାନ୍ତର। ଜଗନ୍ନାଥ, ଭାଗବତ।
୨। ସମତା—2. Similitude; similarity.

୩ । ଉପମା ଯୋଗ୍ୟ ବସ୍ତୁ—
3. A thing worthy of comparision
ଭୁମ୍ଭେ ସେ ତାଙ୍କ ପଟାନ୍ତର । ଉପେନ୍ଦ୍ର, ପ୍ରେମପଞ୍ଚାମୃତ ।

**ପଟା ପଟା**—ଦେ. ଅ – ଲମ୍ବ ଲମ୍ବ ଦାଗ ବା ରେଖାଯୁକ୍ତ ହୋଇ—
Paṭā paṭa With long stripes; striped.
(ପଟାଳୁ ପଟା—ଅନ୍ୟରୂପ)

**ପଟାପଟି**—ଦେ ବି—ଫୁସୁଲା ଫୁସୁଲି, ଭଣ୍ଡାଇବା, ଫୁସୁଲାଇବା—
Paṭāpaṭi Gaining over; seduction; inveigling.
পটাপটী पटापटी
ଏହୁ ରୂପେ ଇନ୍ଦ୍ର, କରନ୍ତେ ପଟାପଟି
ମନେ ସବୁ ପ୍ରକଟ ହୋଇ ପିଟାପିଟି । କୃଷ୍ଣସିଂହ, ମହାଭାରତ ଶାନ୍ତି ।

ପ୍ରାଦେ. (ଗଞ୍ଜାମ) ବି—କଳହ—Quarrel

**ପଟା ପଟ**—ଦେ.,ବି ( ସଂ. ପଟ୍ଟା ଓ ପତ୍ର )—
Paṭā paṭa ୧ । ସନନ୍ଦ—1. A royal grant.
পাট্টা ୨ । ଦାନପତ୍ର—2 Deed of gift
पट्टा ୩ । ଅଧିକାର ପତ୍ର—2. Title deed.

**ପଟା ପଥର**—ଦେ ବି. ( ସଂ. ପଟ୍ଟ+ପ୍ରସ୍ତର )—
Paṭā pathara ପଥରର ଚଉଡ଼ା ଓ ପତଳା ଖଣ୍ଡ—A slab
পাটা পাথর पटिया of stone.

**ପଟା ପୋଶ** – ପ୍ରାଦେ (ଗଡ଼ଜାତ) ବିଣ—ଗୁହାଳିଆ (ଦେଖ)
Paṭā posa Guhāḷiā (See)

**ପଟା ବଦଳ(ଳି)**—ଦେ. ବି—ମିଆଦ ପଟାର କାର୍ଯ୍ୟକାଳ ସମସ୍ତ ପୂରିଯିବା
Paṭa badaḷa(ḷi) ପରେ ଜମିଦାରଙ୍କର ପ୍ରଜାଙ୍କୁ ନୂଆ ପଟା
ଲେଖିଦେବା—Renewal of a lease.

**ପଟା ବାଜ୍**—ବୈଦେ. ବିଣ—ଯେ ଲୋକ ଗଞ୍ଜପା ଆଦି କୌଣସି ପ୍ରକାର
Paṭābāj ଖେଳରେ ମାତେ—( A person ) Addicted to
(ପଟାବାଜୀ—ବି) playing at card.

**ପଟା ବାଡ଼**—ପ୍ରାଦେ. (ସମ୍ବଲପୁର) ବି—ଗ୍ରାମବାସୀମାନେ ପ୍ରତିଦିନ ସମ-
Paṭā bāṛa ବେତ ହେବା ପାଇଁ ବା ସଭା କରିବା ପାଇଁ ଗଛ
(ପଟାବାନ୍ଧ—ଅନ୍ୟରୂପ) ମୂଳେ ବନ୍ଧା ହୋଇଥିବା ମାଟିର ପିଣ୍ଡି—
An earthen platform at the foot of a tree where the villagers assemble daily to hold meetings.

**ପଟା ଭାଡ଼ି**—ଦେ. ବି—ପଟା ଅଟୁ ; କାଠ ପଟାରେ ଛାଆର ହୋଇଥିବା
Pata bhāṛi ଭାଡ଼ି ବା ଘରର ଭିତର ଛାତ—An inner
roof of a thatched house made of planks.

**ପଟା ମଇ**—ଦେ. ବି—କାଦୁଆ କ୍ଷେତକୁ ସମତୁଲ କରିବା ନିମନ୍ତେ
Paṭā mai ବ୍ୟବହୃତ ଏକ ପ୍ରକାର ମଇ—A harrow or
small ladder drawn over a muddy field to make it smooth.

**ପଟା ମଣ୍ଡୋଇ**—ଦେ ବି. (ସଂ. ପଟ୍ଟ+ମଣ୍ଡପ ) — ଯେଉଁ ମଣ୍ଡପର ଉପରେ
Paṭā maṇḍoi ଛାତତଳେ ପଟା ବସ୍ତ ହୋଇଥାଏ—A pavillion laid over with planks below the roof.
(ପଟା ମୁଣ୍ଡେଇ—ଅନ୍ୟରୂପ)
ପଟା ମଣ୍ଡୋଇ ଭୂମି ଭୂମି ଭିଜାଇ ସ୍ତମ୍ଭଯୁକ୍ତ କାଠ ମଣ୍ଡପ ।
ପ୍ରାଚୀ—ରହସ୍ୟ ମଞ୍ଜରୀ ।

**ପଟା ମାରିବା**—ପ୍ରାଦେ (ସମ୍ବଲପୁର) କ୍ରି.—ମଇ ଦ୍ୱାରା କର୍ଷିତ କ୍ଷେତ୍ରର ଟେଳା
Paṭā māribā ଆଦି ଭାଙ୍ଗି ଭୂମିକୁ ସମତଳ କରିବା, ମଇ ଦେବା-
To level up a ploughed field with a ladder.

**ପାଟା ମୁଣ୍ଡାଇ** – ଦେ. ବି (ନାମ —୧ । କଟକ ଜିଲ୍ଲାରେ ଥିବା ପ୍ରାଚୀନ
Paṭāmuṇḍāi ବନ୍ଦରବିଶେଷ—1. An ancient port in the Cuttack district.
୨ । କେନ୍ଦ୍ରାପଡ଼ା ସବ୍‌ଡିଭିଜନରେ ଥିବା ଆଧୁନିକ ଥାନା ଓ ଗ୍ରାମ-
ବିଶେଷ—2. Name of a Police Station and village in the Kendrapara subdivision of Cuttack.
୩ । ପଟାମଣ୍ଡୋଇ (ଦେଖ)—3 Paṭāmaṇḍoi (See)

**ପଟାମୁଣ୍ଡି**—ଦେ. ବି – ବାନା ପଟା ଖେଳ, ଖେଳ ପଟା ଦ୍ୱାରା ଏକପ୍ରକାର
Paṭā muṇḍi ଖେଳ—A kind of game with foils;
wrestling with foils.
ପଦୁଣ୍ଡି ଧାଡି ଧାଉଡ଼ି ପଟାମୁଣ୍ଡି ଖେଳ – ଗୌରୀଚରଣ; ନୃସିଂହ ପୁରାଣ ।

**ପଟାମ୍ବର**—ସଂ. ବି (ପଟ୍ଟ+ଅମ୍ବର) -- ପାଟ ଶାଢ଼ୀ, ପଟ୍ଟ ବସ୍ତ୍ର—
Paṭāmbara Silk cloth.
ପୀତ ପଟାମ୍ବର କାଛନି
ଘ.ନ ବ ଛବିର ଦାମିନୀ – ଉପେନ୍ଦ୍ର, ପ୍ରେମପଞ୍ଚ ମୃତ ।

**ପଟାଲମ**—ବୈଦେ. ବି—( ଇଂ ପ୍ଲାଟୁନ୍, ବାଟାଲିଅନ୍ = ସେନାଦଳ; ଫା.
Paṭālam ବଟେଲିନ୍ )—ପଲଟନ, ସିପାହୀ—Army; a
पल्टन body of soldiers; platoon; batallion.
পল্টন ଛତ୍ରକରୁ ନାକେ ଲୁଣ୍ଠନ ପଟାଲମ ଯେବେ ଅସିବ,
ଗାଁ ଲୋକେ ଯେ ବନ୍ଧା ଛନ୍ଦା ହେବେ ଏହା ନିଃସନ୍ଦେହ ।
ଫକୀର ମୋହନ – ଛମାଣ ଅଠଗୁଣ୍ଠ ।

**ପଟାଳି** — ଦେ. ବି (ସଂ. ପଟଲ) — ୧ । ସାଗ ବାଡ଼ିଆ—A plot or
Paṭāḷi square of land prepared for growing kitchen-vegetables.
মাড
बेड़ा ୨ । ନଦୀରେ ଭାସି ଆସିବାର ଉପଯୋଗୀ ଏକତ୍ର ଆବଦ୍ଧ କାଠ
ବା ବାଉଁଶର ସମଷ୍ଟି—A raft of bamboos or
logs; a float of logs or bamboos for transportation; a fleet of logs.

**ପଟାଳିଆ**—ଦେ. ବିଣ—୧ । ପଟାପରି ପତଳା ବା ଚେପଟା—
Paṭāḷia 1. Flat like a plank
୨ । ପଟାହାରିଆ (ଦେଖ)—2 Paṭāhāriā (See)

**ପଟାଳି ଗୁଡ଼ିବା**—ଦେ. କ୍ରି.—କାଠ ବା ବାଉଁଶକୁ ଏକତ୍ର ପଟାଳି ବାନ୍ଧି
Paṭāḷichchhāṛibā ନଦୀ ଆଦିରେ ଭସାଇ ଦେବା—To
raft; to transport logs etc by forming a raft.

**ପଟାଳି ପଡ଼ିବା**—ଦେ. କ୍ରି.—(ଲକ୍ଷଣାର୍ଥ) ସଂକ୍ରାମକ ଜ୍ୱର ବା ଓଲାଉଠା
Paṭāḷi paṛibā ଦ୍ୱାରା ଏକ ସମୟରେ ମୃତ ହୋଇ ଥିବା
ପଟାଳି ପରି ପଡ଼ିବା;
ପଟାଳି ପରି ଶୋଇବା } ଅନ୍ୟରୂପ] ଲୋକଙ୍କର ଶବ କାଠ ପଟାଳି ପରି ଲଗାଲଗି ହୋଇ
ପଟାଳି ପରି ମରିବା ଏକସ୍ଥାନରେ ପଡ଼ିବା—
पटरा होजाना (figurative) To lie down like logs in a raft (said of people dying in large numbers).

**ପଟାଳିବା**—ଦେ. କ୍ରି.—(ଭୁଲ. ଓ. ପୋଟାଳିବା) – ସମ୍ବର ଯୁଗ୍ମ (ମିଥୁନ)
Paṭāḷibā ଲୁଣି ବା କାଦୁଅ ମାଟିରେ ଗଡ଼ାଗଡ଼ି ହେବା—
(a couple of Sambhar deer) To wallow together in a muddy ground.

[ଦ୍ର—ସମ୍ବର ମିଥୁନ ଜୋଡ଼ା ପଡ଼ିବା ଋତୁରେ ଏହିପରି ଗଡ଼ାଗଡ଼ି ହେବାର ଦେଖାଯାଏ ।]

**ପଟାଳି ବାନ୍ଧିବା**—ଦେ. କ୍ରି.—୧ । ଗୁଡ଼ିଏ କାଠ ବାଉଁଶକୁ ଏକତ୍ର କରି
Paṭāḷi bāndhibā ପଟାଳି କରିବା—1. To make logs into a raft; to raft.

୨ । ଶାଗ ଆଦି ଲଗାଇବା କାମନ୍ତେ କ୍ଷେତକୁ ଛୋଟ ଛୋଟ ପଟାଳିରେ ପରିଣତ କରିବା ବା କ୍ଷୁଦ୍ର ସୀମାବଦ୍ଧ ଭୂଖଣ୍ଡରେ ବିଭକ୍ତ କରିବା—2 To make a field into small plots or blades for growing kitchen-vegetables.

**ପଟା ଶିମ୍ବ**— ଦେ. ବି.— ଏକପ୍ରକାର ଶିମ—A kind of bean.
Paṭā śimba [ଦ୍ର—ଏଥିର ଛୁଇଁ ପଟାଳିଆ ବା ଚେପ୍ଟା ଓ
(ପଟାଶିମ—ଅନ୍ୟରୂପ) ଚଉଡ଼ା ।]

**ପଟାସ୍**— ବୈଦେ. ବି. (ଇଂ. ପଟାସ୍)—ବୃକ୍ଷର ପାଉଁଶରୁ ଉତ୍ପନ୍ନ ଏକ
Paṭās ପ୍ରକାର କ୍ଷାର—Potash
(ପୋଟାସ୍—ଅନ୍ୟରୂପ) पटास **पटास**

**ପଟା ସଲାମି**—ଦେ. ବି.—(ଫ. ପଟ୍ଟା ଓ ପା. ସଲାମୀ)—ରଇତ
Pāṭā salāmi ଜମିଦାରଠାରୁ ଜମି ପଟା ନେବା ବେଳେ ଯେଉଁ
पाटा सेलामी ଟଙ୍କା ଭେଟି ଦିଏ—Premium paid to a landlord by a rayat for a lease.
**पटा सलामी**

**ପଟାସିଅମ୍**—ବୈଦେ. ବି ( ଇଂ. ପୋଟାସିଅମ୍ )—
Paṭāsiam ଏକ ପ୍ରକାର ଧାତବ ମୌଳିକ ପଦାର୍ଥ—
पटासिअम **पटासिअम** Potassium.

**ପଟା ହାଡ଼**—ପ୍ରାଦେ (ବାଲେଶ୍ୱର) ବି.—ପଲାଣ ବାନ୍ଧିବା ବେଳେ
Paṭā hāṛa ବଳଦର ପେଟତଳ ଦେଇ ବନ୍ଧା ହୋଇଥିବା ଦଉଡ଼ିର
(ପଟାହାଡ଼—ଅନ୍ୟରୂପ) ଗୋଛ—A bunch of strings passed below the belly of a pack-bullock.

**ପଟାହାରିଆ**—ଦେ. ବିଣ.—ଯାହା ଦେହରେ ପଟା ପଟା ବା ଚଉଡ଼ା ଓ
Paṭā hāriā ଲମ୍ବ ଗାରମାନ ଥାଏ—Striped.
**धारीदार**

**ପଟାହାରିଆ ବାଘ** - ଦେ. ବି. (ସ ନାମ. ଶାର୍ଦ୍ଦୂଳ)—ଯେଉଁ ବାଘର
Paṭāhāriā bāgha ଦେହଯାକ ପଟା ପଟା ହୋଇଥିବା କଳାଦାଗ-
गोबाघ **सेर** ମାନ ଥାଏ—Striped tiger; Felis Tigris.
ପଟାହାରିଆ ମହାବଳ, ପଟାରିଆ ମହାବଳ, ପଟାଳିଆ ବାଘ, ପଟାଳିଆ ମହାବଳ } ଅନ୍ୟରୂପ

**ପଟି**—ସ ବି. (ପଟ୍ ଧାତୁ = ବେଷ୍ଟନ କରିବା + ଇ)—୧ । ବସ୍ତ୍ରବିଶେଷ—
Paṭi 1. A kind of cloth.

୨ । ପଲ୍ଲୀ; ପଡ଼ା—
2. Hamlet; quarter of a town or village.

୩ । ସମ ବ୍ୟବସାୟୀମାନଙ୍କର ଦୋକାନ ଶ୍ରେଣୀ—3 A row of shops vending the same commodity.

पाटी ଦେ. ବି. (ଫ. ପଟ୍ଟ, ପଟୀ ଲମ୍ବା ଫାଳି)—୧ । ଛୋଟ ଚିତ୍ରପଟ—
**पटी** 1 A small picture.
(ପଟ୍ଟି—ଅନ୍ୟରୂପ) ୨ । ପାଲ, କେରେପାଲ—
2. Gunny; tarpaulin.
୩ । ଛୋଟ ପଟା—3. A small plank or plate.
୪ । ପଟା—4. Strip; plank, plate.
୫ । ପଟା ପଟା ଦାଗ—5. Stripe.
୬ । ଅଳ୍ପ ଚଉଡ଼ା ଲମ୍ବା ଭୂଖଣ୍ଡ—
6. A long & narrow strip of land
୭ । ତାଳ ଖଜୁରି ଆଦି ପତ୍ରରେ ବୁଣା ହୋଇଥିବା ବିଛଣା ବା ଆସନ—7 A mat made of palm leaves.
(ଯଥା—ଶୀତଳପଟୀ, ଖଜୁରି ପଟୀ)
୮ । ଶ୍ରେଣୀ; ଧାଡ଼ି—1. Row.
୯ । ବଣ୍ଟାରେ କୌଣସି ପକ୍ଷର ହିଂସାରେ ପଡ଼ିଥିବା ଲମ୍ବ ଭୂଖଣ୍ଡ; ସିଲ୍—9. A long strip alloted to a party during partition; a cosharer's particular allotment.
୧୦ । କ୍ଷତ ଉପରେ ଔଷଧ ପ୍ରଲେପ ଦେଇ ତହିଁ ଉପରେ ସ୍ଥାପିତ ବସ୍ତ୍ର ଖଣ୍ଡ—10 Poultice; bandage; a rag covering a wound rubbed with ointments
୧୧ । ଚିରା ଲୁଗାରେ ସିଆଁ ହେବା ତାଳି—
11. A patch of cloth patched over a hole.
୧୨ ଛଳ, ଛଳନା—
12. Feigning; pretence; fraud.
୧୩ । ଜମିଦାରଙ୍କ ଅଧୀନ ଏକପ୍ରକାର ମଧ୍ୟ ସ୍ୱତ୍ୱ ବିଶିଷ୍ଟ ଭୂମି—
13. An under tenure.
୧୪ । ପିଛୁଡ଼ା—14. Glance; wink.
୧୫ । ଲମ୍ବ ଓ ଅଳ୍ପ ଚଉଡ଼ା ଲୁଗାର ଖଣ୍ଡ—
15. A long & narrow strip of cloth

ପ୍ରାଦେ. (ସମ୍ବଲପୁର) ବି—୧ । ବଣ୍ଟା ଆଇନ୍ ଅନୁସାରେ ସରକାରଙ୍କ ଦ୍ୱାରା ବଣ୍ଟା ହେବା ଭୂସମ୍ପତ୍ତି ମଧ୍ୟରୁ ଯେଉଁ ଏକତ୍ର ସଂଲଗ୍ନ ଅଂଶ ଜଣେ ହିଂସାଦାରଙ୍କୁ ଦିଆଯାଏ—
1 A compact block alloted to one cosharer in a partition by Government.
୨ । କ୍ଷେତ କିଆରିର ଅଂଶ—
2. Part of a field of corn.
ପ୍ରାଦେ. (ବସ୍ତର). ବି—କର, ଖଜଣା—Tax; rent.

**ପଟିଆ**—ଦେ. ବି—୧ । ପଟାଦ୍ୱାରା ଏକପ୍ରକାର ଖେଳ—
Paṭiā A kind of game with bats or toils

୨ । କଟକ ଜିଲ୍ଲାର ଗୋଟିଏ ଲାଖେରାଜ ଜମି—2. Name of a revenue-free estate in the Cuttack district.

୩ । ଏକପ୍ରକାର ମୋଟ ଧାନ—3 Name of a coarse kind of paddy.

ଦେ ବିଣ—୧ । ଯେ ପକ୍ଷ ନିଏ—1. Partisan; siding with one party.

୨ । ସହାୟକ—2. Supporting, helping; propping up.

୩ । ପାର୍ଶ୍ୱରେ ଥିବା—3 Pertaining to a side.

[ଦ୍ର—ଏହା ଅନ୍ୟ ଶବ୍ଦ ସଙ୍ଗେ ଲାଗେ, ଯଥା—କଡ଼ପଟିଆ; ପଛପଟିଆ, ଡାହାଣପଟିଆ ।]

୪ । ପଟିକିଆ (ଦେଖ)—4. Paṭikiā (See)

ପ୍ରାଦେ. (ସମ୍ବଲପୁର) ବି (ସଂ. ପଟ୍ଟ)—୧ । ଚଟେଇ, ମସିଣା- (ପଟିସ୍ରା—ଅନ୍ୟରୂପ) 1 Mat.

୨ । ଖଜୁରି ପଟି—2. Mat made of date leaves.

୩ । ବୁଣିଡ଼ା, ଚଲେଇ—3 Bamboo-matting.

ପ୍ରାଦେ (ବାଲେଶ୍ୱର) ବି—ପଟାଚଲ ଡଙ୍ଗା—A boat floored with wooden planks.

**ପଟିଆମ**—ପ୍ରାଦେ. (ଗଡ଼ଜାତ) ବି—କାପ, କର୍ଣ୍ଣାଳଙ୍କାରବିଶେଷ—
Patiāma Name of a ear-ornament.

**ପଟିଆ ମୂଷା**—ପ୍ରାଦେ (ସମ୍ବଲପୁର) ବି—ଗୁଳୁଆ ମୂଷା—
Patiā mūshā Rats frequenting thatches.

**ପଟିଆ ହେବା**- ଦେ କ୍ରି—କୌଣସି ବ୍ୟକ୍ତିର ପକ୍ଷ ସମର୍ଥନ କରିବା—
Patiā hebā To take up or support the cause or side of a person.
(ପଟିଆ ବାହାରିବା— ଅନ୍ୟରୂପ)

**ପଟିକା**—ସଂ ବି-(ପଟ+ସ୍ୱାର୍ଥେ କ+ସ୍ତ୍ରୀ. ଆ)—୧ । ପଟି (ଦେଖ)
Patikā Paṭi (See)

୨ । ବୁଣା ଲୁଗା—2. Woven cloth. (Apte)

**ପଟିକିଆ**—ଦେ. ବିଣ—୧ । ଦୁଇଟି ବା ଯୋଡ଼ା ମଧ୍ୟରୁ ଗୋଟିକିଆ ହୋଇ ରହିବା—1. Being one left out of a pair.
Paṭikiā.

ପଟିଆ, ପଟକିଆ, ପଟିକା } ଅନ୍ୟରୂପ — ୨ । ପଟକାଣିଆ, ଏକାକୀ, ଗୋଟିକିଆ—2. Single; singular.

**ପଟିଦାର**—ପ୍ରାଦେ. (ସମ୍ବଲପୁର) ବି—୧ । ପଟ୍ଟି ନାମକ ମଧ୍ୟସ୍ୱତ୍ୱର ଅଧିକାରୀ ବ୍ୟକ୍ତି—1 An undertenant.
Paṭidār

पटीदार ୨ । କ୍ଷୁଦ୍ର ଜମିଦାର—2. A small zamindar.

पट्टीदार ୩ । ଲମ୍ବା ଭୂମିର ଅଧିକାରୀ—2 Owner of a long strip of land.

(ପଟ୍ଟିଦାର—ଅନ୍ୟରୂପ)

**ପଟି ଦେବା**—ଦେ. କ୍ରି—୧ । ଧପ୍ପା ମାରିବା, ଧପାଇବା—
Paṭi debā 1. To win a thing fraudulently or slyly; to defraud.
पटी देओआ

पटी देना ୨ । ଛଳନା କରିବା—2. To feign.

(ପଟି ମାରିବା—ଅନ୍ୟରୂପ) ୩ । କ୍ଷତ ଆଦିର ପ୍ରଲେପ ଉପରେ କନା ମାରିବା—3. To apply poultice or bandage over a wound.

୪ । କନାରେ ତାଳି ପକାଇବା—4. To patch up.

**ପଟି ପକା(କେ)ଇବା**—ଦେ କ୍ରି—ଚିରା ଲୁଗାରେ ତାଳି ଦେବା—
Pati pakā(ke)ibā To put patches on a torn cloth.

**ପଟିବା**—ଦେ. କ୍ରି (ସଂ. ପୁଟ ଧାତୁ ମିଳନେ)—
Patibā ୧ । ରାଜି ହେବା; ମନର ମେଳ ହେବା, ଏକମତ ହେବା—
पटी 2 To be of one mind; to agree.
पटना

(ଯଥା—ତୁମ ସଙ୍ଗେ ମୋର ପଟିବ ନାହିଁ ।)

୨ । ମେଳ ଖାଇବା, ଯୋଡ଼ି ଖାଇବା—2. To suit.

୩ । ଉଦ୍ଦେଶ୍ୟର ଅନୁକୂଳ ହେବା—3. To suit one's purpose.

ମୁଁ ଦେବମାନଙ୍କ ଭୂଲକ୍ଷି କହ କାହିଁ ପଟିବ ନାହିଁ ।
ଫକୀରମୋହନ ଚ୍ୟବନ ଅପରାଧ ।

୪ । ଖାପ ଖାଇବା—4. To tally; to coincide.

୫ । ମନୋମତ ହେବା—5 To meet one's choice.

(ଯଥା—ଏ ଲୁଗାର ଭାଉ ନ ପଟିବାରୁ ମୁଁ କିଣିଲି ନାହିଁ ।)

**ପଟିବାଜ୍**—ଦେ ବିଣ-୧ । ଯେ କୌଶଳ ବା ଛଳନା ଦ୍ୱାରା କାର୍ଯ୍ୟ ହାସଲ କରେ, କୌଶଳୀ—
Patibāj
पटीवाज 1. Ingeneous; feigning; sly.

पटेबाज ୨ । ଲମ୍ପଟ—2 Lecherous; adulterous.

(ପଟ୍ଟିବାଜ୍—ଅନ୍ୟରୂପ) [ପଟ(ଟ୍ଟି)ବାଜୀ - ବିଶେଷ୍ୟ]

**ପଟିମା**—ସଂ. ବି. (ପଟୁ+ଭାବାର୍ଥେ ଇମନ୍)—୧ । ପଟୁତା—
Paṭimā 1. Dexterity; cleverness.

୨ । ଖଟା ପଣ—2. Acidity; sourness. (Apte)

**ପଟି ଯିବା**—ଦେ କ୍ରି—୧ । (ଦୁଇ ଜଣଙ୍କ କଳି ବା ବିବାଦ) ମେଣ୍ଟିଯିବା-
Paṭi jibā 1 To be settled (said of a quarrel or dispute).
पटे जाओआ

पटजाना ୨ । ଅନ୍ୟର କଥାରେ ବଶୀଭୂତ ହେବା—2. To be won over by another; to be inveigled.

(ଯଥା—ହାକିମ ମୋ କଥାରେ ପଟି ଗଲେଣି ।)

**ପଟିଷ୍ଠ**—ସଂ. ବିଣ. ପୁଂ (ପଟୁ+ଅତିଶଯ୍ୟାର୍ଥେ ଇଷ୍ଠ)—
Paṭishṭha ପଟୁତମ; ଖୁବ୍ ପଟୁ—Very dexterous; very expert.

**ପଟୀ**—ସଂ. ବି (ପଟ ଧାତୁ+ଇ)—ପଟି (ଦେଖ)
Paṭi Paṭi (See)

ଦେ. ଓ ପ୍ରାଦେ. ବି—ପଟି (ଦେଖ)—Paṭi (See)

**ପଟୀ ମାଫ**—ପ୍ରାଦେ. (ବସ୍ତର) ବିଣ—ନିଷ୍କର (ଜମି)—
Paṭi māpha Rent-free (holding).

**ପଟୀୟାନ୍**—ସଂ. ବିଣ. ପୁଂ (ପଟୁ+ଅତିଶଯ୍ୟାର୍ଥେ. ଈୟସ, ୧ମା. ୧ବ.)—
Paṭiyān ପଟୁତର, ଦୁଇ ଜଣଙ୍କ ମଧ୍ୟରେ ବେଶି ପଟୁ—
(ପଟୀୟସୀ—ସ୍ତ୍ରୀ) More dexterous.

**ପଟୀର**—ସଂ. ବି (ପଟ୍ ଧାତୁ ଗମନ କରିବା+ଅଧିକରଣେ ଈର)—
Paṭira ୧ । କ୍ଷେତ୍ର—1. Field.

୨ । (+ଭୃଚ ଭିର) ଉଚ୍ଚତା—2 Height; eminence.
୩ । ପେଣ୍ଡୁ—3. A ball to play with
୪ । ଚନ୍ଦନ—4. Sandal.
୫ । ମେଘ—5. Cloud
୬ । କାମଦେବ—6 Cupid.
୭ । ଉଦର—7 Belly.
୮ । ମୂଳା—8. Radish.
୯ । ଖଦିର—9. Catechu.
୧୦ । (+କର୍ତ୍ତୃ ଭିର) ଚାଲୁଣି—10. Seive.
୧୧ । ଆମବାତ—11. Rheumatism. (Apte).
୧୨ । ଖର୍ଦ୍ଦି—12. Catarrh (Apte).
ସଂ ବିଣ - ୧ । ସୁନ୍ଦର—1 Beautiful. (Apte).
୨ । ଉଚ୍ଚ—2 High. (Apte).
୩ । ଡେଙ୍ଗା—3 Tall.

**ପଟୁ**—ସଂ ବିଣ. (ପାଟ ଧାତୁ = ଦୀପ୍ତି ପାଇବା + କର୍ତ୍ତୃ. ଉ)—
Patu ୧ । ନିପୁଣ—1. Expert, dexterous; skilful; proficient
ପଟୁ } ସ୍ତ୍ରୀ
ପଟ୍ଵୀ } ୨ । ସମର୍ଥ—2. Able.
୩ । ଆରୋଗ, ସୁସ୍ଥ—3 Healthy; sound.
୪ । ଚତୁର—4. Clever.
୫ । ଧୂର୍ତ୍ତ—5 Cunning; sly; roguish.
ପଟୁତା } ବି
ପଟୁତ୍ୱ } ୬ । ଉଷ୍ଣ—6. Warm.
୭ । ଉଜ୍ଜ୍ୱଳ—7 Bright.
୮ । ତୀକ୍ଷ୍ଣବୁଦ୍ଧି—8. Sharp; smart.
୯ । ଶକ୍ତ, ସବଳ—9 Strong.
୧୦ । ପ୍ରସ୍ଫୁଟିତ—10. Blown; expanded.
୧୧ । ନିଷ୍ଠୁର—11. Cruel.
୧୨ । ଅତ୍ୟଧିକ—12. Violent; intense. (Apte).
୧୩ । ତୀକ୍ଷ୍ଣ ସ୍ୱରଯୁକ୍ତ—13. Shrill; sharp sounding.
୧୪ । ବାକପଟୁ—14. Eloquent, talkative.
ସଂ. ବି—୧ । କଲରା—1. Memordica Charantia (a bitter fruit).
୨ । ପଟୋଳ—2. Trichosanthes Dioeca (an edible fruit).
୩ । ଛତ୍ରାକ; ଛତୁ—3 Mushroom.
୪ । ଲବଣ—4. Salt.
ଦେ. ବି—୧ । (ସଂ. ପତ୍ ଧାତୁ)—ନଦୀବଢ଼ିରେ ପାଣିରେ ଗୋଳ ହୋଇ ଆସି ଭୂମିରେ ପଡ଼ିଥିବା ପଙ୍କ ଓ କାଦୁଅ ମାଟିର ସ୍ତର—1. Silt; alluvial deposit.
ପଲି
रेत
୨ । ମଳ, ମଇଳା—2. Dirt.
ପଟ୍ଟୁ ୩ । (ସଂ. ପଟ୍ଟ)—ଏକପ୍ରକାର ମୋଟ ପଶମ ଲୁଗା—
ପଟ୍ଟୁ 3. Worsted; coarse wollen stuff.
(ପଟ୍ଟୁ—ଅନ୍ୟରୂପ) ଦେ. ବିଣ—୧ । ଚେମଡ଼ା—
1. Tenacious.

୨ । କୋଚଟ, ମଇଳା—2. Dirty; filthy
୩ । ପଟୁମାଟି ଯୁକ୍ତ—3. Alluvial.

**ପଟୁଆ**—ଦେ. ବିଣ—୧ । ପଟୁମାଟି ଯୁକ୍ତ—1 Alluvial.
Patuā ୨ । କୋଚଟ, ମଇଳା—2. Dirty.
୩ । ଚେମଡ଼ା—3. Tenacious.
୪ । ଯେ ପକ୍ଷ ଧରିଥାଏ—4. Partisan; avowing the cause of one party.
୫ । ଏକ ପାଖକୁ ଆଉଜି ଥିବା—
5. Leaning to a side.
ଦେ ବି—୧ । ଦୁଧ ବା ଦହି ମାଠିଆ—
1. Milk or butter jug or pitcher.
[ ଦ୍ର—ଏହା ମାଠିଆଠାରୁ ଛୋଟ ଓ ଠେକିଠାରୁ ବଡ଼ । ]
୨ । ଛୋଟ ଡଙ୍ଗା—2. Small country boat.
୩ । କଦଳୀପଟୁକା—3. The fibre of plantain tree
ପ୍ରାଦେ. (ଗଡ଼ଜାତ) ବି—ଏକଜାତୀୟ କଣ୍ଟାଳିଆ ଗଛ—
A thorny plant.
[ ଦ୍ର—ଏହାର ଫଳ କମଳା ପରି କିନ୍ତୁ ଅଖାଦ୍ୟ । ]
ପ୍ରାଦେ. (ବାଲେଶ୍ୱର) ବି—କଦଳୀଗଛର କଞ୍ଚା କାଣ୍ଡର ଖଣ୍ଡିତ ଅଂଶ, କଦଳୀ ଘୋଡ଼ା—A piece cut from the trunk of a plantain tree.

**ପଟୁଆର**—ଦେ. ବି—୧ । ନୃତ୍ୟ ବାଦ୍ୟାଦିସହ ଶୋଭାଯାତ୍ରା—
Patuāra 1, Ceremonial procession attended with music and dancing
ପଟୁଆରି }
ପଟୋଆର } ଅନ୍ୟରୂପ ( ଯଥା—ଓଲକଣା ମେଳଣକୁ ଯିବା ସମୟରେ
ପଟୋଆରି } ଭଦ୍ରେଶ୍ୱରଙ୍କର ପଟୁଆର ସମସ୍ତଙ୍କର ଚିତ୍ତ ହରଣ
शोभायात्रा ठाट, जुलूस କରେ ।)
୨ । ପଟୁଆରରେ ଯାଉଥିବା ଲୋକେ, ପାଇକଦଳ—
2. Retinue accompanying a procession

ପଟୁଆରେ ରହି ଅଛନ୍ତି ପାଇକେ
ଫରି ଖଣ୍ଡା ଧରିଣ ଯାଉଛନ୍ତି ଥୋକେ । କୃଷ୍ଣସିଂ ହ. ମହାଭାରତ ଆଦି ।

ପ୍ରାଦେ. (ପୁରୀ) ବି—ଚନ୍ଦନଯାତ୍ରାରେ ଗୃହରୁ ଜଗନ୍ନାଥଙ୍କ ବିଜେ-ପ୍ରତିମା ମଦନମୋହନ ବିମାନରେ ଫେରି ଆସିଲାବେଳେ ସ୍ଥାନେ ସ୍ଥାନେ ରହି ରହି ପାର୍ଶ୍ୱସ୍ଥ ଘରର ପିଣ୍ଡାରେ ଦିଆଯିବା ଭୋଗ ଗ୍ରହଣ କରି ଧୀରେ ଧୀରେ ଗତି କରିବାବେଳେ ନୃତ୍ୟ, ଗୀତ, କୀର୍ତ୍ତନ ଆଦି ହେଉଥିବା ଶୋଭାଯାତ୍ରା—The very slowly marching procession of the idol Madanamohana (of Puri) while returning from the boat during the Chandanajātrā festival.

**ପଟୁଆର କରିବା**—ଦେ. କ୍ରି—ନୃତ୍ୟ ବାଦ୍ୟାଦି ସମଭିବ୍ୟାହାରରେ ଶୋଭା-
Patuāra karibā ଯାତ୍ରା କରିବା—To go in a procession accompanied with music and dancing.

ଲକ୍ଷ ଲକ୍ଷ ବେଢ଼ି ଗୁମର ପଡ଼ୁଥିବ
ପଟୁଆର କରି ମୋ ନଗରକୁ ଯିବ । କୃଷ୍ଣସିଂ ହ. ମହାଭାରତ ଆଦି ।

**ପଟୁଆରି**—ଦେ ବି—୧ । ପଟୁଆର (ଦେଖ)—
Paṭuārı 1. Patuāra (See)
পাটোয়ারি ୨ । (ସଂ. ପଟ୍ଟବାରକ, ହି. ପଟ୍‌ବାରୀ)—ଗ୍ରାମର ରାଜସ୍ୱ
**पटवारी** ସଂକ୍ରାନ୍ତ କାଗଜ ପତ୍ର ଓ ହିସାବ ରଖିବା
(ପଟୋଆରି—ଅନ୍ୟରୂପ) କର୍ମଚାରିବିଶେଷ—2. A village officer in charge of revenue papers; village accountant.
୩ । ଅମିନ, ଗ୍ରାମସ୍ଥ ସରକାରୀ ମାପ କର୍ମଚାରୀ—
3 A village surveyor.

**ପଟୁଆରି ଜାଗିରି**—ଦେ. ବି—ପଟୁଆରିମାନଙ୍କୁ ଦରମା ପରିବର୍ତ୍ତେ ଦଆ-
Paṭuārı jāgırı ଯାଇଥିବା ଭୂମି—Service land granted
পাটোয়ারি যাএগীর **पटवारी जायगीर** to a Paṭuāri

**ପଟୁକ**—ସଂ. ବି. (ପଟୁ+ସ୍ୱାର୍ଥେ. କ)—ପଟୋଳ—An edible fruit
Paṭuka and its creeper; Trichosanthes Dioeca.

**ପଟୁକା**—ଦେ. ବି ( ସଂ. ପଟ୍ଟକ )—
Paṭukā ୧ । ଅଣ୍ଟାରେ ଭିଡ଼ିବା ଲମ୍ବବସ୍ତ୍ର ଖଣ୍ଡ, କଟିବନ୍ଧ, ପେଟୀ—
পটুকা **पटका** 1. Belt; girdle, sash.
পাটুয়া **रेस** ୨ । କଦଳୀ ଗଛର ପଟ—
পাগড়ী 2. Fibre of plantain plant.
**पगड़ी** ୩ । ପଗଡ଼ି—3. Turban.

ସେଷଣି ଭଠି ମଣ୍ଡେ ପଟୁକା ବାନ୍ଧିଲ
ଅଗ ଆଗ ପଛ ଆଡ଼କୁ ଦୋଷି ଦେଲ । କୃଷ୍ଣସିଂହ, ମହାଭାରତ ଦ୍ରୋଣ ।

**ପଟୁତା**—ସଂ. ବି. ( ପଟୁ+ଭାବାର୍ଥେ. ତା )—
Paṭutā ୧ । ଦକ୍ଷତା—1. Dexterity.
(ପଟୁତ୍ୱ—ଅନ୍ୟରୂପ) ୨ । ଚତୁରତା—2. Cleverness; skilfulness.

**ପଟୁ ପଡ଼ିବା**—ଦେ. ବି—ଜମି ଉପରେ ପଟୁମାଟିର ସ୍ତର ବିସ୍ତୃତ ହେବା—
Paṭu paṛıbā Deposit of silt on a land after
পলিপড়া **रेत जमना** flood.
(ପଟୁ ବସିବା, ପଟୁ ଜମିବା—ଅନ୍ୟରୂପ)

**ପଟୁ ବଉଳ**—ବି. (ବୈଦ୍ୟକ)—ଏକ ପ୍ରକାର ବନ୍ୟଗଛ—
Paṭu baula A kind of wild tree.
[ଦ୍ର—କୌଣସି ଅଙ୍ଗ ଶସ୍ତ୍ର ଦ୍ୱାରା ଛିନ୍ନ ହେଲେ ଏହି ଗଛର ଛେଲି ବାଟି ଛିନ୍ନ ଅଙ୍ଗରେ ଲେପନ କରନ୍ତି । ଦ୍ରବ୍ୟଗୁଣ. କଳ୍ପଦ୍ରୁମ ]

**ପଟେ**—ଦେ. ବି—୧ । ଏକ ପଟ ମାତ୍ର, ଏକ ଗୋଟି ମାତ୍ର—
Paṭe 1. One only.
ବାଦ୍ୟ ନାଦ ଛଳେ ବୋଲେ ଲଗା ଲଗା ଅଛି ପଟେ କାହିଁ ହନ ଯେ ।
ଭଞ୍ଜ, ବୈଦେହୀଶବିଳାସ ।
୨ । ଯୋଡ଼ାକ ମଧ୍ୟରୁ ଗୋଟିଏ—2. One of a pair.
ପଟେ ଶଙ୍ଖ ବହି ଭୂମିରେ ଥାନ ଲୁଚି
ସ୍ୱଇଚ୍ଛାରେ ମହା ସୁଖକୁ ଜଣ ଲୁଚି । କୃଷ୍ଣସିଂହ, ମହାଭାରତ ଶାନ୍ତି ।
୩ । ସମକକ୍ଷ ଲୋକ—3. One's equal.
ଦେ. କ୍ରି. ବିଣ—ଦିଗରେ, ଆଡ଼ରେ; ପାଖେ; ପାଖରେ; ପାର୍ଶ୍ୱରେ—On a side.
ସହସ୍ର ଦଶ ହାତ ଲୋଟେ ରହି ପଟେ ।
କୃଷ୍ଣସିଂହ. ମହାଭାରତ, ସଭା ।

**ପଟେରକ**—ସଂ. ବି—ପାଣି କୂଳେ ଜନ୍ମିବା ଏକ ପ୍ରକାର ତୃଣ, ପରୁଡ଼ି
Pateraka ସନ୍ନୁରି—A kind of reed
ସଂ. ନାମ—ପଟେରକ, ଗୁନ୍ଦ୍ର, ରିକ୍ତ, ଶସ୍ୟ, ଶିବ, ଶୃଙ୍ଗବେରାଭ-ମୂଳକ, ଏରକା
সান্তবা, হোগলা
**पटेर, गोँज पटेर**
[ ଦ୍ର—ଏହାର ପତ୍ର ଏକ ଇଞ୍ଚ ଚଉଡ଼ା ଓ ୩/୪ ଫୁଟ ଲମ୍ବ ଏବଂ ମୋଟା, ଏହି ପତ୍ରକୁ ଶୁଖାଇ ଲୋକେ ପରୁଡ଼ି ମଶିଣା ବୁଣନ୍ତି । ଏଥିରେ ବାଜରା ପରି କେଣ୍ଡା ଥିବା ଶସ୍ୟ ଫଳେ । ବୈଦ୍ୟକ ମତରେ ଏହା କଷାୟ, ମଧୁର, ଶୀତଳ, ରକ୍ତ ପିତ୍ତ ନାଶକ ଓ ମୂତ୍ର, ଶୁକ୍ର, ରଜଃ ଓ ସ୍ତନ୍ୟର ଶୁଦ୍ଧିକର । ହି.ଶ.]

**ପଟେଲ୍**—ଦେ. ବିଣ—ପଟ୍ଟିବାଜ, ଧୂର୍ତ୍ତ—
Paṭel Sly; cunning.
(ପଟ୍ଟେଲ—ଅନ୍ୟରୂପ) ପ୍ରାଦେ. (ସମ୍ବଲପୁର) ବି. (ଭୁଲ.ହି ପଟେଲ୍)-
୧ । ବଂଶୋପାଧିବିଶେଷ—1. A family-title
୨ । ଗ୍ରାମର ମୁଖିଆ ବ୍ୟକ୍ତି, ସରକାରୀ ରଇତମାନଙ୍କର ରାଜକାର୍ଯ୍ୟ ପରିଚାଳନ ପାଇଁ ନିଯୁକ୍ତ ପ୍ରତିନିଧି—
2. A person appointed to represent a body of government ryots in their dealings with the authorities.
[ ଦ୍ର—ସମ୍ବଲପୁର ମାନୁଆଲ୍ (୧୯୧୮) ଅନୁସାରେ 'ପଟେଲ' ଉପାଧି ଓ ଅଧିକାର ବଂଶାନୁକ୍ରମିକ, ମାତ୍ର ମନ୍ଦ ଆଚରଣ ଯୋଗୁଁ ଏ ଅଧିକାର କାଢ଼ି ନିଆଯାଏ । ଗଭର୍ଣ୍ଣମେଣ୍ଟ ଗ୍ରାମର ପଟେଲ ନିଯୁକ୍ତ କରନ୍ତି । ]

**ପଟୋଟଜ୍**—ସଂ. ବି. (ପଟ+ଉଟଜ=ଗୃହ)—ବସ୍ତ୍ର ଗୃହ, ତମ୍ବୁ—
Paṭotaja Tent.

**ପଟୋଳ**—ସଂ ବି. (ପାଟି ଧାତୁ=ଉତ୍ପାଟନ କରିବା, ଦୀପ୍ତି ପାଇବା+କର୍ତ୍ତୃ ଓଳ, ଏହା ଶାରୀରିକ ଦୋଷମାନଙ୍କୁ ଉତ୍ପାଟନ କରେ)—
Paṭola
ଅନ୍ୟ ସଂସ୍କୃତ ନାମ—ପଟଳ, ଲତା ଫଳ, ତିକ୍ତକ, କୁଳକ, ପଟୁ, ପଟୁକ, କର୍କଶଦଳ, କୁଳଜ, ରାଜିମାନ୍, ରାଜଫଳ, ରାଜ-ପଟୋଳ, ବରତିକ୍ତ, ଅମୃତ ଫଳ, ତିକ୍ତ ଭଦ୍ରକ, କଟୁଫଳ, କଟୁକ, କଟୁ, କର୍କଶଚ୍ଛଦ, ପ୍ରତୀକ, ରାଜେୟ, ରାଜନାମା, ପାଣ୍ଡୁ, ପାଣ୍ଡୁ ଫଳ, ବୀଜଗର୍ଭ, ନାଗ ଫଳ, କୁଷ୍ଠାରି, କାଶ ମର୍ଦ୍ଦନ, ପଞ୍ଚମ, ଜ୍ୟୋତ୍ସ୍ନୀ, କଚ୍ଛୁଘ୍ନୀ,
পটল
**परवल, परबल**
ମ. ପଡ଼ିବଲ୍
ତେ. କୋତୁ ପୋଟଲ୍
ଓ. ପୋଟଲ, ପଟୋଲ
କୁଷ୍ମାଣ୍ଡାଦି ବର୍ଗର ଫଳ ଶାକ ବିଶେଷ—A kind of edible kitchen fruit of a creeper, Trichosanthes Dioeca.
[ଦ୍ର—ପୁଂ. ଓ ସ୍ତ୍ରୀ ଗଛ ପୃଥକ, ଫୁଲ ଧଳା, ପତ୍ର ଚିରା; ଫଳ ମଧ୍ୟ ତିକ୍ତ, କୃଷି ଯୋଗେ ସ୍ୱାଦ ବର୍ଦ୍ଧିଷ୍ଣୁ ହୁଏ; ଏହାର ପତ୍ର ଓ ଲତା ଔଷଧରେ ବ୍ୟବହୃତ ହୁଏ, ଏହା ଜ୍ୱରଘ୍ନ । ଏହା କଟୁ ତିକ୍ତ ମଧୁର ରସ, ଉଷ୍ଣବୀର୍ଯ୍ୟ, ଲଘୁପାକ, ଅଗ୍ନି ବର୍ଦ୍ଧକ, ସ୍ନିଗ୍ଧ, ସାରକ, ପାଚକ, ରୁଚକର, ଶୁକ୍ର ବର୍ଦ୍ଧକ ଏବଂ କଫ, ପିତ୍ତ, କଣ୍ଡୁ, କୁଷ୍ଠ, ଜ୍ୱର, ଦାହ, କାଶ, କୃମି, ରକ୍ତ ଓ ତ୍ରିଦୋଷର ଉପକାରକ । ପଟୋଳର ପତ୍ର ପିତ୍ତ ନାଶକ ଏବଂ ମୂଳ ବିରେଚକ ।]
ପ୍ରାଦେ. (ଗଞ୍ଜାମ) ବି—ଛଚିଙ୍ଗା; ସାପୁଆ—Snake gourd.

**ପଟୋଳକ** – ସଂ. ବି. (ପଟୋଳ+ସାଦୃଶ୍ୟାର୍ଥେ କ)—ଶାମୁକା, ଶୁକ୍ତି—
Paṭolaka Oyster-shell.

**ପଟୋଳିକା**—ସଂ ବି. ସ୍ତ୍ରୀ. (ପଟୋଳ+କ୍ଷୁଦ୍ରାର୍ଥେ କ+ସ୍ତ୍ରୀ. ଆ)—
Paṭolikā ୧ । ଛୋଟ ପଟୋଳ, କୁଆମଇଡା—1. A species (ପଟୋଳୀ—ଅନ୍ୟରୂପ) of Paṭola of small size.
୨ । ଝଡ଼ି—2 A kitchen fruit of a creeper.

**ପଟ୍ଟ**—ସଂ ବି. (ପଟ୍ ଧାତୁ=ଗମନ କରିବା+କର୍ମ. ତ)—୧ । ପଟ୍ଟା, Paṭṭa ତକ୍ତା—1 Plank; plate.
୨ । ରାଜକୀୟ ଶାସନ; ସନନ୍ଦ—
2 Sanad, firman; a royal grant
୩ । ଧୋବା ଗଣ୍ଡି—
3 Washerman's washing board.
୪ । ଚାଦର, ଓଢଣା—4. Sheet; upper garment.
୫ । ପେଷଣାର୍ଥ ବ୍ୟବହୃତ ଶିଳାପଟ୍ଟ—5 Pestling stone; stone-slab for grinding.
୬ । ଗ୍ରାମ—6 Village; hamlet.
୭ । ନଗର—7. Town; city
୮ । ପୀଠ; ପୀଢ଼ା—8. A wooden seat or slab.
୯ । ଚଉପଥ; ଛକ—9. A crossing of roads; a place where four roads meet.
୧୦ । ରାଜାସନ, ସିଂହାସନ—10. Throne.
୧୧ । ପରଦା—11. Curtain.
୧୨ । ଟସର; ପାଟ, ରେଶମ—12. Silk; tussar.
୧୩ । ପଗଡ଼ି—13. Turban.
୧୪ । ଢାଲ—14. Shield.
୧୫ । ଲୁଗା—15. Cloth; garment.
୧୬ । ଝୋଟ—16. Jute; hemp.
୧୭ । ନାର—17. Town; city. (Apte)
୧୮ । କ୍ଷତାଦ୍ଧ ବନ୍ଧନାର୍ଥ ବ୍ୟବହୃତ ବସ୍ତ୍ର ଖଣ୍ଡ; ପଟ୍ଟି—
18 Bandage; ligature.
୧୯ । ଜମିଦାର ପ୍ରଜାକୁ ଜମି ଖଜଣାରେ ଦେବାର ନିଦର୍ଶନ ପତ୍ର (ହି. ଷ)—19. Lease.
୨୦ । ମୁକୁଟ—20. Tiara; diadem. (Apte).
୨୧ । ପଟ୍ଟି, ଲମ୍ବ ସରୁଖଣ୍ଡ, ପାଢ଼ଆ—21. Strip. (Apte).
୨୨ । କାଷ୍ଠାସନ, ଚଉକି—22. Chair; stool. (Apte).
୨୩ । ଘୋଡ଼ାର ପେଟି—24. A horse's girth. (Apte).

[ ଦ୍ର—ଶ୍ରେଷ୍ଠ ବା ପ୍ରଧାନ ଅର୍ଥରେ ଓ ରାଜକୀୟ ପ୍ରଧାନ ବ୍ୟକ୍ତି ଆଦିଙ୍କ ପୂର୍ବରେ ସଂ 'ପଟ୍ଟ' ଓ ଓଡ଼ିଆ 'ପାଟ' ଯୁକ୍ତ ହୁଏ । ଯଥା— ପଟ୍ଟ ଜ୍ୟୋତିଷୀ; ପଟ୍ଟଶିଷ୍ୟ, ପାଟଯୋଶୀ; ପାଟ ମହାଦେଈ; ପାଟହାତୀ; ପାଟ ଅଗଣା । ]

**ପଟ୍ଟକ**—ସଂ. ବି. ( ପଟ୍ଟ+ସ୍ୱାର୍ଥେ. କ )—
Paṭṭaka ୧ । ପାଟଲୁଗା—1. Silk cloth.
୨ । ସନନ୍ଦ ଲେଖିବାରେ ବ୍ୟବହୃତ ଧାତୁ ଫଳକ—
2. A plate of metal for inscription of royal edicts.
୩ । କ୍ଷତାଦିରେ ବନ୍ଧାଯିବା ପଟ୍ଟି—3. Bandage (Apte).
୪ । ଦଲିଲ, ଲେଖ—4. Document (Apte).

**ପଟ୍ଟ ଗୃହ**—ସଂ ବି—ତମ୍ବୁ, ରାଉଟି—Tent
Paṭṭa gruha (ପଟ୍ଟବାସ—ଅନ୍ୟରୂପ)

**ପଟ୍ଟଜ**—ସଂ. ବି (ପଟ୍ଟ+ଜନ୍ ଧାତୁ+କର୍ତ୍ତୃ ଅ )—
Paṭṭaja ରେଶମି ବସ୍ତ୍ର, ପାଟଲୁଗା—Silken cloth.
(ପଟ୍ଟଜାତ—ଅନ୍ୟରୂପ)

**ପଟ୍ଟ ଜ୍ୟୋତିଷୀ**—ସଂ ବି - ରାଜାଙ୍କର ପ୍ରଧାନ ଜ୍ୟୋତିଷୀ ପଣ୍ଡିତ—
Paṭṭa jyotishī Raja's chief astronomer; the (ପଟ୍ଟ ଜ୍ୟୋତିଷିକ—ଅନ୍ୟରୂପ) astronomer royal.
ତାଙ୍କ ପଟ୍ଟେ ଗୁରୁ ପୁରୋହିତ ପଟ୍ଟ ଜ୍ୟୋତିଷ । ଜଗନ୍ନାଥ. ଭକ୍ତ ।

**ପଟ୍ଟ ଦେବୀ**—ସଂ. ବି. ସ୍ତ୍ରୀ—ସିଂହାସନ ଯୋଗ୍ୟା କୃତାଭିଷେକା ରାଣୀ, ପାଟ-
Paṭṭa debī ରାଣୀ, ରାଜାଙ୍କର ପ୍ରଧାନ ରାଣୀ—The Raja's first Ranee, the queen consort.

**ପଟ୍ଟନ**—ସଂ. ବି. ( ପଟ୍ଟ ଧାତୁ+ଅଧିକରଣେ. ଅନ )—
Paṭṭana ୧ । ନଗର—1. Town; city.
(ପଟ୍ଟଣା—ଅନ୍ୟରୂପ) ୨ । ଗ୍ରାମ, ପଟଣା—2. Village; hamlet.

**ପଟ୍ଟ ନାୟକ**—ସଂ ବି. ( ପଟ୍ଟ=ପ୍ରଧାନ+ନାୟକ=ଚାଳକ )—
Paṭṭa nāyaka ରାଜକର୍ମଚାରୀଙ୍କ ଉପାଧିବିଶେଷ—The title of a king's officer.
ଦେ. ବି—ପଟନାୟକ (ଦେଖ)—Patanāyaka (See)

**ପଟ୍ଟ ବସ୍ତ୍ର**—ସଂ. ବି—୧ । ପାଟ ଲୁଗା—
Paṭṭa bastra 1. Silk cloth.
(ପଟ୍ଟବାସଃ—ଅନ୍ୟରୂପ) ୨ । ପଟ୍ଟଭବନ, ତମ୍ବୁ—2. Tent.

**ପଟ୍ଟ ଭବନ**—ସଂ. ବି—ତମ୍ବୁ; ରାଉଟି; ବସ୍ତ୍ର ଗୃହ—
Paṭṭa bhabana Tent.

**ପଟ୍ଟ ମହିଷୀ**—ସଂ. ବି—ପଟ୍ଟ ଦେବୀ ( ଦେଖ )
Paṭṭa mahishī Paṭṭa debī ( See )
(ପଟ୍ଟରାଜ୍ଞୀ—ଅନ୍ୟରୂପ)

**ପଟ୍ଟଶାକ**—ସଂ. ବି—ନଳିତା ଶାଗ—
Paṭṭaśāka The leaves of jute plant.

**ପଟ୍ଟ ଶିଷ୍ୟ**—ସଂ ବି. ପୁଂ—ଗୁରୁଙ୍କର ପ୍ରଧାନ ଶିଷ୍ୟ; ବଡ଼ ଛାତ୍ର—
Paṭṭa śishya The seniormost or chief disciple, the head scholar.
ପଟ୍ଟ ଶିଷ୍ୟ ମହୁ ହୁଅନ୍ତ ଚୈତନ୍ୟର । ଜଗନ୍ନାଥ. ଭକ୍ତ ।

**ପଟ୍ଟାବାସ**—ସଂ. ବି—ତମ୍ବୁ; ପଟ୍ଟ ଗୃହ—
Paṭṭabāsa Tent

**ପଟ୍ଟାମ୍ବର**—ସଂ. ବି—ପାଟ ଖଦି—
Paṭṭāmbara Silken cloth.

**ପଟ୍ଟିକା**—ସଂ. ବି. ( ପଟ୍ଟ+କ+ସ୍ତ୍ରୀ. ଆ )—
Paṭṭikā ୧ । ପାଟ—1. Silk.

୨ । ପାଟ ଲୁଗା—2. Silken cloth.
୩ । ଖେଳ ପଟା—3. Tablet.
୪ । ଘାଆ ଉପରେ ବନ୍ଧାଯିବା ପଟି—4. Bandage (Apte).
୯ଂ. ବି—ଅନ୍ଥାଲ—Sail.
ଅମ୍ବୁରେ କାଳଦୀ ଧ୍ୱୋଇ ଥାଏଁ ଟେ ବେଜେ
ପାଲାଙ୍ଗ, ଉଙ୍ଗେ ଭୋଗ ଧବଳ ପଟ୍ଟିକା । ରାଧାନାଥ, ମହାଯାତ୍ରା ।

**ପଟ୍ଟିକା ଲୋଧ୍ର**—ସଂ ବି—ନାଲି ଲୋଧ୍ର, ରକ୍ତ ଲୋଧ୍ର (ଗଛ)—
Pattikā lodhra Red Symplocos Racemosa (used in colouring yarn).
(ପଟ୍ଟିକାଖ୍ୟ—ଅନ୍ୟନାମ)
পাটি লোধ पठानी लोध

**ପଟ୍ଟିଲ**—ସଂ. ବି—ପୂତି କରଞ୍ଜ ( ଦେଖ ) ( ହି. ଶ. )
Paṭṭila Pūti karañja ( See )

**ପଟ୍ଟିଶ(ସ)**—ସଂ. ବି. [ ପଟ୍ ଧାତୁ+ଈଶ(ସ) ]—ଦୁଇ ଆଡ଼େ ଧାରୁଥିବା
Paṭṭiśa(sa) ଲମ୍ବା ଖଡ୍ଗ ବିଶେଷ—A very long double-bladed sword.
[ପଟ୍ଟୀଶ(ସ)—ଅନ୍ୟରୂପ]
ବ୍ୟାକୋଷ ପୁଷ୍ପ ମଣ୍ଡଳ କୋଣଗ୍ରାହ ପଟ୍ଟିଶ କ ଭେଗ ହୋଇଛ ସେ ।
ଉପେନ୍ଦ୍ର ବୈଦେହୀଶବିଳାସ ।
[ ଦ୍ର—ଏହା ଛଅ ଫୁଟ ହାତ ଲମ୍ବା, ଏଥିର ଦୁଇ ପାଖ ଧାରୁଆ, ଅଗ ଅଛ ସରୁ ଓ ମୁନିଆଁ, ଏଥିର ମୁଠାରେ ହସ୍ତତ୍ରାଣ ଥାଏ । ]

**ପଟ୍ଟୁ**—ଦେ. ବି (ସଂ. ପଟ୍ଟ)—ଏକ ପ୍ରକାର ଖୁବ ମୋଟା ଓ କମ ଓସାରିଆ
Paṭṭu ପଶମୀ ଲୁଗା—A kind of coarse wollen cloth of small breadth.
পট্টু पट्टू

**ପଟ୍ଟୋଲିକା**—ସଂ. ବି (ପଟ୍ଟ=ରାଜକୀୟ ସନନ୍ଦ+ଉଲ+କ+ଆ)—
Paṭṭolikā ୧ । ଜମିର ପଟ୍ଟା—1. A lease of a land.
୨ । ଆଇନ୍ ବିଷୟକ ଲିଖିତ ମନ୍ତବ୍ୟ—
2. A written legal opinion (Apte)

**ପଟ୍ୱାରି**—ଦେ. ବି—ପଟୁଆରି ( ଦେଖ )
Patwāri Paṭuāri ( See )

**ପଠ୍ (ଧାତୁ)**—ସଂ—୧ । ପାଠ ପଢ଼ିବା—
Paṭh (root) 1 To read; to study.
(ପାଠି ଧାତୁ—ଣିଜନ୍ତ ରୂପ) ୨ । ଉଚ୍ଚୈଃସ୍ୱରରେ ପାଠ କରିବା—
2 To read aloud.
୩ । ଦେବତାଙ୍କୁ ଡାକିବା—3. To invoke a Deity.
୪ । ଗ୍ରନ୍ଥାଦିରେ ଲିଖିତ ବିଷୟର ଉଲ୍ଲେଖ କରିବା—
4. To cite; to quote; to mention (Apte).
୫ । ପ୍ରକାଶ କରିବା—5. To declare; to describe; to express. (Apte).
୬ । ପଢ଼ାଇବା—6. To teach (Apte).
୭ । ଗୁରୁଙ୍କଠାରୁ ଶିକ୍ଷା କରିବା—
7 To learn from a teacher (Apte).

**ପଠ୍ଚ**—ପ୍ରାଦେ. (ଲହରା) ବି—କାନ୍ଥକୁଠି—
Paṭh-chā Niche in the wall.

**ପଠଉଣୀ**—ଦେ. ବି. ସ୍ତ୍ରୀ—ପଠାଣ ସ୍ତ୍ରୀ—
Paṭhauṇi Paṭhāṇ woman.
পঠান্নী, পাঠানী पठानिन, पठानी
(ପଠାଉଣୀ, ପଠଉଣୀ, ପଠୋଣୀ, ପଠୌଣୀ—ଅନ୍ୟରୂପ)

**ପଠକ**—ସଂ. ବଣ. (ପଠ୍ ଧାତୁ+କର୍ତ୍ତୃ ଅକ)—ପଢ଼ୁଥିବା ବ୍ୟକ୍ତି, ପାଠକ
Paṭhaka (ହି ଶ)—Reading; studying.

**ପଠଦ୍ଦଶା**—ସଂ. ବି. (ପଠ୍ ଧାତୁ+ଅତ୍=ପଠତ୍+ଦଶା)—ପଢ଼ିବା
Paṭhaddaśā ଅବସ୍ଥା, ଛାତ୍ରାବସ୍ଥା, ପାଠାବସ୍ଥା—Student life;
(ପଠଦବସ୍ଥା—ଅନ୍ୟରୂପ) the time when a person is engaged in his studies; studentship career.

**ପଠନ**—ସଂ ବି. (ପଠ୍ ଧାତୁ+ଭାବ ଅନ)—୧ । ପଢ଼ିବା, ଅଧ୍ୟୟନ—
Paṭhana 1 Reading; studying.
୨ । ଲେଖାକୁ ପାଠ କରିବା—
2 Perusal of a written matter.
୩ । ମୁହଁରେ ବୋଲିବା; ଆବୃତ୍ତି—3 Recital.

**ପଠନ ପାଠନ(ନା)**—ସଂ.ବି. (ପଠ୍ ଧାତୁ+ଅନ ଓ ପଠ୍ ଧାତୁ ଣିଚ୍+ଅନ)—
Paṭhana pāṭhana(nā) ନିଜେ ପଢ଼ିବା ଓ ଅନ୍ୟକୁ ପଢ଼ାଇବା; ଅଧ୍ୟୟନ ଓ ଅଧ୍ୟାପନା—Learning and teaching.

**ପଠନୀୟ**—ସଂ. ବଣ. (ପଠ୍ ଧାତୁ+କର୍ମ ଅନୀୟ)—୧ । ପାଠ୍ୟ—
Paṭhaniya 1 Readable.
୨ । ଶିକ୍ଷଣୀୟ—2. Fit to be learnt, deserving to be studied.

**ପଠନେଚ୍ଛୁ(ଚ୍ଛୁକ)**—ସଂ ବଣ ପୁଂ (୭ମୀ ତତ୍; ପଠନ+ଇଚ୍ଛୁ)—ପଢ଼ିବାକୁ
Paṭhanechchhu(chchhuka) ଇଚ୍ଛୁକ,ପଠନାଭିଳାଷୀ—
Wishing to study; desirous of reading.
(ପଠନେଚ୍ଛା—ବି)

**ପଠା**—ଦେ. ବି—୧ । (ସଂ. ପୃଷ୍ଠ ବ୍ରଣ)—ପିଠିରେ ହେବା ମାରାତ୍ମକ ବ୍ରଣ
Paṭhā ବିଶେଷ, ପୃଷ୍ଠ ବ୍ରଣ—1. Carbuncle; a boil on
চোটব্রণ, চাঁচনি the back; wasp's nest; furuncle.
पिठिआवाव [ଦ୍ର—ଏହି ବ୍ରଣ ସାଧାରଣତଃ ମଣିଷ ପିଠିରେ ଅର୍ଥାତ୍ ମେରୁହାଡ଼ଉପରେ ଉଠେ ଓ ଏହା କ୍ରମଶଃ ଗୋଟିଏ ଚଉଡ଼ ପିଠାର ଆକାର ଧାରଣ କରେ ଓ ଚଉଡ଼ ପିଠାପରି ତାର ବହୁ ସଂଖ୍ୟକ ଛିଦ୍ର ହୋଇଯାଏ । ବହୁମୂତ୍ର ରୋଗୀଙ୍କୁ ଏ ବ୍ରଣ ବିଶେଷ ଭାବରେ ଆକ୍ରମଣ କରେ ଓ ଏହା ଅଧିକାଂଶ ସମୟରେ ମାରାତ୍ମକ ହୁଏ ।]
टापु ୨ । (ସଂ. ପ୍ରସ୍ଥ) ନଦୀ ଗର୍ଭସ୍ଥ ତୃଣମୟ ଉଚ୍ଚ ଭୂମି ବା କ୍ଷୁଦ୍ର ଦ୍ୱୀପ—
2. An islet or a small grassy eminence in the bed of a river.
ବଲୁଗା ତଟକୀ ତଣ୍ଡ ପଠାରୁଷ ଉଥାଙ୍ଗ-କର୍ଷ ବନାପ ।
ରାଧାନାଥ. ଯଯାତି ।
୩ । (ସଂ. ପ୍ରସ୍ଥାପନ) ପ୍ରେରଣ—3. Sending
ଦେ. ବଣ—ପ୍ରେରିତ—Sent

**ପଠା(ଠେ)ଇବା**—ଦେ କ୍ରି. (ସଂ. ପ୍ର+ସ୍ଥା ଧାତୁ ଣିଚ୍=ସ୍ଥାପି ଧାତୁ)—
Paṭhā(ṭhe)ibā ୧ । ପ୍ରେରଣ କରିବା—1. To send.
পাঠান ୨ । ଅନ୍ୟଦ୍ୱାରା ପ୍ରେରଣ କରାଇବା—
पठाना, भेजना 2 To cause to be sent.

**ପଠାଣ**—ବୈଦେ. ବି. (ପୁସ୍ତୁ ଭାଷା—ପୁଖ୍ତାନା ଶବ୍ଦରୁ ଉର୍ଦ୍ଦୁ. ପଠାନ୍)—
Paṭhāṇa ୧ । ଭାରତର ଉତ୍ତର ପଶ୍ଚିମ ସୀମାନ୍ତ, ଆଫଗାନସ୍ଥାନ ଓ
পাঠান ଲାହୋରର ଉତ୍ତରପଶ୍ଚିମବାସୀ ମୁସଲମାନ ଜାତିବିଶେଷ—
पठान 1. The Pathans.

[ଦ୍ର—ପଠାଣମାନେ ଡେଙ୍ଗା ଓ ଦୀର୍ଘକାୟ ଅଟନ୍ତି । ଏମାନେ ମୁସଲମାନଧର୍ମାବଲମ୍ବୀ । ଏମାନଙ୍କ ସାମାଜିକ ବନ୍ଧନ ଖୁବ୍ ଦୃଢ଼ ଅଟେ । ସ୍ତ୍ରୀମାନଙ୍କ ସତୀତ୍ୱ ରକ୍ଷା ପ୍ରତି ଏମାନଙ୍କର ତୀବ୍ର ଦୃଷ୍ଟି ଥାଏ । ଏମାନଙ୍କ ମଧ୍ୟରେ ଅଧିକାଂଶ ବିବାଦ ସ୍ତ୍ରୀଘଟିତ ଅଟେ । ଏମାନଙ୍କ ଉତ୍ତରାଧିକାର କୋରାନ୍ ଅନୁସାରେ ନ ହୋଇ ସାମାଜିକ ପ୍ରଥା ଅନୁସାରେ ହୁଏ । ଏମାନଙ୍କ ପୂର୍ବ ପୁରୁଷମାନେ ପ୍ରାଚୀନ ଗାନ୍ଧାର, କାମ୍ବୋଜ, ବାହ୍ଲିକ ଆଦରେ ରହୁଥିଲେ । ଏମାନେ ଆଫଗାନିସ୍ଥାନର ଅଧିକାଂଶ, ଭାରତର ସୀମାନ୍ତ ପ୍ରଦେଶ, ପଞ୍ଜାବ ଓ ରୋହିଲ ଖଣ୍ଡର ଅଧିବାସୀ ଅଟନ୍ତି । ଏମାନେ କ୍ରୂର ଓ ହିଂସ୍ର, ଯୁଦ୍ଧପ୍ରିୟ ଓ ସ୍ୱାଧୀନତା ପ୍ରିୟ ଅଟନ୍ତି । ଏ ଜାତି ଅନେକ ସମ୍ପ୍ରଦାୟ ଓ ଶାଖାରେ ବିଭକ୍ତ, ଏ ସମ୍ପ୍ରଦାୟମାନଙ୍କ ନାମ ସଙ୍ଗେ ସମ୍ପ୍ରଦାୟ ସୂଚକ ଶବ୍ଦ, ଯଥା ଖେଲ୍ (ଜକ୍କା ଖେଲ୍), ଜାଇ (ଭୁରଙ୍ଗ ଜାଇ, ଗୀଲଜାଇ) ଲଗାଯାଏ । ପ୍ରତ୍ୟେକ ସମ୍ପ୍ରଦାୟର ଜଣେ ସର୍ଦ୍ଦାର ଥାଆନ୍ତି । ତାଙ୍କୁ ମାଲିକ୍ ବୋଲିଯାଏ । ଭାରତର ଉତ୍ତରପଶ୍ଚିମ ସୀମାନ୍ତ ଅଞ୍ଚଳରେ ଏହି ମାଲିକ୍‌ମାନେ ଶାସକ ଅଟନ୍ତି । ସୀମାନ୍ତ ପ୍ରଦେଶର ପଠାଣମାନେ ପ୍ରାୟଶଃ ଅସଭ୍ୟ, ମୃଗୟା, ଡକାଇତି ଓ ଯୁଦ୍ଧ ଏମାନଙ୍କର ପ୍ରିୟ ବସ୍ତୁ । ଅଫଗାନସ୍ଥାନର ପଠାଣମାନେ ଅପେକ୍ଷାକୃତ ସଭ୍ୟ । ଭାରତବାସୀ ପଠାଣମାନେ ଉକ୍ତ ଦୁଇ ସ୍ଥାନର ପଠାଣମାନଙ୍କ ଠାରୁ ଅଧିକତର ସଭ୍ୟ ଓ କ୍ଷେତ ଓ ଶ୍ରମକର କରି ଜୀବିକା ନିର୍ବାହ କରନ୍ତି । ପଠାଣମାନେ ଉଗ୍ର (fanatic) ମୁସଲମାନ୍ ଅଟନ୍ତି (ହି ଶ.) ।]

୨ । ମୁସଲମାନ୍—2. Mahomedan; Muslim.

୩ । ମ୍ଲେଚ୍ଛ; ବିଜାତୀୟ—Non-Hindu.

ସୁଯୋଧନ ଭ୍ରାତା ପଠାଣ ଥାଇ ମଲେ
ବୋଲି ଯେବେ ଶୁଣିକି ଜାହବ ସେ ଭଲେ । କୃଷ୍ଣସିଂହ. ମହାଭାରତ. ଦ୍ରୋଣ ।

୪ । (ଲକ୍ଷଣାର୍ଥ, ମୁସଲମାନଙ୍କ ଦୁଷ୍କାମି ହିନ୍ଦୁମାନଙ୍କର ଚିରନ୍ତନଭୂତ ଥିବାରୁ) ଦୁଷ୍ଟ ବ୍ୟକ୍ତି—4 Wicked person.

ଭୁଲ ମରଦେ ତା କନେ ପାଇଁ ବଶମଗର ପଠାଣ—କବିସୂର୍ଯ୍ୟ. ସଙ୍ଗୀତ ।

**ପଠାଣ କେଳା**—ଦେ. ବି—ଏକପ୍ରକାର କେଳା— Paṭhāṇa keḻā A kind of Keḻā.

[ଦ୍ର—ଏମାନଙ୍କ ପୁରୁଷମାନେ ବାଉଁଶ ଉପରେ ନାନାପ୍ରକାର କସରତ୍ ଓ ଖେଳୀ ଦେଖାନ୍ତି ।]

**ପଠାଣ ଗେହ୍ନପ(ପୋ)**—ଗ୍ରା ବି ( ଅଶ୍ଳୀଳ ଗାଳି )—ଯେଉଁ ହିନ୍ଦୁ Paṭhāṇa gehipa(po) ସନ୍ତାନର ମାତା ମୁସଲମାନ୍ ପୁରୁଷ ସଙ୍ଗେ ସହବାସ କରିଥାଏ—(A vile term of abuse) Son of a Hindu mother by a Mahomedan male.

ପଠାଣ ଗେହ୍ନାପୁଅ, ପଠାଣ ବେହ୍ନି ପ (ପୋ) } ଅନ୍ୟରୂପ

ପାଠାନେବ ଛେଲେ, **ପଠନୈଟା**

**ପଠାଣି**—ଦେ. ବିଣ—ଅପତ୍ୟିଆଣିଙ୍କୁ ଦିଆଯିବା ନାମ— Paṭhāṇi A name given to persons whose elders were dead before they were born.

(ଯଥା—ପଠାଣି ସାଆନ୍ତ)

[ଦ୍ର—ଅପତ୍ୟିଆଣି ଶବ୍ଦ ଦେଖ ।]

ଦେ. ବିଣ—୧ । ପଠାଣସମ୍ବନ୍ଧୀୟ— (ପଠାଣିଆ—ଅନ୍ୟରୂପ) 1. Pertaining to a Pathan

ପାଠାନେ ୨ । ମୁସଲମାନ୍ ସମ୍ବନ୍ଧୀୟ— **ପାଠାନୀ** 2 Muslim; Mahomedan.

**ପଠାଣି ଯିବା**—ପ୍ରାଦେ. (ସମ୍ବଲପୁର) କ୍ରି (ସଂ. ପ୍ରଥମ+ପ୍ରସ୍ଥାନ)— Paṭhāṇi jibā ବିବାହିତା କନ୍ୟା ରଜସ୍ୱଳା ହେବା ପରେ ପ୍ରଥମେ ସ୍ୱାମୀଘରକୁ ଯିବା, ପହିଲିପାଳି ଯିବା—(said of a matured girl) To go to the husband's house for the first time after puberty

**ପଠାଣି ସାଆନ୍ତ**—ଦେ ବି. (ନାମ)—ଉତ୍କଳର ପ୍ରସିଦ୍ଧ ଜ୍ୟୋତିଷୀ Paṭhāṇi sā-ānta ମହାମହୋପାଧ୍ୟାୟ ଚନ୍ଦ୍ରଶେଖର ସାମନ୍ତଙ୍କ (ପଠାଣି ସାମନ୍ତ—ଅନ୍ୟରୂପ) ଡାକନାମ—Name by which the great Oria astronomer, the late Chandraśekhara Sāmanta was popularly known.

[ଦ୍ର—ସେ ଅପତ୍ୟିଆଣି ଥିବାରୁ ପିତାମାତା ଶିଶୁଙ୍କୁ ପଠାଣି ନାମ ଦେଇଥିଲେ ।]

**ପଠିଆ**—ଦେ. ବି. (ସଂ. ପ୍ରସ୍ଥାପନ)—ପ୍ରେରଣ— Paṭhiā Sending.

ପାଠାନ (ପଠିଆ ପଠେଇ, ପଠିଆପଠି—ଅନ୍ୟରୂପ)

**ପଠାବନୀ** ଦେ ବିଣ—ପ୍ରେରିତ—Sent.

**ପଠିଆଇବା**—ଦେ. କ୍ରି—ପଠାଇବା (ଦେଖ)— Paṭhiāiba Paṭhāibā (See)

କାଇଁତ ରହିବ ପଠିଆଇ ଥିବୁ ତୋର
ଶ୍ରୀକର ମୁଦକୁ । ଭକ୍ତ. ପ୍ରେମସୁଧାନିଧି ।

**ପଠିତ**—ସଂ. ବିଣ. (ପଠ୍ ଧାତୁ+କର୍ମ. ତ)—୧ । ପଢ଼ାଯାଇଥିବା— Paṭhita 1. Read; learnt; studied

୨ । ବୋଲି ଯାଇଥିବା, ଆବୃତ୍ତ—2 Recited.

୩ । ଉଚ୍ଚୈଃସ୍ୱରରେ ପୁସ୍ତକାଦିରୁ ପଢ଼ାଯାଇଥିବା— 3. Read aloud from a writing.

**ପଠିନୀ**—ଦେ. ବିଣ. ସ୍ତ୍ରୀ. (ସଂ ପାଠିନୀ; ସମାସରେ ଅନ୍ୟଶବ୍ଦ ସଙ୍ଗେ Paṭhini ଲାଗେ)—ପାଠକାରିଣୀ—Reading.

ସଙ୍ଗୀତ ପଠିନୀ ଛନ୍ଦିତ ଗୀତରେ
ରତ ପୁନଃ ପୁନଃ ଗାଇବେ । ଭକ୍ତ. ପ୍ରେମସୁଧାନିଧି ।

**ପଠିବା**—ଦେ.(ପଦ୍ୟ) କ୍ରି. (ସଂ. ପଠ୍ ଧାତୁ)—୧ । ପଢ଼ିବା; ପାଠକରିବା— Pathibā 1. To read.

ପଡ଼ା ପଠନ୍ତେ ମଠରୁ ଅଇଲେ କାରଣ । ଭକ୍ତ. କୋଟୀବ୍ରହ୍ମାଣ୍ଡସୁନ୍ଦରୀ ।

**ପଢ଼ନା** ୨ । କହିବା, ଉଚ୍ଚାରଣ କରିବା, ବୋଲିବା— 2. To say; to utter.

ବହୁତ ହରି ସଙ୍ଗେ ହରି ହେଲ
ଶ୍ଳୋକେ ରାମ ରାମ ପଠିଲ । ଭକ୍ତ, ବୈଦେହୀଶବିଳାସ ।

**ପଡ଼୍ ପଡ଼୍**—ଦେ. ଅ. (ଧ୍ୱନ୍ୟନୁକରଣ)—୧ । ପଡ଼ ପଡ଼ ଶବ୍ଦ— Paṛd paṛd 1. Crackling sound.

ପଡ଼୍‌ପଡ଼୍ (ଯଥା—ସେ ବେତରେ ରାମକୁ ପାଞ୍ଚପାହାର ପଡ଼୍ ପଡ଼୍ **ପଡ଼ାପଡ଼** କରି ପିଟି ପକେଇଲା ।)

ପଡ଼୍ ୨ । ଲୁଗା ଚିରିଯିବା ବା ଫାଟିଯିବାର ଶବ୍ଦ—
ପଡ଼ର ପଡ଼ର, ପଡ଼ପାଡ଼୍, ପଡ଼ାକ୍, ପଡ଼ାଚ୍ } ଅନ୍ୟରୂପ 2. Sound produced by the ripping of a cloth.
୩ । ବାରଂବାର ଅଧୋବାୟୁ ନିର୍ଗମନର ଶବ୍ଦ— 3. Sound made by repeated loud discharge of wind from the anus.
[ ଦ୍ର—ପଡ଼ ପଡ଼ ଅପେକ୍ଷା ଶ୍ରେଷ୍ଠ ଶବ୍ଦ ପୁଡ଼ପାଡ଼୍, ପୁଡ଼୍ ପୁଡ଼୍ । ]

**ପଡ଼ଚ଼(ଚେ)ଇବା**—ଦେ. କ୍ରି (ସକର୍ମକ) (ସଂ ପର+ଚର୍ଚ୍ଚ ଧାତୁ)—
Pardachā(che)ibā ୧ । ନିନ୍ଦା କରିବା—1 To blame.
छेड़ना ୨ । ଛିଗୁଲେଇବା, ବ୍ୟଙ୍ଗ କରିବା, ଉପହାସ କରିବା— 2. To jeer at; to gibe.
ପଡ଼ଚ଼େଇବା, ପଡ଼ିଚବା, ପଡ଼ୁଚେଇବା, ଧଡ଼ିଚୁଆ ଦେବା } ଅନ୍ୟରୂପ
୩ । ଗାଳିଦେବା—3 To rebuke
୪ । ପରୋକ୍ଷରେ ହୋଇଥିବା ନିନ୍ଦାବାଦକୁ କହିଥିବା ବ୍ୟକ୍ତି ସଙ୍ଗେ ମୁକାବିଲା ବା ମୁଆଜା କରିବା—4. To confront a slanderer with the person slandered about what the former had reported behind the latter.

**ପଡ଼ଚ଼ୁଆ**—ଦେ. ବ (ସଂ. ପରଚର୍ଚ୍ଚା=ଦୋଷୀ ବୋଲି ଘୋଷଣା କରିବା)-
Pardachuā ୧ । ନିନ୍ଦା—1 Blame.
ଯେବେ ଦଇବେ ହିଦ୍ର ନ ଜାଣ ଯାଇଁ
କେଇେ ଠାରେ କେତେ ପଡ଼ଚୁଆ ପାଇଁ । ଶ୍ରୀପଞ୍ଚମୀ ଗୀତି ।
बोलिठोली, छेड़छाड़ ୨ । ଛିଗୁଲି, ବ୍ୟଙ୍ଗ—
(ପରଚୁଆ—ଅନ୍ୟରୂପ) 2. Irony; gibe.
୩ । ପ୍ରତ୍ୟକ୍ଷରେ ପ୍ରମାଣ—3. Direct evidence.

**ପଡ଼ଣ**—ଦେ. ବ. (ସଂ. ପତ୍ ଧାତୁରୁ ପତନ, ପ୍ରା. ପଡ଼ଣ)—ପଡ଼ିବା—
Pardaṇa पडन पड़ना Falling.

**ପଡ଼ତାଲ**—ଦେ. ବ. (ସଂ. ପରତୋଳନ; ବନ୍ଦୋବସ୍ତ ଇଲାକାରେ ବ୍ୟବହୃତ
Pardatāla ଶବ୍ଦ)—ପ୍ରତାଲ (ଦେଖ)—Pratāla (See)
पड़ताल (ପରତାଲ—ଅନ୍ୟରୂପ)

**ପଡ଼ତାଳିବା**—ଦେ. କ୍ରି—ପ୍ରତାଲ କରିବା (ଦେଖ)—
Pardatāḷibā पड़तालना Pratāla karibā (See)

**ପଡ଼ା**—ଦେ. ବ. (ସଂ. ପତ୍ତନ) —୧ । ପଲ୍ଲୀଗ୍ରାମ—
Pardā 1 Village; hamlet.
पाड़ा (ଯଥା—ହିଷାଲପଡ଼ା, କଲପଡ଼ା ।)
पाड़ा, टोला ୨ । ଗ୍ରାମ ବା ସହରରେ କୌଣସି ବିଶିଷ୍ଟ ଜାତି ବାସ କରିବା ଅଂଶ—2 Quarter of a town or village inhabited by a particular class.
(ଯଥା—ପଟ୍ଟନାୟକ ପଡ଼ା, ମୋଚି ପଡ଼ା ।)
୩ । (ସଂ. ପତନ, ପ୍ରା. ଧଡ଼ଣ) —ପଡ଼ିବା; ପତନ—
3. Falling; fall
୪ । ପରି; ଅନ୍ୟଦ୍ୱାରା ଗଛରୁ ଫଳ ତୋଳାଇବା—
4. Having the fruits plucked through others.
୫ । ନଡ଼ିଆଆଦି ଗଛରୁ ଫଳ ତୋଳାଯିବାର ବାର ବା ଥର—
5. The plucking of fruits (cocoanuts) from trees.
(ଯଥା —ଆମ ବାଡ଼ିଗଛରୁ ଏ ବରଷ ନଡ଼ିଆ ଛଅ ପଡ଼ା ହେଲା ।)

**ପଡ଼ା(ଡ଼େ)ଇବା**—ଦେ. କ୍ରି. ( ସଂ. ପତ୍ ଧାତୁ ଣିଚ୍=ପାତି ଧାତୁ )—
Pardā(rde)ibā ୧ । ପକାଇବା—1 To fell.
पातन ୨ । ଅନ୍ୟ ଦ୍ୱାରା ଫଳ ତୋଳାଇବା—
पड़ाना 2. To have the fruits plucked from trees by others.
ପରାଇବା, ପରେଇବା } ଅନ୍ୟରୂପ
୬ । ଅନ୍ୟ ଦ୍ୱାରା ଶଯ୍ୟାଦି ପକାଇବା—
2 To have the bedding laid by another.
ସେଦିନ ଅଳୀଅଳ ଚନ୍ଦନଶ ରେ ଉଦୁଁ ଶଯ୍ୟାକୁ ପଡ଼ାଇବ ।
ଭକ୍ତ. ପ୍ରେମସୁଧାନିଧି ।

**ପଡ଼ାଂ**—ଦେ. ଅ. ( ଧ୍ୱନ୍ୟନୁକରଣ )—୧ । ବେତ ବା ଚାବୁକ ମାରିବା
Pardāṁ ଶବ୍ଦ—1. Loud crackling sound
पड़ांग ୨ । ହଠାତ୍ ( ପଡ଼ିଯିବା )—
पड़ाक् 2. Suddenly (to fall down).
(ପଡ଼ାକ୍, ପଡ଼ାଙ୍ଗ୍, ପଡ଼ାଂକନା, ପଡ଼ାଂକନ, ପଡ଼ାଙ୍ଗ୍‌କନା, ପଡ଼ାଙ୍ଗ୍ କର ପଡ଼ାଙ୍ଗ୍‌କନ, ପଡ଼ାଙ୍ଗ୍ ଦଣ୍, ପଡ଼ାଙ୍ଗ୍ ଧସ୍—ଅନ୍ୟରୂପ)

**ପଡ଼ା ଗାଁ(ଗାଆଁ)**—ଦେ. ବ. ( ସଂ. ପତ୍ତନ+ଗ୍ରାମ )—କ୍ଷୁଦ୍ର ଗ୍ରାମ—
Pardā gāṅ(gā-āṅ) Small village, hamlet.
पाड़ा गाँ पुरवा (ପଡ଼ା ଗାଁଆଁ—ଅନ୍ୟରୂପ)

**ପଡ଼ାଣିଆଁ (ଆ)**—ଦେ. ବିଣ—ଗଡ଼ାଣିଆ, କ୍ରମନିମ୍ନ—
Pardāṇiāṅ(ā) Sloping
ढालू उतारा हुआ ଦେ. ବ—ନିମ୍ନ ଭୂମି—Low land.
(ଉଠାଣିଆଁ—ବିପରୀତ)

**ପଡ଼ାପଡ଼୍**—ଦେ. ଅ. ( ଧ୍ୱନ୍ୟନୁକରଣ ) —ପଡ଼୍‌ପଡ଼୍—
Pardāpard Pard-pard.

**ପଡ଼ାପଡ଼ି**—ଦେ. ବ—ଧରାପରି, ଅନ୍ୟୋନ୍ୟରେ ଗଡ଼ାଗଡ଼ି ହେବା—
Pardāpardi Throwing each other on the ground; tussle, felling together.
पकड़ौवल (ପରାପରି--ଅନ୍ୟରୂପ)

**ପଡ଼ା ପଡ଼ିଶା**—ଦେ. ବ. (ସଂ. ପତ୍ତନ+ପ୍ରତିବାସୀ)—୧ । ସାଇ ପଡ଼ିଶା—
Pardā pardisā 1. Neighbours.
पाडा पडसे ୨ । ନିଜ ଗୃହର ସମୀପବର୍ତ୍ତୀ ସ୍ଥାନମାନ—
अड़ोसी पड़ोसी, पास पड़ोस 2. Places adjoining one's residence.
[ପଡ଼ା ପଡ଼ୋସ୍, ପଡ଼ା ପ୍ରତିବାସୀ, ପଡ଼ାପଡ଼(ଡ଼ୋ)ସି—ଅନ୍ୟରୂପ]

**ପଡ଼ି**—ଦେ ବ. ( ସଂ. ପତ୍ ଧାତୁ )—
Pardi ୧ । କୌଣସି ଲୋକର ଭରଣପୋଷଣାର୍ଥ ଦିଆଯିବା ଦୈନିକ
पातड़ा ଖଞ୍ଜା ଧାନ୍ୟ ବା ଖାଦ୍ୟସାମଗ୍ରୀ—1. Daily quota of
पेट खरची, रोजाना paddy or provisions supplied for the maintenance of a person; a dole; a daily ration.
୨ । ଗୀତର ଶେଷରେ ବୋଲାଯିବା ଅନ୍ୟ ରାଗାତ୍ମକ ପଦ—
2. The diverted refrain of a song.

୩ । ଏକ ଜଣର ଉପଯୁକ୍ତ ଖାଦ୍ୟ ତଣ୍ଡୁଳାଦି, ସଞ୍ଜା—
3. Victuals sufficient for one person.

ଘା ପଡ଼ ଡୋଇ କୋଠୁଁ ଦେଇ
ଅବର୍ମ ତାଙ୍କ ଦୁ ବୋଲଇ । ଉପେ. ପ୍ରେମପଞ୍ଚାମୃତ ।

ପ୍ରାଦେ. ( ସମ୍ବଲପୁର, ଗଡ଼ଜାତ ) ବି—ପରି ( ଦେଖ )
Pari ( See )

**ପଡ଼ିଆ**—ଦେ. ବି. ( ସଂ. ପତିତ )—୧ । ପତିତ ଭୂମି, ଅନାବାଦ ଜମି—
Pardia 1. Fallow land; uncultivated field; waste land.
ପଡୋ, ପଡା, ପଡ଼ତ୍
**पड़ती** ୨ । ସମତଳ ଘାସ ଭୂମି—2. Meadow
୩ । ଫାଙ୍କା ଜାଗା, ଉନ୍ମୁକ୍ତ ସ୍ଥାନ—3. Open field.
୪ । ନିମ୍ନ ଭୂମି—4. Low land.
୫ । ନଦୀର ଅଳ୍ପ ଜଳ ଥିବା ସ୍ଥାନ—
5. Shallow part of a river.
୬ । ହଳିଆ ବା ମୂଲିଆ ଯେଉଁ ଦିନ କାମ କରିବାକୁ ନ ଆସେ ସେ ଦିନର ଅନୁପସ୍ଥିତି—6 Abesence of a labourer from work on any day
୭ । ଲୁଗାର ଯେଉଁ ଅଂଶର ସୂତା ଠିକ୍‌ରୂପେ ବୁଣା ହୋଇ ପାରି ନ ଥାଏ—7. Part of a cloth where the woof and the warp threads have not been woven regularly.
୮ । ଶଗଡ଼ର ଗୋଟିଏ ଚକ ଉଚ୍ଚ ଜାଗାରେ ଓ ଅନ୍ୟ ଚକ ଖାଲ ଜାଗାରେ ପଡ଼ିବା ଅବସ୍ଥା—8. The condition of one wheel of a cart being on a lower ground than the other.

ଦେ. ବିଣ—୧ । ପତିତ; ଅକର୍ଷିତ—
(ଉଠିଆ—ବିପରୀତ) 1. Uncultivated; waste; fallow.
**পড়ৎ**
**पड़ती**

ପଡ଼ିଅ ଭୂଇଁ ଥାଇଁ ଉଠିଅ ଭୂମି ହେଲେ
ସେ ସୁକୃତ କହି ନ ପାରଇଁ ଭଲେ । କୃଷ୍ଣସିଂହ-ମହାଭାରତ- ଅନୁଶାସନ ।

୨ । ଅନିୟୋଜିତ—2. Unemployed.
(ଯଥା - ଆଜି ମୋର ଚାକର ପଡ଼ିଆ ।)
୩ । (ବାଛୁରୀ ବଢ଼ିଯାଇ ଥିବାରୁ) ଯେଉଁ ଗାଈ ବଷିକ ଯାଇଥାଏ ଅର୍ଥାତ୍ ଯାହାର ଦୁଧ କମି ଯାଇଥାଏ—3. (a milch cow) That has become dry.
୪ । ଦୋକାନରେ ପଦାର୍ଥ ବିକ୍ରି ନ ହେବା (ସମୟ)—
4. Slack (season).
୫ । ନିରସା; ନିକୃଷ୍ଟ—5. Inferior.
୬ । ଯେଉଁ ବ୍ୟକ୍ତି ଖାଇବା ସକାଶେ ପ୍ରତିଦିନ ପଡ଼ି ପାଏ—
6. Depending on a dole of rice.
୭ । ବାସ ପରିତ୍ୟକ୍ତ; ଯେଉଁ ସ୍ଥାନରେ କେହି ବାସ କରୁ ନାହିଁ (ଯଥା—ପଡ଼ିଆ ଘର)—7. Uninhabited; abandoned (house); untenanted.
୮ । ବିକ୍ରି ନ ହୋଇ ଦୋକାନରେ ପଡ଼ି ରହିଥିବା (ପଣ୍ୟଦ୍ରବ୍ୟ)
8 (any commodity) Which remains undisposed of in the shop

**ପଡ଼ିଆ ଉଠିଆ**—ଦେ. ବିଣ. (ବିପରୀତାର୍ଥକ ସହଚର)—୧ । ଉଚ୍ଚ ନୀଚ
Pardia uthia (ଭୂମି)—1. Undulating (ground).
**पड़ती आबादी** ୨ । ଅନାବାଦୀ ଓ ଆବାଦୀ (ଜମି)—
2 Waste and arable (land).

**ପଡ଼ିଆ ଗାଈ**—ଦେ ବି—ବାଛୁରୀ ବଢ଼ିଗଲେ ଯେଉଁ ଦୁହାଁଳୀ ଗାଈଠାରୁ
Pardia gai ଦୁଧ ଦୁହାଁ ବନ୍ଦ କରି ଦିଆଯାଏ—A milch cow
**बिषली हुई गाय** which has become dry

**ପଡ଼ିଆ ଜୁଆର**—ଦେ. ବି—ପୂର୍ଣ୍ଣିମା ଅମାବାସ୍ୟା ଛଡ଼ା ଅନ୍ୟ ତିଥିରେ
Pardia juara ହେବା ଅଳ୍ପ ସ୍ଫୀତିଯୁକ୍ତ ଜୁଆର—Ebb tide;
**घटतोज्वार** (ଉଠିଆ ଜୁଆର—ବିପରୀତ) low tide.

**ପଡ଼ିଆଣ** - ଦେ ବି. (ସଂ. ପ୍ରତିବାଣୀ କମ୍ବା ପ୍ରତିତନ୍ତୁ)—ଲୁଗାର ଭରଣୀ
Pardiana ବା ତଉଡ଼ା ବାଗର ସୂତା—The woof of a cloth; weft.
ପଡ଼ିୟାନ, ପଡ଼୍ୟାନ **भरनी, बाना**

**ପଡ଼ିଆଣି ଜୁଆର**—ଦେ. ବି. (ଜାହାଜିଆ ଭାଷା)—ପାଣିର ଉଚ୍ଚତା କମି
Pardiani juara ଯାଉଥିବା ଜୁଆରର ଅବସ୍ଥା; ଛଢ଼ୋଣୀ—
**ज्वारकी घटती** The subsiding state of a flow tide; the ebbing of a tide.

ଯେତେବେଳେ ପଡ଼ିଆଣି ଜୁଆର,
ଜାହାଜ ନହାତ ବାଲିଚଡାରେ ବସି ଯାଉଛି । ଫକୀରମୋହନ—ଗଳ୍ପସ୍ୱଳ୍ପ ।

**ପଡ଼ିଆ ଭୂଇଁ**—ଦେ. ବି. (ସଂ. ପତିତ ଭୂମି)—୧ । ପତିତ ଜମି—
Pardia bhuin Fallow ground.
ପଡତ୍ ଜମି ୨ । ଗୋଚର ଜମି—
**पड़ती जमीन** 2. Grazing ground.
ପଡ଼ିଆ ବାଡ଼ି } ୩ । ଗ୍ରାମ୍ୟ ସାଧାରଣଙ୍କର ଝାଡ଼ା ଫେରିବା ସ୍ଥାନ—
ପଡ଼ିଆ ଜମି } ଅନ୍ୟରୂପ] 3. The common easing ground of a village.
ପଡ଼ିଆ ଭୂମି }

ଦେବ, ଦ୍ୟାଇବ, ଦେ ପଦ ବୋଲିବ,
ଡେଇ ଭୂଇଁରେ ଗୋଧନ ଚରାଇବ ହେ—ଚକୁଳିଆ ପଣ୍ଡା ଗୀତ ।

**ପଡ଼ିଆରୀ**—ଦେ. ବି—ପଡିହାରୀ ( ଦେଖ )
Pardiari Pardhiari (See)

**ପଡ଼ିଆ ସୁନା**—ଦେ. ବି.—ନିରସା ବା ଭେଲ ସୁନା—Mixed gold.
Pardia suna ନିରସା ସୁନା **गोबराहा सोना**

**ପଡ଼ି ଉଠି ଧାଇଁବା**—ଦେ. କ୍ରି—ବାଧା ବିପଦକୁ ନ ଗଣି ଅତିଶୀଘ୍ର
Pardiuthi dhainba ବ୍ୟଗ୍ର ହୋଇ ଖୁବ୍ ବେଗରେ ଗତି
**पड़ते उठते आना** କରିବା—To run very quickly by ignoring all the difficulties.

**ପଡ଼ି ଉଠି ପଳା(ଳେ)ଇବା**—ଦେ. କ୍ରି—ଅତି ଉଦ୍‌ବେଗରେ ବାଧା ବିଘ୍ନ
Pardi uthi pala(le)iba ନ ଗଣି କୌଣସି ସ୍ଥାନ ତ୍ୟାଗ କରିବା—To leave a place in hot haste.

ଘଟୋତ୍କଚ ସଙ୍ଗରୁ ଯୁଦ୍ଧ ଛଡ଼ି ଦେଇ,
ଚୋଇଲେ ପଡ଼ି ଉଠି ହେ କରଣହିଁ । କୃଷ୍ଣସିଂହ- ମହାଭାରତ- ଖଣ୍ଡ ।

**ପଡ଼ି କାଟ**—ଦେ ବି—୧ । ଦୈନିକ ଖଞ୍ଜା ଥିବା ପଡ଼ି ବା ଖାଦ୍ୟର
Pardi kata ଅପ୍ରାପ୍ତି—1. Lack or deprivation of the
**खुराक बन्द** daily supply or dole given out to a person; non-receipt of one's daily dole.

୨ । ( ଲକ୍ଷଣାର୍ଥ ) ଭୋଜନାଭାବ—2 ( figurative ) Lack of one's daily food or supply.

**ପଡ଼ି ଖିଆ**—ଦେ. ବିଣ—ଯେଉଁ ବ୍ୟକ୍ତିଙ୍କୁ ପ୍ରତିଦିନ ପଡ଼ି ବା ଖଞ୍ଜା ଖାଦ୍ୟ-
**Pardi khiā** ସାମଗ୍ରୀ ମିଳେ—A person who gets dole.

**ପଡ଼ିଛା**—ଦେ. ବି—ପରିଛା ( ଦେଖ )
**Pardichhā** Parichhā (See).

**ପଡ଼ି ଦାତା**—ଦେ. ବିଣ—ଯେ ପଡ଼ିଖିଆ ଲୋକଙ୍କୁ ଦୈନିକ ଖୋରାକ
**Pardi dātā** ଦିଏ—Almoner; one who distributes doles; distributer of provisions.

**ପଡ଼ିବା**—ଦେ. କ୍ରି. ( ସଂ. ପତ୍ ଧାତୁ, ସଂ. ପତନ, ପ୍ରା. ପଡ଼ନ )—
**Pardibā** ୧ । ପତିତ ହେବା—1. To fall.

**ପଡ଼ା** ତୋଳାଇଲା ପରି ତଳ ତଳେ ପଡ଼ିଯିବା ଭଳି
**ପଡ଼ନା** କନ୍ଦର୍ପ. କଣୋଘଚକ୍ଷୁ. ତ ଗୀତ ।

(ପଡ଼ିଯିବା ଅନ୍ୟରୂପ ) ୨ । ଝଡ଼ିବା, ଭୂମିରେ ପତିତ ହେବା—
2. To drop down; to fall to the ground.

୩ । ( ସମୟ ) ଉପସ୍ଥିତ ହେବା—3. (a time) To arrive.

ଯଥା—ଆଜକାଲି ବଡ଼ ମହର୍ଗକାଳ ପଡ଼ିଛି—

୪ । ଲୋଟିବା, ଗଡ଼ିବା, ଭୂମିରେ ଲୁଣ୍ଠିତ ହେବା—4. To roll on the ground; to wallow on the ground.

୫ । ଅନ୍ୟର ଗୋଡ଼ତଳେ ଦଣ୍ଡବତ୍ ପତିତ ହେବା—
5. To lie prostrate at one's feet.

୬ । ସ୍ଖଳିତ ହେବା, ସ୍ୱସ୍ଥାନରୁ ନିମ୍ନକୁ ଖସିବା—
6. To slip down.

ଯଥା—ଘୋଡ଼ାରୁ ପଡ଼ିଯାଇ ରାମର ଅଣ୍ଟା ଭାଙ୍ଗିଗଲା ।

୭ । (ନଦୀ) ବହିଯାଇ ସାଗର ଆଦିରେ ମିଶିବା—
7. (a river) To flow and fall into (the sea).

ଯଥା—ଏ ନଈ ଚିଲିକାରେ ପଡ଼ିଛି ।

୮ । ନିଷ୍କ୍ରାନ୍ତ ହେବା, ବାହାରିବା—
8. To come out; to issue.

ଯଥା—ମେଘରୁ ବର୍ଷା ପଡ଼ୁଛି, ତା ପାଟିରୁ ରକ୍ତ ପଡ଼ୁଛି ।

୯ । ଶୋଇବା, ଶଯ୍ୟାଗତ ହେବା—
9. To lie down; to be confined to bed.

ଯଥା—ତା ଘରେ ତିନି ପ୍ରାଣୀଯାକ ରୋଗରେ ପଡ଼ିଛନ୍ତି ।

୧୦ । ଧୃତ ହେବା, ଧରା ହେବା—10. To be caught.

'କାଳିଆ ଫାନ୍ଦେ ମିଚ ଲୋ । ନ ପଡ଼ିବୁଟି'—ସଙ୍ଗୀତ ।

୧୧ । ହସ୍ତଗତ ହେବା; ଅଧିକାରକୁ ଆସିବା—
11. To come under one's control or disposal.

୧୨ । ଉପସ୍ଥିତ ହେବା; ଆସିବା—
12 To come; to arrive at.

ଅଇଲି ଯାଇଁ ପଡ଼ିଲି କାହିଁ ସୁଆଦ ଶବଦ ହୁଏ ନାହିଁ—ଉଗ ।

୧୩ । ମନ ମିଳିବା ବା ସଙ୍ଗହୋଇ ଚଳିବା—
13. To be on friendly or good terms.

ଯଥା—ସେ ଘଇତାମାଇପଙ୍କର ଭାରି ପଡ଼ୁଛି ।

୧୪ । ଚାଳିତ ହେବା, କଥା ଅନୁସାରେ କାର୍ଯ୍ୟ କରିବା—
14. To be led or guided by; to act according to the advice of.

ଯଥା—ତା କଥାରେ ପଡ଼ି ଆଜି ମୋର ଏ ଦଶା ହେଲା ।

୧୫ । ଆସକ୍ତ ହେବା, ଅନୁରକ୍ତ ହେବା—
15 To be attached or addicted to.

ଯଥା—କୁସଙ୍ଗରେ ପଡ଼ି ସେ ପଢ଼ାପଢ଼ି ଛାଡ଼ି ଦେଲା ।

୧୬ । ମିଳିବା, ମେଳ ହେବା—16 To tally with.

ଯଥା—ତୋ କଥାକୁ ମୋ କଥା ପଡ଼ିଗଲା ।

୧୭ । ସମକକ୍ଷ ହେବା, ଅନୁକୂଳ ହେବା—
17 To be equal to; to fit in with.

ଯଥା—ବରପାତ୍ର ଜାତକ ସଙ୍ଗେ କନ୍ୟାପାତ୍ର ଜାତକ ଭଲ ପଡ଼ିଛି ।

୧୮ । ଅପେକ୍ଷା କରି ରହିବା—18. To stay waiting.

ଯଥା—ଆମ ମାମଲା ଧରାଯିବ ବୋଲି ଆମେ କଟକରେ ତିନି ଦିନ ହେଲା ପଡ଼ିଛୁଁ ।

୧୯ । ଲୋଡ଼ା ହେବା, ଆବଶ୍ୟକ ହେବା—
19 To be necessary; to be wanted.

ଯଥା—ଏ ବର୍ଷ ଶୀତ ପାଇଁକି ଖଣ୍ଡିଏ ମାଠ କିଣିବାକୁ ପଡ଼ିଲାଣି ।

୨୦ । ଦନ୍ତୁରି ହେବା—20. To become blunt.

ଯଥା—ଏ କଟୁରିର ଦାଢ଼ ପଡ଼ିଗଲାଣି ।

୨୧ । ଲାଗିବା; ବ୍ୟୟ ହେବା—21. To cost.

ଯଥା—ଦେଉଳଟିଏ ତୋଳାଇବାକୁ ହଜାରେ ଟଙ୍କା ପଡ଼ିବ ।

୨୨ । ହେବା—22. To be.

ଯଥା—ଏ ଲୁଗାର ଦାମ କେତେ ଟଙ୍କା ପଡ଼ିବ ? ଏ କଥା କଅଣ ମୋଫତ୍ ପଡ଼ୁଛି କି ?

୨୩ । ଆଲୋଚିତ ହେବା; ପ୍ରସଙ୍ଗକ୍ରମେ ଉତ୍ଥାପିତ ହେବା—
23. To be discussed; to be raised during a discourse or conversation.

ଚନ୍ଦ୍ରକୂଟେ ଅନୁସୂୟାଙ୍କର ସଙ୍ଗତେ
ସମ୍ବାଦ ଯା ପଡ଼ିଲା କହିବା ତା କେତେ । କୃଷ୍ଣସିଂହ. ମହାଭାରତ. ବନ ।

୨୪ । ଭାବର ଆଦାନ ପ୍ରଦାନ ହେବା; ପ୍ରଶ୍ନୋତ୍ତର କ୍ରମେ ଚର୍ଚ୍ଚା କରାଯିବା—24. To be dealt with in the shape of questions & answers thereto.

(ଯଥା—ତାର ମୋର ବହୁତ ଦୁଃଖ ସୁଖ ପଡ଼ିଲା । )

୨୫ । ବିଖ୍ୟାତ ହେବା, ପ୍ରକଟିତ ହେବା—
25. To be published.

ବାଟରେ ହଗିଲେ ନାଁ ପଡ଼େ, ଦେଉଳ ତୋଳେଇଲେ ନାଁ ପଡ଼େ । ଢଗ—

୨୬ । ବିଲମ୍ବିତ ହେବା, ଲମ୍ବିବା—26. To hang down.

ଓଢଣା ପଡ଼ିଛି ଭୁଣ୍ଡ ସହିତ
ଦାନ୍ତ ଶୁଭୁଅଛି ତଉଟାଭିଡ଼—ଚର୍ଣ ।

୨୭ । ଚଢ଼ାଉ କରିବା, ଉଜାଡ଼ କରିବା—27. To attack; to commit depredations upon.

ଧୂମାକ୍ତ କଣ୍ଠ ମୂଳକ ଯାକ, ଧନ କାଞ୍ଚନ ଲୁଟି ଅନେକ
ଯାଇଁ ପଡ଼ିଲେ ଖାପିଏ କ୍ରାନ୍ତ ନୃପ ଭୂଷଣ ସେ । ବ୍ରଜନାଥ—ସମର ତରଙ୍ଗ ।

୨୮ । ଅନୁଭୂତ ହେବା—
28. To be felt or experienced.
ଯଥା—ଏ ବର୍ଷ ଭାରି ଶୀତ ପଡ଼ୁଛି ।

୨୯ । ଘଟିବା—29. To happen; to occur.
ପଡ଼ିଲ ଏବେ ଅସି ଦାବାଗ୍ନି ବାଦ—କୃଷ୍ଣସିଂହ, ମହାଭାରତ, ବନ ।

୩୦ । ପ୍ରସ୍ତାବିତ ହେବା—30. To be proposed.
ଲୋକଙ୍କର ନାଗକ ବର ପଡ଼ିଛି ଅର ସାତ ବଣଭୂଆ—ଭଗ ।

୩୧ । ମୁଦା ହେବା; ବନ୍ଦ ହେବା—
31. To be closed or shut up.
ଯଥା—ସନ୍ଧ୍ୟା ନ ବୁଡ଼ୁଣୁ ଗାଆଁସାକ ଡାଟ୍ଟ କବାଟ ପଡ଼ିଲାଣି ।

୩୨ । ଫଳ ଘଟିବା—32 To result.
ଯଥା—ପଠଶଙ୍କୁ ପାଖରେ ହାରିଲେ କେତେ ପଡ଼ିବ ?

୩୩ । ଇତସ୍ତତଃ ସଞ୍ଚାଳିତ ହେବା—
33. To be waved to and fro.
ଟ୍ଟଫୁଲ୍ଲ ଉଷାଣ ଚଞ୍ଚଳ ଭ୍ରମର ଭର ପାଦୁଣରେ ପଡ଼େ—ଦୀନକୃଷ୍ଣ. ଜଗମୋହନ ।

୩୪ । ଉପର୍ଯ୍ୟୁପରି ପ୍ରହାରିତ ହେବା—
34. To be struck repeatedly.
ଘେଙ୍କି ପଡ଼େ ଧମ ଧମ, ସାହାନ ଗ୍ରହନ ଭାର କଠୋର,
ଝାଳ ବୁହେ ଗମ ଗମ—ଭଗ ।

୩୫ । ରହିତ ହେବା; ଅକ୍ଷମ ହେବା, ଅବଶ ହେବା—
35. To become useless or unfit for work.
ଯଥା—ଶ୍ରାଦ୍ଧପାକ ଗୀତ ଗାଇଗାଇ ମୋ କଣ୍ଠ ପଡ଼ିଲାଣି ।

୩୬ । ଖିଆ ପିଆ ହେବା—
36. To be eaten; to be partaken.
ଯଥା—ଆଜି ଟୋପାଏ ନାଲ୍ ପାଣି ପଡ଼ିବାରୁ ତାଙ୍କୁ ଉନପୁର କଥା ବଶୁଛି ।

୩୭ । (ସୁବିଧା) ଜୁଟିବା—37. To come to pass; (an opportunity) to present itself.
ଯଥା—ଖଞ୍ଜ ପଡ଼ିଲେ ସେ ତାଙ୍କୁ ଗ୍ଲେଟେ ଦବ ।

୩୮ । ପଡ଼ିଆ ହେବା; ଅକର୍ଷିତ ହୋଇ ରହିବା—
38 To lie fallow.
ଯଥା—ହଳହଳ ଅଭାବରୁ ମୋର ଏ ବର୍ଷ ୪ ମାଣ ଜମି ପଡ଼ି ରହିଲା ।

୩୯ । ଭୂମି ଉପରେ ବିସ୍ତୃତ ହେବା—33. To be spread on the ground.
ଯଥା—ବିଛଣା ପଡ଼ିଛି ।

୪୦ । ଆଶ୍ରୟ କରି ରହିବା—
40. To remain as a dependant on.
ଯଥା—ମୁଁ ତ ସାଆନ୍ତଙ୍କ ପାଖେ ପଡ଼ିଛି, ସେ ରଖିବେ ରଖନ୍ତୁ, ମାରିଲେ ମାରନ୍ତୁ ।

୪୧ । ଫଳରେ ଜଣା ଯିବା, ଦେଖାଯିବା—
41. To turn out to be; to be found.
ଯଥା—ଏ ବଳଦଟି ଭାରି ଟାଣୁଆ ପଡ଼ିଲା ।

୪୨ । ତଳକୁ ଓହ୍ଲାଇବା; ଅଧୋଗାମୀ ହେବା—
42. To descend; to go down.
ଯଥା—ଉପରୁକୁ ଗୋଟାଏ ପକ୍ଷୀ ପଡ଼ି ଯାଇଛି ।

୪୩ । ଦେଖା ଯିବା—43. To appear; to be seen.
ଯଥା—ମେଘ ଛାଡ଼ିଯିବାରୁ ଆକାଶରେ ତାରା ପଡ଼ିଲେଣି ।

୪୪ । ( ଗଛରେ ଫଳ) ଧରିବା—44. ( said of a fruit ) To appear on a tree; to be borne by a tree.
ଯଥା—ମୋ ବାଡ଼ିରେ ତିନି କାନ୍ଦି କଦଳୀ ପଡ଼ିଲାଣି ।

୪୫ । ଅଭିଭୂତ ହେବା—45. To be overtaken.
ଉକତ ଲାଭେ କୃଷ୍ଣ ପାଦେ,
ନ ପଡେ ଶୋକ ମୋହ ହ୍ରଦେ । ଜଗନ୍ନାଥ. ଭାଗବତ ।

୪୬ । ଉଚ୍ଚାରିତ ହେବା—
46. To be pronounced or uttered.
ଯଥା—ସତ୍ୟନାରାୟଣ ପୂଜାରେ ଆଜି ଖୁବ୍ ହରିବୋଲ ହୁଳହୁଳି ପଡ଼ିଲା ।

୪୭ । ( ଦାନ୍ତଆଦି ) ସ୍ଥାନଚ୍ୟୁତ ହେବା—
47. To be dislocated.
ଯଥା—ବୁଢ଼ାଦିନେ ଅଧିକାଂଶ ଲୋକଙ୍କର ଦାନ୍ତ ପଡ଼ିଯାଏ ।

୪୮ । (ଶାପ ଆଦି) କୌଣସି ବ୍ୟକ୍ତିଠାରେ ଫଳିବା—
48. (a curse) To bear fruit on a person.
ଯଥା —ତା ଉପରେ ମୋ ନିଶ୍ୱାସ ପଡ଼ିଲା ।

୪୯ । ପ୍ରେରିତ ହେବା—49. To be sent or issued.
ଯଥା—ହଭାଘରକୁ ସମୁଦ୍ଦଙ୍କ ଘରେ ଆମର ଗୁଆ ପଡ଼ିଛି ।

୫୦ । କୌଣସି ସ୍ଥାନରେ ସ୍ଥାପିତ ହେବା—
50. To be raised or pitched at a place.
ଯଥା—କଛା ପଡ଼ିଆରେ ତମ୍ବୁ ପଡ଼ିଛି ।

୫୧ । ଆରବ୍ଧ ହୋଇଥିବା—51. To be begun.
ଯଥା—ବର୍ତ୍ତମାନ ଅଯୋଧ୍ୟାକାଣ୍ଡ ପଡ଼ିଛି ।

୫୨ । ଉପୁଜିବା, ଜାତ ହେବା—
52. To be born; to grow.
ଯଥା—ଆମ ଗାଈର ଗୋଟିଏ ମାଈ ବାଛୁରୀ ପଡ଼ିଛି ।

୫୩ । ( ରାସ୍ତା ଆଦି ) ନୂତନ ତିଆରି ହେବା—
53. (a road) To be constructed or laid.
ଯଥା—ଗୁରୁମାସ ହେଲା ଆମ ଗାଁଆଁକୁ ପକ୍କା ସଡ଼କ ପଡ଼ୁଛି ।

୫୪ । (ରୋଗ) ଆକ୍ରମଣ କରିବା—54. To attack.
ଯଥା—ମୋର ପିଳ୍ଳୁଳ ପଡ଼ୁଛି, ଗୋବିନ୍ଦ ମାଆଙ୍କର ଥନହରା ପଡ଼ିଛି ।

୫୫ । ପାଳିତ ହେବା—55. To be laid.
ଯଥା—ଖାଇବାକୁ ପତର ପଡ଼ିଛି ।

୫୬ । ଛାଉଣି ପକାଇବା—56. To encamp.
ଯଥା—ଆମ ତୋଟାରେ ବନ୍ଦୋବସ୍ତ ହାକିମ ପଡ଼ିଛନ୍ତି ।

୫୭ । ମିଶ୍ରିତ ହେବା—57. To be mixed.
ଘିଅରେ ପଡ଼ିଛି କର୍ପୂର ବାସ,
ଘିଅ ଖାଇଲେ ଛଡ଼ିବ ନାଶ । ଶିଶୁଗୀତ ।

୫୮ । ତଳକୁ ଖସାଯିବା—58. To be lowered.

ଯଥା—ଜାହାଜର ଲଙ୍ଗର ପଡ଼ିଲା; ରେଳର ସିଗ୍ନାଲ୍ ପଡ଼ିଲାଣି ।

୫୯ ( ଘରର ଶୁଭଆଦି ) ଦିଆଯିବା—
59. ( a foundation ) To be laid.
ଯଥା— ଆଜ ଘରେ ଶୁଭ ପଡ଼ିଲା ।

୬୦ । କୌଣସି ସ୍ଥାନରେ ଉପସ୍ଥିତ ହେବା—
60. To arrive at a place.
ଯଥା—ମୁଗ କିଆରିରେ ପଙ୍କେ ମାଙ୍କଡ଼ ପଡ଼ିଛନ୍ତି

୬୧ । ଚିତ୍ର ବା କାରୁକାର୍ଯ୍ୟରୂପେ ଖଚିତ ହେବା—
61 To be decorated with ornamental works.
ଯଥା—ଏ ଶାଢ଼ୀରେ ଲୁମ୍ବ ପଡ଼ିଛି ।

୬୨ । ଇତସ୍ତତଃ ବିକ୍ଷିପ୍ତ ହେବା—
62. To be strewn or scattered about.
ଯଥା—ଲୁଗା ପଟାଯାକ ଘରେ ଏଣେ ତେଣେ ପଡ଼ିଛି ।

୬୩ । ସଂଯୋଜିତ ହେବା—6. To be set or joined to.
ଯଥା—ଏଥର ରଜରେ ଗୋଟାଏ ବାରହାତିଆ ଶାଢ଼ୀ ପଡ଼ିଛି ।

୬୪ । ନିମ୍ନସ୍ଥ ବସ୍ତୁକୁ ସ୍ପର୍ଶ କରିବା—
64 To touch a thing which is below
ବାଳ ଲମ୍ବିତ ଭୂଇଁରେ ପଡ଼ୁ । ଲକ୍ଷେ ଚମ୍ପାଫୁଲ ଝଡ଼ୁ । ଚଗ ।

୬୫ । ଉକ୍ତି ପ୍ରତ୍ୟୁକ୍ତିରୂପେ କଥିତ ହେବା—
65. To be exchanged as questions & replies.
ଯଥା—ସେ ଦୁହିଙ୍କ ମଧ୍ୟରେ ଭାରି ତାହିକା ପଡ଼ିଛି ।

୬୬ । ଶବ୍ଦିତ ହେବା—66. To be sounded.
ଯଥା—ତୋପ ପଡ଼ିଲା ।

୬୭ । ରୋପିତ ହେବା; ବୁଣା ହେବା—
67. To be planted; to be sown.
ଯଥା—ଏ ବିଲରେ ଚଳ ପଡ଼ିଛି, କୁଣ୍ଡରେ କୋବି ଗଛ ପଡ଼ିଛି ।

୬୮ । ପ୍ରଦତ୍ତ ହେବା—4 To be given.
ଯଥା—ଚୁଡ଼ା ପାଇଁ କେଉଁଠି ଘରେ ୫ ଗୌଣି ଧାନ ପଡ଼ିଛି, ଧୋବାଘରେ ଲୁଗା ପଡ଼ିଛି ।

୬୯ । ଟଣା ଯିବା—69. To be drawn; to be dragged.
ଯଥା— ପୋଖରୀରେ ଜାଲ ପଡ଼ିଛି ।

୭୦ । ବାଜିବା, ଲାଗିବା—70. To touch.
ପଦ୍ମୋଷ୍ଠୀଙ୍କ ଜଳ ପଡ଼ଇ ଯାଇ ଦେହେ
ସେ କେବେ କ ପଡ଼ଇ ଏ ହସାଇ ମୋହେ । କୃଷ୍ଣସିଂହ. ମହାଭାରତ. ବନ ।

୭୧ । କମିବା—To come down.
ଯଥା— ଭାଉ ପଡ଼ିଲା ।

୭୨ । ବର୍ଷିବା; (ଅମୁକ) ଉପରେ ଊର୍ଦ୍ଧ୍ୱରୁ ପତିତ ହେବା—
72. To be showered upon; to rain.
ଯଥା — ତୋ ମୁଣ୍ଡରେ ବର୍ଷା ପାଣି ପଡ଼ୁଛି ।

୭୩ । ମାଗଣାରେ ମିଳିବା—
73. To be available for nothing.
ଯଥା—ଏଠେଇଁ କଅଣ ସଦାବର୍ତ୍ତ ପଡ଼ିଛି ଯେ, ତୁମେ ନିତି ଏଠାକୁ ଦଉଡ଼ୁଛ ?

୭୪ । (ବ୍ରଣ, ପିଚ୍ଛୁଳ, ବାଘୀ ଆଦି ସ୍ଫୀତିଯୁକ୍ତ ରୋଗ) ଦେହରେ ଦେଖାଯିବା—74. To come out (said of boils & swellings).

୭୫ । (କୋଲପ, ଚାବି, ଶିକୁଳି ଆଦି ଦ୍ୱାରା) ଗୃହର କବାଟ ବନ୍ଦ ହେବା—75. To be locked up with padlock or chain (said of the door of a house).
ଯଥା—ଦୋକାନରେ କୋଲପ ପଡ଼ିଛି ।

[ ଦ୍ର—ଅନ୍ୟ ଧାତୁ ସଙ୍ଗେ ପଡ଼ିବା ଯୋଗ ହେଲେ ସେ ଧାତୁର ଅର୍ଥକୁ ଦୃଢତର କରେ । ଯଥା—ଧାଇଁ ପଡ଼ ହୋ; ଓହ୍ଲାଇ ପଡ଼ିବା, ବସିପଡ଼ିବା; ଉଠିପଡ଼ିବା ଓ ଶୋଇ ପଡ଼ିବା ଇତ୍ୟାଦି ।

ପଡ଼ିବା ପୂର୍ବେ ବ୍ୟବହୃତ ଅସମାପିକା କ୍ରିୟା, ଯଥା — ଧାଇଁ ପଡ଼ିବା, ଉଠି ପଡ଼ିବା, ବସି ପଡ଼ିବା; ଶୋଇ ପଡ଼ିବା; ଗଡ଼ି ପଡ଼ିବା; ନଇଁ ପଡ଼ିବା, ଡେଇଁ ପଡ଼ିବା, ଚମକି ପଡ଼ିବା, ମାଡ଼ି ପଡ଼ିବା, ଭୁଙ୍ଗି ପଡ଼ିବା ଝୁଡ଼ି ପଡ଼ିବା ଇତ୍ୟାଦି ।

ପଡ଼ିବାର ଅସମାପିକା ରୂପ ପରେ ବ୍ୟବହୃତ କ୍ରିୟା—ଯଥା ପଡ଼ିଯିବା, ପଡ଼ି ଉଠି ଧାଇଁବା, ପଡ଼ି ମରିବା ଓ ପଡ଼ି ରହିବା ଇତ୍ୟାଦି ।

ପଡ଼ିବାର ସହଚର କ୍ରିୟା—ପଡ଼ିବା ଉଠିବା; ଉଠିବା ପଡ଼ିବା ]

**ପଡ଼ିବା ଉଠିବା**—ଦେ କ୍ରି—ବିକ୍ଷିପ୍ତ ହେବା ଓ ଉତ୍କ୍ଷିପ୍ତ ହେବା—
**Pardibā uthibā** 1 To be thrown up and down
ସଂସ୍କୃତ **ପତନୋତ୍ଥାନ** — ୨ । ଦଉଡ଼ିଲାବେଳେ ଅସମତଳ ବା ଖସଡ଼ା ଭୂମିରେ ପଡ଼ିଯିବା ଓ ପୁଣି ଉଠିବା—2. To fall down and get up while running over an uneven or slippery surface.
ଯଥା—ଜମିଦାରଙ୍କର ତଲବ ହୋଇଛି ବୋଲି ଅନ୍ଧାର ରାତିରେ ପ୍ରଜାମାନେ ପଡ଼ି ଉଠି ଧାଇଁଛନ୍ତି ।

୩ । (ଲକ୍ଷଣାର୍ଥ) ଘନ ଘନ ଗର୍ଜ୍ଜନ ବା ଉଚ୍ଚୈଃସ୍ୱର ବା ଅତ୍ୟୁଗ୍ରର ଯୋଗୁଁ କମ୍ପମାନ ବା ଅସ୍ଥିର ହେବା—3 (a place) To shake violently owing to repeated loud roaring or loud reports.
ଯଥା—ବାମ୍ବାଜି ଫୁଟିବାରୁ ସେ ଗାଁ ପଡ଼ୁଛି ଉଠୁଛି ।

୪ । (କୌଣସି ବ୍ୟକ୍ତି) ରୋଗର ଯନ୍ତ୍ରଣାରେ ଅସ୍ଥିର ହେବା; ଯନ୍ତ୍ରଣାରେ ଦେହ ହାତ ଗୋଡ଼ ବାଡ଼େଇବା କଚାଡ଼ିବା—
4 (a person) To strike one's arms and legs in the paroxysms of a disease.

**ପଡ଼ି ବାଣୁଆ** — ଗ୍ରା. ଦେ (ଗଡ଼ଜାତ)—ବି—ପେଣ୍ଠିଆ (ଦେଖ)
**Pardi bāṇuā** Penṭhiā (See)

**ପଡ଼ି ଭାତ**—ଦେ. ବି—ଦୈନିକ ଖଞ୍ଜା ବା ନିର୍ଦ୍ଦିଷ୍ଟ ଅନ୍ନ—
**Pardi bhāta** Daily quota or dole of boiled rice.
ଚଉଦ ବ୍ରହ୍ମାଣ୍ଡେ ଯେତେକ
ସବୁଙ୍କ ଦେଇ ପଡ଼ି ଭାତ । ଗ୍ରାଚୀ, ନିର୍ଗୁଣ ମାହାତ୍ମ୍ୟ ।

**ପଡ଼ି ମରିବା**—ଦେ. କ୍ରି—୧ । କୌଣସି ସ୍ଥାନରେ ଜୋରରେ ପତିତ ହେବା—1. To fall down with force.
**Pardi maribā**
୨ । ଅତି ଦୁଃଖ ବା କଷ୍ଟରେ କୌଣସି ସ୍ଥାନରେ ପଡ଼ି ରହିବା—
2. To continue to stay at a place with great difficulty.

**ପଡ଼ି ରହିବା**—ଦେ. କ୍ରି—୧ । ବହୁକାଳ ଏକସ୍ଥାନରେ ପଡ଼ିବା—
Pardi rahiba 1 To lie at one place for a long time.
୨ । କାର୍ଯ୍ୟ ଅସମାପ୍ତ ବା ଅକୃତ ହୋଇ ବହୁକାଳ ରହିବା—
2. To be pending; (a work) to remain undone or unfinished.
୩ । ବହୁକାଳ ଅପେକ୍ଷା କରିବା—
3. To wait for a long time.
୪ । ବହୁକାଳ ରୋଗ ଯୋଗୁଁ ଶଯ୍ୟାଗତ ହୋଇ ରହିବା—
4. To be confined to bed for a long time.

**ପଡ଼ିସା**—ଦେ. ବି. ପୁଂ. (ସଂ. ପ୍ରତିବେଶୀ, ପ୍ରତିବାସୀ, ପ୍ରା. ପଡ଼ିବେସ)—
Pardisa ୧ । ପ୍ରତିବାସୀ; ସାଇପଡ଼ିଶା—
ପଡଶ, ପଡଶୀ 1. Neighbour.
**ପଡ଼ୋସ** ଡାକୁଥିଲେ ପଡ଼ିଶାଏ ମହାଶବ୍ଦ କରି । ସଖାନାଥ. ଫୁଲଶଣୀ ।
ପଡ଼ଶି, ପଡ଼ୋଶ, ପଡ଼ୋଶି } ଅନ୍ୟରୂପ ୨ । ପାଖରେ ଥିବାଲୋକ—
2. A person living close by.
ବେଷ୍ଟିତ ପଡ଼ିଶା ଯେ ଜନ
ଚାହିଁ ନାହିଁ ମୋ ପଣ ।ଭୂପତ. ପ୍ରେମପଞ୍ଚାମୃତ ।
ପଡ଼ିଶୁଣୀ, ପଡ଼ୁଶୁଣୀ, ପଡ଼ୋଶୁଣୀ, ପଡ଼ଶାଣୀ } ସ୍ତ୍ରୀ ଦେ. ବିଣ—ପ୍ରତିବେଶୀ; ପାର୍ଶ୍ୱସ୍ଥ—
Neighbouring; adjoining.

**ପଡ଼ିହାରି**—ଦେ. ବି—ପଢ଼ିଆରି (ଦେଖ)—
Pardihari Pardhiari (See)
ମୁଁ କ ହୋଇଲା ଘର ସ୍ୱତ
କହିବ ପଡ଼ିହାରି ଦୂତ । ଭୂପତ. ପ୍ରେମପଞ୍ଚାମୃତ ।

**ପଡ଼େକ୍**—ପ୍ରାଦେ. (ମେଦନୀପୁର) ବି—ପାଠଶାଳାରେ ପଢ଼ିବା ପିଲା—
Pardek A student.

**ପଡ଼ୋତି**—ପ୍ରାଦେ. (ଯାଜପୁର) ବିଣ—ପଡ଼ିଥି (ମାଲ); ବିକ୍ରି ନ ହୋଇ ଦୋକାନରେ ପଡ଼ି ରହିଥିବା (ପଣ୍ୟଦ୍ରବ୍ୟମାନ)—
Pardoti (commodities) Which lie unsold in the shop.

**ପଡ଼୍ୟା**—ପ୍ରାଦେ. (ମେଦନୀପୁର) ବିଣ. (ସଂ. ପତିତ)—ପଡ଼ିଆ—
Pardya Waste (land).

**ପଢ଼ଉ**—ଦେ. ବି. (ଭା. ପଡ଼ଗ୍)—୧ । ଛୋଟଡ଼ଙ୍ଗା, ଡଙ୍ଗୀ—
Pardhau 1. Small boat; lifeboat.
ଜାଲିବୋଟ ୨ । ଜାଲିବୋଟ—2. Jollyboat; lifeboat.
ଜାଲୀ

**ପଢ଼ଣ**—ଗ୍ରା. ବି. (ସଂ. ପଠ୍ ଧାତୁ)—ପଠନ—Reading.
Pardhana ପଢ଼ା **ପଢ଼ନ**

**ପଢ଼ରେନ୍**—ପ୍ରାଦେ. (ସମ୍ବଲପୁର) ବି—ଗଡ଼ାଣି; ଢଲଆଡ଼କୁ ଢାଲୁ—
Pardharen Downward slope.
(ଢଡ଼ରେନ୍—ବିପରୀତ) ପ୍ରାଦେ. (ସମ୍ବଲପୁର) ବିଣ—ଢଲଆଡ଼କୁ ଢାଲୁ ହୋଇଥିବା, ଗଡ଼ାଣିଆଁ—Sloping downward.

**ପଢ଼ା**—ଦେ. ବି. (ସଂ. ପଠ୍ ଧାତୁ)—୧ । ପଠନ—
Pardha 1. Reading.
ପଡ଼ା; ପଠା ୨ । ଶୁଆସାରୀଙ୍କର ପଦ ବୋଲିବା—
**ପଢ଼ାଇ** 2. Recitation by parrots and myna birds.
୩ । ଶିକ୍ଷା—3. Learning.
୪ । ସନ୍ଥ, ଛାତ୍ରକୁ ଦିଆଯିବା ଦୈନିକ ପାଠ—4. Lesson.
ଦେ. ବିଣ—୧ । ପଠିତ, ପଠିତ ହୋଇଥିବା—
ପଢ଼ା 1 Read; learnt.
**ପଢ଼ାହୁଆ** ୨ । ପଢ଼ୁଆ, ପଢ଼ୁଥିବା—2. Reading.
୩ । ଯେଉଁ ଶୁଆ ବା ସାରୀ ପଦ ଧରି ବୋଲୁଥାଏ—
3. Reciting words; talking (parrot or myna)
ପିଞ୍ଜର ମଣ୍ଡନ ପଢ଼ା ସାରିକା
ପଢ଼ା ଛାଡ଼ି କଲେ ମଣ୍ଡୁକ ଡକା । କବିସୂର୍ଯ୍ୟ. କବିତା ।
୪ । ପାଠୁଆ, ଶିକ୍ଷିତ—4. Learned; educated.

**ପଢ଼ା(ଢ଼େ)ଇବା**—ଦେ. କ୍ରି—୧ । (ପଢ଼ିବାର ଣିଜନ୍ତରୂପ)—ଅଧ୍ୟାପନା କରିବା—1.Causative of Pardhiba;
Pardha(rdhe)iba
ପଡ଼ାନ୍. ପଢ଼ାନ୍ To teach.
**ପଢ଼ାନା; ପଢ଼ବାନା** ୨ । ପରାମର୍ଶ ଦେବା—2. To advise.
ବନ ଭବନ ସବନା ଏକାକରେ ଭଲ ପଢ଼ାଇଛ କଣ୍ଠ ଧାଶ ଗୋ ବାମାଏ ।
ଭଞ୍ଜ. ବୈଦେହୀଶବିଳାସ ।

**ପଢ଼ାକ**—ଦେ. (ପ୍ରାଚୀନ ପଦ୍ୟ) ବିଣ—ଶିକ୍ଷିତ—
Pardhaka Learned; educated.
ଅପେ ପଢ଼ାକ ପଣ୍ଡିତ ଅପଣେ ମୂରୁଖ ।ପ୍ରାଚୀ. ବ୍ରହ୍ମାନରୂପଣଗୀତା ।

**ପଢ଼ା କରିବା**—ଦେ. କ୍ରି—ପଠନ କରିବା; ବିଦ୍ୟାଶିକ୍ଷା କରିବା—
Pardha kariba To study; to learn.

**ପଢ଼ା ଘେନିବା**—ଦେ. କ୍ରି—(ଶିଷ୍ୟ) ଗୁରୁଙ୍କଠାରୁ ସନ୍ଥ ଘେନିବା—
Pardha ghenibā To take a lesson from the teacher for preparing it.
ପଢ଼ାଗିନିବା, ପଢ଼ାଆଣିବା } ଅନ୍ୟରୂପ

**ପଢ଼ା ପଢ଼ି**—ଦେ ବି—ପଠନକର୍ମ; ବିଦ୍ୟାଶିକ୍ଷା, ଲେଖାପଢ଼ା. ପାଠଶାଠ—
Pardha pardhi Learning; studying; education.
ପଡ଼ାପଡ଼ି; ପଢ଼ାପଢ଼ି **ପଢ଼ାପଢ଼ୀ**

**ପଢ଼ାବନ୍ତି**—ଦେ (ପ୍ରାଚୀନ ପ୍ରୟୋଗ) କ୍ରି. (ସଂ. ପଠ୍ ଧାତୁ)—
Pardhabanti (ପଢ଼ିବା କ୍ରିୟାର ଣିଜନ୍ତ ପଢ଼ାନ୍ତିର ବିକଳ୍ପରୂପ) (ସେ ବା ସେମାନେ) ଅଧ୍ୟାପନ କରନ୍ତି—Do teach (An obsolete form of Pardhanti).
ଅନେକ ଯତନ କରି ପଢ଼ାବନ୍ତି ମନ୍ତ୍ର । ପ୍ରତାପ ଶଶିରେଖା ।

**ପଢ଼ାଯିବା**—ଦେ. କ୍ରି. (ପଢ଼ିବା କ୍ରିୟାର କର୍ମବାଚ୍ୟରୂପ)—ପଠିତ ହେବା—
Pardhajiba To be read; to be deciphered.
ପଢ଼ାଯାଓଆ **ପଢ଼ାଜାନା** (ପଢ଼ାହେବା—ଅନ୍ୟରୂପ)

**ପଢ଼ାର**—ଦେ. ବି. (ସଂ. ପଟହ)—ବାଇଦ, ଢାକୁ—
Pardhara Drum.

**ପଢ଼ା ସଙ୍ଗ**—ଦେ. ବି (ସଂ. ପଠନ ସଙ୍ଗୀ)—ସହାଧ୍ୟାୟୀ; ସହପାଠୀ—
Pardha sanga Class-mate; class-friend.
(ପଢ଼ାସଙ୍ଗୀ, ପଢ଼ାସାଙ୍ଗ, ପଢ଼ାସାଙ୍ଗୀ, ପଢ଼ୁଆସଙ୍ଗୀ, ପଢ଼ୁଆସାଙ୍ଗ, ପଢ଼ୁଆସାଙ୍ଗୀ—ଅନ୍ୟରୂପ)

ପଢି—ପ୍ରାଦେ. (ବାଲେଶ୍ୱର) ବ—ମୂଲିଆଙ୍କ ବର୍ତ୍ତନ, ମୂଲ—
Pardhi Wages,

ପଢିଆରି—ଦେ. ବିଣ. (ସଂ. ପ୍ରତିହାରୀ)—୧ । ଦ୍ୱାରୀ, ଦ୍ୱାରରକ୍ଷକ—
Pardhiāri 1. Door-keeper.
पडिहारी ୨ । ପୁରୀ ଜଗନ୍ନାଥ ମହାପ୍ରଭୁଙ୍କ ସେବକବିଶେଷ—
**परहारी** 2. A class of servants of the idol Jagannātha at Puri.
[ଦ୍ର—ଏମାନେ ଦେଉଳରେ ଡାକରା ହାକରା (ଅର୍ଦ୍ଦଳି କାମ) କରନ୍ତି ଓ ଦେଉଳରେ ଗୃହ ଖୋଲି ସେବକମାନଙ୍କୁ ସ୍ୱ ସ୍ୱ କାର୍ଯ୍ୟ କରିବାପାଇଁ ଡାକନ୍ତି ।]
୩ । ରାଜାଙ୍କ ଅନ୍ତଃପୁରରୁ ଖବର ନେବା ଆଣିବା କରିବା ଭୃତ୍ୟ—
3. A servant or orderly of a Raja's harem
୪ । କେତେକ ବ୍ରାହ୍ମଣଙ୍କର ଉପାଧି—4 The family-title of certain Brāhmaṇas.

ପଢିକ—ଗ୍ରା ବିଣ—ପାଠ ପଢିଥିବା, ପଢୁଆ—
Pardhiki Learned.

ପଢିବା—ଦେ କ୍ରି. (ସଂ. ପଠ୍ ଧାତୁ) (ସକର୍ମକ, ଅକର୍ମକ)—
Pardhibā ୧ । ପାଠ କରିବା—
पढ़ा **पढ़ना** 1 To read.
(ପଢାଇବା - ଣିଜନ୍ତ) ୨ । ଅଧ୍ୟୟନ କରିବା, ବିଦ୍ୟାଶିକ୍ଷା କରିବା—
2. To learn
୩ । ଉଚ୍ଚାରଣ କରିବା, ଆବୃତ୍ତି କରିବା—
3 To recite; to speak; to utter.
କେତେ ଯଶ ଆସି ବେଦକୁ ପଢନ୍ତି । କୃଷ୍ଣସିଂହ, ମହାଭାରତ- ଆଦି ।
୪ । ଲେଖା ଅକ୍ଷରକୁ ପାଠ କରିବା—
4 To decipher a writing.

ପଢି ହେବା—ଦେ. କ୍ରି. (ପଢିବା କ୍ରିୟାର କର୍ମବାଚ୍ୟ)—
Pardhi hebā କୌଣସି ଅକ୍ଷର ସ୍ପଷ୍ଟରୂପେ ପଠିତ ହୋଇପାରିବା—(a writing) To be legible.

ପଢୁଆ—ଦେ ବିଣ (ସଂ. ପଠ୍ ଧାତୁ)—୧ । ପାଠାଧ୍ୟାୟୀ—
Pardhuā 1. Reading; studying.
पढ़ुया; पढ़ो ୨ । ଯେ ଭଲ ପଢେ, ପାଠରେ ମନୋଯୋଗୀ—
**पढ़वैया; पढैया** 2. Attentive to his studies.
୩ । ଯେ ପଢ଼ିଥାଏ — 3. Read.
(ଯଥା—ଇଂରାଜୀ ପଢୁଆ) ।
ଦେ. ବି - ୧ । ଛାତ୍ର—1. Student; scholar.
୨ । ଶିଷ୍ୟ—2. Pupil.
୩ । ଛୋଟ ଡଙ୍ଗା, ପଢାଉ—
3. A small boat; a jolly boat

ପଢୁଆଁ—ଦେ. ବିଣ. (ସଂ. ପ୍ରଥମ, ପ୍ରା. ପଢଅଁ)—ପୋଉଆଁ, ପ୍ରଥମ
Pardhuāñ ଜାତ ସନ୍ତାନ—First born; eldest (son).
ଦେ ବି.—ପ୍ରଥମଜାତ ସନ୍ତାନ—Eldest born child.
(ପୋଉଆଁ, ପୋଉହାଁ, ପୋରୁଆଁ, ପୋରୁହାଁ—ଅନ୍ୟରୂପ)

ପଢୁଆଁ ଅଷ୍ଟମୀ—ଦେ. ବି. (ସଂ. ପ୍ରଥମାଷ୍ଟମୀ)—ମାର୍ଗଶିର କୃଷ୍ଣ ଅଷ୍ଟମୀ—
Pardhuāñ ashṭamī The 8th day of the dark fortnight of the month of Mārgaśira.

[ଦ୍ର—ଏ ଦିନ ପରିବାରର ଜ୍ୟେଷ୍ଠ ସନ୍ତାନମାନେ ନୂଆ ଲୁଗା ପିନ୍ଧନ୍ତି ଓ ପରିବାରରେ ପିଠାପଣା ହୁଏ ।]

ପଢୁଆଁ ଗାଈ—ଦେ ବି—ଯେଉଁ ଗାଈ ପ୍ରଥମ ଗର୍ଭମାତ୍ର ପ୍ରସବ କରିଥାଏ—
Pardhuāñ gāi A cow which has given birth to a calf for the 1st time.

ପଢୁଆଁ ପଦା—ଦେ. ବି—ପ୍ରଥମା ପଦା (ଦେଖ)
Pardhuāñ padā Prathamā padā (See).

ପଢେଇଁ—ପ୍ରାଦେ (ସମ୍ବଲପୁର) ବି (ଭୁଲ. ହି. ପନହୀ)—ଯୋତା—
Pardheiñ Shoe.

ପଢୋଉ—ଦେ. ବି. (ସଂ. ପଣ୍ଟୁ)—ପଢଉ, (ଦେଖ)
Pardhou Pardhau (See).

ପଣ୍(ଧାତୁ)—ସଂ.—୧ । କ୍ରୟ ବିକ୍ରୟ କରିବା, ବେପାର କରିବା—
Paṇ (root) 1 To trade.
୨ । ସ୍ତୁତି କରିବା—2. To pray

ପଣ୍‌କା—ପ୍ରାଦେ. (ସମ୍ବଲପୁର) ବି (ଭୁଲ ହି ପଣ୍ଡୁକ)—କପୋତ, କାପ୍ତା—
Paṇ-kā Dove.

ପଣ୍ଚୁ—ପ୍ରାଦେ. (ସିଂହଭୂମ) ବି. (ସଂ ପଚ୍ଚଂଚିକା)—ଧନୁର୍ଗୁଣ—
Paṇ-chu Bow-string.

ପଣ—ସଂ ବି (ପଣ୍ ଧାତୁ=କିଣିବା, ସ୍ତୁତି କରିବା + କର୍ତ୍ତି. ଅ)—
Paṇa ୧ । ଅଶି ସଂଖ୍ୟା, କୋଡିଏ ଗଣ୍ଡା କଉଡ଼ି, କାହାଣର ଏକ ଷୋଡ଼ଶାଂଶ—1. Eighty of anything; eighty cowries.
୨ । ଅଣା; ବିଶ୍ୱା—2. One anna or biswā.
୩ । (+କର୍ମ. ଅ)—ବାଜି—
3. Wager; a stake at play.
୪ । ସର୍ତ୍ତ—4. Stipulation; condition.
ସେ କନ୍ୟା ବୋଇଲା ମୋ ପଣଟିଏ ଅଛି,
ତା ଭାଙ୍ଗିଲେ ମୋତେ ପାଇବ ନୃପତି । କୃଷ୍ଣସିଂହ. ମହାଭାରତ- ବନ ।
୫ । କ୍ରୟ ବିକ୍ରୟ ଦ୍ରବ୍ୟ—5. Merchandise.
୬ । ଚୁକ୍ତି—6. Contract; pact.
୭ । ପ୍ରତିଜ୍ଞା—7. Vow; resolution; resolve.
କେତେ ନ ସହିବ ଏ ମୋ ପଣ ବଡ଼ ।ଶୈ । -ରଥୀନାଥ. ବେଣୀସଂହାର ।
୮ । ବାଜି ରଖି ଯେଉଁ ଖେଳ ଖେଳାଯାଏ, ଦ୍ୟୂତ, ଜୁଆଖେଳ—
8 Gambling; a game at hazards.
୯ । ଭଡ଼ା—9. Hire.
୧୦ । ମୂଲ୍ୟ—10. Price; purchase-money; consideration money.
୧୧ । ବିବାହରେ ବର ବା କନ୍ୟା ପାଇଁର ମୂଲ୍ୟସ୍ୱରୂପ ଗୃହୀତ ଅର୍ଥ ବା ଶୁଳ୍କ, କନ୍ୟାପଣ, ବରପଣ—
11. Marriage fee; price taken for giving a boy or girl in marriage.
୧୨ । ବେପାର, ବେଭାର; ଆଦାନ ପ୍ରଦାନ—12. Bargain; trade; barter; exchange
୧୩ । ବ୍ୟବହାର—13. Treatment; use.
୧୪ । ବେତନ—14. Wages, salary.

୧୫ । ବନ୍ଦ ମୁଷ୍ଟି—15. Closed fist.
୧୬ । ସତ୍ତା—16. Existence.
୧୭ । ସ୍ତୁତି, ପ୍ରଶଂସା (ହି. ଶ.)—17 Eulogy; praise.
୧୮ । ପ୍ରାଚୀନ କାଳର ଏକମୁଠା ଶସ୍ୟର ପରିମାଣ ( ହି ଶ. )—
18 An ancient standard measure equal to the weight of one handful of grain.
୧୯ । ପ୍ରାଚୀନ କାଳରେ ମୁଦ୍ରାରୂପେ ପ୍ରଚଳିତ ୧୧ ମସା (ମତାନ୍ତରରେ ୨୦ ମସା) ଓଜନର ତମ୍ବା ଖଣ୍ଡ ( ହି. ଶବ୍ଦସାଗର )—
19. A bit of copper used in ancient India as currency weighing 11 or 20 Masās.
୧୭ । କାର୍ଷାପଣ, କାହାଣ, ଷୋଳପଣ—
17, One Kāhaṇa or sixteen Paṇas,
ଦେ. ବି—୧ । ( ସ. ପ୍ରଜ୍ଞା, ତୁଳ ପାଲି ପଜ୍ଞା ) ବାଲଙ୍ଗି; ଦମ୍ଭ; ମୁହଁ ଭୁରୁଡ଼ୁ—1 Bragging.

ପ୍ରାଣ ଥିବ ପଣ ସରେ ନାହିଁ । ଉକ୍ତି ।

୨ । ( ବିଶେଷ୍ୟ ଓ ବିଶେଷଣ ସଙ୍ଗେ ଯୁକ୍ତ ) (ଅମୁକ) କାର୍ଯ୍ୟ—
(ପଣିଆ—ଅନ୍ୟରୂପ) 2. The act of.
ପନା ଯଥା—ସ୍ନେହପଣ ' ଦୁଷ୍ଟପଣ ।
୩ । ଶ୍ଳେଷ ଭାଷା—3. A pun (Howells).
୪ । ଅଣା; ଷୋଳ ଭାଗର ଏକ ଭାଗ—
4. One sixteenth of any thing
୫ । ( ସ. ପଣ = ବ୍ୟବହାର ) ଅବସ୍ଥା—
5 State; condition.

କାମାତୁର ନରନାରୀଙ୍କ କାମନା ପୂରଇ,
ସାର୍ଥକ ପୁରୁଷପଣ କର ଏ ବୟସେ । ଗୋପୀନାଥ. ମହାଭାରତ ।

[ ଦ୍ର—ସ. ଭୃ ଓ ତା ପ୍ରତ୍ୟୟର ଅର୍ଥ । ]
୬ । ଅଧିକାର—6. Authority.

ତାହାଙ୍କ ଅଜ୍ଞା ପରମାଣେ ବୈଷ୍ଣବ ମଧ୍ୟେ ହୋଇ ଜଣେ
ଭକତ ଥାଇ ବା ନ ଥାଇ ଅମ୍ଭର ପଣ ନାହିଁ ଅଛି ।
ଭୂପତି. ପ୍ରେମପଞ୍ଚାମୃତ ।

୭ । କିଛି ଧନ—7. Some money.

ପାଇଲେ ପଣେ କ୍ଷଣେ ଟେକେ ସେ କହନ୍ତି – କୃଷ୍ଣସିଂହ. ମହାଭାରତ. ସଭା ।
ବ୍ରାହ୍ମଣେ ସବୁ ଅଡ଼ରେ ବୁଲୁଥାନ୍ତି,
ପାଇଲେ ପଣେ କ୍ଷଣେ ଟେକେ ସେ କହନ୍ତି । କୃଷ୍ଣସିଂହ. ମହାଭାରତ. ସଭା ।

ପନ୍ ପୌଣ୍ଡ ବୈଦେ. ବି. (ଇଂ ପାଉଣ୍ଡ; ଅନ୍ୟ ସଂଖ୍ୟାବାଚକ ଶବ୍ଦ ସଙ୍ଗେ ପ୍ରଯୁଜ୍ୟ; ଯଥା—୧୭ ପଣ କାଗଜ; ୧୮ ପଣ କାଗଜ)—
ଅଧସେରରୁ ଏକ ଦୋପଇସା କମ ଓଜନ ପରିମାଣ—
A pound; a weight little less than $\frac{1}{2}$ seer.

**ପଣ ଅଜା**—ଦେ. ବି. ପୁଂ—ବୃଦ୍ଧ ପ୍ରମାତାମହ; ବୃଦ୍ଧ ପ୍ରପିତାମହ; ଅଜାଙ୍କ
Paṇa ajā ଅଜା—One's great great grand father.
(ପଣଆଈ—ସ୍ତ୍ରୀ) [ଦ୍ର—ଅଜାଙ୍କ ପିତାଙ୍କୁ ଅଣଅଜା ବୋଲାଯାଏ ।]
परदादा

**ପଣ କରିବା**—ଦେ. କ୍ରି—ପ୍ରତିଜ୍ଞା କରିବା—
Paṇa karibā To vow.

प्रणकरना ସତ୍ୟ କରି ପଣ କରୁଛି ଭୁମ୍ଭ ଆଗେ,
ପାଣ୍ଡବେ ପାଞ୍ଚାଳେ ହେ ରହିଲେ ମୋ ଭାଗେ ।
କୃଷ୍ଣସିଂହ. ମହାଭାରତ. ଦ୍ରୋଣ

**ପଣ କାହାଣିଆ(ଆଁ)**—ଦେ. ବିଣ—୧ । ବିପଦରୁ ରକ୍ଷା ପାଇବା ପାଇ
Paṇa kāhāṇiā(āṅ) ଯେଉଁ ବ୍ୟକ୍ତି ଉଚିତ ସମୟରେ ପଣେ (ପଣ କାହାଣିକଆ—ଅନ୍ୟରୂପ) ଖରଚ ନ କରି କଥା ବଳ ପଡ଼ିଲେ କାହାଣେ ଖରଚ କରିବାକୁ ବାଧ୍ୟ ହୁଏ, କୃପଣ (ବ୍ୟକ୍ତି)—
1 Penny-wise pound-foolish ( person); close-fisted; one who instead of spending one anna in time spends one rupee when the proper time is over, to save himself from danger.
୨ । ( ଲକ୍ଷଣାର୍ଥ ) ଅତ୍ୟଧିକ ଆଡ଼ମ୍ବରଯୁକ୍ତ (ଯେ ପଣେ ଖରଚ ହେବା ସ୍ଥାନରେ କାହାଣେ ଖରଚ କରେ)—
2. (figurative) Ostentatious; unduly showy.
ଯଥା—ତୁମର ଏ ପଣକାହାଣିଆ ବେଭାରକୁ ମୁଁ କି ପାଇ ?

**ପଣକିଆ**—ଦେ. ବି—୧ । ପଣ ସମ୍ବନ୍ଧୀୟ ଗଣିତ—
Paṇakiā 1. Arithmetical multiplication table
पणकिया; नामता for computing paṇas or annas.
पहाड़ा ( ପଣିକିଆ—ଅନ୍ୟରୂପ)
[ଦ୍ର—ଗଣିତ ଗୁଣନ ଓ ହିସାବ ମୁଖସ୍ଥ କରିବାର ନାନାପ୍ରକାର ପଣକିଆ ଅଛି । ଯଥା—ସାଧା ପଣକିଆ; ପାହି ପଣିକିଆ, କଡ଼ାଗଣ୍ଡା ପଣିକିଆ ।]

ପଣକିଆ ପ୍ରତି ସଂଖ୍ୟାର ଏକଗୁଣ ଠାରୁ ଦଶ ଗୁଣ ପର୍ଯ୍ୟନ୍ତ ଥାଏ । ପ୍ରତି ସଂଖ୍ୟା ବା ଙ୍କାର ପଣିକିଆକୁ ଉକ୍ତ ସଂଖ୍ୟାରେ 'କି' ଲଗାଇ ଏକକି, ଦୁଇକି, ତିନିକି ଏହିପରି ପଚଶିକି ପଣିକିଆ ପର୍ଯ୍ୟନ୍ତ ଶିଶୁମାନେ ମୁଖସ୍ଥ କରନ୍ତି ।
ଦୁଇକି ସାଧା ପଣକିଆ ଯଥା—

| ⁄ | । | ।⁄ | ୳ | ୳⁄ | ୴ | ୴⁄ | ୧ | ୧⁄ | ୧। |
|---|---|---|---|---|---|---|---|---|---|
| ୨ | ୪ | ୬ | ୮ | ୧୦ | ୧୨ | ୧୪ | ୧୬ | ୧୮ | ୨୦ |
| ୧ | ୨ | ୩ | ୪ | ୫ | ୬ | ୭ | ୮ | ୯ | ୧୦ |
| ୨ | ୨ | ୨ | ୨ | ୨ | ୨ | ୨ | ୨ | ୨ | ୨ |

୧ମ ଖଣ୍ଡା ଦୁଇ କେ ଦୁଇ ପଣ । ୨ୟ ଖଣ୍ଡା ଦୁଇ ଦୁଣେ ଚାରି ପଣ । ୩ୟ ଖଣ୍ଡା ଦୁଇ ତିନି ଛଅ ପଣ । ୪ର୍ଥ ଖଣ୍ଡା ଦୁଇ ଚାରି ଆଠ ପଣ । ୫ମ ଖଣ୍ଡା ଦୁଇ ପଞ୍ଚା ଦଶ ପଣ । ୬ଷ୍ଠ ଖଣ୍ଡା ଦୁଇ ଷୋହୋ ବାର ପଣ । ୭ମ ଖଣ୍ଡା ଦୁଇ ସତାଁ ଚଉଦ ପଣ । ୮ମ ଖଣ୍ଡା ଦୁଇ ଅଷ୍ଟାଁ ଷୋଳ ପଣ କାହାଣେ । ୯ମ ଖଣ୍ଡା ଦୁଇ ନୁଆଁ ଅଠର ପଣ କାହାଣେ ଦୁଇ ପଣ । ୧୦ମ ଖଣ୍ଡା ଦୁଇ ଦଶାଁ କୋଡ଼ିଏ ପଣ କାହାଣେ ଚାରି ପଣ । ଏହିପରି ପିଲାମାନେ ପଢ଼ନ୍ତି ।

ଶିଶୁମାନେ ଏହିପରି ପଢ଼ି ପଣକିଆମାନ ମୁଖସ୍ଥ କରନ୍ତି । ଭିନ୍ନ ଭିନ୍ନ ପଣକିଆମାନଙ୍କର ଭିନ୍ନ ଭିନ୍ନ ଡାକ ଅଛି । (ପାହି ପଣକିଆ, କଡ଼ାଗଣ୍ଡା ପଣକିଆ)
୨ । ଏକ ପ୍ରକାର ମାଇପଙ୍କର କାଚ—
2. A kind of glass bangles.
ଦେ. ବିଣ—ପଣ ସମ୍ବନ୍ଧୀୟ—Pertaining to one paṇa.

**ପଣ ଗୋସାଇଁ ବାପ(ପା)**—ଦେ. ବ. ପୁଂ—୧ । ପିତାମହଙ୍କ ପିତାମହ, ବୃଦ୍ଧ ପ୍ରପିତାମହ—1 Great great grand-father.
Paṇa gosāiṅ bāpa(pā)
ପଣ ଗୋସେଇଁ ବାପ (ପା), ପଣ ଯେସେ ବାପ (ପା), ପଣ ଗୁସ ବାପ (ପା) } ଅନ୍ୟରୂପ
୨ । ପ୍ରପିତାମହ—2 Great grand-father; father of grand-father.
ପଣ ଗୋସାଇଁ ମାଆ—ସ୍ତ୍ରୀ
परदादा; पड़दादा
ବୋଇଲେ ରେ ପିଲେ ନ କର ଅଭ ଉପ
ଅଛିଲି ମୁଁ ତୁମ୍ଭ ପଣ ଗୋସେଇଁ ବାପ । କୃଷ୍ଣସିଂହ. ମହାଭାରତ. ବନ ।

**ପଣ ଗ୍ରନ୍ଥି**—ସ ବ.—ବଜାର, ହାଟ—
Paṇa granthi Market.

**ପଣତ(ନ୍ତ)**—ଦେ. ବ (ସ. ପଟ୍ଟାନ୍ତ, ପଟ୍ଟପ୍ରାନ୍ତ, ପ୍ରା. ପଡ଼ନ୍ତ, ପାଲି ପନ୍ତ)
Paṇata (nta) ୧ । ପିନ୍ଧିବା ବସ୍ତ୍ରର ଶେଷଭାଗ, ବସ୍ତ୍ରାଞ୍ଚଳ—
आँचल 1. The end of a wearing cloth.
अंचल, अंचला ୨ । ଲୁଗାର ଗୋଟିଏ ଅଂଶ ବା ଅର୍ଦ୍ଧ—
ପଣତ କାନି, ପଣନ୍ତ କାନି } ଅନ୍ୟରୂପ 2. One half of a cloth.
ଦମୟନ୍ତୀଙ୍କ ଲୁଗା ପଣତ ପିନ୍ଧିଲେ ।
କୃଷ୍ଣସିଂହ. ମହାଭାରତ. ବନ ।
ଦେ. ବଣ. (ସ. ଅନ୍ତ)—ଅନ୍ତ୍ୟ, ଅନ୍ତିମ—Last.
(ଯଥା —ପଣତ କାଲ)
ପ୍ରାଦେ. (ଗଡଜାତ) ବ—ଯେଉଁ ପଟାମାନ ଯୋଡ଼ା ହୋଇ ଗୋଟିଆ ଶଗଡ଼ର ଅରଗ୍ରାନ ଚକ ତିଆର ହୋଇଥାଏ—
The planks which form the solid wheel of a Goṭiā cart.

**ପଣତ(ନ୍ତ) କାଳ**—ଦେ. ବ—୧ । ଅନ୍ତିମ ସମୟ, ବାର୍ଦ୍ଧକ୍ୟ—
Paṇata(nta) kāla 1. Last days, old age.
୨ । ମୃତ୍ୟୁର ସମୟ—2. The time of death.

**ପଣତ ଗୁଡ଼ି**—ଦେ. ବ—ସ୍ତ୍ରୀଲୋକମାନେ ପିନ୍ଧିଥିବା ଶାଢ଼ିର ଶେଷ କାନି ବା ପଣତରେ ପକା ଯାଇଥିବା ଗଣ୍ଠି—A knot made up of the free end of a woman's cloth.
Paṇata guṛdi
(ପଣନ୍ତ ଗୁଡ଼ି—ଅନ୍ୟରୂପ)

**ପଣନ**—ସ. ବ. (ପଣ୍ ଧାତୁ + ଅନ)--୧ । ବିନିମୟ, ପଣ୍ୟଦ୍ରବ୍ୟର ବଦଳ—
Paṇana 1. Exchange; barter.
୨ । ବିକ୍ରୟ—2. Sale.

**ପଣ ନାତି**—ଦେ. ବ ପୁଂ—(ସ. ପରପୌତ୍ର, ପ୍ରନପ୍ତା)—୧ । ନାତିର ନାତି—
Paṇa nāti 1. Grandson's grandson.
पड़ पोता, पनाती ୨ । ନାତୁଣୀର ନାତି—
ପଣ ନାତୁଣୀ—ସ୍ତ୍ରୀ 2. Grand-daughter's grandson.
[ ଦ୍ର—ନାତିର ପୁଅକୁ ଅଣନାତି ବୋଲାଯାଏ]

**ପଣନୀୟ**—ସ. ବଣ (ପଣ୍ ଧାତୁ + କର୍ମ ଅନୀୟ)—୧ । ବିକ୍ରୟ ଯୋଗ୍ୟ—
Paṇaniya 1. Fit for sale; vendible.
୨ । ଯାହା କ୍ରୟ ବିକ୍ରୟ କରାଯାଇ ପାରେ—2. Negotiable.
୩ । ଯାହା ପଣରୂପେ ରଖାଯାଇ ପାରେ—
3. Proper to be laid as a wager.

**ପଣ ପଣ**—ଦେ. ବଣ—୧ । ଅସଂଖ୍ୟ—
Paṇa paṇa 1. Innumerable; countless.
୨ । ଏକ ପଣ ବା ଅଶି ସଂଖ୍ୟାରେ ଗଣିତ—
2 In groups of eighties.
ଦେ. ବ—ଅସଂଖ୍ୟ ବସ୍ତୁ ବା ଜୀବ—
Innumerable things or animals

**ପଣ ଫର**—ସ. ବ. ( ଜ୍ୟୋତିଷ )—
Paṇa phara ଜନ୍ମ ପତ୍ରିକାରେ ଲଗ୍ନର ୨ୟ, ୫ମ, ୮ମ ଓ ୧୧ଶ ସ୍ଥାନ—(astrology) The 2nd, 5th, 8th and 11th places computed from one's Lagna in the horoscope

**ପଣବ**—ସ ବ. ( ପଣ୍ ଧାତୁ = ସ୍ତୁତି କରିବା + କରଣାର୍ଥେ ଅବ, ଯାହା ସାହାଯ୍ୟରେ ସ୍ତୁତି କରାଯାଏ )—
Paṇaba
୧ । ଆନଦ୍ଧ ବାଦ୍ୟବିଶେଷ, ପଖୋଜ, ଛୋଟ ଢୋଲ—
1. A kind of small drum.
ଦୁହିଙ୍କ ଯୁଦ୍ଧ ଦେଖି ପଣବ ଝର୍ଝର
ମରଦଳ ମୃଦଙ୍ଗ ବଜାଇଲେ ନର । କୃଷ୍ଣସିଂହ. ମହାଭାରତ. ଦ୍ରୋଣ ।
୨ । ସଂସ୍କୃତ ଭାଷାର ଦଶାକ୍ଷର ଛନ୍ଦୋବିଶେଷ—
2. A Sanskrit metre of ten letters.
୩ । ଛୋଟ ନାଗରା—3. A small kettle drum.
ଦେ ବ—ଯୁଦ୍ଧାସ୍ତ୍ରବିଶେଷ—
A kind of weapon of war
ତୋମର ଅଙ୍କୁଶ ଯେ ପଣବ ଲଙ୍ଗଳ । କୃଷ୍ଣସିଂହ ମହାଭାରତ ବନ ।

**ପଣ ବନ୍ଧ**—ସ. ବ. ( ୬ଷ୍ଠୀ ତତ୍, ପଣ + ବନ୍ଧ)—
Paṇa bandha ୧ । ସନ୍ଧି—1 Treaty.
୨ । ବାଜି ରଖିବା—2. Laying a wager.
ସ. ବଣ—କୃତପ୍ରତିଜ୍ଞ (କ୍ଷୀରେନ୍ଦ୍ର)—Resolved.

**ପଣବାନକ**—ସ. ବ—ନାଗରା (ହି ଶ.)—
Paṇabānaka Kettle drum.

**ପଣସ**—ଦେ. ବ. ( ସ. ପନସ, ପ୍ରା. ପଣସ )—
Paṇasa ବୃହତ୍ କଣ୍ଟକାଚ୍ଛାଦିତ ଖାଦ୍ୟ ଫଳ ଓ ତହିଁର ଅଙ୍କୁଶକ ଗଛ—Jack fruit; Autocarpus Integrifolius.
ସ. ରସାଳ, ମୃଦଙ୍ଗ ଫଳ, କଣ୍ଟକ ଫଳ, କଣ୍ଟକୀ ଫଳ, କଣ୍ଟା ଫଳ
काँटाल, काँठाल
कटहल, कठल, पनस, कटहर,
ତେ. ପନସ
[ ଦ୍ର—ଏହା କଞ୍ଚା ଥିଲେ ତରକାରୀ ହୁଏ । ପାଚିଲେ ଏଥିର ଫୁଟିରୁ ମଞ୍ଜିକୁ କାଢ଼ି ପକାଇ କୋଷା ଖିଆଯାଏ ଓ ମଞ୍ଜିକୁ ତରକାରୀ କରି ଖିଆଯାଏ । ଏଥିର କାଠ ହଳଦିଆ ଓ ଶକ୍ତ । କଷି ପଣସକୁ ପଣସ କଠା ବୋଲାଯାଏ । ]
ସ. ବ—କ୍ରୟ ବିକ୍ରୟର ବସ୍ତୁ, ପଣ୍ୟ ଦ୍ରବ୍ୟ, ସଉଦା (ହି.ଶ)—
Commodity; merchandise.

**ପଣସ ଅଠା**—ଦେ. ବ—ପଣସ ଫଳରେ ଥିବା ଅଠାମୟ ପଦାର୍ଥ—
Paṇasa aṭhā The gum inside the jack fruit.

**ପଣସ କଠା**—ଦେ. ବ—କଷି ପଣସ ଫଳ—
Paṇasa kaṭhā Young jack fruit

**ପଣସ କଢ଼ିଆ**—ଦେ. ବଣ—ପଣସ ଫୁଲର କଢ଼ର ଆକୃତିବିଶିଷ୍ଟ
Paṇasa kaṛdhiā (ଅଳଙ୍କାର)—(ornament) Shaped like the bud of the flower of jack fruit.

**ପଣସ କୋଷା**—ପ୍ରାଦେ. ( ସମ୍ବଲପୁର, ଯାଜପୁର ) ବି—ପଣସ ଖୋଷା
Panasa koshā (ଦେଖ)—Panasa khoshā (See)

**ପଣସ କୋଷା ମାଳ**—ପ୍ରାଦେ. (ଯାଜପୁର) ବି—ଚମ୍ପାଫୁଲର ପାଖୁଡ଼ାମାନଙ୍କୁ
Panasa koshā māl। ଅଗ ଅଡ଼ୁ ଚିପି ଦେଇ ପଣସ-ଫୁଟ ପରି କରି ଡହିଁରେ ଗୁନ୍ଥା ଯାଇଥିବା ଫୁଲ ମାଳ—A garland made by stringing Champaka flowers the ends of which are pressed to resemble the capsules of a ripe jack fruit.

**ପଣସ ଖୋଷା**—ଦେ. ବି. ( ସ. ପନସ+କୋଷ )—
Panasa khoshā ୧। ଯେଉଁ ସୁସ୍ୱାଦୁ ଖୋଳ ମଧ୍ୟରେ ପଣସ ମଞ୍ଜି ଥାଏ—1. The juicy capsules enclosing the seeds of the jack fruit.
କାଠାଳେର କୋଷା
**कटहलका कोआ**

୨। ଚିନି ଓ ଅଟାରେ ପ୍ରସ୍ତୁତ ଏକ ପ୍ରକାର ମିଠେଇ—2. A kind of sweetmeat made of sugar & flour.

**ପଣସ ଚକଟା**—ଦେ. ବି—ପାଚିଲା ପଣସ ଭିତରେ ଥିବା ସୁସ୍ୱାଦୁ ଫୁଟ
Panasa chakatā ଗୁଡ଼ିକ ପାଣି ବା ଦୁଧ ସଙ୍ଗେ ଚକଟି ପ୍ରସ୍ତୁତ କରାଯିବା ତରଳ ଖାଦ୍ୟ—A gruelly food prepared by pressing the juice out of the pulpy capsule of the jack fruit.

**ପଣସ ପିଠିଆ ଖଡ଼ୁ**—ଦେ ବି. (ବଣିଆ ଶବ୍ଦ)—ଏକପ୍ରକାର ଖଡ଼ୁ—
Panasa pithiā khardu A kind of bracelet.

**ପଣସ ପେଟା**—ଦେ ବିଣ. ପୁଂ—ପୁରୁଷଙ୍କୁ ଦିଆଯିବା ଏକପ୍ରକାର ଗାଳି,
Panasa petā ବଡ଼ପେଟୁଆ—A term of abuse
(ପଣସ ପେଟୁଆ—ଅନ୍ୟରୂପ) applied to males; potbellied.
(ପଣସ ପେଟୀ, ପଣସ ପେଟେଇ—ସ୍ତ୍ରୀ)

**ପଣସ ଫୁଟ**—ଦେ. ବି—ପଣସ ଖୋଷା ( ଦେଖ )
Panasa phuta Panasa khosā ( See )

**ପଣସ ବୋଡା**—ଦେ. ବି—ପାଚିଲା ପଣସର ଚୋପା—
Panasa botā The outer rind of a ripe jack fruit
(ପଣସ ବୋଡ଼—ଅନ୍ୟରୂପ)

**ପଣସ ଭଣ୍ଡା**—ଦେ. ବି—ପଣସ ଫଳର ଡେମ୍ଫକୁ ଲାଗିଥିବା ଫଳ ମଧ୍ୟସ୍ଥ
Panasa bhandā ମୁଦ୍ଗରାକୃତି ଅଂଶ—
ପଣସ ଭଣ୍ଡି } ଅନ୍ୟରୂପ
ପଣସ ଭୁଣ୍ଡି }
A cylindrical part inside the jack fruits (which is really a part of the stem ).

**ପଣ ସୁନ୍ଦରୀ**—ସ. ବି. (ମ. ପ. ଲୋ, ପଣ=ମୂଲ୍ୟ ଦ୍ୱାରା ସୁଲଭା ସୁନ୍ଦରୀ)-
Pana sundari ବେଶ୍ୟା—Whore; prostitute.
(ପଣ ସ୍ତ୍ରୀ, ପଣଯୋଷିତ୍, ପଣନାରୀ—ଅନ୍ୟରୂପ)

**ପଣସ୍ଥି**—ସ. ବି. [illegible] (ହି. ଶ.)—
Panasthi Sea-shell.

**ପଣା**—ଦେ. ବି. ( ସ. ପ୍ରପାନକ )—
Panā ୧। ଗୁଡ଼ ବା ଚିନି ମିଶ୍ରିତ ପାନୀୟ; ସରବତ—
**पाना** 1. Sherbat; syrup; solution of sugar.
**पन्ना, पना** ହୋ ବିହ ପଣା ପରସ୍ତ [illegible]
[illegible] —କୃଷ୍ଣସିଂହ. ମହାଭାରତ. ବନ।

[ ଅନେକ ପ୍ରକାରର ପଣା ହୁଏ, ଯଥା—ଛେନାପଣା, ଗୁଡ଼ପଣା, କଦଳପଣା, ଚନ୍ଦନପଣା, ପଇଡ଼ପଣା, ଦୁଧପଣା ଇତ୍ୟାଦି । ଜଗନ୍ନାଥଙ୍କ ଭୋଗ ହେବା ପ୍ରପାନକକୁ ଅଧରପଣା କହନ୍ତି । ]

୨। ପେୟ ଦ୍ରବ୍ୟ—2 A drink.
୩। ପଣିବା ( ଦେଖ )—3. Panibā ( See )
୪। ପଣା ସଙ୍କ୍ରାନ୍ତି ( ଦେଖ )
4. Panā samkrānti (See)
ପଣା । ଅସ୍ତ ପାଟେ ବଣା । ଚଗ ।

ଦେ ବିଣ—କୁଟିବା ନିମନ୍ତେ ଢିଙ୍କିମୁଣ୍ଡା ଗାତରେ ଭର୍ତ୍ତି ହୋଇଥିବା—Filled in the pounding receptacle of a Dhinki.

ପ୍ରାଦେ. ( ସମ୍ବଲପୁର ) ବି—ଆଖୁ ଦୋରୁଅ—
Juice pressed from sugarcane

**ପଣା(ଣେ)ଇବା**—ଦେ. କ୍ରି—ପଣିବାର ଣିଜନ୍ତରୂପ—
Panā(ne)ibā Causative of Panibā.

**ପଣା(ଣେ)ଇ ହେବା**—ଦେ. କ୍ରି ( ସ. ପଣ )—୧। କୌଣସି କାର୍ଯ୍ୟ
Panā(ne)i hebā କରିବାକୁ ପ୍ରତିଜ୍ଞା କରିବା—1. To resolve to do a thing; to vow to do a thing
୨। ଦୃଢ଼ ପ୍ରତିଜ୍ଞା ସହ କାର୍ଯ୍ୟ କରିବା—
2. To act with a resolve.

**ପଣାଙ୍ଗନା**—ସ. ବି. ସ୍ତ୍ରୀ. ( ମ. ପ. ଲୋ. କର୍ମଧା, ପଣ=ମୂଲ୍ୟଦ୍ୱାରା ସୁଲଭା
Panānganā ଅଙ୍ଗନା )—୧। ବରପକ୍ଷଠାରୁ ମୂଲ୍ୟ ଗ୍ରହଣପୂର୍ବକ ପିତା ଯେଉଁ କନ୍ୟାକୁ ଦେଇଥାନ୍ତି—1. A bride for whom thefather receives price.
୨। ବେଶ୍ୟା—2. Prostitute

**ପଣାପଣ**—ସ. ବି. ( ପଣ+ଆପଣ )—କୌଣସି ପଣ୍ୟର ଦରଦାମ
Panāpana ନିରୂପଣ, ମୂଲଚାଲ କରିବା—
Settling the price of a commodity.

**ପଣାୟିତ**—ସ. ବିଣ. ( ପଣ୍ ଧାତୁ+ଆୟ+କର୍ମ. ତ )—
Panāyita ୧। ସ୍ତୁତ—1. Prayed.
୨। ପ୍ରଶଂସିତ—2. Praised.
୩। ବ୍ୟବହୃତ—3. Used.
୪। ବିକ୍ରୀତ—4. Sold.
୫। କ୍ରୀତ—5. Purchased.
୬। ବର୍ଣ୍ଣିତ—6 Described.

**ପଣା ସଂକ୍ରାନ୍ତି**—ଦେ. ବି. ( ସ. ପ୍ରପାନକ+ଓ. ସଙ୍କ୍ରାନ୍ତି )—ମହାବିଷୁବ
Panā samkrānti ସଙ୍କ୍ରାନ୍ତି; ମେଷ ସଙ୍କ୍ରାନ୍ତି, ବୈଶାଖ ମାସର
**চড়ক সংক্রান্তি** ପ୍ରଥମ ଦିନ—The sun's equinoxial
**चरख सं क्रान्ति** passage in summer; the first day
( ପଣାସଙ୍କ୍ରାନ୍ତି—ଅନ୍ୟରୂପ ) of the solar month of Baisākha.

[ ଦ୍ର—ଏହିଦିନ ଚଡ଼କ ପୂଜା ହୁଏ ଓ ପାଟୁଆ ନାଚନ୍ତି । ଏହିଦିନ ପଣା ପ୍ରସ୍ତୁତ କରି ବ୍ରାହ୍ମଣଙ୍କୁ ଛତା ଓ ପଙ୍ଖା ଆଦି ସହିତ ଦାନ କରାଯାଏ । ଦେବତା ଓ ତୁଳସୀ ଗଛ ଉପରେ ଜଳପୂର୍ଣ୍ଣ ବସୁନ୍ଧରା ଘଟ ଦିଆଯାଏ । ଗଡ଼ଜାତରେ ଝାମୁଯାତ୍ରା ଏହି ଦିନଠାରୁ ହୁଏ ।]

**ପଣି**—ଦେ ବି. ( ସ. ପଣ ) – ଟଙ୍କାମୁଣ୍ଡେ ଅଣାଏ ବା କାହାଣମୁଣ୍ଡେ
Paṇi ପଣେ ହିସାବରେ ନିର୍ଦ୍ଧାରିତ ଖଜଣ ବା କମିଶନ୍—Rent or commission calculated at the rate of one Paṇa for every Kāhāṇa of one sixteenth
ଦେ ବିଣ—ପଣିଆ ( ଦେଖ )—Paṇiā ( See )
ବୈଦେ. ବି - ପଣ ( ଦେଖ )—Paṇa ( See )
ବିଣ—ଏତେ ପାଉଣ୍ଡ ଓଜନର—Of the weight of so many pounds.

**ପଣିଅଜା**—ଦେ. ବି ପୁଂ—ପଣଅଜା—
Paṇiajā Great great grandfather.
(ପଣିଅଈ – ସ୍ତ୍ରୀ) ଭୃଷ୍ମର ପଣିଅଜା ସହଦେବଙ୍କର
**परदादा** ନୋହିଁ ତ ଶିଙ୍କ ପୁର୍ବେ ଏ କଥା ଗୋଚର ।
କୃଷ୍ଣସିଂହ ମହାଭାରତ. ସଭା ।

**ପଣିଆ(ଆଁ)**—ଦେ. ବି—(ବିଶେଷ୍ୟ ଓ ବିଶେଷଣ ପରେ ଭାବାର୍ଥ ପ୍ରତ୍ୟୟ; ଯଥା – ମନୁଷ୍ୟପଣିଆ, ସୁନ୍ଦରପଣିଆଁ)—An Oria
Paṇiā(ã̃) suffix meaning the state of ( like the
**पाना पना** English ness in manliness ).
(ପଣିସ୍ୱା – ଅନ୍ୟରୂପ)
ଦେ. ବିଣ—୧ । (ଅନ୍ୟ ସଂଖ୍ୟାବାଚକ ଶବ୍ଦ ସଙ୍ଗେ ଯୁକ୍ତ)—
ପଣ ସମ୍ବନ୍ଧୀୟ—1 Relating to a paṇa.
( ଯଥା—ଏ ବର୍ଷ ଆମଆଡ଼େ ଗୁରପଣିଆ ଫସଲ ହୋଇଅଛି । )
**पनी** ୨ । ପାଉଣ୍ଡିଆ, ପାଉଣ୍ଡସମ୍ବନ୍ଧୀୟ—
2. Relating to pound ( weight ).
( ଯଥା—୨୦ ପଣି ଫୁଲ୍‌ସ୍କାପ୍ କାଗଜ । [ ଯେଉଁ ଏକ ରିମ୍ କାଗଜର ଓଜନ ୨୦ ପାଉଣ୍ଡ ] । )

**ପଣିକା**—ଦେ. ବି. ( ସ. ପଣ )—ଦୁଇ ପାହୁଲା—
Paṇikā Two pies; ⅙ of a pice.

**ପଣିକିଆ** – ଦେ. ବି—ପଣକିଆ ( ଦେଖ )
Paṇikiā Paṇakiā ( See )

**ପଣିତ**—ସ. ବିଣ. ( ପଣ୍ ଧାତୁ+କର୍ମ ତ )—ପଣାୟିତ ( ଦେଖ )
Paṇita Paṇāyita ( See )

**ପଣିତବ୍ୟ**—ସ. ବିଣ (ପଣ୍ ଧାତୁ + କର୍ମ ତବ୍ୟ )—
Paṇitabya ୧ । ପଣ୍ୟ, କ୍ରୟ ବିକ୍ରୟ ଯୋଗ୍ୟ—
1. Negotiable; vendible, saleable.
୨ । ବାଜୀରୂପେ ରଖାଯିବାର ଉପଯୁକ୍ତ—
2. Fit to be placed as a wager or bet.

**ପଣିତା**—ସ. ବିଣ. ପୁଂ. ( ପଣ୍ ଧାତୁ + କର୍ତ୍ତୃ ତୃ, ୧ମା ୧ବ. )—
Paṇitā ୧ । ସ୍ତୋତା—1. Praying.
( ପଣିତ୍ରୀ – ସ୍ତ୍ରୀ ) ୨ । କ୍ରେତା—2. Vendee; purchaser.
୩ । ବିକ୍ରେତା – 3. Vendor.
ସ. ବିଣ. ସ୍ତ୍ରୀ. ( ପଣ୍ ଧାତୁ+କର୍ମ. ତ + ସ୍ତ୍ରୀ. ଆ )—
୧ । କ୍ରୀତା—1 Purchased.
୨ । ବିକ୍ରୀତା—2. Sold.

**ପଣିବା**—ଦେ. କ୍ରି. ( ତା. ପଣ = ବ୍ୟବହାରୋପଯୋଗୀ କରିବା )—
Paṇibā ୧ । କୁଟିବା ନିମନ୍ତେ କୌଣସି ବସ୍ତୁକୁ ଢିଙ୍କିମୁଣ୍ଡାରେ ସଞ୍ଚିତ କରିବା ବା ଭରିବା—
1. To put or push in a thing for pounding into the pounding hole of a Ḍhiṅki.
୨ । ଢିଙ୍କି ଗାତରେ କୁଟିବା ଦ୍ରବ୍ୟ ପୂରାଇବା ପରି ବହୁ ପରିମାଣରେ କୌଣସି ଖାଦ୍ୟକୁ ମୁଖଗହ୍ୱରକୁ ନିକ୍ଷେପ କରିବା ଓ ତାହା ଗିଳିବା—2 To gulp in large quantities; to put large quantities of food into the mouth voraciously; to swallow greedily or voraciously.
୩ । ବିଧାଆଦିଦ୍ୱାରା ଉପର୍ଯ୍ୟୁପରି ବହୁ ପ୍ରହାର କରିବା—
3 To administer a volley of fists or strokes.
୪ । କୁଟିବା—4. To pound.
୫ । କୌଣସି ବସ୍ତୁକୁ ପଣ ପଣ କରି ଗଣିବା—5. To count things by groups of one paṇa or 80
୬ । ବହୁତଗୁଡ଼ାଏ କଥା ଉପର୍ଯ୍ୟୁପରି କହିବା; ନିଦ୍ଦଳିବା—
6. To bable forth a volley of words.
୭ । କୌଣସି ସ୍ଥାନରେ କୌଣସି ବସ୍ତୁକୁ ବହୁ ପରିମାଣରେ ଭରିବା—7 To fill up a place with any thing.
୮ । କୌଣସି ସ୍ଥାନରେ କୌଣସି ବସ୍ତୁ ବହୁ ପରିମାଣରେ ଯୋଗାଇବା—8. To supply anything abundantly at a place.

**ପଣେ**—ଦେ. ବି—କିଛି ଧନ—
Paṇe Some money.
ବିଷ ପଣେ ନିମନ୍ତେଣ ଗୁରୁ ବୋଲାଉବେ । ପ୍ରାଚୀ. ଶାଗୁରୁ ଭକ୍ତିଗୀତା ।
ଦେ. ଅ—୧ । ସଂଖ୍ୟାରେ ଏକପଣ ବା ୮୦ ଗୋଟା—
1. Eighty in number.
୨ । ଏକ ଷୋଡ଼ଶାଂଶ—2 One sixteenth.
୩ । ବହୁସଂଖ୍ୟକ—3. Many.
ଢିଙ୍କି ପଡ଼ିଛି ପଣେ । ଶୁଖେଇ ଦବାକୁ କଣେ । ପ୍ରହେଳିକା ।

**ପଣ୍ଡ୍** ( ଧାତୁ )—ସ.—ଗମନ କରିବା—
Paṇḍ ( root ) To go

**ପଣ୍ଡ୍‌କା**—ପ୍ରାଦେ. ( ସମ୍ବଲପୁର ) ବି. ( ସ ପଣ୍ଡୁକ; ପେଣ୍ଡୁକା )—
Paṇḍ-kā କପୋତ, କାପ୍ତା—Dove.
[ ଦ୍ର—ପଣ୍ଡ୍‌କା ତିନି ପ୍ରକାରର, ଯଥା—୧ । ଟାମଟୁରୁକୁ—ଧୂସର ବର୍ଣ୍ଣ ଓ ସାନ, କୁବର । ୨ । ଛିଟ୍‌କେଲ୍—କଳାବିନ୍ଦୁଯୁକ୍ତ, ଧବଳ୍ ନାଲି । ୩ । କୁଡେଲ୍—ପାସ୍ ପରି ବଡ଼ । ]

**ପଣ୍ଡ**—ସ. ବିଣ. ( ପଣ୍ଡ ଧାତୁ+କର୍ତ୍ତୃ ଅ, କିମ୍ବା ପଣ୍ ଧାତୁ + ଡ )—
Paṇḍa ୧ । ବ୍ୟର୍ଥ; ବିଫଳ—
ପଣ୍ଡକ } ଅନ୍ୟରୂପ 1. Fruitless; ineffectual.
ପଣ୍ଡଗ } ୨ । ନପୁଂସକ—2. Impotent.
(ପଣ୍ଡତା, ପଣ୍ଡତ୍ୱ—ବି) ୩ । ନିଷ୍ଫଳ (ବୃକ୍ଷ)—3. Barren (tree)
୪ । ଅଣ୍ଡିରା ଗଛ—4. Male (plant).
ଦେ. ବି—୧ । ଗର୍ବ —1. Pride; arrogance.
ଦେ. ବି. ପୁଂ—୨ । ନପୁଂସକ ବ୍ୟକ୍ତି—2. An eunoch.

**ପଣ୍ଡତା**—ଦେ. ବି—(କାମକୁ ବଶୀଭୂତ କରିଥିବାରୁ)—ଋଷି—
Paṇḍatā Sage.

ଜୈନିକ ବୋଲେ ଭୋ ପଣ୍ଡ ।,
କହ ନୁ ଅବଦ୍ଧ କଥା । ତ୍ରାତାଂ, ଜଗର୍ଣ୍ଣନାହାତ୍ମ୍ୟ ।

**ପଣ୍ଡର**—ପ୍ରାଦେ (ଗଞ୍ଜାମ) ବି—ଗଞ୍ଜାମ ଜିଲ୍ଲାର ଯାତିବିଶେଷ—
Panḍarā Name of a Sūdra caste in the Ganjam district.

ପ୍ରାଦେ (ଉତ୍ତରଭାଷା, ବସ୍ତର) ବିଣ—ଧଳା—White.

**ପଣ୍ଡ ଶ୍ରମ**—ସଂ. ବି (କର୍ମଧା)—ନିଷ୍ଫଳ ପରିଶ୍ରମ, ବୃଥା ଆୟାସ—
Panḍa srama Ineffectual or fruitless labour; labour in vain.

**ପଣ୍ଡା**—ସଂ. ବି. ( ପଣ୍ଡ୍ ଧାତୁ + କର୍ତ୍ତ୍ରି ଅ + ଆ )—୧ । ତୀକ୍ଷ୍ଣ ବୁଦ୍ଧି—
Panḍā 1. Sharp intellect.

୨ । ଜ୍ଞାନ—2 Wisdom.

୩ । ଶାସ୍ତ୍ରଜ୍ଞାନ—3. Insight into the śāstras.

୪ । ବିଦ୍ୟା —4 Learning.

୫ । ବିଜ୍ଞାନ—5 Science, spiritual knowledge.

୬ । ବେଦୋଜ୍ଜ୍ୱଳା ବୁଦ୍ଧି—6. Intellect sharpened by the study of the Bedas

ପାଣ୍ଡା ଦେ. ବି. (ସଂ ପଣ୍ଡା =ବେଦୋଜ୍ଜ୍ୱଳା ବୁଦ୍ଧି)—୧ । ଦେବ-
पण्डा ପୂଜକ ନିମ୍ନ ଶ୍ରେଣୀର ବ୍ରାହ୍ମଣ, ପୂଜାରୀ ବ୍ରାହ୍ମଣ—
1. Priest; a Brāhmaṇa of lower status in society whose occupation is the worship and service of idols.

[ ଦ୍ର—ଏମାନେ ଅଶ୍ରୋତ୍ରୀୟ ବ୍ରାହ୍ମଣମାନଙ୍କର ଭିନ୍ନ ଶ୍ରେଣୀ ମଧ୍ୟରୁ ଏକ ଶ୍ରେଣୀର ଅନ୍ତର୍ଗତ । ଶ୍ରୋତ୍ରୀୟ ବ୍ରାହ୍ମଣମାନେ ଏମାନଙ୍କ ସହିତ ବୈବାହିକ ସମ୍ବନ୍ଧ କରନ୍ତି ନାହିଁ । ଦେବସେବା ଏମାନଙ୍କର ପ୍ରଧାନ କାର୍ଯ୍ୟ ( କୃପାସିନ୍ଧୁ ଇତିହାସ ) । ଏମାନେ ଆଜକାଲି ଅନ୍ୟ ଲୋକଙ୍କର ପାଚକ କାର୍ଯ୍ୟ ବ୍ୟବସାୟ କରିବାର ମଧ୍ୟ ଦେଖାଯାଏ ।]

୨ । ବ୍ରାହ୍ମଣମାନଙ୍କର ବଂଶୋପାଧିବିଶେଷ—
2. The family-title of certain Brāhmaṇas

[ ଦ୍ର— ସମ୍ଭବତଃ ପୂର୍ବେ 'ପଣ୍ଡା' ଉପାଧି ବେଦାଧ୍ୟାୟୀ ଓ ଉଚ୍ଚଶ୍ରେଣୀସ୍ଥ ବ୍ରାହ୍ମଣଙ୍କୁ ଦିଆଯାଉଥିଲା । ପୁରୀ ରାଜାମାନେ 'ସାମନ୍ତ' ବ୍ରାହ୍ମଣଙ୍କୁ ବଡ଼ପଣ୍ଡା ଉପାଧି ଦେଉଥିଲେ । ]

୩ । ତୀର୍ଥରେ ଦର୍ଶନାଦି କରାଇବା ପାଇଁ ନିଯୁକ୍ତ ପ୍ରତ୍ୟେକ ଯାତ୍ରୀର ନିର୍ଦ୍ଦିଷ୍ଟ ତୀର୍ଥଗୁରୁ—
3. The particular priest of a pilgrim at a sacred place of pilgrimage.

୪ । ଅଣ୍ଡିରା ମଇଁଷି, ପୋଢ଼ୁଅ—4. Male buffalo.

ମହିଷ ବଡ଼ପଣ୍ଡା ମଣ୍ଡ ପର ଛିପଣ୍ଡ କଲା—
ଫକୀରମୋହନ- ଛମାଣ ଆଠଗୁଣ୍ଠ ।

୫ । ଶଗଡ଼ ଆଦିରେ ମଣ ହୋଇ ନ ଥିବା ଅଣ୍ଡିରା ବାଛୁରି—
5. A male calf not yet broken to the plough or cart.

୬ । (ସଂ. ପଣ୍ଡ ) ଅଣ୍ଡିରା ଗଛ—6 A male tree

୭ । ଛଣ, ନଡ଼ା ବା ଧାନ ବିଲାକୁ ଗଦା ମାରିଲେ ସେହି ଗଦାର ଯେଉଁ ଚତୁଷ୍କୋଣ ଅଂଶ ଭୂମି ଓ ଉପରର ତ୍ରିକୋଣ ଚାଳି ଅଂଶ ମଧ୍ୟରେ ଥାଏ—7. The main body of a straw rick from the ground upto the part from where the thatch begins to taper.

[ ଦ୍ର—ଗଦାର ସର୍ବୋର୍ଦ୍ଧ୍ୱସ୍ଥ ରେଖାକୁ ମୁଣ୍ଡ ବା ମଥାନ କହନ୍ତି । ଗଦାର ଯେଉଁ ଅଂଶ କ୍ରମଶଃ ଚାଳି କରାଯାଇ ଛପର କରାଯାଏ ସେହି ତ୍ରିଭୁଜାକାର ଅଂଶକୁ ଗଭା ବୋଲାଯାଏ । ଗଭାର ନିମ୍ନସ୍ଥ ଭୂମି ପର୍ଯ୍ୟନ୍ତ ଲାଗିଥିବା ଚତୁରସ୍ର ଅଂଶକୁ ପଣ୍ଡା ବୋଲାଯାଏ ]

ଦେ. ବିଣ—୧ । ( ସଂ. ପଣ୍ଡ ) ଅଣ୍ଡିରା ( ଗଛ )—
1. Male ( tree ).
( ଯଥା—ପଣ୍ଡା ତାଳଗଛ । )

୨ । ରସ ବା ମଞ୍ଜିହୀନ ( ରୁଗ୍ଣ ଫଳ )—
2 Sapless or seedless ( diseased fruit )
( ଯଥା — ପଣ୍ଡା ପଣସ । )

**ପଣ୍ଡା ଗଛ**—ଦେ ବି—ଯେଉଁ ଗଛରେ ଫଳ ହୁଏ ନାହିଁ, ଅଣ୍ଡିରା ଗଛ—
Panḍā gachha A tree which bears no fruit; a male tree,
( ଯଥା—ପଣ୍ଡା ତାଳ, ପଣ୍ଡା ଅମୃତଭଣ୍ଡା । )

**ପଣ୍ଡା ଗୋସା(ସେ)ଇଁ** – ଦେ. ବି.(ପଣ୍ଡାଙ୍କ ପ୍ରତି ସମ୍ମାନାର୍ଥକ ସମ୍ବୋଧନ)—
Panḍā gosā(se)iñ ୧ । ପଣ୍ଡା—1 Panḍā.
पांडाठाकुर ୨ । ସାଧାରଣତଃ ବ୍ରାହ୍ମଣଙ୍କୁ ବା ପଣ୍ଡାଙ୍କୁ ସମ୍ବୋଧନ—
पण्डाजी 2. A name by which a Panḍā or
( ପଣ୍ଡା ଠାକୁର, ପଣ୍ଡାଜୀ — ଅନ୍ୟରୂପ ) Brāhmaṇa is generally addressed to.

**ପଣ୍ଡା ଜଗାଲି**—ପ୍ରାଦେ. ( ଗଞ୍ଜାମ ) ବି—ପୋଢ଼ୁଅ ମାହାର ( ଦେଖ )
Panḍā jagāli Pordhua māhāra ( See )

**ପଣ୍ଡା ପଡ଼ିଆରି**—ଦେ. ବି. ( ସହଚର ଶବ୍ଦ )—ଦେବପୂଜକ ବ୍ରାହ୍ମଣ
Panḍā pardhiāri ଓ ଶୂଦ୍ର ସେବକମାନେ—Brāhmaṇas and Sūdras serving in a temple.

**ପଣ୍ଡା ପଣସ**—ଦେ. ବି. ( ସଂ. ପଣ୍ଡ ଓ ପନସ )—ରସହୀନ ବା ଅସ୍ୱାଦୁ
Panḍā panasa ପଣସ—A juiceless jack fruit.

**ପଣ୍ଡା ମଇଁଷି**—ଦେ. ବି. ( ସଂ. ପଣ୍ଡ ଓ ମହିଷ )—ଅଣ୍ଡିରା ମଇଁଷି—
Panḍā maiñshi Male buffalo.

**ପଣ୍ଡା ମଢ଼ିଆ**—ଦେ. ବି. ( ସହଚର ଶବ୍ଦ; ଅନାଦରାର୍ଥକ ବ୍ୟବହାର )—
Panḍā mardhiā ନିମ୍ନଶ୍ରେଣୀସ୍ଥ ବ୍ରାହ୍ମଣଗଣ—
Brāhmaṇas of lower order.

**ପଣ୍ଡା ମାରିବା**—ଦେ. କ୍ରି. ( ସଂ ପଣ୍ଡ )—( ଧାନଗଛ ପ୍ରଭୃତି ) ଅଙ୍କୁରରୂପେ ବଢ଼ିବା; ବଲ୍ଲା ହୋଇ ବଢ଼ିବା—
Panḍā māribā ( said of paddy plants ) To grow up very luxuriantly.

[ ଦ୍ର—ଯେଉଁ ଧାନ ଗଛର ପତ୍ର ଆଦି ଅଙ୍କୁରରୂପେ ବଢ଼ିଯାଏ ଫଳତଃ ସେ ଗଛରେ ଧାନ ଅଳ୍ପ ଫଳେ । ]

**ପଣ୍ଡା ସୁଆଳି**—ଦେ. ବି—ଏକପ୍ରକାର ସିଧା ସଳଖ ଘାସ —
Panḍā suāli Iseilema Lexum (grass).

[ ଦ୍ର – ଏହା ଉଚ୍ଚରେ ୧ ଠାରୁ ୩ ଇଞ୍ଚ ପର୍ଯ୍ୟନ୍ତ ବଢ଼େ—Haines. ]

**ପଣ୍ଡିଆ**—ପ୍ରାଦେ. ( ସମ୍ବଲପୁର ଓ ଗଡ଼ଜାତ ) ବିଣ—ପାଣ୍ଡୁର—
Pandiā Grey.

**ପଣ୍ଡିଆଣୀ**—ଦେ ବି. ସ୍ତ୍ରୀ—ପଣ୍ଡାଜାତିର ସ୍ତ୍ରୀ—A female of the
Paṇḍiāṇi Paṇḍā Brāhmaṇa class

**ପଣ୍ଡିକି**—ପ୍ରାଦେ. ( ବସ୍ତର ) ବି. ( ତୁଳ ହି. ପେଣ୍ଡୁକା )—କପୋତ—
Paṇḍiki Dove.

**ପଣ୍ଡିଚେରି**—ଦେ. ବି—ଭାରତର ମାନ୍ଦ୍ରାଜ ପ୍ରେସିଡେନ୍ସିରେ ଫ୍ରାନ୍ସଦେଶ
Paṇḍi cheri ଶାସିତ ସମୁଦ୍ରକୂଳବର୍ତ୍ତୀ ନଗର—

[ ଦ୍ର—ଏହା ଫ୍ରେଞ୍ଚ ଭାରତର ରାଜଧାନୀ । ମାନ୍ଦ୍ରାଜର ଦକ୍ଷିଣକୁ ୧୬୨ ମାଇଲ ଦକ୍ଷିଣଆର୍କଟ ଜିଲ୍ଲାଦ୍ୱାରା ଏ ନଗର ଘେରିଅଛି ବେଷ୍ଟିତ ଓ ଏହାର ପଶ୍ଚିମରେ ଆରବସାଗର । ଭିଲ୍ଲିପୁରମ୍‌ଠାରୁ ଏସ ଆଇ. ଆର୍ ରେଲର ଗୋଟିଏ ଶାଖା ପେଣ୍ଡିଚେରି ପର୍ଯ୍ୟନ୍ତ ଯାଇଅଛି । ଖ୍ରୀ.୧୬୮୩ ସାଲରେ ଏଠାରେ ପ୍ରଥମେ ଫରାସି ବସ୍ତି ସ୍ଥାପିତ ହୋଇଥିଲା । ଯୁଦ୍ଧବିଗ୍ରହ ଓ ଅଶାନ୍ତିରେ ଏହା ବହୁବାର ଇଂରାଜଙ୍କ ହସ୍ତଗତ ହୋଇ ଶେଷରେ ଖ୍ରୀ.୧୮୧୬ ଠାରୁ ଏହା ସ୍ଥାୟୀରୂପେ ଫ୍ରାନ୍ସର ହସ୍ତଗତ ହୋଇଅଛି । ଏହା ଗୋଟିଏ ସମୃଦ୍ଧିଶାଳୀ ବଡ଼ ସହର ଓ ସ୍ୱାସ୍ଥ୍ୟକର ସ୍ଥାନ । ଏହା ମଧ୍ୟ ଗୋଟିଏ ବାଣିଜ୍ୟ କେନ୍ଦ୍ର ଓ ବନ୍ଦର । ପ୍ରତିବର୍ଷ ସମୁଦ୍ର ବାଟେ ଏ ବନ୍ଦରରେ ୫୦୦ ଜାହାଜ ଲାଗେ । ଫ୍ରାନ୍ସ ତିଆରି ଜିନସ ଏଠାରେ ଭାରତର ଅନ୍ୟ ସ୍ଥାନ ଅପେକ୍ଷା ଶସ୍ତାରେ ମିଳେ । ଫରାସୀ ସେନାପତି ଡୁପ୍ଲେଙ୍କ ମର୍ମର ମୂର୍ତ୍ତି ଏଠାରେ ଅଛି । ଭାରତରେ ଫରାସୀ ଅଧିକୃତ ଅନ୍ୟସ୍ଥାନମାନ ଯଥା- - ଚନ୍ଦନ ନଗର, ମାହ୍ମା, କରାଇକାଲ ଓ ୟେନାମ୍ ]

**ପଣ୍ଡିତ**—ସଂ. ବିଣ. ପୁଂ. ( ପଣ୍ଡା = ଶାସ୍ତ୍ରଜ୍ଞାନ + ଇତ=ଯୁକ୍ତ) —
Paṇḍita ୧ । ଶାସ୍ତ୍ରଜ୍ଞ —1. Versed in the sacred lore.
(ପଣ୍ଡିତା—ସ୍ତ୍ରୀ, ମୂର୍ଖ—ବିପରୀତ)

୨ । ବିଦ୍ୱାନ୍—2. Learned.

୩ । ଜ୍ଞାନୀ—3. Wise.

[ ଦ୍ର— ବିବେକ ଦ୍ୱାରା ସଦସତ୍ ଜ୍ଞାତା, ଧର୍ମାତ୍ମା, ସତ୍ୟବାଦୀ, ସତ୍ୟପ୍ରିୟ, ଜିତେନ୍ଦ୍ରିୟ, ବିଦ୍ୱାନ୍ ଓ ସର୍ବ ହିତକାରୀ ବ୍ୟକ୍ତିଙ୍କୁ ଶାସ୍ତ୍ରରେ ପଣ୍ଡିତ ବୋଲାଯାଇ ଅଛି । ]

୪ । କୌଣସି ବିଦ୍ୟାରେ ନିପୁଣ, କୁଶଳ, ଦକ୍ଷ —4. Versed in or skilled in any art; adept; proficient

ତେଣେ ଗେଲେ ପଣ୍ଡିତ ବୋଲି ପ୍ରସରୁଛି ମାହା ନାମ ।
କବିସୂର୍ଯ୍ୟ ସଙ୍ଗୀତ ।

୫ । ସଙ୍ଗୀତ, ନୃତ୍ୟ ଓ ବାଦ୍ୟରେ ଦକ୍ଷ—5 Versed in the arts of singing, dancing and music.

ସଂ. ବି—୧ । ବିଦ୍ୱାନ୍ ବ୍ୟକ୍ତି—
1. A scholar; a seer; a learned man.

୨ । ବୁଧ ଗ୍ରହ—2. The planet Mercury.

୩ । ନୃତ୍ୟ ବାଦ୍ୟଜ୍ଞ ବ୍ୟକ୍ତି; ଓସ୍ତାଦ୍—
3. A master musician; a professor of music.

ଦେ. ବିଣ—ସଂସ୍କୃତ ଭାଷାଜ୍ଞ—Learned in Sanskrit

ଦେ. ବି—୧ । ସଂସ୍କୃତ ଓ ଓଡ଼ିଆ ଭାଷାର ଶିକ୍ଷକ—
1. A Sanskrit teacher; an Oriya teacher.

୨ । ଗୁରୁ, ଅବଧାନ—2 A teacher of primary school.

୩ । ସରକାରଙ୍କ ଗୁରୁ ଟ୍ରେନିଙ୍ଗ୍ ବା ପଣ୍ଡିତଟ୍ରେନିଙ୍ଗ୍ ବିଦ୍ୟାଳୟରୁ ଉତ୍ତୀର୍ଣ୍ଣ ଶିକ୍ଷକ—3. A passed or trained teacher

[ ଦ୍ର—ପ୍ରାଥମିକ ଓଡ଼ିଆ ଶିକ୍ଷା ଦେବା ଶିକ୍ଷକଙ୍କୁ ଗୁରୁ ବା ଅବଧାନ, ଉଚ୍ଚ ଓଡ଼ିଆ ଓ ସଂସ୍କୃତ ଶିକ୍ଷା ଦେବା ଶିକ୍ଷକଙ୍କୁ ପଣ୍ଡିତ ଓ ଇଂରାଜି ଶିକ୍ଷା ଦେବା ଶିକ୍ଷକଙ୍କୁ ମାଷ୍ଟର ବୋଲାଯାଏ । ପ୍ରାଥମିକ ଫାରସୀ ଓ ଆରବୀ ଶିକ୍ଷା ଦେବା ଶିକ୍ଷକଙ୍କୁ ମିଆଁଜୀ, ଉଚ୍ଚ ଫାରସୀ ଓ ଆରବୀ ଶିକ୍ଷା ଦେବା ଶିକ୍ଷକଙ୍କୁ ମୌଲବୀ ବୋଲାଯାଏ । କଲେଜରେ ଇଂରାଜି ଭାଷାରେ ଶିକ୍ଷା ଦେବା ଶିକ୍ଷକଙ୍କୁ ଲେକ୍‌ଚରର୍ ବା ପ୍ରୋଫେସର୍ ବୋଲାଯାଏ । ଗୁରୁ, ପଣ୍ଡିତ, ମାଷ୍ଟର, ମିଆଁଜୀ ଓ ମୌଲବୀମାନଙ୍କୁ ତାଲିମ୍ କରିବା ପାଇଁ ଗଭର୍ଣ୍ଣମେଣ୍ଟ ସ୍ଥାନେ ସ୍ଥାନେ ଟ୍ରେନିଙ୍ଗ୍ ସ୍କୁଲ ଓ ଟ୍ରେନିଙ୍ଗ କଲେଜମାନ ପ୍ରତିଷ୍ଠିତ କରି ଅଛନ୍ତି । ]

୪ । ଜ୍ୟୋତିଷଜ୍ଞ ବ୍ରାହ୍ମଣ —
4. An astrologer Brāhmaṇa.

୫ । ଏକ ପ୍ରକାର ଶୂଦ୍ର ଜାତି —5. A class of Śūdras.
[ ଦ୍ର—ଏ ଜାତିଙ୍କର ଆଦିପୁରୁଷ ପଣ୍ଡିତ ବା ବୁଧଗ୍ରହ । ]

୬ । କାଶ୍ମୀରୀ ବ୍ରାହ୍ମଣଙ୍କର ବଂଶୋପାଧିବିଶେଷ—
6. A family title of some Kashmiree Brāhmaṇas.

୭ । ବିହାରୀ ବ୍ରାହ୍ମଣଙ୍କର ବଂଶୋପାଧିବିଶେଷ—
7 A family title of some Brāhmaṇas of Bihar.

୮ । ସାଧାରଣ ଭଦ୍ର ବ୍ରାହ୍ମଣଙ୍କ ନାମ ପୂର୍ବରେ ଲାଗିବା ମାନ୍ୟାର୍ଥକ ପଦ—8. A title attached before the names of educated Brāhmaṇas.
(ଯଥା—ପଣ୍ଡିତ ଗୋପବନ୍ଧୁ ଦାଶ; ପଣ୍ଡିତ ନୀଳକଣ୍ଠ ଦାଶ ।)

୯ । ପଣ୍ଡିତ ବାର (ଦେଖ)—9. Paṇḍita bāra (See)

ଭବ ବଣଘଣ୍ଟ, ବୋମ ଦଉଠା, ବାର ମଙ୍ଗଳ, ପଣ୍ଡିତ ଷଠା,
ଗୁରୁ ଚନ୍ଦ୍ରଦ, ମନ୍ଦୀ ଅଠ, ଉଦଯ ଅସ୍ତ ଶନର ଘାରୁ । ଜନ ବଚନ ।

ପ୍ରାଦେ. (ଗଞ୍ଜାମ) ବି—୧ । ପଣ୍ଡିତ ବଂଶୋପାଧିବିଶିଷ୍ଟ ଏକ ଜ୍ୟୋତିଷୀ ଶୂଦ୍ରଜାତି—1 A class of Śūdras who are astrologers by profession.

୨ । କମା ବ୍ରାହ୍ମଣ—2. A generic title for Telugu Brāhmaṇas.

[ଦ୍ର—ଏ ସଂସ୍କୃତ ଶବ୍ଦ ଇଂରାଜୀ ଭାଷାରେ ମଧ୍ୟ ଚଳୁଅଛି ।]

**ପଣ୍ଡିତକ**—ସଂ. ବି—୧ । (ନାମ) ଧୃତରାଷ୍ଟ୍ରଙ୍କ ଏକପୁତ୍ର—
Paṇḍitaka 1. Name of a son of Dhṛutarāshṭra.

୨ । (ପଣ୍ଡିତ + କ) —ପଣ୍ଡିତ (ଦେଖ)—2. Paṇḍita (See)

ସଂ. ବିଣ. ପୁଂ—ପଣ୍ଡିତ (ଦେଖ) —Paṇḍita (See)

**ପଣ୍ଡିତ ଗୋଷ୍ଠୀ**—ସଂ. ବି. (୬ଷ୍ଠୀ ତତ୍, ପଣ୍ଡିତ + ଗୋଷ୍ଠୀ) —
Paṇḍita goshṭhī ୧ । ପଣ୍ଡିତମାନଙ୍କର ସମ୍ମିଳନୀ; ପଣ୍ଡିତସଭା—
1. An assemblage of Pandits.

ପଣ୍ଡିତ ମଣ୍ଡଳ, ପଣ୍ଡିତ ମଣ୍ଡଳୀ, ପଣ୍ଡିତ ସମାଜ — ଅନ୍ୟରୂପ

୨ । ବିଦ୍ୱନ୍ମଣ୍ଡଳୀ—
2. Learned men collectively; the wise.

**ପଣ୍ଡିତ ଜାତୀୟ**—ସଂ. ବିଣ. ପୁଂ. (ପଣ୍ଡିତ + ଈଷଦର୍ଥେ ଜାତୀୟ)—
Pandita jātiya ସାମାନ୍ୟରେ ଚତୁର—Somewhat clever (Apte).
(ପଣ୍ଡିତ ଜାତୀୟା—ସ୍ତ୍ରୀ)

**ପଣ୍ଡିତ ଟ୍ରେନିଂ**—ଦେ. ବି. (ସଂ ପଣ୍ଡିତ ଓ ଇଂ ଟ୍ରେନିଙ୍ଗ୍)—
Pandita trenim ଯେଉଁ ବିଦ୍ୟାଳୟରେ ଓଡ଼ିଆ ପଢାଇବା
(ପଣ୍ଡିତ ଟ୍ରେନିଙ୍ଗ୍—ଅନ୍ୟରୂପ) ଶିକ୍ଷକମାନଙ୍କୁ ତାଲିମ୍ କରାଯାଏ—
A school or class for training pandits or vernacular teachers, a vernacular teacher-training institution.

**ପଣ୍ଡିତ ପ୍ରବର**—ସଂ. ବିଣ—ଶ୍ରେଷ୍ଠ ପଣ୍ଡିତ—A chief Pandit.
Pandita prabara (ପଣ୍ଡିତବର—ଅନ୍ୟରୂପ)

**ପଣ୍ଡିତ ବାର**—ସଂ. ବି—ବୁଧବାର—Wednesday.
Pandita bāra (ପଣ୍ଡିତବାସର—ଅନ୍ୟରୂପ)

**ପଣ୍ଡିତ ବିଦାକି**—ଦେ. ବି—ରଜା ଓ ବଡ଼ଲୋକଙ୍କ ସଭା ଓ ଉତ୍ସବାଦିକୁ
Pandita bidāki ନିମନ୍ତ୍ରିତ ପଣ୍ଡିତମାନଙ୍କୁ ଦିଆଯିବା ଉପଢୌକନ—
Presents given to Pandits invited on special occasions by rich men.

**ପଣ୍ଡିତ ବିଭାଗ**—ଦେ. ବି—ପଣ୍ଡିତ ଟ୍ରେନିଂ (ଦେଖ)—
Pandita bibhāga Pandita trenim (See)

**ପଣ୍ଡିତ ବିଶ୍ୱନାଥ**—ଦେ. ବି—ଜଣେ ଉତ୍କଳର ପ୍ରସିଦ୍ଧ ସଂସ୍କୃତଜ୍ଞ ପଣ୍ଡିତ—
Pandita biswanātha A famous Sanskrit Pandit of Orissa.
[ଦ୍ର—ଏ 'ସାହିତ୍ୟ ଦର୍ପଣ' ଓ 'ସାହିତ୍ୟ ଦର୍ପଣାଲୋଚନା' ନାମକ ପ୍ରାମାଣିକ ସଂସ୍କୃତ ଅଲଙ୍କାର ଗ୍ରନ୍ଥ ପ୍ରଣୟନ କରିଥିଲେ । ଏ କଳିଙ୍ଗାଧିପତିଙ୍କ ମନ୍ତ୍ରୀ ଥିଲେ (ଜଗବନ୍ଧୁ-ପ୍ରାଚୀନ ଉତ୍କଳ) । ଏହାଙ୍କର ପୂର୍ଣ୍ଣ ନାମ ପଣ୍ଡିତ ବିଶ୍ୱନାଥ କବିରାଜ । ]

**ପଣ୍ଡିତ ମଣ୍ଡଳ(ଳୀ)**—ସଂ. ବି. (୬ଷ୍ଠୀ ତତ୍; ପଣ୍ଡିତ + ମଣ୍ଡଳ)—
Pandita mandala(li) ପଣ୍ଡିତ ଗୋଷ୍ଠୀ (ଦେଖ)—
Pandita goshthi (See)

**ପଣ୍ଡିତ ମହାଶୟ**—ସଂ. ବି.—ପଣ୍ଡିତଙ୍କୁ ମାନ୍ୟାର୍ଥକ ସମ୍ବୋଧନ—
Pandita mahāsaya A respectful address to a Pandit
পণ্ডিত মশাই पण्डित जी

**ପଣ୍ଡିତମାନୀ**—ସଂ. ବିଣ. ପୁଂ. (ପଣ୍ଡିତ + ମନ୍ ଧାତୁ = ବୋଧ କରିବା +
Panditamāni ଇନ୍; ୧ମା. ୧ବ)—୧ । ସାମାନ୍ୟ ପାଣ୍ଡିତ୍ୟ
(ପଣ୍ଡିତ ମାନକ—ଅନ୍ୟରୂପ) ହୋଇ ଯେ ମହାପଣ୍ଡିତ ବୋଲି ଅଭିମାନ
(ପଣ୍ଡିତ ମାନିନୀ—ସ୍ତ୍ରୀ) କରନ୍ତି—1. Pedantic; pedagoguic; fancying one's self to be a big Pandit.
୨ । ମୂର୍ଖ—2. Unlettered; ignorant.

**ପଣ୍ଡିତ ମାଷ୍ଟର**—ଦେ. ବି. (ସଂ. ପଣ୍ଡିତ+ଇଂ. ମାଷ୍ଟର)—
Pandita māshtara ସଂସ୍କୃତ ଶିକ୍ଷକ ଓ ଇଂରାଜୀ ଶିକ୍ଷକ—
পণ্ডিত মাষ্টার Sanskrit teacher and English teacher.
पण्डित मास्टर

**ପଣ୍ଡିତ ମୂର୍ଖ**—ସଂ. ବି. (ବ୍ୟଙ୍ଗ୍ୟ)—ବିଦ୍ୱାନ୍ ଅଥଚ କର୍ତ୍ତୁଁବି ବ୍ୟକ୍ତି—
Pandita mūrkha A learned fool, an impractical learned man.

**ପଣ୍ଡିତମ୍ମନ୍ୟ**—ସଂ. ବିଣ. ପୁଂ (ପଣ୍ଡିତଂ + ମନ୍ ଧାତୁ + ଯ, ଯେ ଆପଣାକୁ
Panditammanya ପଣ୍ଡିତ ବୋଲି ଗର୍ବ କରେ)—
(ପଣ୍ଡିତମ୍ମନ୍ୟା—ସ୍ତ୍ରୀ) ପଣ୍ଡିତ ମାନୀ (ଦେଖ)—
(ପଣ୍ଡିତଂ ମନ୍ୟ—ଅନ୍ୟରୂପ) Pandita māni (See).

**ପଣ୍ଡିତ ସଭା**—ସଂ. ବି. (୬ଷ୍ଠୀ ତତ୍, ପଣ୍ଡିତ + ସଭା)—୧ । ସଂସ୍କୃତଜ୍ଞ
Pandita sabhā ପଣ୍ଡିତମାନଙ୍କ ସମ୍ମିଳନୀ—1. Pandit-sabha; a gathering or association of learned men.
(ଯଥା—ପୁରୀ ମୁକ୍ତିମଣ୍ଡପ ପଣ୍ଡିତ ସଭା)
୨ । ଶାସ୍ତ୍ର ଚର୍ଚ୍ଚା, ବ୍ୟବସ୍ଥା ବା ନ୍ୟାୟ ଦର୍ଶନାଦି ଆଲୋଚନା କରିବା ପାଇଁ ରଜା ଓ ଧନୀମାନଙ୍କ ଦ୍ୱାରା ନିମନ୍ତ୍ରିତ ପଣ୍ଡିତମାନଙ୍କର ସମ୍ମିଳନ—
2 A gathering of Pandits invited by Rajas and rich men for holding learned discussions.

**ପଣ୍ଡିତା**—ସଂ. ବିଣ. ସ୍ତ୍ରୀ—(ପଣ୍ଡିତ+ସ୍ତ୍ରୀ ଆ)—ବିଦୁଷୀ, ବିଦୁଷୀ (ନାରୀ)—
Panditā Learned (woman).

**ପଣ୍ଡିତାଣୀ**—ଦେ. ବି. ସ୍ତ୍ରୀ. (ସଂ. ପଣ୍ଡିତା)—
Panditāni ୧ । ପଣ୍ଡିତଙ୍କ ସ୍ତ୍ରୀ—1. A Pandit's wife.
পণ্ডিতানী ୨ । ବିଦୁଷୀ—2. A learned woman.
पण्डितानी
(ପଣ୍ଡିତଆଣୀ, ପଣ୍ଡିତୁଣୀ—ଅନ୍ୟରୂପ)

**ପଣ୍ଡିତାଭିମାନୀ**—ସଂ. ବିଣ. ପୁଂ. (ପଣ୍ଡିତ + ଅଭିମାନ + ଇନ୍; ୧ମା.୧ବ)
Panditābhimāni ପଣ୍ଡିତମାନୀ (ଦେଖ)
Panditamāni (See).

**ପଣ୍ଡିତାୟମାନ**—ସଂ. ବିଣ. ପୁଂ. (ପଣ୍ଡିତ + ଆଚରଣାର୍ଥେ ଆୟ = ପଣ୍ଡିତାୟ
Panditāyamāna ନାମ ଧାତୁ + ଶାନ)—ଯେ ପୂର୍ବେ ପଣ୍ଡିତ ନ ଥିଲେ କିନ୍ତୁ ବର୍ତ୍ତମାନ ପଣ୍ଡିତ ପାଲଟି ଅଛନ୍ତି, କିମ୍ବା ପଣ୍ଡିତ ପରି ଆଚରଣ କରୁ ଅଛନ୍ତି, ହଠାତ୍ ପଣ୍ଡିତ (ବ୍ୟକ୍ତି), ଭୁଂଇ ପଣ୍ଡିତ—
A person who was not formerly a Pandit but has now turned out to be a Pandit; a person who shows himself off as a Pandit; a person professing himself to be a Pandit or passing himself off
(ପଣ୍ଡିତାୟମାନା—ସ୍ତ୍ରୀ) as a Pandit; pedagoguic.

**ପଣ୍ଡିତି**—ଦେ. ବି (ସଂ. ପାଣ୍ଡିତ୍ୟ)—୧ । ପଣ୍ଡିତ ପଣିଆଁ—1. The
Panditi state or quality of being a pandit.
পণ্ডিতাই पण्डिताई
୨ । ପଣ୍ଡିତ ଚାକର—2. The post of a retained Pandit.
(ପଣ୍ଡିତାଇ, ପଣ୍ଡିତେଇ—ଅନ୍ୟରୂପ)
୩ । ଶିକ୍ଷକତା—3. Teachership.
୪ । ପାଣ୍ଡିତ୍ୟ, ବିଦ୍ୱତ୍ତା—4. Learning; the state of being learned.
ଦେ. ବିଣ—୧ । ପଣ୍ଡିତ ସୁଲଭ, ପଣ୍ଡିତ ଯୋଗ୍ୟ—
পণ্ডিতী पण्डिताउ 1. Pedantic, becoming a learned man.
(ପଣ୍ଡିତିଆ, ପଣ୍ଡିତେଇ—ଅନ୍ୟରୂପ)
୨ । ପଣ୍ଡିତ ସମ୍ବନ୍ଧୀୟ—2. Pertaining to a Pandit

**ପଣ୍ଡିତିଆ**—ଦେ. ବଣ—ପଣ୍ଡିତ ( ଦେଖ )
Panditia Pandita ( See )

**ପଣ୍ଡିତିମା**—ସଂ ବ (ପଣ୍ଡିତ + ଭାବାର୍ଥେ ଇମନ୍, ୧ମା. ୧ବ)—
Panditima ପାଣ୍ଡିତ୍ୟ—Learning (Apte)

**ପଣ୍ଡିତିଆ କଥା**—ଦେ ବ – ସଂସ୍କୃତ ପଣ୍ଡିତମାନେ ସାଧାରଣତଃ ଲେଖା ଓ
Panditia katha କଥାରେ ବ୍ୟବହାର କରିବା ସଂସ୍କୃତ ଶବ୍ଦ-
পণ্ডিতী ভাষা ବହୁଳ ଓ ଆଡମ୍ବରପୂର୍ଣ୍ଣ ଓଡ଼ିଆ ଭାଷା —
**पंडिताउ भाषा** High flown Oria language as
(ପଣ୍ଡିତେଇ ଭାଷା—ଅନ୍ୟରୂପ) used by Pandits; affected or pedantic Oria language.

[ ଦ୍ର—ଏହିପରି ପଣ୍ଡିତିଆ ବଙ୍ଗଳା, ପଣ୍ଡିତିଆ ହିନ୍ଦି ଆଦି ଶବ୍ଦ ବ୍ୟବହୃତ ହୁଏ । ]

**ପଣ୍ଡୁ**–ଦେ. ବ—୧ । ମାର୍ଗଶିର ପୂର୍ଣ୍ଣିମା, ପଣ୍ଡୁ ପୂର୍ଣ୍ଣିମା—
Pandu 1. The fullmoon day of Margasira
ଯଥା—ଅଗଲ ପଣ୍ଡୁ ମଲେ ନଗ,
ଗୋଡଫାଟୁ ଖେଲ ବୃଦ୍ଧକ ନଗ – ଉଗ ।
[ଦ୍ର—ଏ ଦିନ ସ୍ତ୍ରୀଲୋକମାନଙ୍କର ଗୋଟିଏ ଓଷା ।]
୨ । ଶୀତ ଋତୁର ଆରମ୍ଭ—
2 The beginning of winter.
ସଂ ବଣ – ୧ । ପାଣ୍ଡୁର, ମାଟିଆ ମିଶା ହଳଦିଆ (ହି. ଶ ) — 1. Brown
୨ । ଫିକା ଧଳା -- 2 Greyish white
୩ । ଈଷତ୍ ହଳଦିଆ - 3. Yellowish.
ସଂ ବ.—ପାଣ୍ଡୁର ବର୍ଣ୍ଣ—Brown or grey colour.

**ପଣ୍ଡୁଆ**—ଦେ. ବଣ—ପଣ୍ଡ (ଦେଖ)
Pandua Panda (See)
ନ ପଣ୍ଡୁଆ ବୃକ୍ଷ ପତ୍ରରେ
ମାନ ନ ହାଣି ସେ ଅରଣ କରେ । ଗାଗୀ. ଚରଣେ ଗୀତ ।

**ପଣ୍ଡୁଆ କାବତା**—ପ୍ରାଦେ (ଗଡ଼ଜାତ) ବ. (ଭୁଲ. ହି. ପଣ୍ଡୁକ୍)—କୁଆପରି
Pandua kabata ବଡ଼ ଅଣ୍ଡିରା କପୋତ —A kind of big he-dove

**ପଣ୍ଡୁ ଓଷା**—ଦେ ବ—ପଣ୍ଡୁ (ଦେଖ)
Pandu osa Pandu (See)

**ପଣ୍ଡୁ କାଆଁଳ**-ଦେ. ବ—ମାର୍ଗଶିର ମାସରେ ମେଘ ଘୋଡ଼ାଘୋଡ଼ି
Pandu ka-anla କରିବା ଧାଗ—Cloudy weather appearing in the month of Margasira.
ପଣ୍ଡୁ କାଆଳ, ପଣ୍ଡୁ-କାହାଳ, ପଣ୍ଡୁ କାହାଁଳ } ଅନ୍ୟରୂପ

**ପଣ୍ଡୁ ପୁନେଇ(ଇଁ)**--ଦେ. ବ—ପଣ୍ଡୁ (ଦେଖ)
Pandu punei (in) Pandu (See)
[ପଣ୍ଡୁ ପୁନଅ (ଅଁ), ପଣ୍ଡୁ ପୁନ(ନ୍ନ)ମୀ, ପଣ୍ଡୁ ପୂର୍ଣ୍ଣମୀ—ଅନ୍ୟରୂପ]

**ପଣ୍ଡୁ ପୂର୍ଣ୍ଣିମା**—ସଂ ବ—ମାର୍ଗଶିର ପୂର୍ଣ୍ଣିମା —
Pandu purnnima The fullmoon day of Margasira.

**ପଣ୍ଡୁର**—ଦେ. ବ ଓ ବଣ—ପାଣ୍ଡୁର (ଦେଖ)
Pandura Pandura (See)
পাণ্ডুরা ପଣ୍ଡୁର ହରେ ପନ୍ତ ପନ୍ତ
पंडुरा ଧନ ମଣ୍ଡଳ ସଞ୍ଚରନ୍ତି — ଜଗନ୍ନାଥ-ଭାଗବତ ।

**ପଣ୍ଢେଇ**—ପ୍ରାଦେ (ସମ୍ବଲ ପୁର) ବ. (ଭୁଲ. ହି. ପନହୀ)—ଯୋତା—
Pandhei Shoe

**ପଣ୍ୟ**—ସଂ. ବଣ. (ପଣ୍ ଧାତୁ + କର୍ମ. ଯ)—୧ । ବିକ୍ରେୟ, ଯାହା କିଣାଯାଇ
Panya ପାରେ ବା ବିକାଯାଇ ପାରେ—1 Saleable; vendible; marketable; venal.
୨ । ବ୍ୟବହାର୍ଯ୍ୟ, ଚଳନ୍ତି—2. Useful; current.
୩ । ପଣ ବା ମୂଲ୍ୟ ଦ୍ୱାରା ଗୃହୀତ, କ୍ରୀତ—3 Obtained by payment of price, purchased.
୪ । ଯାହା ବଜାରରେ କିଣିବାକୁ ମିଳେ —
4 Available in the market.
୫ । ବିକ୍ରୀତ—5 Sold
୬ । ପ୍ରଶଂସନୀୟ (ହି ଶ )—
7. Praiseworthy; commendable.
ସଂ. ବ ୧ । ବିକ୍ରେୟ ବସ୍ତୁ—1. A thing sold or offered in the market.
୨ । ସଉଦା—
2 Ware; merchandise, commodity
୩ । ମୂଲ୍ୟ—3. Price
୪ । ମାସୁଲ, ଶୁଳ୍କ—4 Fee; customs.
୫ । ଭଡ଼ା – 5. Hire.
୬ । ବେପାର, ବ୍ୟବସାୟ (ହି ଶ )—6. Trade
୭ । ବଜାର, ହାଟ (ହି. ଶ ) —7 Market; mart.
୮ । ଦୋକାନ (ହି. ଶ )—8 Shop.

**ପଣ୍ୟଜୀବ**—ସଂ. ବ. ପୁଂ. (ବହୁବ୍ରୀହି, ପଣ୍ୟ + ଜୀବ୍ ଧାତୁ + ଅ)—
Panyajiba ୧ । ବ୍ୟବସାୟୀ, ବେପାରୀ—1 Tradesman.
ପଣ୍ୟଜୀବା—ସ୍ତ୍ରୀ ୨ । ସଉଦାଗର, ବଣିକ—
2. Trader; merchant
ପଣ୍ୟଜୀବୀ, ପଣ୍ୟ-ଜୀବକ, ପଣ୍ୟାଜୀବ } ଅନ୍ୟରୂପ

**ପଣ୍ୟ ଦାସୀ**—ସଂ ବ. ( ମ ପ. ଲୋ, ପଣ୍ୟ ଦ୍ୱାରା କ୍ରୀତା ଦାସୀ )—
Panya dasi ଯୋଇଲୀ—A hired maid servant.

**ପଣ୍ୟ ଦ୍ରବ୍ୟ** - ସଂ ବ. (କର୍ମଧା, ପଣ୍ୟ + ଦ୍ରବ୍ୟ )—
Panya drabya ସଉଦା; ସଉଦା ପାତି; ମାଲ; ବଜାରରେ ବିକା
(ପଣ୍ୟବସ୍ତୁ—ଅନ୍ୟରୂପ) କିଣା ହେବା ଦ୍ରବ୍ୟ—
Ware, commodity, merchandise.

**ପଣ୍ୟ ପତି** - ସଂ ବ (୬ଷ୍ଠୀ ତତ୍, ପଣ୍ୟ + ପତି)—
Panya pati ବଡ଼ ବେପାରୀ, ସଉଦାଗର (ହି ଶବ୍ଦସାଗର)—
A merchant; big trader.

**ପଣ୍ୟ ଫଳ**—ସଂ ବ. ( ୬ଷ୍ଠୀ ତତ୍, ପଣ୍ୟ + ଫଳ )—
Panya phala ବେପାରରୁ ଉତ୍ପନ୍ନ ଲାଭ -
Profit derived from trade.

**ପଣ୍ୟ ବୀଥିକା**—ସଂ ବ. ( ୬ଷ୍ଠୀ ତତ୍, ପଣ୍ୟ + ବୀଥିକା )—
Panya bithika ୧ । ଦୋକାନ—1 Shop; stall.
ପଣ୍ୟବୀଥୀ ପଣ୍ୟଶାଳା } ଅନ୍ୟରୂପ
୨ । ହାଟ—2. Market, fair.
୩ । ଶ୍ରେଣୀବଦ୍ଧ ଦୋକାନ; ବଜାର—
3. Bazar; a row of shops.

୪ । ଗୋଦାମ—4. Godown; warehouse.

**ପଣ୍ୟ ଭୂମି**—ସ ବ—ସେଉଁଠାରେ ସଉଦା ପଣ ଜମା ରଖାଯାଏ,
Paṇya bhūmi ଗୋଦାମ, ଗୋଲା, ଗଞ୍ଜ (ହ୍ର. ଶ)—
Mart; warehouse.

**ପଣ୍ୟ ଯୋଷିତା**—ସ. ବ ସ୍ତ୍ରୀ ( ମ ପ. ଲୋ, ପଣ୍ୟ=ମୂଲ୍ୟ ଦ୍ୱାରା
Paṇya joshitā ଗୃହୀତା+ଯୋଷିତା )—ବେଶ୍ୟା—
Prostitute; harlot; courtesan.
(ପଣ୍ୟ ବିଳାସିନୀ, ପଣ୍ୟ ଯୋଷିତ୍, ପଣ୍ୟ ସ୍ତ୍ରୀ, ପଣ୍ୟାଙ୍ଗନା—ଅନ୍ୟରୂପ)

**ପଣ୍ୟାଜୀବ**—ସ. ବ. ( ବହୁବ୍ରୀହି, ପଣ୍ୟ+ଆଜୀବ )—
Paṇyājiba ପଣ୍ୟଜୀବ ( ଦେଖ )
(ପଣ୍ୟାଜୀବା—ସ୍ତ୍ରୀ) Panyajiba ( See )

**ପତ୍** (ଧାତୁ)—ସ—୧ । ପଡ଼ିବା—1 To fall.
Pat (root) ୨ । ଯିବା, ଗତି କରିବା—
2. To go; to move (Apte).
୩ । ଅଧୋଗମନ କରିବା – 3. To descend.
୪ । ତଳକୁ ଖସି ପଡ଼ିବା—4. To drop; to fall down
୫ । ଓହ୍ଲାଇବା, ଉଚ୍ଚ ସ୍ଥାନରୁ ତଳକୁ ଅବତରଣ କରିବା—
5. To get down; to alight (Apte).
୬ । ଉଡ଼ିବା, ଶୂନ୍ୟକୁ ଉଠିବା—
6 To fly; to soar (Apte).
୭ । (ସୂର୍ଯ୍ୟାଦି) ଅସ୍ତଗତ ହେବା—
7. (a luminary) To set (Apte).
୮ । ସ୍ୱସ୍ଥାନରୁ ବା ସ୍ୱଜାତିରୁ ବା ସ୍ୱସମାଜରୁ ଚ୍ୟୁତ ହେବା—
8. To forfeit or lose one's caste, position or rank (Apte).
୯ । ଘଟିବା—9 To come to pass; to occur(Apte).
୧୦ । (ଦୃଷ୍ଟି) ପାତିତ ହେବା—10. (one's look) To be directed to (Apte).
୧୦ । ନିଜର ଭାଗ୍ୟରେ ବା ହିସ୍ସାରେ ମିଳିବା—
10. To fall to one's lot or share (Apte).
୧୨ । ନିଜର ଶରୀରକୁ ଭୂମିରେ ପାତିତ କରିବା—.
12. To lay oneself on the ground.

**ପତ**—ସ. ବ. ( ପତ୍ ଧାତୁ=ଯିବା+କରଣ. ଅ )—
Pata ୧ । ପକ୍ଷ—1. Wing.
୨ । (+ଭାବ ଅ ଉଡ଼ିବା—2. Flight; flying (Apte).
୩ । ପତନ—4. Falling.
୪ । ଅବତରଣ—4. Alighting (Apte).
୫ । ଗମନ—5. Going (Apte).
ସ. ବିଣ—ସୁପରିପୁଷ୍ଟ—Cherished; wellfed (Apte).

**ପତକ**—ସ. ବିଣ. ( ପତ୍ ଧାତୁ+କର୍ତ୍ତୃ. ଅକ )—ପଡୁଥିବା—
Pataka Falling (Apte).
ସ. ବ—ଜ୍ୟୋତିଷିକ ତାଲିକା—
An astronomical table (Apte).

**ପତକା**—ଦେ. ବ ( ସ. ପତାକା )—
Patakā ୧ । ବାନା, ପତାକା—1. Flag.
୨ । ଛୋଟ ବାଲିଆ ମାଛ—2 Small Bāliā fish.
[ ଦ୍ର—ଛୋଟ ଅର୍ଥରେ ଏ ଶବ୍ଦ ଅନ୍ୟ ମତ୍ସ୍ୟବାଚକ ଶବ୍ଦ ସଙ୍ଗେ ବ୍ୟବହୃତ ଯଥା—ବାଲିଆ ପତକା—Corresponding to the English suffix 'let' as in brook-let; rivulet; stream-let ]
୩ । ଛୋଟ ମାଛ—3 A small fish.

**ପତକା ମାଛି**—ପ୍ରାଦେ ( ଗଡ଼ଜାତ ) ବ—
Patakā māchhi ଘୋଡ଼ାକ ପରି ଏକ ପ୍ରକାର ସାନ ମାଛି—
A kind of very small fly.

**ପତଗ**—ସ ବ. ( ପତ= ପକ୍ଷ+ଗମ ଧାତୁ+କର୍ତ୍ତୃ. ଅ, ଯେ ପକ୍ଷ ଦ୍ୱାରା
Pataga ଗତି କରେ କିମ୍ବା ପତନ=ଆକାଶରେ ଉଡ଼ି କରି+
( ପତଙ୍ଗ—ଅନ୍ୟରୂପ ) ଗମ୍ ଧାତୁ+ଅ)—
୧ । ପକ୍ଷୀ—1. Bird.
୨ । ଶଲଭ, ଝିଣ୍ଟିକା—2. Locust; a grasshopper.
୩ । ଉଡ଼ା ପୋକ—3. Moth.
୪ । ସୂର୍ଯ୍ୟ—4. The sun.
୫ । ଅଗ୍ନି – 5. Fire
୬ । ବାଣ—6. Arrow.
୭ । ପାରଦ—7. Mercury.
୮ । ଚନ୍ଦନବିଶେଷ—8. A kind of sandal wood.
୯ । ଶାଳ ବା ଶାରଦ ଧାନବିଶେଷ—
9. A kind of winter paddy.
୧୦ । ଲେଖା ଆଦିରେ ବ୍ୟବହୃତ ଯୁକ୍ତ '+' ଚିହ୍ନ; ଛକ—
10. A cross mark made in writing.
୧୧ । ମହୁମାଛି—11. Bee (Apte).
୧୨ । ଖେଳିବାର ଗେଣ୍ଡୁ—
12 A ball for playing with (Apte).
୧୩ । ଶ୍ରୀକୃଷ୍ଣଙ୍କ ନାମ—
13. A name of Śrīkṛushṇa (Apte).

**ପତଙ୍ଗ** ଦେ. ବ. ( ସ. ପତଙ୍ଗ=ଯାହା ଉଡ଼େ )—
**ପତଙ୍ଗ** ୧ । ପିଲାମାନଙ୍କର କାଗଜର ଖେଳନା ବିଶେଷ—
1. A kind of plaything made of paper.

ସେ ଚୋର କର ପଢନ୍ତ ଧର
ପତଙ୍ଗ ଖେଳାଉ ସୁନ୍ଦର । ଜଗନ୍ନାଥ ଭାଗବତ ।

[ଦ୍ର—ଏହା କାଗଜ ବା ତାଳପତ୍ରରେ ନିର୍ମିତ ପକ୍ଷଯୁକ୍ତ ଗୋଲାକାର ଫୁଲ । ଏହା ଖଣ୍ଡିଏ କାଠିର ଅଗରେ ଖୁସୁଲା ହୋଇ ଗୁନ୍ଥା ହୋଇଥାଏ ଓ ପବନ ଆଡ଼କୁ ତାକୁ ଦେଖାଇ କାଠି ଖଣ୍ଡି ଧରିଲେ ସେ ଫୁଲଟି ପବନ ବେଗରେ ଘୂରୁଥାଏ ।]
୨ । କାଗଜର ଘୁଡ଼ି—2. Paper kite.
୩ । (ସ. ପତଙ୍ଗ) ବକମ (ଦେଖ) (ହରେକୃଷ୍ଣ—ଦ୍ରବ୍ୟଗୁଣ).
3. Bakama (See).

**ପତଙ୍ଗ ବୃତ୍ତ**—ସଂ. ବିଣ. ପୁଂ. (ବହୁବ୍ରୀହି; ପତଙ୍ଗ ପରି ବୃତ୍ତ=ବ୍ୟବହାର
Patanga brutta ଯାହାର)—ପତଙ୍ଗ ପ୍ରକୃତିକ; ପତଙ୍ଗ ଯେପରି
(ପତଙ୍ଗ ବୃତ୍ତା—ସ୍ତ୍ରୀ) ଆଲୋକ ଦେଖି ଅଗ୍ନିକି ତେଜିଁ ପଡ଼େ ସେହି ପ୍ରକାର ବିପଦ ବା ମୃତ୍ୟୁ ନିଶ୍ଚୟ ଜାଣି ସୁଦ୍ଧା ଯେଉଁ ବ୍ୟକ୍ତି ଆପାତମନୋରମ ବସ୍ତୁ ପ୍ରତି ଆକୃଷ୍ଟ ହୁଏ—Following the ways of the moth; jumping into danger knowing beforehand the dire result

**ପତଙ୍ଗ ବୃତ୍ତି**—ସଂ. ବି (୬ଷ୍ଠୀ ତତ୍, ପତଙ୍ଗ+ବୃତ୍ତି)—ପତଙ୍ଗ ନ୍ୟାୟରେ
Patanga brutti ଜେଉଁ ପତନବାପରି ଅବଶ୍ୟମ୍ଭାବୀ ବିପଦକୁ ଆକୃଷ୍ଟ ହେବା—The state of being knowingly attracted to a danger (like a moth).

**ପତଙ୍ଗ ଭବ**—ସଂ. ବିଣ (ପତଙ୍ଗ=ସୂର୍ଯ୍ୟ+ଭୂ ଧାତୁ+କର୍ତ୍ତୃ. ଅ)-ସୂର୍ଯ୍ୟଙ୍କଠାରୁ ଉତ୍ପନ୍ନ—Born of the sun.
Patanga bhaba
(ପତଙ୍ଗ ଭବା—ସ୍ତ୍ରୀ) ଦେ. ବି.—କାଳନ୍ଦୀ, ଯମୁନା—The Kālandi or Jamunā river.

ଅଥ ପତଙ୍ଗ ଭବ ହ୍ରଦ ଜଳ
ଅମଳ ବଳ ପଇ ତଳ ତଳ । ଭକ୍ତ ... ।

**ପତଙ୍ଗମ**—ସଂ ବି. (ପତ=ପକ୍ଷ+ଗମ୍ ଧାତୁ+କର୍ତ୍ତୃ ଅ)—ପତଗ (ଦେଖ)
Patangama Pataga (See
(ପତଙ୍ଗୀ—ଅନ୍ୟରୂପ)

**ପତଙ୍ଗିକା**—ସଂ. ବି. ସ୍ତ୍ରୀ (ପତଙ୍ଗ+କ+ସ୍ତ୍ରୀ ଆ)—୧ । କ୍ଷୁଦ୍ର ମହୁମାଛି,
Patangikā କ୍ଷୁଦ୍ର ମହୁମାଛି—1 Tiny bee; a kind of small bee.

୨ । କ୍ଷୁଦ୍ର ପକ୍ଷୀ—2. A small bird.

**ପତଞ୍ଚିକା**—ସଂ. ବି—ଧନୁର ଗୁଣ (ହି. ଶ.)
Patanchikā Bowstring

**ପତଞ୍ଜଳି**—ସଂ. ବି. (ନାମ) (ଅପତତ୍=ପଡ଼ୁଥିଲେ+ଅଞ୍ଜଳ=କରପୁଟ;
Patanjali ନିପାତନ)—ମୁନିବିଶେଷ, ପାତଞ୍ଜଳ ବା ଯୋଗ ଦର୍ଶନ ଓ ପାଣିନି ବ୍ୟାକରଣର ମହାଭାଷ୍ୟ ପ୍ରଣେତା—The name of a sage; the founder of the system of the Hindu joga philosophy and the commentator of the aphorisms of the Sanskrit Grammar of Pāṇini.

[ଦ୍ର—ପ୍ରବାଦ ଅଛି ଯେ ସ୍ୱର୍ଗରୁ ପାଣିନି ମୁନିଙ୍କର ଅଞ୍ଜଳି ମଧ୍ୟକୁ ଏ ମୁନି ସର୍ପାକାରରେ ପତିତ ହୋଇଥିଲେ । ଏହାଙ୍କର ଦର୍ଶନଗ୍ରନ୍ଥର ନାମ ଯୋଗସୂତ୍ର । ସାଧାରଣତଃ ଯୋଗଦର୍ଶନକାର ଓ ମହାଭାଷ୍ୟକାର ପତଞ୍ଜଳି ଜଣେ ଥିବାର ଲୋକେ ବିଶ୍ୱାସ କରନ୍ତି; କିନ୍ତୁ ପାଣିନି ବ୍ୟାକରଣର କାତ୍ୟାୟନଙ୍କ କୃତ ବାର୍ତ୍ତିକର ମହାଭାଷ୍ୟର ରଚୟିତା ପତଞ୍ଜଳି ଦର୍ଶନକାର ପତଞ୍ଜଳିଙ୍କଠାରୁ ସ୍ୱତନ୍ତ୍ର ଓ ଦର୍ଶନକାରଙ୍କର ବହୁ ବର୍ଷ ପରେ ଥିବାର ପ୍ରମାଣ ମିଳିଅଛି । ହି. ଶ. ]

**ପତଡ଼ା ଜଙ୍ଗଲ୍**—ପ୍ରାଦେ (ସିଂହଭୂମ) ବି କ୍ଷୁଦ୍ର କ୍ଷୁଦ୍ର ବୁଦାଥିବା ବଣ—
Patarḍā jangal A jungle of small bushes.

**ପତତ୍**—ସଂ. ବିଣ. (ପତ୍ ଧାତୁ+ଅତ୍, ପୁଂ. ପତନ୍, ସ୍ତ୍ରୀ. ପତନ୍ତୀ)—
Patat ୧ । ପତନଶୀଳ—2 Fallible.

୨ । ତଳକୁ ପଡ଼ୁଥିବା—
2. Falling down; descending
୩ । ଉଡ଼ୁଥିବା—3. Flying.
ସଂ. ବି—ପକ୍ଷୀ—Bird.

**ପତତ୍ପତଙ୍ଗ**—ସଂ ବି. (କର୍ମଧା, ପତତ୍+ପତଙ୍ଗ)—ଅସ୍ତ ହେଉଥିବା
Patat patanga ସୂର୍ଯ୍ୟ—The setting sun.

**ପତତ୍ ପ୍ରକର୍ଷତା**—ସଂ ବି (ପତତ୍+ପ୍ରକର୍ଷ+ତା)—ରଚନାର ଦୋଷବିଶେଷ—
Patat prakarshatā A defect in composition.

[ ଦ୍ର—ଯେଉଁଠାରେ ଅନୁପ୍ରାସାଦିର ପ୍ରକର୍ଷ କ୍ରମେ କମିଯାଏ ବା ରଚନାର ଭଙ୍ଗୀ ଶିଥିଳ ହୋଇପଡ଼େ ସେଠାରେ ପତତ୍ପ୍ରକର୍ଷତା ଦୋଷ ହୁଏ ।
ଯଥା—୧ । ସ୍ୱଳ୍ପ କାଳେ ... ବଳାବରେ ... ହେଲ କୁଶଳା,
ମାତ୍ର ... ପ୍ରତି ମନ ... ଲ । ରାଧାନାଥ, ... ।
ଏଠାରେ ପ୍ରଥମ ପାଦର 'ଲ' ଗତ ଅନୁପ୍ରାସ ଦ୍ୱିତୀୟ ପାଦରେ ରହି ପାରିଲା ନାହିଁ, ତେଣୁ କବିତାର ପ୍ରକର୍ଷ ପତିତ ହେଲା ।
୨ । ମହାଶର ... ଶିଳାମୟୀ
... ଆସି
... 
... ଧ୍ୱଜିନୀ
... । ରାଧାନାଥ. ମହାଯାତ୍ରା ।
ଏଠାରେ ରଚନାର ଭଙ୍ଗୀ କ୍ରମେ ଶିଥିଳ ହୋଇ ଯାଇଥିବାରୁ ଭଙ୍ଗୀ ଶୈଥିଲ୍ୟ ଦୋଷ ହେଲା ଅର୍ଥାତ୍ ପତତ୍ ପ୍ରକର୍ଷତା ଦୋଷ ହେଲା । ]

**ପତତ୍ର**—ସଂ. ବି ( ପତ=ପକ୍ଷ+ତ୍ରୈ ଧାତୁ=ରକ୍ଷା କରିବା+କର୍ତ୍ତୃ. ଅ
Patatra କିମ୍ବା ପତ୍ ଧାତୁ=ପଡ଼ିବା+ତ୍ରୈ ଧାତୁ+କର୍ତ୍ତୃ ଅ, ଯାହା ପକ୍ଷୀକୁ ପଡ଼ିଯିବାରୁ ରକ୍ଷା କରେ; କିମ୍ବା ପତ୍ ଧାତୁ=ଉଡ଼ିବା+କରଣ. ଅତ୍ର )—୧ । ପକ୍ଷ, ପକ୍ଷୀର ଡେଣା—
1 The wing of a bird, pinion
୨ । ପକ୍ଷୀର ପର—2 Feather (Apte).

**ପତତ୍ରି (ତ୍ରୀ)**—ସଂ. ବି. (ପତ୍ ଧାତୁ+ଅତ୍ରି, ପତତ୍ର+ଇନ୍; ୧ମା. ୧ବ)—
Patatri (trī) ୧ । ପକ୍ଷୀ—1. Bird.
୨ । ଶର, ବାଣ—2. Arrow.
୩ । ଘୋଡ଼ା—3 Horse (Apte).
ସଂ. ବିଣ—୧ । ଉଡ଼ୁଥିବା—1. Flying.
୨ । ଡେଣାବିଶିଷ୍ଟ—2 Winged.

**ପତତ୍ରିରାଜ**—ସଂ. ବି ( ୬ଷ୍ଠୀ ତତ୍, ପତତ୍ରି+ରାଜନ୍ )—
Patatrirāja ପକ୍ଷୀରାଜ, ଗରୁଡ଼—Garurḍa.

**ପତଦ୍‌ଗ୍ରହ**—ସଂ. ବି. ( ପତତ୍=ପଡ଼ୁଥିବା ଅର୍ଥାତ୍ ମୁଖକ୍ଷରିତ ଜଳାଦି+
Patad-graha ଗ୍ରହ୍ ଧାତୁ+କର୍ତ୍ତୃ ଅ, ଯାହା ମୁହଁରୁ ପଡ଼ୁଥିବା ଥୁକଆଦିକୁ ଗ୍ରହଣ କରେ )—୧ । ପିକଦାନୀ—
1 Spittle pot; spittoon.
୨ । ଅସମୟରେ ସାହାଯ୍ୟ କରିବା ପାଇଁ ପ୍ରସ୍ତୁତ ହୋଇ ରଖାଯାଇଥିବା ସୈନ୍ୟଦଳ—
2. The reserve of an army (Apte).

୩ । ଯେଉଁ କମଣ୍ଡଳୁରେ ସନ୍ନ୍ୟାସୀମାନେ ଭିକ୍ଷାନ୍ନ ଗ୍ରହଣ କରନ୍ତି —
3. The bowl in which ascetics receive their doles

**ପତଦ୍ ଭୀରୁ**—ସଂ. ବି. ( ପତତ୍ + ଭୀରୁ ) —ଛଞ୍ଚାଣ—
Patad-bhīru Hawk; falcon (Apte)

**ପତନ**—ସଂ. ବି ( ପତ୍ ଧାତୁ + ଭାବ ଅନ ) —୧ । ଉଡ଼ିବା—
Patana 1. Flying

୨ । ଚଳନ—2. Motion.

୩ । ସ୍ଖଳନ—3 Slipping.

୪ । ଓହ୍ଲାଇବା—4 Descent.

୫ । ଖସିପଡ଼ିବା, ତଳକୁ ପଡ଼ିଯିବା, ଅଧଃପତନ—
5. Falling down; downfall

୬ । ଭ୍ରଂଶ—6. Decay, decline.

୭ । ନାଶ—7 Ruin; destruction.

୮ । ପାପ—8 Sin

୯ । ସ୍ୱଧର୍ମରୁ ସ୍ଖଳନ ବା ଚ୍ୟୁତି—9. Apostacy.

୧୦ । ଅସ୍ତଗମନ—10 Setting (as of the sun) (Apte)

୧୧ । ଭୂମିରେ ନିଜ ଦେହକୁ ଦଣ୍ଡବତ୍ ପକାଇବା, ଗୋଡ଼ତଳେ ପଡ଼ିବା—11 Laying one's self prostrate on the ground.

୧୨ । ସ୍ୱାଧିକାରରୁ ବା ଧର୍ମରୁ ବା ସମ୍ମାନରୁ ଚ୍ୟୁତି, ସ୍ୱସ୍ଥାନଚ୍ୟୁତି—
12 Falling from dignity, virtue or position.

୧୩ । ମୃତ୍ୟୁ—13 Death (Apte)

୧୪ । (ସ୍ତନ) ତଳକୁ ଓହଳି ପଡ଼ିବା—14. Hanging down; becoming flaccid (as breasts) (Apte).

୧୫ । ଗର୍ଭପାତ—15 Miscarriage (Apte).

୧୬ । (ଗଣିତ) ବିୟୋଗ, ଫେଡ଼ାଣ—
16. (arithmetic) Subtraction (Apte).

୧୭ । (ଜ୍ୟୋତିଷ) ଗ୍ରହର ଅକ୍ଷାଂଶ—
17. (astronomy) The latitude of a planet (Apte).

ଦେ. ବି. ( ସଂ ପତ୍ତନ=ମୂଳଦୁଆ ) —୧ । ସମତଳତା—
ପତ୍ତନ पत्तन; पाटन 1. Level.
ଯଥା—ମୋଳଆ ପତନ ।

୨ । ମୂଳଦୁଆ—2. Foundation.

**ପତନଶୀଳ**—ସଂ. ବିଣ. (ବହୁବ୍ରୀହି; ପତନ+ଶୀଳ)—ବିନାଶ୍ୟ, ଯାହାର
Patanaśīla ପତନ ବା ବିନାଶ ଅବଶ୍ୟଂଭାବୀ—
ପତନଶୀଳା—ସ୍ତ୍ରୀ } Fallible, subject to decay.
ପତନଶୀଳତା—ବି. }

**ପତନି**—ଦେ. ବି. (ସଂ. ପଟ୍ଟନ)—୧ । ଲୁଗା—
Patani 1. Cloth.

୨ । ସରୁ ଲୁଗା—2 Fine cloth.
ଲୁଗାକୁ ଦେଖାଏ ଚାନ୍ଦ ପତନି
କାନ୍ଥରୁ ଦେଖେ ବେନି । ... ଖୋଣ୍ଡରେ ବାଘ ଥୋ ଗୀତ ।

୩ । ( ସଂ. ପତ୍ନୀ )—ଭାର୍ଯ୍ୟା —3 Wife.

ପତନ ୪ । ( ସଂ ପତ୍ତନ ) ବଙ୍ଗ ଦେଶର ଏକ ପ୍ରକାର ମଧ୍ୟସ୍ୱତ୍ୱ, ପତ୍ତନି—
4. An under tenure in Bengal.
[ ଦ୍ର—ପତନିର ଅଧୀନ ମଧ୍ୟସ୍ୱତ୍ୱକୁ ଦରପତନୀ ଓ ଦରପତନୀର ଅଧୀନ ମଧ୍ୟସ୍ୱତ୍ୱକୁ ସେ-ପତନୀ ବୋଲାଯାଏ । ]

ପ୍ରାଦେ. ( ପୁରୀ ) ବି—୫ । ( ସଂ. ପତନ ) ବେଙ୍ଗଲା ପଡ଼ିବା ପରେ ମେଇ ଗୃହପାଖରେ ବିସ୍ତୃତ ହୋଇ ପଡ଼ିଥିବା କୁଟା ବା ପାଳ—5 Crushed straw lying scattered round the central threshing post

**ପତନି ଆଜ୍ଞା ହେବା**—ଦେ ବି. ( ମାଦଳାପାଞ୍ଜି )—କୌଣସି ବ୍ୟକ୍ତିକୁ
Patani ājñā hebā ରାଜାଙ୍କଠାରୁ ଶାଢ଼ୀ ବା ଅଧିକାର ଦିଆ ଯିବା—A person being granted a cloth in token of a certain honour or office.

**ପତନି ଉଠା(ଠେ)ଇବା**—ପ୍ରାଦେ. ( ପୁରୀ ) କ୍ରି—୧ । ବେଙ୍ଗଲା
Patani uṭhā(ṭhe)ibā ପଡ଼ିବା ଉତ୍ତାରୁ ବଳଦ ଫିଟିଗଲା ପରେ (ପତ୍ତନ ଉଠା[ଠେ]ଇବା—ଅନ୍ୟରୂପ) ମେଇ ଗୃହପାଖରେ ବିସ୍ତୃତ ହୋଇ ପଡ଼ିଥିବା କୁଟା ଓ ଧାନକୁ ଉଠାଇ ନେବା—
1. To pick up the straw lying scattered round the threshing post after threshing

୨ । ଗୃହିର ଯେଉଁ କିଆରରେ ପ୍ରଥମ ଅନୁକୂଳ ହୋଇ ଅକ୍ଷିମୁଠ ବୁଣା ଯାଇଥାଏ ଓ ଶୁକ୍ରବାର ଦିନ ଉକ୍ତ କିଆରରୁ ଧାନ କଟା ଅନୁକୂଳ ହୋଇଥାଏ, ସେ କିଆରରୁ କଟା ହୋଇ ଆସି ଖଳାରେ ଯେଉଁ ଧାନ ଗଦା ପୃଥକରୂପେ ଗଦାମରା ଯାଇଥାଏ, ଗୃହିର ଅନ୍ୟ ସମସ୍ତ ବିଲର ଧାନ ବେଙ୍ଗଲା ପଡ଼ି ସାରିଲା ପରେ ଉକ୍ତ ଅନୁକୂଳ ଜମିର ଧାନକୁ ଗଦାରୁ ଭାଙ୍ଗି ବେଙ୍ଗଲା ପକାଇବା, ଅର୍ଥାତ୍ ଗୃହିର ବର୍ଷକର ଧାନ ଅମଳ କାମର ସର୍ବଶେଷ ବେଙ୍ଗଲା ପକାଇ ଧାନକୁ ଅମଳ କରିବା—
2. To thresh and garner the last paddy sheaves of the season.

**ପତନୀୟ**—ସଂ. ବିଣ. ( ପତ୍ ଧାତୁ + କର୍ମ. ଅନୀୟ )—୧ । ପତନାର୍ହ—
Patanīya 1 Deserving to fall down.

୨ । ପତନଶୀଳ—2 Liable to fall.

**ପତନୋଦ୍ୟତ** ସଂ. ବିଣ. ( ୭ମୀ ତତ୍, ପତନ + ଉଦ୍ୟତ ) - ପଡ଼ିବାକୁ
Patanodyata ଯାଉଥିବା, ଯାହା ଶୀଘ୍ର ପଡ଼ିଯିବ—
(ପତନୋନ୍ମୁଖ ଅନ୍ୟରୂପ) About to fall.

**ପତପତ**—ଦେ. ଅ. ( ଧ୍ୱନ୍ୟନୁକରଣ ) ୧ । ବାୟୁ ଚାଳିତ ପତ୍ରାଦିର
Patapata ଶବ୍ଦ—1. The rustling sound of moving leaves.
ମରମର ପତପତ ତରୁ ପତ୍ରଗଣ—ନନ୍ଦକେ ।ଗ. ନର୍ତ୍ତନା ।

पटपट, लाहालुट २ । ଭୋକ ଶୋଷରେ ଅତି ଆକ୍ରାନ୍ତ—
2. Overpowered with hunger and thirst.
( ଯଥା—ସେ ପିଲାଟି ଭୋକରେ ପତପତ ହେଉଛି । )

୩ । ( ଭୟାଦିରେ ) ଧୁରୁଧୁରୁ; କ୍ଲାନ୍ତ—
3. Enervated through fear.

**ପଟପଟ** ହେବା—ଦେ କ୍ରି—କ୍ଷୁଧାରେ ଅବଶ ହେବା, କ୍ଷୁଧାକ୍ରାନ୍ତ ହେବା— To be overpowered with hunger
Patapata hebā
**पटपट होना**
( ପଟପଟେଇବା, ପଟପଟେଇ ଯିବା—ଅନ୍ୟରୂପ )

**ପଟପଟ** ହୋଇଯିବା—ପ୍ରାଦେ. ( ସାଜପୁର ) କ୍ରି—ଡରିଯିବା—
Patapata hoijibā To become nervous.

**ପଟପଟା**—ଦେ. ବି—ଚିଲିକା ହ୍ରଦରେ ମିଳୁଥିବା ଏକପ୍ରକାର ମାଛ—
Patapatā A class of salt water fish found in the Chilkā lake.

**ପଟର**—ସଂ. ବି. ( ପଟ୍ ଧାତୁ + କର୍ତ୍ତୃ. ଅର ) -- ଗମନଶୀଳ --
Patara Moving.
ସଂ. ବି—ଲୌହ ପିତ୍ତଳାଦି ଧାତୁର ପାତିଆ (କ୍ଷୀନେନ୍ଦ୍ର)—
Thin plate of metal.
पाता पत्ता ଦେ. ବି. (ସଂ. ପତ୍ର)—୧ । ଗଛର ପତ୍ର—1 Leaf.
ପତ୍ରୁପଟର ପତ୍ର ଅଃଇ ନପ୍‌କ—କୃଷ୍ଣଦିଂହ. ମହାଭାରତ. ଆଦି ।
[ ଦ୍ର—ଯେଉଁ ଗଛର ପଟର ସେ ପଟର ସେ ଗଛର ନାମଦ୍ୱାରା ଚିହ୍ନାଯାଏ, ଯଥା—କଦଳୀପଟର, ଆମ୍ବପଟର ଇତ୍ୟାଦି । ]
पात् पत्ती ୨ । ପାତ, ଧାତୁ ଆଦିର ପାତିଆ—
2. Thin slip of metal.
पत्र पत्र ୩ । ପତ୍ର, ଚିଠି—3 Letter.
୪ । ଲେଖା—4 A writing.
पाता पन्ना ୫ । ପୁସ୍ତକର କାଗଜ—5 The leaf of a book.
[ ଦ୍ର—ପୁସ୍ତକର ପ୍ରତ୍ୟେକ ପଟରରେ ୨ ପୃଷ୍ଠା ଥାଏ । ]
पाता ୬ । ଖାଇବା ପାଇଁ ପକାଯିବା ପଦ୍ମ ଓ କଦଳୀପତ୍ର—
पत्तल 6. A plantain or lotus leaf on which food is served
पात् पत्ती ୭ । ଛୁରୀ ବା ଖଡ୍ଗାଦିର ଲମ୍ବ ଓ ପତଳା ଫଳକ—
7. Thin blade of knife or sword.
୮ । ଧୂଆଁପତ୍ର—8. Tobacco leaves.
୯ । ଲେଖନଦ୍ୱାରା ଲେଖିବା ପାଇଁ ବ୍ୟବହୃତ ତାଳପତ୍ର—
9 Palm leaf used for writing upon with iron stylos
ପ୍ରାଦେ. ( ଆଠମଲ୍ଲିକ ) ବି—ପାନ—Betel-leaf

**ପଟର** ଉଠା(ଠେ)ଇବା—ଦେ. କ୍ରି—ଖାଇସାରିବା ପରେ ଅଇଁଠା ପତ୍ରକୁ ଖାଇବା ସ୍ଥାନରୁ ଉଠାଇ ନେବା—
Patara uṭhā (ṭhe) ibā
पाता ओठान To clear away the leaves on which people have eaten.
पत्ता उठाना

**ପଟର** କଟା—ପ୍ରାଦେ. ( ସମ୍ବଲପୁର ) ବି—(ଯେଉଁମାନେ ତାଳପତ୍ର କାଟି ଲେଖନ୍ତି ) କରଣଜାତି—The writer or Karaṇa caste.
Patara kaṭā
ପଟର କଟ', ଚଳର କଟା, ଗଉଡ ଣୀ, ମାଇ
ଏ ଶୁଦ୍ର ଜାତକ ବଶ୍ୱାସ ନାଇଁ – ସମ୍ବଲପୁର ପ୍ରବଚନ ।

**ପଟର** କାଟିବା—ଦେ. କ୍ରି—୧ । ଭୋଜନ ପାଇଁ ବ୍ୟବହୃତ ହେବା ନିମନ୍ତେ କଦଳୀ ଗଛରୁ ପତ୍ର ଦାଆ ଆଦିଦ୍ୱାରା କାଟିବା—1. To cut plantain leaves from the trees for being used as plates during meal
Patara kāṭibā
पाता काटा
पत्ता काटना
୨ । ଲେଖିବା ପାଇଁ ତାଳପତ୍ରର ପାର୍ଶ୍ୱସ୍ଥ ଅଂଶମାନ ଲେଖନଦ୍ୱାରା ସଜାଡ଼ି କରି କାଟିବା—2. To cut the edges of a palm leaf with the blade of a Lekhana ( iron pen ) to make it of proper size for writing upon.

**ପଟର** କୁଡିଆ—ଦେ. ବି. ( ସଂ. ପତ୍ର କୁଟୀ )—ପତ୍ର କୁଟୀର, ପଲ୍ଲୀ—
Patara kuḍiā A hut of leaves.
पाताव कुँडे घव पत्रकुटी

**ପଟର**ଖଣ୍ଡି ଢଖଣ୍ଡି କରିବା—ଦେ କ୍ରି—କିଛି ମାତ୍ର କାମ ନ କରି ନିଷ୍କର୍ମୀ ହୋଇ ବସି ରହିବା—
Patara khaṇḍi ḍikhaṇḍi karibā
(ପଟର ଖଣ୍ଡିକ ଦଖଣ୍ଡି ନ କରିବା -- ଅନ୍ୟରୂପ) To idle away one's time.
ମାମୁଁ ଘରେ ବସି ସେ ପଟର ଖଣ୍ଡି ଦ'ଖଣ୍ଡି କରୁଛି – ଚଗ ।

**ପଟର** ଗୋଟା(ଟେ)ଇବା—ଦେ କ୍ରି—ଜାଳ କରିବା ପାଇଁ ଗଛରୁ ଝଡ଼ିଥିବା ଶୁଖିଲା ପତ୍ରମାନ ଓଟାଇ କରି ସଂଗ୍ରହ କରିବା—To gather the fallen leaves which have dropped from trees for the purpose of fuel
Patara goṭā(ṭe)ibā
पाता गुटान
पत्ता बिछाना, पत्ता खररना

**ପଟର** ଗୋଟିଆ--ଦେ. ବିଣ. ପୁଂ--୧ । କାଷ୍ଠ ଅଭାବରୁ ଚୁଲିରେ ଜାଳିବା ନିମନ୍ତେ ଯେ ଗଛରୁ ଝଡ଼ିଥିବା ଶୁଖିଲା ପତ୍ର ସଂଗ୍ରହ କରେ—1 One who gathers dry leaves fallen from trees to use as fuel.
Patara goṭiā
ପଟର ଗୋଟେଇ } ସ୍ତ୍ରୀ
ପଟର ସାଉଣୀ }
(ପଟର ସାଉଣ୍ଟା —ଅନ୍ୟରୂପ)
पत्ता खररनेवाला ୨ । ଅତି ଗରିବ—2 Very poor.

**ପଟର** ଚଟା—ଦେ. ବି ଓ ବିଣ. ପୁଂ ଓ ସ୍ତ୍ରୀ. (ଗାଳିରେ ବ୍ୟବହୃତ)—ଅଇଁଠାଖିଆ (ଦେଖ)—Aiṇṭhākhia (See)
Patara chaṭā
पाता चाटा जुठाखाना, जुठाखोर

**ପଟର** ଚଟିବା—ଦେ. କ୍ରି—ଅଇଁଠା ଖାଇବା ( ଦେଖ )
Patara chāṭibā Aiṇṭhā khāibā ( See )
पाता चाटा जुठाखाना

**ପଟର** ଝଡ଼ା ଦେ. ବି—ଶୀତ ଋତୁରେ ଗଛମାନଙ୍କରୁ ପତ୍ରସାକ ଝଡ଼ି ପଡ଼ିବା—1. The falling of leaves from trees in winter
Patara jharḍa
पाता झडा पत झड़
[ ଦ୍ର—ପୁଷ ଓ ମାଘ ମାସରେ ଅଧିକାଂଶ ଗଛରୁ ପୁରୁଣା ପତ୍ରମାନ ଝଡ଼ି ପଡ଼େ ଓ ବସନ୍ତ ଋତୁ ( ଫଗୁଣ ଓ ଚୈତ୍ର ) ରେ ଗଛରେ ନୂଆ ପତ୍ରମାନ କଅଁଳେ । ]
୨ । (ଲକ୍ଷଣାର୍ଥ) ଶୁଖିଯିବା – 2. The state of becoming shrivelled and shrunk.
(ପଟରଝଡ଼ାଦେବା—କ୍ରିୟା)
( ଯଥା—ଏତେ ଖାଇ ଏତେ ପିଇ ସେ ପିଲାଟା ପଟରଝଡ଼ା ହଉଚି । )

**ପଟର** ତୁରୁକି—ପ୍ରାଦେ. (ବସ୍ତର) ବି – ଗଧିଆ ବାଘ –
Patara turuki Wolf; hyena.

**ପତର ନନ୍ଦା**—ଦେ. ବ—କୃତଘ୍ନତା—
Patara nindā (ପତର ନନ୍ଦିବା—କ୍ରିୟା) Ungratefulness.

**ପତର ନନ୍ଦୁରା** ଦେ ବଣ. ପୁଂ—ନମକ ହାରାମ, ଅକୃତଜ୍ଞ—
Patara nindurā Ungrateful
( ପତର ନନ୍ଦୁରୀ—ସ୍ତ୍ରୀ ) (ପତର ହଗା, ପତର ହଗୁରା—ଅନ୍ୟରୂପ)

**ପତର ପକା(କେ)ଇବା**—ଦେ କ୍ରି—୧ । ଖାଇବା ପାଇଁ କଦଳୀ ଆଦିର
Patara pakā(ke)ibā ପତ୍ର ତଳେ ବିଛାଇବା—
পাতা পাড়া, পাতাকরা 1 To spread plantain or other
**पत्तल डालना** leaves on the ground over which meal will be served.
୨ । ଅଇଁଠା ପତ୍ରକୁ ଉଠାଇ ନେଇ ବାହାରକୁ ନିକ୍ଷେପ କରିବା—
2 To throw the leaves used as plates during a meal.

**ପତର ପାଣି**—ଦେ ବ—୧ । ଖାଇବା ନିମନ୍ତେ ପତର ବିଛାଇବା ଓ ତହିଁ
Patara pāṇi ଉପରେ ପାଣି ଛିଞ୍ଚିବା—The spreading of plantain leaves and sprinkling water over them preparatory to the serving of food thereon
୨ । ଖାଇବା ପତ୍ର ଉପରେ ପାଣି ଛିଞ୍ଚିଲା ପରି ସାମାନ୍ୟ ବିନ୍ଦୁପାତ ସହ ବର୍ଷା ହେବା—2 Raining in very small drops

**ପତର ପାଣିଆ(ଆଁ)**—ଦେ. ବ—ଖାଇବା ପତ୍ରରେ ପାଣି ଛିଞ୍ଚିବା ଭଳି
Patara pāniā(āṅ) ଅତି ସାମାନ୍ୟ ବର୍ଷା—A sprinkling shower; drizzle.

**ପତର ପୋଡ଼ା**—ଦେ.ବ—ଶାଗ ବା ଚୂନା ମାଛ ଆଦିରେ ଲୁଣ, ବେସର,
Patara porḍā ହଳଦି, ତେଲ ଆଦି ଗୋଳାଇ ପତ୍ରରେ ପୁଡ଼ା
(ପତରପୁଡ଼ା—ଅନ୍ୟରୂପ) ବାନ୍ଧି ନିଆଁରେ ପୋଡ଼ି ପ୍ରସ୍ତୁତ କରାଯିବା ବ୍ୟଞ୍ଜନ—Curry prepared by putting pot-herbs, or small fish etc in a packet wound over with leaves and burnt in charcoal fire

**ପତର ଫଳ**—ପ୍ରାଦେ. ( ମେଦିନୀପୁର ) ବ—ଜହ୍ନି—
Patara phala Luffa Acutangula

**ପତର ଫୁଟା**—ପ୍ରାଦେ. (ସମ୍ବଲପୁର)ବ—ରାତି ପାହିବା; ଫରଚ ଫାଟିବା—
Patara phuṭā Dawn; break of day.

**ପତର ମୂଷା(ଷି)** ଦେ. ବ. ( ସଂ. ପତ୍ର ଓ ମୂଷିକ )—କାହାଣୀରେ
Patara mūshā(shi) ବର୍ଣ୍ଣିତ ଛେଳି (ଏ ଛେଳି ପଙ୍କରେ ଲୋଟି ଶୁଖିଲରେ ପତର ଝଡ଼ିଥିବା ସ୍ଥାନରେ ଗଡ଼ି ଦେହସାକ ପତ୍ରରେ ଆବୃତ ହୋଇ ଗୋଟିଏ କିଂଭୂତ ରୂପ ଧାରଣ କରିଥିଲା)—
( folk tale ) A goat ( which rolled in mud and then rolled over ground strewn leaves which struck to the mud on its body and made it very weird-looking.
ବାଘ—ପତର ମୂଷି ଲେ ପତର ମୂଷି ! ମିଁ କି ଦେଖିଛୁ କି ?
ଛେଳି—ମୁଁ କି ଛାଏ ମିଁ ଫଁ, ମୁଁ ଖାଇଥିଲ ରଜ ଘର
ପତର ମୂଷି—କାହାଣୀ ।

**ପତର ଲଚ୍ଛା**—ପ୍ରାଦେ. ( ଗଡ଼ଜାତ ) ବ—ସମ୍ବାଳୁଆ ପରି ଏକପ୍ରକାର
Patara lachhā ପୋକ—A kind of poisonous cater-
(ପତର ଲେଞ୍ଚ—ଅନ୍ୟରୂପ) pillar, geometrid worm.
[ ଦ୍ର - ଏମାନେ ଜେଣ୍ଡ୍ରି ଓ ଜହ୍ନି ପତରରେ ଥାଆନ୍ତି । ତାଙ୍କ ଦେହରେ ରୁମ ନ ଥାଇ କଣ୍ଟା ଥାଏ । ସେହି କଣ୍ଟା ମନୁଷ୍ୟ ଦେହରେ ଲାଗିଗଲେ ଲକ୍ଷଣ ଭଳି ( ପୋଡ଼ା ଲୁହାରେ ଚଟାଁ ଦେଲା ) ଭଳି ଜ୍ୱାଳା ଜଣାଯାଏ । ଏମାନେ ୨।୩ ଆଙ୍ଗୁଳ ଲମ୍ବ ଓ ଏମାନଙ୍କ ଆଗରେ ଓ ପଛରେ ପୁଞ୍ଜା ଏ ଲେଖାଏ ଟିକଟିକ ଗୋଡ଼ ଥାଏ । ଏହି ଗୋଡ଼ଦ୍ୱାରା ଏମାନେ ଡେଇଁ ଡେଇଁ ଚାଲନ୍ତି । ]

**ପତର ଶଉରା**—ଦେ ବ ପୁଂ ( ସଂ. ପତ୍ର ଶବର )—ଏକପ୍ରକାର
Patara śaurā ଜଙ୍ଗଲୀ ଅସଭ୍ୟ ଜାତି, ବନ୍ୟ ଶବରଜାତି—
ପତର ଶଉରାଣୀ } ସ୍ତ୍ରୀ An aboriginal hill-tribe.
ପତର ଶଉରୁଣୀ }
ବଣ ଦେବତାଙ୍କ ପତର ଶଉରୁଣୀ ଭୂଷା ଏ—ଚଗା ।

**ପତର ସାଉଣ୍ଟା** ଦେ ବ ଓ ବଣ ପୁଂ—ପତର ଗୋଟିଆ ( ଦେଖ )
Patara sāuṇṭā Patara goṭiā ( See )
( ପତର ସାଉଣ୍ଟୀ, ପତର ସାଉଣ୍ଟେଇ—ସ୍ତ୍ରୀ )
( ପତର ସାଉଣ୍ଟିବା କ୍ରିୟା )

**ପତର ସିଙ୍କିବା**—ଦେ. କ୍ରି—ଶାଳ ଆଦି ଗଛର ପତରମାନଙ୍କୁ ବଡ଼
Patara si-ṅkā ଖଲିପତ୍ର କରିବା ସକାଶେ ଖଞ୍ଜିକାଦ୍ୱାରା
(ପତର ସେଇଁବା—ଅନ୍ୟରୂପ) ସେଇଁବା—To sew small Sāla leaves on their edges to make up larger circular plates for meal.

**ପତର ସିଜୁ(ଝୁ)**—ଦେ. ବ ( ସଂ. ପତ୍ର+ସୀହୁଣ୍ଡ )—ପତରିଆ ସିଜୁ
Patara siju(jhu) ( ଦେଖ )—Patariā siju ( See )

**ପତର ସୁନା**—ଦେ ବ—ପତଳା ପତ୍ର ଆକାରରେ ପ୍ରସ୍ତୁତ ଉତ୍କୃଷ୍ଟ ସୁନା—
Patara sunā Leaf gold, excellent gold made in-
পাৎ সোনা **पत्तर सोना** to thin leaves.
( ଇଷ୍ଟ ସୁନା—କପସ୍ୱିତ )

**ପତରିଆ ସିଜୁ(ଝୁ)**—ଦେ. ବ. ( ସଂ. ପତ୍ର+ସୀହୁଣ୍ଡ )—କ୍ଷୀରସ୍ରୀ କଣ୍ଟକୀ
Patariā siju(jhu) ତରୁବିଶେଷ—Euphorbia Nivulia;
ସଂ ମନସା, ସୁହୀ, ବଜ୍ର, ସେହୁଣ୍ଡ Euphorbia Lengularia.
মনসাসিজ, পাতাসিজ [ ଦ୍ର—ଏ ଗଛ ଥାମ୍ଫୁଡ଼ା, ବକଲ ମୋଟା,
**थुहर** କଣ୍ଟା ଯୋଡ଼ ଯୋଡ଼, ପତ୍ର ମୋଟ, ମସୃଣ, ମସକା ଓ ଲମ୍ବ ଓ ପତ୍ରର ଅଗ ଗୋଲ । ]

**ପତରୁ**—ସଂ. ବଣ. ( ପତ୍ ଧାତୁ+କର୍ତ୍ତୃ. ଅରୁ )—ଗମନଶୀଳ—
Pataru Moving.

**ପତଲ**—ପ୍ରାଦେ. ( ବସ୍ତର ) ବଣ—ପତଳା—
Patala Thin.

**ପତଲୁନ(ମ୍)**—ବୈଦେ. ବ. ( ଇଂ ପାଣ୍ଟାଲୁନ୍ )—ପାଇଜାମା—
Patalun(m) পেন্টুল **पतलून** Trousers, drawers.
[ ପେଣ୍ଟଲୁନ୍(ମ୍); ପତଲୁନ୍(ମ୍)—ଅନ୍ୟରୂପ ]

**ପତଳା**—ଦେ. ବଣ.(ସଂ.ପତ୍ରତୁଲ୍ୟ ବା ପତ୍ରଲ, ସଂ. ପାଟ୍ଟ, ପା. ପାତ୍ତ)—
Patalā ୧ । ପାତଳ, ସରୁ, ଯାହାର ବେଧ ଅତି କମ—
পাতলা **पतला, पतील** 1. Thin; fine

( ପତଳୀ—ସ୍ତ୍ରୀ ) ( ଯଥା—ପତଳା ଲୁଗା । )

ପତଳାପଣ / ପତଳାପଣିଆ(ଆଁ) ବି ୨ । ଛଡ଼ାଛଡ଼ା, ଅଘନ—2 Sparse ( ଯଥା—ପତଳା ବାଳ । )

୩ । ଶୀର୍ଣ୍ଣ—3. Lean.

( ଯଥା—ପତଳା ଦେହ, ପତଳା ମନୁଷ୍ୟ । )

୪ । କ୍ଷୀଣ, ଦୁର୍ବଳ—4. Slender, weak.

୫ । ଅତ୍ୟନ୍ତ ତରଳ—5. Very watery; liquid.

( ଯଥା—ପତଳା ଝାଡ଼ା । )

୬ । ଧୈର୍ଯ୍ୟହୀନ ( ମନ )—

6 Impatient; nervous ( mind ).

**ପତଳା କରିବା** - ଦେ. କ୍ରି - ଗାଢ଼ ପଦାର୍ଥକୁ କୌଣସି କ୍ରିୟାରେ ତରଳ କରିଦେବା—To liquefy a solid.
Patalā kariba
পাতলা করা **पतला करना**

**ପତଳା କାନ** - ଦେ. ବି—୧ । ଚୁଗୁଲି ଶୁଣିବା ପ୍ରକୃତି, ଅଯଥା ବିଶ୍ୱାସ କରିବା ଖୋଇ—1. Credulousness.
Patalā kāna
কান পাতলা ୨ । ଅତି ଚୁପ୍‌ଚୁପ୍ କଥା ଶୁଣି ପାରିବାର ଶକ୍ତି—
**पतला कान** 2 The power of hearing very lowly uttered talk

**ପତଳା କାନ(ନୁ)ଆ(ଆଁ)**—ଦେ. ବିଣ ପୁଂ - ୧ । ଯେଉଁ ଲୋକ ଚୁଗୁଲି ଶୁଣି ହଠାତ୍ ବିଶ୍ୱାସ କରେ—
Patalā kāna(nu)ā(āṅ)
কান পাতলা **कन पतला** 1 Credulous
( ପତଳା କାନା)—ଅନ୍ୟରୂପ ) ୨ । ଯେଉଁ ଲୋକ ଅତି ଚୁପ୍ ଚୁପ୍ କଥା ଶୁଣି ପାରେ—
ପତଳାକାନୀ / ପତଳା କାନେଇ(ଈଁ) } ସ୍ତ୍ରୀ 2. Having the power of hearing very low sound

**ପତଳା ଚମ**—ଦେ. ବି. ( ସଂ. ପାତ୍ରଟ+ଚର୍ମ )—ପତଳା ଚମଡ଼ା—
Patalā chama Thin skin.
পাতলা চমড়া **पतला चमड़ा** (ପତଳା ଚମଡ଼ା—ଅନ୍ୟରୂପ)

**ପତଳା ଝାଡ଼ା**—ଦେ. ବି—ତରଳିଆ ଝାଡ଼ା—
Patalā jhārḍā Loose stools.
পাতলা দাস্ত **पतला झाड़ा**
(ପତଳା ଦସ୍ତ, ପତଳା ବାହାରକୁ, ପତଳା ପୋଖରୀ—ଅନ୍ୟରୂପ)

**ପତଳା ନିଦ**—ଦେ. ବି—ଯେଉଁ ନିଦ ଅତି ସାମାନ୍ୟ ଓ କ୍ଷୀଣ ଶବ୍ଦରେ ମଧ୍ୟ ଭାଙ୍ଗିଯାଏ, ଛଇ ନିଦ—
Patalā nida
পাতলা ঘুম **पतला नींद** Very light sleep.

**ପତଳା ଲୁଗା**—ଦେ. ବି—ସୂକ୍ଷ୍ମ ବସ୍ତ୍ର—
Patalā lugā Fine texture; fine cloth
পাতলা কাপড় **पतला कपड़ा** (ପତଳା କପଡ଼ା—ଅନ୍ୟରୂପ)

**ପତଳୀ**—ଦେ. ବି—ପତଳାର ସ୍ତ୍ରୀଲିଙ୍ଗ—
Patalī Feminine of Patalā
পাতলী ପ୍ରାଦେ. (ସମ୍ବଲପୁର) ବି—ବେଙ୍ଗଲା ( ଦେଖ )
**पतली** Beṅgalā ( See )

**ପତା**—ଦେ ବି. ( ସଂ. ପତ୍ର )—୧ । ଆଖିର ଉପରସ୍ଥ ପିଛଡ଼ା, ପଲକ—
Patā পাতা **पपोटा** 1 Eye lid.
পাতা, পত্তা ୨ । ସାନ ବାଳିଆ ମାଛ ବା ବାଳିଆ ପତକା—
**पत्ता, पता** 2. Small Bālia fish.
୩ । ( ସଂ. ପ୍ରତ୍ୟୟ, ପ୍ରା. ପତ୍ତଅ = ଖ୍ୟାତି ହି ଶ ) ବସ୍ତୁର ବା ବ୍ୟକ୍ତିର ଅବସ୍ଥିତି ସମ୍ବନ୍ଧେ ପରିଚୟ ବା ସୂଚନା, ଠିକଣା—
3. The whereabouts of a person or thing
୪ । ଚିହ୍ନ—4. Trace; token.
୫ । ଖବର, ସମ୍ବାଦ—5 News.

ମାଝ ବାପ ମାର ଜାଇ କୁଳଓ ଦେଶର ପତା ନ ଲଗିବାରୁ କଇ କହୁଛ ନାହିଁ ।
ଫକୀରମୋହନ. ଗଳ୍ପସ୍ୱଳ୍ପ ।

୬ । ହଜିଥିବା ବସ୍ତୁର ସନ୍ଧାନ, ଖୋଜ—6. Information about a lost or missing thing; clue.
୭ । କୌଣସି ବ୍ୟକ୍ତିଙ୍କର ରହିବା ସ୍ଥାନର ଠିକଣା—
7 The address of a person
୮ । ଗୂଢ଼ ତତ୍ତ୍ୱ, ରହସ୍ୟ—8. Secret.

**ପତା(ତେ)ଇବା**—ଦେ କ୍ରି. (ସଂ. ପାତ୍ର ଧାତୁ)—
Patā(te)ibā ୧ । ପାତିତ କରିବା—1. To lay down.
পাতান, পাতা ୨ । (କର) ପ୍ରସାରିତ କରିବା, ବଢ଼ାଇବା—
**फैलाना** 2. To extend.

ତେଣେ କଥଯତ୍ନ କଡ଼କ ପିଙ୍ଗି କଚ ପତାଉ । ପ୍ରଧାନାଥ- ଚନ୍ଦ୍ରଭାଗା ।

୩ । ଆଘାତ ଅପେକ୍ଷାରେ ମୁଣ୍ଡକୁ ବା ଶରୀରର କୌଣସି ଅଙ୍ଗକୁ ଦେଖାଇବା, ଆଡ଼ିବା—2 To show one's head or other limb ready to receive a blow
୪ । (ସଂ. ପ୍ରତ୍ୟୟ) ପ୍ରତ୍ୟୟ କରିବା, ବିଶ୍ୱାସ କରିବା—
4. To be confident; to trust
( ଯଥା—ଏଡ଼େ ବଡ଼ କାମ କରିବାକୁ ମୋ ଛାତି ପତାଉ ନାହିଁ । ଛାତି ପତାଇବା = ମନରେ ସାହସ ହେବା)

**ପତାକା**—ସଂ ବି. ( ପତ୍ ଧାତୁ=ଯିବା+କର୍ତ୍ତୃ ଅକ+ଆ )—
Patākā ୧ । ନିଶାଣୀ, ଧ୍ୱଜା, ଅଗରେ ଇତସ୍ତତଃ ସଞ୍ଚାଳିତ ବସ୍ତ୍ର ଖଣ୍ଡ ଯୁକ୍ତ ଦଣ୍ଡ—1 Flag; ensign; banner, standard.
୨ । ନିଶାଣ, ଚିହ୍ନ, ଲକ୍ଷଣ—
2. Mark; sign; symbol; emblem; token.
୩ । ନାଟକର ଅଙ୍ଗବିଶେଷ—3 Episode or episodical incident in a drama (M. W)
[ ଦ୍ର—ଯେଉଁ ସ୍ଥଳରେ ନାଟକୀୟ ଜଣେ ପାତ୍ରର ଚିନ୍ତାଗତ ଭାବର ବା ବିଷୟର ଅନ୍ୟ ଆଗନ୍ତୁକ ପାତ୍ରର ଭାବ ବା ବିଷୟଦ୍ୱାରା ପୋଷଣ ହୁଏ ସେଠାରେ ପତାକା ହୁଏ । ହି. ଶ ]
୪ । ସୌଭାଗ୍ୟ—4 Prosperity; good fortune
୫ । ଜ୍ୟୋତିଷିକ ରକ୍ଷା-ଚକ୍ରବିଶେଷ—5. An astrological figure employed as a charm.
୬ । ଦଶ ଖର୍ବ ସଂଖ୍ୟା, ଦଶ ହଜାର କୋଟି ସଂଖ୍ୟା—
6. One trillion (number).
ଦେ. ବି—ଶ୍ରେଷ୍ଠତା, ପ୍ରତିଷ୍ଠା, ଉତ୍କର୍ଷ—
Distinction; excellence; superiority,

ରୂପରେ ଦେଖନ୍ତ ହାଟରେ ପତାକା ବିଶ୍ୱଚଳ ସେ ଜୁଣାଙ୍କ ।
କନସୂର୍ଯ୍ୟ. ଧ୍ୱଜାକଲ୍ଲୋଳ ।

**ପତାକା ଦଣ୍ଡ**—ସ ବି. ( ୬ଷ୍ଠୀ ତତ୍, ପତାକା+ଦଣ୍ଡ )—
Patākā daṇḍa ଯେଉଁ ବାଉଁଶ ବା କାଠର ଲମ୍ବ ସରୁ ଦଣ୍ଡର ଅଗରେ ପତାକାର କନା ଲାଗିଥାଏ—Flagstaff.

**ପତାକିକ**—ସ. ବିଣ ( ପତାକା+ଇକ )—
Patākika ୧ । ଧ୍ୱଜ ଯୁକ୍ତ—1 Furnished with a flag.
୨ । ଧ୍ୱଜବାହୀ—2 Carrying a flag.

**ପତାକୀ**—ସ ବିଣ. ( ପତାକା+ଇନ୍, ୧ମା ୧ବ. )—
Patākī ପତାକାଧାରୀ —Having a standard; standard-bearing.
(ପତାକିନୀ—ସ୍ତ୍ରୀ)
ସ ବି—୧ । ପତାକୀ ଚକ୍ର ( ଦେଖ )
1. Patākī chakra ( See )
୨ । ରଥ—2. Car; chariot.
୩ । ସେନା —3 Army.
୪ । ପତାକାଧାରୀ ବ୍ୟକ୍ତି—4. Standard-bearer.
୫ । ପତାକା—5 Flag. (M W)

**ପତାକୀ ଚକ୍ର**—ସ. ବି—(ଜ୍ୟୋତିଷ) ଶିଶୁର ଅରିଷ୍ଟ ଗଣନାର୍ଥେ ଅଙ୍କିତ ଗ୍ରହ ଚକ୍ରବିଶେଷ—( astrology ) A
Patākī chakra circle drawn to calculate the evil influence on a child of planets at its birth.

**ପତାଙ୍ଗି**—ପ୍ରାଦେ. (ସମ୍ବଲପୁର) ବି. (ସ. ପତଙ୍ଗ)—କାଗଜର ଗୁଡି—
Patāṅgi Flying kite; paper-kite.

**ପତାଣ୍ଡି**—ପ୍ରାଦେ. (ଗଡ଼ଜାତ) ବି—ମାଣ୍ଡିଆ ଓ ଧାନର ଅଗାଡ଼ି—
Patāṇḍ Chaff of paddy or Māṇḍiā grain

**ପତାଣ୍ଡି ଅଗାଡ଼ି**—ପ୍ରାଦେ ( ଗଡ଼ଜାତ ) ବି—ଯେଉଁ ଧାନର ଅଗାଡ଼ି
Patāṇḍi agāṛḍi ଭିତରେ କିଛି ମାତ୍ର ଶସ୍ୟ ନ ଥାଏ—
Empty chaff of paddy.

**ପତା ଲାଗିବା**—ଦେ. କି.—ସନ୍ଧାନ ମିଳିବା; ଠିକଣା ମିଳିବା—
Patā lāgiba Trace of one's whereabouts; clue to some matter.
(ପତା ମିଳିବା—ଅନ୍ୟରୂପ)

ମାଃ ବାପ ମାର ଜାତି କୁଳ ଓ ଦେଶର ପତା ନ ଲାଗିବାରୁ ବର କୁଳ ନାହିଁ ।
ଫକୀରମୋହନ. ଗଳ୍ପସ୍ୱଳ୍ପ ।

**ପତାଲେଇ(ହି)**—ଦେ. ବି. (ସ. ପତ୍ର ଓ ଲିହ ଧାତୁ=ଚାଟିବା; ଏମାନେ
Patalei(hi) ଗଛର ପତ୍ର ଖାଇବାରୁ) - ସମ୍ବାଳୁଆ -
Caterpillar

[ଦ୍ର—ଏମାନେ ଗଛର ଛାଲ ପତ୍ର ଆଦିରେ ଜାବୁଡ଼ି ଧରି ଲାଗି ରହି ପତ୍ରକୁ ଖାଇ ଯାଆନ୍ତି । ଏଥିପାଇଁ ଯେଉଁ ଲୋକ ଅନ୍ୟ ଲୋକର ସମ୍ପତ୍ତିର ଜାଉଳପରଜୀବୀ ହୋଇ ଲାଗି ଥାଏ ଓ ତାର ସର୍ବନାଶ ଘଟାଏ ତାକୁ କହନ୍ତି ସେ ତା ସଙ୍ଗେ ପତାଲେଇ ଭଳିଆ ଲାଗିଛି । ]

**ପତି**—ସ. ବି. ପୁଂ. (ପା ଧାତୁ=ରକ୍ଷା କରିବା+କର୍ତ୍ତୃ. ଅତି)—
Pati ୧ । ପାଳକ; ରକ୍ଷକ—1. Protector; preserver.
(ପତ୍ନୀ - ସ୍ତ୍ରୀ) ୨ । ପ୍ରଭୁ; ମାଲିକ—2. Lord; master.
୩ । ଭର୍ତ୍ତା; ସ୍ୱାମୀ—3. Husband.
୪ । ନାୟକ, ନେତା, ଚାଳକ—4 Leader; guide.
୫ । ଦ୍ରବ୍ୟାଦିର ଅଧିକାରୀ—5. Owner; possessor
୬ । ରାଜା—6 King; sovereign.

କହନ୍ତି କୃଷ୍ଣସିଂହ ଧରାକୋଟ ପତି ।
କୃଷ୍ଣସିଂହ ମହାଭାରତ. ବନ ।

ହିଁନ୍ଦି ଦେ. ବି. (ସ. ପତ୍ର) ଗଞ୍ଜେଇ ଗଛର ପତ୍ର—
**सबजी भांग** 2 The leaves of Cannabis Sativa
୩ । (ସ ପଙ୍କ୍ତି) ବ୍ରାହ୍ମଣଙ୍କ ଉପାଧିବିଶେଷ—
3. Family title of some Brāhmaṇs.
ଯଥା—କୁଣ୍ଡି ନାହିଁ, ବାଡ଼ି ନାହିଁ ଶଙ୍ଖବାସ ପତି ।)
୪ । (ଜାତି ଶବ୍ଦ ସଙ୍ଗେ ସହଚର ରୂପେ ବ୍ୟବହୃତ, ଜାତିପତି)—
ସମାଜ—4 Society
(ଯଥା - ସେ ମଦ ଖାଇ ଜାତିରୁ ଗଲା ପତିରୁ ଗଲା ।)
ଦେ (ପ୍ରାଚୀନ ପଦ୍ୟ) ବିଣ. --ପତିତ—Fallen.

ଲୁଚିଲା ବୃନ୍ଦାବନ ଅନ୍ତରେ ଧୂମକେତୁ ମଣ୍ଡଳ ଲଭି କି କପରୂପେ ପତି ହେ ଜଳଧର ।
ଭକ୍ତ. ପ୍ରେମସୁଧାନିଧି ।

ପ୍ରାଦେ. (ଗଡ଼ଜାତ) ବି.-- ଏକ ପ୍ରକାର ଅଭିମନ୍ତ୍ରିତ ଜଡ଼ି—
A kind of charm.

[ଦ୍ର—ଶ୍ୱେତ ଅପରାଜିତା ପତ୍ରକୁ ଅଭିମନ୍ତ୍ରିତ କରି ବାଘର ଖୋଜକୁ କାଣ୍ଡି, ଅକ୍ଷତ ଖୋଜ ଚିହ୍ନ ଉପରେ ଉକ୍ତ ପତ୍ରକୁ ପକାଇଲେ, ବାଘ ସେହି ବାଟେ ଫେରି ଆସେ ଓ ଶିକାରୀ ସେହି ବାଟକୁ ଜଗି ରହି ବାଘକୁ ମାରେ ।]

**ପତିଆରି**—ଦେ. ବି (ସ ପ୍ରତ୍ୟୟ, ପ୍ରା. ପତ୍ତିଅ)—୧ । ବିଶ୍ୱାସ, ଆସ୍ଥା -
Patiārā 1. Confidence, trust, reliance; faith.
ପତ୍ୟାବା ପତିଆରି ଯେତେ ଜୋଡ଼ିଛ ଭ୍ରମର,
**पतयारा** ତମସୁକ ଉଣା ହେଲେ । ଉପେନ୍ଦ୍ର, ସାଥିରୁଥ ବାହା ।
(ପତିଆର, ପତ୍ୟାରି—ଅନ୍ୟରୂପ) ୨ । ଜାମିନ୍; ପ୍ରତିଭୂ—
2. Surety; security.
୩ । ଖାତିର, ବ୍ୟବସାୟଗତ ସୁନାମ—
3. Credit in business; good will.
ଦେ ବିଣ.—ବିଶ୍ୱସ୍ତ—Trust worthy; trusty

**ପତିଆରି ଉଠିଯିବା**—ଦେ କି.-- ୧ । ଅନାସ୍ଥା—
Patiārā uthi jibā 1. Loss of confidence.
ପତ୍ୟାବା ଉଠେ ଯାଓୟା ୨ । ବ୍ୟବସାୟଗତ ସୁନାମର ଲୋପ—
**पतयारा छूटजाना** 2. Loss of business-credits.
(ପତିଆରି ବୁଡ଼ି ଯିବା, ପତିଆରି ଡୁବିଯିବା – ଅନ୍ୟରୂପ)

**ପତିଆରି କରିବା**—ଦେ କି. - ବିଶ୍ୱାସ କରିବା, ଆସ୍ଥା ରଖିବା—
Patiārā karibā To have trust in; to believe; to rely on.
ପତିଯା; ପତ୍ୟାବାକରା **पतिआना**
ପତିଆରି ଯିବା ଅନ୍ୟରୂପ)

**ପତିଆରି ଜାମିନ୍**—ଦେ. ବି. ( କଚେରିଆ )—କୌଣସି ବ୍ୟକ୍ତିର କାର୍ଯ୍ୟ
Patiāra jāmin ନିମନ୍ତେ ଅନ୍ୟ ବ୍ୟକ୍ତି ଜାମିନ୍ ବା ପ୍ରତିଭୂ
ପତ୍ୟାବା ଜାମିନ ହେବା—1 Personal security.
**पतयारा जामिनि** ୨ । ଅନ୍ୟର କାର୍ଯ୍ୟ ପାଇଁ ଜାମିନ୍ ହେବା ବ୍ୟକ୍ତି—
( ପତିଆରି ଜାମିନ – ଅନ୍ୟରୂପ ) 2, A person who stands surety for another.

**ପତିଆଲା**—ଦେ ବି (ନାମ)—ଉତ୍ତର ଭାରତର ରାଜପୁତ ରାଜ୍ୟବିଶେଷ—
Patiālā Patiala, name of a Rajput state in
( ପଟ୍ଟିଆଲା—ଅନ୍ୟନାମ ) N. India
[ ଦ୍ର—ଏ ରାଜବଂଶ ସଙ୍ଗେ ଅଧୁନା ଉତ୍କଳର ଢେଙ୍କାନାଳ ଓ ଷଢେଇକଳା ରାଜବଂଶମାନଙ୍କର ବୈବାହିକ ସମ୍ବନ୍ଧ ସ୍ଥାପିତ ହୋଇଅଛି । ]

**ପତିଂବରା**—ସଂ. ବି ସ୍ତ୍ରୀ. ( ପତିଂ=ପତିଙ୍କୁ+ବର୍ ଧାତୁ=ବରଣ କରିବା
Patiṁbarā + କର୍ତ୍ତୃ ଅ, ସ୍ତ୍ରୀ. ଆ )—୧ । ସ୍ୱୟଂବରା, ଯେଉଁ
( ପତିମ୍ବରା—ଅନ୍ୟରୂପ ) ସ୍ତ୍ରୀ ସ୍ୱୟଂ ପତି ନିର୍ବାଚନ କରି ବିବାହ କରନ୍ତି—1. A woman choosing a partner or husband for herself.
୨ । କଳାଜୀରା (ହି. ଶ)—2. Black cuminseed.

**ପତିକ**—ସଂ ବି—କାର୍ଷାପଣ ନାମକ ଏକ ପ୍ରାଚୀନ ମୁଦ୍ରା—
Patika An ancient coin of India

**ପତିକାମା**—ସଂ. ବିଣ. ( ପତି+କାମ+ଆ )—ସ୍ୱାମୀ ପ୍ରାପ୍ତି ନିମନ୍ତେ
Patikāmā ଇଚ୍ଛୁକା ( ସ୍ତ୍ରୀ )—( a woman ) Desiring to get a husband.

**ପତିଗତପ୍ରାଣ**—ସଂ. ବିଣ ପୁଂ. ( ବହୁବ୍ରୀହି, ପତିଗତ ପ୍ରାଣ ଯାହାର )—
Patigataprāṇa ପତିଙ୍କଠାରେ ଏକାନ୍ତ ଅସକ୍ତ—Attached
(ପତିଗତପ୍ରାଣା—ସ୍ତ୍ରୀ) to one's lord or master.

**ପତିଗତପ୍ରାଣା**—ସଂ. ବିଣ. ସ୍ତ୍ରୀ. ( ବହୁବ୍ରୀହି )—୧ । ପତିଗତପ୍ରାଣର
Patigataprāṇā ସ୍ତ୍ରୀଲିଙ୍ଗ—1. Feminine of Patigata prāṇa.
୨ । ସତୀ ( ସ୍ତ୍ରୀ ); ଯେଉଁ ସ୍ତ୍ରୀର ପ୍ରାଣ ପତିଙ୍କ ପ୍ରାଣ ସଙ୍ଗେ ଆବଦ୍ଧ, ଅର୍ଥାତ୍ ପତିଙ୍କ ପ୍ରାଣ ଗଲେ ଯେ ବଞ୍ଚି ପାରେ ନାହିଁ—
2. (a woman) Whose life is exclusively dedicated to the service of her husband; devoted and chaste ( woman ).

**ପତିଘାତୀ**—ସଂ ବିଣ. ପୁଂ—ଯେ ଆପଣା ପ୍ରଭୁ ବା ସ୍ୱାମୀଙ୍କୁ ହତ୍ୟା କରେ—
Patighāti Murdering one's master or lord.

**ପତିଘାତିନୀ**—ସଂ. ବିଣ. ସ୍ତ୍ରୀ. (ପତି+ହନ୍ ଧାତୁ+କର୍ତ୍ତୃ. ଇ, ନିପାତନ)—
Patighātini ୧ । ସ୍ୱାମୀ ହତ୍ୟାକାରିଣୀ—
(ପତିଘ୍ନୀ—ଅନ୍ୟରୂପ) 1. Killing her husband; murderess of her husband.
୨ । ଜ୍ୟୋତିଷ ବା ସାମୁଦ୍ରିକ ଅନୁସାରେ ଯେଉଁ ସ୍ତ୍ରୀର ଜାତକରେ ବୈଧବ୍ୟ ଯୋଗ ଥାଏ—2. ( a woman ) Who according to astrology or palmistry is destined to be a widow.

**ପତିଘ୍ନ**—ସଂ. ବିଣ. ପୁଂ—ପତିଘାତୀ ( ଦେଖ )
Patighna Patighāti ( See )
ସଂ. ବି—ଜ୍ୟୋତିଷ ବା ସାମୁଦ୍ରିକ ମତରେ ବୈଧବ୍ୟସୂଚକ ଯୋଗ ବା ଲକ୍ଷଣ ( ହି. ଶ.)—Astrological indication of a woman becoming a widow.

**ପତିତ**—ସଂ. ବିଣ. ( ସଂ. ପତ୍ ଧାତୁ+କର୍ତ୍ତୃ. ତ )—୧ । ପଡ଼ିଯାଇଥିବା—
Patita 1. Fallen.
( ପତିତା—ସ୍ତ୍ରୀ ) ୨ । ପରାଜିତ—2. Defeated.
୩ । ଅଧୋଗତ, ଅଧୋଗାମୀ ହୋଇଥିବା—
3 Descended; lowered; fallen down
୪ । ଚ୍ୟୁତ, ସ୍ଖଳିତ—4. Slipped.
୫ । ଅକର୍ଷିତ, ପଡ଼ିଆ—
5. Waste; uncultivated; fallow.
୬ । ଜାତିଚ୍ୟୁତ, ସମାଜ ବହିର୍ଭୂତ—6. Outcasted.
( ପତିତତା[ତ୍ୱ]—ବି ) ୭ । ଜାତି ବା ବର୍ଣ୍ଣର ଉପଯୁକ୍ତ କ୍ରିୟାକର୍ମ କରୁ ନ ଥିବା; ଆଚାରଚ୍ୟୁତ—7. Not observing the duties of one's caste or society.
୮ । ଚଳିତ—8. Moved.
୯ । ଗଳିତ, କ୍ଷରିତ—
9 Oozed; flowing down.
୧୦ । ଧର୍ମଭ୍ରଷ୍ଟ, ପାପୀ—
10. Sinful; sinning; fallen from virtue.
୧୧ । ଆଗତ—11. Come; arrived.
୧୨ । ସ୍ୱଧର୍ମତ୍ୟାଗୀ—12. Apostate.
୧୩ । ଅତି ଅପବିତ୍ର ( ହି ଶ. )—
13. Very unholy or impure.
୧୪ । ଅତି ନୀଚ—14 Very low or mean.

**ପତିତ ଜମି**—ଦେ ବି—୧ । ପଡ଼ିଆ ଜମି—1. Waste land;
Patita jami land which is lying fallow.
ପତିତ ଜମି ୨ । ଅନାବାଦ ଜମି, ଯେଉଁ ଜମିରେ କୃଷି ହୋଇ
**पतती जमीन** ପାରେ ନାହିଁ—2. Uncultivable waste land.
( ପତିତଭୂମି—ଅନ୍ୟରୂପ )

**ପତିତ ଜାତି**—ଦେ. ବି—୧ । ଅସ୍ପୃଶ୍ୟ ବା ନୀଚ ଜାତି—
Patita jāti 1. Low caste.
ପତିତଜାତ ୨ । ପାପୀ ଜାତି—2 Sinning people.
**পতিতজাত** ୩ । ପଦଦଳିତ ଜାତି—
3. Downtrodden people.

**ପତିତତ୍ରାହି**—ଦେ. ବି. ( ସଂ ପତିତ+ତ୍ରୈ ଧାତୁ )—ପତିତପାବନ; ରାମ;
Patitatrāhi କୃଷ୍ଣ—Rāma; Saviour of the sinful.
( ପତିତତ୍ରାଣ—ଅନ୍ୟରୂପ ) ଦପତିତ ମେ ପତିତତ୍ରାହି ଦୁତ
ସୁଦେବେଳେ ସୁ.ବଲ ଗଇ ଯେ—ଭକ୍ତ. ବୈଦେହୀଶବିଳାସ ।

**ପତିତ ପାବନ**—ସଂ. ବିଣ ପୁଂ—ପାପୀର ତ୍ରାଣକାରୀ, ପାପୀର ଉଦ୍ଧାର-
Patita pābana କାରୀ, ପାପୀଙ୍କୁ ଯେ ଉଦ୍ଧାର କରେ—
( ପତିତ ପାବନୀ—ସ୍ତ୍ରୀ ) Saviour; purifying the sinful.
( ପତିତତ୍ରାତା—ଅନ୍ୟରୂପ )
[ ଦ୍ର—ଦେବମାନଙ୍କୁ ପତିତପାବନ ଓ ଦେବୀମାନଙ୍କୁ ପତିତପାବନୀ ସମ୍ବୋଧନ କରାଯାଏ । ]
ସଂ. ବି. ପୁଂ—ପାପୀର ତ୍ରାଣକର୍ତ୍ତା, ଈଶ୍ୱର—
God; the Saviour of the sinful.

ଦେ. ବି—୧ । ପୁରୀ ଜଗନ୍ନାଥଙ୍କ ସିଂହଦ୍ୱାର ସମ୍ମୁଖରେ କାନ୍ଥରେ ପ୍ରତିଷ୍ଠିତ ଜଗନ୍ନାଥଙ୍କ ମୂର୍ତ୍ତି—1. The image of the Deity Jagannātha just inside the lions-gate of the Puri temple.

[ ଦ୍ର—ଅସ୍ପୃଶ୍ୟ ଜାତିମାନେ ମନ୍ଦିର ବା ବେଢା ଭିତରକୁ ଯାଇ ନ ଥିବାରୁ ସିଂହଦ୍ୱାର ନିକଟରେ ଏହି ପତିତପାବନଙ୍କୁ ଦର୍ଶନ କରନ୍ତି ]

୨ । ଦେବାଳୟମାନଙ୍କରେ ପ୍ରତିଷ୍ଠିତ କେବଳ ଜଗନ୍ନାଥଙ୍କ ମୂର୍ତ୍ତି—2 The image of Lord Jagannātha only set up and worshipped in a temple.

[ ଦ୍ର - ପୁରୀ ମନ୍ଦିରରେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କର ୩ ମୂର୍ତ୍ତି ଅଛନ୍ତି, କିନ୍ତୁ ସିଂହଦ୍ୱାରସ୍ଥ ସମ୍ମୁଖରେ କେବଳ ଜଗନ୍ନାଥଙ୍କ ମୂର୍ତ୍ତି ସ୍ଥାପିତ । ଯେଉଁ ଦେଉଳମାନଙ୍କରେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କର ୩ ମୂର୍ତ୍ତି ପ୍ରତିଷ୍ଠିତ ନ ହୋଇ କେବଳ ଜଗନ୍ନାଥଙ୍କ ମୂର୍ତ୍ତି ପୂଜା ପାଇ ଥାଆନ୍ତି, ସେ ଦେଉଳରେ ପତିତପାବନ ଅଛନ୍ତି ବୋଲି ବୋଲାଯାଏ । ]

**ପତିତ ପାବନ ବାନା**—ଦେ. ବିଣ—(ସଂ. ପତିତ ପାବନ + ଫା. ବାନା Patita pābana bānā ପାପୀ ଲୋକଙ୍କୁ ଉଦ୍ଧାର କରିବା ପାଇଁ ଯେ ପ୍ରସିଦ୍ଧ, ଅର୍ଥାତ୍ ପ୍ରଭୁ ପରମେଶ୍ୱର, ଭଗବାନ ବା ବିଷ୍ଣୁ (ଦେବତାଙ୍କୁ, ବିଶେଷତଃ ବିଷ୍ଣୁଙ୍କୁ ସ୍ତବ କରିବା ସମୟରେ ପ୍ରଯୁକ୍ତ ସମ୍ବୋଧନ)—(a term addressed to a Deity specially to Bishṇu in prayer) An epithet of God Bishṇu; One who holds the banner of delivering the fallen.

**ପତିତ ବୃତ୍ତ**—ସଂ. ବିଣ—ଜାତିଚ୍ୟୁତ ହୋଇ ଯେ ଜୀବନ ଯାପନ କରେ— Patita brutta Passing one's life in a fallen or outcasted condition.

**ପତିତବ୍ୟ**—ସଂ. ବିଣ. (ପତ୍ ଧାତୁ + କର୍ତ୍ତୃ ତବ୍ୟ)—୧ । ପତନଯୋଗ୍ୟ— Patitabya 1. Fit to fall.

୨ । ଯାହା ପଡ଼ିଯିବ—2. About to fall.

**ପତିତ ସାବିତ୍ରୀକ**- ସଂ. ବିଣ. (ବହୁବ୍ରୀହି)—ଯେଉଁ ଦ୍ୱିଜ ବଂଶଜାତ ବ୍ୟକ୍ତି Patita sābitrika ଉପଯୁକ୍ତ ବୟସରେ ବ୍ରତ ହୋଇ ନ ଥିବାରୁ ପତିତ ହୋଇଅଛି; ସାବିତ୍ରୀଭ୍ରଷ୍ଟ (ଦ୍ୱିଜାତି)—(a twice born) On whom the ceremony of investiture has not been performed in due time.

**ପତିତୋତ୍ପନ୍ନ** - ସଂ. ବିଣ. ପୁଂ. (ବହୁବ୍ରୀହି)—ପତିତା ବା କୁଳଭ୍ରଷ୍ଟା ନାରୀ Patitotpanna ଗର୍ଭଜାତ (ସନ୍ତାନ)—Born of a fallen (ପତିତୋତ୍ପନ୍ନା—ସ୍ତ୍ରୀ) woman.

**ପତିତୋଦ୍ଧାରଣ** - ସଂ. ବିଣ. ପୁଂ. (ବହୁବ୍ରୀହି)—ପତିତପାବନ (ଦେଖ)— Patitoddhāraṇa Patitapābana (See)

(ପତିତୋଦ୍ଧାରଣୀ—ସ୍ତ୍ରୀ) ସଂ. ବି—ପତିତପାବନ (ଦେଖ) Patitapābana (See)

**ପତିତ୍ୱ**—ସଂ. ବି. (ପତି + ଭାବେ. ତ୍ୱ)—୧ । ପ୍ରଭୁତ୍ୱ— Patitwa 1. Mastery.

୨ । ପାଣିଗ୍ରହଣ ଦ୍ୱାରା ସ୍ତ୍ରୀର ସ୍ୱାମୀ ହେବାର ଭାବ— 2. The state of being a husband.

**ପତି ଦେବତା**—ସଂ ବି. (ରୂପକ, ପତିରୂପ ଦେବତା)—ଦେବତାଙ୍କ ପରି Pati debatā ସ୍ତ୍ରୀ ଦ୍ୱାରା ପୂଜିତ ସ୍ୱାମୀ— A husband worshipped as a Deity by the wife

ସଂ. ବିଣ. ସ୍ତ୍ରୀ (ବହୁବ୍ରୀହି, ପତି ଅଟନ୍ତି ଦେବତା ଯାହାର)—

ପତି ଦେବା, ପତି-ଦେବତା, ପତି ଧର୍ମବତୀ } ଅନ୍ୟରୂପ ପତିପ୍ରାଣା (ଦେଖ) Patiprāṇā (See)

**ପତି ଧର୍ମ**—ସଂ. ବି - ୧ । (୬ଷ୍ଠୀ ତତ୍, ପତି + ଧର୍ମ) ପତିର ସ୍ତ୍ରୀ ପ୍ରତି Pati dharma କର୍ତ୍ତବ୍ୟ—1. The duties of a husband towards his wife.

୨ । (ମ. ପ. ଲୋ) ପତି ପ୍ରତି ପତ୍ନୀର କର୍ତ୍ତବ୍ୟ (ହି ଶ,)— 2. The duties of a married woman towards her husband

**ପତି ପତ୍ନୀ** - ଦେ ବି.(ସହଚର)—ସ୍ୱାମୀ ଓ ସ୍ତ୍ରୀ, ଦମ୍ପତି; ଗେରସ୍ତ ଭାରିଯା, Pati patnī ଘଇତା ମାଇପ —Husband and wife; a married couple.

**ପତିପଦା**—ଗ୍ରା. ବି. (ସଂ ପ୍ରତିପଦ୍)—ଶୁକ୍ଳମାନ୍ ପକ୍ଷର ପ୍ରଥମ ଦିବସ— Patipadā The first day of the lunar fortnight. प्रतिपद पड़वा (ପତିପ, ପତିପଦ—ଅନ୍ୟରୂପ)

**ପତିପ୍ରାଣା**—ସଂ ବିଣ. ସ୍ତ୍ରୀ (ବହୁବ୍ରୀହି, ପତି ଅଟନ୍ତି ପ୍ରାଣ ଯାହାର)— Patiprāṇā ପତିଙ୍କଠାରେ ଏକାନ୍ତ ଆସକ୍ତା, ସାଧ୍ୱୀ (ସ୍ତ୍ରୀ)—

ପତି ପରାୟଣା, ପତିଗତ ପ୍ରାଣା } ଅନ୍ୟରୂପ (a wife) Devoted to her husband, chaste and devoted (woman); virtuous and doting (wife).

**ପତିବତ୍ନୀ**—ସଂ. ବିଣ. ସ୍ତ୍ରୀ. ( ପତି + ବତ୍ + ସ୍ତ୍ରୀ. ଈ )— Patibatnī ସଧବା, ଅହିଅ ( ସ୍ତ୍ରୀ ), ସଭର୍ତ୍ତୃକା— (ପତିବତୀ—ଅନ୍ୟରୂପ) (a woman) Having her husband living.

**ପତି ବରତ**—ଗ୍ରା. ବି. (ସଂ. ପତିବ୍ରତ)—ପତିବ୍ରତ ( ଦେଖ ) Pati barata Patibrata ( See )

**ପତିବରତା**—ଗ୍ରା. ବିଣ. ସ୍ତ୍ରୀ. (ପଦ୍ୟ) ( ସଂ. ପତିବ୍ରତା )— Patibaratā पतिबर्ता ପତିବ୍ରତା ( ଦେଖ ) Patibratā ( See )

**ପତିବ୍ରତ**—ସଂ. ବି. ( ମ. ପ. ଲୋ )—ସ୍ତ୍ରୀର ପତି ସେବା ଓ ସତୀତ୍ୱ ରୂପ Patibrata ବ୍ରତ, ପାତିବ୍ରତ୍ୟ—Chastity; devotion to one's husband.

**ପତିବ୍ରତା**—ସଂ. ବି. ସ୍ତ୍ରୀ. ( ବହୁବ୍ରୀହି, ପତି ଅଟନ୍ତି ବ୍ରତ ଯାହାର )— Patibratā ପତିଙ୍କଠାରେ ଏକାନ୍ତ ଆସକ୍ତା, ପତିପ୍ରାଣା, ସତୀ, ସାଧ୍ୱୀ- (ପାତିବ୍ରତ୍ୟ—ବି) (a wife) Devoted to her husband; chaste and devoted (woman).

**ପତିମତୀ**—ସଂ. ବିଣ. ସ୍ତ୍ରୀ. ( ପତି + ମତ୍ + ସ୍ତ୍ରୀ. ଈ )—Having her Patimati ସଧବା, ସଭର୍ତ୍ତୃକା— husband living.

**ପତି ମହାପାତ୍ର**—ଦେ. ବି. (ନାମ)—ଜଗନ୍ନାଥଙ୍କ ସେବକବିଶେଷ, ବିଦ୍ୟା- Pati mahāpātra ପତିଙ୍କର ବଂଶଧର—The descendants of Bidyāpati who had brought the idol of Jagannātha from the village of the Śabara in the forest to Puri.

[ ଦ୍ର—ଜଗନ୍ନାଥ ମହାପ୍ରଭୁ ଅଣସର ଘରେ ଥିଲାବେଳେ ଏହି ପତି ମହାପାତ୍ରମାନେ ମହାପ୍ରଭୁଙ୍କ ସେବା ଓ ଭୋଗଆଦି କରନ୍ତି । ଏମାନେ ଜଗନ୍ନାଥ ମହାପ୍ରଭୁଙ୍କର ପ୍ରଥମ ସେବକ । ଜେଷ୍ଠ ଦେବସ୍ନାନ ପୂର୍ଣ୍ଣିମାଠାରୁ ଗୁଣ୍ଡିଚା ଯାତ୍ରାର ଶେଷ ପର୍ଯ୍ୟନ୍ତ ଜଗନ୍ନାଥ ମହାପ୍ରଭୁ ସେମାନଙ୍କର ଖାସ୍ ମାରଫତରେ ରହନ୍ତି ଓ ଜଗନ୍ନାଥ ମହାପ୍ରଭୁଙ୍କର ବାର୍ଷିକ ଆୟରୁ ଏକ ମାସର ଆୟ ଏମାନେ ପାଆନ୍ତି । ଏ ବ୍ୟବସ୍ଥା ଇନ୍ଦ୍ରଦ୍ୟୁମ୍ନ ମହାରାଜାଙ୍କ ସମୟରେ ଛତିଶା ନିଯୋଗ ସୃଷ୍ଟିକାଳରୁ ରହିଅଛି । ]

**ପତି ମିଶ୍ର**—ପ୍ରାଦେ. ( ଯାଜପୁର ) ବି—ଯାଜପୁରର କୁଳୀନ ବ୍ରାହ୍ମଣ ବଂଶ-ବିଶେଷ—A respectable Brāhmaṇa family of Jajpur.
Pati misra

**ପତିମ୍ବରା**—ସଂ. ବି. ସ୍ତ୍ରୀ—ପତିଂବରା ( ଦେଖ )
Patimbarā — Patimbarā ( See )

**ପତି ସହଗମନ**—ସଂ. ବି. (୬ଷ୍ଠୀ ତତ୍, ପତି+ସହ ଗମନ)—
Pati sahagamana — ପତିଙ୍କ ମୃତ୍ୟୁ ପରେ ପତିଙ୍କ ଚିତାନଳରେ ଜୀବିତା ପତ୍ନୀଙ୍କର ଆରୋହଣପୂର୍ବକ ମରଣ—A widow's voluntary sacrifice by ascending the funeral pyre of her dead husband.
(ପତି ସହମରଣ— ଅନ୍ୟରୂପ)

**ପତିଷ୍ଣୁ**—ସଂ. ବିଣ. ( ପତ୍ ଧାତୁ+ଶୀଳାର୍ଥେ. ଇଷ୍ଣୁ )—
Patishṇu — ପତନଶୀଳ—Fallible.

**ପତୁଆ**—ପ୍ରାଦେ (ବାଲେଶ୍ୱର) ବି—ଦନା ପୁରୁଡ଼ୁଗା ( ଦେଖ )
Patuā — Danā purḍugā ( See )

**ପତୁଆ ପୁଅ**—ପ୍ରାଦେ. (ସମ୍ବଲପୁର) ବି. ପୁଂ—
Patuā pua — ପରିବାରର ବା ପିତା ମାତାଙ୍କର ଜ୍ୟେଷ୍ଠ ସନ୍ତାନ—The eldest son of the parents.

**ପତୁରି**—ଦେ. ବି ( ସଂ. ପତ୍ର )—ଧାନ ଗଛର ପତ୍ରମାନ ଖୁବ ଲମ୍ବ ଲମ୍ବ ହୋଇ ବଢ଼ିଯିବା ଅବସ୍ଥା—The state of the leaves of paddy plants growing inordinately long.
Paturi
ପତୁରି ପଡ଼ିବା, ପତୁରି ପଡ଼ିଯିବା, ପତୁରି ମାରିବା, ପତୁରି ମାରିଯିବା } ଅନ୍ୟରୂପ
[ ଦ୍ର—ଏଥିରେ ଧାନ ଭଲ ଫଳେ ନାହିଁ । ]

**ପତୁରିଆ**—ଦେ. ବିଣ. ( ସଂ. ପତ୍ର )—ପତ୍ର ସମ୍ବନ୍ଧୀୟ—
Paturiā — Leafy.
( ପତରିଆ— ଅନ୍ୟରୂପ ) ( ଯଥା—ପତୁରିଆ ସିଝୁ । )

**ପତୁରିଆ ଶଅର**—ଦେ. ବି—ପତର ଶଉରା ( ଦେଖ )
Paturia śa-ara — Patara śaurā ( See )
(ପତୁରିଆ ଶବର—ଅନ୍ୟରୂପ)

**ପତୁରିଆ ସିଜୁ(ଝୁ)**—ଦେ. ବି —ପତରିଆ ସିଜୁ(ଝୁ) ( ଦେଖ )
Paturiā siju(jhu) — Patariā siju(jhu) ( See )

**ପତୁରି ଖଇର**—ଦେ. ବି—ପତ୍ରି ଖଇର ( ଦେଖ )
Paturi khaira — Patri khaira ( See )

**ପତୁଲି**—ଦେ. ବି. ( ସଂ. ପାତ୍ର, ପାତିଲୀ=ହାଣ୍ଡି, ଭୂଲ. ଫା. ପାତିଲ୍, ମ. ପାତେଲୀ, ପର୍ତ୍ତୁଗାଲ୍. ତିଜେଲ୍ )—
Patuli
ପାତିଲ୍, ତିଜେକ ୨ । ବଡ଼ମୁହାଁ ଚେପ୍ଟା ଛୋଟ ହାଣ୍ଡି—
1. A small flat earthen pot.
(ପାତୁଲି—ଅନ୍ୟରୂପ) ୨ । ବେଙ୍ଗଲା—2. Thrashing of paddy with bullocks treading on the sheaves in a circle
୩ । ଧାନ ମଳା ହୋଇ ଉଡ଼ା ହେବା ପରେ କଟାଯିବା ଧାନ ଗଦା-3. A heap of winnowed and cleansed paddy.

**ପତ୍ତଙ୍ଗ**—ସଂ ବି—ପତ୍ରାଙ୍ଗ ( ଦେଖ )
Pattanga — Patrāṅga ( See )

**ପତ୍ତନ**—ସଂ. ବି. ( ପଦ୍ ଧାତୁ=ଗମନ କରିବା+କର୍ମ. ତନ )—
Pattana — ୧ । ନଗର—1. City.
୨ । ଗ୍ରାମ, ପଟଣା—2. Village; hamlet.
ବଚେଭଳ ପତନ ଘୋଷ ହେଉଁ ପତ୍ତନ – ବାନ୍ଧବାକୁ ଅଦର ସେ ।
ଉପେ. ବୈଦେହୀ.ବିଳାସ ।
୩ । ମୃଦଙ୍ଗ—3. A drum of earth.
୪ । ମୂଳଦୁଆ (କ୍ଷୀନେନ୍ଦ୍ର) 4. Foundation.
୫ । ସୂତ୍ରପାତ, ଆରମ୍ଭ (କ୍ଷୀନେନ୍ଦ୍ର)—5. Beginning.
୬ । ଉପନିବେଶ (କ୍ଷୀନେନ୍ଦ୍ର)—6. Colony.
ଦେ. ବି—୧ । ପତନ, ସମତଳ—1. Level
୨ । ମୂଳଦୁଆ ପକାଇବା—2. Laying the foundation

**ପତ୍ତନି**—ପ୍ରାଦେ. (ମେଦିନୀପୁର) ବି. ( ସଂ. ପତ୍ତନ=ଗ୍ରାମ, ବଂ. ପତ୍ତନୀ)—
Pattani — ଏକ ପ୍ରକାର ମକଦମୀ ମଧ୍ୟ ସ୍ୱତ୍ୱ—The Pattni tenure in Bengal; a kind of middleman's tenure
[ଦ୍ର—୧ମ ପତ୍ତନିର ଅଧୀନ ମଧ୍ୟସ୍ୱତ୍ୱକୁ ଦରପତ୍ତନି ଓ ତନ୍ନିମ୍ନସ୍ଥ ସ୍ୱତ୍ୱକୁ ସେପତ୍ତନି ବୋଲାଯାଏ ।]

**ପତ୍ତନି ତାଲୁକ**—ପ୍ରାଦେ. (ମେଦିନୀପୁର) ବି.—ପତ୍ତନି (ଦେଖ)
Pattani tāluka — Pattani (See)
(ପତ୍ତନିମାହାଲ—ଅନ୍ୟରୂପ)

**ପତ୍ତନିଦାର**—ପ୍ରାଦେ. (ମେଦିନୀପୁର) ବି. – ମକଦମ, ମଧ୍ୟସ୍ୱତ୍ୱାଧିକାରୀ—
Pattanidār — Under tenure holder.

**ପତ୍ତର**—ଦେ. ବି. (ମୁସଲମାନୀ ଅଳଙ୍କାର)—ଫାଶିଆରେ ଓହଳ ଥିବା ଧାତୁର ପାନ-ଆକୃତି ପତଳା ଖଣ୍ଡ—A betel leaf-shaped bit of metal which is attached to an earring as a pendant
Pattara

**ପତ୍ତା**—ଦେ. ବି.– ପତା (ଦେଖ)
Pattā — Patā (See)

**ପତ୍ତି** – ସଂ. ବି. (ପଦ୍ ଧାତୁ=ଗମନ କରିବା+ଭାବ. ତି) · ୧ । ଗମନ, ଗତି—1. Motion.
Patti
୨ । (+କର୍ତ୍ତୃ. ତି) ବୀର—2. Hero.
୩ । ପଦାତିକ, ସୈନ୍ୟ—
3. Infantry; foot soldier.
ପେଷି ହୋଇ ଗଲେ ପତ୍ତି ଅଶ୍ୱ, ଅଶ୍ୱ ରଥ । ରାଧାନାଥ. ମହାଯାତ୍ରା ।
୪ । ଯୋଦ୍ଧା—4 Warrior.

୫ । ୧ ହସ୍ତୀ, ୧ ରଥ, ୩ ଅଶ୍ୱ, ୫ ପଦାତିକ ସମନ୍ୱିତ ସେନା—
5. A detachment of army consisting of one elephant, one car, three horses and five footmen.

୬ । ୫୫ ଜଣ ପଦାତିକ—6 55 foots-soldiers.
ପଞ୍ଚାବନ ଚୋଳ୍ପାରେ ଘୁଅଇ ପତ୍ତି ।
କୃଷ୍ଣସିଂହ. ମହାଭାରତ. ଉଦ୍ୟୋଗ ।

**ପତ୍ତିକ**—ସଂ. ବି. (ପତ୍ତି+କ)—୧ । ଦଶ ଘୋଡ଼ା, ୧୦ ହାତୀ, ୧୦ ରଥ ଓ ୧୦ ପଦାତି ସମନ୍ୱିତ ସେନାଦଳ (ହି. ଶ.)—
Pattika
1. A company of soldiers consisting of 10 horsemen; 10 elephant riders: 10 cars and 10 foot-soldiers.
(ଯଥା—ପ୍ରାଚୀନ କାଳରେ ୧୦ ପତ୍ତିକକୁ ସେନା ଓ ୧୦ ସେନାକୁ ବଳ ବୋଲାଯାଉଥିଲା ।)
୨ । ଉପର୍ଯ୍ୟୁକ୍ତ ସେନାର ଅଧ୍ୟକ୍ଷ—
2 The commander of the above company.

**ପତ୍ନୀ**—ସ ବି. ସ୍ତ୍ରୀ (ପତି+ସ୍ତ୍ରୀ. ଈ)—ଅପଣାର ବିବାହିତା ସ୍ତ୍ରୀ, ଭାର୍ଯ୍ୟା; ସହଧର୍ମିଣୀ—One's married wife; spouse.
Patni
(ପତ୍ନୀର ଅନ୍ୟ ସଂ. ନାମ—ଜାୟା, ଭାର୍ଯ୍ୟା, ଦୟିତା, କଳତ୍ର, ବଧୂ, ସହଧର୍ମିଣୀ, ଦାର୍, ଦାର, ଗୃହିଣୀ, ପାଣିଗୃହୀତା, କ୍ଷେତ୍ର, ଜନି, ଗୃହ ହି. ଶବ୍ଦସାଗର । ]

**ପତ୍ନୀ ବତ୍ସଳ**—ସଂ. ବିଣ. ପୁଂ.—ଅପଣା ଭାର୍ଯ୍ୟା ପ୍ରତି ଏକାନ୍ତ ଅନୁରକ୍ତ—
Patni batsala Attached to one's wife.

**ପତ୍ନୀବ୍ରତ**—ସଂ. ବି. (ମ. ପ. ଲୋ, ପତ୍ନୀ+ବ୍ରତ)—ଅପଣାର ବିବାହିତା ସ୍ତ୍ରୀ ଛଡ଼ା ଅନ୍ୟ ସ୍ତ୍ରୀ ଅଭିଗମନ ନ କରିବାରୂପ ବ୍ରତ ବା ସଙ୍କଳ୍ପ—The vow of fidelity to one's married wife
Patni brata

**ପତ୍ୟାର** (ଇତ୍ୟାଦି)—ଦେ. ବି.—ପତିଆର ଇତ୍ୟାଦି (ଦେଖ)
Patyārā (etc) Patiārā etc (See)

**ପତ୍ର**—ସଂ. ବି. (ପତ୍ ଧାତୁ+କର୍ତ୍ତୃ ର)—୧ । ଦଳ; ଗଛର ପତ୍ର—
Patra 1. Leaf of a tree
୨ । ବହିର କାଗଜ—2. Leaf of a book.
୩ । ଚିଠି—3. Letter.
୪ । ଲେଖ, ଲିପି; ଦଲିଲ—
4. Document; deed; a writing.
୫ । ହୁକୁମନାମା—5. Order.
୬ । ଅଙ୍ଗୀକାର ପତ୍ର—
6. Deed of agreement or contract.
୭ । ପକ୍ଷ; ଡେଣା—7. Wing of a bird.
୮ । ଧାତୁର ପତଳା—8. Foil of metal.
୯ । ବାଣର ପକ୍ଷ—9. The feather of an arrow.
୧୦ । ଯାନ; ବାହନ—10. Vehicle; conveyance.
୧୧ । ଅସ୍ତ୍ରର ଫଳ—11. Blade of a weapon.
୧୨ । ଦେହରେ ପତ୍ରାକୃତି ରଚନାବଳୀ—
12. Leaf-like painting on the body.
୧୩ । ଅନ୍ନାଦି ଖାଇବା ପାଇଁ ଭୂମିରେ ପାରିବା ପତ୍ର—
13. Leaves used as plates for meal.
୧୪ । ତେଜପତ୍ର (ହି ଶ.)—14. Cassia leaf.
୧୫ । ପକ୍ଷୀ (ହି. ଶ )—15. Bird.
ଦେ. ବି. ( ଅନ୍ୟ ଶବ୍ଦ ସଙ୍ଗେ ସହଚର ରୂପେ ବ୍ୟବହୃତ, ଯଥା—ପଇସା ପତ୍ର, ହିସାବ ପତ୍ର, ଚିଠି ପତ୍ର, କାଗଜ ପତ୍ର, ଜିନିସ ପତ୍ର, ପାଉଣା ପତ୍ର )—
୧ । ସମୂହ—1. Collection.
୨ । ଆଦି, ଇତ୍ୟାଦି—2. Etcetra.
ଦେ. ବି (ଜାହାଜୀୟ ଶବ୍ଦ)—ନୌକାରେ ବ୍ୟବହୃତ ଆହୁଲାର ଚଟୁ ପରି ଚଉଡ଼ା ଅଗ୍ରଭାଗ ବା ଆହୁଲାର ପଙ୍ଖା—
The fan-shaped end of an oar; the spoon-shaped blade of an oar.

**ପତ୍ରକ**—ସଂ. ବି. (ପତ୍ର+ସ୍ୱାର୍ଥ. କ)—୧ । ପତର—2 Leaf.
Patraka ୨ । ତେଜ ପତ୍ର—2. The Cassia leaf.
୩ । ପତ୍ରାବଳି ରଚନା—
3 Leaf-like paintings on the body.

**ପତ୍ର କୀଟ**—ସଂ. ବି—ବହି ଓ କାଗଜରେ ଯେଉଁ ପୋକ ଲାଗନ୍ତି—
Patra kita Moths attacking books.

**ପତ୍ର କୁଟୀ**—ସଂ. ବି. (ମ ପ. ଲୋ)—ପତ୍ରକୁଡ଼ିଆ—
Patra kuti A hut of leaves and branches.
(ପତ୍ରକୁଟୀର—ଅନ୍ୟରୂପ)

**ପତ୍ର କୁଡ଼ିଆ**—ଦେ. ବି. ( ମ. ପ. ଲୋ )—
Patra kurdiā ଗଛର ଡାଳଆ ପତ୍ରରେ ନିର୍ମିତ ହୋଇଥିବା କୁଟୀର, ପର୍ଣ୍ଣ କୁଟୀର—A hut of leaves and branches.
পাতার কুঁড়ে
पर्नकुटी

**ପତ୍ର କୋବି**—ଦେ. ବି. (ବୈଦ୍ୟକ)—ଏକ ପ୍ରକାର ବନ୍ଧା କୋବି—
Patra kobi A kind of cabbage.
বাঁধাকপি [ ଦ୍ର—ଏହା ଘିଅରେ ଭାଜି ଖାଇଲେ ରକ୍ତ ପୁଷ୍ଟି ଓ
बंधगोभी ଆୟୁର୍ବୃଦ୍ଧି ହୁଏ । ]

**ପତ୍ର ଗୁଣ୍ଡି**—ଦେ. ବି—ପନାସିଆ ( ଦେଖ )
Patra gundi Panāsiā ( See )

**ପତ୍ରଦାରକ**—ସ. ବି. (ମ ପ. ଲୋ, ପତ୍ର ବିଶିଷ୍ଟ ଦାରକ)—କରତ—
Patradāraka A saw.

**ପତ୍ର ପରଶୁ**—ସ. ବି. ( ଅନ୍ୟ ସଂସ୍କୃତ ନାମ—ଛେଦନୀ )—
Patra parasu ସ୍ୱର୍ଣ୍ଣାଦି ଧାତୁ ଛେଦକ ଶସ୍ତ୍ର, ଛେଣି—
(ପତ୍ର ପର୍ଶୁ—ଅନ୍ୟରୂପ) A tool for cutting metal.

**ପତ୍ରପାଠେ**—ଦେ. କ୍ରି. ବିଣ—ପତ୍ର ପାଠ ମାତ୍ରକେ—
Patrapāthe Immediately on reading the letter.
পত্রপাঠে (ଯଥା, ପତ୍ରପାଠେ ଆପଣ ଆସିବେ)

**ପତ୍ରପାଲ**—ସ. ବି—ଲମ୍ବ ଛୁରି ବା କଟାର (ହି. ଶ )—
Patrapāla A long knife or dagger.

**ପତ୍ରପାଲୀ**—ସଂ ବି—୧ । ବାଣର ପଛ ଭାଗ (ହି. ଶ.)—
Pātrapāli 1. The hind part of an arrow.

୨ । କଇଞ୍ଚି; କତ୍ତୁରୀ (ହି. ଶ)—2. Scissors.

**ପତ୍ରପୁଟ**—ସଂ ବି. (୬ଷ୍ଠୀ ତତ୍, ପତ୍ର+ପୁଟ)—ପତ୍ରପୁଟ, ପତ୍ରର ଠୋଙ୍ଗା—
Patraputa A cup made of leaves.

**ପତ୍ରପୁଡ଼ା**—ଦେ. ବି—ପ୍ରାଚୀନ ଜଳଯାନବିଶେଷ—
Patrapurdā A kind of ancient boat
[ ଦ୍ର—ଭୋଜରାଜାଙ୍କ ପ୍ରଣୀତ 'ଯୁକ୍ତିକଳ୍ପତରୁ' ଗ୍ରନ୍ଥ ଦ୍ରଷ୍ଟବ୍ୟ—ଜଗବନ୍ଧୁ. ପ୍ରାଚୀନ ଉତ୍କଳ । ]

**ପତ୍ରପୁଷ୍ପ(ଷ୍ପା)**—ସଂ. ବି—ରକ୍ତ ତୁଳସୀ, କଳାତୁଳସୀ—
Patrapushpa(shpā) Ocimum Sanctum.

**ପତ୍ରପୁଷ୍ପକ**—ସଂ ବି— ଭୂର୍ଜପତ୍ର ଗଛ—
Patrapushpaka Birch tree; Betula Utilus.

**ପତ୍ର ବନ୍ଧ**—ସଂ. ବି ( ବହୁବ୍ରୀହି, ପତ୍ର ପରି ବନ୍ଧ=ରଚନା ଯାହାର )—
Patra bandha ୧ । ପତ୍ରପୁଷ୍ପାଦିର ଚିତ୍ର—1. Painting or drawing of flowers and leaves.
୨ । ଚିତ୍ରକାବ୍ୟବିଶେଷ —
2. Name of a pictorial composition.

**ପତ୍ରବାହ**— ସଂ. ବି—ବାଣ—
Patrabāha Arrow
(ପତ୍ରବାହକ-ଅନ୍ୟରୂପ) ୨ । ଲିପିବାହୀ, ଯେ ଚିଠି ବୁହାଏ—
2. Messenger; bearer of a letter; letter-carrier.
ଦେ. ବି—ଡାକହରକରା—Postman.

**ପତ୍ର ବିଶେଷ**—ସଂ. ବି—୧ । ଚିତା ଯେପରି, ତିଳକ ଚିତ୍ର, ଦେହରେ
Patra bisesha ପତ୍ରାଦି ଚିତ୍ରଣ—1. Painting of foliage on the body.
ପତ୍ରବିଶେଷକ, ପତ୍ରଲେପ, ପତ୍ରାଙ୍ଗୁଳ } ଅନ୍ୟରୂପ ୨ । ସ୍ତ୍ରୀମାନଙ୍କ ସ୍ତନ କପୋଳାଦିରେ କସ୍ତୁରୀ ଚନ୍ଦନଦ୍ୱାରା ପତ୍ର ରଚନା—
2. Painting of various designs on the breasts and cheeks of women.

**ପତ୍ର ବେଷ୍ଟ**—ସଂ. ବି. ( ପତ୍ର=ପତ୍ରାକାର+ବେଷ୍ଟ=ବଳୟ )—
Patra beshta ୧ । ତାଡ଼—1. Amulet.
( ପତ୍ରଦ୍ରୁମ— ଅନ୍ୟରୂପ ) ୨ । ତାଟଙ୍କ—
2. A kind of earring.

**ପତ୍ର ବ୍ୟବହାର**—ସଂ. ( ୬ଷ୍ଠୀ ତତ୍, ପତ୍ର+ବ୍ୟବହାର )—ଦୁଇ ଜଣଙ୍କ
Patra byabahāra ମଧ୍ୟରେ ପତ୍ରର ଆଦାନ ପ୍ରଦାନ—
Exchange of letters between two persons; carrying on of correspondence.

**ପତ୍ର ଭଙ୍ଗ**—ସଂ. ବି—ପତ୍ରବିଶେଷ (ଦେଖ)
Patra bhanga Patrabisesha ( See )
[ପତ୍ରଭଙ୍ଗି(ଙ୍ଗୀ), ପତ୍ରରଚନା, ପତ୍ରଲେଖ(ଖା), ପତ୍ରବଲ୍ଲରୀ]—ଅନ୍ୟରୂପ

**ପତ୍ରମଞ୍ଜରୀ**— ସଂ. ବି. ( ୬ଷ୍ଠୀ ତତ୍ )—୧ । ପତ୍ରର ଅଗ୍ରଭାଗ—
Patramañjari 1. The apex of a leaf.
୨ । ( ବହୁବ୍ରୀହି; ପତ୍ରର ମଞ୍ଜରୀ ପରି ମଞ୍ଜରୀ ଯାହାର ) ପତ୍ରର ଅଗପରି ତିଳକ ରଚନା—2. Painting on the body resembling the apex of leaves.

**ପତ୍ରମୁଦ**—ଦେ. ବି. ( ସଂ. ପତ୍ର+ମୁଦ୍ରା)—ମୁଦ୍ରିତ ପତ୍ର, ମୁଦା ଚିଠି—
Patramuda An enveloped or sealed letter.
ମୁଦାଚିଠି ଏମନ୍ତ ବାଳକା କୁସୁମମାଳକା ହେଉଁ ପତ୍ରମୁଦେ ପାଇଲା ।
ଉପେନ୍ଦ୍ର. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।

**ପତ୍ର ରଥ**—ସଂ. ବି. (ବହୁବ୍ରୀହି; ପତ୍ର ଅଟେ ରଥ ଯାହାର)—୧ । ପକ୍ଷୀ—
Patra ratha 1. Bird.
୨ । ବାଣ—2. Arrow.

**ପତ୍ରଳ**— ସଂ. ବି. ( ପତ୍ ଧାତୁ+ଋଳ )—ପାତଳ ଦହି, ଘୋଳଦହି—
Patraḷa Whey; churned curd.

**ପତ୍ର ଲିଖନ**—ସଂ ବି—ଚିଠି ଲେଖିବା—Writing of letters
Patra likhana (ପତ୍ରଲେଖନ—ଅନ୍ୟରୂପ)

**ପତ୍ର ଲେଖ**—ସଂ. ବି—ପତ୍ରବିଶେଷ ( ଦେଖ )
Patra lekha (ପତ୍ରଲେପ—ଅନ୍ୟରୂପ) Patrabisesha (See)
ଦେ. ବି—ଚିଠି—Letter.

**ପତ୍ର ଲେଖା**—ସଂ. ବି—ପତ୍ରବିଶେଷ ( ଦେଖ )
Patra lekhā Patrabisesha ( See)
ଦେ ବି - ଚିଠି ଲେଖିବା—Writing of a letter

**ପତ୍ର ଶବର**—ସଂ. ବି ( ମ. ପ. ଲୋ, ପତ୍ର ପରିଧାନକାରୀ ଶବର)—ପତର
Patra sabara ଶଉରା (ଦେଖ) Patara saurā ( See)
( ପତ୍ର ଶବରୀ—ସ୍ତ୍ରୀ ) (ପତ୍ରଶଉରା-ଦେଶଜରୂପ)

**ପତ୍ର ଶିରା**—ସଂ ବି. ( ୬ଷ୍ଠୀ ତତ୍, ପତ୍ର+ଶିରା )—ପତ୍ରରେ ଥିବା ଉଚ୍ଚ
Patra sirā ଶିରା ବା ରେଖାମାନ—The lines or ridges on a leaf.
( ପତ୍ରନାଡ଼ିକା—ଅନ୍ୟରୂପ )

**ପତ୍ର ଶ୍ରେଷ୍ଠ**— ସଂ. ବି. ( ୭ମୀ ତତ୍; ପତ୍ର+ଶ୍ରେଷ୍ଠ )—ବେଲପତ୍ର ( ହି. ଶ. )—The leaves of the Bela tree.
Patra sreshtha

**ପତ୍ରସିଜୁ(ଝୁ)**— ଦେ. ବି—ପତରସିଜୁ ( ଦେଖ )
Patrasiju(jhu) Patarasiju ( See )

**ପତ୍ର ସୂଚୀ**— ସଂ. ବି—୧ । କଣ୍ଟା, କଣ୍ଟକ ( ହି. ଶବ୍ଦସାଗର )—
Patra sūchi 1. Thorn.
୨ । ସୂଚୀପତ୍ର (ଦେଖ)—2. Sūchipatra (See)

**ପତ୍ରା**—ପ୍ରାଦେ. ( ସମ୍ବଲପୁର ) ବି—୧ । ସାନ ସାନ ବୁଦା—
Patrā 1. Small bushes.
୨ । ସାନ ସାନ ବୁଦା ଥିବା ସ୍ଥାନ —
2. A place overgrown with bushes.

**ପତ୍ରାଖ୍ୟ**—ସଂ. ବି. (ପତ୍ର+ଆଖ୍ୟା—ନାମ ଯାହାର )—୧ । ତେଜପତ୍ର—
Patrākhya 1. Cassia leaf.
୨ । ତାଳିଶପତ୍ର—2. The leaf of the Silver fir; Abies Webbiana.

**ପତ୍ରାଙ୍କ**—ସଂ. ବି. ( ୬ଷ୍ଠୀ ତତ୍ )—ପୁସ୍ତକର ପୃଷ୍ଠାଙ୍କ; ବହିର ପ୍ରତ୍ୟେକ
Patrānka ପୃଷ୍ଠାରେ ଯେଉଁ କ୍ରମିକ ସଂଖ୍ୟା ଲେଖା ଯାଇଥାଏ—
The figure or number of a page of a book; page-number of book.

ପତ୍ରାଙ୍ଗ—ସଂ ବି —୧ । ରକ୍ତ ଚନ୍ଦନ—
Patrānga 1. Red sandal;
(ପତ୍ରାଢ୍ୟ, ପତ୍ରାଢ୍ୟ—ଅନ୍ୟନାମ) Pterocarpus Santalinus.
୨ । ବକମ ଗଛ—2. Caesalpinia Sappan.

ପତ୍ରାବଳି(ଳୀ)—ସଂ. ବି.—୧ । ପତ୍ରବିଶେଷ (ଦେଖ)
Patrābali(li) 1. Patra bisesha (See)
୨ । ପତ୍ର ସମୂହ—2 A collection of leaves.
୩ । ଚିଠିମାନଙ୍କ ସମୂହ—3. A collection of letters.
୪ । ଗେରୁ (ହି. ଶ.)—4 Red ochre.

ପତ୍ରାଳି—ପ୍ରାଦେ (ସମ୍ବଲପୁର). ବି.—ଛୋଟ ଛୋଟ ବୁଦାଆଦି ଥିବା ସ୍ଥାନ—
Patrāli A place full of small bushes.

ପତ୍ରି—ଦେ. ବି—୧ । ବନ୍ୟ ଗୁଳ୍ମବିଶେଷ—
Patri 1 Flueggea Obovata.
୨ । ପଣ୍ଡା ଜାତୀୟ ବ୍ରାହ୍ମଣବିଶେଷ—
2 A caste of Brāhmnas.
୩ । ଦେବତାଙ୍କର ସେବକବିଶେଷ; ପତ୍ରିବଡୁ—
3. A class of Sebaks or attendants of idols.
[ଦ୍ର—ଏମାନେ ପୂଜାପଣ୍ଡାଙ୍କୁ ପୂଜାର ଉପକରଣ ଓ ତୁଳସୀ, ବେଲପତ୍ର, ପୁଷ୍ପାଦି ଯୋଗାନ୍ତି ।]
ପ୍ରାଦେ (ସମ୍ବଲପୁର) ବି.—ଖଲି ପତ୍ର—Leaves sewn together and used as plate for taking meals on.

ପତ୍ରିକା—ସଂ. ବି (ପତ୍ର+କ+ସ୍ତ୍ରୀ. ଆ)—୧ । ଚିଠି—
Patrikā 1. Letter.
୨ । ଗେଜେଟ୍, ସମ୍ବାଦପତ୍ର—
2 Gazette; newspaper.
୩ । ସାମୟିକ ପତ୍ର—3. Magazine.

ପତ୍ରି ଖଇର—ଦେ. ବି—ତାଳ ପତ୍ର ଗୁଡ଼ା ହୋଇଥିବା କଳା ଖଇର—
Patri khaira Blocks of black catechu wound round with palm leaves.

ପତ୍ରିଙ୍ଗା—ଦେ. ବି. ( ସଂ. ପତଙ୍ଗ )—ଶାଖାଶ୍ରୟୀ ବର୍ଗର କ୍ଷୁଦ୍ର ପକ୍ଷି ବିଶେଷ; ବାଇଁଶ ପତ୍ରୁରିଆ ପକ୍ଷୀ—The
Patringā Indian Bee-eater.

ପତ୍ରିଣୀ—ସଂ. ବି. (ପତ୍ର+ଇନ୍+ସ୍ତ୍ରୀ. ଈ)—କିଶଳୟ; ନବ ପଲ୍ଲବ—
Patrini Tender leaf.

ପତ୍ରି ବଡୁ—ଦେ. ବି—ଭୁବନେଶ୍ୱର ଓ ଜଗନ୍ନାଥଙ୍କର ନିଯୋଗ ବା
Patri bardu ସେବକବିଶେଷ—A class of attendants of the idols at Puri and Bhubaneswar.
[ଦ୍ର—ଏମାନେ ପୂଜା ସମୟରେ ପୂଜା ପଣ୍ଡାଙ୍କ ନିକଟରେ ଫୁଲ, ତୁଳସୀ, ପତ୍ର, ବେଲ ପତ୍ର ନେଇ ଯୋଗାନ୍ତି ।]

ପତ୍ରି ମସିଣା—ପ୍ରାଦେ (ବାଲେଶ୍ୱର). ବି.—ପତ୍ରୁଡ଼ି ମସିଣା—
Patri masinā A mat made of a wide-bladed reed.

ପତ୍ରୀ—ସଂ. ବି. (ପତ୍ର+ଇନ୍, ୧ମା. ୧ବ)—୧ । ପକ୍ଷୀ—
Patri 1. Bird.
୨ । ଶର, ବାଣ—2. Arrow.
୩ । ପର୍ବତ—3. Mountain.
[ଦ୍ର—ପୁରାଣମତେ ପର୍ବତମାନଙ୍କର ପୂର୍ବେ ପକ୍ଷ ଥିଲା ।]
୪ । ରଥ—4. Car.
୫ । ବୃକ୍ଷ—5. Tree; plant.
୬ । ତାଳ ଗଛ—6. Palm tree.
୭ । (ପତ୍ର+ସ୍ତ୍ରୀ ଈ) ପତ୍ରିକା, ଚିଠି—Letter
୮ । ଶ୍ୟେନ, ଛଞ୍ଚାଣ (ହି. ଶ.)—8. Falcon.
ସଂ. ବିଣ.—ପତ୍ରବିଶିଷ୍ଟ—Leafy.

ପତ୍ରୋର୍ଣ୍ଣ—ସଂ. ବି. (ପତ୍ର+ଊର୍ଣ୍ଣା+ଅ)—୧ । ଧୌତ କୌଷେୟ—
Patrornna 1. Washed silken cloth.
୨ । ଫଣଫଣା, ଶ୍ୟୋନାକ—
2. Bignonia Indica (plant).

ପତ୍ରୋପସ୍କର—ସଂ. ବି – କାସମର୍ଦ୍ଦ ( ଦେଖ )
Patropaskara Kāsamardda ( See )

ପତ୍ରୋଲ୍ଲାସ—ସଂ. ବି. ( ୬ଷ୍ଠୀ ତତ୍; ପତ୍ର+ଉଲ୍ଲାସ )—
Patrollāsa ଫୁଲର କଢ଼ି; ମୁକୁଳ—
Flower-bud; blossom.

ପଥ୍ (ଧାତୁ)—ସଂ—ଗମନ କରିବା—
Path (root) To go.

ପଥୁରିଆ—ପ୍ରାଦେ. (ସମ୍ବଲପୁର) ବି—ପଥୁରିଆ—
Path-riā Stone-mason.

ପଥ—ସଂ. ବି. (ପଥ୍ ଧାତୁ+ଅ, ତୁଲ. ଇଂ. ପାଥ୍, ଗ୍ରୀକ୍ ପୋଣ୍ଟୋସ୍)—
Patha ୧ । ରାସ୍ତା, ବାଟ, ମାର୍ଗ—1. Path; road; way.
୨ । ରନ୍ଧ୍ର; ଛିଦ୍ର—2 Hole.
୩ । ଦ୍ୱାର—3. Exit; door.
୪ । କୌଶଳ, ଉପାୟ, କାର୍ଯ୍ୟ ସାଧନର ଉପାୟ—
4 Contrivance; means; ways and means.

କ କରିବ କ କରଣ ପଥ । କବିସୂର୍ଯ୍ୟ. ସଙ୍ଗୀତ ।

୫ । ଶୈଳୀ; ଚଳନ—
5. Line of conduct; mode of living.
୬ । ରୀତି; ପଦ୍ଧତି, କାର୍ଯ୍ୟ ସାଧନର ବିଧାନ—
5. Manner; mode of work.
୭ । ଦୃଷ୍ଟି ଆଦିର ସୀମା—
7. Reach ( of the eye ).
( ଯଥା—ନୟନ ପଥ; ଦୃଷ୍ଟି ପଥ, କର୍ଣ୍ଣ ପଥ । )
୮ । କାର୍ଯ୍ୟର ଗତି ବା ଧାରା—8 Course.
( ଯଥା—ଧର୍ମ ପଥ, ମୋକ୍ଷ ପଥ । )

ପଥକ—ସଂ. ବି. ( ପଥ+କ )—
Pathaka ୧ । ଯେ ବାଟ ଦେଖାଏ; ପଥ ଦର୍ଶକ—
1. A guide.
୨ । ଜିଲ୍ଲା; ପ୍ରଦେଶ—
2. A district; canton ( M. W. )

**ପଥ କଢା(ଢେ)ଇବା**—ଦେ. କ୍ରି—ଆଗରେ ଥାଇ ପଶ୍ଚାଦ୍‌ବର୍ତ୍ତୀ ବ୍ୟକ୍ତିଙ୍କୁ ବାଟ ଦେଖାଇବା—
Patha kardhā(rdhe)ibā
पथ देखाना To lead the way; to guide.
**राह बताना** ବୋଲନ୍ତି କଢାଅ ହେ ପଥ, ଆଗ ହୋଇଲେ ଗୋପୀନାଥ । କଳାନାଥ. ଭାଗବତ ।
[ପଥ ଦେଖା(ଖେ)ଇବା—ଅନ୍ୟରୂପ]

**ପଥ କର**—ଦେ ବି.(ଇଂ ରୋଡ୍ ସେସ୍‌ର ଅନୁବାଦ; ଆଧୁନିକ ବ୍ୟବହାର)—
Patha kara ରୋଡ୍ ସେସ୍, ରାଜ୍ୟର ସାଧାରଣ ରାସ୍ତାମାନ ତିଆର
पथकर ଓ ମରାମତି କରିବା ନିମନ୍ତେ ଗଭର୍ଣ୍ଣମେଣ୍ଟଙ୍କ ଦ୍ୱାରା
**रोड सैस** ଭୂସ୍ୱାମୀମାନଙ୍କ ଉପରେ ନିର୍ଦ୍ଧାରିତ ଟିକସ—
Road-cess.

**ପଥ କଳ୍ପନା**—ସଂ ବି—ଇନ୍ଦ୍ରଜାଲ—
Patha kalpanā Juggling tricks, conjuring.

**ପଥ ଖରଚ**—ଦେ ବି. ( ସଂ. ପଥ+ଫା. ଖର୍ଚ )—
Patha kharacha ଯାତ୍ରେପ୍ସୁ, ବାଟ ଖରଚ, କୌଣସି ସ୍ଥାନକୁ
पथ खचर ଯାଉଥିବା ବ୍ୟକ୍ତିର ବାଟରେ ଯାହା ବ୍ୟୟ ହୁଏ—
**राह खर्चा** Journey-expenses; travelling expenses.

**ପଥଗାମୀ**—ସଂ. ବିଣ. ପୁଂ (ପଥ+ଗମ୍ ଧାତୁ+କର୍ତ୍ତୃ. ଇନ୍; ୧ମା. ୧ବ)-
Pathagāmi ବାଟରେ ଯାଉଥିବା—Travelling in a road.
(ପଥଗାମିନୀ—ସ୍ତ୍ରୀ) ସଂ. ବି. ପୁଂ—ପଥିକ, ବାଟୋଇ—
(ପଥଗୃତ୍ରୁ—ଅନ୍ୟରୂପ) Traveller; passenger, wayfarer.

**ପଥ ଦର୍ଶକ**—ସଂ. ବି. (୬ଷ୍ଠୀ ତତ୍)—ପଥପ୍ରଦର୍ଶକ, ଯେ ବାଟ କଢ଼ାଏ—
Patha darśaka A leader; a guide; a conductor.

**ପଥ ଦେଖା(ଖେ)ଇବା**—ଦେ. କ୍ରି—୧ । ବାଟ ଦେଖାଇବା, ବାଟ କଢ଼ାଇବା—1. To lead the way; to guide.
Patha dekhā(khe)ibā
୨ । (ଲକ୍ଷଣାର୍ଥ) ପରବର୍ତ୍ତୀ ବ୍ୟକ୍ତିମାନଙ୍କ ପାଇଁ ଗୋଟିଏ ନୂଆ ଉପାୟ ବା ରୀତି ଆରମ୍ଭ କରିବା—2. (figurative) To do a new thing which others will follow
ତାଙ୍କୁ ପ୍ରଣମି ଦେଖାଇଲେ ପଥ
ଏବେ ଜନନୀଙ୍କ ସ୍ନେହ ଭୁମର । ଉପାସ. ଗୀତ ଲହରୀ ।

**ପଥ ପାର୍ଶ୍ୱ**—ସଂ ବି. (୬ଷ୍ଠୀ ତତ୍, ପଥ+ପାର୍ଶ୍ୱ)—ବାଟ ପାଖ—
Patha pārśwa Wayside.

**ପଥ ପ୍ରାନ୍ତ**—ସଂ. ବି. ( ୬ଷ୍ଠୀ ତତ୍; ପଥ+ପ୍ରାନ୍ତ)—
Patha prānta ୧ । ବାଟ ପାଖ—1. Wayside; side of the road.
୨ । ପଥର ସୀମା—2. The end of a road; terminus.

**ପଥ ବାହିବା**—ଦେ. କ୍ରି—ବାଟ ଚାଲିବା—
Patha bāhibā To walk.
पथचला ମୋତେ ପରମ ଜ୍ଞାନ ଦେଇ, ତହୁଁ ସେ ଗଲେ ପଥ ବାହି ।
**रास्ता चलना** ଜଗନ୍ନାଥ. ଭାଗବତ ।

**ପଥ ଭୁଲିବା**—ଦେ. କ୍ରି—୧ । ବାଟ ଭୁଲିବା; ଭୁଆଁ ବୁଲିବା—
Patha bhulibā 1. To lose one's track; to make
पथ हाबान mistake about the road one has to take.
**पथ भूलना**
୨ । ଅବାଟରେ ଯିବା—
2. To go on a wrong track.

**ପଥ ଭ୍ରାନ୍ତ**—ସଂ. ବିଣ. ପୁଂ—୧ । ଯେ ବାଟ ଭୁଲିଛି—
Patha bhrānta 1. One who has lost his way.
(ପଥଭ୍ରାନ୍ତା—ସ୍ତ୍ରୀ) ୨ । କୁପଥଗାମୀ—2. Proceeding in a wrong path.

**ପଥର**—ଦେ ବି. ( ସଂ. ପ୍ରସ୍ତର, ପ୍ରାକୃତ ପତ୍ଥର )—
Pathara पाथर **पत्थर** ୧ । ପ୍ରସ୍ତର; ପାଷାଣ—1. Stone.
[ଦ୍ରି—ପଥର ଅନେକ ପ୍ରକାରର, ଯଥା—୧. ମୁଗୁନି (chlorite), ୨. ବାଲିଆ ପଥର ( କନ୍ଦା ବା କୁଣ୍ଡା ) ( sandstone ), ୩. ଶଙ୍ଖମର୍ମର (marble), ୪ ଖଡ଼ିପଥର ( ଦୁଧିଆ ଓ ମାଟିଆ ଆଦି ) (chalkstone, soapstone), ୫. ମାକଡ଼ା ପଥର (laterite), ୬. ସ୍ଫଟିକ ବା ସ୍ୱଚ୍ଛିକ (quartz), ୭. ଅଗ୍ନିଉଦ୍‌ଗୀର୍ଣ ପଥର (volcanic stone), ୮. ଗେଙ୍ଗୁଟି ( ghooting), ୯. ସ୍ଲେଟପଥର ( slate stone ), ୧୦. ବାଲିଗରଡ଼ା ( pebble, gravel ), ୧୧ ବଉଳମାଳ (spotted stone) । ଏ ପ୍ରତ୍ୟେକଙ୍କର ମଧ୍ୟ ଅନେକ ଶ୍ରେଣୀ ଅଛି ।
ବାବୁ ଚନ୍ଦ୍ରମଣି ଆଚାର୍ଯ୍ୟ ତାଙ୍କର 'ଭୁବନେଶ୍ୱର ନାମକ ଗ୍ରନ୍ଥରେ ପଥରକୁ ନିମ୍ନଲିଖିତ ଶ୍ରେଣୀରେ ବିଭକ୍ତ କରିଅଛନ୍ତି । ଯଥା—(୧) ଡାଳମ୍ବା—(କ) ଶୁକ୍ଳ (ଖ) ରଙ୍ଗ, (୨) ରାଜରାଣିଆ—(କ) ରଙ୍ଗ (ଖ) ହଳଦିଆ, (୩) କନ୍ଦା—(କ) ଖଡ଼ିଆ (୨) ଟାଣ (୩) ନରମ, (ଖ) ବଗଡ଼ା କନ୍ଦା—(୨) ସରୁ (୩) ମୋଟ, (୪) ମାଙ୍କଡ଼ା (୫) ବଉଳମାଳ, (୬) କୁଣ୍ଡାପଥର (୭) ମୁଗୁନି ପଥର (୮) ଖଡ଼ିପଥର ଓ (୯) ଚକ୍ ।]
୨ । ପଥର ପରି ଟାଣୁଆ ବସ୍ତୁ—
2. Any hard thing compared to stone.
ଦେ. ବିଣ.—୧ । (ପଥର ପରି) ଦୁଃଖ ସହନଶୀଳ (ହୃଦୟ)—
1. Capable of endurance (heart)
ଛାତି ପଥର କରିଣ ସହୁ ଅଛୁ, ଆଗେ ଚିନ୍ତି ସହି । ସଙ୍ଗୀତ ।
୨ । ଧୈର୍ଯ୍ୟଶୀଳ—2. Patient.
୩ । ନିର୍ଦ୍ଦୟ, ନିଷ୍ଠୁର; ନିଷ୍କରୁଣ—
3. Hard-hearted; cruel; unfeeling.
୪ । ଅତ୍ୟନ୍ତ ସାହସୀ, ନିର୍ଭୀକ—
4. Courageous; dauntless.

**ପଥର ଖଡ଼ି**—ଦେ. ବି.—(ସଂ. ପ୍ରସ୍ତର+ଖଟି)—ଚକ୍ ଖଡ଼ିଠାରୁ ଟାଣୁଆ
Pathara khardi ପଥର, ଖଡ଼ିପଥର—Chalk stone.

**ପଥର ଗାର**—ଦେ. ବି.—ପଥର ଉପରେ ପକା ଯିବା ରେଖା—
Pathara gāra A line drawn on stone.
**पाथवेब उपब दाग** ଦେ. ବିଣ.—(ଲକ୍ଷଣାର୍ଥ), ପଥର ଉପରେ ଗାର
**पत्थरकी लकीर** ପଡ଼ିଲେ ଯେପରି ଦୃଢ଼ଭାବରେ ରହେ ଓ ଲିଭେ ନାହିଁ ସେହିପରି)—୧ । ଚିରସ୍ଥାୟୀ—
ପଥରର ଗାର } ଅନ୍ୟରୂପ 1 (figurative) Long lasting; permanent; firm as a rock.
ପଥରରେ ଗାର }
(ପାଣିର ଗାର—ଅନ୍ୟରୂପ)

୨ । ଅଟଳ (ଅଙ୍ଗୀକାର ବା ପ୍ରତିଜ୍ଞା), ଅପରିବର୍ତ୍ତନୀୟ—
2. Inviolable (promise); unchangeable.

**ପଥର ଗୁଟୁ**—ଦେ ବ.—ଏକ ପ୍ରକାର ଗଡ଼ଣା ଜାତୀୟ ମାଛ—
Pathara guṭu A kind of freshwater fish
[ଦ୍ର— ଏମାନେ ପାଣିରେ ପଥର ସନ୍ଧିରେ ରହନ୍ତି, ଦେହ କଳଲ ପରି କଳା ।]

**ପଥର ଗେରୁ**—ଦେ ବ. (ବୈଦ୍ୟକ)—ଗୈରିକ (୧) (ଦେଖ)
Pathara geru Gairika (1) (See)

**ପଥର ଚି(ଚୁ)ପୁଡ଼ିବା**—ଦେ କ୍ରି.— (ଲକ୍ଷଣାର୍ଥ; ପଥରକୁ ଚିପୁଡ଼ିବା
Pathara chi(chu)purḍibā ଯେଉଁପରି ଅସମ୍ଭବ ସେହିପରି)—
ପାଥର ନିଙ୍ଗଡାନ ୧ । ଯେଉଁ କର୍ମରୁ ଫଳ ଲାଭ ନ ହେବ, ଫଳ ଲାଭ
पत्थर निचोड़ना ଆଶାରେ ସେପରି କାର୍ଯ୍ୟ କରିବା—1. To do a thing from which it is imposible to get any result
୨ । ଅତି କୃପଣ ଓ ଅଦାତା ଠାରୁ କିଛି ଦାନ ଆଶା କରିବା—
2. To hope for any gift from a miser.

**ପଥର ଚୂନ**—ଦେ ବ.—ପଥର ପୋଡ଼ି କରି ତହିଁରୁ ପ୍ରସ୍ତୁତ ଚୂନ—
Pathara chūna Stone lime.
ପାଥରଚୁନ पत्थरकाचूना

**ପଥର ଟାଶରି**—ପ୍ରାଦେ. (ଗଡ଼ଜାତ) ବ.— ସମତଳ ବିସ୍ତୃତ ପଥର—
Pathara ṭāsarā A big level slab of stone

**ପଥର ପାଣି ହୋଇ ଯିବା**—ଦେ. ବ.—(ଲକ୍ଷଣାର୍ଥ) ଅତ୍ୟନ୍ତ କଷ୍ଟୁର
Pathara pāṇi hoi jibā ହୃଦୟ ମଧ୍ୟ ଦୟାରେ ତରଳିଯିବା—
पत्थर पिघलना, पत्थर पसीजना The melting of a very hard heart.
ପଥର ପାଣି ହେବା } ଅନ୍ୟରୂପ
ପଥର ପାଣେଇବା }
ସେ କାନ୍ଦ ଶୁଣିଲେ ପଥର.ବି ପାଣି ହୋଇଯିବ ।
ମଳକଣ୍ଠଦାଶ. ପିଲଙ୍କ ରାମାୟଣ ।

**ପଥର ଫୋଡ଼**—ଦେ. ବ. (ସଂ. ନାମ, ପାଷାଣଭେଦୀ) ଋଳୁଣୀ ଦାଢ ପୋଷ୍ଟ
Pathara phorḍa ଗୁଳ୍ମ—Coleus Aromaticus.
ପାଥର ଚୁର पत्थरचूर (a herbarious plant).
[ଦ୍ର—ତୁଳସ୍ୟାଦ ବର୍ଗର ଶାକବିଶେଷ, ପତ୍ର ସୁଗନ୍ଧ, ମୋଟା ଓ ମାଂସଳ ଏବଂ ଶିରାଯୁକ୍ତ । ପତ୍ର ଓ ଡାଳ ଉପର ମସଣ । ଫୁଲ ଛୋଟ ଛୋଟ ଓ ନୀଳାଭ ନାଲି । ପେଟ ବିଗିଡ଼ିଲେ ଏ ପତ୍ରରସ ମହତ ସଙ୍ଗେ ବାଟି ପିଅନ୍ତି ।]

**ପଥର ବାଇଉଣୀ**—ଦେ. ବ ସ୍ତ୍ରୀ—ନିରାଶ୍ରୟା ସ୍ତ୍ରୀଲୋକ—
Pathara bāurāṇi A helpless woman.

**ପଥର ବାସନ**—ଦେ. ବ.—ପଥରରେ ନିର୍ମିତ ପାତ୍ରାଦି—
Pathara bāsana Stone utensils.
ପାଥରେ ବାସନ पत्थरका बरतन

**ପଥର ଭିକା(ଖା)ରୀ**—ଦେ. ବ. ପୁଂ—୧ । ଗୃହହୀନ ଭିକ୍ଷୁକ; ଯେ ବାଟରେ
Pathara bhikā(khā)ri ବୁଲି ଭିକ୍ଷା କରେ—1. A home-
पथका भिखारी पथका भिखारी less beggar.
[ ପଥର ଭିକା(ଖା)ରୁଣୀ—ସ୍ତ୍ରୀ ] ୨ । ଅତ୍ୟନ୍ତ ଗରୀବ ଓ ବାସସ୍ଥାନ ବର୍ଜିତ—2. An utterly destitute and homeless person.

**ପଥର ମୁଣ୍ଡି**—ଦେ. ବ.—ଲୁଣି ମାଛ ବିଶେଷ—
Pathara muṇḍi A kind of fish found in the sea
[ଦ୍ର—ଏହାର କାତି ଥାଏ । ଏହା ୬ ଇଞ୍ଚ ଲମ୍ବ । ଏ ମାଛର ମୁଣ୍ଡ ଉପରୁ ବାଲିଗରଡ଼ା ପରି ପଥର ବାହାରେ ।]

**ପଥର ମୁଣ୍ଡେଇ**—ଦେ. ବ.—ଏକପ୍ରକାର ନାଲି ବିଷାକ୍ତ ସାପ—
Pathara muṇḍei A kind of red coloured poisonous snake

**ପଥରର ଛାତି**—ଦେ. ବ.—୧ । ଅତି କଷ୍ଟୁର ହୃଦୟ—
Patharara chhāti 1 Hard heart.
ପାଥରେର ବୁକ ୨ । ଦୁଃଖ ଶୋକାଦିରେ ଅବିଚଳିତ ମନ—
पत्थरकी छाती 2. A mind which is not moved by any feeling, unperturbed mind
ପଥରର ବୁକୁ }
ପଥର ହୃଦୟ } ଅନ୍ୟରୂପ
ପଥର ଛାତି }
୩ । ଅତ୍ୟନ୍ତ ଧୈର୍ଯ୍ୟଶୀଳ ମନ—
3. Very patient mind.
୪ । ଅତ୍ୟନ୍ତ ସହନଶୀଳ ହୃଦୟ—4. A mind which can bear much suffering.

**ପଥର ଶଙ୍ଖାଳି**—ଦେ. ବ—ବାଟରେ ସହାୟ ହେବା ପଦାର୍ଥ—
Pathara śaṅkhāḷi Help on the way.
( ପଥକୁ ଶଙ୍ଖାଳି—ଅନ୍ୟରୂପ ) ତୋ ନାମ ପଥକୁ ଶଙ୍ଖାଳି—
ଜଗନ୍ନାଥ. ଭାଗବତ ।

**ପଥରୋଧ**—ସଂ. ବ. (୬ଷ୍ଠୀ ତତ୍, ପଥ+ରୋଧ )—ଯିବା ବାଟରେ
Patharodha ଉପସ୍ଥିତ ବାଧା—Obstruction of one's path.

**ପଥଶରମ**—ଦେ ବ. ( ସଂ. ପଥଶ୍ରମ )—୧ । ପଥଶ୍ରମ, ବାଟ ଚାଲିବା
Pathaśarama ଯୋଗୁଁ ଜନ୍ମିବା କ୍ଳାନ୍ତି—
ପଥଶର୍ମ }
ପନ୍ଥଶରମ } ଅନ୍ୟରୂପ
ପନ୍ଥଶର୍ମ }
1. Fatigues of journey.
୨ । (ସଂ. ପରିଶ୍ରମ) ପରିଶ୍ରମ—
2. Labour, toil.

**ପଥଶରମି**—ଦେ. ବଣ. (ସଂ. ପଥଶ୍ରମୀ )—୧ । ପଥଶ୍ରାନ୍ତ, ଭ୍ରମଣକ୍ଳାନ୍ତ—
Pathaśarami 1. Tired or fatigued with journey.
(ପଥଶର୍ମି—ଅନ୍ୟରୂପ) ୨ । (ସଂ. ପରିଶ୍ରମୀ) ପରିଶ୍ରମଶୀଳ—
2. Laborious.

**ପଥଶ୍ରମ**—ସଂ. ବ. (ମ. ପ. ଲୋ; ପଥଶ୍ରାନ୍ତ)—୧ । ଭ୍ରମଣଜନିତ କ୍ଳେଶ—
Pathaśrama 1 Troubles of a journey.
୨ । ଭ୍ରମଣଜନିତ କ୍ଳାନ୍ତି—
2. Fatigues of a journey.
ଗ୍ରା. ବ — ପରିଶ୍ରମ—Labour; exertion.

**ପଥଶ୍ରମୀ**—ସଂ. ବଣ. ପୁଂ ( ପଥଶ୍ରମ+ଇନ୍, ୧ମା.୧ବ. )—ପଥଶ୍ରାନ୍ତ—
Pathaśrami Fatigued by a journey.
( ପଥଶ୍ରମିଣୀ—ସ୍ତ୍ରୀ ) ଗ୍ରା. ବଣ —ପରିଶ୍ରମୀ—Laborious.
ଦେଖ ପଣ୍ଡିତ ମୋର ସ୍ୱାମୀ
ଭଗ ଯାଉଛନ୍ତି ପଥଶ୍ରମୀ – ଜଗନ୍ନାଥ. ଭାଗବତ ।

**ପଥଶ୍ରାନ୍ତ**—ସଂ. ବଣ. ପୁଂ—ବାଟ ଚାଲି ଚାଲି କ୍ଳାନ୍ତ—
Pathaśrānta Tired with the journey; way worn.

**ପଥଶ୍ରାନ୍ତି**—ସ ବ · ବାଟ ଚାଲିବା ଯୋଗୁଁ କ୍ଳାନ୍ତି—
Pathaśrānti Fatigues due to a journey.

**ପଥହରା**—ଦେ. ବିଣ—(ସଂ. ପଥ + ହୃ ଧାତୁ)—ଯେଉଁ ଲୋକ ଗନ୍ତବ୍ୟ
Patha harā ପଥକୁ ଭୁଲି ଅବାଟରେ ଯାଉଛି, ପଥ ହରାଇଥିବା,
ପଥହାଵ ବାଟ ବଣା—Having lost one's way.

**ପଥି**—ଦେ. ବି—୧ । (ସଂ ପଥ୍ୟ) ରୋଗୀର ଯୋଗ୍ୟ ଖାଦ୍ୟ, ସୁପଥ୍ୟ—
Pathi 1. Invalid's diet; food beneficial for an invalid; regimen.
ପତ୍ତି
**परहेज** ୨ । ସଦ୍ୟ ପ୍ରସୂତିର ପଥ୍ୟ ଖାଦ୍ୟ—2 Fit diet for the newly delivered mother.
୩ । (ସଂ. ପଥିନ୍) ପଥିକ—
3. Traveller, wayfarer.
ସଂ. ବି. ୧ । ( ପଥ୍ ଧାତୁ=ଗମନ କରିବା + ଅଧିକରଣ. ଈ)
ପଥ, ମାର୍ଗ – 1. Path, road; course.
ପରଲୁ ଏହି ପ୍ରହ୍ଲାଦ ରୀତ, ପଠନେ ଗାନେ ଧାଇଲ ଗତ
ପାଇବା ତଥା ବୈକୁଣ୍ଠପଥି, ପାଇବା ସାଧ ହେ—ଆନନ୍ଦ ଚନ୍ଦ୍ର, ଭକ୍ତ ପ୍ରହ୍ଲାଦ,
୨ । ମତବାଦ, ମତବାଦୀ ସମ୍ପ୍ରଦାୟ—
2. Sect; doctrine (M. W)
୩ । ନରକବିଶେଷ—3. A division of hell. (M. W)
ଦେ. ବିଣ— ରୋଗୀର ପଥ୍ୟ (ଖାଦ୍ୟ)—(food) Beneficial for an invalid

**ପଥିକ**—ସଂ. ବିଣ. ପୁଂ. (ସଂ. ପଥିନ୍=ପଥ + ଗତ୍ୟର୍ଥରେ କ)—
Pathika ୧ । ପଥଭ୍ରମଣକାରୀ—1. Wayfaring; travelling.
(ପଥିକା—ସ୍ତ୍ରୀ)
୨ । ଗୃହଠାରୁ ବହୁଦୂରସ୍ଥ ବିଦେଶବାସୀ, ପ୍ରବାସୀ—
2 Sojourning.
ସଂ. ବି—୧ । ପାନ୍ଥ, ବାଟୋଇ—1. Traveller; wayfarer.
୨ । ବିଦେଶବାସୀ ବ୍ୟକ୍ତି, ପ୍ରବାସୀ—2. Sojourner.
୩ । ପଥଦର୍ଶକ—A guide (M. W.)

**ପଥିକଜନ ବଧୂ**—ସଂ. ବି (କର୍ମଧା ଓ ୬ଷ୍ଠୀ ତତ୍, ପଥିକ + ଜନ + ବଧୂ)
Pathikajana badhū ଯେଉଁ ସ୍ତ୍ରୀର ସ୍ୱାମୀ ପ୍ରବାସୀ—Wife of a sojournere.

**ପଥିକ ନିବାସ**—ସଂ. ବି (୬ଷ୍ଠୀ, ପଥିକ + ନିବାସ)—ପାନ୍ଥ ନିବାସ, ଚଟ୍ଟି—
Pathika nibāsa A serai; traveller's resting place; an inn
(ପଥିକ ବାସ, ପଥିକ ଶାଳା, ପଥିକାଶ୍ରୟ—ଅନ୍ୟରୂପ)

**ପଥି କରିବା**—ଦେ. କ୍ରି—(ରୋଗୀ) ପଥ୍ୟ ଖାଇବା—
Pathi kariba To take diet (said of an invalid).
(ପଥି ଧରିବା—ଅନ୍ୟରୂପ) ପତ୍ତିକବା **पथ्य करना**

**ପଥିକା**—ସଂ. ବି. ଓ ବିଣ. ସ୍ତ୍ରୀ (ପଥିକ+ଆ)-ପଥିକର ସ୍ତ୍ରୀଲିଙ୍ଗ—
Pathikā Feminine of Pathika.
ସଂ. ବି— ମୁନକ୍କା; ନାଲି ଦ୍ରାକ୍ଷାଫଳ (ହି, ଶ.)—
Red grapes. (M. W)

**ପଥି ଜଗିବା**—ଦେ. କ୍ରି—(ରୋଗୀ) କୁପଥ୍ୟ ତ୍ୟାଗ କରି ସୁପଥ୍ୟ ଖାଇବା-
Pathi jagibā To live on a regular diet which is beneficial for an invalid.
ପଥ୍ୟେତେଥାକା **पथ्यसेरहना**
(ପଥି ଜଗି ଚଳିବା, ପଥି ଧାରି ରଖିବା, ପଥିରେ ରହିବା—ଅନ୍ୟରୂପ)

**ପଥି ଦେୟ**—ସଂ. ବି. (୬ଷ୍ଠୀ ତତ୍, ପଥିନ୍ + ଦେୟ)—ରାଜପଥରେ ଯିବା
Pathi deya ବ୍ୟକ୍ତିମାନଙ୍କଠାରୁ ଆଦାୟ କରାଯିବା ଶୁଳ୍କ—
A toll levied on a public road. (M. W)

**ପଥି ଦ୍ରୁମ**—ସଂ. ବି.—ଖଇର ଗଛ —
Pathi druma Acacia Catechu (tree).

**ପଥି ପଥ** – ଦେ. ବି—ବଡ଼ ରାସ୍ତାକୁ ଲାଗିଥିବା ଛୋଟ ରାସ୍ତା ବା ଗଳି—
Pathi patha Lane
କାଲୁ ବଲାଲୁ କଅବା ଯେଣୁ
ପଥି ପଥେ ମିଳିଗଲେ ଭେଣୁ – ପ୍ରାଚୀ. ରସବାରିଧି ।

**ପଥି ମଧ୍ୟରେ** – ଦେ ଅ (ସଂ. ପଥିମଧ୍ୟ ଶବ୍ଦର ୭ମୀ ବିଭକ୍ତି)—ଅଧ
Pathi madhyare ବାଟରେ, ବାଟରେ—Half way on the road; on one's way.
(ପଥି ମଧ୍ୟେ—ଅନ୍ୟରୂପ)
ପଥିମଧ୍ୟେ **पथिमधेर**

**ପଥିଲ**—ସଂ. ବି—(ପଥି + ଲା ଧାତୁ + କର୍ତ୍ତୃ. ଅ)—ପଥିକ; ପାନ୍ଥ—
Pathila Traveller; wayfarer. (M W)

**ପଥୀ**—ସଂ ବି ପୁଂ. (ପଥ + ଇନ୍; ୧ମା. ୧ବ)—୧ । ପଥିକ—
Pathī Traveller,
୨ । ପଥ ଦର୍ଶକ — 2. Guide.
କୃଷ୍ଣ ଯାହା ଇଚ୍ଛେ ପଥୀ, କୃଷ୍ଣ ପଞ୍ଚମୀ ଯେ ତଥି ।
(ପଥିନୀ—ସ୍ତ୍ରୀ) ଭଞ୍ଜ, କୋଟିବ୍ରହ୍ମାଣ୍ଡସୁନ୍ଦରୀ ।

**ପଥୀୟ** – ସଂ. ବିଣ. (ପଥ + ଈୟ) ୧ । ପଥ ସମ୍ବନ୍ଧୀୟ —
Pathīya 1 Relating to the road.
୨ । ସମ୍ପ୍ରଦାୟ ସମ୍ବନ୍ଧୀୟ—
2. Sectorial, relating to a sect.

**ପଥୁକି**—ଗ୍ରା ବି (ସଂ. ପଥିକ)—ପଥିକ, ପାନ୍ଥ—
Pathuki way farer; traveller.
ପଥୁଯା ଫୁଟିଲୁ ଯଙ୍କ ବାଟେ ଭୁଟି
**मुसाफीर, राहगीर** ପଥିକ ପ୍ରାୟେ ପଥଶ୍ରମୀ—ଜଗନ୍ନାଥ ଭାଗବତ ।
ଗ୍ରା· ବିଣ – ୧ । ପଥ ଭ୍ରମଣକାରୀ, ପଥିକ—
1. Travelling; wayfaring.
୨ । ଅନୁଭବୀ—2. Experienced.

**ପଥୁକି ବଧୂ** - ଗ୍ରା. ବି. (ସଂ. ପଥିକ ବଧୂ)—ଯେଉଁ ସ୍ତ୍ରୀର ସ୍ୱାମୀ ପ୍ରବାସୀ —
Pathuki badhū Wife of a sojourner.
ମଦନ ପ୍ରବଳ ମନରେ ଜାଣ
ପଥିକବଧୂ ବିଳାପଇ ତହୁ – ପ୍ରାଚୀ, ରହସ୍ୟମଞ୍ଜରୀ ।

**ପଥୁରିଆ** – ଦେ. ବି (ସଂ. ପ୍ରସ୍ତର)—୧ । ପଥର କାଟିବା ମିସ୍ତ୍ରୀ—
Pathuriā 1. A stone cutter; stone-mason.
ପାଥୁବେ ୨ । ପଥୁରିଆ ରୋଗ (ଦେଖ)—
**पत्थर फोड़ा** 2. Pathuriā roga (See)
ପାଥବିୟା ଦେ. ବିଣ – ୧ । ପଥରପରି ଟାଣୁଆ—
**पथरीला** 1, Hard as stone.
୨ । ପ୍ରସ୍ତରମୟ—2. Stony,

**ପଥୁରିଆ ଟିଙ୍କ**—ଦେ. ବି—( ପଥର ପରି ) ଦୃଢ଼ ଶରୀର ଓ ଚେପ୍ଟା
Pathuriā ṭinka ଟିଙ୍କ—A kind of flat-bodied tick.
( ଦ୍ର—ଟିଙ୍କ ତଳେ ନୋଟ ଦେଖ । )

**ପଥୁରିଆ ରୋଗ**—ଦେ. ବି—ମୂତ୍ରାଶୟର ଅଶ୍ମରୀ ରୋଗ—
Pathuriā roga Gravel; the calculus of the
**पाथरी पत्थरी** bladder or the kidneys.
( ପଥର ରୋଗ—ଅନ୍ୟରୂପ ) [ ଦ୍ର—ଏ ରୋଗୀର ମୂତ୍ରାଶୟରେ ପଥରର କ୍ଷୁଦ୍ର ରେଣୁମାନ କ୍ରମଶଃ ଘନୀଭୂତ ହୋଇ ବାଲିଗରଡ଼ା ପରି ବଢ଼ିଯାଏ ଓ ମୂତ୍ରାଶୟର ଦ୍ୱାରରେ ଏହା ଅଟକି ଯାଇଁ ପ୍ରସ୍ରାବ ନିର୍ଗମନରେ ବାଧା ହୁଏ । ]

**ପଥୁରି**—ଦେ. ବି. ( ସ. ପ୍ରସ୍ତରଣୀ )—୧ । ପଥର ବାସନ—
Pathurī 1. Stoneware; stone utensil.
पाथरी ୨ । ପଥରର କଂସା, ଗିନା ବା କୁଣ୍ଡୀ—
**पथरौटा, पथरौटी, पथरी** 2. A cup of stone.

**ପଥ୍ୟ**—ସ. ବିଣ. ( ପଥ୍ ଧାତୁ=ଗମନ କରିବା+ଯୋଗ୍ୟାର୍ଥେ ଯ )—
Pathya ୧ । ଉପକାରକ, ହିତକର—1. Beneficial.
୨ । ଯୋଗ୍ୟ—2 Fit, proper.
୩ । ସ୍ୱାସ୍ଥ୍ୟକର—3. Healthy; wholesome.
୪ । ( ପଥ+ଯ ) ପଥସମ୍ବନ୍ଧୀୟ—
4. Belonging to the way.
ସ ବି—୧ । ରୋଗୀର ଯୋଗ୍ୟ ଆହାର, ପଥି—
1 Invalid's diet; regimen.
୨ । ସୁପଥ୍ୟ ଖାଦ୍ୟ—2. Beneficial diet.
୩ । ସୈନ୍ଧବଲୁଣ (ହି. ଶ)—3. Rock salt.
୪ । ହିତ, ମଙ୍ଗଳ—4 Good; benifit.
୫ । ଛୋଟ ହରଡ଼ା ଗଛ—5 Small myrobalan tree; Terminalia or Citrina. (M. W).

**ପଥ୍ୟା**—ସ. ବି. ସ୍ତ୍ରୀ ( ପଥ୍ୟ+ସ୍ତ୍ରୀ. ଆ )—୧ । ହରଡ଼ା, ହରିତକୀ—
Pathyā 1. Myrobalan.
୨ । ରାସ୍ତା, ବାଟ—
2. Path, way; road. ( M. W ).
୩ । ସଂସ୍କୃତ ଛନ୍ଦୋବିଶେଷ—
3 Name of a Sanscirt metre.
୪ । ଚଭିଁଟା ( ହି. ଶ. ), କାକୁଡ଼ି—4. Cucumber.
୫ । ଗଙ୍ଗା ( ହି. ଶ. )—5. The river Ganges.
୬ । ଲବଣବିଶେଷ—6. A kind of salt (M. W).

**ପଥ୍ୟାପଥ୍ୟ**—ସ ବିଣ. ( ଦ୍ୱନ୍ଦ୍ୱ, ପଥ୍ୟ+ଅପଥ୍ୟ )—ପଥ୍ୟ ଓ ଅପଥ୍ୟ
Pathyāpathya ( ଖାଦ୍ୟ )—( foods ) Wholesome and unwholesome.

**ପଥ୍ୟାଶୀ**—ସ. ବିଣ. ପୁଂ. ( ପଥ୍ୟ+ଅଶ୍ ଧାତୁ+ଇନ୍, ୧ମା. ୧ବ )—
Pathyāsi ଯେ ପଥ୍ୟ ଖାଏ—Eating wholesome diet.
( ପଥ୍ୟାଶିନୀ—ସ୍ତ୍ରୀ )

**ପଦ୍** ( ଧାତୁ )—ସ—୧ । ଗମନ କରିବା—
Pad (root) 1. To go
୨ । ଦୃଢ଼ରୂପେ ଠିଆ ହେବା—
2. To stand fast or fixed. (M. W).

**ପଦ୍‌ରା**—ଗ୍ରାଦେ. ( ସମ୍ବଲପୁର ) ବିଣ. ପୁଂ—ପାରୁଡ଼ା; ପାଦୁରା—
Pad-rā Given to much breaking wind.
( ପଦ୍‌ରୀ—ସ୍ତ୍ରୀ )

**ପଦ୍‌ରା ପୋକ**—ଗ୍ରାଦେ ( ସମ୍ବଲପୁର )—ପାଡ଼ୁରା ପୋକ ( ଦେଖ )
Pad-rā poka Pārdurā poka ( See )

**ପଦ**—ସ. ବି. ( ପଦ୍ ଧାତୁ=ଗମନ କରିବା+କରଣ. ଅ )—
Pada ୧ । ଚରଣ, ଗୋଡ଼—1. Leg
୨ । ତଳିପା, ପାଦ—2 Foot, sole of the foot.
୩ । ପଦଚିହ୍ନ—3 Foot print.
୪ । ଲକ୍ଷ୍ୟ—4. Aim.
୫ । ( ବ୍ୟାକରଣ ) ବାଚକ ଶବ୍ଦ, ବିଭକ୍ତିଯୁକ୍ତ ଶବ୍ଦ—
5. An inflected word; a word derived from a root
[ଦ୍ର—ଶବ୍ଦରେ ବିଭକ୍ତି ଯୁକ୍ତ ହେଲେ ତାହାକୁ ପଦ ବୋଲାଯାଏ ।]
୬ । ଅବସ୍ଥାନ, ସ୍ଥାନ—6 Spot; station.
୭ । ଶ୍ଳୋକର ଚରଣ, ଶ୍ଳୋକର ପାଦ—
7 Foot of a verse; quarter of a verse.
୮ । ଉପାଧି, ପଦବୀ—
8. Rank; title; position in life.
୯ । ଆଧିପତ୍ୟ—9. Mastery.
୧୦ । ଚିହ୍ନ—10. Trace; mark.
୧୧ । ସମ୍ମାନସୂଚକ ଅଧିକାର, ଚାକିରି—
11. Office; employment.
୧୨ । ଐଶ୍ୱର୍ଯ୍ୟ, କ୍ଷମତା—12. Power; affluence.
୧୩ । ସମ୍ମାନ, ମର୍ଯ୍ୟାଦା, ଗୌରବ—13. Dignity.
୧୪ । ଛଳ, କପଟ—14. Guile; deceit.
୧୫ । ନିନ୍ଦା, ପ୍ରଶଂସା ଆଦିର ବିଷୟ—
15. Subject; object of praise or blame.
୧୬ । ପ୍ରକରଣ, ଗ୍ରନ୍ଥର ବିଭାଗ—16 Chapter.
୧୭ । ବାକ୍ୟ—17. Sentence
୧୮ । ବସ୍ତୁ; ପଦାର୍ଥ—18 Article; thing.
୧୯ । କିରଣ—19. Ray of light.
୨୦ । ଚତୁର୍ଥାଂଶ—20 Quarter, a fourth part.
୨୧ । ଯୋଗ୍ୟତା ଅନୁସାରେ କୌଣସି ବ୍ୟକ୍ତିର ସ୍ଥାନ (ହି. ଶ.)—
21. Position according to one's fitness.
୨୨ । ମୋକ୍ଷ, ନିର୍ବାଣ, ମୁକ୍ତି ( ହି. ଶ. )—
22. Final beatitude; salvation.
୨୩ । ପ୍ରଦେଶ ( ହି. ଶ. )—
23. Province; part of a country.
୨୪ । ଈଶ୍ୱରଭକ୍ତି ସମ୍ବନ୍ଧୀୟ ଗୀତ, ଭଜନ, ପଦ୍ୟରେ ରଚିତ ସ୍ତବ—
24. Hymn; prayer in verse.
୨୫ । ପଦକ୍ଷେପ—35. Step; pace; stride. (Apte).
୨୬ । ଛାପ—26. Impression. (Apte).
୨୭ । ସମ୍ମାନସୂଚକ ପଦବୀ ବା ଉପାଧି—
27. Dignty; honorific title.
୨୮ । ଆଧାର—28 Receptacle. (Apte).
୨୯ । ବାହାନା—29. Pretext (Apte).

୩୦ । (ଗଣିତ) ବର୍ଗମୂଳ—
30. (arithmetic) Square root. (Apte).
୩୧ । ରକ୍ଷା, ଆଶ୍ରୟ—
31 Protection, preservation (Apte).
୩୨ । ଘଣା ବା ସତରଞ୍ଚ ପାଲିର ଘର—
32. A square or house on a chess-board.(Apte)
୩୩ । ବାକ୍ୟର ଅଂଶ—
33. Part of a sentence. (Apte).
୩୪ । କ୍ଷେତ୍ର—34 A plot of ground. (Apte).
ଦେ ବି—୧ । ଗୀତ—1 Song.
୨ । ପଦ୍ୟ—2 Poetry.
୩ । ଗାରୁଡ଼ ମନ୍ତ୍ର—3. Charm; magical sentence or incantation; estoteric or magical formula.
୪ । ଆଦେଶ—4. Order.
୫ । ମାର୍ଗ, ପଥ—5. Path.
ପାପ ପଦେ ଦେବ ଧର୍ମେ ଦେଲୁ ପୃଷ୍ଠାଞ୍ଜଳ—ଚିନ୍ତାମଣି, ଚେମାବଧ୍ୟ ।
୬ । ବାହନ—6. Conveyance.
କରୁଣାସାଗର ଅଂଶ ଚକ୍ରଧର—
ପଦ ପ୍ରସ ପରକାଶେ ସେ କାମିନୀ । ଗୋବିନ୍ଦ, ରସକଲ୍ଲୋଳ ।
୭ । ପଦ୍ମନାଭର ଡାକ ନାମ—
7. Name for calling Padmanābha

**ପଦକ**—ସଂ ବି. (ପଦ+ସଜ୍ଞାର୍ଥ.କ)—୧ । ଲିପିଯୁକ୍ତ ମୁଦ୍ରାକୃତି ଧାତୁ ଖଣ୍ଡ, ତକମା—2 Medal.
Padaka
୨ । କଣ୍ଠହାରସ୍ଥ ମୁଦ୍ରାକୃତି ବର୍ତ୍ତୁଳ ଫଳକବିଶେଷ—
2. A coin-like ornament for the neck.
୩ । ନିଷ୍କ—3 A standard weight of gold.
ଦେ. ବି—୧ । ଏକ ପଦ ବା ବାକ୍ୟ ମାତ୍ର—
(ପଦକ, ପଦେ—ଅନ୍ୟରୂପ) 1. One sentence only.
୨ । ପଦାତି—2. Foot soldier.
ବାହୁ ଲକ୍ଷ ରଥ ପଦକ । ଭଞ୍ଜ ବୈଦେହୀଶବିଳାସ ।

**ପଦ କଟକ**—ସଂ. ବି—ନୂପୁର—
Pada kaṭaka A tinkling ornament worn round the ankles.
ହସ୍ତ ବଳୟ ପଦ କଟକର, ସ୍ୱନ ପ୍ରସର ମର୍ଦ୍ଦଳ ଝର୍ଝର ।
ଭଞ୍ଜ. ପ୍ରେମସୁଧାନିଧି ।

**ପଦ କମଳ**—ସଂ. ବି—(ରୂପକ କର୍ମଧା, ପଦ+କମଳ—ଭକ୍ତିସୂଚକ ପ୍ରୟୋଗ) ପାଦପଦ୍ମ, ପଦ୍ମପାଦ, ପଦ୍ମପରି ସୁନ୍ଦର ଗୋଡ଼—Lotus foot; foot as lovely as the lotus.
Pada kamala
ପଦ ନଳିନ, ପଦ ସରୋଜ, ପଦାବ୍ଜ, ପଦାମ୍ବୁଜ, ପଦାମ୍ଭୋଜ, ପଦାରବିନ୍ଦ, ପଦ ପଙ୍କଜ, ପଦ ପଦ୍ମ } ଅନ୍ୟରୂପ

**ପଦ କାଟୁ କରିବା**—ଦେ. ବି—ମନ୍ତ୍ର ସଫଳ ହେବା—
Pada kāṭu karibā The taking effect of an incantation.

**ପଦକାର**—ସଂ. ବି. (ପଦ+କୃ ଧାତୁ+କର୍ତ୍ତୃ. ଅ)—୧ । ବେଦର ମନ୍ତ୍ର-ପଦ-ବିଭାଜକ ଗ୍ରନ୍ଥ ପ୍ରଣେତା—1. The author of the work which paraphrases vedic fomulae.
Padakāra
(ପଦକୃତ୍—ଅନ୍ୟରୂପ)
୨ । ଗୀତ ରଚୟିତା—2. Composer of a song.
୩ । କବି—3. Poet.

**ପଦ କ୍ରମ**—ସଂ. ବି. (୭ମୀ ତତ୍, ପଦ+କ୍ରମ)—୧ । ଚାଲିବା—
Pada krama 1. Walking.
୨ । ପଦକ୍ଷେପ, ପାହୁଣ୍ଡ—2. Step.

**ପଦ କ୍ଷେପ**—ସଂ. ବି (୭ମୀ ତତ୍, ପଦ+କ୍ଷେପ)—୧ । ପାହୁଣ୍ଡ ପକାଇ ଚାଲିବା, ପଦାର୍ପଣ—1. Stepping; pacing.
Pada kshepa
ପଦ କ୍ଷେପଣ, ପଦ ବିକ୍ଷେପ, ପଦପାତ } ଅନ୍ୟରୂପ
୨ । ପାହୁଣ୍ଡ—2 Pace.

**ପଦଗ**—ସଂ. ବିଣ. ପୁଂ—(ପଦ+ଗମ୍ ଧାତୁ+କର୍ତ୍ତୃ. ଅ)—ପଦଗାମୀ—Walking.
Padaga
(ପଦଗା—ସ୍ତ୍ରୀ) ସଂ. ବି—୧ । ପଦାତି—1 Foot solder.
୨ । ପିଆଦା—2 Peon.
ଦେ. ବି.—ପଦଗମନ, ପାଦରେ ଚାଲିକରି ଯିବା—Walking on foot.
ତରଣୀ ପୃଷ୍ଠ ନାଗେଶ୍ୱର ଶୋଭନ୍ତି ବହାଇ ପଦଗରେ ରଥ ।
ଭଞ୍ଜ କୋଟିବ୍ରହ୍ମାଣ୍ଡସୁନ୍ଦରୀ ।

**ପଦ ଗତି**—ସଂ. ବି(୭ମୀ ତତ୍, ପଦ+ଗତି)—ଚାଲିବାର ଢଙ୍ଗ, ଚାଲି—
Pada gati Gait, manner of going or walking (Apte)

**ପଦ ଗର୍ବ**—ସଂ ବି (ମ. ପ. ଲୋ. କର୍ମଧା, ପଦଜନିତ ଗର୍ବ)—ଅଧିକାର ଯୋଗୁଁ ମନରେ ହେବା ଗର୍ବ—Pride of power; vanity arising out of one's high position.
Pada garba

**ପଦ ଗର୍ବିତ**—ସଂ. ବିଣ ପୁଂ (୫ମୀ ତତ୍, ପଦ+ଗର୍ବିତ)—ଅଧିକାର ପାଇବା ଯୋଗୁଁ ଗର୍ବ ପ୍ରକାଶ କରିବା (ବ୍ୟକ୍ତି)—
Pada garbita
(ପଦଗର୍ବୀ—ଅନ୍ୟରୂପ) Proud of one's power
[ପଦ ଗର୍ବିତା, ପଦ ଗର୍ବିଣୀ—ସ୍ତ୍ରୀ]

**ପଦ ଗୌରବ**—ସଂ. ବି (୬ଷ୍ଠୀ ତତ୍, ପଦ+ଗୌରବ)—ପଦ ବା ଅଧିପତ୍ୟ ଜନିତ ସମ୍ମାନ—Dignity of a position or station.
Pada gauraba
(ପଦ ମର୍ଯ୍ୟାଦା—ଅନ୍ୟରୂପ)

**ପଦଚର**—ସଂ ବି. (ପଦ+ଚର ଧାତୁ+କର୍ତ୍ତୃ. ଅ)—ପଦାତିକ (ହି. ଶ.) Foot soldier.
Padachara

**ପଦ ଚାରଣ**—ସଂ. ବି—ଚାଲିବା, ବୁଲିବା, ପାଇଚାରି—
Pada chārana Walking.

**ପଦଚାରୀ**—ସଂ. ବିଣ. ପୁଂ. (ପଦ+ଚର ଧାତୁ+କର୍ତ୍ତୃ. ଇନ୍ ୧ମା: ୧ବ)—ଗୋଡ଼ରେ ଚାଲିବା (ବ୍ୟକ୍ତି)—(a person) Walking on foot.
Padachāri
(ପଦଚାରିଣୀ—ସ୍ତ୍ରୀ)

**ପଦ ଚିହ୍ନ**—ସଂ. ବି. (୬ଷ୍ଠୀ ତତ୍, ପଦ+ଚିହ୍ନ)—ଚାଲିବାର ଦାଗ, ଭୂମିରେ ଚାଲିଲେ ପାଦର ଯେଉଁ ଚିହ୍ନ ବା ଦାଗ ଭୂମିରେ ପଡ଼େ—Footprint; footmark left on the ground.
Pada chihna

**ପଦଚ୍ଛାୟା**—ସଂ ବି. (୬ଷ୍ଠୀ ତତ୍, ପଦ—ଛାୟା; ସନ୍ଧି ଯୋଗୁଁ ଛ ସ୍ଥାନରେ ଚ୍ଛା)—୧ । ଚରଣାଶ୍ରୟ —1. Patronage.
Padachchhāyā
୨ । ପ୍ରଭୁ ବା ମହତ୍ ବ୍ୟକ୍ତିଙ୍କ ପାଦତଳେ ଶରଣ—
2. Taking shelter under the feet of a Deity or great personage.

**ପଦଚ୍ଛେଦ**—ସଂ. ବି (୬ଷ୍ଠୀ ତତ୍, ପଦ+ଛେଦ, ସନ୍ଧି ଦ୍ୱାରା ଛେ ସ୍ଥାନରେ ଚ୍ଛେ)—(ବ୍ୟାକରଣ) ସନ୍ଧି ବା ସମାସଯୁକ୍ତ କୌଣସି ବାକ୍ୟରେ ଥିବା ପଦମାନଙ୍କୁ ପୃଥକ କରିବା—Resolution of a compound word or sentence into its component parts.
Padachchheda
ପଦବିଚ୍ଛେଦ, ପଦବିଗ୍ରହ } ଅନ୍ୟରୂପ

**ପଦ ଚ୍ୟୁତ**—ସଂ. ବିଣ. ପୁଂ (୫ମୀ ତତ୍, ପଦ+ଚ୍ୟୁତ)—୧ । ଅଧିକାର ଭ୍ରଷ୍ଟ; କୌଣସି ଅଧିକାରରୁ ବଞ୍ଚିତ କରି ଯାଇଥିବା-
Pada chyuta
(ପଦଭ୍ରଷ୍ଟ—ଅନ୍ୟରୂପ) 1. Removed from one's position.
(ପଦଚ୍ୟୁତା, ପଦଭ୍ରଷ୍ଟା—ସ୍ତ୍ରୀ)
(ପଦଚ୍ୟୁତି—ବି) ୨ । ବରଖାସ୍ତ ହୋଇଥିବା—2. Dismissed.

**ପଦଜ**—ସଂ. ବିଣ. (ପଦ+ଜନ୍ ଧାତୁ+କର୍ତ୍ତୃ ଅ)—ପଦରୁ ଜାତ—
Padaja Born of the foot.
ସଂ. ବି.—୧ । ଗୋଡ଼ର ଅଙ୍ଗୁଠି—
1. The fingers of the leg.
୨ । (ବ୍ରହ୍ମାଙ୍କ ପଦରୁ ଶୂଦ୍ର ଜାତ ହୋଇଥିବାରୁ) ଶୂଦ୍ର—
2 A Śūdra.

**ପଦ ଟୀକା**—ସଂ. ବି. (ଆଧୁନିକ ବ୍ୟବହାର; ଇଂରାଜି ଫୁଟ୍‌ନୋଟ୍‌ର ଅନୁବାଦ)—କୌଣସି ପୁସ୍ତକର ମୌଳିକ ଅଂଶରେ ଲେଖା ଥିବା ଦୁର୍ବୋଧ୍ୟ ବିଷୟର ବ୍ୟାଖ୍ୟା, ଯାହା କି ସେହି ପୃଷ୍ଠାର ନିମ୍ନ ଦେଶରେ ଲେଖା ଯାଇଥାଏ—
Pada ṭikā
(ପାଦଟୀକା—ଅନ୍ୟରୂପ) Footnote.

**ପଦ ତଳ**—ସଂ. ବି (୬ଷ୍ଠୀ ତତ୍; ପଦ+ତଳ)—ତଳପା—
Pada tala Sole of the foot.

**ପଦ ତ୍ୟାଗ**—ସଂ. ବି. (୬ଷ୍ଠୀ ତତ୍; ପଦ+ତ୍ୟାଗ)—କର୍ମତ୍ୟାଗ, ଇସ୍ତଫା—
Pada tyāga Resignation.

**ପଦ ତ୍ରାଣ**—ସଂ. ବି. (ପଦ+ତ୍ରୈ ଧାତୁ+କର୍ତ୍ତୃ. ଅନ)—ଜୋତା—
Pada trāna (ପଦାତ୍ରାତା—ଅନ୍ୟରୂପ) Shoes.

**ପଦତ୍ରୀ**—ସଂ. ବି.—ପକ୍ଷୀ (ହି. ଶ.)—
Padatri. Bird.

**ପଦ ଦଳିତ**—ସଂ. ବିଣ.—(୭ମୀ ତତ୍; ପଦ+ଦଳିତ)—ଚରଣ ମର୍ଦ୍ଦିତ—
Pada dalita Trodden under the feet.

**ପଦ ଦାରିକା**—ସଂ. ବି (ପଦ+ଦାରିକା)—ଗୋଡ଼ ଫାଟ ରୋଗ—
Pada dārikā A disease of the soles; chilblain

**ପଦ ଦୋଷ**—ସଂ. ବି. (୬ଷ୍ଠୀ ତତ୍; ପଦ+ଦୋଷ)—ଯେଉଁ ଦୋଷ ବାକ୍ୟ ମଧ୍ୟସ୍ଥ ପଦକୁ ଆଶ୍ରୟ କରି ରହିଥାଏ—
Pada dosha
Some defects in composition as regards the component words.
[ଦ୍ର—ଶ୍ରୁତିକଟୁତା, ଅଶ୍ଳୀଳତା, ଅନୁଚିତତା, ଗ୍ରାମ୍ୟତା, ସନ୍ଦିଗ୍ଧତା, ନେୟାର୍ଥତା, ନିହତାର୍ଥତା, କ୍ଲିଷ୍ଟତା, ଅବିମୃଷ୍ଟବିଧେୟାଂଶତା, ନିରର୍ଥକତା ଅସାଧୁତା, ଅନନୁପ୍ରାସତା, ପୁନରୁକ୍ତତା, ଅଧିକ ପଦତା, ନ୍ୟୂନପଦତା, ପତତ୍ ପ୍ରକର୍ଷତା, ଦୁରନ୍ୱୟ, ଅକ୍ରମତା, ଅସମାନ କର୍ତ୍ତୃତ୍ୱ, ବିଧେୟାବିମର୍ଷ, ଯତିଭଙ୍ଗ ଓ ପ୍ରସିଦ୍ଧିତ୍ୟାଗ—ଏହି ସବୁ ଦୋଷ ପଦଦୋଷର ଅନ୍ତର୍ଗତ ।]

**ପଦ ଧୂଳି**—ସଂ ବି. (୬ଷ୍ଠୀ ତତ୍, ପଦ+ଧୂଳି)—ଚରଣ ରଜ, ପାଦ ତଳେ ଲାଗିଥିବା ଧୂଳି—The dust of one's foot.
Pada dhūli
[ଦ୍ର—ଗୁରୁଜନ ଓ ପୂଜ୍ୟବ୍ୟକ୍ତିଙ୍କ ପଦଧୂଳି ଶିଷ୍ୟ ଓ ବାଳକ ବାଳିକାମାନଙ୍କ ଉପରେ ପଡିଲେ ତାହା ଶୁଭଜନକ ବୋଲି ବିବେଚିତ ହୁଏ ।]

**ପଦଧୂଳି ଦେବା**—ଦେ କ୍ରି.—୧ । ଗୁରୁଜନ ବା ପୂଜ୍ୟବ୍ୟକ୍ତିଙ୍କ ପାଦର ଧୂଳିକୁ ଶିଷ୍ୟ ବା ବାଳକବାଳିକାଙ୍କ ଉପରେ ପକାଇବା—
Pādadhūli debā
(ପଦଧୂଳି ପକାଇବା—ଅନ୍ୟରୂପ)
পদধূলা দেওয়া 1. To lay the dust of the feet of the elders on a disciple or infant.
**पाँवोंकी धूल देना**
୨ । (ଲକ୍ଷଣାର୍ଥ) କୌଣସି ସ୍ଥାନରେ ନିଜେ ଯାଇ ଉପସ୍ଥିତ ହେବା, କୌଣସି ସ୍ଥାନରେ ପଦାର୍ପଣ କରିବା—
2. (figurative) To arrive at a place.

**ପଦ ନ୍ୟାସ**—ସଂ. ବି. (୬ଷ୍ଠୀ ତତ୍, ପଦ+ନ୍ୟାସ)—୧ । ପଦକ୍ଷେପ—
Pada nyāsa 1. Stepping; step, pace.
୨ । ପଦଚିହ୍ନ—2 Foot mark.
୩ । ଗୋଖରୁ (ଦେଖ)—3 Gokharā (See)

**ପଦ ପକା(କେ)ଇବା**—ଦେ. କ୍ରି.—୧ । ବାକ୍ୟ କହିବା—
Pada pakā(ke)ibā 1. To speak sentences.
୨ । ଗୀତ ବୋଲିବା—2 To sing songs
୩ । ମନ୍ତ୍ର ଉଚ୍ଚାରଣ କରିବା—3 To utter incantations.
୪ । ରଚିତ ପଦ୍ୟରେ ମିତ୍ରାକ୍ଷର ମିଳାଇବା—
4. To harmonise the rhyme in a composition.
୫ । ପଦକ୍ଷେପ କରିବା—5. To step; to pace.

**ପଦ ପଢିବା**—ଦେ ବି.—୧ । ପଦ୍ୟରେ ମିତ୍ରାକ୍ଷର ଘଟିବା—
Pada parḍibā 1. Rhyming.
୨ । ବାକ୍ୟର କଥନ—2. Speaking of sentences.

**ପଦ ପଦକେ**—ଦେ. ଅ.—୧ । ପ୍ରତି ପଦରେ—
Pada padake 1. In every word or sentence.
পদে পদে ୨ । ପ୍ରତି ପଦବିକ୍ଷେପରେ—
**बातो बातोंमे** (ପଦେ ପଦେକେ—ଅନ୍ୟରୂପ) 2. At every step.
ନ ଜାଣି ଚଳୁଁ କି ପଦ ବଢାଇଲେ ପଦପଦକେ କଡତା—ସଙ୍ଗୀତ ।
୩ । ପ୍ରତି ମୁହୂର୍ତ୍ତରେ—3 At every moment.

**ପଦ ପଲ୍ଲବ**—ସଂ. ବି. (ରୂପକ କର୍ମଧା; ପଦ+ପଲ୍ଲବ)—କିଶଳୟ ସଦୃଶ କୋମଳ ଚରଣ—Foot delicate like a tender leaf
Pada pallaba

**ପଦ ପାଠ**—ସଂ. ବି (୬ଷ୍ଠୀ ତତ୍, ପଦ+ପାଠ)—ବୈଦିକ ପଦମାନଙ୍କର ପୃଥକ୍ ଲେଖନ ବା ଉଚ୍ଚାରଣ—
Pada pāṭha
(ସଂହିତା ପାଠ—ବିପରୀତ) The arrangement of the vedic text in which each word is written and pronounced in its original form and independently of phonetic changes. (Apte.)

**ପଦପୃଷ୍ଠ** - ସଂ ବି. (୬ଷ୍ଠୀ ତତ୍, ପଦ + ପୃଷ୍ଠ) — ଗୋଡ଼ ତଳପାର ଉପର-
Pada prushtha ଭାଗ ବା ଗୋଡ଼ର ପାପୁଲି—The instep; the bridge of the feet.

**ପଦପ୍ରାନ୍ତ**— ସଂ ବି. (୬ଷ୍ଠୀ ତତ୍, ପଦ + ପ୍ରାନ୍ତ)— ୧ । ପଦତଳ—
Pada prānta 1 Sole of the foot.
୨ । ଚରଣର ଅଗ୍ରଭାଗ—
2 The extremity of the foot.
୩ । ପଦର ନିକଟସ୍ଥ ସ୍ଥାନ—
3. A place near one's foot.
( ଯଥା—ଏ ଗରିବଙ୍କୁ ଆପଣଙ୍କ ପଦପ୍ରାନ୍ତରେ ସ୍ଥାନ ଦେବେ । )

**ପଦ ପ୍ରାର୍ଥୀ**— ସଂ. ବିଣ. ପୁଂ. ( ଉପପଦ ତତ୍, ପଦ + ପ୍ରାର୍ଥୀ )—
Pada prārthī ୧ । ଅଧିକାରଲାଭେଚ୍ଛୁ, ଉମେଦ୍‌ବାର—
(ପଦପ୍ରାର୍ଥିନୀ - ସ୍ତ୍ରୀ) 1 Seeking employment.
୨ । (ଲକ୍ଷଣାର୍ଥ) ଆଶ୍ରୟ ବା ଅନୁଗ୍ରହପ୍ରାର୍ଥୀ—
2 ( figurative ) Seeking shelter or favour.

**ପଦବନ୍ଧ**—ସଂ. ବି—ପଦକ୍ଷେପ, ପାହୁଣ୍ଡ —
Padabandha Footstep; step (Apte)

**ପଦବି(ବୀ)**— ସଂ. ବି. ( ପଦ୍ ଧାତୁ=ଗମନ କରିବା + କରଣ ଅବି, ଅଥବା ପଦ=ପାଦ + ଅବ୍ ଧାତୁ=ରକ୍ଷା କରିବା + କର୍ତ୍ତୃ. ଇ )— ୧ । ମର୍ଯ୍ୟାଦା—1 Dignity.
Padabi(bī)
୨ । ଅବସ୍ଥିତି—2 Position; rank
୩ । ଅଧିକାର—3. Office; post· authority.
୪ । ରାସ୍ତା, ପଥ—4. Road; way.
୫ । ବିଶିଷ୍ଟ ଅଧିକାରଯୁକ୍ତ ସ୍ଥାନ—
5. Authoritative position
୬ । ସମ୍ମାନସୂଚକ ଉପାଧି—6. Honorific title.
୭ । ବଂଶଗତ ଉପାଧି, ଉପନାମ—
7. Family title; surname.
୮ । ପଦ୍ଧତି, ରୀତି—8. Mode; manner.
୯ । ବ୍ୟବସାୟ—9. Profession.
୧୦ । ସଦାଚରଣ—
10. Good conduct or behaviour (Apte).
ଦେ. ବି—ଆଡ଼ମ୍ବର—Pomp; splendour.
ପଦବୀ ଦେଖାଇ ଦେବାରେ ଗଳାମାଳ
ଦେବାରେ ମହାଉତ୍ସବେ ବହୁଳ ସତ୍ତ୍ୱ । ଉଞ୍ଚ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।

**ପଦ ବୃଦ୍ଧି**—ସଂ. ବି. ( ୬ଷ୍ଠୀ ତତ୍; ପଦ + ବୃଦ୍ଧି )—ଅଧିକାରର ବୃଦ୍ଧି—
Pada bruddhi 1. Advancement in rank or position.
୨ । ପ୍ରମୋସନ୍, ଚାକିରିରେ ଉପର ପାହ୍ୟାକୁ ଉଠିବା—
2. Promotion in service
୩ । ଗୋଡ଼ଫୁଲା—3. Swelling of the foot.
୪ । ଗୋଦର—4 Elephantiasis.

**ପଦ ବ୍ରଜ(ଜ୍ୟା)**—ସଂ. ବି. (୩ୟା ତତ୍, ପଦ + ବ୍ରଜ[ଜ୍ୟା] = ଗମନ )—
Pada braja(jyā) ପଦଦ୍ୱାରା ଗମନ, ଚାଲିବା—
Walking; going by foot.

**ପଦ ଭଞ୍ଜନ**—ସଂ. ବି ( ୬ଷ୍ଠୀ ତତ୍, ପଦ+ଭଞ୍ଜନ ) —
Pada bhañjana ୧ । ଦୁରୂହ ଶବ୍ଦର ବ୍ୟାଖ୍ୟା—
1. Explanation of difficult words.
୨ । ସନ୍ଧି ବା ସମାସଯୁକ୍ତ ବାକ୍ୟର ପଦମାନଙ୍କର ପୃଥକ କରଣ —
2. Analysis of words; etymology

**ପଦ ମତ୍ତ**—ସଂ ବିଣ. ପୁଂ (୩ୟା ତତ୍, ପଦ + ମତ୍ତ)—ଅଧିକାର ଯୋଗୁଁ
Pada matta ଗର୍ବିତ—Inflated with the pride of power.
( ପଦମଦ; ପଦମତ୍ତତା—ବି ) (ପଦମତ୍ତା—ସ୍ତ୍ରୀ)

**ପଦ ମର୍ଦ୍ଦନ**—ସଂ ବି ( ୬ଷ୍ଠୀ ତତ୍, ପଦ + ମର୍ଦ୍ଦନ ) —
Pada marddana ୧ । ଗୋଡ଼ ମୋଡ଼ିବା, ଗୋଡ଼ ଘଷିବା—
1. Rubbing of the feet, massage of the feet.
(ପଦସମ୍ବାହନ—ଅନ୍ୟରୂପ) ୨ । (ଲକ୍ଷଣାର୍ଥ ) ଖୋସାମତ କରିବା—
2. (figurative) Flattering.

**ପଦ ମର୍ଯ୍ୟାଦା**—ସଂ. ବି. (୬ଷ୍ଠୀ ତତ୍, ପଦ + ମର୍ଯ୍ୟାଦା)—
Pada marjyādā ୧ । ଅଧିକାରର ଉପଯୁକ୍ତ ସମ୍ମାନ—1 Due respect or decorum.
୨ । ଅଧିକାରଜନିତ ମର୍ଯ୍ୟାଦା—
2. Respect due to a rank.

**ପଦ ମିଳା(ଳେ)ଇବା**—ଦେ. କ୍ରି.—ରଚନାରେ ପଦମାନଙ୍କୁ ମିତ୍ରାକ୍ଷର-
Pada milā(le)ibā ବିଶିଷ୍ଟ କରିବା—To harmonise the rhyme while composing a poem.
पद निलाना
पद मिलाना (ପଦ ମିଳିବା—ବି)

**ପଦର**—ପଦ. ବି. (ସଂ. ପ୍ରାନ୍ତର) – ୧ । ପ୍ରାନ୍ତର—
Padara 1. An open field.
मांठ ୨ । ପଡ଼ିଆ ଭୂମି—2. Waste land.
मैदान ୩ । ବିସ୍ତୀର୍ଣ୍ଣ ସମତଳ ଭୂଖଣ୍ଡ—
3. A large tract of open country.
୪ । ସମୁଦ୍ର ପଠାର ବା ପଠା—4. The vast sandy plain on the sea beach.

**ପଦ ରଜଃ**—ସଂ. ବି—(ମ. ପ. ଲୋ କର୍ମଧା, ପଦ + ରଜଃ)—ପଦଧୂଳି—
Pada rajah Dust of one's foot.
(ପଦ ରେଣୁ—ଅନ୍ୟରୂପ)

**ପଦର ବାଡ଼ି**—ପ୍ରାଦେ (ଗଡ଼ଜାତ, ସହଚର' ବି—ବାଡ଼ି ବଗିଚା —
Padara bāṛi Garden.

**ପଦର ବୁଲୀ**—ଦେ. ବିଣ ସ୍ତ୍ରୀ—(ସ୍ତ୍ରୀଲୋକଙ୍କୁ ଦିଆଯିବା ଗାଳି—a term
Padara bulī of abuse applied to females)—
ଯେଉଁ ସ୍ତ୍ରୀ ସର୍ବଦା ଏଣେ ତେଣେ ବୁଲିବାକୁ ସୁଖ ପାଏ—
(a woman) Who loves to loaf about.

**ପଦ ଲେହନ** - ସଂ. ବି—(୨ୟା ତତ୍; ପଦ+ଲେହନ)—୧ । ଅନ୍ୟର
Pada lehana ଗୋଡ଼ ଚାଟିବା—1 Licking the foot of another.
୨ । (ଲକ୍ଷଣାର୍ଥ) ତୋଷାମଦ କରିବା—2. (fig) Flattering.

**ପଦ ଲେହୀ**—ସଂ. ବିଣ.—(ପଦ+ଲିହ୍ ଧାତୁ+ଇନ୍, ୧ମା. ୧ବ)—
Pada lehī ଖୋସାମଦକାରୀ—One who flatters.

ପଦ ଶବ୍ଦ—ସଂ. ବି. (୬ଷ୍ଠୀ ତତ୍, ପଦ+ଶବ୍ଦ)—ଚାଲିଲାବେଳେ ପାଦ
Pada śabda ପକାଇବାର ଶବ୍ଦ—Sound of foot steps while walking.

ପଦଶୃଙ୍ଖଳା—ସଂ ବି—ନୂପୁର—
Pada śruṅkhaḷā A tinkling ornament worn round the ankles.
ପଦ ଶୃଙ୍ଖଳା କହ କେଉଁଠା ଅଠ ଶୃଙ୍ଖଳା ନାହିଁ । ଭକ୍ତ. ପ୍ରେମସୁଧାନିଧି।

ପଦଷ୍ଠୀବ—ସଂ ବି.—(ପଦ+ଅଷ୍ଠୀବ, ସମାହାର ଦ୍ୱନ୍ଦ୍ୱ, ଯୁଗପଦ୍ ଉଭୟତ
Padashṭhiba ଚରଣ ଓ ଜାନୁଦ୍ୱୟ)—୧ । ବସିବାବେଳେ ଜାନୁ ଓ ଚରଣ ଦ୍ୱୟ ଏକତ୍ର କରିବା, ଭେର ହୋଇ ବସିବା—
1. Bringing together the feet and the knees while sitting; sitting down on the heels.

ପଦ ସେବା—ସଂ ବି. (୬ଷ୍ଠୀ ତତ୍, ପଦ+ସେବା)—୧ । ଗୋଡ଼ ଘଷିବା—
Pada sebā 1. Massage of the feet.
୨ । ଆଶ୍ରୟ କରିବା—2. Taking shelter.

ପଦ ସେବକ—ସଂ. ବି ପୁଂ—୧ । ଗୋଡ଼ ଘଷିବା ଚାକର—
Pada sebaka 1. Humble servant.
(ପଦସେବିକା—ସ୍ତ୍ରୀ) ୨ । (ବିନମ୍ର ବଚନ) ବିଶେଷ ଭକ୍ତ୍ୟାଧୀନ ବ୍ୟକ୍ତି—2. Most obedient and humble servant, (a term of humilty)

ପଦ ସ୍ଖଳନ—ସଂ. ବି—(୬ଷ୍ଠୀ ତତ୍, ପଦ+ସ୍ଖଳନ,—୧ । ଗୋଡ଼ ଖସି
Pada skhaḷana ଯିବା—1. Slipping of the feet.
୨ । ପଦଚ୍ୟୁତି—2. Dismissal.
୩ । କଥା କହୁଁ କହୁଁ କୌଣସି ପଦ ଛାଡ଼ିଯିବା—
3. Omitting some words while talking.

ପଦ ସ୍ଖଳିତ—ସଂ. ବିଣ. ପୁଂ (ବହୁବ୍ରୀହି, ପଦ+ସ୍ଖଳିତ)—ସ୍ଖଳିତ ପଦ—
Pada skhaḷita ଯାହାର ଗୋଡ଼ ଖସି ଯାଇଥାଏ—Slipped.
(ପଦ ସ୍ଖଳନ—ବି) (ପଦ ସ୍ଖଳିତା—ସ୍ତ୍ରୀ)—

ପଦସ୍ଥ—ସଂ. ବିଣ. (ପଦ+ସ୍ଥା ଧାତୁ+କର୍ତ୍ତୃ. ଅ)—୧ । ପଦ ବା
Padastha ଅଧିକାରରେ ଅଧିଷ୍ଠିତ ବା ନିଯୁକ୍ତ—1. Employed
(ପଦସ୍ଥା—ସ୍ତ୍ରୀ) or placed in a posion or rank, invested with office.
୨ । ମାନ୍ୟ, ସମ୍ମାନିତ—
2. Respectable; of postion.
୩ । ଉଚ୍ଚପଦଧାରୀ—3. Holding a high office.
୪ । ଗୋଡ଼ରେ ଚାଲୁଥିବା ( ବ୍ୟକ୍ତି )—
4. Pedestrian ( Howells ).

ପଦା—ଦେ. ବିଣ. ( ସଂ. ପଦ ବା ପ୍ରାନ୍ତର )—୧ । ଶୂନ୍ୟ—
Padā 1. Empty.
ଖୋଲା ଖୁଲା ୨ । ଉନ୍ମୁକ୍ତ ଖୋଲା—2 Open.
୩ । ବୃକ୍ଷାଦି ଶୂନ୍ୟ—3. Treeless.
ତେଜିଣ ଅଶୋକବନ ହୋଇଅଛ ପଦା । ବସ୍ତ୍ରନାଥ. ଚତୁରଭସମାଗ୍ନର ।
୪ । ବାହ୍ୟସ୍ଥ—4. Outer.
୫ । ପଡ଼ିଆ ପରି ଜନଶୂନ୍ୟ—
5. Solitary like a waste.
ଉଜାଡ଼ ଉଜାଡ଼ ୬ । ବିନଷ୍ଟ—6. Destroyed.
ଦେ. ବି—୧ । ପଡ଼ିଆ—1 Waste.
୨ । ବାହାର—2. Outside.
୩ । ବିସ୍ତୀର୍ଣ୍ଣ ପ୍ରାନ୍ତର—3 Open field, plain.
୪ । ବୃକ୍ଷ ଲତାହୀନ ସ୍ଥାନ—
4. Treeless field; open place; wilderness
୫ । ( ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ ହେଲେ ) ସ୍ଥାନ—5 Place.
( ଯଥା—ଶୂଳଆପଦା, ମଶାଣିପଦା । )

ପଦା କରିବା—ଦେ. କ୍ରି—୧ । କୌଣସି ସ୍ଥାନର ବୃକ୍ଷଲତାଦି ଉପାଡ଼ି
Padā kariba ବା କାଟି ତାହାକୁ ପଡ଼ିଆରେ ପରିଣତ କରିବା—
ଉଜଡାନ 1. To turn a place into an open field by
उजाड़ना clearing trees and jungles.
ଏହି ସମୟରେ ସେ ଗ୍ରାମ ଧରି ଗଡ଼ା
ଚାଇଗଲେ ପଦବେ ବନ କରି ଦୋ । କୃଷ୍ଣସିଂହ. ମହାଭାରତ, ବନ ।
୨ । ଜନଶୂନ୍ୟ କରିବା—2 To desolate.
( ଯଥା—ମାଲେରିଆ ଜର ସେ ଗାଁକୁ ପଦା କରି ଦେଲାଣି । )
୩ । ସମୂଳେ ବିନାଶ କରିବା—
3. To destroy.
ଗ୍ରାମଙ୍କ ଅନୁଚ୍ଚ ପ ଅଛଇ ସେ ଗଡ଼ା
କରିବେ ତହିଁ ଯୁଦ୍ଧେ ଶତ୍ରୁକୁଳ ପଦା । କୃଷ୍ଣସିଂହ, ମହାଭାରତ, ସଭା ।
୪ । ଛାରଖାର କରିବା—
4. To devastate; to waste.

ପଦାକୁ ଯିବା—ଦେ. କ୍ରି—୧ । ବାହାରକୁ ଯିବା—1. To go out;
Padāku jibā to go out to the open.
ବାହାରି ଯାଓଆ ୨ । ପୋଖରୀପାଣି ଯିବା, ଝାଡ଼ାଫେରି ଯିବା—
बाहर जाना 2. To go out to ease one's self.
( ପଦାଆଡ଼େ ଯିବା—ଅନ୍ୟରୂପ )

ପଦାଘାତ—ସଂ ବି. ( ୬ଷ୍ଠୀ ତତ୍, ପଦ+ଆଘାତ )—ଗୋଇଠା,
Padāghāta ପଦପ୍ରହାର—Kick.

ପଦାଙ୍କ—ସଂ. ବି. ( ୬ଷ୍ଠୀ ତତ୍, ପଦ+ଅଙ୍କ=ଚିହ୍ନ )—୧ । ପଦଚିହ୍ନ—
Padāṅka 1. Foot-print.
୨ । ( ଲକ୍ଷଣାର୍ଥ ) କୌଣସି ବ୍ୟକ୍ତିଙ୍କ ଆଚରିତ ପନ୍ଥା—
2. One's course of action or conduct.

ପଦାଙ୍ଗୁଳି—ସଂ ବି. ( ୬ଷ୍ଠୀ ତତ୍, ପଦ+ଅଙ୍ଗୁଳି )—ଗୋଡ଼ର
Padāṅguḷi ଆଙ୍ଗୁଠି—Toe.

ପଦାଙ୍ଗୁଷ୍ଠ—ସଂ. ବି. ( ୬ଷ୍ଠୀ ତତ୍, ପଦ+ଅଙ୍ଗୁଷ୍ଠ )—ଗୋଡ଼ର ବୁଢ଼ା
Padāṅgushṭha ଆଙ୍ଗୁଠି—The great finger or thumb of the foot.

ପଦାଡ଼ି—ଦେ. ବି—ଗଦା—
Padārḍi Mace, a club.

ପଦାତ(ତି)—ସଂ. ବି. (ପଦ=ଗୋଡ଼+ଅତ୍ ଧାତୁ=ଗମନ କରିବା+
Padāta(ti) କର୍ତ୍ତୃ. ଅ)—୧ । ପଦଗାମୀ ସୈନ୍ୟ—1. Infantry;
(ପଦାତିକ; ପଦାତୀୟ—ଅନ୍ୟରୂପ) foot soldier.
୨ । ପାଇକ, ପିଆଦା—2. Peon; footman.
୩ । ସମ୍ବାଦବାହକ—3. Messenger; courier.

**ପଦାନତ**—ସ ବଣ. ପୁଂ. ( ୭ମୀ ତତ୍, ପଦ+ଆନତ )—
Padānata ୧ । ଚରଣତଳେ ନମ୍ରତ, ଗୋଡ଼ତଳେ ପଡ଼ିଥିବା—
(ପଦାନତା—ସ୍ତ୍ରୀ) 1, Lying prostrate at the feet of a
(ପଦାବନତ—ଅନ୍ୟରୂପ) person.
୨ । ଅଧୀନ—2, Subordinate.
୩ । ଅତି ଗ୍ଲାନ—3. Very humble.
୪ । ଅନୁଗତ, ବଶମ୍ବଦ—
4, Subservient, obedient,

**ପଦାନି**—ଦେ. ( ପ୍ରାଚୀନ ପଦ୍ୟ ) ବ. ବହୁବଚନ ( ସ. ପଦାନି )—
Padāni ପାହୁଣ୍ଡମାନ—Steps.
ପଦେପଦାନି କସ୍ତରେଣ 'କୃଷ୍ଣ' ଆସନ୍ତପ୍ରେ – ପ୍ରାଚୀ. ଭକ୍ତିଗ୍ରନ୍ଥ ।

**ପଦାନୁବର୍ତ୍ତୀ**—ସ. ବଣ ପୁଂ ( ୭ମୀ ତତ୍, ପଦ+ଅନୁବର୍ତ୍ତୀ )—
Padānubartti ୧ । ପଦାନୁସରଣକାରୀ, ପଦ ଅନୁସରିବା (ବ୍ୟକ୍ତି)—
(ପଦାନୁବର୍ତ୍ତିନୀ—ସ୍ତ୍ରୀ) 1, Following the foot-steps of.
(ପଦାନୁଗ—ଅନ୍ୟରୂପ) ୨ । ଅଧୀନ—2, Subordinate.

**ପଦାନ୍ତି**—ଗ୍ରା ବ. ( ସ ପଦାତି )—ପଦାତିକ—
Padānti Foot soldier,
ପଦାନ୍ତି ବେଶେ ଭ୍ରମ ବେନି କନ୍ଦରଦେଶେ – କୃଷ୍ଣସିଂହ, ମହାଭାରତ, ଅବ ।

**ପଦାନ୍ୱୟ**—ସ ବ. ( ୭ମୀ ତତ୍, ପଦ+ଅନ୍ୱୟ )—ବାକ୍ୟସ୍ଥ ପଦମାନଙ୍କର
Padānwaya ଅନ୍ୱୟ ବା ଅନ୍ୟୋନ୍ୟ ସମ୍ବନ୍ଧ—The construction of the words in a sentence; connection of one word with another in a sentence, parsing,

**ପଦାବଳି(ଳୀ)**—ସ ବ ( ୬ଷ୍ଠୀ ତତ୍, ପଦ+ଆବଳି[ଳୀ] )—
Padābali(li) ୧ । ଶବ୍ଦସମୂହ—1, Series of words.
୨ । ଗୀତସମୂହ—2, Series of verses.
୩ । ଭଜନମାନ—3. A number of psalms.

**ପଦାବୃତ୍ତି**—ସ. ବ. ( ୬ଷ୍ଠୀ ତତ୍, ପଦ+ଆବୃତ୍ତି )—୧ । ଗୋଟିଏ ପଦର
Padābrutti ପୁନରୁଚ୍ଚାରଣ—1, Repetition of a word.
୨ । (ଅଲଙ୍କାର ଶାସ୍ତ୍ର) ପୃଥକ ଅର୍ଥରେ ଏକ ଶବ୍ଦର ଏକାଧିକଥର ପ୍ରୟୋଗ—2, (rhetoric) The use of the same word with many meanings,

**ପଦାଭିଳାଷୀ**—ସ. ବଣ ପୁଂ ( ଉପପଦ ତତ୍, ପଦ+ଅଭିଳାଷୀ )—
Padābhilāshi କୌଣସି ପଦ ବା ଅଧିକାର ପାଇବା ପାଇଁ
( ପଦାଭିଳାଷିଣୀ—ସ୍ତ୍ରୀ ) ଇଚ୍ଛା କରିବା ( ବ୍ୟକ୍ତି )—Desirous
( ପଦାଭିଳାଷ—ବ) of a rank or office.

**ପଦାମ୍ବୁଜ**—ସ. ବ. (ରୂପକ କର୍ମଧା; ପଦ+ଅମ୍ବୁଜ)—୧ । ପାଦପଦ୍ମ, ପଦ୍ମ
Padāmbuja ପରି ସୁନ୍ଦର ଚରଣ, ଚରଣ ପଦ୍ମ—1 Lotus
(ପଦାମ୍ଭୋଜ—ଅନ୍ୟରୂପ) feet; feet as graceful as the
(ପଦାରବିନ୍ଦ—ଅନ୍ୟରୂପ) lotus
୨ । ମାନ୍ୟବ୍ୟକ୍ତି ବା ଗୁରୁଜନଙ୍କ ପଦ—
2 The feet of one's elders
[ଦ୍ର—ଏହିପରି ପଦକମଳ, ପଦସରୋଜ, ପଦାମ୍ଭୋରୁହ, ପଦପଙ୍କଜ ଆଦି ଶବ୍ଦ ବ୍ୟବହୃତ ହୁଏ ।]

**ପଦାର**—ସ. ବ. (୬ଷ୍ଠୀ ତତ୍, ପଦ+ଅର=ଧୂଳି)—୧ । ଚରଣରେଣୁ-
Padāra 1. The dust of one's feet
୨ । ନୌକା—2. A boat.

**ପଦାରଥ**—ଗ୍ରା (ପଦ୍ୟ) ବ. (ସଂ. ପଦାର୍ଥ)—ପଦାର୍ଥ (ଦେଖ)
Padāratha Padārtha (See)

**ପଦାର୍ଘ୍ୟ**—ସ. ବ. (ମ. ପ ଲୋ, ପଦ+ଅର୍ଘ୍ୟ)—ଅତିଥି ବା ଆଗନ୍ତୁକ
Padārghya ଗୁରୁଜନଙ୍କ ପାଦ ଧୋଇବା କାମରେ ଦିଆଯିବା ଜଳ-
Water given to wash the feet of an honoured guest

**ପଦାର୍ଥ**—ସ ବ. (୬ଷ୍ଠୀ ତତ୍, ପଦ+ଅର୍ଥ)—୧ । ଶବ୍ଦର ଅର୍ଥ—
Padārtha 1, Import or meaning of a word.
୨ । ଶବ୍ଦର ପ୍ରତିପାଦ୍ୟ ବସ୍ତୁ—
2. A thing denoted by a word.
୩ । ବସ୍ତୁ, ଦ୍ରବ୍ୟ—3 .Thing; article.
୪ । ଜଡ଼ ପଦାର୍ଥ—4, Inanimate object.
୫ । ସାର, ସତ୍ତ୍ୱ—5 Substance.
୬ । (ବୈଶେଷିକ ଦର୍ଶନ) ପ୍ରମାଣଯୋଗ୍ୟ ୬ ଗୋଟି ବିଷୟ—
6 (philosophy) The 6 objects of proof, categories.
[ଦ୍ର—ଯଥା—ଦ୍ରବ୍ୟ, ଗୁଣ, କର୍ମ, ସାମାନ୍ୟ, ବିଶେଷ ଓ ସମବାୟ ଏହା ଛଡ଼ା 'ଅଭାବ' ଅନ୍ୟ ଏକ ପ୍ରମାଣଯୋଗ୍ୟ ବିଷୟ । ]
ଦେ. ବ—ଧନ, ସମ୍ପତ୍ତି—Riches.

**ପଦାର୍ଥ ଦର୍ଶନ**—ସ. ବ—ବସ୍ତୁ ବିଜ୍ଞାନ; ପ୍ରାକୃତିକ ବିଜ୍ଞାନ; ଯେଉଁ ବିଦ୍ୟା
Padārtha darsana ଦ୍ୱାରା ଚେତନାଚେତନ ବସ୍ତୁମାନଙ୍କର
ପଦାର୍ଥ ବିଜ୍ଞାନ } ଅନ୍ୟରୂପ ଉତ୍ପତ୍ତି, ଗୁଣ ଓ କର୍ମାଦି ସମ୍ବନ୍ଧରେ ଜ୍ଞାନ-
ପଦାର୍ଥ ବିଦ୍ୟା } ଲାଭ ହୁଏ, ଜଡ଼ ବିଜ୍ଞାନ—Natural philosophy; Natural science; physics.

**ପଦାର୍ଥ ବାଦ**—ସ. ବ—ଜଡ଼ବାଦ, ଯେଉଁ ସିଦ୍ଧାନ୍ତରେ ଜଡ଼ ପଦାର୍ଥକୁହିଁ
Padārtha bāda ଏ ସୃଷ୍ଟିର ପ୍ରଧାନ ବା ପ୍ରଥମ ମୂଳ ବୋଲି
(ପଦାର୍ଥବାଦୀ—ବଣ. ପୁଂ.) ଉପସ୍ଥାପିତ କରାଯାଏ—Materialism; materialistic theory of the universe.

**ପଦାର୍ଥ ବିତ୍**—ସ. ବଣ. ପୁ.. (ପଦାର୍ଥ+ବିଦ୍ ଧାତୁ+କର୍ତ୍ତୃ କ୍ୱିପ୍ )—
Padārtha bit ୧ । ବୈଜ୍ଞାନିକ—1. Scientist.
୨ । ପ୍ରକୃତି ବିଜ୍ଞାନାଭିଜ୍ଞ, ପ୍ରାକୃତିକ ତତ୍ତ୍ୱଜ୍ଞ—
2 Naturalist; versed in physical science.

**ପଦାର୍ପଣ**—ସ. ବ. (୬ଷ୍ଠୀ ତତ୍, ପଦ+ଅର୍ପଣ)—୧ । ଚରଣ ବିନ୍ୟାସ—
Padārprna 1. Setting one's foot.
୨ । ପ୍ରବେଶ —2. Entry.
୩ । ଆସି ପହଞ୍ଚିବା, ଉପସ୍ଥାନ—3. Arrival.

**ପଦାୟତ**—ସ. ବଣ. (ପଦ+ଆୟତ)—ପାଦ ସମାନ ଲମ୍ବ—
Padāyata As long as a foot

**ପଦାୟତା**—ସ. ବ (ପଦାୟତ+ଆ) ଯୋତା—
Padāytā Shoe (M. W)

**ପଦାଶ୍ରୟ**—ସ ବ. (୬ଷ୍ଠୀ ତତ୍, ପଦ+ଆଶ୍ରୟ)—୧ । ଚରଣାଶ୍ରୟ, Padāśraya କୌଣସି ବ୍ୟକ୍ତିର ଚରଣରେ ଆଶ୍ରୟ— 1 Shelter under one's foot.
୨ । ମହତ୍ ବ୍ୟକ୍ତିଙ୍କଠାରେ ଆଶ୍ରୟ, ଅନ୍ୟର ପଦତଳେ ଶରଣ— 2, Protection of a greatman patronge.

**ପଦାଶ୍ରିତ** - ସ. ବଣ. ପୁଂ. (୭ମୀ ତତ୍, ପଦ+ଆଶ୍ରିତ)—୧ । ଅନ୍ୟର Padāśrita ପଦତଳେ ଆଶ୍ରୟ ପ୍ରାପ୍ତ—1. Sheltered under (ପଦାଶ୍ରିତା—ସ୍ତ୍ରୀ) another's feet, patronised or protected by another,
୨ । ଅନୁଗତ, ବଶଂବଦ—2 Humble; obedient; subservient; dependant,

**ପଦାସନ**—ସ. ବ. (୬ଷ୍ଠୀ ତତ୍, ପଦ+ଆସନ)—ପାଦପୀଠ, ପାଦାସନ; Padāsana ଗୋଡ଼ ଥୋଇବା ପାଇଁ ପୀଢ଼ା—Foot stool.

**ପଦାସ୍ତ**—ପ୍ରାଦେ (ଗଞ୍ଜାମ) ଇତର) ବ ପଦାର୍ଥ— Padāsta Article,

**ପଦାହତ**—ସ ବଣ—(୩ୟା ତତ୍, ପଦ+ଆହତ)—ଯାହାଙ୍କୁ ପଦଦ୍ୱାରା Padāhata ଆଘାତ କରାଯାଇଅଛି—Kicked or struck by (ପଦାହତା—ସ୍ତ୍ରୀ) (ପଦୋପହତ—ଅନ୍ୟରୂପ) the feet

**ପଦି**—ଦେ ବ—୧ । ପୁଂ—ପଦ୍ମନାଭର ଆଦରାର୍ଥକ ଡାକ ନାମ— Padi A name for calling Padmanābha, (ପଦିଆ—ଅନାଦରାର୍ଥକ) ୨ । ସ୍ତ୍ରୀ—ପଦ୍ମାବତୀର ଡାକ ନାମ— A name for calling Padmābati,

**ପଦିଆ ମାକଡ଼**—ପ୍ରାଦେ. (ଗଡ଼ଜାତ) ବ—ଗେଧ, ଅଣ୍ଡିରା ମାଙ୍କଡ— Padiā mākard Male monkey,

**ପଦିଏ**—ଦେ, ବ. (ଆଦରାର୍ଥକ)—ଏକ ପଦ ବା ବାକ୍ୟ ମାତ୍ର— Padie One word or sentence only, (ପଦେ—ଅନ୍ୟରୂପ) (ଯଥା—ତା ମୁହଁରୁ ପଦିଏ କଥା ଶୁଣିଲେ ମୋ ମନ ଆନନ୍ଦରେ ନାଚ ଉଠେ । ]

**ପଦିକ**—ସ. ବ. (ପଦ୍ ଧାତୁ+କର୍ତ୍ତୃ. ଇକ)—୧ । ପଦାତି— Padika 1, Infantry; foot solder, (ପଦିକା—ସ୍ତ୍ରୀ) ୨ । ଗୋଡ଼ର ଅଗ; ପଦାଗ୍ର— 2, The point of the foot or extremity (M,W)
୩ । ପାଇକ; ପିଆଦା—3, Peon; footman.
ସ. ବଣ—୧ । ପାଦରେ ଚାଲୁଥିବା— 1, Going on foot; pedestrian,
୨ । ଏକ ପଦ ଲମ୍ବ—2, One foot long.
୩ । କେବଳ ମାତ୍ର ଅଂଶ ବା ଖଣ୍ଡବିଶିଷ୍ଟ—3; Comprising only of one division or partition (M. W)
(ପଦିକ—ଅନ୍ୟରୂପ) ଦେ. ବ. (ଆଦରାର୍ଥ)—ପଦେ, ଏକ ପଦମାତ୍ର— One word or sentence only.

**ପଦିକା**—ଦେ. ବ. (ସ. ପଦ)—୧ । ନଳ; ଭୂମି ମାପ କରିବା ସକାଶେ Padikā ବ୍ୟବହୃତ ନିର୍ଦ୍ଦିଷ୍ଟ ଯଷ୍ଟିବିଶେଷ—1 A land-mea- ନଳ ଲଗ୍ଗା suring rod of certain length. [ଦ୍ରି—ପୂର୍ବେ ଆମ ଦେଶରେ ପଦିକାଦ୍ୱାରା ଭୂମି ମାପ କରାଯାଉ ଥିଲା । ଏହାର ଦୈର୍ଘ୍ୟ ବିଭିନ୍ନ ଅଞ୍ଚଳରେ ଭିନ୍ନ ଭିନ୍ନ ଥିଲା; ଯଥା ୨୪ ଦସ୍ତି ପଦିକା, ବାଇଶି ଦସ୍ତି ପଦିକା, ୧୬ ଦସ୍ତି ପଦିକା, ୧୨ ଦସ୍ତି, ୧୪ ଦସ୍ତି ପଦିକା, ଇତ୍ୟାଦି ତଳେ ଟୀକା ଦେଖ ।]
୨ । ଗୁରୁପଣ, ଗୁରୁଅଣା—2 4 panas; 4 annas.

**ପଦିକା ଚଳିବା**—ଦେ ବ.—କୌଣସି ଏକ ସ୍ଥାନରୁ ପଦିକା ମାପର Padikā chalibā ଆରମ୍ଭ କରାଯିବା—Beginning of the measurement of a land with the rod from one place to another.

**ପଦିକା ପକା(କେ)ଇବା**—ଦେ. କ୍ରି.—ଭୂମି ମାପିବା ସକାଶେ ପଦିକା Padikā pakā(ke)ibā ଚାଳିବା—To measure land by means of a rod
ପଦିକା ଚଳା(ଲେ)ଇବା } ଅନ୍ୟରୂପ
ପଦିକା ଚାଳିବା }

**ପଦିକା ମାପ**—ଦେ. ବ—ପଦିକାଦ୍ୱାରା ଜମିର ଜରିବ— Padikā māpa Measurement of a land by means ନଳେ ମାପ लग्गे नाप of a rod.

**ପଦୁଅଁ** (ଇତ୍ୟାଦି)—ଗ୍ରା. ବ (ସ. ପଦ୍ମ)—ପଦ୍ମ ଇତ୍ୟାଦି (ଦେଖ) Paduañ (etc) पदुम Padma etc (See)

**ପଦୁଅାଁ**—ଗ୍ରା. ବ ସ୍ତ୍ରୀ—(ସ. ପଦ୍ମାବତୀ)—ପଦ୍ମାବତୀର ଡାକ ନାମ— Paduāñ पदुमा, पद्मिनी A name for calling (ପଦୁଅାଁବତୀ - ଅନ୍ୟରୂପ) Padmābati.

**ପଦେ**—ଦେ ବ—ପଦକ, ଏକ ପଦ ମାତ୍ର— Pade One word or sentence or quarter song একটা কথা एक बात only.
ଦେ ଅ.—ରୂପେ, ସ୍ୱରୂପ—In the shape of; as.
ସେ ହର ସବଭୂତ ମଧ୍ୟେ, ନନ୍ଦେ ବହରେ ଅସ୍ପଦେ ।
ଜଗନ୍ନାଥ ଭାଗବତ ।

**ପଦେ ଅଧେ**—ଦେ. ବ.—୧ । ଅଳ୍ପ କଥା ବା ବାକ୍ୟ ମାତ୍ର— Pade adhe 1. A few words only; a sentence or অল্পসল্প एक दे बात a half.
୨ । ଅଳ୍ପ ମାତ୍ର—2. A little.
ପଦେ ଅଧେ ଶିଖି ଗୁରୁ ହୋଇବେ ଅପାର । ଶ୍ରୀ ଗୁରୁଭକ୍ତି ଗୀତା ।

**ପଦେଇବା**—ଦେ. କ୍ରି.—କୌଣସି ବ୍ୟକ୍ତିର ମୁଣ୍ଡରେ ଥୋପି ବା ଚାପୁଡ଼ା Padeibā ମାରିବା—To pat on the head of a person অপড়ান, চড়মাবা

**ପଦେ ପଦେ**—ଦେ. କ୍ରି.—୧ । ପ୍ରତି ପଦରେ, ପ୍ରତି ପଦକ୍ଷେପରେ— Pade pade 1. At every foot step. পদেপদে अकसर ୨ । ପ୍ରତିଥର—2. Every time.
୩ । ଉପର୍ଯ୍ୟୁପରି; ବାରମ୍ବାର—3. Repeatedly.
(ଯଥା—ମତେ ପଦେ ପଦେ ବିପଦ ପଡୁଛି ।)
୪ । ଏକ ଏକ ଶବ୍ଦ ଉଚ୍ଚାରଣ କରି— 4. One word at a time.
୫ । ପ୍ରତ୍ୟେକ ଏକ ପଦ ମାତ୍ର—5. One word each.
(ଯଥା—ସେ ଓ ମୁଁ ଦୁହେଁ ପଦେ ପଦେ କଥା ଭଷା ହୋଇ ବିଦାୟ ହେଲୁଁ ।)
୬ । ଠିକେ ଠିକେ; ଚୁମ୍ବକରୂପେ—6. In short; shortly.

୭ । ପଦକୁପଦ, ପଦେ କଥାକୁ ପଦେ ଉତ୍ତର, ପଦକାପଦ— ' 7. Word for word, one word in reply to another.

ପଦେ ପଦେ ପଡ଼ୁଥିବ ଭଗବୃଣ୍ଡା ଚଳୁଥିବ । ଇଗ ।

୮ । ପଦେ କଥା କହି କିଛିକ୍ଷଣ ଥମି ଯାଇ ଫେର୍ ପଦେ କଥା କହିବା ପ୍ରକାରେ, ଏକ ଏକ ପଦ କରି— 8. Uttering one word at intervals

**ପଦୋଦକ**—ସଂ. ବି. (ମ. ପ. ଲୋ, କର୍ମଧା; ପଦ+ଉଦକ)—ଗୁରୁଜନ Padodaka ବା ଦେବତାଙ୍କର ପାଦ ଧୁଆ ପାଣି, ପାଦୋଦକ, ପାଦୁକ, ଚରଣାମୃତ—Washings of the foot of an elder or of a Deity.

**ପଦୋନ୍ନତି**—ସଂ. ବି. (୬ଷ୍ଠୀ ତତ୍; ପଦ+ଉନ୍ନତି)—୧ । ଅଧିକାର ବା Padonnati କ୍ଷମତାର ବୃଦ୍ଧି—1. Increase of power

୨ । ଚାକିରିରେ ଉନ୍ନତି—2. Promotion.

**ପଦ୍ଧଟିକା**—ସଂ. ବି.—ପଜ୍ଝଟିକା (ଦେଖ) Paddhaṭikā Pajjhaṭikā (See)

**ପଦ୍ଧତ(ତି)**—ସଂ. ବି. (ପଦ=ଗୋଡ଼+ହନ୍ ଧାତୁ=ବଧ କରିବା+କର୍ମ. Paddhati(ti) ତି+ସ୍ତ୍ରୀ ଈ—ଯାହାକୁ ଗୋଡ଼ଦ୍ୱାରା ଆଘାତ କରାଯାଏ ।)—୧ । ପଥ—1. Road; path.

୨ । ଲଗାଲ; ଶଗଡ଼ ବା ମନୁଷ୍ୟ ଯାଇ ଥିବା ଯୋଗୁଁ ଭୂମିରେ ପଡ଼ି ଥିବା ଚିହ୍ନ—2. Trace; track.

୩ । ବିଧି, ନିୟମ—3. Rule, system.

୪ । ପ୍ରଣାଳୀ—4 Method; mode.

୫ । ଶ୍ରେଣୀ, ଧାଡ଼ି, ପଂକ୍ତି—5. Row.

୬ । ଉପାଧି, ପଦବୀ—6. Title, rank.

୭ । ରେଖା—7. Line.

୮ । ପ୍ରବାହ—8. Flow; current.

୯ । ଆଚାର, ରୀତି—9. Custom; practice.

୧୦ । ଆଚାରନିର୍ଣ୍ଣାୟକ ଗ୍ରନ୍ଥ; ଯେଉଁ ଗ୍ରନ୍ଥରେ ବିଭିନ୍ନ ବେଦ ଅନୁସାରେ ଲିଖିତ ଭିନ୍ନ ଭିନ୍ନ ଗୃହ୍ୟ ସୂତ୍ରମାନଙ୍କୁ ବିଶଦଭାବରେ ବୁଝାଇ ଦିଆ ଯାଇ ଥାଏ—10 A guide book or a manual laying down rituals or ceremonials of different Bedas.

୧୧ । କାର୍ଯ୍ୟପ୍ରଣାଳୀ (ହି. ଶ.)— 11 Mode or method of work.

**ପଦ୍ମ**—ସଂ ବି. (ପଦ୍ ଧାତୁ=ଗମନ କରିବା+କର୍ତ୍ତୃ ମନ୍; ଯେ ଜଳରେ Padma ଗମନ କରେ)—୧ । ଜଳଜାତ ପ୍ରସିଦ୍ଧ ଲତା ପୁଷ୍ପ ବିଶେଷ, ଉତ୍ପଳ; ପଙ୍କଜ— 1. Lotus, Saluadora Indicus, Nelumbium Speciosum.

[ସଂ. ପର୍ଯ୍ୟାୟ—ନଳିନ, ଅରବିନ୍ଦ, କମଳ, ଶତପତ୍ର, ପଙ୍କଜ, ପଙ୍କେରୁହ, ତାମରସ, ସାରସ, ସରସୀରୁହ, ସରୋରୁହ, ବାରିଜ, ରାଜୀବ, ଅମ୍ଭୋଜ, ଅମ୍ବୁଜ, ଅମ୍ଭୋରୁହ, ଶ୍ରୀବାସ, ଶ୍ରୀପର୍ଣ୍ଣି, ଇନ୍ଦିରାଳୟ, ଅବ୍ଜ, କଞ୍ଜ, ନଳ, ନାଳକ, ବନଜ, ଅମ୍ଲାନ, ପୁଟକ ।]

[ଦ୍ର—ଶ୍ୱେତ, ରକ୍ତ, ନୀଳ, ଭେଦରେ ଏହା ତିନି ପ୍ରକାର, ଏହା ଲଙ୍କା, ପାରସ୍ୟ, ଚୀନ, ଯାପାନ ଓ ମାଲୟ ଦ୍ୱୀପରେ ଏବଂ ଭାରତରେ ସର୍ବତ୍ର ଜନ୍ମେ । ଏହି ଲତା ସିଧା, ସରୁ ଓ କଣ୍ଟକମୟ; ବହୁତ ଉଚ୍ଚକୁ ଓ ଦୂରକୁ ମାଡ଼େ । ଏହାର ପତ୍ର ପାଣି ଉପରେ ଭାସୁଥାଏ, ଫୁଲ ଧଳା ଓ ନାଲି ମିଶା ଏବଂ ସୁଗନ୍ଧଯୁକ୍ତ; ଚେର, ନାଡ଼, ପତ୍ର, ମଞ୍ଜି ଆଦି ସବୁ ଅଂଶ ଔଷଧରେ ଲାଗେ । ପଦ୍ମଫୁଲ ସୂର୍ଯ୍ୟୋଦୟରେ ଫୁଟି ସୂର୍ଯ୍ୟାସ୍ତ ବେଳକୁ ବୁଜି ହୋଇଯାଏ ବୋଲି ସୂର୍ଯ୍ୟଙ୍କୁ ପଦ୍ମବନ୍ଧୁ ବୋଲାଯାଏ ।]

ପାଦ୍ମ
ପଦ୍ମ
ତା. ଅମ୍ଳ

୨ । ନାଗସର୍ପବିଶେଷ— 2. A variety of cobra snakes.

୩ । ଲକ୍ଷ କୋଟି, ୧୦୦୦୦୦,୦୦୦୦୦୦୦୦୦— 3 One-thousand millions or billions (M. W)

[ଦ୍ର—ଏ ସଂଖ୍ୟା ସମ୍ବନ୍ଧେ ମତାନ୍ତର ଦୃଷ୍ଟ ହୁଏ, ମଧ୍ୟ କେହି କେହି ଏହାକୁ ୧୬।୧୬।୧୭ ଶୂନ୍ୟବିଶିଷ୍ଟ ସଂଖ୍ୟା ବୋଲି ନିର୍ଦ୍ଦେଶ କରନ୍ତି ।]

୪ । ନିଧିବିଶେଷ, ପଦ୍ମରାଗ ମଣି— 4 Spinel ruby; a gem.

୫ । ରତିବନ୍ଧବିଶେଷ, ପଦ୍ମବନ୍ଧ— 5. A posture in copulation.

୬ । ପଦ୍ମାକାରରେ ରଚିତ ସେନାବ୍ୟୂହବିଶେଷ— 5. A form of battle array; an army arrayed in the form of a lotus. (M W)

୭ । ତନ୍ତ୍ରୋକ୍ତ ଦେହାଭ୍ୟନ୍ତରସ୍ଥ ଷଡ଼୍‌ଚକ୍ର— 7. Six imaginary circles inside the human body according to Tantra.

(ଷଟ୍‌ଚକ୍ର ଯଥା—ମୂଳାଧାର, ସ୍ୱାଧୀନତା, ମଣିପୁର, ଆହତ, ବିଶୁଦ୍ଧ ଓ ଅଜ୍ଞାନ ।)

୮ । ହାତୀର ଶୁଣ୍ଢ ଓ ମୁଣ୍ଡ ଉପରେ ଥିବା ରକ୍ତବର୍ଣ୍ଣ ଚିହ୍ନବିଶେଷ— 8. Circular red spots on the head and trunk of an elephant.

୯ । ସୀସା (ହି. ଶ)—2. Lead.

୧୦ । କୁବେରଙ୍କ ନିଧିବିଶେଷ— 10. One of the gems of Kubera.

୧୧ । ବିଷ୍ଣୁଙ୍କର ହସ୍ତଧୃତ ଏକ ଆୟୁଧ— 11. One of the weapons held by Bishṇu.

(ଯଥା—ବିଷ୍ଣୁ ଚାରି ହାତରେ ଚାରିଟି ଆୟୁଧ ଧରନ୍ତି ଯଥା—ଶଙ୍ଖ, ଚକ୍ର, ଗଦା, ପଦ୍ମ ।)

୧୨ । ଗଳାରେ ପିନ୍ଧାଯିବାର ଏକପ୍ରକାର ଅଳଙ୍କାର (ହି. ଶ.)— 12. An ornament for the neck.

୧୩ । ସାମୁଦ୍ରିକ ମତରେ ମହାପୁରୁଷଙ୍କ ପାଦରେ ଥିବା ଭାଗ୍ୟସୂଚକ ଚିହ୍ନବିଶେଷ—13. An auspicious mark on the foot of great men.

୧୪ । ମନୁଷ୍ୟର ଦେହରେ ଥିବା ଏକପ୍ରକାର ଧଳା ଦାଗ (ହି. ଶ.)—14. A particular mark or mole on the human body. (M. W)

୧୫ । (ବାସ୍ତୁ ବଦ୍ୟା) ସ୍ତମ୍ଭର ସପ୍ତମଭାଗ (ହି ଶ)—
15. (architecture) A particular part of a column or pillar. (M.W)
୧୬ । ପଦ୍ମକାଷ୍ଠ (ଦେଖ) (ହି. ଶ) —
16- Padma kāshṭha (See)
୧୭ । ଭୂମି ଆଦରେ ଅଙ୍କିତ ପଦ୍ମାକାର ଚକ୍ର——
17 The form or figure of a lotus drawn on the ground or other surface. (M.W)
୧୮ । ମନ୍ଦିରବିଶେଷ—18. A kind of temple. (M.W.)
୧୯ । ପଦ୍ମାସନ—19. A particular posture of the body in religious meditation. (M.W.)
୨୦ । କେତେକ ନାଗସାପଙ୍କ ଫଣା ଉପରେ ଥିବା ପଦ୍ମାକାର ଚିହ୍ନ (ହି. ଶ.)—20. Circular mark on the hood of some cobra snakes.
୨୧ । ବଳଦେବଙ୍କ ନାମ—21 A name of Baladeba.
୨୨ । ଏକପ୍ରକାର ଗ୍ଗୁଗ୍‌ଗୁଲ୍—
22. A species of bdellium. (M.W )
୨୩ । ନକ୍ଷତ୍ରପୁଞ୍ଜବିଶେଷ—
23. A particular constellation. (M.W.)
୨୪ । ଶୀତାକ୍ରାନ୍ତ ନରକବିଶେଷ—
24. Name of a particular cold hell. (M.W.)
୨୫ । ପୁଷ୍କର ମୂଳ (ହି. ଶ.)—25. The root of Nelumbium Speciosum. (M.W.)
୨୬ । ହସ୍ତୀ—26. Elephant. (M.W).
୨୭ । ଜମ୍ବୁଦ୍ୱୀପର ଦକ୍ଷିଣ ପଶ୍ଚିମସ୍ଥ ପୌରାଣିକ ଦେଶବିଶେଷ—
27. Name of a mythological country.
୨୮ । ରାମଚନ୍ଦ୍ରଙ୍କର ନାମ—28. A name of Rāma, the son of Dasaratha. (M W.)
୨୯ । ପଦ୍ମପୁରାଣ—29. Name of a Purāṇa.
୩୦ । ସ୍ଥଳ ପଦ୍ମ—30. Hibiscus Mutabilis (flower and plant).
ଦେ ବି.—୧ । ଯେଉଁ, ପ୍ରସବାନ୍ତେ ସ୍ତ୍ରୀମାନଙ୍କର ଯୋନିବାଟେ ଓ ଭଗ୍ନାନ୍ତ୍ରସାର ରୋଗରେ ମନୁଷ୍ୟମାନଙ୍କର ଗୁହ୍ୟ ବାଟେ ବାହାର ପଡ଼ିବା ମାଂସପିଣ୍ଡ—1. Prolapse of the uterus through the female organ or prolapse of the rectum through the anus.
୨ । ପଦ୍ମଚରଣ, ପଦ୍ମନାଭ ଆଦଙ୍କ ଡାକ ନାମ—
2. Name for calling Padmacharaṇa, Padmanābha etc.
**ପଦ୍ମକ**—ସଂ. ବି. (ପଦ୍ମ+ସାଦୃଶ୍ୟାର୍ଥରେ କ)—୧ । ହାତୀ ଦେହରେ ଥିବା **Padmaka** ଲାଲ ରଙ୍ଗର ଚିହ୍ନ ବା ବିନ୍ଦୁ—1. Red circular marks or spots found on the skin of an elephant.
୨ । ପଦ୍ମକାଷ୍ଠ (ଦେଖ)—2. Padmakāshṭha (See)
୩ । କୁଷ୍ଠରୋଗ—3. Leprosy.
୪ । ପଦ୍ମାକୃତି ସେନା ବ୍ୟୂହ—4. An army arrayed in the form of a lotus flower.
୫ । ପଦ୍ମାସନ (ଦେଖ)—5. Padmāsana (See)
୬ । କୁଡ଼—6. Costum or Arabicus. (M.W)
**ପଦ୍ମ କଣ୍ଟକ**—ସଂ ବି. (ଷଷ୍ଠୀ ତତ୍, ପଦ୍ମ+କଣ୍ଟକ)—୧ । ପଦ୍ମ ନାଡ଼ରେ ଥିବା କଣ୍ଟା—1 The thorns on the stem of a lotus.
**Padma kaṇṭaka** (ପଦ୍ମିନୀ କଣ୍ଟକ—ଅନ୍ୟରୂପ)
୨ । ଦେହରେ ପଦ୍ମକଣ୍ଟା ପରି ଫଳଯିବା ରୋଗବିଶେଷ—
2. A kind of pimple; Lichen Papillaris.
**ପଦ୍ମ କନ୍ଦ**—ସଂ. ବି. (ଷଷ୍ଠୀ ତତ୍, ପଦ୍ମ+କନ୍ଦ)—ପଦ୍ମମୂଳ—
**Padma kanda** The root of a lotus plant.
**ପଦ୍ମ କର**—ସଂ. ବି —୧ । (ବହୁବ୍ରୀହି, ପଦ୍ମ+କର)—ସୂର୍ଯ୍ୟ—
**Padma kara** The sun.
୨ । (ରୂପକ) ପଦ୍ମ ପରି ସୁନ୍ଦର ହସ୍ତ, କର ପଦ୍ମ—
2. A lotus-like hand.
**ପଦ୍ମ କାନ୍ତ**—ସଂ. ବି. (ଷଷ୍ଠୀ ତତ୍; ପଦ୍ମ+କାନ୍ତ)—୧ । ସୂର୍ଯ୍ୟ—
**Padma kānta** 1. The sun.
୨ । ପଦ୍ମରାଗ ମଣି—2. Ruby.
**ପଦ୍ମ କାଷ୍ଠ**—ସଂ. ବି (ମ. ପ. ଲୋ, କର୍ମଧା, ପଦ୍ମ ଗନ୍ଧଯୁକ୍ତ କାଷ୍ଠ)—
**Padma kāshṭha** ପଦ୍ମ ତୁଲ୍ୟ ସୁଗନ୍ଧ କାଷ୍ଠବିଶିଷ୍ଟ ପାହାଡ଼ୀ [ସଂ. ପଦ୍ମକ, ପଦ୍ମ, ପଦ୍ମଗନ୍ଧି, ବୃକ୍ଷବିଶେଷ—A tree having the ପଲାଶ, ମଲୟୁ, ଗୁରୁ, ପୀତରକ୍ତ, ସୁପ୍ରଭ, ଏବଂ ପଦ୍ମବାଚକ ସମସ୍ତ ଶବ୍ଦ ।] scent of a lotus; Prunus Padam; Cerasum Puddum.
ତେ ପଦ୍ମଚରକ୍ଳୋ, ଏଶୁଗୁସହଦେବୀ
पद्मकाष्ठ पद्माक, पद्ममपाय
[ଗୁ—ଏହାର କାଠ ବିସର୍ପ, ଦାହ ବିସ୍ଫୋଟ, କୁଷ୍ଠ, କଫ, ରକ୍ତପିତ୍ତ, ବମି, ବ୍ରଣ ଓ ପିପାସାନାଶକ ।]
**ପଦ୍ମ କିଞ୍ଜଳ୍କ**—ସଂ. ବି. (ଷଷ୍ଠୀ ତତ୍, ପଦ୍ମ+କିଞ୍ଜଳ୍କ)—ପଦ୍ମ ଫୁଲ ମଧ୍ୟରେ ଥିବା ସୂକ୍ଷ୍ମ କେଶର—The filaments inside the lotus flower.
**Padma kiñjalka** (ପଦ୍ମକେଶର—ଅନ୍ୟରୂପ)
ଦେ. ବି.—କୋମଳ ପଦ୍ମ ମଞ୍ଜ—Soft lotus seeds.
**ପଦ୍ମକେତୁ**—ସଂ. ବି.—ପଶ୍ଚିମାକାଶରେ ସମୟେ ସମୟେ ଉଦିତ ଉମାମ ଦେଖା ଯିବା ଧୂମକେତୁବିଶେଷ (ହି. ଶବ୍ଦସାଗର)—
**Padmaketu** A particular comet appearing in the western sky.
**ପଦ୍ମକେଶରୀ ଗୁଣା**—ଦେ. ବି. (କଳିଆ ଶବ୍ଦ)—ପଦ୍ମକେଶର ପରି ହସ୍ତ-ଥିବା ଗୁଆବସା ନାକରେ ପିନ୍ଧିବା ଆଠକୋଣିଆ ସୁନା ଅଳଙ୍କାରବିଶେଷ—A kind of gold ornament for the nose, looking like the filaments of a lotus flower.
**Padma keśari guṇā**
**ପଦ୍ମ କୋଶ(ଷ)**—ସଂ. ବି. (ଷଷ୍ଠୀ ତତ୍, ପଦ୍ମ+କୋଶ)—ପଦ୍ମଫୁଲର ବାହ୍ୟକୋଷ—The calyx of lotus flower.
**Padma kosa (sha)**

ପଦ୍ମ କ୍ଷେତ୍ର—ସଂ. ବି.—ଓଡ଼ିଶାର କଟକ ଜିଲ୍ଲାର କେନ୍ଦ୍ରାପଡ଼ାରେ ଥିବା
Padma kshetra ତୀର୍ଥ—Name of a place held sacred by the Hindus in Kendrapara in the Cuttack district of Orissa.

ପଦ୍ମ ଖସିପଡ଼ିବା—ଦେ. କ୍ରି—ଗୁହ୍ୟଦ୍ୱାରବାଟେ ପଦ୍ମ ବାହାରିବା—
Padma khasipardibā Prolapse of the rectum through the anus.
পদ্মখসেপড়া
(ଯଥା—ବହୁଦିନ ଅତିସାର ବା ନାଳରକ୍ତ ଝାଡ଼ା ହେଲେ ପୁରୁଷ ଓ ସ୍ତ୍ରୀଙ୍କର ଗୁହ୍ୟଦ୍ୱାର ବାଟେ ମଧ୍ୟ ପଦ୍ମ ଖସିପଡ଼େ ।)

ପଦ୍ମ ଗନ୍ଧ—ସଂ. ବିଣ. ପୁଂ. (ବହୁବ୍ରୀହି, ପଦ୍ମ+ଗନ୍ଧ)—ପଦ୍ମପରି ଗନ୍ଧଯୁକ୍ତ—
Padma gandha Scented like a lotus flower.
(ପଦ୍ମଗନ୍ଧା—ସ୍ତ୍ରୀ) ସଂ. ବି. (୬ଷ୍ଠୀ ତତ୍)—ପଦ୍ମଫୁଲର ଗନ୍ଧ—
The scent of a lotus flower.

ପଦ୍ମଗନ୍ଧା—ସଂ. ବିଣ. ସ୍ତ୍ରୀ (ପଦ୍ମଗନ୍ଧ+ସ୍ତ୍ରୀ ଆ)—'ପଦ୍ମଗନ୍ଧ'ର ସ୍ତ୍ରୀଲିଙ୍ଗ—
Padmagandhā Feminine of Padmagandha.
ସଂ. ବି. ସ୍ତ୍ରୀ—ସୀତାଙ୍କ ନାମାନ୍ତର (ଦେହ ପଦ୍ମପରି ବାସୁ ଥିବାରୁ)—
An epithet of Sitā.

ପଦ୍ମଗନ୍ଧି(ନ୍ଧୀ)—ସଂ. ବିଣ. [ପଦ୍ମଗନ୍ଧ+ଇ (ଇନ୍)]—ପଦ୍ମଗନ୍ଧବିଶିଷ୍ଟ—
Padmagandhi(ndhī) Lotus scented.
ସଂ. ବି. (ବୈଦ୍ୟକ)—ପଦ୍ମକାଷ୍ଠ (ଦେଖ)—
Padmakāshtha (See)

ପଦ୍ମ ଗର୍ଭ—ସଂ. ବି—୧ । (୬ଷ୍ଠୀ ତତ୍; ପଦ୍ମ+ଗର୍ଭ)—ପଦ୍ମଫୁଲର
Padma garbha ଅଭ୍ୟନ୍ତର—1. The interior of a lotus flower.
୨ । (ବହୁବ୍ରୀହି) ବ୍ରହ୍ମା (ପ୍ରଳୟ ପରେ ବିଷ୍ଣୁଙ୍କ ନାଭଦେଶସ୍ଥ ପଦ୍ମରୁ ଜାତ ହୋଇ ଥିବାରୁ)—2. Brahmā.
୩ । ଶୁକ୍ତିକା, ଶାମୁକା—୯. Oyster.
୪ । ସୂର୍ଯ୍ୟ (ହି. ଶ)—4. The sun.
୫ । ବିଷ୍ଣୁ—5. Bishnu. (M. W.).
୬ । ବୁଦ୍ଧ—6. The Buddha. (M. W.).
୭ । ଶିବ—7. Siba. (M.W.).

ପଦ୍ମ ଗୁଳଞ୍ଚ—ସଂ. ବି. (ବୈଦ୍ୟକ)—ପଦ୍ମଗୁଳୁଚି (ଦେଖ)—
Padma gulāncha Padmaguluchi (See)

ପଦ୍ମ ଗୁଳୁଚି—ଦେ. ବି—ଔଷଧରେ ବ୍ୟବହୃତ ଲତାବିଶେଷ—
Padma guluchi Tinospora Tomentosa; Plumeria Rubra.
পদ্মগুলঞ্চ
पद्म गुरुच [ ଦ୍ର—ଏହା ଗୁଳଞ୍ଚ ପରି ବୁଦାଳିଆ ଲତା, ଗ୍ରୀଷ୍ମପ୍ରଧାନ ଦେଶରେ ଜଙ୍ଗଲରେ ଜନ୍ମେ । ଏହାର ଫୁଲ ନାଲିଆ, ଛାଲରେ ଆଳୁ ଥାଏ । ଏହା ଗୁଳଞ୍ଚ ପରି ବଳକାରକ । ]

ପଦ୍ମଗୃହା—ସଂ. ବି ସ୍ତ୍ରୀ (ବହୁବ୍ରୀହି, ପଦ୍ମ+ଗୃହ+ଆ)—ପଦ୍ମାଳୟା,
Padmagruhā ଲକ୍ଷ୍ମୀ—A name of Lakshmi.

ପଦ୍ମ ଗୋଖର—ଦେ. ବି (ସଂ. ପଦ୍ମ ଓ ଗୋକ୍ଷୁର)—ନାଗବିଶେଷ—
Padma gokhara A kind of cobra.
(ଯଥା—ଏହାର ଫଣା ଉପରେ ପଦ୍ମଫୁଲପରି ଗୋଲାକାର କଳା ଚିହ୍ନ ଥାଏ ।)

ପଦ୍ମଚାରିଣୀ—ସଂ. ବି. (ପଦ୍ମ+ଚର୍ ଧାତୁ+ଇନ+ସ୍ତ୍ରୀ ଈ)—
Padmachārini ୧ । ସ୍ଥଳପଦ୍ମ, ସ୍ଥଳକମଳ, ଥଳକମଳ—
1. Hibiscus Mutabilis.
[ ଦ୍ର—ଜବାଦିବର୍ଗର ଏହି ପୁଷ୍ପକ୍ଷୁପ ୫।୬ ହାତ ଉଚ୍ଚ ହୁଏ । ଏହାର ପତ୍ର ବଡ଼ ବଡ଼; ଫୁଲ ଶରତ୍‌କାଳରେ ଫୁଟେ । ଏ ଫୁଲ ପ୍ରଥମେ ଧଳା ଓ ପରେ ପଦ୍ମବର୍ଣ୍ଣ ଅର୍ଥାତ୍ ଈଷତ୍ ଲାଲ ହୁଏ । ]
୨ । ହଳଦୀ (ହି. ଶ)—2. Turmeric.
୩ । ଗେଣ୍ଡୁ, କୁସୁମ ଫୁଲ (ହି. ଶ)—3. Safflower.
୪ । ଲାକ୍ଷା (ହି. ଶ)—4. Shell lac.

ପଦ୍ମଜ—ସଂ ବି. (ପଦ୍ମ+ଜନ୍ ଧାତୁ+କର୍ତ୍ତୃ ଅ)—ବ୍ରହ୍ମା—
Padmaja God Brahmā.

ପଦ୍ମ ତନ୍ତୁ—ସଂ ବି. (୬ଷ୍ଠୀ ତତ୍, ପଦ୍ମ+ତନ୍ତୁ)—୧ । ମୃଣାଳ, ପଦ୍ମର
Padma tantu ନାଡ଼—1 The stem of a lotus.
୨ । ମୃଣାଳର ସୂତ୍ର—2. The fibre of lotus stalk.

ପଦ୍ମତୋଳା—ଦେ. ବି—କେଳାମାନଙ୍କର ସାପ ଧରିବା ବା ସାପ
Padmatolā ଖେଳାଇବା ନିମନ୍ତେ ବୋଲିବା ଗୀତ—
ମାନ୍ତ୍ର ମାର୍ଜାର ସର୍ପ ଫେଣ ନ ଧରେ ସେତେ ପଦ୍ମତୋଳା ଗ ଇ.ଲ ।
ଗୋପୀକୃଷ୍ଣ- ଜଗମୋହନ ।
[ ଦ୍ର—ପ୍ରବାଦ ଅଛି ଯେ ଶ୍ରୀକୃଷ୍ଣ 'ପଦ୍ମତୋଳା'ର ପଦମାନ ବୋଲି କାଳୀୟହ୍ରଦ ବା ଯମୁନାରୁ ପଦ୍ମ ତୋଳିଥିଲେ ଏବଂ କାଳୀୟନାଗକୁ ଦମନ କରିଥିଲେ । କେଳାମାନେ ସାପଙ୍କୁ ଖେଳାଇଲାବେଳେ ପଦ୍ମତୋଳା ବୋଲନ୍ତି । ପଦ୍ମତୋଳା ଗୀତରେ ଶ୍ରୀକୃଷ୍ଣଙ୍କ ଚରିତ ବର୍ଣ୍ଣିତ ହୋଇଥାଏ । ଯଥା—"କାଳୀ କ ବନମାଳ ! ଅନ୍ଧାରେ ନ ଦିଶଇ ବାଟ ! କ ଗୋବିନ୍ଦ ହରି ! ମେଘ ଦେ ମାଳ ମାଳ ! ବିଜୁଳି କଡ଼ାଉଛି ବାଟ ! କ ଗୋବିନ୍ଦ ହରି !"
ଫଳତଃ ଦେଖାଯାଇ ଅଛି ଯେ କେଳାମାନେ 'ପଦ୍ମତୋଳା' ପଦମାନ ବୋଲିବା ସମୟରେ ଗୋଖର ସାପମାନେ ପେଡ଼ିଆ ଓ ଗାତଆଦିରୁ ବାହାରନ୍ତି ଏବଂ ଫେଣ ଟେକି ଗାୟକଆଡ଼କୁ ସ୍ଥିରଭାବରେ ଚାହିଁ ରହନ୍ତି । ନାଗସାପ ଛଡ଼ା ଅନ୍ୟ ସାପ ପଦ୍ମତୋଳା ମାନେ ନାହିଁ । ନାଗେଶ୍ୱରୀ ବଜାଇଲେ ମଧ୍ୟ ସାପମାନେ ମୁଗ୍ଧ ହେବା ଦେଖାଯାଏ । ]

ପଦ୍ମ ଦଳେକ୍ଷଣ—ସଂ. ବିଣ. ପୁଂ. (ବହୁବ୍ରୀହି, ପଦ୍ମ+ଦଳ+ଈକ୍ଷଣ)—
Padma dalekshana ଯାହାର ଆଖି ପଦ୍ମଫୁଲର ପାଖୁଡ଼ା ପରି—
(ପଦ୍ମଦଳେକ୍ଷଣା—ସ୍ତ୍ରୀ) Lotus leaf-eyed

ପଦ୍ମ ନାଗ—ସଂ. ବି—ନାଗବିଶେଷ; ପଦ୍ମଗୋଖର—
Padma nāga A kind of cobra.

ପଦ୍ମ ନାଡ଼—ଦେ. ବି. (ସଂ ପଦ୍ମନାଳ)—ପଦ୍ମଲତାର ନାଡ଼, ମୃଣାଳ—
Padma nārda The stem or stalk of a lotus
পদ্মের নাল पद्मकी डंडी

ପଦ୍ମନାଭ—ସଂ. ବି. (ବହୁବ୍ରୀହି, ପଦ୍ମ ନାଭିରେ ଯାହାର ବା ପଦ୍ମବତ୍
Padmanābha ନାଭି ଯାହାର)—୧ । ବିଷ୍ଣୁ, ନାରାୟଣ—
1. The God Bishnu,
[ ଦ୍ର—ଏହାଙ୍କ ନାଭିରୁ ଯେଉଁ ପଦ୍ମ ବାହାରି ଥିଲା ସେହି ପଦ୍ମରେ ବ୍ରହ୍ମା ଥିଲେ ଓ ବ୍ରହ୍ମା ତହିଁରୁ ବାହାରି ସୃଷ୍ଟି କଲେ । ]

୨ । ବ୍ରହ୍ମା—2 The God Brahmā

୩ । ନାଗବିଶେଷ—3. A species of cobra.

୪ । ଧୃତରାଷ୍ଟ୍ରଙ୍କ ଶତପୁତ୍ର ମଧ୍ୟରୁ ଏକତମ—4 Name of one of the hundred sons of Dhrutarāshtra.

୫ । ଆଶ୍ୱିନ ମାସ—5. The name of the eleventh month reckoned from Mārgasira. (M W.)

୬ । ଶତ୍ରୁ ପ୍ରତି ନିକ୍ଷିପ୍ତ ଅସ୍ତ୍ରକୁ ଅପମନ୍ତ୍ରିତ କରିବା ପାଇଁ ପ୍ରଯୁକ୍ତ ମନ୍ତ୍ରବିଶେଷ (ହି ଶବ୍ଦସାଗର)—6. Name of a magical formula spoken over weapons (M. W )

୭ । ନାଗ ସର୍ପବିଶେଷ—
7 Name of a serpent demon.

୮ । ଭବିଷ୍ୟ ଉତ୍ସର୍ପିଣୀର ପ୍ରଥମ ଅର୍ହତଙ୍କ ନାମ—8. Name of the Ist Arhat of the future Utsarpini. (M. W.)

ଦେ. ବି. ପୁଂ.—ପୁରୁଷଙ୍କୁ ଦିଆ ଯିବା ନାମ—
A name given to males.

**ପଦ୍ମନାଭ ଦେବ**—ଦେ.ବି. (ନାମ) — ଓଡ଼ିଶା ଗଡଜାତର ଜନୈକ ରାଜା—
Padmanābha deba A king of a Feudatory state of Orissa.
[ଦ୍ର—'ପ୍ରଣୟବଲ୍ଲୀ' ନାମକ କାବ୍ୟ ଏହାଙ୍କ ଦ୍ୱାରା ବିରଚିତ—
ତାରିଣୀ. ଉତ୍କଳ-ସାହିତ୍ୟ. ଇତିହାସ । ଏ ଉତ୍କଳ ସାହିତ୍ୟର ଉନ୍ନତି ପାଇଁ ସର୍ବଦା ଯତ୍ନ କରୁଥିଲେ ଓ ଓଡ଼ିଆ ଲେଖକ ଓ ଗ୍ରନ୍ଥକାରମାନଙ୍କୁ ନାନାରୂପେ ଉତ୍ସାହିତ କରୁଥିଲେ । ]

**ପଦ୍ମନାଭ ନାରାୟଣ ଦେବ**—ଦେ. ବି. (ନାମ)—ଚନ୍ଦ୍ରମହାରାଜା (ଦେଖ)
Padmanābha nārāyana deba
Chandra mahārāja (See)
[ଦ୍ର—ଏ 'ପ୍ରହ୍ଲାଦ ନାଟକ' ଓ 'ଅହଲ୍ୟା ଶାପ ମୋଚନ' ପ୍ରଭୃତି କେତେକ ଓଡ଼ିଆ ନାଟକ ରଚନା କରିଥିଲେ ।
ତାରିଣୀ. ଉତ୍କଳ-ସାହିତ୍ୟ. ଇତିହାସ ।]

**ପଦ୍ମନାଭ ପରୀକ୍ଷା**—ଦେ. ବି. (ନାମ)—ଜନୈକ ଓଡ଼ିଆ ସଙ୍ଗୀତଜ୍ଞ—
Padmanābha pariksha A famous Oria musician.
[ଦ୍ର—ଏ ସଙ୍ଗୀତ ଶିକ୍ଷା ବିଷୟକ 'ଗୀତ ତାଲ ପ୍ରବନ୍ଧ' ନାମକ ପୁସ୍ତକ ପ୍ରଣୟନ କରିଥିଲେ । ତାରିଣୀ. ଉତ୍କଳ. ସାହିତ୍ୟ ଇତିହାସ]

**ପଦ୍ମନାଭ ଭଞ୍ଜ**—ଦେ. ବି. (ନାମ)—ଭଞ୍ଜ ଯୁଗର ଜନୈକ ଓଡ଼ିଆ କବି—
Padmanābha bhanja An Oria poet of the Bhanja period.
[ଦ୍ର—ଏ 'ଶଶିରେଖା' ନାମକ ଗ୍ରନ୍ଥ ପ୍ରଣୟନ କରିଥିଲେ ।]

**ପଦ୍ମ ନାଳ**—ସ. ବି—ପଦ୍ମ ତନ୍ତୁ; ମୃଣାଳ—
Padma nāla The stalk or fibre of lotus.

**ପଦ୍ମ ନିଧି**—ସ. ବି—କୁବେରଙ୍କର ରତ୍ନମାନଙ୍କ ମଧ୍ୟରୁ ଏକତମ—
Padama nidhi Name of one of the gems possessed by Kubera.

**ପଦ୍ମ ନେତ୍ର**—ସ. ବିଣ. ପୁଂ. (ବହୁବ୍ରୀହି; ପଦ୍ମ+ନେତ୍ର)—ପଦ୍ମତୁଲ୍ୟ ସୁନ୍ଦର ନୟନବିଶିଷ୍ଟ—Lotus-eyed.
Padma netra

ପଦ୍ମ ନେତ୍ରା } ସ୍ତ୍ରୀ
ପଦ୍ମ ନେତ୍ରୀ }

ସ. ବି — ୧ । ପକ୍ଷିବିଶେଷ—
1. Name of a bird (M. W).

୨ । ଭବିଷ୍ୟତରେ ଅବତାର ଗ୍ରହଣ କରିବା ବୁଦ୍ଧବିଶେଷ—
2. Name of a future Buddha. (M. W)

**ପଦ୍ମ ପତ୍ର**— ସ. ବି. (୬ଷ୍ଠୀ ତତ୍, ପଦ୍ମ+ପତ୍ର)—୧ । ପଦ୍ମ ଗଛର ପତ୍ର—
Padma patra 1. Lotus leaf

ପଦ୍ମ ଦଳ } ଅନ୍ୟରୂପ
ପଦ୍ମ ପର୍ଣ୍ଣ }

[ଦ୍ର—ଏଥିରେ ପାଣି ପଡିଲେ ଟଳଟଳ ହୁଏ ଏବଂ ପାଣି ପତ୍ରର ଦେହରେ ନ ଲାଗି ଖସି ପଡେ । ଗରିବ ଲୋକେ ପଦ୍ମ ପତ୍ରରେ ଅନ୍ନାଦି ଖାଆନ୍ତି ।]

୨ । ପୁଷ୍କର ମୂଳ (ହି ଶ.) (ଦେଖ)—
2. Pushkara mūla (See)

ଦେ. ବି - ବଡ଼ ଲୋକଙ୍କ ଭୋଜନ ପାତ୍ରରୂପେ ବ୍ୟବହୃତ ପଦ୍ମପତ୍ରାକାର ରୌପ୍ୟପାତ୍ରବିଶେଷ—A silver plate resembling a lotus-leaf used by rich men.

୩ । କୁଡ (ଦେଖ)—3 Kurdhi (See)

**ପଦ୍ମ ପଦ୍ମ**—ଦେ. ବି ଓ ବିଣ—ଅସଂଖ୍ୟ—
Padma padma Innumerable.
ପଦ୍ମ ପଦ୍ମ କରି ପଦ୍ମ ମନାଏ – ଭକ୍ତ. କୋଟୀ ବ୍ରହ୍ମାଣ୍ଡ ସୁନ୍ଦରୀ ।

**ପଦ୍ମ ପରାଗ**—ସ. ବି. (୬ଷ୍ଠୀ ତତ୍, ପଦ୍ମ+ପରାଗ)—ପଦ୍ମ ଫୁଲ ମଧ୍ୟସ୍ଥ ରେଣୁ—The pollen of a lotus flower.
Padma parāga

**ପଦ୍ମ ପଲାଶ ଲୋଚନ**—ସ. ବିଣ. ପୁଂ. (୬ଷ୍ଠୀ ତତ୍ ଓ ବହୁବ୍ରୀହି; ପଦ୍ମ+ପଲାଶ+ଲୋଚନ)—ପଦ୍ମ ଫୁଲର ପାଖୁଡ଼ା ପରି ନେତ୍ରବିଶିଷ୍ଟ—
Padma palāsa lochana
(ପଦ୍ମ ପଲାଶ ଲୋଚନା—ସ୍ତ୍ରୀ)
Having eyes like the lotus petal.

**ପଦ୍ମ ପାଖୁଡ଼ା**—ଦେ. ବି—ପଦ୍ମ ଫୁଲର ଦଳ—
Padma pākhurdā The petal of a lotus flower.
पद्मेवपापंडि पद्मकोपखुड़ो

**ପଦ୍ମ ପାଣି**—ସ. ବି. (ବହୁବ୍ରୀହି, ପଦ୍ମ ପାଣିରେ ଯାହାର)—୧ । ପଦ୍ମକର; ସୂର୍ଯ୍ୟ—1. The sun.
Padma pāni
(ପଦ୍ମ ହସ୍ତ—ଅନ୍ୟରୂପ) ୨ । ପଦ୍ମପରି କୋମଳ ହସ୍ତ—
2. Hands as delicate as the lotus.
୩ । ବିଷ୍ଣୁ—Bishnu.
୪ । ବ୍ରହ୍ମା—4. Brahmā.
୫ । ବୁଦ୍ଧ—5. The Buddha.

(ପଦ୍ମହସ୍ତା—ସ୍ତ୍ରୀ) ସ, ବିଣ. ପୁଂ.—୧ । ଯାହା ହାତରେ ପଦ୍ମପରି ଚିହ୍ନ ଅଛି—1. Having the mark of a lotus flower on the hand.
୨ । ପଦ୍ମ ଫୁଲ ହାତରେ ଧରିଥିବା—
2. Holding a lotus flower.

**ପଦ୍ମ ପାଦ**—ସ. ବି. (ରୂପକ କର୍ମଧା; ପଦ୍ମ+ପାଦ)—ପଦ୍ମ ପରି ସୁନ୍ଦର ପାଦ; ପାଦ ପଦ୍ମ—Foot resembling a lotus flower.
Padma pāda

पाद पद्म ଦେ. ବି—ପାଦର ପାପୁଲି ଉପରେ ପିନ୍ଧାଯିବା ଅଳଙ୍କାରବିଶେଷ, ପାପଦ୍ମ—An ornament put on over the back of the feet consisting of a circular piece of metal put in position with chains connected with the ankle and the toes.
पाउँ पदम

**ପଦ୍ମ ପୁରାଣ**—ସ ବି—ମହର୍ଷି ବେଦବ୍ୟାସକୃତ ମହାପୁରାଣବିଶେଷ—
Padma purāṇa One of the 18 Hindu Purāṇas.

**ପଦ୍ମ ପୁଷ୍କର**—ଦେ. ବି—ସୁପକ୍ୱ ଓ ଶୁଷ୍କ ପଦ୍ମବୀଜ—The ripe
Padma pushkara and dry seed of lotus flower.
पद्मेबबीचि [ଦ୍ର—ପଦ୍ମବୀଜ ପରିପକ୍ୱ ହୋଇ ଶୁଖିଗଲେ କଳା
**कमलगट्टा** ହୁଏ । ଲୋକେ ତାହାକୁ ଫୋଡ଼ି ମାଳା କରି ପିନ୍ଧନ୍ତି ।
ଏହାକୁ ପୁଷ୍କରମାଳା ବୋଲିଯାଏ । ]

**ପଦ୍ମ ପୁଷ୍ପ**—ସ. ବି—୧ । ପଦ୍ମଫୁଲ—1. The lotus flower.
Padma pushpa ୨ । କରବୀରଫୁଲ (ହି ଶ)—
2. Oleander.
୩ । ଏକପ୍ରକାର ପକ୍ଷୀ (ହି. ଶ)—3 A kind of bird.

**ପଦ୍ମ ପୋଖରୀ**—ଦେ ବି. (ସ. ପଦ୍ମ ଓ ପୁଷ୍କରିଣୀ)—ପଦ୍ମାକର, ପଦ୍ମବହୁଳ
Padma pokharī ଜଳାଶୟ—A tank full of lotus-flowers.
पद्मपुखुर **पद्मकाताल**

**ପଦ୍ମପ୍ରଭ**—ସ. ବିଣ. ପୁଂ. (ବହୁବ୍ରୀହି, ପଦ୍ମ+ପ୍ରଭା)—
Padmaprabha ପଦ୍ମଫୁଲ ପରି ପ୍ରଭାବିଶିଷ୍ଟ—Having the
(ପଦ୍ମପ୍ରଭା—ସ୍ତ୍ରୀ) glow of a lotus flower.
ସ ବି—ବୁଦ୍ଧଦେବଙ୍କ ଭାବୀ ଅବତାରବିଶେଷ (ହି ଶ)—
Name of a future incarnation of the Buddha.

**ପଦ୍ମପ୍ରିୟା**—ସ ବି ସ୍ତ୍ରୀ. (ବହୁବ୍ରୀହି, ପଦ୍ମ+ପ୍ରିୟ+ସ୍ତ୍ରୀ. ଆ)—
Padmapriyā ମନସାଦେବୀ—Goddess Manasā; the Goddess over the serpents.

**ପଦ୍ମ ବନ୍ଧ**—ସ ବି. (ବହୁବ୍ରୀହି; ପଦ୍ମ+ବନ୍ଧ=ରଚନା ପ୍ରଣାଳୀ)—
Padma bandha ୧ । ପଦ୍ମଫୁଲ ଆକୃତିର ଚିତ୍ରକାବ୍ୟବିଶେଷ—
1. A sort of artificial composition in the form of a lotus flower.
୨ । ରତିବନ୍ଧବିଶେଷ—2. A posture in copulation.

**ପଦ୍ମବନ୍ଧୁ**—ସ. ବି. (୬ଷ୍ଠୀ ତତ୍, ପଦ୍ମ+ବନ୍ଧୁ)—୧ । ସୂର୍ଯ୍ୟ—
Padma bandhu 1. The sun.
୨ । ମଧୁକର; ଭ୍ରମର—2 The Black bee.
[ ଦ୍ର—ସୂର୍ଯ୍ୟୋଦୟ ସଙ୍ଗେ ସଙ୍ଗେ ପଦ୍ମ ଫୁଟେ ଏବଂ ଫୁଟିଲା ପଦ୍ମରୁ ମଧୁ ସଂଗ୍ରହ କରିବା ପାଇଁ ଭ୍ରମର ତାହା ପାଖକୁ ଆସେ । ଏଣୁ କବିକଳ୍ପନାରେ ସୂର୍ଯ୍ୟ ଓ ଭ୍ରମର ପଦ୍ମଫୁଲର ବନ୍ଧୁ । ]
୩ । ଆକନ୍ଦ ଗଛ, ଅର୍କଗଛ—3. Calotropis Gigantea (plant).

**ପଦ୍ମ ବର୍ଣ୍ଣ**—ସ. ବି. (ରୂପକ କର୍ମଧା, ପଦ୍ମ+ବର୍ଣ୍ଣ)—
Padma barṇṇa ୧ । ପଦ୍ମଫୁଲ ପରି ଈଷତ୍ ରକ୍ତବର୍ଣ୍ଣ—
1. Rosy colour.
୨ । ଯଦୁଙ୍କର ଏକପୁତ୍ର—2 Name of a son of king Jadu.
ସ. ବିଣ. (ବହୁବ୍ରୀହି)—ପଦ୍ମଫୁଲ ପରି ରକ୍ତବର୍ଣ୍ଣବିଶିଷ୍ଟ—
(ପଦ୍ମବର୍ଣ୍ଣା—ସ୍ତ୍ରୀ) Rosy, rose-coloured.

**ପଦ୍ମ ବାଳ**—ସ. ବି. (ପଦ୍ମ+ବାଳ=ବାଳକ, ପଦ୍ମରୁ ଜାତ ବୋଲି)—
Padma bāla ବିଧାତା; ବ୍ରହ୍ମା—Brahmā.

ସାନ୍ଦ୍ର ର ଅଳଗାଇ ଡର ନନ୍ଦକାଳ
କାଣି ସନ୍ତଗଲେ ଗଡଉ ପଦ୍ମବାଳ । କୃଷ୍ଣସିଂ. ମହାଭାରତ ଉଦ୍ୟୋଗ ।

**ପଦ୍ମବାସା**—ସ. ବି. ସ୍ତ୍ରୀ. (ବହୁବ୍ରୀହି; ପଦ୍ମ+ବାସ+ସ୍ତ୍ରୀ. ଆ)—
Padmabāsā ୧ । ପଦ୍ମାଳୟା, ଲକ୍ଷ୍ମୀ—
1. Goddess Lakshmi
୨ । କମଳାସନା; ସରସ୍ୱତୀ—2. Goddess Saraswatī.

**ପଦ୍ମ ବୀଜ**—ସ ବି. (୬ଷ୍ଠୀ ତତ୍; ପଦ୍ମ+ବୀଜ)—ପଦ୍ମଫୁଲ ମଧ୍ୟସ୍ଥ ଫଳ ବା
Padma bija ମଞ୍ଜି—The seed of lotus flower.

**ପଦ୍ମଭବ**—ସ. ବି. (ବହୁବ୍ରୀହି; ପଦ୍ମ+ଭବ=ଉତ୍ପତ୍ତି)—ବ୍ରହ୍ମା—
Padmabhaba God Brahmā.
ଭବନ୍ ଯତ୍ର ଯଶେ କେଶେ କ ଯାଏ ଏହା କହି ସିଳା ପଦ୍ମଭବ ।
ଭଞ୍ଜ. ପ୍ରେମସୁଧାନିଧି ।

**ପଦ୍ମଭାସ**—ସ. ବି. (ପଦ୍ମ+ଭାସ୍+ଅ)—ବିଷ୍ଣୁ—Bishṇu.
Padmabhāsa (ପଦ୍ମହାସ—ଅନ୍ୟରୂପ)

**ପଦ୍ମଭୂ**—ସ ବି. ପୁଂ (ବହୁବ୍ରୀହି, ପଦ୍ମ+ଭୂ ଧାତୁ+କର୍ତ୍ତୃ. କ୍ୱିପ୍)
Padmabhū ବ୍ରହ୍ମା—God Brahmā.

**ପଦ୍ମ ମଧୁ**—ସ ବି. (୬ଷ୍ଠୀ ତତ୍, ପଦ୍ମ+ମଧୁ)—ପଦ୍ମଫୁଲର ମହୁ—
Padma madhu Lotus honey.
[ ଦ୍ର—ଏହା ଔଷଧରେ ଲାଗେ ଏବଂ ଚକ୍ଷୁରୋଗରେ ବିଶେଷ ଉପକାରୀ, ପଦ୍ମପୂର୍ଣ୍ଣ ପୋଖରୀ ନିକଟରେ ମହୁମାଛିମାନେ ପଦ୍ମଫୁଲରୁ ଯେଉଁ ମହୁ ସଂଗ୍ରହ କରନ୍ତି ତାକୁ ପଦ୍ମମଧୁ ବୋଲିଯାଏ । ]

**ପଦ୍ମ ମୁଖ**—ସ. ବିଣ. ପୁଂ (ବହୁବ୍ରୀହି; ପଦ୍ମ+ମୁଖ)—
Padma mukha ଯାହାର ମୁଖ ପଦ୍ମଫୁଲ ପରି ସୁନ୍ଦର—
(ପଦ୍ମମୁଖୀ—ସ୍ତ୍ରୀ) With face as graceful as a lotus.
ସ. ବି—୧ । ବିଷ୍ଣୁ—1. Bishṇu.
୨ । ବ୍ରହ୍ମା—2. Brahmā.

**ପଦ୍ମମୁଖୀ**—ସ. ବିଣ. ସ୍ତ୍ରୀ. (ପଦ୍ମମୁଖ+ସ୍ତ୍ରୀ ଈ)—ସୁନ୍ଦରମୁହାଁ—
Padmamukhī With face as graceful as a lotus.
ସ. ବି—ଦୂବ ଲତା—The creeping cynoden.

**ପଦ୍ମ ମୁଦ୍ରା**—ସ ବି—ତନ୍ତ୍ରୋକ୍ତ କଳ୍ପିତ ପଦ୍ମର ଆକାରସଦୃଶ ଅଙ୍ଗୁଳି
Padma mudrā ମୁଦ୍ରାବିଶେଷ—A posture or figure made by the fingers used in Tantrik rituals.

**ପଦ୍ମ ଯୋନି**—ସ. ବି (ବହୁବ୍ରୀହି ପଦ୍ମ+ଯୋନି=ଉତ୍ପତ୍ତିସ୍ଥାନ)—
Padma joni ପଦ୍ମଭୂ (ଦେଖ)—Padmabhū (See)

**ପଦ୍ମରାଗ**—ସ. ବି. (ବହୁବ୍ରୀହି; ପଦ୍ମ+ରାଗ=ବର୍ଣ୍ଣ)—
Padma rāga ୧ । ତାମ୍ରବର୍ଣ୍ଣ ମଣିବିଶେଷ, ପଦ୍ମା—
1. Ruby; spinel ruby.
୨ । ପୋଡ଼ହୋଲା, ପ୍ରବାଳ—2. Coral.

**ପଦ୍ମ ରେଖା**—ସ. ବି. (ମ. ପ ଲୋ. କର୍ମଧା; ପଦ୍ମାକୃତି ରେଖା)—
Padma rekhā (ଜ୍ୟୋତିଷ) କରତଳସ୍ଥ ଶୁଭ ଲକ୍ଷଣ ସୂଚକ ରେଖା—A slighty red line on the palm of the hands of certain person from which it is inferred that the persons will become very rich.

[ଦ୍ର—ଏ ରେଖା ତାର୍ ଚକ୍ରପର, ** । ହାତରେ ଏ ରେଖା ଥିଲେ ମନୁଷ୍ୟ ବହୁ ଧନଶାଳୀ ଓ ରାଜା ହୁଏ ।]

**ପଦ୍ମ ଲାଞ୍ଛନ**—ସଂ. ବ. ପୁଂ. (ବହୁବ୍ରୀହି, ପଦ୍ମ+ଲାଞ୍ଛନ=ଚିହ୍ନ)—
Padma lānchchana ୧ । ପଦ୍ମଯୋନି, ବ୍ରହ୍ମା—
1. God Brahmā,
୨ । (ପଦ୍ମାକୃତି ରେଖା ଚିହ୍ନ ଯାହାର) ନୃପତି, ରାଜା—
2. A king,
୩ । କମଳ ପାଣି, ସୂର୍ଯ୍ୟ—2. The Sun-god.
୪ । (ଏହାଙ୍କର ପଦ୍ମମଣି ଥିବାରୁ) କୁବେର—
4. The Hindu God of wealth

**ପଦ୍ମ ଲାଞ୍ଛନା**—ସଂ ବ. ସ୍ତ୍ରୀ. (ପଦ୍ମ ଲାଞ୍ଛନ+ସ୍ତ୍ରୀ. ଆ)—୧ । ଲକ୍ଷ୍ମୀ—
Padma lānchhanā 1. The Goddess of wealth.
୨ । ସରସ୍ୱତୀ—2. The Goddess of learning.
୩ । ଦୁର୍ଗା—3. The Goddess Durgā.

**ପଦ୍ମ ଲୋଚନ**—ସଂ. ବ. (ଉପମିତ କର୍ମଧା)—ପଦ୍ମପରି ସୁନ୍ଦର ନେତ୍ର—
Padma lochana Eye like a lotus flower
(ପଦ୍ମଲୋଚନା—ସ୍ତ୍ରୀ) ସଂ. ବଣ ପୁଂ (ଉପମିତ ବହୁବ୍ରୀହି)—ପଦ୍ମତୁଲ୍ୟ ସୁନ୍ଦର ଚକ୍ଷୁଯୁକ୍ତ—Lotus-eyed.
ଦେ. ବ ପୁଂ.—ଲୋକଙ୍କ ନାମ—
A name given to males.

**ପଦ୍ମ ସ୍ନୁଷା**—ସଂ. ବ—୧ । ଗଙ୍ଗାନଦୀ—
Padma snushā 1. A name of the Ganges.
୨ । ଦୁର୍ଗା—2. Durga.

**ପଦ୍ମା**—ସଂ. ବ. ସ୍ତ୍ରୀ (ପଦ୍ମ+ଅସ୍ତି ଅର୍ଥରେ ଅ+ସ୍ତ୍ରୀ. ଆ)—୧ । ଲକ୍ଷ୍ମୀ;
Padmā ପଦ୍ମାଳୟା—1. Goddess Lakshmī.
୨ । ଲବଙ୍ଗ—2 Cloves.
୩ । ମନସା ଦେବୀ—3. Goddess Manasā.
୪ । ପଦ୍ମଚାରିଣୀ (ଦେଖ)—4. Padmachārini (See)
୫ । ମଞ୍ଜିଷ୍ଠା କୁସୁମ ଫୁଲ—
5. The safflower; Carthamus Tinctoria.
୬ । ଚନ୍ଦ୍ରାବଳୀଙ୍କର ଏକତମା ସଖୀ—
6. One of the companions of Chandrābalī.
ପଦ୍ମା ବୃକ୍ଷରେ ରସବନ୍ଧରେ ଅଂଶିଙ୍କୁ ବଳେ ବଳେ—
ଉଜ୍ଜ୍ୱଳନୀଳ, ବଦରସ୍ଥ ଦ୍ରୁତମଣି ।
୭ । ବ୍ରହ୍ମପୁତ୍ର ନଦ ଓ ଗଙ୍ଗାନଦୀ ମିଳିତ ହେବା ପରେ ପୂର୍ବ ବଙ୍ଗରେ ଯେଉଁ ପ୍ରକାଣ୍ଡ ନଦୀ ସୃଷ୍ଟି ହୋଇଅଛି—
7. Name of a river formed by the Brahmaputra and the Ganges joined together and flowing into the Bay of Bengal.
[ଦ୍ର—ଏହାର ଅନ୍ୟ ନାମ 'ମେଘନା' । ଏହାର ସ୍ରୋତର ଗତି ଅତି ପରିବର୍ତ୍ତନଶୀଳ ଥିବାରୁ ଏହା ଅନେକ ସୁନ୍ଦର ଗ୍ରାମ ଧ୍ୱଂସ କରି ନୂତନ ଚର ସୃଷ୍ଟି କରୁଅଛି । ପ୍ରାଚୀନ ରାଜାମାନଙ୍କର ଅନେକ ସୁନ୍ଦର କୀର୍ତ୍ତି ଗର୍ଭସାତ୍ କରିଥିବାରୁ ଏହାର ଅନ୍ୟ ନାମ 'କୀର୍ତ୍ତିନାଶା' ।]

୮ । ଭାଦ୍ରବ ଶୁକ୍ଳ ଏକାଦଶୀ (ହି. ଶ.)—8. The 11th day of the bright lunar fortnight of Bhādra.

**ପଦ୍ମାକର**—ସଂ. ବ (୬ଷ୍ଠୀ ତତ୍, ପଦ୍ମ+ଆକର)—ପଦ୍ମବହୁଳ ଜଳାଶୟ,
Padmākara ପଦ୍ମ ପୋଖରୀ—A tank full of lotus flowers.

**ପଦ୍ମାକ୍ଷ**—ସଂ. ବ. ପୁଂ. (ବହୁବ୍ରୀହି, ପଦ୍ମ+ଅକ୍ଷି)—କମଳ ଲୋଚନ—
Padmāksha Lotus-eyed.
(ପଦ୍ମାକ୍ଷୀ—ସ୍ତ୍ରୀ) ସଂ. ବ—୧ । (୬ଷ୍ଠୀ ତତ୍)—୧ । ପଦ୍ମବୀଜ—
2. Lotus seed.
୨ । ବିଷ୍ଣୁ—2. Bishnu.

**ପଦ୍ମାବତୀ**—ସଂ. ବ. ସ୍ତ୍ରୀ (ପଦ୍ମ+ଅସ୍ତି ଅର୍ଥରେ ବତ୍+ସ୍ତ୍ରୀ. ଈ)—
Padmābati ୧ । ମନସା ଦେବୀ—1 Goddess Manasā.
୨ । ପଦ୍ମାନଦୀ—2 The Padma river.
୩ । ଉଜ୍ଜୟିନୀ ନଗରର ପୁରାତନ ନାମ—3. The ancient name of the town Ujjain in N. W. P.
୪ । ଦାତା କର୍ଣ୍ଣ ରାଜାଙ୍କ ପତ୍ନୀ—4. Name of the wife of king Karnna.
୫ । ପାଟଣା ନଗରର ପ୍ରାଚୀନ ନାମ (ହି. ଶ.)
5 Ancient name of the city of Patna.
୬ । ଗେଣ୍ଡୁ ଫୁଲ—(ହି. ଶ)—6. Safflower.
୭ । ପନ୍ନା ନଗରର ପ୍ରାଚୀନ ନାମ (ହି. ଶବ୍ଦସାଗର)—
7. Ancient name of the town Panna.
୮ । ଅପ୍ସରାବିଶେଷ (ହି. ଶବ୍ଦସାଗର)—
8. Name of a heavenly nymph.
ଦେ. ବ—୧ । କବି ଜୟଦେବଙ୍କ ପତ୍ନୀ—
1. The wife of poet Jayadeba.
୨ । ନଦିଆବାସୀ ମହାତ୍ମା ନିତ୍ୟାନନ୍ଦଙ୍କ ମାତା—
2 The name of the mother of Sree Nityananda of Nuddea.
୩ । ସ୍ତ୍ରୀଲୋକଙ୍କ ନାମ—3 A name given to females.
୪ । କାଞ୍ଚୀ ରାଜକନ୍ୟା; ପୁରୁଷୋତ୍ତମ ଦେବଙ୍କ ପାଟ ମହିଷୀ—
4. Name of the queen of Purushottama Deba, king of Orissa.

**ପଦ୍ମାଳୟା**—ସଂ. ବ. ସ୍ତ୍ରୀ. (ବହୁବ୍ରୀହି, ପଦ୍ମ+ଆଳୟ+ସ୍ତ୍ରୀ. ଆ)—
Padmālayā ୧ । ଲକ୍ଷ୍ମୀ—1. Goddess Lakshmī.
୨ । ଲବଙ୍ଗ (ହି. ଶ)—2 Cloves.

**ପଦ୍ମାସନ**—ସଂ. ବ—୧ । (କର୍ମଧା; ପଦ୍ମ+ଆସନ)—ଯୋଗାସନବିଶେଷ—
Padmāsana 1. A posture in sitting prescribed in the Sastras.
[ଦ୍ର—ପଦ୍ମାସନରେ ଢେକାପକାଇ ବସି ବାମ ଉରୁ ଉପରେ ଦକ୍ଷିଣ ପଦ ଓ ଦକ୍ଷିଣ ଉରୁ ଉପରେ ବାମ ପଦ ବିନ୍ୟାସପୂର୍ବକ ପଦଦ୍ୱୟର ବୃଦ୍ଧାଙ୍ଗୁଷ୍ଠ ଦ୍ୱୟକୁ ସ୍ୱୀୟ ପଛ ପଟେ ବାଟେ ହାତ ଦ୍ୱୟକୁ ବୁଲାଇ ଉଭୟ ଧରିବାକୁ ହୁଏ ଏବଂ ହୃଦୟରେ ଚିବୁକ ରକ୍ଷା କରି ଏକପ୍ରକାର ଦୃଷ୍ଟିରେ ନାସାଗ୍ରକୁ ଚାହିଁବାକୁ ହୁଏ ।]

ପରଗଣ—ଦେ ବି —ପ୍ରବାସ—
Paragaṇa Sojourn,
ପ୍ରବଦେଶ **परदेश** ମୋର ସାଇଁଙ୍କ ପରଗଣ, କଇଁ କଇଁ କଇଁ ।—ଶୀଶୁଗୀତ ।

ପରଗଣା(ନା)(ନ୍ନା)—ବୈଦେ. ବି.(ଫା. ପରଗନା, ଭୁଲ ସଂ. ପରଗଣ= Paraganā(nā)(nnā) ଗୃହ)—ଜିଲ୍ଲାର ରାଜସ୍ୱ ବିଭାଗ, ପ୍ରଗନ୍ନା, ତାଲୁକା—Fiscal subdivision of a district; pergunna.
ପରଗନା, ପରଗଣା **परगना**
[ଦ୍ର—ମୁସଲମାନ୍ ରାଜତ୍ୱରେ ଏ ରାଜସ୍ୱ ବିଭାଗ ହୋଇଥିଲା, ଏହା ଆଜି ପର୍ଯ୍ୟନ୍ତ ମଧ୍ୟ ଚାଲୁ ଅଛି । କେତେଗୁଡ଼ାଏ ମଉଜାର ସମଷ୍ଟି ପରଗଣା, ଗୁଡ଼ାଏ ପରଗଣାର ସମଷ୍ଟି ଥାନା, ଗୁଡ଼ାଏ ଥାନାର ସମଷ୍ଟି ତହସିଲ, ଗୁଡ଼ାଏ ତହସିଲର ସମଷ୍ଟି ଜିଲ୍ଲା ।]

ପରଗଣେ—ଦେ. ଅ (କଟକଆ)—ପ୍ରଗଣେ (ଦେଖ)
Paragaṇe Pragaṇe (See)

ପରଗ୍ରନ୍ଥି—ସଂ. ବି.—୧ । ଆଙ୍ଗୁଳିର ଗଣ୍ଠି—
Paragranthi 1 Finger joint
୨ । ଆଙ୍ଗୁଠିର ପବ—2 Internode of the finger

ପର ଗ୍ଲାନି—ସଂ ବି. (୬ଷ୍ଠୀ ତତ୍, ପର+ଗ୍ଲାନି)—ପରର ନିନ୍ଦା, Para glāni ପରାପବାଦ—Slander; backbiting
(ପରନିନ୍ଦା—ଅନ୍ୟରୂପ)

ପରଘଟ—ଗ୍ରା. ବିଣ. (ସଂ. ପ୍ରକଟିତ)—ପ୍ରକଟିତ, ସର୍ବତ୍ର ପ୍ରକାଶିତ—
Paraghaṭa Widely published; published broadcast.
ପ୍ରକଟ **परघट**

ପର ଘର—ଦେ ବି.— ୧ । ଅନ୍ୟ ବ୍ୟକ୍ତିର ଘର—
Para ghara 1 Another person's house.
ପରେର ଘର ୨ । ଅନ୍ୟ ବ୍ୟକ୍ତିର ପରିବାର—
**दुसराका घर** 2 Another person's family.

ପରଘର କରି ଦେବା—ଦେ. କ୍ରି. —ଅନ୍ୟ ବ୍ୟକ୍ତିର ସଂସାର ଉପରେ Paraghara kari debā ଚଳିବ ଭାର ବ୍ୟବସ୍ଥା କରି ଦେବା— To arrange for the wellbeing of another person's household or family.

ପରଘର ପଶା—ଦେ ବି. ପୁଂ. (ଗାଳି)—୧ । ଚୋର—
Paraghara pasā 1 Thief
(ପରଘର ପଶୀ—ସ୍ତ୍ରୀ) ୨ । ପରାନ୍ନଭୋଜୀ ବ୍ୟକ୍ତି—
2. A hanger on.
୩ । ଲମ୍ପଟ ବ୍ୟକ୍ତି—3. An adulterer; a lecher
ଦେ. ବିଣ—ଯେ ପରର ଗୃହରେ ପ୍ରବେଶ କରେ—
Entering another person's house.

ପରଘର ବୁଡ଼ା—ଦେ. ବିଣ. ପୁଂ —୧ । ଯେ ଅନ୍ୟ ବ୍ୟକ୍ତିର ସର୍ବନାଶ Paraghara burḍā ଘଟାଏ—1. Bringing about ruin
(ପରଘର ବୁଡେଇ—ସ୍ତ୍ରୀ) to another's family.
୨ । ଯେ ଅନ୍ୟ ବ୍ୟକ୍ତିର ପରିବାର ନାମରେ କଳଙ୍କ ରଟନା ବା ଦୋଷାରୋପ କରେ—2 Publishing scandals regarding another's family; scandal-monger.

ପରଘର ଭଙ୍ଗା—ଦେ. ବିଣ. ପୁଂ—୧ । ଯେ ଅନ୍ୟ ବ୍ୟକ୍ତିର ପରିବାର Paraghara bhaṅgā ମଧ୍ୟରେ କଳହ-ବୀଜ ରୋପଣ କରେ—
(ପରଘର ଭଙ୍ଗେଇ—ସ୍ତ୍ରୀ) 1. One who sows seeds of dissension and disruption in another's family.
୨ । ଯେ ଅନ୍ୟ ବ୍ୟକ୍ତିର ସର୍ବନାଶ କରେ—2. One who brings about ruin to another's family.

ପରଙ୍ଗ—ଦେ ବି. (ନାମ)—ଖୁର୍ଦ୍ଧାଜିଲ୍ଲା ଖୋର୍ଦ୍ଧା ସବ୍‌ଡିଭିଜନର ପ୍ରସ୍ରବଣମୟ Paraṅga ବା ଟାଙ୍ଗି ଅଞ୍ଚଳ—The general name of the high lands of Khurdhā Subdivision which are of a high level and watered by springs and produce good paddy crop every year.
[ ଦ୍ର—ଏ ଅଞ୍ଚଳ ନିର୍ଝରବହୁଳ ଥିବାରୁ ଏଥିର କ୍ଷେତ୍ରମାନଙ୍କରେ ଝର ପାଣି ମାଡେ ଓ ଭଲ ଧାନ ଫସଲ ହୁଏ; ବେଶି ବର୍ଷା ହେଲେ ଏ ସ୍ଥାନ ଉଚ୍ଚ ଥିବାରୁ ପାଣି ଜମା ହୋଇ ରହେ ନାହିଁ । ଅତଏବ ଏ ଅଞ୍ଚଳକୁ ଧୋଇ ବା ମରୁଡି ବାଧେ ନାହିଁ । ]

ପରଙ୍ଗିଆ—ପ୍ରାଦେ. ( ପୁରୀ ) ବିଣ—୧ । ପରଙ୍ଗ ଅଞ୍ଚଳୀୟ—
Paraṅgiā 1 Relating of Paraṅga.
୨ । ( ଲକ୍ଷଣାର୍ଥ ) ଓଲ୍ଲ, ନିର୍ବୋଧ —
2. ( figurative ) Stupid; foolish.

ପରଚ(ଚେ)—ଗ୍ରା. ବି. ( ସଂ. ପରିଚୟ )—ଚିହ୍ନା, ପରିଚୟ—
Paracha(che) Acquaintance.
ପରିଚୟ, ଚେନା ଅର୍ଦ୍ଧ ପରଚେ ହୋଇଛି ସତ
**परचे, परचै, परचत** କୋହ୍ଲଛ ବେନ ଅଙ୍ଗ ମିଶ୍ରିତ —
ଭଞ୍ଜ, କୋଟିବ୍ରହ୍ମାଣ୍ଡସୁନ୍ଦରୀ ।

( ପରେଚ—ଅନ୍ୟରୂପ ) ଦେ. ବିଣ—ପରିଚିତ—Acquainted.
ତୋତେ ଭୁତ ପରଚେ ହୋଇବୁ—ପ୍ରାଚୀ. ପରଚେଗୀତା ।

ପରଚଖା—ପ୍ରାଦେ ( ମେଦିନୀପୁର ) ବି—କାଞ୍ଜିପାଣି ( ଦେଖ )
Parachakhā Kāñjipāṇi ( See )

ପରଚଣ୍ଡ—ଗ୍ରା. ( ପଦ୍ୟ ) ବିଣ—ପ୍ରଚଣ୍ଡ ( ଦେଖ )
Parachaṇḍa **परचंड** Prachaṇḍa ( See )
ଏହା ଶୁଣୁ ଶୁଣୁ ଯେ ବଳ ପରଚଣ୍ଡେ
ବାମଦେବ ଋଷିଙ୍କି ବନ୍ଧିଲେକ କାଣ୍ଡେ—କୃଷ୍ଣସିଂହ, ମହାଭାରତ, ବନ ।

ପରଚଣ୍ଡା—ଗ୍ରା. ( ପଦ୍ୟ ) ବିଣ—ପ୍ରଚଣ୍ଡ ( ଦେଖ )
Parachaṇḍā Prachaṇḍa ( See )
ଅନଳୁକ ଶର ତ ଯୁଦ୍ଧେ ପରଚଣ୍ଡା
ହାଣିବେ ଶର ସୈନ୍ୟ ଧରି ଫରୁ ଖଣ୍ଡା—କୃଷ୍ଣସିଂହ, ମହାଭାରତ, ବନ ।

ପରଚରିବା—ଗ୍ରା. ( ପଦ୍ୟ ) କ୍ରି. ( ସଂ. ପ୍ରଚର )—ପ୍ରଚରିବା; ହେବା, **Paracharibā** ଘଟିବା—To come into existence.
ବର୍ଣ୍ଣିଲେ ଏରୂପେ ସ୍ୱଭାବଙ୍କ ପରଚରେ—ଭଞ୍ଜ. ବୈଦେହୀଶବିଳାସ ।

ପର ଚର୍ଚ୍ଚା—ସଂ. ବି (୬ଷ୍ଠୀ ତତ୍, ପର+ଚର୍ଚ୍ଚା)—ଅନ୍ୟ ବ୍ୟକ୍ତି ବିଷୟରେ Para charchchā ଆଲୋଚନା—Discussion on the affairs or suject of others.

ପରଗ୍ଣ—ବୈଦେ. ବ. ( ଫା. ପର୍ଚ୍ଚ )—ପାରଚା; ବନ୍ଦୋବସ୍ତ ଖାନାପୁରୀ
Parachā ଅମୀନ ରଯ୍ୟତ ଜମିର ଯେଉଁ ପ୍ରାଥମିକ ବିବରଣଲିପି
ପାର୍ଚା **पर्चा** ପ୍ରଜାଙ୍କୁ ଦିଅନ୍ତି—A slip of paper given to a rayat by a Settlement Amina

ପରଚ(ଚେ)ଇବା—ଦେ. କ୍ରି. ( ସଂ. ପରିଚୟ )—୧ । ପରିଚିତ
Parachā(che)ibā କରାଇବା—
1. To cause to be acquainted with.
୨ । ଜଣାଇବା—2. To inform.
୩ । ପଡ଼ଚୁଆ ଦେବା—
3. To make sinister innuendoes

ପରଚାର—ଗ୍ରା. (ପଦ୍ୟ) ବ (ସଂ. ପ୍ରଚାର)—ପ୍ରଚାର ( ଦେଖ )
Parachāra ପରଚାର **परचार** Prachāra (See)
ଭୂଷଣ ବରଚିଲି ପରଚାର କରାଇ ଭଗବାନଙ୍କ—
ଅନୁମାନ. ଦଣ୍ଡୀ ବାଦ୍ୟ

ପରଚାରିବା—ଗ୍ରା. (ପଦ୍ୟ) କ୍ରି. (ସଂ. ପ୍ରଚାର)—ପ୍ରଚାର କରିବା—
Parachāribā ପରଚାରିବା **परचारना** To publish.

ପରଚାଲି—ପ୍ରାଦେ. ( ସମ୍ବଲପୁର ଓ ସିଂହଭୂମ ) ବ—ଲଙ୍ଗଳର ଯୁଆଳର
Parachāli ବାଙ୍କୁଲି ( ଯାହାର ମୁହଁ ତଳଆଡ଼କୁ ହୋଇଥାଏ )—
The wooden pins attached to the ends of the yoke of a plough.

ପରଚିତ୍ତ ପର୍ଯ୍ୟାୟ ଜ୍ଞାନ—ସଂ. ବ—ଅନ୍ୟର ମନୋଗତ ଭାବକୁ ଜାଣି
Parachitta parjyāya jnāna ପାରିବା (ଜୈ.ଶ)—Divining at the thoughts of others; thought-reading

ପରଚିବା—ଦେ. କ୍ରି. ( ସ ପରିଚୟ )—୧ । ପରିଚୟ ଦେବା—
Parachibā 1 To introduce a person to another.
୨ । ଚିହ୍ନା ଦେବା—2. To give out one's identity.

ପରଚୁଆ—ଦେ. ବ—ପଡ଼ଚୁଆ ( ଦେଖ )—
Parachuā Pardachuā ( See )

ପରଚୂଳ(ଳା)(ଲା)—ଦେ. ବ—କୃତ୍ରିମ କେଶ, ଛଦ୍ମ ବେଶ ପାଇଁ ପରିହିତ
Parachūla(lā)(lā) କେଶ—Wig; periwig; false hair
ପରଚୂଳା **बालोंकी टोपी**

ପରଚ୍ଛନ୍ଦ—ସଂ. ବ. ( ୬ଷ୍ଠୀ ତତ୍; ପର+ଛନ୍ଦ=ଇଚ୍ଛା, ଅଭିଳାଷ; ଛ
Parachchhanda ସ୍ଥାନରେ ସନ୍ଧିଦ୍ୱାରା ଚ୍ଛ)—ପରର ଅଭିପ୍ରାୟ—
Another's will or intention.
ସଂ. ବିଣ (ବହୁବ୍ରୀହି)—ପରବଶ; ପରାଧୀନ—
Dependent on another.

ପରଚ୍ଛନ୍ଦାନୁବର୍ତ୍ତୀ—ସଂ. ବିଣ. ପୁଂ. (ପରଚ୍ଛନ୍ଦ+ଅନୁବର୍ତ୍ତିନ୍; =ପରଚ୍ଛନ୍ଦାନୁ-
Parachchhandānubartti ବର୍ତ୍ତିନ୍, ୧ମା. ୧ବ)—
(ପରଚ୍ଛନ୍ଦାନୁବର୍ତ୍ତିନୀ—ସ୍ତ୍ରୀ) ୧ । ପରାଧୀନ—1. Dependent on another.
(ପରଚ୍ଛନ୍ଦାନୁବର୍ତ୍ତିତା—ବ)
୨ । ଯେ ପରର ମନ ଜଗି କାମ କରେ—
2. Acting according to the pleasure or dictates of another.
୩ । ଖୋସାମଦିଆ—3. Sycophant; flattering.

ପରଚ୍ଛିଦ୍ର—ସ ବ (୬ଷ୍ଠୀ ତତ୍, ପର+ଛିଦ୍ର, ସନ୍ଧି ଯୋଗୁଁ 'ଛ' ସ୍ଥାନରେ
Parachchhidra 'ଚ୍ଛ')—୧ । ଅନ୍ୟବ୍ୟକ୍ତିଙ୍କର ଦୋଷ—
1. Other people's faults or weak points.
୨ । ଅନ୍ୟ ବ୍ୟକ୍ତିର ଗୁପ୍ତ କଥା—
2. The secrets of others.

ପରଚ୍ଛିଦ୍ରାନୁସାରୀ—ସଂ. ବିଣ. ପୁଂ. (ପରଚ୍ଛିଦ୍ର+ଅନୁସାରିନ୍,ପରଚ୍ଛିଦ୍ରାନୁସାରିନ୍
Parachchhidrānusāri ୧ମା. ୧ବ)—ଯେ ପରର ଦୋଷ
(ପରଚ୍ଛିଦ୍ରାନୁସାରିଣୀ—ସ୍ତ୍ରୀ) ଧରେ—Fault-finding;cavilling.
(ପରଚ୍ଛିଦ୍ରାନୁସାରିତା—ବ)

ପରଚ୍ଛିଦ୍ରାନ୍ୱେଷଣ—ସଂ. ବ (୬ଷ୍ଠୀ ତତ୍, ପରଚ୍ଛିଦ୍ର+ଅନ୍ୱେଷଣ)—
Parachchhidrānweshana ପରର ଦୋଷ ଖୋଜି ବୁଲିବା—
Seeking for a hole in other peoples' coats.

ପରଚ୍ଛିଦ୍ରାନ୍ୱେଷୀ—ସ ବିଣ. ପୁଂ. (ପରଚ୍ଛିଦ୍ରାନ୍ୱେଷିନ୍ ୧ମା ୧ବ)—
Parachchhidrānweshi ପରଦୋଷ ଖୋଜିବୁଲିବା (ବ୍ୟକ୍ତି)—
(ପରଚ୍ଛିଦ୍ରାନ୍ୱେଷିଣୀ—ସ୍ତ୍ରୀ) Seeking for others' faults.
(ପରଚ୍ଛିଦ୍ରାନ୍ୱେଷିତା—ବ)

ପରଛାଇ—ଦେ ବ. (ସଂ. ପ୍ରତିଚ୍ଛାୟା)—ଦର୍ପଣ ଓ ପାଣିଆଦିରେ ପଡ଼ିବା
Parachhāi କୌଣସି ବସ୍ତୁର ଛାୟା, ପ୍ରତିବିମ୍ବ—
ପ୍ରତିବିମ୍ବ Image of a thing on mirror or water; reflected image.
**परछाइँ**

ପରଛିତ(ତି)—ଦେ ବ—୧ । ପାଚେରି, ପ୍ରାଚୀର—
Parachhit(ti) 1. Compound wall.
ପରଛତୀ ୨ । ଛପର ହୋଇଥିବା ମାଟି ପାଚେରି—
**परछत्ती** 2. A thatched compound wall of earth.

ପରଛିଦ୍ର—ଦେ. ବ. (ସ. ପରଚ୍ଛିଦ୍ର)—୧ । ପରର ଦୋଷ—
Parachhidra Other peoples' faults or weak points.
ପରେର ଛିଦ୍ର **दूसरोंका छिद्र**
ରହୁଁ କ ଶକୁନ୍ତଳା ବୋଇଲେ ଶୁଣନ
ପରଛିଦ୍ର ଯୋଉଷ ପ୍ରମାଣେ ଥିଲେ ସେନ । କୃଷ୍ଣସିଂ ହ. ମହାଭାରତ ଅବ ।
୨ । ପରର ଗୁପ୍ତ କଥା—2. Other peoples' secrets.

ପରଜ—ଦେ ବ. (ସ. ପରଜିକା)—ସଙ୍ଗୀତର ରାଗବିଶେଷ—
Paraja A musical tune.
ପରଜ [ ଦ୍ର—ଏହା ଗାନ୍ଧାର, ଧନାଶ୍ରୀ ଓ ମାରୁ ରାଗର ମିଳନରେ
**परज** ଜାତ । ରାତ୍ରି ୧୧ ଦଣ୍ଡ ଠାରୁ ୧୫ ଦଣ୍ଡ ପର୍ଯ୍ୟନ୍ତ ଏହା ଗେୟ ।
ଏଥିରେ ଋଷଭ, ଧୈବତ କୋମଳ ଓ ମଧ୍ୟମ ତୀବ୍ର ସ୍ୱର ଲାଗେ ।
ଏହା ହିନ୍ଦୋଳରାଗର ସହଚରୀ—ଜ୍ଞ. ଶ. ]
ସ ବିଣ. (ପର+ଜନ୍ ଧାତୁ+କର୍ତ୍ତୃ. ଅ)—ପରଠାରୁ ଜାତ—
(ପରଜା—ସ୍ତ୍ରୀ) Born of another,
ସ. ବ—ପରଞ୍ଜ (ଦେଖ)—Parañja (See)

ପର ଜଞ୍ଜାଳ—ଦେ. ବ—ଅନ୍ୟ ବ୍ୟକ୍ତିର ଜଞ୍ଜାଳ—
Para janjāla Another's trouble or complication.

ପରଜଞ୍ଜାଳିଆ—ଦେ. ବିଣ—ଯେ ପରର ଜଞ୍ଜାଳ ବା ଦୁଃଖରେ ପଶିଥାଏ-
Parajanjālia Troubled with other peoples' troubles or affairs.
(ପରଜଞ୍ଜାଳୀ, ପରଜଞ୍ଜାଳେଈ—ସ୍ତ୍ରୀ)
(ପରଜଞ୍ଜାଳ—ଅନ୍ୟରୂପ)

ପରଜଣା—ପ୍ରାଦେ· (ଗଞ୍ଜାମ) ବି—ଛୁଙ୍କ (ଦେଖ)
Parajaṇā Chhuṅka (See)

ପରଜନ—ସ. ବି—୧ । ଶତ୍ରୁ—1. Enemy.
Parajana ୨ । ଅନ୍ୟ ବ୍ୟକ୍ତି—2. Another person.

ପରଜ(ଜ୍ୱ)ଳିବା—ଦେ. (ପଦ୍ୟ) କ୍ରି. (ସ. ପ୍ରଜ୍ୱଳନ)—୧ । ଜଳିବା—
Paraja(jwa)liba 1. To burn.
ପବଜ୍ବାଲା ୨ । (ଲକ୍ଷଣାର୍ଥ) କ୍ରୋଧରେ ପ୍ରଚଣ୍ଡ ହେବା—
**परजरना** 2. (figurative) To fire in anger; to become furious with anger.
ଶୁଣି ଅସୁରେ ପରଜ୍ଜଳ ଯେସନେ ସମୁଦ୍ର ଉଚ୍ଛୁଳ । ଜଗନ୍ନାଥ, ଭାଗବତ ।

ପରଜା—ଗ୍ରା. (ପଦ୍ୟ) ବି. (ସ. ପ୍ରଜା)—୧ । ରଇତ, ପ୍ରଜା—
Parajā 1. Tenant; subject; royat.
ପ୍ରଜା **परजा**
ହସ୍ତିନାକୁ ଆସିଲେ ସମସ୍ତ ପରଜା । କୃଷ୍ଣସିଂହ, ମହାଭାରତ· ବନ ।
୨ । ପରଝା (ଦେଖ)—2. Parajhā (See)
୩ । ଗୋଣ୍ଡୀ ଭାଷାର ଏକ ଶାଖା—
3. A dialect of the Goṇḍī language.
୪ । ବିଶାଖାପାଟଣାର ଜୟପୁର ଆଦି ମାଲ ଅଞ୍ଚଳମାନଙ୍କରେ ବାସ କରୁଥିବା ଓଡ଼ିଆଭାଷୀ ଅନାର୍ଯ୍ୟ ଜାତିବିଶେଷ—
4 A non-aryan people living in the agency tracts of Vizag district.
[ ଦ୍ର—ଏମାନଙ୍କ ସଂଖ୍ୟା ବିଶାଖାପାଟଣା ଜିଲ୍ଲାର ଲୋକସଂଖ୍ୟାର ଶତକଡ଼ା ୫ । ]
୫ । ବସ୍ତର ଅଞ୍ଚଳର କୃଷକ ଜାତିବିଶେଷ—
5. A caste of agriculturists in Bastar.

ପରଜାପତି—ଗ୍ରା. ବି. (ସ. ପ୍ରଜାପତି)—୧ । ବ୍ରହ୍ମା—
Parajāpati 1. Brahma.
ଧନ୍ୟ ସେ ପରଜାପତି, ବରକୁ କନ୍ୟା ଘଟାଇଛି । ଭଗ ।
୨ । ସୁନ୍ଦର-ପକ୍ଷଯୁକ୍ତ ପୋକବିଶେଷ—2. Butterfly.

ପରଜା ପାଟକ—ଗ୍ରା. ବି. (ସମ୍ବନ୍ଧର)—ରାଜ୍ୟବାସୀ ପ୍ରଜା ଓ ନାନାଜାତୀୟ
Parajā pāṭaka ବ୍ୟକ୍ତିଗଣ—Subjects and people of different classes in a kingdom.

ପରଜି(ଝି)ବା—ଦେ. କ୍ରି—ଛଅଣକୁ ବଘାରିବା ବା ଫୁଟେଇବା—
Paraji(jhi)bā To curry, to fry or season curry with oil or ghee and spices.
[ପରଜା(ଝା)ଇବା—ଅନ୍ୟରୂପ]
ଛୋଁକା **बघारना, छौंकना**
ଘିଅ ଦେଇ ମସଲାଅଣ ପରଜାଇ
ତେଲେ କରି ଭୃଷ୍ଟି କା ପାତ୍ରକରେ ନେଇ । କୃଷ୍ଣସିଂହ ମହାଭାରତ ସ୍ୱ ।

ପରଝା—ଦେ. ବି—ଛଅଣକୁ ବଘାରିବା କର୍ମ—The process of
Parajhā seasoning curry with oil or ghee and spices.
ଛୌଁକ **छौंक; तड़का**

ପର ଝିଅ—ଦେ. ବି—୧ । ଅନ୍ୟ ବ୍ୟକ୍ତିର ଦୁହିତା—
Para jhia 1. Another's daughter.
ପବେବ ମେୟେ ୨ । ବୋହୂ; ଅନ୍ୟ ପରିବାରରୁ ଆପଣା ପରିବାରକୁ ବଧୂ ରୂପେ ଆସିଥିବା କନ୍ୟା—
**दूसरेकी लड़की** 2. Daughter-in-law.

ପରଞ୍ଚ—ପ୍ରାଦେ. ( ଗଞ୍ଜାମ ) ବି—ଘର ଛାଉଣି ସମୟରେ କାଠଆଦିକୁ
Parañja ଖଳକୁ ଉଠାଇ କାମ କରିବା ପାଇଁ ଛାଆଣି କରା-ଯିବା ଭାଡ଼ି ବା ମଞ୍ଚ—A temporary platform or scaffolding made of planks to enable workmen to work high up in side the thatchframe
ସ ବି. (ପରଂ—ପରକୁ+ଜି ଧାତୁ—ଜୟ କରିବା+କର୍ତ୍ତୃ ଅ)—
୧ । ତେଲ ଘଣା ( ପ୍ରକୃତିବାଦ)—1. Oil mill.
୨ । ଛୁରୀର ଧାର—2. Sharp edge of knife.
୩ । ଫେଣ—3. Froth; foam.

ପରଞ୍ଜୟ—ସ. ବି. (ପରଂ—ଶତ୍ରୁକୁ+ଜି ଧାତୁ=ଜୟ କରିବା+କର୍ତ୍ତୃ
Parañjaya ଅ)—ଶତ୍ରୁ ଜୟକାରୀ, ରିପୁଞ୍ଜୟ—
The vanquisher of one's enemies.

ପରଞ୍ଜା—ପ୍ରାଦେ. (ଗଞ୍ଜାମ) ବି—ଖଳ ଘରର ରୁଅ, ରୁଅ—
Parañjā Rafters of a thatched house.

ପରଟ(ଠା)—ଦେ. ବି.(ସ. ପ୍ରଲେପନ)—ଘିଅ ବୋଳା ଯାଇ ସେକାଯାଇ
Paraṭa(ṭhā) ପରସ୍ତ ପରସ୍ତ ଭାଙ୍ଗ କରା ଯାଇଥିବା ରୁଟି—
(ପରେଠା, ପରୋଠା—ଅନ୍ୟରୂପ) A flat bread or pie be smeared with ghee and made into many folds.
ପବେଟା, ପବଟା
**पराँठा**

ପରଢାଲ—ପ୍ରାଦେ. (ସମ୍ବଲପୁର) ବି—ଦୁଦା—
Paraḍhāla A badge.

ପରଣ—ଦେ. ବି· (ସ. ପରିଧାନ)—୧ । ପରିଧାନ, ପିନ୍ଧିବା—
Paraṇa 1 Wearing.
(ପହରଣ—ଅନ୍ୟରୂପ) ୨ । ପିନ୍ଧା; ପିନ୍ଧିବା ଲୁଗା—
ପବନ୍ **पहनावा** 2. Cloths worn.
୩ । ଲୁଗା ପିନ୍ଧିବାର ଢଙ୍ଗ—
3. Mode of wearing cloth or dressingo.

ପରଣାମ୍—ଗ୍ରା. (ପଦ୍ୟ) ବି. (ସ. ପ୍ରଣାମ)—ପ୍ରଣାମ (ଦେଖ)
Paraṇām ପେନାମ **परनाम** Praṇāma ( See )

ପରଣାମିବା—ଗ୍ରା. (ପ୍ରାଚୀନ ପଦ୍ୟ) କ୍ରି. (ସ. ପ୍ରଣାମ)—
Paraṇāmibā ପ୍ରଣାମ କରିବା—To bow down.
ପେନାମକବା ଶୁଣେ ବସିଲେ ମନ ଗଣେ, ପୁଣି ହିଁ ଭଲା ପରଣାମେ ।
**परनामना** ଜଗନ୍ନାଥ, ଭାଗବତ ।

ପରଣାମୀ—ଗ୍ରା. ବି—ପ୍ରଣାମୀ ( ଦେଖ )
Paraṇāmi ପେନାମୀ **परनामी** Praṇāmi ( See )

ପରତ—ଦେ. ବି. (ସ. ପ୍ରସ୍ତ, ପଟ୍ଟ, ପଟଳ)—
Parata ୧ । ସ୍ତର, ତହ—1. Layer.
ପବତ ୨ । ପ୍ରସ୍ତ, ଭାଙ୍ଗ—2. Fold; plait
**परत** ୩ । (ସ. ପ୍ରତ୍ୟୟ) ପରତେ (ଦେଖ)
3. Parate ( See )

ପରତଃ—ସ. ଅ. ( ପର+ତସ୍ )—
Parataḥ ୧ । ପରଲୋକରେ—1. In the existence after death.

୨ । ପରଠାରୁ—2 From another
୩ । ଭବିଷ୍ୟତରେ—3. In future.
୪ । ପରୋକ୍ଷରେ—4 Indirectly

**ପରତଃ ପ୍ରମାଣ** – ସଂ. ବି. (ବହୁବ୍ରୀହି, ପରତଃ + ପ୍ରମାଣ) —
Paratah pramāṇa ଯାହା ସ୍ୱତଃ ପ୍ରମାଣିତ ନୁହେଁ, ପରୋକ୍ଷରେ ପ୍ରମାଣିତ, ଯାହା ଅନ୍ୟ ପ୍ରମାଣର ଅପେକ୍ଷା ରଖେ—
Not self-evident, requiring other proof.

**ପରତକ୍ଷ** – ଗ୍ରା. ବିଣ. (ସଂ. ପ୍ରତ୍ୟକ୍ଷ)—ପ୍ରତ୍ୟକ୍ଷ—
Parataksha Direct; seen with one's own eyes.
পরতেক परतच्छ

**ପରତଚ୍ଛୁ(ଚ୍ଛୁ)**— ଗ୍ରା. ବି. (ସଂ. ପ୍ରତିଚକ୍ଷୁଃ)—ପ୍ରଚକ୍ଷୁ; ଚଷମା—
Paratachhu(chchhu) Spectacles.

**ପର ତନ୍ତ୍ର**—ସଂ. ବିଣ. (ପର + ତନ୍ତ୍ର = ଅଧୀନ)—ପରାଧୀନ, ପରବଶ—
Para tantra Dependent on or subject to another

**ପରତଳା(ଳା)**—ଦେ. ବି—୧ । ଚମଡ଼ାର ବା କନାର ଯେଉଁ ପଟି କାନ୍ଧ ବାଟେ ଅଣ୍ଟା ପର୍ଯ୍ୟନ୍ତ ପଇତା ପରି ଲମ୍ବି ଥାଏ ଓ ଯହିଁରେ ତରବାରୀ ଓ ସଙ୍ଗୀନ୍ ଆଦି ଲଟକା ଯାଏ—
Paratalā(ḷā) পরতালা परतला
1. A leathern or cloth band or strap which is worn along one shoulder and reaches the other side of the waist and from which a sword is suspended; a shoulder-belt
୨ । ଚିଆଦାଙ୍କ ତୋଡ଼ା—2. Peon's badge or belt.

**ପରତା(ତେ)ଇବା**—ଦେ. କ୍ରି. (ସଂ ପ୍ରସ୍ତ, ପତ୍ର)—
Paratā(te)iba ପ୍ରସ୍ତ ପ୍ରସ୍ତ କରି ଭାଙ୍ଗିବା—
তহকরা तहकरना To fold in layers.

**ପରତାପ**—ଗ୍ରା. (ପଦ୍ୟ) ବି (ସଂ. ପ୍ରତାପ)—ପ୍ରତାପ (ଦେଖ)
Paratāpa Pratāpa ( See )
পরতাপ ପ୍ରବଳର ପରତାପେ ଜନ ସୁଖ ହୋଇଁ ଶରତ ବର୍ଷିତ ହେ ।
परताप ଭକ୍ତନାଥ, ଦତ୍ତଙ୍କ ପ୍ରସ୍ତାବନ ।

**ପରତାପୀ**—ଗ୍ରା. (ପଦ୍ୟ) ବିଣ (ସଂ. ପ୍ରତାପୀ)—ପ୍ରତାପୀ, ପ୍ରତାପବାନ୍—
Paratāpi Powerful; mighty.
ମହା ତୋରପୀ ସୁଦୃଢ଼ ଖେନ କେଶରୀ । ଡାକ୍ତ. ପ୍ରତାପ ଶଶିରେଖା ।

**ପରତାଳ (ଇତ୍ୟାଦି)**—ଦେ. ବି—ପ୍ରତାଳ ଇତ୍ୟାଦି (ଦେଖ)—
Paratāla (etc) Pratāla etc. (See)
পরতাল परताल

**ପରତା(ଳ)ଳା**—ଦେ. ବି—ପରତଳା ( ଦେଖ )
Paratā(ḷā)ḷa Parataḷā ( See )

**ପରତାଳିବା**—ଗ୍ରା. କ୍ରି—ପ୍ରତାଳ କରିବା—
Paratālibā To test by remeasurement.
পরতালকরা परताल करना

**ପରତିଜ୍ଞା**—ଗ୍ରା. ବି. ( ସଂ. ପ୍ରତିଜ୍ଞା )—
Paratijna ୧ । ପ୍ରତିଜ୍ଞା—Vow.
পরতিজ্ঞা परतिज्ञा ୨ । କ୍ଷମତା—2. Power.

**ପରତୀତ**—ଗ୍ରା. (ପଦ୍ୟ) ବିଣ (ସଂ. ପ୍ରତୀତ)—ପ୍ରତୀତ ( ଦେଖ )
Paratīta Pratīta ( See )
পরতীত ମନ ଧନ ଦେଇ ପରତୀତ ଗୋ ।
परतीत ଅଭିମନ୍ୟୁ, ବଦଗ୍ଧଚନ୍ତାମଣି ।

**ପରତୀତି**—ଗ୍ରା. (ପଦ୍ୟ) ବି (ସଂ. ପ୍ରତୀତି)—ପ୍ରତୀତି (ଦେଖ)
Paratīti Pratīti (See)
পরতীত ରଙ୍ଗ ମୃତ୍ତିକା ଛଡ଼ିଲି ଅଙ୍ଗସଙ୍ଗ-ଲତା-ପତ୍ର ପରତୀତ ଗୋ ।
परतीत ଅଭିମନ୍ୟୁ, ବଦଗ୍ଧ ଚନ୍ତାମଣି ।

**ପରତେ**—ଦେ. ବି (ସଂ ପ୍ରତ୍ୟୟ)—୧ । ପ୍ରତେ, ବିଶ୍ୱାସ—
Parate I Confidence; trust; faith; belief
୨ । ଅନୁମାନ—2. Guess; inference
পত্যাবা ମୁଁ ତ ଏହୁରୁପ ହେଉଅଛି ପରତେ ।
पतियारा କୃଷ୍ଣସିଂ. ମହାଭାରତ. ସଭା ।

**ପରତେ(ତ୍ୟେ)କ(କେ)**—ଗ୍ରା. ସର୍ବ. (ସଂ. ପ୍ରତ୍ୟେକ)—ପ୍ରତ୍ୟେକ—
Parate (tye)ka(ke) Each.

**ପରତେ ଯିବା** – ଦେ. କ୍ରି.—୧ । ବିଶ୍ୱାସ କରିବା—
Parate jibā 1. To believe.
ପରତେ କରିବା } ଅନ୍ୟରୂପ
ପରତେ ପାଇବା }
ତେବେ ଯିବ ସବୁ କଥା ଜାଣ ତେବେ । କୃଷ୍ଣସିଂହ ମହାଭାରତ ବନ ।
পত্যাবা কবা पतियाना ୨ । ଅନୁମାନ କରିବା—2. To guess.

**ପରତ୍ୱ(ତା)**—ସଂ. ବି. (ପର + ଭାବାର୍ଥରେ ତ୍ୱ)—୧ । ପ୍ରଭେଦ—
Paratwa(tā) 1. Difference.
୨ । ଶତ୍ରୁତା—2. Hostility.
୩ । ଅନାତ୍ମୀୟତ୍ୱ—3. The state of being foregin or strange.
୪ । (ନ୍ୟାୟଶାସ୍ତ୍ର) ସାଧାରଣ ଗୁଣର ପ୍ରକାର; ବସ୍ତୁଦେଶଗତ ଓ ବସ୍ତୁ କାଳଗତ ଗୁଣ—4. (Logic) Nature of common or generic property (Howells).
୫ । ଦୂରତ୍ୱ, ଦୂରବର୍ତ୍ତିତା—5. Remoteness

**ପରତ୍ର**—ସଂ. କ୍ରି. ବିଣ. (ପର + ସ୍ଥାନାଧିକରଣାର୍ଥେ. ତ୍ର)—୧ । ଅନ୍ୟତ୍ର;.
Paratra ଅନ୍ୟ ସ୍ଥାନରେ—1. Elsewhere.
(ଅତ୍ର—ବିପରୀତ) ୨ । ପରକାଳରେ—
2 In future; after death.
୩ । ପରେ; ଭବିଷ୍ୟତରେ—3. Hereafter.

**ପରତ୍ର ଭୀରୁ**—ସଂ. ବିଣ. (ପରତ୍ର = ପରକାଳରେ + ଭୀରୁ)– ଯାହାର
Paratra bhiru ପରକାଳର ଭୟ ଅଛି, ଧର୍ମଭୀରୁ; ଧାର୍ମିକ—
Religious; god-fearing.

**ପରଦଳା**—ଦେ ବି.—ପରତଳା (ଦେଖ)
Paradaḷā Parataḷā (See)
ଖଣ୍ଡା ପରଦଳା ସହିତରେ ସଜାଇ,
ବାନ୍ଧ ହୋଇଲେ ଲୁଗା ଭିଡ଼ କରି ତହିଁ । କୃଷ୍ଣସିଂହ ମହାଭାରତ ବନ ।

**ପରଦା**—ବୈଦେ.ବି.(ଫା.ପର୍ଦା)—୧ । ଭିତରର କଥା ବାହାରକୁ ଦେଖାନ ଯିବା ପାଇଁ ଲୁଗା ଆଦିର ଯେଉଁ ଖଣ୍ଡ ଲଟକାଇ ଦିଆ ଯାଇ ଥାଏ, ଯବନିକା; ପଟ—1. Screen; curtain.
Paradā পরদা परदा
(ପର୍ଦା—ଅନ୍ୟରୂପ) ୨ । ଆବରଣ; ଘୋଡ଼ଣ—
2. Cover; covering.

୩ । ଗୁପ୍ତତା —3. Secrecy, privacy.
୪ । ଅନ୍ତଃପୁର, ଅବରୋଧ—
4. Seraglio; female apartments.
[ଦ୍ର—ଏ ଶବ୍ଦ ଇଂରାଜି ଭାଷାରେ ମଧ୍ୟ ଚଳନ୍ତାଣି ।]
୫ । ମହତ୍ତ୍ୱ, ଇଜ୍ଜତ୍—
5. Ijjat; position; decency; honour
୬ । ସୀତାରର ବଉଳ ସ୍ୱର ପ୍ରକାଶକ ଲୁହା ବା ପିତ୍ତଳର ଅଡ଼ା-କାଠି ବା ଘାଟ—6 Cross-pieces of a guitar.
୭ । ବ୍ୟବଧାନ, ବାଡ଼—7. Fencing; partition.
୮ । ଲଜ୍ଜା—8. Shame; modesty.
୯ । ସ୍ତ୍ରୀମାନଙ୍କର ଅନ୍ତଃପୁରରେ ଅବରୁଦ୍ଧ ରହିବା ପ୍ରଥା; ଅବରୋଧ ପ୍ରଥା, ସ୍ତ୍ରୀମାନେ ପ୍ରକାଶ୍ୟ ଭାବରେ ବାହାରକୁ ନ ବାହାରିବା ପ୍ରଥା—9 The system or custom of females being confined to the inner apartments of the house and not coming out to public view.
୧୦ । ପରସ୍ତ, ପରତ, ସ୍ତର—10. Layer
୧୧ । କାନ ଭିତରେ ଓ ଆଖିର ଡୋଳା ଉପରେ ଥିବା ଖୁବ୍ ସୂକ୍ଷ୍ମ ଚର୍ମ, ଝିଲ୍ଲୀ—11. Membrane
୧୨ । ଲୋକଚକ୍ଷୁର ଅନ୍ତରାଳରେ ଅବସ୍ଥିତ—13. Staying behind the reach of public gaze; privacy.
୧୩ । ହାରମୋନିଅମରୁ ଯେଉଁ ସ୍ଥାନରୁ ସ୍ୱର ଉତ୍ପାଦିତ ହୁଏ—
13. The part of a harmonium from which sounds issue.

**ପରଦା ଖୋଲ୍**—ଦେ. ବିଣ.—୧ । ଯାହାର ଗୁପ୍ତ ରହସ୍ୟ ଉଦ୍‌ଘାଟିତ ହୋଇ ଥାଏ—1. Having the mystery cleared up.
Paradā khol
बेपरदा **परदा खुलना**
୨ । ଯାହାର ଆବରଣ ଉନ୍ମୁକ୍ତ ହୋଇ ଥାଏ—
2 Having the curtain lifted up; unveiled.
୩ । ସର୍ବତ୍ର ପ୍ରକାଶିତ—3. Published broadcast.

**ପରଦା ଖୋଲିବା**—ଦେ. କ୍ରି.—ଗୁପ୍ତ ରହସ୍ୟ ଉଦ୍‌ଘାଟନ କରିବା—
Paradā kholibā To publish any secret
पवदा खोला **परदा खोलना**

**ପରଦାଜ୍**—ବୈଦେ. ବିଣ. (ଫା.)—ସମ୍ପାଦନକାରୀ—
Paradāj Performing
परदाज **परदाज** (ଯଥା—କାର୍‌ପରଦାଜ୍ = କର୍ମ ସମ୍ପାଦକ ।)

**ପରଦାନ**—ଗ୍ରା. (ପଦ୍ୟ) ବି. (ସଂ ପ୍ରଦାନ)—ପ୍ରଦାନ (ଦେଖ)
Paradāna Pradāna (See)
ଲେସେ ପାଶେ ଭଙ୍ଗ ଭଙ୍ଗୀ ନକର,
ବାଳେଣୀ କଲା ପରଦାନ ତ୍ୱରାରେ । ଉପେ. ବୈଦେହୀଶବିଳାସ ।

**ପରଦାନଶିନ୍**—ବୈଦେ. ବିଣ (ଫା.)—୧ । ଯେ (ଅନ୍ତଃପୁରବାସିନୀ ସ୍ତ୍ରୀ) ସର୍ବଦା ପରଦା ପଛଆଡ଼େ ଲୋକଚକ୍ଷୁର ଅନ୍ତରାଳରେ ରହେ, ଅବରୋଧବାସିନୀ, ଅସୂର୍ଯ୍ୟଂପଶ୍ୟା, ଅନ୍ତଃପୁର-ବାସିନୀ—1 Living behind the curtain; confined to the female compartments; confined in the Zenana.
Paradā nasin
पवदानसीन **परनसीन**
୨ । ଯେଉଁ ସ୍ତ୍ରୀ ସର୍ବସାଧାରଣରେ ବାହାରକୁ ବାହାରନ୍ତି ନାହିଁ—
2 (a woman) Who does not come out in public.

**ପରଦା ବନ୍ଧା(ନ୍ଧେ)ଇବା**—ଦେ କ୍ରି—'ପରଦା ବାନ୍ଧିବା'ର ଣିଜନ୍ତରୂପ—
Paradā bandhā(ndhe)ibā Causative form of 'Paradā bāndhibā')—
पवदा फेलान **पर्दा डलवाना** ପ୍ରକାଶ ନ କରିବା, ଗୁପ୍ତ ରଖିବା—
To keep secret.
ପରଦ ପଡ଼ନ୍ତ ବୋଲି ଦିନା ନାହିଁ ରେହାବନ୍ଧାଇ ବଚନରେ—
କବିସୂର୍ଯ୍ୟ, ସଙ୍ଗୀତ ।

**ପରଦା ବାନ୍ଧିବା**—ଦେ. କ୍ରି (ଲକ୍ଷଣାର୍ଥ)—୧ । ଗୋପନ କରିବା, ଲୁଗାଇବା—1 To conceal.
Paradā bāndhibā
पवदा बान्धा ୨ । ସଂଯତ କରିବା—2 To control, to check; to restrain.
**परदा डालना** ୩ । କୌଣସି ବିଷୟକୁ ଗୁପ୍ତ ରଖିବା—
3. To keep any matter secret
[ପରଦା ଟାଣିବା, ପରଦା ପକା(କେ)ଇବା—ଅନ୍ୟରୂପ]

**ପରଦାର(ରାଃ)**—ସଂ ବି (ଷଷ୍ଠୀ ତତ୍, ପର + ଦାର[ରାଃ] ,—ପରସ୍ତ୍ରୀ—
Paradāra(rāh) Another man's wife.
पवदाव ଦେ. ବି. ( ସଂ. ପରଦାର ଗମନ )—ପରସ୍ତ୍ରୀ ସଙ୍ଗେ ସହବାସ,
**परदार** ଲମ୍ପଟତ୍ୱ—Adultery.
( ପରପତ୍ନୀ, ପରନାରୀ, ପରସ୍ତ୍ରୀ—ଅନ୍ୟରୂପ )

**ପରଦାର(ରା) କରିବା**—ଦେ. କ୍ରି—ପରସ୍ତ୍ରୀ ସଙ୍ଗେ ସହବାସ କରିବା—
Paradāra(rā) karibā To commit adultery with another's wife
पवदाव कवा **परदारा करना**
ସେ କର୍ମ କଲେ ପରଦାର—ଜଗନ୍ନାଥ. ଭାଗବତ ।

**ପରଦାର ଗମନ**—ସଂ. ବି—ପରସ୍ତ୍ରୀ ସହିତ ସଂସର୍ଗ—
Paradāra gamana Adultery with another man's wife.
(ପରଦାରାଭିଗମନ—ଅନ୍ୟରୂପ)

**ପରଦାରଗାମୀ**—ସଂ. ବିଣ. ପୁଂ. ( ପରଦାର + ଗମ୍ ଧାତୁ + ଇନ୍; ୧ମା. ୧ବ )—ପରସ୍ତ୍ରୀ ସଂସର୍ଗକାରୀ—
Paradāragāmi
Adulterous (person); committing adultery, with another's wife.
[ ପରଦାରାଭିଗାମୀ—ଅନ୍ୟରୂପ ]

**ପରଦାରିକ**—ସଂ. ବିଣ. ପୁଂ. (ପରଦାର+ଇକ)—ପରଦାରଗାମୀ—
Paradārika Adulterous ( person ).

**ପରଦାରି(ରେ)ଣୀ**—ଗ୍ରା ବିଣ ସ୍ତ୍ରୀ. (ସଂ ପରଦାରର ସ୍ତ୍ରୀଲିଙ୍ଗ) —କୁଳଟା, ଭ୍ରଷ୍ଟା (ସ୍ତ୍ରୀ)—Adulterous (woman ).
Paradāri(re)ṇi

**ପର ଦିନ**—ସଂ. ବି.—ପରବର୍ତ୍ତୀ ଦିବସ—
Para dina Next day.
ଦେ ବି—ପଅର ଦିନ ( ଦେଖ )—
Pa-ara dina ( See )

**ପର ଦେଶ**—ସଂ. ବି. (କର୍ମଧା, ପର + ଦେଶ,—ଭିନ୍ନଦେଶ; ବିଦେଶ—
Paradesa Foreign land; strange country.
पवदेश **परदेश** ଦେ ବି—ପ୍ରବାସ—Sojourn.
( ସ୍ୱଦେଶ—ବିପରୀତ )

**ପରଦେଶିଆ**— ଦେ. ଵଣ. (ସ. ପରଦେଶୀୟ )—୧ । ପ୍ରବାସୀ—
Paradesiā (ପରଦେଶୀ—ଅନ୍ୟରୂପ) 1. Sojourning.
**परदेशी** ୨ । ଭିନ୍ନଦେଶାଗତ—2. Come from abroad;
**परदेशी** come from a strange country
୩ । ବିଦେଶୀ—3. Foreign.

ପରପୁଅ ପରଦେଶିଆ ବନ୍ଧୁ, କେଉଁ କାରୁକେଇ କାଜ । ଢଗ ।

**ପରଦେଶୀୟ**—ସ ଵଣ. ( ପରଦେଶ + ଈୟ )— ଅନ୍ୟ ଦେଶର—
Para desiya Relating to a foreign country, foreign.

**ପର ଦ୍ୱେଷୀ**—ସ. ଵଣ. ପୁଂ. ( ପରଦ୍ୱେଷ + ଇନ୍, ୧ମା. ୧ବ )—
Paradweshi ୧ । ପରପ୍ରତି ଈର୍ଷାନ୍ୱିତ—1 Envious.
( ପରଦ୍ୱେଷିଣୀ— ସ୍ତ୍ରୀ ) ୧ । ଶତ୍ରୁଭାପନ୍ନ—
(ପରଦ୍ୱେଷ୍ଟା—ଅନ୍ୟରୂପ) 2. Inimical; hostile.

**ଧନରେ ବନ୍ଧୁ ଅରଜିବା**— ଦେ. ନ୍ୟାସ୍ଥ—ପରଧନ ବ୍ୟୟ କରି
Para dhanare bandhu arajibā ଆପଣାର ଉପକାରର
ବା ବନ୍ଧୁତ୍ୱର ପନ୍ଥା କରିବା—To earn a personal friend or benifit by spending another's money.
(ପରଧନରେ ବନ୍ଧୁ ବାନ୍ଧିବା—ଅନ୍ୟରୂପ)

**ପର ଧର୍ମ**—ସ. ଵ—୧ । (କର୍ମଧା) ନିଜର ଧର୍ମ ଛଡ଼ା ଅନ୍ୟ ଧର୍ମ—
Para dharma 1. An alien religion.
(ସ୍ୱଧର୍ମ—ବିପରୀତ) ୨ । ( ୬ଷ୍ଠୀ ତତ୍ ) ଅନ୍ୟ ଜାତି ବା ବର୍ଣ୍ଣର ଆଚରିତ ଧର୍ମ—2. Law or duties of another person or caste.
୩ । (ଯୋଗ ଦର୍ଶନ) ଇନ୍ଦ୍ରିୟାଶକ୍ତି (ଶ୍ଳାନେନ୍ଦ୍ର)—
3. (Joga philosophy) Sensualism.

**ପର ଧାମ**—ସ. ଵ. ( କର୍ମଧା; ପର + ଧାମ )—୧ । ବୈକୁଣ୍ଠ; ସ୍ୱର୍ଗ—
Paradhāma 1. Heaven.
୨ । ମୁକ୍ତି; ମୋକ୍ଷପଦ—2. Salvation.
୩ । ପରମେଶ୍ୱର ( ହ୍ର. ଶ· )—3. God.

**ପର ଧାରତା**—ଦେ. ଵଣ—୧ । ଯେଉଁ ବ୍ୟକ୍ତି ଅନ୍ୟ ବ୍ୟକ୍ତିଠାରେ
Para dhāratā ଋଣୀ—1. A person indebted to another.
(ପରଧାରି; ପରଧାରୁଆ—ଅନ୍ୟରୂପ)
୨ । ଅନ୍ୟ ବ୍ୟକ୍ତିର ଖାତକ—
2. Another person's debtor.
୩ । ଋଣ ହେତୁ ଯେଉଁ ବ୍ୟକ୍ତି ଅନ୍ୟ ବ୍ୟକ୍ତିଠାରେ ଆବଦ୍ଧ ବା ପରାଧୀନ—3. A person who is not his own master, being indebted to another.
ଦେ. ଵ—ଅନ୍ୟଠାରୁ ଆଣିଥିବା ଋଣ—
Loan incurred from another.

**ପରନ୍**—ପ୍ରାଦେ. ( ସମ୍ବଲପୁର ) ଵ. ( ସ. ପତ୍ ଧାତୁ )—ଅଥବା;
Paran ଦେବତାଙ୍କ ନିକଟରେ ଧାରଣା—
Lying prostrate before a Deity till one's wishes are fulfilled or granted.

**ପରନ୍ ପଡ଼ିବା**— ପ୍ରାଦେ ( ସମ୍ବଲପୁର ) କ୍ରି—ଦେବତାଙ୍କ ନିକଟରେ
Paran pardibā ଅଥବା ପଡ଼ିବା—
To lie prostrate before a Deity till one's wishes are granted.

**ପରନା**—ପ୍ରାଦେ ( ସମ୍ବଲପୁର ) ଵ—ପାରଣା ( ଦେଖ )
Paranā Pāranā ( See

**ପର ନିନ୍ଦକ**—ସ. ଵଣ—ପରର ନିନ୍ଦାକାରୀ—
Para nindaka Reviling other people.
( ପରନିନ୍ଦୁକ—ଦେଶଜରୂପ )

**ପରନ୍ତପ**—ସ. ଵଣ. ପୁଂ. ( ପରଂ=ଶତ୍ରୁକୁ + ତପ୍ ଧାତୁ=ତାପ ଦେବା
Parantapa + କର୍ତ୍ତୃ. ଅ )— ୧ । ଶତ୍ରୁର ପୀଡ଼ାଦାୟକ (ବ୍ୟକ୍ତି)—
( ପରଂତପ—ଅନ୍ୟରୂପ ) 1. Oppressive to the enemy.
୨ । ଜିତେନ୍ଦ୍ରିୟ—2. Self-denying; self-controlled.
ସ. ଵ. ( ନାମ )—୧ । ମଗଧର ଜଣେକ ରାଜା—
1. Name of a king of Magadha.
୨ । ତାମସ ମନୁଙ୍କର ଏକ ପୁତ୍ର—
2. Name of a son of Tāmasa Manu.

**ପରନ୍ତୁ**—ସ. ଅ. ( ପରମ୍ + ତୁ )—୧ । କିନ୍ତୁ—
Parantu 1. But; on the other hand.
(ପରଂତୁ=ଅନ୍ୟରୂପ) ୨ । ତଥାପି—2. Yet; still.
୩ । ଆହୁରି ମଧ୍ୟ, ଅଧିକନ୍ତୁ—3. Moreover.
୪ । କିନ୍ତୁ ମଧ୍ୟ—4. But also.
୫ । ଏବଂ ମଧ୍ୟ—5 And also.

**ପରନ୍ଦ**—ଦେ. ଵ—ଡଙ୍ଗାର ଦୁଇ ପାଖର ପଟାରେ ଥିବା ଦୁଗୁଣା ବା ଏକ
Paranda ମଙ୍ଗରୁ ଅନ୍ୟ ମଙ୍ଗକୁ ଲାଗିଥିବା ଦୁଇଟି ସ୍ଥୂଳ ଓ ଲମ୍ବ
**आड़ा काठ** ପଟାକୁ ଦୃଢ଼ ରଖିଥିବା ଆଡ଼ କାଠ ଖଣ୍ଡମାନ—
The cross-beams which join the two edges of a country boat.

**ପରପଞ୍ଚ(ଞ୍ଚା)**—ଦେ. ଵ. (ସ. ପ୍ରପଞ୍ଚ=ଭ୍ରମ; ବଞ୍ଚନା)—
Parapañcha(ñchā) ୧ । ମାୟା—Delusion
**प्रपंच; परपंच** ୨ । ବଞ୍ଚନା—2 Cheating; fraud.
୩ । ହଟହଟା—3. Awkward position.
୪ । ଅମଙ୍ଗଳ—4. Evil.
୫ । କପଟତା—5. Hypocricy.
ଦେ. ଵଣ—୧ । ଅମଙ୍ଗଳିଆ, ଅଶୁଭ—
1. Unpropitious; inauspicious.
୨ । କଦାକାର; ବିକଟ; ଅସୁନ୍ଦର; କୁତ୍ସିତ—
**परपंचक, परपंची** 2 Ugly.
ପାଳଖିଲ ମଣ, ଦେଖି ଅଇଲ ପରପଞ୍ଚ – ଢଗ ।
୩ । ମନ୍ଦ—2. Bad; evil.
୪ । ଅତି ଦୁଷ୍ଟ; ଧୂର୍ତ୍ତ—4. Very wicked.
୫ । କପଟୀ; ମାୟାବୀ—5. Deceptive; illusive

ପର ପତ୍ର—ସଂ. ବି—କୌଣସି ପୁସ୍ତକରେ ପୃଷ୍ଠାର ଶେଷରେ ଲେଖାଯିବା
Para patra ଅଧିକା ଶବ୍ଦ ( ଯାହା ପୁଣି ପରବର୍ତ୍ତୀ ପୃଷ୍ଠାର ଆଦ୍ୟରେ ଲେଖା ଯାଇଥାଏ ଏବଂ ଯହିଁରୁ ପର ପର ପୃଷ୍ଠାମାନ ଧରି ପଢ଼େ )—Catchword; a word under the last line of a page which is repeated at the top of the next page (Howells).

ପର ପଦ—ସଂ. ବି. (ପର=ଉତ୍କୃଷ୍ଟ, ଶ୍ରେଷ୍ଠ+ପଦ=ସ୍ଥାନ)—
Para pada ୧ । ମୁକ୍ତି—1 Salvation.
(ପରମ ପଦ—ଅନ୍ୟରୂପ) ୨ । ଉତ୍କୃଷ୍ଟ ସ୍ଥାନ—
2. Excellent place.

ପର ପର—ଦେ. ଅ—କ୍ରମିକ; କ୍ରମଶଃ ପରବର୍ତ୍ତୀ, ଉତ୍ତରୋତ୍ତର—
Para para Serial; consecutive.
পরপর **सिलसिला, तरतीब**

ପର ପରମେଶ୍ୱର—ଦେ. ବି—ପରାତ୍ପର ପରମେଶ୍ୱର (କୁନ୍ତଳାକୁମାରୀ ନଅ
Para parameśwara ଭୁଣ୍ଡି)—The Great God

ପରପାଟ—ପ୍ରାଦେ. (ଗଞ୍ଜାମ) ବିଣ—ଭ୍ରମାତ୍ମକ, ଭୁଲ, ଭ୍ରାନ୍ତ—
Parapāta Wrong; mistaken.
ବି—ଭ୍ରମ, ଭ୍ରାନ୍ତି—Mistake.

ପରପାନକ—ଗ୍ରା. (ପଦ୍ୟ) ବି. (ସଂ. ପ୍ରପାନକ)—
Parapānaka ପଣା, ସୁସ୍ୱାଦୁ ପାନୀୟବିଶେଷ—
পানা **पन्ना** Syrup; sherbat.
ପରପାନକ ସ୍ୱାଦୁ ସ୍ପର୍ଶି ସ୍ପର୍ଶ ଲେ ହର୍ଷବେ ଦାମା ଗୋପର ।
ଅଭିମନ୍ୟୁ. ବିଦଗ୍ଧଚିନ୍ତାମଣି ।

ପର ପିଣ୍ଡାଦ—ସଂ. ବିଣ. ପୁଂ (ପର=ଅନ୍ୟ+ପିଣ୍ଡ=ଅନ୍ନ+ଅଦ୍ ଧାତୁ
Para pindāda =ଖାଇବା+କର୍ତ୍ତୃ. ଅ)—
ପରାନ୍ନଭୋଜୀ, ପରାନ୍ନଜୀବୀ—Feeding at another's table; a sponger; feeding at another's cost.

ପର ପୁଅ—ଦେ. ବି—୧ । ଅନ୍ୟ ବ୍ୟକ୍ତିର ପୁତ୍ର—
Para pua 1. The son of another person.
পরের ছেলে ୨ । ଅନାତ୍ମୀୟ ବ୍ୟକ୍ତି—2. Outsider; not
**दुसराका लड़का** related to one's self.
ପର ପୁଅ ମଲ, ଗଁା, ଭେଗ କାହାରେ ବାହାରେ ଗଲ—ଢଗ ।
୩ । ପର ପୁରୁଷ; ଜାର—3. A paramour; gallant.
ପର ପୁଅ ପରବେଶିଅ ବନ୍ଧୁ, କେତେ ବାନ୍ଧୁନେଇ କାନ୍ଧ—ଢଗ ।

ପର ପୁରୁଷ—ସଂ. ବି. (କର୍ମଧା, ପର+ପୁରୁଷ)—
Para purusha ୧ । ଅନାତ୍ମୀୟ ବ୍ୟକ୍ତି—1. An outsider.
୨ । ଅନ୍ୟ ସ୍ତ୍ରୀର ସ୍ୱାମୀ—
2. Husband of another woman.
୩ । ଉପନାୟକ, ଉପପତି—
3. Paramour; illicit lover; a gallant.
୪ । ପରମ ପୁରୁଷ, ବିଷ୍ଣୁ—4. Bishnu.

ପର ପୁରୁଷ ଗାମିନୀ—ସଂ. ବିଣ. ସ୍ତ୍ରୀ—ବ୍ୟଭିଚାରିଣୀ—
Para purush gāmini Adulterous ( woman ); going after another husband.

ପରପୁଷ୍ଟ—ସଂ. ବିଣ (ତତ୍ପୁ ତତ୍; ପର+ପୁଷ୍ଟ)—
Para pushta ୧ । ଅନ୍ୟ ଦ୍ୱାରା ପ୍ରତିପାଳିତ—
1. Nourished by a stranger
୨ । ଯେଉଁ ଜୀବ ବା ଉଦ୍ଭିଦ ଅନ୍ୟ ଉପରେ ନିର୍ଭର କରେ—
2. Parasitic.
ସଂ. ବି—କୋକିଳ—Cuckoo.
[ ଦ୍ର—କୋକିଳ ଆପଣା ଡିମ୍ବକୁ ଫୁଟାଇ ନ ପାରି କୁଆ ବସାରେ କୁଆ ଡିମ୍ବ ସଙ୍ଗେ ଥୋଇ ଦେଇ ଆସେ । କୁଆ ବାରି ନ ପାରି କୋଇଲି ଡିମ୍ବକୁ ଫୁଟାଇ ଦିଏ ଏବଂ ଛୁଆଙ୍କୁ ଆଧାର ଦେଇ ବଢ଼ାଏ । କୋଇଲି ଛୁଆ ବଡ଼ ହୋଇ ଉଡ଼ି ପାରିଲାରୁ କୁଆ ବସା ଛାଡ଼ି ଆପଣା ମାଆ ପାଖକୁ ଉଡ଼ି ଆସେ । ]

ପରପୁଷ୍ଟା—ସଂ. ବି. ସ୍ତ୍ରୀ. ( ପରପୁଷ୍ଟ+ସ୍ତ୍ରୀ. ଆ )—
Parapushtā ୧ । ମଲ୍ଲଙ୍ଗ—1 Mistleto.
୨ । ବେଶ୍ୟା—2. Harlot
ସଂ. ବିଣ—ଅନ୍ୟ ଦ୍ୱାରା ପ୍ରତିପାଳିତା—Maintained or brought up by another.

ପରପୂର୍ବା—ସଂ. ବି ସ୍ତ୍ରୀ. (ବହୁବ୍ରୀହି, ପର+ପୂର୍ବ+ସ୍ତ୍ରୀ. ଆ)—
Parapūrbā ପୂର୍ବେ ଅନ୍ୟ ସ୍ୱାମୀଙ୍କୁ ବିବାହ କରିଥିବା ସ୍ତ୍ରୀ, ଯେଉଁ ସ୍ତ୍ରୀର ବର୍ତ୍ତମାନ ସ୍ୱାମୀଙ୍କ ଛଡ଼ା ଆଉ ଜଣେ ସ୍ୱାମୀ ଥିଲେ—
A woman previously married to another; a woman who has had a former husband.
[ଦ୍ର—ପରପୂର୍ବା ଦୁଇ ଶ୍ରେଣୀର,ଯଥା, କ୍ଷତା (ଯେ ପ୍ରଥମ ସ୍ୱାମୀର ସହବାସ କରି ଥାଏ) ଓ ଅକ୍ଷତା (ଯେ ପ୍ରଥମ ସ୍ୱାମୀର ସହବାସ କରି ନ ଥାଏ) ।]

ପରବ—ଦେ. ବି. (ସଂ. ପର୍ବ)—୧ । ବ୍ରତାଦି ଧର୍ମୋତ୍ସବ—
Paraba 1. Religious festival.
পরব **त्योहार** ୨ । ଉତ୍ସବ—2. Festival
୩ । ( ପଦ୍ୟ ) ପୂର୍ଣ୍ଣିମା—3. Full moon day.
ପ୍ରାଣବନ୍ଧୁ ଗରବ କାହିଁ କରେ, ପରବ ଚନ୍ଦ୍ରମା ଦରେ । କବିସୂର୍ଯ୍ୟ. ସଙ୍ଗୀତ ।
୪ । ଧୂମ୍ ଧାମ୍—4 Ado.
୫ । ମଉଛବ; ଭୋଜି—5. Feast.
୬ । ଆଶ୍ୱିନ ମାସର ଦୁର୍ଗାପୂଜା—6. Durgā pūjā performed during the month of Āświna.
୭ । ମହାଭାରତ ଗ୍ରନ୍ଥର ଖଣ୍ଡ (ସଂଖ୍ୟାରେ ୧୮ଟି)—
7. A volume of the Mahābhārata
ଶୁଣ ଏହାଙ୍କର ପରବ ସଗ୍ରହ,
ଏହିଙ୍କ କରି ପାରେ ପାଠକ ନିଗ୍ରହ—କୃଷ୍ଣସିଂହ. ମହାଭାରତ. ଆଦି ।
୮ । ଅମାବାସ୍ୟା—8. The new moon.
[ଅଷ୍ଟମୀ, ପୂର୍ଣ୍ଣିମା, ଚତୁର୍ଦ୍ଦଶୀ, ଅମାବାସ୍ୟା ଓ ସଂକ୍ରାନ୍ତି ଏହି ସବୁ ଦିନକୁ ପର୍ବ ବୋଲିଯାଏ ।]
୯ । ମୁଖାଦିର ଭଙ୍ଗୀ—
9. Bodily gesture or expression.
ଶ୍ରୀମୁଖ ପରବରୁ ସ୍ଥିର କରି । କବିସୂର୍ଯ୍ୟ. ସଙ୍ଗୀତ ।

ପରବ ଚନ୍ଦ୍ର—ଦେ. ବି.—ପୂର୍ଣ୍ଣିମାଚନ୍ଦ୍ର—
Paraba chandra Full moon.

ପରବ ବନ୍ଧ ଉପୁଡ଼ି ପିଡ଼ିବା ପାଇଁକ,
ପଡ଼ଣର ସମସ୍ତେ ସେ ହେବେ ଯେବେ ଶଷ । —ନବସୂର୍ଯ୍ୟ. ସଙ୍ଗୀତ ।

**ପରବତ**—ଗ୍ରା. ବି. (ସଂ. ପର୍ବତ)—୧ । ପର୍ବତ—
Parabata 1. Mountain.
ପବବত परवत ପଲୋଉଥ ଗଢ ଅଗିଥିବ ରଶ୍ମୀ ମାଳ୍ୟଗିରି ପରବତେ ।
ରଧାନାଥ ପାଙ୍ଗା ।
୨ । ନାନୈକ ଋଷି—2 Name of a saint
ପରବତ ନାରଦ ଦୁଇ ଋଷିବର ।
କୃଷ୍ଣସିଂହ. ମହାଭାରତ. ବନ ।

**ପରବତ କାଉଁରିଆ**—ଦେ. ବି.—ଝୋଟ ଜାତୀୟ ଅମ୍ଳ ବନ୍ୟଗୁଳ୍ମବିଶେଷ-
Parabata kāuñriā (ଏଥିର ଡେଙ୍ଗ ନାଲି ଓ ପତ୍ର ଖଟା, ଲୋକେ
পট শাক ଶାଗ ଓ ତରକାରି କରି ଖାଆନ୍ତି ଓ ଏ ଗଛର ତନ୍ତୁ
पटुया शाग ବାହାରେ)—A red variety of Jute plant.

**ପରବତା**—ଦେ ବି.—ଯେଉଁ କାଠ ଖୁଣ୍ଟରେ ହାଉଇ ବାଣ ଡେଉରି ଯାଇ
Parabatā ମରୁଥାଏ—A post used as a support to the tail of a rocket before it is set fire to.

**ପରବତିଆ**—ଗ୍ରା. ବିଣ.ସଂ. (ପାର୍ବତୀୟ)—ପାର୍ବତୀୟ, ପାର୍ବତ୍ୟ—
Parabatiā Mountainous; hilly.
ଦେ. ବି.—ନାହାକା ଶୁଆ—
A big species of parrot.

**ପରବନ୍ଧ**—ଗ୍ରାମ୍ୟ. ବି. (ସଂ. ପ୍ରବନ୍ଧ)—ପ୍ରବନ୍ଧ (ଦେଖ)
Parabandha Prabandha (See)
পরবন্ধ पदबंध ଯଥ ଅଛର ହୋଇଛି ଭାଷା ପରବନ୍ଧ ।
ଗୋପୀ. ବୃନ୍ଦାବନଭୂଷଣ ଗୀତା ।

**ପରବ ପରବାଣୀ**—ଗ୍ରା. ବି. (ସହଚର, ସଂ. ପର୍ବ ଓ ପର୍ବାଣୀ)—ପୁଣ୍ୟପର୍ବ
Paraba parabāṇi ଉତ୍ସବାଦି—Feasts and festivals.
(ପରବ ପର୍ବାଣୀ, ପର୍ବପର୍ବାଣୀ—ଅନ୍ୟରୂପ) त्योहार

**ପରବ ପୁନିଅଁ**—ଗ୍ରା. ବି. (ସହଚର; ସଂ. ପର୍ବ ଓ ପୁଣ୍ୟ)—ବହୁବିଧ
Paraba puniañ ଉତ୍ସବମାନ—Various festivals.
(ପରବପୁଣ୍ୟ, ପରବପୁନେଇଁ—ଅନ୍ୟରୂପ)

**ପରବଳ**—ଗ୍ରା. (ପଦ୍ୟ) ବିଣ.—ପ୍ରବଳ (ଦେଖ)
Parabaḷa परबल Prabaḷa (See)
ଅଟିତ ପରବଳରୁ ତରଳମନ୍ତ,
ଭକ୍ତ. କୋଟୀବ୍ରହ୍ମାଣ୍ଡସୁନ୍ଦରୀ ।
ପ୍ରାଦେ. (ବସ୍ତର) ବି.—୧ । ଶମ୍ବାଳୁଆ ପୋକ; ଶୁଆଁବାଳ—
1. Caterpillar; the wooly bear.
୨ । ପ୍ରବାଳ (ଦେଖ)—2. Prabāḷa (See)

**ପର ବଲେଇ**—ଦେ. ବି.—ଅନ୍ୟ ବ୍ୟକ୍ତିର ଦାୟିତ୍ୱ ବା ଜଞ୍ଜାଳ—
Para balai Another person's responsibility or affairs.
(ପରର ବଲେଇ, ପରର ବଳା—ଅନ୍ୟରୂପ)

**ପରବଶ(ଶ୍ୟ)**—ସଂ. ବିଣ. (୬ଷ୍ଠୀ ତତ୍; ପର+ବଶ; ବଶ୍ୟ=ବଶୀଭୂତ)—
Parabaśa(śya). ୧ । ପରାଧୀନ; ପରାଧୀନ—Dependent on another; under the domination of another.
[ପରବଶା(ଶ୍ୟା)—ସ୍ତ୍ରୀ]
[ପରବଶ(ଶ୍ୟ)ତା—ବିଶେଷ୍ୟ]
୨ । ଅଧୀନ, ଅତିଶୟ ରୂପେ ଆସକ୍ତ—2. Subject to; addicted to dominated by.
[ଦ୍ର—ଏହା ଅନ୍ୟ ଶବ୍ଦ ସଙ୍ଗେ ବ୍ୟବହୃତ ହୁଏ, ଯଥା —କ୍ରୋଧ-ପରବଶ, କାମପରବଶ ।]

**ପରବସ୍ତ(ସ୍ତି)**—ବୈଦେ. ବିଣ (ଫା ପରବରସ୍)—ପ୍ରତିପାଳିତ—
Parabas (sta) (sti) Brought up; maintained
পরবরিস परवरिस
ବୈଦେ ବି (ଫା)—୧ । ପ୍ରତିପୋଷଣ—1. Maintenance.
୨ । ଜୀବିକା ନିର୍ବାହ—2 Livelihood

**ପରବସ୍ତ(ସ୍ତି)କରିବା**—ଦେ. କ୍ରି—ପ୍ରତିପାଳନ କରିବା—
Parabas(sta) (sti) karibā To maintain
পরবরিস করা परवरिस करना

**ପରବସ୍ତ(ସ୍ତି) ହେବା**—ଦେ. କ୍ରି—ନିଜର ଜୀବିକା ନିର୍ବାହ କରିବା,
Parabas(sta)(sti) hebā ଚଳାଚଳ ହେବା—To get on in the world; to earn one's living.
পরবরিস হোনা परवरिस होना

**ପରବା(ଇତ୍ୟାଦି)**—ପରୁଆ ଇତ୍ୟାଦି (ଦେଖ)
Parabā (etc) Par-uā (etc) (See)
[ପରବାଇ(ଯ୍ୟ)—ଅନ୍ୟରୂପ]

**ପରବାଣୀ**—ସଂ. ବି—୧ । ଧର୍ମାଧ୍ୟକ୍ଷ (ହି. ଶ.)—
Parabāṇi 1 A religious head.
୨ । ବତ୍ସର (ହି. ଶ.)—2. Year
୩ । ମୟୂର (ହି. ଶ)—3. Peacock.

**ପରବାନ୍**—ସଂ ବିଣ. ପୁଂ. (ପର+ବତ୍, ୧ମା. ୧ବ.)—ପରାଧୀନ—
Parabān Subordinate; subservient.
(ପରବତୀ—ସ୍ତ୍ରୀ)

**ପରବାନା**—ବୈଦେ. ବି (ଫା.)—ପରୁଆନା (ଦେଖ)
Parabānā Par-uānā (See)
(ପରୱାନା—ଅନ୍ୟରୂପ) ଦେଖାଇବେ ନେଇବର ପରବାନା—
ରଧାନାଥ ଦରବାର ।

**ପରବାର୍**—ବୈଦେ. ବି—ପରୁଆର୍ (ଦେଖ)
Parabār Par-uār (See)

**ପରବାରୀ**—ଦେ. ବି—(ସଂ. ପରିବାର)—ଦାସୀ, ପରିବାରୀ—
Parabārī A maid servant.

**ପରବାରେ**—ଦେ. କ୍ରି. ବିଣ—୧ । ସିଧା ସିଧା—
Parabāre 1 Directly; straightway.
(ଯଥା - ସେ ପୁରୀରୁ ପରବାରେ କଲିକତା ଗୁଲିଗଲେ ।)
(ପରବାହାରେ—ଅନ୍ୟରୂପ) ୨ । ଆଦୌ—2. At all
(ଯଥା —ମୁଁ ତାଙ୍କୁ ପରବାରେ ଦେଖି ନାହିଁ ।)

**ପରବାସ**—ସଂ. ବି. (୬ଷ୍ଠୀ ତତ୍, ପର+ବାସ)—ଅନ୍ୟ ବ୍ୟକ୍ତିର
Parabāsa ବାସସ୍ଥାନ—Another's house.
পরবাস ଗ୍ରା ବି (ସଂ. ପ୍ରବାସ)—ପ୍ରବାସ, ବିଦେଶବାସ—
परदेश Residence in a foreign country, sojournment.
କେଉଁଠାରେ କରୁଣ ଥିଲ ପରବାସ । କୃଷ୍ଣସିଂହ. ମହାଭାରତ ବନ ।

**ପରବାସିକା**—ସଂ. ବି.—ମଲ୍ଲଙ୍ଗ—
Parabāsikā (ପରବାସୀ—ଅନ୍ୟରୂପ) Mistletoe

**ପରବାସୀ**—ଦେ. ବିଣ (ସଂ. ପ୍ରବାସୀ)—ପ୍ରବାସୀ—
Parabāsi Residing away in a foreign country; (ପରବାସିଆ—ଅନ୍ୟରୂପ) living away from home; ପରବାସୀ **परदेशी** sojourning.
ପରବାସୀ ରମଣୀ ଅଧିକ ରେଖା ଗତି—ଶିଶୁଶଙ୍କର, ଉଷା ଅଭିଳାଷ ।

**ପରବୀଣ**—ଗ୍ରା. (ପଦ୍ୟ) ବିଣ (ସଂ. ପ୍ରବୀଣ)—ପ୍ରବୀଣ (ଦେଖ)
Parabiṇa Prabiṇa (See)
**परबीन** କହନ୍ତୁ ତ ନୀତିଶାସ୍ତ୍ରରେ ପରବୀଣ । କୃଷ୍ଣସିଂହ. ମହାଭାରତ ସଭା ।

**ପରବୁଦ୍ଧି**—ସଂ ବି (ଷଷ୍ଠୀ ତତ୍, ପର+ବୁଦ୍ଧି)—ଅନ୍ୟର ବୁଦ୍ଧି ବା ପରାମର୍ଶ-
Para buddhi Another's advice.

**ପର ବୁଧିଆ**—ଦେ. ବିଣ—୧ । ନିର୍ବୁଦ୍ଧିଆ—
Para budhiā 1 Lacking in intelligence.
**परमतिया** ୨ । ଯେ ପରର ପରାମର୍ଶରେ ଚାଳିତ ହୁଏ—
2. Led by the advice of another person.
୩ । ପର ବୁଦ୍ଧିଆ, ଯାହାର ଉପସ୍ଥିତ ବୁଦ୍ଧି ନାହିଁ—
3. Having no presence of mind.

**ପରବେଶ**—ଗ୍ରା. (ପଦ୍ୟ) ବି. (ସଂ. ପ୍ରବେଶ)—ପ୍ରବେଶ (ଦେଖ)
Parabesa Prabesa (See)
ପ୍ରବେଶ ଦେ. ବିଣ—ପ୍ରବିଷ୍ଟ (ଦେଖ)—
**परवेश** Prabishṭa (See)
ଦମୟନ୍ତୀ ପାଶରେ ହେଲେ ପରବେଶ—କୃଷ୍ଣସିଂହ, ମହାଭାରତ ବନ ।

**ପରବେଶ ହେବା**—ଗ୍ରା. କ୍ରି. (ସଂ. ପ୍ରବେଶ)—୧ । ପ୍ରବେଶ କରିବା,
Parabesa heba ପ୍ରବିଷ୍ଟ ହେବା—1. To enter.
(ପରବେଶିବା—ଅନ୍ୟରୂପ) ୨ । ଉପସ୍ଥିତ ହେବା—
ପ୍ରବେଶା 2. To arrive; to be in attendance.
**परवेशना** ପାଣ୍ଡବଙ୍କ କାର୍ଯ୍ୟରେ ସକଳ ପ୍ରକାରେ
ସେ ହୁଅ ପରବେଶ ହେଲେ ନଗରରେ । କୃଷ୍ଣସିଂହ, ମହାଭାରତ ଆଦି

**ପରବେଶ୍ମ**—ସଂ. ବି. (କର୍ମଧା, ପର+ବେଶ୍ମନ୍)—ସ୍ୱର୍ଗ—
Parabesma Heaven.

**ପର ବୈରାଗ୍ୟ**—ଦେ. ବି (ମହିମାଧର୍ମର ପରିଭାଷା)—ମହିମାଧର୍ମାବଲମ୍ବୀ
Para bairāgya ମାନଙ୍କର ସାଧନାର ଶେଷ ଫଳ—The consummation of the Sannyāsa of the Mahimā sect of Orissa.
[ଦ୍ର—ମହିମା ଗୋସାଇଁ ଅବଧୂତାଶ୍ରମ ସନ୍ନ୍ୟାସ ପନ୍ଥାକୁ ଦୁଇ ଭାଗରେ ବିଭକ୍ତ କରି ଅଛନ୍ତି,—ଅପର ବୈରାଗ୍ୟ ଓ ପର ବୈରାଗ୍ୟ । ସନ୍ନ୍ୟାସୀର ପ୍ରଥମେ ବିଷୟବାସନାରେ ବୈରାଗ୍ୟ ଜନ୍ମିଲେ ତ୍ୟାଗୀ ହୋଇ ଯେଉଁ ସନ୍ନ୍ୟାସ ଆଶ୍ରମ ଗ୍ରହଣ କରିବାକୁ ହୁଏ ତାକୁ ଅପର ବୈରାଗ୍ୟ ସନ୍ନ୍ୟାସ ବା ମଧ୍ୟଶରଣିକ ବୋଲାଯାଏ । ତତ୍ପରେ ସମାଧି 'ସାଧନ ସମ୍ପତ୍ତି' ମୁମୁକ୍ଷୁତ୍ୱ ପ୍ରଭୃତିରେ ଯୁକ୍ତ ହୋଇ ତତ୍ତ୍ୱ ବିବେକରେ ଅଧିକାର ଜନ୍ମିଲା ପରେ ଗୁରୁଙ୍କଠାରୁ ତତ୍ତ୍ୱମସ୍ୟାଦି ମହାବାକ୍ୟ ଉପଦେଶ ଦ୍ୱାରା 'ସୋଽହଂ' ଅର୍ଥାତ୍ ଅହଂ ବ୍ରହ୍ମାସ୍ମି ଭାବ ଜନ୍ମିଲେ ଯେଉଁ ସନ୍ନ୍ୟାସ ତାହାକୁ ପର ବୈରାଗ୍ୟ ସନ୍ନ୍ୟାସ ବା ଅନ୍ତ ମାତ୍ର ଶରଣ ବୋଲାଯାଏ । ପ୍ରାଚୀ—ବିଶ୍ୱନାଥ ବାବା ମହିମାଧର୍ମ ପ୍ରତିପାଦକ ।]

**ପରବୋଧ**—ଗ୍ରା (ପଦ୍ୟ) ବି (ସଂ. ପ୍ରବୋଧ)—୧। ପ୍ରବୋଧ, ସାନ୍ତ୍ୱନା—
Parabodha 1. Consolation.
ପ୍ରବୋଧ **परबोध** ୨ । ଉଦନ୍ତ—2. Episode.
ନବମ ଛାନ୍ଦ ବର୍ଣ୍ଣନେ କେବଳ କେବଳ ବନୋଦ
କହିବାକୁ ଆଜ୍ଞା ହେଉ ଏଥର ଯେ ପରବୋଧ । ପ୍ରାଚୀ, ରହସ୍ୟମଞ୍ଜରୀ ।

**ପରବୋଧ କରିବା**—ଦେ. କ୍ରି—(ସଂ. ପ୍ରବୋଧ)—ସାନ୍ତ୍ୱନା ଦେବା—
Parabodha karibā To console.
ପରବୋଧ ଦେବା } ଅନ୍ୟରୂପ ପ୍ରବୋଧା
ପରବୋଧିବା } **परबोधना**

**ପରବ୍ୟଥା**—ଦେ ବି (ଆଧୁନିକ ଚିକିତ୍ସା ଶାସ୍ତ୍ରରେ ବ୍ୟବହାର, ଇଂରାଜୀର
Parabyathā ଅନୁବାଦ)—ପ୍ରସବ ବାଶିଦିନ କମ୍ପା ତା ପରେ
ପରବ୍ୟଥା ପ୍ରସବବେଦନା (ଶୂଳ) ପରି ଅନୁଭୂତ ହେବା ବେଦନା—Afterpain.
[ ଦ୍ର—ଜରାୟୁଭିତରେ ରକ୍ତ ଜମିଥିଲେ କମ୍ପା ଫୁଲର କୌଣସି ଅଂଶ ଛିଣ୍ଡି ସେଠି ମଧ୍ୟରେ ରହିଗଲେ ଏପରି ବେଦନା ହୁଏ—(ବ୍ରଜକିଶୋର. ପ୍ରସୂତିଚର୍ଯ୍ୟା) ]

**ପର ବ୍ରତ**—ସଂ. ବି. (ବହୁବ୍ରୀହି, ପର+ବ୍ରତ)—ଧୃତରାଷ୍ଟ୍ର (ହ୍ୱି. ଶ)—
Para brata A name of Dhṛutarāshṭra.

**ପର ବ୍ରହ୍ମ**—ସଂ. ବି—୧ । ପରମେଶ୍ୱର, ପରଂବ୍ରହ୍ମ—
Para brahma 1 God; the Supreme Spirit.
୨ । ପରଂବ୍ରହ୍ମ ପ୍ରତିପାଦକ ଉପନିଷଦ୍‌ବିଶେଷ—
2. A Bedānta treatise treating of the all-pervading Essence of the universe as God.

**ପରଭା**—ଗ୍ରା. ବି—୧ । (ସଂ. ପ୍ରଭା)—ପ୍ରଭା (ଦେଖ)—
Parabhā 1. Prabhā (See)
୨ । (ସଂ. ପ୍ରଭାବ) ପ୍ରଭାବ (ଦେଖ)—2. Prabhāba (See).

**ପର ଭାଗ**—ସଂ. ବି—୧ । (କର୍ମଧା, ପର+ଭାଗ)—ଶ୍ରେଷ୍ଠାଂଶ—
Para bhāga 1. Chief part.
୨ । ଉତ୍କର୍ଷ—2. Excellence; pre-eminence.
୩ । ପରବର୍ତ୍ତୀ ଅଂଶ—3. Next part.
୪ । ଉତ୍ତରାଂଶ, ଶେଷଭାଗ—4 Last part; latter part.
୫ । (ଷଷ୍ଠୀ ତତ୍)—ଅନ୍ୟ ବ୍ୟକ୍ତିର ଅଂଶ—
5 The portion of another.

**ପର ଭାଗ୍ୟୋପଜୀବୀ**—ସଂ. ବିଣ. ପୁଂ. (ଉପପଦ ତତ୍; ପରଭାଗ୍ୟ+
Para bhāgyopajibi ଉପଜୀବୀ)—୧ । ଯେ ଅନ୍ୟ ବ୍ୟକ୍ତିର
(ପରଭାଗ୍ୟୋପଜୀବିନୀ—ସ୍ତ୍ରୀ) ଭାଗ୍ୟ ଉପରେ ନିର୍ଭର କରି ଆପଣା ଜୀବିକା ନିର୍ବାହ କରେ—1. One who ekes out one's existence depending on the fortunes of another person.
୨ । ପରାନ୍ନଭୋଜୀ—2. Feeding at another's expense.

**ପରଭାତ**—ଗ୍ରା. (ପଦ୍ୟ) ବି—୧ । (ସଂ. ପ୍ରଭାତ) ପ୍ରଭାତ; ସକାଳ—
Parabhāta 1. Morning.
ପରଭାତ ୨ । (ସଂ. ପର+ଭକ୍ତ) ପରାନ୍ନ; ଅନ୍ୟବ୍ୟକ୍ତିର ଖାଦ୍ୟ—
**परभात** 2. Another person's food.
୩ । ପରପ୍ରଦତ୍ତ ଅନ୍ନ—3. Food given by another person.

ତୁମ୍ଭଙ୍କୁ ଜାଣ କର ପରଭତ ଖାଇ
ଯା ଜାଇନ୍ତ ମୋର ଅଙ୍ଗେ ଏଥି ନାହିଁ । କୃଷ୍ଣସିଂହ ମହାଭାରତ ଉଦ୍‌ଯୋଗ

**ପରଭାତୁଆ**—ଦେ. ବିଣ. ପୁଂ— ପରାନ୍ନଜୀବୀ—
Parabhātua Living on another's food.

**ପରଭାବ**—ଗ୍ରା. (ପଦ୍ୟ) ବି (ସଂ. ପ୍ରଭାବ) – ପ୍ରଭାବ (ଦେଖ) —
Parabhāba ପ୍ରଭାବ Prabhāba (See)

**ପରଭୁ**—ଗ୍ରା. (ପଦ୍ୟ) ବି. (ସଂ. ପ୍ରଭୁ)—ପ୍ରଭୁ (ଦେଖ)—
Parabhu Prabhu (See)

ଚରଭୁରେ ଭୁରେ ବାର ପାରନ୍ତୁକେ ଇଚ୍ଛିତ ବାସ ଲୋପର ।
ଅଭିମନ୍ୟୁ ସାମନ୍ତ ସିଂହାର ଧର୍ମଚିନ୍ତାମଣି ।

**ପର ଭୁକ୍ତ**—ସଂ. ବିଣ ପୁଂ. (ଷଷ୍ଠୀ ତତ୍, ପର + ଭୁକ୍ତ) —
Para bhukta ୧ । ପୂର୍ବେ ଅନ୍ୟଦ୍ୱାରା ଭୁକ୍ତ ବା ଭୋଗ କରାଯାଇ-
(ପରଭୁକ୍ତା—ସ୍ତ୍ରୀ) ଥିବା—1. Previously enjoyed by another.
୨ । ଅନ୍ୟଦ୍ୱାରା ଅଧିକୃତ—2. Possessed by another.

**ପରଭୃତ୍**—ସଂ ବି. (ପର = ଅନ୍ୟ + ଭୃ ଧାତୁ = ପୋଷଣ କରିବା +
Parabhrut କର୍ତ୍ତୃ. କ୍ୱିପ୍, ଯେ ଅନ୍ୟ ଅର୍ଥାତ୍ କୋକିଳକୁ ପାଳନ କରେ)—କାକ—The crow.

**ପରଭୃତ**—ସଂ. ବି. (ଷଷ୍ଠୀତତ୍; ପର = ଅନ୍ୟ କର୍ତ୍ତୃକ + ଭୃତ = ପାଳିତ) —
Parabhruta କୋକିଳ—Cuckoo.
(ପରଭୃତା—ସ୍ତ୍ରୀ) ଦେ. ବି — ୧ । ପରପୁରୁଷ, ଉପପତି—
1. Paramour; illicit lover.

ବେଶ୍ୟା ପର ଚୂଳ ପରେ ପରଭୃତ ବସାଇ ଗୀତ ଗାଆର ସେ ।
ଉପେନ୍ଦ୍ର. ବୈଦେହୀଶବିଳାସ ।

୨ । ଦୂତ—2. Messenger.

ଉଡ଼େଇରେ ମନ ଉଦୟ ନ କର ପରଭୃତ କାମୋଦୟ ।
ଉପେନ୍ଦ୍ର. ବୈଦେହୀଶବିଳାସ ।

ଦେ. ବିଣ —ଅତ୍ୟନ୍ତ; ମହତ୍—Great.

ବଳସନ୍ତ ପରଭୃତ ଭ୍ରମରେ, ବରଷାନ୍ତିତ ଘନ ମଧ୍ୟରେ ।
ଉପେ. ବୈଦେହୀଶବିଳାସ ।

**ପରମ**—ସଂ. ବିଣ. (ପର = ଉତ୍ତମ, ଶ୍ରେଷ୍ଠ + ମା ଧାତୁ = ମାପିବା + କର୍ତ୍ତୃ.
Parama ଅ)—୧ । ସମଧିକ; ସର୍ବୋତ୍ତମ—1. Highest; supreme.
(ପରମା—ସ୍ତ୍ରୀ) ୨ । ପ୍ରଥମ; ଆଦ୍ୟ—2. First; primary.
୩ । ଚରମ—3. Final.
୪ । ପ୍ରଧାନ; ଶ୍ରେଷ୍ଠ—4. Best; superior; chief.
୫ । ମହତ୍—5. Great.
୬ । ଅତ୍ୟନ୍ତ—6 Extreme; excessive.
୭ । ମହତ୍ତମ—7. Greatest.
୮ । ପ୍ରକୃତ—8. Actual; true.
ଅବ୍ୟ. ଭାବ—ଅତ୍ୟନ୍ତ—Very; excessively; profoundly.
(ପ୍ରଥା—ପରମ ପ୍ରତିକୂଳ ।)
[ ଦ୍ର—ପରମ ଶବ୍ଦ ବିଶେଷ୍ୟର ବିଶେଷଣ ଓ ବିଣର ବିଣ ରୂପେ ନାନା ଶବ୍ଦ ପୂର୍ବେ ବ୍ୟବହୃତ ହୁଏ, ଯଥା—ପରମଦୁଃଖ; ପରମଦୁଃଖିତ; ପରମକ୍ରୁଦ୍ଧ; ପରମଦୁର୍ମେଧାଃ, ପରମପ୍ରୀତ; ପରମପ୍ରୀତି; ପରମ ସନ୍ତୁଷ୍ଟ; ପରମଭାସ୍ୱର, ପରମମନ୍ୟୁମାନ୍, ପରମମହାନ୍, ପରମବ୍ୟୋମ୍ନିକ, ପରମଶୋଭନ, ପରମସମ୍ମତ; ପରମାଙ୍ଗନା; ପରମାର୍ତ୍ତ । ]
କ୍ରି· ବିଣ—୨ । ଅତ୍ୟନ୍ତ—1. Very; much; extremely.
୨ । ସମଧିକରୂପେ—2. Highly; greatly.
ସଂ. ବି—୧ । ଶିବ (ହ୍ର ଶ)—1. Siba.
୨ । ବିଷ୍ଣୁ (ହ୍ର. ଶ)—2. Bishnu.
ଦେ. ବି—ପରମାତ୍ମା; ମନୁଷ୍ୟଠାରେ ଈଶ୍ୱରସତ୍ତା—
The Divine particle or soul in man.

ଜୀବ ପରମ ବେନ ଅଂଶ ଏ ବନ୍ଧ ମୁକ୍ତିରେ ପ୍ରବେଶ ।
ଭୂପତି, ପ୍ରେମପଞ୍ଚାମୃତ ।

**ପରମ କ୍ରୁଦ୍ଧ**—ସଂ ବିଣ. ପୁଂ—ଅତ୍ୟନ୍ତ ସ୍ୱଗାନ୍ୱିତ—
Parama kruddha (ପରମ କ୍ରୁଦ୍ଧା—ସ୍ତ୍ରୀ) Extremely angry.

**ପରମ ଗତି**—ସଂ. ବି. (କର୍ମଧା, ପରମ + ଗତି) —
Parama gati ୧ । ଉତ୍କୃଷ୍ଟ ଗତି—1. The supreme path (to heaven).
୨ । ସର୍ବୋତ୍କୃଷ୍ଟ ଆଶ୍ରୟ—
2. Supreme resort or refuge.
୩ । ମୋକ୍ଷ; ନିର୍ବାଣ—3. Final deliverance; final beatitude; salvation.

**ପରମ ଗବ**—ସଂ. ବି—ଉତ୍କୃଷ୍ଟ ବଳଦ—
Parama gaba An excellent bull. (M. W.)

**ପରମ ଗହନ**—ସଂ. ବିଣ—ଅତ୍ୟନ୍ତ ଗୁପ୍ତ ବା ଅବୋଧ୍ୟ—
Parama gahana Very mysterious or profound.

**ପରମ ଗୁରୁ**—ସଂ. ବି. (କର୍ମଧା; ପରମ + ଗୁରୁ)—
Parama guru ଗୁରୁଙ୍କ ଗୁରୁ, ଅଜା ଗୁରୁ—
One's preceptor's preceptor.
ଦେ. ବି—ବ୍ରାହ୍ମଣଙ୍କ ରାଜଦତ୍ତ ଉପାଧିବିଶେଷ—
A title given by Rajas to Brāhmanas.

**ପରମ ଜ୍ୟୋତିଃ**—ସଂ. ବି. (ବହୁବ୍ରୀହି, ପରମ + ଜ୍ୟୋତିଃ)—
Parama jyotih ୧ । ପରମେଶ୍ୱର—1. God.
୨ । (କର୍ମଧା) ଦିବ୍ୟ ଜ୍ୟୋତିଃ, ସ୍ୱର୍ଗୀୟ ପ୍ରଭା—
2. Divine light; heavenly halo.

**ପରମ ତତ୍ତ୍ୱ**—ସଂ. ବି. (କର୍ମଧା; ପରମ + ତତ୍ତ୍ୱ)—
Parama tattwa ୧ । ଉତ୍କୃଷ୍ଟ ତତ୍ତ୍ୱ—1. The supreme principle.
(ପରମ ତତ୍ତ୍ୱ—ଅନ୍ୟରୂପ)
୨ । ଈଶ୍ୱରଙ୍କ ତତ୍ତ୍ୱ —
2. The ultimate truth or secret; metaphysical truth.
୩ । ସର୍ବୋତ୍କୃଷ୍ଟ ସତ୍ୟ—3 The highest truth.

**ପରମଦା**—ଗ୍ରା· (ପଦ୍ୟ) ବି (ପ୍ରମଦା) —ପ୍ରମଦା; ସ୍ତ୍ରୀ—
Paramadā Woman.

ପରମଦା ବର ସଙ୍ଗ, ପରମ ଦାରୁଣ ଫଳ ଧନ, ପାବେ ଅନୁସରୁ ଅଛ ମୁହିଁ ।
କବିସୂର୍ଯ୍ୟ ଚନ୍ଦ୍ରକଳା ଗୀତ ।

**ପରମଦ୍ରୁ**—ସଂ. ବି—ଅଗୁରୁ ଚନ୍ଦନ—
Paramadru Amyris Agallocha (tree). (M. W.)

ପରମ ଧାମ—ସ ବ (କର୍ମଧା)—ବୈକୁଣ୍ଠ, ସ୍ୱର୍ଗ—
Parama dhāma Heaven.
ପରମ ପଦ—ସ ବ. (କର୍ମଧା, ପରମ+ପଦ)—
Parama pada ୧ । ମୋକ୍ଷ—1 The final beatitude.
୨ । ସର୍ବୋଚ୍ଚ ସ୍ଥାନ—
2. The highest position imaginable
୩ । ଅପବର୍ଗ—3. Summum bonum of life.
୪ । (ଷଷ୍ଠୀ ତତ୍) ପରମ ଦେବତାଙ୍କର ଚରଣ—
4. The Feet of God.
ପରମ ପଦାର୍ଥ—ସ. ବ. (କର୍ମଧା, ପରମ+ପଦାର୍ଥ)—
Parama padārtha ପରମ ପଦ ( ଦେଖ )
Parama pada ( See )
ପରମ ପରମ—ସ. ବ—ସର୍ବୋତ୍କୃଷ୍ଟ, ସର୍ବୋଚ୍ଚ—
Parama parama Highest or most excellent of all. (M. W.)
ପରମ ପରିତୋଷ—ସ. ବ. (କର୍ମଧା, ପରମ+ପରିତୋଷ)—
Parama paritosha ଅତ୍ୟନ୍ତ ଆନନ୍ଦ—
ପରମ ପରିତୁଷ୍ଟି / ପରମ ସନ୍ତୋଷ } ଅନ୍ୟରୂପ Supreme happiness
(ପରମ ପରିତୁଷ୍ଟ, ପରମ ସନ୍ତୁଷ୍ଟ—ବିଣ)
ପରମ ପିତା—ସ. ବ. (କର୍ମଧା, ଜଗତର ଶ୍ରେଷ୍ଠ ପିତା)—
Parama pitā ପରମେଶ୍ୱର, ଜଗତ୍ପିତା ଈଶ୍ୱର—
The Almighty Father; God.
ପରମ ପୁରୁଷ—ସ. ବ. (କର୍ମଧା, ପରମ+ପୁରୁଷ)—ପରମେଶ୍ୱର—
Parama purusha The Supreme Spirit; God.
(ପରମ ପୁଂସ, ପରମ ପିତା—ଅନ୍ୟରୂପ)
ପରମ ଫଳ—ସ. ବ—୧ । ସର୍ବାପେକ୍ଷା ଉତ୍ତମ ଫଳ; ଉତ୍କୃଷ୍ଟ ପରିଣାମ—
Parama phala 1. Excellent result.
୨ । ମୋକ୍ଷ, ମୁକ୍ତି—Salvation; final beatitude.
ପରମ ବନ୍ଧୁ—ସ. ବ. (କର୍ମଧା, ପରମ+ବନ୍ଧୁ)—
Parama bandhu ଶ୍ରେଷ୍ଠ ବନ୍ଧୁ—An excellent or eminent friend.
ଦେ. ବ—୧ । ବନ୍ଧୁର ବନ୍ଧୁ—1. One's friend's friend; one's relative's relative.
୨ । ପ୍ରୀତି ବନ୍ଧୁ, ମହାପ୍ରସାଦ ବନ୍ଧୁ—2. A person related to one by god-relationship; a god-relation.
ପରମ ବୈଷ୍ଣବ—ସ. ବିଣ. ପୁଂ (କର୍ମଧା, ପରମ+ବୈଷ୍ଣବ)—
Parama baishnaba ବିଶେଷ ବିଷ୍ଣୁଭକ୍ତ (ବ୍ୟକ୍ତି)—
(ପରମ ବୈଷ୍ଣବୀ—ସ୍ତ୍ରୀ) Greatly devoted to Bishnu.
ପରମ ବୈଷ୍ଣବୀ—ସ. ବିଣ. ସ୍ତ୍ରୀ—୧ । ଯେଉଁ ଦେବୀ ବା ଶକ୍ତି ପ୍ରତିମାଙ୍କ
Parama baishnabī ଆଗରେ ଜୀବ ବଳି ପଡ଼େ ନାହିଁ
(ପରମ ବ୍ରହ୍ମଚାରିଣୀ—ଅନ୍ୟରୂପ) (ଯଥା—ଭୁବନେଶ୍ୱରର ଲିଙ୍ଗରାଜ ମହାପ୍ରଭୁଙ୍କ ବେଢ଼ା ମଧ୍ୟରେ ଥିବା ଭୁବନେଶ୍ୱରୀ ମୂର୍ତ୍ତି)—
1. A Goddess before whom victims are not sacrificed.
୨ । ଦୁର୍ଗା—2 A name of Durgā
ପରମ ବ୍ରହ୍ମ—ସ. ବ—ପରମ ପୁରୁଷ, ପରମେଶ୍ୱର—
Parama brahma The Suprem Spirit; God.
ପରମ ଭକ୍ତ—ସ. ବ—ଅତ୍ୟନ୍ତ ଅନୁଗତ ଭକ୍ତ—
Parama bhakta A very faithful devotee or adherent.
ପରମ ଭଟ୍ଟାରକ—ସ ବ. ପୁଂ—ସମ୍ରାଟଙ୍କର ପ୍ରାଚୀନ ଉପାଧିବିଶେଷ—
Parama bhattāraka A title given to emperors in ancient times
(ପରମ ଭଟ୍ଟାରିକା—ସ୍ତ୍ରୀ)
ପରମ ମାୟା—ସ. ବ—ପରମେଶ୍ୱର—
Parama māyā God
ପରମ ମୁକ୍ତି—ସ. ବ. (କର୍ମଧା, ପରମ+ମୁକ୍ତି)—ନିର୍ବାଣ; ମୁକ୍ତି—
Parama mukti Final beatitude
(ପରମ ମୋକ୍ଷ—ଅନ୍ୟରୂପ)
ପରମ ଯୋଗୀ—ସ. ବ—୧ । ଶ୍ରେଷ୍ଠ ଯୋଗୀ—
Parama jogī 1. An eminent devotee or ascetic.
୨ । ମହାଦେବ—2. An epithet of Siba
ପରମର୍ଦ୍ଧିକ—ସ. ବିଣ. ପୁଂ. (ପରମ+ଋଦ୍ଧି+କ)—ଅତ୍ୟନ୍ତ ଭାଗ୍ୟବାନ-
Paramarddhika Very fortunate.
(ପରମର୍ଦ୍ଧିକା—ସ୍ତ୍ରୀ)
ପରମ ରସ—ସ. ବ.-ପାଣି ମିଶା ଦହି, ଜଳ ମିଶିତ ତକ୍ର (ହି. ଶ.)—
Parama rasa Churned buttermilk mixed with water.
ପରମ ରହସ୍ୟ—ସ. ବ. ( କର୍ମଧା, ପରମ+ରହସ୍ୟ )—ଅତ୍ୟନ୍ତ
Parama rahasya ଗୋପନୀୟ ବା ଗୂଢ଼ ତତ୍ତ୍ୱ—
Profound or the deepest mystery.
ପରମର୍ଷି—ସ. ବ. ( କର୍ମଧା, ପରମ+ଋଷି )—ମହର୍ଷି, ଶ୍ରେଷ୍ଠମୁନି
Paramarshī (ବେଦବ୍ୟାସ, ନାରଦ, ଶୁକ, ମାର୍କଣ୍ଡେୟଆଦି)—
An eminent sage; a saint of the 1st rank.
ପରମ ସମୁଦୟ—ସ. ବିଣ—୧ । ଅତ୍ୟନ୍ତ ମଙ୍ଗଳ ସୂଚକ—
Parama samudaya 1. Very auspicious. (M W)
୨ । ଅତ୍ୟନ୍ତ କୃତକାର୍ଯ୍ୟ—2. Very successful. (M.W)
ପରମ ସମ୍ମତ—ସ. ବିଣ—ଅତ୍ୟନ୍ତ ସମ୍ମାନିତ—Highly esteemed, much revered (M. W)
Parama sammata
ପରମ ସର୍ବତ୍ର—ସ. ଅ—ସବୁଠାରେ—Everywhere; throughout. (M W.)
Parama sarbatra
ପରମ ସୁଖ—ସ. ବ—ଅତ୍ୟନ୍ତ ଆନନ୍ଦ—Supreme happiness.
Parama sukha (ପରମସୁଖୀ—ବିଣ)
ପରମ ସୁନ୍ଦର—ସ. ବିଣ. ପୁଂ—ଅତ୍ୟନ୍ତ ସୁନ୍ଦର—
Parama sundara Very beautiful.
(ପରମ ସୁନ୍ଦରୀ, ପରମାସୁନ୍ଦରୀ—ସ୍ତ୍ରୀ)
ପରମ ହଂସ—ସ. ବ ପୁଂ(କର୍ମଧା, ପରମ=ପ୍ରଧାନ+ହଂସ=ଯୋଗୀ)-
Parama hamsa ୧ । ଧ୍ୟାନ ଦ୍ୱାରା ଇନ୍ଦ୍ରିୟ ଦମନ କରିଥିବା

ଯୋଗୀ, ସିଦ୍ଧପୁରୁଷ, ମହାଯୋଗୀ—1 An ascetic of the highest order; a religious man who has subdued all his senses by abstract meditation.

[ ଦ୍ର—ଯେଉଁ ସନ୍ନ୍ୟାସୀ ଜ୍ଞାନର ପରମ ଅବସ୍ଥାରେ ଉପନୀତ ହୋଇ ଅଛନ୍ତି ଅର୍ଥାତ୍ ସେ ପରମ ବ୍ରହ୍ମଙ୍କ ସତ୍ତା ପୂର୍ଣ୍ଣରୂପରେ ଅନୁଭବ କରି ପାରିଅଛନ୍ତି ତାଙ୍କୁ ପରମହଂସ ବୋଲାଯାଏ । କୌଣସି ବ୍ୟକ୍ତି ସନ୍ନ୍ୟାସ ଅବଲମ୍ବନ କଲେ ଶିଖାସୂତ୍ର ତ୍ୟାଗ କରି ଦଣ୍ଡ କମଣ୍ଡଳୁ ଗ୍ରହଣ କରନ୍ତି, କିନ୍ତୁ ସେ ପରମହଂସ ଅବସ୍ଥା ପ୍ରାପ୍ତ ହେଲେ ତାଙ୍କର ଦଣ୍ଡ କମଣ୍ଡଳୁ ଗ୍ରହଣ ଆବଶ୍ୟକ ହୁଏ ନାହିଁ, ସେ ସବୁ-ପ୍ରକାର ବନ୍ଧନରୁ ମୁକ୍ତ ହୁଅନ୍ତି; ତାଙ୍କୁ ଶ୍ରାଦ୍ଧ, ସନ୍ଧ୍ୟା, ତର୍ପଣ, ଦେବାର୍ଚ୍ଚନ ଆଦି କରିବାକୁ ହୁଏ ନାହିଁ ଓ ସେ କାହାକୁ ନମସ୍କାର କରନ୍ତି ନାହିଁ । ସେ ସର୍ବଦା ଅଧ୍ୟାତ୍ମନିଷ୍ଠ, ନିର୍ଦ୍ଦ୍ୱନ୍ଦ୍ୱ, ନିଷ୍ପରିଗ୍ରହ ଓ ବ୍ରହ୍ମବିତ୍ ହୋଇ ବ୍ରହ୍ମରେ ସ୍ଥିତି ହୁଅନ୍ତି । ଅବଧୂତମାନଙ୍କର ୪ଟି କ୍ରମ ଅଛି, ଯଥା—କୁଟୀଚକ, ବହୂଦକ, ହଂସ ଓ ପରମହଂସ । ପରମ ହଂସ ସର୍ବଶ୍ରେଷ୍ଠ । ପରମହଂସ ନିର୍ଦ୍ଦିଷ୍ଟ ଶୂନ୍ୟ ପଥରେ ବିଚରଣ କରନ୍ତି—(ହି. ଶବ୍ଦସାଗର) ]

୨ । ସିଦ୍ଧପୁରୁଷଙ୍କ ଉପାଧିବିଶେଷ—
2. A title of an eminent saint.

୩ । ପରମାତ୍ମା, ପରମେଶ୍ୱର—
3. The Supreme Spirit; God.

ଦେ. ବି. (ନାମ)—କଟକ ସହରଠାରୁ ୧୦ ମାଇଲ ପୂର୍ବରେ ଅବସ୍ଥିତ ଗ୍ରାମବିଶେଷ—Name of a village 10miles east of the town Cuttack

[ ଦ୍ର—ଏଠାରେ ପରମହଂସ ନାଥ ନାମକ ଶିବଲିଙ୍ଗ ଅଛନ୍ତି ଏବଂ ଶିବରାତ୍ରିରେ ଏଠାରେ ଗୋଟିଏ ବଡ ମେଳା ହୁଏ । ଏହି ଗ୍ରାମର ନିକଟବର୍ତ୍ତୀ ସଫିପୁର, ବମୁଇ ଓ ଅଥଙ୍ଗାରେ ଭଲ 'ପାନ' ଫସଲ ହୁଏ । ଏହି ପାନ ପରମହଂସୀ ପାନ ନାମରେ ଉତ୍କଳରେ ପ୍ରସିଦ୍ଧ । ]

**ପରମା**—ସଂ ବିଣ. ସ୍ତ୍ରୀ (ପରମ+ସ୍ତ୍ରୀ ଆ)– 'ପରମର' ସ୍ତ୍ରୀଲିଙ୍ଗ—
Paramā Feminine of 'Parama'

ସଂ. ବି.—ଚବ୍ୟ (ହି. ଶ.) – Piper Chaba.

ଦେ. ବି.—ପରମାନନ୍ଦର ଅନାଦରାର୍ଥକ ଡାକ ନାମ—
Name by which a person named Paramānanda is called.

(ପରମି, ପରମୁ—ଆଦରାର୍ଥକ ରୂପ)

**ପରମାକ୍ଷର**—ସଂ. ବି. (କର୍ମଧା; ପରମ+ଅକ୍ଷର)—ଓଁକାର—
Paramākshara The sacred syllable Om (M.W)

**ପରମାଣ**—ଗ୍ରା. ( ପଦ୍ୟ ) ବି ଓ ବିଣ (ସଂ. ପ୍ରମାଣ )—
Paramāṇa ୧ । ପ୍ରମାଣ (ଦେଖ)—1. Pramāṇa (See).

**ପରମାଣ** ସର୍ବେ ସଂସାର ପରମାଣ, ଭୁଜ ଉଚ୍ଚ ବର୍ତ୍ତମାନ
**ପରମାଣ** ଜଗନ୍ନାଥ, ଭାଗବତ ।

୨ । ( ସଂ. ପରିମାଣ ) ପରିମାଣ (ଦେଖ)Parimāṇa (See).

**ପରମାଣିକ**—ଦେ. ବି. (ସଂ. ପ୍ରମାଣିକ) – ୧ । ଜାତିର ପ୍ରଧାନ ବ୍ୟକ୍ତି—
Paramāṇika 1. The headman of a caste

**ପରାମାଣିକ** ଆଉ ଆଉ ହାତୀଆ ଜାତିଙ୍କ ପରି ତନ୍ତିମାନଙ୍କର ମଧ୍ୟ ଜଣେ ପରମାଣିକ
**ଠାକୁର** ଅଛନ୍ତି । ଫକୀରମୋହନ ଛମାଣ ଆଠଗୁଣ୍ଠ ।

୨ । ତନ୍ତିମାନଙ୍କ ଉପାଧିବିଶେଷ—
2. Family-title of some weavers.

୩ । ତନ୍ତିସମାଜର ପ୍ରଧାନ ବ୍ୟକ୍ତିର ଉପାଧି—
3. A title of the headman amongst weavers.

୪ । ଭଣ୍ଡାରି ଜାତିର ମୁଖ୍ୟବ୍ୟକ୍ତିର ଉପାଧି—
4. A title of the headman of the barber cast.

**ପରମାଣିବା**—ଗ୍ରା. (ପଦ୍ୟ) କ୍ରି—୧ । (ସଂ.ପରିମାଣ) ପରିମାଣିବା (ଦେଖ)।
Paramāṇibā 1 Parimāṇibā (See)

**ପରମାଣି** ହେତୁକରି ଅବ୍ୟୁତ ବର କ ପରମାଣି – ପ୍ରାଚୀ. ଶ୍ରୀ ଗୁରୁଭକ୍ତି ଗୀତା ।

**ପରମାନନ୍ଦ** ୨ । ( ସଂ ପ୍ରମାଣ ) ପ୍ରମାଣ ରୂପେ ଗ୍ରହଣ କରିବା—
2. To accept as evidence.

୩ । ସ୍ୱୀକାର କରିବା—3. To agree.

**ପରମାଣୁ**—ସଂ. ବି (ପରମ+ଅଣୁ=କଣା, ଆଧୁନିକ ବିଜ୍ଞାନ ପରିଭାଷା)—
Paramāṇu ୧ । ସୂକ୍ଷ୍ମତମ ଅଂଶ—1. Infinitesimal particle or atom.

୨ । ଜଡ଼ ପଦାର୍ଥର ସୂକ୍ଷ୍ମତମ ଅଂଶ—2. Molecule.

[ଦ୍ର—ବୈଶେଷିକ ଦର୍ଶନ ମତରେ ପଞ୍ଚଭୂତ ମଧ୍ୟରୁ ଆକାଶର ପରମାଣୁ ନାହିଁ, ଆଉ ଚାରିଭୂତ (ପୃଥିବୀ, ଜଳ, ତେଜଃ ଓ ବାୟୁ)ର ପରମାଣୁ ଅଛି । ବସ୍ତୁକୁ କ୍ରମଶଃ ସୂକ୍ଷ୍ମ ଅଂଶରେ ବିଭକ୍ତ କଲେ ଅଣୁ ହୁଏ; ଅଣୁକୁ ସୂକ୍ଷ୍ମାଂଶରେ ବିଭକ୍ତ କଲେ ପରମାଣୁ ହୁଏ । ପରମାଣୁ ଚକ୍ଷୁରାଦି ଇନ୍ଦ୍ରିୟ ଦ୍ୱାରା ଅନୁଭୂତ ହୋଇ ନ ପାରେ । ପରମାଣୁମାନଙ୍କ ସଂଯୋଗରେ ଭାବତୀୟ ବସ୍ତୁର ଉତ୍ପତ୍ତି । ଦୁଇ ଦୁଇ ପରମାଣୁର ମିଳନରେ ଦ୍ୱ୍ୟଣୁକ ବା ଅଣୁ; ୩ ଦ୍ୱ୍ୟଣୁକର ମିଳନରେ ତ୍ରସରେଣୁ; ଚାରିଦ୍ୱ୍ୟଣୁକର ମିଳନରେ ଚତୁରଣୁକ ହୁଏ । ଏହି ପରମାଣୁମାନଙ୍କ ସଂଯୋଗରେ ବାୟୁ, ବାୟୁର ପରମାଣୁଗଣର ସଂଯୋଗରେ ଜଳ, ଜଳର ପରମାଣୁଗଣର ସଂଯୋଗରେ ପୃଥିବୀର ଓ ପୃଥିବୀ ପରମାଣୁଗଣର ସଂଯୋଗରେ ତେଜଃ ଉତ୍ପନ୍ନ ହୁଏ, ଏହାହିଁ ବୈଶେଷିକ ଦର୍ଶନର ପରମାଣୁବାଦ । ପରମାଣୁ ସୂକ୍ଷ୍ମ ଓ ଅନନୁମେୟ ଅଟେ,ଏହା ଇନ୍ଦ୍ରିୟଗ୍ରାହ୍ୟ ନୁହେଁ । ଆଧୁନିକ ରସାୟନ ଓ ଜଡ଼ବିଜ୍ଞାନ ମତରେ ୭୫ ଟି ମୂଳ ପଦାର୍ଥର ପରମାଣୁଦ୍ୱାରା ଏ ଜଗତର ସମସ୍ତ ବସ୍ତୁ ନିର୍ମିତ । ପରମାଣୁମାନଙ୍କ ଚଳନଦ୍ୱାରା ଆଲୋକ, ବିଦ୍ୟୁତ, ତାପ ଆଦି ଜାତ ହୁଏ—ହି. ଶ. ସୂର୍ଯ୍ୟ କିରଣର ଗୋଟିଏ ଅଣୁ ୩୦ଟି ପରମାଣୁର ସମଷ୍ଟି ଅଟେ—M.W ।]

**ପରମାଣୁ ବାଦ**—ଦେ. ବି (ଜଡ଼ ବିଜ୍ଞାନ ଓ ବୈଶେଷିକ ଦର୍ଶନ)—ଜଡ଼ ଜଗତର ଯାବତୀୟ ବସ୍ତୁ ପରମାଣୁମାନଙ୍କ ଯୋଗାକର୍ଷଣର ଫଳ ବୋଲି ବୈଜ୍ଞାନିକମାନେ ଯେଉଁ ମତ ପୋଷଣ କରନ୍ତି—The atomic theory of the universe; the atomistic system of the Baiśeshika system of Hindu philosophy.
Paramāṇu bāda
(ପରମାଣୁ ବାଦୀ—ବିଣ. ପୁଂ.)

**ପରମାଣେ**—ଗ୍ରା. (ପଦ୍ୟ) ଅ—ପ୍ରମାଣେ (ଦେଖ)
Paramāṇe .Pramāṇe (See).

ପ୍ରମାଣେ ଏମନ୍ତ ଶୁଣି ଗୋପୀମାନେ
ବରାବର ବୋଲନ୍ତି ଅଛି ପରମାଣେ — ଭୂପତି. ପ୍ରେମପଞ୍ଚାମୃତ ।

ପରମାତ୍ମା—ସଂ ବି (କର୍ମଧାରୟ, ପରମ+ଆତ୍ମନ୍)—୧ । ପରମେଶ୍ୱର; Paramātmā ପରବ୍ରହ୍ମ—1. God; the Supreme Spirit.
୨ । ଜୀବିତ ମନୁଷ୍ୟର ଅଭ୍ୟନ୍ତରରେ ଥିବା ଈଶ୍ୱରସତ୍ତା—2. The Divine Particle or Soul in man; the Supreme or Universal Soul.
[ଦ୍ର—ପ୍ରତ୍ୟେକ ମନୁଷ୍ୟର ଶରୀରରେ ଜୀବାତ୍ମା ଅଛନ୍ତି ଏବଂ ପ୍ରତ୍ୟେକ ଜୀବାତ୍ମାରେ ସୂକ୍ଷ୍ମରୂପେ ପରମାତ୍ମା ବା ଈଶ୍ୱରସତ୍ତା ବିରାଜିତ । ]

ପରମାତ୍ମୀୟ—ସଂ. ବି. ପୁଂ. (କର୍ମଧା, ପରମ+ଆତ୍ମୀୟ)—ଅନ୍ତରଙ୍ଗ ବନ୍ଧୁ—Paramātmīya One's very close or intimate friend.
(ପରମାତ୍ମୀୟା—ସ୍ତ୍ରୀ)

ପରମାଦ—ଗ୍ରା. (ପଦ୍ୟ) ବି (ସଂ. ପ୍ରମାଦ)—ପ୍ରମାଦ (ଦେଖ) Paramāda Pramāda (See)
ପରମାଦ ତାରଢ଼ ଧ୍ୱଂସୀ ଶ୍ରୀମହାପ୍ରସାଦେ
ପରମାଦ ତାର ଦଧ୍ୱଂସ ହେଲେ ପରମାଦେ । ବଳବନ୍ତୂର୍ପ୍ୟ,
ବିଣ (ସଂ ପ୍ରମାଦଦାୟକ)—ଦୁଃଖଦାୟକ—Painful; afflicting.
ତ୍ରିଯୁଗସତ୍ତ୍ୱ, ପରମାଦ ବଡ଼ ବୁଝ ଗୋ । ବଳବନ୍ତୂର୍ପ୍ୟ, କଳୋପସଂଚନ୍ଦ୍ର ପ ଶାଠ ।

ପରମାଦର—ସଂ. ବି (କର୍ମଧା, ପରମ+ଆଦର)—ଅତିଶୟ ଆଦର, Paramādara ସମାଦର—Greatest respect or regard
(ପରମାଦୃତ, ପରମାଦରଣୀୟ—ବିଣ)

ପରମାଦ୍ୱୈତ—ସଂ. ବି (କର୍ମଧାରୟ, ପରମ+ଅଦ୍ୱୈତ)—ପରମାତ୍ମା, Paramādwaita ପରମେଶ୍ୱର—God; the Supreme Spirit.

ପରମାନନ୍ଦ—ସଂ ବି. ( କର୍ମଧାରୟ, ପରମ+ଆନନ୍ଦ )—୧ । ଅତ୍ୟନ୍ତ Paramānanda ଆନନ୍ଦ—1. Supreme delight or bliss; highest felicity.
୨ । ଅଖଣ୍ଡାନନ୍ଦ, ଚିରସ୍ଥାୟୀ ସୁଖ—2. Permanent bliss; eternal happiness.
୩ । ପରମେଶ୍ୱର—3. God; the Supreme Being.
୪ । ଶ୍ରୀକୃଷ୍ଣ—4. Śrīkṛushṇa.
ପରମାନନ୍ଦଙ୍କ ପଗ୍ଭବରୁ ଦୁଗ । ପ୍ରୀତଅସ୍ତ୍ର ଚକା ନେଲେ—ସଙ୍ଗୀତ ।
ଦେ. ବି. ପୁଂ – ଲୋକଙ୍କ ନାମ — Name given to males.
ଦେ. ବିଣ—ପରମ ଆନନ୍ଦିତ—Highly pleased.
ପରମାନନ୍ଦ ହେଲେ ବ୍ରହ୍ମା—ଭୂପତି. ପ୍ରେମପଞ୍ଚାମୃତ ।

ପରମାନ୍ନ—ସଂ ବି ( କର୍ମଧା; ପରମ+ଅନ୍ନ=ଖାଦ୍ୟ )—( ଦୈବ ଓ Paramānna ପିତୃକାର୍ଯ୍ୟରେ ବ୍ୟବହୃତ ହେଉଥିବାରୁ ) କ୍ଷୀରି, ପାୟସାନ୍ନ; ଦୁଗ୍ଧ ଓ ଶର୍କରାଦ୍ୱାରା ପକ୍ୱ ଅନ୍ନ—A kind of rice-gruel; rice boiled with milk and sugar ( lit. best food ).

ପରମାପଦ—ଦେ. ବି. ( କର୍ମଧା, ପରମ+ଆପଦ୍ )—ଘୋର ସଙ୍କଟ—Paramāpada . Extreme danger.

ପରମାପ୍ୟାୟିତ—ସଂ ବିଣ —ଅତି କୃତାର୍ଥ—Paramāpyāyita Much gratified.

ପରମାୟୁ —ଦେ. ବି. (ସଂ. ପରମାୟୁସ୍ )—ପରମାୟୁଃ (ଦେଖ) Paramāyu Paramāyuḥ ( See )
ପରମାୟୁଷ } ଅନ୍ୟରୂପ
ପରମାଇଷ }
[ ଭିନ୍ନ ଭିନ୍ନ ଜୀବଙ୍କ ପରମାୟୁ ସମ୍ବନ୍ଧରେ ନିମ୍ନଲିଖିତ ପ୍ରବଚନ ଅଛି, ଯଥା—
ପରମାୟୁ ନରକୁଞ୍ଜର ବିଶାଶଏ (୧୨୦ ବର୍ଷ)
ପରମାୟୁ ଛଅ ପନ୍ଦରେ ଘୋଡ଼ା ଯାଏ (୪୫ ବର୍ଷ)
ଗୋରୁ ଚବିଶ, କୁକୁର ବାଆର
ତିନିଶ ବର୍ଷରେ ମରେ କମ୍ଭୀର
ଛଅଣ ଶାଗୁଣା, ନଅଣ କୁଆ
ବାଘ ହେଲେ ମରେ ବିଲୁଆ ।
ଜ୍ୟୋତିଷ ମତରେ ମନୁଷ୍ୟର ପରମାୟୁ ବିଶାଶହେ ବର୍ଷ ମଧ୍ୟରୁ ଜନ୍ମ ନକ୍ଷତ୍ରଦ୍ୱାରା ଦଶାଗଣାକ୍ରମେ ରବିଦଶା ୬, ଚନ୍ଦ୍ର ୧୦, ମଙ୍ଗଳ ୭, ରାହୁ ୧୮, ବୃହସ୍ପତି ୧୬, ଶନି ୧୯, ବୁଧ, ୧୭, କେତୁ ୭ ଓ ଶୁକ୍ର ୨୦ ବର୍ଷ, ଏପରି ଭୋଗ ହୁଏ । ]

ପରମାୟୁଃ—ସଂ ବି. ( ପରମ+ଆୟୁସ୍ )—୧ । ପ୍ରାଣୀର ଜୀବନ-କାଳ; Paramāyuḥ ଆୟୁଷ—1 Duration or span of life of an animal; life time.
୨ । କୌଣସି ଜାତିର ପ୍ରାଣୀର ଜୀବନକାଳର ସର୍ବୋଚ୍ଚ ସୀମା—2. Longest period of life attained by any class of animals.
ସଂ. ବିଣ—ଯେ ବହୁକାଳ ଜୀବିତ ରହିଅଛି—Reaching to a very advanced age (M W).

ପରମାୟୁଷ—ସଂ. ବି. ( ବହୁବ୍ରୀହି, ପରମ+ଆୟୁସ+ଅ, ଯାହା ବହୁ Paramāyusha ଦିନ ବଞ୍ଚେ )—ପିଆଶାଳ ଗଛ ( ହି. ଶ. )—Terminalia Tomentosa ( M. W ).

ପରମାୟୁ ହାନି—ଦେ. ବି. ( ୬ଷ୍ଠୀ ତତ୍; ପରମାୟୁଃ+ହାନି )—ରୋଗ ଓ Paramāyu hāni ପାପାଦିଦ୍ୱାରା ପରମାୟୁ କମିଯିବା—(ପରମାୟୁ କ୍ଷୟ—ଅନ୍ୟରୂପ ) Shortening of the span of one's life.

ପରମାର—ଦେ. ବି—ଅଗ୍ନିକୁଳର ଅନ୍ତର୍ଗତ ରାଜପୁତ ଜାତିବିଶେଷ—Paramāra ପରମାର परमार A sect of Rajputs.
[ ଦ୍ର—ଏମାନେ ମାଳବରେ ରାଜତ୍ୱ କରୁଥିଲେ । ]

ପରମାହ—ସଂ. ବି. ( କର୍ମଧା, ପରମ+ଅହନ୍ )—୧ । ଶୁଭଦିନ—Paramāha 1. An auspicious day.
୨ । ଉତ୍ତମ ଦିବସ—2. An excellent day.

ପରମାର୍ଥ—ସଂ. ବି. ( କର୍ମଧା, ପରମ+ଅର୍ଥ )—୧ । ଶ୍ରେଷ୍ଠ ବସ୍ତୁ—Paramārtha 1. Supreme thing; any excellent or important object.
୨ । ଜୀବନର ଶେଷ ଉଦ୍ଦେଶ୍ୟ —2 The supreme object of life; summum bonum of life.
୩ । ଆଧ୍ୟାତ୍ମିକ ଜ୍ଞାନ—3. Spiritual knowledge. ( Howells ).

ସାଧାରଣ ଲେଖେ ଅପର ପୃଷ୍ଠାରେ ଧ୍ୱନ ୧ ଚଲୁଛ ଅକ୍ଷର ଓ ମାତ୍ରା ଏବ ୨ ଚକ୍ରତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚକ୍ରତ କୌଣସି ବର୍ଣ୍ଣ ବା ମା ଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ପୃଷ୍ଠାରେ ନ ମିଳେ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଉହଁର ବଦଳରେ ୨ ବା ୧ ଚକ୍ରତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ' ନ ମିଳିଲେ 'ଗାଢ଼' ଖୋଜିବେ, 'କୂଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅଙ୍ଗ' ନ ପାଇଲେ 'ଅଙ୍କ' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

୪ । ଧର୍ମ—4. Religion
୫ । ସମ୍ପୂର୍ଣ୍ଣ ସତ୍ୟ—5 Whole truth. (Howells)
୬ । ଯାଥାର୍ଥ୍ୟ—6 Exactitude; reality
୭ । ଶ୍ରେଷ୍ଠ ଧନ—7. Best kind of wealth
୮ । ଈପ୍ସିତ ଧନ—1. Longed for riches
୯ । ପରଂବ୍ରହ୍ମ—9. The Supreme Being
୧୦ । ସର୍ବୋତ୍ତମ ଅର୍ଥ ବା ତାତ୍ପର୍ଯ୍ୟ—
10. Excellent sense or meaning.
୧୧ । ବେଦାନ୍ତାଦ—11. The Bedānta etc (M. W)
୧୨ । ମୋକ୍ଷ—12. Final beatitude.
୧୩ । (ନ୍ୟାୟଦର୍ଶନ) ଦୁଃଖର ସର୍ବଥା ଅଭାବରୂପ ସୁଖ (ହି. ଶ)—
13 ( Nyāya Philosophy ) Happiness due to the total absence of misery.
ଦେ. ବି—ଧର୍ମକାର୍ଯ୍ୟ—
Religious object, spiritual object.

**ପରମାର୍ଥ ତତ୍ତ୍ୱ**—ସଂ. ବି—ବ୍ରହ୍ମଜ୍ଞାନ—The supreme knowledge
Paramārtha tattwa of the divinity of God.

**ପରମାର୍ଥ ତତ୍ତ୍ୱଜ୍ଞ**—ସଂ. ବିଣ ପୁଂ. (ପରମାର୍ଥ+ତତ୍ତ୍ୱ+ଜ୍ଞା ଧାତୁ+ଅ)—
Paramārtha tattwajña ୧ । ବେଦାନ୍ତଜ୍ଞ—
( ପରମାର୍ଥବିତ୍—ଅନ୍ୟରୂପ ) 1. Versed in the Bedānta.
୨ । ବ୍ରହ୍ମଜ୍ଞ, ଈଶ୍ୱରତତ୍ତ୍ୱଜ୍ଞ—2. Knowing the Supreme Being, knowing the highest truth.

**ପରମାର୍ଥ ଦରିଦ୍ର**—ସଂ. ବିଣ—ଫଳତଃ ଗରିବ; ନାଦାନ୍ ଛୁଆ ବନ୍ଧା
Paramārtha daridra ଦରିଦ୍ର—Really poor.

**ପରମାର୍ଥବିଦ୍**—ସଂ. ବିଣ. ପୁଂ. (ପରମାର୍ଥ+ବିଦ୍ ଧାତୁ+କ୍ୱିପ୍; ୧ମା.
Paramārthabid ୧ବ)—ପରମାର୍ଥତତ୍ତ୍ୱଜ୍ଞ (ଦେଖ)—
Paramārtha tattwajña (See)
(ପରମାର୍ଥଜ୍ଞ, ପରମାର୍ଥବାଗୀ—ଅନ୍ୟରୂପ)

**ପରମାର୍ଥ ବିଦ୍ୟା**—ସଂ. ବି—ଅଧ୍ୟାତ୍ମବିଦ୍ୟା—Theology;
Paramārtha bidyā philosophy; spiritual knowledge.

**ପରମାର୍ଥୀ**—ସଂ. ବିଣ—୧ । ମୁମୁକ୍ଷୁ—1. Seeking salvation.
Paramārthi ୨ । ପରମାର୍ଥ ତତ୍ତ୍ୱଜିଜ୍ଞାସୁ—2. Inquisitive of; the highest truth.
परमार्थ ଦେ. ବିଣ—ଗୋଡ଼ା ବୈଷ୍ଣବ—
A devoted Baishnaba.
ଦେ. ବି—ଧର୍ମ କର୍ମ; ପୁଣ୍ୟ କାର୍ଯ୍ୟ—
A pious or religious act.

**ପରମି(ମେ)ଶର**—ଗ୍ରା. ବି. (ସଂ. ପରମେଶ୍ୱର)—ପରମେଶ୍ୱର – God.
Parami(me)śara परमेसर ,

**ପରମୀକରଣ ମୁଦ୍ରା**—ସଂ. ବି—ଦେବତାଙ୍କୁ ଆହ୍ୱାନ କରିବା ଉପଲକ୍ଷରେ
Paramīkaraṇa mudrā ତାନ୍ତ୍ରିକ ଦେବପୂଜାରେ ବ୍ୟବହୃତ ଅଙ୍ଗୁଳି ମୁଦ୍ରା ବିଶେଷ, ମହାମୁଦ୍ରା (ହି. ଶ)—
A posture of the fingers during worship
[ ଦ୍ର—ଏଥିରେ ଦୁଇହାତର ବୁଢା ଅଙ୍ଗୁଠିକୁ ପରସ୍ପର ସଙ୍ଗେ ଛନ୍ଦି ଅନ୍ୟ ଅଙ୍ଗୁଠିମାନଙ୍କୁ ପଙ୍ଖା ପରି ମେଲାଇ ପ୍ରତିମାଙ୍କୁ ଦେଖାଇବାକୁ ହୁଏ । ହି. ଶ । ]

**ପରମୁଖାପେକ୍ଷା**—ସଂ. ବି. (୬ଷ୍ଠୀ ଓ ୭ମୀ ତତ୍, ପର+ମୁଖ+ଅପେକ୍ଷା)—
Paramukhāpekshā ପରନିର୍ଭରତା, ଅପରର ସାହାଯ୍ୟ ବା ଉପଦେଶ-ପ୍ରତ୍ୟାଶା—Dependence on another, mean servility

**ପରମୁଖାପେକ୍ଷିତା**—ସଂ. ବି. (ପରମୁଖାପେକ୍ଷା+ଇନ୍+ଭାବାର୍ଥରେ ତା—
Paramukhāpekshitā ପରନିର୍ଭରଶୀଳତା, ପରମୁହଁକୁ ଗୁହିଁ ରହିବା ଭାବ—The state of depending on another; subserviency

**ପରମୁଖାପେକ୍ଷୀ**—ସଂ. ବିଣ. ପୁଂ. (ପରମୁଖାପେକ୍ଷା+ଇନ୍, ୧ମା ୧ବ)—
Paramukhāpekshi ଅପରର ସାହାଯ୍ୟ ବା ଆଦେଶପ୍ରତ୍ୟାଶୀ—
(ପରମୁଖାପେକ୍ଷିଣୀ—ସ୍ତ୍ରୀ) Depending on another;
(ପରମୁଖାପେକ୍ଷିତା—ବି) subservient

**ପରମେଟା**—ବୈଦେ ବି. (ଇଂ. ପାରାମାଟ୍ଟା)—ଏକପ୍ରକାର ମୋଟଲୁଗା—
Parametā Paramatta.
ପାରମେଟା [ ଦ୍ର—ଏଥିର ଟାଣୀ ସୂତା ତୁଳାର ଓ ଭରଣୀ
परमाटा ପଶମର । ଏହା ମୋଟା ଓ ଚିକଣା କନା ।
[ପାରମା(ମେ)ଟା—ଅନ୍ୟରୂପ] ଅଷ୍ଟ୍ରେଲିଆର ପରମାଟ୍ଟା ନାମକ ସ୍ଥାନରୁ ଆମଦାନି ହେଉଥିବା ମେଣ୍ଢାଲୁମ (ପଶମ)ରୁ ଏ ଲୁଗା ଆଗେ ବୁଣା ଯାଉଥିଲା ବୋଲି ଏ ଲୁଗାର ଏହି ନାମ ରହିଅଛି—ହି. ଶ ]

**ପରମୃତ୍ୟୁ**—ସଂ. ବି. (ବହୁବ୍ରୀହି; ପ୍ରବାଦ ଅଛି ଯେ କୁଆ ମରେ ନାହିଁ)—
Paramṛutyu କାକ, କୁଆ (ହି. ଶ)—Crow.

**ପରମେଶ**—ସଂ. ବି. (କର୍ମଧା, ପରମ+ଈଶ)—୧ । ଜଗଦୀଶ୍ୱର—
Parameśa 1. God.
(ପରମେଶ୍ୱର—ଅନ୍ୟରୂପ) ୨ । ଶିବ, ମହାଦେବ—
2. God Siba.
୩ । ବିଷ୍ଣୁ—3. Bishṇu.

**ପରମେଶୀ**—ସଂ. ବି. ସ୍ତ୍ରୀ. (ପରମେଶ+ସ୍ତ୍ରୀ. ଈ)—ପାର୍ବତୀ, ଦୁର୍ଗା—
Parameśi (ପରମେଶ୍ୱରୀ—ଅନ୍ୟରୂପ) Goddess Durgā.

**ପରମେଶ୍ୱର**—ସଂ. ବି. (କର୍ମଧା, ପରମ+ଈଶ୍ୱର)—
Parameśwara ୧ । ପରମେଶ (ଦେଖ)—
1. Parameśa (See)
୨ । ଇନ୍ଦ୍ର—2. God Indra. (M. W.)

| ୧ | ଛ | ଡ଼ | ର,ହ୍ର | ଝ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଢ଼ | ଶ,ଷ | କ୍ଷ | ଇଯ୍ | ଉଅ | ଋ |
|---|---|---|---|---|---|---|---|---|---|---|---|---|---|---|
| ୨ | ଛ | ଢ଼ | ରୁ | ନ୍ | ଯେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ଯ | ଙ୍ | ଇଅ | ୠ | ନ୍ |

ପରମେଶ୍ୱରଙ୍କୁ ନୈବେଦ୍ୟ ଦେବା—ଦେ. କ୍ରି (ଶିଷ୍ଟ କଥାମଧ୍ୟରେ ବ୍ୟବହୃତ) ଭୋଜନ କରିବା—To eat; to dine.
Parameśwarańku naibedya debā
(ପରମେଶ୍ୱରଙ୍କୁ ଶାକାନ୍ନ ଦେବା—ଅନ୍ୟରୂପ)

ପରମେଶ୍ୱରୀ—ସଂ. ବି (ପରମେଶ୍ୱର+ସ୍ତ୍ରୀ ଈ)—୧ । ଦୁର୍ଗା—
Parameśwari 1. Goddess Durgā.
୨ । ସୀତା—2 A name of Sitā (M. W.).

ପରମେଷ୍ଠୀ—ସଂ ବି. (ପରମେ=ଅତି ଉତ୍କୃଷ୍ଟ ସ୍ଥାନରେ, ସ୍ୱର୍ଗରେ+ସ୍ଥା. ଧାତୁ=ରହିବା+କର୍ତ୍ତୃ. ଇନ୍, ୧ମା. ୧ବ)—
Parameshthi
୧ । ଶିବ—1 Siba.
୨ । ବିଷ୍ଣୁ—2. Bishṇu
୩ । ବ୍ରହ୍ମା—3 Brahmā.
୪ । ଶାଳଗ୍ରାମ ମୂର୍ତ୍ତିବିଶେଷ—4 Name of a peculiarly shaped śālagrāma.
୫ । ଇଷ୍ଟମନ୍ତ୍ରଦାତା ଗୁରୁ—5. Spiritual preceptor
୬ । ଗରୁଡ଼ (ହି. ଶ)—6. Garurda.

ପରମୈଶ୍ୱର୍ଯ୍ୟ—ସଂ. ବି. (କର୍ମଧା, ପରମ+ଐଶ୍ୱର୍ଯ୍ୟ)—ବିପୁଳବିଭବ—
Paramaiswarjya Supreme grandeur or power.

ପରମୋତ୍କୃଷ୍ଟ—ସଂ ବିଣ. (ପରମ+ଉତ୍କୃଷ୍ଟ)—ଅତି ଉତ୍ତମ—
Paramotkrushta Superlatively good

ପରମୋଦ—ଗ୍ରା. (ପଦ୍ୟ) ବି. (ସଂ. ପ୍ରମୋଦ)—ପ୍ରମୋଦ (ଦେଖ)
Paramoda Pramoda (See)
ପବମୋଦ
**परमोद** ବଢାଇଲେ ଯତ୍ନରେ ମୋର ପରମୋଦ ।
କୃଷ୍ଣସିଂହ, ମହାଭାରତ ବନ ।

ପରମୋନ୍ନତି—ସଂ. ବି (କର୍ମଧା, ପରମ+ଉନ୍ନତି)—୧ । ଉନ୍ନତିର ଚରମସୀମା—1. Culmination; the highest pitch.
Paramonnati
୨ । (ଜ୍ୟୋତିଷ)—ଗ୍ରହର ସର୍ବୋଚ୍ଚ ଅବସ୍ଥା—
2 (astronomy) Culmination of a planet.

ପରମ୍ପର - ସଂ. ବିଣ (ପରଂ+ପର)—ଧାରାବାହିକ, ଏକର ପର ଅନ୍ୟ—
Parampara Successive; one after another.
ସଂ. ବି—୧ । ଅନୁକ୍ରମ—1. Succession.
୨ । ଅଣନାତିର ପୁଅ; ପଣନାତି; ପ୍ରପୌତ୍ରର ପୁଅ—
2 Great great grandson
୩ । ପୁତ୍ର, ପୌତ୍ର, ପ୍ରପୌତ୍ର, ପରପୌତ୍ରଆଦି, ବଂଶ, ସନ୍ତତି—
3. Progeny; one's lineal descendants
୪ । ମୃଗମଦ, କସ୍ତୁରୀ (ହି. ଶ)—4. Musk
୫ । ଏକପ୍ରକାର ହରିଣ—5. A species of deer (M. W.).

ପରମ୍ପରା—ସଂ. ବି. ( ପର+ପର+ଆ )—୧ । ଧାରା, ପୂର୍ବାପର କ୍ରମ—
Paramparā 1. System; order.
୨ । ସମୂହ—2 Collection; series
୩ । ଅବିଚ୍ଛିନ୍ନ ଧାରା, ଅନୁକ୍ରମ—
3 Continuous succession; uninterrupted line; unbroken series.
୪ । ଅନ୍ୱୟ, ବଂଶପରମ୍ପରା—4. Family; lineage, progeny; a line of descendents.
୫ । ହିଂସନ, ମାରଣ—5 Hurting; killing.
ଦେ. ବିଣ—୧ । ଧାରାବାହିକ—1. Regular.
୨ । ଅବିଚ୍ଛିନ୍ନ—2. Unbroken.
ଦେ. ଅ—୧ । ଆବାଲ୍ୟରୁ—1. From infancy.
ଚରକ୍ଷଣ ହୋଇଲେ କ ହେବ ପରମ୍ପରା – ଉତ୍ତ. ବୈଦେହୀଶ ବିଳାସ ।
୨ । ଅବିଚ୍ଛିନ୍ନ ଭାବରେ—
2. In an unbroken line or series.
୩ । ଧାରାବାହିକରୂପେ—
3. In regular succession
ବାଳାଗଳକଅଥ ପଣ୍ଡିତଗୁରୁଙ୍କ ପରମ୍ପରା ହୋଇ ଏ ଥଇ ।
ଉତ୍ତ. ବୈଦେହୀଶବିଳାସ ।
୪ । ଆବହମାନ କାଳରୁ—
4. From time immemorial
ପଦ୍ମଣ ଭଲେ ଶ୍ରାଣୀ ପୁଣି ଜାଣ୍ଇ ଶୁଣି ନ ଥିଲଇ ପରମ୍ପରା ।
ଭକ୍ତ. ପ୍ରେମସୁଧାନିଧି ।
୫ । ବହୁ ପୁରୁଷ ହେଲା ଅବିଚ୍ଛିନ୍ନରୂପେ—
5 Uninterruptedly for generations.

ପରମ୍ପରା କ୍ରମେ—ଦେ. କ୍ରି. ବିଣ—ଧାରାନୁକ୍ରମେ, କ୍ରମାନୁସାରେ, ଅବିଚ୍ଛିନ୍ନ ଧାରାରେ—In continuous succession; successively.
Paramparā krame
ପବମ୍ପବା କ୍ରମେ **परंपरा**

ପରମ୍ପରା ଗତ—ସଂ. ବିଣ ( ପରମ୍ପରା+ଗତ, ଆଗତ)—
Paramparā gata ୧ । ଯାହା ଧାରାବାହିକରୂପେ ଆସେ, ଘଟେ ବା ଚଳି ଆସୁଅଛି—1. Successive; happening or come down in regular succession.
୨ । ବଂଶାନୁଗତ—2. Hereditary.
୩ । ପିତୃପୈତାମହିକ, ବଂଶାନୁକ୍ରମେ ଆଗତ—
3. Traditional; propagated from father to son for generations; descended in regular succession.

ପରମ୍ପରିତ ରୂପକ—ସଂ. ବି - ରୂପକ ଅଳଙ୍କାରବିଶେଷ ( ରୂପକ ତଳେ ନୋଟ୍ ଦେଖ )—
Paramparita rūpaka
A kind of simile; a figure of speech. (See notes under 'Rūpaka')
[ ଦ୍ର—ରୂପକ ଅଳଙ୍କାର ୩ ପ୍ରକାର ଯଥା—ସାଙ୍ଗ, ନିରଙ୍ଗ ଓ ପରମ୍ପରିତ ।]

**ପରମ୍ପରୀଣ**—ସ. ବିଣ ( ପରମ୍ପରା + ଅଛି ଅର୍ଥରେ ଈନ)—
Paramparīna ୧ । କ୍ରମାଗତ—1. Successive.
୨ । ଧାରାବାହିକ—2. Serial; methodical; systematic
୩ । ବଂଶପରମ୍ପରାକ୍ରମେ ଆଗତ, ବଂଶାନୁଗତ—
3. Hereditary; traditional

**ପରରାତ୍ର**—ଦେ ବି. (ସ. ଅପରରାତ୍ର ?)—ଅପରରାତ୍ର, ଶେଷରାତ୍ର—
Para rātra The short hours of the night; the latter or closing part of the night; the last watch of the night

ଶ୍ରାବଣ ଶୁକ୍ଳା ପରରାତ୍ରେ
ଗଲୁଁ ଯେଉଁ ଧର ହସ୍ତେ । ଜଗନ୍ନାଥ ଭାଗବତ ।

**ପରଳ**—ଦେ. ବି. ( ସ. ପଟଳ )—ନେତ୍ରରୋଗବିଶେଷ, ମୋତିଆବିନ୍ଦୁ,
Parala ଆଖି ଡୋଳାଉପରେ ମାଡିଯିବା ଆବରଣ—
ହାନି **ପିଟାରା, मोतिआबिंद्** Film in the eye; cataract; pearl in the eye.

**ପରଳା**—ଦେ. ବି.—ଘରର ରୁଅମାନଙ୍କ ଉପରେ ବତା ବିଛାଇବା—
Paralā Laying of a layer of split bamboos on the rafters of a thatched house.

**ପରଲି**—ପ୍ରାଦେ. (କଳାହାଣ୍ଡି) ବି—ବାଉଁଶ ଡାଲା—
Parali A tray of wicker work.

**ପରଲିବା**—ଦେ. କ୍ରି. ( ସ. ପଟଳ )—
Paralibā ଘରର ରୁଅମାନଙ୍କ ଉପରେ ବତା ବନ୍ଧେଇବା;
[ପରଲା(ଲେ)ଇବା—ଅନ୍ୟରୂପ] ବେଉରେଇବା—
**ठाठ बाँधना** To lay a layer of split bamboos on the rafters of a thatched house.

**ପରଲୋକ**—ସ. ବି (କର୍ମଧା, ପର + ଲୋକ)—୧ । ମୃତ୍ୟୁର ପରବର୍ତ୍ତୀ
Paraloka ଅବସ୍ଥା—1. The state after death; the
(ଇହଲୋକ—ବିପରୀତ) realm of the departed.
୨ । ଲୋକାନ୍ତର; ମୃତ୍ୟୁ ପରେ ଜୀବ ଯେଉଁ ଲୋକ ବା ଜଗତକୁ ଯିବାର କଳ୍ପିତ ହୁଏ—2. The next world; the future world (after death).
[ଦ୍ର—ଈଶ୍ୱର ଓ ପରଲୋକରେ ବିଶ୍ୱାସ ନ କରିବା ବ୍ୟକ୍ତିଙ୍କୁ ନାସ୍ତିକ ବୋଲାଯାଏ ।]
ଦେ ବି—(ସ. ପରଲୋକ ଗମନ)—୧ । ମୃତ୍ୟୁ—
1. Death.
୨ । ବାହାର ମନୁଷ୍ୟ, ଅନାତ୍ମୀୟ ବ୍ୟକ୍ତି—2. Outsider; a person not related to one's self.
ଏଣୁ ପରଲୋକେ ପଠାଇଲେ ଖଣ୍ଡ—ଚିନ୍ତାମଣି ।

**ପରଲୋକ ଗତ**—ସ.ବିଣ. ପୁଂ. (୨ୟା ତତ୍; ପରଲୋକ + ଗତ)—ମୃତ—
Paraloka gata Dead; departed; deceased.
(ପରଲୋକ ପ୍ରାପ୍ତ, ପରଲୋକ ଯାତ୍ରୀ—ଅନ୍ୟରୂପ)
(ପରଲୋକଗତା, ପରଲୋକପ୍ରାପ୍ତା—ସ୍ତ୍ରୀ)

**ପରଲୋକ ଗତି**—ସ. ବି. (୨ୟା ତତ୍; ପରଲୋକ + ଗତି) – ୧ । ମୃତ୍ୟୁ—
Paraloka gati 1 Death.
୨ । ମୃତ୍ୟୁ ପରେ ମୋକ୍ଷ—
2. Final beatitude after death.

**ପରଲୋକ ଗମନ**—ସ ବି (୨ୟା ତତ୍, ପରଲୋକ + ଗମନ)—ମୃତ୍ୟୁ—
Paralokā gamana Death; decease.
(ପରଲୋକ ପ୍ରାପ୍ତି, ପରଲୋକ ଯାତ୍ରା—ଅନ୍ୟରୂପ )

**ପରଲୋକ ହେବା**—ଦେ. କ୍ରି—ମୃତ ହେବା, ମରିବା—
Paraloka hebā To die, to be dead.
(ପରଲୋକ ଗମନ କରିବା—ଅନ୍ୟରୂପ)
পরলোক হওয়া **परलोकगामी होना**

**ପରଶ**—ଦେ. (ପଦ୍ୟ) ବି. (ସ. ସ୍ପର୍ଶ)—୧ । ସ୍ପର୍ଶ—
Paraśa 1. Touch.
পরশ **परस** ପରଶମଣି ପରଶରେ ଲୌହ କାଞ୍ଚନ ହୁଏ ଭଲେ—
ଭୂପତି, ପ୍ରେମପଞ୍ଚାମୃତ ।
୨ । ସଂସ୍ପର୍ଶ—2. Association
ଭୃତ୍ୟ ପରଶରେ ପଶ ନସ୍ତରେ—ଭଗ ।
୩ । କଷଟି ପଥର—3. Touchstone.
୪ । ଚୁମ୍ବକ ପଥର—4 Magnetic stone.
ପୁରୁଷ ଲୌହକୁ ନଷ୍ଟେ ନାରୀ ପରଶ—ଭକ୍ତ, ପ୍ରେମ ସୁଧାନିଧି ।
୫ । ସ୍ପର୍ଶ ମଣି—5 The philosopher's stone.

**ପରଶଂସା**—ଗ୍ରା. (ପଦ୍ୟ) ବି. (ସ. ପ୍ରଶଂସା)—
Paraśaṁsā পরশংসা Praśaṁsā (See)
**परशंसा** ବହୁତ ପରଶଂସା କଲେ ଛୁଆ ହରେ—କୃଷ୍ଣସିଂହ, ମହାଭାରତ ବନ ।

**ପରଶଂସିବା**—ଦେ. କ୍ରି (ସ. ପ୍ରଶଂସା) —ପ୍ରଶଂସା କରିବା—
Paraśaṁsibā পরশংসা To praise
**परशंसना** କୃଷ୍ଣ ମହିମା ପରଶଂସି ଏକକୁ ଆରେକ ବିଶେଷ—
ଭୂପତି, ପ୍ରେମପଞ୍ଚାମୃତ ।

**ପରଶଂସୀ**—ଦେ. (ପ୍ରାଚୀନ ପଦ୍ୟ) ବିଣ (ସ. ପ୍ରଶଂସିତ)—ପ୍ରଶଂସିତ—
Paraśaṁsī Praised; eulogised.
ଆଜ ମୋର କାଣ୍ଡକୁ ଦେବ ଯେବେ ନାଶି
ତେବେ ସିନା ହେବ ଜଗତେ ପରଶଂସୀ । କୃଷ୍ଣସିଂହ, ମହାଭାରତ ବନ ।

**ପରଶନ**—ଗ୍ରା. ବି (ସ. ପ୍ରଶ୍ନ)—ପ୍ରଶ୍ନ, ଜିଜ୍ଞାସା—
Paraśana Question; query.
পরশন **प्रसन** ପରସନ ହେବା ନ ହେବା ସନ୍ଦେହେ ପରଶନ ଦେଖି ଚେଷ୍ଟି—
କବିସୂର୍ଯ୍ୟ, ସଙ୍ଗୀତ ।

**ପରଶ ମଣି**—ଦେ. ବି (ସ. ସ୍ପର୍ଶମଣି)—୧ । ସ୍ପର୍ଶମଣି—
Paraśa maṇi 1. The philosopher's stone.
ପରଶ ପଥର / ପରଶୁ ପଥର / ପରଶୁ ମଣି } ଅନ୍ୟରୂପ [ ଦ୍ର—ଏ ମଣି ଯାହାକୁ ସ୍ପର୍ଶ କରିବ ତାହା ସୁନା ହୋଇଯିବ ବୋଲି ପ୍ରବାଦ ଅଛି ।]
পরেশ পাথর, পরশ পাথর ୨ । କଷଟି ପଥର—
**पारस पत्थर** 2 Touch stone.
୩ । ଚୁମ୍ବକ ପଥର—3. Magnet.

**ପରଶାଳା**—ସ. ବି (ବହୁବ୍ରୀହି, ପର + ଶାଳା —ମଲ୍ଲଙ୍ଗ (ହି. ଶ )—
Paraśālā Mistletoe.

**ପରଶିବା**—ଗ୍ରା. (ପଦ୍ୟ) କ୍ରି. ( ସ. ସ୍ପର୍ଶ )—
Paraśibā ୧ । ସ୍ପର୍ଶ କରିବା—1. To touch

ପବଶ ଏ ପରୀ ଶକ୍ତ-ପରଶୁ-ପର-ଢମକୁ ହସି ।
**परसना** ଭକ୍ତ. କୋହ୍ନୃଷ୍ଣୁଦାସ ।
୨ । ( ସ. ପରିବେଷଣ )—ପରଷିବା ( ଦେଖ )
2. Parashiba ( See )

**ପରଶୁ**—ସ. ବି. (ପର=ଶତ୍ରୁ+ଶୃ ଧାତୁ=ହିଂସା କରିବା+କରଣ ଉ)-
Paraśu ପରଶ୍ୱଧ, ଯୁଦ୍ଧ କୁଠାର, ଟାଙ୍ଗି, ଟାଙ୍ଗିଆ—
Battle axe; hatchet
[ ଦ୍ର—ଏଥିରେ ଗୋଟିଏ ଦଣ୍ଡର ମୁଣ୍ଡରେ ଅର୍ଦ୍ଧ ଚନ୍ଦ୍ରାକୃତି ବିସ୍ତୃତାସ୍ୟ ତୀକ୍ଷ୍ଣଲୌହ ଫଳକ ଲାଗି ଥାଏ । ]
ପବଶ ଦେ. ବି—୧ । ପରଶମଣି ( ଦେଖ )
**परश** 1. Paraśamaṇi ( See )
୨ । ପରଶୁରାମ (ଦେଖ)—2. Paraśurāma ( See )
ଛତ୍ତ ପରଶୁ ଅବତାର, ଚାଷ କୁଠାର ଯେନ କର ।
ପ୍ରାଚୀ. ନର୍ଗୁଣମାହାତ୍ମ୍ୟ ।
(ପରଶୁଆ—ଅନାଦରାର୍ଥକ) ୩ । (ଆଦରାର୍ଥକ) ପରଶୁରାମ ନାମକ ବ୍ୟକ୍ତିର ଡାକ ନାମ—3. Name by which a person named Paraśurāma is called.

**ପରଶୁ କେଦାର**—ଦେ ବି—ଏକ ପ୍ରକାର କନ୍ଦ ( ଯାହିଁରେ ସାପ ବିଷ
Paraśu kedāra ଦୂର ହୁଏ)—A kind of vegetable root which is antidote against snake poison.
ନଡ଼ଇ ପରଶୁ କେଦାର ପଇ
ପାରଇ ଫଣି ଫଣା ମଣି ହୁଇ । କବିସୂର୍ଯ୍ୟ. କହରା ।

**ପରଶୁଧର**—ସ. ବିଣ. ପୁଂ ( ପରଶୁ+ଧୃ ଧାତୁ+କର୍ତ୍ତୃ. ଅ )—
Paraśudhara ଯେ ପରଶୁ ଧରିଥାଏ—Holding a battle-axe; armed with a hatchet.
ପରଶୁଧାରୀ } ଅନ୍ୟରୂପ
ପରଶୁପାଣି }
ସ. ଅ—୧ । ମହାଦେବ, ଶିବ—1. Śiba.
୨ । ପରଶୁରାମ ( ଦେଖ )—2. Paraśurāma. ( See )
୩ । ଗଣେଶ—
3. God Gaṇeśa; the younger son of Śiva.

**ପରଶୁ ରତନ**—ଦେ. ବି. ( ସ. ସ୍ୱର୍ଣ୍ଣ ରତ୍ନ )—
Paraśu ratana ପରଶମଣି; ସ୍ୱର୍ଣ୍ଣମଣି—
ପବସ ପାଥର The philosopher's stone.
**पारस पत्थर** ଲଭିବେ ପରଶୁ ରତନ. ସୁବର୍ଣ୍ଣ ଛତର ବଡ଼ନ ।
ଭୂପତି. ପ୍ରେମପଞ୍ଚାମୃତ ।
ପରଶୁମଣି } ଅନ୍ୟରୂପ
ପରଶୁ ପଥର }

**ପରଶୁରାମ**—ସ. ବି. ( ମ. ପ. ଲୋ; ପରଶୁ=କୁଠାର [ସୂଚକ]+ରାମ=
Paraśurāma ରାମାବତାର)—ଜମଦଗ୍ନି ଋଷିଙ୍କ ପୁତ୍ର, ଭାର୍ଗବ—
Paraśurāma; a son of Jamadagni.
[ ଦ୍ର—ଏ ବିଷ୍ଣୁଙ୍କର ୬ଷ୍ଠ ଅବତାର, ପୃଥିବୀକୁ ୨୧ ବାର ନିକ୍ଷତ୍ରିୟ କରିଥିଲେ । ଏହାଙ୍କର ଅସ୍ତ୍ର ପରଶୁ । ଏ ପିତାଦେଶରେ ସ୍ୱୀୟ ମାତା ରେଣୁକାଙ୍କୁ ବଧ କରିଥିଲେ ଓ ପରେ ପିତାଙ୍କୁ ସନ୍ତୁଷ୍ଟ କରି ମାତାଙ୍କୁ ପୁନରୁଜ୍ଜୀବିତା କରାଇଥିଲେ । ଏ ମହାବୀର ଥିଲେ; ଏହାଙ୍କ ପିତୃହନ୍ତା କାର୍ତ୍ତବୀର୍ଯ୍ୟାର୍ଜୁନ ବା ସହସ୍ରାର୍ଜୁନଙ୍କୁ ଏ ବଧ କରିଥିଲେ । ରାମଚନ୍ଦ୍ର ବିବାହ ହୋଇ ସାଇ ସୀତାଙ୍କୁ ଘେନି ମିଥିଳାରୁ ଫେରି ଆସିବା ସମୟରେ ବାଟରେ ଏ ତାଙ୍କୁ ଭେଟି ଧନୁ ପରୀକ୍ଷା ନିମନ୍ତେ ରାମଚନ୍ଦ୍ରଙ୍କୁ ଆହ୍ୱାନ କରିଥିଲେ । ରାମଚନ୍ଦ୍ର ଏହାଙ୍କ ହାତରୁ ଧନୁ ନେବା ସମୟରେ ଏହାଙ୍କ ଦେହରେ ଥିବା ବିଷ୍ଣୁତେଜଃ ରାମଚନ୍ଦ୍ରଙ୍କ ଦେହରେ ପ୍ରବେଶ କଲା ଏବଂ ଏ ହତପ୍ରଭ ହୋଇ ତପସ୍ୟା କରିବାକୁ ଗଲେ । ଏହାଙ୍କର ଅନ୍ୟ ଚାରି ଭାଇଙ୍କ ନାମ ସମନ୍ୱାନ୍, ସୁଷେଣ, ବସୁ ଓ ବିଶ୍ୱାବସୁ । ]

**ପରଶ୍ୱ(ଶ୍ୱଃ)**—ସ ଅ (ପର+ଉତ୍ତରାର୍ଥେ ଶ୍ୱ, ଶ୍ୱସ୍)—
Paraśwa(śwah) ୧ । ଆଗାମୀ ପଅର ଦିନ, ଆଗାମୀ କାଲିର
ପବଶ୍ୱ **परसौं** ପରଦିନ—1. Day after tomorrow.
୨ । ଗତ କାଲିର ପୂର୍ବ ଦିନ—
2 Day before yesterday. (Ganguli).

**ପରଶ୍ୱଧ**—ସ ବି. [ପର=ଶତ୍ରୁ+ଧେ=ଲୁକୁର (ପର'+ଧେ ଧାତୁ=
Paraśwadha ପାନ କରିବା+କର୍ତ୍ତୃ. ଅ, ଯେ ଲୁକୁର ପିଇ
(ପରସ୍ୱଧ—ଅନ୍ୟରୂପ) ଶତ୍ରୁର ରକ୍ତକୁ ପାନ କରେ ]—
ପରଶୁ, କୁଠାର—Battle-axe

**ପରଶ୍ରୀ**—ସ ବି. ( ୬ଷ୍ଠୀ ତତ୍, ପର+ଶ୍ରୀ )—
Paraśri ଅନ୍ୟ ବ୍ୟକ୍ତିର ଶ୍ରୀ ବା ସମ୍ପଦ—
Prosperity of another person.

**ପରଶ୍ରୀ କାତର**—ସ. ବିଣ. ପୁଂ. (୭ମୀ ତତ୍, ପରଶ୍ରୀ+କାତର)—
Paraśri kātara ଅସହିଷ୍ଣୁ, ଯେ ଅନ୍ୟ ବ୍ୟକ୍ତିର ସୁଖ ସମ୍ପଦ
(ପରଶ୍ରୀକାତରା—ସ୍ତ୍ରୀ) ଦେଖିଲେ ବ୍ୟଥିତ ହୁଏ, ଅନ୍ୟ ବ୍ୟକ୍ତିର
(ପରଶ୍ରୀକାତରତା—ବି) ସୁଖ ଯାହା ଆଖିରେ ସାଏ ନାହିଁ—
Envious; pained at another person's weal or prosperity.

**ପରଷା**—ଦେ. ବି. ( ସ. ପରିବେଷଣ )—ପରିବେଷଣ—
Parashā ପବଷା Serving of food.
**परोसना, परसना** ମାର ବରଷା ମାଅ ପରଷା—ଢଗ ।

**ପରଷା(ଷେ)ଇବା**—ଦେ. କ୍ରି—'ପରଷିବା'ର ଣିଜନ୍ତ ରୂପ—
Parashā(she)ibā Causative form of
ପବଷାନ **परसाना** Parashibā.

**ପରଷାଣ**—ଦେ. ବି. ( ସ. ପରିବେଷଣ )—ପରିବେଷଣ—
Parashāṇa Serving out of meal to guests.
ପବଷା **परसना**

**ପରଷା ପରଷି**—ଦେ. ବି—ପରିବେଷଣ କର୍ମ—
Parashā parashi The act of serving out meal
ପରଷା ପବଷି **परसा परसि** to guests.

**ପରଷିବା**—ଦେ. କ୍ରି. (ସ. ପରିବେଷଣ)—
Parashibā ଖାଦ୍ୟ ପରିବେଷଣ କରିବା; ଖାଇବା ଲୋକର ପତ୍ରରେ
ପରଷା ବା ପାତ୍ରରେ ଖାଦ୍ୟ ଦେବା—
**परसना** To serve food.
(ପରଷି ଦେବା—ଅନ୍ୟରୂପ) ବିଜନ୍ତୁ ପରଷିଲେ ଅନ୍ନ ତୋଷମନେ ।
କୃଷ୍ଣସିଂହ. ମହାଭାରତ ସଭା ।

**ପରଷୁଣୀ**—ଦେ. ବଣ. ପୁଂ ଓ ସ୍ତ୍ରୀ. ( ସଂ. ପରବେଷଣ )—
Parashuni ପରିବେଷଣକାରୀ—Serving meal.
(ପରଷାଳୀ—ଅନ୍ୟରୂପ) ଦୁ ଦେ ପ୍ରକାର ଦୁଲଣୀ, ସେ ସଙ୍କେ ଅଳ୍ପ ପରଷୁଣୀ ।
ପାବିବେଷୁନୀ परोसिया ଜଗନ୍ନାଥ- ଭାଗବତ ।
[ପରଷୁଣିଆ(ଆଁ) – ଅନ୍ୟରୂପ] ଦେ ବ - ପିଷ୍ଟା, ଏକ ପ୍ରକାର ପତଳା କଂସାପାତ୍ର (ଯାହା ଦ୍ୱାରା ପାତ୍ରରୁ ଭାତ ଆଦି କଢ଼ାଯାଇ ପତରରେ ପରଷା ହୁଏ—A thin bell metal utensil used in serving out rice from big pots.

**ପରସଙ୍ଗ**—ଗ୍ରା. ବ. (ସଂ. ପ୍ରସଙ୍ଗ)—ପ୍ରସଙ୍ଗ ( ଦେଖ )
Parasanga পরসঙ্গ परसंग Prasanga ( See )

**ପରସନ(ନ୍ନ)**—ସଂ. ବ. ( ସଂ. ପ୍ରସନ୍ନ )—
Parasana(nna) ୧ । ଅନୁକୂଳ, ପ୍ରସନ୍ନ—1. Favourable; propitious; kind.
ପ୍ରবসন্ন परसन
ହରିଙ୍କ ଭକ୍ତିରେ ମନ
ହୁଅଇ ସଦା ପରସନ । ଜଗନ୍ନାଥ, ଭାଗବତ ।
୨ । ସନ୍ତୁଷ୍ଟ—2. Satisfied.
ଏବେଜ ନେ, ଉଚ୍ଛ୍ୱଳ ଜାଡ଼ ଅ ଗୋସେଇଁ ପରସନ - ଭଗ ।
ଗ୍ରା. ବ (ସଂ. ପ୍ରସନ୍ନତା)—ପ୍ରସନ୍ନତା; ସନ୍ତୋଷ, ଅନୁଗ୍ରହ—Satisfaction; favour.

ବନ ଉପ ଯୋଗରେ ବହେ ପରସନ୍ନ । ଉକ୍ତ ବୈଦେଶିଶ ବଳାସ ।
ତୋହର ପରସନ୍ନ ତାର, ସକଳ ହୁଅଇ ସଫଳ । ଜଗନ୍ନାଥ. ଭାଗବତ ।

**ପରସା (ଇତ୍ୟାଦି)**—ଗ୍ରା. ବ. (ସଂ ପ୍ରସ୍ରାବ)—
Parasa (etc) ପ୍ରସ୍ରାବ ଇତ୍ୟାଦି ( ଦେଖ )
. পেচ্ছাব परसाव Prasraba etc ( See )
(ପରସା, ପରସାବ, ପରସ୍ରାବ—ଅନ୍ୟରୂପ)

**ପରସାଦ**—ଗ୍ରା. ବ (ପଦ୍ୟ) (ସଂ. ପ୍ରସାଦ)—
Parasada ୧ । ଦେବତାଙ୍କୁ ନୈବେଦ୍ୟ ଭୋଗ—
পরসাদ 1. Offering to a Deity.
परसाद ୨ । ଉଚ୍ଛିଷ୍ଟ ଭୋଜ୍ୟ, ଅଇଁଠା—
2. The leavings of a person's meal.
୩ । ଅନୁଗ୍ରହ—3. Favour.
ତେଣୁ ବସ୍ତିଲେ, ଦଳାଇ ମନର ଉଥିଲୁ, ଯାହା ପରସାଦେ ତ ଦୃ.ଢ଼
କହିବା ଲୋକର ନୋହେ କଥନକୁ । ଉକ୍ତ, ପ୍ରେମସୁଧାନିଧି ।

**ପରସାଦି**—ଗ୍ରା. ବଣ. ( ସଂ. ପ୍ରସାଦୀକୃତ )—
Parasadi ୧ । ନୈବେଦ୍ୟ – 1. Offered.
পরসাদী ୨ । ଉଚ୍ଛିଷ୍ଟ ( ଖାଦ୍ୟ ଦ୍ରବ୍ୟ )—
परसादि 2. (food) Left after dinner.
[illegible] ଉପଭୁକ୍ତ ପରିତ୍ୟକ୍ତ ଓ ଅଂଶୁ—
3. Abandoned or discarded after enjoyment.
( ଯଥା—ଦର୍ଶକର ପରସାଦ ମାଳ ମୋ ବେକରେ ପକାଇ ଦେଲ । )
ଗ୍ରା. ବ—ପରସାଦ (ଦେଖ)—Parasada (See)

**ପରସା ପୋଡ଼ା**—ଗ୍ରା. ବ. ( ସଂ. ପ୍ରସ୍ରାବ ଜ୍ୱାଳା )—
Parasa porda କ୍ଷୁଦ୍ର ମେହ ରୋଗବିଶେଷ—
ପରସ୍ରା ପୋଡ଼ା / ପରସାବ ପୋଡ଼ା / ପରସା ଜଳା } ଅନ୍ୟରୂପ — Painful and scanty urination; a disease of the urethral organ.
পেচ্ছাব যন্ত্রণা [ ଦ୍ର—ଏଥିରେ ପ୍ରସ୍ରାବ କରିବା ସମୟରେ ଜନନେନ୍ଦ୍ରିୟ ମଧ୍ୟରେ ଭାରି ପୋଡ଼ାଜଳା ହୁଏ, ପରସ୍ରା ହଳଦିଆ ବା ନାଲି ହୋଇ ଅଳ୍ପ ଅଳ୍ପ କ୍ଷରତ ହୁଏ । ]
पिशाबकि ज्वाला

**ପରସା ମୁଣ୍ଡେଇବା**—ପ୍ରାଦେ. (କଳାହାଣ୍ଡି) କ୍ର—(ସ୍ତ୍ରୀ) ନିଜ ଇଚ୍ଛାରେ
Parasa mundeiba ସ୍ୱାମୀ ଗ୍ରହଣ କରିବାକୁ ଯିବା—
(a woman) To look out for a husband of one's choice; to go out to select a husband for one's self.

**ପରସିଦ୍ଧି(ଧି)**—ଗ୍ରା. (ପଦ୍ୟ) ବ. (ସଂ. ପ୍ରସିଦ୍ଧି)—
Parasiddhi (dhi) ପ୍ରସିଦ୍ଧି, ଖ୍ୟାତି – Celebrity.
পরসিদ্ধি परसिद्धि ଗ୍ରା. ବଣ. – ପ୍ରସିଦ୍ଧ—Celebrated
[ପରସିଦ୍ଧ(ଧ)—ବଣ]
ସୁବଳ ଗୋକ କୃଷ୍ଣ ଅଛ
ଏମନ୍ତେ ନାମ ପରସିଦ୍ଧି । ଜଗନ୍ନାଥ. ଭାଗବତ ।

**ପରସୀମା**—ସଂ. ବ. (ପର+ସୀମା, ୬ଷ୍ଠୀ ତତ୍)—
Parasima ଅନ୍ୟ ବ୍ୟକ୍ତିର ଜମିର ବା ରାଜ୍ୟର ସୀମା—
পরের সীমা The boundary of the land or
दुसराका सिवाना country of another.

**ପରସ୍ତ(ସ୍ଥ)**—ଦେ. ବ. (ସଂ. ପ୍ରସ୍ଥ=ବିସ୍ତାର, ସଂ.ପଦ, ସଂ. ପ୍ରସ୍ତର=ପଥର ଶଯ୍ୟା)—
Parasta (stha) ୧ । ପ୍ରସ୍ଥ, ସ୍ତର—1. Layer.
পরস্ত, পরত ୨ । ବାର, ଥର—2. Time.
परत ୩ । ଭାଙ୍ଗ—3. Fold; plait.
ପ୍ରାଦେ. ( ବାଲେଶ୍ୱର ) ବ—ଖଞ୍ଜା, ଅଗଣା—
Courtyard.

**ପରସ୍ତ ପରସ୍ତ**—ଦେ. କ୍ରି. ବଣ—ପ୍ରସ୍ତ ପ୍ରସ୍ତ ହୋଇ—
Parasta parasta 1. In layers.
পরত পরত ୨ । ସ୍ତର ପରେ ସ୍ତର—
परत परत 2. Layer after layer.
(ପରସ୍ତକା ପରସ୍ତ, ପରସ୍ତକୁ ପରସ୍ତ – ଅନ୍ୟରୂପ)

**ପରସ୍ତା(ସ୍ତେ)ଇବା**—ଦେ. କ୍ରି—ପରସ୍ତ ପରସ୍ତ କରି ଭାଙ୍ଗିବା, ଚଉତାଇବା—
Parasta(ste)iba To fold into layers; to plait;
পরতান तह करना, तहियाना to braid.

**ପରସ୍ତାତ୍**—ସଂ. ଅ ( ପର+ତାତ୍, ନିପାତନ )—
Parastat ୧ । ପଶ୍ଚାତ୍—1. Behind.
୨ । ପରେ—2. After.
୩ । ଆଉଥରେ; ପୁନଶ୍ଚ—3. Again; also.

**ପରସ୍ତା ପରସ୍ତି**—ଦେ. ବଣ—ସ୍ତର ସ୍ତର ହୋଇ ସଜ୍ଜିତ, ଚଉତାଚଉତ—
Parasta parasti পরতাপরতি Folded up in layers.

**ପରସ୍ତାବ**—ଗ୍ରା. ବ. (ସଂ. ପ୍ରସ୍ତାବ)—୧ । ପ୍ରସ୍ତାବ—
Parastaba 1. Proposal.

୨ । ପ୍ରସଙ୍ଗ—2. Course of conversation; connection.

୩ । ବିଷୟ—3. Subject

ପରସ୍ତିଆ—ଦେ. ବିଣ. (ସ—ପ୍ରସ୍ତ)—(ଏତେ) ପରସ୍ତ ବା ସ୍ତରଯୁକ୍ତ—
Parastiā
तहवाला Folded in layers.
[ଦ୍ର—ଅନ୍ୟ ସଂଖ୍ୟାବାଚକ ଶବ୍ଦ ସଙ୍ଗେ ଲାଗେ । ଯଥା—ଛଅ ପରସ୍ତିଆ । ]

ପରସ୍ତିରି—ଗ୍ରା. ବି. (ସ. ପରସ୍ତ୍ରୀ)—ପରସ୍ତ୍ରୀ, ଅନ୍ୟ ବ୍ୟକ୍ତିର ଭାରିଯା—
Parastiri Another person's wife.
( ପରତିରି, ପରତିରୀ, ପରତିରୀ; ପରତିର୍ନି—ଅନ୍ୟରୂପ )

ପରସ୍ତୁତ—ଗ୍ରା. ବିଣ. (ସ. ପ୍ରସ୍ତୁତ)—୧ । ଉପସ୍ଥିତ, ବିଦ୍ୟମାନ—
Parastuta 1. Present.
पवस्तुत प्रस्तुत ୨ । ଉଦ୍ୟତ—2 Ready.

୩ । ଯଥାକ୍ରମେ, କ୍ରମାନୁସାରେ—3. Respectively.

ପରସ୍ତେ—ଗ୍ରା. ଅ—୧ । ଏକ ପ୍ରସ୍ତ—
Paraste 1. One layer or fold.
एकपरत ଏକପରତ ୨ । ଏକଥର—2. Once.

୩ । ବୃଷ୍ଟି, (ଗାଳି, ମାଡ଼ ଆଦିର) ଏକ ବର୍ଷା—
3. A shower of (rebuke or beating)
ଯଥା—ତାଙ୍କୁ ଆଜି ଅଚ୍ଛା କରି ପରସ୍ତେ ଶୋଧିଦେଇ ଆସିଲି ।

ପରସ୍ତ୍ରୀ—ସ. ବି. ସ୍ତ୍ରୀ—(ପର+ସ୍ତ୍ରୀ)—ଅନ୍ୟବ୍ୟକ୍ତିର ଭାର୍ଯ୍ୟା—
Parastri Another man's wife.
(ପରପୁରୁଷ—ପୁଂ) ଦେ. ବି—ପର ସ୍ତ୍ରୀ ଗମନ—
Adultery with anothers' wife.

ପରସ୍ତ୍ରୀ ଗମନ—ସ. ବି.—(ପରସ୍ତ୍ରୀ+ଗମନ)—ଅନ୍ୟର ସ୍ତ୍ରୀ ସଙ୍ଗେ ଜାର—
Parastri gamana କର୍ମ, ବ୍ୟଭିଚାର କର୍ମ—
Adultery with a woman.
( ପରସ୍ତ୍ରୀ ସଙ୍ଗ, ପରସ୍ତ୍ରୀ ସଙ୍ଗମ, ପରସ୍ତ୍ରୀ ସହବାସ, ପରସ୍ତ୍ରୀ ହରଣ, ପରସ୍ତ୍ରୀ ସମ୍ଭୋଗ, ପର ସ୍ତ୍ରୀ ସଂସର୍ଗ—ଅନ୍ୟରୂପ )

ପରସ୍ତ୍ରୀଗାମୀ—ସ. ବିଣ. ପୁଂ. (ପରସ୍ତ୍ରୀ+ଗମ୍ ଧାତୁ+କର୍ତ୍ତୃ.ଇନ୍)—
Parastrigāmi ପର ସ୍ତ୍ରୀ ସଙ୍ଗେ ସହବାସକାରୀ—Adulterer.
ସ. ବି. ପୁଂ—ପରସ୍ତ୍ରୀ ସହବାସକାରୀ ବ୍ୟକ୍ତି—
(ପରପୁରୁଷଗାମିନୀ—ସ୍ତ୍ରୀ) An adulterer.

ପରସ୍ପର—ସ. ବିଣ. (ପର+ପର, ନିପାତନ)-ଅନ୍ୟୋନ୍ୟ, ଇତରେତର—
Paraspara Mutual; reciprocal.
ସ. କ୍ରି ବିଣ—୧ । ଅନ୍ୟୋନ୍ୟରେ, ଜଣେ ଅନ୍ୟ ଜଣଙ୍କୁ ଏହିପରି ଭାବରେ; ଜୋଡ଼ା—1. Mutually.
୨ । ଆପଣା ଆପଣା ମଧ୍ୟରେ, ଆପୋଷିରେ—
2. Amicably.

୩ । ଯଥାକ୍ରମେ, କ୍ରମାନୁସାରେ—3. Respectively.
ସ. ବି.—୧ । ମୃଗବିଶେଷ—A kind of deer
୨ । ପ୍ରପୌତ୍ରର ପୁତ୍ର—2. Great great grandson.
୩ । ବଂଶ—3. Race; progeny.
ସ. ସର୍ବନାମ—ଅନ୍ୟୋନ୍ୟ—Each other; one another.

ପରସ୍ପର ବିରୋଧୀ—ସ. ବିଣ ପୁଂ. (ପରସ୍ପର+ବିରୋଧୀ)—
Paraspara birodhi ୧ । ଏକଜଣ ଅନ୍ୟର ପ୍ରତିକୂଳ—
(ପରସ୍ପର ବିରୁଦ୍ଧ—ଅନ୍ୟରୂପ) 1. Opposing each other.
୨ । ଅନ୍ୟୋନ୍ୟର ବିପରୀତ—
2. Contrary to each other.
(ପରସ୍ପର ବିରୋଧିନୀ—ସ୍ତ୍ରୀ)

ପରସ୍ୱ—ସ. ବି. (୬ଷ୍ଠୀ ତତ୍, ପର+ସ୍ୱ, ତୁଲ, ଦେବସ୍ୱ, ଶିବସ୍ୱ, ବ୍ରହ୍ମସ୍ୱ)—
Paraswa ପରଦ୍ରବ୍ୟ, ପରଧନ—
Another's property; the property of others.

ପରସ୍ୱାପହରଣ—ସ. ବି. ( ୬ଷ୍ଠୀ ତତ୍, ପରସ୍ୱ+ଅପହରଣ )—ପରଧନ
Paraswāpaharaṇa ହରଣ, ଚୋରି—Theft

ପରସ୍ୱାପହାରକ—ସ ବିଣ ପୁଂ. (ପରସ୍ୱ+ଅପହାରକ)—ଚୋର—
Paraswāpahāraka Thief.
(ପରସ୍ୱାପହାରୀ—ଅନ୍ୟରୂପ)
( ପରସ୍ୱାପହାରିକା, ପରସ୍ୱାପହାରିଣୀ—ସ୍ତ୍ରୀ )

ପରସ୍ମୈପଦ—ସ. ବି. (ପରସ୍ମୈ=ପର ଶବ୍ଦର ଚତୁର୍ଥୀ ବିଭକ୍ତି ୧ବଚନ;
Parasmaipada ଅନ୍ୟନିମିତ୍ତ,+ପଦ=ତି, ତସ୍ ଓ ଅନ୍ତି ଆଦି
(ଆତ୍ମନେପଦ—ବିପରୀତ) ଚିହ୍ନ (ସଂସ୍କୃତ ଧାତୁର ବିଭକ୍ତିବିଶେଷ)—
କର୍ତ୍ତୃ ବାଚ୍ୟରେ ପ୍ରଯୁଜ୍ୟ କ୍ରିୟାର ବିଭକ୍ତି, କର୍ତ୍ତୃବାଚ୍ୟର କ୍ରିୟାରୂପ ।
The form of a Sanscrit verb in the active voice when the action denoted is performed for the benefit of another, the active voice of verbs.

(ଯଥା—ସେ କରୁଛି=ସଃ କରୋତି (ପରସ୍ମୈପଦ=ସେ ପର ପାଇଁ କରୁଅଛି)—Active voice.
ତାହାଦ୍ୱାରା କରାଯାଉଅଛି—ସଃ କୁରୁତେ—ସେ ନିଜ ପାଇଁ କରୁଅଛି (ଆତ୍ମନେପଦ)—Passive voice.]

ପର ହସ୍ତ—ସ. ବି. (ପର+ହସ୍ତ)—୧ । ଅନ୍ୟବ୍ୟକ୍ତିର ହାତ—
Para hasta 1. The hand of another person.
୨ । ଅନ୍ୟ ବ୍ୟକ୍ତିର ଅଧିକାର, ଅନ୍ୟ ବ୍ୟକ୍ତିର ଜିମାଦାରି—
2. The control or custody of another person.

ପରହସ୍ତଗତ—ସ. ବିଣ. (ପରହସ୍ତ+ଗତ)—୧ । ଆପଣାର ଆୟତ୍ତରେ
Parahastagata ନ ଥିବା—1. Beyond one's own
(ପରହସ୍ତଗତା—ସ୍ତ୍ରୀ) (ପରହସ୍ତକ—ଦେ. ରୂପ) control.
୨ । ପରର ହାତକୁ ଯାଇଥିବା (ଧନ);ଯେଉଁ ଧନ ବା ବସ୍ତୁ ଅନ୍ୟ ବ୍ୟକ୍ତିର କରଗତ ହୋଇଥାଏ—2. (property or thing) Which has gone to the possession, control or custody of another.

**ପର ହାତ**—ଦେ. ବି (ସଂ. ପରହସ୍ତ)—ପର ହସ୍ତ (ଦେଖ)
Para hāta — Para hasta (See)
পবেবহাত ଦେ. ବଣ—ପରହାତିଆ (ଦେଖ)
दुसराका हाथ — Para hātiā (See)

**ପରହାତ ଚଢ଼ିବା**—ଦେ. କ୍ରି—୧ । (ଧନାଦି) ଅନ୍ୟ ବ୍ୟକ୍ତିର କରଗତ ହେବା—1. (property) To go to the control of another.
Para hāta chardhibā
পবেবহাতে চঢা
दुसराकाहाथमे गीरना

୨ । (କୌଣସି ବ୍ୟକ୍ତି) ଅପର ବ୍ୟକ୍ତିର ପରାମର୍ଶ ବା ଅଧିକାରାଧୀନ [ଅନ୍ୟରୂପ] ହେବା—2. To become subservient to another person.
ପରହାତ ହେବା
ପର ହାତରେ ଚଢିବା
ପର ହାତରେ ପଡ଼ିବା

**ପରହାତିଆ**—ଦେ. ବଣ—୧ । ପର ହସ୍ତଗତ (ଦେଖ)
Para hātiā — 1. Para hastagata .(See)

୨ । ପରର ଅଧିକାର ବା କ୍ଷମତାଭୁକ୍ତ—
2. Under the control or disposal of another.

୩ । ଅନ୍ୟ ବ୍ୟକ୍ତି ଦ୍ୱାରା ସାଧ୍ୟ—
3. Accomplishable by another.

**ପର ହିତ**—ସ. ବି. (୬ଷ୍ଠୀ ତତ୍; ପର+ହିତ)—ପରର ମଙ୍ଗଳ, ପରୋପକାର—The good of other people; benefit to others.
Para hita

[ଦ୍ର—ଏଥିରୁ ପରହିତରତ, ପରହିତାନୁଷ୍ଠାନ, ପରହିତାନୁଷ୍ଠାତା, ପରହିତାନୁଷ୍ଠାତ୍ରୀ, ପରହିତାକାଙ୍କ୍ଷୀ, ପରହିତାକାଂକ୍ଷୀ, ପରହିତାକାଙ୍କ୍ଷିଣୀ, ପରହିତ ବ୍ରତ, ପରହିତୈଷଣା, ପରହିତୈଷୀ, ପରହିତୈଷିଣୀ, ପରହିତେଚ୍ଛୁ, ପରହିତେଚ୍ଛା, ପରହିତାଭିଲାଷ, ପରହିତାଭିଲାଷୀ, ପରହିତାଭିଲାଷିଣୀ, ପରହିତ ସାଧକ ଓ ପରହିତ ସାଧିକା ଆଦି ପଦ ନିଷ୍ପନ୍ନ ହୁଏ ।]

**ପରା**—ସ. ଅ—(ଉପସର୍ଗ) (ପୃ ଧାତୁ=ପୂରଣ କରିବା+କର୍ତ୍ତୃ. ଅ)—ନିମ୍ନଲିଖିତ ଅର୍ଥରେ ବ୍ୟବହୃତ ଉପସର୍ଗ—A prefix used in the following senses.
Parā

୧ । ପ୍ରାଧାନ୍ୟ—1. Preeminence.

୨ । ସର୍ବତୋଭାବ—2. In all ways; in every way.
(ଯଥା—ପରାକ୍ରମ)

୩ । ଅତିକ୍ରମ—3. Passing over; surpassing

୪ । ଅତ୍ୟନ୍ତ, ବିଶେଷ ଭାବରେ—4. Excessively.
(ଯଥା—ପରାମର୍ଶ )

୫ । ଗମନ—5. Going.
(ଯଥା—ପରାଗତ)

୬ । ଶେଷ, ଅନ୍ତିମ—6. Final.
(ଯଥା—ପରାକାଷ୍ଠା)

୭ । ବଧ—7. Killing.
(ଯଥା—ପରାହତ)

୮ । ଦୂରକୁ—8. Far; to a distance.

୯ । କ୍ଷତି—9. Loss.

୧୦ । ଅଭିମୁଖ୍ୟ—10. Situation in front.

୧୧ । ପ୍ରାତିଲୋମ୍ୟ—11. Inversion; against the grain.

୧୨ । ସହିତ—12. With.
(ଯଥା—ପରାଗ)

୧୩ । ବିକ୍ରମ—13 Power, might.

୧୪ । ତିରସ୍କାର—14 Rebuke.

୧୫ । ଲେଉଟିବା—15 Returning.
(ଯଥା—ପରାବୃତ୍ତି)

୧୬ । ପ୍ରାତିକୂଲ୍ୟ—16. Opposition.
(ଯଥା—ପରାସ୍ତ)

୧୭ । ବିପରୀତ—17. Opposite.
(ଯଥା—ପରାଜୟ)

୧୮ । ଅନାଦର, ଅବଜ୍ଞା, ଅବହେଳା—
18. Slighting; disregard.
( ଯଥା—ପରାକରଣ )

୧୯ । ପୁନରାୟ—19. Again.

୨୦ । ଭଙ୍ଗ—20. Breaking.

୨୧ । ପଛଆଡ଼କୁ—21. Backwards.
(ଯଥା—ପରାପତିତ)

୨୨ । ଊର୍ଦ୍ଧ୍ୱକୁ—22. Upwards.
(ଯଥା—ପରାବହ)

୨୩ । ନିନ୍ଦିତ—23. Blameworthy
(ଯଥା—ପରାଭବ)

୨୪ । ମୁକ୍ତି—24. Liberation
( ଯଥା—ପରାକୃତ)

ସ. ବଣ. ସ୍ତ୍ରୀ. (ପର+ସ୍ତ୍ରୀ. ଆ)—୧ । ପରର ସ୍ତ୍ରୀଲିଙ୍ଗ—
1. Feminine of Para

୨ । ଉତ୍କୃଷ୍ଟା, ପରମା—2. Excellent.

୩ । ପ୍ରଧାନା, ମୁଖ୍ୟା—3. Chief; principal.

୪ । ବ୍ରହ୍ମଜ୍ଞାନ ପ୍ରତିପାଦିକା—
4. Demonstrating spiritual knowledge.

ସ. ବି. ସ୍ତ୍ରୀ—୧ । ନାଭିମୂଳଠାରୁ ପ୍ରଥମେ ଜାତ ନାଦ ସ୍ୱରୂପ ବର୍ଣ୍ଣ—1. The element of the letter when it emanates first from inside the root of the navel.

୨ । ବେଦାନ୍ତ, ଉପନିଷଦ—2. Bedānta philosophy.

ଦେ. ଅ. (ସଂ. ପ୍ରାୟ)—୧ । (ସଂଶୟାର୍ଥକ; ପ୍ରଶ୍ନାର୍ଥକ)—କି ?—
1. (Interrogative or denoting doubt) Is it so ? will you ?

ସିନ୍ଧୁ ରଙ୍ଗ ପରଣ ସଙ୍ଗିକା ରଠିଥରେ । ସଙ୍ଗୀତ ।

୨ । (ଅନୁରୋଧାର୍ଥକ ବାକ୍ୟ ଶେଷରେ ବ୍ୟବହୃତ)—ଭଲା—
2. (denoting request) Please; wont you ?

ଠଣାଠକ୍କି ରାପଜାସ ମୁଣ୍ଡେ ମନମଥ ଘାଣ,
ବନ୍ଧନ କର ରୁ ସର୍ବ ମୋଚନରେ । କବିସୂର୍ଯ୍ୟ. ବଳୋରାମ୍ଭ ଠ ଗୀତ ।

୩ । (ବାକ୍ୟ ଶେଷରେ, ଦୃଢ଼ାର୍ଥ ପ୍ରକାଶକ)—ତ—
3. (used in emphasis at the end of a sentence) Certainly; too.
(ଯଥା—ମୁଁ ଜାଣେ ପରା, ଏ ଲୋକ ମତେ ଅଧବାଟରେ ଦଗା ଦେବ ।)
ମତନ ୪ । ପରାଏ, ପ୍ରାୟ, ସମାନ, ପରି—4. Like.
बरावर, एकसाँ ମୋ ହୋପରା ଲେକ ଚଳାଇ ଅଣିଲଇଁ ।
କୃଷ୍ଣସିଂହ. ମହାଭାରତ ବନ୍ଦ ।
[ ଦ୍ର—ଏହା ଚତୁର୍ଥ ଅର୍ଥରେ ଯେଉଁ ଶବ୍ଦ ପରେ ଲାଗେ ସେ ଶବ୍ଦର ୬ଷ୍ଠୀ ବିଭକ୍ତି ହୁଏ । ଯଥା ତା ପରା ଲୋକ ]
ଗ୍ରା. ବି. (ଶୂଦ୍ରଙ୍କ ବ୍ୟବହୃତ) (ସଂ. ପାତନ)—୧ । ଫଳଆଦି ଗଛରୁ ତୋଳା ହେବା—1. The plucking of fruits from trees.
ପାଡ଼ା
ताड़ना, तोडाइ
ପାତନା (ଯଥା—ଆମ୍ବପରା, ନଡ଼ିଆ ପରା ।)
୨ । ପାରିବା, ଭୂମିରେ ପକାଇବା—
2. Felling (of a person) on the ground.
(ଯଥା—ଧରି ପରା ଲଗାଇବା, ପରାପର ଲଗାଇବା ।)
୩ । ଭୂମିରେ ବିଛା ହେବା—
3. Being laid or spread on the ground.
(ଯଥା—ଶେଯ ପରା ।)
ଦେ. ବିଣ. (ସଂ. ପ୍ରକାର)—୧ । ପରି, ପ୍ରକାର; ସଦୃଶ—
ମତନ 1 Similar; like.
एकसा (ଯଥା—ଚାରପରା ସୁନ୍ଦର ମୁହଁକୁ ବସନ୍ତ ଦାଗ ଖରାପ କରିଦେଲା ।)
तोड़ाहुआ ୨ । ତୋଳା ହୋଇଥିବା (ଫଳ)—
ପାଡ଼ା 2. Plucked (fruit)
फैलाहुआ ୩ । ଭୂମିରେ ବିଛା ହୋଇଥିବା (ବିଛଣା)—
ପଡା 3 (bed) Spread on the ground.
ପ୍ରାଦେ. (ସମ୍ବଲପୁର) ବି—ପଡ଼ା, ସାଇ—
A quarter of the town or village.
କାଁଚ କାଚ କାଁଚ, ଆମର ପରାକୁ ନ ଯିବୁ ନାଚ,
ପେଣ୍ଡା ଚଳେ ଦେବୁ ଗାଁଚ । ଲୋକଗୀତ ।

ପରାଇ—ଦେ. ଅ. (ପଦ୍ୟ) (ସଂ. ପ୍ରାୟ)—ପ୍ରାୟ—Like.
Parāi ସଚ୍ଚୀ ଆଦମାନେ ନିଷ୍ଠୁର ବଚନେ କର୍ମିଲେ ପଲ୍ଲବ ପରାଇ ।
ମତନ एकसाँ ବ୍ରଜନାଥ, ସମରତରଙ୍ଗ ।

ପରା(ରେ)ଇବା—(ଶୂଦ୍ରଙ୍କ ବ୍ୟବହୃତ) ଗ୍ରା. କ୍ରି. (ପାରିବାର ଣିଜନ୍ତରୂପ; ସଂ. Parā(re)ibā ପାତ୍ ଧାତୁ)-୧ । ଗଛଆଦିରୁ ଫଳ ଅନ୍ୟଦ୍ୱାରା ତୋଳାଇବା, ପଡ଼ାଇବା—1. To cause to be plucked.
ପାଡ଼ାନ୍
पड़ाना (ଯଥା—ସାଥିକୁ ବସି ନଡ଼ିଆ ପରାଉ ଅଛନ୍ତି ।)
ପବାନ ୨ । (ସଂ. ପରିଧାପନ)—ଭୂଷିତ କରାଇବା, ପିନ୍ଧାଇବା,
पहनाना ପରିଧାନ କରାଇବା—2. To cause to put on.
ପାତାନ ୩ । ଅନ୍ୟଦ୍ୱାରା ବିଛଣାଆଦି ଭୂମିରେ ବିଛାଇବା—
फैलाना 3. To cause to be spread.
ପ୍ରାଦେ. (ଉତ୍ତରଭାଷା) କ୍ରି. (ତୁଳ. ହି. ପରାନା)—ପଳାଇବା—
To fly away.
ଗ୍ରା (ଇତରବ୍ୟବହୃତ ଉଚ୍ଚାରଣ)—କ୍ରି—ପଳାଇବା-To flee away.

ପରାଏ—ଦେ. ଅ. (ପଦ୍ୟ) (ସଂ. ପ୍ରାୟ) —ପ୍ରାୟ—Like.
Parāe ତୋଅର ତାଳକ ପିଆଦା ପରାଏ ମାର ଓଙ୍କେ ଅସୁ ଚାଇ ।
ମତନ बराबर (ପରାଏକ—ଅନ୍ୟରୂପ) କବିସୂର୍ଯ୍ୟ, ସଙ୍ଗୀତ ।

ପରାଏଣ—ଗ୍ରା. ଅ. (ପ୍ରାଚୀନ ପଦ୍ୟ) (ସଂ. ପ୍ରାୟ)—ପରାଏ (ଦେଖ)
Parāeṇa Parāe (See)
କ୍ଷୁଦ୍ର ଦାସ ପରାଏଣ ଏଥାରେ ରହୁବେ । ପ୍ରାଚୀ. ଶ୍ରୀ ଗୁରୁଭକ୍ତି ଗୀତା ।

ପରାଂଗତି—ଦେ. ବି. (ସଂ. ପରା+ଗତି)—୧ । ମୋକ୍ଷ, ମୁକ୍ତି—
Parāmgati 1. Salvation.
(ପରାଙ୍ଗତି—ଅନ୍ୟରୂପ) ୨ । ଉଦ୍ଧାର—2 Deliverance.
(ଯଥା—ମୁଁ ପରାଂଗତି ପାଇଗଲି ।)

ପରାକ୍—ସଂ ଅ—ପରାଙ୍ (ଦେଖ)—
Parāk Parāñ (See)

ପରାକ୍‌ପୁଷ୍ପୀ—ସଂ ବି—ଅପାମାର୍ଗ—
Parāk-pushpī Achyranthes Aspera (plant).

ପରାକ—ସଂ. ବି. (ପରା=ଉତ୍ତମ+ଅକ୍ ଧାତୁ=ଗମନ କରିବା+ କରଣ ଅ)—୧ । ଦୂରତ୍ୱ—1. Distance.
Parāka
୨ । ଦ୍ୱାଦଶ ଦିନବ୍ୟାପୀ ଉପବାସ ବ୍ରତ ବା ପ୍ରାୟଶ୍ଚିତ୍ତବିଶେଷ—
2. A religious penance or expiation perfomed in 12 days.
୩ । ବଳି ପକାଇବାର ଖଡ୍ଗ—3 A sacrificial sword (Apte).
୪ । ଜନ୍ତୁବିଶେଷ—4 A kind of animal (M. W.).
୫ । ରୋଗବିଶେଷ—5. A kind of disease (Apte).
ସଂ. ବିଣ—କ୍ଷୁଦ୍ର—Small

ପରାକରଣ—ସଂ. ବି. କ୍ଲୀ. ( ପରା=ପୂର୍ବ+କୃ ଧାତୁ=କରିବା+ ଭାବ. ଅନ, କିମ୍ବା ପରା=ଅବଜ୍ଞା+କରଣ)—
Parākaraṇa
୧ । ଅବଜ୍ଞା କରିବା, ଅବହେଳନ—
1. Slighting; disregarding; disdaining.
୨ । ରଦ୍ଦ କରିବ —2. Setting aside (M. W.).

ପରାକର୍ମ—ଗ୍ରା. ବି. (ସଂ. ପରାକ୍ରମ)—ପରାକ୍ରମ, ବଳ—
Parākarma Might; potency.
ମନ ତେଜ ପର ଯା ପରାକର୍ମ
ଗୋପୀମାନଙ୍କ ବନ୍ଧୁ କେ ଜାଣିମ । ପ୍ରାଚୀ. ରହସ୍ୟମଞ୍ଜରୀ ।

ପରାକାଷ୍ଠା—ସଂ. ବି. (ପରା=ଶେଷ+କାଷ୍ଠା=ସୀମା)—୧ । ଚରମ ସୀମା—
Parākāshṭhā 1. Extreme limit; acme.
(ପରାକୋଟି - ଅନ୍ୟରୂପ) ୨ । ଆତିଶଯ୍ୟ—2. Excess.
୩ । ସର୍ବୋଚ୍ଚ ସୀମା—3. Highest pitch.
୪ । ବ୍ରହ୍ମାଙ୍କ ଆୟୁର ଅର୍ଦ୍ଧେ—4. Half of the lifetime of Brahmā.

ପରାକୁତ(ତ)—ଗ୍ରା. ବି ଓ ବିଣ. (ସଂ. ପ୍ରାକୃତ)—୧ । ପ୍ରାକୃତ ଭାଷା—
Parākuta(ta) 1. The Prākṛuta language.
(ପରାକୃତ—ଅନ୍ୟରୂପ)

କ ପରାକୃତ ସଂସ୍କୃତ
ସେ ଭାବଗ୍ରାହୀ ଜନାର୍ଦ୍ଦନ
ଗାନ ଶୁଣି ଗୋପୀମନେ
ବେଦ ନ ଶୁଣେ ଛେଡ଼େ ସ୍ତବେ । ଭୂପତ. ପ୍ରେମପଞ୍ଚାମୃତ ।

୨ । ଓଡ଼ିଆଭାଷା—2. The Oria language.
(ଯଥା—ବାଲ୍ମୀକି ରାମାୟଣକୁ ଏ ପର୍ଯ୍ୟନ୍ତ କେହି ପରାକୃତରେ ଭାଙ୍ଗିନାହାନ୍ତି ।)
୩ । ପ୍ରଚଳିତ ଦେଶୀୟ ଭାଷା—
3 The vernacular of a country.

**ପରାକ୍ରମ**—ସ. ବି. (ପରା=ସର୍ବତୋଭାବରେ+କ୍ରମ୍ ଧାତୁ=ଗମନ କରିବା
Parākrama +କରଣ. ଅ)—୧ । କ୍ଷମତା, ଶକ୍ତି, ସାମର୍ଥ୍ୟ—
1. Power; potency
୨ । ସାହସ—2 Courage; valour
୩ । ବିକ୍ରମ—3 Might
୪ । ବଳ—4 Strength, prowess
୫ । ପୁରୁଷକାର—5. Exertion

**ପରାକ୍ରମ କରିବା**—ଦେ. କ୍ରି—୧ । ବଳ ବା ସାହସ ଦେଖାଇବା—
Parākrama kariba 1 To show one's valour or
পরাক্রম দেখান पराक्रम दिखाना prowess.
ଯୁଦ୍ଧରେ ଯେଉଁ ଲୋକ ପରାକ୍ରମ କରେ । କୃଷ୍ଣସିଂ. ମହାଭାରତ ସଭା ।

ପରାକ୍ରମ କାଢ଼ିବା
ପରାକ୍ରମ ଦେଖାଇବା } ଅନ୍ୟରୂପ] ୨ । ନିଜର ବାହାଦୁରି କହିହେବା—2 To praise one's own prowess; to
ପରାକ୍ରମ ଦେଖେଇବା brag; to boast.

ସୁପୁରୁଷ ହୋଇ କି ସିଦ୍ଧାନ୍ତ ମାଧବ
ପରାକ୍ରମ କହ ତା ସଭାରେ କହିବ । କୃଷ୍ଣସିଂ. ମହାଭାରତ ସଭା ।

**ପରାକ୍ରମଶାଳୀ**—ସ. ବିଣ. ପୁଂ. (ପରାକ୍ରମ+ଅଛି ଅର୍ଥରେ ଶାଳିନ୍, ୧ମା.
Parākramaśāli ୧ବ)—୧ । ଶକ୍ତିଶାଳୀ, ବଳୁଆ—
(ପରାକ୍ରମଶାଳିନୀ—ସ୍ତ୍ରୀ) 1. Potent; powerful; mighty.
(ପରାକ୍ରମଶାଳିତା—ବି) ୨ । ସାହସୀ—2. Valorous; valiant.

**ପରାକ୍ରମୀ**—ସ. ବିଣ. ପୁଂ. (ପରାକ୍ରମ+ଅଛି ଅର୍ଥରେ ଇନ୍, ୧ମା. ୧ବ)—
Parākrami ପରାକ୍ରାନ୍ତ (ଦେଖ)—
(ପରାକ୍ରମିଣୀ—ସ୍ତ୍ରୀ) Parākrānta (See)

**ପରାକ୍ରାନ୍ତ**—ସ. ବିଣ. ପୁଂ (ପରା+କ୍ରମ୍ ଧାତୁ=ଗମନ କରିବା+କର୍ତ୍ତୃ.
Parākrānta ତ)—୧ । ପରାକ୍ରମଶାଳୀ; ଶକ୍ତିସମ୍ପନ୍ନ—
(ପରାକ୍ରାନ୍ତା—ସ୍ତ୍ରୀ) 1. Powerful; mighty.
୨ । ସାହସୀ—2. Valiant; heroic.

**ପରାଗ**—ସ. ବି. (ପରା=ସହିତ+ଗମ୍ ଧାତୁ=ଗମନ କରିବା+କର୍ତ୍ତୃ.
Parāga ଅ; ଯେ ବାୟୁ ସହିତ ଗମନ କରେ ବା ଉଡ଼ିଯାଏ)—
୧ । ଧୂଳି—1. Dust.
୨ । ପୁଷ୍ପରେଣୁ—2. The farina or pollen of a flower.
୩ । ଗନ୍ଧଦ୍ରବ୍ୟ ଚୂର୍ଣ୍ଣ—3. Scented powder.
୪ । ଚୂର୍ଣ୍ଣ; ଗୁଣ୍ଡା—4. Powder.
୫ । ଚନ୍ଦନ—5. Sandal.
୬ । (ପରା+ଗମ୍ ଧାତୁ+ଭାବ. ଅ)—ସୁନାମ, ଖ୍ୟାତି—
6 Good name; reputation; fame.
୭ । ସୂର୍ଯ୍ୟୋପରାଗ, ସୂର୍ଯ୍ୟଗ୍ରହଣ, ଚନ୍ଦ୍ରଗ୍ରହଣ—
7. Lunar or solar eclipse (M. W.).

ସନ୍ନିହିତ ତୀର୍ଥରେ ସୂର୍ଯ୍ୟ ପରାଗରେ
ସ୍ନାନ କରନ୍ତି ଲୋକ ଯେସନ୍ତ ସ୍ୱର୍ଗରେ । କୃଷ୍ଣସିଂହ, ମହାଭାରତ ବନ ।

୮ । ସ୍ୱାଧୀନତା—8 Independence (M. W.).
୯ । ସ୍ୱଚ୍ଛନ୍ଦ ଗତି (ହ୍ରୁ. ଶ)—9 Unrestricted motion.
୧୦ । ପର୍ବତବିଶେଷ (ହ୍ରୁ. ଶ)—
10 Name of a mountain.

**ପରାଗ କେଶର**—ସ ବି. (ପରାଗ+କେଶର)—ଶିରୋଦେଶରେ ରେଣୁଯୁକ୍ତ
Parāga kesara ପୁଷ୍ପ ମଧ୍ୟସ୍ଥ ସୂକ୍ଷ୍ମ ସୂତ୍ର ସମୂହ—
Stamen of flowers.
[ ଦ୍ର—ଏହା ବୃକ୍ଷମାନଙ୍କର ପୁଂଜନନେନ୍ଦ୍ରିୟ ଅଟେ । ]

**ପରାଗତ**—ସ. ବିଣ. ପୁଂ. (ପରା=ପଶ୍ଚାତ୍, ବିପରୀତଭାବେ+ଆ+ଗମ୍ ଧାତୁ
Parāgata +କର୍ତ୍ତୃ. ତ)—୧ । ପଶ୍ଚାଦାଗତ—
(ପରାଗତା—ସ୍ତ୍ରୀ) 1 Come late; arrived late
୨ । ବିସ୍ମୃତ—2 Forgotten
୩ । ପ୍ରତ୍ୟାଗତ—3 Returned
୪ । ବ୍ୟାପ୍ତ—4. Spread.
୫ । ବିକସିତ—5 Explanded; blown.
୬ । ଯୁକ୍ତ—6. Joined; attached.

**ପରାଙ୍**—ସ. ଅ—ପଶ୍ଚାତ୍, ପଛକୁ—
Parāñ Backwards.

**ପରାଙ୍ମୁଖ**—ସ. ବିଣ. ପୁଂ. (ବହୁବ୍ରୀହି, ପରାଙ୍=ପଛ ଆଡ଼କୁ ମୁଖ
Parāṅmukha ଯାହାର)—୧ । ପଶ୍ଚାତ୍ପଦ—1 Shrinking;
(ପରାଙ୍ମୁଖୀ—ସ୍ତ୍ରୀ) averse from.
[ପରାଙ୍ମୁଖତା—ବି] ୨ । ଅନିଚ୍ଛୁକ—
2 Unwilling; reluctant.
୩ । ପଛଆଡ଼କୁ ମୁହଁ ବୁଲାଇଥିବା, ବିମୁଖ—
3 Having the face turned away or averted.
୪ । ପ୍ରତିକୂଳ—4. Unfavourable; adverse.
୫ । ନିବୃତ୍ତ, କ୍ଷାନ୍ତ—
5. Ceased; discontinued; stopped.
୬ । ଉଦାସୀନ—6. Indifferent.
୭ । ପ୍ରତିନିବୃତ୍ତ—7. Turning away from.

**ପରାଚ୍**—ସ. ବିଣ—୧ । ପ୍ରତିଲୋମଗାମୀ, ଓଲଟାଗତି କରୁଥିବା—
Parāch 1. Moving against the current.
୨ । ଊର୍ଦ୍ଧ୍ୱଗାମୀ—2. Going upwards.
୩ । ପରୋକ୍ଷଗମ୍ୟ—3. Indirectly comprehensible.
୪ । ବାହ୍ୟୋନ୍ମୁଖ (ହ୍ରୁ. ଶ.)—4. Facing outwards.
୫ । ବିମୁଖ—
5. With the face averted; averse.

**ପରାଚିତ** — ଗ୍ରା (ଇତର) ବ (ସଂ. ପ୍ରାୟଶ୍ଚିତ୍ତ) — ୧ । ପ୍ରାୟଶ୍ଚିତ୍ତ —
arā chita     1. Expiatory rites.
ପରାଚତ୍ତ — ଅନ୍ୟରୂପ)   ଆପେ ପରାଚିତ ହୋଇ ଆପେ ସେବେ ଦାନ — ପ୍ରାଚୀ, କ୍ରୁଣରୂପଣ ଗଂଗା ।

ସଂ ବିଣ — (ପର + ଆ + ଚିତ = ପ୍ରତିପାଳିତ) —
୧ । ପର ପୁଷ୍ଟ, ଅନ୍ୟ କର୍ତ୍ତୃକ ପ୍ରତିପାଳିତ —
1. Brought up or fostered by another
୩ । ସମ୍ୟକ୍ ବ୍ୟାପ୍ତ — 3' Well spread; diffused

**ପରାଚିନ** — ଗ୍ରା. ବିଣ. (ପଦ୍ୟ) (ସଂ. ପ୍ରାଚୀନ) — ପ୍ରାଚୀନ; ପୁରୁଣା —
Parāchina     Old; ancient.

**ପରାଚୀ** — ଗ୍ରା. ବ. (ନାମ) (ସଂ ପ୍ରାଚୀ) — ୧ । ପୁରୀଜିଲ୍ଲାର ପ୍ରାଚୀନଦୀ —
Parāchi     1. The Prāchi river in Puri district.
୨ । (ପଦ୍ୟ) ପ୍ରାଚୀ — ଦେଖ — 2 Prāchi (See)
ଦେଖୁଁ ଦେଖୁଁ ଦେଖାଦେଲ ପାଃକମା ପରାଚୀମୂଳେ — ରାଧାନାଥ ରାୟ ।

**ପରାଚୀନ** — ସଂ. ବିଣ. ପୁଂ. (ପରାଚ୍ = ବିମୁଖ + ଈନ୍) — ୧ । ବିମୁଖ,
Parāchina ପରାଙ୍ମୁଖ — 1. Shrinking from; turning
(ପରାଚୀନା — ସ୍ତ୍ରୀ)   back one's face upon; averted.
୨ । ଅନିଚ୍ଛୁକ — 2 Disinclined to; averse from
୩ । ଯେ କୌଣସି ବିଷୟକୁ ଖାତିର ନ କରେ —
3 Not minding; not caring about
୪ । ପରେ ଘଟିବା —
4. Happening subsequently or afterwards. (Apte)
୫ । ଅପର ପାର୍ଶ୍ୱରେ ବା ସୀମାର ବାହାରେ ଅବସ୍ଥିତ —
5 Situated on the other side; being beyond.
ଗ୍ରା. ବିଣ — ପ୍ରାଚୀନ — Old; ancient.

**ପରାଜୟ** — ସଂ. ବ — (ପରା = ବ୍ୟତିକ୍ରମ, ବିପରୀତ + ଜି ଧାତୁ = ଜୟ
Parājaya   କରିବା + ଭାବ. ଅ) — ୧ । ପରାଭବ, ପରାସ୍ତ ହେବା -
(ପରାଜିତ — ବିଣ)   1 Defeat; overthrow.
[ବିଜୟ — ବିପରୀତ]   ୨ । ମକଦ୍ଦମାରେ ହାରିବା —
2. Defeat or discomfiture in a law suit.
ଦେ. ବ — ପରାଞ୍ଜୟ — (ଦେଖ) — Parānjaya (See)

**ପରାଜିତ** — ସଂ. ବିଣ ପୁଂ. (ପରା + ଜି ଧାତୁ = ଜୟ କରିବା + କର୍ମ ତ) —
Parājita   ୧ । ପରାଭୂତ, ବିଜିତ, ଯେ ଅନ୍ୟ ଦ୍ୱାରା ହାରିଛି —
(ପରାଜିତା — ସ୍ତ୍ରୀ)   1. Defeated; vanquished; overthrown.
୨ । ଯେ ମକଦ୍ଦମାରେ ହାରିଛି —
2. Defeated in a law suit.

**ପରାଞ୍ଚ** — ସଂ. ବିଣ. — ପରାଚ୍ (ଦେଖ)
Parānch     Parāch (See)

**ପରାଞ୍ଜୟ** — ଗ୍ରା ବ — (ସଂ. ପରାଜୟ) — ୧ । ଭର୍ତ୍ସନା; ତିରସ୍କାର, ଗାଳିମନ୍ଦ-
Parānjaya   1. Rebuke; censure.
୨ । କୁତ୍ସା, ନିନ୍ଦା — 2 Blame
୩ । ଅବମାନନ — 3. Humiliation.
ଗ୍ରା. ବିଣ — ପରାଜିତ — Vanquished; overpowered.

**ପରାଟ** — ପ୍ରାଦେ. (ସମ୍ବଲପୁର) ବ — ପରାତ, ଧାତୁ ନିର୍ମିତ ବଡ଼ ଥାଳୀ —
Parāt     A large metal plate.

**ପରାଟା** — ଦେ. ବ — ପରାଠା (ଦେଖ)
Parātā     Parațā (See)

**ପରାଣ** — ଗ୍ରା (ପଦ୍ୟ) (ସଂ. ପ୍ରାଣ) — ୧ । ଜୀବନ —
Parāṇa   পরান   जान, जी, परान     1. Life.
କ ସୁଖ, ହେ ପାଣ୍ଡୁନାଟ ଏ ପରାଣ ଧରିବାରେ ଗୁହେ ଥାଇ — ରାଧାନାଥ. ମହାଯାତ୍ରା ।
୨ । (ପୁଂ ଓ ସ୍ତ୍ରୀ) (ପ୍ରେମିକ ପ୍ରେମିକାଙ୍କର ପରସ୍ପର ପ୍ରତି ସମ୍ବୋଧନ, ସଙ୍ଗୀ ବା ଅତି ପ୍ରିୟତମ ବ୍ୟକ୍ତି ପ୍ରତି ସମ୍ବୋଧନ)
ପ୍ରାଣଧନ, ପ୍ରିୟତମ ବ୍ୟକ୍ତି — 2 One's dearest or beloved person.

**ପରାଣ ଘେନିବା** — ଗ୍ରା. କ୍ରି — (ସଂ. ପ୍ରାଣ + ଗ୍ରହଣ) — ମାରି ପକାଇବା —
Parāṇa ghenibā     To kill.
পরান লওআ   जान लेना   ଛଳେ ଉପାୟରେ ଘେନିବା ପରାଣ ।
(ପରାଣ ନେବା — ଅନ୍ୟରୂପ)   କୃଷ୍ଣସିଂହ-ମହାଭାରତ ଅଦି ।

**ପରାଣ ଛାଡ଼ିବା** -- ଗ୍ରା. କ୍ରି — ମରିବା —
Parāṇa chhāḍibā     To die.
প্রাণ ছড়া   ଗ୍ରା. ବ — ମୃତ୍ୟୁ, ପ୍ରାଣ ତ୍ୟାଗ, ଦେହରୁ ପ୍ରାଣ ବାୟୁର
जी छोड़ना   ବହିର୍ଗମନ -- Dying; death; breathing
(ପରାଣ ତେଜିବା — ଅନ୍ୟରୂପ)   one's last.
প্রাণ ছাড়া   प्राण निकलना
(ପରାଣ ଉଡ଼ିଯିବା, ପରାଣ ଯିବା — ଅନ୍ୟରୂପ)

**ପରାଣ ଦେବତା** — ଗ୍ରା. ବ. ( ପୁଂ ଓ ସ୍ତ୍ରୀ ) —
Parāṇa debatā   ୧ । ପରାଣ ଧନ ( ଦେଖ )
পরান দেবতা   1. Parāṇa dhana ( See )
୨ । ଯେଉଁ ବ୍ୟକ୍ତିକୁ ଅତ୍ୟନ୍ତ ଭକ୍ତି କରାଯାଏ — 2. A person to whom one is very much devoted.

**ପରାଣ ଦେବା** — ଗ୍ରା କ୍ରି — ଅନ୍ୟ ବ୍ୟକ୍ତି ପାଇଁ କିମ୍ବା କୌଣସି ଉଦ୍ଦେଶ୍ୟ
Parāṇa debā   ସାଧନାର୍ଥ ନିଜର ପ୍ରାଣ ସମର୍ପଣ କରିବା; ପ୍ରାଣ
পরান দেওআ   ଉତ୍ସର୍ଗ କରିବା — To sacrifice or offer
जान देना   one's life for another or for attaining some object.

**ପରାଣ ଧନ** — ଦେ. ବ ପୁଂ ଓ ସ୍ତ୍ରୀ. (ସଂ. ପ୍ରାଣ + ଧନ) —
Parāṇa dhana   ( ପ୍ରେମିକ ପ୍ରେମିକାଙ୍କର ପରସ୍ପର ସମ୍ବୋଧନ, ସଙ୍ଗୀ ବା ଅତି ପ୍ରିୟତମ ବ୍ୟକ୍ତିଙ୍କର ପରସ୍ପର ସମ୍ବୋଧନ,)
ପ୍ରାଣ ଧନ, ଅତି ପ୍ରିୟତମ ବ୍ୟକ୍ତି, ପ୍ରାଣ ସର୍ବସ୍ୱ, ପ୍ରାଣପ୍ରିୟ ବ୍ୟକ୍ତି — One's dearest person.

ମୋ ଗୁଣ ପରାଣ ଧନ ବାରେ ଫେରି ଗୃହଁ ଯାରେ । ସଙ୍ଗୀତ ।
ଶିରୁ ପଧ ପରାଣ ସଙ୍ଗିନୀ ଉଠିଥିରେ । ସଙ୍ଗୀତ ।
ପରାଣ ପିଭୁଲୀ କ ମୋ କେ ନେଇ ଛଡାଇ । ସଙ୍ଗୀତ ।
ଏ ଗୁଣ ସାଗର ନାଗର ହେଲେ ମୋ ପରାଣ ସଖା ।
ରାଧାନାଥ. ଉଷା ।

[ପରାଣ ନାଥ, ପରାଣ ପିଭୁଲା, ପରାଣ ବନ୍ଧୁ, ପରାଣ ସଙ୍ଗାଳି, ପରାଣ ସଙ୍ଗାତ — ପୁଂ ଓ ସ୍ତ୍ରୀ]

ପରାଣ ସଖା, ପରାଣ ସଙ୍ଗୀ—ପୁଂ
ପରାଣ ଧନ, ପରାଣ ପିଉଲି, ପରାଣ ସଙ୍ଗିନୀ, ପରାଣ ସଖୀ—ସ୍ତ୍ରୀ—
ଅନ୍ୟରୂପ]
পরাণ ধন, পরাণ পুতুল, পরাণ বন্ধু—পুং
পরাণ ধনী, পরাণ পুতলী—স্ত্রী प्राण प्यारा(री)

**ପରାଣ ଧରିବା**—ଗ୍ରା. କ୍ରି—ଜୀଇଁବା, ବଞ୍ଚି ରହିବା—
Parāṇa dhariba To live; to exist; to subsist.
পরান ধরা जीना

**ପରାଣ ନାଟିକା**—ଗ୍ରା. ବି. (ସ ପ୍ରାଣ + ନାଡ଼ିକା)—
Parāṇa nāṭikā ୧ । ମନୁଷ୍ୟ ଜୀବନକୁ ବଞ୍ଚାଇ ରଖିବା ନାଡ଼ୀ, ଜୀବନ ନାଡ଼ିକା, ହୃଦୟର ରକ୍ତବାହୀ ଶିରା—
1. Life-string; heart-string.
୨ । (ଲକ୍ଷଣାର୍ଥ) ମନୁଷ୍ୟର ଅତି ପ୍ରିୟତମ ବ୍ୟକ୍ତି; ଜୀବନ ସର୍ବସ୍ୱ ବ୍ୟକ୍ତି—2. (figurative) One's dearest person.

**ପରାଣ ପାଇବା**—ଗ୍ରା. କ୍ରି—ମୃତ୍ୟୁରୁ ରକ୍ଷା ପାଇବା; ବଞ୍ଚିବା, ଜୀବିତ
Parāṇa pāibā ହେବା—To be saved from death, to live
পরান পাওয়া जान पाना
ତୁଷ୍ଟରୁ କଳନ୍ତର ଧରମପ୍ରବଣ ସ୍ୱର ପରାଣ ପାଇଲେଣି ପ୍ରଶଂସାରେ ।
ବଦସ୍ତୁର୍ବ. ସଙ୍ଗୀତ ।

**ପରାଣ ମୂରୁଛିବା**—ଗ୍ରା. କ୍ରି—୧ । ପ୍ରାଣ ପ୍ରତି ମାୟା ତ୍ୟାଗ କରିବା—
Parāṇa mūruchhibā 1. To be indifferent to one's life.
প্রানের আশা ত্যাগকরা
जीकी आशा तयागना ୨ । ପ୍ରାଣର ଆଶା ତ୍ୟାଗ କରିବା—
2. To give up the hope of life.
ଏ ସମସ୍ତ ଯୁଧିଷ୍ଠିରଙ୍କ ଭଲ ବାହିଁ
ଯୁଦ୍ଧ କରୁ ଅଛନ୍ତି ପରାଣ ମୂରୁଛି । କୃଷ୍ଣସିଂହ, ମହାଭାରତ ଦ୍ରୋଣ ।

**ପରାଣୀ**—ଗ୍ରା. ବି. (ପଦ୍ୟ) (ସ. ପ୍ରାଣୀ)—୧ । ପ୍ରାଣୀ, ଜୀବ, ଜନ୍ତୁ—
Parāṇi 1. Animal, living being.
প্রাণী प्राणी ୨ । ବ୍ୟକ୍ତି; ଜନ—2. Person.
ତିନି ଭରଣେ ପଞ୍ଚ ଜନ ପରାଣୀ, ମାଆମାନଙ୍କ ମାନ୍ୟ କରିଣ ସେ.
ବେଗେ ହେଲେ ମେଳଣି । ବସ୍ତନାଥ, ବରଂବୃନ୍ଦାବନ ।
୩ । ପ୍ରାଣବନ୍ଧୁ, ପ୍ରାଣକୃଷ୍ଣ, ପ୍ରାଣନାଥ ଆଦିଙ୍କ ଡାକ ନାମ—
3. Name for calling persons named Prāṇabandhu, Prāṇakrushṇa and Prāṇanātha.

**ପରାଣେ ମରିବା**—ଗ୍ରା. କ୍ରି—୧ । ମୃତ ହେବା; ପ୍ରାଣତ୍ୟାଗ କରିବା—
Parāṇe maribā 1. To die.
প্রানে মরা ୨ । ପ୍ରାଣାନ୍ତକ କଷ୍ଟ ଭୋଗ କରିବା—
2. To suffer a great misery.
'ଆମ ଘରେ ପାଇବ ବହୁ—ପରାଣେ ମଲ' । ସଙ୍ଗୀତ ।

**ପରାଣେଶ୍ୱରୀ**—ଗ୍ରା. (ପଦ୍ୟ) ସ୍ତ୍ରୀ. (ସ. ପ୍ରାଣେଶ୍ୱରୀ)—ପ୍ରାଣେଶ୍ୱରୀ—
Parāṇeśwarī One's dearest woman.
ପରାଣେଶ୍ୱରୀ ବିନା ଅଛ ବଞ୍ଚିକେ, ଜୀବନ୍ତ କାହିଁ ତୋତେ ଭଜନ୍ତ କହେରେ ।
ଭକ୍ତ ଉପେନ୍ଦ୍ରଭଞ୍ଜ ।

**ପରାତ(ର)**—ଦେ. ବି. (ସ. ପାତ୍ର; ପର୍ତ୍ତୁଗୀଜ୍. ପ୍ରାଟୋ; ଇଂ. ପ୍ଲେଟ୍)—
Parāt(ta) ଧାତୁ ନିର୍ମିତ ବଡ଼ ଥାଳୀ—
পরাত परात A big metal plate or tray.

[ ଦ୍ର—ଏଥିରେ ଅଣ୍ଡା ଦଳିବା ଓ ବେଶି ପରିମାଣର ମିଠାଇ ଆଦି ବନ୍ଧୁବାନ୍ଧବଙ୍କ ଘରକୁ ଉପହାର ପଠାଇବା ଆଦି ହୁଏ । ]

**ପରାତ୍ପର**—ସ ବିଣ. ପୁଂ (ପରାତ୍=ଶ୍ରେଷ୍ଠଠାରୁ+ପର=ଶ୍ରେଷ୍ଠ)—
Parātpara ଶ୍ରେଷ୍ଠ ଅପେକ୍ଷା ଶ୍ରେଷ୍ଠତର—Greatest, highest; supreme.
(ପରାତ୍ପରା—ସ୍ତ୍ରୀ)
ସ. ବି. ପୁଂ—ପରମେଶ୍ୱର—God.

**ପରାତ୍ପରୀ**—ସ. ବି. ସ୍ତ୍ରୀ. (ପରାତ୍ପର+ସ୍ତ୍ରୀ. ଈ)—ଭଗବତୀ, ଦୁର୍ଗା—
Parātpari Goddess Durgā.

**ପରାତ୍ମନ**—ଗ୍ରା. ବି. (ସ. ପରାତ୍ମନ୍)—ପରମାତ୍ମା—
Parātmana God.
ସର୍ବଦା ଥାଇ ଭଗବାନ, ନିତ୍ୟ ଅବର ପରାତ୍ମନ ।
ପ୍ରାଚୀ. ପୂର୍ଣ୍ଣତମ ଚନ୍ଦ୍ରୋଦୟ ।

**ପରାତ୍ମା**—ସ. ବି. (ପରାତ୍ମନ୍, କର୍ମଧା; ପର=ଶ୍ରେଷ୍ଠ+ଆତ୍ମନ୍)—
Parātmā ପରମାତ୍ମା; ପରମେଶ୍ୱର—God; the Supreme Spirit.

**ପରାଦ**—ସ. ବିଣ. ପୁଂ (ପର+ଅଦ୍ ଧାତୁ+କର୍ତ୍ତୃ. ଅ)—ପରାନ୍ନଜୀବୀ
Parāda (ଦେଖ)—Parānnajibi (See).
(ପରାଦା—ସ୍ତ୍ରୀ)

**ପରାଦାନ**—ସ. ବି. (୪ର୍ଥୀ ତତ୍; ପର+ଆଦାନ)—ପରାର୍ଥେ ଦାନ;
Parādāna ପରୋପକାରାର୍ଥ ଦାନ—
A gift for the benifit of others.

**ପରାଧି**—ସ. ବି. (୬ଷ୍ଠୀ ତତ୍, ପର+ଆଧି)—୧ । ଅନ୍ୟବ୍ୟକ୍ତିର ରୋଗ—
Parādhi 1. The disease or sickness of other people.
୨ । (କର୍ମଧା, ପର+ଆଧି)—ଉତ୍କଟ ବ୍ୟାଧି—
2. Severe illness.

**ପରାଧିକାର**—ସ. ବି. (୬ଷ୍ଠୀ ତତ୍, ପର+ଅଧିକାର)—
Parādhikāra ୧ । ଅନ୍ୟ ବ୍ୟକ୍ତିର ଆଧିପତ୍ୟ—
1. Another's supremacy.
(ସ୍ୱାଧିକାର—ବିପରୀତ) ୨ । ଅନ୍ୟର ଇଲାକା—
2. Another's jurisdiction.
୩ । ଅନ୍ୟ ବ୍ୟକ୍ତିର ଦଖଲ—3. Another's possession.
୪ । ଅନ୍ୟ ବ୍ୟକ୍ତିର ବିଷୟ ବା ସମ୍ପର୍କ—
4. Another person's affair or concern.

**ପରାଧିକାର ଚର୍ଚ୍ଚା**—ସ. ବି. (ପରାଧିକାର+ଚର୍ଚ୍ଚା)—ଅନ୍ୟ ବ୍ୟକ୍ତି
Parādhikāra charchchā ବିଷୟରେ ଆଲୋଚନା—
Officiousness; meddlesomeness; discussion about a matter relating to another person; interference with another's concern.

**ପରାଧୀନ**—ସ. ବିଣ. ପୁଂ. (୬ଷ୍ଠୀ ତତ୍; ପର+ଅଧୀନ)—ପରତନ୍ତ୍ର,
Parādhina ଅସ୍ୱାଧୀନ; ଅନ୍ୟର ବଶୀଭୂତ—Subject to another; depending on others.
(ପରାଧୀନା—ସ୍ତ୍ରୀ)
(ସ୍ୱାଧୀନ—ବିପରୀତ) (ପରାଧୀନତା, ପରାଧୀନତ୍ୱ—ବି)

**ପରାନ**—ପ୍ରାଦେ (ସମ୍ବଲପୁର) ବି—(ଣ ସ୍ଥାନରେ ନ ଓ ପଦର ଶେଷବର୍ଣ୍ଣର
Parān ହଲନ୍ତ ଉଚ୍ଚାରଣ, ଭୁଲ. ହିନ୍ଦୀ. ପରାନ୍)—ପ୍ରାଣ—Life.

ଠେଙ୍ଗା ଖାଇ ପରାନ୍ନ ଖାଇ (ଟୋକାରେ ପ୍ରାଣ ଯାଏ)—ଢଗ ।

**ପରାନ୍ତକ**—ସଂ. ବି. (୬ଷ୍ଠୀ ତତ୍ପୁରୁଷ, ପର=ସଂସାର+ଅନ୍ତକ=
Parāntaka ନାଶକ)—ମହାଦେବ—Siba.

ସଂ ବିଣ—ଶତ୍ରୁନାଶକ, ଶତ୍ରୁସଂହାରକ—
Destructive of the enemy.

**ପରାନ୍ନ**—ସଂ. ବି. (୬ଷ୍ଠୀ ତତ୍, ପର+ଅନ୍ନ)—୧ । ପେଟରୁ ଖାଦ୍ୟ
Parānna ସ୍ୱୋପାର୍ଜିତ ନୁହେଁ—1 Food not earned by the sweat of one's brow.

୨ । ସ୍ୱଜନେତର ବ୍ୟକ୍ତି ଦ୍ୱାରା ରନ୍ଧା ହୋଇଥିବା ଅନ୍ନ ବା ଖାଦ୍ୟ-
2. Food cooked by a stranger.

୩ । ପରସ୍ୱାମିକ ଅନ୍ନ—3. Food supplied by or belonging to another.

[ଦ୍ର—ଶାସ୍ତ୍ର ଅନୁସାରେ—ଗୁରୁ, ମାତୁଳ, ଶ୍ୱଶୁର, ପିତା, ପୁତ୍ର ଓ ତତ୍ପତ୍ନୀମାନଙ୍କ ପକ୍ୱାନ୍ନ ପରାନ୍ନ ନୁହେଁ ।]

୪ । ପରର ଭୋଜନ, ଫୋକଟ ଭୋଜନ—
4. Meal at the table of others; eating at another's expense.

୫ । ଅନ୍ୟ ବ୍ୟକ୍ତି ପାଇଁ ଅଭିପ୍ରେତ ଖାଦ୍ୟ ଦ୍ରବ୍ୟ—
5. Food intended for another; another's food.

ସଂ. ବି. (ବହୁବ୍ରୀହି)—ଭୃତ୍ୟ—Servant. (M. W.)

ସଂ. ବିଣ (ବହୁବ୍ରୀହି)—ପରାନ୍ନଜୀବୀ (ଦେଖ)—
Parānnajibi (See).

**ପରାନ୍ନଜୀବୀ**—ସଂ. ବିଣ. ପୁଂ. (ପରାନ୍ନଜୀବନ୍, ପରାନ୍ନ+ଜୀବ୍ ଧାତୁ+
Parānnajibi ଅସ୍ତ୍ୟର୍ଥେ ଇନ୍)—ପରାନ୍ନଦ୍ୱାରା ପ୍ରତିପାଳିତ; ମାଗଣାଖିଆ—Living or subsisting on another's food; sponging.

(ପରାନ୍ନପରପୁଷ୍ଟ, ପରାନ୍ନପୁଷ୍ଟ, ପରାନ୍ନଭୋଗୀ, ପରାନ୍ନଭୁକ୍, ପରାନ୍ନଭୋଜୀ, ପରାନ୍ନଧ୍ୱଂସୀ, ପରାନ୍ନୋପଜୀବୀ—ପୁଂ—ଅନ୍ୟରୂପ)
(ପରାନ୍ନଜୀବିନୀ, ପରାନ୍ନପୁଷ୍ଟା, ପରାନ୍ନଭୋଜିନୀ, ପରାନ୍ନପରପୁଷ୍ଟା, ପରାନ୍ନଧ୍ୱଂସିନୀ—ସ୍ତ୍ରୀଲିଙ୍ଗ)

**ପରାପତ**—ଗ୍ରା (ପଦ୍ୟ) ବିଣ (ସଂ. ପ୍ରାପ୍ତ)—ପ୍ରାପ୍ତ—
Parāpata Received.

ଏପଥେ ଅଚିହ୍ନ ବୁଲିତ, ପ୍ରାଣୀ ଗୋବିନ୍ଦେ ପରାପତ—ଭୂପତି. ପ୍ରେମପଞ୍ଚାମୃତ ।

**ପରାପତି**—ଗ୍ରା (ପଦ୍ୟ) ବି (ସଂ. ପ୍ରାପ୍ତି)—ପ୍ରାପ୍ତି—
Parāpati Receipt.

ତାହା ପରାପତି ମୋ ହୋଇବ କେହ୍ନେ—ଭଞ୍ଜ, କୋଟିବ୍ରହ୍ମାଣ୍ଡସୁନ୍ଦରୀ ।

**ପରାପତିତ**—ସଂ ବିଣ. (ପରା+ଆ+ପତ୍ ଧାତୁ=ଆଗମନ କରିବା+
Parāpatita କର୍ତ୍ତୃ. ତ)—୧ । ପ୍ରତ୍ୟାବୃତ୍ତ, ପ୍ରତ୍ୟାଗତ—
1 Returned; come back.

୨ । ସମାଗତ—2. Come; arrived.

**ପରାପବାଦ**—ସଂ. ବି. (୬ଷ୍ଠୀ ତତ୍, ପର+ଅପବାଦ)—ପରନିନ୍ଦା, ପର
Parāpabāda ନାମରେ ଅପବାଦ—Defamation.

ସବୁଠାରେ ସମସ୍ତେ ସୁଶୀଳ ହୋଇ,
ଥାଇ ପରାପବାଦ ହେଉଥାନ୍ତି କହି । କୃଷ୍ଣସିଂହ. ମହାଭାରତ କର୍ଣ୍ଣ ।

**ପରାପର**—ସଂ. ବିଣ. (ପର+ଅପର)—୧ । ଦୂରବର୍ତ୍ତୀ ଓ ନିକଟବର୍ତ୍ତୀ—
Parāpara 1. Distant and nearer; remote and proximate.

(ପରାପରା—ସ୍ତ୍ରୀ) ୨ । ପ୍ରାଥମିକ ଓ ପରବର୍ତ୍ତୀ—
2. Primary & secondary; prior & subseqent.

୩ । ଉଚ୍ଚତର ଓ ନିମ୍ନତର, ଉଚ୍ଚ ଓ ନୀଚ—3. High and low; higher and lower; highest and lowest.

୪ । ଅପେକ୍ଷାକୃତ ଉତ୍ତମ ଓ ଅପେକ୍ଷାକୃତ ମନ୍ଦ—
4. Better and worse.

୫ । ଆଗ ଓ ପଛ—5. That which comes first and that which comes after; frontal and hind.

୬ । ପ୍ରଥମେ ଘଟିଥିବା ଓ ପରେ ଘଟିଥିବା—
6 Earlier and later.

ସଂ ବି.—ପରୁଷକ, ଫାରସା (ଗଛ ଓ କୋଳି) (ହି ଶ.)—
Asiatica Grewia (tree and plum). (M W.)

ଦେ. ବି—ଶତ୍ରୁ ଓ ମିତ୍ର—Enemy and friend.

ଉଚିତ ହୋଇଲେ ନ ଚିହ୍ନିଲେ ପରାପର—ପ୍ରାଚୀ. କଳିତ ଭଡ଼ ।

**ପରାବର**—ସଂ. ବିଣ. (ପର+ଅବର)—୧ । ପରାପର (ଦେଖ)
Parābara 1. Parāpara (See)

(ପରାବରା—ସ୍ତ୍ରୀ)

୨ । କାଳପରମ୍ପରାକ୍ରମେ ଆଗତ—2. Traditional; handed down from earlier to later times (M. W.).

୩ । ପ୍ରତ୍ୟେକ ପରବର୍ତ୍ତୀ—3. Each successive (M. W.).

ସଂ. ବି. (ବହୁବଚନ ପ୍ରୟୋଗ, ପରାବରାଃ)—୧ । ପୂର୍ବପୁରୁଷଗଣ ଓ ବଂଶଧରଗଣ—1. Ancestors and descendants (M. W.).

୨ । କାରଣ ଓ କାର୍ଯ୍ୟ—2. Cause and effect (M W.).

୩ । ଉଦ୍ଦେଶ୍ୟ ଓ ଫଳ—3. Motive and consequence (M. W.).

୪ । ଜଗତ୍—4. Universe (M. W.).

୫ । ବେଦାନ୍ତ—5. Bedānta.

**ପରାବର୍ତ୍ତ**—ସଂ. ବି. (ପରା+ବୃତ୍ ଧାତୁ=ବର୍ତ୍ତମାନ ରହିବା+ଭାବ. ଅ)—
Parābarta ୧ । ବିନିମୟ, ବଦଳ—
1. Exchange; barter.

୨ । ପ୍ରତ୍ୟାବର୍ତ୍ତନ—2. Returning

୩ । ପଛକୁ ଲେଉଟିବା—3. Turning back.

୪ । ମୁହଁ ବୁଲାଇବା—4. Turning round.

**ପରାବର୍ତ୍ତନ**—ସଂ. ବି. (ପରା+ବର୍ତ୍ତନ)—୧ । (ବିଜ୍ଞାନ ପରିଭାଷା)
Parābarttana ପ୍ରତିଫଳନ—1. Reflection.

୨ । ପରାବର୍ତ୍ତ (ଦେଖ)—2 Parābartta (See)

**ପରାବର୍ତ୍ତନ ବ୍ୟବହାର**—ସଂ. ବି (ଦ୍ୱନ୍ଦ୍ୱ ସ ତ)—ଥରେ ବିଚାର ହୋଇ-
Parābarttana byabahāra ଥିବା ମକଦ୍ଦମାର ପୁନର୍ବିଚାର (ହି. ଶ)—Review or revision of a case.

**ପରାବର୍ତ୍ତିତ**—ସ. ବଣ ( ପରା + ବର୍ତ୍ତି ଧାତୁ = ବର୍ତ୍ତମାନ ରହିବା +
**Parābarttita** କର୍ମ. ତ) --

୧ । ପ୍ରତ୍ୟାବର୍ତ୍ତିତ—1 Returned.

୨ । ପ୍ରତିଫଳିତ—2. Reflected.

**ପରାବହ**—ସ. ବି. (ପରା = ଉପରକୁ + ବହ୍ ଧାତୁ = ବୋହିବା + କର୍ତ୍ତୃ.
**Parābaha** ଅ)—ଊର୍ଦ୍ଧ୍ୱକୁ ପ୍ରବାହିତବାୟୁ, ସପ୍ତବାୟୁ ମଧ୍ୟରୁ ଅନ୍ୟତମ—One of the 7 kinds of winds; wind which rushes upwards.

[ ଦ୍ର—ଏହା ଊର୍ଦ୍ଧ୍ୱକୁ ପ୍ରବାହିତ ହୁଏ । ]

**ପରାବୃତ୍ତ**—ସ. ବଣ. (ପରା = ପୁନର୍ବାର + ବୃତ୍ ଧାତୁ = ବିଦ୍ୟମାନ ରହିବା
**Parābṛutta** + କର୍ତ୍ତୃ. ତ) — ୧ । ପ୍ରତ୍ୟାବୃତ୍ତ—
1. Returned; turned back.

୨ । ପରିବର୍ତ୍ତିତ—2. Changed.

୩ । ପଳାୟିତ—3 Fled away.

୪ । ବଦଳା ଯାଇଥିବା—4. Exchanged; bartered.

୫ । ଅନ୍ତର୍ହିତ—5. Passed away; disappeared (M. W.).

୬ । ଭୂମିରେ ଲୁଣ୍ଠିତ, ଗଡ଼ୁଥିବା—6. Wallowing; rolling. (M. W.)

୭ । (ହିନ୍ଦୁ ସ୍ମୃତି) ରଦ କରାଯାଇଥିବା (ଆଦେଶ)—
7. (Law) Reversed; set aside (as a judgment) (M. W.).

୯ । ଫେରାଇ ଦିଆଯାଇଥିବା—
9. Restored; given back. (M. W.).

୧୦ । ପ୍ରତିହତ, ପ୍ରତିଘାତ ପ୍ରାପ୍ତ—
10 Recoiled; rebounded. (M. W.).

**ପରାବୃତ୍ତି**—ସ. ବି. (ପରା + ବୃତ୍; ପର + ଆବୃତ୍ତି) — ୧ । ପ୍ରତ୍ୟାବର୍ତ୍ତନ—
**Parābṛutti** 1. Coming back.

୨ । ପରିବର୍ତ୍ତନ—2, Change.

୩ । ପଳାୟନ—3. Fleeing.

୪ । ବଦଳ—4. Exchange; interchange; barter.

୫ । ମକଦ୍ଦମାର ସିଦ୍ଧାନ୍ତର ରଦ ହେବା—5. Reversion of a sentence or judgment in law.

୬ । ନିଆ ଯାଇଥିବା ସମ୍ପତ୍ତିର ଫେରସ୍ତ—
6. Restoration of property. (M. W.).

୭ । ପ୍ରତିଘାତ—7. Recoiling; rebounding (M. W.).

୮ । ସଫଳ ନ ହେବା; ବିଫଳ ହେବା—
8. Not taking effect. (M W.).

**ପରାବ୍ୟାଧ**—ସ. ବି. (ପରା + ବ୍ୟଧ୍ ଧାତୁ + ଭାବ. ଅ)—କୌଣସି ଠେକା
**Parābyādha** ବା ଯନ୍ତ୍ରରୁ କ୍ଷିପ୍ତ ଗୁଳାଆଦି ଆଘାତ କରିବାର ସୀମା—A stone's throw; the range of any missile. (M. W.).

**ପରାଭବ**—ସଂ. ବି. (ପରା = ନିନ୍ଦିତ + ଭୂ ଧାତୁ = ହେବା + ଭାବ. ଅ)—
**Parābhaba** ୧ । ତିରସ୍କାର—1. Rebuke.

(ପରାଭାବ—ଅନ୍ୟରୂପ) ୨ । ପରାଜୟ—
2. Defeat; overthrow.

ତାହାଙ୍କ ସହଦେବ ଦେଇ ପରାଭବ । କୃଷ୍ଣସିଂହ, ମହାଭାରତ ସଭା ।

୩ । ବିନାଶ—3. Destruction; ruin; dissolution.

ଧର୍ମ ମୋ ଯେବେ ସତ ହେବ
ଏହୁ ପାଇବେ ପରାଭବ । ଭୂପତି, ଚେମତ୍କାରମୃତ ।

୪ । ବିଫଳତ୍ୱ—4 The state of being ineffectual.

୫ । ଅତିକ୍ରମ—5 Surpassing

୬ । ଅଦୃଶ୍ୟ ହେବା; ଅନ୍ତର୍ଧାନ—
6 Vanishing; disappearance (M. W )

୭ । ବିଚ୍ଛେଦ—7 Separation (M. W ).

୮ । ଅବମାନନ; ସମ୍ମାନଧ୍ୱଂସ—
8. Humiliation; mortification (M. W.).

କ୍ଷତ ଅବା ଗଲେ କୃଷ୍ଣ ସେହି ପରାଭବେ । କେଶବକୋଇଲି ।

୯ । ଘୃଣା—9. Contempt (M. W.).

୧୦ । କ୍ଷତ—10 Injury (M. W ).

୧୧ । ବାର୍ହସ୍ପତ୍ୟ ୬୦ ବର୍ଷ ମଧ୍ୟରୁ ଚତୁର୍ଦ୍ଦଶ ବା ଚତ୍ୱାରିଂଶ ବର୍ଷର ନାମ—11. Name of the 14th or fortieth year in Jupiter's cycle of sixty years (M. W.).

[ଦ୍ର—ଜ୍ୟୋତିଷମତରେ ଏ ବର୍ଷ ପୃଥିବୀରେ ଅଗ୍ନି, ଶସ୍ତ୍ରପୀଡ଼ା ଓ ରୋଗ ବେଶି ହୁଏ ଓ ବ୍ରାହ୍ମଣମାନଙ୍କର ବିଶେଷ ଭୟ ହୁଏ । ଜ୍ୟୋ.ଶ ।]

ଦେ. ବି — ୧ । କଷ୍ଟ, ଦୁଃଖ—1. Trouble.

ସବୁ ସମ୍ପଦ ଏଣେ ଲଭେ, ଜୀବନ ପଡ଼େ ପରାଭବେ ।
ଜଗନ୍ନାଥ. ଭାଗବତ ।

୨ । ନିର୍ଯ୍ୟାତନ—2. Oppression; harassment.

ମୁଁ ଭୁଞ୍ଜୁ ପାଶେ ଥାଇଁ ଥାଇଁ ହରକାରୁ
ଆସିଣ ପରାଭବ ଦେଇ ମୋ ଲୋକଙ୍କୁ । କୃଷ୍ଣସିଂହ. ମହାଭାରତ. ବନ ।

**ପରାଭବୀ**—ସ. ବଣ. (ପରା + ଭୂ ଧାତୁ + କର୍ତ୍ତୃ. ଇନ୍, ୧ମା. ୧ବ)—
**Parābhabi** ପରାଭବକାରୀ, କଷ୍ଟଦାୟକ—
Troublesome; harassing.

ଜଗସନ ପର ପରାଭବୀ ନାମ ନାଗର ଠାକୁର ରହୁ ରହୁ ।
(ପରାଭବିନୀ—ସ୍ତ୍ରୀ) ଭଞ୍ଜ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।

ଦେ. ବଣ—୧ । ପରାସ୍ତ, ପରାଭୂତ—
1. Defeated; overthrown.

ବହୁ ବେଳା କହୁ ଗ୍ରାମ ଦେବ, ମୁହିଁ ତୋରେ ହେଲି ପରାଭବୀ ଯେ ।
ଭଞ୍ଜ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।

୨ । ଦୁଃଖ ଭାଗୀ—2. Beset with trouble.

ଦେଖ ମୁଁ କଷ୍ଟ ପାଦେ ସେବ, କୃଷ୍ଣଙ୍କ ହେଇ ପରାଭବୀ ।
ଜଗନ୍ନାଥ. ଭାଗବତ ।

**ପରାଭିନ(ନ୍ନ)**—ଗ୍ରା. ବି. (ସ. ପ୍ରଭିନ୍ନ)—ପ୍ରଭେଦ—
**Parābhina(nna)** Difference.

**ପରାଭୂତ**—ସ. ବଣ ପୁଂ (ପରା + ଭୂ ଧାତୁ + କର୍ମ. ତ)—
**Parābhūta** ୧ । ପରାଜିତ—1. Defeated; vanished.
(ପରାଭୂତା—ସ୍ତ୍ରୀ) ୨ । ନିନ୍ଦିତ—2. Blamed.

୩ । ତିରସ୍କୃତ—3. Censured.

୪ । ଅତିକ୍ରାନ୍ତ—4. Surpassed; overcome.
୫ । ବିନଷ୍ଟ—5. Perished; ruined.
୬ । ଅବମାନିତ—
6. Humiliated, degraded; humbled.
୭ । କଷ୍ଟ ପ୍ରାପ୍ତ—7. Forlorn (M W)

**ପରାଭୂତି**—ସଂ. ବି. (ପରା+ଭୂ ଧାତୁ+ଭାବ. ତି)—ପରାଭବ (ଦେଖ)
Parābhūti Parābhaba (See)
ଅବା ତା ପଥେ ଯିବା, ଜାଣି କଳଚି ଥିବା, ତା ପଛେ ଯେତେ ପରାଭୂତି କରେ ।
ଲବଙ୍ଗଲତା, ସଙ୍ଗୀତ ।

**ପରାଭୃତ**—ସଂ. ବିଣ. (ପରା+ଭୃ ଧାତୁ+କର୍ମ. ତ)—
Parābhṛuta ୧ । ଲୁକ୍କାୟିତ—1 Concealed; hidden (M. W.).
୨ । ବାହିତ—2 Borne (M. W.).
୨ । କଢା ଯାଇଥିବା—
3. Taken off; put aside (M. W).

**ପରାମନନ**—ସଂ. ବି (ପରା+ମନ୍ ଧାତୁ=ବୋଧ କରିବା, ଅନୁତାପ କରିବା+ଭାବ. ଅନ, ପରା=ଶ୍ରେଷ୍ଠ, ବିଶେଷ; ପ୍ରଗାଢ଼+ମନନ=ଚିନ୍ତା—୧ । ପ୍ରଗାଢ ଚିନ୍ତା—
Parāmanana
1. Deep meditation
୨ । ବ୍ରହ୍ମ ବିଷୟକ ଚିନ୍ତା; ଧ୍ୟାନ—
2. Spiritual meditation.
୩ । ଅନୁତାପ—3. Repentance

**ପରାମର୍ଶ**—ସଂ. ବି. (ପରା=ବିଶେଷ ଭାବରେ+ମୃଶ୍ ଧାତୁ=ବିବେଚନା କରିବା+ଭାବ. ଅ)—୧ । ବିଶେଷ ମନ୍ତ୍ରଣା—
Parāmarśa 1 Consultation.
୨ । ବିବେଚନା, ବିଚାର—2. Consideration; judgment; reflection; thought.
୩ । ଯୁକ୍ତି—3. Reasoning; argument.
୪ । ଉପଦେଶ—4. Advice.
୫ । (ନ୍ୟାୟ ଦର୍ଶନ) ବ୍ୟାପ୍ତିବିଶିଷ୍ଟର ପକ୍ଷଧର୍ମତାବୁଦ୍ଧି, ଜ୍ଞାନ (ଜ୍ଞାନେନ୍ଦ୍ର)—5. (logic) Deduction; ascertaining that the Paksha or subject possesses the Hetu or cause; inference; drawing conclusion from analogy or experience.
୫ । ଧରିବା, ଓଟାରିବା (ଯଥା—କେଶ ପରାମର୍ଶ)—
5. Seizing; pulling (M. W.).
୬ । (ଧନୁ) ଆନମନ; ଟାଣିବା, ନୁଆଇଁବା—
6. Bending or drawing (as a bow).
୭ । ଅବମାନନ, ଅତ୍ୟାଚାର; ଆକ୍ରମଣ—
7. Violent assault; attack.
୮ । ଧର୍ଷଣ—8. Violation; ravishment.
୯ । ବାଧା ପ୍ରଦାନ—
9. Disturbance; hindrance (M. W.).
୧୦ । ସ୍ମୃତି; ସ୍ମରଣ କରିବା—1. Calling to mind; recollection; rememberance.
୧୧ । ନିର୍ଦ୍ଧାରଣ; ନିର୍ଣ୍ଣୟ—11. Ascertainment.
୧୨ । ଧୀର ଭାବରେ ସ୍ପର୍ଶନ—12. Touching gently.
୧୩ । ରୋଗାକ୍ରମଣ—13 Affection by disease (Apte).
୧୪ । ପ୍ରତିଜ୍ଞାର ପ୍ରଧାନ ଓ ଅପ୍ରଧାନ ଅଙ୍ଗ ମଧ୍ୟରେ ସମ୍ପର୍କ ଥିବା ସମ୍ବନ୍ଧୀୟ ଜ୍ଞାନ—14. (logic) Knowledge of the minor premise in its connection with the major (Apte).
ଦେ. ବି—ଗାଳି ମନ୍ଦ, ତିରସ୍କାର—Rebuke.

**ପରାମର୍ଶ କରିବା**—ଦେ. କ୍ରି—୧ । ବିଚାର କରିବା, ମନ୍ତ୍ରଣା କରିବା—
Parāmarśa karibā 1. To consult; to hold consultation.
পরামর্শ করিবা परामर्श करना
୨ । (ଜଣ ଅଙ୍ଗ) ଆଉଁସିବା—1. To stroke; to caress.
(ଯଥା—ସଙ୍ଗେ ସଙ୍ଗେ ମୁକ୍ତାଶିଖା ପରାମର୍ଶ କରି ହଠାତ ଗୁଣନିଧି ରଙ୍ଗମଞ୍ଚରେ ଦେଖା ଦେଲେ ଏବଂ ଅଭିନୟର ସୂତ୍ରପାତ ହେଲା । ମୃତ୍ୟୁଞ୍ଜୟ. ମୁଦ୍ରା ରାକ୍ଷସ ନାଟକ । )

**ପରାମର୍ଶ ଦାତା**—ସ ବିଣ. ପୁଂ (ପରାମର୍ଶ+ଦାତୃନ୍, ୧ମା. ୧ବ)—
Parāmarśa dātā ଯେ ବୁଦ୍ଧି ବତାଏ; ମନ୍ତ୍ରଣା ଦାତା—
(ପରାମର୍ଶ ଦାତ୍ରୀ—ସ୍ତ୍ରୀ) Advisor; counsellor.

**ପରାମର୍ଶ ଦେବା**—ଦେ. କ୍ରି—୧ । ଉପଦେଶ ଦେବା, ବୁଦ୍ଧି ବତେଇବା—
Parāmarśa debā 1. To advice.
পরামর্শ দেওয়া ୨ । ଗାଳି ମନ୍ଦ କରିବା—2. To rebuke
परामर्श देना ୩ । ଅପମାନ ଦେବା—3. To insult.
(ପରାମଶ ଦେବା—ଗ୍ରାମ୍ୟରୂପ)

**ପରାମର୍ଶ ସିଦ୍ଧ**—ସ. ବି. (ଙ୍ଗ୍ୟା ତତ୍, ପରାମର୍ଶ+ସିଦ୍ଧ)—
Parāmarśa siddha ମନ୍ତ୍ରଣା ଦ୍ୱାରା ସ୍ଥିରୀକୃତ—Arrived at or settled after consultation.

**ପରାମର୍ଷ**—ସ. ବି. (ପରା+ମୃଷ୍ ଧାତୁ—କ୍ଷମା କରିବା, ସହିବା+ଭାବ. ଅ)
Parāmarsha ସହିବା—Bearing; suffering.

**ପରାମଶ**—ଗ୍ରା. ବି.—୧ । (ପରାମର୍ଶ) ପରାମର୍ଶ, ଆଲୋଚନା—
Parāmaśa 1. Consultation.
୨ । ତିରସ୍କାର—2. Rebuke.
୩ । ଅବମାନନା—3 Insult.

**ପରାମୃତ**—ସ. ବିଣ. (ପରା+ମୃତ)—ମୃତ୍ୟୁ ଆଦିର ବନ୍ଧନରୁ ମୁକ୍ତ
Parāmṛuta (ହି. ଶ.)—Released from the bond of death etc
ସ. ବି. (ପର=ଅତ୍ୟୁତ୍ତମ+ଅମୃତ)—ବୃଷ୍ଟି (ହି. ଶ)—Raining.

**ପରାମୃଷ୍ଟ**—ସ ବିଣ—(ପରା+ମୃଶ୍ ଧାତୁ+କର୍ମ. ତ)=୧ । ସମ୍ୟକ
Parāmṛushṭa ବିବେଚିତ,ବିଚାରିତ—1.Well considered.
୨ । ସ୍ପୃଷ୍ଟ—2. Touched.
୩ । ନିର୍ଣ୍ଣୀତ—3. Ascertained.
୪ । ଯାହାଙ୍କୁ ମନ୍ତ୍ରଣା କରାଯାଇଅଛି—4. Consulted.
୫ । ଧୃତ—5. Seized.

୬ । ଅବମାନିତ—6. Insulted

୭ । ଧର୍ଷିତ—7. Violated; ravished.

୮ । ପୀଡ଼ିତ—8. Attacked with disease.

**ପରାମ୍ଭବ**—ଗ୍ରା ବି (ସଂ. ପରାଭବ)—ପରାଭବ (ଦେଖ)
Parāmbhaba Parābhaba (See).

**ପରାୟ୍** (ଇତ୍ୟାଦି) - ଦେ. କ୍ରି—ପରୁଆ (ଦେଖ)
Parāy (etc) Par-uā. (See)

**ପରାୟ**—ଦେ. ଅ—(ସଂ. ପ୍ରାୟ)—୧ । ପ୍ରାୟ, ପରାଏ, ପ୍ରାୟେ; ତୁଲ୍ୟ—
Parāya ମତନ बराबर 1. Like; similar to.
ଭୋଳା ପ୍ରତିମାକୁ ପରାଏ ତୁମ୍ଭଙ୍କୁ ଯଶୋଦା ଅନୁକ୍ଷଣ ପାଳ —
କବିସୂର୍ଯ୍ୟ, ଯଶୋଦା ଜଣ୍ମ, ୭ ଗୀତ ।

୨ । ପ୍ରକାରେ; ଅନୁସାରେ—2. According to.
ଗର୍ଭ ଅର୍ଥ କହିଲେ କହିବା ପରାଏ - କୃଷ୍ଣସିଂହ, ମହାଭାରତ ବନ ।

ଦେ ବିଣ—ତୁଲ୍ୟ, ସମ— Similar.

ପରାଏ } ଅନ୍ୟରୂପ
ପରାଏକ }
ଝଙ୍କାରର ପଟ ପରାଏ ପ୍ରତ୍ୟକ୍ଷେ ଦଶେ,
—ଗୋପୀକୃଷ୍ଣ, ରସକଲ୍ଲୋଳ ।

**ପରାୟଣ**—ସଂ. ବିଣ. ପୁଂ (ବହୁବ୍ରୀହି; ପର=ଏକମାତ୍ର+ଅୟନ=
Parāyana ଆସକ୍ତି, ସ୍ଥାନ)—୧ । ସମ୍ପୂର୍ଣ୍ଣରୂପେ କୌଣସି
ବିଷୟରେ ଲାଗିଥିବା—1. Wholly occupied with any matter.

(ପରାୟଣା—ସ୍ତ୍ରୀ) ୨ । ଅତି ଅନୁରକ୍ତ, ଏକାନ୍ତ ଆସକ୍ତ, ଅନୁରକ୍ତ,
[ପରାୟଣତା—ବି] ଏକନିଷ୍ଠ—Devotedly attached to; devoted to.

୩ । ସେବା କରିବାକୁ ତତ୍ପର ବା ଉଦ୍ୟୁକ୍ତ—3. Dedicated to the service of; ready to serve the cause of.

୪ । ଅଭୀଷ୍ଟ—4. Wished for; desired.

[ ଦ୍ର—ଏହା ଅନ୍ୟ ବିଶେଷ୍ୟ ଶବ୍ଦ ସଙ୍ଗେ ଯୁକ୍ତ ହୁଏ । ଯଥା—
ଧର୍ମପରାୟଣ, ସେବାପରାୟଣ, ଉଦରପରାୟଣ, ଇନ୍ଦ୍ରିୟପରାୟଣ,
ଈଶ୍ୱରପରାୟଣ, କର୍ତ୍ତବ୍ୟପରାୟଣ । ]

ସଂ. ବି—(କର୍ମଧା, ପର=ଉତ୍ତମ+ଅୟନ=ଆଶ୍ରୟ)—
୧ । ଉତ୍ତମ ଅବଲମ୍ବନ—1. Good support.

୨ । ସର୍ବୋଚ୍ଚ ଅବସ୍ଥା—2. Highest stage.

୩ । ଚରମ ଆଶ୍ରୟ; ଶେଷ ଅବଲମ୍ବନ—
3. Ultimate resort.
ପୃଥିବୀରେ ଥିବୁ ଯେତେ ନରଗଣ
ତାଙ୍କର ମୁକ୍ତି ତ ଏହି ପରାୟଣ—କୃଷ୍ଣସିଂହ, ମହାଭାରତ ଅଦ

୪ । (୬ଷ୍ଠୀ ତତ୍; ପର=ସଂସାର+ଅୟନ=ଆଶ୍ରୟ)—
ନାରାୟଣ; ଭଗବାନ—4. God.

**ପରାୟତ୍ତ**—ସଂ. ବିଣ—(ବହୁବ୍ରୀହି; ପରର ଅୟତ=ଆୟତ୍ତତା ଯାହିଁରେ;
Parāyati ପର+ଆ+ୟତ୍ ଧାତୁ=ଗମନ କରିବା+ଅନ୍ତ)—
୧ । ପରାଧୀନ—1. Dependent on another.

୨ । ଅତି ବିସ୍ତୃତକାୟବିଶିଷ୍ଟ—
2. Having an extensive body.

୩ । ପଶ୍ଚାଦ୍‌ଗାମୀ—3. Going after; following.

ସଂ. ବି—(କର୍ମଧା, ପର+ଆୟତି)—ଅତିଶୟ ବିସ୍ତାର—
Expanse.

**ପରାୟତ୍ତ**—ସଂ. ବିଣ—(୬ଷ୍ଠୀ ତତ୍; ପର+ଆୟତ୍ତ=ଅଧୀନ)—
Parāyatta ୧ । ପରାଧୀନ, ପରବଶ—1. Dependent on another.
(ପରାୟତ୍ତତା—ବି)

୨ । ଅନ୍ୟର ଅଧିକୃତ—
2. In the possession of another.

**ପରାୟୁଃ**—ସଂ. ବିଣ. (ବହୁବ୍ରୀହି, ପର+ଆୟୁସ୍)—ଯେଉଁ ଲୋକ ଶତବର୍ଷ
Parāyuḥ ବଞ୍ଚିଅଛି—One who has reached the highest age or 100 years (M W.)

ସଂ. ବି—ବ୍ରହ୍ମା—Brahmā.

**ପରାରଧ**—ଗ୍ରା. (ପଦ୍ୟ) ବି. (ସଂ. ପରାର୍ଦ୍ଧ)—ପରାର୍ଦ୍ଧ (ଦେଖ)
Parāradha Parārddha. (See)

**ପରାରି**—ସଂ. ଅ. (ପର=ଅନ୍ୟ, ଗତ+ଅରି=ପୂର୍ବତରସ୍ମିନ୍ ବର୍ଷେ;
Parāri ନିପାତନସିଦ୍ଧ)—୧ । ଗତ ବର୍ଷର ପୂର୍ବବର୍ଷ, ତୃତୀୟ ବର୍ଷ-
1. Year before last.

୨ । ଆସନ୍ତା ବର୍ଷର ପରବର୍ତ୍ତୀ ବର୍ଷ—
2. Year after next.

ସଂ. ବିଣ. (୬ଷ୍ଠୀ ତତ୍, ପର+ଅରି)—ପରର ଶତ୍ରୁ—
The enemy of another.

**ପରାରୁ**—ସଂ. ବି—(ପୃ ଧାତୁ=ପୂର୍ତ୍ତି କରିବା+ଆରୁ)—କଲରା ଫଳ ଓ
Pararu ଗଛ (ହ୍ରୁ. ଶ.)—Memordica Charantia (M. W.).

**ପରାର୍ଥ**—ସଂ. ବିଣ—(ବହୁବ୍ରୀହି, ପର=ଅନ୍ୟ+ଅର୍ଥ=ଉଦ୍ଦେଶ୍ୟ)—
Parārtha ଅନ୍ୟୋଦ୍ଦେଶ୍ୟଯୁକ୍ତ—Having another object.

ସଂ. ବି—(୬ଷ୍ଠୀ ତତ୍; ପର+ଅର୍ଥ)—୧ । ପରର ଉପକାର—
Other people's benefit or interest.

୩ । (କର୍ମଧା; ପର+ଅର୍ଥ)—ପ୍ରଧାନ ପ୍ରୟୋଜନ; ପ୍ରଧାନ ସ୍ୱାର୍ଥ-
3. Highest interest.

୪ । ମୁଖ୍ୟ ଉଦ୍ଦେଶ୍ୟ—4. Principal aim.

୫ । ମୁଖ୍ୟ ଅର୍ଥ—5. Chief meaning.

୬ । ରତି, ସଙ୍ଗମ—6. Sexual intercourse.

**ପରାର୍ଥ ପର**—ସଂ. ବିଣ. ପୁଂ. (ବହୁବ୍ରୀହି; ପରାର୍ଥ+ପର)—୧ । ନିଃସ୍ୱାର୍ଥ--
Parārtha para 1. Unselfish.

(ପରାର୍ଥପରାୟଣ—ଅନ୍ୟରୂପ) ୨ । ପରୋପକାର କରିବାକୁ ସର୍ବଦା
ପରାର୍ଥପରା } ସ୍ତ୍ରୀ ତତ୍ପର—2. Always ready to
ପରାର୍ଥପରାୟଣା } render service or benefit to others.

(ସ୍ୱାର୍ଥପର, ସ୍ୱାର୍ଥପରାୟଣ—ବିପରୀତ)
[ପରାର୍ଥପରତା(ତ୍ୱ), ପରାର୍ଥପରାୟଣତା(ତ୍ୱ)—ବି]

**ପରାର୍ଦ୍ଧ**—ସଂ. ବି. (ପର=ଅତିଶୟ+ଋଧ୍ ଧାତୁ=ବୃଦ୍ଧି ପାଇବା+କର୍ତ୍ତୃ ଅ)
Parārddha ୧ । ଶତସହସ୍ରଲକ୍ଷ କୋଟି ସଂଖ୍ୟା—
୧୦୦୦୦୦୦୦୦୦୦୦୦୦୦୦୦୦୦, ଏକସଂଖ୍ୟା ପରେ ୧୭ଟି ଶୂନ୍ୟ ବସାଇଲେ ଯେଉଁ ସଂଖ୍ୟା ହୁଏ—
1. One hundred thousand billions (M.W.)
୨ । ସର୍ବୋଚ୍ଚ ସଂଖ୍ୟା—2. The highest number.
୩ । ଅପରାର୍ଦ୍ଧ, ଶେଷାର୍ଦ୍ଧ—3. The second half.
୪ । (ପର=ବ୍ରହ୍ମାଙ୍କର+ଅର୍ଦ୍ଧ=ଆୟୁଷ୍କାଳର ଅର୍ଦ୍ଧେ)—ବ୍ରହ୍ମାଙ୍କ ଆୟୁର ଶେଷାର୍ଦ୍ଧ—
4. The second half of the lifetime of Brahmā.

ବ୍ରହ୍ମାର ଆୟୁଷ ଯେ ହୋଇ,
ଅର୍ଦ୍ଧେକ ପରାର୍ଦ୍ଧ ବୋଲଇ । ଜଗନ୍ନାଥ. ଭାଗବତ ।

୫ । (ପର=ସମ୍ୟକ୍+ଋଦ୍ଧ=ସମୃଦ୍ଧିଯୁକ୍ତ)—ବିଷ୍ଣୁ—
5. A name of Bishnu.

**ପରାର୍ଦ୍ଧକ**—ସଂ. ବି. (ପରାର୍ଦ୍ଧ+କ)—କୌଣସି ବସ୍ତୁର ଅର୍ଦ୍ଧେ—
Parārddhaka One half of anything (M.W.)

**ପରାର୍ଦ୍ଧ୍ୟ**—ସଂ. ବିଣ (ପର+ଅର୍ଦ୍ଧ+ଯୁକ୍ତାର୍ଥେ ଯ)—୧ । ଶ୍ରେଷ୍ଠଠାରୁ
Parārddhya ଶ୍ରେଷ୍ଠ, ଅତି ଉତ୍କୃଷ୍ଟ—
1. Chiefest; supreme.
୨ । ଅପରାର୍ଦ୍ଧରେ ଅବସ୍ଥିତ—
2. Being on the remote or other half (M.W.).
ସଂ. ବି.—୧ । ସ୍ୱର୍ଗଲୋକ—1. Heaven.
୨ । (ପରାର୍ଦ୍ଧ+ସ୍ୱାର୍ଥେ. ଯ) ପରାର୍ଦ୍ଧ (ଦେଖ)—
2. Parārddha (See)

**ପରାଲବ୍ଧ**—ଗ୍ରା ବି (ପଦ୍ୟ) (ସଂ ପ୍ରାଲବ୍ଧ)—ଅଦୃଷ୍ଟ, କପାଳ—
Parālabdha **परालबध** Luck, fortune.

ପରାଲବ୍ଧେ ଥିଲେ ସତ୍ପାଦତଳେ ଥିଅ—ହାଡ଼ୀ. ରହସ୍ୟମଞ୍ଜରୀ ।

**ପରାଶର**—ସଂ. ବି. (ନାମ) (ପର=ଉତ୍ତମ+ଆ+ଶୃ ଧାତୁ=ସମ୍ପନ୍ନ
Parāśara କରିବା+କର୍ତ୍ତୃ. ଅ)—୧ । ମୁନିବିଶେଷ, ବ୍ୟାସ-ଦେବଙ୍କ ପିତା—1. Name of a sage
[ ଦ୍ର—ଏ ବଶିଷ୍ଠଙ୍କର ପୁତ୍ର (ମତାନ୍ତରରେ ପୌତ୍ର) ଥିଲେ । ଏହାଙ୍କର ସୃତି (ପରାଶରସଂହିତା) କଳିଯୁଗରେ ପ୍ରଚଳିତ । ଏ ମତ୍ସ୍ୟଗନ୍ଧା ନାମ୍ନୀ ଧୀବର କନ୍ୟାଠାରେ ଆସକ୍ତ ହୋଇଥିଲେ । ଉକ୍ତ କନ୍ୟା ଗର୍ଭରୁ ବ୍ୟାସଦେବଙ୍କର ଜନ୍ମ ହୋଇଥିଲା, ପରାଶର ଋଗ୍ବେଦ ସଂକଳନ କରିଥିବାର କଥିତ । (M. W.)
୨ । (ନାମ) ଆୟୁର୍ବେଦର ଏକ ଆଚାର୍ଯ୍ୟଙ୍କ ନାମ
2. Name of a professor of Hindu medicine.
୩ । (ନାମ) ଜଣେ ଜ୍ୟୋତିଷାଚାର୍ଯ୍ୟଙ୍କ ନାମ—
3. Name of an author of astronomical work.
୪ । ଇନ୍ଦ୍ର—4 Indra.
୫ । ଚନ୍ଦ୍ର—5. Moon
୬ । ନାଗବିଶେଷ—6 Name of a Nāga.

**ପରାଶର ସଂହିତା**—ସଂ ବି (ମ ପ ଲୋ. ପରାଶର+ସଂହିତା)—
Parāśara samhitā ପରାଶର ମୁନିଙ୍କ କୃତ ସ୍ମୃତିଶାସ୍ତ୍ର—
Name of a code of Hindu Law compiled by sage Parāśara.

**ପରାଶରୀ**—ସଂ. ବି. (ପରାଶର=ପରାଶରକୃତ ବିଧାନ+ଅସ୍ତ୍ୟର୍ଥେ ଇନ୍)
Parāśari ଚତୁର୍ଥାଶ୍ରମୀ, ଭିକ୍ଷୁ—
A Hindu who has taken to the last stage of life.

**ପରାଶ୍ରୟ**—ସଂ. ବି. (୬ଷ୍ଠୀ ତତ୍, ପର+ଆଶ୍ରୟ—୧ । ପରଠାରେ ଶରଣ
Prāśraya ନେବା—1 Taking shelter under another.
୨ । ପରାଧୀନତା—2. Subservience.
୩ । ଶତ୍ରୁର ଆଶ୍ରୟସ୍ଥଳ—3. A refuge to enemies
ସଂ ବିଣ ପୁଂ—ପରାଶ୍ରିତ, ପରାବଲମ୍ବୀ—
(ପରାଶ୍ରୟା—ସ୍ତ୍ରୀ) Dependent on another.

**ପରାଶ୍ରୟା**—ସଂ. ବି. ସ୍ତ୍ରୀ - ମଲ୍ଲାଙ୍ଗ, ନିର୍ମୂଳୀ ଲତା—
Parāśrayā Mistletoe.

**ପରାଶ୍ରିତ**—ସଂ. ବିଣ. (ପର+ଆଶ୍ରିତ)—୧ । ଅନ୍ୟର ଶରଣାଗତ—
Prāśrita 1. Taking shelter under another.
(ପରାଶ୍ରିତା—ସ୍ତ୍ରୀ) ୨ । ପରାଧୀନ—2. Subservient.
ସଂ. ବି.—ଦାସ, ଭୃତ୍ୟ—Servant, slave (M.W.).

**ପରାସ**—ସଂ ବି. (ପରା+ଅସ୍ ଧାତୁ+ଅ)—କୌଣସି ସ୍ଥାନରୁ ଫିଙ୍ଗାଯିବା
Parāsa ଢେଙ୍କା ବା ଶର ବା ଗୋଲା ଆଦି ପଡ଼ିବାର ଦୂରତ୍ୱ—
Stone's throw; the range of a missile; the range or distance of any thing thrown.
ଦରଦ **दर्द** ଦେ. ବିଣ (ସଂ ପ୍ରାସ=କୁନ୍ତ)—ବ୍ୟଥାଯୁକ୍ତ; ଦରଜ ହୋଇଥିବା—Painful.

ପାନେସ ଢେଇବା ଅଧିକୁ ପା ପଡ ଜନନ ପରାସ ଯୋ । କବିସୂର୍ଯ୍ୟ ସଙ୍ଗୀତ ।

ଦୁଃଖଦାୟକ, ଦୁଃଖଜନକ—Grievous; affecting.

ଦେବେଶ କୁସୁମ ବେଢେ କଦିବା ସତ୍ତୋଷ,
ସେ ଗନ୍ଧ ହୋଇଲା ଏବେ ପ୍ରାଣକୁ ପରାସ । ଗୋପୀ, ରହସ୍ୟମଞ୍ଜରୀ ।

ଦେ. ବି—୧ । ଦେହର କୌଣସି ଅଂଶର ଦରଜ, ବ୍ୟଥା—
1. Pain in any part of the body.
୨ । ଦୁଃଖ—2. Sorrow; misery; grief
୩ । କଷ୍ଟ—3 Trouble.

**ପରାସନ**—ସଂ.ବି. (ପର=ଶତ୍ରୁ+ଅସ୍ ଧାତୁ=ବଧ କରିବା+ଭାବ.ଅନ)-
Parāsana ହନନ, ବଧ—Killing; slaughter

**ପରାସ ଲାଗିବା**—ଦେ. ବି—୧ । (ଦେହରେ କୌଣସି ଅଂଶ) ଦରଜ
Parāsa lāgibā ହେବା—1. Pain in any part of the body.
ଦରଦ ହଓଆ **दर्द होना**
(ପରାସ ହେବା—ଅନ୍ୟରୂପ) ୨ । ମନକୁ ବାଧିବା—
2. Pain in the mind.

**ପରାସୁ**—ସଂ. ବିଣ. (ବହୁବ୍ରୀହି, ପର=ଅନ୍ତର; ଦୂର+ଅସୁ=ପ୍ରାଣ)—
Parāsu ମୃତ; ଗତପ୍ରାଣ—Dead.

**ପରାସୁତା**—ସଂ. ବି. (ପରାସୁ+ଭାବାର୍ଥେ. ତା)—
Parāsutā ୧ । ମୃତ୍ୟୁ—1. Death.

୨ । ନିଦ୍ରାପ୍ରବଣତା—2 Sleepiness

**ପରାସ୍ତ**—ସଂ. ବିଣ. ( ପରା=ନିନ୍ଦିତ+ଅସ ଧାତୁ=ହେବା, ନିକ୍ଷେପ
Parāsta କରିବା + କର୍ମ. ତ )—
୧ । ନିନ୍ଦିତ, ତିରସ୍କୃତ—1 Rebuked; blamed
୨ । ପରାଜିତ—2 Vanquished, defeated
୩ । ଅତିକ୍ରାନ୍ତ—3 Surpassed; overcome.
୪ । ପରିତ୍ୟକ୍ତ—4. Abandoned
୫ । ଫିଙ୍ଗା ଯାଇଥିବା—5 Thrown away
୬ । ଅସ୍ୱୀକୃତ—6. Repudiated, rejected (M W ).

**ପରାହ**—ସଂ. ବି (ପର=ପଶ୍ଚାତ୍, ଆଗତ + ଅହନ୍=ଦିନ)—
Parāha ପରଦିନ—Next day.

**ପରାହତ**—ସଂ. ବିଣ. ପୁଂ. ( ପରା+ହନ୍ ଧାତୁ=ପରାଜିତ କରିବା +
Parāhata କର୍ମ. ତ )—୧ । ପରାଜିତ, ବିଜିତ—
(ପରାହତା—ସ୍ତ୍ରୀ) 1' Defeated, vanquished.
୨ । ତିରସ୍କୃତ—1. Rebuked
୩ । ଚୂର୍ଣ୍ଣ, ବିନଷ୍ଟ—3 Powdered; crushed.
୪ । ଆକ୍ରାନ୍ତ—4. Overtaken; attacked
୫ । ଆହତ—5 Hurt.
୬ । ବାଧା ପ୍ରାପ୍ତ—6 Obstructed
୮ । ପଛକୁ ହଟା ଯାଇଥିବା—
8. Driven back; repulsed.

**ପରା ହେବା**—ଗ୍ରା କ୍ରି (ସଂ. ପାରିବା କ୍ରିୟାର କର୍ମବାଚ୍ୟ, ସଂ ପାତିତ)—
Parā hebā ୧ । (ଆମ୍ବ ଆଦି ଫଳ) ଗଛରୁ ତୋଳା ହେବା—
**तोड़ा याना** 1. To be plucked (said of fruit).
पाताहओया ୨ । (ବିଛଣା ଆଦି) ଭୂମିରେ ପାତିତ ହେବା—
**बिछा होना** 2. To be laid (said of bed).
୩ । ଭୂମିରେ ବିଛା ହେବା, ବିସ୍ତୃତ ହେବା—
3. To be spread on the ground.

**ପରାହ୍ଣ**—ସଂ. ବି. (୬ଷ୍ଠୀ ତତ୍; ପର+ଅହନ୍=ଦିବସ, ଦିବସର ପର ବା
Parāhna ଶେଷ ଭାଗ)—ଅପରାହ୍ଣ; ଓପର ଓଳ, ଦିନ ଦ୍ୱି ପ୍ରହର
(ପୂର୍ବାହ୍ଣ—ବିପରୀତ) ଠାରୁ ସନ୍ଧ୍ୟା ପର୍ଯ୍ୟନ୍ତ ସମୟ—
Afternoon.

**ପରି**—ସଂ. ଅ. (ଉପସର୍ଗ) (ପୃ ଧାତୁ=ପୂର୍ଣ୍ଣ କରିବା+କର୍ତ୍ତ. ଇ;
Pari ଯାହା ଧାତୁର ପୂର୍ବରେ ବସି ଅର୍ଥ ପୂରଣ କରେ)—
A prefix used in the following senses.
୧ । ସମ୍ପୂର୍ଣ୍ଣ ରୂପେ; ସର୍ବତୋଭାବରେ—
1. Completely.
ଯଥା—ପରିଚ୍ଛଦ, ପରିଶ୍ରାନ୍ତ, ପରିତ୍ୟାଗ ।
୨ । ଚତୁର୍ଦ୍ଦିଗରେ—2. On all sides; around
ଯଥା—ପରିକ୍ରମା, ପରିକ୍ଷିପ୍ତ, ପରିବ୍ୟାପ୍ତ ।
୩ । ଅତ୍ୟନ୍ତ; ଅତ୍ୟଧିକ—3. Very much.
ଯଥା - ପରିତାପ, ପରିଶ୍ରମ, ପରିତୃପ୍ତ ।
୪ । କ୍ରମଶଃ; ବାରମ୍ବାର—4. Repeatedly; gradually.
ଯଥା—ପରିଚ୍ଛଦ, ପରିବେଷଣ ।
୫ । ଭାଗ—5. Part.
୬ । ଦୋଷ କୀର୍ତ୍ତନ—6. Speaking evil of others.
ଯଥା—ପରିବାଦ, ପରିପନ୍ଥୀ, ପରିଭାଷଣ ।
୭ । ଶେଷ—7 End.
ଯଥା—ପରିପାକ ।
୮ । ପ୍ରସାଧନ, ଭୂଷଣ—8. Decoration.
ଯଥା—ପରିକର୍ମ ।
୯ । ଶୋକ— Sorrow.
ଯଥା—ପରିଦେବନ ।
୧୦ । ପୂଜା—10. Worship.
ଯଥା—ପରିଚର୍ଯ୍ୟା ।
୧୧ । ଚିହ୍ନ, ସଙ୍କେତ—11 Sign; indication.
ଯଥା—ପରିଭାଷା ।
୧୨ । ସମ୍ୟକ୍, ବିଶେଷ ଭାବରେ—12. Greatly.
ଯଥା—ପରିତାପ, ପରିପୂର୍ଣ୍ଣ, ପରିଗଣନ ।
୧୩ । ବ୍ୟାପ୍ତି—13. Diffusion.
ଯଥା—ପରିସର ।
୧୪ । ସର୍ବତ୍ର—14. At all places
ଯଥା—ପରିପ୍ଲୁତ ।
୧୫ । ଆପ୍ତ୍ର—15. Repetition.
ଯଥା—ପରିହାସ ।
୧୬ । ବର୍ଜ୍ଜନ, ତ୍ୟାଗ—16. Abandonment.
ଯଥା—ପରିହାର ।
୧୭ । ଆଲିଙ୍ଗନ—17. Embracing.
ଯଥା—ପରିରମ୍ଭ ।
୧୮ । ନିରସନ—18 Refutation.
୧୯ । ଗାଢ଼—19. Deep.
ଯଥା—ପରିଷ୍ୱଙ୍ଗ ।
୨୦ । ଅଭିମୁଖ—20. Facing.
ଯଥା—ପରିଗ୍ରାମ ।
୨୧ । ବ୍ୟାଧି—21. Sickness.
୨୨ । ସହ; ପଶ୍ଚାତ୍—22. With; after.
ଯଥା—ପରିଚର ।
୨୩ । ପ୍ରତି ବଦଳ—23 Exchange.
ଯଥା—ପରିଦାନ, ପରିଶୋଧ ।
୨୪ । କ୍ଷୁଦ୍ର—24. Small.
ଯଥା—ପରିକଥା ।
୨୫ । ପୁନର୍ବାର—25. Again.
ଯଥା—ପରିକ୍ରାନ୍ତ ।
୨୬ । ଉପରି—26. Above; over.
ଯଥା—ପରିକେଶ; ପରିଶୋଷ ।
୨୭ । ନିବୃତ୍ତି—27. Cessation.

ଯଥା—ପରିକାଙ୍କ୍ଷିତ ।

୨୮ । ସବାଙ୍ଗରେ—28 In all limbs; throughout the whole body.

ଯଥା—ପରିକ୍ଷତ ।

୨୯ । ପୂର୍ବରୁ—29. Before.

ଯଥା—ପରିବେତ୍ତା, ପରିବେଦନ ।

୩୦ । ଏକତ୍ର—30. Together.

ଯଥା—ପରିଷଦ୍ ।

୩୧ । ନିୟମ; କ୍ରମ—31. Succession

ଯଥା—ପରିଚ୍ଛେଦ ।

**ପରଶୁ परसों** ଦେ ବି. (ସଂ. ପରେ ଦ୍ୟୁ)—୧ । ପଅର ଦିନ, ଗତ କାଲିର ପୂର୍ବଦିନ—1. Day before yesterday.

୨ । ଆସନ୍ତା କାଲିର ପରଦିନ—

2. Day after tomorrow

ଯଥା—ସେ କାଲି ପରି ଆସି ପହଞ୍ଚିବେ ।

(ପରିଆ—ଅନାଦରାର୍ଥକ) ୩ । (ଆଦରାର୍ଥକ) ପରମାନନ୍ଦର ଡାକନାମ—
3 A name for calling Paramānanda.

ପ୍ରାଦେ (ସମ୍ବଲପୁର, ଗଡ଼ଜାତ) ବି—ପଇ; ହଳିଆକୁ ଘରେ ଖାଇବାକୁ ନ ଦେଇ ଖାଇବା ପାଇଁ ମାସ ହିସାବରେ ଦିଆଯିବା ଧାନ—Paddy given to one's ploughman in lieu of food.

ମତନ ଦେ. ଅ—୧ । (ସଂ. ପ୍ରାପ୍ତ) ପରି, ସମାନ; ପ୍ରାଏ; ତୁଲ୍ୟ, **बराबर** ସଦୃଶ—1. Like.

ଗଡ଼ାଳସ ହାତପରୁ ଭେଷାଣ ପରି କି ଆସନ୍ତି ଭଳି ।
କବିସୂର୍ଯ୍ୟ. କଣୋଷ ଚମ୍ପୂ ଗ. ଗୀତ ।

ପରେ **पर** ୨ । (ପଦ୍ୟ) (ସଂ. ଉପରି)—ଉପରେ—
2 Over; on.

ସକ୍ରନେ ଦୟାଲୁ ଗୁଣ ପରିପାଳୁ ମୋହପର ନାଥବେନେ—କବିସୂର୍ଯ୍ୟ. ସଙ୍ଗୀତ ।

ମତନ ୩ । (ସଂ. ପ୍ରକାର) (କ୍ରିୟା ସଙ୍ଗେ ଲାଗେ) ପ୍ରକାରେ, **मुताबिक** ଅନୁସାରେ—3. According to.

ବୋଲବା ପରେ ହେ ଉଆର ହେଲ ରଥ,
ବସ ଯାଇ ତୁମ୍ଭେ ତହିଁ ରେ ମହାରଥ । କୃଷ୍ଣସିଂହ. ମହାଭାରତ ଦ୍ରୋଣ ।

**ପରିଆଏର୍**—ପ୍ରାଦେ (ସମ୍ବଲପୁର) ବି (ସଂ. ପରାବ୍ଦ)—୧ । ଗତବର୍ଷର ପୂର୍ବ ବର୍ଷ, ଉଦ୍‌ବର୍ଷ—1. Year after next.
Pariāer

**ପରିଅଙ୍ଗୁଠି**—ଦେ. ବି. (ସଂ. ପରି ଉପସର୍ଗ=କ୍ଷୁଦ୍ର + ଅଙ୍ଗୁଳି)—
Pari āṅguṭhi ଅନାମିକା ଅଙ୍ଗୁଳି—Ring finger.

**ପରିଆଣ**—ଦେ. ବି. (ତନ୍ତୀଙ୍କ ଭାଷା)—ଭରଣୀ ସୂତା—
Pariāṇa Woof; weft.

**ପରିକଥା**—ସଂ. ବି. (ସଂ. ପରି=କ୍ଷୁଦ୍ର + କଥା)—୧ । ଉପକଥା, ଅଖ୍ୟାୟିକା
Parikathā 1. Story; fable.

୨ । ଏକ କାହାଣୀର ଅନ୍ତର୍ଗତ ତତ୍‌ପ୍ରସଙ୍ଗ ସମ୍ବନ୍ଧୀୟ ଅନ୍ୟ କାହାଣୀ—2. Episode

୩ । ଧର୍ମ ସମ୍ବନ୍ଧୀୟ ଆଖ୍ୟାନ—
3. Religious tale ( M. W. ).

**ପରିକନା**—ଦେ. ବି—ପରକନା (ଦେଖ)—
Parikanā Parakanā (See).

**ପରିକର**—ସଂ. ବି. (ପରି + କୃ ଧାତୁ=କରିବା + ଅଧିକରଣ. ଅ)—
Parikara ୧ । ପର୍ଯ୍ୟଙ୍କ, ଶଯ୍ୟା—1. Bedstead; bed.

୨ । ପୁଂ. (ପରି + କୃ ଧାତୁ + କର୍ତ୍ତୃ. ଅ)—ସହଚର—
(ପରିକରୀ—ସ୍ତ୍ରୀ) 2. Companion.

୩ । ପରିବାର; ପରିଜନ—3. Family.

୪ । ପରିଚାରକ; ଭୃତ୍ୟ; ଅନୁଚର—
4. Attendant; servant; retinue, entourage.

ତୋର ପରିକର ରେ ସଖା । ତୋର ପଦ କର,
ଆଜ ତୁହି ଉଦେ ମୋତେ ତୋର ପଦ କର । କବିସୂର୍ଯ୍ୟ. ସଙ୍ଗୀତ ।

୫ । ଯାନ ବାହନ—5 Conveyance.

୬ । ( ପରି + କୃ ଧାତୁ + କର୍ମ. ଅ )—ଉପକରଣ—
6 Material.

୭ । ସମୂହ—7. Collection

୮ । କଟିବନ୍ଧ—8. Belt; zone; girdle.

୯ । ଆରମ୍ଭ—9. Beginning.

୧୦ । ନିଷ୍ପତ୍ତି—10. Decision.

୧୧ । ପ୍ରଗାଢ଼ ଚେଷ୍ଟା—11 Great exertion.

[ ଦ୍ର—କୌଣସି କାର୍ଯ୍ୟରେ ଦୃଢ଼ ପରିକର ହେବା=ଅର୍ଥାତ୍ ଉକ୍ତ କାର୍ଯ୍ୟ ନିମନ୍ତେ ଅଣ୍ଟା ଭିଡିବା ବା ପ୍ରଗାଢ଼ ଚେଷ୍ଟା କରିବା ।]

୧୨ । ବିବେକ—12 Conscience.

୧୪ । ଦୃଢ଼ ସଙ୍କଳ୍ପ—14. Strong determination; resolve.

୧୫ । (ପରି + କର) ବାହାଡ଼ା ଅଙ୍ଗୁଠି, ଅଙ୍ଗୁଠିରୁ ବାହାରିଥିବା ଅନ୍ୟ ଅଧିକା ଅଙ୍ଗୁଠି—
15. A redundant or extra finger.

୧୬ । କାବ୍ୟାଲଙ୍କାରବିଶେଷ—
16. A figure of speech in which many significant epithets or adjectives are employed, one after the other, to give force to a statement

[ଦ୍ର—ଅଭିପ୍ରାୟଯୁକ୍ତ ବିଶେଷଣମାନ ଯେଉଁଠାରେ ବ୍ୟବହୃତ ହୋଇ ଥାଏ, ସେଠାରେ ପରିକର ଅଳଙ୍କାର ହୁଏ ।

ଇନ୍ଦିବାସ ରଙ୍ଗସ୍ଥଳୀ ଗୁ ଚନ୍ଦ୍ରିକା
ଚୋର ପରେ ପଦ୍ମ ଶ୍ରୀମତୀ ମାଳିକା ।
ବହୁ ଭୃଙ୍ଗ ଶୃଙ୍ଖଳ ସାଦରେ ଲଭଣୀ
ସ୍ୱବଶ ସ୍ମର ପ୍ରଭୁ ଭଲ ଚନ୍ଦ୍ରାମଣି । (ତୂଳିକା)
ଭୂଳମଣି—ଅଳଙ୍କାର ତରଙ୍ଗିଣୀ ।]

ଦେ. କ୍ରି—ଅମୁକ ପରି ବା ଭଳି କର—Make like.

ଦାସର ସଦୃଶ କରନ୍ତ ଘନ
ଦାସକୁ ଦାସ ପରି କର ଅଜ । କବିସୂର୍ଯ୍ୟ, ସଙ୍ଗୀତ ।

**ପରିକରଣ**—ଦେ. ବି. ( ସଂ. ପ୍ରକରଣ )—ଧାରା; ପ୍ରକରଣ—
Parikaraṇa Article; paragraph; item.

ଯଥା—ସନ ୧୮୦୫ ମସିହାର ୧୬ କାନୁନର ୭ ପରିକରଣ ।

**ପରିକର୍ତ୍ତା**—ସଂ. ବି. ପୁଂ—(ପରି+କର୍ତ୍ତୃ, ୧ମା. ୧ବ)—ଜ୍ୟେଷ୍ଠ
Parikarttā ଅବିବାହିତ ଥାଇ କନିଷ୍ଠ ଭ୍ରାତାର ବିବାହ ସଂସ୍କାରକାରୀ ଯାଜକ—1 priest who officiates at the marriage ceremoney of a person whose elder brother is still unmarried.

**ପରିକର୍ମ**—ସଂ. ବି—କ୍ଲୀ—(ପରି=ଭୂଷଣ+କର୍ମନ୍=କର୍ମ)—
Parikarma ୧ । ଅଙ୍ଗ ସଂସ୍କାର, ପ୍ରସାଧନ, ବେଶ ହେବା—
1 Toilet; decoration of the body.
୨ । ଗାଧୋଇବା ପରେ ଦେହରେ ଗନ୍ଧ ଚନ୍ଦନାଦି ଲେପନ—
2 Painting or perfuming of the body after bath.
୩ । ପୋଷାକ ପିନ୍ଧି ସଜବାଜ ହେବା—3 Dressing.
ସଂ. ବି—ଭୃତ୍ୟ (ଜ୍ଞାନେନ୍ଦ୍ର)—Servant.

**ପରିକର୍ମୀ**—ସଂ. ବି. ପୁଂ (ପରି+କର୍ମନ୍)—ପରିଚାରକ; ଭୃତ୍ୟ—
Parikarmā Attendent; servant.

**परीकरमा** ଗ୍ରା. ବି—(ସଂ. ପରିକ୍ରମା)—ପରିକ୍ରମ ୩—(ଦେଖ)
Parikrama 3 (See).

**ପରିକର୍ମୀ**—ସଂ. ବି.ପୁଂ. (ପରିକର୍ମ+ଅସ୍ତ୍ୟର୍ଥେ ଇନ୍, ୧ମା. ୧ବ)—
Parikarmi ୧ । ବେଶକାରୀ ବ୍ୟକ୍ତି, ପ୍ରସାଧକ—1. One who dresses up a person.
(ପରିକର୍ମିଣୀ—ସ୍ତ୍ରୀ) ୨ । ଭୃତ୍ୟ; ପରିଚାରକ—
2. Attendant; servant.
ସଂ. ବିଣ—୧ । ପରିଷ୍କାରକାରୀ—1. Cleansing.
୨ । ବେଶକାରୀ—2. Dressing; decorating.

**ପରିକର୍ମେ**—ଗ୍ରା. କ୍ରି. ବିଣ—(ସଂ. ପରିକ୍ରମେ)—୧ । ଅନୁସାରେ—
Parikarme 1 According to.
୨ । ଏକର ପରେ ଅନ୍ୟ, ଏହିରୂପେ; ଏକାଦିକ୍ରମେ—
2. In succession; one after the other; seriatim.

**ପରିକଳନ(ନା)**—ସଂ. ବି. (ପରି+କଲ୍ ଧାତୁ+ଭାବ. ଅନ)—
Parikalana(nā) ୧ । ଗୋଡ଼ାଇବା—1. Chasing. (M.W.)
(ପରିକଳିତ—ବିଣ) ୨ । ଧରିବା—2. Seizing; taking hold. (M. W.)
୩ । ଗିଳିବା—
3. Devouring; swallowing. (M. W)
୪ । କ୍ରିୟାଦିର ଅଭ୍ୟାସ—
4. Practice; observance. (M. W.)
୫ । ବିଚାର କରିବା; ବିବେଚନ—
5. Consideration. (M. W.)
ଦେ. ବି—ଗଣନା; ଆନ୍ଦାଜ—Counting; estimate.

**ପରିକଳିବା**—ଦେ. (ପଦ୍ୟ) କ୍ରି—(ସଂ. ପରି+କଲ୍ ଧାତୁ)—ଅଭ୍ୟାସ
Parikaliba କରିବା; କ୍ରିୟାଦି ଆଚରଣ କରିବା—To practise; to observe.

ଯୋଗଧ୍ୟାନ ପରିକଳି
ନିଜ ଶରୀରେ ଅଗ୍ନି ଜାଳି
ପଞ୍ଚ ପବନ ନିଜ ପିଣ୍ଡେ
ହୋମ କରନ୍ତି ଅଗ୍ନିକୁଣ୍ଡେ । ଜଗନ୍ନାଥ ଭାଗବତ ।

**ପରିକଳ୍କନ**—ସଂ. ବି. (ପରି+କଳ୍କ ଧାତୁ+ଭାବ ଅନ)—ପ୍ରବଞ୍ଚନା,
Parikalkana ଦଗାବାଜୀ (ହି. ଶ.)—Deceit; cheating. (M W.)

**ପରିକଳ୍ପନ(ନା)**—ସଂ.ବି (ପରି=ସମ୍ୟକ୍+କ୍ଳୃପ୍ ଧାତୁ=କଳ୍ପନା କରିବା+
Parikalpana (nā) ଭାବ ଅନ)—୧ । କଳ୍ପନା, ଆବିଷ୍କରଣ—
1 Invention; contrivance, imagination.
ପରିକଳ୍ପିତ } ବିଣ ୨ । ରଚନା—2 Arranging: composing.
ପରିକ୍ଳୃପ୍ତ }
୩ । ସ୍ଥିରୀକରଣ—3 Fixing; settling
୪ । ବଣ୍ଟନ—4 Division; distribution
୫ । ପ୍ଲାନ୍; ନକସା—5 Design; plan

**ପରିକଳ୍ପିତ**—ସଂ. ବିଣ—(ପରି+କ୍ଳୃପ୍ ଧାତୁ=ସମର୍ଥ ହେବା, କଳ୍ପନା
Parikalpita କରିବା+କର୍ମ. ତ)—୧ । ରଚିତ, ରଚିତ—
1 Arranged, composed.
୨ । ଆବିଷ୍କୃତ—2. Invented; contrived.
୩ । ସ୍ଥିରୀକୃତ; ନିର୍ଦ୍ଧାରିତ—3. Settled, fixed.
୪ । ଅନୁଷ୍ଠିତ, ସମ୍ପାଦିତ—4 Accomplished, done
୫ । ଆଶା କରାଯାଇଥିବା—5 Wished for; expected.

**ପରିକା**—ଗ୍ରା. ଅ—(ସଂ. ପ୍ରାୟ)—ପରି (ଦେଖ)
Parikā ମତନ **कैऐसा, बरावर** Pari (See .
ତୁମ୍ଭର ପରିକା ଧୂଳିଆ ପିଣ୍ଡାରେ ବସି ମାନ ଜଗୁଥିବ ।
ଭକ୍ତକବି—ସାଆନ୍ତିଆ ବାହା ।

**ପରିକାଙ୍କ୍ଷିତ**—ସଂ. ବି. (ପରି=ଗତ+କାଙ୍କ୍ଷା=ଅଭିଳାଷ+ଅସ୍ତ୍ୟର୍ଥେ
Parikānkshita ଇତ, ଯାହାର ପାର୍ଥିବ ଭୋଗାଭିଳାଷ ନାହିଁ)—ତପସ୍ୱୀ, ଯୋଗୀ—An ascetic.
ସଂ. ବିଣ—୧ । (ପରି+କାଙ୍କ୍ଷ ଧାତୁ+କର୍ତ୍ତୃ. ତ)—୧ । ଯେ ସମସ୍ତ ପାର୍ଥିବ ଅଭିଳାଷ ତ୍ୟାଗ କରିଅଛି 1. Having renounced all worldly desires.
୨ । (ପରି+ସମ୍ପୂର୍ଣ୍ଣରୂପେ+କାଙ୍କ୍ଷ ଧାତୁ+କର୍ମ. ତ)—
ଅଭିଳଷିତ—2. Wished for.

**ପରିକାତର**—ସଂ. ବିଣ. ପୁଂ. (ପରି=ଅତ୍ୟନ୍ତ+କାତର)—ଅତି ଭୀରୁ—
Parikātara Very timid, coward. (M. W.)
(ପରିକାତରା—ସ୍ତ୍ରୀ) (ପରିକାତରତା—ବି)

**ପରିକୀର୍ଣ୍ଣ**—ସଂ. ବିଣ. (ପରି=ଚତୁର୍ଦ୍ଦିଗରେ+କୀର୍ଣ୍ଣ=ବିକ୍ଷିପ୍ତ)—୧ । ବିକ୍ଷିପ୍ତ;
Parikirnna ବ୍ୟାପ୍ତ—1. Diffused; scattered; strewn about.
୨ । ସମର୍ପିତ—2. Delivered; given over.
୩ । ବିସ୍ତୃତ—3. Spread.
୪ । ଘେରିଆଡେ ଘେରା ହୋଇଥିବା; ବେଷ୍ଟିତ—
4. Surrounded.
୫ । ବହୁ ବ୍ୟକ୍ତି ବା ବସ୍ତୁରେ ପୂର୍ଣ୍ଣ, ଗହଳିଆ—
5. Crowded (M. W)

**ପରିକୀର୍ତ୍ତନ**—ସ. ବି. (ପରି=ଚତୁର୍ଦ୍ଦିଗରେ+କୀର୍ତ୍ତନ=ପ୍ରଶଂସା)—
Parikirttana ୧ । ପ୍ରଶଂସା—1. Eulogy; praise.
୨ । ଗାନ—2. Song
୩ । ପ୍ରଚାର—3. Proclamation; announcement.
୪ । ଉଚ୍ଚାରଣ—4. Utterance.

**ପରିକୀର୍ତ୍ତିତ**—ସ. ବିଣ. (ପରି=ଚତୁର୍ଦ୍ଦିଗରେ+କୀର୍ତ୍ତିତ=ପ୍ରଶଂସିତ)—
Parikirttita ୧ । ପ୍ରଶଂସିତ—1. Praised; eulogised.
୨ । ଗୀତ—2. Sung.
୩ । ବ୍ୟକ୍ତ, ପ୍ରକାଶିତ—3. Expressed
୪ । ଉଚ୍ଚୈଃସ୍ୱରରେ ପ୍ରଚାରିତ—
4 Published aloud; proclaimed
୫ । ଉଚ୍ଚାରିତ, କଥିତ—
5. Uttered; said; pronounced.
୬ । ଉଦ୍‌ଘୋଷିତ, ସର୍ବତ୍ର ପ୍ରଚାରିତ—
6 Proclamed on all sides.
୭ । ଆହୂତ—7 Called.

**ପରିକୃଶ**—ସ. ବିଣ ପୁଂ. (ପରି=ଅତ୍ୟନ୍ତ+କୃଶ=କ୍ଷୀଣ)—
Parikrusa ଅତି କ୍ଷୀଣ—Very thin; emaciate. (M W.)
(ପରିକୃଶା—ସ୍ତ୍ରୀ) ସ. ବି—ଅତି କ୍ଷୁଦ୍ର ଆକାର—
Slender size (M W).
(ପରିକୃଶତା—ବି)

**ପରିକେଶ**—ସ. ବି (ଅବ୍ୟୟୀଭାବ; ପରି=ଉପରିଭାଗ+କେଶ)—
Parikesa କେଶର ଉପରିଭାଗ—The surface or upper-part of the hair.

**ପରିକ୍ୱଣନ**—ସ. ବିଣ. (ପରି+କ୍ୱଣ୍ ଧାତୁ+କର୍ତ୍ତୃ. ଅନ)—
Parikwanana ଉଚ୍ଚ ଗର୍ଜ୍ଜନକାରୀ—Loud sounding; loud (M. W).
ସ. ବି—ମେଘ (ହି. ଶ)—Cloud

**ପରିକ୍ରମ**—ସ. ବି. (ପରି=ଚତୁର୍ଦ୍ଦିଗରେ+କ୍ରମ୍ ଧାତୁ=ଗମନ କରିବା+
Parikrama ଭାବ. ଅ)—୧ । ଧାରାବାହିକତା; ଧାରା—
ପରିକ୍ରମା } ଅନ୍ୟରୂପ 1. Succession; series; order.
ପରିକ୍ରମଣ } ୨ । ଇତସ୍ତତଃ ପାଦଚାଳନ, ବୁଲିବା—
(ପରିକ୍ରାନ୍ତ—ବିଣ) 2 Walking to and fro.
୩ । ପ୍ରଦକ୍ଷିଣୀକରଣ, କୌଣସି ବସ୍ତୁର ବା ବ୍ୟକ୍ତିର ବା ସ୍ଥାନର ଚାରିପାଖେ ବୁଲି ଆସିବା—3. Circumambulation; going round a thing, person or place.
ଗରୁଡ ଅଛି ଅରେ ନଚ ସେ ଗରିବୁ
ପରିକ୍ରମ କରଣ ଯାଅବ୍ ଘରକୁ । କୃଷ୍ଣସିଂହ. ମହାଭାରତ ଶାନ୍ତି ।
[ ଦ୍ର—ଦେବବିଗ୍ରହ, ମନ୍ଦିର, ତୁଳସୀବୃକ୍ଷ, ଗୁରୁଜନ ଓ ତୀର୍ଥାଦିର ଚାରିପାଖେ ବୁଲି ଆସିବାକୁ ପରିକ୍ରମ ବୋଲାଯାଏ । ନଦୀର ଉତ୍ପତ୍ତି ସ୍ଥଳଠାରୁ ନଦୀର ଗୋଟିଏ କୂଳ ପାଖେ ପାଖେ ନଦୀର ସଙ୍ଗମସ୍ଥଳ ପର୍ଯ୍ୟନ୍ତ ଯାଇ ସେଠାରୁ ପୁଣି ନଦୀର ଅପରକୂଳ ବାଟେ ଉତ୍ପତ୍ତି ସ୍ଥଳକୁ ଆସିବାର ନାମ ପରିକ୍ରମ । ]
୪ । ପର୍ଯ୍ୟଟନ—4. Travelling.
ବହୁତ ତୀର୍ଥମାନ ପରିକ୍ରମ କରି । କୃଷ୍ଣସିଂହ. ମହାଭାରତ ଆଦି ।
୫ । ଗମନ—5. Going.
୬ । ଗତି କରି ଟପିଯିବା—6 Outstripping; overtaking.
୭ । କୌଣସି ବସ୍ତୁର ବା ସ୍ଥାନର ବା ବ୍ୟକ୍ତିର ବାଟ ବା ପାଖଦେଇ ଚାଲିଯିବା—7. Going past (M. W.).

**ପରିକ୍ରୟ**—ସ. ବି. (ପରି=ପୁନର୍ବାର+କ୍ରୟ)—୧ । ବିକ୍ରୀତ ବସ୍ତୁର
Parikraya ପୁନର୍ବାର କ୍ରୟ—1 Purchasing of a thing
(ପରିକ୍ରୀତ—ବିଣ) which had been once sold.
୨ । ଟଙ୍କାଦେଇ ଶାନ୍ତିକ୍ରୟ—
2. Purchasing of peace with money
୩ । ଭଡ଼ା—3. Hire
୪ । ବନ୍ଧକ ବସ୍ତୁକୁ ମୁକୁଳାଇବା—4. Releasing of a pledged article; redemption of a mortgaged property.
୫ । ଟଙ୍କା ଦେଇ ଯେଉଁ ଶାନ୍ତି କିଣାଯାଏ—
5. Peace purchased with money.
୬ । ମୂଲ—6 Wages (M. W).
୭ । ନଗଦ ଟଙ୍କା ଦେଇ ଜିନିଷ କିଣିବା—7. Cash purchase; purchasing of an article by paying the price cash.
୮ । କିଣିବା, କ୍ରୟ—8. Purchasing.

**ପରିକ୍ରିୟା**—ସ. ବି. (ପରି=ଚାରିଆଡ଼େ+କ୍ରିୟା=ଖାତଦ୍ୱାରା ବେଷ୍ଟନ
Parikriya କରିବା)—୧ । ଚତୁର୍ଦ୍ଦିଗ ପରିଖାଦ୍ୱାରା ବେଷ୍ଟନ କରିବା—1. Digging a moat round a place.
୨ । ସଂସ୍କରଣ—2 Consecration; purification.
୩ । ଏକଦିନସାଧ୍ୟ ଯାଗବିଶେଷ—
3 A sacrifice performable in a day.
ଗ୍ରା. ବି. (ସ. ପ୍ରକ୍ରିୟା)—କୌଣସି ଔଷଧ ବା ପ୍ରୟୋଗର ଗୁଣ ବା ଫଳ—The effect of a medicine or appliance.

**ପରିକ୍ଲିଷ୍ଟ**—ସ. ବିଣ. (ପରି=ଅତିଶୟ+କ୍ଲିଶ୍ ଧାତୁ=କ୍ଲେଶ ପାଇବା
Pariklishta +କର୍ତ୍ତୃ. ତ)—୧ । ଅତିଶୟ କ୍ଲେଶପ୍ରାପ୍ତ—
1. Much troubled.
୨ । ଉଦ୍‌ବିଗ୍ନ—2 Harassed
୩ । ବିନଷ୍ଟ—3 Ruined.

**ପରିକ୍ଷ**—ଗ୍ରା. ବି—୧ । (ସ. ପରୀକ୍ଷା)—ପରିଖ (ଦେଖ)—
Pariksha 1. Parikha (See)
୨ । (ସ. ପରିକ୍ଷିତ)—ପରିକ୍ଷିତ୍ (ଦେଖ)—
2. Parikhit (See)
ଶୁଣ ପରିକ୍ଷ ନରନାଥ, କୃଷ୍ଣଚରିତ ଭାଗବତ । ଜଗନ୍ନାଥ ଭାଗବତ ।

**ପରିକ୍ଷତ**—ସଂ. ବିଣ. (ପରି=ସର୍ବାଙ୍ଗରେ+କ୍ଷତ=କ୍ଷୟ ପ୍ରାପ୍ତ)—
Parikshata ୧ । ବିନଷ୍ଟ—1. Ruined.
(ପରିକ୍ଷତ—ବି) ୨ । ଅତ୍ୟନ୍ତ ଆହତ—2. Much hurt.
୩ । ସର୍ବାଙ୍ଗରେ କ୍ଷତ; କ୍ଷତବିକ୍ଷତ—
3. Wounded in all the limbs.

**ପରିକ୍ଷୟ**—ସଂ. ବି. (ପରି=ସମ୍ୟକ୍+କ୍ଷୟ, ପରି+କ୍ଷି ଧାତୁ=କ୍ଷୟହେବା
Parikshaya +ଭାବ. ଅ)—୧ । ବିନାଶ—
1. Ruin; destruction.
୨ । କ୍ଷୟ—2. Decay; wane.
୩ । ସମ୍ପୂର୍ଣ୍ଣ ନିବୃତ୍ତି—3 Cessation
୪ । ଶେଷ, ଅନ୍ତ—4. End.

**ପରିକ୍ଷା**—ସଂ. ବି. (ପରି+କ୍ଷୈ ଧାତୁ+କର୍ତ୍ତୃ. ଅ,+ଆ)—୧ । କାଦୁଅ—
Parikshā 1. Clay, mud. (M W.)
୨ । ମଇଳା, ମଳ—2 Dirt (M W)

**ପରିକ୍ଷାଣ**—ସଂ ବିଣ. (ପରି+କ୍ଷୈ ଧାତୁ=କ୍ଷୟିତ ହେବା+କର୍ତ୍ତୃ. ନ)—
Parikshāṇa ଭସ୍ମୀଭୂତ—Charred or burnt to cinder. (M. W)

**ପରିକ୍ଷାମ**—ସଂ. ବିଣ. ପୁଂ – (ପରି=ଅତ୍ୟନ୍ତ+କ୍ଷାମ)—ଅତ୍ୟନ୍ତ କୃଶୀ-
Parikshāma କୃତ—Excessively emaciated or
(ପରିକ୍ଷାମା—ସ୍ତ୍ରୀ) (ପରିକ୍ଷାମତା—ବି) dried up. (M W).

**ପରିକ୍ଷିତ୍(ତ)**—ସଂ ବି. (ନାମ) (ପରି+କ୍ଷି ଧାତୁ=କ୍ଷୀଣ ହେବା+କର୍ତ୍ତୃ.
Parikshit (ta) କ୍ୱିପ୍; କର୍ମ୍ମ କର୍ମ. ତ)—ଅଭିମନ୍ୟୁଙ୍କ ପୁତ୍ର,
ପରୀକ୍ଷିତ } ଅନ୍ୟରୂପ
ପରୀକ୍ଷିତ୍ }
ଅର୍ଜୁନଙ୍କ ନାତି; ଜନମେଜୟ ରାଜାଙ୍କ ପିତା—
Name of the son of Abhimanyu and father of Janamejaya.

[ ଦ୍ର—କୁଳର ଅତି କ୍ଷୀଣ ଅବସ୍ଥାରେ ଜନ୍ମ ଗ୍ରହଣ କରିଥିବାରୁ କିମ୍ବା କୁରୁ କୁଳର କ୍ଷୟ ପରେ ଜନ୍ମ ଗ୍ରହଣ କରି ଥିବାରୁ ଏହାଙ୍କୁ ଏ ନାମ ଦିଆ ଯାଇଥିଲା । ପାଣ୍ଡବମାନେ ଏହାଙ୍କୁ ଶୈଶବରେ ରାଜ୍ୟ ଭାର ଦେଇ ମହାପ୍ରସ୍ଥାନ କରିଥିଲେ । ଜଣେ ମୁନିଙ୍କ ଶାପରେ ଏହାଙ୍କୁ ତକ୍ଷକ ଦଂଶିବାରୁ ଏ ମୁମୂର୍ଷୁ ଅବସ୍ଥାରେ ଶୁକ ମୁନିଙ୍କଠାରୁ ଭାଗବତ ଆଦି ପୁରାଣ ଶୁଣିଥିଲେ । କୁରୁଙ୍କର ଏକ ପୁତ୍ରଙ୍କ ନାମ ମଧ୍ୟ ପରିକ୍ଷିତ ଥିଲା । ଆଉ ଜଣେ ଜନମେଜୟଙ୍କ ଭାଇଙ୍କ ନାମ ମଧ୍ୟ ପରିକ୍ଷିତ ଥିଲା । ଅଯୋଧ୍ୟାର ଜଣେ ରାଜାଙ୍କ ନାମ ମଧ୍ୟ ପରିକ୍ଷିତ ଥିଲା । (M. W.) ]

ଦେ. ବି. ପୁଂ.—ଲୋକଙ୍କୁ ଦିଆଯିବା ନାମ—
A name given to males.

**ପରିକ୍ଷିପ୍ତ**—ସଂ. ବିଣ.—(ପରି=ଚତୁର୍ଦ୍ଦିଗରେ+କ୍ଷିପ୍ ଧାତୁ=କ୍ଷେପଣକରିବା
Parikshipta +କର୍ମ. ତ)—୧ । ଚାରି ଆଡ଼େ ଘେରି ହୋଇଥିବା; ପରିବେଷ୍ଟିତ—1. Surrounded; encircled.
୨ । ବିକ୍ଷିପ୍ତ—2. Scattered.
୩ । ପରିତ୍ୟକ୍ତ—3. Abandoned.
୪ । କ୍ଷିପ୍ତ—4. Thrown.

**ପରିକ୍ଷୀଣ**—ସଂ. ବିଣ. (ପରି=ଅତିଶୟ+କ୍ଷୀଣ=କ୍ଷୟ ପ୍ରାପ୍ତ)—
Parikshīṇa ୧ । ଅତିଶୟ କ୍ଷୟପ୍ରାପ୍ତ—1. Much decayed.
୨ । ଅତି କ୍ଷୀଣ—2. Excessively emaciated.
୩ । ଅତି ଦୁର୍ବଳ—3. Very weak.

**ପରିକ୍ଷେପ**—ସଂ. ବି. (ପରି+କ୍ଷିପ୍ ଧାତୁ=କ୍ଷେପଣ କରିବା+ଭାବ. ଅ)—
Parikshepa ୧ । ପରିବେଷ୍ଟନ—1. Surrounding
୨ । ନିକ୍ଷେପ—2. Throwing.
୩ । ପରିତ୍ୟାଗ—3. Abandonment.
୪ । ବିକ୍ଷେପ; ବୁଣିବା—4. Scattering.
୫ । ବୃତ୍ତର ପରିଧି—5. Circumference. (M. W.)

**ପରିକ୍ଷେପକ**—ସଂ. ବିଣ (ପରି+କ୍ଷିପ୍ ଧାତୁ=କ୍ଷେପଣ କରିବା+
Parikshepaka କର୍ତ୍ତୃ. ଅକ)—୧ । ଯେ ପରିବେଷ୍ଟନ କରେ—
(ପରିକ୍ଷେପିକା—ସ୍ତ୍ରୀ) 1. Surrounding; encircling
୨ । ଯେ ଇତସ୍ତତଃ ବିକ୍ଷିପ୍ତ କରେ—2. Scattering.
୩ । ଯେ ନିକ୍ଷେପ କରେ—3. Throwing.

**ପରିଖ**—ଦେ. ବି. (ସଂ ପରୀକ୍ଷା)—୧ । ପରୀକ୍ଷା—
Parikha 1. Test; examination.
ପ୍ରବଧ ୨ । ଔଷଧରେ ଅନୁପାନ ମିଶ୍ରିତ କରିବା—
ପରଖ 3 Mixing of a vehicle with a medicine.
୩ । ରାଜ ଉପକରଣବିଶେଷ—
3. One of the royal paraphernalia
୪ । ପିକଦାନୀ—4. Spittoon.
ବାମେ ଅନନ୍ତ ବନ୍ଦ୍ୟାବଳୀ
ପାନ ପରିଖ କଲେ ଧରି—ଦ୍ରାତୀ. ପୂର୍ଣ୍ଣତମ ଚନ୍ଦ୍ରୋଦୟ ।

**ପରିଖା**—ସଂ. ବି. ସ୍ତ୍ରୀ. (ପରି=ଚତୁର୍ଦ୍ଦିଗରେ+ଖନ୍ ଧାତୁ=ଖୋଳିବା+
Parikhā କର୍ମ. ଅ+ସ୍ତ୍ରୀ. ଆ)—ନଗର ବା ଗଡ଼ର ଚାରିପାଖେ ଖୋଳା ଯାଇଥିବା ଗଭୀର ନାଳ, ଗଡ଼ଖାଇ—A ditch or moat round a fort or town

**ପରିଖିବା**—ଗ୍ରା କ୍ରି—(ସଂ. ପରୀକ୍ଷା)—ପରଖିବା, ପରୀକ୍ଷା କରିବା—
Parikhibā To test; to examine.
ପ୍ରବଧକବା **ପରିଖେନା**

**ପରିଖୀକୃତ**—ସଂ. ବିଣ—(ପରିଖା ଅଭୂତ ତଦ୍ଭାବେ ଚ୍ୱି+କୃ ଧାତୁ=
Parikhīkṛuta କରିବା+କର୍ମ. ତ,)—ଯେଉଁ ସ୍ଥାନର ଚାରିପାଖରେ ପରିଖା ଖୋଳା ଯାଇଅଛି, ପରିଖାଦ୍ୱାରା କୃତ ବେଷ୍ଟନ—
Surrounded by a moat

**ପରିଖ୍ୟାତ**—ସଂ. ବିଣ—(ପରି=ସର୍ବତ୍ର+ଖ୍ୟାତ)—୧ । ପ୍ରଖ୍ୟାତ, ଅତି.
Parikhyāta ପ୍ରସିଦ୍ଧ; ବିଖ୍ୟାତ—Celebrated; reputed.
(ପରିଖ୍ୟାତି—ବି) ୨ । ଅମୁକ ନାମରେ ଖ୍ୟାତ ବା ଡକା ଯାଉଥିବା—
2. Called as; named as.

**ପରିଗଣନ(ନା)**—ସଂ. ବି—(ପରି=ବିଶେଷ ଭାବରେ+ଗଣ୍ ଧାତୁ=
Pariganana(nā) ଗଣନା କରିବା+ଭାବ ଅନ,+ଆ)—ସମ୍ପୂର୍ଣ୍ଣରୂପେ
(ପରିଗଣିତ—ବିଣ) ବା ଯତ୍ନପୂର୍ବକଗଣନ—Complete or accurate enumeration.

**ପରିଗତ**—ସଂ. ବିଣ—(ପରି+ଗମ୍ ଧାତୁ=ଗମନ କରିବା, ଜାଣିବା+
Parigata କର୍ମ. ତ)—ପରିଜ୍ଞାତ—1 Known.
୨ । ପ୍ରାପ୍ତ—2. Attained; received.
୩ । ବେଷ୍ଟିତ—3. Surrounded, encompassed.
୪ । ଯାହାର ଚାରିପାଖେ ପରିକ୍ରମା କରାଯାଇ ଅଛି—
4. Circumambulated; gone round. (M. W.)
୫ । ଅନୁଭୂତ—5. Experienced (M. W.)
୬ । ବିସ୍ମୃତ—6. Forgotten. (M. W.)

୭ । (କର୍ତ୍ତୃ. ତ) ଗତ—7. Gone.
୮ । ବିସ୍ତୃତ—8 Spread; diffused.
୯ । ଚେଷ୍ଟିତ—9. One who has exerted or tried.
୧୦ । ମୃତ (ହି. ଶ.)—10 Dead; deceased.

**ପରଗଦତ**—ସଂ. ବି. (ପର+ଗଦ୍ ଧାତୁ=କହିବା+ଭାବ. ତ)—
Parigadita ସମ୍ୟକ୍ କୀର୍ତ୍ତନ; ପରକୀର୍ତ୍ତନ—
Relation; narrating.
ସଂ. ବିଣ. (+କର୍ମ.ତ)—ବର୍ଣ୍ଣିତ—Related, narrated.

**ପରଗମିତ**—ସଂ. ବିଣ. (ପର=ସମ୍ୟକ୍+ଗମ୍ ଧାତୁ ଣିଚ+କର୍ମ. ତ)—
Parigamita ୧ । ପରଗୃଳତ—1 Conducted.
୨ । ଅତିବାହିତ (ସମୟ)—2 Spent (time); passed.

**ପରଗର୍ଭିକ**—ସଂ. ବି.—ଅଇଣ୍ଠିଅଷେଗ, ଗର୍ଭିଣୀମାତାର ସ୍ତନ୍ୟପାନ କରିବା
Parigarbhika ଯୋଗୁଁ ଶିଶୁର ହେବା ରୋଗ (ହି. ଶ)—
Infantile diarrhœa due to sucking the breast of a pregnant mother.
[ଦ୍ର—ଏଥିରେ ଶିଶୁର କାଶ ହୁଏ, ଅରୁଚ ଓ ତନ୍ଦ୍ରା ହୁଏ, ଶରୀର ଦୁର୍ବଳ ହୁଏ, ଅଜୀର୍ଣ୍ଣ ହୁଏ ଓ ପେଟ ବଡ଼ ହୋଇଯାଏ । ବୈଦ୍ୟକ ମତରେ ଏଥିରେ ଶିଶୁକୁ ଅଗ୍ନିଦୀପକ ଔଷଧ ଦିଆଯିବା ଉଚିତ—
( ହି. ଶବ୍ଦସାଗର ) । ]

**ପରଗୁଣ**—ଦେ. ବି. (ଭୁଲ ସଂ ପ୍ରଗମ=ପ୍ରାଥମିକ ପ୍ରକାଶ)—୧ । ଅବସ୍ଥା-
Pariguna 1. State; condition; first manifestation. (M.W.)
୨ । ଆଭ୍ୟନ୍ତରୀଣ ଅବସ୍ଥା—2 Internal condition.
୩ । ପ୍ରାରମ୍ଭିକ ସୂଚନା, ଲକ୍ଷଣ—3 First indication.

ଚାଅଁ ପରଗଣ, ଖୋବା ଭୁଠରୁ ଦଶେ,
ତୋହୁ ପରଗୁଣ, ନଖ ଶାଗୁ ଘଷେ ।
ଶାଶୁ ପରଗୁଣ, ପାଖରେ ବସେ,
ମାଆ ପରଗୁଣ, ଘର ପରଶେ ।
ପୁଅ ପରଗୁଣ, ଡାକଲେ ଅଂସ,
ବନ୍ଧୁ ପରଗୁଣ, ଦେଖିଲେ ହସେ,
ଝିଅ ପରଗୁଣ, ମାଆ ସଙ୍ଗେ ମିଶେ । ଇତ ।

**ପରଗୁଣିତ**—ସଂ. ବି. (ପର+ଗୁଣ୍ ଧାତୁ+କର୍ମ. ତ)—୧ । ପୁନଃ କଥିତ;
Pariguṇita ପୁନରାବର୍ତ୍ତିତ—1. Repeated; reiterated.
୨ । ସଂଖ୍ୟା ଯୋଗ କରାଯାଇ ବର୍ଦ୍ଧିତ—
2. Augmented by addition of. (M.W.)

**ପରଗୁଣ୍ଠିତ**—ସଂ. ବିଣ. (ପର+ଗୁଣ୍ଠ ଧାତୁ କର୍ମ. ତ)—୧ । ଆବୃତ;
Pariguṇṭhita ଘୋଡ଼ା ହୋଇଥିବା—
1. Covered with (M. W.)
୨ । ଲୁକ୍କାୟିତ—2. Hidden.

**ପରଗୁଣ୍ଡିତ**—ସଂ ବିଣ. (ପର+ଗୁଣ୍ଡ୍ ଧାତୁ+କର୍ମ. ତ)—ଧୂଳ ବା ଗୁଣ୍ଡା
Pariguṇḍita ଦ୍ୱାରା ଆବୃତ ( ହି. ଶବ୍ଦସାଗର )—
Covered with dust. (M. W.)

**ପରଗୂଢ଼**—ସଂ. ବିଣ (ପର+ଗୁହ୍ ଧାତୁ=ଗୋପନ କରିବା+କର୍ମ. ତ)-
Parigūḍha ଅତି ଗୁପ୍ତ—Very secret.

**ପରଗୃଦ୍ଧ**—ସଂ. ବିଣ. (ପର+ଗୃଧ୍ ଧାତୁ=ଅତ୍ୟନ୍ତ ଆକାଂକ୍ଷା କରିବା+
Parigṛuddha କର୍ତ୍ତୃ. ତ)—ଅତି ପେଟୁ, ଉଦରମ୍ଭରି—
(ପରଗ୍ରୋଧ—ବି) Very greedy (M. W ).

**ପରଗୃହୀତ**—ସଂ. ବିଣ. (ପର+ଗ୍ରହ୍ ଧାତୁ=ଗ୍ରହଣ କରିବା+କର୍ମ. ତ)-
Parigṛuhita ୧ । ଅଙ୍ଗୀକୃତ; ସ୍ୱୀକୃତ—
1. Agreed to; accepted; admitted.
(ପରିଗୃହୀତା—ସ୍ତ୍ରୀ) ୨ । ମଞ୍ଜୁର କରାଯାଇଥିବା—
2. Granted; sanctioned.
୩ । ବେଷ୍ଟିତ—3. Surrounded; enveloped; fenced.
୪ । ଧୃତ—4. Seized; grasped.
୫ । ପ୍ରାପ୍ତ—5 Obtained.
୬ । ପାଳତ (ଆଦେଶ)—6 Obeyed.

**ପରଗୃହ୍ୟ**—ସଂ. ବିଣ. ( ପରି=ସବୁତୋଭାବରେ+ଗ୍ରହ୍ ଧାତୁ=ଗ୍ରହଣ
Parigṛuhya କରିବା+କର୍ମ. ଯ )—୧ । ଗ୍ରହଣ ଯୋଗ୍ୟ;
(ପରିଗୃହ୍ୟା—ସ୍ତ୍ରୀ) ପରିଗୃହୀତ ହେବାର ଯୋଗ୍ୟ—
1. Acceptable; admissible.
୨ । ସ୍ୱୀକାର୍ଯ୍ୟ—2. Agreeable.
୩ । ପ୍ରାପ୍ୟ—3. Obtainable.
୪ । ମଞ୍ଜୁର କରାଯିବାର ଯୋଗ୍ୟ—4 Fit to be granted.

**ପରଗୃହ୍ୟା**—ସଂ. ବି. ସ୍ତ୍ରୀ (ପରିଗୃହ୍ୟ+ଆ)—୧ । ବିବାହିତା ସ୍ତ୍ରୀ—
Parigṛuhyā 1. Married woman (M. W.).
୨ । ଧର୍ମ ପତ୍ନୀ (ହି. ଶ.)—2 Wedded wife.

**ପରଗ୍ରହ**—ସଂ. ବି. ( ପରି+ଗ୍ରହ୍ ଧାତୁ=ଗ୍ରହଣ କରିବା ଇତ୍ୟାଦି+
Parigraha ଭାବ. ଅ )—୧ । ସ୍ୱୀକାର—1. Admission.
ପରିଗୃହୀତ, ପରିଗ୍ରହୀତା } ବିଣ ୨ । ଦାନ ଗ୍ରହଣ—
2. Acceptance of a gift.
୩ । ସଂସର୍ଗ—3 Intercourse; association.
୪ । ଅର୍ଜନ, ପ୍ରାପ୍ତି—4 Acquisition; attainment.
୫ । ଦଖଲ ନେବା, ଆୟତ୍ତୀକରଣ—
5. Taking possession.
୬ । ଧାରଣା—6. Retention; conception.
୭ । ସୂର୍ଯ୍ୟ ଗ୍ରହଣ—7. Solar eclipse.
୮ । ଦଖଲ, ଅଧିକାର—
8. Authority; dominion, control.
୯ । ସମ୍ପତ୍ତି—9 Property.
୧୦ । ପିନ୍ଧିବା; ପରିଧାନ—10 Putting on.
୧୧ । ବିବାହ, ଦାରପରିଗ୍ରହ—
11. Marrying; marriage; taking of a wife.
୧୨ । ଅନୁଗ୍ରହ—12. Grace; favour. (M. W.)
୧୩ । ସମ୍ମାନ ପ୍ରଦର୍ଶନ—
13. Homage; reverence. (M. W ).
୧୪ । ଦଣ୍ଡ—14. Punishment. (M.W.)
୧୫ । କୌଣସି ବ୍ୟକ୍ତିକୁ ନିଜ ଘର ମଧ୍ୟକୁ ପ୍ରବେଶ କରାଇବା—
15. Admittance into one's house. (M. W.)

୧୬ । ବୋଧ, ବୁଝିବା—16. Understanding.
୧୭ । ବାଡ଼ ବୁଲଇବା—17. Fencing round
୧୮ । ଘେରିଇବା; ବେଷ୍ଟନ—
18. Enclosing; surrounding.
୧୯ । ରୂପ ଗ୍ରହଣ—19. Assuming of a form. (M. W.)
୨୦ । (+କର୍ମ. ଅ)-ପତ୍ନୀ—20. Wife.
୨୧ । ରକ୍ଷିତା ସ୍ତ୍ରୀ—21 Concubine, mistress.
୨୨ । ପରିଜନ, ଗହଣ— 2. Attendants; retinue.
୨୩ । ଶପଥ—23 Oath.
୨୪ । ଅଭିସମ୍ପାତ—24 Imprecation; curse.
୨୫ । ରାହୁଗ୍ରସ୍ତ ସୂର୍ଯ୍ୟ—25. Eclipsed sun
୨୬ । ସେନାର ପଶ୍ଚାଦ୍‌ଭାଗ —
26. The rear or reserve of an army.
୨୭ । ଘରକରଣା—27. Household. (M. W.)
୨୮ । ସ୍ତ୍ରୀପୁତ୍ରାଦି ପରିବାର—28. Family.(M. W.)
୨୯ । ରାଜାଙ୍କର ଅନ୍ତଃପୁର—
29. The seraglio of a prince. (M W.
୩୦ । ଗୃହ—39. House; abode. M. W.
୩୧ । ମୂଳ; ମୂଳକାରଣ—
31. Root; origin; foundation. (M. W.)
୩୨ । ଦତ୍ତବସ୍ତୁ, ଦାନ—32. Gift; present.
୩୩ । ଯୋଗଫଳ—33. Sum; totality
୩୪ । (+ଭାବ. ଅ) ସାଦର ଗ୍ରହଣ (ହି. ଶ.)—
34. Hospitable reception.
[ଦ୍ର—ଦାର ପରିଗ୍ରହ=ବିବାହ, ପତ୍ନୀ ଗ୍ରହଣ; ମୂର୍ତ୍ତି ପରିଗ୍ରହ= ରୂପ ଧରିବା ।]

**ପରିଗ୍ରହ କରିବା**—ଦେ. କ୍ରି—(ସ. ପରିଗ୍ରହ)—ବିବାହ କରିବା—
**Parigraha kariba** To marry.

ଲର୍ଭେ କାମେ କନ୍ୟା ପରିଗ୍ରହ କଲ,
ଅକ୍ଷୟ ବଂଶ ଯହୁଁ ଉଦ୍‌ଭବ ହେଲ ।। କୃଷ୍ଣସିଂହ ମହାଭାରତ—ଅଦ ।

[ଦ୍ର—ଏଥିର ଅନ୍ୟ ଅର୍ଥ ପାଇଁ ପରିଗ୍ରହ ଶବ୍ଦର ଅନ୍ୟ ଅର୍ଥମାନ ଦେଖ]

**ପରିଗ୍ରହ ଦ୍ୱିତୀୟ**—ସ. ବିଣ. ପୁଂ. (ବହୁବ୍ରୀହି, ପରିଗ୍ରହ+ଦ୍ୱିତୀୟ)—
**Parigraha dwitiya** ୧ । ସସ୍ତ୍ରୀକ; ଯାହା ସଙ୍ଗେ ଭାର୍ଯ୍ୟା ଅଛନ୍ତି-
1. Accompanied by one's wife.
୨ । ସପରିବାର—
2. Accompanied by one's family.

**ପରିଗ୍ରହିବା**—ଦେ. (ପଦ୍ୟ) କ୍ରି—(ସ. ପରିଗ୍ରହ)—(ମୂର୍ତ୍ତି) ଗ୍ରହଣ ବା
**Parigrahiba** ଧାରଣ କରିବା—To assume (a form).

ମୂର୍ତ୍ତି ପରିଗ୍ରହି ଭବେ, ବ ସାହସ ।—ଅଧ୍ୟାତ୍ମ. ରାମ ।

[ଦ୍ର—ଅନ୍ୟାନ୍ୟ ଅର୍ଥ ପାଇଁ ପରିଗ୍ରହର ଅନ୍ୟ ଅର୍ଥମାନ ଦେଖ]

**ପରିଗ୍ରାମ**—ସ. ଅ. (ଅବ୍ୟୟୀଭାବ; ପରି=ଅଭିମୁଖେ+ଗ୍ରାମ)—
**Parigrāma** ୧ । ଗ୍ରାମାଭିମୁଖେ—Towards a village.
୨ । ଗ୍ରାମର ସମ୍ମୁଖରେ—2. In front of a village.
ସ. ବି—ଗ୍ରାମର ସାମନା ଭାଗ (ହି. ଶ)—
The front part of a village.

**ପରିଗ୍ରାହକ**—ସ ବିଣ. ପୁଂ. (ପରି=ଚତୁର୍ଦ୍ଦିଗରେ+ଗ୍ରହ୍ ଧାତୁ=ଗ୍ରହଣ
**Parigrāhaka** କରିବା+କର୍ତ୍ତୃ. ଅକ)—୧ । ଯେ ପରିଗ୍ରହ
[ପରିଗ୍ରହୀତା—ଅନ୍ୟରୂପ ] କରେ—1. Accepting.
ପରିଗ୍ରାହିକା, ପରିଗ୍ରାହିଣୀ } ସ୍ତ୍ରୀ ୨ । ଗ୍ରହୀତା—2, Taking
୩ । ସ୍ୱୀକାରକର୍ତ୍ତା—
3. Admitting; agreeing.

**ପରିଗ୍ରାହ୍ୟ**—ସ. ବିଣ. (ପରି+ଗ୍ରହ ଧାତୁ+କର୍ମ. ଯ)—ପରିଗୃହୀତ
**Parigrāhya** ହେବାର ଯୋଗ୍ୟ—Fit to be accepted.

**ପରିଘ**—ସ. ବି—(ପରି=ସର୍ବତୋଭାବରେ+ହନ୍ ଧାତୁ=ବଧ କରିବା+
**Parigha** କରଣ. ଅ)—୧ । ପ୍ରାଚୀନ କାଳର ଯୁଦ୍ଧାସ୍ତ୍ରବିଶେଷ—
1. A kind of iron weapon used in ancient times in fighting, a bludgeon or club studded with iron.

ପାଖରେ ଯେ ପରିଘ ଥିଲା ହୋଇଅଛ ।
ଗ୍ରାମବୃଦ୍ଧି କେବଳ ଯହିଁ ବାଧ କଲ । କୃଷ୍ଣସିଂହ. ମହାଭାରତ. ସଭା ।

[ଦ୍ର—ଏହାର ଆକାର ମୁଦ୍ଗର ପରି ଗୋଲ ଓ ମୋଟା; ଏହା ପୁରୁଷ ପ୍ରମାଣ ଲମ୍ବା ଓ ବଳପୂର୍ବକ ଶତ୍ରୁ ପ୍ରତି ନିକ୍ଷିପ୍ତ ହେଉଥିଲା । ଏହାର ମୁଣ୍ଡରେ ଲୁହାର କଣ୍ଟା ବସି ଥିଲା ।]
୨ । ଲୁହାର କଳଣୀ, କବାଟ ବନ୍ଦକରିବାର ଅର୍ଗଳ—
2. Iron bar for shutting a door.
୩ । (ଜ୍ୟୋତିଷ) ବିଷ୍କମ୍ଭାଦି ସପ୍ତବିଂଶ ଯୋଗ ମଧ୍ୟରୁ ଊନବିଂଶ ଯୋଗ—3. One of the 27 astrological conjunctions.
୪ । ଘଟ; କଳସ—4. Pitcher; jar.
୫ । (ପରି+ହନ୍ ଧାତୁ+ଭାବ. ଅ) ବ୍ୟାଘାତ, ବାଧା—
5. Obstacle; hindrance.
୬ । ଆଘାତ—6. Stroke.
୭ । (+କର୍ମ ଅ) ତୋରଣ ଦ୍ୱାର; ଫାଟକ; ଗୋପୁର—
7. Gateway; gate.
୮ । କାଚ ଘଡ଼ି—8 A glass pitcher. (M. W.)
୯ । ଘର (ହି. ଶ.)—9 House.
୧୦ । ପର୍ବତ (ହି. ଶ.)—10. Mountain.
୧୧ । ବଜ୍ର—11. Thunder.
୧୨ । ଶେଷ ନାଗ; ବାସୁକି—12, Bāsuki.
୧୩ । ଚନ୍ଦ୍ର—13. Moon.
୧୪ । ସୂର୍ଯ୍ୟ—14. Sun.
୧୫ । ନଦୀ—15. River.
୧୬ । ସ୍ଥଳ—16. Land
୧୭ । ଅବିଦ୍ୟା (ହି. ଶ)—17. Ignorance.
୧୮ । ମୃତ୍ତଜାତ ମୃତଗର୍ଭବିଶେଷ (ହି. ଶ.), ଜନ୍ମ ହେବା ସମୟରେ ଯେଉଁ ଭ୍ରୂଣ ଯୋନି ଦ୍ୱାରରେ ଆଟକିଯାଇ କରି ଅଟକିଯାଏ (ହି. ଶ.)—18. Dead foetus; a child which presents a peculiar crooss position in birth.(M. W),

୧୯ । ସୂର୍ଯ୍ୟ ଉଦୟ ବା ଅସ୍ତ ହେବାବେଳେ ଯେଉଁ ମେଘ ସୂର୍ଯ୍ୟକୁ ଘୋଡ଼ାଏ (ହ୍ରି. ଶ)—19 A cloud which hides the sun during sunrise or sunset

**ପରିଘଟ୍ଟନ**—ସଂ. ବି. (ପରି+ଘଟ୍ଟ ଧାତୁ=ଘାଣ୍ଟିବା+ଭାବ ଅନ)—
Parighattana ୧ । ଘାଣ୍ଟିବା, ଆଲୋଡ଼ନ—1 Stirring up.
(ପରିଘଟ୍ଟିତ—ବିଣ)
୨ । ଘଷିବା—2 Rubbing

**ପରିଘାଇ**—ଦେ. କ୍ରି ବିଣ. (ସଂ ପରିଘ; ପରିଘାତ—୧ । ଦୃଢ଼ରୂପେ—
Parighāi 1. Sturdily; strongly.
୨ । ଉପର୍ଯ୍ୟୁପରି—2. Repeatedly

**ପରିଘାତ**—ସଂ. ବି. (ପରି+ହନ୍ ଧାତୁ=ବଧ କରିବା+ଭାବ. ଅ)—
Parighāta ୧ । ହନନ, ବଧ—1 Killing; slaughter
(ପରିଘାତନ—ଅନ୍ୟରୂପ) ୨ । ଆଘାତ—2. Striking.
୩ । (+କରଣ. ଅ)—ବିଘ୍ନ, ପ୍ରତିବନ୍ଧକ—
3. Obstacle; hindrance.
୪ । ପରିଘ, ଲୌହମୁଖ ମୁଦ୍ଗର—
4. A club studded with iron.
୫ । ଅର୍ଗଳ—5 Bolt; bar.
୬ । ଯେଉଁ ଅସ୍ତ୍ରରେ ହତ୍ୟା କରାଯାଏ—
6. A weapon used for killing

**ପରିଘୋଷ**—ସଂ ବି. (ପରି=ଉପରସ୍ଥ+ଘୋଷ=ଶବ୍ଦ)—
Parighosha ୧ । ମେଘର ଗର୍ଜନ, ଘଡ଼ଘଡ଼ି—
1. The roar of clouds.
୨ । ଆରାବ; ଶବ୍ଦ—2. Sound
୩ । (ପରି=ନିନ୍ଦିତ+ଘୋଷ)—ଅକଥ୍ୟ କଥା—
3. Unuterable speech.

**ପରିଚ**—ଗ୍ରା. ବି. (ସଂ. ପରିଚୟ)—ପରିଚୟ—Acquaintance.
Paricha ଦେ. ବିଣ. (ସଂ. ପରିଚିତ)—ପରିଚିତ—
ପରେଚ **परचै; परचा** Acquainted.

**ପରିଚୟ**—ସଂ. ବି. (ପରି=ସର୍ବତୋଭାବେ+ଚି ଧାତୁ=ଏକତ୍ର କରିବା
Parichaya +ଭାବ. ଅ)—୧ । ଆଳାପ, କୌଣସି ବ୍ୟକ୍ତିର ନାମଧାମାଦି ଜାଣିବା—1. Acquaintance
(ପରିଚିତ—ବିଣ) ୨ । ଅଭିଜ୍ଞାନ—
2. Intimate knowledge
୩ । ପ୍ରଣୟ; ଘନିଷ୍ଠତା, ଜଣାଶୁଣା—
3 Intimacy; friendship
୪ । ଅଭ୍ୟାସ (ହ୍ରି. ଶ)—4. Practice. (M W.)
ଦେ ବିଣ. (ସଂ. ପରିଚିତ)—ପରିଚିତ—Acquainted.

**ପରିଚୟ କରା(ରେ)ଇବା**—ଦେ. କ୍ରି—କୌଣସି ବ୍ୟକ୍ତିକୁ ଅନ୍ୟ ବ୍ୟକ୍ତି
Parichaya karā(re)ibā ସଙ୍ଗେ ଚିହ୍ନାଇ ଦେବା—
ପରିଚୟ କରାନ To introduce a person to another.
**परिचय कराना**

**ପରିଚୟ କରିବା**—ଦେ. କ୍ରି—ଆଳାପ କରିବା, ଘନିଷ୍ଠତା ସ୍ଥାପନ
Parichaya karibā କରିବା—To pick up acquaintance with a person.
ପରିଚୟ କରା

**ପରିଚୟ ଦେବା**—ଦେ. କ୍ରି—୧ । ଚିହ୍ନାଦେବା; ଆପଣାର ସ୍ୱରୂପ ପ୍ରକାଶ
Parichaya debā କରିବା—1. To make one's self known.
ପରିଚୟ ଦେଓଆ
**परिचय देना** ୨ । ପ୍ରମାଣ ଦେଖାଇବା—2. To testify.

**ପରିଚୟ ପାଇବା**—ଦେ. କ୍ରି—୧ । ପ୍ରମାଣ ପାଇବା—
Parichaya pāibā 1. To get proof of.
ପରିଚୟ ପାଓଆ ୨ । ଜାଣି ପାରିବା—
**परिचय पाना** 2. To come to know.

**ପରିଚର**—ସଂ. ବି. (ପରି=ପଶ୍ଚାତ୍+ଚର୍ ଧାତୁ=ଗମନ କରିବା+କର୍ତ୍ତୃ.
Parichara ଅ) ୧ । ସହଚର—1. Companion.
୨ । ଅନୁଚର—2 Attendant.
୩ । ପରିଚାରକ, ଭୃତ୍ୟ—3 Servant.
୪ । ଶରୀର ରକ୍ଷକ—4. Body-guard
୫ । ସେନା ନାୟକବିଶେଷ—
5. A kind of commander of an army.
୬ । ଚୌକିଦାର—6. Watchman.
୭ । ରୋଗୀର ସେବାକାରୀ ବ୍ୟକ୍ତି—
7. A person who tends sick people.
୮ । (+ଭାବ. ଅ)—ସେବା, ଭୃତ୍ୟତ୍ୱ—
8. Service; homage.

**ପରିଚର୍ଯ୍ୟା**—ସଂ. ବି. (ପରି+ଚର ଧାତୁ=ସେବା କରିବା ଇତ୍ୟାଦି+
Paricharjyā ଭାବ. ଯ+ସ୍ତ୍ରୀ. ଆ)—୧ । ସେବା, ଭୃତ୍ୟପଣ—
1. Personal service; attendance.
୨ । ଶୁଶ୍ରୂଷା—2 Tending.
୩ । ସତ୍କାର; ପୂଜା—3. Worship; adoration.
୪ । ଉପାସନା—4. Prayer.
୫ । ପ୍ରଦକ୍ଷିଣ—5. Circumambulation.

**ପରିଚାୟକ**—ସଂ. ବିଣ. ପୁଂ. (ପରି+ଚି ଧାତୁ=ଏକତ୍ର କରିବା+କର୍ତ୍ତୃ.
Parichāyaka ଅକ)—୧ । କୌଣସି ବ୍ୟକ୍ତିକୁ ଅନ୍ୟ କୌଣସି ବ୍ୟକ୍ତି ସଙ୍ଗେ ଯେ ପରିଚୟ କରାଇଦିଏ—1. Introducing a person to another.
(ପରିଚାୟିକା—ସ୍ତ୍ରୀ) ୨ । ଯେ ଚିହ୍ନାଇ ଦିଏ—
2. Making known.
୩ । ଜ୍ଞାପକ—3. Intimating.
୪ । ପ୍ରଦର୍ଶକ—4 Showing
୫ । ସୂଚକ—5. Indicating.

**ପରିଚାର**—ସଂ. ବି. ପୁଂ—ପରିଚର (ଦେଖ)
Parichāra Parichara. (See)

ପଦାଭିଲାଷୀ ଅଟେ ମୋହର ଶୁମର
ଭରତରେ ଯେ ଅଛି କେତେ ପରିଚାର। କୃଷ୍ଣସିଂହ ମହାଭାରତ ଅଦି।

**ପରିଚାରକ**—ସଂ. ବି. ପୁଂ.—(ପରି+ଚର୍ ଧାତୁ=ଗମନ କରିବା+କର୍ତ୍ତୃ
Parichāraka ଅକ)—୧ । ସେବକ, ଭୃତ୍ୟ—2. Servant.
(ପରିଚାରୀ—ଅନ୍ୟରୂପ) ୨ । ରୋଗୀ ସେବାରେ ନିଯୁକ୍ତ ବ୍ୟକ୍ତି—
2. A person engaged to tend a patient.

ପରିଚାରିକା } ସ୍ତ୍ରୀ ୩ । ଦେବମନ୍ଦିରର ତତ୍ତ୍ୱାବଧାରକ; ପରିଚ୍ଛା—
ପରିଚାରିଣୀ } 2. Superintendent of a temple

**ପରିଚର୍ଯ୍ୟ**— ସଂ. ବିଣ. ପୁଂ. (ପରି + ଚର ଧାତୁ + କର୍ମ ଯ)— ପରିଚର୍ଯ୍ୟା
Paricharjya ପାଇବା ଯୋଗ୍ୟ, ସେବ୍ୟ—Deserving to be
(ପରିଚର୍ଯ୍ୟା—ସ୍ତ୍ରୀ) tended or looked after.

**ପରିଚାଳକ** – ସଂ. ବି ପୁଂ (ପରି + ଚଲ୍ ଧାତୁ ଣିଚ + କର୍ତ୍ତୃ ଅକ)—
Parichālaka ୧ । ନେତା—1. Leader.
(ପରିଚାଳିକା— ସ୍ତ୍ରୀ) ୨ । ଚଳାଇବା ବ୍ୟକ୍ତି—
2. Superintendent.
୩ । ଅଧ୍ୟକ୍ଷ—3. Head.
୪ । ଯେ ଗାଡ଼ି ଆଦିକୁ ଚଳାଏ—
4. Conductor; driver.
ସଂ. ବିଣ— ପରିଚାଳନକାରୀ— Guiding; leading.
ସଂ. ବି.—(ବିଜ୍ଞାନ ପରିଭାଷା)—ଯାହା ଏକ ପରମାଣୁରୁ ଅନ୍ୟ ପରମାଣୁକୁ ତାପାଦି ଚଳାଏ—Conductor (of heat or light or electricity.)

**ପରିଚାଳକତା**—ସଂ. ବି. (ବିଜ୍ଞାନ ପରିଭାଷା)—୧ । ଜଡ଼ ବସ୍ତୁର ଏକ
Parichālakatā ପରମାଣୁରୁ ଅନ୍ୟ ପରମାଣୁକୁ ତାପ ଆଦି ସଞ୍ଚାଳନ କରିବାର ଗୁଣ—1. The property of a thing of conducting heat etc
୨ । ଅଧ୍ୟକ୍ଷତା, ନେତୃତ୍ୱ – 2 Leadership

**ପରିଚାଳନ**—ସଂ. ବି. (ପରି + ଚଲ୍ ଧାତୁ ଣିଚ୍ =ଚଳିବା+ଭାବ ଅନ)--
Parichālana ୧ । ସମ୍ପାଦନ, ନିର୍ବାହ—
(ପରିଚାଳିତ—ବିଣ) 1. Accomplishment.
୨ । ସଞ୍ଚାଳନ—2. Moving.

**ପରିଚାଳିତ**—ସଂ. ବିଣ.—(ପରି + ଚଲ୍ ଧାତୁ ଣିଚ୍ + କର୍ମ. ତ)—
Parichālita ୧ । ସମ୍ପାଦିତ, ନିର୍ବାହିତ—
1. Accomplished; conducted
୨ । ଚାଳିତ—2. Moved.

**ପରିଚି**—ଗ୍ରା. ବି. —(ସଂ. ପରିଚୟ)—ପରିଚୟ—
Parichi Acquaintance.
ବିଣ. (ସଂ. ପରିଚିତ)—ପରିଚିତ—Acquainted.

**ପରିଚିତ**—ସଂ. ବିଣ. ପୁଂ— (ପରି+ଚି ଧାତୁ=ଏକତ୍ର କରିବା+କର୍ମ.
Parichita ତ.)—୧ । ଜ୍ଞାତ—1. Known
(ପରିଚିତା—ସ୍ତ୍ରୀ) ୨ । ଚିହ୍ନିତ—2. Recognised
(ପରିଚିତି—ବି) ୩ । ଜଣା ଶୁଣା, ଯାହା ସଙ୍ଗେ ଆଲାପାଦି ଅଛି—
3. Acquainted; well known.
୪ । ଗଦା ହୋଇ ଯାଇ ଥିବା—4. Heaped up; collected.

**ପରିଚିନ୍ତନ**—ସଂ. ବି.—(ପରି + ଚିନ୍ତନ)—୧ । ପରିକଳ୍ପନ (ଦେଖ)
Parichintana 1. Parikalpana (See)
୨ । ମନନ—2. Reflection.
[ଦ୍ରି—ଏଥିରୁ ପରିଚିନ୍ତକ, ପରିଚିନ୍ତିତ, ପରିଚିନ୍ତନୀୟ, ପରିଚିନ୍ତ୍ୟ ବିଶେଷଣ ଶବ୍ଦ ହୁଏ ।]

**ପରିଚେୟ**—ସଂ ବି. ପୁଂ—(ପରି + ଚି ଧାତୁ + କର୍ମ. ଯ)—
Paricheya ୧ । ପରିଚୟର ଯୋଗ୍ୟ—
(ପରିଚେୟା - ସ୍ତ୍ରୀ) 1. Fit to be known
୨ । ସବୁଆଡ଼ୁ ସଂଗୃହୀତ ହୋଇ ଗଦା କରାଯିବାର ଯୋଗ୍ୟ—
2 To be collected all round or from every side (M W ).

**ପରିଚୁମ୍ବନ**—ସଂ. ବି. (ପରି+ଚୁମ୍ବ୍ ଧାତୁ+ଭାବ. ଅନ)—ପ୍ରେମ ପୂର୍ବକ
Parichumbana ଚୁମ୍ବନ—Loving kiss.

**ପରିଚ୍ଛଦ୍**– ସଂ ବିଣ. (ପରି + ଛଦ୍ ଧାତୁ=ଆଚ୍ଛାଦନ କରିବା + କର୍ତ୍ତୃ.
Parichchhad କ୍ୱିପ୍)—ଭୂଷଣ ବିଶିଷ୍ଟ—Adorned with.

**ପରିଚ୍ଛଦ** – ସଂ. ବି (ପରି=ସର୍ବତୋଭାବରେ+ଛଦ୍ ଧାତୁ=ଆଚ୍ଛାଦନ
Parichchhada କରିବା+କର୍ମ. ଅ)—୧ । ବେଶ; ପୋଷାକ—
୨ । ପରିଜନ, କୁଟୁମ୍ବ—2 Relative
୩ । ପିନ୍ଧିବା ଲୁଗା — 3. Cloth used for wearing.
୪ । ( ପରି+ଛଦ୍ ଧାତୁ+ଭାବ ଅ )---ଆଚ୍ଛାଦନ, ଘୋଡ଼ଣି; ଆବରଣ – 4. Covering.
୫ । ଯାନ ବାହନାଦି—5 Conveyance.
୬ । ଅସବାବ ପତ୍ର, ଚଳନ୍ତି ସମ୍ପତ୍ତି—6. Furnitures; fittings; goods and chattels.
୭ । ରାଜ ଚିହ୍ନ—7. Paraphernalia of royalty.

**ପରିଚ୍ଛନ୍**—ଦେ. ବି —ପରିଛନ୍ (ଦେଖ)
Parichchhan Parichhan (See)

**ପରିଚ୍ଛନ୍ଦ**—ସ ବି. –(ପରି+ଛଦ୍ ଧାତୁ+କର୍ମ ଅ)—୧ । ପରିଚ୍ଛଦ;
Parichchhanda ପୋଷାକ—1. Dress.
୨ । ଅଙ୍ଗରଖା; ଅଙ୍ଗାବରଣ, କୁର୍ତ୍ତା—2. Coat.
୩ । ସାଞ୍ଜୁ—3 Coat of armour.
୪ । ସହଚରଗଣ; ଅନୁଚର—4. Train; retinue.

**ପରିଚ୍ଛନ୍ନ** – ସଂ. ବିଣ. (ପରି+ଛଦ୍ ଧାତୁ+କର୍ମ. ତ)— ୧ । ଆଚ୍ଛାଦିତ;
Parichchhanna ଆବୃତ—1. Covered.
୨ । ପରିଚ୍ଛଦଯୁକ୍ତ; ପୋଷାକ ପରିହିତ—2, Dressed.
୩ । ପରିଷ୍କୃତ— 3. Cleansed.
୪ । ସଜ୍ଜିତ—4. Furnished; equipped.
୫ । ଅଲଂକୃତ—5. Adorned.
୬ । ଉତ୍ତମ – 6. Good.
୭ । ଲୁକ୍କାୟିତ – 7. Concealed; hidden.
୮ । ଛଦ୍ମ ବେଶ ଦ୍ୱାରା ଗୋପିତ—
8. Disguised (M. W ).

**ପରିଚ୍ଛା**—ଦେ. ବି.— (ସଂ. ପରୀକ୍ଷକ)—ପରିଚ୍ଛା (ଦେଖ)
Parichchhā Parichhā (See)

**ପରିଚ୍ଛିତି**—ସଂ. ବି.—୧ । ସୀମା (ହି. ଶବ୍ଦସାଗର)—
Parichchhiti 1. Boundary.
୨ । ଦୁଇ ପଦାର୍ଥକୁ ପରସ୍ପର ଠାରୁ ସମ୍ପୂର୍ଣ୍ଣରୂପେ ପୃଥକ କରିବା (ହି. ଶବ୍ଦସାଗର)—2. Complete separation of two things from each other.

୩ । ବିଭାଗ; ବଣ୍ଟନ (ହି. ଶ.)—3. Division; partition.

**ପରିଚ୍ଛିତ୍ତି**—ସଂ. ବି.—(ପରି+ଛିଦ୍ ଧାତୁ=ଛିଣ୍ଡାଇବା+ଭାବ. ତି)—
Parichchhitti ୧ । ବ୍ୟବଧାନ—1 Intervention; space between.
୨ । ଯଥାର୍ଥ ବର୍ଣ୍ଣନା—2 Correct description.
୩ । ନିର୍ଣ୍ଣୟ, ଅବଧାରଣ—
3 Ascertainment; determination
୪ । ଅନ୍ତରାଳ—4. Background
୫ । ନିର୍ଣ୍ଣୀତ ସଂଜ୍ଞା—5. Accurate definition (M W).
୬ । ବିଭାଗ, ପୃଥକ୍‌କରଣ—
6. Partition; separation (M.W)
୭ । ସୀମା—7 Limit. (M W.)

**ପରିଚ୍ଛିନ୍ନ**—ସଂ. ବି. (ପରି+ଛିଦ୍ ଧାତୁ=ଛେଦନ କରିବା+କର୍ମ ତ)—
Parichchhinna ୧ । ପରିମିତ, ସୀମାବଦ୍ଧ—1. Limited; circumscribed.
୨ । ନିର୍ଣ୍ଣୀତ—2 Ascertained
୩ । ବିଭକ୍ତ—3. Divided
୪ । ପ୍ରତିକୃତ—4. Remedied; obviated
ଦେ. କ୍ରି. ବିଣ—(ପ୍ରାଚୀନ ପଦ୍ୟ) ପରିଷ୍କାର ଭାବରେ—
Clearly.

ଶ୍ରୀଗୁରୁ ପରମଗୁରୁ କହ ପରିଚ୍ଛିନ୍ନ—ପ୍ରାଚୀ. ଶ୍ରୀଗୁରୁଭକ୍ତି ଗୀତା ।

**ପରିଚ୍ଛେଦ**—ସଂ. ବି. (ପରି+ଛିଦ୍ ଧାତୁ=ଛେଦନ କରିବା+କର୍ମ. ଅ)—
Parichchheda ୧ । ବିଚ୍ଛେଦ—1. Separation.
୨ । ଅଂଶ; ଭାଗ—2. Part; portion
୩ । ସୀମା—2. Limit; boundary.
୪ । ଶେଷ, ସମାପ୍ତି—4. End; finish.
୫ । ଗ୍ରନ୍ଥର ଭିନ୍ନ ଭିନ୍ନ ବିଷୟ ବିଭାଗ; ଅଧ୍ୟାୟ—
5. Chapter of a book; section of a work.
୬ । ନିଶ୍ଚୟ—6. Certainty.
୭ । (ପରି+ଛିଦ୍ ଧାତୁ+ଭାବ ଅ) ଅବଧାରଣ; ନିର୍ଣ୍ଣୟ—
7. Ascertainment.
୮ । ଭେଦ ଜ୍ଞାନ—8. Discrimination.
୯ । ସମ୍ପୂର୍ଣ୍ଣ ବିନାଶ—8 Destruction; ruin.

ଦ୍ରବ୍ୟରୁ ଯେବେ ଚ୍ୟୁତର ବିଚ୍ଛେଦ, କାମ କାଣ୍ଡରେ ହେଲେ ପରିଚ୍ଛେଦ.
ବାହାଙ୍କୁ କହିବା, କପାଳରେ ଦେନା କର ଘାତନା ।
କବିସୂର୍ଯ୍ୟ—ସଙ୍ଗୀତ ।

୧୦ । କାଟି କରି ବିଭକ୍ତ କରିବା—10. Severing.
୧୧ । ବିଭାଗ, ବଣ୍ଟନ—11. Partition; division.
୧୨ । ସଂକଳ୍ପ—12. Resolution.
୧୩ । ପ୍ରକୃତ ସଂଜ୍ଞା—13. Accurate definition. (M. W)
୧୪ । ପ୍ରତୀକାରଣ—
14. Remedying, obviating. (M W.)

**ପରିଚ୍ଛେଦ୍ୟ**—ସଂ. ବିଣ. (ପରି+ଛିଦ ଧାତୁ+କର୍ମ ଯ)—୧ । ବିଭାଜ୍ୟ—
Parichchhedya I. Divisible; partible.
୨ । ପରିମେୟ—2 To be measured. (M. W.)

**ପରିଚ୍ୟୁତ**—ସଂ. ବିଣ. (ପରି+ଚ୍ୟୁ ଧାତୁ=ସ୍ଖଳିତ ହେବା+କର୍ତ୍ତୃ. ତ)—
Parichyuta ୧ । ବିଚ୍ୟୁତ, ସ୍ଖଳିତ; ଭ୍ରଷ୍ଟ—1. Fallen off; slipped off.
(ପରିଚ୍ୟୁତି—ବି) ୨ । ପତିତ—2 Fallen down.
୩ । ଜାତିରୁ ବା ସଂଗ୍ରରୁ ବହିଷ୍କୃତ—
3. Excommunicated; expelled from caste or society.

**ପରିଛନ୍**—ଦେ. ବି—୧ । ପାଉତି; ରସିଦ—
Parichhan 1 Receipt.
(ପରିଛିନ୍ନ—ଅନ୍ୟରୂପ) ୨ । ଫାରଖି ରସିଦ—
2. Full satisfaction receipt.
୩ । ଦୁଇ ପଟାର ସନ୍ଧିରେ ଥିବା ଫାଙ୍କ ଉପରେ ମରାଯିବା କାଠର ପତଳା ପାଉଥ ବା ବଟ—3 Thin plank put over the opening of two planks.

**ପରିଛନ୍ଦେ**—ଦେ. କ୍ରି. ବିଣ—ଛନ୍ଦା ଛନ୍ଦି ହୋଇ—
Parichhande Intertwined; twined with each other.

ହସ୍ତେ ହସ୍ତେ ଅଙ୍ଗେ ଅଙ୍ଗେ ପରିଛନ୍ଦେ
କେଶ ଚୁମ୍ବନାବ ତଭଙ୍ଗଠି ରତ ବେଢେ—ପ୍ରାଚୀ. ରସବାରିଧି ।

**ପରିଛା**—ଦେ. ବି—(ସଂ. ପରୀକ୍ଷକ)—୧ । ମନ୍ଦିରର ପ୍ରଧାନ କର୍ମଚାରୀ—
Parichhā 1. The head officer or superintendent of a temple.
ପରିଛା ୨ । ତତ୍ତ୍ୱାବଧାରକ—
ପରିଚ୍ଛା 2. Superintendent; supervisor.

ତାହର ପରିଛା ଅଛନ୍ତି କାହ୍ନୁ—ପ୍ରାଚୀ. ପରବେ ଗୀତା ।

୩ । ଗ୍ରାମର ପ୍ରଧାନ ବା ମୁଖ୍ୟ ବ୍ୟକ୍ତି—
3. The headman of a village.

**ପରିଛା(ଛେ)ଇ**—ଦେ. ବି.—ପରିଛାଙ୍କ କର୍ମ—
Parichhā(chhe)i The work, service or post of a Parichhā.
ସଂ. ବିଣ—ପରିଛା ସମ୍ବନ୍ଧୀୟ—
Relating to the Parichhā
(ଯଥା—ପରିଛାଇ ଶାଢ଼ୀ)

**ପରିଛା(ଛେ)ଇ ଶାଢ଼ୀ**—ଦେ. ବି—ପରିଛା ପଦରେ ନିଯୁକ୍ତ ବ୍ୟକ୍ତି ଯେଉଁ
Parichhā chhei sārdhi ଶାଢ଼ୀ ବା ବସ୍ତ୍ର ପାଏ—
A cloth given to a person on his appointment as the Parichhā of a temple.

**ପରିଛିତ୍**—ଦେ. ବି—ପରଛିତ୍ ( ଦେଖ )
Parichhit Parachhit (See)

**ପରିଜନ**—ସଂ. ବି. (ପରି=ସମ୍ପୂର୍ଣ୍ଣରୂପେ+ଜନ=ଯୀୟ ଲୋକ)—
Parijana ୧ । ସ୍ୱଜନ, ପରିବାର; ପୋଷ୍ୟ ବର୍ଗ—
1. Family; one's dependants
୨ । (ପରି=ପଶ୍ଚାତ୍+ଜନ=ଲୋକ) ଭୃତ୍ୟ, ଅନୁଚର; ସେବକ—
2. Servant; attendant.

ଅବ ବୃନ୍ଦ ଶୋଭା ଦେଖାକୁ ଦେଉ ଅନ୍ତ
ଥିଲେ ଯେ ସେ ଅସି ହୋଇଲେ ପରିଜନ ।
କୃଷ୍ଣସିଂହ, ମହାଭାରତ, ବନ ।

୩ । ଅନୁଚର ବର୍ଗ—3. Retinue
ଭକ୍ତ ଲ ଶରତ ଲକ୍ଷ୍ମୀ ପରିଜନ
ପ୍ରାପ୍ତ ଦେଶ ଦେଶ କରିଣ ଭ୍ରମଣ । ରାଧାନାଥ, ଚିଲିକା ।

**ପରିଜନୀ**—ଦେ. ବି. (ପଦ୍ୟ) ସ୍ତ୍ରୀ - ସେବିକା; ପରିଚାରିଣୀ—
Parijani Maid servant.
ଦିବ୍ୟ ବେଶ ସଙ୍ଗିଣୀ, ଯାଉ ଯେତେ ପରିଜନୀ
ସେବାସୁଧ ସଙ୍ଗେ ଘେନ ସଙ୍ଗେ ଚଳାଯେ । ସାରୀ, ରହସ୍ୟମଞ୍ଜରୀ ।

**ପରିଜମ**—ସଂ. ବି. (ଆଧୁନିକ ଜଡ଼ ବିଜ୍ଞାନ ପରିଭାଷା)—
Parijama ତ୍ରିଫଳକବିଶିଷ୍ଟ କାଚ, ଲମ୍ବା ତ୍ରିକୋଣ କାଚ—Prism.

**ପରିଜୟ୍ୟ**—ସଂ. ବିଣ. ( ପରି=ସର୍ବତ୍ର+ଜି ଧାତୁ=ଜୟ କରିବା+ଶକ୍ୟାର୍ଥେ. ଯ )—ସର୍ବଙ୍କ ଜୟ କରିବାକୁ ସମର୍ଥ—
Parijajya Able to vanquish all.

**ପରିଜା**—ଦେ. ବି. ( ସଂ. ପର୍ଯ୍ୟାୟ )—
Parijā ୧ । ପର୍ଯ୍ୟାୟ—1 Series; class
ପରିଯା, ପରିଯ୍ୟା, ପର୍ଯ୍ୟା } ଅନ୍ୟରୂପ
୨ । କରଣମାନଙ୍କର ବଂଶୋପାଧିବିଶେଷ—2. A family title of Karaṇas.
୩ । ପାରିଜା (ଦେଖ)—3 Pārijā (See).
ସଂ. ବି. (ବୈଦିକ ସଂସ୍କୃତ) ଆଦ୍ୟ ଜନ୍ମ ଭୂମି (ହି. ଶ.)—
The original birth-place.

**ପରିଜ୍ଞାତ**—ସଂ. ବିଣ. (ପରି=ସମ୍ୟକ୍+ଜ୍ଞାତ)—
Parijñāta ୧ । ବିଶେଷ ରୂପେ ଜ୍ଞାତ, ସୁପରିଚିତ—
(ପରିଜ୍ଞାତା—ସ୍ତ୍ରୀ) 1 Thoroughly known.
୨ । ଚିହ୍ନା ଯିବା—2. Recognised.
୩ । ସ୍ଥିରୀକୃତ—3 Ascertained.

**ପରିଜ୍ଞାତା**—ସଂ. ବିଣ. (ପରି+ଜ୍ଞା ଧାତୁ=ଜାଣିବା+କର୍ତ୍ତୃ. ତୃ, ୧ମା.୧ବ)-
Parijñātā ୧ । ଉତ୍ତମ ରୂପେ ଜାଣିଥିବା, ସୁଜ୍ଞାତା—
(ପରିଜ୍ଞାତ୍ରୀ—ସ୍ତ୍ରୀ) 1. Knowing well.
୨ । ଜ୍ଞାନୀ—2. Wise (M. W ).
୩ । ବୁଦ୍ଧିମାନ୍—3. Intelligent (M. W.)

**ପରିଜ୍ଞାନ**—ସଂ. ବି. (ପରି=ସମ୍ୟକ୍+ଜ୍ଞା ଧାତୁ=ଜାଣିବା+ଭାବ. ଅନ)—
Parijñāna ୧ । ସମ୍ୟକ୍ ଜ୍ଞାନ—1. Thorough knowledge.
୨ । ସୁପରିଚୟ—2. Recognition, intimate acquaintance.
୩ । ଅନୁଭବ—3. Experience; perception.
୪ । ଭଲ ମନ୍ଦର ପ୍ରଭେଦ-ଜ୍ଞାନ—
4. Discrimination between good and evil

**ପରିଡା**—ଦେ. ବି. ୧ । ଶୂଦ୍ରଙ୍କର ବଂଶୋପାଧିବିଶେଷ—
Pariḍā 1. A family title of Sūdras.
୨ । ଘୋଡ଼ା ସଇସ—
2. Syce; groom of a horse.
ଏଥୁ ଅନ୍ତେ ନକୁଳ କଇଁ ପୁରୁଷ
ଅଇଲେ ଧର କର ପରିଡା ବେଶ । କୃଷ୍ଣସିଂହ, ମହାଭାରତ, ବନ ।

**ପରିଡୀନ**—ସଂ. ବି. ( ପରି+ଡୀ ଧାତୁ+ଭାବ. ଅନ )—
Pariḍina ଚକ୍ରବତ୍ ଉଡ଼ିବା—Flying of a bird in a circle

**ପରିଣତ**—ସଂ. ବିଣ. (ପରି+ନମ୍ ଧାତୁ=ନମ୍ର ହେବା+କର୍ତ୍ତୃ. ତ)—
Pariṇata ୧ । ବିନତ; ନୁଆଁଇଥିବା—1. Bent.
୨ । ତଳକୁ ନଇଁଥିବା—2 Bent down.
୩ । ଅବସ୍ଥାନ୍ତର ପ୍ରାପ୍ତ, ପରିବର୍ତ୍ତିତ—
3. Changed, transformed.
୪ । ବୃଦ୍ଧ—4 Old; advanced in age.
୫ । ସୁପକ୍ୱ—5. Ripened; developed; mature.
୬ । ପୂର୍ଣ୍ଣ (ଚନ୍ଦ୍ର)—6. Full (moon).
୭ । ଅସ୍ତଗତ (ସୂର୍ଯ୍ୟ)—7 Set (moon).
୮ । ସୁଜୀର୍ଣ୍ଣ ( ଅନ୍ନ )—
8. Well digested ( food ).

**ପରିଣତ ବୟସ୍କ**—ସଂ. ବିଣ. ପୁଂ. (ବହୁବ୍ରୀହି, ପରିଣତ୍+ବୟସ୍)—
Pariṇata bayaska ବୃଦ୍ଧ ବୟସ୍କ—Advanced in age.
(ପରିଣତ ବୟସ୍କା—ସ୍ତ୍ରୀ)

**ପରିଣତି**—ସଂ. ବି. (ପରି+ନମ୍ ଧାତୁ=ନମ୍ର ହେବା+ଭାବ. ତି)—
Pariṇati ୧ । ବିନତି—1. Bending.
୨ । ଅବନତି, ତଳକୁ ନଇଁ ପଡ଼ିବା—2. Bending down.
୩ । ପରିବର୍ତ୍ତନ—3 Change.
୪ । ଅବସ୍ଥାନ୍ତର ପ୍ରାପ୍ତି—4. Transformation.
୫ । ସୁପକ୍ୱତା—5. Ripeness; maturity.
୬ । ବାର୍ଦ୍ଧକ୍ୟ—6. Old age.
୭ । ସମାପ୍ତି—7. End.
୮ । ଚରମ ଦଶା, ପରିଣାମ—
8. Last condition; final state.
କାହିଁ ଭଲ ପରିଣତିରେ ନରମଣି । କୃଷ୍ଣସିଂହ, ମହାଭାରତ, ସଭା ।
୯ । ଶେଷ ଫଳ; ପରିପାକ—9. Ultimate result.
୧୦ । ଫଳ ପ୍ରାପ୍ତି; ସଫଳତା ହେବା ଅବସ୍ଥା—10. Fulfilment
ପରମ ତତ୍ତ୍ୱ, ତେବେ ପିଇବା ପୀୟୂଷ
ପରିଣତି ସମୟେ ସେ ହେବ ଯେବେ ବିଷ । କବିସୂର୍ଯ୍ୟ, କଳୋପତୀରଙ୍ଗ, ୨ ଗୀତ ।

**ପରିଣତେ**—ଦେ. (ପଦ୍ୟ) କ୍ରି ବିଣ—ଶେଷରେ; ଅବଶେଷରେ—
Pariṇate At last; finally.
ଶ୍ଳୋଷଣ ଉଣନ୍ତେ ଜାଣନ୍ତେ ପରିଣତେ ଧିକ୍କାର କରି କେତେ ଗର୍ଜ୍ଜି ।
ଭକ୍ତ, ବୈଦେହୀଶବିଳାସ ।

**ପରିଣଦ୍ଧ**—ସଂ. ବିଣ—(ପରି+ନହ୍ ଧାତୁ=ବାନ୍ଧିବା+କର୍ମ. ତ)—
Pariṇaddha ୧ । ଉତ୍ତମରୂପେ ବନ୍ଧା ହୋଇଥିବା—1. Well bound.
୨ । ସମ୍ବଦ୍ଧ, ସଂଯୁକ୍ତ—2 Attached
୩ । ଆଲିଙ୍ଗିତ—3. Embraced.
୪ । ପରିହିତ—4 Put on; worn.
୫ । ବିସ୍ତୀର୍ଣ୍ଣ (ହି. ଶ )—5. Extensive.

**ପରିଣୟ** — ସଂ. ବି—(ପରି + ନୀ ଧାତୁ = ନେବା, ପାଇବା + ଭାବ ଅ) —
Pariṇaya ବିବାହ, ଦାରପରିଗ୍ରହ, ପାଣିଗ୍ରହଣ — Marriage;
(ପରିଣୟନ—ଅନ୍ୟରୂପ) wedding.

**ପରିଣାମ** — ସଂ. ବି—(ପରି+ନମ୍ ଧାତୁ = ନମ୍ର ହେବା + ଭାବ. ଅ)—
Pariṇāma ୧ । ଅବସ୍ଥାନ୍ତର ପ୍ରାପ୍ତି, ବିକୃତି—1. Transformation; change of condition.
୨ । ଶେଷ, ଅବସାନ—2 End.
୩ । ଶେଷ ଫଳ—3 Ultimate result
୪ । ପରିପକ୍ୱତା—4. Ripeness; maturity.
୫ । କାବ୍ୟାଲଙ୍କାରବିଶେଷ—
5 A figure of speech.
[ଦ୍ର—ପରିଣାମ ଓ ରୂପକ ମଧ୍ୟରେ ପ୍ରଭେଦ ଅତି ସୂକ୍ଷ୍ମ । ରୂପକ ଉପମାନ ଓ ଉପମେୟର ଶୋଭାକୁ ମାତ୍ର ବ୍ୟକ୍ତ କରେ । ଅର୍ଥାତ୍ ରୂପକରେ ସଦୃଶ ବସ୍ତୁର ତାଦାତ୍ମ୍ୟ ମାତ୍ର ବିଷୟବିଶେଷରେ ଅବଭାସିତ ହୁଏ । କିନ୍ତୁ ପରିଣାମରେ ତାହା ନୁହେଁ । ଏଥିରେ ଉପମାନର ତାଦାତ୍ମ୍ୟ ଫଳସାଧନରୂପେ ଉପମେୟରେ ଆରୋପିତ ହୁଏ—
ଅର୍ଥାତ୍ ଆରୋପ୍ୟମାଣ ବସ୍ତୁ ଆପଣାର ପ୍ରୟୋଜନ ବଶତଃ ଆରୋପର ଉଦ୍ଦେଶ୍ୟ ସାଧନ କରେ । କୁଳମଣି ଅଳଙ୍କାରତରଙ୍ଗିଣୀ ।
ପରିଣାମ ଅଳଙ୍କାରରେ ଆରୋପ୍ୟମାଣ ବସ୍ତୁ ଆରୋପିତ ବିଷୟ ସହିତ ଅଭିନ୍ନରୂପରେ ପରିଣତ ହୋଇ ପ୍ରକୃତାର୍ଥର ଉପଯୋଗୀ ହୁଏ । ଯଥା—
ଅବାରିତ କରିଦେଲ ନବପ୍ରେମ କାମନା ସ୍ରୋତର ଧାର
କାମନା ନଦୀର କଳୁଷ ଶୋଧିଲେ ପ୍ରେମ ସେ ଅଗସ୍ତ୍ୟ ତାର ।
ରାଧାନାଥ — ସଯାତି ।
୬ । (ଆଧୁନିକ ବିଜ୍ଞାନ) ଜୀବଗଣର କ୍ରମ ବିବର୍ତ୍ତନ—
6 (Science) Evolution; cosmic evolution.

**ପରିଣାମ ଦର୍ଶନ**—ସଂ.ବି. (ପରିଣାମ+ଦର୍ଶନ)—ଦୂରଦର୍ଶିତା; ଭବିଷ୍ୟତରେ
Pariṇāma darsana କଅଣ ଘଟିବ, ଏହା ଜାଣିବା —
(ପରିଣାମ ଦୃଷ୍ଟି—ଅନ୍ୟରୂପ) Foresight; prudence; providence.

**ପରିଣାମ ଦର୍ଶିତା**—ସଂ. ବି—(ପରିଣାମ ଦର୍ଶିନ + ଭାବ ଅର୍ଥରେ ତା)—
Pariṇāma darśitā ଦୂରଦର୍ଶିତା— Far-sightedness; foresight.

**ପରିଣାମ ଦର୍ଶୀ**— ସଂ. ବିଣ. ( ପରିଣାମ ଦର୍ଶିନ୍; ପରିଣାମ + ଦୃଶ୍ ଧାତୁ +
Pariṇāmadarśi କର୍ତ୍ତୃ. ଇନ୍)— ଚରମଦର୍ଶୀ; ଭବିଷ୍ୟତ୍ ଦର୍ଶୀ,
(ପରିଣାମ ଦର୍ଶିନୀ—ସ୍ତ୍ରୀ) ସୁଦୂରଦର୍ଶୀ; ପରେ କି ଫଳ ଘଟିବ ଏଥିପ୍ରତି ଲକ୍ଷ୍ୟ ରଖି ଯେ କାର୍ଯ୍ୟ କରେ— Prudent; provident; farseeing; foresighted.

**ପରିଣାମ ବାଦ**—ସଂ. ବି—୧ । (ଆଧୁନିକ ବିଜ୍ଞାନ)—ସମସ୍ତ ଜୀବ ପ୍ରଥମରେ
Pariṇāma bāda ଗୋଟିଏ ଜୀବର କ୍ରମବିକାଶ ବା ପରିଣାମ, ଏହିଭଳି ବୈଜ୍ଞାନିକ ମତବିଶେଷ, ବିବର୍ତ୍ତନବାଦ—The Evolution theory of the universe.
[ଦ୍ର— ଏହି ମତକୁ ଇଂରାଜ ପଣ୍ଡିତ ଡାରୱିନ୍ ପ୍ରଥମେ ପ୍ରଚାର କଲେ ]
୨ । ସାଂଖ୍ୟମତ, ଯେଉଁ ମତରେ ଜଗତର ଉତ୍ପତ୍ତି ଓ ନାଶ ଅଦୃଷ୍ଟ ପରିଣାମରୂପେ କଥିତ (ହି. ଶ.)—2 The theory of Sāṁkhya philosophy that the creation is nothing but change.

**ପରିଣାମ ଶୂଳ**—ସଂ. ବି. ( ବୈଦ୍ୟକ )—ଶୂଳରୋଗବିଶେଷ, ଖାଦ୍ୟ-
Pariṇāma śūla ଦ୍ରବ୍ୟର ପରିପାକ ହେବା ସମୟରେ ପେଟକୁ ମାରିବା ରୋଗ—Renal colic; colic which is felt when the food is digested

**ପରିଣାମିବା** — ଗ୍ରା କ୍ରି. (ପଦ୍ୟ) (ସଂ. ପ୍ରଣାମ) —ପ୍ରଣମିବା, ନମସ୍କାର
Pariṇāmibā କରିବା—To make obeisence; to bow down before a person as a mark of reverence.

**ପରିଣାମୀ** — ସଂ. ବିଣ. (ପରିଣାମ + ଇନ୍; ୧ମା. ୧ବ)—ପରିବର୍ତ୍ତନଶୀଳ -
Pariṇāmi Changing; everchanging;changeable.

**ପରିଣାୟ**—ସଂ. ବି (ପରି+ନୀ ଧାତୁ=ନେବା+ଭାବ. ଅ)—
Pariṇāya ୧ । ପରିଣୟ, ବିବାହ—1 Marriage.
(ପରିଣାୟ—ଅନ୍ୟରୂପ) ୨ । ପଶାପାଲି ଓ ସତରଞ୍ଜ ପାଲିର ଗୁରିପାଖରେ ଗୋଟି ଚଳାଇବା—2. Moving the balls on the chess-board or dice-board.
୩ । ଗ୍ରାମ ଗୁରିପାଖେ ଥିବା ସର୍ବସାଧାରଣ ଜମି (ଯାଜ୍ଞବଲ୍କ୍ୟ ସ୍ମୃତି)-
3. The village common round a village.

**ପରିଣାୟକ**—ସଂ. ବିଣ ପୁଂ. (ପରି+ନୀ ଧାତୁ=ପାଇବା + କର୍ତ୍ତୃ.ଅକ)—
Pariṇāyaka ବିବାହକାରୀ, ଯେ କୌଣସି ସ୍ତ୍ରୀକୁ ବିବାହ କରେ— Marrying.
ସଂ. ବି. ପୁଂ—୧ । ସ୍ୱାମୀ, ପତି, ଭର୍ତ୍ତା—
1. Married husband.
୨ । ପ୍ରଭୁ—2 Lord; master.
୩ । ସେନା ଅଧିନାୟକ, ସେନାପତି—
3. Commander; general of an army.

**ପରିଣାହ**—ସଂ. ବି. (ପରି=ଚତୁର୍ଦ୍ଦିଗରେ+ନହ୍ ଧାତୁ=ବନ୍ଧନ କରିବା
Pariṇāha + କରଣ. ଅ)—୧ । ବ୍ୟାପ୍ତି, ବିସ୍ତାର—
(ପରିଣାହ—ଅନ୍ୟରୂପ) 1. Extension; extent.
୨ । ଓସାର—2. Breadth; width.
୩ । ବିଶାଳତା—
3. Expanse; latitude; extensiveness.
୪ । ପରିଧି—4. Circumference.
୫ । ଦୀର୍ଘଶ୍ୱାସ (ହି. ଶ.)—5. Sigh.

**ପରିଣାହୀ**—ସଂ. ବିଣ. (ପରିଣାହିନ୍; ପରି + ନହ୍ ଧାତୁ = ବନ୍ଧନ କରିବା
Pariṇāhi + କର୍ତ୍ତୃ. ଇନ୍)—୧ । ଓସାରିଆ —
(ପରିଣାହବାନ—ଅନ୍ୟରୂପ) 1. Broad.
୨ । ବିଶାଳ—2. Extensive.
୩ । ବିସ୍ତୃତ—3. Extended.
୪ । ପରିଧିବିଶିଷ୍ଟ—4. Circular.

**ପରିଣୀତ** —ସଂ. ବିଣ. ପୁଂ. (ପରି+ନୀ ଧାତୁ = ବିବାହ କରିବା+କର୍ମ. ତ)
Pariṇita ୧ । ବିବାହିତ—1. Married.

(ପରଣୀତା—ସ୍ତ୍ରୀ) ୨ । ସମାପ୍ତ, ସମ୍ପନ୍ନ (ହ୍ର. ଶ.)—
2. Accomplished.

**ପରଣେତା**—ସଂ. ବି. ପୁଂ.—(ପର+ନୀ ଧାତୁ+କର୍ତ୍ତୃ. ତୃ, ପରଣେତୃ;
Parineta ୧ମା. ୧ବ.)—ସ୍ୱାମୀ—Husband.
ସଂ. ବିଣ ପୁଂ—ବିବାହକାରୀ—Marrying.

**ପରିଣେୟ**—ସଂ ବିଣ. ପୁଂ —(ପରି+ନୀ ଧାତୁ=ପାଇବା+କର୍ମ. ଯ)—
Parineya ୧ । ବିବାହ ଯୋଗ୍ୟ—
(ପରିଣେୟା—ସ୍ତ୍ରୀ) 1 Marriageable.
୨ । ସ୍ୱାମୀରୂପେ ବରିତ ହେବାର ଉପଯୁକ୍ତ (ପୁରୁଷ)—
2. (a man) Fit to be taken as husband.

**ପରିତଃ**—ସଂ. ଅ.—(ପରି+ଚତୁର୍ଦ୍ଦିଗରେ ତସ୍)—୧ । ଚତୁର୍ଦ୍ଦିଗରେ—
Paritah 1. On all sides.
୨ । ସମ୍ପୂର୍ଣ୍ଣରୂପେ—2. Fully; completely.
୩ । ସର୍ବତୋଭାବରେ—3. In all ways.

**ପରିତପ୍ତ**—ସଂ. ବିଣ.—(ପରି+ତପ୍ ଧାତୁ=ତାପ ଦେବା+କର୍ମ. ତ)—
Paritapta ୧ । ସନ୍ତପ୍ତ, ଉତ୍ତପ୍ତ—1. Heated; hot.
(ପରିତପ୍ତା—ସ୍ତ୍ରୀ) ୨ । ମନସ୍ତାପ ଯୁକ୍ତ—
(ପରିତପ୍ତି—ବି) 2 Sorrowing; pained; sorry.
୩ । ପଶ୍ଚାତ୍ତାପଯୁକ୍ତ—3 Repentant.

**ପରିତାପ**—ସଂ. ବି. (ପରି+ତପ୍ ଧାତୁ+ଭାବ. ଅ)—୧ । ଉତ୍ତାପ—
Paritapa 1. Heat.
(ପଶ୍ଚାତାପ—ଅନ୍ୟରୂପ) ୨ । (ପରି+ତପ୍ ଧାତୁ+କରଣ. ଅ)—
ମନୋଦୁଃଖ, ମନସ୍ତାପ, ଶୋକ—
2. Sorrow; grief; anguish.
୩ । ସ୍ନେହ—3. Affection; attachment.
୪ । ଅନୁତାପ—Repentance.
୫ । ଭୟ; ଡର, (ହ୍ର ଶ.)—5 Fear.
୬ । ଉଦ୍‌ବେଗ (ହ୍ର ଶ.)—6. Anxiety.
୭ । (ପରି+ତପ୍ ଧାତୁ+ଅଧି. ଅ)—ନରକବିଶେଷ—
7. Name of a part of the hell.

**ପରିତାପିତ**—ସଂ. ବିଣ. (ପରିତାପ+ଯୁକ୍ତାର୍ଥେ. ଇତ)—୧ । ସନ୍ତାପିତ—
Paritapita 1. Heated.
(ପରିତାପିତା—ସ୍ତ୍ରୀ) ୨ । ଶୋକାନ୍ୱିତ—2. Grieved.
୩ । ଅନୁତାପିତ—3. Repentant.

**ପରିତାପିବା**—ଦେ (ପଦ୍ୟ) କ୍ରି. (ସଂ. ପରି+ତପ୍ ଧାତୁ)—
Paritapiba ୧ । ଦୁଃଖିତ କରାଇବା—
परितापना পরিতাপনা 1. To cause grief; to aggrieve.
୨ । ତତାଇବା—2. To heat.
୩ । ଅନୁତପ୍ତ କରାଇବା—3. To cause one to repent.

**ପରିତାପୀ**—ସଂ. ବିଣ. ପୁଂ (ପରିତାପ+ଇନ୍; ୧ମା. ୧ବ.)—
Paritapi ୧ । ପରିତାପିତ (ଦେଖ)—1 Paritapita (See)
(ପରିତାପିନୀ—ସ୍ତ୍ରୀ) ୨ । ଦୁଃଖ ବା ବ୍ୟଥାଦାୟକ—
2. Giving pain; painful; afflicting.

**ପରିତାଳ**—ଦେ. ବି—( ପରି+ତାଳ )—ଦୁଇବସ୍ତୁ ପରସ୍ପର ସହିତ
Paritala ବାଜିବା, ଘାତପ୍ରତିଘାତ—Collision; striking with each other.

> ବାଣେ ବାଣେ ପରିତାଳ, ଜ୍ୱୋଳିତ ବାଜିବ ଅନଳ,
> ଭଳ ଚନ୍ଦ ମନ ଭାବେ ସେ ମେଳ । ଭଞ୍ଜ, ବୈଦେହୀଶବିଳାସ ।
> ମୃତ୍ତିକ ମର୍କ ପରିତାଳ,
> ଦେହୁଁ ଗଳଇ ଶ୍ରମ ଝାଳ । ଜଗନ୍ନାଥ. ଭାଗବତ ।

**ପରିତିକ୍ତ**—ସଂ. ବିଣ (ପରି+ତିକ୍ତ)—ଅତ୍ୟନ୍ତ ପିତା—
Paritikta Very bitter.
ସଂ. ବି.—ନିମ୍ବ, ନିମ (ହ୍ର. ଶ)—Nima (tree)

**ପରିତୁଷ୍ଟ**—ସଂ. ବିଣ. ପୁଂ (ପରି=ଅତିଶୟ+ତୁଷ୍ ଧାତୁ=ସନ୍ତୁଷ୍ଟ
Paritushta ହେବା+କର୍ତ୍ତୃ. ତ)—୧ । ସମ୍ପୂର୍ଣ୍ଣରୂପେ ସନ୍ତୁଷ୍ଟ—
(ପରିତୁଷ୍ଟି, ପରିତୋଷ—ବି) 1. Fully satisfied.
(ପରିତୁଷ୍ଟା—ସ୍ତ୍ରୀ) ୨ । ପରିତୃପ୍ତ—2. Contented.
୩ । ଆନନ୍ଦିତ, ପ୍ରସନ୍ନ—3 Pleased.
୪ । ଅଭିଲଷିତ ଫଳ ପ୍ରାପ୍ତି ଦ୍ୱାରା ଯାହାର ମନ ବୋଧ ହୋଇ
ଅଛି—4. Satiated; gratified.

**ପରିତୃପ୍ତ**—ସଂ. ବିଣ ପୁଂ—(ପରି+ତୃପ୍ ଧାତୁ=ତୃପ୍ତ ହେବା+କର୍ତ୍ତୃ.
Paritrupta ତ.)—ପରିତୁଷ୍ଟ (ଦେଖ)
(ପରିତୃପ୍ତା—ସ୍ତ୍ରୀ) (ପରିତୃପ୍ତି—ବି) Paritushta (See)

**ପରିତେଜିବା**—ଦେ. (ପଦ୍ୟ) କ୍ରି.—(ସଂ. ପରିତ୍ୟାଗ)—ତ୍ୟାଗ କରିବା—
Paritejiba To give up; to abandon

> ନିର୍ଗୁଣ ଭାବକୁ ଯେ ବୁଝେ,
> ସକଳ କର୍ମ ପରିତେଜେ । ଦୀନ. ନିର୍ଗୁଣମାହାତ୍ମ୍ୟ ।

**ପରିତେଜ୍ୟା**—ଗ୍ରା. ବି.—(ସଂ. ପରିତ୍ୟଜନ)—ପରିତ୍ୟାଗ (ଦେଖ)
Paritejya Parityaga (See).

**ପରିତୋଷ**—ସଂ. ବି. (ପରି=ସମ୍ପୂର୍ଣ୍ଣ+ତୋଷ=ସନ୍ତୋଷ)—
Paritosha ୧ । ପରିତୃପ୍ତି—1 Satisfaction.
(ପରିତୁଷ୍ଟ—ବିଣ) ୨ । ମହାନନ୍ଦ—2. Great pleasure.
(ପଶ୍ଚତୋଷ, ପରିତୋଷଣ—ଅନ୍ୟରୂପ)

**ପରିତୋଷିବା**—ଦେ କ୍ରି. (ପଦ୍ୟ)—(ସଂ. ପରିତୋଷ)—
Paritoshiba ସନ୍ତୁଷ୍ଟ କରିବା; ପରିତୃପ୍ତ କରିବା—
परितोषा পরিতোষণা To satisfy; to gratify.

> ଏରୂପେ କୃଷ୍ଣ ଯେ ତୋଷେ,
> ନିଜ ଭକତ ପରିତୋଷେ । ଜଗନ୍ନାଥ. ଭାଗବତ ।

**ପରିତ୍ୟକ୍ତ**—ସଂ. ବିଣ. (ପରି+ତ୍ୟଜ୍ ଧାତୁ=ତ୍ୟାଗ କରିବା+କର୍ମ. ତ)—
Parityakta ୧ । ବର୍ଜିତ—1. Abandoned.
(ପରିତ୍ୟକ୍ତା—ସ୍ତ୍ରୀ) ୨ । ଯାହାର ସଙ୍ଗ ତ୍ୟାଗ କରା ଯାଇଥାଏ—
(ପରିତ୍ୟାଗ, ପରିତ୍ୟଜନ—ବି) 2 Shunned.

**ପରିତ୍ୟକ୍ତା**—ସଂ. ବିଣ. ସ୍ତ୍ରୀ. (ପରିତ୍ୟକ୍ତ+ଆ)—ଯେଉଁ ସ୍ତ୍ରୀକୁ ସ୍ୱାମୀ ତ୍ୟାଗ
Parityakta କରିଅଛି—(a wife) Abandoned by the husband
ସଂ. ବିଣ. ପୁଂ. (ପରି+ତ୍ୟଜ୍ ଧାତୁ+କର୍ତ୍ତୃ. ତୃ; ପରିତ୍ୟକ୍ତୃ;
(ପରିତ୍ୟକ୍ତ୍ରୀ—ସ୍ତ୍ରୀ) ୧ମା. ୧ବ)—ପରିତ୍ୟାଗକାରୀ—
Abandoning.

**ପରିତ୍ୟଜନ**—ସଂ. ବି. (ପରି+ତ୍ୟଜ୍ ଧାତୁ=ତ୍ୟାଗ କରିବା+ଭାବ ଅନ)
Parityajana ୧ । ବର୍ଜନ, ପରିତ୍ୟାଗ—
(ପରିତ୍ୟାଜନ—ଅନ୍ୟରୂପ—ହି. ଶ) 1. Abandonment.
୨ । ସଙ୍ଗ ତ୍ୟାଗ—2. Shunning one's society.
୩ । ଅଭ୍ୟାସାଦିର ତ୍ୟାଗ—3 Giving up of a habit.

**ପରିତ୍ୟଜ୍ୟ**—ସଂ ବିଣ. (ପରି+ତ୍ୟଜ୍ ଧାତୁ+କର୍ମ ଯ)—ପରିତ୍ୟାଜ୍ୟ;
Parityajya ବର୍ଜନୀୟ (ହି. ଶ.)—Fit to be abandoned
(ପରିତ୍ୟାଜ୍ୟ—ଅନ୍ୟରୂପ) or shunned.

**ପରିତ୍ୟାଗ**—ସଂ ବି. (ପରି+ତ୍ୟଜ୍ ଧାତୁ+ତ୍ୟାଗ କରିବା+ଭାବ. ଅ)—
Parityāga ପରିତ୍ୟଜନ (ଦେଖ)—Parityajana (See).
(ପରିତ୍ୟକ୍ତ—ବିଣ)

**ପରିତ୍ୟାଜ୍ୟ**—ସଂ ବିଣ. (ପରି+ତ୍ୟଜ୍ ଧାତୁ=ତ୍ୟାଗ କରିବା+କର୍ମ ଯ)
Parityājya ପରିତ୍ୟାଗ କରିବାର ଯୋଗ୍ୟ, ବର୍ଜନୀୟ—
(ପରିତ୍ୟଜ୍ୟା—ସ୍ତ୍ରୀ) Fit to be abandoned or shunned.

**ପରିତ୍ରାଣ**—ସଂ. ବି. (ପରି=ସମ୍ପୂର୍ଣ୍ଣରୂପେ+ତ୍ରୈ ଧାତୁ=ଉଦ୍ଧାର କରିବା
Paritrāṇa +କର୍ମ. ତ)—୧ । ମୁକ୍ତି, ଉଦ୍ଧାର—
1. Deliverance; liberation.
୨ । ମୋକ୍ଷ—2 Salvation; final beatitude.
୩ । ରକ୍ଷା—3. Protection; preservation.
୪ । ଦେହର ଲୋମ (ହି. ଶ)—4 The hair of the body; fur.

ସଂ. ବିଣ. ଓ ବି (ପରି+ତ୍ରୈ ଧାତୁ+କର୍ତ୍ତୃ. ଅନ)—
୧ । ପରିତ୍ରାତା, ରକ୍ଷାକର୍ତ୍ତା—
1. Pretector; saver
ମୋହଲେ ତୁ ପରିତ୍ରାଣ ନାହିଁ ସ୍ୱ ଅଛନ୍ତ୍ର କାଣ, ନିଃଶେଷ କଲ୍ଲଃ ଦେହଜୀହା—
ଅବସ୍ତୁହୁଁ। କହୋଳ ଭଞ୍ଜ—ଛ ଗୀତ ।
୨ । ମୋକ୍ଷଦାତା—2. Saviour
୩ । ଉଦ୍ଧାରକର୍ତ୍ତା—3 Deliverer.

**ପରିତ୍ରାତ**—ସଂ. ବିଣ. ପୁଂ (ପରି+ତ୍ରୈ ଧାତୁ=ରକ୍ଷା କରିବା+କର୍ମ ତ)—
Paritrāta ୧ । ମୁକ୍ତିପ୍ରାପ୍ତ, ବନ୍ଧନାଦିରୁ ମୁକ୍ତ—
(ପରିତ୍ରାତା—ସ୍ତ୍ରୀ) 1. Delivered; liberated.
୨ । ମୋକ୍ଷପ୍ରାପ୍ତ—2. Saved.
୩ । ରକ୍ଷିତ—3 Protected; preserved.

**ପରିତ୍ରାତା**—ସଂ. ବିଣ. ଓ ବି. ପୁଂ. (ପରି+ତ୍ରୈ ଧାତୁ=ରକ୍ଷା କରିବା+
Paritrāta କର୍ତ୍ତୃ. ତୃ, ପରିତ୍ରାତୃ, ୧ମା. ୧ବ)—
୧ । ଉଦ୍ଧାରକର୍ତ୍ତା—1. Delivering; deliverer.
୨ । ମୋକ୍ଷଦାତା—2. Saving; saviour.
୩ । ରକ୍ଷକ—3. Protecting, protector; preserving preserver.
(ପରିତ୍ରାତ୍ରୀ—ସ୍ତ୍ରୀ)

ସଂ. ବିଣ. ସ୍ତ୍ରୀ (ପରିତ୍ରାତ+ଆ)—ପରିତ୍ରାତର ସ୍ତ୍ରୀଲିଙ୍ଗ—
Feminine of Paritrāta.

**ପରିତ୍ରାୟକ**—ସଂ. ବିଣ. ଓ ବି. ପୁଂ. (ପରି+ତ୍ରୈ ଧାତୁ+କର୍ତ୍ତୃ. ଅକ)—
Paritrāyaka ପରିତ୍ରାତା (ଦେଖ)—Paritrāta (See).
(ପରିତ୍ରାପକ—ଅନ୍ୟରୂପ—ହି. ଶବ୍ଦସାଗର)
(ପରିତ୍ରାୟିକା—ସ୍ତ୍ରୀ)

**ପରିତ୍ରାହି**—ସଂ କ୍ରି—(ପରି+ତ୍ରୈ ଧାତୁର ଅନୁଜ୍ଞାର୍ଥେ, ଲୋଟ୍, ମଧ୍ୟମ
Paritrāhi ପୁରୁଷ ଏକବଚନ)—ରକ୍ଷାକର, ଉଦ୍ଧାର କର ।
ହେ ପ୍ରଭୋ ! ମତେ ପରିତ୍ରାଣ କର—
Oh Lord ! save me
[ ତ୍ର—ସଂସ୍କୃତ ତ୍ରୈ ଧାତୁ ଆତ୍ମନେପଦୀ, ମାତ୍ର ଲୋଟ 'ସ୍ୱ' ବିଭକ୍ତିରେ ବିକଳ୍ପରେ 'ହି' ଆଦେଶ ହୁଏ, ସଂସ୍କୃତରେ ମଧ୍ୟ ଏଭଳି ପ୍ରୟୋଗ ଦେଖାଯାଏ, ଯଥା—ପରିତ୍ରାହି ଜଗନ୍ନାଥ ତ୍ୱାମେବ ଶରଣଂ ଗତଃ, ତ୍ରାହିମାଂ ମଧୁସୂଦନ ଇତ୍ୟାଦି । ]
ଦେ. ବି—ବିପନ୍ନ ବ୍ୟକ୍ତିର ତ୍ରାହି ତ୍ରାହି ରବ—
ପରିତ୍ରାହି ତ୍ରାହି The call of a person in destress for protection

**ପରିଦଗ୍ଧ**—ସଂ. ବିଣ. (ପରି+ଦଗ୍ଧ)—୧ । ଈଷତ୍ ଦଗ୍ଧ; ସାମାନ୍ୟରେ
Paridagdha ପୋଡ଼ି ଯାଇଥିବା—
1. Slightly burnt, scorched; scalded

**ପରିଦର**—ସଂ. ବି. (ପରି+ଦୃ. ଧାତୁ+କର୍ତ୍ତୃ ଅ; ତୁଳ. ଇଂ. ପାଇରିଆ)
Paridara ଦନ୍ତରୋଗବିଶେଷ, ଯହିଁରେ ଦାନ୍ତମାଢ଼ିରୁ ଦାନ୍ତ ଅଲଗା ହୋଇଯାଏ ଓ ଛେପ ସଙ୍ଗେ ରକ୍ତ ପଡ଼େ—
A disease of the teeth; pyrrhea; looseness of the teeth accompanied with bleeding.

**ପରିଦର୍ଶନ**—ସଂ ବି (ପରି+ଦର୍ଶନ)—ଉତ୍ତମରୂପେ ଦେଖିବା; ମନୋ-
Paridarśana ଯୋଗ ପୂର୍ବକ ଅବଲୋକନ—
Inspection, observation.
(ପରିଦ୍ରଷ୍ଟା, ପରିଦର୍ଶକ; ପରିଦୃଷ୍ଟ, ପରିଦର୍ଶିତ—ବିଣ)

**ପରିଦାନ**—ସଂ. ବି—(ପରି=ବଦଳରେ+ଦାନ)— । ବିନିମୟ,
Paridāna ପ୍ରତିବଦଳ—1. Exchange.
୨ । ବନ୍ଧକ ଜିନିଷକୁ ଫେରାଇଦେବା—
2. The returning of a pledge.
୩ । ଉଆପସ କରିବା, ନେଇଥିବା ବସ୍ତୁକୁ ଲେଉଟାଇବା—
3. Return of a thing taken.

**ପରିଦାୟୀ**—ସଂ. ବି. ପୁଂ. (ପରି+ଦା ଧାତୁ+କର୍ତ୍ତୃ. ଇନ୍; ୧ମା. ୧ବ)—
Paridāyi ପରିବେତ୍ତାର ଶ୍ୱଶୁର, ବଡ଼ ଭାଇ ଅବିବାହିତ ଥାଉଁ ଥାଉଁ ଯେଉଁ ସାନ ଭାଇ ବିବାହ କରେ, ଏପରି ବର ସଙ୍ଗେ ନିଜର କନ୍ୟାର ବିବାହ ଦେବା ବ୍ୟକ୍ତି—
A person who gives his daughter or ward in marriage to a man whose elder brother is not yet married.

**ପରିଦାସ**—ଦେ. ବି—୧ । ଦାସର ଦାସ; ଅନୁଦାସ—
Paridāsa 1. Slave of a slave.
୨ । ଅତି ସାନ ଦାସ—
2 A very humble servant
ତାରକା ପଦ ଚରଣେ ଦାସ ପରିଦାସ । ବିଶ୍ୱନାଥ. ଭକ୍ତଅଭିଳାଷ ।

**ପରିଦାହ**—ଦେ. ବି. ( ପରି+ଦାହ )—
Paridāha ୧ । ଅତ୍ୟନ୍ତ ଦାହ ବା ଜ୍ୱଳନ—
(ପରୀଦାହ—ଅନ୍ୟରୂପ) 1. Much burning
(ପରିଦଗ୍ଧ—ବିଣ) ୨ । ମାନସିକ ପୀଡ଼ା, ସନ୍ତାପ—
2 Grief; anguish.

**ପରିଦଗ୍ଧ**—ସଂ. ବି— ମାଂସ ପୂର ଦିଆଯାଇଥିବା ପିଠା—
Paridigdha Meat covered with meal (M. W)

**ପରିଦନ**—ଦେ. ବି. (ସଂ. ପରେଦ୍ୟୁଃ)—ପଅର ଦିନ—
Paridina Day before yesterday, day after tomorrow.
ପরশু परसों

**ପରିଦୀନ**—ସଂ. ବିଣ. ପୁଂ. (ପରି+ଦୀନ)—ଅତ୍ୟନ୍ତ ବ୍ୟସ୍ତ—
Paridīna Much dejected or afflicted.
(ପରିଦୀନା—ସ୍ତ୍ରୀ)

**ପରିଦୁର୍ବଳ**—ସଂ. ବିଣ. ପୁଂ —ଅତ୍ୟନ୍ତ ଅଶକ୍ତ—
Paridurbala Extremely weak or decrepit.
(ପରିଦୁର୍ବଳା—ସ୍ତ୍ରୀ, ପରିଦୁର୍ବଳତା – ସ୍ତ୍ରୀ)

**ପରିଦୃଶ୍ୟମାନ**—ସଂ. ବିଣ. (ପରି=ସବୁ ଆଡ଼େ+ଦୃଶ୍ୟମାନ)—
Paridṛuśyamāna ଚତୁର୍ଦ୍ଦିଗରେ ଦେଖା ଯାଉଥିବା—
Seen around.

**ପରିଦୃଷ୍ଟ**—ସଂ ବିଣ— ୧ । ଭଲ କରି ଦେଖା ଯାଇଥିବା—
Paridṛushṭa 1 Beheld.
୨ । ଅନୁଭୂତ—2. Perceived.
୩ । ଜ୍ଞାତ—3. Known.

**ପରିଦୃଢ**— ସଂ. ବିଣ. (ପରି+ଦୃଂହ ଧାତୁ+କର୍ମ ତ)—ଦୃଢ଼ୀକୃତ—
Paridṛuddha Made strong or firm; strengthened.
(ପରିଦୃଂହଣ—ବି)

**ପରିଦେବ** – ସଂ. ବି.(ପରି+ଦେବ ଧାତୁ=ବିଳାପ କରିବା+ଭାବ. ଅ)—
Parideba ୧ । ବାହୁନା କାନ୍ଦଣା; ବିଳାପ, ଖେଦୋକ୍ତି—
1. Lamentation; bewailing.
୨ । ଅନୁତାପ—2. Repentance
(ପରିଦେବନ, ପରିଦେବନା—ଅନ୍ୟରୂପ)

**ପରିଦେବକ**—ସଂ. ବି. ପୁଂ (ପରି+ଦେବ ଧାତୁ+କର୍ତ୍ତୃ ଅକ)—
Paridebaka ୧ । ଯେ ବିଳାପ କରେ—1. One who
(ପରିଦେବିକା—ସ୍ତ୍ରୀ) wails or complaints.
୨ । ଯେ ଅନୁତାପ କରେ—2. One who repents.

**ପରିଦେବିତ**—ସଂ. ବିଣ. (ପରି+ଦେବ ଧାତୁ+କର୍ମ. ତ)—
Paridebita ୧ । ଯାହାପାଇଁ ବିଳାପ କରାଯାଏ—
1. Lamented; bewailed.
ସଂ. ବି. ( +ଭାବ. ତ )—ବିଳାପ—Bewailing; lamentation.

**ପରିଦେବୀ**—ସଂ. ବିଣ. ପୁଂ ( ପରି ଦେବିନ୍; ପରି+ଦେବ ଧାତୁ+କର୍ତ୍ତୃ. ଇନ୍ )—୧ । ବିଳାପକାରୀ; ବିଳାପୀ—
Paridebī
(ପରିଦେବିନୀ—ସ୍ତ୍ରୀ) 1. Lamenting; bewailing.
୨ । ଅନୁତାପୀ—2. Repentant.

**ପରିଦ୍ୟୂନ**—ସଂ ବିଣ (ପରି+ଦେବ ଧାତୁ+କର୍ତ୍ତୃ. ତ)—
Paridyūna ୧ । ଦୁଃଖିତ—1. Sorrowful
୨ । ଅନ୍ୟ ଦ୍ୱାରା ଦୁଃଖ ପ୍ରାପ୍ତ—
2 Made miserable by another

**ପରିଧାତବ୍ୟ**—ସଂ. ବିଣ. ( ପରି+ଧା ଧାତୁ=ଧାରଣ କରିବା+କର୍ମ. ତବ୍ୟ)—ପରିଧେୟ—Fit to be worn.
Paridhātabya

**ପରିଧାନ**—ସଂ. ବି (ପରି+ଧା ଧାତୁ=ଧାରଣ କରିବା+ଭାବ. ଅନ)—
Paridhāna ୧ । ଲୁଗା ପିନ୍ଧିବା—1.Putting on or wearing of clothes; clothing.
(ପରିହିତ—ବିଣ)
୨ । ଘୋଡ଼ାଇବା, ଆଚ୍ଛାଦନ—2. Covering.
୩ । (ପରି+ଧା ଧାତୁ=ଧାରଣ କରିବା+କର୍ମ. ଅନ)—
ପରିଧେୟ ବସ୍ତ୍ର; ପିନ୍ଧା ଲୁଗା—
3 Cloth which a person wears.
୪ । ପୋଷାକ—4 Dress.
୫ । ଦେହକୁ ଲାଗି କରି ପିନ୍ଧାଯିବା ଲୁଗା—
5. An under garment.
୬ । ବୋଲା ଯାଉଥିବା ସ୍ତବ ଆଦିର ସମାପ୍ତି (ହ୍ରି. ଶ)—
6 Closing or concluding of a recitation
୭ । (+କରଣ. ଅ) ଘୋଡ଼ଣୀ—7. Lid.

**ପରିଧାନ କରିବା**—ଦେ. କ୍ରି—ପିନ୍ଧିବା—To wear; to put on.
Paridhāna karibā
পরিধান করা परिधान करना

**ପରିଧାନ ବଲ୍କଲ**—ସଂ. ବି. (ପରିଧାନ+ବଲ୍କଲ)—
Paridhāna balkala ବସ୍ତ୍ର ରୂପେ ବ୍ୟବହୃତ ଗଛର ଛାଲ—
The bark of a tree used as cloth.

**ପରିଧାନ ବସ୍ତ୍ର**—ସଂ. ବି. (ପରିଧାନ+ବସ୍ତ୍ର)—୧ । ପିନ୍ଧିବା ଲୁଗା—
Paridhāna bastra 1. A cloth which is worn.
(ପରିଧାନ ବାସଃ—ଅନ୍ୟରୂପ) ୨ । ପୋଷାକ—2. Dress.
୩ । ଦୁପଟା—3. An upper garment. (M. W.)

**ପରିଧାନୀୟ**—ସଂ. ବିଣ (ପରି+ଧା ଧାତୁ+କର୍ମ. ଅନୀୟ)—
Paridhānīya ପିନ୍ଧିବାର ଯୋଗ୍ୟ—Fit to be put on.
ସଂ. ବି—ପିନ୍ଧା ଲୁଗା, ଧୋତି—An under garment.

**ପରିଧାପନ**—ସଂ. ବି. (ପରି+ଧାପି ଧାତୁ=ପିନ୍ଧାଇବା; ଧୋଇବା ଇତ୍ୟାଦି +କର୍ମ. ଅନ)—୧ । ପରିଧାନ ବସ୍ତ୍ର—
Paridhāpana
(ପରିଧାପକ—ବିଣ) 1. A cloth used for wearing.
୨ । (ପରି+ଧାପି ଧାତୁ+ଭାବ. ଅନ) ଲୁଗା ପିନ୍ଧାଇବା—
2. Causing to put on; dressing up another person.

**ପରିଧାବନ**—ସଂ. ବି—(ପରି+ଧାବନ)—୧ । ପଶ୍ଚାଦ୍ଗମନ—
Paridhābana 1. Following.
୨ । ପଶ୍ଚାଦ୍ଧାବନ—2. Pursuing.
୩ । ଭୃତ୍ୟରୂପେ ସେବା—3. Attendance. (as a servant); rendering of personal service.
୪ । ପଳାଇ ଯିବା—
4. Running away; escaping. (M. W.)

**ପରିଧାପ୍ୟ**—ସଂ. ବି—(ପରି+ଧା ଧାତୁ=ଧାରଣ କରିବା+କର୍ମ. ଅ)—
Paridhāya ୧ । ପରିଚ୍ଛଦ, ପୋଷାକ—1. Dress; clothes
୨ । (ପରି+ଧା ଧାତୁ+ଭାବ. ଅ) ପରିଧାନ; ପିନ୍ଧିବା—
2. Wearing.
୩ । (ପରି+ଧା ଧାତୁ+ଅଧିକରଣ. ଅ)—ନିତମ୍ବ—
3. Buttocks.
୪ । ଜଳାଧାର—4. Receptacle for water.
୫ । (+କର୍ତ୍ତୃ. ଅ)—ଅନୁଚରବର୍ଗ—
5. Train; retinue. (M. W.)

**ପରିଧାୟକ**—ସ ବିଣ. ପୁଂ. (ପରି+ଧା ଧାତୁ+କର୍ତ୍ତୃ. ଅକ)—
Paridhāyaka ୧ । ଗୁରିଆଡ଼େ ଘେରିଥିବା—
(ପରିଧାୟିକା—ସ୍ତ୍ରୀ) 1. Surrounding.
୨ । କୌଣସି ବସ୍ତୁକୁ ଗୁଡ଼ାଇଥିବା—2. Winding.
ସ. ବି—୧ । ବାଡ଼ (ହି. ଶ.)—
1. Fencing; enclosure.
୨ । ଛଡ଼ଦେବାଲି (ହି. ଶ.), ହତା—
2. Compound wall.

**ପରିଧାରଣ**—ସ ବି—(ପରି+ଧୃ ଧାତୁ=ଧାରଣ କରିବା+କର୍ତ୍ତୃ.ଅନ)—
Paridhārana ୧ । ପ୍ରତିବନ୍ଧକ—1. Obstacle; obstruction.
୨ । (+ଭାବ ଅନ)—ବହନ—
2. Bearing; carrying. (M W.)
୩ । ଟେକି ଧରିବା—3 Supporting. (M. W.)
୪ । ସହନ—4. Enduring. (M. W)

**ପରିଧାରଣା**—ସ ବି—(ପରି+ଧୃ ଧାତୁ=ଧରିବା+ଭାବ.ଅନ+ସ୍ତ୍ରୀ ଆ)—
Paridhāranā ୧ । ଧରି ରଖିବା—1. Holding fast.
୨ । ଧୈର୍ଯ୍ୟ—2. Patience. (M W.)
୩ । ଅଧ୍ୟବସାୟ—3. Perseverance. (M. W.)

**ପରିଧି**—ସ. ବି.—(ପରି+ଧା ଧାତୁ=ଧରିବା+କର୍ମ. ଇ)—
Paridhi ୧ । (ଜ୍ୟାମିତି) ବୃତ୍ତର ଚତୁଃ ସୀମାରେ ଥିବା ରେଖା; ବେଢ଼—1. (geometry) Circumference of a circle.
୨ । ସୂର୍ଯ୍ୟ ବା ଚନ୍ଦ୍ରର ମଣ୍ଡଳ—
2. The disc or orb of the sun & the moon.
୩ । ବୃତ୍ତ—3 Circle.
୪ । ପରିବେଷ୍ଟନ—4. Surrounding
୫ । ଚକ୍ରବାଳ; ଦିଗ୍‌ବଳୟ—5. Horizon.
୬ । ସୂର୍ଯ୍ୟ ବା ଚନ୍ଦ୍ରର ଗୁରି ପାଖରେ ପଡ଼ବା ବଳୟାକାର ଉଜ୍ଜ୍ୱଳ ରେଖା—6. A halo or bright circle seen round the sun & the moon.

ସୂର୍ଯ୍ୟ ମଣ୍ଡଳରେ ତ ପଡ଼ଲ ପରିଧି — କୃଷ୍ଣସିଂହ ମହାଭାରତ ବନ ।

୭ । ଚକର ପହି—
7. The rim or circumference of a wheel.
୮ । ବାଡ଼, ଘେର—
8 Fencing; enclosure (M. W.)
୯ । ଯଜ୍ଞାଗ୍ନିକୁ ସ୍ୱସ୍ଥାନରେ ରଖିବା ପାଇଁ ଅଗ୍ନିର ଗୁରିପାଖେ ସ୍ଥାପିତ ୩ ଖଣ୍ଡ ଲମ୍ବ ଡାଳ ବା କାଠି—6. The three fresh sticks laid round a sacrificial fire to keep it together (M W.)
[ଦ୍ର—ଏ ତିନି ଖଣ୍ଡ କାଠିକୁ ଯଥାକ୍ରମେ ମଧ୍ୟମ ଦକ୍ଷିଣ ଓ ଉତ୍ତର ପରିଧି ବୋଲାଯାଏ—M. W.)
୧୦ । (ପୃଥିବୀର ସ୍ଥଳଭାଗକୁ ବେଢ଼ି ଥିବାରୁ) ସମୁଦ୍ର—
10. The ocean.
୧୧ । ପରିଧେୟ ବସ୍ତ୍ର, ଲୁଗା, ପୋଷାକ (ହି. ଶ)—
11. Clothes; dress; garment.
୧୨ । ଘୋଡ଼ଣୀ—12 Cover. (M W)
୧୩ । (ଜ୍ୟୋତିଷ; ସୂର୍ଯ୍ୟସିଦ୍ଧାନ୍ତ) ପ୍ରଥମ କ୍ଷୁଦ୍ର ବୃତ୍ତର ପରିଧିରେ ଥିବା ବିନ୍ଦୁକୁ କେନ୍ଦ୍ର କରି ଅଙ୍କିତ ବୃତ୍ତ—
13. Epicycle. (M. W.)
୧୪ । ଯଜ୍ଞୀୟ ପଶୁ ଯେଉଁ ଡାଳରେ ବନ୍ଧାଯାଏ—
14. The branch of the tree to which the sacrificial victim is tied (M. W.)

**ପରିଧିସ୍ଥ**—ସ. ବି—(ପରିଧି+ସ୍ଥା ଧାତୁ=ରହିବା, କର୍ତ୍ତୃ. ଅ; ପରିଧିରେ
Paridhistha ଅବସ୍ଥିତ)—୧ । ଶରୀର ରକ୍ଷକ, ଭୃତ୍ୟ—
1. Bodyguard.
୨ । ଯୁଦ୍ଧରେ ରଥ ଓ ରଥୀକୁ ରକ୍ଷା କରିବା ପାଇଁ ସ୍ଥାପିତ ପ୍ରହରୀ (ହି. ଶ)—2. A guard posted to keep watch on the chariot & the charioteer.
୩ । ମୋସାହେବ (ଗ୍ଲାଡେନ୍ସ)—
3. A hanger on; a toady.
ସ. ବିଣ—୧ । ପରିବେଷ୍ଟନକାରୀ—1. Surrounding.
୨ । ଚତୁଃପାର୍ଶ୍ୱସ୍ଥ—
2. Situated on the four sides.

**ପରିଧୂପନ**—ସ. ବି—(ପରି=ଗୁରିଆଡ଼େ+ଧୂପି ଧାତୁ=ଧୂଆଁ ଦେବା+
Paridhūpana ଭାବ. ଅନ)—୧ । ଗୁରିଆଡ଼େ ଧୂଆଁ ଦେବା—
1. Fumigation.
ପରିଧୂମନ } ଅନ୍ୟରୂପ
ପରିଧୂମାୟନ
୨ । ସୁଶ୍ରୁତ ଅନୁସାରେ ତୃଷ୍ଣା ରୋଗର ଏକ ଉପଦ୍ରବ । ଯହିଁରେ ବିଶେଷ ପ୍ରକାରର ବମନୋଦ୍ୱେଗ ହୁଏ (ହି. ଶ.)—2. A violent symptom of vomiting in a disease attended with extreme thirst.

**ପରିଧୂପିତ**—ସ. ବିଣ. (ପରି+ଧୂପି ଧାତୁ+କର୍ମ. ତ)—୧ । ଧୂପଦ୍ୱାରା
Paridhūpita ସୁଗନ୍ଧୀକୃତ—1. Scented by fumigation.
୨ । ଧୂପର ସୁଗନ୍ଧଦ୍ୱାରା ଚତୁର୍ଦ୍ଦିଗ ଆମୋଦିତ—2. With sweet smell diffused on all sides by fumigation.

**ପରିଧେୟ**—ସ. ବିଣ. (ପରି+ ଧା ଧାତୁ+କର୍ମ. ଯ)—ପରିଧାନ ଯୋଗ୍ୟ—
Paridheya Fit to be put on.

ସଂ. ବି. (+ଭାବ. ଯ)—ପିନ୍ଧା ଲୁଗା, ଧୋତି—
An under garment (M. W)

**ପରିଧେୟ ବସ୍ତ୍ର**—ସଂ. ବି. (କର୍ମଧା, ପରିଧେୟ+ବସ୍ତ୍ର)—ପୋଷାକ—
Paridheya bastra Wearing apparel.

**ପରିନିର୍ବାଣ**—ସଂ. ବି —(ପରି=ସମ୍ପୂର୍ଣ୍ଣ+ନିର୍ବାଣ)—୧ । ସମ୍ପୂର୍ଣ୍ଣ ନିର୍ବାଣ
Parinirbāṇa ବା ମୋକ୍ଷ—1. Entire cessation of rebirth.
(ପରିନିର୍ବୃତି—ବିଣ)
(ପରିନିର୍ବାତି, ପରିନିର୍ବୃତି—ଅନ୍ୟରୂପ)
୨ । ବ୍ୟକ୍ତିତ୍ୱର ସମ୍ପୂର୍ଣ୍ଣ ଲୋପ—2 Complete extinction of individuality. (M. W.)

**ପରିନିଷ୍ଠା**—ସଂ. ବି. (ପରି+ନିଷ୍ଠା)—୧ । ପରାକାଷ୍ଠା; ଚରମ ସୀମା—
Parinishṭhā 1. Extreme limit; maximum limit
(ପରିନିଷ୍ଠିତ—ବିଣ) ୨ । ପୂର୍ଣ୍ଣତା—
2 Fullness; completeness; accomplishment.
୩ । ଜ୍ଞାନର ପୂର୍ଣ୍ଣତା (ହି. ଶବ୍ଦସାଗର)—
3. Complete knowledge (M. W.)
୪ । ଅଭ୍ୟାସର ପୂର୍ଣ୍ଣତା (ହି. ଶବ୍ଦସାଗର)—
4. Completeness of habit or exercise.

**ପରିନୈଷ୍ଠିକ**—ସଂ ବିଣ. (ପରିନିଷ୍ଠା+ଇକ)—୧ । ସର୍ବଶ୍ରେଷ୍ଠ;
Parinaishṭhika ସର୍ବୋତ୍କୃଷ୍ଟ—1. Most excellent; perfect.
୨ । ସର୍ବୋଚ୍ଚ—2. Highest.

**ପରିପକ୍ୱ**—ସଂ. ବିଣ. (ପରି=ଉତ୍ତମରୂପେ+ପକ୍ୱ)—୧ । ସୁପକ୍ୱ—
Paripakwa 1. Well ripe; quite ripe.
(ପରିପକ୍ୱତା—ବି) ୨ । ସୁସିଦ୍ଧ—
2. Well boiled; well cooked; well dressed.
୩ । ସୁପରିଣତ—3. Well developed.
୪ । ସୁଜୀର୍ଣ୍ଣ—4. Well digested.
୫ । ପରିଣତ; ପ୍ରୌଢ଼ (ବୁଦ୍ଧି), ତୀକ୍ଷ୍ଣ—
5. Very sharp or mature (intellect).
୬ । ବହୁଦର୍ଶୀ—6 Experienced.
୭ । ନିପୁଣ; କୁଶଳ—7. Adept, skilful.
୮ । ମୁମୂର୍ଷୁ—8. Near death; about to pass away.

**ପରିପଣ**—ସଂ. ବି. (ପରି+ପଣ୍ ଧାତୁ=ବେପାର କରିବା+କରଣ. ଅ;
Paripaṇa ଯାହାଦ୍ୱାରା ବା ସାହାଯ୍ୟରେ ବେପାର କରାଯାଏ)—
ବ୍ୟବସାୟର ମୂଳ ଧନ, ପାଣ୍ଠି; ପୁଞ୍ଜି—
The capital of a trade.

**ପରିପଣିତ**—ସଂ. ବିଣ. (ପରି+ପଣ୍ ଧାତୁ=କ୍ରୟବିକ୍ରୟ କରିବା ଇତ୍ୟାଦ
Paripaṇita +କର୍ମ. ତ)—୧ । ବେପାରରେ ଲଗା ଯାଇଥିବା;
(ପରିପଣନ—ବି) ମୂଳଧନରୂପେ ଖଟା ଯାଇ ଥିବା—
1. Invested in trade.
୨ । ନ୍ୟାସୀକୃତ—2. Deposited in trust.
୩ । ବାଜୀ ରୂପେ ରଖା ଯାଇ ଥିବା—
3. Wagered. (M. W.)
୪ । ବନ୍ଧକ ରଖା ଯାଇ ଥିବା—4 Pledged. (M W)

**ପରିପଣ୍ଡିମା**—ସଂ. ବି. (ପରି+ପଣ୍ଡୁ+ଭାବାର୍ଥେ. ଇମନ୍)—ସମ୍ପୂର୍ଣ୍ଣ ଧଳା
Pari paṇḍimā ରଙ୍ଗ ବା ଫିକ୍କା ରଙ୍ଗ—
(ପରିପାଣ୍ଡିମା, ପରିପାଣ୍ଡୁରିମା—ଅନ୍ୟରୂପ) Complete whiteness or paleness.

**ପରିପନ୍ଥକ**—ସଂ. ବି.—(ପରି=ଦୋଷ ବର୍ଜ୍ଜନ+ପନ୍ଥକ=ଯେ ପଥରେ
Pari panthaka ଗମନ କରେ)—୧ । ପଥରୋଧକ ବ୍ୟକ୍ତି—
ପରିପନ୍ଥିକ } ଅନ୍ୟରୂପ 1. One who obstructs the way.
ପରିପନ୍ଥୀ }
୨ । ପ୍ରତିକୂଳ ବ୍ୟକ୍ତି; ବିରୋଧୀ ବ୍ୟକ୍ତି—2. Antagonist.
୩ । ଶତ୍ରୁ ବିପକ୍ଷ—3. Adversary; enemy.
ବେତି ଶଙ୍କ ପରିପନ୍ଥୀ ଅବ ଅଷ୍ଟ ଉଠୀ ଦଦେଗ୍ରୀ ସମ ।
ଉଷ. ବୈଦେହୀଶବିଳାସ ।
୪ । ଦସ୍ୟୁ, ଡକାଏତ, ବାଟଚୋରି—
4. Robber; highway man.
୫ । ବିଘ୍ନ; ବ୍ୟାଘାତ—5. Obstacle; hindrance.
ସଂ. ବିଣ.—୧ । ପଥ ଅବରୋଧକାରୀ—
1. Obstructing the way.
୨ । ପ୍ରତିକୂଳାଚାରୀ—2. Acting against.
୩ । ବାଧାଜନକ—3. Hindering, obstructing.

**ପରିପରା**—ଦେ. ବିଣ. ପୁଂ ଓ ସ୍ତ୍ରୀ—(ଭୁଲ. ସଂ. ପରିପରୀ=ଶତ୍ରୁ)—
Pari parā ୧ । ମନୁଆ—1. Self-willed.
୨ । ଯେ ଆପଣାକୁ ବଡ଼ ବୋଲି ମନେ କରେ—
2 One who thinks too much of one's self.
୩ । ନିର୍ଲଜ୍ଜ—3. Shameless.
୪ । ଯେ ଆପଣାର ବଡ଼େଇ କହି ହୁଏ—4 Boastful.
୫ । ଆପଣା ପ୍ରଶଂସା ଶୁଣିବାକୁ ଇଚ୍ଛୁକ—
5. Wishing to hear one's own eulogy.
ଦେ. ବି.—ନିର୍ଲଜ୍ଜତା—Shamelessness.

**ପରିପରୀ**—ସଂ. ବି.—ଶତ୍ରୁ; ବିପକ୍ଷ ବ୍ୟକ୍ତି—
Paripari Adversary; antagonist. (M. W.)

**ପରିପାକ**—ସଂ. ବି. (ପରି+ପଚ୍ ଧାତୁ=ରନ୍ଧନ କରିବା+ଭାବ. ଅ)—
Paripāka ୧ । ପରିଣାମ; ଶେଷାବସ୍ଥା—1. Final state.
(ପରୀପାକ—ଅନ୍ୟରୂପ) ୨ । ଉତ୍ତମରୂପେ ପାକ ହେବା ଅବସ୍ଥା—
2. Being completely cooked or dressed.
୩ । ଉତ୍ତମରୂପେ ଜୀର୍ଣ୍ଣ ହେବା, ହଜମ—
3. Digestion.
୪ । ପାଚିଯିବା; ପକ୍ୱତା—4. Ripening; maturity.
୫ । ନୈପୁଣ୍ୟ—5. Skill.
୬ । ଉତ୍କର୍ଷ—6. Excellence.
୭ । ପୂର୍ଣ୍ଣତା—7. Perfection. (M. W.)
୮ । ଫଳ—8. Result; consequence. (M. W.)
୯ । ଅନୁଭବ—9. Experience. (M. W.)
୧୦ । ଚତୁରତା—
10. Cleverness; shrewdness. (M. W.)

ଦେ ବିଣ—ପୂର୍ଣ୍ଣତା ପ୍ରାପ୍ତ, ପରିପକ୍ୱ—
Matured; ripened.

ଯେବେ ହେଲେ ବୃଦ୍ଧ ହୋଇ ପରିପାକ
କୁଳେ ଜାତ ଭାଙ୍କର ନୋହିଲ ପାଳକ । କୃଷ୍ଣସିଂହ, ମହାଭାରତ. ସଭା ।

**ପରିପାଟଳ**—ସଂ. ବିଣ. (ପରି+ପାଟଳ)—ଫିକା ନାଲି—
Paripāṭala (ପରିପାଟଳିମା—ବି) Pale red

**ପରିପାଟି(ଟୀ)**—ସଂ. ବି. ( ପରି=ପରେ, କ୍ରମେ କ୍ରମେ+ପଟ୍ ଧାତୁ ଣିଚ୍, Paripāṭi(ṭī) ପାଟ ଧାତୁ=ଗମନ କରିବା+ଭାବ. ଇ, ଈ)—
ପରିପାଟି ୧ । ଅନୁକ୍ରମ, ଆନୁପୂର୍ବିକ ଧାରା—
1. Order; succession.

କଥାରେ କଳଧୌତ ଦଶନକୁ ଉପାନ୍ତ ଦେଉଁ ପରିପାଟୀ ନାଶିଲା ।
ଉପେନ୍ଦ୍ର. ବୈଦେହୀଶବିଳାସ ।

୨ । ସୁବ୍ୟବସ୍ଥା—2. Good arrangement.
୩ । ନୈପୁଣ୍ୟ, କୌଶଳ—3. Skill.
୪ । କାରିଗରି—4. Art.
୫ । ଉତ୍କର୍ଷ—5. Excellence.
୬ । ଢଙ୍ଗ, ରୀତି, ପଦ୍ଧତି—6 Method; mode; style.
୭ । ଅଙ୍କ, ଗଣିତ—7. Arithmetic (M. W.)
ଦେ. ବିଣ—୧ । ଧାରାବାହିକ—1. Methodical.
୨ । ମନୋହର; ସୁନ୍ଦର—
2 Graceful; neat; elegant.
୩ । ସୁବ୍ୟବସ୍ଥିତ—3. Well arranged; orderly.
୪ । ଉତ୍କୃଷ୍ଟ—4. Excellent.

**ପରିପାତ**—ସଂ. ବି. ( ପରି+ପତ୍ ଧାତୁ+ଭାବ. ଅ )—
Paripāta ବିଶେଷ ଭାବରେ ପତନ—
Falling copiously.

ଅନେକେ ଅଶ୍ରୁ ପରିପାତ, ଏକ ଅନେକେ କୋଳାଗତ ।
ଉପେନ୍ଦ୍ର. ପ୍ରେମସୁଧାମୃତ ।

**ପରିପାଳକ**—ସଂ. ବିଣ. ପୁଂ. ( ପରି+ପାଳକ )—
Paripālaka ୧ । ଯେ ପ୍ରତିପୋଷଣ କରେ—
(ପରିପାଳୟିତା—ଅନ୍ୟରୂପ) 1. Maintaining; fostering.
ପରିପାଳିକା, ପରିପାଳୟିତ୍ରୀ } ସ୍ତ୍ରୀ ୨ । ଆଶ୍ରୟଦାତା—2. Giving shelter.
୩ । ରକ୍ଷକ—3. Guarding; protecting.

**ପରିପାଳନ(ନା)**—ସଂ. ବି. (ପରି=ସର୍ବତୋଭାବରେ+ପାଳନ+ଅ)—
Paripālana(nā) ୧ । ପ୍ରତିପାଳନ; ପରିପୋଷଣ—
(ପରିପାଳିତ—ବିଣ) 1. Maintaining; fostering; nourishing.
୨ । ରକ୍ଷା କରିବା—2. Guarding; protecting.
୩ । ଯତ୍ନ ନେବା—3. Taking care of.

**ପରିପାଳିବା**—ଦେ. କ୍ରି. ( ସଂ. ପରିପାଳନ )—
Paripāliba ପ୍ରକାଶ କରିବା; ଦେଖାଇବା—
परिपाला परिपालन करना To exhibit; to manifest.

ସହଜେ ଦୟାଳୁ ଗୁଣ ପରିପାଳୁ ମୋହ ପଟ ନ ଥିବନରେ ।
କବିସୂର୍ଯ୍ୟ, ସଙ୍ଗୀତ ।

**ପରିପାର୍ଶ୍ୱ**—ସଂ ବିଣ—ନିକଟବର୍ତ୍ତୀ; ପାର୍ଶ୍ୱବର୍ତ୍ତୀ—
Paripārśwa Being at or by one's side.
ସଂ. ବି—ପାର୍ଶ୍ୱ (ହି. ଶ)—Side, flank.

**ପରିପୁଷ୍ଟ**—ସଂ. ବିଣ—୧ । ଉତ୍ତମ ରୂପେ ପାଳିତ; ଉତ୍ତମ ରୂପେ ପୋଷିତ—
Paripushṭa 1. Well nourished; well nurtured.
୨ । ହୃଷ୍ଟପୁଷ୍ଟ—2. Well developed.
(ପରିପୋଷ, ପରିପୋଷଣ—ବି)

**ପରିପିଙ୍ଗ**—ସଂ. ବିଣ—ଫିକା ନାଲି—
Paripinga Brownish red. (M. W.)
(ପରି ପିଞ୍ଜର—ଅନ୍ୟରୂପ)

**ପରିପିଚ୍ଛ**—ସଂ. ବି—ମୟୂର ପୁଚ୍ଛର ପରରେ ତିଆରି ଅଳଙ୍କାରବିଶେଷ—
Paripichchha An ornament made of the feathers of a peacock's tail. (M. W.)

**ପରିପିଷ୍ଟ**—ସଂ. ବିଣ. ( ପରି+ପିଷ୍ ଧାତୁ+କର୍ମ. ତ)—
Paripishṭa ୧ । ଦଳିତ—1. Crushed.
୨ । ଗୋଡରେ ମଳା ଚକଟା ହୋଇଥିବା, ପଦମର୍ଦ୍ଦିତ—
2. Trampled down.

**ପରିପିଷ୍ଟକ**—ସଂ. ବି—ସୀସା (ହି. ଶ.)—
Paripishṭaka Lead. (M. W.)

**ପରିପୀଡ଼ନ**—ସଂ. ବି. ( ପରି+ପୀଡ଼ନ )—୧ । ଚିପୁଡ଼ିବା—
Paripīrdana 1. Squeezing; pressing out. (M.W.)
(ପରିପୀଡ଼ିତ—ସ୍ତ୍ରୀ) ୨ । ଅନିଷ୍ଟ କରିବା—2. Injuring.
୩ । ଅତ୍ୟନ୍ତ ଦୁଃଖ ଦେବା—3. Tormenting.
୪ । ପେଷିବା—4. Grinding; pressing.

**ପରିପୂତ**—ସଂ. ବିଣ. ( ପରି+ପୂତ )—
Paripūta ୧ । ପରିଷ୍କୃତ—1. Cleansed.
(ପରିପୂତା—ସ୍ତ୍ରୀ) ୨ । ପାଛୁଡ଼ା ହୋଇ ପରିଷ୍କୃତ (ଶସ୍ୟାଦି)—
ପରିପାବନ, ପରିପୂତି } ବି 2. Winnowed (corn); threshed.
୩ । ଅତି ପବିତ୍ର; ବିଶୁଦ୍ଧ—3. Quite pure.
୪ । ପବିତ୍ରୀକୃତ—4. Purified
୫ । ଛଣା ହୋଇଥିବା—5 Strained.

**ପରିପୂରିତ**—ସଂ. ବିଣ. ( ପରି+ପୂରିତ )—
Paripūrita ୧ । ସମ୍ପୂର୍ଣ୍ଣ ସମାପ୍ତ—1 Finished.
(ପରିପୂରଣ—ବି) ୨ । ପୂର୍ଣ୍ଣ ହୋଇଥିବା—2. Filled up.
୩ । ସମ୍ପାଦିତ; ନିଷ୍ପନ୍ନ—3. Accomplished.
୪ । ଅନୁଭୂତ—4. Experienced. (M. W).

**ପରିପୂର୍ଣ୍ଣ**—ସଂ. ବିଣ. (ପରି=ସମ୍ୟକ୍+ପୂର୍ ଧାତୁ=ପରିପୂର୍ଣ୍ଣ ହେବା+
Paripūrṇṇa କର୍ତ୍ତୃ. ତ)—୧ । ପୂର୍ଣ୍ଣ ହୋଇଥିବା—
(ପରିପୂର୍ଣ୍ଣତା, ପରିପୂର୍ତ୍ତି—ବି) 1. Filled up.
୨ । ଭରପୂର—
2. Filled up to the brim; brimming with.

୩ । ପରିତୃପ୍ତ—3. Fully satisfied; quite content.
୪ । ସମ୍ପୂର୍ଣ୍ଣ—
4 Completed; finished; whole; perfect
୫ । ଧନାଦରେ ପୂର୍ଣ୍ଣ—5. Filled up with riches.
ତାଙ୍କ ବଇଭବରୁ କାହିଁ ମହିଜନ,
ଭଣ୍ଡାର କରୁ ନାହାନ୍ତି ପରିପୂର୍ଣ୍ଣ । କୃଷ୍ଣସିଂ. ମହାଭାରତ ସଭା ।
୬ । ସଫଳ, ସିଦ୍ଧ—6. Successful.
୭ । ପରିବ୍ୟାପ୍ତ—7. Diffused; spread on all sides.

**ପରିପୃଷ୍ଟ**—ସଂ. ବିଣ. (ପରି+ପୃଷ୍ଟ=ଜିଜ୍ଞାସିତ)—୧ । ସମ୍ୟକ୍‌ରୂପେ
Paripṛusta ଜିଜ୍ଞାସିତ—1. Well questioned.
(ପରିପୃଚ୍ଛା, ପରିପୃଚ୍ଛନ—ବି) ୨ । ତଦନ୍ତ କରାଯାଇଥିବା—
2. Enquired about.

**ପରିପେଲବ**—ସଂ. ବିଣ—ଅତି ସୁକୁମାର—Very delicate.
Paripelaba ସଂ. ବି—କେଉଟିଆ ମୁଥା—
Cyperus Rotundus. (M W.)

**ପରିପ୍ରେଷଣ**—ସଂ. ବି. (ପରି+ପ୍ର+ଇଷ୍ ଧାତୁ+ଭାବ. ଅନ)—
Paripreshana ୧ । ଚରିଆଡ଼କୁ ଦୂତ ପଠାଇବା—
(ପରିପ୍ରେଷିତ—ବିଣ) 1. Sending forth emissaries to all sides
୨ । ନିର୍ବାସନ—2. Exiling; transportation.
୩ । ପରିତ୍ୟାଗ କରଣ—3. Abandonment.

**ପରିପ୍ରେଷ୍ୟ**—ସଂ. ବି (ପରି+ପ୍ର+ଇଷ୍ ଧାତୁ+କର୍ମ. ଯ)—ଭୃତ୍ୟ—
Paripreshya Servant.
ସଂ. ବିଣ—ଦୂତ ରୂପେ ପ୍ରେରିତ ହେବା ଯୋଗ୍ୟ—
Fit to be sent forth as an emissary.

**ପରିପୋଟ**—ସଂ. ବି. (ପରି+ପୁଟ୍ ଧାତୁ=ଚୋପା ଛଡ଼ାଯିବା+ଭାବ.ଅ)—
Paripota ୧ । ଚୋପା ବା ଛାଲ ଛଡ଼ିଯିବା—
1. Peeling off or dropping off of the skin or bark; disquamation.
୨ । ବହୁତ ଭାରୀ ଅଳଙ୍କାର ପିନ୍ଧିବା ଯୋଗୁଁ କାନରେ ହେବା ଫୁଲା ଓ କ୍ଷତରୋଗ—Peeling off of the skin of the ear and swelling of the lobes due to wearing very heavy ear-ornaments.
(ପରିପୋଟକ, ପରିପୋଟନ, ପରିପୋଟିକା—ଅନ୍ୟରୂପ)

**ପରିପୋଷ**—ସଂ. ବି. (ପରି+ପୁଷ୍ ଧାତୁ+ଭାବ. ଅ)—
Pariposha ପୂର୍ଣ୍ଣ ପୁଷ୍ଟି ବା ବୃଦ୍ଧି—Good nourishment.

**ପରିପୋଷଣ**—ସଂ. ବି. (ପରି+ପୁଷ୍ ଧାତୁ+ଭାବ. ଅନ)—ପାଳନ—
Pariposhana । Nurture; nourishing.

**ପରିପ୍ଲବ**—ସଂ.ବି.(ପରି=ସର୍ବତୋଭାବରେ+ପ୍ଲୁ ଧାତୁ=ଭାସିବା+ଭାବ.ଅ)-
Pariplaba ୧ । ପ୍ଲାବନ—1. Flood.
୨ । ଉପଦ୍ରବ; ଅତ୍ୟାଚାର—2. Oppression; tyranny
୩ । ସନ୍ତରଣ—3. Swimming.
୪ । ଇତସ୍ତତଃ ଦଉଡ଼ିବା—4. Running to and fro.
୫ । (+କରଣ. ଅ)—ନୌକା—5. Boat.

ସଂ ବିଣ. (ପରି+ପ୍ଲୁ ଧାତୁ+କର୍ତ୍ତୃ. ଅ)—
୧ । ଆକୁଳ, ଅସ୍ଥିର—1. Restless.
୨ । କମ୍ପମାନ—2 Trembling

**ପରିପ୍ଲୁତ**—ସଂ. ବିଣ. (ପରି+ପ୍ଲୁ ଧାତୁ=ଭାସିବା+କର୍ତ୍ତୃ. ତ)
Paripluta ୧ । ପ୍ଲାବିତ; ମଗ୍ନ—1 Flooded; inundated.
୨ । ଅଭିଷିକ୍ତ, ସ୍ନାତ—2. Bathed.
(ପରିପ୍ଲୁତା—ସ୍ତ୍ରୀ) ୩ । ଆକୁଳିତ—3 Overwhelmed
୪ । ପାଣିରେ ବୁଡ଼ା ଯାଇଥିବା, ସିକ୍ତ—4 Immersed
୫ । କମ୍ପମାନ—5. Shaking; trembling
୬ । ଓଦା—6 Wet; moistened.
ସଂ. ବି—ଡିଆଁ, ଲୁଦା—A spring; jump. (M. W.)

**ପରିପ୍ଲୁତା**—ସଂ ବି. ସ୍ତ୍ରୀ. (ପରିପ୍ଲୁତ+ସ୍ତ୍ରୀ. ଆ)—୧ । ମଦିରା; ମଦ—
Paripluta 1. Wine; spirituous liquor.
୨ । ମୈଥୁନ ବା ଋତୁସ୍ରାବ କାଳରେ ଯେଉଁ ଯୋନିରେ ପୀଡ଼ା ଜାତ ହୁଏ (ହି. ଶ)—2. A female organ which becomes painful during coition or menses.
ସଂ. ବିଣ—ପରିପ୍ଲୁତର ସ୍ତ୍ରୀଲିଙ୍ଗ—
Feminine of Paripluta.

**ପରିଫୁଲ୍ଲ**—ସଂ. ବିଣ—୧ । ସମ୍ପୂର୍ଣ୍ଣରୂପେ ବିକସିତ (ନେତ୍ର)—
Pariphulla 1 Widely opened (eye).
୨ । ରୋମାଞ୍ଚିତ --2. Horripilated, with the hairs of the body standing on end.

**ପରିବକ୍ତ୍ରା**—ସଂ. ବି. (ପରି+ବକ୍ତ୍ର+ଆ)—ଗୋଲାକାର ବେଦୀ (ହି. ଶ.)
Paribaktra A circular pulpit or altar.

**ପରିବତ୍ସର**—ସଂ. ବି. (ଜ୍ୟୋତିଷ)—୧ । ଯେଉଁ ସମୟ ମଧ୍ୟରେ
Paribatsara ବୃହସ୍ପତି ଦ୍ୱାଦଶରାଶି ଭୋଗ କରେ । ସୌର
ପରିବତ୍ସରୀଣ } ବିଣ ଦ୍ୱାଦଶ ବତ୍ସର; ବାର୍ହସ୍ପତ୍ୟ ଏକ ବତ୍ସର—
ପରିବତ୍ସରୀୟ } 1 One year of the cycle of Jupiter which is equal to 10 solar years.
୨ । ସମ୍ବତ୍ସର; ଏକବର୍ଷ—2. One year.
୩ । (ଜ୍ୟୋତିଷ) ସମ୍ବତ୍ସରବିଶେଷ, ପାଞ୍ଚବରଷ ମଧ୍ୟରୁ ଦ୍ୱିତୀୟ ବର୍ଷ
3. (astronomy) The second of a cycle of five years.

**ପରିବଦନ**—ସଂ. ବି. (ପରି+ବଦ୍ ଧାତୁ+ଭାବ. ଅନ)—ନିନ୍ଦା, ପରର
Paribadana ଦୋଷ ବର୍ଣ୍ଣନ—Blaming; describing the fault of others.

**ପରିବନ୍ଧ**—ସଂ. ବି—(ପରି=ନାନା+ବନ୍ଧ=ବନ୍ଧନୀ)—
Paribandha ୧ । ନାନାପ୍ରକାର—1. Various kinds.
୨ । ଚାତୁରୀ; ଛଳନା—2. Deceit.
ସଂ. ବିଣ. (ପରି+ବନ୍ଧ୍ ଧାତୁ=ଆଲିଙ୍ଗନ କରିବା+ଭାବ. ଅ)—
ଛନ୍ଦାଛନ୍ଦି—Intertwined.
ନାନାକୁ ନାନ ପରିବନ୍ଧ
ବୋଲେ କରନ୍ତୁ ସାଉନାଦ । ଜଗନ୍ନାଥ—ଭାଗବତ ।

**ପରିବନ୍ଧନ**—ସଂ. ବି. (ପରି+ବନ୍ଧନ)—ଗୁଡ଼େଇ କରି ବାନ୍ଧିବା—
Paribandhana Tying round. (M. W.)

**ପରିବର୍ଜ୍ଜ(ର୍ଜ)ନ**—ସ. କ୍ରି—(ପରି=ସର୍ବତୋଭାବରେ + ବୃଜ୍ ଧାତୁ=ତ୍ୟାଗ କରିବା + ଭାବ ଅନ)—୧ । ସର୍ବଥା ତ୍ୟାଗ-
Paribarjja(rja)na
1 Complete forsaking; abandonment.
୨ । ହନନ, ବଧ—2. Killing; slaughter.

**ପରିବର୍ଜ୍ଜିତ**—ସ. ବଣ—(ପରି + ବୃଜ୍ ଧାତୁ + କର୍ମ ତ)—୧ । ପରିତ୍ୟକ୍ତ-
Paribarjjita 1. Abandoned.
(ପରିବର୍ଜ୍ଜିତା—ସ୍ତ୍ରୀ) ୨ । ଗୁରିଆଡେ ଗୁଡ଼ାଅ ହୋଇଥିବା—
2. Wound round. (M W.)

**ପରିବର୍ତ୍ତ(ର୍ତ୍ତ)**—ସ. ବ—( ପରି+ବୃତ୍ ଧାତୁ=ବଦଳାଇବା ଇତ୍ୟାଦି + ଭାବ ଅ)—୧ । ବିନିମୟ, ଦ୍ରବ୍ୟବଦଳ—
Paribarta(rtta)
1. Exchange; barter.
ପରିବର୍ତ୍ତୀ } ଅନ୍ୟରୂପ
ପରିବର୍ତ୍ତନ }
୨ । ଅବସ୍ଥାନ୍ତର, ଦଶାନ୍ତର—
2. Another condition; change.
୩ । ଯୁଗାନ୍ତ—3 The end of a juga
୪ । ଯାହା ବଦଳରେ ଦିଆଯାଏ—
4 A thing given in exchange.
୫ । ଜଗତର ଅନ୍ତ—
5. The end of the world. (M. W )
୬ । ଗ୍ରହର ସ୍ୱକକ୍ଷରେ ଘୂର୍ଣ୍ଣନ—
6. Revolving, revolution of a planet. (M.W.)
୭ । ବର୍ଷ—7. A year (M. W.)
୮ । ଫେରାଇ ଦେବା, ଫେରସ୍ତ—8. Return. (M. W.)
୯ । ଗୃହ—9 Abode (M. W.)
୧୦ । ସ୍ଥାନ—10. Spot; place. (M. W.)
୧୧ । ପୁସ୍ତକର ପରିଚ୍ଛେଦ—
11. Chapter; section of a book. (M. W.)
୧୨ । ଇତସ୍ତତଃ ଚଳନ—
12. Moving to & fro. (M. W.)
୧୩ । କଡ଼ ଲେଉଟାଇବା—13. Turning sides.
୧୪ । ଲୁଣ୍ଠନ—14. Robbing.
୧୫ । କୂର୍ମ ରାଜ; ବିଷ୍ଣୁଙ୍କର କୂର୍ମ ଅବତାର—
15. The incarnation of Bishnu in the shape of a tortoise.

**ପରିବର୍ତ୍ତ(ର୍ତ୍ତ)ନ**—ସ. ବ.—(ପରି + ବୃତ୍ ଧାତୁ + ଭାବ. ଅନ)—
Paribarta(rtta)na ୧ । ପରିବର୍ତ୍ତ—(ଦେଖ)—
1. Paribarta. (See).
୨ । ବାଳ କାଟିବା; ବାଳ କାଟୁରା—
2. The cutting or clipping of the hair. (M W)
୩ । ରକ୍ଷଣ—3. Protecting; defending.

**ପରିବର୍ତ୍ତ(ର୍ତ୍ତ)ନଶୀଳ**—ସ. ବଣ. ପୁଂ. (ପରିବର୍ତ୍ତନ + ଶୀଳ)—
Paribarta(rtta)nasila ୧ । ଯାହା ବଦଳେ—
1. Changing.
(ପରିବର୍ତ୍ତନଶୀଳା—ସ୍ତ୍ରୀ) ୨ । ଯାହା ଘୂରେ—2. Revolving.

**ପରିବର୍ତ୍ତ(ର୍ତ୍ତ)ନୀୟ**—ସ. ବଣ. —(ପରି + ବୃତ ଧାତୁ + କର୍ମ ଅନୀୟ)—
Paribarta(rtta)niya ପରିବର୍ତ୍ତନ ଯୋଗ୍ୟ—Changeable.

**ପରିବର୍ତ୍ତ(ର୍ତ୍ତ) ବିବାହ**—ସ. ବ. (ପରିବର୍ତ୍ତ + ବିବାହ)—ଏକ ପରିବାରରେ କନ୍ୟା ପ୍ରଦାନ କରିବା ଏବଂ ସେହି ପରିବାରରୁ କନ୍ୟା ଆଣିବା—Giving a daughter in marriage in a family & bringing a daughter from the same family in marriage.
Paribarta(rtta) bibāha

**ପରିବର୍ତ୍ତି(ର୍ତ୍ତି)କା**—ସ. ବ—ଲିଙ୍ଗର ରୋଗବିଶେଷ, ଅଧିକ କୁଣ୍ଡାଇବା ବା ଆଘାତ ଲାଗିବାରୁ ଲିଙ୍ଗଚର୍ମ ଲେଉଟି ପଡ଼ି ଫୁଲିଯିବା ରୋଗ (ବୈ. ଶ.)—Swelling and turning out of the foreskin due to excessive itching or stroke.
Paribarti(rtti)kā

**ପରିବର୍ତ୍ତି(ର୍ତ୍ତି)ତ**—ସ. ବ—(ପରି + ବର୍ତ୍ତି ଧାତୁ=ବଦଳ କରାଯିବା + କର୍ମ. ତ)—୧ । ଅବସ୍ଥାନ୍ତର ପ୍ରାପ୍ତ; ରୂପାନ୍ତରିତ
Paribarti(rtti)ta
1. Changed; modified.
୨ । ବଦଳା ଯାଇଥିବା—2. Exchanged.
୩ । ବଦଳରେ ପ୍ରାପ୍ତ—
3 Received in exchange.

**ପରିବର୍ତ୍ତି(ର୍ତ୍ତି)ନୀ**—ସ. ବଣ. ସ୍ତ୍ରୀ. ( ପରିବର୍ତ୍ତିନ୍ + ସ୍ତ୍ରୀ. ଈ)—ପରିବର୍ତ୍ତୀର ସ୍ତ୍ରୀ ଲିଙ୍ଗ—Feminine of Paribarti.
Paribarti(rtti)ni
ସ. ବ—ଭାଦ୍ର ଶୁକ୍ଳ ଏକାଦଶୀ, ପାର୍ଶ୍ୱ ପରିବର୍ତ୍ତନ ଏକାଦଶୀ—
The 11 day of the bright fortnight of the month of Bhādra.

**ପରିବର୍ତ୍ତୀ(ର୍ତ୍ତୀ)**—ସ. ବଣ.—(ପରିବର୍ତ୍ତିନ୍, ପରି + ବୃତ୍ ଧାତୁ=ଅବସ୍ଥାନ କରିବା+କର୍ତ୍ତୃ. ଇନ୍)—୧ । ପରିବର୍ତ୍ତନଶୀଳ-
Paribarti(rtti)
I. Changing.
(ପରିବର୍ତ୍ତିନୀ—ସ୍ତ୍ରୀ) ୨ । ଯେ ବଦଳାଏ—2. Exchanging,

**ପରିବର୍ତ୍ତୁ(ର୍ତ୍ତୁ)ଳ**—ସ. ବଣ—ପୂର୍ଣ୍ଣ ଗୋଲାକାର (ହ୍ର. ଶ)
Paribartu(rttu)la Quite round or circular. (M. W.)

**ପରିବର୍ତ୍ତେ(ର୍ତ୍ତେ)**—ଦେ. ଅ—(ଅନ୍ୟ ଶବ୍ଦ ପରେ ଲାଗେ, ଯଥା ଧ୍ରମ ପରିବର୍ତ୍ତେ)—୧ । (ଅମୁକର) ବଦଳରେ—
Paribarte(rtte)
परिवर्ते 1. In exchange of.
**परिबर्त्तमे** ୨ । (ଅମୁକର) ସ୍ଥାନରେ—2. In the place of.

**ପରିବର୍ଧ (ର୍ଦ୍ଧ)କ**—ସଂ. ବଣ. (ପରି+ବୃଧ୍ ଧାତୁ + ବୃଦ୍ଧି ପାଇବା + କର୍ତ୍ତୃ. ଅକ)—ବୃଦ୍ଧିକାରକ, ଉତ୍କର୍ଷକ—
Paribardha(rddha)ka
Increasing; improving.
ସ. ବ.—ଘୋଡ଼ା ସହିସ, ଅଶ୍ୱରକ୍ଷକ—Hostler; syce; groom. (M. W.)

**ପରିବର୍ଧ(ର୍ଦ୍ଧ)ନ**—ସ. ବ.(ପରି + ବୃଧ୍ ଧାତୁ + ଭାବ. ଅନ)—
Paribardha(rddha)na ୧ । ଅତ୍ୟନ୍ତ ବୃଦ୍ଧି—
(ପରିବୃଦ୍ଧି—ଅନ୍ୟରୂପ) Great growth; increase.
୨ । ବଢ଼ିବା—2. Increasing.
୩ । ଗୋରୁ ଆଦିଙ୍କ ଜୀବଙ୍କୁ ପାଳ ବଢ଼ାଇବା—
3. Rearing of animals.

**ପରିବର୍ଦ୍ଧି(ଦ୍ଧି)ତ**—ସଂ ବିଣ —[ପରି + ବୃଧ୍ ଧାତୁ (ଣିଜନ୍ତ) = ବର୍ଦ୍ଧି ଧାତୁ
Paribardhi(rddhi)ta = ବୃଦ୍ଧି ପାଇବା + କର୍ମ. ତ)—
(ପରିବୃଦ୍ଧ—ଅନ୍ୟରୂପ) ୧ । ବୃଦ୍ଧି ପ୍ରାପ୍ତ—1. Increased.
(ପରିବର୍ଦ୍ଧିତା—ସ୍ତ୍ରୀ) ୨ । ବିସ୍ତାରିତ—2. Extended
୩ । ଲାଳିତ ପାଳିତ—3. Reared, brought up
୪ । (ଜଳାଶୟ) ଖୋଳା ଯାଇ ଥିବା—
4. (tank) Excavated (M. W.)

**ପରିବର୍ହ**—ସଂ. ବି (ପରି = ସମ୍ପୂର୍ଣ୍ଣରୂପେ + ବର୍ହ ଧାତୁ = ଆଚ୍ଛାଦନ କରିବା,
Paribarha ଶୋଭା ପାଇବା + କରଣ. ଅ)— ୧ । ପରିଚ୍ଛଦ,
ପରିଧେୟ, ପୋଷାକ—1. Dress.
୨ । ରାଜ ଚିହ୍ନ—2 Paraphernalia of royalty.
୩ । ଗୃହ ଦ୍ରବ୍ୟାଦି, ଘରକରଣା ଜିନିଷପତ୍ର—
3. Furnitures; goods and chattels

**ପରିବସଥ**—ସଂ. ବି —(ପରି = ଗ୍ରାମ ଦଗରେ + ବସ୍ ଧାତୁ = ବାସକରିବା
Paribasatha + ଅଧିକରଣେ ଅଥ) — ଗ୍ରାମ—Village.

**ପରିବହ**—ସଂ. ବି —(ପରି=ଉପରେ+ବହ୍ ଧାତୁ=ବହନ କରିବା+
Paribaha କର୍ତ୍ତୃ. ଅ)— ବାୟୁମଣ୍ଡଳସ୍ଥ ସପ୍ତ ବାୟୁର ଅନ୍ତର୍ଗତ ସୁବହ
ବାୟୁର ଉପରିସ୍ଥ ବାୟୁ—Name of one of the 7
winds according to Hindu mythology.
[ଦ୍ର—୭ ବାୟୁର ନାମ—ଆବହ, ଉଦ୍ବହ, ସମ୍ବହ, ପ୍ରବହ, ବିବହ,
ପରିବହ ଓ ସୁବହ ।]

**ପରିବା**— ଦେ. ବି —୧ । ରନ୍ଧା ହୋଇ ନ ଥିବା ଉଦ୍ଭିଜ୍ଜ ଖାଦ୍ୟ ଦ୍ରବ୍ୟ—
Paribā 1 Green uncooked vegetables.
କାଞ୍ଚା ତବକାରୀ — ସକଳ ପରିବା ଏକା ଠାବେ ଗଦାଇଲେ ।
**शाक, सबजी** — ପ୍ରାଚୀ. କଳଲତିକ ।
୨ । ତିଅଣ ଯୋଗ୍ୟ ଫଳ ମୂଳ—2. Kitchen vegetables;
fruits and roots used as curry.

**ପରିବାଦ**—ସଂ. ବି. (ପରି=ଦୋଷ କୀର୍ତ୍ତନ+ବଦ୍ ଧାତୁ=କହିବା+
Paribāda ଭାବ. ଅ)—୧ । ଅପବାଦ—1. Defamation.
୨ । ନିନ୍ଦାବାଦ—2. Blame.
(ପରୀବାଦ—ଅନ୍ୟରୂପ) (ପରିବାଦିତ—ବିଣ)
ଶତ ନିନ୍ଦା କୁଷ୍ଣୀ ଭବ ସେ ପରିବାଦ,
ଚାରିକୁଳ୍ୟ ଅଜ୍ଞାନ ଅଧମ ବବାଦ । କୃଷ୍ଣସିଂ. ମହାଭାରତ ଉଦ୍ଯୋଗ ।
୩ । ଦୋଷ ବା ଅପରାଧର ଅଭିଯୋଗ—
3. Charge; accusation.
୪ । ଅସତ୍ୟମୂଳକ ନିନ୍ଦାବାଦ—
4. Slander which is not true.
୫ । ତିରସ୍କାର—5. Rebuke.
୬ । ବୀଣାଦିର ତନ୍ତ୍ରୀ ବଜାଇବା ପାଇଁ ବ୍ୟବହୃତ ତାରର ଅଙ୍ଗୁଳିତ୍ର;
ମିଜ୍‌ରାବ୍—6. A cap of wire put on the fingers
to strike the string of a harp or guitar.

**ପରିବାଦକ**—ସଂ. ବି. ପୁଂ. (ପରି=ନିନ୍ଦା+ବଦ୍ ଧାତୁ+କର୍ତ୍ତୃ. ଅକ)—
Paribādaka ୧ । ନିନ୍ଦୁକ—1. Calumniator.
(ପରିବାଦିକା—ସ୍ତ୍ରୀ) ୨ । ଅପବାଦକ—2. Defamer.
୩ । ତିରସ୍କାରକ—3 One who censures or rebukes.
୪ । ଅଭିଯୋଗକାରୀ—
4 Complainant, accuser.
୫ । ବୀଣାବାଦକ—5 A player on the harp.

**ପରିବାଦିନୀ**—ସଂ. ବି. ସ୍ତ୍ରୀ (ପରି = ସମ୍ୟକ୍‌ରୂପେ + ବଦ୍ ଧାତୁ = କହିବା
Paribādini + କର୍ତ୍ତୃ. ଇନ୍ + ସ୍ତ୍ରୀ. ଈ)—ସପ୍ତତନ୍ତ୍ରୀଯୁକ୍ତ ବୀଣା—
A harp with seven strings.

**ପରିବାଦୀ**—ସଂ. ବିଣ. ପୁଂ (ପରିବାଦନ୍, ପରିବାଦ + କର୍ତ୍ତୃ ଶୀଳାର୍ଥେ.ଇନ୍)
(ପରିବାଦିନୀ—ସ୍ତ୍ରୀ) ୧ । ନିନ୍ଦାକାରୀ—1. Blaming
୨ । ଅପବାଦକାରୀ—2. Defaming
୩ । ତିରସ୍କାରୀ—3 Abusing.
୪ । (+ଅସ୍ତ୍ୟର୍ଥରେ ଇନ୍) ଅପବାଦଗ୍ରସ୍ତ—
4. Defamed.
ସଂ. ବି—୩ । ବାଦୀ, ମୁଦ୍ଦେଇ—
3. Complainant; plaintiff; accuser

**ପରିବାଧା**—ସଂ. ବି. (ପରି + ବାଧା) —୧ । ଅତ୍ୟନ୍ତ ପୀଡ଼ା ବା କଷ୍ଟ—
Paribādhā 1 Excessive pain.
୨ । ଶ୍ରମ, ମିହନତ—2 Labour; exertion.

**ପରିବାପ** —ସଂ. ବି. ( ପରି + ବପ୍ ଧାତୁ ଣିଚ୍ = ବାପିଧାତୁ = ମୁଣ୍ଡନ
Paribāpa କରିବା+ଭାବ ଅ)—୧ । ମୁଣ୍ଡନ, ଲଣ୍ଡା କରିବା—
(ପରୀବାପ—ଅନ୍ୟରୂପ) 1 Shaving
୨ । ବୁଣିବା, ବପନ—2. Sowing.
୩ । ରୋପଣ, ରୋଇବା—
3 Planting of seedlings or plants.
୪ । (ପରି + ବପ୍ ଧାତୁ ଣିଚ୍ = ବାପି ଧାତୁ + ଅଧିକରଣ. ଅ)
କୃତ୍ରିମ କ୍ଷୁଦ୍ର ଜଳାଶୟ—4 A pool; pond.
୫ । ଘରର ଉପକରଣ—5. Furniture (Apte).
୬ । ଅନୁଚରବର୍ଗ—6. Train; retinue (Apte).
୭ । (+କର୍ମ. ଅ) ମୁଢ଼ି —7. Fried grains or rice.
(Apte)
୮ । ଦସାଦହି—8. Coagulated milk (Apte).

**ପରିବା ପତର**—ଦେ. ବି —( ସହଚର ଶବ୍ଦ )—ରନ୍ଧନ ଯୋଗ୍ୟ
Paribā patara ଶାକସବଜୀ, ପତ୍ରପରିବା, ତଣ୍ଡ ତରକାରୀ;
(ପରିବା ପତ୍ର—ଅନ୍ୟରୂପ) ପତ୍ରଅରି—Kitchen vegetables
तरी तवकावी **शाक सबजी** of various kinds.

**ପରିବାପନ**—ସଂ. ବି. (ପରି + ବାପି ଧାତୁ = ମୁଣ୍ଡନ କରିବା + ଭାବ.ଅନ)—
Paribāpana ଲଣ୍ଡା କରି କ୍ଷୌର କରିବା; ମୁଣ୍ଡନ—Shaving.
(ପରିବାପଣ—ଅନ୍ୟରୂପ)

**ପରିବାପିତ**—ସଂ. ବିଣ. (ପରି + ବପ୍ ଧାତୁ ଣିଚ୍ = ବାପି ଧାତୁ + କର୍ମ.ତ)-
Paribāpita ୧ । ଲଣ୍ଡା କରାଯାଇଥିବା, ମୁଣ୍ଡିତ—
1. Shaven.
୨ । ବୁଣା ଯାଇଥିବା, ଉପ୍ତ—2. Sown.
୩ । ରୋପିତ—3 Planted; transplanted.

ପରିବାର—ସଂ. ବି. (ପରି + ବୃ ଧାତୁ = ବରଣ କରିବା, ଆବରଣ କରିବା
Paribāra + କର୍ମ. ଅ)—୧ । ପରିଜନ, ପୋଷ୍ୟବର୍ଗ—
ପରୀବାର } ଅନ୍ୟରୂପ 1. One's family and
ପରିବରଣ } dependants
୨ । ଅନୁଚର—
2. Train; suite; retinue; followers

ସଙ୍ଗରେ ନିଜ ପରିବାର,
ଧରଣ ବ୍ୟଞ୍ଜନ ଶ୍ରମର । ଜଗନ୍ନାଥ. ଋତେବ ।

୩ । (+ କର୍ତ୍ତୃ. ଅ) ଖଡ୍ଗାଧାର—3. Sheath; scabbard.
୪ । ଏକ ସ୍ୱଭାବ ବା ଆକାରର ବସ୍ତୁଗଣ—
4. Things of the same class or nature.
୫ । ପରିଚ୍ଛଦ—5. Dress; raiment.
୬ । (+ କରଣ. ଅ) ଆବରଣ, ଘୋଡ଼ଣୀ—
6. Cover; covering (M.W)
୭ । ଗ୍ରାମର ଚତୁଃପାର୍ଶ୍ୱସ୍ଥ ବାଡ଼—
7. A hedge round a village. (M.W.)
୮ । ଜ୍ଞାତି ଓ ବନ୍ଧୁବର୍ଗ (ହି. ଶବ୍ଦସାଗର)—
8. Direct and collatral relations; one's agnates and cognates.
୯ । ଛତ୍ରଚାମରାଦି ରାଜା ଓ ଦେବତାଙ୍କ ସଙ୍ଗରେ ଯିବା ସାମଗ୍ରୀ
(ହି. ଶ.)—9. Royal paraphernalia

परिवार घरवाली ଦେ. ବି.—ସ୍ତ୍ରୀ—Wife.

ପରିବାରିତ—ସଂ. ବିଣ. ( ପରି + ବାରିତ )—
Paribārita ଚାରିଆଡ଼େ ଘେରି ଯାଇଥିବା, ପରିବେଷ୍ଟିତ, ଆବୃତ—
Surrounded by; covered with; veiled in.

ପରିବାରୀ—ଦେ. ବି. ସ୍ତ୍ରୀ. (ଦାସୀ ପରିବାରର ଜଣେ ବ୍ୟକ୍ତି ରୂପେ ପରି-
Paribāri ଗଣିତା ହେବାରୁ)—ଦାସୀ, ଚାକରାଣୀ—
स्त्री टहलुनी Maid servant.

ସହସ୍ର ସଂଖ୍ୟା ପରିବାରୀଙ୍କୁ ଘେନିଲେ
ନିଜ ଦାସୀ ଭୁ-ଲି ସେ ଗେଲରେ ବୁଲିଲେ ।
କୃଷ୍ଣସିଂ. ମହାଭାରତ. ଅଦି ।

[ ଦ୍ର—ପୋଇଲୀ ଓ ଦାସୀ ପରେ ଏ ଶବ୍ଦ ସହଚର ରୂପେ ବ୍ୟବହୃତ ହୁଏ, ଯଥା, ଦାସୀ ପରିବାରୀ, ପୋଇଲୀ ପରିବାରୀ । ]

ପରିବାରୀୟ—ସଂ. ବିଣ. ( ଛତରଥ )—
Paribāriya ପରିବାର ସମ୍ବନ୍ଧୀୟ, ପାରିବାରିକ—
(ପରିବାରିକ—ଦେଶଜରୂପ) Relating to a family.
( ଯଥା—ପରିବାରୀୟ ସମ୍ପତ୍ତି । )

ପରିବାସ—ସଂ. ବି. ( ପରି + ବସ୍ ଧାତୁ + ଅ )—
Paribāsa ୧ । (+ ଅଧିକରଣ. ଅ) ଗୃହ, ବାସସ୍ଥାନ (ହି. ଶ.)—
1. House; residence.
୨ । (+ ଭାବ. ଅ) ଅବସ୍ଥାନ—2 Staying.
୩ । (ପରି = ଉତ୍ତମ + ବାସ) ସୁବାସ, ସୁଗନ୍ଧ (ହି. ଶ.)—
3 Sweet smell; fragrance.
୪ । ବିଦେଶ ବାସ—4. Sojourn. (M. W)

ପରିବାସନ—ସଂ. ବି - ଖଣ୍ଡ (ହି. ଶ.)—
Paribāsana Piece.

ପରିବାହ—ସଂ. ବି. ( ପରି + ବହ୍ ଧାତୁ + ଭାବ. ଅ )—
Paribāha ୧ । ପ୍ଲାବନ, ପାତ୍ର ବା ଜଳାଶୟ ଅଧି ପୂର୍ଣ୍ଣ ହୋଇ
(ପରୀବାହ—ଅନ୍ୟରୂପ) ପାଣି ବାହାରି ଯିବା; ଉଚ୍ଛୁଳିବା (ହି. ଶ)—
(ପରିବାହୀ, ପରିବାହିତ—ବିଣ) 1. Overflowing; inundation (Apte).
୨ । (+ କରଣ. ଅ) ବଳକା ପାଣି ବୋହିଯିବା ନଳା—
2. A drain for the overflowing water.

ପରିବିନ୍ନ—ସଂ. ବି. ପୁଂ. (ପରି = ପୂର୍ବରୁ + ବିଦ୍ ଧାତୁ + କର୍ମ. ତ)—
Paribinna ଯେଉଁ ଅବିବାହିତ ବ୍ୟକ୍ତିର ସାନ ଭାଇ ବିବାହିତ
ପରିବିତ୍ତ } ଅନ୍ୟରୂପ ହୋଇଥାଏ—An unmarried elder
ପରିବିତ୍ତି } brother whose younger is married.
( ଯଥା—ବିବାହିତ ସାନ ଭାଇକୁ ପରିବେତ୍ତା ବୋଲାଯାଏ । )

ପରିବିନ୍ଦକ—ସଂ. ବି. ପୁଂ. (ପରି + ବିଦ୍ ଧାତୁ + କର୍ତ୍ତୃ ଅକ)—
Paribindaka ଯେଉଁ ବ୍ୟକ୍ତି ଆପଣାର ବଡ଼ ଭାଇ ବିବାହିତ
(ପରିବିନ୍ଦିତ—ଅନ୍ୟରୂପ) ହେବା ପୂର୍ବରୁ ବିବାହ କରେ—
A person who gets married before his elder brother.

ପରିବିନ୍ଦନ—ସଂ. ବି. (ପରି + ବିଦ ଧାତୁ + ଅନ)—
Paribindana ୧ । ( + ଭାବ. ଅନ ) ବଡ଼ ଭାଇର ବିବାହ ପୂର୍ବରୁ ସାନ ଭାଇର ବିବାହ—1 Marriage of the younger brother before that of the elder.
୨ । (+ କର୍ତ୍ତୃ. ଅନ) ପରିବିନ୍ନ ( ଦେଖ )
2. Paribinna ( See )

ପରିବିଷ୍ଟ—ସଂ. ବିଣ. (ପରି + ବିଶ୍ ଧାତୁ + କର୍ମ. ତ)—
Paribishta ୧ । ଚତୁର୍ଦ୍ଦିଗରେ ଘେରି ହୋଇଥିବା; ପରିବେଷ୍ଟିତ—
1. Surrounded; besieged. (M. W.)
୨ । (ପରି + ବିଷ୍ ଧାତୁ + ତ) ପରଷା ଯାଇଥିବା (ଖାଦ୍ୟ)—
2. Served [food].

ପରିବିଷ୍ଟି—ସଂ. ବି (ପରି + ବିଶ୍ ଧାତୁ + ଭାବ. ତି)—
Paribishti ୧ । ସେବା, ଚାକିରି—1. Service; attendance.
୨ । ବେଷ୍ଟନ—2. Surrounding

ପରିବୀକ୍ଷଣ—ସଂ. ବି. (ପରି + ବି + ଈକ୍ଷ୍ ଧାତୁ = ଦେଖିବା + ଭାବ. ଅନ)-
Paribikshana ପର୍ଯ୍ୟବେକ୍ଷଣ, ଅନୁସନ୍ଧାନ ସହକାରେ ଦର୍ଶନ-
ପରିବୀକ୍ଷିତ } ଅନ୍ୟରୂପ Observation; careful look.
ପରିବେକ୍ଷକ }

ପରିବୀତ—ସଂ. ବିଣ. (ପରି + ବୀ ଧାତୁ = ଗମନ କରିବା ଅଥବା ବେଷ୍ଟ ଧାତୁ
Paribita = ବେଷ୍ଟନ କରିବା + କର୍ମ. ତ)—
୧ । ପରିବେଷ୍ଟିତ—1. Surrounded; circumscribed.
୨ । ସମାଚ୍ଛାଦିତ—2. Well-covered; enveloped.
୩ । ବ୍ୟାପ୍ତ—3. Pervaded; overspread.

**ପରିବୃଢ଼**—ସଂ. ବି. (ପରି=ସମ୍ପୂର୍ଣ୍ଣ ରୂପେ+ବୃହ୍ ଧାତୁ=ସମ୍ବନ୍ଧ ଥିବା
Paribrurdha +କର୍ତ୍ତୃ. ତ )—
ପ୍ରଭୁ, ସ୍ୱାମୀ—Lord; master.
ପୃଥ୍ୱୀ ଚନ୍ଦ୍ରବଂଶ ପରିବୃଢ଼ ବାଲୁକେଶ, ପ୍ରସରିଲେ ଏ ରସ ଗୋ ।
କବିସୂର୍ଯ୍ୟ. ଜଗଦ୍ଗୋପାଳଚମ୍ପୂ, ୫ ଗୀତ ।

**ପରିବୃତ**—ସଂ ବିଣ (ପରି=ଗୁରିଆଡ଼େ+ବୃ ଧାତୁ=ଆବରଣ କରିବା
Paribruta +କର୍ମ ତ)—୧ । ପରିବେଷ୍ଟିତ, ଘେରା ହୋଇଥିବା-
1. Surrounded.
୨ । ସମାବୃତ—2. Well covered.

**ପରିବୃତି**—ସଂ. ବି. (ପରି+ବୃତ୍ ଧାତୁ=ବର୍ତ୍ତମାନ ରହିବା+ଭାବ. ତି)-
Paribruti ୧ । ବେଷ୍ଟନ, ପରିଧି—1. Circumference.
୨ । ବାଡ଼—2. Fence
୩ । ଆବରଣ, ଘାଙ୍କୁଣୀ—3 Cover.
୪ । ଘେରିବା—
4. Surrounding, standing round. (Apte).

**ପରିବୃତ୍ତ**—ସଂ. ବିଣ. ( ପରି+ବୃତ୍ ଧାତୁ+କର୍ମ. ତ )—
Paribrutta ୧ । ବେଷ୍ଟିତ (ହି. ଶ.)—1. Surrounded.
୨ । ଘୂରିଥିବା—
2 Revolved; turned round (Apte)
୩ । ପଛକୁ ଫେରିଥିବା—
3. Turned back; retreated (Apte).
୪ । ବଦଳା ଯାଇଥିବା, ବିନିମୟ କରାଯାଇଥିବା—
4. Exchanged; bartered (Apte).
୫ । ସମାହିତ—5. Finished; ended (Apte).
୬ । ଓଲଟା ପାଲଟା କରା ଯାଇଥିବା (ହି. ଶ.)
6. Inverted; turned upside down.
(+ଭାବ. ତ) ଆଲିଙ୍ଗନ—Embrace (Apte).

**ପରିବୃତ୍ତି**—ସଂ. ବି. ( ପରି+ବୃତ୍ ଧାତୁ+ଭାବ ତି )—
Paribrutti ୧ । ପରିବର୍ତ୍ତନ—1 Change.
୨ । ବିନିମୟ—2. Exchange; barter.
୩ । (ସାହିତ୍ୟ) ଅଳଙ୍କାରବିଶେଷ—
3. A figure of speech in which there is an exchange of a thing for what is equal, less or greater.
[ ଦ୍ର—ଏକ ପଦାର୍ଥ ଅନ୍ୟ ସମାନ ବା ନ୍ୟୂନ ପଦାର୍ଥଦ୍ୱାରା ପରିବର୍ତ୍ତିତ ହେଲେ ପରିବୃତ୍ତି ଅଳଙ୍କାର ହୁଏ, ଯଥା—
ତୋ ଦେହରୁ ଶୈତ୍ୟ ନେଇ ଗନ୍ଧବହ-
ତୀରବାସୀଙ୍କି ଦେଇଛି ।
ତାହାଙ୍କ ସନ୍ତାପ ନେଇ ଅବ୍ଧି ଗର୍ଭେ
ବାଡ଼ବକୁଳେ ଥୋଇଛି ।
କୁଳମଣି. ଅଳଙ୍କାରତରଙ୍ଗିଣୀ ।
ଯେଉଁ ଅଳଙ୍କାରରେ ଗୋଟିଏ ବସ୍ତୁକୁ ଦେଇ ଅନ୍ୟ ସମାନ ବା ଅସମାନ ( ଅଧିକ ବା ନ୍ୟୂନ ) ବସ୍ତୁ ଆଣିବାର କଥିତ ହୁଏ ତାହା ପରିବୃତ୍ତି ଅଳଙ୍କାର; ଯଥା—ମୁଗ୍ଧଲୋଚନା ତୁମ୍ଭେ ତାହାର କଟାକ୍ଷକୁ ଦେଇ ମୋ ହୃଦୟକୁ ନେଇଅଛ ଓ ମୁଁ ମୋ ହୃଦୟକୁ ଦେଇ ମଦନ-ଜ୍ୱରକୁ ପାଇଅଛି । ସମାନ ବସ୍ତୁ ସଙ୍ଗେ ସମାନ ବସ୍ତୁର ବିନିମୟ କଳ୍ପିତ ହେଲେ ସମପରିବୃତ୍ତି ହୁଏ, ଅସମ ବସ୍ତୁର ବିନିମୟ ହେଲେ ବିଷମପରିବୃତ୍ତି ହୁଏ—ହି. ଶବ୍ଦସାଗର । ]
୪ । ପ୍ରତ୍ୟାବୃତ୍ତି, ଫେରିବା—
4. Return; turning back (Apte)
୫ । ସମାପ୍ତି—5. End; termination (Apte).
୬ । ଘେର, ବେଷ୍ଟନ (ହି ଶ)—
6. Surrounding (Apte)
୭ । କୌଣସି ସ୍ଥାନରେ ବାସ କରିବା ବା ରହିବା—
7. Staying or dwelling in a place (Apte).
୮ । ଲିଙ୍ଗର ଅଗ ଚମର ସଙ୍କୋଚନ—
8. The contraction of the prepuce or foreskin of the penis.
୯ । ରଚନାରେ ଭାବର ପରିବର୍ତ୍ତନ ନ କରି ଏକ ଶବ୍ଦ ସ୍ଥଳରେ ଅନ୍ୟ ଶବ୍ଦର ବ୍ୟବହାର—
9. Substitution of one word for another without affecting the sesne (Apte).
( ଯଥା—ବୃଷଧ୍ୱଜ ପରିବର୍ତ୍ତରେ ବୃଷଲାଞ୍ଛନ ବା ବୃଷବାହନ ଶବ୍ଦର ପ୍ରୟୋଗ । )

**ପରିବେତ୍ତା**—ସଂ. ବି. ପୁଂ. ( ପରି=ଡ଼ିଙ୍ଗୁ+ବିଦ୍ ଧାତୁ=ଲାଭ କରିବା
Paribetta +କର୍ତ୍ତୃ. ତୃ, ୧ମା. ୧ବ. )—ବଡ଼ ଭାଇ ଅବିବାହିତ ଥାଉଁ ଥାଉଁ ବିବାହିତ ସାନ ଭାଇ—A person who gets married before his elder brother is married.
[ ଦ୍ର—ବଡ଼ ଭାଇ ଦେଶାନ୍ତରଗାମୀ, ନପୁଂସକ, ପତିତ, ମୂକ, ବଧିର, ଅନ୍ଧ, କୋଢ଼ି, ବିବାହ କରିବାକୁ ଅନିଚ୍ଛୁକ, ବେଶ୍ୟାସକ୍ତ ଓ ଚିରରୋଗୀ ହେଲେ, କିମ୍ବା ଆପଣାର ଅନ୍ତର ଭାଇ ହୋଇଥିଲେ, କିମ୍ବା ସାନ ଭାଇକୁ ବିବାହ କରିବାକୁ ଅନୁମତି ଦେଲେ ବଡ଼ ଭାଇ ବିବାହିତ ନ ହୋଇ ସୁଦ୍ଧା ସାନ ଭାଇ ବିବାହ କରିବାର ଶାସ୍ତ୍ରବିଧି ଅଛି । ଅବିବାହିତ ବଡ଼ ଭାଇକୁ ପରିବିଣ୍ଣ, ପରିବିତ୍ତ, ପରିବିତ୍ତି ବୋଲାଯାଏ । ]

**ପରିବେଦ**—ସଂ ବି. ( ପରି+ବିଦ୍ ଧାତୁ+ଭାବ. ଅ )—ସମ୍ୟକ୍ଜ୍ଞାନ—
Paribeda Complete or accurate knowledge (Apte).

**ପରିବେଦନ**—ସଂ. ବି. (ପରି+ବିଦ୍ ଧାତୁ=ଲାଭ କରିବା+ଭାବ. ଅନ)—
Paribedana ୧ । ଅନୂଢ଼ ଜ୍ୟେଷ୍ଠଭ୍ରାତା ବିବାହ ନ କରୁଣୁ କନିଷ୍ଠର ବିବାହ—1. The marriage of a person whose elder brother is still unmarried
୨ । ବିବାହ—2. Marriage (Apte).
୩ । ବୋଧ; ପୂର୍ଣ୍ଣଜ୍ଞାନ—
3. Complete or accurate knowledge.
୪ । ଲାଭ—4. Profit; gain.
୫ । ପ୍ରାପ୍ତି—5. Acquisition.

୬ । ଅଗ୍ନ୍ୟାଧାନ, ଅଗ୍ନି ହୋତ୍ର ପାଇଁ ଗୃହରେ ଯଜ୍ଞାଗ୍ନି ସ୍ଥାପନ—
6. Maintaining the household fire (Apte)

୭ । ସର୍ବତ୍ର ବ୍ୟାପ୍ତି—
7. Pervasion on all sides (Apte)

୮ । ଆଲୋଚନା, ବାଦବିବାଦ (ହି. ଶ.)—
8. Discussion (Apte).

୯ । ଅତ୍ୟନ୍ତ ଦୁଃଖ, କଷ୍ଟ ( ହି. ଶ. )—
9. Misery; pain

**ପରିବେଦନା**—ସଂ. ବି. (ପରି+ବେଦ ଧାତୁ=ଜାଣିବା+ଭାବ· ଅନ Paribedanā +ସ୍ତ୍ରୀ. ଆ )—୧ । ଅତ୍ୟନ୍ତ କ୍ଲେଶ, ଯନ୍ତ୍ରଣା—
1. Misery; pang.

୨ । ଦୂରଦର୍ଶିତା—
2. Prudence; foresight ( Apte ).

୩ । ଚତୁରତା, ବିଦଗ୍ଧତା ( ହି. ଶ. )—
3. Shrewdness ( Apte ).

**ପରିବେଦିନୀ**—ସଂ. ବି ସ୍ତ୍ରୀ. ( ପରି+ବିଦ୍ ଧାତୁ=ଲାଭ କରିବା+କର୍ତ୍ତୃ. Paribedinī ଇନ୍, ସ୍ତ୍ରୀ ଈ )—ପରିବେତ୍ତାର ସ୍ତ୍ରୀ, ଯୋଉଁ ସ୍ତ୍ରୀ (ପରିବେଦନୀୟା—ଅନ୍ୟରୂପ) ଅବିବାହିତ ଜ୍ୟେଷ୍ଠଭ୍ରାତାର କନିଷ୍ଠଙ୍କୁ ବିବାହ କରିଥାଏ—The wife of a younger brother who gets married before his elder. ( M. W. ).

**ପରିବେଶ**—ସଂ. ବି. ( ପରି=ଚାରିଆଡ଼େ+ବିଶ୍ ବା ବିଷ୍ ଧାତୁ=ବେଷ୍ଟନ Paribesa କରିବା. ବ୍ୟାପିବା+ଅଧି. ଅ )—୧ । ପରିଧି— ( ପରିବେଷ—ଅନ୍ୟରୂପ ) 1. Circumference.

୨ । ମଣ୍ଡଳ—2. Halo; orb.

୩ । ଚନ୍ଦ୍ର ସୂର୍ଯ୍ୟର ମଣ୍ଡଳ—3. The disc of the sun or moon; the halo round the sun or moon.

୪ । (+ଭାବ. ଅ) ପରିବେଷଣ, ପରଷିବା—
4. Serving of meal.

୫ । (+ଭାବ. ଅ) ଘେର, ବେଷ୍ଟନୀ—
5. Any thing surrounding or protecting

୬ । ପରିଧାନ—
6. Putting on; clothing; dressing (M. W ).

**ପରିବେଷକ**—ସଂ. ବି. ପୁଂ—(ପରି+ବିଷ୍ ଧାତୁ+କର୍ତ୍ତୃ. ଅକ)— Paribeshaka ପରଷୁଣି; ପରଷାଳ, ପରିବେଷଣକାରୀ— (ପରିବେଷ୍ଟା—ଅନ୍ୟରୂପ) Meal-server; one who serves up meals; a waiter. (ପରିବେଷିକା; ପରିବେଷ୍ଟ୍ରୀ—ସ୍ତ୍ରୀ)

**ପରିବେଷଣ**—ସଂ ବି.—(ପରି+ବିଷ୍ ଧାତୁ=ବ୍ୟାପିବା+ଭାବ ଅନ)— Paribeshaṇa ୧ । ଭୋଜନ କରୁଥିବା ଲୋକଙ୍କୁ ଖାଦ୍ୟ ପରଷିବା—1. Serving up of meals; distributing food.

୨ । (+କର୍ତ୍ତୃ. ଅନ)—ପରିଧି—
2. Circumference. (M. W.)

୩ । ସୂର୍ଯ୍ୟ ବା ଚନ୍ଦ୍ରର ମଣ୍ଡଳ—
3. The halo round the sun or moon. (M. W)

**ପରିବେଷ୍ଟନ**—ସଂ. ବି. (ପରି+ବେଷ୍ଟ ଧାତୁ=ବେଷ୍ଟନ କରିବା+ଭାବ. Paribeshṭana ଅନ)—୧ । ଘେରାଉ କରିବା; ଘେରିବା—
1. Surrounding; beseiging.

୨ । (+କରଣ. ଅନ) ପଟି—2. Ligature; bandage.

୩ । ବାଡ଼—3. Fencing; enclosure.

୪ । ଆବରଣ, ଘୋଡ଼ଣୀ—4. Cover.

୫ । ପ୍ରାଚୀର—5. Compound wall

୬ । (+କର୍ତ୍ତୃ. ଅନ)—ପରିଧି—
6. Circumference. (M. W.)

୭ । ଗୁଡ଼ାଇବା; ବାନ୍ଧିବା—
7 Tying round or up. (M. W.)

**ପରିବେଷ୍ଟିତ**—ସଂ. ବିଣ. (ପରି+ବେଷ୍ଟ ଧାତୁ=ବେଷ୍ଟନ କରିବା+ Paribeshṭita କର୍ମ. ତ)—୧ । ଚତୁର୍ଦ୍ଦିଗରେ ବେଷ୍ଟିତ—
1. Surrounded.

୨ । ଆବୃତ, ପରିବୃତ—2. Covered; veiled.

୩ । ପଟ୍ଟଦ୍ୱାରା ବନ୍ଧା ଯାଇଥିବା—
3. Bandaged; swathed. (M.W.)

**ପରିବୋଧ**—ସଂ.ବି.—(ପରି=ସମ୍ୟକ୍+ବୋଧ)—୧ । ସମ୍ୟକ୍ ଜ୍ଞାନ— Paribodha 1. Complete knowledge.

(ପରିବୋଧନ—ଅନ୍ୟରୂପ) ୨ । ଦଣ୍ଡର ଧମକ ଦେଇ ବା କୁଫଳର ଭୟ ଦେଖାଇ କୌଣସି କାର୍ଯ୍ୟରୁ ନିବୃତ୍ତ କରିବା; ଚେତାଇବା—2 Act of preventing a person from doing something by threat of punishment or evil result.

**ପରିବ୍ୟୟ**—ସଂ. ବି. (ପରି+ବ୍ୟୟ)—୧ । କୌଣସି ଦ୍ରବ୍ୟ ପାଇଁ କରାଯିବା Paribyaya ବ୍ୟୟ—1. Cost. (M W )

୨ । ମସଲା—2. Condiment; spices. (M. W.)

**ପରିବ୍ୟାଧ**—ସଂ. ବି.—୧ । ଜଳବେତସ ( ହି. ଶବ୍ଦସାଗର)— Paribyādha 1. A species of reed; Calamus Fasciculatus (M. W.)

୨ । ଦ୍ରୁମୋତ୍ପଳ; କଣିଅର (ହି. ଶ. )—
2. Prerospermum Ascerifolium. (M.W.)

୩ । ଗେଣ୍ଡୁ ଫୁଲ—3. Marigold

**ପରିବ୍ରଜ୍ୟା**—ସଂ. ବି. ସ୍ତ୍ରୀ—(ପରି+ବ୍ରଜ୍ ଧାତୁ=ଭ୍ରମଣ କରିବା+ଭାବ. Paribrajyā ଯ, ସ୍ତ୍ରୀ. ଆ)—୧ । ତପସ୍ୟା—
1. Religious austerities.

୨ । ବାନପ୍ରସ୍ଥ ଆଶ୍ରମ ପରେ ୪ର୍ଥ ଆଶ୍ରମ ବା ଭିକ୍ଷୁ ବୃତ୍ତି ଅବଲମ୍ବନ ପୂର୍ବକ ନାନା ସ୍ଥାନ ପର୍ଯ୍ୟଟନ—2. Religious mendicancy after completing the Bānaprastha stage of life.

୩ । ପରିବ୍ରାଜନ, ଧର୍ମାର୍ଥ ପରିଭ୍ରମଣ—
3. Travel for religious purposes.

୪ । ଇତସ୍ତତଃ ପରିଭ୍ରମଣ—
4. Strolling or wandering from place to place.

**ପରିବ୍ରାଜ୍**—ସ. ବି. ପୁଂ.—(ପରି+ବ୍ରଜ୍ ଧାତୁ=ଭ୍ରମଣ କରିବା+କର୍ତ୍ତୃ. କ୍ୱିପ୍)—୧ । ପର୍ଯ୍ୟଟକ—1 Traveller.
Paribrāj

ପରିବ୍ରାଜ, ପରିବ୍ରାଜକ } ଅନ୍ୟରୂପ — ୨ । ଭିକ୍ଷୁ, ଚତୁର୍ଥାଶ୍ରମଧର୍ମୀ ସାଧୁ; ଚତୁର୍ଥ ଆଶ୍ରମ ଅବଲମ୍ବୀ ବ୍ୟକ୍ତି—2. Ascetic of the 4th or last religious stage of life.
ପରିବ୍ରାଜୀ, ପରିବ୍ରାଜକା, ପରିବ୍ରାଜକା } ସ୍ତ୍ରୀ

୩ । ସନ୍ନ୍ୟାସୀ—3. A religious recluse.

ସ. ବିଣ.—ଭ୍ରମଣକାରୀ—Travelling.

**ପରିବ୍ରାଜନ**—ସ. ବି.—(ପରି+ବ୍ରଜ୍ ଧାତୁ=ଭ୍ରମଣ କରିବା+ଭାବ.ଅନ)
Paribrājana ୧ । ପରିଭ୍ରମଣ—1. Travel.

୨ । ପରିବ୍ରଜ୍ୟା ଗ୍ରହଣ—2. The taking of the vow of a Paribrāja

**ପରିବ୍ରାଜୀ**—ସ. ବିଣ. ସ୍ତ୍ରୀ.—(ପରିବ୍ରାଜ+ସ୍ତ୍ରୀ. ଈ)—ପରିବ୍ରାଜର ସ୍ତ୍ରୀଲିଙ୍ଗ—
Paribrājī Feminine of Paribrāja.

ସ. ବି. ସ୍ତ୍ରୀ.—୧ । ପରିଭ୍ରମଣକାରିଣୀ ସ୍ତ୍ରୀ ଭିକ୍ଷୁ—
1. A female itenerant ascetic

୨ । ମହାମୁଣ୍ଡୀ; ବଡ଼ ଥାଲକୁଡ଼ୀ (ଲତା)—
2. Spheranthus Mollis (creeper)

**ପରିବ୍ରାଟ୍**—ସ. ବି. ପୁଂ. (ପରିବ୍ରାଜ୍ ୧ମା. ୧ବ.)—ପରିବ୍ରାଜ୍ (ଦେଖ)
Paribrāṭ Paribrāj (See)

**ପରିଭକ୍ଷ**—ସ. ବିଣ.—(ପରି+ଭକ୍ଷ୍ ଧାତୁ+କର୍ତ୍ତୃ. ଅ)—ଅନ୍ୟର ଦ୍ରବ୍ୟ ଭୋଜନକାରୀ, ପରାନ୍ନଭୋଗୀ (ହି. ଶ.)—
Paribhaksha
(ପରିଭକ୍ଷା—ସ୍ତ୍ରୀ) Subsisting on the food of another.

**ପରିଭକ୍ଷଣ**—ସ. ବି. (ପରି=ସର୍ବତୋଭାବରେ, ନିବାକ୍+ଭକ୍ଷଣ)—
Paribhakshana ନିବାକ୍ ଖାଇ ଯିବା, ପୋଛି ପାଛି ଖାଇଦେବା-
(ପରିଭକ୍ଷିତ—ବିଣ) Eating without leaving any remainder; eating up.

**ପରିଭବ**—ସ. ବି. (ପରି+ଭୂ ଧାତୁ=ହେବା, ପରାଜୟ କରିବା+ଭାବ. ଅ)—୧ । ପରାଭବ, ପରାଜୟ—1. Defeat.
Paribhaba
(ପରିଭାବ, ପରାଭାବ—ଅନ୍ୟରୂପ)—୨ । ତିରସ୍କାର—2. Rebuke.

୩ । ଅବମାନନା—3. Insult.

୪ । ଅସମ୍ମାନ—4. Disrespect.

**ପରିଭବୀ**—ସ. ବିଣ. ପୁଂ.—(ପରିଭବିନ୍; ୧ମା. ୧ବ. ପରି+ଭୂ ଧାତୁ+କର୍ତ୍ତୃ. ଇନ୍)—୧ । ପରାଭବକାରୀ—
Paribhabī
(ପରିଭାବୀ—ଅନ୍ୟରୂପ) 1. Defeating.
(ପରିଭାବିନୀ, ପରିଭବିନୀ—ଅନ୍ୟରୂପ)

୨ । ତିରସ୍କାରୀ; ତିରସ୍କାରକାରୀ—2. Rebuking.

୩ । ଅପମାନକାରୀ; ଅବଜ୍ଞାକାରୀ—3. Insulting.

୪ । ଦ୍ରଷ୍ଟା—4 Seeing.

**ପରିଭାଷକ**—ସ.ବିଣ.—(ପରି+ଭାଷ୍ଧାତୁ+କର୍ତ୍ତୃ.ଅକ)—୧ । ନିନ୍ଦକ—
Paribhāshaka 1. Blaming.
(ପରିଭାଷିକା—ସ୍ତ୍ରୀ) ୨ । ତିରସ୍କାରକ—2. Rebuking.

୩ । ଅପବାଦକାରୀ—3. Slandering; defaming.

**ପରିଭାଷଣ**—ସ ବି.—(ପରି=ପରସ୍ପର+ଭାଷଣ=କଥନ)—
Paribhāshaṇa ୧ । ବାକ୍ୟାଳାପ, କଥୋପକଥନ—
1. Conversation.

୨ । (ପରି=ନିନ୍ଦା, ଦୋଷ କୀର୍ତ୍ତନ+ଭାଷଣ=କଥନ)—
ନିନ୍ଦାବାଦ—2 Blaming.

୩ । ତିରସ୍କାର, ଢ଼ଲୁଗୁଣା—3. Rebuking; jeering.

[ଦ୍ର—ହିନ୍ଦୁ ସ୍ମୃତି ଅନୁସାରେ ଗର୍ଭିଣୀ, ଆପଦଗ୍ରସ୍ତ, ବୃଦ୍ଧ ଓ ବାଳକ ଅପରାଧୀଙ୍କୁ ଅନ୍ୟ ଦଣ୍ଡ ନ ଦେଇ ପରିଭାଷଣ ଦଣ୍ଡ ଦେବା ଉଚିତ ।]

୪ । ଲକ୍ଷଣ—4. Symptom.

୫ । ସଙ୍କେତ—5 Sign.

୬ । ରୋଗର ଲକ୍ଷଣ ପ୍ରକାଶ—6. Describing the symptoms of a disease; prognosis

**ପରିଭାଷା**—ସ.ବି.—(ପରି=ବ୍ୟାପ୍ତ+ଭାଷା=କଥନ)—୧ । ବିଶେଷାର୍ଥ-
Paribhāshā ବୋଧକ ସଙ୍କେତ—1. Sign indicating special meaning.

୨ । ବିଜ୍ଞାନ ଆଦିରେ ପ୍ରଚଳିତ ସଂଜ୍ଞାବିଶେଷ—
2. Technical term.

୩ । ପରିଷ୍କୃତ ବା ସ୍ପଷ୍ଟଭାଷଣ—
3. Clear expression; lucid speech.

୪ । ବିଶିଷ୍ଟ ପଦମାନଙ୍କ ଅର୍ଥ—
4 Meaning of technical words.

୫ । ବିଶିଷ୍ଟ ପଦମାନଙ୍କର ତାଲିକା—5. A list of technical words; technology.

୬ । ନିନ୍ଦା (ହି. ଶ.)—6 Blame.

୭ । ଭର୍ତ୍ସନା—7. Censure; reproof (M. W.).

**ପରିଭାଷିକ**—ଦେ. ବିଣ. ( ସ. ପାରିଭାଷିକ )—
Paribhāshika ପାରିଭାଷିକ ( ଦେଖ )
Pāribhāshika ( See )

**ପରିଭାଷିତ**—ସ. ବିଣ. (ପରି+ଭାଷ୍ ଧାତୁ=କହିବା+କର୍ମ. ତ)—
Paribhāshita ୧ । କଥିତ—1. Spoken.

୨ । ପରିଭାଷା ଦ୍ୱାରା ବ୍ୟକ୍ତ—
2 Expressed in technical terms.

୩ । ବ୍ୟାଖ୍ୟାତ—3. Explained. (M. W.)

**ପରିଭୁକ୍ତ**—ସ. ବିଣ. (ପରି+ଭୁଜ୍ ଧାତୁ=ଭୋଜନ କରିବା+କର୍ମ.ତ)—
Paribhukta ୧ । ଯାହା ଭୋଗ କରା ଯାଇଅଛି, ଉପଭୁକ୍ତ—
(ପରିଭୁକ୍ତା—ସ୍ତ୍ରୀ) 1. Enjoyed before by another.

୨ । ପୂର୍ବରୁ ବ୍ୟବହୃତ—2. Used before.

୩ । ଅନ୍ୟ ଦ୍ୱାରା ପୂର୍ବରୁ ଭକ୍ଷିତ—
3. Eaten before by another.

**ପରିଭୂତ**—ସ. ବିଣ. (ପରି+ଭୂ ଧାତୁ+କର୍ମ. ତ)—
Paribhūta ୧ । ପରାଜିତ—1. Defeated; conquered.
(ପରିଭୂତି—ବି) ୨ । ଅଭିଭୂତ—2. Overpowered.

୩ । ଭର୍ତ୍ସିତ—3. Chastised
୪ । ଅନାଦୃତ—4. Slighted
୫ । ଘୃଣିତ—5. Despised
୬ । ଅବହେଳିତ—6 Disregarded

**ପରିଭୂଷଣ**—ସଂ. ବି. ( ପରି+ଭୂଷଣ )—୧ । ସଜାଇବା—
Paribhūshaṇa 1. Equipping; furnishing.
୨ । କୌଣସି ପ୍ରଦେଶର ବା ଭୂଖଣ୍ଡର ରାଜସ୍ୱ ଶତ୍ରୁକୁ ଦାନ କରି ତହିଁ ବଦଳରେ ଯେଉଁ ଶାନ୍ତି କ୍ରୀତ ହୁଏ (ହି. ଶ.)—
2. Peace purchased by paying or the cession of the whole revenue of a province to the enemy. (M. W.)

**ପରିଭେଦ**—ସଂ. ବି. ( ପରି+ଭେଦ )—ଅସ୍ତ୍ର ଶସ୍ତ୍ରାଦିର ଆଘାତ—
Paribheda Hurt or injury caused by weapons.

**ପରିଭୋଗ**—ସଂ. ବି. (ପରି+ଭୁଜ୍ ଧାତୁ=ଭୋଜନ କରିବା+ଭାବ. ଅ)—
Paribhoga ୧ । ସମ୍ଭୋଗ—1. Enjoyment.
ପରିଭୁକ୍ତ, ପରିଭୋଗ୍ୟ } ବିଣ ୨ । ସଙ୍ଗମ, ମୈଥୁନ—
2 Sexual intercourse.
୩ । ଜୀବନୋପାୟ; ଜୀବିକା—
3 Means of subsistence. (M. W)
୪ । ସମ୍ଭୋଗର ଉପାୟ—
4. Means of enjoyment. (M. W)
୫ । ପର ଦ୍ରବ୍ୟର ଅବୈଧ ବ୍ୟବହାର—
5 Illegal use of another's goods. (M. W.)
୬ । ଗୁରୁ ଧନର ଉପଭୋଗ (ହି. ଶବ୍ଦସାଗର)—
6. Enjoyment or appropriation of the property of one's preceptor.

**ପରିଭ୍ରମ** - ସଂ. ବି. (ପରି+ଭ୍ରମ୍ ଧାତୁ=ଭ୍ରମଣ କରିବା+ଭାବ. ଅ)—
Paribhrama ୧ । ପରିଭ୍ରମଣ, ଚତୁର୍ଦ୍ଦିଗ ଭ୍ରମଣ; ପର୍ଯ୍ୟଟନ—
1. Moving about; roaming; wandering.
୨ । ଭ୍ରମ; ଭ୍ରାନ୍ତି, ପ୍ରମାଦ—
2. Mistake; error. (M. W.)
୩ । କଥାକୁ ବୁଲେଇ କରି କହିବା—3. Circumlocution; rambling discourse. (M. W.)

**ପରିଭ୍ରମଣ**—ସଂ. ବି. (ପରି+ଭ୍ରମ୍ ଧାତୁ+ଭାବ. ଅନ)—
Paribhramaṇa ୧ । ପରିକ୍ରମ ( ଦେଖ )
1. Parikrama ( See )
୨ । ଇତସ୍ତତଃ ଚଳନ—2. Moving to and fro.
୩ । ପର୍ଯ୍ୟଟନ—3. Travelling.
୪ । ଘୂର୍ଣ୍ଣନ; ଘୂରି ଆଡ଼େ ବୁଲିବା—
4. Turning round; revolving.
୫ । ପରିଧି—5. Circumference. (M. W.)

**ପରିଭ୍ରଷ୍ଟ**—ସଂ. ବିଣ. (ପରି+ଭ୍ରନ୍ଶ ଧାତୁ=ସ୍ଖଳିତ ହେବା+କର୍ମ. ତ)—
Paribhrashṭa ୧ । ପତିତ—1. Fallen.
(ପରିଭ୍ରଂଶ—ବି) ୨ । ବିଚ୍ୟୁତ; ସ୍ଖଳିତ—2. Slipped off.
(ପରିଭ୍ରଷ୍ଟା—ସ୍ତ୍ରୀ) ୩ । ନଷ୍ଟ—3. Spoiled; destroyed; ruined; lost
୪ । ପଳାୟିତ—4. Fled away; escaped.

**ପରିମ୍ କରିବା**—ଦେ. କ୍ରି. ( ତନ୍ତୀମାନଙ୍କ ଭାଷା )—
Parim karibā ୧ । ଲୁଗା ବୁଣିବା ପାଇଁ ଟାଣି ସୁତାକୁ ମଣ୍ଡରେ ବୁଡ଼ାଇ ତାକୁ ଲମ୍ବ କରି ଓଟାରି ବାନ୍ଧିବା ପରେ ପାନିଆ ଦ୍ୱାରା ଉକ୍ତ ଟାଣି ସୁତାମାନଙ୍କୁ ଲୁଣ୍ଠାଇ କରି ଗୋଟି ଗୋଟି ବା ଖିଅ ଖିଅ କରିବା—
To separate the warp threads by means of the comb after immersing them in gruel for weaving.

**ପରିମଣ୍ଡଳ**—ସଂ. ବି. (ପରି=ଘୂରି ଆଡ଼େ+ମଣ୍ଡଳ=ଗୋଲ; ପରିଧି)—
Parimaṇḍala ୧ । ପରିଧି—1. Circumference.
୨ । ବୃତ୍ତ—2. Circle; sphere.
୩ । ସୂର୍ଯ୍ୟ ଓ ଚନ୍ଦ୍ରଙ୍କ ମଣ୍ଡଳ—3. The orb of or halo round the sun and the moon.
୪ । ଗୋଲାକାର; ବର୍ତ୍ତୁଳତା—
4. Roundness; rotundity.
୫ । ଗୋଲକ—5. Globe; sphere.
୬ । ଏକ ପ୍ରକାର ବିଷାକ୍ତ ମଶକ (ସୁଶ୍ରୁତ)—
6. A kind of venomous gnat.
ସଂ. ବିଣ—୧ । ଗୋଲ—1. Circular.
(ପରିମଣ୍ଡଳତା—ବି) ୨ । ବର୍ତ୍ତୁଳ—2. Round; globular.
୩ । ଅଣୁ ପରିମିତ—
3. Of the measure of an atom.

**ପରିମର**—ସଂ. ବି. (ପରି+ମୃ ଧାତୁ+ଭାବ. ଅ)—
Parimara ୧ । ବହୁ ଜୀବଙ୍କର ମରଣ—
1. The dying in numbers. (M. W.)
୨ । କୌଣସି ଲୋକର ଘୂରି ପାଖ ଘେରି ଜୀବମାନଙ୍କ ମରଣ—
2 The dying round any one. (M. W.)
୩ । ଶତ୍ରୁର ବିନାଶାର୍ଥ ପ୍ରଯୁକ୍ତ ଅଭିଚାର—3. A magical rite for the destruction of one's adversary
୪ । ବାୟୁ; ପବନ (ହି. ଶ.)—4. Wind
ସଂ. ବିଣ—ଯାହା ଘୂରି ପାଖେ ବହୁ ଲୋକ ମରି ଅଛନ୍ତି—
One round whom many people have died.

**ପରିମର୍ଶ**—ସଂ. ବି. (ପରି=ସମ୍ୟକ୍+ମୃଶ୍ ଧାତୁ=ସ୍ପର୍ଶ କରିବା+ଭାବ. ଅ)—
Parimarśa ୧ । ଘର୍ଷଣ—1. Rubbing.
୨ । ଲାଗିଯିବା; ଛୁଇଁବା, ସ୍ପର୍ଶ—2. Touching.
୩ । ସଂଘର୍ଷ—3. Collision.
୪ । ବିବେଚନା—4. Thorough consideration.
୫ । ସ୍ମରଣ—5. Reflection (M. W.).

**ପରିମର୍ଷ**—ସଂ. ବି. (ପରି+ମୃଷ ଧାତୁ=ସହ୍ୟ କରିବା+ଭାବ. ଅ)—
Parimarsha ୧ । ଦ୍ୱେଷ; ହିଂସା, ଅସୂୟା—
1. Malice; spite.

୨ । ଈର୍ଷ୍ୟା—2 Envy.
୩ । କ୍ରୋଧ—3. Anger; rage

**ପରିମଳ**—ସଂ. ବି. (ପରି=ଚତୁର୍ଦ୍ଦିଗ+ମଲ୍ ଧାତୁ=ଧାରଣ କରିବା+ଭାବ. ଅ)—୧ । ଚନ୍ଦନ ଆଦିର ଲେପନ ଜନିତ ସୁଗନ୍ଧ—1. Perfume arising from the paste of fragrant substance.
Parimala

୨ । ପୁଷ୍ପ ଆଦିରୁ ଉତ୍ଥିତ ସୁବାସ—
2. Smell arising from flowers; scent.
୩ । ସମ୍ଭୋଗ—3. Enjoyment.
୪ । ମୈଥୁନ—4 Copulation; connubial pleasure.
୫ । ସଜ୍ଜନ ସହବାସ—
5. Living with good people.
୬ । ପଣ୍ଡିତମାନଙ୍କ ସମ୍ମିଳନୀ—
6. A meeting of learned men.
୭ । କଳଙ୍କ—7. Stain. (M. W.)
୮ । ଦଳନ; ବାଟିବା (ହି. ଶ)—
8. Pounding; pasting; bruising

ଦେ. ବି—୧ । ଅବସ୍ଥା—1. Condition; state.
୨ । ଆଭ୍ୟନ୍ତରୀଣ ଅବସ୍ଥାର ପୂର୍ବସୂଚନା; ପରିଗୁଣ—
2. Indication.
ତାଂ ପରିମଳ ଖୋବାଭୁଠରୁ ଜଣା । ତଗ ।
୩ । ମେଳ; ଗହଳ—3. Crowd.
ଯାହା ପରିମଳ ଦେଖିଲକୁ ସିବା ବେଳେ,
ଶଶିସେଣା ଦୁଃଖକୁ କୂଳ ଅନାଇଲେ । ପ୍ରାଚୀ. ପ୍ରତାପ ଶଶିସେଣା ।

ଦେ. ବିଣ—ସୁବାସିତ, ସୁଗନ୍ଧଯୁକ୍ତ—
Fragrant; sweet smelling.
କାହା କୁସୁମେ ପରିମଳ
ଲୁବେ ଲକ୍ଷ୍ମର ବନମାଳ । ଜଗନ୍ନାଥ. ଭାଗବତ ।

**ପରିମଳ ମୟ**—ସଂ. ବିଣ. (ପରିମଳ+ଯୁକ୍ତାର୍ଥେ ମୟ)—ସୁବାସପୂର୍ଣ୍ଣ; ସୁଗନ୍ଧଯୁକ୍ତ—Fragrant.
Parimala maya
ଦକ୍ଷିଣ ବନ୍ଦେ ବହେ ମୃଦୁଳ
ପରିମଳମୟ ମଳୟାନିଳ । ମଧୁସୂଦନ. ଛନ୍ଦମାଳା ।

**ପରିମଳା**—ଗ୍ରା. ବି. (ନାମ) (ସଂ. ପ୍ରମୀଳା)—ପ୍ରମୀଳା (ଦେଖ)—
Parimala Pramila (See)
[ ଦ୍ରି—ଚକ୍ରବର୍ତ୍ତୀର ସ୍ୱର୍ଗ ସୁଧାମୋହନଙ୍କ ନାଟକରେ 'ପରିମଳା-ସହଗମନ'ରେ ପ୍ରମୀଳାର ନାମ ପରିମଳା ଦିଆଯାଇ ଅଛି । ]

**ପରିମାଣ**—ସଂ. ବି. (ପରି=ସମ୍ୟକ୍+ମା ଧାତୁ=ମପିବା+ଭାବ. ଅନ)—
Parimana ୧ । ପରିଧି, ଦୈର୍ଘ୍ୟ, ପ୍ରସ୍ଥ, ଆକାର, ଓଜନ, ସଂଖ୍ୟା, କାଳ, ମୂଲ୍ୟ ଆଦିର ମାପ—1. Measure of circumference, length, breadth, size weight, number, duration, value and quantity.
ପରିମିତ ପରିମେୟ } ବିଣ.
୨ । ବିସ୍ତୃତି—2 Extent.
୩ । ଦୈର୍ଘ୍ୟ ଓ ପ୍ରସ୍ଥ, ଆକାର—
3. Size; length and breadth; dimensions.
୪ । ଗଣିବା—4. Counting
୫ । ସଂଖ୍ୟା—5. Number.
୬ । ଆକାରର ବର୍ଗ ବା ଘନଫଳ—
6. Superficial or cubical area.
୭ । ଓଜନ—7. Weight.
୮ । ମାପର ଉପକରଣ—8. Material or standard for measurement or weighing.

**ପରିମାଣ ଫଳ**—ସଂ. ବି. (୬ଷ୍ଠୀ ତତ୍; ପରିମାଣ+ଫଳ)—
Parimana phala ନିର୍ଦ୍ଦିଷ୍ଟ କ୍ଷେତ୍ରର ବର୍ଗଫଳ—
Area of a plot of land.
[ ଦ୍ର—କ୍ଷେତ୍ରର ଦୀର୍ଘ ଓ ପ୍ରସ୍ଥ ଗୁଣିଲେ ଯେଉଁ ଗୁଣିତ ହୁଏ । ]

**ପରିମାଣାତ୍ମକ**—ସଂ.ବିଣ. (ପରିମାଣ+ଆତ୍ମନ୍+କ)—ପରିମାଣ ସମ୍ବନ୍ଧୀୟ—
Parimanatmaka Quantitative, relating to measure.
(ପରିମାଣାତ୍ମିକା—ସ୍ତ୍ରୀ)

**ପରିମାଣି**—ଦେ. ଅ. (ସଂ. ପ୍ରମାଣ)—ତୁଲ୍ୟ; ପରି; ପ୍ରମାଣେ—
Parimani Like; similar to
ରଥ ବସନ୍ତ କେତୁକାଣି
ଚନ୍ଦ୍ରମଣ୍ଡଳ ପରିମାଣି । ପ୍ରାଚୀ ଯଶୋବନ୍ତ. ପ୍ରେମଭକ୍ତିଗୀତା ।

**ପରିମାଣିକ**—ଦେ. ବି—୧ । ସମାଜର ପ୍ରଧାନ ବ୍ୟକ୍ତି—
Parimanika 1. The headman of a caste-guild.
परामाणिक ୨ । ତନ୍ତୀମାନଙ୍କ ଉପାଧିବିଶେଷ—
ठाकुर 2. A family-title of weavers.
ପ୍ରାଦେ. (ପୁରୀ)—ମନ୍ଦିରର ଯେଉଁ କର୍ମଚାରୀ ଖଟଣି ପାଇଁ ଯାତ୍ରୀଙ୍କ ଦେବା ଫିସ୍ ସ୍ଥିର କରେ ଓ ଆଦାୟ କରେ—
A temple officer who settles & realises fees from pilgrims for offerings to a Deity.

**ପରିମାଣିକା**—ପ୍ରାଦେ. (ପୁରୀ) ବି—ଜଗନ୍ନାଥ ଆଦି ଦେବତାଙ୍କ କୌଣସି ବିଶେଷ ଖଟଣି ଲଗାଇବା ପାଇଁ ଯାତ୍ରୀ ଦେବା ଫିସ୍—The fees paid by pilgrims for offering special bhog to a Deity.
Parimanika

**ପରିମାଣିବା**—ଦେ. (ପଦ୍ୟ) କ୍ରି- (ସଂ. ପରିମାଣ)—୧ । ମାପ ସ୍ଥିର କରିବା—1. To ascertain or determine the measure of.
Parimaniba
परिमाण परिमानना
ଲକ୍ଷ ଅଲକ୍ଷ ଯେତେ ପ୍ରାଣୀ ।
ବୋଧ ବଳରେ ପରିମାଣି । ଜଗନ୍ନାଥ—ଭାଗବତ ।
୨ । ନିର୍ଦ୍ଦେଶ କରିବା; ବ୍ୟବସ୍ଥା କରିବା—
2. To indicate; to lay down.
ଶାସ୍ତ୍ରଭାବରେ ସେ ପ୍ରମାଣେ ପରିମାଣି ବର୍ଣ୍ଣନର ମାନ—ମଧୁସୂଦନ ।
୩ । ରଚନା କରିବା—3. To compose.
ନିର୍ମ୍ମଳ ଭାଗବତ ବାଣୀ
ଛନ୍ଦ ପ୍ରବନ୍ଧେ ପରିମାଣି । ଜଗନ୍ନାଥ—ଭାଗବତ ।
୪ । ବିଚାରିବା—
4. To think; to keep in view.

କବା ଉତ୍ତମ ପରିମଣି
ଅଛିଲେ ଅନ୍ତେ ତ ନ ଜାଣି । ଜଗନ୍ନାଥ—ଭାଗବତ ।

**ପରିମି**—ଗ୍ରା ବି—(ନାମ)—(ଆଦରାର୍ଥକ) ପରମାନନ୍ଦର ଡାକ ନାମ—
Parimi ପରମାନନ୍ଦ— Name for calling Paramānanda

**ପରିମିତ**—ସଂ ବିଣ—(ପରି+ମା ଧାତୁ+ମାପିବା+କର୍ମି. କ୍ତ)—
Parimita ୧ । ନିର୍ଦ୍ଦିଷ୍ଟ ସୀମାବଦ୍ଧ—1 Definite; of given dimensions; limited
(ପରିମିତା—ସ୍ତ୍ରୀ)
୨ । ଉପଯୁକ୍ତ ପରିମାଣଯୁକ୍ତ—
2 Of proper or fixed to quantity.
୩ । ସଂଯତ—3 Moderate, temperate.
୪ । ନିୟମିତ—4. Regulated.
[ପରିମିତତା (ତ୍ୱ)—ବି] ୫ । ଅଳ୍ପ—
5. Small; little; sparing
୬ । ସ୍ଥିରୀକୃତ—
6 Defined; determined, ascertained
୭ । ମାପ ହୋଇଥିବା, ତଉଲ ହୋଇଥିବା—
7. Measured; weighed.
୮ । ସଂଖ୍ୟାତ—9. Numbered.
୯ । ନିର୍ଦ୍ଦିଷ୍ଟ ସଂଖ୍ୟକ—9 Of a fixed number.

**ପରିମିତ ବ୍ୟୟ**—ସଂ. ବି. (କର୍ମଧା; ପରିମିତ+ବ୍ୟୟ)—ଉଚିତ ଖରଚ,
Parimita byaya ଆୟକୁ ଦେଖି ବ୍ୟୟ—Frugality; economy.

ପରିମିତବ୍ୟୟିତା } ବି
ପରିମିତବ୍ୟୟିତା }
ସଂ. ବିଣ. ପୁଂ (ବହୁବ୍ରୀହି; ପରିମିତ+ବ୍ୟୟ) - ମିତବ୍ୟୟୀ; ଯେ ବ୍ୟୟ କରିବା
(ପରିମିତବ୍ୟୟୀ—ଅନ୍ୟରୂପ) ବିଷୟରେ ସଂଯତ—
Economical; frugal.
[ପରିମିତବ୍ୟୟୀ, ପରିମିତବ୍ୟୟିନୀ—ସ୍ତ୍ରୀ]

**ପରିମିତ ଭୋଜନ**—ସଂ ବି—(କର୍ମଧା; ପରିମିତ+ଭୋଜନ)—
Parimita bhojana ୧ । ନିର୍ଦ୍ଦିଷ୍ଟ ସୀମା ମଧ୍ୟରେ ସଂଯତ ଖାଦ୍ୟ·
(ପରିମିତାହାର—ଅନ୍ୟରୂପ) Moderate meal
୨ । ଖାଦ୍ୟ ସମ୍ବନ୍ଧେ ସଂଯମ—
2. Moderation in eating; temperance; abstemiousness.
ପରିମିତଭୋଜନା }
ପରିମିତାହାରୀ } ସ୍ତ୍ରୀ
ପରିମିତାହାରିଣୀ }
ପରିମିତ ଭୁକ୍ } ଅନ୍ୟରୂପ
ପରିମିତାହାରୀ }
ସଂ. ବିଣ. ପୁଂ. (ବହୁବ୍ରୀହି; ପରିମିତ+ଭୋଜନ)—ଖାଦ୍ୟ ପାନ ବିଷୟରେ ସଂଯତ-
Temperate in meal.

**ପରିମିତାଚାର**—ସଂ. ବି. (କର୍ମଧା, ପରିମିତ+ଆଚାର)—ସଂଯତ ଆଚରଣ
Parimitāchāra ବା ବ୍ୟବହାର—Well regulated conduct.
(ପରିମିତାଚାରା—ସ୍ତ୍ରୀ) ସଂ.ବିଣ.ପୁଂ—ସଂଯତ—Of moderate or regulated conduct.

**ପରିମିତାଚାରୀ**—ସଂ. ବିଣ. ପୁଂ. (ପରିମିତାଚାରିନ୍, ୧ମା ୧ବ.)—
Parimitāchāri ସଂଯତ—Moderate.
(ପରିମିତାଚାରିଣୀ—ସ୍ତ୍ରୀ) [ପରିମିତାଚାରିତା—ବି]

**ପରିମିତି**—ସଂ. ବି—(ପରି+ମା ଧାତୁ+ଭାବ. କ୍ତି)-୧ । ଯେଉଁ ବିଦ୍ୟା
Parimiti ଦ୍ୱାରା ଜମିର ମାପ ଜଣାପଡ଼େ, କ୍ଷେତ୍ର ପରିମାଣ ବିଦ୍ୟା—
1 Mensuration.
୨ । ମାପର ଫଳ—2 Measure; result of measurement.
୩ । ମାପିବା—3. Measurement
୪ । ପରିମାଣ—4 Quantity

**ପରିମିସର**—ଗ୍ରା ବି. (ସଂ. ପରମେଶ୍ୱରର ଅଶୁଦ୍ଧ ଉଚ୍ଚାରଣ)—ପରମେଶ୍ୱର
Parimisara (ପରିମିସୋର—ଅନ୍ୟରୂପ) God

**ପରିମିସ(ସି)ରି ନୋ(ଲୋ)ଟ୍**—ବୈଦେ ବି—(ଇଂରାଜୀ ଶବ୍ଦର ଅଶୁଦ୍ଧ
Parimisa(si)ri no(lo)t ଉଚ୍ଚାରଣ—ପ୍ରମିସରି ନୋଟ୍ (ଦେଖ)
Pramisari not. (See).

**ପରିମୁକ୍ତ**—ସଂ. ବିଣ—(ପରି+ମୁଚ୍ ଧାତୁ=ମୋଚନ କରିବା+
Parimukta କର୍ମ କ୍ତ)—୧ । ପରିତ୍ୟକ୍ତ, ବର୍ଜିତ—
1 Abandoned, shunned.
୨ । ପୂର୍ଣ୍ଣରୂପେ ମୁକ୍ତ—2 Fully liberated; freed

**ପରିମୁକ୍ତ ସଙ୍ଗ**—ସଂ. ବିଣ. ପୁଂ. (ବହୁବ୍ରୀହି, ପରିମୁକ୍ତ=ସମ୍ପୂର୍ଣ୍ଣରୂପେ
Parimukta sanga ପରିତ୍ୟକ୍ତ+ସଙ୍ଗ=ବିଷୟ ଭୋଗ)—
ବର୍ଜିତ ବିଷୟ ଭୋଗ, ବିଷୟଭୋଗ ପ୍ରତି ନିସ୍ପୃହ, ବିରାଗୀ—
One who has renounced worldly engagements.

**ପରିମୁଖେ**—ଦେ. କ୍ରି. ବିଣ—(ସଂ. ପରିମୁଖଂ=ମୁହଁର ଚାରିପାଖେ)—
Parimukhe ସମ୍ମୁଖରେ—In front; before

ବ୍ରହ୍ମା ନନ୍ଦନ ପରିମୁଖେ
ପୁଣି ପୁଚ୍ଛିଲ ଅସ୍ତସୁଖେ । ଜଗନ୍ନାଥ—ଭାଗବତ ।

**ପରିମୁଣ୍ଡା**—ଦେ. ବି—୧ । ଅନ୍ୟ ବ୍ୟକ୍ତି ବା ଦେବତାଙ୍କ ନିକଟରେ
Parimundā ନିଜର ଦୀନତା ପ୍ରକାଶ—1. Expressing one's humility before a Deity or before another
୨ । ଅନ୍ୟକୃତ ଦୋଷ ବା ଅପରାଧକୁ ଆପଣା ଉପରକୁ ନେବା· ପାଇଁ ପ୍ରାର୍ଥନା—2 Taking the blame for the fault of another on one's head.
୩ । ମନର ଦୁଃଖ ପ୍ରକାଶ—3. Giving vent to one's grief or mental anguish.

**ପରିମୁଣ୍ଡା ଯିବା**—ଦେ. କ୍ରି.—୧ । ଆପଣାର ଦୀନତା ପ୍ରକାଶ କରିବା—
Parimundā jibā 1. To express one's humility

ଚୋରି ପଣକୁ ନାଥ ପରିମୁଣ୍ଡା ଯାଇ ।
କୃଷ୍ଣଦାସ. ଦେଉଳତୋଳା ।

ନିଛା ୨ । ଧନ୍ୟ ଧନ୍ୟ କରିବା; ପ୍ରଶଂସା କରିବା—
**निछावर होना** 2. To praise; to eulogise.
୩ । ମନରେ ଦୁଃଖ କରିବା—3. To be sorry.
୪ । ନେହୁରା ହେବା—4. To request humbly.

ବ୍ରହ୍ମା ଏ କହିଲେ ଏବା ପରିମୁଣ୍ଡା ଯାଇ,
ସତ କହ ଦେଉଳ କାହାର ଅଟଇ । କୃଷ୍ଣଦାସ. ଦେଉଳତୋଳା ।

୫ । ଅନ୍ୟ କୃତ ଦୋଷ ବା ଅପରାଧର ଦାୟିତ୍ୱକୁ ଆପଣା ମୁଣ୍ଡରେ ନେବା—5 To take the blame for the fault of another on one's head

୬ । ଅଭିମାନ କରିବା—
6 To be sullen on account of displeasure.

୭ । ନମସ୍କାର କରିବା—
7 To bow down in reverence

ସେ ପୀତବାସଙ୍କ କହଇ,
ଚରଣେ ପରିମ ଶ୍ରୀ ପାଇ । ଜଗନ୍ନାଥ. ଭାଗବତ ।

**ପରିମେୟ**—ସ. ବିଣ.—(ପରି + ମା ଧାତୁ + କର୍ମ ଯ)—୧ । ପରିମାଣ-ଯୋଗ୍ୟ—1. Measurable.
Parimeya
(ପରିମେୟା—ସ୍ତ୍ରୀ) ୨ । ଗଣନୀୟ—
(ପରିମେୟତା[ତ୍ୱ]—ବି) 2 Numerable; calculable.
୩ । ପରିମିତ, ସୀମାବିଶିଷ୍ଟ, ନିର୍ଦ୍ଦିଷ୍ଟ—
3. Limited; definite
୪ । ସଂଯତ—4 Moderate
୫ । ପରିମାଣଯୁକ୍ତ—5. Measured.
୬ । ନିର୍ଦ୍ଦିଷ୍ଟ ସଂଖ୍ୟକ—
6 Of definite or limited number.

**ପରିମୋକ୍ଷ**—ସ ବି.—(ପରି + ମୋକ୍ଷ୍ ଧାତୁ = ମୁକ୍ତ ହେବା + ଭାବ. ଅ)-
Parimoksha ପରିତ୍ରାଣ—1. Deliverance; liberation.
(ପରିମୋକ୍ଷଣ—ଅନ୍ୟରୂପ) ୨ । ମଳତ୍ୟାଗ—
2. Passing of stools; evacuation.
୩ । ପରିତ୍ୟାଗ—3. Abandonment.
୪ । ମୋକ୍ଷ; ନିର୍ବାଣ—4 Final beatitude

**ପରିମୋଷ**—ସ. ବି.— ଚୋରି, ସ୍ତେୟ (ହି. ଶ)
Parimosha Theft.

**ପରିମୋଷକ**—ସ. ବି.—ଚୋର (ହି. ଶ.)—
Parimoshaka Thief.

**ପରିମୋଷୀ**—ସ. ବିଣ. ପୁଂ—ଚୋର ସ୍ୱଭାବ ବିଶିଷ୍ଟ (ହି. ଶ.)
Parimoshi Stealing by nature; of a thievish nature.
(ପରିମୋଷିଣୀ—ସ୍ତ୍ରୀ)

**ପରିମ୍ଲାନ**—ସ. ବିଣ—(ପରି + ମ୍ଲାନ = ମଳିନ)—୧ । ଅତ୍ୟନ୍ତ ମ୍ଲାନ—
Parimlāna I Very pale or wan.
(ପରିମ୍ଲାନା—ସ୍ତ୍ରୀ) ୨ । କ୍ଷୀଣୀଭୂତ—
2. Become thinner; emaciated.
୩ । କ୍ଲାନ୍ତ—3. Exhausted.
୪ । ଝାଉଁଳ ଯାଇଥିବା—4. Faded; withered
ସ. ବି.—ଭୟ ବା ଦୁଃଖରେ ମୁହଁର ବିରସ ଭାବ—
1. Change of countenance by fear or grief. (M. W.)
୨ । କଳଙ୍କ; ଦାଗ—2. Stain.

**ପରିଯନ୍ତ**—ଗ୍ରା. ବି.—(ସ. ପର୍ଯ୍ୟନ୍ତ)—ପର୍ଯ୍ୟନ୍ତ; ଶେଷ; ଅବସାନ—
Parijanta End.

ସେବାଇରେ ଲକ୍ଷ ଯେ ଜନ ପରିଯନ୍ତେ,
ମଗ୍ନ ହୋଇଣ ମହା ସାଗର ଯାଆନ୍ତେ ।
କୃଷ୍ଣସିଂହ ମହାଭାରତ. ବନ ।

ପରିଯ୍ୟନ୍ତ, ପରିଯନ୍ତେ, ପରିଯ୍ୟନ୍ତେ } ଅନ୍ୟରୂପ ଗ୍ରା. ଅ.— ଯାବତ, ଯାକେ, ଯାଏ—
Till; upto.

ସେବାକୁ କଲେକ୍ ଆଜ ପରିଯନ୍ତେ ।
କୃଷ୍ଣସିଂହ. ମହାଭାରତ. ଆଦ ।

परियन्त ୨ । ଏତେ ଦୂରତା ପର୍ଯ୍ୟନ୍ତ—
परियंत 2. To a distance of

**ପରିଯଙ୍କ**—ଗ୍ରା. (ପଦ୍ୟ) ବି.—(ସ ପର୍ଯ୍ୟଙ୍କ)—ପର୍ଯ୍ୟଙ୍କ, ପଲଙ୍କ—
Parijyanka परियंक Bedstead

ଘାଟରେ ଦେଖିଲୁ ଆସନେ ପ୍ରକୁ ହୋଇ.
ଅମୂଲ୍ୟ ପରିଯଙ୍କ ତୋହିଏ ଭସଇ । କୃଷ୍ଣସିଂହ. ମହାଭାରତ. ବନ ।

**ପରିରକ୍ଷଣ**—ସ. ବି —(ପରି = ସର୍ବତୋଭାବେ + ରକ୍ଷ୍ ଧାତୁ = ରକ୍ଷା କରିବା + ଭାବ. ଅନ)—୧ । ସଂରକ୍ଷଣ —
Parirakshana
(ପରିରକ୍ଷା—ଅନ୍ୟରୂପ) 1. Careful preservation; protecting
(ପରିରକ୍ଷକ, ପରିରକ୍ଷିତ, ପରିରକ୍ଷିତା—ପୁଂ—ବିଣ)
(ପରିରକ୍ଷିକା, ପରିରକ୍ଷିତା, ପରିରକ୍ଷିତ୍ରୀ – ସ୍ତ୍ରୀ. ବିଣ) ୨ । ଉଦ୍ଧାର—
2. Deliverance; rescue (M W)
୩ । ସାବଧାନତା, ଯତ୍ନ—3. Care; caution. (M.W)
୪ । ଜଗିବା—4 Guarding.

**ପରିରଟନ**—ସ. ବି (ପରି + ରଟନ)—୧ । ଉଚ୍ଚୈଃସ୍ୱରରେ କାନ୍ଦିବା—
Pariratana 1. Cryingaloud. (M.W.)
ପରିରଟକ—ବିଣ—ପୁଂ. } ୨ । ଚିତ୍କାର କରିବା—
ପରିରଟିକା—ବିଣ. ସ୍ତ୍ରୀ } 2 Screaming (M.W.).

**ପରିରବ୍ଧ**—ସ. ବିଣ. (ପରି ରଭ୍ ଧାତୁ = ଆଲିଙ୍ଗନ କରିବା + କର୍ମ ତ)
Parirabdha ୧ । ଆଲିଙ୍ଗିତ—1. Embraced; hugged.
(ପରିରବ୍ଧା—ସ୍ତ୍ରୀ) ୨ । (+ କର୍ତ୍ତୃ. ତ)—ଆଲିଙ୍ଗନକାରୀ—
2 Embracing. (M. W.)

**ପରିରମ୍ଭ**—ସ. ବି. (ପରି = ଦୃଢ ଭାବେ + ରଭ୍ ଧାତୁ = ଆଲିଙ୍ଗନ କରିବା + ଭାବ. ଅ)—ଗାଢ଼ାଲିଙ୍ଗନ, ଜାବୁଡ଼ି କରି କୁଣ୍ଢେଇବା—Tight embrace; hugging,
Parirambha
ପରୀରମ୍ଭ, ପରିରମ୍ଭଣ } ଅନ୍ୟରୂପ
ବିଣ—ପରିରବ୍ଧ, ପରିରମ୍ଭିତ—ପୁଂ. }
ପରିରବ୍ଧା, ପରିରମ୍ଭିତା—ସ୍ତ୍ରୀ }

**ପରିରମ୍ଭା**—ଦେ. ବିଣ. (ସ. ପରିରମ୍ଭିତ)—ଆଶ୍ଳେଷିତ; ପରିରବ୍ଧ—
Pariranbhā Embraced

ବୋଲି ହସି ମଧେ ସାର ଯେଣି ଚେମା—
ବେଗେ ପାଦ ଦେଶକେ ସେ ପରିରମ୍ଭା । ଭକ୍ତ. ବେଦେଶ୍ୱାରବିଳାସ ।

**ପରିରମ୍ଭିବା**—ଦେ. ପଦ୍ୟ. କ୍ରି—ଗାଢ଼ାଲିଙ୍ଗନ କରିବା—
Parirambhibā To embrace.

परिरम्भ ଅତ ଛ ରୂତ ମ କୁଳତ ଲତା,
परिरम्भकरना ପରିରମ୍ଭି ଦେସକେ ବନତା । ଗ୍ରାମୀ. ଉପଦେଶମଞ୍ଜରୀ ।

**ପରିସ୍ଫଟକ**—ସ. ବିଣ. ପୁଂ. (ପରି=ସର୍ବତ୍ର+ରଟ୍ ଧାତୁ=ପ୍ରକାଶ
Pariraṭaka କରିବା+କର୍ତ୍ତୃ. ଅକ)—
(ପରିସ୍ରଟୀ—ଅନ୍ୟରୂପ) ୧ । ସର୍ବତ୍ର ରଟନାକାରୀ—
1. Publishing broadcast.
ପରିସ୍ରଟକା } ସ୍ତ୍ରୀ ୨ । ଉଚ୍ଚୈଃସ୍ୱରରେ ଚିତ୍କାରକାରୀ—
ପରିସ୍ରଟମା } 2. Screaming. (M. W.)
୩ । ଉଚ୍ଚୈଃସ୍ୱରରେ କ୍ରନ୍ଦନକାରୀ—
3. Crying aloud (M. W.).

**ପରିଲମ୍ବନ**—ସ. ବି.—୧ । (ଜ୍ୟୋତିଷ) କୌଣସି ଜ୍ୟୋତିଷ୍କର ଆପଣାର
Parilambana ମେରୁଦଣ୍ଡ ଉପରେ ଘୂରୁ ଘୂରୁ ବିଷୁବରେଖାର
ଏକଦିଗରେ ୨୨ଡିଗ୍ରୀ ପର୍ଯ୍ୟନ୍ତ ଯାଇ ପୁଣି ଫେରି ଆସି ଅପର
ଦିଗରେ ୨୨ ଡିଗ୍ରୀ ପର୍ଯ୍ୟନ୍ତ ଗତି କରି ପୁଣି ଆପଣା ସ୍ଥାନକୁ
ଫେରି ଆସିବା (ହି. ଶବ୍ଦସାଗର)—
1. (astronomy) Libration; apparent irregularity in the motion of a planet whereby its globe seems to turn slightly round to each side alternately.
୨ । ପଛରେ ରହିଯିବା—
2. Lagging, lingering. (M. W.).

**ପରିଲିଖନ**—ସ. ବି. (ପରି+ଲିଖନ)—ଘଷି ମାଜି ଚିକ୍କଣ କରିବା,
Parilikhana ପାଲିସ କରିବା—Polishing, smoothing.

**ପରିଲେଖନ**—ସ. ବି. (ପରି=ଚାରିଆଡ଼େ+ଲିଖ୍ ଧାତୁ=ଲେଖିବା+
Parilekhana ଭାବ. ଅନ)—୧ । ଯଜ୍ଞସ୍ଥାନର ସୀମାକୁ ଚାରିଆଡ଼େ
ରେଖାଦ୍ୱାରା ବେଷ୍ଟନ—1. Surrounding the limit of the sacrificial place by lines.
୨ । କୌଣସି ବସ୍ତୁର ଚାରିଆଡ଼େ ଗାର କାଟିବା—
2 Drawing lines round about.

**ପରିଶଙ୍କନୀୟ**—ସ. ବିଣ. (ପରି=ବିଶେଷରୂପେ+ଶଙ୍କ୍ ଧାତୁ=ଭୀତ
Pariśankaniya ହେବା, ଆଶଙ୍କା କରିବା+କର୍ମ ଅନୀୟ)—
(ପରିଶଙ୍କା—ବି) ବିଶେଷ ଶଙ୍କାର କାରଣ, ଆଶଙ୍କନୀୟ, ଭୟର
(ପରିଶଙ୍କ୍ୟ—ଅନ୍ୟରୂପ) ବିଷୟ, ଭୀତ ଯୋଗ୍ୟ—
Apprehensible; to be doubted or distrusted
(ପରିଶଙ୍କନୀୟା, ପରିଶଙ୍କ୍ୟା—ସ୍ତ୍ରୀ)
[ଦ୍ର—ଏହିପରି ପରିଶଙ୍କିତ, ପରିଶଙ୍କିତବ୍ୟ ଶବ୍ଦମାନ ନିଷ୍ପନ୍ନ ହୁଏ ।]

**ପରିଶରମ**—ଗ୍ରା. ବି (ସ. ପରିଶ୍ରମ)—ପରିଶ୍ରମ—
Pariśarama Labour.
ପବିଶ୍ରମ **मेहनत** (ପରିଶର୍ମ, ପରିସ୍ରମ—ଅନ୍ୟରୂପ)
ଗ୍ରା. ବିଣ—ପରିଶ୍ରମସାଧ୍ୟ, ଆୟାସ ସାଧ୍ୟ—Laboursome.

**ପରିଶର୍ମି**—ଗ୍ରା. ବିଣ. (ସ. ପରିଶ୍ରମୀ)—ପରିଶ୍ରମୀ –
Parisarmi Laborious.

**ପରିଶିଷ୍ଟ**—ସ. ବିଣ. (ପରି+ଶିଷ୍ ଧାତୁ=ଶେଷ କରିବା+କର୍ମ. ତ)—
Pariśishṭa ୧ । ବାକି ରହିଯାଇଥିବା; ଅବଶିଷ୍ଟ—
1. Remaining; left.
୨ । ଯାହା ପରିଶେଷରେ ଯୁକ୍ତ ହୁଏ—
2. Joined at the end.
ଦେ· ବି.—୧ । ପୁସ୍ତକର ଶେଷରେ ଯୋଗ କରାଯିବା ଅତିରିକ୍ତ
ଜ୍ଞାତବ୍ୟ ବିଷୟ ଲେଖାଥିବା ଅଂଶ—
1. Supplement; appendix.
୨ । ଅବଶିଷ୍ଟ ବା ବାକିଥିବା ଅଂଶ—2. Remainder.

**ପରିଶୀଳନ**—ସ. ବି. (ପରି+ଶୀଲ୍ ଧାତୁ=ଏକାନ୍ତ ପ୍ରବୃତ୍ତ ହେବା+
Pariśilana ଭାବ. ଅନ)—୧ । ଅନୁଧ୍ୟାନ, ଅନୁଶୀଳନ ପୂର୍ବକ
(ପରିଶୀଳକ, ପରିଶୀଳିତ—ବିଣ) ଅଧ୍ୟୟନ—
1. Study; constant application.
୨ । ଛୁଇଁବା—2. Touch; contract.
୩ । ଆଲିଙ୍ଗନ—3. Embrace.
୪ । ସଙ୍ଗମ—4. Intercourse
୫ । ଅବଗାହନ—5 Immersion, bath.

**ପରିଶୀଳନୀ**—ସଂ. ବି (ପରିଶୀଳନ+ସ୍ତ୍ରୀ. ଈ)—ଅନୁଶୀଳନୀ—
Pariśilani A corollary

**ପରିଶୁଦ୍ଧ**—ସଂ. ବିଣ (ପରି=ସର୍ବତୋଭାବେ+ଶୁଧ୍ ଧାତୁ=ଶୁଦ୍ଧକରିବା
Pariśuddha +କର୍ମ. ତ)—୧ । ସମ୍ପୂର୍ଣ୍ଣରୂପେ ବିଶୁଦ୍ଧୀକୃତ—
(ପରିଶୁଦ୍ଧା—ସ୍ତ୍ରୀ) 1. Completely cleansed or purified.
(ପରିଶୋଧିତ—ଅନ୍ୟରୂପ) ୨ । ବିଶୁଦ୍ଧ, ପବିତ୍ର; ପବିତ୍ରୀକୃତ—
(ପରିଶୁଦ୍ଧି—ବି) 2. Pure; purified
୩ । ସଂସ୍କୃତ, ସଂଶୋଧିତ—3 Rectified
୪ । ସଫା ସୁତୁରା କରାଯାଇଥିବା, ପରିଷ୍କୃତ—
4. Cleared off.
୫ । ଦୋଷାରୋପରୁ ସମ୍ପୂର୍ଣ୍ଣରୂପେ ବିମୁକ୍ତ—5 Aquitted of a charge or accusation.

**ପରିଶୁଷ୍କ**—ସ. ବିଣ. (ପରି+ଶୁଷ୍ ଧାତୁ=ଶୁଷ୍କ ହେବା+କର୍ତ୍ତୃ. ତ)—
Pariśushka ୧ । ବିଶୁଦ୍ଧ, ନିତାନ୍ତ ଶୁଖିଲା, ଶୁଖି ଯାଇଥିବା—
(ପରିଶୁଷ୍କତା—ବି) 1. Perfectly dry, dried up; parched.
(ପରିଶୁଷ୍କା—ସ୍ତ୍ରୀ)
୨ । ନୀରସ—2. Sapless
୩ । ଝାଉଁଳିଥିବା, ସେମନ୍ଥିଥିବା—
3 Shrivelled up; withered; shrunk.

**ପରିଶେଷ**—ସ. ବି. (ପରି+ଶେଷ)—
Pariśesha ୧ । ସର୍ବଶେଷ—1. The last thing.
୨ । ଅବଶେଷ—2 Remnant; remainder.
୩ । ଉପସଂହାର, ସମାପ୍ତି, ଅବସାନ—
3. Conclusion; termination.
୪ । ବାକି, ଅବଶିଷ୍ଟ ଅଂଶ, ବଳକା—4. Residue.
୫ । ଧାର, ସୀମା—5. Border; limit.
୬ । ଗ୍ରନ୍ଥର ଶେଷରେ ସଂଯୁକ୍ତ ଅଂଶ, ପରିଶିଷ୍ଟ—
6. Supplement.
ସ. ବିଣ—ଅବଶିଷ୍ଟ—Remaining; left over.

**ପରିଶେଷରେ**—ଦେ. କ୍ରି. ବିଣ. ( ସଂ. ପରିଶେଷ )—
Pariseshare ସର୍ବଶେଷରେ, ସବୁଠାରୁ ଶେଷରେ—At last.
পরিশেষে আখেরে

**ପରିଶୋଧ**—ସଂ. ବି. ( ପରି=ସମ୍ୟକ୍+ଶୁଧ୍ ଧାତୁ=ଶୁଦ୍ଧ କରିବା+ଭାବ. ଅ )—
Parisodha
(ପରିଶୋଧନ—ଅନ୍ୟରୂପ) ୧ । ଋଣ ଶୁଦ୍ଧି, ଋଣ ଶୁଝିବା—
(ପରିଶୋଧିତ, ପରିଶୋଧକ—ବିଣ) 1 Liquidation of a debt, paying off.
୨ । ସଂଶୋଧନ, ସଂସ୍କାର, ପରିଷ୍କାର କରିବା—
2. Cleansing; purification.

**ପରିଶୋଧକ**—ସଂ. ବିଣ. ପୁଂ. ( ପରି+ଶୋଧକ )—
Parisodhaka ୧ । ଋଣ ଆଦି ପରିଶୋଧ କରିବା (ବ୍ୟକ୍ତି)—
(ପରିଶୋଧିକା—ସ୍ତ୍ରୀ) 1. Liquidating a debt
୨ । ଯେ ପରିଷ୍କାର କରେ—2 Clearing; purifying.

**ପରିଶୋଷ**—ସଂ. ବି. (ପରି+ଶୁଷ୍ ଧାତୁ=ଶୁଷ୍କ ହେବା+ଭାବ. ଅ)—
Parisosha ୧ । ପୂର୍ଣ୍ଣ ବିଶୁଷ୍କତା—1. Complete
(ପରିଶୋଷଣ—ଅନ୍ୟରୂପ) dryness.
(ପରିଶୁଷ୍କ—ବିଣ) ୨ । ବାଷ୍ପ ଦ୍ୱାରା ଜଳାଦିର ଅନ୍ତର୍ଦ୍ଧାନ—
2 Evaporation. (M W.)

**ପରିଶ୍ରମ**—ସଂ. ବି. (ପରି+ଶ୍ରମ୍ ଧାତୁ=ପରିଶ୍ରମ କରିବା+ଭାବ. ଅ)—
Parisrama ୧ । ବିଶେଷ ଶ୍ରମ, ମିହନ୍ତ—
ପରିଶ୍ରାନ୍ତ, ପରିଶ୍ରମୀ } ଅନ୍ୟରୂପ 1. Labour; toil.
୨ । କ୍ଳାନ୍ତି; ଶ୍ରାନ୍ତି—2. Fatigue.
୩ । ଆୟାସ—3. Exertion
୪ । ଧାରାବାହିକ ପାଠାଭ୍ୟାସ—4 Regular study.
୫ । ଅଧ୍ୟବସାୟ—5. Perseverance

**ପରିଶ୍ରମ କାତର**—ସଂ. ବିଣ. ପୁଂ. (ପରିଶ୍ରମ+କାତର)—
Parisrama katara ୧ । ଶ୍ରମବିମୁଖ, ବିନା ଇଚ୍ଛା, ପରିଶ୍ରମ
(ପରିଶ୍ରମ କାତରତା—ବି) କରିବାକୁ କୁଣ୍ଠିତ—
(ପରିଶ୍ରମ କାତରା—ସ୍ତ୍ରୀ) 1. Disliking labour.
୨ । ସୁସ୍ତି; କୋଡିଆ—2. Idle; lazy.

**ପରିଶ୍ରମ ପଡ଼ିବା**—ପ୍ରାଦେ. (ଗଞ୍ଜାମ) କ୍ରି—ପରିଶ୍ରମ କରିବା—
Parisrama pardiba To labour.

**ପରିଶ୍ରମର ଫଳ**—ଦେ. ବି—ପରିଶ୍ରମର ଫଳସ୍ୱରୂପ ସାଧିତ କାର୍ଯ୍ୟ—
Parisramara phala The result of one's labour.
পরিশ্রমের ফল পরিশ্রমকা ফল

**ପରିଶ୍ରମୀ**—ସଂ. ବିଣ. ପୁଂ. ( ପରିଶ୍ରମିନ୍, ପରିଶ୍ରମ+ଅସ୍ତ୍ୟର୍ଥେ ଇନ୍;
Parisrami [illegible] ୧ମା. ୧ବ )—
(ପରିଶ୍ରମିଣୀ—ସ୍ତ୍ରୀ) ୧ । ମିହନ୍ତୀ—1 Laborious
୨ । ପରିଶ୍ରମକାରୀ—2. Exerting; labouring.
୩ । ପାଠାଭ୍ୟାସରତ—3. Studious.
୪ । ଅଧ୍ୟବସାୟୀ—4. Persevering

**ପରିଶ୍ରୟ**—ସଂ. ବି (ପରି+ଶ୍ରୀ ଧାତୁ+କର୍ମ. ଅ)—୧ । ବାଡ—
Parisraya 1 Fencing, enclosure
୨ । ଆଶ୍ରୟ ସ୍ଥାନ—2 Refuge; assylum.
୩ । ସଭା, ସମ୍ମିଳନୀ—
3 Assembly, meeting. (M. W.)

**ପରିଶ୍ରାନ୍ତ**—ସଂ ବିଣ. (ପରି+ଶ୍ରମ୍ ଧାତୁ+କର୍ତ୍ତୃ. ତ)—
Parisranta ଶ୍ରାନ୍ତିଯୁକ୍ତ, କ୍ଲାନ୍ତ, ମିହନ୍ତ କରି କରି କ୍ଲାନ୍ତ—
(ପରିଶ୍ରାନ୍ତି—ବି) Fatigued, worn

**ପରିଶ୍ରୁତ**—ସଂ. ବିଣ. (ପରି+ଶ୍ରୁ ଧାତୁ=ଶୁଣିବା+କର୍ମ. ତ)—
Parisruta ୧ । ଯାହା ଶୁଣା ଯାଇଅଛି—1 Heard
୨ । ବିଖ୍ୟାତ, ବିଶ୍ରୁତ—1. Famous; celebrated.

**ପରିଶ୍ଳେଷ**—ସଂ ବି. (ପରି+ଶ୍ଳିଷ୍ ଧାତୁ=ଆଲିଙ୍ଗନ କରିବା+ଭାବ ଅ)-
Parislesha ଆଲିଙ୍ଗନ—Embrace

**ପରିଷଦ୍**—ସଂ. ବି. ( ପରି=ଏକତ୍ର+ସଦ୍ ଧାତୁ=ଯିବା, ବସିବା+ଅଧିକରଣେ କ୍ୱିପ୍=ପରିଷଦ୍, ୧ମା. ୧ବ, ଯେଉଁଠାକୁ ଅନେକ ଲୋକ ଏକତ୍ର ଯାଆନ୍ତି )—
Parishad
୧ । ସଭା, ମଣ୍ଡଳୀ—1. Assembly; meeting.
୨ । ଏକ ବିଂଶତିର ଅନ୍ୟୂନ ନ୍ୟାୟବେଦବେଦାନ୍ତକୁଶଳ ପଣ୍ଡିତମାନଙ୍କର ସଭା—2 A meeting of not less than 21 learned men.
୩ । ସମୂହ—3 Assemblage.
୪ । (+କର୍ତ୍ତୃ. କ୍ୱିପ୍) ସଭାର ସଭ୍ୟ—
4 A member of an assembly (M W)
୫ । ଦର୍ଶକ—5. Spectator. (M. W.)

**ପରିଷଦ**—ସଂ. ବି. ପୁଂ. (ପରି+ସଦ୍ ଧାତୁ+କର୍ତ୍ତୃ. ଅ)—
Parishada ୧ । ସଭାସଦ, ସଭାର ସଭ୍ୟ, ସଦସ୍ୟ—
(ପାରିଷଦ, ପାର୍ଷଦ—ଅନ୍ୟରୂପ) 1. A member of an assembly.
୨ । ଶୋଭାଯାତ୍ରାରେ ସ୍ୱାମୀଙ୍କୁ ଘେରି ଚାଲୁଥିବା ଅନୁଚର—
2. Retinue; train.
୩ । ଦରବାରୀ, ରାଜସଭାସଦ—3. Courtier.

**ପରିଷଦ୍ବଳ**—ସଂ. ବି. ପୁଂ (ପରିଷଦ୍+ଯୋଗ୍ୟାର୍ଥେ. ବଳ)—
Parishadbala ସଭାସଦ; ସଭାର ସଭ୍ୟ—
(ପରିଷଦ୍ବଳା—ସ୍ତ୍ରୀ) A member of an assembly

**ପରିଷ୍କନ୍ଦ**—ସଂ. ବି—୧ । ପିତାମାତା ଛଡ଼ା ଅନ୍ୟ ବ୍ୟକ୍ତି ଦ୍ୱାରା ପାଳିତ
Parishkanda ପୁତ୍ର, ଦୁଲାଳ—1 Foster child.
୨ । ଭୃତ୍ୟ—2. Servant (M. W.)
୩ । ଗାଡି ପାଖେ ପାଖେ ଦଉଡ଼ିବା ଚାକର—3. A servant running by the side of a carriage.
୪ । ମନ୍ଦିର—4. Temple. (M. W)

**ପରିଷ୍କାର**—ସଂ. ବି. (ପରି+କୃ ଧାତୁ+ଭାବ. ଅ)—ଅଳଙ୍କାର—
Parishkara Ornament; decoration

**ପରିଷ୍କାର**—ସଂ. ବି. (ପରି+କୃ ଧାତୁ+ଭାବ. ଅ, 'ସ'ର ଆଗମ)—
Parishkāra ୧ । ଶୋଧନ, ସଂସ୍କାର, ଶୁଦ୍ଧି—
(ପରିଷ୍କୃତ—ବିଣ) 1 Purification.
୨ । ପାକ କରଣ—2 Dressing; cooking
୩ । (+କର୍ମ. ଅ) ଗୃହର ଉପକରଣାଦି—
3 Domestic furnitures and utensils.
୪ । ସଂଯମ, ଇନ୍ଦ୍ରିୟନିରୋଧ—4. Self discipline.
୫ । ସ୍ୱଚ୍ଛତା, ନିର୍ମଳତା—5. Transparency; clearness.
୬ । ଶୋଭା—6. Beauty; grace
୭ । (+କର୍ମ. ଅ) ଅଳଙ୍କାର (ହି ଶ)—7 Ornament; decoration.
୮ । ଦୀକ୍ଷାଗ୍ରହଣ—8 Initiation (M. W.).
ଦେ ବିଣ (ସଂ. ପରିଷ୍କୃତ)—୧ । ପରିଷ୍କୃତ—
পরিস্কার 1. Cleansed.
**सफा, सफा** ୨ । ନିର୍ମଳ, ସଫା—2. Clean.
ଯଥା—ପରିଷ୍କାର ଜଳ ।
୩ । ସ୍ୱଚ୍ଛ—3. Clear.
ଯଥା—ପରିଷ୍କାର ଦର୍ପଣ ।
୪ । ପରିପାଟୀ; ପରିଚ୍ଛନ୍ନ—4. Neat and clean.
ଯଥା—ପରିଷ୍କାର ଘର ।
୫ । ମନୋହର; ସୁନ୍ଦର—5. Beautiful.
ଯଥା—ପରିଷ୍କାର ମୁଖ ।
୬ । ନିର୍ଦ୍ଦୋଷ—6. Faultless.
୭ । ସରଳତାପୂର୍ଣ୍ଣ; ଅକପଟ, ନିଷ୍କପଟ—7. Frank.
ଯଥା—ପରିଷ୍କାର କଥା, ପରିଷ୍କାର ହୃଦୟ ।
୮ । ମଳଶୂନ୍ୟ—8. Dirtless
୯ । ଆବର୍ଜନାଶୂନ୍ୟ, ସଫା ସୁତୁରା—
9. Free from refuse.
ଯଥା—ପରିଷ୍କାର ଦାଣ୍ଡ ।
୧୦ । ନିଃସନ୍ଦେହ—10. Doubtless.
ଯଥା—ପରିଷ୍କାର କଥା ।
୧୧ । ସ୍ପଷ୍ଟରୂପେ ଲିଖିତ—11. Clearly written; legibly written
ଯଥା—ପରିଷ୍କାର ଲେଖା ।
୧୨ । ଉତ୍କୃଷ୍ଟ—12. Excellent.
୧୩ । ନିର୍ବାଧ, ପ୍ରତିବନ୍ଧକଶୂନ୍ୟ—
13. Free from obstacles; unobstructed.
ଯଥା—ପରିଷ୍କାର ପଥ
୧୪ । ସ୍ପଷ୍ଟରୂପେ ଉଚ୍ଚାରିତ—14. Uttered or pronounced clearly.
୧୫ । ମଧୁର—15. Sweet.
ଯଥା—ପରିଷ୍କାର ଗଳା ।
୧୬ । ମେଘଶୂନ୍ୟ—16. Cloudless.
ଯଥା—ପରିଷ୍କାର ଆକାଶ ।
୧୭ । ରୋଗଶୂନ୍ୟ, ନିରାମୟ; ସୁସ୍ଥ—
17. Free from sickness; healthy
ଯଥା—ପରିଷ୍କାର ଦେହ ।
୧୮ । ବିଶୁଦ୍ଧୀକୃତ—18. Purified.
୧୯ । ଖୋଲାସା—19. Clear.
ଯଥା—ପରିଷ୍କାର ଜାଗା ।
୨୦ । ତୋଫା, ଶୁଭ୍ର—20. Bright.
ଯଥା—ପରିଷ୍କାର ଚେହେରା ।
୨୧ । ଜ୍ୟୋତ୍ସ୍ନାମୟ—21. Moonlit.
ଯଥା—ପରିଷ୍କାର ରାତ୍ରି ।
୨୨ । ଉତ୍ତମରୂପେ ନିର୍ମଳ କରାଯାଇଥିବା—
22 Well cleansed.
ଯଥା—ପରିଷ୍କାର ଲୁଗା ।
୨୩ । ସୁଦକ୍ଷ—23. Skilful.
ଯଥା—ପରିଷ୍କାର ଖେଳାଳି ।
୨୪ । ସୁବୋଧ୍ୟ—24 Easily comprehensible.
ଯଥା—ପରିଷ୍କାର ଭାଷା ।
୨୫ । ସ୍ୱାଭାବିକ—25. Natural.
ଯଥା—ପରିଷ୍କାର ନାଡ଼ି ।
୨୬ । ଅମଳିନ—26. Not dirty; not stained.
ଯଥା—ପରିଷ୍କାର ବିଛଣା ।
ଦେ. କ୍ରି. ବିଣ—୧ । ସ୍ପଷ୍ଟରୂପେ—1. Clearly.
পরিস্কার ଯଥା—ମତେ ପରିଷ୍କାର ଦେଖା ଯାଉଛି ।
**साफ** ୨ । ସୁନ୍ଦରରୂପେ—2. Well.
ଯଥା—ଏ ଫଟୋଖଣ୍ଡି ପରିଷ୍କାର ଉଠିଯାଇଛି ।
୩ । ନିର୍ମଳରୂପେ—3. Cleanly.
୪ । ସରଳଭାବରେ—4. Frankly.
୫ । ପରିପାଟିରୂପେ—5. Decently; nicely.

**ପରିଷ୍କାର କରିବା**—ଦେ. କ୍ରି. (ସଂ. ପରିଷ୍କରଣ)—୧ । ପରିଷ୍କୃତ କରିବା
Parishkāra kariba ଅଳଆ ସଫା କରିବା—
পরিস্কার করা 1. To cleanse; to sweep.
**साफ करना** ୨ । ନିର୍ମଳ କରିବା—2. To clear off dirt.
୩ । ଉତ୍ତମରୂପେ ବୁଝାଇ ଦେବା—
3. To explain clearly.
୪ । ପରିଶୁଦ୍ଧ କରିବା—4. To purify.

**ପରିଷ୍କାରଣ**—ସଂ. ବି—୧ । ପାଳିତପୁତ୍ର (ହି. ଶ)—
Parishkārana 1. Foster-son.
୨ । ଦତ୍ତକ ପୁତ୍ର (ହି. ଶ)—2. Adopted son.

**ପରିଷ୍କାର ପରିଚ୍ଛନ୍ନ**—ଦେ. ବିଣ. (ସହଚର ଶବ୍ଦ; ସଂ. ପରିଷ୍କୃତ ଓ
Parishkāra parichchhanna ପରିଚ୍ଛନ୍ନ)—ନିର୍ମଳୀକୃତ ଓ
পরিস্কার পরিচ্ছন্ন ଶୁଭ୍ର ସୁପରିଷ୍କୃତ—Clean and tidy; neat and clean.
**साफसुतरा**

**ପରିଷ୍କୃତ**—ସଂ. ବିଣ—(ପରି+କୃତ, ନିପାତନ)—୧ । ନିର୍ମଳୀକୃତ—
Parishkruta 1 Cleansed; cleared up.
(ପରିଷ୍କୃତି—ବି) ୨ । ଶୋଧିତ—2 Purified.
୩ । ଓଲା ଓଳ ହୋଇଥିବା—
3 Well scoured; well swept.
୪ । ବୁଝାଇ ଦିଆ ଯାଇଥିବା—
4 Well explained.
୫ । ସୁବୋଧ୍ୟ—
5. Explicit; easily comprehensible
୬ । ପାଲିସ କରି ଯାଇଥିବା – 6. Polished
୭ । ଶୋଭାଯୁକ୍ତ (ଜ୍ଞାନେନ୍ଦ୍ର)—7. Beautiful.

**ପରିଷ୍କ୍ରିୟା**—ସଂ. ବି. (ପରି+କ୍ରିୟା, ସ ଆଗମ)—୧ । ଅଲଙ୍କରଣ—
Parishkriya 1 Decorating; embellishment.
୨ । ଶୋଧନ (ହି. ଶ.)—
2. Purifying; cleansing.
୩ । ମଜାମଜି (ହି. ଶ.)—3 Scouring
୪ । ସଜାଇବା (ହି. ଶ.)—4. Furnishing

**ପରିଷ୍ଟବନ**—ସଂ. ବି—(ପରି+ସ୍ତୁ ଧାତୁ+ଭାବ. ଅନ)—୧ । ଅତ୍ୟନ୍ତ
Parishtabana ପ୍ରଶଂସା କରିବା (ହି.ଶ)—1. Eulogising;
(ପରିଷ୍ଟୁତ—ବିଣ) praising.
(ପରିଷ୍ଟୁତି—ଅନ୍ୟରୂପ) ୨ । ସମ୍ୟକ୍ ପ୍ରକାର ସ୍ତୁତି କରିବା
(ହି. ଶ.)—2 Praying.

**ପରିଷ୍ଟି**—ସଂ. ବି—୧ । ସବୁଆଡ଼େ ଖୋଜିବା—
Parishti 1 Searching all round. (M. W.)
୨ । ବଳାତ୍କାର—2. Violence. (M. W.)
୩ । ବାଧା—
3. Obstruction; impediment. (M. W.)
୪ । ବିଷମ ସମସ୍ୟା—4. Dilemma. (M. W.)

**ପରିଷ୍ଟୋମ**—ସଂ ବି—ପରିସ୍ତୋମ (ଦେଖ)
Parishtoma Paristoma. (See)

**ପରିଷ୍ୱଙ୍ଗ**—ସଂ. ବି. (ପରି+ସ୍ୱଜ୍ ଧାତୁ=ଆଲିଙ୍ଗନ+ଭାବ. ଅ.)—
Parishwanga ୧ । ଗାଢାଲିଙ୍ଗନ—1 Tight embrace.
(ପରିଷ୍ୱକ୍ତ—ବିଣ) ୨ । ଆସଙ୍ଗ—2. Conjunction.
(ପରିଷ୍ୱଞ୍ଜନ—ଅନ୍ୟରୂପ)

**ପରିସଂଖ୍ୟା**—ସଂ. ବି. (ପରି+ସଂଖ୍ୟା)—୧ । ଗଣନା—
Parisamkhya 1. Calculation; enumeration.
୨ । ମୋଟ, ସମଷ୍ଟି—2. Sum; total. (M. W.)
୩ । ପୁନରାବୃତ୍ତି—3. Recapitulation. (Apte)
୪ । କାବ୍ୟର ଅଲଙ୍କାରବିଶେଷ—4. A rhetorical figure in which by the special mention of a thing similar things are excluded.
(ପରିସଂଖ୍ୟାତ—ବିଣ) [ପ୍ରଶ୍ନପୂର୍ବକ ହେଉ ବା ପ୍ରଶ୍ନ ବିନା ହେଉ କୌଣସି ବସ୍ତୁ କଥିତ ହୋଇ ଯେବେ ତତ୍ସଦୃଶ ବସ୍ତୁର ନିଷେଧ କରାଯାଏ, ତାହାହେଲେ ପରିସଂଖ୍ୟା ଅଲଙ୍କାର ହୁଏ; ଯଥା—

ସଂସାରେ କି ବସ୍ତୁ ଅଟଇ ମାନବର ଭୂଷଣ ?
ଯଶ ଏକା, ନୁହେ ରତନ ହେଲେ ବାଳକଗଣ ।
କାହାକୁ କରିବ ଜୀବନେ ଯତ୍ନେ ଅନୁକରଣ ?
ଆର୍ଯ୍ୟ ଜନ—ପୁଣ୍ୟ ଚରିତ, ନୁହେଁ ପାପାଚରଣ ।
କେ ଅଟେ ପ୍ରକୃତ ନୟନ ? ମନ, ନୁହେଁ ଏ ଆଖି,
ଅଛି ଏକା ସିନା ଅଟଇ ପାପ ପୁଣ୍ୟର ସାକ୍ଷୀ ।
କୃଷ୍ଣସିଂହ, ଅଳଙ୍କାର ତରଙ୍ଗିଣୀ ।

**ପରିସଂଖ୍ୟାନ**—ସଂ. ବି. (ପରି+ସଂଖ୍ୟାନ)—୧ । ପରିସଂଖ୍ୟା
Parisamkhyana ୧, ୨, ୩ (ଦେଖ)—1. Parisamkhya. 1, 2. 3. (See).
୨ । ସମୁଚିତ ବିବେଚନା ବା ବିଚାର—2. Proper estimate; correct judgment. (Apte)

**ପରିସଂଘୁଷ୍ଟ**—ସଂ. ବିଣ. (ପରି+ସମ୍+ଘୁଷ୍ ଧାତୁ+ତ)—କ୍ରନ୍ଦନ ବା
Parisamghushta ଗୋଳମାଳ ଶବ୍ଦରେ ପୂର୍ଣ୍ଣ—Filled with cries or noise.

**ପରିସଖ୍ୟ**—ସଂ. ବି—ଅଟଳ ବନ୍ଧୁତା, ପ୍ରକୃତ ବନ୍ଧୁତା—
Parisakhya Perfect or true friendship. (M. W.)

**ପରିସଞ୍ଚର**—ସଂ. ବି. (ପରି+ସଞ୍ଚର)—ସୃଷ୍ଟିର ପ୍ରଳୟକାଳ (ହି. ଶ.)—
Parisanchara The time of universal dissolution.
(ପରିସଞ୍ଚର—ଅନ୍ୟରୂପ) (M. W.)
ସଂ. ବିଣ. ପୁଂ.—ଇତସ୍ତତଃ ବିଚରଣକାରୀ—Roving about; vagrant (M. W.)
(ପରିସଂଚରୀ—ସ୍ତ୍ରୀ)

**ପରିସନ୍ତାନ**—ସଂ. ବି—(ପରି+ସମ୍+ତନ୍ ଧାତୁ+କର୍ମ. ଅ)—ତାର;
Parisantana ତନ୍ତୀ (ହି. ଶ.)—Wire, string.

**ପରିସଭ୍ୟ**—ସଂ. ବି—ସଭାସଦ—
Parisabhya Member of a council or assembly.

**ପରିସମାପ୍ତ**—ସଂ. ବିଣ. (ପରି+ସମ୍+ଆପ୍ ଧାତୁ+କର୍ତ୍ତୃ. ତ)—
Pari samapta ସମ୍ପୂର୍ଣ୍ଣରୂପେ ସମାପ୍ତ—Finished;
[ପରିସମାପ୍ତି—ବି] accomplished; brought to a close; consummated.

**ପରିସମୂହନ**—ସଂ. ବି. (ପରି+ସମ୍+ଊହ୍=ଧାତୁ+ଭାବ. ଅନ)—
Parisamuhana ୧ । ଓଲାଇକରି ଗଦା କରିବା—
1. Heaping; sweeping together. (M. W.)
୨ । ଯଜ୍ଞାଗ୍ନିରେ ସମିଧ ପକାଇବା (ହି. ଶ.)—
2. Putting fuel-sticks on the sacrificial fire.
୩ । ତୃଣ ଆଦିକୁ ନିଆଁରେ ପକାଇବା (ହି. ଶ.)—
3. Throwing of grass etc on fire.

**ପରିସର**—ସଂ. ବି. (ପରି+ସୃ ଧାତୁ=ଯିବା+ଅଧି. ଅ)—୧ । ନଗର
Parisara ନଦୀ ବା ପର୍ବତାଦିର ନିକଟସ୍ଥ ପ୍ରଦେଶ; ପର୍ଯ୍ୟନ୍ତ ଭୂମି—
1. Precincts; vicinity; premises.
୨ । ନିକଟବର୍ତ୍ତୀ ସ୍ଥାନ—
2. Adjacent lands; neighbourhood; environs.
୩ । ଆକାର—3. Dimension; shape; extent.
୪ । ବ୍ୟାପ୍ତି; ବିସ୍ତାର; ଓସାର—4. Extension.
୫ । ଚଉଡ଼ା; ପ୍ରସ୍ଥ—5 Width; breadth.

୬ । କୌଣସି ପଦାର୍ଥ ଦ୍ୱାରା ଅଧିକୃତ ସ୍ଥାନ—
6. Place occupied by a thing; position; site.
୭ । ମୃତ୍ୟୁ—7. Death.
୮ । ବିଧି—8 Rule; precept.
୯ । ପ୍ରଦେଶ—9. A part of the country.
୧୦ । ଶିରା, ନାଡ଼ୀ—10. Vein; artery.
୧୧ । ଦେବତା—11. A god (Apte).
୧୨ । ପରିସରଣ ( ଦେଖ )
12. Parisarana ( See )
ସଂ. ବିଣ—ପାର୍ଶ୍ୱବର୍ତ୍ତୀ, ସଲଗ୍ନ—
Adjacent; lying near. (M. W.)

**ପରିସରଣ**— ସଂ. ବି. (ପରି+ସୃ ଧାତୁ+ଭାବ. ଅନ)—
Parisarana ୧ । ମୃତ୍ୟୁ—1. Death; decease; demise.
୨ । ପରାଜୟ—2. Defeat.
୩ । ଚହଲିବା—
3 Walk or moving about.

**ପରିସର୍ପ**—ସଂ. ବି. (ପରି+ସୃପ୍ ଧାତୁ+ଭାବ. ଅ)—
Parisarpa ୧ । କୌଣସି ବସ୍ତୁ ବା ବ୍ୟକ୍ତିକୁ ଖୋଜିବାକୁ ଯିବା—
(ପରିସର୍ପଣ—ଅନ୍ୟରୂପ) 1. Going about in search of
୨ । ପଶ୍ଚାଦ୍ଧାବନ—2 Pursuing.
୩ । ଚହଲିବା—3 Walking about, roving.
୪ । ବେଢ଼ିବା, ପରିବେଷ୍ଟନ—
4. Surrounding; encircling.
୫ । (+କର୍ତ୍ତୃ ଅ) ସର୍ପବିଶେଷ—
5. A species of serpent.
୬ । କ୍ଷୁଦ୍ର କୁଷ୍ଠବିଶେଷ—
7. Name of a mild form of leprosy. (M. W)
[ ଦ୍ର—ସୁଶ୍ରୁତ ଅନୁସାରେ ୧୧ ପ୍ରକାର କ୍ଷୁଦ୍ର କୁଷ୍ଠ ରୋଗମଧ୍ୟରୁ ଏହା ଏକତମ, ଏଥିରେ ଦେହରେ ଛୋଟ ଛୋଟ ବ୍ରଣ ପରି ଫଳଯାଏ ଓ ତାହା ଦେହ ତମାମ କ୍ରମଶଃ ବ୍ୟାପେ । ଏ ବିସ୍ଫୋଟକରୁ ପୂଜ ବାହାରେ । ହି. ଶ. ]
୭ । (+ଭାବ ଅ) କୌଣସି ବ୍ୟକ୍ତିର ଠିକଣା ଜଣା ନ ଥିବା ସ୍ଥଳରେ ସେ ଯେଉଁ ବାଟରେ ଯାଇଅଛି ତହିଁରେ ପରିଲକ୍ଷିତ ଚିହ୍ନ, ଖୋଜ ଆଦି ଦ୍ୱାରା ଉକ୍ତ ବ୍ୟକ୍ତିକୁ ଖୋଜିବା—
7 Tracking a person by following his foot-steps or other signs left by him.
୮ । (+ଭାବ. ଅ) ଭୂମିରେ ଘୁଷୁରି ଘୁଷୁରି ଯିବା (ହି. ଶ.)—
8 Crawling.

**ପରିସର୍ଯ୍ୟା**—ସଂ. ବି. (ପରି+ସୃ ଧାତୁ+ଭାବ. ଯ+ସ୍ତ୍ରୀ. ଆ)—
Parisarjyā ୧ । ଗୁରି ଆଡ଼କୁ ଗମନ—
1. Going towards all sides.
୨ । ବିଛି ହୋଇଯିବା—1. The condition of being strewn about.
୩ । ସେବା—3. Service, personal attendance. (M. W)

**ପରିସା(ସ୍ରା)**—ଗ୍ରା. ବି. (ସଂ. ପରିସ୍ରାବ)—ପରିସ୍ରାବ ୧ ଓ ୨ ( ଦେଖ )
Parisā(srā) Parisrāba 1 & 2 ( See )
(ପରିସାବ—ଅନ୍ୟରୂପ) ପେଛାବ पेसाब

**ପରିସାରକ**—ସଂ. ବିଣ. (ପରି+ସୃ ଧାତୁ+କର୍ତ୍ତୃ. ଅକ)—
Parisāraka ଗୁରିଆଡ଼େ ବୁଲୁଥିବା—
(ପରିସାରିକା, ପରିସାରିଣୀ—ସ୍ତ୍ରୀ) Roving; wandering.
(ପରିସାରୀ—ଅନ୍ୟରୂପ)

**ପରିସିଧି**—ଗ୍ରା. (ପ୍ରାଚୀନ ପଦ୍ୟ) ବି. (ସଂ. ପ୍ରସିଦ୍ଧି)—ପ୍ରସିଦ୍ଧି (ଦେଖ)
Parisidhi परसिध Prasiddhi ( See )
ବିଣ. (ସଂ. ପ୍ରସିଦ୍ଧ) ପ୍ରସିଦ୍ଧ; ବିଖ୍ୟାତ—Celebrated.
ସେହିଁ ଅବସ୍ଥାରେ ସେହିଁ ଯଥାଜ୍ୟ
ସେ ସେ ଅଗମେ ନିଗମେ ପରିସିଧି । ଗ୍ରାଚୀ. ସେବାଇଧି ।

**ପରିସୀମା**—ସଂ. ବି. ( ପରି+ସୀମା )—
Parisimā ୧ । ଶେଷ ସୀମା—1. Extreme limit; border; boundary.
୨ । ଅନ୍ତ—2. End.
୩ । ଗଣନା, ଇୟତ୍ତା—3. Knowing; calculation
୪ । ଚତୁଃସୀମା; ଚଉହଦି—
4. The boundaries on the four sides.

**ପରିସ୍କନ୍ଦ**—ସଂ. ବିଣ—ପରିପୁଷ୍ଟ, ମାତା ପିତା ଛଡ଼ା ଅନ୍ୟ ବ୍ୟକ୍ତି ଦ୍ୱାରା
Pariskanda ପାଳିତ (ବାଳକ)—(a child) Fostered by persons other than the parents.

**ପରିସ୍ତରଣ**—ସଂ. ବି. (ପରି+ସ୍ତୃ ଧାତୁ+ଭାବ. ଅନ)—
Paristarana ୧ । ଗୁରି ଆଡ଼େ ବିଛି ଦେବା ବା ବୁଣିବା—
(ପରିସ୍ତର—ଅନ୍ୟରୂପ) 1. Strewing round.
(ପରିସ୍ତୃତ—ବିଣ) ୨ । ନିଆଁ ଉପରେ କୁଟା ଆଦି ପକାଇବା—
2. Throwing straw etc into fire.
୩ । ଘୋଡ଼ାଇବା (ହି.ଶ ) —3. Covering, enveloping
୪ । ଏକତ୍ର ଗଦା କରିବା—4. Heaping together.

**ପରିସ୍ତୋମ**—ସଂ. ବି. (ପରି+ସ୍ତୋମ୍ ଧାତୁ=ପ୍ରଶଂସା କରିବା+କର୍ମ ଅ)-
Paristoma ୧ । ହାତୀ ପିଠିରେ ପଡ଼ିବା ଚିତ୍ରିତ କମ୍ବଳ, ହାତୀଝୁଲ—
1. The pictured covering over an elephant; the coloured housings of an elephant.
୨ । ଘୋଡ଼ଣୀ, ଘଟାଟୋପ—2. Coverlet.
୩ । ଗଦି—3. Cushion (Apte).

**ପରିସ୍ଥୟ**—ଦେ ବି. ( ସଂ. ପରିସ୍ଥାନ ) —
Paristhaya ୧ । ସ୍ଥିରତା—1. Fixity; fixedness.
୨ । ନିଶ୍ଚୟ—2 Certainty.
( ଯଥା—ତା କଥାରୁ କିଛି ପରିସ୍ଥୟ ମିଳିଲା ନାହିଁ । )

**ପରିସ୍ଥାନ**—ସଂ. ବି. ( ପରି+ସ୍ଥାନ )—
Paristhāna ୧ । ବାସ ସ୍ଥାନ—1. Abode. (M. W.)
୨ । ସ୍ଥିରତା—2. Fixedness. (M. W )
୩ । ଦୃଢ଼ତା—3 Firmness.

**ପରସ୍ଥିତ**—ସଂ. ବି. (ପର+ସ୍ଥା. ଧାତୁ+ଭାବ. ତି)—
Paristhiti ୧ । ଅବସ୍ଥା, ଅବସ୍ଥାନ, ନିର୍ଦ୍ଦିଷ୍ଟ—
1. State; condition
୨ । ଚତୁଃପାର୍ଶ୍ୱର ଅବସ୍ଥା—
2. All circumstances taken together.
୩ । ପରସ୍ଥାନ (ଦେଖ)—3. Paristhāna (See).

**ପରସ୍ପନ୍ଦ**—ସଂ. ବି. (ପର+ସ୍ପନ୍ଦ)—୧ । କମ୍ପନ—
Parispanda 1. Vibration, tremor.
୨ । ଥରିବା—2. Quivering; throbbing
୩ । ଗତି—3 Motion
୪ । (ଯଜ୍ଞାଗ୍ନିର)ରକ୍ଷଣ—
4. Keeping or maintaining (a sacred fire).
୫ । ପତ୍ରାବଳୀ ରଚନ (ପ୍ରକୃତିବାଦ)—
5. Painting on the body.
୬ । କେଶର ସଜ୍ଜା—
6. Decoration of the hair (M. W.).
୭ । ଚାପ—7. Pressure (M. W.).
୮ । ଉଚ୍ଚ ଶବ୍ଦ ସହକାରେ ପତନ—8 Crash (M. W.).
୯ । (+କର୍ତ୍ତୃ. ଅ)—ଅନୁଚରବର୍ଗ—
9. Retinue, train. (M.W.).

**ପରସ୍ପର୍ଦ୍ଧା**—ସଂ. ବି. (ପରି+ସ୍ପର୍ଦ୍ଧା)—ପ୍ରତିଯୋଗିତା—
Parisparddhā Rivalry.
(ବିଣ. —ପରିସ୍ପର୍ଦ୍ଧୀ—ପୁଂ. ପରିସ୍ପର୍ଦ୍ଧିନୀ—ସ୍ତ୍ରୀ)

**ପରସ୍ଫୁଟ**—ସଂ. ବିଣ. (ପରି+ସ୍ଫୁଟ୍ ଧାତୁ=ଫୁଟିବା+କର୍ତ୍ତୃ. ଅ)—
Parisphuta ୧ । ଉତ୍ତମରୂପେ ଫୁଟିଥିବା—
1. Fully blown.
୨ । ସୁସ୍ପଷ୍ଟ—2. Clear; quite plain; manifest.
୩ । ଉତ୍ତମରୂପେ ପୁଷ୍ଟ—3. Fully developed. (M.W.)

**ପରସ୍ଫୁରଣ**—ସଂ. ବି. (ପରି+ସ୍ଫୁରଣ)—୧ । ଆଖି ମିଟିକା ମାରି ଚାହିଁବା-
Parisphurana 1. Glancing.
(ପରିସ୍ଫୁରିତ—ବିଣ) ୨ । କଢ଼ି ଫୁଟିବା—
(ପରିସ୍ଫୂର୍ତ୍ତି—ଅନ୍ୟରୂପ) 2. Budding; shooting.
୩ । ଠକ ଠକ ଡେଇଁବା, ସ୍ପନ୍ଦନ—
3. Palpitation; quivering; throbbing.
୪ । ଉଜ୍ଜ୍ୱଳ ଭାବରେ ଦେଖାଯିବା; ଶୋଭା ପାଇବା—
4. Shining forth.

**ପରସ୍ଫୁରନ୍ତ**—ଦେ. ବିଣ. (ସଂ. ପରିସ୍ଫୁରିତ)—ପୁଂ—ବିଶେଷ ଭାବରେ
Parisphuranta ପ୍ରକାଶିତ, ପ୍ରକଟିତ—
Budded, clearly manifest.
[illegible]

**ପରସ୍ୟନ୍ଦ**—ସଂ. ବି. (ପରି+ସ୍ୟନ୍ଦ ଧାତୁ+ଭାବ. ଅ)—[illegible]
Parisyanda 1. Oozing.
(ପରିସ୍ୟନ୍ଦନ—ଅନ୍ୟରୂପ) ୨ । ଟୋପା ଟୋପା ପଡ଼ିବା—
(ପରିସ୍ୟନ୍ଦୀ—ବିଣ) 2. Dropping

୩ । ସ୍ରୋତଃ—3 Flow; stream

**ପରସ୍ରବ**—ସଂ. ବି. (ପରି+ସ୍ରୁ ଧାତୁ+ଭାବ. ଅ)—୧ । ବହିଯିବା—
Parisraba 1 Flowing streaming
୨ । ସନ୍ତାନ ଜନ୍ମ—2 The birth of a child
୩ । ତଳଆଡ଼କୁ ଗଡ଼ିଯିବା—3 Gliding down.
୪ । କୁସୁମ ଫୁଲ—4. Rottleria Tinctoria (M. W).

**ପରସ୍ରା**—ଦେ. ବି. (ସଂ. ପ୍ରସାବ)—ପରସ୍ରାବ, ପ୍ରସ୍ରାବ, ମୂତ୍ର—
Parisrā Urine.
পিছাব, পেছাব **पेशाब** (ପରିସ୍ରାବ—ଅନ୍ୟରୂପ)
[ଗ୍ରା—ଭାଷାରେ ବ୍ୟବହୃତ ଏହି ଶବ୍ଦର ଅନ୍ୟ ଆକାରମାନ, ଯଥା—ପରସା, ପରସ୍ରା, ପରସାବ, ପରସ୍ରାବ, ପରିସା, ପରସାବ, ପ୍ରସା, ପ୍ରେସା, ପେରେସା । ]

**ପରସ୍ରା କରିବା**—ଦେ. କ୍ରି—ପ୍ରସ୍ରାବ କରିବା—
Parisrā karibā To urinate; to pass urine.
পেছাবকরা **पेशाबकरना**
(ପରସା କରିବା, ପରିସ୍ରାବ କରିବା, ପ୍ରସା କରିବା—ଅନ୍ୟରୂପ)

**ପରସ୍ରାଖାନା**—ଦେ ବି. (ସଂ ପ୍ରସ୍ରାବ ଓ. ଆ. ଖାନା=ସ୍ଥାନ)—
Parisrākhānā ଲୋକେ ପ୍ରସ୍ରାବ କରିବାର ନିର୍ଦ୍ଦିଷ୍ଟ ସ୍ଥାନ—
পেসাবখানা **पेसावखाना** Urinal.
(ପରିସ୍ରାବଖାନା—ଅନ୍ୟରୂପ)

**ପରସ୍ରାଜଳା**—ଦେବି. (ସଂ. ପ୍ରସ୍ରାବ ଓ ଜ୍ୱାଳା)—ପ୍ରସା କରିବା ସମୟରେ
Parisrājalā ପ୍ରସ୍ରାବ ଦ୍ୱାରରେ ଅନୁଭୂତ ତୀବ୍ର ବେଦନା
পেছাবজলা (ରୋଗବିଶେଷ)—
ପରିସ୍ରା ଜାଳା } ଅନ୍ୟରୂପ Scalding of urine; painful
ପରିସ୍ରା ପୋଡ଼ା } urination accompanied with burning sensation in the urethral canal.

**ପରସ୍ରା ତଲବ ଦେବା**—ଦେ. କ୍ରି.—ପ୍ରସ୍ରାବର ଆବେଗ ଜଣାଯିବା, ମୂତ
Parisrā talab debā ମାଡ଼ିବା—A tendency to make
পেছাবপাওআ **पेसाब तलबहेना** water.
(ପରିସ୍ରା ମାଡ଼ିବା—ଅନ୍ୟରୂପ)

**ପରସ୍ରାଦ୍ୱାର**—ଦେ ବି. (ସଂ. ପ୍ରସ୍ରାବ ଓ ଦ୍ୱାର)—ଜନନେନ୍ଦ୍ରିୟ—
Parisrā dwāra Male or female organ.
পেছবদ্বার **पेसाबकी नाली**
(ପରିସ୍ରା ଦୁଆର, ପରିସ୍ରାବ ଦ୍ୱାର—ଅନ୍ୟରୂପ)

**ପରସ୍ରା ନଳ(ଳୀ)**—ଦେ. ବି. (ସଂ. ପ୍ରସ୍ରାବ ଓ ନଳ)—
Parisrā nala(lī) ମୂତ୍ରଦ୍ୱାର ମଧ୍ୟସ୍ଥ ନଳ—
পেছাবনালী Urinary passage; the urinary
**पेसाबकीनाली** canal.

**ପରସ୍ରାପୋଡ଼ା**—ଦେ. ବି.—ପରିସ୍ରା ଜଳା (ଦେଖ)—
Parisrāpordā Parisrā jalā (See.

**ପରସ୍ରାବ**—ସଂ. ବି. (ପରି+ସ୍ରାବ)—୧ । ପାଣିର ବୋହିଯିବା—
Parisrāba 1. Efflux; flow of water.
୩ । (ଆଧୁନିକ ରସାୟନ) ଛାଙ୍କିବା, କୌଣସି ଜଳୀୟ ପଦାର୍ଥକୁ କ୍ଷାରଜଳ ସହିତ ଆଲୋଡ଼ିତ କରି ଲୁଗାରେ ଛାଣିନେବା ପ୍ରକ୍ରିୟା—3. The process of sifting a liquid after mixing it with ash-water.

୪ । ଜଳୀୟ ପଦାର୍ଥକୁ ନିଆଁରେ ବସାଇ ତହିଁର ବାଷ୍ପକୁ ଥଣ୍ଡା କରି ଅର୍କ ବାହାର କରିବା ପ୍ରକ୍ରିୟା, ଚୁଆଁଇବା—4 Distillation

ପେଛାବ ଦେ ବି. (ସଂ. ପ୍ରସ୍ରାବ)—୧ । ମୂତ୍ର, ମୂତ—1. Urine.
ପେଶାବ
୨ । ମୂତ୍ର ତ୍ୟାଗ—2 Urination.

**ପରିସ୍ରାବଣ**—ସଂ ବି. (ପରି+ସ୍ରୁ ଧାତୁ ଣିଚ ସ୍ରାବ ଧାତୁ+ଅଧି. ଅନ)—Parisrābaṇa ଯେଉଁ ପାତ୍ରରେ ପାଣି ଛଣାଯାଏ—1 filtering or straining vessel.

**ପରିସ୍ରାବୀ**—ସଂ. ବିଣ—(ପରି+ସ୍ରୁ ଧାତୁ ଣିଚ୍ ସ୍ରାବ ଧାତୁ+କର୍ତ୍ତୃ. ଇନ୍; Parisrābī ୧ମା. ୧ବ.)—୧ । ବହି ଯାଉଥିବା—1. Flowing.
୨ । ଝରୁଥିବା—2. Oozing.
ସଂ. ବି--୧ । ସବୁବେଳେ ଗୁହ୍ୟଦ୍ୱାର ବାଟେ ଘନରସ ବାହାରିବା,ଭଗନ୍ଦର ରୋଗବିଶେଷ—1. A form of fistula of the anus.
୨ । ଦୁରାରୋଗ୍ୟ ଜଳୋଦର ରୋଗବିଶେଷ—2. An incurable form of swollen abdomen. (M.W.)

**ପରିସ୍ରୁତ**—ସଂ. ବିଣ. (ପରି+ସ୍ରୁ ଧାତୁ=ସ୍ରବିବା+କର୍ତ୍ତୃ. ତ)—Parisruta ୧ । ଟୋପା ଟୋପା ହୋଇ ଝରିବା, କ୍ଷରିତ—1 Falling by drops; trickled.
୨ । ଅର୍କ ବାହାର କରିବା ପ୍ରକ୍ରିୟାଦ୍ୱାରା ଝରିଥିବା, କ୍ଷରିତ—2. Distilled.
ସଂ. ବି (ବୈଦିକ)—ଅତର, ପୁଷ୍ପସାର—Essence of flowers; otto.

**ପରିସ୍ରୁତା**—ସଂ. ବି. ସ୍ତ୍ରୀ—(ପରିସ୍ରୁତ+ସ୍ତ୍ରୀ. ଆ)—୧ । ମଦ୍ୟ, ମଦିରା—Parisrutā 1. Spirits; wine.
(ପରିସ୍ରୁତ୍—ଅନ୍ୟରୂପ) ୨ । ଦ୍ରାକ୍ଷା ମଦ୍ୟ—2. Wine from grapes.

**ପରିହ୍ୟାରି**—ପ୍ରାଦେ. (ସମ୍ବଲପୁର ଓ ଗଡ଼ଜାତ) ବି. (ସଂ. ପରାରି)—Parih-āri ୧ । ଗତ ବର୍ଷର ପୂର୍ବ ବର୍ଷ—1. Year before last.
ପରିଃ ଆରି
ପରିହାରି } ଅନ୍ୟରୂପ ୨ । ଆଗାମୀ ବର୍ଷର ପରବର୍ଷ—2. Year after next.
ପରିଆହେ(ଏ)ରି

**ପରିହତ**—ସଂ. ବିଣ. (ପରି+ହନ୍ ଧାତୁ+କର୍ମ. ତ)—୧ । ପରିତ୍ୟକ୍ତ—Parihata 1. Abandoned.
୨ । ଧୃତ—2. Seized; taken.
ସଂ. ବି—୧ । ଲଙ୍ଗଳର କଣ୍ଠି (ହ୍ଲ. ଶ.)—1. The part of the plough between the handle & the plough blade.
୨ । ଖଣ୍ଡେ କାଠରେ ତିଆରି ହୋଇଥିବା ଲଙ୍ଗଳ (ହ୍ଲ. ଶ)—2. A plough made of one piece of wood only.

**ପରିହର**—ସଂ. ବି. (ପରି+ହୃ ଧାତୁ+ଭାବ. ଅ)—ପରିହାର; ତ୍ୟାଗ—Parihara Abandonment.
ପ୍ରସାଦ ପରିହର, ଭୁଷାଭୂତ ନକର—କବିସୂର୍ଯ୍ୟ ସଙ୍ଗୀତ ।

**ପରିହରଣ**—ସଂ. ବି—(ପରି+ହୃ ଧାତୁ+ଭାବ. ଅନ)—୧ । ହାନି—Pariharana 1. Loss.
ପରିହୃତ
ପରିହାରୀ } ବିଣ ୨ । କ୍ଷୀଣତା—2 Weakness; feebleness.
ପରିହାରକ
୩ । ପରିହାର, ପରିତ୍ୟାଗ, ବର୍ଜନ—3 Abandonment; relinquishment.
୪ । (ଦୋଷ) ଛଡ଼ାଇବା, କ୍ଷାଳନ, ନିରାକରଣ—4 Repelling; removing, refutation.
୫ । କୌଣସି ବସ୍ତୁକୁ ଅଧିକାରୀର ବିନାନୁମତିରେ ଜବରଦସ୍ତି ଛଡ଼ାଇ ନେବା—5. Snatching away by force.

**ପରିହରଣୀୟ**—ସଂ. ବିଣ. (ପରି+ହୃ ଧାତୁ+କର୍ମ. ଅନୀୟ)—Pariharaṇiya ୧ । ପରିତ୍ୟାଗର ଉପଯୋଗୀ, ତ୍ୟାଜ୍ୟ—(ପରିହରଣୀୟା—ସ୍ତ୍ରୀ) 1. Fit to be abandoned or shunned.
୨ । ଗ୍ରହଣ ଯୋଗ୍ୟ, ଗ୍ରାହ୍ୟ—2. Fit to be taken, acceptable
୩ । ଛଡ଼ାଇ ନେବାର ଯୋଗ୍ୟ—3. Fit to be snatched away.
୪ । ନିବାରଣୀୟ—4. Preventible.

**ପରିହରମାଣ**—ସଂ. ବିଣ ପୁଂ. (ପରି+ହୃ ଧାତୁ+କର୍ତ୍ତୃ. ଆନ= Pariharamāṇa ସଂ. ଶାନଚ)—ଯେ ପରିହାର କରୁଅଛି—(ପରିହରମାଣା—ସ୍ତ୍ରୀ) Relinquishing; abandoning; avoiding.

**ପରିହରିବା**—ଦେ. କ୍ରି (ପଦ୍ୟ) (ସଂ. ପରିହରଣ)—ପରିହାର କରିବା; Pariharibā ତ୍ୟାଗ କରିବା—To abandon; to shun; to avoid.
ପବିହରା परिहरना
ଭେଦମତ ପରିହର ସହିତ ବନ୍ଧନେ
ବଦ୍ଧ ହେବେ ଅର୍ଯ୍ୟଭୂମେ ଅର୍ଯ୍ୟସୁତେ ସେଦେ—
ଜଗନ୍ନାଥ—ମହାଯାତ୍ରା ।

**ପରିହର୍ତ୍ତବ୍ୟ**—ସଂ. ବିଣ. (ପରି+ହୃ ଧାତୁ+କର୍ମ. ତବ୍ୟ)—ପରିହରଣୀୟ; Parihartabya ପରିହାର୍ଯ୍ୟ—Fit to be abandoned; avoidable.

**ପରିହସନୀୟ**—ସଂ. ବିଣ. (ପରି+ହସ୍ ଧାତୁ+କର୍ମ. ଅନୀୟ)—Parihasaniya ୧ । ଉପହାସ୍ୟ—1 Laughable; (ପରିହସନୀୟା—ସ୍ତ୍ରୀ) ludicrous.
୨ । ପରିହାସର ଉପଯୁକ୍ତ ପାତ୍ର—2. Fit to be laughed at or jested with.

**ପରିହସିତ**—ସଂ. ବିଣ. ପୁଂ. (ପରି+ହସ୍ ଧାତୁ+କର୍ମ. ତ)—ଯାହାକୁ Parihasita ଥଟ୍ଟା ବା ଉପହାସ କରାଯାଏ—Laughed at; (ପରିହସିତା—ସ୍ତ୍ରୀ) jeered at.
ବି—(+ଭାବ. ତ)—ପରିହାସ—Jest.

**ପରିହାର**—ସଂ. ବି. (ପରି+ହୃ ଧାତୁ+ଭାବ. ଅ)—୧ । ପରିତ୍ୟାଗ, Parihāra ସର୍ବଥା ତ୍ୟାଗ—1. Abandonment; desertion; relinquishment; avoidance.
ପରିହୃତ
ପରିହାରୀ } ବିଣ ୨ । ଅନାଦର; ଅସମ୍ମାନ—2. Insult; disrespect; disesteem.
ପରିହାର୍ଯ୍ୟ

୩ । ଦୋଷାପନୟନ, ଦୋଷ ଛଡ଼ାଇବା; ଦୋଷ ଖାଲନ—
3 Repelling of a charge; refuting
୪ । ଏଡ଼ାଇବା, ଏଡ଼ିବା—
4. Escaping from; shunning; avoiding.
୫ । ନିଜ ଉପରୁ ଦୋଷ ଛଡ଼ାଇବା ପାଇଁ ପ୍ରତ୍ୟୁତ୍ତର, ଖଣ୍ଡନ—
5 Refutation, reply to an accusation against oneself.
୬ । ପ୍ରାର୍ଥନା, ଅନୁରୋଧ—6 Prayer; request.
୭ । ରିହାଇ, ମୋଚନ, ମୁକ୍ତି—7. Exemption
୮ । ବିଦାୟ—8. Bidding adieu.
୯ । ପରାଜୟ—9. Defeat
୧୦ । ଉପେକ୍ଷା—10. Disregard; indifference
୧୧ । ରାଜପୁତ୍ ଜାତିର ଗୋଟିଏ ଶାଖା (ଏମାନଙ୍କର ଅନ୍ୟ ନାମ ଅଗ୍ନି କୁଳ)—11. Name of a branch of the Rajputs.
୧୨ । (+କର୍ମ. ଅ)—ଗ୍ରାମର ଚାରିପାଖେ ଗୋଚାରଣପାଇଁ ଛଡ଼ା ଯିବା ପଡ଼ିଆଭୂମି (ହି. ଶ)—12. The common grazing ground round a village
୧୩ । ଯୁଦ୍ଧରେ ଜିଣା ଯାଇଥିବା ଧନାଦି (ହି. ଶ)—
13. Booty, spoils
୧୪ । କର ଦିଆଣରୁ ମୁକ୍ତି (ହି. ଶ)—
14. Exemption or remission from taxation.
୧୫ । ଭର୍ତ୍ସନା (ହି. ଶ)—15. Rebuke; censure.

**ପରିହାରି**—ସଂ. ବିଣ. ପୁଂ. (ପରି+ହୃ ଧାତୁ+ଇନ୍ ୧ମା. ୧ବ)—
Parihāri ୧ । ପରାଜୟକାରୀ, (ଅମୁକ ଅପେକ୍ଷା) ଉତ୍କୃଷ୍ଟ—
(ପରିହାରକ—ଅନ୍ୟରୂପ) 1 Defeating; excelling.
ପରିହାରିଣୀ } ସ୍ତ୍ରୀ ନାରୀରୂପ ପରିହାରି କମ୍ପନାରୁ । କବିସୂର୍ଯ୍ୟ. ସଙ୍ଗୀତ ।
ପରିହାରିକା } ୨ । ପରିହରଣକାରୀ (ପରିହରଣର ଭିନ୍ନ ଭିନ୍ନ ଅର୍ଥ ଦେଖ)—2. Doing an act of Pariharaṇa (See).

**ପରିହାର୍ଯ୍ୟ**—ସଂ. ବିଣ. (ପରି+ହୃ ଧାତୁ+କର୍ମ. ଯ)—
Parihārjya ୧ । ପରିତ୍ୟାଜ୍ୟ, ପରିହର୍ତ୍ତବ୍ୟ—
(ପରିହାର୍ଯ୍ୟା—ସ୍ତ୍ରୀ) 1. Fit to be relinquished or shunned; avoidable.
୨ । ରିହାଇ ବା ମୁକ୍ତିଲାଭ ପାଇବା ଯୋଗ୍ୟ—
2. Deserving exemption.

**ପରିହାସ**—ସଂ. ବି. (ପରି+ହସ୍ ଧାତୁ+ଭାବ. ଅ)—୧ । ଥଟ୍ଟା—
Parihāsa 1. Jesting; mockery.
ପରିହସିତ } ୨ । କୌତୁକ—2. Sport; mirth.
ପରିହସନୀୟ } ବିଣ ୩ । ଉପହାସ—3. Ridicule; laughter;
ପରିହାସ୍ୟ } jeering.
[ ଦ୍ର—ଏହି ଶବ୍ଦ ଅନ୍ୟ ଶବ୍ଦ ସଙ୍ଗେ ସହଚରରୂପେ ବ୍ୟବହୃତ ହୁଏ, ଯଥା—ହାସ ପରିହାସ, ଥଟ୍ଟା ପରିହାସ, କୌତୁକ ପରିହାସ । ]
୪ । କ୍ରୀଡ଼ା; ଖେଳ; (ହି. ଶ)—4. Play.

**ପରିହାସକ**—ସଂ. ବିଣ. ପୁଂ (ପରି+ହସ୍ ଧାତୁ+କର୍ତ୍ତୃ. ଅକ)—
Parihāsaka ଯେ ପରିହାସ କରେ—Mocking; jesting.
(ପରିହାସିକା—ସ୍ତ୍ରୀ) ବି—ବିଦୂଷକ—Jester

**ପରିହାସ କରିବା**—ଦେ. କ୍ରି—ଥଟ୍ଟା ତାମସା କରିବା—
Parihāsa kariba To play jests with; to cut
পরিহাসকরা परिहासकरनो jokes with
[ପରିହାସ ଲଗା(ଗେ)ଇବା—ଅନ୍ୟରୂପ]

**ପରିହାସ ଲଗା(ଗେ)ଇବା**—ଦେ. କ୍ରି—ପରିହାସ କରିବା (ଦେଖ)
Parihāsa lagā(ge)ibā Parihāsa karibā (See)

**ପରିହାସି**—ଦେ. ବିଣ (ପୁଂ ଓ ସ୍ତ୍ରୀ) (ସଂ. ପରିହାସ୍ୟ)—୧ । ପରିହାସ
Parihāsi ଯୋଗ୍ୟ ବ୍ୟକ୍ତି), ଯାହା ସଙ୍ଗେ ପରିହାସ ବା ଥଟ୍ଟା କରିବା ସମାଜସମ୍ମତ—1. Fit to be jested with according to social custom.
୨ । ପରିହାସ କରୁଥିବା—2. Jesting.
୩ । ଯେ ସର୍ବଦା ଥଟ୍ଟା ପରିହାସ କରେ, ଥଟ୍ଟିଲ; ପରିହାସପ୍ରିୟ—
(ପରିହାସିଆ—ଅନ୍ୟରୂପ) 3. Jestive; sportive, jocular.
[ଦ୍ର—ଆମ ସମାଜରେ ଅଜ, ଅଜା, ନାତି, ନାତୁଣୀ, ନାତୁଣୀ-ଜୋଇଁ, ନାତୁଣୀବୋହୂ, ଭଣୋଇ ଓ ଶଳା, ଶାଳୀ, ଶଳାଭାଉଜ, ନଣନ୍ଦ, ଦିଅର, ଭାଉଜ, ନଣନ୍ଦେଇ ଓ ଭଉଣୀଜୋଇଁ ଏମାନେ ପରିହାସି ଅଟନ୍ତି ।

**ପରିହାସ୍ୟ**—ସଂ. ବିଣ. (ପରି+ହସ୍ ଧାତୁ+କର୍ମ ଯ)—
Parihāsya ଥଟ୍ଟା ତାମସାର ଯୋଗ୍ୟ, ପରିହସନୀୟ—
(ପରିହାସ୍ୟା—ସ୍ତ୍ରୀ) Rediculous, laughable.
(ପରିହାସ୍ୟତା—ବି) ଗ୍ରା. ବି. (ସଂ. ପରିହାସ)—ପରିହାସ (ଦେଖ)
परिहस Parihāsa (See)

**ପରିହିତ**—ସଂ. ବିଣ. (ପରି+ଧା ଧାତୁ=ଧାରଣ କରିବା+କର୍ମ. ତ)—
Parihita ୧ । ପିନ୍ଧା ହୋଇଥିବା, ପିନ୍ଧା—1. Clothed;
(ପରିହିତା—ସ୍ତ୍ରୀ) worn; clad; put on; donned.
୨ । ଆଚ୍ଛାଦିତ—2. Covered over.
ପ୍ରାଦେ.(ଗଡ଼ଜାତ) ବିଣ.(କଟକିଆ ଭାଷା)—ସନ୍ନିକଟ,ସନ୍ନିହିତ—
Very close.

**ପରିହୀନ**—ସଂ. ବିଣ. (ପରି+ହା ଧାତୁ+କର୍ମ. ତ) —୧ । କ୍ଷୀଣ—
Parihina 1. Weak.
(ପରିହୀନା—ସ୍ତ୍ରୀ) ୨ । କ୍ଷୟପ୍ରାପ୍ତ—2. Wasted; waned.
(ପରିହୀଣ—ଅନ୍ୟରୂପ) ୩ । ସମ୍ୟକ୍ ବଞ୍ଚିତ—
3 Defrauded; deprived of; deceived.
୪ । ପରିବର୍ଜିତ; ତ୍ୟକ୍ତ—4. Abandnoed

**ପରିହୃତ**—ସଂ. ବିଣ. (ପରି+ହୃ ଧାତୁ+କର୍ମ. ତ)—ପରିତ୍ୟକ୍ତ—
Pari hṛuta 1. Abandoned; deserted.
(ପରିହୃତା—ସ୍ତ୍ରୀ) ୨ । ବିମୁକ୍ତ—2. Liberated.
୩ । ବଳପୂର୍ବକ ଗୃହୀତ—3. Snatched, seized; robbed.
୪ । ଖାଳିତ—4. Confuted; repelled; refuted.
୫ । ପତିତ; ଭ୍ରଷ୍ଟ (ହି. ଶ)—5 Fallen.

୬ । ନଷ୍ଟ, ଧ୍ୱସ୍ତ (ହି ଶ.)—6. Ruined.

**ପରୀ**—ବୈଦେ. ବି. ସ୍ତ୍ରୀ (ଫା. ପରୀ, ତୁଲ. ଇଂ ଫେୟାରୀ, ସଂ ଅପ୍ସରା) —
Pari ୧ । ଅପ୍ସରା, ପକ୍ଷଯୁକ୍ତ ସୁନ୍ଦରୀ ଦେବଯୋନିବିଶେଷ —
परी **परी** Fairy, nymph.

[ଦ୍ର ପାରସ୍ୟ ଦେଶର ପ୍ରାଚୀନ କାହାଣୀରେ ପରୀମାନେ କୋହକାଫ୍ ପର୍ବତବାସିନୀ ପକ୍ଷଯୁକ୍ତା ସୁନ୍ଦରୀ ସ୍ତ୍ରୀ ରୂପଧାରଣୀ ବୋଲି କଳ୍ପିତା । ଏମାନଙ୍କ ରୂପ ଠିକ୍ ନାରୀଙ୍କ ପରି, କେବଳ ଖୁଆ ମୁଣ୍ଡରେ ଦୁଇଟି ପକ୍ଷୀ ଲାଗିଥିବାରୁ ଏମାନେ ଆକାଶ ପଥରେ ବିଚରଣ କରନ୍ତି । ଫାରସୀ ଓ ଉର୍ଦ୍ଦୁ ସାହିତ୍ୟରେ ପରୀମାନଙ୍କ ସୌନ୍ଦର୍ଯ୍ୟର ଅନେକ ବର୍ଣ୍ଣନା ଅଛି । କେବଳ ସ୍ୱର୍ଗବାସିନୀ ହୂରୀ ନାମ୍ନୀ ଦେବଯୋନୀ ପରୀମାନଙ୍କ ଠାରୁ ସୁନ୍ଦରୀ ବୋଲି କଥିତା । ଫାରସୀ ଓ ଉର୍ଦ୍ଦୁ କବିତାରେ ସୁନ୍ଦରୀ ସ୍ତ୍ରୀମାନଙ୍କୁ 'ପରୀ' ସଙ୍ଗେ ତୁଳନା କରି ଯାଇଅଛି ଓ ସେମାନଙ୍କୁ ତେଣୁକରି ପରୀ ବୋଲାଯାଇଅଛି (ହି ଶ )]

୨ । ପରୀ ପରି ସୁନ୍ଦରୀ ସ୍ତ୍ରୀ—2. An exquisitely beautiful and charming woman; a paragon amongst women.

**ପରୀକ୍ଷ**—ଦେ. ବି. (ସଂ ପରୀକ୍ଷା)— ୧ । ପରୀକ୍ଷା—
Pariksha 1. Examination.

ପରୀକ୍ଷ କାମକେ କୃଷ୍ଣ କରନ୍ତି ଦମନ୍ତୀ । ପ୍ରାଚୀ, ନଳଚରିତ ।

୨ । ଜଳୀୟ ଔଷଧ ସହିତ ଅନୁପାନ ମିଶ୍ରଣ—2. Mixing of a vehicle with certain liquid medicines.
(ଯଥା—ଏ ପାଚନରେ ମହୁ ପରୀକ୍ଷ ଦେଇ ଖାଇବାକୁ ହେବ ।)

୩ । (ସଂ. ପରୀକ୍ଷିତ ) ପରୀକ୍ଷିତ ରାଜା—
3. Name of a king

ଶୁଣ ପରୀକ୍ଷ ନରନାଥ,
କୃଷ୍ଣ ଚରିତ ଭାଗବତ । ଜଗନ୍ନାଥ ଭାଗବତ ।

**ପରୀକ୍ଷକ**—ସଂ. ବି. ପୁଂ. (ପରି + ଈକ୍ଷ୍ ଧାତୁ=ଦେଖିବା+କର୍ତ୍ତୃ. ଅକ)—
Parikshaka ୧ । ଯେ ପରୀକ୍ଷା କରେ—
(ପରୀକ୍ଷିକା—ସ୍ତ୍ରୀ) 1. Examiner.

୨ । ଦୋଷଗୁଣବିଚାରକ, ସମାଲୋଚକ—
2. Judge; critic.

**ପରୀକ୍ଷା**—ସଂ. ବି. (ପରି+ଈକ୍ଷ୍ ଧାତୁ=ଦେଖିବା+ଭାବ. ଅ+ସ୍ତ୍ରୀ. ଆ)—
Pariksha ୧ । ଦୋଷ ଗୁଣର ବିଚାର —
(ପରୀକ୍ଷଣ — ଅନ୍ୟରୂପ) 1. Examination.
(ପରୀକ୍ଷିତ, ପରୀକ୍ଷିତବ୍ୟ, ପରୀକ୍ଷ୍ୟ—ବିଣ)

୨ । ଅନୁସନ୍ଧାନ—2. Investigation; enquiry

୩ । ବିଶ୍ଳେଷଣାଦି ଦ୍ୱାରା ପଦାର୍ଥର ଗୁଣାଦି ନିର୍ଣ୍ଣୟ—
3. Experiment by analysis and synthesis.

୪ । ମାଣ୍ଡୁ, ପ୍ରାଚୀନ କାଳରେ ନ୍ୟାୟାଳୟରେ ଅଭିଯୁକ୍ତ ବ୍ୟକ୍ତିର ଅପରାଧିତା ବା ନିରପରାଧିତାର ପ୍ରମାଣ ନେବା (ଯଥା—ଅଗ୍ନି ପରୀକ୍ଷା)—4. Ordeal.

୫ । ସ୍ୱର୍ଣ୍ଣ ରତ୍ନାଦିରେ ଦୋଷ ଅଛି କି ନାହିଁ ଏଥିର ପ୍ରମାଣାର୍ଥ ତଦନ୍ତ—5. Test of gold and gems

ଦେ. ବି.—୧ । ବିଦ୍ୟାର୍ଥୀମାନଙ୍କର ବିଦ୍ୟାଶିକ୍ଷାର ନିର୍ଦ୍ଦିଷ୍ଟ କାଳ ପରେ ବିଦ୍ୟା ଓ ଗୁଣ ବିଚାରାର୍ଥ ନିର୍ବାଚିତ ପ୍ରଶ୍ନାଦିର ଉତ୍ତର ସମାଧାନ ରୂପ କ୍ରିୟା—
1. Examination of students

୨ । ଜଳୀୟ ଔଷଧ ସଙ୍ଗେ ବ୍ୟବହୃତ ଅନୁପାନ—
2 A vehicle for taking certain medicines.

୩ । ଦେବୋତ୍ତର ସମ୍ପତ୍ତିର ତତ୍ତ୍ୱାବଧାରକ ପ୍ରଧାନ କର୍ମଚାରୀ, ପରିଛା—୪. A superintendent of an endowment.

ପରିଛା ହକାର ଆଜ୍ଞା ଦେଲେ ତହିଁ । ଭକ୍ତ, ରାବଣବଧ ।

**ପରୀକ୍ଷା କରିବା**—ଦେ. କ୍ରି—୧ । ବିଶ୍ଳେଷଣାଦି ଦ୍ୱାରା ଗୁଣାଦି ନିର୍ଣ୍ଣୟ
Pariksha kariba କରିବା —1. To experiment.
परीक्षा करना ୨ । ଦ୍ରବ୍ୟର ଉତ୍କର୍ଷ ବା ଅପକର୍ଷ ପରଖ କରିବା —
**परीक्षाकरना, परखना** 2 To test

୩ । ବିଦ୍ୟା ବା ଯୋଗ୍ୟତା ସ୍ଥିର କରିବା ପାଇଁ ଛାତ୍ରାଦିଙ୍କୁ ପ୍ରଶ୍ନ କରିବା—3. To examine a student.

**ପରୀକ୍ଷା ଦେବା**—ଦେ. କ୍ରି—ନିଜର ଉପଯୁକ୍ତତାର ପରିଚୟ ଦେବା—
Pariksha deba To appear at an examination;
परीक्षा देना to undergo a test or ordeal.
**परीक्षा देना** କଠିନ ପରୀକ୍ଷା ଦେଲେ ଲଙ୍କାଠାରେ ସତୀ ।
ନନ୍ଦ କିଶୋର ସୀତା ବନବାସ ।

**ପରୀକ୍ଷା ନେବା**—ଦେ. କ୍ରି—୧ । କୌଣସି ଛାତ୍ରର ଯୋଗ୍ୟତା ବିଚାରାର୍ଥ
Pariksha neba ପ୍ରଶ୍ନାଦି ଦ୍ୱାରା ପରୀକ୍ଷା କରିବା- 1 To
परीक्षा लेना examine a student.
**परीक्षा लेना** ୨ । ଯୋଗ୍ୟତାର ନିଦର୍ଶନ ଦେଖିବା—
2 To test.

**ପରୀକ୍ଷା ଫଳ**—ସଂ ବି. (ଷଷ୍ଠୀ ତତ୍)—ପରୀକ୍ଷାର୍ଥୀମାନଙ୍କର ଯୋଗ୍ୟତାର
Pariksha phala ବିଚାରର ଶେଷ ଫଳ—The result of an examination; examination result

**ପରୀକ୍ଷାର୍ଥୀ**—ସଂ. ବିଣ. ପୁଂ. (ପରୀକ୍ଷା + ଅର୍ଥିନ୍, ୧ମା. ୧ବ.)—ପରୀକ୍ଷା
Parikshārthi ଦେବା ପାଇଁ ଇଚ୍ଛୁକ—Desirous of
(ପରୀକ୍ଷାର୍ଥିନୀ—ସ୍ତ୍ରୀ) appearing at an examination.

ସଂ. ବି—ପରୀକ୍ଷା ଦେବା ପାଇଁ ପ୍ରସ୍ତୁତ ବା ଉପସ୍ଥିତ ବ୍ୟକ୍ତି—
Candidate; examinee.

**ପରୀକ୍ଷିତ୍**—ସଂ. ବି. (ପରି + କ୍ଷି ଧାତୁ=କ୍ଷୟ କରିବା + କର୍ତ୍ତୃ. କ୍ୱିପ୍)—
Parikshit ପରୀକ୍ଷିତ୍ (ଦେଖ)—Parikshit (See)

**ପରୀକ୍ଷିତ**—ସଂ. ବି. (ପରି + କ୍ଷି ଧାତୁ+କର୍ମ. କ୍ତ)—ପରୀକ୍ଷିତ୍ (ଦେଖ)
Parikshita Parikshit. (See).
(ପରୀକ୍ଷିତା—ସ୍ତ୍ରୀ) ବିଣ—(ପରି + ଈକ୍ଷିତ)—୧ । ଯାହାକୁ ପରୀକ୍ଷା କରି ଯାଇଅଛି—1. Examined; tried; investigated; experimented.

୨ । ଅନୁଭବ ଦ୍ୱାରା ଦେଖା ଯାଇଥିବା—
2. Tested by experience.

**ପରୀକ୍ଷିତ ଔଷଧ**—ସଂ. ବି.—ଯେଉଁ ଔଷଧର ଗୁଣ ବା ଫଳ ଏଥିପୂର୍ବେ
Parikshita aushadha ଦେଖା ଯାଇଅଛି—Well tried or tested medicine.

**ପରୀକ୍ଷିତ ତୁଟକା**—ଦେ. ବି—ଯେଉଁ ସାମାନ୍ୟ ବୁଟୀର ଗୁଣ ଏଥିପୂର୍ବେ ପରୀକ୍ଷା କରାଯାଇଅଛି—A well-tried simple remedy.
Parikshita tuṭakā
ପରୀକ୍ଷିତ ଟୋଟ୍‌କା **परीक्षिततोटका**

**ପରୀଜାଦ୍**—ବୈଦେ. ବିଣ. (ଫା)—ପରୀ ପରି ସୁନ୍ଦରୀ—Beautiful as a fairy.
Parijād
ডানাকাটাপরী **परीजाद**

**ପରୀଣାୟ**—ସଂ ବି—ପରିଣାୟ (ଦେଖ)
Pariṇāya Pariṇāya. (See)

**ପରୀଣାହ**—ସଂ. ବି—ପରିଣାହ (ଦେଖ)
Pariṇāha Pariṇāha. (See)

**ପରୀତ**—ସଂ. ବି—(ପରି=ଚାରିଆଡେ+ଇ ଧାତୁ=ଯିବା+କର୍ମ. ତ)—
Parita ୧ । ବେଷ୍ଟିତ, ପରିବୃତ—1. Surrounded.
୨ । ଯୁକ୍ତ, ବିଶିଷ୍ଟ—2. Joined; connected.
୩ । ପରିଗତ—3. Gone forth.

**ପରୀତ୍ତ**—ସଂ. ବିଣ—୧ । ସୀମାବଦ୍ଧ (ହି. ଶ.)—1. Limited.
Paritta
୨ । ସଂକୀର୍ଣ୍ଣ—2. Narrow.
୩ । ସଙ୍କୁଚିତ—3. Contracted.

**ପରୀ ଦେଶ**—ଦେ. ବି—(ଫା. ପରୀ+ସଂ. ଦେଶ)—ପରୀମାନେ ଯେଉଁ କାଳ୍ପନିକ ଦେଶରେ ବାସ କରନ୍ତି—Fairy-land.
Pari desa
পরী রাজ্য **परीमुलक** (ପରି ସ୍ଥାନ, ପରି ରାଜ୍ୟ—ଅନ୍ୟରୂପ)

**ପରୀରମ୍ଭ**—ସଂ ବି—ପରିରମ୍ଭ (ଦେଖ)
Parirambha Parirambha. (See)

**ପରୀହାର**—ସଂ. ବି—ପରିହାର (ଦେଖ)
Parihāra Parihāra. (See)

**ପରୀହାସ**—ସଂ. ବି—ପରିହାସ (ଦେଖ)
Parihāsa Parihāsa. (See)

**ପରୁ**—ଦେ. ଅ. (ସଂ. ପରୁତ୍)—୧ । ଗତ ବର୍ଷ; ଗୋଦସ୍ତା—1. Last year.
Paru
୨ । (ସଂ. ପରତଃ) ଅପେକ୍ଷା, ଠାରୁ—2. Than.
ନୁ ଭୂମ୍ୟ ଦାସ ଗରୁ ବାସ—ଜଗୋବନ୍ଧୁ ପ୍ରେମଭକ୍ତିଗୀତା ।
୩ । (ସଂ. ଉପରି) ଉପରୁ—3. Down from.
ପଡିଲେ ହାସାପରୁ ଖଣ୍ଡଣ ବଡୋଳା—କୃଷ୍ଣସିଂହ ମହାଭାରତ ଦ୍ରୋଣ ।
ସଂ. ବି—୧ । ପର୍ବତ (ହି. ଶ.)—1. Mountain.
୨ । ସ୍ୱର୍ଗଲୋକ—2. Heaven; paradise.
୩ । ଗ୍ରନ୍ଥି, ଗଣ୍ଠି—3. Knot.
୪ । ସମୁଦ୍ର—4. The ocean (Apte).

**ପରୁଆ (ଇତ୍ୟାଦି)**—ବୈଦେ. ବି. (ଫା)—ପରୁଆ ଇତ୍ୟାଦି (ଦେଖ)
Parua (etc) Par-ua etc. (See).
(ପରଉଇ, ପରୋଆ—ଅନ୍ୟରୂପ)
**परोआ प्रवाह** ଏଣିକି ଦେଲେ ସମସ୍ତର ମନ୍ଦରେ ପରୁଆ ନାହିଁ । ...

ପ୍ରାଦେ (ବସ୍ତୁଶ) ବି (ସଂ. ପାରାବତ)—ପାରା—Pigeon.

**ପରୁଆନା**—ବୈଦେ. ବି (ଫା)—ପରଉଆନା (ଦେଖ)
Paruānā Par-uānā (See)
(ପରୱାନା, ପରନା, ପରୱାନା—ଅନ୍ୟରୂପ)
ଭିଣିକାର ପରୁଆନା । × × × ସବୁ ମୋ ପାଖରେ ଅଛି ।
ଫକୀରମୋହନ ଛମାଣଆଠଗୁଣ୍ଠ ।

**ପରୁଆର୍**—ବୈଦେ. ବି (ଫା)—ପରଉଆର୍ (ଦେଖ)
Paruār Par-uār (See)

**ପରୁଡ଼ି**—ଦେ ବି—୧ । ବିଶାକାଠିର ତଳେ ଦଉଡି ଲାଗି ଝୁଲୁଥିବା ଚାଳପତ୍ରରେ ତିଆରି ପଲ୍ଲ—1. A square bit of wicker work hanging from the roller of 'Bisā kāthi'.
Parurdi
[ ଦ୍ର—ଏହା ଉପରେ ଜଳସପତ୍ର ରଖାଯାଇ ଓଜନ କରାଯାଏ । ]
୨ । ( ସଂ. ପଟ୍ଟେରକ ) ସନ୍ତରା ( ଦେଖ )
2. Santarā ( See )

**ପରୁଡ଼ି ମସିଣା**—ଦେ. ବି.—ସନ୍ତରା ମସିଣା (ଦେଖ)
Parurdi masiṇā Santarā masinā (See)
**पटेरकी चटाइ**

**ପରୁତ୍**—ସଂ. ଅ. (ପର+ବର୍ଷ. ଅର୍ଥରେ ଉତ୍)—ଗତ ବର୍ଷ, ଗୋଦସ୍ତା—Last year.
Parut

**ପରୁଶୁ (ଇତ୍ୟାଦି)**—ଗ୍ରା. ବି.—ପରଶୁ ଇତ୍ୟାଦି (ଦେଖ)
Parusu (etc) Parasu etc (See)

**ପରୁଷ**—ସଂ. ବିଣ. (ପୃ ଧାତୁ=ପୂର୍ତ୍ତି କରିବା+କର୍ତ୍ତୃ. ଉଷ)—
Parusha ୧ । କଠିନ—1. Hard.
(ପରୁଷା—ସ୍ତ୍ରୀ) ୨ । କଠୋର; କର୍କଶ, ରୁକ୍ଷ, ରୁକ୍ଷ—
(ପରୁଷତା[ଭି], ପାରୁଷ୍ୟ—ବି) 2. Rough; severe; rude.
ଯଥ ମୋତେ ଟାଳ ପଟେ ମ ନ ପାରେଁ ପରୁଷ ପୁରୁଷ ଜାତ ଗୋ ।
କବିସୂର୍ଯ୍ୟ. ସଙ୍ଗୀତ ।
୩ । ଉଦ୍ଧତ; ଉଗ୍ର—3. Abusive; rude.
୪ । ନିର୍ଦ୍ଦୟ; ନିଷ୍ଠୁର—4. Cruel; unkind.
୫ । ବିଚିତ୍ର ବର୍ଣ୍ଣ ବିଶିଷ୍ଟ—5. Multicoloured.
୬ । ଶ୍ରୁତିକଟୁ—6. Harsh or disagreeable to the ear.
୭ । କଷ୍ଟଦାୟକ (ପବନ)—7. Keen; piercing (wind).
୮ । ମଳିଆ—8. Dirty (Apte)
୯ । ଛିଟଛିଟିଆ—9. Spotted; variegated.
୧୦ । ଝାମ୍ପୁଡ଼ା—10. Shaggy (Apte)
ସଂ. ବି.—୧ । କଠୋର ବଚନ, ଗାଳି—
1. Harsh or abusive speech (Apte).
୨ । ଫାରସା କୋଳି (ଦେଖ)—2. Phārasā koli (See)
୩ । ନୀଳ ଝିଣ୍ଟି, ବାଣା—
3. The blue-flowered variety of Barlaria.
୪ । କାଣ୍ଡସର—4. A kind of reed.
୫ । ଶର; ବାଣ (ହି. ଶ)—5. Arrow.

ଦେ. ବି.—୧ । କଠୋରତା—
1 Roughness; harshness.
୨ । କାଠିନ୍ୟ – 2. Hardness
୩ । କର୍କଶତା—3. Rudeness.
୪ । ନିଷ୍ଠୁରତା—4 Cruelty.
–ସଂ. ବି.—କର୍କଶ ସ୍ୱର—
Parusha kantha Rude tone; harsh tone.

**ପରୁଷ ଫଳ**—ସଂ. ବି.—ଫାରସା କୋଳି (ଦେଖ)
Parusha phala Phārasā koli (See)

**ପରୁଷାଣ**—ଦେ. ବି. (ସଂ. ପରିବେଷଣ)—ପରଷିବା—
Parushāna Serving out meal.
परिवेशन परसना

**ପରୁଷିବା**—ଦେ. କ୍ରି. (ସଂ. ପରିବେଷଣ)—ପରଷିବା (ଦେଖ)
Parushibā Parashibā (See)
पवेसा परसना

**ପରୁଷୁଣୀ**—ଦେ. ବିଣ.—ପରଷୁଣୀ (ଦେଖ)
Parushuni Parashuni (See)

**ପରୁଷୁଣିଆ(ଆଁ)**—ଦେ. ବି. ଓ ବିଣ.—ପରଷୁଣିଆ (ଦେଖ)
Parushunia(ān) Parashunia (See)

**ପରୂଷ**—ସଂ. ବି—ଫାରସା କୋଳି ଓ ଗଛ (ହରେକୃଷ୍ଣ. ଦ୍ରବ୍ୟଗୁଣ)—
Parūsha (ପରୂଷକ—ଅନ୍ୟରୂପ) Phārasā (See)

**ପରେ**—ଦେ. ଅ.—(ସଂ. ପର)—୧ । ଉତ୍ତାରୁ, ଅନନ୍ତର—
Pare 1. After.
पवे परे ୨ । ପଶ୍ଚାତ୍—2. Afterwards.
୩ । ଭବିଷ୍ୟତରେ—3. In future.
୪ । (ଅମୁକର) ପରେ, ଉତ୍ତାରେ—4. After that.
୫ । ଠାରେ, ଉପରେ—5. Over; above.

ତା'ର ପରେ କି ବଳ୍ପ'ସ । କବିସୂର୍ଯ୍ୟ. ସଙ୍ଗୀତ ।

୬ । (ଅମୁକର) ଉର୍ଦ୍ଧ୍ୱରେ—6. High above.

ତୋହ ପରେ ଚଢ଼ି ବସିବେ ଗୌରବେ,
ତୋର ମତେ କେତେ କରଣ୍ୟ ମାନବେ । ରାଧାନାଥ. ଦରବାର ।

पवे ୭ । (ଅମୁକର) ଉପରକୁ; ଆଡ଼କୁ—
पर 7. Towards (that).

କୃପାର୍ଣ୍ଣବ ଯେ କୃତବର୍ମା କୁନ୍ତେ ମିଶି,
ଡାକ୍ଷେକେ ପରେ ବରଷିଲେ ଶର ରାଶି । କୃଷ୍ଣସିଂହ. ମହାଭାରତ. ସ୍ତ୍ରୀ ।

(ଅମୁକର) ବାହାରେ—8. Out side (that).

କାଳ ମାୟାର ପରେ ରହି,
ତତ ଅପାର ଭେଦ ନାହିଁ—ଜଗନ୍ନାଥ. ଭାଗବତ ।

चेये ୯ । (ଅମୁକ) ଅପେକ୍ଷା; ରୁ; ଅଧିକା, ଠାରୁ—
से 9. Over and above; than.

ଯା ଠାରୁଁ ନାନା ଯାହା ପରେ,
ତୈଁ ନାହିଁ ଏ ସଂସାରେ ଜଗନ୍ନାଥ. ଭାଗବତ ।

ଗ୍ରାଦେ. (ସମ୍ବଲପୁର) ପରି; ପରିଷ୍ୟେ—Like; similarly.

**ପରେଇ (ଇତ୍ୟାଦି)**—ବୈଦେ. ବି. (ଫା)—ପରୁଆ ଇତ୍ୟାଦି (ଦେଖ)
Parei (etc) Par-uā etc. (See)

**ପରେଇବା**—ଗ୍ରା. (ଇତର) କ୍ରି.—(ଳ ସ୍ଥାନରେ ର ଉଚ୍ଚାରଣ)—
Pareibā ପଳାଇବା (ଦେଖ)—Palāibā (See)

**ପରେଚ**—ଗ୍ରା. ବି. ଓ ବିଣ. (ସଂ. ପରିଚୟ)—ପରିଚୟ (ଦେଖ)
Parecha Parichaya (See)

**ପରେଟ୍(ଡ୍)**—ବୈଦେ ବି. (ଇଂ ପାରେଡ୍)—୧ । ପଲଟଣ ବା କନଷ୍ଟ-
Paret (d) ବଲମାନଙ୍କ ଶ୍ରେଣୀବଦ୍ଧ ହୋଇ ନାନା ପ୍ରକାର ଅଙ୍ଗ ଓ
पारेड परेट ଅସ୍ତ୍ରାଦି ଚାଳନ—
1 Military or police parade.
୨ । ଗ୍ରାମ ଚୌକିଦାରମାନଙ୍କର ସପ୍ତାହର ନିର୍ଦ୍ଦିଷ୍ଟ ଦିବସରେ
ଥାନାରେ ହାଜର ହେବା—2. The chowkidar's
weekly parade at the police station

**ପରେଟ୍(ଡ୍) ପଡ଼ିଆ**—ଦେ. ବି—ଯେଉଁ ପଡ଼ିଆ ବା ଖୋଲା ଯାଗାରେ
Paret(d) pardia ସୈନିକମାନେ ପରେଟ୍ କରନ୍ତି—
पारेड माठ Parade-ground; parade field.
परेट मैदान

**ପରେଟ୍ ପାଳି**—ଦେ. ବି—ସପ୍ତାହର ନିର୍ଦ୍ଦିଷ୍ଟ ଦିବସ ମାନଙ୍କରେ ଭିନ୍ନ ଭିନ୍ନ
Paret pāli ଗ୍ରାମର ଚୌକିଦାରମାନଙ୍କର ଥାନାରେ ହାଜର ହେବା
ପାଳି—Parade-day of village chowkidars.

**ପରେଠା**—ବୈଦେ. ବି (ହି)—ପରଠା ( ଦେଖ )
Paretā Paratā ( See )
(ପରୋଠା—ଅନ୍ୟରୂପ)

**ପରେଣ**—ଗ୍ରା. ଅ. (ପଦ୍ୟ)—ପରେ, ଉପରେ—
Parena On; above.

ଅପ ରଙ୍କ ପରେଣ ସେତୁ ବସେ । ତ୍ରାଗୀ, ପରଦେ ଗୀତା ।

**ପରେତ**—ସଂ. ବିଣ. (ପର=ପରଲୋକ+ଇ ଧାତୁ=ଯିବା+କର୍ତ୍ତୃ. ତ;
Pareta ଅର୍ଥାତ୍ ପର ଲୋକକୁ ଯେ ଯାଇଛି )—
ମୃତ—Dead; departed.
ବି—୧ । ପ୍ରେତ, ମୃତ ଲୋକର ଭୂତ—
1. The ghost of a dead man.
୨ । ମୃତ୍ତର—2. Dead body; corpse

**ପରେତ ରାଟ୍**—ସଂ. ବି. (ପରେତ=ପ୍ରେତ+ରାଜ୍ ଧାତୁ+କର୍ତ୍ତୃ. କ୍ୱିପ୍)-
Pareta rāt ପ୍ରେତଙ୍କ ରାଜା; ଯମ ରାଜା—
The God of death; Jama.

**ପରେଦ୍ୟୁଃ**—ସଂ. ଅ. (ପର+ଦିବସାର୍ଥେ ଏଦ୍ୟୁସ୍)—ପଅର ଦିନ—
Paredyuh Day before yesterday; day after to-morrow.

**ପରେଶ**—ସଂ. ବି. ( ପର+ଈଶ )—
Paresa ୧ । ପରମେଶ୍ୱର—1. God.
୨ । ବିଷ୍ଣୁ—2. Bishnu.
୩ । ଶିବ—3. Siba.

**ପରେଶ ନାଥ**—ଦେ. ବି—ପାର୍ଶ୍ୱନାଥ ( ଦେଖ )
Paresa nātha Pārswanātha ( See )

[ ଦ୍ର—କଲିକତାରେ ଜୈନ ସେଠଙ୍କ ପ୍ରତିଷ୍ଠିତ ପରେଶନାଥ ମନ୍ଦିର ମର୍ମର ପ୍ରସ୍ତର ଓ ନାନା ବର୍ଣ୍ଣ କାଚ ଖଣ୍ଡ ଦ୍ୱାରା ରଚିତ ଦେଖାଯାଏ । ]

**ପରେଷ୍ଟୁ**—ସଂ. ବି. ସ୍ତ୍ରୀ—ବହୁପ୍ରସୂତା ଗୌ, ବରଷ ବିଆଣୀ ଗାଈ—
Pareshtu A cow which has often calved (Apte).

**ପରୋଆନା**—ବୈଦେ. ବି. (ଫା)—ପର୍ ଉଆନା ( ଦେଖ )
Paroānā Par-uānā ( See )

**ପରୋକ୍ଷ**—ସଂ. ବିଣ (ଅବ୍ୟୟୀ ଭାବ, ପର=ଅତୀତ+ଅକ୍ଷ=ଇନ୍ଦ୍ରିୟ)—
Proksha ୧ । ଇନ୍ଦ୍ରିୟାତୀତ—1. Imperceptible; beyond the ken of the senses.
(ପ୍ରତ୍ୟକ୍ଷ— ବିପରୀତ)
[ପରୋକ୍ଷ(ତ୍ୱ)ତା—ବି] ୨ । ଅସାକ୍ଷାତ୍, ଅଦୃଶ୍ୟ—
2. Invisible
୩ । ଦୃଷ୍ଟିର ବହିର୍ଭୂତ—
3 Out of sight; beyond one's ken.
୪ । ଅପ୍ରତ୍ୟକ୍ଷ—4. Indirect
୫ । ଗୁପ୍ତ—5. Surreptitious; latent.
ସଂ. ବି—୧ । ଅନୁପସ୍ଥିତି, ଅଭାବ (ହି ଶ.)—
1. Absence; want.
୨ । ପରମ ଜ୍ଞାନୀ ବ୍ୟକ୍ତି (ହି. ଶବ୍ଦସାଗର)—
2. A seer; a very wise man.
୩ । (ବ୍ୟାକରଣ) ଅତୀତ କାଳ—
3. (grammar) Past tense.

**ପରୋକ୍ଷ ଜ୍ଞାନ**—ସଂ. ବି. (କର୍ମଧା, ପରୋକ୍ଷ+ଜ୍ଞାନ)—
Paroksha jnāna ୧ । ଅତୀନ୍ଦ୍ରିୟ ଜ୍ଞାନ—1. Knowledge of things unseen; clairvoyance.
୨ । ଅପ୍ରତ୍ୟକ୍ଷ ଜ୍ଞାନ—2. Indirect knowledge.

**ପରୋକ୍ଷ ପ୍ରମାଣ**—ସ. ବି—ସାକ୍ଷାତ୍ ପ୍ରମାଣ ଛଡ଼ା ଅନ୍ୟ ପ୍ରକାର ପ୍ରମାଣ—
Paroksha pramāna Circumstantial or indirect evidence.

**ପରୋକ୍ଷ ଭୋଗ**—ଦେ.ବି. (ହିନ୍ଦୁ ଆଇନ୍)—ପ୍ରକୃତ ଅଧିକାରୀର ଅନୁପସ୍ଥିତି
Paroksha bhoga ବା ଅଜ୍ଞାତରେ ଅନ୍ୟ ବ୍ୟକ୍ତି ଦ୍ୱାରା ତାହାର ସମ୍ପତ୍ତିର ଉପଭୋଗ—( Hindu law ) Enjoyment of one's property by another in his absence or without his knowledge.

**ପରୋକ୍ଷରେ**—ଦେ. କ୍ରି. ବିଣ. ( ସ. ପରୋକ୍ଷେ )—
Parokshare ଜଣକର ଅନୁପସ୍ଥିତିରେ—In one's absence;
ପରୋক্ষে behind one's back.

**ପରୋଢ଼ା**—ସ. ବି. ସ୍ତ୍ରୀ. (୩ୟା ତତ୍, ପର ଦ୍ୱାରା ଊଢ଼ା=ବିବାହିତା)—
Parorhā ପର ସ୍ତ୍ରୀ—Another man's wife; the married wife of another person.

**ପରୋପକାର**—ସ. ବି. ( ୬ଷ୍ଠୀ ତତ୍; ପର+ଉପକାର )—
Paropakāra ପରହିତ ସାଧନ—Doing good to others; benevolence; philanthropy.

**ପରୋପକାରୀ**—ସ. ବି. ସ୍ତ୍ରୀ—ସାଧ୍ୱୀ ସ୍ତ୍ରୀ—A wife wholly devoted
Paropakārī to her husband. (M. W.)

**ପରୋପକାରୀ**—ସଂ. ବିଣ. ପୁଂ. (ଉପପଦ; ପର+ଉପକାରୀ)—
Paropakārī ପରହିତ ସାଧକ—Doing good to others; philanthropic; beneficent.
(ପରୋପକାରିଣୀ, ପରୋପକାରିକା—ସ୍ତ୍ରୀ)
(ପରୋପକାରକ—ଅନ୍ୟରୂପ) (ପରୋପକାରିତା—ବି)

**ପରୋପକୃତ**—ସ. ବିଣ. ପୁଂ—ଅନ୍ୟ ବ୍ୟକ୍ତି ଦ୍ୱାରା ଉପକାର ପ୍ରାପ୍ତ —
Paropakruta Benefitted by another.
(ପରୋପକୃତା—ସ୍ତ୍ରୀ)

**ପରୋପଜୀବୀ**—ସ. ବିଣ. ପୁଂ. (ଉପପଦ ତତ ପୁରୁଷ, ପର+ଉପଜୀବୀ)—
Paropajībī ୧ । ପରାନ୍ନରେ ପାଳିତ—1. Brought up at another's expense.
(ପରୋପଜୀବିନୀ—ସ୍ତ୍ରୀ)
୨ । ପରମୁଖାପେକ୍ଷୀ—
2. Depending upon another.

**ପରୋଲ୍**—ବୈଦେ. ବି. ( ଇଂ. ପାରୋଲ୍ )—
Parol ସେଉଁ ଭିନ୍ନ ଭିନ୍ନ ସାଙ୍କେତିକ ଶବ୍ଦ ବା ପଦ ସେନାମାନଙ୍କ
পারোল ମଧ୍ୟରେ ପ୍ରତି ଦିନ ଚଳେ ଓ ଯାହା ଉଚ୍ଚାରଣ କରିବା
परोल ବ୍ୟକ୍ତି ଆପଣା ଦଳର ବୋଲି ବିବେଚିତ ହୁଏ—
Parol, a daily pass word in a camp or garrison.

**ପରୋଷ୍ଟୀ(ଷ୍ଣୀ)**—ସ. ବି—ଅସରପା (ହି. ଶ.)—
Paroshtī(shnī) Cockroach (Apte).

**ପର୍କଟ**—ସ. ବି—୧ । ଏକପ୍ରକାର ବଗ—
Parkata 1. A kind of Ardea (bird).
(ପର୍କଟୀ—ସ୍ତ୍ରୀ) ୨ । ଅନୁଶୋଚନା—2. Regret. (M.W.).
୩ । ଉତ୍କଣ୍ଠା—3. Anxiety. (M. W.).
ଗ୍ରା. ବିଣ. (ସ. ପ୍ରକଟିତ)—ପ୍ରକଟିତ, ସର୍ବତ୍ର ପ୍ରକାଶିତ—
Published everywhere.

**ପର୍କଟି(ଟୀ)**—ସ. ବି—୧ । ଜ୍ୱୀଗଛ, ଏକଜାତୀୟ ଅଶ୍ୱତ୍ଥ ଗଛ—
Parkati(tī) 1. A kind of fig tree; Ficus Infectoria; the wave-leafed fig tree.
পাকুড়গাছ पाखर
[ଦ୍ର—ଏହି ଗଛ ପଶ୍ଚିମ ଭାରତରେ ବେଶି ଦେଖାଯାଏ । ]
୨ । କଞ୍ଚାଗୁଆ—2. A fresh betel nut. (M.W.).

**ପର୍ଜ(ର୍ଜ୍ଜ)ନ୍ୟ**—ସ. ବି. (ପୃଜ୍. ଧାତୁ=ପାଣି ଛିଞ୍ଚିବା+କର୍ତ୍ତୃ. ଅନ୍ୟ,
Parja(rjja)nya ନିପାତନ)—୧ । ଶବ୍ଦକାରୀ ମେଘ—
1. Thunder cloud; rain cloud.
୨ । ଇନ୍ଦ୍ର—2. God Indra.

**ପର୍ଜନ୍ୟା**—ସ. ବି—ଦାରୁହଳଦୀ (ଦେଖ)—Dāruhaladī (See).
Parjanyā (ପର୍ଜନ୍ମା-ଅନ୍ୟରୂପ)

**ପର୍ଝିବା**—ପ୍ରାଦେ (ଗଡ଼ଜାତ) କ୍ରି—ପରଜିବା (ଦେଖ)—
Parjhibā Parajibā (See).

**ପର୍ଣ୍ଣ (ଧାତୁ)**—ସ.—ହରିଦ୍ୱର୍ଣ୍ଣ ହେବା—
Parnna (root) To become green.

**ପର୍ଣ୍ଣ**—ସ. ବି. (ପର୍ଣ୍ଣ୍ ଧାତୁ+କର୍ତ୍ତୃ. ଅ)—୧ । ଗଛର ପତ୍ର—
Parnna 1. Leaf of trees.

ଜନକ କନ୍ୟା ସ୍ନାନେ ପବିତ୍ର ଅତ,
ପର୍ଣ୍ଣ ଗହଳ ଯହିଁ ତରୁବ୍ରତତି । ରଥ ନାଥ- ମେଘଦୂତ ।

୨ । ତାମ୍ବୁଲ, ପାନ—2. Betel leaf.
୩ । ପକ୍ଷୀର ଡେଣା; ପକ୍ଷ —
3. Pinion; wings of a bird.
୪ । ପକ୍ଷୀର ପର—4. Feather.
୫ । ଫୁଲର ପାଖଡ଼ା ବା ଦଳ—
5. The petal of a flower.

**ପର୍ଣ୍ଣକାର**—ସ. ବି—ପାନର ଜାତି—A caste of Śūdras
Parnnakāra growing and selling betel leaves

**ପର୍ଣ୍ଣ କୁଟୀ**—ସ. ବି. (ମ. ପ ଲୋ, ପର୍ଣ୍ଣ + କୁଟୀ)—
Parnna kuṭī ୧ । ପତ୍ରକୁଡିଆ; ପଲ୍ଲୀ—
ପର୍ଣ୍ଣକୁଟି, ପର୍ଣ୍ଣଶାଳା, ପର୍ଣ୍ଣଶାଲ୍ଲ } ଅନ୍ୟରୂପ 1 A hut made of leaves.
୨ । ମୁନିଙ୍କ ପଲ୍ଲୀ—
2. Hermitage, arbour.

**ପର୍ଣ୍ଣ କୁଣ୍ଡ**—ସ. ବି—ବୃନ୍ତ, ଫୁଲ କଢ଼ିକୁ ରକ୍ଷା କରୁଥିବା କୋମଳ
Parnna kunda ପତ୍ରାଂଶ—Calix of a flower.

ମୁକୁଳ—ଉଦ୍‌ଗମ ଲାଗି ବୃନ୍ତଭାଳେ ବାନ୍ଧୁ ଅଛ ପର୍ଣ୍ଣକୁଣ୍ଡ—ଗଧାନାଥ. ଭଙ୍ଗୀ ।

**ପର୍ଣ୍ଣ କୃଚ୍ଛ୍ର**—ସ. ବି—କେବଳ ଗଛର ପତ୍ର ଖାଇ ଯେଉଁ ବ୍ରତ ଅନୁଷ୍ଠାନ
Parnna kruchchhra କରାଯାଏ—An austerity
performed by living on leaves of trees only.

[ଦ୍ରି—ଏ ବ୍ରତରେ ୧ମ ଦିନ ପଲାଶ ପତ୍ର, ୨ୟ ଦିନ ଡମ୍ବିରପତ୍ର ୩ୟ ଦିନ ପଦ୍ମ ପତ୍ର ଓ ୪ର୍ଥ ଦିନ ବେଲ ପତ୍ରର କ୍ୱାଥ ପିଇ ରହିବାକୁ ହୁଏ—ହି. ଶ. ।]

**ପର୍ଣ୍ଣ ଦାହ**—ସ. ବି—ପଲାଶ ଦାହ; ମୃତ ବ୍ୟକ୍ତିର ଦେହ ନ ମିଳିଲେ କ୍ଷାତ
Parnna dāha କୁଟୁମ୍ବମାନେ ପଲାଶ ପତ୍ର ଦ୍ୱାରା ମୃତ ବ୍ୟକ୍ତିର ମୂର୍ତ୍ତି ରଚନା କରି ଉକ୍ତ କଳ୍ପିତ ମୃତ ବ୍ୟକ୍ତିକୁ ଦାହ କରିବା ପ୍ରକ୍ରିୟା—The practice of cremating an effigy of the deceased made up of 'Palāsa' leaves when his dead body can not be procured for cremation.

**ପର୍ଣ୍ଣ ନର**—ସ. ବି—ଶବଦାହାର୍ଥ ପଲାଶ ପତ୍ର ଦ୍ୱାରା ନିର୍ମିତ ମୃତ ବ୍ୟକ୍ତିର
Parnna nara ମୂର୍ତ୍ତି—The effigy of a dead person, made up of Palāsa leaves for cremation.

**ପର୍ଣ୍ଣ ନାଳ**—ସ. ବି. (୬ଷ୍ଠୀ ତତ୍, ପର୍ଣ୍ଣ+ନାଳ)—ପତ୍ରର ଡେମ୍ଫ—
Parnna nāla Leaf stock; petiole.

**ପର୍ଣ୍ଣ ବାଦ୍ୟ**—ସ. ବି. (୬ଷ୍ଠୀ ତତ୍, ପର୍ଣ୍ଣ+ବାଦ୍ୟ)—
Parnna bādya ୧ । (ନଡ଼ିଆ, ତାଳଆଦିର) ପତ୍ର ନିର୍ମିତ ପେଁକାଳି—Whistle made by frolling leaves of trees, e.g. of cocoanut, plam etc
୨ । ପତ୍ରନିର୍ମିତ ପେଁକାଳିର ଶବ୍ଦ—
2. Sound produced by blowing into a rollded leaf.

**ପର୍ଣ୍ଣ ବୀଟିକା**—ସ. ବି—ପାନଖିଲ; ବିଡ଼ିଆ—
Parnna biṭikā A packet made up of betel nut and spices etc. and rolled up in betel leaf for chewing.

**ପର୍ଣ୍ଣ ଭକ୍ଷ**—ସ. ବିଣ. ପୁଂ. (ପର୍ଣ୍ଣ+ଭକ୍ଷ ଧାତୁ+କର୍ତ୍ତୃ. ଅ)—
Parnna bhaksha ପତ୍ର ଖାଇ ଯେ ଜୀବନ ଧାରଣ କରେ—
Feeding on leaves.

**ପର୍ଣ୍ଣ ଭୋଜନ**—ସ. ବି. (ପର୍ଣ୍ଣ+ଭୋଜନ)—୧ । (ବହୁବ୍ରୀହି) ଛେଳି—
Parnna bhojana Goat.
୨ । (୭ମୀତତ୍)- ପତ୍ର ଖାଇ ବଞ୍ଚିବା—
2 Subsisting on leaves only.

**ପର୍ଣ୍ଣ ମଣି**—ସ. ବି—୧ । ପନ୍ନା ରତ୍ନ—1. Emerald.
Parnna mani ୨ । ଏକ ପ୍ରକାର ଐନ୍ଦ୍ରଜାଲିକ ଯନ୍ତ୍ର—
2. A kind of magical instrument.

**ପର୍ଣ୍ଣମୟ**—ସ. ବିଣ—୧ । ଶାଖାନିର୍ମିତ—1 Made of leaves.
Parnnamaya ୨ । (+ପ୍ରାଚୁର୍ଯ୍ୟାର୍ଥେ ମୟ)—ପତ୍ର ବହୁଳ—
2 Leafy.

**ପର୍ଣ୍ଣ ମୃଗ**—ସ. ବି—୧ । ଶାଖାମୃଗ, ବାନର—1. Monkey.
Parnna mruga ୨ । କଟାଶ, ବୃକ୍ଷମାର୍ଜାର—2. Wild cat.
୩ । ଯେଉଁ ପଶୁମାନେ ଗଛ ଉପରେ ଚଳପ୍ରଚଳ ହୁଅନ୍ତି—
3. Beasts frequenting trees

**ପର୍ଣ୍ଣ ଲତା**—ସ. ବି—ପାନ ଲତା—
Parnna latā The Piper Betel creeper.

**ପର୍ଣ୍ଣ ଶବର**—ସ. ବି—ପତର ଶଉରା (ଦେଖ)—
Parnna śabara Patara śaurā (See)
(ପର୍ଣ୍ଣ ଶବରୀ—ସ୍ତ୍ରୀ)

**ପର୍ଣ୍ଣ ଶଯ୍ୟା**—ସ. ବି. (ମ. ପ. ଲୋ, ପର୍ଣ୍ଣ=ପତ୍ର ନିର୍ମିତ+ଶଯ୍ୟା=
Parnna śajyā ବିଛଣା)—ଗଛର ପତ୍ର ଦ୍ୱାରା ପ୍ରସ୍ତୁତ ଶଯ୍ୟା—
A bed or couch made up of leaves.

**ପର୍ଣ୍ଣ ଶାଳା(ଲା)**—ସ. ବି—୧ । ପର୍ଣ୍ଣ କୁଟୀ (ଦେଖ)—
Parnna śāḷā(lā) 1. Parnna kuṭī. (See)
୨ । ଯମୁନା ଓ ଗଙ୍ଗା ନଦୀର ମଧ୍ୟବର୍ତ୍ତୀ ବୃହତ୍ ପ୍ରାଚୀନ ବ୍ରାହ୍ମଣ ଉପନିବେଶର ନାମ—2. Name of a great settlement of Brāhmaṇas between the Jamuna & the Ganges. (M. W.)

**ପର୍ଣ୍ଣସି**—ସ. ବି—୧ । କମଳ, ପଦ୍ମ (ହି. ଶ.)—
Parnnasi 1. Lotus.
୨ । ପାଣି ମଧ୍ୟରେ ନିର୍ମିତ ଘର (ହି. ଶ.)—
2 A house built in the midst of water; a summer house.
୩ । ଅଳଙ୍କରଣ—
3. Decoration; toilet. (M. W.)
୪ । ଶାକସବଜି; ପରିବା—
4. A vegetable. (M. W.)

ପର୍ଣ୍ଣାଦ—ସଂ. ବଣ ପୁଂ. (ପର୍ଣ୍ଣ + ଅଦ୍ ଧାତୁ + କର୍ତ୍ତୃ. ଅ)—ଯେ ବ୍ରତପାଇଁ ପତ୍ର ଖାଇ ବଞ୍ଚେ—Subsisting on leaves in pursuance of a religious vow.
Parnnāda
ପର୍ଣ୍ଣାହାର } ଅନ୍ୟରୂପ
ପର୍ଣ୍ଣାହାରୀ }

ପର୍ଣ୍ଣାଶନ—ସଂ. ବ—(ପର୍ଣ୍ଣ+ଅଶନ)—୧ । (ଷଷ୍ଠୀ ତତ୍) ଖାଦ୍ୟରୂପେ ବ୍ୟବହୃତ ପତ୍ର—1. Leaves used as food.
Parnnāśana
(ପର୍ଣ୍ଣାଶନା—ସ୍ତ୍ରୀ)
୨ । (ବହୁବ୍ରୀହି) ମେଘ—2. Cloud. (M. W.)
ବଣ. ପୁଂ—(ବହୁବ୍ରୀହି) ଯେ ପତ୍ର ଖାଇ ବଞ୍ଚେ—Living on leaves, feeding on leaves.

ପର୍ଣ୍ଣାସ—ସଂ. ଚ—୧ । ଏକପ୍ରକାର ତୁଳସୀ—
Parnnāsa        1 A species of Basilicum;.
୨ । ନୋସିଗାସ—2. Cedrela Toonā. (M. W.)

ପର୍ଣ୍ଣୀ—ସଂ. ବ. (ପର୍ଣ୍ଣ+ଇନ୍; ୧ମା. ୧ବ.)—୧ । ବୃକ୍ଷ; ଗଛ—
Parnni        1. Tree.
୨ । ଶାଲପର୍ଣ୍ଣୀ (ଦେଖ)—2 Sālaparnnī. (See)
୩ । ତେଜପତ୍ର (ହ୍ର. ଶ)—3. The cassia leaf
୪ । ପୃଷ୍ଠ ପର୍ଣ୍ଣୀ (ଦେଖ)— 4. Prushtha parnni. (See)

ପର୍ଦ୍ଦ (ଧାତୁ)—ସ.—ପାଦିବା; ବାତ କର୍ମ କରିବା—
Parda (root) To pass wind through the anus.
[ପର୍ଦ୍ଦ—ଅନ୍ୟରୂପ]

ପର୍ଦ୍ଦ—ସ. ବ—(ପର୍ଦ୍ଦ ଧାତୁ + କର୍ମ. ଅ)—୧ । ପାଦ; ଅଧୋବାୟୁ—
Parda        1. Wind passed throught the anus.
(ପର୍ଦ୍ଦ—ଅନ୍ୟରୂପ) ୨ । ଘନ କେଶ—
2. Thick hair. (M. W.)
୩ । ମୁଣ୍ଡର କେଶ (ହ୍ର. ଶ)—
3. The hair of the head.

ପର୍ଦ୍ଦନ—ସ. ବ. (ପର୍ଦ୍ଦ ଧାତୁ + ଭାବ. ଅନ)—ବାତ କର୍ମ; ପାଦିବା; ଅଧୋବାୟୁ ତ୍ୟାଗ—Emitting offensive wind; passing wind through the anus.
Pardana
(ପର୍ଦ୍ଦନ—ଅନ୍ୟରୂପ)

ପର୍ଦ୍ଦା (ଇତ୍ୟାଦି)—ବୈଦେ. ବ. (ପା)—ପରଦା ଇତ୍ୟାଦି (ଦେଖ)
Pardā (etc)        Paradā etc. (See)

ପର୍ପ୍ (ଧାତୁ)—ସ.—ଗମନ କରିବା; ଗତି କରିବା—
Parp (root)        To go; to move. (Apte)

ପର୍ପ—ସ. ବ. (ପର୍ପ୍ ଧାତୁ + ସଂଜ୍ଞା. ଅ)—୧ । କଅଁଳ ଘାସ—
Parpa        1. Young grass. (Apte)
୨ । ପଙ୍ଗୁ ପୀଠ; ଯେଉଁ ଯାନରେ ପଙ୍ଗୁମାନେ ସ୍ଥାନାନ୍ତରକୁ ଯିବା ଆସିବା କରନ୍ତି. ଖଞ୍ଜବାହ୍ୟ ଶକଟ (ପ୍ରକୃତିବାଦ)—
2. A seat for cripples; a wheeled carriage in which cripples are moved about. (Apte)
୩ । ଗୃହ (ପ୍ରକୃତିବାଦ)—3. House.

ପର୍ପଟ—ସଂ. ବ. (ପର୍ପ ଧାତୁ + ସଂଜ୍ଞାର୍ଥେ. ଅଟ)—୧ । କ୍ଷେତ ପାପୁଡ଼ା; ଖରପୋଡ଼ିଆ (ଦେଖ)—1. Kharapordia. (See)
Parpata
୨ । ପାପୁଡ଼; ପାମ୍ପଡ଼—2. A thick flat cake prepared of pasted pulse.

୩ । ସୁବାସିତ ମୃତ୍ତିକାବିଶେଷ, ସୌରାଷ୍ଟ୍ରମୃତ୍ତିକା—
ପର୍ପଟିକ } ଅନ୍ୟରୂପ    3 A kind of fragrant earth (Apte)
ପର୍ପଟୀ }    ୪ । ସୁଗନ୍ଧବିଶେଷ—
4. A kind of perfume. (Apte)

ପର୍ପଟଦ୍ରୁମ—ସଂ ବ.(ଯେଉଁ ଗଛର ଛାଲ ପର୍ପଟପରି)—କୁମ୍ଭି ୨ । (ଦେଖ)—
Parpata druma        Kumbhi. 2 (See)

ପର୍ପଟୀ—ସଂ ବ—ଆୟୁର୍ବେଦୋକ୍ତ ବିଧିରେ ପ୍ରସ୍ତୁତ ଗ୍ରହଣୀ ରୋଗର ଔଷଧବିଶେଷ—A medicine for dysentery.
Parpati
(ପର୍ପଟୀରସ—ଅନ୍ୟରୂପ) [ଦ୍ର—ପାରା ଓ ଗନ୍ଧକକୁ ଭୃଙ୍ଗରାଜ ରସରେ ଜାର ତହିଁ ସଙ୍ଗେ ତମ୍ବା ଓ ଲୁହା ଭସ୍ମ ମିଶାଇ ଏହା ତିଆର କରାଯାଏ ।]

ପର୍ପରୀ—ସଂ. ବ—ବାଳର ବେଣୀ—
Parparī        A braid of hair. (M. W.)

ପର୍ପରୀକ—ସଂ. ବ. (ପୃ ଧାତୁ=ପାଳନ କରିବା + ଈକ. ସଂଜ୍ଞାର୍ଥେ)—
Parparīka  ୧ । ସୂର୍ଯ୍ୟ—1. The sun.
୨ । ଅଗ୍ନି—2. Fire.
୩ । ଜଳାଶୟ—3. Reservoir; tank.

ପର୍ପରୀଣ—ସ. ବ—ପତ୍ରର ଶିରା—
Parparina    The vein of a leaf (M. W.).

ପର୍ପିକ—ସ ବ. ପୁଂ—ଦୋଳାରେ ନିଆ ଅଣା କରାଯାଉ ଥିବା ଖଞ୍ଜ ବ୍ୟକ୍ତି—A cripple who moves about in a chair.
Parpika
(ପର୍ପିକା—ସ୍ତ୍ରୀ)

ପର୍ବ୍ (ଧାତୁ)—ସ—ଗତି କରିବା—To go; to move.
Parb (root) (ପର୍ବ୍ବ—ଅନ୍ୟରୂପ)

ପର୍ବ(ର୍ବ)—ସ. ବ. (ପୃ. ଧାତୁ=ପୂରଣ କରିବା + ବନ୍; ପର୍ବନ୍ ଶବ୍ଦ)—
Parba(rbba)    ୧ । ସନ୍ଧି, ଗ୍ରନ୍ଥି, ଗଣ୍ଠି—
1. Knot; joint; knuckle.
୨ । ଆଖୁ, ବେତଆଦିର ଦୁଇଟି ଗଣ୍ଠି ମଧ୍ୟସ୍ଥ ଅଂଶ; ଆଙ୍ଗୁଠିର ଦୁଇ ଗଣ୍ଠି ମଧ୍ୟସ୍ଥ ଅଂଶ; ପବ, ପଗ—2. The part of a cane between two knots; internode.
୩ । ଅମାବାସ୍ୟା ଓ ପ୍ରତିପଦାର ସନ୍ଧି—3. The juncture between the newmoon and its next day.
୪ । ଯାତ୍ରା; ପରବ; ଉତ୍ସବ—4. Festival; an occasion of rejoicing.
ବୋଲିବା କ ମାଗୀ ତୁମ୍ଭେ, ସତ୍ୟ ହେଲେ ଏ ଅରଣ୍ୟେ
ପର୍ବକାଳେ ବେଳକୁଳ ଗ୍ରାସେ—ଭକ୍ତ, ବୈଦେହୀଶ ବିଳାସ ।
୫ । ଅଙ୍ଗଭଙ୍ଗୀ—5. Gesture.
୬ । ମହାଭାରତର ୧୮ ଗୋଟି ବିଭାଗ—
6. Parts (numbering 18) of the Mahābhārat.
୭ । ପୁସ୍ତକର ଅଧ୍ୟାୟ—
7. Section or chapter of a book.
୮ । ଅଷ୍ଟମୀ, ଚତୁର୍ଦ୍ଦଶୀ, ପୂର୍ଣ୍ଣିମା, ଅମାବାସ୍ୟା ଓ ସଂକ୍ରାନ୍ତି, ଏହି ପାଞ୍ଚଗୋଟି ବିଶେଷ ତିଥି—8. The 8th, 14th, fullmoon and newmoon of the lunar month and the first day of the solar month.

୯ । ପ୍ରସ୍ତାବ—9. Proposal

୧୦ । କ୍ଷଣ—10. Moment; instant (M. W.).

୧୧ । ବିଷୁବ; ସମଦିବା ଷ୍ଟର୍ଭ—
11. Equinox; solstice (M. W.).

୧୨ । ଧର୍ମ, ପୁଣ୍ୟକାର୍ଯ୍ୟ ବା ଉତ୍ସବାଦିର ସମୟ—
12. Holiday.

୧୩ । ଦେହର ଅଙ୍ଗ, ପ୍ରତ୍ୟଙ୍ଗ ଓ ହାଡ଼ର ଗଣ୍ଠି—13. A limb; member, joint of the body; knuckle (M. W.)

୧୪ । ଅଂଶ, ବିଭାଗ—14. Portion, part; division (M. W.)

୧୫ । ସିଡ଼ିର ପାହାଚ, ପାବଚ୍ଛ—
15. The step of a staircase (M. W.).

୧୬ । ନିର୍ଦ୍ଧାରିତ କାଳାଂଶ—16 A period; fixed time (M. W.).

୧୭ । ଅଷ୍ଟମୀ, ଚତୁର୍ଦ୍ଦଶୀ, ଅମାବାସ୍ୟା ଓ ପୂର୍ଣ୍ଣିମାରେ କୃତ୍ୟ ଯଜ୍ଞବିଶେଷ—17. A sacrifice performed on the occasion of a change of the moon (M. W.)

୧୮ । ସୂର୍ଯ୍ୟ ବା ଚନ୍ଦ୍ରର ଗ୍ରହଣ—
18. Solar or lunar eclipse (M. W.).

୧୯ । ସୁଯୋଗ ବା ସୁବିଧା—
19. An opportunity or occasion (M. W.)

୨୦ । ଶୁକ୍ଲପକ୍ଷ (ହି. ଶ)—20 Lunar fortnight.

ଦେ. ବି—୧ । ବ୍ୟାପାର, ଘଟଣା—
1. Happening; event; affair

୨ । ଗୋଳମାଳ—2. Ado, noise.

**ପର୍ବକ**—ସଂ. ବି. (ପର୍ବ+କ)—ଆଣ୍ଠୁ—
Parbaka Knee-joint.

**ପର୍ବକାର(ରୀ)**—ସଂ. ବି ପର୍ବ (ସଂକ୍ରାନ୍ତି, ଅମାବାସ୍ୟା, ଅଷ୍ଟମୀ, ଚତୁର୍ଦ୍ଦଶୀ Parbakāra(ri) ଓ ପୂର୍ଣ୍ଣିମାଆଦି)ରେ କରଣୀୟ ଅନୁଷ୍ଠାନ ଓ ଯଜ୍ଞମାନଙ୍କୁ ଯେଉଁ ପୁରୋହିତ ଅର୍ଥଲୋଭରେ ତଦତିରିକ୍ତ ଅନ୍ୟ ଦିବସମାନଙ୍କରେ କରେ—A Brāhmaṇa who, from motives of gain, performs on common days ceremonies which ought to be performed on Parba days.

**ପର୍ବଗାମୀ**—ସଂ. ବିଣ. ପୁଂ. (ପର୍ବ+ଗମ୍ ଧାତୁ+ଇନ୍, ୧ମା. ୧ବ)—
Parbagāmi ଯେଉଁ ବ୍ୟକ୍ତି ଅଷ୍ଟମୀ, ଚତୁର୍ଦ୍ଦଶୀ, ପୂର୍ଣ୍ଣିମା ଅମାବାସ୍ୟା ଓ ସଂକ୍ରାନ୍ତିଆଦି ନିଷିଦ୍ଧ ତିଥିରେ ସ୍ତ୍ରୀ ସହବାସ କରେ—Cohabiting with one's wife on the prohibited Parba days.

**ପର୍ବଣ**—ସଂ. ବି. (ପୃ ଧାତୁ+ଅନ)—୧ । ପୂର୍ଣ୍ଣ କରିବା କର୍ମ (ହି. ଶ)—
Parbaṇa 1. The act of completing or filling up.

୨ । ରାକ୍ଷସବିଶେଷ—2 Name of a demon.

୩ । ଗ୍ରନ୍ଥି; ଗଣ୍ଠି—3. A knot (M. W.).

**ପର୍ବଣୀ**—ସଂ. ବି (ପର୍ବନ୍+ଅ+ଈ)—୧ । ପୂର୍ଣ୍ଣିମା—
Parbaṇi 1. Full moon day.

(ପର୍ବଣିକା—ଅନ୍ୟରୂପ) ୨ । ଚକ୍ଷୁଃସନ୍ଧିର ରୋଗବିଶେଷ—
2 A disease of the so called junctures of the eye (Apte)

୩ । ପୂରଣ କରିବା କର୍ମ—3. Filling up

୪ । ଉତ୍ସବ—4 Festival (M. W.).

**ପର୍ବତ**—ସଂ ବି —(ପର୍ବ ଧାତୁ+କର୍ତ୍ତୃ. ଅତ, ପୁରାଣ ମତରେ ପୂର୍ବେ Parbata ପର୍ବତମାନଙ୍କର ପକ୍ଷ ଥିଲା ଓ ସେମାନେ ଉଡ଼ି ପାରୁଥିଲେ, ଇନ୍ଦ୍ର ବଜ୍ରଦ୍ୱାରା ସେମାନଙ୍କ ପକ୍ଷ ଛେଦନ କଲେ।)

୧ । ଗିରି, ପାହାଡ଼—1. Mountain; hill, rock

୨ । ଗନ୍ଧର୍ବବିଶେଷ—
2 Name of a heavenly chorister

୩ । ନାରଦଙ୍କ ସହଚର, ଦେବର୍ଷିବିଶେଷ—
3. Name of a sage.

୪ । ପାବଦା ମାଛ, ବଢ଼ୁଆ ମାଛ—4. A kind of fish; Silurus Pabda; the butter fish.

୫ । ଶାକବିଶେଷ—5. A kind of potherb or vegetable.

୬ । ହିମାଳୟ—6. The Himalayan mountains.

୭ । ସାତ ସଂଖ୍ୟା—7. The number seven (M. W.).

୮ । ଗଛ—8. Tree. (M. W.)

୯ । ସୋମ ରସକୁ ଛେଚିବା ପାଇଁ ବ୍ୟବହୃତ ପ୍ରସ୍ତର ଖଣ୍ଡ—
9 A fragment of rock or stone for pressing out the Soma juice. (M. W.)

୧୦ । ପର୍ବତାକାର ମେଘ—
10. A mountain-like cloud (M. W.)

୧୧ । ଅଷ୍ଟବସୁ ମଧ୍ୟରୁ ଏକ—
11 Name of one of the 8 Basu Deities.

୧୨ । ରାମାୟଣୋକ୍ତ ମର୍କଟ ବିଶେଷ—
12. Name of a monkey. (M. W.)

୧୩ । ଶଙ୍କରାଚାର୍ଯ୍ୟଙ୍କ ଶିଷ୍ୟମାନଙ୍କ ଗଠିତ ଦଶନାମୀ ସନ୍ନ୍ୟାସୀମାନଙ୍କ ମଧ୍ୟରୁ ଏକ ଶ୍ରେଣୀ (ଦଶନାମୀ ସନ୍ନ୍ୟାସୀ ଦେଖ)—
13. Name of one of the 10 religious orders founded by Sankarāchārjya's pupils whose members add the word Parbata to their names.

୧୪ । ସମ୍ଭୂତି ଗର୍ଭରୁ ଉତ୍ପନ୍ନ ମରୀଚିଙ୍କର ଏକ ପୁତ୍ର—
14 Name of a son of sage Marīchi.

ଦେ. ବି. (ଲକ୍ଷଣାର୍ଥ) କୌଣସି ପଦାର୍ଥର ରାଶି ବା ବହୁ ପରିମାଣ—
(figurative) A large quantity or heap of any thing.

ଶ୍ରୀପର୍ବତକୁ ଗଲେ ସୁକୃତ ପର୍ବତ
କୃଷ୍ଣ ତାର ଯେଣ ହୋଏ ଶୁଦ୍ଧ ଚିତ୍ତ । କୃଷ୍ଣସିଂହ. ମହାଭାରତ ବନ ।

**ପର୍ବତ କଙ୍କଡ଼ା** — ଦେ. ବି—ଏକ ପ୍ରକାର ଗାଢ କୃଷ୍ଣ ବର୍ଣ୍ଣ ବିଶିଷ୍ଟ ସ୍ଥଳଚର
Parbata kankarda କଙ୍କଡ଼ା (ଏମାନେ ପଥର ସନ୍ଧିରେ ରହନ୍ତି)-
A kind of crab moving on land

**ପର୍ବତ କାଉଁରିଆ**—ଦେ. ବି—ପରବତ କାଉଁରିଆ ( ଦେଖ )
Parbata kāuṅria Parabata kāuṅriā ( See )

**ପର୍ବତ କାକ**—ସଂ. ବି—ଦ୍ରୋଣକାକ, ଡାମରକୁଆ—
Parbata kāka Raven.

**ପର୍ବତ କୀଲା**—ସଂ. ବି. ସ୍ତ୍ରୀ. (ବହୁବ୍ରୀହି, ପର୍ବତ ଅଛି କୀଲା ଯାହାର,
Parbata kīlā ପର୍ବତ + କୀଲ + ଆ, ପୁରାଣ ମତରେ ୭ଟି ପର୍ବତ
[ପର୍ବତ ଧାତ୍ରୀ—ଅନ୍ୟରୂପ] କୀଳକ ସ୍ୱରୂପ ପୃଥିବୀକୁ ସ୍ୱସ୍ଥାନରେ ରଖି ଥିବାରୁ)—ପୃଥିବୀ—The earth

**ପର୍ବତଜ**—ସଂ. ବିଣ. (ପର୍ବତ + ଜନ୍ ଧାତୁ = ଜାତ ହେବା + କର୍ତ୍ତ୍ରି ଅ)
Parbataja ପର୍ବତରୁ ଜାତ—Born of a mountain
(ପର୍ବତଜା—ସ୍ତ୍ରୀ) ସଂ ବି—ମୈନାକ ପର୍ବତ (ହିମାଳୟ ପର୍ବତର
[ପର୍ବତାତ୍ମଜ—ଅନ୍ୟରୂପ] ପୁତ୍ର)—A name of the Maināka mountain.

**ପର୍ବତଜା**—ସଂ. ବିଣ. ସ୍ତ୍ରୀ. (ପର୍ବତଜର ସ୍ତ୍ରୀଲିଙ୍ଗ)—
Parbatajā Feminine of Parbataja.
(ପର୍ବତାତ୍ମଜା—ଅନ୍ୟରୂପ) ବି. ସ୍ତ୍ରୀ—୧ । ପାର୍ବତୀ—
1 Goddess Pārbatī.
୨ । ପାର୍ବତ୍ୟ ନଦୀ—2. Mountain-river.

**ପର୍ବତ ଦାନ** - ସଂ. ବି— ପର୍ବତ ଆକାରର ଶସ୍ୟ, ଲବଣ, ସ୍ୱର୍ଣ୍ଣ, ରୌପ୍ୟାଦି
Parbata dāna ବସ୍ତୁରାଶିର ଦାନ—A gift of gold, silver, salt, grains heaped up the shape of a mountain. (M W.)

**ପର୍ବତ ଦୁର୍ଗ**—ସଂ. ବି—ଅଗମ୍ୟ ପର୍ବତ—
Parbata durga An inaccessible mountain (M W)

**ପର୍ବତ ଧାତୁ**—ସଂ. ବି.—ଖଣିରୁ କଢ଼ାଯିବା ମିଶ୍ରିତ ଧାତୁ—
Parbata dhātu Ore. (M. W)

**ପର୍ବତବାସିନୀ**—ସଂ. ବିଣ. ସ୍ତ୍ରୀ. (ପର୍ବତବାସିନ୍ + ସ୍ତ୍ରୀ. ଈ)—ପର୍ବତ
Parbata bāsini ବାସୀର ସ୍ତ୍ରୀଲିଙ୍ଗ—Feminine of Parbatabāsi
ସଂ. ବି. ସ୍ତ୍ରୀ—୧ । କ୍ଷୁଦ୍ର ଜଟାମାଂସୀ—
. Nard; spikenard.
୨ । କାଳୀ; ଦୁର୍ଗା—2. Durgā,
୩ । ଗାୟତ୍ରୀ (ବ୍ର. ଶ .—3. A name of Gāyatrī.

**ପର୍ବତବାସୀ**—ସଂ. ବିଣ. ପୁଂ—ପାହାଡ଼ିଆ—
Parbatabāsi Hilly; living in mountains.
[ପର୍ବତବାସିନୀ—ସ୍ତ୍ରୀ] ସଂ. ବି—ପାହାଡ଼ରେ ବାସ କରୁଥିବା ବ୍ୟକ୍ତି—
Mountaineer; hillman

**ପର୍ବତ ମାଟି**—ଦେ. ବି—୧ । ସୌରାଷ୍ଟ୍ର ମୃତ୍ତିକା—
Parbata māti 1. A kind of yellow earth.
୨ । ପଙ୍କ ଉପରର ସର (ବ୍ୱରେଳୁଷ ଦ୍ରବ୍ୟଗୁଣ)—
2 A thick coating formed on mire.

**ପର୍ବତ ମାଳା**—ସଂ. ବି. (୬ଷ୍ଠୀ ତତ୍; ପର୍ବତ + ମାଳା)—ବହୁ ଦୂରକୁ ଲମ୍ବି
Parbata mālā ଥିବା ପର୍ବତ—Mountain range.
[ପର୍ବତଜାଲ, ପର୍ବତଶ୍ରେଣୀ—ଅନ୍ୟରୂପ]

**ପର୍ବତ ମୋଚ**—ସଂ ବି—ପାହାଡ଼ିଆ କଦଳୀ—
Parbata mochā A species of plantain growing on hills.

**ପର୍ବତରାଜ** [ନ୍]—ସଂ. [୬ଷ୍ଠୀ ତତ୍, ପର୍ବତ + ରାଜ (ନ୍)—୧ । ଉଚ୍ଚତମ
Parbatarāja [t] ପର୍ବତ—1. Highest mountain.
(ପର୍ବତ ମୁନ୍ଦ୍ର—ଅନ୍ୟରୂପ) ୨ । ହିମାଳୟ ପର୍ବତ—
2 The Himalyas.

**ପର୍ବତାଇ**—ଦେ. ବି. ସ୍ତ୍ରୀ—ଦେବୀ ବିଶେଷ—
Parbatāi Name of a popular Goddess.
(ପର୍ବତେଇ—ଅନ୍ୟରୂପ)

**ପର୍ବତାରି**—ସଂ. ବି. (୬ଷ୍ଠୀ ତତ୍; ପର୍ବତ + ଅରି, ଏ ବଜ୍ରଦ୍ୱାରା
Parbatāri ପର୍ବତମାନଙ୍କ ପକ୍ଷ ଛେଦନ କରିଥିବାରୁ)—ଇନ୍ଦ୍ର—
Indra.

**ପର୍ବତାଶୟ**—ସଂ ବି (ବହୁବ୍ରୀହି; ପର୍ବତ + ଆଶୟ)—ମେଘ—
Parbatāśaya Cloud.

**ପର୍ବତାଶ୍ରୟ**—ସଂ. ବି ( ବହୁବ୍ରୀହି, ପର୍ବତ + ଆଶ୍ରୟ )—୧ । ପାର୍ବତ୍ୟ
Parbatāśraya ବ୍ୟକ୍ତି, ପର୍ବତବାସୀ ବ୍ୟକ୍ତି—1. Mountaineer.
(ପର୍ବତାଶ୍ରୟୀ ଅନ୍ୟରୂପ)
(ପର୍ବତାଶ୍ରୟା—ସ୍ତ୍ରୀ) ୨ । ଶରଭ ନାମକ ଅଷ୍ଟପଦୀ ପୌରାଣିକ ଜୀବ—
2 Name of a fabulous eight-legged animal
ସଂ. ବିଣ. ପୁଂ—ପର୍ବତବାସୀ—Living in the mountain.

**ପର୍ବତାସ୍ତ୍ର**—ସଂ. ବି—ପ୍ରାଚୀନକାଳର ଯୁଦ୍ଧାସ୍ତ୍ରବିଶେଷ—
Parbatāstra A weapon of war mentioned in the mythologies.
[ଦ୍ର- ପୁରାଣାଦିରେ ବର୍ଣ୍ଣିତ ହୋଇଅଛି ଯେ ଶତ୍ରୁ ଉପରକୁ ଏହି ଶର ପ୍ରୟୋଗ କଲେ ସେଥିରୁ ବଡ଼ ବଡ଼ ପଥରଖଣ୍ଡମାନ ବର୍ଷି ଶତ୍ରୁମାନଙ୍କୁ ପେଷି ମାରି ପକାଉଥିଲା ଓ ନିଜ ସେନାର ଚତୁପାଖେ ପାହାଡ଼ପରି ପଥରଗଦା ହୋଇ ଯାଉଥିବାରୁ ଶତ୍ରୁପକ୍ଷଙ୍କ ଆକ୍ରମଣରୁ ସେନା ରକ୍ଷା ପାଉଥିଲା । ]

**ପର୍ବତିଆ**—ଦେ. ବିଣ (ସଂ. ପାର୍ବତୀୟ)—୧ । ପାର୍ବତୀୟ—
Parbatiā 1. Hilly; mountainous,
ପାହାଡ଼ିଆ ୨ । ପର୍ବତ ପରି ଉଚ୍ଚ—2. High as mountain.
पर्वती

**ପର୍ବତିଆ କୋଶ** ପ୍ରାଦେ (ଗଡ଼ଜାତ) ବି - ପ୍ରାୟ ୨½ ବା ୩ ମାଇଲ
Parbatiā kośa ଦୂରତା ବିଶିଷ୍ଟ କ୍ରୋଶ—A kros of 2½ or 3 milse.
[ ଦ୍ର—ଦୂରବର୍ତ୍ତୀ ପର୍ବତ ଆଖିକୁ ନିକଟବର୍ତ୍ତୀ ଦେଖା ଯାଉଥିବାରୁ ସେହି ଅନୁଭବରୁ ଏପରି କୋଶ ଲୁହାଯାଏ । ]

**ପର୍ବତିଆ ଖଡ଼ା** - ସଂ. ବି—ଏକପ୍ରକାର ବଡ଼ ପତ୍ରବିଶିଷ୍ଟ ଓ ସାଧାରଣ
Parbatiā khardā ଖଡ଼ା ଗଛଠାରୁ ଉଚ୍ଚ ଖଡ଼ାଗଛ—
1 A kind of large variety of Khardā pot herb.

**ପର୍ବତିଆ ବାର୍ହା**— ଦେ. ବି—ବନ୍ୟ ବରାହ ବିଶେଷ—
Parbatiā bārhā — A kind of wild boar.
[ ଦ୍ର—ବାର୍ହା ତଳେ ନୋଟ ଦେଖ । ]

**ପର୍ବତିଆ ବୋଡ଼ା**—ଦେ. ବି – ବଡ଼ ପାହାଡ଼ିଆ ବୋଡ଼ା ସାପ—
Parbatiā borḍā — A species of mountain boa (snake)

**ପର୍ବତୀୟ**—ସଂ. ବିଣ (ପର୍ବତ + ସମ୍ବନ୍ଧାର୍ଥେ ଈୟ) ୧ । ପର୍ବତ-
Parbatīya ସମ୍ବନ୍ଧୀୟ, ପାର୍ବତ୍ୟ—1. Mountainous.
୨ । ପର୍ବତବାସୀ—2. Living in the mountains.

**ପର୍ବ ପର୍ବାଣି** - ଦେ ବି (ସହଚର ଶବ୍ଦ)—ଉତ୍ସବ ଦିବସମାନ, ଯାତ୍ରାଭିଥ,
Parba parbāṇi ଯାତ୍ରାପର୍ବ—The days of various
परबत्योहार festivals.
(ପର୍ବପୁର୍ବାଣୀ- -ଅନ୍ୟରୂପ) ପୂନର୍ଥ ଓ ପର୍ବପର୍ବାଣିରେ ଯେ ସବୁ କଥାରୁ,
ବାଢିଗଣ, କଦଳୀ ଭେଟ୍ଟି ଆସେ ସେ ସବୁ
ସଇଜେ ସଲଙ୍ଗେ ହାଟକୁ ଯାଏ ।
ଫକୀରମୋହନ. ଛମାଣ ଆଠଗୁଣ୍ଠ ।

**ପର୍ବ ସନ୍ଧି**—ସଂ. ବିଣ ( ୬ଷ୍ଠୀ ତତ୍, ପର୍ବ + ସନ୍ଧି )—୧ । ପୂର୍ଣ୍ଣିମା ଓ
Parba sandhi ପ୍ରତିପଦ୍, କିମ୍ବା ଅମାବାସ୍ୟା ଓ ପ୍ରତିପଦର ସନ୍ଧି-
ସ୍ଥଳ—1. The time between the last day of one lunar fortnight and the 1st day of the next
୨ । ସୂର୍ଯ୍ୟ ବା ଚନ୍ଦ୍ରଗ୍ରହଣର ସମୟ (ହି. ଶବ୍ଦସାଗର)—
2. The time of a solar or lunar eclipse.
୩ । ଆଣ୍ଠୁର ଗଣ୍ଠି (ହି. ଶବ୍ଦସାଗର)—
3. Knee-joint.

**ପର୍ବସ୍ତ(ସ୍ତି)**—ବୈଦେ. ବି (ଫା. ପର୍ବରସ୍ତ)—ପାଳନ, ପୋଷଣ—
Parbast (sti) Maintainance
(ପର୍ବରସ୍ତ—ଅନ୍ୟରୂପ) ବିଣ — ପ୍ରତିପୋଷିତ—Maintained
परवरिश, पर्वरिश

**ପର୍ବସ୍ଫୋଟ**—ସଂ. ବି—ଆଙ୍ଗୁଠିର ଗଣ୍ଠିମାନଙ୍କୁ ଫୁଟାଇବା—
Parbasphoṭa The crackling of the finger-joints.

**ପର୍ବାପର୍ବ**—ଦେ. ବି (ସହଚର ଶବ୍ଦ)—ପର୍ବ ପର୍ବାଣି ( ଦେଖ )
Parbāparba Parba parbāṇi ( See )
ମୋହର ଯାହା ପର୍ବାପର୍ବେ
ବଧ ବିଧାନ ଯେମ ପୂର୍ବେ । ଜଗନ୍ନାଥ. ଭାଗବତ ।

**ପର୍ବାହ**—ସ. ବି. (ପର୍ବ + ଅହନ୍)—ପର୍ବ ଦିବସ; ଉତ୍ସବ ଦିନ—
Parbāha Day of festival; galaday, holiday

**ପର୍ବିତ**—ସ. ବି—ପାବତା ମାଛ, ପର୍ବତ ୪ ( ଦେଖ )
Parbita Parbata 4 ( See )

**ପର୍ମ**—ଗ୍ରା ବିଣ. (ସ ପରମ)—ପରମ, ସର୍ବ ପ୍ରଧାନ—
Parma Supreme.
ସେ ରୂପ ପର୍ମ ବ୍ରହ୍ମସାର । ଯଗୋବନ୍ତ. ପ୍ରେମଭକ୍ତି- ବ୍ରହ୍ମଗୀତା ।

**ପର୍ମେଶ୍ୱ(ଶ)ର**—ଗ୍ରା. ବି. (ପ୍ରାଚୀନ ପଦ୍ୟ)—ପରମେଶ୍ୱର—
Parmeśwa(śa)ra God.
(ପର୍ମିଶର, ପର୍ମିଶ୍ୱର—ଅନ୍ୟରୂପ)

ସେ ଏ ବର ଦେଉଛ ଶୋଳ ଲକ୍ଷ ପର୍ମେଶ୍ୱର । ଗ୍ରାଚୀ ବ୍ରହ୍ମଗୀତା ।

**ପର୍ଯ୍ୟଗ୍ନି**—ସ. ବି. ( ପରି+ଅଗ୍ନି )—ଯଜ୍ଞ ବା ସଜ୍ଞୀୟ ପଶୁଙ୍କୁ ଯେଉଁ ପାଖ
Parjyagni ବା ଜଳନ୍ତା ନିଆଁ ଧରି ପରିକ୍ରମା କରାଯାଏ (ହି.ଶ.)—
Circumambient fire; lighted fire carried round a sacrificial fire or victim. (M. W )

**ପର୍ଯ୍ୟଗ୍ନିକରଣ**—ସ. ବି. ( ପର୍ଯ୍ୟଗ୍ନି + କରଣ )—
Parjyagnikaraṇa ହୋମ ବା ସଜ୍ଞୀୟ ପଶୁର ଚାରି ପାଖେ ଜଳନ୍ତା ନିଆଁ ଧାରଣ ପୂର୍ବକ ପରିକ୍ରମଣ—
The ritual of carrying a lighted fire round a Homa or a sacrificial victim.

**ପର୍ଯ୍ୟଙ୍କ**—ସ. ବି ( ପରି + ଅଙ୍କ୍ ଧାତୁ=ଗମନ କରିବା+ଅଧିକରଣେ
Parjyanka ଅ )—୧ । ପଲଙ୍କ, ଖଟ—1. Bedstead; couch.
୨ । ପାଲିଙ୍କି—2. Palanquin
୩ । ଉପବେଶନ ବିଶେଷ; ପିଚ୍ଛ ମାଡ଼ି ଗୋଡ଼ ଟେକି ବସିବା—
3. A kind of posture in sitting; squatting with the heels and the hams
୪ । ନର୍ମଦାର ଉତ୍ତରସ୍ଥ ପର୍ବତ ବିଶେଷ (ହି. ଶ.)—
4. Name of a mountain north of the Narmadā river.
( ଏହା ବିନ୍ଧ୍ୟର ପୁତ୍ର ବୋଲି କଳ୍ପିତ । )
୫ । ପିଚ୍ଛ ଓ ତଳପା ଭୂମିରେ ଲଗାଇ ବସିବା ବେଳେ ଯେଉଁ ଲୁଗାକୁ ପିଠି, ଅଣ୍ଟା ଓ ନଳ ଗୋଡ଼ ଚାରି ପାଖେ ଗୁଡ଼ାଇ ଦିଆଯାଏ—5. A cloth wound round the loins and legs while sitting on the heels and the hams.

**ପର୍ଯ୍ୟଙ୍କ ବନ୍ଧ**—ସ. ବି—୧ । ବସ୍ତ୍ର ଦ୍ୱାରା ପୃଷ୍ଠ, ଅଣ୍ଟା ଓ ଜାନୁଦ୍ୱୟକୁ
Parjyanka bandha ବାନ୍ଧି ବସିବା—1. The act of sitting and binding a cloth
(ପର୍ଯ୍ୟଙ୍କ ବନ୍ଧନ—ଅନ୍ୟରୂପ) round the back, the loins and the knees. (M.W )
୨ । ସ୍ୱାସ୍ତିକ—2. Sitting on the hams.

**ପର୍ଯ୍ୟଙ୍କିକା**—ସ. ବି. (ପର୍ଯ୍ୟଙ୍କ + ସ୍ୱାର୍ଥେ. କ + କ୍ଷୁଦ୍ରାର୍ଥେ. ଆ)—
Parjyankikā ଛୋଟ ପଲଙ୍କ—A small bedstead.
ଲଭଇ ବିଶ୍ରାମ-ସ୍ୱର୍ଗ ଅର୍ପିତ ପର୍ଣ୍ଣର ଚୋଭ ପର୍ଯ୍ୟଙ୍କିକା ।
ରାଧାନାଥ. ଚିଲିକା ।

**ପର୍ଯ୍ୟଟକ**—ସ. ବିଣ. ପୁଂ (ପରି+ଅଟ୍ ଧାତୁ=ଭ୍ରମଣ କରିବା + କର୍ତ୍ତୃ. ଅକ)—
Parjyaṭaka ପରିଭ୍ରମଣକାରୀ—Wandering about; strolling.
(ପର୍ଯ୍ୟାଟକ—ଅନ୍ୟରୂପ)
ବି—୧ । ପରିବ୍ରାଜକ; ପଥିକ—
1. Traveller, stroller; wanderer; tourist.
୨ । ବାଉଳିଆ ଲୋକ, ଛନ୍ନଛଡ଼ା—
2. A tramp; a vagabond. (M. W )

**ପର୍ଯ୍ୟଟନ**—ସ. ବି. (ପରି+ଅଟ୍ ଧାତୁ + ଭାବ. ଅନ)—
Parjyaṭana ୧ । ପରିଭ୍ରମଣ—1. Travelling; roaming about.

୨ । ଦେଶ ଭ୍ରମଣ—2. Touring; perigrination.

**ପର୍ଯ୍ୟଟିବା**—ଦେ. (ପଦ୍ୟ) କ୍ରି—ପର୍ଯ୍ୟଟନ କରିବା, ଭ୍ରମଣ କରିବା—
Parjyatiba ପର୍ଯ୍ୟଟି To wander; to travel.
**पर्यटना** ସେ ଯେବେ ମଣ୍ଡ ପର୍ଯ୍ୟଟନ୍ତି
ଭୂମିଣ ଲୋକ ନସ୍ତାରନ୍ତି । ଜଗନ୍ନାଥ- ଭାଗବତ ।

**ପର୍ଯ୍ୟଧ୍ୟୟନ**—ସ. ବିଣ. ପୁଂ—ପଢ଼ିବାକୁ ଅନିଚ୍ଛୁକ—
Parjyadhyayana Averse from study.

**ପର୍ଯ୍ୟନ୍ତ**—ସ. ବି. ( ପରି+ଅନ୍ତ )—
Parjyanta ୧ । ସୀମା—1. Boundary; border.
୨ । ପ୍ରାନ୍ତ, ଅନ୍ତିମ ସୀମା—
2 Limit; extremity.
୩ । ଅବସାନ; ଶେଷ—3. End.
୪ । ପାର୍ଶ୍ୱ—4. Side; flank.
୫ । ସମୀପ, ନିକଟ—5. Nearness; vicinity.
ବି—୧ । ପ୍ରତ୍ୟନ୍ତ; ଶେଷ ସୀମାରେ ସ୍ଥିତ—
1. Situate in the extremity.
୨ । ନିକଟବର୍ତ୍ତୀ—
2. Adjoining, neighbouring. (M. W)
ଦେ. କ୍ରି. ବିଣ. ( ସ. ପର୍ଯ୍ୟନ୍ତମ୍ )—
पर्यन्त ୧ । ( କାଳ, ସ୍ଥାନ ଓ ବିଷୟ ) ଅବଧି, ଯାଏ—
**पर्यन्त, तक** 1 Up to; till; as far as; until.
୨ । (ସ. ପର୍ଯ୍ୟନ୍ତେ=ଶେଷରେ) ଅମୁକର ଶେଷ ପର୍ଯ୍ୟନ୍ତ—
2. To the end of.

**ପର୍ଯ୍ୟନ୍ତ ଭୂମି**—ସ. ବି. ( କର୍ମଧା, ପର୍ଯ୍ୟନ୍ତ+ଭୂମି)—
Parjyanta bhumi ୧ । ସୀମା ଭୂମି—1. Border-land; frontier.
ପର୍ଯ୍ୟନ୍ତ ଭୂ, ପର୍ଯ୍ୟନ୍ତ ଦେଶ } ଅନ୍ୟରୂପ
୨ । ପ୍ରତ୍ୟନ୍ତ ଭୂମି; ନିକଟବର୍ତ୍ତୀ, ଅଞ୍ଚଳ—
2. Precints; vicinity
୩ । ନଦୀ ଶୈଳାଦିର ସନ୍ନିକଟବର୍ତ୍ତୀ ଭୂଭାଗ—3. Tract adjoining a river or mountain.
୪ । ନିକଟବର୍ତ୍ତୀ ବା ପାର୍ଶ୍ୱବର୍ତ୍ତୀ ଦେଶ—
4. A neighbouring or adjacent district.

**ପର୍ଯ୍ୟନ୍ତେ**—ଦେ. କ୍ରି. ବିଣ—ପର୍ଯ୍ୟନ୍ତ ( ଦେଖ )
Parjyante Parjyanta ( See )
ସ. ଅ—ଶେଷରେ—At the end. (M. W )

**ପର୍ଯ୍ୟନ୍ୟ**—ସ. ବି—ପର୍ଜନ୍ୟ ( ଦେଖ )
Parjyanya Parjanya (See)

**ପର୍ଯ୍ୟବସାନ**—ସଂ. ବି. (ପରି+ଅବସାନ)—୧ । ସମାପନ—
Parjyabasana 1 Completion.
୨ । ସମାପ୍ତି, ଶେଷ
2. Termination; end; conclusion.
୩ । ଅନ୍ତର୍ଭାବ; ଅନ୍ତର୍ଭୁକ୍ତ ହେବା—
3. Inclusion; amalgamation.
୪ । ରାଗ, କ୍ରୋଧ (ହ ଶ.)—4 Anger
୫ । ପ୍ରକୃତ ଅର୍ଥ ନିରୂପଣ (ହି. ଶ.)—
5 Ascertainment of the true meaning.

**ପର୍ଯ୍ୟବସିତ**—ସ. ବି. ( ପରି+ଅବସିତ=ସମାପ୍ତ )—୧ । ପରିଣତ—
Parjyabasita 1 Turned into.
୨ । ନିଃଶେଷିତ—2. Emptied
୩ । ସମାପ୍ତ—
3. Ended; terminated; finished; completed.
୪ । ପର୍ଯ୍ୟାଲୋଚନାଦ୍ୱାରା ନିର୍ଦ୍ଧାରିତ—
4. Ascertained by observation.
୫ । ଅପେକ୍ଷାକୃତ ଦୂରସ୍ଥ—
5 Living farther off (M. W).

**ପର୍ଯ୍ୟବସ୍ଥା**—ସ ବି ( ପରି+ଅବସ୍ଥା )—୧ । ବାଧା—
Parjyabastha 1. Obstacle.
(ପର୍ଯ୍ୟବସ୍ଥାନ—ଅନ୍ୟରୂପ) ୨ । ବ୍ୟାଘାତ, ପ୍ରତିରୋଧ—
2 Obstruction; impediment.
୩ । ବିରୋଧ—3. Opposition; contradiction.
୪ । ଅବରୋଧ—4. Siege.
୫ । ବିପକ୍ଷତା—5. Antagonism.

**ପର୍ଯ୍ୟବସ୍ଥାତା**—ସ. ବିଣ ପୁଂ. ( ପରି+ଅବ+ସ୍ଥା. ଧାତୁ+କର୍ତ୍ତୃ ତୃ,
Parjyabasthata ୧ମା. ୧ବ )—୧ । ପ୍ରତିକୂଳ—
( ପର୍ଯ୍ୟବସ୍ଥାତ୍ରୀ—ସ୍ତ୍ରୀ ) 2. Opposing.
୨ । ବ୍ୟାଘାତକାରକ—2. Obstructing, impeding.
ସ. ବି—୧ । ଶତ୍ରୁ—1 Enemy
୨ । ବିପକ୍ଷ ପକ୍ଷ—2 Adversary; antagonist.

**ପର୍ଯ୍ୟବସ୍ଥିତ**—ସ. ବିଣ. ( ପରି+ଅବସ୍ଥିତ )—୧ । ସର୍ବତ୍ର ବ୍ୟାପ୍ତ
Parjyabasthita ହୋଇ ସ୍ଥିତ—1. Existing by; pervading everywhere.
୨ । ଅବସ୍ଥିତ—2. Stationed; standing (M. W).
୩ । ( ଅମୁକ ପ୍ରତି ) ଆସକ୍ତ, ଅନୁରକ୍ତ—
3 Devoted or addictied to (M. W)
୪ । ଆନନ୍ଦିତ, ହୃଷ୍ଟ—
4. Merry; of good cheer (M. W).
୫ । ସ୍ୱଚ୍ଛନ୍ଦତା ଯୋଗୁଁ ସୁଖୀ—
6. Comfortable (M.W.)
ବି—ବିଷ୍ଣୁ, ଈଶ୍ୱର—God.

**ପର୍ଯ୍ୟବେକ୍ଷକ**—ସ. ବିଣ. ପୁଂ. ( ପରି+ଅବ+ଈକ୍ଷ ଧାତୁ=ଦେଖିବା
Parjyabekshaka +କର୍ତ୍ତୃ. ଅକ )—ପରିଦର୍ଶନକାରୀ; ନିରୀ-
(ପର୍ଯ୍ୟବେକ୍ଷିକା—ସ୍ତ୍ରୀ) କ୍ଷଣକାରୀ—Observing; minutely seeing.
ବି—୧ । ଗ୍ରହ ନକ୍ଷତ୍ରାଦି ଦର୍ଶକ—
1. Observator of stars and planets.
୨ । ତତ୍ତ୍ୱାବଧାରକ—2. Superintendent.

**ପର୍ଯ୍ୟବେକ୍ଷଣ**—ସ ବି. ( ପରି+ଅବ+ଈକ୍ଷଣ )—୧ । ନିରୀକ୍ଷଣ,
Parjyabekshana ପରିଦର୍ଶନ—1. Observation

( ପର୍ଯ୍ୟବେକ୍ଷିତ—ବଣ ) ୨ । ତତ୍ତ୍ୱାବଧାରଣ, ତଦନ୍ତ—
2. Investigation.
୩ । ତତ୍ତ୍ୱାବଧାନ—
3 Supervision; superintendence.

**ପର୍ଯ୍ୟବେକ୍ଷଣିକା**—ସଂ. ବି. ( ପର୍ଯ୍ୟବେକ୍ଷଣ + କ + ସ୍ତ୍ରୀ. ଆ )—ମାନ-
Parjyabekshaṇikā ମନ୍ଦିର, ଗ୍ରହ ନକ୍ଷତ୍ରାଦି ପର୍ଯ୍ୟବେକ୍ଷଣ କରିବାର ମନ୍ଦିର—Observatory.

**ପର୍ଯ୍ୟୟ**—ସଂ. ବି. ( ପରି+ଅୟ୍ ଧାତୁ=ଗମନ କରିବା+ଭାବ. ଅ )—
Parjyaya ୧ । ପ୍ରାତିକୂଲ୍ୟ, ବୈପରୀତ୍ୟ—1. Opposition.
୨ । ଅବୈଧ ଆଚରଣ—2. Illegal conduct.
୩ । କୌଣସି ନିୟମ ବା କ୍ରମର ଉଲ୍ଲଂଘନ (ହି. ଶ.)—
3 Transgression of any rule or order

**ପର୍ଯ୍ୟୟଣ**—ସଂ. ବି. ( ପରି+ଅୟ୍ ଧାତୁ+ଅନ, ଯାହା ଉପରେ ବସି
Parjyayaṇa ସ୍ଥାନାନ୍ତରକୁ ଯିବାକୁ ହୁଏ)--୧ । ପଲ୍ଲାଣ, ଘୋଡ଼ା—
1 Pack-saddle.
୨ । ପଶୁପୃଷ୍ଠରେ ପଡ଼ିବା ଆସନ, ଜିନ୍—2. Saddle.

**ପର୍ଯ୍ୟଶ୍ରୁ**—ସଂ. ବଣ ( ପରି+ଅଶ୍ରୁ )—୧ । ଅଶ୍ରୁପୂର୍ଣ୍ଣ—
Parjyaśru 1 Tearful; full of tears.
୨ । ଭୂରି ଅଶ୍ରୁମଗ୍ନ—
2. Brimming with tears, flooded with tears.

**ପର୍ଯ୍ୟସନ**—ସଂ. ବି. (ପରି+ଅସ୍ ଧାତୁ=ନିକ୍ଷେପ କରିବା+ଭାବ. ଅନ)—
Parjyasana ୧ । ଦୂରୀକରଣ, ଅପସାରଣ—1. Removing.
୨ । ଇତସ୍ତତଃ ଫିଙ୍ଗିବା—
2. Throwing or tossing about.

**ପର୍ଯ୍ୟସ୍ତ**—ସଂ. ବଣ. ( ପରି+ଅସ୍ ଧାତୁ=କ୍ଷେପଣ କରିବା+କର୍ମ. ତ )—
Parjyasta ୧ । କ୍ଷିପ୍ତ—1. Strewn; scattered about.
(ପର୍ଯ୍ୟାସ—ବିଶେଷ୍ୟ) ୨ । ଫିଙ୍ଗି ଦିଆଯାଇଥିବା—
2. Thrown or cast about.
୩ । ବିସ୍ତାରିତ, ପ୍ରସାରିତ—3. Extended; spread.
୪ । ଦୂରୀକୃତ, ଅପସାରିତ—4 Removed; driven out.
୫ । ଉଦ୍ବର୍ତ୍ତିତ, ଓଲଟାଇ ଦିଆ ଯାଇଥିବା—
5. Overturned; upset; inverted.
୬ । ଆହତ, ଆଘାତପ୍ରାପ୍ତ—6. Wounded; struck.
୭ । ନିହତ—7. Killed.
୮ । (+କର୍ତ୍ତୃ. ତ ) ପତିତ—8. Fallen.
୯ । ବ୍ୟାପ୍ତ—9. Diffused.
୧୦ । (+କର୍ମ. ତ) ବେଷ୍ଟିତ, ଆକ୍ରାନ୍ତ—
10. Surrounded; encompassed; ensnared (M.W).

**ପର୍ଯ୍ୟସ୍ତାପହ୍ନୁତି**—ସଂ ବି—ଅର୍ଥାଲଙ୍କାରବିଶେଷ—
Parjyastāpahnuti A figure of speech.
[ ଦ୍ର—ଏଥିରେ ବସ୍ତୁର ଗୁଣ ଗୋପନ କରି ସେହି ଗୁଣ ଅନ୍ୟ ବସ୍ତୁରେ ଆରୋପଣ କରାଯାଏ । ]

**ପର୍ଯ୍ୟସ୍ତି**—ସଂ. ବି. (ପରି+ଅସ ଧାତୁ+ଭାବ. ତି)—
Parjyasti ୧ । ତେର ହୋଇ ଚଳପାରେ ବସିବା—
1. Sitting up on the heels. (M. W).
୨ । ପିଙ୍ଗୁ ମାଡ଼ି ବସିବା—
2. Sitting on the hams (M. W).
୩ । ଠେକା ପକାଇ ବସିବା—
3. Sitting cross-legged.

**ପର୍ଯ୍ୟସ୍ତିକା**—ସଂ. ବି. ( ପର୍ଯ୍ୟସ୍ତ+କ+ସ୍ତ୍ରୀ. ଆ, ଯାହା ବିସ୍ତାରିତ ହୁଏ )—
Parjyastikā ୧ । ଶଯ୍ୟା—1. Bed.
୨ । ପଲଙ୍କ, ଖଟ—2. Bedstead; couch.

**ପର୍ଯ୍ୟା ଆକୁଳ**—ଗ୍ରା (ପଦ୍ୟ) ବଣ.—ପର୍ଯ୍ୟାକୁଳ (ଦେଖ)—
Parjyā ākula Parjyākula (See)

ପୁଣି ଝଙ୍କେ ଚାପ ପାଦ ପୁଣି ଶଯ୍ୟା ଆଚରଇ,।
ପୁଣିହିଁ ପର୍ଯ୍ୟା ଆକୁଳେ ଅତି ନବେଶ । ଭ୍ରାଗୀ. ଚଇବାଇଥ ।

**ପର୍ଯ୍ୟାକୁଳ**—ସଂ. ବଣ. (ପରି+ଆକୁଳ)—୧ । ଅତି କାତର; ଅତି
Parjyākula ବ୍ୟାକୁଳ—1. Very uneasy; bewildered; confused
[ପର୍ଯ୍ୟାକୁଳତା(ତ୍ୱ)—ବି]
୨ । ବ୍ୟତିବ୍ୟସ୍ତ—2. Disordered; confused.
୩ । ଅତି ଚିନ୍ତାନ୍ୱିତ—3. Very anxious.
୪ । ଟଳମଳ—4. Tottering.
୫ । ଗୋଳିଆ (ପାଣି)—5. Turbid (water). (M.W.)

**ପର୍ଯ୍ୟାଚାନ୍ତ**—ସଂ. ବି. (ପରି+ଆଚାନ୍ତ)—ଏକ ପଂକ୍ତିରେ ବସି ଭୋଜନ
Parjyāchānta କରୁ ଥିବା ବ୍ୟକ୍ତିମାନଙ୍କ ମଧ୍ୟରୁ ଜଣେ ଉଠି
(ପର୍ଯ୍ୟାଚାନ୍ତ—ଅନ୍ୟରୂପ) ଗଲେ ବା ଆଚମିଲେ ଅନ୍ୟ ବ୍ୟକ୍ତିମାନଙ୍କ ଭୋଜନ ପାତ୍ର ବା ପତ୍ରରେ ଯେଉଁ ଖାଦ୍ୟ ସାମଗ୍ରୀ ବଳି ରହି ଥାଏ—The remains of the food left in the plates of all the people dining in a row when one of them leaves the place or washes the face and hands.

**ପର୍ଯ୍ୟାଣ**—ସଂ. ବି. (ପରି+ଯା ଧାତୁ+କରଣ. ଅନ)—
Parjyāṇa ପର୍ଯ୍ୟାୟଣ (ଦେଖ)—Parjyāyaṇa (See).

**ପର୍ଯ୍ୟାପ୍ତ**—ସଂ. ବଣ (ପରି+ଆପ୍ ଧାତୁ=ପାଇବା+କର୍ତ୍ତୃ. ତ)—
Parjyāpta ୧ । ପ୍ରାପ୍ତ, ଲବ୍ଧ—1. Got; received; gained.
୨ । ସମର୍ଥ—2. Able.
୩ । ସମ୍ପୂର୍ଣ୍ଣ—3. Complete; full.
୪ । ଯଥେଷ୍ଟ, ପ୍ରଚୁର—
4. Sufficient; enough; adequate
୫ । ସମସ୍ତ—5. Whole; entire
୬ । ପରିମିତ—6. Definite; moderate; limited.
୭ । ସମ୍ପନ୍ନ—7. Endowed.
୮ । ବହୁ ପରିମିତ—
8. Copious; abundant; many; much.
୯ । ବିସ୍ତୃତ—9. Extensive; wide.
୧୦ । ସମାପ୍ତ—10. Completed; finished. (M.W.)
୧୧ । ବୃହତ୍—11. Large.
୧୨ । ଯୋଗ୍ୟ; ଉପଯୁକ୍ତ—12. Suitable; fit.

ବି.—(+ଭାବ. ତ)—ପ୍ରାଚୁର୍ଯ୍ୟ—
1. Sufficiency, adequacy.

୨ । ଶକ୍ତି, ସାମର୍ଥ୍ୟ—2 Ability.

୩ । ପରିତୋଷ; ତୃପ୍ତି—3. Satisfaction.

୪ । ଯୋଗ୍ୟତା—4. Suitableness; fitness

**ପର୍ଯ୍ୟାପ୍ତ ବାଦୀ**—ସଂ. ବିଣ. ପୁଂ.—(ପର୍ଯ୍ୟାପ୍ତ+ବାଦିନ୍, ୧ମା. ୧ବ.)—
Parjyāpta bādī ମିତବାଦୀ; ମିତ ଭାଷୀ—
ପର୍ଯ୍ୟାପ୍ତବାଦିନୀ } ସ୍ତ୍ରୀ
ପର୍ଯ୍ୟାପ୍ତଭାଷିଣୀ } Of moderate speech; sparing in speech.
(ପର୍ଯ୍ୟାପ୍ତଭାଷୀ—ଅନ୍ୟରୂପ)

**ପର୍ଯ୍ୟାପ୍ତି**-ସଂ ବିଣ (ପରି+ଆପ୍ ଧାତୁ+ଭାବ. ତି)—୧ । ପ୍ରାଚୁର୍ଯ୍ୟ—
Parjyāpti 1. Sufficiency; adequacy.

୨ । ପରିପୂର୍ଣ୍ଣତା—2. Completion; fulness.

୩ । ପରିତୃପ୍ତି—3. Satiety, satisfaction

୪ । ସାମର୍ଥ୍ୟ—4 Competence, ability.

୫ । ସ୍ୱଚ୍ଛନ୍ଦ୍ୟ; ସଂସାର ଯାତ୍ରାର ସୁଗମତା—5. Competency.

୬ । ଅବସାନ—6. End

୭ । ପରିମିତତା—8 Moderation; temperance.

୯ । ଅପସାରଣ—9. Removal.

୧୦ । ବାରଣ—10. Prevention

ଗ୍ରା. ବି—୧ । ଜୀବିକା—1. Livelihood

୨ । ଆବଶ୍ୟକତା—2. Need, necessity.
(ଯଥା—ମୋର ଏଥିରେ ପର୍ଯ୍ୟାପ୍ତି ଚଳିବ ନାହିଁ ।)

**ପର୍ଯ୍ୟାବର୍ତ୍ତ(ର୍ତ)**—ସଂ. ବି. (ପରି+ଆ+ବୃତ୍ ଧାତୁ+ଭାବ. ଅ)—
Parjyābartta(rta) ୧ । ପ୍ରତ୍ୟାଗମନ—1. Return.
(ପର୍ଯ୍ୟାବର୍ତ୍ତନ—ଅନ୍ୟରୂପ) ୨ । ବଦଳ—2. Exchange.
(ପର୍ଯ୍ୟାବୃତ୍ତ, ପର୍ଯ୍ୟାବର୍ତ୍ତିତ—ବିଣ) ୩ । ସଂସାରରେ ପୁଣି ଜନ୍ମଗ୍ରହଣ (ହି. ଶା.)—3. Taking rebirth in the world after death.

**ପର୍ଯ୍ୟାୟ**—ସଂ ବି.—(ପରି+ଇ ଧାତୁ=ଗମନ କରିବା+ଭାବ. ଅ)—
Parjyāya ୧ । କ୍ରମ, ଅନୁକ୍ରମ—1. Succession; regular order; rotation.

୨ । ପାଳି—2. Turn; periodic turn.

୩ । ନିୟମିତ କ୍ରମ—3. Regular succession.

୪ । ପ୍ରାଚୁର୍ଯ୍ୟ 4. Sufficiency.

୫ । ସୁଯୋଗ; ଅବସର—5. Opportunity.

୬ । ଶ୍ରେଣୀ; ପ୍ରକାର—6. Kind; class.

୭ । ପଦାର୍ଥର ଗୁଣ ବା ଧର୍ମ—
7. Attribute of a thing.

୮ । ଏକାର୍ଥ ବାଚକ ଶବ୍ଦ; ସମ ନାମ; ସମାନାର୍ଥକ ଶବ୍ଦ—
8. Synonym.

ଏଣୁ ହୁ ସୁଧାକର କଳାନିଧି ପର୍ଯ୍ୟାୟେ କଲେ କଳାପୂର୍କେ ବିଦ୍ଧି—
ଉଷା, କୋହନ୍ତୁଦ୍ଧାଂଶୁସୂନନ୍ଦ ।

୯ । ଅର୍ଥାଲଙ୍କାର ବିଶେଷ, ଯେଉଁ ଅଲଙ୍କାରରେ ପୂର୍ବକାଳରେ ବା ଉତ୍ତର କାଳରେ ଅନେକ ବସ୍ତୁର ଉତ୍ପତ୍ତି କିମ୍ବା ଅନେକ ସ୍ଥାନରେ ଏକ ବସ୍ତୁର ସ୍ଥିତି ବା ଗତି ବର୍ଣ୍ଣନା କରାଯାଏ—
9. A figure of speech describing a thing at different places or positions in succession.

୧୦ । ନିର୍ମାଣ (ହି. ଶା.)—10. Construction.

୧୧ । ଏକ ଶ୍ରେଣୀ ବା କୁଳରୁ ଉତ୍ପନ୍ନ ହୋଇ ବ୍ୟକ୍ତିଙ୍କ ମଧ୍ୟରେ ପରସ୍ପର ସମ୍ବନ୍ଧ—11. Mutual relationship between two persons of the same family or class.

**ପର୍ଯ୍ୟାୟ କ୍ରମେ**—ଦେ. କ୍ରି. ବିଣ—୧ । ଯଥାକ୍ରମେ—
Parjyāya krame 1. Respectively.

୨ । ପାଳି ଅନୁସାରେ—2. By turns; rotation.

୩ । ନିୟମିତ କ୍ରମାନୁସାରେ, ଏକର ପର ଅନ୍ୟ—
3. In regular succession

**ପର୍ଯ୍ୟାୟ ବୃତ୍ତି**—ସଂ. ବି.—ଏକକୁ ତ୍ୟାଗ କରି ଅନ୍ୟକୁ ଗ୍ରହଣ କରିବାର
Parjyāya brutti ବୃତ୍ତ—The state or condition of abandoning one and taking another.

**ପର୍ଯ୍ୟାୟ ଶବ୍ଦ**—ଦେ. ବି—ଏକ ପଦାର୍ଥର ଏକାର୍ଥ ବୋଧକ ଭିନ୍ନ ନାମ—
Parjyāya śabda Synonym.

**ପର୍ଯ୍ୟାୟ ଶୟନ**—ସଂ. ବି.—ପହରୀମାନଙ୍କର ପାଳିଅନୁସାରେ ଶୋଇବା ଓ
Parjyāya śayana ଚେଇଁବା—Alternate sleeping and watching of watchmen by turns.

**ପର୍ଯ୍ୟାୟୋକ୍ତ**—ସଂ. ବିଣ. (ତୃତୀୟା ତତ୍, ପର୍ଯ୍ୟାୟ+ଉକ୍ତ)—
Parjyāyokta ପର୍ଯ୍ୟାୟ କ୍ରମେ ଉକ୍ତ, ପରେ ପରେ ଉଲ୍ଲିଖିତ—
Described seriatim.

**ପର୍ଯ୍ୟାୟୋକ୍ତି ଅଳଙ୍କାର**—ସଂ. ବି—ଅର୍ଥାଲଙ୍କାରବିଶେଷ—
Parjyāyokti alaṅkāra A figure of speech.

[ଟି—ଯେଉଁଠାରେ ବକ୍ତବ୍ୟ ବିଷୟକୁ ସ୍ପଷ୍ଟରୂପେ ବର୍ଣ୍ଣନା ନ କରି ବାକ୍ୟଭଙ୍ଗିଦ୍ୱାରା ସୂଚନା କରାଯାଏ, କିମ୍ବା ଯେଉଁଠାରେ କୌଣସି ରମଣୀୟ ବ୍ୟାଜ ଦ୍ୱାରା କାବ୍ୟର ଉଦ୍ଦେଶ୍ୟ ସାଧନ କରାଯାଏ ସେଠାରେ ପର୍ଯ୍ୟାୟୋକ୍ତି ଅଳଙ୍କାର ହୁଏ, ଉଦାହରଣ ଯଥା—

୧ । ଧରନ୍ତି ଯୁବକେ ପଦପଦ୍ମ ଯହିଁ ଅସୁଖ ଶିକ୍ଷା,
ରୂଷ ଯୁବତୀଙ୍କି ମାନ୍ଧାରେ ଦେଇ ନୈଥିବ୍ୟ ଶାଖା । ରାଧାନାଥ. ଉଷା ।

୨ । ଛତ୍ର ଧାରୀ ଦଣ୍ଡ ଯହିଁ ନାଗଫେଣୀ,
ଶାରଦାକେ ପୁଣି ମଉଳକା ବେଣୀ । ରାଧାନାଥ. ଚିଲିକା ।

**ପର୍ଯ୍ୟାଲୋଚନା**—ସଂ. ବି. (ପରି+ଆଲୋଚନା)—
Parjyālochanā ୧ । ପୁନଃ ପୁନଃ ଆଲୋଚନା—
(ପର୍ଯ୍ୟାଲୋଚନ—ଅନ୍ୟରୂପ) 1. Circumspection; attentive observation.
ପର୍ଯ୍ୟାଲୋଚକ } ବିଣ
ପର୍ଯ୍ୟାଲୋଚିତ }
୨ । ବିତର୍କ—
2. Deliberation; reflection.

୩ । ସମାଲୋଚନା—3. Criticism

**ପର୍ଯ୍ୟାସ**—ସଂ. ବି. (ପରି+ଅସ୍. ଧାତୁ+ଭାବ. ଅ)—
Parjyāsa ୧ । କ୍ରମ ଭଙ୍ଗ, ଓଲଟ ପାଲଟ ହେବା—

ପର୍ଯ୍ୟସ୍ତ, ପର୍ଯ୍ୟାସିତ } ବିଣ 1. Upturning; overturning.
୨ । ପରିବର୍ତ୍ତନ—
(ପର୍ଯ୍ୟାସନ—ଅନ୍ୟରୂପ) 2. Change; revolution
୩ । କ୍ରମାନୁସାରେ ପରିବର୍ତ୍ତନ—3 Rotation.
୪ । ବିନାଶ—4. Destruction, ruin.
୫ । ବଧ—5 Killing.
୬ । ପତନ—6. Fall
୭ । ବ୍ୟାପ୍ତି; ବିସ୍ତାର—7. Extension.
୮ । ପରିକ୍ରମା—8. Circumambulation
୯ । ବେଷ୍ଟନ କରି ବସିବା—9 Sitting round.

**ପର୍ଯ୍ୟାହାର**—ସଂ. ବି. (ପରି+ଆ+ହୃ. ଧାତୁ=ନେବା+ଭାବ. ଅ)—
Parjyāhāra ଏକ ସ୍ଥାନରୁ ସ୍ଥାନାନ୍ତରକୁ ନେବା—
1. Taking or carrying a thing from one place to another; conveying.
୨ । ବିହଙ୍ଗିକା, ବାହାଙ୍ଗୀ—2. A yoke borne across the shoulder for carrying loads suspended at each end.
୩ । ବୋଝ—3 A load. (M. W.)
୪ । କଳଶ—4. Pitcher. (M W)
୫ । ଶସ୍ୟ ସଞ୍ଚୟ—5. Storing grain. (M W.)

**ପର୍ଯ୍ୟୁକ୍ଷଣ**—ସଂ. ବି. (ପରି+ଉକ୍ଷ ଧାତୁ+ଭାବ. ଅନ)—
Parjyukshaṇa ୧ । ଶ୍ରାଦ୍ଧ, ହୋମ, ପୂଜା ଆଦି ଉପଲକ୍ଷରେ ମନ୍ତ୍ରପାଠ ପୂର୍ବକ ଚାରିଆଡ଼େ ପାଣି ଛିଞ୍ଚିବା (ହ ଶ.)—
1. Sprinkling water on all sides by reciting certain formulae.
୨ । ସେଚନ—2. Sprinkling

**ପର୍ଯ୍ୟୁକ୍ଷଣୀ**—ସଂ. ବି. (ପର୍ଯ୍ୟୁକ୍ଷଣ+ଈ)—ଯେଉଁ ପାତ୍ରରୁ ଜଳ ନେଇ
Parjyukshaṇi ଚାରିଆଡ଼େ ଛିଞ୍ଚାଯାଏ—
A vessel for sprinkling water.

**ପର୍ଯ୍ୟୁତ୍ସୁକ**—ସଂ. ବି. ପୁଂ. (ପରି+ଉତ୍ସୁକ)—୧ । ଉତ୍କଣ୍ଠିତ—
Parjyutsuka 1. Very anxious; mentally restless.
(ପର୍ଯ୍ୟୁତ୍ସୁକା—ସ୍ତ୍ରୀ) ୨ । ସମୁତ୍ସୁକ; ଲାଳାୟିତ—
[ପର୍ଯ୍ୟୁତ୍ସୁକତା(ତ୍ୱ)—ବି] 2. Eagerly desirous; longing for.
୩ । ଅନୁରକ୍ତ—3. Attached.
୪ । ଶୋକାକୁଳ—4. Sorrowful; grieved.

**ପର୍ଯ୍ୟୁଦୟ**—ସଂ. ଅ. (ସଂ. ପର୍ଯ୍ୟୁଦୟଂ, ପରି+ଉଦୟ)—
Parjyudaya ସୂର୍ଯ୍ୟୋଦୟର ସମୀପବର୍ତ୍ତୀକାଳରେ—
About sunrise. (M. W.).

**ପର୍ଯ୍ୟୁଦସ୍ତ**—ସଂ. ବିଣ. [ପରି=ସର୍ବତୋଭାବରେ+ଉତ୍ (ଊର୍ଦ୍ଧ୍ୱ)+
Parjyudasta ଅସ୍. ଧାତୁ=ନିବାରଣ କରିବା+କର୍ମ. ତ]—
(ପର୍ଯ୍ୟୁଦସନ - ବି) ୧ । ନିଷିଦ୍ଧ, ନିବାରିତ—
1. Prohibited; excluded; denied.
୨ । ପରାଜିତ—2. Defeated; vanquished.
୩ । ନାମଞ୍ଜୁର କରି ଯାଇଥିବା—3. Rejected.

**ପର୍ଯ୍ୟୁଦାସ**—ସଂ. ବି. (ପରି+ଉତ୍+ଅସ୍ ଧାତୁ+ଅ)—
Parjyudāsa ୧ । ନିବାରଣ—1. Prohibition.
୨ । ପରାଜୟ—2. Defeat.
୩ । ନିଷେଧାତ୍ମକ ନିୟମ—3. A prohibitive rule.

**ପର୍ଯ୍ୟୁପାସନ**—ସଂ. ବି. (ପରି+ଉପ+ଅସ୍ ଧାତୁ+ଭାବ. ଅନ)—
Parjyupāsana ୧ । ଚାରିଆଡ଼େ ବସିବା—1. Sitting round.
ପର୍ଯ୍ୟୁପାସିତ, ପର୍ଯ୍ୟୁପାସକ } ବିଣ. ୨ । ସେବା—2. Service; attendance, worship.
୩ । କ୍ଷମା ବା ଦୋଷ ମାଗିବା—3. Asking pardon or excuse.
୪ । ବନ୍ଧୁତା—4. Friendliness. (M W.)
୫ । (+ଅଧିକରଣ) ଯେଉଁଠାରେ ଛାଉଣୀ ପକାଯାଏ—
5. Encamping ground. (M. W.)

**ପର୍ଯ୍ୟୁପ୍ତି**—ସଂ. ବି. (ପରି+ବପ୍ ଧାତୁ=ବୁଣିବା+ଭାବ. ତି)—
Parjyupti ଚାରିଆଡ଼େ ମଞ୍ଜି ବୁଣିବା—Sowing round of seeds.

**ପର୍ଯ୍ୟୁଷିତ**—ସଂ. ବି. (ପରି+ବସ୍ ଧାତୁ=ବାସ କରିବା+ତ, ସନ୍ଧି
Parjyushita ବିଧାନ)—୧ । ବାସି, ଡହଣୀ—1. Stale, not fresh; insipid.
୨ । ପଚା, ସଢ଼ା—
2 Putrid; decomposed; rotten.
୩ । ଯେ କୌଣସି ସ୍ଥାନରେ ରାତ୍ରି ଯାପନ କରିଥାଏ—
3 Having passed the night. (M. W)

**ପର୍ଯ୍ୟୁଷିତାନ୍ନ**—ଦେ. ବି—ବାସୀଭାତ—
Parjyusitānna Rice boiled yesterday.

**ପର୍ଯ୍ୟେଷଣ(ଣା)**—ସଂ. ବି—(ପରି+ଏଷଣ)—
Parjyeshaṇa (ṇā) ୧ । ଗବେଷଣା; ସବିଶେଷ ଅନୁସନ୍ଧାନ -
1. Investigation.
୨ । ସମ୍ପୂର୍ଣ୍ଣ ଅନ୍ୱେଷଣ—2. Thorough search.

**ପର୍ଶନ**—ଗ୍ରା. ବି. (ସଂ. ପ୍ରଶ୍ନ)—ପ୍ରଶ୍ନ (ଦେଖ)
Parśana Praśna. (See)
পরশন্ন ଗ୍ରା. ବିଣ. (ସଂ. ପ୍ରସନ୍ନ)—ପ୍ରସନ୍ନ (ଦେଖ)
পরশন Prasanna (See)

**ପର୍ଶନାଲ୍ ଆଲୱାନ୍ସ**—ବୈଦେ ବି. (ଇଂ)—ଦରମା ଛଡ଼ା କର୍ମଚାରୀମାନଙ୍କୁ
Parśanāl ālāwāns ବ୍ୟକ୍ତିଗତ ଭାବରେ ଦିଆଯିବା ଭତ୍ତା—
পার্সনাল আলাউআন্স Personal allowance.

**ପର୍ଶନାଲ୍ ଆସିଷ୍ଟାଣ୍ଟ**—ବୈଦେ. ବି. (ଇଂ)—ଉଚ୍ଚ କର୍ମଚାରୀ ବା ରାଜା
Parśanāl āsishṭānṭ ଆଦିଙ୍କ ସହାୟକ କର୍ମଚାରୀ—
(ପର୍ଶନାଲ୍ କ୍ଲର୍କ—ଅନ୍ୟରୂପ) Personal assistant.

**ପର୍ଶନାଲ୍ ଡକ୍ରୀ(ଗ୍ରୀ)**—ବୈଦେ. ବି. (ଇଂ)—ସମ୍ପତ୍ତି ଉପରେ ଯେଉଁ ଡିଗ୍ରୀ
Parsanāl ḍikri (gri) ଦିଆ ନ ଯାଇ ବ୍ୟକ୍ତି ଉପରେ
পার্সনাল ডিক্রী ଦିଆଯାଏ—Personal decree.

**ପର୍ଶୁ(ଇତ୍ୟାଦି)**—ସଂ. ବି—ପରଶୁ (ଇତ୍ୟାଦି)
Parśu(etc) Paraśu etc. (See)

ଦେ. ବି—ପରଶୁରାମର ଡାକ ନାମ—
Name for calling 'Paraśurāma.

**ପର୍ଶୁକା** —ସଂ. ବି. (ପର୍ଶୁ+କ+ସ୍ତ୍ରୀ. ଆ)—ପଞ୍ଜରାସ୍ଥି, ପଞ୍ଜରା ହାଡ଼—
Parśukā Rib.

**ପର୍ଶେଣ୍ଟ** —ବୈଦେ. ଅ (ଇଂ)—ଶତକରା, ଅନୁପାତ ଅନୁସାରେ ଶହକେ
Parśent ଏତେ—Per cent.
पारसेण्ट पार्सेंट

**ପର୍ଶେଣ୍ଟେଜ୍**— ବୈଦେ. ବି (ଇଂ)—ଅନୁପାତ ଅନୁସାରେ ଶହକେ କେତେ
Parśentej ହେବ ଏଥିର ହିସାବ—Percentage
पार्सेण्टेज पर्सेंटेज

**ପର୍ଶ୍ୱଧ**—ସଂ. ବି—ପରଶ୍ୱଧ (ଦେଖ)
Parśwadha Paraśwadha (See)

**ପର୍ଷଦ୍**—ସଂ ବି (ପୃଷ୍ ଧାତୁ=ପ୍ରୀତ କରିବା+ଅଧିକରଣେ. ଅଦ୍;
Parshad ଯେଉଁଠାରେ ଲୋକମାନଙ୍କୁ ପ୍ରୀତ କରାଯାଏ)—ପରଷଦ୍;
ସଭା—Association; society; assembly.

**ପର୍ଷଦ୍‌ବଳ**—ସଂ. ବି ( ପର୍ଷଦ୍+ଯୋଗ୍ୟାର୍ଥେ ବଳ )—ସଭାସଦ—
Parshad-bala Member of a society.

**ପର୍ଷା**—ପ୍ରାଦେ (ସମ୍ବଲପୁର) ବି—ପରଷା (ଦେଖ)
Parshā Parashā (See)

**ପର୍ଷିବା** —ଗ୍ରା. କ୍ରି—ପରଷିବା (ଦେଖ)
Parshibā Parashibā (See)

**ପର୍ସନ୍**—ଗ୍ରା. ବିଣ (ସଂ. ପ୍ରସନ୍ନ)—ପ୍ରସନ୍ନ (ଦେଖ)
Parsan Prasanna (See)

**ପର୍ସା** (ଇତ୍ୟାଦି)—ଗ୍ରା. ବି—ପରସା ଇତ୍ୟାଦି (ଦେଖ)
Parsā (etc) Parasā etc (See)
(ପର୍ସାବ—ଅନ୍ୟରୂପ)

**ପର୍ସାଦ**—ଗ୍ରା. ବି (ସଂ. ପ୍ରସାଦ)—ପ୍ରସାଦ (ଦେଖ)
Parsāda Prasāda (See)

**ପଲ୍** (ଧାତୁ)—ସଂ—୧ । ଗମନ କରିବା—1. To go.
Pal (root) ୨ । ରକ୍ଷା କରିବା—2 To save.

**ପଲ୍**—ବୈଦେ. ବି ( ହେବ୍ରୁ, ନାମ )—ସେଣ୍ଟ୍ ପଲ୍; ବାଇବଲ୍ ଲିଖିତ
Pal ମହାପୁରୁଷ—Saint Paul.
पल पल [ଦ୍ର—ଏ ମହାତ୍ମା ଇଂଲଣ୍ଡର ରକ୍ଷକ ମହାତ୍ମାରୂପେ ପୂଜିତ ହେଉଅଛନ୍ତି । ଏହି ଶବ୍ଦକୁ ବାଇବଲର ଓଡ଼ିଆ ଅନୁବାଦକ 'ପାଉଲ୍' କରିଅଛନ୍ତି । ]

**ପଲ୍‌ବିବା**—ପ୍ରାଦେ (ସମ୍ବଲପୁର) କ୍ରି—ପଲବିବା (ଦେଖ)
Pal-bibā Palabibā (See)

**ପଳ**—ସଂ. ବି (ପଲ୍ ଧାତୁ=ଗମନକରିବା+କରଣ. ଅ)—୧ । ଓଜନରେ
Pala ଚାରି କର୍ଷ ପରିମାଣ, ଚାରି ତୋଳା ପରିମାଣ—
1. A weight of 4 tolas.
[ଦ୍ର—୧ ସେର=୨୦ ପଳ, ୧ ଵିଶା=୨୫ ପଳ । ]
୨ । (+କର୍ତ୍ତୃ. ଅ ମୁହୂର୍ତ୍ତ, ସୂକ୍ଷ୍ମ କାଳ, ୨୦ ବିପଳ—
2. Moment; 24 seconds.
[ଦ୍ର—୧ ଦଣ୍ଡ=୬୦ ପଳ, ୧ ପଳ=୬୦ ବିପଳ୍ମ ।]
୩ । ଆମିଷ, ମାଂସ—3. Flesh; meat.
୪ । (+ଭାବ. ଅ) ପ୍ରତାରଣ—4. Cheating.
୫ । ଚଳନ—5. Moving; motion
୬ । ପାଳ; କୁଟା; ଶସ୍ୟହୀନ ତୃଣ—6. Straw after threshing; straw shorn of grains
୭ । ଗତି (ହି. ଶ.) 7. Movement
୮ । ମୂର୍ଖ ବ୍ୟକ୍ତି (ହି. ଶ.)—8. A dunce.
୯ । ତରାଜୁ, ତୁଳାଯନ୍ତ୍ର (ହି. ଶ )—9. Balance; scales.

**ପଲ**—ଦେ. ବି ( ସଂ. ଦଳ )—୧ । ଏକଜାତୀୟ ଜୀବଙ୍କ ସମୂହ—
Pala 1. A herd of animals.
दल झुंड ମହିଷାଳେ ପହୁଁ ଗର୍ଜନେ ତରଳୁ ମହିଷ-ପଲ—ଗଧ ନାଥ. ଭଗ ।
(ପଲ୍ହ, ପଲ୍ଲ—ଅନ୍ୟରୂପ) ୨ । ଦଳ, ପଙ୍କ୍ତି—2 Crowd; flock.
୩ । ପଶୁଙ୍କ ଦଳ—3. A herd of beasts.
[ଦ୍ର—ଭିନ୍ନଭିନ୍ନଜାତୀୟ ଜୀବଙ୍କ ପଲକୁ ଭିନ୍ନଭିନ୍ନ ନାମରେ, ଡକାଯାଏ—ଚଢେଇ, କୁକୁର, ମାକଡ଼, ଗୋରୁ, ଛେଳି, ହରିଣ, ମହିଷଙ୍କ ପଲ । ବାଛୁରୀ, ଗୋରୁ, ମହିଷଙ୍କ ଗୋଠ । ମନୁଷ୍ୟ ସୁଷୁଣ୍ଡିଙ୍କ ପଲ ବା ସାହଣ ବା ଫଉଦ । ଯାତ୍ରୀ, ନାଟବାଲାଙ୍କ ଦଳ ପଙ୍କ୍ତି ବା ମେଳ । ଯାତ୍ରୀ ଓ ମାଛଙ୍କ ସାହଣ ବା ଖେଦା । ମାଛ ଜାଆଁଳଙ୍କ ମନ୍ଦା । ପିଲାଙ୍କ ଖାଉଡ଼, ଗୋଠ । କୁମ୍ଭୀର, ସାପ, ବାବାଜୀଙ୍କ ମେଳ, ଭେଳା, ମେଳା । ଜନ୍ତା, ପିମ୍ପୁଡ଼ି ଓ ତେଲୁଣୀ ପୋକ ଆଦି କ୍ଷୁଦ୍ରଜୀବଙ୍କ ମଳା, ମନ୍ଦା । ]
୪ । ସମୂହ—4. Multitude.
ଶଳଭ ପର ଅଶ୍ୱତ୍ଥାମା ଶରପଲ ବାହାରିଲେ ମାରିବା ପାଇଁ ଯୋଦ୍ଧା ଭଲ—
କୃଷ୍ଣସିଂହ ମହାଭାରତ ଦ୍ରୋଣ ।

**ପଲଉ**—ବୈଦେ. ବି (ଫା ପଲାଓ; ମୂଳ. ସଂ. ପଲାନ୍ନ, ପୁଲାକ=ମାଂସ
Palau ମିଶ୍ରିତ ଅନ୍ନ )—ଆମିଷ ମିଶ୍ରିତ ଘୃତପକ୍ୱ ଅନ୍ନ—Rice
पलाओ boiled with meat and ghee.
पुलाव, पलाव ପଲଉ ବନା ଵନେ ନ ଖାଇଲ ଭତ—
(ପଲାଉ—ଅନ୍ୟରୂପ) କୃଷ୍ଣସିଂ. ମହାଭାରତ. ସଭା ।

**ପଲକ**—ଦେ. ବି ( ସଂ ପଳ+କ—ହି. ଶବ୍ଦସାଗର ଓ ଯୋଗେଶ୍ୱରଙ୍କ;
Palaka ଆଖିର ନିମେଷଦ୍ୱାରା 'ପଳ' କଳ୍ପିତ ହେଉଥିବାରୁ,
पलक ୨୫ ନିମେଷ=୧ପଳ, ଫା. ପଲକ୍—ପ୍ରଲ୍ଲାଦବାଦ ଓ
पलक ଷ୍ଟାନେନ୍ତ୍ର)—୧ । ଆଖି ପିଛୁଳିବାର ସମୟ; ନିମେଷ,
କ୍ଷଣମାତ୍ର—1. A moment; twinkle.
ପଲକେ ପଲକେ ମୁଁ ତ୍ରିଯୁଗ ଅଟଇ ନଣି ନୋହୁଥିଲେ ଛିତ—କବିସୂର୍ଯ୍ୟ. ସଙ୍ଗୀତ
୨ । ଆଖି ପିଛୁଳିବା—
2. Wink; twinkling of the eye.
୩ । ଆଖିପତା—3. Eyelid.
ପରମ ପଲକ ପଡ ରଞ୍ଜନ—ଭଞ୍ଜ. ପ୍ରେମସୁଧାନିଧି ।

**ପଲକ ପକା(କେ)ଇବା**—ଦେ. କ୍ରି—୧ । ଆଖି ବୁଜି ଫିଟାଇବା—
Palaka pakā (ke)ibā 1. To wink; to twinkle.
पलक फेलना ୨ । ଆଖି ବୁଜିବା—
पलक गिराना 2. To close the eyelid.

**ପଲକ ପିଚ୍ଛୁଡ଼ିବା**—ଦେ. କ୍ରି—ପଲକପକାଇବା ୧ (ଦେଖ)
Palaka pichhārdibā Palaka pakāibā (See)

**ପଲକ ରହିତ**—ଦେ ବଣ—ନିର୍ନିମେଷ—
Palaka rahita Winkless.
(ପଲକଶୂନ୍ୟ—ଅନ୍ୟରୂପ)

**ପଲକା(କୁ)ପଲ**—ଦେ. କ୍ରି. ବିଣ—ପଲ ପଲ, ଏକଦଳ ପରେ ଅନ୍ୟ
Palakā(ku)pala ଦଳ, ଏହିପରି ଅନେକ, ଦଳଦଳ ହୋଇ,
ଦଲେ ଦଲେ ଅନେକ ଦଳ—Herd after herd; in nu-
ଝୁଣ୍ଡ୍ କେ ଝୁଣ୍ଡ୍ merous herds; following each other in flocks.

**ପଲକ୍ଷ**—ସଂ. ବଣ—ଶ୍ୱେତ; ଧବଳ (ହି ଶବ୍ଦସାଗର)
Palaksha White.
ସଂ. ବି—ଧଳାରଙ୍ଗ—White colour

**ପଲକ୍ଷାର**—ସଂ. ବି (ପଳ=ମାଂସ+କ୍ଷର୍ ଧାତୁ=କ୍ଷରିବା+କର୍ତ୍ତୃ ଅ;
Palakshāra ଯାହା ମାଂସରୁ କ୍ଷରେ)—ଶୋଣିତ, ରକ୍ତ—Blood.

**ପଲଖ** (ଖା)—ଦେ ବି (ସଂ. ପଲ=ଲୁଚା, ଲୁଚାପରି ଅସାର ଥିବାରୁ)—
Palakha (khā) କାଠର ଉପରେ ଗୁଡ଼ିଆଡ଼େ ଛାଲ ତଳେ
(ମଞ୍ଜ—ବିପରୀତ) ଥିବା ଅସାର ଅଂଶ—The unsubstan-
ପଲକାକାଠ tial or soft part round a timber below the bark.

ବୃକ୍ଷର ପଲଖେ ଯେହ୍ନା ମଞ୍ଜ କରେ ଭଙ୍ଗ—ଚନ୍ଦ୍ରମଣି. ବଳହାଦତ୍ୟ ।

**ପଲଗଣ୍ଡ**—ସଂ. ବି—ରାଜମିସ୍ତ୍ରୀ—
Palaganda Mason.

**ପଲଙ୍କ**—ଦେ. ବି (ସଂ. ପଲ୍ୟଙ୍କ)—ପର୍ଯ୍ୟଙ୍କ; ଖଟ—
Palanka Bedstead; couch.
ପାଲଙ୍କ ପଲଙ୍କେ ଶୁଭର ଘମା ଏତେକ କହୁ—ପ୍ରଚୀ. ଶିଶୁଶଙ୍କର ଲକ୍ଷାଅଭିଳାଷ ।
ପଲଂଗ
[ ଦ୍ର—ଖଟରେ ବାଡ଼ ନ ଥାଏ । ପଲଙ୍କରେ ବାଡ଼ ଥାଏ ।
ଗଛ ପଲଙ୍କରେ ମଶାରିଖୁଣ୍ଟ ଓ ଛାତ ଥାଏ । ]

**ପଲଙ୍କ ଚଉକୀ**—ପ୍ରାଦେ (ଗଡ଼ଜାତ) ବି—ରଜା ଶୋଇଥିବବେଳେ ତାଙ୍କ
Palanka chaukī ପଲଙ୍କ ପାଖରେ ପହରାଦେବା ଜଗୁଆଳୀ—
(ପଲଙ୍କଚୌକି—ଅନ୍ୟରୂପ) A watchman who keeps watch near the bedstead when a Raja is asleep.

ମଳୟବସନ୍ତ ରଜାଙ୍କ ପଲଙ୍କ ଚୌକୀ ହୋଇଥାଏ—ଅଟଣୀ ଚରଣକୁମାର ଚରିତ ।

**ପଲଙ୍କ ଚା**—ଦେ. ବି—ଭାରତବାସୀ ସାହେବମାନେ ସକାଳୁ ନିଦ୍ରା ତ୍ୟାଗ
Palanka chā କରି ବିଛଣା ଛାଡ଼ି ଉଠି ଆସିବା ପୂର୍ବରୁ ବିଛଣାରେ
ପାଲଙ୍କ ଚା ଥାଇ ଯେଉଁ ଚାହା ଖାଆନ୍ତି—The cup of tea
ପଲଂଗ ଚା (taken by Europeans in India)
ପଲଙ୍କ ଚାଆ } ଅନ୍ୟରୂପ before leaving the bed in the
ପଲଙ୍କ ଚାହା } morning.

**ପଲଙ୍କଟ**—ସଂ. ବଣ. ( ପଳ=ମାଂସ+କଙ୍କ୍ ଧାତୁ=ସଙ୍କୁଚିତ ହେବା+
Palankata କର୍ତ୍ତୃ. ଅ; ଶଙ୍କା ହେତୁ ଯାହାର ମାଂସ ସଙ୍କୁଚିତ
ହୁଏ )—୧ । ଭୟାଳୁ—1. Timid (Apte).
୨ । ଲାଜକୁଳା—2. Bashful (Apte)

**ପଲଙ୍କ ପିଠି**—ଦେ. ବି—ପଲଙ୍କ ପରି ଚଉଡ଼ା ପିଠି—
Palanka pithi Broad back ( compared to a
ପାଲଙ୍କ ପିଠ ପଲଂଗକା ପସାପୀଠ bedstead ).

**ପଲଙ୍କ ପିଠିଆ**—ଦେ. ବଣ—ଯାହାର ପିଠି ପଲଙ୍କ ପିଠି ପରି ଚଉଡ଼ା
Palanka pithiā (ଘୋଡ଼ା)—Broad-backed (horse).
ପାଲଙ୍କ ପିଠେ ପଲଂଗକାପସା ପୀଠବାଲା

**ପଲଙ୍କଷ**—ସଂ. ବି. ପୁଂ. ( ପଳ=ମାଂସକୁ+କଷ୍ ଧାତୁ; ହିଂସା କରିବା
Palankasha +କର୍ତ୍ତୃ. ଅ )—ରାକ୍ଷସ—Demon.

**ପଲଙ୍କଷା**—ସଂ. ବି. ସ୍ତ୍ରୀ. (ପଲଙ୍କଷ+ସ୍ତ୍ରୀ. ଆ)—୧ । ରାକ୍ଷସୀ—
Palankashā 1. A demoness.
(ପଲଙ୍କଷୀ—ଅନ୍ୟରୂପ) ୨ । ମକ୍ଷିକା—2. Flea.
୩ । କିଂଶୁକ, ପଳାଶ—3 Brutea Frondosa tree
୪ । ଲାକ୍ଷା, ଲାଖ—4 Shellac
୫ । କ୍ଷୁଦ୍ର ଗୋକ୍ଷୁର—
5 A medicinal herb; Tribulus Terrestris.
୬ । ରାସ୍ନା, ଏକ ପ୍ରକାର ଆମ୍ବଗଛର ନିର୍ମୂଳୀ—
6. Vanda Roxburghii.
୭ । ଗୁଗ୍ଗୁଳ—7. Bdellium.

**ପଲଛି**—ପ୍ରଦେ. ( ବାମଡ଼ା ) ବି—ଖୁଳ—
Palachhi Lean-to.

**ପଲଟଣ**—ବୈଦେ. ବି. ( ଇଂ. ପ୍ଲାଟୁନ୍; ବାଟେଲିଅନ୍, ଉର୍ଦ୍ଦୁ. ପଲଟନ୍,
Palatana ଭୁଲ. ଫା. ବଟେଲନ୍ )—୧ । ସୈନ୍ୟଦଳ—
ପଲଟନ ପଲ୍‌ଟନ 1. Army; regiment; battallion.
(ପଲଟନ—ଅନ୍ୟରୂପ) ୨ । ସୈନ୍ୟ—2. Soldier.
( ଯଥା—କଳା ପଲଟଣ, ଗୋରା ପଲଟଣ, ଜର୍ମାନ ପଲଟଣ । )

**ପଲଟଣିଆ (ଆଁ)**—ଦେ. ବଣ—ପଲଟଣ ସମ୍ବନ୍ଧୀୟ—
Palataniā(ā̃) Regimental; belonging to or
ପଲଟନେ ପଲ୍‌ଟନିୟା pertaining to the army; military,
( ପଲଟନିଆ[ଆଁ]—ଅନ୍ୟରୂପ ) ( ଯଥା—ପଲଟଣିଆ ସାହେବ, ପଲଟଣିଆ ଡାକ୍ତର । )

**ପଲତା**—ପ୍ରାଦେ. (ମେଦିନୀପୁର) ବି—୧ । (ସଂ ପଟ୍ଟ) ଝୋଟ ଗଛ—
Palatā 1. Jute plant.
ପଲତା ୨ । (ସଂ. ପଟୋଳ) ପୋଟଳପତ୍ର ଓ ଲତା—
ପରବଲ 2. The Patola creeper and leaves.
୩ । କମ ଓ ପଶାରୁଣୀ ଆଦି ପତ୍ରକୁ ବାଟି ତହିଁରେ ପରିବା ମିଶାଇ କରାଯିବା ଝୋଳ ତରକାରୀ—3. A gruelly soup made by boiling some pasted leaves.

**ପଲନ୍ତି**—ପ୍ରାଦେ. (ବାଲେଶ୍ୱର) ବି—୧ । ପକ୍କାକୋଠା କିମ୍ବା ଅନ୍ୟ କୌଣସି
Palanti ବସ୍ତୁ ଉପରେ ଜନ୍ମିଥିବା ସବୁଜ ଉଦ୍ଭିଜ୍ଜ ପଦାର୍ଥ; ଶିଉଳୀ—1. Moss.
୨ । ପୋଖତ ମାଛ, କଙ୍କଡ଼ା ପ୍ରଭୃତି ଦେହରେ ବସିଥିବା ଖସଡ଼ା ସୁରୁବିଶେଷ—2. A mossy growth found over very old fishes, crabs etc.

**ପଲପଲ**—ଦେ. ଅ—ପଲକାପଲ (ଦେଖ)
Palapala — Palakāpala ( See )
(ପଲେ ପଲେ—ଅନ୍ୟରୂପ) ଆସିବେଁ ଦଉଡ଼, ଦୁଲୁଁ ଡେରେଁ ବଳ
ଶିଷ୍ଟେଶଣି ଲେଉରେ ପଲେପଲେ – ଜଗନ୍ନାଥ. ମହାଯାତ୍ରା ।

**ପଲ(ଲ)ବ**—ସଂ. ବି. ( ପଲ=ଅମିଷ+ବା ଧାତୁ=ପାଇବା+କରଣେ. ଅ )—ପୋଳୁହ; ମାଛଙ୍କୁ ମାଡ଼ିବସିବାର ବାଉଁଶ ପାଉଁଥ ନିର୍ମିତ ଯନ୍ତ୍ରବିଶେଷ—A basket-like contrivance for catching fish by pouncing upon them.
Pala(la)ba
ପଲୋ
झाबा
ଗ୍ରା. ବି (ସଂ. ପଲ୍ଲବ)—ପତ୍ର—Leaf.

**ପଲବିବା**—ଦେ. କ୍ରି. ( ପଦ୍ୟ ) ( ସଂ. ପଲ୍ଲବିତ )—୧ । ( ଗଛରୁ ) ପତ୍ର କଅଁଳିବା; ଢୁଅଁ ଦେବା, ପଲ୍ଲବିତ ହେବା—
Palabibā
ପଲବା 1. ( a tree ) To shoot forth; to bring forth
पल्लवना (ପଲ୍ଲବିବା—ଅନ୍ୟରୂପ) leaves and shoots.
୨ । ଉଦ୍ରିକ୍ତ ହେବା—2. To be excited.
୩ । ଅଗ୍ରସର ହେବା—3. To advance
୪ । ବୃଦ୍ଧି ପ୍ରାପ୍ତ ହେବା—4. To increase.

**ପଲମ**—ଦେ. ବି—ବଡ ଶରା, ମାଟିର ତେଲଭଜଣୀ, ହାଣ୍ଡି ମୁହଁର ଢାଙ୍କୁଣୀ—
Palama A shallow concave earthen pan used as a
ସରା ढक्कन, चपनी cover for earthen pots and as a frying pan.

**ପଲମ ପେଟା**—ଦେ. ବିଣ—ଯାହାର ପେଟ ପଲମ ପରି ଚଉଡ଼ା ଓ ଫୁଲୁକା—Pot-bellied.
Palama petā
(ପଲମ ପେଟେଇ, ପଲମ ପେଟୀ—ସ୍ତ୍ରୀ )
( ପଲମ ପେଟୁଆ, ପଲମ ପେଟୁଆ—ଅନ୍ୟରୂପ )

**ପଲଳ**—ସଂ. ବି. ( ପଲ୍ ଧାତୁ+ସଂଜ୍ଞାର୍ଥେ. ଅଳ )—୧ । ମାଂସ—
Palala 1. Flesh; meat.
୨ । ପଙ୍କ—2. Mud; mire.
୩ । ନଦୀ ପ୍ରଭୃତିର ପଟୁ—3. Alluvial deposit.
୪ । ତିଳ ଓ ଚିନିଦ୍ୱାରା ପ୍ରସ୍ତୁତ ମିଷ୍ଟାନ୍ନବିଶେଷ, ଖଜା—
4. A kind of sweetmeat.
୫ । ( ପଲ=ମାଂସ+ଲା ଧାତୁ, ଗ୍ରହଣ କରିବା+ଅ ) ରାକ୍ଷସ—
5. A demon.

**ପଲଲାଶୀ**—ସଂ. ବିଣ. ପୁଂ. ( ପଲଲ+ଅଶ୍ ଧାତୁ=ଖାଇବା+କର୍ତ୍ତୃ. ଇନ୍; ୧ମା. ୧ବ. )—ମାଂସାଶୀ—Carnivorous;
Palalāsi
( ପଲଲାଶିନୀ—ସ୍ତ୍ରୀ ) flesh-eating.

**ପଲଲୀୟ ଉପାଦାନ**—( ଆଧୁନିକ ବିଜ୍ଞାନ ପରିଭାଷା )—ଯେଉଁ ଖାଦ୍ୟରେ ମାଂସର ଉପକରଣମାନ ଥାଏ—
Palaliya upādāna
Carbohydrates.

**ପଲସ୍ତରା**—ବୈଦେ. ବି. ( ଇଂ. ପ୍ଲାଷ୍ଟର )—
Palastarā ଗୃହର କାନ୍ଥ ଉପରେ ପତଳା ସ୍ତରରେ ମାଟି ବା
(ପଲସ୍ତା—ଅନ୍ୟରୂପ) ଚୂନର ଲେପ—Plastering.
ପଲସ୍ତାରା पलस्तर

**ପଲସ୍ତରା କରିବା**—ଦେ. କ୍ରି—ଘରର କାନ୍ଥରେ ସମତଳ ଭାବରେ ମାଟି ବା ଚୂନର ସ୍ତର ବୋଳିବା—
Palastarā karibā
ପଲସ୍ତାରା କରା To plaster the wall with mud
पलस्तर करना or me.

**ପଲସ୍ତି**—ବୈଦେ. ପ୍ରାଦେ. (ଗଞ୍ଜାମ) ବି. (ଇଂ. ପ୍ଲାଷ୍ଟର, ତେ. ପାଲସ୍ତ୍ରୀ)—
Palasti ୧ । ଡାକ୍ତରମାନଙ୍କ ବ୍ୟବହୃତ ପୋଲ୍ଟିସ୍—
1. Plaster; poultice.
୨ । ମଲମ—2 Ointment; liniment.

**ପଲା**—ଦେ. ବି. (ସଂ. ପରିମାଣ ବାଚକ ପଲ, ଭୁଲ. ସଂ. ପଳଘ=ଜଳ ପାତ୍ର)—ଭାଣ୍ଡ ମଧ୍ୟରୁ ତେଲ ଘିଅ ଆଦି ଉଠାଇବା ନିମନ୍ତେ ବ୍ୟବହୃତ ଏକ ପ୍ରକାର ଲୁହା ଚାମୁଚ ( ଏଥିରେ ଦଣ୍ଡ ବା ବେଣ୍ଟ ପାତ୍ରଠାରୁ ସମକୋଣ ହୋଇ ଉପରକୁ ଉଠି ଥାଏ)—A spoon or ladle with an upright handle for lifting oil, ghee etc from a jar.
Palā
ପଳୀ
पली, कोइआ
କ୍ରି. (ପଳାଇବା କ୍ରିୟାର ଅନାଦରାର୍ଥକ ଅନୁଜ୍ଞା ଦ୍ୱିତୀୟ ପୁରୁଷରେ ରୂପ)—ତୁ ପଳାଇ ଯା—(Thou) Go away; be gone.
ପାଲା
भागो
(ଯଥା—ମୋ କୁକୁଡ଼ା ଭାଉ ଦୁଷ୍ଟ—କହୁଛି ମାରେ ଠୁଟି ଠୁଟି, ଦୂର ପଳା ଦୂର ପଳା—ଶିଶୁ ଗୀତ । )

**ପଲ୍ଲା**—ଦେ. ବି. (ସଂ. ପର୍ଣ୍ଣଶାଳା; ସଂ ପଲ୍ଲୀ, ଭୁଲ. ତେ. ପଲ୍ଲ)—
Palā ୧ । ପତ୍ର କୁଡ଼ିଆ, ପର୍ଣ୍ଣଶାଳା—1. A hut made of
ପାଭାରକୁଁଡେ झोंपड़ी, पत्तकुटी leaves.
ସେହି ବଂକ୍ତି ·· ··ଅଳାର ପଲ୍ଲରୁ ବାହାର ଅସିଲେ ।
ଜଗନ୍ନାଥ. କବେଣ୍ଡା ।
୨ । କ୍ଷୁଦ୍ର କୁଡ଼ିଆ—2. A tiny hut.
୩ । କ୍ଷୁଦ୍ର ଘର; କୁଡ଼ିଆ—3. Cottage.
पाल्ला, पलड़ा ୪ । (ସଂ. ପଲ) ତରାଜୁର ଦୁଇ ପାଖରେ ଥିବା ପାତ୍ର—
ପାଲ୍ଲା 4. The scale pans of a balance.
ପ୍ରାଦେ. ୧ । (ସମ୍ବଲପୁର) ବି—ତୁଷାର; କାକର—Dew
୨ । (ଗଞ୍ଜାମ)—ତଳି; ଗୁଚ୍ଛଗଛ—Seedling.
( ଯଥା—ଧାନପଲ୍ଲା=ଧାନତଳି)
୩ । (ଗଡ଼ଜାତ)—ବାଘ ଆଦି ହିଂସ୍ର ଜନ୍ତୁଙ୍କୁ ଶିକାର କରିବାକୁ ଶିକାରୀ ଲଗି ରହିବା ପାଇଁ ଭୂମିରେ ଖୋଳାଯାଇ ଡାଳ ପତ୍ର ଆଦିରେ ମୁହଁ ଘୋଡ଼ା ଯାଇଥିବା ଗାତ—
A pit dug in the ground and covered over with twigs and leaves under which a hunter lies in ambush.
୪ । (ସିଂହଭୂମ) ବିଣ—କ । ପୋଲ, ଫମ୍ପା—1. Hollow.
ଖ । ମାଗଣା, ମୋଫତ—2. Got gratis.

**ପଲ୍ଲଇ**—ଦେ. ବି.—( ସଂ. ଗୋ-ପାଳକ )—
Palāi
ପଲେଇ, ପଲେ } ଅନ୍ୟରୂପ ୧ । ଗଉଡ଼ମାନଙ୍କ ଜାତିର ପ୍ରଧାନ ବ୍ୟକ୍ତି—
1. The headman of cowherds.
୨ । ଗଉଡ଼ମାନଙ୍କର ବଂଶଗତ ଉପାଧିବିଶେଷ—
2. A family-title of cowherds.

୩ । ପୋଲେଇ, ରାଜାଙ୍କର ଭୃତ୍ୟବିଶେଷଙ୍କ ଉପାଧି—
3. Title of a class of servants of a Raja.

ପଳା(ଳେ)ଇ ପଶିବା—ଦେ. କ୍ରି—ଭୟରେ ବିପଦରୁ ପଳାଇ ଯାଇ ଅନ୍ୟତ୍ର
Palā(le)i pasibā ଆଶ୍ରୟ ନେବା— To flee from
পালিয়ে ঢুকা danger and take shelter in some
पलाकर छीपना place in fear; to take refuge.

ପଳାଇ ପଶିଲି ମାଉସୀ ଘରେ
ମାଉସୀ ମାରିଲା ବାଡ଼ହରେ—ଢଗ।

ପଳା(ଳେ)ଇବା—ଦେ. କ୍ରି. ( ସଂ. ପଳାୟନ )—
Palā(le)ibā ୧ । ପଳାୟନ କରିବା—1. To fly away;
পলান, পালান भागना, पलाना to flee.

୨ । ଅନ୍ତର୍ହିତ ହେବା, ଲୋପ ପାଇବା—
2. To disappear.

ସେ ମୃଗ ପ୍ରଭୁଙ୍କ ମହିମା ଦେଖି ପଳାଇ ଦୁଃଖ ଯାମିନୀ।
ମଧୁସୂଦନ, ଉତ୍କଳଗାଥା।

୩ । ( ପାଳିବା କ୍ରିୟାର ପ୍ରୟୋଜକ ରୂପ )—
পালান ଅନ୍ୟ ଦ୍ୱାରା ପାଳିତ କରାଇବା—3. To cause to be
पलवाना brought up or reared by another.

ପ୍ରାଦେ. (ଗଞ୍ଜାମ) କ୍ରି—୧ । କୌଣସି ସ୍ଥାନରୁ ଚାଲି ଯିବା—
1. To depart, to go away from a place.
୨ । ଦ୍ରୁତଗତି କରିବା—2. To move swiftly.

ପଲଇବା—ପ୍ରାଦେ. (ସମ୍ବଲପୁର) କ୍ରି. (ଳ ସ୍ଥଳରେ ଲ ଉଚ୍ଚାରଣ )—
Palāibā ପଳାଇବା (ଦେଖ)—Palāibā (See)

ପଳା(ଳୋ)ଇ ଯିବା—ଦେ. କ୍ରି—ଦ୍ରୁତ ଗତିରେ କୌଣସି ସ୍ଥାନ ତ୍ୟାଗ
Palā(le)i jibā କରିବା—To run away from a place.
পালিযে যাওয়া भागजाना, पलाजाना

ପଳଉଣି—ଦେ. ବି. ( ସଂ. ପଳାୟନ )—
Palāuni ଦ୍ରୁତ ଗତିରେ କୌଣସି ସ୍ଥାନ ତ୍ୟାଗ କରି ଚାଲିଯିବା—
পালান पलाना, परना Fleeing away; swift motion.

ସେ ସରସ ପଳାଉଣି ବେଳ କଳା କଳାପ କଙ୍କିଣୀ ରବ।
କବିସୂର୍ଯ୍ୟ, ସଙ୍ଗୀତ।

ପଲଓ(ଉ)—ବୈଦେ. ବି. (ଫା)—ପଲାଉ ( ଦେଖ )
Palāo(u) Palāu ( See )

× × × × ତୋମ୍ଭମାନଙ୍କ ଖାନା ପଲଓ ସକାଶେ ଏକଣ ଚାଉଳ ବହୁତ ହେବ—
ଫକୀରମୋହନ, ଛମାଣ ଅଠଗୁଣ୍ଠ।

ପଳାଗ୍ନି—ସଂ. ବି. (ଷଷ୍ଠୀ ତତ୍, ପଳ=ମାଂସ+ଅଗ୍ନି, ମାଂସର ଅଗ୍ନି
Palāgni ସ୍ୱରୂପ)—ପିତ୍ତ—Bile.

ପଳାଙ୍ଗ—ସଂ. ବି. (ବହୁବ୍ରୀହି; ପଳ=ମାଂସ ପ୍ରଧାନ ଅଟେ ଅଙ୍ଗ ଯାହାର)
Palāṅga ଶିଶୁମାର, ଶୁଶୁକ—A purpoise

ପଲାଞ୍ଚିଆ—ଦେ. ବି. (ସଂ. ପଲ୍ୟାୟଣ)—ହାତୀର ସାଜବିଶେଷ—
Palāñchiā A kind of elephant's saddle.

ହାଉଦା ଅମାର ଅମ୍ବାରି ଜୋପର ପଲାଞ୍ଚିଆ ଘଣ୍ଟି ନାଦ।
ବ୍ରଜନାଥ, ସମରତରଙ୍ଗ।

ପଲାଣ—ଦେ.ବି. (ସଂ. ପର୍ଯ୍ୟାଣ, ପଲ୍ୟାଣ, ପ୍ରା. ପଲ୍ଲାଣ)—
Palāṇa ୧ । ଥୋଡ଼ଥା ବଳଦଙ୍କ ପିଠିରେ ଲଦାଯିବା ଅଖାର ଆସ୍ତରଣ-
(ପଲ୍ଲାଣ—ଅନ୍ୟରୂପ) 1. Pack-saddle.
পালান ଗାଣ୍ଡି ଠାଇଁ ବଳଦ ଅଣିଥିଲେ, ତାହା ଉପି ଖାଇଯାଇ ପଲାଣ।
पालान ଫକୀରମୋହନ, ଗଳ୍ପସ୍ୱଳ୍ପ।

୨ । (ସଂ ପଲ୍ୟାୟଣ) ହାତୀ ଉପରେ ପଡ଼ିବା ଅଖାର ଗଦି, ଯାହା
ଉପରେ ହାଉଦା କସାଯାଏ —
2. Pack-saddle for elephant.
୩ । ଯୁଦ୍ଧସଜ୍ଜା, ସେନା ସାଜିବା—
3. Battle-array; preparing soldiers for battle.

ପ୍ରାଦେ (ଗଞ୍ଜାମ) ବି—ନବ ପ୍ରସୂତ ଗାଈଙ୍କ ପ୍ରସବ ଦ୍ୱାରରୁ
ଫୁଙ୍କିବା; ଗାଈକୁ ଧରିବା—Blowing air into the
abdomen of a newly delivered milch cow.

ପଲାଣିବା—ଦେ. କ୍ରି (ସଂ. ପର୍ଯ୍ୟାଣ)—
Palāṇibā ୧ । ଥୋଡ଼ ବଳଦ ଉପରେ ପଲାଣ ଲଦିବା—
পালানকষা 1 To put the pack saddle on the back
पलानाना of a pack-bullock.
୨ । ଘୋଡ଼ା ପିଠିରେ ଜିନ୍ ଓ ହାତୀ ପିଠିରେ ଗଦି ପକାଇବା—
2. To put the saddle on a horse or the pack-saddle on an elephant.
୩ । ସେନାଙ୍କୁ ସୁସଜ୍ଜିତ କରିବା—
3. To array the soldiers for battle.

ପଲାଣ୍ଟି—ପ୍ରାଦେ (ଗଡ଼ଜାତ) ବି—ପତଳା ବୁଣା ହୋଇଥିବା ଖୁଣ୍ଟିଆ—
Palāṇṭi A thinly woven reed-mat.

ପଲାଣ୍ଡୁ—ସଂ. ବି. [ପଲ୍ ଧାତୁ=( ରୋଗରୁ ) ରକ୍ଷା କରିବା+ଅଣ୍ଡୁ;
Palāṇḍu କପାଳକ]-ପିଆଜ—Onion.

ପଳାତକ—ଦେ. ବିଣ. (ସଂ. ପଳାୟିତ)—୧ । ପଳାଇ ଯାଉଥିବା—
Palātaka 1. Fleeing away; fugitive; deserting; run away.
୨ । ନିରୁଦ୍ଦେଶ—2. Absconding.
ବି—ଯେଉଁ ବ୍ୟକ୍ତି ପଳାଇ ଯାଉଥାଏ—
A run away; a fugitive; deserter.

ପଳାନ୍ନ—ସଂ ବି. [ମ.ପ.ଲୋ; ପଳ=ମାଂସ(ସହିତ ପକ୍ୱ)+ଅନ୍ନ]-ପଲାଉ-
Palānna A rich food consisting of rice boiled with ghee and meat.

ପଳାପ—ଗ୍ରା. ବି. (ସଂ. ପ୍ରଳାପ)—ପ୍ରଳାପ (ଦେଖ)—
Palāpa Pralāpa (See).

ସଂ. ବି—୧ । ହାତୀର ଗଣ୍ଡସ୍ଥଳ (ହେ. ଶ.)—
1. The temples of an elephant.
୨ । ପଘା—2. Halter; rope (Apte).

ପଲା ପକା(କେ)ଇବା—ଦେ. କ୍ରି—କୌଣସି ସ୍ଥାନରେ ପର୍ଣ୍ଣଶାଳା ନିର୍ମାଣ
Palā pakā(ke)ibā କରିବା—To build or raise a
(ପଲା ମାରିବା—ଅନ୍ୟରୂପ) leaf-hut at any place.

ପଳାୟନ—ସଂ. ବି. (ପରା+ଅୟ୍. ଧାତୁ=ଗମନ କରିବା+ଭାବ. ଅନ)
Palāyana ୧ । ଭୟ ହେତୁ କୌଣସି ସ୍ଥାନ ତ୍ୟାଗ—
(ପଳାୟିକ, ପଳାୟିତ—ବିଣ) 1. Flying away through fear.
୨ । ଚଞ୍ଚଳ ଦୌଡ଼ିକରି ଚାଲିଯିବା—
2. Flight; fleeing away escape, taking to one's heels

**ପଲାୟନ ପର**—ସଂ. ବିଣ. ପୁଂ. (ବହୁବ୍ରୀହି, ପଲାୟନ+ପର)—
Palāyana para ୧ । ପଳାଇବାକୁ ଉଦ୍ୟତ—
(ପଲାୟନପରା—ସ୍ତ୍ରୀ) 1. Ready to flee away.
୨ । ପଲାୟମାନ, ପଳାଉଥିବା—2 Fleeing away.

**ପଲାୟମାନ**—ସଂ ବିଣ. ପୁଂ. (ପରା+ଅୟ୍. ଧାତୁ+କର୍ତ୍ତୃ. ଆନ)—
Palāyamāna ପଳାଉଥିବା—Fleeing away; abscon-.
(ପଲାୟମାନା—ସ୍ତ୍ରୀ) ding, taking to one's heels.

**ପଲାୟିତ**—ସଂ. ବିଣ. ପୁଂ. (ପରା+ଅୟ୍. ଧାତୁ+କର୍ତ୍ତୃ. ତ)—
Palāyita ୧ । ପଳାଇ ଯାଇଥିବା—1. Fled; run away.
(ପଲାୟିତା—ସ୍ତ୍ରୀ) ୨ । ନିରୁଦ୍ଦିଷ୍ଟ—2. Absconded.

**ପଲାଲ**—ସଂ. ବି. (ପଲ=କୁଟା+ସଜ୍ଞାର୍ଥେ. ଅଲ)—୧ । ପାଳ, କୁଟା—
Palāla 1. Crushed and grainless straw.
୨ । ଶୁଖିଲା ଘାସ—2. Hay.
୩ । ଶସ୍ୟଶୂନ୍ୟ ତୃଣଦଣ୍ଡ—3. Cornless stem of grass.

**ପଲାଲ ଦୋହଦ**—ସଂ. ବି. (ବହୁବ୍ରୀହି; ପଲାଲ ଦ୍ୱାରା ଦୋହଦ ହୁଏ
Palāla dohada ଯାହାର; ପାଳ ବାନ୍ଧିଲେ ଆମ୍ବ ଗଛର
ମୁକୁଳୋଦ୍ୟମ ହୁଏ)—ଆମ୍ବ ଗଛ (ହି. ଶବ୍ଦସାଗର)—
Mango tree.

**ପଲା(ଳା)ଶ**—ସଂ. ବି. (ପଲ୍ ଧାତୁ—ଯିବା+ଅ=ପଲ, ଅଶ୍ ଧାତୁ=
Palā(lā)śa ବ୍ୟାପିବା+ଅ=ଅାଶ; ପଲ+ଆଶ, କିମ୍ବା ପଲ=
ଓ. ପଳାଶ ପତ୍ର+ଅଶ୍ ଧାତୁ=ଭୋଗ
ପଲାଶ କରିବା+କର୍ତ୍ତୃ. ଅ)—
ଢାକ୍, ପଲାଶ୍, ତେସୁକାପେଡ୍, ୧ । କିଂଶୁକ—1. The Dhak
କଙ୍କିଆ, କନ୍‌କୈରି ଚିଚ୍‌ସା tree; Butea Frondosa.
ସଂ. ପର୍ଯ୍ୟାୟ — ପଲା(ଳା)ଶ, କିଂଶୁକ, ପର୍ଣ୍ଣ, ଯାଜ୍ଞିକ, ରକ୍ତପୁଷ୍ପକ, କ୍ଷାର ଶ୍ରେଷ୍ଠ, ବାତପୋଥ, ବ୍ରହ୍ମବୃକ୍ଷ, ବ୍ରହ୍ମବୃକ୍ଷକ, ବ୍ରହ୍ମୋପନେତା, ସମିଦ୍‌ବର, କରକ, ତ୍ରିପତ୍ରକ, ବ୍ରହ୍ମପାଦପ, ତ୍ରିପର୍ଣ୍ଣ, ପଲାଶକ, ରକ୍ତ ପୁଷ୍ପ, ପୂତଦ୍ରୁ, କାଷ୍ଠଦ୍ରୁ, ବୀଜ ସ୍ନେହ, କୃମିଘ୍ନ, ବକ୍ର ପୁଷ୍ପକ, ସୁପର୍ଣ୍ଣୀ ।

[ଦ୍ର—ଏହା ଶିମ୍ବାଦି ବର୍ଗର ମଧ୍ୟମାକୃତି ତରୁ ବିଶେଷ । ଗଛ ବଙ୍କା ଓ ଗଣ୍ଠିଆ; ପତ୍ର ତ୍ରିପର୍ଣ୍ଣ । ଶୀତ ଶେଷରେ ଗଛରୁ ପତ୍ର ଝଡ଼ିପଡ଼େ ଓ ବସନ୍ତାଗମରେ ଶୁକଚଞ୍ଚୁପରି ଚୋପା ନାଲି ଫୁଲରେ ଥୁଣ୍ଟା ଗଛ ପୂର୍ଣ୍ଣ ହୋଇଯାଏ । ଏହି ଗଛ ଭାରତର ସର୍ବତ୍ର ଦେଖାଯାଏ । ଏଥିର ଛାଲ ଚିରଦେଲେ ଏକପ୍ରକାର ରକ୍ତବର୍ଣ୍ଣ ନିର୍ଯ୍ୟାସ (Bengal kino) ବାହାରେ । ଏହାର ଫୁଲକୁ ପାଣିରେ ସିଝାଇଲେ ଏକପ୍ରକାର ନାଲିରଙ୍ଗ ବାହାରେ । ପୂର୍ବେ ଏହାର ରଙ୍ଗଦ୍ୱାରା ଅମ୍ବରକୁ ରଞ୍ଜିତ କରା ଯାଉଥିଲା । ଫୁଲ ଝଡ଼ିଗଲେ ଚେପଟା ଓ ଚଉଡ଼ା ଛୁଇଁ ହୁଏ, ଛୁଇଁରେ ଚେପଟା ବୀଜ ଥାଏ । ପଳାଶ ବୀଜକୁ ପଳାଶ ପାପଡ଼ୀ କହନ୍ତି ।

ଦେଖିବାକୁ ପଳାଶ ଗଛପରି, କିନ୍ତୁ ସ୍ଥୂଳତର ଏକପ୍ରକାର ଲଟାଣିଆ ଗୁଳ୍ମକୁ ଭୂଇଁପଳାଶ (ସଂ. ଭୂପଲାଶ; ହସ୍ତିକର୍ଣ୍ଣ ପଳାଶ) ବୋଲାଯାଏ (Butea Superba) । ଏହାର ଫୁଲ ପଳାଶ ଅପେକ୍ଷା ବଡ଼ । ଏହା ମଧ୍ୟ ଓ ଦକ୍ଷିଣ ଭାରତରେ ଜନ୍ମେ; (ଯୋଗେଶଚନ୍ଦ୍ର) । ପଲାଶର ବୀଜ ପେଟର କୃମିଘ୍ନ । ଫୁଲ, ଛେଲି ଓ ମଞ୍ଜି ଔଷଧରେ ଲାଗେ । ପତ୍ର ମୋଟା ଥିବାରୁ ତାକୁ ସିଇଁ କରି ଖଲିପତ୍ର କରାଯାଏ, ଠଉପଣା କରାଯାଏ । ଉତ୍ତରଭାରତରେ ଧୂଆଁ ପତ୍ରର ଗୁଣ୍ଡ ଭରତି କରି ଏ ପତ୍ରକୁ ଗୁଡ଼ାଇ ପିକା ବଲାଯାଏ । ପଳାଶ ଗଛର ଛାଲକୁ ଛେଚ ଡଙ୍ଗା ଓ ଜାହାଜର ଫାଟରେ ପୂରାଯିବା ଅସ୍ତା ତିଆରି କରାଯାଏ । ପ୍ରତ୍ୟେକ ଡେଙ୍ଗରେ ୩ଟ ପତ୍ର ଲାଗିଥାଏ । ଏ ଗଛର ଛାଲର ଅଂଶରେ ଦଉଡ଼ି ତିଆରି ହୁଏ । ଏଥିର ଡାଳଗୁଡ଼ିକୁ ସିଝାଇ କରି ଏକ ପ୍ରକାର ଖଇର ତିଆରି କରାଯାଏ, ଏ ଗଛର ବକଲରୁ ଏକ ପ୍ରକାର ଅଠା ବାହାରେ । ବୈଦ୍ୟକ ମତରେ ଏଥିର ଫୁଲ ବାତବର୍ଦ୍ଧକ, ମଳରୋଧକ, ତୃଷା, ଦାହ, ପିତ୍ତ, କଫ, ରକ୍ତବିକାର, କୁଷ୍ଠ ଓ ମୂତ୍ରକୃଚ୍ଛ୍ର ନାଶକ । ଏଥିର ଫଳ କଫ, ବାତ, ଉଦରରୋଗ, କୃମି, କୁଷ୍ଠ, ଗୁଳ୍ମ, ପ୍ରମେହ, ବାର୍ଶ ଓ ଶୂଳନାଶକ । ଏଥିର ବୀଜ ସ୍ନିଗ୍ଧ, କଫ ଓ କୃମିନାଶକ । ଏଥିର ଅଠା ମଳରୋଧକ ଓ ଗ୍ରହଣୀ, ମୁଖରୋଗ, କାସ ଓ ସ୍ୱେଦ ଦୂରକାରକ ।

ଏ ବୃକ୍ଷକୁ ହିନ୍ଦୁମାନେ ପବିତ୍ର ଜ୍ଞାନ କରନ୍ତି । ଏ ବୃକ୍ଷର ଉଲ୍ଲେଖ ବେଦରେ ମିଳେ । କେତେକ ଯଜ୍ଞପାତ୍ର ପଳାଶ କାଠରେ ପ୍ରସ୍ତୁତ ହୁଏ । ଉପନୟନ କାଳରେ ବ୍ରାହ୍ମଣକୁମାର ପଳାଶ ଦଣ୍ଡ ଧାରଣ କରେ । ବସନ୍ତକାଳରେ ଉଜ୍ଜ୍ୱଳ ରକ୍ତବର୍ଣ୍ଣ ଶୁକନାସାବତ୍ ପୁଷ୍ପରେ ପତ୍ରଶୂନ୍ୟ ଡାଳମାନ ଲଦି ହୋଇ ଅତି ରମଣୀୟ ଦେଖାଯାଏ ଓ ଫୁଲ ନିର୍ଗନ୍ଧ, ଏଥିପାଇଁ ସଂସ୍କୃତ କବିମାନେ ଏ ଫୁଲର ସୌନ୍ଦର୍ଯ୍ୟ ଏବଂ ଗନ୍ଧଶୂନ୍ୟତା ବିଷୟରେ ଅନେକ ଲେଖିଯାଇ ଅଛନ୍ତି—ହି. ଶବ୍ଦସାଗର]

୨ । (ପଲ=ପତ୍ର+ଅଶ)—ପତ୍ର—2. Leaf.
୩ । ଫୁଲର ପାଖୁଡ଼ା—
3. Petal of a flower.
୪ । ପତ୍ର ପରି ହରିଦ୍‌ବର୍ଣ୍ଣ—4. Emerald colour.
୫ । ମଗଧ ଦେଶ (ଶୋନ ନଦୀ ତୀରସ୍ଥ ଦକ୍ଷିଣ ବିହାର ଅଞ୍ଚଳ)—
5. Bihar (country); South Bihar.
୬ । (ପଲ=ମାଂସ+ଅଶ୍ ଧାତୁ ଖାଇବା+କର୍ତ୍ତୃ. ଅ)—ରାକ୍ଷସ—
6. Demon.
ବିଧିରେ ପଲାଶ ଲୁଧିର ସଖା ବିକର୍ଣି ସ ପୁଷ୍ପ ପରସ୍ୱେ ପଶା
(ପଲାଶ—ପଲାଶ ବୃକ୍ଷ. ରାକ୍ଷସ)—
ଭଞ୍ଜ—ବୈଦେହୀଶ ବିଳାସ ।
୭ । ପ୍ରେତ—7. Ghost.
୮ । ଗୃଧ୍ରଜାତୀୟ ପକ୍ଷି ବିଶେଷ (ହି. ଶ)—
8. A bird resembling the vulture.
୯ । ଲାକ୍ଷା—2. Red lac. (M. W.)
୧୦ । ଚୋପା ନାଲି ରଙ୍ଗ—
10. Cochineal. (M. W.)
୧୧ । ଶଟୀ; ଗନ୍ଧ ପଲାଶୀ—
11. Curcuma Zedoaria. (M. W.)
ବିଣ—୧ । ସବୁଜ ବର୍ଣ୍ଣ ବିଶିଷ୍ଟ; ଶ୍ୟାମଳ—
1. Green or emerald coloured.
୨ । ନିଷ୍ଠୁର—2. Cruel.
୩ । ନିର୍ଦ୍ଦୟ—3. Merciless; unkind.

ପଳାଶକ—ସଂ. ବି—(ପଳାଶ + ସ୍ୱାର୍ଥେ. କ)—୧ । ପଳାଶ ଗଛ ଓ ଫୁଲ
Palāsaka 1. The Dhak tree & flower.
୨ । ଶଠୀ—2. Curcuma Zedoaria. (M. W.)
୩ । କର୍ପୂର (ହି. ଶ.)—3. Camphor.
୪ । ଲାକ୍ଷା (ହି. ଶ.)—4. Red lac.

ପଳାଶ ନ(ଲ)ଇ—ପ୍ରାଦେ.(ଗଡ଼ଜାତ) ବି. (ସଂ. ନାମ ଭୂପଲାଶ, ହସ୍ତିକର୍ଣ୍ଣ
Palāsa na(la)i ପଳାଶ)—ଲଟାଣିଆ ପଳାଶ ଜାତୀୟ ଗୁଳ୍ମ—
Butea Superba (creeping plant).

ପଳାଶ ପାପଡ଼ା(ଡ଼ି)—ଦେ. ବି. (ସଂ. ପଳାଶ + ପର୍ପଟ, ଏ ଛୁଇଁ ଓ ମଞ୍ଜି
Palāsa pāparḍā (rḍi) ପର୍ପଟ ପର ପତଳା ଥିବାରୁ)—
पलाशपापडी ପଳାଶ ମଞ୍ଜି ବା ଛୁଇଁ—The seed or
पलाश पापड़ी bean of Butea Frondosa tree.
[ ଦ୍ର—ଏହା ଔଷଧରେ ବ୍ୟବହୃତ ହୁଏ ।]

ପଳାଶିବା—ଦେ. କ୍ରି. (ସଂ. ପଳାୟନ)—(ହାତୀ) ବେଗରେ ଗମନ
Palāsibā କରିବା—To walk swiftly (said of
झटकारना an elephant).
ପଳାଶିଲ୍ଲ ବେଳେ ପାଦୁଶଙ୍କେ କୋଶେ ଗୁଲୁଥାଇ ଉରରେ ।
ଶିଶୁଗୀତ, ଝୁଲଝାନ ।

ପଳା(ଲା)ଶୀ —ସଂ.ବି.(ପଳାଶ=ପତ୍ର + ଅଚ୍ଛ ଅର୍ଥେ ଇନ୍, ୧ମା. ୧ବ)—
Palā(lā)si ୧ । ଖୀର ବା ଖୀରକୋଳ ଗଛ—
1 A kind of plum tree.
୨ । (ପଳ=ମାଂସ + ଅଶ୍ ଧାତୁ=ଖାଇବା + ଇନ୍) ରାକ୍ଷସ—
2. Demon.
୩ । ହିଂସ୍ର ଜନ୍ତୁ—3. Wild animal.
୪ । ପଳାଶ ନଇ (ଦେଖ)—4. Palāsa nai (See).
୫ । ବୃକ୍ଷ—5. A tree (M. W.).
୬ । ଶଠୀ—6. Curcuma Zedoaria(plant).
ବିଣ—୧ । (ପଳାଶ+ଇନ୍; ୧ମା. ୧ବ)—ପତ୍ର ଯୁକ୍ତ, ପତ୍ର ବହୁଳ—1. Leafy.
୨ । (ପୁଂ) (ପଳ=ମାଂସ+ଅଶ୍ ଧାତୁ=ଖାଇବା + ଇନ, ୧ମା.
(ପଳାଶିନୀ—ସ୍ତ୍ରୀ) ୧ବ)—ମାଂସାଶୀ—Carnivorous.
ଦେ. ବି. (ନାମ)—ବଙ୍ଗଦେଶର ଗ୍ରାମ ବିଶେଷ—
पलासी Name of a village in Bengal where the
पलासी battle of Plassey was won by the
English in 1757 A.D.

ପଳାଶୀ ଯୁଦ୍ଧ—ଦେ. ବି. (ଭାରତ ଇତିହାସ) ଖ୍ରୀ୧୭୫୭ ଶାଲରେ ପଳାଶୀ-
Palāsi juddha ଠାରେ ହୋଇଥିବା ଯୁଦ୍ଧ—
पलासी युद्ध The battle of Plassey in 1757 A D.
पलासीकी लड़ाइ [ ଦ୍ର—ଏହି ଯୁଦ୍ଧ କ୍ଲାଇବଙ୍କ ସଙ୍ଗେ ବଙ୍ଗଳାର ନବାବ ସିରାଜୁଦ୍ଦୌଲାଙ୍କର ହୋଇଥିଲା । ଏଥିରେ ସିରାଜୁଦ୍ଦୌଲା ପରାସ୍ତ ହୋଇଥିଲେ ଓ ବଙ୍ଗ ଇଂରାଜମାନଙ୍କ କରଗତ ହେଲା । ]

ପଳା ହେବା—ଦେ. କ୍ରି. (ପାଳିବାର କର୍ମବାଚ୍ୟରୂପ)—ଅନ୍ୟଦ୍ୱାରା ପାଳିତ
Palā hebā ହେବା—To be reared up.
(ପଳାଯିବା—ଅନ୍ୟରୂପ) ଯଥା—ଗଉଡ଼ଦ୍ୱାରା ବା ଛୁଆ ଗୁଡ଼ିକ ପଳା
पाला हओआ पाला होना ହୋଇଅଛନ୍ତି ।

ପଳି—ଦେ.ବି. (ଭୁଲ. ବ. ପଲି)—ପଙ୍କ ମାଟି (ନଦୀର)—
Pali Silt; alluvial deposit.

ପଲ୍ଲି(ଲ୍ଲୀ)—ଦେ. ବି. (ସଂ. ପଲ୍ଲୀ)—୧ । କ୍ଷୁଦ୍ର କ୍ଷୁଦ୍ର କୁଡ଼ିଆବିଶିଷ୍ଟ
Palli(lī) ଗ୍ରାମ—1. A hamlet of huts.
पल्ली ( ଯଥା—ଶବରୀ ପଲ୍ଲି । )
पुरवा, टोली ୨ । ଦଶ ଲକ୍ଷ ଗାଈଙ୍କର ସମଷ୍ଟି—
2. A collection of one million cows.
ଶତସହସ୍ରେକ ଗାଈ ହେଲେ ଗୋଗୋଷ୍ଠକ ବୋଲି
ସହସ୍ରେ ଗୋଷ୍ଠ ହୋଇଲେ ହୁଏ ଏକ ପଲ୍ଲି । ସାରଳା, ମହାଭାରତ ଅର୍ଣ୍ୟ

ପଲ୍ଲି(ଲ୍ଲୀ) କର—ଦେ. ବି—ଶବରମାନେ ଜଙ୍ଗଲରୁ କାଠପତ୍ର ଗୋଟାଇ
Palli(lī) kara ଆଣି ତାହା ସିଲାଇ କରି ଖଲିପତ୍ର ବିକ୍ରି କରିବା
[ପଲି(ଲ୍ଲୀ)ଟିକସ—ଅନ୍ୟରୂପ] ନିମନ୍ତେ ରାଜାଙ୍କୁ ଯେଉଁ ଟିକସ
ଦିଅନ୍ତି—A tax paid to a Raja for bringing
Sal leaves to be sewn into big feeding
plates.

ପଲିକ୍ନୀ—ସଂ. ବି. ସ୍ତ୍ରୀ—୧ । ପଳିତକେଶା ବୃଦ୍ଧା ସ୍ତ୍ରୀ—
Palikni 1. An old grey-haired woman (Apte).
୨ । ବାଳଗର୍ଭିଣୀ ଗୌ; ପହିଲି ଥର ଗର୍ଭ ଯାଇଥିବା ଗାଈ;
ଯେଉଁ ଗାଈ ପ୍ରଥମଥର ଗର୍ଭଧାରଣ କରିଅଛି (ହି. ଶ)—
2. A cow for the first time with calf.

ପଲିଘ—ସଂ. ବି—୧ । କଳଶ—1. Waterpot; pitcher(Apte).
Paligha ୨ । ଭିତକାନ୍ଥ, ପ୍ରାକାର—
2. Wall; rampart (Apte).
୩ । ଲୁହା ଗୋବମର ବା ଲୁହାର ମୁଦ୍ଗର—
3. An iron club or one studded with iron.
୪ । ଗୋଗୋଷ୍ଠ, ଗୁହାଳ—4. A cowpen (M. W.).
୫ । ଗୋପୁର; ଫାଟକ ଘର—5 The portalled gate-way of a building (Apte).
୬ । ଅର୍ଗଳ (ହି. ଶ)—6 A bar.
୭ । କାଚର ଜଳପାତ୍ର—7. A glass water-vessel. (M. W.).

ପଲିଟିକ(କା)ଲ୍—ବୈଦେ. ବିଣ. (ଇଂ. ପୋଲିଟିକାଲ୍)—ରାଜନୀତିକ—
Palitika(kā)l Political.
(ପଲିଟିକେଲ୍—ଅନ୍ୟରୂପ) ବୈଦେ. ପ୍ରାଦେ. (ଗଡଜାତ) ବି—
पलिटिकाल ପଲିଟିକାଲ ଏଜେଣ୍ଟ (ଦେଖ)
पलिटिकेल Palitikāl ejent (See)

ପଲିଟିକାଲ୍ ଏଜେଣ୍ଟ—ବୈଦେ. ବି. (ଇଂ)—ଗଡ଼ଜାତ ରାଜାମାନଙ୍କର
Palitikāl ejent ଓ ଗଭର୍ଣ୍ଣମେଣ୍ଟଙ୍କ ମଧ୍ୟରେ ରାଜକୀୟ ପ୍ରସଙ୍ଗ
पलिटिकाल एजेन्ट ପରିଚାଳନାର୍ଥ ନିଯୁକ୍ତ ଗଭର୍ଣ୍ଣମେଣ୍ଟଙ୍କ ପ୍ରତିନିଧି ଉଚ୍ଚ
पलिटिकेल एजेंट କର୍ମଚାରୀ—Political Agent.

ପଲିଟିକାଲ ଡିପାର୍ଟମେଣ୍ଟ—ବୈଦେ. ବି. (ଇଂ)—ସରକାରଙ୍କର ଯେଉଁ
Palitikāl dipārtment ବିଭାଗରେ ରାଜନୀତି ସମ୍ବନ୍ଧୀୟ ବିଷୟ-
पलिटिकेल डिपार्टमेंट ମାନ ବୁଝାଯାଏ—Political depart-
पलिटिकेल डिपार्टमें ट ment of the Government.

**ପଲ୍ଟିକ୍ସ**—ବୈଦେ ବ (ଇଂ)—ରାଜନୀତି—
Palitiks Politics.
पलिटिक्स **पालिटिक्स**

**ପଳତ**—ସଂ. ବ. (ପଲ୍ ଧାତୁ=ଗମନ କରିବା+ତ)—
Paḷita ୧ । ବୃଦ୍ଧାବସ୍ଥା ହେତୁ କେଶର ଶୁକ୍ଳତା, ବାଳ ପାଚିବା—
1. Greyness of the hair due to old age.
୨ । କର୍ଦ୍ଦମ, କାଦୁଅ, ପଙ୍କ—2 Clay; mud; mire.
୩ । ତାପ—3. Heat
୪ । ପାଚିଲାବାଳ, ଶୁକ୍ଳୀଭୂତ କେଶ—
4. Grey hair. (Apte)
୫ । କେଶଗୁଚ୍ଛ—5. A tuft of hair. (M. W.)
୬ । ଗଗ୍ଗୁଳ—6. Benzoin. (Apte)
୭ । ମରିଚ—7 Pepper. (Apte)
୮ । ଶିଳା ଜତୁ (ହ ଶ)—
8. Bitumen; asphalt
ବଣ—୧ । ବୃଦ୍ଧାବସ୍ଥାଯୋଗୁଁ ଶୁକ୍ଳୀକୃତ (କେଶ)—
(ପାଳତ୍ୟ—ବ) 1 Hoary; grey (hair)
୨ । ବଳବଳକା, ବଳସ୍ତୁକ୍ତ—2 Wrinkled.
୩ । ଜରାଗ୍ରସ୍ତ, ବୃଦ୍ଧ—2. Old, aged

**ପଳତା**—ବୈଦେ. ବ—(ଫା. ପିଲତାହ୍; ଭୁଲ, ଓଡ଼ିଆ ବଳତା, ସଂ. ବର୍ତ୍ତିକା) ୧ । ବସ୍ତ୍ର ଖଣ୍ଡ ନିର୍ମିତ ସ୍ଥୂଳ ବଳତା, ସଳତା; ବର୍ତ୍ତୀ, ମୋଟ ବତି—1. A stout wick for an oil lamp.
Paḷitā
पलिता
**पालता**
୨ । ବନ୍ଧୁକରେ ନିଆଁ ଲଗାଇବା ପାଇଁ ବ୍ୟବହୃତ ରଜ୍ଜୁ—
2. The match of a gun.
୩ । ବାଣରେ ନିଆଁ ଲଗାଇବା ପାଇଁ ବାରୁଦ ଦିଆଯାଇ ବଳା ଯାଇଥିବା ବଳତା; ରସ ବଳତା—3. A long wick containing gunpowder used to light fireworks.
୪ । ନାଳ ଘାଆ ଓ ବଥରୁ ପୂଜ ଆଦି ବାହାର କରିବା ନିମନ୍ତେ ବଥ ମୁହଁରେ ଦିଆଯିବା କାଠି ବା ସୂତା—4. A twig or skein of cotton thrust into a boil or sinus for the exudation of pus.

पलता ଦେ. ବ୍.—ନଳିତା ଶାଗ; ନଳିତା ପିତା—
**परबल** The bitter leaves of jute plant.

**ପଳିତା ପତ୍ର**—ପ୍ରାଦେ. (ବାଲେଶ୍ୱର) ବ.—୧ । ପଟୋଲଗଛର ଲତା ଓ ପତ୍ର—1 The twigs and leaves of Patoḷa creeper.
Paḷita patra
पलते पाता
**परबलकी पती** [ଦ୍ର—ଏହାର ରସ ଛିଲ୍ତ ଓ ଉପକାରୀ ।]
୨ । ପସାରୁଣୀ ଲତାର ପତ୍ର—
2. The leaves of Pasāruṇi creeper.
[ଦ୍ର—ଏହା ବାଛି କମ୍ପା ସିଦ୍ଧ କରି ଶ୍ରେଣୀ ପାଇଁ ଝୋଲ କରି ଯାଏ ।]

**ପଳିତୀ**—ସଂ. ବଣ. ପୁଂ (ପଳିତ+ଇନ୍, ୧ମା. ୧ବ)—ଯାହାର ବାଳ ପାଚି ଯାଇ ଥିଛି—Greey-haired.
Paḷiti
(ପଳିତିନୀ—ସ୍ତ୍ରୀ)

**ପଲିଶ୍**—ବୈଦେ.ବ.(ଇଂ)—ପାଲିଶ, ଘସା ମଜା ହେବାରୁ ଚିକ୍କଣତା—
Paliś Polish
पालिस **पालिश** ବଣ—ଘସା ମଜା ହୋଇ ଚିକ୍କଣ ଦେଖାଯାଉଥିବା-Polished.

**ପଲିଶି**—ବୈଦେ. ବ. (ଇଂ)—
Paliśi ୧ । ଜୀବନ ବୀମା କରିବାର ନିଦର୍ଶନ ଦଲିଲ—
पलिसी 1. Life Insurance Policy.
**पालिसी** ୨ । ନୀତି, କାର୍ଯ୍ୟ ସାଧନର ରୀତି—2. Policy.
୩ । କୂଟ ନୀତି, ଚାଲ୍‌ବାଜୀ—
3. Crooked policy; machiavellianism.

**ପଲିଶି ବାଜ୍**—ବୈଦେ. ବଣ. (ଇଂ. ପଲିଶୀ+ଫା. ପ୍ରତ୍ୟୟ ବାଜ୍)—
Paliśi bāj ଚାଲ୍‌ବାଜ୍, କାର୍ଯ୍ୟ ସାଧନାର୍ଥେ ଯେ କୂଟ ନୀତି
पलिसीबाज ଅବଲମ୍ବନ କରେ—Machiavellian.
**चालबाज** (ପଲିଶିବାଜୀ—ବ)

**ପଲିଶି ହୋଲ୍ଡର୍**—ବୈଦେ. ବ. (ଇଂ)—
Paliśi holdar ଯେଉଁ ଲୋକ ଜୀବନ ବୀମା କରିଥାଏ—
Policy-holder; the holder of an Insurance Policy.

**ପଲେ**—ଦେ ବଣ—ଏକ ପଲ ପରିମିତ, ଗୁରୁ କରିସି ଓଜନର
Pale Measuring or weighing one Paḷa.
एक पल ବ—ଏକ ପଲ ମାତ୍ର—One Paḷa only.
**एकपल**

**ପଲେ**—ଦେ. ବଣ—୧ । ଏକ ପଲ ବା ଏକ ଦଳ (ଗାଈ ଆଦି)—
Pale 1. One herd of.
एकदल ୨ । ବହୁ ସଂଖ୍ୟକ—2. A large number of; a crowd of.
**एकझुंड, एकदल**
(ଯଥା—ତା ଘରେ ପଲେ ଛୁଆ ।)
ବ ଓ ଅ.—ଏକ ଦଳ ମାତ୍ର—One herd only.

**ପଳେ(ଳୋ)ଇ**—ଦେ. ବଣ. ସ୍ତ୍ରୀ. (ସଂ. ପଲାୟିକା)—
Paḷe(ḷo)i ଯେଉଁ ସ୍ତ୍ରୀ ସ୍ୱାମୀ ସଂସର୍ଗକୁ ସୁଖ ନ ପାଇ ସବୁଦା ବାପ
छुडका, छुडुका ଘରକୁ ପଳାଏ—(a woman) Who does
**भगेडु, भगेली** not like to live with her husband and often runs away to her parental roof on very slight provocations

**ପଳେଇ ପଶା**—ଦେ. ବଣ. ପୁଂ—ଯେଉଁ ବ୍ୟକ୍ତି ଭୟରେ ଏକ ସ୍ଥାନରୁ
Paḷei paśā ପଳେଇ ଆସି ଅନ୍ୟ ବ୍ୟକ୍ତିର ଘରେ ଆଶ୍ରୟ ନିଏ—
**भगेडु, भगोडा** (a man) Who runs away from danger and takes shelter in another's roof through fear.
छुडका
୨ । ଭୟାଳୁ—2. Timid; coward.

**ପଳେଇ ପଶି**—ଦେ. ବଣ. ସ୍ତ୍ରୀ (ସଂ. ପଲାୟନ+ପ୍ରବେଶ)—
Palei pasi ୧ । ପଳେଇ (ଦେଖ)—1. Palei (See)
ପାଳାହୁଡୁକା ୨ । ଯେଉଁ ସ୍ତ୍ରୀ ସ୍ୱାମୀ ଘରୁ ପଳାୟନ କରି ଅନ୍ୟ
ଝଗେଲୀ, ହୁଷଗହଣ୍ଡୀ ପରିବାରରେ ପଶେ ବା ଆଶ୍ରୟ ନିଏ—
2. (a woman) Who runs away from her husbands roof and takes shelter in another family.

**ପଲ୍ଟଣ(ନ)** (ଇତ୍ୟାଦି)—ବୈଦେ. ବ—ପଲଟଣ ଇତ୍ୟାଦି (ଦେଖ)
Paltana (na) (etc) Palatana etc (See)

**ପଲ୍ୱଲ**—ସଂ. ବ. (ପଲ୍ ଧାତୁ=ଯିବା+ସଜ୍ଞାର୍ଥେ. ବଲ, ଯେଉଁଠାକୁ
Palwala ଗୋମେଷାଦି ପାଣି ପିଇବାକୁ ଯାଆନ୍ତି; ତୁଳ. ଇଂ. ପୁଲ, ପଣ୍ଡ, ଲାଟିନ୍—ପାଲସ୍, ଗ୍ରୀକ୍—ପାଲସ୍ )—
କ୍ଷୁଦ୍ର ଜଳାଧାର, ଡୋବା, ଗୁଆ—
Pool; very small tank, a small reservoir of water, puddle.
ରକ୍ତକ ଶ୍ୟାଡ ନଳୀ ଅଛ ଯୋଗି, ମନୋହର ନାଭି ପଲ୍ୱଲ ଦେଖି ।
ଭଞ୍ଜ. କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ।

**ପଲ୍ୱଲାବାସ**—ସଂ. ବ. (ବହୁବ୍ରୀହି, ପଲ୍ୱଲ+ଆବାସ)—
Palwalābāsa କଚ୍ଛପ, କଇଞ୍ଚ—Tortoise.

**ପଲ୍ୟଙ୍କ**—ସଂ. ବ. ( ପରି+ଅଙ୍କ, ର ଓ ଲ ର ଭେଦ ନ ଥିବାରୁ )—
Palyanka ୧ । ପର୍ଯ୍ୟଙ୍କ; ଖଟ, ପଲଙ୍କ—
1. Bedstead; couch.
୨ । ମଞ୍ଚ—2 Raised framework; scaffolding.
୩ । କୃଷି—3. Agriculture.
୪ । ପିଣ୍ଡି ଓ ଜଙ୍ଘପାରେ ଭର ଦେଇ ବସିବା ସମୟରେ ଅଣ୍ଟା ଓ ନଳ ଗୋଡ଼କୁ ଘୁଡ଼ାଇ କରି ବାନ୍ଧିବା ବସ୍ତ୍ର—4. A cloth wound the waist and legs while sitting on the heels and hams.
୫ । ଜଙ୍ଘପା ଓ ପିଣ୍ଡିକୁ ଭୂମିରେ ଲଗାଇ ବସିବା—
4 Sitting on the hams and heels.
[ଦ୍ର—ପଲ୍ୟଙ୍କ ଶବ୍ଦଯୁକ୍ତ ଶବ୍ଦମାନଙ୍କ ପାଇଁ ପର୍ଯ୍ୟଙ୍କ ଶବ୍ଦ ତଳେ ଦେଖ ।]

**ପଲ୍ୟୟନ**—ସଂ. ବ—(ପରି+ଅୟ୍, ଧାତୁ=ଯିବା, ବସିବା+ଅଧିକରଣେ; ଅନ, ଯାହା ଉପରେ ବସିବାକୁ ହୁଏ)—
Palyayana
୧ । ପଲାଣ, ଥୋଡ଼—1. Pack-saddle.
୨ । ଘୋଡ଼ାର ଜିନ୍—2. Saddle of a horse.
୩ । ଘୋଡ଼ାର ଲଗାମ—3 Rein; bridle. (Apte)

**ପଲ୍ଲ(ଧାତୁ)**—ସଂ—ଗମନ କରିବା; ଗତି କରିବା—
Palla(root) To go to move.

**ପଲ୍ଲ**—ସଂ. ବ. (ପଲ୍ ଧାତୁ+ଅ)—୧ । ଶସ୍ୟ ସଂରକ୍ଷଣ ସ୍ଥାନ, ଅମାର—
Palla Granary.
୨ । ଓଳିଆ—2. A packet made of straw and wound with straw ropes for storing corn.
ଦେ. ବ—ପଲ (ଦେଖ)—Pala, (See)

**ପଲ୍ଲବ**—ସଂ. ବ. (ପଲ୍. ଧାତୁ+କର୍ତ୍ତ୍ରି. କ୍ୱିପ=ପଲ୍, ପଲ୍+ଲବ=ଅଂଶ;
Pallaba ଯାହା ଯାଉଲେ ଝଡ଼ିପଡ଼େ)—୧ । ନୂଆପତ୍ର, କଅଁଳିଆ ପତ୍ର—1. New leaf; tender leaf.
୨ । ଶାଖାଗ୍ର, ଗଛର ନୂଆ କଅଁଳଥିବା ଛୋଟ ଡାଳ, କୁଆଁ—
2. Young shoot of a plant; a sprout.
୩ । ଗଛର ପତ୍ର—3. Leaf of a tree
୪ । ଶୃଙ୍ଗାର; କେଳି—
4. Coition, copulation; amorous sport
୫ । ବଳୟ, ଖଡ଼ୁ—5. Wristlet.
୬ । ବିଟ ପୁରୁଷ—6. Adulterer; paramour.
୭ । ପାଲ, କୁଟା—7. Cushed straw.
୮ । (ନାମ) ପହ୍ଲବ (ଦେଖ)—8. Palhaba. (See)
୯ । ବିସ୍ତାର—8; Expansion, spreading.
୧୦ । କଢ଼ି—10. Bud; blossom. (Apte)
୧୧ । ଅଲକ୍ତକ—11. Red dye for the feet. (Apte)
୧୨ । କଙ୍କଣ, ବଳୟ—
12. Bracelet; armlet. (Apte)
୧୩ । ବଳ (ହି. ଶ.)—13. Strength.
୧୪ । ଚପଲ୍ୟ (ହି. ଶ.)—
14. Restlessness; unsteadiness. (Apte)
୧୫ । ବସ୍ତ୍ରାନ୍ତ—
15. The end of a robe or garment (Apte).
୧୬ । ନୃତ୍ୟ କାଳରେ ହାତର ଏକପ୍ରକାର ସ୍ଥିତି (ହି. ଶ.)—
16. A particular posture of the hand during dancing.
୧୭ । (ପୁଂ.) କାମୁକ ବ୍ୟକ୍ତି; ନାଗର—
17. A libertine. (Apte)
ଦେ. ବ—(ସଂ. ପଲ୍ଲବ=ପତ୍ର)—କର ପଲ୍ଲବ, ଜଗନ୍ନାଥ ମହାପ୍ରଭୁଙ୍କ ହାତ ଅଗରେ ଲଗାହେବା ପୁଷ୍ପ ସଜ୍ଜିତ ପତ୍ରଚକ୍ର—
A circular slip of leaves overlaid with flowers put on the tip of the stumped hands of the image of Jagannātha.

**ପଲ୍ଲବକ**—ସଂ. ବ. (ପଲ୍ଲବ+କ)—୧ । ଜାର, ବିଟପୁରୁଷ—
Pallabaka 1. A paramour; libertine. (Apte)
୨ । ଅସ୍ୱାଭାବିକ ପ୍ରକ୍ରିୟାରେ ପୁରୁଷର କାମପ୍ରବୃତ୍ତି ଚରିତାର୍ଥକାରୀ ବାଳକ—2 A catamite. (Apte)
୩ । ବେଶ୍ୟାର ଇଆର—
3. The paramour of a harlot. (Apte)
୪ । ଅଶୋକ ଗଛ—4. The Asoka tree. (Apte)
୫ । ଏକପ୍ରକାର ମାଛ (ହି. ଶ.)—
5. A kind of fish. (Apte)
୬ । ପଲ୍ଲବ (ଦେଖ)—6. Pallaba. (See)

**ପଲ୍ଲବଗ୍ରାହିତା(ତ୍ୱ)**—ସଂ. ବ. (ପଲ୍ଲବଗ୍ରାହିନ୍+ଭାବ. ତା; ତ୍ୱ)—
Pallabagrāhitā(twa) ୧ । ସବୁ ବିଷୟରେ ଉପରଠାଉରିଆ

ଜ୍ଞାନ—1. Literary shallowness; superficial knowledge in all matters; the state of being a jack of all trades.

୨ । ବେଦର୍କାସ୍ତ ବା ଶ୍ରେଷ୍ଠ କଥାର ଚର୍ଚ୍ଚା—
2. Dealing with trifles. (Apte)

**ପଲ୍ଲବଗ୍ରାହୀ**—ସ. ବଣ. ପୁଂ. (ପଲ୍ଲବ+ଗ୍ରହ୍ ଧାତୁ+କର୍ତ୍ତୃ. ଇନ୍, ୧ମା.- Pallabagrāhī ୧ବ.)—୧ । ସବ୍‌ଜାନ୍ତା;ସ୍ୱୟଂକଥିତ ସର୍ବଜ୍ଞ;ଯାହାର (ପଲ୍ଲବ ଗ୍ରାହିଣୀ—ସ୍ତ୍ରୀ) କୌଣସି ବିଷୟରେ ପ୍ରଗାଢ଼ ଜ୍ଞାନ ନ ଥାଏ- 1 Having no mastery on all subjects; superficial; shallow (person);jack of all trades but master of none.

[ଦ୍ର—ଏପରି ଲୋକର ସବୁଗଛର ଅଗ ପତ୍ର ଛିଣ୍ଡାଇବା ଲୋକ ସଙ୍ଗେ ତୁଳନା ହୁଏ ।]

୩ । ନୂଆପତ୍ର କଅଁଳୁଥିବା (ବୃକ୍ଷ ବା ଲତା)—
2. Putting forth sprouts.

୩ । ଯେ ବେଦର୍କାସ୍ତ ବା ଶ୍ରେଷ୍ଠ କଥା ବିଷୟ ଚର୍ଚ୍ଚା କରେ—
3. Dealing with trifles.

**ପଲ୍ଲବା(ବେ)ଇବା**—ଦେ. କ୍ରି.—୧ । ପଲ୍ଲବିତ ବା ପତ୍ରଯୁକ୍ତ କରିବା; Pallabā(be)ibā କଅଁଳାଇବା—1. To cause to shoot forth sprouts or leaves.

ଶୁଖିଲ ତରୁକୁ ପଲ୍ଲବାଏ ଗୋ ସଙ୍ଗୀତ ।

୨ । ଜାତ କରାଇବା, ଜନ୍ମାଇବା—2. To cause to be produced or grown.

ପଲ୍ଲବାଏ ଅସବୃଷେ ଅଦରେ ।
ବଇଦେହୀଶ- ବିଳାସ କଲ୍ଲୋଳ ।

୩ । ଡେଜାଇବା—3. To instigate; to incite.

କୁହୁଳ ବୃଦ୍ଧିରେ କେହିଁ ଅନ୍ଧାରେ ସଖା ଦେଉଛ ପଲ୍ଲବାଇ ।
ରାମକୃଷ୍ଣ. ରସକଲ୍ଲୋଳ

**ପଲ୍ଲବାଧର**—ସ. ବଣ. ପୁଂ. (ବହୁବ୍ରୀହି; ପଲ୍ଲବ ପରି କୋମଳ ଓ ରକ୍ତାଭ Pallabādhara ଅଧର ଯାହାର )—ଯାହାର ଅଧର ବା ଓଷ୍ଠ (ପଲ୍ଲବାଧରା—ସ୍ତ୍ରୀ) ପଲ୍ଲବ ପରି କୋମଳ, ରକ୍ତାଭ ଓ ମନୋହର—Rosy-lipped.

**ପଲ୍ଲବାଧାର**—ସ. ବି. ( ୬ଷ୍ଠୀ ତତ୍; ପଲ୍ଲବ+ଆଧାର )—ଗଛର ଡାଳ—Pallabādhāra Branch of tree.

**ପଲ୍ଲବାରୁଣ**—ସ. ବଣ—ପଲ୍ଲବ ପରି ଅରୁଣ ବା ରକ୍ତାଭ—Pallabāruṇa Rosy like new tender leaves.
( ପଲ୍ଲବାରୁଣା—ସ୍ତ୍ରୀ )

**ପଲ୍ଲବିକ**—ସ. ବଣ. ପୁଂ. ( ପଲ୍ଲବ—ଶୃଙ୍ଗାର+ଇକ )—୧ । ରସିକ; Pallabika ନାଗର; ବହୁସ୍ତ୍ରୀ-ପୁରୁଷ—1. Libertine.

୨ । ଅସ୍ୱାଭାବିକ ଉପାୟରେ ପୁରୁଷର କାମ ବୃତ୍ତି ଚରିତାର୍ଥକାରୀ ବାଳକ—2. A catamite ( Apte ).

**ପଲ୍ଲବିତ**—ସ. ବଣ. ( ପଲ୍ଲବ+ଇତ )—୧ । ପତ୍ର କଅଁଳିଥିବା; ଯେଉଁ Pallabita ଗଛରୁ ନୂଆ ପତ୍ର ବା କୁଆଁ ବାହାରୁ ଥାଏ—
1. Covered with newly sprouted twigs and leaves; sprouting.

୨ । ଅତିରଞ୍ଜିତ—2. Exaggerated.
୩ । ବିସ୍ତାରିତ—3 Spread; extended ( Apte ).
୪ । ଲାକ୍ଷାରଞ୍ଜିତ—4 Dyed red with lac ( Apte ).
୫ । ରୋମାଞ୍ଚିତ ( ହ୍ନି. ଶ. )—
5. With the hairs of the body erect through sudded emotion; horripilated.

ସ. ବି—ଲାକ୍ଷାରସ—Lac dye ( Apte ).

**ପଲ୍ଲବିବା**—ଦେ. କ୍ରି. ( ସ. ପଲ୍ଲବ )—୧ । ( ଗଛ ) କୁଆଁ ଦେବା; Pallabibā କଅଁଳିବା—1 ( tree ) To shoot forth new leaves or twigs.

ପଲ୍ଲବଇ ଭଇମାନଙ୍କ ଅଶାତରୁ—କୃଷ୍ଣସିଂହ. ମହାଭାରତ. ଅଦି ।

୨ । (ଲକ୍ଷଣାର୍ଥ) ସତେଜ ହେବା—2. To thrive.

**ପଲ୍ଲବୀ**—ସ. ବି. (ପଲ୍ଲବ+ଇନ୍, ୧ମା. ୧ବ.)—୧ । ଗଛ; ବୃକ୍ଷ —Pallabī 1. Tree.

୨ । ( ନାମ ) ପହ୍ଲବ ( ଦେଖ )—
2. Palhaba ( See )

ସ. ବଣ—ପଲ୍ଲବଯୁକ୍ତ—Furnished with leaves.

**ପଲ୍ଲବେ(ଭେ)ରମ୍**—ସ. ବି. (ନାମ)—ମାନ୍ଦ୍ରାଜ ନିକଟରେ ଥିବା ପ୍ରାଚୀନ Pallabe(bhe)ram ପହ୍ଲବ ରାଜାମାନଙ୍କର ରାଜଧାନୀ—
A place near Madras which was the capital of the ancient Palhaba kings and from the site of which ancient potteries of prehistoric times have been unearthed.

[ ଦ୍ର—ପ୍ରାଚୀନ ଭାରତରେ ବ୍ୟବହୃତ ମୃତ୍‌ପାତ୍ରମାନ ଏ ସ୍ଥାନର ଭୂଗର୍ଭରୁ ମିଳିଅଛି । ]

**ପଲ୍ଲା**—ଦେ. ବି—ପଲ୍ଲା ( ଦେଖ )
Pallā Palā ( See )

**ପଲ୍ଲି(ଲ୍ଲୀ)**—ସ. ବି. [ ପଲ୍ଲ ଧାତୁ+ଅଧି ଇ; (ସ୍ତ୍ରୀ+ଈ) ]—
Palli(llī) ୧ । ପଡ଼ା; ଛୋଟ ଗ୍ରାମ—1. Hamlet; small village.
୨ । ଝିଟିପିଟି; ଗୃହ ଗୋଧିକା—2. House lizard.
୩ । ଗ୍ରାମ (ହ୍ନି. ଶ.)—3. Village.
୪ । କୁଡ଼ିଆ; କୁଟୀ ( ହ୍ନି. ଶ. )—
4. Cottage; hut (Apte).
୫ । ଗୃହ; ବାସ ସ୍ଥାନ—5. House; station (Apte).

ପ୍ରାଦେ. (କଳାହାଣ୍ଡି)—କଣ୍ଡୂରୋଗ—Itches.

**ପଲ୍ଲି(ଲ୍ଲୀ) ଗ୍ରାମ**—ସ. ବି—ପଲ୍ଲି ୧-୩ ( ଦେଖ )
Palli(llī) grāma Palli 1-3 ( See )

**ପଲ୍ଲି(ଲ୍ଲୀ) ପତନ**—ସ.ବି—ଘରଚାଳରୁ ବା ଉର୍ଦ୍ଧ୍ୱରୁ ମନୁଷ୍ୟ ଦେହରେ ଝିଟିପିଟି Palli(llī) patana ଖସି ପଡ଼ିବା—
The falling down of a house-lizard on a man.

[ ଦ୍ର—ଲୌକିକ ବିଶ୍ୱାସ ଯେ ମନୁଷ୍ୟର ବାମ ଅଙ୍ଗରେ, ଉଦରରେ, ମୁଣ୍ଡରେ, ପିଠି, ବକ୍ଷ ଦେଶ ଓ କର ଚରଣରେ ଝିଟିପିଟି

ପଡ଼ିଲେ ମଙ୍ଗଳ ଘଟେ ଓ ଦକ୍ଷିଣ ଅଙ୍ଗରେ ପଡ଼ିଲେ ସ୍ୱଜନ ଧନ-ବିୟୋଗାଦି ଅମଙ୍ଗଳ ଘଟେ । ମାତ୍ର ମତାନ୍ତରରେ ଏହାର ବିପରୀତ ହୁଏ ବୋଲି ବିବେଚିତ ହୁଏ । ]

**ପଲ୍ଲବ(ବୀ)**—ସଂ. ବି. ( ଭାରତ ଇତିହାସ )—
Palhaba(bī) ୧ । ଖ୍ରୀଷ୍ଟ ପୂର୍ବ ୨୫୦ରୁ ଖ୍ରୀଃ ୧୦୦୦ ସାଲ ପର୍ଯ୍ୟନ୍ତ ଦକ୍ଷିଣ ଭାରତରେ ରାଜତ୍ୱ କରୁଥିବା ରାଜବଂଶ—
1. Name of an ancient Royal family of South India.

[ ଦ୍ର—ଏ ରାଜବଂଶ ସପ୍ତମ ଶତାବ୍ଦୀରେ ଦକ୍ଷିଣ ଭାରତରେ କାଞ୍ଚୀଠାରେ ରାଜତ୍ୱ କରୁଥିଲେ । ଏ ସମସ୍ତ ଦାକ୍ଷିଣାତ୍ୟ ଜୟ କରିଥିଲେ । ଚୀନ ପରିବ୍ରାଜକ ହୁଏନସାଂ ଭାରତକୁ ଆସିବା ସମୟ (ଖ୍ରୀ୬୪୦) ରେ କାଞ୍ଚୀରେ ପଲ୍ଲବରାଜ ନରସିଂହବର୍ମା ଦାକ୍ଷିଣାତ୍ୟର ପ୍ରଧାନ ନରପତି ହୋଇଥିଲେ । ପଲ୍ଲବ ରାଜାମାନେ ପ୍ରଥମେ ରାଜମହେନ୍ଦ୍ରୀ (ବେଙ୍ଗୀ)ରେ ରାଜତ୍ୱ କରୁଥିଲେ । ତତ୍ପରେ ସେଠାରୁ ବିତାଡ଼ିତ ହୋଇ କାଞ୍ଚୀରେ ରାଜଧାନୀ କଲେ । ତତ୍ପରେ ଖ୍ରୀ୧୦୦୦ରେ ଚୋଳରାଜା ରାଜରାଜଦେବ ଏ ବଂଶର ରାଜାଙ୍କୁ ପରାସ୍ତ କରି ଏହାଙ୍କ ଆଧିପତ୍ୟ ଲୋପ କଲେ । ବର୍ତ୍ତମାନ ମାନ୍ଦ୍ରାଜ ପ୍ରଦେଶର ପୁଦୁକୋଟା ରାଜା ଏହି ପଲ୍ଲବରାଜାଙ୍କ ବଂଶଧର । ଅଶୋକ ଖ୍ରୀ. ପୂ ୨୫୦ରେ ଏହି ପଲ୍ଲବ ରାଜ୍ୟକୁ ବୌଦ୍ଧ ପ୍ରଚାରକ ପଠାଇଥିଲେ, କିନ୍ତୁ ସେ ସମୟରେ ପଲ୍ଲବରାଜ୍ୟ ଗୁଜରାଟରେ ଥିଲା (ହି.ଶ.)

ଏ ରାଜାମାନେ କୁରୁରାଜାଙ୍କର ମିତ୍ରରାଜା ଥିବାର ମହାଭାରତରେ ଉଲ୍ଲେଖିତ ଅଛି । କେହି କେହି ପଣ୍ଡିତ କହନ୍ତି ଯେ ମହାଭାରତରେ ଏମାନଙ୍କର ଓ ଶକ ଓ ଯବନମାନଙ୍କର ନାମ ପରବର୍ତ୍ତୀ କାଳର ଲେଖକମାନେ ଗୁଞ୍ଜି ଦେଇଅଛନ୍ତି ।

ମନୁ ସଂହିତାରେ ପଲ୍ଲବ ଗୋଟିଏ ମ୍ଳେଚ୍ଛ ଜାତି ମଧ୍ୟରେ ଗଣିତ । ]

୨ । ପ୍ରାଚୀନ ପଲ୍ଲବ ରାଜାଙ୍କ ଦ୍ୱାରା ଶାସିତ ଦାକ୍ଷିଣାତ୍ୟର ପ୍ରାଚୀନ ଜାତିବିଶେଷ—2 The people of South India governed by the Palhaba kings; the Parthians who settled in South India.

[ ଦ୍ର—ଏମାନେ ଦକ୍ଷିଣ ଇଉରୋପର ପାର୍ଥିଆରୁ ଆସି ପ୍ରଥମେ ପାରସ୍ୟରେ ତତ୍ପରେ ପଶ୍ଚିମୋତ୍ତର ଭାରତରେ, ତତ୍ପରେ ପଶ୍ଚିମ ଭାରତରେ ଓ ସର୍ବଶେଷରେ ଦକ୍ଷିଣଭାରତରେ ବସତି କରିଥିଲେ । ]

୩ । ଏକ ପ୍ରାଚୀନ ଫାରସୀ ବା ଇରାଣୀ ଜାତି —
3. The Pelhabis, an ancient Persian nation.

[ଦ୍ର—ମନୁସ୍ମୃତି, ରାମାୟଣ, ମହାଭାରତ ଆଦି ପୁସ୍ତକରେ ଖସ, ଯବନ, ଶକ, କାମ୍ବୋଜ, ବାହ୍ଲୀକ, ପାରଦ ଆଦି ପଶ୍ଚିମଭାରତବାସୀ ଜାତିମାନଙ୍କ ସଙ୍ଗେ ପଲ୍ଲବ ଜାତିର ଉଲ୍ଲେଖ ଅଛି । ଉକ୍ତ ଗ୍ରନ୍ଥମାନଙ୍କରେ ସାଧାରଣତଃ ପାରସ୍ୟବାସୀ ବା ଇରାଣୀମାନଙ୍କ ପଲ୍ଲବ ନାମ ଦିଆଯାଇଅଛି । କେତେକ ଇଉରୋପୀୟ ଐତିହାସିକ ପଲ୍ଲବଶବ୍ଦକୁ ପାର୍ଥିଆ ନିବାସୀ ପାରଦ(ଜାତି)ର ଅପଭ୍ରଂଶ ଥିବାର କହନ୍ତି, କିନ୍ତୁ ସଂସ୍କୃତଗ୍ରନ୍ଥମାନଙ୍କରେ ପଲ୍ଲବ ଓ ପାରଦ ସ୍ୱତନ୍ତ୍ର ଜାତି ଥିବାର କଥିତ । ହରିବଂଶ ଓ ମନୁସଂହିତା ମତରେ ପାରଦ, ଶକ ଆଦି ଜାତିଙ୍କ ପରି ପଲ୍ଲବମାନେ ପ୍ରଥମେ କ୍ଷତ୍ରିୟ ଥିଲେ, ପରେ ସଂସ୍କାର ଭ୍ରଷ୍ଟ ହୋଇ ପତିତ ଥିଲେ । ସଗରରାଜା ଏମାନଙ୍କୁ ବଳାତ୍କାର କ୍ଷତ୍ରିୟ ଧର୍ମରୁ ପତିତ କରାଇ ମ୍ଳେଚ୍ଛରୂପେ ପରିଣତ କଲେ । ବାଲ୍ମୀକୀୟ ରାମାୟଣରେ ବଶିଷ୍ଠଙ୍କ ଗାଈ ଶବଳାର ହମ୍ବାରବରୁ ପଲ୍ଲବଜାତି ଜନ୍ମିଥିବାର କଥିତ (ହି. ଶ.) । ]

୪ । ପାରସ୍ୟର ଅନ୍ତର୍ଗତ ଏକ ପ୍ରଦେଶ ଓ ନଗର (ହି. ଶ.)—
4. Name of an ancient province and town of Persia.

୫ । ପ୍ରାଚୀନ ପାରସ୍ୟଦେଶ (ହି ଶ.)—
5. Ancient Persia.

୬ । ପ୍ରାଚୀନ ପାରସ୍ୟ ବା ଇରାନରେ ପ୍ରଚଳିତ ପ୍ରାଚୀନ ଭାଷା ବିଶେଷ—6. The Pelhabi language; an ancient lauguage of Persia.

[ଦ୍ର—ଏହା ଅତି ପ୍ରାଚୀନ ଫାରସୀ ଓ ଆଧୁନିକ ଫାରସୀର ଏକ ମଧ୍ୟବର୍ତ୍ତୀ ଭାଷା । ପ୍ରାଚୀନ ଫାରସୀ ଭାଷାରେ ଲିଖିତ ପାର୍ଶୀମାନଙ୍କ ଧର୍ମଗ୍ରନ୍ଥ 'ଯେନ୍ଦାବେସ୍ତା'ର ଅନୁବାଦ ଓ ଟୀକାମାନ ଏହି ଭାଷାରେ ଲେଖା ହୋଇଥିଲା । ଏହି ଭାଷାରେ ସେମିଟିକ (Semitic) ଶବ୍ଦମାନଙ୍କ ବହୁଳତା ଦେଖାଯାଏ (ହି. ଶ.)—

**ପଲ୍ହିକା**—ସଂ. ବି—ଜଳଲକ୍ଷ୍ମୀ (ହି ଶ.) ବୋରଝାଞ୍ଜି—
Palhikā Pistia Stratiotes; an aquatic plant.

**ପଶ୍(ଧାତୁ)**—ସ—ବନ୍ଧନ କରିବା —
Paś (root) To tie; to bind down.

**ପଶମ**—ଦେଦେ. ବି· (ଫା, ଭୁଲ. ସଂ. ପଶୁଲୋମ)—ଭେଣ୍ଡି, ପଶୁଲୋମ—
Paśama ପଶମ **पशम** Wool; fur.

[ଦ୍ର— ତିବ୍ବତ ଓ ହିମାଳୟରେ ଥିବା ଏକ ପ୍ରକାର ଛେଳିଙ୍କ ଲୋମ ମୂଳରେ ଖୁବ୍ ସରୁ ଚିକ୍କଣ କଅଁଳିଆ ତୁଳାପରି ରୋମ ଥାଏ; ତାକୁ ପଶମ ବୋଲାଯାଏ ।]

**ପଶମୀ** - ଦେଦେ. ବିଣ. (ଫା. ପଶମୀନା)—୧ । ପଶମ ନିର୍ମିତ—
Paśamī 1. Woolen.
(ପଶ୍ମୀନା—ଅନ୍ୟରୂପ) ୨ । ବାଲୁଆ—2. Wooly; hairy.
**पशमीना** **पशमिना**

**ପଶା**—ଦେ. ବି. (ସଂ. ପାଶକ; ପ୍ରା. ପାସା)—୧ । ଚଉପାଶ;-ଅକ୍ଷକ୍ରୀଡ଼ା--
Paśā ପାଶା **पासा** 1. Game at dice.
**हाल** ୨ । (ସଂ. ପାର୍ଶ୍ୱ=ପ୍ରାନ୍ତ)- କୋଡ଼ି, କାଙ୍କ, କୁରାଢ଼ୀ ଆଦିର ମୂଳଦେଶସ୍ଥ ବଳୟ (ଯାହା ମଧ୍ୟ ଦେଇ ବେଣ୍ଟ ପଶିଥାଏ); କାଙ୍କ ଆଦିର ମୁଣ୍ଡି —2. The ring of a spade or axe through which the handle is passed.

୩ । ଲଙ୍ଗଳ ମୁହଁରେ ଲଙ୍ଗଳଲୁହାକୁ ସଂଲଗ୍ନ କରିବା ନିମନ୍ତେ ଲୌହ ନିର୍ମିତ ନେଷ୍ଟନୀ ବା ମୁଦ୍ରିଆ—3. A ring of iron through which the plough iron is thrust.

୪ । କୋଡ଼ି କାଙ୍କରେ ମାଟି ହାଣିବାର ଏକଥର—
4. One stroke of a spade for cutting earth.
(ଯଥା—ମୁଁ ପଶାଏ ମାଟି ହାଣିଲି ବେଳକୁ ସେ ଆସି ପହଞ୍ଚିଲେ)

୫ । କୋଡ଼ି କାଙ୍କ ଆଦ୍ଦର ପଶା ବା ମୁଣ୍ଡିରେ ପ୍ରହାର—
5. A blow with the base or ring of a spade or axe.

ନ ଜାଣି ଗୋଡସ୍ କହିଛ ଏବେ,
ପରେ ଖାଇଥାବ ଖର୍ଗିଆ ପଶା — ଚଗ ।

(ପଶୀ—ସ୍ତ୍ରୀ) ବିଣ—(ସଂ. ପ୍ରବେଶ) (ଅନ୍ୟ ଶବ୍ଦ ସଙ୍ଗେ ବ୍ୟବହୃତ ଯଥା—ହାଡ଼ିଘର ପଶା, ଗାଈପଶା)—୧ । ପ୍ରବେଶକାରୀ—
1. Entering; going into.

**पाँजी** ୨ । ଥଳ; ନଦୀ ଆଦିରେ ଲୋକେ ପଶିକରି ଯିବାର ଅବସ୍ଥାଯୁକ୍ତ (ଜଳଭାଗ)—2. Fordable.
(ଯଥା - ଅଗ୍ରହାଣ ମାସରେ ମହାନଦୀ ପଶା ହୋଇଯାଏ)
ପ୍ରାଦେ (ଯାଜପୁର) ବି - ଛୁଞ୍ଚି ବା ଭାମ୍ପଣର କଣା—
Eye of a needle.

**ପଶା(ଶେ)ଇବା**—ଦେ କ୍ରି—୧ । ପଶିବା କ୍ରିୟାର ଣିଜନ୍ତରୂପ —
Paśā(śe)ibā 1 The causative form of Paśibā.
ଚୋକାନ ୨ । ଭୂଷିଇବା; ପ୍ରବିଷ୍ଟ କରାଇବା—
**घुसाना** 2. To cause to enter, to thrust.
୩ । କୋଡ଼ି କାଙ୍କ ଆଦ୍ଦର ପଶାରେ ଆଘାତ କରିବା—
3. To strike with the handle of a spade.
ପ୍ରାଦେ (ଲଇଆ) କ୍ରି—ଭାତ ଗାଳିବା—To press out water from the boiled rice in the cooking pot.

**ପଶା କାଠି** ଦେ. ବି. (ସଂ.ପାଶକ ଓ କାଷ୍ଠ)—୧ । କାଠ ବା ହାତୀଦାନ୍ତ
Paśā kāṭhi ବା ଶିଂଘ ନିର୍ମିତ ପଶା ଖେଳିବାର ଚଉଠଯୁକ୍ତ କାଠି—
ପାଶାସାବୀ **पासा** 1. Dice.

ହେଲେ ନ ପାରିଲୁ ପଶାକାଠିକି – ଉଣ୍ଡ, ୯ ବୈଦେହୀଶବିଳାସ ।

[ ଦ୍ର—ଏହା ୩ଖଣ୍ଡ; ପ୍ରତ୍ୟେକର ଚାରି ପିଠିରେ ଗୋଲାକାର ବିନ୍ଦୁମାନ ଥାଏ, ଗୋଟିଏ ପିଠିରେ ୧; ୨ୟରେ ୨; ୩ୟରେ ୫ ଓ ଚତୁର୍ଥରେ ୬ଗୋଟି ଗୋଲ ବିନ୍ଦୁଥାଏ; ପଶା ଖେଳିବା ସମୟରେ ଏହି ୩ଖଣ୍ଡି କାଠି ଗଡ଼ାଇବାକୁ ହୁଏ ।
ପଶା ଖେଳରେ ବ୍ୟବହୃତ ଅନ୍ୟ କେତୋଟି ଶବ୍ଦ ଅଙ୍କ (ସଂ. ଅଙ୍କ)=ପଶା ଗୋଟି ଚଳିବାର ବାଟରେ ପ୍ରତିବନ୍ଧକ, ଯୁଗ (ସଂ. ଯୁଗ୍ମ)=ଦୁଇଟି କାଠିରେ ସମ ସଂଖ୍ୟକ ଦାନ ପଡ଼ିଲେ ଦୁଇଟି ଗୋଟି ଏକତ୍ର ଚଳିବାର ପ୍ରଣାଳୀ ।]

୨ । ଏକ ପ୍ରକାର ସରୁଧାନ—
2. A species of fine paddy.

**ପଶା ଖେଳ** – ଦେ. ବି—(ସଂ. ପାଶକ+କ୍ରୀଡ଼ା)—ପାଶକ କ୍ରୀଡ଼ା;
Paśā khela ଚଉପାର ଖେଳ—The game at dice;
ପାଶାଖେଲ **पाशाखेल** dice play.

[ ଦ୍ର—ଏଥିରେ ୪ଜଣ ଖେଳାଳୀ ୨ ଦଳ ହୋଇ ଖେଳନ୍ତି, ପୂର୍ବେ ଖେଳାଳୀମାନେ ପଣ ବା ବାଜି ରଖି ପଶା ଖେଳୁଥିଲେ । ଏହି ଖେଳରେ ନଳ ରାଜା ରାଜ୍ୟ ସମ୍ପଦ ଓ ଯୁଧିଷ୍ଠିର ରାଜ୍ୟ ଓ ଦ୍ରୌପଦୀଙ୍କୁ ହରାଇ ବନବାସ କରିଥିଲେ ।]

**ପଶା ଖେଳାଳୀ**—ଦେ ବିଣ- ଯେଉଁ ବ୍ୟକ୍ତି ପଶା ଖେଳରେ ନିପୁଣ—
Paśā kheḷāli A gamester; gambler at dice.
ପାଶା ଖେଲାଡୀ **फडबाज**

**ପଶା ଗୋଟି**—ଦେ. ବି. ( ସଂ. ପାଶକ ଓ ଗୁଟି )—
Paśā goṭi ପଶା ଖେଳର ଗୁଳା ବା କାଷ୍ଠ ଗୁଳିକା—
ପାଶାର ଗୁଟି The small circular figures or pawns
**पासाका गोटी** used in the game of dice.

[ ଦ୍ର—ଏହା ୪ ରଙ୍ଗର ( ହଳଦୀ, କାଳୀ, ନାଲୀ ଓ ନେଳୀ), ଓ ପ୍ରତ୍ୟେକରୁ ୪ ଗୋଟି ଲେଖାଏଁ, ମୋଟରେ ୧୬ ଗୋଟି ଗୋଟି ଥାଏ । ]

**ପଶା ଦାନ**—ଦେ. ବି—ପଶା କାଠିକୁ ଗଡ଼ାଇଲେ ୩ ଖଣ୍ଡଯାକ କାଠି
Paśā dāna ପିଠିରେ ଦେଖାଯିବା ବିନ୍ଦୁମାନଙ୍କର ସମଷ୍ଟି—
ପାଶାର ଦାନ The result of a throw of dice.
**पासाका दाब** [ ଦ୍ର—ଛପୁରି, ଛକ ବା ଛକ ପୁଅ=୧+୧ +୧ । ଚଉକ=୧+୨+୧ । ପଞ୍ଚା ବା ପଞ୍ଚିଡ଼=୨+୨ +୧ । ଛକା ବା ଛକଡ଼=୨+୨+୨ । ସାଠ ବା ପାଞ୍ଚ ଦୁଇ =୫+୧+୧ । ଅଠା ବା ଛ ଦୁଇ ବା ପାଞ୍ଚ ଛକ=୬+୧ +୧ ବା ୫+୨+୧ । ନଅ ବା ଛ ଛକ ବା ପଞ୍ଚା ଗୁର =୬+୨+୧ କିମ୍ବା ୫+୨+୨ । ଦଶ ବା ଛ ଗୁର=୬ +୨+୨ । ଏଗାର ବା ଦଶ ପୁଅ=୫+୫+୧ । ବାର ବା କଟେ ବାର ବା ଦଶ ଦୁଇ=୬+୫+୧ କିମ୍ବା ୫+୫ +୨ । ଏଗାର ଦୁଇ ତେର ବା ପ ବାର ବା ପୁଅବାର =୬ +୫+୨ କିମ୍ବା ୬+୬+୧ । ଚଉଦ=୬+୬+୨ । ପନ୍ଦର =୫+୫+୫ । ଷୋଳ=୫+୫+୬ । ସତର=୬+୬+୫ ଅଠର=୬+୬+୬ । ]

**ପଶାପଶି**—ଦେ. ବି—୧ । ପଶାଇବା କ୍ରିୟାମାନ, ଘୁଷାଘୁଷି—
Paśāpaśi 1. Acts of thrusting.
ଢୁକାଢୁକି ୨ । ପ୍ରବେଶ ଆଦି; ପଶିବା ଆଦି—
**घुसाघुसी** 2. Entry.

**ପଶା ପାଲି**—ଦେ. ବି. (ସଂ. ଶାରିଫଳ; ଶାରିପଟ୍ଟ)—
Paśā pāli ପଶା ଖେଳର ଗୋଟିମାନ ଯେଉଁ ପ୍ରକୋଷ୍ଠଚିହ୍ନିତ
ପାଶାର ଛକ୍ କନାର ପଟ୍ଟ ଉପରେ ଚାଳିତ ହୁଏ—
**पासाका बिसात** Dice board or dice plate.

**ପଶା ବଡ଼ ଦାନ**—ଦେ. ବି— ଦଶ ସଂଖ୍ୟା—
Paśā barḍa dāna Ten.

ପଶା ବଡ଼ ଦାନ ସ୍ୟନ୍ଦନ (ଦଶ+ରଥ) (=ଦଶରଥ) ।
ଭଞ୍ଜ, କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ।

[ ଦ୍ର—କଉଡ଼ି ଖେଳରେ ବଡ଼ ଦାନ ୧୦ ଅଟେ ।]

**ପଶା ସାର**—ଦେ. ବି. (ସଂ ପାଶକ+ସାର=ଗୋଟି)—
Paśā sāra ପଶା ଗୋଟି (ଦେଖ)—Paśā goṭi (See)

**ପଶି**—ପ୍ରାଦେ. (ଯାଜପୁର) ବି—ମଫସଲ—
Paśi Countryside; muffassil.

**ପଶିଆ**—ପ୍ରାଦେ. (କଟକ) ବି. (ଭୁଲ. ହି. ପସାବନ; ସଂ. ପ୍ରସ୍ରାବଣ)—
Paśiā ପେଜ—Water filtered from boiled rice.
(ଯାଜପୁର) ବି—ପଶି (ଦେଖ)—Paśi (See)

**ପଶିବା**—ଦେ. କ୍ରି. (ସଂ. ପ୍ରବେଶ; ପ୍ରା. ପଇଶ)—
Paśibā ୧ । ପ୍ରବିଷ୍ଟ ହେବା; ଭିତରକୁ ପ୍ରବେଶ କରିବା—
ଢୁକା, ଚୋକା 1. To enter.

ଘୁସନା, পৈঠনা — ଏକା ହୋଇ ଅଶ୍ରମ ଭିତରେ ପଶିଲେ ।
କୃଷ୍ଣସିଂହ. ମହାଭାରତ ଆଦି ।

(ବାହାରିବା—ବିପରୀତ) ୨ । ଭିତରେ ଅବସ୍ଥାନ କରିବା—
ପୁରାଇବା } ପ୍ରଯୋଜକ 2. To remain within.
ପଶାଇବା } (ଯଥା—ସେ ସବୁ ବେଳେ ଘରେ ପଶିଛି ।)

୩ । ଆଶ୍ରୟ ବା ଶରଣ ନେବା—3. To take refuge.
ମୁଁ ସାହସ ଚରଣରେ ପଶି ଅସାର ସଂସାରେ ନାହିଁ ବସି ।
କବିସୂର୍ଯ୍ୟ, ସଙ୍ଗୀତ ।

୪ । କୌଣସି କଷ୍ଟସାଧ୍ୟ କର୍ମରେ ପ୍ରବୃତ୍ତ ହେବା—
4. To undertake a difficult task.
ମହା ବଳୀୟାଁ କି ମଧ୍ୟ ରଣସ୍ଥଳୀ ଭେଳ
କେଉଁଠି ବଳେ ପଶ ସେ ସଂଗ୍ରାମେ । ରାଧାନାଥ, ମହାଯାତ୍ରା ।

୫ । ନିକଟକୁ ଯିବା—5. To go near.
ଯାବତ ପ୍ରେମେ ନେଁ ମିଶେ, ଗୋବିନ୍ଦ ତା ପାଶେ ନ ପଶେ ।
ଭୂପତି, ପ୍ରେମପଞ୍ଚାମୃତ ।

୬ । ଆସକ୍ତ ହେବା—
6. To be devoted or attached to.
ତାହାର ଚରଣାରବିନ୍ଦେ
ମନ ପଶିବ ଅପ୍ରମାଦେ । ଜଗନ୍ନାଥ, ଭାଗବତ ।

[ ଚଣ୍ଡୀଦାସ ଓ ଶୂନ୍ୟପୁରାଣ ଆଦି ପ୍ରାଚୀନ ବଙ୍ଗଳା ପଦ୍ୟରେ 'ପଶିବା' କ୍ରିୟାର ବ୍ୟବହାର ଦେଖାଯାଏ । ]

**ପଶୁ**—ସଂ. ବି. ( ଦୃଶ୍ ଧାତୁ + କର୍ତ୍ତୃ. ଉ; ଦୃଶ ସ୍ଥାନରେ ପଶ ଆଦେଶ (Apte); ଯେ ସମସ୍ତ ଦେଖିପାରେ )—
**Paśu**

୧ । ସଲାଙ୍ଗୁଳ ଚତୁଷ୍ପଦ ଜନ୍ତୁ—
1. Beast; brute; a quadruped with a tail.

୨ । ଛାଗ –2. Goat.

୩ । ଗୋ ମେଷାଦି ଗୃହପାଳିତ ଜନ୍ତୁ—3. Cattle.

୪ । ମୂର୍ଖ ବ୍ୟକ୍ତି—
4. Illiterate person; an ignorant person.

୫ । ପଶୁ ପ୍ରକୃତିକ ବ୍ୟକ୍ତି—
5. Brute-natured person.

୬ । ନିର୍ବୁଦ୍ଧିଆ—6. A blockhead; stupid person.

୭ । ବଳି ଦିଆଯିବା ବୋଦା—
7. Victim sacrificed as an offering.

୮ । (ତନ୍ତ୍ର) ନିରାମିଷାଶୀ, ମାଦକତ୍ୟାଗୀ ଜିତେନ୍ଦ୍ରିୟ ବ୍ୟକ୍ତି—
8. ( Tantra ) A very pious and abstemious person.

୯ । ଜୀବ; ପ୍ରାଣୀ—
9. Animal; living being ( Apte ).

୧୦ । ଅଗ୍ନି—10. Fire ( Apte ).

୧୧ । ଯଜ୍ଞ (ହି. ଶ.)–11. Vedic saċrifice.

୧୨ । ଯେଉଁ ବ୍ୟକ୍ତି ମନ୍ତ୍ର ଗ୍ରହଣ କରି ନ ଥାଏ—
12. An uninitiated person.

୧୩ । ଦେବତା (ହି. ଶ.)—13 Deity.

୧୪ । ଯଜ୍ଞଡମ୍ବିରି ( ହି. ଶ ) ( ଦେଖ )—
14. Jajnadimbiri ( See )

୧୫ । ପ୍ରମଥ (ହି. ଶବ୍ଦସାଗର)—
15. An attendant of Śiba.

ବିଣ—୧ । ମୂର୍ଖ—1 Silly; stupid; block-headed.

୨ । ପଶୁ ପ୍ରକୃତିବିଶିଷ୍ଟ—2. Beastly; brute-natured.

**ପଶୁ କର୍ମ**—ସଂ. ବି ( ୬ଷ୍ଠୀ ତତ୍; ପଶୁର ଆଚରିତ କର୍ମ )—୧ । ପାଶବ କର୍ମ—1. Brutal deed; beastly act.
**Paśu karma**

( ପଶୁକ୍ରିୟା—ଅନ୍ୟରୂପ ) ୨ । ପଶୁ ପରି ହିତାହିତ ବିବେଚନା ଶୂନ୍ୟ କର୍ମ—2. Acting like beasts; beastly act.

୩ । ମୈଥୁନ—3. Copulation.

୪ । ଯଜ୍ଞରେ ପଶୁ ବଧ—4. Animal sacrifice.

**ପଶୁକଳ୍ପ**—ସଂ. ବିଣ. ( ପଶୁ + ତୁଲ୍ୟାର୍ଥେ. କଳ୍ପ )—ପଶୁ ପରି, ପାଶବ—
**Paśukalpa** Beastly; brutish.

ବି—ଯଜ୍ଞାଙ୍ଗ ପଶୁବଳି ବିଧାନ—The ritual of offering victims in a sacrifice.

**ପଶୁ ଗାୟତ୍ରୀ**—ସଂ. ବି. (ମ.ପ. ଲୋ; ପଶୁ ବଳି ଦେବା ସମୟରେ ଉଚ୍ଚାରିତ ଗାୟତ୍ରୀମନ୍ତ୍ର)—ଯଜ୍ଞାର୍ଥ ପଶୁକୁ ବଳି ଦେବା ପୂର୍ବରୁ ତା କାନରେ ଯେଉଁ ମନ୍ତ୍ର କହି ଦିଆଯାଏ—
**Paśu gāyatrī**
(ପଶୁମନ୍ତ୍ର—ଅନ୍ୟରୂପ)
The vedic formula whispered into the ear of a victim before it is sacrificed.

[ ଦ୍ର—ଏ ମନ୍ତ୍ର ଗାୟତ୍ରୀର ଛାଞ୍ଚରେ ରଚିତ; ଯଥା—ଓଁ ପଶୁପାଶାୟ ବିଦ୍ମହେ, ଶିରଶ୍ଛେଦାୟ ( ବିମ୍ବା ବିଶ୍ୱକର୍ମଣେ ) ଧୀମହି, ତନ୍ନୋ ଜୀବଃ ପ୍ରଚୋଦୟାତ୍ । ]

**ପଶୁଚର**—ସଂ. ବି. (୬ଷ୍ଠୀ ତତ୍, ପଶୁ + ଚର)—ପଶୁମାନଙ୍କର ଚରାଭୂଇଁ—
**Paśuchara** Grazing ground for beasts.

**ପଶୁ ଚର୍ଯ୍ୟା**—ସଂ. ବି. (୬ଷ୍ଠୀ ତତ୍, ପଶୁ + ଚର୍ଯ୍ୟା)—୧ । ପଶୁପରି ବିବେକହୀନ ବ୍ୟବହାର, ପାଶବ ବ୍ୟବହାର—
**Paśu charjyā**
1 Beastly conduct.

୨ । ପଶୁପାଳନ; ଗୋମେଷାଦି ପାଳିବା—
2. Cattle breeding.

୩ । ରମଣ—3. Copulation (Apte).

୪ । ସ୍ୱେଚ୍ଛାଚାର (ହି. ଶ)—4. Arbitrary conduct.

**ପଶୁତା(ତ୍ୱ)**—ସଂ. ବି. (ପଶୁ + ଭାବ. ତା, ତ୍ୱ)—ପାଶବ ଅବସ୍ଥା—
**Paśutā(twa)** Beastility.

**ପଶୁ ଧର୍ମ**—ସଂ. ବି. (୬ଷ୍ଠୀ ତତ୍; ପଶୁ + ଧର୍ମ)—୧ । ପଶୁକର୍ମ (ଦେଖ)
**Paśu dharma** 1. Paśukarma (See)

୨ । ବିଧବା ବିବାହ—The marrying of widows. (Apte).

୩ । ଗମ୍ୟାଗମ୍ୟ ବିଚାର ରହିତ ମୈଥୁନ—
3. Promiscuous cohabitation.

ବିଣ. (ବହୁବ୍ରୀହି)—ପଶୁର ଆଚାର ବିଶିଷ୍ଟ (ବ୍ୟକ୍ତି)—
Beastial; brutal.

**ପଶୁପତି**—ସଂ. ବି. (୬ଷ୍ଠୀ ତତ୍; ପଶୁ + ପତି)—୧ । ମହାଦେବ—
**Paśupati** 1. Śiba.

(ପଶୁନାଥ—ଅନ୍ୟରୂପ) ୨ । ଶିବଙ୍କର ଯଜମାନ ମୂର୍ତ୍ତି—
2. One of the forms of Siba.
୩ । ସିଂହ—3. The lion.
୪ । ପଶୁରକ୍ଷକ—4. A herdsman (Apte).
୫ । ଅଗ୍ନି (ହି. ଶ)—5 Fire.
୬ । ଔଷଧ (ହି ଶ)—6. Herb.

**ପଶୁପତି ନାଥ**—ଦେ. ବି—ନେପାଳରେ ଅବସ୍ଥିତ ଶିବମୂର୍ତ୍ତିଙ୍କ ନାମ—
Pasupati nātha Name of a phallic image of Siba worshipped in Nepal.
[ ଦ୍ର—ଭାରତରେ ୧୨ ଗୋଟି ତୀର୍ଥମଧ୍ୟରୁ ଏହା ଏକତମ । ]

**ପଶୁ ପାତକ**—ସ. ବି. (ମ. ପ. ଲୋ, କର୍ମଧା)—ପଶୁହତ୍ୟା ପାପ—
Pasu pātaka Sin committed by the killing of an animal.
ବ୍ୟର୍ଥେକି ଅରଜ ପଶୁପାତକ । ଭକ୍ତ, କୈ ଦେଖାଣକଳାବ ।

**ପଶୁ ପାଳ**—ସ. ବି. ପୁଂ. (୬ଷ୍ଠୀ ତତ୍, ପଶୁ+ପାଳ)—
Pasupāla ପଶୁମାନଙ୍କୁ ପାଳନ କରିବା ବ୍ୟକ୍ତି, ପଶୁଜଗୁଆଳ—
(ପଶୁପାଳୀ—ସ୍ତ୍ରୀ) One who tends or rears cattle;
(ପଶୁପ, ପଶୁପାଳକ—ଅନ୍ୟରୂପ) herdsman.

**ପଶୁପାଳକ**—ସ. ବି. ପୁଂ. (୬ଷ୍ଠୀ ତତ୍, ପଶୁ+ପାଳକ)—
Pasupālaka ପଶୁପାଳ (ଦେଖ)—Pasupāla (See)
ଦେ. ବି. (ସ. ପୁଷ୍ପ ଓ ପାଳକ)—ଜଗନ୍ନାଥ ଓ ଲିଙ୍ଗରାଜଆଦି ମହାପ୍ରଭୁଙ୍କ ସେବକ ବିଶେଷ—A class of sebakas of the Deities, Jagannātha (of Puri) and Lingarāja (of Bhubaneswar).
[ ଦ୍ର—ଏମାନେ ଦର୍ପଣ ଦେଖାଇ ଶ୍ରୀମୁଖ ପ୍ରକ୍ଷାଳନ, ଦାନ୍ତକାଠି ଲାଗି, ଆଚମନ, ଧୂପ ଦୀପ ସହିତ ଶ୍ରୀମୂର୍ତ୍ତିରେ ପଞ୍ଚାମୃତ ସ୍ନାନ, ସୁଗନ୍ଧ ଅବକାଶ ଲାଗି ଇତ୍ୟାଦି କରାଇବେ । ଜଗବନ୍ଧୁ ପ୍ରାଚୀନ ଉତ୍କଳ ।
ଏମାନେ ରଥ ଉପରେ ଠାକୁରଙ୍କୁ ଭୋଗ ଲଗାନ୍ତି ଓ ଦେବତାମାନଙ୍କୁ ବେଶ ଲାଗି କରନ୍ତି । ]

**ପଶୁପାଳନ**—ସ. ବି. (୬ଷ୍ଠୀ ତତ୍, ପଶୁ+ପାଳନ)—
Pasupālana ଗୋ ମେଷାଦି ପଶୁଙ୍କୁ ପାଳିବା—
(ପଶୁରକ୍ଷଣ—ଅନ୍ୟରୂପ) 1. Rearing of cattle.
୨ । ଗୋ ମେଷାଦିଙ୍କୁ ଜଗିବା—
2 The tending of cattle.

**ପଶୁ ପାଶ**—ସ. ବି. (୬ଷ୍ଠୀ ତତ୍; ପଶୁ+ପାଶ)—୧ । ପଶୁଙ୍କୁ ବାନ୍ଧିବା
Pasu pāsa ଦଉଡ଼ି—1. A rope for tying cattle or
(ପଶୁରଜ୍ଜୁ—ଅନ୍ୟରୂପ) other beasts.
୨ । ଯଜ୍ଞପଶୁ ବାନ୍ଧିବାର ରଜ୍ଜୁ—
2 Rope for tying a victim of sacrifice.
୩ । ଜୀବର ସଂସାରବନ୍ଧନ—3. The bonds which enchain the individual soul (Apte).
୪ । ପଶୁବଳି ବିଶିଷ୍ଟ ଯଜ୍ଞ; ପଶୁମେଧ—
4. Animal sacrifice (Apte).

**ପଶୁ ପାଶକ**—ସ. ବି—୧ । ପଶୁପାଶ (ଦେଖ)—
Pasu pāsaka 1. Pasupāsa (See)
୨ । ରତିବନ୍ଧ ବିଶେଷ (ହି. ଶ)—
2. A mode of sexual enjoyment (Apte).

**ପଶୁ ପ୍ରୋକ୍ଷଣ**—ସ ବି. (୬ଷ୍ଠୀ ତତ୍, ପଶୁ+ପ୍ରୋକ୍ଷଣ)—ବଳି କର୍ମରେ
Pasu prokshana ଅଭିପ୍ରେତ ପଶୁଙ୍କୁ ଛେଦନ କରିବା ପୂର୍ବରୁ ମନ୍ତ୍ରଦ୍ୱାରା ପବିତ୍ରୀକରଣ—The act of consecrating an animal before sacrifice.

**ପଶୁ ଫାଣ୍ଡି**—ପ୍ରାଦେ. (ଗଞ୍ଜାମ) ବି—କାଞ୍ଜିହାଉସ୍—
Pasu phāndi Cattle pound.

**ପଶୁ ବଳି**—ସ. ବି—୧ । ବୋଦା—1. Beast offered as a
Pasu bali victim in a sacrifice.
୨ । ଦେବତାଙ୍କ ଆଗରେ ପଶୁବଧ—
2. Animal sacrifice.

**ପଶୁ ବୁଦ୍ଧି**—ସଂ. ବି (ମ.ପ.ଲୋ; କର୍ମଧା; ପଶୁ ସୁଲଭ ବୁଦ୍ଧି)—
Pasu buddhi ୧ । ପଶୁପରି ଅଳ୍ପବୁଦ୍ଧି; ଯୁକ୍ତି ଓ ବିଗ୍ୟରହୀନ ବୁଦ୍ଧି—1. Very little intelligence like that of beasts.
୨ । ଆଦ୍ୟାବୁଦ୍ଧି (ଦେଖ)—2. Ādyābuddhi (See)
ବିଣ—୧ । ମୂର୍ଖ; ଅଜ୍ଞ—2. Stupid.
୨ । ହିତାହିତ ବିବେଚନା ଶୂନ୍ୟ—
2. Wanting discrimination.

**ପଶୁ ବୁଧିଆ**—ଦେ. ବିଣ. (ସଂ. ପଶୁବୁଦ୍ଧି)—ପଶୁବୁଦ୍ଧି (ଦେଖ)
Pasu budhiā Pasubuddhi (See)
(ପଶୁ ବୁଦ୍ଧିଆ—ଅନ୍ୟରୂପ)

**ପଶୁ ବୃତ୍ତି**—ସଂ. ବି (୬ଷ୍ଠୀ ତତ୍, ପଶୁ+ବୃତ୍ତି)—ପଶୁକର୍ମ (ଦେଖ)
Pasu brutti Pasukarma (See)
ସଂ. ବିଣ (ବହୁବ୍ରୀହି)—ପଶୁପରି ଆଚରଣକାରୀ—
Beastial; beastly; brutal.

**ପଶୁମାର**—ସ. ବି—କଂସେଇ
Pasumāra (ପଶୁମାରକ—ଅନ୍ୟରୂପ) Butcher.
ପୁରେ ବାଳନ୍ତି ବସୁଜନେ,
ପଶୁଙ୍କୁ ପଶୁମାର ଦେଲେ । ଜଗନ୍ନାଥ. ଭାଗବତ ।
ପଶୁମାରକ ଘରେ ଯେସନ୍ତେ,
ବନ୍ଧରେ ଥାନ୍ତି ପଶୁଗଣେ । ଜଗନ୍ନାଥ. ଭାଗବତ ।

**ପଶୁ ମେଧ**—ସ. ବି—ଯେଉଁ ଯଜ୍ଞରେ ପଶୁ ବଧ କରାଯାଏ—
Pasu medha Animal sacrifice.
(ପଶୁଯଜ୍ଞ, ପଶୁଯାଗ—ଅନ୍ୟରୂପ)

**ପଶୁ ମେହନ କାରିକା**—ସ, ବି—ହାଲିମ (ଦେଖ)—
Pasu mehana kārikā Hālima (See).

**ପଶୁରାଜ**—ସ. ବି. (୬ଷ୍ଠୀ ତତ୍; ପଶୁ+ରାଜ)—ମୃଗେନ୍ଦ୍ର; ପଶୁଶ୍ରେଷ୍ଠ;ସିଂହ—
Pasurāja The king of beasts; lion.

**ପଶୁରି**—ଦେ. ବି. (ସ. ପଞ୍ଚ+ଓ ସେର)—
Pasuri ୧ । ପାଞ୍ଚସେର ପରିମାଣ ବା ଓଜନ—
ପସେରୀ ପଂସେରୀ 1. The weight of 5 seers.

୨ । ପାଞ୍ଚସେର ଓଜନର ବଟକରା—
2. A standard for weighing 5 Seers.
ବିଣ—ପାଞ୍ଚସେର ଓଜନବିଶିଷ୍ଟ—
Weighing 5 Seers.

**ପଶୁର ଗଉଣୀ**—ଦେ. ବି—ଯେଉଁ ଗଉଣିରେ ପାଞ୍ଚସେର ପରିମିତ ଶସ୍ୟାଦି
Pasuri gauṇi ସମ୍ମାଏ—A measuring pot of the
(ପଶୁର ଗୌଣି—ଅନ୍ୟରୂପ) capacity of 5 Seers.

**ପଶୁ ହତ୍ୟା**—ସ. ବି—୧ । ଯଜ୍ଞରେ ପଶୁଙ୍କୁ ବଳଦେବା—
Pasu hatyā 1 The slaughter of animals for
( ପଶୁଘାତ, ପଶୁବଧ, ପଶୁମାରଣ—ଅନ୍ୟରୂପ) sacrifice;
୨ । ଜୀବହତ୍ୟା—2 Animal slaughter.

**ପଶେର୍**—ପ୍ରାଦେ· (କଳାହାଣ୍ଡି) ବି—ବାଳୁଙ୍ଗା—
Paser Awned wild paddy.

**ପଶ୍ଚାତ୍**—ସଂ. ଅ—(ପର +ଅସ୍ତାତ୍=ନିପାତନସିଦ୍ଧ)—୧ । ପରବର୍ତ୍ତୀ
Paschāt କାଳରେ, ପରେ—1. After; afterwards; subsequently.
୨ । ଏଥି ପରେ (କାଳରେ ବା ସ୍ଥାନରେ)—
2. Hereafter (in space or time).
୩ । ପଛରେ—3. Behind.
୪ । ପିଠି ଆଡ଼େ—
4. In the back; in the rear.
୫ । ଭବିଷ୍ୟତରେ—5 In future.
୬ । ପଛ ଆଡ଼ୁ—6 From behind.
୭ । ପଛ ଆଡ଼କୁ—7. Backwards.
୮ । ଅବଶେଷରେ, ପରିଶେଷରେ—
8. Finally; at last. (Apte)
୯ । ପଶ୍ଚିମ ଦିଗରୁ—9. From the west. (Apte)
୧୦ । ପଶ୍ଚିମ ଦିଗକୁ—
10. Towards the west. (Apte)
ବିଣ—୧ । ପଛଆଡ଼େ ଥିବା—
1. Situate behind; hinder.
୨ । ପରେ ଘଟିବା—2. Future.

**ପଶ୍ଚାତ୍ କର୍ମ**—ସ. ବି (ବୈଦ୍ୟକ)—ଆରୋଗ୍ୟ ହେବା ପରେ ଶରୀରର
Paschāt karma ବଳ, ବର୍ଣ୍ଣ ଓ ଅଗ୍ନି ବୃଦ୍ଧି ପାଇଁ କରାଯିବା
ଉପଚାର—Treatment done during convalescence to restore strength and digestion.

**ପଶ୍ଚାତ୍ କୃତ**—ସ.ବି—୧ । ଯାହାକୁ ପଛରେ ଛାଡ଼ି ଆସିବାକୁ ହୋଇଥାଏ-
Paschāt kruta 1. Left behind (Apte).
୨ । ଯାହାକୁ ମନୁଷ୍ୟ ଟପି ଯାଏ ବା ବଳିଯାଏ—
2. Surpassed (Apte).
୩ । ଯାହାକୁ କେହି ପଚାରନ୍ତି ନାହିଁ—
3. Thrown to the background (Apte).

**ପଶ୍ଚାତ୍ଗାମୀ**—ସ. ବିଣ. ପୁଂ. (ପଶ୍ଚାତ୍+ଗମ୍ ଧାତୁ+ଇନ୍; ୧ମା.୧ବ)-
Paschātgāmi ୧ । ଯେ ପଛେ ପଛେ ଯାଏ—
(ପଶ୍ଚାତ ଗାମିନୀ—ସ୍ତ୍ରୀ) 1. Following.
୨ । ଯେ ପଛ ଆଡ଼କୁ ଗତି କରେ—
2. Moving backwards.
୩ । ପରବର୍ତ୍ତୀ—3. Following; succeeding.

**ପଶ୍ଚାତେ**—ଦେ. ଅ. ( ସ. ପଶ୍ଚାତ୍ )—
Paschāte ୧ । ପରେ, ଭବିଷ୍ୟତରେ, ପଛକୁ; ପଛେ—
ପଶ୍ଚାତ } 1. In future; afterwards.
ପଶ୍ଚାନ୍ତୁ } ଅନ୍ୟରୂପ] ତାହାଙ୍କ ଚରଣ ଛାଡ଼ି ପାଇ, ପଶ୍ଚାତେ କି ଗତିକୁ ପାଇ ।
ପଶ୍ଚାନ୍ତେ } ଜଗନ୍ନାଥ. ଭାଗବତ ।
ପାଛେ, ପିଛେ ୨ । ପୃଷ୍ଠ ଦେଶରେ—2. In the back.
**पीछे**

**ପଶ୍ଚାତ୍ତାପ**—ସ. ବି. (ଅବ୍ୟୟୀ ଭାବ; ପଶ୍ଚାତ୍+ତାପ)—
Paschāttāpa ଅନୁଚିତ କାର୍ଯ୍ୟ କରିବା ଯୋଗୁଁ ମନରେ ଜାତ
(ପଶ୍ଚାନୁତାପ—ଅନ୍ୟରୂପ) ହେବା ଖେଦ, ପସ୍ତାଇବା, ଅନୁତାପ—
Repentance; contrition.
ଏହା ବେଶିଣ ସୁଯୋଧନ ପଶ୍ଚାତ୍ତାପ
କରୁ ଅବା ଛତ୍ରକ ବାନ୍ଧିବାର ପାପ । କୃଷ୍ଣସିଂହ, ମହାଭାରତ ଦ୍ରୋଣ ।

**ପଶ୍ଚାଦ୍ଦିଗ**—ସ. ବି. (କର୍ମଧା, ପଶ୍ଚାତ୍+ଦିଗ)—
Paschāddiga ୧ । ପଶ୍ଚାଦ୍ଭାଗ (ଦେଖ)
ପଶ୍ଚାଦ୍ଦେଶ } ଅନ୍ୟରୂପ 1. Paschādbhāga ( See )
ପଶ୍ଚାଦ୍ଭାଗ } ୨ । ପଶ୍ଚିମ—2. The west.

**ପଶ୍ଚାଦ୍ବଂଶ**—ଦେ. ବି —(ବାଇବଲ ଅନୁବାଦ, ଆଧୁନିକ ପ୍ରୟୋଗ)—ଭାବୀ
Paschādbamsa ବଂଶଧରଗଣ—Descendants.

**ପଶ୍ଚାଦ୍ବର୍ତ୍ତୀ**—ସଂ. ବିଣ. ପୁଂ. (ପଶ୍ଚାତ୍+ବୃତ୍ ଧାତୁ+ଇନ୍. ୧ମା. ୧ବ.)
Paschādbarttī ପଛଆଡ଼େ ଅବସ୍ଥିତ—Situate behind.
(ପଶ୍ଚାଦ୍ବର୍ତ୍ତିନୀ—ସ୍ତ୍ରୀ)

**ପଶ୍ଚାର୍ଦ୍ଧ**—ସ. ବି. ( ଅପର+ଅର୍ଦ୍ଧ; ନିପାତନ )—୧ । ଶରୀରର ଗୋଡ଼-
Paschārddha ଠାରୁ ନାଭି ପର୍ଯ୍ୟନ୍ତ ଅଂଶ—1. The part
(ପୂର୍ବାର୍ଦ୍ଧ-ବିପରୀତ) of the body below the navel; the lower half of the body.
୨ । ବସ୍ତୁର ଦ୍ୱିତୀୟାର୍ଦ୍ଧ—2. The latter half.
୩ । ପଶ୍ଚିମାଂଶ—3. The western side (Apte)

**ପଶ୍ଚିମ**—ସ. ବି. ( ପଶ୍ଚାତ୍=ପଛଆଡ଼େ+ଇମ; ଉପାସନାକାଳରେ ଏହି
Paschima ଦିଗ ମନୁଷ୍ୟର ପଛକୁ ଥିବାରୁ; କମ୍ବା ପଶ୍ଚ=ପଶ୍ଚାତ୍+
ଇ ଧାତୁ=ଗମନ କରିବା+ମ, ସୂର୍ଯ୍ୟଦେବ ପ୍ରଥମେ ଉଦିତ
ହେବା ପରେ ଯେଉଁ ଦିଗକୁ ଗମନ କରନ୍ତି)—୧ । ପ୍ରତୀଚୀ;
ସୂର୍ଯ୍ୟ ଯେଉଁ ଦିଗରେ ଅସ୍ତ ହୁଅନ୍ତି—1. The west.
୨ । ପୃଷ୍ଠଦେଶ; ପଛଆଡ଼—
2. Back side; hind part.
୩ । ଶେଷଭାଗ—3. Last portion
ବିଣ—୧ । ପଶ୍ଚିମଦିଗସ୍ଥ—1. Western.
୨ । ଶେଷ; ଚରମ—2. Final; last.
୩ । ପଛଆଡ଼ର—3. Hinder; hindmost.
ଦେ. ବି—୧ । ଭାରତର ପଶ୍ଚିମ ଅଂଶ; ପଶ୍ଚିମାଞ୍ଚଳ—
1. Western India.

୨ । ଭାରତର ଉତ୍ତର ପଶ୍ଚିମ ପ୍ରଦେଶ—
2. The North Western Province of India

**ପଶ୍ଚିମ ଅବସ୍ଥା**—ସଂ. ବି—୧ । ମୃତ୍ୟୁ—
Paschima abastha 1. Death.
ତାହାଙ୍କର ପଶ୍ଚିମ ଅବସ୍ଥା ହୋଇଲେ
ଆମ୍ଭେମାନେ ଯମଙ୍କ ପାଶେ ସିନ୍ଧି ଭଲେ—କୃଷ୍ଣସିଂହ, ମହାଭାରତ ବନ
୨ । ଶେଷ ଅବସ୍ଥା—2 Last stage.
୩ । ମୁମୂର୍ଷୁ ଅବସ୍ଥା—3. Dying condition.

**ପଶ୍ଚିମ କବାଟ**—ଦେ. ବି—କ୍ଷତ୍ରିୟଙ୍କ ବଂଶୋପାଧିବିଶେଷ—
Paschima kabāṭa A family title of the Kshatriyas.

**ପଶ୍ଚିମ ଘାଟ**—ଦେ. ବି—ବିନ୍ଧ୍ୟ ପର୍ବତର ପଶ୍ଚିମ ଶାଖା, ଯାହା ବମ୍ବେଇ
Paschima ghāṭa ପ୍ରଦେଶର ପଶ୍ଚିମାଂଶରେ ସମୁଦ୍ରର ସମାନ୍ତର
पश्चिम घाट ହୋଇଅଛି—The Western Ghat
पश्चिमी घाट mountain range in western India.

**ପଶ୍ଚିମ ଜୀବନ**—ସଂ ବି—ଶେଷ ଜୀବନ; ଜୀବନର ଶେଷଭାଗ—
Paschima jībana The last part of the life.
କରୁଥିଲ ଆଶା କଟିବ ଯାପନ
ତୋ ପଶ୍ଚିମଗରେ ପଶ୍ଚିମ ଜୀବନ—ରାଧାନାଥ, ଲେଖା ।

**ପଶ୍ଚିମ ଦକ୍ଷିଣ**—ସଂ. ବି—ପୃଥିବୀର ଦକ୍ଷିଣ ଓ ପଶ୍ଚିମ ଦିଗର ମଧ୍ୟବର୍ତ୍ତୀ
Paschima dakshina କୋଣ, ନୈର୍ଋତ କୋଣ—
The south western point of the compass.

**ପଶ୍ଚିମ ଦୁଆର**—ଦେ. ବି. ( ସଂ. ପଶ୍ଚିମ+ଦ୍ୱାର )—୧ । ଘର ବା ଗଡ଼
Paschima duāra ବା ମନ୍ଦିର ବା ମନ୍ଦିର ବେଢ଼ାର ପଶ୍ଚିମ ଦିଗର
पश्चिम द्वार ଦ୍ୱାର—1. The western door or gate
पच्छिम दरवाजा of a house or compound or temple.
୨ । ପୁରୀ ଜଗନ୍ନାଥ ମନ୍ଦିର ବେଢ଼ାର ପଶ୍ଚିମ ଦ୍ୱାରରେ ପୂର୍ବେ ଥିବା ବେଶ୍ୟାଳୟମାନ—2 The houses of prostitutes which were formerly located near the western gate of the Puri temple.
୩ । ଗୁହ୍ୟଦ୍ୱାର—3. Anus.
(ଯଥା—ତାହାର ପଶ୍ଚିମ ଦୁଆର ଶବ୍ଦ କରୁଛି=ସେ ବାତକର୍ମ କରୁଛି । )

**ପଶ୍ଚିମ ବାହିନୀ**—ସଂ. ବିଣ ସ୍ତ୍ରୀ. ( ପଶ୍ଚିମ+ବହ ଧାତୁ+କର୍ତ୍ତୃ. ଇନ୍+
Paschima bāhinī ସ୍ତ୍ରୀ. ଈ )—ଯେଉଁ ନଦୀ ପଶ୍ଚିମକୁ ବହି ଯାଇଅଛି—(a river) Flowing towards the west.

**ପଶ୍ଚିମ ବୁଦ୍ଧି**—ସଂ. ବି—ପଛ ବୁଦ୍ଧି—
Paschima buddhi After-wit.

**ପଶ୍ଚିମ ରାତ୍ର**—ସଂ. ବି · ଶେଷ ରାତ୍ର; ରାତ୍ରର ଶେଷଭାଗ—
Paschima rātra The small hours of the night.

**ପଶ୍ଚିମ ରାତ୍ରି**—ଦେ. ବି.—(ସଂ. ପଶ୍ଚିମ ରାତ୍ର)—ପଶ୍ଚିମ ରାତ୍ର (ଦେଖ)
Paschima rātri Paschima rātra (See)
ପଶ୍ଚିମ ରାତ୍ରି ପ୍ରାପ୍ତ ହୋଇ,
ନଦିଶ ତାଙ୍କ ଅର କାହିଁ । ଜଗନ୍ନାଥ. ଭାଗବତ ।

**ପଶ୍ଚିମା**—ସଂ. ବି. ସ୍ତ୍ରୀ. (ପଶ୍ଚିମ+ଆ)—ପଶ୍ଚିମ ଦିଗ, ପ୍ରତୀଚୀ—
Paschimā The west.

(ପଶ୍ଚିମାଣୀ—ସ୍ତ୍ରୀ) ଦେ. ବି. ପୁଂ—୧ । ଭାରତର ପଶ୍ଚିମାଞ୍ଚଳ ବାସୀ—
पछिमा 2. A person of Western India.
पछमी ୨ । ଭାରତର ଉତ୍ତର ପଶ୍ଚିମାଞ୍ଚଳୀୟ ବ୍ୟକ୍ତି—
2. A man of the North Western province of India.
ବିଣ.—ପଶ୍ଚିମ ଦେଶୀୟ—Western.
ପଶ୍ଚିମା ବେଶ ଯଥୋଚିତ ବାଟ, ପିନ୍ଧାଇ ସକଳ ହୋଇଲେ ତୋଷ
ଭଞ୍ଜ· କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ।

**ପଶ୍ଚିମାଚଳ**—ସଂ. ବି.—ଅସ୍ତାଚଳ (ଦେଖ)
Paschimāchala Astāchala (See)

**ପଶ୍ଚିମା ପବନ**—ଦେ. ବି.—ଯେଉଁ ଥଣ୍ଡା ପବନ ଶୀତ ଦିନେ ପଶ୍ଚିମ
Paschimā pabana ଦିଗରୁ ବହେ—The cold wind
पिछिमे बातास पछमीहवा blowing from the west.

**ପଶ୍ଚିମୀ**—ସଂ. ବିଣ—୧ । ପଶ୍ଚିମ ଦିଗସ୍ଥ—
Paschimī 1. Of the west.
୨ । ପଶ୍ଚିମ ସମ୍ବନ୍ଧୀୟ—2. Western.

**ପଶ୍ଚିମୋତ୍ତର**—ସଂ. ବି.—(ପଶ୍ଚିମ+ଉତ୍ତର)—ପୃଥିବୀର ପଶ୍ଚିମ ଓ
Paschimottara ଉତ୍ତର ଦିଗର ମଧ୍ୟବର୍ତ୍ତୀ କୋଣ, ବାୟୁକୋଣ
The north western point of the compass.

**ପଶ୍ୱାଚାର**—ସଂ. ବି.— (ମ. ପ. ଲୋ, ପଶୁର ଉପଯୁକ୍ତ ଆଚାର)—
Paswāchāra ୧ । ପାଶବ ବ୍ୟବହାର—
1. Beastly conduct.
୨ । ତାନ୍ତ୍ରିକ ଆଚାରବିଶେଷ—
2. A kind of Tantric ritual.
[ଦ୍ର—ତନ୍ତ୍ର ମତରେ ତିନ ପ୍ରକାରେ ସାଧନା କରି ଯାଏ; ଯଥା, ଦିବ୍ୟ, ବୀର ଓ ପଶୁ; ପଶ୍ୱାଚାର ବା ବୈଦିକାଚାର କଳିଯୁଗରେ କର୍ତ୍ତବ୍ୟ; ଏଥିରେ ନିତ୍ୟସ୍ନାନ, ସନ୍ଧ୍ୟା, ପୂଜନ, ଶ୍ରାଦ୍ଧ ଓ ବ୍ରାହ୍ମଣ କର୍ମ କରିବ, ସମସ୍ତଙ୍କୁ ସମାନ ଭାବରେ ଦେଖିବ, ଅନ୍ୟର ଅନ୍ନ ଗ୍ରହଣ କରିବ ନାହିଁ, ସତ୍ୟ କହିବ ଓ ମଦ୍ୟ ମାଂସ ବ୍ୟବହାର କରିବ ନାହିଁ (ହି.ଶ )]

**ପଶ୍ୱାଚାରୀ**—ସଂ. ବିଣ. ପୁଂ (ପଶ୍ୱାଚାର+ଇନ୍; ୧ମା. ଏବ.)—
Paswāchārī ୧ । ପାଶବ ବ୍ୟବହାରକାରୀ—
(ପଶ୍ୱାଚାରିଣୀ—ସ୍ତ୍ରୀ) 1. Acting brutally; bestial.
୨ । ପଶ୍ୱାଚାର ବିଧିରେ ତାନ୍ତ୍ରିକ ଅନୁଷ୍ଠାନକାରୀ—
2. Following the Paswāchāra Tantra-exercises.

**ପଶ୍ୟ**—ଦେ. ବି.—(ସଂ. ପ୍ରବେଶ, କିମ୍ବା ଦୃଶ୍ ଧାତୁର ଅନୁଜ୍ଞା ୨ୟ ପୁରୁଷ
Pasya ଏକ ବଚନର ଆକାର ସଂ. ପଶ୍ୟ=ଦେଖ)—୧ । ଦୃଷ୍ଟି—
खेयाल खयाल 1. Sight.
୨ । କୌଣସି ବିଷୟ ପ୍ରତି ମନୋଯୋଗ—
2. Attention to any point.
୩ । ଧ୍ୟାନ, ଖିୟାଲ—3. Care; thought.
୪ । ସ୍ମରଣ—4. Remembrance; recollection.

**ପଶ୍ୟତୋହର**—ସଂ. ବି. ପୁଂ—[ପଶ୍ୟତଃ=ଦେଖିବା ଲୋକର+ହୃ
Pasyatohara ଧାତୁ+କର୍ତ୍ତୃ. ଅ—ହର=ଯେ ହରଣ କରେ; ଯେଉଁ ବ୍ୟକ୍ତି ଅକ୍ଷି ଆଗରେ (ସୁନାକୁ) ହରି ନିଏ]—

୧ । ବଣିଆ—1. Goldsmith.
୨ । ଚୋର—2. Thief.

**ପଷ୍ଟ**—ସ୍ତ୍ରୀ ବଣ—(ସଂ. ସ୍ପଷ୍ଟର ଅଶୁଦ୍ଧ ଉଚ୍ଚାରଣ)—ସ୍ପଷ୍ଟ (ଦେଖ)
Pashṭa पष्ट Spashṭa. (See)

**ପସନା**—ପ୍ରାଦେ. (ବସ୍ତର) (ଭୁଲ. ହି. ପସୀନା; ସଂ. ପ୍ରସ୍ୱେଦନ)—ଝାଳ—
Pasanā Sweat; perspiration.

**ପସନା ଫୁଟିବା**—ପ୍ରାଦେ. (ବସ୍ତର) କ୍ରି—ଝାଳ ବହିବା—
Pasanā phuṭibā Sweat coming out of the body; perspiration.

**ପସନ୍ଦ**—ବୈଦେ. ବି. (ଫା.)—୧ । ନିର୍ବାଚନ; ବାଛିବା;—
Pasanda 1. Selection.
ଅପସନ୍ଦ, ନାପସନ୍ଦ, ବେପସନ୍ଦ } ବିପରୀତ
୨ । ରୁଚି, ମନୋନୟନ; ଅଭିରୁଚି—
2. Choice; liking.
पछन्द ୩ । ମଞ୍ଜୁରି; ଗ୍ରହଣ—
पसंद 3. Acceptance.
୪ । ସମ୍ମାନ—4. Regard; respect.
୫ । ଅନୁମୋଦନ—5 Approval; approbation
ବଣ.—୧ । ମନୋନୀତ—1. Selected; chosen.
୨ । ଅନୁମୋଦିତ—2. Approved.
୩ । ଗୃହୀତ—3 Accepted.
୪ । ମନୋମତ; ଇଚ୍ଛାନୁରୂପ; ରୁଚିର ଅନୁକୂଳ—
4. Choice; suiting one's choice or taste.
୫ । ଅନୁରୂପ; ତୁଲ୍ୟ—5. Like; similar.
ବନ୍ଧୁ ଅବନ୍ଧୁଙ୍କ ବନ୍ଧୁ, ଅଧରରେ ବନ୍ଧ କରି ଧୁନ୍ଦ ପସନ୍ଦ ହୁଆ—
କବିସୂର୍ଯ୍ୟ—ସଙ୍ଗୀତ ।
୬ । ରୁଚିକର, ଉତ୍ତମ, ସୁନ୍ଦର—
6. Beautiful, decent.
ଏଥିରୁ ବଡ ପସନ୍ଦ × × × ଦେବାର ଶିଖିବୁ ମୋର ହିଣି ।
କବିସୂର୍ଯ୍ୟ. ସଙ୍ଗୀତ ।
୭ । ଉଚିତ—7. Proper.
ଉପଷ୍ଟ ଯାକରେ ଜଣା ନ ଥାଇ ସଂଶୟ
ପସନ୍ଦ ନୁହଇ ପର ପୁରୁଷରେ ସ୍ନେହ—
କବିସୂର୍ଯ୍ୟ—କଳୋଗସ ଚମ୍ପୂ ପ. ୮୦ ।
୮ । ବିଶ୍ୱାସ ଯୋଗ୍ୟ—8. Reliable; trustworthy.
୯ । ଯୋଗ୍ୟ, ଅନୁକୂଳ—9 Suitable; fitting

**ପସନ୍ଦ କରିବା**—ଦେ କ୍ରି—୧ । ମନୋନୀତ କରିବା—
Pasanda karibā 1. To choose; to select.
पछन्दकरा ୨ । ପ୍ରଶଂସା କରିବା—2. To praise.
पसन्दकरना ୩ । ଅନୁମୋଦନ କରିବା—
3. To aprove; to take a fancy to.
୪ । ସମ୍ମାନ କରିବା; ଖାତିର କରିବା—
4. To treat with respect or regard.
୫ । ଭଲ ପାଇବା; ସୁଖ ପାଇବା—5. To like
୬ । ବିଶ୍ୱାସ କରିବା—6. To believe; to trust.
୭ । କୌଣସି ପଦାର୍ଥର ଗୁଣ ବା ମୂଲ୍ୟ ବିଚାର କରିବା—
7. To take into consideration the quality or (ପସନ୍ଦକୁ ଆଣିବା—ଅନ୍ୟରୂପ) price of a thing; to appraise.

**ପସନ୍ଦକୁ ଆସିବା**—ଦେ କ୍ରି—ମନୋମତ ହେବା—
Pasandaku āsibā To meet with one's approval,to
पछन्देआसा;पसन्दमेंआना suit one's choice.

**ପସନ୍ଦଦାର୍**—ବୈଦେ. ବଣ—(ଫା. ପସନ୍ଦଦାର୍)—୧ । ଅନୁମୋଦିତ—
Pasandadār 1. Approved; choice
(ପସନ୍ଦଦାରିଆ—ଅନ୍ୟରୂପ) ୨ । ଯେ ଉତ୍ତମରୂପେ ପସନ୍ଦ କରିପାରେ—
पछन्ददार 2 Competent to select a thing.
पसन्ददार ୩ । ଦେଖିବାକୁ ସୁନ୍ଦର—
3. Graceful to look at.

**ପସନ୍ଦ ପଡ଼ିବା**—ଦେ. କ୍ରି—୧ । ସମ୍ମାନିତ ହେବା, ଖାତିରରେ ଆସିବା—
Pasanda paṛibā 1. To be treated with respect (ପସନ୍ଦରେ ପଡ଼ିବା—ଅନ୍ୟରୂପ) or regard.
पछन्द पड़ा (ଯଥା—ଏ କାଳର ଟୋକାଙ୍କୁ ମୁରବୀମାନେ ପସନ୍ଦ
पसन्दपड़ना ପଡ଼ୁ ନାହାନ୍ତି)
୨ । ମନୋନୀତ ହେବା; ଅନୁମୋଦିତ ହେବା—
2. To be approved; to meet with approval; to suit one's choice.
ପସନ୍ଦ ପଡ଼ିବ ବୋଲି ସିନା ମାତ୍ର ପରତା ବଳାଇ ବଚନରେ—
କବିସୂର୍ଯ୍ୟ. କବିତାକଲ୍ଲୋଳ ।
୩ । ବିଶ୍ୱାସ କରାଯିବା—3. To be believed.

**ପସନ୍ଦ ସଇ**—ବୈଦେ. ବି. (ଫା.)—୧ । ଅନୁମୋଦିତ ହେବାର ଯୋଗ୍ୟ-
Pasanda sai 1. Worthy of approval or belief; (ପସନ୍ଦ ସହି—ଅନ୍ୟରୂପ) approvable.
पछन्दसहि ୨ । ରୁଚିର ଅନୁରୂପ—
पसन्दसही 2 According to one's liking or fancy.

**ପସନ୍ଦି**—ବୈଦେ. ବଣ—(ଫା. ପସନ୍ଦୀ)—ପସନ୍ଦଦାର୍ (ଦେଖ)—
Pasandi Pasandadār. (See)
( ପସନ୍ଦିଆ—ଅନ୍ୟରୂପ )

**ପସର**—ଦେ. ବି—ପସରା (ଦେଖ)—
Pasara Pasarā. (See)
ଯେସନେ ବଣିଆ ପସର—ଭକ୍ତ ପ୍ରେମ ପଞ୍ଚାମୃତ ।

**ପସରା**—ଦେ. ବି—(ସଂ. ପ୍ରସାର=ପଣ୍ୟ ବିକ୍ରୟ; ଭୁଲ. ପାଲି. ପସାର; କମ୍ପା ସ. ପଣ୍ୟଶାଳା)—୧ । ବୁଲାବିକାଳି ବା ଉଠା—
Pasarā
पसवा ଦୋକାନୀର ବିକ୍ରେୟ ଦ୍ରବ୍ୟ ସମ୍ଭାର—1. Collection
पसरहट्टा, पसरट्टा; पसारा of commodities or wares of a pedlar, pedlary.
୨ । ଦୋକାନ—2. Shop.
ବସିଛି ବୃକ୍ଷ ପାସୋରି ବାଟି ଖରସ ପସରା—
କବିସୂର୍ଯ୍ୟ ରତ୍ନାକର ଚମ୍ପୂ ବ, ଗୀତ ।
୩ । ଉଠାଦୋକାନୀର ପଣ୍ୟଦ୍ରବ୍ୟ ରଖିବା ଗୁଙ୍ଗୁଡ଼ା,ପଣ୍ୟାଧାର—
3 A basket or tray on which commodities are exhibited for sale by a pedlar.
୪ । ଆଶ୍ରୟ—4. Support.

୫ । ଜୀବିକା ନିର୍ବାହର ଉପାୟ—
5. Means of support.
୬ । ବୋଝ—6 Load.
୭ । ଆଧାର—7. Receptacle.
୮ । (ଲକ୍ଷଣାର୍ଥ) ପୂର୍ଣ୍ଣ ପରିମାଣ—
8. (figurative) A full measure.
(ଯଥା—ଘର କଲେ କଲଙ୍କ ପସର ମୁଣ୍ଡେଇବାକୁ ହୁଏ ।)
ପ୍ରାଦେ (ଗଡ଼ଜାତ) ବି—ଖାତିର; ପରୁଆ—
Care; regard.
(ଯଥା—ତାର ଏ କଥାରେ ପସର ନାହିଁ)

**ପସର ମେଲ(ଲେ)ଇବା**—ଦେ. କ୍ରି—ବିକ୍ରେୟ ଦ୍ରବ୍ୟ ପରିପୂର୍ଣ୍ଣ ଆଧାରକୁ
Pasarā mela(le)ibā ପଣ୍ୟ ବିକ୍ରୟାର୍ଥ ଖୋଲି ରଖିବା—To exhibit or spread out the basket or tray of commodities for sale.
ପସର ପକା(କେ)ଇବା } ଅନ୍ୟରୂପ
ପସର ବାଢ଼ିବା
ପସର ମେଲିବା
पसरा खुला पसरहट्टा खुलना

**ପସଲା**—ଦେ. ବି—(ବୃଷ୍ଟିର) ଅସର—
Pasalā Shower; outpour (of rain).
पसला बौछार; झड़

**ପସାର**—ଦେ. ବି—(ସଂ. ପ୍ରସାର)—୧ । ଖ୍ୟାତି; ପ୍ରତିପତ୍ତି—
Pasāra 1 Reputation.
पतियारा पसारा
୨ । ବ୍ୟବସାୟଗତ ବିଶ୍ୱାସ ବା ସୁନାମ—
2. Credit or reputation in trade or business.
୩ । ବ୍ୟବସାୟାଦିରେ କୃତକାର୍ଯ୍ୟତା—
3. Success in business.
पसाव ୪ । ବିସ୍ତୃତି, ପ୍ରସାର—
पसार 4. Expanse; extent.
୫ । ବ୍ୟବସାୟର ବିସ୍ତାର ବା ଉନ୍ନତି—
5. Extention of business; improvement in trade.

**ପସାରିବା**—ଦେ. କ୍ରି (ସଂ. ପ୍ରସାରଣ);—୧ । ଦୋକାନର ପଣ୍ୟଦ୍ରବ୍ୟକୁ
Pasāribā ମେଲାଇ ରଖିବା—1. To exhibit the basket
पसारना of commdities for sale.
୨ । ମେଲାଇବା—2. To spread out; to stretch out.

**ପସାରି**—ଦେ. ବି. ପୁଂ—୧ । ବୁଲାବିକାଳି—
Pasāri 1. A pedlar.
(ପସାରୁଣୀ—ସ୍ତ୍ରୀ) ୨ । ପଣ୍ୟ ବିକ୍ରେତା; ଦୋକାନୀ—
2. Shop keeper; stall holder, grocer.
गाँजल, पसारी ୩ । ହାଟ ଆଦିକୁ ଯେଉଁ ବିକ୍ରେତାମାନେ ପସର
पंसारी ନେଇ ଆସନ୍ତି, ଭୁଟା ଦୋକାନୀ—3. Sellers coming to a market with baskets; huckster.

ଗୁଣୀଲ ପସର ପ୍ରମାଣ
ଗୁଣି ସ୍ୱାଦ ଫଳ ଅଣ
ତାହା ଯେସନେ ନେଗେ ଅଣି
ପସାର ନାହିଁ ନ ଗଣି ।
ଉପେନ୍ଦ୍ର—ପ୍ରେମପୀୟୂଷ ।

**ପସାରୁଣୀ**—ଦେ. ବି. ସ୍ତ୍ରୀ.—୧ । (ପସାରିର ସ୍ତ୍ରୀଲିଙ୍ଗ) ଯେଉଁ ସ୍ତ୍ରୀଲୋକ
Pasāruṇi ହାଟକୁ ପସର ନେଇ ପଣ୍ୟାଦି ବିକେ—
A female huckster.
ସ.—ପ୍ରସାରଣୀ, ସୃଜବଲା
ଭଦ୍ରପର୍ଣ୍ଣୀ, ପ୍ରତାପନୀ, ସରଣୀ
ସାରଣୀ, ପ୍ରସାରଣୀ,
ଗନ୍ଧାଳ, ବଲା, ଗନ୍ଧପ୍ରସାରଣୀ,
ଭଦ୍ରା, ଗନ୍ଧଭଦ୍ରା, ସୁପ୍ରସରା,
କଟଂଭରା, ସାରଣୀ,
ପ୍ରସରା ।
ମ. ଗୃହବେଲ, ପ୍ରସାରଣୀ
ତେ. ସବରେଲଚେଟ୍ଟୁ,
ଗୋପ୍ରେମଗୋରୁ
ଗୁ. ପ୍ରସାରଣ, ବେଲ୍ୟ
ଗନ୍ଧଭାଦୁଲିୟା, ଗାନ୍ଧାଳ
ଗାନ୍ଦାଳ, ଗନ୍ଧଭାଦୁଲ
गान्धाली, पसरन,
गन्धालि, गन्धपसार(री)
୨ । (ସ. ପ୍ରସାରଣୀ)—ଏକ ପ୍ରକାର ଔଷଧି ଲତା—
2 A medicinal creeper; Paederia Fœtida
[ଦ୍ର—ଏ ଲତାର ପତ୍ର ଅତ୍ୟନ୍ତ ଦୁର୍ଗନ୍ଧମୟ । କିନ୍ତୁ ଡିଅଣ ବା ଝୋଳ ହେଲେ ଏଥିର ଦୁର୍ଗନ୍ଧ ରହେ ନାହିଁ । ଏହାର ପତ୍ର ଓ ଡାଙ୍କର ଝୋଳ କରି ପଥ୍ୟରୂପେ ରୋଗୀ ଖାଏ । ଏହାର ରସ ଦେହରେ ମାଲିସ କଲେ ଅଙ୍ଗ ପ୍ରସାରିତ ହୁଏ ବୋଲି ଏହାର ନାମ ପ୍ରସାରଣୀ । ଏହା ଅଙ୍କୁକାଦି ବର୍ଗର ଦୁର୍ଗନ୍ଧ ରୋହିଣୀ ଲତା, ଫୁଲ କଲମଲଟାର ଫୁଲ ପରି ଓ ଶରତ୍ କାଳରେ ଫୁଟେ; ଏ ଲତା ବହୁତ ମାଡି ଯାଏ । ବୈଦ୍ୟକ ମତରେ ଏହା ବଲବୀର୍ଯ୍ୟ ବର୍ଦ୍ଧକ, ବାତ ପିତ୍ତ ନାଶକ, ଭଗ୍ନାସ୍ଥି ସଂଯୋଜକ, ସ୍ୱରଭଙ୍ଗ ଓ ବାତ ଆଦି ରୋଗରେ ଉପକାରୀ ।]

**ପସିନା**—ଦେ. ବି. (ସ. ପ୍ରସ୍ୱେଦନ)—ଝାଳ—
Pasinā घाम पसीना Sweat.
(ପସିନ୍ନା—ଅନ୍ୟରୂପ)

**ପସ୍ତା**—ଦେ. ବି.—(ସ. ପଶ୍ଚାତ୍ତାପ, ପ୍ରା. ପଚ୍ଛତାବ)—ପଶ୍ଚାତ୍ତାପ—
Pastā पस्तान पछतावा Repentance.

**ପସ୍ତା(ସ୍ତେ)ଇବା**—ଦେ. କ୍ରି. (ସ. ପଶ୍ଚାତ୍ତାପ ପ୍ରା. ପଚ୍ଛତାବ)—
Pastā(ste)ibā ଅନୁତାପ କରିବା—To repent.
पस्तान पछताना

**ପହଁଟିଆ**—ପ୍ରାଦେ. (ସମ୍ବଲପୁର) ବି.—(ସଂ. ପ୍ରଭାତ; ପ୍ରା. ପହାଟ)—
Pahañṭiā ପାହାନ୍ତିଆ—Early hours of the morning.
(ପହଣ୍ଟିଆ—ଅନ୍ୟରୂପ)

**ପହଁଟିଆ ତରା**—ପ୍ରାଦେ. (ସମ୍ବଲପୁର) ବି.—ପାହାନ୍ତିଆ ତରା (ଦେଖ)
Pahañṭiā tarā Pāhāntiā tarā (See).
(ପହଣ୍ଟିଆ ତରା—ଅନ୍ୟରୂପ)

**ପହଁଟିବା**—ପ୍ରାଦେ. (ସମ୍ବଲପୁର) କ୍ରି.—୧ । ଅଭ୍ୟାସ ବଶତଃ ଲାଳାୟିତ
Pahañṭibā ହେବା—1. To be tempted owing to habit.
(ପହଁଟି ଯିବା—ଅନ୍ୟରୂପ)
(ଯଥା—ସବୁଦିନ ଏଠାରୁ ପୁଆଲ ଖାଇ ଗାଈଟା ପହଁଟୁଛି ।)
୨ । (ନିଆଁ) ଲାଗି ଯିବା—
2. To break out (said of fire).

**ପହଁରା**—ଦେ. ବି.—୧ । (ସଂ. ବହୁକରୀ=ଝାଡ଼ୁ, ବହୁକର=ଝାଡ଼ୁ-
Pahañrā ଦେବା ବ୍ୟକ୍ତି)—ଓଳାଇବା—
झाँटी झाड़ु, बुहारनी, बढ़नी 1. Sweeping.
୨ । ଝାଡ଼ୁ; ସମ୍ମାର୍ଜ୍ଜନୀ—
2. Broomstick.

୩ । ଝାଡ଼ୁ ଦେବା, ଓଲାଇବା—
3. Sweeping a place clean.

ଅଗଣା ଘରକ ପହଁର,
ଚନ୍ଦନ ତୋଳ ଦାଣ୍ଡ ଛେକ । ଭଗବତ ।

সাঁতার ୪ । (ସଂ. ପ୍ଳବନ ପ୍ରା. ପବଣ)—ସନ୍ତରଣ—
पैराइ 4. Swimming.

ପ୍ରାଦେ (ଗଡ଼ଜାତ)—କ୍ଷେତରେ ଖୋଳାଯିବା ପହଣୀ, ପାଣି କାଳ—
Small water-channel dug in a field

ଦେ. ବଣ.—ଯେଉଁ ପାଣିର ଗମ୍ଭୀରତା ମନୁଷ୍ୟର ଉଚ୍ଚତା ଠାରୁ ବେଶି ଓ ଯାହାକୁ ପହଁରିବାଦ୍ୱାରା ପାର ହେବାକୁ ପଡ଼େ—
(water) Which is more than a man's depth.

**ପହଁରା(ରେ)ଇବା**—ଦେ. କ୍ରି.—ପହରାଇବା (ଦେଖ)
Pahañrā(re)ibā Paharāibā (See)

**ପହଁରାଏ ପାଣି**—ଦେ. ବି.—ଯେଉଁ ଜଳର ଗମ୍ଭୀରତା ମନୁଷ୍ୟର ଉଚ୍ଚତା ଅପେକ୍ଷା ବେଶି ଓ ସନ୍ତରଣଦ୍ୱାରା ଯାହା ଉଲ୍ଲଙ୍ଘନ କରାଯାଇ ପାରେ, ଗମ୍ଭୀର ଜଳ—
Pahañrāe pāṇi
সাঁতার পানী
प राव
Water which is more than a man's depth and which can be crossed by swimming; deep water.

**ପହଁରା ପହଁରି**—ଦେ. ବି.—୧ । ଝାଡ଼ୁଦ୍ୱାରା ପରିଷ୍କାର କରିବା କର୍ମ—
Pahañrā pahañri 1. Sweeping.
୨ । ସନ୍ତରଣ କର୍ମ—2. Act of swimming.

**ପହଁରା ମୁଠା**—ଦେ. ବି.—ଘର ଆଦି ଓଲାଇବା ପାଇଁ ଗୁଚ୍ଛାଏ ଖଡ଼ିକା ଏକତ୍ର ଗୋଛ ହୋଇ ବନ୍ଧା ହୋଇଥିବା ସମ୍ମାର୍ଜନୀ—A bundle of twigs bound together and used as a broom-stick.
Pahañrā muṭhā
ঝাঁটা গাছি
झाड़ु; बुहारनी

**ପହଁରିବା**—ଦେ. କ୍ରି.—୧ । ଝାଡ଼ୁଦ୍ୱାରା ଓଲାଇବା—
Pahañribā 1. To sweep a place clean.
ঝাঁট দেওয়া
बुहारना
୨ । (ସଂ. ପ୍ଳବ ଧାତୁ) ସନ୍ତରଣ କରିବା, ଜଳରେ ଭାସି ଗତି କରିବା—2. To swim.
সাঁতার কাটা
पा रना, पैरना
୩ । କୌଣସି ବସ୍ତୁର ଉପରେ ଉପରେ ଗତି କରିବା—3. To move on the surface.
୪ । ଭାସିବା; ଭାସମାନ ହେବା—4. To float.

**ପହଙ୍ଗା**—ଦେ. ବି.—ପଙ୍ଗା ମାଛ (ଦେଖ)
Pahaṅgā Paṅgā māchha (See)

**ପହଞ୍ଚ**—ଦେ. ବି. (ସଂ. ପ୍ର. ଉପସର୍ଗ. ଅଞ୍ଚ ଧାତୁ=ଗମନ କରିବା)—ହାତ ପାଇବା ଯାଗା—A place within the reach of one's hands.
Pahañcha
পহুচ । पहुंच
(ପହୁଞ୍ଚ—ଅନ୍ୟରୂପ)

**ପହଞ୍ଚା**—ଦେ. ବି (ସଂ. ପ୍ର+ଅଞ୍ଚ ଧାତୁ)—୧ । ପହଞ୍ଚିବା କର୍ମ—
Pahañchā 1. Arrival.
পৌচা
पहुँच
୨ । ଦୋଳି ଚଳାଇବା, ଦୋଳିର ଇତସ୍ତତଃ ଚାଳନ—
2. Rocking a swing.

**ପହଞ୍ଚା(ଞ୍ଚେ)ଇବା**—ଦେ. କ୍ରି (ସଂ. ପ୍ର+ଅଞ୍ଚ ଧାତୁ)—ପହଞ୍ଚିବା କ୍ରିୟାର ଣିଜନ୍ତ ରୂପ—The causative form of pahañchibā.
Pahañchā(ñche)ibā
পৌছান, পহুঁছান
पहोंचाना, पहुँचाना
୧ । ଉପସ୍ଥିତ କରାଇବା, ଉପନୀତ କରାଇବା—
[ପହୁଞ୍ଚା(ଞ୍ଚେ)ଇବା—ଅନ୍ୟରୂପ] 1. To cause to arrive at.
୨ । ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ବହି ନେବା—
2. To convey or carry from one place to another place.
୩ । (ଦୋଳିକୁ) ଝୁଲାଇବା —
3. To rock (a swing).
( ଯଥା—ଦୋଳି ପହଞ୍ଚାଇବା, ପଇତା ପହଞ୍ଚାଇବା । )
୪ । ପଞ୍ଚାଇବା (ଦେଖ)—4. Pañchāibā (See)

**ପହଞ୍ଚି**—ପ୍ରାଦେ (ଗଞ୍ଜାମ) ବି—ପଇଞ୍ଚ ( ଦେଖ )
Pahañchi Paiñcha (See)
(ପହୁଞ୍ଚି—ଅନ୍ୟରୂପ)

ସୁନାଗଡ଼ୁ ପହୁଞ୍ଚି ଉଡକ ମୁଦ୍ରିକା,
ଲଗାଇ କରି ଶୋଭା ଦଶୁଛନ୍ତି ଏକା ।
କୃଷ୍ଣସିଂହ, ମହାଭାରତ ଅଦ ।

**ପହଞ୍ଚିବା**—ଦେ. କ୍ରି [ସଂ. ପ୍ର+ଅଞ୍ଚ ଧାତୁ, ସଂ. ପ୍ରଭୂତ=ଉପରେ ଗତ, ପ୍ରା. ପହୂଚ (ହି. ଶ] ଉପନୀତ ହେବା, ଉପସ୍ଥିତ ହେବା—To reach; to arrive at.
Pahañchibā
পহুঞ্চা, পৌছা
पहोंचना

**ପହଡ଼**—ଦେ. ବି (ଭୁଲ. ତା. ପଡ଼; ତେ ପଡୁଡ଼=ଶୋଇବା)—ପହୁଡ଼, ରାଜାଙ୍କର ନିଦ୍ରା ବା ଶୟନ; ଦେବତାଙ୍କର ନିଦ୍ରା ବା ବିଶ୍ରାମ ନିଦ୍ରା—Sleep ( used for the sleep of kings and Deities )
Pahaṟḍa
(ପହୁଡ଼—ଅନ୍ୟରୂପ)
ঘুম
नींद
[ ଦ୍ର—ଏହା ରାଜା ଓ ଦେବତାଙ୍କ ନିଦ୍ରା ପ୍ରତି ପ୍ରୟୋଗ କରାଯାଏ । ମଧୁସୂଦନ କବିତାବଳୀରେ ('ଭେକଣ ବେଗେ ପହୁଡ଼ ଗୋଧନ ଘେନି ଗଉଡ଼') ଗଉଡ଼ର ନିଦ୍ରାପ୍ରତି ପହୁଡ଼ ଶବ୍ଦ ବ୍ୟବହାର କରିଅଛନ୍ତି; କିନ୍ତୁ ଏହା ସଙ୍ଗତ ନୁହେଁ ।]
ଗ୍ରାମ୍ୟ (ଇତର ଭାଷା) ପ୍ରହର, ୪ ଘଡ଼ି ସମୟ; ଯାମ; ୩ ଘଣ୍ଟା ସମୟ—A unit of time; about three hours

**ପହଡ଼ ଘର**—ଦେ. ବି—(ରାଜାଙ୍କର) ଶୟନ କକ୍ଷ, ଶୋଇବା ଘର—
Paharḍa ghara Bedchamber (of a Raja).

**ପହଡ଼ ପକା(କେ)ଇବା**—ଦେ. କ୍ରି—ଦେବତାଙ୍କର ଦୈନିକ କର୍ତ୍ତବ୍ୟ ନୀତି ଶେଷ କରି ପହଡ଼ ପଡ଼ିବାର ନୀତି ସମାଧାନ କରିବା—To perform the daily ceremonials or rites leading up to the daily sleep of an idol.
Paharḍa pakā(ke)ibā

**ପହଡ଼ ପଡ଼ିବା**—ଦେ. ବି—(ଦେବତା, ରାଜାଆଦି) ନିଦ୍ରିତ ହେବା—
Paharḍa parḍibā Being asleep (said of Rajas and idols).

**ପହଡ଼ା(ଡ଼େ)ଇବା**—ଦେ. କ୍ରି—(ପହଡ଼ିବା କ୍ରିୟାର ଣିଜନ୍ତ ରୂପ)—
Paharḍā(rḍe)ibā The causative form of Pahārḍibā).
[ପହୁଡ଼ା(ଡ଼େ)ଇବା—ଅନ୍ୟରୂପ]
ଶୁଆଇବା—To cause to sleep.

**ପହଡ଼ିବା**—ଦେ. କ୍ରି—୧ । (ରଜା) ଶୋଇବା—
Pahardibā 1. To sleep (said of a Raja).
(ପହୁଡ଼ିବା—ଅନ୍ୟରୂପ) ପହୁଡ଼ ଥିଲେ ଜଣା, ନ ଗଲା ମୋତେ ବାଣା ଅଙ୍ଗେ ପ୍ରଲେପ ଲଗାଇଲ ଗେଲେ ଲସ୍ତ—କବିସୂର୍ଯ୍ୟ. ସଙ୍ଗୀତ ।

୨ । ପଡ଼ିବା—2. To fall
୩ । ବାଣ ମାରିବା—3. To fire; to throw arrows.

**ପହଣା(ନା)**—ପ୍ରାଦେ (ମେଦନୀପୁର, ଯାଜପୁର, ଭଦ୍ରଖ) ବି (ଭୁଲ. ବଂ ପୋନାମାଛ) ମାଛ ଚାଆଁଳ, ରେହୁ, ଭାକୁଡ଼, ମିରିକାଳି ଆଦି ମାଛଛୁଆ—The fry of fishes.
Pahaṇā(nā)

**ପହଣୀ**—ଦେ. ବି (ସ ପ୍ରବେଣୀ; ସଂ. ପୟଃ + ନାଳୀ)—
Pahaṇī ୧ । ଜଳନାଳ—1. Water channel.
ନାଲା ୨ । ଲମ୍ବ ଗଭୀର ଗାଡ଼—2. Trench; moat;
ਪੈਨ ditch; long deep pit.

**ପହଣ୍ଡ**—ଦେ. ବି (ସଂ. ପଦଦଣ୍ଡ ବା ପଦ ଓ କୁଣ୍ଡନ=ଗଢ଼; ସ. ପାଦଦଣ୍ଡ, ପ୍ରା. ପ୍ରାୟଦଣ୍ଡ, ପାଲି. ପାଖଣ୍ଡକ)—୧ । ପାଦ, ପାହୁଣ୍ଡ; ପାଦକ୍ଷେପ—1. Step; footstep.
Pahaṇḍa
पा
पैंड़, पग ଯେତେ ବେଳେ ପହଣ୍ଡ ଧରି ମୋତେ ଯାଇ—କୃଷ୍ଣସିଂହ. ମହାଭାରତ ବନ ।
୨ । ଚାଲିବା ସମୟରେ ଦୁଇ ପାଦ ମଧ୍ୟସ୍ଥ ସ୍ଥାନ—2. Pace; the space between the two steps of a person walking.
୩ । ଉରୁଣ୍ଡିବନ୍ଧ—3 The ground piece of a door-frame.
୪ । ସରୁ ପିଣ୍ଡା—4 Portico; narrow veranda.
୫ । ଚାଲିବା—5. Walking.

**ପହଣ୍ଡ ପକା(କେ)ଇବା**—ଦେ. କ୍ରି—୧ । ପାଦକ୍ଷେପ କରି ଚାଲିବା—
Pahaṇḍa pakā(ke)ibā 1. To walk step by step; to step.
[ପହଣ୍ଡି ପକା(କେ)ଇବା—ଅନ୍ୟରୂପ]
पा फेंका ବନକୁ ଯିବା ପାଇଁ ଅଗକୁ ପହଣ୍ଡ
डगमागा ପକାଇଲେ ଛାଡ଼ି ଆପଣା ରାଜ୍ୟଖଣ୍ଡ । କୃଷ୍ଣସିଂହ ମହାଭାରତ ସଭା ।
୨ । ଧୀରେ ଧୀରେ ଚାଲିବା—2 To walk slowly.
ଗଣି ଗଣି କରି ପହଣ୍ଡ ପକାଇଲେ—କୃଷ୍ଣସିଂହ ମହାଭାରତ ବନ ।

**ପହଣ୍ଡ ମଣା**—ଦେ. ବି—ରାଜା ବା ଦେବତାଙ୍କ ପହଣ୍ଡି ବିଜେ ସମୟରେ ଜଣେ ସେବକ ଆଗେ ଆଗେ ଚାଲି ବାଟ କଢ଼ାଇବା କର୍ମ—Act of leading the way.
Pahaṇḍa maṇā
(ପହଣ୍ଡ ମଣାଣ—ଅନ୍ୟରୂପ)

**ପହଣ୍ଡ ମଣା(ଣେ)ଇବା**—ଦେ. କ୍ରି—ରାଜାମାନଙ୍କ ଚାଲିବା ଆଗରୁ ଜଣେ ଆଗୁଆ ଲୋକ ବାଟ କଢ଼ାଇବା—To lead the way before Rajas walking.
Pahaṇḍa maṇā(ṇe)ibā
पथदेखान
रास्तादिखलाना [ଦ୍ର—ପହଣ୍ଡମଣାଇବା ଲୋକ ଆଗରେ ଯାଉଥିବାରୁ ବାଟର ସକଳ ଗୋଳମାଳ ବା ଅବସ୍ଥା କଥା ଚେତାଇ ରାଜାଆଦିଙ୍କୁ ସାବଧାନ କରିଦିଏ ।]
୨ । ପଛରେ ଆସୁଥିବା ରାଜା ଆଦିଙ୍କୁ ବାଟ କଢ଼ାଇବାବେଳେ ବାଟ କଢ଼ାଳି 'ଏଣ୍ଡୁ ଆସନ୍ତୁ' ବୋଲି କହିବା—2. To utter words of cautioning about the way while leading the way.
ପାଟୁଡ ଦୂଡନା ବୋଲିବ ପହଣ୍ଡ ମଣାଇଛ ବାରମ୍ବାର—ଲକ୍ଷ. ଜୋଷ୍ଟ୍ରବ୍ରହ୍ମାଣ୍ଡଭୂଗୋଳ ।

**ପହଣ୍ଡ ମଣାଯିବା**—ଦେ. କ୍ରି—(ପହଣ୍ଡ ମଣାଇବାର କର୍ମବାଚ୍ୟରୂପ)—ଅନ୍ୟଦ୍ୱାରା ବାଟ କଢ଼ାଇବା କର୍ମ ସମ୍ପାଦିତ ହେବା—Being led by another while walking.
Pahaṇḍa maṇājibā
ଲବ୍ଧର ଦ୍ୱାରରେ ନୃପ ଉପଗ୍ରହରେ ଏ ପଦ ପହଣ୍ଡ ମଣାଯିବ—କବିସୂର୍ଯ୍ୟ—ସଙ୍ଗୀତ ।

**ପହଣ୍ଡି**—ଦେ. ବି—୧ । ଧୀରେ ଧୀରେ ଚାଲିବା—
Pahaṇḍi 1 Pacing; striding; walking with measured steps.
पा पा चला टहल
୨ । ଏକ ପ୍ରକାର ଖେଳ—2 A kind of game.
୩ । ପହଣ୍ଡି ବିଜୟ (ଦେଖ)—3. Pahaṇḍi bijaya. (See)

**ପହଣ୍ଡି ବିଜୟ**—ଦେ. ବି—୧ । ଭ୍ରମଣ; ପାଦ ଚାରଣ—
Pahaṇḍi bijaya 1. A walk
ପହଣ୍ଡି ବିଜୟେ } ଅନ୍ୟରୂପ
ପହଣ୍ଡି ବିଜେ }
୨ । ଧୀରେ ଧୀରେ ପଦକ୍ଷେପ ଦ୍ୱାରା ଚାଲି—2. Walking by slow steps.
୩ । ଗୁଣ୍ଡିଚା ଯାତ୍ରା ସମୟରେ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରାଙ୍କ ମୂର୍ତ୍ତି ଦେଉଳରୁ ରଥ ଉପରକୁ, କିମ୍ବା ରଥରୁ ଓହ୍ଲାଇ ଦେଉଳକୁ କିଆ ହେବା ପୂର୍ବରୁ ଯଥାକ୍ରମେ ଦେଉଳଠାରୁ ରଥ ପର୍ଯ୍ୟନ୍ତ କିମ୍ବା ରଥଠାରୁ ଦେଉଳ ପର୍ଯ୍ୟନ୍ତ ତାଙ୍କୁ ସେବକମାନେ ବାହାଦଣ୍ଡା କରି ଧରି ଓ ପାଟ ଡୋରରେ ଟାଣି ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ଉଠାଇଁ ଉଠାଇଁ ନେବାର ବିଧି—The process of taking the images of idols Jagannātha, Balabhadra and Subhadrā in a stately procession by gradual leaps from the temple to the car or vice versa during the car-festival.
ପହଣ୍ଡି ବିଜୟ କରନ୍ତ
ତିନି ରଥରେ ତିନି ମୂର୍ତ୍ତି—ଯଶୋବନ୍ତ ପ୍ରେମଭକ୍ତି ବ୍ରହ୍ମଗୀତା ।
[ଦ୍ର—ଏହି ପହଣ୍ଡି ବିଜୟ ଦୁଇ ପ୍ରକାର ଯଥା—୧ । ଗୋଟି ପହଣ୍ଡି=ପ୍ରଥମେ ବଳଭଦ୍ର, ପରେ ସୁଭଦ୍ରା ଓ ସର୍ବ ଶେଷରେ ଜଗନ୍ନାଥଙ୍କୁ ପୃଥକ୍ ପୃଥକ୍ କରି ପହଣ୍ଡି ବିଜେ କରାଇ ରଥ ଉପରକୁ ନେବା—୨ । ଧାଡ଼ି ପହଣ୍ଡି=ସମୟର ଅଳ୍ପତା ଦୃଷ୍ଟିରେ ଆଗପଛ କରି ପ୍ରଥମେ ବଳଭଦ୍ର ତାପରେ ସୁଭଦ୍ରା ଓ ସର୍ବଶେଷରେ ଜଗନ୍ନାଥଙ୍କ ଦେଉଳମଧ୍ୟରୁ ନେଇ ସେମାନଙ୍କୁ ଏକା ଧାଡ଼ିରେ ଚଲାଇ ରଥ ଉପରକୁ ନେବା ।]

**ପହନା**—ପ୍ରାଦେ (ଲହରିଆ) ବି. (ତୁଳି. ହି. ପାହୁନା; ସ. ପ୍ରାଘୁର୍ଣ୍ଣ, ପ୍ରା. ପାଘୁଣ=ଅତିଥି)—କୁଣିଆ, ଅତିଥି, ଅଭ୍ୟାଗତ—Guest.
Pahanā
(ପଁହନା, ପହଁନା—ଅନ୍ୟରୂପ)

ପହଣ୍ଡ—ଦେ. ବି—ଡଙ୍ଗାର ଧନୁକାକାର ଦାଢ ବା ଫନ—
Pahanda The bow-shaped broad upper edge or
ডোঁগাবধাব नावकाकिनार brim of a boat.

ପହପଟ—ଦେ. ବିଣ—ଅନାବୃତ, ଉନ୍ମୁକ୍ତ—
Pahapata খোলা खुला Open.
(ଯଥା—ପହପଟ ପଡ଼ିଥା)
ବି—ତାଳବିଶେଷ—A kind of musical measure.
( ଦ୍ରୁ—ଏ ତାଳର ଗୀତ ସ୍ତ୍ରୀ ମାନେ ଗାଆନ୍ତି । )
ପ୍ରତ ନକୁଳେ ତାଳ ପହପଟ—କବସୂର୍ଯ୍ୟ ବଳଭା କଲ୍ଲୋଳ ।

ପହପଟ ମେଲା—ଦେ.ବିଣ.—ସମ୍ପୂର୍ଣ୍ଣରୂପେ ଖୋଲା ବା ମୁକୁଳା, ଉନ୍ମୁକ୍ତ—
Pahapata melā Fully open; wide open.
একেবাব ফাঙ্কা खुलोजगह

ପହ ଫାଟିବା—ପ୍ରାଦେ. (ଯାଜପୁର) ବି.—(ଭୁଲ. ହି. ପୌ ଫାଟନା)—
Paha phātibā ଫସର ଫାଟିବା ବେଳ, ବଡ଼ ଭୋର—
Early dawn; daybreak.

ପହର—ଦେ.ବି. (ସଂ. ପ୍ରହର) – ପ୍ରହର, ଦିବସର ବା ରାତ୍ରିର ଚାରି ଭାଗରୁ
Pahara ଏକ ଭାଗ ସମୟ, ଚାରି ଘଡ଼ି, ଯାମ, ·ତିନି ଘଣ୍ଟା—
পহৰ A watch of 3 hours; a period of about
पहर three hours.
ପ୍ରାଦେ. (ଜାଜପୁର) ବି.—ସମୟ—Time.

ପହରଣ—ଦେ. ବି.—(ସଂ. ପ୍ରବରଣ, ପରିଧାନ)—୧ । ବସ୍ତ୍ରାଦି ପରିଧାନ—
Paharana 1. Putting on; wearing of cloth.
পরন ୨ । ପୋଷାକ, ପରିଚ୍ଛଦ—
पहरन, पहनावा 2. Dress; raiments.
(ଯଥା—ଆମ ବାବୁମାନେ ସାହେବୀ ପହରଣରୁ ଭାରି ସୁଖ ପାଉ ଅଛନ୍ତି ।)
୩ । ଲୁଗା ପିନ୍ଧିବାର ଢଙ୍ଗ ବା ଛାଞ୍ଚ
3. Mode or fashion of putting on dress.
ପହରଣ ସମସ୍ତଙ୍କର ଏକ, ଖେଃଥ ମଇଳା, ଡରକୁଃ"ଡଙ୍ଗ"ଖଣ୍ଡେ ଖଣ୍ଡେ ଲୁଗା-
ଫକୀରମୋହନ- ଗଳ୍ପସ୍ୱଳ୍ପ ।

ପହରା—ଦେ. ବି.—( ସଂ. ପ୍ରହର; ପହରା, ଆଗେ ପ୍ରହରୀମାନେ ଏକ
Paharā ପ୍ରହରରୁ ଏକ ପ୍ରହର ବଦଳ ହେଉଥିଲେ)—
পাহাবা ୧ । ଜଗିବା—1. Watching; guarding.
पहरा ୨ । ଜଗିବାର ପାଳି—
2. Watch; turn of watching.
୩ । ପହରା ବାଲା (ଦେଖ)—3. Paharā bālā (See)
୪ । ରାଜତ୍ୱ; ଅଧିକାର କାଳ—4. Regime; turn of the exercise of one's authority.
୫ । ଚାଲିଚଳନ—5. Conduct; manners.
୬ । ପହଁରା (ଦେଖ)—6. Pahañrā (See)
୭ । (ସଂ. ପାଦ)—କୌଣସି ସ୍ଥାନରେ ପାଦ ଦେବା—
7. Stepping at a place.
୮ । କୌଣସି ସ୍ଥାନରେ ପାଦ ଦେବାର ଫଳ—
8. The result of a person's setting foot at a place.

(ଯଥା—ତାଙ୍କ ଘରେ ବୋହୂର ପହରା ଭଲ ପଡ଼ିଲା ।)

ପହରା(ରେ)ଇବା—ଦେ. କ୍ରି.—୧ । ପହରିବାର ଣିଜନ୍ତ ରୂପ—
Paharā(re)ibā 1. The causative from of Paharibā.
সাঁতবান ୨ । ସନ୍ତରଣ କରାଇବା—
तिराना, तैराना 2. To cause to swim.
୩ । ଭସାଇବା—3. To cause to float.
୪ । ଅନ୍ୟଦ୍ୱାରା ଝାଡ଼ୁ କରାଇବା—4. To cause another to cleanse or sweep a place.
୫ । ଉପରେ ଉପରେ ଚଲାଇବା—
5. To move on the surface.
ପ୍ରାଦେ. (ମେଦିନୀପୁର) କ୍ରି.—ପିନ୍ଧାଇବା—
To make (a person) put on a cloth.

ପହରାଏ ପାଣି—ଦେ. ବିଣ—ଜଣେ ମନୁଷ୍ୟଠାରୁ ଅଧିକ ଗଭୀର (ଜଳ);
Paharāe pāni ଯହିଁରେ ମନୁଷ୍ୟକୁ ପହଁରିବାକୁ ପଡ଼େ—
(ପହଁରାଏ—ଅନ୍ୟରୂପ) More than a man's depth
সাঁতাবপানী (of water) in which a man is obliged
पैराव to swim.

ପହରା କରିବା—ଦେ. କ୍ରି—ପହରା ଦେବା (ଦେଖ)
Paharā karibā Paharā debā (See)

ପହରାଜ—ଗ୍ରା. ବି—ପ୍ରହରାଜ ୧ (ଦେଖ)
Paharāja Praharāja 1. (See)

ପହରା ଦେବା—ଦେ. କ୍ରି—ଜଗିବା—
Paharā debā To keep watch.
পাহারা দেওযা; पहरादेना

ପହରା ବାଲା—ବେଦେ. ବି—୧ । ଜଗୁଆଳ, ସନ୍ତ୍ରୀ; ଚଉକିଦାର—
Paharā bālā Watchman; guard; sentry.
পাহাবাওয়ালা; पहरावाला (ପହରା ଵାଲା—ଅନ୍ୟରୂପ)

ପହ(ହଁ)ରାଳୀ—ଦେ. ବିଣ—ପହରିବା ବାଲା (ଦେଖ)
Paha(hañ)rāli Paharibā bālā (See)
সাঁতাবদেনেওযালা; तैराको

ପହରିକିଆ—ଦେ ବିଣ (ସଂ. ପ୍ରହର)—ଏକପ୍ରହର ସ୍ଥାୟୀ—
Paharikiā Existing for one Prahara.
একপহরস্থায়ী

ପହରିକିଆ ତ(ତା)ରା—ଦେ.ବି. – ସନ୍ଧ୍ୟା ପ୍ରହରକଠାରେ ପଶ୍ଚିମରେ ବୁଡ଼ିଯିବା
Paharikiā ta(tā)rā ଶୁକ୍ର ଗ୍ରହ, ରାତ୍ରର ପ୍ରଥମ ପହର ପର୍ଯ୍ୟନ୍ତ
শুকতাবা; पहरतिआ तारा ଯେହିଁ ତାରା ଉଜ୍ଜ୍ୱଳରୂପେ ଦେଖା ଦେଇ ପଶ୍ଚିମରେ ଲୁଚିଯାଏ—The Evening star; the Hesperus; Venus.

[ଦ୍ରୁ—ଏହି ପହରିକିଆ ତାରା ପ୍ରକୃତରେ ତାରା ନୁହେଁ, ଏହା ଗୋଟିଏ ଗ୍ରହ ଓ ଏହା ପୃଥିବୀ ପାଖାନ୍ତ ଚାରି ରୂପେ କେତେବେଳ ପାହାନ୍ତିଆରେ ପୂର୍ବ ଦିଗରେ ଦେଖାଯାଏ ।]

ପହରି ଦିନ—ପ୍ରାଦେ (ଗଡ଼ଜାତ) ବି (ସଂ. ପରେଦ୍ୟୁଃ)—ପଅରିଦିନ—
Pahari dina Day before yesterday or day after
পবশু to-morrow.

**ପହରିବା**—ଦେ. କ୍ରି—୧ । ଝାଡ଼ୁ କରିବା; ଓଳାଇବା—
Paharibā 1. To sweep.
(ପହରିବା—ଅନ୍ୟରୂପ) ୨ । ( ସ. ପ୍ଲବ୍ ଧାତୁ ) ସନ୍ତରଣ କରିବା—
2. To swim.
କ ଏବା ପହଁରୁ ଥିଲେ ସେ ରସିକ-ରସିକା,ସୁହାଗଭରେ—ସ୍ୱାମୀ ଗାଥ. ଯଥା
ସାଁତାର ଦେଓୟା ୩ । ଜଳ ଉପରେ ଭାସିବା—3. To float on
ପୈରନା the surface of the water.
୪ । ପରିଧାନ କରିବା; ପିନ୍ଧିବା (ଲୁଗା ଓ ପୋଷାକ ଆଦି)—
4. To put on or wear (clothes)
ରାଉଳେ ସବୁ ଯାମା ଅଙ୍ଗରେ ପହରି
ସିଂହାର ବେଶେ ଯେଉଁ ଅଛନ୍ତି ବେଢି ଭରି ।
କୃଷ୍ଣସିଂହ. ମହାଭାରତ ଆଦି

**ପହରିବା ବାଲା**—ଦେ. ବିଣ—ସନ୍ତରଣପଟୁ—
Paharibā bala Swimmer; expert in swimming.
ତୈରାକ, ତୈରନେବାଲା

**ପହରୀ**—ଗ୍ରା. ବି (ସ. ପ୍ରହରୀ)—ପ୍ରହରୀ—
Pahari Watchman.
পাহারা, पहरी, पहरु

**ପହରୁ**—ପ୍ରାଦେ. (ଗଡ଼ଜାତ) ବି (ଶୂଦ୍ର ଜାତିଙ୍କ ଭାଷା)—ଗତ ବା,
Paharu ଆଗାମୀ ବର୍ଷ—Next year; last year.

**ପହଲ**—ବୈଦେ. ବି (ଫା. ପହଲୁ; ଭୂଲ. ସ. ପଟଲ)—୧ । କାଠଖଣ୍ଡର
Pahala ଧାରକୁ ରନ୍ଦାଦ୍ୱାରା ଗଡ଼ାଣିଆ କରିବା—
পল 1. Making the edge of a piece of wood
पहल sloping by the carpenter's plane.
୨ । ( ବଣିଆ ଶବ୍ଦ ) ଅତି ମୂଲ୍ୟବାନ୍ ମଣିମାନଙ୍କର କଟା ହୋଇଥିବା ପାଖ—2. The side of a precious stone showing the cut; facet.
୩ । କୋଣବିଶିଷ୍ଟ ଘନ ବସ୍ତୁର ପ୍ରତ୍ୟେକ ସମତଳ ପାଖ—
3. The broad surface of a many-surfaced article.
୪ । ପରସ୍ତ; ସ୍ତର—4. Layer.

**ପହଲଦାର**—ବୈଦେ. ବିଣ (ଫା. ପହଲୁଦାର)—ଯେଉଁ ବସ୍ତୁର ପହଲ ବା
Pahaladār ସମତଳ ପାଖ ଥାଏ—Faceted; having
পলদার, पहलदार planes.

**ପହଲା**—ଗ୍ରା. ବି—ପୋହଲା ( ଦେଖ )
Pahalā Pohalā (See)
পলা, सुम्बा

**ପହଲା**—ଦେ. ବି—୧ । ହାତକୁ ହଲାଇ ସଗର୍ବ ଗତି—
Pahalā 1. Walking in a proud manner by hanging one's hands; strutting.
୨ । (ସ. ପ୍ରହ୍ଲାଦ) ପ୍ରହ୍ଲାଦ ନାମକ ବ୍ୟକ୍ତିର ଅନାଦରାର୍ଥକ ଡାକ ନାମ—2. The name by which a person named Prahlāda is called.
(ପହଲା,ପହଲୁ—ଆଦରାର୍ଥକ ଡାକ ନାମ)

**ପହଲା(ଲେ)ଇବା**—ଦେ. କ୍ରି—୧ । ଗର୍ବରେ ହାତ ହଲାଇ ଚାଲିବା—
Pahalā(le)iba 1. To strut.
ঢঠনা ପୁଣି ଚାଲଇ ପହଲଇ,
ভণ্ডান ଅଗେ ହୋଇଲେ ସ୍ୱଗତ୍ରାସ । ଜଗନ୍ନାଥ. ଭାଗବତ ।
ফুসলানা ୨ । ଭଣ୍ଡାଇବା, ଭୁଲାଇବା, ଫୁସୁଲାଇବା—
2. To hoodwink a person by oily words
୩ । ବାଆଁରେଇ ହୋଇ କଥାକୁ ଭ୍ରୂକ୍ଷେପ ନ କରିବା—
To feign not to hear what a person is speaking.

**ପହଲା ପହଲି**—ଦେ. ବି—ଭଣ୍ଡା ଭଣ୍ଡି, କଥାରେ ଲୋକଙ୍କୁ ଭୁଲାଇବା—
Pahalā pahali Hoodwinking; inveigling.
ভণ্ডাভণ্ডি, फुसलाफुसली

**ପହଲି**—ଦେ. ବି (ସ ପ୍ରହେଳିକା)—୧ । ଢଗ—
Pahali 1. Popular saying.
হেয়ালী ୨ । ପ୍ରବଚନ, ପ୍ରବାଦ ବାକ୍ୟ—
पहेली 2. Proverb.
୩ । ପଦ ମିଳା ଯାଇଥିବା ପ୍ରବଚନ—
3. Rhyming proverb.
୪ । ପ୍ରହେଳିକା; ନାଆଁ ଦିଆ—4. Riddle.
୫ । ପଦ୍ୟରେ କଥିତ ପ୍ରହେଳିକା—
5. Squib or gibe in rhyme.
(ଯଥା—ଦଦେଇ ଦାସଙ୍କ ପହଲି । )
୬ । ବ୍ୟଙ୍ଗୋକ୍ତି—6. Irony; innuendo; ironical sentences; covert attacks in rhyme.

**ପହଲି ପକା(କେ)ଇବା**—ଦେ. କ୍ରି—କୌଣସି ବ୍ୟକ୍ତିକୁ ଲକ୍ଷ୍ୟ କରି
Pahali pakā(ke)iba ବ୍ୟଙ୍ଗୋକ୍ତିସୂଚକ ପ୍ରବଚନ ବା
( ପହଲି ମେଲିବା—ଅନ୍ୟରୂପ ) ପହଲିମାନ ବୋଲିବା—
ছড়াকাটা To utter innuendoes with
व्यंगकरना, पहेलिनुझाना reference to a person.

**ପହଲିବା**—ଦେ. କ୍ରି—ହାତ ହଲାଇ ଗର୍ବ ସହିତ ଚାଲିବା—
Pahaliba To strut.

**ପହି**—ଦେ. ବି—ପଇ (ଦେଖ)
Pahi Pai (See)

**ପହିଆ** (ଇତ୍ୟାଦି)—ଦେ. ବି.—ପଇଆ ଇତ୍ୟାଦି (ଦେଖ)
Padiā (etc) Paiā etc (See)
पहिया ପ୍ରାଦେ ( ସିଂହଭୂମ ) ବି—ପାଞ୍ଚଣ—
A small stick used for driving cattle; a herdsman's staff.

**ପହିଜ**—ଦେ. ( ପ୍ରାଚୀନ ପଦ୍ୟ ) ବି ( ସ. ପ୍ରତିଜ୍ଞା; ପ୍ରା. ପଇଞ୍ଜା=
Pahija ହଠ )—୧ । ପଇଆ ( ଦେଖ ).
( ପହିଜ୍ୟ—ଅନ୍ୟରୂପ ) 1. Paiā (See).
୨ । ଗୋଳମାଳ—2. Ado.
୩ । ବିବାଦ—3 Dispute.
୪ । ବାଦାନୁବାଦ—4 Altercation.
୫ । ବଳ ପରୀକ୍ଷା ପାଇଁ ଡାକିବା—5. Challenging
୬ । ଗର୍ବ—6. Pride.

୭ । କ୍ରୋଧ—7. Anger.
୮ । ବୁଦ୍ଧି—8. Intelligence.
୯ । ଆସ୍ଫାଳନ —9. Bragging.
୧୦ । ପାହୁଡ଼—10 An ornament for the leg.

**ପହୁ ବାଡ**—ପ୍ରାଦେ. (କଟକ) ବ—ବଇ ବାଡ (ଦେଖ)—
Pahı bārda Bai bārda (See).

**ପହ୍ଲ(ଲି)ମାନ୍**—ବେଦେ. ବ. (ଫା. ପହ୍ଲବାନ୍)—୧ । ମଲ୍ଲ—
Pahil-(li)man 1 An athlete; a wrestler
ପାଲୋଯାନ ୨ । ମଲ୍ଲବଦ୍ୟା ଶିକ୍ଷା ଦେବାପାଇଁ ନିଯୁକ୍ତ ମଲ୍ଲ—
पहलवान 2. A fencing master engaged for
[ପହ୍ଲ(ଲି)ବାନ୍—ଅନ୍ୟରୂପ] teaching wrestling.

**ପହ୍ଲ(ଲି)ମାନି**—ବୈଦେ. ବ. (ଫା.)—୧ । ମଲ୍ଲର କର୍ମ—
Pahıl-(li)māni 1. Act of a wrestler.
ପାଲୋଯାନୀ ୨ । ବଡ଼ଲୋକଙ୍କ ଘରେ କୁସ୍ତିଆଦ ଶିଖାଇବା ପାଇଁ
पहलवानी ରଖାଯିବା ମଲ୍ଲର ଗୃକର—2 The post of a wrestler retained by a rich man.

**ପହ୍ଲମାନିଆଁ(ଆ)**—ଦେ ବଣ—୧ । ପହ୍ଲମାନ ସମ୍ବନ୍ଧୀୟ—
Pahıl-māniañ(ā) 1. Relating to a wrestler.
ପାଲୋଯାନୀ ୨ । ପହ୍ଲମାନର ଯୋଗ୍ୟ—
पहलवानी 2. Becoming or befitting to a wrestler.

**ପହ୍ଲ**—ଦେ. ବଣ (ସ. ପ୍ରଥମ ପ୍ରା. ପହ୍ଲୋ; ଭୁଳ. ଇଂ. ପ୍ରାଯୂର୍)—
Pahıla ୧ । ପ୍ରଥମ, ଆଦ୍ୟ—1. First.
ପ୍ରଥମ, ପୟଲା ୨ । ଆଦ୍ୟଜାତ—2. First born.
पहिल, पहिला ୩ । ଅଗ୍ରଜ—3. Earlier born; elder.

**ପହ୍ଲା**—ଦେ. ବ. (ସଂ. ପ୍ରଥମ. ପ୍ରା. ପହ୍ଲୋ)—ମାସର ପ୍ରଥମ ତାରଖ;
Pahılā ପଇଲା—The first day of a month.
ପୟଲା, ପହିଲା पहिला
ବଣ—ପହ୍ଲ (ଦେଖ)—Pahila (See).
ପ୍ରାଦେ. (ସିଂହଭୂମ) ବ—ପଇଲା (ଦେଖ)—Pailā (See).

**ପହ୍ଲା ଡଗ୍ରୀ**—ଦେ. ବ. (କଚରଥା)—ପ୍ରାଥମିକ ଡଗ୍ରୀ (ଦେଖ)—
Pahılā digri Prāthamıka digri (See).
ପୟଲାଡିଗ୍ରୀ पहिलाडिग्री

**ପହ୍ଲା ନମ୍ବର**—ବୈଦେ. ବଣ. (ଇଂ)—୧ । ପ୍ରଥମ ଶ୍ରେଣୀୟ—
Pahılā nambara 1. Of first class.
ପୟଲାନମ୍ବର ୨ । ଉତ୍କୃଷ୍ଟ—
पहला 2 Excellent.
ବ—ପ୍ରଥମ ସଂଖ୍ୟା—The first number.

**ପହ୍ଲି**—ଦେ. ବଣ—ପହ୍ଲ (ଦେଖ)—
Pahıli Pahilā (See).
କ୍ରି. ବଣ—ପହ୍ଲେ (ଦେଖ)—Pahile (See).

**ପହ୍ଲି ଧୂପ**—ଦେ. ବ—ଦେବତାଙ୍କ ନିକଟରେ ସକାଳେ ସର୍ବପ୍ରଥମେ ଦଆ
Pahili dhūpa ଯିବା ଧୂପ, ଯାପ, ନୈବେଦ୍ୟାଦ ପୂଜା—
ପ୍ରଥମ ଭୋଗ The first of the daily worship and
पहिलाभोग offering made to a Deity

**ପହ୍ଲି ପାଲି**—ଦେ. ବ—ପଇଲି ପାଲି; ବାଲ୍ୟ ବବାହତା କନ୍ୟା ରଜସ୍ୱଲା
Pahılı pāli ହେବା ପରେ ପ୍ରଥମେ ଶ୍ୱଶୁରାଳୟକୁ ସ୍ୱାମୀର ସହିତ
ଦିବାଗମନ ଯାତ୍ରା କରିବା, ନବବଧୂ ଯାତ୍ରା—The starting of
पहिली बिदागरी a girl wife for her husband's house for the first time after attaining puberty.

**ପହ୍ଲି ବିଆଣ**—ଦେ. ବ—ପ୍ରଥମ ସନ୍ତାନ ଜନନକର୍ମ, ପ୍ରଥମ ପ୍ରସବ—
Pahılı biāṇa The act of giving birth to a child for the 1st time; the first delivery.

**ପହ୍ଲି ବିଆଣୀ**—ଦେ. ବଣ—ପ୍ରଥମ ପ୍ରସୂତ (ଗାଈ); ପ୍ରଥମ ପ୍ରସୂତ—
Pahilı biāṇi (a cow) Which has calved for the
ପ୍ରଥମପ୍ରସୂତୀ पहिला first time.

**ପହ୍ଲି ଭୋଗ**—ଦେ. ବ—ପଇଲି ଭୋଗ, ଧନୁ ସଂକ୍ରାନ୍ତିଠାରୁ ମକର
Pahilı bhoga ସଂକ୍ରାନ୍ତି ପର୍ଯ୍ୟନ୍ତ ସକାଳେ ଦେବତାଙ୍କ ନିକଟରେ
ପ୍ରଥମ ଭୋଗ ହେବା ପିଠା ଓ ଖେଚୁଡ଼ି ଆଦ ଭୋଗ—
पहिला भोग Offering of sweets to a Deity in the morning during the month of Dhanu or Pausha.

**ପହ୍ଲୁ**—ଦେ. କ୍ରି. ବଣ—ପହ୍ଲେ (ଦେଖ)—
Pahılu (ପହ୍ଲୁଁ—ଅନ୍ୟରୂପ) Pahile (See).
ଘଟେ ଅଷ୍ଟବର୍ଣ୍ଣ ନାଥ ଚୋ ପଦେ ପହ୍ଲୁରେ ।
କବିସୂର୍ଯ୍ୟ, କୋଣୋଗ ରାମ ସ ଗୀତ ।

**ପହ୍ଲେ**—ଦେ. କ୍ରି. ବଣ—(ସ. ପ୍ରଥମ; ପ୍ରା. ପହ୍ଲୋ)
Pahıle ୧ । ଆଦ୍ୟରେ; ପ୍ରଥମେ—
ପ୍ରଥମଥେକେ 1. At first; in the beginning.
पहिले, पहले ୨ । ପ୍ରଥମଠାରୁ, ଆଦ୍ୟରୁ—
2. From the beginning.
ପହ୍ଲେ ସ୍ମରଣପଦ୍ମ ସାରାଇଲ ବଧ । ମଧୁସୂଦନ, ଉତ୍ତରରାମ ଚରିତ ।

**ପହ୍ଲେ ପହ୍ଲେ**—ଦେ. କ୍ରି. ବଣ—ପ୍ରଥମେ; ଆଦ୍ୟକାଳରେ—
Pahıle pahıle In the beginning.
ପ୍ରଥମ ପ୍ରଥମ पाहले पहिले [ପହ୍ଲୁ(ଲୁଁ) ପହ୍ଲୁ(ଲୁଁ)—ଅନ୍ୟରୂପ]

**ପହୁଁରିବା**—ଦେ. କ୍ରି—ପହଁରିବା (ଦେଖ)—
Pahuñrıbā Pahañribā (See)
ଖଆଁ ବଇଜକ ରହ୍ଲ ସଞ୍ଜୀ ପହୁଁର । ଗ୍ରାମ୍ୟ, କୃଷ୍ଣକଥୁପଣଗୀତ ।

**ପହୁରିବା**—ଦେ. କ୍ରି. (ସ. ପରଧାନ)—ପିନ୍ଧିବା—
Pahuribā To put on.
ପରା पहरना ବସ୍ତ୍ର ପହୁଁରିଲେ ସେତେବେଳେ ସେ ସକଳ । ଗ୍ରାମ୍ୟ ନଳଚରିତ ।

**ପହ୍ନା**—ଦେ. ବ (ସ. ଆପୀନ)—୧ । ପନା, ଗୋରୁପ୍ରଭୃତଙ୍କ ସ୍ତନ—
Pahnā 1. Udder of cows and other female
ପାନା थन, अयन beasts.
ଦୁଧ ପିଇ ବାଛୁରୀ ଯେବେ ପହ୍ନା ଛାଡ଼େ । କୃଷ୍ଣସିଂହ, ମହାଭାରତ ଆଦ ।
୨ । ଘୋଡ଼ାର ଲଗାମରେ ଲଗିଥିବା ଚମଡ଼ାପଟି—
2. A leather strip attached to a reins of a horse.
ପ୍ରାଦେ. (ସିଂହଭୂମ) ବ—ମାଛ ଜାଆଁଳ—
The fry of fishes.
ବୈଦେ. ବ. (ଫା. ପହ୍ନାହ୍)—ଲୁଗାର ଓସାର—
The breadth of a cloth.

ପହ୍ନା(ହ୍ନେ)ଇବା—ଦେ. କ୍ରି—(ସ. ପ୍ରସ୍ନବନ, ପୟଃସ୍ରବଣ, ଭୁଲ. ପ୍ରା. ପହ୍ନବନ)—୧ । ଗାଈମାନେ ବେଶି ଦୁଧ ଦେବାର ପୂର୍ବସୂଚକ ବଡ଼ ପହ୍ନା ବାହାର କରିବା—
Pahnā(hne)ibā
पानान
पन्हाना, पासना, पानीयाना 1. To swell the udder to be milched; to have a big udder (which will give much milk) (said of a cow.
[ପନ୍ହା(ନ୍ହେ)ଇବା—ଅନ୍ୟରୂପ]

୨ । (ଦୁଧିଆଳୀ ଗାଈ ବା ଛେଳି) ନିଜ ପହ୍ନାରେ ଥିବା ଦୁଧ ଚରକୁ ଗଡ଼ି ଆସିବା ବେଳେ ଅସ୍ଥିରତା ପ୍ରକାଶ କରିବା—2 (a milch cow or goat) To cause its dugs to swell by allowing the milk from the udder to descend to the dugs; to indicate yearning to be milched or to give a sucking to her calf by becoming restless.

ଅସଙ୍ଗା ଗାଈ ତଳରେ ପହ୍ନାଇବ ଛୀର—
ପ୍ରାଚୀ—ବୃନ୍ଦାବନରୂପଣ ଗୀତା ।

୩ । ଦୁଧ ଦୁହିଁଲା ଦୁଧ ଦୋହିଁବାକୁ ବସିଲେ ଗାଈମାନେ ମୁଣ୍ଡ ପକାଇ ପହ୍ନା ଦେଖାଇବା—
3 (a cow) To be ready for being milched.

ପହ୍ନିଆ—ପ୍ରାଦେ. (ସିଂହଭୂମ) ବି—ପହିଆ (ଦେଖ)—
Pahniā Pahiā (See)

ପହ୍ନେଇବା—ପ୍ରାଦେ. (ଯାଜପୁର) କ୍ରି—ଉତ୍ସାହିତ କରିବା, ଆଗ୍ରହାନ୍ୱିତ କରାଇବା—To make a person interested to say or to do something.
Pahneibā

ପହ୍ଲ—ଦେ. ବି—ପଲ୍ଲ (ଦେଖ)
Pahla Pala (See)

ପହ୍ଲବ—ସଂ. ବି—ପଲ୍ଲବ (ଦେଖ)—
Pahlaba Palhaba. (See)

ପହ୍ଲବୀ—ସଂ. ସ୍ତ୍ରୀ—ପହ୍ଲବମାନଙ୍କର କଥିତ ଭାଷା—
Pahlabi The dialect used by the Pelhevis.

ପହ୍ଲା—ଦେ. ବି—କୁଡ଼ିଆ—
Pahlā पाला झोपड़ी,पर्णकुटी Hut; cottage.
[ଦ୍ର—ଧାନ କ୍ଷେତ, ମାଛମସ୍ର ବାଡ଼ି ଆଦି ସ୍ଥାନରେ ଜଗିବା, ଲୋକ ଆଶ୍ରୟ ନେବା ପାଇଁ ଯେଉଁ କୁଡ଼ିଆ ଘର ତିଆରି ହୋଇଥାଏ ତାହାକୁ ପହ୍ଲା କହନ୍ତି ।]
ପ୍ରାଦେ (ଗଡ଼ଜାତ) ବି—ତଳି—Seedling.

ପହ୍ଲା ଜଗେଇବା—ପ୍ରାଦେ. (ଆଠମଲ୍ଲିକ) କ୍ରି—ତଳି ରୋଇବା—
Pahlā jageibā To transplant seedlings.
(ପହ୍ଲା ରୋଇବା—ଅନ୍ୟରୂପ)

ପା (ଧାତୁ)—ସଂ—ପାନ କରିବା; ପିଇବା—
Pā (root) To drink.

ପା—ଦେ. ବି ଓ କ୍ରି ଓ ଅ—ପାଅ (ଦେଖ)—
Pā Pā-a (See)

ପାଅଇ—ଦେ. (ପ୍ରାଚୀନ ପଦ୍ୟ) କ୍ରି—(ପାଇବା କ୍ରିୟାର ବର୍ତ୍ତମାନ କାଳ ପ୍ରଥମ ପୁରୁଷ ଏକ ବଚନ ଅନାଦରାର୍ଥକ)—(ସେ) ପାଏ—
Pā-ai
पाय पाता (he) Gets.

ନ କହଲେ ପଦକୁ ପାଅଇ ଗରସ୍ତ—
କୃଷ୍ଣସିଂହ—ମହାଭାରତ. ସଭା ।

ପାଅ—ଦେ. ବି—(ସଂ. ପାଦ=ଚତୁର୍ଥାଂଶ. ପ୍ରା. ପାଅ)—୧ । ପଦ; ଚରଣ—1 Leg.
Pā-a पा पाउँ पाओँ पाव

ବିଜୟ ପଣ ଥିବାଯାଏ, ମନ ନ ପଶେ ଚୋର ପାଏ—
ଭୂପତି. ପ୍ରେମପଞ୍ଚାମୃତ ।

୨ । ପାଦ—2. Foot.

୩ । ପାଦତଳ—3. Sole of the foot.

୪ । ଚତୁର୍ଥାଂଶ—4 One fourth.

୫ । ଏକ ସେରର ଚତୁର୍ଥାଂଶ—
पुआ
पाव; पौआ 5. One fourth of a Seer.

୬ । ଏକ କ୍ରୋଶ ଦୂରତ୍ୱର ଏକ ଚତୁର୍ଥାଂଶ, ଅଧ ମାଇଲ—
6. One fourth of a Kros; half a mile

୭ । ଏକ ମାଣ ଜମିର ଚତୁର୍ଥାଂଶ—
7. One fourth of an acre of land.

୮ । ଏକ ଗୌଣିର ଚତୁର୍ଥାଂଶ—
8 One fourth of a Gauṇi measure.

୯ । ଏକ ଶହ ପାନର ଚତୁର୍ଥାଂଶ; ୨୫ଟା ପାନପତ୍ର—
9. 25 betel leaves.

୧୦ । ଏକ ପା ଓଜନର ବଟକରା—
10. A weight of ¼ seer.

୧୧ । ଏକ ପା ମପିବାର ପାତ୍ର—
11. A measure of ¼ seer.

କ୍ରି—(ପାଇବା କ୍ରିୟାର ଅନୁଜ୍ଞା ଅନାଦରାର୍ଥକ ତୁ କର୍ତ୍ତା ସଙ୍ଗେ ବ୍ୟବହୃତ)—୧ । ତୁ ପ୍ରାପ୍ତ ହୋ—1. You do get.
୨ । ତୁ ଭୋଗ କର—2. You do enjoy.

ଅ—(କୌଣସି ଦୁଷ୍ଟ ବ୍ୟକ୍ତି କଷ୍ଟ ପାଇବାର ଦେଖି ତା ପ୍ରତି ତାଚ୍ଛିଲ୍ୟରେ ବ୍ୟବହୃତ)—ଅଚ୍ଛା ହେଲା ! କଷ୍ଟ ଭୋଗ କଲୁ—
All right? you have got a proper reward for your act; well served !

ପ୍ରାଦେ (ଗଞ୍ଜାମ) ବି—ପରିମାଣବିଶେଷ; ଏକ ସୋଲର ଏକ ଏକ ଚତୁର୍ଥାଂଶ ବା ଆଠ ତୋଲା—
A unit of measurement.

[ଦ୍ର—ଅଡ଼ା ତଳେ ନୋଟ ଦେଖ ।]

ପାଅାଁ (ଆଁ)ତର—ଦେ.ବି (ସ. ପ୍ରଭାତ+ତାରା)-୧ । ରାତିରୁ ଉଠି କୌଣସି ବଶିଷ୍ଟ ଉଦ୍ଦେଶ୍ୟରେ ଅନୁକୂଳ; ଅନୁଦୟ ଯାତ୍ରା—
Pā-añ(āñ)tara
पाअँतरा 1. Starting on a mission early before daybreak.
पापतपाव

ପୁଆଁ(ଆଁ)ତର
ପାଇଁ(ଏଁ)ତର } ଅନ୍ୟରୂପ
ପାହାଁତର

(ଯଥା—ସେ କାଲି ପାଅାଁତର କରି କଟକ ଗଲେ ।)

୨ । ପାହାନ୍ତି ତାରା—
2. Morning star.

ପାଆଁ ପଡ଼ିବା—ଦେ. କ୍ରି. ( ସ. ପାଦ ଓ ପତନ )—୧ । ଗୋଡ଼ତଳେ
Pā-āñ pardibā ପଡ଼ି ଲୋଟିବା—1. To roll at the
পায়েপড়া feet of another person in suppli-
पावपड़ना (ପାଆ ପଡ଼ିବା - ଅନ୍ୟରୂପ) cation.
୨ । ଦାନ୍ତେଉଳୁଣ୍ଠା ହେବା, ଦନ୍ତରେ ତୃଣ ଧରି ଅନ୍ୟ ବ୍ୟକ୍ତିର ପାଦତଳେ ଲୋଟିବା—2 To roll at the feet of another in a supplicating manner by holding a tuft of straw between the teeth.

ପାଆଁ ପଡ଼ି ଶୋଇବା—ଦେ. କ୍ରି—ପାଆଁ ପଡ଼ିବା ( ଦେଖ )
Pā-āñ pardi soibā Pā-āñ pardibā (See)
পায়েপড়া ଅଣ ହୋଇଣ ବୋଲି ପରଶଂସା କଲେ
पावपड़ना ପାଆଁ ପଡ଼ି ଶୋଇ ଅପଣା ସ୍ଥାନେ ଗଲେ – କୃଷ୍ଣସିଂହ, ମହାଭାରତ, ଶାନ୍ତି
(ପାଁ ପଡ଼ି ଶୋଇବା, ପାଁ ଘୁଡ଼ି ଶୋଇବା—ଅନ୍ୟରୂପ)

ପାଆକଆ—ଦେ. ବିଣ—ଏକପାଆ ପରିମାଣ ବା ଓଜନ ବିଶିଷ୍ଟ—
Pā-ākiā 1. Weighing or measuring one Pā-ā
একপোআ पावभरका or ¼ of a Seer.
( ପାଇକଆ—ଅନ୍ୟରୂପ )
କপোচালের ୨ । ଯେଉଁ ହାଣ୍ଡିରେ ପାଏ ଚାଉଳ ଫୁଟି ପାରେ—
पावभर चावलकी 2. ( an earthen pot ) Capable of holding one Pua of rice while boiling
ବି—ଏକ ପାଆ ମପିବାର ପାତ୍ର—
A pot of the capacity of ¼ seer.

ପାଆକଆ ହାଣ୍ଡି—ଦେ. ବି—ଯେଉଁ ହାଣ୍ଡିରେ ଏକପାଆ ଚାଉଳ ଫୁଟି
Pā-ākiā handi ଭାତ ହୋଇପାରେ—A pot of the
একপোচালের হাঁড়ি capacity of containing ¼ seer of
पावभर चावलकी हाँड़ी rice while being boiled.

ପାଆଜମ—ଦେ. ବି—ବଳଗଣ୍ଠିର ଏକପ୍ରକାର ଅଳଙ୍କାର—
Pā-ājama An ornament for the ankle.
( ପାଆଞ୍ଜମ—ଅନ୍ୟରୂପ )

ପାଆ ତଳ—ଦେ. ବି ( ସ. ପାଦତଳ )—ପାଦତଳ—
Pā-a tala পায়ের তলা तलवा The sole of the foot.
( ପାଆତଳ—ଅନ୍ୟରୂପ )

ପାଆତଳିଆ—ଦେ. ବିଣ. ( ସ. ପାଦତଳ )—୧ । ପାଦତଳସ୍ଥ—
Pā-ātaliā 1. Situate under one's foot.
পায়ের তলার ୨ । ପଦାଶ୍ରିତ ( ବ୍ୟକ୍ତି ), ଅନୁଗତ—
पावकेदबेलका 2. Dependent on the favour of.
୩ । ଅଧୀନ ( ବ୍ୟକ୍ତି )—
3. Subordinate ( person ).

ପାଆଦାନ୍—ବୈଦେ. ବି.(ଫା; ଭୁଲ ସ. ପାଦ+ଆଧାନ)—ପାଁଦାନ୍ (ଦେଖ)
Pā-adān পাঁদান পাবदान Pāñdān (See)
(ପାଆଁଦାନ୍—ଅନ୍ୟରୂପ)

ପାଆ ଧୁଆ—ଦେ. ବି.( ସ. ପାଦ ଓ ଧାବନ )—୧ । ଗୋଡ଼ ଧୋଇବା—
Pā-ā dhuā 1. Washing of the feet.
পা ধোয়া ୨ । ବିବାହ ବେଦିରେ ଶଳା ଭଗ୍ନୀପତିର ଗୋଡ଼ ଧୋଇ
पयर धोना ଦେବାରୂପ ଆଚାର—2. The ceremony of the
(ପାଧୁଆ—ଅନ୍ୟରୂପ) bride's brother washing the feet of the bridegroom on the marriage altar.

ପାଆଧୁଆ କଂସା—ଦେ. ବି—ଯେଉଁ କଂସାରେ ବିବାହ ବେଦୀ ଉପରେ
Pā-ādhuā kamsā ଶଳା ଭଉଣୀଇର ଗୋଡ଼ ଧୋଇଦିଏ—
পা ধোয়া বাটি The metal basin used in washing the
पयधोआ बाटी feet of the bridegroom.

ପାଆନ୍ତା—ଗ୍ରା. ବି—ପାହାନ୍ତା ( ଦେଖ )
Pā-āntā Pāhāntā (See)

ପାଆ ପଦ୍ମ—ଦେ.ବି. ( ସ. ପାଦ ଓ ପଦ୍ମ )—ଗୋଡ଼ର ପାଗୁଳିରେ ପିନ୍ଧା-
Pā-ā padma ଯିବା ଏକପ୍ରକାର ପଦ୍ମାକୃତି ଅଳଙ୍କାର—A kind
পাপদ্ম of ornament for the back of the feet.
[ ଦ୍ର—ଏଥିର ଗୋଟିଏ ପାଖ ବଳାଗଣ୍ଠିରେ ଗଳିଯା ଯାଏ, ଅନ୍ୟ ପାଖ ଗୋଡ଼ ଆଙ୍ଗୁଠିମାନଙ୍କରେ ଥିବା ମୁଦିମାନଙ୍କ ସଙ୍ଗେ ଅଟକା ଯାଏ । ] (ପାଆ ପଦୁଅଁ—ଅନ୍ୟରୂପ)

ପାଆପୋଛ(ଷ)—ବୈଦେ. ବି. (ଫା. ପାଇଁପୋସ୍)—ପାଁପୋଛ (ଦେଖ)
Pā-āpochha(sh) Pāñpochha (See)

ପାଆଫିଆ—ଦେ. ବି—ବିବାହର ପୂର୍ବଦିନ ଭଣ୍ଡାର ଓ ଭଣ୍ଡାରୁଣୀ ବର
Pā-āphiā ଓ କନ୍ୟାଙ୍କ ଗୋଡ଼ରେ ଅଳତା ଦେବା ବିଧି—
পায়ে আলতা The ceremony of painting the feet
महावर लगाना of the bride and the bridegroom with
(ପାଆଫିଟା—ଅନ୍ୟରୂପ) lac on the eve of marriage.

ପାଆଭାଗ—ଦେ ବି. (ସ. ପଦ ଓ ଭାଗ = ଗୃହର ପାଦଦେଶ)—ବାରଣ୍ଡା;
Pā-ābhāga ଗୃହର ପିଣ୍ଡା, ପାଭାଗ—Veranda; portico.
বারান্দা बरामदा, ओसारा

ପାଆଲାଗି—ଦେ ବି ଓ ଅ (ସ. ପାଦ+ଲଗ୍ନ)—ଦଣ୍ଡବତ—
Pā ālāgi পায়েপড়া पाँवलागी Obeisance.
( ପାଲାଗି, ପାଉଁଲାଗି—ଅନ୍ୟରୂପ )

ପାଆଲାଗି ହେବା—ଦେ. କ୍ରି—ଦଣ୍ଡବତ ହେବା, ଗୋଡ଼ତଳେ ପଡ଼ିବା—
Pā-ālāgi hebā To bow down; to prostrate one-
পায়েপড়া self at another's feet in reverence.
पाँवलागी करना
( ପାଲାଗି ହେବା, ପାଉ ଲାଗି ହେବା, ପାଉଁ ଲାଗିହେବା—ଅନ୍ୟରୂପ )

ପାଇ—ଦେ. ବି—୧ । ( ସ. ପାଦ ) ପାହୁଲା; ଏକପଇସାର ଏକ-
Pāi ତୃତୀୟାଂଶ ମୂଲ୍ୟର ତାମ୍ରମୁଦ୍ରା—1. A pie; ⅓ of a pice.
পাই पाइ ୨ । ପାହି ରଇତ—2 Non-resident royat.
পাহী पाही ୩ । ଡୁଡୁ ଖେଳରେ ଏକପକ୍ଷର ସୀମା ନିର୍ଦ୍ଦିଷ୍ଟ ସ୍ଥାନ—
3. The space alloted to one party in the game of Dudu.
ବିଣ—ଭିନ୍ନ ମଉଜାବାସୀ ( ପ୍ରଜା )—
Non resident ( tenant ).
ପ୍ରାଦେ. ( ଗଡ଼ଜାତ ଓ ସମ୍ବଲପୁର ) ବି—କାଖ; ପିଲାଙ୍କୁ ଯେଉଁ କଡ଼ରେ ଅଣ୍ଟା ଉପରେ ବସାଇ କାଖେଇବାକୁ ହୁଏ—Flank; the part of the body on which grown up people carry infants.

ପ୍ରାଦେ. (ସିଂହଭୂମ)—୧ । ତୁମ୍ବ (ଦେଖ)—1. Tumba (See)
୨ । ଦୁଇ ସେର ଓଜନର ଶସ୍ୟ ମାପିବା ପାଇଁ ବ୍ୟବହୃତ ଗଉଣୀ—
2. A wickerwork corn-measuring pot of the capacity of 2 Seers.
୩ । ଦୁଇବାଟି ଓଜନ ( ୧୬୮ ବା ୨୦୦ ତୋଳା )—
3. A standard weight below 200 tolas.

**-ପାଇଁ**—ଦେ. ଅ—୧ । ଲାଗି; ନିମନ୍ତେ—
Pāĩ 1. For, for the sake of.
ପାଇଁକି, ପେଇଁ } ଅନ୍ୟରୂପ — ଜଣ ଜଣଙ୍କରେ ବନ୍ଧିଲେ ଦଣ ଦଣ ଦେଖାଇବା ପାଇଁକି ଲେ ପଉରୁଷ । କୃଷ୍ଣସିଂହ. ମହାଭା. ଉ. ଦ୍ରୋଣ ।
ଜନ୍ୟ ୨ । ଯୋଗୁଁ, ହେତୁରୁ—
केलिये, को 2. Because of, on account of.
୩ । (ଯାହାକୁ) ଲାଭ କରିବା ନିମନ୍ତେ—
3. For getting which.
ଯାହା ପାଇଁ ଶିବ ପୂଜୁ ଥାଇଁ — କବିସୂର୍ଯ୍ୟ ସଙ୍ଗୀତ ।

**ପାଇଛେକ**—ଦେ. ବି—(ସ. ପଞ୍ଚକ)—କସି ପାଞ୍ଚି—(ଦେଖ)—
Pāĩchheka Kasipāñchi. (See)

**ପାଇକ**—ଦେ. ବି—(ସ. ପଦାତିକ. ପ୍ରା. ପାଇକ୍କ; ସଂ. ପାଦିକ)—
Pāika ୧ । ପଦାତିକ—1. A foot soldier.
पाईक ଗଲ ନ ପାରଇ ପାଇକ ଅଗେ
पायक ପଣ କହୁଥାଏ ମାଇପ ଆଗେ — ଭଗ ।
୨ । ପିଆଦା—2. Peon; footman.
୩ । ଓଡ଼ିଶା ଗଡ଼ଜାତ ଓ ଖୋରଧା ଅଞ୍ଚଳରେ ଥିବା କ୍ଷତ୍ରିୟ ଜାତିବିଶେଷ—3. A caste of Kshatriyas inhabiting Khurda and the hilly states of Orissa.

[ଦ୍ର—ଆଗେ ଏମାନେ ରାଜାଙ୍କର ସୈନ୍ୟ ହେଉଥିଲେ ଓ ବର୍ତ୍ତମାନ ପ୍ରହରୀ କାର୍ଯ୍ୟ କରନ୍ତି । ପ୍ରାଚୀନ ଓଡ୍ରମାନେ ସମରକୁଶଳ ଜାତି ଥିଲେ । ଏମାନେ ପତିତ କ୍ଷତ୍ରିୟ ଥିଲେ ଓ ଯୁଦ୍ଧ ଏମାନଙ୍କର ପ୍ରଧାନ ବ୍ୟବସାୟ ଥିଲା । ଗଙ୍ଗବଂଶ ରାଜାମାନେ ଓଡ୍ରମାନଙ୍କୁ ସୈନ୍ୟ ଶ୍ରେଣୀଭୁକ୍ତ କଲେ ଓ ଏହି ଓଡ୍ରମାନଙ୍କ ନାମରୁ ମୁସଲମାନ୍‌ମାନେ ଏ ଦେଶକୁ ଓଡ୍ରଦେଶ ବା ଓଡ଼ିଶା ନାମରେ ଡାକିଲେ । ଗଙ୍ଗ ଓ ସୂର୍ଯ୍ୟବଂଶର ରାଜାମାନଙ୍କ ରାଜତ୍ୱବେଳେ ଓଡ୍ରମାନେ ଦେଶର ନାନା ସ୍ଥାନରେ ଜାଗିର ପାଇ ବାସ କଲେ । ପରେ ଖୋରଧାରେ ଭୋଇବଂଶଙ୍କ ରାଜତ୍ୱ ଆରମ୍ଭରେ ଏମାନେ ଅଧିକ ସଂଖ୍ୟାରେ ଖୋରଧା ମଧ୍ୟରେ ଜାଗିର ପାଇ ବାସ କଲେ । ଏହି ଓଡ୍ରମାନେ ସାଧାରଣତଃ ପଦାତିକ ସୈନ୍ୟ ଥିଲେ । ଉତ୍କଳର ଅନ୍ୟ ଜାତିମାନେ ମଧ୍ୟ ଓଡ୍ରଙ୍କ ସଙ୍ଗେ ମିଶି ପଦାତିକ ହୋଇଥିଲେ । ସୁତରାଂ ସମସ୍ତ ପଦାତିକ ଦଳ ପାଇକ ନାମରେ ପରିଚିତ ହେଲେ । ଏମାନେ ଖୋରଧାରେ ବସତି କରି ଜାଗିର ଜମି ଭୋଗ କରୁଥାଆନ୍ତି, ମାତ୍ର ଯୁଦ୍ଧବେଳେ ଡକରା ହେଲେ ଯୁଦ୍ଧ କ୍ଷେତ୍ରରେ ଉପସ୍ଥିତ ହେଉଥିଲେ । ଅସ୍ତ୍ର ଶସ୍ତ୍ର ଓ ବ୍ୟବସାୟ ଭେଦରେ ପାଇକମାନେ ସାଧାରଣତଃ ତିନି ଶ୍ରେଣୀରେ ବିଭକ୍ତ—

(୧) ପହରୀ ପାଇକ—ଏମାନଙ୍କ ପ୍ରଧାନ ଅସ୍ତ୍ର ଲମ୍ବା ଓ ସିଧା ତରବାରୀ ଏବଂ କାଠରେ ଚର୍ମ ଛାଉଣି ଓ ଲୁହା ଟଗାବଥିବା ଢାଲ, ଏମାନେ ଦୁର୍ଗ ଓ ରାଜ ନଅର ରକ୍ଷାରେ ନିଯୁକ୍ତ ଥିଲେ ।

(୨) ବାଣୁଆ ପାଇକ—ପ୍ରଥମେ ଧନୁଃଶର ଏମାନଙ୍କର ପ୍ରଧାନ ଅସ୍ତ୍ର ଥିଲା, ପରେ ପୁଣି ବନ୍ଧୁକ ବ୍ୟବହାର କଲେ । ଯୁଦ୍ଧ ଅଭିଯାନରେ ଦୂର ଦେଶକୁ ଯିବା ପ୍ରଧାନତଃ ଏମାନଙ୍କର କାର୍ଯ୍ୟ ଥିଲା ।

(୩) ଢେଙ୍କିଆ ବା ଡିଙ୍କିଆ ପାଇକ—ଧନୁଃଶର ଓ ଖଣ୍ଡା ଏମାନଙ୍କର ପ୍ରଧାନ ଅସ୍ତ୍ର । ରାଜାଙ୍କ ଆଦେଶ ଅନୁସାରେ ରାଜ୍ୟ ମଧ୍ୟରେ ସାଧାରଣ ଶାନ୍ତିରକ୍ଷାଠାରୁ ଆରମ୍ଭ କରି ଶତ୍ରୁ ସହିତ ଯୁଦ୍ଧ କରିବା ପର୍ଯ୍ୟନ୍ତ ସକଳ କାର୍ଯ୍ୟ ପାଇଁ ଏମାନେ ସର୍ବଦା ପ୍ରସ୍ତୁତ ରହୁଥିଲେ ।

ପାଇକମାନଙ୍କର ଯୁଦ୍ଧ ପରିଚ୍ଛଦ ମଧ୍ୟରେ ସମସ୍ତଙ୍କ ମସ୍ତକରେ ଟୋପି ଏବଂ ଶରୀରର ସର୍ବାଙ୍ଗ ବ୍ୟାଘ୍ର ଚର୍ମରେ ଆବୃତ ଓ ହଳଦୀ ତେଲରେ ରଞ୍ଜିତ ହେଉଥିଲା । ମସ୍ତକର ବଡ ସିନ୍ଦୂର ଟୋପା ଯୋଗେ ଏମାନଙ୍କ ଆକୃତି ଭୀଷଣ ଦେଖା ଯାଉଥିଲା । ଯୁଦ୍ଧ କ୍ଷେତ୍ରରେ ପାଇକମାନଙ୍କର ସାହସ ଓ କୌଶଳ ପ୍ରଶଂସନୀୟ ଥିଲା । ସେମାନେ ୩୦୦ ବର୍ଷ ପର୍ଯ୍ୟନ୍ତ ପ୍ରବଳ ମୁସଲମାନ୍ ବାହିନୀ ସଙ୍ଗେ ଯୁଦ୍ଧ କରି ଦେଶ ରକ୍ଷା କରି ରାଜ୍ୟବଢାଇ ଥିଲେ ଏବଂ ଶତ ଶତ ବର୍ଷବ୍ୟାପୀ ପରାଧୀନତା ସତ୍ତ୍ୱେ ମରହଟ୍ଟା ଅଶ୍ୱାରୋହୀମାନଙ୍କର ସମକକ୍ଷ ଯୋଦ୍ଧା ହୋଇ ରହିଥିଲେ (କୃପାସିନ୍ଧୁ ଉତ୍କଳ ଇତିହାସ) । ଅସଲ ଓଡ୍ର ପୂର୍ବପୁରୁଷମାନଙ୍କ ବଂଶଧର ପାଇକମାନଙ୍କୁ ଓଡ୍ର ପାଇକ ଓ ଶୂଦ୍ରଜାତୀୟ ଅନ୍ୟ ପାଇକମାନଙ୍କୁ ଶୂଦ୍ର ପାଇକ ବୋଲାଯାଏ ।]

**ପାଇକ କାହାଣୀ**—ଦେ. ବି. (ପାଇକର କହିବା ଗପ)—
Pāika kāhāṇi ୧ । ଅସମ୍ଭବ ଗପ—
1. Incredible tale; travellers' tale.
୨ । ଆତ୍ମପ୍ରଶଂସାପୂର୍ଣ୍ଣ ଗଳ୍ପ—
2. Bluster; a talk full of self-praise.

**ପାଇକଚ୍ଛ(ଛି)**—ଦେ. ବି. (ସ. ପାଦ ଓ କଚ୍ଛ)—ପିନ୍ଧିବା ଲୁଗାର ସାମନା ପାଖରେ ତଳକୁ ଲମ୍ବିଥିବା ଫେରକୁ ଗୋଡ଼ ଫାଙ୍କ ବାଟେ ପଛଆଡ଼କୁ ନେଇ ଅଣ୍ଟାପଛେ ଖୋସିବାର ଲୁଗା ପିନ୍ଧିବା ପ୍ରଣାଳୀ—
Pāikachhā(chhi)
मालकाछा
कछानि
A mode of tucking back the hanging end of the loin cloth for the purpose of athletic exercises.

[ ଦ୍ର—ମଲ୍ଲମାନେ ଲୁଗାକୁ ପାଇକଛ ମାରି ପିନ୍ଧନ୍ତି । ଲୁଗା ପିନ୍ଧିଥିବା ଲୋକଙ୍କୁ ମଧ୍ୟ କୌଣସି ଶ୍ରମ ସାଧ୍ୟ କାମ କରିବାକୁ ପଡ଼ିଲେ ସେ ଲୁଗାକୁ ପାଇକଛ ମାରେ, ତାହାହେଲେ କାମ କଲାବେଳେ ଲୁଣ୍ଠିକାନି ଆଗଆଡ଼େ ତଳେ ଘୁଞ୍ଚରେ ନାହିଁ ବା ବୋହୋଲେ ନାହିଁ । ]

**ପାଇକଚ୍ଛ ମାରିବା**—ଦେ. କ୍ରି—ପିନ୍ଧା ଲୁଗାର ସାମନା ପାଖେ ଓହଳିଥିବା ଫେର କାନିକି ଗୁଡ଼ା ତଳବାଟେ ନେଇ ଅଣ୍ଟାର ପଛଆଡ଼େ ଖୋସିବା—
Pāikachhā māribā
मालकाछा मारना
कछनि कछना
To tuck up the hanging front portion of the cloth by
(ପାଇକଚ୍ଛ ଉଡ଼ାଇବା—ଅନ୍ୟରୂପ)

tucking it down between the thighs and attaching it to the back part of the waist.

**ପାଇକ ଜାଗିର୍**—ଦେ. ବି—ପାଇକମାନଙ୍କୁ ଦରମା ପରିବର୍ତ୍ତେ ଦିଆ ଯାଇଥିବା ଜାଗିର— **Pāika jāgiri** Paikan Jaghir; service-land granted to a Paik.

**ପାଇକ ଧୋବା**—ପ୍ରାଦେ. (ଗଞ୍ଜାମ) ବି—ଭଞ୍ଜ ରାଜାଙ୍କ ବାହିନୀରେ ଯେଉଁ ସବୁ ଜାଗିରଖିଆ ଧୋବା ଲୁଗା କାଚିବାକୁ ଯାଉଥିଲେ— **Pāika dhobā** The washerman-service-holders who were accompanying the army under the ancient Bhañja kings of Orissa.

**ପାଇକ ଫୁଲ**—ପ୍ରାଦେ. (ସିଂହଭୂମ) ବି—ଗୋଡ଼ବାଣ ଫୁଲ— **Pāika phula** A kind of flower
(ପାଇକର ଫୁଲ—ଅନ୍ୟରୂପ)

**ପାଇକ ବିଦ୍ରୋହ**—ଦେ. ବି—୧୮୧୭ ଖ୍ରୀଷ୍ଟାବ୍ଦରେ ଖୋରଧାର ପାଇକମାନେ କରିଥିବା ମେଳି— **Pāika bidroha**
(ପାଇକ ମେଳି—ଅନ୍ୟରୂପ) The Paik rebellion of Khurda of 1817 A. D.

[ଦ୍ର—ଇଂରେଜମାନେ ଓଡ଼ିଶା ଅଧିକାର କରିବା ପରେ ଖୋରଧାର ଇଂରାଜ ରାଜକର୍ମଚାରୀମାନଙ୍କ କଠୋର ବ୍ୟବହାର, ପାଇକାନ୍ ଜାଗିର ଉପରେ କର ବସାଇବା, ଲୁଣ କର ବସାଇବା ଓ ବଙ୍ଗାଳୀ ସରକାରୀ କର୍ମଚାରୀମାନେ କଳେ ବଳେ କୌଶଳେ ଜାଗିର ନେବା ଯୋଗୁଁ ଉତ୍ତେଜିତ ହୋଇଥିବା ପାଇକମାନେ ଖୋରଧା ରାଜାଙ୍କ ବକ୍ସି ଜଗବନ୍ଧୁ ବିଦ୍ୟାଧରଙ୍କ ନେତୃତ୍ୱରେ ୧୮୧୭ ସାଲ ମାର୍ଚ୍ଚ ମାସରେ ବିଦ୍ରୋହ କରିଥିଲେ । ପ୍ରଥମେ ୪୦୦ କନ୍ଧ ଘୁମୁସରରୁ ଖୋରଧାକୁ ଆସି ଉପସ୍ଥିତ କଲେ । ତାଙ୍କ ସଙ୍ଗେ ପୂର୍ବରୁ ଉତ୍ତେଜିତ ପାଇକମାନେ ଯୋଗ ଦେଲେ ଓ ବାଣପୁର ପୁଲିସଥାନା, କଚେରି, ସରକାରୀ ଘର ଓ ଧନ ଲୁଣ୍ଠନ କରି ଖୋରଧା, ଲେମ୍ବାଇ ଓ ପୁରୀ ଆକ୍ରମଣ କଲେ । ପରେ ଏମାନଙ୍କ ସଙ୍ଗେ କଟକ ଜିଲ୍ଲାର କୁଜଙ୍ଗ ଓ କନିକାର ପାଇକମାନେ ଯୋଗ ଦେଲେ । ଏ ବିଦ୍ରୋହକୁ ଛ ମାସ ମଧ୍ୟରେ ଇଂରାଜମାନେ ସିପାହି ଓ ପଲଟଣଙ୍କ ସାହାଯ୍ୟରେ ଦମନ କରି ନେତାମାନଙ୍କୁ ଓ ବିଦ୍ରୋହୀମାନଙ୍କୁ ପ୍ରାଣଦଣ୍ଡ, ଦ୍ୱୀପାନ୍ତର ଦଣ୍ଡ ଓ କାରାଦଣ୍ଡ ଦେଇ ଦମନ କଲେ ଓ ଖୋରଧାକୁ ଇଂରେଜ ସରକାର ନିଜର ଖାସ ମାହାଲ ରୂପେ ଗ୍ରହଣ କରି ଶାସନ କଲେ । (ଲୁପାସିଙ୍କ ଉତ୍କଳ ଇତିହାସ) । ]

**ପାଇକ ମାଗୁଣି**—ଦେ. ବି—ପିଲାମାନେ ଖେଳିବା ଏକପ୍ରକାର ଖେଳ— **Pāika māguṇi** A kind of children's outdoor game.

**ପାଇକରା**—ଦେ ବି. (ସଂ. ପଦାତିକ+ରାଜ)—ଓଡ଼ିଶା ରାଜାଙ୍କ ପ୍ରଦତ୍ତ ପାଇକ ଓ ଖଣ୍ଡାଇତ ମାନଙ୍କର ଉପାଧିବିଶେଷ— **Pāikarā**
ପାଇକରାଏ } ଅନ୍ୟରୂପ
ପାଇକରାୟ }
A title given by Rajas to Paiks.

[ ଦ୍ର—ଏହା ବର୍ତ୍ତମାନ ବଂଶଗତ ଉପାଧିରେ ପରିଣତ ହୋଇ ଅଛି । ]

**ପାଇ କରିବା**—ପ୍ରାଦେ. (ସମ୍ବଲପୁର ଓ ଗଡ଼ଜାତ) କ୍ରି. (ଭୁଲ. ହିନ୍ଦୀ. ପହଲୁ ପର୍ ଲେନା)—ପିଲାମାନଙ୍କୁ କାଖେଇବା; କାଖ କରିବା— **Pāi karibā** To carry children on one's sides or flanks above the waist.

**ପାଇକସ୍ତ(ସ୍ତା)**—ବୈଦେ. ବି. ( ଫା. ପୌକାସ୍ତ୍ ) - ପାହି ରଇତ, ଅନ୍ୟ ଗ୍ରାମରେ ଜମି ଚାଷ କରୁଥିବା ଏକ ଗ୍ରାମବାସୀ ପ୍ରଜା— **Pāikasta(stā)** पाईकास्त पइकाश्त A Pahi raiyat; nonresident tenant of a village.

**ପାଇକା**—ଦେ· ବି—ଏକ ପା ପରିମାଣବିଶେଷ, ପାଅକଥିଆ ମାଣ— **Pāikā** 1 A measure for one pā-ā or ¼ of a seer.
୨ । (ନାମ) କଟକ ଜିଲ୍ଲାରେ ମହାନଦୀର କ୍ଷୁଦ୍ର ଶାଖା ନଦୀ ଦୁଇଟି— 2. Name of two branches of the Mahānadī river in the district of Cuttack.
ବୈଦେ. ବି. (ଇଂ)—ଛାପାଖାନାରେ ସାଧାରଣ ମଧ୍ୟଭଳି ଆକାରର ଅକ୍ଷର— पाईका पाइका The Pica type (in printing).
[ଦ୍ର—ଏହା ତିନି ପ୍ରକାର ଯଥା—ଛୋଟ ପାଇକା Small pica, ସାଧାରଣ ପାଇକା Pica, ଡବଲ ପାଇକା Double pica । ]

**ପାଇକାଣ(ନ୍)**—ଦେ. ବି (ବହୁବଚନ)—ପାଇକମାନେ— **Pāikāṇa(n)** The Pāikas.

> କେ ଅବା ଲଙ୍ଗିଲ କେତୁ ଉଡ଼ଗକ,
> ରଥୁ ପାଇଲେ ପାଇକାଣ । ବ୍ରଜନାଥ, ସମର ତରଙ୍ଗ ।

ବିଣ—ପାଇକାଲି (ଦେଖ)—Pāikāḷi (See)

**ପାଇକାନ୍ ଜାଗିର୍**—ଦେ. ବି—ପାଇକମାନଙ୍କୁ ଯୁଦ୍ଧ କାର୍ଯ୍ୟରେ ଯୋଗ ଦେବା ପାଇଁ ବେତନ ପରିବର୍ତ୍ତେ ଦିଆ ଯାଇଥିବା ଜାଗିର ଜମି— **Pāikān jāgiri**
(ପାଇକାଳି ଜାଗିର—ଅନ୍ୟରୂପ) Service tenures granted to Pāikas.

**ପାଇକାର**—ଦେ. ବି—ପଇକାରୀ (ଦେଖ)— **Pāikāra** (ପାଇକାରୀ—ଅନ୍ୟରୂପ) Paikāri. (See).

> ପ୍ରଥମେ ସୃଷ୍ଟିଠାରୁ କଣେ କୁଲଦେପାରୀ,
> ସେ କରେ ପାଇକାରକୁ, ପାଇକାର ହାଟକୁ
> କଣେ ଗୋପାଳଦାସ—ଫକୀର ମୋହନ ଗଳ୍ପ ସ୍ୱଳ୍ପ ।

**ପାଇକାଳି**—ଦେ. ବିଣ—୧ । ପାଇକମାନଙ୍କର ପ୍ରାପ୍ୟ— **Pāikāḷi** 1. Due to the Pāikas.
(ପାଏକାଳି—ଅନ୍ୟରୂପ) (ଯଥା - ପାଇକାଳି ଖୋରାକ)—
୨ । ପାଇକମାନଙ୍କର ସମ୍ପର୍କୀୟ— 2. Pertaining to the Pāikas.
(ଯଥା—ପାଇକାଳି ଜାଗିର)

**ପାଇକା(ଖା)ସ୍ତ(ସ୍ତା)**—ଦେ. ବି ଓ ବିଣ—ପାହି ରଇତ— **Pāikā(khā)sta(stā)** पाही पाही Non-resident cultivator of a village.

**ପାଇକେରା ଗଛ**—ଦେ. ବି—ଲକ୍ଷ୍ମୀ ପାଦୁକା ( ଦେଖ ) **Pāikerā gachha** Lakshmī pādukā ( See )

**ପାଇଖାନା**—ବୈଦେ. ବି. (ଫା)—ପଇଖାନା ( ଦେଖ ) **Pāikhānā** Paikhānā ( See )

ପାଇଛା(ଚ୍ଛା)—ବୈଦେ. ବି. ( ଫା. ପାଦ୍‌ଶାହ୍, ପାଦ୍=ସିଂହାସନ+ ଶାହ୍=ସ୍ୱାମୀ )—
Pāichhā(chchhā)
पातस्या ବାଦସାହା, ରାଜା; ସମ୍ରାଟ—
पाच्छा, पाच्छाह King; emperor; sovereign.
(ଯଥା—ଝାଡ଼ ଖଣ୍ଡ ପାଇଛା, ହକ୍ ନାକ୍ ପାଇଛା ।)
୨ । ଗଞ୍ଜପା ସାରର ୧୨ ସଂଖ୍ୟା ଯୁକ୍ତ ଚକ୍ର, ରାଜା ଚିହ୍ନିତ ସାର—
2. The card representing 12 (king) in the Ganjapā game.
[ ଦ୍ର—ଏଥିରେ ଗାଡ଼ି ବା ରଥରେ ରାଜାଙ୍କର ଚିତ୍ର ଥାଏ । ]

ପାଇଛା ମାଳି—ଦେ. ବି. (ନାମ)—କବିସୂର୍ଯ୍ୟଙ୍କ ଅମଳର ମହୁରୀ ରାଜ୍ୟର ରାଣୀ—Name of the Rani of the Mahuri estate in the time of Poet Kavisurjya who was some time the Court of Wards Manager of the estate.
Pāichhā māḷi

ପାଇଜଙ୍ଗା(ଙ୍ଘା)—ଦେ. ବି—ପାଇଜାମା ( ଦେଖ )
Pāijangā(ṅghā) Pāijāmā ( See )

ପାଇଜମ—ବୈଦେ. ବି. (ଫା. ପାଁଜେବ୍)—ପାଉଜର ( ଦେଖ )
Pāijama Pāujari ( See )
(ପାଇଁଜର, ପାଇଁଜଡ଼ି, ପାଇଁଜର, ପାଇଁଜୁଡ଼ି, ପାଇଁଜୁର—ଅନ୍ୟରୂପ)

ପାଇଜାମା—ବୈଦେ. ବି. (ଫା. ପାଜାମା, ତୁଳ. ସଂ. ପାଦ ଓ ଜଙ୍ଘା)—
Pāijāmā ୧ । ଗୋଡ଼ ମୁଣା; ଗାଣ୍ଡି ମୁଣା, ଯେଉଁ ଗୋଡ଼ମୁଣାର ଗୋଡ଼ ବଳାଗଣ୍ଠି ପର୍ଯ୍ୟନ୍ତ ଲମ୍ବ ଥାଏ—
पायजामा
पायजामा, पाजामा 1. Trousers; long drawers.
୨ । ପଟଲୁନ—2. Pantaloons.
୩ । ପାଣ୍ଟ—3. Pant.

ପାଇଟାଲ—ଦେ. ବି—୧ । ମିସ୍ତ୍ରୀ—1. Architecht; mason.
Pāiṭāla ୨ । ଦୈନିକ ମୂଲିଆ—2. A day-labourer.
(ପାଇଟିଆଲ—ଅନ୍ୟରୂପ) टहलु

ପାଇଟି—ଦେ. ବି. ( ସଂ. ପରିପାଠୀ ବା ପାଠୀ=ଅନୁକ୍ରମ; ତୁଳ—ତେ. ପାନ୍ଧି )—
Pāiṭi
पाइट, पाटि, पाट ୧ । ଗୃହମାର୍ଜନାଦି ନିତ୍ୟ କର୍ମ; ଗୃହର ଶୃଙ୍ଖଳା
टहल ଓ ପରିପାଟୀ ରକ୍ଷାଦିକ ନିତ୍ୟ କର୍ମ, ନୀଚ ଗୃହ କର୍ମ, ଆଉଟୀ—
1. The menial works of a household.
ପାଇଟି କରଇବ ଦାସୀଙ୍କ ସଙ୍ଗରେ । କୃଷ୍ଣସିଂହ, ମହାଭାରତ. ବନ ।
୨ । ଛୋଟ ଚାକିରି—2. Menial service.
୩ । ଦୈନିକ ଧନ୍ଦା—
3. Daily work or business.
୪ । କାରିଗରି—4. Workmanship.

ପାଇଟିଆ—ଦେ. ବି—ପାଇଟାଲ ( ଦେଖ )
Pāiṭiā Pāiṭāla ( See )

ପାଇଟିପତର—ଦେ. ବି. ( ଅନର୍ଥକ ଯୁକ୍ତ ସହଚର ଶବ୍ଦ )—
Pāiṭi patara ଦୈନିକ ଘର ଧନ୍ଦା; ଅଡ଼ୁଆ-ପତ୍ର—
पाटिबाँटि, पाटबाँट One's daily avocations.
टहल टुकरा

ପାଇଟି ଭୋର୍—ଦେ. (ବାକ୍ୟ)—କାର୍ଯ୍ୟ ଶେଷ ହେଲା—
Pāiṭi bhor The work is done; well done!

ପାଇଟି ଶେଷ ହେବା—ଦେ. କ୍ରି—ଅବସ୍ଥା ଖରାପ ହୋଇଯିବା—
Pāiṭi sesha hebā Being ruined.
(ଯଥା—ଆମ୍ଭରୁ ବଂଶ ବଳଲେ ପାଇଟି ଶେଷ ହେବ ।)

ପାଇଟି ସାରିବା—ଦେ କ୍ରି—ନିଜର ଦୈନିକ କର୍ତ୍ତବ୍ୟମାନ ସମାଧାନ କରିବା—To finish one's alloted daily duties.
Pāiṭi sāribā

ପାଇଣ୍ଟ—ବୈଦେ. ବି—୧ । (ଇଂ) ଏକ ଗାଲନ୍‌ର ଅଷ୍ଟମାଂଶ, ତରଳ ପଦାର୍ଥର ବୈଦେଶିକ ପରିମାଣ ବିଶେଷ—Pint.
Pāinṭ
पाइंट ୨ । (ଇଂ. ପେଣ୍ଟ —ପେଣ୍ଟ (ଦେଖ)—
पाइंट 2. Paenṭ. (See)

ପାଇଣ୍ଡା—ପ୍ରାଦେ. (ଗଞ୍ଜାମ) ବି—ଗଞ୍ଜାମର ଓଡ଼ିଆ ଅସ୍ପୃଶ୍ୟ ଜାତିବିଶେଷ—
Pāiṇḍā A class of untouchable Orias in Ganjam.
[ଦ୍ର—ଏମାନେ ଓଡ଼ିଶାର ପାଣ ଶ୍ରେଣୀର ଅଟନ୍ତି ।]
ପ୍ରାଦେ. (ବାଲେଶ୍ୱର) ବି—ଛଦାମଠାରୁ ଅଳ୍ପର କମ୍ ମୂଲ୍ୟର ଧନର ପରିମାଣ—An amount less than ¼ of a pice.

ପାଇନ୍—ପ୍ରାଦେ. ୧ । (ସମ୍ବଲପୁର) ବି—ପାଣି—1. Water.
Pāin ୨ । (ମେଦିନୀପୁର)—ସୁନାରେ ଝଳାଯିବା ମିଶ୍ରିତ ଧାତୁ—
2. Alloy used in soldering gold.

ପାଇପ୍—ବୈଦେ. ବି—(ଇଂ. ପାଇପ୍)—୧ । ନଳ—
Pāip पाइप पाइंप 1. Tube.
୨ । ଏକସ୍ଥାନରୁ ଅନ୍ୟ ସ୍ଥାନକୁ ପାଣି ନେବା ପାଇଁ ବ୍ୟବହୃତ, ଧାତୁ ଆଦିର ବଡ଼ ନଳ—2. Water-pipe.

ପାଇବା—ଦେ. କ୍ରି—(ସଂ. ପ୍ର+ଆପ୍. ଧାତୁ )—୧ । ପ୍ରାପ୍ତ ହେବା
Pāibā पाओया पाना ଲଭିବା—1. To get; to receive.
ଅଭଜନ ଏ ବଦଧା ପାଇବେଟି ସେବେ
ଚନଗ୍ଳେକ ଯାକ ଅଲରେ ଇଣିବେ ।
କୃଷ୍ଣସିଂହ, ମହାଭାରତ ବନ ।
୨ । ଅର୍ଜ୍ଜନ କରିବା—2 To earn.
୩ । ଅନୁଭବ କରିବା; ଭୋଗ କରିବା—3. To enjoy; to experience.
କାଲ ସୁଅଦ ପାଇଛ
ଘରରୁ ଉଠି ଧାଇଁଛ । ଢଗ ।
୪ । ଅଣ୍ଟିବା—4 To suffice.
(ଯଥା—ମତେ କଣ୍ଟକ ଯିବାକୁ ବେଳ ପାଇବ ନାହିଁ)
୫ । ସୁବିଧା ବା ସୁଯୋଗ ପ୍ରାପ୍ତ ହେବା—5. To have opportunity or occasion (for something.)
[ଯଥା—ଆମ୍ଭେମାନେ ଏହା ଦେଖିବାକୁ (ବା ଶୁଣିବାକୁ) ପାଇଲୁଁ]
୬ । ମେଳ ଖାଇବା; ଉପଯୁକ୍ତ ହେବା; (ମନର) ଅନୁମତ ହେବା—
6. To tally with; to suit.
(ଯଥା—ତା କଥାଟା ମୋ ମନକୁ ପାଇଲା ନାହିଁ)
୭ । ପ୍ରବେଶ ହେବା, ପହଞ୍ଚିବା—7. To reach.

ସେହୁକାଳେ ପାଣ୍ଡବମାନଙ୍କ ସମୀପେ
ବ୍ୟାସ ମହାଋଷି ପାଇଗଲେ ଅପେ ।
କୃଷ୍ଣସିଂହ ମହାଭାରତ. ଆଦ ।

୮ । (ସଂ. ପ୍ରଭାତ) ପାହିବା, ପ୍ରଭାତ ହେବା—
8 To dawn.
ପାଇଲା ରାତ, ଭୂଷ ନେଇଗଲ କଳକପାତ । ଛଗ ।

୯ । ବୋଧ ହେବା; (କୌଣସି କଥା ମନକୁ, ଚିତ୍ତକୁ, ମନ୍ଦାକୁ) ଘେନିବା, ମନୋମତ ହେବା—9. To meet with one's approval; to seem; to occur to one's mind.
କେ ବୋଇଲେ ବଧାଷ ଶର ସନ୍ଧ ଯାକୁ
ବନ୍ଧନ ସେ ମଣବ ପାଇଛି ମନ୍ଦାକୁ—
କୃଷ୍ଣସିଂହ-ମହାଭାରତ ବନ ।

୧୦ । ମାନିବା, ସମ୍ମତ ହେବା, ଅନୁମୋଦନ କରିବା—
10, To agree to; to approve of.
ବୋଇଲେ ଏ କଥାକୁ ପାଏ ତ ହୃଦୟ—
କୃଷ୍ଣସିଂହ ମହାଭାରତ ବନ ।

୧୧ । (ଅନ୍ୟର ମନୋଗତ ଭାବ) ବୁଝି ପାରିବା—
11. To be able to understand or comprehend (another's mind).
(ଯଥା—ମୁଁ ଏତେ ସେବା କରି ମଧ୍ୟ ତା ମନ ପାଇଲି ନାହିଁ)

୧୨ । ମଣିବା; ବୋଧକରିବା—12 To think.
ଜଣେ ହୋଇ ବନ୍ଧୁର ଜନକର ପ୍ରାଣ
ନେବାର ଚମତ୍କାର ପାଉଛି ମୁଁ ଜାଣ ।
କୃଷ୍ଣସିଂହ. ମହାଭାରତ ଦ୍ରୋଣ ।

୧୩ । ଖାଇବା, ଭୋଜନ କରିବା —13. To eat.
ବଧମନ୍ତ୍ର କରି ସେ ବୃତ କରୁଥାଏ
ହବି ନମନ୍ତ୍ରୀ ସେ ବେଳେ ମାତ୍ର ପାଏ ।
କୃଷ୍ଣସିଂହ ମହାଭାରତ ଶାନ୍ତି ।

୧୪ । (କୌଣସି ସ୍ଥାନକୁ ମନୁଷ୍ୟର ହାତ ଗୋଡ଼ ବଢ଼ାଇଲେ) ହାତ ଗୋଡ଼ ସେ ସ୍ଥାନକୁ ସ୍ପର୍ଶ କରିବା—14. To be within the reach of one's hand and feet.
ଏ ଫଳ ରକ୍ଷଣ ସ୍ୱସ୍ଥ
ହସ୍ତ ନ ପାଏ ବଡ଼ ଉଚ୍ଚ – ଜଗନ୍ନାଥ ଭାଗବତ ।

୧୫ । ଗ୍ରହଣ କରିବା—15. To accept.
ଧୂମ୍ରପାନ କଲେ ଗୁରୁ ଜଳ ନ ପାଇବେ ।
ଶ୍ରୀରୀ. ଶ୍ରୀଗୁରୁଭକ୍ତି ଗୀତା ।

ପ୍ରାଦେ. (ଗଞ୍ଜାମ) କ୍ରି.—ପିଲା ପ୍ରସବ କରିବା—
To give birth to a child; to be delivered of a child.

**ପାଇ ଯିବା**—ଦେ. କ୍ରି.—୧ । ପ୍ରାପ୍ତ ହେବା—
Pāi jibā 1. To get.
পেয়ে যাওয়া ୨ । (ସ୍ଥାନରେ) ଉପସ୍ଥିତ ହେବା—
**पाजाना** 2. To arrive at; to reach.
ସେହୁକାଳେ ପାଣ୍ଡବମାନଙ୍କ ସମୀପେ,
ବ୍ୟାସ ମହାଋଷି ପାଇଗଲେ ଅପେ । କୃଷ୍ଣସିଂହ, ମହାଭାରତ ଆଦ

୩ । (କାଳ) ଉପସ୍ଥିତ ହେବା—3. (the time) To come.
ଉତ୍ସବକାଳ ମୋ ନିକଟେ ସିନ ପାଇ
ପୋଷିବାକୁ କର୍ଣ୍ଣ ବର୍ଷଙ୍କୁ ଏବେ ନାହିଁ । କୃଷ୍ଣସିଂହ, ମହାଭାରତ ବନ ।

୪ । ଅତିବାହିତ ହେବା, ବିତି ଯିବା—
4. To pass; to expire.
ଗଲୁଁ ଗଲୁଁ ବର୍ଷେ ପାଇ ଗଲା ।
ଗୋଳକଣ୍ଡ ଦାସ, ପିଲାଙ୍କ ରାମାୟଣ ।

୫ । (କାଳ ବା ସ୍ଥାନ)—ନିକଟବର୍ତ୍ତୀ ହେବା—
5. To approach (a place or time).

୬ । ପାହିବା, ପ୍ରଭାତ ହେବା—6. To dawn.

**ପାଇଲା**—ଦେ. ବିଣ—୧ । ଯେଉଁଠାରୁ ଦ୍ରବ୍ୟପ୍ରାପ୍ତି ହୁଏ—
Pāilā 1. (a place) From which something is got.
ଲୋକେ ପାଇଲା ଗଡ଼ଥ ବୃହାନ୍ତ । ଛଗ ।
୨ । ଲବ୍ଧ; ପ୍ରାପ୍ତ—2. Received; got.
ପାଇଲା ଧନ ଛଡ଼ନ୍ତ ନାହିଁ । ଛଗ ।
ଦେ. କ୍ରି. (ସଂ. ପ୍ର+ଆପ ଧାତୁ=ପ୍ରାପ୍ତ ହେବା, ଅତୀତକାଳ ନାମ ପୁରୁଷ ଏକବଚନର କ୍ରିୟା; ଅମାନ୍ୟାର୍ଥେ, ଯଥା—ରାମ ବାଟରେ ଏହି ପୁସ୍ତକଟି ପାଇଲା)—ପ୍ରାପ୍ତ ହେଲା—(he) Got.

**ପାଇଲି**—ଦେ. କ୍ରି—ପାହିଲି (ଦେଖ)
Pāili Pāhili (See)
ଦେ. କ୍ରି (ସଂ. ପ୍ର+ଆପ୍ ଧାତୁ, ଅତୀତକାଳ ୧ମ ପୁରୁଷ ଅମାନ୍ୟାର୍ଥେ)—ପ୍ରାପ୍ତ ହେଲି (ମୁଁ)—(I) Got.

**ପାଇହା**—ଦେ. କ୍ରି ଓ ବିଣ. (ସଂ. ପଦଗ୍ନ)—ପାହିଆ (ଦେଖ)
Pāihā Pāhiā (See)

**ପାଉ**—ଦେ. କ୍ରି ଓ ବିଣ—ପାହୁ (ଦେଖ)—
Pāu Pāhu (See)

**ପଉଁଜ(ଜି)ଡ଼(ରି)**—ବୈଦେ. କ୍ରି—ପାଉଜରି ( ଦେଖ )
Pāuñja(ji)rḍi(ri) Pāujari ( See )
( ପାଉଁଜ; ପାଉଁଜବି[ମି]—ଅନ୍ୟରୂପ )

**ପାଉଁଦାନ୍**—ବୈଦେ. (ଫା)—ପାଁଦାନ୍ ( ଦେଖ )
Pāuñdān (ପାଉଦାନ୍ – ଅନ୍ୟରୂପ) Pāñdān ( See )

**ପାଉଁ ପିଆଦା**—ଦେ. ବିଣ. ( ସଂ. ପଦ+ଫା. ପୟାଦା )—ଗୋଡ଼ରେ
Pāuñ piādā ଚାଲି ଆସିବା ( ବ୍ୟକ୍ତି )—( a person )
পাপেয়াদা **पावपैदल** Walking on foot.

**ପାଉଁପୂଜା**—ଦେ. କ୍ରି. (ଫା. ପାଉଁ+ସଂ. ପୂଜା)—୧ । ପାଦପୂଜା—
Pāuñpūjā 1. Worship of one's feet.
পাদপূজা ୨ । ଅତ୍ୟଧିକ ସମାଦର ଓ ସତ୍କାର—
**पादपूजा** 2. Much homage and adoration.

**ପାଉଁପୋଛ(ସ)**—ଦେ କ୍ରି. ( ଫା. ପାଉଁପୋଶ୍=ପାଦୁକା)—
Pāuñpochh(s) ପାପୋଛ (ଦେଖ)—Pāpochh (See)
পাঁপোস **पाँपोस**
[ ପାଉଁପୋଛ(ସ)—ଅନ୍ୟରୂପ ]

**ପାଉଁରୁଟି**—ବୈଦେ. କ୍ରି. ( ପର୍ତ୍ତୁଗୀଜ୍. ପାଓ=ଅଟାରେ ତିଆରି ପିଠା ଓ
Pāuñruṭi ସେକ୍ଟ=ଯାହା ସେକା ଯାଇଥାଏ, Roasted bread;
পাউরোটী ଫ୍ରେଞ୍ଚ. ପାଇଁଷ୍ଟୋ—ସେକା ପିଠା; ଭୁଲି. ସଂ. ସେକିକା;

**पाँवरोटि** ସେଙ୍କୀ=ଡାଙ୍କାରେ ସେକା ଗହମ ଅଟ୍ଟାର ପିଠା )—
ପାଉଁସ୍ଲେଟ୍ଟ } ଅନ୍ୟରୂପ ଅଟ୍ଟାରେ ଖମିର୍ ବା ଏକପ୍ରକାର
ପାଓଁରୋ(ରୁ)ଟ୍ଟ } ଚୂନା ମିଶା ଯାଇ ଦହକ ଜାଆଁର
ଧାସରେ ସିକ୍ ଏକପ୍ରକାର ଫୁଲୁକା ରୁଟୀ=Loaf.

**ପାଉଁଶ**—ଦେ. ବ. ( ସ. ପାଂଶୁ=ଧୂଳ )—ଭସ୍ମ—
Pāuñsa পাঁশ **पाँस, राख** (ପାଁଶ—ଅନ୍ୟରୂପ) Ashes.

**ପାଉଁଶ କୁଡ଼**—ଦେ ବ. ( ସ. ପାଂଶୁକୁଳ )—ଯେଉଁଠାରେ ଗୃହସ୍ଥର
Pāuñsa kurdha ଚୁଲିରୁ କଢ଼ା ହେବା ପାଉଁଶ ପ୍ରଭୃତିକ ଜମା
(ପାଉଁଶଗଦା—ଅନ୍ୟରୂପ) କରାଯାଏ—A heap of domestic
পাঁশকুড় **राखकीढेरी** ashes.

**ପାଉଁଶ ପାଉଁଶିଆ**—ଦେ. ବ—ପାଷାଣଭେଦୀ ଗୁଳ୍ମ, ରୁକୁଣୀ ହାଉଯୋଷ
Pāuñsa pāuñsiā ଗୁଳ୍ମ—Colenus Aromaticus (herb).
ପ୍ରାଦେ. ( ଗଡ଼ଜାତ )—ବଥୁଆ ଶାଗ (ଦେଖ)
Bathuā śāga (See)
ଦେ. ବଣ. (ସ. ପାଂଶୁଳ)—ପାଂଶପାଂଶିଆ; ପାଂଶୁଳ, ପାଉଁଶିଆ—
Ashy, ash-coloured, grey.

**ପାଉଁଶ ପାଉଁଶିକଆ**—ପ୍ରାଦେ. (ଗଡ଼ଜାତ) ବ—ପାଉଁଶ ପାଉଁଶିଆ (ଦେଖ)
Pāuñsa pāuñsikiā Pāuñsa pāuñsiā ( See )

**ପ ଉଁଶିଆ**—ଦେ. ବଣ. ( ସ. ପାଂଶୁଳ )—୧ । ପାଂଶୁବର୍ଣ୍ଣବିଶିଷ୍ଟ; ପାଉଁଶ
Pāuñsiā ପର ବର୍ଣ୍ଣବିଶିଷ୍ଟ; ମାଟିଆ—1. Ashy; ash-
পাংশুটিয়া; পাংশুটে **भूरा, मटमैला** coloured
୨ । ପାଉଁଶ ବୋଳା ହୋଇଥିବା—
2. Besmeared with ashes.

**ପାଉଁଶିଆ ବନ୍ତଳ**—ଦେ. ବ—ଏକପ୍ରକାର ବନ୍ତଳ କଦଳୀ—
Pāuñsiā bantala A kind of banana.
পাংশুটিয়া কাঁচকলা [ ଦ୍ର—ଏ ଫଳ ପାକଳ ହେଲେ ଏହାର
ଉପରଭାଗ ପାଉଁଶିଆ ବର୍ଣ୍ଣ ଧାରଣ କରେ । ]

**ପାଉଁସି**—ପ୍ରାଦେ. ( ବସ୍ତର ) ବ. ( ସ. ପର୍ଣ୍ଣିକା=ପଞ୍ଚସ୍ୱହାଡ଼ )—
Pāuñsi ପଇକ—Vegetable chopper set on a
plate of wood.

**ପାଉହା**—ଦେ. ବଣ ଓ ବ—ପାହୁ ( ଦେଖ )
Pāuhā (ପାହୁଆ – ଅନ୍ୟରୂପ) Pāhu ( See )

**ପାଉଆର୍ (ଇତ୍ୟାଦି)**—ବୈଦେ. ବ—ପାଞ୍ଜାର ଇତ୍ୟାଦି (ଦେଖ)
Pāuār (etc) Pāwār etc ( See )

**ପାଉଚ**—ଦେ. ବ. ( ସ. ପଦକା )—ସୋପାନ, ପାବଚ୍ଛ, ପାହାଚ—
Pāucha ধাপ, পইঠা **पैड़ी, सीढ़ी** Steps.
( ପାଉଚ[ଢ଼ି]—ଅନ୍ୟରୂପ )

**ପାଉଜର**—ବୈଦେ. ବ. ( ପା. ପାଜେବ୍ର ଭୁଲ. ସ. ପାଦମଞ୍ଜୀର )—
[illegible] ପାଦର ଘୁଙ୍ଗୁରୁ ଲଗା ବଳା—A tinkling anklet.
পাঁজোর, পাইজোর **पाजेब, पाँजेब**
ପାଉଜବ, ପାଇଁଜବ, ପାଉଜମ, ପାଇଁଜମ,
ପାଉଞ୍ଜମ, ପାଇଁଜମ(ଞ୍ଜ), ପାଉଞ୍ଜର, } ଅନ୍ୟରୂପ
ପାଇଁଜର, ପାଞ୍ଜେର, ପାଉଜେବ, ପାଇଁଜେବ,
ପାଉଞ୍ଜ, ପାଉଞ୍ଜେବ, ପାଇଁଞ୍ଜେବ

**ପାଉଡ**—ଗ୍ରା. ବ – ପାହୁଡ଼ ( ଦେଖ )
Pāurda Pāhurda ( See )

**ପାଉଡର**—ବୈଦେ. ବ. ( ଇଂ )—୧ । ଚୂର୍ଣ୍ଣ; ଚୂନା—
Pāudar 1. Powder.
পাউডার ୨ । ସ୍ତ୍ରୀ ଓ ଅଭିନେତୃବର୍ଗ ମୁହଁକୁ ସୁନ୍ଦର କରିବା ପାଇଁ
**पाउडर** ଯେଉଁ ସୁଗନ୍ଧଚୂର୍ଣ୍ଣ ବୋଳନ୍ତି - 2. Face-powder.

**ପାଉଡ଼ିଆ**—ପ୍ରାଦେ. ( ସମ୍ବଲପୁର ) ବ—ଭୂୟାଁ ନାମକ ଆଦିମ ପାର୍ବତ୍ୟ
Pāurdiā ଜାତି—An aboriginal tribe of the Orissa
states.

**ପାଉଡ଼ୀ**—ପ୍ରାଦେ. ( ସିଂହଭୂମ ) ବ ସ୍ତ୍ରୀ. ( ସ ପାର୍ବତୀ )—ସିଂହଭୂମିରେ
Pāurdi ପୂଜିତା ପାର୍ବତୀ ଦେବୀ—A name of Goddess
Pārbati worshipped in the Singhbhum
district.
[ ଦ୍ର—ସରେଇକଳା, ମୟୂରଭଞ୍ଜ, କେନ୍ଦୁଝର ଆଦି ଅଞ୍ଚଳରେ
ଏ ଦେବୀଙ୍କୁ ଲୋକେ ପୂଜା କରନ୍ତି । ]

**ପାଉଡ଼ୀ ମେଳ**—ପ୍ରାଦେ. ( ସିଂହଭୂମ ) ବ—ପାଉଡ଼ୀ ଠାକୁରାଣୀଙ୍କର
Pāurdi mela ୧୨ ବର୍ଷରେ ଥରେ ହେବା ଯାତ୍ରା—
A festival of the Goddess Pāurdi
observed once in 12 years.
[ ଦ୍ର—ରାଜା ଅଭିରାମ ସିଂହ ଏ ଯାତ୍ରା ପ୍ରବର୍ତ୍ତିତ କରଥିଲେ ।
ଏଥିରେ ସରେଇକଳାର ସମସ୍ତେ ଯୋଗ ଦିଅନ୍ତି । ]

**ପାଉଣା**—ଦେ. ବ. ( ସ. ପ୍ରାପଣ, ପ୍ରାପ୍ୟ )—ପ୍ରାପ୍ୟ ଧନ—
Pāuṇā Money due; dues.
পাওনা ବଣ—୧ । ପ୍ରାପ୍ୟ—1. (any money or thing)
**पावना, पाना** Due to or from
(ଦେଏଣା—ବିପରୀତ) ୨ । (ସ. ପାଦୋନ) ଚତୁର୍ଭାଗରୁ ଭାଗ--
পৌনে **पौने** 2. Three fourth.
(ଯଥା—ପାଉଣା ୩ ଟଙ୍କା=୨ ୨¾)

**ପାଉଣାଦାର**—ଦେ. ବ—୧ । ଯାହାର ପ୍ରାପ୍ୟ ଥାଏ—
Pāuṇādār 1. One to whom money is due.
(ଦେଣାଦାର—ବିପରୀତ) ୨ । ମହାଜନ—2 Creditor.
(ପାଉଣାବାଲା—ଅନ୍ୟରୂପ) পাওনাদার **पावनादार**

**ପାଉଣା ଦେଏଣା**—ଦେ. ବ ଓ ବଣ (ବିପରୀତାର୍ଥ ସହଚର ଶବ୍ଦ)—
Pāuṇā de-eṇā ୧ । ପ୍ରାପ୍ୟ ଧନର ପ୍ରାପ୍ତି ଓ ଦେୟ ଧନର ଦାନ-
(ପାଉଣା ଦେଣା — ଅନ୍ୟରୂପ) 1. Receipt of one's dues
পাওনা দেনা and payment of one's liabilities.
**पवना देना** ୨ । ପ୍ରାପ୍ୟ ଓ ଦେୟ ଧନ—
2. Dues and liabilities of a person; amounts
due from and payble to any person.
୩ । ପ୍ରାପ୍ୟ ଓ ଦେୟ ଧନର ହିସାବ ଫଇସାଲା—
3. Settlement of accounts.
[ ଦ୍ର—ଏ ଶବ୍ଦ ସାଧାରଣତଃ 'ଦେଣା ପାଉଣା' ଆକାରରେ
ବ୍ୟବହୃତ ହୁଏ । ]

**ପାଉଣା ନିକାଶ(ଶି)**—ଦେ. ବି—ଦୁଇ ଜଣଙ୍କ ମଧ୍ୟରେ ପ୍ରାପ୍ୟ ଧନର
Pāuṇā nikāśa(śi) ହିସାବ ପତ୍ର ହେବା ପରେ ଦିଆ ନିଆ
পাওনা নিকেশ ହେବା ଦ୍ୱାରା ତହିଁର ନିଷ୍ପତ୍ତି—
पावना निकाश Settlement of dues and liabilities between two persons.

**ପାଉଣା ପତର**—ଦେ. ବି. ( ୨ୟ ନିରର୍ଥକ ସହଚର ଶବ୍ଦ )—
Pāuṇā patara ପ୍ରାପ୍ୟ ଧନ ଆଦି, ସମସ୍ତ ପ୍ରକାର ପ୍ରାପ୍ୟ ଧନ—
(ପାଉଣା ପତ୍ର—ଅନ୍ୟରୂପ) Various dues, dues of all sorts.
পাওনা পয়সা पावना पत्तर

**ପାଉଣ୍ଡ**—ବୈଦେ. ବି. ( ଇଂ. ପାଉଣ୍ଡ )—
Pāuṇḍ ୧। ପ୍ରାୟ ୧୦ ଟଙ୍କା ମୂଲ୍ୟର ଇଂଲଣ୍ଡ ପ୍ରଚଳିତ ସ୍ୱର୍ଣ୍ଣମୁଦ୍ରା
1 Pound; an English gold coin.

[ ଦ୍ର—୧ ପାଉଣ୍ଡ = ୨୦ ଶିଲିଙ୍ଗ୍, ୧ ଶିଲିଙ୍ଗ = ୧୨ ପେନସ୍ ୧ ପାଉଣ୍ଡ = ୨୦ ଶିଲିଙ୍ଗ = ୨୪୦ ପେନ୍ସ, ପେନ୍ସ ଶବ୍ଦ ପେନ୍ନୀ ଶବ୍ଦର ବହୁବଚନ, ୧ ପେନ୍ନୀ ବୋଲାଯାଏ କିନ୍ତୁ ଏକରୁ ଅଧିକ ହେଲେ ପେନ୍ସ ବୋଲାଯାଏ, ଯଥା—୪ ପେନ୍ସ। ପେନ୍ନୀ ମୁଦ୍ରା ତାମ୍ର ବା ନିକେଲ ଧାତୁ ନିର୍ମିତ, ଶିଲିଙ୍ଗ୍—ରୌପ୍ୟ ମୁଦ୍ରା ଓ ପାଉଣ୍ଡ୍ ସ୍ୱର୍ଣ୍ଣ ମୁଦ୍ରା ଅଟେ। ଭାରତକୁ ବିଲାତରୁ ଗିନି ବା ସଭରେନ୍ ନାମକ ଯେଉଁ ସ୍ୱର୍ଣ୍ଣ ମୁଦ୍ରା ଆସେ ତହିଁର ମୂଲ୍ୟ ୨୧ ଶିଲିଙ୍ଗ୍ ଅଟେ ଓ ସୁନାର ଭାଉ କମ ବେଶି ହେବା ସଙ୍ଗେ ଓ Exchange ( ଅନ୍ତର୍ଜାତୀୟ ମୁଦ୍ରା ବଦଳ ) ର ରେଟ୍ ଅନୁସାରେ ଏହି ଗିନିର ମୂଲ୍ୟ ଭାରତରେ କମ୍ ବେଶି ହୁଏ। ମୋଟା ମୋଟି ଦେଖିବାକୁ ଗଲେ ପାଉଣ୍ଡର ମୂଲ୍ୟ ଭାରତ ପ୍ରଚଳିତ ମୁଦ୍ରା ଅନୁସାରେ ଦଶ ଟଙ୍କା ଧରାଯାଏ, କିନ୍ତୁ ବର୍ତ୍ତମାନ (୧୯୩୩ ସାଲରେ) ଏଥିର ମୂଲ୍ୟ ଟ ୧୩୮ ରୁ ଊର୍ଦ୍ଧ୍ୱକୁ ଉଠି ଯାଇଅଛି। ଗିନିର ମୂଲ୍ୟ ପ୍ରାୟ ୨୦ ଟଙ୍କା ହୋଇଅଛି। ]

পাউণ্ড, পাউন, পৌণ্ড ୨। ଇଂରାଜି ଓଜନବିଶେଷ; ୪୦ଭରି ଓଜନରୁ
पाउंड, पाउन, पउन କିଛି କମ୍; ପ୍ରାୟ ବାଲେଶ୍ୱରୀ ଅଧସେର—
2 Pound (weight).
୨। କାଞ୍ଜି ହାଉସ୍—2. Pound; kine house

**ପାଉଣ୍ଡ** (ଇତ୍ୟାଦି)—ଦେ. ବି. ( ସଂ. ପହଣ୍ଡ )—
Pāuṇḍa (etc) ପହଣ୍ଡ ଇତ୍ୟାଦି ( ଦେଖ )
Pahaṇḍa etc ( See )

**ପାଉଣ୍ଡ ପକା(କେ)ଇବା**—ଦେ. କ୍ରି—ପାଉଳିବା; ଧୀରେ ଧୀରେ ପାଦକୁ
Pāuṇḍa pakā(ke)iba ଛଡ଼ା ଛଡ଼ା କରି ପକାଇ ଚାଲିବା—
পা ফেলা To walk with long and slow strides.
डग भरना, धाप देना

**ପାଉଣ୍ଡର**—ଗ୍ରା. ବୈଦେ. ବି. ( ଇଂ. ପାଉଡରର ଅଶୁଦ୍ଧ ଉଚ୍ଚାରଣ)—
Pāuṇḍara ପାଉଡର (ଦେଖ)—Pāudara (See)

**ପାଉଣ୍ଡିଆ**—ଦେ. ବିଣ. (ଇଂ. ପାଉଣ୍ଡ ସଙ୍ଗେ ଓଡ଼ିଆ ଇଆ ପ୍ରତ୍ୟୟ, ଅନ୍ୟ
Pāuṇḍiā ସଂଖ୍ୟାବାଚକ ଶବ୍ଦ ସଙ୍ଗେ ଲାଗେ ଯଥା—
পনী पाउण्डवाला ୨୪ ପାଉଣ୍ଡିଆ କାଗଜ )—
୧। ଯେଉଁ ବସ୍ତୁର ଓଜନ ଏତେ ପାଉଣ୍ଡ—
1. Of the weight of so many pounds.
୨। ଯେଉଁ କାଗଜର ଏକ ରିମ୍‌ର ଓଜନ ଏତେ ପାଉଣ୍ଡ—
2. (paper) Of which one ream weighs so many pounds.
(ଯଥା—ଚବିଶ ପାଉଣ୍ଡିଆ ଡବଲଫୁଲସ୍କାପ୍ କାଗଜ।)

**ପାଉଣ୍ଡେଜ୍ ଫିସ୍**—ବୈଦେ. ବି. (ଇଂ. କଚେରୀ ଶବ୍ଦ)—
Pāuṇḍej phis ଅଦାଲତରେ ନିଲାମ ଧରିବା ବ୍ୟକ୍ତି ନିଲାମ
পাউণ্ডেজ ফিস ଡାକସମନ ଉପରେ ସରକାରଙ୍କୁ ଦେବା ଫିସ୍—
पाउंडेज फिस Poundage fees; fees paid by an auction purchaser to court at a certain percentage.

**ପାଉତି**—ଦେ. ବି. ( ସଂ. ପ୍ରାପ୍ତି )—
Pāuti ୧। ପ୍ରାପ୍ତି ସୂଚକ ଲେଖା ରସିଦ—
দাখিলা रसिद, रसिद फारम 1. Receipt.
୨। ଖଜଣା ପ୍ରାପ୍ତିର ରସିଦ—1. Rent receipt
୩। ଚେକ ପାଉତି—3. Cheque receipt.

**ପାଉତି କାଟିବା**—ଦେ. କ୍ରି—ଧନ ପାଇବା ବ୍ୟକ୍ତି ଦୋହୋର ରସିଦ
Pāuti kāṭibā ଲେଖି ମୂଳ ଖଣ୍ଡ ଆପଣା ପାଖେ ଲେଖି ଅନ୍ୟ ଖଣ୍ଡ ଧନ ଦେବା ବ୍ୟକ୍ତିଙ୍କୁ ଦେବା—
(a payee) To give to the payer a cheque-receipt after cutting it from the counterfoil.

**ପାଉତି ପତ୍ର**—ଦେ. ବି. (ସହଚର ଶବ୍ଦ, ନିରର୍ଥକ ଦ୍ୱିତୀୟ ଶବ୍ଦ)—
Pāuti patra ରସିଦ ଆଦି ପ୍ରାପ୍ତି ସୂଚକ ଲେଖ—
বসিদ টসিদ Receipt or other written acknowledgement of payment.
रसिद उसिद
(ପାଉତି ପତର, ପାଉତି ଫାଉତି—ଅନ୍ୟରୂପ)

**ପାଉଦିଆ**—ଦେ. ବିଣ—ପ୍ରତାରକ (ବ୍ୟକ୍ତି), ଯେ ଭଣ୍ଡାଏ—
Pāudiā Deceitful; cheating.
ধাপাবাজ धोखाबाज (ପାଉମରା—ଅନ୍ୟରୂପ)

**ପାଉ ଦେବା**—ଦେ. କ୍ରି—୧। ଭଣ୍ଡାଇବା
Pāu debā 1. To put off on some excuse.
(ପାଉ ମାରିବା ଅନ୍ୟରୂପ) ୨। ଧପ୍ପା ମାରିବା—
ধপা মাবা धोका देना 2. To cheat.

**ପାଉପଣ**—ଦେ. ବି—ଧପ୍ପାବାଜି; ଠକାମି—
Pāupaṇa Cheating; fraud; deception.
ধাপাবাজী धोकाबाजी
[ପାଉପଣିଆ(ଆଁ), ପାଉଆପଣ, ପାଉଆପଣିଆ(ଆଁ)—ଅନ୍ୟରୂପ)]

**ପାଉରା(ରେ)ଇବା**—ଦେ. କ୍ରି. (ସଂ. ପ୍ରହାର)—ପାହୁରାଇବା (ଦେଖ)—
Pāurā(re)ibā Pāhurāibā (See).

**ପାଉରାଣୀ**—ଦେ. ବି. (ସଂ. ପ୍ରହାରଣୀ)—ପାହୁରାଣୀ (ଦେଖ)—
Pāurāṇī Pāhurāṇī (See).

**ପାଉରିବା**—ଦେ. କ୍ରି. (ସଂ. ପରିଧାନ)—ପାହୁରିବା (ଦେଖ)—
Pāuribā Pāhuribā (See).

**ପାଉଲ**—ଦେ. ବି. (ସଂ. ପାଦ)—ପାହୁଲ (ଦେଖ)—
Pāula Pāhula (See).

**ପାଉଲ ପକା(କେ)ଇବା**—ଦେ. କ୍ରି—ପାଉଣ୍ଡ ପକାଇବା (ଦେଖ)—
Pāula pakā(ke)ibā Pāunda pakāibā (See).
[ପାଉଲ ପକା(କେ)ଇ ଖେଳିବା—ଅନ୍ୟରୂପ]

**ପାଉଲା**—ଦେ· ବ—ପାହୁ, ପଇସାର ଏକଚତୁର୍ଥାଂଶ ମୁଦ୍ରା—
Pāulā ପାଈ ପାଇ A copper pie.
(ପାହୁଲା—ଅନ୍ୟରୂପ) ହାଉଲେ ! ଛନ ପଇସା ପାଉଲେ – ଶିଶୁବଚନ ।
ପ୍ରାଦେ. (ଗଞ୍ଜାମ) ବ—ସୁଉକି—
One fourth of a rupee; a four anna bit.

**ପାଉଲି**—ଦେ. ବ. ଓ ବଣ—କାଉଲା (ଦେଖ)—
Pāuli Kāula (See).

**ପାଉଲିବା**—ଦେ. କ୍ରି—ପାଉଣ୍ଡ ପକାଇବା (ଦେଖ)—
Pāulibā Pāunda pakāibā (See).

**ପାଉସେରି**—ଦେ. ବ—୧ । ମହାଜନଙ୍କୁ ବେପାରିଠାରୁ ପଣ୍ୟଦ୍ରବ୍ୟ କିଣାଇ
Pāuseri ଦେବା ବ୍ୟକ୍ତିର ପ୍ରାପ୍ୟ; ଦଲାଲର କମିଶନ୍ ବା ଦସ୍ତୁରି—
(ପାହୁସେରି—ଅନ୍ୟରୂପ) 1. Commission of a broker or commission agent.
୨ । (ଲକ୍ଷଣାର୍ଥ) ଦୁଇଜଣଙ୍କ ମଧ୍ୟରେ କରାଯିବା ଦେଣ ନେଣରେ ତୃତୀୟ ବ୍ୟକ୍ତି ମଝିରେ ପାଇବା ଲାଭ—
2. (figurative) The profit which accrues to a third person when there is some transaction between two persons.

**ପାଏ**—ଦେ. ବ. ଓ ବଣ—୧ । ଓଜନରେ ବା ମାପରେ କୌଣସି ନିର୍ଦ୍ଦିଷ୍ଟ
Pāe ପରିମାଣର ଚାରି ଭାଗରୁ ଏକଭାଗ—
1. One Pao in weight or measure.
୨ । ଏକଚତୁର୍ଥାଂଶ—2. One fourth.
ଦେ. ବ. (ସ. ପାଦ)—ପାଦ—Foot; leg.
ପା ଭଠ ଶବର ଛଡ଼ ପାଏ
ପାବ ମନେ ନ କର କଛ ଭସ୍ୱେ । ଜଗନ୍ନାଥ-ଭାଗବତ ।
ପାଏ ପାବମେ ୨ । ପାଦରେ—2. At the foot.
ଶରଣ ଶଲ ତୋର ପାଏ,
ଭଣ ବା ନ ରଣ ଏ କାଏ । ଜଗନ୍ନାଥ, ଭାଗବତ ।
ଦେ. କ୍ରି. ବଣ—ଏକପାଦ ବା ପଦକ୍ଷେପ ମାତ୍ର—
ଏାୟ ଏକପାବ By one step only.
ଅସ୍ଥାଧୀନରେ ଥିବ ଠାଏ,
କାହିଁ ବ ନ ଚଳବ ପାଏ । ଦ୍ବାରୀ, ନିର୍ଗୁଣ ମାହାତ୍ମ୍ୟ ।
ପାୟ ଦେ. କ୍ରି. (ପାଇବା କ୍ରିୟାର କାଳ୍ୟ ପ୍ରବୃତ୍ତ ବର୍ତ୍ତମାନକାଳ
ପାତା ଅନାଦରାର୍ଥିକ ତୃତୀୟ ପୁରୁଷ ଏକବଚନ 'ସେ' କର୍ତ୍ତା ସଙ୍ଗେ
ବ୍ୟବହୃତ)—(ସେ) ପ୍ରାପ୍ତ ହୁଏ—(he) Gets, receives.

**ପାଏକ**—ଦେ. ବ. (ସ. ପଦାତିକ)—ପାଇକ (ଦେଖ)—
Pāeka Pāika (See).
ପାଏକ ବୁହାନ୍ତେ ମନେ ଭଲେ ହାସି—ଜଗନ୍ନାଥ ଭାଗବତ ।

**ପାଏଙ୍ଗ**—ପ୍ରାଦେ. (ସମ୍ବଲପୁର) ବ—ବନ୍ୟଲତାବିଶେଷ—
Pāeng A wild creeper.
[ଦ୍ର—ଏହାର ପତ୍ରକୁ ଚାଉଳ ସଙ୍ଗେ ବାଟି ପିଠା କରନ୍ତି ।]

**ପାଏଡ଼ା**—ଦେ. ବ. (ଭୁଲ. ସ. ପାଦ ପୀଠ)—ଦେବତା ଓ ରାଜାମାନଙ୍କ
Pāerdā ଗମନ କରିବା ବାଟରେ ବିଛାଯିବା ଲୁଗା—
ପାଡ଼ନ A cloth which is spread on the road on
ପାବଡ଼ାପାୟବାଦ which great men pass and images of Deities are taken.
କରନ୍ତ ପାଏଡ଼ା ସବୁ ରଙ୍ଗ ପାଟରେ – ଗୋଲକୃଷ୍ଣ, ରସକଲ୍ଲୋଳ ।
ପ୍ରାଦେ. (ଗଡ଼ଜାତ) ବ—ଘୋଡ଼ା ଜିନ୍‌ର ରେକାବ—
Stirrup.

**ପାଏନ୍**—ପ୍ରାଦେ (ସମ୍ବଲପୁର) ବ—(ଭୁଲ. ନବା ସ୍ଥାନରେ ନଏନ୍; ସ୍ଥିତ
Pāen ସ୍ଥଳରେ ସ୍ୱଏନ୍)—ପାଣି, ଜଳ—Water
୨ । (ମେଦିନୀପୁର, ଭୁଲ. ବ. ପାଏନ୍)—ସୁନା ଝାଳିବା ପାଇଁ
ବ୍ୟବହୃତ ମିଶା ଧାତୁର ପତଳା ପତ୍ର—
Alloy used for joining two bits of gold.

**ପାଏନ୍ କଖାରୁ**—ପ୍ରାଦେ. (ସମ୍ବଲପୁର) ବ – ପାଣିକଖାରୁ (ଦେଖ)—
Pāen kakhāru Pāni kakhāru (see)

**ପାଏନ୍‌ଧାର୍ କରିବା**—ପ୍ରାଦେ. (ସମ୍ବଲପୁର) କ୍ରି—ଠାକୁରାଣୀ ମାଜଣା
Pāen-dhār karibā କରିବା; ଗ୍ରାମରେ ହଇଜା, ବସନ୍ତଆଦି
ମାଆଙ୍କର ଉପସ୍ଥିତ ହେଲେ ଗ୍ରାମଦେବତାଙ୍କୁ ପାଣି ଫୁଲ ଦେଇ
ପୂଜା କରିବା—To worship the village Goddess on occasions of divine visitations (e. g. cholera, smallpox.).

**ପାଏନ୍‌ବତା**—ପ୍ରାଦେ. (ସମ୍ବଲପୁର) ବ—ଯେଉଁ ଲମ୍ବ ବତା ଚାଳର ତଳ
Paen-batā ବା ଶେଷ ଦାଢ଼ରେ ରୁଅ ମୁଣ୍ଡରେ ବନ୍ଧାଯାଏ, ପାଣି
ବତା—A long split bamboo tied to the lower ends of the rafters of a thatched house.
[ଦ୍ର—ଖପରଲି-ଘରେ ଉକ୍ତ ବତାରେ ଖପରଛଣିର ତଳପାଖ
ଅଟକି ରହେ ଏବଂ ଚାଳ ଘରେ ଛଣର ଶେଷ ମୁଣ୍ଡ ତାହିଁରେ ଲଇ
ଦ୍ୱାରା ବନ୍ଧାଯାଏ ।]

**ପାଏନ୍ ଶାଗ**—(ସମ୍ବଲପୁର)—ବ.—ସୁନୁସୁନିଆ ଶାଗ (ଦେଖ)—
Pāen sāga Sunusunia sāga (See)

**ପାଏ ପଡ଼ିବା**—ଦେ. କ୍ରି.—ପାଦ ତଳେ ପଡ଼ିବା, ଗୋଡ଼ ତଳେ ପଡ଼ିବା—
Pāe pardibā To fall prostrate at the feet of another.
(ପାଏଁ ପଡ଼ିବା—ଅନ୍ୟରୂପ) ପାଏ ପଡ଼ ଉଠି ଶିରେ କରନ୍ତ ଯୋଡ଼,
ପାୟେ ପଡ଼ା ପାବପଡ଼ନା ପ୍ରାଚୀ – ବ୍ରହ୍ମାଣ୍ଡପୁରାଣ ଗୀତା ।

**ପାଏବନ୍ଦ**—ବୈଦେ. ବଣ—(ଫା. ପାବନ୍ଦ=ଆବଦ୍ଧ; ଅସ୍ୱାଧୀନ)—
Pāeband ୧ । (କୌଣସି କାର୍ଯ୍ୟରେ) ଏକାନ୍ତ ନିଯୁକ୍ତ—
ପାବନ୍ଦ 1. Busily engaged (in some work).
(ପାଏବନ୍ଦୀ—ବ) ( ଯଥା—ମୁଁ ମକଦ୍ଦମା ପାଇଁ କଟକରେ ବନ୍ଦନ
ପାଏବନ୍ଦ ହେଲି)
୨ । ଅସ୍ୱାଧୀନ; ନାଚାର; ବାଧ୍ୟ—
2. Helpless; not free.

**ପାଏର୍**—ପ୍ରାଦେ. (ସମ୍ବଲପୁର) ବ—(ଭୁଲ. ହି. ପାଏଡ୍)—୧ । କ୍ଷେତର
Pāer ହିଡ଼; ଆଡ଼—1. Ridge of a field.
୨ । ଛୋଟ ବନ୍ଧ—2. A small embankment.

**ପାଏଲାଗି**—ପ୍ରାଦେ (ସମ୍ବଲପୁର) ବ. ଓ ଅ. ( ତୁଳ. ହି ପାଓଁଲାଗୀ )—
Pāelāgi ଦଣ୍ଡବତ (ଦେଖ)—Dandabata (See).

**ପାଏସ୍**—ପ୍ରାଦେ (ସମ୍ବଲପୁର) ବ—ପାୟସ (ଦେଖ)—
Pā s Pāyasa. (See)

**ପାଂକ୍ତ**—ସ. ବଣ—(ପଂକ୍ତି+ ସମ୍ବନ୍ଧାର୍ଥେ. ଅ)—୧ । ଶ୍ରେଣୀବଦ୍ଧ, ପଂକ୍ତି-
Pamkta ବଦ୍ଧ—1. Arranged or set in a row or rows.

୨ । ପଂକ୍ତି ବା ସମାଜ ସମ୍ବନ୍ଧୀୟ—
2. Social; relating to society.

୩ । ସାମାଜିକ ଭୋଜି ବା ପଂକ୍ତିଭୋଜନ ସମ୍ବନ୍ଧୀୟ—
3. Relating to caste dinner.

—ସ. ବଣ. (ପଂକ୍ତି+ସମ୍ବନ୍ଧାର୍ଥେ ଏୟ)—ପାଂକ୍ତ (ଦେଖ)—
Pāmkteya Pāmkta. (See)

**ପାଂଶନ**—ସ. ବଣ. ପୁଂ. (ପଶ୍ ଧାତୁ=ବିନାଶ କରିବା +କର୍ତ୍ତୃ. ଅନ)-
Pāmśana ୧ । ଯେ ନାଶ କରେ, ବିନାଶକ—
(ପାଂଶନା—ସ୍ତ୍ରୀ) 1. Destructive, ruinous.

୨ । ଦୂଷଣକାରୀ—2 Staining; bringing down stigma on a person.

[ଦ୍ର—ଅନ୍ୟ ଶବ୍ଦ ସଙ୍ଗେ ବ୍ୟବହୃତ, ଯଥା—କୁଳ ପାଂଶନ ପୁତ୍ର ।]

**ପାଂଶପାଂଶି(ଶୁ)ଆ**—ଦେ. ବଣ—ପାଂଶୁପାଂଶୁଆ (ଦେଖ)—
Pāmś-pāmśi(śu)ā Pāmśupāmśuā. (See)

**ପାଂଶୁ**—ସ. ବ—(ପଶ୍ ଧାତୁ=ବିନାଶ କରିବା +ସଜ୍ଞାର୍ଥେ. ଉ)—
Pāmśu ୧ । ଧୂଳି—1. Dust; crumbling soil.
(ପାଂସୁ—ଅନ୍ୟରୂପ) ୨ । ପାପ—Sin.

୩ । ପାଉଁଶ—3. Ashes.

୪ । କଳଙ୍କ—4. Stain; stigma.

୫ । କର୍ପୂର ବିଶେଷ—5. A kind of camphor.

୬ । ଅନେକ ଦିନରୁ ସଞ୍ଚିତ ଗୋବର, ଖତ—6. Cowdung stored for a long time for being used as manure.

୭ । ସ୍ଥାବର ସମ୍ପତ୍ତି—
7. Immoveable property; landed property.

୮ । ସମୁଦ୍ରଲୁଣ—8. Sea salt; white salt.

୯ । ପୁଷ୍ପ ପରାଗ—The pollen of a flower.

୧୦ । ସ୍ତ୍ରୀରଜଃ—10. The menses. (M. W.)

**ପାଂଶୁକ**—ସ. ବଣ. (ପାଂଶୁ+ଯୁକ୍ତାର୍ଥେ. କ)—୧ । ଧୂଳି ଧୂସରିତ,
Pāmśuka ଧୂଳିଯୁକ୍ତ—1 Dusty; besmirched with dust.
(ପାଂସୁକ—ଅନ୍ୟରୂପ) (ପାଂଶୁକା—ସ୍ତ୍ରୀ)

୨ । ପାପିଷ୍ଠ—2. Sinful.

୩ । ଧୂଳିପରି ଧୂସରବର୍ଣ୍ଣବିଶିଷ୍ଟ, ମାଟିଆ—
3. Dust coloured.

୪ । ଦୁଷ୍ଟ—4. Wicked.

୫ । ଲମ୍ପଟ; ପରସ୍ତ୍ରୀଗାମୀ—
5. Lecherous; adulterous.

୬ । ମଳିଆ; ମଇଳା—6. Dirty.

୭ । ବାଲୁକାମୟ—7. Sandy

୮ । ଅପବିତ୍ରୀକୃତ—8. Sullied; defiled.

୯ । ଅପମାନିତ—9. Disgraced.

୧୦ । (ଅନ୍ୟ ଶବ୍ଦ ସଙ୍ଗେ ଲାଗେ,ଯଥା-କୁଳପାଂଶୁକ=କଳଙ୍କକାରୀ)-
10. Sullying; defiling.

ସ. ବ—୧ । ପୂତି କରଞ୍ଜ—
1. A kind of Pongamia tree.

୨ । ବଗପୋଲ—2. Guilandina Bonducella tree (M. W.).

୩ । ପାପୀ ବ୍ୟକ୍ତି—3. A sinner

୪ । ଶିବଙ୍କ ଅସ୍ତ୍ରବିଶେଷ, ଯାହାର ମୁଣ୍ଡରେ ନରକପାଳ ଲାଗିଥାଏ; ଦଣ୍ଡାସ୍ତ୍ର, ଖଟ୍ୱାଙ୍ଗ—4. A kind of bludgeon with a human skull set at the top.

୫ । ପୁଂଶ୍ଚଳ; ଉପପତି—5 Paramour; gallant.

୬ । ଲମ୍ପଟ ବ୍ୟକ୍ତି—6 Adulterer; lecher; a profligate man.

୭ । ଶିବ—7. Siba.

୮ । ଧୂଳିମୟ ସ୍ଥାନ—8. A dusty place.

**ପାଂଶୁକ(କା)ଶୀସ**—ସ. ବ—ହୀରାକଶ (ହି. ଶ.)—
Pāmśuka(kā)śisa Sulphate of iron (M. W.).

**ପାଂଶୁକୀ**—ସ. ବ. ସ୍ତ୍ରୀ. (ପାଂଶୁକ+ସ୍ତ୍ରୀ ଈ)—୧ । ଅସତୀ ସ୍ତ୍ରୀ—
Pāmśukā 1. An unchaste woman.
(ପାଂସୁକା—ଅନ୍ୟରୂପ) ୨ । ରଜସ୍ୱଳା ବା ଋତୁମତୀ ସ୍ତ୍ରୀ, ରଜୋବତୀ ସ୍ତ୍ରୀ—2. A woman in her menses; a menstruous woman.

୩ । ପିତୃକୁଳ ବା ସ୍ୱାମିକୁଳରେ କଳଙ୍କ ଲଗାଇବା ସ୍ତ୍ରୀ—
3. A woman who brings stain on her husband's or father's family.

୪ । ପୃଥିବୀ—4. The earth.

୫ । କେତକୀ ବା କିଆଫୁଲ; (ଯଥା—ଏଥିର କେଶର ରଜଃପୂର୍ଣ୍ଣ ଥିବାରୁ)—5. Pandanus Odoratissimus (flower).

୬ । ଦୁଷ୍ଟଚରିତ୍ରା ସ୍ତ୍ରୀ—6. A licentious woman (M.W.).

**ପାଂଶୁ କୁଳ**—ସ. ବ—୧ । ସିଆଁ କନ୍ଥାଦ୍ୱାରା ପ୍ରସ୍ତୁତ ବୌଦ୍ଧ ଭିକ୍ଷୁମାନଙ୍କ
Pāmśu kula ପରିଧେୟ ବସ୍ତ୍ର (ହି. ଶ)—1. The cloth worn by Buddhist ascetics consisting of rags sewn together.
ପାଂଶୁକୂଳ } ଅନ୍ୟରୂପ
ପାଂସୁକୁ(କୂ)ଳ }

୨ । ଯେଉଁ ଦଲିଲରେ ବିଶିଷ୍ଟ ପକ୍ଷଙ୍କ ନାମ ଲେଖାଯାଇ ନ ଥାଏ (ହି. ଶ)—2. A deed which does not mention the name of the principal person; a legal document not made out in any particular person's name (M. W.).

ପାଂଶୁକୁଳୀ— ସ ବ. (ପାଂଶୁ+କୁଳ+ଈ)—ରାଜପଥ —
Pāṁśukuḷī A high road (M. W.).

ପାଂଶୁକୂଳ—ସ. ବ—୧ । ଧୂଳିଗଦା; ଅଳିଆଗଦା—
Pāṁśukūla 1 A dust heap.
୨ । ପାଉଁଶକୁଢ (ଦେଖ)—2. Pāuṅśakuṛdha (See).
୩ । ବୌଦ୍ଧଭିକ୍ଷୁମାନଙ୍କ ପରିଧେୟ ପାଇଁ ବ୍ୟବହୃତ ଚିରାକନା, ଯାହା କି ଅଳିଆଗଦାରୁ ଗୋଟାଆଯାଏ—
3. A collection of rags out of a dust-heap used by Buddhist monks for their clothing (M. W.).

ପାଂଶୁ କ୍ରୀଡ଼ା—ସ ବ. (ଷଷ୍ଠୀ ବା ୭ମୀ ତତ୍; ପାଂଶୁକ୍ରୀଡ଼ା)—ଧୂଳିଖେଳ—
Pāṁśu krīṛdā Playing in the sand or dust
(ପାଂଶୁକ୍ରୀଡ଼ନ—ଅନ୍ୟରୂପ) (M. W.).

ପାଂଶୁ ଖଳ—ସ. ବ—ଧୂଳି ବା ବାଲିର ଗଦା—
Pāṁśu khaḷa Sand heap; dust heap.
(ପାଂଶୁସଞ୍ଚୟ, ପାଂଶୁଧାନ—ଅନ୍ୟରୂପ)

ପାଂଶୁ ଚାମର—ସ. ବ—୧ । ଧୂଳିଗଦା—
Pāṁśu chāmara 1. A heap of dust (M.W.).
(ପାଂଶୁଚାମର-ଅନ୍ୟରୂପ) ୨ । ପଟ୍ଟବାସ—2. Tent.
୩ । ସୁବାସିତ ଚୂର୍ଣ୍ଣ—3. Perfumed powder.
୪ । ଦୂବ ଘାସରେ ଆଚ୍ଛାଦିତ ବନ୍ଧ—
4 A bank covered with Dūba grass (M.W).
୫ । ପ୍ରଶଂସା—5 Praise (M. W.)
୬ । କଷି କାକୁଡ଼ି—6 A small cucumber. (M. W )

ପାଂଶୁପତ୍ର—ସ. ବ. (ବହୁବ୍ରୀହି, ପାଂଶୁ+ପତ୍ର)—ବଥୁଆ ଶାଗ (ଦେଖ)
Pāṁśupatra (ବୃ. ଶା.)—Chenopodium Album; Bathuā śāga (See)

ପାଂଶୁ ପାଂଶୁଆ—ଦେ. ବଣ.—(ସ. ପାଂଶୁ)—୧ । ପାଂଶୁବର୍ଣ୍ଣବିଶିଷ୍ଟ—
Pāṁśa pāṁśuā 1. Dust coloured.
୨ । ଧୂଳିମୟ—2. Dusty.
ଦେ. ବ.—ପଉଁଶ ପାଉଁଶିଆ (ଦେଖ)
Pāuṅśa pāuṅśiā (See)

ପାଂଶୁ ବର୍ଣ୍ଣ—ସ. ବ.—(କର୍ମଧା; ପାଂଶୁ+ବର୍ଣ୍ଣ)—ପାଉଁଶିଆ ବର୍ଣ୍ଣ—
Pāṁśu barṇṇa Ash-colour.
ସ. ବଣ.—(ବହୁବ୍ରୀହି; ପାଂଶୁ+ବର୍ଣ୍ଣ)—ପାଉଁଶିଆ—Ashy.

ପାଂଶୁ ମର୍ଦ୍ଦନ—ସ.ବ.—ଆଳବାଳ, ଗଛମୂଳରେ ଖୋଳାଯିବା ପାଣି ମଳା-
Pāṁśu marddana An excavation for water round the root of a tree (M. W.)

ପାଂଶୁ(ଶୂ)ର—ସ. ବଣ.—(ପାଂଶୁ+ଯୁକ୍ତାର୍ଥେ ର)—ଧୂଳିମୟ—
Pāṁśu(śū)ra Dusty.
ବ.—୨ । ଧୂଳିମୟ ସ୍ଥାନ—2. Dusty place.
୩ । ଡାଉଁଶ—3. Gadfly.
୪ । ଚଳନ୍ ଅସମର୍ଥ କେଖା ଓ ଖୋଷା (ହି. ଶ)—
4. A cripple carried or moving about in a chair (M. W.)

ପାଂଶୁଳ—ସ. ବଣ.—(ପାଂଶୁ+ଯୁକ୍ତାର୍ଥେ. ଳ)—ପାଂଶୁକ (ଦେଖ)—
Pāṁśula Pāṁśuka (See)
(ପାଂଶୁଳା—ସ୍ତ୍ରୀ) ବ —ସଚଳ ଲବଣ, ଶାମ୍ଭର ଲବଣ, (ହରେକୃଷ୍ଣ ଦ୍ରବ୍ୟଗୁଣ), ଲୁଣୀ ମାଟିରୁ ବାହାର କରାଯିବା ଲୁଣ—
A kind of slat extracted from saline soil.

ପାଂଶୁ ଲବଣ—ସ. ବ.—ପାଂଶୁଳ (ଦେଖ)
Pāṁśu labaṇa Pāṁśula (See)

ପାଂଶୁଳା—ସ. ବ. ଓ ବଣ ସ୍ତ୍ରୀ—(ପାଂଶୁଳ+ସ୍ତ୍ରୀ. ଆ)—
Pāṁśulā ପାଂଶୁକା (ଦେଖ)—Pāṁśukā (See)
ଦେ. ବଣ. ପୁଂ.—ପାଂଶୁକ (ଦେଖ)—Pāṁśukā (See)

ପାଂଶୁଳୀ—ଦେ. ବଣ. ସ୍ତ୍ରୀ—(ସ. ପାଂଶୁଳା)—ଅସତୀ ଓ ଭ୍ରଷ୍ଟା (ସ୍ତ୍ରୀ)—
Pāṁśuḷī Unchaste or frofligate (woman).

ପାଂସନ—ସ. ବଣ.—(ପନ୍ସ ଧାତୁ+କର୍ତ୍ତ୍ରି. ଅନ)—ପାଂଶକ (ଦେଖ)—
Pāṁsana Pāṁsaka (See)

ପାଂସିଠା—ପ୍ରାଦେ. (ବସ୍ତର) ବ.—ପାନ ସିଠା (ଦେଖ)
Pāṁsiṭhā Pāna siṭhā (See)

ପାଂସୁ (ଇତ୍ୟାଦି)—ସ. ବ.— ପନ୍ସ ଧାତୁ+ସଜ୍ଞାର୍ଥେ. ଉ)—
Pāṁsu (etc) ପାଂଶୁ ଇତ୍ୟାଦି (ଦେଖ)
Pāṁśu etc (See)

ପାଁ—ପ୍ରାଦେ. (ଗଞ୍ଜାମ)—ଅ.—ପାଇଁ, ନିମନ୍ତେ—
Pāṅ (ପାଁରେ—ଅନ୍ୟରୂପ)— For; on account of.

ପାଁଚ—ପ୍ରାଦେ. (ଭଞ୍ଜଭୂମି ଓ ସମ୍ବଲପୁର) ବ. ଓ ବଣ (ସ. ପଞ୍ଚ)—
Pāñch ପାଞ୍ଚ—Five

ପାଁଚପଟିଆ—ପ୍ରାଦେ (ସମ୍ବଲପୁର)—ବଣ.—ପାଞ୍ଚ ଖେଣିଆ ଘର—
Pāñcha paṭiā A thatched house with five long plates or śeṇis'.

ପାଁୟା(ୟାଁ)—ପ୍ରାଦେ.—(ଭଞ୍ଜଭୂମି) ବ.—ପାଦ. ଗୋଡ଼—
Pāñyā(āṅ) Leg; foot.

ପାଁଦାନ—ବୈଦେ. ବ. (ଫା. ପାଉଁଦାନ, ସ. ପାଦାଧାନ—
Pāṅdān ୧ । ପାଦପୀଠ—1. A foot-rest; foot-stool,
(ପାଦାନ—ଅନ୍ୟରୂପ)
पाओंदान पाँवदान ୨ । ଗାଡ଼ି ବା ସଗଡ଼ରୁ ଉଠିବା ନିମନ୍ତେ ଯେଉଁ ପଟା ଉପରେ ଗୋଡ଼ ଦେବାକୁ ହୁଏ—
2. Foot-board of a vehicle.

ପାଁସ୍ୱେଶ—ଗ୍ରା. (ପ୍ରାଚୀନ ପଦ୍ୟ) ବ. (ସ. ପାଂଶୁ)—ପାଉଁଶ—
Pāñyeśa (ପାସ୍ୱେଁଶ, ପାଏଁଶ—ଅନ୍ୟରୂପ) Ashes.

ତାହ ସୁବର୍ଣ୍ଣ ଶରୀର, ପାଁସ୍ୱେଶ ଘେନିଛ କର
ନନ୍ଦଙ୍କ କରେ ସେ ଦେଲେ, ଅଦୃଶ୍ୟ ହୋଇଲେ ସେ—
ଜଗନ୍ନାଥ—ଦଶମସ୍କନ୍ଧ ।

ପାଁସାତ—ଗ୍ରା. ବ. ଓ ବଣ (ସଂଖ୍ୟାବାଚକ; ସ. ପଞ୍ଚ ଓ ସପ୍ତ)—
Pāṅsāta ୧ । ପାଞ୍ଚ ବା ସାତ ସଂଖ୍ୟକ—
पांच।सात 1. Five or seven.
पाँच सात ୨ । ଅଳ୍ପ ସଂଖ୍ୟକ—2. A few; about five or seven.

ପାକ୍—ବୈ. ବ.—(ଇଂ. ପାକ୍)—ସୂତାର ବଡ଼ା—
Pāk ପ୍ୟାକ୍ पैक्  A pack of thread.

ପାକ୍ କରିବା—ଦେ. କ୍ରି—(ଇଂ. ପାକ୍)—କୌଣସି ବସ୍ତୁ ବା ପୁସ୍ତକାଦିକୁ
Pāk karibā ପ୍ୟାକ୍‌କରା पैककरना  ଏକତ୍ର ସୂତାରେ ବାନ୍ଧି କାଗଜ ଆଦି ଗୁଡ଼ାଇ ପୋଟଳା କରିବା—To pack some articles into a parcel.

ପାକ୍‌ଟି—ଦେ. ବ.—(ଇଂ. ପକେଟ୍)—ପକେଟ୍—
Pāk-ṭi ପକେଟ पाकट  Pocket.

ପାକ୍‌ବା—ପ୍ରାଦେ. (ସମ୍ବଲପୁର) କ୍ରି.—(ସଂ. ପକ୍ୱ)—ପାଚିବା—
Pāk-bā  To ripen.

ପାକ୍‌ଲା—ଗ୍ରା. ବିଣ.—(ସଂ ପକ୍ୱ)—ପାଚିଲା, ପକ୍ୱ—
Pāk-lā  Ripe.
ପାକା पक्काहुआ, पाकत

ପାକ—ସଂ. ବ.—(ପଚ୍ ଧାତୁ=ପାକ କରିବା+ଭାବ. ଅ)—
Pāka ୧। ରନ୍ଧନ, ରାନ୍ଧିବା, ରାନ୍ଧଣା, ରୁଷେଇ—
1. Cooking.

ବଧାନ କମଳା ଯାର ମାନଙ୍କ ଭୋଜ୍ୟ ଦେଲେ ଯେ ।
ଭକ୍ତ- ବୈଦେହୀଶବିଳାସ ।

[ଦ୍ର—ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କର ୪ ପ୍ରକାର ପାକ ହୁଏ, ଯଥା (୧) ଭୀମପାକ, (୨) ନଳ ପାକ, (୩) ସୌରି ପାକ; (୪) ଗୌରି ପାକ—ଜଗବନ୍ଧୁ ପ୍ରାଚୀନ ଉତ୍କଳ । ]

୨। ସିଝାଇବା—2 Boiling.

୩। ଭାଜିବା—3. Baking; roasting.

୪। ସିଝିବା, ସିଦ୍ଧ ହେବା—4 Being boiled.

୫। ହଜମ, ପରିପାକ, ଜୀର୍ଣ୍ଣ ହେବା—
5 Digestion; assimilation of food.

୬। ପରିଣତି, ପରିଣାମ, ଫଳ—
6 Completion; development of consequences.
ବପାକ କର୍ମ ପାକ ହେଲ ମତ । ଭକ୍ତ- ବୈଦେହୀଶବିଳାସ ।

୭। (ଫଳ ଆଦିର) ପକ୍ୱତା, ପାଚି ଯିବା—
7. Ripening; ripeness (of fruit).

୮। ବଥ ଆଦି ପାଚିବା; ପୂଯପୂର୍ଣ୍ଣ ହେବା—
8 Suppuration (of boils).

୯। ବାଳ ପାଚିବା—9 Ripening of the hair; greyness (of the hair).

୧୦। ଦଉଡ଼ି ବା ସୂତାକୁ ଭଲ କରି ମୋଡ଼ିବା—
10. Twisting of thread or string into a rope.

୧୧। ଉତ୍ତମରୂପେ ପରିଣତ ହେବା—
11. Maturity, full development.

୧୨। ଇଟା ପୋଡ଼ା—12. Burning of bricks. (M.W)

୧୩। ରନ୍ଧା ଯାଇ ଥିବା ଖାଦ୍ୟ; ପକ୍ୱାନ୍ନ—
13. Any cooked or dressed food. (M. W.)
ବ୍ରଜବାସୀ ବଇଷ୍ଣବ ସେ ପାକ ନ ଭୁଞ୍ଜ—ପ୍ରାଚୀ. ଶ୍ରୀସୁଭକ୍ତି ଚିନ୍ତା

୧୪। ବଥ—14. Abscess; ulcer. (M. W.)

୧୫। ସମ୍ପୂର୍ଣ୍ଣତା, ପୂର୍ଣ୍ଣାବସ୍ଥା, ପୋଷଣ ହେବା ଅବସ୍ଥା—
15. Completion; perfection. (M. W.)
ମନେ କଲେ ପୁଷ୍ପକୁ ଖୋଜିବା କପାଇଁ,
ଆମ୍ଭ ଯଶ ପଣତ ପାକ ହୋଇ ନାହିଁ । କୃଷ୍ଣସିଂହ ମହାଭାରତ ଶାନ୍ତି ।

୧୬। ଉତ୍କର୍ଷ—16. Excellence. (M. W.)

୧୭। ପୂର୍ବ ଜନ୍ମ କୃତ କର୍ମର ପରିଣାମ ବା ଫଳ—
17. The development of the consequences of an act done in a former life. (M.W.)

୧୮। ଫଳବିଶିଷ୍ଟ କର୍ମ—
18. Any act having consequences. (M.W.)

୧୯। ଯେଉଁ ଅଗ୍ନିରେ ପରିବାରର ପାକ କ୍ରିୟା ସମ୍ପାଦିତ ହୁଏ—19. Domestic fire. (M. W.)

୨୦। ରାନ୍ଧିବା ପାତ୍ର; ରନ୍ଧନ ପାତ୍ର, ପାଗ ହାଣ୍ଡି—
20 Cooking utensil. (M. W).

୨୧। କୌଣସି ଦେଶରେ ରାଜଦ୍ରୋହ ବା ସମୂହ ଭୟର ଉପସ୍ଥିତି—
21. General panic or revolution in a country (M. W.).

୨୨। ପାଗ, କୌଣସି ଦ୍ରବ୍ୟକୁ ଚିନି, ମିଶ୍ରି, କନ୍ଦ, ଗୁଡ଼ଆଦିର ଶିରାରେ ବା ମହୁରେ ବୁଡ଼ାଇ ପୁଆଇବା (ହ୍ରୁ ଶ)—22. The seasoning of any article in syrup or honey.

୨୩। (+କର୍ତ୍ତୃ. ଅକ) ଇନ୍ଦ୍ରଙ୍କଦ୍ୱାରା ନିହତ ଦୈତ୍ୟବିଶେଷ—
23. A demon killed by Indra.
[ଦ୍ର—ଏହି ହେତୁରୁ ଇନ୍ଦ୍ରଙ୍କ ନାମ ପାକଶାସନ ।]

୨୪। ଶ୍ରାଦ୍ଧରେ ପିଣ୍ଡ ପାଇଁ ପାକ କରାଯାଇଥିବା କ୍ଷୀରି (ହ୍ରୁ. ଶ)—
24. Gruel prepared with milk for being offered in Śrāddha.

୨୫। (+କର୍ତ୍ତୃ. ଅକ)—ପେଚକ—25 Owl (Apte).

୨୬। (+କର୍ମ. ଅକ)—ଶସ୍ୟ—26. Grain (Apte).

୨୭। ଜୀବ ଶିଶୁ—27 The young of an animal (M. W.).

୨୮। କଅଁଳା ପିଲା; ଶିଶୁ—
28 A child; infant (M. W).

ଦେ. ବି—୧। ଗୃହସ୍ଥର ପାଗହାଣ୍ଡିର ଏକସାଇ—
1 A set of earthen cooking pots used in a family.

୨। କୌଣସି ବ୍ୟକ୍ତିର ଗୃହରେ ବା କୌଣସି ବ୍ୟକ୍ତିଦ୍ୱାରା ରନ୍ଧନ କରାଯାଇଥିବା ଅନ୍ନାଦି—2. Food cooked in the home of or by a certain person.

ସଂ. ବିଣ—୧। ଅତିଶିଶୁ—1. Very young (M. W.).

୨। ସରଳାନ୍ତଃକରଣ—2. Simple-minded

୩। ମୂର୍ଖ—3. Ignorant.

୪। ଅକୃତ୍ରିମ—4. Inartificial.

୫। ସତ୍; ସାଧୁ—5. Honest.

ଦେ. ବିଣ—୧। ସୁପରିପକ୍ୱ—1. Well ripened.

୨। ଫଳ ପ୍ରସୂ—2 Producing result.

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରା ଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳେ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ' ନ ମିଳିଲେ 'ଗାଢ଼' ଖୋଜିବେ, କୃଷ ନ ମିଳିଲେ 'କୃଶ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; ଅର୍ଘ୍ୟ ନ ପାଇଲେ 'ଅର୍ଘ' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ

୩ । ପକ୍, ସିଦ୍ଧ—3. Boiled; cooked; dressed.

ପାକମାଂସ ଗିଳଇଣି, କୂରାଇଲେ ଦେଇତେ ଆଣି,
ସହସ୍ର ପୋଡ଼ଥ ଛେଳ ପାଶେ ଛାଡ଼ିଲେ ହେ । ଜଗନ୍ନାଥ. ନରଶ୍ରଗମାହାତ୍ମ୍ୟ ।

୪ । ପରିଣତ—4. Developed.

**ପାକ କରିବା**—ଦେ. କ୍ରି—୧ । ରାନ୍ଧିବା—1. To cook.
Pāka karibā
୨ । ସିଝାଇବା, ସିଦ୍ଧ କରିବା—2. To boil.
पाक करना
୩ । ନିଆଁରେ ସେକିବା ବା ଭାଜିବା—3. To bake; to fry; to roast.
୪ । ଆଉଟିବା—4 To agitate over fire.

ପୁଣି ଅନଳେ ପାକ କଲେ
ସୁବର୍ଣ୍ଣ ହୋଇ ଏକ ଠୂଳେ । ଜଗନ୍ନାଥ ଭାଗବତ ।

**ପାକ କାର**—ସଂ. ବି. (ସଂ. ପାକ+କୃ ଧାତୁ+କର୍ତ୍ତୃ. ଅ)—ପାଚକ; ରନ୍ଧନକାରୀ ବ୍ୟକ୍ତି—A cook.
Pāka kāra

କାଳ ହୋଇଛ ପାକକାର,
ମୃତ୍ୟୁ ଦେବତା ଭକ୍ଷକାର । ଗୋପୀ. ନର୍ଗଣମାହାତ୍ମ୍ୟ ।

**ପାକ କାର୍ଯ୍ୟ**—ସଂ. ବି (ପାକ+କାର୍ଯ୍ୟ)—୧ । ରନ୍ଧନକ୍ରିୟା—1. Cooking.
Pāka kārjya
ପାକକର୍ମ, ପାକକ୍ରିୟା, ପାକପ୍ରକ୍ରିୟା—ଅନ୍ୟରୂପ
୨ । ଖାଦ୍ୟ ଜୀର୍ଣ୍ଣ ହେବାର ଆଭ୍ୟନ୍ତରୀଣ ପ୍ରକ୍ରିୟା—2. The digestion of food; the dessolutions of the food inside the stomach.

**ପାକ କୁଟୀ**—ସଂ. ବି. (ପାକ+କୁଟୀ)—୧ । କୁମ୍ଭାରର ଭାଟି—1. Potter's kiln (M. W.).
Pāka kuṭi
(ପାକପୁଟୀ—ଅନ୍ୟରୂପ)
୨ । କୁମ୍ଭାରଶାଳ—2. Pottery (M. W.).

**ପାକ କୃଷ୍ଣ**—ସଂ. ବିଣ. (ପାକ+କୃଷ୍ଣ, ଯାହା ପାଚିଲେ କୃଷ୍ଣାଭ ହୁଏ)—କରଞ୍ଜା କୋଳି—Carissa Carandas (berry) (M. W.).
Pāka krushṇa
(ପାକଫଳ—ଅନ୍ୟରୂପ)

**ପାକ ଚକ୍ର**—ଦେ. ବି. (ପରାକ୍ରମ+ଚକ୍ର)—୧ । ଶଠତା; କୌଶଳଜାଲ, କଳକୌଶଳ—1. Artifice; stratagem.
Pāka chakra
पाकचक्र
୨ । ପାଣି ଭଉଁରୀ, ମଲମଲୀ—2 Eddy.
୩ । ଅପରାଧୀଙ୍କୁ ଦଣ୍ଡଦେବାର ଏକପ୍ରକାର ଚକ—3. A kind of wheel used in ancient times to punish criminals; rack.
୪ । ଜଟିଳ ରହସ୍ୟଯୁକ୍ତ ସମସ୍ୟା—4. Riddle.
୫ । ଚକ୍ରମଧ୍ୟସ୍ଥ ଚକ—4. A wheel within a wheel.
୬ । ଘୁରୁଥିବା ଚକ—6. A whirling wheel.

**ପାକଜ**—ସଂ. ବି. (ପାକ+ଜନ୍ ଧାତୁ+କର୍ତ୍ତୃ. ଅ; ଲୁଣିପାଣିକୁ ସୂର୍ଯ୍ୟକିରଣ ବା ଅଗ୍ନିରେ ପାକ କଲେ ଯାହା ମିଳେ)—
Pākaja
୧ । ପାଙ୍ଗାଲୁଣ—1. Salt prepared by the boiling and evaporation of sea-water.

୨ । ପେଟଫମ୍ପା—2. Flatulence (M. W.).
ସଂ. ବିଣ—ପାକଦ୍ୱାରା ଉତ୍ପନ୍ନ—Produced by cooking or roasting.

**ପାକଡ଼ା**—ଦେ. ବି—ପାଖଡ଼ା (ଦେଖ)
Pākarḍā Pākharḍā (See).
(ପାକଡ଼ା ଖଇର—ଅନ୍ୟରୂପ)

**ପାକ ପଣ୍ଡିତ**—ସଂ. ବି. ପୁଂ (୭ମୀ ତତ୍, ପାକ+ପଣ୍ଡିତ)—ରନ୍ଧନରେ ସିଦ୍ଧହସ୍ତ ବ୍ୟକ୍ତି—A master in the art of cooking (M. W.)
Pāka paṇḍita
(ପାକପଣ୍ଡିତା—ସ୍ତ୍ରୀ)

**ପାକ ପାତ୍ର**—ସଂ. ବି (୬ଷ୍ଠୀ ତତ୍, ପାକ+ପାତ୍ର)—ରାନ୍ଧିବା ହାଣ୍ଡି—Cooking pot.
Pāka pātra
(ପାକଭାଣ୍ଡ—ଅନ୍ୟରୂପ)

**ପାକ ଯଜ୍ଞ**—ସଂ. ବି—୧ । ବୃଷୋତ୍ସର୍ଗ ଓ ଗୃହ ପ୍ରତିଷ୍ଠା ଆଦି କର୍ମରେ କ୍ଷୀର ଆହୁତି ଦିଆଯିବା ହୋମ (ହି. ଶ.)—1. Vedic sacrifice in which milk-gruel is offered to fire.
Pāka jajña
୨ । ବ୍ରହ୍ମଯଜ୍ଞ ଛଡ଼ା ଗୃହସ୍ଥର ନିତ୍ୟକର୍ତ୍ତବ୍ୟ ଅନ୍ୟ ୪ଟି ଯଜ୍ଞ [ଯଥା—ବୈଶ୍ୱଦେବ, ହୋମ, ବଳିକର୍ମ ଓ ଅତିଥିସେବା,କାରଣ ଏ ଚାରି କର୍ମରେ ପକ୍ୱାନ୍ନ ବ୍ୟବହୃତ ହୁଏ (ହି. ଶ.)]—3. The 4 daily rites which a Hindu householder has to perform by the offering of cooked food.

**ପାକ ଯନ୍ତ୍ର**—ସଂ. ବି—୧ । ରନ୍ଧନାର୍ଥ ବ୍ୟବହୃତ ବୈଜ୍ଞାନିକ ଚୁଲ୍ଲୀ—1. Oven constructed on scientific principles for cooking.
Pāka jantra
୨ । ବୈଜ୍ଞାନିକ ଉପାୟରେ ଔଷଧାଦି ପାକ କରିବାପାଇଁ ବ୍ୟବହୃତ ଯନ୍ତ୍ର (ଜ୍ଞାନେନ୍ଦ୍ର)—2. Scientific apparatus used for boiling medicines.
୩ । ପାକସ୍ଥଳୀ, ଜଠରର ଯେଉଁ ସ୍ଥାନରେ ଭୁକ୍ତ ଦ୍ରବ୍ୟର ପରିପାକ ହୁଏ—3. Digestive organ; stomach.

**ପାକ ଯନ୍ତ୍ର ପ୍ରଦାହ**—ସଂ. ବି (ଆଧୁନିକ ଡାକ୍ତର ପରିଭାଷା)—ପାକସ୍ଥଳୀରେ ଜ୍ୱାଳା ଅନୁଭୂତ ହେବା ରୋଗ (ଜ୍ଞାନେନ୍ଦ୍ର) Gastrites.
Pāka jantra pradāha

**ପାକରଞ୍ଜନ**—ସଂ. ବି—ତେଜ ପତ୍ର (ଜ୍ଞାନେନ୍ଦ୍ର)—The leaf of Laurus Cassia.
Pākarañjana

**ପାକଡ଼**—ଦେ. ବି—ପାଖଡ଼ା ( ଦେଖ )
Pākaṛa Pākharḍā ( See )
(ପାକଡ଼ ଖଇର—ଅନ୍ୟରୂପ)

**ପାକଲ୍**—ପ୍ରାଦେ. (ସମ୍ବଲପୁର) ବିଣ—ରକ୍ତ ବର୍ଣ୍ଣ—Red.
Pākal

**ପାକଲ**—ସଂ. ବି. ( ପାକ+ଲ )—
Pākaḷa
୧ । କୁଡ଼ ନାମକ ସୁଗନ୍ଧ ଦ୍ରବ୍ୟ—1. Costus Speciosus.

| ୧ | ଇ | ଡ | ଋ,ୠ | ଃ | ଏ | ହ୍ରସ୍ୱ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | କ୍ଷ | ଇଯ୍ | ଉଃ | ଢ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଭ | ରୁ | ନ୍ | ଯ୍ୟେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଦ୍ୟ | ଇଅ | ଓ | ନ୍ |

୨ । ହସ୍ତୀର ଜ୍ୱର ରୋଗ—2. Fever of elephants.
୩ । ଅଗ୍ନି—3. Fire.
୪ । ବାୟୁ; ପବନ—4 Wind. (M. W)
୫ । ଅଗ୍ନି ବର୍ଣ୍ଣ ବା ଲୋହିତ ବର୍ଣ୍ଣ (ଜ୍ଞାନେନ୍ଦ୍ର)—
5. Fiery red colour.
୬ । ପିତ୍ତାଧିକ୍ୟ ଜନିତ ମାରାତ୍ମକ ସନ୍ନିପାତ ଜ୍ୱରବିଶେଷ (ହି.ଶ.)-
6. A kind of mortal fever.
ସଂ. ବିଣ—୧ । ଯାହା ପକ୍ୱ କରେ—
1 Ripening; bringing to ripeness
୨ । ଯାହା ବଥ ଆଦିକୁ ପଚାଇ ଦିଏ —
2. Causing suppuration of boils.
୩ । ଅତ୍ୟନ୍ତ କଳା—3. Quite black. (M. W)

**ପାକଳ** ଦେ. ବିଣ. (ସଂ. ପକ୍ୱ, ପକ୍କ)—
**पाकवाला** ୧ । ପକ୍ୱ—1. Ripe
୨ । (ସୂତା) ଉତ୍ତମ ରୂପେ ବଳା ହୋଇଥିବା—
2. Well twisted.
୩ । ସୁପରିଣତ (ଫଳ), ଉତ୍ତମ ରୂପେ ବଢ଼ି ଯାଇଥିବା କିନ୍ତୁ ପାଚି ନ ଥିବା; ପକ୍ୱ ପ୍ରାୟ—3. Matured but not yet ripe; half ripe.
[ ଦ୍ର—ପାଚି ଯାଇଥିବା କଦଳୀ ପାକଲ୍ଲା କଦଳୀ; ସୁପରିଣତ ହୋଇଥିବା ଅଥଚ ପାଚି ନ ଥିବା କଦଳୀ=ପାକଳ କଦଳୀ । ]
୪ । ଅତ୍ୟଧିକ ପରିଶ୍ରମ ବା ପ୍ରହାର ଆଦି ଯୋଗୁଁ ବ୍ୟଥା ଯୁକ୍ତ (ଶରୀର)—4 (body or limb) Become painful on account of excessive labour or beating.

**ପାକଳ କାନ୍ଧ**—ଦେ ବି. (ଗଉଡ଼ମାନଙ୍କ ଭାଷା)—
**Pākaḷa kāndha** ବହୁତ ସମୟ କାନ୍ଧରେ ସବାରି କମ୍ପା ଭାର ବୋହିବା ଦ୍ୱାରାରୁ ଦରଜ ହୋଇଥିବା ବା ଭରି ଯାଇଥିବା କାନ୍ଧ—The shoulder of a palki-bearer when it becomes acutely painful after carrying a heavy load for a long time.

**ପାକଲ୍ଲା**—ଗ୍ରା. ବିଣ. (ଶୂଦ୍ରମାନଙ୍କ ବ୍ୟବହୃତ ଭାଷା) (ସଂ. ପକ୍ୱ)—
**Pākaḷā** ୧ । ପାଚିଲା; ପକ୍ୱ (ଫଳ)—1. Ripe (fruit).
ପାକଲ୍ଲା, ପାକେଲା } ଅନ୍ୟରୂପ ୨ । (ସଂ. ପ୍ରକ୍ଷାଳିତ) ପାଣିରେ କଷ କରାଯାଇ ଥିବା ସୁରଞ୍ଜିତ (ଗାମୁଛା)—
पाका, पाकला 2. Tinted reddish yellow, being
पक्का, पकेत seasonably immersed in water.
( ଯଥା—ପାକଲ୍ଲା ଗାମୁଛା । )
୩ । ଶୁଭ୍ର—3. White; grey (hair).
( ଯଥା—ପାକଲ୍ଲା ବାଳ, ପାକଲ୍ଲା ଦାଢ଼ି । )
୪ । ବହୁଦିନ ବ୍ୟବହୃତ ହେବା ଯୋଗୁଁ ଓ ତେଲ ଆଦି ମରା ଯିବାରୁ ରକ୍ତାଭ ହୋଇଥିବା ( ବାଉଁଶ ବାଡ଼ି )—
4. (a bamboo stick) Which has assumed a reddish yellow tint by being used and handled for a very long time and smeared with oil.
( ଯଥା—ପାକଲ୍ଲା ବାଡ଼ି । )
୫ । ଘିଅ ବା ତେଲ ଆଦି ବହୁକାଳ ପୂରି ଯାଇଥିବାରୁ ଯେଉଁ ମାଟି ଘଡ଼ାର ରନ୍ଧ୍ରମାନ ତେଲ ବା ଘିଅ ପିଇଥାଏ, ସେ ଘଡ଼ା—
5. (earthen pot) The pores of which have become saturated with oil or ghee by constant use.
(ଯଥା—ପାକଲ୍ଲା ଘଡ଼ା)
୬ । ଯେଉଁ ବ୍ରଣ ଆଦିରେ ପୂଜ ହୋଇଅଛି—
6 Ripe (boil); suppurated.

**ପାକଲା(ଲେ)ଇବା**—ଦେ. କ୍ରି—(ସଂ. ପକ୍ୱ)—୧ । ପଚାଇବା—
**Pākaḷā(le)ibā** 1. To cause ripeness.
पाकाना **पकाना** ୨ । ସୂତା ଆଦିକୁ ବଳ ପାକଳ କରିବା—
पाकाना **पाक देना** 2. To twist yarn or fibres well.
फुसलाना ୩ । ଫୁସୁଲେଇବା—
**फुसलाना** 3 To wheedle; to cajole.
पाकलाना ୪ । (ସଂ. ପ୍ରକ୍ଷାଳନ) ଭକ୍ଷ୍ୟ ଦ୍ରବ୍ୟକୁ ଦାନ୍ତରେ ନ ଚୋବାଇ
**घुलघुलाना** ଏ କଲରୁ ସେ କଲକୁ ଜିଭ ଦ୍ୱାରା ଚଳାଇବା—
4. To cause food to slide from one side of the mouth to the other without chewing it.
୫ । (ସଂ. ପ୍ରୋଦ୍ଗାର) ପାଗୁଳି କରିବା, ରୋମନ୍ଥ କରିବା—
5. To ruminate.

**ପାକଲ୍ଲା ଗାମୁଛା**—ଗ୍ରା. (ଇତର)—( ପାକଲ୍ଲା+ଗାମୁଛା )—ପାଣିକଷ
**Pākaḷā gāmuchhā** ହୋଇ ନାଲି କରା ଯାଇଥିବା, ସୁରଞ୍ଜିତ ଗାମୁଛା—A napkin which has been tinged red by a special process of seasoning it in water.
[ଦ୍ର—ନୂଆ ଗାମୁଛାକୁ କେତେଦିନ ପାଣିକଷ କରି (ଅର୍ଥାତ୍ ପାଣିରେ ଓ ତୋରାଣିରେ ବତୁରାଇ ଓ ଶୁଖାଇ) ଓ ପାଗ ଯୋଗ ଅନୁସାରେ ତହିଁରେ ଯୋରିଷତେଲ, ପଇଡ଼ ପାଣି, ସପୁରି ପାଣି, କନ୍ଦ, ଛେନାପାଣି ଓ ଦୁଧ ଦେଇ ପୁଣି ଓ କଟକ ଜିଲ୍ଲାରେ ଲୋକେ ଗାମୁଛାକୁ ପଚାନ୍ତି । ଗାମୁଛା ପଚାଇବାକୁ ପ୍ରାୟ ଦୁଇ ମାସ ଲାଗେ । ତହିଁର ରଙ୍ଗ ରକ୍ତାଭ ହଳଦିଆ ହୁଏ ଓ ଗାମୁଛା ବହଳଆ ହୋଇଯାଏ । ଉକ୍ତ ଗାମୁଛାକୁ ଗ୍ରୀଷ୍ମଦିନେ ଓଦା କରି ଦେହରେ ପକାଇଲେ ଶୀତଳ ଲାଗେ ଓ ତହିଁରୁ ଗୋଟିଏ ସୁସ୍ନିଗ୍ଧ ଗନ୍ଧ ବାହାରେ; ସୁମସ୍ତଙ୍କ ହାତରେ ଗାମୁଛା ପାଚେ ନାହିଁ । ଗାମୁଛା ପଚାଇବା ପାଇଁ ବିଶେଷ ଯତ୍ନ ଓ ପାଗଯୋଗ ଅନୁସାରେ ଯୋରିଷତେଲ ଆଦି ଦେବାକୁ

ହୁଏ, ପାଗ ଯୋଗ ବଗିଡ଼ିଲେ ଗାମୁଛରେ ଧଳାଚଛ ଓ କଳାଚଛ (ଧଳା ଓ କଳା ଛିପି ଛିପି ଦାଗମାନ) ମାଉଯାଏ । ପାଚଲା ଗାମୁଛର ସଉକୀ ଲୋକମାନେ ଚନ୍ଦନ ଯାତ୍ରା ସମୟରେ ସନ୍ଧ୍ୟା ପରେ ଓ ଦପଦ୍ୱାରରେ ଦେହରେ ଏ ଗାମୁଛକୁ ଓଦା କରି ପକାନ୍ତି ।]

**ପାକଲ ଘଡ଼**—ଦେ. ବି—ତେଲ ବା ଘିଅରେ ସଡ଼ ହୋଇଥିବା ମାଟିଘଡ଼ି—
Pākalā ghardi An earthen pot the pores of which have become saturated with ghee or oil.
[ଦ୍ର—ଏପରି ଘଡ଼ିରେ ଘିଅ ବା ତେଲ ରଖିଲେ ସେ ଘଡ଼ି ଉକ୍ତ ଘିଅ ବା ତେଲକୁ ଶୋଷିନିଏ ନାହିଁ । ନୂଆ ଘଡ଼ିରେ ଘିଅ ବା ତେଲ ରଖିଲେ ଘଡ଼ିର ରନ୍ଧ୍ରମାନ କେତେକ ଘିଅ ବା ତେଲ ଶୋଷି ନିଏ । ଏଥିପାଇଁ ଲୋକେ ପାକଲା ଘଡ଼ି, ପାକଲା ମାଠିଆ ଆଦିକୁ ଆଦର କରନ୍ତି ।
ଏହିପରି ପାକଲା ମାଠିଆ, ପାକଲା ହାଣ୍ଡି, ପାକଲା ପଲମ ଆଦି ଶବ୍ଦ ବ୍ୟବହୃତ ହୁଏ ।]

**ପାକଲ ଦାଢ଼ି**—ଗ୍ରା. ବି—ଶୁଭ୍ର ଶ୍ମଶ୍ରୁ—
Pākalā dardhi White or grey beard.
पाकादाढ़ी पक्कीदाड़ी

**ପାକଲ ଦାଢ଼ିଆ**—ଗ୍ରା. ବିଣ.—ଶୁଭ୍ର ଶ୍ମଶ୍ରୁ ବିଶିଷ୍ଟ—
Pākalā dardhia Having grey beard
पाकादाढ़ीओयाला ଆଜ ଚ କେତେ ପାକଲା ଦାଢ଼ିଆ ବୁଢ଼ା ଆସିଛନ୍ତି।
पक्कीदाढ़ावाला ମଧୁସୂଦନ, ଛଣ୍ଣରାମଚରିତ।

**ପାକଲ ଦାନ୍ତ**—ଗ୍ରା. ବି. (ସଂ. ପକ୍ୱ+ଦନ୍ତ)—ପାନବୋଲ ବା Pākalā dānta ମେହେନ୍ଦିରେ ସୁରଞ୍ଜିତ ଦନ୍ତ—
पाकादाँत Teeth dyed red by chewing betel etc.
रंगलदाँत

**ପାକଲ ଦିହ**-ଗ୍ରା. ବି—ମାଡ଼ଆଦି ଯୋଗୁଁ ଦରଜ ହୋଇ ଯାଇଥିବା Pākalā diha ଶରୀର—Body which has become painful with severe beating.

**ପାକଲ ବାଡ଼ି**-ଦେ. ବି—ଯେଉଁ ବାଉଁଶ ବାଡ଼ି ବହୁଦିନ ବ୍ୟବହାର Pākalā bārdi କରାଯିବାରୁ ଓ ସମୟେ ସମୟେ ତହିଁରେ ତେଲ ବୋଳାଯିବାରୁ ରକ୍ତାଭ ହଳଦିଆ ଦେଖାଯାଉଥାଏ—
A bamboo walking stick which has assumed a yellowish tint by being handled for a long time and now and then besmeared with oil.

**ପାକଲ ବାଳ**—ଗ୍ରା ବି—(ସ.ପକ୍ୱ+ବାଳ)—ପକ୍ୱ କେଶ—
Pākalā bāla Grey hair
पाकाचुल पकाबाल (ପାକଲବାଳୁଆ—ବିଣ)

**ପାକଲ ବୁଢ଼ା**—ଗ୍ରା. ବି—(ସ.ପକ୍ୱ+ବୃଦ୍ଧ)—ଅତି ବୃଦ୍ଧ ଲୋକ—
Pākalā burdha Very old man.
पाकना बुड़ो [illegible] बुड्‌ढा

**ପାକଲି(ଳୀ)**—ସ. ବି—କର୍କଟଶୃଙ୍ଗୀ (ଦେଖ)—
Pākali(li) Kakarda srungi. (See)

**ପାକଲିଆ**—ଦେ. ବିଣ—(ସଂ. ପକ୍ୱ)—୧ । ପକ୍ୱ—
Pākalia पाकर्ना [illegible] पक्का Ripe.
୨ । ଈଷତ୍ ପକ୍ୱ; ଅର୍ଦ୍ଧପକ୍ୱ—2. Half ripe
୩ । ସୁପରିଣତ, ପକ୍ୱପ୍ରାୟ—3. Well matured.
୪ । ଉତ୍ତମରୂପେ ବଳା ହୋଇଥିବା (ସୁତା)—
4 Well twisted (yarn or thread).

**ପାକଶାଳା**—ସଂ. ବି—(୬ଷ୍ଠୀ ତତ୍, ପାକ+ଶାଳା)—ହାଣ୍ଡିଶାଳ, ରନ୍ଧନ Pākasālā ଶାଳା, ରୋଷଣା ଘର—Cook room; kitchen.
(ପାକାଗାର—ଅନ୍ୟରୂପ) [ଦ୍ର—ହିନ୍ଦୁ ଶାସ୍ତ୍ରମତରେ ବାସଗୃହର ପୂର୍ବ ଦକ୍ଷିଣ (ଅଗ୍ନି) କୋଣରେ ଗୃହସ୍ଥ ପାକଶାଳା ନିର୍ମାଣ କରିବେ ଓ ଧୂଆଁ ବାହାରିଯିବା ପାଇଁ ଘରର ଛାତରେ ଗୋଟିଏ ଛୋଟ ଝରକା କରିବେ—ହି. ଶ. ।]

**ପାକ ଶାସନ**—ସ ବି. (ଉପପଦ ତତ୍, ପାକ=ରାକ୍ଷସବିଶେଷ+ଶାସନ)—
Pāka sāsana ଇନ୍ଦ୍ର—Indra.
ପାକଦ୍ୱିଟ୍, ପାକଦ୍ୱିଷ, ପାକହନ୍ତା
ପାକରିପୁ, ପାକାରି, ପାକନିସୂଦନ } ଅନ୍ୟରୂପ

**ପାକଶାସନି**—ସ. ବି.—(ପାକଶାସନ+ଅପତ୍ୟାର୍ଥେ. ଇ)—ଇନ୍ଦ୍ରଙ୍କ ପୁତ୍ର Pākasāsani ଜୟନ୍ତ—The name of Indra's son.

**ପାକ ଶାସ୍ତ୍ର**—ସ. ବି.—ରନ୍ଧନ କୌଶଳ ବା କଳା ରୂପ ବିଦ୍ୟା—
Pāka sāstra Culinary art; the science or art of cooking. (M.W)
(ପାକବିଦ୍ୟା—ଅନ୍ୟରୂପ)

**ପାକ ଶୁକ୍ଳ**—ସ. ବି.—ଚକ୍ ଖଡ଼ି—
Pāka sukla Chalk.(M.W.)

**ପାକସ୍ଥଳୀ**—ସ. ବି.—(୬ଷ୍ଠୀ ତତ୍, ପାକ+ସ୍ଥଳୀ)—ପୁଟୀ, ପେଟ Pākasthali ମଧ୍ୟରେ ଯେଉଁ ମୁଣାରେ ଖାଦ୍ୟ ଜୀର୍ଣ୍ଣ ହେବା (ପାକାଶୟ—ଅନ୍ୟରୂପ) ସମୟରେ ରହେ, ପକ୍ୱାଶୟ—
Stomach; digestive organ.

**ପାକସ୍ଥାନ**—ସଂ. ବି.-(୬ଷ୍ଠୀ ତତ୍; ପାକ+ସ୍ଥାନ)—୧ । ପାକଶାଳା; Pāka sthāna ରୁଷେଇ ଘର—1. Cook room.
୨ । କୁମ୍ଭାରର ଭାଟି—2. Potter's kiln.

**ପାକସ୍ଥାଲୀ**—ସଂ ବି.—(୬ଷ୍ଠୀ ତତ୍, ପାକ+ସ୍ଥାଲୀ)—ପାଗ ହାଣ୍ଡି; Pāka sthāli ରାନ୍ଧିବା ହାଣ୍ଡି—Cooking pot.

**ପାକ ହାଣ୍ଡି**—ଦେ ବି.—(ସଂ. ପାକ+ହାଣ୍ଡି)—ପାଗ ହାଣ୍ଡି, ରୋଷାଇ-
Pāka handi ହାଣ୍ଡି—Cooking pot.
पाकेर हाँड़ि ନବଘନ ବଧ ପାକ ହାଣ୍ଡି ସେ କରିବ ।
पाककीहाँड़ी तौला ପ୍ରାଚୀ. ଶ୍ରୀ ଗୁଣ୍ଡିଚକ୍ର ଗୀତା

**ପାକାତିସାର**—ସଂ. ବି.—ଗ୍ରହଣୀ; ପୁରାତନ ନାଳରକ୍ତ ଝାଡ଼ା—
Pākātisāra Chronic dysentery (M W)

**ପାକାମ୍ବର**—ଦେ. ବି.—(ସଂ. ପକ୍ୱ=ସୁରଞ୍ଜିତ+ଅମ୍ବର)-ଗେରୁଆ Pākāmbara ଲୁଗା—A cloth dyed with red ochre.

**ପାକାମ୍ବରୀ**—ଦେ. ବିଣ.—(ସଂ. ପକ୍ୱ+ଅମ୍ବର)—ଗେରୁଆ ଲୁଗା ପିନ୍ଧି-
Pākāmbari ଥିବା—Wearing cloth dyed red

**ପାକାସ୍ପର୍ଶ**—ଦେ. ବି. (ସଂ. ପାକାସ୍ପୃଶ୍ୟା)—ସ୍ତ୍ରୀର ରଜଃସ୍ରାବ—
Pākāsparsa Menstruation; monthly course.

ପାକାସ୍ପରଶ
ପାକାସ୍ପରଶ } ଅନ୍ୟରୂପ ଦେ. ବିଣ.—ପାକାସ୍ପୃଶ୍ୟା (ଦେଖ)
ପାକାସ୍ପର୍ଶି Pākāsprusya (See).

— ସଂ. ବଣ. ସ୍ତ୍ରୀ ( ବହୁବ୍ରୀହି, ପାକ + ଅସ୍ପୃଶ୍ୟ + ଅ,
Pākāsprusyā ପରନିପାତ, ପାକ ଅଟେ ଅସ୍ପୃଶ୍ୟ ଯାହାର) —
(ପାକାସ୍ପର୍ଶ୍ୟା —ଅନ୍ୟରୂପ) ରଜସ୍ୱଳା; ଋତୁମତୀ —
ପାକାସ୍ପର୍ଶ Menstruated; (a woman)
ପାକାସ୍ପର୍ଶ(ଶା) } ଦେଶଜରୂପ in her menses.
କାସ୍ପରଶ(ଶା)

[ଦ୍ର—ପାକାସ୍ପୃଶ୍ୟା ସଂସ୍କୃତ ଶବ୍ଦକୋଷରେ ମିଳେ ନାହିଁ । ସମ୍ଭବତଃ ପଣ୍ଡିତମାନଙ୍କଦ୍ୱାରା ଏ ଶବ୍ଦ ପରେ ଚଳିଅଛି ।]

**କଥା** —ଗ୍ରା. ବଣ.— ପାଅକଥା (ଦେଖ)
Pākıā Pā-ākıā (See)

**ପାକିଂ**—ବୈଦେ ବ. (ଇଂ. ପାକଙ୍ଗ୍)—କୌଣସି ଦ୍ରବ୍ୟ ଦୂର ସ୍ଥାନକୁ
Pākim ପଠାଇବା ପାଇଁ ପୋଟଳା ବା ପୁଡ଼ା ବାନ୍ଧିବା—
ପେକିଂ **पकिङ्ग्** (ପାକଙ୍ଗ୍ — ଅନ୍ୟରୂପ) Packing.

**ପାକିଂ ଚାର୍ଜ**—ବୈଦେ, ବ (ଇଂ)—କୌଣସି ଦ୍ରବ୍ୟ ପାକିଂ କରିବାର
Pākim chārj ବ୍ୟୟ ବା ପାଉଣା—Packing charge.
ପେକିଂ ଚାର୍ଜ **पैकिङ्ग चारज** (ପାକଙ୍ଗ୍ ଚର୍ଜ—ଅନ୍ୟରୂପ)

**ପାକିଟ୍(ଟି)** (ଇତ୍ୟାଦି)-ଗ୍ରା. ବ.—୧ । (ଇଂ.ପକେଟ୍) ପକେଟ ଇତ୍ୟାଦି
Pākıt(tı) (etc) (ଦେଖ)—Paket etc (See)
ପକେଟ **जेब, थोकड़ी, पाकिट**
ଗୁ. ଖିସ୍ସା, ପାକଟ, ଗଜବୁ

**ପାକିଟ୍‌ମାର(ରୁ)**—ଗ୍ରା.ବ.—ଅନ୍ୟ ଲୋକର ପିନ୍ଧିବା କୁର୍ତ୍ତାର ପକେଟକୁ
Pākıt-mār(ru) କାଟି ବା ପକେଟରେ ହାତ ପୂରାଇ ପକେଟରେ
ପକେଟମାର ଥିବା ଜିନଷ ଚୋରି କରି ନେବା ଚୋର—
**जेबकट, पाकिटमार** Pick-pocket.
ଗୁ. ଗଜବାକାତରୁ, ଖିସାକାତରୁ

**ପାକିବା**—ଦେ, କ୍ରି —(ସଂ. ପକ୍ୱ)—ପାଚିବା—
Pākıbā To ripen.

**ପାକିମ**—ସଂ. ବଣ.—(ପାକ + ଇମ)—୧ । ରନ୍ଧା ଯାଇଥିବା—
Pākima 1. Cooked (M. W.)
୨ । ପୋଡ଼ା ଯାଇଥିବା (ମାଟି ପାତ୍ର)—
2. Burnt (earthenware). (M.W.)
୩ । ପାଚିଲା—3. Ripened; ripe.
୪ । ସୁପରିପୁଷ୍ଟ—4. Matured.(M. W.)
୫ । ଅଗ୍ନି ବା ଖରା ଉତ୍ତାପରେ ପ୍ରସ୍ତୁତ (ଲବଣ)—
5. (salt) Obtained by cooking or evaporation. (M.W.)
୬ । ତାତି କରି ନାଲି ହୋଇଥିବା (ଧାତୁ)—
6. Red hot (metal). (M. W.)

**ପାକିଲା**—ଗ୍ରା. ବ.—ପାକଲା (ଦେଖ)—
Pākilā Pākalā (See)

**ପାକୁ**—ସଂ. ବ. (ପାକ + ଉ)—ପାଚକ—
Pāku Cook (Apte).

**ପାକୁଆ**—ଦେ. ବଣ. ପୁଂ.—(ସଂ. ଫଲକ)—୧ । ଦନ୍ତହୀନ—
Pākuā 1. Toothless.
ପାକେଇ } ସ୍ତ୍ରୀ ମଂତ୍ରୀ ବଡ଼ା ବଳଆ ପାକୁଆ ପାଟିରେ ଆଁ କରି, ଆଖି ବୁଜି × × ବାଉଳ ଅଧର ବସି ପଳାଉ । — ଫକୀରମୋହନ. ଛମଣ ଆଠଗୁଣ୍ଠ ।
ପାକୋଇ

ଫୋକଲା ୨ । ଜୀର୍ଣ୍ଣ—2 Worn
**फोकला, फोपला** ୩ । ଦନ୍ତୁର (ହତିଆର) —
3. Blunt (weapon).
ଯଥା—ପାକୁଆ କାଙ୍କ, ପାକୁଆ କଟୁରି ।

**ପାକୁଆ ପାଟି**—ଦେ. ବ—ଦନ୍ତହୀନ ମୁଖ—
Pākuā pāti Toothless mouth
**ফোকলা মুখ; फोपला मुहँ**

ପାକୁଆ ପାଟେଇ } ସ୍ତ୍ରୀ. ସ. ବଣ. ପୁଂ—ଦନ୍ତହୀନ (ବ୍ୟକ୍ତି)—
ପାକୋଇ ପାଟି Toothless (person).
(ପାକୁଆ ପାଟିଆ—ଅନ୍ୟରୂପ)

**ପାକୁକ**—ସ. ବ. ପୁଂ. (ପାକ + ଉକ)—ପାଚକ, ରୁଷେଇଆ —
Pākuka Cook.

**ପାକୁଡ଼**—ଦେ. ବ. ( ସ. ପର୍କଟୀ, ପ୍ରା. ପକ୍କଡ଼ୀ )—
Pākurda ଜରି ଗଛ ( ଦେଖ )
ପାକୁଡ **पाकड़, पाखड़** Jari gachha (See)
ପ୍ରାଦେ. ( ସିଂହଭୂମ ) ବ—
ଛୋଟ ଛୋଟ ପତ୍ରବିଶିଷ୍ଟ ଅଶ୍ୱତ୍ଥ ଗଛ—
A kind of Ficus Religiosa; small-leaved fig tree.

**ପାକୁଡ଼ି**—ପ୍ରାଦେ. (ଗଞ୍ଜାମ) ବ. (ସ. ପକ୍ୱବଟକ; ଭୁଲ ହି. ପକୌଡ଼ୀ)—
Pākurdi ବଟା ବିରିରେ ପିଆଜ ଓ ଲଙ୍କାମରିଚ ମିଶାଇ ଘିଅ
(ପାକୋଡ଼ି—ଅନ୍ୟରୂପ) ବା ତେଲରେ ଛାଣିବା ଏକପ୍ରକାର ପିଠା—
A kind of cake fried in ghee or oil.

**ପାକୁ ପାକୁ**—ଦେ. ଅ. ( ଧ୍ୱନ୍ୟନୁକରଣ )—
Pāku pāku ୧ । ଉପର୍ଯ୍ୟୁପରି ପାଟିକୁ ଆଁ କରି ପୁଣି ବନ୍ଦ
ପକପକ **फकफक** କରିବା, ଠାକୁ ଠାକୁ—
ଗୁ. ଉଚକା 1. Alternately opening & shutting the mouth.
( ଯଥା—ମାଛଯାକ ଶୁଖିଲାରେ ପଡ଼ି ପାଟି ପାକୁ ପାକୁ କରୁ ଅଛନ୍ତି । )
୨ । ମୁମୂର୍ଷୁ ବ୍ୟକ୍ତିର କ୍ଷୀଣ ନିଶ୍ୱାସ ସହ ପାଟିକୁ ମେଲିବା ଓ ବନ୍ଦ କରିବା—2. Feeble gaspings of a dying man accompanied with alternate opening and shutting of the lips.
( ଯଥା—ବୁଢ଼ା ଆସି ପାକୁ ପାକୁ ହେଲାଣି । )
୩ । ସମ୍ମୁଖରେ ଉପସ୍ଥିତ ଖାଦ୍ୟର ଲାଳସାରୁ ପାଟିକୁ ଉପର୍ଯ୍ୟୁପରି ମେଲିବା ଓ ବନ୍ଦ କରିବା; ଠାକୁ ଠାକୁ—
3. Repeated opening and shutting of the mouth in eager hankering after some dainty food when it is before one's eyes.
( ଯଥା—ବାଘ ଆଧାର ଦେଖି ପାଟିକୁ ପାକୁ ପାକୁ କରୁଛି ।

ପାକୁଳା(ଳି)—ଦେ. ବି. ( ସଂ. ପ୍ରୋଦ୍ଗାର )—
Pākulā(li) ପାଗୁଳ, ରୋମନ୍ଥ, ଚର୍ବିତଚର୍ବଣ—
पाईज, जाबर Chewing the cud; ruminating.
पागुर, जुगाली ମ. ରୋଁଥ୍ ଗୁ. ବାଗୋଲୀ

ପାକୁଳି କରିବା—ଦେ. କ୍ରି. ( ସଂ. ପ୍ରୋଦ୍ଗାର )—
Pākuli kariba ୧ । ରୋମନ୍ଥ କରିବା—
पाईजकाटा 1. To ruminate; to chew the cud.
पगुराना ୨ । ପାକଲେଇବା, ଦନ୍ତହୀନ ବ୍ୟକ୍ତି ଖାଦ୍ୟ
ଗୁ ବାଗୋଳବୁଁ ଦ୍ରବ୍ୟକୁ ପାଟିର ଏ ପାଖ ସେପାଖ ଗଡାଇବା—
ପାକୁଳାଇବା, ପାକୁଲେଇବା } ଅନ୍ୟରୂପ 2. To roll the food inside the mouth from one side
पागलान to the other without chewing.
पुलपुलाना ୨ । ନ ଚୋବାଇ ଗିଳିବା—2 To swallow a
আডে গেলা निगरना thing without chewing.

ପାକେଟ୍—ଦେ. ବି. ( ଇଂ. ପକେଟ୍ )—
Pāket ୧ । ପକେଟ୍—1. Pocket
পাকেট ୨ । (ଇଂ ପାକେଟ୍) ପୁଳିକା, ପାର୍ସେଲ୍; ଏକତ୍ର ବନ୍ଧା
पाकिट ହୋଇ ଗୋଟିଏ ଆବରଣରେ ବନ୍ଦ କରି ଯାଇଥିବା
ଗୁଡିଏ ବସ୍ତୁର ପୁଡ଼ା—2 Packet

ପାକେଟି—ଗ୍ରା. ବୈଦେ. ବି. (ଇଂ. ପକେଟ୍)—ପକେଟ୍—
Pāketi Pocket

ପାକେପା—ଦେ. ବଣ—୧ । ପାଆକଅ; ଏକ ପାଆ ପରିମିତ, ଏକପାଆ
Pākepā ପରିମାଣରେ ନିର୍ମିତ—1. Of ¼ Seer in weight.
ପାଅକେ ପା, ପାଅକେ ପାଅ } ଅନ୍ୟରୂପ
୨ । ଯହିଁର ପ୍ରତ୍ୟେକର ପରିମାଣ ଏକ ପାଆ—
2. Weighing one fourth of a Seer each.

ପାକେପାଣ୍—ଗ୍ରା. ବଣ—ପାକେପା ( ଦେଖ )
Pākepāṇ Pākepā ( See )

ଝଲକ ଲଡ଼ ଟାକେ ପାଣ୍
ଓଥ ବୋଇଲ କଇଞ୍ଚ ଅଣ୍
ମାଅ ବୋଇଲ କଇଞ୍ଚ କାହିଁ
ଝଲକ ଲଡ଼ ପାଇଲୁ କାହିଁ ? ଶିଶୁ ଗୀତ ।

ପାକେଲେଇବା—ଦେ. କ୍ରି—ପାକଲାଇବା ( ଦେଖ )
Pākeleibā Pākalāibā ( See )

ପାକ୍ୟ—ସଂ. ବଣ. ( ପଚ୍ ଧାତୁ + କର୍ମ. ଯ )—
Pākya ୧ । ରନ୍ଧାଯିବାର ଉପଯୁକ୍ତ—
1. Fit to be cooked.
୨ । ଯାହାକୁ ପଚାଇ ହେଉଥିବ—2. To be ripened.
ସଂ. ବି—ସୋରିସ୍—Saltpetre (Apte).

ପାକ୍ଷ—ସଂ. ବଣ. (ପକ୍ଷ + ଅ)—ପାକ୍ଷିକ ୧, ୬ ( ଦେଖ )
Pāksha Pākshika 1, 6 ( See )

ପାକ୍ଷପାତିକ—ସଂ. ବଣ. ପୁଂ. ( ପକ୍ଷପାତ + ଇକ )—
Pākshapātika ଯେ ପକ୍ଷପାତ କରେ;ଯେ ପକ୍ଷ ଅବଲମ୍ବନ କରେ—
(ପାକ୍ଷପାତିକା—ସ୍ତ୍ରୀ) Partial (Apte).

ପାକ୍ଷିକ—ସଂ. ବଣ. ( ପକ୍ଷ + ସମ୍ବନ୍ଧାର୍ଥେ. ଇକ)—
Pākshika ୧ । ଏକ ପକ୍ଷ (୧୫ ଦିନ) ସମ୍ବନ୍ଧୀୟ—
1 Relating to a fortnight
୨ । ପକ୍ଷପାତି—2 Partial; favouring a party or faction.
୩ । ପକ୍ଷୀ ସମ୍ବନ୍ଧୀୟ—3 Relating to a bird.
୪ । ପକ୍ଷୀର ଡେଣା ସମ୍ବନ୍ଧୀୟ—
4. Relating to the wing of a bird.
୫ । ଯାହା ପକ୍ଷର ଦିନେ ଥରେ ଘଟେ ବା କରାଯାଏ—
5. Happening or done once in a fortnight; bi-weekly.
୬ । କୌଣସି ପକ୍ଷ (ଦଳ) ସମ୍ବନ୍ଧୀୟ—
6 Relating to a party or faction.
୭ । ଯୁକ୍ତିର ପକ୍ଷ ସମ୍ବନ୍ଧୀୟ—
7. Relating to the sides of an argument
୮ । ଯେଉଁ ନିୟମ ପାଳନ କରିବା ଇଚ୍ଛାଧୀନ—
8. Optional; subject to an alternative. (Apte)
ସଂ. ବି—୧ । (ପକ୍ଷିନ୍ + ପ୍ରହରଣାର୍ଥେ. ଇକ)—ଚଢ଼େଇଆ, ଚଢ଼େଇମାରୁ—1 A bird catcher; fowler
୨ । (ପକ୍ଷ + ଇକ) ଇଚ୍ଛାନୁସାରେ କରାଯିବା ଅନ୍ୟ ନିୟମ, ଉପାୟାନ୍ତର—1 An alternative. (Apte)

ପାକ୍ଷିକ ଜର—ସଂ. ବି—( କର୍ମଧା, ପାକ୍ଷିକ + ଜ୍ୱର )—ପକ୍ଷର ଦିନ
Pākshika jwara ଅନ୍ତରରେ ହେଉଥିବା ଜର—Fever attacking once in a fortnight; fever recurring after 15 days.

ପାକ୍ଷିକ ପତ୍ର—ସ. ବି—(କର୍ମଧା, ପାକ୍ଷିକ + ପତ୍ର)—ପକ୍ଷର ଦିନେ ଥରେ
Pākshika patra ପ୍ରକାଶିତ ହେବା କାଗଜ ବା ସମ୍ବାଦ ପତ୍ର—Bi-weekly paper.

ପାକ୍ଷିକ ଶ୍ରାଦ୍ଧ—ସଂ. ବି—( କର୍ମଧା, ପାକ୍ଷିକ + ଶ୍ରାଦ୍ଧ)—ପକ୍ଷର ଦିନେ
Pākshika śrāddha କରାଯିବା ଶ୍ରାଦ୍ଧ ବିଶେଷ—A Śrāddha performed once in a fortnight.

ପାଖ—ଦେ. ବି—(ସଂ. ପାର୍ଶ୍ୱ)—୧ । ପାର୍ଶ୍ୱ—
Pākha 1 Side.
୨ । ନୈକଟ୍ୟ, ସାମୀପ୍ୟ—
2. Nearness; vicinity; proximity.
পাশ ୩ । ଦେହର ପାର୍ଶ୍ୱ; କଡ଼—
बगल, पास 3. Side of the body; flank.
ଗୁ. ପାସ ୪ । କୌଣସି ବସ୍ତୁ ବା ବ୍ୟକ୍ତି ବା ସ୍ଥାନକୁ ଲାଗିଥିବା ଅବସ୍ଥା—4. The state of adjoining a thing, person or place.
୫ । ଦିଗ, ତରଫ; ଆଡ଼—
5. Quarter; direction.
୬ । ବସ୍ତୁର ବା ସ୍ଥାନର କୌଣସି ଦିଗର ସୀମା—
6. The boundary of a thing or place on one side.

୭ । ସନ୍ନିଧି; ସାନ୍ନିଧ୍ୟ, ସାମ୍ମୁଖ୍ୟ—
7 One's presence; front; company.
୮ । ବହୁତଳ ବିଶିଷ୍ଟ ବସ୍ତୁର ଗୋଟିଏ ତଳ—8. One surface of a thing having more than one surface.
୯ । ଅଧିକାର, ରକ୍ଷଣାବେକ୍ଷଣ—
9. Power of disposal, custody, control.
(ଯଥା—ବର୍ତ୍ତମାନ ମୋ ପାଖରେ କୌଣସି ଟଙ୍କା ନାହିଁ)
୧୦ । ସାହଚର୍ଯ୍ୟ, ଅନୁଚର୍ଯ୍ୟ—
10 Companionship; attendance.
୧୧ । (ସଂ. ପକ୍ଷ)—ପକ୍ଷ; ଦଳ—11 Party; side.
ଦେ. ବିଣ—୧ । ପାର୍ଶ୍ୱବର୍ତ୍ତୀ—
1. Situate or lying on the side of;
୨ । ନିକଟବର୍ତ୍ତୀ—2. Near; at hand.
୩ । ସଂଲଗ୍ନ; ଲଗାଲଗି—3. Adjoining; adjacent.
୪ । ଅଳ୍ପ ଦୂରରେ ଅବସ୍ଥିତ—
4. Situated at a small distance.
୫ । ସନ୍ନିଧିରେ ବା ସମ୍ମୁଖରେ ଅବସ୍ଥିତ—
5. Situate or present in front or before.
୬ । ଉତ୍ତରବର୍ତ୍ତୀ—
6. Next; immediately following.
୭ । ନିକଟତର—7. Nearer.
(ଯଥା—କଟକଠାରୁ ପୁରୀ ଅପେକ୍ଷା ଭୁବନେଶ୍ୱର ପାଖ ଅଟେ)
୮ । ସର୍ବଦା ସହଚର ବା ଅନୁଚରରୂପେ ସଙ୍ଗେ ରହୁଥିବା (ଲୋକ)—8 Attending on a person.
(ଯଥା—ପାଖ ଲୋକ)

**ପାଖଆଖ**—ଦେ. ବି—(ଅର୍ଥହୀନ ୨ୟ ସହଚର ଶବ୍ଦ)—୧ । ପାଖ—
Pākha ākha — 1. Side.
(ଆଖ ପାଖ—ଅନ୍ୟରୂପ) ୨ । ନିକଟବର୍ତ୍ତୀ ସ୍ଥାନ—
2. Adjacent place.
୩ । ପାର୍ଶ୍ୱବର୍ତ୍ତୀ ଓ ସମ୍ମୁଖସ୍ଥ ସ୍ଥାନମାନ—
3. The places near and in front of a person.
୪ । କୌଣସି ସ୍ଥାନର ଚାରିଆଡ଼େ ନିକଟବର୍ତ୍ତୀ ସ୍ଥାନମାନ—
4. Places surrounding a locality; surroundings.
आसपाश ଦେ. ବିଣ—୧ । ନିକଟବର୍ତ୍ତୀ—
आसपास ଗୁ. ଆସ ପାସ — 1. Near.
୨ । ପରସ୍ପରକୁ ଲଗାଲଗି—
2. Adjoining each other
୩ । ଅଳ୍ପ ଦୂରରେ ଅବସ୍ଥିତ—3. Situated at a small distance; not far off; near by.
ଦେ. ଅ—ପ୍ରାୟ—Approximately.
(ଯଥା—ଏ ବିବାହରେ ଶହେଟଙ୍କାର ଆଖ ପାଖ ଖରଚ ଲାଗିଲା ।)

**ପାଖକୁ**—ଦେ. ଅ—୧ । ନିକଟକୁ—
Pākshaku — 1. Near; to the side of.
(ପାଖିକୁ, ପାଖ—ଅନ୍ୟରୂପ) ୨ । ଛାମୁକୁ, ସନ୍ନିଧିକୁ, ଠାକୁ—
पाशे पास 2 To; to the presence of.
ଗୁ. ପାସ ୩ । ସଂଲଗ୍ନ ହୋଇ, ଲାଗିକରି—3. Adjoining.
୪ । ଉତ୍ତରବର୍ତ୍ତୀ—
4 Next to; immediately following.
୫ । କାର୍ଯ୍ୟର ସହାୟକ ବା ସହକର୍ମୀ ରୂପେ, ଆବଶ୍ୟକ ବେଳେ ସହାୟ ହେବା ପାଇଁ—As a help when required.
(ଯଥା—ଗୃହିଣୀ ପାଖକୁ ଜଣେ ଟହଲିଆ ନ ଥିଲେ ଭାରି ଅସୁବିଧା ପଡ଼େ; ମୋ ପାଖକୁ ତିନି ଜଣ ନ ହେଲେ ଭାଷାକୋଷର ସମ୍ମାର୍ଜନ କର୍ମ ଚଳିବା ଦୁର୍ଘଟ ।)
[ ଦ୍ର—ବାଲେଶ୍ୱର ଅଞ୍ଚଳରେ 'ଘରପାଖକୁ' ଶବ୍ଦ 'ଘରକୁ' ଏହି ଅର୍ଥରେ ବ୍ୟବହୃତ ହୁଏ । ଯଥା—ମୁଁ ଘର ପାଖକୁ ଯାଉଛି । ]

**ପାଖକେ**—ଦେ. ଅ—୧ । ଏକ ପାର୍ଶ୍ୱରେ—
Pākhake — 1. On one side.
एक दिगे ୨ । ଗୋଟିଏ ସୀମାରେ—2. On one boundary.
**एक तरफमे** ୩ । ଗୋଟିଏ ପକ୍ଷରେ—3. In one party; on one side.

**ପାଖଡ଼ା**—ଦେ ବି ( ସଂ. ନାମ, ଶ୍ୱେତ ଖଦିର )—ପାଖଡ଼ା ଖଇର, ଏକ ପ୍ରକାର ଫିକା ଓ ଈଷତ୍ କଷା ଖଇର—Pale catechu; gambier.
Pākharda
[ପାଖଡ଼ା(ରା)ଖଇର—ଅନ୍ୟରୂପ]
ସଂ. ନାମ—ଶ୍ୱେତ ଖଦିର,
ଶ୍ୱେତସାର, କଦର,
ସୋମବଲ୍କଲ
पापड़ी खयर, पाण्ढाखयर
**पाखरा खैर, सफेदखैर**
ଗୁ. କେଭ଼ଉଆ କାଥା,
ଗୋରଡ଼
ମ. ପାଂଢରି କୈର
ତେ ଚଦାସୁ ଚେଲଚଂଡ଼ୁ
[ଦ୍ର—ଏହା ଆଚ୍ଛୁକାଦି ବର୍ଗର କ୍ଷୁପବିଶେଷରୁ ପ୍ରାପ୍ତ ଖଇର । ମାଲକ୍କା, ସିଙ୍ଗାପୁରଆଦି ଅଞ୍ଚଳରେ ଜାତ ବୃକ୍ଷର ଅଠାରୁ ପାଖଡ଼ା ଖଇର ହୁଏ । ଏ ଖଇରର ବର୍ଣ୍ଣ ପାଣ୍ଡୁର ଓ ଏହା କଳା ଖଇର ଅପେକ୍ଷା ଅଳ୍ପ କଷା । ଏହା ବର୍ଣ୍ଣପ୍ରସାଦକ ଓ ମୁଖରୋଗ, ରକ୍ତ ଦୋଷ ଓ କଫନାଶକ ।

**ପାଖଣ୍ଡ**—ଦେ. ବିଣ—୧ । ଏକ ପାଆ ପରିମିତ—
Pākhanda 1. Measuring one fourth of a Seer.
୨ । (ସଂ. ପାଷଣ୍ଡ)—ଈଶ୍ୱରବିଶ୍ୱାସହୀନ—2 Heretical.
ମନ୍ଦବୁଦ୍ଧି ପାଖଣ୍ଡ ଜୀବ ଏହି ବଡ଼ ହୃଦ—ପ୍ରାଚୀ. ଶ୍ରୀ ବୃନ୍ଦାବନଗୀତା
୩ । (ସଂ. ପାଷଣ୍ଡ) ପାଖଣ୍ଡି ( ଦେଖ )—
3. Pākhandi ( See )
ସଂ. ବି—ବେଦାଦି ହିନ୍ଦୁଧର୍ମ ଶାସ୍ତ୍ରରେ ଯାହାର ବିଶ୍ୱାସ ନାହିଁ—
A heretic. (Apte).

**ପାଖ ପଡ଼ିଶା**—ଦେ. ବି (ସଂ. ପାର୍ଶ୍ୱ ଓ ପ୍ରତିବେଶୀ )—୧ । ନିକଟବର୍ତ୍ତୀ ପ୍ରତିବାସୀ—1. Near neighbour.
Pākha pardisā
ପାଖ ପଡ଼ୋଶ, ପାଖପଡ଼ା, ପାଖ ପଡ଼ୋଶୀ
ପାଖ ପଡ଼ିଶା ସେ ହେବେ କାହିଁ ହେଲ
ବେଳ ମଧ୍ୟ ଅଲସଳ ।
—ବିଧାକାଥ, କେଦାରଗୌରୀ ।

ପାଶପଡୋଶ ୨ । ଗୃହର ଚତୁର୍ଦ୍ଦିଗସ୍ଥ ନିକଟବର୍ତ୍ତୀ ସ୍ଥାନମାନ—
पासपड़ोस 2. Places in the neighbourhood of
ଗୁ. ଆଡ଼ୋଶୀ ପଡ଼ୋଶୀ a person's house.
ଦେ. ବିଣ—ଗୃହର ନିକଟରେ ବାସ କରୁଥିବା; ସାଇପଡ଼ିଶା—
(a person) Living in the neighbourhood of a person's house.

**ପାଖ ପାଖ**—ଦେ. ବିଣ—ପରସ୍ପରର ନିକଟବର୍ତ୍ତୀ, ଲଗାଲଗି—
Pākha pākha 'Adjoining each other.
ପାଶା ପାଶି पास पास

**ପାଖ ପୁଖା**—ଦେ ବି ଓ ବିଣ ଓ ଅ(ସହଚର, ପୁନରୁଚ୍ଚାରିତ ଧ୍ୱନ୍ୟନୁକାରୀ
Pākha pukhā ନିରର୍ଥକ; ୨ୟ ଶବ୍ଦ)—ପାଖଆଖ (ଦେଖ)
Pākha ākha (See)
(ଯଥା—ପୁସ୍ତି ତ ମୋ ଘରର ପାଖପୁଖା ନୁହେଁ ଯେ, ମୁଁ ଦଉଡ଼ି-
ଯାଇ ତାଙ୍କୁ ଦେଖି ଆସନ୍ତି ।)

**ପାଖ ମାଡ଼ିବା**—ଦେ. କ୍ରି (କୌଣସି ବ୍ୟକ୍ତିର ବା ସ୍ଥାନର) ପାଖକୁ ବା
Pākha mārdibā ନିକଟକୁ ଆସିବା—To come near (a
ପାଶେଘେଁଷା पासफटकना place or person).

**ପାଖର୍‌**—ଦେ. ବିଣ. ପୁଂ ଓ ସ୍ତ୍ରୀ (ସଂ. ପ୍ରବର; ଭୁଲ. ସଂ. ପରାକ୍ରମୀ)—
Pākharā ୧ । ଦୁଷ୍ଟ; ପାଜି—1. Wicked.
ଦୁଷ୍ଟ दुष्ट; नटखट ୨ । ଅସ୍ଥିର—2. Restless.
[ପାଖରପଣ, ପାଖରପଣିଆ (ଆଁ)—ବିଶେଷ୍ୟ] ୩ । ନିର୍ଲଜ୍ଜ—
3. Immodest; shameless (Revd. Grundy).
ଦେ. ବି—ପାଖଡ଼ା (ଦେଖ)—Pākhardā (See)
ପ୍ରାଦେ (ପୁରୀ) ବି—ଚଷାଙ୍କଠାରୁ ନିମ୍ନତର ଶୂଦ୍ରଜାତିବିଶେଷ—
A class of Sūdras lower than the Chashās.

**ପାଖର ଖଇର**—ଦେ. ବି—ପାଖଡ଼ା (ଦେଖ)
Pākharā khaira Pākhardā (See).

**ପାଖରୁ**—ଦେ. ଅ (ପାଖ ଶବ୍ଦରେ ୫ମୀ ବିଭକ୍ତି ସୂଚକ 'ରୁ' ଯୁକ୍ତ ହୋଇ
Pākharu ଅବ୍ୟୟରୂପେ ବ୍ୟବହୃତ)—୧ । ନିକଟରୁ—
(ପାଖୁରୁ, ପାଖୁଁ—ଅନ୍ୟରୂପ) 1. From.
ପାଶଥେକେ ୨ । ନିକଟବର୍ତ୍ତୀ ସ୍ଥାନରୁ—
पाससे 2. From an adjacent place.
୩ । ଅମୁକର ଅଧିକାରରୁ ବା ଦଖଲରୁ—
3. From the control or possession of.
୪ । (ଅମୁକର) ଅଭିଭାବକତ୍ୱ ବା ଶିକ୍ଷକତ୍ୱର ଅଧୀନତାରୁ—
4. From the guardianship or tutorship of (a person).
(ଯଥା—ମୁଁ ପିଲାକୁ ଗୃହାଳର ଅବଧାନଙ୍କ ପାଖରୁ ଉଠାଇଆଣି
... ଇସ୍କୁଲ ମାଷ୍ଟରଙ୍କ ପାଖରେ ଛାଡ଼ି ଦେଇଛି ।)
୫ । (ଅମୁକର) ସାହଚର୍ଯ୍ୟରୁ—5. From the company
or companionship (of a person).
୬ । (ଅମୁକ ନିକଟରେ କରିବା) ଚାକିରୀରୁ ବା ସେବାରୁ—
6. From the service of (a person).
୭ । (ଅମୁକ) ଦିଗରୁ—7. From the quarter or direction of.

[ଦ୍ର—ବାଲେଶ୍ୱର ଅଞ୍ଚଳରେ 'ଘର ପାଖରୁ' ଶବ୍ଦ ଘରଠାରୁ
ଅର୍ଥରେ ବ୍ୟବହୃତ ହୁଏ ।]

**ପାଖରେ**—ଦେ. ଅ (ପାଖ ଶବ୍ଦରେ ୭ମୀ ବିଭକ୍ତିସୂଚକ 'ରେ' ଯୁକ୍ତ ହୋଇ
Pākhare ଅବ୍ୟୟରୂପେ ବ୍ୟବହୃତ)—୧ । ନିକଟରେ,
(ପାଖେରେ, ପାଖେ—ଅନ୍ୟରୂପ) 1. Near; at hand.
ପାଶେ पासमें ପୃଷ୍ପଙ୍କୁ ଶିଖି ଶିଖା ପାଖରେ ରଖି ।
କବିସମ୍ରାଟ୍ ଉପେନ୍ଦ୍ର ଭଞ୍ଜ ।
୩ । (ଅମୁକ ବ୍ୟକ୍ତି)ଠାରେ, ସଙ୍ଗରେ—With (a person).
(ଯଥା—ତା ପାଖରେ ବର୍ତ୍ତମାନ ଧନ ନାହିଁ ।)
୪ । (ଅମୁକ ସଙ୍ଗେ) ତୁଳନାରେ—
4. In comparision with (a person or thing).
(ଯଥା—ପଢ଼ା ବିଷୟରେ ରାମ ପାଖରେ ଶ୍ୟାମ କିଛି ନୁହେଁ ।)
୫ । (ଅମୁକର) ସାହଚର୍ଯ୍ୟ ବା ସହବାସରେ—
5. In the companionship of (a person)
୬ । (ଅମୁକର) ସେବାରେ—6. In the service of.
୭ । (ଅମୁକର) ସହାୟକ ସ୍ୱରୂପ—
7. As a helper of (a person.)
୮ । ଏକ ସଙ୍ଗରେ, କଡ଼ରେ—
8. Together with; by the side of.
ତାଖରେ ଶୁଏ, କାଖରେ ଲୁଚେ, ତା କଥା କି ଅଜଣା ହୁଏ । ଢଗ ।

**ପାଖରେ ବସିବା**—ଦେ. କ୍ରି.—୧ । ସଙ୍ଗରେ ବସିବା—
Pākhare basibā 1. To sit with.
୨ । (ଲକ୍ଷଣାର୍ଥ)—ସମାନସ୍ଥିତ ହେବା—
2. To be equal with.

**ପାଖ ଲୋକ**—ଦେ. ବି.—(ସଂ. ପାର୍ଶ୍ୱଲୋକ)—୧ । ପାର୍ଶ୍ୱଚର—
Pākha loka 1. Companion.
ପାଶେର ଲୋକ ୨ । ଅନୁଚର—
नौकर 2 Attendant; personal servant.
୩ । ଅର୍ଦ୍ଦଲି, ଚାକର—3. Orderly; servant.
ଦୂରଦେଶରେ ଗୃହ ଦେଲ, ପାଖଲୋକଙ୍କୁ ପଚାରିଲ, ଏ କଥା ?
ଫକୀରମୋହନ. ଗଳ୍ପସ୍ୱଳ୍ପ ।

**ପାଖାଇବା**—ଦେ. କ୍ରି.—(ସଂ ପାର୍ଶ୍ୱ)—ପାଖିବା (ଦେଖ)
Pākhāibā Pākhibā (See)

**ପାଖାଣ୍ଡ(ଣ୍ଡି)**—ଦେ. ବିଣ.—(ସଂ. ପାଷଣ୍ଡ=ବେଦବିରୁଦ୍ଧାଚାରୀ, ସଂ.
Pākhānda(ndi) ପାଷଣ୍ଡ 'ଷ' ସ୍ଥାନରେ ଖ ଉଚ୍ଚାରଣ; ସଂସ୍କୃତରେ
ପାଖାଣ୍ଡି ପଣ / ପାଖାଣ୍ଡିପଣିଆ (ଆଁ) } ବିଶେଷ୍ୟ ମଧ୍ୟ ପାଷଣ୍ଡ ଶବ୍ଦ ପାଖଣ୍ଡରୂପେ
ଉଚ୍ଚାରିତ ହେବାର ମନ୍ତବ୍ୟ
ପାଖଣ୍ଡ ବିଲିଅମ୍ସ୍ ଲେଖି ଅଛନ୍ତି)—ପାଷଣ୍ଡ ଦୁଷ୍ଟ ଦୁର୍ବୃତ୍ତ—
पाखण्डी Wicked; vile; wanton.
ଦେ. ବି.—ଦୁଷ୍ଟାମି—Wickedness; wontonness.

**ପାଖା ପାଖି**—ଦେ. ଅ.—୧ । ଅତି ନିକଟରେ ଅବସ୍ଥିତ; ସନ୍ନିକଟ—
Pākhā pākhi 1. Very near.
ପାଶାପାଶି ୨ । ନିକଟ ଭବିଷ୍ୟତ—
पास पास 2. Near future.
୩ । ପରସ୍ପରର ନିକଟବର୍ତ୍ତୀ—3. Adjoining each other.

ପାଖାଳିବା—ପ୍ରାଦେ. (ମେଦନୀପୁର) କ୍ରି.—(ସଂ. ପ୍ରକ୍ଷାଳନ; ଭୁଲ. ବଂ. Pākhāliba ପାଖଳାନ)—ପ୍ରକ୍ଷାଳନ କରିବା, ଧୌତ କରିବା—To wash.

ପାଖି—ଦେ. (ପ୍ରାଚୀନ ପଦ୍ୟ) ଅ.—ପାଖକୁ—
Pākhi To the side or direction of.

କ କଲେ ଭୃଷି ବୋଲ ନୃପ ଭୂଇ ଅଛି,
ଭୂଜ କନ୍ଦ ପୁଣି ଗୃହାଗ୍ରେ ଥୁଇ ପାଖି । କୃଷ୍ଣସିଂହ. ମହାଭାରତ ଅନୁଶାସନ

ପାଖିଆ—ଦେ. ବିଣ.—ପାର୍ଶ୍ୱସ୍ଥ—
Pākhiā Situated on the side, lateral
[ଦ୍ର—ଅନ୍ୟ ଶବ୍ଦ ସଙ୍ଗେ ସଙ୍ଗେ ବ୍ୟବହୃତ, ଯଥା—ବାଆଁ ପାଖିଆ, ଦୁଇ ପାଖିଆ, ଏକ ପାଖିଆ ।]

ପାଖିଆଇବା—ଦେ. କ୍ରି.—ପାଖିବା (ଦେଖ)
Pākhiāiba Pākiba (See)

ପାଖିଆ ପାଖେଇ—ଦେ. ବି.—୧ । ଏକ ପାଖକୁ ଲୋକମାନଙ୍କୁ Pākhiā pākhei ଅଡ଼େଇବା ବା ହଟାଇବା କର୍ମ; ଅଡ଼େଇ ଦେବା—1 The act of making people move to one side.

୨ । (ବିପରୀତ ଦିଗରୁ ଆସୁଥିବା ଦୁଇଜଣ) ପରସ୍ପର ବିପରୀତ ପାର୍ଶ୍ୱକୁ ଅଡ଼େଇ ଯିବା—2. (two persons coming from opposite directions) Moving to mutually opposite sides; making way for each other.

ପାଖି ପଟା—ଦେ. ବି.—(ସଂ ପାର୍ଶ୍ୱ+ପଟ୍ଟ)—କାଠମୁଣ୍ଡି କରତଦ୍ୱାରା Pākhi patā ଚିରା ହୋଇ ଯିବା ପରେ ଦୁଇ ପାଖର ଯେଉଁ ପଲଣା ଖଣ୍ଡମାନ ରହି ଯାଏ—The slices on both sides which remain after a log is sawed into planks.

ପାଖିବନ୍ଧା ମହଣ - ଦେ. ବି.—(ସଂ. ପାର୍ଶ୍ୱବନ୍ଧନ+ଓ. ମଣ)—ସଗଡ଼ରେ Pākhi bandhā mahana ବା ହଳରେ ଲାଗି ଥିବା ମଣିଆ (ପଖିବନ୍ଧା ମଣ—ଅନ୍ୟରୂପ) (ମହଣ ହୋଇଥିବା) ବଳଦଙ୍କ ପାଖରେ ଅମଣିଆ ଦାମୁଡ଼ିକୁ ଅଭ୍ୟସ୍ତ କରିବାପାଇଁ ବାନ୍ଧିକରି ବୁଲାଇ ମଣ କରିବା—Breaking of a steer in plough or cart by tying it with the yoked bullocks and causing it to walk alongside for some time.

ପାଖିବା—ଦେ ବି.—(ସଂ. ପାର୍ଶ୍ୱ)—୧ । ଏକ ପାଖକୁ ଆଉଜିଯିବା—
Pākhibā 1 To lean to one side.

୨ । ଏକ ପାର୍ଶ୍ୱକୁ ଘୁଞ୍ଚି ଯିବା—
2 To move to one side.

୩ । (ସମୟ ବା ସ୍ଥାନ ବା ବ୍ୟକ୍ତି) ନିକଟବର୍ତ୍ତୀ ହେବା, ପାଖକୁ ଆସିବା—3. (a time, place or person) To come near; to become nearer; to approach.

ଆଖେଇଲ, ଅଗଣ୍ଡ ଅଖଣ୍ଡ ପାଖେଇଲ । ଭଜ ।

୪ । ପାର୍ଶ୍ୱ ଦିଗକୁ ଗତି କରିବା—4. To make a sidelong movement.

୫ । ଅଡ଼େଇ ଯିବା, ଏକ ପାଖକୁ ଆଉଜି ଯାଇ ଅନ୍ୟ ବ୍ୟକ୍ତିକୁ ବାଟ ଛାଡ଼ି ଦେବା—5. To make room for another person to pass.

ପାଖୁ—ଦେ ଅ.—(ପାଖ ଶବ୍ଦରେ ୫ମୀ ବିଭକ୍ତିର 'ଉ' ଚିହ୍ନ ଯୁକ୍ତ ହୋଇ Pākhu ଅବ୍ୟୟରୂପେ ବ୍ୟବହୃତ)—ପାଖରୁ (ଦେଖ)—
(ପାଖୁଁ—ଅନ୍ୟରୂପ) Pākharu (See)

ପାଖୁଆ—ଦେ. ବିଣ.—ପାର୍ଶ୍ୱବର୍ତ୍ତୀ—
Pākhuā Adjoining.
পাশের पासका

ପାଖୁକୁ—ଗ୍ରା ଅ—ପାଖକୁ (ଦେଖ)
Pakhuku Pākhaku (See)

ପାଖୁଡ଼(ଡ଼ା)(ଡି)—ଦେ ବି. (ସଂ. ପକ୍ଷ, ପକ୍ଷ୍ମ)—
Pākhurda(rdā)(rdi) ୧ । ପୁଷ୍ପର ଦଳ—1. The petal of a flower

ଅମ୍ଭ ଅଛ କ ବହୁଧ ବାସନ୍ତିକ ବାସିତ୍ୱନ ପାଖୁଡ଼ା ।
ଜଦସୁର୍ଯ୍ୟ—ସଙ୍ଗୀତ ।

পাকড়ী, পাবড়ী, পাপড়ী ୨ । ଉପର୍ଯ୍ୟୁପରି ନ୍ୟସ୍ତ ପତଳା ସ୍ତର—
पंखड़ी, पंखुड़ी, पखड़ी 2. Thin layers laid over one another.

୩ । କପା ବା ଶିମିଳି ତୁଳାର କୋଷର ଉପରିସ୍ଥ ପତଳା ଆବରଣ-
3. The capsule of cotton or silk-cotton pods.

ପାଖୁଡ଼ିଆ—ଦେ. ବିଣ. (ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ ହୁଏ ଯଥା—ଶ୍ୱେତ Pākhurdiā ପାଖୁଡ଼ିଆ, ରଙ୍ଗ ପାଖୁଡ଼ିଆ)—ଦଳବିଶିଷ୍ଟ (ପୁଷ୍ପ)—
পাপড়িওয়ালা पखड़ीवाला Petalled (flower).

ପାଖୁରୁ—ଗ୍ରା ଅ.—ପାଖରୁ (ଦେଖ)—
Pakhuru Pākharu (See).

ପାଖେ—ଦେ. ଅ—ପାଖରେ (ଦେଖ)—
Pākhe Pākhare (See).
(ପାଖେରେ—ଗ୍ରାମ୍ୟରୂପ) ସେ କଥା ମୁହିଁ ଗୋଚ ପାଖେ,
କହିବ ଭକ୍ତ ଜନ ସୁଖେ । ଜଗନ୍ନାଥ. ଭାଗବତ ।

ପାଖେଇ ଦେବା—ଦେ. କ୍ରି. (ସକର୍ମକ)—ଅଡ଼େଇ ଦେବା; ଲୋକଙ୍କ Pākhei debā ବାଟରୁ ଅଡ଼େଇ ଦେବା—
To cause people to move away from a person's path.

ପାଖେଇବା—ଦେ. କ୍ରି. (ସଂ. ପାର୍ଶ୍ୱ)—୧ । ପାଖିବା (ଦେଖ)—
Pākheibā 1. Pākhibā (See).

ପାଖେଇ ଅଯୁକ୍ତ ସେ ଅକ୍ରମକାଳ—ଜଗନ୍ନାଥ. ଭାଗବତ ।

୨ । ପାଖେଇ ଦେବା—2. Pākhei debā (See).
[ ଦ୍ର—ପାଖେଇବା କ୍ରିୟାର ଅସମାପିକାରୂପ ସଙ୍ଗେ ଆସିବା, ଯିବା, ଦେବା କ୍ରିୟାର ସମାପିକା ରୂପ ଯୁକ୍ତ ହୁଏ । ]

ପାଖେଇ ଯିବା—ଦେ. କ୍ରି. (ଅକର୍ମକ)—ଗୋଟାଏ ପାଖକୁ ଘୁଞ୍ଚିଯିବା—
Pākhei jibā To move to one side.
(ପାଖେଇ ହେବା—ଅନ୍ୟରୂପ)

ପାଖେ ପାଖେ—ଦେ. ଅ—୧ । ବରାବର ପାର୍ଶ୍ୱରେ ବା ନିକଟରେ—
Pākhe pākhe 1. Side by side; along the side of.

ଯଥା—ରେଲ୍ ଲାଇନ୍ ଜଗନ୍ନାଥ ସଡ଼କର ପାଖେ ପାଖେ ଖଣ୍ଡଦୂର ପର୍ଯ୍ୟନ୍ତ ପଡ଼ିଛି ।

ପାଶେ ପାଶେ ୨ । ସବୁବେଳେ ନିକଟରେ—
**पासपास** 2. Always at hand.
(ଯଥା—ତୁମେ ଡରନା, ମୁଁ ତୁମ ପାଖେ ପାଖେ ଅଛି ।)

**ପାଗ୍‌ରାଗ୍**—ପ୍ରାଦେ. (ସମ୍ବଲପୁର, ସହଚର ଶବ୍ଦ)—ପାଗଯୋଗ (ଦେଖ)—
Pāg-rāg  Pāga joga (See).

**ପାଗ୍‌ଲା** (ଇତ୍ୟାଦି)—ଦେ ବିଣ. ପୁଂ.—ପାଗଲା ଇତ୍ୟାଦି (ଦେଖ)—
Pāg-lā (etc)  ପଗ୍‌ଲୀ, ପାଗ୍‌ଲୀ—ସ୍ତ୍ରୀ Pāgalā etc. (See).

**ପାଗ୍‌ଲାମି**—ଦେ. ବି—ପାଗଲାମି—
Pāg-lāmi  Pāgalāmi (See).

**ପାଗ**—ଦେ ବି. (ସଂ. ପ୍ରଗ୍ରହ, ପ୍ରା. ପଗ୍ଗହ)—୧ । ପଗଡ଼ି, ଠେକା;
Pāga  पाग  ଶିରସ୍ତ୍ରାଣ—1. Headdress;
**पाग**  turban.
ପାଗବାଳେ ପେନ ଅଛନ୍ତି କ ଜଣେ—କୃଷ୍ଣସିଂହ. ମହା ଭରତ ବନ ।
[ଦ୍ର—କମ ଚଉଡ଼ା ଓ ଖୁବ୍ ଲମ୍ବ ଲୁଗା ଉପର୍ଯ୍ୟୁପରି ଗୁଡ଼ାଅ ହୋଇ ମୁଣ୍ଡରେ ବନ୍ଧା ହୋଇଥିବା ପଗଡ଼ିକୁ ପାଗ ବୋଲାଯାଏ । ଏହି ଅର୍ଥରେ ପାଗ ଶବ୍ଦର ବ୍ୟବହାର, ହିନ୍ଦୀ, ବଙ୍ଗଳା, ମରହଟ୍ଟୀ, ଆସାମୀ ଭାଷାମାନଙ୍କରେ ଅଛି । ]

ପାକ **पाग** ୨ । (ସଂ ପାକ)—ରନ୍ଧନ, ରନ୍ଧା—2. Cooking.
୩ । ରନ୍ଧନପାତ୍ରର ଏକସାର—
3. One set of cooking pots.
ନୋଟା ମାଡ ହାଣ୍ଡିଶାଳରେ ପଶିଲ ଲେ । ହାଣ୍ଡି ପାଗ ମାରୁ ଗଲ ଲେ—
ଫକୀରମୋହନ. ଗଳ୍ପସ୍ୱଳ୍ପ ।

୪ । ରନ୍ଧନର ବା ଉଖୁଡ଼ାଆଦି ପାଗ କରିବାର ଏକଥର—
4. One cooking or seasoning with syrup.

ଗାକା **पाग** ୫ । ଉଖୁଡ଼ା, ମିଠାଇ, ମୋଦକ, ପିଠା ଆଦି ତିଆରି କରିବା ନିମନ୍ତେ ନିଆଁ ଉପରେ ସିଦ୍ଧ ହୋଇ ପ୍ରସ୍ତୁତ ଗୁଡ଼, ବା ଚିନିର ଗାଢ଼ରସ, ସିରା—5. Syrup for seasoning sweetmeats, cakes and fried corn.

୬ । ଏକଥର ପାକରେ, ପ୍ରସ୍ତୁତ ଖାଦ୍ୟ, ଉଖୁଡ଼ା, ପିଠା ଓ ମିଷ୍ଟାନ୍ନାଦି—6. Food, cakes, sweetmeats prepared at one cooking.

୭ । ଯେଉଁଥିରେ ଏକାଧିକ ବସ୍ତୁ ମିଶାଯାଇ ପ୍ରସ୍ତୁତ କରାଯାଏ, (ଯଥା—ନାସ, ଗୁଣ୍ଡି, ଚୂନପତ୍ର) ତାହାର ପ୍ରସ୍ତୁତ କରିବାର ଏକଥର ବା ଏକଥରର ପରିମାଣ—7 A quantity of a compound article which is prepared with various ingredients at one time

ଯଥା—କାଲି ମୁଁ ଯେଉଁ ଗୁଣ୍ଡି ପାଗକ କରିଥିଲି ତାହା ଆଗଥରକୁ ଅପେକ୍ଷା ଭଲ ହୋଇଛି ।

୮ । (ସଂ. ଋତୁ ବସ୍ତୁ)—ପାଗ୍‌ଲା (ହନ୍,ଋତୁ)—8. Weather.
(ବେଯାଗ, ଅପାଗ—ବ୍ୟୁତ୍ପନ୍ନ) ଯଥା—ଖରାପାଗ; ମେଘୁଆପାଗ ।

**मर्सूम** ୯ । କୃଷି ସମ୍ବନ୍ଧୀୟ ଉକ୍ତ କର୍ମ କରିବା ପାଇଁ ଅନୁକୂଳ
**मौसीम** ଋତୁ—9. Weather; favourable for particular agricultural operation.

୧୦ । ସୁଯୋଗ, ସୁବିଧା—10. Opportunity.

**ପାଗ ଅଛୁଆଁ**—ଦେ. ବିଣ. (ସଂ. ପାକ+ଅସ୍ପୃଶ୍ୟା)—ପାକାସ୍ପୃଶ୍ୟା (ଦେଖ)
Pāga achhuā̃  Pākāsprusyā (See).

**ପାଗ କରିବା**—ଦେ ବି—୧ । କୃଷି କର୍ମର ଅନୁକୂଳ ଋତୁ ଘଟିବା—
Pāga karibā  1. The arrival of the proper season or weather for a particular
**योगहोना**  agricultural operation.
(ଯଥା—ଆଜି ଧାନ ବୁଣିବାକୁ ଭଲ ପାଗ କରିଛି ।)

ପାଗ ପକା(କେ)ଇବା } ଅନ୍ୟରୂପ ୨ । କୌଣସି କାର୍ଯ୍ୟ ପାଇଁ
ପାଗ ଦେବା } ଉପଯୁକ୍ତ ଋତୁ ବା ସମୟ ଘଟିବା—
2 The arrival of the proper weather or time for doing a certain work.

ଦେ. କ୍ରି—ପୁରୁଣା ପାକପାତ୍ରମାନ ଫିଙ୍ଗିଦେଇ ରନ୍ଧନାର୍ଥ ଏକ ସାର ନୂଆ ପାକପାତ୍ର କରିବା—To replace an old set of cooking pots by a new set.

**ପାଗ ଗୁଡ଼ା (ଡ଼େ)ଇବା**—ଦେ. କ୍ରି—ମୁଣ୍ଡରେ ପଗଡ଼ି ଭିଡ଼ିବା—
Pāga gurḍā(rḍe)ibā  To tie a turban round
(ପାଗ ବାନ୍ଧିବା, ପାଗ ଭିଡ଼ିବା—ଅନ୍ୟରୂପ)  the head
पागबाँधा  **पाग बाँधना**

**ପାଗ ଚଟୁ**—ଦେ. ବି—ଗୁଡ଼ିଆଙ୍କର ଉଖୁଡ଼ା ତିଆରି କରିବା ପାଇଁ
Pāga chaṭu  ବ୍ୟବହୃତ ଚଉଡ଼ାମୁହାଁ ଚଟୁ—The flat-headed
**पागकरछु**  ladle used by confectioners in seasoning fried paddy in syrup.

**ପାଗ ଛଡ଼ା**—ଦେ. ବିଣ. ( ସଂ. ପାକ+ଉତ୍ସୃଷ୍ଟ )—
Pāga chharḍā  ୧ । ବର୍ଜିତ (ହାଣ୍ଡି), ମୃତକାଦି ଅଶୌଚ
**छुतहर**  ଶେଷରେ ରନ୍ଧନଶାଳାରୁ କଢ଼ା ଯାଇଥିବା (ହାଣ୍ଡି)—
1. Discarded or abandoned (earthen cooking pots)

୨ । ଋତୁମତୀ ହେବାରୁ ରାନ୍ଧିବାର ଅଯୋଗ୍ୟା (ସ୍ତ୍ରୀ); ପାକାସ୍ପୃଶ୍ୟା—2. Menstruated; (a woman) in her monthly course.

**ପାଗ ଛୁଇଁବା**—ଦେ. କ୍ରି—୧ । ( ସ୍ତ୍ରୀ ) ଋତୁସ୍ନାନ ପରେ ପାକଶାଳାରେ
Pāga chhuĩbā  ପ୍ରବେଶ କରି ରନ୍ଧନ କରିବା—
**पाक छूना**  1. (a woman) To cook for the first
(ପାଗ ଖେଳିବା—ଅନ୍ୟରୂପ)  time after her purificatory bath after the menses.

୨ । ନବବଧୂ ଶ୍ୱଶୁରାଳୟକୁ ଆସି ଶ୍ୱଶୁରଙ୍କ ପାକରେ ପ୍ରଥମେ ରାନ୍ଧିବା—3. (a new bride) To cook for the first time in the husband's cooking.

**ପାଗ ଝୁକି ଯିବା**—ଦେ. କ୍ରି—କୃଷି ଉପଯୁକ୍ତ ଋତୁ ବା ସମୟ ବଳିଯିବା—
Pāga jhuki jibā  The passing away of the proper season for a particular agricultural operation.

ପାଗଡ଼ – ଦେ. ବି. (ଜାହାଜିଆ ଶବ୍ଦ) (ସଂ. ପ୍ରଗ୍ରହ=ଦଉଡ଼ି)—
Pāgarḍa ୧ । ବୋଟ ଆଦି ଟାଣିବାରେ ବ୍ୟବହୃତ ଛୋଟ ଦଉଡ଼ି-
पागड़ 1 (nautical term) Tug; tugging rope; towing rope.
× × × ଧାବନ୍ତ ଗଙ୍ଗା ପରି ଚଞ୍ଚଳ ଚଳିଲେ—ପାଗଡ଼, ପାଙ୍ଗଡ଼, ପାଗଡ଼ ।
ଫକୀରମୋହନ. ଗଳ୍ପସ୍ବଳ୍ପ ।
୨ । ଶୂଦ୍ରମାନଙ୍କର ଉପାଧିବିଶେଷ—
2 A family title of Śūdras.

ପାଗଡ଼ ମାରିବା – ଦେ. କ୍ରି (ଜାହାଜିଆ ଶବ୍ଦ)—
Pāgarḍa māribā ବୋଟ ଆଦିର ଟଣା ଶେଷ ହେବା ପରେ
पागड़ समेटना ପାଗଡ଼କୁ ଡଙ୍ଗା ଉପରକୁ ଟାଣି ଗୋଟାଇ ଆଣିବା—To hoist in the towing rope.

ପାଗଡ଼ ମେଣ୍ଟା(ଣ୍ଟେ)ଇବା—ଦେ. କ୍ରି. (ଜାହାଜିଆ ଶବ୍ଦ)—
Pāgarḍa mentā(nte)ibā ଗଛ ବନ୍ଧିଥିବା ଏକ ଡଙ୍ଗାର
पागड़ बगलाना ପାଗଡ଼କୁ ବିପରୀତ ଦିଗରୁ ଆସୁଥିବା ଡଙ୍ଗାର ପାଗଡ଼ ଉପର ବା ତଳ ଦେଇ ଟାଣି ନେବା—
To pass the towing rope of a moving boat over or below that of another boat coming from an opposite direction.

ପାଗଡ଼ା—ଦେ. ବି—ଶକଟା ଖେଳର ଦାନବିଶେଷ—
Pāgarḍā 1. Name of a throw in the game of Sakaṭā.
୨ । ପାଖଡ଼ା (ଦେଖ)—2. Pākharḍā (See)

ପାଗଡ଼ା ଖଇର – ଦେ. ବି—ପାଖଡ଼ା ( ଦେଖ )
Pāgarḍā khaira Pākharḍā ( See )

ପାଗ ଦେବା—ଦେ. କ୍ରି—୧ । ସୁଯୋଗ ଦେବା—
Pāga debā 1. To allow an opportunity.
୨ । ପାଗିବା (ଦେଖ)—2 Pāgibā (See)

ପାଗ ପଟୁକା—ଦେ. ବି. (ସହଚର ଶବ୍ଦ, ସଂ. ପ୍ରଗ୍ରହ+ପଟ୍ଟିକ)—
Pāga paṭukā ୧ । ପୋଷାକ ପରିଚ୍ଛଦ—1. Dress.
धड़ाचूड़ा ୨ । ମୁଣ୍ଡରେ ବାନ୍ଧିବା ପଗଡ଼ି ଓ ଅଣ୍ଟାରେ ବାନ୍ଧିବା
पाग पटका କମରବନ୍ଧ—2. Turban and belt.

ପାଗ ଯୋଗ—ଦେ. ବି. ( ଏକାର୍ଥକ ସହଚର ଶବ୍ଦ )—
Pāga joga ୧ । ଶସ୍ୟାଦି ଆବାଦ ହେବା ପାଇଁ ଆବଶ୍ୟକ
लगन योग ଅନୁକୂଳ ସମୟ ଓ ଅନୁକୂଳ ପ୍ରକ୍ରିୟାମାନ—
1. The proper season and operations for growing a crop.
୨ । ଅନୁକୂଳ ଅବସ୍ଥା, ସୁଯୋଗ—
2. Favourable condition; opportunity.
୩ । ଅନୁକୂଳ ଅବସ୍ଥାମାନଙ୍କର ସମୁଚ୍ଚୟ—
3. The aggregate and concatenation of all favourable conditions.

ପାଗଲ୍—ପ୍ରାଦେ. (ସମ୍ବଲପୁର) ବିଣ—ବଗା; ଓଲୁ, କର୍ବୁଦିଆ—
Pāgal Stupid.

ପାଗଲ(ଲ)—ସଂ. ବି. ପୁଂ—ବାୟା ଲୋକ—
Pāgala(la) A mad man.
পাগল (স্ত্রী—পাগলিনী) ସଂ. ବିଣ. ପୁଂ—୧ । ବାୟା, ବାଉଳ;
पागल, पगला ବିକୃତମସ୍ତିଷ୍କ—1. Mad; deranged in mind.
ଶୃଗାଳ ପାଗଳ ହୋଇ, ସିଂହ ପୁରେ ପଶି ଯାଇ ।
( ପାଗଳୀ—ସ୍ତ୍ରୀ ) ବିଶ୍ବନାଥ ଚଉତିଶାସଂଗ୍ରହ ।
୨ । ବିମୁଗ୍ଧ—2. Enchanted; charmed.
୩ । ବାଉଳ ପରି କ୍ରୋଧାଦିରୁ ହିତାହିତ ଜ୍ଞାନଶୂନ୍ୟ—
3, Maddened; one who has lost his reasoning power, being overcome with passion.

ପାଗଲ କରିବା—ଦେ. କ୍ରି—ଉନ୍ମତ୍ତ କରାଇବା—
Pāgala karibā To madden.
পাগলকরা पगला करना

ପାଗଲ ଖାନା—ଦେ. ବି. (ସଂ. ପାଗଲ+ଫା. ଖାନେହ୍)—
Pāgala khānā ବାଉଳମାନଙ୍କ ଚିକିତ୍ସାର୍ଥ ପ୍ରତିଷ୍ଠିତ ଆଶ୍ରମ;
পাগলাখানা ବାଉଳାଶ୍ରମ—Lunatic assylum; mental hospital.
पागलखाना
(ପାଗଲାଖାନା, ପାଗଲଖାନା, ପାଗଲ୍ଲଖାନା, ପାଗଲ କୋଠି, ପାଗଲ୍ଲ ଗାରଦ୍— ଅନ୍ୟରୂପ)

ପାଗଲା(ଲ୍ଲା) ଅ(ଆଁ)ସିଆ—ଦେ. ବିଣ. (ସଂ. ପାଗଲ+ହସନ୍)—
Pāgalā(lā) a(āṅ)siā ହସନ୍ତ ବିକୃତମସ୍ତିଷ୍କ, ପିତପାଗ୍ଳା,
পাগলাটে (ଲୋକ)—Crack-brained; crazy.
पगलासा

ପାଗଲା(ଲ୍ଲ)—ଦେ. ବି ଓ ବିଣ. ପୁଂ. (ସଂ. ପାଗଲ)—ପାଗଲ (ଦେଖ)—
Pāgalā(lā) Pāgala (See)
ପାଗଲୀ(ଲ୍ଲୀ) পাগলা(পুং),পাগলী, পাগলিনী(স্ত্রী)
ପାଗଲମା } ସ୍ତ୍ରୀ
ପାଗଲ୍ଲମା पागला(पुं), पागली(स्त्री)
ପାଗଲୁଣୀ

ପାଗଲା(ଲ୍ଲ, ଲେ, ଲ୍ଲେ)ଇବା—ଦେ. କ୍ରି—୧ । ବାଉଳପରି ଗପିବା;
Pāgalā(lā, le, le)ibā ପ୍ରଳାପ କରିବା—1. To rave like a mad man.
୨ । (ସଂ.ପ୍ରୋଦ୍ଗାର) ପାଗୁଳାଇବା; ରୋମନ୍ଥ କରିବା—
2 To ruminate.
୩ । ପାକଲାଇବା ୪ ( ଦେଖ )—
3. Pākalāibā 4. (See)
୪ । କଥାରେ ଭଣ୍ଡାଇବା; ଭୁଲାଇବା—
4. To wheedle; to cajole.
୫ । ଜିଜ୍ଞାସିତ ବିଷୟର ପ୍ରକୃତ ଉତ୍ତର ନ ଦେଇ ବା ପ୍ରକୃତ କଥା ନ କହି ଏଣୁ ତେଣୁ କହିବା—
5 To prevaricate, to make evasive replies or statements

ପାଗଲା(ଲ୍ଲା) ଘଣ୍ଟା—ଦେ. ବି—୧ । ଯେଉଁ ଘଣ୍ଟା ଠିକ ସମୟ ରଖେ
Pāgalā(lā) ghanṭā ନାହିଁ—1. A clock which often goes wrong.
পাগলা पगला घण्टा

୨ । ଜେଲଖାନାରେ ହଠାତ୍ ବିପଦ ଉପସ୍ଥିତ ହେଲେ, ଜେଲ୍‌ର କର୍ମଚାରୀମାନେ ଯେଉଁ ଘଣ୍ଟାକୁ ପିଟି ଅନ୍ୟ କର୍ମଚାରୀମାନଙ୍କୁ ସାବଧାନ କରାଇ ଦିଅନ୍ତି—2. Alarm gong which is sounded in a jail in times of emergency.

ପାଗଲା(ଳା)ମି--ଦେ. ବି (ବଙ୍ଗଳାରୁ ଅନୁକୃତ)-୧ । ପାଗଳପଣ, ବାଉଳତା-
Pāgalā(lā)mi 1. Madness; insanity.
ପାଗଲାମୀ ୨ । ବାଉଳ ପରି ପ୍ରଳାପ କରିବା—
पागल पन 2. Raving like a mad man.
ପାଗଳ(ଲ)ପଣ } ଅନ୍ୟରୂପ ୩ । ନିର୍ବୋଧତା—
ପାଗଳ(ଲ)ପଣିଆ(ଆଁ) } 3. Folly, foolishness.

ପାଗଳୀ(ଲୀ)—ସଂ. ବି ଓ ବିଣ ସ୍ତ୍ରୀ—(ପାଗଳ+ଈ)—ପାଗଳର ସ୍ତ୍ରୀଲିଙ୍ଗ-
Pāgalī(lī) Feminine of Pāgala.
ପାଗଲୀ; ପାଗଲିନୀ पगली
[ପାଗଲନୀ, ପାଗଲେ(ଲୋ)ଇ—ଦେଶଜରୂପ]

ପାଗଲେ(ଲୋ)ଇ—ଦେ. ବିଣ—ପାଗଳ ବ୍ୟକ୍ତି ପରି, ବାଉଳ ପ୍ରାୟ;
Pāgale(le)i ବାଉଳ ସୁଲଭ—Befitting a mad man.
ପାଗଲାଇ ଦେ. ବି ଓ ବିଣ. ସ୍ତ୍ରୀ—ପାଗଳର ସ୍ତ୍ରୀଲିଙ୍ଗ—
पगलाई Feminine of Pāgala.

ପାଗ ହାଣ୍ଡି—ଦେ. ବି—(ସଂ. ପାକ+ହଣ୍ଡିକା)—୧ । ପାକଶାଳାରେ
Pāga hāndi ପାକାର୍ଥ ବ୍ୟବହୃତ ହାଣ୍ଡି, ପାକ ଭାଣ୍ଡ—
ପାକେବହାଁଡୀ 1. Earthen cooking pots actually
पाककीहाँड़ी in use.
୨ । ପାଗୁଆଳ ହାଣ୍ଡି (ଦେଖ)—
2. Pāguāli hāndi (See)

ପାଗା—ଦେ ବି—(ସଂ. ପ୍ରଗହ=ଘୋଡ଼ା ବାନ୍ଧିବା ଦଉଡ଼ି)—
Pāgā ଘୋଡ଼ାଶାଳ, ଅସ୍ତାବଲ୍—Stable.
ଅସ୍ତବଲ अस्तबल

ପାଗା ପଟକା—ପ୍ରାଦେ. (ଯାଜପୁର)—ବି—ପାଗ ପଟୁକା—
Pāgā patakā Pāga patukā (See)

ପାଗି—ଦେ. ବିଣ—(ଅନ୍ୟ ଶବ୍ଦ ସଙ୍ଗେ ବ୍ୟବହୃତ)—୧ । ପାଗଧାରୀ;
Pāgi ଉଷ୍ଣୀଷଧାରୀ—1. Wearing a turban.
ପାଗଓୟାଲା (ଯଥା—ନାଲପାଗିଆ)
पागवाला ୨ । ଚିନିରେ ପାଗ କରାଯାଇଥିବା—
( ପାଗିଆ—ଅନ୍ୟରୂପ ) 2. Seasoned in syrup.
(ଯଥା—ଦୋପାଗି ଉଖୁଡ଼ା)
୩ । ପକ୍ୱ; ସିଦ୍ଧ—3. Boiled.
(ଯଥା – ସୂର୍ଯ୍ୟପାଗି ।)

ପାଗିବା—ଦେ. କ୍ରି—(ସଂ. ପାକ)—୧ । (ଅକର୍ମକ) ଖୁବ୍ ବର୍ଷା ପରେ
Pāgibā କ୍ଷେତ୍ରରୁ ପାଣି ମରଯାଇ ତାହା ଚଷ ହେବାର ଓ ବୁଣା (ପାଗେଇବା—ଅନ୍ୟରୂପ) ହେବାର ଉପଯୁକ୍ତ ହେବା—1 (a field) To become fit for ploughing and sowing seeds after a shower.
୨ । (ଅକର୍ମକ) କଞ୍ଚା ନଡ଼ିଆ ଶୁଖିଯାଇ ବ୍ୟବହାର ବା ବାଣିଜ୍ୟ ପାଇଁ ଉପଯୁକ୍ତ ହେବା—2. (cocoanut) To become fit for use.
୩ । (ଅକର୍ମକ) କୌଣସି ଦ୍ରବ୍ୟରୁ ଅନ୍ତରସ୍ଥ ଜଳ ଶୁଖିଯିବାଦ୍ୱାରା ତାହା ବ୍ୟବହାରର ଉପଯୋଗୀ ହେବା—3 (any article) To become fit for use after the water in it has dried up.
୪ । (ସକର୍ମକ) ଖଇ ଆଦିକୁ ଗୁଡ଼ ବା ଚିନିର ଶିରାରେ ଘୂଆଇବା-
पागना 4. To season fried grains in boiling syrup.
ପ୍ରାଦେ (ବାଲେଶ୍ୱର) କ୍ରି—(ଗାଈ) ବଳଦ ପଡ଼ିବା, ଋତୁମତୀ ହେବା—(a cow) To be in heat.

ପାଗୁଆଳ ହାଣ୍ଡି—ଦେ. ବି—୧ । ପାଗ ହାଣ୍ଡି, ରନ୍ଧନାର୍ଥ ବ୍ୟବହୃତ ମାଟି
Pāguāli hāndi ପାତ୍ର, ପାକ ଭାଣ୍ଡ—1. Earthen cooking pot.
୨ । ଯେଉଁ ବଡ଼ ହାଣ୍ଡିରେ ଗୁଡ଼ ରଖି ଗୁଣ୍ଡିଆମାନେ ଉଖୁଡ଼ାର ପାଗ କରନ୍ତି ଏବଂ ଖଜା କରନ୍ତି—2. Big earthen pots in which fried corn is seasoned in boiled sugar and in which dough is boiled for preparing cakes.

ପାଗୁଡ଼ି—ପ୍ରାଦେ. (ସମ୍ବଲପୁର, ଗଡ଼ଜାତ) ବି—ଫାଟକ—
Pāgurdi Gate.

ପାଗୁଲା—ଦେ. ବି. (ସଂ. ପ୍ରୋଦ୍ଗାର)—ପାକୁଳା (ଦେଖ)
Pāgulā (ପାଗୁଳ—ଅନ୍ୟରୂପ) Pākulā (See)
ଜାବର, ପାଇଜ, ଜାଓର पागुर, जुगाली

ପାଗୁଳା(ଳେ)ଇବା—ଦେ. କ୍ରି—ପାକୁଳ କରିବା (ଦେଖ)
Pāgulā(le)ibā Pākuli kariba (See)

ପାଗୁଳି—ଦେ. ବି—୧ । (ସଂ. ପାକସ୍ଥାଲୀ)—ପାକପାତ୍ର, ପାଗହାଣ୍ଡି—
Pāguli 1. Cooking pot.
୨ । (ସଂ. ପ୍ରୋଦ୍ଗାର) ପାକୁଳା (ଦେଖ)
2. Pākulā (See)
୩ । ରୋମନ୍ଥନ ବେଳେ ଗବାଦି ପଶୁ ପେଟ ମଧ୍ୟରୁ ଯେଉଁ ଖାଦ୍ୟର ଗୋଲା ଆଣି ପାଟିରେ ରୋମନ୍ଥ କରନ୍ତି—3. Cud.

ପାଗୁଳି କରିବା—ଦେ. କ୍ରି—ପାକୁଳି କରିବା (ଦେଖ)
Pāguli kariba Pākuli kariba (See)

ପା-ଘଣ୍ଟା—ଦେ. ବି. (ପା=ଏକଚତୁର୍ଥାଂଶ+ଘଣ୍ଟା)—ପନ୍ଦରମିନିଟ୍—
Pā-ghantā 15 minutes; a quarter of an hour.
পা ঘন্টা ପା-ଘଣ୍ଟା ବାଦେ ବାବୁ ମାଝିକୁ ଅଣ୍ଟ ଥରେ ଅନାଇ କହିଲେ ।
पावघन्टा ଫକୀରମୋହନ, ଗଳ୍ପସ୍ୱଳ୍ପ
(ପାଏଘଣ୍ଟା—ଅନ୍ୟରୂପ)

ପାଂକ୍ତେୟ—ସଂ. ବି. (ପଙ୍କ୍ତି+ଏୟ)—ସାମାଜିକ ଭୋଜିରେ ଏକ ପଂକ୍ତିରେ
Pāmkteya ବସି ଭୋଜନ କରିବାର ଅଧିକାରୀ—Entitled to dine in one line with other caste-people.

ପାଙ୍ଗିବା—ପ୍ରାଦେ. କ୍ରି—୧ । ( ସମ୍ବଲପୁର ) କୌଣସି ବ୍ୟକ୍ତିର ଅଶୁଭ
Pāngibā ଚାହିଁବା, ଅମଙ୍ଗଳ ଇଚ୍ଛା କରିବା—1. To wish evil of another.

୨ । (ପୁରୀ) (କୌଣସି ବ୍ୟକ୍ତିକୁ) ଦଣ୍ଡ ଦେଇ ସାଧ୍ୟ କରିବା— 2. To teach a person a lesson, to subjugate a person by punishment.

୩ । (ପୁରୀ) କୌଣସି ବ୍ୟକ୍ତିକୁ ଅସମର୍ଥ କରିବା— 3. To incapacitate a person.

୪ । (ଗଞ୍ଜାମ) ଗୁଣି ଗାରେଡି ପ୍ରୟୋଗଦ୍ୱାରା ବଶୀଭୂତ କରିବା— 4. To bring a person under cortrol by application of magical charms.

(ଗଡ଼ଜାତ) କ୍ରି—କୌଣସି ବ୍ୟକ୍ତିଠାରେ ମନ୍ତ୍ରାଦି ଅପଶକ୍ତିର ପ୍ରୟୋଗ ପୂର୍ବକ ଭୂତ ବା ଡାହାଣୀ ଲଗାଇବା—5. To cause derangement of mind by employing charms.

**ପାଙ୍ଗୁଳା**—ଦେ. ବି. (ସଂ. ପାଗଳ)—୧ । ମନ୍ଦାଗ୍ନିଜନିତ ରୋଗ-Pāngulā ବିଶେଷ—1. A disease due to indigestion. (ପାଙ୍ଗୁଳିଆ—ଅନ୍ୟରୂପ)

୨ । ବାତୁଳତା—2. Madness.

**ପାଙ୍ଗୁଳି, ପାଙ୍ଗୁଲେଇ** } ସ୍ତ୍ରୀ. ଦେ. ବିଣ. ପୁଂ—୧ । ବାତୁଳ—1 Mad; insane.
କ୍ଷ୍ୟାପା ସିଡ଼ୀ

୨ । ଈଷତ୍ ବାତୁଳ, ବିକୃତମସ୍ତିଷ୍କ (ବ୍ୟକ୍ତି)—2. Crack-brained.

**ପାଚିବା**—ପ୍ରାଦେ. (ସମ୍ବଲପୁର) କ୍ରି. (ସଂ. ପଚ୍ ଧାତୁ)—ପାଚିବା—Pāch-bā To ripen; to become ripe.

**ପାଚକ**—ସଂ. ବି. ପୁଂ. (ପଚ୍ ଧାତୁ=ପାକ କରିବା+କର୍ତ୍ତୃ. ଅକ)—Pāchaka ୧ । ଯେ ପାକ କରେ; ସୂପକାରୀ, ସୁଆର; ରୁଷେଇଆ—(ପାଚକା, ପାଚକୀ—ସ୍ତ୍ରୀ) 1. A male cook.

୨ । ବହ୍ନି—2 Fire.

୩ । ଜଠରାଗ୍ନି, ଖାଦ୍ୟଦ୍ରବ୍ୟର ଜୀର୍ଣ୍ଣକାରକ ଶରୀରାଭ୍ୟନ୍ତରସ୍ଥ ଶକ୍ତି—3. Digestive energy inside the stomach.

୪ । ଟଙ୍କଣ, ଟାଙ୍ଗଣା (ହେମଚନ୍ଦ୍ର)—4. Borax.

୫ । ପିତ୍ତ—5. Gall; bile (M. W.).

[ଦ୍ର—ବୈଦ୍ୟକମତରେ ଜୀର୍ଣ୍ଣଶକ୍ତିର ସହାୟକ ୫ ପ୍ରକାର ପିତ୍ତ ବା ରସମଧ୍ୟରୁ ଏହା ଏକତମ । ଏହାର ସ୍ଥାନ ଆମାଶୟ ଓ ପକ୍ୱାଶୟ ଅଟେ । ଏହା ଖାଦ୍ୟଦ୍ରବ୍ୟକୁ ପକ୍ୱ କରାଏ ଓ ତହିଁରୁ ଉତ୍ପନ୍ନ ରସ, ବାୟୁ, ପିତ୍ତ, କଫ, ମୂତ୍ର ଓ ପୁରୀଷ ଆଦିକୁ ପୃଥକ୍ କରେ—ହି. ଶ]

୬ । ଲବଣଯୁକ୍ତ ଜୀର୍ଣ୍ଣକାରକ ଔଷଧ; ହଜମୀ ଔଷଧ (ହି. ଶ)—6. Digestive saline medicine.

ସଂ. ବିଣ—୧ । ରନ୍ଧନକାରୀ—1. Cooking.

୨ । ଯାହା ପରିପକ୍ୱ କରାଏ—2. Causing ripeness or maturity; maturing.

୩ । ଜୀର୍ଣ୍ଣକାରକ—3 Digestive; tonic.

୪ । କ୍ଷୁଧାବର୍ଦ୍ଧକ—4. Appetising.

**ପାଚକଡ଼ା**—ପ୍ରାଦେ. (ଗଡ଼ଜାତ) ବି—ପାଞ୍ଚକୋଡ଼ମେଇ(ଲତା) (ଦେଖ) Pāchakarda Pānchakordamei (creeper) (See) (ପାଚକଡମା, ପାଚକଡ଼ମେଇ, ପାଚକୋଡମା(ମ୍ବା, ମେ, ମ୍ବେ)ଇ—ଅନ୍ୟରୂପ)

**ପାଚକ ପାଣି**—ପ୍ରାଦେ. (ପୁରୀ) ବି. (ସଂ. ପାଚକ+ପାନୀୟ)—Pāchaka pāni ଭାଙ୍ଗ; ପତ୍ର, ମରିଚ ଓ ମସଲା ଘୋଟାପାଣି; ସିଦ୍ଧି—Bhāng; Ganja leaves and black pepper and other spices pasted together and mixed with water and made into a drink.

**ପାଚଣ**—ଦେ. ବି. (ସଂ. ପ୍ରାଜନ)—ଗବାଦି ତାଡନ ଯଷ୍ଟି; ବଳଦ Pāchaṇa ପ୍ରଭୃତିଙ୍କୁ ଅଡାଇବା ନିମନ୍ତେ ବ୍ୟବହୃତ କ୍ଷୁଦ୍ରବାଡ଼ି; ପାଚନ, ପାଁଚନୀ ଠେଙ୍ଗୁଣୀ—A cattle-driving stick; a goad.
पैना

ଅତି ଚଞ୍ଚଳ ତ ଅଶ୍ୱକୁ ସେ ଘୋଡାଏ
ପାଚଣ ବାଡ଼ି ବାଜନ୍ତେ ତଡାଇ ବାଏ । କୃଷ୍ଣସିଂହ. ମହାଭାରତ ଦ୍ରୋଣ ।

**ପାଚନ**—ସଂ. ବି. (ପଚ୍ ଧାତୁ ଣିଚ୍=ପାଚି ଧାତୁ=ପରିପାକ କରାଇବା+Pāchana କର୍ତ୍ତୃ. ଅନ)—୧ । ବିବିଧ ଔଷଧର କ୍ୱାଥ, ଔଷଧସିଦ୍ଧଜଳ—1. A decoction of several ingredients; infusion of drugs.

[ଦ୍ର—ଔଷଧ ଦ୍ରବ୍ୟମାନଙ୍କୁ ୧୬ ଗୁଣ ପାଣିରେ ମୃଦୁ ଅଗ୍ନିରେ ସିଝାଇ ତହିଁର ଏକଚତୁର୍ଥାଂଶ ଜଳ ଥାଉଁ ଥାଉଁ ତାହାକୁ ନିଆଁରୁ ଓହ୍ଲାଇ ଯେଉଁ ପାଣି ବା କ୍ୱାଥ ଛାଣି ନିଆଯାଏ ତାକୁ ପାଚନ ବୋଲାଯାଏ । ବୈଦ୍ୟକ ଗ୍ରନ୍ଥମାନଙ୍କରେ ୩୦୦ରୁ ଅଧିକ ପାଚନର ବ୍ୟବସ୍ଥା ଅଛି—ହି. ଶ ।]

୨ । ଅଗ୍ନି—2. Fire

୩ । ଅମ୍ଳ ରସ (ହେମଚନ୍ଦ୍ର)—3. Acid.

୪ । ରକ୍ତୈରଣ୍ଡ (ରାଜନିର୍ଘଣ୍ଟ)—4. The red Ricinus; the red variety of castor seed plant.

୫ । ଖଟା ସ୍ୱାଦ, ଆମ୍ଳିକାପଣ—5. Acidity; sourness. (Apte).

୬ । ରୋଷେଇ କରିବା କର୍ମ, ରନ୍ଧନ—7. Act of cooking or baking.

୭ । ଫଳ ଆଦିକୁ ପକ୍ୱ କରିବା କର୍ମ—7. Act of ripening.

୮ । ବଥ ଆଦିକୁ ପଚାଇବା କର୍ମ—8. Act of extracting pus etc. from a boil; causing suppuration.

୯ । ଘାଆ ଆଦିକୁ ଶୁଖାଇବା କର୍ମ (ସୁଶ୍ରୁତ)—9. Causing a wound to close by means of styptic. (M. W.)

୧୦ । ଘାଆ ଆଦିକୁ ଶୁଖାଇବା ଔଷଧ ବା ପ୍ରୟୋଗ—10. A stiptic for closing a wound; an astringent medicine. (Apte).

୧୧ । ପ୍ରାୟଶ୍ଚିତ୍ତ—11 Penance, expiation. (M. W.)
୧୨ । ପେଟ ମଧ୍ୟରେ ଖାଦ୍ୟାଦ୍ୟ ଜୀର୍ଣ୍ଣ ହେବା ପ୍ରକ୍ରିୟା—
12. The process of digestion of food.
୧୩ । ଜୀର୍ଣ୍ଣକାରକ ଔଷଧ—13. Digestive medicine.
୧୪ । ଯାହା ଅନ୍ୟ ପଦାର୍ଥକୁ ମିଳେଇ ଦିଏ—
14 A dissolvent. (M. W.)
ସଂ. ବିଣ.—୧ । ଜୀର୍ଣ୍ଣକାରକ, ହଜମୀ—1. Digestive.
୨ । ରନ୍ଧନକାରୀ—2. Cooking.
୩ । ଯାହା ଫଳ ଆଦିକୁ ପକ୍ୱ କରାଏ—3 Ripening.
୪ । ଯାହା ନରମ କରେ—
4. Softening; relaxing. (M. W.)
୫ । ଯାହା ବଥ ଆଦିରେ ପୂଜ ଜନ୍ମାଏ—
5. Suppurative. (M. W.)
୬ । ଆମ୍ବିଲା, ଖଟା—6. Sour (Apte).
ପ୍ରାଦେ. (ବସ୍ତର)—ବି.—ପାଞ୍ଚଣ, ଗବାଦ୍ ତାଡ଼ନ ଦଣ୍ଡ—
Cattle-driving stick.

**ପାଚନକ**—ସଂ. ବି. (ପାଚ ଧାତୁ=ପରିପାକ କରାଇବା + କର୍ତ୍ତୃ. ଅନ+କ; ଏହା ସ୍ୱର୍ଣ୍ଣାଦିକୁ ପାକ କରାଏ)—
Pāchanaka
୧ । ସୋହାଗା—1. Borax.
୨ । ପାଚନ ୯।୧୦।୧୩।୧୪ ( ଦେଖ )
2. Pāchana 9, 10, 13, 14 ( See )
୩ । ଏକ ପ୍ରକାର ପାନୀୟ ଖାଦ୍ୟ—
3. A sort of diet drink. (M. W.)

**ପାଚନିକା**—ସଂ. ବି. ( ପାଚନ+ଇକ+ଆ, କିମ୍ବା ପାଚନକ + ଆ )—
Pāchanikā ୧ । ରନ୍ଧନ—1. Cooking.
୨ । ପକ୍ୱ କରାଇବା—1. Maturing; ripening.

**ପାଚନୀ**—ସଂ. ବି. ସ୍ତ୍ରୀ. (ପାଚନ+ସ୍ତ୍ରୀ. ଈ)—ହରିତକୀ; (ମେଦିନୀ)—
Pāchanī Myrobalan.

**ପାଚନୀୟ**—ସଂ. ବିଣ. (ପଚ୍ ଧାତୁ+କର୍ମ. ଅନୀୟ)—
Pāchanīya ପାଚ୍ୟ, ଯାହା ପାକ କରି ଯାଇପାରେ—
To be cooked, digested, matured or ripened.

**ପାଚୟିତା**—ସଂ. ବିଣ. ପୁଂ. ( ପଚ୍ ଧାତୁ ଣିଚ୍=ପାଚ ଧାତୁ+କର୍ତ୍ତୃ. ତୃ, ପାଚୟିତୃ ଶବ୍ଦ, ୧ମା. ୧ବ )—
Pāchayitā
(ପାଚୟିତ୍ରୀ—ସ୍ତ୍ରୀ) ୧ । ରନ୍ଧନକାରୀ—1. Cooking.
୨ । ଜୀର୍ଣ୍ଣକାରକ—2 Digesting.
୩ । ପକ୍ୱକାରୀ—3. Ripening; maturing.

**ପାଚଲ**—ସଂ. ବିଣ. (ପଚ୍ ଧାତୁ ଣିଚ୍+ଅଲ)—
Pāchala ୧ । ରନ୍ଧନକାରୀ—1. Cooking.
୨ । ଯାହା ପଚାଏ—2. Ripening.
୩ । ଜୀର୍ଣ୍ଣକାରକ—3. Digestive.
ସଂ. ବି—୧ । ରୁଶେୟା—1. Cook.
୨ । ଅଗ୍ନି—2. Fire.
୩ । ବାୟୁ—3. Wind.

୪ । ଅଗ୍ନିର ବିନା ସାହାଯ୍ୟରେ ପକ୍ୱ ଖାଦ୍ୟ ଦ୍ରବ୍ୟ—
4. A thing dressed without the aid of fire (Apte).

**ପାଚଲ**—ଦେ. ବି (ସଂ. ପଚ୍ ଧାତୁ)—ବ୍ୟଞ୍ଜନବିଶେଷ, ଘାଣ୍ଟିଆ ଡାଲଣା—
Pāchala A kind of vegetable curry, hodge podge.
ଘଣ୍ଟ सतँजा, सतनजा
ଭଜା ସାକଉଦ୍ଧ ମହୁରା; ଆମ୍ବିଳ, ପାଚଲ ବେଶର ।
ଗମଦାମ, ଦାଢ଼ଂଭାଇଙ୍କ ।

**ପାଚଲା (ଇତ୍ୟାଦି)**—ଦେ. ବିଣ (ସଂ. ପକ୍ୱ)—ପାକଲା ଇତ୍ୟାଦି (ଦେଖ)
Pāchalā (etc) Pākalā etc (See).
ପାକା पका
ଖଣ୍ଡ ହେଲେ ପାଚଲ ଘର ଦେଖାଇବ ।
କୃଷ୍ଣସିଂହ ମହାଭାରତ ଅଦି ।

**ପାଚୁ**—ଦେ. ବି (ସଂ. ପଶ୍ଚାତ୍; ପ୍ରା. ପଚ୍ଛା)—୧ । ପାଛ, ନିତମ୍ବ; ପିଚୁ—
Pāchu 1. Buttocks.
ପାଛା पाछा,पीछा
୨ । ପାଚୁପାଡ଼ (ଦେଖ)
2. Pāchupāḍ (See).

**ପାଚୁପାଡ଼**—ଦେ. ବିଣ (ସଂ. ପଶ୍ଚାତ୍+ପ୍ରାନ୍ତ, ବଙ୍ଗଳାରୁ ଅନୁକୃତ )—
Pāchupāḍ ଯେଉଁ ଶାଢ଼ୀ ଲୁଗାର ପିଚୁରେ ପଡ଼ିବା ଅଂଶରେ ଗୋଟିଏ ରଙ୍ଗିନ୍ ପଟି ଥାଏ—
ପାଛାପେଡ଼େ तीनपढ़िया
(ପାଚୁପାଡ଼ି, ପାଚୁପାଡ଼ିଆ—ଅନ୍ୟରୂପ) (a cloth for female wear) Having a broad stripe lengthwise about the middle of it.
ପାଛାପେଡ଼େ କାପଡ଼
तिनपढ़ीया
ଦେ. ବି—ଯେଉଁ ଶାଢ଼ୀର ମଝିରେ ଗୋଟିଏ ରଙ୍ଗିନ୍ ପଟି ଥାଏ—
A cloth for female wear having a broad coloured stripe running lengthwise about the middle.
[ଦ୍ର—ଏପରି ଶାଢ଼ୀ ବଙ୍ଗ ଦେଶରେ ଚଳେ ଓ ବଙ୍ଗାଳୀଙ୍କ ଦେଖାଦେଖି ଓଡ଼ିଆଣୀଙ୍କ ମଧ୍ୟରେ ଚଳିଅଛି । ଲୁଗାର ଯେଉଁ ଅଂଶ ସ୍ତ୍ରୀମାନଙ୍କ ପିଚୁ ଉପରେ ରହେ (ଅର୍ଥାତ୍ ଲୁଗାର ଚଉଡ଼ା ବାଗରେ ଏକ ପାଖରେ ୬ ପଣ ଓ ଅନ୍ୟ ପାଖରେ ଲୁଗାର ଦଣ୍ଡପଣ ଥାଏ) ସେହି ଅଂଶରେ ଲୁଗାର ଲମ୍ବେ ଲମ୍ବେ ଉଭୟ ପାଖର ଧଡ଼ି (ପାଡ଼୍) ଆକୃତିରେ ଗୋଟିଏ ଲମ୍ବ ପଟି ବୁଣା ଯାଇଥାଏ । ଉକ୍ତ ଶାଢ଼ୀକୁ ପିନ୍ଧିଲାବେଳେ ଉକ୍ତ ପଟିଟି ସ୍ତ୍ରୀଲୋକଙ୍କ ପିଚୁ ଉପରେ ପଡ଼ିଥାଏ । ବିହାର ଅଞ୍ଚଳରେ ମାଇପେ ପିନ୍ଧିବା ଶାଢ଼ୀର ମଝିରେ ଆଉ ଗୋଟିଏ ଧଡ଼ି ଭଳି ପଟିଥାଏ (ଦୁନ୍‌ପଡ଼ିୟା) ଓ କେତେକ ଶାଢ଼ୀରେ ଦୁଇପାଖର ଧଡ଼ିକୁ ଛାଡ଼ି ମଝିରେ ତିନି ପଟି ଥାଏ (ତିନ୍ ପଡ଼ିୟା) ।

**ପାଚି**—ଦେ. ବି—(ସଂ. ପାକ)—୧ । ପାଳକ; ଭଲ ଫସଲ ଅମଦାନି ହେବାର ଅବସ୍ଥା ବା ସମୟ—1. The state or season of a bumper crop.
Pāchi
୨ । ଫସଲ—2. Crop; harvest.

**ପାଚିଆ**—ଦେ. ବି. (ସଂ. ପିଚ୍ଛ)—୧ । ବାଉଁଶ ପାତିଆ, ତାଳ ବା ଖଜୁରି ପତ୍ର, କାଇଁଶ ଆଦିରେ ବୁଣା ଛୋଟ ଟୋକେଇ;
Pāchia
ପେଡେ, ପେଥେ; पथिया ବାଉଁଶିଆ—1 Small wicker-work basket.

**ପାଚିଆ ବସାଦହି**—ଦେ. ବି—ପାଛିଆ ବସାଦହି—(ଦେଖ)
Pāchiā basādahi Pāchhiā basā dahi (See).

**ପାଚିକା**—ସଂ. ବି. ସ୍ତ୍ରୀ—(ପାଚକ+ସ୍ତ୍ରୀ.ଆ)—ସୂପକାରିଣୀ; ଯେଉଁ ସ୍ତ୍ରୀଲୋକ
Pāchikā ପାକ କରେ, ରନ୍ଧନକାରିଣୀ—A female cook.
ସଂ. ବିଣ. ସ୍ତ୍ରୀ—ପାଚକର ସ୍ତ୍ରୀଲିଙ୍ଗ—Feminine of Pāchaka.

**ପାଚିକାଭାର୍ଯ୍ୟ**—ସଂ. ବିଣ. ପୁଂ (ବହୁବ୍ରୀହି, ପାଚିକା+ଭାର୍ଯ୍ୟା)—
Pāchikābhārjya Having a cook for a wife. (M.W).

**ପାଚିତ**—ସଂ. ବିଣ. (ପଚ୍ ଧାତୁ ଣିଚ୍+କର୍ମ. ତ)—
Pāchita ୧ । ଭଜା ହୋଇଥିବା—1. Roasted.
୨ । ରନ୍ଧା ହୋଇଥିବା—2. Cooked.
୩ । ଜୀର୍ଣ୍ଣ କରି ଯାଇଥିବା—3 Digested.

**ପାଚିବା**—ଦେ. କ୍ରି. (ସଂ. ପଚ୍ ଧାତୁ)—୧ । (ଫଳାଦି) ପକ୍ୱ ହେବା—
Pāchibā 1. (a fruit) To ripen.
ପକା ୨ । (କେଶ) ଶୁକ୍ଳ ହେବା—
पकना 2. (the hair) To become grey.
୩ । (ଦେହ) ପ୍ରହାର ବା ଅତ୍ୟଧିକ ପରିଶ୍ରମ ଯୋଗୁଁ ବ୍ୟଥାଯୁକ୍ତ ହେବା—
3. (the body) To become painful for over-exertion or beating.
୪ । (ବ୍ରଣ) ପୂଜେଇବା—4. (a boil) To suppurate.
୫ । (ନିଆଁରେ ଧାତୁଆଦି) ଲାଲ ଦେଖିବା—
5. (a bit of metal) To become red-hot.
୬ । (ଗାମୁଛା, ଦାନ୍ତ) ରଞ୍ଜିତ ହେବା—
6. (napkin, teeth) To become tinged red.
୭ । ଅତି ବୃଦ୍ଧ ହେବା—7. To become very old.
୮ । ଫଳରେ ପରିଣତ ହେବା—8 To result in.
୯ । (କଉଡ଼ି ବା ପଶାଖେଳରେ ଦାନ ପଡ଼ିବା ଦ୍ୱାରା) ଖେଳାଳିର ସାର ସବୁ ଘରଯାକ ବୁଲି ଶେଷ ମୁଣ୍ଡରେ ପହଞ୍ଚିବା—
9. (the pieces in a game of dice or cowrie) To succeed in reaching the destination of the movements.
୧୦ । (ଲକ୍ଷଣାର୍ଥ) ଜମା ହେବା, ଏକତ୍ର ହେବା; ଜମିବା—
10. To accumulate.

କେବେ ପୁଣ୍ୟ ଫଳ ପାଚିଥିଲା—କବିସୂର୍ଯ୍ୟ, ସଙ୍ଗୀତ ।

୧୧ । (ପୋଡ଼ା ଇଟା ଓ ହାଣ୍ଡି) ଉତ୍ତମରୂପେ ପୋଡ଼ିହେବା—
11. (brick or earthen pot) To be well-burnt.
୧୨ । କ୍ରମଶଃ ବୃଦ୍ଧି ପାଇବା—
12. To grow gradually.
୧୩ । ଭବିଷ୍ୟତ ପାଇଁ ସଞ୍ଚିତ ହେବା—
13. To be in store for future.
(ଯଥା—ତୋ କପାଳରେ ଗୁଡ଼ାଏ ମାଡ଼ ଗାଳି ପାଚିଲାଣି ।)

**ପାଚି(ଚେ)ରି**—ଦେ. ବି—(ସଂ. ପ୍ରାଚୀର)—୧ । ବେଢ଼ା—
Pāchi(che)ri 1. Compound; rampart.
ବୃନ୍ଦାବନ ଦେଲା ଯୁଗ ର ପାଚେରି । ରାଧାନାଥ, ଚନ୍ଦ୍ରଭାଗା ।
୨ । ମାଟି ପଥର ବା ଇଟା ନିର୍ମିତ ଉଚ୍ଚ
पाचील, पाँचिल, पाँचिर କାନ୍ଥ—High wall.
परकोटा, चहर दिवारी ଘର ଚାରିପାଖେ ପଡ଼ିଛି ପାଚେରି—କୃଷ୍ଣସିଂହ, ମହାଭାରତ, ସଭା ।

**ପାଚିଲା** (ଇତ୍ୟାଦି)—ଦେ. ବିଣ—(ସଂ. ପକ୍ୱ)—ପାକଲା ଇତ୍ୟାଦି
Pāchilā (etc) (ଦେଖ)—Pākalā etc. (See)
(କଣ୍ଟା—ବଙ୍ଗଳା) पाका पक्का ଅଳପ ଢ଼ାସ ମଧୁରଙ୍କ
ଓଷ୍ଠ ପାଚିଲା ଫଳ ଜମ୍ବୁ—ଜଗନ୍ନାଥ, ଭାଗବତ ।

**ପାଚିଲା କୋଡମେଇ ଫଳ**—ଦେ. ବି ଚଣାଫଳ—(ହରେକୃଷ୍ଣ ଦ୍ରବ୍ୟ-
Pāchilā kordamei phala ଗୁଣ) ଗହମ କାକୁଡ଼ି (ଦେଖ)—
Gahama kākurdi (See)

**ପାଚିଲାର**—ଗ୍ରା. (ପ୍ରାଚୀନ ପଦ୍ୟ) ବିଣ—ପାଚିଲା; ପକ୍ୱ—
Pāchilāra (ପାଚିଲାର—ଅନ୍ୟରୂପ) Ripe.
ସମୟ ଜାଣିଲି ଦାସ ପାଚିଲାର ଫଳ । ପ୍ରାଚୀ. ଶ୍ରୀଗୁରୁଭକ୍ତି ଗୀତା ।

**ପାଚୀ**—ଦେ. ବି— ଔଷଧ ଲତାବିଶେଷ—
Pāchi A kind of medicinal creeper.
ସଂ. ପର୍ଯ୍ୟାୟ—ମରକତପର୍ଣ୍ଣୀ, ହରିତ ଲତା, ହରିତ ପତ୍ରିକା, ପତ୍ରୀ, ସୁରଭି, ମାଲାରିଷ୍ଟା, ଗାରୁତ୍ମତ, ପତ୍ରିକା ।
पाचि, पचे
[ଦ୍ର—ବୈଦ୍ୟକ ମତରେ ଏହା କଟୁ, ହୃଦ୍ୟ, ଉଷ୍ଣ ଓ କଷାୟ । ବାତଦୋଷ ଓ ଗ୍ରହଭୂତବିକାରନାଶୀ, ତ୍ୱକ୍‌ଦୋଷପ୍ରଶମକ, ବ୍ରଣରେ ହିତକର; (ରାଜନିର୍ଘଣ୍ଟ) । ]

**ପାଚେଲି**—ଦେ. ବି—ପାଚଲ (ଦେଖ)—
Pācheli Pāchala (See)
ଦେ. ବିଣ—(ସଂ. ପାଞ୍ଚାଲୀ)—ଏକ ଧର୍ମରେ ନିଷ୍ଠା ନ ରଖି ଯାହାଆଡ଼େ ମନ ବୁଲାଇବା (ଧର୍ମବିଶ୍ୱାସ)— Wavering; hesitant (religious belief); having no firm faith.
ସ୍ୱେଚ୍ଛାନ୍ତ ଭୃତ୍ୟ ବରିଅଛି, ପାଚେଲି ଧର୍ମେ ସେ କହିବ, ତାହାଙ୍କ ଚନ୍ଦ୍ରୁଁ ଉପଦେଶ, ସେଜନ ଦରବ ବିଶ୍ୱାସ । ଭୂପତି, ପ୍ରେମପଞ୍ଚାମୃତ ।

**ପାଚ୍ଛା**—ବୈଦେ. ବି—ପାଇଛା (ଦେଖ)—
Pāchchhā Pāichhā (See)

**ପାଚ୍ୟ**—ସଂ. ବିଣ—(ପଚ୍ ଧାତୁ+କର୍ତ୍ତୃ. ଯ)—୧ । ପରିପାକ ଯୋଗ୍ୟ,
Pāchya ଜୀର୍ଣ୍ଣ ହେବା ଉପଯୁକ୍ତ—1 Digestible.
୨ । ରନ୍ଧା ହେବାର ଯୋଗ୍ୟ—
2. Fit to be cooked or roasted.
୩ । ସିଝିବା ଯୋଗ୍ୟ—3. Fit to be boiled.

**ପାଛ**—ବୈଦେ. ବି—(ଫା. ପାଦ୍ ସାହ୍)—ପାଇଛା (ଦେଖ)—
Pāchha Pāichhā (See)
ପାଚ୍ଛା } ଅନ୍ୟରୂପ
ପାଶ୍ଚା }
ଦେ. ବି—ପାଖ ଇତ୍ୟାଦି (ଦେଖ)—
Pāchā etc (See)

**ପାଛୁଆ**—ଦେ. ବି—ପାଚିଆ (ଦେଖ)—
Pāchhia Pāchia (See)

ଯାଁଶୁଯାଁଷ୍ଟି ବୁଇଖଣ୍ଡ ଭୂଟରେ ବାରଶତ ଲୋକଙ୍କୁ ଖିଆଇଲେ, ପୁଣି ଗୁରୁ ପାଛିଆ ବଳ ପଡ଼ିଲା — ଫକୀର ମୋହନ ଛମାଣ ଆଠଗୁଣ୍ଠ ।

**ପାଛୁଆ ବସାଦହି**—ଦେ. ବି—୧ । ପାଚିଆରେ ପିଠୋଉ ବୋଳ ତାର ରନ୍ଧ୍ରସବୁ ବନ୍ଦ କରି ସେଥିରେ ଦୁଧକୁ ମଞ୍ଜ ଦେଇ ଜମାଇ କରାଯିବା ଗାଢ଼ ବସାଦହି—1. Milk curdled in a basket made impervious by smearing it with paste.
Pāchhia basādahi
ପେତେଦଁଇ
**पथियाकी दहा**

[ଦ୍ର—ପୁରୀ ଜଗନ୍ନାଥ ମାଣିକପାଟଣାରେ ଏପରି ଦହି କରାଯାଏ ।]

୨ । ବସାଦହିକୁ ପାଚିଆରେ ଅଜାଡ଼ି ପାଚିଆର ଛିଦ୍ର ବାଟେ ତହିଁର ଜଳୀୟ ଅଂଶ ଝରିଗଲେ ଯେଉଁ ଗାଢ଼ ଦହି ରହେ—2. Thick curd prepared by putting curd in a basket and letting the watery portion ooze out of it

[ ଦ୍ର—ଏପରି ଦହି ହୁଦୋଳ ଆଦି ଗଡ଼ଜାତରେ ତିଆରି ହୁଏ, ଏମନ୍ତ କି, ଏ ଦହିକୁ କାଠଚେର ଠୋଲାରେ ରଖି ବହୁ ଦୂର ଦେଶକୁ କିଆ ଯାଇପାରେ । ]

**ପାଛୁ**—ପ୍ରାଦେ (ମେଦିନୀପୁର) ଅ (ତୁଳ. ବଂ. ପାଛୁ)—ପଶ୍ଚାତ୍, ପଛରେ—
Pāchhu After; behind

**ପାଛୁଡ଼ା**—ଦେ. ବି—[ସଂ. ପକ୍ଷପଟ, ପ୍ରା. ପଚ୍ଛଡ (ହି. ଶବ୍ଦସାଗର); ସଂ ପ୍ରଚ୍ଛଦ. ତୁଳ. ପା—ପାଛଡ଼ା]—୧ । ଉତ୍ତରୀୟ; ଗୁଦଡ଼ି; ବହିର୍ବାସ—1. Sheet; scarf.
Pāchhurdā
ପାଛୁଡ଼ି, ପାଛୋଡ଼ା, ପାଛୋଡ଼ି } ଅନ୍ୟରୂପ
ପାଛଡା ପାଛଡ଼ୀ
**पिछौरा**

ପାଛୁଡ଼ାରେ ପୂରଇ ଅଣ୍ଟାରେ ବାନ୍ଧିଲେ,
କାନ୍ଧେ ଛତା ଧରି ସେ ଯାହା ଘରେ ଗଲେ ।
କୃଷ୍ଣସିଂହ, ମହାଭାରତ ବନ ।

[ଦ୍ର—ଲୁଗାକୁ ପିନ୍ଧା ଓ ଗୁଦଡ଼ିକୁ ପାଛୁଡ଼ା କହନ୍ତି ।].

୨ । (ସଂ. ପ୍ରସ୍ଫୋଟନ + ତାଡ଼ନ) ପାଛୁଡ଼ିବା—2. Winnowing.
ପାଛୋଡ଼ା, ପାଛଡ଼ା, ପାଛୁଡ଼ି } ଅନ୍ୟରୂପ
**पछोड़ना, फटकना** ଦେ. ବିଣ—କୁଲାଦ୍ୱାରା ପରିଷ୍କୃତ ହୋଇଥିବା (ଶସ୍ୟାଦି)—Winnowed.

**ପାଛୁଡ଼ିବା**—ଦେ. କ୍ରି—( ସଂ. ପ୍ର + ସ୍ଫୁଟ୍ ଧାତୁ; ପ୍ରସ୍ଫୋଟନ = ସୂର୍ପ ବା କୁଲା ଓ ସୂର୍ପଚାଳନ )—କୁଲାଦ୍ୱାରା ଧାନ ଚାଉଳ ଆଦିରୁ ତୁଷ ଓ ଆବର୍ଜନା ଆଦି ଦୂର କରିବା—To winnow; to remove husks from grains with the help of the winnowing fan.
Pāchhurdibā
(ପାଛୋଡ଼ିବା—ଅନ୍ୟରୂପ)
पाछड़ा
**फटकना, पछोड़ना**

ପ୍ରାଦେ. (ଗଞ୍ଜାମ)—କ୍ରି.—ବଳୁଆ ଯୁବକମାନେ ଶଗଡ଼ ଚକର ତୁମ୍ବକୁ ଛାତି ଲକ୍ଷ୍ୟ ପାଖେ ଲଗାଇ ରଖି ଶଗଡ଼ର ପହିକୁ ଦୁଇ ହାତରେ ଧରି ତାକୁ କୁଲା ପାଛୁଡ଼ିବା ପରି ଉପରକୁ ଓ ତଳକୁ ଚାଳନ କରି ବ୍ୟାୟାମ କରିବା—To move the rim of a cart-wheel up and down with the hands like a winnowing fan by fixing its hub at one's navel.

**ପାଛୋଟି ଆଣିବା**—ଦେ କ୍ରି.—ପାଛୋଟିବା—୨ (ଦେଖ)
Pāchhoti ānibā Pāchhotibā 2 (See)

ସମ୍ବନ୍ଧୀଙ୍କୁ ପାଛୋଟି ଆଣନ୍ତୁ '
ଫକୀରମୋହନ ଛମାଣ ଆଠଗୁଣ୍ଠ ।

**ପାଛୋଟି ଅସିବା**—ଦେ. କ୍ରି—ଆଗନ୍ତୁକ ମାନନୀୟ ବ୍ୟକ୍ତି କଦଷ୍ଟ ସ୍ଥାନରେ ପହଞ୍ଚିବା ପୂର୍ବରୁ ତାଙ୍କୁ ସମ୍ମାନପ୍ରଦର୍ଶନାର୍ଥ ଖଣ୍ଡିଦୂରକୁ ଯାଇ ଭେଟିବା—To meet an honoured incomer at some distance before he arrives at a place.
Pāchhoti āsibā

ତୃମ୍ଭଙ୍କୁ ପାଛୋଟି ଅସ୍ତୁଛନ୍ତି କ ଆଦରେ—ମଧୁସୂଦନ କବିତାବଳୀ ।

**ପାଛୋଟି ଦେବା**—ଦେ. କ୍ରି—ପାଛୋଟିବା—୧ (ଦେଖ)—
Pāchhoti debā Pāchhotibā 1 (See)

**ପାଛୋଟିବା**—ଦେ. କ୍ରି —( ସଂ. ପ୍ରତ୍ୟୁଦ୍ଗମନ; ପ୍ରତ୍ୟୁଦ୍‌ବ୍ରଜନ; ତୁଳ. ସଂ. ପ୍ରସ୍ଥାପନ)—୧ । ବଳାଇ ଦେବା, ବିଦାୟ ଦେବା ଜମନ୍ତେ ବନ୍ଧୁ ବା ମାନ୍ୟ ବ୍ୟକ୍ତିଙ୍କ ସଙ୍ଗରେ କଛିଦୂର ବଳାଇ ଦେବାକୁ ଯିବା; ପାଛୋଟି ଯିବା—1. To accompany a departing honoured guest for some distance to see him off.
Pāchhotibā
**आग बाड़ान**

୨ । ଆଗନ୍ତୁକ ବନ୍ଧୁ ବା ମାନ୍ୟ ବ୍ୟକ୍ତି ଆପଣା ନିକଟରେ ପହଞ୍ଚିବା ପୂର୍ବରୁ ଖଣ୍ଡିଦୂରକୁ ଯାଇ ତାଙ୍କୁ ସାଙ୍ଗେ ସାଙ୍ଗେ ଆଣିବା—2. To advance to some distance to meet an incoming honoured guest and accompany him to the destination.

ପାଛୋଟି ଗଣ୍ଡେ ଦୂର ଯାଇ, ସାଷ୍ଟାଙ୍ଗେ ଦଣ୍ଡବତ ହୋଇ ।
ଭୂପତି, ପ୍ରେମପଞ୍ଚାମୃତ ।

**ପାଛୋଟି ଯିବା**—ଦେ. କ୍ରି.—ପାଛୋଟିବା (ଦେଖ)
Pāchhoti jibā Pāchhotibā (See)

ପାଛୋଟି ଯାଇ ଉର୍ବଶୀଙ୍କି ସେ ଭେଟିଲେ ।
କୃଷ୍ଣସିଂହ. ମହାଭାରତ, ବନ ।

**ପାଛୋଣି**—ଦେ. ବି.—ଏକପ୍ରକାର ବାସନ (ନନ୍ଦେ)—
Pāchhoni A kind of utensil.

ଗଡ ସୁନାଗଢିଆ ନାଲୁଅ ଚୋରି କମ,
ଭୁଡ କ କଂସା ଥାଳ ପାଛୋଣି ପଲମ—ପୀତାମ୍ବର. ନୃସିଂହପୁରାଣ ।

**ପାଜ**—ସଂ. ବି.—ବଳ (ଉଣାଦିକୋଷ)—
Pāja Strength.

**ପାଜମ୍**—ବୈଦେ. ବି.—ପାଉଁଜର (ଦେଖ)
Pājam Pāunjari (See)
ପାଁଜମ୍, ପାଜେମ୍, ପାଁଜେମ୍, ପାଜେବ୍, ପାଁଜେବ୍, ପାଁଜ(ଜି)ର, ପାଁଜୁର (ହି) } ଅନ୍ୟରୂପ

**ପାଜସ**—ସଂ. ବି.—(ସଂ. ପଜ୍ ଧାତୁ = ଦୀପ୍ତି ପାଇବା + ଭାବ ଅସ୍)—
Pājasa ୧ । ଦୃଢ଼ତା; ବଳ—
1. Firmness; vigour; strength. (M. W.)
୨ । ଉଜ୍ଜ୍ୱଳତା—
2. Brightness; glitter; sheen. (M. W.)
୩ । ସ୍ୱର୍ଗ ଓ ମର୍ତ୍ତ୍ୟ—3. Heaven and earth (M. W.)
୪ । ଖାଦ୍ୟ ଦ୍ରବ୍ୟ—4 Food. (M. W.)

**ପାଜସ୍ୟ**—ସଂ. ବି. (ପାଜସ+ଯ)—୧ । ପ୍ରାଣୀର ପେଟ ଅଂଶ—
Pājasya 1. The region of the belly of an animal (M W.)

୨ । ଦେହର ପାର୍ଶ୍ୱ, କଡ଼ (ହ୍ୱି ଶ.)—
2. Flank; side of the body.

**ପାଜାମା**—ବୈଦେ ବି.—(ଫା. ପାୟଜାମା)—୧ । ପାଇଜାମା (ଦେଖ)
Pājāma 1. Pāijāmā (See)

ପୋଷାକ ବନ୍ଧାଣ ଚିଲ ପାଜାମା ।
ଫକୀରମୋହନ ଲ୍ଛମଣଅଠଗୁଣ୍ଡ ।

୨ । (ଫା. ପାଁଜେବ)—ପାଉଁଜର (ଦେଖ)—
2. Pāuñjari (See)

**ପାଜି**—ଦେ. ବିଣ.—(ସଂ. ପାପ୍ୟ=ନୀଚ; ଘୃଣ୍ୟ, ହୀନ)—୧ । (ଗାଳରେ ବ୍ୟବହୃତ) ନୀଚ—1. Low; mean, vile.
Pāji

ପାଜୀ **पाजी** ୨ । ଦୁଷ୍ଟ, ଖଳ—2. Wicked; wanton.

ମାର ପାଜି ମଙ୍ଗା ବଳ ଭଙ୍ଗ କରିବାକୁ । କବିସୂର୍ଯ୍ୟ• ସଙ୍ଗୀତ ।

୩ । ପରର ଅନିଷ୍ଟକାରୀ ବ୍ୟକ୍ତି—
3 Bent on injuring others.

**ପାଜିକ**—ସଂ. ବି.—ଛଞ୍ଚାଣ—
Pājika Falcon (M. W )

**ପାଜିଖୋର୍**—ଦେ. ବିଣ.—ପାଜି (ଦେଖ)
Pājikhor Pāji (See)

**ପାଜିଗିରି**—ବୈଦେ. ବି.—(ସଂ. ପାପ୍ୟ+ଫା. ପ୍ରତ୍ୟୟ ଗିରି)—
Pājigiri ୧ । ପାଜି ବା ନୀଚ ଲୋକର ବ୍ୟବହାର—
1. Meanness; vileness.

୨ । ଦୁଷ୍ଟତା; ଖଳତା—2. Wickedness.

ପାଜୀପାନା, ପେଜେମି **पाजीपन, पाजीगिरि**

[ପାଜିପଣ, ପାଜିପଣିଆ(ଆଁ)—ଅନ୍ୟରୂପ]

**ପାଜିରି**—ବୈଦେ. ବି.—ପାଉଁଜର (ଦେଖ)
Pājiri Pāuñjari (See)

**ପାଜୁ**—ପ୍ରାଦେ. (ସିଂହଭୂମ) ବି.—(ଭୁଲ. ବ. ପାଗୁଁଲ୍)—ପାଗୁଳି;
Pāju ରୋମନ୍ଥ—Ruminating; chewing the cud.

**ପାଞ୍ଚ୍**—ପ୍ରାଦେ. (ସମ୍ବଲପୁର)— ବି. ଓ ବିଣ. (ସଂ. ପଞ୍ଚନ୍ )—
Pānch ପଞ୍ଚ, ପାଞ୍ଚ—Five.

**ପାଞ୍ଚ୍ ପାଲି**—ପ୍ରାଦେ. (ସମ୍ବଲପୁର) ବି—(ସଂ. ପଞ୍ଚପଲ୍ଲି)—ଗ୍ରାମସମୂହ;
Pānch-pāli ଗ୍ରାମପୁଞ୍ଜ—A union or number of villages.

**ପାଞ୍ଚ**—ଦେ. ବି. ଓ ବିଣ.—(ସଂ. ପଞ୍ଚନ୍)—ଚାରି ଅପେକ୍ଷା ଏକ ଅଧିକ—
Pāncha पाँच् **पाँच** Five.

ଗାର୍ହପତ୍ୟ, ଆହବନୀୟ ଦକ୍ଷିଣାଗ୍ନି,
ଅବସଥ୍ୟ, ଲୌକିକ ଏରୂପେ ପାଞ୍ଚ ଅଗ୍ନି । କୃଷ୍ଣସିଂହ• ମହାଭାରତ• ବନ ।

ଦେ. ବି.—( ସଂ. ବାଞ୍ଛା, ସଂ. ପଞ୍ଚ୍ ଧାତୁ=ବ୍ୟକ୍ତ କରିବା; ବିସ୍ତାର କରିବା)—୧ । ପୂର୍ବରୁ ଭାବନା; ଆଗତ ପାଞ୍ଚ; ଭବିଷ୍ୟତ୍ ପାଇଁ ବିଚାର—1. Forethought; thought for the future.

पाँचा
**सोच, सोच विचार**

୨ । ଭାବନା; ବିଚାର, ଚିନ୍ତା—2. Thought.

ମାତୃ ପିତୃ ଗୁରୁ ଚିତ୍ତ ପ୍ରଭୃତିରେବନ୍ତ,
ନଷ୍ଟେ ପାଳିବାକୁ ହେବ ନ କର ପାଞ୍ଚକୁ—ତୁଳସୀ. ଚକ୍ରମ ରାମାୟଣ ।

୩ । ପରାମର୍ଶ—3 Advice; consultation.

୪ । ଅନୁମାନ—4. Guess.

ଧାଡିରେ ଏଡେ ପ୍ରବେଶ, ପାଞ୍ଚ ଦିନ୍ ହେବ ଶେଷ ।
ଉପେ• କୋଟିବ୍ରହ୍ମାଣ୍ଡସୁନ୍ଦରୀ ।

୫ । କାମନା—5. Wish; desire.

पँच् **पंच** ୬ । ପଞ୍ଚସଂଖ୍ୟକ ଲୋକ, ପାଞ୍ଚଜଣ—6. Five persons

ବଧ ମୋ ଇଚ୍ଛନ୍ତି, ବୃଜକୁ ପାଞ୍ଚ ପାଞ୍ଚ କହନ୍ତି । ଉପେ• ବୈଦେହୀଶବିଳାସ ।

୭ । ପଞ୍ଚାୟତ—7. A body of arbitrators.

୮ । ପଞ୍ଚାୟତି, ଆପୋସି ମୀମାଂସା—8. Arbitration.

ଦେ. ବିଣ—ଅନେକ ସଂଖ୍ୟକ—Many.

ପାଞ୍ଚ ଦିନପରେ ପାଞ୍ଚ କଥା,
ପାଞ୍ଚ ମାଇପରେ ପାଞ୍ଚ କଥା । ଢଗ ।

**ପାଞ୍ଚ ଅବକାଶ**—ଦେ. ବି—ଦେବତାଙ୍କର ଯେଉଁ ୫ଟି ନିର୍ଦ୍ଦିଷ୍ଟ ସମୟରେ
Pāncha abakāsa ଏକ ବେଶ ପରିବର୍ତ୍ତନ ଓ ଅନ୍ୟ ବେଶଲାଗି ହେବା ସମୟରେ ଯାତ୍ରୀମାନଙ୍କ ଦର୍ଶନର ଅଭାବ ହେବା ଅବସ୍ଥା—The five daily recesses of an idol (specially of the Diety Jagannātha at Puri).

ଭଞ୍ଜ୍‌ଧୂପ ପାଞ୍ଚ ଅବକାଶ ସେ ଉଦ୍ଧାସେ—ପ୍ରାଚୀ• ଗୁରୁଭକ୍ତି ଗୀତା ।

(ଅବକାଶ ତଳେ ଟୀକା ଦେଖ)

**ପାଞ୍ଚ ଅଙ୍ଗୁଳିଆ**—ଦେ. ବି. (ବୈଦ୍ୟକ)—ପାଞ୍ଚକୋଡ଼ମାଇ (ଦେଖ)—
Pāncha āngulia Pānchakordamai (See).

[ ଦ୍ର—ଏହାର ପତ୍ର ପାଞ୍ଚଟି ଆଙ୍ଗୁଠି ପରି ପଞ୍ଚଶିଖା ଯୁକ୍ତ । ଏହାର ମୂଳର ଚୂର୍ଣ୍ଣ ପ୍ରକ୍ଷେପ କଲେ ଉପଦଂଶ ବ୍ରଣ ଶୁଷ୍କ ହୁଏ । ଏହା ବିଷ—ଦ୍ରବ୍ୟଗୁଣ କଳ୍ପଦ୍ରୁମ । ]

**ପାଞ୍ଚଉତ(ତ୍ତ)ର ଶଏ(ହେ)**—ଦେ. ବି. ଓ ବିଣ. ( ସଂଖ୍ୟାବାଚକ, ସଂ.
Pāncha uta(tta)ra sae(he) ପାଞ୍ଚୋତ୍ତରଶତ)—ଏକଶହପାଞ୍ଚ; ୧୦୫—One hundred and five

କାଉରବ ପାଞ୍ଚ ଉତରଶଏ ଭାଇ—କୃଷ୍ଣସିଂହ, ମହାଭାରତ ବନପର୍ବ ।

**ପାଞ୍ଚ କରିବା**—ଦେ. କ୍ରି. (ସଂ. ପଞ୍ଚ୍ ଧାତୁ)—୧ । ଭାବିବା; ପାଞ୍ଚିବା—
Pāncha kariba 1 To think; to consider.

पाँचा ତୁମ୍ଭ ପାଇଁ ନାନା ପାଞ୍ଚ କରିଅଛୁ ଏଥକୁ ତୁଅ ତତପର ।
**सोच** ଗୀତା, ଇନ୍ଦ୍ରସ୍ୟମନ୍ତକସ ।

୨ । ପରାମର୍ଶ କରିବା—2. To consult.

**ପାଞ୍ଚ କାଣ୍ଡିଆ**—ଦେ ବିଣ—ଛଡ଼ା ଛଡ଼ା ହୋଇ ସ୍ଥାନେ ସ୍ଥାନେ
Pāncha kāndia ଉପୁଜିଥିବା— . Growing sparsely; sparse.

(ଯଥା—ତା ଦେହ ଯାକ ପାଞ୍ଚକାଣ୍ଡିଆ ହୋଇ ବସନ୍ତ ବାହାରିଛି ।)

**ପାଞ୍ଚ କୋଡ଼ମା(ମେ)ଇ(ଇଁ)**—ଦେ. ବି. (ସଂ. ପଞ୍ଚ+କୁଷ୍ମାଣ୍ଡ)—
Pāncha kordamā(me)i(iñ) ଗଡ଼ମ କାଲୁଡ଼ି; ମହାକାଲ; ଏକଜାତୀୟ ବନ୍ୟଲତା—A kind of wild creeper; Citrilus Colocynthis; colocynth.

ସ. ନାମ—ମହାକାଳ; ଇନ୍ଦ୍ରା-ବାରୁଣୀ, ଇନ୍ଦ୍ରାଣୀ
মাকাল, বাখাল শসা
इन्द्रायन, इनार्
ପାଞ୍ଚକୋଡ଼ମାଇ, ପାଞ୍ଚକୋଡ଼ମେଇଆ, ପାଞ୍ଚକୋଡମେଇ } ଅନ୍ୟରୂପ
[ଦ୍ର—ଏହା କୁଷ୍ମାଣ୍ଡାଦିବର୍ଗର ସାର୍ଘ ଲତାବିଶେଷ। ଏହା ବଡ଼ବଡ଼ ଗଛରେ ମାଡ଼େ। ପତ୍ର ପାଞ୍ଚ ଅଙ୍ଗୁଳପର ପଞ୍ଚ ଶିଖାବିଶିଷ୍ଟ। ପତ୍ରର ପୃଷ୍ଠଭାଗ ରୋମ-ସ୍ଥାନ, ଫୁଲ ହଳଦିଆ। ପାଚିଲା ଫଳ ଖୁବ୍ ନାଲି। କଞ୍ଚା ଉଚ୍ଚରର ପଦାର୍ଥ କାଳିଆ ଓ ଗୋବରପର।]

ପାଞ୍ଚଗଡ଼ିଆ ଚଷା—ପ୍ରାଦେ. (ଗଡ଼ଜାତ) ବି—ଶୂଦ୍ର ବା ଚଷାଙ୍କ ଶାଖା-ବିଶେଷ—A class of Śūdras.
Pāñchagarḍiā chashā

ପାଞ୍ଚଗୋଟିଆ—ଦେ ବି—ଏକତ୍ର ସଲଗ୍ନ ପାଞ୍ଚଟି ଗୋଲକରେ ପ୍ରସ୍ତୁତ କର୍ଣ୍ଣାଭରଣବିଶେଷ—
Pāñchagotiā
(ପାଞ୍ଚଗଣ୍ଡିଆ—ଅନ୍ୟରୂପ) A kind of earring consisting of 5 balls set together.

ମକୁରା ପାଞ୍ଚଗୋଟିଆ, ନାଗ ଫୁଲିଆ—ପ୍ରାଚୀ, ଉତ୍ସମସ୍ତବଂଶ।

ପାଞ୍ଚଜଣଙ୍କ ଭିତରେ ବସିବା—ଦେ. କ୍ରି—ସମାଜରେ ସମ୍ଭ୍ରାନ୍ତ ବ୍ୟକ୍ତି ବୋଲି ପରଗଣିତ ହେବା—To be counted as a respectable person in society.
Pāñchajanaṅka bhitare basibā
ପାଞ୍ଚରେ ବସିବା, ପାଞ୍ଚଜଣରେ ବସିବା } ଅନ୍ୟରୂପ

ଶାଶୁ ପରଗୁଣ, ପାଞ୍ଚରେ ବସେ—ଚଗ।

ପାଞ୍ଚଜନୀ—ସ. ବି. ସ୍ତ୍ରୀ. (ନାମ)—ପଞ୍ଚଜନ ନାମକ ପ୍ରଜାପତିଙ୍କର ଏକ କନ୍ୟା, ଅସିକ୍ନୀ—Name of a daughter of Pañchajana, a progenitor of mankind.
Pāñchajanī

ପାଞ୍ଚଜନ୍ୟ—ସ. ବି. (ପଞ୍ଚଜନ=ହିରଣ୍ୟକଶିପୁର ପୌତ୍ର ସମୁଦ୍ରବାସୀ ତିମି ରୂପ ଅସୁରବିଶେଷ+ଜାତାର୍ଥେ ଯ, ଏହି ଅସୁରର ଅସ୍ଥିରେ ନିର୍ମିତ ହୋଇଥିବାରୁ)—
Pāñchajanya
୧। ଶ୍ରୀକୃଷ୍ଣଙ୍କ ଶଙ୍ଖର ନାମ—
1. Name of the conch blown by Srikrushna
[ଦ୍ର—ଶ୍ରୀକୃଷ୍ଣ ଯେଉଁ ସମୟରେ ତାଙ୍କ ଗୁରୁ ସାନ୍ଦୀପନ ମୁନିଙ୍କୁ ଗୁରୁଦକ୍ଷିଣା ଦେବା ପରବର୍ତ୍ତିରେ ତାଙ୍କର ହଜିଥିବା ପୁତ୍ରକୁ ଉଦ୍ଧାର କରିବାପାଇଁ ସମୁଦ୍ରରେ ପ୍ରବେଶ କରିଥିଲେ ସେହି ସମୟରେ ପଞ୍ଚଜନ ନାମକ ଏକ ସମୁଦ୍ରବାସୀ ଅସୁରକୁ ମାରି ତାଙ୍କ ଗୁରୁପୁତ୍ରଙ୍କୁ ଛଡ଼ାଇ ଆଣିଥିଲେ ଓ ତାଠାରୁ ଏ ଶଙ୍ଖ ଆଣିଥିଲେ।]
୨। ଅଗ୍ନି (ମେଦିନୀ)—Fire
୩। ଏକପ୍ରକାର ମାଛ—3. A species of fish (M.W.).
୪। ଜମ୍ବୁଦ୍ୱୀପର ଆଠଟି ଉପଦ୍ୱୀପ ମଧ୍ୟରୁ ଏକ—
4. Name of one of the 8 peninsulas of the mythological island Jambu.

ପାଞ୍ଚଟା—ଦେ. ବିଣ. (ଅନାଦରାର୍ଥକ)—ପଞ୍ଚ ସଂଖ୍ୟକ—
Pāñchatā, पाँचटा, পাঁচটা Numbering five.
(ପାଞ୍ଚଟା, ପାଞ୍ଚୋଟା—ଅନ୍ୟରୂପ)
ଦେ. ବି—୧। ୫ ଗୋଟା; ସଂଖ୍ୟାରେ ପାଞ୍ଚ
(ପାଞ୍ଚଟି, ପାଞ୍ଚୁଟି, ପାଞ୍ଚୋଟି—ଆଦରାର୍ଥକରୂପ) 1. Five in number
୨। ଘଣ୍ଟାରେ ପାଞ୍ଚ ବାଜିବା ସମୟ—2. Five o'clock.

ପାଞ୍ଚଣ—ଦେ. ବି. (ସ. ପ୍ରାଜନ)—୧। ପାଚଣ (ଦେଖ)—
Pāñchaṇa 1. Pāchaṇa (See).
(ପାଞ୍ଚଣ ବାଡ଼ି—ଅନ୍ୟରୂପ) ହସ୍ତେ ମାତ୍ର ପାଞ୍ଚଣ ବାଡ଼ି ଧରିଥିଲେ
পাচন কাঠ়া ଧ୍ୱଜଙ୍କୁ ମାରିବାକୁ ଉଦେଶି ଥାଇଁଲେ।
(ପାଞ୍ଚନ—ଅନ୍ୟରୂପ) କୃଷ୍ଣସିଂହ, ମହାଭାରତ ଅଦି।
୨। (ସ. ପାଚନ)—ପାଚନ, କ୍ୱାଥ—2 Decoction.

ପାଞ୍ଚଣା—ଦେ. ବି—୧। ପାଞ୍ଚ ୧ ଠାରୁ ୫ (ଦେଖ)
Pāñchaṇā 1. Pāñcha 1 to 5 (See)
পাঁচানা ଗ୍ରା. ବି. (ସ. ପଞ୍ଚ+ଆନକ)—ପାଞ୍ଚ ଅଣା—
पाँचआना Five annas.
[ଦ୍ର—ସଂସ୍କୃତ ସନ୍ଧିର ନିୟମ ଓଡ଼ିଆର ଦେଶଜ ଶବ୍ଦମାନଙ୍କ ପ୍ରତି ଖାଟୁ ନ ଥିବାରୁ ପାଞ୍ଚ+ଅଣା=ପାଞ୍ଚଣା ହେଲା। ଏହିପରି ତୁଳନା କର ଆଠ+ଅଣା=ଆଠଣା; ଦଶ+ଅଣା=ଦଶଣା।]

ପାଞ୍ଚଦଶ—ସ. ବିଣ. (ପଞ୍ଚଦଶ+ସମ୍ବନ୍ଧାର୍ଥରେ. ଅ)—
Pāñcha daśa ୧। ପଞ୍ଚଦଶ ସମ୍ବନ୍ଧୀୟ—
(ପାଞ୍ଚଦଶୀ—ସ୍ତ୍ରୀ) 1. Relating to the number fifteen
୨। ପଞ୍ଚଦଶୀ ତିଥି ସମ୍ବନ୍ଧୀୟ—
2. Relating to the 15th day of a lunar fortnight.
ଦେ. ବି. ଓ ବିଣ—ପାଞ୍ଚରୁ ଅଧିକ ଓ ଦଶରୁ ଅନଧିକ—
More than five and less than ten.

ପାଞ୍ଚଦଶ୍ୟ—ସ. ବି. (ପଞ୍ଚଦଶ+ସମାହାରାର୍ଥେ. ଯ)—
Pāñchadaśya ପନ୍ଦର ସମାହାର—An aggregate or collection of fifteen (Apte)
ସ. ବିଣ—ପାଞ୍ଚଦଶ (ଦେଖ)—Pāñchadaśa (See)

ପାଞ୍ଚଧାର(ରା)—ଦେ. ବି—ଆଠମଲ୍ଲିକର ପର୍ବତବିଶେଷ—
Pāñchadhāra(rā) Name of a hill in the Athmallik State of Orissa.
[ଦ୍ର—ଏହାର ଉଚ୍ଚତା ୨୧୯୮ ଫୁଟ।]

ପାଞ୍ଚ ନଖ—ସ. ବିଣ. (ପଞ୍ଚ ନଖ+ଅ)—
Pāñcha nakha ପାଞ୍ଚ ନଖବିଶିଷ୍ଟ ଜନ୍ତୁର ଚମଡ଼ାରେ ନିର୍ମିତ—
Made of the skin of an animal with 5 claws. (M. W.)
ସ. ବି=ପାଞ୍ଚ ନଖବିଶିଷ୍ଟ ଜନ୍ତୁର ମାଂସ—
The flesh of an animal with five claws. (M. W.)

ପାଞ୍ଚ ନଖିଆ—ଦେ. ବିଣ. (ସ. ପଞ୍ଚ+ନଖ)—
Pāñcha nakhiā ଯେଉଁ ଜୀବମାନଙ୍କର ପାଞ୍ଚଟି ଲେଖାଏଁ ନଖ ଅଛି—(animals) Having 5 claws.
(ପାଞ୍ଚ ନଖୀ—ଅନ୍ୟରୂପ)

ପାଞ୍ଚନଦ—ସ. ବିଣ. (ପଞ୍ଚନଦ+ଅ)—
Pāñchanada ପଞ୍ଚନଦ ବା ପଞ୍ଜାବ ସମ୍ବନ୍ଧୀୟ—
(ପାଞ୍ଚନଦୀ—ସ୍ତ୍ରୀ) Relating to the Panjab.

ପାଞ୍ଚନବ—ଦେ. ବି ଓ ବିଣ. (ସଂ. ପଞ୍ଚନବତି)—ପଞ୍ଚାନବେ—
Pānchanaba Ninetyfive; 95.
ପାଞ୍ଚନବ କାଣ୍ଡ ସେ ଥିଲା ଦୁର୍ଯ୍ୟୋଧନଙ୍କୁ
କହିଲେ ଲୁଚିଲମ୍ଭୀ ଜୀବନ ନେବାକୁ । କୃଷ୍ଣସିଂହ, ମହାଭାରତ ଭୀଷ୍ମ ।

ପାଞ୍ଚନରି—ଦେ. ବିଣ. ( ସଂ. ପଞ୍ଚ + ଲହରୀ )—
Pānchanari ପାଞ୍ଚଟି ସୂତ୍ର ବା ହାର ବିଶିଷ୍ଟ (ମାଳା)—
পাঁচনরী पचलड़ी Five-stringed (necklace).
[ପାଞ୍ଚ ନରିଆ, ପାଞ୍ଚଲରି, ପାଞ୍ଚ ଲରିଆ, ପାଞ୍ଚ ସରି(ରୀ), ପାଞ୍ଚସରିଆ, ପାଞ୍ଚ-ସୋରି, ପାଞ୍ଚ ସୋରିଆ—ଅନ୍ୟରୂପ ]

ପାଞ୍ଚନା—ଦେ. ବି—ପାଞ୍ଚ ୧ ଠାରୁ ୫ ( ଦେଖ )
Pānchanā Pāncha 1 to 5 ( See )
ସେ ବସ୍ତୁ ଭଠଲେ ମନ ପାଞ୍ଚନା ଅଶେଷେ ।
ଗ୍ରାମୀ, ବନ୍ଧୁଜନରୂପଣ ଗୀତା ।

ପାଞ୍ଚ ପଚିଶ—ଦେ. ବି. (ସହଚର, ସଂ. ପଞ୍ଚନ୍, ପଞ୍ଚବିଂଶ)—
Pāncha pachisa ୧ । ସର୍ବସାଧାରଣ—1. The public;
পাঁচপচিশ पाँचपचिसों the general public.
(ପାଞ୍ଚ ପଚିଶି—ଅନ୍ୟରୂପ) (ଯଥା—ତାଙ୍କୁ ପାଞ୍ଚ ପଚିଶ ହସୁଛନ୍ତି ।)
ଦେ. ବି. ଓ ବିଣ ( ସଂଖ୍ୟାବାଚକ )—
ବହୁ—Many.

ପାଞ୍ଚ ପାଞ୍ଚୁ—ଦେ ବି—ପଞ୍ଚାୟତର ସଦସ୍ୟମାନେ—
Pāncha pānchu The members of a Panchayet or board of arbitrators.

ପାଞ୍ଚ ପାଦିକ—ସଂ ବିଣ. (ପଞ୍ଚପାଦ + ଅସ୍ତ୍ୟର୍ଥେ. ଇକ)—
Pānch pādika ୫ ପାଦ ଲମ୍ବା; ପାଞ୍ଚ ଫୁଟ ଲମ୍ବା—
Five feet long.

ପାଞ୍ଚପାହିଆ—ପ୍ରାଦେ. (ଯାଜପୁର) ବି—ପିଲାଙ୍କ ଖେଳବିଶେଷ—
Pāncha pāhiā A kind of children's game.

ପାଞ୍ଚ ପୁତ୍ରୀ—ଦେ. ବି ସ୍ତ୍ରୀ. (ସଂ. ପଞ୍ଚ+ପୁତ୍ର)—ପାଞ୍ଚ ପୁତ୍ରର ମାତା—
Pāncha putri The mother of five sons.
ତୁମ୍ଭେ ପାଞ୍ଚ ପୁତ୍ରୀ ହୋଇଛ ସବୁ ବେଳେ ।
କୃଷ୍ଣସିଂହ, ମହାଭାରତ, ଉଦ୍ୟୋଗ ।

ପାଞ୍ଚ ବାତ୍ସରିକ—ସଂ ବିଣ. (ପଞ୍ଚ ବତ୍ସର + ସମ୍ବନ୍ଧାର୍ଥରେ ଇକ)—
Pāncha bātsarika ୧ । ପଞ୍ଚ ବର୍ଷୀୟ—1. Relating to
(ପାଞ୍ଚବାର୍ଷିକ—ଅନ୍ୟରୂପ) a period of five years.
ପାଞ୍ଚ ବାତ୍ସରିକୀ } ଅନ୍ୟରୂପ ୨ । ପାଞ୍ଚ ବର୍ଷ ଅନ୍ତରରେ ଘଟିବା—
ପାଞ୍ଚ ବାର୍ଷିକୀ 1. Happening at interval of five years.
୨ । ଯାହାର ବୟସ ପାଞ୍ଚ ବରଷ—3. Aged five years.
୪ । ଯହିଁର ମିଆଦ ପାଞ୍ଚ ବର୍ଷ; ପାଞ୍ଚ ସାଲା—4. Which holds good for a period of five years.

ପାଞ୍ଚ ଭାଙ୍ଗୁଣୀ—ଦେ. ବିଣ. ( ସଂ. ପଞ୍ଚ + ଭଙ୍ଗ )—
Pāncha bhānguṇi ୧ । ଯାହା ପାଞ୍ଚ ପରସ୍ତ କରି ଯାଇଅଛି—
ପାଞ୍ଚ ଭାଙ୍ଗୁଣିଆ(ଆଁ)—ଅନ୍ୟରୂପ] 1. Folded into five folds or layers.
पचहरा

୨ । ଯେଉଁ ଦଉଡ଼ି ପାଞ୍ଚ ସର ସୂତାରେ ବଳା ହୋଇଅଛି—
2. Twisted with five strands.

ପାଞ୍ଚ ଭୌତିକ—ସଂ. ବିଣ. (ପଞ୍ଚଭୂତ + ସମ୍ବନ୍ଧାର୍ଥେ. ଇକ)—
Pāncha bhautika ୧ । ପଞ୍ଚଭୂତ ସମ୍ବନ୍ଧୀୟ—
1. Relating to the five prime elements of nature.
ପାଞ୍ଚ ଭୌତିକ ଏ ଶରୀର
ଅସ୍ଥି ଚର୍ମ୍ମେ ପ ନବଦ୍ୱାର—ଜଗନ୍ନାଥ ଭାଗବତ ।
୨ । ପଞ୍ଚଭୂତରୁ ଉତ୍ପନ୍ନ, ପାଞ୍ଚଭୂତରେ ନିର୍ମିତ—
2. Composed of the five elements of nature.
୩ । ଯହିଁରେ ପଞ୍ଚଭୂତ ଥାଏ—
3. Containing the five primary elements.
ସଂ. ବି—ଶରୀର; ଦେହ—The material body.

ପାଞ୍ଚମ—ଦେ. ବି—(ସଂ. ପାଦ ମଞ୍ଜରୀ)—ପାଉଜଂର (ଦେଖ)—
Pāncham Pāujari (See)
(ପାଞ୍ଜଡ଼ି, ପାଞ୍ଜବ, ପାଞ୍ଜମ, ପଞ୍ଜର—ଅନ୍ୟରୂପ)

ପାଞ୍ଚ ମଥା—ଦେ. ବି—( ସଂ. ପଞ୍ଚନ୍ ଓ ମସ୍ତକ )—ପଞ୍ଚମୁଖ; ପଞ୍ଚାନନ;
Pāncha mathā ମହାଦେବ, ଶିବ —Śiba (the five-faced God.)
ପାଞ୍ଚ ମାଥ,
ପାଞ୍ଚ ମୁଣ୍ଡ } ଅନ୍ୟରୂପ
ପାଞ୍ଚ ମୁହଁ
ପାଞ୍ଚ ମୁଖ
ହରେ ବର୍ଣ୍ଣ କରାର ସେ ଯେନ ପାଞ୍ଚ ମୁଣ୍ଡ—
ସାରଳା ମହାଭାରତ ବନ୍ଦନ ।

ପାଞ୍ଚ ମିଶା—ଦେ. ବିଣ—(ସଂ. ପଞ୍ଚ + ମିଶ୍ରିତ)—ବହୁ ପଦାର୍ଥର ମିଶ୍ରଣରେ
Pāncha misā ଜାତ—Consisting of many things
পাঁচ মিশালী पच मेल mixed together.
(ପାଞ୍ଚ ମିଶାଣ, ପାଞ୍ଚ ମିଶାଳ, ପାଞ୍ଚ ମେଳ—ଅନ୍ୟରୂପ)

ପାଞ୍ଚ ମିଶାଳି ଶାଗ—ପ୍ରାଦେ. (ବାଲେଶ୍ୱର) ବି—ନାନାପ୍ରକାର ଶାଗ ପତ୍ର
Pāncha misāli sāga ପ୍ରଭୃତି ମିଶାଇଲେ ଯାହା ହୁଏ—
Pot herbs or kitchen-herbs consisting of the leaves of many plants.
[ ଦ୍ର—ସାଧାରଣତଃ ଗରିବ ଲୋକ ଏହାକୁ ଖାଆନ୍ତି ।]

ପାଞ୍ଚ ରଙ୍ଗା—ଦେ. ବିଣ—(ସଂ. ପଞ୍ଚ + ରଙ୍ଗ)—ଚିତ୍ରବିଚିତ୍ର, ବହୁ ରଙ୍ଗ
Pāncha rangā ବିଶିଷ୍ଟ—Multicoloured; variegated
পাঁচরাংগা पचरंगा (ପାଞ୍ଚରଙ୍ଗି; ପାଞ୍ଚ ରଙ୍ଗିଆ—ଅନ୍ୟରୂପ)

ପାଞ୍ଚରେ ବସିବା—ଦେ. କ୍ରି—୧ । ଭଦ୍ର ସମାଜରେ ଜଣେ ବୋଲି ଗଣ୍ୟ
Pānchare basibā ହେବା—1. To be counted as a
পাঁচেবসা पाँचमेंबैठना respectable person in society.
୨ । ପଞ୍ଚାୟତ ସଭାର ଜଣେ ସଭ୍ୟ ହେବା—
2 To be a member of a board of arbitrators.

ପାଞ୍ଚଲ ପାଣ୍ଡୁ—ପ୍ରାଦେ. (ଗଞ୍ଜାମ) ବି—ବାଟି ଖେଳର ୫ମ ଆଘାତ—
Pānchala pāndu The 5th stroke in the game of marbles.

ପାଞ୍ଚଳିକା—ସଂ. ବି—( ପଞ୍ଚାଲ + ଇକ ସ୍ତ୍ରୀ. ଆ )—ବସ୍ତ୍ରାଦି ନିର୍ମିତ
Pānchalikā କଣ୍ଢେଇ—A doll made of cloth.
(ପାଞ୍ଚାଳିକା—ଅନ୍ୟରୂପ)

**ପାଞ୍ଚଶାବ୍ଦିକ**—ସଂ.ବି—(ପଞ୍ଚନ୍=ପାଞ୍ଚ+ଶବ୍ଦ=ଧ୍ୱନି+ନିଷ୍ପନ୍ନାର୍ଥେ. ଇକ)
Pānchasābdika ୧ । ପଞ୍ଚପ୍ରକାର ବାଦ୍ୟ—1 Five kinds of musical instruments.

[ ଦ୍ର—ଅଙ୍ଗଜ (ଯଥା—କରତାଳ; ମୁଖବାଦ୍ୟ) । ଚର୍ମଜ (ଯଥା—ଢୋଲ) । ତନ୍ତ୍ରଜ (ଯଥା—ବୀଣା, ସାରଙ୍ଗୀ) । କାଂସ୍ୟଜ (ଯଥା—ଝାଞ୍ଜ; ଘଣ୍ଟା) । ଫୁତ୍କୃତ (ଯଥା—ଭେରୀ; ଶଙ୍ଖ, ବଂଶୀ) । ଏହି ପଞ୍ଚ ପ୍ରକାର ବାଦ୍ୟ । ସ୍କନ୍ଦ ପୁରାଣ—ରେବାଖଣ୍ଡ]

୨ । ନାନା ବାଦ୍ୟଯନ୍ତ୍ର—
2. Musical instruments in general. (Apte)

**ପାଞ୍ଚାଳ**—ସଂ. ବି—(ପଞ୍ଚାଳ=ଦେଶ ବିଶେଷ+ସ୍ୱାର୍ଥେ. ଅ)—୧ । ପଞ୍ଚାଳ
Pānchāla ଦେଶର ରାଜା—1. The king of the
(ପାଞ୍ଚାଳକ—ଅନ୍ୟରୂପ) Panchālas.

୩ । ବଢ଼େଇ, ତନ୍ତୀ, ଭଣ୍ଡାରି, ଧୋବା ଓ ମୋଚି ଏହି ପାଞ୍ଚ ଜାତିଙ୍କର ପାଠକ ବା ସାମାଜିକ ସଂଘ ବା ସମୁଦାୟ (ହି. ଶ.)
3. An association of five caste-guilds; (viz, carpenters, weavers, barbers, washermen and shoe makers). (Apte)

(ପାଞ୍ଚାଳୀ—ସ୍ତ୍ରୀ) ସଂ. ବିଣ, (ପଞ୍ଚାଳ+ସମ୍ବନ୍ଧାର୍ଥେ. ଅ)—ପଞ୍ଚାଳ ଦେଶୋଦ୍ଭବ, ପଞ୍ଚାଳ ଦେଶୀୟ—Relating to the country of the Pānchālas.

**ପାଞ୍ଚାଳୀ**—ସଂ. ବି. ସ୍ତ୍ରୀ—(ପଞ୍ଚାଳ+ନିବାସ ବା ଅପତ୍ୟାର୍ଥେ. ଅ+ସ୍ତ୍ରୀ. ଈ)
Pānchāli ୧ । ପଞ୍ଚାଳ ଦେଶର ନାରୀ ବା ରାଜକୁମାରୀ—
1. A woman or princess of the Pānchālas.

୨ । ଦ୍ରୌପଦୀ—2. A name of Draupadī.

୩ । ପୁତ୍ତଳିକା, କଣ୍ଢେଇ—3. Doll; puppet.

୪ । ସାହିତ୍ୟରେ ଏକପ୍ରକାର ବାକ୍ୟ ରଚନା ପ୍ରଣାଳୀ—
4. A kind of literary compostion.

[ ଦ୍ର—ଏଥିରେ ବଡ଼ ବଡ଼ ପାଞ୍ଚ ବା ଛଅ ସମାସଯୁକ୍ତ କାନ୍ତିପୂର୍ଣ୍ଣ ପଦାବଳି ସନ୍ନିବେଶିତ ହୋଇଥାଏ । ସୁକୁମାର ଓ ମଧୁର ବର୍ଣ୍ଣନାରେ ଏ ରଚନା ବ୍ୟବହୃତ ହୁଏ । ଗୌଡ଼ୀ ଓ ବୈଦର୍ଭୀ ବୃତ୍ତିର ସମ୍ମିଶ୍ରଣକୁ ମଧ୍ୟ କେହି କେହି ପାଞ୍ଚାଳୀ କହନ୍ତି—ହି. ଶ]

୫ । ସଙ୍ଗୀତରେ ସ୍ୱର ସାଧନର ପ୍ରଣାଳୀବିଶେଷ—
5 A mode of musical exercise.

[ଦ୍ର—ଆରୋହୀ ଯଥା—ସାରେ ସାରେ ଗା; ରେଗା ରେଗାମା, ଗାମା ଗାମାପା; ମାପା ମାପାଧା; ପାଧା ପାଧାନି; ଧାନି ଧାନିସା— ଅବରୋହୀ ଯଥା—ସାନି ସାନିଧା; ନିଧା ନିଧାପା; ଧାପା ଧାପାମା; ପାମା ପାମାଗା; ମାଗା ମାଗାରେ; ଗାରେ ଗାରେସା— ହି. ଶ]

୬ । ଏକ ପ୍ରକାର ପିତ୍ତଳ (ହି. ଶ.)—
6. A kind of brass.

**ପାଞ୍ଚି**—ଦେ. ବି—୧ । ବିବାହ ବେଳେ ବରର ପିନ୍ଧିବା ହଳଦିଆ ବା ନାଲି ଧଡ଼ିଆ ଲୁଗା ଯୋଡ଼—1. A kind of
Pānchi bordered cloth worn by the bridegroon
ଫେଁଟା during marriage.

ଗୋଡ଼ ତଳକୁ ଯେଣୁ ପଡ଼ଥିଲ ପାଞ୍ଚ।
ଓରୀ ହେବ ବୋଲି ତା ଟେକିଲେ ସେ ପାଞ୍ଚ—କୃଷ୍ଣସିଂହ ମହାଭାରତ. ସଭା ।

[ଦ୍ର—ବିବାହ ବେଦୀରେ କନ୍ୟା ପିନ୍ଧିବା ଶାଢ଼ୀକୁ ବଉଳପାଟ ବା ବଉଳ ପାଟ ବୋଲାଯାଏ; ପାଞ୍ଚି ଓ ବଉଳପାଟର ଅଗ୍ରଭାଗ ବେଦିରେ ବିବାହ ବେଳେ ପରସ୍ପର ସଙ୍ଗେ ଗଣ୍ଠିଆ ହୁଏ ।]

୨ । ବ୍ରତ ବେଦୀରେ ପିନ୍ଧା ଯିବା ଲୁଗା ଯୋଡ଼—
3. A pair of cloths worn by a boy at the investiture of the sacred thread.

ପ୍ରାଦେ. (ସମ୍ବଲପୁର) ବି—(ସଂଭବତଃ ଏହାର ଲମ୍ବ ପାଞ୍ଚହାତ ଥିବାରୁ)—ଛୋଟ ଗାମୁଛା—Small napkin.

**ପାଞ୍ଚିବା**—ଦେ. କ୍ରି—(ସଂ. ବାଞ୍ଛା)—୧ । ଇଚ୍ଛା କରିବା; କାମନା
Pānchibā କରିବା—1. To wish, to desire.
पाँचा ମୋହପରି ପାଞ୍ଚ ଅଛି ଯେ ମଁ କାଷ୍ଠା ଭକ୍ତିନି ନିତ୍ୟ ରହିବାକୁ ।
सोँचना କବିସୂର୍ଯ୍ୟ; ସଙ୍ଗୀତ ।

୨ । ଭାବିବା; ଚିନ୍ତା କରିବା—2. To think.
ଧରିବା ପରି ପାଞ୍ଚ ପଡେ ଲମ୍ବ ହୋଇ । କୃଷ୍ଣସିଂହ, ମହାଭାରତ ବନ ।

୩ । ଅନୁମାନ କରିବା—3. To guess.
କରନ୍ତି ଏହା କହି ବୋଲି ସେ ପାଞ୍ଚିଲେ । କୃଷ୍ଣସିଂହ, ମହାଭାରତ ବନ ।

୪ । ପରାମର୍ଶ କରିବା—4. To consult

୫ । କଳ୍ପନା କରିବା—5. To imagine.
ସୁମଣି-ଚନ୍ଦ୍ରମା-ମୁଖ ଦେଖି ମୃଗ
ମାନସ ଏସନ ପାଞ୍ଚେ । ରଘୁନାଥ, ଯଯାତି ।

୬ । ଆଲୋଚନା କରିବା, ବିଚାର କରିବା—
6. To consider the pros and cons of a matter.

୭ । ସ୍ଥିର କରିବା, ସଂକଳ୍ପ କରିବା—
7. To settle; to resolve.
ଶଲ୍ୟ ପାଣ୍ଡୁସୁତଙ୍କୁ ପାଞ୍ଚ ପାଞ୍ଚ ପାଞ୍ଚ
କହିଲେ ଧର୍ମ୍ମ୍ମର୍ଣ୍ଣ ମଧ ସେ ଅମଙ୍ଗ । କୃଷ୍ଣସିଂହ, ମହାଭାରତ ଶଲ୍ୟ ।

୮ । ପୂର୍ବରୁ କୌଣସି ବିଷୟ ବିଚାର କରିବା ବା ସ୍ଥିର କରିବା—
8. To think or decide about a matter beforehand; to premeditate.

**ପାଞ୍ଚୁଟା**—ଦେ. ବି ଓ ବିଣ. (ଅନାଦରାର୍ଥକ)—ପାଞ୍ଚ ଗୋଟା—
Pānchuta पाँचटा, पाँचटे পাঁচটা Five.
(ପାଞ୍ଚୋଟା—ଅନ୍ୟରୂପ) (ପାଞ୍ଚଟି, ପାଞ୍ଚୋଟି—ଆଦରାର୍ଥକ ରୂପ).

**ପାଞ୍ଚୁଣି**—ଦେ. ବି. (ସଂ. ବାଞ୍ଛା)—ପାଞ୍ଚ ୧ଠାରୁ ୫ (ଦେଖ)
Pānchuṇi Pāncha 1 to 5 (See)
(ପାଞ୍ଚୁଣୀ—ଅନ୍ୟରୂପ) ଗରୁଡ଼ ପାଞ୍ଚୁଣି ଯାକ ଜାଣିଲେ ନୃସିଂହ ।
ପୀତାମ୍ବର. ନୃସିଂହପୁରାଣ ।
ମନେ ମନେ ପାଞ୍ଚୁଣି କରନ୍ତି ପଦ୍ମନାଭ । ସାରଳା, ମହାଭାରତ ସଭା ।

**ପାଞ୍ଚେହେଁ**—ଦେ. ବି. (ସଂ. ପଞ୍ଚହି)—ପାଞ୍ଚଜଣଯାକ—
Pāncheheṅ All the five.
पाँचजनाई ଯେତେକ ସେ ଅଛ ମହଁ ଦେଲିଛ ନିବାର
पाँचौंहि ପାଞ୍ଚେହେଁ ପ୍ରଧାନ ତୁମ୍ଭ ରାଜକୁମାର ।
ସାରଳା, ମହାଭାରତ ଅଦ୍ୟ ।

**ପାଞ୍ଜଡ଼(ଡ଼ି)**—ଦେ. ବି—୧ । ପଇଞ୍ଜି (ଦେଖ)
Pānjarḍa(rḍi) 1. Painji (See)

୨ । ପାଉଁଜର (ଦେଖ)—2. Pāuñjarı (See)

**ପାଞ୍ଜବ(ମ)**—ବେଦେ. ବ—ପାଉଁଜର (ଦେଖ)
Pāñjaba(ma) Pāuñjarı (See)

**ପାଞ୍ଜି**—ଦେ. ବ. (ସଂ. ପଞ୍ଜିକା)—୧ । ପଞ୍ଜିକା, ଦିନାଦି ପାଞ୍ଜି; ମାସ, ତିଥି, ବାର ନକ୍ଷତ୍ର ଆଦି ଜ୍ଞାପକ ଜ୍ୟୋତିଷ ଗ୍ରନ୍ଥ—
Pāñji
पाँजि 1. Almanac; calendar
**पत्रा, पंचांग, पंजी** ୨ । ତାଳପତ୍ରରେ ଲିଖିତ ହିସାବ—
2. Accounts wr:tten on palm-leaf.

ମନ୍ତ୍ର ଜାଣିଁ ଏବେ ବାତୁଳ ଗାଦରନ
ଲେଖିଲେ ଲେଖିଁ ତା କରଣେ ପାଞ୍ଜିବୃନ୍ଦି । କୃଷ୍ଣସିଂହ, ମହାଭାରତ ବନ ।

୩ । ହିସାବ ଲେଖା ହୋଇଥିବା ତାଳପତ୍ର—
3. Palm-leaves on which accounts are written.
[ ଦ୍ର—ଯେଉଁ ତାଳପତ୍ରମାନଙ୍କରେ ହିସାବ ଲେଖାଯାଏ ତାହା ଗ୍ରନ୍ଥ ଲେଖାଯିବା ତାଳପତ୍ରମାନଙ୍କ ଅପେକ୍ଷା ବେଶି ଲମ୍ବା । ଗ୍ରନ୍ଥ ଲେଖାଯିବା ତାଳପତ୍ରମାନ ଫାଳ ଫାଳ କରାଯାଇ ପ୍ରତ୍ୟେକ ପୃଷ୍ଠାର ମଝିରେ ଛିଦ୍ର କରାଯାଇ ଛିଦ୍ରମଧ୍ୟରେ ସୂତା ଗଳାଯାଇ ପୃଷ୍ଠାମାନଙ୍କ ସଂଯୋଗରେ 'ପୋଥି' ହୁଏ; କିନ୍ତୁ ହିସାବପତ୍ର ଲେଖାଯିବା ତାଳପତ୍ରମାନ ଗୋଟା ଗୋଟା ରଖାଯାଇ ତହିଁର ମୂଳପାଖମାନ ଏକତ୍ର ତାଳପତ୍ରର ମଞ୍ଜୁଆରେ ବନ୍ଧାଯାଏ ଓ ପ୍ରତି ତାଳପତ୍ରର ଅଗପାଖ ଫାଳ କରାଯାଏ । ଓଡ଼ିଶାରେ ପୂର୍ବେ ଜମିଦାରି ହିସାବ ପତ୍ର ଓ ଜମିମାପ ଭର୍ତ୍ତିଉଆମାନ ପାଞ୍ଜିରେ ଲେଖାଯାଉ ଥିଲା ଓ ଅନେକ ପୁରୁଣା ଜମିଦାରଙ୍କ ଘରେ ପାଞ୍ଜିବିଡ଼ାମାନ ଅବଧି ସଞ୍ଚିତ ହୋଇ ରହିଅଛି । ଅନେକ ଗୁଡ଼ାଏ ପାଞ୍ଜି ବିଡ଼ାକୁ ମୃଦଙ୍ଗାକାର କରି ବନ୍ଧା ଯାଉଥିଲା । ଆଜକାଲି କାଗଜ କଲମର ବହୁଳ ବ୍ୟବହାର ଯୋଗୁଁ ତାଳପତ୍ର ଓ ଲେଖନର ବ୍ୟବହାର ଲୋପ ହୋଇଅଛି, କାଗଜ ଅପେକ୍ଷା ତାଳପତ୍ର ବହୁକାଳ ସ୍ଥାୟୀ ହେଉଥିଲା । ]

୪ । ଯମରାଜାଙ୍କ ମହାଫିସ୍‌ଖାନାରେ ରକ୍ଷିତ ଚିତ୍ରଗୁପ୍ତଙ୍କ ସଙ୍କଳିତ ମନୁଷ୍ୟଙ୍କର ପାପପୁଣ୍ୟର ତାଲିକା—4. The record of the pious and sinful acts of persons, said to be maintained by Chitragupta in the record-room of Jama.
[ ଦ୍ର—ମନୁଷ୍ୟର ଆତ୍ମା ମୃତ୍ୟୁପରେ ଯମଭୁବନକୁ ଗଲେ ସେଠାରେ ଚିତ୍ରଗୁପ୍ତ ଏହି ପାଞ୍ଜି ଦେଖି ତାହାର ଦଣ୍ଡ ବା ପୁରସ୍କାର ବିଷୟ ଯମରାଜାଙ୍କ ସମ୍ମୁଖରେ ପେଶ୍ କରନ୍ତି । ]

**ପାଞ୍ଜିଆ**—ଦେ. ବ. (ସଂ. ପଂଜୀକାର)—୧ । ଯେ ପାଞ୍ଜିଧରି ଦିନ, ବାର ଆଦି କହେ, ନାହାକ, ଜଉତିଷ—1. An astrologer.
Pāñjıā
**पंजियार** ୨ । ଯେ ରାଜାଙ୍କର ହିସାବପତ୍ର ରଖେ—
2 A Raja's accountant.

ସଙ୍ଗେ ସଙ୍ଗେ ଅସୁଚିନ୍ତ ବ୍ୟବହାରଙ୍କାର
କରଣ, ପାଞ୍ଜିଆ, ସାକ୍ଷୀ, ପଦାତିକ ଆଦି । ରଘୁନାଥ, ମହାରାଜ୍ଞା ।

**ପାଞ୍ଜିଆ ପଟ୍ଟନାୟକ**—ଦେ. ବ—କରଣଙ୍କ ରାଜଦତ୍ତ ଉପାଧିବିଶେଷ—
Pāñjıā paṭṭanāyaka A title given to Karaṇas by Rajas.

**ପାଞ୍ଜି କହିବା**—ଦେ. କ୍ରି.—( ଜ୍ୟୋତିଷ ) ଦିନାଦି ପାଞ୍ଜିରୁ ତିଥି, ବାର, ନକ୍ଷତ୍ର ଆଦି ପାଠ କରିବା—'an astrologer)
Pāñji kahibā
पाँजीबला To read out the contents of an
**पंचांङ्ग फलकहना** almanac.
[ଦ୍ର—ପୂର୍ବେ ରାଜା ଓ ଧନୀମାନଙ୍କ ନିକଟରେ ପ୍ରତିଦିନ ସକାଳେ ଜ୍ୟୋତିଷ ଆସି ସେଦିନର ପାଞ୍ଜି କହି ଯାଉଥିଲେ । ଦୋଳପୂର୍ଣ୍ଣିମା ଦିନ ଦୋଳବେଦୀରେ ଦେବପ୍ରତିମାଙ୍କ ଆଗରେ ଗଣକ ଆଗାମୀ ବର୍ଷର ପାଞ୍ଜିରେ ଲେଖାଥିବା ବିଷୟମାନ ପାଠ କରନ୍ତି । ]

**ପାଞ୍ଜିକାର**—ଦେ. ବ. (ସଂ. ପଞ୍ଜିକାକାର)—ପଞ୍ଜିକା ସଙ୍କଳୟିତା—
Pāñjıkāra The compiler of an almanac.

**ପାଞ୍ଜି ପତର**—ଦେ. ବ. ( ଅନର୍ଥକ ୨ୟ ସହଚର ଶବ୍ଦ)—
Pāñji patara ତାଳ ପତ୍ରରେ ଲିଖିତ ହିସାବ ପତ୍ରମାନ—
पाँजीपुथि Accounts written on palm leaf.
**पंजीपत्र** (ପାଞ୍ଜି ପତ୍ର, ପାଞ୍ଜି ପୋଥି—ଅନ୍ୟରୂପ)

ନାଆଁ ମାହାନ୍ତି, ଗାଆଁ ମହାନ୍ତି
ମାହାନ୍ତିଙ୍କ ପାଖେ ଆଉ ମାହନ୍ତି
ପାଞ୍ଜି ପତର ତୋହ ମାହାନ୍ତି — ଢଗ ।

**ପାଞ୍ଜି ବିଡ଼ା**—ଦେ. ବ—ହିସାବ ପତ୍ର ବା ପଞ୍ଜିକା ଲେଖାଥିବା ତାଳ ପତ୍ରର ଗୋଛା—A number of written palm-leaves tagged into a bundle at the left corner.
Pāñji bırḍā
पांजी पुथी
**पंजीपोथि**

**ପାଟ୍**—ବୈଦେ. ବ. ( ଇଂ. Part, ପାର୍ଟ୍ )—
Pāṭ ୧ । ପୁସ୍ତକର ଅଂଶ ବା ଖଣ୍ଡ—
पार्ट 1. Part or volume of a book.
**पाट** ୨ । ନାଟକାଭିନୟରେ ନେତୃ ବିଶେଷଙ୍କ ପ୍ରତି ଭାର ଦିଆଯାଇଥିବା ନାଟକୀୟ ବ୍ୟକ୍ତିଙ୍କ ଭାଗ—2. The part taken by an actor in a dramatic performance.
पाट ୩ । (ଇଂ. ପଟ) ସାହେବମାନଙ୍କର ଝାଡ଼ା ଫେରିବା କମୋଡ଼ରେ
**पाट** ଥିବା କୁଣ୍ଡ—3 Commode-pot.
ପ୍ରାଦେ. ୧ । ( ସମ୍ବଲପୁର ) ବ. ( ସଂ. ପଟ୍ଟ )—
ପାଟ, ରେଶମ—1. Silk.
୨ । ( କଲାହାଣ୍ଡି ) ବ—ଡୁ ଡୁ ଆଦି ଖେଳର ଘାଇ, ପାହି—
2. The boundary line drawn between the two parties of players in the game of Ḍuḍu.

**ପାଟ୍ସୁଣ୍ଟି**—ପ୍ରାଦେ. ( ସମ୍ବଲପୁର ) ବ—ପିଟକାଲା;
Pāt-suṇti ଲଙ୍ଗଳ ଓ ଈଷକୁ ଯୋଗ କରିବା ଲାଗି ଖିଲ—
The wooden pin which tightens the plough with the shaft.

**ପାଟ୍ଜୁଷି**—ଗ୍ରା. ବ—ପାଟଜୋଷି ( ଦେଖ )
Pāṭ-jushı Pāṭajoshi ( See )
(ପାଟ୍ଜୋଷି, ପାଟ୍ଦୁଷି, ପାଟ୍ଦୋଷି—ଅନ୍ୟରୂପ)

**ପାଟ୍ନା(ଣା)**—ଦେ. ବ—ପାଟଣା ( ଦେଖ )
Pāṭ-nā(ṇā) Pāṭaṇā ( See )

**ପାଟନା(ନେ)ଇ**—ଦେ. ବିଣ—ପାଟଣେଇ ( ଦେଖ )
Pāṭ-nā(ne)i Pāṭanei ( See )

**ପାଟ୍‌ନି**—ପ୍ରାଦେ. (ସମ୍ବଲପୁର) ବି (ଭୁଲ. ହି. ପାଟନ୍)—କୋଠାର କାଠ-
Pāṭ-ni Timber of a building.

**ପାଟ୍ ପନିଆଁ**—ପ୍ରାଦେ. (ସମ୍ବଲପୁର) ବି. (ହି. ନାମ ଫନଗା)—କକି -
Pāṭ-paniāñ The dragon fly.
(ପାଟ୍ ପନିହାଁ—ଅନ୍ୟରୂପ)

**ପାଟ୍ ସାହାଲ**—ପ୍ରାଦେ. (ବସ୍ତର) ବି.—ହରଗୌରୀ ଫୁଲ—
Pāṭ-sāhāli The common Balsam flower.

**ପାଟ**—ଦେ. ବି. ( ସଂ. ପଟ୍ଟ )—୧ । କୌଷେୟ ବସ୍ତ୍ର—
Pāṭa ବେଙ୍ଗ ପାଟ **रेशम, पाट** 1 Silk cloth.

ପାଟ ୨ । କସ୍ତା; ନାଲି ବା ଅନ୍ୟ ରଙ୍ଗର ସୂତା—
**पाट** 2. Red or other coloured cotton yarn.

୩ । ରାଜ ସିଂହାସନ—3. Throne.

ମଥୁରା ପୁରେ ଧର୍ମ ରଚେ
ସ୍ଥାପନ୍ତେ ଦୂରସେନ ପାଟ । ଜଗନ୍ନାଥ, ଭାଗବତ ।

୪ । ପ୍ରଶସ୍ତ ଭୂଖଣ୍ଡ—
4. An extensive piece of land.
ଡେଙ୍କାଳ ଦେଶର ନିଜ ରାଜ୍ୟ ପାଟ । ଗୋପୀନାଥ, ନନ୍ଦକେଶରୀ ।

ଜଳାଭୂମି ୫ । ଖାଲୁଆ ଓ ସର୍ବଦା ପାଣି ଜମିଥିବା ଜମି, ଜଳାଭୂମି-
**दलदल** 5. Fen; low and unproductive land; bog; marsh; swamp.

[ ଦ୍ର—ଏଥିରେ ସାରଣା ଆଦି ଧାନର ଫସଲ ଭଲ ହୁଏ ।]

୬ । ଏକ ପୁରୁଷ—6. Generation.
(ଯଥା—ଆମ ପାଞ୍ଚ ପାଟରେ କେହି ଶିକ୍ଷିତ ନ ଥିଲେ)

୭ । ସାନ ହ୍ରଦ—7. Small lake.

୮ । ରାଜବଂଶ ( ମାଦଳା ପାଞ୍ଜି )—
8. Royal family.

୯ । ପ୍ରଭୁ, ରକ୍ଷକ; ରାଜା, ଅଧିକାରୀ, ମାଲିକ—
9. King; master; protector; owner.
କଳକାବରୀ ଏବେ ହୋଇଲା ଅଣପାଟ,
ମୁରୁପୁର ନେଲୁ ଭାଙ୍ଗିଲୁ ସବୁ ଲାଟ । ପୀତାମ୍ବର, ନୃସିଂହପୁରାଣ ।

୧୦ । ଗୋବରା ଚଢ଼େଇର ପେଟତଳେ ଥିବା ନାଲି ଓ ଚିକ୍କଣ ରୋମ-
10. The red feathers in the belly of a Gobarā bird.
ଗୋବରା ଚଢ଼େଇର ପାଟ ଉପୁଡ଼ାଇ,
ଛାଡ଼ିଦେବା ପରାୟେ ହୋଇଛି ତ ତୁହି । କୃଷ୍ଣସିଂହ, ମହାଭାରତ କର୍ଣ୍ଣ ।

୧୧ । ସମୂହ—11. Collection; multitude.
[illegible]
[illegible]

୧୨ । (ସ୍ତ୍ରୀ) ସ୍ତ୍ରୀଲୋକଙ୍କୁ ଡାକିବା ନାମ—
12. A name given to females.

ପାଟ ୧୩ । (ବଙ୍ଗଳାର ଝୋଟ କଳରେ କୁଲିକାମ କରିବାକୁ ଯାଇ
**पाट** ଦେଶ କୁ ଦେଶକୁ ଫେରି ଆସିବା ଓଡ଼ିଆମାନଙ୍କ ବ୍ୟବହୃତ)—
ଝୋଟ—13. Jute.

୧୪ । ଓସାର, ପ୍ରସ୍ଥ—14. Breadth; width.

ପ୍ରାଦେ—୧ । (ଗଡ଼ଜାତ)—ବି—ପଣାସଂକ୍ରାନ୍ତିରେ ବ୍ରତଧାରୀ-
ମାନେ ଉପରେ ଚାଲିଯିବା ପାଇଁ ଭୂମିରେ ଜଳାଯିବା ନିଆଁ ବା
ବିଛାଯିବା କଣ୍ଟା—1. Fire or thorns spread in a long pit over which devotees walk on the Panāsamkrānti day
ଯଥା—ନିଆଁପାଟ, କଣ୍ଟାପାଟ ।
[ଦ୍ର—ଏଥିରୁ ପାଟୁଆ ଶବ୍ଦ ଉତ୍ପନ୍ନ ହୋଇଅଛି ।]

୨ । (ବାମଣ୍ଡା)—ଜଳପ୍ରପାତ—2. Waterfall; cascade.

୩ । (ଉତ୍ତର ଭୁଖା ବସ୍ତର)—ବି—ପିଠି—3. Back.

ପାଟ ଦେ. ବିଣ—( ସଂ. ପଟ୍ଟ )—୧ । ପଟ୍ଟ; କୌଷେୟ ନିର୍ମିତ—
Silken.
**पाट** ଯଥା—ପାଟବସ୍ତ୍ର, ପାଟଶାଢ଼ୀ, ପାଟଲୁଗା ।

୨ । ପ୍ରଧାନ—(ଅନ୍ୟ ଶବ୍ଦ ସଙ୍ଗେ ବ୍ୟବହୃତ, ଯଥା—
ପାଟରାଣୀ, ପାଟଜୋଶୀ)—2. Chief.
ନିଜ ଭାରିଯା ପାଟରାଣୀ,
କାନ୍ଦରେ ଥାନ୍ତି କୋଳେ ବସି । ଭୂପତି, ପ୍ରେମପଞ୍ଚାମୃତ ।

୩ । ରାଜାଙ୍କର ଖାସ୍ ବ୍ୟବହାରରେ ଲାଗୁଥିବା—3. Used by the king; reserved for the use of the king.
ମୋ ଉଚ୍ଚ ଉରଜ ଅଟନ୍ତି,
ମଦନ ପାଟଗଜକୁମ୍ଭ । ଭୂପତି, ପ୍ରେମପଞ୍ଚାମୃତ ।

[ଦ୍ର—ଯଥା—ପାଟହାତୀ, ପାଟଘୋଡ଼ା; ପାଟଅଗଣା, ପାଟଖଣ୍ଡା; ପାଟଛତ୍ର ।]

୪ । (ସଂ. ପାଟଳ)—ଗୋଲାପୀ, ପାଟଳବର୍ଣ୍ଣବିଶିଷ୍ଟ—
4. Pale red; rosy.
ଯଥା—ପାଟପୋକ ।

**ପାଟ ଓପାଡ଼ିବା**—ଦେ. କ୍ରି—୧ । ଗୋବରା ଚଢ଼େଇର ଶିଖାରେ ଓ
Pāta opārdibā ମଳଦ୍ୱାର ନିକଟରେ ଥିବା ନାଲି ଓ ଚିକ୍କଣ
(ପାଟ ଉପାଡ଼ିବା—ଅନ୍ୟରୂପ) ରୋମ ଉପାଡ଼ିବା—
1. To uproot the red feathers from the head and navel of a Gobarā bird.

[ ଦ୍ର—ଯେଉଁ ଗୋବରା ଚଢ଼େଇ ଅନ୍ୟ ଚଢ଼େଇ ସଙ୍ଗେ ଲଢ଼ାଇ କରି ହାରି ଯାଏ ତାହାର ପାଟ ଓପାଡ଼ି ପକ୍ଷିସ୍ୱାମୀ ତାକୁ ଉଡ଼ାଇ ଦିଏ, ଅତଏବ ଲକ୍ଷଣାର୍ଥରେ ଦର୍ପ ହାନି କରିବା; ଅବମାନିତ କରିବା ଅର୍ଥରେ ପାଟ ଓପାଡ଼ିବା ଶବ୍ଦ ବ୍ୟବହୃତ ହୁଏ ।]

୨ । (ଲକ୍ଷଣାର୍ଥ)—ଦର୍ପ ହାନି କରିବା, ବହୁତ କ୍ଷତି ଘଟାଇ ନାରଖାର କରିବା; ଅବମାନିତ କରିବା—
2. (figurative) To crush the pride of a person; to humiliate a person; to injure or ruin a person.
ଯଥା—ମୁଁ ତାର ପାଟ ଓପାଡ଼ି ଦେବି ।

**ପାଟକ**—ସଂ. ବି. (ପଟ୍ ଧାତୁ=ଗମନ କରିବା+କର୍ତ୍ତୃ. ଅକ)—
Pāṭaka ୧ । ନଦ୍ୟାଦିର କୂଳ—
1. The bank or shore of a river.
୨ । ଗ୍ରାମର ଅଂଶ, ଗ୍ରାମାର୍ଦ୍ଧ—
2. Half portion or quarter of village.

୩ । ପଶାର ଗୋଟି ଗ୍ଭଳବା—3. The moving of the pieces in the game of dice.
୪ ।ବାଦ୍ୟ ଯନ୍ତ୍ର—4. Musical instrument.
୫ । ବାଦ୍ୟ ଧ୍ୱନି—
5. The sound of a musical instrument
୬ । ରୋଧ—6. Obstruction.
୭ । ମୂଳଧନର କ୍ଷତି—
7. Loss of capital or stock. (Apte)
୮ । ପାଣି ନିକଟକୁ ଯିବା ପାଇଁ ରଚିତ ସୋପାନ ଶ୍ରେଣୀ—
8. A flight of steps leading to the water (Apte).
୯ । ପଶାକାଠି ଗଡ଼ାଇବା —
9. Throwing the dice (Apte).
୧୦ । ଫଟାଇବା ଅସ୍ତ୍ର—
10. A splitter; divider (Apte).
୧୧ । ଦୀର୍ଘ ଫାଙ୍କ—11. A long span (Apte).
୧୨ । ପଶା (ହି. ଶ.)—12 Dice
ଦେ. ବି.–( ସଂ. ପାଟକ=ଗ୍ରାମାଂଶ, ଗ୍ରାମାଂଶରେ ବାସ କରୁଥିବା ଲୋକେ)-ଶୂଦ୍ରମାନଙ୍କର ବିଭିନ୍ନ ଉପଜାତି ବା ବାଡ଼ୁଆ ଜାତି—The various subcastes amongst the śūdras according to their respective callings.

ପାଟକେ ହାଟରେ କ୍ରୟ ବିକ୍ରୟ କରନ୍ତି । ଉଦ୍ଧ. ଲାବଣ୍ୟ ବତୀ ।

[ଦ୍ର—ହିନ୍ଦୁମାନଙ୍କର ୪ ଜାତି (ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର) ଓ ଶୂଦ୍ରମାନଙ୍କର ୩୬ ପାଟକ ଅଛି । ଯଥା — (୧) ଗଉଡ଼ ( ୪ ଜାତି —ମଗଧା, ମଥୁରାପୁରିଆ, ଗୋପପୁରିଆ, ଭୁମାଲ ) । (୨) ଭଣ୍ଡାରୀ—କନାମୁଠିଆ ଓ ଚମମୁଠିଆ (ବା ବାଡ଼ୁଆ)। (୩) ବଢେଇ (୪) କମାର, (୫) ଧୋବା (୬) ତନ୍ତି (୭) ପୋଟଳ ବଣିଆ (୮) ନାୟକ—(ମାଟବଂଶ ଓ ଖଡ଼ବଂଶ) (୯) ଗୁଳାଭଣା, (୧୦) ତେଲି,(୧୧) ତାମ୍ବିଳ, (୧୨) ଓଡ଼, (ଓଡ଼ଚଷା,ଓଡ଼ପାଇକ) (୧୩) ଚଷା (ଶୁଧ ଚଷା) (୧୪) ଗୋଲ୍ଲ, (୧୫) କେଉଟ, (୧୬) ମାଳୀ ବା ମାଳାକାର, (୧୭) ଶୁଣ୍ଢି, (୧୮) ଶଙ୍ଖାରୀ, (୧୯) ପାଟରା, (୨୦) ଖରୁଡ଼ା ବା ଖଡ଼ୁରା, (୨୧) କଂସାରି, (୨୨) ଥଟାରି, (୨୩) ପଥୁରିଆ, (୨୪) ବୈଶ୍ୟ ବଣିଆ, (୨୫) କାଉରା, (୨୬)। ଗୁଡ଼ିଆ, (୨୭) କୁମ୍ଭାର, (୨୮) ଚିତ୍ରକାର, (୨୯) ଦରଜି, (୩୦) ମଲ୍ଲା, (୩୧) ରଙ୍ଗଣୀ ବା ସୁତାଲ, (୩୨) ଡମ୍ବାର, (୩୩) ଲୁଣିଆ, (୩୪) ଥୋଡ଼ିଆ, (୩୫) ରସରା, (୩୬) ଦୁଣା । ଖଣ୍ଡାଏତ, ମହାନ୍ତି ଓ ମହାଲାୟକ ପାଟକରେ ଯାଆନ୍ତି ନାହିଁ । ବାଉରି, ଗୋଖା, କଣ୍ଡରା ପାଣ, ଶବର, ହାଡ଼ି, ଡମ, ଚମାର ଏମାନେ ଅନାର୍ଯ୍ୟ ଥିବାରୁ ପାଟକରେ ଯାଆନ୍ତି ନାହିଁ । ପରାଶର ସଂହିତା ଅନୁସାରେ ଗଉଡ଼, ମାଳ, ତେଲୀ, କେଉଟ, ଗୁଡ଼ିଆ, ବଢ଼େଇ, କୁମ୍ଭାର, କମାର ଓ ଭଣ୍ଡାରୀ ଏହି ନଅଟି ପାଟକ ବା ନବଶାୟକ ଅଟନ୍ତି । ପାଟକ ଜାତିର ସ୍ତ୍ରୀ ଲୋକେ ମଧ୍ୟ ବ୍ୟବସାୟ ଉପଲକ୍ଷରେ ବାଣ୍ଡକୁ ବାହାରିବା ଏମାନଙ୍କ ସମାଜରେ ଚଳେ ।]

**ପାଟ କଙ୍କଡ଼ା**—ପ୍ରାଦେ. (ବାଲେଶ୍ୱର) ବି.—ସମୁଦ୍ର କୂଳରେ ଥିବା ନାଲି Pāṭa kankarḍā ଛୋଟ କଙ୍କଡ଼ାବିଶେଷ—A kind of small red-coloured crab found on the seashore
[ଦ୍ର—ଏହା ଭକ୍ଷଣ ଯୋଗ୍ୟ ନୁହେ । କିନ୍ତୁ ଔଷଧ ନିମନ୍ତେ ବ୍ୟବହୃତ ହୁଏ ବୋଲି ପ୍ରବାଦ ଅଛି । ଏମାନେ ଏତେ ଅଧିକ ପରିମାଣରେ ସମୁଦ୍ରକୂଳର ସ୍ଥାନେ ସ୍ଥାନେ ବାସ କରନ୍ତି ଯେ, ଦୂରରୁ ଦେଖିଲେ ମନେ ହୁଏ ଯେପରି କେହି ସମୁଦ୍ର କୂଳରେ ଗୁରୁଆଡେ ସିନ୍ଦୂର ବିଛି ଦେଇଛି ।]

**ପାଟକପୁରା**—ଦେ. ବି—କାଠିଆକଦଳୀବିଶେଷ—
Pāṭakapurā A kind of Banana which is sweet when ripe.
କାଁଠାଲୀକଲା
**मालभोग** [ ଦ୍ର—ଏହା ପାଚଲେ ସୁସ୍ୱାଦୁ ହୁଏ । ଏଥିରେ କଦଳୀ-ଚକଟା ହୁଏ । ]

**ପାଟ କଳ** —ଦେ. ବି—(ବଙ୍ଗଳାରୁ ଅନୁକୃତ) –ଯେଉଁ କଳରେ ଝୋଟରୁ Pāṭa kaḷa ଅଖା ଆଦି ତିଆରି ହୁଏ, ଚଟ୍‌କଲ, ଝୋଟ କାରଖାନା- Jute mill.
পাটকল **पाट कारखाना**

**ପାଟକି**—ଦେ. ବି—ପାଟକ (ଦେଖ)—
Pāṭaki Pāṭaka (See)
ଦେ. ବିଣ—ପାଟକ ସମ୍ବନ୍ଧୀୟ—Relating to the sub-castes amongst the Śūdras.

ପାଟକ ଜାତରେ ଏତେ ବଡ ଅଭିଆଡୀ କନ୍ୟା ଘରେ ରଖିବାକୁ ମନା— ଫକୀରମୋହନ. ଗଳ୍ପସ୍ୱଳ୍ପ ।

**ପାଟ କେରଣ୍ଡି**—ଦେ. ବି—ଏକପ୍ରକାର କେରଣ୍ଡି ମାଛ—
Pāṭa keraṇḍi A kind of Barb fish; Barbs Conchonius.
কাঁচনপুঁটী **खेसरा**
[ଦ୍ର—ଏହି ମାଛର କଡ଼ ପାଖର ମଝିରେ ଗୋଟିଏ ନାଲିଗାର ଥାଏ ଓ ଏହାର ଦେହ ଈଷତ୍ ହରିଦ୍‌ବର୍ଣ୍ଣ ]

**ପାଟ ଖୋସା**—ଦେ.ବି—(ସଂ.ପଟ୍ଟ+କୋଷ)—ପାଟ ବା ରେଶମ ପୋକଙ୍କ Pāṭa khoshā ଖୋଳ ବା ଗୋଟୀ—Silk cocoon.
(ପାଟ ଗୋଟୀ—ଅନ୍ୟରୂପ) পাটেরকোয়া **रेसमकाकोया**

**ପାଟ ଗୁଣ୍ଡି**—ଦେ. ବି—(ଏଥିରେ ପାଟ ବା ରେଶମ ସୂତା ରଞ୍ଜିତ ହେଉ Pāṭa gunḍi ଥିବାରୁ)—କମଳାଗୁଣ୍ଡି (ଦେଖ)—Kamaḷā gunḍi (See)

**ପାଟ ଚେଙ୍ଗ(ଙ୍ଗା)**—ପ୍ରାଦେ. (ଗଡ଼ଜାତ) ବି—ନାଲିଲାଞ୍ଜିଆ ଚେଙ୍ଗ Pāṭa chenga (ngā) (ମାଛ) —Red-tailed Chenga fish.

**ପାଟ ଚୋଳୀ**—ଦେ. ବି—(ସଂ. ପଟ୍ଟ+ଚୋଳ)—ପାଟର କାଞ୍ଚୁଲି—
Pāṭa choḷi **पाटकीचोली** A bodice of silk.

କଳସିତା ଉଦ୍ଧୃଗୋପ ବେଶଧ ପାଟଚୋଳୀ — ଉଦ୍ଧ ବୈଦେହୀଶବିଳାସ ।

**ପାଟଚର**—ସଂ. ବି—(ପଟ୍ଟଚର+ସ୍ୱାର୍ଥେ. ଅ)—ଚୋର; ତସ୍କର—
Pāṭachchara Thief; robber; pilferer.

**ପାଟ ଛତି**—ଦେ. ବି—(ସଂ. ପଟ୍ଟ+ଛତ୍ର)–ରାଜା ଓ ଦେବତାଙ୍କ ଉପରେ Pāṭa chhati ଟେକା ଯାଉଥିବା ରେଶମ କନାରେ ଆବୃତ ଛତା—

রেসমেরছাতি Silken umbrella held over Rajas and idols
**पाटकी छतरी**

ପ୍ରଫୁଲ୍ଲ ପ୍ରସୂନ ଧରନ୍ତ ଯା ଶିରେ ସକୋଚର ପାଟଛତ—
କବିକଙ୍କଣୋର. ଶର୍ମିଷ୍ଠା ।

**ପାଟ ଜର୍ଦ୍ଦା**—ପ୍ରାଦେ. (ମେଦନୀପୁର, ଯାଜପୁର)—ବି—୧ । ବିଲାତି
Pāṭa jardā ବାଇଗବା (ଦେଖ)—1. Bilāti bāigabā (See)

୨ । ନାଲିଗବ; ରକ୍ତୈରଣ୍ଡ—
2 The red variety of the castor seed plant.

**ପାଟ ଜଥା**—ଦେ. ବି—ଏକଜ ବୁଣା ପାଟର ଧୋତି ଓ ଚଦର—
Pāṭa jathā A pair of silken cloths (loin cloth and sheet) woven in one length.
**पाटजोड़ा**
(ପାଟ ଯୋଡ଼—ଅନ୍ୟରୂପ)

**ପାଟ ଜେମା**—ପ୍ରାଦେ (ଗଡ଼ଜାତ) ବି. ସ୍ତ୍ରୀ—ରାଜାଙ୍କର ଜ୍ୟେଷ୍ଠା କନ୍ୟା-
Pāṭa jemā The eldest daughter of a Rāja.

**ପାଟ ଜୋଷି**—ଦେ. ବି—(ସଂ. ପଟ୍ଟ ଜ୍ୟୋତିଷୀ)—୧ । ରାଜାଙ୍କ ପ୍ରଧାନ
Pāṭa joshi ଜ୍ୟୋତିଷ ପଣ୍ଡିତ—1. The chief astrologer of a Raja; the astrologer royal.

ପାଡ଼ ଜୋଷି, ପାଢ଼ ଜୁଷି, ପାଢ଼ୁଷି, ପାଢ଼ୁଷି } ଅନ୍ୟରୂପ

ଜଣାଇଲ ପାଟଜୋଷୀ ଗଣି ଶୁଭବେଳା କୁପଭ
ଲଗ୍ନରେ । ଚନ୍ଦ୍ରମଣି – ବଳମାଧବଙ୍ଗ ।

୨ । ବ୍ରାହ୍ମଣମାନଙ୍କୁ ରାଜଦତ୍ତ ଉପାଧି ବିଶେଷ—2. A title bestowed on Brāhmaṇas by Rājas.

**ପାଟଡୋର(ରି)**—ଦେ. ବି—(ସଂ. ପଟ୍ଟ+ଡୋର)—ରେଶମର ତିଆରି
Pāṭa ḍora(ri) ଦଉଡ଼ା—Silk string.
রেসমেরডুরী **पाटडोर**

**ପାଟଣା(ନା)**—ଦେ. ବି—(ସଂ. ପତ୍ତନ)—୧ । ନଗର, ସହର—
Pāṭaṇā(nā) পাটনা **पटन** 1. City; town.

୨ । ଗ୍ରାମ Village.

ସମ ନାଗେଟେ ବୃନ୍ଦାବନ ନିକଟେ ଗୋପ ବୋଲି ପାଟଣାରେ—
ଏ୍ୟାତୀ – ଉତ୍ସବ ମଞ୍ଜରୀ ।

୩ । ପ୍ରାଚୀନ ପାଟଳୀପୁତ୍ରର ଆଧୁନିକ ନାମ (ଏହା ବିହାର ପ୍ରଦେଶର ପାଟଣା ବିଭାଗ ଓ ପାଟଣା ଜିଲ୍ଲାର ରାଜଧାନୀ)—
3. Patna; name of a town, district and division of the Province of Bihar.

[ଦ୍ର—ଏହା ବିହାର ପ୍ରଦେଶର ରାଜଧାନୀ । ଏଠାରେ ପାଟଣା ହାଇକୋର୍ଟ ଓ ବିଶ୍ୱବିଦ୍ୟାଳୟ ଅବସ୍ଥିତ । ଏହା ଗଙ୍ଗା ନଦୀର ଦକ୍ଷିଣ କୂଳରେ ଲମ୍ବ ଭାବରେ ଅବସ୍ଥିତ । ଏଥି ନିକଟରେ ପ୍ରାଚୀନ ପାଟଳି ପୁତ୍ରର ଅନେକ ଭଗ୍ନାବଶେଷ ଦେଖାଯାଏ; ଇଂରାଜମାନେ ପୂର୍ବେ ଏଠାରେ ଗୋଟିଏ ଉଚ୍ଚ ପକ୍କା ଧାନକୋଠି ନିର୍ମାଣ କରିଥିଲେ, ତାହା ଏବେ ହୁଦ୍ଧା ଅଛି । ଏହା ଗଙ୍ଗା ଓ ଶୋନ ନଦୀର ସଙ୍ଗମ ନିକଟରେ ଅବସ୍ଥିତ ।]

୪ । ଉତ୍କଳ ଅନ୍ତର୍ଗତ ଗୋଟିଏ ଗଡ଼ଜାତ ରାଜ୍ୟ; ବଲାଙ୍ଗିର-ପାଟଣା—4. Patna; name of one of the Orissa states.

୫ । ପଟଣେଇ (ଦେଖ)—5. Patanei (See)

**ପାଟଣା(ଣେ)ଇ**—ଦେ. ବି—ପାଟଣା ଦେଶୀୟ—Belonging or
Pāṭaṇā(ṇe)i পাটনাই **पटनिया** appertaining to Patna.

ପାଟନାଇ, ପାଟନେଇ } ଅନ୍ୟରୂପ ( ଯଥା—ପାଟଣାଇ ଆଳୁ, ପାଟଣେଇ କୋବି ।)—

ପତ୍ତନୀ ଦେ. ବି—ଜମିଦାରୀର ଅନ୍ତର୍ଗତ ଚିରସ୍ଥାୟୀ କର ଧାର୍ଯ୍ୟ
**पटनी** ହୋଇଥିବା ମଧ୍ୟସ୍ୱତ୍ୱ ଗ୍ରାମ ବା ମଉଜା—A village of which the rent payable by the tenure-holder is permanently settled.

**ପାଟଦ**—ସଂ. ବି—କାର୍ପାସ, କପା (ହ୍ରି. ଶ.)—
Pāṭada Cotton.

**ପାଟଦନ୍ତାରି**—ପ୍ରାଦେ. (ଗଡ଼ଜାତ) ବି—ନାଲିଆ କଣ୍ଟା ଓ କୋମଳ ପତ୍ର
Pāṭa dantāri ଥିବା ଲତାଳିଆ ବୁଦା—A kind of creeping thorny bush.

**ପାଟଦେଉ**—ଦେ. ବି—(ସଂ. ପଟ୍ଟ+ଦେବ)—ଯୁବରାଜ; ରାଜାଙ୍କ ଜ୍ୟେଷ୍ଠ
Pāṭadeu କୁମାରଙ୍କ ଉପାଧି—The title of the eldest son or heir apparent of a Raja.
**युवराज**

**ପାଟନ**—ସଂ. ବି—(ପଟ୍ ଧାତୁ, ଣିଜନ୍ତ—ପାଟି ଧାତୁ=ଗମନ କରିବା+ ଅନ୍,—୧ । ଛେଦନ, କର୍ତ୍ତନ—
Pāṭana
(ପାଟିତ, ପାଟନୀୟ, ପାଟ୍ୟ—ବିଣ) 1 Cutting.

୨ । ବିଦାରଣ, ଫାଡ଼ିବା, ଚିରିବା—
2. Tearing up; splitting; cleaving

୩ । ବିଭଞ୍ଜନ—
3. Dividing; cutting to pieces.

୪ । ବିନାଶନ—4. Destroying. (M. W.)

୫ । ଫୋଡ଼ିବା—5. Piercing.

୬ । ଦକ୍ଷିଣାପଥର ପ୍ରାଚୀନ ରାଜଧାନୀବିଶେଷ ( ହ୍ରି. ଶ. )—
6. Name of an ancient town in the Deccan.

**ପାଟନ କ୍ରିୟା**—ସଂ. ବି. (ସ୍ୱଣ୍ଡ ତ)—ବଥଆଦିକୁ ଫୋଡ଼ିବା—
Pāṭana kriya Lancing an abscess or ulcer
(ପାଟନକର୍ମ—ଅନ୍ୟରୂପ) (M. W.).

**ପାଟନା**—ସଂ. ବି. (ପାଟନ+ଆ)—ଛେଦ; କଟା ହୋଇ କରାଯିବା ଗାତ—
Pāṭanā A cut; an incision (M. W.).

ଦେ. ବି—ପାଟଣା ୩-୪ (ଦେଖ)—Pāṭaṇā 3-4 (See)

**ପାଟ ନେତ**—ଦେ. ବି. (ସଂ. ପଟ୍ଟ+ନେତ୍ର)—ରେଶମର ସରୁଲୁଗା—
Pāṭa neta Silken cloth of delicate texture.
পাটনেত **पाटखोरकी**

**ପାଟପ**—ଦେ. ବି. (ସଂ. ପାଟବ)—୧ । ପାଟବ; ପଟୁତା—
Pāṭapa 1. Skill.
**चतुराइ** ୨ । ବାହାଦୁରୀ—2. Excellence.

ଚର୍ତ୍ତି ବି କବ ରଚ ଆପଣା ପାଟପ
ଦେଖାଇ ନୃତ୍ୟ କର କରେ ତମ ଲୋଚ । କୃଷ୍ଣସିଂ. ମହାଭାରତ ବନ ।

**ପାଟ ପଥର**—ଦେ. ବି—ଦେଉଳ ବା ପଥର କୋଠାର କବାଟ ବା
Pāṭa pathara ଝରକାର ଉପରେ କାନ୍ଥରେ ଅଡ଼ାଯାଇଥିବା ଲମ୍ବା ପଥର—Lintel stone.
বাসকাট পথর
**पाटपत्थर**

**ପାଟପନଅ(ଅଁ)**—ପ୍ରାଦେ. (ସମ୍ବଲପୁର) ବି—କଙ୍କି—
Pāṭapanā(ān) [ପାଟପନହା(ହାଁ)—ଅନ୍ୟରୂପ] Dragon-fly.

**ପାଟ ପହଲା**—ଦେ. ବି. (ସଂ. ପାଟଲ+ପ୍ରବାଳ)—ନାଲି ପୋହୋଲା—
Pāṭa pahalā লালপলা लालमुंगा Red coral.
(ପାଟପୋଏଲା, ପାଟ ପୋହଲା, ପାଟପୋହୋଲା—ଅନ୍ୟରୂପ)

**ପାଟପୁକ**—ପ୍ରାଦେ. (ମେଦିନୀପୁର; ଉତ୍ତର ବାଲେଶ୍ୱର) ବି (ପୋ ସ୍ଥାନରେ ପୁ ଉଚ୍ଚାରଣ)—ସାଧବବୋହୂ, ପାଟପୋକ—
Pāṭapuka Cochineal (insect).

**ପାଟ ପୋକ**—ଦେ. ବି—୧ । ଇନ୍ଦ୍ରଗୋପ ବା ସାଧବ ଘରବୋହୂ ପୋକ; ମଖମଲି ପୋକ—1. Cochineal insect.
Pāṭa poka
মখমলী পোকা
बीरबहुटी
ହୋଇଣ ଦର୍ଶିଗଲ ପାଟପୋକ ନ୍ୟାୟେ ।
କୃଷ୍ଣସିଂହ, ମହାଭାରତ କର୍ଣ ।
পাটপোকা ୨ । ପାଟସୂତା ତିଆରି କରିବା ପୋକ—
रैसमकाकीड़ा 2 Silk worm, the silk moth; Bombyx.

**ପାଟ ପୋତା(ତେ)ଇବା**—ଦେ କ୍ରି—ଗୃହର ମୂଳଦୁଆ ବା ମୂଳପଥର ପକାଇବା—To lay the foundation stone of a building.
Pāṭa potā(te)ibā

**ପାଟଫୁଲ**—ଦେ. ବି—୧ । ପାଟନିର୍ମିତ ଥୋପ—
Pāṭaphuli 1. Tassels made of silk.
বেসমেবথোপী ଘୋଡ଼ା ମୁଣ୍ଡେ ପାଟଫୁଲ, ଘୋଡ଼ା ଯାଉଥିଲା ବଜାଉବୁଲି,
रेसमका लटकन ଘଡ଼ ଦେଇ ଦଶଘଡ଼ି । ତରତ ଘୋଡ଼ାଗୀତ ।
୨ । ଫୁଲଲଗା କସ୍ତା ସୂତାର ଫିତା—
पाटका, फींटा 2. Tassellated tape.
[ଦ୍ର—ଏହା ସ୍ତ୍ରୀଲୋକଙ୍କ ଜୁଡ଼ାରେ ଲଗାଯାଏ ।]
୩ । କୁରୁବକ, ରକ୍ତଝିଣ୍ଟି—
3. The red-flowered variety of Barlaria.
[ଦ୍ର—ଏହିଫୁଲର ରଙ୍ଗ ଆରକ୍ତ; କଦମ୍ବଫୁଲ ପରି ଆକାର ।]

**ପାଟ ଫେଟା**—ଦେ. ବି—ପାଟଲୁଗା, ରେସମର ଧୋତି—
Pāṭa pheṭā A long loin-cloth of silk.
বেসমেবধুতী ପିନ୍ଧିଛନ୍ତି ବାଛି ସୁରଙ୍ଗ ପାଟଫେଟା ।
रेसमीधोती କୃଷ୍ଣସିଂହ, ମହାଭାରତ ଅଦି ।

**ପାଟବ**—ସଂ. ବି. (ପଟୁ+ଭାବାର୍ଥେ ଅ)—୧ । ପଟୁତା; ଦକ୍ଷତା;ନୈପୁଣ୍ୟ—
Pāṭaba 1. Skill; dexterity.
ଆପଣାବଳ ଦେଖାଇବା ପାଟବରେ । କୃଷ୍ଣସିଂହ. ମହାଭାରତ ସଭା ।
୨ । ଚତୁରତା—2. Cleverness.
୩ । କ୍ଷିପ୍ରତା—3. Quickness.
୪ । ସ୍ୱାସ୍ଥ୍ୟ, ଆରୋଗ୍ୟ—4. Health (M.W.).
୫ । ତେଜଃ—5. Energy (Apte).
ସଂ. ବିଣ. (ପଟୁ+ସ୍ୱାର୍ଥେ ଅ)—୧ । ପଟୁ—
1. Skilful; dexterous.
୨ । ଚତୁର—2. Clever; sharp.

**ପାଟବଂଶୀ**—ଗ୍ରା ବି. (ସଂ. ପଟ୍ଟମହିଷୀ)—ପଟ୍ଟମହିଷୀ, ପାଟରାଣୀ—
Pāṭabamsi The principal Ranee of a Raja.
পাটবানী पटरानी

**ପାଟ ବରତ**—ଦେ. ବି—୧ । ଅନନ୍ତ ବ୍ରତ ଓ ସୁଦଶା ବ୍ରତଆଦି କରୁଥିବା ବ୍ୟକ୍ତିମାନେ ହାତରେ ବାନ୍ଧୁଥିବା ପାଟଫୁଲ—
Pāṭa barata
(ପାଟବ୍ରତ—ଅନ୍ୟରୂପ) 1. A tassellated string put on by persons observing certain vows.
୨ । ରେସମର ଫୁଲ ଲାଗିଥିବା ବାହୁସୂତ୍ର—
2. An amulet-string furnished with silken tassels
ଦଦମାଳୀ ପାଟବ୍ରତ, ହାତରେ ଭୂଷଣାଦିତ । ଭକ୍ତ, ଲାବଣ୍ୟବତୀ ।

**ପାଟବଲି(ଲି)ଆ**—ପ୍ରାଦେ. (ଗଡ଼ଜାତ) ବି—ଏକପ୍ରକାର ବଳଆ କୁକୁର—
Pāṭa bali(li)ā A kind of ferocious wild dog.
[ଦ୍ର—ଏମାନଙ୍କ ଦେହ ପାଟଦେଶ ଚିକ୍କଣ, ରକ୍ତାଭ ଲୋମବିଶିଷ୍ଟ, ଏମାନଙ୍କୁ ବାଘ ମଧ୍ୟ ଡରେ । ଏମାନେ ଦଳବଦ୍ଧ ହୋଇ ଅରଣ୍ୟରେ ବିଚରଣ କରନ୍ତି ।]

**ପାଟ ବାଟେ**—ପ୍ରାଦେ. (ଉତ୍ତରଭୁକ୍ତା) ଅ—ଏଥିରେ—
Pāṭa bāṭe

**ପାଟବିକ**—ସଂ. ବିଣ. ପୁଂ. (ପାଟବ+ସ୍ୱାର୍ଥେ ଇକ)—୧ । ପଟୁ, ନିପୁଣ—
Pāṭabika 1. Skilful.
(ପାଟବିକା—ସ୍ତ୍ରୀ) ୨ । ଧୂର୍ତ୍ତ, ଶଠ—2. Fraudulent; sharp.
୩ । ଚତୁର—3. Clever

**ପାଟବେ**—ଦେ. କ୍ରି. ବିଣ—ବିଧିମତେ—
Pāṭabe Duly.
ପାଟଲିପୁତ୍ର ନରଦେବେ, ପାଟବେ ଦେଲେ ସନ୍ଦେଶେ ।
ଭକ୍ତ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।

**ପାଟବୋହୂ ମଣିମାଁ**—ପ୍ରାଦେ. (ଗଡ଼ଜାତ) ବି—ଯୁବରାଣୀ; ଯୁବରାଜଙ୍କ ପ୍ରଧାନ ସ୍ତ୍ରୀ—The principal wife of an heir apparent of a Raja.
Pāṭa bohu manimā(mān)

**ପାଟ ଭଣଜା(ଞ୍ଜା)**—ପ୍ରାଦେ. (ଗଡ଼ଜାତ) ବି.—ଜ୍ୟେଷ୍ଠ ଭଣଜା, ଆପଣାର ଜ୍ୟେଷ୍ଠା ଭଗିନୀର ଜ୍ୟେଷ୍ଠପୁତ୍ର—
Pāṭa bhaṇajā(ñjā) The eldest son of one's eldest sister.

**ପାଟଭାଲି**—ଦେ. ବି.—ଶୁକ ଜାତୀୟ ଶ୍ରେଷ୍ଠ ପକ୍ଷୀବିଶେଷ—
Pāṭa bhāli A species of small parrot;
(ପାଟଭାଲିଆ—ଅନ୍ୟରୂପ) paroquet; parrakeet; Conurus Carolinensis.
[ଦ୍ର—ଏମାନେ ସାଧାରଣ ଶୁଆଙ୍କ ଠାରୁ ଶ୍ରେଷ୍ଠ । ଏହାଙ୍କର ଦେହ ସବୁଜ ଓ ମୁଣ୍ଡ ନାଲିଆ, ପକ୍ଷର ଦୁଇ କଡ଼ରେ ନାଲି ଦାଗ ଥାଏ ।]

**ପାଟ ଭୁଆସୁଣୀ**—ପ୍ରାଦେ. (ଗଞ୍ଜାମ) ବି—ପାଟ ପୋକ; ସାଧବ ଘର ବୋହୂ—Cochineal insect.
Pāṭa bhuāsuṇī

**ପାଟ ମଞ୍ଜୁଆତି**—ଦେ. ବି.—ଏକ ପ୍ରକାର ମଞ୍ଜୁଆତି ଗୁଳ୍ମ—
Pāṭa manjuāti A species of red flowered Lawsonia.
(ଦ୍ର—ମଞ୍ଜୁଆତି ଶବ୍ଦ ଦେଖ)

**ପାଟ ମଣିମା(ମାଁ)**—ପ୍ରାଦେ. (ଗଡ଼ଜାତ) ବି. ସ୍ତ୍ରୀ.—ପଟ୍ଟ ମହାଦେବୀ;
Pāṭa maṇimā (māñ) ପାଟ ମହାଦେଈ—
A Raja's principal or eldest Ranee.

**ପାଟ ମହାଦେଈ**—ଦେ. ବି. ସ୍ତ୍ରୀ. (ସଂ. ପଟ୍ଟ+ମହାଦେବୀ)—ପଟ୍ଟମହିଷୀ;
Pāṭa mahādei ରାଜାଙ୍କର ପ୍ରଥମ ଓ ପ୍ରଧାନ ରାଣୀ—
ପାଟରାନୀ, ପାଟେଶ୍ୱରୀ The chief wife of a Raja; the
पटरानी, पाटमहिषी eldest Ranee.
(ପାଟ ମାହାଦେଈ, ପାଟ ମହାଦେବୀ, ପାଟମହିଷୀ—ଅନ୍ୟରୂପ)
ତୁମ୍ଭେ ରାଜାର ଘରଣୀ ପା ,ମହାଦେଇ
ହୋଇ ସୁଖ ଭୁଞ୍ଜିବ ମାଗ ବହୁ ଦାଇଁ—କୃଷ୍ଣସିଂହ ମହାଭାରତ ଶଲ୍ୟ

**ପାଟ ମୁଦି**—ଦେ. ବି.—(ସଂ ପଟ୍ଟ+ମୁଦ୍ରିକା)—କ୍ଷତ୍ରିୟ ଓ ରାଜାମାନଙ୍କ
Pāṭa mudi ବିବାହ ପୂର୍ବରୁ ବର କନ୍ୟାଙ୍କର ମହାପ୍ରସାଦ ନିର୍ବନ୍ଧ
पाकादेखा तिलक ଉତ୍ସବ—The ceremonial betrothal amongst Rajas and Kshatriyas.
[ଦ୍ର—ଏଥିରେ ବର ପକ୍ଷରୁ କନ୍ୟାପାଇଁ ପାଟ ଶାଢ଼ୀ ଓ ମୁଦି-ଉପଢୌକନ ଦିଆ ଯାଏ ଏବଂ କନ୍ୟା ପକ୍ଷରୁ ବରକୁ ପାଟଲୁଗା ଓ ମୁଦି ଉପଢୌକନ ଦିଆ ଯାଏ ଓ ବର ପକ୍ଷ ଓ କନ୍ୟା ପକ୍ଷ ମଧ୍ୟରେ ବାଗ୍ଦାନ ହୁଏ, ଅର୍ଥାତ୍ ବିବାହ ବିଷୟ ଓ ଦିବସର ଚୁକ୍ତି ହୁଏ ।]

**ପାଟମ୍ବର**—ସଂ. ବି.—ପଟ୍ଟାମ୍ବର; ରେସମୀ ଲୁଗା (ହି. ଶବ୍ଦସାଗର)—
Pāṭambara Silken cloth.
(ପାଟଂବର—ଅନ୍ୟରୂପ)

**ପାଟରା**—ଦେ. ବି. ପୁଂ—(ସଂ. ପଟ୍ଟକାର)—ପାଟ, କପା, ସୂତା ଓ ଲୁଗା
Pāṭarā ଆଦି ବ୍ୟବସାୟୀ ଶୂଦ୍ର ଜାତିବିଶେଷ—A Hindu
ପାଟୁଆ, ପଟୋ बजाज. पटवा caste of dealers in cloth
(ପାଟରାଣୀ—ସ୍ତ୍ରୀ) and cotton yarn.
[ଦ୍ର—ଏମାନେ ରେସମ ଓ ତୁଳାର ନାନା ବର୍ଣ୍ଣର ସୂତା (ପାଟ ଓ କପା), ପାଟଫୁଲ, ଧଡ଼ିଆ, କରଧନ୍ଦା ଆଦି ବିକନ୍ତି ଓ ଲୁଗାର ଦୋକାନ ମଧ୍ୟ କରନ୍ତି । ଏମାନେ କେଣ୍ଟି ଆଦିରୁ ପାଟ ବା ସୂତା ଦ୍ୱାରା ମଧ୍ୟ ବୁଣନ୍ତି ।]

**ପାଟରାଣୀ**—ଦେ. ବି. ସ୍ତ୍ରୀ.—(ସଂ. ପଟ୍ଟରାଜ୍ଞୀ)—୧ । ପଟ୍ଟମହିଷୀ; ପାଟ
Pāṭarāṇī ମହାଦେଈ—1. The eldest or principal
ପାଟରାନୀ Ranee.
पटरानी ୨ । ପାଟରା ଜାତୀୟା ସ୍ତ୍ରୀ—
बजाजीन, पटवाइन 2. A woman of the Pāṭarā caste.

**ପାଟଳ**—ସଂ. ବି.—(ପାଟଳା=ପାଟଳଫୁଲ+ତୁଲ୍ୟାର୍ଥେ. ଅ)—ଫିକା
Pāṭala ନାଲି; ଶ୍ୱେତ ରକ୍ତବର୍ଣ୍ଣ; ଗୋଲାପି ରଙ୍ଗ—
1. Pale red colour; whitish red colour; rose colour.
୨ । ପାଟଳା ୩ (ଦେଖ)—2. Pāṭalā 3. (See)
୩ । ଏକ ପ୍ରକାର ଶୀତକାଳୀନ ଧାନ—
3. A kind of winter paddy.
୪ । ନାଗକେଶର ବା ନାଗେଶ୍ୱର ଗଛ—4. Mesua Ferra (tree).
୫ । ଗୋଲାପ—5. Rose.
୬ । ସେବତୀ ଫୁଲ—6. Musk rose.

(ପାଟଳା—ସ୍ତ୍ରୀ) ସଂ. ବିଣ.—ପାଟଳ ବର୍ଣ୍ଣବିଶିଷ୍ଟ; ଗୋଲାପୀ—
Pale red.
ଦେ. ବି.—୧ । ପାଟଳି ପୁଷ୍ପ—1. Pāṭali flower
୨ । ପ୍ରାଚୀନ ଜଳଯାନବିଶେଷ (ଜଗବନ୍ଧୁ ପ୍ରାଚୀନ ଉତ୍କଳ)—
2. A kind of old ship.

**ପାଟଳା**—ସଂ. ବି. ସ୍ତ୍ରୀ—(ପାଟ=ବିସ୍ତାର+ଲା ଧାତୁ=ପାଇବା+କର୍ତ୍ତୃ.
Pāṭalā ଅ+ସ୍ତ୍ରୀ ଆ; ବା ପଟ ଧାତୁ=ଫାଟି ଯିବା+କର୍ତ୍ତୃ. ଅ+ସ୍ତ୍ରୀ ଆ, ଫଳ ଫାଟି ଯିବାରୁ ଏହି ନାମ)—୧ । ଦୁର୍ଗା—
1. A name of Durgā.
୨ । ପାଟେଲୀ ଗଛ ଓ ଫୁଲ—
2. Sterospermum Suaveolens; Bignonia Suaveolens (tree and flowers).

ସଂ—ନାମ—ପାଟଳା, ପାଟଳ, ପାଟଳୀ, ଅମୋଘା, ମଧୁଦୂତୀ, ଫଳେରୁହା, କୃଷ୍ଣବୃନ୍ତା, କୁବେରାକ୍ଷୀ(ସ୍ତ୍ରୀ), କାଲସ୍ଥାଲୀ, ଅଳବଲ୍ଲଭା, ଅଳପ୍ରିୟା, ତାମ୍ରପୁଷ୍ପୀ, କାମଦୂତୀ, କୁମ୍ଭିକା, ବସନ୍ତ ଦୂତୀ, ସ୍ଥାଲୀ, ସ୍ଥିର ଗନ୍ଧା, ତୋୟାଧିବାସିନୀ, ଅମ୍ବୁବାସୀ, କୋକିଳା, କର୍ବୁରୀ, ଅମ୍ବୁବାସିନୀ, କୁମ୍ଭୀ, କାଲବୃନ୍ତା
पाकल, घण्टा, मुग, जंकल
(Kirtikar)
ଓ. ପାଟେଲୀ
पद्, पाटल, पाड़री, पाड्र, पारल, पाद्ल, पादिआला, पार्दिआ, पड़र, पड़ल, पार
(Kirtikar)
ମ. ପାଡ଼ଲୀ
ତେ. କଲଗୋରୁ, କାଲଗୋଟୁ
ମ. ପାଡ଼ୀ

[ଦ୍ର—ଏହା ନାତିବୃହତ୍ ବନ୍ୟତରୁ; ଫୁଲର ବର୍ଣ୍ଣ ଫିକା ନାଲି, ଫୁଲ ସୁଗନ୍ଧ । ଫୁଲ ଡେମ୍ଫରେ ଶୁଷ୍କ ହୋଇ ଓହଳ ଥାଏ । ଫୁଲରୁ କେଶର ଝଡ଼ି ଗଛ ମୂଳେ ଗଦା ହୁଏ । ଗ୍ରୀଷ୍ମକାଳରେ ଫୁଲ ଫୁଟେ । ଫଳ ଲମ୍ବା, ସିଧା ଓ ନୀଳରକ୍ତ ବର୍ଣ୍ଣ । ଆଉ ଏକ ପ୍ରକାର ଶ୍ୱେତାଭ ପୁଷ୍ପ ଯୁକ୍ତ ପାଟଳକୁ 'ଘଣ୍ଟା ପାଟଳ' ବୋଲଯାଏ । (ଘଣ୍ଟା ପାଟଳ ଦେଖ) (ସଂ. ସିତପାଟଳା) । ବୈଦ୍ୟକ ମତରେ ପାଟଳ—କଷାୟ ତିକ୍ତ ରସ, ତ୍ରିଦୋଷଘ୍ନ ଓ ଅରୁଚି, ଶ୍ୱାସ, ଶୋଥ, ରକ୍ତଦୁଷ୍ଟି, ବମି, ହିକ୍କା ଓ ତୃଷ୍ଣାନାଶକ । ଏହାର ପୁଷ୍ପ କଷାୟ ଓ ମଧୁର ରସ, ଶୀତବୀର୍ଯ୍ୟ, କଫ, ରକ୍ତଦୋଷ, ପିତ୍ତ ଓ ଅତିସାର ନାଶକ ଏବଂ କଣ୍ଠଶୋଧକ । ଏହାର ଫଳ ରକ୍ତ ପିତ୍ତ ନାଶକ, ଏବଂ ଏହି ଫଳକୁ ମହୁ ସଙ୍ଗେ ଘୋରି ସେବନ କଲେ ହିକ୍କା ରୋଗ କମିଯାଏ । ଶ୍ୱେତ ପାଟଳ ପାଇଁ ସିତ ପାଟଳା ଦେଖ ।]

୩ । (ଅନ୍ୟ ସଂ. ନାମ ପିଚ୍ଛିଲା) ବିହିଦାନା—
3. Cydonia Vulgaris; Quince-seed.
[ଦ୍ର—ଏହା ପଶ୍ଚିମ ହିମାଳୟର ଓ ପଞ୍ଜାବର ବନ୍ୟ ବୃକ୍ଷର ଫଳ-ବୀଜ, ଗ୍ରୀଷ୍ମ କାଳରେ ପାଚେ । ବୈଦ୍ୟକ ମତରେ ଏହା ସ୍ନିଗ୍ଧ, କାସଘ୍ନ ମେହ ଓ ଯୋନିର ଦାହ ନିବାରକ ଓ କ୍ଷତ ସ୍ଥାନର ଜ୍ୱାଳା ନିବାରକ ।]
୪ । ରକ୍ତ ଲୋଧ୍ର (ହି. ଶ.) (ଦେଖ)—4. The red variety of Symplocos Racemosa tree.
୫ । ଜଳକୁମ୍ଭୀ; (ହି. ଶ.); ବୋରଝାଙ୍ଗି—5. Pistia Stratiotes; an aquatic plant.

ସଂ. ବିଣ. ସ୍ତ୍ରୀ. (ପାଟଳ + ସ୍ତ୍ରୀ. ଆ)—ପାଟଳର ସ୍ତ୍ରୀଲିଙ୍ଗ— Feminine of Pāṭala.

(ପାଟଳଆ—ଅନ୍ୟରୂପ) ଦେ. ବିଣ—ପାଟଳ ବର୍ଣ୍ଣବିଶିଷ୍ଟ— (ପାଟଳୀ—ସ୍ତ୍ରୀ) Rose-coloured; rosy.

**ପାଟଳ(ଳୀ)**—ସଂ. ବି—୧ । ପାଟଳା ୨ ( ଦେଖ )
Pāṭali(lī) 1. Pāṭalā 2 ( See )
୨ । ପାଣ୍ଡୁ ଫଳ (ହି. ଶବ୍ଦସାଗର) ( ଦେଖ )
2. Pāṇḍu phala ( See )
୩ । ପଟୋଳ (ଦେଖ)—2. Paṭola ( See )

**ପାଟଳଆ ଲେ(ଲ୍ଲୋ)ଧ(ଧ୍ରୁ)**—ଦେ. ବି. (ସଂ.ପଟ୍ଟିକା ଲୋଧ୍ର)
Pāṭaliā le lo)dha(dhu) ଏକପ୍ରକାର ଆରଣ୍ୟ ବୃକ୍ଷ—
[ପାଟଳାଲେ(ଲ୍ଲୋ)ଧୁ—ଅନ୍ୟରୂପ] The red variety of Simplocos Racemosa (tree).
ପାଟେଳଆ ଲୋଧ } ଅନ୍ୟରୂପ
ପାଟେଳଆ ଲୋଧୁ }
[ ଦ୍ର—ଏହାର ଗୁଳ୍ମରୁ ଔଷଧ ଓ ରଙ୍ଗ ହୁଏ । ]
ସଂ. ପର୍ଯ୍ୟାୟ—ପଟ୍ଟିକା ଲୋଧ୍ର
କ୍ରମୁକ, ସ୍ଥୂଳବଲ୍କଲ, ଜୀର୍ଣ୍ଣ ପତ୍ର, ବୃହତ୍ ପତ୍ର, ପଟ୍ଟୀ ଓ ଲାକ୍ଷା ପ୍ରସାଦନ
ପାଟିଲୋଧ **पठानी लोध** ଗୁ. ପଠାନୀ ଲେଦର

**ପାଟଳକ**—ସଂ. ବିଣ. ପୁଂ—୧ । ଯେ ଅନ୍ୟର ଗୁପ୍ତ କଥା ଜାଣେ—
Pāṭalika 1. Knowing the secrets of
(ପାଟଳକା—ସ୍ତ୍ରୀ) others (Apte).
୨ । କାଳ ସମୟଜ୍ଞ— 2. Knowing time and place (Apte).
ସଂ ବିଣ. ପୁଂ—ଶିଷ୍ୟ, ଛାତ୍ର—A pupil (Apte).

**ପାଟଳତ**—ସଂ. ବିଣ. (ପାଟଳ+ଅସ୍ତ୍ୟର୍ଥେ. ଇତ)—
Pāṭalita ପାଟଳ ବର୍ଣ୍ଣଯୁକ୍ତ, ପାଟଳ ବର୍ଣ୍ଣ ରଞ୍ଜିତ— Dyed pale red.

**ପାଟଳ ପୁତ୍ର**—ସଂ. ବି. (ନାମ) (ପାଟଳ+ପୁତ୍ର)—
Pāṭali putra ପ୍ରାଚୀନ ମଗଧର ରାଜଧାନୀ; ଆଧୁନିକ ପାଟନା
(ପାଟଳୀ ପୁତ୍ର—ଅନ୍ୟରୂପ) ବା ବିହାରର ରାଜଧାନୀ—
The ancient name of Patna.
[ ଦ୍ର—ଏହା ଚନ୍ଦ୍ର ଗୁପ୍ତଙ୍କର ରାଜଧାନୀ ଥିଲା, ସିକନ୍ଦର (ଆଲେକ୍‌ଜାଣ୍ଡର) ଭାରତକୁ ଆସିବା ସମୟରେ ଏହା ବିଶେଷ ସମୃଦ୍ଧିଶାଳୀ ରାଜଧାନୀ ଥିଲା । ଏହାକୁ ଗ୍ରୀକ୍‌ମାନେ Palibothram (ପାଲିବୋଥ୍ରାମ) ଏବଂ ଚନ୍ଦ୍ରଗୁପ୍ତଙ୍କୁ Sandrakotas (ସାନ୍ଦ୍ରାକୋଟସ୍) ନାମରେ ଡାକୁଥିଲେ । ପ୍ରାଚୀନ ପାଟଳପୁତ୍ର ଆଧୁନିକ ପାଟଣା ସହରରୁ ୨୩ ମାଇଲ ପୂର୍ବରେ ଗଙ୍ଗା ତଟରେ ଥିଲା । ଏହାର ବର୍ତ୍ତମାନ ନାମ କୁମ୍ରହର୍ । ଏଠାରେ ଭୂଗର୍ଭରୁ ପ୍ରାଚୀନ ପାଟଳପୁତ୍ରର ବହୁତ ଭଗ୍ନାବଶେଷ ବାହାରୁଅଛି । ବୁଦ୍ଧଙ୍କ ପରବର୍ତ୍ତୀ କେତେକ ଶତାବ୍ଦି ଭାରତରେ ଏ ନଗର ବିଶେଷ ସମୃଦ୍ଧିଶାଳୀ ଓ ବିଖ୍ୟାତ ଥିଲା । ପ୍ରାଚୀନ ପୁସ୍ତକରେ ଏହାର ନାମ ପୁଷ୍ପପୁର ଓ କୁସୁମପୁର ଲେଖାଅଛି । ଶେର୍‌ସାହା ଆଧୁନିକ ପାଟଣା ନଗରକୁ ବସାଇଥିଲେ । ଭବିଷ୍ୟ ପୁରାଣରେ ଅଛି ଯେ ବିଶ୍ୱାମିତ୍ରଙ୍କ ଭଗିନୀ ପାଟଳୀଙ୍କ ଇଚ୍ଛା ଅନୁସାରେ କୌଣ୍ଡିଲ୍ୟ ମୁନିଙ୍କ ପୁତ୍ର ମନ୍ତ୍ର ବଳରେ ଏ ନଗର ବସାଇ ଥିବାରୁ ଏହାର ନାମ ପାଟଳୀପୁତ୍ର ହେଲା । ବୁଦ୍ଧଦେବଙ୍କ ସମକାଳୀନ ରାଜା ଅଜାତଶତ୍ରୁଙ୍କ ପୁତ୍ର ତାଙ୍କର ମନ୍ତ୍ରୀଙ୍କ ଦ୍ୱାରା ନଗର ନିର୍ମାଣ ପାଇଁ ଉପଯୁକ୍ତ ସ୍ଥାନ ଖୋଜାଉଥିଲେ । ମନ୍ତ୍ରୀମାନେ ଅବଗତ ହେଲେ ଯେ ବୁଦ୍ଧଦେବ ନାଳନ୍ଦରୁ ବୈଶାଳୀକୁ ଯିବା ସମୟରେ ବାଟରେ ଏହି ପାଟଳୀ ଗ୍ରାମରେ ଗ୍ରାମବାସୀମାନେ ତାଙ୍କ ପାଇଁ ଗୋଟିଏ ବିଶ୍ରାମାଗାର ନିର୍ମାଣ କଲେ ଓ ବୁଦ୍ଧଦେବ ଆଶୀର୍ବାଦ କରିଥିଲେ ଯେ ଏହି ଗ୍ରାମ ଗୋଟିଏ ବିଶାଳ ନଗରରେ ପରିଣତ ହେବ । ମନ୍ତ୍ରୀମାନେ ଏହା ଶୁଣି ଏହିଠାରେ ନଗର ବସାଇବାର ସ୍ଥିର କଲେ—ହି. ଶ ]

**ପାଟଳୀ**—ସଂ. ବି. (ପାଟ=ବିସ୍ତାର+ଲା ଧାତୁ+କର୍ତ୍ତୃ. ଇ)—
Pāṭali ୧ । ପାଟଳ (ଦେଖ)—1 Pāṭali (See)
୨ । ପାଟନା ନଗରର ଅଧିଷ୍ଠାତ୍ରୀ ଦେବୀ (ହି. ଶବ୍ଦସାଗର)—
2. The presiding Goddess of Patna city.
୩ । ଗାଧିଙ୍କ କନ୍ୟା ଓ ବିଶ୍ୱାମିତ୍ରଙ୍କ ଭଉଣୀ—
3. Name of a sister of Biswāmitra.
[ ଦ୍ର—ଏହାଙ୍କ ଅନୁରୋଧରେ କୌଣ୍ଡିଲ୍ୟ ମୁନିଙ୍କ ପୁତ୍ର ଏ ନଗର ବସାଇଥିଲେ । ]

**ପାଟଳୀ ତୈଳ**—ସଂ. ବି—ଚୂଉଲ ମୁଗୁରା ତୈଳ (ବଙ୍ଗଳା ଦ୍ରବ୍ୟଗୁଣ)—
Pāṭali taila Chalmugra oil.
[ ଦ୍ର—ଏହା ବମନକାରକ, ବଳବର୍ଦ୍ଧକ, ଅଗ୍ନିବର୍ଦ୍ଧକ ଓ ରସାୟକ । ଏହା କୁଷ୍ଠ, କଣ୍ଡୁ ଓ ଚର୍ମଦୋଷ ନାଶକ ।]

**ପାଟଳୀମା**—ସଂ. ବି. (ପାଟଳ+ଭାବାର୍ଥେ. ଇମନ୍, ୧ମା. ୧ବ)—
Pāṭalimā ପାଟଳ ବର୍ଣ୍ଣ—Rosy colour; pale red tint.

**ପାଟ ଲୁଗା**—ଦେ. ବି—(ସଂ. ପଟ୍ଟବସ୍ତ୍ର)—ପଟ୍ଟବସ୍ତ୍ର—
Pāṭa lugā ବେସମକାପଡ଼ **पाटकाकपड़ा** Silken cloth.
ପାଟଲୁଗା ଗୋଟିକେ ଦଣ୍ଡକୁ ବାନ୍ଧିଲେ—
କୃଷ୍ଣସିଂହ-ମହାଭାରତ-ଆଦ ।
[ ଦ୍ର—ଏହିପରି ପାଟପିଢ଼ା; ପାଟଶାଢ଼ୀ ଆଦି ଶବ୍ଦ ହୁଏ ]

**ପାଟଶାଳ(ଲି)ଆ**—ପ୍ରଦେ (ଗଞ୍ଜାମ) ବି—୧ । ଗଞ୍ଜାମର ପାଟଶାଳି ନାମକ
Pāṭaśāli(li)ā ସ୍ଥାନର ତନ୍ତୀମାନଙ୍କ ହାତବୁଣା କପା ସୂତାର
**पाटसाली** ଖୁବ୍ ସରୁ ଲୁଗା—1. A fine cotton cloth
(ପାଟୁଶାଲିଆ—ଅନ୍ୟରୂପ) woven by the weavers of a village Pāṭaśāli in Ganjam.
୨ । ଗଞ୍ଜାମ ଜିଲ୍ଲାର ତନ୍ତୀଜାତିବିଶେଷ—2. Name of a weaver caste weaving Pāṭaśālia cloth.
[ ଦ୍ର—ଏମାନଙ୍କ ହାତକଟା ସୂତାର ଖୁବ୍ ପତଳା ଲୁଗା ଭାରତବିଖ୍ୟାତ । ମାରଙ୍କାର ଅଞ୍ଚଳର ତନ୍ତୀମାନେ ଏକପ୍ରକାର ରେସମୀ ବସ୍ତ୍ର ବୁଣନ୍ତି । ଉକ୍ତ ତନ୍ତୀମାନଙ୍କୁ ହିନ୍ଦିରେ 'ପଟସାଲୀ' ବୋଲାଯାଏ]
୩ । ଦାକ୍ଷିଣାତ୍ୟର ଥିବା ଏକଜାତୀୟ ତନ୍ତୀ—
3. A class of weavers in the Deccan.
[ ଦ୍ର—ଏମାନେ ଶୈବ ଅଟନ୍ତି; ଏମାନେ ଶିବଙ୍କ ଲିଙ୍ଗ ଆକାରର ଗୋଟିଏ ଗୋଲକକୁ ସୂତାରେ ଗୁନ୍ଥି ବେକରେ ପିନ୍ଧନ୍ତି ଓ କପାଳରେ ଭସ୍ମର ୩ ଗାର କାଟନ୍ତି । ଏମାନେ ମଦ୍ୟ ମାଂସ ଖାଆନ୍ତି ନାହିଁ ଓ ଏକ ଗୋତ୍ରରେ ବିବାହ କରନ୍ତି ନାହିଁ, ଏମାନେ ଲିଙ୍ଗାୟତ ସମ୍ପ୍ରଦାୟଭୁକ୍ତ ଅଟନ୍ତି—ହି. ଶ.)

**ପାଟ ସଉଦା**—ଦେ. ବି.—ପାଟରାମାନଙ୍କ ଦୋକାନରେ ବିକ୍ରି କରାଯିବା
Pāṭa saudā ରେଶମ ଓ ଭୂଲାର ସୂତା, ପାଟଫୁଲ, କରଧନ୍ଦ, ଫଉଡା ଆଦି—Silk and cotton threads tassellated tapes; waiste tapes etc sold by Pātarās.

**ପାଟା**—ପ୍ରାଦେ (ଗଞ୍ଜାମ) ବିଣ—ଟାଙ୍ଗରା, ଚନ୍ଦାମୁଣ୍ଡିଆ—
Pāṭā Bald headed.

ପ୍ରାଦେ (ବସ୍ତର) ବି—(ସଂ. ପଟ୍ଟ)—ଖଦ—
Loin cloth.

**ପାଟାମୁଣ୍ଡା**—ପ୍ରାଦେ (ଗଞ୍ଜାମ). ବିଣ. ପୁଂ—ଟାଙ୍ଗରାମୁଣ୍ଡିଆ—
Pāṭāmuṇḍā Bald-headed.
(ପାଟମୁଣ୍ଡିଆ—ଅନ୍ୟରୂପ; ପାଟମୁଣ୍ଡୀ—ସ୍ତ୍ରୀ)

**ପାଟି**—ଦେ. ବି—(ସଂ. ପଙ୍କ୍ତି)—୧ । ଶ୍ରେଣୀ—
Pāṭi ପାଟି पाटि 1. Row.
ଯଥା—ପାଟିଏ ଦାନ୍ତ ।

ମୁଖ मुंह ୨ । ମୁଖ; ତୁଣ୍ଡ—2. Mouth.

ଦୁର୍ଯ୍ୟୋଧନଙ୍କୁ ଏବେ ଅନ୍ଧ କାଳ ଘୋଟ
ଏଣୁ ତାଙ୍କ କ୍ରୋଧ କହୁନ୍ତ ତା ପାଟ । କୃଷ୍ଣସିଂହ ମହାଭାରତ ବନ ।

आवाज ୩ । ତୁଣ୍ଡଦ୍ୱାରା କରାଯିବା ଓ ଅନ୍ୟଙ୍କୁ ଶୁଣାଯିବା ଧ୍ୱନି—
3 Voice of the mouth.
୪ । ଉଚ୍ଚୈଃସ୍ୱର—4. Loud voice
୫ । ଉଚ୍ଚୈଃସ୍ୱରରେ ଗୋଳମାଳ—
5. Noise caused by loud voice.

हल्ला; शोर ୬ । କପାଳ ଠାରୁ ଗାଲ ପର୍ଯ୍ୟନ୍ତ ବୋଳା ଯିବା ଚନ୍ଦନ ଓ ଭଳକର ପଟ୍ଟ—6. A stripe of sandal or other paste smeared on the forehead and reaching the cheeks.

पाढ़ो ୭ । ଗୃହ ଛାତର ବଢା ତଳେ ଭୂରା ଉପରେ ଲମ୍ବ ହୋଇ ପକା ଯିବା କାଷ୍ଠ ଖଣ୍ଡ ବା ତଳ ଶ୍ରେଣୀ—7. The lower wooden or bamboo plate just below the rafters of a thatched house near the eaves.

କେତେ କେତେ ଶସ୍ତ୍ର ପାଟ ଲଗିଛ ଚକ୍ଷୁରେ । କୃଷ୍ଣସିଂହ ମହାଭାରତ ।

୮ । (ସଂ. ପଟ୍ଟ) ଲଲାଟର ଫଳକ—
8. The surface of the brow.
ଲଲାଟ ପାଟରେ ଶୋଭା ତେଜକର ବନ୍ଧ—ଫାଟୀ ଭସବାରଥ ।

पाटी ୯ । ଆଙ୍ଗୁଳ ଲମ୍ବା ପତଳା ପଟ୍ଟ—
पट्टी; पाटा ... 9. Metal plate.
[illegible]
[illegible] 10. Wooden plank.
[illegible] ଭୁଇଭାଗ କର କୁଣ୍ଡାଇ [illegible] ବା [illegible] କେଶବନ୍ଧାସ—
11. Artistic parting of the hair on the head with the comb and keeping the parted hairs in position with the help of pasted and unguents.

ଦେ. ବିଣ—(ଅନ୍ୟ ଶବ୍ଦ ସଙ୍ଗେ ବ୍ୟବହୃତ)—କ୍ଷୁଦ୍ର, କ୍ଷେଚ୍ଛ—
ପାତି छोटा Small.
ଯଥା—ପାଟି ଖଣ୍ଡା=କ୍ଷେଚ୍ଛ ଖଣ୍ଡା ।

ପ୍ରାଦେ. (ସିଂହଭୂମ) ବି.—ଶଗଡ଼ର ପଇ—
The rim of a cart wheel.

ପ୍ରାଦେ. (କଳାହାଣ୍ଡି)—ବି.—ଶ୍ରେଣୀ—
The wall plate of a thatched house.

**ପାଟିଆ**—ଦେ. ବି.—୧ । ପଟା ପଟା ଦାଗ—
Pāṭiā Stripe.

धारि, डोरिया ୨ । ମୁଣ୍ଡର ବାଳକୁ ଦୁଇଭାଗରେ ଭାଙ୍ଗି ବେଶ ରଚନା କରିବା—2. The two parts of the
पाटि, पटिया hair divided in the middle.

ପ୍ରାଦେ. (ସମ୍ବଲପୁର)—ବି.—(ତୁଳ. ହି. ପାଢ଼ୀ)—ଶ୍ରେଣୀ, ଘରର ଗୁଳ ତଳରେ ଥଇଯିବା ଲମ୍ବ କାଷ୍ଠ ଖଣ୍ଡ—
The wall plate of a thatched house.
[ଦ୍ର—ଏହା ଭୂରା ଉପରେ ଲମ୍ବ ହୋଇ ରଖା ଯାଏ । ଏହାର ଉପରେ ଭୂଅ ପଡ଼େ ।]

ଦେ. ବିଣ.—(ଅନ୍ୟ ଶବ୍ଦ ସଙ୍ଗେ ବ୍ୟବହୃତ)—ପାଟି ବା ମୁଖଶବ୍ଦ-(ପାଟେଇ—ସ୍ତ୍ରୀ) ବିଶିଷ୍ଟ—Voiced (as in loud-voiced).
ଯଥା—ବଡ଼ ପାଟିଆ, ଉଚ୍ଚ ପାଟିଆ ।

**ପାଟିଆ ମୂଷା**—ପ୍ରାଦେ. (ବସ୍ତର) ବି.—ଗୁଳୁଆ ମୂଷା—
Pāṭiā mūshā Rats frequenting thatches.

**ପାଟିକଢ଼ା**—ଦେ. ବିଣ—ଏକ ବ୍ୟକ୍ତିଦ୍ୱାରା ଅର୍ଦ୍ଧଚର୍ବିତ ବା ଉଚ୍ଛିଷ୍ଟ
Pāṭi kaṛhā (ପାନଗୁଆ ଆଦି)—(Chewed betel or
उगिला pieces of nut) Brought out of one's mouth.

[ ଦ୍ର—ଶିଶୁମାନଙ୍କୁ ବୟସ୍କ ବ୍ୟକ୍ତିମାନେ ସ୍ନେହରେ ଓ ରସିକ ରସିକା ପରସ୍ପରକୁ ଆପଣା ପାଟିକଢ଼ା ପାନ ମୁହଁଦ୍ୱାରା ଦଅନ୍ତି । ]

**ପାଟି କରିବା**—ଦେ. କ୍ରି—ଉଚ୍ଚୈଃସ୍ୱରରେ ଚିତ୍କାର କରିବା—
Pāṭi karibā हल्लाकरना To make a loud noise.

**ପାଟିକା**—ସଂ. ବି—୧ । ଏକଦିନର ମୂଲ (ହ. ଶ)—
Pāṭikā 1. A day's wages.
୨ । ଛାଲ, ଚୋପା (ହ. ଶ)—2. Rind; bark.
୩ । ବୃକ୍ଷ ବିଶେଷ (ହ. ଶ)—3. Name of a tree.

**ପାଟି ଖଣ୍ଡା**—ଦେ. ବି—କ୍ଷେଚ୍ଛ ଖଣ୍ଡା—
Pāṭi khaṇḍā Scimitar; small sword; rapier.
ପାତି ତଲୋୟାର छोटी तलवार

**ପାଟି ଖଣି ମାରିବା**—ଦେ. କ୍ରି—୧ । ଅତ୍ୟଧିକ ଶୀତ ହେତୁରୁ ଦୁଇ-
Pāṭi khaṇi māribā ଦାନ୍ତପାଟ ପରସ୍ପର ସହିତ ବାଜିବା—
घिग्घी बंधना 1. Chattering of the jaws due to extreme cold.
ପାଟି ଖଣି ମାରିଯିବା
ପାଟି ଖଣ୍ଟ ବାଜିବା
ପାଟି କାଢ଼ିବା
ପାଟି କାଢ଼ି ମାରିବା
ପାଟି କାଢ଼ିଯିବା
(ଅନ୍ୟରୂପ) ୨ । ଅତ୍ୟଧିକ ଭୟ ହେତୁ କାନ୍ଦିବାର ପଦ ଓ ଅକ୍ଷରମାନଙ୍କର ସ୍ଖଳନ—
2. Stammering due to extreme fright.

**ପାଟିଡ଼ି**—ପ୍ରାଦେ. (ଗଞ୍ଜାମ) ବି (ତେଲୁଗୁ ?)—ବେକର ଅଳଙ୍କାର ବିଶେଷ—A kind of ornament for the neck.
Pātirdi

**ପାଟିତ**—ସଂ. ବିଣ. (ପଟ୍ ଧାତୁ ଣିଚ୍=ପାଟି ଧାତୁ=ଗମନ କରିବା, ବିଦାରଣ କରିବା + କର୍ମ. ତ)—୧ । ବିଦୀର୍ଣ୍ଣ— 1. Pierced; split.
Pātita
୨ । ଭଗ୍ନ—2 Broken.
୩ । କ୍ଷତ—3. Wounded
୪ । ଫୋଡ଼ାଯାଇ ଥିବା—4. Bored; pricked

**ପାଟି ତୁଣ୍ଡ**—ଦେ. ବି (ଏକାର୍ଥବୋଧକ ସହଚର)—ମୁଖଧ୍ୱନି— The voice of one's throat.
Pati tunda
ଗଳାବ ଆବାଜ ଯଥା—ତାଙ୍କ ପାଟିତୁଣ୍ଡରେ ଏଗାଆଁ କମ୍ପୁଛି ।
**मुहँकीआवाज**

**ପାଟିତୁଣ୍ଡ ବାଜିବା**—ଦେ. ବି—ଉଚ୍ଚୈଃସ୍ୱର ଶୁଣାଯିବା—
Pātitunda bājibā The loud voice being heard to a distance.
**आवाज सुनाइ पड़ना**

**ପାଟିଦେବା**—ଦେ. କ୍ରି (ସଂ. ପଟ୍ ଧାତୁ ଣିଚ୍ ପାଟି ଧାତୁ=ବିଦାରଣ କରିବା)—୧ । ଚିପିଦେବା— 1. To press hard
Pātidebā
୨ । ଚୂନା କରିବା—2. To reduce to powder.

**ପାଟି ପଡ଼ିଯିବା**—ଦେ. ବି—ରୋଗଆଦି ଯୋଗୁଁ ବାକ୍‌ଶକ୍ତି ରହିତ ହେବା, କଥା କହି ନ ପାରିବା—
Pāti pardijibā
ପାଟି ଲୁଜ ହୋଇଯିବା } ଅନ୍ୟରୂପ
ପାଟି ବନ୍ଦ ହୋଇଯିବା
Lockjaw; the automatic closing of the mouth.
**दाँतीलगजाना**

**ପାଟି ପାଡ଼ିବା**—ଦେ. କ୍ରି—୧ । ଉଚ୍ଚୈଃସ୍ୱରରେ ଚିତ୍କାର କରିବା—
Pāti pārdibā 1. To cry aloud; to bowl.
୨ । ଦୁଇ ଦାନ୍ତପାଟିକୁ ବନ୍ଦ କରିବା—
2. To close or shut up one's mouth or lips.

ଗର୍ଜେ ପଶିବ ଯେତେବେଳେ
ପାଟି ପାଡ଼ିବ ଅବହେଳେ । ଜଗନ୍ନାଥ, ଭାଗବତ ।

**ପାଟି ପାଣେଇବା**—ଦେ. ବି—୧ । ସମ୍ମୁଖରେ ଉପସ୍ଥିତ ମିଷ୍ଟାନ୍ନ ବା ଲୋଭନୀୟ ଖାଦ୍ୟ ବା ଖଟାଆଦି ଖାଦ୍ୟବସ୍ତୁର ଲୋଭରେ ପାଟିରୁ ନାଳ ଗଡ଼ିବା, ମୁଖରୁ ଲାଳାସ୍ରାବ—1. Salivation due to hankering after food presented before one's mouth.
Pāti pāneibā
[ପାଟି ନା(ଲ)ଳେଇବା—ଅନ୍ୟରୂପ]
**मुहँमे पानीआना**
୨ । ରୋଗଯୋଗୁଁ ପାଟିକି ଖାଦ୍ୟଦ୍ରବ୍ୟ ସବୁ ବିସ୍ୱାଦୁ ଓ ପାଣିଚିଆ ଲାଗିବା, ଅରୁଚି—2. Disrelish and want of taste in food due to disease.

**ପାଟି ଫିଟା(ଟେ)ଇବା**—ଦେ. କ୍ରି—ମୁହଁ ଖୋଲି କଥା କହିବା—
Pāti phitā(te)ibā To open the mouth and talk.
ମୁଖ ଖୋଲା **मुहँ खोलना**

**ପାଟି ଫିଟିବା**—ଦେ. ବି—ବାକ୍ୟ ସ୍ଫୁରିବା—
Pāti phitibā The opening of the month for speaking.
ମୁଖଖୁଲା **मुहँ खलना**

ଦେହରେ ଶକ୍ତି ନାହିଁ, ପାଟି ଫିଟୁ ନାହିଁ ।
ଫକୀରମୋହନ, ଛମାଣ ଅଠଗୁଣ୍ଠ ।

**ପାଟିବତା**—ଦେ. ବି—ତୁଣ୍ଡିବତା ( ଦେଖ )
Pāti batā Tundibatā ( See )

**ପାଟି ବଥା(ଥେ)ଇବା**—ଦେ. ବି—ଅତିରିକ୍ତ ପରିମାଣରେ କହିବା ହେତୁରୁ ପାଟିରେ ପୀଡ଼ା ବୋଧ ହେବା-
Pāti bathā(the)ibā
A feeling of weariness in the mouth after a good deal of talking.

କହି କହି ଏବେ ବଥାଇଲାଣି ପାଟି ।
କୃଷ୍ଣସିଂହ, ମହାଭାରତ, ଉଦଯୋଗ.

**ପାଟିବା**—ପ୍ରାଦେ. (ସମ୍ବଲପୁର) ବି—ପୋତିବା—
Pātibā To bury.

**ପାଟି ବାନ୍ତୁଳି ଯିବା**—ପ୍ରାଦେ. ( ଗଞ୍ଜାମ ) କ୍ରି—
Pāti bāntuli jibā ପାଟି ଖଣି ମାରିବା ( ଦେଖ )
Pāti khani māribā ( See )

**ପାଟି ବୁଜିବା**—ଦେ. କ୍ରି. ( ଅକର୍ମକ )—
Pāti bujibā ୧ । ଉଚ୍ଚୈଃସ୍ୱରରେ କଥାବାର୍ତ୍ତା ସ୍ଥଗିତ କରିବା—
ମୁଖ ବନ୍ଧକବା 1. To stop loud talking.
**मुहँ बन्द करना** ୨ । ଚୁପ୍ ରହିବା; କଥା ନ କହିବା—
ପାଟି ବନ୍ଦ କରିବା } ଅନ୍ୟରୂପ
ପାଟି ମୁଦିବା
2 To shut up one's mouth; to cease talking; not to speak.

**ପାଟି ମାରିବା**—ଦେ. କ୍ରି—(ଲକ୍ଷଣାର୍ଥ) ଖାଦ୍ୟ ସମ୍ବନ୍ଧେ ସଂଯତ ହେବା—
Pāti māribā (figurative) To be abstemious in the matter of food.

**ପାଟିଯିବା**—ଦେ. କ୍ରି—ଚିପି ହୋଇଯିବା—
Patijibā To be pressed up.
(ପାଟି ହୋଇଯିବା—ଅନ୍ୟରୂପ)
(ଯଥା—କବାଟ କିଳିଲା ବେଳେ ତା ଆଙ୍ଗୁଳି ପାଟିଗଲା । )

**ପାଟିରୁ କଥା ଛଡ଼ା(ଡ଼େ)ଇ ନେବା**—ଦେ. କ୍ରି—
Pātiru kathā chhardā(rde)i nebā
**बात छीन लेना** କୌଣସି ବ୍ୟକ୍ତି ଗୋଟିଏ କଥା କହିବାକୁ ଯିବାର ଠିକ୍ ସମୟରେ ଅନ୍ୟ କେହି ଠିକ୍ ସେହି କଥା କହିଦେବା—
To forestall a person; to speak out what one was just going to say.

**ପାଟିରେ ବେଙ୍ଗ ବନ୍ଧା ହେବା**—ଦେ. ବି—୧ । ( ଲକ୍ଷଣାର୍ଥ ) କଥା କହିବାର ଶକ୍ତି ନ ଥିବା—
Pātire benga bandhā hebā
**मुहँमे काँटा ठो का होना** 1. Losing one's power of speech.
[ପାଟିରେ ବିଣ୍ଡା (ଠିପି) ମରି ହେବା; ପାଟିରେ ଘାଆ ହେବା—ଅନ୍ୟରୂପ]

ତୋ ପାଟିରେ କଅଣ ବେଙ୍ଗ ବନ୍ଧା ହୋଇଅଛି ?
କୁଲଜାକୁମାରୀ, ନଅଭୁଣୀ ।

କ୍ଷୀର ଖାଇଲା ବେଳକୁ ପୁଅର ମଥ
ବୁଲିବୁଲି ବେଳକୁ ପାଟିରେ ଘାଆ । ଢଗ ।

**ପାଟିଲ**—ଗ୍ରା. ବ. (ସ. ପାଟଲୀ)—ପାଟଳା ( ଦେଖ )
Pāṭili Pāṭalā ( See )
(ପାଟୁଲ, ପାଟେଲ—ଅନ୍ୟରୂପ)

**ପାଟିସନ୍**—ବୈଦେ. ବ. ( ଇଂ. ପାର୍ଟିସନ୍ )—୧ । ବଣ୍ଟନ—
Pāṭisan 1. Partition.
पार्टिसन ୨ । ଜମିଦାରୀ ବଣ୍ଟନ—2 Partition of Estates
पार्टीसन ୩ । ଦୁଇ ସ୍ଥାନ ମଧ୍ୟରେ ଦିଆଯିବା ବ୍ୟବଧାନ—
3 Partition set up between two places

**ପାଟି ହେବା**—ପ୍ରାଦେ (ଗଡଜାତ) କ୍ରି—ଘୋଡାଇ ହୋଇଯିବା; ଆବୃତ
Pāṭi hebā ହେବା—To be covered up.
ସହର ପାଟଲ ସରସର ଧୂଳରେ ପାଟି ହୋଇ
ତୁଳନଥା ହୋଇଗଲଣି । ଉତ୍କଳ ସେବକ (ତା୧୪-୩ ୨୧ ।)

**ପାଟୀ**—ସ. ବ. ସ୍ତ୍ରୀ (ପଟ୍ ଧାତୁ ଣିଜନ୍ତ=ପାଟି ଧାତୁ=ଦୀପ୍ତି ପାଇବା+
Pāṭī କର୍ତ୍ତ୍ରି. ଇ+ସ୍ତ୍ରୀ. ଈ)—୧ । ପରିପାଟୀ, ଶୃଙ୍ଖଳା—
1. Arrangement; method; order.
୨ । ଶ୍ରେଣୀ—2. Row.
୩ । ଏକଜାତୀୟ ବସ୍ତୁର ଶ୍ରେଣୀ; ପଂକ୍ତି—
3. A row of things of the same class.
୪ । ପୁଞ୍ଜ—4 Group.
୫ । ପ୍ରଣାଳୀ—5. Mode; manner

**ପାଟୀଗଣିତ**—ସ. ବ—(ପାଟୀ=ପରିପାଟୀ+ଗଣିତ)—ଅଙ୍କଶାସ୍ତ୍ର—
Pāṭīganita Arithmetic.

**ପାଟୀନ**—ସ. ବ—ପାଠୀନ (ଦେଖ)
Pāṭīna Pāṭhīna ( See )

**ପାଟୀର**—ସ. ବ ( ପଟୀର୍+ସ୍ୱାର୍ଥେ ଅ )—ଚନ୍ଦନବିଶେଷ—
Pāṭīra A kind of sandal.

**ପାଟୁଆ**—ଦେ. ବ—ଘଣ୍ଟପାଟୁଆ; ଚୈତ୍ର ସଂକ୍ରାନ୍ତି ବା ପଣା ସଂକ୍ରାନ୍ତିରେ
Pāṭuā ବ୍ରତ ପାଳନପୂର୍ବକ ଝାମୁନାଚ କରିବା ନର୍ତ୍ତକ—
Persons who dance in observance of a religious vow on the occasion of Paṇā Samkrānti.
[ ଦ୍ରୁ—କେତେକ ଅଞ୍ଚଳରେ ପାଟୁଆମାନେ ପିଠିରେ ଝୁଣା ମାର ବେଏଁଶିରୀ ହାଡ଼ଭଳେ ବଙ୍କାଗ୍ର କଣ୍ଟା ଫୋଡ଼ି ସେ ବୁକରେ ଦଉଡ଼ି ଲଗାଇ ବାଉଁଶ ଅଗରେ ଝୁଲନ୍ତି । ବାଉର, କଣ୍ଡରା, ପାଣ ଓ ଡମ ଆଦି ପାଟୁଆ ହୁଅନ୍ତି । ]

**ପାଟୁଆ ଉତ୍ସ(ଛ)ବ**—ଦେ. ବ—ଚଡ଼କ ପୂଜା ( ଦେଖ )
Pāṭuā utsa(chchha)ba Chaṛdaka Pūjā (See)
(ପାଟୁଆ ଜାତ, ପାଟୁଆ ଜାତରା, ପାଟୁଆ ଯାତ୍ରା—ଅନ୍ୟରୂପ)

**ପାଟୁ ପାଟୁ**—ଦେ. ବିଣ—କ୍ଷୁଧା ବା ତୃଷାରେ ପରିଶୁଷ୍କ କଣ୍ଠତାଳୁ; କ୍ଷୁଧାରେ
Pāṭu pāṭu ବା ତୃଷ୍ଣାରେ ଶୁଷ୍କ ବା ଅସ୍ଥିର—Troubled by
पटपट the pangs of extreme hunger or thirst; with the mouth parched up owing to thirst and hunger.
ତାହାର ପାଟି ହୋଇଯାଇ ପାଟୁ ପାଟୁ
ପାଣି ଦିଅ ବୋଲି ସେବକୁ କରେ ସ୍ତୁତି । କୃଷ୍ଣସିଂହ-ମହାଭାରତ, ଆଦି ।

( ଯଥା—ଭୁଭୁଆଣି ପିଲାଟା ଦୁଧ ନ ପାଇ ଭୋକରେ ପାଟୁ ପାଟୁ ହେଲାଣି । )

**ପାଟୁଲି**—ପ୍ରାଦେ (ଗଡ଼ଜାତ) ବ—ଘର ତିଆରି କାମରେ ଲାଗିବା ଭଳି
Pāṭuli ବଡ଼ ଓ ଟାଣୁଆ ଗଛ—A big and hard tree fit for being used as material for building houses.
ଗ୍ରା. ବ—ପାଟଳା ( ଦେଖ )—Pāṭalā ( See )

**ପାଟେଇ**—ଦେ. ବିଣ ( ଅନ୍ୟ ଶବ୍ଦ ସଙ୍ଗେ ଲାଗେ, ଯଥା ବଡ଼ ପାଟେଇ,
Pāṭei ଉଚ୍ଚ ପାଟେଇ)—୧ । ପାଟିଆର ସ୍ତ୍ରୀ ଲିଙ୍ଗ—
(ପାଟୋଇ—ଅନ୍ୟରୂପ) 1. Feminine of Pāṭiā.
୨ । ଭୁଣ୍ଡେଇ; ବାଚାଳୀ; ମୁଖରୀ—
2. Talkative (woman).
୩ । କଳହକାରିଣୀ—3. Quarrelsome (woman).
୪ । ଯେଉଁ ସ୍ତ୍ରୀର ଗଳାର ସ୍ୱର ଉଚ୍ଚ ବା କଡ଼ା—
4. (a woman) Having a loud or harsh tone.

**ପାଟେ କଳି**—ଦେ. ବ. —କଳିର ଏକ ଦଫା; ପୂରାଦେ କଜିଆ—
Pāṭe kali A full course or heat of quarrelling
ऐकटकर झगड़ा ଯଥା—ସେ ମୋ ସଙ୍ଗେ ପାଟେ କଳି କଲା ।
ପାଟେ କଜିଆ } ଅନ୍ୟରୂପ [ଦ୍ରୁ—ବୋଧ ହୁଏ ପାଟିଏ କଳି
ପାଟେ ଚକଟାଳ(ଳ) } =ଯେତେ କଳି କଲେ ପାଟି ଘୋଳ ହୋଇ ଯାଏ । ]

**ପାଟେଲୀ**—ଦେ. ବିଣ ସ୍ତ୍ରୀ.—(ସ. ପାଟଲା)—ପାଟଳବର୍ଣ୍ଣବିଶିଷ୍ଟ (ଗାଈ)
Pāṭelī Pale red (cow)
ଗ୍ରା. ବ.—୧ । ଗ୍ରାମଦେବତାବିଶେଷ—1. Name of a popular Goddess.
୨ । ପାଟଳା (ଦେଖ)—2. Pāṭalā (See).

**ପାଟ୍ଟୁ**—ବୈଦେ ( ତେଲୁଗୁ ) ବ—ପଲସ୍ତା; କାନ୍ଥ ଆଦିରେ ଚୂନର ସ୍ତର
Pāṭṭu ବୋଳ ଚାଲୁ ମାଠିବା—Plastering.

**ପାଟ୍ୟ**—ସ. ବ (ପଟ୍ ଧାତୁ+କର୍ତ୍ତ୍ରି. ଯ)—ଛଣପଟ (ଦ୍ବି. ଶ.)—
Pāṭya Flax

**ପାଟ୍ରା**—ଗ୍ରା. ବ. ପୁଂ—୧ । ପାଟରା (ଦେଖ)
Pātrā 1. Pāṭarā (See)
୨ । ପେଟରା (ଦେଖ)—Peṭarā (See).

**ପାଟ୍ରାଣୀ**—ଦେ. ବ. ସ୍ତ୍ରୀ—ପାଟରାଣୀ (ଦେଖ)
Pāṭrānī Pāṭarānī (See).

**ପାଠ**—ସ. ବ ( ପଠ୍ ଧାତୁ=ଅଧ୍ୟୟନ କରିବା+ଭାବ. ଅ )—
Pāṭha ୧ । ପଠନ, ଲେଖାଥିବା ବିଷୟକୁ ପଢ଼ିବା—
1. Reading of any written matter; perusal
୨ । ଆବୃତ୍ତି—2. Recital.
(ଯଥା—ସ୍ତୋତ୍ରପାଠ; ବେଦପାଠ; ମନ୍ତ୍ରପାଠ । )
୩ । ପୁସ୍ତକର ପଠନୀୟ ଅଂଶ—3. Text of a book; the readable portion of a book
୪ । ବିଦ୍ୟାଶିକ୍ଷା; ପଢ଼ାପଢ଼ି; ଅଧ୍ୟୟନ—
4. Learning; study.

୫ । ସନ୍ଥ, ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ ଅଭ୍ୟାସ ବା ଆୟତ୍ତ କରିବା ପାଇଁ ଗୁରୁଙ୍କଦ୍ୱାରା ଛାତ୍ର ପ୍ରତି ନିରୂପିତ ପାଠ୍ୟ ବିଷୟ—
5. A lesson given to a pupil for preparing in a fixed time.

୬ । ଅଧ୍ୟାପନ, ପଢ଼ାଇବା —6. Teaching.

୭ । କୌଣସି ବିଷୟ ବା ପଦ ବା ଶବ୍ଦ ଏକ ଗ୍ରନ୍ଥର ଭିନ୍ନ ଭିନ୍ନ ସଂସ୍କରଣରେ ଯେଉଁପରି ଲେଖା ଯାଇଥାଏ—
7. Different readings of the same matter or word or line found in different editions or copies of the same book.

ଦେ. ବି—୧ । ଶିକ୍ଷାଲାଭ—1 Education; attainment of learning.

ବୋଲଯାକେ ଭାତ (ଶେଷ), ବଲା ଯାକେ ପାଠ—ଢଗ ।

୨ । ପାଠ୍ୟ ପୁସ୍ତକ (ଯଥା—ବାଳକା ପାଠ, ଦ୍ୱିତୀୟ ପାଠ)—
2 Text book; reader.

୩ । ଧର୍ମଶାସ୍ତ୍ର—3. The scripture.

(ଯଥା—ପାଠ ଡାକୁଛି ଦୁଷ୍ଟଲୋକର ସଙ୍ଗ ତ୍ୟାଗ କରିବ ।)

୪ । ପ୍ରଚଳିତ ବିଧି, ରୀତି—
4. Current rule; custom; usage.

୫ । ପନ୍ଥା; ମାର୍ଗ; ପଦ୍ଧତି—5. Way; mode; fashion.

( ଯଥା—ଆଜିକାଲିର ଟୋକାଏ ଗୋଟାଏ ଗୋଟାଏ ନୂଆ ପାଠ ବାହାର କରୁଛନ୍ତି । )

୬ । ଆଚରଣ ; ଆଚରିତ ପନ୍ଥା—
6. Course of action; conduct.

( ଯଥା—ଆମ ଘରେ ନନାଙ୍କର ପାଠେ ତ, ନାନାଙ୍କର ପାଠେ । )

୭ । ନିତ୍ୟକର୍ମ—7. Daily act.

ମଲ ଶବ ଧୋଇବାର ଅଛି ତାର ପାଠ ।
କୃଷ୍ଣସିଂହ ମହାଭାରତ ବନ ।

୮ । ଖବର, ସମ୍ବାଦ—8. News; tidings.

ବାର୍ତ୍ତାବହ ସ୍ଥାନ ବସି ପାଠମାନ ବୋଧର ହେବାକୁ ।
ଭଞ୍ଜ ବୈଦେହୀଶବିଳାସ ।

୯ । ଅଭ୍ୟାସ—9. Habit.

ପ୍ରାଦେ (ଉତ୍ତରଭାଷା) ବି—ପିଠି—Back.

**ପାଠକ**—ସଂ ବି. ପୁଂ (ପଠ୍ ଧାତୁ=ଅଧ୍ୟୟନ କରିବା+କର୍ତ୍ତୃ. ଅକ)—
Pāṭhaka ୧ । ପଢ଼ୁଆ; ଯେ ପଢ଼େ—1. Reader.
(ପାଠିକା—ସ୍ତ୍ରୀ) ୨ । ( ପଠ୍ ଧାତୁ ଣିଚ୍ ପାଠି ଧାତୁ+କର୍ତ୍ତୃ. ଅକ) ଅଧ୍ୟାପକ—2. Teacher;

୩ । ପୁରାଣ ପଣ୍ଡା—
3. A reader of the Purāṇas.

୪ । ଯେ କୌଣସି ପୁସ୍ତକରୁ ପଢ଼େ—
4. A reader or reciter from a book.

ସଂ. ବିଣ. ପୁଂ—୧ । ପାଠନକାରୀ —1. Reading.

୨ । ଆବୃତ୍ତିକାରୀ—2. Reciting.

୩ । ଅଧ୍ୟାପନକାରୀ—3. Teaching.

ଦେ. ବି.—ପଶ୍ଚିମା ବ୍ରାହ୍ମଣଙ୍କ ଉପାଧିବିଶେଷ—
A family-title of certain Brāhmaṇas of north and west India.

**ପାଠ ଗୁରୁ**—ସଂ ବି.—(ପାଠ+ଗୁରୁ)—ବିଦ୍ୟା ଗୁରୁ; ଯେ ବିଦ୍ୟା
Pāṭha guru ପଢ଼ାନ୍ତି—Teacher.

**ପାଠଘୋଷା**—ଦେ ବି—ମୁଖସ୍ଥ କରିବାପାଇଁ ପୁସ୍ତକର କୌଣସି ଅଂଶର
Pāṭhaghoshā ବାରଂବାର ଆବୃତ୍ତି—Repeating or
पाठघोषान learning a portion of a book to
(ପାଠ ଘୋଷିବା—କ୍ରିୟାରୂପ) commit it to memory.

ଦେ. ବିଣ—ଯେଉଁ ଛାତ୍ର ପାଠକୁ ଘଣ୍ଟାଇବା ପାଇଁ ବାରଂବାର ଘୋଷେ ବା ମୁଖସ୍ଥ କରେ—Learning by rote; repeatedly reading a lesson aloud to get it by heart.

**ପାଠ ଡାକୁଛି**—ଦେ. ବାକ୍ୟ.—(ଅମୁକ ବିଷୟ) ପ୍ରାଚୀନ ଗ୍ରନ୍ଥମାନଙ୍କରେ
Pāṭha dākuchhi ବା ଶାସ୍ତ୍ରରେ ଲେଖାଅଛି—( a particular thing) Is witten in ancient books or scriptures; so say the books.

ପାଠ ଡାକିଲା
ପାଠ କହିଲା
ପାଠ କହୁଛି } ଅନ୍ୟରୂପ
ପାଠରେ ଅଛି
ପାଠଭାଙ୍ଗୁ(ଙ୍ଗୁ)ଛି

ପାଠ ଡାକୁଛି,
ଜଣେ ଉପୁଡେଇବ, ଜଣେ ଉଡ଼ାଇବ । ଢଗ ।

( ଯଥା—ଅର୍ଥାତ୍ ଆମର ପ୍ରାଚୀନ ଗ୍ରନ୍ଥମାନଙ୍କରେ ଲେଖାଅଛି ଯେ ଜଣେ ଲୋକ ବହୁକଷ୍ଟରେ ସଞ୍ଚିବା ଧନକୁ ତା ପରେ ଅନ୍ୟ ଲୋକ ଅପବ୍ୟୟରେ ଉଡ଼ାଇ ଦିଏ । )

**ପାଠନ(ନା)**—ସଂ. ବି, ସ୍ତ୍ରୀ.—( ପଠ୍ ଧାତୁ ଣିଜନ୍ତ=ପାଠ୍ ଧାତୁ+ଭାବ
Pāṭhana (nā) ଅନ,+ସ୍ତ୍ରୀ. ଆ)—ଅଧ୍ୟାପନା, ପଢ଼ାଇବା; ଛାତ୍ରଙ୍କୁ ବିଦ୍ୟା ଶିକ୍ଷା ଦେବା—Teaching.

**ପାଠ ପଢ଼ା**—ଦେ ବି.—(ସଂ. ପାଠ+ପଠନ, ପାଠନ)—
Pāṭha pardhā ୧ । ବିଦ୍ୟାଶିକ୍ଷା, ଅଧ୍ୟୟନ—
पाठपडा पाठपढ़ा 1. Reading; education; study.

"ମାଆଁ ମାଆଁ ରେ । ପାଠପଢ଼ା ବଡ଼ ଦୁଃଖ;
ହାତ ଗୋଡ଼ ଭୁଦ ଲଗାଇ ରେ । ଚଷାଙ୍କୁ ବଡ଼ ସୁଖ—ଶିଶୁବଚନ

୨ । ଅଧ୍ୟାପନା—2. Teaching.

ଦେ. ବିଣ.—୧ । ଅଧ୍ୟୟନକାରୀ (ଛାତ୍ର)—
1. Studying (student).

୨ । ଅଧ୍ୟାପନକାରୀ (ଗୁରୁ)—2 Teaching (master).

୩ । ଶିକ୍ଷିତ, ଶିକ୍ଷାପ୍ରାପ୍ତ—3. Educated.

୪ । ଯେଉଁ ସ୍ଥାନରେ ପିଲାଏ ପଢ଼ନ୍ତି—
4. (a place) Where children study.

ଯଥା—ପାଠ ପଢ଼ା ମେଳ ।

**ପାଠ ପଢ଼ା(ଢେ)ଇବା**—ଦେ. କ୍ରି.—(ସଂ. ପାଠ+ପାଠନ)—
Pāṭha pardhā(rdhe)ibā ଛାତ୍ରଙ୍କୁ ବିଦ୍ୟାଶିକ୍ଷା ଦେବା—
ପାଠପଢ଼ାନ 1. To impart education to pupils.
पाठ पढ़ाना ୨ । (ଲକ୍ଷଣାର୍ଥ) ଉପଦେଶ ଦେବା; ମନ୍ତ୍ରଣା ଦେବା—
2. (figurative) To give advice.

୩ । (କଚେରିଆ)— ସାକ୍ଷୀଙ୍କୁ ଘରେ ତାଲିମ୍ କରିବା—
3. To coach one's witness

[ଦ୍ର— କଚେରିରେ ସାକ୍ଷ୍ୟ ଦେବା ପୂର୍ବରୁ ସାକ୍ଷୀମାନେ ଯେଉଁ ପକ୍ଷ ସମର୍ଥନ କରିବାକୁ ଆସି ଥାଆନ୍ତି ସେହି ପକ୍ଷର ମାମଲତକାରମାନେ ସାକ୍ଷୀମାନଙ୍କୁ ଅମୁକ ଅମୁକ ବିଷୟ କହିବ ବୋଲି 'ପାଠ ପଢ଼ାନ୍ତି' । 'ମୌକ୍ତିକଂ ନ ଗଜେ ଗଜେ'—ସବୁ ହାତୀଙ୍କ ମୁଣ୍ଡରେ ମୁକ୍ତା ନ ଥିଲା ଭଳି ସବୁ ଓକିଲ ବା ସବୁ ମୁକ୍ତାରଙ୍କୁ ସାକ୍ଷୀ ପଢ଼ାଇବା ବିଦ୍ୟା ଆସେ ନାହିଁ । ସାକ୍ଷୀ କଚେରିରେ ହାକିମଙ୍କ ପାଖରେ ଜବାନବନ୍ଦୀ ଦେବା ପୂର୍ବରୁ ସେ କଅଣ କହିବ ତାହ ନିଜ ପକ୍ଷର ଓକିଲ, ମୁକ୍ତାର ବା ମାମଲତକାରଙ୍କ ଆଗରେ କହେ ଓ ସେ ଯେଉଁ ଯେଉଁ ଠାରେ ଝୁଣ୍ଟେ ବା ଝୁଣ୍ଟିବାର ଆଶଙ୍କା ଥାଏ ତାହା ଉକ୍ତ ମାମଲତକାର ତାକୁ 'ଶୁଦ୍ଧ ଅଶୁଦ୍ଧ ପୂରାଇ ଗାଇବାକୁ' ଆଜ୍ଞା କରି ପାଠ ପଢ଼ାଇ ଦିଅନ୍ତି । ଆଜି କାଲି ମଫସଲ ଅଦାଲତ ଓ ବିଶେଷତଃ ଫଉଜଦାରୀ କୋର୍ଟରେ ଯେଉଁ ମାମଲତକାର ବା ଓକିଲ ମୁକ୍ତାର ସାକ୍ଷୀଙ୍କୁ ପାଠ ପଢାଇବା ବିଷୟରେ ଯେତିକ ବେଶି ସିଦ୍ଧହସ୍ତ ତାଙ୍କର ସେତିକ ବେଶି ନାମ ଡାକ ଓ ବଡ଼ତି ।]

**ପାଠ ପଢ଼ିବା**—ଦେ. କ୍ରି.—(ସଂ. ପାଠ+ପଠ୍ ଧାତୁ)—୧ । ବିଦ୍ୟାଶିକ୍ଷା କରିବା, ଶିକ୍ଷକଙ୍କ ଠାରୁ ବିଦ୍ୟା ଲାଭ କରିବା
Pāṭha pardhibā
পাঠপড়া 1. To acquire learning; to undergo a
**पाठ पढ़ना** course of education.
୨ । ନିର୍ଦ୍ଦିଷ୍ଟ ପାଠ ବା ସନ୍ଥକୁ ଅଭ୍ୟାସ କରିବା—
2 To be engaged in studying a particular lesson.
୩ । (ଲକ୍ଷଣାର୍ଥ) (କଚେରିଆ)—ମାମଲତକାରଙ୍କଦ୍ୱାରା (ସାକ୍ଷୀ) ମକଦ୍ଦମା ପଡ଼ିବା ପୂର୍ବରୁ ତାଲିମ୍ ହେବା—
3. ( figurative -( a witness) To be coached beforehand.

**ପାଠ ପଢ଼ୁଆ**—ଦେ. ବିଣ. ପୁଂ. ଓ ସ୍ତ୍ରୀ—୧ । ଯେଉଁ ଛାତ୍ର ବିଦ୍ୟା ଶିକ୍ଷା
Pāṭha pardhuā କରୁଅଛି—1. Studying; being
পাঢ়ুয়া **पढ़ुआ** educated.
୨ । ଶିକ୍ଷିତ; ଯେ ବିଦ୍ୟାଶିକ୍ଷା କରିଅଛି—
3. Educated.
୩ । ଯେ ବିଦ୍ୟାଶିକ୍ଷା ଦେଉ ଅଛନ୍ତି—
3. Teaching; imparting education.
୪ । ଯେଉଁ ଗୁରୁଙ୍କ ଠାରେ କୌଣସି ବ୍ୟକ୍ତି ବାଲ୍ୟ କାଳରେ ବିଦ୍ୟା ଶିକ୍ଷା କରିଥିଲେ—4. One who had been a persona's teacher in the latter's boyhood.

**ପାଠ ବାଡ଼ି**—ଗ୍ରା. ବି.—(ଗଉଡ଼ମାନଙ୍କ ଲଉଡ଼ି ଖେଳରେ ବ୍ୟବହୃତ) ବାଡ଼ି
Paṭha bārḍi ବୁଲାଇବାର ଏକ ପ୍ରକାର ରୀତି—A kind of brandishing the stick in stick play.

**ପାଠ ମଞ୍ଜରୀ**—ସଂ. ବି—ଏକ ପ୍ରକାର ମଇନା ଜାତୀୟ ପକ୍ଷୀ (ହ୍ର. ଶ.)—
Patha manjari A species of myna bird.

**ପାଠଲେ**—ପ୍ରାଦେ. (ଉତ୍ତର ଭାଗ; ବାଲେଶ୍ୱର) ଅ—ପଛରେ—
Pathale Behind.

**ପାଠ ଶାଠ**—ଦେ. ବି.—(ନିରର୍ଥକ ଅନୁଚର ଶବ୍ଦ,—୧ । ବିଦ୍ୟାଆଦି—
Pāṭha śāṭha 3. Learning etc
পড়া(ডা) পড়ি(টি) **पढ़ालिखा** ୨ । ପାଣ୍ଡିତ୍ୟ ପ୍ରକାଶ—
2. Exhibition of one's learning.

ପୁଣି ବୋଇଲେ ହେ ସଜନ ତୁମ୍ଭେ ଭଟ,
ଜାଣି ବସୁ ହିଜଙ୍କ, କରି ପାଠ ଶାଠ ।
କୃଷ୍ଣସିଂହ, ମହାଭାରତ ବନ ।

୩ । ବିଦ୍ୟା ଓ ବୁଦ୍ଧି—
3. Learning and intelligence.
୪ । ଲେଖା ପଢ଼ା—4 Reading and writting.

**ପାଠଶାଳା(ଳି)**—ସଂ. ବି. ସ୍ତ୍ରୀ.—(୬ଷ୍ଠୀ ତତ୍; ପାଠ+ଶାଳା=ଗୃହ)—
Pāṭhaśāḷā(lā) ବିଦ୍ୟାଳୟ, ସ୍କୁଲ—School.
(ପାଠାଳୟ—ଅନ୍ୟରୂପ) ଦେ. ବି.—ଲୋଅର୍ ପ୍ରାଇମେରୀ ସ୍କୁଲ୍; ନିମ୍ନ ଶ୍ରେଣୀର ବିଦ୍ୟାଳୟ; ନିମ୍ନ ପ୍ରାଥମିକ ବିଦ୍ୟାଳୟ; ଚାଟଶାଳୀ; ଚାହାଳି—Primary vernacular school.

**ପାଠଶିମ(ମ୍ବ)**—ଦେ. ବି—ଚେପଟା ଶିମ୍ବ ବିଶେଷ—
Pāṭhaśima(mba) A kind of flat bean.
**पट्टाशीम**

**ପାଠା**—ସଂ. ବି. ସ୍ତ୍ରୀ—ଆକାନବିନ୍ଧ ( ଦେଖ )
Pāṭhā Akānabindhi. ( Sea )

**ପାଠାନ୍ତର**—ସଂ. ବି. (କର୍ମଧା, ଅନ୍ୟ+ପାଠ)—୧ । ଅନ୍ୟ ପାଠ—
Pāṭhāntara 1. Another lesson.
(ପାଠଭେଦ—ଅନ୍ୟରୂପ) ୨ । ଏକପୁସ୍ତକର ବିଭିନ୍ନ ସଂସ୍କରଣରେ ଏକ କଥାର ବିଭିନ୍ନରୂପ ଲେଖା—2. Another reading from a different book.

**ପାଠାଭ୍ୟାସ**—ସଂ. ବି. (୬ଷ୍ଠୀ ତତ୍; ପାଠ+ଅଭ୍ୟାସ)—
Pāṭhābhyāsa ବିଦ୍ୟାନୁଶୀଳନ, ପାଠ ପ୍ରସ୍ତୁତ କରିବା—
Preparing a lesson; studying.

**ପାଠାର୍ଥୀ**—ସଂ. ବି. ପୁଂ. (ପାଠ+ଅର୍ଥୀ)—ଛାତ୍ର—
Pāṭhārthī Student.
(ପାଠାର୍ଥିନୀ—ସ୍ତ୍ରୀ) ସଂ. ବିଣ. ପୁଂ—ବିଦ୍ୟା ଅର୍ଜନ କରିବା ପାଇଁ ଇଚ୍ଛୁକ—Wishing to study.

**ପାଠିକା**—ସଂ. ବି ଓ ବିଣ. ସ୍ତ୍ରୀ. (ପାଠକ+ସ୍ତ୍ରୀ. ଆ)—
Pāthikā ପାଠକର ସ୍ତ୍ରୀଲିଙ୍ଗ—
Feminine of Pāṭhaka.
ସଂ. ବି—ଅକାନବିନ୍ଧ (ଦେଖ)—Akānabindhi (See).

**ପାଠିତ**—ସଂ. ବିଣ. (ପଠ୍ ଧାତୁ ଣିଜନ୍ତ=ପାଠି ଧାତୁ+କର୍ମ ତ)—
Pāthita ଅଧ୍ୟାପିତ—Taught.

**ପାଠୀ**—ସଂ ବିଣ. ପୁଂ. (ପଠ୍ ଧାତୁ+କର୍ତ୍ତୃ. ଇନ୍ ୧ମା. ୧ବ)—
Pāthī ପାଠକ; ଯେ ପଢ଼େ—Reading; studying.
(ପାଠିନୀ—ସ୍ତ୍ରୀ) [ ଦ୍ର—ଅନ୍ୟ ଶବ୍ଦ ସଙ୍ଗେ ଲାଗେ; ଯଥା—ସହପାଠୀ, ବେଦପାଠୀ । ]
ସଂ. ବି —୧ । ଚିତ୍ରକ ବୃକ୍ଷ; ଧଳା ଚିତା ଗୁଳ୍ମ—

୬ । ବ୍ରାହ୍ମଣଙ୍କ ଉପାଧିବିଶେଷ—
2. A family-title of Brāhmaṇas

**ପାଠୀନ**—ସଂ. ବି. (ପାଠ + ସଜ୍ଜାର୍ଥେ ଈନ)— ୧ । ପାଠକ—
Pāṭhīna 1. Reader
ସଂ. ନାମ— ବୋଆଲ, ବଦାଲକ, ସହସ୍ରଦଂଷ୍ଟ୍ର, ବୋୟାଲ
୨ । (ପାଠୀ = ପୃଷ୍ଠ + ନମ୍ ଧାତୁ = ଶବ୍ଦ କରିବା + ଅ)— ବାଲିଆମାଛ —
2. Boal fish
**ପହିନା, ପଢ଼ିନା, ବୁଆରୀ** [ ଦ୍ର—ଏହା ଶ୍ଳେଷ୍ମକର ଓ ବଳବର୍ଦ୍ଧକ, ଏହାଦ୍ୱାରା ରକ୍ତ ଓ ପିତ୍ତ ଦୂଷିତ ହୁଏ ଏବଂ କୁଷ୍ଠରୋଗ ଉତ୍ପନ୍ନ ହୁଏ । ଏହା ମାଂସଭୋଜୀ ଓ ଶବଭୋଜୀ । ]
୩ । ଗୁଗ୍‌ଗୁଲ ବୃକ୍ଷ—3. Amyris Agallochum (tree).

**ପାଠୋଦ୍ଧାର**—ସଂ. ବି. (୬ଷ୍ଠୀ ତତ୍; ପାଠ + ଉଦ୍ଧାର)—
Pāṭhoddhāra ପୁସ୍ତକରେ ଦେଖାଯିବା କୌଣସି ଦୁରୂହ ବା ଅବୋଧ୍ୟ ପଦ ବା ବାକ୍ୟର ଅର୍ଥକୁ ବୋଧଗମ୍ୟ କରାଇବା—
The elucidation of any knotty or obscure passage in a book.

**ପାଠୋନ୍ନତି**—ସଂ.ବି. (୬ଷ୍ଠୀ ତତ୍, ପାଠ + ଉନ୍ନତି)—ଶିକ୍ଷାର କ୍ରମୋନ୍ନତି—
Pāṭhonnati The progress of education.

**ପାଠ୍ୟ**—ସଂ. ବିଣ. (ପଠ୍ ଧାତୁ = ପଢ଼ିବା + କର୍ମ. ଯ)— ୧ । ପଢ଼ିବାର
Pāṭhya ଯୋଗ୍ୟ; ପାଠଯୋଗ୍ୟ, ପଠନୀୟ—1. Worth reading; legible; fit to be perused.
୨ । ଯାହା ବିଦ୍ୟାଳୟରେ ପଠିତ ହେବାପାଇଁ ବିଦ୍ୟାଳୟର କର୍ତ୍ତୃପକ୍ଷ ଆଦେଶ ଦିଅନ୍ତି—2 Prescribed as text-book in a school.

**ପାଠ୍ୟ ନିର୍ଘଣ୍ଟ**—ସଂ. ବି. (ପାଠ୍ୟ + ନିର୍ଘଣ୍ଟ, ଆଧୁନିକ ପ୍ରୟୋଗ)—
Pāṭhya nirghaṇṭa ପାଠ୍ୟପୁସ୍ତକ ମାନଙ୍କର ତାଲିକା—
A list or syllabus of text-books.

**ପାଠ୍ୟ ପୁସ୍ତକ**—ସଂ. ବି. (ପାଠ୍ୟ + ପୁସ୍ତକ)— ୧ । ବିଦ୍ୟାଳୟରେ ପଠିତ
Pāṭhya pustaka ହେବା ପାଇଁ କର୍ତ୍ତୃପକ୍ଷଙ୍କ ନିର୍ଦ୍ଦିଷ୍ଟ ପୁସ୍ତକ, ପଢ଼ାବହି—1. Text book.
୨ । ଯେଉଁ ବହି ପଢ଼ିବା ଯୋଗ୍ୟ—
2 A book worth reading

**ପାଠ୍ୟପୁସ୍ତକ କମିଟୀ**—ଦେ. ବି.—ଆଧୁନିକ ବ୍ୟବହାର (ସଂ. ପାଠ୍ୟପୁସ୍ତକ
Pāṭhyapustaka kamiṭī ଇଂ. କମିଟୀ) + ବିଦ୍ୟାଳୟର ପାଠ୍ୟପୁସ୍ତକମାନ ମନୋନୀତ କରି ନିର୍ଦ୍ଦେଶ କରିବା ପାଇଁ ପ୍ରତି ପ୍ରଦେଶରେ ସରକାରଙ୍କ ଦ୍ୱାରା ପ୍ରତିଷ୍ଠିତ ସମିତି—
Text-book committee.

**ପାଠ୍ୟାବସ୍ଥା**—ଦେ. ବି. (ଅପପ୍ରୟୋଗ) (ପାଠ୍ୟ + ଅବସ୍ଥା)—
Pāṭhyābasthā ପଠଦଶା, ଛାତ୍ରାବସ୍ଥା—Student life.
पाठ्यावस्था

**ପାଡ୍**—ଦେ. ବି—ଲୁଗାର ଧଡ଼ି, କନାରି—
Pārḍ The hem or border of a cloth.
पाड ପ୍ରାଦେ. (ମେଦିନୀପୁର) ବି (ଭୂଲ ବି. ଏହି ଅର୍ଥରେ ଏହି

**पाड़** ଶବ୍ଦ ଓ ହି. ପାଡ଼୍)—ପୋଖରୀ ବନ୍ଧ—
The high bank of a tank.

**ପାଡ଼**—ଦେ ବି (ସଂ. ପର୍ଦ୍ଦନ; ତୁଳ. ଇଂ. ଫାର୍ଟ୍)—
Pārḍa ଅପାନବାୟୁ, ବାତକର୍ମ—Ventris Crepitus;
पाद **पाद्** fart; wind passed through the anus.

**ପାଡ଼ ଗଣ୍ଠି**—ଗ୍ରା. ବି. (ଅଶିଷ୍ଟ) (ସଂ. ପର୍ଦ୍ଦ + ଗ୍ରନ୍ଥି)—
Pārḍa ganṭhi ବହୁ ଶିଶୁ ବାଳକଙ୍କ ମଧ୍ୟରେ ଅଧୋବାୟୁ ନିଃସାରକ ବ୍ୟକ୍ତିକୁ ଦୋଷୀ ସାବ୍ୟସ୍ତ କରିବା ପାଇଁ ଏକ ପ୍ରକାର ମାଣ୍ଡୁ—A kind of ordeal for adjudging as to who of the assembled children broke wind.
[ ଦ୍ର—ଏକତ୍ର ଉପସ୍ଥିତ ଗୁଡ଼ାଏ ଶିଶୁଙ୍କ ମଧ୍ୟରୁ ଜଣେ କେହି, ବାତକର୍ମ କଲେ ଓ ନ ମାନଲେ, ଜଣେ ଗୁଡ଼ାଏ କୁଟା କାଠି ହାତରେ ମୁଠାଇ ଧରେ ଓ ତହିଁ ମଧ୍ୟରୁ ଖଣ୍ଡେ କୁଟାରେ ଗଣ୍ଠି ପଡ଼ି ଥାଏ । କୁଟାମାନ ଧରିଥିବା ଶିଶୁର ହାତରୁ ସେହି ମୁଠିଆ ହୋଇଥିବା କୁଟାରୁ ଉପସ୍ଥିତ ଶିଶୁମାନେ ପ୍ରତ୍ୟେକେ ଖଣ୍ଡେ ଖଣ୍ଡେ ଓଟାରି ନିଅନ୍ତି । ଯେଉଁ ଶିଶୁ ଗଣ୍ଠି ପଡ଼ିଥିବା କୁଟା ଖଣ୍ଡି ନିଏ, ସେହି ଶିଶୁ ଏହି କୋଦଣ୍ଡୀ ନିଃଶାପ ଅନୁସାରେ ବାତକର୍ମ କରିଥିବାର ଶିଶୁ ଦରବାରରେ ସାବ୍ୟସ୍ତ ହୁଏ । କାହାର ଅଞ୍ଚଳରେ ଖଣ୍ଡିଏ କାଠିର ଅଗକୁ ବଙ୍କା କରି ଦେଇ ଜଣେ ପିଲା ଆପଣା ଆଖି ବୁଜି ଉକ୍ତ କାଠିକୁ ଦୁଇ ହାତର କରତଳରେ ଦହି ଖୁଆଲୁ ମୋହିଁଲା ଭଳି ଘୁରାଏ ଏବଂ ଘୁରାଇ ଘୁରାଇ ଉକ୍ତ କାଠିର ବକ୍ରୀକୃତ ଅଗ ଯେଉଁ ପିଲା ଆଡ଼କୁ ବୁଲି ଯିବାର ଦେଖାଯାଏ ସେହି ପିଲାଟି ବାତକର୍ମ କରିଥିବାର ସାବ୍ୟସ୍ତ ହୁଏ । ]

**ପାଡ଼ଜୁଷି**—ଗ୍ରା. ବି—ପାଡ଼ୁଷି ( ଦେଖ )
Pārḍajushi Pārḍushi ( See )
(ପାଡ଼ଦୁଷି, ପାଡଦୋଷି— ଅନ୍ୟରୂପ)

**ପାଡ଼ରା**—ଗ୍ରା. ବିଣ. ପୁଂ. ( ସଂ. ପର୍ଦ୍ଦକ )—
Pārḍarā ୧ । ପାରଡ଼ା, ପାରୁଡ଼ା; ଯେ ବାତ କର୍ମ କରେ —
ପାଡ଼ୁଆ } ଅନ୍ୟରୂପ
ପାଡ଼ୁରା }
1. Habituated to breaking wind very often.
ପାଡ଼ରୀ, ପାଡ଼ୁ(ଡ଼ୋ)ଈ, ପାଡ଼ୁରୀ } ସ୍ତ୍ରୀ
୨ । ଡରୁଆ, ଛେରୁଆ—
2 Timid; coward.
ପେଦୋ, পাদুয়া **पदोड़ा, पद्दू**
୩ । ପାଡ଼ ପରି ପୂତି ଗନ୍ଧବିଶିଷ୍ଟ—3. Of very offensive smell like the wind from the anus.

**ପାଡ଼ରା ପୋକ**—ଦେ. ବି. ( ସଂ. ପୂତ୍ୟଣ୍ଡ, ପୂତିକୀଟ )—
Pārḍarā poka ପାରଡ଼ା ବା ପାରୁଡ଼ା ପୋକ; ଦୁର୍ଗନ୍ଧ ଯୁକ୍ତ (ପାଡ଼ୁରା ପୋକ— ଅନ୍ୟରୂପ) ଦୁଇପକ୍ଷୀ ଷଟ୍‌ପଦୀ କୀଟ—
পদী, পেদোপোকা Lady bird; Coccinella;
**पद्दीकीड़ी** Hippodamea Maculata.
ଅତେ ଉର୍ଣ୍ଣକ । ବଣାରୁ ଫୁଲରୁ ପାଡ଼ୁଡା ପୋକ—ଇଗ ।
[ ଦ୍ର —ଏମାନେ କଖାରୁ ଫୁଲରେ ବସିବାର ଦେଖାଯାଏ । ଏମାନଙ୍କର ବର୍ଣ୍ଣ ନାଲି କିମ୍ବା ହଳଦିଆ, ଦେହରେ କଳାକଳା

ଫୁଟ ଫୁଟକିଆ ଦାଗ ଥାଏ । ଏହାକୁ ହାତରେ ମଳଲେ ବା ଏହା ହାତରେ ଲାଗିଲେ ଗନ୍ଧାଏ । ଏମାନଙ୍କ ପକ୍ଷଯୁକ୍ତ ପୃଷ୍ଠର ବ୍ୟାସ ଅଧ ଇଞ୍ଚ ଠାରୁ ¾ ଇଞ୍ଚ । ]

**ପାଡ଼ିଆ**—ଦେ ବଣ. ( ସ. ପାର୍ଶ୍ବ )—ନାହାଚୂଳଆ ଗୃହ ଘରର ଲମ୍ବ **Pārḏiā** ବାଗରେ ଥିବା ସାନ ( କାନ୍ଥ ବା ଖୁଣ୍ଟ )—
(ଭୂଳଆ—କପସ୍ତର) Lateral ( wall or post of a gabled thatched house ).

ଦେ. ବ—୧ । ପାଡ଼ିଆ କାନ୍ଥ ( ଦେଖ )
1. Pārḏiā kāntha ( See )
୨ । ପାଡ଼ିଆ ଖମ୍ବ ( ଦେଖ )
2. Pārḏiā khamba ( See )
୩ । ପାଡ଼ିଆ ଶେଣୀ ( ଦେଖ )
3. Pārḏiā seṉi ( See )

**ପାଡ଼ିଆ କାନ୍ଥ**—ଦେ. ବଣ—ନାହାଚୂଳଆ ଗୃହ ଘରର ପିଣ୍ଡା ଓ ଘର **Pārḏiā kāntha** ଭିତର ମଧ୍ୟରେ ଥିବା କାନ୍ଥ—
The wall of a gabled thatched house between the veranda and the inside.

**ପାଡ଼ିଆ ଖମ୍ବ**—ଦେ. ବ—ଗୃହ ଘରର ପିଣ୍ଡା ପାଖର କାନ୍ଥରେ ଯେଉଁ **Pārḏiā khamba** ଖୁଣ୍ଟ ବସି ଥାଏ—The lateral posts of a gabled thatched house.
**पाढ़का खूंटी**
(ପାଡ଼ିଆ ଖୁଣ୍ଟ—ଅନ୍ୟରୂପ)

**ପାଡ଼ିଆ ଶେଣୀ**—ଦେ. ବ – ଗୃହ ଘରର ପାଡ଼ିଆ ଖୁଣ୍ଟ ଉପରେ ଯେଉଁ **Pārḏiā seṉi** ଶେଣୀ ପଡ଼ିଥାଏ—Wall plates laid on the lateral pillars of a thatched house.
**पाढ़ी**

**ପାଡ଼ିନୀ**—ସ. ବ – ମାଟିର ହାଣ୍ଡି ( ହ୍ବି. ଶ. )—
**Pārḏini** An earthen pot or boiler. (M. W.)

**ପାଡ଼ିବା**—ଦେ. କ୍ରି. ( ସ. ପର୍ଦ୍ଦ୍ ଧାତୁ )—
**Pārḏibā** ୧ । ଅପାନ ବାୟୁ ଛାଡ଼ିବା; ବାତ କର୍ମ କରିବା—
(ପାଡ଼ିଦେବା—ଅନ୍ୟରୂପ) 1. To break wind; to pass wind through the anus; to void wind from the stomach.
पादना
पादना

୨ । ( ସ. ପତ୍ ଧାତୁ ଣିଜନ୍ତ ପାତି ଧାତୁ )—
ପାତିତ କରାଇବା; ପକାଇବା, ପାରିବା; ଭୂମିରେ ବିସ୍ତୃତ କରିବା; ଭୂଇଁରେ ପକାଇବା; ବିଛାଇବା—
पाड़ा, पाता 2. To spread a thing on the ground.
**बिछाना, पसारना** (ଯଥା—ବିଛଣା ପାଡ଼ିବା, ଲୁଗା ପାଡ଼ିବା ।)
ବର୍ଷିଅଛ ଭୂଷ ଗୃହେ ତଲେ ପାଡ଼ । କୃଷ୍ଣସିଂହ. ମହାଭାରତ ବନ ।

बन्दकरा ୩ । (କବାଟ) ପକାଇବା; ବନ୍ଦ କରିବା; (ଦ୍ୱାର) ରୁଦ୍ଧ
**बन्दकरना** କରିବା—3. To close or shut (a door).
ଦୁଷ୍ଟ ଦର୍ପ ପାଇଁ ପଶିଥିବ ଭାଇ ବାଟ
ଆକାଶରେ ଅଳ୍ପେ ଯେବେ ପାଡ଼ିଲେ କବାଟ । କୃଷ୍ଣସିଂହ, ମହାଭାରତ, ବନ ।

(ଡିମ୍) ପାଡ଼ା ୪ । ଗର୍ଭରୁ ବାହାର କରିବା; ନିର୍ଗତ କରାଇବା—
**(अंडा) देना, पाड़ना** 4. To lay (eggs).
( ଯଥା—ଡିମ୍ବ ପାଡ଼ିବା । )

पाता **बाँधना, पाड़ना** ୫ । ଛିଆର କରିବା—5. To erect.
( ଯଥା—ଜାଠ ପାଡ଼ିବା, ଚୁଲି କରିବା । )

धारे आना ୬ । ପାଡ଼ିବା, ନଗଦ ପଇସା ନ ଦେଇ କାଲ କରି
**उठावना** ସଉଦା ଆଣିବା—6. To purchase or bring commodities on credit.

**पाड़ना** ୭ । ଭୂମିରେ ଲଗାଇବା ବା ଭୂମି ସଙ୍ଗେ ମିଶାଇବା—
7. To make a thing stick to the ground; to bring a thing close to the ground.
( ଯଥା—ବଢ଼ିଣାକୁ ପାଡ଼ି କରି ଘରକୁ ଓଳେଇ ନେଲେ ଟିକିଏ ସୁଦ୍ଧା ଅଳିଆ ରହିବ ନାହିଁ । )

**मचाना** ୮ । ଉଚ୍ଚ ଶବ୍ଦ କରିବା, (ଡକା) ଛାଡ଼ିବା—
8. To make a loud sound; to emit a loud cry.
ପାଡ଼ିଲେ ଡକା ନସୃଜନ୍ତୁ ମୁଖ ଠାଣି—କୃଷ୍ଣସିଂହ. ମହାଭାରତ ବନ ।

फेला ୯ । (ପ୍ରମାଦାଦି) ପକାଇବା, ଘଟାଇବା—
**गिराना** 9. To bring (danger); to cause.
ଯେ ଧନ ହୃଦ ଏ ଏକଡା ଛାଡ଼ିଲେ
ପ୍ରମାଦ ପାଡ଼ିଲେ ଦୁଃଖ ଯବନେ—ରଘୁନାଥ. କବିତାବଳୀ ।

पाड़ा ୧୦ । ପାରିବା; ଫଳ ଆଦି ଗଛରୁ ତୋଳିବା—
**तोड़ना** 10 To pluck (fruits) from trees.
( ଯଥା—ନଡ଼ିଆ ପାଡ଼ିବା । )

बुजा ୧୧ । ଚିପିଦେବା; ( ଦୁଇ ଓଠ ବା ଦାନ୍ତପାଟିକୁ ) ମୁଦି
**मुदना** ଦେବା—11. To shut or close up (one's mouth or jaws.
ଗର୍ବେ ପଶିବ ଯେତେବେଳେ,
ପାଟି ପାଡ଼ିବ ଅବହେଳେ । ଜଗନ୍ନାଥ, ଭାଗବତ ।

(कान) पाता ୧୨ । (କାନକୁ) କୌଣସି କଥା ବା ଧ୍ୱନିକୁ ଉତ୍ତମ-
**(कान)देना, लगाना** ରୂପେ ଶୁଣିବା ପାଇଁ ଭୂଇଁ ଆଡ଼କୁ ଲୁଆଇଁବା ବା ମଝିରେ ବ୍ୟବଧାନ ନ ଥିବା କାନ୍ଥ ବା କବାଟରେ କାନକୁ ଲଗାଇବା—12. To press one's ears close to the ground or door in order to be able to overhear a thing.
[ ଦ୍ର—କାନ ପାଡ଼ିବା ଓ କାନ ଡେରିବା ମଧ୍ୟରେ ପ୍ରଭେଦ ଏହି କି, କୌଣସି ଶବ୍ଦ ବା କଥା ଶୁଣିବା ପାଇଁ କାନକୁ ଭୂମି ଆଡ଼କୁ ଲୁଆଇଁବାକୁ କାନ ପାଡ଼ିବା କହନ୍ତି ଓ ଉକ୍ତ ଶବ୍ଦ ଆସୁଥିବା ଦିଗକୁ କାନକୁ ବୁଲାଇବାକୁ କାନ ଡେରିବା କହନ୍ତି; ଗୋପନରେ କେହି କଥାବାର୍ତ୍ତା ହେଉଥିବା ବେଳେ ତୃତୀୟ ବ୍ୟକ୍ତି ଉକ୍ତ ଘରର ବାହାରେ ଥାଇ ବ୍ୟବଧାନ ଥିବା କାନ୍ଥରେ ବା କବାଟରେ କାନ ଲଗାଇବାକୁ କାନ ପାଡ଼ିବା କହନ୍ତି । ]

पाता ୧୩ । (ଗୋବର, ଘସି, ଗଜା, ଇଟା ଆଦିର ପିଣ୍ଡୁଳାମାନଙ୍କୁ
**पाथना, पाड़ना** ଶୁଖାଇବା ପାଇଁ) ଭୂମି ବା ପଟା ଉପରେ ସ୍ଥାପିତ କରିବା—13. To lay (cowdung cakes, balls of confectionary bricks ) on the ground or board to dry.

**ପାଡ଼ୁର** (ଇତ୍ୟାଦି) — ଗ୍ରା. ବିଣ—ପାଡ଼ର୍ ଇତ୍ୟାଦି (ଦେଖ)
Pārdurā (etc) Pārdarā etc (See)

**ପାଡ଼ୁଷି**—ଗ୍ରା. ବ—ପାଠଯୋଷି ( ଦେଖ )
Pārdushi Pātajoshi (See)

**ପାଡ଼ୁଷି ମହାପାତ୍ର** — ଦେ. ବ—ଦେବତାଙ୍କ ସେବକଙ୍କ ଉପାଧିବିଶେଷ—
Pārdushi mahāpātra Title of some temple servants.

**ପାଢ଼**—ଦେ ବିଣ—ଭୀରୁ, କାପୁରୁଷ—
Pārdha Coward.
**कायर** କେ ପାଢ ବେକୁ ମରଦ ବନ୍ଧା ଏହ ଠାବରେ ପଡ଼ିବ ହିନା — ବ୍ରଜନାଥ ସମରତରଙ୍ଗ ।
ପ୍ରାଦେ (ସିଂହଭୂମ) ବ (ସଂ. ପାଠା)—ଅକାନବିନ୍ଦ (ଗୁଳ୍ମ) (ଦେଖ)
Akānabindhi (See)

**ପାଢ଼ି**—ଦେ. ବ (ସଂ. ପାଠୀ=ପଠନକାରୀ)—୧ । ପଣ୍ଡା ଜାତୀୟ ଦେବଳକ
Pārdhi ସେବକ ବ୍ରାହ୍ମଣ—1. A low class of Brāhmanas
(ପାଢ଼ିଆଣୀ—ସ୍ତ୍ରୀ) serving in temples.
ପାଁଡେ ୨ । ବ୍ରାହ୍ମଣଙ୍କର ବଂଶୋପାଧିବିଶେଷ—
**पाठक, पन्डा, पाँडे** 2. A family title of Brāhmanas.
[ ଦ୍ର—ଏହି ଶ୍ରେଣୀୟ ବ୍ରାହ୍ମଣମାନେ ଶାସନୀ ବା ଦାନୁଆ ବ୍ରାହ୍ମଣମାନଙ୍କ ଠାରୁ ନିକୃଷ୍ଟ । ଗୌଡ଼, ସାରସ୍ୱତ, ଗୁଜରାଟୀ ଓ ମୈଥିଳ ବ୍ରାହ୍ମଣମାନଙ୍କର ପାଠକ ବଂଶୋପାଧି ଥିବାର ଦେଖାଯାଏ ।]
୩ । ( ଭୁଲ. ସଂ. ପାଚନୀ=ସିଦ୍ଧକରିବା ହାଣ୍ଡି, ଲୁଣ ହାଣ୍ଡିରେ ରନ୍ଧା ହେଉଥିବାରୁ) ଲୁଣ ସିଦ୍ଧକରିବା ବ୍ୟକ୍ତି—3. A person who boils sea water for manufacturing salt.
ପ୍ରାଦେ. (ସମ୍ବଲପୁର; ଲରିଆ) ବ. (ଭୁଲ. ହିଂ. ପାଡ଼ୀ)—ମାଈ ମଇଁଷି ଛୁଆ—A female calf of buffalo.

**ପାଢ଼ିଆ ବ୍ରାହ୍ମଣ**—ପ୍ରାଦେ. (ଗଞ୍ଜାମ) ବ.—ପଣ୍ଡା ଓ ପାଢ଼ୀ ଶ୍ରେଣୀୟ
Pārdhiā brāhmana ବ୍ରାହ୍ମଣ—
A class of Brāhmanas.
[ଦ୍ର—ଏମାନେ ହଳୁଆଙ୍କଠାରୁ ଉତ୍କୃଷ୍ଟ ଓ ପଣ୍ଡା ଶ୍ରେଣୀୟ । ଏମାନେ ସବୁ ପ୍ରକାରର ସଉଦା ବିକିବା ପାଇଁ ଦୋକାନ କରନ୍ତି । ଗଞ୍ଜାମର କେତେକ ସ୍ଥାନମାନରେ ଏହି ଶ୍ରେଣୀର ବ୍ରାହ୍ମଣମାନେ ପୁରୋହିତ କରୁଥିବାର ମଧ୍ୟ ଦେଖାଯାଏ । ]

**ପାଢ଼ିବା**—ଦେ. କ୍ରି.—୧ । ବାକିରେ ସଉଦା ନେବା—
Pārdhibā 1. To purchase commodities on credit.
**लौलीबाजी करना** ୨ । କୌଣସି ଦେୟକୁ ସୁଝିବା ପାଇଁ ବିଳମ୍ବ କରିବା—2. To delay the repayment of any due.
୩ । କୌଣସି ଦେୟକୁ ଦେବା ପାଇଁ ଭଣ୍ଡିବା—
3. To put off payment of one's liabilities on various pretexts from day to day.

**ପାଢ଼ୁ**—ଦେ. ବିଣ. ପୁଂ.—୧ । ଯେ ଉଧାର ବା ଋଣ ନେଇ ବା
Pārdhu ବାକିରେ ସଉଦା କରି ତାହା ସୁଝିବାକୁ ବିଳମ୍ବ କରେ —
**लौलीबाज** 1. (a person) Who delays the payment of
(ପାଢ଼ୁଆ—ଅନ୍ୟରୂପ) the price of commodities
(ପାଢ଼େଇ, ପାଢ଼େଣୀ—ସ୍ତ୍ରୀ) purchased on credit.
୨ । ଦେଣଦାର; ଋଣଗ୍ରସ୍ତ—
2. Involved in debt; indebted.
୩ । ଠକ, ଧପାବାଜ୍—3. Cheating; deceitful

**ପାଣ**—ଦେ ବ - (ଭୁଲ. ସଂ. ପାଣବିକ=ବାଦ୍ୟ ବାଦକ=
Pāna A drummer).
୧ । ନୀଚ ଅସ୍ପୃଶ୍ୟଜାତିବିଶେଷ—
पान्, पाण्, डोम् 1. A class of low untouchable
**डोम** (ପାଣୁଣୀ—ସ୍ତ୍ରୀ) caste.
[ଦ୍ର—ଏମାନେ ଢୋଲ ବଜାନ୍ତି, ମଲ୍ଲ ଗୋରୁ ଚମଡ଼ାର ବ୍ୟବସାୟ କରନ୍ତି, ବେତରେ ଚଉକି ଓ ପେଟରା ଆଦି ବୁଣନ୍ତି, ଘୋଡ଼ା ସଇସ ଓ ଚଉକିଦାର କାମ କରନ୍ତି । ଏମାନେ ମଦ୍ୟ ଓ ଗୋମାଂସ ଭକ୍ଷଣ କରନ୍ତି । ଗଡ଼ଜାତରେ ପାଣଙ୍କର ଜାତି ଚାରି ପ୍ରକାର । (୧) ଲୁଗାବୁଣା, (୨)ହାଡ଼ା ବେପାରି, (୩)ଚଉକିଆ, (୪) ସଂଯୋଗୀ ବୈଷ୍ଣବ । ଗଡ଼ଜାତରେ ହାଡ଼ିମାନେ ଢୋଲ ଆଦି ବାଦ୍ୟ ମାନ ମଧ୍ୟ ବଜାନ୍ତି, ପାଣମାନେ ଢୋଲ ବଜାନ୍ତି ନାହିଁ । ଗଡ଼ଜାତର ପାଣମାନେ ପ୍ରସିଦ୍ଧ ଚୋର । ସିଂହଭୂମର ପାଣମାନେ ଲୁଗା ବୁଣନ୍ତି ଓ କୁକୁଡ଼ା ଓ ଗୋମାଂସ ଖାଆନ୍ତି ନାହିଁ ।]
୨ । ପାଣୁ (୩) (ଦେଖ)—Pānu 3 (See)
ସଂ. ବ.—(ପଣ୍ ଧାତୁ+ଭାବ. ଅ)—୧ । ବାଣିଜ୍ୟ, ବେପାର—
1. Trade; traffic.
୨ । ବଣିକ୍, ବେପାରୀ—2. Trader.
୩ । ବାଜି ରଖି ଖେଳା ଯିବା ଖେଳ, ଜୁଆ—
3. Game; gambling.
୪ । ଜୁଆରେ ରଖା ଯିବା ବାଜି (ହ୍ର. ଶ.)—
4. Wager; stake at play.
୫ । କର; ହସ୍ତ, ପାଣି. (ହ୍ର. ଶ.)—5. Hand.
୬ । ପ୍ରଶଂସା (ହ୍ର. ଶ.)—6. Praise (M. W.)

**ପାଣ ଛୁଆଁ**—ଦେ. ବ.—ପାଣଙ୍କୁ ଛୁଇଁବାଦ୍ୱାରା କଳ୍ପିତ ଅପବିତ୍ରତା—
Pāna chhuān Impurity caused by the touch of a Pāna.
ଦେ. ବିଣ.—ପାଣ ଛୁଇଁବା ଯୋଗୁଁ ଅପବିତ୍ର—
Made impure by the touch of a Pāna.
(ଯଥା—ପାଣଛୁଆଁ ଖପର ।)
[ ଦ୍ର—ସାଧାରଣତଃ ଉଚ୍ଚଜାତିର ବ୍ୟକ୍ତିମାନେ ପାଣଙ୍କୁ ଛୁଇଁଲେ ଅପବିତ୍ର ହୁଅନ୍ତି; ଏଥିପାଇଁ ଲୋକେ ଫଳନ୍ତି ଆମ୍ବ ଓ ପଣସ ଆଦି ଗଛର ଗୁରିପାଖେ ପାଳଦଉଡ଼ି ଘେରାଇ ଉକ୍ତ ପାଳଦଉଡ଼ି ଉପରେ ପାଣଦ୍ୱାରା ଖଣ୍ଡିଏ ଖପର ରଖାଇ ଦିଅନ୍ତି । ଉକ୍ତ ପାଣଛୁଆଁ ଖପର ଲାଗିଥିବା ଦଉଡ଼ିକୁ ଉଚ୍ଚଜାତିର ଲୋକେ ଛୁଇଁଲେ ଅପବିତ୍ର ହେବେ, ଏହି ଆଶଙ୍କାରେ ଦଉଡ଼ି ଘେରା ହୋଇଥିବା ଆମ୍ବ ଆଦି ଗଛକୁ ଉଚ୍ଚଜାତୀୟ ଲୋକେ ଛୁଅନ୍ତି ନାହିଁ । ]

**ପାଣତା**—ପ୍ରାଦେ. (ସିଂହଭୂମ) ବ ସ୍ତ୍ରୀ—ଗୃହସ୍ଥର ଘରକୁ ପ୍ରତ୍ୟହ କୂଅ **Pāṇatī** ବା ପୋଖରୀରୁ ପାଣିଆଣି ଦେବା ପାଇଁ ନିଯୁକ୍ତା ସ୍ତ୍ରୀ (ପାଣିଆ—ଅନ୍ୟରୂପ) ଲୋକ—A woman who is engaged on hire to fetch water from a well or pond for the domestic use of a person.

**ପାଣବ**—ସ. ବି. (ପଣବ + ସ୍ୱାର୍ଥେ ଅ)—ମର୍ଦ୍ଦଳ, ମାଦଳ—**Pāṇaba** Drum; a kind of drum.

**ପାଣବିକ**—ସ. ବିଣ. (ପଣବ + ଇକ)—ପଣବ ବା ଢୋଲ ସମ୍ବନ୍ଧୀୟ—**Pāṇabika** Relating to a drum.
(ପାଣବିକୀ—ସ୍ତ୍ରୀ) ସ. ବି. ପୁଂ—୧ । ବାଦ୍ୟବାଦକ, ଯେ ବାଜା ବଜାଏ—1. Drummer (M. W.).
୨ । ପକ୍ଷିବିଶେଷ—2. A species of bird.

**ପାଣି**—ସ. ବି. (ପଣ୍ ଧାତୁ=ବ୍ୟବହାର କରିବା + କରଣ ଇ, ଅଥବା **Pāṇi** ପଣ୍ ଧାତୁ=କ୍ରୟବିକ୍ରୟ କରିବା + କରଣ. ଇ; ତୁଳ. ଲାଟିନ୍—ପଲ୍ମା; ଜର୍ମାନ୍—ଫୁଲ୍ଲେନ୍, ପ୍ରାଚୀନ ଇଂରାଜୀ—ଫଲ୍ମ୍, ତୁଳ ଇଂ. ପାମ୍=କରତଳ, )—୧ । କର, ହାତ—1. Hand.
୨ । କହୁଣିଠାରୁ ଅଙ୍ଗୁଠି ପର୍ଯ୍ୟନ୍ତ ହସ୍ତାଂଶ—2 The part of the hand between the elbow and the fingers.
୩ । ଗୁଳକ ବୃକ୍ଷ; କୋଇଲଖିଆ ଗୁଳ୍ମ—3. Ruella Longifolia (plant).
୪ । (+ ଅଧିକରଣ. ଇ)—ଦୋକାନ, ହାଟ, କ୍ରୟବିକ୍ରୟ ସ୍ଥାନ—4. A place of sale; shop; market. (M. W.).
ଦେ. ବି. (ସ. ପାନୀୟ; ପ୍ରା. ପାଣି)—୧ । ଜଳ—
पानी 1. Water.
पाणी ୨ । ଜଳୀୟ ପଦାର୍ଥ, ରସ, ଦ୍ରବ ପଦାର୍ଥ—
ମ. ପାଣୀ 2. Liquid; juice; sap.
ଯଥା—ଘାଅରୁ ଭାରି ପାଣି ଦେଉଛି ।
ତେ. ନୀରଲୁ, ଉଦକମୁ ୩ । ପଣା; ପାନୀୟ ବସ୍ତୁ—3. A drink.
ଯଥା—ସୋଡ଼ା ପାଣି, ପଇଡ଼ ପାଣି ।
[ ଦ୍ର—ସମ୍ବଲପୁର, ସୋନପୁର ଓ ମେଦିନୀପୁର ଆଦି ଅଞ୍ଚଳରେ ଲୋକେ 'ପାଣି'କୁ 'ପାଏନ୍' ରୂପେ ଉଚ୍ଚାରଣ କରନ୍ତି । ]
୪ । ବଳଦର ଗୃହ ବା ଶଗଡ଼ କାର୍ଯ୍ୟରେ ଲାଗିବାର ବର୍ଷ ବା କାଳ, କାଟ—4. A period of one season or year in which a bullock works in plough or cart.
ଯଥା—[illegible] ପାଣିର ହେଲାଣି ।
୫ । [illegible] ବା ଅସ୍ତ୍ରଶସ୍ତ୍ରକୁ ଦୃଢ଼ କରିବାପାଇଁ ତାତିଲା ବା [illegible] ପାଣିରେ ବୁଡ଼ାଇବାର କ୍ରିୟା—5. The process of tempering iron or weapon with water.
୬ । (ସ. ପାଣୀ) ବ୍ରାହ୍ମଣମାନଙ୍କର ବଂଶୋପାଧିବିଶେଷ—6. A family-title of Brahmans.
୭ । ପୁରୁଷର ବୀର୍ଯ୍ୟ, ରେତଃ—7 Semen virile.
୮ । ସ୍ତ୍ରୀରଜଃ; ରକ୍ତପାଣି—8 Menstrual flux.
୯ । ସ୍ତ୍ରୀରେତଃ—9 The semen of females.
୧୦ । ତେଜଃ, ସରସପଣ—10. Vigour.
ପୂର୍ବପର ମୁହରେ ନାହିଁ ଆଉ ପାଣି । କୃଷ୍ଣସିଂ. ମହାଭାରତ ଦ୍ରୋଣ ।
୧୧ । ବର୍ଷା—11. Rain.
ପାଣି ବର୍ଷୁଛି ମୁଁ, ପବନ ବହୁଛି ମୁଁ । କୁନ୍ତଳାକୁମାରୀ, ଜଳଜରୁଣୀ ।
୧୨ । ବନ୍ୟାଜଳ—12. Flood water.
୧୩ । ଜଳବାୟୁ—13 Climate.
ଯଥା—ମୋ ଦେହରେ କଲିକତାର ପାଣି ଗଲା ନାହିଁ ।
୧୪ । ଜଳର ଗଭୀରତା—14. Depth of water.
ପାଣି ନ ଦେଖି ଲଙ୍ଗଳା ହେବା କାହିଁ । ଢଗ ।
ଯଥା—ଏ ପୋଖରୀରେ କାହେ ପାଣି, ପୁରୁଷେ ପାଣି, ପହଁରିବ ପାଣି ।
୧୫ । ପିତୃଲୋକଙ୍କ ତର୍ପଣ ଉପଲକ୍ଷରେ ଦିଆଯିବା ଜଳ—15. Oblation of water offered to the spirits of one's deceased ancestors.
ଯଥା—ତା କୁଳରେ ପାଣି ଦେବାକୁ କେହି ରହିଲେ ନାହିଁ ।
[ ଦ୍ର—ପାଣିର ସଂସ୍କୃତ ପର୍ଯ୍ୟାୟ—ଜଳ, ପୟଃ, ନୀର, ଉଦକ, ଉଦ, ରସ, ଅପ୍, ଜୀବନ, ଅମ୍ବୁ, ଅର୍ଣ୍ଣଃ, କ୍ଷୋଦ, ପଦ୍ମ, ତୋୟ, ବାରି, ଅମୃ, କବନ୍ଧ, ସଲିଳ, ବନ, ବାଃ, ଘୃତ, ମଧୁ, ପୁଷ୍କର, ପିପ୍ପଳ, କ୍ଷୀର, ବିଷ, ରେତ, କଶ, ବୃସ୍, ଭୁବନ, ସୁକ୍ଷେମ, ଧରୁଣ, ସୁରା, ଅରବିନ୍ଦ, ଧନ୍ନାର୍ବୁ, ଜାମି, ଆୟୁଧ, କ୍ଷପୁ, ଅହି, ଅକ୍ଷର, ସ୍ରୋତ, ତୃପ୍ତି, ପୟ୍ୟ, ସର, ଭେଷଜ, ସହ, ଓଜ, ସୁଖ, କ୍ଷତ୍ର, ଶୁଭ, ଯାଦୁ, ଭୂତ, ଭୁବନ, ଭବିଷ୍ୟତ୍, ବ୍ୟୋମ, ଯଶ, ମହଃ, ସର୍ଣ୍ଣୀକ, ସ୍ୱୃତିକ, ସତୀନ, ଗହନ, ଗମ୍ଭୀର, ଗଭରଂଗ, ଇମ୍, ହବି, ସଦନ, ଋତ, ଯୋନି, ସତ୍ୟ, ରୟି, ସତ୍, ତୂର୍ଣ୍ଣି, ସବ, ଅକ୍ଷିତ, ବର୍ହି, ନାମ, ସର୍ପି, ପବିତ୍ର, ଅମୃତ, ଇନ୍ଦୁ, ସ୍ୱଃ, ସର୍ଗ, ଶମ୍ବର, ବସୁ, ଉପ, ଶୁକ୍ର, ତେଜଃ, କୀଳାଷ, କମଳ, କୀଲାଲ, ପାଥ, ପୁଷ୍କର, ସର୍ବତୋମୁଖ, ପାନୀୟ, ମେଘପୁଷ୍ପ, ସଲ, ଜଡ଼, କ, ଅଂଧ, ନାର, କୁଶ, କାଣ୍ଡ, ସବର, ସର, କର୍ବୁର, ବ୍ୟୋମ, ସଂବ, ଇରା, ବାଜ, ଡାମର, କଂବଲ, ସ୍ୟନ୍ଦନ, କ୍ଷର, ଉର୍ଜ୍ଜ, ସୋମ, ମହତ୍—ହି. ଶ. ]

**ପାଣି ଅଁଳା**—ଦେ. ବି. (ସ. ପ୍ରାଚୀନାମଳକ, ପାନୀୟାମଳକ)—**Pāṇi a-aṅlā** ନେପାଳ, ବଙ୍ଗ, ଆସାମ, ଚଟ୍ଟଗ୍ରାମ, କଙ୍କଣ ଓ ଦକ୍ଷିଣ ଭାରତରେ ଜନ୍ମିବା ଶ୍ରେଷ୍ଠ ଗୁଳ୍ମ ବିଶେଷ—Flacourtia Cataphracta (plant).
ପାଣି ଅଁଅଁଳା, ପାଣି ଅଁଳା, ପାଣି ଅଁଅଁଳା (ଅନ୍ୟରୂପ)
पानिआला, पानिआमला
पानिआम्वरा, पनियाला, पानीआँवला
ତେ. ପ୍ରାଚୀନାମଲକମୁ
ମ. ପାଣଆମ୍ଳେ
ଗୁ. ପାଣୀଆଁବଳା
[ ଦ୍ର—ଏହାର ଡାଳରେ କଣ୍ଟା ନ ଥାଏ, ଗଛର ଗଣ୍ଡିରେ କଣ୍ଟା ଥାଏ । ଫୁଲର ପାଖୁଡ଼ା ନାହିଁ, ଫଳ ପାଚିଲେ ଉଇଁଷି କୋଳି ପରି କଳା ହୁଏ, କିନ୍ତୁ ଫଳ ଉଇଁଷି କୋଳିଠାରୁ ବଡ଼ । ଅର୍ଣ୍ଣ ଓ ମୌଳି ଗଛ ଶୁଆଳ; ଫଳ

ଉପଧରେ ବ୍ୟବହୃତ ହୁଏ । ଏହାର ପତ୍ର, ଶାଖା, ଛେଲ ଓ ଫଳ ସାମାନ୍ୟ ଜ୍ୱର ଓ ଉଦରାମୟ ଅବ ରୋଗରେ ବ୍ୟବହୃତ ହୁଏ । ଏହା ତ୍ରିଦୋଷନାଶକ ଓ ଜ୍ୱରଘ୍ନ । ]

**ପାଣି ଅଛୁଆଁ ଜାତି**—ଦେ. ବ. ( ସଂ. ପାନୀୟ + ଅସ୍ପୃଶ୍ୟ + ଜାତି)—
Pāṇi achhuāñ jāti ଯେଉଁ ନୀଚ ଶୂଦ୍ର ଜାତିଙ୍କ ସ୍ପୃଷ୍ଟ ଜଳ
ଜଲ ଅଛୂଁୟାଁ ଜାତ ବ୍ରାହ୍ମଣାଦି ଉଚ୍ଚ ଜାତିଙ୍କ ଅସ୍ପୃଶ୍ୟ—
**पानी नहीं चलनेवाली जात** Some low caste Śūdras, the water touched by whom is not to be used by Brāhmaṇas and other high castes.

[ ଦ୍ର—ଅତି ନୀଚ ଜାତିଙ୍କୁ ଉଚ୍ଚ ବର୍ଣ୍ଣର ହିନ୍ଦୁମାନେ (ଯଥା— ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ) ଛୁଅନ୍ତି ନାହିଁ । ସେମାନେ ଅସ୍ପୃଶ୍ୟ ବା ଅଛୁଆଁ ଜାତି । ଯଥା—ପାଣ, କଣ୍ଡରା, ହାଡ଼ି, ବାଉରି, ଡମ, ଚମାର, ଏମାନଙ୍କୁ ଛୁଇଁଲେ ସ୍ନାନ କରିବାକୁ ହୁଏ । ସେମାନଙ୍କ ଅପେକ୍ଷା ଉଚ୍ଚତର ଶୂଦ୍ର ଜାତିଙ୍କୁ ଉଚ୍ଚ ବର୍ଣ୍ଣର ହିନ୍ଦୁମାନେ ଛୁଇଁ ପାରନ୍ତି, କିନ୍ତୁ ସେମାନଙ୍କ ସ୍ପୃଷ୍ଟ ଜଳକୁ ପିଅନ୍ତି ନାହିଁ, ଏମାନଙ୍କୁ ପାଣି ଅଛୁଆଁ ଜାତି ବୋଲାଯାଏ । ଯଥା—ତନ୍ତି, କେଉଟ, ଜ୍ୟୋତିଷ ନାୟକ, ଭୁଲାଘଣା । ଏମାନଙ୍କ ଅପେକ୍ଷା ଉଚ୍ଚତର ଶୂଦ୍ର ଜାତିଙ୍କୁ ଉଚ୍ଚ ବର୍ଣ୍ଣର ହିନ୍ଦୁମାନେ ଛୁଅନ୍ତି ଓ ଏମାନଙ୍କ ସ୍ପୃଷ୍ଟ ଜଳକୁ ମଧ୍ୟ ବ୍ୟବହାର କରନ୍ତି । ଏମାନଙ୍କୁ ପାଣି ଛୁଆଁ ଜାତି କହନ୍ତି, ଯଥା—ଗଉଡ଼, ଭଣ୍ଡାରି, ଚଷା, ଗୁଡ଼ିଆ, କମାର, ବଢେଇ, ପାଟରା, ମାଳି, କଂସାରି । ]

**ପାଣିଆ(ଆଁ)**—ଦେ. ବଣ. ( ସଂ ପାନୀୟ )—
Pāṇiā(āñ) ୧ । ଜଳବହୁଳ; ଜଳୀୟ—
ପାତଳା, ପାନୀସା 1. Abounding in water; watery.
**पनिहा, पनला** ୨ । ଜଳମିଶ୍ରିତ—2 Mixed with water.
୩ । ତରଳ—3. Liquid.
୪ । ପାଣିର; ପାଣିର ସ୍ୱାଦଯୁକ୍ତ, ସ୍ୱାଦହୀନ—
4. Having the taste of water; insipid; tasteless.
୫ । ( ସଂଖ୍ୟାବାଚକ ଶବ୍ଦ ସଙ୍ଗେ ଯୁକ୍ତ )—
ଏତେ ବର୍ଷ ହଳ ବା ଶଗଡ଼ରେ ଲଗା ଯାଇଥିବା (ବଳଦ)—
5. (a bullock) Which has worked in the plough or cart for so many years.
ଚ ପାଣିଆ ବଳଦ ହଳକର ଦାମ ସାଢ଼େ ଚାରି
ଚ ପାଞ୍ଚ ଟଙ୍କା କେବେ କଏ ଶୁଣିଥିଲା ? ଫକୀରମୋହନ. ଗଳ୍ପସ୍ୱଳ୍ପ ।
ଭାବୀ ଦେ. ବଣ—ଜଳବାହକ, ପାଣି ବୁହାଳି—
**पनिहार** Water carrier.
ଦେ. ବଣ—ଶୀତଳ—Cold.
( ଯଥା—ସନ୍ନିପାତ ମଲୁର ହାତ ହାତ ପାଣି ହୋଇ ଯାଉଛି । )

**ପାଣିଆଁ ଗଉଡ଼**—ଦେ. ବ—ପାଣି ଆପଟ ( ଦେଖ )
Pāṇiāñ gaurḍa Pāṇi āpata ( See )
ଜଲେର ଭାବୀ **पनीहार**

**ପାଣି ଆଖିଆ**—ଦେ. ବ—ସାମୁଦ୍ରିକ ମତ୍ସ୍ୟବିଶେଷ—
Pāṇi ākhia A sort of sea fish.

**ପାଣି ଅଞ୍ଜୁଳା**—ଦେ. ବ (ପାଣି + ଅଞ୍ଜଳି)—ଜଳାଞ୍ଜଳି—
Pāṇi āñjulā An oblation of water with the
ଜଲେର ଅଂଜଲା palms joined together to form a
**पानीकी अंजुली** cup.

**ପାଣି ଆପଟ**—ପ୍ରାଦେ. ( ଗଡ଼ଜାତ ) ବ—
Pāṇi āpaṭa ରାଜାମାନଙ୍କ ନଅରକୁ ପାଣି ବୁହାଇବା ଗଉଡ଼—
Water-carrier to the palace of a Raja.

**ପାଣି ଆମ୍ବ**—ଦେ. ବ—ପାଣିରେ ହଳଦି, ଅଦା, ତେଲ ପକାଇ ଉକ୍ତ
Pāṇi āmba ପାଣିକୁ ୪।୫ ଦିନ ସୂର୍ଯ୍ୟପାଗୀ କରିବା ପରେ ସେହି ପାଣିରେ ସଦ୍ୟ ତୋଳା ହୋଇ ଆସିଥିବା ପାଚିଲା ଆମ୍ବକୁ ସାଇତି ରଖିବା—A process of preserving ripe mangoes in water mixed with turmeric, ginger and oil and seasoned in sun's rays for 4 or 5 days

[ ଦ୍ର—ଏପରି କଲେ ଆମ୍ବ ୩।୪ ମାସ ପର୍ଯ୍ୟନ୍ତ ଅବିକୃତ ଅବସ୍ଥାରେ ରହେ । ]

**ପାଣି ଆଳୁ**—ଦେ. ବ. ( ସଂ. ପାନୀୟାଲୁ )—
Pāṇi ālu ବନ ଜାତ ଆଳୁବିଶେଷ—
A kind of wild yam.

**ପାଣିଇତି**—ଦେ. ବ. ସ୍ତ୍ରୀ—ଯେଉଁ ସ୍ତ୍ରୀ ଲୋକ କୂଅ ବା ପୋଖରୀରୁ ପାଣି
Pāṇi-iti ଆଣି ଗୃହସ୍ଥମାନଙ୍କ ଘରେ ଯୋଗାଏ—
**पनहारनीन** A female water-carrier.
(ପାଣେଇତି—ଅନ୍ୟରୂପ)

**ପାଣି ଉଠିବା**—ଦେ. ବ—ଖୋଳା ଯାଉଥିବା କୂପ ଆଦିରୁ ଭୂଗର୍ଭସ୍ଥ
Pāṇi uṭhibā ଝରରୁ ଜଳ ଊର୍ଦ୍ଧ୍ୱକୁ ଉଠିବା—
ଜଲଉଠା The coming up of water from under-
**पानी उठना** ground spring through an opening in a well or tube well.

**ପାଣି ଉତାରିବା**—ଦେ. କ୍ରି. ( ହିନ୍ଦୀରୁ ଅନୁକୃତ )—
Pāṇi utāribā କୌଣସି ଲୋକଙ୍କୁ ବେଇଜ୍ଜତ ବା ଅବମାନିତ
**पानी उतारना** କରିବା—To insult or humiliate a person.

**ପାଣିଓଟା**—ପ୍ରାଦେ. ( ସମ୍ବଲପୁର ) ବ—ଶୁଣ୍ଢି ଜାତି—
Pāṇiotā The wine distiller caste.

**ପାଣିକଖାରୁ**—ଦେ. ବ ( ଓ. ପାଣି + ସ. କର୍କାରୁ )—କଖାରୁ ଜାତୀୟ
Pāṇi kakhāru ଲତା ଓ ଫଳ—Cucurbita Pepo
ସ. ନାମ—କୁଷ୍ମାଣ୍ଡ, ଛମିଷ (Haines); Benincusa Cere-
ছাচিকুমড়া, চালকুমড়া fera; pumpkin; white gourd-
**पेठा, सफेद कुमड़ा,** melon.
**कुम्हड़ा**
ମ. ଭେପଲା
ତେ. ବୁଡ଼ିଦପୁମ୍ମଡ଼ି

[ ଦ୍ର—ଏହାହିଁ ପ୍ରକୃତ କୁଷ୍ମାଣ୍ଡ; ବୋଇତିକଖାରୁ ବିଦେଶରୁ ଏ ଦେଶକୁ ଆସିଛି । ଏହାର ଫୁଲ ଈଷତ୍ ହଳଦିଆ; ଫଳ ଛୋଟବେଳେ ସବୁଜବର୍ଣ୍ଣ, ପକ୍ୱ ହେଲେ ପାଉଁଶପରି ଧଳା ଚୂନାରେ ଆବୃତ ହୁଏ । ଫଳମାନ ଡମ୍ବରୁ ବା ମୃଦଙ୍ଗପରି । ]

**ପାଣି କଣ୍ଟା**—ପ୍ରାଦେ (ସିଂହଭୂମ) ବି—ଶିଂଘଡ଼ାଫଳ—
Pāṇi kaṇṭā Water chestnut.

**ପାଣି କଣ୍ଟିବା**—ଦେ. କ୍ରି—ଜଳର ଗଭୀରତାକୁ ମାପିବା—
Pāṇi kaṇṭibā To fathom the depth of
ଜଳମାପା water.
**पानीका थाह लेना**

**ପାଣି କଥୁ**—ଦେ. ବି—ପାଣି କୋଥ ( ଦେଖ )
Pāṇi kathu Pāṇi kotha (See)

**ପାଣି କମିବା**—ଦେ. ବି—କୂଅ, ପୋଖରୀ, ନଈଆଦିରୁ ଗ୍ରୀଷ୍ମ ଋତୁରେ
Pāṇi kamibā ଜଳ ଅଳ୍ପ ହୋଇଯିବା—The decrease of
(ପାଣି କମିଯିବା—ଅନ୍ୟରୂପ) water in a well, tank or
ଜল কমে যাওয়া river during summer.
**पानी टुटना, पानी घटना**

**ପାଣି କନା**—ଦେ. ବି—ଘାଆ ବା ଅନ୍ୟ କୌଣସି କ୍ଷତ ସ୍ଥାନରେ ବୁଡ଼ା-
Pāṇi kanā ଇବା ସକାଶେ ପାଣିରେ ବୁଡ଼ା ହୋଇଥିବା କନା—
জলে ভিজান নেকড়া A piece of wet rag used for
**पन कपड़ा** putting over boils, cuts, wounds etc.

**ପାଣି କର**—ଦେ. ବି—ଜଳ କର; ଅନ୍ୟ ବ୍ୟକ୍ତିର ଗଡ଼ିଆ ବା କେନାଲରୁ
Pāṇi kara ପାଣି ଆଣି ଆପଣା କ୍ଷେତ୍ରରେ ମଡ଼ାଇବା ପାଇଁ କ୍ଷେତ୍ର-
জলকর ସ୍ୱାମୀ ଜଳ-ସ୍ୱାମୀଙ୍କୁ ଦେବା କର ବା ଖଜଣା—
**जलकर** 1. Watercess; water rate.
୨ । ସରକାରଙ୍କର କେନାଲ୍ ରେଭେନ୍ୟୁ ବା ଜଳକର
—2. Canal-cess; cess levied by Government from canal irrigated lands.

**ପାଣି କରିବା**—ଦେ. କ୍ରି—୧ । କୌଣସି କଠିନ ପଦାର୍ଥକୁ ତରଳ
Pāṇi karibā କରିବା—1. To liquefy any hard or
জলকরা solid thing.
**पानी करना** ୨ । ପରାସ୍ତ କରିବା—
2. To vanquish; to defeat.
୩ । ଘୋଡ଼ାକୁ ବହୁତ ପରିଶ୍ରମ କରାଇ ଘର୍ମାକ୍ତ କରାଇବା—
3 To cause a horse to perspire with hard labour.
୪ । ଛନକା କରିଦେବା—4. To cause alarm.
୫ । ଉତ୍ତମରୂପେ ଘଣ୍ଟାଇବା ବା ମୁଖସ୍ଥ କରିବା—
5. To get by heart.

**ପାଣି କଳ**—ଦେ. ବି—୧ । ଯେଉଁ କଳଦ୍ୱାରା ଜଳାଶୟ ଓ କୂପଆଦିରୁ
Pāṇi kaḷa ପାଣି ଉପରକୁ ଉଠାଯାଏ; ଦମକଳ—
**জলের কল, দমকল** 1. Water-pumping machine.
**पानी उठानेकी कल, दमकल** ୨ । ଯେଉଁ କଳ ବା ଚକ ପାଣିର
**জলের কল** [illegible] ଚାଳିତ ହୁଏ—2. Water-mill;
**[illegible]** water-wheel.

**ପାଣି [illegible]**—ଦେ. [illegible] ବହୁବାର ଧୁଆ ଓ ଶୁଖା ହୋଇ
Pāṇi [illegible] ଧଳାଭ୍ [illegible] ଯାଇଥିବା (ଗାମୁଛା)—
**पानीमें कसा हुआ** (a napkin) Which has assumed a yellowish tint by frequent immersion in water.

**ପାଣି କାଉ**—ଦେ (ଶୂଦ୍ରଙ୍କ ବ୍ୟବହୃତ) ବି (ସ.ପାନୀୟ+କାକ, ସ. ଜଳ
Pāṇi kāu କାକ)—ପ୍ଲବଗବର୍ଗର ପ୍ରାୟ ୧ ହାତ ଦୀର୍ଘ ଜଳଚର
( ପାଣି କୁଆ—ଅନ୍ୟରୂପ ) ଲିପ୍ତପାଦ ପକ୍ଷୀବିଶେଷ—
পানিকোআ, পানিকৌটি The little cormorant; the
পানিকাক, পানিকৌড়ি coal goose; Phalacrocorax.
**पानीकउआ** [ ଦ୍ର—ଏହାର ଥଣ୍ଟ ଚେପଟା, ପକ୍ଷୀ ସାନ, ବେକ ଲମ୍ବା; ଓପର ଥଣ୍ଟ ତଳକୁ ବଙ୍କେଇ ଥାଏ । ଲାଞ୍ଜ ପ୍ରାୟ ନାହିଁ, ବର୍ଣ୍ଣ ଘୋର କୃଷ୍ଣବର୍ଣ୍ଣ । ଏମାନେ ଅଧିକ ସମୟ ପାଣିରେ ବୁଡ଼ ପାରନ୍ତି । ]

**ପାଣି କାଚ**—ଦେ. ବି (ସ. ପାଣି+କାଚ)—ହାତରେ ପିନ୍ଧିବା ସରୁଆ କାଚ
Pāṇi kācha ଅଳଙ୍କାରବିଶେଷ—A kind of slender glass bangle.
ସେ ଭୃଙ୍ଗେ ବାନ୍ଧନ୍ତ ରୂପା ଚୁଡ଼ା କଦମାଳୀ
ପାଣିରେ ଘା ପାଣି କାଚ ଚିହ୍ନା କଙ୍କଣଳୀ ଯେ—**ଉପ.** ଲାବଣ୍ୟବତୀ ।

**ପାଣି କାଟିବା**—ଦେ. କ୍ରି—୧ । ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ପାଣି
Pāṇi kāṭibā ନେବାର ନାଳୀ ପ୍ରସ୍ତୁତ କରିବା—
জলকাটা **पानीकाटना** To cut a channel for the flow of water from one place to another.
୨ । (ମାଛ ବା ଡଙ୍ଗା ଆଦି ଜଳରେ ଯିବା ସମୟରେ କିମ୍ବା ମନୁଷ୍ୟ ପହଁରିବା ସମୟରେ) ଜଳକୁ ଦୁଇ ଭାଗ କରିବା—
2 To plough a way through water (said of fishes, boats and swimmers).
୩ । ( କଫଘ୍ନ ଔଷଧ ) ଶରୀରର ଥଣ୍ଡାଦୋଷ ନାଶ କରିବା—
3. To counteract the effect of cold (said of an antidote for cold).

**ପାଣି କାଢ଼ିବା**—ଦେ. କ୍ରି—୧ । କୂପରୁ ଜଳ ତୋଳିବା—
Pāṇi kāṛhibā 1. To lift water from a well.
জলতোলা **पानीकाढ़ना** ବାବାଜୀ ଥିଲେ ଭିତରୁ, ଠେକ ଠେକ କରୁ
ପାଣି କାଢ଼ୁଥିଲେ ସେମାନଙ୍କ ଭିତରୁ—ଛାଡ଼ଗୀତ ।
୨ । କୌଣସି ପଦାର୍ଥରୁ ଜଳ ବା ରସ ଚିପୁଡ଼ିବା ବା ନିଗାଡ଼ିବା—
2 To press out water from any watery thing.
୩ । ( ଅଶ୍ଳୀଳ ) ସ୍ତ୍ରୀଲୋକ ସଙ୍ଗେ ସଙ୍ଗମ କରିବା—
3. (indecent) To cohabit with a woman.

**ପାଣି କାଦୁଅ**—ଦେ. ବି ( ସ. ପାନୀୟ+କର୍ଦ୍ଦମ )—ବର୍ଷାଜନିତ ଜଳ ଓ
Pāṇi kādua ତଜ୍ଜନିତ କର୍ଦ୍ଦମ—Water and mud due
জলকাদা **पानीकीचड़** to rain.

**ପାଣିକାଣି**—ଦେ. ବି—କ୍ଷୁଦ୍ର ବନ୍ୟବୃକ୍ଷବିଶେଷ—
Pāṇikāṇi Bridelia Retusa tree (Haines).
কসাই **कोसाइ**

**ପାଣିକ ଛେଳି**—ଦେ. ବିଣ (ନ୍ୟାୟ)—(ଛେଳିମାନେ ଯେପରି ପାଣିରେ
Pāṇiki chheḷi ସ୍ନାନ କରିବାକୁ ଡରନ୍ତି ସେହିପରି) କୌଣସି କାର୍ଯ୍ୟ କରିବାକୁ ନିତାନ୍ତ ଅମଙ୍ଗ—
Very unwilling to do a certain work.

**ପାଣିକ(କୁ) ପକା(କେ)ଇବା**—ଦେ. କ୍ରି—(ଲକ୍ଷଣାର୍ଥ)—୧ । (ଧନକୁ) ବୃଥା ବ୍ୟୟ କରିବା—
Pāṇiki ku) pakā(ke)ibā — 1. To spend money for no purpose.
[ ପାଣିକ ପକା(କେ)ଇଦେବା, ପାଣିକୁ(କ) ଫିଙ୍ଗିଦେବା, ପାଣିରେ ପକା(କେ)ଇବା—ଅନ୍ୟରୂପ ] ୨ । ଅପାତ୍ରରେ ଧନ ଦେବା—2 To give money to an unworthy object or cause.
ଜଲେଫେଲା **पानीमें फेंकना, पानीमेंबहाना**

**ପାଣି କୁଆ**—ଦେ. ବି (ସଂ. ଜଳକାକ )—୧ । ପାଣିକୁଆ (ଦେଖ)
Pāṇi kuā — 1. Pāṇi kuā (See)
पानिकौड़ी, पानीकौट **पनकौया जलकौया**
(ପାଣିକାକ—ଅନ୍ୟରୂପ)
ସବଳ, ଶାମୁକାଇ, ହଂସ, କୋକ, ପାଣିକୁଆ ଅବ ଜଳ ବହଙ୍ଗମେ ସଦା ଝଙ୍କାଅନ୍ତି—ବ୍ରଧାନାଥ, ଚଇକା ।
[ ଦ୍ର—ଏମାନେ ଲମ୍ବରେ ୧ ହାତ ବଢ଼ନ୍ତି । ଚଞ୍ଚୁ ଚେଟ୍‌ଟା ଓ ବଙ୍କାଗ୍ର, ପକ୍ଷ ଛୋଟ, ଦେହ କଳା ଓ ପୁଚ୍ଛ କଳାମିଶା ସାଦ୍ରା, ପିଠି ପକ୍ଷ ଓ ପଦ ଧୂସରବର୍ଣ୍ଣ । ]
୨ । ପାଣିକୁଆ ପରି କିନ୍ତୁ କ୍ଷୁଦ୍ରତର ଓ ଧୂସରବର୍ଣ୍ଣ ପକ୍ଷୀବିଶେଷ—2. The brown headed gull.

**ପାଣିକୁମ୍ଭା**—ପ୍ରାଦେ ( ଗଡ଼ଜାତ ) ବି—ମାଟିଆବର୍ଣ୍ଣବିଶିଷ୍ଟ ରାତ୍ରିରେ ଶବ୍ଦ କରିବା ଏକପ୍ରକାର ପକ୍ଷୀ—
Pāṇikumbha — A kind of brown bird emitting loud sounds in the night.

**ପାଣି କୁସୁମ**—ଦେ. ବି—ଜଳ କୂଳରେ ଜନ୍ମିବା ଏକପ୍ରକାର ବନ୍ୟ ଗୁଳ୍ମ—
Pāṇi kusuma — A kind of tree growing near water.

**ପାଣି କୁହୁଡ଼ି**—ଦେ. ବି—୧ । ଶୀତଋତୁ ଛଡ଼ା ଅନ୍ୟ ସମୟରେ ହେବା କୁହୁଡ଼ି, ଋଣ କୁହୁଡ଼ି—
Pāṇi kuhurdi — 1. Fog appearing in seasons except winter, indicating early rain.
बनकुयासा **बर्षाकीकुहासा**
[ ଦ୍ର—ଏହାଦ୍ୱାରା ଅନ ଦିନ ପରେ ବର୍ଷା ହେବାର ସୂଚନା ମିଳେ । ]
ଗଣ୍ଡୁଶା ୨ । ବନ୍ୟଘାସବିଶେଷ—2. A kind of wild grass; Panicum Millare (Haines).

**ପାଣି କେନ୍ଦର (ଡ଼ି) (ଳି)**—ଦେ. ବି—( ପାଣୀୟ+ସଂ. କନ୍ଦଳୀ; ସଂ ନାମ ଜଳଜକନ୍ଦ, କନ୍ଦଳୀ)—
Pāṇi kendari (rdi) (li) — ଜଳଜ ଶାକବିଶେଷ । କନ୍ଦଳୀ ୧ ( ଦେଖ )—
पानिकला **कादू, कँदरी** Ottelia Alismoides, an aquatic plant.
ପାଣି କେନ୍ଦର (ଡ଼ି)
ପାଣି କେନ୍ଦୁର (ଡ଼ି)
ପାଣି କେନ୍ଦୁଳ (ଲି)
ପାଣି କେନ୍ଦ୍ରୁଳ (ଲ) } ଅନ୍ୟରୂପ] [ ଦ୍ର—ପୋଖରୀ ଆଦିର କୂଳ ଓ ବିଲ, ଖାଲ ପ୍ରଭୃତିର ଅଳ୍ପ ଜଳ ଥିବା ସ୍ଥାନରେ ଏହା ଜନ୍ମେ । ବର୍ଷା-ଋତୁ ଆରମ୍ଭରେ ଗଛ ଉଠେ । ମୂଳରୁ ଡେଙ୍ଗ ଲଗା ପକ୍ଷ ଆକାର ପତ୍ର ବାହାରେ । ଫୁଲ ଧାରୁଥିବା ଫୁଲପଦ୍ମଥିଲା ଓ ବ୍ରିଦଳ । ତାହାର ମୂଳ ପାଖେ ନାଡ଼ରେ କଦଳୀ ପରି ଗୋଟିଏ ଫଳ ଧରେ । ତାକୁ ବାଛି ବାଇ ଫୁଲରେ ବୋଲଲେ ଫୁଲ୍ଲ ଓ ଦରଜ କମିଯାଏ । ]

ସେ ରଜ ସଂସ୍ପର୍ଶେ ହବା ଶୋଭବନ୍ତ ହଗଇ ପାଣି କେନ୍ଦ୍ରୁ—ଚନ୍ଦ୍ରଶେଖର ଶର୍ମା ।

**ପାଣିକେନ୍ଦୁ**—ପ୍ରାଦେ (ପୁରୀ) ବି—ବୈଶ୍ୟ କରଣ ଜାତିବିଶେଷ—
Pāṇi kendu — A caste of Baisyas.
[ ଦ୍ର—ଏମାନେ ପ୍ରକୃତରେ ବୈଶ୍ୟ, ଏମାନଙ୍କ ସମାଜରେ ବିଧବା ବିବାହ ନାହିଁ ଓ ବାଲ୍ୟବିବାହ ପ୍ରଚଳିତ ଅଛି । କରଣ-ମାନଙ୍କପରି ଏମାନେ ସମାଜରେ ସମ୍ମାନିତ ହୁଅନ୍ତି ଓ ଏମାନଙ୍କର ବଂଶୋପାଧି ମହାନ୍ତି, ନାୟକ ଇତ୍ୟାଦି । ଜମିଦାରୀ ଓ ରାଜଗୀରେ କୌଣସି କୌଣସିଠାରେ ଏମାନେ ଭୋଇ ରୂପେ ଗ୍ରାମର ହିସାବ ପତ୍ର ରଖୁଥିଲେ । କରଣ ଶବ୍ଦ ତଳେ ନୋଟ୍ ଦେଖ । ]

**ପାଣିକୋଥ**—ଦେ. ବି—ଚକ୍ଷୁରୋଗବିଶେଷ; ଆଖିଧରା ରୋଗ—
Pāṇikotha — Ophthalmia.
ପାଣିକୋଥୁ
ପାଣିକୋତ } ଅନ୍ୟରୂପ [ଦ୍ର—ଏଥିରେ ଆଖି ନାଲି ହୋଇଯାଏ ଆଖିରୁ ପାଣି ବହେ, ଆଖି ଖୁଣ୍ଟି ହୁଏ ଓ ଚୋକ ଉଠା, **आंख उठना** ଆଖିରେ ଲେମ୍ବରୀ ଧରେ । ]

**ପାଣି କୋଦାଳ**—ପ୍ରାଦେ (ଗଡ଼ଜାତ) ବି—ବନ୍ୟ ବୃକ୍ଷବିଶେଷ—
Pāṇi kodāla — A kind of wild tree.

**ପାଣି ଖମ୍ବ**—ପ୍ରାଦେ (ଗଡ଼ଜାତ) ବି—ଶୁଳ ଘରର ପିଣ୍ଡା ଧାଡ଼ିରେ ଥିବା ଖୁଣ୍ଟ—
Pāṇi khamba — The posts on the edge of the veranda of a thatched house.
(ପାଣିଖୁଣ୍ଟ, ପାଣିଖୁମ୍ବ, ପାଣିଆ ଖୁଣ୍ଟ—ଅନ୍ୟରୂପ) **उलतिका खम्मा**

**ପାଣି ଖାଇବା**—ଦେ. କ୍ରି—୧ । ଜଳ ପାନ କରିବା—
Pāṇi khāibā — 1. To drink water.
जलखाओया **जलपीना** ୨ । ଜଳଖିଆ କରିବା—2. To take light refreshment.
[ ଦ୍ର—ପ୍ରକୃତରେ ପାଣିକୁ ଖାଆନ୍ତି ନାହିଁ—ପିଅନ୍ତି । ]
**पानीउठाना, पानीशोखना** ୩ । ( ଅଟା, ମଇଦା ବା ଋନ୍ଧାହେବା ଦ୍ରବ୍ୟ )—ଜଳ ଶୋଷିବା—3. (said of flour) To suck or take in much water.
୪ । (କୌଣସି ଶୁଖିଲା ସ୍ଥାନ) ବହୁତ ପାଣି ଶୋଷି ନେବା—4. (a dry place) To assimulate or suck in water.

**ପାଣିଖିଆ**—ପ୍ରାଦେ. (ସିଂହଭୂମ)ବି.—(ଭୁଲ. ଦ୍ରୁ. ପନ୍‌ପିଲାଙ୍କ)—ଜଳଖିଆ
Pāṇikhiā — Tiffin.

**ପାଣିଗଡ଼ା**—ଦେ. ବି—୧ । ପାଣି ଗଡ଼ିବା (ଦେଖ)
Pāṇi gardā — 1. Pāṇi gardibā (See)
୨ । ମାଛ ଧରିବା ପାଇଁ ଉପରୁ ତଳକୁ ପାଣି ବହି ଯିବା ପାଇଁ କରାଯିବା ନାଳ—2. A channel cut for the flow of water for fishing purpose.

**ପାଣି ଗଡ଼ିବା**—ଦେ. ବି.—୧ । କୌଣସି ଉଚ୍ଚ ଜଳପୂର୍ଣ୍ଣ ସ୍ଥାନରୁ ନିମ୍ନ ଜାଗାକୁ ଜଳ ବହି ଆସିବା—
Pāṇi gardibā — 1. The flowing down of water.
जलगड़ा
**पानी गीरना** ୨ । ମୁଖରୁ ପାଣି ବା ଲାଳ ବହିବା—
**पानी उतरना** 2. The watering of the mouth.

୨ । ଅଣ୍ଡକୋଷ ଜଳପୂର୍ଣ୍ଣ ହୋଇ ଫୁଲି ହେବା—
2. The swelling of the testicle; hydrocele.

**ପାଣି ଗତ**—ସ. ବିଣ.—(୨ୟା ତତ୍, ପାଣି + ଗତ)—କରଗତ, ଆପଣାର
Pāṇi gata ହାତ ମୁଠା ଭିତରକୁ ଆସିଥିବା (ବସ୍ତୁ)—Brought under control, come to the hand.

ଶାଳଭ ସୁଧାଂଶୁ କଳାକୁ ଏକାଗ୍ରେ କରିବାକୁ ପାଣିଗତ ।
ଉପେନ୍ଦ୍ରଭଞ୍ଜ. ଲାବଣ୍ୟବତୀ ୫' ଗୀତ ।

**ପାଣି ଗମ୍ଭାରି**—ଦେ. ବି.—ଗମ୍ଭାରି ବୃକ୍ଷବିଶେଷ—
Pāṇi gambhāri A species of Gmelina Arborea tree.
पानी गामाब **गम्भार**
[ଦ୍ର—ଏ ଗଛମାନ ପାଣିକୂଳରେ ହୁଏ ।]

**ପାଣି ଗାମୁଛା**—ଦେ.ବି.—(ପାଣି + ଗାମୁଛା)—ଯେଉଁ ଗାମୁଛାକୁ ପାଣି କଷ
Pāṇi gāmuchhā କରି ପକାଇ ଅମ୍ଳାନ ବସ୍ତ୍ରରୂପେ ବ୍ୟବହାର
पानितोला କରନ୍ତି—A napkin seasoned in water.

**ପାଣିଗାର**—ଦେ. ବି.—୧ । ଜଳ ଉପରେ କଟାଯିବା ରେଖା—
Pāṇi gāra A line drawn on water.
जलेते बेखा ୨ । (ଲକ୍ଷଣାର୍ଥ) ପାଣିରେ ରେଖା ପରି ଅସ୍ଥାୟୀ ବିଷୟ
**पानी कीलकीर** 2. (figurative) Any thing as transient
(ପାଣିରେ ଗାର—ଅନ୍ୟରୂପ) as a line drawn on water.
(ପଥର ଗାର—ଅନ୍ୟରୂପ)

**ପାଣି ଗୃହୀତି**—ସ. ବି. ସ୍ତ୍ରୀ—(ପାଣି + ଗୃହୀତ + ଇ)—ପତ୍ନୀ; ଭାର୍ଯ୍ୟା—
Pāṇi gṛuhīti Wife.

**ପାଣିଗ୍ରହ**—ସ. ବି. ପୁଂ.—(ପାଣି+ଗ୍ରହ୍ ଧାତୁ=ଗ୍ରହଣ କରିବା+ଅଣ୍
Pāṇigraha ଅ)—ବିବାହ—Marriage.
(ପାଣିଗ୍ରହଣ—ଅନ୍ୟରୂପ)

**ପାଣି ଗ୍ରହୀତା**—ସ. ବି. ପୁଂ—(ପାଣି + ଗ୍ରହୀତା)—ସ୍ୱାମୀ—
Pāṇi grahītā (ପାଣିଗ୍ରହୀତ୍ରୀ—ସ୍ତ୍ରୀ) Husband.

**ପାଣିଗ୍ରାହୀ**—ସ. ବି.—(ପାଣି + ଗ୍ରହ୍ ଧାତୁ=ଧାରଣ କରିବା+କର୍ତ୍ତୃ.
Pāṇigrāhī ଇନ୍)—ହାତ ଧରିଥିବା ଲୋକ—
(ପାଣିଗ୍ରାହିଣୀ—ସ୍ତ୍ରୀ) (a person) Holding one's hand.
ଦେ. ବି.—୧ । ବ୍ରାହ୍ମଣମାନଙ୍କ ଉପାଧିବିଶେଷ—
1. A title of Brāhmaṇas.
୨ । ରାଜା ବ୍ରହ୍ମୋତ୍ତର ଗ୍ରାମ ପାଇଁ ଭୂମିଦାନ କରିବା ସମୟରେ ସଙ୍କଳ୍ପ ସହିତ ଜଳ ଯେଉଁ ବ୍ରାହ୍ମଣଙ୍କ ହାତରୁ ଦିଅନ୍ତି—
2. A Brāhmaṇa who receives the formal gift of land made to a colony of Brāhmaṇas by a Raja.
[ଦ୍ର—ରାଜାମାନେ ପୂର୍ବେ ବହୁ ବ୍ରାହ୍ମଣଙ୍କୁ ଦୂରଦେଶରୁ ଆଣାଇ ବ୍ରାହ୍ମଣଶାସନମାନ ବସାଇବା ସମୟରେ ଏକ ଶାସନର ଉପନିବେଶୀ ସମସ୍ତ ବ୍ରାହ୍ମଣଙ୍କ ହାତକୁ ପାଣି ଟେକି ନ ଦେଇ ସେମାନେ ପ୍ରତିନିଧି ସ୍ୱରୂପ ଜଣେ ପ୍ରଧାନ ବ୍ରାହ୍ମଣଙ୍କ ହାତକୁ ଦାନ-ସଙ୍କଳ୍ପ ମନ୍ତ୍ର ଉଚ୍ଚାରଣ ପୂର୍ବକ ପାଣି ଟେକି ଦେଉଥିଲେ; ସେହି ବ୍ରାହ୍ମଣଙ୍କୁ ପାଣିଗ୍ରାହୀ ବୋଲାଯାଉଥିଲା ।]

**ପାଣିଘ**—ସ. ବି.—(ପାଣି+ହନ୍ ଧାତୁ=ଆଘାତ କରିବା + କର୍ତ୍ତୃ ଅ)—
Pāṇigha ୧ । ଢୋଲ ଆଦି ବଜାଇବା ବ୍ୟକ୍ତି—
1. A drummer (Apte); one who plays on a hand-instrument (M. W.)
୨ । ଶିଳ୍ପୀ—2. A handicraftsman. (Apte).
୩ । (+ କର୍ମ. ଅ)—ହାତରେ ବଜାଯିବା ମୃଦଙ୍ଗ ଆଦି ବାଦ୍ୟ—
3 Musical instrments played on by the hands.

**ପାଣିଘାଟ**—ଦେ. ବି (ସ. ପାନୀୟ + ଘଟ୍ଟ)—ପୁଷ୍କରିଣୀ ଆଦିର ଯେଉଁ
Pāṇighāṭa ଘଟ୍ଟ ବା ଅଂଶକୁ ଲୋକେ ପାଣି ଆଣିବାକୁ ଯାଆନ୍ତି—
जलेव घाट The part of a pond frequented by
**पनघट** people for bringing water from.

**ପାଣି ଘାତ**—ସ. ବି.—ହାତଦ୍ୱାରା ଆଘାତ (ଯଥା, ବିଧା, ଚୁପୁଡ଼ା, ମୁଣ୍ଡି, ମୁଥି)—A blow with the hand.
Pāṇi ghāta

**ପାଣି ଘି(ଘେ)ନିବା**—ଦେ. କ୍ରି.—(ସ. ପାନୀୟ + ଗ୍ରହଣ, ପ୍ରା. ଘେନଣ)-
Pāṇi ghi(ghe)nibā ୧ । ମୂତ୍ର ତ୍ୟାଗ ପରେ ଲିଙ୍ଗ ବା
जल शौचकबा ଯୋନୀକୁ ଜଳଦ୍ୱାରା ଧୌତ କରିବା—
**पानी लेना; पानीछुना** 1. To wash the private parts after making water.
ଏ ବାଡ଼ାରେ ସେ ଛୁଆ ହୋଇଣ ମୂତନ୍ତି
ପାଣି ଘେନିବାର କଥାହିଁ ନ ଜାଣନ୍ତି । କୃଷ୍ଣସିଂହ, ମହାଭାରତ କର୍ଣ୍ଣ ।
୨ । ମଳତ୍ୟାଗ ପରେ ଜଳଦ୍ୱାରା ଶୌଚ ହେବା, ଛୁଅଁବା—
2. To wash the posteriors after evacuation.

**ପାଣି ଚଢ଼ା(ଢ଼େ)ଇବା**—ଦେ. କ୍ରି—୧ । ଦେବତାଙ୍କ ଉପରେ ପାଣି
Pāṇi charḍhā(rḍhe)ibā ଢାଳିବା—1. To pour water
जलचढ़ान on the image of a Deity.
**पानीचढ़ाना** ୨ । ଲୁହାର ଅସ୍ତ୍ରଶସ୍ତ୍ରାଦିକୁ ଟାଣୁଆ କରିବା ପାଇଁ ପାଗଯୋଗ ଅନୁସାରେ ତାହା ତାତି ଥାଉଁ ଥାଉଁ ତାକୁ ପାଣିରେ ବୁଡ଼ାଇବା—2. To temper an iron weapon or steel by cooling it with water.
୩ । ରୋଗୀର ଚର୍ମତଳରେ ଛୁଞ୍ଚିପରି ପିଚକାରୀଦ୍ୱାରା ଜଳୀୟ ଔଷଧ ପ୍ରୟୋଗ କରିବା—3. To give injections to a patient.

**ପାଣିଚ୍ଛ**—ଦେ. ବିଣ—୧ । ଜଳୀୟ ସ୍ୱାଦବିଶିଷ୍ଟ, ସ୍ୱାଦହୀନ—
Pāṇichā 1. Tasteless; insipid
पानिसा, पानसिया ୨ । ଅତିରିକ୍ତ ଜଳଯୁକ୍ତ—2 Diluted with
**पानसोहा** water; soaked with water; watery.
[ପାଣିଚ, ପାଣିଚଆ, ପାଣିପାଣିଚ୍ଛ, ପାଣିପାଣିଆ, ପାଣିପାଣିଚଆ, ପାଣିସିଆ, ପାଣିପାଣିଆ(ଆଁ)—ଅନ୍ୟରୂପ]

**ପାଣିଚି**—ପ୍ରାଦେ. (ପୁରୀ) ବିଣ—୧ । ଯେଉଁ ନଡ଼ିଆଭିତରୁ ପାଣିଯାକ
Pāṇichi ଶୁଖି ଯାଇ ନ ଥାଏ—1. Cocoanut, the water inside which has not yot completely dried up.
[ଦ୍ର—ପାଣି ଶୁଖିଯାଇଥିବା ନଡ଼ିଆକୁ ଖୁରୁଡ଼ା ବୋଲାଯାଏ ।]
୨ । ଏକପ୍ରକାର ଧାନ (ଜଳବହୁଳ ଜମିରେ ଏ ଧାନ ଫସଲ ଭଲ ହୁଏ)—2. A kind of paddy.

**ପାଣି ଛଡ଼ା(ଡ଼େ)ଇବା**—ଦେ କ୍ରି—୧ । ପହଣି ବା ବାନ୍ଧ ମେଲା କରି ଜଳପୂର୍ଣ୍ଣ କିଆରିରେ ଜମା ହୋଇଥିବା ପାଣିକୁ ନିକାଶି କରାଇବା—
Pāṇi chharḍā(ṛḍe)iba
ଜଲଛଡାନ
**पानीछोड़ाना**
(ପାଣି ଛଡ଼ାଇଦେବା—ଅନ୍ୟରୂପ)
1 To open out a way for accumulated water.
ଜଚ୍ଛଲଡାଦେଓଆ
୨ । ମନ୍ତ୍ରପାଠ ବା ଦେବତାଙ୍କ ନାମ ଉଚ୍ଚାରଣ ପୂର୍ବକ ଦେବତାଙ୍କ ନିବେଦିତ ଭୋଗର ଚାରିପାଖେ ଚଳେ ପାଣି ବୁଲାଇ ଦେବା, ଉତ୍ସର୍ଗ କରିବା—
**उत्सर्ग करना**
2 To offer some article to a Deity by encircling it with a handful of water.
୩ । (ଜୀବନର) ଆଶା ପରିତ୍ୟାଗ କରିବା—
3. To give up the hope of one's life.
୪ । କୌଣସି କାର୍ଯ୍ୟ ପାଇଁ ଜୀବନ ଉତ୍ସର୍ଗ କରିବା—
4. To dedicate one's life for a certain object.
× × × ଜୀବନକୁ ବ ପାଣି ଛଡେଇ ଦେଇଛୁଁ ।
ଉତ୍କଳ—କୃଷକ ଋଷି ।

**ପାଣିଛଡ଼ା ପଣ୍ଡା ସେବକ**—ଦେ. ବି—ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ସେବକ ବିଶେଷ—A class of servants of the Deity Jagannātha of Puri.
Pāṇichharḍā paṇḍā sebaka
ଦ୍ର:—ଏମାନେ ଶ୍ରୀମୁଖ ପଖାଳ ସେବା କରନ୍ତି । ଜଗବନ୍ଧୁ, ପ୍ରାଚୀନ ଉତ୍କଳ । ୬୫

**ପାଣି ଛତର**—ଦେ. ବି. (ସଂ. ପାନୀୟ+ସତ୍ର)—ଜଳଛତ୍ର (ଦେଖ)
Pāṇichhatara Jalachhatra (See)
ଜଲଛତ୍ର **पानीछत्र** (ପାଣିଛତ୍ର—ଅନ୍ୟରୂପ)

**ପାଣି ଛବି**—ଦେ. ବି—ଜଳଦ୍ୱାରା ଯେଉଁ ଚିତ୍ରକୁ ଅନ୍ୟ କାଗଜରେ ବସାଯାଏ; ଜଳଛବି; ଏକ କାଗଜ ଉପରେ ଥିବା ଯେଉଁ ଛବିକୁ ଓଦା କରି ଅନ୍ୟ କାଗଜ ଉପରେ ମାଡ଼ି ଦେଲେ ଦ୍ୱିତୀୟ କାଗଜରେ ଉକ୍ତ ଛବି ଉଠିଯାଏ—
Pāṇi chhabi
ଜଲଛବି
**जलछबि**
Transfer-picture.

**ପାଣି ଛାଟ**—ପ୍ରାଦେ. (ଅଳ) ବି—ପାଣିପାଟିଆ (ଦେଖ)
Pāṇi chhāṭa Pāṇipāṭiā (See)
ଜଲେରଛାଟ ଦେ. ବି—୧ । ଯେଉଁ ବର୍ଷାଜଳ ତିର୍ଯ୍ୟକ୍‌ଭାବରେ କୌଣସି ବସ୍ତୁ ଉପରେ ପଡ଼େ—1. Rain water which splashes a thing in a slanting manner.
**पानीकाछींटा**
(ପାଣିଛାଟିବା—କ୍ରିୟାରୂପ)
୨ । ତିର୍ଯ୍ୟକ୍‌ଭାବରେ କୌଣସି ବସ୍ତୁକୁ କଡ଼ପାଖରୁ ବା ତଳଆଡ଼ୁ ଯେଉଁ ପାଣି ଛିଟାଯାଏ—2 Water splashed on a thing from a side or from below.

**ପାଣି ଛିଞ୍ଚା**—ଦେ. ବି. (ସଂ. ପାନୀୟ+ସେଚନ)—
Pāṇi chhiñchā ୧ । ଜଳସେଚନ କରିବା—
ଜଲସୀଂଚା; ଜଲେରଛାଟ 1. Sprinkling of water.
**पानीसींचना** ୨ । ବିଲରେ ପାଣିମଡ଼ାଇବା—
(ପାଣିସିଞ୍ଚା—ଅନ୍ୟରୂପ) 2. Irrigating a field for raising crop.

ପ୍ରାଦେ. (ଗଞ୍ଜାମ) ବି—କଉଡ଼ିଖେଳରେ କେତେଜଣ ଯୋଡ଼ି ବାନ୍ଧି ଖେଳିବା ବେଳେ ଜଣେ ଖେଳାଳୀ ବଳପଡ଼ିଲେ ଦୁଇ-ଦଳର ଲୋକେ ବେଳେ ବେଳେ ଆପଣା ଦଳରେ ଦରକାର ବେଳେ ଖେଳିବା ପାଇଁ ଯେଉଁ ଖେଳାଳୀକୁ ରଖିଥାଆନ୍ତି—An extra player kept in reserve to replace one of a pair of players in a game of cowries.

**ପାଣି ଛିଞ୍ଚିବା**—ଦେ. କ୍ରି (ସଂ ପାନୀୟ+ସିଚ୍ ଧାତୁ)—
Pāṇi chhiñchiba ୧ । କୌଣସି ସ୍ଥାନରେ ଜଳବିନ୍ଦୁ ସେଚନ କରିବା—1. To sprinkle water on a place.
ଜଲସୀଂଚା
**पानी सींचना** ୨ । (ଲକ୍ଷଣାର୍ଥ) କୋମଳ କଥା କହି ମନୋରଞ୍ଜନ କରିବା—2. (figurative) To please a person by soft words.
ଉପରେ ଉପରେ ଛିଞ୍ଚିଣ ପାଣି
ତଳେ କାଟୁଥାଏ ଶିଖିଲୁ କାଣି । ତଗ ।
୩ । (ଲକ୍ଷଣାର୍ଥ) କୋମଳ ବାକ୍ୟ ପ୍ରୟୋଗଦ୍ୱାରା କୌଣସି ବ୍ୟକ୍ତିର କ୍ରୋଧକୁ ଶାନ୍ତ କରିବା—3 To quench the anger of a person by soft words.
୪ । ଲୋକେ ଖାଇବାପାଇଁ ଭୂମିରେ ପାରିତ କଦଳୀପତ୍ରଆଦି ଉପରେ ଖାଦ୍ୟ ବଢ଼ାଯିବା ପୂର୍ବରୁ ଜଳବିନ୍ଦୁ ସେଚନ କରିବା—
4. To sprinkle water on plantain or other leaves spread on the ground before food is served on them.
[ ଦ୍ର—ଖାଇବା ସ୍ଥାନକୁ ପ୍ରଥମେ ଓଳାଇବାକୁ ହୁଏ, ଓଳଥା ହେବା ପରେ ସେ ସ୍ଥାନରେ ଭୂମିରେ ପାଣି ଛିଞ୍ଚାଯାଏ, ତା ପରେ କଦଳୀ ପତ୍ର ପକାଯାଏ, ତା ପରେ କଦଳୀ ପତ୍ର ଉପରେ ପାଣି ଛିଞ୍ଚା ଯାଏ, ତା ଉପରେ ଲୁଣ ବଢ଼ାଯାଏ, ତା ପରେ ଅନ୍ନାଦି ବଢ଼ାଯାଏ ।]

**ପାଣି ଛିଡ଼ିକା**—ଦେ. ବି—ଯେଉଁ ପାଣି ପ୍ରଥମେ ଭୂପୃଷ୍ଠରେ ପଡ଼ି ତହିଁରୁ ପ୍ରତିଘାତ ପାଇ କଡ଼ବାଗରେ ଅନ୍ୟ ବସ୍ତୁରେ ପଡ଼େ—Splatter; splashing of water on a thing after coming in contact with the ground.
Pāṇi chhirḍikā
ଜଲେର ଛୀଟ
**पानीके छींटे**
(ପାଣି ଛିଡ଼ିକିବା—ଅନ୍ୟରୂପ)
[ପାଣି ଛିଡ଼କା(କେ)ଇବା—କ୍ରିୟାରୂପ]

**ପାଣି ଛୁଆଁ ଜାତି**—ଦେ ବି. (ସଂ. ପାନୀୟ+ସ୍ପର୍ଶ)—
Pāṇi chhuān̐ jāti ଯେଉଁ ଶୂଦ୍ର ଜାତିଙ୍କ ସ୍ପୃଷ୍ଟଜଳ ବ୍ରାହ୍ମଣାଦି ଉଚ୍ଚ ଜାତିଙ୍କ ବ୍ୟବହାର୍ଯ୍ୟ ଓ ପେୟ—
ଜଲ ଛୋଯାଁ ଜାତ
**पानी चलनेवाली जात** High caste Śūdras, the water touched by whom can be drunk and used by Brāhmaṇas and people of other high castes.
( ପାଣି ଅଛୁଆଁ ଜାତି ତଳେ ନୋଟ୍ ଦେଖ । )

**ପାଣି ଛେଳା(ଳା, ଳେ, ଳେ)ଇବା**—ଦେ. କ୍ରି (ସଂ. ପାନୀୟ+ଉତ୍ସର୍ଜନ)—
Pāṇi chhejā(ḍā, je, de)iba ଡଙ୍ଗା ମଧ୍ୟରେ ଛିଦ୍ର ଦେଇ ପଶିଥିବା ପାଣିକୁ ବେଣ୍ଟୁଆ ଦ୍ୱାରା ଉଠାଇ ବାହାରକୁ ଫୋପାଡ଼ିବା—To bale out water which has leaked into a boat through the fissures, by means of a wooden cup.
**पानी उपछना**

ପାଣିଜ—ସ ବ.(ପାଣି=ହସ୍ତ+ଜନ୍ ଧାତୁ=ଉତ୍ପନ୍ନ ହେବା+କର୍ତ୍ତୃ ଅ)-
Pāṇija ନଖ, କରରୁହ—Finger-nail.

ପାଣି ଜୋଖା—ଦେ. ବ—ଆଖି ଧରିବା ରୋଗରେ ଆଖି ପତା ମଧ୍ୟରେ
Pāṇi jokhā ବାହାରିବା କ୍ଷୁଦ୍ର ବ୍ରଣ—Small pimples
ଚୋଖେର ফুৰকনা appearing inside the eye lids in
आँखका कौढ़ी Ophthalmia.
[ ଦ୍ର—ସେଥିରେ ସାହାଡ଼ା ଗଛର କ୍ଷୀର ଓ କଳସିର ଡେଙ୍ଗର କ୍ଷୀର ଲଗାଇଲେ ଭଲ ହୁଏ । ]

ପାଣି ଝିଙ୍କିବା—ଦେ. କ୍ରି—ଦଉଡ଼ିରେ କୂଅରୁ ପାଣି କାଢ଼ିବା—
Pāṇi jhiṅkibā To lift up water from a well
ଜଲ তুলা with the help of a rope and
पानी झोकना pitcher.

ପାଣି ଟେକିବା—ଦେ. କ୍ରି—୧ । କୌଣସି ବସ୍ତୁ ବା ଭୂମି ଆଦି ବ୍ରାହ୍ମଣଙ୍କୁ
Pāṇi ṭekibā, ଦାନ କରିବା ପୂର୍ବରୁ ସଙ୍କଳ୍ପ ମନ୍ତ୍ର ଉଚ୍ଚାରଣ
ଜଲ দেওয়া ପୂର୍ବକ ବ୍ରାହ୍ମଣ ହାତକୁ ମୁନ୍ଦାଏ ପାଣି ଦେବା—
पानी देना 1. To make over a handful of water
ପାଣି ଅଞ୍ଜୁଳା ଟେକିବା / ପାଣି ଅଞ୍ଜୁଳି ଟେକିବା } ଅନ୍ୟରୂପ to a Brāhmaṇa by reciting some formulas before handing over a gift.
୨ । ଶତ୍ରୁର ଅମଙ୍ଗଳ କାମନା କରି ଦେବତାଙ୍କ ନାମ ଧରି ପାଣି ଅଞ୍ଜୁଳା ଢାଳିବା – 2. To offer handfuls of water by invoking a Deity and wishing one's enemy evil.
୩ । ତର୍ପଣ ସମୟରେ ଦେବତା ଓ ପିତୃ ଆଦିଙ୍କୁ ଅର୍ଘ୍ୟ ଦେବା—
3. To offer libations of water to the spirits of one's deceased ancestors.

ପାଣି ବୁଡ଼ୁକି—ଦେ. ବ. (ଭୁଲ. ହୁ. ପନଡୁବ୍ବା)—ମାଛରଙ୍କା ଚଢ଼େଇ—
Pāṇi dubuki Kingfisher.
[ ଦ୍ର—ଏ ପାଣିରେ ବୁଡ଼ି ମାଛ ଧରେ । ]

ପାଣି ଢାଳିବା—ଦେ. କ୍ରି—୧ । କୌଣସି ପାତ୍ରରୁ ପାଣି ଇଡ଼ିବା—
Pāṇi dhāḷibā 1. To pour out water from
পানীঢালা पानी उडेलना a pot.
(ପାଣି ଅଜାଡ଼ିବା—ଅନ୍ୟରୂପ) ୨ । ଶିବ ଲିଙ୍ଗଙ୍କ ଉପରେ ଜଳ ଅଜାଡ଼ିବା—2. To pour out water on the image of Śiba
ଦେ. ବ—ବହୁ ପରିମାଣରେ ବର୍ଷା ହେବା—
Raining in torrents.

ପାଣିତ—ଦେ. ବଣ—ପାଣିଦିଆ ( ଦେଖ )
Pāṇita Pāṇidiā ('See )
[illegible] ଦୀନନାଥ, ମହାଯାତ୍ରା ।

ପାଣି ତଳ—ସଂ. ବି. ( ଷଷ୍ଠୀ ତତ୍ପୁ, ପାଣି + ତଳ)—କରତଳ, ଲେଉଟ—
Pāṇi tala Palm of the hand.

ପାଣିତି—ଦେ. ବ. ସ୍ତ୍ରୀ—ପାଣିଇତି ( ଦେଖ )
Pāṇiti Pāṇi-iti ( See )
(ପାଣେଇତି—ଅନ୍ୟରୂପ)

ପାଣି ତୋଳା—ଦେ ବ. ( ସ. ପାନୀୟ+ଉତ୍ତୋଳନ )—
Pāṇi tolā ୧ । 'ଦଣ୍ଡଜାତ' ସଙ୍କଳ୍ପ କରିଥିବା ବ୍ୟକ୍ତିମାନେ
(ପାଣିସାଧା—ଅନ୍ୟରୂପ) ବାଦ୍ୟ ସହିତ ସନ୍ଧ୍ୟା ବେଳେ ଗୋଟିଏ
ପାଣି ତୋଳିବା / ପାଣି ସାଧିବା } କ୍ରିୟାରୂପ ପୋଖରୀକୁ ଯାଇ ସେଠାରେ ସ୍ନାନକରି ସେଠାରୁ ପାଣି ଆଣିବା ଉତ୍ସବ—
জলসাধা 1. The ceremony of bringing water from a tank after bathing there, performed by the observers of the vow in 'Daṇḍajāta.'
[ ଦ୍ର—ପାଣିତୋଳା ଦିନଠାରୁ ସଂକ୍ରାନ୍ତି ପର୍ଯ୍ୟନ୍ତ ଦଣ୍ଡନାଚ କରନ୍ତି । ]
୨ । ବିବାହାଦି କର୍ମରେ ପ୍ରତିବେଶୀମାନଙ୍କ ଗୃହରୁ ଜଳ ସଂଗ୍ରହ ରୂପ ମଙ୍ଗଳ କର୍ମ—2. The ceremony of collecting water from the houses of neighbours on occasions of marriage

ପାଣି ଦ(ଦେ)ବା—ଦେ. କ୍ରି—୧ । (ବୃକ୍ଷ ଆଦିର ମୂଳରେ) ଜଳ ଢାଳିବା-
Pāṇi da(de)bā 1. To water plants.
জল দেওয়া ଅମ୍ବ ଗଛରେ ପାଣି ଦଇ ଦଇ ନିମ୍ବ ଗଛ ମଲା । ଶିଶୁ ଗୀତ ।
पानीदेना ୨ । ଲୁହାକୁ ଦୃଢ଼ କରିବା ସକାଶେ ତାତିଲା ଲୁହାକୁ
পানান ଜଳରେ ବୁଡ଼ାଇବା—2 To immerse hot
पानी बुझाना iron in water to temper it.
ପାଣି ଦେଉଥିଲୁ ଶାଣିକି ବାଣକୁ ବାଜନ୍ତ ଜଟିଳ ରାହୁ ।
ଭଞ୍ଜ, ଲାବଣ୍ୟବତୀ ।
୩ । (ତର୍ପଣାଦିରେ) ପିତୃ ଲୋକଙ୍କୁ ତର୍ପଣ କରିବା—
জল দেওয়া 3. To offer libations of water to the
जलदेना spirits of one's deceased ancestors.
ତୁମ୍ଭେ ଯେଉଁମାନଙ୍କୁ ଦେବ ବାରୁ ପାଣି
ସେହିତ ତାଙ୍କୁ ପାଣି ଦେଉଛନ୍ତି ପୁଣି । କୃଷ୍ଣସିଂହ. ମହାଭାରତ, ସଭା ।
୪ । ସ୍ଥାନାନ୍ତରରୁ ଘଟ ଆଦି ଦ୍ଵାରା ଜଳ ବହି ଆଣି ଯୋଗାଇବା—4. To supply water by carrying it from some other place.
୫ । ତୃଷାତୁରକୁ ଜଳ ପିଇବାକୁ ଦେବା—
5. To give water to a person to drink.
୬ । (ଘାଆ ଆଦି) ଜଳୀୟରସ ଉଦ୍ଗିରଣ କରିବା—
6. To water; to emit water (said of sore, the eyes or nostrils.)
( ଯଥା—ମୋ ଆଖି ୬ ମାସ ହେଲା ପାଣି ଦଉଛି । )
ଦେ. ବ—୧ । (ଘାଆ, ଆଖି, ନାକ ଆଦିରୁ) ଜଳସ୍ରାବ ହେବା;
पानीआना ପାଣି ଗଡ଼ିବା—1. Watering of any sore or the eyes or nostrils.
୨ । (କୋଠା, ଢଙ୍ଗା, ଗୁଳ ଆଦିର ଛିଦ୍ର ବାଟେ) ଜଳ ଭେଦ ବାହାରିବା—2. Oozing of water through leaks; leaking.
ପ୍ରାଦେ ( ବାଲେଶ୍ଵର ) କ୍ରି—ବନଶୀ ପକାଇବାବେଳେ ଜଳର ଗମ୍ଭୀରତା ସ୍ଥିର କରିବା ଓ ତଦନୁସାରେ ବନଶୀ ସୂତାରେ ଡେରେଣ୍ଡା ବସାଇବା—To fathom the depth of water for angling and adjust the float on the angling string.

**ପାଣି ଦଳ**—ଦେ. ବି—ଜଳଜ ବା ଅର୍ଦ୍ଧ ଜଳଜ ଘାସ—
Pāṇi dala A kind of aquatic grass; Echinochla Colona (Haines); Paniculum Ripens (Kirtikar).
ଦଳ
**କଡ଼ତୀ**
[ ଦ୍ର—ପ୍ରଥମେ ଏହାର ଚେରଗୁଡ଼ିକ ଭାସୁଥାଏ । ଏ ଘାସର ପତ୍ର ଲମ୍ବରେ ୬ଫୁଟ ଠାରୁ ୪ଫୁଟ ପର୍ଯ୍ୟନ୍ତ ବଢ଼େ । ଏହା ଗୋରୁ ଗାଈ ଓ ଘୋଡ଼ାଙ୍କ ଖାଦ୍ୟ ରୂପେ ବ୍ୟବହୃତ । ଏହାର ସ୍ତର କ୍ରମେ ଜଳାଶୟ ଉପରେ ମାଡ଼ିଯାଇ ଏତେ ଶକ୍ତ ହୁଏ ଯେ, ଏହା ଉପରେ ପିଲା ଓ ବାଳୁଙ୍ଗାମାନେ ଚୁଲି ଯାଇ ପାରନ୍ତି ଓ ଏହାର ଚେର କ୍ରମଶଃ ଜଳାଶୟର ତଳ ଦେଶରେ ଯାଇ ମାଡ଼େ । ]

**ପାଣିଦିଆ**—ଦେ. ବିଣ—୧ । ଦୃଢ଼ କରିବା ନିମନ୍ତେ କର୍ମିଷ୍ଠ ସମୟରେ
Pāṇi diā ଉତ୍ତପ୍ତ ଅବସ୍ଥାରେ ପାଣିରେ ବୁଡ଼ାଯାଇଥିବା
**पानी टोजा हुआ; पानीदार** (ଶସ୍ତ୍ରାଦି)—1. Well tempered (iron weapon etc )
ତତଣ୍ଡରେ ପାଣିକ ପାଣିଦିଆ ଖଣ୍ଡା—କୃଷ୍ଣସିଂହ. ମହାଭାରତ ବନ ।
୨ । ( ଲକ୍ଷଣାର୍ଥ ) ଶାଣିତ—
2 Whetted; sharpened
୪ । ଜଳବାହକ (ବ୍ୟକ୍ତି)—
4. (a person) Who carries water

**ପାଣିଦିଆ ମୁହଁ**—ଦେ. ବି—୧ । (ଲକ୍ଷଣାର୍ଥ) ପାଣିଦିଆ ଅସ୍ତ୍ର ପରି ଯେଉଁ
Pāṇidiā muhan̐ ଲୋକର ମୁହଁ ଭରି ଥାଏ; ଯେ ନିର୍ଭୀକ ଭାବରେ କଥା କହେ—1. A fearless speaker.
୨ । ନିର୍ଲଜ୍ଜ ବ୍ୟକ୍ତି—2. Shameless person.

**ପାଣି ଦୁଧ**—ଦେ. ବି—(ସଂ. ପାନୀୟ+ଦୁଗ୍ଧ)—ଜଳ ମିଶ୍ରିତ ଦୁଗ୍ଧ—
Pāṇi dudha Milk diluted with water; milk which contains a quantity of water
ଜଳସା ଦୁଧ
**पनिहा दुध**

**ପାଣି ଦିହରେ ଯିବା**—ଦେ. ବି—କୌଣସି ସ୍ଥାନର ଜଳବାୟୁ କୌଣସି
Pāṇi dihare jibā ବ୍ୟକ୍ତିର ଦେହରେ ସହ୍ୟ ହେବା—The suiting of the climate of a place to one's constitution
ଜଳ ସଓ୍ୱା
**पानी सहा होना**

**ପାଣି ଦ୍ରବ୍ୟ**—ଦେ. ବି—(ପାଣି+ଦ୍ରବ୍ୟ)—ସ୍ୱର୍ଣ୍ଣ ଓ ରତ୍ନ—
Pāṇi drabya Gold and gems.

**ପାଣି ଧଣ୍ଡ** (ଣ୍ଡା)—ଦେ. ବି—( ସଂ. ପାନୀୟ+ଡୁଣ୍ଡୁଭ )—ବିଷହୀନ
Pāṇi dhaṇḍa (ṇḍā) ଜଳଚର ସର୍ପ ବିଶେଷ—Water-snake; Homalopsidae.
ଟେଁଡ଼ା, ଟୋଡ଼ା
**डेड़हा, डेरढ़ा** କେଉଁ ଖନ ପୁଣି ସେ କେଳକୁ ବାହାରଲେ,
ଭେଣ୍ଡା ପାଣି ଧଣ୍ଡାଏ ଶୋଇଛ ଦେଖିଲେ ।
କୃଷ୍ଣସିଂହ. ମହାଭାରତ. ଅବ ।
[ ଦ୍ର—ଏମାନେ ଛୋଟ ଛୋଟ ମାଛ ଓ ଗେଣ୍ଡା କଙ୍କଡ଼ା ଖାଆନ୍ତି । ]

**ପାଣି ଧରିବା**—ଦେ. ବି—କୌଣସି ସ୍ଥାନର ଜଳବାୟୁ କୌଣସି ବ୍ୟକ୍ତିର
Pāṇi dharibā ଦେହରେ ନ ଚଳିବାରୁ ତାକୁ ରୋଗ ଧରିବା—
ଜଳଧରା Becoming sick owing to the climate of a place not agreeing with one's constitution.
**पानी लागना**

**ପାଣି ଧାନ**—ଦେ. ବି.—(ସଂ. ପାନୀୟ+ଧାନ୍ୟ)—ଯେଉଁ ଧାନ ବେଶୀ
Pāṇi dhāna ପାଣି ଥିବା ସ୍ଥାନରେ ଆବାଦ କରାଯାଏ—
କଳାଧାନ Kinds of paddy which are grown in water-logged places.
**पानीधान**

**ପାଣି ନ ଗଳିବା**—ଦେ. ବି.—୧ । ଛିଦ୍ରଶୂନ୍ୟତା ଯୋଗୁଁ ଜଳ ଭେଦ
Pāṇi na galibā ନ ପାରିବା ଅବସ୍ଥା
ଜଳ ନା ଗଳା **पानी न घुसना** 1 Imperviousness.
୨ । ( ଲକ୍ଷଣାର୍ଥ ) ଦୁଇଜଣଙ୍କ ମଧ୍ୟରେ ଅଭେଦ୍ୟ ପ୍ରୀତି—
2 Close intimacy between two persons.

**ପାଣି ନଳା**—ଦେ. ବି.—(ସଂ. ପ୍ରଣାଳୀ)—ପାଣି ବୋହିଯିବାର ରାସ୍ତା—
Pāṇi nalā Water channel; gutter.
(ପାଣି ନାଲ, ପାଣି ନାଳ, ପାଣି ମାହାଳ—ଅନ୍ୟରୂପ)
ଜଳନାଳା, **पानीनाला**

**ପାଣିନି**—ସଂ ବି—(ନାମ)—ପ୍ରସିଦ୍ଧ ସଂସ୍କୃତ ବ୍ୟାକରଣ ସୂତ୍ରକାର—
Pāṇini Name of the celebrated compiler of Sanscrit Grammar.
[ ଦ୍ର—ଖ୍ରୀଷ୍ଟ ଜନ୍ମର ୪ର୍ଥ ଓ ୫ମ ଶତାବ୍ଦି ପୂର୍ବେ (ମତାନ୍ତରରେ ୭ମ ଶତାବ୍ଦି ପୂର୍ବେ) ଗାନ୍ଧାର ପ୍ରଦେଶସ୍ଥ ଶାଲାତୁର ଗ୍ରାମରେ ଏ ଜନ୍ମି ଥିଲେ । ଏହାଙ୍କର ପ୍ରସିଦ୍ଧ ସଂସ୍କୃତ ବ୍ୟାକରଣ ଆଠ ଅଧ୍ୟାୟରେ ବିଭକ୍ତ । ଏ ଗ୍ରନ୍ଥରେ ଗୁଡ଼ିଏ ସୂତ୍ର ଉଦାହରଣ ସହ ଦିଆ ଯାଇଅଛି । ଅନ୍ୟର ମଧ୍ୟ ଧାତୁପାଠ ନାମକ ଗୋଟିଏ ବ୍ୟାକରଣ ପରିଶିଷ୍ଟ ଏ ସଙ୍କଳନ କରିଥିଲେ । କଥିତ ଅଛି ଯେ ଏ ପ୍ରଥମେ ଶିକ୍ଷାଲାଭାର୍ଥ ପାଟଳିପୁତ୍ରର ବର୍ଷ ନାମକ ଉପାଧ୍ୟାୟଙ୍କ ନିକଟରେ କେତେକ ଦିନ ଅବସ୍ଥାନ କଲେ, କିନ୍ତୁ ଆଶାନୁରୂପ ପାଠୋନ୍ନତି ନ ହେବାରୁ ହିମାଳୟକୁ ଯାଇ ତପସ୍ୟା କଲେ ଓ ତପସ୍ୟା ଦ୍ୱାରା ମହାଦେବଙ୍କୁ ସନ୍ତୁଷ୍ଟ କରି ତାଙ୍କ ବରରେ ବ୍ୟାକରଣ ଶାସ୍ତ୍ରରେ ବ୍ୟୁତ୍ପନ୍ନ ହେଲେ । ଏହାଙ୍କ ମାତାଙ୍କ ନାମ ଦାକ୍ଷୀଦେବୀ—ସୁବଳଚନ୍ଦ୍ର । ]
ଦେ. ବି—ପାଣିନିଙ୍କ କୃତ ସଂସ୍କୃତ ବ୍ୟାକରଣ—The Sanscrit grammar by Pāṇini.

**ପାଣିନୀୟ**—ସଂ. ବିଣ—(ପାଣିନି+ଇୟ)—୧ । ପାଣିନି କୃତ—
Pāṇiniya 1. Composed by Pāṇini.
୨ । ପାଣିନିଙ୍କ ଗ୍ରନ୍ଥରେ ଉଲ୍ଲେଖିତ—
2. Mentioned in the work of Pāṇini.
୩ । ପାଣିନିଙ୍କ ଗ୍ରନ୍ଥ ପାଠକ—
3. Studying the books of Pāṇini.

**ପାଣି ପଟା**—ଦେ. ବି—ଚାଳର ଶେଷରେ ରୁଅମାନଙ୍କ ମୁଣ୍ଡରେ ଦିଆ
Pāṇi paṭā ଯାଇଥିବା ମୁହଁ ପଟା—The plate which is put to the lower ends of the rafters in a thatched house.
(ପାଣିପାଟିଆ; ପାଣିଆପଟା—ଅନ୍ୟରୂପ)
**पाट़**
[ଦ୍ର—ଏ ପଟା ଚାଳର ଛଣ ଓ ଖପରଲୀକୁ ଅଟକାଇ ରଖେ ।]

**ପାଣି ପଡ଼ୁଡ଼ ଗଳି**—ପ୍ରାଦେ ( ବାଲେଶ୍ୱର ) ବି—ସମକୋଣରେ ଅବସ୍ଥିତ
Pāṇi paṛuṛ gali ଦୁଇଟି ଚାଳର ମଝିରେ ଥିବା ଓ ସେହି ବାଟ

ଦେଇ ଘର ଭିତରକୁ ପାଣି ଗଳି ଆସୁଥିବାର ଛିଦ୍ର ବା ଜଳା, ଲଂଘା—The juncture of two thatches meeting at right angles

**ପାଣି ପଡ଼ିବା**—ଦେ. କ୍ରି—୧ । ଜଳ ପତିତ ହେବା—
Pāni pardibā 1 The falling down of water
**पानीगोरना** ୨ । ନଦୀ ବଢିବା—2. Inundation of a river
**जवानीआना** ୩ । ମନୁଷ୍ୟତା ବା ଶ୍ରୀବୃଦ୍ଧି ପ୍ରାପ୍ତ ହେବା—
3. Attainment of puberty (in the case of a girl) or adolescence (in the case of a boy.)
ଅଳପୁଁ ଏତେ । ପାଣିପଡ଼ିଲେ ସେ ହବନ୍ତ କେତେ—ଭଣ ।
୪ । ଖୋଳା ହେଉଥିବା କୂପ ବା ପୁଷ୍କରଣୀରେ ଜଳୋଦ୍ଗମ ହେବା ବା ପାଣି ଝରିବା—4. The first appearance or oozing of water in a tank or well which is being sunk.

**ପାଣି ପଣା**—ଦେ. ବି ( ସହଚର ଶବ୍ଦ, ପାନୀୟ+ପ୍ରପାନକ )—୧ । ଜଳ
Pāni panā ବା ଅନ୍ୟ କୌଣସି ପାନୀୟ ଦ୍ରବ୍ୟ—
ଜଲପାନ **पानीउनी** 1. Water or any other drink.
(ପାଣି ଫାଣି—ଅନ୍ୟରୂପ)
ଛନ ଦନ ଭଗ୍ନରୁ ଚତୁର୍ଥ ଦବସ
ପାଣି ପଣା କରିବ ଛାଡ଼ ଅନ୍ନ ଗ୍ରାସ—କୃଷ୍ଣସିଂହ ମହାଭାରତ. ଅନଶାସନ ।
୨ । ଜଳଖିଆ—2. Tiffin; light refreshment.

**ପାଣିପଥ**—ଦେ. ବି (ନାମ)—ଦିଲ୍ଲୀ ଓ ଅମ୍ବାଲା ମଧ୍ୟସ୍ଥଳରେ ଥିବା ପ୍ରସିଦ୍ଧ
Pānipatha ଯୁଦ୍ଧକ୍ଷେତ୍ର—Name of a battle field
ପାନୀପଥ **पानीपथ** between Delhi and Ambala; Panipat.
[ଦ୍ର—ଏଠାରେ ଓ ଏହା ନିକଟରେ ଭାରତସାମ୍ରାଜ୍ୟର ଭାଗ୍ୟ-ନିର୍ଣ୍ଣାୟକ ଏକାଧିକ ଯୁଦ୍ଧ ହୋଇଥିଲା । ଏହା ନିକଟରେ କୁରୁ-କ୍ଷେତ୍ରରେ ମହାଭାରତ ଯୁଦ୍ଧ ହୋଇଥିଲା । ପୃଥ୍ୱୀରାଜ ଓ ସାହାବୁଦ୍ଦିନ ଘୋରୀଙ୍କ ସଙ୍ଗେ ଏଥିର ନିକଟରେ ଯେଉଁ ଯୁଦ୍ଧ ହୋଇଥିଲା ତହିଁର ଫଳରେ ଭାରତରେ ପଠାଣ ରାଜ୍ୟର ଆରମ୍ଭ ହୋଇଥିଲା ଓ ଖ୍ରୀ. ୧୫୨୬ ରେ ଏହି ଯୁଦ୍ଧକ୍ଷେତ୍ରରେ ବାବର ପଠାଣ ସମ୍ରାଟ ଇବ୍ରାହିମ୍ ଲୋଦୀଙ୍କୁ ପରାସ୍ତ କରି ମୋଗଲସାମ୍ରାଜ୍ୟର ମୂଳଭିତ୍ତି ସ୍ଥାପନ କରିଥିଲେ, ଏହା ଭାରତ ଇତିହାସରେ ପ୍ରଥମ ପାଣିପଥ ଯୁଦ୍ଧ ନାମରେ ଖ୍ୟାତ । ଖ୍ରୀ. ୧୫୫୬ ରେ ଆକବର ତାଙ୍କ ମାମୁ ଓ ଶିକ୍ଷା ଗୁରୁ ବୈରାମ ଖାଁଙ୍କ ସହାୟତାରେ ବାଲ୍ୟାବସ୍ଥାରେ ଏହିଠାରେ ମହମ୍ମଦ ଆଦିଲଶାହାଙ୍କ ସେନାପତି ହିମୁଙ୍କୁ ପରାସ୍ତ କରି ପିତାଙ୍କ ହୃତ ରାଜ୍ୟର ଉଦ୍ଧାର କରିଥିଲେ । ଏହା ଦ୍ୱିତୀୟ ପାଣିପଥ ଯୁଦ୍ଧ । ୧୭୬୧ ସାଲରେ ଏହି ଯୁଦ୍ଧକ୍ଷେତ୍ରରେ ଆଫଗାନିସ୍ଥାନର ରାଜା ଅହମ୍ମଦସାହା ଅବଦାଲୀ ଭାରତ ଆକ୍ରମଣ କରି ପେଶବା ବାଲାଜୀ ବାଜୀରାଓଙ୍କ ସୈନ୍ୟଙ୍କୁ ଏହିଠାରେ ପରାସ୍ତ କରି ମରହଟ୍ଟା ଶକ୍ତିର ଧ୍ୱଂସସାଧନ କରିଥିଲେ; ଏହା ତୃତୀୟ ପାଣିପଥ ଯୁଦ୍ଧ—ପ୍ରୋଥେରୋଙ୍କ ଭାରତ ଇତିହାସ ।)

**ପାଣିପଥ ଯୁଦ୍ଧ**—ଦେ. ବି—ପାଣିପଥରେ ହୋଇଥିବା ଯୁଦ୍ଧମାନ—
Pānipatha juddha The wars at Panipatha.
(ପାଣିପଥ ତଳେ ଦେଖ)

**ପାଣି ପବନ**—ଦେ. ବି. ( ସହଚର ) ( ସଂ. ପାନୀୟ+ପବନ )—
Pāni pabana ୧ । ବର୍ଷା ଓ ତୋଫାନ; ଝଡ଼ ଓ ବରଷା—
ଜଲ ବାତାସ, ଜଲ ଝଡ଼ 1. Rain accompanied with wind.
**बरषा झक्कर** ୨ । ଜଳ ବାୟୁ; ଆବ୍ ହାଉଆ—
ଜଲ ହାଓୟା 2. Climate.
**आब हवा**

**ପାଣି ପରି**—ଦେ. କ୍ରି ବିଣ—୧ । ଅନର୍ଗଳ ବା ପ୍ରାଞ୍ଜଳ ରୂପ—
Pāni pari 1. Fluently.
ଜଲେର ମତନ ( ଯଥା—ପାଣି ପରି ପଇଠେଇବା । )
**पानीके पसा, पानीका तरह** ୨ । ଅଜସ୍ର (ବ୍ୟୟ କରିବା)—
2 Copiously.

**ପାଣି ପରି ପଢ଼ିବା**—ଦେ କ୍ରି—ପ୍ରାଞ୍ଜଳ ରୂପେ ପାଠ କରିବା, ଅବଶ୍ରାନ୍ତ
Pāni pari pardhibā ଭାବରେ କୌଣସିଠାରେ ନ ଅଟକି
ଜଲେର ମତନ ପଡ଼େ ଯାଓୟା ପଢ଼ିଯିବା, ଗଡ଼ ଗଡ଼ କରି ପଢ଼ିଯିବା,
**घड़ाघड़ पढ़ना** ଅନର୍ଗଳ ପଢ଼ିବା—
To read out a thing fluently or uninterruptedly.

**ପାଣି ପରି ଯିବା**—ଦେ. କ୍ରି—୧ । ଦୂର ହେବା; ଲୁପ୍ତ ହେବା; ଭାସିଯିବା,
Pāni pari jibā ଯିବା, ନ ରହିବା—1. To disappear; to vanish.
ପାନୀର ମତନ ବୟେ ଯାଓୟା
**पानीके पसा बहयाना** ( ଯଥା—ଆମ ନାବାଳକ ରଜା ଗାଦିରେ
(ପାଣି ପରି ବୋହିଯିବା—ଅନ୍ୟରୂପ) ବସିଲେ ପ୍ରଜାଙ୍କ ଲୋକଙ୍କ ଦୁଃଖ ପାଣି ପରି ଯିବ । )
୨ । ଜଳ ସ୍ରୋତ ପରି ଦ୍ରୁତଗତି କରିବା—
2. To move swiftly like the flow of water.

**ପାଣି ପଶା**—ଦେ. ବିଣ. ( ସଂ. ପାନୀୟ+ପ୍ରବେଶ )—
Pāni pasā ପାଣି ଲାଗି ନଷ୍ଟ ହୋଇଥିବା (ଧାନ, ଚାଉଳ, ଶସ୍ୟ)-
**मकुवा** Spoiled by coming in contact with water.
[ ଦ୍ର—ପାଣି ପଶା ଧାନ, ଚାଉଳ, ଶସ୍ୟ ଆଦି ବିସ୍ୱାଦ ହୁଏ । ]

**ପାଣି ପାଇବା**—ଦେ. କ୍ରି—୧ । ମୃତ୍ୟୁ ପରେ ପୁତ୍ରାଦିଙ୍କଠାରୁ ତର୍ପଣ ପ୍ରଭୃତି
Pāni pāibā ପାଇବା—1. To receive oblations of
ଜଲ ପାଓୟା water from one's descendants
**जलपाना** after death.
ଯେବେ ପାଣି ପାଇବା ଥିଲା ମନେ ଥିଲା
ତେବେ ଭୁଜା ହୁଅ ହେ ଅନ୍ଧ ବାଳ ବର୍ଗ । କୃଷ୍ଣସିଂହ. ମହାଭାରତ, ଶଲ୍ୟ
୨ । କ୍ଷେତ୍ର ପାଇଁ ବା ବ୍ୟବହାର ପାଇଁ ଯଥେଷ୍ଟ ଜଳ ପ୍ରାପ୍ତ ହେବା—
2. To get sufficient water for any field or for drinking etc.
( ଯଥା—ଏ ବର୍ଷ ବର୍ଷା ଅଭାବରୁ ଗ୍ରାମବାସୀମାନେ ପାଣି ପାଇଲେ ନାହିଁ । )

୩ । ବୃକ୍ଷ ଆଦି ବଞ୍ଚିବା ପାଇଁ ଜଳ ପ୍ରାପ୍ତ ହେବା—
3. To be watered (said of trees and plants)
(ଯଥା—ପାଣି ନ ପାଇବାରୁ ମୋ ବାଇଗଣ ଗଛଯାକ ମରିଗଲା ।)
[ଦ୍ର—ହିନ୍ଦୀରେ 'ପାନୀପାନା' ଶବ୍ଦର ଅର୍ଥ (ସ୍ତ୍ରୀ) ସନ୍ତାନ ପ୍ରସବ କରିବା ।]

**ପାଣି ପାଟି**—ଦେ. ବି—୧ । ପାଣି ବଟା (ଦେଖ)
Pāṇi pāṭi 1. Pāṇi baṭā (See)
(ପାଣି ପାଟିଆ—ଅନ୍ୟରୂପ)
୨ । ପାଣିପଟା (ଦେଖ)—2. Pāṇipaṭā (See)

**ପାଣି ପାଟିଆ ଘର**—ଦେ. ବିଣ—କେବଳ କାଠ ରୁଅ ଓ କାଠ ବଟାରେ
Pāṇi pāṭiā ghara ଓ ତଳ ଉଲେ ପାଣି ପାଟିଆ ଦିଆ ହୋଇ
କାଠେର ঘর ଛଆଇ କରାଯାଇଥିବା ଗୁଳ ଘର, ଧୂଳିଆ ଘର—
**काठ घर** A thatched house the upper frame of which is exclusively made of wood.

**ପାଣିପାଣିଆ(ଆଁ)**—ଦେ. ବି—ପାଣିବସନ୍ତ, ହାଡ଼ଫଟ—
Pāṇipāṇiā(āṅ) Chicken pox.
ଦେ. ବିଣ—ପାଣିଆ ୧।୨।୩।୪ (ଦେଖ)
জল য়া **पानी पानी** Pāṇiā 1, 2, 3, 4 (See)

**ପାଣି ପାଣ୍ଡେ**—ଦେ. ବି. (ଆଧୁନିକ ପ୍ରୟୋଗ)—ରେଲ୍ ଷ୍ଟେସନରେ
Pāṇi pāṇḍe ଯାତ୍ରୀମାନଙ୍କୁ ପିଇବା ପାଣି ଯୋଗାଇବା ପାଇଁ
পানিপাঁড়ে ନିଯୁକ୍ତ ଭୃତ୍ୟ—A servant who is enga-
**पानीपाँडे** ged by the Railway to supply drinking water to passengers.

**ପାଣିପିଆ**—ଦେ ବି. (ସଂ. ପାନୀୟ+ପାନ)—୧ । ଜଳପାନ—
Pāṇipiā 1. Drinking of water.
জলপান ୨ । ଜଳଖିଆ—2. Light refreshment.
**पानीपीना, पनपिलाव** ୩ । କୂଳେଚର ପକ୍ଷୀବିଶେଷ—
3. A kind of wading bird.

**ପାଣି ପିଆଇବା**—ଦେ. କ୍ରି. (ପାଣି ପିଇବାର ଣିଜନ୍ତ ରୂପ)—
Pāṇi piāibā ୧ । ଅନ୍ୟ ବ୍ୟକ୍ତିକୁ ଜଳପାନ କରିବାକୁ ଦେବା—
ପାଣିପେଇବା } 1. To give a person water to drink.
ପାଣିପିଏଇବା } ଅନ୍ୟରୂପ
ପାଣିପ୍ୟାଇବା }
୨ । ସଂଜ୍ଞାହୀନ ବା ମୁମୂର୍ଷୁ ବ୍ୟକ୍ତିର ମୁଖରେ
জলখাওয়ান ଜଳ ଦେବା—2. To pour water into
**पानीपिलाना** the mouth of a senseless or dying person.
୩ । କୌଣସି ବ୍ୟକ୍ତିକୁ ଜଳଖିଆ ଖୁଆଇବା—
2. To give a person some light refreshment.
୪ । (ଲକ୍ଷଣାର୍ଥ) କୌଣସି ବ୍ୟକ୍ତିକୁ ଅତ୍ୟନ୍ତ କ୍ଳାନ୍ତ କରିବା ବା ପରିଶ୍ରମ କରାଇବା—4. (figurative) To cause a person to labour hard; to tire or weary a person.
[ଦ୍ର—ଲୋକ ଅତ୍ୟଧିକ ପରିଶ୍ରମ କରି ଅତ୍ୟନ୍ତ କ୍ଳାନ୍ତ ହୋଇଗଲେ ତୃଷାର୍ତ୍ତ ହୋଇ ପାଣି ପିଇବାକୁ ବାଧ୍ୟ ହୁଏ ।]

**ପାଣି ପିଇବା**—ଦେ. କ୍ରି—୧ । ଜଳ ପାନ କରିବା—
Pāṇi piibā 1. To drink water.
জলপানকরা, জলখাওয়া ୨ । ଜଳଖିଆ କରିବା—
**पानीपीना** 2. To take light refreshment.
୩ । କୌଣସି କାର୍ଯ୍ୟ କରି ଅତି କ୍ଳାନ୍ତ ହେବା—
3. To be overtired by doing work.

**ପାଣି ପିଢ଼ା**—ଦେ. ବି. (ସହଚର) (ସଂ. ପାନୀୟ+ପୀଠ)—
Pāṇi piṛhā ଆଗନ୍ତୁକ ବ୍ୟକ୍ତିଙ୍କୁ ଗୋଡ଼ ଧୋଇବା ପାଇଁ ପାଣି
জলপীড়ি ଓ ବସିବାପାଇଁ ଦିଆଯିବା ପିଢ଼ା, ପାଦ୍ୟ ଓ ଆସନ—
**पानीपीढ़ा** Water to wash the feet and a stool to sit upon (given to an incoming guest).
ଏହି ବିଜକୁ ପାଣି ପିଢ଼ା ଆଣି ଦିଅ । କୃଷ୍ଣସିଂହ, ମହାଭାରତ ଆଦି ।

**ପାଣି ପୀଡ଼ନ**—ସଂ. ବି. (ପାଣି+ପୀଡ଼ନ=ଗ୍ରହଣ)—
Pāṇi piṛdana ପାଣିଗ୍ରହଣ, ବିବାହ—
Marriage; wedding.
ବଇବ ସୁବଣୀ କବସୁର ଘଡ
କହିବେ କୃଷ୍ଣାଙ୍କ ପାଣି ପୀଡ଼ନ । ନନ୍ଦକଶୋର, କୃଷ୍ଣକୁମାରୀ ।

**ପାଣି ଫଳ**—ଦେ. ବି (ସଂ. ପାନୀୟ ଫଳ)—ଶିଙ୍ଗଡ଼ା—
Pāṇi phaḷa Water chestnut; Trapa Dispinosa.
ସଂ ନାମ—ଜଳଫଳ, [ଦ୍ର—ଏହା ଜଳଜ ଶାକବିଶେଷ । ପର୍ଣ୍ଣ-
শৃঙ্গাটক ପୋଖରୀରେ ଏହି ଲଟା ଭାସୁଥାଏ । ଫଳ-
পানীফল ତ୍ରିକୋଣ ଓ ଦୁଇ ଶୃଙ୍ଗବିଶିଷ୍ଟ । ଫୁଲ ଚତୁର୍ଦ୍ଦଳ
**पानीफल** ଓ ଶ୍ୱେତବର୍ଣ୍ଣ; ବର୍ଷାକାଳ ଅପରାହ୍ଣରେ ଫୁଟେ । କାଶ୍ମୀର ଦେଶୀୟ ଶିଙ୍ଗଡ଼ା ଖୁବ୍ ବଡ଼ ବଡ଼ । ଏଥିରୁ ଖୋପା ଛଡ଼ାଇଲେ ଭିତରୁ ଧଳା ସୁସ୍ୱାଦୁ ଶସ ବାହାରେ । ଏଥିରୁ ପାଲୁଅ ହୁଏ ।]

**ପାଣି ଫାଟିଯିବା**—ଦେ. କ୍ରି—୧ । ଦୁଧଆଦିର ଜଳୀୟାଂଶ ଓ ଛେନା ପୃଥକ୍
Pāṇi phāṭijibā ହେବା—1. To be turned into
দুধছেঁড়া whey in part when curdled (the
**दुधफटना** curdled portion becoming separate
বৃথাহওয়া from the watery portion).
**पानीमेंजाना** ୨ । (ଲକ୍ଷଣାର୍ଥ) ନିଷ୍ଫଳ ହେବା; ବ୍ୟର୍ଥ ହେବା—
2. (figurative) To be fruitless.
ଯଥା—ମୋର ଏତେ ପରିଶ୍ରମ ପାଣି ଫାଟି ଗଲା ।

**ପାଣି ଫୁକାର**—ଦେ. ବି—କୌଣସି ବନ୍ଧ ବା ପୋଲ ମଧ୍ୟ ଦେଇ ପାଣି
Pāṇi phukāra ବୋହିଯିବାର ଘର—The opening in
**पानीकाभमरा** a dam or bridge through which water flows.

**ପାଣି ଫୁ(ଫୋ)ଟ(ଟୁ)କା**—ଦେ. ବି.—(ସଂ. ପାନୀୟ+ସ୍ଫୋଟକ)—
Pāṇi phu (pho)ṭa (ṭu)kā ୧ । ଜଳ ବୁଦ୍‌ବୁଦ—
জলের ভুড় ভুড়ি 1. Water bubble.
**पानीका बुलबुला, पानीका बतासा**
ଏ ଜୀବନ ପାଣି ଫୋଟକା ପରସ୍ପେ ।
କୃଷ୍ଣସିଂହ, ମହାଭାରତ, ବନ ।

୬ । (ଲକ୍ଷଣାର୍ଥ)— କୌଣସି ନଶ୍ୱର ବସ୍ତୁ—
2. (figurative) Any transient thing.
ଜୀବନଟା ପାଣିଫୋଟକା, ପାଞ୍ଚଦିନ ଠୋ ଟଙ୍କା ।
ଭୂଷଣ, ଗୀତଲହରୀ ।

**ପାଣି ଫୁଟା(ଟେ)ଇବା**—ଦେ. କ୍ରି. (ସଂ. ପାନୀୟ+ସ୍ଫୋଟନ)—ପାଣିକୁ
Pāṇi phuṭā(ṭe)ibā ନିଆଁ ଉପରେ ବସାଇ ତହିଁରୁ ବୁଦ୍‌ବୁଦ
ଜଲ ଫୋଟାନ ବାହାର କରାଇବା—To boil water
**पानी फुटाना**

**ପାଣି ଫୁଟିବା**—ଦେ. ବି.—(ସଂ. ପାନୀୟ+ସ୍ଫୋଟନ)—୧ । ଅଗ୍ନି-
Pāṇi phuṭibā ଉପରେ ଉତ୍ତପ୍ତ ଜଳରୁ ବୁଦ୍‌ବୁଦର ନିର୍ଗମ—
ଜଲଫୋଟା **पानी फुटना** 1. The boiling of water.
୨ । ରାସାୟନିକ ପ୍ରକ୍ରିୟାଦ୍ୱାରା ଜଳରୁ ବୁଦ୍‌ବୁଦ ନିର୍ଗମ—
2. Bubbling of water

**ପାଣି ବଟା**—ଦେ. ବି —(ଘର ଘରେ ବ୍ୟବହୃତ)—ଓଳି ପାଣି ପଡି
Pāṇi baṭā ପିଣ୍ଡାର ଦାଡ଼ ଛିଡ଼ି ନ ଯିବ ବୋଲି ଘରକୁ ଅଳ୍ପ
**पाड़ बता** ବଢ଼ାଇ ଦେବା ପାଇଁ ଘରର ଗୋଟିଏ ଗୋଟିଏ ରୁଅକୁ
ମଝିରେ ମଝିରେ ଅନ୍ୟ ରୁଅମାନଙ୍କ ଅପେକ୍ଷା ଲମ୍ବ ରଖି ଲମ୍ବ
ରୁଅମାନଙ୍କ ମୁଣ୍ଡରେ ବନ୍ଧା ଯାଇଥିବା ବତା—
A lath of split bamboo put at the ends of projecting rafters of a thatch.

**ପାଣିବନ୍ତ**—ଦେ. ବିଣ—ଅତି ଉତ୍କୃଷ୍ଟ (ମୁକ୍ତା, ହୀରାଆଦି)—
Pāṇibanta (pearl or diamond) Of first water.
**पानीदार** ସୁଖାଦ ଗୁଣ୍ଡ ଅଣି ଦିଶି ମୁ ଦେଲି ପାଣି—
ବନ୍ତ ବର୍ତ୍ତୁଳ ମୋତି ହାରକୁ । କବିସୂର୍ଯ୍ୟ, ସଙ୍ଗୀତ ।

**ପାଣି ବନ୍ଧା(ନ୍ଧେ)ଇବା**—ଦେ. କ୍ରି.—(ସଂ. ଜଳ+ବନ୍ଧନ)—ଜଳ ପ୍ରବାହ
Pāṇi bandhā(ndhe)ibā ବନ୍ଦ କରିବା ପାଇଁ ବନ୍ଧ ପକାଇବା—
ବାଁଧ ବାଁଧନ To construct a dam to stop the flow of water.
**पानी बाँधना**

**ପାଣି ବସନ୍ତ**—ଦେ. ବି.—ପାଣି ପାଣିଆ; ହାଡ଼ଫୁଟି—
Pāṇi basanta Chicken pox
ପାନୀବସନ୍ତ **मातिया शीतला, पनगोटी**

**ପାଣି ବାଟ**—ଦେ. ବି.—(ସଂ. ପାନୀୟ+ବର୍ତ୍ମ)—୧ । ଜଳନିର୍ଗମର
Pāṇi bāṭa ପଥ—1. An opening or channel for the flow of water.
ଜଲେରରାସ୍ତା
**नीबाट** ୨ । ଜଳ ପଥ—2. Waterway.
୩ । ନଦୀ ଓ ପୋଖରୀର ଗାଧୁଆ ଘାଟ ନିକଟକୁ ଯିବାର ରାସ୍ତା—
3. The path leading to a bathing place in a tank or river.

**ପାଣି ବିଛା**—ଦେ. ବି.—(ସଂ. ପାନୀୟ+ବୃଶ୍ଚିକ)—ପାଣିରେ ବିଚରଣକାରୀ
Pāṇi bichhā ଏକ ପ୍ରକାର ବିଷାକ୍ତ ଲମ୍ବ କୀଟ—A kind of poisonous long insect living in water and having the shap of a scorpion.
[ଦ୍ର—ଏମାନଙ୍କର କଙ୍କଡ଼ା ବିଛାର ଅଛି । ଏମାନେ ପାଣିରେ ପଥର,କାଠ ଓ ଗଛରେ ରହନ୍ତି ।]

**ପାଣି ବିରାଡ଼ି**—ଦେ. ବି (ସଂ. ନାମ ଉଦ୍‌ବିଡାଲ, ସଂ. ପାନୀୟ+ବିଡ଼ାଳ)—
Pāṇi birāṛi ଓଧ—Otter.
ଉଦ୍ ବିଲାବ, **उद् बिलाव**
(ପାଣି ଭୂଆ—ଅନ୍ୟରୂପ) (ପାଣି ବଲେଇ—ଶୂଦ୍ର ବ୍ୟବହୃତ ରୂପ)

**ପାଣି ବୁଡ଼ା (ଡେ) ଇବା**—ଦେ. କ୍ରି—କୌଣସି ବଂଶର, ବ୍ୟକ୍ତିର ବା
Pāṇi buṛā (ṛe)ibā ସ୍ଥାନର ପ୍ରତିଷ୍ଠାକୁ ନଷ୍ଟ କରିବା—
ନାମ ଡୁବାନ To bring about the ruin of the good name or reputation of a family, person or place.

**ପାଣି ବୁହା**—ଦେ. ବି (ସଂ. ପାନୀୟ+ବହନ)—୧ । ଜଳକୁ ପାତ୍ର ଦ୍ୱାରା
Pāṇi buhā ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ନେବା—
ପାନୀ ବହା 1 Carrying water in any vessel from one place to another.
**पानी पटाना**
୨ । କ୍ଷେତକୁ ଜଳାଶୟାଦିରୁ ଜଳ ଉଠାଇବା—
2. Baling of water from a tank for irrigating fields.
୩ । (ଲକ୍ଷଣାର୍ଥ) କୌଣସି କଠିନ ପରିଶ୍ରମସାଧ୍ୟ କାର୍ଯ୍ୟ—
3 (figurative) Any hard or laboursome work.
[ ଦ୍ର—'ଢିଙ୍କି କୁଟା', ପାଣି ବୁହା' 'କୋଡ଼ି ହଣା, ପାଣି ବୁହା' ଓ 'ଘଣା ପେଲା, ପାଣି ବୁହା' ଆଦି ଶବ୍ଦ କଠିନ ପରିଶ୍ରମସାଧ୍ୟ କାର୍ଯ୍ୟ ପ୍ରତି ପ୍ରୟୋଗ କରାଯାଏ । ]
ଦେ. ବିଣ. ଓ ବି—ପାଣି ବୁହାଳି (ଦେଖ)—
Pāṇi buhāḷi ( See )

**ପାଣି ବୁହାଇବା**—ଦେ. କ୍ରି—(ସଂ. ପାନୀୟ+ବହ୍ ଧାତୁ)—
Pāṇi buhāibā ୧ । କ୍ଷେତରେ ମଡ଼ାଇବା ପାଇଁ କୌଣସି
(ପାଣି ବୋହିବା—ଅନ୍ୟରୂପ) ଜଳାଶୟରୁ ଜଳ ଉତ୍ତୋଳନ
ପାନୀ ବହାନ କରିବା—1. To bale out or lift water from a tank to irrigate fields.
**पानी लाना**
୨ । କୂପ ପୁଷ୍କରିଣୀ ଆଦିରୁ ଗୃହର ବ୍ୟବହାର ପାଇଁ ମାଠିଆ ଆଦିରେ ଜଳ ବହନ କରିବା—2. To carry water in water-vessels from one place to another

**ପାଣି ବୁହାଳି**—ଦେ. ବିଣ—ଯେଉଁ ବ୍ୟକ୍ତି ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ
Pāṇi buhāḷi ପାତ୍ରରେ ପାଣି ବହନ କରନ୍ତି—(person)
**पनहरा** Carrying water in water vessels from one place to another.
ଦେ. ବି—ପାଣି ବହନ କରି ସ୍ଥାନାନ୍ତରକୁ ନେବା ବ୍ୟକ୍ତି—
Water carrier.

**ପାଣି ବେଗୁନିଆ(ଆଁ)**—ଦେ. ବି (ସଂ. ଜଳ ବେତସ)—ଜଳ ବେତସ—
Pāṇi begunia (ān) Water ratan.
ପାଣି ବେଗୁନିଆଁ ଅମ୍ବର ପ୍ରବାହରୁ
ଉଦ୍ଧାର କର ସେ ଲିଙ୍ଗ ପତିତ ତଳକୁ । କୃଷ୍ଣସିଂହ, ମହାଭାରତ ଶା.ପ ।

**ପାଣି ବେତ**—ଦେ. ବି—ଜଳବେତସ; ବେତର ପ୍ରକାରବିଶେଷ—
Pāṇi beta Water ratan.
ଜଲ ବେତ, **पानी बेंत** (ବେତ ଉଚ୍ଚଳ-କୋଷ ଦେଖ)

**ପାଣି ବୋହିବା**—ଦେ. ବି ( ସ. ପାନୀୟ+ବହ୍ ଧାତୁ )—
Pāṇi bohibā ୧ । ସ୍ରୋତ ବହିବା—1. The flowing of
**ଜଳ ବହା, पानी बहना** water.
୨ । ମୁଖରୁ ଲାଳାସ୍ରାବ—2. Watering of the mouth.
୩ । ସ୍ୱେଦୋଦ୍ଗମ ହେବା—2. Perspiration.
୪ । ଶରଦ ଯୋଗୁଁ ନାସିକାରୁ ଜଳୋଦ୍ଗମ—
4. Watering of the nostrils due to cold.
୫ । ଚକ୍ଷୁରୁ ଲୋତକ ସ୍ରାବ ବା ଜଳ ସ୍ରାବ—
5. The coming of tears to the eyes.
୬ । ଘାଆ ଆଦିରୁ ଜାସା ଦେବା—
6. Watering of sores.
ଦେ. କ୍ରି—ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ପାତ୍ରାଦି ଦ୍ୱାରା ଜଳ ନେବା—To carry water from one place to another in a water vessel.
ମାଥ ସାଥନ୍ତାଣୀ ଭଣୀ—ଦେଇଥିବ ଗଡମାଳଅ ଘରେ ଲେ ଗରଡ ବୋହୁବେ ପାଣି—
ଶିଶୁଗୀତ
୨ । କ୍ଷେତ୍ରକୁ ଜଳ ମଡ଼ାଇବା ପାଇଁ ଖାଲ ବା ପୋଖରୀରୁ ଉଠାଇବା—
2. To bale out water from a tank or river to irrigate a field.

**ପାଣି ଭଅଁର(ରା)**—ଦେ. ବି—ଦୃଢ଼ପୃଷ୍ଠ କୃଷ୍ଣବର୍ଣ୍ଣ ଜଳକୀଟବିଶେଷ—
Pāṇi bha-anra(rā) A kind of stiff-winged
**जलकीड़ी** aquatic insect; the water betle;
(ପାଣିଭମ୍ବର—ଅନ୍ୟରୂପ) Dytiscut.
[ ଦ୍ର—ଏମାନେ ଖୁବ୍ ଦ୍ରୁତ ବେଗରେ ପାଣି ଉପରେ ପହଁରନ୍ତି ଓ ପଛ ଗୋଡ଼ଦ୍ୱାରା ଅଞ୍ଜୁଳା ମାରନ୍ତି । ଏମାନେ ମଜା ମଜା ହୋଇ ପାଣି ଉପରେ ଘୂରିକରି ବୁଲନ୍ତି । ]

**ପାଣି ଭଉଁରି**—ଦେ. ବି ( ସ. ପାନୀୟ+ଭ୍ରମଣ )—ଯେଉଁଠାରେ ପାଣି
Pāṇi bhaunri ଚକ୍ରପରି ଘୂରି ତଳକୁ ପଶି ଯାଉଥାଏ, ଜଳାବର୍ତ୍ତ—
**ଜଳଭଉଁରୀ, ଜଳଭ୍ରମୀ पानीभंवर** Whirlpool; eddy.
(ପାଣିମଲମଲ, ପାଣିଭମ୍ବର—ଅନ୍ୟରୂପ)

**ପାଣି ଭାଙ୍ଗିବା**—ଦେ. କ୍ରି—୧ । ପେଟ ଟାଣିଲେ ପେଟ ଉପରେ ଗୋଟିଏ
Pāṇi bhāngibā ବଡ଼ ପାତ୍ରରେ (କଂସାରେ) ଜଳ ରଖି ଗୋଟିଏ
**ଜଳଭାଙ୍ଗା पानीघालना** ଛୋଟ ପାତ୍ରଦ୍ୱାରା ତହିଁରୁ ଜଳ ଉଠାଇ ପୁଣି ସେହି ବଡ଼ ପାତ୍ର (କଂସା ପ୍ରଭୃତି) ମଧ୍ୟକୁ ଉପରୁ ଅଜାଡ଼ିବା—1. To put a large dish filled with water on the belly and lift the water from it with a smaller vessel and then pour it down into the bigger vessel repeatedly.
୨ । କୌଣସି ତରଳ ପଦାର୍ଥରେ ଉପର୍ଯ୍ୟୁପରି ପାଣି ମିଶାଇ ତାହାକୁ ତରଳତର କରିଦେବା—To make a liquid thinner by diluting it with water.
୩ । ଭାଙ୍ଗ ( ପଛ ସଙ୍ଗେ ମରିଚ ମସଲା ବାଟି ପାଣି ମିଶାଇ ଛାଣିବା କରାଯିବା ପାନୀୟକୁ ବାରଂବାର ) ଏକ ପାତ୍ରରୁ ଅନ୍ୟ ପାତ୍ରରେ ଅଜାଡ଼ିବା—
3. To pour bhānga from one pot to another and vice versa repeatedly before drinking it.

**ପାଣି ମଞ୍ଜୁଆତି**—ଦେ. ବି—ମଞ୍ଜୁଆତିବିଶେଷ—
Pāṇi manjuāti A kind of Manjuāti.
(ମଞ୍ଜୁଆତି ଦେଖ ନୋଟ୍ ଦେଖ)

**ପାଣିମଡ଼ା(ଡେ)ଇବା**—ଦେ. କ୍ରି - ଫସଲ ଆଦି ପାଇଁ ଜଳକୁ କ୍ଷେତ୍ରର
Pāṇimarḍā(rḍe)ibā ସବୁ ଅଂଶରେ ବିସ୍ତୃତ କରାଇବା—
**पानीबराना; पानीचढ़ाना** To irrigate a field with water.

**ପାଣିମନ୍ତୁରିବା**—ଦେ. କ୍ରି—ଜଳକୁ ଅଭିମନ୍ତ୍ରିତ କରିବା—
Pāṇimanturibā To consecrate water by blowing
**ଜଳପଢା** one's breath into it while repeating
**पानीपरीरना; पानीपढ़ना, पानीफुङ्कना** certain esoteric formulas.

**ପାଣିମରା**—ଦେ. ବି—ଜାହାଜ ପ୍ରଭୃତିରୁ ପାଣି ନିଷ୍କାଶନ—
Pāṇimarā Baling out water from the hold
**पानीमारना** of ships.
ଅଧ ରାତି ସରିକି ଜାହାଜ ଗାମର ହେଲା
ସମସ୍ତେ ମିଳି ପାଣିମରାରେ ଲାଗି ଥାଆନ୍ତି । ଫକୀରମୋହନ, ଗଳ୍ପସ୍ୱଳ୍ପ ।

**ପାଣିମରିବା**—ଦେ. କ୍ରି—୧ । କୌଣସି ଅଙ୍ଗରୁ ଶକ୍ତି କମ୍ ହେବା;
Pāṇimaribā ଅଙ୍ଗ ଅବଶ ହେବା; କ୍ଳାନ୍ତି—
**ଜଳମରା** 1. The loss of energy of a limb; weariness.
**पानीमरना** (ଯଥା—ପଦରେ କାଲ ଠିଆ ହୋଇ ମୋ ଗୋଡ଼ରୁ (ପାଣିମରାଯିବା—ଅନ୍ୟରୂପ) ପାଣି ମଲାଣି ।)
୨ । ଚକ୍ଷୁର ଦୃଷ୍ଟିଶକ୍ତି ଅବଶ ହେବା—
2. The tiring of the eyesight.
(ଯଥା—ତିନି ଦିନ ହେଲା ତାଙ୍କ ଆସିବାକୁ ଚାହିଁ ଚାହିଁ ଆଖିରୁ ପାଣି ମଲାଣି ।)
୩ । ସଙ୍ଗମ ଶକ୍ତି ଲୋପ ହେବା—
3. Loss of sexual vigour.
୪ । ଉତ୍ତାପଦ୍ୱାରା କୌଣସି ବସ୍ତୁ ନିର୍ଜଳ ହେବା—
4. The evaporation of water from a thing.

**ପାଣି ମାରିବା**—ଦେ. କ୍ରି—୧ । ଅଗ୍ନି ଆଦିର ଉତ୍ତାପଦ୍ୱାରା କୌଣସି
Pāṇi māribā ପଦାର୍ଥର ଜଳୀୟ ଅଂଶକୁ ନିଃଶେଷ କରିବା—
**ଜଳମାରା** 1. To dry up water from a thing by
**पानीमारना, पानीउतारना** applying heat.
(ପାଣିମାରଦେବା—ଅନ୍ୟରୂପ) ୨ । (ଅଶ୍ଳୀଳ) ଅଭିରତ୍କୁ ମୈଥୁନଦ୍ୱାରା ସ୍ତ୍ରୀଲୋକର କଣ୍ଡୁ ପ୍ରଶମନ କରିବା—2. (indecent) To assuage the sexual hankering of a woman by intercourse.
୩ । ଆଖି, ମୁଣ୍ଡ ବା ଅଙ୍ଗରେ ପାଣିର ଛିଟିକା ମାରିବା—
3. To splash water on the head or face of a person.

ନଅମି ନାମ ବହୁରେ ମାରୁଛ ଠୋବର ପାଣି । ଭଗ ।

୪ । (ଲକ୍ଷଣାର୍ଥ) ଦୁଷ୍ଟ ବା ଅଶିଷ୍ଟ ବ୍ୟକ୍ତିଙ୍କୁ ଦମନ କରିବା—4. (figurative) To punish a wicked or uncivil person.

୫ । ବେଇଜ୍ଜତ କରିବା—5. To humiliate a person.

**ପାଣିମିଳା**—ପ୍ରାଦେ. (ସମ୍ବଲପୁର) ବି—ମୃତ ବ୍ୟକ୍ତିଙ୍କ ବନ୍ଧୁମାନେ ଦଶାହ Pāṇimilā ଶୁଦ୍ଧିକ୍ରିୟା ଉପଲକ୍ଷରେ ମୃତବ୍ୟକ୍ତିଙ୍କ ଘରକୁ ଯେଉଁ ଲୁଗା ବେଭାରରୂପେ ପଠାନ୍ତି—The cloth sent to the house of a relation on the occasion of his obsequial rites.

**ପାଣିମୁକ୍ତ**—ସ. ବି—ହସ୍ତଦ୍ୱାରା ନିକ୍ଷେପଣୀୟ ଅସ୍ତ୍ର—(ଯଥା—ବର୍ଛିମ୍, Pāṇimukta ଢେଲା) (ସୁବଳଚନ୍ଦ୍ର)—Any weapon or messile thrown by the hand.

**ପାଣିମୁଖ**—ସ. ବି (ବହୁବ୍ରୀହି, ପାଣି+ମୁଖ, ବ୍ରାହ୍ମଣର ହସ୍ତ ଅଟେ Pāṇimukha ମୁଖ ଯାହାର)—ପିତୃ ଲୋକ (ସୁବଳ ଚନ୍ଦ୍ର)—The spirits of the departed ancestors.

**ପାଣି ରଖିବା**—ଦେ. କ୍ରି—୧ । କୌଣସି ଲୋକର ଇଜ୍ଜତ ବା ମହତ୍ତ୍ୱକୁ Pāṇi rakhibā ବଜାୟ ରଖିବା ବା ରକ୍ଷା କରିବା—**पानोरखना** 1. To preserve or save the honour of a or person.

୨ । କୌଣସି ବଂଶର ବା ବ୍ୟକ୍ତିର ପ୍ରତିଷ୍ଠା ବା ସୁନାମ ବଜାୟ ରଖିବା—2. To maintain or keep intact the good name or reputation of a person family.

**ପାଣିର ଗାର**—ଦେ. ବି.—ପାଣିଗାର (ଦେଖ) Pāṇira gāra Pāṇi gāra (See)

[ଦ୍ର—ପାଣିରେ ଗାର ପକାଇଲେ ମାତ୍ରେ ଲିଭି ଯାଏ ଅତ ଯେଉଁ ବିଷୟ କରିବାକୁ ପ୍ରତିଜ୍ଞା କରାଯାଇ, କରାଯାଏ ନାହିଁ, ସେହିଠାରେ ସେହି ବିଷୟକୁ ଲକ୍ଷ୍ୟ କରି "ପାଣିର ଗାର" ବୋଲି କୁହାଯାଏ ।]

**ପାଣିରେ ପକା(କେ)ଇବା**—ଦେ. କ୍ରି.—୧ । କୌଣସି ଦ୍ରବ୍ୟକୁ ଜଳସାତ୍ Pāṇire pakā(ke)ibā କରିବା—1. To comign a **জলে ফেলা** thing to water.

**पानीमे डालना. पानीमे फेंकदेना** ୨ । ବବୁଡ଼ାଇବା—2. To moisten.

୩ । ବୃଥାରେ (ଧନ) ବ୍ୟୟ କରିବା—3. To spend money without any result.

୪ । ଅପାତ୍ରରେ ଧନ ଦେବା—4. To give money to an unworthy object or man.

**ପାଣିରେ ସର ପକା(କେ)ଇବା**—ଦେ. କ୍ରି.—୧ । ଅସମ୍ଭବ କାର୍ଯ୍ୟ Pāṇire sara pakā(ke)ibā କରିବା—1. To do the imposible.

୨ । ଭିତରରେ କପଟ ରଖି ମୁଖରେ ମଧୁର ବାକ୍ୟ କହିବା—2. To utter sweet words while entertaining simister throughout in the mind.

**ପାଣିଲଇ**—ପ୍ରାଦେ. (ଗଡ଼ଜାତ) ବି.—ଜଙ୍ଗଲରେ ଛାୟାଯୁକ୍ତ ଓ ଶୀତଳ Pāṇi lai ସ୍ଥାନରେ ଉଠେ ମାଢ଼ୁଆ ଲତାବିଶେଷ—A kind of tenacious wild creeper growing in shady and cool places.

[ଦ୍ର—ଏହାର ପତ୍ରର ଆକୃତି ହୃତ୍କାର ଆକୃତି ପରି । ଏହା ଲଇ ରୂପେ ବ୍ୟବହୃତ ହୁଏ ।]

**ପାଣି ଲାଗି**—ଦେ. ବି.—୧ । ସଂକଳ୍ପପୂର୍ବକ ଦେବତାଙ୍କ (ବିଶେଷତଃ Pāṇi lāgi ଶିବ ଲିଙ୍ଗ) ଉପରେ ପାଣି ଢାଳିବା ବା ଚଢାଇବା, ଦେବତାଙ୍କ ସ୍ନାନ—1. Pouring water on the image of a Deity.

୨ । ରାଜା ଆଦିଙ୍କ ସ୍ନାନ ବିଧି—2. The bath of Rajas.

**ପାଣି ଲାଉ**—ପ୍ରାଦେ. (ମେଦିନୀପୁର) ବି.—ଲାଉ (ଦେଖ) Pāṇi lāu Lāu (See)

**ପାଣି ଲାଜକୁ(କୋ)ଲୀ**—ଦେ. ବି.—(ପାଣି+ସ. ଲଜ୍ଜାଳୁଲା)—Pāṇi lājaku(ko)li ବନ୍ଧୁଲାଦ ବର୍ଗୀୟ ଜଳ ନିକଟରେ ଜନ୍ମିବା

ପାଣିଲାଜକୁସ୍ତ, ପାଣି ଲାଜକୋଲୀ, ପାଣି ଲାଜକୋସ୍ତ } ଅନ୍ୟରୂପ — କଣ୍ଟକହୀନ ଲତାବିଶେଷ—Neptunia Obracia; an aquatic pot-herb.

ସ. ନାମ—ଅଲମ୍ବୁଷା, [ଦ୍ର—ଏହାର ପତ୍ର ଦ୍ୱିଧା, ପକ୍ଷାକାରବିଶିଷ୍ଟ, ଖରଭୁକ, ମୋଦୋଗଲା ଛୁଇଁଲେ ବୁଜି ହୋଇ ଯାଏ । ଏହାକୁ ଶାଗ **पानि पानिलाजक** କରି ଖାଆନ୍ତି । ଏହାର ଫୁଲ ଈଷତ୍ **ल्याज्‌क, फुलशोला** ଲାଲ ବର୍ଣ୍ଣ ।]

**पानी छुइमुइ**

**ପାଣି ଲେଉଟିଆ**—ଦେ.ବି. (ସ. ତଣ୍ଡୁଲୀୟକ)—ଲେଉଟିଆ ଶାଗ(ଦେଖ) Pāṇi leuṭiā Leuṭiā (See)

(ପାଣି ନେଉଟିଆ—ଅନ୍ୟରୂପ) (ହରେକୃଷ୍ଣ. ଦ୍ରବ୍ୟଗୁଣ)

**ପାଣିଲୋହା**—ପ୍ରାଦେ. (ଗଡ଼ଜାତ) ବି.—ପାଣିସାରୁ (ଦେଖ) Pāṇi lohā Pāṇi sāru (See) (Haines).

**ପାଣି ଶଙ୍ଖ**—ଦେ. ବି.—(୧) (ସ. ପାନୀୟ+ଶଙ୍ଖ)—ଯେଉଁ ଶଙ୍ଖର Pāṇi śaṅkha ଗଣ୍ଠିରେ ଛିଦ୍ର ନ ଥାଏ ଓ ଯହିଁରେ ଦେବ ପୂଜା **পানিশঙ্খ, পানিশঙ্খ** ପାଇଁ ଜଳ ରଖାଯାଏ—1. A conch without a hole which contains water for purposes of being used during worship.

୨ । (ସ. ପାଣି=ହାତ+ଶଙ୍ଖ)—ଯେଉଁ ଶଙ୍ଖକୁ ହାତରେ ଧରି ଫୁଙ୍କି ବଜାଯାଏ—2. A conch which is blown with the mouth by being held with the hands.

**ପାଣିଶିଉଳୀ**—ଦେ. ବି. -(ସ. ପାନୀୟ+ଶୀତଳ)—ଜଳଜ ଲତା ଶାକ- Pāṇi siuḷi ବିଶେଷ—Lemanthemum Indicum; **পানি শিঅলী** Menyanthes Cristate; Vellarisa **पानड़ी** Cristata.

[ପାଣିଶିମି(ମୁ)ଳା—ଅନ୍ୟରୂପ [ଦ୍ର—ଏହାର ପତ୍ର କଇଁ ପତ୍ର ପରି ସ. ନାମ—ଶୀତାଲୀ କନ୍ଦ ପତଳା ଓ ମସୃଣ । ଗଛ ପାଣିରେ ଭାସି ଭାସି **कालाकुमारिका** ଜନ୍ମେ । ଏହାର ଡାଙ୍ଗରେ ଗଣ୍ଠିରୁ ଚେର

ଜନ୍ମେ ଓ ସେ ଡେର ପାଣିରେ ଭାସୁଥାଏ । ଫୁଲ ଶ୍ୱେତ ଓ ପତ୍ରର ଧଡ଼ ଚର୍ ଚର୍ । ଫୁଲର ଡେଙ୍ଗ ହଳଦିଆ, ଏହାର ପତ୍ରକୁ ଫୁଲ ଓ କଥ ଉପରେ ପକାଇଲେ ଥଣ୍ଡା ଲାଗେ । ଆଉ ଏକପ୍ରକାର ଶ୍ୱେତଜାତୀୟ ଲତାକୁ ଶ୍ୱେତ ପାଣିଶିଉଳୀ (Lemanthum cristatum) କହନ୍ତି ।]

**ପାଣି ଶୋର୍**—ପ୍ରାଦେ. (ସିଂହଭୂମ) ବି.—ପାଣି ବୋହିଯିବା ପାଇଁ ପ୍ରସ୍ତୁତ
Pāṇi sorā     ନାଳଆ—Drainage; water channel.

**ପାଣିଶୋଲରି**– ଦେ. ବି —ପାଣିକୂଳରେ ଜନ୍ମିବା ଶାକବିଶେଷ—
Pāṇi solari     A kind of aquatic pot-herb.
[ ଦ୍ର—ଏହାର ପତ୍ରଗୁଡ଼ିକ ଛିନ୍ନଲପତ୍ର ଭଳି ଶ୍ୱେତ, ଏହାର ଶାଗ ରୁଚିକର । ]

**ପାଣି ସଡ଼କା ମାରିବା**—ପ୍ରାଦେ. ( ଯାଜପୁର ) ବି—(କୌଣସି ସ୍ଥାନ)
Pāṇi sarḍakā māribā   ସନ୍ତସନ୍ତିଆ ହେବା—( a place)
To become moist or damp.

**ପାଣିସର୍ଗ୍ୟା**—ସଂ. ବି. ( ପାଣି + ସୃଜ୍ ଧାତୁ + କର୍ମ. ଯ + ଆ, ଯାହା
Pāṇi sargyā     ହାତ ଦ୍ୱାରା ନିର୍ମିତ ହୁଏ )—
ରଜ୍ଜୁ, ଦଉଡ଼ି (ସୁବଳଚନ୍ଦ୍ର)—Rope.

**ପାଣିସାଇଁ(ଇ)**—ଗ୍ରା ବି. ଓ ବିଣ. ( ସଂ. ପାନୀୟ + ଶାୟିନ୍ )—
Pāṇi sāĩ(i)     ଜଳଶାୟୀ ( ଦେଖ )
ପାଣି ସେଇଁ(ଇ)—ଅନ୍ୟରୂପ     Jalaśāyī ( See )

**ପାଣି ସାରିବା**—ଦେ. କ୍ରି—୧ । ଝାଡ଼ା ଫେରି ସାରି ଗୁହ୍ୟଦ୍ୱାର ଜଳ
Pāṇi sāribā     ଦ୍ୱାରା ଶୌଚ କରିବା—
ଜଲ শৌচ হওআ   1. To wash the posteriors after
प ... छूना, पानी लेना     easing oneself.

ଧୂଳ ପାଣି ... ଅପଣାର ବଣ୍ଟାକୁ
ମେ ଗୃହେ ଅମଙ୍ଗଳ ହୁଅଇ ତାହାକୁ । କୃଷ୍ଣସିଂହ, ମହାଭାରତ ଶାନ୍ତି ।

୨ । ଜଳ ପାନ କରିବା—2. To drink water.

**ପାଣିସାରୁ**—ଦେ. ବି. ( ସଂ. କୋଚ, ଏକକନ୍ଦ )—
Pāṇisāru     ପାଣିକୂଳରେ ଜନ୍ମିବା ଏକ ପ୍ରକାର ସାରୁ—
কাঁটা কচু     A kind of Colocacia; Lasia Hetero-
पानी अरबी     phylla; vitis Late foloia (Haines).
[ ଦ୍ର—ଏହାକୁ ଗରିବ ଲୋକେ ସିଝାଇ କରି ଖାଆନ୍ତି । ଏହାକୁ ଖାଇଲେ ପାଟି କୁଣ୍ଡେଇ ହୁଏ । ଏହା ଦୁଇ ପ୍ରକାର, ଏକ ପ୍ରକାର ପତ୍ରର ଡେଙ୍ଗ ହରିଦ୍ବର୍ଣ୍ଣ ଓ ଅନ୍ୟ ପ୍ରକାରର ଡେଙ୍ଗ ବାଇଁଗଣି ରଙ୍ଗର । ]

**ପାଣି ସାଳ**—ଦେ. ବି. ( ସଂ. ପାନୀୟ + ଶାଳା )—
Pāṇi sāḷa     ୧ । ପଥିକମାନଙ୍କ ପିଇବାକୁ ଦେବା ନିମିତ୍ତ ଓ
জলছত্র  ପାଣି ରଖିବା ନିମିତ୍ତ ପ୍ରସ୍ତୁତ ହୋଇଥିବା ଘର, ପାଣି ଛତର—
पनसाल, पौसरा   1 A house where water is stored up and distributed to wayfarers.
୨ । ଟେଣ୍ଡା ଶାଳ ( ଦେଖ )
2. Teṇḍāśāḷa ( See )

**ପାଣିହଳା**—ଦେ. ବି—ଉଭୟଚର ବିଷାକ୍ତ ସର୍ପବିଶେଷ—
Pāṇihaḷā     A kind of poisonous amphibeous
(ପାଣିହୁଳା—ଅନ୍ୟରୂପ)     snake.

ପାଣିହଳା ଧଣ୍ଡା ଢଡ ଆଦି ଏ ସାପ
ଛୁଇଁଲେ ପଡ଼ ଧରି କର୍ଣ୍ଣଙ୍କ ସମୀପ । କୃଷ୍ଣସିଂହ, ମହାଭାରତ. କର୍ଣ୍ଣ ।

ପ୍ରାଦେ. ( ବାଲେଶ୍ୱର ) ବି—ତେଲୁଣିପୋକ—
Galley worm.

ପ୍ରାଦେ. ( ଗଞ୍ଜାମ, ଜୟପୁର, ବିଶାଖାପଟ୍ଟଣା )—
ମାଟିବର୍ଣ୍ଣ ସାପ—A kind of nonvenemous brown coloured snake.

**ପାଣି ହେବା**—ଦେ. ବି—୧ । ଜଳାର୍ଦ୍ର ହେବା—
Pāṇi hebā     1 To become wet.
পানী হওয়া     ୨ । ମିଳେଇଯିବା—2 To be dissolved
पानी होना     in water.
୩ । (ଲୁଣ ଆଦି) ପାଣିରେ ପରିଣତ ହେବା—
3 To turn into water.
୪ । (ଲକ୍ଷଣାର୍ଥ) ପାଣି ପରି ଉଭେଇଯିବା—
4 (figurative) To vanish like water.
୫ । (ଲକ୍ଷଣାର୍ଥ) ପାଣି ପରି ଥଣ୍ଡା ହୋଇଯିବା—
5. (figurative) To become cold like water.
( ଯଥା—ସନ୍ନିପାତ ଯୋଗୁଁ ତା ଦେହ ହାତ ପାଣି ହୋଇ ଯାଉଛି । )

**ପାଣୀ**—ସଂ ବି.(ପଣ୍ ଧାତୁ = ବ୍ୟବସାୟ କରିବା + କର୍ତ୍ତୃ. ଇନ୍,୧ମା ୧ବ)-
Pāṇī     ୧ । ବେଦାର୍ଥ ବ୍ୟବସାୟୀ ବୈଦିକ ବ୍ରାହ୍ମଣସମ୍ପ୍ରଦାୟବିଶେଷ—
1. A sect of Brāhmaṇas whose profession was to explain the Bedas
୨ । ହସ୍ତ, ହାତ—2. Hand. ( M. W. )
ଦେ. ବି—ପିକାଅରି ଓ ପଣ୍ଡାଶ୍ରେଣୀର ବ୍ରାହ୍ମଣଙ୍କ ବଂଶୋପାଧି—
A family title of a lower order of Brāhmaṇas.

**ପାଣୁ**—ଗ୍ରା. ବି—୧ । (ଆଦରାର୍ଥକ) ପ୍ରାଣବନ୍ଧୁ, ପ୍ରାଣକୃଷ୍ଣ, ପ୍ରାଣଧନ,
Pāṇu     ପ୍ରାଣନାଥ ନାମର ବ୍ୟକ୍ତିଙ୍କୁ ଡାକିବା ନାମ—
(ପାଣୁଆ—ଅନାଦରାର୍ଥକ)   1. A name by which persons whose name begin with 'Prāṇa' are called.
୨ । ଅପତ୍ରିଆଣୀଙ୍କ ନାମ—2. A name given to boys whose elders died before the former were born.
୩ । କନ୍ଧମାନଙ୍କ ଗ୍ରାମ ପ୍ରାନ୍ତରେ ବାସ କରୁଥିବା ଲୁଗାବୁଣା ଜାତି-
3. A class of lowcaste weavers living in the precincts of Kandha villages.
[ ଦ୍ର—ପୂର୍ବେ ଏମାନଙ୍କ ମଧ୍ୟରୁ ଭୂଦେବତାଙ୍କୁ ବଳି ଦେବା ନିମନ୍ତେ 'ମେରିଆ' କିଆ ଯାଉଥିଲା । କନ୍ଧମାନେ ଏମାନଙ୍କୁ ଆପଣା-ଠାରୁ ନୀଚ ବୋଲି ମନେ କରନ୍ତି । ଏହି ପାଣମାନେ ଅନ୍ୟ ଦେଶକୁ ଯାଇ ହିନ୍ଦୁ ଜାତିର ଲୋକ ଚୋରାଇ ଆଣି ମେରିଆ ପାଇଁ କନ୍ଧମାନଙ୍କୁ ଯୋଗାଉଥିଲେ । ]

**ପାଣେଇତି**—ଦେ. ବି. ସ୍ତ୍ରୀ—ପାଣିଇତି ( ଦେଖ )
Pāṇeiti     Pāṇi-iti ( See )

**ପାଣେଇବା**—ଦେ. କ୍ରି. ( ସ ପାନୀୟରୁ ଓଡ଼ିଆ ନାମଧାତୁ )—
**Pāneibā** ୧ । ଜଳରୂପେ ପରିଣତ ହେବା—
ଜଲ ହୋନା 1. To turn into water.
**पानी होना** ୨ । ଜଳପୂର୍ଣ୍ଣ ହେବା—2. To become filled up with water.
(ପାଣେଇଯିବା—ଅନ୍ୟରୂପ)
୩ । ଜଳୀୟ ପଦାର୍ଥରେ ପୂର୍ଣ୍ଣ ହେବା—
3. To become full of watery-substance.
( ଯଥା—ଛନ ଦନ ପରେ ବସନ୍ତ ପାଣେଇଯାଏ, ତତ୍ପରେ ପୂଜେଇ ଯାଏ । )
୪ । (ମୁଖ) ଖାଦ୍ୟଦ୍ରବ୍ୟ ପାଇଁ ଲାଳାମୟ ହେବା—
4 To water; to salivate ( said of the mouth of person hankering after food ).
୫ । ଜଳରେ ମିଶାଇବା ବା ମିଳାଇବା—
5. To dissolve in water.
୬ । ଜଳରେ ପରିଣତ କରବା—
6. To turn into water.

**ପାଣ୍ଟା**—ପ୍ରାଦେ. (ଗଞ୍ଜାମ) ବି (ତେଲଗୁ ?)—ଖଳା, ଫସଲ—
**Pānṭā** Crop.

**ପାଣ୍ଟା ନଷ୍ଟି**—ପ୍ରାଦେ. (ଗଞ୍ଜାମ) ବି—ଫସଲର କ୍ଷତ—
**Pānṭā nashṭi** Loss of a crop.

**ପାଣ୍ଟି**—ବୈଦେ. ବି—ପାଣ୍ଠି (ଦେଖ)
**Pānṭi** Pānṭhi (See)

**ପାଣ୍ଠି**—ଦେ. ବି—୧ । ମୂଳଧନ, ବେପାର ବଣିଜର ମୂଳଧନ, ପୁଞ୍ଜି—
**Pānṭhi** 1. The capital of business.
ପୁଁଜି ୨ । ଗଚ୍ଛିତ ଧନ, ସଞ୍ଚିତ ଧନ—
**पुंजी** 2. Stock; hoard.

**ପାଣ୍ଟ** ବୈଦେ ବି. (ଇଂ. ପାଇଣ୍ଟ)—ପାଇଣ୍ଟ, ପ୍ରାୟ ଏକ-
**पांट** ପାଅ ପରମିତ ( କ୍ରାଣ୍ଟି, କେରୋସିନ ତେଲଆଦ )—
**पांटी** Pint (measure of liquid).

**ପାଣ୍ଠି କରବା**—ଦେ. କ୍ରି—୧ । ଗଚ୍ଛିତ ଧନ ସଞ୍ଚୟ କରବା—
**Pānṭhi kariba** 1. To hoard money.
ପୁଁଜିକବା ୨ । ମୂଳଧନରୂପେ ବବେଚନା କରବା—
**पुंजि करना** 2. To consider as the capital of a business.

**ପାଣ୍ଟି ବୋତଲ**—ବୈଦେ. (ଇଂ. ପାଇଣ୍ଟ+ବତୁଲ)—
**Pānṭhi botala** ଯେଉଁ ବୋତଲରେ ଏକ ପାଇଣ୍ଟ ପରମିତ
**पाइंबोतल** ତେଲାଦ ଧରବ—Pint bottle; a bottle
**पां टोबोतल** of the capacity of one pint.

**ପାଣ୍ଡ୍ରା**—ପ୍ରାଦେ. (ସମ୍ବଲପୁରୀ) ବିଣ. (ସଂ. ପାଣ୍ଡୁର)—ପାଣ୍ଡରା (ଦେଖ)
**Pānd-rā** Pāndarā (See)

**ପାଣ୍ଡ୍ରି**—ଦେ. ବିଣ. ସ୍ତ୍ରୀ—ପାଣ୍ଡ୍ରାର ସ୍ତ୍ରୀଲିଙ୍ଗ—
**Pānd-ri** Feminine of Pāndarā.

**ପାଣ୍ଡବ**—ସଂ. ବି. ପୁଂ. (ପାଣ୍ଡୁ+ଅପତ୍ୟାର୍ଥେ. ଅ)—
**Pāndaba** ୧ । ପାଣ୍ଡୁ ରାଜାଙ୍କର ପଞ୍ଚପୁତ୍ର; ପଞ୍ଚ ପାଣ୍ଡବ—
1. The five sons of king Pāṇḍu.
[ ଯୁଧିଷ୍ଠିର, ଭୀମ, ଅର୍ଜୁନ, ନକୁଳ ଓ ସହଦେବ, ଏହିମାନେ ପଞ୍ଚପାଣ୍ଡବ । ଏଥିମଧ୍ୟରୁ କୁନ୍ତୀଙ୍କ ପୁତ୍ର ପ୍ରଥମ ୩ଜଣ, ମାଦ୍ରୀଙ୍କ ପୁତ୍ର ଶେଷ ୨ଜଣ । ]
୨ । ଝେଲମ ନଦୀତୀରରେ ଅବସ୍ଥିତ ପ୍ରାଚୀନ ପ୍ରଦେଶ (ହି ଶ)—
2. Name of an ancient province of North India on the bank of the river Sutlej.
୩ । ପାଣ୍ଡବ ପ୍ରଦେଶବାସୀ ବ୍ୟକ୍ତି (ହି. ଶ)—
3. An inhabitant of the ancient province of that name.
ଦେ. ବି—୧ । ଗଉଡ଼ ଜାତିବିଶେଷ—
1. A sect of cowherds.
୨ । ଲୋକଙ୍କ ନାମ—2. A name given to males.

**ପାଣ୍ଡବନଗର(ରୀ)**—ସଂ. ବି—ଇନ୍ଦ୍ରପ୍ରସ୍ଥ, ପ୍ରାଚୀନ ଦିଲ୍ଲୀ (ହି. ଶ)—
**Pāndabanagara(ri)** A name of ancient Delhi.

**ପାଣ୍ଡବାୟନ**—ସଂ. ବି. (ପାଣ୍ଡବ+ଅୟନ)—ଶ୍ରୀକୃଷ୍ଣ (ହି. ଶ)—
**Pāndabāyana** A name of Srikrushna.

**ପାଣ୍ଡବୀୟ**—ସଂ. ବି. (ପାଣ୍ଡବ+ସମ୍ବନ୍ଧାର୍ଥେ ଈୟ)—୧ । ପାଣ୍ଡବ ସମ୍ବନ୍ଧୀ—
**Pāndabiya** 1. Relating to the Pāndabas.
୨ । ପାଣ୍ଡବ ପକ୍ଷୀୟ—2. Of the side or party of the Pāndabas.

**ପାଣ୍ଡବେୟ**—ସଂ. ବି ପୁଂ—୧ । (ପାଣ୍ଡୁ+ଅପତ୍ୟାର୍ଥେ ଏୟ)—
**Pāndabeya** ପାଣ୍ଡବ—1. The Pāndabas.
୨ । (ପାଣ୍ଡବ+ଅପତ୍ୟାର୍ଥେ ଏୟ)—ଅଭିମନ୍ୟୁଙ୍କ ପୁତ୍ର ରାଜା ପରୀକ୍ଷିତ (ହି. ଶ)—2 A name of king Parikshita.

**ପାଣ୍ଡର**—ସଂ. ବି. (ପଣ୍ଡ ଧାତୁ=ଗମନ କରବା+କର୍ତ୍ତୃ. ସଂଜ୍ଞାର୍ଥେ. ଅର)—
**Pāndara** ୧ । ପାଣ୍ଡୁବର୍ଣ୍ଣ, ଛେତାରଙ୍ଗ—1. Pale yellow colour; yellowish white colour.
୨ । ଶୁକ୍ଳବର୍ଣ୍ଣ—2. White colour.
୩ । ମରୁଆ (ଦେଖ)—3. Maruā (See)
୪ । କୁନ୍ଦପୁଷ୍ପ (ଦେଖ)—4. A flower kunda (See)
୫ । ଗିରିମାଟି, ଗେରୁ—5. Red ochre.
ସଂ. ବିଣ. ପୁଂ—ପାଣ୍ଡୁବର୍ଣ୍ଣବିଶିଷ୍ଟ; ଛେତା—Pale.
ସ୍ତ୍ରୀ. ବୈଦେ. ବି. (ଇଂ. ପାଉଡର)—ପାଉଡର (ଦେଖ) Pāudara (See)

**ପାଣ୍ଡରା**—ଦେ. ବିଣ. (ସଂ. ପାଣ୍ଡର)—୧ । ପାଣ୍ଡୁବର୍ଣ୍ଣବିଶିଷ୍ଟ—
**Pāndarā** 1. Grey; brown.
(ପାଣ୍ଡରଆ—ଅନ୍ୟରୂପ) ୨ । ହରିଦ୍ରାଭ ଶୁକ୍ଳବର୍ଣ୍ଣବିଶିଷ୍ଟ—
ପାଁଓରା **पाण्डु** 2. Yellowish white.
୩ । ପାଉଁଶିଆ—3. Ashy.
ସଂ. ବିଣ. ସ୍ତ୍ରୀ—ପାଣ୍ଡରର ସ୍ତ୍ରୀଲିଙ୍ଗ—
Feminine of Pāndara.

**ପାଣ୍ଡରା କଦଳୀ**—ଦେ. ବି. (ସଂ. ପାଣ୍ଡର+କଦଳୀ)—
**Pāndarā kadali** ପାଉଁଶିଆ ବନ୍ତଳ (ଦେଖ)—
ହରେକୃଷ୍ଣ. ଦ୍ରବ୍ୟଗୁଣ—Pāunsia bantala (See)

**ପାଣ୍ଡରୀ**—ଦେ. ବଣ. ସ୍ତ୍ରୀ—ପାଣ୍ଡରର ସ୍ତ୍ରୀଲିଙ୍ଗ—
Pāṇḍarī Feminine of Pāṇḍarā.

**ପାଣ୍ଡା**—ପ୍ରାଦେ. (ଗଡ଼ଜାତ) ବଣ. (ସ. ପଣ୍ଡ)—ବିଫଳମନୋରଥ; ନିଷ୍ଫଳ-
Pāṇḍā Fruitless; unsuccessful.
[ ଦ୍ର—ଟ୍ରେଇନ୍ ଗୁଲିଗଲା । ଭଦ୍ରଲୋକଟି ଟ୍ରେନରେ ଉଠି ନ ପାରି ପାଣ୍ଡା ହୋଇ ଷ୍ଟେସନରେ ବସି ରହିଲେ । ଗଡ଼ଜାତବାସିନୀ (୨୬ । ୪ । ୩୦) ]
୨ । (ପାରିକୁଦ) ଚିଲିକାରେ ଶୀତ ଋତୁରେ ଦେଖାଯିବା ଏକ-ପ୍ରକାର ପକ୍ଷୀ—2 A kind of aquatic bird frequenting the Chilka lake in winter.

**ପାଣ୍ଡାଲ୍**—ବୈଦେ ବି.—(ଇଂ.)—ସଭାମଞ୍ଚ; ରଙ୍ଗମଞ୍ଚ, ବକ୍ତୃତାଳୟ—
Pāṇḍāl Pandal.
ପାଣ୍ଡାଲ **फौड़ाल**

**ପାଣ୍ଡା ହଂସ**—ପ୍ରାଦେ. (ପାରିକୁଦ) ବି.—ଚକ୍ରବାକ—
Pāṇḍā hamsa The ruddy goose.

**ପାଣ୍ଡି**—ଦେ. ବି.—୧ । କୁମ୍ଭାରୁଣୀମାନେ ଜଙ୍ଗଲରୁ କାଟିବା କଣ୍ଟାଝାଟି
Pāṇḍi ଗୋଛ—1. Bundles of thorn; shrub and twigs collected by potter women from jungle for burning earthen pots.
୨ । ଚିଲିକାରେ ଦେଖାଯିବା ପାଣ୍ଡୁରଲିପ୍ତପଦ ପକ୍ଷୀବିଶେଷ—
2. A kind of grey webfooted aquatic bird.
ଦେ. ବଣ. ପୁଂ. ଓ ସ୍ତ୍ରୀ—(ଶିଶୁଙ୍କ ପ୍ରତି ବ୍ୟବହୃତ) ସ୍ଥୂଳକାୟ ଓ ଖର୍ବ—Stout and dwarfish.

**ପାଣ୍ଡିଆ**—ଦେ. ବି.—୧ । ଏକପ୍ରକାର ପାଣ୍ଡୁରଲିପ୍ତପଦ ଜଳଚର ପକ୍ଷୀ—
Pāṇḍiā 1. A kind of grey webfooted bird.
**पाळति** (ପାଣ୍ଡିଆ—ଅନ୍ୟରୂପ) ୨ । ଜଙ୍ଘ—2. Thigh.

**ପାଣ୍ଡିଆ ମାଣ୍ଡି ବସିବା**—ଦେ. ବି.—ଦୁଇ ଜଙ୍ଘକୁ ଭୂମିରେ ଲୋଟାଇ ବା
Pāṇḍiā māṇḍi basibā ପକ୍ଷ୍ୟୁଣ୍ଡିରୂପେ ସଲଗ୍ନ କରି ବସିବା—
**पाळति मारके बैठना** To squat with the thighs touching the ground.

ପାଣ୍ଡିଆ ପାଡ଼ି ବସିବା, ପାଣ୍ଡିଆ ପାରି ବସିବା, ପାଣ୍ଡିଆ ପକାଇ ବସିବା, ପାଣ୍ଡିଆ ପାଡ଼ିବା } ଅନ୍ୟରୂପ

**ପାଣ୍ଡିତ୍ୟ**—ସ. ବି.—(ପଣ୍ଡିତ+ଭାବାର୍ଥେ. ଯ)—୧ । ବିଦ୍ୟା—
Pāṇḍitya 1. Learning.
୨ । ନୈପୁଣ୍ୟ—2. Skill.
୩ । ଚତୁରତା—3. Cleverness; talent.
୪ । ବିଦ୍ବତ୍ତା—4. Scholarship; erudition.

**ପାଣ୍ଡୁ**—ସ. ବଣ.—(ପାଣ୍ଡ୍ ଧାତୁ=ଗମନ କରିବା+କର୍ତ୍ତୃ. ବା ସଜ୍ଞାର୍ଥେ.
Pāṇḍu ଉ)—୧ । ଧୂସର, ପାଂଶୁବର୍ଣ୍ଣବିଶିଷ୍ଟ—
ପାଣ୍ଡୁତା, ପାଣ୍ଡୁତ୍ୱ } ବିଶେଷ୍ୟ 1. Grey; pale white
୨ । ଗୌର ବା ଶ୍ୱେତ—White.
୩ । ଶୁକ୍ଳ ପୀତ—3. Yellowish white.
୪ । ଫିକା—4. Pale; yan.

ସ. ବି.—୧ । ରୋଗବିଶେଷ; ହଳଦିଆ କାମଳ ରୋଗ—
1. Jaundice.
[ ଦ୍ର—ଏହି ରୋଗରେ ଆଖି ହଳଦିଆ ହୋଇଯାଏ । ଏହା ରକ୍ତହୀନତାରୁ ଜାତ ହୁଏ ]
୨ । ଭାରତର ତୀର୍ଥବିଶେଷ—
2. Name of a sacred place in India
୩ । ଦକ୍ଷିଣ ଭାରତର ଦେଶବିଶେଷ—
3. Name of a country in south India.
୪ । ହସ୍ତିନା ନଗରୀର ରାଜା; ପାଣ୍ଡବମାନଙ୍କ ପିତା; ଧୃତରାଷ୍ଟ୍ରଙ୍କ ସାନ ଭାଇ—4. Name of the father of the Pāṇḍabas.

[ଦ୍ର—ଏ ବ୍ୟାସଦେବଙ୍କ ଔରସରେ ବିଚିତ୍ରବୀର୍ଯ୍ୟଙ୍କର ଏକ ବିଧବା ରାଣୀ ଅମ୍ବାଳିକାଙ୍କ ଗର୍ଭଜାତ କ୍ଷେତ୍ରଜ ସନ୍ତାନ ଥିଲେ । ଅମ୍ବାଳିକା ବ୍ୟାସଦେବଙ୍କର ଭୟଙ୍କର ମୂର୍ତ୍ତି ଦେଖି ପାଣ୍ଡୁବର୍ଣ୍ଣା ହୋଇ ଯିବାରୁ ତାଙ୍କର ପୁତ୍ର ମଧ୍ୟ ପାଣ୍ଡୁବର୍ଣ୍ଣ ହେଲେ । ଏଥିପାଇଁ ଏହି ପୁତ୍ରର ନାମ ପାଣ୍ଡୁ ଦିଆଗଲା ।

ପାଣ୍ଡୁଙ୍କର ଦୁଇ ସ୍ତ୍ରୀ କୁନ୍ତୀ ଓ ମାଦ୍ରୀ । କୁନ୍ତୀଙ୍କ ଗର୍ଭରୁ ଯୁଧିଷ୍ଠିର, ଭୀମ ଓ ଅର୍ଜୁନ ଏବଂ ମାଦ୍ରୀଙ୍କ ଗର୍ଭରୁ ନକୁଳ ଓ ସହଦେବ ଜନ୍ମି ଥିଲେ । ଅଭିଶାପ ଫଳରେ ସେ ନିଜେ ସ୍ତ୍ରୀସହବାସ କରୁ ନ ଥିଲେ ଓ ତାଙ୍କର ସ୍ତ୍ରୀଦ୍ୱୟ ଦୁର୍ବାସାଙ୍କଠାରୁ ପ୍ରାପ୍ତ ଏକ ମାଳାକୁ ଜପି ଭିନ୍ନ ଭିନ୍ନ ଦେବତାଙ୍କୁ ସ୍ମରଣ କରି ତତ୍ତତ୍ ଦେବତାଙ୍କ ଔରସରେ ୫ଟି ପୁତ୍ର ଉତ୍ପାଦନ କରିଥିଲେ । ଏହି ପଞ୍ଚ ପାଣ୍ଡବ ପାଣ୍ଡୁଙ୍କର କ୍ଷେତ୍ରଜ ସନ୍ତାନ ଥିଲେ । ଏକଦା ସେ ମୃଗ ବୋଲି ମୃଗରୂପୀ କୌଣସି ଋଷି-ପୁତ୍ରଙ୍କୁ ବଧ କରିଥିଲେ । ଏହି ମୃଗରୂପୀ ଋଷି ସେହି ସମୟରେ ସ୍ୱପତ୍ନୀ ପ୍ରତି ଆସକ୍ତ ଥିଲେ । ତାହାଙ୍କର ଅଭିଶାପ ଯୋଗୁଁ ପାଣ୍ଡୁ ସ୍ତ୍ରୀସହବାସରୁ ବଞ୍ଚିତ ହେଲେ । କେତେକାଳ ପରେ ପାଣ୍ଡୁ ଉକ୍ତ ଅଭିଶାପ ବିଷୟ ବିସ୍ମୃତ ହୋଇ ମାଦ୍ରୀଙ୍କୁ ଆଲିଙ୍ଗନ କରିବା ସମୟରେ ତାହାଙ୍କର ମୃତ୍ୟୁ ହେଲା ।)

୫ । ଶ୍ୱେତହସ୍ତୀ—5. White elephant.
୬ । ପଟୋଳ ଫଳ—6. The Paṭola fruit.

**ପାଣ୍ଡୁକ**—ସ. ବି. ପୁଂ. (ପାଣ୍ଡୁ+ସ୍ୱାର୍ଥେ. କ)—୧ । ପାଣ୍ଡୁରୋଗ—
Pāṇḍuka 1. Jaundice.
୨ । ପାଣ୍ଡୁରାଜା—2. King Pāṇḍu.
୩ । ପାଣ୍ଡୁବର୍ଣ୍ଣ—3. Grey colour.

**ପାଣ୍ଡୁର**—ସଂ ବି ଓ ବଣ. ପୁଂ. (ପାଣ୍ଡୁ+ସ୍ୱାର୍ଥେ ର; ଅଥବା ପାଣ୍ଡ୍ ଧାତୁ
Pāṇḍura =ଗମନ କରିବା+ସଂଜ୍ଞାର୍ଥେ ଉର)—ପାଣ୍ଡର (ଦେଖ)
(ପାଣ୍ଡୁରା—ସ୍ତ୍ରୀ) Pāṇḍara (See)
ସ. ବି.—ଧବଳ କୁଷ୍ଠ—White leprosy (Apte)

**ପାଣ୍ଡୁରଙ୍ଗ**—ସ. ବି.—(ବହୁବ୍ରୀହି)—୧ । ଶାକବିଶେଷ—
Pāṇḍu raṅga 1. A kind of pot-herb.
पाट वाङ्गा ୨ । କୁଆମରିଚା ବା ମଟମଟିକା—
2. A kind of kitchen vegetbles.

**ପାଣ୍ଡୁର ଦ୍ରୁମ**—ସଂ. ବ ପୁଂ (ପାଣ୍ଡୁର+ଦ୍ରୁମ)—(ଏହା ପାଣ୍ଡୁର ଥିବାରୁ)
Pāṇḍura druma ଭୁଡକ, ପିତାକୋରୁଆଁ ଗଛ—
ଅନ୍ୟ ସଂ ନାମ— Holarrhena; Anti dysenterica
ଭୁଟଜ, ଗିରିମଲ୍ଲିକା (plant).

**ପାଣ୍ଡୁରା**—ଦେ. ବଣ.—(ସଂ. ପାଣ୍ଡୁର)—ପାଣ୍ଡରା (ଦେଖ)
Pāṇḍurā Pāṇḍarā (See)
(ପାଣ୍ଡୁରୀ—ସ୍ତ୍ରୀ) ସଂ. ବଣ. ସ୍ତ୍ରୀ—ପାଣ୍ଡୁରର ସ୍ତ୍ରୀଲିଙ୍ଗ—
Feminine of Pāṇḍura.

**ପାଣ୍ଡୁରିଆ**—ପ୍ରାଦେ. (ଯାଜପୁର) ବଣ —ପାଣ୍ଡୁର (ଦେଖ)
Pāṇḍuriā Pāṇḍura (See)

**ପାଣ୍ଡୁରିମା**—ସଂ. ବ. (ପାଣ୍ଡୁର+ଭାବାର୍ଥେ. ଇମନ୍)—ପାଣ୍ଡୁତା, ଫକାବର୍ଣ୍ଣ—
Pāṇḍurimā Paleness; white or pale-colour. (Apte).

**ପାଣ୍ଡୁଲିପି**—ସଂ. ବ.—(କର୍ମଧା, ପାଣ୍ଡୁ+ଲିପି)—୧ । ଖସଡ଼ା, ଛଠା—
Pāṇḍu lipi Priliminary rough sketch of a document.
(ପାଣ୍ଡୁଲେଖ; ପାଣ୍ଡୁଲେଖ୍ୟ—ଅନ୍ୟରୂପ)
୨ । ହାତଲେଖା ପୁସ୍ତକ—2. Manuscript.
୩ । ଭୂମିରେ ବା ପଟାରେ ଖଡ଼ିଦ୍ୱାରା ଅଙ୍କିତ ଚିତ୍ର—
3. A rough draft or sketch made with chalk on the ground or board (Apte).

**ପାଣ୍ଡେ**—ଦେ. ବ.—କନଉଜା ବ୍ରାହ୍ମଣମାନଙ୍କ ବଂଶୋପାଧିବିଶେଷ—
Pāṇḍe Family title of some Kanauji Brāhmaṇas
ପାଣ୍ଡେ ପଢ଼ିଲେ ପାଠ, ଛ କିଂଗ୍ ଣେ ଆଠ—ଢଗ ।
ପାଁଡ଼େ ପ୍ରାଦେ. (ସମ୍ବଲପୁର) ବ.—ଅଗରିଆ ଓ କେଉଟଙ୍କର
**ପାଣ୍ଡେ** ବଂଶୋପାଧିବିଶେଷ—Family title of some Agariā and fishermen in Sambalpur.

**ପାଣ୍ଡେଇ**—ଦେ. ବ. (ସଂ. ପନ୍ନଦ୍ଧ୍ରୀ; ଉପାନହ)—୧ । ଚର୍ମପାଦୁକା,
Pāṇḍei ଜୋତା—1. Shoes.
ପାଣ୍ଡୋଇ / ପାଣ୍ଡେଇ / ପାଣ୍ଡୋଇ } ଅନ୍ୟରୂପ
୨ । ଗୋଇଠି ନ ଥିବା ଚର୍ମପାଦୁକା; ଚଟିଜୋତା—2. Slippers.
୩ । ମରହଟ୍ଟୀ ଜୋତା—
ପାନଈ 3. Country slippers with projecting tips.
**ପାନ ହିଂ; ପନାହ** ୪ । କୁମ୍ଭାରୁଣୀ ଓ ଗଉଡ଼ମାନେ ଗୋଡ଼ ତଳପାକୁ କଣ୍ଟାରୁ ରକ୍ଷା କରିବା ନିମନ୍ତେ ବ୍ୟବହାର କରିବା ଚଟି ଯୋତା—4. Leathern sandals.
ଏକଳକ୍ଷ ତେଲେଙ୍କ ଯୋଦ୍ଧାଏ ପାଣ୍ଡେଇ । କୃଷ୍ଣସିଂହ, ମହାଭାରତ ସଭା ।
[ ଦ୍ର—ଏହି ଜୋତାର ତଳପାରେ ଚମଡ଼ା ପରିବର୍ତ୍ତରେ କାଠ ଥାଏ । ଉପରେ ଚମ ଦଉଡ଼ି ବା ଦଉଡ଼ିର ଫାଶ ଥାଏ । ]

**ପାଣ୍ଡେଇକୁଦା**—ପ୍ରାଦେ. (ଗଞ୍ଜାମ) ବଣ—ଜୋତା ମାଡ଼ୁଥିବା, ଚର୍ମପାଦୁକା
Pāṇḍeikudā ପରିହିତ (ପଦ)—(feet) Wearing shoes; habituated to putting on shoes.

**ପାଣ୍ଡେଇ କୁଦିବା**—ପ୍ରାଦେ. (ଗଞ୍ଜାମ) କ୍ରି—ଜୋତା ପିନ୍ଧିବା—
Pāṇḍei kudibā To put on shoes.

**ପାଣ୍ଡେଇଖିଆ**—ଦେ. ବଣ. ପୁଂ. (ଗାଳିରେ ବ୍ୟବହୃତ)—
Pāṇḍeikhiā ଜୋତାମାଡ଼ଖିଆ; ଯେ ଜୋତାରେ ମାଡ଼ ଖାଇବା ଉପଯୁକ୍ତ ବା ମନ୍ଦକାର୍ଯ୍ୟ ଯୋଗୁଁ ଯାହାକୁ ଜୋତାରେ ମାଡ଼ ଦିଆଯାଏ—
ପାଣ୍ଡୋଇଖିଆ / ପାଣ୍ଡେଇଖିଆ / ପାଣ୍ଡୋଇଖିଆ } ଅନ୍ୟରୂପ
Deserving or habituated to shoe-beating.

**ପାଣ୍ଡେବ**—ଗ୍ରା. ବ. (ପାଣ୍ଡବର ଅଶୁଦ୍ଧ ଉଚ୍ଚାରଣ)—ପାଣ୍ଡବ (ଦେଖ)
Pāṇḍeba Pāṇḍaba (See)

**ପାଣ୍ଡେୟ**—ଦେ. ବ—ପାଣ୍ଡେ (ଦେଖ)
Pāṇḍeya Pāṇḍe (See)
[ ଦ୍ର—ପାଣ୍ଡେ ଉପାଧିଧାରୀ କେତେକ ଶିକ୍ଷିତ ବ୍ୟକ୍ତିଙ୍କ ବଂଶୋପାଧି । 'ପାଣ୍ଡେ' ସ୍ଥଳରେ ପାଣ୍ଡେୟ ବ୍ୟବହାର କରିବାର ଦେଖାଯାଏ । ]

**ପାଣ୍ଡେରା**—ଗ୍ରା ବଣ ପୁଂ—ପାଣ୍ଡରା (ଦେଖ)
Pāṇḍerā (ପାଣ୍ଡେରୀ—ସ୍ତ୍ରୀ) Pāṇḍarā (See)

**ପାଣ୍ଡ୍ୱ**—ସଂ. ବ—ରଙ୍ଗାଯାଇ ନ ଥିବା ପଶମର ପୋଷାକ—
Pāṇḍwa An uncoloured woollen garment (Apte).

**ପାଣ୍ଡ୍ୟ**—ସଂ. ବ—୧ । ଦକ୍ଷିଣଭାରତର ପୁରାଣ ଓ ଇତିହାସପ୍ରସିଦ୍ଧ ରାଜ୍ୟ—
Pāṇḍya 1. An ancient province or kingdom of south India.
[ ଦ୍ର—ଏହା ଆଧୁନିକ ମାଲବାର, କାନଡ଼ା ଓ କଙ୍କଣ । ]
୨ । ଉକ୍ତ ଦେଶର ରାଜା—
2. A king of the Pāṇḍya country.
୩ । ଉକ୍ତ ଦେଶବାସୀ ବ୍ୟକ୍ତି—
3. An inhabitant of the Pāṇḍya country.

**ପାଣ୍ଢିଆ** (ଇତ୍ୟାଦି)—ଦେ. ବ—ପାଣ୍ଡିଆ ଇତ୍ୟାଦି (ଦେଖ)
Pāṇḍhiā (etc) Pāṇḍiā etc (See)

**ପାଣ୍ଢେ(ଢୋ)ଇ** (ଇତ୍ୟାଦି)—ଦେ. ବ—ପାଣ୍ଡେଇ ଇତ୍ୟାଦି (ଦେଖ)
Pāṇḍhe(ṇḍho)i (etc) Pāṇḍei etc (See)

**ପାଣ୍ୟ**—ସଂ. ବଣ. (ପଣ୍ ଧାତୁ+କର୍ମ. ଯ)—ପ୍ରଶଂସନୀୟ—
Pāṇya Commendable; praiseworthy (Apte).

**ପାଣ୍ହଇ** ପ୍ରାଦେ. (କୋରାପୁଟ) ବ. (ସଂ. ଉପାନହ, ପନ୍ନଦ୍ଧ୍ରୀ)—
Pāṇhai ପାଣ୍ଡେଇ, ଜୋତା—Shoes

**ପାତ**—ସଂ. ବ. (ପତ୍ ଧାତୁ=ପଡ଼ିବା+ଭାବ. ଅ)—୧ । ଘଟଣା—
Pāta 1 Happening; coming to pass; occurrence.
ଯଥା—ଅନର୍ଥପାତ; ବିପତ୍ପାତ ।
୨ । ପତନ, ପଡ଼ିବା—2. Falling; fall
ଯଥା—ବୃଷ୍ଟିପାତ; ଉଲ୍କାପାତ, କରକାପାତ ।
୩ । ଲିଖନ—3. Writing
ଯଥା—ଅଙ୍କପାତ; ଧାରାପାତ ।
୪ । ତଳକୁ ଖସିବା, ଓହ୍ଲାଇବା—
4. Descent; descending; alighting (Apte).
୫ । ଗମନ—5. Going.
୬ । (ପତ୍ ଧାତୁ ଣିଚ୍ ପାତି ଧାତୁ+ଭାବ. ଅ) ନିକ୍ଷେପ—
6. Throwing.
ଯଥା—ଲୋଷ୍ଟ୍ରପାତ ।
୭ । ବଧ—7. Killing.

ଯଥା—ଶତ୍ରୁପାତ ।

୮ । ନିପାତ, କ୍ଷୟ; ନାଶ—8. Destruction; ruin.

ଯଥା—ଗର୍ଭପାତ, ଶରୀରପାତ, ଦେହପାତ ।

୯ । କୌଣସି ବିଷୟ ପ୍ରତି ଦୃଷ୍ଟି ବା କର୍ଣ୍ଣ ପ୍ରୟୋଗ କରଣ—
9. Directing the eyes or ears towards a thing; casting.

ଯଥା—ଦୃଷ୍ଟିପାତ; କର୍ଣ୍ଣପାତ ।

୧୦ । ତଳେ ବିଛାଇବା—10. Spreading on the ground.

ଯଥା—ଶଯ୍ୟାପାତ ।

୧୧ । ଧରାଶାୟୀ କରିବା—11. Felling.

୧୨ । ଭୂମିରେ ପକାଇବା, ମୋଚନ; ସ୍ରାବ—
12. Shedding (of tears, of blood); discharging; emitting.

ଯଥା—ଅଶ୍ରୁପାତ; ଲୋତକପାତ; ରକ୍ତପାତ ।

୧୩ । ଆଘାତ—13. Stroke; blow (Apte).

ଯଥା—ଖଡ୍ଗପାତ; ଗଦାପାତ ।

୧୪ । ଆକ୍ରମଣ—14. Inroad; attack (Apte)

[ ଦ୍ର—ପତନ ବା ଘଟନା ଅର୍ଥରେ ଏ ଶବ୍ଦ ଅନ୍ୟ ଶବ୍ଦ ସଙ୍ଗେ ଯୋଗ ହୁଏ । ଯଥା—ବୃଷ୍ଟିପାତ, ଉଲ୍କାପାତ, ଶରୀରପାତ, ରେଖାପାତ, ଶକ୍ରପାତ ଇତ୍ୟାଦି । ]

୧୫ । (ପତ୍ ଧାତୁ=ପଡ଼ିବା+କର୍ତ୍ତୃ. ଅ)—ରାହୁଗ୍ରହ—
15. The ascending node.

୧୬ । (ଫଳିତ ଜ୍ୟୋତିଷ)—କୌଣସି ଗ୍ରହର ଅମଙ୍ଗଳଜନକ ଅବସ୍ଥିତି—16 (astrology) An inauspicious or malignant aspect of a planet (Apte.)

ସଂ. ବିଣ.—(ପା ଧାତୁ=ରକ୍ଷା କରିବା+କର୍ମ.ତ)—
୧ । ରକ୍ଷିତ—1. Protected; saved.
୨ । ପାଳିତ—2 Maintained

ଦେ. ବି.—(ସଂ. ପତ୍ର)—୧ । ଧାତୁର ପାତିଆ—
1 Metal foil; thin blade of metal.
୨ । (ବଣିଆ ଶବ୍ଦ) ମୁସଲମାନଙ୍କ ସ୍ତ୍ରୀଲୋକଙ୍କ ମଝି କାନରେ ପିନ୍ଧିବା ପତ୍ରାକାର ସୁନା ଓ ରୂପାର କାରୁକାର୍ଯ୍ୟ—
2. Gold or silver ring worn in the middle of the ear by Muslim females and wrought with filagree work resembling foliage.

**ପାତକ**—ସଂ. ବି.—(ପତ୍ ଧାତୁ ଣିଚ. ପାତି ଧାତୁ=ତଳକୁ ପକାଇବା+
Pātaka କର୍ତ୍ତୃ. ଅକ; ଯାହା ମନୁଷ୍ୟର ଅଧଃପତନ ଘଟାଏ)—
୧ । ପାପ—1. Sin.

ହରଇ ସେ ପାତକମାନଙ୍କୁ ଧ୍ୱଂଶନ ।
କୃଷ୍ଣସିଂହ. ମହାଭାରତ. ଆଦି ।

। ଦୋଷ, ଅପରାଧ—2. Guilt; crime.

। ପତନକାରକ ବସ୍ତୁ; ଯାହା ପତନ ଘଟାଏ—
3. That which causes some thing to fall down.

୪ । ମନୁଷ୍ୟର ଅଧଃପତନର ହେତୁ—4. The cause of one's downfall or ruin.

[ଦ୍ର—ପାତକ ଦୁଇ ପ୍ରକାର—(୧) ମହାପାତକ; (୨) ଉପପାତକ ।

ବ୍ରହ୍ମହତ୍ୟା, ସ୍ତ୍ରୀହତ୍ୟା, ଗୋହତ୍ୟା, ଗୁରୁପତ୍ନୀଗମନ ଓ ବାଳକ ହତ୍ୟା ଏଗୁଡ଼ିକ ଶାସ୍ତ୍ର ଅନୁସାରେ ମହାପାତକ ବା ମହାପାପ (henious sins) ଅଟେ । ମତାନ୍ତରରେ ବ୍ରହ୍ମହତ୍ୟା, ଗୋହତ୍ୟା, ସୁରାପାନ, ସ୍ତେୟ ବା ଚୌର୍ଯ୍ୟ ଓ ଗୁରୁଙ୍ଗନାସଙ୍ଗମ ଏ ପାଞ୍ଚଟି ମହାପାତକ ଅଟେ । (ମନୁ ୧୧।୫୫), ମିଥ୍ୟାକଥନ, ସୁରାପାନ, ଅବିବାହିତା କନ୍ୟାରମଣ, ପରସ୍ତ୍ରୀଗମନ ଓ କୃତଘ୍ନତା; ଶାସ୍ତ୍ର ଅନୁସାରେ ଏଗୁଡ଼ିକ ଉପପାତକ ବା ଲଘୁତର ପାପ (lesser sins). ହିନ୍ଦୁ ସ୍ମୃତିଶାସ୍ତ୍ରରେ ଅନ୍ୟୁନ ୫୪ ଟି ଉପପାତକ ମଧ୍ୟ ବର୍ଣ୍ଣିତ ଅଛି ।

ଯଥା—ମାଛୁଆ ପାତକ ।]

ସଂ. ବିଣ.—ପତନ ଘଟାଇବା—
Causing fall or downfall.

**ପାତକ ଛଡ଼ା(ଡ଼େ)ଇବା**—ଦେ. କ୍ରି.—ପ୍ରାୟଶ୍ଚିତ୍ତ ଦ୍ୱାରା ନିଜର ପାପ
Pātaka chhar̤ā (r̤e)ibā କ୍ଷୟ କରିବା—
(ପାତକ ଛାଡ଼ିବା—ବିଶେଷ୍ୟରୂପ) To expiate for one's sin.

**ପାତକ ଲାଗିବା**—ଦେ. କ୍ରି.—ଶାସ୍ତ୍ର ଅନୁସାରେ ଦୋଷଭାଗୀ ହେବା;
Pātaka lāgibā କୌଣସି ବ୍ୟକ୍ତି ଉପରେ କୌଣସି ପାତକ
**पातक लगना** ପ୍ରବର୍ତ୍ତିବା—The sharing of a sin.
(ପାତକ ଛାଡ଼ିବା—ବିପରୀତ)

**ପାତକା**—ଗ୍ରା. ବିଣ. ପୁଂ.—(ସଂ. ପାତକୀ)—ପାତକୀ (ଦେଖ)
Pātakā Pātakī (See)
(ପାତକୀ; ପାତକେଇ—ସ୍ତ୍ରୀ)

**ପାତକୀ**—ସଂ. ବିଣ. ପୁଂ. (ପାତକିନ୍; ପାତକ+ଅସ୍ତି ଅର୍ଥରେ ଇନ୍)—
Pātakī ପାପୀ—1. Sinful.
(ପାତକିନୀ—ସ୍ତ୍ରୀ)

ଧର୍ମିଲେ ସମସ୍ତ ଗୁଣ, ମୂର୍ଖରେ ପଣ୍ଡିତପଣ,
ପାତକୀ ହୁଅନ୍ତି ଧନ ବନ୍ତ । ବିଶ୍ୱନାଥ. ବିଚିତ୍ରରାମାୟଣ ।

୨ । ଅପରାଧୀ—2. Offending; guilty.
୩ । ଖଳ; ଦୁଷ୍ଟ—3 Wicked; wanton.

ସଂ. ବି—୧ । ପାପୀ ବ୍ୟକ୍ତି—1 Sinner.
୨ । ଅପରାଧୀ ବ୍ୟକ୍ତି—2. Offender.
୩ । ଦୁର୍ଜ୍ଜନ ବ୍ୟକ୍ତି—4. A wicked person.

ଦେ. ବିଣ. ସ୍ତ୍ରୀ—ପାତକାର ସ୍ତ୍ରୀଲିଙ୍ଗ
Feminine of Pātakā.

**ପାତଞ୍ଜଳ**—ସଂ. ବି. (ପତଞ୍ଜଳିଙ୍କ ଦ୍ୱାରା ରଚିତ ଅର୍ଥରେ+ଅ)—
Pātañjala ୧ । ପତଞ୍ଜଳି ମୁନିକୃତ ଦର୍ଶନଶାସ୍ତ୍ର—
1. The branch of Hindu philosophy propounded by sage Patañjali.

[ଦ୍ର—ଏହାର ନାମ ଯୋଗଦର୍ଶନ; ଏହା ଚାରି ଭାଗ ବା ପାଦରେ ବିଭକ୍ତ ।
୧ । ଯୋଗପାଦ (ଏଥିରେ ଯୋଗର ଲକ୍ଷଣାଦି ବର୍ଣ୍ଣିତ
୨ । ସାଧନପାଦ (କ୍ରିୟା ଯୋଗାଦି ସାଧନ ପ୍ରକରଣ) ।

୩ । ବିଭୂତିପାଦ (ଧ୍ୟାନ ଧାରଣାଦି ବିଭୂତି ବିବରଣ) ।
୪ । କୈବଲ୍ୟପାଦ (ସିଦ୍ଧିପଞ୍ଚକାଦି କୈବଲ୍ୟ) । ]
୨ । ପତଞ୍ଜଳି ମୁନିକୃତ ବେଦାନ୍ତର ମହାଭାଷ୍ୟ –
2. The commentary of the Bedānta by sage Patañjali.
[ ଦ୍ର—ପତଞ୍ଜଳି ତଳେ ନୋଟ ଦେଖ । ]

**ପାତନ**—ସଂ. ବି. ( ପତ୍ ଧାତୁ ଣିଚ୍=ପାତି ଧାତୁ=ତଳକୁ ପକାଇବା + ଭାବ ଅନ )— ୧ । ଅଧଃକ୍ଷେପଣ, ଭୂମିରେ ପକାଇବା—1 Throwing down; causing to fall down; felling.
Pātana
(ପାତିତ—ବିଣ)
୨ । ବିନ୍ୟାସ—2. Arranging
୩ । (ରସାୟନ) ନିଃସ୍ୟନ୍ଦନ, କ୍ଷାରଣ—
3. (chemistry) Distillation
୪ । ନିଷ୍କାମଣ—4. Extraction.
୫ । ବିନାଶନ; ନିପାତ କରିବା—
5. Destruction; annihilation.
୬ । ( + କର୍ମ ଅନ ) କାନର ପତା—
6 The blade of the ear.
୭ । ବିସ୍ତାର କରିବା—7. Spreading out
୮ । ଲେଖିବା, ଅଙ୍କନ—
8 Writing down; drawing.
୯ । ଫିଙ୍ଗି ଦେବା—9 Throwing; casting.
୧୦ । ଅବମାନନ—10 Humbling; lowering (Apte).
୧୧ । ଦୂରୀକରଣ—11. Removing (Apte).
୧୨ । ପତନ ଘଟାଇବା—
12. Causing to fall down.
( ଯଥା—ଗର୍ଭପାତନ । )
୧୩ । ମୋଚନ; ସ୍ରାବ—
13. Emitting; shedding; discharging.
( ଯଥା—ରେତଃପାତନ । )
୧୪ । ଦଣ୍ଡାଦିଦ୍ୱାରା ଆଘାତ କରିବା—
14 Striking; giving blows with.
( ଯଥା—ଦଣ୍ଡ ପାତନ । )

**ପାତନା**—ଦେ. ବି. ( ସଂ. ପାତନ )—
Pātanā ୧ । ଜଞ୍ଜାଳ—1. Complicated state of affairs; complication.
୨ । ଘଟଣା—2. Happening; event.
କୃଷ୍ଣଙ୍କ ଉରୁରେ ସେତେ ପାତନା, ହାଣ୍ଡି ଉଦରେ ଏ ସବୁ ଥାପନା ।
ଗ୍ରାଚୀ, ପରବେଗୀତା ।
ସଂ. ବି. ( ପାତନ + ଆ )—୧ । ସ୍ଥାପନା—
1. Establishing; setting up.
ଯୋଗୀ ଗୋପାଳ ଅଂଶ ଆଗ ଯାଅ
ସୃଷ୍ଟି ପାତନା ସବେ ଶିବେ କହି । ଗ୍ରାଚୀ, ରହସ୍ୟମଞ୍ଜରୀ ।
୨ । ପାତନ ( ଦେଖ )—2. Pātana ( See )
ଅଗୋ ତୁ ସପନାବତ ସପନ ପାତନା ପାତ
ବହାଇ ତୁ କେବୁ ଗତ ଜନମାନଙ୍କ । ପାଚୀ, ରହସ୍ୟମଞ୍ଜରୀ ।
୩ । ତିଆଣ, ସମ୍ପାଦନ—3. Creation, doing.
ଜଣରେ ବୃକ୍ଷକୁ ନିପାତ, ପାତନା ଯାଉ ଏ ସମସ୍ତ ।
ଗ୍ରାଚୀ ପୂର୍ଣ୍ଣତମ ଚନ୍ଦ୍ରୋଦୟ ।
ପ୍ରାଦେ. (ମେଦିନୀପୁର) ବି. (ଭୁଲ. ବି)—ବଡ଼ ହାଣ୍ଡି, ନଉତି—
Big earthen cooking pot.

**ପାତନା ମାନ**— ଦେ. ବି— ଉତ୍ପାତ ଘଟନାସମୂହ—
Pātanā māna Befalling of various calamitious events.

**ପାତର**—ଗ୍ରା. ବି. ( ସଂ. ପାତ୍ର )—ପାତ୍ର ( ଦେଖ )
Pātara Pātra ( See )
ଗ୍ରା ବିଣ (ସଂ. ପାତ୍ର)— ପାତ୍ର, ଯୋଗ୍ୟ, ଉପଯୁକ୍ତ—
Fit; proper
ହରିବାକୁ ଲାଗେ ନାକେ ମଧ୍ୟେ କେ ଲଗିଦ ଲମ୍ବେ ଦେଙ୍କେ ବସାଇଁ ପିନାକେ
କଲୁ ମୋ ଥିଲ । ବାଣୀ ଇନ୍ଦୁର କ୍ରିପ୍ସର ତେଉ ଅନ୍ତେ ହର ପ୍ରୟୋଗେ ତୃମ୍ଭେ
ପାତର ମୋତେ ଲଣିଲ । ଭଞ୍ଜ. ବୈଦେହୀଶବିଳାସ ।
ପ୍ରାଦେ. (ବସ୍ତ୍ର) ବିଣ—ପାତଳ—Thin

**ପାତର ଅନ୍ତର**—ଗ୍ରା ବି ଓ ବିଣ—ପାତ୍ର ଅନ୍ତର ( ଦେଖ )
Pātara antara Pātra antara ( See )
କେହୁ କାହାକୁ ନୁହନ୍ତି ପାତର ଅନ୍ତର । ପାଚୀ, କୃଷ୍ଣନିରୂପଣ ଗୀତା ।

**ପାତରିଆଣୀ**—ପ୍ରାଦେ. (କୋଶପୁର) ବି—(ଭୁଲ. ହି. ପତୁରିୟା, ପାତରି= ବେଶ୍ୟା )—୧ । ବେଶ୍ୟା - 1. Whore; prostitute.
Pātariāṇi
୨ । ନର୍ତ୍ତକୀ—2. A female dancer.
ଦେ. ବି. ସ୍ତ୍ରୀ—ପାତ୍ର ଉପାଧିଧାରୀ ପୁରୁଷ ସ୍ତ୍ରୀ—The wife of a person having the title of Pātra.

**ପାତଲ୍ ଘଁଟା**—ପ୍ରାଦେ. (ସମ୍ବଲପୁର) ବି—(ହି. ବିଲାୟତୀ ଭଁଟା) ବିଲାତି
Pātal ghaṅṭā ବାଇଗଣ—Tamato.
(ପାତଲ୍ ଘଣ୍ଟା; ପାତଲ୍ ଭଁଟା; ପାତଲ୍-ଭଣ୍ଟା; ପାତଲ୍ ଭାଁଟା, ପାତଲ୍ ଭାଣ୍ଟା } ଅନ୍ୟରୂପ

**ପାତଳ**—ଦେ. ବି—(ପା + ତଳ)— ପାଦ ତଳ—
Pātaḷa The ground below one's feet.
पायतला ଶରଣ ବୋଲକ ପତଳ ପାଟଳେ—
पाबतला କବମ୍ବ ର୍ଯ୍ୟ – କଶୋସ ଚମ୍ପୁ ଶ ଗୀତ ।
ଦେ. ବିଣ—୧ । ପାଅତଳିଆ; ପାଦତଳସ୍ଥିତ—
1. Situate below one's feet.
୨ । ଅନୁଗତ—2. Dependent; subservient.
୩ । ଅତି ହୀନ—3 Very low.
ପାତଳା
ପାତଳିଆ } ଅନ୍ୟରୂପ
୪ । (ସଂ. ପତ୍ରତୁଲ୍ୟ, ପତ୍ରଳ=ପତ୍ରପରି ସରୁ)—ପତଳା; ସରୁ—4. Thin; fine; slender.
(ବହଳ—ବିପରୀତ) ୫ । କୃଶ; ଶୀର୍ଣ୍ଣକାୟ—
5. Emaciated; lean; slender-bodied.
पातला ୬ । ଜଳରେ ଗୋଳିଆ ହୋଇଥିବା—
पतला; पातर Diluted with water.

୭ । ଜଳୀୟ, ତରଳ—7 Watery; liquid
୮ । ଅଘନ—8. Sparse; loose; not dense.

**ପାତଳ ଭାତ**—ଦେ. ବି—ପବାଗୁ; ଯାଉ—
Pātaḷa bhāta Gruel.

**ପାତଳା**—ଦେ. ବିଣ—(ସଂ. ପତ୍ତଳ)—ପାତଳ (ଦେଖ)—
Pātaḷā (ପାତଳୀ—ସ୍ତ୍ରୀ Pātaḷa (See)

**ପାତଳିଆ**—ଦେ. ବିଣ—ପାତଳ (ଦେଖ)—
Pātaḷiā Pātaḷa (See)
ଦେ. ବି—୧ । ଅନୁଗତ ବ୍ୟକ୍ତି—
1. A subservient or dependent person.
୨ । ଭୃତ୍ୟ, ଦାସ, ପାଦସେବକ—
2 Servant; slave.
କ୍ଷେତ୍ରେ ନନ୍ଦନଙ୍କୁ କ୍ଷେତ୍ରମାନଳଥିବୁ ଭଳେ କବରବ ତାହାଙ୍କର ପାତଳଥାଲୁ ।
କବିସୂର୍ଯ୍ୟ, ସଙ୍ଗୀତ ।

**ପାତଳୀ**—ଦେ. ବି—ପଥରକୁ ଚକ୍କଣ କରି ଚାଞ୍ଛିବାର ଛୋଟ ନିହାଣ—
Pātaḷi A small chisel to smooth a stone.
पतली ଦେ. ବିଣ—ସ୍ତ୍ରୀ—ପାତଳାର ସ୍ତ୍ରୀଲିଙ୍ଗ—
**पतली** Feminine of Pātaḷā.
ସଂ. ବି. ସ୍ତ୍ରୀ—ସ୍ତ୍ରୀବିଶେଷ (ହେ ଶ.)—
A woman of a particular class

**ପାତଶା**—ବୈଦେ. ବି—(ଫା ପାଦ୍‌ଶାହ)—ବାଦସାହା, ସମ୍ରାଟ—
Pātaśā Emperor; king.
(ପାତ୍‌ଶା—ଅନ୍ୟରୂପ) बादशाह **पातशाह**

**ପାତଶାଇ(ହି)**—ବୈଦେ. ବି—(ଫା. ପାଦ୍‌ଶାହୀ)—ସମ୍ରାଟପଣ—
Pātaśāi(hi) Sovereignty.
बादशाही ଦେ. ବିଣ—୧ । ବାଦସାହୀ, ସମ୍ରାଟସୁଲଭ—
**पातशाही** 1. Befitting a king; kingly.
୨ । ରାଜକୀୟ—2 Royal.

**ପାତା**—ସଂ. ବି. ପୁଂ—(ପା ଧାତୁ=ପାଳନ କରିବା; ରକ୍ଷା କରିବା+
Pātā କର୍ତ୍ତୃ. ତୃ, ପାତୃ, ୧ମା. ୧ବ)—୧ । ପାଳକ; ରକ୍ଷଣକର୍ତ୍ତା—1 Preserver.
(ପାତ୍ରୀ—ସ୍ତ୍ରୀ) ୨ । ପାନକର୍ତ୍ତା—2. Drinker.

**ପାତାଙ୍ଗ**—ଦେ ବି—(ସଂ. ପତାକା)—ପତାକା—
Pātāṅga Flag.

**ପାତାମ୍**—ଦେ. ବି—(ସଂ. ପତ୍ର)—ସରୁ ପାତିଆ—
Pātām पाताम **पत्ती** Metal foil; thin slip of metal.

**ପାତାଳ**—ସଂ. ବି—(ପତ୍ ଧାତୁ=ପଡ଼ିବା+ଅଧିକରଣ. ଆଳ)—
Pātāḷa ୧ । ଅଧୋଭୁବନ, ମର୍ତ୍ତ୍ୟର ନିମ୍ନସ୍ଥ ଭୁବନ—1. The nether world; the mythological regions below the earth.

[ଦ୍ର—ପୁରାଣମାନଙ୍କ ମତରେ ପୃଥିବୀର ତଳେ କ୍ରମାଗତ ତଳକୁ ତଳକୁ ୭ଟି ଭୁବନ ଅଛି । ତାକୁ ପାତାଳ ବୋଲାଯାଏ । ପାତାଳମାନଙ୍କର ସଂଖ୍ୟା ୭ଟି ଥିବା ବିଷୟରେ ସବୁ ପୁରାଣ ଏକମତ । କିନ୍ତୁ ସେମାନଙ୍କ ନାମ ସମ୍ବନ୍ଧେ ଭିନ୍ନ ଭିନ୍ନ ପୁରାଣ ଓ କୋଷ ମାନଙ୍କରେ ପାର୍ଥକ୍ୟ ଦେଖାଯାଏ । ଯଥା—

ଅତଳ, ନିତଳ, ବିତଳ, ଗଭସ୍ତିମତ୍, ତଳ, ସୁତଳ, ପାତାଳ, (ଶବ୍ଦରତ୍ନାବଳୀ ।)

ଅତଳ, ବିତଳ, ସୁତଳ, ତଳାତଳ, ମହାତଳ, ରସାତଳ, ପାତାଳ, (ପଦ୍ମ ପୁରାଣ—ପାତାଳଖଣ୍ଡ ।)

ଅତଳ, ସୁତଳ, ବିତଳ, ଗଭସ୍ତିମତ୍, ମହାତଳ, ରସାତଳ ପାତାଳ (ଅଗ୍ନି ପୁରାଣ) ।

ଅତଳ, ବିତଳ, ନିତଳ, ଗଭସ୍ତିମତ୍, ମହାତଳ, ସୁତଳ, ପାତାଳ (ବିଷ୍ଣୁ ପୁରାଣ ।)

ତଳ, ଅତଳ, ବିତଳ, ସୁତଳ, ତଳାତଳ, ମହାତଳ, ରସାତଳ, (ପ୍ରକୃତିବାଦ) ।

ଅତଳ, ବିତଳ, ସୁତଳ, ରସାତଳ, ତଳାତଳ, ମହାତଳ, ପାତାଳ (ଆପ୍ଟେ) ।

ଅତଳ, ବିତଳ, ସୁତଳ, ତଳାତଳ, ମହାତଳ, ରସାତଳ, ପାତାଳ (ସୁବଳଚନ୍ଦ୍ର) ।

ଅତଳ, ବିତଳ, ସୁତଳ, ତଳାତଳ, ତଳ, ରସାତଳ, ପାତାଳ (କ୍ଷୀରେନ୍ଦ୍ର ।)

ଏହି ପାତାଳଲୋକରେ ନାଗମାନେ ବାସ କରନ୍ତି । ଏହା ସ୍ୱର୍ଗଠାରୁ ଅଧିକ ସୁଖମୟ ଥିବାରୁ ଏହାକୁ ବିଳସ୍ୱର୍ଗ ବୋଲାଯାଏ । ଏଥିରେ ସମୃଦ୍ଧ ଭୁବନ, ଉଦ୍ୟାନ, ବିହାର, କ୍ରୀଡ଼ାଭୂମିମାନ ଅଛି । ଏଠାରେ ମଧ୍ୟ ଦାନବମାନଙ୍କର ବାସ ଓ ଏଠାରେ ମହାଦେବ ରହନ୍ତି । ଏଠାରେ ଦିବସରେ ସୂର୍ଯ୍ୟ ଶୀତଳ କିରଣ ଦିଅନ୍ତି ଓ ରାତିରେ ଚନ୍ଦ୍ରକିରଣରେ ଶୈତ୍ୟ ନ ଥାଏ, କେବଳ ଆଲୋକ ଥାଏ । ଏହି ସପ୍ତ ପାତାଳ ଅନନ୍ତ ବା ଶେଷ ନାଗଙ୍କ ମସ୍ତକ ଉପରେ ଅବସ୍ଥିତ । ଶେଷ ନାଗ ହାଇ ମାଇଲେ ସାଦ୍ରିଜୋଯାବ୍ଧିକାନନ ସପ୍ତ ପାତାଳ କମ୍ପି ଉଠେ । ଏଠାର ନଦୀର ନାମ ହାଟକୀ ବା ପାତାଳ ଗଙ୍ଗା ବା ଭୋଗବତୀ । ବିଷ୍ଣୁ ପୁରାଣ—୨।୫ ]

୨ । ଗମ୍ଭୀର ଗର୍ତ୍ତ—2. A deep hole; abyss.
୩ । ଭୂଗର୍ଭ—3. The interior or bowels of the earth.
୪ । ନରକ—4. Hell
୫ । ନାଗଲୋକ—5. The regions inhabited by the mythological Nāgas.
୬ । ( ଫଳିତ ଜ୍ୟୋତିଷ ) ଲଗ୍ନର ୪ର୍ଥ ସ୍ଥାନ—
6. ( astrology ) The 4th place computed from one's Lagna
୭ । ବାଡ଼ବାନଳ—7. Submarine fire.

**ପାତାଳ ଗରୁଡ଼(ଡ଼ୀ)**—ଦେ. ବି—୧ । ଔଷଧ ଲତାବିଶେଷ—
Pātāḷa garurḍa(rḍi) 1 A medicinal creeper, Cocculus Villosus; Cogenaria Vulgaris.
ସଂ. ନାମ—ବତ୍ସାଦନୀ, ସୋମବଲ୍ଲୀ, ଗାରୁଡ଼ୀ, ମହାବଳା, ଦୃଢ଼ଲତା, ଦୀର୍ଘବଲ୍ଲୀ, ବନତିକ୍ତିକା, ପାତାଳ ଗରୁଡ଼, ଛିଲିହିଣ୍ଡି, ସୌପର୍ଣ୍ଣୀ, ତିକ୍ତାଙ୍ଗୀ, ମୋଚକାଙ୍ଗୀ, ମୋଚକାଭିଧା,
[ ଦ୍ର—ଏହା ପୂର୍ବ ଉପଦ୍ୱୀପ ଛଡ଼ା ସମସ୍ତ ଭାରତ ଓ ଲଙ୍କାରେ ଜନ୍ମେ । ଏହା ଛୋଟ ଝାମ୍ପୁଡ଼ିଆ ଗୁଳ୍ମ, ଶାଖା ଗୁଡ଼ିକ ଲମ୍ବା ଓ ପତ୍ରହୀନ ଘନ

ତାର୍କ୍ଷୀ, ସାର୍ପକାଣ୍ଡା, ମହାମୂଳ; ବନତିକ୍ତିକା
ପାତାଲ ଗରුଡ଼ି ଶିଳିନ୍ଦା
**छेतड़ा, जामतकिबेल, छिरेटा**
ତେ. ଦୂସର ତୋଗେ, ଦୁସାରତାଗା, ଚିପୁରୁତିଗା
ମ. ତାନଦେଲ, ବାମନାଭେଲ୍ଲ, ହୁଣ୍ଡିର, ତାନଗ୍ ବେଲ
ଗୁ. ବେଡ୍ଡି, ବେଡ୍ଡୀଓଲପ
ତା. କଭୁକକୋଡ଼ି

ଭାବରେ ଆଚ୍ଛାଦିତ । ପତ୍ରର ରସରେ ପାଣି ମିଶାଇଲେ ଏକ ପ୍ରକାର ନୀଳ ରସରେ ପରିଣତ ହୁଏ । ଏହି ରସ ଚିନି ସହିତ ମେହରୋଗର ଔଷଧ ରୂପେ ବ୍ୟବହୃତ ହୁଏ । ଏହାର ଚେର ଓ ପତ୍ର ମଧ୍ୟ ଔଷଧ ରୂପେ ବ୍ୟବହୃତ ହୁଏ । (Kirtikar).

ଏହାର ପତ୍ର ମଧୁର, ରୁଚିକର, ଶୁକ୍ରବର୍ଦ୍ଧକ, କଫ, ପିତ୍ତ ଓ ଦାହ-ନାଶକ । ]

୨ । ଗଛବିଶେଷ; ସର୍ପବିଷନାଶକ ଚେର—
2. A kind of sweet smelling root which is an antidote against snake-bite.

ସଂ. ନାମ—ଚନ୍ଦ୍ରା
चन्द्रा

୩ । ଦକ୍ଷିଣ ଆମେରିକାରୁ ଏ ଦେଶକୁ ଅଣାଯାଇ ଲଗାଯାଇଥିବା ତରୁବିଶେଷ—
3. Ranwolfia Serpentina (Haines).

[ ଦ୍ର—ଏହା ଖଡ଼ାଗଛ ପରି ଡେଙ୍ଗା ଗୁଳ୍ମ । ଏହା ୩।୪ ହାତ ବଢ଼େ । ଏହାର ପତ୍ର ଓ ଚେର ବାଟି ଖୁଆଇଲେ ସର୍ପଦଷ୍ଟ ରୋଗୀ ଭଲ ହୁଏ । ଏଥିର ପ୍ରତି ଗଣ୍ଠିରେ ୩।୪ ଟି ପତ୍ର ବଳୟାକାରରେ ଥାଏ । ଫୁଲ ଧଳା ଓ ଉପର ନୀଳରକ୍ତ, ବହିରାବରଣ ନାଲି, ଫଳ କଳା ଓ ଯୋଡ଼ା ଯୋଡ଼ା । ]

**ପାତାଳ ଗଙ୍ଗା**—ସଂ. ବି. ( ପାତାଳ+ଗଙ୍ଗା )—ପୁରାଣବର୍ଣ୍ଣିତ ପାତାଳ ଲୋକରେ ପ୍ରବାହିତା ନଦୀ; ଭୋଗବତୀ—
Pātāla gaṅgā
Name of a river said to flow in the nether regions

[ ଦ୍ର—ସ୍ୱର୍ଗଗଙ୍ଗାର ନାମ ମନ୍ଦାକିନୀ, ମର୍ତ୍ତ୍ୟଗଙ୍ଗାର ନାମ ଭାଗୀରଥୀ, ପାତାଳଗଙ୍ଗାର ନାମ ଭୋଗବତୀ । ]

**ପାତାଳ ପୁରୀ**—ସଂ. ବି. ( ପାତାଳ+ପୁରୀ )—
Pātāla purī

୧ । ପାତାଳ—1. The nether regions.

୨ । ସପ୍ତ ପାତାଳ ମଧ୍ୟରୁ ସର୍ବନିମ୍ନ ଲୋକ—
2. Name of the lowest of the seven nether regions according to Hindu mythology

पातालपुरी

ଦେ. ବି— ମାଟି ତଳରେ ନିର୍ମିତ ଗୁପ୍ତଗୃହ—
A house or cellar built below the ground; underground vault

**ପାତାଳ ଫୁଟା**—ଦେ. ବିଣ—(ସଂ. ପାତାଳ+ସ୍ଫୁଟ )—୧ । ଅତି ଗଭୀର, ଅତଳସ୍ପର୍ଶୀ—1. Very deep; abysmal.
Pātāla phuṭā
(ପାତାଳଫୁଟ—ଅନ୍ୟରୂପ) (ଯଥା—ପାତାଳଫୁଟା କୂଅ । )

पातालतोड़

୨ । ସ୍ୱୟଂଭୂ (ଲିଙ୍ଗ); ଯେ ପାତାଳରୁ ଭୂମି ଭେଦ କରି ବାହାରିଅଛନ୍ତି—2. A phallic image of Siba which has appeared on the ground of itself.

(ଯଥା—ପାତାଳଫୁଟା ଲିଙ୍ଗ । )

**ପାତାଳଭେଦୀ**—ପ୍ରାଦେ (ଗଡ଼ଜାତ) ବି—ଗୁଳ୍ମବିଶେଷ—
Pātālabhedī
A species of medicinal plant

[ ଦ୍ର—ଏହାର ଚେର ମାଟି ତଳରେ ବହୁ ଦୂରକୁ ଯାଇଥାଏ । ଚେର ଔଷଧରେ ଲାଗେ । ]

**ପାତାଳି**— ଦେ. ବିଣ (ପ୍ରାଚୀନ; ମାଦଳାପାଞ୍ଜି) (ସଂ. ପାତାଳ)—ଭୂଗର୍ଭରେ ପୋତା ଯାଇଥିବା—Buried underground.
Pātāli

[ ଦ୍ର—ଜଗନ୍ନାଥ ବିଗ୍ରହଙ୍କୁ ଶତ୍ରୁ ହସ୍ତରୁ ରକ୍ଷା କରିବା ସକାଶେ ସେବକମାନେ ତାଙ୍କୁ ପାତାଳ କରିଥିଲେ । ]

**ପାତି**—ସଂ. ବି—( ପା ଧାତୁ=ପାଳନ କରିବା+କର୍ତ୍ତୃ. ଅତି )—ପ୍ରଭୁ; ସ୍ୱାମୀ—Lord; master.
Pāti

पाती
फांकी

ଦେ. ବି—( ସଂ. ପତ୍ରୀ=ଶ୍ଳେଟ ପତର )—୧ । କୌଣସି ବସ୍ତୁର କ୍ଷୁଦ୍ର ଓ ପାତଳା ହୋଇ କଟା ଯାଇଥିବା ସରୁ ଖଣ୍ଡମାନ—1. Thin slice.

( ଯଥା—ନଡ଼ିଆ ପାତି । )

୨ । ଶ୍ଳେଟ ପଦାର୍ଥ—
2. A small thing; a diminutive thing.

कपि

୩ । ପାତି ମାକଡ଼—3. An ape.

୪ । ଅତି ପତଳା ବା କ୍ଷୀଣ ବ୍ୟକ୍ତି—
4. An emaciated person,

୫ । (ସଂ. ପାତ୍ର; ଅନ୍ୟ ଶବ୍ଦ ପରେ ପ୍ରଯୁଜ୍ୟ) ଆଧାର—
5. Receptacle.

(ଯଥା—କଜଳପାତି, କଳାପାତି । )

୬ । (ସଂ. ପଂକ୍ତି) ପାଟିଆ—
6 Long and broad line; stripe.

୭ । କ୍ଷୁଦ୍ର ଜୀବ—7. A small animal.

(ଯଥା—ବଣଲପାତି, କଜଳପାତି (ପକ୍ଷୀ) । )

पाति
नन्हा

ଦେ. ବିଣ (ସଂ. ପତ୍ରକ, ଅନ୍ୟ ଶବ୍ଦ ପରେ ପ୍ରଯୁଜ୍ୟ; ତୁଳ. ଇଂ. ପେଟ୍ଟୀ)—ଶ୍ଳେଟ, କ୍ଷୁଦ୍ରାକୃତିବିଶିଷ୍ଟ—Diminutive; petty.

(ଯଥା—ପାତିମାକଡ, ପାତିହଂସ, ପାତିଶିଆଳୀ ।)

ଦେ. ଅ—(ନିରର୍ଥକ) ଇତ୍ୟାଦି—A redundant word used after nouns meaning etcetera; and suchlike things.

[ ଦ୍ର—ଅନ୍ୟ ଶବ୍ଦ ସଙ୍ଗେ 'ଇତ୍ୟାଦି' ଅର୍ଥରେ ବ୍ୟବହୃତ ହୁଏ । ଯଥା— ଜିନିଷପାତି, ସଉଦାପାତି, ଗହଣାପାତି, ଦୋକାନପାତି, ତୁଳନା କର— ପଇସାପତର, କାଗଜପତ୍ର, ଜିନିଷପତ୍ର । ]

ପ୍ରାଦେ (ଗଞ୍ଜାମ) ବି—ବାଉଁଶର ପାତିଆ—Thin lath of bamboo.

ପ୍ରାଦେ. (ସମ୍ବଲପୁର) ବି—(ସଂ. ପଂକ୍ତି), କଉଡ଼ିଖେଳବିଶେଷ—
A kind of game played with cowries or small sea-shells.

[ ଦ୍ର—ଖଣ୍ଡିଏ ଲମ୍ବ କାଠ ବା ବଟା ଉପରେ ୧୦।୧୨ଟି ସାନ କଉଡ଼ିକୁ ଲମ୍ବ ବାଗରେ ସଜାଇ କରି ରଖାଯାଏ । ଖେଳାଳୀ ସେ ବଟାଠାରୁ ଖଣ୍ଡଦୂରରେ ଛିଡ଼ା ରହି ଆପଣା ହାତରେ ଥିବା ଗୋଟିଏ ବଡ କଉଡ଼ି ଧରି ଉକ୍ତ ସଜ୍ଜିତ କଉଡ଼ିକୁ ଲକ୍ଷ୍ୟ କରି ମାରେ ।

**ପାଟିଆ**—ଦେ. ବି —(ସ. ପଟ୍ଟ, ପଟ୍ଟିକା)—୧ । ସରୁ ପତଳା ପଟ୍ଟ—
Pātiā 1. Thin slip; lath.
ପାଥି **ପଟ୍ଟୀ** ଯଥା—ତମ୍ବାପାଟିଆ, ଲୁହାପାଟିଆ ।
୨ । (ବଣିଆ ଶବ୍ଦ) ଧାତବ ଅଳଙ୍କାରକୁ ଯୋଡିବା ପାଇଁ ଉକ୍ତ ଧାତୁରେ କରସ୍ଥା ଧାତୁ ମିଶାଇ ତିଆର କରାଯାଇଥିବା ସରୁ ଧାତୁ ପତ୍ର—2. Thin metal slip used as solder.
୩ । ବାଉଁଶପାଟିଆ; ପତଳା ହୋଇ ଚିରାଯାଇଥିବା ବାଉଁଶ—
3. Thin lath of bamboo.
ମାଳ ଘର ଶଙ୍କୁଲିରେ ଯେ ବାଉଁଶ ୨ ପାଟିଆ ।
ମକରଶୋର. ନର୍ଣ୍ଣରଣୀ ।

ପେଟିୟା, ପେଟେ ୪ । (ସ. ପଟ୍ଟ ବା ପଂକ୍ତି)—କପାଳ ଉପରର
**पट्टी, पाटी** କେଶର ଭିର୍ଯ୍ୟକ ବିନ୍ୟାସ, ପାଟିଆ, ସୁନ୍ଥା, ସ୍ତ୍ରୀଲୋକମାନେ କପାଳର କେଶକୁ କୁଣ୍ଡାଇ ମସୃଣ ଓ ବନ୍ଧା ହୋଇଥିବା ମେଥି ଦ୍ୱାରା ଭଙ୍ଗ କରିବା କେଶବିନ୍ୟାସ—Arrangement of the hair of the head with a comb so as to make a line by separating the hair of the temple of one's head into two parts and make them stick to their position by means of wax or other gummy substance.
ଦେ. ବିଣ.—୧ । ଅତି ପତଳା—1. Very thin.
୨ । ଅତି ଶୀର୍ଣ୍ଣକାୟ—
2. Much emaciated; thin-bodied.

**ପାଟିଆ କାଟିବା**—ଦେ. କ୍ରି.—ସୁନ୍ଥା ପକାଇବା, ସୁନ୍ଥା କାଟିବା—
Pātiā kātibā To make a line by parting the hair of the temple with a comb.
ପେଟେ ପାଡା, ପାଟୀ ପାଡା
**पट्टी सँवारना, पट्टी बठाना**
ପାଟିଆ ପକା(କେ)ଇବା, ପାଟିଆ ପାଡ଼ିବା, ପାଟିଆ ପାରିବା } ଅନ୍ୟରୂପ

**ପାଟି ଚୋର**—ଦେ. ବି.—ଯେ କ୍ଷୁଦ୍ର ଜିନିଷ ଚୋରି କରେ, ଠାଉକା
Pāti chora ଚୋର—A petty thief; a pilferer.
ପାତିଚୋବ **उठाइगीरा: अँटीवाज**

**ପାଟି ଡଙ୍ଗା**—ପ୍ରାଦେ. (ଗଞ୍ଜାମ) ବି—ବାଉଁଶ ପାଟିଆରେ ବୁଣା ଯାଇଥିବା
Pāti ḍangā ଡମା—An impervious manger made of bamboo laths.
[ଦ୍ର—ଏଥିରେ ଗୋରୁଙ୍କୁ କୁଣ୍ଡା ପାଣି ଖାଇବାକୁ ଦିଆଯାଏ ।]

**ପାତିତ**—ସ.—ବିଣ.—(ପତ୍ ଧାତୁ, ଣିଚ୍+କର୍ମ. ତ)—୧ । ଫୋପଡ଼ା
Pātita ଯାଇଥିବା, ଫିଙ୍ଗା ଯାଇଥିବା, ନିକ୍ଷେପିତ—
1. Thrown; cast.
୨ । ଭୂମିରେ ପକା ଯାଇଥିବା——2. Felled down
୩ । ବିସ୍ତାରିତ; ବିଛା ଯାଇଥିବା—
3. Spread out.
୪ । ଝଡ଼ି ଥିବା, ଖସି ପଡ଼ି ଥିବା, ଝଡ଼ାଇ ଦିଆ ଯାଇଥିବା—
4. Plucked; shed.

**ପାତିତ୍ୟ**—ସ. ବି.—(ପତିତ+ଭାବାର୍ଥେ. ଯ)—୧ । ପଡ଼ିଯିବାର ଅବସ୍ଥା
Pātitya 1. State of having fallen down.
୨ । ପତିତ ବା ହୀନାବସ୍ଥା—2 Degraded condition.
୩ । ନୈତିକ ହୀନତା—
3. Moral degradation; moral depravity.
୪ । ଜାତିରୁ ପତିତ ବା ଚ୍ୟୁତ ହେବାର ଅବସ୍ଥା—
4. The state of being degraded from society or of being outcasted.
୫ । ପାପ—5. Sin.
ପାତିତ୍ୟ ଧ୍ୱଂସୀ ଶ୍ରୀ ମହାପ୍ରସାଦେ,
ନାହିଁ ସଂଶୟ ହେଲେ ପରମାଦେ – କବିସୂର୍ଯ୍ୟ ସଙ୍ଗୀତ ।

**ପାତି ଦେବା**—ଦେ. କ୍ରି.—(ସ. ପତ୍ ଧାତୁ ଣିଚ୍ ପାତି ଧାତୁ)—
Pāti debā ୧ । (ବିଛଣା) ପକାଇବା; ବିସ୍ତୃତ କରିବା—
(ପାତିବା—ଅନ୍ୟରୂପ) To spread out.
ପାତୀ **पसारना** ଗନ୍ଧି ଫୁଲ ମାଳୀ ମାଳୀ ଗ୍ରାସେ ପାତି ଚୂଳ
ଚୂଳକେ ତନ ଲେଖିବ ଭଳ ଭଳ—ଭକ୍ତ. ପ୍ରେମସୁଧାନିଧି ।
୨ । (ଘାସ, ଗୋଡ଼ ପ୍ରଭୃତି) ଭୂମିରେ ଲମ୍ବାଇବା; ପତାଇବା—
2. To lay out.
ସନ୍ଧ୍ୟାକାଳ ଶୋଇବାବେଳରେ ମୁଣ୍ଡକୁ
ପାତିଦେଲେ ନେଇ ସେ ଆପଣା ଜଙ୍ଘକୁ—କୃଷ୍ଣସିଂହ. ମହାଭାରତ ବନ ।
୩ । (ହାତ, କାନ) ଟେକିକରି ଦେଖାଇବା, ପ୍ରସାରିତ କରିବା—
3. To extend (hand, ear).
୪ । ( ଗଣ୍ଠି ) ରଚନା କରିବା, ପକାଇବା—
4. To make ( knot ).
**पाथना** ୫ । (କାନ) ଡେରିବା; ଶୁଣିବାପାଇଁ କାନକୁ ନୁଆଁଇବା—
5. To lower or direct one's ears to listen.
ତାହା ଶୁଣି ସମ୍ରାଟ କର୍ଣ୍ଣ ଦେଇ ପାତି
କହିଗଲେ ଶୋକ ଅଗ୍ନିରେ ଅତି ତାତି—କୃଷ୍ଣସିଂହ, ମହାଭାରତ ବନ ।
୬ । (ପାତ୍ର ପ୍ରଭୃତି) ଟେକିକରି ଦେଖାଇବା—
6. To show by holding up (a cup)
ଚନ୍ଦ୍ରକ ସଉଦାମ୍ନୀ ସୁନା ପାତ୍ର ପାତି
ସେ ନନ୍ଦଗୋପ ଦେ ଧରିଲେ ଝଟତି—କୃଷ୍ଣସିଂହ. ମହାଭାରତ ବିରାଟ ।
୭ । ନିରୂପଣ କରିବା—
7. To ascertain; to take for granted
ଉଚ୍ଚଗୁଣକୁ ତୁ ଧାର ଅଣିଗ
ତୁ ଏ ଅବ ଭୂତ ବୋଲି ପାତିଲୁ—ପ୍ର ଭୀ, ପରିଚେତୀରା ।

**ପାତିନୀ**—ସ. ବିଣ. ସ୍ତ୍ରୀ (ପାତିନ୍+ଈ)—ପାତୀର ସ୍ତ୍ରୀଲିଙ୍ଗ—
Pātini Feminine of Pāti.

**ପାତିବ୍ରତ୍ୟ**—ସ. ବି ( ପତିବ୍ରତା+ଭାବାର୍ଥେ. ଯ )—ସତୀତ୍ୱ; ପତିବ୍ରତାର
Pātibratya ଧର୍ମ, ପତିପରାୟଣତା—Chastity; conjugal fidelity; concentrated devotion to one's husband.

**ପାତି ମାକଡ଼**—ଦେ. ବି—ନାଲମୁହାଁ ଶ୍ରେଣୀଜାତୀୟ ମାକଡ଼—
Pāti mākarḍa Red-faced monkey; ape;
( ପାତିମାଙ୍କଡ଼—ଅନ୍ୟରୂପ ) Macacus Rhesus.
କପୀବାଁଦର, ପାତିବାଁଦବ **बँदर**

**ପାତିଲ**—ସ. ବି ( ପତ୍ ଧାତୁ ଣିଚ୍+କର୍ମ. ଲ )—ଚଉଡ଼ାମୁହାଁ ଶ୍ରେଣୀ
Pātila ପାତିଲ **ଅଟିକା; ପତୁଲି**—A wide-mouthed
**पतील** ଫା. ପତୀଲା ମ. ପାତେଲୀ small earthen pot.

ପାତଲୀ—ସ. ବ (ପତ୍ ଧାତୁ ଣିଚ୍ ପାତ ଧାତୁ+ଲ+ସ୍ତ୍ରୀ. ଈ, ବା ପାତ+ଇଲ)—୧ । ପାତଲ (ଦେଖ)—1. Pātili Pātila (See).
୨ । ଫାନ୍ଦ, ଶିକାରର ଜାଲ—2 Snare; hunter's net.
୩ । ନାରୀ, ସ୍ତ୍ରୀ—3 Woman

ପାତଶା—ବୈଦେ. ବ (ପ୍ରାଚୀନ ପ୍ରୟୋଗ, ଫା. ପାତ୍‌ଶାହ୍)—ବାଦଶାହା, ସମ୍ରାଟ (ମାଦଳାପାଞ୍ଜି)—Emperor. Pātisā

ପାତି ଶିଆଳ—ଦେ. ବ - ଶଗାଲଜାତୀୟ କ୍ଷୁଦ୍ର ଜନ୍ତୁ, କୋକଶିଆଳ,କୋକି- Pāti siāla Fox.
পাতীশেযাল लोमड़ी (ପାତିଶିଆଳ—ଅନ୍ୟରୂପ)

ପାତି ଶିପ—ଦେ. ବ—ସମୁଦ୍ର କୂଳରେ ମିଳିବା ଅତି ଛୋଟ ଶିପ— Pāti sipa Very small oyster shells.
ছোট ঝিনুক, छोटाशिप पातिशीप

ପାତିଶେର(ର)—ଦେ. ବ—ବାଲେଶ୍ୱରୀ ସେର, ଅଶୀ ତୋଳା ଓଜନର ସେର (ଉତ୍କଳ ସାହିତ୍ୟ—୩।୨୪)— Pātiseri(ra)
A standard seer weighing 80 Tolās.

ପାତିହା ଦ୍ୱାଜ୍‌ଦୁହମ୍—ବୈଦେ ( ଆରବୀ. ଫାତିଅଦୋହାଜଦମ୍ ) ବ—ଫାତିଅଦୋହଜ୍‌ଦମ୍ (ଦେଖ) Pātihā dwāj-duham Phātiādohajdam (See).
ପାତିହା ଦ୍ୱାଜ୍‌ଦମ୍ / ପାତିହା ଦୋଆ(ହା)ଜ୍‌ଦମ୍ } ଅନ୍ୟରୂପ

ପାତିହଂସ—ଦେ. ବ—କୁଜୀ ହଂସ, ବତକ, ଗେଡ଼ୀ ହଂସ— Pāti hamsa A common duck; a gander.
পাতিহাঁস বতককড়ী, বত্তকী

ପାତୀ—ସ. ବଣ. ପୁଂ—(ଅନ୍ୟ ଶବ୍ଦ ସଙ୍ଗେ ସମାସରେ ଯୁକ୍ତ; ପାତିନ୍, ପତ୍ ଧାତୁ=ପଡ଼ିବା+କର୍ତ୍ତୃ. ଇନ୍)—୧ । ଯେ ପଡ଼େ, ପଡ଼ୁଥିବା—2. Falling. Pāti (ପାତିନୀ—ସ୍ତ୍ରୀ)
୨ । ଉଡ଼ୁଥିବା—2 Flying.
୩ । (ପତ୍ ଧାତୁ ଣିଚ୍+ଇନ୍ )ଯେ ପକାଏ—3. Throwing.
ଦେ. ବ ଓ ବଣ—ପାତି—(ଦେଖ)—Pāti (See).

ପାତୁଆ—ଦେ. ବଣ—ଏକ ପାର୍ଶ୍ୱରେ ପାତଳ— Pātuā Thin at one end.
ଦେ. ବ—୧ । ବନ୍ୟଜାତିବିଶେଷ; ପତର ଶବର—
1. Name of a nomad hill-tribe wearing leaves.
ଅଙ୍ଗନାଇ ଗୁଞ୍ଜା-ମାଳଅ ପାତୁଆ କରନ୍ତି ଜବୁ ସଂଗ୍ରହ— ଉପେନ୍ଦ୍ରଭଞ୍ଜ—ପଦଙ୍ଗା।
[ ଦ୍ର—ଏମାନେ ଲୁଗା ପରିବର୍ତ୍ତେ ପତ୍ର ଗୋଞ୍ଚରେ ଶରୀରର ଗୋପ୍ୟ ଅଙ୍ଗମାନ ଆବୃତକରି ଲଜ୍ଜା ନିବାରଣ କରନ୍ତି ।]
୨ । ଜୁଆଙ୍ଗ ଭାଷାର ଅନ୍ୟ ନାମ - 2 Another name of the language of the Juāngas.
୩ । ଚିଲିକା ହ୍ରଦର ମତ୍ସ୍ୟବିଶେଷ—
3. A kind of fish (found in the Chilka).

ପାତୁକ—ସ. ବଣ—(ପତ୍ ଧାତୁ=ପତିତ ହେବା+କର୍ତ୍ତୃ. ଶୀଳାର୍ଥେ ଉକ)—ପତନଶୀଳ—Fallible; tending to fall. Pātuka (ପାତୁକୀ—ସ୍ତ୍ରୀ)
ସ. ବ—୧ । ପର୍ବତର ଢାଲୁ, ପର୍ବତସାନୁ —
1. The slope of a mountain.
୨ । ଜଳ ହସ୍ତୀ—2 Hippopotamus.

ପାତୁରୁ ଭାଜି—ପ୍ରାଦେ. (ଗଞ୍ଜାମ) ବ—ମଦରଙ୍ଗା (ଶାଗ)— Pāturu bhāji A kind of pot herb.

ପାତୁଲ୍—ପ୍ରାଦେ. (ସମ୍ବଲପୁର)—ବ—(ସ. ପାତ୍ର, ଭୁଲ, ପତୁଲ୍)—ଛୋଟ ହାଣ୍ଡି; ଆଟିକା—Small earthen pot Pātul

ପାତେକ—ଗ୍ରା. ବ—(ସ. ପାତକ)—ପାତକ, ପାପ— Pāteka Sin
ବେନି କର୍ଣ୍ଣେ ଶୁଣିଲେ ପାତେକ ହେବ ଧ୍ୱଂସ— ପ୍ରାଚୀ. ବୃନ୍ଦାବନଭୂଷଣଗୀତା।

ପାତେକି—ଗ୍ରା. ବଣ. ପୁଂ ଓ ସ୍ତ୍ରୀ (ସଂ. ପାତକୀ)—ପାପୀ— Pāteki Sinful.

ପାତେଲା—ଗ୍ରା. ବଣ. ପୁଂ—ପାତଳ— Pātelā (ପାତେଲୀ—ସ୍ତ୍ରୀ) Thin.

ପାତେଲିଆ—ଗ୍ରା ବଣ—ପାତଳିଆ – (ଦେଖ)— Pāteliā Pātaliā (See)

ପାତ୍ର—ସ ବ—(ପା ଧାତୁ=ରକ୍ଷା କରିବା+କର୍ତ୍ତୃ. ତ୍ର, ବା ପା ଧାତୁ=ପାନ କରିବା+କରଣ. ତ୍ର, ଯହିଁରେ ଜଳାଦ ରଖାଯାଏ ବା ପାନ କରାଯାଏ)—୧ । ବସ୍ତୁର ଆଧାର— Pātra
1. A receptacle; a pot; a vessel.
୨ । ଭାଜନ; ଯୋଗ୍ୟ ବିଷୟ, (କୌଣସି ବିଷୟର) ଉପଯୁକ୍ତ ବ୍ୟକ୍ତି-
2. Object; recipient; fit object for.
ଶୁଣିଲେ ଯେବେ ମୁହିଁ ପାତ୍ର
କହ ହୋ ଜନ୍ମ କର୍ମ ଗୋତ୍ର—ଜଗନ୍ନାଥ, ଭାଗବତ।
୩ । କୌଣସି କାର୍ଯ୍ୟ କରିବାକୁ ଯୋଗ୍ୟ ବ୍ୟକ୍ତି—
3 A competent person; a person competent to do some thing.
୪ । ବାସନ—4. Utensil; plate; bowl.
୫ । ବିବାହାର୍ଥୀ, ବର—
5. Bridegroom; bridegroom elect.
୬ । ମନ୍ତ୍ରୀ—6. Minister.
୭ । (ଭୂଗୋଳ) ତୀର ଦ୍ୱୟର ମଧ୍ୟବର୍ତ୍ତୀ ଜଳ ଧାର, ପ୍ରଣାଳୀ—
7. ( Geography ) A strait.
୮ । ନାଟକର ଅଭିନେତା—8. Actor of a play.
୯ । ଦେହ, ଶରୀର—9. Body.
ସ. ବ. ସ୍ତ୍ରୀ—୧୦ । କନ୍ୟା—10. Bride; bride elect.
ସ. ବଣ—ଉପଯୁକ୍ତ; ଯୋଗ୍ୟ—Fit; competent.
ଭାରତ ଶୁଣିବାକୁ ପାତ୍ର ତୁମ୍ଭେମାନେ। କୃଷ୍ଣସିଂହ ମହାଭାରତ ଆଦି।
ଦେ. ବ—୧ । ଶୂଦ୍ର ଓ ଖଣ୍ଡାଏତଙ୍କ ବଂଶୋପାଧିବିଶେଷ—
1. A family-title of Sūdras and Khandāetas.
୨ । ଉପଯୁକ୍ତ ବର—2 A deserving bridegroom.
୩ । ଉତ୍ତମ ଲୋକ—3. A good man
୪ । ବ୍ୟକ୍ତି; ମନୁଷ୍ୟ—4 A person.

ଯଥା—ଭରବା ପାତ୍ର (ଭରଯିବା ଲୋକ), ଛଡ଼ବା ପାତ୍ର (ଛଡ଼ଦେବା ବ୍ୟକ୍ତି)

**ପାତ୍ର ଅନ୍ତର**—ଦେ. ବି—୧ । ପକ୍ଷପାତ—
Pātra antara 1. Partiality.
ପକ୍ଷପାତ ୨ । ଜଣକ ପ୍ରତି ଏକପ୍ରକାର ବ୍ୟବହାର ଓ ଅନ୍ୟ
ପକ୍ଷପାତର ବ୍ୟକ୍ତି ସମାନପଦସ୍ଥ ହୋଇଥିଲେହେଁ ତାହା ପ୍ରତି କରାଯିବା ଅନ୍ୟରୂପ ବ୍ୟବହାର—2 Unequal dealing or behaviour with different persons, discriminating treatment

**ପାତ୍ରତା**—ସଂ. ବି. (ପାତ୍ର + ଭାବାର୍ଥେ ତା)—୧ । ଉପଯୋଗିତା—
Pātratā 1. Fitness.
(ପାତ୍ରତ୍ୱ—ବି) ୨ । ସମ୍ମାନ—2. Respect; homage

**ପାତ୍ର ପକ୍ଷ**—ସଂ. ବି. (ପାତ୍ର + ପକ୍ଷ)—ବରଯାତ୍ରୀ, ବରଙ୍କଦଳ—
Pātra paksha The party accompanying the bridegroom to a marriage.

**ପାତ୍ର ମନ୍ତ୍ରୀ**—ଦେ. ବି. (ସଂ. ପାତ୍ର + ମନ୍ତ୍ରୀ, ସହଚର ଶବ୍ଦ)—
Pātra mantri ରାଜସଭାସ୍ଥ ଅମାତ୍ୟାଦି କର୍ମଚାରୀ—
(ପାତ୍ରମିତ୍ର—ଅନ୍ୟରୂପ) Ministers and other officers of the court of a king.
ସୁଗ୍ରୀବ ଏହା ଜାଣି ପାତ୍ରମନ୍ତ୍ରୀ ସେନ ସେହୁ ଋଷ୍ୟମୂକ ପର୍ବତରେ ଯାଇ ଥାଏ । ଜଗନ୍ନାଥ. ବିଲଙ୍କା ରାମାୟଣ ।

**ପାତ୍ର ଶେଷ**—ସଂ. ବି. (ମ. ପ. ଲୋ, ପାତ୍ରରେ ବଳିଥିବା ଖାଦ୍ୟ ଦ୍ରବ୍ୟର
Pātra sesha ଶେଷ)—ଅଇଁଠା, ଭୋଜନ ପାତ୍ରରେ ଖାଇବାଲୋକ ଛାଡ଼ିଯାଇଥିବା ଭୁକ୍ତାବଶିଷ୍ଟ ଦ୍ରବ୍ୟ, ଉଚ୍ଛିଷ୍ଟ (ହି. ଶ)—
The leavings of an eater in the plate.

**ପାତ୍ର ସଂସ୍କାର**—ସଂ. ବି (୬ଷ୍ଠୀ ତତ୍; ପାତ୍ର + ସଂସ୍କାର)—ମନ୍ତ୍ରାଦି ଦ୍ୱାରା ପୂଜା-
Pātra samskāra ପାତ୍ରକୁ ଶୁଦ୍ଧ କରିବା—The purification of the sacrificial vessels by means of mystic formulas.
ଦେ. ବି—ବାସନ ମାଜିବା—Scouring of utensils.

**ପାତ୍ରସ୍ଥ**—ସଂ. ବିଣ—୧ । ପାତ୍ରରେ ରକ୍ଷିତ—
Pātrastha 1. Put in or consigned into a vessel.
୨ । ସତ୍‌ପାତ୍ରରେ ନ୍ୟସ୍ତ—
2. Consigned to a proper person
ଦେ. ବିଣ. ସ୍ତ୍ରୀ—ଉପଯୁକ୍ତ ବରଙ୍କୁ ବିବାହିତା (କନ୍ୟା)—
ପାତ୍ରସ୍ଥ (a girl) Given in marriage to a worthy bridegroom.

**ପାତ୍ରସ୍ଥ କରିବା**—ଦେ. କ୍ରି—୧ । କନ୍ୟାକୁ ବିବାହ ଦେବା—
Pātrastha kariba 1 To give a girl in marriage
ପାତ୍ରସ୍ଥକରା ୨ । କନ୍ୟାକୁ ସତ୍ ପାତ୍ରରେ ଦାନ କରିବା—
2. To give a girl in marriage to a suitable or worthy bridegroom.

**ପାତ୍ରସାତ୍**—ସଂ. ଅ. (ପାତ୍ର + ଅର୍ପିତ ଅର୍ଥରେ ସାତ୍)—
Pātrasāt ୧ । ପାତ୍ରସ୍ଥ, ପାତ୍ରରେ ଅର୍ପିତ—
1. Consigned to a vessel or pot.
୨ । ସତ୍‌ପାତ୍ରରେ ଦାନ—
2. Gift to a proper person.
୩ । କନ୍ୟାକୁ ସତ୍‌ପାତ୍ରକୁ ବିବାହାର୍ଥେ ଦାନ—
3. Giving a girl in marriage to a suitable bridegroom.

**ପାତ୍ରାଣୀ**—ପ୍ରାଦେ. (ସମ୍ବଲପୁର) ବି. ସ୍ତ୍ରୀ—ବିଞ୍ଝାଲ ଜମିଦାର ଜମିଦାରି
Pātrāni ପାଇବା ଦିନ, ଅର୍ଥାତ୍ ପ୍ରଥମେ ଜମିଦାରି ଗାଦିରେ ବସିବା ଦିନ ଯେଉଁ ସ୍ତ୍ରୀକୁ ବିବାହ କରନ୍ତି—
The girl whom a Binjhāla Zamindar marries on the day he is installed as Zamindar (in Sambalpur)
[ଦ୍ର—ଏପରି ପାରମ୍ପରିକ ବିଧି ଅଛି ଯେ ସେଦିନ ଗୋଟିଏ ନୂଆ ଭାର୍ଯ୍ୟାକୁ ନୂଆ ବିଞ୍ଝାଲ ଜମିଦାର ବିବାହ କରିବେ ।]

**ପାତ୍ରାପାତ୍ର ଜ୍ଞାନ**—ସଂ. ବି. (ପାତ୍ର + ଅପାତ୍ର + ଜ୍ଞାନ)—
Pātrāpātra jnāna କୌଣସି ବ୍ୟକ୍ତିର ଯୋଗ୍ୟତା ବା ଅଯୋଗ୍ୟତା ବିଷୟରେ ଜ୍ଞାନ—Discrimination about the worthiness or otherwise of a person in relation to whom a person is going to do a certain act.

**ପାତ୍ରାସାଦନ**—ସଂ. ବି. (୭ମୀ ତତ୍; ପାତ୍ର + ଆସାଦନ)—
Pātrāsādana ଯଜ୍ଞପାତ୍ରର ଯଥାସ୍ଥାନରେ ସ୍ଥାପନ—
The placing of a sacrificial vessel at its proper place.

**ପାତ୍ରି**—ଦେ. ବି. (ସଂ. ପାତ୍ରୀ)—୧ । ଛୋଟପାତ୍ର—
Pātri 1. A small pot or vessel
କୋଶୀ ୨ । ତର୍ପଣାଦିରେ ବ୍ୟବହୃତ ତମ୍ବାର ନୌକାକୃତି ପାତ୍ର—
ପାତ୍ରୀ 2. A boat-shaped copper pot used in offering libations of water to the manes.
ବିଜମାନେ ଗଙ୍ଗ ଯେ ପାତ୍ରୀ ବଳେ ଥୋଇ । କୃଷ୍ଣସିଂହ, ମହାଭାରତ ବନ ।
[ ଦ୍ର—ଏହାର ଗୋଟିଏ ମୁଣ୍ଡରେ ପାଣି ଗଳିବାକୁ ପାତ୍ରାନଥାନାକ ଥାଏ । ]
୩ । ଛୋଟ ଗ୍ଲାସ୍—3. A small glass.

**ପାତ୍ରିଆଣୀ**—ଦେ. ବି. ସ୍ତ୍ରୀ—ପାତ୍ର ଉପାଧିଧାରୀ ବ୍ୟକ୍ତିର ସ୍ତ୍ରୀ—
Pātriāni The wife of a Pātra.

**ପାତ୍ରିୟ**—ସଂ.ବିଣ. ପୁଂ(ପାତ୍ର+ଇୟ)—ସହଭୋଜୀ, ଯେଉଁ ବ୍ୟକ୍ତିଙ୍କ ସଙ୍ଗେ
Pātriya ଏକ ପାତ୍ରରେ ଭୋଜନ କରାଯାଇ ଥାଏ—
(ପାତ୍ରିୟା—ସ୍ତ୍ରୀ) (a person) With whom one can take
(ପାତ୍ର୍ୟ—ଅନ୍ୟରୂପ) food from the same plate.

**ପାତ୍ରୀ**—ସଂ. ବି. (ପାତ୍ର+ସ୍ତ୍ରୀ. ଈ)—୧ । ପାତ୍ର—
Pātri 1. Pot; vessel.
୨ । ହୋମ ଯଜ୍ଞାଦିରେ ବ୍ୟବହୃତ ପାତ୍ର—
2. A sacrificial vessel.
୩ । ବିବାହଯୋଗ୍ୟା କନ୍ୟା—
3. A marriageable bride.
୪ । କୁମାରୀ—4. Maid; virgin.

୫ । ନବବିବାହିତା କନ୍ୟା, ବଧୂ—5. Bride

୬ । ଉଠା ଚୁଲ୍ଲି (ହି. ଶ)—2. A removeable oven.

**ପାତ୍ରୀୟ**—ସଂ. ବିଣ. (ପାତ୍ର+ସମ୍ବନ୍ଧାର୍ଥେ ଈୟ)—ପାତ୍ର ସମ୍ବନ୍ଧୀୟ—
Pātrīya Relating to a Pātra.

ସଂ. ବି. କ୍ଲୀ—ଯଜ୍ଞପାତ୍ର—Sacrificial vessel.

**ପାଥ**—ସଂ. ବି. (ପା ଧାତୁ=ପିଇବା+କର୍ତ୍ତୃ.ଅ, ଥ ଆଗମ)—୧ । ସୂର୍ଯ୍ୟ—
Pātha 1. Sun.

(ପାଥସ୍—ଅନ୍ୟରୂପ) ୨ । ଅଗ୍ନି—2. Fire.

୩ । (+କର୍ମ. ଅ)—ଜଳ—3 Water.

୪ । ଅନ୍ନ (ହି. ଶ)—4. Food.

୫ । ଆକାଶ (ହି. ଶ)—5. The sky.

୬ । ବାୟୁ (ହି. ଶ)—6. Air.

ଦେ. ବି. (ସଂ. ପାର୍ଥ)—ଅର୍ଜୁନ; ତୃତୀୟ ପାଣ୍ଡବ—
पार्थ Arjuna.

ସେହି ଗାଣ୍ଡୀବ ସେହି ପାଥ, ସେହି ଗାଣ୍ଡୀବ ଏବେ ମାଥ । ଭଗ ।

**ପାଥଃ**—ସଂ. ବି. (ପାଥସ୍; ପା ଧାତୁ=ପାନ କରିବା+କର୍ମ ଅସ୍; ଥ.
Pāthaḥ ଆଗମ)—ପାଥ (ଦେଖ)—Pātha (See)

(ପାଥସ୍—ଅନ୍ୟରୂପ)

**ପାଥ ନାଥ**—ସଂ. ବି. (୬ଷ୍ଠୀ ତତ୍; ପାଥ+ନାଥ)—ସମୁଦ୍ର—
Pātha nātha The sea; ocean.

**ପାଥ ରଥ**—ସଂ. ବି. (ମ. ପ. ଲୋ, ପାଥ=ଜଳ+ରଥ=ଯାନ; ପାଥରେ
Pātha ratha ବ୍ୟବହୃତ ଯାନ)—ନୌକା; ଡଙ୍ଗା—
Boat.

**ପାଥିଃ**—ସଂ. ବି. (ପାଥିସ୍; ପା ଧାତୁ=ପାନ କରିବା+ସଂଜ୍ଞାର୍ଥେ.
Pāthiḥ ଇସ୍; ଥ. ଆଗମ)—ସମୁଦ୍ର—1. The sea; ocean.

୨ । ଆକ୍ଷି—2 The eye

୩ । ଜଳ—3. Water.

୪ । ଘାଆ ଉପରେ ଆଚ୍ଛାଦକ ଖୋଳ ବା ରକ୍ତର ଶୁଖିଲା ବକଲ
(ହି. ଶ)—4. A peel formed over sores.

**ପାଥିକ**—ସଂ. ବି ପୁଂ ଓ ସ୍ତ୍ରୀ—(ପଥିକ+ଅପତ୍ୟାର୍ଥେ. ଅ)—ପଥିକ
Pāthika ବା ବିଦେଶବାସୀ ବ୍ୟକ୍ତିର ସନ୍ତାନ—
The son of a traveller or sojourner.

**ପାଥିକ୍ୟ**—ସଂ. ବି—(ପଥିକ+ଭାବାର୍ଥେ. ଯ)—ପଥିକ ଭାବ; ପଥିକତ୍ୱ—
Pāthikya The state of being a traveller.

**ପାଥୁରି**—ଦେ. ବି—(ସଂ ପ୍ରସ୍ତର)—ମୂତ୍ରାଶୟରେ ପଥର ଜନ୍ମିବା ରୋଗ;
Pāthuri ଅଶ୍ମରୀ—A disease; the stone in the
पाथरी पथरी kidneys; calculus in the bladder.

**ପାଥେଫୋନ୍**—ବୈଦେ (ଇଂ) ବି—ଗୀତ ଅନୁକରଣ କରିବାର କଳ ବା
Pathephone ଯନ୍ତ୍ର ବିଶେଷ—Pathephone.
पाथेफोन पाथेफोन

**ପାଥେୟ**—ସଂ. ବି—(ପଥ+ପ୍ରୟୋଜନାର୍ଥେ. ଏୟ)—୧ । ପଥିକର
Pātheya ବାଟରେ ଲୋଡ଼ା ହେବା ପଦାର୍ଥ—1. Articles
required by a traveller during the
journey.

୨ । ବାଟୋଇର ବାଟରେ ଲୋଡ଼ା ହେବା ଖାଦ୍ୟ ପଦାର୍ଥ, ଯାହା
ବାଟୋଇ ସଙ୍ଗରେ ନେଇଥାଏ—2. Food which
a traveller takes with him for being
partaken of during the journey.

୩ । ବାଟ ଖର୍ଚ୍ଚ—3. Passage-money.

୪ । କନ୍ୟା ରାଶି (ହି. ଶ.)—
4. The astronomical sign Virgo.

**ପାଥୋଜ**—ସଂ. ବି—(ପାଥସ୍+ଜନ୍ ଧାତୁ=ଜନ୍ମିବା+କର୍ତ୍ତୃ ଅ)—
Pāthoja (ପାଥୋରୁହ—ଅନ୍ୟରୂପ) ପଦ୍ମ—Lotus.

**ପାଥୋଦ**—ସଂ. ବି—(ପାଥସ୍+ଦା ଧାତୁ=ଦାନ କରିବା+କର୍ତ୍ତୃ. ଅ)—
Pāthoda ଜଳଦ, ମେଘ—Cloud.

(ପାଥୋଧର—ଅନ୍ୟରୂପ)

**ପାଥୋଧି**—ସଂ. ବି—(ପାଥସ୍=ଜଳ+ଧା. ଧାତୁ=ଧାରଣ କରିବା+ଅଧି.
Pāthodhi ଇ)—ଜଳନିଧି; ସମୁଦ୍ର—The sea; ocean.

(ପାଥୋନିଧି—ଅନ୍ୟରୂପ)

**ପାଥ୍ୟ**—ସଂ. ବିଣ—(ପାଥ+ଯ)—୧ । ଆକାଶବାସୀ—
Pāthya (ହି. ଶ.)—1 Living in the sky.

୨ । ବାୟୁରେ ରହୁଥିବାଲୋ (ହି. ଶ.)—
2. Living in the air.

**ପାଦ୍‌ଶା**—ବୈଦେ. ବି. (ଫା. ପାଦ୍‌ଶାହ୍)—ପାତଶା (ଦେଖ)—
Pād-śā Pātaśā (See)

**ପାଦ**—ସଂ. ବି. (ପଦ ଧାତୁ=ଗମନ କରିବା+କରଣ. ଅ)—୧ । ଚରଣ;
Pāda ଗୋଡ଼—1. Leg; foot.

୨ । ତଳପା—2 Sole of the foot.

୩ । ବୃକ୍ଷର ମୂଳ, ଚେର—3 Root of tree.

୪ । ପାହୁଣ୍ଡ—4. A step.

୫ । କିରଣ, ରଶ୍ମି—5 Ray; beam.

୬ । ପର୍ବତର ମୂଳ ଦେଶ—
6. The foot of a mountain.

୭ । ଚାରିଧାଡ଼ିଆ ଶ୍ଳୋକର ଏକଧାଡ଼ି—
7. One line of a stanza or quatrain.

୮ । କୌଣସି ବସ୍ତୁର ମୂଳଦେଶ—8. Base.

୯ । ଚତୁର୍ଥାଂଶ—9. One fourth; quarter.

ଦ୍ୱାପର ଯୁଗେ ଥିଲ ପାଦ ଉଣା ଧର୍ମ—କୃଷ୍ଣସିଂହ ମହାଭାରତ ବନ ।

୧୦ । ପାହାଚ—10. Step of a staircase.

୧୧ । (ହିନ୍ଦୁ ଆଇନ୍ ବା ସ୍ମୃତି) ମକଦ୍ଦମା ଚଳାଇବାର ଭିନ୍ନ ଭିନ୍ନ
ସିଡ଼ି ବା ଉପକ୍ରମ—11. The different stages or
steps in the conduct of a suit

[ଦ୍ର—ଯଥା—ଭାଷାପାଦ ବା ପୂର୍ବ ପକ୍ଷ ପାଦ—
ଅରଜି—Plaint.

ଉତ୍ତର ପାଦ—ଜବାବ—Written statement.

କ୍ରିୟା ପାଦ—ପ୍ରମାଣ—Evidence.

ସାଧ୍ୟସିଦ୍ଧି ପାଦ—ରାଏ, ଫଏସଲା—Judgment and
decree.]

୧୨ । ବଡ଼ ପର୍ବତର ସମୀପସ୍ଥ କ୍ଷୁଦ୍ର ପର୍ବତ (ହି ଶ —
12. A hill close to a mountain.
ପାଦଗିର ପର୍ଯ୍ୟଙ୍କିକା — ଗ୍ରଧାନାଥ ।
୧୩ । ଚିକିତ୍ସାର ଚାରିଗୋଟି ଅଙ୍ଗ (ଯଥା—ବୈଦ୍ୟ, ରୋଗୀ, ଔଷଧ ଓ ଉପଚାରକ) (ହି. ଶ)—13. The four concomitants of medical treatment.
୧୪ । ପଦର କ୍ରିୟା, ଗମନ, ଚାଲିବା (ହି. ଶ)—
15 Walking.
୧୫ । ଶିବ (ହି. ଶ)—15 Siba.
୧୬ । ଏକ ଋଷିଙ୍କ ନାମ (ହି. ଶ)—
16. Name of a sage.

**ପାଦ କଟକ**—ସ. ବ—(୬ଷ୍ଠୀ ତତ୍, ପାଦ+କଟକ)—ପାହୁଡ଼, ମଲ୍ଲ, ବଳା—Anklet.
Pāda kaṭaka
(ପାଦ କୀଳକା—ଅନ୍ୟରୂପ)

**ପାଦ ଗଣ୍ଡିର**—ସ. ବ—(ପାଦ+ଗଣ୍ଡ ଧାତୁ=ଫୀତ ହେବା+ଇର)—ଶ୍ଲୀପଦ, ଗୋଦର—Elephantiasis of the leg.
Pāda gaṇḍira

**ପାଦଗତ**—ସ. ବଣ—(୨ୟା ତତ୍, ପାଦକୁ ଗତ ବା ପ୍ରାପ୍ତ)—ପଦାଶ୍ରିତ, ପାଦତଳେ ପଡ଼ିଥିବା (ବ୍ୟକ୍ତି)—(a person) Falling prostrate at the feet of another.
Pādagata
ସେ ମାୟାଧର ପାଦଗତ
କମଳ ଦାସ ଜଗନ୍ନାଥ — ଜଗନ୍ନାଥ ଭାଗବତ ।

**ପାଦଗତେ**—ଦେ. କ୍ରି. ବଣ—ପାଦକୁ ଆଶ୍ରୟ କରି, ପଦାଶ୍ରୟରେ—At or below the feet.
Pādagate
ଏଣୁ ମୁକୁନ୍ଦ ପାଦଗତେ
ଯେ ପ୍ରାଣୀ ଭକତ ନରତେ — ଜଗନ୍ନାଥ ଭାଗବତ ।

**ପାଦ ଗୟା**—ଦେ. ବ—(ନାମ)—ହିନ୍ଦୁ ତୀର୍ଥସ୍ଥାନବିଶେଷ—A sacred place of the Hindus.
Pāda gayā
[ଦ୍ର—ଏହା ଗୋଦାବରୀ ଷ୍ଟେସନ ଠାରୁ ୪୨ ମାଇଲ ଦୂରରେ ଅବସ୍ଥିତ । ଏଠାରେ ସ୍ନାନ ଓ ପିଣ୍ଡ ଦାନ କରି ହିନ୍ଦୁ ତୀର୍ଥଯାତ୍ରୀମାନେ କୃତାର୍ଥ ହୁଅନ୍ତି । ମଦନମୋହନ—ତୀର୍ଥ ଦର୍ଶନ ]

**ପାଦଗାମୀ**—ସ. ବଣ. ପୁଂ. (ପାଦ+ଗମ୍ ଧାତୁ+କର୍ତ୍ତୃ. ଇନ୍, ପାଦଗାମିନ୍ ଶବ୍ଦ, ୧ମା. ୧ବ)—ପାଦଚାରୀ—Walking on foot.
Pādagāmī
(ପାଦଗାମିନୀ—ସ୍ତ୍ରୀ)

**ପାଦ ଗ୍ରନ୍ଥି**—ସ. ବ. (୬ଷ୍ଠୀ ତତ୍, ପାଦ+ଗ୍ରନ୍ଥି)—୧ । ବଳାଗଣ୍ଠି—1. Ankle.
Pāda granthi
୨ । ଗୁଲ୍ଫ, ଗୋଇଠି—2. Heel.

**ପାଦ ଗ୍ରହଣ**—ସ. ବ. (୬ଷ୍ଠୀ ତତ୍)—ମାନ୍ୟାର୍ଥ ବା ପ୍ରାର୍ଥନା ବା କ୍ଷମା ଭିକ୍ଷା କରିବା ପାଇଁ ଗୋଡ଼ ଧରି ପ୍ରଣାମ କରିବା—Clasping or embracing the feet of any person in token of respect or submission or for asking pardon.
Pāda grahaṇa

**ପାଦ ଗ୍ରହଣୀ**—ସ. ବ. (ପାଦ+ଗ୍ରହଣ+ଇନ୍; ଯାହା ଅଶ୍ୱାରୋହୀର ପାଦକୁ ଗ୍ରହଣ କରେ)—ଘୋଡ଼ାର ଜିନର ଦୁଇ ପାଖରେ ଝୁଲୁଥିବା ରେକାବ—Stirrups.
Pāda grahaṇi
ପାଦ ଗ୍ରହଣୀରେ ଉଠି ଯୁବାମାନେ ତେଜି ପୃଷ୍ଠେ ଚଢ଼ିଲେ ସନ୍ଧ୍ୟାସୀ ପରେ ।
ଲାଳ କଣ୍ଠ — ମାୟାଦେବୀ ।

**ପାଦଚାର**—ସ. ବ. (ପାଦ+ଚର ଧାତୁ+ଭାବ. ଅ)—୧ । ଚାଲିବା, ଚାଲିଚୂଲି—1. Walking
Pādachāra
ପାଦଚାରଣ } ଅନ୍ୟରୂପ
ପାଦଚାଳନ }
ନିଶାନ୍ତ ଅନ୍ଧାରେ ମୃଦୁ ପାଦଚାରେ
ଫେରିଗଲେ ହଂସପୁରେ—ରାଧାନାଥ ପାର୍ବତୀ ।
୨ । (ଜ୍ୟୋତିଷ) ଗ୍ରହମାନଙ୍କର ଆହ୍ନିକ ଭୋଗ ବା ଗତି—2. (astronomy) The diurnal motion of planets.

**ପାଦଚାରୀ**—ସ. ବଣ. ପୁଂ. (ପାଦ+ଚର ଧାତୁ+ଇନ୍; ୧ମା. ୧ବ.)—ଗୋଡ଼ରେ ଚାଲିବା (ବ୍ୟକ୍ତି), ଚାଲୁଥିବା—Going on foot; walking.
Pādachāri
(ପାଦଚାରିଣୀ—ସ୍ତ୍ରୀ)
ସ. ବ—ଗୋଡ଼ରେ ଚାଲିବା ବ୍ୟକ୍ତି—1, A pedestrian.
୨ । ପଦାତିକ—2 Foot soldier.

**ପାଦ ଛୁଇଁବା**—ଦେ. କ୍ରି—ପାଦରେ ହାତ ଦେଇ ଶପଥ କରିବା—To take an oath by touching one's feet.
Pāda chhuinbā
ପା ଛୋଆ पैर छूना
ଏ କଥା ଆନ ଥିବ ଯେବେ ମୋ ମାନସ
ଛୁଇଁଛି ନାଶ ସିଦ୍ଧ ଭୂମି ପାଦ ଦେଶ—କୃଷ୍ଣସିଂହ ମହାଭାରତ ବନ ।

**ପାଦଜ**—ସ. ବଣ. (ପାଦ+ଜନ୍ ଧାତୁ+କର୍ତ୍ତୃ. ଅ)—ଗୋଡ଼ରୁ ଜାତ—Born of the foot.
Pādaja
ସ. ବ—(ବ୍ରହ୍ମାଙ୍କ ପାଦରୁ ଜାତ ହୋଇ ଥିବାରୁ) ଶୂଦ୍ରଜାତି—The Śūdra or non-Brahman caste.

**ପାଦ ଜଳ**—ସ. ବ—୧ । (ମ.ପ. ଲୋ. କର୍ମଧାରୟ) ପାଦୋଦକ; ଗୋଡ଼ଧୂଆ ପାଣି—1. Water with which a person's feet are washed.
Pāda jaḷa
୨ । ଘୋଳ ଦହି (ହି. ଶ)—2. Churned curd.

**ପାଦ ଟୀକା**—ସ.ବ—ପଦ ଟୀକା (ଦେଖ)
Pāda ṭikā Pada ṭikā (See)

**ପାଦଡ଼ି(ରି)**—ଗ୍ରା. ବୈଦେ. ବ. (ପର୍ତ୍ତୁ. ପାଦ୍ରି; ପାଡ୍ରୀ)—୧ । ଖ୍ରୀଷ୍ଟାନ ଧର୍ମଯାଜକ—1. A priest; a Padre.
Pādarḍi(ri)
(ପାଦାଡ଼ି—ଅନ୍ୟରୂପ) ୨ । ଖ୍ରୀଷ୍ଟଧର୍ମପ୍ରଚାରକ—2. Missionary.
ପାଦ୍ରୀ पादरी
୩ । (ଲକ୍ଷଣାର୍ଥ) (ମରହଟ୍ଟୀ ବୁଢ଼ାମାନଙ୍କ ବ୍ୟବହୃତ ଶବ୍ଦ) ଇଂରାଜି ଶିକ୍ଷା ପ୍ରଭାବରୁ ଧର୍ମ ଓ ଆଚାର ଭ୍ରଷ୍ଟ ହିନ୍ଦୁ ଯୁବକ ବା ବ୍ୟକ୍ତି—3. (figurative) A young man or person who does not observe orthodoxy on account of the influence of western education.

**ପାଦ ତଳ**—ସ.ବ. (୬ଷ୍ଠୀ ତତ୍)—୧ । ତଳିପା—1. Sole of the foot.
Pādataḷa
୨ । ଗୋଡ଼ର ତଳ, ପାଦତଳ, ପାଆତଳ—2. The part below the foot.
ପାୟେବତଳା ଦେ. ବ—ପାଦର ନିକଟସ୍ଥ ଭୂଭାଗ—The earth round or near the feet of a person.
पावकातला

ପାଦତଳଆ—ଦେ. ବଣ—ପାଆ ତଳଆ (ଦେଖ)
Pādatalia Pā-ā talia (See)

ପାଦତଳେ ପଡ଼ିବା—ଦେ କ୍ରି—ସମ୍ମାନ ଦେଖାଇବା, ନମସ୍କାର କରିବା
Pādatale pardibā ବା କ୍ଷମା ମାଗିବା ପାଇଁ କୌଣସି ବ୍ୟକ୍ତିର
पाये पडा, पायेंतले पडा ଗୋଡ଼ତଳେ ଲମ୍ବ ହୋଇ ପଡ଼ିବା—
पावँ लागीहोना To lay down one's self at a person's feet in reverence, salutation or for soliciting pardon.

ପାଦତ୍ରାଣ—ସ ବ. (ବହୁବ୍ରୀହି; ପାଦର ତ୍ରାଣ=ରକ୍ଷା ହୁଏ ଯାହାଦ୍ୱାରା)—
Pādatrāna ୧ । ପାଦୁକା; ଯୋତା—1. Shoes; boots.
( ପାଦତ୍ର—ଅନ୍ୟରୂପ ) ୨ । ଖଡ଼ମ, କଠଉ—
2. Sandals.
୩ । ମୋଜା—3. Stockings.
୪ । ଗୋଡ଼ରେ ଭିଡ଼ା ହେବା ପଟି—4. Leggings.

ପାଦ ଦେଶ—ସ. ବ—୧ । ପଦ, ଚରଣ—1 Leg; foot.
Pāda desa
୨ । (ପର୍ବତ ବା ବୃକ୍ଷର) ତଳ ଦେଶ—
2. The foot (of a tree or mountain).
୩ । ନିମ୍ନାଂଶ—3 Lower part.

ପାଦ ଧୂଳି (ଇତ୍ୟାଦି)—ସ. ବ—ପାଦରଜ ଇତ୍ୟାଦି (ଦେଖ)
Pāda dhūli(etc) Pādaraja etc (See)

ପାଦପ—ସ. ବ. (ପାଦ=ମୂଳ ଦ୍ୱାରା+ପା ଧାତୁ=ପିଇବା+କର୍ତ୍ତୃ. ଅ),-
Pādapa ଯେ ମୂଳଦ୍ୱାରା ପିଏ)—୧ । ବୃକ୍ଷ—1. Tree.
୨ । (ପାଦ+ପା ଧାତୁ=ରକ୍ଷା କରିବା+କର୍ତ୍ତୃ. ଅ) ଯୋତା—
2. Shoes; slippers.
୩ । ପାଦପୀଠ—3. Foot stool.

ପାଦ ପଡ଼ିବା—ଦେ. ବ—୧ । ଗମନ କରିବା—
Pāda pardiba 1. Going to or coming to a place.
पा पड़ा ସେ ସ୍ଥାନରେ ଯାହାର ପଡ଼ିଅଛି ପାଦ
पधारा होना କେବେ ଯାହାକୁ ସନ୍ତ ନ ଚାରେ ବିପଦ ।
[ପାଦ ପକା(କେ)ଇବା—ଅନ୍ୟରୂପ] କୃଷ୍ଣସିଂହ- ମହାଭାରତ ବନ ।
୨ । କୌଣସି ସ୍ଥାନରେ କୌଣସି ବ୍ୟକ୍ତିର ଉପସ୍ଥିତି—
2. The presence of a person at a place.
तुकांत मिलना
୩ । ପଦ୍ୟରେ ଦୁଇ ଧାଡ଼ିର ଯତିପାତର ସାମଞ୍ଜସ୍ୟ ହେବା—
3. Rhyming of lines in poetry.

ପାଦ ପଦ୍ମ—ସ. ବ. ( ଉପମିତ )—ପଦ୍ମ ପରି ସୁନ୍ଦର ପଦ—
Pāda padma Lotus-feet; foot as beautiful as lotus.
पा पद्म
ଦେ. ବ—ଗୋଡ଼ର ପାପୁଲିରେ ପିନ୍ଧିବା ଗୋଲାକାର ଅଳଂକାର
ବିଶେଷ; ପାଅ ପଦ୍ମ—A circular lotus-shaped ornament worn over the instep.

ପାଦପା—ଦେ. ବ. (ପାଦ+ପା ଧାତୁ=ରକ୍ଷା କରିବା+କର୍ତ୍ତୃ. ଅ+
Pādapā ସ୍ତ୍ରୀ. ଆ )—ପାଦୁକା—Shoes; sandals.

ପାଦ ପାପୁଲି—ଦେ. ବ—ପାଦ ପୃଷ୍ଠ—
Pāda pāpuli The back of the foot; instep
पैरकी पीठ ତାଙ୍କ ମେରେ ମୋ ପାଦ ପାପୁଲି । ସାରୀ. ପରଚେ ଗୀତ ।

ପାଦ ପୀଠ—ସ. ବ. ( ମ ପ. ଲୋ, ପାଦ ରଖିବାର ପୀଠ )—
Pāda pitha ଗୋଡ଼ ରଖିବାର ଆସନ ବା ପୀଢ଼ା—
Foot stool; foot rest.

ପାଦ ପୀଡ଼ା—ସ. ବ ( ୭ମୀ ତତ୍, ପାଦ+ପୀଡ଼ା )—
Pāda pirdā ୧ । ଗୋଡ଼ରେ ଜନ୍ମିବା ରୋଗ—
1. Disease in the leg; foot disease.
୨ । ବହୁ ପଥ ଚାଲିବା ଯୋଗୁ ପାଦରେ ଜନ୍ମିବା ବ୍ୟଥା—
2 Pain in the leg due to walking a long distance.
୩ । ଗୋଡ଼ ବିନ୍ଧା—3. Aching in the leg.

ପାଦ ପୂଜା—ସ. ବ ( ୭ମୀ ତତ୍ )—
Pāda pūjā ୧ । ସମ୍ମାନାର୍ହ ବ୍ୟକ୍ତି ବା ଦେବତାଙ୍କର ଚରଣରେ ଅର୍ପିତ ପୂଜା—1. Worship of the feet of a respectable person or Deity.
୨ । ( ଲକ୍ଷଣାର୍ଥ ) ବିଶେଷ ସମ୍ମାନ—
2. (figurative) Profound veneration

ପାଦ ପୂରଣ—ସ. ବ. ( ୭ମୀ ତତ୍, ପାଦ+ପୂରଣ )—
Pāda pūrana ୧ । ବାକ୍ୟାଲଙ୍କାର, ବାକ୍ୟକୁ ଶେଷ କରିବା ନିମନ୍ତେ ବ୍ୟବହୃତ ଶବ୍ଦ ଯଥା—ଇ (ଏକଇ), ଟି (ହେଇଟି); ପଦ୍ମ—1 Expletive used to fill up a word.
୨ । ଶ୍ଳୋକର ଏକ ବା ଅନେକ ଚରଣ ଶୁଣି ବାକି ଚରଣକୁ ରଚନା କରିବା—2. The filling up of omitted line or lines in a stanza.

ପାଦ ପୃଷ୍ଠ—ସ. ବ. ( ୬ଷ୍ଠୀ ତତ, ପାଦ+ପୃଷ୍ଠ )—ଗୋଡ଼ର ପାପୁଲି—
Pāda prushtha The instep

ପାଦ ପ୍ରକ୍ଷାଳନ—ସ. ବ. (୬ଷ୍ଠୀ ତତ୍, ୨ୟା ତତ୍; ପାଦ+ପ୍ରକ୍ଷାଳନ)—
Pāda prakshālana ଗୋଡ଼ ଧୋଇ ଦେବା—
Washing of the feet.

ପାଦ ପ୍ରହାର—ସ. ବ. ( ୩ୟା ତତ୍, ପାଦ+ପ୍ରହାର )—
Pāda prahāra ପଦାଘାତ, ଗୋଇଠା—Kick.

ପାଦ ବଲ୍ମୀକ—ସ. ବ—ପାଦ ଗଣ୍ଡିର ( ଦେଖ )
Pāda balmīka āda gandira ( See )

ପାଦ ବିକ—ସ. ବ. ( ପଦବୀ=ପଥ+କୁଶଳାର୍ଥେ. ଇକ )—
Pādabika ପାନ୍ଥ, ପଥିକ—Passenger; traveller.

ପାଦ ବିନ୍ଦ—ଗ୍ରା. ବ. (ପ୍ରାଚୀନ ପଦ୍ୟ; (ସ. ପାଦାରବିନ୍ଦ)—
Pāda binda ପଦାରବିନ୍ଦ—Lotus feet.
ଏକ ବନ୍ଧୁ ପାଦ ବିନ୍ଦ ହୃଦୟରେ ଗୁଣି । ପ୍ରାଚୀ ବୃନ୍ଦାବନରୂପଣ ଗୀତା ।

ପାଦ ବ୍ୟଥା—ସ. ବ. ( ୬ଷ୍ଠୀ ତତ୍; ପାଦ+ବ୍ୟାଧି )—
Pāda byathā ପାଦ ପୀଡ଼ା ( ଦେଖ )
(ପାଦ ବ୍ୟଥା—ଦେଶଜରୂପ) Pāda pirdā ( See )

ପାଦ ମୂଳ—ସ. ବ. ( ୬ଷ୍ଠୀ ତତ୍ )—ଗୋଇଠି—
Pāda mūla Heel of the foot.

ପାଦ ଯମକ—ସଂ. ବି—ଶବ୍ଦାଳଙ୍କାର ବିଶେଷ; ଶ୍ଳୋକର ପାଦ ବା ଚରଣର
Pāda jamaka ଭିନ୍ନ ଭିନ୍ନ ଅଂଶରେ ବିନ୍ୟସ୍ତ ଯମକ—
Alliteration at certain places in a line of poetry.

ପାଦ ରକ୍ଷକ—ସଂ. ବି. ( ୬ଷ୍ଠୀ ତତ୍, ପାଦ+ରକ୍ଷକ )—
Pāda rakshaka ପାଦତ୍ରାଣ, ପାଦୁକା, ଯୋତା—Shoes.

ପାଦ ରଜ—ଦେ. ବି. ( ସଂ. ପାଦ ଓ ରଜସ୍ )—
Pāda raja ୧ । ଗୋଡ ତଳେ ଲାଗିଥିବା ଧୂଳି—
1. The dust of the feet.
୨ । (ସଂ ପାଦ ଓ ଅ. ଦର୍ଦ୍) —ପାଦ ପୀଡ଼ା (ଦେଖ)
2. Pāda pirdā ( See )

ପାଦରଜ ପକା(କେ)ଇବା— ଦେ. କ୍ରି. ( ସମ୍ମାନାର୍ଥକ ପ୍ରୟୋଗ )—
Pādaraja pakā(ke)ibā (କୌଣସି ସ୍ଥାନରେ କୌଣସି ମହାପୁରୁଷ ପାଯେବ ଧୂଳା ଦେଓୟା ବା ବନ୍ଧୁ ଆଦିଙ୍କର) ଉପସ୍ଥିତ ହେବା, ଆସିବା-
पैरका धूली देना 1. To come to a place; to arrive at a place.
(ପାଦ ରଜ ଦେବା—ଅନ୍ୟରୂପ)
(ପାଦ ରଜ ପଡ଼ିବା—ବିଶେଷ୍ୟ)
( ଯଥା—ମୋ କୁଡ଼ିଆରେ ଆପଣଙ୍କ ପାଦ ରଜ ପଡ଼ିଲା ନାହିଁ । )

ପାଦ ରଜ୍ଜୁ—ସଂ. ବି—୧ । ଗୋଡ଼ରେ ବନ୍ଧାଯିବା ପଟି—
Pāda rajju 1. Leggings.
୨ । ପଶୁ ଆଦିଙ୍କ ଗୋଡ ବନ୍ଧାଯିବା ଦଉଡ଼ି—
2. Ropes for tying the legs of animals.

ପାଦ ରଥ—ସଂ. ବି. ( ୬ଷ୍ଠୀ ତତ୍, ପାଦ+ରଥ=ଯାନ )—
Pāda ratha ପାଦୁକା—Shoes.

ପାଦରି—ବୈଦେ. ବି—ପାଦଡ଼ି ( ଦେଖ )
Pādari Pādardi ( See )

ପାଦରେ ପଡ଼ିବା— ଦେ. କ୍ରି—ପାଦ ତଳେ ପଡ଼ିବା ( ଦେଖ )
Pādare pardibā Pāda tale pardibā ( See )
पायें पडा ବିଦେଶ ଭୁଲେ ଋଷି ପାଦରେ ପଡ଼ିଲେ ।
पावँ पड़ना କୃଷ୍ଣସିଂହ. ମହାଭାରତ. ବନ ।

ପାଦଶା—ବୈଦେ. ବି—ପାତଶା ( ଦେଖ )
Pādaśā Pātaśā ( See )
(ପାଦଶା —ଅନ୍ୟରୂପ)

ପାଦ ଶୈଳ—ସଂ. ବି—ବଡ଼ ପର୍ବତର ପାଦ ଦେଶରେ ଥିବା ଛୋଟ
Pāda śaila ପାହାଡ଼; ପ୍ରତ୍ୟନ୍ତ ପର୍ବତ—A hill at the foot of a mountain.

ପାଦ ସମ୍ବାହନ—ସ ବି. (୬ଷ୍ଠୀ ତତ୍, ପାଦ+ସମ୍ବାହନ)—
Pāda sambāhana ପାଦ ସେବା (ଦେଖ)—
Pāda sebā (See)

ପାଦ ସେବା—ଦେ. ବି. (୬ଷ୍ଠୀ ତତ୍; ପାଦ+ସେବା)—ଗୋଡ଼ଘଷା;
Pāda sebā କରତଳଦ୍ୱାରା କୌଣସି ବ୍ୟକ୍ତିର ଗୋଡ଼କୁ ଘଷିବା ବା ମୋଡ଼ିବା—Rubbing of the legs; massage of the legs.
ଶିଶୁଙ୍କୁ ମୁହିଁ ନନ୍ଦ ପରିଣେ ଭଜ
ପାଦସେବା କରଇ ହୋଇଣ ସହଜ । କୃଷ୍ଣସିଂହ. ମହାଭାରତ ବନ ।

ପାଦ ସ୍ଫୋଟ —ସ. ବି —ଗୋଇଠିରେ ଉଠିବା ବଥ, ଭାଲୁକା ବଥ—
Pādasphoṭa A boil on the heel; a chilblaine

ପାଦାଙ୍ଗଦ—ସ. ବି. (ପାଦ+ଅଙ୍ଗ=ସୌନ୍ଦର୍ଯ୍ୟ+ଦା ଧାତୁ+କର୍ତ୍ତୃ ଅ,
Pādāṅgada ଯାହା ପାଦର ସୌନ୍ଦର୍ଯ୍ୟ ବୃଦ୍ଧି କରେ)—ମଲ;
ନୂପୁର—Anklet.

ପାଦାଙ୍ଗୁଲି—ସ. ବି. (୬ଷ୍ଠୀ ତତ୍, ପାଦ+ଅଙ୍ଗୁଳି)—ଗୋଡ଼ର ଅଙ୍ଗୁଠି-
Pādāṅguli Toe.

ପାଦାଙ୍ଗୁଷ୍ଠ—ସ. ବି. (୬ଷ୍ଠୀ ତତ୍, ପାଦ+ଅଙ୍ଗୁଷ୍ଠ)—ଗୋଡ଼ର ବୁଢ଼ା
Pādāṅgushṭha ଅଙ୍ଗୁଠି—The great toe.

ପାଦାଡ଼ି—ଦେ. ବିଣ. (ସ. ପାଦ)—୧ । ଅଲସୁଆ (ଲୋକ)—
Pādardi 1. Lazy.
आलसी ୨ । ଦୀର୍ଘସୂତ୍ରୀ—2. Dilatory.
ବୈଦେ. ବି—ପାଦଡ଼ି (ଦେଖ)—Pādardi (See)

ପାଦାଣ୍ଡି — ଦେ. ବି. (ସ. ପାଦ)—ପଳାୟିତ; ଭୁ—
Pādāṇḍi Gone away; fled.

ପାଦାଣ୍ଡି ଦେବା—ଦେ. କ୍ରି—ପଳାୟନ କରିବା, ସ୍ଥାନ ତ୍ୟାଗ କରିବା—
Pādāṇḍi debā To go away.
नदोगयारह होना ଯଥା—ଆମେ ସମସ୍ତେ ସେଠାରେ ବସି କଥାବାର୍ତ୍ତା ହେଉ ହେଉ ଗୋପାଳ ସେଠାରୁ ପାଦାଣ୍ଡି ଦେଲେ ।

ପାଦାତ - ସଂ. ବି. (ପାଦ+ଅତ୍‌ଧାତୁ=ଗମନ କରିବା+କର୍ତ୍ତୃ. ଅ)—
Pādāta ପାଦାତି (ଦେଖ)—Pādāti (See)

ପାଦାତି—ସଂ. ବି. (ପାଦ+ଅତ୍ ଧାତୁ=ଗମନ କରିବା+କର୍ତ୍ତୃ. ଇ)—
Pādāti ପଦାତି ସୈନ୍ୟ, ଯେଉଁ ସୈନ୍ୟ ଭୂମିରେ ଥାଇ ଯୁଦ୍ଧ
(ପାଦାତିକ—ଅନ୍ୟରୂପ) କରନ୍ତି—Foot soldier, infantry.

ପାଦାନ୍—ବୈଦେ. ବି. (ଫା. ପାଇଁଦାନ୍; ସଂ. ପାଦଧାନ)—
Pādān ପାଦପୀଠ, ଗାଡ଼ି ବା ଶଗଡ଼କୁ ଉଠିବା ନିମନ୍ତେ
पादान ଯେଉଁ ପଟା ଉପରେ ପାଦ ଦେବାକୁ ହୁଏ—
पावदान A foot-rest; foot-stool; foot-board.
(ପାଦାନ୍—ଅନ୍ୟରୂପ)

ପାଦାନ୍ତି—ଗ୍ରା. ବି. (ସଂ. ପାଦାତି)—ପଦାତି ସୈନ୍ୟ—
Pādānti Infantry.
ପାଦାନ୍ତି ବଳ ପ୍ରବଳରେ ଗମନ୍ତେ
ରେଣୁଏ ଅଣୁଏ ଛନ୍ଦି ନ ଉଶିଲେ ଅବାଗ ପ୍ରକାଶ ନାହିଁ ।
ଉକ୍ତ, କୋଶିବୃତ୍ତାନ୍ତ ଯୁଦ୍ଧ ।

ପାଦୁ—ସଂ. ବି. (ପାଦ+ଉ)—ଯୋତା—Shoes.
Pādu ଦେ. ବି—ତଳା ସୀସାରେ ପୂର୍ଣ୍ଣୋଦର କଉଡ଼ି—
A cowry or shell filled with molten lead.

ପାଦୁକ—ସଂ. ବିଣ. (ପଦ୍ ଧାତୁ ଶୀଳ=ପାଦ+ଶୀଳାର୍ଥେ ଉକ) —
Pāduka ୧ । ଗମନ ଦକ୍ଷ—1. Expert in walking.
୨ । (ପାଦ+ଉକ)—ଯେଉଁ ଶିଶୁର ପାଦଦ୍ୱୟ ପ୍ରଥମେ ମାତୃଗର୍ଭରୁ ବାହାରି ଥାଏ—2. (a child) Whose legs come out at first at birth.

ଦେ. ବ. (ସଂ. ପାଦୋଦକ)—୧ । ବ୍ରାହ୍ମଣ ବା ଗୁରୁଜନଙ୍କ
**चरणोदक, चरणामृत** ପାଦ ଧୁଆଯାଇଥିବା ଜଳ—1. Water
(ପାଦୁକପାଣି—ଅନ୍ୟରୂପ) with which the feet of a revered elder or Brāhmaṇa have been washed.

[ ଦ୍ର—ଗୁରୁଜନ ଓ ମାନ୍ୟ ବ୍ୟକ୍ତିଙ୍କର ପାଦ ଧୋଇ ଦେଇ ସେହି ପାଦୁକକୁ ପିଇବାର ଓ ଅଧର, ଆଖି ଓ ମସ୍ତକରେ ଲଗାଇବାର ପ୍ରଥା ଅଛି । ଯଥା

ଉତ୍ତମ ଜଳେ ପଦ ଧୋଇ
ଅଧର ନେତ୍ର ଶିରେ ଦେଇ । ଭୂପତ, ପ୍ରେମତରଙ୍ଗିଣୀ ]

୨ । ଦେବତାଙ୍କର ସ୍ନାନ ଜଳ—2. The hallowed water with which the image of a Deity has been washed

୩ । ଦେବତାଙ୍କ ଅଙ୍ଗରୁ କଢ଼ାଯାଇଥିବା ତୁଳସୀଆଦି—
3. Tulasi leaves taken out of a Deity.

**ପାଦୁକା**—ସଂ. ବ. ( ପାଦ ଧାତୁ=ଗମନ କରାଇବା+କର୍ତ୍ତୃ ଉ+
Pādukā କ)—୧ । ଖଡ଼ମ; କଠଉ—1. Sandals

୨ । ଜୋତା—2. Shoes.

୩ । ଚଟି ଜୋତା—3. Slippers.

**ପାଦୂ**—ସଂ. ବ. (ପଦ୍ ଧାତୁ+ଊ)—ଯୋତା—
Pādū Shoes.

**ପାଦୋଦକ**—ସଂ. ବ. (ମ. ପ ଲୋ. କର୍ମଧାରୟ, ପାଦ ପ୍ରକ୍ଷାଳକ
Pādodaka ଉଦକ)—ଦେବତା, ବ୍ରାହ୍ମଣ ବା ଗୁରୁଜନଙ୍କ ଗୋଡ଼ ଯେଉଁ ଜଳରେ ଧୁଆ ହୋଇଥାଏ—Water with which the image of a Diety or the feet of an elder or Brāhmaṇa have been washed.

**ପାଦ୍ୟ**—ସଂ. ବ. (ପାଦ+ନିମିତ୍ତାର୍ଥେ ଯ)—୧ । ଆଗନ୍ତୁକ ମାନ୍ୟବ୍ୟକ୍ତିଙ୍କ
Pādya ପାଦପ୍ରକ୍ଷାଳନାର୍ଥ ଜଳ—1. Water for washing the feet of a venerable guest.

୨ । ପାଦୋଦକ—2. Water with which the feet have been washed.

ସଂ. ବଣ. (ପାଦ+ଯ)—ପାଦ ସମ୍ବନ୍ଧୀୟ—
Relating to the foot.

**ପାଦ୍ରି**—ବୈଦେ. ବ.—ପାଦଡ଼ି (ଦେଖ)
Pādri Pādardi (See)

**ପାଧା**—ପ୍ରାଦେ. (ଯାଜପୁର) —ବ.—ପାଞ୍ଚ ପାହିଆ (ଦେଖ)
Pādhā Pāncha pāhiā (See)

**ପାନ**—ପ୍ରାଦେ. ବ.—୧ । (ସମ୍ବଲପୁର)—୧ । ପାନ, ତାମ୍ବୁଲ—
Pān 1. Betel.

୨ । (ସମ୍ବଲପୁର, ଢେଙ୍କାନାଳ) (ଭୁଲ. ବ. ପାଇନ୍; ପାନ୍)—
ସୁନା ଅଳଙ୍କାର ଝାଳିବା ପାଇଁ ନକୃଷ୍ଟ ଧାତୁ ମିଶ୍ରିତ ଖାଦ—
2. Alloy used in soldering gold.

**ପାନ୍‌ତି ବେଳ**—ପ୍ରାଦେ. (ସମ୍ବଲପୁର) ବ.—ଅପରାହ୍ଣ ୩ ଟା ଠାରୁ ୫ଟା
Pān-ti belā ବେଳ—Afternoon 3 to 5.

[ଦ୍ର—ଏ ସମୟରେ ସ୍ତ୍ରୀଲୋକମାନେ ଗୃହ କର୍ମ ପାଇଁ ପ୍ରୟୋଜନୀୟ ଜଳ ଆଣିବାକୁ ଗ୍ରାମର କୂଅ ବା ପୋଖରି ଆଦି ନିକଟକୁ ଯାଆନ୍ତି ।]

**ପାନ୍‌ତୁଆ**—ଦେ. ବ.—ପାନ୍ତୁଆ (ଦେଖ)
Pān-tuā Pāntuā (See)

**ପାନ୍ ବିର୍ଡ଼ା**—ପ୍ରାଦେ. (ସମ୍ବଲପୁର) ବ.—(ଭୁଲ. ହି. ପାନବୀଡ଼ା)—
Pān-birdā ପାନଖିଲ (ଦେଖ)—Pānakhila (See)
(ପାନ୍‌ବିରା—ଅନ୍ୟରୂପ)

**ପାନ୍‌ସି**—ବୈଦେ. ବ (ଫ୍ରେଞ୍ଚ୍-ପିନାସି, ଇଟାଲୀୟ-ପିନାଷ୍ଣା, ; ଚୀନ୍‌ଭାଷା-
Pān-si ସାମ୍ପାନ୍)—ଜଳ ବିହାରାର୍ଥ ଛୋଟ ଡଙ୍ଗା, ପଢ଼ଉ ଡଙ୍ଗା;
**पानसि** ସରୁ ଡଙ୍ଗା, କାଠୁଆ—Small pleasure-boat with
**फरसनाव** a small room on it; jolly boat.

[ଦ୍ର—ଏଥିରେ ଗୋଟିଏ ଛୋଟ କୋଠରି ଥାଏ । କଲିକତାର ଗଙ୍ଗା ନଦୀରେ ଅନେକ ପାନ୍‌ସୀ ଦେଖାଯାଏ । ]

**ପାନ**—ସଂ. ବ. (ପା ଧାତୁ=ପିଇବା; ରକ୍ଷା କରିବା+ଭାବ. ଅନ)—
Pāna ୧ । ଜଳୀୟ ପଦାର୍ଥର ଗଳାଧଃକରଣ; ପିଇବା—
1. Drinking; draught.

୨ । ରକ୍ଷଣ—2. Protecting; preserving.

୩ । ଶାଣୋଲ୍ଲେଖନ, ପଜାଇବା—3 Whetting.

୪ । (+ଅଣ୍, ଅନ) ପାନ ପାତ୍ର—
4. A goblet; drinking glass; wine glass

୫ । ଶୁଣ୍ଡୀ—5. A wine dealer; distiller.

୬ । ନାଳ; ଜଳ ନାଳ—6. A canal (Apte).

୭ । ନିଶ୍ୱାସ—7. Breath; expiration (Apte).

୮ । ପାନୀୟ ବସ୍ତୁ—
8. A drink or beverage in general (Apte).

୯ । ମଦ୍ୟାଦି ପାନ—
9. Drinking spirituous liquors (Apte).

ଦେ. ବ.—୧ । ଥରେ ସେବନ ଯୋଗ୍ୟ ଔଷଧ—
1. A dose of medicine.

ସଂ ତାମ୍ବୂଲ, ନାଗବଲ୍ଲୀ, ତାମ୍ବୂଲୀ
ନାଗିନୀ, ଭକ୍ଷ୍ୟପତ୍ରୀ, ମୁଖଭୂଷଣ,
ନାଗବଲ୍ଲରୀ, କାମଜନନୀ ।
ତେ. ତାମଲ ପାକୁ
ତା. ବେଟ୍ରିଲୀ
ମ. ନାଗବେଲ
ଗୁ. ନାଗରବେଲ୍ୟ, ପାନ
**पान**
**पान, नागरबेल**
ଆ. ତାନ୍
ଫା. ବର୍ଗେଂଭବୋଲ୍

୨ । (ସଂ. ପର୍ଣ୍ଣ) ପାର୍ଯ୍ୟାୟ ଲତା ବିଶେଷର ପତ୍ର—2. Piper betel; Charvica Betel, betel leaf

[ଦ୍ର—ଏ ଲତା ଆର୍ଦ୍ର ଓ ସମୋଷ୍ଣ ଜଳବାୟୁଯୁକ୍ତ ଅଞ୍ଚଳ ଓ ଦ୍ୱୀପ ଏବଂ ବାଲୁଆ ମାଟିରେ ବଢ଼େ । ଏହା ବେଶି ଖରା ବା ବର୍ଷା ସହି ପାରେ ନାହିଁ । ଛାୟାମଣ୍ଡପ 'ବରଜ' ତିଆରି କରି ଏ ଲତା ଉପରେ ଛାୟା କରିବାକୁ ହୁଏ । ସୀମାନ୍ତ ପ୍ରଦେଶ ଓ ପଞ୍ଜାବ ଛଡ଼ା ଭାରତର ସର୍ବତ୍ର, ସିଂହଳ, ଜାଭା ଓ ଶ୍ୟାମ ଆଦି ଉଷ୍ଣ ଜଳବାୟୁମୟ ଅଞ୍ଚଳରେ ଏହାର କୃଷି ହୁଏ । ପାନ ଗଛର ଫୁଲ, ଫଳ ବା ମଞ୍ଜି ହୁଏ ନାହିଁ । ପାନ ଲତାର ଡାଳକୁ ପୋତି ପାନର କୃଷି କରା ଯାଏ । ନାନା ପ୍ରକାର ପାନ ଅଛି;

ଯଥା—ଦେଶୀ ପାନ, ଛଚ ପାନ, କର୍ପୂରକାନ୍ତ ପାନ, ମଘୀ। ଗୟା ଅଞ୍ଚଳରେ ଉତ୍ପନ୍ନ ମଘୀ ପାନ ଉତ୍କୃଷ୍ଟ ବୋଲି ବିବେଚିତ। ଓଡ଼ିଶାରେ ପାନର କୃଷି ଖୁବ୍ ଲାଭଜନକ। ଏଥିପାଇଁ ପାନ ଜମିର ଏକରର ଖଜଣା ପଚିଶ ଟଙ୍କାଠାରୁ ଦେଡ଼ଶହ ଟଙ୍କା ହୁଏ। ବଡ଼ ଆକୃତିବିଶିଷ୍ଟ ପାନକୁ ଭଡ଼ ପାନ, ସାଧାରଣ ବା ମଧ୍ୟମ ଆକୃତିବିଶିଷ୍ଟ ପାନକୁ ମହତା ପାନ ଓ ଛୋଟ ପାନକୁ ବୁଣି ପାନ କୁହାଯାଏ। ୫୦ଟି ପାନରେ ଏକ କଡ଼ା ଓ ଦୁଇ କଡ଼ାରେ ଏକ ଶହ ହୁଏ। ଚୂନ, ଗୁଆ, ଗୁଣ୍ଡି, ଖଇର ଓ ମସଲା ଇତ୍ୟାଦି ଦେଇ ପାନକୁ ଖିଲି ଭାଙ୍ଗି ଲୋକମାନେ ମୁଖବାସରୂପେ ବ୍ୟବହାର କରନ୍ତି। ଗୁଣ୍ଡି ଦିଆ ନ ଯାଇଥିବା ପାନକୁ ସାଦା ପାନ ଓ ଗୁଣ୍ଡି ଦିଆଯାଇଥିବା ପାନକୁ କଡ଼ା ପାନ କହନ୍ତି। ବଙ୍ଗଦେଶାଗତ ଛଚ (ଶ୍ୱେତ) ପାନକୁ ବଙ୍ଗଳା ପାନ କୁହାଯାଏ। ଉତ୍କଳ ଦେଶରେ ଲୋକଙ୍କର ପାନ ଖାଇବା ଅଭ୍ୟାସ ଅତ୍ୟଧିକ। ମଫସଲରେ ଅଧିକାଂଶ ଲୋକେ ପାନ, ଗୁଆ, ଗୁଣ୍ଡି, ଖଇର ଓ ଚୂନ ଥିବା ମୁଣି (ବଟୁଆ) ଅଣ୍ଟାରେ ଖୋସି ଝୁଲାଇ ଥାଆନ୍ତି ଓ ଭଦ୍ର ଲୋକମାନେ ସଙ୍ଗରେ ଖିଲି ପାନ ଥିବା ବଟା ବା ଡବା ରଖନ୍ତି। ଆଗନ୍ତୁକ ଭଦ୍ରବ୍ୟକ୍ତିଙ୍କୁ ପାନ ଖିଲି ଦିଆଯାଏ; ଭୋଜିରେ ଓ ସାମାଜିକ ସଭାରେ ଓ ସମ୍ମିଳନରେ ଆଗନ୍ତୁକ ବ୍ୟକ୍ତିମାନଙ୍କୁ ପାନଖିଲି ଦିଆଯାଏ। ଦରବାର ଆଦିରେ ମଧ୍ୟ ଦରବାରୀମାନଙ୍କୁ ସରକାରଙ୍କ ପକ୍ଷରୁ ପାନଖିଲି ବଣ୍ଟାଯାଏ।

ବୈଦ୍ୟକମତରେ ଏହା କଫ, ମୁଖଦୌର୍ଗନ୍ଧ୍ୟ, ମଳ, ବାୟୁ, ଶ୍ରାନ୍ତି, ସ୍ତ୍ରୀପ୍ରୀତିହୀନତା ନାଶକ। ଜ୍ୱର, ମୁଖଶୋଷ, ରକ୍ତପିତ୍ତ, ମଦ, ମୂର୍ଚ୍ଛା ଓ ନେତ୍ରରୋଗୀ ଓ ରୁକ୍ଷ ଏବଂ ଦୁର୍ବଳ ବ୍ୟକ୍ତି ପକ୍ଷରେ ଏହା ସେବନ ନିଷିଦ୍ଧ। ଅଧିକ ପରିମାଣରେ ପାନ ଖାଇଲେ ତ୍ରିଦୋଷ କୁପିତ ହୁଏ ଓ ଶରୀର, ନେତ୍ର, କେଶ, ଦନ୍ତ, ଅଗ୍ନି, ଶ୍ରୋତ୍ର, ବର୍ଣ୍ଣ ଓ ବଳର କ୍ଷୟ ହୁଏ—ଦେବେନ୍ଦ୍ର—ଦ୍ରବ୍ୟଗୁଣ।

ପାନ ରସ କଫ ଆଦି ଅନେକ ରୋଗରେ ଔଷଧର ଅନୁପାନ ସ୍ୱରୂପ ବ୍ୟବହୃତ ହୁଏ। ଭୋଜନ ପରେ ଗୁଆ, ଖଇର, ଚୂନ ଓ ମସଲା ଦିଆ ପାନ ଖାଇଲେ ମୁଖର ଦୁର୍ଗନ୍ଧ ନଷ୍ଟ ହୁଏ ଓ ଖାଦ୍ୟ ଦ୍ରବ୍ୟ ଜୀର୍ଣ୍ଣ ହେବା ପକ୍ଷରେ ଏହା ସାହାଯ୍ୟ କରେ।]

୩। ଚୂନ ବୋଳାଯାଇ ଗୁଆର ଛୋଟ ଛୋଟ ଖଣ୍ଡ, ମସଲା, ଖଇର ଦିଆଯାଇ ଖିଲି ମୋଡ଼ାଯାଇଥିବା ପାନ, ପାନଖିଲି—

3. A packet of betel leaves rolled with small pieces of betelnuts, spices, catechu etc inside it.

୪। ଚିଲିକାରେ ମିଳିବା ଏକ ପ୍ରକାର ଚିଙ୍ଗୁଡ଼ିମାଛ—

4 A kind of shrimp (found in the Chilka lake).

୫। (ବଣିଆ ଶବ୍ଦ) ପାନ ପରି ଦିଶୁଥିବା ନାକରେ ପିନ୍ଧାଯିବା ଏକ ପ୍ରକାର ଛୋଟ ଅଳଙ୍କାର—

5 A small gold ring for the nose with a top resembling a betel leaf.

୬। ତାସ ଖେଳରେ ପାନ ଆକୃତିର କଳା ଓ ନାଲି ରଙ୍ଗର ତାସ—(ନାଲି ପାନକୁ ହରତନ ଓ କଳାକୁ ଇସ୍କାପାନ ବୋଲାଯାଏ)—

6. The two suits or kinds of playing cards resembling the size of betel leaves; the spades and the hearts amongst the playing cards.

ପ୍ରାଦେ. (ବାମଣ୍ଡା, ଆଠମଲ୍ଲିକ)—ବି.—ଗଛର ପତ୍ର—Leaf (ଯଥା—ସରଗୀ ପାନ=ଶାଳୁଆ ଗଛର ପତ୍ର।)

**ପାନଅଇଡ଼ (ଡି, ରି)**—ଦେ. ବି.—ଏକପ୍ରକାର ଔଷଧ ଲତା; ନାଗଦଅଣା—
Pāna airda (rdi; ri) A kind of medicinal creeper.

ସଂ ଅର୍କପର୍ଣ୍ଣୀ; ଅର୍କମୂଳା, ଅହିଗନ୍ଧା, ନାଗଦମନୀ, ବିସର୍ପିଣୀ, ମହାଯୋଗେଶ୍ୱରୀ, ସୁନନ୍ଦା

ନାଗଦନା, ଈଶାରମୂଲ
**ଈଶରମୂଲ, ହକ୍ଷିମୂଲ, ନାଗଦୌନ**
ତେ. ଇଶ୍ୱରୀବେଟ୍ଟୁ
ମା. ମାରଗ୍ରେବା
ଆ. ଜ୍ରୁପ୍ଳୋନ

[ ଦ୍ର—ଏହା ଶୁକ୍ଳ ଓ କୃଷ୍ଣ ଭେଦରେ ଦୁଇ ପ୍ରକାର। କୃଷ୍ଣ ଅପେକ୍ଷା ଶୁକ୍ଳ ପାନଅଇଡ଼ଗଛ ଗୁଣରେ ଶ୍ରେଷ୍ଠ। (ଦ୍ରବ୍ୟଗୁଣ କଳ୍ପଦ୍ରୁମ)। ଏହାର ଚେର ସାପକାମୁଡ଼ା ଓ ବିଛା ନାହୁଡ଼ ମାରିବା ସ୍ଥାନରେ ଲେପ ଦିଆଯାଏ ଓ ଖାଇବାକୁ ଦିଆଯାଏ। ସ୍ତ୍ରୀମାନଙ୍କ ମାସିକ ଋତୁସ୍ରାବକୁ ନିର୍ଦ୍ଦୋଷ କରିବା ପାଇଁ ଏହାର ମୂଳ ବ୍ୟବହୃତ ହୁଏ। ହଇଜା ଓ ଅତିସାର ରୋଗରେ ଗୋଲମରିଚ ସଙ୍ଗେ ଏହାର ମୂଳକୁ ବାଟି ଖାଇଲେ ବହୁ ଉପକାର ହୁଏ। ଏ ପତ୍ରର ରସ ସାମାନ୍ୟ ମାଦକ, ଛୋଟ ପେଟ ବେମାରୀରେ ଉପକାରୀ। ଏହାର ମୂଳ ପତ୍ରର ରସ ତିକ୍ତ ଓ ଉଷ୍ଣ। ଏହା ସେବନ କଲେ ବାତ, ସର୍ପ ଓ ବୃଶ୍ଚିକବିଷ, ଶ୍ୱେତକୁଷ୍ଠ, ଗ୍ରହଣୀ, ବିସର୍ପ, ଜ୍ୱର, ଦଦ୍ରୁ ଓ ବ୍ରଣରୋଗ ନିବାରିତ ହୁଏ। ଏହାର ମୂଳର କ୍ୱାଥ, ଅଜୀର୍ଣ୍ଣ, ବିରେଚନ, ରକ୍ତୋରୋଧ, ଆଘାତଜନିତ ବେଦନା, ଉଦରରୋଗ ଓ ଏକାହ୍ନିକ ଜ୍ୱର ହରଣ କରେ। ଏଥିର ମୂଳ ଘୋରି ଆଖିରେ ଲଗାଇଲେ ଅଲୁଅ, ବ୍ରଣ ଭଲ ହୁଏ। ଏହା ଗର୍ଭସ୍ରାବକ—
ବନଜବନ୍ଧୁ—ଦ୍ରବ୍ୟଗୁଣ କଳ୍ପଦ୍ରୁମ। ]

**ପାନକ**—ସଂ. ବି (ପାନ+କ)—ପ୍ରପାନକ, ପଣା; ସରବତ—
Pānaka A sweet drink, syrup.

[ ଦ୍ର—ଚିନି, କନ୍ଦ ବା ଗୁଡ଼କୁ ପାଣିରେ ଗୋଳି ସେଥିରେ କାଗଜିରସ ବା ତେନ୍ତୁଳି ଆଦିର ସାମାନ୍ୟ ଅମ୍ଳରସ ମିଶାଇ ମୁଖ-ରୋଚକ ପାନୀୟ ତିଆରି କରାଯାଏ। ]

**ପାନ କଣ୍ଟା**—ଦେ. ବି—ବଙ୍ଗାଳୀଆ ଖୋସାର ମଣ୍ଡଳାକାର ବେଣୀର ସରୁ
Pāna kantā ମାନଙ୍କୁ ପରସ୍ପର ସଙ୍ଗେ ଆବଦ୍ଧ କରି ରଖିବା ନିମନ୍ତେ
ପାନକାଁଟା ବ୍ୟବହୃତ ଲୁହାର ବଙ୍କା କଣ୍ଟା—Hair pin with a metal leaf over it.

[ ଦ୍ର—ଏଥିର ପିଠିରେ ପାନପତ୍ର ପରି ଧାତୁଖଣ୍ଡ ଲାଗିଥାଏ। ]

**ପାନ କପୁର**—ଦେ. ବି—( ସଂ ପର୍ଣ୍ଣ.+କର୍ପୂର )—୧। ଏକପ୍ରକାର
Pāna kapura କପୁର—1. A kind of camphor.

୨। ପାନକପୁରା (ଦେଖ)—2 Pānakapurā (See)

**ପାନକପୁରା**—ଦେ. ବି (ସଂ. ପର୍ଣ୍ଣ+କର୍ପୂର, ଏହାର ପତ୍ର କର୍ପୂର ପରି
Pānakapurā ବାସିବାରୁ)—ନାରଙ୍ଗାଦି ବର୍ଗର କ୍ଷୁପବିଶେଷ—
ପାନକପୂର Clausena Heptaphylla; (a small
**ପାନଡ଼ୀ** plant with camphor scented leaves).

[ଦ୍ର—ଏହା ପୂର୍ବ ବଙ୍ଗରେ ଜନ୍ମେ, ଅନ୍ୟତ୍ର ଲୋକେ ସଉକରେ ବଗିଚାରେ ଲଗାନ୍ତି । ପତ୍ର ମଳଲେ କର୍ପୂରର ଗନ୍ଧ ବାହାରେ । ପତ୍ରରେ ପ୍ରାୟ ୭୫ ପର୍ଣ୍ଣି ଥାଏ । ଏହା ତେଲକୁ ବା ପାଣାସୁକୁ ସୁବାସିତ କରିବା ପାଇଁ ଉହିଁରେ ମିଶାଯାଏ । ]

**ପାନ ଖିଲ(ଲ)**—ଦେ. ବି (ସ. ପର୍ଣ୍ଣ+କୀଲକ)—ଗୁଆ ମସଲା ଆଦିରେ
Pāna khila (li) ପୂର୍ଣ୍ଣ କରି ମୋଡ଼ା ଯାଇଥିବା ପାନର କାହାଳୀ—
ପାନଖିଲି, ପାନେର ବୌଡା — Betel leaf rolled into a
**पानका बीडा, पानकि खिल्ली** packet and containing spices, lime, catechu and small pieces of betel nuts.

[ ଦ୍ର—ପାନକୁ ଦୁଇ ଫାଳ କରି ତହିଁରେ ଚୂନ ବୋଳ ଖଇର, ଭଙ୍ଗା ଗୁଆ, ମସଲା ଓ ଭମାଖୁର ଗୁଣ୍ଡି ଦେଇ ନାନା-ଆକାରରେ ପାନଖିଲ ମୋଡ଼ାଯାଏ । ଯେଉଁ ପାନଖିଲ ମଧ୍ୟରେ ଗୁଣ୍ଡି ଦିଆଯାଇ ନ ଥାଏ ତାକୁ ସାଦା (ଧା) ଖିଲ ଓ ଯହିଁରେ ଗୁଣ୍ଡି ଥାଏ ତାକୁ କଡ଼ା ଖିଲ କହନ୍ତି । ]

**ପାନ ଗୋଷ୍ଠୀ**—ସ. ବି—୧ । ମଦ୍ୟପାନ ଉକ୍ତ, ଯେଉଁଠାରେ ତାନ୍ତ୍ରିକ-
Pāna goshṭhi ମାନେ ଏକତ୍ର ହୋଇ ମଦ୍ୟପାନାଦି ପଞ୍ଚମକାରର
(ପାନଗୋଷ୍ଠିକା—ଅନ୍ୟରୂପ) ସାଧନା କରନ୍ତି (ହ୍ରି. ଶବ୍ଦସାଗର)—
1. A place where Tantrik devotees assemble and perform wine drinking and other Tantric rites.

୨ । ତାଡ଼ୀଖାନା, ଶଣ୍ଡୀ, ମଦୁଆଙ୍କ ଆଡ୍ଡା—
2. A place where people assemble for drinking toddy or wine; tavern.

୩ । ମଦତ୍ ଖଣ୍ଟ—3 Opium smoking den.

**ପାନ ଟେକା**—ପ୍ରାଦେ ( ଗଡ଼ଜାତ ଓ ସିଂହଭୂମ ) ବି—ବିବାହ ପୂର୍ବରୁ
Pāna ṭekā ବର ପକ୍ଷୀୟ ଓ କନ୍ୟାପକ୍ଷୀୟ ବ୍ୟକ୍ତିମାନଙ୍କ ମଧ୍ୟରେ ହେବା ମହାପ୍ରସାଦ ବନ୍ଧନ—Ceremony of formal betrothal done between the bride's and bridegroom's guardians.

[ ଦ୍ର—ବଙ୍ଗଦେଶରେ ବିବାହ ସମ୍ବନ୍ଧ ନିର୍ଣ୍ଣାୟକ ପତ୍ର ବା ଲେଖାକୁ ପାନପତ୍ର ବୋଲାଯାଏ । ]

**ପାନଡବା**—ଦେ. ବି—ଯେଉଁ ଧାତୁମୟ ଦୁଇଫାଳଆ ପାତ୍ର ବା ବାକ୍ସରେ
Pāna ḍibā ଖିଲପାନ ରଖାଯାଏ, ପାନବଟା—A pot for
পানের ডিবে keeping prepared betel.
**पानडबा, पनबटा**
(ପାନଡବିଆ, ପାନଡବା, ପାନଡବି—ଅନ୍ୟରୂପ)

**ପାନତୁଆ**—ଦେ. ବି—ପାନ୍ତୁଆ ( ଦେଖ )
Pānatuā — Pāntuā ( See )

**ପାନଦାନ୍**—ବୈଦେ. ବି ( ଓ. ପାନ+ଫା. ଦାନ୍ )—
Pānadān — ୧ । ପାନଡବା ( ଦେଖ )
পানদান — 1. Pānadibā ( See )
**पानदान** — ୨ । ବଡ଼ଲୋକମାନଙ୍କ ସଭା ଓ ମଜଲିସରେ ଆଗନ୍ତୁକ-ମାନଙ୍କ ସମ୍ବର୍ଦ୍ଧନା କରିବା ପାଇଁ ଦିଆଯିବା ପାନଖିଲମାନ ଯେଉଁ ଆଧାରରେ ରଖାଯାଏ—2. A tray in which rolled packets of betel are kept and presented to guests in social gatherings.

**ପାନ ଦୋଷ**—ସ. ବି (ମ. ପ. ଶ୍ଳୋକୀ, ପାନଜନିତ ଦୋଷ)—
Pāna dosha ଅତିରିକ୍ତ ମଦ୍ୟପାୟିତା; ମଦୁଆମି—Intemperance.

**ପାନପ**—ସ. ବି—( ପାନ+ପା ଧାତୁ+କର୍ତ୍ତୃ. ଅ)—ମଦ୍ୟପ, ମଦୁଆ
Pānapa (ହି. ଶବ୍ଦସାଗର)—A drunkard.

**ପାନ ପତୁରି ଘାସ**—ଦେ. ବି—ପାନିଆ ଘାସ ( ଦେଖ )
Pāna paturi ghāsa — Pāniā ghāsa ( See )

**ପାନ ପତୁରି**—ଦେ. ବି. ( ସ. ପର୍ଣ୍ଣ+ପତ୍ର )—
Pāna paturi ସ୍ତ୍ରୀଲୋକମାନଙ୍କ କେଶରେ କପାଳ ଉପରେ ପିନ୍ଧାଯିବା ପାନ ଆକାରର ଅଳଙ୍କାରବିଶେଷ—
A kind of ornament shaped like a betel leaf and put on the brow over the hair by women.
(ପାନପର୍ଣ୍ଣୀ—ଅନ୍ୟରୂପ)

ଝଲକ ପାନପତୁରି । ମୁକୁନ୍ଦ୍ର ଦେହ ଲେହିଲ କେଶ ଗନ୍ଧ ଜିହ୍ଵା ଲହ ଲହ କରି ଅଭିମନ୍ୟୁ ବଦରଥତନ୍ତ୍ରାମନ୍ତୀ ।

**ପାନ ପାତ୍ର**—ସ. ବି (ମ. ପ ଶ୍ଳୋ; ପାନାର୍ଥ ବ୍ୟବହୃତ ପାତ୍ର)—
Pāna pātra ୧ । ଗିଲାସ—1. Drinking glass.
(ପାନ ଭାଜନ, ପାନ ଭାଣ୍ଡ—ଅନ୍ୟରୂପ) ୨ । ମଦ ପିଇବା ପାତ୍ର—
2. Wine glass.

୩ । ପାଣି ପିଇବାର ପାତ୍ର—
3. Drinking pot; drinking bowl.

**ପାନ ପିକ**—ଦେ. ବି—ଖିଲ ପାନ ଖାଇବା ଲୋକର ପାଟିରୁ ବାହାରିବା
Pāna pika ପାନ ରସ ମିଶ୍ରିତ ଛେପ—Saliva or spittle
(ପାନପିକ୍—ଅନ୍ୟରୂପ ) induced by chewing betel.
পানের থু থু **पानका पीक**

**ପାନ ଫୁଲ**—ଦେ. ବି—ବିବାହ ପୂର୍ବରୁ ବର ଓ କନ୍ୟା ପକ୍ଷରୁ ପରସ୍ପରକୁ
Pāna phula ଦିଆଯିବା ଉପଢୌକନସ୍ୱରୂପ ପାନ ଓ ଫୁଲ—
**পান ফুল** Presents of betel and flowers exchanged between the bride and bridegroom before marriage.

**ପାନ ବଟା**—ଦେ. ବି—ପାନଡବା (ଦେଖ)
Pāna baṭā — Pānadibā (See).

**ପାନ ବଟୁଆ**—ଦେ. ବି ( ସ. ପର୍ଣ୍ଣ, ସ. ବଟ=ଗୋଲସୂତ୍ର )—ପାନ ଭାଙ୍ଗି
Pāna baṭuā ଖାଇବାର ଉପକରଣ ଆଦି ( ପାନ, ଚୂନ, ଖଇର,
পানের বটুয়া(থলে) ଗୁଆ ଓ ଗୁଣ୍ଡି) ରଖାଯିବା ମୁଣି—
**पानकाबटवा** Betel-pouch; a pouch in which the
(ପାନମୁଣି, ପାନଥଳି—ଅନ୍ୟରୂପ) ingredients for chewing betel are kept.

ପ୍ରାଦେ ( ବସ୍ତର ) ବି—ପାନଡବା—A pot for keeping rolled up betel-packets.

**ପାନ ବଣିକ୍(କ)**—ସଂ. ବି—ଶୁଣ୍ଡି; ମଦ୍ୟବିକ୍ରେତା—
Pāna baṇik(ka) Wine seller.
(ପାନବଣିଜ—ଅନ୍ୟରୂପ)

**ପାନ-ବରଜ**—ଦେ. ବି (ସଂ. ପର୍ଣ୍ଣ+ବାଟ=ମଣ୍ଡପ)—ଯେଉଁ ଛାୟାମଣ୍ଡପ
Pāna baraja ମଧ୍ୟରେ ପାନ ଫସଲ ଲଗାଯାଏ—
ପାନବରଜ A shade of grass and reed made for
पनबाड़ि; पानकावरौंजा; बरेव rearing betel, betel plantation.

[ଦ୍ର—ପାନ ଲତା ଉଚ୍ଚ ଡିପ ଓ ବାଲିଆମାଟିରେ ଉଧାଏ । କିନ୍ତୁ ପାନ ଫସଲରେ ବରାବର ପାଣି ଛାଟିବା ଦରକାର । ପାନ ଗଛ ଖରାରେ ମରିଯାଏ, ଏଥିପାଇଁ ଇଙ୍କଡ଼ ନାମକ ଗୁଳ୍ମର ଡାଙ୍ଗ ଛାଆର କରି ଚାରିପଟେ ଛାମୁଣ୍ଡିଆ ଓ କାନ୍ଥ କରି ସେହି ଛାମୁଣ୍ଡିଆ ତଳେ ପାନ ଲଗାଇବାକୁ ହୁଏ । ଏହାକୁ ପାନବରଜ ବୋଲାଯାଏ ।]

[ଦ୍ର—ପାନ ଓ ପାନବରଜସମ୍ବନ୍ଧୀୟ କେତେକ ଶବ୍ଦ :— ନଥ, ଲଥ—ପାନଲତା । ଗ ଣ୍ଡି ଗ—ପାନଲତାର ଖଣ୍ଡିତ ଅଂଶ ବା ପବର ମୂଳଗଣ୍ଡି, ଯାହାକୁ ଭୂମିରେ ପୋତି ଲୋକେ ନୂତନ ଗଛ ଉତ୍ପାଦନ କରନ୍ତି । ଛିଟା—ପାନଲତାର ଗଣ୍ଠିରୁ ବାହାରିବା ଡାଙ୍କ ବା କଡ଼ମା । ଗଛ—ଏକତ୍ର ଲଗାଯାଇଥିବା ଦୁଇ ଧାଡ଼ି ପାନ ଲତା । ଆଉଡ଼—୨୮୮ଟି ପାନ 'ଗଛ'ର ଧାଡ଼ି ଅନ୍ତରରେ ଦିଆ ଯାଇଥିବା ଡେଲିଙ୍ଗି ବାଉଁଶର ଛବି । ଏଥିର ତଳ ଭୂଇଁରେ ଓ ମୁଣ୍ଡ ବରଜର ଛାତରେ ଲାଗେ । ଛୁଞ୍ଚ—ବରଜର ଛାତ ବା ଶୂଳ ଉପରେ ପଡ଼ି ଯାଇଥିବା ଡେଲିଙ୍ଗି ବାଉଁଶ (ଯାହା ଉପରେ ଯୁଣ ବିଛାଯାଇ ଛାୟା କରାଯାଏ । ବିଛଣୀ, ବିଛିଣୀ—ବରଜ ଛାତରେ ଛୁଞ୍ଚ ଉପରେ ବିଛାଯିବା ଯୁଣ ବଡ଼ା । ପାଖୁଡ଼—ଅଗ କଟାଯାଇଥିବା ଇଙ୍କଡ଼, ଯାହା କ ଡାଙ୍ଗ ବନାଯାଇ ବରଜ ଗୁରପାଖରେ ଦିଆଯାଏ ।]

**ପାନ ବରଜି**—ଦେ. ବି (ସଂ. ପର୍ଣ୍ଣ+ବାରୁଜୀବୀ, କ୍ଷାକେନ୍ଦ୍ର)—୧ । ଯେଉଁ
Pāna baraji ଲୋକ ପାନ ବରଜ କରି ପାନ ଫସଲ କରେ—
बारुई A person who raises betel by
बरई agriculture.
(ପାନବରଜିଆ—ଅନ୍ୟରୂପ) ୨ । ପାନ ଫସଲ ପ୍ରସ୍ତୁତକରିବା ଶୂଦ୍ର-ଜାତିବିଶେଷ—2. A caste of Sūdras which raises betel plantations; a betel planter

**ପାନବିଡ଼ା**—ପ୍ରାଦେ (ସମ୍ବଲପୁର) ବି (ତୁଳ. ହି. ପାନବୀଡ଼ା)—ପାନଖିଲ
Pānabirḍā (ଦେଖ)—Pānakhila (See).

**ପାନବିଡ଼ିଆ**—ଦେ. ବି (ସଂ. ପର୍ଣ୍ଣ ଓ ବିଟକା)—ପାନଖିଲ—
Pānabirḍiā A packet made up of pieces of betel unts, spices etc packed in betel leaf.

**ପାନ ବିଭ୍ରମ**—ସଂ. ବି—ପାନାତ୍ୟୟ ( ଦେଖ )
Pāna bibhrama Pānātyaya (See).

**ପାନ ବୋଲ**—ଦେ. ବି—ପାନଖିଲ ଖିଆଇଥିବା ଯୋଗୁଁ ଅଧରରେ ଓ
Pāna bola ଦାନ୍ତରେ ବସିଥିବା ଗାଢ଼ ରକ୍ତବର୍ଣ୍ଣ ସୁର—
पानका रंग; पानकी ललाई Red dye of the lips and teeth due to chewing betel.

ଅଧର ସୁନ୍ଦର ନ ଥାଇ ପାନ ବୋଳ
ଖିଆଉଥାଇ ସବୁବେଳରେ ପ୍ରବାଳ—ବ୍ରଜନାଥ ବ. ମହାଭାରତବନ ।

**ପାନ ଭାଙ୍ଗିବା**—ଦେ. କ୍ରି.—ପାନ ପତ୍ରରେ ଚୂନ ବୋଳ ଚାରିରେ
Pāna bhāṅgibā ଖଇର ଓ ଗୁଆ ମସଲା ଆଦ ଦେଇ ପାନ
ପାନସାଜା ଖିଲ ସଜ୍ଜିତ କରିବା—To make up betel and
पान लगाना pieces of nuts, spices etc into packets.

କରିବ ସତନେ ଭାଙ୍ଗି ପାନ । ଅଭିମନ୍ୟୁ ସାମନ୍ତ ଚିନ୍ତାମଣି

**ପାନ ଭୂମି**—ସଂ. ବି.—ମଦ ଖଟି, ତାଡ଼ିଖଟି—
Pāna bhūmi A place where people gather for
(ପାନଭୂ, ପାନଭୂମୀ—ଅନ୍ୟରୂପ) drinking wine or toddy.

**ପାନ ମସଲା**—ଦେ. ବି.—(ସଂ. ପର୍ଣ୍ଣ+ଫା. ମଶାଲା)—ପାନ ଖିଲରେ ଦିଆ
Pāna masalā ଯିବା ମସଲା (ଯଥା—ଗୁଜୁରାତି, ଅଲେଇଚ, ଯାଇତ୍ରୀ
पान मसला ଲବଙ୍ଗ, ଜାଇଫଳ ଓ କବାବଚିନି)—Spices taken
पानका मशाला with betel.

**ପାନମହୁରି**—ଦେ. ବି. (ସଂ. ପର୍ଣ୍ଣ+ମଧୁରିକା)—ଧନ୍ୟାଦିବର୍ଗର ବର୍ଷାୟୁଷ
Pānamahuri ଶାକବିଶେଷ—Anisse, aniseed, fennel;
ସ ମିଶ୍ରେୟା, ମଧୁରିକା, ମିସି, Faeniculium Vulgare.
ଅବାକ୍‌ପୁଷ୍ପୀ; ସହିତ ପୁଷ୍ପିକା, ଛତ୍ରା, ଶାଲେୟ, ଶାଲୀନ
ଗୁ. ବରିୟାଲୀ
ତେ. କୁପି, ପୋଦକଲ କୁରଦ ସୌଂଫ
ମ. ବଡ଼ୀ ଶୌଂଫ
ଫା. ବାଦିୟାନ୍
ଆ. ଏଜ୍ଞୟାନନ
पानमहरी, मौरी, मउरी
सउफ, सौंप, मिठाजिरा

[ଦ୍ର—ଏହା ଖିଲ ପାନରେ ଓ ରାନ୍ଧିବାର ମସଲା ରୂପେ ବ୍ୟବହୃତ ହୁଏ । ଏହା ଔଷଧରେ ଲାଗେ ଓ ଏହାର ଅର୍କ ଔଷଧରୂପେ ବ୍ୟବହାର କରାଯାଏ । ବୈଦ୍ୟକ ମତରେ ଏହା ଯୋନିଶୂଳ, ଅଗ୍ନିମାନ୍ଦ୍ୟ, ମଳବନ୍ଧତା, କ୍ରିମି, ଶୂଳ, କାସ, ବମି, ଶ୍ଳେଷ୍ମା ଓ ବାୟୁନାଶକ । ଏହା ବୃଷ୍ୟ, ରୁକ୍ଷ ଓ ପାଚକ ।]
(ପାନମଉରି, ପାନମୌରି, ପାନମଧୁରି—ଅନ୍ୟରୂପ)

**ପାନରି**—ଦେ. ବି.—(ସଂ. ପର୍ଣ୍ଣିକାର)—୧ । ପାନବରଜି (୨) (ଦେଖ)
Pānarī 1. Pānabaraji (2) (See)
बारुई, बारूजी; पानवरजी, पानति ୨ । ପାନ ବେପାରୀ—
पनेरी, बरइ 2. A trader in betal-leaves.
(ପାନେରି—ଅନ୍ୟରୂପ)

**ପାନ ଲୋଡ଼ା**—ଦେ. ବି. (ବରଜିଙ୍କ ବ୍ୟବହୃତ)—ପାନ ଲତାରୁ ପାନ
Pāna lorḍā ଛିଣ୍ଡାଇବା ପ୍ରକ୍ରିୟା—Plucking of betel leaves from the creeper.

**ପାନ ଲୋଡ଼ିବା**—ଦେ. କ୍ରି. (ବରଜିମାନଙ୍କ ବ୍ୟବହୃତ ଶବ୍ଦ)—ପାନଲତାରୁ
Pāna lorḍibā ପାନ ତୋଳିବା—To pluck betel leavs from the creeper.

**ପାନ ଶିର**—ଦେ. ବି.—ପାନ ଡେମ୍ଫକୁ ଲାଗି ଥିବା ପାନପତ୍ରର ପିଠି
Pāna śira ମଧ୍ୟସ୍ଥ ଶିରା—The continuation of the
(ପାନଶିରା—ଅନ୍ୟରୂପ) stem of a betel leaf.

**ପାନ ଶୌଣ୍ଡ**—ସ. ବଣ. ପୁଂ. (ପାନ=ମଦ୍ୟପାନ+ଶୌଣ୍ଡ=ମତ୍ତ)—
Pāna śauṇḍa ଅତ୍ୟନ୍ତ ପାନରତ; ମଦୁଆ, ମଦ୍ୟପାନାସକ୍ତ—
One addicted to drink; drunkard.

**ପାନସ**—ଦେ. ବି.—(ଫା. ଫାନୁସ୍)—କାଚ, ମେଘନାଲ ଓ କାଗଜ ନିର୍ମିତ ଦୀପାଧାରବିଶେଷ—Chineese lantern.
Pānasa
ଫାନସ **ଫାନुस** [ଦ୍ର—ଯେଉଁ ପାନସ ଉପରେ ଉଡ଼େ ତାକୁ
(ପାନୁସ—ଅନ୍ୟରୂପ) ଉଡ଼ା ପାନୁସ କୁହାଯାଏ ।]

ସଂ. ବିଣ. (ପନସ+ଅ)—ପଣସ ସମ୍ବନ୍ଧୀୟ—
Relating to the jackfruit.

ସଂ. ବି—ପଣସରୁ ତିଆର ପ୍ରାଚୀନ କାଳର ଏକପ୍ରକାର ମଦ୍ୟ—
A kind of wine prepared in old times from the jack fruit.

**ପାନାଗାର**—ସଂ ବି. (ପାନ+ଆଗାର)—ମଦଖଟି; ଯେଉଁ ଘରେ ମଦ ପିଇବା ପାଇଁ ଲୋକେ ଏକତ୍ର ହୁଅନ୍ତି—Tavern;
Pānāgāra
a house where people assemble to drink wine.
(ପାନାଳୟ, ପାନଶାଳା—ଅନ୍ୟରୂପ)

**ପାନାତ୍ୟୟ**—ସ. ବି—ଅତ୍ୟଧିକ ମଦ୍ୟପାନ ଯୋଗୁଁ ଜନ୍ମିବା ରୋଗ ବିଶେଷ—A disease due to excessive drinking of wine.
Pānātyaya
[ ଦ୍ର—ଏଥିରେ ହୃଦୟର ଦାହ ଓ ପୀଡ଼ା ହୁଏ, ମୁହଁ ହଳଦିଆ ହୋଇଯାଏ, ଘନ ଘନ ମୂର୍ଚ୍ଛା ହୁଏ, ପ୍ରଳାପ ହୁଏ ଓ ମୁହଁରୁ ଫେଣ ବାହାରେ—ହି. ଶ । ]

**ପାନାର୍ଥୀ**—ସ. ବିଣ. ପୁଂ. (ପାନ+ଅର୍ଥ ଧାତୁ+ଇନ୍; ୧ମା. ୧ବ)—
Pānārthi
୧ । ଯେ ପିଇବା ପାଇଁ ଇଚ୍ଛା କରୁଥାଏ—
(ପାନାର୍ଥିନୀ—ସ୍ତ୍ରୀ) 1. Desirous of drinking.
୨ । ଯାହାକୁ ଶୋଷ କରୁଥାଏ—2. Thirsty.

**ପାନାସକ୍ତ**—ସ. ବିଣ. ପୁଂ. (୭ମୀ ତତ୍; ପାନରେ ଆସକ୍ତ)—
Pānāsakta
୧ । ଯେ ସର୍ବଦା ଜଳପାନ କରିବାରେ ଅଭ୍ୟସ୍ତ—
(ପାନାସକ୍ତା—ସ୍ତ୍ରୀ) 1. Habituated to drinking water.
୨ । ଯେ ସର୍ବଦା ମଦ୍ୟପାନରେ ଲିପ୍ତ—
2. Addicted to drink; drunkard.

**ପାନି(ନିଁ)**—ପ୍ରାଦେ. (ସମ୍ବଲପୁର ଓ ବସ୍ତର) ବି—ପାଣି; ଜଳ—
Pāni(nīñ) Water.

**ପାନିଆ(ଆଁ)**—ଦେ. ବି. (ସଂ ପ୍ରବେଣୀ; ପ୍ରସାଧନୀ)—୧ । କଙ୍କତିକା,
Pānia(āñ)
କେଶ ପ୍ରସାଧନୀ; କଙ୍ଗେଇ—1. Comb.
चिबनी; चिरूनी, काँकई
୨ । ଲୁଗାବୁଣା ସମୟରେ ଠାଣୀ ସୁତାକୁ
**ककहा, कंघा**
ଧାରାମତେ ଠାଣି ଧରିବା ନିମିତ୍ତ ବ୍ୟବହୃତ
ତେ. ଦୁବେ.
କଙ୍କତିକା ସଦୃଶ ଯନ୍ତ୍ରବିଶେଷ—
2. A comb of weavers through which the warp threads are passed to keep them distinct from each other during weaving.
[illegible] । କାନ୍ଧ ଓ ବେଖ ମୁଣ୍ଡି ମଧ୍ୟରେ ଥିବା ତ୍ରିକୋଣ ହାଡ଼—
3. The scapula.
୪ । ଉଲ୍ ଓ ଝୋଟ ଆଦିକୁ କୁଣ୍ଡାଇ ପରିଷ୍କାର କରିବା ପାନିଆ—
4. A comb for clearing wool, flax etc.
[illegible] —ପାଣିଆ—Watery.
**ପାନିଆଁ** [illegible] —ଘୋଳ ଦହି [illegible]
[illegible] Churned curd.

**ପାନିଆ ଖେଳ**—ପ୍ରାଦେ (ଗଡ଼ଜାତ) ବି ଏକପ୍ରକାର କ୍ରୀଡ଼ା—
Pānia khel̤a A kind of indoor game.
[ ଦ୍ର—ଦୁଇଜଣ ଖେଳାଳି ଏଥିରେ ଖେଳନ୍ତି । ତ୍ରିଭୁଜାକାରରେ ଗୁଡ଼ାଏ ସାନ ଗୋଡ଼ିକୁ ଛେଳି ଓ ବଡ଼ ଗୋଡ଼ିକୁ ବାଘ କଳ୍ପନା କରାଯାଇ ଭୂମିରେ ଗାର କଟାଯାଇ ରଖାଯାଏ । ଜଣେ ଖେଳାଳି ଛେଳି ନିଏ ଓ ଆଉ ଜଣେ ବାଘ ନିଏ । ଛେଳି ଗୋଡ଼ିମାନ ଏପରି ବସାଇବାକୁ ହେବ ଯେ ବାଘ ଗୋଡ଼ି ତାକୁ ଡେଇଁ କରି ଖାଇ ପାରିବ ନାହିଁ । ]

**ପାନିଆ ଘାସ**—ଦେ. ବି—ଏକ ପ୍ରକାର ଘାସ—
Pānia ghāsa A kind of grass.
(ପାନିଆଁ ଘାସ—ଅନ୍ୟରୂପ) [ଦ୍ର—ଏହାର ମୂଳ ପାନିଆପରି ଚଉଡ଼ା, ଏହାର ପତ୍ର ଧାନ ପତ୍ରଠାରୁ ସାନ ଓ କୋମଳ ।]

**ପାନିକ**—ସ. ବି—(ପାନ+ଇକ)—ମଦ୍ୟକାର ଓ ମଦ୍ୟ ବ୍ୟବସାୟୀ ବ୍ୟକ୍ତି, ଶୁଣ୍ଡି—A vender of spirituous liquors; wine distiller. (Apte)
Pānika

**ପାନିକି**—ଗ୍ରା. ବି—ପାଲିଙ୍କି (ଦେଖ)
Pāniki Pālinki (See).

**ପାନି କୁଆଲି**—ପ୍ରାଦେ (ସୋନପୁର) ବି—ପାଣି କୁଆ (ଦେଖ)—
Pāni kuāl̤i Pāni kuā (See)

**ପାନିଲ**—ସଂ. ବି—(ପାନ+ଇଲ)—ପାନପାତ୍ର—
Pānil̤a A drinking vessel; goblet. (Apte).

**ପାନିହାରି ବେଲା**—ପ୍ରାଦେ. (ସମ୍ବଲପୁର) ବି—(ଭୁଲ. ଏହି ଅର୍ଥରେ ହି. ପନିହାରୀ ବେଲା)—ପାନ୍ତି ବେଲା (ଦେଖ)—
Pānihāri belā Pān-ti belā (See)

**ପାନୀୟ**—ସଂ. ବିଣ—(ପା ଧାତୁ+କର୍ମ. ଅନୀୟ)—୧ । ପେୟ; ପାନର ଉପଯୁକ୍ତ—1. Drinkable.
Pāniya
୨ । ପିଇବା ପାଇଁ ଅଭିପ୍ରେତ—
2. Intended to be drunk.
୩ । ରକ୍ଷଣୀୟ—
3. To be preserved or protected.
୪ । ଜଳ ସମ୍ବନ୍ଧୀୟ—4. Relating to water.
୫ । ଜଳଚର(ଜୀବ)—5. Aquatic (animal)
ସ. ବି—୧ । ଜଳ—1. Water.
୨ । ପଣା—2. Sweet drink.
୩ । ପିଇବାର କୌଣସି ଦ୍ରବ୍ୟ—
3. A drink; beverage.

**ପାନୀୟ କାକିକା**—ସ. ବି—ପାଣିକୁଆ ( ଦେଖ )
Pāniya kākikā Pānikuā (See)

**ପାନୀୟ ନକୁଲ**—ସଂ. ବି—ଓଧ—
Pāniy nakul̤a Otter.

**ପାନୀୟ ଫଳ**—ସ. ବି—୧ । ପାଣି ଫଳ; ଶିଙ୍ଗଡ଼ା—
Pāniya phal̤a 1. Water chestnut.
୨ । ମଖନା—2. A kind of aquatic plant, the seeds of which are fried and eaten.

**ପାନୀୟ ବର୍ଣ୍ଣିକା**—ସଂ. ବି—ବାଲୁକା; ବାଲି—
Pāniy barṇṇikā Sand (Apte).
(ପାନୀୟ ଚୂର୍ଣ୍ଣିକା—ଅନ୍ୟରୂପ)

**ପାନୀୟଶାଳା**—ସଂ. ବି—୧ । ପାଣି ରଖିବାର ଘର —
Pāniay śālā 1 A house for storing water.
(ପାନୀୟ ଶାଳିକା—ଅନ୍ୟରୂପ) ୨ । ଯେଉଁ ସ୍ଥାନରେ ପଥିକମାନଙ୍କୁ ଜଳ ବଣ୍ଟା ହୁଏ; ଜଳସତ୍ର—1. A place for distribution of water to travellers.
ପାନୀୟଶାଳେ ପ୍ରାଣିମାନେ,
ପଇବେ ମିଳନ୍ତି ଯେସନେ । ଜଗନ୍ନାଥ, ଭାଗବତ ।

**ପାନୀୟାମଳକ**—ସ. ବି—ପାଣି ଅଁଳା (ଦେଖ)
Pāniyāmalaka Pani a-ṅlā (See)

**ପାନୀୟାଳୁ**—ସ. ବି—୧ । ଶଙ୍ଖ ସାରୁ—
Pāni ālu 1. A kind of sweet edible arum.
শাঁকআলু ୨ । ଗସ୍ଥା ଆଳୁ—
पानीआलु 2. A kind of sweet yam

**ପାନୁ**—ପ୍ରାଦେ (ଗଞ୍ଜାମ) ବୈଦେ. ବି—(ତେଲଗୁ)—ଟାକ୍ସ; ଟିକସ, ଶୁଳ୍କ-
Pānu Tax; cess.
(ଯଥା—ସଂସାର ପାନୁ=ଇନ୍‌କମ ଟାକ୍ସ)

**ପାନୁଆରି**—ପ୍ରାଦେ (ଗଡ଼ଜାତ) ବି—ପାନ ଅଇଡ଼ (ଦେଖ)
Pānuāri (ପାନେର—ଅନ୍ୟରୂପ) Pāna airḍa (See)

**ପାନେ**—ଦେ. ଅ - ଏକପାନ ବା ମାତ୍ରା ପରିମିତ (ଔଷଧାଦି)—
Pāne A dose of (medicine).
একপান एकखुराक

**ପାନେଲ**—ବୈଦେ. ବି (ଇଂ. ପାନେଲ)—ଯେଉଁ କବାଟର ପଟା ଖଣ୍ଡେ ଭକ୍ତାରେ ନ ହୋଇ ଗୁରୁପାଖେ ଚଉକାଠ ପରି ଭକ୍ତା ଦିଆଯାଇ ମଝିରେ ଖଣ୍ଡେ ପଟା ଭଡ଼ା ଯାଇଥାଏ—
Pānela Panelled door.
পানিল पानियल,नखासोदरकीवाड़
ପାନଅଲ୍, ପାନଆଲ୍, ପାନଏଲ୍, ପାନଲ୍, ପାନଏଲୀ } ଅନ୍ୟରୂପ

**ପାନେଲା**—ବୈଦେ. ବି—ପନେଲା (ଦେଖ)
Pānelā Panelā (See)
ପାନଅଲା, ପାନଏଲା } ଅନ୍ୟରୂପ
পানেলা, পিনিওলা
पनेला

**ପାନ୍ତୁଆ**—ଦେ. ବି—ଲାଲମୋହନ; ଗୋଲାପ ଜାମୁ ନାମକ ମିଷ୍ଟାନ୍ନ—
Pāntua A kind of Indian sweetmeat made from cheese.
পানিতুয়া; পানতোয়া पानतुआ
[ଦ୍ର—ଦୁଧ ଛେନା ସଙ୍ଗେ ଗୁଅଳ ଗୁଣ୍ଡା ମିଶାଇ ଗୋଲାକାର ପିଣ୍ଡ କରାଯାଏ । ପରେ ତାକୁ ଘିଅରେ ପାକ କରି ଚିନି ରସରେ ବୁଡ଼ାଇ ଏହା ତିଆର ହୁଏ ଓ ଏହା ରକ୍ତବର୍ଣ୍ଣ ଦେଖାଯାଏ ।]

**ପାନ୍ଥ**—ସଂ. ବି. (ପଥିନ୍=ପଥ+କୁଶଳ ବା ପଟୁ ଅର୍ଥରେ- ଅ)—
Pāntha ୧ । ବାଟୋଇ; ପଥିକ; ପର୍ଯ୍ୟଟକ—1. Traveller
୨ । ବିଦେଶରେ ଥିବା ଯୋଗୁଁ ସ୍ତ୍ରୀ ବିଚ୍ଛେଦ ଦୁଃଖୀ ବ୍ୟକ୍ତି—
2. A lover separated from his sweetheart being far away from home.

**ପାନ୍ଥ ନିବାସ**—ସଂ. ବି. (୬ଷ୍ଠୀ ତତ୍, ପାନ୍ଥର ନିବାସ)—ପାନ୍ଥଶାଳା—
Pāntha nibāsa (ଦେଖ)—Pānthaśālā (See)

**ପାନ୍ଥ ପାଦପ**—ସଂ. ବି—( ଆଧୁନିକ ପ୍ରୟୋଗ)—ମାଡାଗାସ୍କର ଆଦି ଦ୍ୱୀପପୁଞ୍ଜରେ ଜନ୍ମିବା କଦଳୀ ଜାତୀୟ ଏକ ପ୍ରକାର ଗଛ—The traveller's tree; Ravenala Madagascariensis.
Pāntha pādapa
पान्थपादप
[ଦ୍ର—ଏହାର ବାହାଙ୍ଗାର ମୂଳକୁ କ୍ଷୁରଦ୍ୱାରା କ୍ଷତ କଲେ ତହିଁରୁ ଜଳପରି ସୁସ୍ୱାଦୁ ପାନୀୟ ରସ ବାହାରେ ଓ ତାହା ପଥିକମାନେ ପିଅନ୍ତି । ଏ ଗଛକୁ ଭାରତବର୍ଷରେ କେତେକ ଲୋକ ଆଣି ଲଗାଇ ଅଛନ୍ତି ଓ ଏ ଗଛରୁ ମଧ୍ୟ ଜଳପରି ସୁସ୍ୱାଦୁ ରସ ବାହାରେ ।]

**ପାନ୍ଥ ଶାଳା**—ସଂ. ବି—(୬ଷ୍ଠୀ ତତ୍; ପାନ୍ଥର ଶାଳା)—ପଥିକମାନଙ୍କ ଆଶ୍ରୟାର୍ଥ ନିର୍ମିତ ଘର, ଚଟି—An inn; a serai; a rest house for wayfarers.
Pāntha śālā

**ପାପ୍‌ଚି ପିଠା**—ପ୍ରାଦେ. (ସିଂହଭୂମ) ବି - ଗୁଡ଼ ଭାଗ କମ୍ ଥିବା ଖୁବ୍ ମୋଟା ଜାତର ପିଠା—
Pāp-chi pithā A thick pastry cake having a small quantity of sugar.

**ପାପ୍‌ଡ଼ି**—ପ୍ରାଦେ. (ଗଡ଼ଜାତ) ବି.—(ସ. ପର୍ପଟ)—ଜଙ୍ଗଲର ଏକପ୍ରକାର ବଣୁଆ ଗଛର ମୂଳକୁ ବା କନ୍ଦାକୁ ଚେକା ଚେକା ପତଳା କରି କାଟି ଶୁଖାଇ କରାଯିବା ପରିବା—A kind of kitchen vegetable consisting of thin bits sliced from the root of a wild tree.
Pāp-rḍi
(ପାପିଡ଼ି—ଅନ୍ୟରୂପ)
[ଦ୍ର—ଏହାକୁ ସିଝାଇ ତରକାରି କରି ଖିଆ ଯାଏ ଓ ଗୁଡ଼ ସଙ୍ଗେ ପାଗ କରି ଭୁଖୁଡ଼ା କରି ଖିଆ ଯାଏ । ଜଙ୍ଗମାନେ ଏହାକୁ ହାଟକୁ ବିକିବାକୁ ଆଣନ୍ତି ଓ ଟୋକେଇଦରିଆ ଦାମରେ ବିକନ୍ତି ।]
ଦେ. ବି.—ପାପଡ଼ି (ଦେଖ)—Pāparḍi (See)

**ପାପ**—ସ. ବି. (ପା ଧାତୁ=ରକ୍ଷା କରିବା+ଅପାଦାନେ. ପ; ମନୁଷ୍ୟ ଯାହା ଠାରୁ ଆପଣାକୁ ସର୍ବଦା ରକ୍ଷା କରେ)—
Pāpa
(ପାପକ—ଅନ୍ୟରୂପ) ୧ । ପାତକ, ଅଧର୍ମ—1. Sin.
(ପୁଣ୍ୟ—ବିପରୀତ) ୨ । ଦୁଷ୍କୃତି; ମନ୍ଦକର୍ମ—
2. Guilt; villainy; depravity.
୩ । ଅପରାଧ—3. Offence; crime.
୪ । ଅନିଷ୍ଟ—4 Evil, injury.
୫ । ଅମଙ୍ଗଳ; ଆପଦ, ଦୁର୍ଭାଗ୍ୟ—
5. Calamity, misfortune.
୬ । ବଧ; ହତ୍ୟା (ହ୍ର ଶ.)—6. Murder; slaughter.
[ଦ୍ର—ଯେଉଁ କର୍ମର ଫଳ ଇହଲୋକରେ ଓ ପରଲୋକରେ ଅଶୁଭ, ଯେଉଁ କର୍ମ ପରିଣାମରେ କର୍ତ୍ତାର ଅମଙ୍ଗଳକର, ଯାହା ବ୍ୟକ୍ତିବିଶେଷର ବା ସମାଜର ଅନିଷ୍ଟ ଘଟାଏ, ଯାହା ନୀତିଶାସ୍ତ୍ର ଓ ଧର୍ମଶାସ୍ତ୍ରରେ ନିନ୍ଦିତ ତାହାକୁ ପାପ ବୋଲାଯାଏ । ପାପର ଫଳରେ କର୍ତ୍ତାର ଇହକାଳରେ ଦୁଃଖଭୋଗ ଓ ନିନ୍ଦା ଓ ପରକାଳରେ ନରକଭୋଗ ହୁଏ । ଧର୍ମଶାସ୍ତ୍ରରେ ନିଷିଦ୍ଧ କର୍ମ କରିବା ଓ ବିହିତ

କର୍ମ ନ କରିବା ପାପ । ପାପର ସଂସର୍ଗକାରୀ ମଧ୍ୟ ପାପଭାଗୀ ହୁଏ । ପ୍ରାୟଶ୍ଚିତ୍ତ, ଅନୁତାପ ଓ ଦଣ୍ଡଭୋଗଦ୍ୱାରା ପାପର କ୍ଷୟ ହୁଏ । ଇହକାଳରେ ଯାହାର ପାପକ୍ଷୟ ହୋଇ ନ ଥାଏ, ମୃତ୍ୟୁ ପରେ ସେ ପାପର ଫଳରେ ନରକ ଭୋଗ କରେ ବା ନୀଚଯୋନିରେ ଜନ୍ମ ଲଭି ଜନ୍ମାନ୍ତରରେ ଦୁଃଖ ଭୋଗ କରେ । ମନୁରେ ଅଛି ଯେ, ପାପ ପ୍ରକାଶ ଓ ଅନୁତାପଦ୍ୱାରା ପାପ କ୍ଷୟ ହୁଏ ।]

ସଂ. ବିଣ.—(ପାପ + ଅସ୍ତ୍ୟର୍ଥେ. ଅ)—୧ । ପାପୀ; ପାପିଷ୍ଠ— 1. Sinning.

ତଥିବେ ତୁମ୍ଭ ସଙ୍ଗେ ଆସିଛ ସେ ପାପ,
ମୋ ବାହୁବଳରେ ତା ନାମ ହେବ ଲୋପ—କୃଷ୍ଣସିଂହ ମହାଭାରତ. ବନ ।

୨ । ପାପଜନକ—2. Sinful.
୩ । ଅନିଷ୍ଟକର—3. Injurious; deleterious
୪ । ଦୁଷ୍ଟ, କ୍ରୂର, ଖଳ—4 Wicked.
୫ । ଅଶୁଭ, ଅମଙ୍ଗଳକର—5. Evil; inauspicious.

ଦେ. ବି.—୧ । ବିରକ୍ତିକର ବିଷୟ, ବିରକ୍ତିର କାରଣ— 1. Botheration.
୨ । କଳଙ୍କ—2. Stain.
(ଯଥା—ଅମୁକ ମଲା, ପାପ ଗଲା ।)

**ପାପ କର୍ମ**—ସଂ. ବି.—୧ । (କର୍ମଧାରୟ)—ପାପଜନକ କାର୍ଯ୍ୟ— Pāpa karma 1. Sinful act.
(ପାପକାର୍ଯ୍ୟ—ଅନ୍ୟରୂପ) ୨ । (କର୍ମଧା) ମନ୍ଦ କର୍ମ— 2. Wicked deed.

**ପାପକର୍ମା**—ସଂ. ବିଣ. (ପାପ+କର୍ମନ୍, ୧ମା. ୧ବ.; ବହୁବ୍ରୀହି)— Pāpakarmā. ପାପୀ—Sinner; sinning; sinful; committing sins.
(ପାପକର୍ମୀ—ଅନ୍ୟରୂପ)

**ପାପକାରିଆ**—ପ୍ରାଦେ (ଗଞ୍ଜାମ) ବିଣ—ବୁଲାନ୍ତି (ବଳଦ) (ଦେଖ) Pāpakāriā Bulānti (balada) (See)

**ପାପକୃତ୍**—ସଂ. ବିଣ. (ପାପ+କୃ ଧାତୁ+କର୍ତ୍ତୃ. କ୍ୱିପ୍)—ପାପିଷ୍ଠ; ଯେ ପାପ କରେ—Sinful; sinning. Pāpakrut

**ପାପକ୍ଷୟ**—ସଂ. ବି.—୧ । (୬ଷ୍ଠୀ ତତ୍; ପାପ କ୍ଷୟ)—ପାପର ମନ୍ଦଫଳର କ୍ଷୟ ବା ହ୍ରାସ ବା ଅନ୍ତ—1. The decrease or end of the evil effects of sin Pāpa kshaya
୨ । (ବହୁବ୍ରୀହି; ପାପର କ୍ଷୟ ହୁଏ ଯେଉଁଠାରେ) ତୀର୍ଥ (ହି. ଶ.)— 2. A sacred place of pilgrimage.

**ପାପଗର୍ଭ**—ସଂ. ବି. (ମ. ପ ଲୋ;)—ପାପ ପ୍ରଣୟ ଜନିତ ଗର୍ଭାବସ୍ଥା— Pāpa garbha Pregnancy resulting from illicit connection.

**ପାପଗ୍ରହ**—ସଂ. ବି. (ଜ୍ୟୋତିଷ)—ଅମଙ୍ଗଳକାରୀ କେତେକ ଗ୍ରହ— Pāpa graha 1. Some of the inauspicious planets in Hindu astrology.
(ଶୁଭଗ୍ରହ—ବିପରୀତ)
[ଦ୍ର—ଶନି, ରବି, ମଙ୍ଗଳ, ରାହୁ ଓ କେତୁ ଏମାନେ ପାପଗ୍ରହ ଓ ଏମାନଙ୍କ ମଧ୍ୟରୁ ବୁଧ ସଙ୍ଗେ ଯୁକ୍ତ କୌଣସି ଗ୍ରହ ପାପଗ୍ରହ ।]
୨ । (ଫଳିତ ଜ୍ୟୋତିଷ)—କୃଷ୍ଣ ଅଷ୍ଟମୀଠାରୁ ଶୁକ୍ଳାଷ୍ଟମୀ ପର୍ଯ୍ୟନ୍ତ ଦେଖାଯିବା ଚନ୍ଦ୍ର (ହି. ଶ.)—2. (astrology) The moon in its phases from the 8th day of the dark lunar fortnight to the 8th day of the bright fortnight.

**ପାପଘ୍ନ**—ସଂ. ବିଣ. ପୁଂ.—[ ପାପ+ହନ୍ ଧାତୁ+କ୍ୱିପ୍ ]—ଯାହା ମନୁଷ୍ୟର ପାପ ନାଶ କରେ, ପାପନାଶକ— Pāpaghna
(ପାପଘ୍ନୀ—ସ୍ତ୍ରୀ) Destroying one's sins
ସ ବି—ରାଶି, ତିଳ—Sesame; sesamum seed.

**ପାପଘ୍ନୀ**—ସଂ. ବିଣ. ସ୍ତ୍ରୀ. (ପାପଘ୍ନ+ସ୍ତ୍ରୀ ଈ) —ପାପଘ୍ନର ସ୍ତ୍ରୀଲିଙ୍ଗ)— Pāpaghni Feminine of Pāpaghna.

**ପାପ ଚନ୍ଦ୍ର**—ସଂ. ବି. ( ସଂ. ପାପଯୁକ୍ତ ଚନ୍ଦ୍ର )—( ଫଳିତ ଜ୍ୟୋତିଷ ) Pāpa chandra ବିଶାଖା ଓ ଅନୁରାଧା ନକ୍ଷତ୍ରର ଦକ୍ଷିଣ ଭାଗରେ) ସ୍ଥିତ ଚନ୍ଦ୍ର (ହି. ଶ)—(astrology. The moon when it is in the south of the 16th and the 17th asterisms.
(ପାପଚନ୍ଦ୍ରମା—ଅନ୍ୟରୂପ)

**ପାପଚର**—ସଂ. ବିଣ. ପୁଂ. (ପାପ + ଚର୍ ଧାତୁ + କର୍ତ୍ତୃ ଅ)— Pāpachara ପାପ ଆଚରଣକାରୀ; ପାପୀ— Sinning.
(ପାପଚାରୀ—ଅନ୍ୟରୂପ)
(ପାପଚରୀ, ପାପଚାରିଣୀ—ସ୍ତ୍ରୀ)

**ପାପଚିନ୍ତା**—ସଂ. ବି – ପାପ କରିବାର ଚିନ୍ତା— Pāpachintā Sinful thought.

**ପାପଚେତାଃ**—ସଂ. ବିଣ. (ବହୁବ୍ରୀହି; ପାପ+ଚେତସ୍; ୧ମା. ୧ବ) — Pāpachetāh ଦୁଷ୍ଟଚିତ୍ତ ( ବ୍ୟକ୍ତି )—(a person) Of sinful or wicked mind.
(ପାପଚିତ୍ତ, ପାପମତି, ପାପବୁଦ୍ଧି—ଅନ୍ୟରୂପ)

**ପାପ ଛୁଇଁବା**—ଦେ. ବି. (ସଂ. ପାପ + ସ୍ପୃଶ ଧାତୁ)—ଆପଣାର ପ୍ରିୟପାତ୍ରର ଅମଙ୍ଗଳାଶଙ୍କା ମନରେ ଉଦୟ ହେବା— Pāpa chhuiñbā Portentious thoughts about one's loved being.
पापछोआँ
पापछूँना

**ପାପ ଜୀବ**—ସଂ. ବି. (କର୍ମଧା; ପାପ + ଜୀବ)—ପୁରାଣାନୁସାରେ ସ୍ତ୍ରୀ, ଶୂଦ୍ର, ହୂନ ଓ ଶବରଆଦି ବ୍ୟକ୍ତି (ହି. ଶ)— Pāpa jība A woman, a Śūdra, a Hun and a Śabara (according to the Hinndu Purāṇas).

**ପାପଡ଼**—ଦେ. ବି. (ସଂ. ପର୍ପଟ; ପ୍ରା. ପପ୍ପଡ଼)—୧ । ବିରି ମୁଗ ବା ବୁଟ ସହିତ ଲୁଣ, ଜିରା, ସାଜିମାଟି, ହେଙ୍ଗୁ ଆଦି ମିଶାଇ ପ୍ରସ୍ତୁତ କରାଯିବା ଏକପ୍ରକାର ପତଳା ପିଠା— Pāpaṛda 1. A thin cake prepared of pasted pulses.
पापड
पापड़
(ପାଁପଡ଼—ଅନ୍ୟରୂପ)
[ ଦ୍ର—ଏହାକୁ ଭାଜି କରି ଖାଇଲେ ରୁଚିକର ହୁଏ । ]
୨ । ଅଉଟା ଦୁଧ ଉପରେ ପଡ଼ିବା ସରର ବହୁ ସ୍ତରକୁ ଉପର୍ଯ୍ୟୁପରି ରଖାଯାଇ ଶୁଖା ଯାଇଥିବା ପିଷ୍ଟକବିଶେଷ; ସ୍ତର ହୋଇ ସଜ୍ଜିତ ସରଭଜା—2. A cake made up of seveal layers of cream pressed together.

ବୈଦେ. ବି. (କଚେରୀଆ) (ଇଂ. ପପର୍)—୧ । ପାପଡ଼ ମକଦମା (ଦେଖ)—1. Pāpaṛda makadamā (See)

୨ । (ଇଂ. ପପର୍)—ମକଦମାର ଖରଚ୍ଚ ଚଳାଇବାକୁ ଅକ୍ଷମ ବ୍ୟକ୍ତି—2. A pauper; a person who is declared unable to pay the courtfees of a suit filed by him.

**ପାପଡ଼ ମକଦମା**—ଦେ. ବି. (କଚେରୀ)—(ଇଂ. ପପର୍=ଦରିଦ୍ର ଓ ଫା. ମୁକଦ୍ଦମା)—ଅର୍ଥହୀନ ବ୍ୟକ୍ତି; ଅଦାଲତରେ କୋର୍ଟଫିସ୍‌ର ଖର୍ଚ୍ଚରୁ ମୁକ୍ତି ପାଇ କୌଣସି ମକଦମା ଚଳାଇବା ନିମନ୍ତେ ଦାଏର କରିବା ମକଦମା—Pauper suit.
Pāparda makadamā
পাঁপরমোকদ্দম
**पाँपर मुकद्दमा**
ପାଁପଡ଼ସୁଟ, ପାପଡ଼ସୁଟ } ଅନ୍ୟରୂପ

**ପାପଡ଼ା**—ଦେ ବି—୧ । ପାପଡ଼ ୧ (ଦେଖ)
Pāpardā 1 Pāparda 1 (See)
୨ । ପାପଡ଼ି (ଦେଖ)—2 Pāpardi (See)
୩ । (ସ. ପର୍ପଟ)—ମଧ୍ୟପ୍ରଦେଶ, ବଙ୍ଗ ଓ ମାନ୍ଦ୍ରାଜ ଆଦିରେ ଜନ୍ମିବା ନାତିଉଚ୍ଚ ବନ୍ୟ ତରୁବିଶେଷ—
**पापड़ा**
3. A wild timber-tree.

[ ଦ୍ର—ଏଥିର ପ୍ରତିବର୍ଷ ପତ୍ର ଝଡ଼ିଯାଏ ଓ ନୂଆ ପତ୍ର ଜନ୍ମେ। ଏହାର ମଞ୍ଜକାଠ ଚକ୍‌ଚକ୍ ଓ ଧଳା ଓ ହଳଦିଆ ମିଶା ବର୍ଣ୍ଣ, ଟେମଡ଼ ଓ ଝାଣ୍ଡୁଆ । ଏ କାଠରେ ପାନିଆ ତିଆରି ହୁଏ । ଏ'କାଠରେ ଖୋଦନ କାମ ସୁନ୍ଦର ରୂପେ କରାଯାଇ ପାରେ—ହି. ଶ । ]

ଦେ. ବିଣ—ପୋରହା; ଜୀର୍ଣ୍ଣ ଶୀର୍ଣ୍ଣ—Worn out.

**ପାପଡ଼ି**—ଦେ. ବି. (ସଂ. ପର୍ପଟୀ)—୧ । ହିମାଳୟରେ ଉତ୍ପନ୍ନ କ୍ଷୁଦ୍ର ଶାକ ବିଶେଷ—1. Podophyllum Emodi; a medicinal plant.
Pāpardi
[ ଦ୍ର—ଏହାର ମୂଳରେ ରେଚକ ଔଷଧ ହୁଏ । ]
୨ । ଘରପୋଡ଼ିଆ (ଦେଖ)—2. Gharapordiā (See)
୩ । ପାପଡ଼ ୧ (ଦେଖ)—3 Pāparda 1 (See).
ପ୍ରାଦେ. (ବାଲେଶ୍ୱର) ବି—ଏକପ୍ରକାର ଲୁଣିମାଛ—
A kind of sea-fish.
[ ଦ୍ର—ଏମାନେ ନଈ ମୁହାଣରେ ମିଳନ୍ତି । ]

**ପାପ ତାପ**—ସଂ. ବି. (ଦ୍ୱନ୍ଦ୍ୱ, ପାପ+ତାପ)—ପାପ ଓ ଦୁଃଖ—
Pāpatāpa Sin and pain.

**ପାପତିଆ**—ପ୍ରାଦେ. (ଗଡ଼ଜାତ) ବିଣ. ପୁଂ. (ସଂ. ପାପଚେତା)—
Pāpatitiā (ପୁରୁଷଙ୍କ ପ୍ରତି ପ୍ରଯୁକ୍ତ ଏକପ୍ରକାର ଗାଳି) ପାପମନା—
(ପାପତେଇ—ସ୍ତ୍ରୀ) Evil-minded.

**ପାପଦୃଷ୍ଟି**—ସଂ. ବି—୧ । ପାପଯୁକ୍ତ ଉଦ୍ଦେଶ୍ୟ ସହିତ କୌଣସି ବ୍ୟକ୍ତିକୁ ଦେଖିବା—1. Sinful look; looking on a person with a sinster motive.
Pāpadrushti
୨ । ପ୍ରତିକୂଳ ଦୃଷ୍ଟି—2. Evil eye.
୩ । ଅଶୁଭକର ଦୃଷ୍ଟି—3 Inauspicious look.
ସଂ. ବିଣ. (ବହୁବ୍ରୀହି)—ଯାହାର ଦୃଷ୍ଟି ପାପମୟ ଅଟେ—
1. Having a sinful glance.
୨ । ଯାହାର ଦୃଷ୍ଟି ଅମଙ୍ଗଳକର—
2. Having an inauspicious glance.

**ପାପ ଦୋସ୍ତି**—ଦେ. ବି. ( ସ. ପାପ, ଆ. ଦୋସ୍ତୀ )—ପାପ ପ୍ରଣୟ—
Pāpa dosti Illicit love.
পাপ দোস্তি **पाप दोस्ति**

**ପା ପଦ୍ମ**—ଦେ. ବି—ପାଦ ପଦ୍ମ ( ଦେଖ )
Pā padma Pāda padma ( See )

**ପାପନାମା**—ସ. ବିଣ. ( ପାପ+ନାମନ୍, ୧ମା. ୧ବ )—
Pāpa nāmā ୧ । ଅମଙ୍ଗଳ ବା ଅଭଦ୍ର ନାମଧାରୀ (ହି. ଶ.)—
1. Bearing an inauspicious or indecent name.

**ପାପ ନାଶ**—ସ. ବି—ପାପ ମୋଚନ ( ଦେଖ )
Pāpa nāsa Pāpa mochana ( See )
୨ । ଅପକୀର୍ତ୍ତି ଯୁକ୍ତ (ବ୍ୟକ୍ତି) (ହି. ଶ.)—
2. (a person) Having an evil repute.

**ପାପ ନାଶକ**—ସ. ବିଣ. ପୁଂ—ପାପଘ୍ନ ( ଦେଖ )
Pāpa nāsaka Pāpaghna ( See )
(ପାପ ନାଶିକା, ପାପନାଶିନୀ—ସ୍ତ୍ରୀ) (ପାପନାଶୀ—ଅନ୍ୟରୂପ)

**ପାପ ନାଶନ**—ସ. ବି. ପୁଂ—ପାପଘ୍ନ ( ଦେଖ )
Pāpa nāsana Pāpaghna ( See )
(ପାପ ନାଶନୀ—ସ୍ତ୍ରୀ)
ସ. ବି—୧ । ପ୍ରାୟଶ୍ଚିତ୍ତ (ହି. ଶ.)—1. Expiation.
୨ । ବିଷ୍ଣୁ (ହି. ଶ.)—2. Bishnu.
୩ । ଶିବ (ହି. ଶ.)—3 Siba.
୪ । ପାପ ମୋଚନ ( ଦେଖ )
4. Pāpa mochana ( See )

**ପାପ ନାଶିନୀ କୁଣ୍ଡ**—ଦେ. ବି—ଭୁବନେଶ୍ୱରରେ ଥିବା ପଥର ପାହାଚ ବନ୍ଧା ଗୋଟିଏ ପ୍ରାଚୀନ ପୁଷ୍କରିଣୀ—
Pāpa nāsini kunda
Name of an artificial tank of Bhubaneswara.

**ପାପ ନିଶ୍ଚୟ**—ସ. ବିଣ. ପୁଂ. (ବହୁବ୍ରୀହି; ପାପ+ନିଶ୍ଚୟ)—
Pāpa nischaya ପାପ କରିବା ପାଇଁ କୃତସଂକଳ୍ପ—
(ପାପ ନିଶ୍ଚୟା—ସ୍ତ୍ରୀ) Determined to commit sin.

**ପାପ ପତି**—ସ. ବି. ( ମ. ପ ଲେ )—ଜାର; ଉପପତି—
Pāpa pati A paramour.

**ପାପ ପୁରୁଷ**—ସ. ବି—୧ । ମୂର୍ତ୍ତିମାନ୍ ପାପ; ସଇତାନ; ପାପ ନାମଧାରୀ କଳ୍ପିତ ପୁରୁଷ—
Pāpa purusha
1. Sin personified; Satan.

[ ଦ୍ର—ତନ୍ତ୍ର ମତରେ କଳ୍ପିତ ପାପପୁରୁଷର ସମସ୍ତ ଶରୀରର ଉପାଦାନ ଓ ଅଙ୍ଗ ପ୍ରତ୍ୟଙ୍ଗ ଓ ଲୋମମାନ ଭିନ୍ନ ଭିନ୍ନ ପାପ ବା ମହାପାତକ ଓ ଉପପାତକ ଦ୍ୱାରା ଗଠିତ । ଏହାର ବର୍ଣ୍ଣ କଜ୍ଜଳ-କଳା, ଏହାର ଆଖି ରକ୍ତବର୍ଣ୍ଣ । ଏ ସର୍ବଦା କ୍ରୁଦ୍ଧ ଓ ଏହାର ଆୟୁଧ ଖଡ୍ଗ ଓ ଢାଲ । ହି. ଶ. ]

୨ । ( ମ. ପ. ଲୋ; ପାପ କର୍ମକାରୀ ପୁରୁଷ )—
ପାପୀ ବା ଦୁଷ୍ଟ ବ୍ୟକ୍ତି—2. A villain; a wicked person.

**ପାପ ପ୍ରଣୟ**—ସ. ବି—ପରସ୍ତ୍ରୀ ବା ପରପୁରୁଷ ସଙ୍ଗେ ପ୍ରେମ—
Pāpa praṇaya Illicit love; adulterous love.

**ପାପ ପ୍ରବୃତ୍ତି**—ସ ବିଣ. ଓ ବି ( ବହୁବ୍ରୀହି; ପାପ+ପ୍ରବୃତ୍ତି )—
Pāpa prabṛutti ପାପ ମତି ( ଦେଖ )
Pāpa mati ( See )

**ପାପ ଫଳ**—ସ. ବି. ( ୬ଷ୍ଠୀ ତତ୍; ପାପ+ଫଳ )—
Pāpa phaḻa ୧ । ପାପର ଅଶୁଭ ଫଳ—
1. The evil effects of sinful acts.
୨ । (କର୍ମଧା) ମନ୍ଦ ବା ଅଶୁଭ ଫଳ—2. Evil result.
ସ. ବିଣ. (ବହୁବ୍ରୀହି) ଯେଉଁ କର୍ମର ଫଳ ପାପ, ପାପଜନକ—
Sinful (act).

**ପାପ ବୁଦ୍ଧି**—ସ. ବି—ମନ୍ଦ ପ୍ରକୃତି—
Pāpa buddhi Evil disposition.
(ବିପରୀତ—ଧର୍ମବୁଦ୍ଧି) ସ. ବିଣ—ପାପ ଚେତା ( ଦେଖ )
Pāpa chetā ( See )

**ପାପ ଭକ୍ଷଣ**—ସ. ବି—କାଳ ଭୈରବ ( ଦେଖ ) (ହ୍ରି. ଶ.)—
Pāpa bhakshaṇa Kāḻa bhairaba ( See )

**ପାପ ଭାକ୍**—ସ. ବିଣ. ପୁଂ. ଓ ସ୍ତ୍ରୀ ( ପାପ+ଭଜ୍ ଧାତୁ+କର୍ତ୍ତୃ. କ୍ୱିପ୍;
Pāpa bhāk ୧ମା. ୧ବ. )—୧ । ପାପୀ—1. Sinning.
୨ । ପାପର ଫଳ ଭୋଗୀ—
2. Sharing the punishment for a sin.

**ପାପ ଭାଗୀ**—ସ. ବିଣ. ପୁଂ. ( ପାପ+ଭଜ ଧାତୁ+କର୍ତ୍ତୃ. ଣିନ୍; ୧ମା.
Pāpa bhāgi ୧ବ. )—ପାପ ଭାକ୍ ( ଦେଖ )
(ପାପ ଭାଗିନୀ—ସ୍ତ୍ରୀ) Pāpa bhāk ( See )

**ପାପ ଭୀରୁ**—ସ. ବିଣ. ( ୬ଷ୍ଠୀ ତତ୍ )—
Pāpa bhiru ଧର୍ମ ଭୀରୁ, ପାପ କରିବାକୁ ଯେ ଡରେ—
Fearing sin; scrupulous; god-fearing.

**ପାପ ମତି**—ସ. ବିଣ. ( ବହୁବ୍ରୀହି, ପାପ+ମତି )—
Pāpa mati ଯାହାର ମନ ସର୍ବଦା ପାପ କର୍ମ ଆଡ଼କୁ ଧାଏଁ—
Evil-minded; malevolent.
ସ. ବି. ( କର୍ମଧା, ପାପ+ମତି )—
ପାପ କର୍ମ କରିବା ପାଇଁ ଆକୃଷ୍ଟ ମନ—
Inclination to do evil.

**ପାପମୟ**—ସ. ବିଣ. ( ପାପ+ପୂର୍ଣ୍ଣାର୍ଥେ. ମୟ )—
Pāpamaya ୧ । ପାପରେ ପୂର୍ଣ୍ଣ ( କର୍ମ, ଜୀବନ )—
(ପାପମୟୀ—ସ୍ତ୍ରୀ) 2. Sinful; full of sin.
୨ । ଯେଉଁ ବ୍ୟକ୍ତିର ଚିନ୍ତା, କର୍ମ ଓ ଚେଷ୍ଟା ପାପରେ ପୂର୍ଣ୍ଣ; ପାପୀ—
2. ( a person ) Sinful in thought, act and endeavours.

**ପାପ ମୋଚନ**—ସ. ବି. ( ୫ମୀ ତତ୍; ପାପ+ମୋଚନ )—
Pāpa mochana ୧ । ପାପରୁ ମୁକୁଳାଇବା—
1 Liberation or redemption from sin.
୨ । ( ୬ଷ୍ଠୀ ତତ୍ ) ଦୋଷର ବା ପାପର କ୍ଷମା—
2 Remission of guilt.
ସ. ବିଣ—ପାପରୁ ମନୁଷ୍ୟଙ୍କୁ ଯେ ମୁକ୍ତ କରେ—
Redeeming a person from sin.

**ପାପ ମୋଚନୀ**—ସ. ବି—ଚୈତ୍ର କୃଷ୍ଣ ପକ୍ଷ ଏକାଦଶୀ (ହ୍ରି. ଶ —)
Pāpa mochani The eleventh day of the dark fortnight of Chaitra.

**ପାପରା**—ଦେ. ବିଣ—୧ । ପୋଖରା, ଜୀର୍ଣ୍ଣ—
Pāparā 1 Worn out, decayed.
**ମୁଣ୍ଡୁରା** ୨ । କୀଟଦଷ୍ଟ—2 Worm-eaten.
୩ । ଭଙ୍ଗପ୍ରବଣ, ମସକା—3. Fragile.

**ପାପ ରୋଗ**—ସ. ବି. (ମ. ପ. ଲୋ; ପାପ+ରୋଗ)—୧ । ଯେଉଁ ରୋଗ
Pāpa roga ପୂର୍ବ ଜନ୍ମ ବା ଇହ ଜନ୍ମରେ କରିବା ପାପର ପରିଣାମ ବୋଲି ଲୋକେ ବିଶ୍ୱାସ କରନ୍ତି—Any disease believed to be the penalty for sins committed.
[ଦ୍ର—ହିନ୍ଦୁ ଧର୍ମ ଶାସ୍ତ୍ର ଅନୁସାରେ କୁଷ୍ଠ, ଯକ୍ଷ୍ମା, କୁନଖ (କଣନଖା), ଶ୍ୟାବଦନ୍ତ (ଦାନ୍ତ କଳା ପଡ଼ିଯିବା), ପୀନସ, ପୂତି ବକ୍ତ୍ର (ଶ୍ୱାସ ବାୟୁରୁ ଦୁର୍ଗନ୍ଧ ବାହାରିବା), ହୀନାଙ୍ଗତା, ଶ୍ୱିତ୍ର, ଶ୍ୱେତକୁଷ୍ଠ, ପଙ୍ଗୁତା, ମୂକତା, ଲୋଲଜିହ୍ୱତା, ଉନ୍ମାଦ, ଅପସ୍ମାର, ଅନ୍ଧତା, କାଣତ୍ୱ, ଭ୍ରାମର (ମୁଣ୍ଡ ଘୂରିବା), ଗୁଳ୍ମ, ଶ୍ଳୀପଦ (ଗୋଦର) ଆଦି ପାପରୋଗ ଗ୍ରସ୍ତ ବ୍ୟକ୍ତିର ଓ ବ୍ରହ୍ମହତ୍ୟା, ସୁରାପାନ, ସ୍ୱର୍ଣ୍ଣ ହରଣ ଆଦି ବିଶେଷ ବିଶେଷ ପାପ କରିଥିବା ବ୍ୟକ୍ତିର ନରକ ଗମନ ହୁଏ ଓ ପରେ ପଶୁ, କୀଟ, ପତଙ୍ଗ ଆଦି ପାପ ଯୋନିରେ ଜନ୍ମ ଲାଭ କରିବା ପରେ ପୁଣି ମନୁଷ୍ୟ ଜନ୍ମ ଲାଭ ହୁଏ—ହ୍ରି. ଶ)
୨ । ମସୁରିକା; ବସନ୍ତରୋଗ (ହ୍ରି. ଶ)—2. Small pox.

**ପାପର୍ଦ୍ଧି**—ସ. ବି. (ପାପ+ଋଦ୍ଧି)—ମୃଗୟା (ହ୍ରି. ଶ)—
Pāparddhi Hunting.

**ପାପଲ୍ଲବ**—ଦେ. ବି. (ସ ପାଦ+ପଲ୍ଲବ; ତୁଳ; କରପଲ୍ଲବ)—(ଗୁରୁଜନ,
Pāpallaba ଦେବତା, ମହାପୁରୁଷ ଓ ସୁନ୍ଦରୀ ସ୍ତ୍ରୀଙ୍କ ପାଦ ପ୍ରତି ଏ ଶବ୍ଦ ଯୁକ୍ତ ହୁଏ ) ପଲ୍ଲବ ସଙ୍ଗେ ତୁଳିତ ପାଦ, କୋମଳ ପାଦ—Dainty feet; tender feet.
ଯାହା ପାପଲ୍ଲବ ମହାପାପଲବ ନ ରଖେ ସ୍ମରଣ କ୍ଷଣରେ ।
କବିସୂର୍ଯ୍ୟ. ଚନ୍ଦ୍ରକଳା ।

**ପାପ ଶୋଧନ**—ସ.ବି (ପାପ+ଶୋଧନ)—୧ । (୬ଷ୍ଠୀ ତତ୍) ପ୍ରାୟଶ୍ଚିତ୍ତଦ୍ୱାରା
Pāpa śodhana ଦ୍ୱାରା ପାପଶୁଦ୍ଧି—1. Purification of a sinner by expiation.
୨ । (ବହୁବ୍ରୀହି) ତୀର୍ଥସ୍ଥାନ (ହ୍ରି. ଶ)—2. Any place of pilgrimage.

**ପାପ ସମ୍ଭବ**—ସ. ବିଣ—ପାପରୁ ଜାତ—Born of sin.
Pāpa sambhaba

**ପାପହର**—ସ. ବିଣ. (ପାପ+ହୃ ଧାତୁ+କର୍ତ୍ତୃ ଅ)—ପାପନାଶକ—
Pāpahara Destroying the evil consequence of sin.
(ପାପହା—ଅନ୍ୟରୂପ) (ପାପହରା—ସ୍ତ୍ରୀ)

ପାପା—ସଂ ବି-ହସ୍ତା,ଜ୍ୟେଷ୍ଠା, ଅନୁରାଧା ନକ୍ଷତ୍ରରେ ବୁଧଗ୍ରହର ଗତି(ବୃ ଶ)—
Pāpā The passing of the planet Mercury through the 13th, 18th and 17th asterisms

ଦେ.ଅ (ଶିଶୁବଚନ;ତୁଳନାକର ଇଂରାଜି ଶିଶୁବଚନ ପାପା =ପିତା)
পাপা; ଶିଶୁମାନେ ପିତାଙ୍କୁ ସଂବୋଧନ କରିବା ଏକ ସ୍ୱାଭାବିକଶବ୍ଦ—
पापा A name by which a child naturally accosts its father; papa.

ପାପାଙ୍କୁଶା—ସଂ. ବି (ପାପ+ଅଙ୍କୁଶ+ଆ)—ଆଶ୍ୱିନଶୁକ୍ଳ ଏକାଦଶୀ
Pāpānkusa (ବୃ. ଶ)—The eleventh day of the bright fortnight of the month of Aswina

ପାପାଚରଣ—ସ.ବି.(୬ଷ୍ଠୀ ତତ୍,ପାପ+ଆଚରଣ)—ପାପକାର୍ଯ୍ୟ କରିବା—
Pāpācharaṇa Sinful conduct; commission of sin.

ପାପାଚାର—ସଂ. ବିଣ. ପୁ. (ପାପ+ଆଚାର)—ପାପାଚାରୀ (ଦେଖ)
Pāpāchāra Pāpāchāri (See).

ସଂ. ବି. (୬ଷ୍ଠୀ ତତ୍)—ପାପଯୁକ୍ତ ଆଚାର, ପାପାଚରଣ (ଦେଖ)
Pāpācharaṇa (See).

ପାପାଚାରୀ—ସଂ.ବିଣ.ପୁଂ(ପାପ+ଆ+ଚର ଧାତୁ+କର୍ତ୍ତୃ ଇନ୍,୧ମା ୧ବ)-
Pāpāchāri ପାପ କର୍ମକାରୀ—Sinful;of sinful conduct.
(ପାପାଚାରିଣୀ—ସ୍ତ୍ରୀ)

ପାପାତ୍ମା—ସଂ. ବିଣ. (ବହୁବ୍ରୀହି; ପାପ+ଆତ୍ମନ୍)—୧ । ପାପଚେତା;
Pāpātmā ପାପରେ ଅନୁରକ୍ତ—1. Sinful; sinnig.
୨ । ଦୁଷ୍ଟାତ୍ମା—2 Of wicked disposition.

ପାପାଶୟ—ସଂ. ବିଣ. (ବହୁବ୍ରୀହି, ପାପ+ଆଶୟ)—୧ । ପାପୀ—
Pāpāśaya Sinning, sinful
(ପାପାଶୟା—ସ୍ତ୍ରୀ) ୨ । ପାପଚେତା (ଦେଖ)
(ପାପାଶୟତା—ବି) 2, Pāpachetā (See)

ପାପାହ—ସଂ. ବି. (ପାପ+ଅହନ୍)—୧ । ଅଶୌଚ କାଳ—
Pāpāha 1. The time of impurity owing to a birth or death.
୨ । ଅଶୁଭ ଦିନ—2 Inauspicious day.

ପାପିୟା—ଦେଶ—୧ । ପାପୟା (ଦେଖ)—
Pāpiā 1. Pāpayā (See)
(ପାପେୟା—ଅନ୍ୟରୂପ) ୨ । ଋତୁରେ ମିଷ୍ଟସ୍ୱରକାରୀ ଏକପ୍ରକାର
পাপীয়া पपीहा ଉଡ୍ରସେପାୟ ପକ୍ଷୀ—2 Nightingale

ପାପିଷ୍ଠ—ସଂ. ବିଣ. ପୁଂ. (ପାପ+ଅତ୍ୟନ୍ତାର୍ଥେ. ଇଷ୍ଠ)—୧ । ମହାପାପୀ—
Pāpishṭha 1 Very sinful.
(ପାପିଷ୍ଠା—ସ୍ତ୍ରୀ) ୨ । ଅପରାଧୀ—2. Guilty

ପାପିଷ୍ଠୀ—ଦେ. ବିଣ. ସ୍ତ୍ରୀ.—(ସଂ. ପାପିଷ୍ଠା)—ପାପକାରିଣୀ ସ୍ତ୍ରୀ—
Pāpishṭhi Sinful woman.

ପାପିଷ୍ଠୀ ଏବୁ କୁଚକ୍ରୀଏ,
ଧର ଏହାର ଏ ସନ୍ତତ । ଜଗନ୍ନାଥ. ଭାଗବତ ।

ପାପୀ—ସଂ.ବିଣ, ପୁଂ. (ପାପ+ଅସ୍ତ୍ୟର୍ଥରେ ଇନ୍; ୧ମା. ୧ବ.)—
Pāpi ୧ । ପାପକାରୀ—1 Sinful; committing sin.
(ପାପିନୀ—ସ୍ତ୍ରୀ) ୨ । ଖଳ; ଦୁଷ୍ଟ—2. Wicked
୩ । କ୍ରୂର, କର୍କଶ—3 Cruel.

ସଂ. ବି—୧ । ପାପକାରୀ ବ୍ୟକ୍ତି—1 A sinner
୨ । ଅପରାଧୀ ବ୍ୟକ୍ତି—2. An offender
୩ । ଖଳ ବ୍ୟକ୍ତି—3 Wicked person.
୪ । କ୍ରୂର ବ୍ୟକ୍ତି—4. A cruel person.

ପାପୀ ତାପୀ—ଦେ ବି (ସହଚର ଶବ୍ଦ, ସ. ପାପୀ+ତାପୀ)—
Pāpi.tāpi ୧ । ଅତ୍ୟନ୍ତ ପାପ କରିଥିବାରୁ ସନ୍ତପ୍ତ—
পাপী তাপী 1. Repentant for one's sins.
पापी तापी ୨ । ପାପୀ ଓ ଦୁଃଖୀ—2 Sinful and miserable.

ପାପୀୟାନ—ସ. ବିଣ. ପୁଂ—(ପାପ+ଅତ୍ୟର୍ଥେ ଇୟସ୍, ପାପୀୟସ୍ ଶବ୍ଦ,
Pāpiyān (ପାପୀୟସୀ—ସ୍ତ୍ରୀ) ୧ମା. ୧ବ)—ପାପିଷ୍ଠ—Sinful.

ପାପୁଡ଼ି—ଦେ. ବି—ପାପଡ଼ି (ଦେଖ)
Papurḍi Pāpirḍi (See)

ପାପୁଲି—ଦେ. ବି (ସ ପୃଷ୍ଠ)—୧ । କରପୃଷ୍ଠ—
Pāpul· 1 The back of the palm.
হাতের পিঠ
उपर हत्थी

ଦେହକୁ ଝାଳ ବହୁଁଯାଉଥିଲା, ସେ ହାତ ପାପୁଲିରେ
ମୁହଁକୁ ପୋଛି ପୋଛି ଟୋପି ପକାଉଥିଲେ ।
ଫକୀରମୋହନ. ଛମାଣ ଆଠଗୁଣ୍ଠ ।

[ ଦ୍ର—କରତଳକୁ ଲେଉ ଓ କରପୃଷ୍ଠକୁ ପାପୁଲି କହନ୍ତି । ]

পা'য়ের পিঠ ୨ । କରତଳ—2 Palm of the hand.
तलुआका उपरभाग ୩ । ପାଦର ପୃଷ୍ଠ—3 The instep.

[ ଦ୍ର—ପାଦତଳକୁ ତଳପା ଓ ପାଦପୃଷ୍ଠକୁ ପାପୁଲି ବୋଲାଯାଏ । ]

ପାପୁଲିକାଣ୍ଡ—ପ୍ରାଦେ (ବାଲେଶ୍ୱର) ବି—ହାତର ପାପୁଲିରେ ହୋଇଥିବା
Pāpulikānda ଏକପ୍ରକାର ଦୁଷ୍ଟ 'ଘାଆ'—
A sore on the back of the palm.

[ ଦ୍ର—ଏହା ହାତର ପାପୁଲିର ସମସ୍ତ ଅଂଶ ମାଡ଼ିଯାଇ ସମୟ ସମୟରେ ବିଶେଷ ଯନ୍ତ୍ରଣା ଦିଏ । ]

ପାପୂଜା—ଦେ ବି (ସହଚର; ସ. ପାଦପୂଜା)—୧ । ପାଦପୂଜା—
Pāpūjā 1. Worshipping the feet.
୨ । ଦେବତା ଓ ମହାପୁରୁଷ ଆଦିଙ୍କୁ ସମ୍ମାନାର୍ଥ ପ୍ରଦତ୍ତ ଧନ,
ଭେଟି; ସଲାମୀ—2. Money presented to a Deity or great man as a mark of respect.

ଦେର ଦେର ବଡ଼ଲୋକ ପାପୂଜା ପଠାଉଥିଲେ;
ସେମାନଙ୍କର ସୁଅ ହେଉ ନାହିଁ—ଫକୀରମୋହନ. ଗଳ୍ପସ୍ୱଳ୍ପ ।

ପାପୋଛ(ସ୍)—ବୈଦେ. ବି (ଫା ପାଅପୋସ୍; ତୁଳ. ସ. ପାଦ ଓ
Pāpochh s) ସ. ପ୍ରୋଞ୍ଛନ, ଓଡ଼ିଆ ପୋଛିବା) ବାହାରୁ ଘରକୁ
পাপোশ ପଶି ଆସିବା ଲୋକର ତଳପାରେ ଲାଗିଥିବା ଧୂଳି
पापोश ଓ କାଦୁଅ ଆଦିକୁ ଛଡ଼ାଇବା ନିମନ୍ତେ ତଳପାକୁ
ଘୋଷାରି ଦେବା ପାଇଁ ଦୁଆର ମୁହଁରେ ପକାଯିବା କନ୍ଥା
ଆଦିର ଅସ୍ତରଣ—Door mat.

ପାପ୍ମା—ସ. ବି (ପା ଧାତୁ+ଅପାଦାନେ ମନ୍; ୧ମା.୧ବ)—୧ । ପାପ—
Pāpmā 1. Sin; vice
୨ । ଅପରାଧ—2. Guilt.
୩ । ଖଳତା; ଦୁଷ୍ଟତା—3. Wickedness.

୪ । ମନ୍ଦ ଅବସ୍ଥା; ମନ୍ଦ ଦଶା —
4 Bad fortune or state (Apte).
ସଂ ବିଣ—୧ । ପାପମୟ—1. Sinful.
୨ । ପାପୀ—2. Sinning
୩ । ଅନିଷ୍ଟକର—3 Injurious; hurtful (Apte.)

**ପାବ୍**—ପ୍ରାଦେ. (ସମ୍ବଲପୁର) ବି—ଆଦିମ ଜାତି ବିଶେଷ—
**Pāb** A class of aborigines.

**ପାବକ**—ସଂ ବିଣ. (ପୂ ଧାତୁ=ପବିତ୍ର କରିବା+କର୍ତ୍ତୃ. ଅକ)—
Pābaka ଶୁଦ୍ଧକାରକ, ପବିତ୍ରତା ବିଧାୟକ, ଯାହା ପବିତ୍ର ବା
(ପାବକା—ସ୍ତ୍ରୀ) ଶୁଦ୍ଧ କରେ—Purifying; cleansing.
ସଂ. ବି ୧ । ଅଗ୍ନି—1. Fire.
୨ । ତାପ (ହି. ଶ.)—2. Heat.
୩ । ସଦାଚାରୀ ବ୍ୟକ୍ତି—3. A pious man.
୪ । ଭଲ୍ଲାତକ; ଭଲିଆ—4. Marking nut
୫ । ନାଲି ଚିତା ଗଛ, ରକ୍ତ ଚିତ୍ରକ —
5. Plumbago Rosea (plant).
୬ । ସଦାଚାର ( ହି. ଶ. )—
6. Approved conduct or practice.
୭ । ଅଗ୍ନିମନ୍ଥ, ଅଗିବଥୁ ଗଛ (ହି. ଶ.)—
7 Premna Integrifolia ( tree ).
୮ । ବିଡଙ୍ଗ (ହି. ଶ.) (ଦେଖ)—8 Birdanga (See)
୯ । କୁସୁମ (ହି. ଶ.) (ଦେଖ)—9. Kusuma (See)
୧୦ । ବରୁଣ (ହି. ଶ.)—10. The God of the ocean.
୧୧ । ସୂର୍ଯ୍ୟ (ହି. ଶ )—11. The sun.
୧୨ । ଅଗ୍ନିଦେବ—12. The God of fire (Apte).
୧୩ । ତିନି ସଂଖ୍ୟା —13. The number three (Apte).
୧୪ । ମୁନି; ଋଷି—14. Saint; sage (Apte).
୧୫ । ବୈଦ୍ୟୁତାଗ୍ନି —15. Fire got from electricity.
୧୬ । ବହ୍ନି ମନ୍ତ୍ର—
16. Vedic formula for worshipping fire.

**ପାବକ ଋଷି**— ସଂ. ବି (କର୍ମଧା)— ବ୍ରହ୍ମାଙ୍କ ଅଙ୍ଗରୁ ଜାତ ସତେଇଶି ଜଣ
Pābaka rushi ଋଷି—A generic term for 27 sages said to have sprung up from the body of Brahmā.

[ଦ୍ର—ମହାଭାରତ ବନପର୍ବରେ ଲେଖାଅଛି କି, ବ୍ରହ୍ମାଙ୍କ ଅଙ୍ଗରୁ ୨୭ ଜଣ ପାବକ ଋଷି ଜାତ ହୋଇଥିଲେ । କିନ୍ତୁ ବେଦରେ ଅଗ୍ନିଙ୍କର ଏହିସବୁ ଭିନ୍ନ ଭିନ୍ନ ନାମ ମଧ୍ୟ ଅଛି । ଅଙ୍ଗିରା, ଦକ୍ଷିଣ, ଗାର୍ହପତ୍ୟ, ଆହବନୀୟ, କର୍ମକ୍ଷ୍ୟ, ବିଦ୍ୟୁତ, ଶୂର, ସମ୍ଭର୍ତ୍ତ, ଲୌକିକ, ଜାଠର, ବିଷଗ, କବ୍ୟ, କ୍ଷେମବାନ, ବୈଷ୍ଣବ, ଦସ୍ୟୁମାନ, ବଳଦ, ଶାନ୍ତ, ପୁଷ୍ଟ, ବିଭାବସୁ, ଜୋତିଷ୍ମାନ୍, ଭରତ, ଭଦ୍ର, ସ୍ୱିଷ୍ଟକୃତ୍, ବସୁମାନ୍, କ୍ରତୁ, ସୋମ ଏବଂ ପିତୃମାନ୍ । ହି. ଶ ]"

**ପାବଚ୍ଛ**—ଦେ. ବି - ପାହାଚ; ସିଢ଼ି; ସୋପାନ—
धाप दर्जा, जोड़ा Flight of steps; ladder; stair.

**ପାବତା(ଦା)**—ଦେ. ବି ( ସଂ. ପର୍ବତ ) —ପର୍ବତମତ୍ସ୍ୟ—
Pābatā(dā) Callichrus Pabda (fish).
पावदा दपठा

**ପାବନ**—ସଂ. ବିଣ ( ପୂ ଧାତୁ ଣିଚ ପାବ ଧାତୁ=ଶୁଦ୍ଧ କରିବା+କର୍ତ୍ତୃ.
Pābana . ଅନ)—୧ । ପବିତ୍ର—1. Sacred; pure,
(ପାବନୀ—ସ୍ତ୍ରୀ) holy.
୨ । ପବିତ୍ରତାବିଧାୟକ, ଯାହା ପବିତ୍ର କରେ—
2. Purifying; sanctifying.
୩ । ତ୍ରାଣକର୍ତ୍ତା, ଉଦ୍ଧାରକାରୀ—
3 Delivering; saving.
୪ । (ପବନ+ଅ) ପବନ ପିଇ କରି ଯେ ବଞ୍ଚିଥାଏ (ହି. ଶ.)—
4 Subsisting on air only.
ସଂ. ବି ( ପୂ ଧାତୁ ଣିଚ ପାବ ଧାତୁ+ଅନ )—୧ । ଜଳ —
1. Water.

ଲୋକେଽଂଚପଦଦେ ଅବନୀ-ପାବନୀ
ତ୍ରିଲୋକପାବନୀ ଗଙ୍ଗା ପାବନ-ପରଶେ – ରଘୁନାଥ, ମହାଯାତ୍ରା ।

୨ । ଗୋମୟ—2. Cowdung.
୩ । ପ୍ରାୟଶ୍ଚିତ୍ତ—3. Penance; expiation.
୪ । ରୁଦ୍ରାକ୍ଷ (ଦେଖ)—4. Rudrāksha (See)
୫ । (+ଭାବ ଅନ); ପବିତ୍ରୀକରଣ—5. Sanctifying.
୬ । ଶୁଦ୍ଧୀକରଣ—6. Purification
୭ । (+କର୍ତ୍ତୃ. ଅନ) ବିଷ୍ଣୁ—7. Bishnu
୮ । ଅଗ୍ନି—8. Fire.
୯ । ବ୍ୟାସଦେବ—9. Byāsa ( author of the Mahābhārata ).
୧୦ । କୁଷ୍ଠ, କୁଡ଼ ( ହି. ଶ. )—
10. Costus Speciosus.
୧୧ । ପୀତ ଭୃଙ୍ଗରାଜ ( ହି. ଶ. )—
11. The yellow flowered variety of Bhrungarāja.
୧୨ । ଚିତ୍ରକ ବୃକ୍ଷ ( ହି. ଶ. )—
12. Plumbago Zeylanica ( plant ).
୧୩ । ଚନ୍ଦନ (ହି. ଶ.)—13. Sandal.
୧୪ । ସିହ୍ଲକ; ଶିଳାରସ ( ହି. ଶ. )—
14. Benzoin; incense ( Apte ).
୧୫ । ସିଦ୍ଧପୁରୁଷ ( ହି. ଶ. )—
15. A spritually great man.
୧୬ । ସାମ୍ପ୍ରଦାୟିକ ତିଳକ ରେଖା—
16. A sectarial mark ( Apte ).

**ପାବନି**—ସଂ. ବି (ପବନ+ଅପତ୍ୟାର୍ଥେ ଇ)—୧ । ହନୁମାନ୍—
Pābani 1. Hanumān.
୨ । ଭୀମ—2. Bhima.

**ପାବନୀ**—ସଂ. ବିଣ. ସ୍ତ୍ରୀ (ପାବନ+ସ୍ତ୍ରୀ. ଈ)—ପବିତ୍ରକାରିଣୀ—
Pābani Purifying.
ସଂ. ବି—୧ । ଗଙ୍ଗାନଦୀ—1. The river Ganges.

୨ । ଗାଈ -2 Cow.
୩ । ତୁଳସୀ—3 The Holy Basil.
୪ । ହରଡ଼ା—4 Myrobalan

ପାବନ୍ତି—ଦେ. କ୍ରି (ପ୍ରାଚୀନ ପଦ୍ୟ)—ପାଇବା କ୍ରିୟାର ପାଆନ୍ତିର
Pābanti ବିକଳ୍ପ ରୂପ—Do get.

ମୋକ୍ଷର ଅନ୍ତ ସେ ପାବନ୍ତି
ଜନ୍ମ ମରଣ୍ ଭରସାନ୍ତି । ପ୍ରାଚୀ ନର୍ଗ୍‌ଣମାହାତ୍ମ୍ୟ ।

ପାବନ୍ଧ—ବୈଦେ. ବିଣ. (ଫା)—ପାଏବନ୍ଦ (ଦେଖ)
Pābanda Pāebanda (See)

ପାବନ୍ଧି—ଦେଦେ. ବି (ଫା)—ପାଏବନ୍ଦି (ଦେଖ)
Pābandi Pāebandi (See)

ପାବମାନ—ସଂ. ବିଣ. ପୁଂ. (ପୂ ଧାତୁ+କର୍ତ୍ତୃ. ଶାନଚ, ମ ଆଗମ)—
Pābamāna ପବିତ୍ରତା ବିଧାୟକ—Purifying.
(ପାବମାନା—ସ୍ତ୍ରୀ)

ପାବିତ—ସଂ. ବିଣ. (ପୂ ଧାତୁ ଣିଚ ପାବି ଧାତୁ+କର୍ମ କ୍ତ)—
Pābita ୧ । ପବିତ୍ରୀକୃତ - 1. Sanctified.
୨ । ଶୋଧିତ—- Purified.

ପାବିବା—ଦେ. କ୍ରି. (ପ୍ରାଚୀନ ପଦ୍ୟ)—ପବିତ୍ର କରିବା—
Pābibā To purify.

ଏକ ଦଂଶରେ ଶତ ଜାଣ
ପାବି ବଂଶୁକ ବେଣ । ପ୍ରାଚୀ. ପୂର୍ଣ୍ଣତମ ଚନ୍ଦ୍ରୋଦୟ ।

ପାବୀ—ସ. ବିଣ. ପୁଂ. (ପୂ ଧାତୁ ଣିଚ ପାବି ଧାତୁ+କର୍ତ୍ତୃ ଇନ୍, ପାବିନ୍
Pābī ଶବ୍ଦ ୧ମା. ୧ବ)—ପବିତ୍ରତାକାରକ—
(ପାବିନୀ—ସ୍ତ୍ରୀ) Purifying.

ପାବୁର୍ଡି—ପ୍ରାଦେ. (ଗଡ଼ଜାତ) ବି. (ସ. ପର୍ବତ)—କେନ୍ଦୁଝର, ବଣେଇ,
Pāburdi ବାମଣ୍ଡା ଓ ପାଲଲହଡ଼ା ଅଞ୍ଚଳବାସୀ ଭୂୟାଁମାନଙ୍କ ଆବାସ ସ୍ଥାନର ନାମ; ଭୂୟାଁପୀଢ଼—Name of the place inhabited by the Bhuyāns in some of the Orissa States

[ ଦ୍ର—ଏ ଅଞ୍ଚଳରେ ବନ୍ୟ ଅବସ୍ଥାରେ ଆମ୍ବ, ପଣସ କାଗଜଲେମ୍ବୁ, କଦଳୀ ଓ ତମ୍ବାଆଦିର ପ୍ରକାଣ୍ଡ ଗଛମାନ ପର୍ଯ୍ୟାପ୍ତ ପରିମାଣରେ ଜନ୍ମି ପ୍ରଚୁର ଫଳ ପୁଷ୍ପ ପ୍ରସବ କରନ୍ତି । ]

ପାବୁଲି—ପ୍ରାଦେ. (ସମ୍ବଲପୁର ଓ ଗଡ଼ଜାତ) —ପାହାଡ଼—
Pābuli Hill.

ପବେନି—ଗ୍ରାମ୍ୟ. ବି. (ପ୍ରାଚୀନ ପଦ୍ୟ) (ସ ପାବନି)—ହନୁମାନ୍—
Pābeni Hanumān.

ପୁଣି ଏକ ବୃକ୍ଷ ସେ ସେ ଉପାଡ଼ି ଧରଇ,
ପାବେନିର ଅଙ୍ଗେ ବେଗେ ପିଟ୍ଟଇ ନେଇ । ବିଶ୍ୱନାଥ, ବଡଛ ରାମାୟଣ ।

ପାବ୍ୟ—ସ. ବିଣ. (ପୂ ଧାତୁ+କର୍ମ. ଯ)—ପବିତ୍ର କରାଯିବାର ଯୋଗ୍ୟ—
Pābya Fit to be purified

ପାଭାଗ—ଦେ. ବି. (ସଂ. ପଦ ଓ ଭାଗ, ଗୃହର ପାଦଦେଶ)—ଗୃହର
Pābhāga ପିଣ୍ଡା; ବରଣ୍ଡା—Veranda; portico
(ପାଆଭାଗ—ଅନ୍ୟରୂପ)

ପାଭ(ଭୋ)ର୍—ଗ୍ରା. ଅ. (ସବାରି ଗଡ଼ୁଆମାନଙ୍କ ଡାକ)—
Pābha(bho)r ଏଠାରେ ବଲାଗଣ୍ଠି ବୁଡ଼ିବା ଅପେକ୍ଷା ବେଶି ପାଣି
**पाभोर** ଅଛି—(a halloo of palki-bearers) Here we have to wade through more than
[ପାଆଭ(ଭୋ)ର୍ - ଅନ୍ୟରୂପ] ankle-deep water.

ପାମ(ମା)—ସ. ବି. (ପେ ଧାତୁ = ଶୁଷ୍କ ହେବା+କର୍ତ୍ତୃ ମନ୍; ପାମନ୍ ଶବ୍ଦ
Pāma mā) ୧ମା. ୧ବ)—କାଛୁ, କୁଣ୍ଡିଆ—Itches.

ପାମଘ୍ନ—ସ. ବି (ପାମନ୍+ହନ ଧାତୁ+କର୍ତ୍ତୃ. ଅ, ଏହା କାଛୁ
Pāmaghana କୁଣ୍ଡିଆର ମହୌଷଧ)—ଗନ୍ଧକ—Sulpher.

ପାମନ—ସଂ. ବିଣ. ପୁଂ (ପାମନ୍=କାଛୁ କୁଣ୍ଡିଆ+ଅଛି ଅର୍ଥରେ ନ)—
Pāmana କାଛୁରା; କାଛୁ ରୋଗାକ୍ରାନ୍ତ—
(ପାମନା—ସ୍ତ୍ରୀ) Suffering from itches.

ପାମର—ସଂ. ବିଣ ପୁଂ. (ପାମନ୍=କାଛୁ+ର ଧାତୁ+ଗ୍ରହଣ କରିବା
Pāmara +କର୍ତ୍ତୃ. ଅ, କିମ୍ବା ପାପ୍ମ=ପାପ+ମ୍ରିଧାତୁ+କର୍ତ୍ତୃ. ଅ)
(ପାମର୍;ପାମରୀ—ସ୍ତ୍ରୀ)—୧ । କାଛୁରା—1 Attacked with scabs; scabby (Apte)
୨ । ଅଧମ—2. Vile; mean.
୩ । ନୀଚ; ଇତର—Low, base; vulgar.
୪ । ଦ୍ୱେଷ୍ୟ—4. Despised; despicable
୫ । ପାପିଷ୍ଠ—5. Sinful
୬ । ନିର୍ବୋଧ; ମୂର୍ଖ—6. Stupid; foolish, silly.
୭ । ଖଳ; ଦୁଷ୍ଟ—7. Wicked; rogue.
୮ । ନିରାଶ୍ରୟ; ବେସାହାରା—8. Poor; helpless (Apte).
୧ । ଦୁଷ୍ଟ ବା ନୀଚ ବ୍ୟକ୍ତି—
1. A wicked or low man (Apte).
୨ । ନିର୍ବୋଧ ବ୍ୟକ୍ତି—2. A fool; idiot (Apte)
୩ । ଘୃଣ୍ୟ କର୍ମକାରୀ ନୀଚ ଜାତୀୟ ବ୍ୟକ୍ତି—3. A person of lowest extraction engaged in the most degrading occupation.

ବାଇଆ ବାଉଳେ ହୋଇ ମରନ୍ତି ପାମରେ । ଜଗନ୍ନାଥ. ମହାଯାତ୍ରା ।

ପାମର ଯୋଗ—ସ. ବି.—ଏକପ୍ରକାର ନିକୃଷ୍ଟ ଯୋଗସାଧନ, ଯଦ୍ଦ୍ୱାରା
Pāmara joga ନଟ ଓ ବାଜୀଗରମାନେ ଅଦ୍ଭୁତ ଖେଳ ଦେଖାନ୍ତି.
A kind of Joga exercise with the help of which people exhibit wonderful feats.

[ ଦ୍ର—ଏଥିର ସାଧନଦ୍ୱାରା ଅନେକ ରୋଗର ନାଶ ହୁଏ ଓ ଅଦ୍ଭୁତ ଶକ୍ତି ପ୍ରାପ୍ତି ହୁଏ । କେହି କେହି ଏହାକୁ ପାଶ୍ଚାତ୍ୟ ମିସ୍‌ମେରିଜ୍ମ (mesmerism) ମଧ୍ୟରେ ଗଣନା କରନ୍ତି । (ହି. ଶ.) ]

ପାମରା—ଦେ. ବି. (ସ. ପାପ ମରଣ)—ମୃତ୍ୟୁର ସମ୍ପୂର୍ଣ୍ଣ ଲକ୍ଷଣ ପ୍ରକାଶିତ
Pāmara ହେବା ପରେ ପୁନର୍ବାର ଜୀଇଁ ଉଠିବା—The survival of a person who shows signs of death and is taken by the people to be dead.

ପାମରା ଯିବା—ଦେ. କ୍ରି.—(ସ. ପରି+ମା ଧାତୁ)—କୌଣସି ପରିମାପକ
Pāmarā jibā ଦ୍ୱାରା ମାପ କରାଯିବା—To be measured.

**ପାମା**—ସଂ. ବ.—(ପେ ଧାତୁ=ଶୁଷ୍କ ହେବା+କର୍ତ୍ତୃ. ମନ୍)—
Pāmā ୧ । କାଛୁ—1. Itches.
୨ । ଶୁଖିଲ କୁଣ୍ଡିଆ—2. Scabies; eruption.
୩ । ବଇଷ୍ଟ—3. Eczema
୪ । ଶୁଖ୍ଲ ଯାବୁ—4. Dry ringworm.
୫ । ଯେଉଁ ରୋଗ ହେତୁରୁ ମୁଣ୍ଡରେ ଚନ୍ଦା ରୋଗ ହୁଏ—
5. Disease accompanyined by baldness ( Howells )

**ପାମାରି**—ସଂ ବ. (ପାମା+ଅରି=ଶତ୍ରୁ)—ଗନ୍ଧକ—
Pāmāri Sulpher

**ପାମିର୍ ପଏଣ୍ଟ୍**—ବୈଦେ.ବ. (ନାମ) ଇଂ.ପାମିର୍=ହେନ୍ତାଳ+ପଏଣ୍ଟ୍=
Pāmirā paent =ନାସୀ)—ମହାନଦୀ ବଙ୍ଗୋପସାଗରରେ ପଡ଼ିଥିବା ମୁହାଣରେ ଥିବା ଭୂଭାଗର ପୂର୍ବ ଭାଗ ଅଗ୍ର—
(ପାମିର୍ ଅନ୍ତରୀପ—ଅନ୍ୟନାମ) Palmyra point; the cape formed near the mouth of the Mahānadi in the Bay of Bengal.

[ଦ୍ର—ଏଠାରେ ହେନ୍ତାଳ ବା ପାମିର୍ (Palmyra) ଗଛ ବହୁତ ଥିବାରୁ ଏଠାକୁ ଅଷ୍ଟାଦଶ ଶତାବ୍ଦିରେ ଆସିଥିବା ଇଂରାଜ ପୋତର ନାବିକମାନେ ପ୍ରଥମେ ଏହାକୁ ଏହି ନାମରେ ଡାକିଥିଲେ ଓ ସେହିଦିନଠାରୁ ଏହାର ଏହି ନାମ ଚଳିଅଛି)

**ପାମେଲ୍**—ଦେ. ଅ— ସଂ. ପାଦ+ମିଳନ) (ଯୁଦ୍ଧକ ସ୍ୱଧାଶ୍ୟାମଙ୍କ
Pāmel ପ୍ରବର୍ତ୍ତିତ ଡ୍ରିଲ୍ ସମ୍ବନ୍ଧୀୟ ଆଦେଶ ବଚନ)—ଗୋଡ଼କୁ ଏକ ସମୟରେ କ୍ରମାନ୍ୱୟରେ ଉଠାଅ ଓ ପକାଅ—
A term of drill; mark-time.

**ପାମୋଜ୍**—ଦେ. ବ—୧ । ଏକପ୍ରକାର ପାରା, ଯାହାଙ୍କ ଗୋଡ଼ର ପର
Pamoj ଆଙ୍ଗୁଠି ପର୍ଯ୍ୟନ୍ତ ମାଡ଼ି ଆସିଥାଏ—
पामोज; **पामोज** 1. A species of pigeon whose feathers cover their toes.
୨ । ଯେଉଁ ଦୁଷ୍ଟ ଘୋଡ଼ା ମୁହଁକୁ ବୁଲାଇ ଆରୋହୀର ପାଦକୁ କାମୁଡ଼େ—2. A vicious horse which bites at the feet of the rider.

**ପାମ୍ପଡ଼**—ଦେ. ବ—ପାପଡ଼ (ଦେଖ)—
Pāmparda Pāparda (See)

**ପାମ୍ପଢ଼ି**—ଦେ. ବ—ପାପଢ଼ି (ଦେଖ)—
Pāmpardi Pāpardi (See)

**ପାମ୍ପଢ଼ି ଶୋଇବା**—ଦେ. କି—ପାଆଁ ପଡ଼ିବା (ଦେଖ)
Pāmpardi soibā Pā-ānā-pardiba
ପାମ୍ପଢ଼ିବା }
ପାମ୍ପ ଢ଼ି ଶୋଇବା } ଅନ୍ୟରୂପ

**ପାୟ**—ସଂ. ବ—(ପା ଧାତୁ+ଅ; ଯ ଆଗମ) ଜଳ—Water (Apte).
Pāya

**ପାୟକ**—ସଂ. ବଣ. ପୁଂ. (ପା ଧାତୁ+କର୍ତ୍ତୃ. ଅକ)—ପାନକାରୀ—
Pāyaka (ପାୟିକା—ସ୍ତ୍ରୀ) Drinking (Apte)

**ପାୟଖାନା**—ବୈଦେ. ବ—ପାଇଖାନା (ଦେଖ)
Pāyakhānā Pāikhānā (See).

**ପାୟଚାରି**—ଦେ. ବ—(ସଂ. ପାଦଚାରଣ)—ପଦବ୍ରଜରେ ଭ୍ରମଣ—
Pāyachāri पायचारी **पैदल** Walking.

**ପାୟଜଙ୍ଗା(ଙ୍ଘା)**—ବୈଦେ ବ—( ଫା. ପାଜାମା )—ପେଣ୍ଟାଲୁନ,
Pāyajanga(ngha) ଗାଣ୍ଡିମୁଣା—Pantaloon, pant
पायजामा **पायजामा**
ପାୟିଜାମା, ପାୟିଜ ଙ୍ଗା(ଙ୍ଘା), ପାୟ ଜମା }
ପାୟଜାମା, ପାୟିଜମା } ଅନ୍ୟରୂପ

**ପାୟନ୍ଦାଜ୍**—ବୈଦେ. ବ—ଘରେ ସଫା ଫର୍ସ୍ ଆସନର ଧାରରେ ପଡ଼ିଥିବା
Pāyandāj ମୋଟ ଆସନ, ଯହିଁ ଉପରେ ଆଗନ୍ତୁକମାନେ ଗୋଡ଼ର
पाएन्दाज **पायन्दाज** ଧୂଳି ଆଦି ପୋଛି ଫର୍ସ୍ ଉପରକୁ ଯାଆନ୍ତି—
A coarse mat on which incomers rub off the dust of their feet before they go and sit upon the valuable sheet spread on the floor.

**ପାୟଦଲ୍**—ଦେ. ବଣ— ସଂ. ପାଦତଳ, ପ୍ରା. ପାୟତଲ)—ପଇଦଲ
Pāyadal (ଦେଖ)—Paidala (See)
पैदल **पायदल**

**ପାୟମାଲ୍**—ବୈଦେ. ବଣ (ଫା.)—୧ । ଗୋଡ଼ରେ ଚକଟା ହୋଇଥିବା
Pāyamāl 1. Trodden with the feet.
पायमाल **पायमाल** ୨ । ବିନଷ୍ଟ, ଧ୍ୱଂସ—
(ପାୟମାଲୀ—ବ) 2. Devastated; ruined.

**ପାୟସ**—ସଂ. ବ—(ପୟସ୍=ଦୁଧ+ବିକାରାର୍ଥେ. ଅ)—୧ । ପରମାନ୍ନ,
Pāyasa କ୍ଷୀର; ଦୁଗ୍ଧ ଓ ଶର୍କରା ପକ୍ୱ ଅନ୍ନ—1. Frumenty; gruel made of rice or wheat flour boiled with milk and sugar.
୨ । ସରଳ ନିର୍ଯ୍ୟାସ (ହି. ଶ.)—
2. The gum of the pine tree; turpentine.
୩ । (+ସ୍ୱାର୍ଥେ. ଅ) ଦୁଗ୍ଧ—3 Milk. (Apte)
୪ । ଅମୃତ—4. Nectar. (Apte)
ସଂ. ବଣ—(ପୟସ୍+ଅ)—ପୟଃ ସମ୍ବନ୍ଧୀୟ—
Relating to milk or water.

**ପାୟସିକ**—ସଂ. ବଣ ପୁଂ—(ପୟସ୍+ପ୍ରିୟାର୍ଥେ. ଇକ)—ଯେ ଆଉଟା
Pāyasika ଦୁଧ ଖାଇବାକୁ ସୁଖ ପାଏ—Fond of boiled
(ପାୟସିକା—ସ୍ତ୍ରୀ) milk. (Apte)

**ପାୟା**—ଦେ. ବ—(ସଂ. ପାଦ; ଫା ପାୟହ୍)—୧ । ପାଇଆ; ଖଟ ବା
Pāyā ଚଉକିର ଗୋଡ଼—1. The posts of a bedstead
पाया **पाया** or chair.
୨ । ସ୍ତମ୍ଭ, ଖୁଣ୍ଟ—2 Pillar; post.
୩ । ସମ୍ମାନ; ମର୍ଯ୍ୟାଦା—
3. Respectability; dignity.
୪ । ପଦବୀ; ପଦ—4. Position; rank; situation.
୫ । ସମ୍ମାନଯୁକ୍ତ ପଦବୀ—
5 A position of respectability.
୬ । ତୁଲ୍ୟତା; ସମତା—6. Equality.
୭ । ସିଢ଼ିର ପାହାଚ—7. The step of a stair.

ପାୟା ଯିବା—ଦେ. କ୍ରି.—(ସଂ. ପ୍ରାପ୍ତ, ପାଇବାର କର୍ମବାଚ୍ୟ)—ପ୍ରାପ୍ତ
Pāyā jibā ହେବା, ମିଳିବା—To be got; to be
ପାওয়া যাওয়া पाया जाना recovered.

ପାୟିକ—ସଂ ବି. (ପା ଧାତୁ=ରକ୍ଷା କରିବା+କର୍ତ୍ତୃ. ଇକ)—
Pāyika ୧ । ଶରୀର ରକ୍ଷକ ସୈନ୍ୟ—1. Body guard.
୨ । ଚଉକିଦାର—2. Guard; watchman.
୩ । ପାଇକ, ପାଏକ, ପଦାତିକ (ହି, ଶ)—
1. Foot soldier (Apte).
୪ । ପିଅଦା—4. Peon

ପାୟୀ—ସଂ. ବିଣ. ପୁଂ(ପା ଧାତୁ କର୍ତ୍ତୃ. ଇନ, ୧ମା ୧ବ)—ପାନକାରୀ—
Pāyi Drinking.
(ପାୟିନୀ—ସ୍ତ୍ରୀ) ଘରରୁ ଉଦକ ନେଇଁ ରୂପ ପାୟୀ
ତୃପ୍ତ ହେବ ଏହା ଅଟେ ମନ ଧ୍ୟାୟୀ ।
ରଘୁନାଥ. ଓଡ଼ିଆ ।

[ଦ୍ର—ଏହା ସମାସରେ ଅନ୍ୟ ଶବ୍ଦ ସହିତ ବ୍ୟବହୃତ ହୁଏ, ଯଥା—ସୁଧାପାୟୀ, ରୂପପାୟୀ, ଦୁଗ୍ଧପାୟୀ ।

ପାୟୁ—ସଂ. ବି. (ପା ଧାତୁ=ରକ୍ଷା କରିବା+କର୍ତ୍ତୃ. ଉ, ଯାହା ମଳ
Pāyu ନିଃସରଣ କରିବା ପୋଗୁଁ ପ୍ରାଣୀମାନଙ୍କୁ ରକ୍ଷା କରେ)—
ଗୁହ୍ୟଦ୍ୱାର, ମଳଦ୍ୱାର—Anus.

ପାଏ—ଦେ. ଅ. (ସଂ. ପାଦ)—୧ । ପାଏ, ଏକପା ମାତ୍ର—
Pāye 1. One Pua only.
একপোয়া ୨ । ଏକଚତୁର୍ଥାଂଶ—2. One fourth
एकपाव; पावभर ୩ । ପାଦରେ—3. At the feet.
পায়ে ଭଗ୍ନେ ନେତ୍ରେ ସୁରସ୍ଥେ
पाऊँमे ଶରଣ ଗଲେ କୃଷ୍ଣ ପାଏ । ଜଗନ୍ନାଥ. ଭାଗବତ ।

ପାଏଡ଼ା—ଦେ. ବି—ପାଏଡ଼ା (ଦେଖ)
Payerdā Pāerdā (See)
ବୃନ୍ଦେ ପାଏଡ଼ା ପାଡ଼ କର
ସ୍ୱାନ୍ତ ଚଳନ୍ତି ହେଲା ହର । ଯଶୋବନ୍ତ. ପ୍ରେମଭକ୍ତି ବ୍ରହ୍ମଗୀତା ।

ପାଏ ପଡ଼ିବା—ଦେ. କ୍ରି—ଗୋଡ଼ତଳେ ପଡ଼ିବା—
Pāye pardibā To fall at the feet of another, to
পায়েপড়া prostrate oneself before another.
पावपड़ना ଶୁଣି ନନ୍ଦ ସେ ବଡ଼ ହରଷ ପାଇ
ସନ୍ଧ କଥା ଶୁଣି ପାଏ ପଡ଼ି ଶୋଇ । ଗୁରୁଚରଣ. ଉଦ୍ଧବ ।

ପାଯ୍ୟ—ସଂ. ବିଣ. (ପା ଧାତୁ+କର୍ମ. ଯ)—୧ । ପାନକରିବା ଯୋଗ୍ୟ—
Pājya 1. Drinkable.
୨ । ନୀଚ; ହୀନ; ଘୃଣ୍ୟ—
2. Low; vile; contemptible (Apte).
ସଂ. ବି—୧ । ଜଳ—1. Water.
୨ । ପାନ କରିବା—2. Drinking (Apte).
୩ । ରକ୍ଷା—3 Protection (Apte).
୪ । ପରିମାଣ—4. A measure (Apte).
୫ । ବ୍ୟବସାୟ; ବୃତ୍ତି; ପେଶା—
5. Practice; profession (Apte).

ପାର୍ (ଧାତୁ)—ସଂ—୧ । କର୍ମ ସମାପ୍ତି କରିବା—
Pār (root) 1. To complete a work.
୨ । ପାରିବା—2. To be able

ପାରି—ଦେ. ଅ—୧ । ଉଲ୍ଲଂଘନ—1 Crossing.
Pār ୨ । ଗୁ, ଚଳାଯିବ—2. Gone.
୩ । ବିପଦରୁ ଉଦ୍ଧାର ପାଇଥିବା—
3. Saved from danger.

ପାରି ଉତାର(ତ୍ତାର)—ଦେ. ବି (ସଂ ପାର ଓ ଉତ୍ତରଣ)—୧ । ଲୋକମାନେ
Pār utā(ttā)r ନଦୀଆଦିକୁ ନୌକାଦ୍ୱାରା ପାରି ହୋଇ ଅରକୂଳରେ
পারউতার ନୌକାରୁ ଉତୁରି ଯିବା—1. Crossing a
पारउतार river and setting foot on the other side.
ପାରଉତାର } ଅନ୍ୟରୂପ
ପାରଉତ୍ତାର }
୨ । କୌଣସି ବିପଦରୁ ପରିତ୍ରାଣ—
2. Deliverance from a danger.
ମହାମହିମାଙ୍କ ଆଜ୍ଞା ପାରି ହେଉବୁଁ । ବାଚୀ, ବ୍ରହ୍ମନିରୂପଣଗୀତା ।
୨ । ଲୋକଙ୍କୁ ନୌକାଦ୍ୱାରା ନଦୀଆଦି ପାରି କରାଇବା କର୍ମ—
2. Act of ferrying people across.

ପାର—ସଂ. ବି. (ପର+ଅ, କିମ୍ବା ପାର୍ ଧାତୁ=କର୍ମ ସମାପ୍ତ ହେବା+
Pāra ଭାବ. ଅ, କିମ୍ବା ପୃ ଧାତୁ=ନଦ୍ୟାଦି ପାରି କରିବା+
କର୍ତ୍ତୃ. ଅ)—୧ । ଜଳାଶୟ ବା ନଦୀର ଅନ୍ୟ ତୀର;
ପାରି—1. Opposite or further bank; the other side or shore of a river or water.
ଉତୁଣି ତରଣୀ ହୋଇ ଲଗାଅ ତୁ ପାରେ । କବିସୂର୍ଯ୍ୟ, ସଙ୍ଗୀତ ।
୨ । ଉଦ୍ଧାର; ଉତ୍ତରଣ—2 Deliverance.
୩ । ମୁକ୍ତି, ମୋକ୍ଷ—3. Salvation.
୪ । (ପୃ ଧାତୁ=ପୂରଣ କରିବା+ଭାବ. ଅ)—
କୌଣସି ବିଷୟର ସୀମା ବା ଶେଷପ୍ରାନ୍ତ—
4. The end or limit of anything; goal; extremity.
ଜଳଜାତ ସୁନ୍ଦରୀ ଶ୍ରୀକୃଷ୍ଣ ଜଳପାରେ
ରସିକ ରସ ଦ୍ୱାରା ରସବୃନ୍ଦାବନ ପାରେ । କବିସୂର୍ଯ୍ୟ, ସଙ୍ଗୀତ ।
୫ । ପୂର୍ଣ୍ଣତା—5. Fullness
୬ । ପାରଦ, ପାରା ଧାତୁ—6. Mercury (metal).
୭ । କାଜକୃତ ସଙ୍କଳ୍ପ ବା ପ୍ରତିଜ୍ଞାର ପୂର୍ଣ୍ଣତା ବା ସଫଳତା—
7. Fulfilment or fruition of one's promise or vow.
ପ୍ରତିଜ୍ଞାର ପାରକୁ ପାଇବ ଅର୍ଜୁନ
କହନ୍ତ ଜୟଦ୍ରଥ ଗଳାର ନିଧନ । କୃଷ୍ଣସିଂହ, ମହାଭାରତ ଦ୍ରୋଣ ।
ଦେ. ବି—୧ । ନଦୀଆଦିର ଉଲ୍ଲଂଘନ—
1 Crossing of a river.
୨ । ନିରାପଦରେ ବିପଦଆଦିକୁ ଡେଇଁଯିବା—
2. Going through a danger safely.
୩ । (ସଂ. ପରିପାକ)—ଖାଦ୍ୟଦ୍ରବ୍ୟର ପରିପାକ—
3. Digestion of food.

୪ । ସ୍ୱକୃତ ପାପ, ଅପରାଧଆଦିର ବିଷମୟ ଫଳ ଭୋଗରୁ ମୁକ୍ତି— 4 Exemption from suffering the punishment for a sin or guilt.

୫ । (ସ୍ତ୍ରୀ) ପାର୍ବତୀ ନାମକ ସ୍ତ୍ରୀକୁ ଡାକିବାର ନାମ— 5. Name by which a woman named Pārbatī is called.

ଦେ. ବିଣ—୧ । ଯେ ନଦୀଆଦି ପାର ହୋଇଥାଏ— 1. Having crossed a river.

୨ । ଜୀର୍ଣ୍ଣ କରାଯାଇ ଥିବା (ଖାଦ୍ୟ)— 2. Digested (food).

**ପାର ଉତା(ତ୍ତା)ର କରିବା**—ଦେ. କ୍ରି. (ସଂ. ପାର+ଉତ୍ତରଣ)— Pāra utā(ttā)ra karibā ୧ । ଲୋକମାନଙ୍କୁ ନଦୀଆଦି ପାର କରାଇ ଅପର କୂଳରେ ପହଞ୍ଚାଇବା—1. To পারউতারকরা করাই পারউতারনা take people across a river safely; to ferry a person across.

୨ । ଉଦ୍ଧାର କରିବା, ପରିତ୍ରାଣ କରିବା— 2. To deliver.

**ପାରଉତ୍ତ(ତା)ର ପାଇବା**—ଦେ କ୍ରି.—ଉଦ୍ଧାର ପାଇବା— Pāra uttā(tā)ra pāibā To come out of danger পার পাওয়া पार करना safely.

**ପାର ଉତ୍ତ(ତା)ର ହେବା**—ଦେ. କ୍ରି.—୧ । ନଦୀ ଅଦି ପାର ହେବା, Pāra uttā(tā)ra hebā ଉତ୍ତୀର୍ଣ୍ଣ ହେବା—1 To cross a river. পারউতার হওয়া पारउतरना

୨ । ବିପଦରୁ ଉତ୍ତୀର୍ଣ୍ଣ ହେବା— 2. To come out of a calamity safely.

**ପାରକ**—ସଂ. ବିଣ. ପୁଂ (ପୃ ଧାତୁ=ପୂର୍ଣ୍ଣ କରିବା+କର୍ତ୍ତୃ. ଅକ)— Pāraka ୧ । ଚତୁର—1. Clever.

(ପାରିକା—ସ୍ତ୍ରୀ) ୨ । ପାରଗ; ପାରଙ୍ଗମ; ନିପୁଣ, ଦକ୍ଷ; ପଟୁ— 2. Expert; skilful; able.

୩ । ଯାହା ଅପର ପାରକୁ ନିଏ—3. Ferrying across.

୪ । ପୂରକ—4. One who fills up; filling up.

୫ । ଯାହା ଅନ୍ୟପାରିକୁ ପାର ହେବାକୁ ସମର୍ଥ କରେ— 5. Enabling to cross.

୬ । ରକ୍ଷକ, ପାଳନକାରୀ, ପାଳକ— 6. Protecting

୭ । ଉଦ୍ଧାରକାରୀ—7. Saving; delivering.

୮ । ସନ୍ତୋଷଜନକ—8. Pleasing; satisfying (Apte).

ଦେ. ବି. (ସଂ. ପରୀକ୍ଷକ)—ଦେବ ମନ୍ଦିରର ସେବକବିଶେଷ— A class of temple servants.

(ପାରିକ—ଅନ୍ୟରୂପ) [ଦ୍ର—ଯେଉଁ ସେବକ ପ୍ରଥମେ ଆସି ମନ୍ଦିରର କବାଟର ଜଉମୁଦ ପରୀକ୍ଷା କଲା ପରେ କବାଟ ଫିଟେ ।]

ଗ୍ରା. ବି.—(ସଂ. ପାଳକ; ଉଚ୍ଚର ବ୍ୟବହୃତ 'ଳ' ସ୍ଥାନରେ 'ର' ହୋଇଅଛି)—୧ । ସୁଗୁଳ; ସୁସମୟ—2. The state of favourable weather for a bumper crop.

୨ । ସୁଯୋଗ—2. Good opportunity.

**ପାରକତା(ତ୍ୱ)**—ସଂ. ବି. (ପାରକ+ତା, ତ୍ୱ)—୧ । ପଟୁତା, ନିପୁଣତା— Pārakatā (twa) 1 Expertness.

୨ । ଯୋଗ୍ୟତା—2. Ability; competence.

**ପାର କରିବା**—ଦେ. କ୍ରି.—(ସଂ. ପାର)—୧ । ଏ ପାରିରୁ ସେ ପାରିକୁ Pāra karibā ଡଙ୍ଗା ଆଦି ଦ୍ୱାରା ନେବା—1. To take a পার করা पार करना person across (a river or water); to ferry a person across.

୨ । ନିରାପଦରେ ଗୁରୁପାକ ଖାଦ୍ୟକୁ ଜୀର୍ଣ୍ଣ କରିବା— 2. To digest a heavy or rich food easily

୩ । ଉଦ୍ଧାର କରିବା; ତାରିବା—3. To deliver

୪ । ବିପଦରୁ ରକ୍ଷା କରିବା— 4. To save from danger.

୫ । ଶେଷ କରିବା—5. To end.

କରିବ ଦ୍ରୌପଦୀ ଚିର ଦୁଃଖ ଅନ୍ତ ପାର । ରାଧାନାଥ- ଦେବୀସହାର ।

୬ । ଉପରେ ପଡ଼ିବା ବିପଦରୁ ନିରାପଦରେ ମୁକ୍ତି ଲଭିବା— 6. To escape from a danger unhert.

୭ । ନିଜ କୃତ ପାପ ବା ଅପରାଧର ବିଷମୟ ଫଳରୁ ନିଷ୍କୃତି ବା ଅବ୍ୟାହତି ଲାଭ କରିବା—7. To be exempt from suffering the evil consequence of one's sin or guilt.

**ପାରକା(ଖା)**—ଦେ. ବିଣ. (ସଂ. ପାରକ)—୧ । ଚତୁର, ସିଆଣା— Pārakā(khā) 1. Clever. সেয়ানা सेयाना ୨ । ଶଠ, ଧୂର୍ତ୍ତ—2 Cheating; sly; artful.

୩ । ଦୁଷ୍ଟ—3. Wicked.

୪ । ଶୀଘ୍ରଗାମୀ—4. Swift.

ବାପ ବଳ୍ପା, ପୁଅ ସଳଖା, ନାତି ତୋଳା ଭାରି ପାରକା । ଲୋକଗୀତ ।

**ପାରକା(ଖା) ପଣ**—ଦେ. ବି. (ସଂ. ପାରକ)—୧ । ଚତୁରତା— Pārakā(khā) paṇa 1. Cleverness.

ପାରକା ପଣିଆ } ଅନ୍ୟରୂପ
ପାରକା ପଣିଆଁ

୨ । ଶଠତା, ଧୂର୍ତ୍ତତା— 2. Slyness; artfulness.

**ପାରକ୍ୟ**—ସଂ. ବି. (ପର+କ+ହିତାର୍ଥେ. ଯ)—୧ । ପରୋପକାରିତା— Pārakya 1. Benifitting others.

୨ । ପରାୟତ୍ତତା, ପରାଧୀନତା—2. Subordination; the state of belonging to another.

୩ । (ପାରକ+ଭାବାର୍ଥେ. ଯ)—ପାରକତା, ସାମର୍ଥ୍ୟ— 3. Competence; ability.

୪ । ଶତ୍ରୁ—4. Enemy (Apte)

୫ । (ପରଲୋକରେ ମଙ୍ଗଳକର) ପୁଣ୍ୟକର୍ମ (ହ୍ରି. ଶ୍ର.)— 5. Pious or meritorious conduct (Apte).

ସଂ. ବିଣ.—୧ । ପରକୀୟ— 1. Belonging to another; alien.

୨ । ପର ସମ୍ବନ୍ଧୀୟ—2. Relating to another.

୩ । ଶତ୍ରୁ ସମ୍ବନ୍ଧୀୟ; ଶାତ୍ରବ— 3. Relating to the enemy; inimical.

୪ । ବିପକ୍ଷ—4. Hostile
୫ । ପରକାଳରେ ଉପକାରୀ—
5. Useful in the next world (Apte).

**ପାରଖୀ**—ଦେ. ବିଣ. ( ସଂ. ପରୀକ୍ଷକ )—
Pārakhi ଯେ ପରଖ କରେ, ପରୀକ୍ଷକ—
(ପାରିକ୍ଷୀ—ଅନ୍ୟରୂପ) Testing; examining.
**पारखी** ଦେ. ବି—ପରଖାଳୀ; ପରୀକ୍ଷା କରିବା ବ୍ୟକ୍ତି—
Examiner; tester.
ମାନବ ଚରିତ୍ର ଏ ମୂର୍ତ୍ତିକ କରୁ ଯୁଟଟ-ଥିବ ପାରଖୀ ।
ରାଧାନାଥ. ଯଯାତି ।

**ପାରଗ**—ସଂ. ବିଣ. ପୁଂ. (ପାର=ଅନ୍ୟ ତୀର + ଗମ ଧାତୁ+କର୍ତ୍ତୃ ଅ)—
Pāraga ୧ । କୃତକାର୍ଯ୍ୟ—1. Successful
(ପାରଗା—ସ୍ତ୍ରୀ) ୨ । ଯେ ନଦୀ ଆଦିକୁ ପାର ହୋଇଅଛି, ପାରଗାମୀ
2. One who has crossed
୩ । ନିପୁଣ, ସମର୍ଥ, ପଟୁ—
3. Competent; skilful.
୪ । ଯୋଗ୍ୟ—4. Capable, able.
୫ । ଯେ କୌଣସି ବିଷୟର ଶେଷ ସୀମାକୁ ଯାଇଥାଏ—
5 Having gone to the utmost limit; accomplished.
୬ । କୌଣସି ବିଷୟରେ ଉତ୍ତମ ରୂପେ ପଣ୍ଡିତ—
6. One who has thoroughly mastered anything. thoroughly versed in or conversant with.
୭ । ଯେ ଅନ୍ୟ ଲୋକଙ୍କୁ ନଦ୍ୟାଦିର ଅପର ପାରକୁ ନିଏ—
7. Ferrying across.
୮ । ଅତି ବିଦ୍ୱାନ—8. Very learned (Apte).

**ପାରଗତ**—ସଂ. ବିଣ. ପୁଂ (୭ମୀ ତତ୍, ପାର+ଗତ )—
Pāragata ୧ । ନଦୀକୁ ପାର ହୋଇଥିବା; ଉତ୍ତୀର୍ଣ୍ଣ—
(ପାରଗାମୀ—ଅନ୍ୟରୂପ) 1. Having crossed a river,
ପାରଗତା } ସ୍ତ୍ରୀ
ପାରଗାମିନୀ }
୨ । ପାରଗ ( ଦେଖ )
2. Pāraga ( See )
୩ । ପବିତ୍ର—3. Pure; sacred.
ସଂ. ବି—ଜିନ—A Jaina saint.
ଦେ. ବିଣ—ତାଲିମ ହୋଇଥିବା—Trained.

**ପାରଗତ କରିବା**—ଗ୍ରା. କ୍ରି—ତାଲିମ କରିବା—
Pāragata kariba To train.

**ପାରଗ୍ରାମିକ**—ସଂ. ବିଣ. ( ପର ଗ୍ରାମ+ସମ୍ବନ୍ଧାର୍ଥେ ଇକ )—
Pāragrāmika ୧ । ପରର ଗ୍ରାମ ସମ୍ବନ୍ଧୀୟ—
1. Relating to another man's village.
୨ । ବୈରକାରୀ, ବୈର ଭାବାପନ୍ନ, ବିପକ୍ଷ—2. Inimical.

**ପାରଙ୍ଗ**—ସଂ. ବିଣ. ( ପାରଂ+ଗମ୍ ଧାତୁ+କର୍ତ୍ତୃ. ଅ )—
Pāranga ପଟୁ, ନିପୁଣ—Competent; able.
ଦାକ୍ଷିଣାତ୍ୟେ ଶଶ୍ରା ଫଳକ ଧରିଥାନ୍ତି
ସ୍ୱେ ବିଦ୍ୟାରେ ପାରଙ୍ଗ ସେମାନେ ବୋଲନ୍ତି । କୃଷ୍ଣଙ୍କ ମହାଭାରତ ଶାନ୍ତି

**ପାରଙ୍ଗତ**—ସଂ. ବିଣ. ପୁଂ. ( ପାରଂ+ଗତ )—ପାରଗତ ( ଦେଖ )
Pārangata (ପାରଙ୍ଗତା—ସ୍ତ୍ରୀ) Pāragata ( See )

**ପାରଙ୍ଗମ**—ସଂ. ବିଣ. ପୁଂ. ( ପାରଂ=ଅନ୍ୟ ପାରକୁ+ଗମ ଧାତୁ+
Pārangama କର୍ତ୍ତୃ. ଅ, ଅନ୍ୟ ରୂପ ପାରଗ, ଭୁଜ, ବିହଙ୍ଗମ,
(ପାରଙ୍ଗମା—ସ୍ତ୍ରୀ) ଭୁଜଙ୍ଗମ )—ପାରଗ ( ଦେଖ )
Pāraga ( See )

**ପାରଚ୍**—ଦେଦେ. ବି. ( ଫା. ପାର୍ଚ୍ )—ପାର୍ଚ୍ ( ଦେଖ )
Pāracha Pārcha ( See )

**ପାରଜ**—ସଂ. ବି—ସ୍ୱର୍ଣ୍ଣ, ସୁନା—
Pāraja Gold (Apte).

**ପାରଜାୟିକ**—ସଂ. ବିଣ. ପୁଂ. ( ପରଜାୟା+ଇକ )—
Pārajāyika ୧ । ପରସ୍ତ୍ରୀ ସମ୍ବନ୍ଧୀୟ—
1. Relating to another's wife.
୨ । ପରସ୍ତ୍ରୀଗାମୀ—2. Adulterous.

**ପାରଡ଼ା** (ଇତ୍ୟାଦି)—ଦେ. ବି ଓ ବିଣ—ପାଡ଼ରା ଇତ୍ୟାଦି ( ଦେଖ )
Pārarda (etc) Pārdarā etc. ( See )

**ପାରଣ(ଣା)**—ସଂ. ବି ( ପୃ ଧାତୁ+ଭାବେ. ଅନ; ପକ୍ଷେ+ଆ )—
Pāranā ୧ । ବ୍ରତ ବା ଉପବାସ ପରେ ପ୍ରଥମ ଭୋଜନ, ଭୋଜନ
(ପାରଣୀୟ—ବିଣ) ଦ୍ୱାରା ଉପବାସର ଉଦ୍ୟାପନ; ପାଳନା—
1. Breaking of a religious fast; the first meal after a fast, a breaking fast.
[ ଦ୍ର—ରୋହିଣୀ ବ୍ରତ ଭିନ୍ନ ଅନ୍ୟ ସମସ୍ତ ବ୍ରତରେ ଦିବାଭାଗରେ ପାରଣା କର୍ତ୍ତବ୍ୟ । ]
ବିଷ୍ଣୁତ ଭୁମୁର ଶୂଳ ରିପୁ ରକ୍ତ ସ୍ୱାର୍ଥେ ବହୁ ଦିନ ବଧ ତାଙ୍କ ଶୋଣିତ ପାରଣା ।
ରାଧାନାଥ, ମହାଯାତ୍ରା ।
୨ । ବ୍ରତର ସମାପ୍ତି—
2. Formal conclusion of a fast.
୩ । ( ପୃ ଧାତୁ=ପୂର୍ଣ୍ଣ ହେବା+ଣିଚ୍=ପାର ଧାତୁ=ପୂର୍ଣ୍ଣ କରିବା+ଭାବ. ଅନ+ଆ )—ତୃପ୍ତି—
3. Satiety; satisfaction.
୪ । (+କର୍ତ୍ତୃ. ଅନ) ମେଘ—4. Cloud.
୫ । କାର୍ଯ୍ୟ ସମାପନ—5. Accomplishment (Apte).
୬ । ସମାପ୍ତି (ହ୍ରି. ଶ.)—6. Completion.
୭ । ସମଗ୍ର ଲେଖାର ପଠନ—
7. Reading through; perusal (Apte).
୮ । ଭୋଜନ—8. Eating (Apte).

**ପାରଣା**—ସଂ. ବି.—ପାରଣ (ଦେଖ)—
Pāranā Pārana ( See )

**ପାରତ୍ ପକ୍ଷରେ**—ଦେ. ଅ. ( ବଙ୍ଗଳାରୁ ଅନୁକୃତ )—
Pārat pakshare କେତାନ୍ତ ପକ୍ଷରେ, ଯଥାସମ୍ଭବ; ଯେବେ ସମର୍ଥ
पारत पक्षे ହୁଅ ହେବେ—At least, if possible.
**जब हो सके** ( ପାରତ ପକ୍ଷେ, ପାରତ ପକ୍ଷରେ—ଅନ୍ୟରୂପ )
(ଯଥା—ମହାତ୍ମା ଗାନ୍ଧିଙ୍କ ହୁକୁମ ଯେ, ପ୍ରତ୍ୟେକ ଲୋକ ପାରତ୍ ପକ୍ଷରେ ମାସକୁ ୨୦୦୦ ଗଜ ସୂତା କାଟିବେ । )

**ପାରତ**—ସଂ. ବି. ( ନାମ )—ଏକ ପ୍ରାଚୀନ ଦେଶ ଓ ତହିଁର ଅଧିବାସୀ ମ୍ଲେଚ୍ଛ ଜାତିର ନାମ ( ହି. ଶବ୍ଦସାଗର )—
Pārata
Parthia; name of an ancient country and its mlechha people.
[ ଦ୍ର—ଏହା କାସ୍ପିୟାନ୍ ହ୍ରଦର ଦକ୍ଷିଣସ୍ଥିତ ପାହାଡ଼ର ଅପର ପାର୍ଶ୍ୱରେ ଥିବା ପାରସ୍ୟଦେଶର ଗୋଟିଏ ପ୍ରଦେଶ । ପାରସ୍ୟଦେଶ ବହୁକାଳଯାଏ ଏଠା ଅଧିବାସୀମାନଙ୍କ ଅଧୀନ ଥିଲା । ମନୁସଂହିତା, ମହାଭାରତ ଓ ବୃହତ୍‌ସଂହିତାରେ ଏ ଦେଶର ଓ ଏ ଜାତିର ଉଲ୍ଲେଖ ଅଛି । ପ୍ରାଚୀନ ଶିଳାଲେଖରେ 'ପାର୍ଥିବ' ଶବ୍ଦର ଉଲ୍ଲେଖ ମିଳେ । କେହି କେହି 'ପହ୍ଲବ' ଶବ୍ଦକୁ ପାର୍ଥିବର ଅପଭ୍ରଂଶ ବୋଲି କହନ୍ତି । କିନ୍ତୁ ସଂସ୍କୃତ ସାହିତ୍ୟରେ ପାରତ ବା ପାରଦ ଓ ପହ୍ଲବ ଦୁଇ ପୃଥକ୍ ଜାତି ଥିବାର ଉଲ୍ଲେଖ ଅଛି । ହି. ଶ. ]

**ପାରତନ୍ତ୍ରିକ**—ସଂ. ବିଣ—(ପରତନ୍ତ୍ର+ସମ୍ବନ୍ଧେ. ଇକ)—୧ । ପରାଧୀନ—
Pāratantrika 1 Dependent.
(ପାରତନ୍ତ୍ରିକା—ସ୍ତ୍ରୀ) ୨ । ପରତନ୍ତ୍ର—2. Subservient.
୩ । ଅନ୍ୟ ବ୍ୟକ୍ତିର ଧର୍ମ ଶାସ୍ତ୍ରରେ ଉପଦିଷ୍ଟ—3 Enjoined by the religious treatise of another. (Apte)

**ପାରତନ୍ତ୍ର୍ୟ**—ସଂ. ବି—(ପରତନ୍ତ୍ର+ଭାବେ. ଅ)—ପରାଧୀନତା—
Pāratantrya Subservience; subordination;
(ସ୍ୱାତନ୍ତ୍ର୍ୟ—ବିପରୀତ) dependence, subjection.

**ପାରତ୍ରିକ**—ସଂ. ବିଣ ( ପରତ୍ର+ସମ୍ବନ୍ଧାର୍ଥେ ଇକ )—୧ । ପରଲୋକ
Pāratrika ସମ୍ବନ୍ଧୀୟ—1. Relating to future existence;
(ଐହିକ—ବିପରୀତ) relating to the life after death, relating to the next world after death
୨ । ପରଲୋକରେ ଆବଶ୍ୟକ ବା ଉପକାରୀ—
2. Useful in the future existence.
୩ । ପରଲୋକରେ ଅର୍ଥାତ୍ ମୃତ୍ୟୁ ପରେ ଭୋଗ କରାଯିବା—
3. Enjoyble in the future life.

**ପାରଥ**—ଗ୍ରା. (ପଦ୍ୟ)—ବି. (ସଂ. ପାର୍ଥ)—ପାର୍ଥ (ଦେଖ)—
Pāratha **पारथ** Pārtha (See)

**ପାରଥିବ**—ଗ୍ରା. (ପଦ୍ୟ) ବିଣ—(ସଂ. ପାର୍ଥିବ)—ପାର୍ଥିବ (ଦେଖ)—
Pārathiba **पारथिव** Pārthiba (See).

**ପାରଥୁକ(କ୍ୟ)**—ଗ୍ରା. ବି—(ସଂ. ପାର୍ଥକ୍ୟ)—ପାର୍ଥକ୍ୟ—
Pārathuka(kya) Difference.

**ପାରଦ**—ସଂ. ବି— (ପାର=ପଣ୍ଡିତ+ଦା ଧାତୁ+କର୍ତ୍ତୃ. ଅ; ଯେ ଶରୀରକୁ
Pārada ପଣ୍ଡିତ ବା ପୁଷ୍ଟି ଦାନ କରେ)—୧ । ପାରା ଧାତୁ—
ସଂ. ରସରାଜ; ରସେନ୍ଦ୍ର; 1. Mercury, quicksilver.
ଅମୃତ; ହରବୀଜ [ ଦ୍ର—ଏଥିରୁ ନାନାପ୍ରକାର ଔଷଧ ପ୍ରସ୍ତୁତ ହୁଏ । ]
[illegible] ୨ । ପାରତ (ଦେଖ)—2 Pārata (See)
[illegible] ଧାତୁ+କର୍ତ୍ତୃ. ଅ [illegible]
[illegible]—ପାରକାରୀ; [illegible]
[illegible] Ferrying across; acting as a ferryman.

**ପାରଦ ଜାରଣ**—ସଂ. ବି—( ୬ଷ୍ଠୀ ତତ୍; ପାରଦ+ଜାରଣ )—
Pārada jārana (ବୈଦ୍ୟକ) ପାରାମାରିବା, ପାରାକୁ ଭସ୍ମ କରିବା—
(ପାରଦ ମାରଣ—ଅନ୍ୟରୂପ) Oxidisation of mercury.

**ପାର ଦଣ୍ଡକ**—ସଂ. ବି—(ପାର+ଦଣ୍ଡକା+ଅ)—ଦଣ୍ଡକାରଣ୍ୟର ଦକ୍ଷିଣ
Pāra dandaka ଦିଗସ୍ଥ ଭୂଭାଗ, ଗୋଦାବରୀର ଦକ୍ଷିଣସ୍ଥ ଦେଶ ବିଶେଷ—Country beyond the Dandaka forest.
[ଦ୍ର—ଏହା ପ୍ରାଚୀନ ଉତ୍କଳର ଅଂଶ ଥିଲା ।]

**ପାରଦ ଭସ୍ମ**—ସଂ. ବି—( ବୈଦ୍ୟକ )—ପାରା ଭସ୍ମ, ଆୟୁର୍ବେଦିକ ବା
Pārada bhasma ରାସାୟନିକ ପ୍ରକ୍ରିୟା ଦ୍ୱାରା କରାଯିବା ପାରଦର ପାଉଁଶ—Oxide of mercury.

**ପାର ଦରଶନ**—ଦେ. ବିଣ ( ପଦ୍ୟ )—ପାରଦର୍ଶୀ (ଦେଖ)—
Pāra daraśana Pāradarśī (See)

ସେ ଅନ୍ୟ ସିଦ୍ଧ ମୁନିଜନ
ବେଦାନ୍ତ ପାର ଦରଶନ—ଜଗନ୍ନାଥ ଭାଗବତ ।

**ପାରଦର୍ଶିକ**—ସଂ. ବିଣ—( ପାର+ଦୃଶ୍ ଧାତୁ ଣିଚ=ଦର୍ଶ ଧାତୁ+କର୍ତ୍ତୃ.
Pāradarśika ଅକ)—୧ । ଯାହା ବିପରୀତ ପାରକୁ ଦେଖାଏ—
(ପାରଦର୍ଶିକା(ସ୍ତ୍ରୀ) 1. Showing the opposite bank.
୨ । ସ୍ୱଚ୍ଛ, ଯାହା ଭିତର ଦେଇ ଦେଖାଯାଇ ପାରେ—
2. Transparent.

**ପାରଦର୍ଶିତା**—ସଂ. ବି—(ପାରଦର୍ଶିନ୍+ଭାବ. ତା)—୧ । ପଟୁତା—
Pāradarśitā 1. Proficiency; skill.
୨ । ଅଭିଜ୍ଞତା—2. Experiencee.
୩ । ଦୂରଦର୍ଶିତା—3 Foresight.

**ପାରଦର୍ଶୀ**—ସଂ. ବିଣ. ପୁଂ—(ପାର+ଦୃଶ୍ ଧାତୁ+କର୍ତ୍ତୃ. ଇନ୍, ପାର-
Pāradarśī ଦର୍ଶିନ୍, ୧ମା. ୧ବ)—୧ । ଦୂରଦର୍ଶୀ; ପରିଣାମଦର୍ଶୀ—
(ପାରଦର୍ଶିନୀ—ସ୍ତ୍ରୀ) 1. Having foresight; foresighted;
(ପାରଦୃଶ୍ୱା—ଅନ୍ୟରୂପ) foreseeing; prudent
୨ । ଅଭିଜ୍ଞ; ବହୁଦର୍ଶୀ—2. Experienced.
୩ । ସମର୍ଥ—3. Competent; capable.
୪ । ପାରଙ୍ଗମ, ପଟୁ—4. Skilful; expert; conversant with; well versed in; proficient in.
୫ । ଶାସ୍ତ୍ରରେ ବା କଳାରେ ସୁବିଜ୍ଞ—
5 Well versed in a science or art.
୬ । ଯେ କୌଣସି ବିଷୟର ଶେଷ ସୀମାକୁ ଦେଖିଥାଏ—
6 Having seen the end of a matter.

**ପାରଦାରିକ**—ସଂ. ବିଣ. ପୁଂ. (ପରଦାର+ଆସକ୍ତ ଅର୍ଥରେ. ଇକ)—
Pāradārika ପରସ୍ତ୍ରୀଗାମୀ; ପରସ୍ତ୍ରୀରତ—Adulterous.
ସଂ. ବି—ଲମ୍ପଟ ବ୍ୟକ୍ତି—Adulterer.

**ପାରଦାର୍ଯ୍ୟ**—ସଂ. ବି—(ପରଦାର+ଯ)—ପରଦାର ଗମନ—
Pāradārjya Adultery; intriguing with another man's wife.

**ପାରଦେଶ୍ୟ**—ସଂ. ବିଣ ପୁଂ—(ପରଦେଶ+ଯ)—୧ । ପ୍ରବାସୀ—
Pāradeśya 1 Sojourning.

(ପାରଦେଶିକ, ପାରଦେଶ୍ୟ —ଅନ୍ୟରୂପ) ୨ । ବିଦେଶୀ— 2 Foreign; outlandish
ପାରଦେଶ୍ୟା } ସ୍ତ୍ରୀ
ପାରଦେଶିକା
ସଂ. ବି —୧ । ପ୍ରବାସୀ ବ୍ୟକ୍ତି— 1. A sojourner.
୨ । ବିଦେଶୀ ବ୍ୟକ୍ତି —2. A foreigner.
୩ । ପଥିକ—3 A traveller. (Apte)

**ପାର ପାଇବା**—ଦେ. କ୍ରି—୧ । ପରିତ୍ରାଣ ପାଇବା; ଉଦ୍ଧାର ପାଇବା— 1 To be delivered.
Pāra pāibā
পাবপাওযা পারপাওয়া
୨ । ନିରାପଦରେ ଲଙ୍ଘନ କରିବା; ତରିବା— 2. To cross safely.
୩ । ବିପଦକୁ ଲଙ୍ଘିବା— 3. To overcome a calamity.

**ପାରବ**ଂ—ଗ୍ରା. ବି.—( ସଂ. ପାର୍ବଣ )—ପାର୍ବଣ ( ଦେଖ ) Pārbaṇa (see)
Pārabaṇa
ଗାଇଗଲେ ମଧୁ ଗୀତ ମଧୁ ପାରବଣେ ।—ନନ୍ଦକିଶୋର. ସୀତା ବନବାସ ।

**ପାରବତ**—ସଂ ବି.—ପାରାବତ (ଦେଖ) Pārābata (see) (Apte)
Pārabata

**ପାରବତିଆ**—ଗ୍ରା. ବିଣ. (ସଂ. ପାର୍ବତ୍ୟ)—ପାର୍ବତ୍ୟ (ଦେଖ) Pārbatya (see)
Pārabatiā

**ପାରବତୀ**—ଗ୍ରା (ପଦ୍ୟ) ବି. ସ୍ତ୍ରୀ. (ସଂ. ପାର୍ବତୀ)—୧ । ପାର୍ବତୀ— 1. Goddess Pārbatī
Pārabatī
ମହାଦେବ ମହର୍ଷିଗଣ ପାରବତୀ
ସେହି ମଧ ଭସ୍ମ ଯୋଗଲେ ନନ୍ଦୀ । କୃଷ୍ଣସିଂହ. ମହାଭାରତ. ବନ ।
୨ । ପାର୍ବତୀ ନାମ୍ନୀ ସ୍ତ୍ରୀର ଡାକ ନାମ— 2. Name for calling Pārbatī.
ଦେ. ବି—ପ୍ରଜାପତି—Butterfly

**ପାରବଶ୍ୟ**—ସଂ. ବି (ପରବଶ +ଭାବେ ଯ)—ପରବଶତା; ପରାଧୀନତା— Dependence; subservience.
Pārabaśya

**ପାରବାଟ**—ଦେ. ବି. (ସଂ ପାର ଓ ବାଟ)—୧ । ମୁକ୍ତି, ଉଦ୍ଧାର— 1. Deliverance.
Pārabāṭa
୨ । ମୁକ୍ତିର ଉପାୟ— 2. Scheme or steps for deliverance.

**ପାରବାଟ କରିବା**—ଦେ. କ୍ରି—ଉଦ୍ଧାର କରିବା—To deliver.
Pārabāṭa karibā

**ପାରମହଂସ୍ୟ**—ସଂ. ବିଣ (ପରମହଂସ+ସମ୍ବନ୍ଧାର୍ଥେ ଯ)—ପରମହଂସ ସମ୍ବନ୍ଧୀୟ —Relating to a Paramahamsa.
Pāramahaṁsya
ସଂ. ବି—ପରମହଂସଙ୍କ ଆଚରିତ କର୍ମ—Most sublime asceticism or meditation.

**ପାରମାଣବ**—ସଂ. ବିଣ.—(ପରମାଣୁ+ଅ)—ପରମାଣୁ ସମ୍ବନ୍ଧୀୟ— Molecular.
Pāramāṇaba

**ପାରମାଣବାକର୍ଷଣ**—ସଂ. ବି. ( ଆଧୁନିକ-ଜଡ଼ବିଜ୍ଞାନ ପରିଭାଷା ) ( ସଂ. ପରମାଣବ+ଆକର୍ଷଣ)
Pāramāṇabākarshaṇa
ଜଡ଼ ପଦାର୍ଥସ୍ଥ ପରମାଣୁମାନଙ୍କ ମଧ୍ୟରେ ପରସ୍ପର ଆକର୍ଷଣ—(Physics) Molecular attraction.

**ପାରମାର୍ଥିକ**—ସଂ. ବି. (ପରମାର୍ଥ+ସମ୍ବନ୍ଧାର୍ଥେ ଇକ)—୧ । ପରମାର୍ଥ ତତ୍ତ୍ୱ ସମ୍ବନ୍ଧୀୟ—1. Theological; relating to the highest truth.
Pāramārthika
୨ । ଧର୍ମ ସମ୍ବନ୍ଧୀୟ, ଆଧ୍ୟାତ୍ମିକ—2 Spiritual.
୩ । ଧାର୍ମିକ; ଧର୍ମାତ୍ମା—3. Religious, pious.
୪ । ପାରଲୌକିକ—4. Relating to future existence.
୫ । ପରମ ମଙ୍ଗଳଜନକ—5. Very beneficial.
୬ । ସତ୍ତ୍ୱବିଶିଷ୍ଟ, ସତ୍, ବାସ୍ତବ—6. Real; essential; existent (Apte).
୭ । ଉତ୍କୃଷ୍ଟ—7. Excellent; best (Apte).

**ପାରମିକ**—ସଂ. ବିଣ (ପରମ+ଇକ) ଶ୍ରେଷ୍ଠ, ପ୍ରଧାନ Chief; principal; supreme; best (Apte).
Pāramika
(ପାରମିକା – ସ୍ତ୍ରୀ)

**ପାରମିତ**—ସଂ. ବିଣ (ପାରଂ+ଇ ଧାତୁ=ଯିବା+କର୍ତ୍ତୃ. ତ)—
Pāramita ୧ । ଅନ୍ୟ ପାରକୁ ଯାଇଥିବା—1 Gone to the opposite bank (Apte).
୨ । ପାର ହୋଇଥିବା, ଯାହାକୁ କେହି ପାର ହୋଇଥାଏ— 2 Crossed; transversed (Apte).
୩ । ସର୍ବୋତ୍କୃଷ୍ଟ; ସର୍ବଶ୍ରେଷ୍ଠ—3. Transcendent.

**ପାରମେଷ୍ଠ୍ୟ**—ସଂ. ବି (ପରମେଷ୍ଠି+ଯ)—୧ । ସର୍ବୋଚ୍ଚତା, ଉତ୍କର୍ଷ— 1. Supremacy; highest position (Apte).
Pārameshṭhya
୨ । ଛତ୍ରଚାମରାଦି ରାଜଚିହ୍ନ—2. Royal insignia (Apte).

**ପାରମ୍ପରୀଣ**—ସଂ. ବିଣ (ପରମ୍ପରା+ଈନ)—୧ । ପରମ୍ପରାଗତ— 1. Traditional.
Pāramparīṇa
(ପାରମ୍ପରିକ—ଅନ୍ୟରୂପ) ୨ । କ୍ରମିକ—2. Successive.
୩ । ବଂଶଗତ—3. Hereditary.

**ପାରମ୍ପର୍ଯ୍ୟ**—ସଂ. ବି ( ପରମ୍ପରା+ଯ )—୧ । ଅନୁକ୍ରମ, କ୍ରମାନ୍ୱୟଯୁକ୍ତ ଧାରା, ପରମ୍ପରାକ୍ରମ—1. Succession; regular succession.
Pāramparjya
୨ । ପୁରୁଷାନୁକ୍ରମ, ବଂଶପରମ୍ପରା—2. Succession for generations; successive generations; hereditary succession.
୩ । ମୁହେଁ ମୁହେଁ ପୁରୁଷାନୁକ୍ରମେ ଚାଲି ଆସୁଥିବା କଥା— 3. Oral traditions handed down to posterity.
୪ । ମଧ୍ୟସ୍ଥତା—4 Intermediation (Apte).
ସଂ. ବିଣ—୧ । ପାରମ୍ପରିକ—1. Successive,
୨ । ପରମ୍ପରାଗତ; ପୁରୁଷାନୁକ୍ରମେ ଆଗତ— 2. Traditional; handed down from generation to generation.

**ପାରମ୍ପର୍ଯ୍ୟୋପଦେଶ**—ସଂ. ବି ( କର୍ମଧା )—ସେହିଁ ଶ୍ରୁତ ବାକ୍ୟ ପୁରୁଷାନୁକ୍ରମେ ଚାଲି ଆସୁଅଛି—
Pāramparjyopadeśa
Traditional instruction; tradition, regarded by the Paurāṇikas as a Pramāṇa or proof (Apte).

**ପାର ଯିବା**—ଦେ. କ୍ରି—୧ । ବିଷମୟ ଫଳରେ ପରିଣତ ନ ହେବା—
Pāra jibā 1. Not to result in any bad result; to agree with.
(ଯଥା—ବର୍ତ୍ତମାନ ଧନ ଓ ବୟସ ବଳରେ ଅମୁକ ଲୋକ ଯେଉଁ ପାପମାନ କରୁଛି ତାହା ତାକୁ କେବେ ପାର ଯିବ ନାହିଁ । )

পার হওয়া **पार होना** ୨ । ସହ୍ୟହେବା, ସହି ହୋଇଯିବା—
(ପାରହେବା–ଅନ୍ୟରୂପ) 2. To be borne; to be tolerated.
ବଶ କର ବଳୁ ଶିବ । ଏଷ ଜଳାଇଲୁ ଆଜ ଅର୍ଥେ ପାର ଯିବ ।
ଭକ୍ତ ବୈଦେହୀଶବିଳାସ ।

୩ । ଜୀର୍ଣ୍ଣ ହେବା—3 To be digested
(ଯଥା—ବେଙ୍ଗ ପେଟରେ କଣ ଘିଅ ପାର ଯିବ ? )

୪ । (ପାପ ଆଦି) କାହାଠାରେ ନ ଲାଗିବା, ଛାଡ଼ିବା—
4. (the sinfulness of an act.) Not to affect a person.
ମାଳତ ଧଧ କେଉଁ ଛାର
ବସ୍ତୁକୁ ନ ଲାଗେ ପାର—ଭୂପତି ପ୍ରେମପଞ୍ଚାମୃତ ।

୫ । ( ବିପଦ ଆଦି ) ଶେଷ ହେବା—
5. ( misery ) To end.
ତାହାର କଠିଣ ସ୍ନେହବନ୍ଧ ପାରଗଲା—ସାତୀ ନନ୍ଦନରତ ।

୬ । ମୁକ୍ତ ହେବା, ମୋକ୍ଷପ୍ରାପ୍ତ ହେବା—
6 To be delivered: to attain salvation.
ଧନ୍ୟ ଶ୍ରୀକ୍ଷେତ୍ର ଏସ୍ଥାନ
ବ୍ରହ୍ମା । ଶର୍ପୁ ଗଲା ପାର—ଜଗନ୍ନାଥ ଭଗବତ ।

**ପାରୟିଷ୍ଣୁ**—ସଂ. ବିଣ (ପାର ଧାତୁ+ଇଷ୍ଣୁ)—୧ । ମନୋହର—
Pārayishnu 1. Pleasing; gratifying (Apte).
୨ । କୌଣସି କାର୍ଯ୍ୟ ସମ୍ପନ୍ନ କରିବାକୁ ସମର୍ଥ—
2. Able to accomplish anything (Apte).
୩ । ପର ପାର ବା ଶେଷକୁ ଯିବା ବିଷୟରେ ସମର୍ଥ—
3. Able to go to the end of anything ( Apte ).

**ପାରଳା**—ଦେ. ବି—ପାରଳା ଖେମୁଣ୍ଡି (ଦେଖ)
Pāralā Pāralā khemundi (See)

**ପାରଳାଖେମୁଣ୍ଡି**—ଦେ. ବି—ଗଞ୍ଜାମର ଗୋଟିଏ ପ୍ରସିଦ୍ଧ ଓଡ଼ିଆ ରାଜ୍ୟ ଓ
Pāralākhemundi ତାହାର ରାଜଧାନୀ—Parlakemidi; name of big estate in Ganjam.
(ପାରଲାଖେମିଡ଼ି, ପାରଲାକିମିଣ୍ଡି (ଡ଼ି), ପାରଲାକିମୁଣ୍ଡି, ପାରଲାକିମୁଣ୍ଡି, ପାରଲାଖେମଣ୍ଡି, ପାରଲା ଖେମଣ୍ଡି, ପାରଲା ଖେମଣ୍ଡି, ପାରଲା ଖେମିଣ୍ଡି, ପାରଲା ଖେମୁଣ୍ଡି, ପାରଲା ଖେମୁଣ୍ଡି—ଅନ୍ୟରୂପ)

[ ଦ୍ର—ଖେମଣ୍ଡି ତଳେ ନୋଟ୍ ଦେଖ । ଏ ରାଜ୍ୟର ରାଜାମାନେ ଓଡ଼ିଶାର ପ୍ରାଚୀନ ଗଜପତି ରାଜବଂଶୀୟ । ଏମାନଙ୍କ ଉପାଧି ଗଜପତି ନାରାୟଣ ଦେବ । ଏ ବଂଶର ରାଜାମାନେ ପୁରୁଷାନୁକ୍ରମେ ସାହିତ୍ୟ, କାବ୍ୟ, ନାଟକ, ଅଳଙ୍କାର ଆଦି କଳାବିଦ୍ୟାମାନଙ୍କର ପୃଷ୍ଠପୋଷକ ରୂପେ ପ୍ରସିଦ୍ଧି ଲାଭ କରି ଆସୁଅଛନ୍ତି । ଏ ରାଜଧାନୀରେ ଗୋଟିଏ ସେକେଣ୍ଡ ଗ୍ରେଡ କଲେଜ ଅଛି । ଏହି ବଂଶର ସ୍ୱର୍ଗୀୟ ସେକେଣ୍ଡ ପ୍ରିନ୍ସ୍ ପଦ୍ମନାଭ ନାରାୟଣ ଦେବ (ଡାକନାମ ଚନ୍ଦ୍ର ମହୀରାଜା) ଜଣେ ବିଶିଷ୍ଟ ସାହିତ୍ୟାନୁରାଗୀ ମହାତ୍ମା ଥିଲେ । ଏହା ପ୍ରାଚୀନ ଉତ୍କଳର ଗୋଟିଏ ଅଂଶ ଥିଲା । ଏଥିର ରାଜା ଶ୍ରୀକୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ ଲଣ୍ଡନର ପ୍ରଥମ ରାଉଣ୍ଡଟେବଲ କନ୍‌ଫରେନ୍ସରେ ସମଗ୍ର ଉତ୍କଳ ଭାଷୀ ଅଞ୍ଚଳ ଏକ ଶାସନାଧୀନ ହେବା ପାଇଁ ଯେଉଁ ପ୍ରଚେଷ୍ଟା କରିଥିଲେ ତାହାର ଫଳରେ କେତେକ ଉତ୍କଳଭାଷୀ ଅଞ୍ଚଳ ମିଶି ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ସଙ୍ଗଠିତ ହେଲା । ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେବା ସମ୍ପର୍କରେ ରାଜା ଶ୍ରୀକୃଷ୍ଣଚନ୍ଦ୍ରଙ୍କର ପ୍ରଥମ ଓ ଦ୍ୱିତୀୟ ରାଉଣ୍ଡଟେବଲ୍ କନ୍‌ଫରେନ୍ସରେ ପ୍ରଗାଢ଼ ଚେଷ୍ଟା ଓ ତୃତୀୟ କନ୍‌ଫରେନ୍ସରେ ଖଲିକୋଟ ଆଠଗଡ଼ର ରାଜା ରାମଚନ୍ଦ୍ର ମର୍ଦ୍ଦରାଜଙ୍କ ଉଦ୍ୟମ ଓଡ଼ିଶାର ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ । ପାରଳା ଖେମୁଣ୍ଡିରେ କବି ଗୋପାଳକୃଷ୍ଣ ଜନ୍ମି ଥିଲେ । ଏହି ରାଜ୍ୟ ଗଞ୍ଜାମର ପ୍ରଥମ ଓଡ଼ିଆ ଗ୍ରାଜୁଏଟ୍ ସ୍ୱର୍ଗୀୟ ଶ୍ୟାମସୁନ୍ଦର ରାଜଗୁରୁଙ୍କ ଜନ୍ମସ୍ଥାନ । ]

**ପାରଲୌକିକ**—ସଂ ବିଣ (ପରଲୋକ+ଇକ)—୧ । ପରଲୋକ ସମ୍ବନ୍ଧୀୟ
Pāraulaukika 1. Relating to the existence after death.
(ପାରଲୌକିକୀ—ସ୍ତ୍ରୀଲିଙ୍ଗ)

**ପାରଶ**—ଦେ. ବି.—୧ । ( ସଂ. ସ୍ପର୍ଶମଣି ) ପରଶୁ ( ଦେଖ )
Pāraśa 1. Paraśu ( See )
পাশ ୨ । (ସଂ. ପାର୍ଶ୍ୱ)—ପାର୍ଶ୍ୱ; ପାଖ—2. Side.
**पास** ୩ । ଖାଇବା ବ୍ୟକ୍ତିର ପତର ପାଖରେ ଖାଦ୍ୟ ବଢ଼ାଯାଇ ଥିବା ଆଉ ଖଣ୍ଡେ ପତର, ଯାହାକି କୌଣସି ଅନୁପସ୍ଥିତ ବ୍ୟକ୍ତିଙ୍କ ପାଇଁ ଉଦ୍ଦିଷ୍ଟ ହୋଇଥାଏ—
1. A plantain leaf on which some food is served and which is put near the plate or leaf from wich a person takes his meal.

**ପାରଶବ**—ସଂ. ବିଣ. (ପରଶୁ+ଅ)—ପରଶୁ ସମ୍ବନ୍ଧୀୟ—
Pāraśaba Relating to or derived f
(ପାରଶବୀ—ସ୍ତ୍ରୀ ଲିଙ୍ଗ) Paraśu (axe) weapon.
ସଂ. ବି—୧ । ଲୌହ ନିର୍ମିତ ଅସ୍ତ୍ରବିଶେଷ, ଟାଙ୍ଗିଆ; କୁଠାର; ପରଶୁ—1. Battle axe.
୨ । ( ଯାହା ଦ୍ୱାରା ପରଶୁ ନିର୍ମିତ ହୁଏ )—ଲୌହ—
2. Iron.
୩ । ବ୍ରାହ୍ମଣ ଔରସରେ ଶୂଦ୍ରା ଗର୍ଭରୁ ଜାତ ସନ୍ତାନ; ନିଷାଦଜାତି-
3. A son born of a Brāhmaṇa father and Śūdra mother as a result of amorous connection (Apte).
୪ । ପର ସ୍ତ୍ରୀ ଗର୍ଭଜାତ ସନ୍ତାନ, ଜାରଜ—
4. A bastard, an adulterine.
୫ । ଏକ ପ୍ରାଚୀନ ଦେଶର ନାମ ( ଯହିଁରୁ ମୁକ୍ତା ମିଳୁଥିଲା ) ( ବୃ. ଶ. )—5 Name of an ancient pearl-producing country.

**ପାରଶୀ(ସୀ)**—ଦେ. ବି.(ସଂ ପାରସିକ)—୧ । ଏକ ପ୍ରକାର ଧର୍ମ—
Pārasi(si) 1. Name of a religious faith.
( ପାର୍ସୀ, ପାର୍ଶୀ—ଅନ୍ୟରୂପ ) পার্সী **पारसी**

[ ଦ୍ର—ଏ ଧର୍ମ ପାରସ୍ୟ ରାଜ୍ୟରେ ଜୋରୋଆଷ୍ଟର (Zoroaster) ବା ଜରଥୃଷ୍ଟଙ୍କ ଦ୍ୱାରା ଖ୍ରୀ. ପୂ. ୬ଷ୍ଠ ଶତାବ୍ଦୀରେ ପ୍ରବର୍ତ୍ତିତ ହୋଇଥିଲା । ବାକ୍ଟ୍ରିୟାର ରାଜା ବିସ୍ତାସ୍ପଙ୍କୁ ଜୋରୋଆଷ୍ଟର (ଫା ଜରଥୁସ୍ତ୍, ଜରତୁସ୍ତ୍ର) ଏ ନୂତନ ଧର୍ମରେ ଦୀକ୍ଷିତ କରିଥିଲେ । ଜୋରୋଆଷ୍ଟର୍ ୭୭ ବର୍ଷ ବୟସରେ ମୃତ ହେଲେ । ଆରବ-ମାନେ ୬୫୧ ଖ୍ରୀଷ୍ଟାବ୍ଦରେ ପାରସ୍ୟ ରାଜ୍ୟ ଧ୍ୱଂସ କରି ଏ ଧର୍ମାବଲମ୍ବୀମାନଙ୍କୁ ମୁସଲମାନ୍ ଧର୍ମରେ ଦୀକ୍ଷିତ କରିବାକୁ ଚେଷ୍ଟା କରିବାରୁ ଏମାନେ ଖୋରାସାନକୁ ପଳାଇ ଗଲେ ଓ ସେଠାରୁ ବୋମ୍ବାଇର ୯୦ ମାଇଲ ଉତ୍ତର ଗୁଜରାଟର ସଞ୍ଜନ ନାମକ ସ୍ଥାନରେ ୭୮୫ ଖ୍ରୀଷ୍ଟାବ୍ଦରେ ବସତି ସ୍ଥାପନ କଲେ । ଏମାନେ ସ୍ଥାନୀୟ ଭାଷା ଓ ରୀତି ନୀତି ଗ୍ରହଣ କରିବାକୁ ରାଜି ହେବାରୁ ଏଠାର ସ୍ଥାନୀୟ ହିନ୍ଦୁ ରାଜା ଏମାନଙ୍କୁ ବମ୍ବେର ନିକଟରେ ବାସ କରି ରହିବାକୁ ଅନୁମତି ଦେଲେ । ଏମାନେ ପାରସ୍ୟରୁ ଆସିଥିବାରୁ ଏମାନଙ୍କ ନାମ ପାରସୀ ହେଲା । ଭାରତରେ ଏମାନଙ୍କର ସଂଖ୍ୟା ପ୍ରାୟ ୧ଲକ୍ଷ ହେବ ଓ ଏମାନେ ବମ୍ବେ ପ୍ରଦେଶର ଅଧିବାସୀ । ଏମାନେହିଁ ଭାରତରେ ପ୍ରଥମେ ଇଂରାଜି ସଭ୍ୟତା ଓ ଶିକ୍ଷା ଗ୍ରହଣ କରିଥିଲେ । ଏମାନଙ୍କ ଧର୍ମ ଏକେଶ୍ୱରବାଦ; ମନ୍ଦ ଓ ଭଲ ମଧ୍ୟରେ ସର୍ବଦା ଯୁଦ୍ଧ ଲାଗିଛି, ଶେଷରେ ମନ୍ଦ ହାରିବ ଓ ଭଲ ଜିତିବ, ଭଲ ଓ ମନ୍ଦ ଏକ ଈଶ୍ୱର (ଅହୁର ମଜଦା)ଙ୍କ ସୃଷ୍ଟି । ଏମାନଙ୍କର ଧର୍ମ ଏହି କି—ପ୍ରତ୍ୟେକ ପାରସି 'ଆଶା' ପଥରେ ବିଚରଣ କରିବେ, ପ୍ରତ୍ୟେକ ବ୍ୟକ୍ତି ଉତ୍ତମ କାର୍ଯ୍ୟ ଓ ଉତ୍ତମ ଚିନ୍ତା କରିବେ ଓ ଉତ୍ତମ ବାକ୍ୟ କହିବେ । ବୈଦିକ ସ୍ତବ ଓ ଏମାନଙ୍କ ସ୍ତବ ମଧ୍ୟରେ ଐକ୍ୟ ଦେଖାଯାଏ । ହିନ୍ଦୁମାନଙ୍କ ପରି ଏମାନଙ୍କର ଉପନୟନ (ନଭ୍‌ଯୋତ୍) ସଂସ୍କାର ଅଛି । ପ୍ରତ୍ୟେକ ପାରସୀ ବାଳକ ଓ ବାଳିକା ଏ ସଂସ୍କାର ଲାଭ କରି ଖଣ୍ଡିଏ କୁର୍ତ୍ତି, ଖଣ୍ଡିଏ ମେଖଳା ଓ ଖଣ୍ଡିଏ ମଖମଲ ଟୋପି ପିନ୍ଧନ୍ତି । ପାରସୀମାନଙ୍କ ବିବାହ ବେଳେ ବିବାହ ମନ୍ତ୍ର ପହ୍ଲବୀ ଭାଷାରେ ଓ ସଂସ୍କୃତରେ ୭ଥର ଉଚ୍ଚାରିତ ହୁଏ ।

ପ୍ରାଣ ଛାଡ଼ିଗଲେ ଦେହ (ଶବ) ଅପବିତ୍ର ବୋଲି ଜ୍ଞାନ କରାଯାଏ । ମୃତ ଶବକୁ ଖରାରେ ପକାଇ ଦେବାର ବିଧି ଅଛି, ଏଥିପାଇଁ ମୌନ ଥିବା ଘର (Tower of Silence) ନିର୍ମିତ ହୋଇଥାଏ । ଏଥିରେ ପକା ଯିବା ଶବକୁ ଶାଗୁଣାମାନେ ଉପରୁ ଉଡ଼ି ଆସି ଖାଆନ୍ତି । ଏମାନେ ମୃତାହ ଶ୍ରାଦ୍ଧ ପାଳନ କରନ୍ତି । ମୃତ୍ୟୁର ଚତୁର୍ଥ ଦିନ ପ୍ରେତାତ୍ମାର ମୋକ୍ଷ କାମନାରେ ନାନାପ୍ରକାର ଉତ୍ସବ ହୁଏ । ଏମାନଙ୍କ ମତରେ ଅଗ୍ନି ବିଶୁଦ୍ଧ ପଦାର୍ଥ, ତେଣୁ ତହିଁରେ ଶବଦାହ କରିବା ଅନୁଚିତ ମନେ କରି ଏମାନେ ତହିଁରେ ଶବଦାହ କରନ୍ତି ନାହିଁ । ଏମାନଙ୍କର ଧର୍ମମନ୍ଦିରରେ ଅହର୍ନିଶ ଅଗ୍ନି ପ୍ରଜ୍ୱଳିତ ହେଉଥାଏ । ଏମାନେ ଅଗ୍ନି ଉପାସକ ।]

୨ । ବହୁ ପୁରୁଷ ପୂର୍ବେ ପାରସ୍ୟ ଦେଶରୁ ଆସି ଭାରତର ପଶ୍ଚିମ ଉପକୂଳରେ ଉପନିବେଶ ସ୍ଥାପନ କରି ଥିବା ଜାତିବିଶେଷ— 2. The Parsees; a fire-worshiping nation of western India who orginally migrated from Persia.

[ଦ୍ର—ଏମାନେ ସୂର୍ଯ୍ୟ ଓ ଅଗ୍ନିକୁ ପୂଜା କରନ୍ତି । ଏମାନଙ୍କର ଶାସ୍ତ୍ର ଜେଣ୍ଡାବେସ୍ତା; Zendavesta (ଜଂଦ୍ ଅବସ୍ତା) । ୧୯୨୧ ସାଲର ସେନ୍‌ସସ୍ ଅନୁସାରେ ସମସ୍ତ ପୃଥିବୀରେ ପାରଶୀମାନଙ୍କ ସଂଖ୍ୟା ୫ ଲକ୍ଷ ଅଟେ । ଏମାନଙ୍କ ଶାସ୍ତ୍ର ପାହ୍ଲବୀ ଭାଷାରେ ଲିଖିତ ।]

ପାବସୀ ୩ । ପାରସ୍ୟ ଦେଶୀୟ ବ୍ୟକ୍ତି—
**पारसी** 3. A Persian.

ସଂ. ବି —(ପାରଶ + ଈ)—ଫାରସୀ ଭାଷା—
The Persian language (Apte.)

ଦେ ବିଣ. — ପାରସ୍ୟ ଦେଶୀୟ—Persian.
(ଯଥା—ପାରଶୀ ଭାଷା ।)

**ପାରଶୀ(ସୀ)କ**—ସଂ ବି.—(ପାରଶ୍ୟ+ଇକ)—୧ । ପାରଶ୍ୟ ଦେଶବାସୀ ବ୍ୟକ୍ତି—1. A Persian (Apte).
Pārasi(si)ka
୨ । ପାରସ୍ୟ ଦେଶୀୟ ଅଶ୍ୱ—
2. A Persian horse (Apte).

ସଂ. ବିଣ.—ପାରସ୍ୟ ଦେଶୀୟ, ପାରସ୍ୟ ଦେଶୋଦ୍ଭବ—Persian.
(ପାରସିକ—ଅନ୍ୟରୂପ)

**ପାରଶୀ(ସୀ)କ ଫଳ**—ସଂ. ବି.—(ଅନ୍ୟ ସଂ. ନାମ ମ୍ଳେଚ୍ଛାମ୍ଳିକା)—ଆଲୁବୋଖାରା—Cherry plum
Pārasi(si)ka phala
आलुबोखवा **आलूबीखारा**
ମ. ଆଲୁବୁକ ଗୁ. ଆଲୁ ଫା. ଆଲୁସ୍ୟା ଆ ଇଜ୍ଜାମ୍

**ପାରଶୀ(ସୀ)କ ବଚ**—ସଂ. ବି—ଖୋରାସାନୀ ବଚ; ଶ୍ୱେତ ବଚ, ଘୋଡ଼ା ବଚ—A species of Orris root or sweet flag; Achorus Calumus.
Pārasi(si)ka bachā
ସଂ. ହୈମବତୀ, ଶ୍ୱେତ ବଚ୍,
ପାରସିକ ବଚ୍,
बालबच, खुबासानीवच
**खुरासानीवच, सफेदवच**
ମ. ବେଖଣ୍ଡ
[ ଦ୍ର—ଏହା ଗୋଟିଏ ଗୁଳ୍ମର ମୂଳ; ଏହା ଦେଖିବାକୁ ଧଳା ।]
ଗୁ. ଘୋଡ଼ା ବଜ, ତୈ. ବାସା, ବଡ଼ଜ, ନାଲ୍କରସ, ତା. ବସମ୍ବୁ; ଫା. ସୋସନଜର୍ଦ ଅଗର୍; ଆ. ଉଦଲ୍‌ବୁଜ୍ ।

**ପାରଶୀ(ସୀ)କ ଯମାନୀ**—ସଂ. ବି—ପାରସ୍ୟ ଦେଶୀୟ ଯୁଆଣୀ, ଖୋରାସାନୀ ଯୁଆଣୀ (ବୀଜ)—Henbane; seeds of Hysocyamus Niger.
Pārasi(si)ka jamāni
ସଂ. ନାମ—ଯବାନୀ, ଯାବନୀ, ତୀବ୍ରା, ତୁରୁଷ୍କା, ମଦକାରିଣୀ, ଦୀପ୍ୟା, ଶ୍ୟାମା, କୁବେର, ମାଦକ ଓ ମଦକାରକ ।
खोवासानी जोयान
**खुरासानी अजवायन**
[ ଦ୍ର—ବୈଦ୍ୟକ ମତରେ ଏହା କଟୁ, ରୁକ୍ଷ, ପାଚକ, ମଳ-ସଂଗ୍ରାହକ, ଉଷ୍ଣବୀର୍ଯ୍ୟ ମାଦକ, ଗୁରୁ, ବାତକର ଓ କଫନାଶକ ।]
ମ ଖୁରାସାନୀ ଓମ୍ବା, ଗୁ ଖୁରାସାନୀ ଅଜମା, ତେ. ଖୁରସାନ ବାମୁ, ତା. ଖୋରସଣୀ ଓ ନାମଶିଟ୍ଟାମୁଟ୍ଟି; ଫା. ବଜ୍‌ରୁଲ୍‌ବଞ୍ଜ୍ ବଜେ, ଆ. ବଜରୁଲ୍ ବଜ୍ ।

**ପାରଶୀ କୋଟ**—ଦେ. ବି—( ସଂ. ପାରଶୀକ ଓ ଇଂ. କୋଟ୍ )—ବେକ ପାଖରେ ବୋତାମ ଲାଗି ଜଙ୍ଘ ତଳକୁ ଲମ୍ବି ଥିବା ଏକପ୍ରକାର କୋଟ—Parsee coat.
Pārasi koṭa
पार्सीकोट
**पारसीकोट**

**ପାରଶ୍ୱ**—ଗ୍ରା. ବି. (ସଂ. ପାର୍ଶ୍ୱ)—୧ । ପାଖ— **Pāraśwa** 1 Side.

ସେ ଯାଗ ଅଗ୍ନି କୁମାଲଯଙ୍କ ଉଭର
ପାରଶ୍ୱରେ ପକାଇଦେଲେ ପୱଣର । କୃଷ୍ଣଙ୍କ ମହାଭାରତ ଆଦ ।

୨ । ପାରଶ ୩ ( ଦେଖ )—2. Pāraśa 3. ( See )

**ପାରଶ୍ୱଧ**—ସଂ. ବି. ପୁଂ ( ପରଶ୍ୱଧ=କୁଠାର+ପ୍ରହରଣାର୍ଥେ ଅ. ) **Pāraśwadha** ପରଶୁଧାରୀ; ପରଶୁ କୁଠାର ଦ୍ୱାରା ସଜ୍ଜିତ— (ପାରଶ୍ୱଧିକ—ଅନ୍ୟରୂପ) Armed with a battle axe; carrying a battle axe, halbertman.

**ପାରଶ୍ୟ(ସ୍ୟ)**—ସଂ. ବି—ଭାରତର ବନ୍ଧୁ ପଶ୍ଚିମ ଓ ଆଫଗାନ ସ୍ଥାନର **Pāraśya(sya)** ସନ୍ନିକଟ ପଶ୍ଚିମବର୍ତ୍ତୀ ଦେଶବିଶେଷ—Persia (country).

[ ଦ୍ର— ଏଥିର ରାଜାଙ୍କୁ 'ଶାହା' ବୋଲାଯାଏ । ଏଦେଶବାସୀମାନେ ଜାତିରେ ମୁସଲମାନ୍ । ପୂର୍ବେ ଏମାନେ ସୂର୍ଯ୍ୟ ଓ ଅଗ୍ନି ପୂଜା କରୁଥିଲେ ଓ ପରେ ମୁସଲମାନ୍ ଧର୍ମ ଗ୍ରହଣ କଲେ । ଏ ଦେଶର ଆଦିମ ଧର୍ମାବଲମ୍ବୀମାନେ ପାରସ୍ୟରୁ ଆସି ଭାରତର ପଶ୍ଚିମ ଉପକୂଳରେ ଉପନିବେଶ ସ୍ଥାପନ କରିଥିଲେ ଓ ଏହିମାନେ ବର୍ତ୍ତମାନ 'ପାର୍ଶୀ' ନାମରେ ଖ୍ୟାତ । ଅତି ପ୍ରାଚୀନ କାଳର ପାରସ୍ୟ ଦେଶବାସୀ ଓ ଭାରତବାସୀ ଆର୍ଯ୍ୟମାନେ ଆଦିମ ଆର୍ଯ୍ୟ ଜାତିର ଶାଖା ଥିଲେ ଓ ଦୁଇ ଦେଶବାସୀ ଆର୍ଯ୍ୟଙ୍କ ମଧ୍ୟରେ ଘନିଷ୍ଠ ସମ୍ବନ୍ଧ ଥିଲା ଓ ପାରସ୍ୟ ଠାରୁ ସରଯୂ ନଦୀ କୂଳ ପର୍ଯ୍ୟନ୍ତ ଭୂମିକୁ ଆର୍ଯ୍ୟଭୂମି ବୋଲା ଯାଉଥିଲା । ପାରସ୍ୟର ଅନ୍ୟ ନାମ 'ଇରାନ୍' । ଏହି ଶବ୍ଦ ଓ ଆର୍ଯ୍ୟ ଶବ୍ଦର ବ୍ୟୁତ୍ପତ୍ତି ଏକ । ପାରସ୍ୟର ପ୍ରାଚୀନ ସମ୍ରାଟ ଡେରାୟୁସ୍ ଆପଣା ନାମ ପୂର୍ବରେ 'ଆର୍ଯ୍ୟପୁତ୍ର' ଉପାଧି ବସାଇଥିଲେ । ପାରସ୍ୟର ପ୍ରାଚୀନ୍ ରାଜଧାନୀର ନାମ ପାରସ୍ୟପୁର ( ଗ୍ରୀକ୍ ପାର୍ସିପୋଲିସ୍ ) ଥିଲା । ବୈଦିକ ଯୁଗରେ ପାରଶ୍ୟ ନାମ ପ୍ରସିଦ୍ଧ ହୋଇ ନ ଥିଲା । ବେଦ ଓ ରାମାୟଣରେ ପାରଶ୍ୟ ଦେଶର ନାମୋଲ୍ଲେଖ ନାହିଁ, କିନ୍ତୁ ମହାଭାରତ, ରଘୁବଂଶ, କଥାସରିତ୍ସାଗର ଆଦି ସଂସ୍କୃତ ଗ୍ରନ୍ଥରେ ଏହିର ନାମ ମିଳେ । ଅତି ପ୍ରାଚୀନ କାଳରେ ପାରସ୍ୟର ଓ ଆର୍ଯ୍ୟାବର୍ତ୍ତର ଆର୍ଯ୍ୟମାନଙ୍କ ଉପାସନା ଓ କର୍ମକାଣ୍ଡ ଆଦିରେ ଭେଦ ନ ଥିଲା । ସେମାନେ ଅଗ୍ନି, ସୂର୍ଯ୍ୟ, ବାୟୁ ଆଦି ଦେବଙ୍କ ଉପାସନା ଓ ଅଗ୍ନି ହୋତ୍ର, ସୋମପାନ ଓ ଯଜ୍ଞାଦି କରୁଥିଲେ ଓ ସେମାନଙ୍କ ପୂଜିତ ଦେବତାମାନଙ୍କ ନାମ ବେଦୋକ୍ତ ଦେବତାମାନଙ୍କର ନାମର ବର୍ଣ୍ଣସାଦୃଶ୍ୟ ଥିଲା । ଏମାନଙ୍କର ଭାଷାର ମୂଳ ଆର୍ଯ୍ୟ ଭାଷା । ଏହି ଆର୍ଯ୍ୟଭାଷାରୁ ବୈଦିକ ଓ ଲୌକିକ ସଂସ୍କୃତର ଉତ୍ପତ୍ତି । ପ୍ରାଚୀନ ପାରସୀଙ୍କ ଓ ବୈଦିକ ଭାଷା ମଧ୍ୟରେ ପ୍ରଭେଦ ନ ଥିଲା ବୋଲି କହିଲେ ଚଳେ । ପାରସୀମାନଙ୍କ ଧର୍ମଶାସ୍ତ୍ର ଜେନ୍ଦାବସ୍ତାରେ ଭାରତର ନଦୀ ଓ ପ୍ରଦେଶମାନଙ୍କର ନାମ ଅଛି (ଯଥା ସପ୍ତସିନ୍ଧୁ ସ୍ଥାନରେ ହପ୍ତ-ହିନ୍ଦୁ; ସରସ୍ୱତୀ ସ୍ଥାନରେ ହରହ୍ୱେତୀ, ସରଯୂ ସ୍ଥାନରେ ହରୟୁ, ଯଜ୍ଞ ସ୍ଥାନରେ ୟସ୍ନ, ଇନ୍ଦ୍ର ସ୍ଥାନରେ ଇନ୍ଦ୍ର, ଅସୁର ସ୍ଥାନରେ ଅହୁର ) । ପାରସ୍ୟର ଋଷି ଜରଥୁସ୍ତ୍ର (Zoroaster) ଆର୍ଯ୍ୟମାନଙ୍କ ଧର୍ମରୁ ଏକ ଭିନ୍ନ ସମ୍ପ୍ରଦାୟ ସୃଷ୍ଟି କରି ଜନ୍ଦଅବସ୍ତା (Zendavesta) ଗ୍ରନ୍ଥ ପାରସୀମାନଙ୍କ ମଧ୍ୟରେ ପ୍ରଚାର କଲେ । ଜନ୍ଦଅବସ୍ତାରେ ବେଦ ପରି ଗାଥା (ଗାଥ) ଓ ମନ୍ତ୍ର (ମନ୍ଥ୍ର) ମାନ ଅଛି, କେତେକ ମନ୍ତ୍ର ବୈଦିକ ମନ୍ତ୍ର ସଙ୍ଗେ ମିଳୁଛି । ସମ୍ଭବତଃ ବେଦର ସଙ୍କଳୟିତା ବେଦ ବ୍ୟାସ ଓ ଜନ୍ଦଅବସ୍ତାର ସଙ୍କଳୟିତା ଜରଥୁସ୍ତ୍ର ସମକାଳୀନ ଥିଲେ—ହି. ଶ ]

ସଂ. ବିଣ—ପାରସ୍ୟ ଦେଶୀୟ—Persian

**ପାରଷଦ**—ଗ୍ରା. ବି ( ପଦ୍ୟ )—( ସଂ. ପାର୍ଷଦ )—ପାଷଦ ( ଦେଖ ) **Pārashada** Pārshada (See)

ବମାନ ମଧ୍ୟେ ନାରାୟଣ
ବେଷ୍ଟିତ ପାରଷଦ ଗଣ—ଜଗନ୍ନାଥ. ଭାଗବତ ।

**ପାରସ**—ଦେ. ବି—(ସଂ. ପାରଦ ରସ)—ପାରା ଧାତୁ— **Pārasa** Mercury (metal)

(ପାରସୀ—ସ୍ତ୍ରୀ) ସଂ. ବିଣ. ପୁଂ.—ପାରସ୍ୟ ଦେଶବାସୀ—Persian.

**ପାରସ୍ତ୍ରୀକ**—ସଂ. ବିଣ.—(ପରସ୍ତ୍ରୀ+ଇକ)—ପାରଜାୟିକ (ଦେଖ) **Pārastrika** Pārajāyika (See)

**ପାରସ୍ତ୍ରୈଣ**—ସଂ. ବିଣ. ପୁଂ (ପରସ୍ତ୍ରୀ+ନ)—ପାରଦାରିକ— **Pārastraiṇa** Adulterous.

**ପାରସ୍ତ୍ରୈଣେୟ**—ସଂ. ବି. ପୁଂ. ( ପରସ୍ତ୍ରୀ+ଅପତ୍ୟାର୍ଥେ. ଏୟ; ଇନ୍ ଆଗମ, କପାଗନ)—୧ । ପରସ୍ତ୍ରୀ ଜାତ **Pārastraiṇeya** (ପାରସ୍ତ୍ରୈଣେୟୀ—ସ୍ତ୍ରୀ –) ସନ୍ତାନ; ଜାରଜ ସନ୍ତାନ— 1 The offspring of adultery; bastard.

୨ । କ୍ଷେତ୍ରଜ ସନ୍ତାନ—2. Child begotton by a person on the wife of another.

**ପାରସ୍ପରିକ**—ସଂ. ବିଣ. (ପରସ୍ପର+ଇକ)—ପରସ୍ପର ସମ୍ବନ୍ଧୀୟ— **Pārasparika** Relating to each other.

**ପାରସ୍ୟକୁଳୀନ**—ସଂ. ବି. ପୁଂ. ( ପରସ୍ୟକୁଳ=ଅନ୍ୟର ବଂଶ+ଜାତାର୍ଥେ ଈନ, ଅନ୍ୟର ବଂଶରେ ଜାତ)—ପୋଷ୍ୟପୁତ୍ର **Pārasyakulīna** An adopted son (Apte.)

**ପାରହଂସ୍ୟ**—ସଂ. ବିଣ. (ପରମହଂସ+ଯ)—ପରମହଂସ ସମ୍ବନ୍ଧୀୟ— **Pārahaṁsya** Relating to an ascetic who has subdued all his senses (Apte).

**ପାର ହେବା**—ଦେ. କ୍ରି—୧ । ପାର ହେବା, ତରିବା, ନଦୀର ଏ ପାରରୁ ସେ ପାରକୁ ଯିବା—1. To cross a river. **Pāra hebā**

পার হওয়া ୨ । (ବିପଦରୁ) ଉତ୍ତୀର୍ଣ୍ଣ ହେବା—

पार होना 2. To escape unhurt (from danger).

୩ । (ବିବାହ ଯୋଗ୍ୟା କନ୍ୟା) ବିବାହିତା ହେବା — 3 (a marriageble girl) To be given in marriage.

୪ । ବିଷମୟ ଫଳରେ ପରଣତ ନ ହେବା— 4. No to result in any bad result

**ପାରା**—ଦେ. ବି. (ସଂ. ପାରାବତ)—୧ । କପୋତ ଜାତୀୟ ପକ୍ଷୀ; କବୁତର; ଗୃହ କପୋତ—1. Pigeon; Columba Intermedia. **Pārā** পায়রা परेवा

ସଂ. କଳରବ; ଅରୁଣଲୋଚନ [ଦ୍ର—ଏମାନେ କପୋତ ଶ୍ରେଣୀୟ । ତେ. ପାରୁବା ପିଟ୍ଟା ଅପାଳିତ ଅବସ୍ଥାରେ ଏମାନେ ଘରର (ପଦ୍ମ, ପାରେଇ, ପାରାବତୀ—ସ୍ତ୍ରୀ) ଗୃଳରେ ଦେଉଳର ଖୋଲରେ ଓ ପର୍ବତ ଖୋଲରେ ରହନ୍ତି । ଏମାନଙ୍କର ରଙ୍ଗ ମାଟିଆ ନେଳ ।

ଗୃହପାଳିତ ପାର୍‌ମାନେ ଧଳା, କଳା, ନାଲି ଆଦି ନାନା ରଙ୍ଗର ହୁଅନ୍ତି । ଏମାନଙ୍କର ଶବ୍ଦକୁ ଘୁମୁରିବା କହନ୍ତି । ଏମାନଙ୍କର ଧ୍ୱନି 'ବକ୍ ବକୂମ୍ କୂମ୍' । ଏମାନେ ବହୁ ଉଚ୍ଚରେ ଉଡ଼ି ପାରନ୍ତି ଓ ଉଡ଼ିବା ସମୟରେ ଲୋଟଣି ପାର୍‌ମାନେ ବାଜି ଭୁଗନ୍ତି । ଇଉରୋପ ଆଦି ଦେଶରେ ଏମାନଙ୍କ ଗୋଡ଼ରେ ଚିଠି ବାନ୍ଧି ଦେଇ ଉଡ଼ାଇ ଦେଲେ ଏମାନେ ଦୂର ଦେଶରେ ଅଭିପ୍ରେତ ସ୍ଥାନରେ ଯାଇ ପହଞ୍ଚିବା ଦ୍ୱାରା ଦୂରବାସୀମାନେ ସମ୍ବାଦ ପାଆନ୍ତି । ପାର୍‌ମାନଙ୍କର ଉଡ଼ିବା ଦେଖିବା ପାଇଁ ଲୋକେ ସଉକରେ ପାର୍ ପାଳନ୍ତି । ଏମାନଙ୍କର ଦୃଷ୍ଟିଶକ୍ତି ଅତି ପ୍ରଖର । ଏମାନେ ଉପରକୁ ୧।୨ ମାଇଲ ଉଚ୍ଚକୁ ଉଠି ମେଘରେ ଅଦୃଶ୍ୟ ହୋଇ ଯାଆନ୍ତି । ଭୂଇଁରେ ଖୋରାକ ବୁଣି ଦେଲେ ଏମାନେ ବହୁ ଉଚ୍ଚରୁ ତାହା ଦେଖି ଖୁମ୍ପି ପାରନ୍ତି । ଏମାନେ ଘୁମୁରିଲା ବେଳେ ବେକ ଫୁଲାନ୍ତି ।

ବିଭିନ୍ନ ଜାତୀୟ ପାର୍ । ଯଥା— ଦେଉଳଥା ପାର୍, ଲୋଟଣୀପାର୍, ପଡ଼ପାଓଁ ପାର୍, ରେସମୀ, ସୀରାଜୀ, ଲକ୍କା ପାର୍, ପାହାଡ଼ିଆ ପାର୍ ଇତ୍ୟାଦି ।]

୨ । (ସଂ. ପାରଦ)— ପାରଦ ଧାତୁ—

2. Mercury; quicksilver.

ସଂ. ନାମ—ପାରଦ, ରସରାଜ, ରସନାଥ, ମହାରସ, ରସ, ମହାତେଜସ୍, ରସଲୋହ, ରସୋତ୍ତମ, ସୂତରାଟ୍, ଚପଳ, ଜୈତ୍ର, ଶିବବୀଜ, ଶିବ, ଅମୃତ, ରସେନ୍ଦ୍ର, ଲୋକେଶ, ଦୁର୍ଦ୍ଧର, ପ୍ରଭୁ, ରୁଦ୍ରଜ, ହରତେଜଃ, ରସଧାତୁ, ସ୍କନ୍ଦ, ଦେବ, ଦିବ୍ୟରସ, ଯଶୋଦ, ସୂତକ, ସିଦ୍ଧ ଧାତୁ, ପାରତ, ହରବୀଜ

[ ଦ୍ର—ପାର୍ ବା ପାରଦ—ଦେଖିବାକୁ ଚଳ ଚଳ ଓ ଧଳା । ଏହା ଖଣିରୁ ବିଶୁଦ୍ଧ ଅବସ୍ଥାରେ ବା ଗନ୍ଧକ ସଙ୍ଗେ ମିଶ୍ରିତ ଅବସ୍ଥାରେ ହିଙ୍ଗୁଳ ରୂପରେ ମିଳେ । ଭାରତରେ କେବଳ ନେପାଳରେ ପାର୍‌ର ଖଣି ଅଛି । ଚୀନ, ଜାପାନ ଓ ସ୍ପେନ୍ ଦେଶରେ ପାର୍‌ର ଖଣି ଅଛି । ପାର୍ ତରଳ, କିନ୍ତୁ ଖୁବ ଭାରୀ । ପାର୍ ଥଣ୍ଡା ପାଇଲେ ଗାଢ଼ ହୁଏ । ଖଣିରେ ଥିବା ପାର୍‌ରେ ଗନ୍ଧକ, ସୁନା, ରୂପା ମିଶି ଥାଏ ଓ ବୈଜ୍ଞାନିକ ପ୍ରକ୍ରିୟାରେ ପାର୍‌କୁ ଉକ୍ତ ଧାତୁମାନଙ୍କଠାରୁ ପୃଥକ୍ କରାଯାଏ । ପାର୍ ଦ୍ୱାରା ଅନେକ ଦରକାରୀ କାର୍ଯ୍ୟ ହୁଏ । ପାର୍ ସଙ୍ଗେ ଅନ୍ୟ ଧାତୁ ସହଜରେ ମିଳାଇଲେ ମିଶି ପାରେ, ଏଥିପାଇଁ ସୁନା, ରୂପା ଆଦି ଧାତୁର ଲେପ କୌଣସି ବସ୍ତୁ ଉପରେ ଦେବାକୁ ହେଲେ ଉକ୍ତ ଧାତୁକୁ ପାର୍ ସଙ୍ଗେ ମିଶାଇ ଲେପ ତିଆରି କରି ଉକ୍ତ ବସ୍ତୁ ଉପରେ ବୋଳି ଦିଆଯାଏ । ପରେ ଉକ୍ତ ବସ୍ତୁକୁ ଉତ୍ତପ୍ତ କଲେ ପାର୍ ବାଷ୍ପ ହୋଇ ଉଡ଼ିଯାଏ ଓ ସୁନା ବା ରୂପାର ଲେପ ଉକ୍ତ ବସ୍ତୁ ଉପରେ ରହିଯାଏ । କାଚ ପଛଆଡ଼େ ପାର୍ ଲେପିଲେ ତାହା ଦର୍ପଣ ହୁଏ । ପର୍ ଉପରେ ଚାପର କ୍ରିୟା ବିଶେଷ ଦେଖାଯିବାକୁ ପାର୍ ଦ୍ୱାରା ତାପମାନ ଯନ୍ତ୍ର ନିର୍ମିତ ହୁଏ । ହିନ୍ଦୁ ପୁରାଣ ମତରେ ପାର୍ ଶିବଙ୍କ ବୀର୍ଯ୍ୟ ଅଟେ । ଆୟୁର୍ବେଦରେ ପାର୍‌ର ଅନେକ ଅସାଧାରଣ ଗୁଣ ଥିବାର କଥିତ । ପାର୍‌କୁ ଜାରଣ ମାରଣ କରି ଔଷଧରେ ପ୍ରୟୋଗ କଲେ ଉକ୍ତ ଔଷଧ ସେବନ ଦ୍ୱାରା ବାର୍ଦ୍ଧକ୍ୟ ନିବାରିତ ହୁଏ, ଏପରି କଥିତ ଅଛି । ବୈଦ୍ୟକ ମତରେ ପାର୍ ତ୍ରିଦୋଷନାଶକ, ଯୋଗବାହୀ, ଶୁକ୍ରବର୍ଦ୍ଧକ ଓ ସମସ୍ତ ରୋଗ ନାଶକ । ପାର୍‌କୁ ଆୟୁର୍ବେଦୋକ୍ତ ବିଧିରେ ଶୋଧନ କରି ବ୍ୟବହାର କଲେ ଏହା ଅମୃତବତ୍ ଫଳଦ ହୁଏ, କିନ୍ତୁ ଅଶୋଧିତ ଅବସ୍ଥାରେ ସେବନ କଲେ ଏହା ଦ୍ୱାରା ମାରାତ୍ମକ ଅନିଷ୍ଟ ଘଟେ ।]

ବୈଦେ. ବି. ( ଇଂ. ପାର୍‌ଗ୍ରାଫ୍ )—୧ । ଲିଖିତ ବିଷୟର ବା ପ୍ରବନ୍ଧର ବିଭିନ୍ନ ଅଂଶ ବା ଅନୁଚ୍ଛେଦ—

পারা

**पारा, पैरा** 1. Para; paragraph.

୨ । (ଫା. ପାର୍ = ଖଣ୍ଡ) ପୁସ୍ତକରେ ଅଧ୍ୟାୟ; କୋରାନ୍‌ର ଅଧ୍ୟାୟ

2 Chapter of the Koran.

**ପାର୍ ଆଖି** — ଦେ. ବି—ପାର୍ ପରି ପ୍ରଖର ଦୃଷ୍ଟି ଶକ୍ତି—

Parā ākhi — Keen sight; ability to see minute things from a distance like the pigeon.

পায়রা দৃষ্টি

**परेवा दृष्टि**

**ପାର୍ ଆଖିଆ**—ଦେ. ବିଣ. ପୁଂ—ପାର୍ ପରି ପ୍ରଖର ଦୃଷ୍ଟି ଶକ୍ତିବିଶିଷ୍ଟ—

Pārā ākhiā — Keen-sighted

**परेवा आँखिआ** (ପାର୍ ଦୃଷ୍ଟିଆ — ଅନ୍ୟରୂପ)

(ପାର୍ ଆଖେଇ — ସ୍ତ୍ରୀ)

**ପାର୍‌କା**—ପ୍ରାଦେ. (ଗଞ୍ଜାମ) ବି — ଦୁଇ ପଇସା; ଦୋପଇସୀ—

Pārakā — Half anna

**ପାର୍ ଖୋପ**—ଦେ. ବି—ପୋଷା ପାର୍‌ମାନେ ଜୋଡ଼ି ଜୋଡ଼ି ହୋଇ ବାସ କରିବା ନିମନ୍ତେ ପାର୍ ଭାଡ଼ିରେ ଦେଇଥିବା କୋଠରି—Pigeon hole.

Pārā khopa

পায়রা খুবরী

**परेबाकी खोँता**

**ପାର୍(ରେ)ଗ୍ରାଫ୍**—ବୈଦେ. ବି. ( ଇଂ. ପାର୍‌ଗ୍ରାଫ )—

Pārā(re)grāph — ଲିଖିତ ବିଷୟର ବା ପ୍ରବନ୍ଧର ସ୍ୱତନ୍ତ୍ର ଅଂଶ —

প্যারেগ্রাফ **पैराग्राफ** Paragraph.

**ପାର୍ ଘଟିତ ଔଷଧ**—ଦେ. ବି—ଯେଉଁ ଔଷଧରେ ପାରଦ ଗୋଟିଏ ଉପାଦାନ ଅଟେ —

Pārā ghatita aushadha — Medicine having mercury as an ingredient. a mercurial preparation.

**ପାର୍ ଘୁମୁର୍**— ଦେ ବି — ପାର୍‌ର ମୁଖ ଶବ୍ଦ—

Pārā ghumurā — The sound or cawing of a pigeon.

পায়রার ডাক **परेबाकी गुटकना**

**ପାର୍ ଚାନ୍ଦି** —ଦେ. ବି. ( ସଂ. ପାରାବତ + ଚନ୍ଦ୍ରକ )—

Pārā chāndi — ଧଳା ଚାନ୍ଦୀ; ଏକ ପ୍ରକାର ସାମୁଦ୍ରିକ ମାଛ—

পায়রা চাঁদ — A kind of flat sea fish; a variety of flounder.

**बड़ी चाँदी**

[ ଦ୍ର—ଏମାନେ ଚେପଟା, ବୃତ୍ତାକାର ଓ ଧଳା । ଏମାନେ ଏକ ଫୁଟ ପର୍ଯ୍ୟନ୍ତ ବ୍ୟାସରେ ବଢ଼ନ୍ତି । ଏମାନଙ୍କର କାଣ୍ଟ ଅଛି । ]

**ପାର୍ ଛତି** — ଦେ. ବି. ( ସଂ. ପାରାବତ ଓ ସଂ. ଛତ୍ର )—

Pārā chhati — ପାର୍‌ମାନେ ଉଡ଼ି କରି ଆସି ବସିଥିବା ନିମିତ୍ତ ପୋତା ହୋଇଥିବା ବାଉଁଶ ଅଗରେ ନିର୍ମିତ ଚତୁଷ୍କୋଣ ମଞ୍ଚ—

ପାର୍ ଛତି / ପାର୍ ଛତର } ଅନ୍ୟରୂପ

কবুতরের মাচা — A square framework of bamboo-laths put at the top of a pole driven to the ground for enabling the pigeons to take rest after a flight; pigeons' roost.

**परेबाकी छत्ता**

ପାରଞ୍ଜି—ପ୍ରାଦେ. (ଗଞ୍ଜାମ) ବି. (ତେ. ପାରଞ୍ଜି)—
Pāraṅji କୋଠା କାନ୍ଥ ଆଦି ଗଢ଼ିଲା ବେଳେ ରାଜ ମିସ୍ତ୍ରୀମାନଙ୍କ ବସିବା ପାଇଁ ଉଚ୍ଚରେ ହୋଇଥିବା ବାଉଁଶ ବା କାଠର ମଞ୍ଚା—A scaffolding of wood or bamboo on which masons sit while building high walls etc.

ପାରପତ—ସଂ. ବି (ପାର+ଆ+ପତ୍ ଧାତୁ+କର୍ତ୍ତୃ. ଅ, ଯେ ବଳ
Pārāpata ଦ୍ୱାରା ପତତ ହୁଏ)—ପାରାବତ (ଦେଖ)
Pārābata (See)

ପାରାପାର—ସଂ. ବି (ପାର=ଏପାର+ଅପାର=ଅନ୍ୟ ପାର)—
Pārāpāra ୧ । ସମୁଦ୍ର—1. Ocean.
୨ । ନଦୀ ଆଦିର ଉଭୟ କୂଳ, ଏପାର ସେପାର—
2. Both shores of a river.

ପାରାପାର କରିବା—ଦେ କ୍ରି—ଲୋକଙ୍କୁ ନଦୀର ଏପାରୁ ସେପାରୁ ପାର
Pārāpāra kariba ଉତ୍ତାର କରିବା—To ferry people across a river.
পার উতার করা पार उतारना

ପାରାପାର ହେବା—ଦେ. କ୍ରି—ନଈ ପାର ହେବା—
Pārāpāra heba To cross a river; to cross and recross a river.
পার উতার হওয়া पार उतरना

ପାରାପିଟ୍—ବୈଦେ. ବି—(ଇଂ. ପାରାପେଟ୍)—କୋଠାର ଛାତ ଉପରେ
Pārāpit ଦିଆ ଯାଇଥିବା ଅଳ୍ପ ଉଚ୍ଚ ପାଚେରୀ—Parapet.
পারাপেট पैरापीट (ପାରାପେଟ୍—ଅନ୍ୟରୂପ)

ପାରାଫିନ୍—ବୈଦେ. ବି—(ଇଂ. ପାରାଫିନ)—୧ । କୋଲ୍‌ଟାର୍ ବା
Pāraphin ଶିଲରୁ ବାହାରିବା ମହମ ପରି ଏକପ୍ରକାର ଧଳା ବସ୍ତୁ—
পারাফীন্ पैराफीन् 1. Paraffin.
୨ । କେରୋସିନ୍ ପରି ଏକପ୍ରକାର ଖଣିଜ ତେଲ—
2 Paraffin oil.

ପାରାବତ—ସଂ. ବି—(ପାର+ଅବ ଧାତୁ=ରକ୍ଷା କରିବା+କର୍ତ୍ତୃ. ଅତ)-
Pārābata ୧ । ପାରା ଚଢ଼େଇ; ଗୃହ କପୋତ—1. Pigeon.
୨ । କପୋତ; କାପତା—
2. Dove; turtle dove.
୩ । ମାଙ୍କଡ଼—3, Monkey. (Apte)
୪ । ପର୍ବତ—4. Mountain. (Apte)
୫ । କେନ୍ଦୁ ଗଛ (ହି. ଶ.)—
5. Diospyrus Melanoxylon. (tree).
୬ । ମହାଭାରତୋକ୍ତ ନାଗ ବିଶେଷ (ହି. ଶ.)—
6. Name of a mythological serpent.
୭ । ସୁଶ୍ରୁତୋକ୍ତ ଏକ ପ୍ରକାର ଖଟା ପଦାର୍ଥ (ହି. ଶ.)—
7. Name of a sour thing mentioned in the Susruta.
୮ । ଦତ୍ତାତ୍ରେୟଙ୍କ ଗୁରୁ (ହି. ଶ.)—8. Name of the preceptor of sage Dattātreya.
ଦେ. ବି—(ସଂ. ପାରେବତ)—ପିଜୁଳି—Guava.
ଚଲେ ପାରବତ ସ୍ତୋଭ ହୃଦୟା—
ବୃନ୍ଦାବତ, ମହାଭାରତ. ବନ ।

ପାରାବତୀ—ସଂ. ବି—୧ । ଗୋପ ଗୀତ (ହି. ଶ)—
Pārābati 1. The song of cowherds.
କରନ୍ତି କରେ ବସି ପାରାବତୀ ହାରେ—
ଗୀତକୃତି—ରସ କଲ୍ଲୋଳ ।
୨ । ନଅର କୋଳି (ହି. ଶ.)—
2. Na-ara koli (See)
୩ । ନଦୀ ବିଶେଷ (ହି. ଶ)—3. Name of a river.

ପାରାବାର—ସଂ. ବି—(ପାର=ସୀମା, ଅପର ପାର+ଅବାର, ଯାହାର
Pārābāra ଚାରିକୁ ବାର ହୁଏ ନାହିଁ)—୧ । ସମୁଦ୍ର—
1. Ocean
୨ । ସମୁଦ୍ରର ଅନ୍ୟକୂଳ—
2. The opposite shore of a sea.
ଦେ. ବି—୧ । ସୀମା, ଅନ୍ତ—1. Limit; extreme limit
୨ । ପରିଗଣନା, ଇୟତ୍ତା, କଳନା—
2. Count; calculation.
୩ । ନଦ୍ୟାଦିର ଦୁଇକୂଳ (ହି. ଶ.)—
3. The two shores of a river.

ପାରାବାରୀଣ—ସଂ. ବିଣ. ପୁଂ—(ପାରାବାର+ଗମନାର୍ଥେ. ଈନ)—
Pārābārīṇa ୧ । ପାରଗାମୀ—1. Having gone over to the other end.
(ପାରାବାରୀଣା—ସ୍ତ୍ରୀ)
୨ । ପାରଙ୍ଗମ—2. Expert; well versed.

ପାରା ଭିଡ଼ି—ଦେ. ବି—ପୋଷା ପାରାମାନଙ୍କ ରହିବା ପାଇଁ ଭୂମିଠାରୁ କିଛି
Pārā bhiḍi ଉଚ୍ଚରେ ନିର୍ମିତ ହୋଇଥିବା ଧାଡ଼ି ଧାଡ଼ି ଖୋପଯୁକ୍ତ କାଠର ପଞ୍ଜୁରି—Pigeon house; a dovecot.
পায়রার কুঠরী(বাক্স) কাবুক,কবুতরখানা

ପାରାୟଣ—ସଂ.ବି—(ପାର=ସମାପ୍ତ+ଅୟନ=ଗମନ)—୧ । ସମ୍ପୂର୍ଣ୍ଣତା;
Pārāyaṇa ସମାପ୍ତି—1. End; completion; totality.
୨ । ନିର୍ଦ୍ଦିଷ୍ଟ ସମୟରେ କୌଣସି ଗ୍ରନ୍ଥକୁ ସମ୍ପୂର୍ଣ୍ଣ କରି ପାଠ କରିବା, ମୂଳରୁ ଶେଷଯାଏ ପାଠ କରିବା—2. Reading thorough of a book in a fixed time.
୩ । ପୁରାଣ ପଢ଼ିବା; ପୁରାଣ ପାଠ—
3 Reading of a Purāṇa.
୪ । ଉତ୍କୃଷ୍ଟ ସ୍ଥାନ—4. Excellent place.

ପାରାୟଣିକ—ସଂ. ବି.ପୁଂ (ପାରାୟଣ+ଇକ)—୧ । ପୁରାଣାଦି ଅଦ୍ୟୋପାନ୍ତ
Pārāyaṇika ପାଠ କରିବା ବ୍ୟକ୍ତି—1. A person who reads a Purāṇa thorough.
୨ । ଛାତ୍ର (ହି. ଶ.)—2, Student.

ପାରାଶର—ସଂ. ବିଣ. (ପରାଶର+ରଚିତାର୍ଥେ ଅ)—୧ । ପରାଶର ମୁନିଙ୍କ
Pārāśara କର୍ତ୍ତୃକ ରଚିତ ବା ସଙ୍କଳିତ—1. Compiled or composed by sage Parāśara.
୨ । ପରାଶର ମୁନିଙ୍କ ସମ୍ବନ୍ଧୀୟ—
2 Relating to sage Parāśara.
୩ । (+ଅପତ୍ୟାର୍ଥେ. ଅ) ପରାଶର ବଂଶଜ—
3. Born in the family of Parāśara.

୩ । ( ଶିଶୁ, ପଶୁ, ଗୋ ଆଦିଙ୍କୁ ଖାଦ୍ୟ, ପାନୀୟ, ଆଦି ଦେଇ ପୋଷିବା, ବଢ଼ାଇବା, ଲାଳନ ପାଳନ କରିବା— 3. To rear up; to bring up.

୪ । (ପରିବାରକୁ ବା କୌଣସି ବ୍ୟକ୍ତିକୁ ) ଭୋଜନ ଓ ପରିଧେୟ ଦେଇ ବଞ୍ଚାଇବା, ଭରଣ ପୋଷଣ କରିବା— 4. To maintain; to support.

୫ । ( ଆଜ୍ଞା, ପ୍ରତିଜ୍ଞା, ବ୍ରତ ) ଅନୁସାରେ କାର୍ଯ୍ୟ କରିବା— 5. To follow; to observe.

୬ । (ଅଶ୍ୱ, ହସ୍ତୀ, ମେଷ) ଗୃହପାଳିତ ପଶୁଆଦିଙ୍କୁ ସେବା କରିବା— 6. To tend.

୭ । ଜଗିବା—7. To watch.

**ପାଳନ କର୍ତ୍ତା**—ସଂ. ବିଣ. ପୁଂ—ପ୍ରତିପାଳକ; ପୋଷଣାହାରୀ—
Pālana karttā Maintaining; bringing up.
(ପାଳନକର୍ତ୍ତ୍ରୀ—ସ୍ତ୍ରୀ)

**ପାଳନା**—ଦେ. ବି. (ସଂ. ପାରଣା)—୧ । ବ୍ରତ ଉପବାସ ପରେ ପ୍ରଥମ ଭୋଜନ—1. Breaking a fast; the first meal taken after a religious fast
Pālanā
ପାବଣା पारणा
(ପାଲନା—ଅନ୍ୟରୂପ) ୨ । ପାଳଣ (ଦେଖ)— 2. Pālana (See).
পালন पालन

ସାବଧାନ ହୋଇ ପାଳନା କରନ୍ତୁ ନା—
କୃଷ୍ଣସିଂହ ମହାଭାରତ—ସଭା ।

**ପାଳନୀୟ**—ସଂ. ବି. ପୁଂ—( ପାଳ ଧାତୁ+କର୍ମ. ଅନୀୟ )—ରକ୍ଷଣୀୟ ପାଳିବାର ଯୋଗ୍ୟ (ପାଳିବାର ଉକ୍ତ ଉକ୍ତ ଅର୍ଥରେ ପ୍ରଯୁଜ୍ୟ)—Fit to be protected, tended reared up, observed, followed etc (See Pāliba)
Pālaniya
(ପାଳନୀୟା—ସ୍ତ୍ରୀ)

**ପାଳନ୍ତା**—ଦେ. ବି—୧ । ପାଳିତା—
Pālantā ଯେପାଳେ पालनेवाला 1. Brought up.

ବଦେହ ରାଜନ ପାଳନ୍ତା ସେ ସୁତା ସୀତା ଲେଖ ବଳା କେହି—
ଭକ୍ତ—ବୈଦେହୀଶ ବିଳାସ ।

୨ । ପାଳକ— 2. Maintaining; bringing up.

**ପାଳ ପକା(କେ)ଇ ଉଚ୍ଚ ହେବା**—ଦେ. (ପ୍ରବଚନ)—କୌଣସି କାରଣ ନ ଥାଇ ବା କେହି ବଡ଼ ବୋଲି କହୁ ନ ଥିଲା ବେଳେ ଆପେ ନିଜକୁ ବଡ଼ ବୋଲି ଭାବିବା ଓ ଦେଖାଇ ହେବା—To boast for nothing; to vainly boast of one's greatness without any foundation.
Pāla pakā(ke)i uchcha hebā

**ପାଳ ବାଇଗଣ**—ପ୍ରାଦେ. (ବାଲେଶ୍ୱର) ବି—ପାଳ ଜମିରେ ଜନ୍ମୁଥିବା ବାଇଗଣ; ପାଳୁଅ ବାଇଗଣ—
Pāla bāigana

[ ଦ—ଏହା ବାଡ଼ି ବାଇଗଣ ଠାରୁ ଆକୃତିରେ ବଡ଼, କିନ୍ତୁ ସେପରି ସୁସ୍ୱାଦୁ ନୁହେ । ]

**ପାଳ ବିଣ୍ଡା**—ଦେ. ବି—ପାଳ ଚିଣ୍ଡା; ଭୁଷାବିଣ୍ଡା; ପୁଳାଏ ଭୁଷ—
Pāla bindā A plug of straw tied together.
পোয়ালেরছিপি पुआलकागट्ठा

**ପାଳବିଣ୍ଡା ମନ୍ତ୍ରୀ**—ଦେ. ବି—ଅବିବେଚକ ରାଜାଙ୍କର ନିର୍ବୁଦ୍ଧିଆ ମନ୍ତ୍ରୀ—
Pālabindā mantri A foolish minister of a foolish king.
গবাচন্দ্রমন্ত্রী बेवुकूफमन्त्री

[ ଦ୍ର—କାହାଣୀରେ ଅଛି 'ଅବୁଝାମଣା ରାଜାକୁ ପାଳବିଣ୍ଡା ମନ୍ତ୍ରୀ'। ଗୋଟିଏ ଅବୁଝା ରାଜା ଥିଲେ । ତାଙ୍କ ପାଖରେ ଗୋଟିଏ ମନ୍ତ୍ରୀ ଥିଲେ । ମନ୍ତ୍ରୀଙ୍କ ମୁହଁ ଖୋଲିଥିଲେ କାଳେ ତାଙ୍କ ମୁହଁରୁ ଫସ୍ ଫାସ୍ ବୁଦ୍ଧି ଗୁଡ଼ାକ ପଦାକୁ ବାହାରି ଯିବ, ସେଥିପାଇଁ ମନ୍ତ୍ରୀ ସବୁବେଳେ ମୁହଁରେ ବିଣ୍ଡାଏ ପାଳ ମାରି ରାଜସଭାରେ ବସିଥାଆନ୍ତି । ରାଜା ପରାମର୍ଶ ମାଗିଲେ ମୁହଁରୁ ପାଳବିଣ୍ଡାଟା ଓଟାରି ପକାଇ ରାଜାଙ୍କୁ ବୁଦ୍ଧି ବତାଇ ଦିଅନ୍ତି ଓ ପୁଣି ସେହି ପାଳବିଣ୍ଡାକୁ ମୁହଁରେ ମାଡ଼ି ଦିଅନ୍ତି । ପାଳବିଣ୍ଡା ମନ୍ତ୍ରୀଙ୍କ ପରାମର୍ଶ ଓ ଅବୁଝାମଣା ରାଜାଙ୍କର ବିଚରଣା ସମ୍ବନ୍ଧେ ଅନେକ ହାସ୍ୟୋଦ୍ଦୀପକ ଗଳ୍ପ ଅଛି । ଫକୀର ମୋହନ ସେନାପତି ପାଳବିଣ୍ଡା ମନ୍ତ୍ରୀଙ୍କର ଗୋଟିଏ ଗଳ୍ପ ପଦ୍ୟାକାରରେ ଲେଖି ଅଛନ୍ତି ।]

**ପାଳୟିତା**—ସଂ. ବିଣ. ପୁଂ. (ପାଳ ଧାତୁ+କର୍ତ୍ତୃ. ତୃ, ୧ମା. ୧ବ)—
Pālayitā ୧ । ପାଳନକର୍ତ୍ତା— 1. Supporting preserving; keeping.
(ପାଳୟିତ୍ରୀ—ସ୍ତ୍ରୀ)

୨ । ରକ୍ଷକ—2. Protecting.

ସଂ. ବି. ପୁଂ—୧ । ପାଳିବା ବ୍ୟକ୍ତି—1. Rearer.

୨ । ପୋଷଣାହାରୀ ବ୍ୟକ୍ତି—2. Supporter.

୩ । ରକ୍ଷକ ବ୍ୟକ୍ତି—3. Protector.

୪ । ବ୍ରତଧାରୀ ବ୍ୟକ୍ତି— 4. An observer of vows.

**ପାଲରେ ପକା(କେ)ଇବା**—ଦେ. କ୍ରି—୧ । ଖାପରରେ ପକାଇବା; କରଗତ କରିବା, ବଶୀଭୂତ କରିବା—
Pālare pakā(ke)ibā 1 To bring a person under one's control or machination.
পাল্লেফেলা, পালযফেলা पालेगीराना

୨ । ପ୍ରଲୋଭନ ଦେଖାଇ ବଶ କରିବା— 2. To bring under control by temptations.

୩ । ବିପଦରେ କୌଣସି ବ୍ୟକ୍ତିକୁ ପକାଇବା— 3. To cause a person to be involved in danger.

**ପାଲରେ ପଡ଼ିବା**—ଦେ. କ୍ରି—୧ । ବଶୀଭୂତ ହେବା; କରଗତ ହେବା—
Pālare pardibā 1. To come under one's control.
পাল্লায়পড়া, পালেপড়া पालेपड़ना

୨ । କୁଚକ୍ର ବା କୁମନ୍ତ୍ରଣା ଦ୍ୱାରା ବଶବର୍ତ୍ତୀ ହେବା— 2. To come under another's machinations.

୩ । ଅନ୍ୟର ଚକ୍ରାନ୍ତରେ ବିପନ୍ନ ହେବା— 3. To be involved in danger by another's machinations.

**ପାଲଲହଡ଼ା**—ଦେ. ବି—ଓଡ଼ିଶାର ଗୋଟିଏ ଗଡ଼ଜାତ—
Pālalahardā A State in Orissa.

[ଦ୍ର—ଏଥିର କ୍ଷେତ୍ରଫଳ ୪୫୨ ବର୍ଗମାଇଲ । ଏହା ବାମଣ୍ଡାର ପୂର୍ବରେ ଅବସ୍ଥିତ । ଏ ରାଜ୍ୟର ପ୍ରଧାନ ପର୍ବତ ମଳୟଗିରି । ଯାହା

ସାଧାରଣ ଲୋକେ ଅପର ପୃଷ୍ଠାରେ ଦୃତ ୧ ଚନ୍ଦ୍ରିତ ଅକ୍ଷର ଓ ମାତ୍ରା ଏବଂ ୨ ଚନ୍ଦ୍ରିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚନ୍ଦ୍ରିତ କୌଣସି ବର୍ଣ୍ଣ ବା ମାତ୍ରା ଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚନ୍ଦ୍ରିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— ସାଢ' ନ ମିଳିଲେ 'ସାଢ଼' ଖୋଜିବେ, କୃଥ ନ ମିଳିଲେ 'କୃଥ' ଦେଖିବେ; 'ବଧି' ନ ପାଇଲେ 'ବନ୍ଧ' ଦେଖିବେ; ଅଙ୍ଖୋ ନ ପାଇଲେ 'ଆଙ୍ଖ' ଦେଖିବେ, 'ଅଲବଢ' ନ ପାଇଲେ 'ଅଲବଢ଼' ଦେଖିବେ

ନଗରର ସନ୍ତୋଷ ପାଲ ଅଷ୍ଟାଦଶ ଶତାବ୍ଦୀ ପୂର୍ବେ ଏ ରାଜ୍ୟ ସ୍ଥାପନ କରିଥିଲେ । ଏ ରାଜାଙ୍କ ସମ୍ବନ୍ଧ ସର୍ପ—
ଜଗବନ୍ଧୁ—ପ୍ରାଚୀନ ଉତ୍କଳ ।]

**ପାଲଶ୍**—ବୈଦେ. ବି ( ଇଂ ପଲିଶ୍, ସଂ. ପରିକର୍ମ )—୧ । କୌଣସି ପଦାର୍ଥକୁ ଘଷି ମାଜି ମସୃଣ କରିବା—1. Polishing.
Pālaś
ପାଲସ୍ } ଅନ୍ୟରୂପ
ପାଲସି }
পালিশ पालिश
୨ । ଘଷା ମଜା ଯୋଗୁଁ ଉତ୍ପନ୍ନ ମସୃଣତା; ଚକଣା; ଚକ୍ଚକ୍ୟ—2 Polish.
୩ । ଚଉକି, ମେଜ ଆଦିର ଉପରକୁ ଘଷି ମାଜି ମସୃଣ କରି ତାକୁ ଚକ୍ଚକିଆ କରିବା ପାଇଁ ବ୍ୟବହୃତ ଲାକ୍ଷାଦି ଲେପନ, ବାର୍ଣ୍ଣିସ୍; ଫ୍ରେଞ୍ଚ୍ ପାଲଶ୍—3 Varnish; French polish.

ବୈଦେ. ବିଣ—ଘଷା, ମଜା ହୋଇ ମସୃଣ ହୋଇଥିବା; ଚକଣିଆ; ଚକ୍ଚକିଆ—Well polished; shining; burnished; varnished.

**ପାଲଶ୍ ଉଠା(ଠେ)ଇବା**—ଦେ. କ୍ରି—କୌଣସି ପଦାର୍ଥକୁ ଘଷି ମାଜି ଖୁବ୍ ମସୃଣ ଓ ଚକଚକିଆ କରିଇବା—To bring out polish from a thing by rubbing and varnishing it well; to make a thing shining by polishing.
Pālaś uṭhā(ṭhe)ibā
পালিশউঠান, পালিশওঠান
पालिशनिकालना
(ପାଲଶ୍ ବାହାର କରିବା, ପାଲଶ୍ କାଢ଼ିବା—ଅନ୍ୟରୂପ)

**ପାଲଶ୍ ଉଠିବା**—ଦେ. କ୍ରି—ଘଷା ମଜା ହୋଇ କୌଣସି ପଦାର୍ଥ ଚକଣିଆ ଦେଖାଯିବା—The state of a thing being well polished; having a polished shining surface.
Pālaś uṭhibā
পালিশউঠা
पालिश निकलना

**ପାଲଶ୍ କରିବା**—ଦେ. କ୍ରି—୧ । ଚକଣିଆ କରିବା ନିମନ୍ତେ ଘଷା ମଜା କରିବା—1. To polish.
Pālaś karibā
পালিশকরা पालिशकरना
୨ । ବାର୍ଣ୍ଣିସ୍ କରିବା—2. To varnish.

**ପାଲଶ୍ ଗୁଣ୍ଡା**—ଦେ. ବି—ଯେଉଁ ଖଡ଼ି ଆଦିର ଚୂର୍ଣ୍ଣଦ୍ୱାରା କାଠ ବା ଧାତୁର ପଦାର୍ଥକୁ ମାଜି ଚକ୍ଚଣ କରାଯାଏ—Polishing powder.
Pālaś guṇḍā
পালিশগুড়ো
पालिश चूर
(ପାଲଶଗୁଣ୍ଡି, ପାଲଶିଗୁଣ୍ଡା, ପାଲଶିଗୁଣ୍ଡି—ଅନ୍ୟରୂପ)

**ପାଲି**—ଦେ. ବି ( ସଂ. ପଞ୍ଜାଳୀ ବା ପର୍ଯ୍ୟାୟ; ସଂ. ପାଳ—ଓଡ଼ିଆ ପାଳି—ବଂ. ପାଲା—ପର୍ଯ୍ୟାୟ ବା କ୍ରମ )—
Pāli
পালা
सतनारायनकीपूजा
୧ । ୧୪ ଅକ୍ଷରଯୁକ୍ତ ପଦଯୁକ୍ତ ଛନ୍ଦର ବଙ୍ଗଳା ପାଞ୍ଚାଳି ଗୀତ ଅନୁକରଣରେ ରଚିତ ଦେବତାଙ୍କର (ବିଶେଷତଃ ସତ୍ୟପୀର ବା ସତ୍ୟନାରାୟଣ ଗୋସାଇଁଙ୍କର ) ମାହାତ୍ମ୍ୟ ବର୍ଣ୍ଣନାତ୍ମକ ଧର୍ମ ସଙ୍ଗୀତ ( ସାଧାରଣତଃ ଏହାକୁ ପୂଜା ବୋଲାଯାଏ )—Religious song composed in lines of 14 letters dealing with Mythological lore (and especially of Satya Narayana ) corresponding to the old mystery plays of Europe.

[ ଦ୍ର—ପାଲି ଆମଦେଶକୁ ବଙ୍ଗ ଦେଶରୁ ଆସିଅଛି । ଏହି ବର୍ଗୀମ୍ନ କବି 'କବିକର୍ଣ୍ଣ'ଙ୍କର ରଚିତ ୧୪ ଅକ୍ଷରିଆ ଛନ୍ଦ । ମୁସଲ-ମାନଙ୍କର ପୂଜ୍ୟ 'ପୀର'ଙ୍କୁ ହିନ୍ଦୁମାନେ 'ସତ୍ୟପୀର' ବା ସ୍ୱଳସ୍ୱରଣୋକ୍ତ 'ସତ୍ୟନାରାୟଣ' ରୂପରେ କଳ୍ପନା କରି ଶିରଣୀ (ଏହା ପ୍ରକୃତରେ ବୃଦ୍ଧିଆ କିନ୍ତୁ ଆମ୍ଭେମାନେ ତାକୁ ସ୍ୱଳସ୍ୱରଣୋକ୍ତ ପାଚିଲା କଦଳୀ-ଚକଟା କରିଅଛୁଁ) ଭୋଗ ଲଗାଇ ଇପ୍ସିତ ଫଳ (ଯଥା—ଧନଲାଭ ସନ୍ତାନ ଲାଭ, ମକଦମା ଡିକ୍ରୀ, ବେପାରରେ ଉନ୍ନତି, ଗୃହକଲ୍ୟାଣ ଇତ୍ୟାଦି) ମନାସନ୍ତି ଓ ଫଳ ଘଟିଲେ ସତ୍ୟପୀରଙ୍କୁ ଏକ ପାଲି, ଚାରି ପାଲି, ଆଠ ପାଲି ବା ଷୋଳ ପାଲି ମନାସନ୍ତି । ଏ'ସବୁ ପ୍ରାଚୀନ ବଙ୍ଗଳାଭାଷାରେ ରଚିତ । ବଙ୍ଗଳାଭାଷାନଭିଜ୍ଞ ଓଡ଼ିଆମାନଙ୍କ ପାଟିରେ ମୌଳିକ ବଙ୍ଗରଚନାଯାକ ବିକୃତ ହୋଇ ଉଚ୍ଚାରିତ ହୁଏ । ପାଲିରେ ସତ୍ୟପୀରଙ୍କ କରାମତି ବିଷୟକ ଘଟନାମାନ ବର୍ଣ୍ଣିତ ଥାଏ, (ଯଥା ବିପଦରୁ ଉଦ୍ଧାର ପାଇବା, ରାଜ୍ୟଲାଭ, ଡକାଏତଙ୍କ ମୁହଁରୁ ବର୍ତ୍ତିବା, ପୁତ୍ରଲାଭ, ଧନଲାଭ ଆଦି ହେବା, ସତ୍ୟପୀରଙ୍କୁ ନ ମାନିବା ଲୋକର ଅନିଷ୍ଟ ଘଟିବା) । କେତେକ ପାଲିର ନାମ—ଜନ୍ମପାଲି, କାଠୁରିଆ, ମର୍ଦ୍ଦଗାଜୀ, ରତ୍ନାକର, ବିଦ୍ୟାଧର, ବିଭା, ମନୋହର ଫାସିଆରା, ସଉଦାଗର ପାଲି ।

ଗୋଟିଏ ଆସନ (ପୀଢ଼ା ବା ଚଉକୀ) ମଣ୍ଡିରେ 'ସତ୍ୟନାରାୟଣ' ବା 'ସତ୍ୟପୀର'ଙ୍କୁ ସ୍ଥାପନା କରି ଓ ଗୃହଯାଗରେ ଗୃହଦେବତା (ଗଣେଶ, ଶିବ, ସୂର୍ଯ୍ୟ, ଦୁର୍ଗା) ଙ୍କୁ ସ୍ଥାପନା କରି ଗୃହ ଦେବତାଙ୍କୁ 'ମୁକାମ' ବା ଭୋଗ ସ୍ୱରୂପ ଗୃହ ଜାଗାରେ ଅଳ୍ପ ଅଳ୍ପ ଭୋଗ ବଢ଼ା-ଯାଏ ଓ ମଣ୍ଡିରେ ଥିବା ନାରାୟଣ ବା ସତ୍ୟପୀରଙ୍କ ପାଇଁ 'ଶିରଣୀ' ଭୋଗ ବଢ଼ାଯାଇ ହିନ୍ଦୁଶାସ୍ତ୍ରବହିର୍ଭୂତ ମନ୍ତ୍ରଦ୍ୱାରା ଭୋଗ କରି ସାରିଲା ପରେ ପାଲି ବୋଲାଯାଏ । ପୋଥିରୁ ପଢ଼ି ପାଲି ବୋଲିଲେ ତାକୁ 'ପୋଥିପୂଜା' ବା 'ପୋଥିପାଲି' ବୋଲାଯାଏ ଓ ନୃତ୍ୟ ବାଦ୍ୟାଦିସହ ପାଲି ବୋଲିଲେ ତାକୁ 'ଠିଆପାଲି' ବା 'ଠିଆ ପୂଜା' ବୋଲାଯାଏ । ଯେଉଁମାନେ ପାଲି ବୋଲନ୍ତି ବା ନାଚନ୍ତି ତାଙ୍କୁ 'ପାଲିବାଲା' ବା ପୂଜାବାଲା ବୋଲାଯାଏ । ମଧ୍ୟେ ମଧ୍ୟେ ପ୍ରସଙ୍ଗକ୍ରମେ ଚଉପଦୀ, ଡାହିକା, ଛାନ୍ଦ ଓ ଗୀତ ଆଦି ମଧ୍ୟ ପାଲି ବୋଲି ସମୟରେ ପାଲି-ବାଲାମାନେ ଲଗାନ୍ତି । ପାଲିବାଲାଙ୍କ ଏକାଧିକ ଦଳ ପାଲି ବୋଲିରେ ପ୍ରତିଯୋଗିତା ଦେଖାଇ ଆପଣା ଆପଣା ବିଦ୍ୟା ପରୀକ୍ଷା କରିଥାନ୍ତି, ଏହାକୁ 'ଖାଇଁକିପାଲି' ବା 'ଲଢ଼େଇ ପାଲି' ବା 'ବାଦୀପାଲି' ବୋଲାଯାଏ । ପାଲିବାଲାଙ୍କ ଦଳର ନେତାକୁ 'ଗାୟକ' ବୋଲାଯାଏ । ଗାୟକ ଡାହାଣ ହାତରେ ଚିନ୍ନ ଧରି ଓ କାଖରେ ଚଅଁର ଜାକି

| ୧ | ଇ | ଓ | ର,ଋ | ଡ଼ | ଏ | ଦ୍ୱିସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଙ୍ଘ | ଞ୍ଝ | ଣ୍ଡ,ଣ୍ଠ | ମ୍ବ | ଇପ୍ | ଉଅ | ଞ୍ଛ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଳ | ପ୍ଲେ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଶ୍ୟ | ଯ | ବ | ଙ୍ୟ | ଇଅ | ୭ | ନ୍ତ |

ପାଲର ପଦମାନ ବୋଲେ ଓ ତାହାର ସଙ୍ଗୀମାନେ ପାଳ ଧରନ୍ତି, ଅର୍ଥାତ୍ ଗାୟକ ବୋଲିବା ପଦକୁ ପୁନରାବୃତ୍ତି କରନ୍ତି । ଏମାନଙ୍କୁ 'ପାଳିଆ' ବୋଲଯାଏ । ଗାୟକ ସଙ୍ଗେ ଯେଉଁ ଲୋକ ମୃଦଙ୍ଗ ବଜାଏ ତାକୁ ବାଦ୍ୟକ କହନ୍ତି । ଗାୟକ ଗୀତ ବୋଲେ ଓ ତା ସଙ୍ଗେ ବାଦ୍ୟକ ବାଦ୍ୟ ବଜାଏ । 'ଶିରପାଳିଆ' ବା ଡାହାଣ ପାଳିଆ ଗାୟକଙ୍କୁ ଗୀତବୋଲିବାରେ ସାହାଯ୍ୟ କରୁଥାଏ । ଆଉ ଦୁଇ ତିନି ଜଣ ପାଳ ଧରିବା ଲୋକ ଝାଞ୍ଜ ବଜାଇ ଗାୟକର ଗୀତର ପାଳ ବା ଘୋଷାକୁ ଆବୃତ୍ତି କରନ୍ତି । ଏମାନେ 'ପାଳିଆ' । ପୂଜାଦଳ ନାନା-ପ୍ରକାର ଭଙ୍ଗୀ ଓ ଅଲଙ୍କାରରେ ରଚିତ ଶ୍ଳେଷ ଯୁକ୍ତ, ସିଂହାବଲୋକନ, ବ୍ୟାଘ୍ରଗତି, ମଣ୍ଡୂକପ୍ଲୁତି, ଯମକ, ଛାନ୍ଦ, ଗୀତ, ଶ୍ଳୋକ, ଚଉପଦୀ, ଚଉତିଶା ଆଦି ବୋଲନ୍ତି । ଲଢେଇ ପାଲରେ ବିପକ୍ଷଦଳମାନେ ବ୍ୟଙ୍ଗୋକ୍ତି ଓ ପରିହାସୋକ୍ତି ସୂଚକ ଗୀତ ଓ 'ଦାସ୍ୟିକା' ବା 'ଡାଏକା' ବୋଲିବୋଲି ହୋଇ କାହାରିକ ଚଉଁର ଉପ ମସ୍ତକର ବୁଲାନ୍ତି । ଠିଆ ପାଲ କରିବା ପାଲବାଲାମାନେ ନାନାପ୍ରକାର ବେଶରେ ସଜ୍ଜିତ ହୋଇ ଥାଆନ୍ତି । ଏମାନଙ୍କ ମଧ୍ୟରୁ ଜଣେ ଜଣେ ଖୁବ୍ ପାଣ୍ଡିତ୍ୟ ଓ ଆଶୁ ରଚନାଶକ୍ତି ଦେଖାଇ ଦର୍ଶକମାନଙ୍କୁ ମୋହିତ କରନ୍ତି ।

୨ । ଧର୍ମ ସଙ୍ଗୀତସହ ନୃତ୍ୟ ଗୀତାଦି—2 Religious songs accompanied with music and dance.

୩ । ସତ୍ୟପୀର ବା ସତ୍ୟନାରାୟଣଦେବଙ୍କ ପୂଜା—
3. The ceremony of worshipping Satyanārāyaṇa Deity.

୪ । (ଲକ୍ଷଣାର୍ଥ) ଉଚ୍ଚୈଃସ୍ୱରରେ କଳି କଜିଆ—
4. (figurative) Loud quarrelling.

**ପାଲଇବା**—ପ୍ରାଦେ (ମେଦିନୀପୁର) କ୍ରି. (ବଂ ପାଲାନ)-ପଳାଇବା—
Pālaibā To run away.

**ପାଲ କରିବା**—ଦେ. କ୍ରି—୧ । 'ପାଲ' ନୃତ୍ୟ ଗୀତାଦି କରିବା—
Pālā karibā 1. To perform Pālā play.
ପାଲ ଲଗା(ଗେ)ଇବା } ଅନ୍ୟରୂପ
ପାଲ ଜମା(ମେ)ଇବା }
୨ । କଳିକଜିଆ କରିବା—2. To quarrel.
୩ । ଗୋଲମାଲ କରିବା—3. To set up a row.

**ପାଲଗି**- ଦେ. ବି (ସଂ. ପାଦ+ଲଗ୍ନ)—ଦଣ୍ଡବତ—
Pālāgi Obeisance.

**ପାଲାଗନ** ଅ—ଆପଣଙ୍କୁ ନମସ୍କାର !—Obeisance to you!

**ପାଲ ବଢ଼ା(ଢ଼େ)ଇବା** - ଦେ. କ୍ରି—୧ । ପାଲର ଅଭିନୟ ସମାପ୍ତି କରିବା—
Pālā bardhā(rdhe)ibā 1. To finish the performance of Pālā.
ପାଲା সାঙ্গ କରা
( ପାଲ ସାଙ୍ଗ କରିବା—ଅନ୍ୟରୂପ ) ୨ । ( ଲକ୍ଷଣାର୍ଥ ) କୌଣସି ଆଡ଼ମ୍ବର ବା ଗୋଲମାଲମୟ କର୍ମର ସମାପ୍ତି କରିବା—
2. (figurative) To end any matter or show or ado.

**ପାଲ ବଢ଼ିବା**—ଦେ. କ୍ରି—ପାଲର ଅଭିନୟର ସମାପ୍ତି—The conclusion of the performance of a
Pālā bardhibā
ପାଲା সାঙ্গ হওয়া (ପାଲ ସାଙ୍ଗ ହେବା—ଅନ୍ୟରୂପ) Pālā

**ପାଲବାଲା**—ଦେ. ବି—ପାଲ ବୋଲିବା ଗାୟକ ବା ନର୍ତ୍ତକ—
Pālābālā 1. The actor or singer of Pālā songs
ପାଲଉଆଲା } ଅନ୍ୟରୂପ
ପାଲଗୁଆଲା }
[ ଦ୍ର—ଏକଦଳ ପାଲବାଲା ୫ କିମ୍ବା ୬ ଜଣ ଥାଆନ୍ତି । ଏମାନେ ପୁଣି ଦୁଇଟି ଦଳରେ ବିଭକ୍ତ ହୋଇ ପାଲ ବୋଲନ୍ତି ।

୧ମ ଦଳ—୧. ଗାୟକ (ଏହାଙ୍କଠାରେ ଚଉଁର ଓ ମନ୍ଦିରା ଥାଏ), ୨. ବାଦ୍ୟକ ( ମୃଦଙ୍ଗ ବଜାଇବାବାଲା ), ୨. ଶିରପାଳିଆ, ଶ୍ରୀପାଳିଆ ବା ଡାହାଣ ପାଳିଆ ( ଏ ହାତରେ ଝାଞ୍ଜ ଧରିଥାଏ, ପାଳ ଦେଲା ବେଳେ ବଜାଏ, କିନ୍ତୁ ଗାୟକ ବୋଲିବା ବେଳେ ବଜାଏ ନାହିଁ, ଗାୟକ ସଙ୍ଗେ କେବଳ ଗୀତ ବୋଲେ ।

୨ୟ ଦଳ ( ଯେ ଗାୟକର ବୋଲିବା ଗୀତର ପାଳ ଧରନ୍ତି ବା ଘୋଷାକୁ ଆବୃତ୍ତି କରନ୍ତି ।

ଦ୍ୱିତୀୟ ଦଳରେ ୧. ପାଳିଆ, ୨. ପାଳିଆ, ୩. ପାଳିଆ, ଏ ଦୁଇ ଜଣ ବା ତିନି ଜଣ ଝାଞ୍ଜ ଧରିଥାନ୍ତି ଓ ପାଳ ଧରିଲା ବେଳେ ବଜାନ୍ତି ।

ଗାୟକ ଗୀତ ବୋଲେ, ବାଦ୍ୟକ ମୃଦଙ୍ଗ ବଜାଏ ଓ ଶ୍ରୀପାଳିଆ ମଧ୍ୟ ଗାୟକ ସଙ୍ଗେ ବେଳେ ବେଳେ ବୋଲେ । ୨ୟ ଦଳ ପାଳ ଧରନ୍ତି । ଗାୟକମାନଙ୍କ ମଧ୍ୟରେ ଜଣେ ଜଣେ ପଣ୍ଡିତ ଓ ଆଶୁ କବି ଥାଆନ୍ତି । ଗାୟକ ଗୀତ ବୋଲିବା ବେଳେ ଓ ପାଳିଆ ପାଳ ଧରିବା ବେଳେ ବାଦ୍ୟକ ମୃଦଙ୍ଗ ବଜାଏ, ଶିରପାଳିଆ ଗାୟକ ସଙ୍ଗେ ଗୀତ ବୋଲେ, କିନ୍ତୁ ପାଳିଆଙ୍କ ସଙ୍ଗେ ଝାଞ୍ଜ ବଜାଏ । ଗାୟକର ଅନୁପସ୍ଥିତି ବା ଅକ୍ଷମ ଅବସ୍ଥାରେ ଶିରପାଳିଆ ପାଲରେ ଗାୟକର କାର୍ଯ୍ୟ କରେ । ]

**ପାଲ ମନାସିବା**—ଦେ. କ୍ରି—ମନୋବାଞ୍ଛା ସିଦ୍ଧ ହେଲେ ସତ୍ୟନାରାୟଣ ବା ସତ୍ୟପୀର ଗୋସାଇଙ୍କୁ ଶିରଣୀ ଭୋଗ କରି ପାଲର ଅଭିନୟ କରାଇବା ପାଇଁ ଧର୍ମତଃ ପ୍ରତିଜ୍ଞା କରିବା—To vow to have the performance of Pālā on the event of a person's wished for object being attained
Pālā manāsibā
**ପୂଜା মানত**
(ପାଲ ଯାଚିବା—ଅନ୍ୟରୂପ)

[ ଦ୍ର—ମକଦମା ଡିକ୍ରୀ ହେଲେ, ପୁଅ ଜନ୍ମ ହେଲେ ବା ଅନ୍ୟ ମନସ୍କାମନା ସିଦ୍ଧ ହେଲେ ମୁଁ ଗୋଟିଏ ବା ଥରେ ପାଲ କରାଇବି ବୋଲି ଲୋକେ ପ୍ରଭୁଙ୍କୁ ଡାକି ପାଲ ମନାସନ୍ତି । କେହି ୪ ପାଲ କେହି ୮ ପାଲ ଓ କେହି କେହି ୧୬ ପାଲ ଯାଚନ୍ତି ଏବଂ କାମ ଫଳେ ହେଲେ ତଦନୁସାରେ ଏକ ବା ତତୋଽଧିକ ପୋଥିପାଲ କିମ୍ବା ଠିଆପାଲ କରନ୍ତି । ]

**ପାଲାଶ**—ସଂ. ବିଣ. ( ପଳାଶ+ଅ )—୧ । ପଳାଶ ବୃକ୍ଷ ସମ୍ବନ୍ଧୀୟ—
Pālāśa 1. Relating to Palāśa tree.
(ପାଲାଶୀ—ସ୍ତ୍ରୀ) ୨ । ହରିତ୍ ବର୍ଣ୍ଣବିଶିଷ୍ଟ—2. Green (colour).

ସ. ବ—୧ । ତମାଲପତ୍ର ( ହି. ଶ. )—
1. Tamāla leaves.
୨ । ତେଜପତ୍ର ( ହି. ଶ. )—2. Cassia leaves
୩ । ହରିତ୍‌ବର୍ଣ୍ଣ—3. Green colour (Apte).
୪ । ପ୍ରାଚୀନ ମଗଧ ଦେଶ—
4. The ancient Magadha country (Apte).

**ପାଲ୍ସାୟ**—ଦେ. ବ. (ସ. ପାଲ+ସମାପ୍ତି)—ପାଲ୍ଅଭିନୟର ସମାପ୍ତି—
Pālā sāya — The concluding of a Pālā performance.
ପାଲାସାୟ

**ପାଲ** ( ଧାତୁ )—ସ. ( ପା ଧାତୁ ଣିଚ )—ପାଳନ କରିବା; ପାଳିବା—
Pāli (root) To preserve, to bring up; to observe; to obey; to carry out.

**ପାଲ(ଲୀ)**—ସ. ବ. ( ପା ଧାତୁ ଣିଚ୍=ପାଲ ଧାତୁ= ରକ୍ଷା କରିବା+କର୍ମ. ଇ, ଈ )—୧ । ପଂକ୍ତି; ଶ୍ରେଣୀ—
Pāli(lī) 1. Row; line.
୨ । ପ୍ରାନ୍ତଭାଗ; ଧାର; ସୀମା—
2. Margin; end; edge; extremity; limit.
୩ । ପ୍ରଦେଶ—3. Province; part of a country.
୪ । ଖଡ୍ଗାଦିର ତୀକ୍ଷ୍ଣ ଧାର; ଧାର—
4. Edge of sharp weapons.
୫ । ସିଦ୍ଧ କରିବାର ପାତ୍ର—5. Cooking pot; boiler.
୬ । ଅଙ୍କ; କୋଳ—6 Lap; bosom (Apte).
୭ । ପ୍ରଶଂସା ବଚନ—7. Eulogisim; praise.
୮ । କୋଣ (ହି. ଶ.)—1. Angle; corner.
୯ । ହାଣ୍ଡି; ଥାଳୀ—9. A pot.
୧୦ । ସେତୁ; ବନ୍ଧ—10. Embankment; dam.
୧୧ । ପୋଲ; ବାନ୍ଧ—11. Bridge; causeway (Apte).
୧୨ । ଦାଗ; ଚିହ୍ନ—12. Sign; mark; spot.
୧୩ । ସୀମା—13. Boundary.
୧୪ । ଶ୍ମଶ୍ରୁଳା ସ୍ତ୍ରୀ—14. A bearded woman.
୧୫ । ପିଚ୍ଛ—15. Haunch; hip ( Apte ).
୧୬ । ଛାତ୍ରମାନଙ୍କ ବୃତ୍ତି—16. Stipend; scholarship.
୧୭ । କର୍ଣ୍ଣଲତାଗ୍ର; କାନର ଅଗ୍ର ଭାଗ ( ଯେଉଁ ସ୍ଥାନରେ ଲୋକ ଅଳଙ୍କାର ଝୁଲିବା ପାଇଁ ଫୋଡ଼ା ହୁଏ—
17. The tip of the ear.
୧୯ । ଉକୁଣ୍ଡାଦି; ଉକୁଣୀ—19. Louse.
୨୦ । ଗୋରୁଙ୍କ ଅଟାଳ; ଗୁହାଳ; ଗୁହାଳ—
20. A crib for a cattle; a sty.
୨୧ । ପାତ୍ରବିଶେଷ; ଶସ୍ୟ ମାପିବାର ମାଣ—
21 A small measuring pot for corn.
୨୨ । ରାଶି—22. Heap.
୨୩ । ପାଲ ଗଦା—23. Hayrick; stack of straw.
୨୪ । ଲମ୍ବ ଜଳାଶୟ—24. An oblong pond (Apte).
୨୫ । ଶିକ୍ଷା ପାଉଥିବା ଅବସ୍ଥାରେ ଗୁରୁଙ୍କ ଦ୍ୱାରା ଶିଷ୍ୟର ପ୍ରତିପାଳନ କର୍ମ—25. The maintenance of the pupil by his teacher during his period of studies (Apte).
୨୬ । ପରିଧି—26. Circumference (Apte)
୨୭ । (ପାଲୀ) ପାକପାତ୍ର, ହାଣ୍ଡି (ହି. ଶ)—
27. A pot; boiler (Apte)
୨୮ । ଏକପ୍ରସ୍ଥ ପରିମିତ ତଣ୍ଡୁଲ (ପ୍ରାୟ ପାଞ୍ଚସେର)—
28. A particular measure of capacity (Apte).
୨୯ । ପାଲ—29. Sail (Ganguly).

ଦେ. ବ. (ସ. ପର୍ଯ୍ୟାୟ)—୧ । ପର୍ଯ୍ୟାୟ, କୌଣସି କାର୍ଯ୍ୟ କରିବାର କ୍ରମିକ ସମୟ—1. Turn or change of doing any work in succession.
ପାଳା, ପାଳି
ପାରୀ
୨ । ନିର୍ଦ୍ଧାରିତ ସମୟର କ୍ରମ—
2. Fixed time in succession.
୩ । ଥର—3. Time.
ପାଁଚପଞ୍ଚ ନଃ ନା ଛମା ଅଗରେ ଜ ଧର ପାଲିଏମାଃ ଉଦ୍ଧର ଗୋ ।
ଦେବ ସୂର୍ଯ୍ୟ, କଣୋଗଡମ୍ବ ପ ଗୀତ ।
୪ । ନିର୍ଦ୍ଦିଷ୍ଟ ସମୟ—4 Fixed time.
ଚନ ବକେ ମୋର ଚଉଠ ଭଗ ପାଲ—କୃଷ୍ଣସିଂହ ମହାଭାରତ ବନ ।
୫ । ପର୍ଯ୍ୟାୟକ୍ରମେ ପୂଜା ଓ ସେବା ଆଦି କରିବାର ନିର୍ଦ୍ଦିଷ୍ଟ ଦିବସ ବା ସମୟ—5. Turn of offering worship.
୬ । ସପ୍ତାହର ନିର୍ଦ୍ଧାରିତ ଦିବସ (ଯଥା—ହାଟ ପାଲ)—
6. Week-day of a weekly market.
୭ । ପ୍ରଧାନ ଗାୟକ ଗୀତ ବୋଲିବା ପରେ ଗୀତର ଯେଉଁ ଘୋଷାକୁ ଅନ୍ୟମାନେ ବୋଲନ୍ତି—7. Recital of the refrain of a song.

ପ୍ରାଦେ. (ଗଞ୍ଜାମ) ବ—ନିବ୍, ଲୁହାର କଲମର ଅଗ୍ର—Nib.

**ପାଲି**—ଦେ. ବ. [ପାଲ=ପଂକ୍ତି; ପଲ୍ଲୀ=ଗ୍ରାମ ଅର୍ଥାତ୍ ଗ୍ରାମ୍ୟଲୋକଙ୍କ କଥିତ ଭାଷା, କିମ୍ବା ପାଲାଶ=ମଗଧ ଦେଶ)—୧ । ଯେଉଁ ଭାଷାରେ ବୁଦ୍ଧଦେବ ଉପଦେଶ ଦେଉଥିଲେ ଓ ଯହିଁରେ ବୌଦ୍ଧ ଗ୍ରନ୍ଥମାନ ଲିଖିତ ହୋଇଅଛି; ସଂସ୍କୃତର ଗୋଟିଏ ପ୍ରାକୃତ ଭାଷା; ବୌଦ୍ଧମାଗଧୀ ଭାଷା—1. The Pāli language.
Pāli
ପାଳୀ
ପାଲୀ

[ଦ୍ର—ଏହି ଭାଷାରେ ବୌଦ୍ଧମାନଙ୍କ ଧର୍ମଗ୍ରନ୍ଥ ଲିଖିତ ହୋଇଥିଲା । ଭାରତବର୍ଷରେ ସଂସ୍କୃତ ଭାଷା (classical language) ପଢ଼ାହେଲା ଭଳି ଶ୍ୟାମ, ବ୍ରହ୍ମଦେଶ, ସିଂହଳ ଆଦି ଦେଶମାନଙ୍କରେ ପାଲିଭାଷା ଅଧୀତ ହେଉଅଛି । ବୌଦ୍ଧ ଧର୍ମର ଅଭ୍ୟୁଦୟ କାଳରେ ଏ ଭାଷାର ପ୍ରଚାର ପଶ୍ଚିମରେ ବାହ୍ଲୀକ (ଅଫଗାନ୍ ତୁରସ୍କର ଉତ୍ତର) ଠାରୁ ପୂର୍ବରେ ଶ୍ୟାମ ଦେଶ ପର୍ଯ୍ୟନ୍ତ ଓ ଉତ୍ତର ଭାରତରୁ ଦକ୍ଷିଣରେ ସିଂହଳ ପର୍ଯ୍ୟନ୍ତ ହୋଇଥିଲା । ବୁଦ୍ଧ ପାଲିଭାଷାରେ ଧର୍ମ ଉପଦେଶ ଦେଇ ଥିବାର କଥିତ ଅଛି । ବୌଦ୍ଧଧର୍ମ ଗ୍ରନ୍ଥ ଓ ଅଶୋକଙ୍କ ଶିଳାଲିପିମାନ ଏହି ଭାଷାରେ ଲିଖିତ । ପାଲୀ ଭାଷାର ପୁରାତନ ବ୍ୟାକରଣ କଚାୟନ ( କାତ୍ୟାୟନ )ଙ୍କ 'ସୁଗନ୍ଧକଳ୍ପ' । ଏ କାତ୍ୟାୟନଙ୍କୁ କେହି କେହି ଅର୍ଥାତ୍ ଖ୍ରୀ. ପୂ. ଷଷ୍ଠଶତାବ୍ଦୀର (ବୁଦ୍ଧଦେବଙ୍କ ପ୍ରତ୍ୟକ୍ଷ

ଶିଷ୍ୟ) ଓ କେହି କେହି ଖ୍ରୀ. ପୂର୍ବ ୩୦୦ ଶତାବ୍ଦୀର ଲୋକ ବୋଲି କହନ୍ତି । କେହି କେହି ବରରୁଚି କବିଙ୍କୁ ଏହି କାତ୍ୟାୟନ ବୋଲି କହନ୍ତି । କାତ୍ୟାୟନ ପାଲୀକୁ ମାଗଧୀ ଓ ମୂଳଭାଷା ବୋଲି କହିଅଛନ୍ତି । କିନ୍ତୁ ଅନେକ ପଣ୍ଡିତ ପାଲୀକୁ ମାଗଧୀ ଠାରୁ ପୃଥକ୍ ବୋଲି କହନ୍ତି । କିନ୍ତୁ ପାଲୀଭାଷା ଏକପ୍ରକାର ପ୍ରାଚୀନ ମାଗଧୀଭାଷା ଅଟେ । ଏହାକୁ ପ୍ରାଚୀନ ମାଗଧୀ ପ୍ରାକୃତ ବୋଲାଯାଇ ପାରେ । ପାଲୀ ଶବ୍ଦର ଉତ୍ପତ୍ତି ସମ୍ବନ୍ଧରେ ମଧ୍ୟ ପଣ୍ଡିତମାନଙ୍କର ମତଭେଦ ଦେଖାଯାଏ । କେହି କେହି କହନ୍ତି ଏହା 'ପଲ୍ଲୀ' ବା ପଡ଼ାଗାଁର ପ୍ରଚଳିତ ଭାଷା ଥିଲା । କେହି କେହି କହନ୍ତି ଏହା 'ପାଲାଶ' ବା ମଗଧର ଭାଷା । କେହି କେହି କହନ୍ତି ଏହା ପଞ୍ଚମ ଭାଷା, କେହି କେହି କହନ୍ତି ଏହା ପାଟଳୀ ବା ପ୍ରାଚୀନ ପାଟଣାର ଭାଷା ଥିବାରୁ ଏହି ନାମ ହୋଇଅଛି । କିନ୍ତୁ ପାଲୀ ଶବ୍ଦ ସଂ.ପାଳ (ପଂକ୍ତି) ରୁ ବାହାର ଥିବାର ଅନୁମାନ ଯୁକ୍ତିଯୁକ୍ତ ବୋଧ ହେଉଅଛି । ବୌଦ୍ଧ ଧର୍ମର ପ୍ରାଚୀନ ହୀନଯାନ ଶାଖାର ସମସ୍ତ ଧର୍ମଗ୍ରନ୍ଥ ପାଲୀ ଭାଷାରେ ଲିଖିତ, କିନ୍ତୁ ନବ ମହାଯାନ ଶାଖାର ଗ୍ରନ୍ଥମାନ ପରେ ସଂସ୍କୃତରେ ଲିଖିତ ହୋଇଅଛି—ହ ଶ । ]

ଛକ ୨ । (ପଶାଳୀ, ସଂ ଶାରଫଲ) ପଶାଖେଳର ବା ଶତରଞ୍ଜ **चौसरकी बिसात; पाशा** ଖେଳର ଘରମାନ ଚିତ୍ର ହୋଇଥିବା କନାର ଚଉକ—A chequered cloth board for playing the game of dice; diceboard

ହେମ ପଶାଘର ପଞ୍ଚିକ ପାଲରେ ଚଉଦିକ ଆଉ ଚିଆଡ଼ଙ୍କୁ ।
ହରେକୃଷ୍ଣ. ସଙ୍ଗୀତ ।

୩ । ସ୍ତ୍ରୀମାନଙ୍କ ନାମ—3. Name given to females.

ପ୍ରାଦେ. (ସମ୍ବଲପୁର) ବି. (ସଂ. ପଲ୍ଲି)—୧ । ଗ୍ରାମର ପଡ଼ା—
1. Part or quarter of a village.
୨ । ପଡ଼ାଗାଁ—2. Hamlet.
( ଯଥା—ବରପାଲି । )

**ପାଳଅ**—ଦେ. ବି—ପାଲାବାଲାଙ୍କ ମଧ୍ୟରେ ଯେଉଁ ଲୋକ ପାଳ ଧରେ
**Pālia** ବା ଗାୟକ ବୋଲିବା ଗୀତକୁ ଆବୃତ୍ତି କରେ, ଅନୁଗାୟକ—
**मैंथो** The singer who follows the principal singer of a Pālā in chorus.

ପାଲବାଲ ପାଳଅମାନେ ଏକସ୍ୱରରେ ଗୀତ ଧରିଲା ପରି
ସମସ୍ତେ ଡାକ ଦେଲେ । ଫକୀରମୋହନ. ଛମାଣ ଅଠଗୁଣ୍ଠ ।

ଦେ. ବିଣ. (ପୁଂ. ସ୍ତ୍ରୀ)—ଯେଉଁ ବ୍ୟକ୍ତିର ସେବା ବା ଗୃହକର୍ମର ପାଳି ଥାଏ—A person having the turn of service on a particular day.
(ଯଥା—ପାଳଅ ପାଇକ; ପାଳଅ ପୋଇଲି ।)

**ପାଳିଆ**—ପ୍ରାଦେ. (ଗଞ୍ଜାମ) ବି—ଅତି ନୀଚ ଶୂଦ୍ରଜାତିବିଶେଷ—
**Pālia** A low caste Sūdra.

**ପାଳି ଆଣିବା**—ଦେ. କ୍ରି—ଶିଶୁଆଦିଙ୍କୁ ବହୁକାଳ ପାଳନ କରି ବଢ଼ାଇବା—
**Pāḷi ānibā** **पालतेथना** To bring up a child.

**ପାଳି କରିବା**—ଦେ. କ୍ରି—ଆପଣାର ପାଳିର ନିର୍ଦ୍ଦିଷ୍ଟ ସେବା, କାର୍ଯ୍ୟ ବା
**Pāḷi karibā** ଗୃହକର୍ମ କରାଇବା—To work at one's
**पालाकरना पारीकरना** turn of service.

**ପାଳିକା**—ସଂ. ବି. (ପାଳ+କ+ସ୍ତ୍ରୀ. ଆ)—୧ । ଶସ୍ତ୍ରର ଖଡ୍ଗ ଧାର—
**Pāḷikā** 1. Sharp edge of a weapon.
୨ । କାନପତ୍ର—2. Lobe of the ear.

**ପାଳି ଖଟିବା**—ଦେ. କ୍ରି—ପାଳି କରିବା (ଦେଖ)
**Pāḷi khaṭibā** **पाला खाटा** Pāḷi karibā (See)

**ପାଲ୍କି**—ଦେ ବି (ସଂ ପଲ୍ୟଙ୍କ)—ପାଲ୍କୀ, ପାଲ୍କ—
**Pālinki** A palanquin; a palky.
(ପାଲକ—ଅନ୍ୟରୂପ) [ଦ୍ର—୩।୪ ହାତ ଲମ୍ବ, ୨ ହାତ ଚଉଡ଼ା, ୨ ହାତ ଉଚ୍ଚ କାଠର ବାକ୍ସ ପରି ଯାନବିଶେଷ । ଏଥିର ଆଗ ଓ ପଛରେ ଗୋଟିଏ ଲେଖାଏଁ ବାଉଁଶ ଲାଗିଥାଏ । ସେହି ବାଉଁଶକୁ ୨ଜଣ ବା ୩ଜଣ ଲେଖାଏଁ କାନ୍ଧରେ ବସାଇ ନେବା ଆଣିବା କରନ୍ତି । ଆଗ ବାଉଁଶକୁ ଲୁମ୍ବ ଓ ପଛ ବାଉଁଶକୁ ପିଙ୍ଗ କହନ୍ତି । ପାଲ୍କି ୨ ପ୍ରକାର, ଯଥା—୧ । ଆଧୁନିକ ପାଲ୍କି ବା ସବାରି । ୨ । ମହରବଟ୍ଟୀ ପାଲ୍କି । ମହରବଟ୍ଟୀ ପାଲ୍କି ଗୋଟିଏ ପଲଙ୍କ ପରି ହୋଇଥାଏ ଓ ଏହା ଉପର ଦେଇ '——'' ଏହିପରି ଗୋଟିଏ ବକ୍ରମଧ୍ୟ ବାଉଁଶ ବନ୍ଧା ହୋଇଥାଏ । ବର୍ତ୍ତମାନ ମହରବଟ୍ଟୀ ପାଲ୍କି ବରକନ୍ୟାଙ୍କ ବିବାହ ଶୋଭାଯାତ୍ରାରେ ବ୍ୟବହୃତ ହୁଏ । ପାଲ୍କିକୁ ଆମ ଦେଶରେ ବେହେରା ଓ ବାଉରିମାନେ କାନ୍ଧାନ୍ତି, ବାଲେଶ୍ୱର ପ୍ରାନ୍ତ ଓ ମେଦିନୀପୁର ଅଞ୍ଚଳରେ ପାଣ ଓ ହାଡ଼ିମାନେ କାନ୍ଧାନ୍ତି, ଓ ପଶ୍ଚିମରେ 'କାହାର'ମାନେ କାନ୍ଧୁଆନ୍ତି । ବେହେରାମାନେ ନାନାପ୍ରକାର ସ୍ୱରରେ ଗୀତ ଗାଇ ଡାକ ଡାକି ପାଲ୍କି ବୁହାନ୍ତି ।]

**ପାଲ୍କିଆ**—ଦେ. ବି—ପାଲ୍କି ବାହକ—
**Pālinkiā** A palki bearer.
**पालकीवाहक, कहार** ଟେକି ପାଲ୍କିଆ ଅପର
ନିତ୍ୟ ଭିକାରୀ ସଙ୍ଗେ ଭେଟି । ଭୂପତି. ପ୍ରେମପଞ୍ଚାମୃତ ।

**ପାଲ୍କି ଉପରେ ପାଟଛତା**—ଦେ. ବି (ପ୍ରବଚନ)—(ଲକ୍ଷଣାର୍ଥ)
**Pālinki upare pāṭachhatā** ପାଲ୍କିରେ ବସିଥିବା ବ୍ୟକ୍ତି
**भागका भूतकमाय, एकहल सर्गमें वहना** ଭଭବଶାଳୀ ଥିବାର ଅନୁମାନ ସ୍ୱାଭାବିକ । ପୁଣି ପାଲ୍କି ପାଖେ ପାଖେ ଜଣେ ବ୍ୟକ୍ତି ପାଟର ଛତା ମେଲି ପାଲ୍କି ଉପରକୁ ଧରିଥିଲେ ତାହା ଅଧିକତର ବିଭବର ପରିଚାୟକ ହୁଏ—(ଲିଙ୍ଗ) The state of one lucky event befalling on an already lucky person.

**ପାଲ୍କି ଚଢ଼ା**—ଦେ. କ୍ରି—ପାଲ୍କିରେ ଚଢ଼ି ଯାତାୟାତ କରିବା—
**Pālinki chaṛhā** To ride on a palki; to use the
**पालकी चढ़ना** palki as a conveyance.
ଦେ. ବିଣ—ଯେଉଁ ବିଭାଘରରେ ବିଭା ହେବାପାଇଁ ବର କନ୍ୟାର ଘରକୁ ଓ ବିବାହପରେ ବର ଓ କନ୍ୟା ଏକତ୍ର ବରଘରକୁ
**पालकीचढ़ा** ପାଲ୍କି ଚଢ଼ି ଆଡ଼ମ୍ବରସହିତ ଯାଆନ୍ତି—
(a marriage) In which the bridegroom is taken in a palki for marriage and returns with the bride in palki and with procession.

**ପାଲିଙ୍କି ଚଢ଼ା ବାହା**—ଦେ. ବି.—ସାଡମ୍ବର ବିବାହ ଉତ୍ସବ, ଯେଉଁ ବିବାହରେ ବର ବାଜା ନେଇ ଯିବା ପାଇଁ ପାଲିଙ୍କି ଚଢ଼ି ଯାଆନ୍ତି ଓ ବିବାହ ପରେ କନ୍ୟା ସହିତ ଏକ ପାଲିଙ୍କିରେ ବସି ଶୋଭାଯାତ୍ରା କରି ବାହୁଡ଼ନ୍ତି—A marriage in which the bridal procession is accompanied with pomp and a palki with the bridegroom.
Pālinki chardhā bāhā
ପାଲିଙ୍କି ଚଢ଼ା ବାହାଘର, ପାଲିଙ୍କି ଚଢ଼ା ବଭା, ପାଲିଙ୍କି ଚଢ଼ା ବଭାଘର } ଅନ୍ୟରୂପ
पालकी चढ़ा विवाह ग

**ପାଲିଙ୍କି ବେହେରା**—ଦେ. ବି—ସବାରି ବେହେରା (ଦେଖ)
Pālinki beherā कहार Sabāribeherā (see)

**ପାଲିଜର**—ଯେଉଁ ଜର ପର୍ଯ୍ୟାୟକ୍ରମେ ଏକ ବା ଅଧିକ ଦିନ ଛଡ଼ା ଆକ୍ରମଣ କରେ—Tertian or quartan fever.
Pālijara
পালাজ্বর पालिज्वर—अनःरहय

**ପାଲିତ୍ (ଥ୍)**—ଦେ. ବି. (ସଂ. ପାଲ ଧାତୁ)—ବଙ୍ଗ କାୟସ୍ଥମାନଙ୍କ ଉପାଧି ବିଶେଷ—Family title of some Kāyasthas; Palit (Bengalee).
Pālit (th)

**ପାଳିତ**—ସଂ. ବିଣ (ପାଳ ଧାତୁ+କର୍ମ ତ)—୧ । ରକ୍ଷିତ—1. Protected; preserved
Pālita
(ପାଳିତା—ସ୍ତ୍ରୀ) ୨ । ବର୍ଦ୍ଧିତ—2 Nourished; maintained; brought up.
ସଂ. ବି—ଶାଖୋଟ ବା ସହାଡ଼ା ଗଛ—Strebulus Asher (tree).

**ପାଳିତବ୍ୟ**—ସଂ. ବିଣ—(ପାଳ ଧାତୁ+କର୍ମ. ତବ୍ୟ)—ପାଳିତ ହେବାର ଉପଯୋଗୀ—Worthy of being maintained or preserved or nourished or observed
Pālitabya
(ପାଳିତବ୍ୟା—ସ୍ତ୍ରୀ)

**ପାଳି ଧରିବା**—ଦେ. କ୍ରି—ଗାୟକର ବୋଲିବା ଗୀତକୁ ଅନୁସରଣ କରି ଘୋଷିବା—To recite a song sung by a singer in chorous; to recite the refrain of a song.
Pāli dharibā
পালাধরা
सङ्गदेना
[ ଦ୍ର—ସତ୍ୟନାରାୟଣ ପାଲା ଗୀତ ଓ ଭାଗବତ ଆଦିର ପାଣ୍ଡୀଗଡରେ ଓ ସଙ୍ଗୀତରେ ପ୍ରଧାନ ଗାୟକକୁ ଗୀତ ବୋଲିବା ମଧ୍ୟରେ ମଧ୍ୟରେ ଅବସର ଦେବା ପାଇଁ ଏକାଧିକ ବ୍ୟକ୍ତି ପାଳି ଧରନ୍ତି । ଏମାନେ ପାଳି ଧରିବାବେଳେ ଗାୟକ ଟିକିଏ ଦମ୍ ନିଏ । ]

**ପାଳି ନେବା** ଦେ. କ୍ରି—ପାଳି ଆଣିବା (ଦେଖ)—
Pāli nebā Pāli ānibā (See)

**ପାଳିନ୍ଦ**—ସଂ. ବି—( ପାଳ ଧାତୁ=ପ୍ରତିପାଳନ କରିବା+ଇନ୍=ମଧୁମକ୍ଷିକାମାନଙ୍କୁ ପ୍ରତିପାଳନ କରେ ବୋଲି)—କୁନ୍ଦଫୁଲ—A short of jasmine.
Pālinda

**ପାଳିନ୍ଦୀ(ନ୍ଧୀ)**—ସଂ. ବି—(ପାଳ ଧାତୁ+ଇନ+ସ୍ତ୍ରୀ. ଈ)—୧ । ତ୍ରିବୃତ; ଭଦ୍ରୁଡ଼ୀ ଲତା; ଶ୍ୟାମାଲତା—1. A medicinal creeper.; Ipomea Turpe Thum.
Pālindī(ndhī)
ସଂ. ତ୍ରିପୁଟା, ତ୍ରିବୃତା, ଶ୍ୟାମା
तेउड़ी
तरवद्
୨ । କୁଆମଇତା (ହରେକୃଷ୍ଣ ଦ୍ରବ୍ୟଗୁଣ)—2. A kind of cucurbitatious fruit and its creeper.
ମ. ଉପୃଓ
ତେ. ଅଲତେଗଓ

**ପାଳିବା**—ଦେ. କ୍ରି. (ସଂ. 'ପା ଧାତୁ ଣିଚ୍=ପାଳ ଧାତୁ)—୧ । ଶିଶୁକାଳରୁ ଲାଳନ ପାଳନ କରିବା—1 To bring up; to nourish from childhood
Pālibā
পালা पालना
ତୋଲା ପ୍ରଥମରୁ ତବେ ତୁମ୍ଭକୁ ଯଶୋଦା ଅଛନ୍ତି ପାଳି—
ଜଗନ୍ନାଥ. କଳେବରଣ ।
୨ । (ଜୀବ ଆଦିଙ୍କୁ) ଖାଇବାକୁ ଦେଇ ପୋଷିବା—2 To tend, to rear.
୩ । ରଖିବା—3. To keep.
୪ । ଜଗିବା, ରକ୍ଷା କରିବା—4. To save; to protect; to watch.
ସେ କଳୁଗୃହ ପ୍ରସେଚନ ପାଳ ଅଛ । କୃଷ୍ଣସିଂହ. ମହାଭାରତ. ଅଦ ।
୫ । (ଆଦେଶ) ମାନିବା—5 To obey or to carry out (an order).
ବେତୁ କାହୁଁ ବୋଲ ଆଉ ପାଳବେ ପୋଇଲ ଲେଲେଇ ହୋଇ ।
ଭକ୍ତ. ପ୍ରେମସୁଧାନିଧି
୬ । ପ୍ରତିଜ୍ଞା ଅନୁସାରେ କାର୍ଯ୍ୟ କରିବା—6. To carry out one's promise
୭ । ବ୍ରତ ଆଦିର ବିଧି ବା ନିୟମ ଅନୁସାରେ କାର୍ଯ୍ୟ କରିବା—7. To observe (a rule or penance or vow.)
୮ । (ରାଜ୍ୟ ଓ ପ୍ରଜା) ସୁଶାସନ କରିବା—8. To rule with mercy and justice.
ସେ ରାଜ୍ୟ ପାଳନ୍ତ ଏତେ ପଇନେ । ମଧୁସୂଦନ ।
୯ । ଜନ୍ମଜାତ ବା ମୃତକଜାତ ଅଶୌଚର ବିଧି ରକ୍ଷା କରିବା—9. To observe the rules of pollution in cases of death or birth amongst relations.
୧୦ । କୌଣସି ବ୍ୟକ୍ତିକୁ ଗ୍ରାସାଚ୍ଛାଦନ ଦେଇ ତାହାର ଜୀବନ ରକ୍ଷା କରିବା; ପୋଷିବା—10. To maintain or support a person by providing him with food and raiment.

**ପାଳୁ**—ଦେ. ବି—ପାଳୁଅ (ଦେଖ)
Pālu Palua (See)
ପ୍ରାଦେ. (ଗଞ୍ଜାମ). ବି—(ତେ. ପାଲୁ—ଦୁଧ, ଦୁଗ୍ଧ—Milk.

**ପାଲୁ**—ପ୍ରାଦେ (ଗଞ୍ଜାମ) ବି—୧ । କାଠ ଚିକ୍କଣ କରିବା ଅସ୍ତ୍ରବିଶେଷ, ବଢ଼େଇର ରନ୍ଦା—1. A carpenter's plane.
Pālu
रांदा
୨ । ପାଳୁ (ଦେଖ)—2. Pālu (See).

**ପାଳୁଅ**—ଦେ. ବି. (ସଂ. ପଲଲ—ତିଳଚୂର୍ଣ୍ଣ, ପଙ୍କ)—୧ । ହଳଦୀ ଜାତୀୟ ବଡ଼ ବନ୍ୟଶାକ ବୃକ୍ଷବିଶେଷର ଶ୍ୱେତ ସୁଗନ୍ଧ ମୂଳ—1. Curcuma Zeodharia; Zeodary; Starch; Indian arrow root; Curcuma Anyustifolia; Curcuma Aromatica (Haines).
Pālua
পালো; শটী
कचूर
ସଂ. ଗନ୍ଧସାର, କର୍ଚ୍ଚୂର, ବେଧମୁଖ୍ୟ, ଦ୍ରାବିଡ଼, କଳ୍ପକ, କର୍ଚ୍ଚୂର, ଶଠୀ, ଗନ୍ଧମୂଳୀ, ଜଟାଳ
[ ଦ୍ର—ପାଳୁଅ ଗଛ ପୂର୍ବ, ମଧ୍ୟ ଓ

ଫା. ନରଂବାଦ ଦକ୍ଷିଣ ଭାରତରେ ବେଶି ହୁଏ।
ମ. କଚ୍ଚୋଗ୍ର ପୂର୍ବ ହିମାଳୟ ଓ ଚଟ୍ଟଗ୍ରାମରେ ଏ ଗଛ
ଗୁ. କଚୂରୋ ବେଶୀ ଜନ୍ମେ । ଶୀତ ଆରମ୍ଭରେ
ଆ ଏରକୁଲକାପୁର ଏହାର ମୂଳ ଭଲ ହୋଇ ପୁଷ୍ଟ ହୋଇଥିବା ଜମିରେ ପୋତାଯାଏ ଓ ମଝିରେ ମଝିରେ ପାଣି ଦିଆଯାଏ । ପୁଷ ମାସରେ ଏହାର ପତ୍ର ଝଡ଼ିଗଲାରୁ ଏହାର ମୂଳକୁ ଖୋଳି ପାଣିରେ ଧୋଇ କୁଟି ପାଣିରେ ବତୁରାଇଲେ ତଳେ ଗୋଟିଏ ଧଳା ସ୍ତର ବସିଯାଏ । ତାକୁ ଶୁଖାଇ କୁଟି ଛାଣି ପାଳୁଅ କରାଯାଏ । ଏହା ରୋଗୀ ଓ ଶିଶୁମାନଙ୍କର ପଥ୍ୟ ଏବଂ ଲଘୁପାକ । ଏହି ପାଳୁଅରେ ଶୀଘ୍ର ଓ ପାୟସ ଆଦି ହୁଏ । ଏହା ଈଷତ୍ କର୍ପୂର ଗନ୍ଧବିଶିଷ୍ଟ । ପୂର୍ବେ ପାଳୁଅରେ ବକମ କାଠର ରଙ୍ଗ ମିଶାଇ ଲୋକେ ଅବିର ତିଆରି କରୁଥିଲେ, ଏବେ ମଧ୍ୟ କେତେକ ସ୍ଥାନରେ ପାଳୁଅରୁ ଅବିର କରାଯାଏ । ବୈଦ୍ୟଶାସ୍ତ୍ର ମତରେ ଏହା ଅଗ୍ନି ଦୀପକ, ରୁଚିକାରକ, କଟୁତିକ୍ତରସ ସୁଗନ୍ଧଯୁକ୍ତ ଉଷ୍ଣବୀର୍ଯ୍ୟ ଓ ଲଘୁ; ଏହା କୁଷ୍ଠ, ଅର୍ଶ, ବ୍ରଣ, କାସ, ଶ୍ୱାସ, ଗୁଳ୍ମ, ବାୟୁ, କଫ ଓ କ୍ରିମିନାଶକ, ଏହାଦ୍ୱାରା ଗଳଗଣ୍ଡ, ଗଣ୍ଡମାଳା, ଅପଚୀ ଓ ମୁଖର ଜଡ଼ତା ନିବୃତ ହୁଏ—ବଙ୍ଗଳା ଦ୍ରବ୍ୟଗୁଣ ।]
୨ । ପାଳୁଅ ଗଛର କନ୍ଦ ଓ ଶିଙ୍ଗଡ଼ା ଆଦିକୁ ଚୂର୍ଣ୍ଣ କରି ପ୍ରସ୍ତୁତ କରାଯିବା ଅଟା—2. Starch.

**ପାଳୁଆ**—ଦେ. ବିଣ – ଯାହା ପାଳ ବା ନଦୀଗର୍ଭସ୍ଥ ପଙ୍କ ଜମିରେ ଫଳେ—
Pāluā Grown in silted river-side lands.
(ଯଥା—ପାଳୁଆ ବାଇଗଣ ।)

**ପାଳୁଗୁଣ୍ଡି**—ଦେ. ବି – ପାଳୁଅ ଚୂର୍ଣ୍ଣ—
Pāluguṇḍi Sottie powder; Zeodary powder.
(ପାଳୁଆଗୁଣ୍ଡି—ଅନ୍ୟରୂପ)

**ପାଲୁଣୀ**—ଦେ. ବି. ସ୍ତ୍ରୀ – ୧ । ପାଣଜାତୀୟା ସ୍ତ୍ରୀ—
Pāluṇi 1. A female of the Pāṇa caste.
୨ । ଅପବିତ୍ରିଆଣୀ ସ୍ତ୍ରୀଙ୍କ ନାମ—
2. Name given to females.

**ପଲେଇବା**—ଦେ. କ୍ରି—ପାଳିବା କ୍ରିୟାର ଣିଜନ୍ତ ରୂପ—
Pāleibā Causative of Pālibā.

**ପାଲେଶ୍**—ବୈଦେ. ବି. (ଇଂ. ପାଲେଶ)—ରାଜପ୍ରାସାଦ—
Pāleś পালেস পালেস Palace.

**ପାଲେଶ ସୁପରଣ୍ଟେଣ୍ଡେଣ୍ଟ୍**—ବୈଦେ. ବି. (ଇଂ ପାଲେଶ୍ ସୁପରଣ୍ଟେଣ୍ଡେଣ୍ଟ୍)
Pāleś suparintendent ରାଜପ୍ରାସାଦର ତତ୍ତ୍ୱାବଧାରକ—
पालेस सूपरिंटेंडेण्ट पालेससुपरटेंट Palace superintendent.

**ପାଲ୍ୟ**—ସଂ. ବିଣ—(ପାଳଧାତୁ+କର୍ମ. ଯ)–ପାଳନୀୟ (ଦେଖ)—
Pālya Pālaniya (See).
ଦେ. ବିଣ—ପାଳିତ (ଦେଖ)—Pālita (See).
ପାଲ୍ୟ ଯାହାର ନୋହୁ ତାହାର ଅଭ କାହାର ଭୟ ।
ଅଭିମନ୍ୟୁ ବଦର୍ଣ୍ଣ ଧନଶ୍ରାମଣି ।

**ପାୱା**—ଦେ. ବିଣ—ପାହୁ (ଦେଖ)
Pāwā Pāhu (See)

**ପାୱା ଯିବା**—ଦେ. କ୍ରି. ( ବଙ୍ଗଳାରୁ ଅନୁକୃତ )—
Pāwā jibā ପ୍ରାପ୍ତ ହେବା; ମିଳିବା—To be had; to be
পাওয়া যাওয়া got; to be recovered.
पाया जाना

**ପାୱାର**—ବୈଦେ. ବି. ( ଇଂ. ପାୱାର )—
Pāwār ୧ । କ୍ଷମତା—1. Power.
পাওয়ার ୨ । ରେଲ ଗାଡ଼ି, ମଟର ଓ କଳ ଆଦିର ବଳ—
पावार 2. Power of a machine.
୩ । ମାଜିଷ୍ଟ୍ରେଟ ଆଦି ବିଚାରକଙ୍କୁ ନିର୍ଦ୍ଦିଷ୍ଟ ସୀମା ପର୍ଯ୍ୟନ୍ତ ବିଚାର କରିବା ଓ ଦଣ୍ଡ ଦେବାର କ୍ଷମତା—3. The power conferred on Magistrates or on the functionary to deal with cases of certain descriptions.

**ପାୱାର ହାଉସ୍**—ବୈଦେ. ବି ( ଇଂ. ପାୱାର ହାଉସ୍ )—
Pāwār hāus ଯେଉଁ ଘରେ କଳ ଦ୍ୱାରା ବିଦ୍ୟୁତ୍ ଉତ୍ପାଦିତ
পাওয়ার হাউস କରାଯାଇ ତାହା ବିଜୁଳି ବତୀ ଓ ପଙ୍ଖା ଆଦି
पावार हौस ଚଳାଇବା ପାଇଁ ଦୂରକୁ ପ୍ରେରିତ କରାଯାଏ—
Power house.

**ପାଶ୍**—ବୈଦେ. ବି. (ଇଂ. ପାଶ)—୧ । ପରୀକ୍ଷାରେ ସଫଳତା ଲାଭ ବା
Pāś ଉତ୍ତୀର୍ଣ୍ଣ ହେବା—1. Passing of an examination.
পাশ ୨ । କୌଣସି ସ୍ଥାନକୁ ଯିବାର ବା ମଟରଗାଡ଼ି ଆଦି
पास ଚଳାଇବାର ଲିଖିତ ଅନୁମତି ପତ୍ର, ଛାଡ଼ ଚିଠି—
2. A permit, a pass.
୩ । ବନ୍ଧୁକ ଆଦି ବ୍ୟବହାର କରିବା, ବାଜା ବଜାଇ ଶୋଭାଯାତ୍ରା ନେବା ଆଦି ପାଇଁ ସରକାରରୁ ମିଳିବା ଛାଡ଼(ଚିଠି)—
3. Licence for the use of a gun or for taking a procession.
୪ । ଆଧୁନିକ ଭେଳି ବିଦ୍ୟା (mismerism) ର ବାଜିକର ଅନ୍ୟ ଲୋକର ଦେହରେ ହାତ ବୁଲାଇବା ରୂପ କର୍ମ—
4. Pass ( given by a mismerist to hypnotise a patient. )
୫ । (ଫା. ପାସ୍) କୌଣସି ସୁଗନ୍ଧ ଦ୍ରବ୍ୟ ଛିଞ୍ଚିବାରେ ବ୍ୟବହୃତ ପାତ୍ର—A pot or vessel used in sprinkling scouts.
[ଦ୍ର—ଏହି ଅର୍ଥରେ ଅନ୍ୟ ଶବ୍ଦ ସଙ୍ଗେ ବ୍ୟବହୃତ ହୁଏ । ଯଥା—ଗୋଲାପ ପାଶ]
ବୈଦେ. ବିଣ.—ପରୀକ୍ଷାରେ ଉତ୍ତୀର୍ଣ୍ଣ—Passed.
ପ୍ରାଦେ. (ସମ୍ବଲପୁର) ବି.—(ଭୁଲ. ହି. ପାସ୍; ସଂ. ପାର୍ଶ୍ୱ)—
୧ । ପାଖ—1. Side.
୨ । ନୈକଟ୍ୟ—2. Nearness.
ପ୍ରାଦେ. (ସମ୍ବଲପୁର)—ବିଣ.—ଅଦୂର; ନିକଟ—
Adjoining; near; not distant.

**ପାଶ୍ କରିବା**—ଦେ. କ୍ରି.—(ଇଂ. ପାସ୍)—ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବା—
Pāś karibā To pass an examination.
পাশকরা पासकरना (ଫେଲ ହେବା—ବିପରୀତ)

ପାଶ୍ ଖବର୍ —ବୈଦେ. ବ.—(ଇଂ. ପାସ୍+ଫା. ଖବର)—ପରୀକ୍ଷାରେ
Pāś khabar ଛାତ୍ର ପାଶ୍ କରିଥିବା ସମ୍ବାଦ—
পাশের খবর News of an examinee's passing
पासकी खबर an examination.

ପାଶ୍ ନମ୍ବର—ବୈଦେ. ବ—(ଇଂ. ପାସ୍+ନମ୍ବର୍)—କୌଣସି
Pāś nambara ପରୀକ୍ଷାରେ ପରୀକ୍ଷାର୍ଥୀର ପାଶ କରିବା ପାଇଁ
পাশ মার্ক पास मारक ନିର୍ଦ୍ଧାରିତ ନମ୍ବର—Pass mark in
(ପାଶ୍ ମାର୍କ୍—ଅନ୍ୟରୂପ) an examination.

ପାଶ୍‌ପୋର୍ଟ୍(ର୍ଟ୍)—ବୈଦେ. ବ—(ଇଂ. ପାଶ୍‌ପୋର୍ଟ୍)—କୌଣସି ବ୍ୟକ୍ତି
Paś potṛ(rṭ) ଦେଶାନ୍ତରକୁ ଯିବା ପାଇଁ ସରକାରଙ୍କ ଠାରୁ ପେଉଁ
পাশপোর্ট ଛାଡ଼ପତ୍ର ନିଏ—Pass ports, a permit granted
पासपोर्ट to a person to travel in foreign countries

ପାଶ୍ ବୁକ—ବୈଦେ ବ (ଇଂ)—ଡାକ ଘରେ କିମ୍ବା ବ୍ୟାଙ୍କ୍ ଆଦିରେ
Paś buk ଟଙ୍କା ଜମା କରିଥିବା ଲୋକଙ୍କୁ ଟଙ୍କା ଜମା କରିବାର
পাশবুক पासबुक ନିଦର୍ଶନ ରୂପେ ମିଳିବା ହିସାବ ବହି—
(ପାଶ୍ ବହି—ଅନ୍ୟରୂପ) Pass book (of any bank).

ପାଶ୍ ଲିଷ୍ଟ - ବୈଦେ. ବ. (ଇଂ. ପାଶ୍ ଲିଷ୍ଟ)—କୌଣସି ପରୀକ୍ଷାରେ ପାଶ୍
Paś lisht କରିଥିବା ଛାତ୍ରମାନଙ୍କ ତାଲିକା—
পাশ লিষ্ট पास लिष्ट Pass list.
(ପାସ୍‌ଲିଷ୍ଟ—ଅନ୍ୟରୂପ)

ପାଶ—ସଂ. ବ—(ପଶ୍ ଧାତୁ=ବାନ୍ଧିବା+କରଣ ଅ, କିମ୍ବା ପାଶି ଧାତୁ
Pāśa +କରଣ ଅ.—୧ । ରଜ୍ଜୁ; ଦଉଡ଼ି—
1. Rope; string; cord.
୨ । ଶିକୁଳି—2. Chain; fetter; bond.
୩ । ପଶୁ ପକ୍ଷୀ ଆଦି ଧରିବାର ଫାଶ, ଫାନ—
3. Noose; snare; trap.
୪ । ଜାଲ—4. Net.
୫ । ଅକ୍ଷ; ପଶାଖେଳ—5. Game of dice.
୬ । ପାଶାସ୍ତ୍ର; ଶସ୍ତ୍ରଭେଦ; ପ୍ରାଚୀନ ଯୁଦ୍ଧାସ୍ତ୍ରବିଶେଷ—
6. A noose; a weapon of offence.
[ଦ୍ର—ଏହାକୁ ଶତ୍ରୁ ଉପରକୁ ପକାଇ ଶତ୍ରୁକୁ ଆପଣା ଆଡ଼କୁ ଟାଣି ଆଣିବାକୁ ହେଉଥିଲା—
୭ । ଗଣ୍ଠି—7. A knot; loop ୮ । ସୂତ୍ର—8. Thread.
୯ । ପଶାକାଠି—9. Die; dice
୧୦ । ବୁଣା ହୋଇଥିବା ବସ୍ତୁର ଧଡ଼ି—The edge or border of anything woven (Apte)
୧୧ । (କେଶବାଚକ ଶବ୍ଦ ପରେ ବସିଲେ)—ସମୂହ; ଗୁଚ୍ଛ; ବଡ଼ା—
11. A tuft or mass.
(ଯଥା—କେଶପାଶ)
୧୨ । (ଛାତ୍ର, ଭିଷକ୍, ବୈୟାକରଣ ଶବ୍ଦ ପରେ ବସିଲେ) କୁତ୍ସିତ୍—ଯଥା ଛାତ୍ରପାଶ; ବୈୟାକରଣପାଶ; ଭିଷକ୍‌ପାଶ )
12. A contemptible or worthless person.
ସଂ. ବଣ.—୧ । (କର୍ଣ୍ଣବାଚକ ଶବ୍ଦ ପରେ ବସିଲେ) ସୁନ୍ଦର—
1. Beautiful, graceful.
(ଯଥା—କର୍ଣ୍ଣପାଶ)
୨ । (ଅନ୍ୟ ଶବ୍ଦ ସଙ୍ଗେ ବ୍ୟବହୃତ ଯଥା ଛତ୍ରପାଶ=ଖଣ୍ଡିଆ ଛତା) କୁତ୍ସିତ, ମନ୍ଦ—2 Ugly; bad.
ଦେ. (ପଦ୍ୟ) ବ.—(ସଂ. ପାର୍ଶ୍ୱ)—୧ । ପାଖ—
পাশ पास 1. Side
ଗା ଯା ମୋ ପାଶରୁ । କବିସୂର୍ଯ୍ୟ ସଙ୍ଗୀତ
୨ । ନିକଟ୍ୟ; ସମୀପ—2 Vicinity.
ଅପସ୍ମରି ହେଲେ ଦାସ
ନିକଟେ ପାଶକୁ ଯିବ କ୍ଷମା କର ଦୋଷ । ଉଦ୍ଧ, ପ୍ରେମ ସୁଧାନିଧି
୩ । ପାର୍ଶ୍ୱଭାଗ—3. The sides; flank
ଫୁଲ ପକ୍ଷୀ ଫଳ ଆଦି ଚିତ୍ରର ପ୍ରଲମ୍ବରେ ଧରି କରେ
ବେନି ପାଶରେ ମନ୍ଦେ ମନ୍ଦେ ଚାଳିବା କି କହିବ ବଖାଣେ । ପ୍ରାଣକୃଷ୍ଣ, ଜଗମୋହନ
୪ । (ପାନବରଜୀଙ୍କ ଭାଷା) ପାନ ଗଛର ଧାଡ଼ି—
4. A row of plants in a betel plantation.

ପାଶକ—ସଂ ବ (ପାଶି ଧାତୁ=ବନ୍ଧନ କରିବା+କର୍ତ୍ତୃ. ଅକ)—
Pāśaka ୧ । ପଶାଖେଳ—1. Game of dice.
୨ । ପଶାକାଠି—2 Die; dice (Apte).

ପାଶକ ପୀଠ—ସଂ. ବ—୧ । ଜୁଆ ଖେଳର ଘର—
Pāśaka piṭha 1. A gambling house. (Apte).
୨ । ଯେଉଁ ପଟା ଉପରେ ପଶା ଖେଳା ଯାଏ—
2 A gambling table. (Apte)

ପାଶ କ୍ରୀଡ଼ା—ସଂ. ବ. ( ଷଷ୍ଠୀ ତତ୍; ପାଶ ଦ୍ୱାରା କ୍ରୀଡ଼ା )—
Pāśa krirḍā ଅକ୍ଷକ୍ରୀଡ଼ା, ପଶା ଖେଳ, ଚଉପାର—
The game of dice; playing at dice

ପାଶଙ୍ଗ—ଦେ ବ. ( ସଂ. ପାଷାଣ, ଭୁଲ. ଫା. ପାସଙ୍ଗ୍ )—
Pāśanga ୧ । ତରାଜୁର ଦୁଇ ପାଖକୁ ସମାନ କରିବାକୁ
পাষাঙ্গ ଯେଉଁ ପାଷାଣ ବା ଇଟା ଖଣ୍ଡ ଦେବାକୁ ହୁଏ—
पासङ्ग, पसंगा 1. A piece of stone or brick-bat put
ମ. ପାସଙ୍ଗ on one of the pans of a scale to make
ଫା. ପାସଙ୍ଗ୍ the beam horizontal; a make weight.
୨ । ତୁଲା ଦଣ୍ଡର ଦୁଇ ପାଲ୍ଲାର ସମତା—
2. Equilibrium of a scale-beam

ପାଶଙ୍ଗ ଧରିବା—ଦେ. କ୍ରି. ( ସଂ ପାଷାଣ+ଧୃ ଧାତୁ )—
Pāśanga dharibā ତୁଲା ଦଣ୍ଡର ଉଭୟ ତରଫର ପଲ୍ଲାକୁ
পাষাঙ্গ ভাঙ্গা ସମାନ କରିବା ନିମନ୍ତେ ଝୁଙ୍କି ପଡ଼ିଥିବା
पासङ्ग डालना ପଲ୍ଲାରେ ଇଟା ଖଣ୍ଡମାନ ରଖିବା, କଢ଼ିବା
[ପାସଙ୍ଗ ପକା(କେ)ଇବା—ଅନ୍ୟରୂପ] ଧରିବା—
To set the balance right by putting a piece of brick-bat or earth on one of the pans to secure equipoise.

ପାଶଙ୍ଗରେ ପକା(କେ)ଇବା - ଦେ. କ୍ରି—୧ । (ଲକ୍ଷଣାର୍ଥ) ଖାତିର
Pāśangare pakā(ke)ibā କରିବା—1. To care for.
पासंगमे लगाना ୨ । ସମ୍ମାନ ଚକ୍ଷୁରେ ଦେଖିବା—
2. To look upon with respect

୩ । ଅନୁରୋଧ ଆଦିକୁ ଗ୍ରାହ୍ୟ କରିବା—
3 To pay heed to any request or advice.
( ଯଥା—ମୋ କଥାଟାକୁ ସେ ପାଶଙ୍ଗରେ ପକାଇଲେ ନାହିଁ । )

ପାଶଙ୍ଗରେ ନ ପଡ଼ିବା—ଦେ. କ୍ରି. ( ଲକ୍ଷଣାର୍ଥ )—
Pāsangare na pardiba ୧ । କୌଣସି ବସ୍ତୁ ବା ବ୍ୟକ୍ତି
**पासंग बराबर न होना,** ସଙ୍ଗେ ତୁଳନୀୟ ନ ହେବା—
**पासंगभी न होना** 1. Not to be considered worth comparing
୨ । ସମାନ ନ ହେବା—2. Not to be equal.
୩ । ଅନେକଙ୍କ ଭିତରେ ଜଣେ ବୋଲି ବିବେଚିତ ନ ହେବା—
3. No to be considered as a distinguished person amongst many.
୪ । ସମ୍ମାନ-ସହିତ ବିବେଚିତ ନ ହେବା—4. Not to be regarded with a feeling of respect.
( ଯଥା—ଆଜି କାଲିକାର ଟୋକାଙ୍କ ଦଳରେ ଆମେ ମରହଟ୍ଟିଆ ଯାକ ପାଶଙ୍ଗରେ ପଡ଼ୁ ନାହୁଁ । )

ପାଶ ପାଣି—ସଂ. ବି. ( ବହୁବ୍ରୀହି )—ବରୁଣ—
Pāsa pāṇi The Hindu God of ocean.
ପାଶଧର, ପାଶହସ୍ତ, ପାଶଭୃତ } ଅନ୍ୟରୂପ [ ଦ୍ର— ବରୁଣ ଦେବତା ହାତରେ ଗୋଟିଏ ପାଶ ଧରିଥାଆନ୍ତି । ]
ସଂ. ବିଣ—ପାଶ ରୂପ ଅସ୍ତ୍ର ଦ୍ୱାରା ସଜ୍ଜିତ—
Armed with a noose.

ପାଶବ—ସଂ. ବିଣ. ( ପଶୁ+ସମ୍ବନ୍ଧାର୍ଥେ. ଅ )—୧ । ପଶୁସମ୍ବନ୍ଧୀୟ—
Pāsaba 1. Beastly; bestial.
୨ । ପଶୁର ଯୋଗ୍ୟ—2. Becoming a beast.
୩ । ନିଷ୍ଠୁର—3. Heartless; cruel
ସଂ. ବି—ପଶୁସମୂହ—A herd of beasts; a flock of beasts

ପାଶ ବଦ୍ଧ—ସଂ. ବିଣ. ( ୭ମୀ ତତ୍; ପାଶ+ବଦ୍ଧ )—
Pāsa baddha ଫାନ୍ଦରେ ପଡ଼ିଥିବା—Noosed; ensnared.

ପାଶ ବନ୍ଧ—ସଂ. ବି. ( ରୂପକ; ପାଶ+ବନ୍ଧ )—
Pāsa bandha ୧ । ଫାଶ; ଫାନ୍ଦ—1 Snare.
(ପାଶ ବନ୍ଧନ—ଅନ୍ୟରୂପ) ୨ । ଫାଶରେ ବନ୍ଧା ହେବା—
2. Being ensnared.

ପାଶବିକ—ସଂ. ବିଣ. ( ପଶୁ+ସମ୍ବନ୍ଧାର୍ଥେ. ଇକ)—ପାଶବ (ଦେଖ)
Pāsabika Pāsaba ( See )

ପାଶଭୃତ—ସଂ. ବି. ( ଉପପଦ ତତ୍ପୁରୁଷ, ପାଶ+ଭୃ ଧାତୁ=ଧାରଣ
Pāsabhrut କରିବା+କର୍ତ୍ତି. କ୍ୱିପ୍ )—ପାଶପାଣି (ଦେଖ)
Pāsapāṇi ( See )

ପାଶମୁଦ୍ରା—ସଂ. ବି—ତାନ୍ତ୍ରିକମାନଙ୍କ ବ୍ୟବହୃତ କରମୁଦ୍ରାବିଶେଷ—
Pāsamudrā A posture of the fingers used by Tantra worshippers.
[ ଦ୍ର—ପ୍ରତ୍ୟେକ ହାତରେ ତର୍ଜନୀ ଓ ବୃଦ୍ଧାଙ୍ଗୁଷ୍ଠର ଅଗ୍ରକୁ ବୃତ୍ତାକାରରେ ସଂଲଗ୍ନ କରି ଉକ୍ତ ବୃତ୍ତ ଦ୍ୱୟକୁ ପରସ୍ପର ସଙ୍ଗେ ବିପରୀତ ଦିଗରୁ ଛୁଆଁଇଲେ ପାଶମୁଦ୍ରା ହୁଏ । ହି ଶ ]

ପାଶା—ପ୍ରାଦେ (ବମ୍ବର) ବି. ( ସଂ. ପାଶକ )—
Pāsā ୧ । ପଶା ଖେଳ—1 The game of dice.
୨ । (ବଣିଆ ଶବ୍ଦ) ଅଳଙ୍କାରରେ ବ୍ୟବହୃତ ହେବା ଏକ ପ୍ରକାର ରୂପା କଡ଼—2 A kind of silver ring used in ornaments.
ବୈଦେ. ବି. ( ତୁର୍କୀ ଭାଷା, ଫା ବାଦ୍‌ଶାହ୍ )—
ତୁର୍କୀର ସର୍ଦ୍ଦାରମାନଙ୍କର ଉପାଧିବିଶେଷ—
Pasha; a title of Turkish Chiefs.

ପାଶି (ଧାତୁ)—ସଂ. ( ପଶ୍ ଧାତୁ ଣିଚ୍ )—ବନ୍ଧନ କରିବା—
Pāsi (root) To bind.

ପାଶି—ଦେ. ବି. ( ସଂ. ପାଶ )—ଫାଶ—
Pāsi Noose; snare
ବାଜବାକୁ ମୋ ମନ ରୂ ପାଶି । ଅଭିମନ୍ୟୁ, କଳୋବତୀ, ସଙ୍ଗୀତ ।

ପାଶିକ—ସଂ. ବି. ପୁଂ. ( ପାଶ+ଇକ )—ଯେ ଫାଶ ଦ୍ୱାରା ପକ୍ଷୀ ଧରେ—
Pāsika A bird catcher.

ପାଶିତ—ସଂ. ବିଣ. ( ପାଶ+ଇତ )—ପାଶବଦ୍ଧ—
Pāsita Fettered; ensnared.

ପାଶୀ—ସଂ. ବିଣ (ପାଶ+ଇନ୍, ୧ମା. ୧ବ)—ପାଶାସ୍ତ୍ରଧାରୀ—
Pāsi Armed with a noose.
( ପାଶିନୀ—ସ୍ତ୍ରୀ ) ସଂ. ବି—୧ । ବରୁଣ—
1. The Ocean-god.
୨ । ଯମ—2. The God of death.
୩ । ବ୍ୟାଧ—3. A hunter or fowler
୪ । ଯେଉଁ ବ୍ୟକ୍ତି ଫାଶ ବସାଇ ପଶୁ ପକ୍ଷୀ ଆଦି ଧରେ—
4. A person who catches birds and beasts by setting snares.
୫ । ପ୍ରାଣ ଦଣ୍ଡରେ ଦଣ୍ଡିତ ବ୍ୟକ୍ତିର ଗଳାରେ ଯେଉଁ ହାଡ଼ି ଫାଶ ବସାଏ ( ହି. ଶ. )—5. A public hangman.
ଦେ. ବି (ସଂ ପାଶ)—ଫାଶ—Noose
ପଶୁ ଲୁବ୍ଧକ ଯେଉଁକି ପ୍ରକାଶି
ବସ୍ତାରନ୍ତି କନ୍ଦର୍ପ ବାହୁପାଶୀ ଦିନ. ପ୍ରେମସୁଧାନିଧି ।
ଦେ. ବିଣ ( ସଂ. ପାର୍ଶ୍ୱବର୍ତ୍ତୀ )—ପାର୍ଶ୍ୱବର୍ତ୍ତୀ; ନିକଟବର୍ତ୍ତୀ—
Adjacent.
କବୁରେ ସେ ପାଶୀ ହେଲା ପାଶୀ ନୋହି ଭଜ—ଉକ୍ତ. ବୈଦେହୀଶବିଳାସ ।

ପାଶୁକ—ସଂ. ବିଣ (ବୈଦିକ)—(ପଶୁ+ଅକ)—୧ । ପଶୁସମ୍ବନ୍ଧୀୟ—
Pāsuka 1. Relating to animal (Apte).
୨ । ଦେବତାଙ୍କୁ ଦିଆଯିବା ବଳିସମ୍ବନ୍ଧୀୟ—
2. Relating to a victim of sacrifice (Apte).

ପାଶୁପତ—ସଂ. ବିଣ (ପଶୁପତି=ମହାଦେବ+ଅ)—ମହାଦେବସମ୍ବନ୍ଧୀୟ—
Pāsupata Belonging to Mahādeba.
( ପାଶୁପତୀ—ସ୍ତ୍ରୀ ) ସଂ. ବି—୧ । ଶିବଭକ୍ତ; ଶୈବ—
1. A devotee of Siba.

୨ । ମହାଦେବଙ୍କ ଅସ୍ତ୍ରବିଶେଷ, ଶିବଙ୍କ ଅମୋଘାସ୍ତ୍ର—
2. Name of a weapon of Siba.
[ ଦ୍ର—ଅର୍ଜୁନଙ୍କ ତପସ୍ୟାରେ ସନ୍ତୁଷ୍ଟ ହୋଇ ମହାଦେବ ଏହାଙ୍କୁ ଅର୍ଜୁନଙ୍କୁ ଉପହାର ଦେଇଥିଲେ । ]
୩ । ବକ ଫୁଲ; ଅଗସ୍ତି ଫୁଲ—
2 A flower; Agasti; Grandiflora.

**ପାଶୁପତଦର୍ଶନ**—ସ. ବି—ସାମ୍ପ୍ରଦାୟିକ ହିନ୍ଦୁଦର୍ଶନଶାସ୍ତ୍ରବିଶେଷ—
Pāsupata darsana Name of a Sectarian treatise of Hindu Philosophy.
[ଦ୍ର—ସର୍ବାର୍ଥଦର୍ଶନ ସଂଗ୍ରହରେ ଏ ଦର୍ଶନର ନାମ ଉଲ୍ଲେଖ ଅଛି । ଏଥିରେ ଜୀବମାତ୍ରଙ୍କୁ 'ପଶୁ' ସଂଜ୍ଞା ଦିଆ ଯାଇଅଛି ଓ ପଶୁପତି ଶିବ ଜଗତର ଓ ଜୀବର ଅଧୀଶ୍ୱର ଥିବାର ଲେଖା ଅଛି । ମୁକ୍ତି ଦୁଇ ପ୍ରକାର ଯଥା—ସର୍ବ ଦୁଃଖର ଅତ୍ୟନ୍ତ ନିବୃତ୍ତି ଓ ପରମୈଶ୍ୱର୍ଯ୍ୟ ପ୍ରାପ୍ତି ବୋଲି ଏଥିରେ ଲେଖା ଅଛି । ଅନ୍ୟ ଦର୍ଶନମାନଙ୍କରେ ଦୁଃଖର ନିବୃତ୍ତିକୁ ମୁକ୍ତି ବୋଲି ଯାଇଅଛି, କିନ୍ତୁ ପାଶୁପତ ଦର୍ଶନରେ ଦୁଃଖର ନିବୃତ୍ତି ସଙ୍ଗେ ପରମୈଶ୍ୱର୍ଯ୍ୟ ପ୍ରାପ୍ତି ନ ହେଲେ ମୁକ୍ତି ହେବ ନାହିଁ ବୋଲି ବର୍ଣ୍ଣିତ ହୋଇଅଛି । ଦୃକ୍‌ଶକ୍ତି ଓ କ୍ରିୟାଶକ୍ତି ପରମୈଶ୍ୱର୍ଯ୍ୟପ୍ରାପ୍ତିରୁ ମୁକ୍ତି ପାଇବାର ଦୁଇଟି ଫଳ । କେହି କେହି ଭଗବଦ୍‌ଦାସତ୍ୱପ୍ରାପ୍ତିକୁ ମୁକ୍ତି କହନ୍ତି । କିନ୍ତୁ ପାଶୁପତଦର୍ଶନ ମତରେ ଏହା ମୁକ୍ତି ନୁହେ, ବନ୍ଧନ ଅଟେ—ହି. ଶ.)

**ପାଶୁପତବ୍ରତ**—ସ. ବି—ବ୍ରତବିଶେଷ—
Pāsupatabrata A religious penance.
[ ଦ୍ର—ଏହି ବ୍ରତପାଳନକାରୀ ବ୍ୟକ୍ତି ଦ୍ୱାଦଶୀ ଦିନ ଥରେମାତ୍ର ଖାଇବେ । ତ୍ରୟୋଦଶୀ ଦିନ ଅଯାଚିତଭାବରେ ଯେ ଯାହା ଦେବ ଖାଇବେ । ଚତୁର୍ଦ୍ଦଶୀ ଦିନ ଦିନଯାକ ଉପବାସ କରି ରାତିରେ ଖାଇବେ ଓ ତହିଁ ପରଦିନ ଉପବାସ କରିବେ । ]

**ପାଶୁପତାସ୍ତ୍ର**—ସ. ବି—ଶିବଙ୍କର ତ୍ରିଶୂଳ; ଶୂଳାସ୍ତ୍ର—
Pāsupatāstra The trident of Siba.
[ ଦ୍ର—ଅର୍ଜୁନ ତପସ୍ୟାଦ୍ୱାରା ଶିବଙ୍କୁ ସନ୍ତୁଷ୍ଟ କରାଇ ଏ ଅସ୍ତ୍ର ଶିବଙ୍କଠାରୁ ପାଇଥିଲେ । ]

**ପାଶୁପାଳ୍ୟ**—ସ. ବି (ପଶୁପାଳ + ଭାବେ. ଯ)—ପଶୁପାଳନ ବୃତ୍ତି—
Pāsupālya The occupation of rearing cattle.

**ପାଶୁବନ୍ଧକ**—ସ. ବି ( ପଶୁ + ବନ୍ଧକ + ଅ )—ଯଜ୍ଞର ବଳିପଶୁ ବନ୍ଧାଯିବା ସ୍ଥାନ ( ହି. ଶ )—
Pāsubandhaka The place where the victim intended for a sacrifice is tied down.

**ପାଶେ**—ଦେ. ଅ (ସ. ପାର୍ଶ୍ୱ)—୧ । ନିକଟରେ—
Pāse 1. Near.
ପାଁଶେ ପାସମେ ୨ । ନିକଟକୁ—2. To.
ଚା ପାଶେ ଗଲା ସେ ମିତ କହୁଛ ହିତ – ଗଙ୍ଗ ଉ ।
୩ । ଠାରେ—3. At.

**ପାଶା**—ଦେ. ବି (ପା. ପାଦସାହ)—ବାଦସାହା; ମୁସଲମାନ ରାଜା; ସମ୍ରାଟ—
Pāschā King; emperor.
ଓ ପାତଶା ପାସା

**ପାଶ୍ଚାତ୍ୟ(ତ୍ତ୍ୟ)**—ସ. ବିଣ ( ପଶ୍ଚାତ୍ + ଭବ ଅର୍ଥେ. ଯ ବା ତ୍ୟ )—
Pāschātya(ttya) ୧ । ପଶ୍ଚିମଦିଗସ୍ଥ, ପ୍ରତୀଚୀନ, ପ୍ରାଚ୍ୟେତର—
1 Western, occidental.
୨ । ପଶ୍ଚାଦ୍ଦେଶରେ ଅବସ୍ଥିତ, ପଛଆଡ଼େ ଥିବା—
2. Being behind; posterior; hind.
୩ । ପରେ ଘଟିବା—3. Subsequent.
୪ । ପଶ୍ଚାଦାଗତ; ପଛେ ଆସିବା—
4. Coming after.
୫ । ପଶ୍ଚିମଦେଶୀୟ—5. Belonging to the western country or the western Hemisphere
୬ । ପଶ୍ଚିମଦେଶାଗତ—
6. Hailing from the west.
୭ । ଅନ୍ତିମ—7. Last; ultimate.
ସ. ବି—୧ । ଇଉରୋପୀୟ ବ୍ୟକ୍ତି—
1 A European.
୨ । ଯବନ—2 A Mahomedan (coming to India from the west).
୩ । ପଛଆଡ଼—3. The hind part.

**ପାଶ୍ଚାତ୍ୟ ବିଜ୍ଞାନ**—ସ. ବି ( ଆଧୁନିକ ପ୍ରୟୋଗ )—ଭାରତର ପଶ୍ଚିମରେ ଅବସ୍ଥିତ ଇଉରୋପ ଓ ଆମେରିକା ଆଦିରେ ଆଲୋଚିତ ବିଜ୍ଞାନ—
Pāschāty bijnāna Western science.

**ପାଶ୍ଚାତ୍ୟ ଶିକ୍ଷା**—ସ. ବି—ଭାରତରେ ଇଉରୋପବାସୀଙ୍କଦ୍ୱାରା ପ୍ରବର୍ତ୍ତିତ ଶିକ୍ଷା—
Pāschātya sikshyā Western education; Education promulgated in India by the Europeans.

**ପାଶ୍ଚାତ୍ୟ ସଭ୍ୟତା**—ସ. ବି—୧ । ଯେଉଁ ସଭ୍ୟତା ଭାରତକୁ ପଶ୍ଚିମରୁ ଅର୍ଥାତ୍ ଇଉରୋପରୁ ଆସି ଅଛି—
Pāschātya sabhyatā 1. Western civilization introduced in India by the Europeans.
୨ । ଇଉରୋପ, ଆମେରିକା ଆଦି ଦେଶର ଆଧୁନିକ ସଭ୍ୟତା—
2. Modern civilisation.

**ପାଷକ**—ସ. ବି—ଗୋଡ଼ରେ ପିନ୍ଧାଯିବା ଅଳଙ୍କାରବିଶେଷ—
Pāshaka A kind of ornament for the leg.

**ପାଷଣ୍ଡ**—ସ. ବି. ପୁଂ—(ପାପ+ଷଣ୍ ଧାତୁ=ଦାନ କରିବା + କର୍ତ୍ତୃ. ଡ; ବା ପା=ବେଦ ଧର୍ମ + ଷଣ୍ ଧାତୁ=ଖଣ୍ଡନ କରିବା + କର୍ତ୍ତୃ. ଅ )—୧ । ବେଦବିରୁଦ୍ଧାଚାରୀ, ବିଧର୍ମୀ ବ୍ୟକ୍ତି; ସଦାଚାରଭ୍ରଷ୍ଟ ବ୍ୟକ୍ତି—
Pāshanda (ପାଷଣ୍ଡୀ—ସ୍ତ୍ରୀ) 1. A heretic; a heterodox; a person who forsakes vedic ways and follows other ways.
୨ । ବିଧର୍ମୀ—2. An apostate.
୩ । ଅହିନ୍ଦୁ—3. A non-Hindu.
୪ । ବୌଦ୍ଧ ବା ଜୈନ ଧର୍ମାବଲମ୍ବୀ—
4. A Buddhist or Jaina.

୫ । ପାମର—5. Wicked man
୬ । ଶଠ—6. Rogue, villain.
୭ । ନାସ୍ତିକ—
7. An atheist; imposter
୮ । ପାପୀ—8. Sinner
୯ । ଧର୍ମଧ୍ୱଜୀ ବା କପଟଧାର୍ମିକ ବ୍ୟକ୍ତି—
9 An imposter; a religious hypocrite
୧୦ । ସମ୍ପ୍ରଦାୟ ( ହ. ଶ )—
10. Religious sect
୧୧ । ଧର୍ମମତ ( ହ. ଶ )—
11. Religious doctrine or tenet.
୧୨ । ବେଦବିରୁଦ୍ଧ ବାଦ ଓ ଆଚରଣ—
12. Heresy; heterodoxy (Apte)
କିଲେ ପାଷଣ୍ଡ ଆଚରିବେ
ସେ ପଞ୍ଚତନ୍ତ୍ର ନ କରିବେ—ଜଗନ୍ନାଥ ଭାଗବତ ।
ସଂ. ବିଣ—୧ । ଅଧର୍ମୀ—1. Impious.
୨ । ସଦାଚାରଭ୍ରଷ୍ଟ—
2. Heretical; heterodox.
୩ । ପ୍ରତାରକ, ଶଠ—3 Fraudulent.
୪ । ନାସ୍ତିକ—4. Blashemous.
୫ । ଦୁଷ୍ଟ—5. Wicked.
୬ । ପାପିଷ୍ଠ—6 Sinful.
୭ । ଧର୍ମଧ୍ୱଜୀ—7. Hypocritical

**ପାଷଣ୍ଡକ**—ସଂ. ବି ଓ ବିଣ—ପାଷଣ୍ଡ (ଦେଖ)—
Pāshaṇḍaka (ପାଷଣ୍ଡିକା—ସ୍ତ୍ରୀ) Pāshaṇḍa (See)

**ପାଷଣ୍ଡତା(ତ୍ୱ)**—ସଂ. ବି—(ପାଷଣ୍ଡ+ଭାବାର୍ଥେ. ତା, ତ୍ୱ)—
Pāshaṇḍatā(twa) ୧ । ଅଧାର୍ମିକତା—1. Impiety.
୨ । ଭଣ୍ଡତା—2. Hypocricy
୩ । ଈଶ୍ୱର ନିନ୍ଦା—3. Blashemy.
୪ । ନାସ୍ତିକତା—4. Atheism.
୫ । ବିରୁଦ୍ଧ ଧର୍ମ, ଧର୍ମାନ୍ତର—5. Heresy.

**ପାଷଣ୍ଡୀ**—ସଂ. ବି ଓ ବିଣ. ପୁଂ—(ପାଷଣ୍ଡ+ସ୍ୱାର୍ଥେ. ଇନ୍; ୧ମା. ୧ବ)—
Pāshaṇḍi ପାଷଣ୍ଡ (ଦେଖ)— Pāshaṇḍa (See)
ସଂ. ବି ଓ ବିଣ. ସ୍ତ୍ରୀ—ପାଷଣ୍ଡର ସ୍ତ୍ରୀଲିଙ୍ଗ—
Feminine of Pāshaṇḍa.

**ପାଷାଣ**—ସଂ. ବି (ପିଷ୍ ଧାତୁ=ବାଟିବା+କରଣାର୍ଥେ. ଆନ, ଯାହାଦ୍ୱାରା
Pāshāṇa ବଟାଯାଏ)—୧ । ପଥର; ଶିଳା—1. Stone.
୨ । ବଟକର—
2. A piece of stone used as a weight.
୩ । ପାଶଙ୍ଗ—
3. A piece of stone put on one of the scale pans to make the beam horizontal.

**ପାଷାଣଗର୍ଦ୍ଦଭ**—ସଂ. ବି—ହନୁ ସନ୍ଧିଜାତ କ୍ଷୁଦ୍ର ରୋଗବିଶେଷ; ଦାନ୍ତ
Pāshāṇa garddabha ମୂଳ ଫୁଲା ରୋଗ (ହ. ଶ)—
Swelling of the jaws.

**ପାଷାଣ ଚତୁର୍ଦ୍ଦଶୀ**—ସଂ. ବି—ମାର୍ଗଶିର ମାସ ଶୁକ୍ଳ ଚତୁର୍ଦ୍ଦଶୀ—
Pāshāṇa chaturddasi The 14th day of the bright fortnight of the month of Mārgasira.
[ ଦ୍ର—ଏ ଦିନ ପାର୍ବତୀଙ୍କ ପାଷାଣାକାର ପିଷ୍ଟକ ଦ୍ୱାରା ପୂଜା କରାଯାଏ । ]

**ପାଷାଣ ଦାରକ**—ସଂ. ବି—୧ । ପଥର ଭେଦ କରିବାର ଶସ୍ତ୍ରବିଶେଷ,
Pāshāṇa dāraka ଟାଙ୍ଗିଆ—1. An axe for piercing stones.
(ପାଷାଣ ଦାରଣ—ଅନ୍ୟରୂପ)
୨ । ପଥର କାଟିବା ବଟାଲି; ପଥୁରିଆଙ୍କ ସଜ—
2. A stone cutter's chisel.

**ପାଷାଣ ଭେଦକ**—ସଂ ବି—ପାଷାଣ ଭେଦୀ (ଦେଖ)—
Pāshāṇa bhedaka Pāshāṇa bhedi (See).
(ପାଷାଣ ଭେଦନ—ଅନ୍ୟରୂପ)

**ପାଷାଣଭେଦୀ**—ସଂ. ବି. (ଏହା ପର୍ବତରୁ ଜାତଥିବାରୁ)—୧ । ତୁଳସୀଜାତ
Pāshāṇabhedi ପୋଷ୍ଟ ଗୁଳ୍ମ, ତୁଳସ୍ୟାଦି ବର୍ଗର ସୁବାସଯୁକ୍ତ ଶାକ
पाषाण चूर, पाथरचूर ଗୁଳ୍ମବିଶେଷ—
पत्थरचूर 1. Colenus Aromaticus; Irissp.
ତେ. ପିଣ୍ଡିଚେଟ୍ଟୁ [ଦ୍ର—ଏହା ତୁଳସ୍ୟାଦିବର୍ଗର ଶାକ
ମ. ପାଷାଣଭେଦୀ ଗୁଳ୍ମ, ପତ୍ର ସୁଗନ୍ଧ, ମାଂସଳ, ଭାଙ୍ଗିଲେ ରସ
ସଂ. ନାମ—ଅଶ୍ମଘ୍ନ; ଅଶ୍ମଭେଦୀ ମସ ଛୁଏ । ପତ୍ରର ଧାର ଦନ୍ତୁର, ଏହାର
ଶିଳାଗର୍ଭଜ; ପାଷାଣଭେଦ, ପତ୍ର ବାଡ଼ି ଦିଇଲେ ପେଟ ବିଗିଡ଼ିଥିଲେ
ପାଷାଣଭେଦନ ଭଲ ହୋଇଯାଏ ।]
ସଂ. କରକୋଡ଼ି— ୨ । ଲେଟାଳିଆ ଅପୁଷ୍ପକ କ୍ଷୁଦ୍ର ଶାକ
ହେମସାଗର, ପାଷାଣଭେଦକ, ବିଶେଷ, ହିମସାଗର, ହେମସାଗର—
ଗିରିଭିତ୍, ଉପଲଭେଦୀ 2. Colinus Ambonicus;
पाथरकुचि, हिमसागर, हेमसागर Kalucho Laciniata
पखानभेद Selaginella Irissp.
ପା. ଗୋଶଦ [ଦ୍ର—ଏହା ଅର୍ଦ୍ଧୋଚ୍ଚ ଓ ଗଛ
ଆ. ଜନ୍ତୁଆନା ଦିଧା; ପତ୍ର ମୋଟା ଓ ମାଂସଳ ଏବଂ
ତେ. ତେଲ ନୁରୁପିଣ୍ଡି ପଞ୍ଚାକାରରେ କଟିତ; ଫୁଲ ଶ୍ୱେତ ଓ
ହଳଦିଆ; ଏହା ଶୀତବୀର୍ଯ୍ୟ, ତିକ୍ତ କଷାୟରସ; ବସ୍ତିଶୋଧକ ଓ ଭେଦକ;
ତ୍ରିଦୋଷ, ଅର୍ଶ, ଗୁଳ୍ମ, ମୂତ୍ରକୃଚ୍ଛ୍ର, ଅଶ୍ମରୀ, ହୃଦ୍‌ରୋଗ; ଯୋନିରୋଗ,
ପ୍ରମେହ, ପ୍ଲୀହା, ଶୂଳ ଓ ବ୍ରଣ ନିବାରକ । ]
ଦେ. ବି.—ପୁରୁଣାକୋଠା ଓ ଦେଉଳର ପଥର, ଇଟା ଥାକ ଓ ଅବ୍ୟବହୃତ କୂଅ ଓ ବାଡ଼ିମାନଙ୍କ କାନ୍ଥ ଓ ପଥର ସନ୍ଧିରେ ଉଠିବା ଶାଖା ପତ୍ରଯୁକ୍ତ କ୍ଷୁଦ୍ର ଗୁଳ୍ମ—Ferns.
ପାଷାଣ ଭେଦୀରେ ମଣ୍ଡିତ ତୋରଣ
ଶୈବାଳ ପୁରେ ହିଂସ୍ର ସ୍ୱନ । ରାଧାନାଥ. ଲେଖା

**ପାଷାଣମୟ**—ସଂ. ବିଣ.—(ପାଷାଣ+ପ୍ରାଚୁର୍ଯ୍ୟାର୍ଥେ ମୟ) ୧ । ପାଷାଣ ବା
Pāshāṇamaya ପଥରରେ ପୂର୍ଣ୍ଣ—1. Full of stone; stony.
୨ । ପାଷାଣରେ ନିର୍ମିତ—2. Made of stone.

**ପାଷାଣ ରୋଗ**—ସଂ. ବି.—ଅଶ୍ମରୀ ରୋଗ (ହ. ଶ.)—
Pāshāṇa roga Stone in the bladder.

ପାଷାଣ ସମ୍ଭବ ବଲ୍ଲୀ—ସ. ବ.—ପ୍ରବାଳ, ପୋହଳା (ହ୍ରି. ଶ.)—
Pāshāṇa sambhaba balli Coral.

ପାଷାଣ ହୃଦୟ—ସ ବ (କର୍ମଧା, ପାଷାଣ + ହୃଦୟ)—କଠିନ ହୃଦୟ—
Pāshāṇa hrudaya Cruel heart.
(ପାଷାଣ ହୃଦୟା—ସ୍ତ୍ରୀ) ସ. ବିଣ. ପୁଂ—ନିଷ୍ଠୁର—
Cruel; stone-hearted; hard-hearted.

ପାଷାଣିଆ—ଦେ. ବିଣ. (ସ. ପାଷାଣ)—୧ । ପାଷାଣମୟ—
Pāshāṇia 1. Stony.
୨ । ପାଷାଣ ପରି କଠିନ—2. Hard as stone

ପାଷାଣୀ—ସ. ବ. (ପାଷାଣ + ଈ)—୧। ବଟକରା—
Pāshāṇi 1. Stone weight.
୨ । ଦୁର୍ଗା—2. Goddess Durga

ପାଷାଣ୍ଡ—ଦେ. ବ. ଓ ବିଣ. ପୁଂ. (ସ. ପାଷଣ୍ଡ)—ପାଷଣ୍ଡ (ଦେଖ)
Pāshāṇḍa Pāshaṇḍa (See)
(ପାଷାଣ୍ଡୀ—ସ୍ତ୍ରୀ)

ପାଷ୍ଟୋ—ଦେ. ବ.—ଉତ୍ତର ପଶ୍ଚିମ ସୀମାନ୍ତ ପ୍ରଦେଶରେ ପ୍ରାୟ ୪୦ ଲକ୍ଷ
Pāshṭo ଲୋକଙ୍କର କଥିତ ଏକ ପ୍ରକାର ଇରାନିଅନ୍ ଭାଷା—
পাস্তো A group of Eranian language spoken by
पश्तू above 4 lacs of people in N. W Frontier.
(ପାଷ୍ଟ୍ର, ପାସ୍ତୁ (ସ୍ତ୍ରୋ)—ଅନ୍ୟରୂପ) Provinces; the Pashtoo language.

ପାସୁର (ଇତ୍ୟାଦି)—ଦେ. ବ. ଓ ବିଣ. (ସ. ବିସ୍ମରଣ)—
Pāsura (etc) ପାସୋର (ଇତ୍ୟାଦି) (ଦେଖ)
Pāsora etc. (See).

ପାସୁରା—ଦେ. ବ. ଓ ବିଣ.—(ସ. ବିସ୍ମରଣ—ପାସୋରା (ଦେଖ)
Pāsurā Pāsorā (See)

ପାସୁରା(ରେ)ଇବା—ଦେ. କ୍ରି.—ପାସୋରାଇବା (ଦେଖ)
Pāsurā(re)ibā Pāsorāibā (See)

ପାସୁରିବା—ଦେ. କ୍ରି.—ପାସୋରିବା (ଦେଖ)
Pāsuribā Pāsoribā (See)

ପାସେଜ୍ ମନି—ବୈଦେ. ବ. (ଇଂ)—ଜାହାଜ ଆଦିରେ ବନ୍ଦରକୁ
Pāsej mani ଯିବା ପାଇଁ ଲାଗିବା ଭଡ଼ା—Passage-money.
প্যাসেজ মনি पैसेज मनी

ପାସେଞ୍ଜର୍—ବୈଦେ. ବ. (ଇଂ)—୧ । ରେଲ ଓ ଜାହାଜ ଆଦିରେ
Pāsenjar ଯିବା ଯାତ୍ରୀ—1. Passenger.
প্যাসেঞ্জর ୨ । ପାସେଞ୍ଜର ଗାଡ଼ି—
पैसेंजर 2. Passenger train.
(ପାସଞ୍ଜର, ପାସେଞ୍ଜର—ଅନ୍ୟରୂପ)

ପାସେଞ୍ଜର୍ ଗାଡ଼ି—ଦେ. ବ. (ଇଂ. ପାସେଞ୍ଜର + ସ. ଗନ୍ତ୍ରୀ)—
Pāsenjar gārḍi ଯେଉଁ ରେଲଗାଡ଼ିରେ ଯାତ୍ରୀମାନେ ଯାତାୟାତ
(ପାସେଞ୍ଜର୍ ଟ୍ରେନ୍—ଅନ୍ୟରୂପ) କରନ୍ତି—A Passenger
প্যাসেঞ্জর ট্রেন पैसेंजर ट्रेन Train.

ପାସେଞ୍ଜର୍ ଜାହାଜ—ବୈଦେ. ବ. (ଇଂ. ପାସେଞ୍ଜର୍—ଫା. ଜାହାଜ)—
Pāsenjar jāhāja ଯେଉଁ ଜାହାଜରେ ଯାତ୍ରୀମାନେ ଯିବା ଆସିବା
প্যাসেঞ্জর জাহাজ କରନ୍ତି—A passenger ship.
पैसेंजर जाहाज़

ପାସୋର—ଦେ. ବ (ସ. ବିସ୍ମରଣ, ପ୍ରା. ବିମ୍ହରଣ, ବିସ୍ମରଣ)—
Pāsora ବିସ୍ମୃତି, ବିସ୍ମରଣ; କୌଣସି ବିଷୟ ଭୁଲିଯିବା—
ପାସର } ଅନ୍ୟରୂପ Forgetting; oblivion; forgetfulness.
ପାସ୍ୱର }
পাসরন বিসরনা ଦେ. ବିଣ—ବିସ୍ମୃତ—Forgotten.

ପାସୋର ଯିବା—ଦେ. କ୍ରି. (ସ. ବିସ୍ମରଣ)—
Pāsora jibā ସ୍ମୃତିରୁ ଅନ୍ତର ହେବା, ମନେ ନ ପଡ଼ିବା—
(ପାସୋର ହେବା—ଅନ୍ୟରୂପ) To be forgotten.
পাসর যাওয়া बिसर होना

ପାସୋରା—ଦେ. ବ—ପାସୋର (ଦେଖ)
Pāsorā Pāsora (See)
(ପାସରା—ଅନ୍ୟରୂପ) ଦେ. ବିଣ. (ସ. ବିସ୍ମରଣ)—
পাসরা ୧ । ବିସ୍ମରଣଶୀଳ—1. Forgetful
बिसराउ ୨ । (ଅନ୍ୟ ଶବ୍ଦ ପରେ ଲାଗେ । ଯଥା—ଦୁଃଖପାସୋରା;
ଶୋକପାସୋରା) ଯେ (ଦୁଃଖଆଦିକୁ) ପାସୋରାଇ ଦିଏ—
2 Causing to forget (one's sorrow).
ପାସୋରକ ଦେଖି, କହୁ, କେବୁ ଜନ
ଏ ଶୋକପାସୋରା ଅବ୍ୟସବନ । ରାଧାନାଥ. ଚିଲିକା ।

ପାସୋରା(ରେ)ଇବା—ଦେ. କ୍ରି—୧ । ପାସୋରିବା କ୍ରିୟାର ଣିଜନ୍ତ ରୂପ
Pāsorā(re)ibā —1. Causative of Pāsoribā
পাসরান ୨ । ଭୁଲାଇବା—2. To cause to forget; to
बिसराना; बिसरावना bring about forgetfulness.
ପାସୋରାଇ ମନୁ ନାନା କଉକ ଲସାଇ
ଗୀତୁ ଅଶୁ ବରଷାଇ ଗୋ । କବିସୂର୍ଯ୍ୟ. ଭଣୋସଚମ୍ପୂ ।

ପାସୋରି ପକା(କେ)ଇବା—ଦେ. କ୍ରି. (ସକର୍ମକ)—ଭୁଲିଯିବା; ବିସ୍ମୃତ
Pāsori pakā(ke)ibā ହେବା—To forget.
(ପାସୋରିଦେବା, ପାସୋରିଯିବା—ଅନ୍ୟରୂପ)
পাসরে যাওয়া बिसर जाना

ପାସୋରିବା—ଦେ. କ୍ରି. (ସକର୍ମକ)—ଭୁଲିବା; ବିସ୍ମୃତ ହେବା—
Pāsoribā To forget.
পাশরা ଦର୍ପଣର କହୁନକ ଅତ୍ୟ ପାସୋରି ଏ କଥା ।
बिसरना ରାଧାନାଥ—ମହାଯାତ୍ରା ।

ପାହା—ପ୍ରାଦେ. (ସମ୍ବଲପୁର) ବ. (ସ. ପାଦ)—ପାଦକ୍ଷେପ—
Pāhā Step; the space between the 2 legs while walking.

ପାହାଚ—ଦେ. ବ. (ସ. ପାଦଞ୍ଚ)—୧ । ପାଉଞ୍ଚ; ସୋପାନ—
Pāhācha 1. Step of a ladder or staircase.
(ପାହାଞ୍ଚ—ଅନ୍ୟରୂପ) ୨ । ସିଡ଼ି—2. Ladder; stairs.
ধাপ खाड़ी, सीढ़ी

ପାହାଡ଼—ଦେ. ବ. (ସ. ପର୍ବତ, ପାଷାଣ)—
Pāhārḍa ୧ । ଅନୁଚ୍ଚ ପର୍ବତ; ମୁଣ୍ଡିଆ—
পাহাড 1. Hill; hillock.
पहाड़ ୨ । ମାଟି ବା ପଥରର ଉଚ୍ଚସ୍ତୂପ—
2. A big mound of earth or stones.
୩ । (ଲକ୍ଷଣାର୍ଥ) କୌଣସି ବସ୍ତୁର ଉଚ୍ଚ ଗଦା ବା ଗଣ୍ଡି—
3. (figurative) A big mass or heap of anything.

**ପାହାଡ ଚିତି**—ପ୍ରାଦେ (ସମ୍ବଲପୁର) ବି—ପାହାଡିଆ ବଡ ସାପ—
Pāhārḍa chiti A big species of hill-snakes

**ପାହାଡ ତଳି**—ଦେ. ବି—୧ । ପର୍ବତର ନିମ୍ନଦେଶ—
Pāhārḍa taḷi 1. The foot of a hill
ପାହାଡ଼ତଳ } ଅନ୍ୟରୂପ ୨ । ଉପତ୍ୟକା—2. A valley.
ପାହାଡ଼ତଳୀ } ୩ । ପର୍ବତର ନିମ୍ନରେ ଥିବା ଭୂମି—
পাহাড়তলা तराइ 3. Terai

**ପାହାଡ ତଳିଆ**—ଦେ. ବିଣ—୧ । ଉପତ୍ୟକା ସମ୍ବନ୍ଧୀୟ—
Pāharḍa taḷiā 1. Relating to a valley.
পাহাড়তলী ୨ । ଉପତ୍ୟକାବାସୀ—
तराइका 2. Living in a valley.

**ପାହାଡ ତୋଡ**—ଦେ. ବିଣ—ଯାହା ପାହାଡ ଭାଙ୍ଗିବାକୁ ସମର୍ଥ, ଖୁବ୍ ବଳୁଆ ବା ଟାଣୁଆ—Very hard or strong ( as if able to break a hill into pieces.
Pāhārḍa torḍa
পাহাড় তোড়
पहाड़तोड़
ତୋର ନ ଗାଏ ଉଠାଉଁନ୍ ଚିଁଛ ପାହାଡତୋଡ ମମଗା—
ନୃକନାଥ. ସମରତରଙ୍ଗ ।

**ପାହାଡା**—ଦେ. ବି—(ସଂ ପାଦ ସ୍ଥାପନ)—୧ । ପାଏଡ଼ା; ଦେବତାଆଦି ବଜେ ହେବା ସମୟରେ ବାଟରେ ବିଛା ଯାଇଥିବା ବସ୍ତ୍ର—1. Cloth spread over the road on which a deity will pass.
Pāhārḍā
पाँवड़ा
ମୁଁ ତୋ ସଙ୍ଗୀତ ଜଗତ ବାଟୁଡା ବଜେ ପାହାଡାରେ
କବିସୂର୍ଯ୍ୟ ସଙ୍ଗୀତ ।
୨ । ସୁନା ରୁପାର ଜିନିଷ ତିଆରରେ ବଣିଆଙ୍କୁ ମଜୁରି ଦିଆଯିବା ଭୁଟ, ବଟା ବା ଘାଟି—2. Allowance made to goldsmiths for wastage of gold and silver in preparing ornaments
ପ୍ରାଦେ (ବାଲେଶ୍ୱର) ବି—୧ । ଏକପ୍ରକାର ମଧୁର ମାଛ—
1. A kind of fresh-water-fish.
୨ । ଘୋଡ଼ା ଜିନ୍‌ର ଟେକୋବ—2 Stirrup.

**ପାହାଡ଼ାସିଂହ**—ଦେ. ବି—କ୍ଷତ୍ରିୟଙ୍କ ବଂଶୋପାଧିବିଶେଷ—
Pāhārḍāsiṁha A family title of some Kshatriyas.

**ପାହାଡ଼ିଆ**—ଦେ. ବିଣ (ସଂ. ପାର୍ବତ୍ୟ, ପାର୍ବତୀୟ)—୧ । ପାର୍ବତ୍ୟ, ପର୍ବତ ସମ୍ବନ୍ଧୀୟ—1. Mountainous; hilly.
Pāhārḍiā
পাহাড়ীয়া,, পাহাড়ী ୨ । ପର୍ବତବାସୀ—
पहाड़ी, पहाड़िया 2. Living in the mountains.
୩ । ପର୍ବତଜାତ—3. Found in mountains.
ଦେ. ବି—ପାହାଡ଼ିଆକେଦାର ( ଦେଖ )—
Pāhārḍiā kedāra ( See )
ପାହାଡ଼ିଆ ରାଗ ରଚି ନାଉରିଅ କରୁଛ ପାଣିରେ ଗାଉ—
ନନ୍ଦକିଶୋର. କର୍ଣ୍ଣଧୂଳୀ ।

**ପାହାଡ଼ିଆ କେଦାର**—ଦେ. ବି—୧ । ସଙ୍ଗୀତର ରାଗବିଶେଷ—
Pāhārḍiā kedāra 1. Name of a musical air.
[ ଦ୍ର—ରାଗ ତଳେ ନୋଟ ଦେଖ । ]

୨ । ପାହାଡ଼ରେ ବା ପାହାଡ଼ ନିକଟରେ ଥିବା ଶସ୍ୟ କ୍ଷେତ୍ର—
2. A hilly field or plot of cultivated land (Howells)

**ପାହାଡ଼ିଆ ମୂଷା**—ଦେ. ବି—(ସଂ. ପର୍ବତ ମୂଷିକ)—ଏକ ପ୍ରକାର ବଡ଼ ମୂଷା—A kind of big rat inhabiting in mountains: a species of marmot.
Pāhārḍiā mūshā
পাহাড়ী ইন্দুর
पहाड़िया चूहा

**ପାହାଡ଼ି ଶିଶୁ**—(ସଂ. ସିଉଷାଳ)—ଏକପ୍ରକାର ଶିଶୁ ଗଛ—
Pāhārḍi śisu Dalbergia Latifolia (tree) Haines.
পাহাড়ীশিশু सितिसाल पाहाड़ीशिशम

**ପାହାଡ଼ୀ**—ଦେ. ବି—ପର୍ବତବାସୀ ଲୋକ—
Pāhārḍi Hill tribe; mountaineer, hill men.
পাহাড়ী ଦେ. ବିଣ—ପାହାଡ଼ିଆ ( ଦେଖ )
पहाड़ी Pāhārḍiā ( See )
ପ୍ରାଦେ (ଗଞ୍ଜାମ) ବି—ଗଞ୍ଜାମ ଜିଲ୍ଲାର ପାଠକବିଶେଷ—
A caste of the Sūdras of the district of Ganjam.

**ପାହାଣ**—ଦେ. ବି ( ଥଟାରଙ୍କ ଭାଷା )—ପିତଳ ଝଲା ହେବା ସକାଶେ ତମ୍ବା ଓ ଜସ୍ତର ମିଶ୍ରିତ ଧାତୁ—A mixed metal or alloy used in soldering pieces of brass.
Pāhāṇa

**ପାହାଣିଆ**—ଦେ. ବିଣ. (ସଂ. ପତନ)—କ୍ରମନିମ୍ନ, ଢାଲୁ, ଗଡ଼ାଣିଆ—
Pāhāṇiā Sloping; slanting.
গড়ানিয়া; ढालु
(ପାହାନା, ପାହାନିଆ, ପାଆନିଆ—ଅନ୍ୟରୂପ)

**ପାହାନ୍ତରା**—ଦେ. ବି—(ସଂ. ପ୍ରଭାତ + ତାରା; ଶୁକ୍ର)—ପାଆଁତରା (ଦେଖ)
Pāhāntarā Pā-āntarā (See )
(ପାହାଁତରା—ଅନ୍ୟରୂପ) ପାହାନ୍ତରା କର ଦୁହେଁ କରିବା ଗମନ—
ଚାଚାଁଷୟୀ. ଛକକଂଜନବତୀ ।

**ପାହାନ୍ତରା ଅନୁକୂଳ**—ଦେ. ବି—ଉଷା ଯାତ୍ରା, ଉଷା କାଳରେ କୌଣସି ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ କ୍ରମରେ ଘରୁ ବାହାରିବା; ଜନ୍ମ ଯାତ୍ରା—
Pahāntarā anukūla
ପାହନ୍ତରା ଯାତ୍ରା—ଅନ୍ୟରୂପ
मोरकीजात्रा Starting for a certain destination or work from home before dawn (i. e. when the morning star is rising).
[ଦ୍ର—ଜ୍ୟୋତିଷ ମତରେ ଉଷାକାଳରେ ଯାତ୍ରା କରିବା ଶୁଭ]

**ପାହାନ୍ତା**—ଦେ. ବି. (ସଂ. ପ୍ରଭାତ)—ପାହାନ୍ତି (ଦେଖ)
Pāhāntā Pāhānti (see)

**ପାହାନ୍ତି**—ଦେ. ବି. (ସଂ. ପ୍ରଭାତ)-ରାତ୍ର ପାହିବା ସମୟ; ରାତିର ଶେଷ ଭାଗ ବଡ଼ ଭୋର—The latter part of the night; day-break; the time before dawn; early morning.
Pāhānti
(ପାହାନ୍ତିଆ—ଅନ୍ୟରୂପ)
ভোরবেলা सबेरा पहफटना
କାଣ୍ଡ ଘାରେ ମୋ ଦେହ ଯାଉଥିବ ତାତ
ଏଣୁ ଗୋଇ ପଇଲ ବୁଧଙ୍କେ ପାହାନ୍ତି । ବୃନ୍ଦାବନ୍. ହୋତାଉର. ଉତ୍ତରୋତ
ଦେ. ବିଣ.—(ସଂ. ପ୍ରଭାତ)—୧ । ପ୍ରଭାତ ସମ୍ବନ୍ଧୀୟ—
1. Relating to day-break.

(ଯଥା—ପାହାନ୍ତିଆ ଶୀତ)

୨ । ପ୍ରଭାତ କାଳୀନ–2 Occuring at day-break.

(ଯଥା—ପାହାନ୍ତି ବାଜା)

୩ । (ସଂ. ପ୍ରାପଣ, ଅନ୍ୟ ଶବ୍ଦ ସଙ୍ଗେ ବ୍ୟବହୃତ,

(ଯଥା—ହାତ ପାହାନ୍ତି )—( ଗୋଡ଼ ହାତଦ୍ୱାରା ) ପହଞ୍ଚିବାର ଯୋଗ୍ୟ (ସ୍ଥାନ)

3. Reachable (by the hand or foot).

**ପାହାନ୍ତି ଅବକାଶ**—ଦେ. ବ. (ସଂ. ପ୍ରଭାତ ଅବକାଶ)—୧ । ପ୍ରଭାତ
Pāhānti abakāsa ସମୟରେ ଦେବତାମାନଙ୍କର ପହଡ଼ ଭାଙ୍ଗିବା ପରେ କରାଯିବା ଆରତି ଆଦି—

1 The ceremonies performed before Deities in the early morning.

ପ୍ରଭାତୀ ୨ । ଶଯ୍ୟା ତ୍ୟାଗ କରିବା ସମୟରେ ବୋଲାଯିବା ସ୍ତୁତି ଗୀତ—
**प्रभाती** 2. Hymns and songs recited before day-break.

**ପାହାନ୍ତି ଖେଚଡ଼ି**—ପ୍ରାଦେ (ପୁରୀ ବ.—କୁସ୍ତି କସରତ୍ କରୁଥିବା
Pāhānti khechardi ଯୁବକମାନେ ପାହାନ୍ତିଆରୁ କୁସ୍ତି ଆଦି କରସାରି ଖାଉଥିବା ଖେଚଡ଼ି—Rice boiled with pulse and ghee taken by athletes in the morning.

**ପାହାନ୍ତି ତାରା**—ଦେ ବ (ସଂ. ପ୍ରଭାତ, ତାରା)—୧ । ପ୍ରଭାତ ତାରା, ରାତି
Pāhānti tārā ପ୍ରହରେ ଥାଇଁ ଯେଉଁ ତାରା ପୂର୍ବଦିଗରୁ ଉଇଁ
(ପାହାନ୍ତିଆ ତରା—ଅନ୍ୟରୂପ) ସକାଳ ହେଲାବେଳକୁ ପୂର୍ବାକାଶରେ
**शुकवा** ଦେଖା ଯାଉଥାଏ—1. The morning star; the shining star seen in the eastern sky before dawn.

[ ଦ୍ର—ଏହା ଗୋଟିଏ ନୁହେଁ, ବର୍ଷର ଭିନ୍ନ ଭିନ୍ନ ସମୟରେ ଭିନ୍ନ ଭିନ୍ନ ଗ୍ରହ ଯଥା—ମଙ୍ଗଳ, ବୃହସ୍ପତି, ଶୁକ୍ର ଓ ଶନି ପାହାନ୍ତିଆ ସମୟରେ ପୂର୍ବଦିଗରୁ ଉଇଁନ୍ତି—କିନ୍ତୁ ସମସ୍ତଙ୍କ ମଧ୍ୟରେ ଶୁକ୍ର ଉଜ୍ଜ୍ୱଳତମ ଓ ତା ପରେ ବୃହସ୍ପତି । ଏମାନେ ଗତି କରୁ କରୁ ଯେତେବେଳେ ପ୍ରଭାତ ପୂର୍ବରୁ ପୂର୍ବଆଡ଼େ ଦେଖା ଯାଆନ୍ତି ତାଙ୍କୁ ପାହାନ୍ତିଆ ତାରା ବୋଲାଯାଏ ଓ ରାତି ପହରକ ପର୍ଯ୍ୟନ୍ତ ପଶ୍ଚିମଆଡ଼େ ଦେଖା ଯାନ୍ତି ତାଙ୍କୁ ପହରକିଆ ବା ସନ୍ଧ୍ୟା ତାରା କହନ୍ତି । ସମୟେ ସମୟେ ପୁନର୍ବସୁ ନକ୍ଷତ୍ରରେ ଥିବା ଲୁବ୍ଧା ନକ୍ଷତ୍ର (dogstar—ଯାହା ନକ୍ଷତ୍ରମାନଙ୍କ ମଧ୍ୟରେ ଉଜ୍ଜ୍ୱଳତମ) ସନ୍ଧ୍ୟା ପରେ ବା ଭୋର ପୂର୍ବରୁ ପଶ୍ଚିମାକାଶରେ ବା ପୂର୍ବାକାଶରେ ଦେଖାଗଲେ ତାଙ୍କୁ ମଧ୍ୟ ଲୋକେ ପ୍ରଭାତ ତାରା ଓ ସନ୍ଧ୍ୟା ତାରା କହନ୍ତି । ]

୨ । ଶୁକ୍ର ଗ୍ରହ—2. The Venus.

**ପାହାନ୍ତି ପଖାଳ**—ଦେ. ବ ( ସଂ. ପ୍ରଭାତ+ପ୍ରକ୍ଷାଳିତାନ୍ନ )—
Pāhānti pakhāla ରାତି ପାହାନ୍ତିଆରୁ ଖିଆଯିବା ପଖାଳ ଭାତ-Moistened rice taken early before day-break.

ବଙ୍କା ପାଚ ଖାଇ ସେ ହୁଟି ! ତୋ ବାନ୍ତ ତ ପାଚର ନାହିଁ,
ବାନ୍ତ ପାଚର ନାହିଁ ରେ ବୁଢ଼ା ! ମୁଁ ପାହାନ୍ତି ପଖାଳ ଖାଏ ।
ଅରଟ ଗୀତ ।

**ପାହାନ୍ତି ଶୀତ**—ଦେ. ବ—ଫାଲ୍ଗୁନ ଓ ଚୈତ୍ର ମାସର ରାତି ଶେଷ ପହର
Pāhānti sita ଆଡ଼କୁ ଅନୁଭୂତ ହେବା ସାମାନ୍ୟ ଶୀତ—
**सुबहका जाड़ा** Slight cold felt towards the end of the night in months of Phālguna and Chaitra.

**ପାହାର**—ଦେ. ବ ( ସଂ. ପ୍ରହାର )—୧ । ପ୍ରହାର, ଆଘାତ, ମାଡ଼—
Pāhāra 1. Blow; beating.
ଘା **चौट, लाठी**

୨ । ଯଷ୍ଟି ବା ବେତ୍ର ଦ୍ୱାରା ଆଘାତ—

2. Stroke of a stick or cane

୩ । ଉପର୍ଯ୍ୟୁପରି କୁଟିବା—

3. Repeated beating or pounding.

୪ । ଢିଙ୍କିରେ କୁଟିବା—

4. Pounding with a Dhinki.

ମୋନା ୫ । ଢିଙ୍କିର ମୁଣ୍ଡରେ ଲାଗିଥିବା ମୁଷଳ—
**मूसल** 5 The pounding pestle attached to a Dhinki.

ପ୍ରାଦେ. (ଗଡ଼ଜାତ) ବ—ଏକାଦିକ୍ରମେ ଲାଗିଥିବା ବନ୍ଧୁର ଢିପ ବା ଗଡ଼ାଣିଆ ଜମି—A succession of mounds or slopes.

(ଯଥା—ଢିପ ପାହାର ଗଡ଼ାଣିଆ ପାହାର ।)

**ପାହାରପୁର**—ଦେ. ବ ( ନାମ )—ଆଇ. ବି. ରେଲର ଜମାଲଗଞ୍ଜ
Pāhārapur ଷ୍ଟେଶନ ନିକଟବର୍ତ୍ତୀ ରାଜସାହି ଜିଲ୍ଲାର ଗୋଟିଏ
ପାହାରପୁର **पहारपुर** ଗ୍ରାମ—A village in the district of Rajsahi near the Jamalganj station of the I. B. Ry.

[ଦ୍ର—ଏହି ଗ୍ରାମରୁ ଭୂଗର୍ଭରୁ କେତେକ ମନ୍ଦିର ଓ ମୂର୍ତ୍ତି ଆବିଷ୍କୃତ ହୋଇ ଥିବାରୁ ଜଣାଯାଏ ଯେ ଆଗେ ଖ୍ରୀଷ୍ଟ ୫ମ ଓ ୬ଷ୍ଠ ଶତାବ୍ଦିରେ ବଙ୍ଗଦେଶୀୟମାନେ ଶ୍ରୀକୃଷ୍ଣ ଓ ବଳରାମଙ୍କର ପୂଜା କରୁଥିଲେ । ସେହି ଖୋଦକଶିଳ୍ପୀ ଓ ପ୍ରସ୍ତରଶିଳ୍ପୀମାନଙ୍କରେ କୃଷ୍ଣ ଓ ବଳରାମଙ୍କର କେତେକ ବାଲ୍ୟକାଳ ଜୀବନ ଘଟଣା ଖୋଳା ଯାଇଅଛି, ଏଥିରୁ ଜଣାଯାଏ ଯେ ଭାରତୀୟ ଶିଳ୍ପ ଯାବା, ବାଲ୍ୟାଦି ରୂପ ନିବେଶମାନଙ୍କରେ ଅନୁକୂଳ ହୋଇଥିଲା । ଏଠାରୁ ବାହାରିଥିବା ତାମ୍ର ଶାସନ ୧୫୯ରୁ ୪୭୯ ଖ୍ରୀ: ମଧ୍ୟରେ ଲିଖିତ ହୋଇଥିବାର ନିର୍ଣ୍ଣୟ କରାଯାଇ ଅଛି ଓ ଏଥିରେ ରାଜା ଜୈନମାନଙ୍କ ପାଇଁ କେତେକ ଭୂମି ଦାନ ଦେଇ ଥିବାର ଲେଖାଅଛି । ]

**ପାହାରୀ**—ଦେ. ବ. (ସଂ. ପ୍ରହରୀ)—୧ । ପ୍ରହରୀ—
Pāhāri 1. Watchman.
ପାହାରା **पाहरुपहरी** ପାହାରୀ ଜଣାଇଲା ଯାଇ
ଶୁଣି ଥାଇଁଲେ ବେଶ କରି । ଜଗନ୍ନାଥ. ଭାଗବତ ।

୨ । ଦ୍ୱାରୀ; ଦରୁଆନ—

2. Door keer; gate keeper.

ହାଇ ନରୂପଣ ତାହାରେ ବହିଲେ ନଗିଲ ସେହି ପାହାରୀ ।
ବିଶ୍ୱନାଥର ଉଷାବିଳାସ ।

ପିଚ୍ଛଡ଼—ଦେ. ବି ( ସଂ. ପକ୍ଷ୍ମପାତ)—୧ । ଆଖିର ପଲକ—
Pichhārda 1. Eye-lid.
୨ । ପଲକପାତ—2. Blinking
୩ । ନିମେଷ ମାତ୍ର ସମୟ—
3. A twinkle of the eye.

ପିଚ୍ଛଡ଼ି—ଦେ. ବିଣ ( ସଂ. ପଶ୍ଚାତ୍ ) —୧ । ପଶ୍ଚାଦ୍‌ଭାଗସ୍ଥ—
Pichhārdi 1. Pertaining to the rear; postern
ପିଛାଡି पिछाड़ि
୨ । ପଛ ଗୋଡ଼ ସମ୍ବନ୍ଧୀୟ—
2. Pertaining to the hind leg
ଦେ ବି—୧ । ପିଚ୍ଛଡ଼ ( ଦେଖ )
1. Pichhārda ( See ).
पछाड़ ୨ । ଘୋଡ଼ାର ପଛ ଗୋଡ଼ ବନ୍ଧାହେବା ଦଉଡ଼ା—
2. The ropes for tying the postern legs of a horse
୩ । ପଶୁର (ଘୋଡ଼ାର) ପଛ ଗୋଡ—
3. The hind legs of a beast.
୪ । ( ଜାହାଜିଆ ଶବ୍ଦ ) ପଶ୍ଚିମଦିଗ—
4. (nautical ) West ( mariner's compass ).
୫ । ଗାଡ଼ିରେ ଲାଗିଥିବା ବଳଦଙ୍କ ପିଚ୍ଛ ଚକକ୍ଷ୍ୱାର୍ ଘଷି ନ ହେବା ପାଇଁ ଦଣ୍ଡା ଦେହରେ ବନ୍ଧା ଯାଇଥିବା ବାଉଁଶଖଣ୍ଡ ( ଯାହା କି ବଳଦଙ୍କ ପିଚ୍ଛ ଓ ଚକ ମଧ୍ୟରେ ଥାଏ )—
5. A piece of bamboo tied to the shafts of a cart to save the posteriors of the bullocks from being hurt by the moving wheels.

ପିଚ୍ଛଡ଼ିବା—ଦେ. କ୍ରି—ଆଖିର ପଲକ ପକାଇବା—
Pichhārdibā To blink; to wink.
पलक फेलना ଦମୟନ୍ତୀ ସର୍ଶ ଭୁଲେ ମୋ ରୂପ ଚକ୍ଷି
पलक गिराना ପିଚ୍ଛଡ଼ ନ ପାଉନ୍ତ ତାର ବେନି ଅକ୍ଷି—କୃଷ୍ଣସିଂହ. ମହାଭାରତ ବନ ।

ପିଚ୍ଛଡ଼ି ମାରିବା—ଦେ. କ୍ରି—ପଛ ଗୋଡରେ ନାଡ ମାରିବା—
Pichhārdi māribā To kick with the hind leg or legs.
लाथी मारा कथाड़ मारना

ପିଚ୍ଛ ଧରିବା—ଦେ. କ୍ରି—୧ । ପଛେ ପଛେ ଯିବା—
Pichhā dharibā 1 To follow.
पेछु पेछु याओया ୨ । (ଶିକାର) କୌଣସି ଜୀବ ଯାଇଥିବା ବାଟକୁ
पीछा करना ଦେଖି ତା ପଛେ ପଛେ ଯିବା—
2. To follow an animal on its track.
୩ । ଆଶ୍ରୟ ବା ଅନୁଗ୍ରହାର୍ଥ କୌଣସି ବ୍ୟକ୍ତିର ସଙ୍ଗେ ଗୋଡ଼ାଇବା—3. To dance attendance upon a person for some favour.

ପିଚ୍ଛ ପଡ଼ିବା—ଦେ. କ୍ରି—ପଛେ ପଛେ ଯିବା—
Pichhā pardibā To follow after (Howells).

ପିଚ୍ଛରେ—ଦେ. ଅ—ପିଚ୍ଛ ( ଦେଖ )
Pichhāre Pichhā ( See )

ପିଚ୍ଛରେ ଲାଗିବା—ଦେ. କ୍ରି—୧ । ଆଶ୍ରୟ ବା ଅନୁଗ୍ରହ ପ୍ରାର୍ଥନାରେ
Pichhāre lāgibā କୌଣସି ବ୍ୟକ୍ତିକୁ ସର୍ବଦା ଅନୁସରଣ
পেছনে লাগা କରିବା—1. To wait upon a person, to
पीछे लगना follow a person for some favour or help.
(ପିଚ୍ଛରେ ଲଗାଇବା—ଣିଜନ୍ତରୂପ)
୨ । କୌଣସି ବ୍ୟକ୍ତି ପ୍ରତି ଖୁବ୍ ଯତ୍ନ କରିବା—
2. To take utmost care of a person.
୩ । କୌଣସି ବ୍ୟକ୍ତିର ଅନିଷ୍ଟାଚରଣ କରିବା ପାଇଁ ସୁଯୋଗ ଉଣ୍ଡିବା—3 To shadow a person.
୪ । କୌଣସି ବ୍ୟକ୍ତି ବା ବିଷୟ ପାଇଁ ( ଏତେ ଧନ ) ବ୍ୟୟିତ ହେବା—4. ( so much money ) To be spent after a person or thing.

ପିଚ୍ଛଲ୍—ପ୍ରାଦେ. ( ସମ୍ବଲପୁର ) ବି—୧ । ଗୁଳ ଘରର ଓଳ—
Pichhāl 1. The eaves of a thatched house.
ଘରେ କାହିଁ ବରହମ୍ ଥାଇ, ପିଚ୍ଛଲ୍‌ଅଡେ ମେଇ ଅଁଛେ—ଛନ୍ଦ ।
୨ । ( ଭୁଲ. ଏହି ଅର୍ଥରେ ହି. ପିଛୱାଡ଼ା ) ଘରର ପଛଆଡ଼, ବାଡ଼ିଆଡ଼—2. Back side of the house.

ପିଚ୍ଛଲ୍ ତଲ୍—ପ୍ରାଦେ. (ସମ୍ବଲପୁର) ବି—ଓଳତଳ—
Pichhāl tal The ground below the eaves of a thatch.

ପିଚ୍ଛିଡ଼ା—ଦେ ବି—ପିଚ୍ଛଡ଼ା ( ଦେଖ )
Pichhirdā Pichhardā ( See )

ପିଛିଲ—ଦେ ବିଣ. ( ସଂ ପଶ୍ଚାତ୍ )—୧ । ପଛିଲା; ପଶ୍ଚାଭାଗରେ ଥିବା;
Pichhilā ପଶ୍ଚାଦ୍‌ବର୍ତ୍ତୀ—1. Situate behind.
পিছন, পেছন, পিছা ୨ । ପଛଆଡ଼େ ଆସୁଥିବା—
पिछला 2. Following; coming in the rear.
(ଆଗିଲା—ବିପରୀତ) ୩ । ପୂର୍ବବର୍ତ୍ତୀ—3 Preceding; previous.
୪ । ବିଗତ କାଳୀନ—4. Past; arrear.
ଦେ. ବି—୧ । ପଶ୍ଚାଦ୍‌ଭାଗ—1. Hind part.
୨ । ପଛଆଡ଼—2. The rear.
୩ । ଅତୀତ କାଳ—3 The past.

ପିଛୁଆ—ଦେ. ବି. (ବଣିଆ ଶବ୍ଦ)—ହାତର ଚୁଡ଼ି ପଛରେ କହୁଣୀଆଡ଼କୁ
Pichhuā ପିନ୍ଧାଯିବା ଅଳଙ୍କାର—A kind of bracelet
पछेली worn near the elbow above the churdi.

ପିଛୁଳା(ଳେ)ଇବା—ଦେ. କ୍ରି. (ସଂ. ପ୍ରକ୍ଷାଳନ)—ଅଇଁଠା ବାସନକୁ
Pichhulā(le)ibā ପାଉଁଶ ଆଦିରେ ନ ମାଜି କେବଳ ମାତ୍ର
পাখালা ପାଣିରେ ଧୋଇଦେବା—To wash superficially
पखालना a utensil which has been used in taking meals.
(ପିଚ୍ଛୁଳାଇବା, ପିଚ୍ଛୁଳେଇବା, ପିଚ୍ଛୁଳାଇବା, ପିଚ୍ଛୁଳେଇବା, ପିଛୁଳିବା, ପିଛୁ ଲାଇବା, ପିଛୁ ଲେଇବା, ପିଛୁ ଳିବା—ଅନ୍ୟରୂପ)

ପିଛୁଳି—ଦେ. ବି—ପିଚ୍ଛଳି (ଦେଖ)—
Pichhuli Pichhali (See).

**ପିଛୁଳ ପଡ଼ିବା**—ଦେ. କ୍ରି—୧ । ଗିଲ୍ଟି ଫୁଲି ଦରଜ ହେବା—
Pichhuli pardiba 1. The painful swelling of the lymphatic gland.
(ପିଛୁଳ ଗଡ଼ିବା, ପିଛୁଳ ଦରଜ—ଅନ୍ୟରୂପ)
ଦେ. କ୍ରି—୨ । (ସ ପିଚ୍ଛଳ) ଗୋଡ଼ ଖସି ପଡ଼ିବା—
2. To trip and fall down.
ହୃଦେ ଅଇଁ ସିଲେ ବୃନ୍ଦ ପିଛୁଳ ପଡ଼ି ଭ୍ରୁ—ଭ୍ରାନ୍ତି, ବ୍ରହ୍ମାନନ୍ଦରୂପଣ ଗୀତା ।

**ପିଚ୍ଛୋଡ଼ା**—ଦେ. ବି. (ପ୍ରାଚୀନ ପଦ୍ୟ)—(ସ. ପକ୍ଷ୍ମ)—୧ । ଆଖିର ପକ୍ଷ୍ମ;
Pichhorda ପିଛଡ଼ା—Eye-lid.
ଗୋ କାଚ କୃଷ୍ଣର ଭ୍ରୁ ଲତା,
ପୀ କାଚ ପିଚ୍ଛୋଡ଼ାରେ ହି ଭା । ମଣୋବନ୍ତ୍ର, ହେମଭକ୍ତି ବ୍ରହ୍ମଗୀତା

**ପିଜଇ**—ପ୍ରାଦେ (ସମ୍ବଲପୁର) ବି—ସୂତା କାଟିବାରେ ବ୍ୟବହୃତ ତୁଳାର
Pijai ବଳଣା—Cotton-rolls used for spinning yarn.

**ପିଜାସ**—ଦେ. ବି. (ସ ପିଞ୍ଜୁଷ)—କର୍ଣ୍ଣମଳ, କାନଗୁହ; କାନଗଇ—
Pijasa The rheum deposited inside the ear; the wax of the ear
କାନେର ଖୋଲ ग़ीड़, गीज

**ପିଜୁଡ଼ି**—ଦେ. ବି. (ସ. ପାରେବତ ଫଳ)—
Pijurdi ପିଜୁଡ଼ି; ପିଆସ୍ତ୍ର, ଗୃଡ଼ୁଳଅଫଳ—
পেয়ারা; পিয়ারা Guava; Ficus Carica;
अमृत; पपारा Psidium Guyava.
ମ. ପେରୁ
ତେ. ଜାମପଣ୍ଡୁ
[ଦ୍ର—ଏ ଗଛ ଆମେରିକାରୁ ଏ ଦେଶକୁ ପ୍ରଥମେ ଆସିଥିଲା । ଏହା ଜମ୍ବୁକାଦି ବର୍ଗର ଶ୍ରେଷ୍ଠ ଉଦ୍ୟାନ ବୃକ୍ଷ, ଗ୍ରୀଷ୍ମକାଳରେ ଧଳା ଫୁଲ ଧରେ; ଗଛ ପ୍ରାୟ ବଙ୍କା, ଖୋଲ ମସୃଣ; ବକଲରୁ ଖୋଲ ପାଖୁଡ଼ା ଉଠିଯାଏ, କାଠ ଖୁବ୍ ଟାଣୁଆ, କଞ୍ଚାଫଳ ଓ ପତ୍ର କଷା;ପାଚିଲେ ସ୍ୱାଦୁ ହୁଏ । ଏହାର ପତ୍ର ମୁଖର ଦୁର୍ଗନ୍ଧନାଶକ; ଏହାର ମଞ୍ଜି ଗୁଡ଼ୁଳ ପରି, ଏଥିପାଇଁ ଏହାର ନାମ ଗୁଡ଼ୁଳଆ ।
(ପିଜୁଡ଼ି, ପିଜୁଡ଼ୁ, ପିଜୁଳ, ପିଜୁଳ—ଅନ୍ୟରୂପ)
ଏହା ବଡ଼ ଓ ସାନ ଭେଦରେ ଦୁଇ ପ୍ରକାର । ସାନ ପିଆସ୍ତ୍ରର ସଂସ୍କୃତ ନାମ—ପାରେବତ, ରୈବତ, ଆରେବତକ, ମଧୁଫଳ, ଅମୃତ ଫଳ ଓ ପାରେବତକ । ଏହା ମଧୁରରସ, ବଳକାରକ, ହୃଦ୍ୟସୁଗନ୍ଧି, ସ୍ନିଗ୍ଧ, ରୁଚିକର ଓ ଶୁକ୍ରଜନକ ।
ବଡ଼ ପିଆସ୍ତ୍ରର ସଂସ୍କୃତ ନାମ—ମହାପାରେବତ, ସ୍ୱର୍ଣ୍ଣ ପାରେବତ, ସାମ୍ରାଣିଜ, ଖାରକ, ରକ୍ତରୈବତକ, ବୃହତ୍ ପାରେବତ, ଦ୍ୱୀପଜ ଓ ଦ୍ୱୀପଖର୍ଜୁର; ଏହା ବଳକାରକ, ପୁଷ୍ଟିକର, ବୃଷ୍ୟ, ଏବଂ ମୂର୍ଚ୍ଛା ଓ ଜ୍ୱର ନାଶକ । ଏହା ପୂର୍ବୋକ୍ତ ପିଆସ୍ତ୍ର ଅପେକ୍ଷା ଅଧିକ ଗୁଣବିଶିଷ୍ଟ । ଉଭୟ ପ୍ରକାର ପିଆସ୍ତ୍ରର ପତ୍ରକୁ ଘୋଡ଼ି ଅଫିମ ସଙ୍ଗେ ବାଳ ଲୋକେ ମଦତ୍ ବା ଗୁଲି ଖିଆର କରନ୍ତି ।]

**ପିଞ୍ଛ**—ଦେ. ବି—୧ । ପିଚ୍ଛ (ଦେଖ)—1. Pichha (See).
Pinchha ୨ । ଶୁଖିଲା ନଡ଼ିଆ ପତ୍ରର ଛୋଟ ଛୋଟ ବିଡ଼ା—
2. Small bunches of dry cocoanut leaves tied together.
ପ୍ରାଦେ. (ସମ୍ବଲପୁର ଓ ଗଡ଼ଜାତ)—ଘଣାର ଖାଣ୍ଡି—
The stick attached to the basin of an oil mill.

**ପିଞ୍ଛଡ଼ା**—ଦେ. ବି—୧ । ପିଛଡ଼ା (ଦେଖ)—1. Pichharda (See)
Pinchharda ୨ । (ସ. ପିଞ୍ଜୁଷ) ନେତ୍ରମଳ; ଆଖିନେଦେଖ—
2. Concrete rheum of the eye.

**ପିଞ୍ଛ ଦେବା**—ଦେ. କ୍ରି—୧ । ଧାନ ଗଛକୁ ଗୋରୁ ଖାଇଯିବେ ନାହିଁ ବୋଲି ପିଞ୍ଛଦ୍ୱାରା ଧାନ ଗଛରେ ଗୋବରପାଣି ଛିଞ୍ଚିବା—1 To sprinkle water mixed with cow-dung on paddy plants to prevent cattle from nibbling them.
Pinchha deba
(ପିଞ୍ଛ ମାରିବା—ଅନ୍ୟରୂପ)
কুচীমাৰা
कुचीमारना
୨ । ପଲସ୍ତରା କରିବା ପୂର୍ବରୁ କାନ୍ଥ ଉପରେ ପିଞ୍ଛଦ୍ୱାରା ପାଣି ଛିଞ୍ଚିବା—2. To sprinkle water with the help of a mason's brush on wall which is being plastered
୩ । ଭାତ ହାଣ୍ଡିର ମୁହଁରେ ପିଞ୍ଛକୁ ହାକୁଡ଼ାଇ ଭାତହାଣ୍ଡିକୁ ଅଣାଇ ଭାତରୁ ପେଜ ଗାଳିବା—3. To put a bunch of straw etc on the mouth of an inclined cooking pot to let the rice water escape therefrom

**ପିଞ୍ଛା**—ଦେ. ବି—୧ । ପରଶୁଣି; ପତଳା କଂସା, ଯହିଁରେ ବଡ଼ ପାତ୍ରରୁ ଭାତ ଆଣି ପରିବେଷଣ କରିବାକୁ ହୁଏ—1 A thin metal bowl to serve rice
Pinchha
सरवा
(ପିଁଛା—ଅନ୍ୟରୂପ) ୨ । (ସ. ପିଚ୍ଛ) ଚାମର ଜାତୀୟ ବ୍ୟଜନ ବିଶେଷ—2. A kind of chowrie like fan.
ଅବିରତ ପିଞ୍ଛା ଚାମର । ଶାନ୍ତି ମୂନି ସୁର ତର—ଭୂପତି ପ୍ରେମପଞ୍ଚାମୃତ ।
୩ । ପିଛଡ଼ା (ଦେଖ)—
3. Pichharda (See)
ଘା ରୂପ କନ୍ୟାମାନେ ଗୁହିଁ । ନୟନ ପିଞ୍ଛା ନ ଚଳଇ—ଜଗନ୍ନାଥ ଭାଗବତ ।

**ପିଞ୍ଛାଡ଼ିବା**—ଦେ. କ୍ରି—(ସ. ପକ୍ଷ୍ମପାତ)—ପିଛଡ଼ିବା (ଦେଖ)—
Pinchhardiba Pichhardiba (See)
ଧାନ ମଙ୍ଗଳ ରୂପ ଦେଖି
ପିଞ୍ଛାଡ଼ି ନ ପାରଇ ଅଖି—ଜଗନ୍ନାଥ ଭାଗବତ ।

**ପିଞ୍ଜ** (ଧାତୁ)—ସ—୧ । ଆଘାତ କରିବା—
Pinj (root) 1 To strike.
୨ । ବଧ କରିବା—2. To kill.
୩ । ବାସ କରିବା—3. To live.
୪ । ସ୍ପର୍ଶ କରିବା—4. To touch
୫ । ମିଳିତ ହେବା—5. To meet; to mix with.
୬ । ଚକ୍ ଚକ୍ ହେବା; ଦୀପ୍ତି ପାଇବା—
6. To shine; to sparkle.
୭ । ପିଙ୍ଗଳ ବର୍ଣ୍ଣ ହେବା—7. To become tawny.
୮ । ରଞ୍ଜିତ କରିବା—8 To paint; to dye.

**ପିଞ୍ଜ**—ସ. ବି. (ପିଞ୍ଜ ଧାତୁ+ଭାବ. ଅ)—୧ । ବଧ; ହତ୍ୟା—
Pinja 1. Killing; murder; slaughter.
୨ । ଏକପ୍ରକାର କର୍ପୂର—2. A kind of camphor.
୩ । ବଳ, ଶକ୍ତି—3. Power; might; strength.

ସ. ବିଣ. ପୁଂ. (ପିଞ୍ଜ ଧାତୁ=ବଧ କରିବା, ଆଘାତ କରିବା+
(ପିଞ୍ଜଳା—ସ୍ତ୍ରୀ) କର୍ମି. ଅ)—୧ । ବ୍ୟାକୁଳିତ—
1. Disturbed; confused.
୨ । କାତର—2 Confounded.

ପିଞ୍ଜକ—ସ. ବି. (ପିଞ୍ଜ ଧାତୁ=ରଞ୍ଜିତ କରିବା+କରଣ. ଅକ)—
Pinjaka ହରିତାଳ (ହ. ଶ)—Yellow orpiment.

ପିଞ୍ଜଟ—ସ. ବି. (ପିଞ୍ଜ ଧାତୁ+କର୍ତ୍ତୃ. ଅଟ)—ନେତ୍ରମଳ, ନେତ୍ରକର୍—
Pinjata The concrete rheum or mucus of the eye.

ପିଞ୍ଜନ—ସ. ବି. (ପିଞ୍ଜ ଧାତୁ=ସ୍ପର୍ଶ କରିବା, ଆଘାତ କରିବା+କରଣ.
Pinjana ଅନ)—୧ । କପା ଧୁଣିବା ଧନୁ, କାର୍ପାସ ଶୋଧକ ଧନୁ—
1. A bow used in carding cotton
୨ । (+ଭାବ. ଅନ) ତୂଳା ଧୁଣିବା—
2. Carding of cotton.

ପିଞ୍ଜର—ସ. ବି. (ପିଞ୍ଜ ଧାତୁ+ଅର)—୧ । ପୀତବର୍ଣ୍ଣ ଅଶ୍ୱବିଶେଷ—
Pinjara 1. A bay or chestnut horse.
୨ । ପିଙ୍ଗଳବର୍ଣ୍ଣ—2. Tawny colour.
୩ । ହରିତାଳ—3. Yellow orpiment
୪ । ପକ୍ଷୀ ପାଳିବାର ପଞ୍ଜୁରି—4 Bird-cage.
୫ । ସ୍ୱର୍ଣ୍ଣ—5. Gold.
୬ । ପଞ୍ଜରା ହାଡ଼—6. The ribs.
୭ । ଦେହାସ୍ଥି ପୁଞ୍ଜ, ଚର୍ମ ଓ ମାଂସ ହୀନ ହାଡ଼ର ଥାଟ—
7. Skeleton.
୮ । ପିତ୍ତଳ—8. Brass.
କରୁଣା ସୁବର୍ଣ୍ଣ ଯେ, ବାଳ ପିଞ୍ଜର ପରିରେ ।
ଲକ୍ଷ୍ମୀ, ବେ ଦେଶ୍ୱରଦାସ ।
୯ । ନାଗେଶ୍ୱର ଫୁଲ—
9. The Nāgeswara flower; Messua Ferra.
ସ. ବିଣ.—୧ । ପିଙ୍ଗଳ—
1, Tawny; reddish yellow.
୨ । ପୀତ; ହଳଦିଆ (ହ. ଶ.)—2. Yellow.

ପିଞ୍ଜରକ—ସ. ବି.—ହରିତାଳ (ଦେଖ)
Pinjaraka Yellow orpiment.

ପିଞ୍ଜରା—ଦେ. ବି. (ସ. ପିଞ୍ଜର)—ପିଞ୍ଜରୀ (ଦେଖ)
Pinjarā Pinjarī (See)

ପିଞ୍ଜରା ପୋଲ—ଦେ. ବି.—ବୃଦ୍ଧ ଓ ଅକ୍ଷମ ଗୋରୁମାନଙ୍କର ଆଶ୍ରମ;
Pinjarā pola ଗୋଶାଳା—A shelter for decrepit and
पिंजरापोल पिंजरापोल sick cattle.

ପିଞ୍ଜରୀ—ଦେ. ବି. (ସ ପିଞ୍ଜର)—ପକ୍ଷୀମାନଙ୍କୁ ରଖିବା ପାଇଁ ନିର୍ମିତ କାଠ
Pinjarī ବା ଲୁହାର ଛୋଟ ଘର; ପଞ୍ଜୁରି—
ଖାଚା, পিঞ্জরা पिंजरा(ड़ा) Bird cage.
ପିକ କପୋତ ଶୁଆ ଶାରୀ, ଶଙ୍କିତ ହୋଇଛନ୍ତି ପିଞ୍ଜରୀ—ଭୂପତି, ପ୍ରେମପଞ୍ଚାମୃତ ।

ପିଞ୍ଜଳ—ସ. ବିଣ.—(ପିଞ୍ଜ ଧାତୁ=ପିଙ୍ଗଳ ବର୍ଣ୍ଣ ହେବା+କର୍ତ୍ତୃ. ଅଳ)—
Pinjala ୧ । ଫିକା ପଡ଼ି ଯାଇଥିବା—1. Turned grey.
(ପିଞ୍ଜଳା—ସ୍ତ୍ରୀ) ୨ । ଯାହା ମୁହଁ ଫିକା ପଡ଼ି ଥାଏ—
2. With the face turned pale.
୩ । ଭୟ ବା ଶୋକଦ୍ୱାରା ବ୍ୟାକୁଳ—3. Overcome with grief or terror; panic-struck.
୪ । କିଂକର୍ତ୍ତବ୍ୟବିମୂଢ଼—4. Extremely confounded, dumbfounded.
ସ. ବି—୧ । କୁଶ ପତ୍ର—1 A blade of Kuśa grass
୨ । ହରିତାଳ—2. Yellow orpiment.
୩ । ଜଳ ବେତସ (ହ. ଶ)—3. Water ratan.
୪ । ଶ୍ରାଦ୍ଧ ଓ ଯଜ୍ଞରେ ବ୍ୟବହୃତ ଏକତ୍ର ବନ୍ଧା ହୋଇଥିବା ଦୁଇଟି କୁଶ (ହ. ଶ)—4 Two blades of Kuśa grass tied together and used in vedic sacrifice
୫ । ପ୍ରଦୀପର ବର୍ତ୍ତିକା—
5 The wick of a lamp. (Apte)

ପିଞ୍ଜା—ସ. ବି—(ପିଞ୍ଜ ଧାତୁ+ଅ, ସ୍ତ୍ରୀ ଆ)—୧ । ହଳଦୀ—
Pinjā 1. Turmeric.
୨ । ହିଂସା—2. Envy.
୩ । କ୍ଷତ—3 Injury.
୪ । ବଧ—4. Killing.
୫ । ଆଘାତ—5. Hurting; striking.
୬ । ଠେଙ୍ଗା, ବାଡ଼ି—6 Stick
୭ । ତୂଳା—7. Cotton.
ଦେ. ବି—(ସ. ପିଞ୍ଜନ)—ତୂଳା ଧୁଣିବା—
Carding of cotton.
ଦେ. ବିଣ—ଧୁଣା ହୋଇଥିବା—Carded (cotton).

ପିଞ୍ଜା(ଞ୍ଜେ)ଇବା—ଦେ. କ୍ରି—(ସ. ପିଞ୍ଜ ଧାତୁ=ଆଘାତ କରିବା—
Pinjā(nje)ibā ପିଞ୍ଜିବା କ୍ରିୟାର ଣିଜନ୍ତରୂପ—Causative of
পেঁজান धुनवाना Pinjibā.
ମୂର୍ଖଲୋକ ତୂଳା ଲୋକଙ୍କର ତୂଳ ଦେହକୁ ପିଞ୍ଜାଇ ଦେଉଛି—
ଅର୍ଜୁନଦାସ, ରାମବିଭା ।

ପିଞ୍ଜାନ—ସ. ବି—ସ୍ୱର୍ଣ୍ଣ; ସୁନା ( ହ. ଶବ୍ଦସାଗର )—
Pinjāna Gold.

ପିଞ୍ଜିକା—ସ. ବି. ( ପିଞ୍ଜ ଧାତୁ+ଇକ+ସ୍ତ୍ରୀ. ଆ )—ଧୁଣା ତୂଳାର
Pinjikā ବଲଣା—A roll of carded cotted from
পাইজ which thread is spun; a skein of cotton
पूनी wool.

ପିଞ୍ଜିବା—ଦେ. କ୍ରି. ( ସ.ପିଞ୍ଜ ଧାତୁ=ଆଘାତ କରିବା )—୧ । ତୂଳାକୁ
Pinjibā ଧୁଣିବା—1. To cleanse or card cotton
ধোনা, পেঁজা तुनना, धुनना into wool.
୨ । ତୂଳା ଧୁଣିବା ପରି ମଞ୍ଜି ପକାଇବା—2. To thoroughly overhaul ( like carding cotton ).
୩ । ଛିନ୍ନବିଛିନ୍ନ କରିବା—3. To smash up; to disentangle the parts of a thing.
ଅଳ କରିବ ଖଣ୍ଡ ଖଣ୍ଡ, ଛାତି ପିଞ୍ଜିବ ଘୋର ପିଣ୍ଡ—
ଜଗନ୍ନାଥ, ଭାଗବତ ।

ପିଞ୍ଜୁ (ଞ୍ଜୂ)—ସ. ବ. ( ପିଞ୍ଜ ଧାତୁ + ଉ, ଊ )—ଘାପର ବଳତା; ବତୀ—
Pinju(nju) The wick of a lamp.
ପ୍ରାଦେ. ( ଗଡ଼ଜାତ ) ବ—ଭୁଲାର ବଳଣା—A roll of carded cotton used in spinning thread.
( ଯଥା—ସେ ପିଟ୍ ବୋଲନ୍ତ ଘର ଲୋକଙ୍କଠାଏ । )

ପିଞ୍ଜୁଷ—ସ. ବ. ( ପିଞ୍ଜ ଧାତୁ + ଊଷ )—କର୍ଣ୍ଣମଳ; କାନଗଇ—
Pinjūsha The wax of the ear.

ପିଞ୍ଜେଟ—ସ. ବ. ( ପିଞ୍ଜ ଧାତୁ + ଏଟ )—ପିଞ୍ଜଟ (ଦେଖ)
Pinjeta Pinjata ( See )

ପିଟ୍ (ଧାତୁ)—ସ—୧ । ସହତ ହେବା—
Piṭ (root) 1. To be gathered into one.
୨ । ମିଳିତ ହେବା—2. To meet.
୩ । ଶବ୍ଦ ସହିତ ସଂଘାତ କରିବା—
3. To strike with a noise.
୪ । ସଂଗ୍ରହ କରିବା; ଗଦା କରିବା—
4. To gather; to heap together.

ପିଟ୍—ବୈଦେ. ବ. (ଇଂ.)—ରଙ୍ଗମଞ୍ଚର ସନ୍ନିଧିରେ ପ୍ରଥମ ଶ୍ରେଣୀର
Pit ବଶିଷ୍ଟ ଭଦ୍ରଲୋକମାନଙ୍କ ବସିବା ପାଇଁ ବେଞ୍ଚ, କୁରୁଚ ଆଦି
পিট ପକାଇବା ନିମନ୍ତେ ଖୋଲା ଯାଇଥିବା ଗର୍ତ୍ତ—
पीट Pit (in a theatre hall).

ପିଟ୍‌ମାନ୍—ବୈଦେ. ବ. (ଇଂ. ନାମ)—ଇଂରାଜ ସର୍ଟହାଣ୍ଡ ବା ସୂକ୍ଷ୍ମଲିପିର
Piṭ-mān ଅବିଷ୍କାରକ—Pitman; the inventor of the
পিটমান্ system of shorthand which goes by
पीटमैन his name.

ପିଟ—ସ. ବ. (ପିଟ୍ ଧାତୁ + କର୍ମ. ଅ)—୧ । ବାଉଁଶ ପାତିଆ କର୍ମିତ
Pita ଟୋକେଇ; ତୋଲି—1. Basket made of bamboo laths.
୨ । ପେଡ଼ା, ପେଟରା; ପେଡ଼ି—
2. A wicker work trunk.
୩ । ଫୋଟକା; ବିସ୍ଫୋଟକ—
3. Pimple; blister; postule.
୪ । ଘୁଷୁରିଙ୍କ ଅଟେଇ—4. Hovel for hogs; crib.
୫ । ଗୃହ—5. House.
୬ । ଛାତ—6. Roof (Apte).
୭ । ଧ୍ୱଜାରେ ଲଗିବା ଅଳଙ୍କାରବିଶେଷ—7. A kind of decoration attached to a flag.
୮ । ଗ୍ରନ୍ଥ ବିଭାଗ; ଗ୍ରନ୍ଥର ଖଣ୍ଡ (ହ୍ରି. ଶ.)—
8. Volume of a book or literary production.
୯ । ରଚନା ବା ଲେଖାର ସଂଗ୍ରହ—
9. A collection of writings (Apte).
୧୦ । ଶସ୍ୟାଗାର; ଅମାର—10. Granary (Apte).

ପିଟକ—ସ. ବ. (ପିଟ୍ ଧାତୁ + କର୍ମ. ଅକ)—ପିଟ (ଦେଖ)
Piṭaka Piṭa (See)

ପିଟକା—ସ. ବ. (ପିଟକ + ଆ)—୧ । କ୍ଷୁଦ୍ର ବ୍ରଣ—
Piṭakā 1. A small boil or pimple (Apte).
୨ । କ୍ଷୁଦ୍ର ପେଟରା (ହ୍ରି ଶ.)—2. A small box.

ପିଟଣା—ଦେ. ବ.—(ସ. ପିଟ୍ ଧାତୁ)—୧ । କୋବା, ଭୂଇଁ ପିଟି ସମତୁଲ
Piṭaṇā କରିବାର ମୁଗୁର—1. Rammer or mallet used
পিটনা पिटना by masons to beat and pave down the floor of a house or the ground.
ବାଳକୁ କେ ବାନ୍ଧ ପିଟଣାରେ । ଗ୍ରାଗୀ, ପରବେ ଗୀତା ।
୨ । ମାଡ଼, ପ୍ରହାର—2 Beating.

ପିଟର୍—ବୈଦେ. ବ. (ଇଂ. ନାମ)—୧ । ବାଇବଲ୍ ଲିଖିତ ମହାତ୍ମା
Pitar পিটার पिटार ସେଣ୍ଟପିଟର୍—1 St. Peter.
[ବି—ଏ ଯୀଶୁ ଖ୍ରୀଷ୍ଟଙ୍କର ଜଣେକ ଭକ୍ତ ଶିଷ୍ୟ, ଖ୍ରୀଷ୍ଟଧର୍ମ ପ୍ରଚାର କରିଥିଲେ ।]
୨ । ପିଟର୍ ଦ ଗ୍ରେଟ୍ (ଦେଖ)—2. Pitar di gret (See)

ପିଟର୍ ଦ ଗ୍ରେଟ୍—ବୈଦେ. ବ. (ଇଂ.ନାମ, ପିଟର୍=ନାମ + ଦ ଗ୍ରେଟ୍=
Piṭar di greṭ ପ୍ରସିଦ୍ଧ ମହାପୁରୁଷ)—ରୁଷିଆର ଜଣେ ବିଖ୍ୟାତ
পিটর দি গ্রেট ସମ୍ରାଟ—Peter the Great; a famous
पटर दी ग्रेट czar of Russia

ପିଟା—ଦେ. ବ.—(ସ. ପିଟ୍ ଧାତୁ)—୧ । ପିଟିବା; ବାଡ଼େଇବା—
Piṭā 1. Beating down or ramming; hammer-
পটন पिटाई ing.
୨ । ବେତ୍ରାଦି ଦ୍ୱାରା ପ୍ରହାର—2. Thrashing with a cane or thin stick.
୩ । ଘଣ୍ଟ ଓ ଢୋଲ ଆଦି ଉପରେ ଆଘାତ—
3. Striking on a gong or drum.
পিটা, পেটা ଦେ. ବିଣ—୧ । ବାଡ଼ିଆ ହୋଇଥିବା—
पिटाहुआ 1. Beat down; beaten; rammed.
୨ । ହାତୁଡ଼ିରେ ବାଡ଼ିଆ ହୋଇଥିବା—
2. Hammered.
୩ । ମାଡ଼ ଖାଇବାରେ ଅଭ୍ୟସ୍ତ—
पिटू 3. Habituated to thrashing.

ପିଟା(ଟେ)ଇବା—ପିଟିବା କ୍ରିୟାର ଣିଜନ୍ତ ରୂପ—
Piṭā(ṭe)ibā Causative of Piṭibā.
পিটান, পেটান କହୁଛି ଜଣେ ଜଣେ କରିଣ ପିଟାଅ
पटाना, पिटवाना ପରେ ତାହାଙ୍କୁ ଯମ ପୁରକୁ ପଠାଅ ।
କୃଷ୍ଣସିଂ. ମହାଭାରତ. ଶାନ୍ତି ।

ପିଟା ଘଡ଼ି—ଦେ. ବ—୧ । ପିଟା ଘଣ୍ଟା ( ଦେଖ )
Piṭā ghardi 1. Piṭā ghanṭa ( See )
୨ । ଯେଉଁ ସମୟସୂଚକଯନ୍ତ୍ରସୂଚକ ଘଡ଼ି ଟଙ୍ଗ୍ ଟଙ୍ଗ୍ ହୋଇ ବାଜି ସମୟ ଜଣାଇ ଦିଏ—2. Chiming clock.
ସ ଅନ୍ତର ହୋଇଅଛି ପିଟା ଘଡ଼ି ଘଣ୍ଟା ।
ଧାତୀ, ବୃନ୍ଦାବନ ଗୀତା ।

ପିଟା ଘଣ୍ଟ(ଣ୍ଟା)—ଦେ. ବ—୧ । ଯେଉଁ ଘଣ୍ଟାରେ ଆଘାତ କରି ଶବ୍ଦ
Piṭā ghanṭa(nṭā) କରାଯାଏ—1. Gong.
পেটা ঘন্টা ୨ । (ଲକ୍ଷଣାର୍ଥ) ଯେଉଁ ଲୋକ ଅନେକ ତାଡ଼ନା
पिटा घण्टा ଆଦି ସହି ସହି ପଥର ପାଲଟି ଗଲାଣି—
2. A person hardened to constant beating.

ପିଟାପିଟି—ଦେ. ବ—୧ । ବାଡ଼ାଅ ବାଡେଇ—
Piṭāpiṭi 1. Mutual beating.
पिटापिटि ୨ । ଉପର୍ଯ୍ୟୁପର ପ୍ରହାର, ନିର୍ଦ୍ଦୟ ମାଡ଼—
पिटापिट 2. Sound thrashing or beating.
ଦେ. ବଣ—ପରସ୍ପର ମଧ୍ୟରେ ବାଡ଼ାଅବାଡେଇ ହେବା—
Beating each other.

ମେ ସବାଙ୍କ ଡାଇ ଡାଇରେ ପିଟାପିଟି
ହୋଇ କେତେ ଯୁଦ୍ଧ ଭୂମିରେ ଗଲେ ଲୋଟି ।
କୃଷ୍ଣସିଂହ, ମହାଭାରତ, ୧୧ ।

ପିଟା ଯିବା—ଦେ. କ୍ରି (ପିଟିବାର କର୍ମ ବାଚ୍ୟ)—ଅନ୍ୟ ଦ୍ୱାରା ପ୍ରଦତ୍ତ
Piṭā jibā ବା ଆଘାତ ପ୍ରାପ୍ତ ହେବା, ବାଡ଼ଅ ହେବା—
पिटा खाओ To be beaten or hammered.
पिटायाना (ପିଟା ହେବା—ଅନ୍ୟରୂପ)

ପିଟା ଲୁହା—ଦେ. ବ. (ସ. ପିଟ୍ ଧାତୁ+ଲୌହ)—
Piṭā luhā ଯେଉଁ ଲୁହାକୁ ନିଆଁରେ ତତାଇ ହାତୁଡ଼ିରେ ପିଟି
ପେଟା ଲୋହା ବା ବାଡେଇ କାମ କରାଯାଏ—
पिटा लुहा Wrought iron
(ଢାଳା ଲୁହା—ବିପରୀତ)

ପିଟି—ପ୍ରାଦେ. (ମେଦିନୀପୁର) ବ—ପେଡ଼ିପେଡ଼ିକିଆ (ଦେଖ)
Piṭi Perdiperdikiā (See)

ପିଟି ଦେବା—ଦେ କ୍ରି—ଥରେ ଜୋରରେ ପିଟିବା—
Piṭi debā To strike once with force.

ପିଟି ପକା(କେ)ଇବା—ଦେ. କ୍ରି—ଉପର୍ଯ୍ୟୁପର ପିଟିବା; ଅତ୍ୟନ୍ତ ପ୍ରହାର
Piṭi pakā(ke)ibā କରିବା—To beat copiously; to give a sound thrashing.

ପିଟିବା—ଦେ.କ୍ରି. (ପିଟ ବା ପିଟ୍ଟ ଧାତୁ=କୁଟିବା, ଭୁଲ.ସ. ପୀଡ଼୍ ଧାତୁ)—
Piṭibā ୧ । ଉପର୍ଯ୍ୟୁପର ଆଘାତ କରିବା, ସଂଘାତ କରିବା—
पिटा, पेटा 1. To ram; to strike repeatedly.
पिटना ୨ । ହାତୁଡ଼ିରେ ଧାତୁ ଆଦିକୁ ଆଘାତ କରିବା—
2. To hammer.
୩ । ବାଡ଼େଇବା; ପ୍ରହାର କରିବା; ଯଷ୍ଟି ଦ୍ୱାରା ଆଘାତ କରିବା—
3. To thrash; to beat with a stick.
ମୋତ ଗମ୍ଭୀର ଘଣ୍ଟ ପିଟିଲାରେ । ଉପେନ୍ଦ୍ରଭଞ୍ଜ, ଯଉ୍ଟାଭ ।
୪ । ଭୂମିରେ ଆଘାତ କରିବା—
4. To strike on the ground.
(ଯଥା—ମୁଣ୍ଡ ପିଟିବା ।)
୫ । ଆନନ୍ଦ ବାଦ୍ୟରେ ହାତ ବା କାଠି ଆଦି ଆଘାତ କରିବା—
5 To beat a drum.
ହୋଇ କାମସଜ ପିଟେ ଢକା ବାଜଣ । କୃଷ୍ଣସିଂହ. ମହାଭାରତ. ସଭା ।

ପିଟି ଯିବା—ଦେ. କ୍ରି.—କେତେକ ସମୟ ପିଟିବା—
Piṭijibā To go on beating for some time.

ପଟିସନ୍—ବୈଦେ. ବ. (ଇଂ. ପେଟିସନ୍) (କଚିରିଆ)—ଦରଖାସ୍ତ;
Piṭisan ଆବେଦନ ପତ୍ର—Petition.

ପିଟିସନ୍ ରାଇଟର୍—ବୈଦେ. ବ (ଇଂ)—(କଚିରିଆ)—
Piṭisan rāiṭar ୧ । ଦରଖାସ୍ତ ଲେଖକ, ନବିସିନ୍ଦା—
1. Writer or scribe of a petition.
୨ । (ସାଧାରଣରେ ବ୍ୟବହୃତ ଅର୍ଥ)—କଚେରୀରେ ଯେଉଁମାନେ ପକ୍ଷମାନଙ୍କ ନିମନ୍ତେ ଦରଖାସ୍ତ ଲେଖନ୍ତି ଓ ତଦ୍ଦ୍ୱାରା କରନ୍ତି—
2. Petition writer working in courts

ପିଟି ହେବା—ଦେ. କ୍ରି.—୧ । ନିଜେ ବାଡେଇ ହେବା—
Piṭi hebā 1. To strike (one's self)
[illegible]
୨ । ପିଟା ପାଇ ପାରିବା—2. To be beaten.
(ଯଥା—ଏ ଚାପୁଆ ଲୁହା ପିଟି ହେଉ ନାହିଁ ।)

ପିଟି ହୋଇ ଯିବା—ଦେ. କ୍ରି.—ଜୋରସହକାରେ କୌଣସି ଟାଣ ବସ୍ତୁରେ
Piṭi hoi jibā ବା ଭୂମିରେ ଆଘାତ ପାଇବା—To strike or come with force against a hard substance.
(ଯଥା—ମୋ ମୁଣ୍ଡ କାନ୍ଥରେ ପିଟି ହୋଇଗଲା ।)

ପିଟୁଣୀ—ଦେ ବ—(ସ. ପିଟ୍ ଧାତୁ)—ଓଳିଆକୁ ବାନ୍ଧ ସାର ତାକୁ
Piṭuṇi ସମତୁଲ କରି ବାଡ଼େଇବା ପାଇଁ ବ୍ୟବହୃତ ପଟା ବା
पीटना ଡିହୁଣୀ—A flat mallet used to make the surface of an Olia smooth by beating.

ପିଟ୍ଟକ—ସ. ବ. (ପିଟ୍ଟ୍ ଧାତୁ+ତ+କ)—ଦନ୍ତମଳ; ଦାନ୍ତର ଛଉିଆ,
Piṭṭaka ଦନ୍ତ କଟ୍ଟକ—The tartar or excretion of the teeth.

ପିଠ୍ (ଧାତୁ)—ସ.—ଆଘାତ କରିବା—
Piṭh (root) 1. To strike.
୨ । ବଧ କରିବା—2. To kill.
୩ । କଷ୍ଟାନୁଭବ କରିବା; କଷ୍ଟ ଦେବା—
3. To feel pain, to be afflicated.

ପିଠ୍—ପ୍ରାଦେ. (ଭଞ୍ଜଭୂଷା)—ବ—ପିଠି—
Piṭh Back.

ପିଠ—ସ. ବ. (ପିଠ୍ ଧାତୁ+ଅ)—କ୍ଲେଶ; ଯାତନା—
Piṭha Pain; agony.

ପିଠଉ—ଦେ. ବ. (ସ. ପିଷ୍ଟୋଦକ)—ଭୁଞ୍ଜିଲକୁ ବତୁରାଇ ବାଟି କରି
Piṭhau ଚକୁଳି, ଚିତଉ ଆଦି ପିଠା କରିବାନିମନ୍ତେ ତିଆରି କରାଯିବା ଘନ
पिठ्ठि पिठाणि ଲେହ—Liquid pulp of moistened
चउरेठ लपसी rice prepared by grinding; liquid paste used for making pastry cakes; batter.
ମଳ ଯେ ପଠଉ ମଳ ପିଣ୍ଡ ଡଳଇ । ବୈଷ୍ଣବଦାସ ।

ପିଠର—ସ. ବ. (ପିଠ=କ୍ଲେଶ+ର ଧାତୁ=ଗ୍ରହଣ କରିବା+ଅ)—
Piṭhara ୧ । ହାଣ୍ଡି, ଥାଳି—1. Earthen pot; pan.
(ପିଠରକ, ପିଠରିକା, ପିଠରୀ—ଅନ୍ୟରୂପ) ୨ । ପେଟରା—
2. A basket.
୩ । ଗୃହ—3. House.
୪ । କୋଠରୀ—4 Room.

୫ । ପଟି, ମୁନ୍ଦୁରୀ—5. Mat.
୬ । ମୁଥା—6. Bulbous grass-root.
୭ । ଦଧିମନ୍ଥନ ଦଣ୍ଡ, ଦହିଖୁଆ—
7. Churning rod, churner.

**ପିଠରୀ**—ସ. ବ (ପିଠ=କ୍ଲେଶ+ ର ଧାତୁ=ଗ୍ରହଣ କରିବା+ଈ)—
Pithari ପିଠର (ଦେଖ)—Pithara (See)

**ପିଠଲ**—ଦେ. ବ.—ପିଠୋଲ (ଦେଖ)
Pithala Pithola (See)

**ପିଠା**—ଦେ. ବ. (ସ ପିଷ୍ଟକ)—ଗହମ, ଚାଉଳ, ମୁଗ ଆଦି ବଟା ବା
Pitha ଚୂନା ଦ୍ୱାରା ପ୍ରସ୍ତୁତ ହେଉଥିବା ଖାଦ୍ୟ—
पिठा चपाती पूआ Cake.

ଘଣ୍ଟଅ ନୁହୁଇ ଯେବେ ବନାଶକ୍;
ନ ଦେଇ ଖାଇ ପିଠା ଖେଳେନ୍ତେ ଉତ୍ସବ । କୃଷ୍ଣସିଂହ ମହାଭାରତ ଦ୍ରୋଣ ।

[ଦ୍ର—ପିଠା ଅନେକ ପ୍ରକାରରେ ତିଆରି ହୁଏ । ଚାଉଳ ବଟା ପାଣିଆ ହେଲେ ତାକୁ ପିଠଉ ଓ ଘନ ହେଲେ ତାକୁ ଖଳ ବା ଖୋଦୁଅ ବୋଲି ଯାଏ ।

ପୋଡ଼ି କରି, ଭାଜି କରି, ତେଲ ବା ଘିଅରେ ଛାଣି, ପାଣିରେ ସିଝାଇ ଓ ବାମ୍ଫରେ ସିଝାଇ ପିଠା ତିଆରି କରାଯାଏ ।

କେତେଗୁଡ଼ିଏ ପିଠାର ନାମ ଯଥା – କାକରା, ନାନମାନ, ଆରିସା ପୁରି ବା ଲୁଚି, ରୁଟି, ଖଳରୁଟି, ଉଣ୍ଡୁରି ବା ଏଣ୍ଡୁରି, ଚକୁଳି, ଚିତଉ, ପୋଡ଼ପିଠା, ମଣ୍ଡା, ଗଇଁଠା, ଫୁଲ, ବରଲଡ଼ୁ, ବରବରି, ଅପମାଲୁ ବା ଅମାଲୁ (ମାଲପୁଆ), ଝିଲି (କାନ୍ତି ବା ନାଡ଼ି) ଓ ପାପଡ଼ି ଇତ୍ୟାଦି ପୁରୀ ଜଗନ୍ନାଥଙ୍କ ଦେଉଳରେ, ସତ୍ୟବାଦୀ ଗୋପୀନାଥଙ୍କ ନିକଟରେ ଓ ଭୁବନେଶ୍ୱରର ଲିଙ୍ଗରାଜ ମହାଦେବଙ୍କଠାରେ ନାନା ପ୍ରକାରର ପିଠା ପୂର୍ବରୁ ଚଳି ଆସୁଅଛି, ଯଥା—

ପୁରୀ ଜଗନ୍ନାଥଙ୍କ ନିକଟରେ—ଜଗନ୍ନାଥବଲ୍ଲଭ, ଖଜା, ଗଜା, ଖୁରୁମା, ମଗଜଲଡ଼ୁ, ଛେନାତାଡ଼ିଆ, ଛେନାମାଣ୍ଡୁଅ, ଚନ୍ଦ୍ରକାନ୍ତି ଓ ଲଡୁପୁରୀ; ସତ୍ୟବାଦୀ ଗୋପୀନାଥଙ୍କ ନିକଟରେ—ଗୋପାଳବଲ୍ଲଭ, ସରପୁଲି, କାକରା ଓ ଭାଲମ୍, ଅମୃତ ରସାବଳୀ, ଭୁବନେଶ୍ୱର ଲିଙ୍ଗରାଜଙ୍କ ନିକଟରେ— ବସନ୍ତ ବା ବସନ୍ତ ଆରିସା, କାନ୍ତି ଓ ଭାଲମ୍; ଏହାଛଡ଼ା ଆଧୁନିକ ଅନେକ ପ୍ରକାରର ନୂତନ ଧରଣର ପିଠା ମଧ୍ୟ ଲୋକେ କରୁଅଛନ୍ତି ।

ଗଞ୍ଜାମରେ ଲଙ୍କାମରିଚକୁ ପିଠଉରେ ବୁଡ଼ାଇ ଘିଅରେ ବା ତେଲରେ ଛାଣନ୍ତି ଏହାକୁ—ପକୌଡ଼ୀ କହନ୍ତି । ]

**ପିଠା(ଠେ)ଇବା**—ଦେ. କ୍ରି—ପିଠିଆଇବା ( ଦେଖ )
Pitha(the)iba Pithiaiba ( See )

**ପିଠାଉ**—ଦେ. ବ—ପିଠଉ ( ଦେଖ )
Pithau Pithau ( See )

**ପିଠା ଓଷା**—ଦେ. ବ—ପିଠା ଯାତ୍ରା ( ଦେଖ )
Pitha osha Pitha jatra ( See )

**ପିଠା ଖଡ଼ିକା**—ଦେ. ବ—ପିଠା ପାଟିଆ ( ଦେଖ )
Pitha khardika Pitha patia ( See )

**ପିଠା ପଣା**—ଦେ. ବ. ( ସ. ପିଷ୍ଟକ ଓ ପ୍ରପାନକ )—
Pitha pana ଉତ୍ସବ ଆଦିରେ ଖିଆଯିବା ନାନା ପ୍ରକାରର ମିଷ୍ଟାନ୍ନ—Sweetmeats and cakes taken during festivities.

**ପିଠା ପଥୁରୀ**—ପ୍ରାଦେ. ( ଯାଜପୁର ) ବ—
Pitha pathuri ପଥରରେ ତିଆରି ପତଳା ତାଉଆ—
A thin pan made of stone.
[ ଦ୍ର—ଏଥିରେ ଚକୁଳି ପିଠା ହୁଏ । ]

**ପିଠା ପାଟିଆ**—ଦେ. ବ —ଲୁହା ଖଡ଼ିକା, ଚକୁଳି ଆଦି ପଠାକୁ ପଲମରୁ
Pitha patia ଉଠାଇବା ନିମନ୍ତେ ଖଣ୍ଡିଆ ଲୌହ ଦଣ୍ଡ—
A thin iron laddle broadened at one end to lift cakes from the pan.

ଚଡ଼ ପିଠା ପାଟିଆ ଦୁହେଁ ଛନ୍ତି କାଖେ ।
କୃଷ୍ଣସିଂହ ମହାଭାରତ, ବନ ।

**ପିଠା ଫଳ**—ପ୍ରାଦେ. (ଗଞ୍ଜାମ) ବ—ନେଉଆ ଫଳ—
Pitha phala The bullocks heart (fruit).

**ପିଠା ଯାତ୍ରା**—ଦେ. ବ—ବଡ଼ ଓଷା, କାର୍ତ୍ତିକ ପୂର୍ଣ୍ଣିମି ସମୟରେ କଟକ
Pitha jatra ନଗରର ନିକଟବର୍ତ୍ତୀ ଆଠଗଡ଼ ରାଜ୍ୟର ଧବଳେଶ୍ୱର ମହାଦେବଙ୍କ ନିକଟରେ ହେବା ଯାତ୍ରା—
A festival observed at Dhabaleswara near Cuttack in which cakes and gruel are offered to the Deity.

[ ଦ୍ର—ଏ ଯାତ୍ରାରେ ଲୋକମାନେ ବିଶେଷ ପରିମାଣରେ ରୁଣ୍ଡ ହୁଅନ୍ତି । ମଣ୍ଡା ଓ ଖୀରସା ଠାକୁରଙ୍କୁ ଭୋଗ ଲାଗେ । ]

**ପିଠାଲୁ**—ପ୍ରାଦେ. (ମେଦନୀପୁର) ବ. (ଭୁଲ. ବ. ପିଠାଲୀ)—
Pithalu ପିଠଉ (ଦେଖ)—Pithau ( See )

**ପିଠି**—ଦେ. ବ. ( ସ. ପୃଷ୍ଠ )—
Pithi ୧ । ପୃଷ୍ଠ ଦେଶ, ଜୀବ ଦେହର ପେଟର ବିପରୀତ ବା
पिठि पीठ ଉପରସ୍ଥ ଅଂଶ—1. Back.
(ପେଟ—ବିପରୀତ)

ଅରେ ଶକୁନ ଯା ଧରିବୁ ପଣ କାଟି
ସେହି କାଣ୍ଡ ହୋଇବ ଗଳସିବ ପିଠି । କୃଷ୍ଣସିଂହ, ମହାଭାରତ, ସଭା ।

୨ । କୌଣସି ପଦାର୍ଥର ଉପର ଭାଗ—
2. The surface of a thing.
୩ । ପଦାର୍ଥର ଗୋଟିଏ ପାଖ—
3. One side of a thing.

ଆଉ ପିଠି ଦର୍ପଣରେ ମୁଖ ନ ଦିଶଇ । ପ୍ରାଚୀ. ସୁଲୁଇଙ୍କ ଗୀତା ।

୪ । କୌଣସି ସ୍ଥାନକୁ ଯିବା ବା ଫେରିବାର ଏକ ଥର—
4. One trip of a double journey.
( ଯଥା —ରପ୍ଲାଇ କାର୍ଡ଼ର ପ୍ରେରକ ଦୁଇ ପିଠିର ଡାକ ମାସୁଲ ଦେଇଥାନ୍ତି । )
୫ । ପଛ ପାଖ—5. Back side of a thing.

ଏ ପ୍ରେମ ମୋତେ ନ ଲଭଇ
ଦର୍ପଣ ପିଠି ପ୍ରାପ୍ତ ହୋଇ । ଭୂପତି, ପ୍ରେମପଞ୍ଚାମୃତ ।

୬ । ପକ୍ଷ; ତରଫ—6. Side; party.

ଏଣୁ ବର ପିଠିରୁ ଦେବାକୁ ପଡେ । ଫକୀରମୋହନ. ଗଳ୍ପସ୍ୱଳ୍ପ ।

**ପିଠିଆ**—ଦେ. ବ—କଳା ପିଠିଆ; କଳା ବେଠିଆ, ଜଗନ୍ନାଥଙ୍କ ରଥ
Pithia ଟାଣିବା ଲୋକ—Puller of the car of Jagannatha.

ସ. ବିଣ. ପୁଂ—୧ । ସବଦା ମାଡ଼ ଗାଳି ଖାଇ ଖାଇ ଗଧ୍ପାଁ
ଧିଠେଇ } ସ୍ତ୍ରୀ ହେବାରୁ ଯେ ମାଡ଼ ଗାଳି ଆଦିକୁ ଖାତର କରେ
ପିଠୋଇ } ନାହିଁ—1. Not caring for rebukes or
**पिट्ठ** thrashing ( being habituated to rebukes or thrashings).

୨ । ପୃଷ୍ଠଯୁକ୍ତ ( ଅନ୍ୟ ଶବ୍ଦ ସଙ୍ଗେ ପ୍ରଯୁଜ୍ୟ )—
2. Having back like.
( ଯଥା—ପଲଙ୍କ ପିଠିଆ । )

୩ । ( ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ ) ପିଠି ବୁଲାଇଥିବା—
3. Having one's back towards.
( ଯଥା—ଖରା ପିଠିଆ ହୋଇ ବସିବା । )

୪ । (ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ) ପିଠିରେ କାର୍ଯ୍ୟ କରିବା—
4. Carrying on different works with the back.
( ଯଥା— ବ ପିଠିଆ ବଳଦ ଅର୍ଥାତ୍ ଯେଉଁ ବଳଦ ଶଗଡ଼ ଓ ହଳରେ ଲାଗେ । )

ପ୍ରାଦେ. (ସମ୍ବଲପୁର) ବିଣ—ଅନୁଜ; କନିଷ୍ଠ (ଭାଇ)—
(ଉଠିଆ—ବିପରୀତ) Younger (brother)

**ପିଠିଆଇବା**—ଦେ. କ୍ରି. ( ଓଡ଼ିଆ ପିଠି ଶବ୍ଦରୁ ନିଷ୍ପନ୍ନ ନାମ ଧାତୁ )—
Pithiāibā ୧ । ପିଠି ଆଡ଼କୁ ବୁଲାଇବା—
**पीठदेना, पीठ दिखाना** 1. To turn one's back upon.
(ପିଠେଇବା—ଅନ୍ୟରୂପ) ବାହାନ୍ତେ ମାରଗଣ ଜଣେ ନ ଠିଅଇ ।
ପଳାଇଲେ ବାନରେ ଭଏ ପିଠିଅଇ ।
କୃଷ୍ଣସିଂହ. ମହାଭାରତ ବନ ।

୨ । ଖରା ବା ବର୍ଷାକୁ ପିଠି ଦେଖାଇବା ବା ପଡ଼ାଇବା—
2. The expose one's back to the sun or rain.

୩ । କୌଣସି ବସ୍ତୁକୁ ଟେକିବା ବା ଠେଲିବା ପାଇଁ ପିଠି-ଲଗାଇବା—3. To put one's back to lift or push a thing.

୪ । ମାଡ଼ଗାଳିକୁ ଭ୍ରୂକ୍ଷେପ ନ କରିବା—
4. Not to care for rebukes or thrashing.

୫ । ଆଦେଶ ଆଦି ଅମାନ୍ୟ କରିବା—
5. To disregard or disobey an order.

୬ । ଖାତିର ନ କରିବା—6. To ignore.

**ପିଠିଆ ଉଠିଆ**—ପ୍ରାଦେ. (ସମ୍ବଲପୁର) ବିଣ. (ବିପରୀତ ସହଚର)—
Pithiā uthiā ଅଗ୍ରଜ ଓ କନିଷ୍ଠ (ଭାଇମାନେ); ଏକୋଦର ପ୍ରସୂତ—Utrine (brothers).

**ପିଠି ଅଡ଼ିବା**—ଦେ. କ୍ରି—ପ୍ରହାର ପ୍ରତି ପ୍ରସ୍ତୁତ ହୋଇ ପିଠି ପଡ଼ାଇ କରି
Pithi ārdibā ରହିବା—To wait with one's back ready to take a blow.

**ପିଠି ଅଡ଼େଇବା**—ଦେ. କ୍ରି— କୌଣସି ସ୍ଥାନରୁ ଚାଲିଯିବା—
Pithi ārdeibā To go away from or leave a place.
(ପିଠି ଅଡ଼େଇ ଦେବା—ଅନ୍ୟରୂପ) (ଯଥା—ଗୃହାଳୀରୁ ମୁଁ ପିଠି
**पीठ दिखाकर जाना; पीठ फेरना** ଅଡ଼େଇ ଦେଉଁ ଦେଉଁ ପିଲାମାନେ ଗୋଧା ଆରମ୍ଭ କରିବେ ।)

**ପିଠିଆ ବଳଦ**—ଦେ. ବି—ଯେଉଁ ବଳଦ ପିଠିରେ ଭାର ବହେ, ପଲାଣ
Pithiā balada ବୁହା ବଳଦ; ଥୋଡ଼ିଆ ବଳଦ—Pack-bullock.

**ପିଠିଆ ଭାଇ**—ପ୍ରାଦେ. (ସମ୍ବଲପୁର) ବି—ସାନଭାଇ—
Pithiā bhāi Younger brother.

**ପିଠି କରିବା**—ଦେ. କ୍ରି—୧ । ପଛଆଡ଼କୁ ବୁଲିଯିବା—
Pithi karibā 1. To turn one's back.

୨ । ଅମାନ୍ୟ କରିବା—2 To disobey.
ତାହାଙ୍କୁ କ କହୁରୁ ମୋତେ କରୁ ପିଠି । କୃଷ୍ଣସିଂହ, ମହାଭାରତ ବନ ।

୩ । ପୃଷ୍ଠଭଙ୍ଗଦେବା, ଲେଉଟି କରି ଶତ୍ରୁଆଡ଼ୁ ପିଠି-ଦେଖାଇବା—3. To turn one's back and fly away from battle.
ଜଳଦେ ଯେ ସାଉରେ ନ କରି ପିଠିକି
ବୋଇଲେ କହ ଯାଇ ଭୂପ ଲକାଟକେ । କୃଷ୍ଣସିଂହ. ମହାଭାରତ ବନ ।

୪ । କୌଣସି ବ୍ୟକ୍ତି ନିକଟରୁ ବା କୌଣସି ସ୍ଥାନରୁ ଚାଲିଯିବା—
4. To leave a place or person.
ଏରୁପେ କହୁ ବ୍ୟାସ ଆଦ୍ୟ ଉଠିଲେ
ଯାଉଛୁଁ ବୋଲି ପାଣ୍ଡବଙ୍କ ପିଠି କଲେ । କୃଷ୍ଣସିଂହ. ମହାଭାରତ ବନ ।

୫ । ଅନୁପସ୍ଥିତ ହେବା—5. To be absent.

୬ । ଅନାଦର କରିବା, ତତ୍ତ୍ୱ ନ ନେବା, ନ ପଚାରିବା—
6. Not to take care of a thing.

୭ । ଭୁଲିଯିବା—7. To forget.

**ପିଠି କାମୁଡ଼ା**—ଦେ. ବି. (ସଂ. ପୃଷ୍ଠ+କବଳ)—(ଲକ୍ଷଣାର୍ଥ)
Pithi kāmurdā ପରୋକ୍ଷରେ ବା କୌଣସି ବ୍ୟକ୍ତିର
**पीठ पीछे बुराकहना** ଅନୁପସ୍ଥିତିରେ ତାହାର ନିନ୍ଦାବାଦ; ଚୁଗୁଲି—
(ପିଠିକାମୁଡ଼ିବା; ପିଠିରେ କାମୁଡ଼ିବା—କ୍ରିୟାରୂପ) Backbiting.

ଦେ. ବିଣ. ପୁଂ—ଚୁଗୁଲିଆ; ଅନୁପସ୍ଥିତ ବ୍ୟକ୍ତିର ନିନ୍ଦାକାରୀ
(ପିଠିକାମୁଡ଼ୀ—ସ୍ତ୍ରୀ) Backbiting; speaking evil of a person behind his back.

**ପିଠିକି(କୁ)କନା ପେଟକୁ ଦାନା**—ଦେ. ବି—ମନୁଷ୍ୟପାଇଁ ଭୂଇଟି ଦରକାରୀ ପଦାର୍ଥ—
Pithiki(ku)kanā petaku dānā
Raiment (for the back) and food (for the belly).

**ପିଠି କୁଣ୍ଡେଇ ହେବା**—ଦେ. ବି—(ଲକ୍ଷଣାର୍ଥ) ମାଡ଼ ଖାଇବାପାଇଁ
Pithi kundei hebā ପିଠିରେ କଣ୍ଡୁ ଉତ୍ପନ୍ନ ହେବା—
(ପିଠି ଗଲୁ କରିବା—ଅନ୍ୟରୂପ) (figurative) The itching
**पिठचुलकना** of one's back to get a sound thrashing.
(ଯଥା—ଭୁ ଜାଣି ଶୁଣି ଅନ୍ୟାୟ କରୁଛୁ ! ତୋର କଅଣ ପିଠି କୁଣ୍ଡେଇ ହେଉଛି କି ? )

**ପିଠି ଗୁପ(ପୁ)ଡ଼ା(ଡ଼େ)ଇବା**—ଦେ. କ୍ରି—୧ । ସ୍ନେହ ବା ଆଦରର
Pithi chāpa(pu)rdā(rde)ibā ଚିହ୍ନ ସ୍ୱରୂପ କୌଣସି ବ୍ୟକ୍ତିର
ପିଠିରେ ହାତମାରିବା } ଅନ୍ୟରୂପ ପିଠିରେ ଧୀରେ ଧୀରେ
ପିଠିରେ ହାତବୁଲା(ଲେ)ଇବା } ଗୁପୁଡ଼ା ମାରିବା—
**पिठ थोंकना** 1. To pat on one's back in fondness.

୨ । (ଲକ୍ଷଣାର୍ଥ) କୌଣସି ବ୍ୟକ୍ତି କଅଁଳେଇ ସଅଁଳେଇ କଥା କହିବା—2. (figurative) To cajole; to wheedle.

୩ । (ଲକ୍ଷଣାର୍ଥ) କୌଣସି ବ୍ୟକ୍ତିଙ୍କୁ ଉତ୍ସାହିତ କରିବା—3. (figurative) To encourage a person.

**ପିଠିଛାଟ**—ପ୍ରାଦେ. (ଗଡ଼ଜାତ) ବି—ଚିତ ହୋଇ ଶୋଇ ବଳ ଭାଙ୍ଗିବା— Pithichhāta Cutting somersault while lying on the back.

**ପିଠି ଦେବା**—ଦେ. କ୍ରି—୧ । (ଯୁଦ୍ଧରେ) ପୃଷ୍ଠଭଙ୍ଗ ଦେବା— Pithi debā 1. To turn one's back (in the battle).

୨ । ପିଠି କରିବା (ଦେଖ)—2 Pithi karibā (See)

**ପିଠି ପେଟ ଲାଗିବା**—ଦେ. ବି—୧ । କ୍ଷୁଧା ବା ଉପବାସଯୋଗୁଁ ପେଟ ଭିତରଆଡ଼କୁ ପଶିଯିବା—1. The sinking of the belly to the wall of the back on account of starvation.
Pithi peta lāgibā

ପିଠିପେଟ ଲାଗିଯିବା, ପିଠିରେ ପେଟ ଲାଗିବା, ପିଠିକି(କୁ)ପେଟ ଲାଗିଯିବା, ପିଠିକି(କୁ)ପେଟ ପଶିଯିବା, ପିଠିପେଟ ଏକ ହେବା—ଅନ୍ୟରୂପ

୨ । ଅତି ଶୀର୍ଣ୍ଣକାୟ ହେବା ଅବସ୍ଥା—2. Emaciation.

**ପିଠି ବୁଲା(ଲେ)ଇବା**—ଦେ. କ୍ରି—ପିଠି କରିବା (ଦେଖ) Pithibulā(le)ibā Pithi karibā (See)

**ପିଠିମାଛ**—ଦେ. ବି—୧ ; ଏକପ୍ରକାର ମାଛ— Pithimāchha 1. A species of fish.

୨ । ବଡ଼ମାଛର ପିଠି ଅଂଶ—2. The back part of a fish.

**ପିଠିରି**—ପ୍ରାଦେ. (ସମ୍ବଲପୁର) ବିଣ—କନିଷ୍ଠ (ଭାଇ ଓ ଭଉଣୀ)— Pithira Younger (brother or sister).

**ପିଠିରେ କାମୁଡ଼ିବା**—ଦେ. କ୍ରି—(ସଂ. ପୃଷ୍ଠ+କବଳ)— Pithire kāmurdibā ୧ । (ଲକ୍ଷଣାର୍ଥ) ଚୁଗୁଲି କରିବା; କୌଣସି ବ୍ୟକ୍ତିର ଅନୁପସ୍ଥିତିରେ ତାହାର ନିନ୍ଦା କରିବା—1. (fig.) To backbite; to speak evil of a person behind his back.
ପିଠେ କାମଡ଼ାନ, **पीठ पीछे बुराकहना**

୨ । (ଲକ୍ଷଣାର୍ଥ) ଅପ୍ରତୀକରଣୀୟ ଅନିଷ୍ଟ କରିବା—2. (figurative) To injure a person without his being able to remedy or retaliate.

**ପିଠିରେ ଖାଇବା**—ଦେ. କ୍ରି—୧ । ମାଡ଼ ଖାଇବା— Pithire khāibā 1. To be beaten.
(ପିଠିରେ ପାଇବା—ଅନ୍ୟରୂପ) मारखाओवा **पीठपरखाना**

**ପିଠିରେ ପଡ଼ିବା**—ଦେ. କ୍ରି—(ଲକ୍ଷଣାର୍ଥ) ପକ୍ଷ ସମର୍ଥନ କରିବା; ସହାୟ ହେବା, ରକ୍ଷା କରିବା—To back; to support; to render help; to protect.
Pithire pardibā

**ପିଠି ହାଡ଼**—ଦେ. ବି—ମେରୁଦଣ୍ଡ— Pithi hārda Back bone.

ଦଣ୍ଡ ଦେଲେ ସନ୍ଦେଶ ମାଗିଲେ ହିତ
ଲୁଣେ ଦଃ ଟାଙ୍କ ଛେଦିଲେ ମେରୁ ହାଡ / କୃଷ୍ଣସିଂହ ମହାଭାରତ ବନ

**ପିଠୁଆର**—ଦେ. ବି—ତିଅଣରେ ଦିଅଯିବା ମସଲାବଟା ପାଣି— Pithuāra Spice paste added to curry for giving it flavour.

**ପିଠେଇ**—ଦେ. ବିଣ—ପିଠିଆର ସ୍ତ୍ରୀଲିଙ୍ଗ— Pithei Feminine of Pithia
( ପିଠୋଇ—ଅନ୍ୟରୂପ )

**ପିଠୋଉ**—ଦେ ବି—ପିଠଉ (ଦେଖ)— Pithou Pithau (See)

**ପିଠୋ(ଠୌ)ଣି**—ଦେ ବି—(ସଂ. ପିଷ୍ଟପର୍ଣ୍ଣୀ, ପୃଶ୍ନିପର୍ଣ୍ଣୀ—ପୃଶ୍ନିପର୍ଣ୍ଣୀ (ଦେଖ)—Prusniparnni (See).
Pitho'(thau)ni

**ପିଠୋଳ**—ଦେ. ବି—୧ । ଛାଞ୍ଚରେ ଢଳା ହୋଇ ପିଠା ଆକୃତିରେ ତିଆରି କରାଯାଇଥିବା ଏକପ୍ରକାର କନ୍ଦ— 1. A kind of sugar manufactured in the form of cakes.
Pithola **पिठौरी**

୨ । ବନଜାତ ଆଳୁବିଶେଷ—2 A kind of wild yam
[ ଦ୍ର—ଏହାକୁ କଞ୍ଚା ଓ ସିଝାଇ କରି ଖାଆନ୍ତି ।]

**ପିଡ଼କ**—ସଂ. ବି—୧ । କ୍ଷୁଦ୍ର ବ୍ରଣ— Pirdaka 1. Small boil; pimple.

୨ । ଫୋଟକା—2. Blister

**ପିଡ଼ଙ୍ଗ**—ଦେ ବି—(ସଂ ଶୃକ୍କା)—ଶିମ୍ବାଦି ବର୍ଗର ବର୍ଷାୟୁଃ ଶାକ ବିଶେଷ—A pot herb; Trigonella Corniculata.
Pirdanga

ସଂ. ନାମ—ଶୃକ୍କା, ଅସୃକ୍, ବ୍ରାହ୍ମଣୀ ଦେବୀ, ମରୁନ୍ମାଳା, ଲତା, ଲଘୁ, ସମୁଦ୍ରାନ୍ତା, ବଧୂ, କୋଟି, ବର୍ଷା, ଲଙ୍କୋପିକା—

ପିଡିଙ୍ଗ, ପିଡ଼ି, ପିଡଙ୍ଗ

**असबरग अस्परकपुरी**

ମ. ଶୃକ୍କା, ଗାଗୌଣା

ତେ. ଶୃକ୍ଲୁଥନେଲୁ ଦ୍ରବ୍ୟ ମୁ

ଫା. ଅସବରଗ୍

[ ଦ୍ର—ପତ୍ର ଛନପାଳଆ, ଛୁଇଁ ତେପଷ୍ଠା ଓ ବଙ୍କା, ଗଛ ମେଥି ଗଛ ପରି । ଏହା ଶାଗରୂପେ ଖିଆ ଯାଏ । ବୈଦ୍ୟକ ମତରେ ଏହା ମଧୁର ତିକ୍ତ ରସ । ଶୀତବୀର୍ଯ୍ୟ, ଶୁକ୍ର ବର୍ଦ୍ଧକ, ତ୍ରିଦୋଷ ନାଶକ ଏବଂ ଏହା କୁଷ୍ଠ, କଣ୍ଡୁ, ବିଷ,ଘର୍ମ, ଦାହ, ଅଲକ୍ଷ୍ମୀ, ଜ୍ୱର ଓ ରକ୍ତଜ ବ୍ୟାଧି-ବିନାଶକ ।]

**ପି. ଡବ୍ଲ୍ୟୁ. ଡି**—ବୈଦେ. ବି—(ଇଂ)—ସାଙ୍କେତିକ, ପବ୍ଲିକ୍ ୱାର୍କସ୍ ଡିପାର୍ଟମେଣ୍ଟ ଏଇ ୩ଟି ଶବ୍ଦର ପ୍ରଥମ ଇଂରାଜୀ ଅକ୍ଷର ଜାତ )—ସରକାରଙ୍କ କାରିଗରି ବିଭାଗ; ପୂର୍ତ୍ତବିଭାଗ—P W. D. Public Works Department of the Government.
Pi dablyu. di

[ ଦ୍ର ଇଂରାଜୀ ପବ୍ଲିକ୍ ୱାର୍କସ ଡିପାର୍ଟମେଣ୍ଟର ଅର୍ଥ ସର୍ବ-ସାଧାରଣ କର୍ମବିଭାଗ । କେହି କେହି ଏହାକୁ D. P. W. ଡି. ପି. ଡବ୍ଲ୍ୟୁ ମଧ୍ୟ ଲେଖନ୍ତି ।]

**ପିଡ଼(ଢ଼)ର**—ପ୍ରାଦେ. (ଗଞ୍ଜାମ)—ବୈଦେ. (ଇଂ) ବି. (ଇଂ. ପ୍ଲିଡ଼ର) ଓକିଲ—Pleader.
Pirda(rdha)ra

**ପିଡ଼(ଢ଼)ର ପାଇଟି**—ପ୍ରାଦେ. (ଗଞ୍ଜାମ) ବି.—୧ । ଓକାଲତି— Pirda(rdha)ra pāiti 1. Pleadership,

୬ । ଓକିଲ ବ୍ୟବସାୟ—
2. The profession of a pleader

ପିଡ଼ିଆ—ଦେ. ବ (ପିଣ୍ୟାକ=ସ୍ୱର୍ଗ ପିଡ଼ିଆ)—ତେଲ ଗଛ ପେଡ଼ା ହୋଇ ସେଥିରୁ ତେଲ ନିଷ୍କାସିତ ହେବା ପରେ ବଳିଥିବା ପଦାର୍ଥ—Oil-cake.
Pirdia
ସ. ପିଣ୍ଯାକ, ତୈଲ ପିଣ୍ଯାକ, ଖଳ
ଖଇଲ ଖଲି

ପିଡ଼ିଖି—ଦେ ବ.-ପିଡ଼ିପିଡ଼ିଆ (ଦେଖ)
Pirdikhi Pirdipirdia (See)

ପିଡ଼ିପିଡ଼ିଆ—ଦେ. ବ. (ସ. ବଡ଼ାଲାକ୍ଷ)—୧ । କୁନ୍ଦୁରୁଖଟି ( ଦେଖ )
Pirdipirdia 1 Kundurukhati ( See )
୨ । (ସ. ଚଣ୍ଡୀ) ଦେଶୀ ଲତା (କବିରାଜ ହରେକୃଷ୍ଣ ଦ୍ରବ୍ୟଗୁଣ)—
2. A creeper.

ପିଡ଼ୁଆ—ଦେ. ବ—୧ । ପିଡ଼ିଆ (ଦେଖ)
Pirdua 1 Pirdia (See)
ପ୍ରାଦେ (ସମ୍ବଲପୁର) ବ—ବନଜାତ ଦ୍ରବ୍ୟବିଶେଷ—
A forest produce.

ପିଢ—ଦେ. ବ. (ସ. ପୀଠ)—୧ । ଚଉତରା; ବେଦୀ—
Pirdha 1. An altar, platform.
ପୀଁଡୀ; ପିଡୀ ୨ । ପୀଠସ୍ଥାନ—
पीढ़ा, पीढ़ी 2. A famous or sacred place.
୩ । ଗୃହଚାଳର ସର୍ବୋଚ୍ଚ ସ୍ଥାନ—
3 The summit of a thatch.
୪ । ବଂଶାନୁଗତ ପୁରୁଷ, ପୋଷ୍ଯା—
4. Successive generation of a family.
୫ । ଉଚ୍ଚ ହିଡ଼—5. A high ridge.
୬ । ପୂର୍ବ ପୁରୁଷଙ୍କ ଅସ୍ଥାନ—6. Ancestral seat.
୭ । ଦେବମୂର୍ତ୍ତିର ମୂଳ ଅସ୍ଥାନ—
7. The pedestal of an idol.
୮ । ବାଜି; ଜୁଆଖେଳରେ ଲଗାଯିବା ପଣ—8. Wager.
ଧୃଷ୍ଟର ତ ଅଛ ଅମ୍ଭେ ପଶା ଖେଳିବା
ସେତେ ଧନ ବୋଲନ୍ତୁ ସୁ ପିଢ କରିବା । ସାରଳା- ମହାଭାରତ ।
ଦ୍ୟୁତ ଖେଳିବା ପିଢ କର,
ସଂଗ୍ରାମେ ଯେ ଯାହାର ହାର । ଜଗନ୍ନାଥ. ଭାଗବତ ।
୯ । ବାସସ୍ଥାନ; ବସତି—9. Residence.
(ଯଥା—ଭୂୟାଁ ପିଢ଼ )
୧୦ । ରାଜାଙ୍କ ଅଧୀନସ୍ଥ ଜଙ୍ଗଲ କ୍ଷୁଦ୍ରରାଜ୍ୟ—
10. A small principality under a Raja.
୧୧ । ଗଦା; ରାଶି; ସ୍ତୂପ—11. Heap.
ପ୍ରାଦେ. (ସିଂହଭୂମ) ବ—କୋଲ୍ହ, କନ୍ଧ, ଶବରଆଦି ଅନାର୍ଯ୍ୟଙ୍କର ବସତି ବା ଗ୍ରାମମାନଙ୍କର ସମବାୟ—A union of villages of the Aborigines.

ପିଢ଼ା—ଦେ. ବ. (ସ. ପୀଠ)—୧ । ତଳେ ବସିବାର ଭୂଇଁମୁଣ୍ଡରେ ଗୋଡ଼ଥିବା କାଷ୍ଠାସନ—1. A low wooden stool or platform.
Pirdha
ପିଡୀ, ପିଁଡ଼ା
पाढ़ा
କବି ହିନେ ପିଢାରେ ଗୋଡ ଝୁଲେ ଯାଇ ।
କୃଷ୍ଣସିଂହ. ମହାଭାରତ. ସଭା ।
୨ । ଖାଇ ବସିବାର କାଷ୍ଠାସନ—2. A stool or seat sitting on which people take meals.
୩ । ଗୃହର ଚାଳର ମଥାନ—
3. The ridge of a thatch.
ପିଢାରେ ସୁବର୍ଣ୍ଣ କଳସେ
ତୋରଣ ଲମ୍ବିଛି ହରଷେ । ଜଗନ୍ନାଥ. ଭାଗବତ ।
୪ । ଘରର ଚାଳର ଉପର ପାଖ—4. The outer portion of the thatch of a house.
ଲୋକମାନେ ଉପରେ ଏକଟା ଜାଣିପାରୁ ସେହିଦିନ ରାତରେ ତାହା ପିଢା ବା ବାଡ଼ରୁ ଫଳ କଦଳୀଆଁ କମ୍ବା ବଳଉ ଥାବ ଚୋରି କରି ଯେନଯାନ୍ତି ।
ଫକୀରମୋହନ, ଛଅମାଣଆଠଗୁଣ୍ଠ ।

ପିଢ଼ାପାଣି—ଦେ. ବ. (ସହଚର ଶବ୍ଦ)—ଖାଇବା ପୂର୍ବରୁ ଆବଶ୍ୟକୀୟ ଦୁଇ ଗୋଟି ପ୍ରଧାନ ବସ୍ତୁ, ଯଥା—ବସିବାକୁ ପିଢ଼ା ଓ ଖାଇବା ସ୍ଥାନରେ ଓ ପତ୍ରରେ ଛିଞ୍ଚିବାକୁ ଓ ପିଇବାକୁ ପାଣି—A seat to sit on and water to drink and sprinkle on the spot where a person sits to take his meal.
Pirdhapani

ପିଢ଼ାପୁଅ—ପ୍ରାଦେ. (ଯାଜପୁର) ବ—ପୁଅପିଢ଼ା—
Pirdhapua A wooden doll.

ପିଢ଼ାମୁଣ୍ଡି—ପ୍ରାଦେ. (ବାଲେଶ୍ବର) ବ—ଧାନବିଲରେ ଜନ୍ମୁଥିବା ଘାସ ବିଶେଷ—A kind of weed growing in paddy fields.
Pirdhamundi

ପିଢି—ଦେ. ବ. (ସ. ପୀଠିକା)—୧ । ବଂଶାନୁକ୍ରମିକ ପୁରୁଷ—
Pirdhi 1. Generation.
ପିଡ଼ି (ଯଥା—ସିଦ୍ଧେଶ୍ବରପୁରରେ ଆମର ପାଞ୍ଚ ପିଢି ଭୋଗ
पीढ़ी ହେଲାଣି ।)
୨ । ଉଚ୍ଚସ୍ଥାନକୁ ଆରୋହଣ କରିବା ନିମିତ୍ତ ପାଦପୀଠ—
2. A foot-stool.

ପିଢ୍ର—ପ୍ରାଦେ. (ଗଞ୍ଜାମ) ବୈଦେ. ବ. (ଇଂ. ପ୍ଲିଡ଼ର୍)—ପିଢ଼ର (ଦେଖ)
Pidhra Pirdar (See).

ପିଣ—ଗ୍ରା. ପ୍ରାଦେ. (କଟକସହର) ଅ. (ସ. ପୁନଃ)—ପୁଣି; ପୁନର୍ବାର—
Pin Again.

ପିଣ୍ଡ୍ (ଧାତୁ)—ସ—ରାଶି କରିବା; ଗଦା କରିବା; ଏକତ୍ରିତ କରିବା—
Pind (root) To heap up; to gather together.

ପିଣ୍ଡ—ସ. ବ. (ପିଣ୍ଡ୍ ଧାତୁ+କର୍ମ. ଅ)—୧ । ପୁଞ୍ଜ; ରାଶି, ସମୂହ—
Pinda 1. Mass; collection.
୨ । ଢେଲା—2. Lump.
୩ । ଗଦା; ରାଶି—3. Heap; mass.
୪ । ପେଣ୍ଡା; ଗୋଛା—4. Cluster; bunch.
୫ । ପରିମାଣ—5. Quantity.
୬ । ଜୀବିକା—6. Livelihood.
୭ । ଲୌହ—7. Iron
୮ । ପିଣ୍ଡୁଳା; ଗୋଲା; ଗୋଲକ; ଗୋଟି—
8. A ball; a globe; a globular lump.

୯ । ଶ୍ରାଦ୍ଧରେ ପିତୃମାନଙ୍କୁ ଦେଯ଼ ହାତରେ ବଳାଯାଇଥିବା ବର୍ତ୍ତୁଳାକାର ଅନ୍ନାଦି—9. An offering of rice etc made into a ball and offered to ancestors; funeral-cakes.
୧୦ । ଗୋଲ ପଦାର୍ଥ—10. A round thing.
୧୧ । ଦେହ, ଶରୀର —11. Body.
ଯୋଠାରେ ମନ ପ୍ରାଣ ରଖି ଅଚ୍ଛନ୍ତି ଲୋ
ପିଣ୍ଡ ଧରଣ କରୁଥିଲ ପିବା ବଳେ । କୃଷ୍ଣସିଂହ, ମହାଭାରତ. ଆଦ ।
୧୨ । ଅନ୍ନ ଗୁଣ୍ଡା, କବଳ, ଗ୍ରାସ—12. One mouthful of food made up into a ball, morsel.
୧୩ । ଘରର ପିଣ୍ଡା—13. Veranda; portico.
୧୪ । ବଳ, ଶକ୍ତି; ସମର୍ଥ—
14 Might; power; strength
୧୫ । ଶିହ୍ଲକ; ଗୁଗ୍ଗୁଳ, କୁନ୍ଦୁରୁ ଖୋଟୀ, ସୁଗନ୍ଧ ଧୂପବିଶେଷ, ଲୋବାନ୍—15. Frankincense, Gum Olibanum.
୧୬ । ଓଡ଼୍ର ପୁଷ୍ପ, ମନ୍ଦାର ଫୁଲ—16. China rose.
୧୭ । ଖାଦ୍ୟ ସାମଗ୍ରୀ—17 Food.
୧୮ । ମାଂସ—18. Flesh; meat.
୧୯ । ମଦନ ବୃକ୍ଷ, ମହଣ ଗଛ—
19. A tree; Mimosa Catechu.
୨୦ । ଗଜ କୁମ୍ଭ—20. The projection on both the sides of an elephant's brow or forehead.
୨୧ । ଗର୍ଭସ୍ଥ ଭ୍ରୂଣ—21. Foetus; embriyo.
୨୨ । (ଗଣିତ) ରାଶିମାନଙ୍କ ସମଷ୍ଟି—
22. (arithmetic) The total of certain numbers.
୨୩ । (ଜ୍ୟୋତିଷ) ବୃତ୍ତ ଚକ୍ରର ଚତୁର୍ଥାଂଶର $\frac{1}{24}$ ଭାଗ, ୩ ଡିଗ୍ରୀ ୪୫ ମିନିଟ୍—23. (astronomy) The 24th part of the quardants of a circle; 3 degrees and 45 minutes.
୨୪ । ତଟକା ଲହୁଣୀ—24. Fresh butter.
୨୫ । ଭୋଜନ; ଆହାର (ହି. ଶ.)—
25. Eating, taking meal.
ସ. ବିଣ. —୧ । ସଂଗୃହୀତ; ଏକୀଭୂତ—
1. Gathered into a lump.
୨ । ଘନ; ସାନ୍ଦ୍ର—2. Thick.
୩ । ଗୋଟାଳିଆ—3. Consisting of a lump.
୪ । ରାଶିକୃତ—4. Heaped up.
ଦେ. ବି.—୧ । ମୂଳ ଧନ—1. Capital.
୨ । ପିଆଜ ଆଦିର ଗୋଲାକାର ମୂଳ—.
2. Bulbous root; root stock.
୩ । ଗଣିତର ମୂଳ ସଂଖ୍ୟା—3. The root of a mathematical problem.

**ପିଣ୍ଡକ**—ସ. ବି. (ପିଣ୍ଡ+କ)—୧ । ଶିହ୍ଲକ ନାମକ ଧୂପ ଦ୍ରବ୍ୟ—
Pindaka 1. Frankincense; Gum Myrrh.
୨ । ପିଶାଚ—2. Fiend, goblin.
୩ । ଅସୁର, ରାକ୍ଷସ—2. Demon.
୪ । ପିଣ୍ଡାଳୁ—4. Yam.
୫ । ଗାଜର—5. Carrot.

**ପିଣ୍ଡ କନ୍ଦ**—ସ. ବି. (ବହୁବ୍ରୀହି)—ପିଣ୍ଡାଳୁ, ଖମ୍ବ ଆଳୁ—
Pinda kanda Yam.

**ପିଣ୍ଡ କର୍କଟୀ**—ସ. ବି.—ବୋଇତ କଖାରୁ (ହି. ଶ.) (ଦେଖ)
Pinda karkati Boiti kakharu (See)

**ପିଣ୍ଡ ଖର୍ଜୁର(ରୀ)**—ସ. ବି.—(ପିଣ୍ଡାକାରରେ ଏକତ୍ର ବନ୍ଧା ହୋଇ ରଖା ଯିବାରୁ) ଆରବ ଦେଶୀଯ଼ ପାଚିଲା ଖଜୁରୀ କୋଳି, ପେଣ୍ଡି ଖଜୁରୀ—Arabian date fruits.
Pinda kharjura (ri)

**ପିଣ୍ଡତଗର**—ସ. ବି.—ଏକ ପ୍ରକାର ତଗର (ଫୁଲ ଓ ଗୁଳ୍ମ)—
Pinda tagara A kind of Tagara (flower and plant).
ଅନ୍ୟ ସ. ନାମ—ଦଣ୍ଡହସ୍ତୀ ଓ ବହୁଂଶ

**ପିଣ୍ଡଦ**—ସ. ବିଣ ପୁଂ--ଯେ ପୂର୍ବ ପୁରୁଷଙ୍କୁ ପିଣ୍ଡ ଦେବାର ଶାସ୍ତ୍ର ଅନୁସାରେ ଅଧିକାରୀ—Entitled to offer the funeral cakes to an ancestor.
Pindada
ପିଣ୍ଡଦାତା, ପିଣ୍ଡଦାଯ଼କ, ପିଣ୍ଡଦାଯ଼ୀ, ପିଣ୍ଡପ୍ରଦ } ଅନ୍ୟରୂପ
ସ. ବି. ପୁଂ—୧ । ଯେ ପିତୃ ଲୋକଙ୍କୁ ପିଣ୍ଡ ଦିଏ—
1. One who offers funeral cakes to the departed ancestors.
୨ । ସପିଣ୍ଡ, ନିକଟସ୍ଥ ଆତ୍ମୀଯ଼—
2. Nearest male relation.
୩ । ମୁରବି—Patron; guardian.
୪ । ଅନ୍ନଦାତା—4. Supporter.

**ପିଣ୍ଡଦାନ**—ସ. ବି. (୬ଷ୍ଠୀ ତତ୍)—ପିତୃଲୋକଙ୍କୁ ଶ୍ରାଦ୍ଧ ସମଯ଼ରେ ପିଣ୍ଡ ଦେବା—Offering or presentation of funeral cakes to the manes.
Pindadāna
(ପିଣ୍ଡ ନିର୍ବପନ, ପିଣ୍ଡ ପ୍ରଦାନ—ଅନ୍ୟରୂପ)

**ପିଣ୍ଡ ଦିଆ**—ଦେ. ବି.—ପିଣ୍ଡଦାନ (ଦେଖ)
Pinda diā Pinda dāna (See)
পিণ্ড দেওয়া पिण्ड देना

**ପିଣ୍ଡ ଦେବା**—ଦେ. କ୍ରି.—(ସ. ପିଣ୍ଡଦାନ)—ପିଣ୍ଡ ଦାନ କରିବା, ପିତୃ ଲୋକଙ୍କ ଉଦ୍ଦେଶ୍ୟରେ ପିଣ୍ଡ ଉତ୍ସର୍ଗ ବା ଅର୍ପଣ କରିବା—To offer funeral cakes to the deceased ancestors.
Pinda debā
পিণ্ড দেওয়া
पिण्ड देना
(ପିଣ୍ଡପକା(କେ)ଇବା — ଅନ୍ୟରୂପ)

**ପିଣ୍ଡପାତ**—ସ. ବି. (୬ଷ୍ଠୀ ତତ୍; ପିଣ୍ଡ+ପାତ)—୧ । ପିଣ୍ଡଦାନ (ଦେଖ)
Pindapāta 1. Pindadāna ( See )

**ପିଣ୍ଡପାଦ**—ସ. ବି. ( ବହୁବ୍ରୀହି )—ହସ୍ତୀ—
Pindapāda Elephant.

**ପିଣ୍ଡପୁଷ୍ପ**—ସ. ବି. ( ବହୁବ୍ରୀହି )—ଅଶୋକ ଫୁଲ—1. The Asoka flower; Janesia Asoka.
Pinda pushpa
୨ । ପଦ୍ମ—2. Lotus.

୩ । ମନ୍ଦାର—3. China rose
୪ । ଠଗର ଫୁଲ—4. The Coronaria (flower).

**ପିଣ୍ଡଫଳା**—ସଂ. ବି. ( ବହୁବ୍ରୀହି )—ପିତା ଲାଉ—
Pindaphalā Bitter gourd.

**ପିଣ୍ଡବୀଜ**—ସଂ. ବି. ( ବହୁବ୍ରୀହି; ଯାହାର ବୀଜ ପିଣ୍ଡ ବା ଗୋଲ )—
Pindabija କନିଅର ଗଛ—Bastard Oleander.
(ପିଣ୍ଡବୀଜକ—ଅନ୍ୟରୂପ) yellow oleander

**ପିଣ୍ଡ ବ୍ରହ୍ମାଣ୍ଡ**—ଦେ. ବି—ଶରୀର ରୂପକ ସଂସାର—
Pinda brahmānda The body imagined to be the universe

ଏ ପିଣ୍ଡ ବ୍ରହ୍ମାଣ୍ଡ ସ୍ୱାମୀ ଅର୍ଜିଂଥିଲେ ଚାଟା ।
ସ୍ୱାମୀ, ବ୍ରହ୍ମନିରୂପଣ ଗୀତା ।

**ପିଣ୍ଡଭାକ୍**—ସଂ ବି. ପୁଂ ଓ ସ୍ତ୍ରୀ ( ପିଣ୍ଡ+ଭଜ ଧାତୁ+କର୍ତ୍ତୃ. କ୍ୱିପ୍ )—
Pindabhāk ସନ୍ତାନ ସନ୍ତତିଙ୍କ ପ୍ରଦତ୍ତ ପିଣ୍ଡକୁ ଯେଉଁ ପୂର୍ବ ପୁରୁଷ ଗ୍ରହଣ କରନ୍ତି—( ancestors ) Partaking of or receiving funeral cakes offered by the descendants

**ପିଣ୍ଡଭାଗୀ**—ସଂ. ବିଣ. ପୁଂ. ( ପିଣ୍ଡ+ଭଜ୍ ଧାତୁ+କର୍ତ୍ତୃ. ଘ୍ୟଣ୍+ଇନ୍;
Pindabhāgī ୧ମା. ୧ବ, ପିଣ୍ଡଭାଗିନ୍ ଶବ୍ଦ )—ପିଣ୍ଡଭାକ୍
(ପିଣ୍ଡଭାଗିନୀ—ସ୍ତ୍ରୀ) ( ଦେଖ )—Pindabhāk ( See )

**ପିଣ୍ଡମୂଳ**—ସଂ. ବି. ( ବହୁବ୍ରୀହି )—
Pindamūla ୧ । ଗର୍ଜ୍ଜର, ଗାଜର—1 Carrot.
୨ । ଶାଲଗମ୍ (ହି. ଶ.)—2. Turnip.

**ପିଣ୍ଡରୋଗ**—ସଂ. ବି. (ବହୁବ୍ରୀହି)—୧ । ଯେଉଁ ରୋଗ କୌଣସି ବ୍ୟକ୍ତିର
Pinda roga ଦେହର ସ୍ଥାୟୀ ହୋଇ ରହିଅଛି ( ହି. ଶ. )—
1. A chronic disease.
୨ । କୁଷ୍ଠ ରୋଗ (ହି. ଶ.)—2. Leprosy.

**ପିଣ୍ଡଲେପ**—ସଂ. ବି. ( ୬ଷ୍ଠୀ ତତ୍; ପିଣ୍ଡ+ଲେପ )—
Pindalepa ଲେପ ଭାଗ, ପିତୃ,ପିତାମହ, ପ୍ରପିତାମହଙ୍କୁ ପିଣ୍ଡ ଦେବା ସମୟରେ ତାଙ୍କ ଉପରର ୩ ପୁରୁଷଙ୍କୁ ଯେଉଁ କ୍ଷେତ୍ର ପିଣ୍ଡମାନ ଦିଆଯାଏ—Smaller rice cakes offered to one's great great grand-fathers, his father and grand-father during a Śraddha.

**ପିଣ୍ଡଲୋପ**—ସଂ. ବି. ( ୬ଷ୍ଠୀ ତତ୍; ପିଣ୍ଡ+ଲୋପ )—୧ । ବଂଶ ଲୋପାତ୍
Pindalopa ଜନକ ପିତୃ ଲୋକଙ୍କୁ ଦିଆ ଯାଉଥିବା ପିଣ୍ଡ ଦାନ ବନ୍ଦ ହେବା—1. The cessation of funeral offering due to the extinction of a family.
୨ । ନିର୍ବଂଶ ଅବସ୍ଥା—2 Extinction of a family.

**ପିଣ୍ଡ ଲୋପ ହେବା**—କୁଳ ବୁଡ଼ିଯିବା; ନିର୍ବଂଶ ହେବା—
Pinda lopa hebā The extinction of a family.
ପିଣ୍ଡ লোপ হওয়া ପାବଗଡ ଅମ୍ଭକୁ ଦେଇଛନ୍ତି ଶାପ
पिण्ड लोप होना ଅମ୍ଭେ ମଲେ ଅମ୍ଭର ପିଣ୍ଡ ହେବ ଲୋପ ।
କୃଷ୍ଣସିଂହ, ମହାଭାରତ, ଅନୁଶାସନ ।

**ପିଣ୍ଡା**—ସଂ ବି. ( ପିଣ୍ଡ+ଆ )—
Pindā ୧ । ଇସ୍ପାତ—1. Steel.
୨ । କସ୍ତୁରୀବିଶେଷ—2. Musk.
୩ । ହଳଦୀ (ହି ଶ.)—3 Turmeric.
୪ । ବଂଶପତ୍ରୀ, ବାଉଁଶ ପତ୍ରଭଳିଆ ଘାସ (ହି. ଶ )—
4. A kind of grass.

বারান্দা ଦେ. ବି. ( ସଂ. ପିଣ୍ଡ)—ଘର ଭାଗ; ଭରଣ୍ଡା—
बसारा, बरांड़ा Veranda; portico

**ପିଣ୍ଡାବସା**—ଦେ. ବିଣ. ପୁଂ. ( ଯେଉଁ ବ୍ୟକ୍ତି କାମ କରିବାକୁ ଘରୁ ନ
Pindābasā ବାହାରି ସର୍ବଦା ପିଣ୍ଡା ଉପରେ ବସିଥାଏ )—
ଅଳସୁଆ, କର୍ମଭ୍ରଷ୍ଟ (ବ୍ୟକ୍ତି)—Idle (person).

**ପିଣ୍ଡାୟସ**—ସଂ. ବି—ଇସ୍ପାତ—
Pindāyasa Steel

**ପିଣ୍ଡାର**—ସଂ. ବି—୧ । ଶାକବିଶେଷ—
Pindāra 1. A kind of pot herb.
[ ଦ୍ର—ଏହା ଶୀତଳ ଓ ପିତ୍ତନାଶକ । ହି. ଶ. ]
୨ । କ୍ଷପଣକ ( ହି. ଶ. )—
2. A Buddhist mendicant.
୩ । ଗୋପ, ଗୋରୁ ଜଗୁଆଳ ( ହି. ଶ. )—
3. Cowherd.
୪ । ବିକଙ୍କତ ବୃକ୍ଷ (ହି. ଶ. ), ଭଇଁଚ ( ଦେଖ )
4 Bhaincha ( See )

**ପିଣ୍ଡାରକ**—ବି—୧ । ମହାଭାରତୋକ୍ତ ଦ୍ୱାରକାସ୍ଥିତ ହିନ୍ଦୁମାନଙ୍କର ତୀର୍ଥ-
Pindāraka ବିଶେଷ—1. Name of a place of pilgrimage in W. India.
[ ଦ୍ର— ଏହା ଗୁଜରାଟରେ ସମୁଦ୍ରକୂଳଠାରୁ ପ୍ରାୟ ଏକ କ୍ରୋଶ ଦୂରରେ ଅବସ୍ଥିତ । ସ୍କନ୍ଦ ପୁରାଣ, ଲିଙ୍ଗ ପୁରାଣ ଓ ମହାଭାରତରେ ଏଥିର ଉଲ୍ଲେଖ ଅଛି । କଥିତ ଅଛି ଯେ ଏ ତୀର୍ଥରେ ସ୍ନାନ କରି ପାଣ୍ଡବ ଗୋତ୍ରହତ୍ୟା ପାପରୁ ମୁକ୍ତିଲାଭ କରିଥିଲେ । ହି. ଶ. ]
୨ । ବସୁଦେବ ଓ ରୋହିଣୀଙ୍କର ଏକ ପୁତ୍ର (ହି. ଶ.)—
2 Name of a son of Basudeba.
୩ । ନାଗବିଶେଷ ( ହି. ଶ. )—
3. Name of a mythological serpent.

**ପିଣ୍ଡାରୀ**—ଦେ. ବି. (ହି. ପିଣ୍ଡାରୀ, ମ. ପେଣ୍ଡାରୀ, ଭୂଲ ଓ ପେଣ୍ଡ=ହାଟ,
Pindāri ହାଟ ଲୁଣ୍ଠନକାରୀ ଦସ୍ୟୁ)—ଖ୍ରୀ. ଅଷ୍ଟାଦଶ ଶତାବ୍ଦୀରେ
পিণ্ডারী ମଧ୍ୟଭାରତରେ ଲୁଣ୍ଠନଆଦି ଉପଦ୍ରବ କରୁଥିବା ଦସ୍ୟୁ-
पिण्डारी ଦଳ—The Pindarees; hordes of robbers who infested central India in the 18th century.
[ ଦ୍ର—ପିଣ୍ଡାରୀମାନେ କୌଣସି ସ୍ୱତନ୍ତ୍ର ଜାତି ନ ଥିଲେ । ଲୁଟିଆରୀ ଦଳକୁ ପିଣ୍ଡାରୀ ବୋଲାଯାଉ ଥିଲା । ମରହଟ୍ଟା, ଅଫଗାନ୍ ଆଦି କେତେକ ଜାତିର ଲୋକ ଏହି ଦଳଭୁକ୍ତ ହୋଇଥିଲେ । ଏମାନଙ୍କର କୌଣସି କଷ୍ଟା ବା ନିର୍ଦ୍ଦିଷ୍ଟ ସୈନ୍ୟଦଳ ନ ଥିଲେ । ଖ୍ରୀ. ଅଷ୍ଟାଦଶ ଶତାବ୍ଦୀରେ ଏମାନେ ମଧ୍ୟଭାରତରେ ଲୁଟପାଟ କରି

ବିଶେଷ ଉପଦ୍ରବ କରୁଥିଲେ । ଅମୀର ଖାଁ ପିଣ୍ଡାରୀମାନଙ୍କ ସର୍ଦ୍ଦାର ଥିଲେ । ଲର୍ଡ଼ ହେଷ୍ଟିଙ୍ଗ୍ସ ୧୮୦୦ ଖ୍ରୀଷ୍ଟାବ୍ଦରେ ବିପୁଳ ସୈନ୍ୟ ନେଇ ଏମାନଙ୍କୁ ଘେରିଲେ । ଏମାନଙ୍କର ଦଳପତି ଅମୀର ଖାଁ ରାଜପୁତାନାର ଟଙ୍କ ରାଜ୍ୟ ପାଇ ସନ୍ତୁଷ୍ଟ ହେଲେ ଓ ଇଂରାଜମାନଙ୍କ ଅଧୀନତା ସ୍ୱୀକାର କଲେ । ଅମୀର ଖାଁଙ୍କ ବଂଶଧରମାନେ ଅଦ୍ୟାପି ଟଙ୍କ ରାଜ୍ୟର ନବାବ । ପିଣ୍ଡାରୀମାନଙ୍କ ଦ୍ୱିତୀୟ ସର୍ଦ୍ଦାର ଚିତୁ ଖାଁ ଅରଣ୍ୟକୁ ପଳାଇ ଯାଇ ବ୍ୟାଘ୍ର ମୁଖରେ ମୃତ୍ୟୁ ଲଭିଲେ । ତୃତୀୟ ସରଦାର କରିମ ଖାଁ ଧୃତ ହୋଇ ଇଂରାଜଙ୍କ ଶରଣାପନ୍ନ ହେବାରୁ ଏହାଙ୍କୁ ଯୁକ୍ତ ପ୍ରଦେଶର ବସ୍ତି ଜିଲ୍ଲାରେ କେତେକ ଜମି ବଂଶାନୁକ୍ରମେ ଜାଗିର ଦିଆଗଲା । ଏହାପରେ ପିଣ୍ଡାରୀମାନଙ୍କ ଦଳ ଧ୍ୱଂସ ପ୍ରାପ୍ତ ହେଲା ।—ଭୋଳାନାଥ ଦାସ. ମିଲ୍ ଭାରତ ଇତିହାସ । ]

**ପିଣ୍ଡାର୍କ**—ଦେ. ବି—(ପ୍ରାଚୀନ ପଦ୍ୟ)—ପିଣ୍ଡାରକ (ଦେଖ)—
**Pindarka** Pindāraka (See)

ତୀର୍ଥ ପ୍ରବେଶିଲେ ପିଣ୍ଡାର୍କ ତୀର୍ଥ ସ୍ନାନ କଲେ ।
ଭାରତ, ପ୍ରେମତରଙ୍ଗାମୃତ ।

**ପିଣ୍ଡାଳୁ(ଲୂ)**—ସଂ. ବି—ହାତୀଖୋଜିଆ ଦେଶୀଆଳୁ—
**Pindālu(lū)** Yam; sweet potato; Discova Globosa, Batatas Esculatus.

ଅନ୍ୟ ସଂ. ନାମ—ପିଣ୍ଡାଳକ, ପିଣ୍ଡ କନ୍ଦ, ରୋମଶ କନ୍ଦ, କନ୍ଦଗ୍ରନ୍ଥି, ପିଚ୍ଛଲ ଓ ସ୍ୱାଦୁକନ୍ଦକ—

ଚୁବଡ଼ୀଆଳୁ
सुथनीपिंड़िआ; शकताळु, रताळु
ମ. ରତାଳେ
ଗୁ. ରତାଳୁ
ତେ ଚରଗେଡ଼ୁ
ତା. ଯାମଂଗୋଲ୍ଲଂ

[ ଦ୍ର—ଏହାର ମୂଳ ହାତୀ ଗୋଡ଼ପରି ଭଳି ଗୋଲ; ଏହି ଆଳୁକୁ ଛିଅଣ କରି ଖିଆଯାଏ । ବୈଦ୍ୟକ ମତରେ ଏହା ମଧୁରରସ, ଶୀତବୀର୍ଯ୍ୟ ବୃଷ୍ୟ, ସନ୍ତର୍ପଣ । ଏହା ମୂତ୍ରକୃଚ୍ଛ୍ର, ଦାହ, ଶୋଷ ଓ ପ୍ରମେହ ନାଶକ । ]

**ପିଣ୍ଡାହ୍ୱା**—ସଂ. ବି—ନାଡ଼ୀ ହିଙ୍ଗୁ (ଦେଖ)—
**Pindāhwā** Nārdi Lingu. (See)

**ପିଣ୍ଡି(ଧାତୁ)**—ସ—ପିଣ୍ଡ୍ (ଧାତୁ) (ଦେଖ)—
**Pindi(root)** Pinda (root) (See)

**ପିଣ୍ଡି**—ସ. ବି—(ପିଣ୍ଡ୍ ଧାତୁ+ଇ)—୧ । ଚକ୍ରନାଭି; ଚକ୍ରର ମଧ୍ୟ ମଣ୍ଡଳ—1. The nave of a wheel.
**Pindi**

୨ । ଗୋଡ଼ର ପାପୁଲି—2. The instep.
୩ । ଆଣ୍ଠୁର ଗୋଲ ହାଡ଼—3. Knee bone.
୪ । ଗୋଡ଼ର ଖଣ୍ଡା; ଗୋଡ଼ର ପେଣ୍ଡା—
4. The calf of the leg.
୫ । ଭାତ ଗୁଣ୍ଡା—
5. A mouthful of food made up into a ball.
୬ । ଦେବ ମୂର୍ତ୍ତିର ଗୋଡ଼ ତଳେ ଥିବା ବଇଠି—
6. Pedestal for the image of a Deity.
୭ । ବେଦୀ; ପୀଠ—7. Altar; platform.
୮ । ପିଣ୍ଡା—8. Veranda.
୯ । ଖଜୁରି କୋଳି—9. Date fruit.
୧୦ । ଲାଉ—10 Gourd; pumpkin.
୧୧ । ଛୋଟ ପିଣ୍ଡୁଳା—
11. A small round ball or lump.

**ପିଣ୍ଡୀ**—ଦେ. ବି—(ସ. ପିଣ୍ଡ)—୧ । ହାଣ୍ଡିଶାଳରେ ହାଣ୍ଡି ଆଦି ରଖିବା ପାଇଁ ମଲା ଥିବା ଉଚ୍ଚ ବେଦୀ, ତେଙ୍ଗଡ଼ା—
पिढ़ई

1. An earthen platform with circular grooves to put cooking pots on.

୨ । ଗଛମୂଳେ ବନ୍ଧାଯିବା ବେଦୀ (ଏଥିରେ ଲୋକ ବସନ୍ତି)—
2 A platform raised at the foot of a tree.
୩ । ଏକ ମାହାଳ ପାଇଖାନାରେ ଝାଡ଼ା ଫେରିବା ବେଳେ ଉପର ହୋଇ ବସିବା ପାଇଁ କମିତ ଇଟା ବା ପଥରର ବଇଠି—3 Blocks of brick or stone raised in a latrine to rest one's feet on.

**ପିଣ୍ଡିକ ଦୀକ୍ଷିତ**—ଦେ. ବି. (ନାମ)—ପୁରୀ ଜିଲ୍ଲା ବିଶ୍ୱନାଥପୁର ଶାସନର ଜଣେ ପ୍ରସିଦ୍ଧ ଉଚ୍ଚ ବଂଶୀୟ ବ୍ରାହ୍ମଣ—
**Pindika dikshita** Name of a Brāhmana of high family of Puri district who performed Jajna.

[ ଦ୍ର—ଏ ପୂର୍ବେ ଯଜ୍ଞ କରି ଓଡ଼ିଶା ରାଜାଙ୍କଠାରୁ ଦୀକ୍ଷିତ ଉପାଧି ପାଇଥିଲେ । ]

**ପିଣ୍ଡିକ ଶ୍ରୀଚନ୍ଦନ**—ଦେ. ବି. (ନାମ)—ଖୋର୍ଦ୍ଧାବାସୀ ଜଣେ କବି—
**Pindika śrichandana** A poet of Khordhā.

[ଦ୍ର—'ମୁକୁନ୍ଦମାଳା' ଓ 'ବସନ୍ତରାସ' ଏ କବିଙ୍କ ରଚିତ ପୁସ୍ତକ—ଚାରୁଣୀ. ଉତ୍କଳ-ସାହିତ୍ୟ ଇତିହାସ । ]

**ପିଣ୍ଡିକା**—ସ. ବି. (ପିଣ୍ଡ+କ+ଆ)—୧ । ପିଣ୍ଡି (ଦେଖ)
**Pindikā** 1 Pindi (See)

୨ । ବଡ଼ ଆବୁ; ଗୋଠାଳିଆ ମାଂସବୃଦ୍ଧି—
2. Round fleshy swelling.

ଦେ. ବି—୧ । ଦେବତାଙ୍କ ପାଦପୀଠରେ ଦର୍ଶକ ଦର୍ଶନ କଲା ବେଳେ ଦେବା ଭେଟି—
1. Present given to a Deity at the pedestal when a person pays a visit.
୨ । କୌଣସି ବ୍ୟକ୍ତିକୁ ଦିଆଯିବା ଭେଟି ବା ଉତ୍କୋଚ—
2. Present or bribe given to a person.
୩ । ଖଣ୍ଡଖଣ୍ଡ ଦାନାବିଶିଷ୍ଟ କସ୍ତୁରୀ ( କବିରାଜ ହରେକୃଷ୍ଣ ଦ୍ରବ୍ୟଗୁଣ )—3. Musk with big grains.
୪ । ଶୈତାମ୍ଳିକା ( ହି. ଶବ୍ଦସାଗର ); ତିନ୍ତିଳ—
4. Tamarind.

**ପିଣ୍ଡିକା ଚଢ଼ା(ଢ଼େ)ଇବା**—ଦେ. କ୍ରି—୧ । ଦେବତାଙ୍କୁ ଦର୍ଶନ କଲା ବେଳେ ତାଙ୍କ ପାଦପୀଠରେ ଭେଟି ରଖିବା—1. To place a gift of money at the pedestal of a Deity.
**Pindikā chardhā(rdhe)ibā**

୨ । ( ଲକ୍ଷଣାର୍ଥ ) କୌଣସି ବ୍ୟକ୍ତିକୁ ଧନାଦି ଭେଟି ବା ଉତ୍କୋଚ ଦେବା—
2. To give a present or bribe to a person.

ପିଣ୍ଡି(ଣ୍ଡୀ)ଖର୍ଜୁର(ରୀ)—ସଂ. ବି—ପିଣ୍ଡ ଖର୍ଜୁର (ଦେଖ)
Pındı(ṇḍi)kharjura(ri) Pında kharjura (See)

ପିଣ୍ଡିତ—ସଂ. ବିଣ (ପିଣ୍ଡ୍ ଧାତୁ+ତ)—
Pinḍıta ୧ । ପିଣ୍ଡୀକୃତ କରାଯିବା, ସଂହତ—
1 Rolled into a ball.
୨ । ସାନ୍ଦ୍ର, ଘନ—2 Dense
୩ । ରାଶୀକୃତ—3. Heaped up, consolidated.
୪ । ଗୁଣିତ—4. Multiplied
୫ । ମିଶାଣ କରାଯାଇଥିବା—5 Added up.
ସଂ. ବି—୧ । ଶିଲାରସ (ହି ଶ)—1 Styrax; benzoin.
୨ । କଂସା (ହି. ଶ)—2 Bell metal.
୩ । ଗଣିତ (ହି. ଶ)—3 Mathematics.

ପିଣ୍ଡିତାର୍ଥ—ସଂ. ବି ( କର୍ମଧା; ପିଣ୍ଡିତ+ଅର୍ଥ )—କୌଣସି ବାକ୍ୟର ବା
Pinḍitārtha ବାକ୍ୟସମୂହର ସ୍ଥୂଳାର୍ଥ—The consolidated meaning of a whole passage (Apte)

ପିଣ୍ଡିଲ—ସଂ. ବିଣ. ପୁଂ. ( ପିଣ୍ଡି+ଲ )—୧ । ମୋଟା ଗୋଡ଼ଭଣ୍ଡା-
Pinḍila ବିଶିଷ୍ଟ (ବ୍ୟକ୍ତି)—1 Having large calves
(ପିଣ୍ଡିଲା—ସ୍ତ୍ରୀ) (Apte).
୨ । ଗଣନାରେ ଦକ୍ଷ—2. Skilled in calculations (Apte)
ସଂ. ବି. ପୁଂ—୧ । ଗଣକ; ଜ୍ୟୋତିଷ—
1 Astronomer; fortune-teller.
୨ । ପୋଲ, ସେତୁ—2. Bridge.
୩ । ମାଟିଗଦା; ସ୍ତୂପ—3 Mound

ପିଣ୍ଡିଶୂର—ସଂ. ବି. ପୁଂ—ପିଣ୍ଡୀଶୂର (ଦେଖ)
Pındisūra Pinḍīsūra (See)

ପିଣ୍ଡୀ—ସଂ. ବି. (ପିଣ୍ଡ୍ ଧାତୁ+ଈ, ପିଣ୍ଡ+ଇନ୍; ୧ମା. ୧ବ)—
Pinḍi ୧ । ପିଣ୍ଡି (ଦେଖ)—1. Pinḍi (See)
୨ । ପିଣ୍ଡୁଳ—2. Ball; circular packet; roll
୩ । ପିଣ୍ଡ ଖର୍ଜୁର ( ଦେଖ )
3. Pinḍa kharjura ( See )
୪ । ଭିକ୍ଷୁକ—4. Beggar.
୫ । ପିଣ୍ଡଦାତା—5. One who offers funeral cakes to the manes.
୬ । ଏକ ପ୍ରକାର ତଗର ଫୁଲ (ହି. ଶ.)—
6. A kind of Tagara flower.
ସଂ. ବିଣ. ପୁଂ—୧ । ଦେହଧାରୀ—1. Having a body.
୨ । ପିଣ୍ଡଭୁକ୍—2. Partaking of funeral cakes of rice.

ପିଣ୍ଡୀକରଣ—ସଂ. ବି. ( ପିଣ୍ଡ+ଅଭୂତ ତଦ୍ଭାବେ ଚ୍ୱି+କରଣ )—
Pinḍīkarana ଗଦା କରିବା—Gathering into a heap.

ପିଣ୍ଡୀକୃତ—ସଂ ବିଣ. ( ପିଣ୍ଡ+ଅଭୂତ ତଦ୍ଭାବେ ଚ୍ୱି+କୃତ )—
Pinḍīkṛuta ୧ । ମେଞ୍ଚା କରି ଯାଇଥିବା—
1. Made into a lump.
୨ । ଗୁଣ୍ଡା ବଳାଯିବା—2. Rolled into a ball
୩ । ବଳା ଯାଇଥିବା—3. Pressed together.
୪ । କେନ୍ଦ୍ରରେ ରାଶୀକୃତ—
4 Concentrated at one point
୫ । ରାଶୀକୃତ—5. Heaped up.]

ପିଣ୍ଡୀତକ—ସଂ. ବି.—୧ । ଟୋଲକ ( ଦେଖ
Pinḍītaka 1. Tolaka ( See )
କବିରାଜ ହରେକୃଷ୍ଣ — ଦ୍ରବ୍ୟଗୁଣ ।
୨ । ଏକ ପ୍ରକାର ତଗର ଫୁଲ ( ହି. ଶ. )—
2. A kind of Tagara flower.
୩ । ମଦନ ବୃକ୍ଷ ( ହି ଶ )—
3 Bushy Gardenia ( tree ).

ପିଣ୍ଡୀପୁଷ୍ପ—ସଂ. ବି.—ଅଶୋକ ବୃକ୍ଷ ( ହି. ଶ )—
Pinḍipushpa The Asoka tree.

ପିଣ୍ଡୀଭୂତ—ସଂ. ବିଣ—( ପିଣ୍ଡ+ଅଭୂତ ତଦ୍ଭାବେ ଚ୍ୱି+ଭୂତ )—ଏକତ୍ର
Pinḍībhūta ବଳାଯାଇ ଗୋଟା କରାଯାଇଥିବା—Made or pressed into a lump; conglomerated.

ପିଣ୍ଡୀର—ସଂ. ବିଣ—(ପିଣ୍ଡ+ଈର)—ଶୁଷ୍କ, ନୀରସ—
Pinḍira Sapless; dry.
ସଂ. ବିଣ—୧ । ସମୁଦ୍ର ଫେଣ—
1. Cuttle fish bone.
୨ । ଡାଳିମ୍ବ—2. Pomegranate.
୩ । ଲହରୀ ଆଘାତରେ ଜନ୍ମିବା ଫେନ—
3. Foam of the sea.

ପିଣ୍ଡୀଶୂର—ସଂ. ବି. ପୁଂ—(ପିଣ୍ଡି=ଆପଣା ପିଣ୍ଡାରେ ଶୂର=ବୀର; ଭୁଜ—
Pinḍi sūra ତତ୍ ପୁରୁଷ)—୧ । ଯେ ଆପଣା ଦୁଆର ମୁହଁରେ ବୀରତ୍ୱ ଦେଖାଏ କିନ୍ତୁ ବାହାରକୁ ଗଲେ ଭୀରୁ, ଗେହ୍ଲେଶ୍ୱର; ଉଦ୍ଧତୁଆ—1. A person who brags of his bravery at his threshold; a braggart.
୨ । କାପୁରୁଷ—2. A coward, poltroon.
୩ । (ପିଣ୍ଡୀ=ଅନ୍ନପିଣ୍ଡ ଖାଇବା ବିଷୟରେ ଶୂର=ବୀର) ଭୋଜନ-ପଟୁ; ପେଟୁ—3 A glutton; a greedy person.

ପିଣ୍ଡୁଳା—ଦେ. ବି—(ସଂ. ପିଣ୍ଡ)—୧ । ଗୋଲାକାର କରାଯାଇଥିବା ମାଟି
Pinḍula ବା କାଦୁଅ—1. A lump of clay.
ପିଣ୍ଡୀ ତନ୍ତ୍ରାବେ ମାଟି ପିଣ୍ଡୁଳାଏ
ପିଂଡ଼ା, ପିଂଡ଼ୋ ଜୀବନ ରଖେ ମୁନି ବଳ—ଜଗନ୍ନାଥ ଭାଗବତ ।
୨ । ଗୋଲା—2. A ball; a round lamp.
ପୂର୍ଣ ମାଂସ ପିଣ୍ଡୁଳାକୁ ସେ ମହାଜ୍ଞାନ
ବଳେ ସିଞ୍ଚନ କରଇଲେ ଶତଖାନ—
କୃଷ୍ଣସିଂହ- ମହାଭାରତ—ଆଦି ।

ପିଣ୍ଡୁଳି—ଦେ. ବି—(ସଂ. ପିଣ୍ଡ)—ପିଣ୍ଡୁଳା (ଦେଖ)—
Pinḍuli Pinḍula (See)

ପିଣ୍ଡୋଲା—ଦେ. ବି—ପିଣ୍ଡୁଳା ( ଦେଖ )
Pinḍola Pinḍula ( See )

**ପିଣ୍ଡୋଳି—ସ. ବ. ( ପିଣ୍ଡ୍ ଧାତୁ+ଓଲ )—**
Pindoli ଖାଇ ସାରିବା ପରେ ଖାଇବା ପତ୍ରରେ ବଳି ପଡ଼ି ରହି ଯାଇଥିବା ଭକ୍ଷ୍ୟ ଖାଦ୍ୟ, ଭୁକ୍ତାବଶେଷ, ଉଚ୍ଛିଷ୍ଟ ଦ୍ରବ୍ୟ—
Orts; leavings of a meal.
ଦେ ବ—ପିଣ୍ଡୁଲା ( ଦେଖ )—Pindula ( See )

**ପିଣ୍ୟାକ—ସ. ବ. (ପିଷ୍ ଧାତୁ=ଚୂର୍ଣ୍ଣ କରିବା + କର୍ମ. ଆକ, ନିପାତନ)—**
Pinyaka ୧ । ରାଶି ବା ସୋରିଷର ପିଡ଼ିଆ—
1. Oil cake of sessamum or mustard.
୨ । ପିଡ଼ିଆ —2. Oil cake.
୩ । ହେଙ୍ଗୁ—3. Asafœtida.
୪ । ସିହ୍ଲକ—4. Frankincense.
୫ । ଯାଫ୍ରାନ—4. Saffron.
୬ । ଶିଳା ଜତୁ (ହ୍ଲି. ଶ.)—6. Bitumen; benzoin.

**ପିତ୍—ପ୍ରାଦେ. (ସମ୍ବଲପୁର) ବିଣ—ପିତା, ତିକ୍ତ—**
Pit Bitter (in taste)

**ପିତ୍‌କୁରୁଆ—ପ୍ରାଦେ. (ସମ୍ବଲପୁର) ବ—ତିକ୍ତତା —**
Pitkurua Bitter taste, bitterness in taste.

**ପିତ—ଦେ. ବ. ( ସ ପିତ୍ତ )—୧ । ପିତ୍ତ, ଶରୀରସ୍ଥ ଧାତୁବିଶେଷ—**
Pita 1. Bile.
ପିତ୍ତ पित्त
୨ । (ପୁଂ. ଓ ସ୍ତ୍ରୀ) ପୀତାମ୍ବରୀ ଓ ପୀତାମ୍ବର ଆଦର ଡାକ ନାମ—
2. Name for calling Pitambari and Pitambara etc.

**ପିତ ଉଠିବା—ଦେ. ବ—ପିତ୍ତ ଉଠିବା ( ଦେଖ )**
Pita uthiba Pitta uthiba ( See )

**ପିତଃ—ସ. ସମ୍ବୋ ( ପିତୃ ଶବ୍ଦର ସମ୍ବୋଧନ ରୂପ )—ହେ ପିତା—**
Pitah Oh father.

**ପିତ କେରଣ୍ଡି—ଦେ. ବ—ପିତ୍ତ ଥିବା ସାନ କେରଣ୍ଡି ମାଛ—**
Pita kerandi Small species of Kerandi.
(ପିତା'କରଣ୍ଡି—ଅନ୍ୟରୂପ) [ ଦ୍ର—ଏହାକୁ ପିତା ମାଛ ମଧ୍ୟ କହନ୍ତି । ]

**ପିତ ଖସାଇବା (ଇତ୍ୟାଦି)—ଦେ.କ୍ରି—ପିତ୍ତ ଖସାଇବା ଇତ୍ୟାଦି (ଦେଖ)**
Pita khasaiba (etc) Pitta khasaiba etc. (See)

**ପିତର—ଦେ. ବ. ( ବହୁବଚନ; ସ. ପିତୃ ଶବ୍ଦର ପ୍ରଥମା ବିଭକ୍ତିର ବହୁବଚନ; ପିତରଃ )—**
Pitara ପିତୃ ଲୋକ; ମନୁଷ୍ୟର ମୃତ ପୂର୍ବପୁରୁଷଗଣ—
One's deceased ancestors.
ସନ୍ଧ ସାଧ୍ୟ ତିଳାର ଗୁହ୍ୟକ ପିତର ।
କୃଷ୍ଣଙ୍ଗ. ମହାଭାରତ. ଅଦ ।

**ପିତଳ—ଦେ. ବ. ( ସ. ପିତ୍ତଳ )—**
Pitala ୧ । ପିତ୍ତଳ; ମିଶ୍ରିତ ଧାତୁବିଶେଷ—
पित्तल पीतल 1. Brass.
୨। ପିତ୍ତଳରେ ନିର୍ମିତ ପରିମାଣ ପାତ୍ର; ଗଉଣୀ—
2. A measure made of brass.

**ପିତଳ କାନ—ଦେ. ବ ( ଲକ୍ଷଣାର୍ଥ )—**
Pitala kana ୧ । ଦୂରରୁ ଗୁନ ଗୁନ କଥା ଶୁଣି ପାରିବାର ଶକ୍ତି—
1. The power of hearing a very low voice from afar.
୨ । ଚୁଗୁଲି ଶୁଣିବାର ଅଭ୍ୟାସ—
2. Habit of hearing back bitings.

**ପିତଳିଆ—ସ. ( ପିତ୍ତଳ )—ପିତଳ ପରି—**
Pitalia Like brass.
पीतली, पीतला

**ପିତା—ସ. ବ. ( ପା ଧାତୁ=ରକ୍ଷା, ପାଳନ କରିବା + କର୍ତ୍ତୃ. ତୃ, ପିତୃ ଶବ୍ଦ ୧ମା ବିଭକ୍ତି ୧ ବଚନ )—**
Pita
୧ । ବାପ, ଜନକ—1. Father.
୨ । (ସ. ଦ୍ୱିବଚନ)—ପିତା ମାତା ଉଭୟ—Parents
୩ । (ସ. ବହୁବଚନ)—ଚନ୍ଦ୍ରଲୋକବାସୀ ପିତୃ ଲୋକ—
Manes.
[ ଦ୍ର—ଏମାନଙ୍କର ନାମ ଯଥା—ଅଗ୍ନିଷ୍ୱାତ୍ତ, ବର୍ହିଷଦ, ସୁଭାସ୍ୱର, ଆଜ୍ୟପ, ଉପହୂତ, କ୍ରବ୍ୟାଦ ଓ ସୁକାଳିନ ।
ଅନ୍ୟ ଭାଷାର ଶବ୍ଦ ସଙ୍ଗେ ଏହି ଶବ୍ଦର ସୌସାଦୃଶ୍ୟ ଯଥା—ସଂସ୍କୃତ—ପିତୃ, ପାର୍ସି—ପଦର୍, ଗ୍ରୀକ୍—ପାଟେର୍, ଲାଟିନ୍—ପାଟେର୍, ଜର୍ମାନ୍—ଫାଟେର୍, ଇଂରେଜି—ଫାଦାର୍ । ଶାସ୍ତ୍ର ଅନୁସାରେ ଜନ୍ମଦାତା, ଅନ୍ନଦାତା, ଭୟତ୍ରାତା, ଶ୍ୱଶୁର, ବିଦ୍ୟାଗୁରୁ ଓ ଜ୍ୟେଷ୍ଠ ଭ୍ରାତା ଏମାନେ ପିତାଙ୍କ ପରି ।
ସମାସରେ 'ପିତା'ଠାରେ ପିତୃ ଶବ୍ଦ ରହେ । ଯଥା—ପିତୃସ୍ୱତ୍ୱ, ପିତୃଧନ ଇତ୍ୟାଦି । ]
ଦେ. ବ—୧ । ଯେଉଁ ତିଅଣରେ ନିମ୍ବ ଆଦି ପିତା ଦିଆଯାଇ ତିକ୍ତ ସ୍ୱାଦ ଯୁକ୍ତ କରାଯାଏ—1. A curry flavoured
सुक्तानि with bitter leaves (e. g. Neem).
ପୁଂ ଓ ସ୍ତ୍ରୀ—୨ । ପୀତାମ୍ବର ଓ ପୀତାମ୍ବରୀର ଡାକ ନାମ—
1. A name by which Pitambara or Pitambari is called.
तितो ଦେ. ବିଣ. ( ସ. ପିତ୍ତ; ତିକ୍ତ )—
୧ । ତିକ୍ତ—1. A bitter taste.
୨ । (ଲକ୍ଷଣାର୍ଥ) ତିକ୍ତ ପଦାର୍ଥ ପରି ଯାହା ମନୁଷ୍ୟଙ୍କୁ ଖରାପ ଲାଗେ, କଟୁ—2. Bitter; disagreeable.
କର୍ଣ୍ଣରେ କହ ଜ୍ୟେଷ୍ଠ ଭ୍ରାତା ପିତା କର
ଲୁହି ନ ଲୁହି କୋପିଆ ବାଣୀ ପିତା ସର । ଭକ୍ତ. ବୈଦେହୀଶବିଳାସ ।

**ପିତା ଆଳୁ—ଦେ. ବ—ଟୁଙ୍ଗା ( ଦେଖ )**
Pita alu Tunga ( See )

**ପିତା କୋରମା—ଦେ. ବ. (ସ. କୂଟଜ)—କୋରୁଆଁ ( ଦେଖ )**
Pita korama Koruan ( See )

**ପିତା କୋରୁଆଁ—ଦେ. ବ. (ସ. କୂଟଜ)—କୋରୁଆଁ ( ଦେଖ )**
Pita koruan Koruan ( See )
(ପିତା କରୁଆ, ପିତା କରୁଇ, ପିତା କରେଇ, ପିତା କରେଇ, ପିତା କୁଡ଼େଇ, ପିତା କୋଡ଼େଇ, ପିତା କୋରେଇ—ଅନ୍ୟରୂପ )

ପିତା ଗହମା—ପ୍ରାଦେ (ବାଲେଶ୍ୱର) ବି—ଏକପ୍ରକାର ଶାଦ୍ୟଶାକ,
Pitā gahamā ପିତା ଶାଗ—A kind of bitter leaf.

ପିତାଜାମୁ—ପ୍ରାଦେ. (ଗଡ଼ଜାତ) ବି—ଭୂତଜାମୁ (ଦେଖ)
Pitājāmu Bhātajāmu (See)

ପିତାଟିଆ—ଦେ. ବିଣ—ଈଷତ୍ ତିକ୍ତ ସ୍ୱାଦବିଶିଷ୍ଟ—
Pitāṭiā Of slightly bitter taste

ପିତାତରଡ଼ା—ଦେ. ବି. (ସ. ତିକ୍ତ ଘୁଣ୍ଟିକେଷ୍ଟା)—
Pitātarardā ଜହ୍ନି ପରି ତିକ୍ତସ୍ୱାଦ ଏକପ୍ରକାର ଅରଣ୍ୟ ଲତାଫଳ—A cucurbitaceous fruit growing wild; Luffa-amera; Luffa-pluckiliana (Haines).
ସ. ତିକ୍ତକୋଶାତକୀ, ରାଜକୋଶାତକୀ, କୃତବେଧନ କର୍କଟଭୁଣ୍ଡୀ, ତିକ୍ତଭୁଣ୍ଡୀ
ତିତାତରଇ; ଟେଟାଟେଙ୍ଗେଲ;
ତେଲକୁଚା; ତିତାପବୋଲ କଡୁତରାଇ ଝିଙ୍ଗା
ତେ. ଚେଡାବୀର, ଚେଦୁଦୋଣ୍ଡା
ଗ. ବୋଦକାକଣ୍ଡି, ପିଣ୍ଡିତୋରଡ଼ା, ପିଣ୍ଡିମଠକା
(ପିତାତୋରଡ଼ା—ଅନ୍ୟରୂପ)

ପିତାତରଲା—ପ୍ରାଦେ. (ଗଡ଼ଜାତ) ବି—ପିତାତରଡ଼ା (ଦେଖ)
Pitātaralā Pitātarardā (See)

ପିତାତିଅଣ—ଦେ. ବି—ଯେଉଁ ତରକାରୀରେ ନିମ୍ବଆଦି ପିତା ମିଶାଯାଇ ଥାଏ—Curry flavoured with bitter ingredients.
Pitātiaṇa

ପିତାଦତ୍ତ—ଦେ. ବିଣ. (ସ. ପିତୃଦତ୍ତ)—ପିତୃଦତ୍ତ (ଦେଖ)
Pitādatta Pitṛudatta (See)
ପିତାଦତ୍ତ କନ୍ୟା ଶ୍ୱଶୁରଗୃହେ ସ୍ଥିତି। ପ୍ରବଚନ।

ପିତାନଳିତା—ଦେ. ବି—ନଳିତାପିତା—
Pitānaḷitā The leaves of the bitter jute plant.
[ ଦ୍ର—ଏହା ଔଷଧରେ ଲାଗେ । ]

ପିତାପାଣି—ଦେ. ବି—ବର୍ଷାଋତୁର ପ୍ରଥମ ଅସରା ବର୍ଷା—
Pitāpāṇi The first shower of a season; the first monsoon shower of the year.
ପଛରୁ ଅଷାଢ ସିମିତ ନଇରେ ପିତାପାଣି ବଢ଼ଇ
ନାଥ ମେଣ୍ଟଲେବେ। ଫକୀରମୋହନ. ଲଚ୍ଛମା।

ପିତାପାଣିଆ—ଦେ. ବି—ପିତାପାଣି (ଦେଖ)
Pitāpāṇiā Pitāpāṇi (See)

ପିତାପିତା—ଦେ. ବି—ବିରସ—Pale
Pitāpitā ଯଥା—(ସେ ମୁହଁ ପିତାପିତା କରୁଛି ।)

ପିତାପୁତ୍ର—ସ. ବି. (ଦ୍ୱନ୍ଦ୍ୱ)—ବାପ ଓ ପୁଅ—
Pitāputra Father and son.

ପିତାପୋଇ—ଦେ. ବି—ଏକପ୍ରକାର ପିତାପତ୍ରବିଶିଷ୍ଟ ଜଙ୍ଗଲପୋଇ—
Pitāpoi A kind of creeper.

ପିତାବାଲ୍ଜି—ଦେ. ବି. (କନ୍ଧଭାଷା)—ପ୍ରଧାନ ଦେବତା; ପରମେଶ୍ୱର;
Pitābālji ସବୁ ଦେବତାଙ୍କର ପିତା—
The great father God.

ପିତାମଇତା—ଦେ. ବି. (ସ. କର୍କଟଭୁଣ୍ଡୀ)—
Pitāmaitā ପୋଟଲ ଜାତୀୟ ଅରଣ୍ୟ ଲତାଫଳ ବିଶେଷ—
କଡୁତବାଇ; ତିତପଲତା A bitter variety of Paṭola.

ପିତାମଶିଆ—ପ୍ରାଦେ. (ଗଡ଼ଜାତ) ବି—ଗୋଲ ଆଳୁ ପରି ଏକ-ପ୍ରକାର ବନ୍ୟମୂଳ—A kind of wild root like potato.
Pitāmaśiā
[ ଦ୍ର—ଗଛ ଆଳୁ ଲତାପରି ମାଡ଼ିଥାଏ । ମୂଳକୁ ଗରିବ ଲୋକେ (ଶବର, କନ୍ଧ ପ୍ରଭୃତି) ମହର୍ଗ କାଳରେ ପାଣିରେ ସିଝାଇ ଗାଳ ଚକଟି କରି ଖାଆନ୍ତି । ]

ପିତାମହ—ସ. ବି. ପୁଂ. (ପିତୃ+ପିତାଙ୍କ ପିତା ଅର୍ଥରେ ଆମହ)—
Pitāmaha ୧ । ପିତାଙ୍କ ପିତା, ଜେଜେବାପ—
1. Paternal grand-father.
୨ । ସୁରଜ୍ୟେଷ୍ଠ, ବ୍ରହ୍ମା—2. Brahmā.
(ଯଥା—ବ୍ରହ୍ମାଙ୍କଠାରୁ ଏହି ସମସ୍ତ ପ୍ରଜା ସୃଷ୍ଟ ହୋଇ ଅଛନ୍ତି ବୋଲି ଲୋକେ ତାହାଙ୍କୁ ପିତାମହ ବୋଲି ନିର୍ଦ୍ଦେଶ କରନ୍ତି ।)
୩ । ଦକ୍ଷପ୍ରଜାପତି—3. Dakshya Prajāpati

ପିତାମହୀ—ସ. ବି ସ୍ତ୍ରୀ. (ପିତାମହ+ସ୍ତ୍ରୀ. ଈ)—ଜେଜେମା; ବଡ଼ମା—
Pitāmahī Paternal grand-mother.

ପିତାମାଛ—ଦେ. ବି—ପିତକେରଣ୍ଡି (ଦେଖ)
Pitāmāchha Pitakerāṇḍi (See)

ପିତା ମାତା—ସ. ବି. (ଦ୍ୱନ୍ଦ୍ୱ)—ବାପ ଓ ମା, ଜନକ ଜନନୀ—
Pitā mātā Father and mother; parents.

ପିତା ମାରିବା—ଦେ. କ୍ରି—ନିମ୍ବପତ୍ର ଆଦିକୁ ଭାଜି ତିଅଣରେ ମିଶାଇ ତିଅଣକୁ ତିକ୍ତସ୍ୱାଦବିଶିଷ୍ଟ କରିବା—
Pitā māribā
To flavour a curry with bitters.

ପିତାଲାଉ—ଦେ. ବି. (ସ. ତିକ୍ତ ଓ ଅଲାବୁ)—
Pitālāu ତିକ୍ତସ୍ୱାଦୁବିଶିଷ୍ଟ ଅଲାବୁ ଜାତୀୟ ଫଳ—
ସ. କର୍କଟଭୁମ୍ବୀ ତିତାଲାଉ ततलौआ Bitter gourd.

ପିତା ଲାଗିବା—ଦେ. କ୍ରି—୧ । ତିକ୍ତ ବୋଧ ହେବା—
Pitā lāgibā 1. To taste bitter.
୨ । (ଲକ୍ଷଣାର୍ଥ, କୌଣସି ବିଷୟ) ଅସୁଖକର ବୋଧ ହେବା—
2 (Fig) To feel unpleasant.
ଶ୍ରବଣର ଘୃଣା ହେତୁ, ତେଣେ ପିତା ଲାଗୁଛି
ଗୋଲକଚନ୍ଦ୍ର ଦାଶ. ପିଙ୍ଗଳଯୋଗମଯୁଣ ।

ପିତାଳି—ପ୍ରାଦେ. (ସିଂହଭୂମ) ବି—ସାନକେରଣ୍ଡି ମାଛ—
Pitāḷi A kind of small fish.

ପିତାଳିଆ—ଦେ. ବିଣ—ପିତାଟିଆ (ଦେଖ)
Pitāḷiā (ପିତୁଳିଆ—ଅନ୍ୟରୂପ) Pitāṭiā (See)

ପିତାଳୁ—ଦେ. ବି—ପାଣିଗମ୍ବାରି (ଦେଖ)
Pitāḷu Pāṇigambāri (See)

ପିଶାଶ—ଦେ. ବି. ପୁଂ. (ସ. ପିଶାଚ)—୧ । ପିଶାଚ—
Piśāśa 1. Fiend.
(ପିଶାଶୁଣୀ—ସ୍ତ୍ରୀ) ୨ । (ଇଂ. ପିକେକ୍ସ)—ଗଇନ୍ତି, ଦୁଇପାଖରେ ମୁନ ଥିବା ଅର୍ଦ୍ଧଚନ୍ଦ୍ରାକୃତି କୁରୁଣ୍ଡି—2. Pickaxe.
ଦେ. ବିଣ—୧ । ପୈଶାଚିକ—1. Fiendish.
୨ । ନିଷ୍ଠୁର—2. Cruel.

ପିତାଶଖିଆ—ଦେ. ବଣ. ପୁଂ—ପୁରୁଷଙ୍କୁ ଦଆଯିବା ଅଭିଶାପ—
Pitāsakhiā A curse given to males.
(ପିତାଶଖେଇ—ସ୍ତ୍ରୀ)

ପିତା ଶାଗ—ଦେ. ବ—ପାଣି ମରଯାଇଥିବା ପଡ଼ିଆରେ ଜନ୍ମିବା ଏକ-
Pitāsāga ପ୍ରକାର ତିକ୍ତ ବର୍ଷାୟୁ ଶାକ—A pot herb
ସ. ଗ୍ରୀଷ୍ମସୁନ୍ଦରକ, ପର୍ପଟ growing in meadows;
ଗିମିଶାକ୍, ଗିମାଶାଗ Erythrea Roxburghii;
ଗେଳନା Mollugo spergula.
(Kirtikar)
[ ଦ୍ର—ପତ୍ର ଅଭିମୁଖୀ; ଫୁଲ ଶ୍ୱେତ; ଶୀତ ଦିନେ ଫୁଟେ, ଫଳ ଫାଟିଯାଏ । ଏହା ପିତ୍ତ, କଫ, କାମଳ, ପାଣ୍ଡୁ ଓ ପ୍ଲୀହାନାଶକ ।]

ପିତାଶିଆ—ଦେ. ବଣ—(ସ ପିଶାଚ)—୧ । ପୈଶାଚିକ—
Pitāsiā 1. Fiendish.
୨ । ନିଷ୍ଠୁର—2 Cruel.

ପିତାଶୁଖୁଆ—ଦେ. ବ—ପିତ କଡା ହୋଇ ନ ଥିବା କେଉଣ୍ଟି ଆଦି
Pitāsukhuā ସାନ ମାଛର ଶୁଖୁଆ—
A kind of small dry fish
[ ଦ୍ର—ଏହା ପିତା ଲାଗେ ବୋଲି ଏ ନାମ ।]

ପିତାଶୁଣୀ—ଦେ. ବ. ସ୍ତ୍ରୀ—(ପିଶାଚିନୀ)—ପିତାଶର ସ୍ତ୍ରୀଲିଙ୍ଗ—
Pitāsuni Feminine of Pitāsa.
ଅନ୍ତରେ ଅନେକ ପିତାଶୁଣୀ—ଫକୀରମୋହନ ଭ୍ରମଣ ଆଠଗଡ଼ ।

ପିତି ନାଟ—ଦେ. ବ—(ସ. ପିତ୍ତ ଓ ନୃତ୍ୟରୁ)—ତନ୍ତ୍ରସନ୍ତ୍ର ପ୍ରୟୋଗଦ୍ୱାରା
Pitināta ଦୁଇ ଜଣଙ୍କ ମଧ୍ୟରେ ଲଗାଯିବା କଳକଜିଆ—
Quarrel brought about by magic.

ପିତିପାଙ୍ଗୁଳା—ଦେ. ବଣ. ପୁଂ—ପିତ୍ତିପାଙ୍ଗୁଳା (ଦେଖ)—
Pitipāngulā Pittapāngulā (See)
(ପିତିପାଙ୍ଗୁଳୀ—ସ୍ତ୍ରୀ)

ପିତି ପାଙ୍ଗୁଳିଆ—ଦେ. ବଣ. ପୁଂ—ପିତ୍ତି ପାଙ୍ଗୁଳା (ଦେଖ)—
Pitipāngulia Pitta pāngulā (See).
(ପିତିପାଙ୍ଗୁଳେଇ—ସ୍ତ୍ରୀ)

ପିତି ପିତେଇବା—ଦେ. କ୍ରି—(ସ. ପିତ୍ତ)—ଭୋକିଲା ହୋଇ ଅତି
Pitipiteibā ବ୍ୟସ୍ତ ହେବା—To be distressed by the
(ପିତିପିତେଇ ଯିବା—ଅନ୍ୟରୂପ) agonies of hunger.

ପିତୁଃ ପୁତ୍ର—ସ. ବ—(ସ. ପିତୁଃ=ପିତାଙ୍କର ପୁତ୍ର)—ଉପଯୁକ୍ତ ବା
Pituhputra ଖ୍ୟାତ ପିତାଙ୍କର ଉପଯୁକ୍ତ ପୁତ୍ର; ବାପର ପୁଅ—
The son of a renowned father; the fit son of a fit father. (Apte)

ପିତୁ ନାଟ—ଦେ ବ—ପିତି ନାଟ (ଦେଖ)—
Pitunāta Pitināta (See)

ପିତୁଳା—ଦେ. ବ—( ସ. ପୁତ୍ତଳିକା, ପ୍ରା. ପୁତ୍ତଳିଆ )—୧ । ପ୍ରତିମା;
Pitulā (ପିତୁଳି—ଅନ୍ୟରୂପ) ମୂର୍ତ୍ତି—1. Image; idol.
ଲେଖେଲ ହଥାରେ ନ ରହି ଭୁଜା
ଭୁବନରେ ତ୍ରିମୂର୍ତ୍ତିକ ପିତୁଳା—ଲକ୍ଷ୍ମୀସ୍ୱର୍ଣ୍ଣ ଗୀତା ।
ପୁତଲ ୨ । ପୁତ୍ତଳିକା; କଣ୍ଢେଇ—2. Doll.
୩ । ଆଖିର ପୁଅ—3. The pupil of the eye.
୪ । (ଲକ୍ଷଣାର୍ଥ) ଆଖିର ପୁଅ ପରି ଅତି ପ୍ରିୟ ବ୍ୟକ୍ତି—
4. (Fig) One's dearest or most beloved person

ପିତୁଳା କନ୍ଦାଇବା—ପ୍ରାଦେ (ଗଡ଼ଜାତ) କ୍ରି—ମୁମୂର୍ଷୁ ରୋଗୀର ମୃତ୍ୟୁର
Pitulā kandāibā ଅବ୍ୟବହିତ ପୂର୍ବେ ଆଖିରୁ ଲୁହ ବୋହିବା—
The shedding of tears of a diseased person just before death.
(ଯଥା—ସ୍ତ୍ରୀଲୁ ପିତୁଳା କନ୍ଦେଇଲାଣି, ଏ ଆଉ ବଞ୍ଚିବ ନାହିଁ)

ପିତୁଳା ଘର—ଦେ ବ—୧ । ଯେଉଁ ଘରେ ପିତୁଳାମାନେ ଥାଆନ୍ତି—
Pitulāghara 1. A house where dolls are kept.
୨ । ଦେଉଳର ଚାରି ପାଖରେ ପାର୍ଶ୍ୱଦେବତାମାନଙ୍କୁ ବସାଇବା ଘର—2. Small temples where images are set up round a temple.

ପିତୁଳା ନାଟ—ଦେ. ବ—(ସ. ପୁତ୍ତଳ ଓ ନୃତ୍ୟ)—କଣ୍ଢେଇ ନାଟ—
Pitulā nāta Doll dancing; puppet show.
ପୁତଲ ବାଜୀ

ପିତୁଳା ପୂଜା—ଦେ. ବ—ଈଶ୍ୱର ସ୍ଥାନରେ ପ୍ରତିମା ପୂଜା—
Pitulāpūjā Image worship; idol worship

ପିତୁଳି—ଦେ. ବ—ପିତୁଳା ( ଦେଖ )
Pituli Pitulā ( See )
ଦେ. ବଣ—ପିତୁଳିଆ ( ଦେଖ )
Pituliā ( See )

ପିତୁଳିଆ—ଦେ. ବଣ. ( ସ. ତିକ୍ତରୁ )—
Pituliā ୧ । ପିତାଳିଆ; ଈଷତ୍ ତିକ୍ତ—
ତିତକୁଟେ 1. Slightly bitter in taste.
(ପିତୁଳିଆ—ଅନ୍ୟରୂପ) ୨ । (ସ. ପିତ୍ତଳ) ପିତ୍ତଳ ସମ୍ବନ୍ଧୀୟ—
2. Brassy; brazen.
୩ । ପିତ୍ତଳ ରଙ୍ଗଯୁକ୍ତ—3. Of brassy colour.
୪ । ପିତ୍ତଳ ମିଶ୍ରିତ—
4. Mixed or alloyed with brass.
୫ । ପିତ୍ତଳ ବାସନରେ ରହିବା ଯୋଗୁଁ ଊଣ୍ଟେଇ ଯାଇଥିବା (ଖଟା ଦ୍ରବ୍ୟ)—5. That which has become spoiled in taste owing to being kept in a brass vessel.

ପିତୃ—ସ. ବ. (ମୂଳ ଶବ୍ଦ)—୧ । ପିତା (ଦେଖ)
Pitru 1. Pitā (See)
୨ । ପିତୃଗଣ—2 The manes.
ଦେ. ବ.—ପିତା—Father.
(ଯଥା—ସେ ମୋର ପିତୃ; ମୁଁ ତାଙ୍କ ବଚନ ଭାଙ୍ଗି ପାରିବ ନାହିଁ ।)

ପିତୃ ଅର୍ଜନ—ଦେ. ବ—ନିଜର ପିତାଙ୍କ ଅର୍ଜିତ ସମ୍ପତ୍ତି—
Pitru arjana Paternal acquisities

ପିତୃ ଅର୍ଜିତ—ଦେ. ବଣ—ନିଜର ପିତା ବା ପୂର୍ବ ପୁରୁଷଙ୍କ ଅର୍ଜିତ—
Pitru arjita Paternal; acquired by one's ancestors; ancestral (property).

ପିତୃ ଋକ୍ଥ—ସ. ବି. ( ପିତୃ+ଋକ୍ଥ=ସମ୍ପତ୍ତି, ଦାୟ )—
Pitru ruktha ପୈତୃକ ସମ୍ପତ୍ତି—Paternal property.

ପିତୃକ—ସ. ବିଣ. ( ପିତୃ+କ )—
Pitruka ୧ । ପୈତୃକ, ପିତୃ ସମ୍ବନ୍ଧୀୟ—1. Paternal.
୨ । ପିତୃ ପୁରୁଷଙ୍କଠାରୁ ପ୍ରାପ୍ତ ବା ଆଗତ—
2. Handed down from one's ancestors; ancestral

ପିତୃ କର୍ମ—ସ. ବି—ପିତୃଲୋକଙ୍କ ଉଦ୍ଦେଶ୍ୟରେ କୃତ ଶ୍ରାଦ୍ଧ
Pitru karma ତର୍ପଣାଦି—Obsequial rites, ceremonies performed to one's ancestors

ପିତୃ କଳ୍ପ—ସ. ବି. ପୁଂ. ( ପିତୃ+କଳ୍ପ )—୧ । ପିତୃକର୍ମ—
Pitru kalpa 1. Obsequial ceremonies.
୨ । ପିତୃଲୋକଙ୍କର ଉତ୍ପତ୍ତ୍ୟାଦିଜ୍ଞାପକ ଗ୍ରନ୍ଥବିଶେଷ —
ସ ବିଣ—ପିତୃ ତୁଲ୍ୟ—Father like.

ପିତୃ କାନନ ସ. ବି. ( ୬ଷ୍ଠୀ ତତ୍ )—ଶ୍ମଶାନ—
Pitru kānana Cremation ground; crematory.

ପିତୃ କାର୍ଯ୍ୟ—ସ ବି—ପିତୃକର୍ମ ( ଦେଖ )
Pitru kārjya Pitru karma ( See )

ପିତୃକୁଳ—ସ. ବି. ( ୬ଷ୍ଠୀ ତତ୍ )—ପିତାଙ୍କ ବଂଶ—
Pitrukula Paternal line.

ପିତୃ କୃତ୍ୟ—ସ. ବି—ପିତୃକର୍ମ ( ଦେଖ )
Pitru kruty Pitru karma ( See )

ପିତୃ କ୍ରିୟା—ସ. ବି—ପିତୃକର୍ମ ( ଦେଖ )
Pitru kriyā Pitru karma ( See )

ପିତୃଗଣ—ସ. ବି. ( ୬ଷ୍ଠୀ ତତ୍ )—
Pitrugana ୧ । ପୂର୍ବ ପୁରୁଷଗଣ; ବଡ଼ବଡ଼ୁଆ; ପିତୃଲୋକ—
1 One's ancestors.
୨ । ମନୁଷ୍ୟମାନଙ୍କର ପୂର୍ବ ପୁରୁଷଙ୍କର ୧୫ଟି ଶ୍ରେଣୀ—
2. 15 classes of Progenitors of the universe; the manes.
[ ଦ୍ର—ଅଗ୍ନିଷ୍ୱାତ୍ତାଦି ସପ୍ତ ଓ ମରୀଚ ପ୍ରଭୃତି ଅଷ୍ଟ ମୁନିଙ୍କଠାରୁ ଦେବ, ଦାନବ, ଯକ୍ଷ, ମାନବ ପ୍ରଭୃତିଙ୍କର ଉତ୍ପତ୍ତି ହୋଇଥିବାରୁ ଏମାନଙ୍କୁ ପିତୃଗଣ ବୋଲାଯାଏ । ଏମାନେ ଦକ୍ଷ ପ୍ରଜାପତିଙ୍କଠାରୁ ଜାତ । ଶାସ୍ତ୍ର ଅନୁସାରେ ଏହି ପ୍ରତ୍ୟେକଙ୍କର ଗୋଟିଏ ଲେଖାଏଁ ଗଣ ଅଛି । ଗରୁଡ଼ପୁରାଣୋକ୍ତ ପିତୃମାନଙ୍କ ନାମ—ବିଶ, ବିଶ୍ୱଭୁକ, ଆରାଧ୍ୟ, ଧର୍ମ, ଧନ୍ୟ, ଶୁଭାନନ, ଭୂମିଦ, ଭୂମିକୃତ୍, ଭୂତି, କଲ୍ୟାଣ, କଲ୍ୟଦ, କଲ୍ୟତର, କଲ୍ୟତରାଶ୍ରୟ, କଲ୍ୟତାହେତୁ, ଅନଘ, ମହାନ, ମହାତ୍ମା, ମହିତ, ମହିମାବାନ, ମହାବଳ । ]

ପିତୃ ଗୃହ—ସ. ବି. ( ୬ଷ୍ଠୀ ତତ୍ )—୧ । କନ୍ୟାର ବାପଘର—
Pitru gruha 1. The house of a bride's father.
୨ । ପିତୃକାନନ; ଶ୍ମଶାନ—2. Cremation ground.
୩ । ପୈତୃକ ଗୃହ—3 Ones paternal house.

ପିତୃ ଗୋତ୍ର—ସ. ବି ( ୬ଷ୍ଠୀ ତତ )—ପିତୃକୁଳ ( ଦେଖ )
Pitru gotra Pitru kula ( See )

ପିତୃଘାତକ—ସ. ବିଣ. ପୁଂ. ( ଉପପଦ ତତ୍ପୁରୁଷ )—
Pitru ghātaka ପିତାଙ୍କୁ ଯେ ହତ୍ୟା କରେ—
( ପିତୃଘାତକା—ସ୍ତ୍ରୀ ) Parricide, Patricide

ପିତୃଘାତୀ—ସ ବିଣ. ପୁଂ. ( ଉପପଦ ତତ୍ପୁରୁଷ )—
Pitrughāti ପିତୃଘାତକ ( ଦେଖ )
( ପିତୃଘାତିନୀ—ସ୍ତ୍ରୀ ) Pitrughātaka ( See )

ପିତୃଘ୍ନ—ସ ବିଣ. ପୁଂ. ( ପିତୃ+ହନ୍ ଧାତୁ+କର୍ତ୍ତୃ. ଅ )—
Pitrughna ପିତୃଘାତକ—Parricide.

ପିତୃ ତର୍ପଣ—ସ. ବି. ( ୬ଷ୍ଠୀ ତତ୍ )—
Pitru tarpana ୧ । ପିତୃଲୋକଙ୍କ ତୃପ୍ତ୍ୟର୍ଥ ଜଳ ଓ ତିଳାଦି ଦ୍ୱାରା କରାଯିବା କ୍ରିୟା—1. Offering of water and sessamum to the manes or deceased ancestors.
୨ । ପିତୃ ଲୋକଙ୍କର ତୃପ୍ତି—
2. The satisfaction of one's Progenitors.
୩ । ତିଳ, ସ୍ୱର୍ଗ—3. Sessamum.
୪ । ପିତୃତୀର୍ଥ ( ୧ ) ( ଦେଖ )
4. Pitru tirtha ( 1 ) ( See )

ପିତୃତିଥି—ସ. ବି.—ଅମାବାସ୍ୟା—
Pitrutithi The new moon day
[ ଦ୍ର—ଏହିଦିନ ପିତୃଗଣ ପଞ୍ଚଦଶ କଳାତ୍ମକ ଚନ୍ଦ୍ରଙ୍କର ସୁଧା ପାନ କରନ୍ତି । ]

ପିତୃତୀର୍ଥ—ସ. ବି.—୧ । ଦକ୍ଷିଣ ହସ୍ତର ତର୍ଜନୀ ଓ ଅଙ୍ଗୁଷ୍ଠ ମୂଳରୁ -
Pitrutirtha ସ୍ଥିତ କରତଳର ଅଂଶ—1. The part of the palm between the index finger and thumb of the right hand.
[ ଦ୍ର—ଏହି ବାଟେ ପାଣ୍ଠୀରେ ତର୍ପଣ କରି ଜଳ ଦେଲେ ପିତୃଗଣ ଗ୍ରହଣ କରନ୍ତି । ]
୨ । ଗୟାଧାମ—2 Gaya.
[ ଦ୍ର—ଏଠାରେ ପିଣ୍ଡ ଦେଲେ ପିତୃପୁରୁଷମାନେ ପ୍ରେତ-ଯୋନିରୁ ମୁକ୍ତ ହୁଅନ୍ତି । ]

ପିତୃତ୍ୱ—ସ. ବି.—( ପିତୃ+ଭାବେ. ତ୍ୱ )—ଜନକତ୍ୱ, କୌଣସି ଶିଶୁର
Pitrutwa ପ୍ରକୃତ ଜନକ ହେବାର ଅବସ୍ଥା—Paternity; the fact of being the actual father of a child; father-hood.

ପିତୃଦତ୍ତ—ସ. ବିଣ.—( ୩ୟା ତତ୍ )—କନ୍ୟାକୁ ପିତା ଦେଇଥିବା ଧନ
Pitru datta ( ଯାହାକି କନ୍ୟାର ସ୍ୱୀୟଧନରୂପେ ସ୍ମୃତିରେ କଳ୍ପିତ )—
(property) Given to the daughter by her father.

ପିତୃଦତ୍ତା—ସ. ବିଣ. ସ୍ତ୍ରୀ.—ପିତାଙ୍କଦ୍ୱାରା ଜାମାତା ହସ୍ତରେ ଅର୍ପିତା
Pitrudattā ( କନ୍ୟା )—Given in marriage by the father.

ପିତୃ ଦାନ—ସ. ବି—ପିତୃଗଣଙ୍କ ଉଦ୍ଦେଶ୍ୟରେ ଶ୍ରାଦ୍ଧାଦିରେ ଦିଆଯିବା
Pitru dāna ଅନ୍ନ ବସ୍ତ୍ର ଧନ ଇତ୍ୟାଦି ଦାନ—Gifts made in honour of one's departed ancestors.

ପିତୃଦାୟ—ସ ବ.—(୬ଷ୍ଠୀ ତତ୍)—ପୁତ୍ର ପିତାଙ୍କ ଅନ୍ତେ ପାଇବା
Pitru dāya ସମ୍ପତ୍ତି, ପୈତୃକ ସମ୍ପତ୍ତି—Patrimony.
ଦେ. ବ—ଆପଣାର ମୃତ ପିତାଙ୍କ ଶୁଦ୍ଧ ଶ୍ରାଦ୍ଧ କରିବାର ଦାୟିତ୍ୱ ବା ଭାର—The obligation to perform the obsequial rights to one's deceased father.

ପିତୃଦିନ—ସ. ବ—୧ । ଅମାବାସ୍ୟା, ପିତୃତିଥି—
Pitru dina 1. The new moon day
୨ । ମୃତ ପିତାଙ୍କ ସାମ୍ବତ୍ସରିକ ଶ୍ରାଦ୍ଧ ଦିବସ—2 The anniversary Srāddha of one's father.

ପିତୃଦିବସ—ସ ବ—ପିତୃଦିନ (ଦେଖ)
Pitru dibasa Pitru dina (See)

ପିତୃଦିନସା—ଦେ. ବ ( ସ. ପିତୃଦିବସ )—ମୃତ ପିତାଙ୍କ ସାମ୍ବତ୍ସରିକ
Pitru dibasā ଶ୍ରାଦ୍ଧ ଦିବସ—The anniversary of the death of one's father when śrāddha is offered.

ପିତୃଦେବ—ସ ବ. (ରୂପକ)—୧ । ଦେବତାରୂପେ କଳ୍ପିତ ନିଜର
Pitru deba ପିତା—1. One's father regarded as a deity.
୨ । (୬ଷ୍ଠୀ ତତ୍)—ପିତାଙ୍କୁ ପୂଜା କରିବା—
2. Worshipping a father (Apte).

ପିତୃଦୈବତ—ସ. ବ.—(ବହୁବ୍ରୀହି, ପିତୃଗଣ ଅଟନ୍ତି ଦୈବତ ବା
Pitru daibata ଦେବତା ଯାହାର,—ମଘା ନକ୍ଷତ୍ର—
The 10th lunar asterism.

ପିତୃଦ୍ରବ୍ୟ—ସ. ବ.—ପିତାଙ୍କ ତ୍ୟକ୍ତ ସମ୍ପତ୍ତି—
Pitru drabya Patrimony.

ପିତୃଦ୍ରୋହ—ସ ବ.—ପିତାଙ୍କ ପ୍ରତି ମନ୍ଦ ବ୍ୟବହାର ବା ବିରୋଧା-
Pitru droha ଚରଣ—Illtreatment of one's father.

ପିତୃଦ୍ରୋହକ—ସ ବଣ. ପୁଂ.—ପିତାଙ୍କର ବିରୋଧାଚରଣ—
Pitru drohaka Revolting against one's father; offending one's father.

ପିତୃଦ୍ରୋହୀ—ସ. ବଣ ପୁଂ.—ପିତୃଦ୍ରୋହକ (ଦେଖ)
Pitru drohi Pitru drohaka (See)
(ପିତୃଦ୍ରୋହିଣୀ—ସ୍ତ୍ରୀ)

ପିତୃଦ୍ୱେଷ—ସ. ବ.—ପିତାଙ୍କ ପ୍ରତି ଈର୍ଷା ବା ଘୃଣା—
Pitru dwesha Malice towards father.

ପିତୃଦ୍ୱେଷକ—ସଂ. ବଣ. ପୁଂ—ପିତାଙ୍କ ପ୍ରତି ଈର୍ଷା ବା ଘୃଣାଯୁକ୍ତ;
Pitru dweshaka ପିତୃ ଶତ୍ରୁ—Malicious or spiteful to one's father.
(ପିତୃଦ୍ୱେଷିକା—ସ୍ତ୍ରୀ)

ପିତୃଦ୍ୱେଷୀ—ସଂ. ବଣ. ପୁଂ.—ପିତୃଦ୍ୱେଷକ (ଦେଖ)—
Pitru dweshi Pitru dweshaka (See)
(ପିତୃଦ୍ୱେଷିଣୀ—ସ୍ତ୍ରୀ)

ପିତୃଦ୍ୱେଷ୍ଟା—ସଂ. ବଣ. ପୁଂ.—ପିତୃଦ୍ୱେଷକ (ଦେଖ)
Pitru dweshtā Pitru dweshaka (See)
(ପିତୃଦ୍ୱେଷ୍ଟ୍ରୀ—ସ୍ତ୍ରୀ)

ପିତୃଧନ—ସଂ. ବ.—ବାପମାଲ, ପୈତୃକ ସମ୍ପତ୍ତି—
Pitru dhana Ancestral property; paternal wealth; patrimony.

ପିତୃପକ୍ଷ—ସଂ. ବ.—୧ । ଆଶ୍ୱିନ କୃଷ୍ଣପକ୍ଷ—1. The dark
Pitrupaksha fortnight of Āswina
[ଦ୍ର—ଏହି ୧୫ ଦିନ ପିତୃଲୋକଙ୍କ ଉଦ୍ଦେଶ୍ୟରେ ତର୍ପଣ ଓ ମହାଳୟା ଶ୍ରାଦ୍ଧ କରାଯାଏ ।]
୨ । ଆତ୍ମୀୟ ପିତୃ ସମ୍ବନ୍ଧୀୟ ସ୍ୱଜନାଦି—2. One's paternal relations, relatives connected through one's father.

ପିତୃପତି—ସ. ବ. (୬ଷ୍ଠୀ ତତ୍)—ଯମ—
Pitrupati The god of death.

ପିତୃପଦ - ସ. ବ—ପିତୃଲୋକ (ଦେଖ)
Pitrupada Pitruloka (See)

ପିତୃପିତା—ସ. ବ ପୁଂ. (୬ଷ୍ଠୀ ତତ୍)—ପିତାମହ—
Pitru pitā Paternal grand mother.
[ଦ୍ର—ପିତାଙ୍କ ପିତାଙ୍କୁ ପିତାମହ, ପିତାମହଙ୍କ ପିତାଙ୍କୁ ପ୍ରପିତାମହ ଓ ପ୍ରପିତାମହଙ୍କ ପିତାଙ୍କୁ ବୃଦ୍ଧପ୍ରପିତାମହ ବା ଗୋସେଇଁ ବାପ କହନ୍ତି ।]

ପିତୃପୁରୁଷ—ସ. ବ—୧ । ଆପଣାର ପିତୃପକ୍ଷୀୟ ପୂର୍ବପୁରୁଷ—
Pitru purusha 1. One's paternal ancestors.
୨ । ପିତୃଗଣ—2. The manes.

ପିତୃପୈତାମହ—ସ. ବଣ. (ପିତୃପିତାମହ+ଅ)—
Pitru paitāmaha ୧ । ପୂର୍ବପୁରୁଷ ସମ୍ବନ୍ଧୀୟ—
1. Ancestral.
୨ । ପୂର୍ବପୁରୁଷ ପରମ୍ପରାଗତ—
2. Descended from one's distant ancestors.
୩ । ପିତୃପିତାମହଙ୍କ ତ୍ୟକ୍ତ (ସମ୍ପତ୍ତି)—
3. Inherited from one's father and grand-father.

ପିତୃପୈତାମହିକ—ସଂ. ବଣ. (ପିତୃପିତାମହ+ଇକ)—
Pitru paitāmahika ପିତୃପୈତାମହ (ଦେଖ)
Pitru paitāmaha (See)

ପିତୃପ୍ରସୂ—ସ. ବ. ସ୍ତ୍ରୀ. (ପିତୃ+ପ୍ରସୂ=ମାତା)—୧ । ପିତାମହୀ—
Pitruprasū 1. Paternal grand mother.
୨ । ସନ୍ଧ୍ୟା, ଗୋଧୂଳି ସମୟ—
2. Twilight, evening
[ଦ୍ର—ଏହି ସମୟରେ ପ୍ରେତ ବା ଭୂତମାନେ ପୃଥିବୀରେ ବିଚରଣ କରନ୍ତି ।]

ପିତୃପ୍ରାପ୍ତ—ସ. ବଣ. (୫ମୀ ତତ୍)—ମୃତ ପିତାଙ୍କଠାରୁ ପ୍ରାପ୍ତ (ଧନ)—
Pitru prāpta Inherited from ones father.

ପିତୃବଂଶ—ସ. ବ—ପିତୃକୁଳ (ଦେଖ)
Pitrubamśa Pitrukula (See)

ପିତୃବତ୍—ସଂ. ବଣ ଓ କ୍ରି. ବଣ. (ପିତୃ+ତୁଲ୍ୟାର୍ଥେ ବତ୍)—
Pitrubat ପିତୃତୁଲ୍ୟ—Like one's father.

ପିତୃବନ—ସଂ. ବ—ପିତୃକାନନ (ଦେଖ)
Pitrubana Pitrukānana (See)

ପିତୃବନ୍ଧୁ—ସଂ. ବ (୬ଷ୍ଠୀ ତତ୍)—୧ । ଆପଣା ପିତାଙ୍କର ବନ୍ଧୁ—
Pitrubandhu 1 Friend of one's father.
୨ । (ସ୍ମୃତିଶାସ୍ତ୍ର) ପିତାଙ୍କ ସମ୍ପର୍କ ଯୋଗୁଁ ଯେ ଆପଣାର ବନ୍ଧୁ ଲେଖା ହୁଅନ୍ତି—2 One's cognate kinsmen by the father's side.
[ ଦ୍ର—ପିତାଙ୍କ ମାମୁଁପୁଅ, ପାଉସୀପୁଅ ଓ ପିଉସୀ ପୁଅ ଭାଇ । ]

ପିତୃବସତି—ସଂ. ବ. (୬ଷ୍ଠୀ ତତ୍)—ପିତୃକାନନ (ଦେଖ)
Pitru basati Pitru kānana (See)

ପିତୃ ବାନ୍ଧବ—ସ ବ—ପିତୃବନ୍ଧୁ (ଦେଖ)
Pitru bāndhaba Pitrubandhu (See)

ପିତୃବିୟୋଗ—ସଂ. ବ (୬ଷ୍ଠୀ ତତ୍)—ଆପଣା ପିତାଙ୍କ ମୃତ୍ୟୁ—
Pitru biyoga Death of one's father.

ପିତୃବ୍ୟ—ସଂ. ବ (ପିତୃ+ଭ୍ରାତା ଅର୍ଥରେ ବ୍ୟ, ତୁଳନାକର ଗ୍ରୀକ୍ ପାଟ୍ରୋଲ୍, ଲାଟିନ୍ ପାଟ୍ରୁବସ୍)—ପିତାଙ୍କ ଭାଇ; କକେଇ, ଦଦେଇ—
Pitrubya Paternal uncle; one's father's brother.

ପିତୃବ୍ୟକନ୍ୟା—ସଂ. ବ. ସ୍ତ୍ରୀ—ଖୁଡ଼ୁତାତିଅ ଭଉଣୀ—
Pitrubya kanyā Paternal uncle's daughter.

ପିତୃବ୍ୟପତ୍ନୀ—ସଂ. ବ. ସ୍ତ୍ରୀ—ଖୁଡ଼ୀ ବା ଦେଠେଇ—
Pitrubya patnī Paternal uncle's wife; paternal aunt.

ପିତୃବ୍ୟପୁତ୍ର—ସଂ. ବ. ପୁଂ—ଖୁଡ଼ୁତାପୁଅ ଭାଇ—
Pitrubya putra Paternal uncle's son; one's cousin.

ପିତୃବ୍ରତ—ସଂ. ବ—୧ । ପିତୃଯଜ୍ଞ, ଶ୍ରାଦ୍ଧ ତର୍ପଣାଦି—
Pitrubrata 1 Obsequial offerings.
୨ । ପିତୃସେବା—2. Devotion or service rendered to one's father.

ପିତୃଭକ୍ତ—ସଂ. ବଣ. ପୁଂ—ପିତାଙ୍କ ପ୍ରତି ଭକ୍ତିମାନ୍ (ପୁତ୍ର)—
Pitrubhakta Dutiful or devoted to one's father;
(ପିତୃଭକ୍ତା—ସ୍ତ୍ରୀ) dutifully attached to one's father.

ପିତୃଭକ୍ତି—ସଂ. ବ—ପିତାଙ୍କ ପ୍ରତି ପୁତ୍ରର ଶ୍ରଦ୍ଧା ଓ ଅନୁରକ୍ତି—
Pitrubhakti Devotion to one's father; filial duty.

ପିତୃଭୋଜନ—ସଂ. ବ. (ମ ପ. ଲୋ)—ଶ୍ରାଦ୍ଧରେ ପିତାଙ୍କ ନାମରେ ଉତ୍ସୃଷ୍ଟ ଭୋଜ୍ୟବସ୍ତୁ ବା ପିଣ୍ଡ—
Pitru bhojana Food offered to the manes.

ପିତୃମନ୍ଦିର—ସଂ. ବ. (୬ଷ୍ଠୀ ତତ୍)—ପିତୃଗୃହ (ଦେଖ)
Pitrumandira Pitrugruha (See)

ପିତୃମାତା—ସଂ. ବ. ସ୍ତ୍ରୀ. (୬ଷ୍ଠୀ ତତ୍)—ପିତାଙ୍କର ମାତା; ପିତାମହୀ—
Pitrumātā Paternal grand-mother.

ପିତୃମାତୃ—ଦେ. ବ. (ଦ୍ୱନ୍ଦ୍ୱ)—୧ । ବାପ ଓ ମା—
Pitrumātru 1. Parents.
[ ଦ୍ର—ପିତୃ ଓ ମାତୃ ଶବ୍ଦର ଦ୍ୱନ୍ଦ୍ୱ ସମାସ ହେଲେ ସଂସ୍କୃତ ବ୍ୟାକରଣ ନିୟମ ଅନୁସାରେ 'ମାତାପିତୃ' ଶବ୍ଦ ଓ ତହିଁର ୧ମା ୨ ବଚନରେ 'ମାତାପିତରୌ' ହୁଏ କିମ୍ବା ପିତରୌ ଶବ୍ଦ ହୁଏ । ଏପରି ସ୍ଥଳରେ 'ପିତୃମାତୃ' ଶବ୍ଦ ପ୍ରୟୋଗ ଅଶୁଦ୍ଧ ଓ ୬ଷ୍ଠୀ ତତ୍ପୁରୁଷରେ ନିଷ୍ପନ୍ନ ପିତୃମାତୃ ଶବ୍ଦ (ଯାହାର ୧ମା ୧ବଚନରେ ରୂପ ପିତୃମାତା)ର ଅର୍ଥ ବାପଙ୍କ ମାତା ବା ପିତାମହୀ । ମାତାପିତୃହୀନ ତଳେ ଥିବା ନୋଟ ଦେଖ । ]
୨ । ଅନ୍ୟ ବ୍ୟକ୍ତି ପିତା ମାତା ଆଦିଙ୍କ ନାମ ଧରିବା (ଗାଳି ଦେବା)
2 Calling names to another person's father and mother
( ଯଥା—ତୁ ମତେ ମାଇଲେ ମୁଁ ତୋ ପିତୃମାତୃ ରଖିବି ନାହିଁ ।)

ପିତୃ ମାତୃ ହୀନ—ଦେ ବଣ ପୁଂ—ମାତାପିତୃହୀନ, ମାଆ ବାପ ନ ଥିବା
Pitru mātru hīna (ବ୍ୟକ୍ତି)—Orphan, bereft of parents
(ପିତୃମାତୃହୀନା—ସ୍ତ୍ରୀ) [ ଦ୍ର—ଏହା ଅଶୁଦ୍ଧ, ଶୁଦ୍ଧ ଶବ୍ଦ—'ମାତାପିତୃହୀନ' ]

ପିତୃମାନ୍—ସ. ବଣ. ପୁଂ—(ପିତୃ+ଅଛି ଅର୍ଥରେ ମତ୍)—ଜୀବତ୍‌ପିତୃକ ଯାହାଙ୍କ ପିତା ବଞ୍ଚି ଅଛନ୍ତି, ବାପ ଥିବା (ପୁଅ)—
Pitrumān Having one's father living.
(ପିତୃମତୀ—ସ୍ତ୍ରୀ)

ପିତୃମୁଖା—ଦେ ବଣ. ପୁଂ—ଯେଉଁ ଶିଶୁର ଚେହେରା ପିତାଙ୍କ ଚେହେରା ପରି—
Pitru mukhā (a child) Inheriting the appearance of the father
(ପିତୃମୁଖୀ - ସ୍ତ୍ରୀ)

ପିତୃମେଧ—ସ. ବ. (୬ଷ୍ଠୀ ତତ୍) ପିତୃଯଜ୍ଞ (ଦେଖ)
Pitru medha Pitrujajña (See

ପିତୃ ଯଜ୍ଞ—ସ. ବ. (୬ଷ୍ଠୀ ତତ୍)—୧ । ପିତୃଲୋକଙ୍କ ଉଦ୍ଦେଶ୍ୟରେ ଅନୁଷ୍ଠିତ ଶ୍ରାଦ୍ଧ ତର୍ପଣାଦି—
Pitrujajña 1. Obsequial offerings to one's ancestors
୨ । ଗୃହସ୍ଥର ପ୍ରତିଦିନ କର୍ତ୍ତବ୍ୟ ପିତୃତର୍ପଣ ଓ ବୈଶ୍ୱଦେବ—
2. The daily rituals offered to one's ancestors.
[ଦ୍ର—ପିତୃଯଜ୍ଞାଦି ପଞ୍ଚଯଜ୍ଞ ପ୍ରତ୍ୟହ ଗୃହସ୍ଥର କର୍ତ୍ତବ୍ୟ—ବ୍ରହ୍ମଯଜ୍ଞ—ବେଦାଧ୍ୟୟନ; ପିତୃଯଜ୍ଞ—ପିତୃତର୍ପଣ; ଦେବଯଜ୍ଞ—ଅଗ୍ନିହୋତ୍ର; ଭୂତଯଜ୍ଞ—ଭୂତବଳି, ନୃଯଜ୍ଞ—ଅତିଥିସେବା ।]

ପିତୃ ଯାନ—ସ. ବ. (୬ଷ୍ଠୀ ତତ୍)—୧ । ପିତୃଗଣଙ୍କର ଚନ୍ଦ୍ରଲୋକକୁ ଯିବାର ମାର୍ଗ—1. The path of the departed ancestors to the lunar heaven ascribed to them.
Pitru jāna
୨ । ପୁଣ୍ୟାତ୍ମା ଲୋକଙ୍କ ମୃତ୍ୟୁ ପରେ ସ୍ୱର୍ଗକୁ ନେଇ ଯିବାପାଇଁ ଦେବଲୋକରୁ ପଠାଯିବା ରଥ—
2. A car which descends from heaven to take up the souls of the departed ancestors on their death.
୩ । ଦକ୍ଷିଣାୟନ କାଳ—
3. The period during which the sun moves towards the south of the equator.

ପିତୃରାଜ—ସଂ. ବି. (୬ଷ୍ଠୀ ତତ୍)—ଯମ—
Pitrurāja The deity of Death.

ପିତୃଲୋକ—ସଂ. ବି. (୬ଷ୍ଠୀ ତତ୍)—୧ । ସ୍ୱର୍ଗରେ ପିତୃଗଣଙ୍କ ପାଇଁ
Pitruloka ନିର୍ଦ୍ଦିଷ୍ଟ ସ୍ଥାନ, ଚନ୍ଦ୍ରଲୋକ—
1 The world or habitation set apart for the souls of the deceased ancestors.
୨ । ପିତୃଗଣ—2 Deceased progenitors of the world.
୩ । ଆପଣାର ମୃତ ପୂର୍ବପୁରୁଷ—
3. One's departed ancestors.

ପିତୃଶୋକ—ସଂ. ବି.—ପିତୃବିୟୋଗଜନିତ ଦୁଃଖ—Sorrow at
Pitrušoka the death of one's father.

ପିତୃଶ୍ରାଦ୍ଧ—ସଂ ବି. (୬ଷ୍ଠୀ ତତ୍)—ପିତୃଲୋକଙ୍କ ଉଦ୍ଦେଶ୍ୟରେ କରାଯିବା
Pitru šrāddha ଶ୍ରାଦ୍ଧ, ପିତୃକର୍ମ—Obsequial ceremonies in honour of one's ancestors.

ପିତୃଷ୍ୱ (ସ୍ୱ) ସା—ସଂ. ବି. ସ୍ତ୍ରୀ (୬ଷ୍ଠୀ ତତ୍, ପିତୃଙ୍କର ସ୍ୱସା=ଭଉଣୀ,
Pitrushwa (swa) sā ୧ମା; ୧ବ)—ପିଉସୀ; ପିଇସୀ—
Father's sister.

ପିତୃଷ୍ୱ (ସ୍ୱ) ସେୟ—ସଂ. ବି. ପୁଂ. (ପିତୃଷ୍ୱସୃ+ଅପତ୍ୟାର୍ଥେ ଏୟ)—
Pitrushwa (swa) seya ପିଉସୀପୁଅ ଭାଇ—
ପିତୃଷ୍ୱ (ସ୍ୱ) ସେୟୀ—ସ୍ତ୍ରୀ Son of one's father's sister

ପିତୃଷ୍ୱ (ସ୍ୱ) ସ୍ରୀୟ—ସଂ. ବି ପୁଂ. (ପିତୃଷ୍ୱସୃ+ଅପତ୍ୟାର୍ଥେ ଈୟ)—
Pitrushwa (swa) sriya ପିତୃଷ୍ୱସେୟ (ଦେଖ)
(ପିତୃଷ୍ୱ (ସ୍ୱ) ସ୍ରୀୟା—ସ୍ତ୍ରୀ). Pitrushwaseya (See)

ପିତୃଷ୍ୱ (ସ୍ୱ) ସ୍ରେୟ—ସଂ. ବି. ପୁଂ.—ପିତୃଷ୍ୱସେୟ (ଦେଖ)
Pitrushwa (swa) sreya Pitrushwaseya (See)
(ପିତୃଷ୍ୱ (ସ୍ୱ) ସ୍ରେୟୀ—ସ୍ତ୍ରୀ)

ପିତୃ ସଂନିଭ—ସଂ. ବିଣ.—ପିତୃକଳ୍ପ (ଦେଖ)
Pitru samnibha Pitrukalpa (See)

ପିତୃ ସଦନ—ସଂ. ବି.—ପିତୃଗୃହ (ଦେଖ)
Pitrusadana Pitrugruha (See)

ପିତୃ ସଦ୍ମ—ସଂ. ବି—(୬ଷ୍ଠୀ ତତ୍)—ପିତୃକାନନ (ଦେଖ)—
Pitru sadma Pitru kānana (See)

ପିତୃ ସନ୍ନିଭ—ସଂ. ବିଣ- ପିତୃକଳ୍ପ (ଦେଖ)—
Pitru sannibha Pitrukalpa (See)

ପିତୃ ସମ୍ବତ୍ସର—ସଂ. ବି—ପିତାଙ୍କର ମୃତ୍ୟୁଦିବସଠାରୁ ଏକ ବର୍ଷ ସମୟ—
Pitru sambatsara Period of one year from the death of one's father.

[ ଦ୍ର—ଏହି ବର୍ଷକ ମଧ୍ୟରେ ପିତାଙ୍କୁ ପ୍ରତି ମାସରେ ଶ୍ରାଦ୍ଧ ଦେବାକୁ ହୁଏ ବୋଲି ଏ ସମୟରେ କ୍ରିୟା ଧରିଥିବା ପୁତ୍ର ଅନ୍ୟ ଗୃହସ୍ଥର ପାକରେ ଭୋଜନ କରେ ନାହିଁ ।

ଆଉ ମଧ୍ୟ ଲୋକଙ୍କର ବିଶ୍ୱାସ ଯେ ଏହି ବର୍ଷକ ମଧ୍ୟରେ ପୁତ୍ରକୁ ନାନା ଦୁଃଖ ଭୋଗ କରିବାକୁ ପଡ଼େ ଓ ଏ ଏକ ବର୍ଷକାଳ କଟି ଗଲେ ଦୁଃଖ କମିଯାଏ ।]

ପିତୃସେବା—ସଂ. ବି—(୬ଷ୍ଠୀ ତତ୍)—ଭକ୍ତିପୂର୍ବକ ପିତାଙ୍କର ଶୁଶ୍ରୂଷା—
Pitru sebā Devoted service to one's father.

ପିତୃସ୍ଥାନ—ସଂ. ବି—(୬ଷ୍ଠୀ ତତ୍)—୧ । ଶ୍ମଶାନ—
Pitru sthāna 1. Cremation ground
୨ । ପିତୃଲୋକ, ଚନ୍ଦ୍ରଲୋକ—
2. The heaven for the deceased progenitors.
୩ । ପିତୃତୁଲ୍ୟ ପୂଜ୍ୟ ବ୍ୟକ୍ତି—
3. A person in the position of a father to one

ପିତୃସ୍ଥାନୀୟ—ସଂ. ବିଣ. ପୁଂ—୧ । ପିତୃତୁଲ୍ୟ; ପିତାଙ୍କ ପରି ମାନନୀୟ-
Pitru sthāniya 1. Standing in relationship of a father to a person; deserving to be honoured like one's father.
[ ଦ୍ର— ଶାସ୍ତ୍ର ଅନୁସାରେ—ଅନ୍ନଦାତା, କନ୍ୟାଦାତା, ଭୟତ୍ରାତା, ଜ୍ୟେଷ୍ଠଭ୍ରାତା ଓ ସାକ୍ଷାଗୁରୁ ଏମାନେ ଆପଣାର ପିତୃସ୍ଥାନୀୟ ଅଟନ୍ତି ।]
୨ । ଆପଣାର ଅଭିଭାବକ; ମୁରବି—
2. One's guardian.
୩ । ଗୁରୁଜନ—3. One's elders.

ପିତୃସୂ—ସଂ. ବି. ସ୍ତ୍ରୀ—(ପିତୃ+ସୂ ଧାତୁ+କର୍ତ୍ତୃ. କ୍ୱିପ୍)—ପିତୃପ୍ରସୂ
Pitrusū (ଦେଖ)—Pitru prasū (See)

ପିତୃହତ୍ୟା—ସଂ. ବି—(୬ଷ୍ଠୀ ତତ୍)—ବାପାଙ୍କୁ ବଧ କରିବା—
Pitru hatyā Murdering one's father; parricide; patricide.

ପିତୃହନ୍ତା—ସଂ. ବିଣ. ପୁଂ—(ପିତୃ+ହନ୍ ଧାତୁ+ତୃ, ୧ମା. ୧ବ)—
Pitruhantā ପିତୃଘ୍ନ, ପିତୃଘାତୀ—Parricide.
(ପିତୃହନ୍ତ୍ରୀ—ସ୍ତ୍ରୀ)

ପିତୃହା—ସଂ. ବିଣ. ପୁଂ—(ପିତୃ+ହନ୍ ଧାତୁ+କର୍ତ୍ତୃ. କ୍ୱିପ୍)—
Pitruhā ତୁଳନା କର: ବ୍ରହ୍ମହା—ପିତୃହନ୍ତା (ଦେଖ)—
Pitruhantā (See)

ପିତୃହୀନ—ସଂ. ବିଣ. ପୁଂ—(୩ୟା ତତ୍)—ବାପଛେଉଣ୍ଡ, ଯାହାର
Pitruhina ପିତା ମରିଅଛନ୍ତି—Fatherless; having lost one's father.
(ପିତୃହୀନା—ସ୍ତ୍ରୀ)

ପିତୃହୂ—ସଂ. ବି—ଡାହାଣ କାନ—
Pitruhū One's right ear.
[ଦ୍ର—ସ୍ମୃତି ଶାସ୍ତ୍ର ଅନୁସାରେ ମନୁଷ୍ୟର ଡାହାଣ କାନରେ ଗଙ୍ଗା ବିରାଜିତ ଥିବାରୁ ସେ କାନରେ ହାତମାରିଲେ ମନୁଷ୍ୟ ପବିତ୍ର ହୋଇଯାଏ ଓ ପିତୃଲୋକଙ୍କ ଉଦ୍ଦେଶ୍ୟରେ ତର୍ପଣାଦି କରିବାକୁ ଅଧିକାରୀ ହୁଏ । ବାମ କର୍ଣ୍ଣକୁ ଦେବହୂ ବୋଲାଯାଏ ।]

ପିତେଇ ଯିବା—ଦେ. କ୍ରି—ପିତ୍ତାଧିକ୍ୟ ହେତୁରୁ ଶରୀର ପୀଡ଼ିତ ହେବା—To be affected by bile.
Pitei jibā
ପ୍ରାଦେ (ସମ୍ବଲପୁର) କ୍ରି—ଉକେଇଯିବା, ଉଲୁଟି ଯିବା –

ପିତ୍ତ—ସଂ. ବି—( ଅପି=ନଷ୍ଟସ୍ୱରୂପେ+ଦୋ ଧାତୁ=ଛେଦନ କରିବା
Pitta କମ୍ବା ଦେ ଧାତୁ=ପାଳନ କରିବା+କର୍ତ୍ତୃ. ତ)— ବୈଦ୍ୟ-
ସଂ. ପର୍ଯ୍ୟାୟ—ପିତ୍ତମାୟୁ ଶାସ୍ତ୍ର ( ଶରୀରସ୍ଥ ପ୍ରଧାନ ତିନି ଧାତୁ
କଳନ୍ଧଳ, ତେଜସ୍, ତିକ୍ତ, ଧାତୁ, (ବାତ, କଫ ଓ ପିତ୍ତ ) ମଧ୍ୟରୁ
ଉଷ୍ମା, ଅଗ୍ନି, ଅନଳ, ରଞ୍ଜନ ଏକତମ—The gall; bile:
ଅ. ସଫର choler.
ଫା ତଲ୍ଖୀ [ଦ୍ର—ପିତ୍ତ ଶରୀରର ଅନ୍ତର୍ଗତ ଯକୃତରୁ
ଉତ୍ପନ୍ନ ହୁଏ । ଏହାର ବର୍ଣ୍ଣ ନୀଳାଭ ପୀତବର୍ଣ୍ଣ ଓ ଏହାର ସ୍ୱାଦ
ତିକ୍ତ ବା ପିତା । ଏହା ଯକୃତର ବାହାର ଦୁଇଟି ନାଡୀଦ୍ୱାରା
ପକ୍ୱାଶୟକୁ ଆସି ସେଠାରେ ଆହାରରସ ସଙ୍ଗେ ମିଶେ । ପକ୍ୱା-
ଶୟରେ ଆହାର ଦ୍ରବ୍ୟ ନ ଥିଲେ ପିତ୍ତ ପୁଣି ଯକୃତକୁ ଫେରିଯାଏ ।
ଆହାରରସରୁ ଅମ୍ଳତା ଦୂର କରିବା, ପେଟ ଭିତରେ ଆହାର୍ଯ୍ୟ
ଦ୍ରବ୍ୟକୁ ସଢାଇ ନ ଦେବା, ଶରୀରର ତାପକୁ ସ୍ଥିର ରଖିବା ପିତ୍ତର
କାର୍ଯ୍ୟ । ପିତ୍ତ କମିଗଲେ ମନ୍ଦାଗ୍ନି ଅଜୀର୍ଣ୍ଣ ଓ କୋଷ୍ଠକାଠିନ୍ୟ
ହୁଏ । ପିତ୍ତ ଅଧିକ ହେଲେ ଜ୍ୱର, ଦାହ, ବମନ, ତୃଷା, ମୂର୍ଚ୍ଛା ଓ
ନାନା ଚର୍ମରୋଗ ହୁଏ । ପିତ୍ତ କମି ହେଲେ ଦେହ ଦୁର୍ବଳ
ଦେଖାଯାଏ । ସମୟ ସମୟରେ ଶରୀରରେ ପିତ୍ତ ଅଧିକ ହେଲେ
ତାହା ବାନ୍ତି ଦ୍ୱାରା ବାହାରିଯାଏ । ଏହା ଶରୀରସ୍ଥ ତିନି ଧାତୁ (କଫ,
ବାତ ଓ ପିତ୍ତ) ମଧ୍ୟରେ ଏକତମ ।

ସାଧାରଣ ଲୋକଙ୍କ ମଧ୍ୟରେ ବିଶ୍ୱାସ ଅଛି ଯେ, ଲୋକର ପିତ୍ତ
ଅଧିକ ହେଲେ ଲୋକ ରାଗି ଉଠେ ଓ ବେଳେ ବେଳେ ବାଉଳା
ପରି ହୁଏ ଏବଂ ଦେହରେ ପିତ୍ତ ଅଧିକ ଥିବା ବ୍ୟକ୍ତି ଦୁର୍ବଳ ଓ
ଚଡ଼ିଲ ହୁଅନ୍ତି ।]

ପିତ୍ତ ଉଠିବା—ଦେ. କ୍ରି—ହଠାତ୍ ରାଗିଯିବା—
Pitta uṭhibā To become suddenly angry or
ପିତ୍ତି ଓଠା choleric.
**পিত্তাতবলনা** [ଦ୍ର—ଲୋକବିଶ୍ୱାସ ଯେ ମୁଣ୍ଡକୁ ପିତ୍ତ
ପିତ୍ତ ଚଢ଼ିବା } ଉଠିଗଲେ ମନୁଷ୍ୟର ମସ୍ତିଷ୍କ ବା
ପିତ୍ତ ଗରମ ହେବା } ଅନ୍ୟରୂପ ମଗଜ ଗରମ ହୋଇଯାଏ ଓ ସେ
ପିତ୍ତ ଉତୁରିବା } ବାଉଳା ପ୍ରାୟ ହୁଏ ।]

ପିତ୍ତକୋଷ—ସଂ. ବି. ( ଷଷ୍ଠୀ ତତ୍, ପିତ୍ତ+କୋଷ )—
Pitta kosha ପ୍ରାଣୀର ଶରୀରସ୍ଥ ପିତ୍ତ ଥିବା ମୁଣା ବା ଥଳି—
Gall-bladder.

ପିତ୍ତ ଖସା(ସେ)ଇ ଦେବା—ଦେ. କ୍ରି—୧ । ( ଲକ୍ଷଣାର୍ଥ ) କୌଣସି
Pitta khasā(se)i debā ବ୍ୟକ୍ତିର ପିତ୍ତାଧିକ୍ୟଜନିତ ରାଗକୁ
ପିତ୍ତ ଖସା(ସେ)ଇବା } ଅନ୍ୟରୂପ ଶାନ୍ତ କରାଇବାପାଇଁ ଉପଦ୍ରବ
ପିତ୍ତ ଉତାରିବା } କରିବା—
To cause a person's anger to subside
by checking him.
୨ । (ଗାଳିରେ ବ୍ୟବହୃତ) ଥଣ୍ଡା କରାଇବା, ଶିକ୍ଷା ଦେବା—
2 To teach a lesson to a person.

ପିତ୍ତଘ୍ନ—ସଂ. ବିଣ. ( ପିତ୍ତ+ହନ୍ ଧାତୁ+କର୍ତ୍ତୃ. ଅ )—ପିତ୍ତନାଶକ—
Pittaghna Anti-bilious; lessening bile in the
system

ସଂ. ବି—ଘିଅ—Ghee

ପିତ୍ତଘ୍ନୀ—ସଂ ବି. ସ୍ତ୍ରୀ—ଗୁଳୁଚୀ ଲତା—
Pittaghni A medicinal creeper, Menispermum
Glabrum.

ପିତ୍ତ ଚଢ଼ା(ଢେ)ଇବା—ଦେ କ୍ରି—୧ । ଶରୀରରେ ପିତ୍ତବୃଦ୍ଧି କରାଇବା-
Pitta chaḍhā(ḍhe)ibā 1. To cause increase of
ପିତ୍ତି ଚଟାନ **পিত্ত চড়ানো** bile in the system.
୨ । ଅନ୍ୟ ବ୍ୟକ୍ତିକୁ ରାଗରେ ବାଉଳା କରାଇବା—
2 To madden a person.

ପିତ୍ତ ଚଢ଼ିବା—ଦେ. କ୍ରି—୧ । ସାମୟିକ ବାଉଳତା—
Pitta chaḍhibā 1. Temporary lunacy or mania
due to bile
୨ । ପିତ୍ତ ଉଠିବା ( ଦେଖ )—
2 Pitta uṭhibā ( See )

ପିତ୍ତଜ—ସଂ. ବିଣ. ( ଉପପଦ ତତ୍, ପିତ୍ତ+ଜନ୍ ଧାତୁ+କର୍ତ୍ତୃ ଅ )—
Pittaja ଶରୀରରେ ପିତ୍ତର ଆଧିକ୍ୟ ଯୋଗୁ ଜାତ—
(ପିତ୍ତଜନିତ—ଅନ୍ୟରୂପ) Arising out of or due to excess
of bile in the system.

ପିତ୍ତଜନକ—ସଂ ବିଣ—ଶରୀରରେ ପିତ୍ତ ବୃଦ୍ଧିକାରକ (ଔଷଧ)—
Pitta janaka (medicine) Increasing bile sec-
retion in the system.

ପିତ୍ତ ଜ୍ୱର—ସଂ. ବି. ( ମ. ପ. ଲୋ; ପିତ୍ତାଧିକ୍ୟ ଜନିତ ଜ୍ୱର )—
Pitta jwara ପୈତ୍ତିକ ଜ୍ୱର; ପିତ୍ତ ଧାତୁର ପ୍ରକୋପଜନିତ ଜ୍ୱର—
Bilious fever.

ପିତ୍ତ ଦେହୀ—ଦେ. ବିଣ. ପୁଂ ଓ ସ୍ତ୍ରୀ—ଯେଉଁ ଲୋକର ଦେହରେ ପିତ୍ତ
Pitta dehī ଧାତୁ ଅଧିକ ଥାଏ—Bilious or choleric
ପିତ୍ତଧାତ **পিত্ত ধাতকা** ( person ).
(ପିତ୍ତ ଧାତୁ—ଅନ୍ୟରୂପ)
[ ଦ୍ର—ପିତ୍ତଦେହୀ ଲୋକମାନେ କ୍ଷୀଣଶରୀର, ହଠାତ୍ ରାଗୀ,
ଅବ୍ୟବସ୍ଥିତଚିତ୍ତ ଓ କାମାତୁର ହୁଅନ୍ତି ବୋଲି ଲୋକବିଶ୍ୱାସ । ]

ପିତ୍ତ ନାଶକ—ସଂ. ବିଣ—ପିତ୍ତଘ୍ନ, ଯେଉଁ ଔଷଧଦ୍ୱାରା ଶରୀରର
Pitta nāśaka ପିତ୍ତାଧିକ୍ୟ ନିବୃତ୍ତ ହୁଏ—Anti-bilious;
(ପିତ୍ତ ନିବାରକ—ଅନ୍ୟରୂପ) antidote against bilious-
ness.

ପିତ୍ତ ପଡ଼ିବା—ଦେ. କ୍ରି—ଉପଯୁକ୍ତ ସମୟରେ ଆହାର ନ ପାଇବା ଯୋଗୁଁ
Pitta paṛibā ପିତ୍ତାଶୟରୁ ପିତ୍ତ ଚଢ଼ିବା ଯୋଗୁଁ କ୍ଷୁଧା ମାନ୍ଦ୍ୟ
ପିତ୍ତିପଡ଼ା ଓ ବମନାଦି ବିକାର ଉପସ୍ଥିତ ହେବା—Vomitting;
**পিত্ত জ্বালনা** Dyspepsia etc. caused by bile secretion
due to not eating in due time.

ପିତ୍ତ ପାଗ୍ଳା—ଦେ. ବିଣ. ପୁଂ—୧ । ସାମୟିକ ବାଉଳ—
Pitta pāgulā 1. Maniac; temporarily insane.
୨ । ଚଡ଼ିଲ—2. Choleric; sulky.
୩ । ଯେ ସାମୟିକ ବାଉଳ ପ୍ରାୟ ଏଣୁତେଣୁ ବକେ; ବାଚାଳ—
3. One who becomes excited and talkative
on occasions.

(ପିତ୍ତପାଗ୍‌ଲ, ପିତ୍ତପାଗ୍‌ଲଆ, ପିତ୍ତପାଗ୍‌ଲା, ପିତ୍ତପାଗ୍‌ଲ, ପିତ୍ତ—ପାଗ୍‌ଲଆ—ଅନ୍ୟରୂପ)
(ପିତ୍ତପାଗ୍‌ଲୀ, ପିତ୍ତପାଗ୍‌ଲେଇ, ପିତ୍ତପାଗ୍‌ଲୀ, ପିତ୍ତପାଗ୍‌ଲେଇ—ସ୍ତ୍ରୀ)

**ପିତ୍ତ ପାଗ୍‌ଲାଇବା**—ଦେ. କ୍ରି—ପିତ୍ତ ଚହଟିବା (ଦେଖ)
Pitta pāngulāibā Pitta chahaṭibā (See)
(ପିତ୍ତ ପାଗ୍‌ଲିବା -ଅନ୍ୟରୂପ)

**ପିତ୍ତପାଣ୍ଡୁ**—ସ. ବି.—ହଳଦିଆ କାମଳ ରୋଗ—
Pittapāṇḍu Jaundice.
(ଯଥା—ଏଥିରେ ରୋଗୀର ମଳ, ମୂତ୍ର, ନେତ୍ର ଓ ଦେହ ପୀତାଭ ଦେଖାଯାଏ।)

**ପିତ୍ତ ପ୍ରକୃତି**—ସ. ବିଣ.- ( ବହୁବ୍ରୀହି, ପିତ୍ତ+ପ୍ରକୃତି )—ଯେଉଁ ବ୍ୟକ୍ତିଠାରେ ପିତ୍ତ ଧାତୁର ଆଧିକ୍ୟ ଥାଏ—Of bilious temperament.
Pitta prakṛuti
(ପିତ୍ତପ୍ରକୃତିକ—ପୁଂ. ଅନ୍ୟରୂପ)
(ପିତ୍ତ ପ୍ରକୃତିକା—ସ୍ତ୍ରୀ)
[ଦ୍ର—ଏମାନଙ୍କୁ ଖୁବ୍ କ୍ଷୁଧା ଓ ଶୋଷ ହୁଏ, ଏମାନଙ୍କ ବର୍ଣ୍ଣ ଗୋର୍, ଲେଡ଼ ଓ ତଳପା ଓ ମୁଖ ରକ୍ତାଭ, ଆଖି ତଳ ଓ କେଶ କଡ଼ର୍ ହୁଏ ଓ ଦେହରେ ଲୋମ କମ୍ ଥାଏ।]

**ପିତ୍ତବର୍ଦ୍ଧକ**—ସ. ବିଣ—ପିତ୍ତଜନକ (ଦେଖ)
Pittabarddhaka Pittajanaka (See)

**ପିତ୍ତରକ୍ତ**—ସ. ବି—ରକ୍ତପିତ୍ତ ରୋଗ, ଅମ୍ଳପିତ୍ତ ରୋଗ—
Pittarakta Plethora

**ପିତ୍ତଳ**—ସ. ବି. (ପିତ୍ତ=ପିତ୍ତର ବର୍ଣ୍ଣ+ଲା ଧାତୁ=ଗ୍ରହଣ କରିବା+କର୍ତ୍ତୃ. ଅ)—୧। ତାମ୍ର ଓ ସୀସା ମିଶ୍ରିତ ଧାତୁବିଶେଷ—1. Brass.
Pittaḷa
୨। ଭୂର୍ଜ୍ଜ ପତ୍ର—2. The bark of birch tree.
୩। ହରିତାଳ—3. Yellow orpiment
ସ. ବିଣ.—ପିତ୍ତଯୁକ୍ତ; ପୈତ୍ତିକ—Bilious.

**ପିତ୍ତଶ୍ଳେଷ୍ମ**—ଦେ. ବି. (ସ. ପିତ୍ତ ଓ ଶ୍ଳେଷ୍ମନ୍)—ଶରୀରରେ ପିତ୍ତ ଓ କଫର ଆଧିକ୍ୟଜନିତ ଅସୁସ୍ଥତା—Illness due to increase of gall and cough in the system.
Pitta ślesbma
ପିତ୍ତଶିଳେଷମ; ପିତ୍ତଶିଲେଷମ, ପିତ୍ତଶ୍ଲେଷ୍ମା
ପିତ୍ତଶେଳେଷମ ପିତ୍ତଶେଲେଷମା } ଅନ୍ୟରୂପ

**ପିତ୍ତହା**—ସଂ. ବିଣ.—(ପିତ୍ତ+ହନ୍ ଧାତୁ+କର୍ତ୍ତୃ. ଅ,—ପିତ୍ତଘ୍ନ (ଦେଖ)—Pittaghna (See)
Pittahā
ସଂ. ବି.—ଘରପୋଡ଼ିଆ (ଦେଖ)—Gharapoṛdiā (See)

**ପିତ୍ତା**—ଦେ. ବିଣ. (ସ. ତିକ୍ତ)—ପିତା; ତିକ୍ତ—
Pittā ତିତା कड़वा, तिता Of bitter taste.

**ପିତ୍ତାତିଶଯ୍ୟ**—ସଂ. ବି. (୬ଷ୍ଠୀ ତତ୍; ପିତ୍ତ+ଆତିଶଯ୍ୟ)—
Pittātiśajya ଶରୀରରେ ପିତ୍ତର ବୃଦ୍ଧି—Excessive gall secretion in the system; predomination of bile in the body.

**ପିତ୍ତାତିସାର**—ସ. ବି—ପିତ୍ତାଧିକ୍ୟଜନିତ ଝାଡ଼ା—
Pittātisāra Diarrhoea resulting from excess of bile in the system.
(ପିତ୍ତାଡାଯାର- ଅନ୍ୟରୂପ)

[ଦ୍ର—ଏଥିରେ ମଳ ସଙ୍ଗେ ଟକଟକିଆ ନାଲ ପଡ଼େ।]

**ପିତ୍ତାଧାର**—ସଂ. ବି. (୬ଷ୍ଠୀ ତତ୍)—ପିତ୍ତକୋଷ, ଯେଉଁ ଥଳିରେ ପିତ୍ତ ଥାଏ—Gall-bladder.
Pittādhāra
(ପିତ୍ତାଶୟ—ଅନ୍ୟରୂପ)

**ପିତ୍ତାଧିକ**—ସ. ବିଣ. (ବହୁବ୍ରୀହି, ପିତ୍ତ+ଅଧିକ)—ଯେଉଁ ଦେହରେ ପିତ୍ତ ବିଶେଷଭାବରେ ପ୍ରବଳ ଥିବା ନାଡ଼ି ଆଦି ପରୀକ୍ଷାରୁ ଜଣାଯାଏ—(body) In which bile predominates.
Pittādhika

**ପିତ୍ତାଧିକ୍ୟ**—ସ. ବି. (୬ଷ୍ଠୀ ତତ୍)—ପିତ୍ତାତିଶଯ୍ୟ (ଦେଖ)
Pittādhikya Pittātiśajya (See)

**ପିତ୍ତା ପୋଟଳ**—ଦେ ବି. (ବୈଦ୍ୟକ)—ଏକପ୍ରକାର ପଟୋଳ—
Pittā poṭaḷa A kind of bitter patola fruit and its creeper.
ସ ପଟୋଳ, କର୍କଶଚ୍ଛଦ, କଟୁଫଳ, କୁଷ୍ଠହା, କାସମୁକ୍ତିଦ
চিৎপটোল; চিৎপলতা बड़ बेवर बल
ତେ. ଚେଜ୍ଜ ପୋଟ୍ଲୁ

**ପିତ୍ତା ବାଦାମ**—ଦେ. ବି. (ବୈଦ୍ୟକ)—ଏକପ୍ରକାର ବାଦାମ—
Pittā bādāma A kind of bitter almond
ସ. ତିକ୍ତବାତାଦ [ଦ୍ର—ଏହା ଖାଇଲେ ଦୃଷ୍ଟିଶକ୍ତି ବର୍ଦ୍ଧିତ ହୁଏ ଓ ଅଗ୍ନିର ଦୀପ୍ତି ହୁଏ। ଦ୍ରବ୍ୟଗୁଣ କଳ୍ପଦ୍ରୁମ।]

**ପିତ୍ତା ବୋଦକା**—ପ୍ରାଦେ (ଗଞ୍ଜାମ) ବି. (ବୈଦ୍ୟକ) ପିତା ତରଡ଼ା (ଦେଖ)
Pittā bodakā Pitā tarardā (see)

**ପିତ୍ତା ଲାଉ**—ଦେ. ବି. (ବୈଦ୍ୟକ)—ଏକପ୍ରକାର ଲାଉ—
Pittā lāu Bitter gourd
ସ—ତିକ୍ତାଲାବୁ, କଟୁତୁମ୍ବୀ, ତିକ୍ତବୀଜା
তিত্‌লাউ तित्‌लौकी
ତେ. ଚେଦ୍ଦାଅନପୁ

**ପିତ୍ତୋଲ୍‌ବଣ**—ସ. ବି. (୬ଷ୍ଠୀ ତତ୍)—ପିତ୍ତାତିଶଯ୍ୟ (ଦେଖ)
Pittolwaṇa Pittātiśajya (see)

**ପିତ୍ରର୍ଜ୍ଜନ**—ସ. ବି. (୬ଷ୍ଠୀ ତତ୍; ପିତୃ+ଅର୍ଜ୍ଜନ) ପିତୃ ଅର୍ଜ୍ଜନ (ଦେଖ)
Pitrarjana Pitṛu arjana (see)

**ପିତ୍ରର୍ଜ୍ଜିତ**—ସ. ବିଣ. (୩ୟା ତତ୍; ପିତୃ+ଅର୍ଜ୍ଜିତ)—ପିତୃଅର୍ଜ୍ଜିତ (ଦେଖ)
Pitrarjita Pitṛuarjita (see)

**ପିତ୍ରାଳୟ**—ସ. ବି. (୬ଷ୍ଠୀ ତତ୍; ପିତୃ+ଆଳୟ)— ୧। ପିତୃଭବନ, ବାପଘର—1. Father's house.
Pitrālaya
୨। ପୈତୃକ ବାସସ୍ଥାନ—2. Ancestral residence.

**ପିତ୍ର୍ୟ**—ସ. ବିଣ. (ପିତୃ+ଯ)—୧। ପୈତୃକ—
Pitrya 1. Paternal; ancestral.
୨। ପିତାଙ୍କଠାରୁ ପ୍ରାପ୍ତ—2. Inherited from father
୩। ପିତୃଗଣ ନାମରେ ଉତ୍ସୃଷ୍ଟ—
3. Dedicated to the manes.
୪। ଶ୍ରାଦ୍ଧ ତର୍ପଣାଦି ପିତୃକର୍ମରେ ପ୍ରଶସ୍ତ—
4. Sacred to the manes.
ସଂ. ବି.—୧। ବଡ଼ବାପ, ଜ୍ୟେଷ୍ଠ ତାତ, ଜ୍ୟେଷ୍ଠ ପିତୃବ୍ୟ, ଦେଉତା—1. Father's elder brother.

୨ । ମାଷ; ବର—2. A kind of kidney bean.

୩ । ମଧୁ—3. Honey.

୪ । ପିତୃତୀର୍ଥ, ଅଙ୍ଗୁଷ୍ଠ ଓ ତର୍ଜନୀ ମୂଳମଧ୍ୟସ୍ଥ କରତଳ—
4 The portion of the palm of hand between the root of the index finger and that of the thumb

୫ । ବଡ଼ ଭାଇ (ଗ୍ରା. ଶ.)—5. Elder brother.

**ପିତ୍ର୍ୟା**—ସ. ବଣ. ସ୍ତ୍ରୀ. (ପିତ୍ର୍ୟ+ଆ)—ପିତ୍ର୍ୟର ସ୍ତ୍ରୀଲିଙ୍ଗ—
Pitryā Feminine of pitrya.

ସ. ବି.—୧ । ମଘା ନକ୍ଷତ୍ର (ଗ୍ରା ଶ)—
1. The 10th asterism.

୨ । ପୂର୍ଣ୍ଣିମା (ଗ୍ରା. ଶ.)—2. The full moon day.

୩ । ଅମାବାସ୍ୟା (ଗ୍ରା.ଶ)—3. The new moon day.

**ପିତ୍ସଲ**—ସ. ବି. (ପତ୍ ଧାତୁ=ଗମନ କରିବା+ସଂଜ୍ଞାର୍ଥେ. ସଲ)—
Pitsala ମାର୍ଗ, ପଥ—Road, way, path.
(ପିତ୍ସଲ—ଅନ୍ୟରୂପ)

**ପିତୁଡ଼ି**—ଦେ. ବି. (ସ. ପାରେବତ ଫଲ)—ପିଜୁଡ଼ି (ଦେଖ)
(ପିତୁଡ଼ି, ପିଜୁଡ଼ି—ଅନ୍ୟରୂପ) Pijurdi.

**ପିଧାନ**—ସ. ବି. (ଅପି=ଲୁପ୍ତ ଉପସର୍ଗ+ଧା ଧାତୁ=ଧାରଣ କରିବା+
Pidhāna ଭାବ. ଅନ)—୧ । ଅପିଧାନ, ଆଚ୍ଛାଦନ; ଆବରଣ—
1. A cover.

ବକୁଳ ପିଧାନ ପୁଣି ଶାଖା ଲଙ୍ଘନରେ—ଉ.ଭ. ବୈଦେହୀଶବିଳାସ ।

୨ । (+କରଣ. ଅନ) ଢାଙ୍କୁଣୀ—2. Lid.

୩ । ଘୋଡ଼ଣୀ—3 A covering.

୪ । ଖଣ୍ଡାର ଖାପ; ଅସିକୋଷ—4. Sheath.
କହୁ ଦେଶେ କଳେବର ଖଡ୍ଗ ପିଧାନେ । ଯଥାକାଳ. ମହାଭାରତ ।

୫ । ଆବରଣ ବସ୍ତ୍ର; ରେପର—
5. Wrapper, winding sheet.

୬ । ଅଙ୍ଗରଖା; ଲୁଗ୍ରା—6. Coat; over coat.

୭ । ଥାଲମ, ପିହାଣ; ତେଲଢୁଣୀ—
7. A pan or lid for an earthen pot.

**ପିଧାନକ**—ସ. ବି. (ପିଧାନ+ସ୍ୱାର୍ଥେ. କ)—୧ । ଖଡ୍ଗକୋଷ—
Pidhānaka 1. A sheath.

୨ । ଗିନା ବା ଗିଲାସର ସରପୋଷ—
2. A lid for a glass or crucible.

**ପିନ୍**—ବୈଦେ. ବି. (ଇଂ.)—୧ । କେଶ, ଲୁଗା ଓ କାଗଜ ଆଦି ଏକତ୍ର
Pin ରଖିବା ନିମନ୍ତେ ବ୍ୟବହୃତ କୌଣସି ଧାତୁର ସରୁ କଣ୍ଟା—
পিন पिन 1. Pin
(ପିନା—ଅନ୍ୟରୂପ) ୨ । ଛୋଟ ଖିଲ—2. Small peg.

୩ । (ଇଂ. ପେନ୍) ନିବ୍—3. Nib.

**ପିନ୍ କଣ୍ଟା**—ଦେ. ବି.—(ଇଂ. ପିନ୍+ସ. କଣ୍ଟକ)—ପିନ (ଦେଖ)—
Pinkantā Pin (See)

**ପିନ୍ ଭାଇସ୍**—ବୈଦେ. ବି (ବଣିଆ ଶବ୍ଦ) (ଇଂ)—ସୁନା ରୁପାର ତାରକୁ
Pin bhāis ଧରି କାମ କରିବା ଲାଗି ଏକ ପ୍ରକାର ହତିଆର—
পিনভাইস Pin-vice; gold smith's vice for holding
**पिन वाइस** wires

**ପିନ୍ସନ୍**—ବୈଦେ ବି. (ଇଂ. ପେନ୍ସନ୍)—ପେନ୍ସନ୍ (ଦେଖ)
Pinsan Pensan (See)
পেনসন **पिनसन**
(ପିନ୍ସିନ୍, ପିନ୍ସନ୍, ପିନ୍ସିନ୍—ଅନ୍ୟରୂପ)

**ପିନ୍ସିଲ୍**—ବୈଦେ. ବି. (ଇଂ. ପେନ୍ସିଲ୍)—ପେନ୍ସିଲ୍ (ଦେଖ)
Pin-sil পেনসিল **पेंसिल** Pen-sil (See)
ପିନ୍ସିଲ, ପିନସିଲ୍, ପିନ(ନା)ସୁଖଣ୍ଡି, ପିନ ନା ସ୍କାଠି, ପିନ୍ସିନ୍, ପିନ୍ସିନ } ଅନ୍ୟରୂପ

**ପିନଦ୍ଧ**—ସ. ବଣ. (ଅପି=ଲୁପ୍ତ+ନହ୍ ଧାତୁ=ବାନ୍ଧିବା+ତ)—
Pinaddha ୧ । ବଦ୍ଧ—1. Bound

୨ । ବନ୍ଧା ହୋଇଥିବା—2. Tied.

୩ । ପରିହିତ—3. Worn; clothed.

୪ । ଆବୃତ—4. Covered; veiled

**ପିନସ**—ସ ବି—ଶ୍ଳେଷ୍ମା, କଫ—
Pinasa Catarh; cold.

ଦେ. ବି. (ସ. ପୀନସ)—ପୀନସ (ଦେଖ)
Pināsa (See)

**ପିନା**—ବୈଦେ ବି ଇଂ. (ପିନ୍)—୧ । କାଠର ଛୋଟ ଖିଲ—
Pinā 1. Small wooden pegs.

୨ । ପିରିକ୍—2. Prick.

**ପିନାକ**—ସ. ବି. (ପା ଧାତୁ=[ଜଗତ୍] ରକ୍ଷା କରିବା+କର୍ତ୍ତୃ. ଅକ,
Pinaka ଯାହା ଜଗତକୁ ରକ୍ଷା କରେ)—୧ । ଶିବଧନୁ—
1. The bow used by Siba.

୨ । ଶିବଙ୍କ ତ୍ରିଶୂଳ—
2. The trident of Siba.

୩ । ଶିବଙ୍କର ଧନୁାକାର ବାଦ୍ୟଯନ୍ତ୍ର—3. A bow-shaped musical instrmment of Siba.

[ ଦ୍ର—ଏହାକୁ ଶିବ ଯୁଦ୍ଧ ସମୟରେ ଧନୁରୂପେ ଓ ନୃତ୍ୟ କାଳରେ ବାଦ୍ୟରୂପେ ବ୍ୟବହାର କରନ୍ତି । ]

୪ । ଧୂଳିବୃଷ୍ଟି; ପାଂଶୁବୃଷ୍ଟି—
4. A shower of dust.

୫ । ନୀଳ ଅଭ୍ର (ଗ୍ରା. ଶ.)—5. Blue mica.

**ପିନାକଧାରୀ**—ସ. ବି. (ବହୁବ୍ରୀହି; ପିନାକ+ଧୃ ଧାତୁ+କର୍ତ୍ତୃ. ଇନ୍;
Pinākadhāri ୧ମା. ୧ବ.)—ଶିବ, ମହାଦେବ—Siba.

**ପିନାକଧୃକ୍**—ସ. ବି. (ବହୁବ୍ରୀହି, ପିନାକ+ଧୃ ଧାତୁ+କର୍ତ୍ତୃ. କ୍ୱିପ୍)—
Pinākadhruka ଶିବ; ମହାଦେବ—Siba

**ପିନାକପାଣି**—ସ. ବି. (ବହୁବ୍ରୀହି, ପିନାକ ପାଣିରେ ଯାହାର)—
Pinākapāni ଶିବ; ମହେଶ୍ୱର—Siba

**ପିନାକୀ**—ସ. ବି. (ବହୁବ୍ରୀହି; ପିନାକ+ଇନ୍; ୧ମା. ୧ବ.)—
Pināki ୧ । ଶିବ, ମହାଦେବ—1. Siba.

୨ । ଧନୁାକୃତ୍ତି ସପ୍ତତନ୍ତ୍ରବିଶିଷ୍ଟ ବାଦ୍ୟଯନ୍ତ୍ରବିଶେଷ —
2. A kind of stringed musical instrument
ତାଳ ମୃଦଙ୍ଗ ବେଣୁ ବୀଣା ପିନାକୀ ରବା ରଂଗରେ ସେ ସେନ —
ବୃତ୍ତାପ. ଶଶିସେଣା ।

ପିନାଲ୍‌କୋଡ଼୍—ବୈଦେ ବି. ( ଇଂ. ପେନାଲ୍‌କୋଡ଼୍ )—ଅପରାଧୀଙ୍କ
Pinal-kod ନିମନ୍ତେ ବ୍ରିଟିଶ୍ ଗଭର୍ଣ୍ଣମେଣ୍ଟଙ୍କ କୃତ ଦଣ୍ଡବିଧି ଆଇନ—
পেনালকোড **पीनलकोड** Penal Code.
( ପେନଲ୍‌କୋଡ଼୍, ପେନାଲ୍‌କୋଡ଼୍— ଅନ୍ୟରୂପ )

ପିନାଲ୍ ସେଟଲ୍‌ମେଣ୍ଟ—ବୈଦେ ବି. ( ଇଂ ପେନାଲ୍ ସେଟ୍ଲମେଣ୍ଟ)—
Pinal setal-menta ଅପରାଧୀମାନଙ୍କୁ ସମାଜ ବା ଗ୍ରାମ ମଧ୍ୟରୁ
পেনাল সেটলমেন্ট ନେଇ ନିର୍ଦ୍ଦିଷ୍ଟ ସ୍ଥାନରେ ବାସଗୃହ କରି ରଖାଇବା
**पीनाल सेटलमैंट** ସ୍ଥାନ ବା ବସତି—Penal settlement

ପିନି—ପ୍ରାଦେ. ( ବାଲେଶ୍ୱର ) ଅ—ପରି, ସଦୃଶ—
Pini Like.

ପିନସ—ଦେ. ବି. ( ସଂ. ପୀନସ, ପ୍ରତିନସ୍ୟ )—ନାକର ଅର୍ଶରୋଗ—
Pinisa Polypus of the nose, atrophic rhinites
পিনাস; পিনস [ ଦ୍ର—ଏଥିରେ ନାସାରନ୍ଧ୍ରରେ ଘାଆ ହୁଏ,
**पीनस, पिंसी** ନାକରୁ ରକ୍ତସ୍ରାବ ହୁଏ, ଘ୍ରାଣଶକ୍ତି ଲୋପ ହୁଏ
ପିନସ୍, ପିନାସ, ପିନାସୀ, } ଅନ୍ୟରୂପ ଓ ନାକ ଭିତର ମାଂସ ଓ
ପିନସି, ପେନସ, ପେନସୀ } ପୂଜରେ ଭର୍ତ୍ତି ହୋଇ ଶେଷକୁ
ନାକ ଛିଣ୍ଡିପଡ଼େ । ]

ପିନ୍ଧା ଦେ. ବି. ( ସଂ. ପିଧାନ; ପରିଧାନ )—୧ । ( ବସ୍ତ୍ର ଅଳଙ୍କାର
Pindhā ଆଦି ) ପରିଧାନ କରିବା କର୍ମ—
পরা, পিন্ধা 1 Wearing; dressing
**पहनवा** ୨ । ପୋଷାକ, ପରିଧେୟ ବସ୍ତ୍ର; ପରିଚ୍ଛଦ—
2. Cloth; dress.
ପିଁଧା } ଅନ୍ୟରୂପ
ପିନ୍ଧା }
ମୂଷିକାଶକୁ ଦେଲେ ଗୁଆ, ଛବି ଗଉନୀ ପିଁଧା ନୂଆ ।
ଲୁପଚ. ପ୍ରେମପଞ୍ଚାମୃତ ।
ଧୁତୀ ୩ । ଅଣ୍ଟାଠାରୁ ତଳକୁ ଯେଉଁ ଲୁଗା ପିନ୍ଧାଯାଏ;
**धोती** ଅଧୋବାସ; ଧୋତି—
3. Cloth worn round the waist; lower garment, loin cloth.
୪ । ପିନ୍ଧାଯିବା ଲୁଗାର ଆଗ ପାଖ ଫେର—
4. The plaited portion of the dhoti laid over the front part of the waist-band ( Howells ).
পরা ଦେ ବିଣ—ପରିହିତ; ପରିଧାନ କରାଯାଇଥିବା—
**पहनाहुआ** Worn.

ପିନ୍ଧା(ନ୍ଧେ)ଇ ଦେବା—ଦେ. କ୍ରି—ଅନ୍ୟ ଲୋକର ଦେହରେ ବସ୍ତ୍ରାଦି
Pindhā(ndhe)i debā ଆବରଣ କରିବା—
To clothe another person.
( ଯଥା—ତାଙ୍କ ବଣ୍ଡୁଘରକୁ ମୋତେ ନିମନ୍ତ୍ରଣ କରି ସେ ମତେ ଯୋଡ଼େ ପାଟ ଖଦ ପିନ୍ଧାଇଦେଲେ । )

ପିନ୍ଧା(ନ୍ଧେ)ଇବା—ଦେ. କ୍ରି—ପିନ୍ଧିବା କ୍ରିୟାର ଣିଜନ୍ତ ରୂପ—
Pindhā(ndhe)ibā Causative of Pindhibā.
পরান, পরান **पहनाना, पहनाना**

ପିନ୍ଧା ଖଟିବା—ପ୍ରାଦେ. ( ଗଡ଼ଜାତ ) କ୍ରି—
Pindhā khaṭibā ପିନ୍ଧା ଲୁଗା ରୂପେ ଅନେକ ଦିନ ଯିବା ବା ସହିବା—To wear long (said of a cloth).
( ଯଥା—ଖଦଡ଼ ଲୁଗା ବହୁତ ଦିନ ପିନ୍ଧା ଖଟେ । )

ପିନ୍ଧା ଚାଦର—ଦେ ବି. ( ସହଚର ଶବ୍ଦ )—
Pindhā chādara ଯୋଡ଼, ଅଧୋବାସ ଓ ଉତ୍ତରୀୟ, ଅଣ୍ଟା
ପିନ୍ଧା ଚାଦର } ଅନ୍ୟରୂପ ତଳକୁ ପିନ୍ଧିବା ଲୁଗା ଓ ଦେହରେ
ପିନ୍ଧା ପାଛୁଡ଼ା } ପକାଇବା ଚାଦର, ଧୋତି ଓ ଚାଦର-
ପିନ୍ଧା ବୋସଡ଼ା }
ଧୁତୀ চাদব Loin cloth and sheet; a pair of clothes
**धोती चद्दर** ( one to put round the waist and another to put round the upper part of the body ); upper and lower garments.
ଦେ. ବିଣ—ଲୁଗା ଓ ଚାଦରଦ୍ୱାରା ସଜ୍ଜିତ—Dressed with a loin cloth and a sheet.

ପିନ୍ଧାଣ—ଦେ. ବି. ( ସଂ. ପିଧାନ; ପରିଧାନ )—
Pindhāṇa Wearing; putting on cloth.
পিন্ধন **पहनाइ**

ପିନ୍ଧାପିନ୍ଧି—ଦେ. ବି—୧ । ପରସ୍ପର ପରସ୍ପରକୁ ଲୁଗା ପିନ୍ଧାଇବା—
Pindhāpindhi 1. Clothing or dressing each other.
পিন্ধাপিন্ধী **पहनाइ**
୨ । ବସ୍ତ୍ର ପରିଧାନ କ୍ରିୟା—
2 The operation of dressing one's self.

ପିନ୍ଧା ବାସ—ଦେ. ବି—ପରିଧେୟ ବସ୍ତ୍ର, ପିନ୍ଧା ଲୁଗା—
Pindhā bāsa Worn cloth
ମୋ ପିନ୍ଧା ବାସ ଶେଷକୁ ଛିଣ୍ଡ ଥାଇ ଅଙ୍ଗର ଅର୍ଦ୍ଧେ ତଖା ଫୁଲେ ।
କବିସୂର୍ଯ୍ୟ. ସଙ୍ଗୀତ ।

ପିନ୍ଧାଯିବା—ଦେ. କ୍ରି—ପିନ୍ଧିବାର କର୍ମବାଚ୍ୟ ରୂପ—
Pindhājibā The passive voice of Pindhibā.
পরা যাওআ **पहनाजाना**
( ପିନ୍ଧା ହେବା—ଅନ୍ୟରୂପ)

ପିନ୍ଧାଳି—ଦେ. ବି—୧ । ଯେ ପିନ୍ଧେ, ଯେ ବସ୍ତ୍ରାଦି ପରିଧାନ କରେ—
Pindhāḷi 1. Wearer.
୨ । ଯେ ଅନ୍ୟକୁ ବସ୍ତ୍ର ଅଳଙ୍କାରାଦିରେ ସଜ୍ଜିତ କରି ପାରେ—
2. One skilled in dressing another or adorning another.

ପିନ୍ଧିବା—ଦେ. କ୍ରି. ( ସଂ. ପିଧାନ; ପରିଧାନ ଓ ଅପି+ଧନ୍ ଧାତୁ )—
Pindhibā ୧ । ନାଇବା; ପରିଧାନ କରିବା—1 To wear or put on dress.
পরা, পিন্ধা **पहनना**
ପର ଲୁଗା ପିନ୍ଧି ଯାଉଛ ଯ ଏ,
ଲୋକ ପଚାରିଲେ ମୁଣ୍ଡ ତଳକୁ ଥାଏ । ଚଗ ।
୨ । ନିଜ ଦେହରେ ଅଳଙ୍କାର ଭରି ହେବା, ଅଳଙ୍କାର ଘେନିବା-
2. To put on or adorn one's self with ornaments.
୩ । ଦେହରେ ଧାରଣ କରିବା—
3. To put (marks etc) on the body.

ପିନ୍ଧିଲା—ଦେ. ବିଣ—ପରିହିତ—
Pindhila Worn ( cloth; ornament ).
(ପିନ୍ଧିବା—ଅନ୍ୟରୂପ) ଥାଳ ଦେଖିଲେ ମୋ ବଦନେ ଗୋଟିଏ ପିନ୍ଧିଲା ବସନେ
ରୂପଦ. ଚିନ୍ତାମଣିମୃତ ।

ପନ୍ନିଆମ୍ମା—ପ୍ରାଦେ. ( ଗଞ୍ଜାମ ) ବି. ( ଲୁମୁଟ ବା ବୈଶ୍ୟଭାଷା )—
Pinniamma ଝୁଡ଼ୀ ବା ମାଉସୀ—
Paternal aunt or maternal aunt.

ପିପତିଷା—ସଂ. ବି. ( ପତ୍ ଧାତୁ=ପତିତ ହେବା+ଇଚ୍ଛାର୍ଥେ ସନ୍=
Pipatisha ପିପତିଷା ଧାତୁ+ଭାବ. ଅ+ଆ )—ପଡ଼ନେଚ୍ଛା,
ପଡ଼ିବାକୁ ଇଚ୍ଛା—Inclination to fall down or descend.

ପିପତିଷୁ—ସଂ. ବିଣ ( ପତ୍ ଧାତୁ+ଇଚ୍ଛାର୍ଥେ ସନ୍+ଉ )—ପତନେଚ୍ଛୁ—
Pipatishu Disposed to fall down or descent.
ସଂ. ବି—ପକ୍ଷୀ—Bird.

ପିପବିଷା—ସଂ. ବି. ( ପୂ ଧାତୁ=ପବିତ୍ର ହେବା+ଇଚ୍ଛାର୍ଥେ ସନ୍+ଆ )—
Pipabisha ପବିତ୍ର ହେବାର ଇଚ୍ଛା—
Inclination to become pure.

ପିପବିଷୁ—ସଂ. ବିଣ. ( ପୂ ଧାତୁ+ଇଚ୍ଛାର୍ଥେ ସନ୍+ଉ)—ପବିତ୍ର ହେବାକୁ
Pipabishu ଅଭିଳାଷୀ—Wishing to be purified.

ପିପରମି(ମେ)ଣ୍ଟ (ଇତ୍ୟାଦି)—ବୈଦେ. ବି. ( ଇଂ. ପେପ୍ପରମିଣ୍ଟ )—
Piparami(me)nta (etc) ପେପରମିଣ୍ଟ ଇତ୍ୟାଦି ( ଦେଖ )
Peparmint etc ( See )

ପିପଲ୍—ପ୍ରାଦେ. ( ସମ୍ବଲପୁର ) ବି. ( ସଂ. ପିପ୍ପଳ, ତୁଳ. ହି. ପୀପଲ )—
Pipal ଅଶ୍ୱତ୍ଥ ଗଛ—Pipal tree.

ପିପଲ୍ ପାତା—ଦେ. ବି. ( ହିନ୍ଦୀଆ ଶବ୍ଦ )—ମଝି କାନର ପାନପତ୍ର
Pipal pata ଆକାରର ଅଳଙ୍କାରବିଶେଷ—A kind of leaf-shaped ornament worn over the ears.

ପିପଲା—ଦେ. ବି. ( ସଂ ପିପ୍ପଳ )—୧ । ବିମାନ ଓ ଖଟ ଆଲମାରିର
Pipala ବାଡ଼ରେ ବସାଯିବା ପିପ୍ପଳ ଆକାରର ଲମ୍ବ କାଠଖଣ୍ଡ—
ପିପ୍ପଳା, ପିପୁଲା, ପିମ୍ପୁଲା, ପିମ୍ପଲା } ଅନ୍ୟରୂପ 1. Wooden pegs put on the frames of furnitures.
୨ । ବଣପିପଳ, ପିପ୍ପଳୀମୂଳ—
2. Wild piper; Scindapsus officinalis.
[ ଦ୍ର—ଏହାର ପତ୍ରର ନାମ 'ଚବ୍ୟ' ଓ 'ଚଇ' । ]

ପିପଲା ମୂଳ—ଦେ. ବି—ପିପ୍ପଳୀମୂଳ ( ଦେଖ )
Pipala mula Pippali mula ( See )
পিপলামূল पिपरामूल
ମ୍ପିପ୍ପଲା ମଳ, ପିମ୍ପଲା ମୂଳ, ପିପୁଲା ମୂଳ, ପିମ୍ପୁଲା ମୂଳ, ପିପଲୀ ମୂଳ } ଅନ୍ୟରୂପ

ପିପଲି—ଦେ. ବି. ( ସଂ ପିପ୍ପଳୀ )—ତାମ୍ବୁଲାଦି ବର୍ଗର ସୁଗନ୍ଧି ଲତା-
Pipali ବିଶେଷ—Long pepper; Piper Longum;
ସଂ. ମାଗଧୀ, କୃଷ୍ଣା, ଶୌଣ୍ଡୀ Chavica Roxburghii.
ଉପକୁଲ୍ୟା, କଣା, ଉଷଣା, [ ଦ୍ର—ଏହା ଏକପ୍ରକାର ଲତା ।
ତଣ୍ଡୁଳଶୁଣ୍ଡୁଳା, ବୈଦେହୀ, ଏହାର କଞ୍ଚା ଫଳ ଶୁଖିଲେ ସ୍ୱାଦ
ଚପଳା, କୋଲା ଲାଗେ । ପାଚିଲା ଫଳ ଈଷତ୍ ମିଠା
পিপুল, পিঁপুল ଲାଗେ । ଏହାର ପତ୍ର ଶ୍ରେଷ୍ଠ ପାନ
पीपर, पिपाल, पिपल ପତ୍ର । ଏହା ବୃକ୍ଷ କରାଯାଏ । ଏହା
ମ ପତ୍ପଲି ଅନେକ ଔଷଧରେ ବ୍ୟବହୃତ ହୁଏ ।
ତେ. ପିପ୍ପଲୀଚେଟ୍ଟୁ, ପିପ୍ପିଳ୍ଳୁ ଏହା ଅଗ୍ନିଦୀପକ, ବୃଷ୍ୟ, ମଧୁରବିପାକ,
ଗୁ. ଲଂଡୀପିପଲ ରସାୟନ, ଅନୁଷ୍ଣ, କଟୁ, ସ୍ନିଗ୍ଧ, ବାତ-
ଫା. ପିଲ୍‌ପିଲ ଶ୍ଳେଷ୍ମନାଶକ, ଲଘୁ ଓ ରେଚକ ।
ଆ. ଫିଲ, ଦାରଫିଲ୍ ଏହା ଶ୍ୱାସ, କାସ, ଉଦର, ଜ୍ୱର,
ପିପୁଲ, ପିମ୍ପଳ, ପିମ୍ପଲ, ପିପୋଲ, ପିମ୍ପୋଲ } ଅନ୍ୟରୂପ କୁଷ୍ଠ, ପ୍ରମେହ, ଗୁଳ୍ମ, ଅର୍ଶ, ପ୍ଲୀହା, ଶୂଳ ଓ ଆମବାତ ବିନାଶକ । କଞ୍ଚାପିପ୍ପଳ କଫକାରକ, ଶୀତଳ, ମଧୁର ରସ ଓ ପିତ୍ତନାଶକ; ଶୁଷ୍କ ପିପ୍ପଳୀ ପିତ୍ତ ପ୍ରକୋପକ । ପିପ୍ପଳ ମଧୁସହ ସେବନ କଲେ ମେଦୋରୋଗ କଫ, ଶ୍ୱାସ, କାସ ଓ ଜ୍ୱର ନିବାରିତ ହୁଏ, ବଳ, ମେଧା ଓ ଅଗ୍ନି ବର୍ଦ୍ଧିତ ହୁଏ । ଏହା ଗୁଡ଼ ସହିତ ସେବନ କଲେ ଜୀର୍ଣ୍ଣଜ୍ୱର, ଅଗ୍ନିମାନ୍ଦ୍ୟ, କାସ, ଅଜୀର୍ଣ୍ଣ, ଅରୁଚି, ଶ୍ୱାସ, ହୃଦ୍‌ରୋଗ, ପାଣ୍ଡୁ ଓ କ୍ରିମି ନଷ୍ଟ ହୁଏ ।

ଏହି ଜାତିପ୍ର ଆରଣ୍ୟ ଲତାର ଫଳ ପିପ୍ପଳୀ ଆକାରର ହୁଏ କିନ୍ତୁ ଖୁବ୍ ବଡ଼ । ଏହାକୁ ସଂସ୍କୃତରେ ଗଜପିପ୍ପଳୀ, କରିପିପ୍ପଳୀ ଓ ଭାଷାରେ ଗଜପିମ୍ପଲା କହନ୍ତି । ଏହା ଚବିକା ଲତାର ଫଳ । ଏହାର ମୂଳ ଔଷଧରେ ଲାଗେ । ଏ ଲତାର ଫଳମଞ୍ଜରୀ ହାତୀଶୁଣ୍ଢ ପରି ସ୍ଥୂଳ ଥିବାରୁ ଏହାର ନାମ ଗଜପିପ୍ପଳୀ (Pothos Officialis) ।

ଆଉ ଏକପ୍ରକାର ପିପ୍ପଳୀର ମୂଳକୁ ସଂସ୍କୃତରେ ପିପ୍ପଳୀମୂଳ ଓ ଭାଷାରେ ପିମ୍ପଲା ବା ବଣପିପ୍ପଳା କହନ୍ତି ( Scindapsus Officinalis ) ଏହା ଔଷଧରେ ଲାଗେ । ]

ପିପା—ବୈଦେ ବି. (ପର୍ତ୍ତୁଗୀଜ ପିପା, ଇଂ ପିପେ)—
Pipa ତୈଳାଦି ରଖିବାର ମୃଦଙ୍ଗାକୃତି ବଡ଼ କୋଠ—
পিপা Cask, barrel.
पीपा ପ୍ରାଦେ.—(କେନ୍ଦ୍ରାପଡ଼ା, ଯାଜପୁର, ବାଲେଶ୍ୱର)—
(ପିମ୍ପା—ଅନ୍ୟରୂପ) କିରୋସିନ୍ ତେଲ ଜଳିବା ଡିବି—
Open Kerosine lamps made of tin.
ପ୍ରାଦେ. ( ବସ୍ତର ) ବି—ଟିଣ ଆଦିର ଡବା—
Tin case or box.

ପିପାଇ (ଇତ୍ୟାଦି)—ଦେ. ବି—ପିପେଇ ଇତ୍ୟାଦି ( ଦେଖ )
Pipai (etc) Pipei etc. ( See )

ପିପା ପତର—ଦେ. ବି—ପିପା ଉପରେ ଯେଉଁ ଲୁହା ପାଇଆ ମଡ଼ା
Pipa patara ହୋଇଥାଏ—Thin iron bands rivetted round barrels.
ପିପା ପତ୍ର, ପିପା ପାଇଆ } ଅନ୍ୟରୂପ

ପିପାସା—ସଂ. ବି. ( ପା ଧାତୁ=ପିଇବା+ଇଚ୍ଛାର୍ଥେ ସନ୍=ପିପାସ ଧାତୁ
Pipasa +ଭାବ. ଅ+ଆ )—
୧ । ପାନେଚ୍ଛା, ଶୋଷ, ତୃଷା—1. Thirst.
୨ । ( ଲକ୍ଷଣାର୍ଥ ) କୌଣସି ବସ୍ତୁ ପାଇବାର ବିଶେଷ ଇଚ୍ଛା, ତୃଷ୍ଣା; ଲାଲସା—2. ( fig ) Hankering after a thing.

ପିପାସାନ୍ୱିତ—ସ ବଣ ପୁଂ ( ବହୁ ଭତ୍, ପିପାସା+ଅନ୍ୱିତ )—
Pipāsānwita ୧ । ଶୋଷୀ, ତୃଷାର୍ତ୍ତ—1. A thirst.
(ପିପାସାର୍ତ୍ତ—ଅନ୍ୟରୂପ) ୨ । ତୃଷିତ—2 Thirsty, thirsting
(ପିପାସାନ୍ୱିତା, ପିପାସାର୍ତ୍ତା—ସ୍ତ୍ରୀ)
୩ । ( ଲକ୍ଷଣାର୍ଥ ) କୌଣସି ବସ୍ତୁ ପ୍ରତି ଲୋଭାସକ୍ତ—
3 ( fig ) Covetuous or hankering after a thing.

ପିପାସିତ—ସ. ବଣ. ପୁଂ ( ପିପାସା+ସଞ୍ଜାର୍ଥେ. ଇତ ବା ପିପାସ ଧାତୁ+ କର୍ତ୍ତୃ. ତ )—ପିପାସାନ୍ୱିତ ( ଦେଖ )
Pipāsita Pipāsānwita ( See )
(ପିପାସିତା - ସ୍ତ୍ରୀ)

ପିପାସୀ—ସ. ବଣ. ପୁଂ ( ପିପାସା+ଇନ୍ )—ପିପାସାନ୍ୱିତ ( ଦେଖ )
Pipāsi Pipāsānwita ( See )
(ପିପାସିନୀ – ସ୍ତ୍ରୀ)

ପିପାସୁ—ସଂ. ବଣ. (ପା ଧାତୁ ସନ୍=ପିପାସ୍ ଧାତୁ+କର୍ତ୍ତୃ. ଉ )—
Pipāsu ପିପାସାନ୍ୱିତ ( ଦେଖ )
Pipāsānwita ( See )

ପିପିଲି- ଦେ ବ (ନାମ)—୧ । ବାଲେଶ୍ୱର ନିକଟସ୍ଥ ପ୍ରାଚୀନ ବନ୍ଦର-
Pipili 1 An ancient port in Balasore.
[ ଦ୍ର—ଏଠାରେ ଇଂରେଜମାନେ ଓଡ଼ିଶା ଅଧିକାର ପୂର୍ବରୁ ଗୋଟିଏ ବନ୍ଦର ଓ ଗୋଦାମ ଖୋଲିଥିଲେ । ]
୨ । ପିପୋଲ ( ଦେଖ )—2. Pipola ( See )

ପିପୀତକ— ସଂ. ବ. (ନାମ)—ଭବିଷ୍ୟ ପୁରାଣୋକ୍ତ ବ୍ରାହ୍ମଣର ନାମ—
Pipitaka Name of a Brāhmana mentioned in the Bhabishya Purāna
( ଯଥା—ପିପୀତକୀ ତଳେ ନୋଟ ଦେଖ । )

ପିପୀତକୀ— ସଂ. ବ. (ପିପୀତକ+ଈ)—ବୈଶାଖ ଶୁକ୍ଳ ଦ୍ୱାଦଶୀ—
Pipitaki The 12th day of the bright lunar fortnight of Baisākha
[ ଦ୍ର—ଭବିଷ୍ୟପୁରାଣରେ ଏ ଦିନ ଆଚରଣୀୟ ବ୍ରତର ଉପାଖ୍ୟାନ ଅଛି । ପିପୀତକ ନାମକ ବ୍ରାହ୍ମଣଙ୍କୁ ଯମଦୂତମାନେ ଯମ-ଲୋକକୁ ନେଇଗଲେ । ସେଠାରେ ତାଙ୍କୁ ଭାରି ତୃଷା ହେବାରୁ ସେ ବିକଳରେ ଯମଙ୍କୁ ସ୍ତବ କଲେ । ଯମ ତା ସ୍ତବରେ ପ୍ରସନ୍ନ ହୋଇ ତାଙ୍କୁ ମର୍ତ୍ତ୍ୟ ଲୋକକୁ ପଠାଇ ଦେଲେ ଓ ଏ ବ୍ରତ କରିବାକୁ ଉପଦେଶ ଦେଲେ । ଏ ବ୍ରତରେ ଶୀତଳ ଜଳ ପୂର୍ଣ୍ଣ କଳଶ ବ୍ରାହ୍ମଣଙ୍କୁ ଦାନ କରାଯାଏ—ଭ. ଶ. ]

ପିପୀଲ(ଲି)— ସଂ. ବ. ( ପୀଲ୍ ଧାତୁ=ଶୁବ୍ଧ ହେବା; ସ୍ତବ କରିବା+ ଯଙ୍ ଲ+ଅ )—ପିମ୍ପୁଡ଼ି ( ଦେଖ )
Pipila(la) Pimpurdi ( See )
[ପିପୀଲ(ଲି)କ—ଅନ୍ୟରୂପ ]

ପିପୀଲ(ଲି)କା—ସଂ. ବ ( ପୀଲ ଧାତୁ=ଶୁବ୍ଧ ହେବା; ସ୍ତବ କରିବା+ ଯଙ୍ଲ+ଅକ+ଆ)—ପିମ୍ପୁଡ଼ି ( ଦେଖ )
Pipili(li)kā Pimpurdi ( See )

ପିପୀଲିକାଭକ୍ଷୀ—ସ. ବ—ପିମ୍ପୁଡ଼ି ଖାଇ ଜୀବନ ଧାରଣ କରିବା ଏକ ପ୍ରକାର ଚତୁଷ୍ପଦ କ୍ଷୁଦ୍ର ଜନ୍ତୁ—The ant eater; the ant bear.
Pipilikā bhakshi
ପିପୀଲିକାଭୁକ୍ } ଅନ୍ୟରୂପ
ପିପୀଲିକାଭୋଜୀ
[ ଦ୍ର—ଏହା ବନ୍ୟକାପଡ଼ା ଶ୍ରେଣୀର ଦନ୍ତହୀନ ପୁଚ୍ଛବିଶିଷ୍ଟ ଜନ୍ତୁ । ଏହାର ଥୋମଣୀ ଲମ୍ବ ଓ ମୁନିଆ ଏବଂ ଗୋଟିଏ ଲମ୍ବା ଲହକା ସରୁ ଜିଭ ଅଛି, ଏହାର ଆଗଗୋଡ଼ର ନଖ ଖୁବ୍ ଦାଢ଼ୁଆ, ଏ ଆଗଗୋଡ଼ରେ ହୁଙ୍କାମାନ ଭାଙ୍ଗି ତା ମଧ୍ୟରେ ମୁହଁ ପୁରାଇ ଲମ୍ବ ଲାଳୁଆ ଜିଭଦ୍ୱାରା ପିମ୍ପୁଡ଼ି ଓ ଉଈମାନଙ୍କୁ ଅଣି ଖାଏ । ଏ ଜୀବ ଦକ୍ଷିଣ ଆଫ୍ରିକାରେ ଓ ଭାରତର ସ୍ଥାନେ ସ୍ଥାନେ ଦେଖାଯାଏ ।]

ପିପୀଲିକାମାର୍ଗ—ସ. ବ—(ଯୋଗଶାସ୍ତ୍ର) ପିମ୍ପୁଡ଼ି ପରି ଧୀରେ ଧୀରେ କ୍ରମଶଃ ଅଧ୍ୟବସାୟ ସହକାରେ ସମାଧି ଲାଭ-କରିବାର ରୀତି — (Joga system) The gentle and gradual method of accomplishing Samādhi (separation from mundane concerns) with slowness and steadiness like those of the ants.
Pipilikā mārga

ପିପୀଲ(ଲି)—ସଂ. ବ—(ପୀଲ ଧାତୁ=ଶୁବ୍ଧ ହେବା, ସ୍ତବ କରିବା+ ଯଙ ଲ+ଈ)—ପିମ୍ପୁଡ଼ି (ଦେଖ)—Pimpurdi (See).
Pipili(li)

ପିପୁଲା (ଇତ୍ୟାଦି)—ଦେ ବ—ପିପଳା ଇତ୍ୟାଦି (ଦେଖ)—
Pipulā (etc) Pipalā etc (See)

ପିପୁଳି—ଦେ. ବ—ପିପଳି (ଦେଖ)—
Pipuli Pipali (See)

ପିପୃଚ୍ଛିଷା—ସ. ବ—( ପ୍ରଚ୍ଛ୍ ଧାତୁ ପଚାରିବା+ଇଚ୍ଛାର୍ଥେ. ସନ୍+ଭାବ. ଅ +ଆ)—ପଚାରିବାର ଇଚ୍ଛା—
Pipruchchhishā Wish to ask

ପିପୃଚ୍ଛିଷୁ—ସ. ବଣ—( ପିପୃଚ୍ଛିଷ୍ ଧାତୁ+କର୍ତ୍ତୃ. ଉ )—ପଚାରିବାକୁ ଇଚ୍ଛୁକ—Wishing to ask.
Pipruchchhishu

ପିପେଇ—ଦେ. ବ—କାଉଁରିଆ (ଦେଖ)—
Pipei Kāuñriā (See)

ପିପେଇ ଅମାବାସ୍ୟା—ଦେ. ବ—(ସ. ପୂପାଳ ବା ପୂପପାପ ଓ ଅମାବାସ୍ୟା ଏ ଦିନ ପୂପ ବା ପିଠାରେ ପାପକାଟି ପୋଡ଼ି ପିତୃଲୋକଙ୍କୁ ଶ୍ରାଦ୍ଧ କରାଯାଏ)—
Pipei amābāsyā
(ପିପେଇ ଅମାବସ୍ୟା—ଅନ୍ୟରୂପ)
ଦେବାଳୀ ପସ୍ତା ଅମାବାସ୍ୟା, ଦେବାଲୀ, କାର୍ତ୍ତିକ ଅମାବାସ୍ୟା-
ଦ୍ୱୀବାଳୀ The new moon of the month of Kārttika.
ପିପେଇ ଅମାବସ୍ୟା
ପିପାଇ ଅମାସ୍ୟା
ପିପୋଇ ଅମେଇସା } ଅନ୍ୟରୂପ
ପିମ୍ପା ଉଆଁଶ
ପିମ୍ପେଇ ଅମାସିଆ
ପିମ୍ପାଇ ଅମାଇସା
[ଦ୍ର—ଏ ଦିନ ସନ୍ଧ୍ୟା ପରେ ପଞ୍ଚବର୍ଜିତ ମହାଳୟା ଶ୍ରାଦ୍ଧ କରାଯାଏ ଓ ପିତୃଲୋକଙ୍କ ପୂପ ପାପ ଅର୍ଥାତ୍ ପିଠା ଉପରେ ପାଟ ପୋଡ଼ି ଦାନ କରାଯାଏ ଓ ବଡ଼ ବଡ଼ୁଆଙ୍କୁ କାଉଁଳିଆ ଦେଖାଇ ଡକାଯାଏ—"ବଡ଼ ବଡ଼ୁଆଏ ହେ ! ଅନ୍ଧାରରେ ଆସ, ଆଲୁଅରେ ଯାଅ, ବାଇଶି ପାହାଚରେ ଗଡ଼ଗଡ଼ାଉଥାଅ ।" ]

ପିପେଇ ଶ୍ରାଦ୍ଧ—ଦେ. ବ—( ସଂ. ପୂପାଳ=ପିଠା )—ପସ୍ତାଶ୍ରାଦ୍ଧ; ପେପେଇ ଅମାବାସ୍ୟା ଦିନ ସନ୍ଧ୍ୟାପରେ ପାପଦାନ ପୂର୍ବକ
Pipeiśrāddha

ପିଷାଇ
ପିମ୍ପା
ପିମ୍ପାଇ
ପିମ୍ପେଇ } ଶ୍ରାଦ୍ଧ—ଅନ୍ୟରୂପ — କରାଯିବା ଶ୍ରାଦ୍ଧ—Offerings of Srāddha done on the evening of Pipaiamābāsyā.
(ମିପେଇ ଶିଶୁଧ—ଗ୍ରାମ୍ୟରୂପ )

ପିପେଲ୍—ପ୍ରାଦେ. (ସମ୍ବଲପୁର) ବ. (ସଂ. ପିପ୍ପଳ)—ଅଶ୍ୱତ୍ଥ ଗଛ—
Pipel The Pipal tree.

ପିପୋଲ—ଦେ. ବ—(ନାମ)—ପୁରୀଜିଲ୍ଲାର ଗୋଟିଏ ଗ୍ରାମ—
Pipola Pipli; a village in the district of Puri.

ପିମ୍ପୋଲ
ପିପିଲ } ଅନ୍ୟରୂପ [ଦ୍ର—ଏହା ଜଗନ୍ନାଥ ସଡ଼କ ଉପରେ । ଏଠାରେ ଦରଜିମାନେ ସୁନ୍ଦର ଛୁଞ୍ଚିକାମର ବଟୁଆ, ଢକଅଖୋଲ, ଗୁନ୍ଦୁଆ, ଭୁଲାଭର୍ତ୍ତ କୁର୍ତ୍ତି ଓ ସୁଜନିଆଦି କରନ୍ତି । ଇଂରାଜୀ ନାମ ପିପ୍ଲି (Pipli) । ଏଠାରେ ଥାନା, ସବ୍‌ରେଜେଷ୍ଟ୍ରିର ଅଫିସ ଓ ଖ୍ରୀଷ୍ଟାନପଡ଼ା ପ୍ରଭୃତି ଅଛି । ]

ପିପୋଲିଆ—ଦେ. ବଣ—ପିପୋଲନିର୍ମିତ—
Pipoliā Made at Pipli

ପିପ୍ପଳ—ସଂ. ବ. (ପା ଧାତୁ+ରକ୍ଷା କରିବା+ଅଳ)—
Pippala ୧ । ଅଶ୍ୱତ୍ଥଗଛ—
1. The holy fig tree; Ficus Religiosia.
୨ । ଜଳ—2. Water.
୩ । କୁର୍ତ୍ତିର ଆସ୍ତୀନ; କୁର୍ତ୍ତିର ଯେଉଁ ଅଂଶଦ୍ୱାରା ହାତ ଆବୃତ ଥାଏ—3 Sleeve of a coat.
୪ । ରେବତୀ ଗର୍ଭଜାତ ମିତ୍ରଙ୍କର ଏକ ପୁତ୍ର (ଭାଗବତ, ହ୍ର. ଶ)—4. Name of a son of Mitra and Rebati.
୫ । ପକ୍ଷିବିଶେଷ (ହ୍ର. ଶ)—5. A species of bird.
୬ । ନଗ୍ନବ୍ୟକ୍ତି (ହ୍ର. ଶ)—6. A nude person.
୭ । ବସ୍ତ୍ରଖଣ୍ଡ (ହ୍ର. ଶ)—7. A piece of cloth.

ପିପ୍ପଳକ—ସଂ. ବି. (ପା ଧାତୁ+ଅଳ+କ)—
Pippalaka ୧ । ସ୍ତନବୃନ୍ତ; ଚୁଚୁକ ଭୂଣ୍ଡି, ସ୍ତନମୁଖ—
1. Nipple.
୨ । ସେଇଁବା ସୂତା; ସୀବନସୂତ୍ର—2. Sewing thread.

ପିପ୍ପଳାମୂଳ—ଦେ. ବ—ପିପ୍ପଳୀମୂଳ (ଦେଖ)
Pippalāmūla Pippalī mūla (See)

ପିପ୍ପଳି(ଳୀ)—ସଂ. ବ. (ପା ଧାତୁ=ରକ୍ଷା କରିବା+ଅଳ+ଇ, ଈ; ଏହା ରୋଗରୁ ରକ୍ଷା କରେ)—ପିପଳି (ଦେଖ)
Pippali(lī) Pipali (See)

ପିପ୍ପଳୀମୂଳ—ସଂ. ବ. (ବୈଦ୍ୟକ)—ବଣ ପିପ୍ପଳୀମୂଳ—
Pippalimūla Piper root; Piper Officinarum.
ସଂ. ଗ୍ରନ୍ଥିକ, ଉଷଣ, ଚଟକାଶିରଃ
ପିପ୍ପୁଲମୂଳ
ପିପଲାମୂଳ
ଫା. ଫିଲ୍‌ଫିଲ୍‌ମୋୟା
ଆ. ଆସଲୁଲ ଫିଲଫିଲ୍
ମ. ପିପ୍ପଳମୂଳ
ଗୁ. ପିପରୀମୂଳ, ଗଣ୍ଠୋଡ଼ା
ତେ. ପିପଲିବେରୁ
[ଦ୍ର—ଏହା ଔଷଧରେ ବ୍ୟବହୃତ ହୁଏ । ଏହା ଅଗ୍ନିଦୀପକ, କଟୁ, ଉଷ୍ଣବୀର୍ଯ୍ୟ, ପାଚକ, ଲଘୁ, ରୁକ୍ଷ, ପିତ୍ତକର ଓ ଭେଦକ, ଏହା କଫ, ବାତ, ଉଦର ଆନାହ, ପ୍ଲୀହା, ଗୁଳ୍ମ, କ୍ରିମି, ଶ୍ୱାସ ଓ କ୍ଷୟ ବିନାଶକ—ଦ୍ରବ୍ୟଗୁଣ । ]

ପିପ୍ପିକା—ସଂ. ବ (ପ୍ୟାପୃ ଧାତୁ=ବୃଦ୍ଧି ପାଇବା+ଇକ)—
Pippikā ଦନ୍ତମଳ, ଦାନ୍ତର ଛିଉଅ—
The tartar of gum of the teeth

ପିପ୍ପିଲି—ଦେ. ବ. (ନାମ)—ପିପିଲି (ଦେଖ)
Pippili Pipili (See)

ପିବଇ—ଦେ. କ୍ରି (ପଦ୍ୟ)—ପିଇବା କ୍ରିୟାର ପିଅଇର ବିକଳ୍ପରୂପ—
Pibai Another form of Piai the drinks
ଏମନ୍ତ କହି କୃଷ୍ଣା ପାଇଁ ଶ୍ରୀଚରଣ ଧୌତ ଉଦକ ପିବଇ ।
ଭ୍ରାତୀ, ଚଢ଼ସ୍ୟମନ୍ତକ ।

ପିବା—ଦେକ୍ରି—(ପ୍ରାଚୀନ ପଦ୍ୟ)—ପିଇବା—
Pibā To drink.
ପଡ଼ିବ କ୍ଷୀର ପିବା ଅକଣ
ଚିତ୍ତରେ ଧରଣୀର ପାଶେ—ଜଗମୋହ ହେବେ ।

ପିମ୍ପା—ଦେ. ବ—ପିପା—(ଦେଖ)—
Pimpā Pipā (See)

ପିମ୍ପାଇ—ଦେ ବ.—ପିପାଇ (ଦେଖ)
Pimpāi (ପିମ୍ପେଇ—ଅନ୍ୟରୂପ) Pipāi (See)

ପିମ୍ପୁଡ଼ି—ଦେ. ବ. (ସଂ. ପିପୀଲୀ)—ପ୍ରସିଦ୍ଧ ଷଟ୍‌ପଦ ପକ୍ଷହୀନ କୀଟ ବିଶେଷ—Formicidae ants
Pimpurdi
ପିମ୍‌ପଡ଼ା, ପିଂମଡ଼ା
ଚିଉଁଟୀ ଚିଣ୍ଟୁ ଚୀଟୀ
ମ. ମୁଙ୍ଗୀ
ସମ୍ବଲପୁର. ଗୁଣ୍ଡି
(ପିମ୍ପିଡ଼ି—ଅନ୍ୟରୂପ)
[ଦ୍ର—ଆକାରରେ ଓ ସ୍ୱଭାବରେ ଏମାନେ ମକ୍ଷିମାଛି ପରି; ଏମାନଙ୍କର ଅଣ୍ଟା ଭାରି ସରୁଆ, ଏମାନଙ୍କର ଦୁଇଟା ତୀକ୍ଷ୍ଣ ଦାନ୍ତ ଥାଏ । ଏହି ଦୁଇଟି ଦାନ୍ତରେ ଏମାନେ କାମୁଡ଼ନ୍ତି ଓ ଖାଦ୍ୟ ଦ୍ରବ୍ୟକୁ ଧରନ୍ତି । ଏମାନେ ତିନି ଶ୍ରେଣୀର ସ୍ତ୍ରୀ, ପୁରୁଷ ଓ କ୍ଲୀବ । କ୍ଲୀବମାନେ ପରିଶ୍ରମ କରନ୍ତି । ପକ୍ଷ ହେଲେ ଏମାନେ ଉଡ଼ନ୍ତି ଓ ଶେଷରେ ମୃତ୍ୟୁ ମୁଖରେ ପଡ଼ନ୍ତି ।

ବଡ଼, ସାନ, ନାଲି, ଧଳା ଓ କଳା ଆଦି ଭେଦରେ ଏମାନେ ନାନା ଜାତୀୟ । ଉଇ ଓ ଜନାମାନେ ମଧ୍ୟ ଏହି ଶ୍ରେଣୀର ଅନ୍ତର୍ଗତ, ଏମାନେ ଭାରି ମିଠାପ୍ରିୟ । ଗଛର ପତ୍ରରେ, ମାଟିରେ ଓ ଗଛର ଖୋଲରେ ଏମାନେ ନାନା ପ୍ରକାରର ବସା ତିଆରି କରନ୍ତି ।

୧ । ଯେଉଁମାନେ ଆମ୍ବଗଛରେ ଥାଆନ୍ତି ଓ ଆମ୍ବ ପତ୍ରମାନଙ୍କୁ ଏକତ୍ର ଜଡ଼ିତ କରି ଗୋଟିଏ ଲେଖାଏଁ ଥଳି ପରି ବସା କରନ୍ତି ତାଙ୍କୁ ନାଇ (ବ. ଆମପିପଡ଼ା) କହନ୍ତି । ଏମାନଙ୍କ ରଙ୍ଗ ହଳଦିଆ ଓ ଆକାର ବଡ଼ । ଏମାନଙ୍କ ଡିମ୍ବରୁ ବନ୍ଧାରେ ଗୁଳି ମାଛଙ୍କ ଚରା କରାଯାଏ ।

୨ । ଏକ ପ୍ରକାର ପିମ୍ପୁଡ଼ି କୃଷ୍ଣବର୍ଣ୍ଣ; ଗଛର କୋରଡ଼ ଓ ଖଲ ତଳେ ବସା କରନ୍ତି । ଏମାନଙ୍କୁ କାଠ ପିମ୍ପୁଡି (ବ. କାଠ ପିଁପଡ଼ା) କହନ୍ତି ।

୩ । କଳା କଳା ବଡ଼ଗୋଡ଼ିଆମାନଙ୍କୁ ଜନା (ବ. ଡ଼େଁଓ) ବୋଲାଯାଏ । ଏ ଜନାମାନେ ବଡ଼ (ଜଗସା) ଓ ସାନ (ଧୂଳିଆ) ଭେଦରେ ନାନା ପ୍ରକାରର । ଏମାନଙ୍କ କାମୁଡ଼ାଦ୍ୱାରା ରକ୍ତ ବୁହେ ଓ ବିଶେଷ ଜ୍ୱାଳା ହୁଏ ।

୪। ଧଳା ଧଳା ଜାତୀୟ ପିମ୍ପୁଡ଼ିଙ୍କୁ ଉଇ (ବ. ଉଇ. White ant Termite) କହନ୍ତି। ଏମାନେ ମାଟିରେ ପାହାଡ଼ ବା ମନ୍ଦିର ପରି ଘର ତିଆରି କରନ୍ତି। ଏହାକୁ ହୁଙ୍କା (ବ. ଢିପି) ବୋଲି ଯାଏ।

୫। ସାଧାରଣ ପିମ୍ପୁଡ଼ି ନାଲି—(ବ. ଲାଲ୍ ପିମ୍ପୁଡ଼ା)। ଏମାନେ ସାନ ସାନ ଓ ବଡ଼ ବଡ଼ ନାନା ପ୍ରକାରର ହୁଅନ୍ତି। ସାନ ସାନ ମାନଙ୍କୁ ସି ପିମ୍ପୁଡ଼ି (ବ. ଖୁଦ୍ୟା, ଖୁଦେ୍ୟ) ବୋଲାଯାଏ। ଏମାନେ କାମୁଡ଼ନ୍ତି।

୬। କଳା ପିମ୍ପୁଡ଼ି (ବ. ଗୁଡେ୍ୟ, ଡାଆଁ)— ଏମାନେ ବିଷହୀନ ଓ କାମୁଡ଼ନ୍ତି ନାହିଁ।

୭। ଏହା ଛଡ଼ା ଏକପ୍ରକାରର ପାଚିଁଶିଆ ପିମ୍ପୁଡ଼ି ଅଛନ୍ତି। ଏମାନେ ଖରା ସମୟରେ କ୍ଷେତରୁ ଶସ୍ୟ ବୀଜମାନ ସଂଗ୍ରହ କରି ଆପଣା ବସାରେ ନେଇ ସଞ୍ଚୟ କରନ୍ତି। ପିମ୍ପୁଡ଼ିମାନେ ଦଳବଦ୍ଧ ହୋଇ ରହନ୍ତି ଓ କାର୍ଯ୍ୟ କରନ୍ତି। ଏମାନେ ଧାଡ଼ି ବାନ୍ଧି ଯିବା ଆସିବା କରନ୍ତି। ଜୀବତତ୍ତ୍ୱବିତ୍‌ମାନେ ଗବେଷଣାଦ୍ୱାରା ଏମାନଙ୍କର ଅଧ୍ୟବସାୟ, କାର୍ଯ୍ୟବିଭାଗ ଓ ସ୍ୱାୟତ୍ତାଧୀନତା ଆଦି ଦେଖି ଚମତ୍କୃତ ହୋଇ ଅଛନ୍ତି।

ପିମ୍ପୁଡ଼ି ସମ୍ବନ୍ଧେ କେତେଗୁଡ଼ିଏ ପ୍ରବଚନ ଓ ନ୍ୟାୟ।

୧। ଗୁଡ଼ଘରେ ପିମ୍ପୁଡ଼ି ଜଗୁଆଳି (ପହରିଆ) ନ୍ୟାୟ—ଖାଦ୍ୟ ଦ୍ରବ୍ୟକୁ ଖାଦକର ଜିମା କଲେ ଅର୍ଥାତ୍ ଭକ୍ଷକଙ୍କୁ ଦ୍ରବ୍ୟ ରକ୍ଷା କରିବାକୁ ଦେଲେ ସେ ଦ୍ରବ୍ୟ ନଷ୍ଟ ହେବା ସ୍ୱାଭାବିକ।

୨। ପିମ୍ପୁଡ଼ିର ପକ୍ଷୀ ଲାଗିବା ନ୍ୟାୟ—ସର୍ବନାଶ ବା ମୃତ୍ୟୁର ପୂର୍ବ ସମୟ ଉପସ୍ଥିତ ହେବା।

୩। ହାତୀ ଗଳି ଯାଉଛି ପିମ୍ପୁଡ଼ି ଗଳିବାକୁ ବାଟ ନାହିଁ, ହାତୀ ଗଳି ଯାଉଛି ପିମ୍ପୁଡ଼ିକୁ ବାଟ ବନ୍ଦ ହେଉଛି ନ୍ୟାୟ—ବଡ଼ ବଡ଼ କଥାରେ ଦୃଷ୍ଟି ନ ଥାଇ ସେ ଛୋଟ ଛୋଟ ବିଷୟକୁ ଜଗେ।

୪। ପିମ୍ପୁଡ଼ି ହୋଇ ସାପରୁଖାରେ ଚଢ଼ିବା ନ୍ୟାୟ—ଛୋଟ ଲୋକ ହୋଇ ବଡ଼ କଥାରେ ହସ୍ତକ୍ଷେପ କରିବା।

୫। ହାତୀ ମୁହଁରୁ କଲେ ଖସି ପଡ଼ିଲେ ପିମ୍ପୁଡ଼ିକୁ ଖାଇବାକୁ ଶହେ ବରଷ ନ୍ୟାୟ—ହାତୀପରି ବ୍ୟକ୍ତି ସାମାନ୍ୟ ମାତ୍ର (କଳେ ମାତ୍ର ଖାଦ୍ୟ) ଛାଡ଼ି ଗଲେ ସେଥିକରେ ଲକ୍ଷ ଲକ୍ଷ ପିମ୍ପୁଡ଼ି ପରି ଜୀବ ପୋଷି ହୁଅନ୍ତି।

୬। ହାତୀ ମୁତ ଦେଲେ ପିମ୍ପୁଡ଼ି ପହଁରିବେ ନ୍ୟାୟ—ହାତୀ ପରି ବଡ଼ ଜୀବର ମୁତ୍ରରେ ପିମ୍ପୁଡ଼ି ପରି ଜୀବ ବୁଡ଼ି ଯାଏ।

୭। ଗୁଡ଼ଘର ପିମ୍ପୁଡ଼ି ଖାଇଯିବା ନ୍ୟାୟ—ଯେଉଁ କାର୍ଯ୍ୟକୁ ଶତ୍ରୁଠାରୁ ସର୍ବଦା ସାବଧାନତା ସହିତ ରକ୍ଷା କରିବା ଦରକାର।

୮। ପିମ୍ପୁଡ଼ି ଧାଡ଼ି ଲାଗିବା ନ୍ୟାୟ—ଯେଉଁଠାରେ ବହୁଜନଙ୍କ ସମାଗମ ହୁଏ, ସେଠାରେ 'ପିମ୍ପୁଡ଼ି ଧାର' ପରି ଲୋକେ ଚାଲୁଥିବାର ଲୋକେ ତୁଳନା କରନ୍ତି।

୯। ଗୁଡ଼ କୁ ପିମ୍ପୁଡ଼ି ବାଇ ହେବା ନ୍ୟାୟ—ପିମ୍ପୁଡ଼ିମାନେ ମିଠା ଜିନିଷ ପ୍ରତି ଅତ୍ୟନ୍ତ ଆସକ୍ତ ଥିବାରୁ ବିଷୟ ପ୍ରତି କୌଣସି ବ୍ୟକ୍ତିର ବିଶେଷ ଆଗ୍ରହ ବା ଲୋଭ ଦେଖାଗଲେ ଲୋକେ ଏହା ଉଦାହରଣ ଦେଇଥାନ୍ତି।]

**ପିମ୍ପୁଡ଼ିଆ**—ଦେ. ବିଣ—୧। ପିମ୍ପୁଡ଼ି ସମ୍ବନ୍ଧୀୟ—
Pimpurdia 1. Relating to ants
୨। ପିମ୍ପୁଡ଼ି ପରି—2. Ant like.
୩। ଗୋରୁମାନଙ୍କର ରୋଗବିଶେଷ—3. A disease of cattle; Eczema of cattle
[ଦ୍ର—ଏଥିରେ ଗୋରୁମାନଙ୍କ ଦେହରେ ମନା ମନା ଫଳିଯାଇ ଗୋଡ଼ ଓ ଦେହରୁ ଚମ ବାହାରି ପଡ଼େ।]

**ପିମ୍ପୁଡ଼ିଆ ମୁହାଁ**—ଦେ ବିଣ. ପୁଂ—ଅତିଶୟ ରାଗୀ, ଯେ କଟୁ କଥା କହେ, କର୍କଶଭାଷୀ—Harsh mouthed; of an angry nature.
Pimpurdia muhañ
(ପିମ୍ପୁଡ଼ିଆ ମୁହାଁ—ସ୍ତ୍ରୀ)

**ପିମ୍ପୁଡ଼ି ଧାର**—ଦେ. ବି—ଏକାଦି କ୍ରମେ ଚାଲୁଥିବା ପିମ୍ପୁଡ଼ିମାନଙ୍କ ଶ୍ରେଣୀ
Pimpurdi dhara A line of ants creeping.

**ପିମ୍ପୁଡ଼ି ବାସ**—ଦେ. ବି—ଏକ ପ୍ରକାର ସରୁ ଧାନ—
Pimpurdi bāsa Name of a fine rice
[ଦ୍ର—ଏ ଧାନର ଚାଉଳ ମୃଦୁ ସୁବାସଯୁକ୍ତ।]

**ପିମ୍ପୁଡ଼ି ମୁହାଁ**—ଦେ. ବିଣ—ପିମ୍ପୁଡ଼ିଆ ମୁହାଁ (ଦେଖ)
Pimpurdi muhañ Pimpurdia muhañ (See)
(ପିମ୍ପୁଡ଼ିମୁହାଁ—ସ୍ତ୍ରୀ)

**ପିୟାଳ**—ସଂ. ବି—(ପୀ ଧାତୁଜ ? ପୀୟ (ସୌତ୍ର ଧାତୁ = ତୃପ୍ତ କରିବା) + କର୍ତ୍ତୃ. ଆଳ)—ଚାରୁଗଛ, ଚାରକୋଳି ଗଛ, ରାଜାଦନ ବୃକ୍ଷ, ଆମ୍ରାଦି ବର୍ଗର ଆରଣ୍ୟ ତରୁ ବିଶେଷ— Buchanania Latifolia, Chirolia Sapida.
Piyāla
ସଂ ପ୍ରିୟାଳ, ଚାର, ବହୁଲ-ବଲ୍କଲ, ଭକ୍ଷବୀଜ, ଚାରୁ, ଖର-ସ୍କନ୍ଧ, ରଜାଦନ, ତାପସେଷ୍ଟ, ସନ୍ନକଦ୍ରୁ, ଧନୁଷ୍ପଟ.
ପିୟାଳ
चिरौञ्जि; पियेबेह; पियार
ମ. ଚାରୋଲୀ.
ତେ. ଚାରୁ; ଚାରବୋଳ
ତା. କାଟମରା
ତେ. ସାରୁପାପୁ
ଗୁ. ଚାରୋଲୀ
ଫା. ଚୂକଲେଖାଜା.
ଆ. ହବୁସ୍ ସମାନା.
[ଦ୍ର—ଏଥିର ଫଳ କୃଷ୍ଣବର୍ଣ୍ଣ ଓ ମନୁଷ୍ୟଭୋଜ୍ୟ। ମଞ୍ଜି ଭିତରୁ ବାଦାମ ଭଳି ସୁସ୍ୱାଦୁ ଶସ ବାହାରେ। ଏଥିରୁ ତେଲ ବାହାରେ, ଏହାର ପାଚିଲା କୋଳି ଖାଆନ୍ତି ଓ ହିନ୍ଦୁସ୍ଥାନ ପ୍ରଭୃତିରେ ଏ କୋଳିଦ୍ୱାରା ମିଷ୍ଟାନ୍ନ ପ୍ରସ୍ତୁତ ହୁଏ। ବସନ୍ତ ଋତୁରେ ଏ ଗଛ ଆମ୍ବଗଛ ପରି ବଉଳେ; ଏହାର ଛେଲି, ପତ୍ର ଓ ବୀଜ ଔଷଧାର୍ଥ ବ୍ୟବହୃତ ହୁଏ।

ଏହାର ବୀଜ ମଧୁର, ଶୀତଳ, ଧାତୁ ପୁଷ୍ଟିକର, ବାତ, ପିତ୍ତ, ଦାହ, ଜ୍ୱର ଓ ତୃଷାହାରକ। ଏହା ଆମବର୍ଦ୍ଧକ, ମଳରୋଧକ ଓ ଗୁରୁପାକ। ଏହାର ବୀଜଜାତ ତେଲ ଇନ୍ଦ୍ରଲୁପ୍ତ (ଟାଙ୍ଗରମୁଣ୍ଡ) ରୋଗରେ ମୁଣ୍ଡରେ ମାଲିସ କରାଯାଏ। ଏହାର ଛେଲିକୁ ଛେଳଦୁଧ ସହିତ ବାଟି ଖାଇଲେ ରକ୍ତାତିସାର ଭଲ ହୁଏ। ଏହାର ଛେଲିର କ୍ୱାଥ ରକ୍ତପିତ୍ତ ନାଶକ। ଏଥିର କାଠ ଖୁବ ମଜଭୁତ ଏ ଗଛର ଛାଲକୁ ଚିରିଦେଲେ ସେଥିରୁ ଏକପ୍ରକାର ଅଠା ବାହାରେ।

**ପିୟାସାଳ**—ଦେ. ବି.—(ସଂ. ପୀତଶାଳ) ଆରଣ୍ୟ ଉଚ୍ଚ ତରୁବିଶେଷ—
Piyāsāla The Indian Kino tree;
ସଂ—ପୀତସାର, ପୀତଶାଳ, Pterocarpus Marsupium;

ପ୍ରିୟକ, ସର୍ଜକ, ଜୀବକ,ଅସନ, ସାଜକ; ମହାସର୍ଜ, ବନ୍ଧୂକପୁଷ୍ପ ପ୍ରିୟସାଲକ — Pterocarpus Acuminata (Haines). Pentaptera Tomentosa.
ପିଆଶାଳ
पिआसार ;असना,सज
पियासाल , प्यासाल्
ତେ—ମାର୍ଦ୍ଦି, ମଦ୍ଦି
ମ—ହୋଦଲ
ଗୁ—ବଷ୍ୟାଂ
ଫା—କମରକସ୍

[ଦ୍ର—ଏହାର କାଠ ଗାଛ ବା ଆରଲ୍ଲୁ ଗାଛ, ଏ ଗଛରୁ ଗାଢ଼ ରକ୍ତ ବର୍ଣ୍ଣ ନିର୍ଯ୍ୟାସ (gum kino) ବାହାରେ । ଏହାର କାଠ ଶାଳ କାଠ ପରି ଶକ୍ତ ନୁହେ । କିନ୍ତୁ ଏ କାଠରେ ବାକ୍ସ, କବାଟ, ଚଉକି, ପଲଙ୍କ, ଖଟ, ଟେବଲ ଆଦି ତିଆରି ହୁଏ । ଓଡ଼ିଶାର ଗଡ଼ଜାତମାନଙ୍କରେ ଏ ଗଛ ଅନେକ ଜନ୍ମେ । ଏ ଗଛ ଶୀତଦିନେ ପତ୍ରହୀନ ହୁଏ । ଏଥିର ଛାଲରୁ ହଳଦିଆ ରଙ୍ଗ ତିଆରି ହୁଏ । ସିଂହଭୂମି ଓ ଛୋଟନାଗପୁର ଅଞ୍ଚଳରେ ଏ ଗଛରେ ଟସର ପୋକମାନେ ଗୋଟି ବାନ୍ଧନ୍ତି । ସ୍ଥାନେ ସ୍ଥାନେ ଏଥିରେ ଲାକ୍ଷା ପୋକ ମଧ୍ୟ ଲାଗନ୍ତି । ବୈଦ୍ୟକ ମତରେ ପିଆସାଲ, ଶ୍ୱିତ୍ର, କୁଷ୍ଠ, ବିସର୍ପ, ପ୍ରମେହ, ଗୁହ୍ୟକ୍ରିମି, କଫ, ରକ୍ତପିତ୍ତ ଦୂର କରେ ଓ କେଶ ଓ ଚର୍ମର ହିତକର ଅଟେ । ]

**ପିର**—ବୈଦେ. ବି. ( ଫା. ପୀର )—
Pira — ୧ । ମୃତ୍ୟୁ ପରେ ପୂଜିତ ମୁସଲମାନ୍ ମହାପୁରୁଷ, ମୁସଲମାନ୍ ପୁଣ୍ୟାତ୍ମା ବା ଧାର୍ମିକ ବ୍ୟକ୍ତି, ମହାତ୍ମା—
পীর — 1. A Mahomedan saint worshipped after his death.
पीर
୨ । ହିନ୍ଦୁମାନଙ୍କଦ୍ୱାରା ପୂଜିତ ସତ୍ୟପୀର—
2. Satyapir who is worshipped by the Hindus.
[ ଦ୍ର—ପାଲ୍ଲ ତଳେ ନୋଟ ଦେଖ । ]
୩ । ଧର୍ମଗୁରୁ—3. A religious preceptor.
ଦେ. ବିଣ. ( ଲକ୍ଷଣାର୍ଥ; ବ୍ୟଙ୍ଗ ) ସମସ୍ତଙ୍କଠାରୁ ବେଶି—
( ironical ) Greatest.
( ଯଥା—ସେ ଦୁଷ୍ଟଙ୍କ ପିର ଅଟେ । )

**ପିରଙ୍କ ଆସ୍ଥାନ**—ଦେ. ବି. ( ଫା. ପୀର+ସଂ. ଆସ୍ଥାନ )—
Piranka āsthāna — ପ୍ରସିଦ୍ଧ ମୁସଲମାନ୍ ମୃତ ମହାତ୍ମାଙ୍କର କବରସ୍ଥାନ — The grave of a Mahomedan saint
পীরের আস্থান
पीरका आस्थान
[ ଦ୍ର—ଓଡ଼ିଶାରେ ଅନେକ ସ୍ଥଳରେ ହିନ୍ଦୁମାନେ ମୁସଲମାନଙ୍କ ପିରଙ୍କୁ ପୂଜା କରିବା ଦେଖାଯାଏ । ସେଠାରେ ମୁସଲମାନ୍ ପୁରୋହିତମାନେ ଶୀରଣୀ (ଭୋଗ)କୁ ଫାତିଆ (ନୈବେଦ୍ୟ) କରିବା ପରେ ତାହା ହିନ୍ଦୁମାନେ ଗ୍ରହଣ କରିବାର ଦେଖାଯାଏ । କଟକ ସହରରେ କଦମରସୁଲ ଗୋଟିଏ ପ୍ରସିଦ୍ଧ ପିର ।
ଖୋର୍ଦ୍ଧାର କାଇପଦରରେ ବୋଖାରୀ ସାହେବ ମଧ୍ୟ ପିର ଅଟନ୍ତି । ]

**ପିରଙ୍କ ସାଙ୍ଗରେ ଥଟ୍ଟା ଖେଳିବା**—ଦେ. କ୍ରି—ମାନ୍ୟ ବ୍ୟକ୍ତିଙ୍କୁ ଅପମାନ ଦେବା—To treat a man deserving reverence with disregard.
Piranka sāngare thaṭṭā kheḷibā
পীরের সঙ্গে ঠাট্টাকরা
पीरका साथ दिल्लगी करना

**ପିରଙ୍କ ସାଙ୍ଗେ ଗୋସ୍ତାକି କରିବା**—ଦେ—ପିରଙ୍କ ସାଙ୍ଗରେ ଥଟ୍ଟା ଖେଳିବା (ଦେଖ)—
Piranka sānge gostāki karibā — Piranka sāngare thaṭṭā kheḷibā (See).
পীরের সঙ্গে গোস্তাকী করা
पीरको साथ गोस्ताखी करना

**ପିରଡ଼ା**—ପ୍ରାଦେ. (ସମ୍ବଲପୁର) ବି—(ଭୁଲ ସଂ. ପୀଠ)—ପିଢ଼ା, ଛପର ଘରର ଗୁଳର ଉପରଭାଗ; ଛାତ—Roof of a thatched house.
Piraḍā
(ପିରଡ଼ା, ପିଡ଼ା – ଅନ୍ୟରୂପ)

**ପିରତି**—ଗ୍ରା. ବି—(ସଂ. ପ୍ରୀତି)—୧ । ପ୍ରଣୟ—1. Love.
Pirati
পীরিত ୨ । କାମବୃତ୍ତି ସମ୍ପୃକ୍ତ ପ୍ରଣୟ—
(ପିରିତି – ଅନ୍ୟରୂପ) 2. Amorous love.

**ପିରାମିଡ଼୍**—ବୈଦେ. ବି. (ଇଂ)—ଆଫ୍ରିକା ମହାଦେଶର ଉତ୍ତରସ୍ଥ ବା ମିଶର ଦେଶର ପ୍ରାଚୀନ ରାଜାମାନଙ୍କର ସମାଧିସ୍ତୂପ—Pyramid; the Pyramids of Egypt.
Pirāmiḍ
পিরামিড্
पिरामीड
[ ଦ୍ର—ଏଥିରେ ସେମାନଙ୍କର ମୃତ ଦେହ ପୋତା ଯାଉଥିଲା । ଏହା ଇଟା ଓ ପଥରର ଚତୁଷ୍କୋଣ କ୍ଷେତ୍ର ଉପରେ କ୍ରମସୂକ୍ଷ୍ମ ତ୍ରିଭୁଜାକାରର ସ୍ତୂପରୂପେ ଉଠି ଗୋଟିଏ ବିନ୍ଦୁରେ ଶେଷ ହୋଇଥାଏ ।]

**ପିରାଲି**—ବୈଦେ. ବି—୧ । ମୁସଲମାନଙ୍କ ଅନ୍ନ ସ୍ପର୍ଶନ ବା ଘ୍ରାଣ କରିଥିବା ଯୋଗୁଁ ପତିତ ବଙ୍ଗୀୟ ବ୍ରାହ୍ମଣବିଶେଷ—1. A class of Brāhmaṇas of Bengal who are considered fallen on account of their ancestors having touched food cooked by Mahomedans.
Pirāli
পীরালী
[ଦ୍ର—ସପ୍ତଦଶ ଶତାବ୍ଦୀରେ ଯଶୋହରର ଶାସନକର୍ତ୍ତା ପୀର୍-ଅଲ୍ଲୀଙ୍କ ଦତ୍ତ ଅନ୍ନକୁ କେତେକ ବଙ୍ଗୀୟ ବ୍ରାହ୍ମଣ ସ୍ପର୍ଶ କରିଥିବାରୁ ସେମାନେ ପତିତ ବୋଲି ବିବେଚିତ ହୋଇଥିଲେ ଓ ସେହିମାନଙ୍କ ବଂଶଧରମାନେ ବଙ୍ଗରେ ପିରାଲୀ ବ୍ରାହ୍ମଣରୂପେ ଅବଧି ପରିଚିତ । ]
୨ । ଏକପ୍ରକାର ପଗଡ଼ି—2. A kind of turban.
[ ଦ୍ର—ଏହି ପଗଡ଼ି ବଙ୍ଗର ପିରାଲୀ ବ୍ରାହ୍ମଣମାନେ ପ୍ରଥମେ ଉଦ୍ଭାବନ କରିଥିବାର କଥିତ ।]

**ପିରି**—ଗ୍ରାମ୍ୟ. ଅ—ପରି; ପ୍ରାୟ; ସମାନ—Like.
Piri
ପ୍ରାଦେ (ଜୟପୁର) ବି—କୁଟା, ପାଳ—Crushed straw

**ପିରିଅଡ଼୍**—ବୈଦେ. ବି. (ଇଂ)—୧ । ନିର୍ଦ୍ଦିଷ୍ଟ କାଳ—1. Period (of time)
Piriaḍ
পিরিয়ড্ ୨ । ସ୍କୁଲରେ ଛାତ୍ରମାନେ ଗୋଟିଏ ବିଷୟ ପଢ଼ିବା ପାଇଁ
पिरियड् ରୁଟିନ୍ ଅନୁସାରେ ନିର୍ଦ୍ଧାରିତ କାଳ—2. A period for studying in school according to the routine.

**ପିରିକ**—ବୈଦେ. ବି. (ଇଂ. ପ୍ରିକ୍)—୧ । ପିରିକ କଣ୍ଟା (ଦେଖ)—1. Pirika kaṇṭā (See).
Pirika

ପେବେକ୍ ଦେ. ବ—( ସ. ପୁଷ୍ଟା; କସାର )—ପିରିକ, କଣ୍ଟା
ପିଏଁକ ପିରିକ୍, ଏକପ୍ରକାର କଣ୍ଟାଯୁକ୍ତ ଗୁଦାଳଥା ବନ୍ୟ ଗୁଳ୍ମ—
কাঁটাগুডকামাই A kind of thorny wild plant; Caparis Sepiaria

[ଦ୍ର—ଏ ଗଛ ଉଚ୍ଚରେ ତିନ ହାତ ହେବ। ଏହାର ଡାଙ୍ଗ ଖୁବ୍ ଶକ୍ତ, କଣ୍ଟା ଛୋଟ ଛୋଟ ଓ ମୁନୟା, ଏହାର କୋଳ ପାଚିଲେ ଖାଆନ୍ତି। ଫୁଲ ଟେଙ୍ଗା ପେଙ୍ଗା, ଫଳ ଓ ବାସନାଯୁକ୍ତ। ଏ ଗୁଳ୍ମର କାଣ୍ଡ ଶେତାଭ, କନ୍ତୁ ଖୁବ୍ ଟାଣୁଆ ଓ ଏଥିରେ ସହଜରେ ଉଇ ଧରନ୍ତି ନାହିଁ ବୋଲି ଲୋକ ଘରମାନ ତାନ୍ତରେ ଏହାକୁ ଦଅନ୍ତି।]

ପିରିକ କଣ୍ଟା—ଦେ. ବ— ଇ°. ପ୍ରିକ୍+ସ. କଣ୍ଟକ )—୧। ଛୋଟ
Pirika kanṭā ଲୁହା କଣ୍ଟା—1. Small iron pins; prick
পেবেককাঁটা परेककाँटा ୨। ପିରିକ ଗୁଳ୍ମର କଣ୍ଟା—
(ପିରିକ କଣ୍ଟା—ଅନ୍ୟରୂପ) 2. The thorn of Pirika plant.

ପିରିକା—ଗ୍ରାମ୍ୟ. ଅ — ପିରି (ଦେଖ)
Pirikā Piri (see)
(ପରିକା – ଅନ୍ୟରୂପ) (ଯଥା—ମୋ ପରିକା ସେ ନୁହେଁ)

ପିରିକି—ବୈଦେ. ବ. (ଇ°)—ପିରିକ କଣ୍ଟା (ଦେଖ)
Piriki Pirika kanṭā (see)
ଦେ ବ.—ପିରିକ (ଦେଖ)—Pirika (see).

ପିରିଚ—ବୈଦେ. ବ. (ପର୍ତ୍ତୁଗୀଜ ପିରିଚ)—ଛୋଟ ଥାଳିଆ—
Pirich Small plate; saucer.
পিরিচ, पिरिच

ପିରିଚ୍ ପିଆଲା—ବୈଦେ. ବ. (ସହଚର ଶବ୍ଦ; ପର୍ତ୍ତୁଗୀଜ୍, ପିରିଚ୍+
Pirich piālā ଫା. ପ୍ୟାଲ)—ଥାଳିଆ ଓ ତହିଁ ସଙ୍ଗର ଗିନା —
পিরিচ পেয়ালা Plate and cup, saucer and cup.
पिरिजप्याला [ଦ୍ର—ଗୁହା ଖାଇବାପାଇଁ ପିଆଲାରେ ଗୁହା ଥାଏ ଓ ତାକୁ ଢାଳକରି ପିରିଚରେ ପିଅନ୍ତି]

ପିରୁଆ—ଦେ. ବ.—ପିଢ଼ିଆ (ଦେଖ)
Piruā Pirḍiā (see)

ପିରୁଡ଼ି—ଦେ. ବ.—ଶସ୍ୟଶେଷ ପଡ଼ିଆ ପଡ଼ିଗଲେ ତହିଁରେ ଉଠିବା ଏକ
Pirurḍi ପ୍ରକାର ଘାସ—A kind of wild grass growing on corn fields lying fallow.

ପିରୋଗ—ଗ୍ରାମ୍ୟ. ବ.—ପ୍ରୟୋଗ—
Piroga Application; applying.
ସେବଣ ବେ.ବ ଘଣ୍ଟି ଔଷଧ ଦେଇଥିଲ ଦିନ
ଖୁବ ହୋଇ ତାକୁ ତାହା ପିରୋଗ କଲେ। ସ୍ୱାତୀ, ଇତ୍ୟାଦି।

ପିରୋଜ(ଜା)—ବୈଦେ. ବ. (ଫା. ଫୀରୋଜା)—ବୈଦୂର୍ଯ୍ୟମଣି—
Piroja(jā) The Beryl (gem).
পিরোজা पिरोजा (ଯଥା—ଏହା ପିରୋଜ ନାଳକଣ୍ଠି ମଣି।)

ପିରୋତ୍ତର—ଦେ. ବ. (ତୁଳନୀୟ—ଦେବୋତ୍ତର; ବ୍ରହ୍ମୋତ୍ତର)—
Pirottara ମୁସଲମାନ ପୀରଙ୍କ ଅସ୍ଥାନରେ ସେବା ପୂଜା ନିମନ୍ତେ
পিরোত্তর ଲଗା ଥିବା ବୃତ୍ତି—Endowments for main-
पीरोत्तर taining worship at the tombs of
(ପିରବୃତ୍ତ, ପିରବୃତ୍ତି, ପିରୋତ୍ତର—ଅନ୍ୟରୂପ) Mahomedan saints.

ପିଲ୍—ବୈଦେ ବ. (ଇ°. ପିନ୍, ଇ°. ପିଲାର; ଫା. ପିଲ୍ପାୟା)—
Pil ୧। ଛୋଟ କାଠ୍ବା ବାଉଁଶ ଖିଲ—
পীল 1 Wooden or bamboo peg.
मेख ୨। ଖୁଣ୍ଟ, ଖୁଣ୍ଟି—2. Pillar.
୩। ସୀମାନିର୍ଦ୍ଦେଶକ ଖୁଣ୍ଟି—3 Boundary pillar.
୪। (ଇ°. ପିଲ୍)—ବଟିକା, ବଟି—4. Pill.
୫। (ଫା. ପୀଲ୍=ହାତୀ) ସତରଞ୍ଜ ଖେଳର ହାତୀ—
5. The elephant piece in the game of chess.

ପିଲ୍ଖାନା—ବୈଦେ. ବ. (ଫା. ପୀଲ୍=ହାତୀ+ଖାନା=ଶାଳା)—
Pil-khānā ହାତୀଶାଳ—A stable for an elephant.
পীলখানা पीलखाना

ପିଲ୍ଗାଡ଼ି—ବୈଦେ ବ. (ଫା. କଚରିଆ)—ଭୂମିରେ ଖୁଣ୍ଟ ପୋତା—
Pil-gārḍi Insertion of a peg into the ground.
পিলগাড়ী पिलगाड़ी

ପିଲ୍ଗାଡ଼ି କରିବା—ଦେ. କ୍ରି. (କଚରିଆ)—ପିଲ୍ ଗାଡ଼ିବା (ଦେଖ)
Pil-gārḍi karibā Pil-gārḍibā (See)

ପିଲ୍ ଗାଡ଼ିବା—ଦେ. କ୍ରି. ( କଚରିଆ )—୧। ଖୁଣ୍ଟପୋତିବା—
Pil gārḍibā 1. To drive or insert a peg into the ground.
୨। ଖୁଣ୍ଟପୋତି ସୀମା ନିର୍ଦ୍ଦେଶ କରିବା—
2 To put boundary pillars on the ground.

ପିଲ—ଦେ. ବ—କଦଳୀଗଛ ପିଣ୍ଡରୁ ବାହାରିବା କ୍ଷୁଦ୍ର ପୁଆ, କଦଳୀ ଓଧ—
Pila Small seedlings or tubers coming out of the root of a plantain tree.
ପ୍ରାଦେ. (ବାଲେଶ୍ୱର) ବ—ଇଲିଶି ମାଛର ଛୁଆ—
(ପିଲଛୁଆ—ଅନ୍ୟରୂପ) The fry of Hilsa fish.

ପିଲପାଇଆ—ବୈଦେ. ବ. (ଫା. ପିଲ୍ ପାୟ=ହାତୀଗୋଡ଼; ହାତୀ
Pilapāiā ଗୋଡ଼ ପରି ମୋଟ)—୧। ମୋଟ ଓ ଛୋଟ ଖୁଣ୍ଟି—
পীলপায়া; পীল্পা 1. Small and stout pillar.
पीलपाया; पोल्पा ୨। ସୀମାଖୁଣ୍ଟି—2. Boundary pillar.
୩। ଖୁଣ୍ଟ—3. Pillar; column.
(ପିଲପାୟା, ପିଲପାହୁଆ, ପିଲପାହ୍ୟା, ପିଲପାଇଆ, ପିଲପାହୁଆ, ପିଲପାହ୍ୟା—ଅନ୍ୟରୂପ)

ପିଲବାଡ଼—ଦେ. ବ—୧। ଛୋଟ ଖିଲା—
Pilabārḍi 1. Small peg
୨। ଦୁଇଖଣ୍ଡ ବାଉଁଶ ବାଡ଼ିରେ ଖେଳ—
2. Fencing with sticks.
[ଦ୍ର—ଏଥିରେ ଦୁଇଦଳ ହୋଇ ଖେଳନ୍ତି। ବଡ଼ ବାଡ଼ିର ନାମକୁ "ପିଲ" ଓ "ଆରବା" କହନ୍ତି।]

ପିଲ(ଲି)ସଜ—ଦେ.ବ. (ଫା.ଫତୀଲ୍ ସୋଜ୍=ପିତ୍ତଳପାପ; ସ.ଦୀପଗର୍ଭ)—
Pila(li)sajā ୧। ପିତ୍ତଳର ଦୀପରୁଖା; ପିତ୍ତଳର ଦୀପବୃକ୍ଷ; ପିତ୍ତଳ
পিলসুজ ଦୀପାଧାର—1 Brass lamp-stand.
फतीलसोज, दीवट ୨। ଗଛଦୀପ; ଯେଉଁ ବୃକ୍ଷାକାର ଦଣ୍ଡରେ ସ୍ତର

ପିଲସେଜ
ପିଲ୍‌ସୁଜ
ପିଲ୍‌ସୁଜ } ଅନ୍ୟରୂପ] ସ୍ତର କରାଇ ଉପର୍ଯୁପରି ପ୍ରଦୀପଶ୍ରେଣୀ ସଜ୍ଜା ହୋଇଥାଏ । ଶାଖାବିଶିଷ୍ଟ ଦୀପବୃକ୍ଷ—
ପିଲ୍(ଲ୍)ସୋଜ 2. A chandelier for oil lamps.

ପିଲ୍ଲ—ଦେ. ବି. (ଦ୍ରାବିଡ଼. ପିଲ୍ଲ=ଶିଶୁ, ବାଳକ, ତୁଳନାକର ସଂ ବାଲ;
Pilā ଛା, ପିଲ୍ଲେ)—୧ ଶିଶୁ, ସନ୍ତାନ—
ଛେଲେ; ଛାଲିଆ; ପିଲ୍ଲା; ପିଲେ 1. Child; offspring
**पिल्ला, छोकरा** (ଦ୍ର—ବଙ୍ଗଳାରେ ଏ ଶବ୍ଦ 'ଛେଲେ' ଶବ୍ଦ ସଙ୍ଗେ ସହଚରରୂପେ ବ୍ୟବହୃତ ହୁଏ, ଯଥା ଛେଲେ, ପିଲେ ।)
୨ । ଜୀବମାନଙ୍କର ଶିଶୁ—2 Little ones or offsprings of animals.
ଭୂରଙ୍ଗ ହୁଏ କ ଗ୍ରସଇ ପିଲ. କବିସୂର୍ଯ୍ୟ—ବଇଗା
୩ । ବାଳକ—3. Boy.
୪ । ଅପ୍ରାପ୍ତରଜସ୍ୱା କନ୍ୟା—
4 A girl before she attains puberty.
୫ । ନିଜର ସ୍ତ୍ରୀବାଳକାଦି ପରିବାରବର୍ଗ—
5. One's family consisting of one's wife and children.
ଦେ. ବିଣ.—୧ । କ୍ଷୁଦ୍ର ଓ ଅଳ୍ପବୟସ୍କ—1. Small and young.
(ଅନ୍ୟ ଶବ୍ଦ ସଙ୍ଗେ ଲାଗେ, ଯଥା—ପିଲ୍ଲାଗଛ)
୨ । ଅଳ୍ପବୟସ୍କ—2. Young.
୩ । କ୍ଷୁଦ୍ର—3. Small; tiny.
୪ । (ସଂ. ପୀତ)—ହଳଦିଆ—4. Yellow.
**पीला** ପ୍ରାଦେ. (ଭଳି ଭାଷା). ବି.—ପୁଅ—Son.

ପିଲା—ଦେ. ବିଣ. (ସଂ ପୀତ)—ଈଷତ୍ ହଳଦିଆ ରଙ୍ଗ—
Pilā **पीला** Yellowish colour.

ପିଲ୍ଲଏ—ଦେ. ବି (ବହୁବଚନ) ୧ । ପିଲ୍ଲମାନେ, ଶିଶୁମାନେ—
Pilāe 1. Children.
ଛେଲେରା ଅଣରେ ପିଲ୍ଲଏ ମୂଷାମାନ୍ତ, ନେଇ ଯାଇ ପସରଯାନ୍ତ.
**बच्चें** ଶଶୁଗୀତ.
୨ । ନିଜର ପରିବାରସ୍ଥ ସ୍ତ୍ରୀପୁତ୍ରାଦି—
1. Family members consisting of one's wife and children.
୩ । ଆପଣାର ସ୍ତ୍ରୀ—3. Wife (in euphemism).
[ଦ୍ର—ଲୋକେ 'ମୋ ସ୍ତ୍ରୀ' ବୋଲି ନ କହି 'ଆମ ପିଲ୍ଲଏ, ଆମ ଭିଆସ, ଆମ ଘରେ, ଆମ ଘରଆଡ଼େ' ଆଦି ବାକ୍ୟ ବ୍ୟବହାର କରିଥାଆନ୍ତି । ଯେଡ଼ର କି 'ମୋ ସ୍ତ୍ରୀ ବା ଭାରିଯା' ଶବ୍ଦଟା ବାଣ୍ଡଲୋକଙ୍କ ଆଗରେ ବ୍ୟବହାର କରିବାକୁ ଲାଜ ମାଡ଼େ । ଏହିପରି ମଧ୍ୟ ସ୍ତ୍ରୀମାନେ 'ମୋ ସ୍ୱାମୀ' ବୋଲି ନ କହି 'ଆମର ସେ, ଆମର ସେମାନେ, ଆମ ବାଣ୍ଡ ଆଡ଼େ' ଶବ୍ଦମାନ ବ୍ୟବହାର କରନ୍ତି । ]

ପିଲ୍ଲ କଥା—ଦେ. ବି—ପିଲ୍ଲ କୁହା ( ଦେଖ )
Pilā kathā Pilā kuhā ( See )

ପିଲ୍ଲ କନ୍ୟା—ଦେ. ବି—ଅରଜସ୍ୱା କନ୍ୟା—
Pilā kanyā Girl-bride; a girl given in marriage before attaining puberty.
ବାଚ୍ଚା ମେୟେ
**बच्ची लड़की** (ପିଲ୍ଲ କନିଆଁ—ଅନ୍ୟରୂପ)
(ବଡ଼ିଲ୍ଲ କନ୍ୟା—ବିପରୀତ)

ପିଲ୍ଲ କବିଲ୍ଲା—ଦେ. ବି. (ସହଚର ଶବ୍ଦ)—ପିଲ୍ଲ ଝିଲ୍ଲ ( ଦେଖ )
Pilā kabilā Pilā jhilā ( See )

ପିଲ୍ଲ କାଳ—ଦେ. ବି—୧ । ଶିଶୁକାଳ; ଶିଶୁ ଅବସ୍ଥା—
Pilā kāla 1. Childhood; boyhood; girlhood.
ଛେଲେ ବେଲା ୨ । ଅଳ୍ପ ବୟସ—2. Young age.
**बचपन**

ପିଲ୍ଲ କୁହା—ଦେ. ବି—୧ । ଶିଶୁର କଥା—
Pilā kuhā 1. A child's word; the words of a young person.
୨ । ଆପଣାଠାରୁ ଅଳ୍ପବୟସ୍କ ବ୍ୟକ୍ତିର ଉପଦେଶ—
2 The advice given by a younger person.
୩ । ଶିଶୁ ପରି ନଗଣ୍ୟ ଲୋକର ଉପଦେଶ—
3. Advice of an insignificant person.

ପିଲ୍ଲ ଖେଳ—ଦେ. ବି—୧ । ଶିଶୁ କ୍ରୀଡ଼ା—
Pilā khela 1. Child's play.
ଛେଲେ ଖେଲା ୨ । ଶିଶୁଙ୍କ କ୍ରୀଡ଼ା ଭଳି ଅସ୍ଥାୟୀ ଓ ଉପର ଠାଉରିଆ
**बच्चों की खेला** ବିଷୟ—2. Insignificant and superficial matter like children's play.

ପିଲ୍ଲ ଖୋଇ—ଦେ. ବି—ବାଳ ସ୍ୱଭାବ; ବାଳ ଚପଳ୍ୟ—
Pilā khoi Childishness.
ଛେଲେମୀ **बालपन, बचपन**

ପିଲ୍ଲ ଝିଲ୍ଲ—ଦେ. ବି. ( ସହଚର ଶବ୍ଦ )—
Pilā jhilā ୧ । ବାଳବଚ୍ଚା, ସନ୍ତାନ ସନ୍ତତି; ପୁଂ ଓ ସ୍ତ୍ରୀ ଶିଶୁ—
1. Children (both male and female).
ଛେଲେ ମେୟେ, ଛେଲେ ପୁଲେ, ଛେଲେ ପୀଲେ
**बाल बचे, बच्चाबच्ची**
୨ । ପୁତ୍ର ବା କନ୍ୟା—
2. Son or daughter.
× × × ଯ ହାଇ ପିଲ ଝିଲ ବଳ ନାହିଁ, ସେ କୁକୁର ପିଲଙ୍କୁ ଏ,
ବିରକ୍ତ ପିଲଙ୍କୁ ଏ × × × ଗୋଟି ଛାକୁ ଭଲ ପାଏ ।
ଫକୀରମୋହନ. ଛମାଣ ଅଠଗୁଣ୍ଠ ।
୩ । ସ୍ତ୍ରୀ ବାଳକାଦି ସମନ୍ୱିତ ଆପଣାର ପରିବାର—
2. One's family consisting of one's wife and children.

ପିଲ୍ଲଟିଆ—ଦେ. ବିଣ—ବାଲୋଚିତ; ବାଲ ସୁଲଭ—
Pilāṭiā Childlike; becoming a child; childish.
ଛେଲେମୋ, ଛେଲେମି
**लड़कपनकोसी** ପିଲ୍ଲଟିଆ ବଚନ ଶୁଣି ବଦି ବାଳେ । କୃଷ୍ଣସିଂହ. ମହାଭାରତ,
ଦେ. ବି—ବାଲ ସ୍ୱଭାବ—Childishness.

ପିଲ୍ଲ ଟୁକେଲ୍—ପ୍ରାଦେ. ( ସମ୍ବଲପୁର ) ବି—
Pilā ṭukel ପୁଅ ଝିଅ; ପିଲ୍ଲ ଝିଲ୍ଲ—
Children ( both male and female ).

**ପିଲ୍ଲଣି(ଣ୍ଟି)ଆ**—ଦେ. ଵଣ ଓ ଵ—ପିଲ୍ଲଟିଆ ( ଦେଖ )
Pilāṇi(ṇṭi)ā Pilāṭiā ( See )
( ଯଥା—ପିଲ୍ଲଣିଆ ଆଚରଣ, ପିଲ୍ଲଣ୍ଟିଆ ସମାଲୋଚନା । )

**ପିଲ୍ଲ ଦିନ**—ଦେ. ଵ—ପିଲ୍ଲକାଳ ( ଦେଖ )
Pilā dina Pilākāḷa ( See )
ପିଲ୍ଲ ଦିନ୍ ପୂଜନା ପ୍ରାଣ ବଵଳଥା । କବିସୂର୍ଯ୍ୟ. ସଙ୍ଗୀତ ।

**ପିଲ୍ଲ ପଣ**—ଦେ. ଵ—ପିଲ୍ଲ ଖୋଇ ( ଦେଖ )
Pilā paṇa Pilā khoi ( See )
[ପିଲ୍ଲ ପଣିଆ(ଅଁ)—ଅନ୍ୟରୂପ]

**ପିଲ୍ଲ ପାଇବା**—ପ୍ରାଦେ. ( ଗଞ୍ଜାମ ) କ୍ରି—
Pilā pāibā (ସ୍ତ୍ରୀ ଲୋକ) ସନ୍ତାନ ପ୍ରସବ କରିବା—
To give birth to a child.

**ପିଲ୍ଲ ପିଚିକା**—ଦେ. ଵ—୧ । ଶିଶୁ ଆଦିଙ୍କ ସହିତ ପରିବାରସ୍ଥ ବ୍ୟକ୍ତିଗଣ-
Pilā pichikā 1. The members of a family,
ଛୋଟେ ପିଲେ ଅସିଛୁ ଏକା, ସିବୁ ଏକା,
**बालबच्चे** ସାଙ୍ଗରେ ନ ଥିବେ ପିଲ୍ଲ ପିଚିକା—ଚଗ ।
(ପିଲ୍ଲ ପିଚକା—ଅନ୍ୟରୂପ) ୨ । ପିଲ୍ଲପିଲ; ସନ୍ତାନ ସନ୍ତତି—
2. Childen ( male and female ).
୩ । ଛୋଟ ପିଲ୍ଲ—3. Little child.
ମହାନ୍ତ ବନ୍ଧ ପିଲ୍ଲ ପିଚିକା ନ୍ହନ୍ତ । ଫକୀରମୋହନ, ଗଳ୍ପସ୍ୱଳ୍ପ ।
୪ । ପରିବାର—4. Family.

**ପିଲ୍ଲ ପିଲ୍ଲ**—ଦେ. ଵ. (ବହୁବଚନ)—ଛୋଟଛୋଟ; କ୍ଷୁଦ୍ର କ୍ଷୁଦ୍ର (ଅନେକ)-
Pilā pilā Tiny ( many ).
(ପିଲ୍ଲ ପିଲ୍—ଅନ୍ୟରୂପ)

**ପିଲ୍ଲ ପିଲ୍ଲି**—ଦେ. ଵ. (ସହଚର ଶବ୍ଦ)—ପିଲ୍ଲ ଝିଲ୍ଲ ( ଦେଖ )
Pilā pilī Pilā jhilā ( See )

**ପିଲ୍ଲ ବୟସ**—ଦେ. ଵ—ପିଲ୍ଲ କାଳ ( ଦେଖ )
Pilā bayasa Pilā kāḷa ( See )

**ପିଲ୍ଲ ବସାଣି**—ପ୍ରାଦେ. ( ଗଞ୍ଜାମ ) ଵ—ପ୍ରଥମେ ରଜସ୍ୱଳା ହେଲେ
Pilā basāṇi ବାଳକାର ସାତ ଦିନ ପର୍ଯ୍ୟନ୍ତ ଅସ୍ପୃଶ୍ୟାବସ୍ଥାରେ ସମସ୍ତଙ୍କଠାରୁ ପୃଥକ୍ ହେବା ବିଧାନ—Separate living of a newly menstruated girl for a week after the appearance of her menses.

**ପିଲ୍ଲାବାଲ୍ଲୀ**—ଦେ. ଵଣ. ସ୍ତ୍ରୀ—୧ । ଯାହା କୋଡ଼ରେ ସ୍ତନନ୍ଧୟ ଶିଶୁ ଥାଏ—
Pilābālī 1. Nursing mother.
**बच्चावाली** ୨ । ବହୁ ସନ୍ତାନଙ୍କ ମାତା—2. A mother of many children.
(ପିଲ୍ଲ ବୁଆଲ୍ଲୀ—ଅନ୍ୟରୂପ)

**ପିଲ୍ଲ ବୁଦ୍ଧି**—ଦେ. ଵ—ପିଲ୍ଲ ଖୋଇ ( ଦେଖ )
Pilā buddhi Pilā khoi ( See )

**ପିଲ୍ଲ ମଣି(ନି)ଷ**—ଦେ. ଵ—ଅଳ୍ପ ବୟସ୍କ ଶିଶୁ—
Pilā maṇi(ni)sha A mere child.
**छोटे मानुष बच्चा आदमी**
(ପିଲ୍ଲ ଲୋକ, ପିଲ୍ଲ ମଣଷ—ଅନ୍ୟରୂପ)

**ପିଲ୍ଲମି**—ଦେ. ଵ. (ବଙ୍ଗଳା ପ୍ରତ୍ୟୟର ଅନୁକରଣ; ତୁଳ. ଛେଲେମି)—
Pilāmi ବାଲ ଚପଳତା; ପିଲ୍ଲଟିଆ କଥା—Childishness.
**छेलेमी लड़कपन**

**ପିଲ୍ଲଳିଆ**—ଦେ. ଵଣ—ପିଲ୍ଲଟିଆ ( ଦେଖ )
Pilāḷiā Pilāṭiā ( See )

**ପିଲ୍ଲସ**—ଦେ. ଵ. ( ଵିଦେଶୀ ଶବ୍ଦ ) ( ତୁଳ. ଇଂ. ପିନ୍‌ସର୍ସ; ପର୍ତ୍ତ୍ତ.
Pilāsa Pincers )—
ଏକ ପ୍ରକାର ଲୁହାର ଚିମୁଟା ବା ସଣ୍ଡୁଆସି—
A kind of iron pincers.

**ପିଲି**—ଦେ. ଵଣ—ଛୋଟ; କ୍ଷୁଦ୍ର—
Pili Small; tiny.

**ପିଳିଆ(ହା)(ଇତ୍ୟାଦି)**—ଦେ. ଵ—ପିଳେହି ଇତ୍ୟାଦି ( ଦେଖ )
Piḷiā(hā) (etc) Piḷehi etc ( See )

**ପିଲପିଲା**—ଦେ. ଵ—ମନୁଷ୍ୟର ଅତର୍କ୍କି ବା ଭୟତ୍ରସ୍ତ ହେବା ଅବସ୍ଥା—
Pilipilā Sudden panic.
**तिलमिला**

**ପିଲି ପିଲା(ଲେ)ଇବା**—ଦେ. କ୍ରି—ଭୟରେ ସନ୍ତ୍ରସ୍ତ ହେବା; ଅତର୍କ୍କି
Pili pilā(le)ibā ହେବା—To be panic-stricken.
**तिलमिलाना**

**ପିଲୁ**—ଦେ. ଵ—ସୀତାରର ଘତବିଶେଷ—
Pilu Name of a musical air of the guitar.

**ପିଲୁକ**—ସ. ଵ—ପୀଲୁ (ବୃକ୍ଷ) (ହି. ଶ.) ( ଦେଖ )
Piluka Pīlu ( See )

**ପିଲୁ ଗଛ**—ଦେ. ଵ. ( ସ. ପୀଲୁ )—ପୀଲୁ ( ଦେଖ )
Pilu gachha Pīlu ( See )

**ପିଲେ**—ଦେ. ଵ. (ବହୁବଚନ)—ପିଲ୍ଲମାନେ—
Pile Youngsters; children.

**ପିଳେଇ (ଇତ୍ୟାଦି)**—ଦେ. ଵ—ପିଳେହି ଇତ୍ୟାଦି ( ଦେଖ )
Piḷei (etc) Piḷehi etc. ( See )

**ପିଲେଇତି**—ଦେ. ଵ. (ସ୍ତ୍ରୀ)—୧ । ପିଲ୍ଲବାଲ୍ଲୀ; ପ୍ରସୂତି; ସନ୍ତାନବତୀ ସ୍ତ୍ରୀ;
Pileiti ଯେଉଁ ସ୍ତ୍ରୀର କୋଡ଼ରେ ପିଲ୍ଲ ଥାଏ; ଦୁଗ୍ଧପୋଷ୍ୟ
**बच्चावाली** ସନ୍ତାନବତୀ ସ୍ତ୍ରୀ—1. A woman having a sucking child.
୨ । ବହୁ ସନ୍ତାନ ସନ୍ତତିଙ୍କ ମାତା—
2. Mother of many children.

**ପିଲେଇବା**—ଦେ. କ୍ରି.—୧ । ପ୍ରୟୋଗ କରିବା—
Pileibā 1. To apply.
୨ । (ବୁଦା ଆଦି ସତେଜ ହୋଇ) କୁଆଁ ମାରିବା —
2. (a bush) To shoot forth sprouts.
ପ୍ରାଦେ (ଗଡ଼ଜାତ) (ବେଉଷଣପରେ ଧାନଗଛ) ମୂଳରୁ ଏକାଧିକ କୁଆଁ ଦେଇ ବୁଦାଳିଆ ହୋଇ ଉଠିବା —
(the paddy plant) To sprout into bushy shoots after puddling.

**ପିଳେହି**—ଦେ. ଵ.—(ସ ପ୍ଲୀହା)—୧ । ପ୍ଲୀହା—
Piḷehi 1. Spleen.
ପିଳା, ପିଳେ ୨ । ପ୍ଲୀହା ବୃଦ୍ଧି ରୋଗ—2. Enlargement of the spleen.
**तिल्ही, तिल्ली**
(ପଳେଇ, ପିଲୋଇ, ପିଳୋହି, ପ୍ଳିଆ, ପିଳହା—ଅନ୍ୟରୂପ)

ପିଲେହ୍ନ ଜ(ଜ୍ୱ)ର—ସ. ବି.—ପ୍ଲୀହାର ବୃଦ୍ଧିଯୁକ୍ତ ରୋଗ—
Pilehi ja (jwa)ra Fever accompanied with
পিলেজ্বর तापतिल्लि enlargement of the spleen; spleen fever.

ପିଲେହ୍ନ ପାଣି ହେବା—ଦେ. ବି.—ଭୟରେ ଅସ୍ଥିର ହେବା,
Pilehi pāṇi hebā ଅଉର୍ଦ୍ଧହେବା—Being alarmed.
পিলেচমকা

ପିଲେହ୍ନ ଫାଟିବା—ଦେ. ବି.—ପେଟ ଉପରେ ଗୁରୁତର ଆଘାତ ଯୋଗୁଁ
Pilehi phāṭibā ପ୍ଲୀହା ଫାଟିଯିବା—
পিলেফাটা तिल्ली फटना Rupture of the spleen.

ପିଲେହ୍ନ ମାରିବା—ଦେ. କ୍ରି.—ନାନା ଉପାୟରେ ବା ଉଦର ଉପ ଅଙ୍ଗରେ
Pilehi māribā ଡଉଆଦ ଦେଇ ବର୍ଦ୍ଧିତ ପିଲେହ୍ନକୁ ସାଧାରଣ ଆକାରକୁ ଆଣିବା—To reduce an enlarged spleen to its proper shape by branding the belly with hot iron etc.

ପିଲ୍ଲ—ସ.ବିଣ.ପୁଂ—କ୍ଲିନ୍ନଚକ୍ଷୁ, ଯାହାର ଆଖି ସବୁବେଳେ ଲେଦେଇଯୁକ୍ତ—
Pilla (ପିଲ୍ଲା—ସ୍ତ୍ରୀ) Blear-eyed.
ସ. ବି—ନେତ୍ର ରୋଗବିଶେଷ— An eye-disease.

ପିଲ୍ଲକା—ସ. ବି.—ହସ୍ତିନୀ, ହାତୁଣୀ (ହ୍ନ. ଶ)
Pillakā A female elephant.

ପିଲ୍ଲା—ଦେ. ବି.—ପିଲ୍ଲ (ଦେଖ)
Pillā Pilā (See)

ପିଲ୍ଲି—ଦେ. ବିଣ.—ପିଲି (ଦେଖ)
Pilli Pili (See)
ପ୍ରାଦେ (ସମ୍ବଲପୁର) ବି.—ପୁଅ (ଦେଖ)—Pua (See)

ପିଲ୍ହା—ପ୍ରାଦେ (ମେଦନୀପୁର). ବି.—ପ୍ଲୀହା—
Pil-hā Spleen.

ପିଲ୍ହୁ—ଦେ. ବି.—(ସ. ପ୍ଲୀହା)—ଛେଳି ଓ ଗୋରୁଙ୍କର ଉଆଁରୋଗ
Pil-hu ବିଶେଷ—Anthrax; splenic fever; splenic apoplexy, a fatal disease of sheep and cattle.

ପିଶ୍ (ଧାତୁ)—ସ.—୧ । ତରଳିଯିବା; ଗଳିତ ହେବା—1. To melt.
Pis ୨ । ମିଳାଇଯିବା—2 To dissolve.
୩ । ଚୂର୍ଣ୍ଣ କରିବା—3. To pound; to powder.
୪ । ସାଫ୍ କରିବା—4. To brighten.
୫ । ନଷ୍ଟ କରିବା—5. To destroy; to spoil.
୬ । ଅବୟବୀଭୂତ ହେବା—
6. To be organised; to form a part of the body.
୭ । ଆଲୋକିତ କରିବା—7. To light.
୮ । ପ୍ରବେଶ କରିବା—8. To enter.

ପିଶ୍ ବୋର୍ଡ୍—ବୈଦେ. ବି. (ଇଂ ପେଷ୍ଟ୍ ବୋର୍ଡ୍)—ମୋଟା କାଗଜର
Pis-bord ଚଲ୍ଲା—Paste board.
পিশ্‌বোড় वस्‌ति

ପିଶଙ୍ଗ—ସ. ବି. (ପିଶ୍ ଧାତୁ + କର୍ତ୍ତୃ ଅଙ୍ଗ)—ପିଙ୍ଗଳ ବର୍ଣ୍ଣ—
Pisanga Tawny colour.
ସ ବିଣ.—ପିଙ୍ଗଳ—Tawny
ପିଶଙ୍ଗ ବସ୍ତ୍ର ପରିଧାନ
ମୃଦୁ ଜଳଦ ନମ୍ରନ—ଜଗନ୍ନାଥ ଦାସ.
ଦେ. ବିଣ—ରଞ୍ଜିତ—Dyed.
ପିଶଙ୍ଗ ...
...

ପିଶଙ୍ଗିତ—ସ. ବିଣ. (ପିଶଙ୍ଗ + ଅସ୍ତ ଅର୍ଥରେ ଇତ)—ପିଙ୍ଗଳବର୍ଣ୍ଣ
Pisangita ହରିଦ୍ରା—Tawny.

ପିଶା—ପ୍ରାଦେ (ମେଦନୀପୁର) ବି.—(ଭୂଜ ବା ପୀଶୋ)—ପିଇସା—
Pisā The husband of one's father's sister.

ପିଶାଚ—ସ. ବି. ପୁଂ (ପିଶିତ=ମାଂସ+ଅଶ୍ ଧାତୁ=ଖାଇବା + କର୍ତ୍ତୃ. ଅ;
Pisācha ନିପାତନ)—୧ । ଦେବଯୋନି ବିଶେଷ—
(ପିଶାଚୀ—ସ୍ତ୍ରୀ) 1 A class of celestial beings, imp; ghost.
୨ । ମାଂସାଶୀ ରାକ୍ଷସ, ପ୍ରେତ ଯୋନି ବିଶେଷ, ଦୈତ୍ୟ,—
2. A malignant spirit; meat-eating demon, a devil; fiend.
୩ । (ଲକ୍ଷଣାର୍ଥ) ନରାଧମ—
3. (figurative) A mean or wicked person.
ଦେ. ବିଣ—୧ । ଦୁଷ୍ଟ—1. Wicked.
୨ । ନିଷ୍ଠୁର—2. Cruel.
୩ । ନିର୍ଲଜ୍ଜ—3. Shameless.
୪ । କୃପଣ—4. Miserly.
୫ । ଲୋଭୀ—5 Avaricious.
୬ । ପୈଶାଚିକ—6. Fiendish; devilish

ପିଶାଚ ଅଗ୍ନି—ଦେ. ବି. (ସ ପିଶାଚାଗ୍ନି)—ଚରଗୁଣୀ ଆଲୁଅ—
Pisācha agni Will-o-the-wisp.
পেত্নীর আলো
...

ପିଶାଚକ—ସ. ବି. ପୁଂ. (ପିଶାଚ+ସ୍ୱାର୍ଥେ କ)—ପିଶାଚ (ଦେଖ)
Pisāchaka (ପିଶାଚିକା—ସ୍ତ୍ରୀ) Pisācha (See)

ପିଶାଚକୀ—ସ. ବି. ପୁଂ. (ପିଶାଚକ+ଇନ୍, ୧ମା. ୧ବ)—କୁବେର—
Pisāchaki A name of God Kubera.

ପିଶାଚ ପ୍ରକୃତି—ସ. ବି. (୬ଷ୍ଠୀ ତତ୍)—ଦୁଷ୍ଟବୁଦ୍ଧି—
Pisācha prakruti Fiendish nature.
ସ. ବିଣ. (ବହୁବ୍ରୀହି)—ପିଶାଚ ପ୍ରକୃତିବିଶିଷ୍ଟ—
Of a fiendish nature

ପିଶାଚ ପ୍ରକୃତିକ—ସ. ବିଣ. ପୁଂ. (ପିଶାଚ+ପ୍ରକୃତି + କ)—
Pisācha prakrutika ପୈଶାଚିକ—Of a fiendish
(ପିଶାଚ ପ୍ରକୃତିକା—ସ୍ତ୍ରୀ) nature.

ପିଶାଚ ବୃକ୍ଷ—ସ. ବି—ଶାଖୋଟ, ଶାହାଡ଼ା ଗଛ—
Pisācha bruksha Trophis Aspera (tree)

ପିଶାଚ ମୋଚନ ତୀର୍ଥ—ସ. ବି—କାଶୀର ପ୍ରସିଦ୍ଧ ତୀର୍ଥ ବିଶେଷ—
Pisācha mochana tirtha Name of a sacred place in Benares.

ପିଶାଚାଗ୍ନି—ସ. ବ—ଚଉରଙ୍ଗୀ ଅଲୁଅ—
Pisāchāgni Ignis fatuus; will-o-the-wisp.

ପିଶାଚିଆ—ଦେ. ଵଣ (ସ. ପୈଶାଚକ)—ପୈଶାଚକ—
Pisāchiā Fiendish.

ପିଶାଚୀ—ସ. ବ. ସ୍ତ୍ରୀ—୧ । ପିଶାଚର ସ୍ତ୍ରୀଲିଙ୍ଗ——
Pisāchī 1 Feminine of Pisācha.
୨ । ପୈଶାଚୀ ଭାଷା (ଦେଖ)
2. Paiśāchī bhāshā (See)
୩ । ଜଟାମାଂସୀ (ଦେଖ)—3 Jaṭāmāṁsī (See)

ପିଶାଚୁଣୀ—ଦେ. ବ. (ସ. ପିଶାଚୀ) —୧ । ପିଶାଚୀ—
Pisāchuni 1. A female fiend or imp; a she-devil.
पिचासी, पेतनी
ଚଉଷଠୀ ଡାହାଣୀ ପିଶାଚୁଣୀ ଶ୍ରେଣୀ
ପିଇଲେ ସୋଡଷ ସେ ରକ୍ତ ମର୍ଣ ପାଣି । କୃଷ୍ଣସିଂହ, ମହାଭାରତ ଦ୍ରୋଣ
୨ । ପିଶାଚ ପ୍ରକୃତିକା ସ୍ତ୍ରୀ—2. A devellish woman.

ପିଶାବ—ଦେ ବ. (ସ. ପ୍ରସ୍ରାବ)—ପ୍ରସ୍ରାବ, ମୂତ୍ର—
Pisāba पेछाब **पीसाव** Urine.

ପିଶିତ—ସ. ବ. (ପିଶ୍ ଧାତୁ=ଅବୟବୀଭୂତ ହେବା + କର୍ମ ତ)—ମାଂସ—
Pisita Flesh; meat.

ପିଶିତାଶନ—ସ. ବ. ପୁଂ. (ପିଶିତ=ମାଂସ + ଅଶ୍ ଧାତୁ ଭକ୍ଷଣ କରିବା + କର୍ତ୍ତୃ. ଅନ)—ପିଶାଚ—Fiend.
Pisitāśana
(ପିଶିତାଶନା—ସ୍ତ୍ରୀ) ସ. ଵଣ—ମାଂସ ଭୋଜୀ—
Carnivorous; meat-eating.

ପିଶିତାଶୀ—ସଂ. ବ ଓ ଵଣ. ପୁଂ (ପିଶିତ + ଅଶ୍ ଧାତୁ + କର୍ତ୍ତୃ. ଇନ୍—ଣୀ. ୧ବ )—ପିଶିତାଶନ (ଦେଖ)
Pisitāśī
(ପିଶିତାଶିନୀ—ସ୍ତ୍ରୀ) Pisitāśana (See)

ପିଶିନା—ଦେ. ବ—ବନ୍ୟ ଗୁଳ୍ମବିଶେଷ—
Pisinā Maba Busifolia (plant).

ପିଶୀ—ପ୍ରାଦେ. (ମେଦିନୀପୁର) ବ. (ଭୁଲ ବ. ପିସୀ)—ପିଇସୀ—
Pisī (ପିଶୀମା—ଅନ୍ୟରୂପ) Father's sister.

ପିଶୀଲ—ସ. ବ—ମାଟିର କଟୋରା (ହ. ଶ)—
Pisīla A cup of earth.

ପିଶୁନ—ସ. ବ. (ପିଶ୍ ଧାତୁ + କର୍ତ୍ତୃ. ଉନ)—୧ । ହିଂସ୍ର—
Piśuna 1. Malicious; malignant.
(ପିଶୁନତା—ବ) ୨ । ନିଷ୍ଠୁର; କଠୋର; କ୍ରୂର—
2. Cruel; hard; harsh.
୩ । ଦୁଷ୍ଟ; ଖଳ—3. Wicked; insidious.
୪ । ନୀଚ—4. Low; mean; ignoble, base; vile.
୫ । ବିଶ୍ୱାସଘାତକ—5. Treacherous.
୬ । ଘୃଣ୍ୟ—6 Contemptible.
୭ । ଅବୋଧ—7. Stupid.
୮ । ଅପବାଦସୂଚକ—8. Slanderous; defamatory.
୯ । ଯେ ପରସ୍ପର ମଧ୍ୟରେ ଭେଦ ଜନ୍ମାଏ, ଚୁଗୁଲିଆ—
9. Causing dissensions; backbiting; telltale.
ସ. ବ—୧ । କାକ—1. Crow.
୨ । ଗୁପ୍ତଚର—2. Spy.
୩ । ତୂଳା—3. Cotton.
୪ । କୁଙ୍କୁମ, ହଳଦୀ—4. Turmeric, painting paste.
୫ । ନାରଦ ମୁନି—5. Sage Nārada.
୬ । ତଗର (ଦେଖ) (ହ. ଶ)—6 Tagara (See)

ପିଶୁନ ବଚନ—ସ. ବ.—୧ । କୁକଥା—
Piśuna bachana 1. Evil speech.
୨ । ଗାଳିମନ୍ଦ—2. Abuse.
(ପିଶୁନବାକ୍ୟ—ଅନ୍ୟରୂପ) ୩ । ଅପବାଦ—3. Slander
୪ । ନିଷ୍ଠୁର କଥା—4. Cruel words.

ପିଶୁନା—ସ. ବ.—ଚୁଗୁଲି ଖୋରୀ, ଚୁଗୁଲିଆପଣ—
Piśunā Backbiting.

ପିଷ୍ (ଧାତୁ)-ସ—୧ । ମର୍ଦ୍ଦନ କରିବା—
Pish 1. To pestle
୨ । ବାଟିବା; ପେଷିବା—2. To grind.
୩ । ଚୂନା କରିବା—3. To powder.
୪ । ମଳିବା, ଦଳିବା—
4. To bruise, to press repeatedly.
୫ । କ୍ଷତି କରିବା—5. To injure
୬ । ଦେବା—6 To give.
୭ । ବଳବାନ୍ ହେବା—7. To be strong.
୮ । ବାସ କରିବା—8. To dwell.
୯ । ଚିପୁଡ଼ିବା, ଚପିବା—9. To squeeze.
୧୦ । ଘଷିବା—10. To rub together.
୧୧ । ପିଟିବା—11. To hammer.

ପିଷ୍ଟ—ସ. ଵଣ. (ପିଷ ଧାତୁ + କର୍ମ. ତ)—୧ । ଘୃଷ୍ଟ; ବଟା ହୋଇଥିବା;
Pishṭa ମର୍ଦ୍ଦିତ—1. Ground; bruised; pestled.
୨ । ପିଟା ହୋଇଥିବା—2. Hammered.
୩ । ଚୂର୍ଣ୍ଣିତ—3. Pounded; powdered.
୪ । ଚିପୁଡ଼ା ହୋଇଥିବା—4. Pressed.
୫ । ଚପି ହୋଇଥିବା, ପେଷି ହେବା; ଦଳିତ—
5. Squeezed; crushed.
୬ । ଦଳା ହେବା, ଚକଟା ହେବା—
6 Kneaded, trodden
୭ । ଘର୍ଷିତ—7. Rubbed together.
ସଂ. ବ.—୧ । ପିଠା—1. Cake.
୨ । ଶସ୍ୟ ଚୂନା—2. Flour.
ପିଷ୍ଟ ଫଳ ମୂଳ ଜଳ ପାକ ସେ ନିଇବ । ପ୍ରାଚୀ. ଶ୍ରୀ ଗୁରୁଭକ୍ତି ଗୀତା ।
୩ । ପାଣିରେ ଶସ୍ୟ ଚୂନା ଦଳା ହୋଇ ସିଦ୍ଧ କରା ଯାଇଥିବା ଖାଦ୍ୟ—3. Any food prepared by kneading cornflour with water and dressing it.

ପିଷ୍ଟକ—ସଂ. ବି. (ପିଷ୍ଟ=ଶସ୍ୟ ଚୂନା+ବିକାରାର୍ଥେ. କ)—ପିଠା; ପୂପ—
Pishṭaka 1 Cake.

୨ । ପିଡ଼ିଆ, ତିଳ ଚୂର୍ଣ୍ଣ—2. Oil cake

୩ । ନେତ୍ର ରୋଗବିଶେଷ, ଆଖି ଜଳକା ହେବା ରୋଗ, ଆଖିରେ ଫୁଲ ପଡ଼ିବା ରୋଗ ( ହି. ଶବ୍ଦସାଗର )—
3. Opacity of the eye; an eye disease;cataract of the eye.

ପିଷ୍ଟପ—ସଂ. ବି. ( ପିଷ୍ ଧାତୁ=ପ୍ରବେଶ କରିବା+ଅଧିକରଣେ. ଅପ, ନିପାତନ )—
Pishṭapa
(ପିଷ୍ଟପ—ଅନ୍ୟରୂପ) ଭୁବନ, ଜଗତ—World.

ପିଷ୍ଟ ପଚନ—ସଂ. ବି. ( ବହୁବ୍ରୀହି; ପିଷ୍ଟ+ପଚନ )—
Pishṭa pachana ପିଠା ପାକ କରିବା ପାତ୍ର, ରୁଟି ସେକିବା ତାଉଆ—A pan or pot for preparing or roasting cakes

ପିଷ୍ଟ ପର୍ଣ୍ଣୀ—ସଂ. ବି. ( ପିଷ୍ଟ=ପିଠା ପରି ପର୍ଣ୍ଣ ଯାହାର )—
Pishṭa parṇṇi ପୃଶ୍ନିପର୍ଣ୍ଣୀ ( ଦେଖ )
Pruśniparṇṇi ( See )

ପିଷ୍ଟ ପେଷଣ—ସ ବି. ( ୬ଷ୍ଠୀ ତତ୍; ପିଷ୍ଟ+ପେଷଣ )—
Pishṭa peshana ୧ । ପୁଷ୍ଟ ଘର୍ଷଣ, ଥରେ ବଟା ହୋଇଥିବା ବସ୍ତୁକୁ ଆଉ ଥରେ ବାଟିବା—
1 Pounding or bruising of a thing already pounded.

୨ । ( ଲକ୍ଷଣାର୍ଥ ) ଥରେ ଆଲୋଚିତ ବିଷୟକୁ ଆଉ ଥରେ ବୃଥା ଆଲୋଚନା କରିବା—2. (figurative) Dealing unnecessarily with a matter already dealt with; fruitless repetition.

ପିଷ୍ଟିକ—ସ. ବି. ( ପିଷ୍ଟ+ସଜ୍ଞାର୍ଥେ. କ )—
Pishṭika ୧ । ପିଠଉ—1. Watery paste for making cakes.
(ପିଷ୍ଟୋଦକ—ଅନ୍ୟରୂପ)

୨ । ଖଳ—2. Kneaded flour; dough.

ପିସ୍ (ଧାତୁ)—ସ—୧ । ଯିବା—
Pis (root) 1. To go.

୨ । ଚଳିବା—2. To move.

୩ । ଶକ୍ତ ହେବା—3 To be strong.

୪ । ଆଘାତ କରିବା—4 To strike; to hurt.

୫ । କ୍ଷତ କରିବା—5 To injure.

୬ । ଦାନ କରିବା—5. To give; to bestow.

୭ । ବାସ କରିବା—7. To dwell.

ପିସାନ୍—ପ୍ରାଦେ ( ବସ୍ତର ) ବି. ( ସ. ପିଶ୍ ଧାତୁ; ତୁଳ. ହି. ଏହି ଅର୍ଥରେ ଏହି ଶବ୍ଦ )—
Pisān

୧ । ଚୂନା—1. Powder ( of any thing ).

୨ । ଶସ୍ୟାଦିର ଚୂର୍ଣ୍ଣ—4. Corn flour

ପିସାନ୍ ପାଲି—ପ୍ରାଦେ. ( ବସ୍ତର ) ବି—
Pisān pāli କାନ୍ଥରେ ବିଆଯିବା ଚିତ୍ର ବା ଝୋଟି—
Figures made on the wall by drawing with or sprinkling rice-paste.

ପିସ୍ତଲ—ବୈଦେ. ବି. ( ଇଂ. ପିଷ୍ଟଲ୍ )—
Pistala ଛୋଟ ବନ୍ଧୁକ—A pistol.
पिस्तल पिस्तौल
[ପିସ୍ତୁଲ(ଲ), ପିସ୍ତୋଲ(ଲ)—ଅନ୍ୟରୂପ]

ପିସ୍ତା—ବୈଦେ. ବି—ପେସ୍ତା ( ଦେଖ )
Pistā Pestā ( See )

ପିସ୍ତାବ—ପ୍ରାଦେ. (ମେଦିନୀପୁର) ବି. (ତୁଳ. ବ. ପିସାବ)—
Pistāba ପରିସ୍ରା—Urine.

ପିହଲ—ପ୍ରାଦେ. (ପୁରୀ) ବି—ସୁଯୋଗ—
Pihala Opportunity.
ମାଇଡଙ୍କର ପିହଲ ପାଇଲେ । ଖାଇକଣ୍ଟ ଚାମ୍ପ ପିଠିଙ୍କ ଲମାପୂର୍ଣ ।

ପିହାଣ—ଦେ. ବି. ( ସ. ପିଧାନ )—
Pihāṇa ମାଟିର ପଲମ; ଡେଲୁଣି, ହାଣ୍ଡି ଉପରେ ଘୋଡ଼ାଯିବା ଶରା ସରୁ—A shallow pan put over a cooking pot.
ढक्कन, पिहाना
କନକ କୁଡ଼ଆ ଥାଉ ଯେ ପ ଏ ପିହାଣ । କବୀ ସ୍ୱ. ମଙ୍ଗୀତ ।

ପ୍ରାଦେ. ( ଗଡ଼ଜାତ ) ବି. ( ସ. ପାନ )—

୧ । ଗାଈଠାରୁ ଦୁଧ ଦୁହାଁଯିବା ପୂର୍ବରୁ ବାଛୁରି ଗାଈଠାରୁ ଦୁଧ ପିଇବା—1. The sucking of the cow's milk by the calf before the cow is milked.

୨ । ଦୁହିଁଲା ପୂର୍ବରୁ ଗାଈଠାରୁ ଦୁଧ ପିଇବା ପାଇଁ ଲଗାଯିବା ବାଛୁରି—2. The calf which sucks the cow before it is milked.

୩ । ଭଉଣୀ (ଅଗ୍ର ଛୋଟ) ପିଲା ମାଆଠାରୁ ପିଇବା ଦୁଧ—
3. Milk sucked by a suckling from the mother's breast

ପିହାଣ ମୁହଁ—ଦେ. ବି—ପିହାଣ ପରି ଚଟକା ମୁହଁ—
Pihāṇa muhan̐ Flat face like a pan; a shallow face.
(ପିହାଣିଆ ମୁହଁ—ଅନ୍ୟରୂପ)

ପିହାଣ ମୁହାଁ—ଦେ. ବଣ. ପୁଂ—୧ । ପିହାଣ ପରି ଚଟକା ଓ ଅସୁନ୍ଦର ମୁଖ ଯୁକ୍ତ; ଚଟକା ମୁହାଁ—
Pihāṇa muhān̐ 1. Flat-faced; shallow-faced.
ढक्कन मुहाँ
(ପିହାଣିଆ ମୁହାଁ—ଅନ୍ୟରୂପ) ୨ । (ଲକ୍ଷଣାର୍ଥ) ବେହିଆ; ନିର୍ଲଜ୍ଜ—
2. (figurative) shameless.
ପିହାଣ ମୁହାଁ } ସ୍ତ୍ରୀ
ପିହାଣିଆ ମୁହାଁ }

ପିହାଣିଆ(ଆଁ)—ଦେ. ବି. ( ସ. ପିଧାନ )—
Pihāṇiā(ān̐) ୧ । ଉପର ପଟ ଚକର ମଝି କଣାରେ ବିଆଯାଇ ଥିବା ଛିଦ୍ରଯୁକ୍ତ ଗୋଲାକାର କାଠର ଚକତି ( ଯେଉଁ ଛିଦ୍ର ମଧ୍ୟରେ ତଳ ପଟ ଚକର କେନ୍ଦ୍ରର ମାରିଖୁଣ୍ଟି ଗଳା ଯାଇ ଚକ ଘୂରେ )—1. A circular piece
(ପିହାଣିଆ—ଅନ୍ୟରୂପ)

of wood ( with a hole ) put into the central hole of the upper millstone (into which the peg of the lower millstone enters when the upper mill-stone is revolved ).

୨ । ( ବଣିଆ ଶବ୍ଦ ) ଚଉଁରି ଭୁଣ୍ଡିରେ ଲଗାଯିବା ଛୁଦ୍ର ଝରିଣୁ ଶସ୍ତ ଆକୃତିର ଧାତୁର ଅଳଙ୍କାର—2 A metal pan-shaped ornament attached to the end of a hair pin.

୩ । ସ୍ତ୍ରୀମାନଙ୍କ ବେଣୀର ଶେଷ ଭାଗରେ ଝୁଲୁଥିବା ପିହାଣ ଆକାରର ଭୁଣ୍ଡି—3 A bit of shallow pan-shaped ornament attached to the end of a cord attached to the braid of hair.

୪ । ପିହାଣ ବା ପଲମ ଆକୃତିର ଏକପ୍ରକାର ଅଳଙ୍କାର (ଏହା ବାଜୁ ଇତ୍ୟାଦିର ଡୋରି ଅଗରେ ଭୁଣ୍ଡି ଉପରେ ଦିଆଯାଏ)— 4. A piece of shallow pan-like ornament (attached to the end of the string of an armlet).

**ପିହୁଡ଼ା**—ପ୍ରାଦେ (ସମ୍ବଲପୁର) ବି.—ପିହୁଳା ଦେଖ)
Pihirda — Pihula (See).

**ପିହିତ**—ସଂ. ବିଣ. (ଅପି=ସମ୍ପୂର୍ଣ୍ଣରୂପେ+ଧା ଧାତୁ+କର୍ମ ତ; ଅପି
Pihita ଉପସର୍ଗର ଅ ଲୋପ ) ୧ । ଆଚ୍ଛାଦିତ,ଆବୃତ— 1. Covered over,

ଘର ଛଡ଼ାଏ ମୋର ପିହିତ ପାଶାଣେ,
ମୋ ଜୀବନ ତୋ ଅନ୍ୟ ଉପାଦାନେ, ରଘୁନାଥ — ଲୋକା.

୨ । କୋଷଗତ—2. Ensheathed.

୩ । ଲୁକ୍କାୟିତ—3. Concealed; hidden.

୪ । ତିରୋହିତ—4 Disappeared; vanished.

**ପିହିବା**—ଦେ. କ୍ରି. (ଅପି+ଧା ଧାତୁ) -- ଘୋଡ଼ାଇବା; ଆଚ୍ଛନ୍ନ କରିବା—
Pihiba — To overspread.

ଗହ୍ନି ଗହ୍ନି ଦଶଦିଗ କାମଅନ୍ଧାର ପିହିଲାରେ ।
କବିସୂର୍ଯ୍ୟ — ସଙ୍ଗୀତ.

**ପିହୁରା**—ପ୍ରାଦେ. (ସମ୍ବଲପୁର ବି.—ପିହୁଳା (ଦେଖ)
Pihira — Pihula (See).

**ପିହୁଡ଼ା**—ଦେ. ବି.—ପିହୁଳା (ଦେଖ)
Pihurda — Pihula (See).
(ପିଉଡ଼ା—ଅନ୍ୟରୂପ) ପିଲବେଳେ ଶ୍ରୀକୃଷ୍ଣଙ୍କୁ ପିହୁଡ଼ାରୋଗ ହୋଇଥିଲା ।
ଅଜ୍ଞାତଲେଖକ. ଗଳ୍ପସ୍ୱଳ୍ପ

**ପିହୁରା**—ପ୍ରାଦେ (ବସ୍ତର). ବି.—ପିହୁଳା (ଦେଖ)
Pihura — Pihula (See)

**ପିହୁଳା**—ଦେ. ବି. (ସଂ. ପୃଥନା)—ଶିଶୁମାନଙ୍କ ଧନୁଷ୍ଟଙ୍କାର ରୋଗ
Pihula ବିଶେଷ; ଶିଶୁମାନଙ୍କୁ ଆକ୍ରମଣ କରିବା ବାତବିଶେଷ—
(ପିହଳା—ଅନ୍ୟରୂପ) Infantile epiplepsy; infantile
[ପିହୁ(ଉ)ଳା ମାଇବା—ଅନ୍ୟରୂପ] convulsions.

[ଦ୍ରି—ଏହାକୁ ଡାହାଣୀ ରୋଗ ବୋଲନ୍ତି । ପୂତନା ରାକ୍ଷସୀ ଶିଶୁଙ୍କୁ ଆକ୍ରମଣ କରେ ବୋଲି ଲୋକବିଶ୍ୱାସ । ଏଥିରେ ପ୍ରଥମେ ଜ୍ୱର ହୁଏ, ତା ପରେ ଶିଶୁ ଆଖି ଖୋସିଦେଇ ଅଜ୍ଞାନ ହୋଇଯାଏ । ମୂର୍ଚ୍ଛା ବା ଅପସ୍ମାରର ଲକ୍ଷଣମାନ ଏଥିରେ ପ୍ରକାଶିତ ହୁଏ ।]

**ପିହ୍ଲେଇ**—ଦେ.ବି —(ସଂ ପ୍ଲୀହା)—ପ୍ଲୀହା—
Pihlei ପିଲେ ତିଲ୍ଲୀ Spleen.

**ପୀଟାବଇ**—ପ୍ରାଦେ. (ଗଞ୍ଜାମ). ବି —ପତଳା ବାଉଁଶବତାରେ ବୁଣା-
Pitabai ଯାଇଥିବା ବାଡ଼—A fencing of split bamboos woven together.

**ପୀଠ**—ସଂ. ବି. (ପିଠ ଧାତୁ=କ୍ଲିଷ୍ଟ ହେବା+ଅଧିକରଣ ଅ)—କ୍ଲପାତନ
Pitha ୧ । ବସିବାର ସ୍ଥାନ; ପିଡ଼ା—1. A stool; a seat.

୨ । ଚଉକି—2. Chair.

୩ । ଧର୍ମକ୍ଷେତ୍ର; ଧର୍ମକେନ୍ଦ୍ର, ତୀର୍ଥ— 3. A place of pilgrimage; religious centre.

୪ । ଦେବତାଙ୍କ ଅଧିଷ୍ଠିତ ସ୍ଥାନ— 4 A shrine; the seat of a Deity

୫ । ଦେଉଳର ମୂଳ ଅଂଶ— 5. The pedestal of a temple.

୬ । ଦେବତା ଆଦିଙ୍କ ମୂର୍ତ୍ତିର ଗୋଡ଼ତଳର ବଇଠି— 6. The pedestal of an image.

୭ । ବଇଠି—7 Base; basis.

୮ । ପିଣ୍ଡି, ଉଚ୍ଚ ସମତଳ ସ୍ତୂପ— 8 A raised platform or mound.

୯ । ବେଦୀ—9 Altar.

୧୦ । ଧର୍ମଶାସ୍ତ୍ର ଅଧ୍ୟୟନ କାରୀ ଛାତ୍ରଙ୍କ ବ୍ୟବହୃତ କୁଶାସନ— 10 The seat of a religious student made of Kusa grass (Apte).

୧୧ । ବସିବାର ପ୍ରକାରବିଶେଷ, ଆସନବିଶେଷ— 11. A particular posture in sitting (Apte).

୧୨ । (ଜ୍ୟାମିତି) ବୃତ୍ତଖଣ୍ଡର ପୂରକ— 12.(Geometry) The compliment of a segment (Apte)

୧୩ । ( ପୁରାଣମତେ ) ମହାଦେବପତ୍ନୀ ସତୀ ଦେବୀଙ୍କର ମୃତ ଶରୀରର ଭିନ୍ନ ଭିନ୍ନ ଅବୟବ ଖଣ୍ଡମାନ ପଡ଼ିଥିବାର ସ୍ଥାନ, ଯାହାକି ହିନ୍ଦୁମାନଙ୍କର ତୀର୍ଥରୂପେ ପରିଗଣିତ ହୋଇଅଛି, ହିନ୍ଦୁ କ୍ଷେତ୍ର—13. Places on which the different limbs of the body of Siba's consort Sati fell and which have turned into places of pilgrimage

[ଦ୍ରି—ସତ୍ୟଯୁଗରେ ଦକ୍ଷ ପ୍ରଜାପତି ଗୋଟିଏ ଯଜ୍ଞ ଅନୁଷ୍ଠାନ କଲେ । ସେହି ଯଜ୍ଞକୁ ଆପଣାର ଜ୍ୱାଇଁ ମହାଦେବଙ୍କୁ ନିମନ୍ତ୍ରଣ କଲେ ନାହିଁ. କିନ୍ତୁ ଦକ୍ଷକନ୍ୟା ମହାଦେବଙ୍କ ପତ୍ନୀ ସତୀଦେବୀ ସେଠାକୁ ଯିବାରୁ ଦକ୍ଷ ମହାଦେବଙ୍କୁ ଗାଳିଦେଲେ । ସତୀ ସ୍ୱାମୀଙ୍କର ଅପମାନ ସହ୍ୟ କରି ନ ପାରି ସେହି ଯଜ୍ଞ କୁଣ୍ଡରେ ଝାସ ଦେଇ ପ୍ରାଣତ୍ୟାଗ କଲେ । ମହାଦେବ ଆସି ଏହା ଦେଖି କୋପାନ୍ୱିତ ହୋଇ ଦକ୍ଷ ଯଜ୍ଞକୁ ନଷ୍ଟକରି ସତୀଙ୍କ ମୃତ ଦେହକୁ କାନ୍ଧରେ ପକାଇ ତ୍ରିଭୁବନ ଭ୍ରମଣ କଲେ । ଏହା ଦେଖି ବିଷ୍ଣୁ ସୁଦର୍ଶନ ଚକ୍ର ଦ୍ୱାରା ସତୀଙ୍କ ଦେହକୁ ଖଣ୍ଡ ବିଖଣ୍ଡ କରି ଦେଲେ ଓ ତାହାର ଅଂଶମାନ

ଛିଡ଼ଙ୍କ କରି ପଡ଼ିଲା । ସେହି ସବୁ ସ୍ଥାନ ୫୧ ପୀଠ ଓ ୨୬ ଉପପୀଠ ନାମରେ ମହାତୀର୍ଥ ରୂପେ ପରିଗଣିତ ହେଲା । ପ୍ରତ୍ୟେକ ପୀଠରେ ଏକ ଦେବୀ ବା ଭୈରବୀ ଓ ଏକ ଭୈରବଙ୍କ ଉଦ୍ଭବ ହେଲା । ପୀଠ ଓ ଉପପୀଠ ସମ୍ବନ୍ଧେ ପୁରାଣମାନଙ୍କରେ ସ୍ଥାନଭେଦ, ଅଙ୍ଗଭେଦ ଓ ମତଭେଦ ଲକ୍ଷିତ ହୁଏ ।

ପୀଠ ସ୍ଥାନମାନ ଯଥା—

| ୧<br>ସେହି ସେହି ସ୍ଥାନରେ ପଡ଼ିଥିବା ସତୀଙ୍କ ଅଙ୍ଗର ନାମ | ୨<br>ଅଙ୍ଗ ପଡ଼ିବାର ସ୍ଥାନ | ୩<br>ପୀଠାଧିଷ୍ଠାତ୍ରୀ ଭୈରବୀଙ୍କ ନାମ | ୪<br>ଭୈରବଙ୍କ ନାମ |
|---|---|---|---|
| ୧. ବ୍ରହ୍ମ ରନ୍ଧ୍ର | ହିଙ୍ଗୁଲା (ବେଲୁଚିସ୍ଥାନ) | କୋଟ୍ଟରୀ | ଭୀମଲୋଚନ |
| ୨. ତ୍ରିନେତ୍ର | ଶର୍କର | ମହିଷମର୍ଦ୍ଦିନୀ | କ୍ରୋଧୀଶ |
| ୩. ନେତ୍ରାଂଶ ତାରା | ତାରା | ତାରଣୀ | ଉନ୍ମତ୍ତ |
| ୪ ବାମ କର୍ଣ୍ଣ | କଇଠୋଯ୍ୟାତଠ | ଅପର୍ଣ୍ଣା ବା ଶିଖର ବାସିନୀ | ବାମେଶ ବା ମଦନଭୈରବ |
| ୫ ଡାହାଣ କର୍ଣ୍ଣ | ଶ୍ରୀପର୍ବତ ବା କର୍ଣ୍ଣାଟ | ଶ୍ରୀସୁନ୍ଦରୀ ବା ଜୟ ଦୁର୍ଗା | ସୁନ୍ଦରାନନ୍ଦ ବା ଅଭୀରୁ |
| ୬. ନାସିକା | ସୁଗନ୍ଧା | ସୁନନ୍ଦା | ତ୍ର୍ୟମ୍ବକ |
| ୭ ମନଃ ବା ଭ୍ରୂମଧ୍ୟ | ବକ୍ର ନାଥ | ପାପହରା ବା ମହିଷ ମର୍ଦ୍ଦିନୀ | ବକ୍ରନାଥ |
| ୮. ବାମ ଗଣ୍ଡ | ଗୋଦାବରୀ | ବିଶ୍ୱମାତୃକା ବା ରାକିଣୀ | ବିଶ୍ୱେଶ ବା ଦଣ୍ଡପାଣି |
| ୯. ଡାହାଣ ଗଣ୍ଡ | ଗଣ୍ଡକୀ | ଗଣ୍ଡକୀ ଚଣ୍ଡୀ | ଚକ୍ରପାଣି |
| ୧୦. ଊର୍ଦ୍ଧ୍ୱଦନ୍ତ | ଅନଲ | ନାରାୟଣୀ | ସଂହୂର ବା ସଂହର |
| ୧୧. ଅଧୋଦନ୍ତ | ପଞ୍ଚ ସାଗର | ବାରାହୀ | ମହାରୁଦ୍ର |
| ୧୨. ଜିହ୍ୱା ବା ପଦାଙ୍ଗୁଳ | ଜ୍ୱାଳାମୁଖୀ ବା ବିରାଟ | ଅମ୍ବିକା | ଅମୃତାକ୍ଷ, ବଟୁକେଶ୍ୱର ବା ଉନ୍ମତ୍ତଭୈରବ |
| ୧୩. କଣ୍ଠ | କାଶ୍ମୀର | ମହାମାୟା | ତ୍ରିସନ୍ଧ୍ୟା |
| ୧୪. ଗ୍ରୀବା | ଶ୍ରୀହଟ୍ଟ ବା ଶ୍ରୀଶୈଳ | ମହାଲକ୍ଷ୍ମୀ | ସର୍ବାନନ୍ଦ ବା ସମ୍ବରାନନ୍ଦ |
| ୧୫. ଓଷ୍ଠ | ଭୈରବ ପର୍ବତ | ଅବନ୍ତୀ | ଲମ୍ବ କର୍ଣ୍ଣ |
| ୧୬. ଅଧର ବା ଉଦର | ପ୍ରଭାସ | ଚନ୍ଦ୍ରଭାଗା | ବକ୍ରତୁଣ୍ଡ |
| ୧୭. ମର୍ମ | ପ୍ରଭାସ ଖଣ୍ଡ | ସିଦ୍ଧେଶ୍ୱରୀ | ସିଦ୍ଧେଶ୍ୱର |
| ୧୮. ଚିବୁକ | ଜନସ୍ଥାନ | ଭ୍ରାମରୀ | ବିକୃତାଙ୍ଗ |
| ୧୯. ଦ୍ୱିହସ୍ତାଙ୍ଗୁଳ | ପ୍ରୟାଗ | କମଳା; କଲ୍ୟାଣୀ ବା ଲଳିତା | ବେଣୀମାଧବ ବା ଭବ |
| ୨୦. ଡାହାଣହସ୍ତ | ମାନସରୋବର | ଦାକ୍ଷାୟଣୀ | ହର ବା ଅମର |
| ୨୧. ଡାହାଣ ବାହୁ | ଚଟ୍ଟଗ୍ରାମ | ଭବାନୀ | ଚନ୍ଦ୍ରଶେଖର |
| ୨୨. ବାମ ସ୍କନ୍ଧ | ମିଥିଳା | ମହାଦେବୀ | ମହୋଦର |
| ୨୩. ଡାହାଣସ୍କନ୍ଧ | ରତ୍ନାବଳୀ | କୁମାରୀ ବା ଶିବା | ଶିବ ବା କୁମାର |
| ୨୪. ବାମ ମଣିବନ୍ଧ | ମଣିବନ୍ଧ | ଗାୟତ୍ରୀ | ଶଙ୍କର ବା ସର୍ବାନନ୍ଦ |
| ୨୫. ଡାହାଣ ମଣିବନ୍ଧ | ମଣିବେଦ ବା ମଣିବନ୍ଧ | ସାବିତ୍ରୀ | ସ୍ଥାଣୁ ବା ସର୍ବାନନ୍ଦ |
| ୨୬. ବାମକହୁଣୀ | ଉଜ୍ଜୟିନୀ | ମଙ୍ଗଳ ଚଣ୍ଡିକା | କପିଳାମ୍ବର |
| ୨୭. ଡାହାଣକହୁଣୀ | ରଣ ଖଣ୍ଡ | ବହୁଳାକ୍ଷୀ | ମହାକାଳ |
| ୨୮. ବାମବାହୁ | ବହୁଳା | ବହୁଳା | ଭୀରୁକ |
| ୨୯. ଡାହାଣବାହୁ | ବକ୍ରେଶ୍ୱର | ବକ୍ରେଶ୍ୱରୀ | ବକ୍ରେଶ୍ୱର |
| ୩୦. ବାମସ୍ତନ | ଜାଳନ୍ଧର | ତ୍ରିପୁରମାଳିନୀ | ଭୀଷଣ |
| ୩୧. ଡାହାଣସ୍ତନ | ରାମଗିରି | ଶିବାନୀ | ଚଣ୍ଡ |
| ୩୨. ପୃଷ୍ଠଦେଶ | ବୈବସ୍ୱତ ବା କନ୍ୟାଶ୍ରମ | ତ୍ରିପୁଟା ବା ସର୍ବାଣି | ଶମନକର୍ମୀ ବା ନିମିଷ |
| ୩୩. ହୃଦୟ | ବୈଦ୍ୟନାଥ | ନବ ଦୁର୍ଗା ବା ଜୟ ଦୁର୍ଗା | ବୈଦ୍ୟନାଥ |
| ୩୪. ନାଭି | ଉତ୍କଳ (ପୁରୀ), ବିରଜାକ୍ଷେତ୍ର ବା ଯାଜପୁର | ବିରଜା ବା ବିମଳା | ଜୟ ବା ଜଗନ୍ନାଥ |
| ୩୫. ଜଠର | ହରିଦ୍ୱାର | ଭୈରବୀ | ବକ୍ର |
| ୩୬. କାଖ | କୌଁକ | କୌଁକେଶ୍ୱରୀ | କୌଁକେଶ୍ୱର |
| ୩୭. କଙ୍କାଳ | କାଞ୍ଚୀ ଦେଶ | ଦେବଗର୍ଭା | ରୁରୁ |
| ୩୮. ବାମ ନିତମ୍ବ | କାଲ ମାଧବ | କାଳୀ | ଅସିତାଙ୍ଗ |
| ୩୯ ଡାହାଣନିତମ୍ବ | ନର୍ମଦା | ଶୋଣାକ୍ଷୀ | ଭଦ୍ରସେନ |
| ୪୦. ମହାମୁଦ୍ରା (ଯୋନି) | କାମରୂପ (ଆସାମ) | କାମାଖ୍ୟା | ଉମାନନ୍ଦ |
| ୪୧. ବାମ ଜାନୁ | ମାଳବ | ଶୁଭଚଣ୍ଡୀ | ତାମ୍ର |
| ୪୨. ଡାହାଣ ଜାନୁ | ସ୍ରୋତା | ଚଣ୍ଡିକା | ସଦାନନ୍ଦ |
| ୪୩. ବାମ ଜଙ୍ଘ | ଜୟନ୍ତୀ (ଆସାମ) | ଜୟନ୍ତୀ | କ୍ରମଦୀଶ୍ୱର |
| ୪୪. ଡାହାଣ ଜଙ୍ଘ ବା ଜାନୁ | ନେପାଳ ବା ମଗଧ | ମହାମାୟା ବା ସର୍ବାନନ୍ଦକରୀ | କାପାଳୀ ବା ବ୍ୟୋମକେଶ |
| ୪୫. ବାମ ପାଦ | ତରୋତା(ତ୍ରିସ୍ରୋତା) | ଭ୍ରାମରୀ | ଅମ୍ବର |
| ୪୬. ଡାହାଣ ପାଦ | ତ୍ରିପୁରା | ତ୍ରିପୁରା | ନଳ ବା ତ୍ରିପୁରେଶ |
| ୪୭. ଡାହାଣ ପାଦାଙ୍ଗୁଷ୍ଠ | କ୍ଷୀର ଗ୍ରାମ | ଯୋଗାଦ୍ୟା | କ୍ଷୀର ଖଣ୍ଡ |
| ୪୮. ଡାହାଣ ପାଦାଙ୍ଗୁଷ୍ଠ ଚତୁଷ୍ଟୟ | କାଳୀଘାଟ (କଲିକତା) | କାଳିକା | ନକୁଲେଶ |
| ୪୯. ବାମ ଗୁଳ୍ଫ | ବିଭାସ | ଭୀମରୂପା ବା କପାଳିନୀ | କାପାଳୀ |
| ୫୦. ଡାହାଣ ଗୁଳ୍ଫ | କୁରୁକ୍ଷେତ୍ର | ସାବିତ୍ରୀ, ସମ୍ବରୀ ବା ବିମଳା | ସମ୍ବର୍ତ୍ତ ବା ସ୍ଥାଣୁ |

| | | | |
|---|---|---|---|
| ୫୧. ବାମ ପାଦାଙ୍ଗୁଳି | ବିନ୍ଧ୍ୟ ଶେଖର | ବିନ୍ଧ୍ୟବାସିନୀ | ପୁଣ୍ୟଭାଜନ |

ଉପପୀଠମାନଙ୍କ ନାମ

| ପଡ଼ିଥିବା ସତୀଙ୍କ ଅଙ୍ଗ ବା ଅସ୍ଥାଦିର ନାମ | ପଡ଼ିବାର ସ୍ଥାନ | ଭୈରବୀ | ଭୈରବ |
|---|---|---|---|
| ୧. କଣ୍ଠ | କଣ୍ଠ କୋଣା | ଭୁବନେଶୀ | ସିଦ୍ଧରୂପ |
| ୨. କେଶ | କେଶଜାଲ (ବୃନ୍ଦାବନ) | ଉମା | ଭୂତେଶ |
| ୩. କୁଣ୍ଡଳ ବା ମଣିକର୍ଣ୍ଣୀ | ବାରଣସୀ ବା କାଶୀ | ବିଶାଳାକ୍ଷୀ ବା ଅନ୍ନପୂର୍ଣ୍ଣା | କାଳଭୈରବ ବା ବିଶ୍ୱେଶ୍ୱର |
| ୪. ବାମ ଗଣ୍ଡାଂଶ | ଉତ୍ତର | ଉତ୍ତରଣୀ | ଉତ୍ପାଦନ |
| ୫. ଡାହାଣ ଗଣ୍ଡାଂଶ | ଜଳସ୍ଥଳ | ଭ୍ରମରୀ | ବିରୂପାକ୍ଷ |
| ୬. ଓଷ୍ଠାଂଶ | ଅଟ୍ଟହାସ | ଫୁଲ୍ଲରା | ବିଶ୍ୱନାଥ ବା ବିଶ୍ୱେଶ |
| ୭. ଦନ୍ତାଂଶ | ସହର | ସୁରେଶୀ | ସୁରେଶ |
| ୮. ଉଚ୍ଛିଷ୍ଟ | ନୀଳାଚଳ (ପୁରୀ) | ବିମଳା | ଜଗନ୍ନାଥ |
| ୯. କଣ୍ଠହାର | ଅଯୋଧ୍ୟା | ଅନ୍ନପୂର୍ଣ୍ଣା | ହରିହର |
| ୧୦. ହାରାଂଶ | ନନ୍ଦୀପୁର | ନନ୍ଦିନୀ | ନନ୍ଦିକେଶ୍ୱର |
| ୧୧. ଗ୍ରୀବାଗ ବା ଦକ୍ଷତଲ୍ପ | ଶ୍ରୀ ଶୈଳ | ସର୍ବେଶ୍ୱରୀ | ଚିଦାନନ୍ଦ |
| ୧୨. ଶିରାଂଶ | କାଳୀପୀଠ | ଚଣ୍ଡେଶ୍ୱରୀ | ଚଣ୍ଡେଶ୍ୱର |
| ୧୩. ଅସ୍ଥି | ଚଣ୍ଡୀପ | ଚକ୍ରଧାରିଣୀ | ଶୂଳପାଣି |
| ୧୪. ପାଣିପଦ୍ମ | ଯଶୋର | ଯଶୋରେଶ୍ୱରୀ | ପ୍ରଚଣ୍ଡ ବା ଚଣ୍ଡ |
| ୧୫. କରାଂଶ | ସତାଚଳ | ସୁନନ୍ଦା | ସୁନନ୍ଦ |
| ୧୬. ସ୍କନ୍ଧାଂଶ | ବୃନ୍ଦାବନ | କୁମାରୀ ବା କାତ୍ୟାୟନୀ | କୁମାର |
| ୧୭. ବସା(ଚର୍ବି) | ଗୌରୀଶେଖର | ଯୁଗାଦ୍ୟା | ଭୀମ |
| ୧୮. ଶିରାନଳ | ନଳହାଟୀ | ସାଫାଳିକା ବା କାଳିକା | ଯୋଗୀଶ |
| ୧୯. ନିତମ୍ବାଂଶ | ଶୋଣ | ଭଦ୍ରା | ଭଦ୍ରେଶ୍ୱର |
| ୨୦. କକ୍ଷାଂଶ | ସର୍ବଶୈଳ୍ୟ | ବିଶ୍ୱମାତା | ଦଣ୍ଡପାଣି |
| ୨୧. ପଦାଂଶ | କ୍ଷୀରଗ୍ରାମ | ପାର୍ବତୀ | ବୈରବେଶ୍ୱର |
| ୨୨. ନୂପୁର | ଲଙ୍କା | ଇନ୍ଦ୍ରାକ୍ଷୀ | ରକ୍ଷେଶ୍ୱର |
| ୨୩. ଚର୍ମାଂଶ | କଟକ | କଟକେଶ୍ୱରୀ ବା କାତ୍ୟାୟନୀ | ବାମଦେବ |
| ୨୪. ରୋମ | ପୁଣ୍ଡ୍ର | ସର୍ବାକ୍ଷିଣୀ | ସର୍ବ |
| ୨୫. ରୋମଖଣ୍ଡ | ତୈଲଙ୍ଗ | ଚଣ୍ଡନାୟିକା | ଚଣ୍ଡେଶ |
| ୨୬. ଭଗ୍ନାଂଶ | ଶ୍ୱେତବନ୍ଧ | ଜୟା | ମହାଭୀମ |

ପୀଠକ—ସଂ. ବି. (ପୀଠ+ସ୍ୱାର୍ଥେ କ)—ପୀଢ଼ା (ହି. ଶ)—
Pīṭhaka A wooden stool.

ପୀଠ କେଳି—ସ. ବି ପୁଂ.—ନାୟକର ସହାୟକ ବିଦ୍ୱାସୀ ବ୍ୟକ୍ତି—
Pīṭha keḷi A parasite of a gallant; a boon companion of a lover in amatory matters whose duty is to appease an irritated mistress. (M. W.)

[ ଦ୍ର—ଏ ବ୍ୟକ୍ତି କୁପିତା ନାୟିକାକୁ ପ୍ରସାଦନ କରି ନାୟକ ନାୟିକାଙ୍କ ପ୍ରଣୟ ପରଣତିରେ ସାହାଯ୍ୟ କରେ । ]

ପୀଠଗ—ସ.ବିଣ. ପୁଂ. ( ପୀଠ+ଗମ୍ ଧାତୁ+କର୍ତ୍ତୃ. ଅ )—ଖୋଞ୍ଚା—
Pīṭhaga (ପୀଠଗା—ସ୍ତ୍ରୀ) Lame; crippled.

ପୀଠ ଗର୍ଭ—ସ. ବି. (୬ଷ୍ଠୀ ତତ୍; ପୀଠ+ଗର୍ଭ)—
Pīṭha garbha ଦେବମୂର୍ତ୍ତିଆଦିର ବଇଠିର ନିମ୍ନଦେଶରେ ଥିବା ଗର୍ତ୍ତ—The cavity below the pedestal of an image (Apte).

ପୀଠ ଚକ୍ର—ସ. ବି—୧ । ଗୋରୁଗାଡ଼ି, ଶଗଡ଼—
Pīṭha chakra 1. Cart.
୨ । ଚକ୍ରଯୁକ୍ତ ଯାନ—2. Wheeled vehicle; carriage.
୩ । ପ୍ରଣବ ମନ୍ତ୍ରଦ୍ୱାରା ନ୍ୟାସବିଶେଷ—3. A kind of mystic breath-exercise.

ପୀଠ ଦେବତା—ସ. ବି—୧ । ପୀଠସ୍ଥାନର ଅଧିଷ୍ଠାତ୍ରୀ ଦେବତା—
Pītha debatā 1. The presiding Deity of a Pīthasthāna.
୨ । ଆଧାର ଶକ୍ତି; ଆଦ୍ୟ ଦେବତା (ହି. ଶ)—
2. The Primordeal Deity.

ପୀଠ ନାୟିକା—ସ. ବି. ସ୍ତ୍ରୀ—୧ । ଦୁର୍ଗାପୂଜା ସମୟରେ ଯେଉଁ ଚତୁର୍ଦ୍ଦଶ-
Pīṭha nāyikā ବର୍ଷୀୟା ବାଳିକାକୁ ଦେବୀରୂପେ କଳ୍ପନା କରାଯାଇ ପୂଜା କରାଯାଏ—1. A girl of fourteen who represents Durgā during the worship of the Goddess (Apte)
୨ । ଦୁର୍ଗା (ହି. ଶ)—2. Goddess Durgā.

ପୀଠଭୂ—ସ. ବି—ପାଚେରି ବା କାନ୍ଥଆଦିର ମୂଳଦେଶର ଜମି (ହି. ଶ)—
Pīṭhabhū The basement of a wall (Apte).

ପୀଠମର୍ଦ୍ଦ—ସ. ବି. ପୁଂ—ପୀଠକେଳି (ଦେଖ)—Pīṭhakeḷi (See)
Pīṭhamardda (ପୀଠମର୍ଦ୍ଦକ—ଅନ୍ୟରୂପ)

ପୀଠମର୍ଦ୍ଦିକା—ସ. ବି. ସ୍ତ୍ରୀ—୧ । ନାଗର ସଙ୍ଗେ ଭେଟ କରାଇବା
Pīṭhamarddikā ବିଷୟରେ ନାଗରୀକୁ ଯେଉଁ ସଖୀ ସାହାଯ୍ୟ କରେ—1. A lady who assists a heroine in securing her lover
୧ । ବେଶ୍ୟାମାନଙ୍କୁ ନାଚ ଶିଖାଇବା ଗୁରୁ—
2 A dancing master who instructs courtezans in the art of dancing (Apte).

ପୀଠସର୍ପୀ—ସ. ବିଣ., ପୁଂ. ( ପୀଠ=ଆସନ+ସୃପ ଧାତୁ=ଗତି କରିବା
Pīṭhasarpi +ଇନ୍; ଯେ ବସି ବସି ଗମନ କରେ)—ଖଞ୍ଜ—
(ପୀଠସର୍ପିଣୀ—ସ୍ତ୍ରୀ ) Crippled.

ପୀଠ ସ୍ଥାନ—ସ. ବି—୧ । ପୁରାତନ ଦେବାଳୟ—
Pīṭha sthāna 1. An ancient temple.
୨ । ପୁରାଣପ୍ରସିଦ୍ଧ ତୀର୍ଥସ୍ଥାନ; ଯେଉଁଠାରେ ସତୀଙ୍କର ଅବୟବ-ବିଶେଷ ଛିଡ଼ିକି ପଡ଼ିଥିଲା; ପୀଠ (୧୩ ଦେଖ)—
2. A sacred spot where a limb of Pārbati is said to have fallen (Pīṭha 13 See).

ପୀଠିକା—ସଂ. ବ. (ପୀଠ + କ + ଆ)—୧ । ପୀଢ଼ା—
Pīṭhikā 1. A stool.
୨ । ବଇଠି—2 Pedestal; base
୩ । ପୁସ୍ତକର ଅଂଶ (ଯଥା—ଦଶକୁମାର ଚରିତର ପୂର୍ବପୀଠିକା, ଉତ୍ତରପୀଠିକା)—3. A section of a book (Apte).
ଦେ. ବ—ପିଠିକା (ଦେଖ)—Pithikā (See)

ପୀଠୀ—ସଂ. ବ. (ପୀଠ + ସ୍ତ୍ରୀ ଈ)—୧ । ପୀଢ଼ା, ଆସନ—
Pīṭhī 1 A seat.
୨ । ଚଉକି; ଷ୍ଟୁଲ୍—2. A stool.
ଦେ. ବ—ପିଠି (ଦେଖ)—Pithi (See)

ପୀଡ଼୍ (ଧାତୁ)—ସ—୧ । ପୀଡ଼ା ଦେବା, କଷ୍ଟ ଦେବା—
Pīrda (root) 1. To give pain; to torment.
୨ । ମର୍ଦ୍ଦନ କରିବା—2. To pound.
୩ । ଅତ୍ୟାଚାର କରିବା—3. To oppress
୪ । ଦୋହଲାଇବା—4 To shake.
୫ । ଚପୁଡ଼ିବା; ପେଡ଼ିବା, ଚିପିବା—
5. To squeeze; to press together.
୬ । ଘାଣ୍ଟିବା—6 To agitate.
୭ । ବାଧାଦେବା—7. To oppose, to obstruct
୮ । ବିରକ୍ତ କରିବା—8. To annoy; to molest
୯ । ନଗରର ଅବରୋଧ କରିବା—9.To beseige a city.
୧୦ । ଘୋଡ଼ାଇବା; ଆବରଣ କରିବା—
10. To cover; to wrap up (Apte)
୧୧ । ଘୋଡ଼ାଇ ପକାଇବା—11. To eclipse (Apte).
୧୨ । ବିନାଶ କରିବା; ଗାଏବ୍ କରିବା—
12 To suppres, to destroy (Apte).
୧୩ । ଭାଙ୍ଗିବା—13 To break; to violate (Apte).
୧୪ । ନେଇ ଯିବା—
14. To take away; to remove (Apte).

ପୀଡ଼(ଢ଼)—ଦେ. ବ.—ପିଢ଼ (ଦେଖ)
Pīrda(rdha) Pirdha (See)

ପୀଡ଼କ—ସ. ବଣ. ପୁଂ.(ପୀଡ଼ ଧାତୁ + କର୍ତ୍ତୃ. ଅକ; ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ
Pīrdaka ହୁଏ, ଯଥା—ପ୍ରଜାପୀଡ଼କ)—୧ । ପୀଡ଼ାଦାୟକ;
(ପୀଡ଼କା—ସ୍ତ୍ରୀ) ଉତ୍ପୀଡ଼କ—1 Troubling; hurtful; oppressing; oppressive.
୨ । କଷ୍ଟଦାୟକ—2. Painful.
୩ । ବିରକ୍ତିଜନକ—3. Vexatious.
ସ. ବ—ଉତ୍ପୀଡ଼କ, ବ୍ୟକ୍ତି—Oppressor; persecutor.

ପୀଡ଼ନ—ସ. ବ. (ପୀଡ଼୍ ଧାତୁ + ଭାବ. ଅନ)—୧ । ଜୁଲମ୍; ଅତ୍ୟାଚାର
Pīrdana କରିବା—1 Oppression; tormenting.
୨ । ଦୁଃଖ ଦେବା—2. Paining; distressing.
୩ । ଘାଆ ଆଦିର ପୋଡ଼ିବା; ପୋଡ଼ା ଜଳା—
3. The smarting of a wound or sore.
୪ । ବଥା, ବିନ୍ଧା—4. Aching.
୫ । ବିରକ୍ତ କରିବା—5. Annoying.
୬ । ହଇରାଣ କରିବା—6. Harassing; persecuting.
୭ । ଉଚ୍ଛେଦନ; ବିନାଶ କରିବା, ଲୁଟ କରିବା—
7. Devastation; depradation.
୮ । ଚପୁଡ଼ିବା; ରସ ପେଡ଼ିବା—
8 Squeezing; bruising.
୯ । ଚିପିବା, ପେଷଣ; ମର୍ଦ୍ଦନ; ଗୁଡ଼ିବା—9. Pressing.
୧୦ । ପରାଭବ କରିବା—10. Defeating. humilating; subjugating.
୧୧ । ସୂର୍ଯ୍ୟ ଚନ୍ଦ୍ରାଦିଙ୍କ ଗ୍ରହଣ (ଜ୍ଯୋ. ଶା.)—11. Eclipse.
୧୨ । ଉଚ୍ଛେଦ, ନାଶ—12. Elimination; ruin.
୧୩ । ତିରୋଭାବ; ଲୋପ—
13 Extinction; disappearance

ପୀଡ଼ନୀୟ—ସ ବଣ.—(ପୀଡ଼୍ ଧାତୁ + କର୍ମ ଅନୀୟ)—ଯନ୍ତ୍ରଣା
Pīrdanīya ଦେବାର ଉପଯୁକ୍ତ—Deserving to be pres-
(ପୀଡ଼ନୀୟା—ସ୍ତ୍ରୀ) sed or pained (etc.)
ସ. ବ.—୧ । ମନ୍ତ୍ରୀ ଓ ସେନା ରହିତ ରାଜା (ଯାଜ୍ଞବଲ୍କ୍ୟ ସ୍ମୃତି) (ଜ୍ଯୋ. ଶା)—1 A king shorn of his minister and army.
୨ । (ଯାଜ୍ଞବଲ୍କ୍ୟ ସ୍ମୃତି) ଚାରି ପ୍ରକାର ଶତ୍ରୁ ମଧ୍ୟରୁ ଏକ—
2 One of the 4 classes of enemies mentioned in the codes of Hindu law.

ପୀଡ଼ା—ସ. ବ. (ପୀଡ଼୍ ଧାତୁ + ଭାବ. ଅ + ସ୍ତ୍ରୀ. ଆ)—୧ । ଶାରୀରିକ ବା
Pīrdā ମାନସିକ କ୍ଳେଶ; ଯନ୍ତ୍ରଣା, ବେଦନା, ବ୍ୟଥା—
1. Bodily or mental pain; affliction; pang; anguish; trouble; suffering; distress
୨ । ଅଙ୍ଗାଦିର ବିନ୍ଧା; ବଥା—2. Aching of any limb
୩ । ଅତ୍ୟାଚାର—3. Oppression; torture.
୪ । ବିନାଶ; ଉଚ୍ଛେଦ—4. Destruction; devastation; annihilation; depradation.
୫ । କ୍ଷତି; ଦୁଃଖ—5. Harm; injury.
୬ । (+କର୍ତ୍ତୃ ଅ) ରୋଗ—6. Disease.
୭ । ଅନୁକମ୍ପା; ଦୟା; କୃପା—7. Compassion; pity.
୮ । ବାଧା—8. Obstruction.
୯ । ଶାନ୍ତିଭଙ୍ଗ—9. Breach or deprivation of peace; disturbance.
(ଯଥା—ଆଶ୍ରମ ପୀଡ଼ା ।)
୧୦ । ଶିରୋମାଳା; କିରୀଟ; ମୁଣ୍ଡରେ ଗୁଡ଼ା ହୋଇ ଥିବା ମାଳ—
10. A chaplet.
୧୧ । ସରଳ ବୃକ୍ଷ, ଦେବଦାରୁ—
11. A tree; Pinus Longifolia.
୧୨ । ଅଙ୍ଗାଦିର ଦରଜ—
12. Acute pain or tenderness of any limb.

୧୩ । ରୋଗ—13. Disease, illness.

୧୪ । ସରଳ ଧୂପ—14. An incense extracted from the pine tree.

ପୀଡ଼ା(ଡ଼େ)ଇବା—ଦେ. କ୍ରି. (ସ. ପୀଡ଼ ଧାତୁ ଣିଜନ୍ତ ପୀଡ଼ି ଧାତୁ)—
Pirdā(rde)ibā ପୀଡ଼ବା କ୍ରିୟାର ଣିଜନ୍ତରୂପ — Causative of Pirdibā.

ପୀଡ଼ାପୀଡ଼ି—ଦେ. ବି—୧ । ଅତ୍ୟନ୍ତ ଯନ୍ତ୍ରଣା ଦେବା—
Pirdāpirdi 1. Afflicting.
पीडापीडी ୨ । ଉତ୍ପୀଡ଼ନ—2. Oppressing.
जोरजुलम ୩ । ଅତ୍ୟନ୍ତ ଜୋରଜବର ବା ଜବରଦସ୍ତି—
3. Coercion.

ପୀଡ଼ା ପୀଡ଼ି କରିବା—ଦେ. କ୍ରି.—୧ । ଉତ୍ପୀଡ଼ନ କରିବା—
Pirdā pirdi karibā 1. To oppress.
पीड़ापीड़ि करना ୨ । ଅତ୍ୟନ୍ତ କଷ୍ଟ ଦେବା—
दबाव डालना 2. To afflict.
୩ । ବାଧ୍ୟ କରିବା, ଜବରଦସ୍ତି କରିବା—3. To coerce.

ପୀଡ଼ାମାନ—ଦେ. ବିଣ. ( ସ. ପୀଡ୍ୟମାନ )—ପୀଡ୍ୟମାନ ( ଦେଖ )
Pirdāmāna Pidyamāna ( See )

ଓଷ୍ଠ ଦ୍ୱୟରେ ପୀଡ଼ାମାନ, ଦେଖନ୍ତେ ତୁମେ ଅଚେତନ—
ଜଗନ୍ନାଥ, ଭାଗବତ ।

ପୀଡ଼ା ସ୍ଥାନ—ସ. ବି. ( ୬ଷ୍ଠୀ ତତ୍; ପୀଡ଼ା+ସ୍ଥାନ)—( ଫଳିତଜ୍ୟୋତିଷ)
Pirdā sthāna ଜନ୍ମକୋଷ୍ଠୀରେ ଲଗ୍ନର ତୃତୀୟ, ଷଷ୍ଠ, ଦଶମ ଓ ଏକାଦଶ ସ୍ଥାନମାନଙ୍କ ଛଡ଼ା ଅନ୍ୟ ସ୍ଥାନମାନ; ଅଶୁଭ ଗ୍ରହମାନଙ୍କ ସ୍ଥାନ ( ହି. ଶ.)—( astrology ) The places except the 3rd, 6th, 10th and 11th counted from the Lagna in a horoscope.

ପୀଡ଼ିତ—ସ.ବିଣ. ପୁଂ (ପୀଡ଼ା+ଯୁକ୍ତାର୍ଥେ ଇତ)—୧ । ରୁଗ୍ଣ; ରୋଗଗ୍ରସ୍ତ;
Pirdita ରୋଗାର୍ତ୍ତ—1. Ill; sick; afflicted with
(ପୀଡ଼ିତା—ସ୍ତ୍ରୀ) disease; diseased.
୨ । ବ୍ୟଥିତ—2. Ailing; suffering.
୩ । କ୍ଲିଷ୍ଟ; ଦୁଃଖିତ—3. Distressed; aggrieved.
୪ । ଘୃଷ୍ଟ; ମର୍ଦ୍ଦିତ—4. Rubbed; chaffed.
୫ । ଚପୁଡ଼ା ହୋଇଥିବା—5 Squeezed.
୬ । ଦଳିତ—6. Pressed; kneaded.
୭ । ଧ୍ୱସ୍ତ—7. Destroyed; devastated; laid waste.
୮ । ଉତ୍ପୀଡ଼ିତ; ପ୍ରପୀଡ଼ିତ—8. Oppressed; tortured.
ସ. ବି. ( ପୀଡ଼ ଧାତୁ+କର୍ମ. ତ )—୧ । ସ୍ତ୍ରୀମାନଙ୍କ କାନରେ ନୋଳି ଅବ ପିନ୍ଧିବା ପାଇଁ କରାଯାଇଥିବା ଛିଦ୍ର—
1. A bore in the ear of females for putting on rings.
୨ । (+ଭାବ. ତ) ପୀଡ଼ା; ରୋଗ—2. Illness; disease

ପୀଡ଼ିବା—ଦେ. (ତଦ୍ଭ) କ୍ରି. (ସ. ପୀଡ଼ ଧାତୁ )—୧ । ପୀଡ଼ା ଦେବା,
Pirdibā ପୀଡ଼ା କରିବା—1. To pain; to trouble; to
पीड़ा पीड़ना afflict; to give pain.

ବନ ଦେଖି ପୀଡ଼ଇ ମଦନ ଶର ଜାଳା—ବୈଷ୍ଣବଚରଣ, ଲକ୍ଷ୍ମୀବିଳାସ ।

୨ । ଉତ୍ପୀଡ଼ନ କରିବା—2. To oppress.
୩ । ଚପୁଡ଼ିବା—3. To squeeze.
୪ । ଚପିବା—4. To press.
୫ । ପୀଡ଼ିତ ହେବା, କ୍ଲିଷ୍ଟ ହେବା—5 To be afflicted.

ଉଷ୍ଣ ଲବଣ କଟୁ ତୀକ୍ଷ୍ଣ, ଶାକ ଅମ୍ଳିଳ ଯା ଭକ୍ଷଣ
ଜନନୀ ଆହାର କରଇ, ସେ ରସେ ସର୍ବାଙ୍ଗ ପୀଡ଼ଇ—
ଜଗନ୍ନାଥ, ଭାଗବତ ।

ପୀଡ଼ିଯ଼(ଆ)—ଦେ. ବି. ( ସ. ପୀଡ଼ ଧାତୁ=ଚପୁଡ଼ିବା, ତେଲିଙ୍କର ଚପୁଡ଼ା
Pirdiya(ā) ହେବାରୁ ଉତ୍ପନ୍ନ —ପିଡ଼ିଆ ( ଦେଖ )
Pirdiā ( See )

ପୀଡ୍ୟମାନ—ସ. ବିଣ. ( ପୀଡ ଧାତୁ ଣିଚ୍+କର୍ମ. ମାନ )—
Pidyamāna ୧ । ଯାହାକୁ ପୀଡ଼ା ଦିଆଯାଉଅଛି, ଉତ୍ପୀଡ୍ୟମାନ—
(ପୀଡ୍ୟମାନା—ସ୍ତ୍ରୀ) 1. Which is being oppressed.
୨ । କ୍ଲିଶ୍ୟମାନ—2. Suffering; ailing.
୩ । ଚପୁଡ଼ା ଯାଉଥିବା—4 Being squeezed.
୪ । ଚପା ଯାଉଥିବା—3. Being pressed.

ପୀଢ଼ା(ଢ଼ି)—ଦେ. ବି—ପିଢ଼ା(ଢ଼ି) ( ଦେଖ )
Pirdhā(rdhi) Pirdhā(rdhi) ( See )

ପୀତ—ସ. ବିଣ. ( ପା ଧାତୁ=ପିଇବା+କର୍ମ. ତ )—୧ । ପାନ କରା
Pita ଯାଇଥିବା—1. Drunk; quaffed.
ପୀତବା / ପୀତବ୍ୟ } ବି ୨ । ( +କର୍ତ୍ତୃ. ତ ) ପାନକର୍ତ୍ତା, ପିଇଥିବା, ପାନ କରିଥିବା—2. Having drunk.
୩ । ହଳଦିଆ—3. Yellow.
୪ । ପାଣ୍ଡୁର; କପିଳ—4. Grey; tawny.
ସ. ବି. ( +ଭାବ. ତ )—୧ । ପାନ; ପିଇବା କର୍ମ—
1. Drinking.
୨ । ହଳଦିଆ ରଙ୍ଗ—2. Yellow colour.
୩ । ହରତାଳ—3. Yellow orpiment.
୪ । କୁସୁମଫୁଲ—
4. Safflower; Cathamus Tinctorius
୫ । ଗୋମେଦ, ପୁଷ୍ପରାଗମଣି, ପୋଖରାଜ—5. Topaz.
୬ । ଗୋରୋଚନା—6. Yellow pigment.
୭ । ଶାଖୋଟ ବା ଶାହାଡ଼ା ( ଗଛ )—
7. Trophis Aspera ( tree ).
୮ । ଅଙ୍କୋଠ; ଧଳା ଆଙ୍କୁ ଗଛ—
1. Alangium Hexapetallum.
୯ । ପୀତଝିଣ୍ଟି ( ହି. ଶ.); ଦାସକେରେଣ୍ଟା—
9. Barleria Prionites.
୧୦ । ଏକପ୍ରକାର ସୋମଲତା ( ହି. ଶ. )—
10. A kind of Soma creeper.
୧୧ । ବେତ ( ହି. ଶ )—11. Ratan cane.
୧୨ । ସରଳଧୂପ ( ହି. ଶ. )—
12. Incense extracted from the pine tree.

୧୩ । କପିଳବର୍ଣ୍ଣ (ହ୍ରି. ଶ.)—13. Grey or tawny colour.
୧୪ । ହରିଚନ୍ଦନ (ହ୍ରି. ଶ.)—14. A kind of sandal.
୧୫ । ନନ୍ଦୀବୃକ୍ଷ (ହ୍ରି. ଶ.), ତୁତ ଗଛ—15. Mulberry.
୧୬ । ପଦ୍ମ କାଷ୍ଠ ( ହ୍ରି. ଶ ) (ଦେଖ )
16. Padma kāshtha ( See)
ଦେ. ବି—( ହଳଦିଆ ରଙ୍ଗର ପକ୍ଷୀ ) ହଳଦୀବସନ୍ତ ପକ୍ଷୀ—
The yellow Barbet; Cyanops Asiatica (bird).
ତମାଳ ତରୁକୁ ପୀତସୃଥ ବେଢି ଧାଉଥାନ୍ତ ଶୋଭ ଭଜେ—
ଅଭିମନ୍ୟୁ, ବିଦଗ୍ଧଚିନ୍ତାମଣି ।

ପୀତକ—ସଂ. ବି. ( ପୀତ+ସ୍ୱାର୍ଥେ. କ )—୧ । ହରିତାଳ—
Pītaka 1. Yellow orpiment.
୨ । କୁଙ୍କୁମ, ଜାଫ୍ରାନ—2. Saffron.
୩ । ଅଗୁରୁ ଚନ୍ଦନ—3. Aloe wood.
୪ । ପଦ୍ମ କାଷ୍ଠ—4. A fragrant wood.
୫ । କୁସୁମଫୁଲ—5. Safflower.
୬ । ପିତଳ—6. Brass.
୭ । ମଧୁ—7. Honey.
୮ । ହଳଦୀ—
8. Turmeric; Curcuma Zanthorrhiza
୯ । (ଗଣିତ) ଅବ୍ୟକ୍ତ ରାଶିବିଶେଷ—
9. (mathematics) An unknown quantity.
୧୦ । ଅଶୋକ ଗଛ—
10. Janesia Asoka ( tree ).
୧୧ । ଚିରେଇତା ଗୁଳ୍ମ—
11. A sort of Gentia; Cheerātā.
୧୨ । ରାକ୍ଷସବିଶେଷ—
12. Name of a demon,
୧୩ । ସ୍ୱର୍ଣ୍ଣମାକ୍ଷିକ ( ହ୍ରି. ଶ. )—
13. Iron or copper pyrites.
୧୪ । ବଜ୍ରସାର, ସାଳ ନିର୍ଯ୍ୟାସ ( ହ୍ରି. ଶ. )—
14. The gum of pine tree used as incense.
୧୫ । ପୀତ ଲୋଧ୍ର ( ଉ. ଶ )—15. The yellow variety of Simplocus Racemosa.
୧୬ । ପୀତ ଚନ୍ଦନ ( ହ୍ରି. ଶ. )—
16 Yellow sandal wood
୧୭ । କଙ୍କୋଲ; ଏକ ପ୍ରକାର ବବୂର ଗଛ ( ହ୍ରି. ଶ. )—
17 Acacia Arabica.
୧୮ । ଗାଜର ( ହ୍ରି. ଶ. )—18. Carrot.
୧୯ । ପୀତ ଜୀରକ; ଧଳା ଜୀର ( ହ୍ରି. ଶ. )—
19. Cumin seed.

ପୀତ କଦଳୀ—ସଂ. ବି (କର୍ମଧା)—ସ୍ୱର୍ଣ୍ଣ କଦଳୀ; ଚମ୍ପା କଦଳୀ—
Pīta kadalī A variety of plantain with yellow pulp.

ପୀତ କନ୍ଦ—ସଂ. ବି (ବହୁବ୍ରୀହି)—ଗାଜର—
Pīta kanda Carrot.

ପୀତ କରବୀରକ—ସଂ. ବି—(ହଳଦିଆ) କନିଅର ଫୁଲ—
Pīta karabīraka Bastard oleander.

ପୀତକା—ସଂ. ବି. ( ପୀତକ+ଆ )—୧ । ଦାସକେରେଣ୍ଟା—
Pītakā 1. The yellow flowered Barleria ( plant ).
୨ । ହଳଦୀ—2. Turmeric.

ପୀତ କାବେର—ସଂ. ବି. ( ପୀତ+କାବେର=ବସ୍ତୁ )—
Pīta kābera ୧ । କୁଙ୍କୁମ—1. Saffron.
(ପୀତକାବେର—ଅନ୍ୟରୂପ) ୨ । ପିତ୍ତଳ—2. Brass.
୩ । ପୀତାକୋରୁଆ ଗୁଳ୍ମ—
3. Holarrhena Dysenterica (plant).

ପୀତ କାଷ୍ଠ—ସଂ ବି—୧ । ପୀତ ଚନ୍ଦନ—
Pīta kāshtha 1 Yellow sandal.
୨ । ପଦ୍ମ କାଷ୍ଠ ( ହ୍ରି. ଶ. ) ( ଦେଖ )
2. Padma kāshtha ( See )

ପୀତକାଷ୍ୟ—ସଂ. ବି—ପୀତ ଚନ୍ଦନ—
Pītakāshya Yellow Sandal.

ପୀତ କୁରବକ—ସଂ. ବି—ଦାସକେରେଣ୍ଟା ( ହ୍ରି ଶ. )—
Pīta kurabaka The yellow flowered Barleria.
(ପୀତ କୁରୁଣ୍ଟ, ପୀତ କୁସୁମ, ପୀତଝିଣ୍ଟୀ—ଅନ୍ୟରୂପ)

ପୀତ କୁଷ୍ମାଣ୍ଡ—ସଂ. ବି—ବୋଇତି କଖାରୁ—
Pīta kushmānda Curcurbita Maxima.

ପୀତ କୋଷା—ସଂ. ବି—ଗୋସାଳିଳ ( ଦେଖ )
Pīta kosā Gosāulī ( See )

ପୀତ ଗନ୍ଧ—ସଂ. ବି—ପୀତ ଚନ୍ଦନ ( ଦେଖ )
Pīta gandha Pīta chandana ( See )

ପୀତ ଚନ୍ଦନ—ସଂ. ବି—ଏକ ପ୍ରକାର ଉତ୍କୃଷ୍ଟ ଓ ପୀତାଭ ଚନ୍ଦନ; ହରିଚନ୍ଦନ—
Pīta chandana A species of yellow sandal wood.
ସଂ. କାଳସାର, କାଳାନୁସାର୍ଯ୍ୟକ, ପୀତକ, ପୀତକା, ବର୍ବ୍ବୂର, କାଲେୟ, ବର୍ବର, କାଲୀୟ, କାଲୀୟକ, ପୀତାଭ, ମାଧବପ୍ରିୟ, କାଲୟକ, ହରିଚନ୍ଦନ, ହରିପ୍ରିୟ, ପୀତଗନ୍ଧ, ପୀତକାଷ୍ଠ, କଳମ୍ବା
ତ୍ରା. କଲମ୍ବକ
ତେ. କଲମ୍ବନ
[ ଦ୍ର—ଏହା ଶୀତବୀର୍ଯ୍ୟ, ତିକ୍ତରସ ଓ କାନ୍ତିକାରକ । ଏହା ବଚର୍ଚ୍ଚିକା, କୁଷ୍ଠ, କଣ୍ଡୁ, କଫ, ଦଦ୍ରୁ, ବିଷଦୋଷ, ରକ୍ତପିତ୍ତ, କ୍ରିମି, ବ୍ୟଙ୍ଗ, ପିତ୍ତଦୋଷ, ପିପାସା, ଜ୍ୱର ଓ ଦାହରୋଗରେ ଉପକାରୀ । ରକ୍ତ ଚନ୍ଦନର ଅନ୍ୟାନ୍ୟ ଗୁଣ ଏଥିରେ ଦେଖାଯାଏ । ଏହା ଘୋର କରି ଦେହରେ ଓ ଦେବତାଙ୍କ ଶ୍ରୀଅଙ୍ଗରେ ବୋଳାଯାଏ । ]

ପୀତ ଚମ୍ପକ—ସଂ. ବି. ( କର୍ମଧା; ପୀତ+ଚମ୍ପକ )—
Pīta champaka ୧ । ହଳଦିଆ ଚମ୍ପା—
1. Yellow Champaka flower.
୨ । ( ବହୁବ୍ରୀହି ବା ଉପମିତ ) ପ୍ରଦୀପ—2. Lamp.

ପୀତ ତଣ୍ଡୁଲ—ସଂ. ବି—ସାଳ ଗଛ ( ହ୍ରି. ଶ. )—
Pīta tandula The Sāla tree.
(ପୀତ ତଣ୍ଡୁଳକା—ଅନ୍ୟରୂପ)

**ପୀତ ତୁଣ୍ଡ**— ସ ବ· ( ବହୁବ୍ରୀହି; ପୀତ+ତୁଣ୍ଡ )—
Pita tunda ୧ । କାଦମ୍ବ ପକ୍ଷୀ; ବାଲ ହଂସ—
(ପୀତ ତୁଣ୍ଡ—ଅନ୍ୟରୂପ) 1 A kind of goose.
୨ । ବାୟା ଚଢେଇ—2. The tailor bird

**ପୀତ ଦାରୁ**— ସ. ବ —୧ । ଦେବଦାରୁ—
Pita dāru 1. Pine tree.
୨ । ସରଳ ଧୂପ — 2. The gum of pine used as incense.
୩ । ହଳଦୀ (ହି. ଶ.)—3 Turmeric.

**ପୀତଦୁଗ୍ଧା**—ସ. ବ. ସ୍ତ୍ରୀ. ( ବହୁବ୍ରୀହି, ପୀତ+ଦୁଗ୍ଧ+ଆ )—
Pita dugdhā ୧ । ଯେଉଁ ଗାଈର ଦୁଧ ବାଛୁରୀ ପିଇ ସାରିବା ପରେ ମନୁଷ୍ୟ ଦ୍ୱାରା ଦୁହାଁ ଯିବା ପାଇଁ ଗାଈ ବନ୍ଧା ହୋଇଥାଏ—
1. A milch cow ready to be milked after the calf has sucked.
୨ । ଦୁହାଁଳୀ ଗାଈ—2. A milch cow ( Apte )
୩ । ଯେଉଁ ଗାଈର ଦୁଧ ପୂର୍ବରୁ ମହାଜନଙ୍କୁ ବନ୍ଧକ ଦିଆ ଯାଇଅଛି—3. A cow whose milk has been pledged ( Apte ).

**ପୀତଦ୍ରୁ**—ସ. ବ—୧ । ଦାରୁ ହରିଦ୍ରା, ଡାଳ ହଳଦୀ—
Pitadru 1. A kind of turmeric.
୨ । ଦେବଦାରୁ—2. Pine.

**ପୀତ ଧଡ଼ା**—ଦେ. ବ. (ସଂ ପୀତ ଧଟୀ)— ଅଣ୍ଟାରେ ଭିଡ଼ା ଯିବା ହଳଦିଆ
Pita dhardā ପାଟ ଚଦର, ପୀତାମ୍ବର—A yellow silk sheet used as belt.
[ଦ୍ର—ଶ୍ରୀକୃଷ୍ଣ ଏହାକୁ ଅଣ୍ଟାରେ ଭିଡ଼ୁ ଥିଲେ ।]

**ପୀତନ**—ସ. ବ. (ପୀତ=ହଳଦୀ+ ନୀ ଧାତୁ+ଅ)—୧ । କୁଙ୍କୁମ—
Pitana 1. Saffron.
(ପୀତନକ—ଅନ୍ୟରୂପ) ୨ ହରିତାଳ—
2. Yellow orpiment.
୩ । ଧୂପ ସରଳ—2. The gum of pine tree
୪ । ପର୍କଟିବୃକ୍ଷ; ଜରିଗଛ—4 The wavy leafed fig tree.
୫ । ଆମ୍ବଡ଼ାଗଛ (ହି ଶ)—
5. The hog-plum tree (Apte).

**ପୀତନକ**—ସ. ବ.—୧ । ଆମ୍ରାତକ; ଆମ୍ବଡ଼ା—
Pitanaka 1. The hug plum.
୨ । କୁଙ୍କୁମ—2. Saffrom
୩ । ହରିତାଳ—3. Yellow orpiment.
୪ । ଦେବଦାରୁ—4. A sort of pine.

**ପୀତନାଶ**—ସ. ବ— ଲକୁଚ;ଜେଉଟ (ଦେଖ)—
Pitanāsa Jeuta (See)

**ପୀତନୀ**—ସ. ବ—ଶାଳପର୍ଣ୍ଣୀ (ହି. ଶ) ଦେଖ—
Pitani Sālaparnni (See)

**ପୀତ ନୀଳ**—ସ. ବ.—ସାବଜାବର୍ଣ୍ଣ; ଭୃଣବର୍ଣ୍ଣ
Pita nila Green colour.
ସ. ବଣ—ସାବଜା—Green.

**ପୀତ ପଟ**—ସ.ବ.. (ବହୁବ୍ରୀହି;ପୀତ+ପଟ)—ପୀତବସ୍ତ୍ର ପରିଧାନକାରୀ—
Pita pata Putting on yellow cloth.
ପୀତପଟ ନଟ ନାଁ ମୋ ଅଗରେ ନ ଧର
କବିସୂର୍ଯ୍ୟ - କଳୋଲ୍ଲ ଚତୁ, ପ ଗୀତ
ସଂ. ବ— ଶ୍ରୀକୃଷ୍ଣ—An epithet of Srikrushna.

**ପୀତ ପରାଗ**—ସ. ବ. (ବହୁବ୍ରୀହି, ପୀତ+ପରାଗ) —ପଦ୍ମକେଶର(ହି.ଶ )
Pita parāga The filaments of lotus.

**ପୀତପର୍ଣ୍ଣୀ**—ସ. ବ. (ପୀତ+ପର୍ଣ୍ଣ+ଈ)—ବୃଶ୍ଚିକାଳୀ, ବିଛୁଆତି—
Pitaparnni The stringing nettle.

**ପୀତ ପାଦପ**—ସଂ. ବ. ୧ । ଶ୍ୟୋନାକ, ଫଣଫଣା (ଦେଖ)
Pita pādapa 1. Phanaphanā (See).
୨ । ଲୋଧ (ହି. ଶ).—2. Simplocus Racemosus.

**ପୀତପାଦା**—ସଂ. ବ (ବହୁବ୍ରୀହି; ପୀତ+ପାଦ+ଅ)—ଶାରୀ ପକ୍ଷୀ—
Pitapādā The myna bird.

**ପୀତପିଷ୍ଟ**—ସଂ.ବ—ସୀସାଧାତୁ—
Pitapisthta Lead (metal) (Apte)

**ପୀତ ପୁଷ୍ପ**—ସଂ. ବ (କର୍ମଧା ଓ ବହୁବ୍ରୀହି) ୧ । କନିଅର—
Pitapushpa 1 Yellow oleander.
(ପୀତପୁଷ୍ପକ—ଅନ୍ୟରୂପ ୨ । ପୀତ ଝିଣ୍ଟି—
2. The yellow flowered Barlaria.
୩ । ଜହ୍ନି (ହି.ଶ.)—3. Luffa Acutangula.
୪ । ତଗର (ହି. ଶ).—4 Tagara (See)

**ପୀତପୁଷ୍ପା**—ସଂ. ବ (ବହୁବ୍ରୀହି.) ୧ । ମହାକାଳ (ଦେଖ)—
Pita pushpā 1. Mahākāla (See).
୨ । ଜହ୍ନି—2. Luffa Acutangula.
। ପୀତ ଝିଣ୍ଟି—3 Yellow Barleria
୪ । ହଳଦିଆ ଯୁଇ—4. Yellow Jui flower.
୫ । କନିଅର—5, Yellow oleander.

**ପୀତପୁଷ୍ପୀ**—ସଂ. ବ—ପୀତପୁଷ୍ପା ୪୫ (ଦେଖ)
Pitapushpi Pitapushpā 4 5. (See)

**ପୀତ ବାଲୁକା**—ସଂ. ବ — ହଳଦୀ (ହି. ଶ)
Pita bāluka Turmeric

**ପୀତ ବାସ**—ସଂ.ବ ପୁଂ—(ପୀତ+ବାସ=ବସ୍ତ୍ର;ବହୁବ୍ରୀହି)୧ । ଶ୍ରୀକୃଷ୍ଣ—
Pita bāsa 1, Srikrushna,
୨ । ଲୋକଙ୍କ ନାମ—2. A name given to males.

**ପୀତବାସାଃ**— ସଂ.ବଣ. (ବହୁବ୍ରୀହି;ପୀତ+ବାସସ୍)—ଯେ ହଳଦିଆଲୁଗା-
Pitabāsā ପିନ୍ଧେ—Wearing yellow cloth.
ସଂ. ବ. ଶ୍ରୀକୃଷ୍ଣଙ୍କ ନାମ—A name of Srikrushna.

**ପୀତବୀଜା**—ସଂ· ବ.— ମେଥୀ—
Pitabijā Trigonella FænuGræcum; fenugreek.

**ପୀତଭୃଙ୍ଗି (ଙ୍ଗୀ)**—ସଂ. ବ.— ଭୃଙ୍ଗରାଜ (ଦେଖ)
Pitabhrungi (ngi) Bhrungarāja (See)
(ପୀତଭୃଙ୍ଗରାଜ— ଅନ୍ୟରୂପ)

**ପୀତ ମଣି**—ସଂ ବ.—ପୁଷ୍ପରାଗ, ପୋଖରାଜ ମଣି—
Pita mani (ପୀତରତ୍ନ—ଅନ୍ୟରୂପ) Topaz.

**ପୀତ ମୁଦ୍ଗ**—ସଂ. ବ—ସୁନାମୁଗ, ମେଥିମୁଗ—
Pita mudga A kind of mung (pulse).

**ପୀତ ମୂଲକ**—ସଂ ବ.—ପୀତ କନ୍ଦ (ଦେଖ)—
Pita mūlaka Pita kanda (See)

**ପୀତ ରକ୍ତ**— ସଂ. ବ. ୧ । ପୋଖରାଜ ମଣି—
Pita rakta 1, Topaz,
୨ । ପଦ୍ମ କାଷ୍ଠ (ଦେଖ)—2. Padma kāshtha (See)

**ପୀତ ଲୋହ**—ସଂ. ବ. (କର୍ମଧା, ପୀତ + ଲୋହ)—ପିତ୍ତଳ—
Pita loha Brass.

**ପୀତଶାଳ**—ସଂ ବ —୧ । ପିଆଶାଳ (ଦେଖ)
Pitaśāla Piyāsāla (See)
(ପୀତଶାଳକ—ଅନ୍ୟରୂପ) ୨ । ଅସନ (ଦେଖ)—
2, Asana (see)

**ପୀତ ସାର**—ସଂ. ବ—୧ । ହରିଚନ୍ଦନ, ପୀତ ଚନ୍ଦନ—
Pita sāra 1, Yellow sandal wood
୨ । ଗୋମେଦ ବା ପୁଷ୍ପରାଗମଣି—2, Topaz
୩ । ଚନ୍ଦନ ବୃକ୍ଷ—3 Sandal wood.
୪ । ଲେମ୍ବୁ, କମଳା—4, Common Citron lemon.
୫ । ଅଙ୍କୋଠ; ଧଳାଅଙ୍କୁ ଗଛ—
5, Alangium Hexapetallum tree.
୬ । ପିଆଶାଳ (ଦେଖ)—6, Piyāsāla (See).
୭ । ଅସନ (ଦେଖ)—7, Asana (See)
୮ । ଶିଳାରସ (ହି. ଶ.) (ଦେଖ)—8. Silārasa (See)

**ପୀତ ସାରକ**—ସଂ. ବ—୧ । ଅଙ୍କୋଠ ବୃକ୍ଷ—
Pita sāraka 1. Alangium tree.
୨ । ନିମ୍ବ ଗଛ—2. Nim tree.

**ପୀତସାରି**—ସଂ. ବ—ସୁରୁମା—
Pitasāri (ପୀତସାରକା—ଅନ୍ୟରୂପ) Antimony.

**ପୀତ ସାଲ**—ସଂ. ବ—୧ । ପିଆଶାଳ (ଦେଖ)—
Pita sāla 1 Piyāsāla (See)
(ପୀତ ସାଲକ—ଅନ୍ୟରୂପ) ୨ । ଅସନ (ଦେଖ)—
2. Asana (See)

**ପୀତ ସ୍ଫଟିକ**—ସଂ. ବ—ପଦ୍ମରାଗ ମଣି—
Pita sphatika Topaz.

**ପୀତ ସ୍ଫୋଟ**—ସଂ. ବ—ଖଜୁଲି; କାଛୁ (ହି. ଶ)—,
Pita sphota Itches.

**ପୀତା**—ସଂ. ବ—(ପୀତ + ଆ)—୧ । ହଳଦ—
Pitā 1. Turmeric.
୨ । ଗୋରୋଚନା—
2 Yellow pigment found in cow's head.
୩ । ଦାରୁ ହଳଦୀ (ହି. ଶ.)—
3, Dāru haladi (See)
୪ । ଚମ୍ପା କଦଳୀ (ହି. ଶ)—
4. A variety of plantain with yellow pulp
୫ । ଶାଳପର୍ଣ୍ଣୀ (ହି. ଶ)—5. Sālaparnni (See).
୬ । ଆକାଶବଳ୍ଲୀ, ଳମୃଲୀ ଲତା (ହି. ଶ)—
6. A parasitic creeper
୭ । ଦେବଦାରୁ (ହି. ଶ)—7. Pine (tree).
୮ । ଅଶ୍ୱଗନ୍ଧା (ହି ଶ) (ଦେଖ)—
8. Aswagandhā tree (See)
୯ । ଜଙ୍ଗଲୀ ଠଙ୍ଗ (ହି. ଶ)—9. Wild orange
ସଂ. ବିଣ. ସ୍ତ୍ରୀ—ପୀତର ସ୍ତ୍ରୀଲିଙ୍ଗ—Feminine of Pita.
ଦେ. ବ.—ପୁଂ. ଓ ସ୍ତ୍ରୀ.—ପୀତାମ୍ବର ଓ ପୀତାମ୍ବରୀର ଡାକନାମ-
Name for calling Pitāmbara (male) and
Pitāmbari (female).

**ପୀତାଭ**—ସଂ. ବଣ (ବହୁବ୍ରୀହି), ପୀତ + ଆଭା)—ହଳଦିଆ—
Pitābha Yellow.
(ପୀତାଭା—ସ୍ତ୍ରୀ) ସଂ. ବ—ପୀତ ଚନ୍ଦନ (ହି. ଶ)—
Yellow sandal.

**ପୀତାମାରି**—ଦେ. ବ —ବନ୍ୟ ବୃକ୍ଷବିଶେଷ—
Pitāmāri A kind of wild tree.
[ଦ୍ର—ଏହାର ଉଚ୍ଚତା ପ୍ରାୟ ୧୫ ଫୁଟ ହୁଏ ।]

**ପୀତାମ୍ବର**—ସଂ. ବ —(କର୍ମଧା; ପୀତ + ଅମ୍ବର)—୧ । ହଳଦିଆ ଲୁଗା—
Pitāmbara 1. Yellow cloth
୨ । (ବହୁବ୍ରୀହି) ବିଷ୍ଣୁ; ଶ୍ରୀକୃଷ୍ଣ—2. Srikrushna.
୩ । ନର୍ତ୍ତକ—3. A dancer.
୪ । ନଟ—4. An actor.
୫ । ହଳଦିଆ ବସ୍ତ୍ରଧାରୀ ସନ୍ନ୍ୟାସୀ—
5 A mendicant wearing yellow clothes.
(ପୀତାମ୍ବରୀ—ସ୍ତ୍ରୀ) ସଂ. ବିଣ. ପୁଂ—ହଳଦିଆ ଲୁଗା ପିନ୍ଧିଥିବା
(ବ୍ୟକ୍ତି)—Wearing yellow clothes.

**ପୀତାମ୍ବର ଦାଶ**—ଦେ. ବ (ନାମ)—ଜଣେକ ଗଞ୍ଜାମବାସୀ ଓଡ଼ିଆ
Pitāmbara dās. ବ୍ରାହ୍ମଣ କବି—An Ordiā Brāhman.
poet of Ganjam.
[ଦ୍ର—ଏ ଓଡ଼ିଶା ରାଜା ଶ୍ରୀ ନାରାୟଣଦେବ ଦେବଙ୍କ ରାଜତ୍ୱ
କାଳରେ (ଖ୍ରୀ: ୧୭୩୬—୧୭୬୩) ତାହାଙ୍କର ପ୍ରକାଣ୍ଡ ଗ୍ରନ୍ଥ
'ନୃସିଂହ ପୁରାଣ' ରଚନା କରିଥିଲେ । ତାରଣୀ-ଉତ୍କଳ-ସାହିତ୍ୟ—
ଇତିହାସ ।
ଏ କବି ଗୁପ୍ତ ବୈଷ୍ଣବ ଥିଲେ । ଏହାଙ୍କ ପିତାଙ୍କ ନାମ
ବାଲୁକେଶ୍ୱର । ଋଷିକୁଲ୍ୟା ନଦୀ ତଟରେ ଏହାଙ୍କର ମଠ ଥିଲା—
ଜଗବନ୍ଧୁ-ପ୍ରାଚୀନ-ଉତ୍କଳ ।]

**ପୀତାମ୍ବର ଦେବ**—ଦେ ବ (ନାମ)—ଜଣେକ ଓଡ଼ିଆ କବି—
Pitāmbara deba An Ordiā poet.
[ଦ୍ର—ଏ ଜଣେ ରାଜା ବା ରାଜବଂଶୀୟ ଥିଲେ । 'ଅଖିଳ
ଚନ୍ଦ୍ରାମଣି' ନାମରେ ଖଣ୍ଡିଏ ଛନ୍ଦଗ୍ରନ୍ଥ ଏହାଙ୍କ ରଚିତ—
ତାରଣୀ-ଉତ୍କଳ-ସାହିତ୍ୟ-ଇତିହାସ ।]

**ପୀତାମ୍ବର ମିଶ୍ର କବିଚନ୍ଦନ**—ଦେ. ବି—(ନାମ)—ଜନୈକ ଓଡ଼ିଆ କବି
Pitāmbara misra kabichandna An Ordiā poet.
[ଦ୍ର—୧୯ଶ ଶତାବ୍ଦୀର ଶେଷ ଭାଗର କବି । 'ରାମବିରୁଦାବଳୀ' ଓ 'ପୀତାମ୍ବରୀ ଚଣ୍ଡୀ' ପ୍ରଭୃତି ଗ୍ରନ୍ଥର ପ୍ରଣେତା—ଜଗବନ୍ଧୁ ପ୍ରାଚୀନ ଉତ୍କଳ । ]

**ପୀତାମ୍ବର ରାଜେନ୍ଦ୍ର**—ଦେ. ବି (ନାମ)—ଜଣେ ଓଡ଼ିଆ କବି—
Pitāmbara rājendra An Ordiā poet.
[ଦ୍ର—ଏ ସମ୍ଭବତଃ ଗଞ୍ଜାମ ଜିଲ୍ଲା ଚିକିଟି ରାଜ୍ୟର ରାଜା ଥିଲେ, 'ରାମଲୀଳା' ଏହାଙ୍କ ରଚିତ ଗ୍ରନ୍ଥ ।]

**ପୀତାମ୍ବରା**—ସ. ବିଣ. ସ୍ତ୍ରୀ—(ପୀତାମ୍ବର+ସ୍ତ୍ରୀ. ଆ)—ପୀତାମ୍ବର ପରିଧାନ
Pitāmbarā କାରିଣୀ—(female) Wearing yellow cloth.
ସ ବି—୧ । ମହାଲକ୍ଷ୍ମୀ—1. Goddess Lakshmi
୨ । ବଗଳାମୁଖୀ—2. One of the forms of Durgā or Dasamahābidyā.

**ପୀତାମ୍ବରୀ**—ଦେ. ବିଣ. ସ୍ତ୍ରୀ—ପୀତାମ୍ବର ପରିଧାନ କାରିଣୀ—
Pitāmbari (female) Wearing yellow cloth.
ଦେ. ବି—(ସ. ପୀତାମ୍ବର)—୧ । ଏକପ୍ରକାର ହଳଦିଆ ପାଟ ଶାଢ଼ୀ—1. A kind of yellow silk cloth.
[ଦ୍ର—ଏଥିର ଝାଣୀ ନାଲି ଓ ଭରଣୀ ହଳଦିଆ ।]
୨ । ସ୍ତ୍ରୀଲୋକଙ୍କର ନାମ—
2. A name given to females.

**ପୀତାରୁଣ**—ସ. ବି ଓ ବିଣ—(ପୀତ+ଅରୁଣ)—୧ । ହଳଦିଆ ମିଶା
Pitāruṇa ନାଲି ରଙ୍ଗ—Yellowish red colour.
୨ । ସୁର୍ଯ୍ୟ ଫାଟିବା ବେଳ—
2. Daybreak;
ସ. ବିଣ - ହଳଦିଆ ମିଶା ନାଲି—Yellow-red.

**ପୀତାଶ୍ମ**—ସ. ବି. (ପୀତ+ଅଶ୍ମନ୍)—ପୁଷ୍ପରାଗ ମଣି—
Pitāsmā (ପୀତାଶ୍ମ—ଅନ୍ୟରୂପ) Topaz.

**ପୀତି**—ସ. ବି. (ପା ଧାତୁ+କର୍ତ୍ତୃ. ତି)—୧ । ଘୋଡ଼ା—
Piti 1. Horse.
୨ । (+ଭାବ. ତି) ପାନ, ପିଇବା—
2. Drinking; draught.
୩ । (+ଅଧି. ତି) ଶୁଣ୍ଡୀ ଦୋକାନ, ଶୌଣ୍ଡିକାଳୟ—
3. Wine shop; dram shop; tavern.
୪ । ହାତୀ ଶୁଣ୍ଢ—4. The proboscis of an elephant.
୫ । ଗତି; ଗମନ—5. Going (Apte).
୬ । (ବୈଦିକ) ରକ୍ଷଣ—6. (vedic) Protection.

**ପୀତିକା**—ସ. ବି. (ପୀତ+କ+ସ୍ତ୍ରୀ. ଆ)—୧ । ହଳଦୀ—
Pitikā 1. Turmeric.
୨ । ସ୍ୱର୍ଣ୍ଣଯୂଥୀ; ହଳଦିଆ ଯୁଈ—2. Golden jasmine.

**ପୀତୀ**—ସ. ବି. (ପୀତି+ଇନ୍; ଅଛି. ଅର୍ଥରେ)—ଘୋଡ଼ା—
Piti Horse.

**ପୀତୁ**—ସ. ବି. (ପା ଧାତୁ+କର୍ତ୍ତୃ. ତୁ; ଜଳକୁ ଶୁଖାଇବାରୁ)—୧ । ସୂର୍ଯ୍ୟ
Pitu 1. The sun.
୨ । ଅଗ୍ନି—2. Fire.
୩ । ଯୂଥପତି; ହସ୍ତୀ—3. The chief leading elephant of a herd.
ଦେ. ବି. ପୁଂ. ଓ ସ୍ତ୍ରୀ—ପୀତାମ୍ବର ଓ ପୀତାମ୍ବରୀର ଡାକ ନାମ—
Name for calling Pitāmbara and Pitāmbari.

**ପୀଥ**—ସ. ବି. (ପା ଧାତୁ+କର୍ତ୍ତୃ. ଥ)—୧ । ସୂର୍ଯ୍ୟ—
Pitha 1. The sun.
୨ । ଅଗ୍ନି—2 Fire.
୩ । କାଳ—3. Time.
୪ । (+କର୍ମ. ଥ) ଜଳ—4. Water.
୫ । ଘୃତ—5. Ghee.

**ପୀଥି**—ସ. ବି. (ପା ଧାତୁ+କର୍ତ୍ତୃ. ଥି)—ଘୋଟକ—
Pithi Horse

**ପୀନ**—ସ. ବିଣ. (ପ୍ୟାୟୃ ଧାତୁ=ବୃଦ୍ଧି ପାଇବା+କର୍ତ୍ତୃ. ତ)—
Pina ୧ । ସ୍ଥୂଳ, ମୋଟା—1. Muscular; fat; corpulent; robust; stout; bulky; plump
୨ । ଫୁଲି ଥିବା—2. Swollen.
୩ । ପ୍ରବୃଦ୍ଧ, ପୁଷ୍ଟ—
3. Enlarged; developed; profuse.
୪ । ସମ୍ପନ୍ନ; ପୂର୍ଣ୍ଣ—4. Finished; full
୫ । ଗୋଲ ଓ ସ୍ଥୂଳ—5. Full and round.
୬ । ମାଂସଳ—
6. Brawny; fleshy. (Apte).

**ପୀନ ଉରଜା**—ଦେ ବି. ସ୍ତ୍ରୀ—(ସ. ପୀନ+ଉର=ବକ୍ଷ+ଜନ୍ ଧାତୁ
Pina urajā +ଅ+ସ୍ତ୍ରୀ. ଆ)—(ପୃଥିବୀରୁ ଜାତା)—ସୀତା—
Sitā.

ତପିଳରେ ପୀନ ଉରଂଜା ଅପୂର୍ବ ଦ୍ରବ୍ୟ ଦେଖି ନ ମାଗିବୁ ।
ଉପେ. ବୈଦେହୀଶବିଳାସ ।

ଦେ. ବିଣ. ସ୍ତ୍ରୀ—(ପୀନ+ଉରଜ+ଆ)—ପୃଥୁଳ ସ୍ତନବିଶିଷ୍ଟା (ସ୍ତ୍ରୀ)—(a woman) Having plump breasts.

**ପୀନ ପୟୋଧର**—ସ. ବି. (କର୍ମଧା)—ଲାଉଆ ଦୁଧ; ସ୍ଥୂଳସ୍ତନ; ପୀବର
Pina payodhara ସ୍ତନ—Plump breasts.
(ପୀନସ୍ତନ; ପୀନ ବକ୍ଷଃ—ଅନ୍ୟରୂପ)

**ପୀନ ପୟୋଧରା**—ସ. ବିଣ. ସ୍ତ୍ରୀ. (ବହୁବ୍ରୀହି)—ଲାଉଆ ଦୁଧୀ, ପୀବର-
Pina payodharā ସ୍ତନା; ସ୍ଥୂଳ କଠିନ କୁଚା—(a woman)
ପୀନସ୍ତନୀ / ପୀନବକ୍ଷାଃ } ଅନ୍ୟରୂପ — Having plump and prominent breasts; having a full bosom.

**ପୀନ ଶିଳା**—ସ. ବି.—(କର୍ମଧା; ପୀନ+ଶିଳା)—କଠିନ ପ୍ରସ୍ତର—
Pina silā Hard stone.

ବାଦ୍ୟ ବାଜିବା ଛଳେ ଅର୍ଥେ ନ କହି ପରସ୍ପରେ କଥା ନୋହି,
ଯଦି ନ ପୀନ ଶିଳା ଟେକେ ସେ ହୀରୀ ପ୍ରାପ୍ତ ଅବଧି ହୋଇ ।
ଉପେ. ବୈଦେହୀଶବିଳାସ

ପୀନସ—ସଂ. ବି. (ପୀନ=ମୋଟା+ସେ ଧାତୁ=ନାଶ କରିବା+କର୍ତ୍ତୃ ଅ)
Pinasa ୧ । ନାସିକା ରୋଗବିଶେଷ, ପିନସରୋଗ—
1. Atrophic rhinites; polypus of the nose.
୨ । ସର୍ଦ୍ଦି—2 Cold; catarrh.

ପୀନସା – ସଂ ବି.—କାକୁଡ଼ି—
Pinasā Cucumber.

ପୀନସୀ—ସଂ ବିଣ. ପୁଂ (ପୀନସ+ଇନ୍, ୧ମା. ୧ବ)—ପୀନସ ରୋଗଗ୍ରସ୍ତ—
Pinasi Suffering from polypus of the nose or cold.
(ପୀନସିନୀ—ସ୍ତ୍ରୀ)

ପୀନା—ବୈଦେ. ବି (ଇଂ. ପିନ୍)—କାଠର ସରୁ ଖିଲ—
Pinā Slender wooden peg.
पीना पीना

ପୀନୋଧ୍ନୀ—ସଂ. ବି. ସ୍ତ୍ରୀ (ବହୁବ୍ରୀହି, ପୀନ=ସ୍ଥୂଳ+ଊଧସ୍=ପଣ୍ଡା+ଈ)—କୁଣ୍ଡୋଧ୍ନୀ ବା ପୀବରସ୍ତନୀ ଗୌ, ବଡ଼ ପଣ୍ଡା ଥିବା ଗାଈ—A cow with a large udder.
Pinodhni
(ପୀନୋଧାଃ—ଅନ୍ୟରୂପ)

ପୀନୋନ୍ନତ ପୟୋଧର—ସଂ. ବି (କର୍ମଧା, ପୀନ+ଉନ୍ନତ+ପୟୋଧର)—ସ୍ଥୂଳ ଓ କଠିନ ସ୍ତନ, ଯେଉଁ ପୀନ ସ୍ତନ ତଳଆଡ଼କୁ ଝୁଙ୍କି ନାହିଁ—Plump and prominent breasts; tight and plump breasts.
Pinonnata payodhara

ପୀନୋନ୍ନତ ପୟୋଧରା—ସଂ ବିଣ. ସ୍ତ୍ରୀ. (ବହୁବ୍ରୀହି)—
Pinonnata payodharā ଯେଉଁ ସ୍ତ୍ରୀର ସ୍ତନ ସ୍ଥୂଳ ଓ ଉନ୍ନତ—
(a woman) With tight and plump breasts,

ପୀପରୀ—ସଂ ବି—ଛୋଟ ପ୍ଲକ୍ଷ ଗଛ (ହି. ଶ)—
Pipari A small variety of Plaksha tree.

ପୀବର—ସଂ. ବିଣ. (ପୈ ଧାତୁ=ବୃଦ୍ଧି ପାଇବା+ବର)—
Pibara ୧ । ପୀନ, ସ୍ଥୂଳ, ମୋଟା—
1 Fat; plump.
ପୀବରୀ, ପୀବରା } ସ୍ତ୍ରୀ
୨ । କୁଣ୍ଡାଭୂଷଣ୍ଡା; ସ୍ଥୂଳାଙ୍ଗ—
[ପୀବରତା(ତ୍ୱ)—ବି] 2. Corpulent
୩ । ଗୁରୁ; ଭାରି (ହି. ଶ)—3. Heavy.
ସଂ. ବି—୧ । କଚ୍ଛପ; କଇଁଛ—1. Tortoise (Apte)
୨ । ଜଟା (ହି. ଶ)—2. Matted hair.

ପୀବର ସ୍ତନୀ—ସଂ. ବିଣ ସ୍ତ୍ରୀ—୧ । ପୀନସ୍ତନୀ; ଘନକୁଚା—
Pibara stani 1. (a woman) Having plump breasts.
୨ । କୁଣ୍ଡୋଧ୍ନୀ—2. (a cow) Having a plump or large udder.

ପୀବରା—ସଂ. ବିଣ. ସ୍ତ୍ରୀ. (ପୀବର+ଆ)—ପୀବରର ସ୍ତ୍ରୀଲିଙ୍ଗ—
Pibarā Feminine of Pibara.
ସଂ. ବି—୧ । ଅଶ୍ୱଗନ୍ଧା—
1. A medicinal plant; Physalis Flexuosa.
୨ । ଶତାବରୀ; ଛତୋରୀ—2. A thorny and ferny creeper; Asparagus Racemosus.
୩ । ତରୁଣୀ, ଯୁବତୀ ସ୍ତ୍ରୀ—3. A young woman.
୪ । କୁଣ୍ଡା ଭୂଷୁଣ୍ଡା—4. A fat woman.

ପୀବରୀ—ସଂ. ବିଣ. (ପୀବର+ଈ)—ପୀବରର ସ୍ତ୍ରୀଲିଙ୍ଗ—
Pibari Feminine of Pibara.
ସଂ. ବି—୧ । ପୀବରା (ଦେଖ)—1, Pibarā (See)
ସଂ ଯୋଷିଣୀ, ଦ୍ରୁମୋତ୍ପଳ, ପରିବ୍ୟାଧ ୨ । ଓଲଟକମଳ ଗୁଳ୍ମ—
2 Abroma Augusta (plant).
୩ । ଗାଈ (ହି. ଶ)—3. Cow (Apte).
୪ । ଶାଲପର୍ଣ୍ଣୀ (ହି. ଶ) (ଦେଖ)
4. Salaparnni (See)

ପୀବା—ସଂ ବି. (ପ୍ୟାୟୃ ଧାତୁ=ବୃଦ୍ଧି ପାଇବା+କର୍ତ୍ତୃ. ବନ୍, ୧ମା. ୧ବ)—୧ । ବାୟୁ—1 Air; wind.
Pibā
୨ । ଜଳ—2 Water (Apte).
ସଂ ବିଣ—୧ । ସ୍ଥୂଳ, ମୋଟା—1. Fat; plump.
୨ । ବଳିଷ୍ଠ—2 Strong

ପୀବିଷ୍ଠ—ସଂ. ବିଣ. ପୁଂ. (ପୀବନ୍+ଇଷ୍ଠ)—ଅତି ସ୍ଥୂଳ (ହି. ଶ)—
Pibishtha Very plump.
(ପୀବୀୟାନ୍—ଅନ୍ୟରୂପ, ପୀବିଷ୍ଠା, ପୀବୀୟସୀ—ସ୍ତ୍ରୀ)

ପୀୟ (ଧାତୁ)—ସଂ. (ସୌତ୍ର ଧାତୁ)—୧ । ବଧ କରିବା—
Piya (root) 1. To kill.
୨ । ହିଂସା କରିବା—2, To injure.
୩ । ତୃପ୍ତ କରିବା—3, To satisfy.
୪ । ଦୟା କରିବା—4, To be kind.
୫ । ସ୍ନେହ କରିବା—5, To love.
୬ । ସମ୍ମାନ କରିବା—6, To regard, to respect.

ପୀୟତ୍ନୁ—ସଂ. ବିଣ. (ପୀୟ ଧାତୁ=ହିଂସା କରିବା+ଶୀଳାର୍ଥେ ତ୍ନୁ)—
Piyatnu ହିଂସାଶୀଳ; ହିଂସ୍ର—Envious; malicious; malignant.

ପୀୟୁ—ସଂ. ବି (ପୀ ଧାତୁ+କର୍ତ୍ତୃ. ଉ; କିମ୍ବା ପା ଧାତୁ+ୟୁ)—
Piyu ୧ । କାଳ; ସମୟ—1. Time.
୨ । ସୂର୍ଯ୍ୟ—2. The sun
୩ । ପେଚା—3. Owl.
୪ । କାକ—4. Crow.
ସଂ. ବିଣ—ହିଂସ୍ର (ହି. ଶ.)—
Malicious; malignant.

ପୀୟୂଷ—ସଂ. ବି (ପୀୟୂ ଧାତୁ=ତୃପ୍ତକରିବା+କର୍ତ୍ତୃ. ଊଷ)—
Piyūsha ୧ । ସୁଧା, ଅମୃତ—1. Nectar.
୨ । ଦୁଗ୍ଧ—2. Milk.
୩ । ମିଷ୍ଟ ରସ—3. Sweet juice.
୪ । ଅତି ମଧୁର ବସ୍ତୁ—
4. Very sweet thing; any thing sweet.
ଢାଳୀ ଗୀତ ପୀୟୂଷ ପିଇବା—ବନସ୍ପର୍ଶ. ଉପେନ୍ଦ୍ର-ଭଞ୍ଜ, ବ ଗୀତ ।

୫ । ନବପ୍ରସୂତା ଗାଭୀଠାରୁ ପ୍ରସବର ସପ୍ତ ଦିନ ମଧ୍ୟରେ ଦୁହାଁହେବା ଦୁଗ୍ଧ—5 First week's milk of a cow; milk of a cow during a week after her calving.

[ ଦ୍ର—ବୈଦ୍ୟକ ମତରେ ଏ ଦୁଗ୍ଧ ଦାହକାରକ, ରକ୍ତର କୋପକାରକ ଓ ପିତ୍ତକାରକ ଅଟେ । ଏହା ସ୍ୱାସ୍ଥ୍ୟର ହାନିକର—ହି. ଶ. । ]

୬ । ଗଳସ୍ତ ଦୁଧ—6. Fresh milk.

**ପୀୟୂଷକଣ୍ଠୀ**—ଦେ. ବିଣ. ସ୍ତ୍ରୀ ( ବହୁବ୍ରୀହି )—ମଧୁର ଗଳା
Piyūshakaṇṭhi ଥିବା ( ସ୍ତ୍ରୀ ), ପୀୟୂଷବଚନା ସ୍ତ୍ରୀ—A sweet-toned (woman).

**ପୀୟୂଷ ବଚନ**—ସଂ. ବି—ପୀୟୂଷବାଣୀ (ଦେଖ)
Piyūsha bachana Piyūshabāṇi (See)
(ପୀୟୂଷବଚନା—ସ୍ତ୍ରୀ) ସଂ. ବିଣ. ପୁଂ – ପୀୟୂଷଭାଷୀ (ଦେଖ) Piyūshabhāshi (See)

**ପୀୟୂଷବାଣୀ**—ସଂ ବି—( ଲକ୍ଷଣାର୍ଥ ) ମଧୁର ବଚନ—
Piyūsha bāṇi ( figurative) Sweet words.

**ପୀୟୂଷଭାଷୀ**—ସଂ. ବିଣ. ପୁଂ ( ବହୁବ୍ରୀହି )—ମଧୁରଭାଷୀ—
Piyūshabhāshi Talking sweetly.
(ପୀୟୂଷଭାଷିଣୀ—ସ୍ତ୍ରୀ; ପୀୟୂଷଭାଷିତା—ବି)

**ପୀୟୂଷମହାଃ**—ସଂ. ବି ( ବହୁବ୍ରୀହି; ପୀୟୂଷ=ଅମୃତପର+ମହସ୍=ଦୀପ୍ତି,
Piyūshamahāh କିରଣ ଯାହାଙ୍କର, ୧ ମା. ୧ବ)—ସୁଧାଂଶୁ; ଚନ୍ଦ୍ର—The moon.

**ପୀୟୂଷ ରୁଚି**—ସଂ.ବି (ବହୁବ୍ରୀହି; ପୀୟୂଷ + ରୁଚି=କିରଣ ଯାହାଙ୍କର)—
Piyūsha ruchi ୧ । ଚନ୍ଦ୍ର—1. The moon.
୨ । ( ପୀୟୂଷରେ ରୁଚି ଯାହାଙ୍କର ) ଦେବଗଣ—The Gods.
ସଂ. ବିଣ ( ପୀୟୂଷରେ ରୁଚି=ସ୍ନେହ ଯାହାର ) ଅମୃତପ୍ରିୟ—Fond of nectar.

**ପୀରତି**—ଦେ. ବି ( ସଂ. ପ୍ରୀତି )—୧ । ପ୍ରୀତି, ଅନୁରାଗ, ପ୍ରଣୟ—
Pirati 1. Love.
পিরিত ୯ କ ଦଣ୍ଡ ବନା ପୀରତିରେ – କନ୍ଦର୍ପ କଟାକ୍ଷ ତମ୍ଭ କି ଗଢ ।
୨ । ପ୍ରୀତିପାତ୍ର—2. One's beloved person.
ଅରେ କୁଳାଙ୍ଗାର ଅନୁଭଧନ,
କେତେକାଳକୁ ରେ, ପୀରତି ତୋର ଧନ—ବଳୀନାଥ. ବରଜସୁମାପୂର୍ଣ ।
୩ । ପ୍ରେମ; ଭକ୍ତି—3. Devotion; attachment.
ସ୍ୱଜନ ଅସନ୍ତ ଚରଣେ ପୀରତି ପ୍ରଭୁଙ୍କେ ମୋର ଥାଉ ।
ବଳୀନାଥ. ବରଜସୁମାପୂର୍ଣ ।
୪ । ସଦ୍ଭାବ—4. Friendship.
୫ । ଅବୈଧ ବା ଗୁପ୍ତ ପ୍ରଣୟ—5. Illicit or secret love.
(ପୀରତି, ପିରତି—ଅନ୍ୟରୂପ)

**ପୀଲ୍** ( ଧାତୁ )—ସଂ.—୧ । ଥମିବା—
Pil (root) 1. To stop.
୨ । ରୋଧ କରିବା—2. To hinder; to obstruct.
୩ । ବିରତ ହେବା—3 To cease.
୪ । ଜଡ଼ୀଭୂତ ହେବା—4 To become still and dumb.
ବୈଦେ ଶି (ଇଂ)—ବଟିକା—Pill.

**ପୀଲୁ**—ସଂ. ବି. (ପୀଲ୍ ଧାତୁ+ସଂଜ୍ଞାର୍ଥେ. ଉ)—୧ । ଭୁଇଁଜାମୁ; ବୃହତ୍
Pilu କ୍ଷୁପବିଶେଷ—1 Salvadora Persica; Careya
पीलू Arborea; Tooth brush tree; the Mustard
জাল, পীলু tree of the Bible.

ସଂ. ଗୁଡ଼ଫଳ; ସ୍ରଂଶୀ; ଶୀତ ଫଳ
ମ. ପିଲୁ
ତେ. ଗୋଲୁଗୁଚେଟ୍ଟୁ
ତା. କୋଲୁ
ଗୁ. ଖାରୀଜାଲ୍ୟ
ଫା. ମିସ୍ୱାକ୍
ଆ. ଇରକ୍

[ଦ୍ର—ଏଥିର କାଠ କୋମଳ, ଈଷତ୍ ପୀତ, ଡାଳ ଓ ଫୁଲ ତଳକୁ ଝୁଲି ଥାଏ; ଯାତଲା ଫଳ ନାଲି । ଏ ଗଛର ଡାଳରେ ଭଲ ଦାନ୍ତକାଠି ହୁଏ । ଏହା ସିନ୍ଧୁ ଓ ପଞ୍ଜାବ ପ୍ରଦେଶରେ ଓ ବିହାରରେ ଜନ୍ମେ । ବୈଦ୍ୟକ ମତରେ ଏଥିର ଫଳ ସ୍ୱାଦୁ, କଟୁ, ତିକ୍ତ, ଉଷ୍ଣ, ଭେଦକ ଓ ବାୟୁ, କଫ, ପିତ୍ତ, ଗୁଳ୍ମ, ପ୍ରମେହ ଓ ସନ୍ଧି ବାତ ନାଶକ ।]

୨ । ଏକ ପ୍ରକାର କୀଟ—2. A kind of insect.
୩ । ହସ୍ତୀ—3. Elephant.
୪ । ଫୁଲ—4. Flower.
୫ । ପରମାଣୁ—5 Atom; molecule.
୬ । ବାଣ; ଶର—6. Arrow.
୭ । ହସ୍ତର ମଧ୍ୟଭାଗ—7. Metacarpus.
୮ । ଅସ୍ଥିଖଣ୍ଡ—8. Piece of bone.
୯ । କୃମି (ହି. ଶ.)—9. Maggot.
୧୦ । ଶର ତୃଣର ପୁଷ୍ପ (ହି. ଶବ୍ଦସାଗର)—10. The flower of sara reed.
୧୧ । ନାଲି ଝିଣ୍ଟି (ହି. ଶବ୍ଦସାଗର)—11. The red flowered Barleria.
୧୨ । ଆଖରୋଟ ଗଛ (ହି. ଶ.)—12. Walnut tree.
୧୩ । କରତଳ (ହି. ଶ.)— 13. Palm of the hand

**ପୀଲୁପର୍ଣ୍ଣୀ**—ସଂ. ବି.—୧ । ବୃକ୍ଷବିଶେଷ; ପୀଲୁ—
Pilu parṇṇi 1. Salvadora Persica (Haines).
୨ । ମୁର୍ବାଲତା, ମୁରୁଗା ଲତା—2 A creeper of hard fibres; Sansevera Zeylanica.
୩ । ବନ୍ଧ୍ୟାକା; କଇଁଚି କାକୁଡ଼ି ଲତା—3. A creeper; Memordica Monadelpha.
୪ । ଏକପ୍ରକାର ଶାକ—4. A kind of pot herb.
[ ଦ୍ର—ଏହା ଔଷଧରେ ବ୍ୟବହୃତ ହୁଏ ।]

**ପୀଲୂ**—ସଂ. ବି.—ପୀଲୁ ୧ (ଦେଖ)
Pilū Pilu (See)

**ପୀଷ୍ (ଧାତୁ)**—ସଂ.—୧ । ପେଷିବା; ବାଟିବା—1. To crush; to
Pish (root) bruise; to rub.
୨ । ରଗଡ଼ିବା—2. To grind.

ପିଶୀ—ପ୍ରାଦେ (ବସ୍ତର). ବ —ପିଉଷୀ (ଦେଖ)
Pisi Piusi (See).

ପୁ—ଦେ. ଅ. (ଧ୍ୱନ୍ୟନୁକରଣ)—ଶବ୍ଦାନୁକରଣ—
Pu Imitation of a sound.

। ପୁ ।—ଦେ (ସାଙ୍କେତିକ)- ୧ । (ଦଲିଲ ଆଦିରେ ବ୍ୟବହୃତ)
। Pu । ଅମୁକର ପୁତ୍ର—1 Abbreviation denoting 'the son of'.
(ଯଥା—ରାମଚନ୍ଦ୍ର ରଥ । ପୁ । ବଶିରଥ; ଅର୍ଥାତ୍ ବଶିରଥଙ୍କ ପୁତ୍ର ରାମଚନ୍ଦ୍ର ରଥ ।)
୨ । ( ସ. ପୂର୍ବ ) ଦଲିଲ ଆଦିରେ ଜମିର ଚଉହଦୀ ଲେଖାଯିବା ସମୟରେ ବ୍ୟବହୃତ ସାଙ୍କେତିକ ଚିହ୍ନ, ପୂର୍ବଦିଗ—
2. An abbreviation used in documents to denote 'bounded on the east by'.
୩ । (ସ ପୁନଃ) ପୁନଶ୍ଚ ଶବ୍ଦର ସାଙ୍କେତିକ ଚିହ୍ନ—
3. Abbreviation of 'Punaścha'; again.
[ଦ୍ର—ପତ୍ର ବା ଦଲିଲ ଆଦି ଲେଖି ସାରି ତହିଁରେ ଆଉ କିଛି କଥା ଯୋଗ କରିବାକୁ ହେଲେ ଏହି ସାଙ୍କେତିକ ବ୍ୟବହୃତ ହୁଏ । ଏହାର ଇଂରାଜୀ ବ୍ୟବହାର—'P. S.' ବା 'Post script' ଏହାର ଅର୍ଥ ପୁନଶ୍ଚ ଲେଖୁଅଛି କି, ପୁନଶ୍ଚ ଜଣାଇବାର ଏହିକି ]

ପୁଃ—ସ. ବି (ପୁର୍ ଶବ୍ଦ ୧ମା ୧ବ)—୧ । ନଗର—1. Town
Puh (Apte).
୨ । ଦୁର୍ଗ—2. Fortress; castle (Apte)
୩ । ନଗର ବା ଦୁର୍ଗ ପ୍ରାଚୀର—3. Wall; rampart. (Apte).
୪ । ଶରୀର; ଦେହ—4. Body (Apte)
୫ । ବୁଦ୍ଧି ବୃତ୍ତି—5. Intellect (Apte); intelligence.

ପୁଅ—ଦେ. ବି. (ସ.ପୁତ୍ର,ପ୍ରା. ପୁଅ;ଢମ୍ପା ସ. ପୋତ = ଶିଶୁ)—୧ । ପୁତ୍ର—
Pua 1. Son.
ପୌ, ଛେଲେ ୨ । ବାଳକ—2. Boy.
**ପୋ; ବେଟା, ବଚ୍ଚା** ବେ-ାନ ଅମୃତ ମୟୀ ଝିଲ.
ହିଂଅ ବିପରୀତ— ଗୋପାଳମୁଅକୁ ହଉଲ । ଜଲାଥ—ଭାଗବତ.
୩ । ପିଲା; ଶିଶୁ—3. Infant.
୪ । ସନ୍ତାନ—4 Male child.
୫ । ବଂଶଧର; ଜାତୀୟ ବା ବଂଶୀୟ ବ୍ୟକ୍ତି—
5. Man born of a family or belonging to a caste.
( ଯଥା—ଚଷା ଘର ପୁଅ, ପଠାଣ ପୁଅ, ପର ପୁଅ । )
୬ । ପଶା କାଟିର ୧ ସଂଖ୍ୟକ ଦାନ—
6. A turn of a die resulting in one.
୭ । କଦଳୀ ଗଛର ମୂଳରୁ ଉତ୍ପନ୍ନ ପୁଆ—7. The shoot or cone of plantain plants
କଦଳୀର ପୁଅ, ବାଙ୍କ ଶର ହାତ—କୃଷ୍ଣଚରନ ।
୮ । (ବ୍ୟଙ୍ଗାର୍ଥ) ମନୁଷ୍ୟ—8. Man.
ଘର ବୃଦ୍ଧ ପାଣି ଅଣ୍ଟାଏ ହେଲଣି
ପୁଅଙ୍କର ପିକା ଶିଅ ଘର ଯାଉ ନାହିଁ—ଭଗ ।
୯ । (ସ. ପୁତ୍ତଳିକା) ପିଲାଙ୍କ ଖେଳିବା କଣ୍ଢେଇ—
9. An infant's doll.
୧୦ । ଆଖିର ପିତୁଳା—
9. The pupil of the eye

ପୁଅ କରିବା—ଦେ. କ୍ରି—୧ । ଧର୍ମ ପୁତ୍ର ରୂପେ ଗ୍ରହଣ କରିବା—
Pua kariba 1. To take one as a godson.
ଛେଲେ ନওয়া ୨ । ପୋଷ୍ୟ ପୁତ୍ର ଗ୍ରହଣ କରିବା—
2. To adopt a boy as one's son; to take a son in adoption.

ପୁଅ ଖେଳା(ଳେ)ଇବା—ଦେ କ୍ରି—ନିଜେ ପୁତ୍ର ଜନ୍ମକରି ତାକୁ ଆପଣା
Pua khelā(le)ibā କୋଳରେ କ୍ରୀଡ଼ା କରାଇବା ଓ ସ୍ନେହରେ
ଛେଲେ ଖেলান ବଢ଼ାଇବା—To beget and bring forth
**बच्चा खेलाना** a son and fondle him on one's lap.
( ଯଥା—ପ୍ରଭୁ ଦୟା କଲେ ଆର ବରଷ ଏ ଦିନକୁ ତୁ ପୁଅ ଖେଳାଉଥିବୁ । )

ପୁଅ ଜିଉଁତିଆ—ପ୍ରାଦେ ( ସମ୍ବଲପୁର ) ବି—ଷଷ୍ଠୀ ଓଷା ବ୍ରତ—
Pua jiuntia Name of a religious vow observed by females.
[ ଦ୍ର—ଜିଉନ୍ତିଆ ତଳେ ନୋଟ୍ ଦେଖ ]

ପୁଅ ଝିଅ—ଦେ. ବି. (ବିପରୀତ ଲିଙ୍ଗାତ୍ମକ ସହଚର; ସ. ପୁତ୍ର+ଦୁହିତା)-
Pua jhia ୧ । ପୁତ୍ର ବା କନ୍ୟା—1. Son or daughter.
ଛେଲେ ମେয়େ ୨ । ସନ୍ତାନ ସନ୍ତତି—2. Children.
**बेटाबेटी**

ପୁଅ ଦା(ଦ୍ଦା)ର—ବୈଦେ. ବି. (ଫା)—ପୋଦାର ( ଦେଖ )
Pua dā(ddā)r Podār ( See )

ପୁଅ ନେବା—ଦେ. କ୍ରି—ଜନ୍ମଦାତା ପିତାଠାରୁ ପୋଷ୍ୟପୁତ୍ର ଗ୍ରହଣ
Pua nebā କରିବା—To take a son in adoption
ଛେଲେ ନেনা from his natural father.
**गोद लेना**

ପୁଅ ପଣ—ଦେ. ବି—୧ । ପୁତ୍ରତ୍ୱ—
Pua pana 1. Sonship.
[ପୁଅ ପଣିଆ(ଆଁ)—ଅନ୍ୟରୂପ) ୨ । ମନୁଷ୍ୟତା—
2. Manliness; manhood.
୩ । ସାହସ—3. Bravery; courage.

ପୁଅ ପିଢ଼ା—ଦେ. ବି—(ସ. ପୁତ୍ତଳିକା)—ଶିଶୁମାନଙ୍କ ଖେଳିବା ନିମନ୍ତେ
Pua pirdhā ପ୍ରସ୍ତୁତ ଚିତ୍ରିତ ପୀଢ଼ା ଆକୃତିବିଶିଷ୍ଟ କଣ୍ଢେଇ—
খেলারপীঢ়ে Small chips of wood prepared and painted for being used as dolls by children.

ପୁଅ ପୁଅକା—ଦେ. ବିଣ—ଅଣିର ପୁଅଙ୍କ ପିନ୍ଧା (ଲୁଗା)—
Pua puakā (cloth) To be worn by male children.

ପୁଅ ବାର—ଦେ. ବି—୧ । ପୋବାର (ଦେଖ)—
Pua bāra (ପୁଅବାଆର—ଅନ୍ୟରୂପ) 1. Pobāra (See)
୨ । (ଲକ୍ଷଣାର୍ଥ) ଅଚ୍ଛ ସୁବିଧା; ସୁଯୋଗ; ସୌଭାଗ୍ୟ—
2. (figurative) Good fortune; a good opportunity.

**ପୁଅ ବାଲି**—ଦେ. ବଣ. ସ୍ତ୍ରୀ—ପୁଅାତି (ଦେଖ)
Puabāli (ପୁଅବୁଆଲୀ—ଅନ୍ୟରୂପ) Puāti (See)

**ପୁଅ ବାହ୍ମୁଣ**—ପ୍ରାଦେ (ଗଡଜାତ) ବ—ରଜାଙ୍କ ମୃତ୍ୟୁ ପରେ ତାଙ୍କର ପୁତ୍ରଙ୍କ ପ୍ରତିନିଧି ସ୍ୱରୂପ ଯେଉଁ ବ୍ରାହ୍ମଣ ମୃତ ରଜାଙ୍କର ଶବଦାହାଦି ଓ ଅଶୌଚ ପାଳନାଦି କର୍ମମାନ କରନ୍ତି—A Brāhmana who performs the funeral rites of a deceased Raja in lieu of the late king's own son who has to ascend the throne.
Pua bāhmuna (ପୁଅବ୍ରାହ୍ମଣ—ଅନ୍ୟରୂପ)

[ଦ୍ର—ରଜାଙ୍କ ମୃତ୍ୟୁର ଅବ୍ୟବହିତ ପରେ ମୃତ ରଜାଙ୍କ ପୁତ୍ର କେତେକ ମଙ୍ଗଳ କର୍ମମାନ କରି ରାଜଗାଦିରେ ବସନ୍ତି, ଏଥିପାଇଁ ସେ ମୃତ ରଜାଙ୍କ ଶବଦାହାଦି ଓ ଅଶୌଚ ପାଳନାଦି କରନ୍ତି ନାହିଁ । ]

**ପୁଅ ବିକା**—ଦେ.ବଣ—(ସ.ପୁତ୍ର+ବିକ୍ରୟ)—ପୁଅର ବିବାହ ଉପଲକ୍ଷରେ କନ୍ୟା ପକ୍ଷର ଅଭିଭାବକଙ୍କଠାରୁ ଟଙ୍କା ନେବା—The practice of taking money as the bridegroom's price from the bride's party.
Pua bikā

ବୁଢା ବହୁ ପୁଅବିକା କେଖର ଅନ୍ତଠାରୁ ଛାଡ଼ ।
ଭିକାରୁ—ଗୌଡ଼ନ ।

**ପୁଅମା**—ଦେ. ବ—ପୁଅର ମା (ଦେଖ)—
Pua mā Puara mā (See,

ପ୍ରାଦେ (ଗଞ୍ଜାମ) ବ—ପାଳିତାମା; ରାଣୀଙ୍କର ପୁଅଙ୍କୁ ପାଳଥିବା ଅନ୍ତଃପୁରସ୍ଥା ଦାସୀ—The nurse of the male child of a Rāni.

**ପୁଅର ଫଣ୍ଡ**—ବୈଦେ—ବ—(ଇଂ)—ଦରିଦ୍ର ବ୍ୟକ୍ତିମାନଙ୍କୁ କମ୍ବା ବିଦ୍ୟାଳୟରେ ପଢୁଥିବା ଗରିବ ଛାତ୍ରମାନଙ୍କ ସାହାଯ୍ୟ ଦେବାଲାଗି ଆର୍ଥିକ ପାଣ୍ଠି—Poor fund.
Puar phand
ପୁଅରଫଣ୍ଡ ପୁଅରଫାଣ୍ଡ

**ପୁଅର ମା**—ଦେ. ବ—୧ । ସନ୍ତାନ ଜନ୍ମ କରିଥିବା ସ୍ତ୍ରୀ—
Puara mā 1 A woman bringing forth male child; mother of a male child.
ପୋଅରମା (ପୁଅର ମାଆ - ଅନ୍ୟରୂପ)

ଯାହ ଦେଉଳବେଳକୁ ପୁଅର ମା
ତୁନ୍ତ ତୁନ୍ତ ପଦେ ଉଠେଲକୁ ଡେବରେ ସା—ରଜ ।

୨ । ସନ୍ତାନ ଜନୟିତ୍ରୀ ପ୍ରୌଢ଼ା ସ୍ତ୍ରୀ—
2. A grown up mother.

**ପୁଅ ରୋଗ**—ଦେ. ବ—(ସ. ପୁତ୍ର ଓ ରୋଗ କମ୍ବା ପୂତନା ରୋଗ)—ପିଲାଙ୍କୁ ଡାହାଣୀ ଖାଇବା ରୋଗ; ଶିଶୁର ଶୀର୍ଣ୍ଣତାଜନକ ରୋଗବିଶେଷ; ଡାହାଣୀ ବା ଡାହାଣିଆ ରୋଗ—Rickets; an infantile disease resulting in the child becoming withered and emaciated day by day; infantile marasmus or wasting disease.
Pua roga
ପୁଁଅେ; ପୁଁଏଁପାଓୟା

[ଦ୍ର—ଏଥିରେ ଶିଶୁ କ୍ରମଶଃ ଯୋଇଖାଉ ଘର ଶୁଖି ଶୁଖିଯାଏ ଓ ସବୁବେଳେ ତା ହାତ ଗୋଡ଼ ମୋଡ଼ି ମୋଡ଼ି ହେଉଥାଏ ଓ ସେ ଲୁଜା-ହୋଇ ଠିଆ ହୁଏ । ଏହାର ପ୍ରତିକାର ପାଇଁ ଶିଶୁର ମର୍ଦ୍ଦନବେଳରେ ମୋଡ଼ାକୁଇଁ ଘଷାନ୍ତି ଓ ଶିଶୁର ଦେହରେ କୋଚଆ ଚଳାନ୍ତି ।]

**ପୁଆ**—ଦେ. ବ—(ସ. ପୁତ୍ର)—୧ । କଦଳୀ ଓ ବାଉଁଶର ମୂଳରୁ ବାହାରୁଥିବା ନୂଆ ଗଛ—1. Young seedlings of plantain or bamboo; cones or shoots coming out of the root of a plantain or bamboo tree.
Puā
ଡେମ୍,ତେଉଁଡ଼,ତେଡ଼,ଫୁକୀ,ପୁକୀ
ପୂତୀ

[ଦ୍ର—କ୍ଷୁଦ୍ର ପୁଆଙ୍କୁ ଛୁଅ ବା ଓଁଥ ଓ ବଡ଼ଙ୍କୁ ପୁଆ ବୋଲାଯାଏ ]

୨ । କୁଆଁ; ବୃକ୍ଷର ନୂତନ ଡାଳ—
2. Shoots; new and tender branches.

ଗୋଡ଼ା ମଧ୍ୟରୁ ପୁଆଟିଏ ଆଣି ଜକେ ଲେଇଥନ୍ତି—
ଫକୀରମୋହନ. ଛମାଣଆଠଗୁଣ୍ଠ ।

୩ । (ସ. ପୂପ) ତେଲରେ ବା ଘିଅରେ ଭଜା ବା ଛଣା ହୋଇଥିବା ବୁଟ ବା ପିଠା—3. Cake or gram fried in ghee or oil.

ପୋଆ ୪ । (ସ. ପୁତ୍ର) ଶ୍ରେଷ୍ଠ ବାଲିଆ ମାଛ, ବାଲିଆପଟକା—
ପୁଆ 4 Small Boal fish.

ନୋଡ଼ା ୫ । ଶିଲ ବା ଶିଳରେ ମସଲା ଆଦି ବାଟିବାର କ୍ଷୁଦ୍ର ଲମ୍ବଡ଼ା ପଥର ଖଣ୍ଡ—5. Pestle
ମସଲ

(ଯଥା—ଶିଲପୁଆ; ଶିଳ ପୁଆ ।)

୬ । ଆଖୁ ଓ କପାଖାଇର ଯେଉଁ ଗୋଲ କାଠବାଡ଼ି ଦ୍ୱୟ ଘୁରିବା ଦ୍ୱାରା ଆଖୁ ପେଡ଼ାଯାଏ ଓ କପା ଖିଆ ହୁଏ—
6. The screwed rollers of a sugarcane pressing machine or cotton ginning machine.

୭ । ଡାବଲପୁଆ ଖେଳରେ ଯେଉଁ କ୍ଷୁଦ୍ର କାଠିକୁ ଡାବଲ ବା ବାଡ଼ିଦ୍ୱାରା ଦୂରକୁ ନିକ୍ଷିପ୍ତ କରାଯାଏ—7. A stout pin of bamboo or wood used in children's game of Dābalapuā

ଦେ. ବଣ - ଘିଅରେ ବା ତେଲରେ ଭଜାଯାଇଥିବା (ବୁଟ)—(gram) Roasted or fried in ghee or oil.

ପ୍ରାଦେ (ସିଂହଭୂମ) ବ—୧ । ଏକ ପାଆ ବା ¼ ସେର—
1. One-fourth of a Seer.

୨ । ପାଆକିଆ ପାତ୍ର—2 A measuring pot of the capacity of ¼ of a Seer.

**ପୁଆଇଁବା**—ଦେ. କ୍ରି. ( ସ. ତପ୍ ଧାତୁ )—ପୁଆଁଇବା, ନିଆଁ ଧାରରେ ବା ଖରାରେ ନିଜର ଦେହକୁ ଗରମ କରିବା, ଅଗ୍ନି ବା ଖରାର ଉତ୍ତାପକୁ ସେବନ କରିବା—To warm oneself before the fire or in the sun; to bask in the fire or sun.
Puāinbā
ପୋଆନ
ତାପନା
ପୋଉଁଇବା, ପୁଆଁଇବା, ପୁଆଁଇଁବା } ଅନ୍ୟରୂପ

**ପୁଆଇବା**—ଦେ. କ୍ରି. —୧ । (ସ.ପୂପ) ଘିଅରେ ବା ତେଲରେ ପିଷ୍ଟକାଦିକୁ ଭାଜିବା—1. To fry cakes with ghee.
Puāibā
ଭାଜା

୨ । (ସ. ପ୍ରଭାତ) ପୁହାଇବା; ରାତି ପାହିବା ବା ପ୍ରଭାତ ହେବା ପର୍ଯ୍ୟନ୍ତ ସମୟ ଯାପନ କରିବା—2. To pass the night till dawn; to let the whole night pass.
ପୌନା; ତଲନା
ପୁଏଇବା, ପୋଇବା, ପୁାଇବା } ଅନ୍ୟରୂପ

ପୋହାନ ୩ । ଖଣ୍ଡ, ଚକଟା ଶିରାରେ କୌଣସି ବସ୍ତୁକୁ ଅଗ୍ନି ଉତ୍ତାପରେ ଗୋଳାଇବା—3. To agitate a thing in syrup over fire

୪ । ଉପଶମ କରିବା—4. To satiate.

ପାଓଯାନ ୫ । ପାଇବା କ୍ରିୟାର ଣିଜନ୍ତ ରୂପ— 5 Causative of Paiba.

ପ୍ରାଦେ. (ବସ୍ତର) କ୍ରି.—ଶୁଆଇବା—To cause to sleep.

**ପୁଅଁ**—ଦେ. ବି—ଅଗ୍ନି ବା ଖରାର ତାପକୁ ସେବନ କରିବା, କଅଁ Puañ ପୋହାଁବା—Warming oneself with fire ପୋଯାନ or in the sun. (ଯଥା—କଅଁ ପୁଅଁ, ଖରାପୁଅଁ)

**ପୁଅଁ ତରା**—ଦେ. ବି.—(ସଂ ପ୍ରଭାତ ତାରା)—ପ୍ରଭାତ ତାରା, ଧାବାନ୍ତି Puañ tara ତାରା—The morning star ଶୁକ୍‌ତାବା (ପୁହାଁତରା—ଅନ୍ୟରୂପ)

**ପୁଅଣ**—ଦେ. ବି.—ପୁହାଣ (ଦେଖ) Puaña Puhana (See)

**ପୁଅଣୀ**—ଦେ. ବି.— (ସଂ. ପରିଧାନ, ପଧାନ)— ୧ । ସ୍ତ୍ରୀମାନଙ୍କର ପିନ୍ଧିଥିବା ଶାଢ଼ୀ ଉପରେ ଆଉ ଖଣ୍ଡେ ଓଢ଼ଣା ବା ଉତ୍ତରୀୟ ପକାଇବା ଅବସ୍ଥା—1 The dressing of women with an outer sheet over the cloth worn by them. Puaṇi ଓଡନା (ପୁହାଣୀ—ଅନ୍ୟରୂପ)

୨ । ପୁଅଣୀ ଘର(ଦେଖ)—2. Puaṇi ghara (See)

**ପୁଅଣୀ ଘର**—ଦେ. ବି.—ବାଳକାର ଆଶୀର୍ବାଦ ଘର ବା ବନ୍ଦାପନା ଉତ୍ସବ; ରଜସ୍ୱଳା ବାଳକାର ସ୍ୱାମୀ ସହିତ ପ୍ରଥମ ମିଳନ ରୂପ ଅନୁଷ୍ଠାନ; କନ୍ୟାର ଦ୍ୱିରାଗମନ ସଂସ୍କାର - Puaṇi ghara ଦିବାଗମନ (ପୁହାଣୀ ଘର— ଅନ୍ୟରୂପ) The ceremony of consummation of marriage of a girl-wife after she has attained puberty.

**ପୁଅଣୀ ହେବା**—ଦେ. କ୍ରି —(ସ୍ତ୍ରୀମାନେ) ପିନ୍ଧିବା ଶାଢ଼ୀ ଉପରେ ଓଢ଼ଣୀ ପକାଇବା—To put on a scarf over the cloth of women). Puaṇi heba ଓଡ଼ନା ଦେଓଯା (ପୁହାଣୀ ହେବା —ଅନ୍ୟରୂପ)

**ପୁଅଣୀ ହୋଇ ଆସିବା**—ଦେ. କ୍ରି — ଋତୁମତୀ କନ୍ୟାର ପ୍ରଥମେ ଶାଶୁଘରକୁ ଯିବା; ପହିଲ୍‌ପାଳି ଯିବା— Puaṇi hoi asiba

ପୁଅଣୀ ହୋଇ ଯିବା, ପୁହାଣୀ ହୋଇ ଯିବା, ପୁହାଣୀ ହୋଇ ଆସିବା } ଅନ୍ୟରୂପ — To go to the husband's house for consummation of marriage.

**ପୁଅତି**—ଦେ. ବି. ( ସଂ. ପ୍ରଜାବତୀ )— Puati ୧ । ଗର୍ଭିଣୀ; ଆସନ୍ନ ପ୍ରସବା ନାରୀ— 1. A pregnant woman in an advanced stage. ପୋଯାତୀ पूती, जच्चा

ପୋଆତି, ପୋଇତି, ପୁଏଇତି } ଅନ୍ୟରୂପ ୨ । ( ସଂ. ପ୍ରସୂତା )— ପୋଖତୀ ସ୍ତ୍ରୀ; ସଦ୍ୟ ପ୍ରସୂତା ସ୍ତ୍ରୀ— 2. A woman who has recently delivered.

୩ । ସ୍ତନ୍ୟପାୟୀ ଶିଶୁର ମାତା— 3 The mother of a suckling child.

**ପୁଅପୁଇ**—ଦେ ବି—ଅନ୍ୟୋନ୍ୟରେ ଏକାଠି ମିଶାମିଶି— Puapui Intimately mixing with each other, mutual intimacy. (ପୁଅପୋଇ—ଅନ୍ୟରୂପ)

**ପୁଅ ଯିବା**—ଦେ କ୍ରି—ପୁଆଇବା କ୍ରିୟାର କର୍ମ ବାଚ୍ୟ - Pua jiba Passive voice of Puaiba. (ପୁଆ ଦେବା—ଅନ୍ୟରୂପ)

**ପୁଅର**—ଦେ. ବି ( କଣିଆ ଶବ୍ଦ )—ଠଣା ଉପରେ ସୁନା ବା ରୂପାର ପତ୍ର ଥୋଇ ପେଚା ଅଳଙ୍କାର ଗଢ଼ା ଯିବା ଡହିଁ ପାଇଁ ଅଭ୍ରେଡ଼ ବର୍ତ୍ତିଷ୍ଟ ଛେଣି— A small metal pestle with which thin metal leaves are beaten into a hollow bulb. Puara

**ପୁଅରି**—ଦେ. ବି ଶ୍ରେଷ୍ଠ ଲିହଣ; ଡାଗୀ - Puari A small iron chisel. (ପୁହାର—ଅନ୍ୟରୂପ)

**ପୁଅଲ**—ପ୍ରାଦେ. (ସମ୍ବଲପୁର) ବି. (ଭୁଜ. ହି ପୁଆଲ୍) - Pual ପାଳ; କୁଟା—Crushed straw

**ପୁଅଲ୍ ଗୁରଲା**—ପ୍ରାଦେ. (ସମ୍ବଲପୁର) ବି ଯେଉଁ ବାଡ ଦିଆ ଯାଇଥିବା Pual gur-la ସ୍ଥାନରେ କୁଟା ବା ନଡ଼ା ଜମା ରହେ— An enclosure for the straw-stack.

**ପୁଅଲ୍ ଛତୁ**—ପ୍ରାଦେ. (ସମ୍ବଲପୁର) ବି—ପାଳ ଛତୁ ( ଦେଖ ) Pual chhatu Pala chhatu ( See )

**ପୁଅଲି**—ପ୍ରାଦେ. (ସିଂହଭୂମ) ବି. (ଭୁଲ ବି. ଧୋଯାଲ୍)— Puali ପାଳ; କୁଟା—Crushed straw.

**ପୁଅଲ ଘର**—ପ୍ରାଦେ. (ସମ୍ବଲପୁର) ବି—ଗୁଲ ଘର— Puali ghara A thatched house.

**ପୁଅଲିଆ**—ପ୍ରାଦେ. (କଳ ଭାଷା) ବି—ଉଙ୍କୀ; ବଡ଼ ଉକୁଣୀ— Pualia Big louse.

**ପୁଇ**—ଦେ. ବି. ( ସଂ. ପୁଷ୍ଟିକା; ଉପୋଦକା )— Pui ୧ । ପୋଇ ( ଦେଖ ) - 1. Poi ( See )

୨ । ( ସଂ. ପଦ ) ଖଟର ପୁଅ; ଖଟଖୁରା—2. Bed post.

ଦେ. ବିଣ — ପୋଇ (ଦେଖ)—Poi (See)

ପ୍ରାଦେ. (ସିଂହଭୂମ) ବି—ଢିଙ୍କିର ଅଖ — The axle of a Dhinki.

**ପୁଇ** (ଇତ୍ୟାଦି)—ଦେ. ବି—ପୋଇ ଇତ୍ୟାଦି (ଦେଖ)
Pui (etc) Poi etc (See)

**ପୁଇଁ**—ଦେ. ବି. (ସଂ. ପୃଚ୍ଛ)—ଖେଳରେ ଅସଦ୍‌ଭାବରେ, ବିପକ୍ଷଙ୍କୁ ଜିଣିବା
Puiñ ନିମନ୍ତେ ଅବଲମ୍ବିତ ପ୍ରକ୍ରିୟା—
ଛୁଡ଼କୁଛି Unfair means used in a game.
ପଇଁ ଅଲେ ପୁଇଁ ତାହାର ପଡେ । ଢଗ ।
ଦେ. ବିଣ. (ସଂ ପୂତି) —ପଚା, ସଢ଼ା—Rotten.
(ଯଥା—ପୁଇଁ ଚଙ୍ଗୁଡ଼ି ।)

**ପୁଇଁଆ**—ଦେ. ବି. (ସଂ. ପୁଣ୍ଡ୍ରସାକ ସର୍ପ)—ନାଲି ପୋଇର ଡାଙ୍ଗପରି
Puiñā ଚିକ୍କଣିଆ, ସରୁଆ ଓ ଶ୍ଳେଷ୍ମ ବିଷାକ୍ତ ସାପବିଶେଷ—
ପୁଇଁଷା; ପୁଏଁ A small snake; Ariphis Baena; Typhlops Braminus.
[ ଦ୍ର—ଏହା ୫।୧୦ ଅଙ୍ଗୁଳି ଲମ୍ବ । ଏମାନେ ଗଡ଼ଜାତରେ ଦେଖାଯାଆନ୍ତି, ଏମାନଙ୍କ ବର୍ଣ୍ଣ ଫିକା ନାଲି । ]
ଦେ. ବିଣ—ପୁଇଁ (ଦେଖ)—Puiñ (See)
୨ । ଯେଉଁ ଖେଳାଳି ଖେଳରେ ଭ୍ରାନ୍ତ ଗୋଳାଏ—
2. (a player) Using unfair means in a game.

**ପୁଇଚେଲ୍**—ପ୍ରାଦେ. (କଳାହାଣ୍ଡି) ବି—ଶଗଡ଼ର ବାଙ୍କୁଲି—
Puichel The pins put at the ends of the yoke of a cart.

**ପୁଇନ୍ ଜଜ୍**—ବୈଦେ. ବି.(ଇଂ)—ହାଇକୋର୍ଟର ସାଧାରଣ ବିଚାରପତି—
Puin jaj Puisne judge of a High Court.

**ପୁଇବା**—ଦେ. କ୍ରି—ପୁଆଇବା (ଦେଖ)
Puibā Puāibā (See)

**ପୁଏ**—ଦେ. ବି. (ବହୁବଚନ)—୧ । ପୁଅମାନେ—
Pue 1. Sons.
୨ । ବାଳକଗଣ—2. Boys.

**ପୁଏଇତି**—ଦେ. ବି. ସ୍ତ୍ରୀ—୧ । ପୁତ୍ରପ୍ରସୂ ସ୍ତ୍ରୀ—1. Woman giving
Pueiti birth to sons; mother of sons.
୨ । ବହୁ ପୁତ୍ରବତୀ—2. Mother of many sons.
୩ । ପୁଆତି (ଦେଖ)—3. Puāti (See)

**ପୁଂ**—ସଂ. ବି. (ସଂ. ପୁମସ୍ ଶବ୍ଦ; ୧ମା. ୧ବ ପୁମାନ୍)—୧ । ପୁଂଲିଙ୍ଗ—
Pum 1. Masculine gender.
(ପୁଂସ୍—ଅନ୍ୟରୂପ) ୨ । ଅଣ୍ଡିରା; ପୁରୁଷ; ପୁଂସ—2. Male.
୩ । ମନୁଷ୍ୟ—3. Man
୪ । ମନୁଷ୍ୟ ଜାତି—4. Mankind (Apte).
୫ । (ବ୍ୟାକରଣ) ପୁଂଲିଙ୍ଗ ଶବ୍ଦ—5. (grammar) A word in the masculine gender (Apte).
୬ । ଆତ୍ମା—6. The soul (Apte).
ଦେ. (ସାଙ୍କେତିକ)—। ପୁ । (ଦେଖ)—। Pu । (See)

**ପୁଂନାଗ**—ସଂ. ବି.—ପୁନ୍ନାଗ (ଦେଖ)
Pumnāga Punnāga (See)
ଏ ପୁଂନାଗ ମାଳା ସମ୍ପାଦନ ପାଇଁ ଉଚିତ୍ ଉଦ୍ଧବ ।
ଭଞ୍ଜ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।

**ପୁଂବତ୍**—ସଂ. ବିଣ—ପୁରୁଷ ପରି—
Pumbat Manly; manlike; masculine.

**ପୁଂଯୋଗ**—ସଂ. ବି. (ପୁଂ + ଯୋଗ=ସହବାସ)—
Pumjoga ସ୍ତ୍ରୀର ପୁରୁଷ ସଙ୍ଗେ ମିଳନ, ପୁରୁଷ ସଙ୍ଗମ—
A woman's copulation with man.

**ପୁଂରତ୍ନ**—ସଂ. ବି. (ପୁଂ + ରତ୍ନ)—ପୁରୁଷ ରତ୍ନ—
Pumratna An excellent man (Apte).

**ପୁଂଲିଙ୍ଗ**—ସଂ ବି. (୬ଷ୍ଠୀ ତତ୍)—୧ । ଶିଶ୍ନ, ପୁରୁଷଚିହ୍ନ, ପୁରୁଷର
Pumlinga ଲିଙ୍ଗ—1. Male organ; penis
୨ । (ବ୍ୟାକରଣ) ପୁରୁଷ ବାଚକ ଶବ୍ଦର ଲିଙ୍ଗ—
2. (Grammar) Masculine gender.
୩ । ପୁରୁଷତ୍ୱ—3. Virility; manhood (Apte).

**ପୁଂଶକ୍ତି**—ସଂ. ବି—ଜନନଶକ୍ତି, ମନୁଷ୍ୟତ୍ୱ, ପୁଂସ୍ତ୍ୱ—
Pumśakti Potency in man; virility.

**ପୁଂଶ୍ଚଳ**—ସଂ. ବି. ପୁଂ (ପୁମସ୍=ପୁରୁଷ + ଚଲଧାତୁ = ଚଞ୍ଚଳହେବା + କର୍ତ୍ତୃ ଅ; ଯେଉଁ ପୁରୁଷ ରମଣୀ ହେତୁ ଚଞ୍ଚଳ ହୁଏ)
Pumśchala ବ୍ୟଭିଚାରୀ; ପରସ୍ତ୍ରୀଗାମୀ ପୁରୁଷ—Adulterer.

**ପୁଂଶ୍ଚଳୀ**—ସଂ. ବି. ସ୍ତ୍ରୀ.—(ପୁମସ୍=ପୁରୁଷ + ଚଲଧାତୁ = ଚଞ୍ଚଳହେବା + କର୍ତ୍ତୃ ଅ, ସ୍ତ୍ରୀ, ଈ; ଯେଉଁ ସ୍ତ୍ରୀ ଏକାଧିକ ପୁରୁଷ
Pumśchali ବିଷୟରେ ଚଞ୍ଚଳା ହୁଏ ।)—୧ । ଅସତୀ; ଛିଣ୍ଡାଳି,
ବ୍ୟଭିଚାରିଣୀ ସ୍ତ୍ରୀ—1. Adulteress; unchaste woman.
୨ । ବେଶ୍ୟା—2 Harlot; prostitute.

**ପୁଂଶ୍ଚଳୀୟ**—ସଂ.ବି. ପୁଂ—(ପୁଂଶ୍ଚଳୀ + ଅପତ୍ୟାର୍ଥେ ଈୟ)—ଅସତୀପୁତ୍ର,
Pumśchaliya ବେଶ୍ୟାପୁତ୍ର—The son of a harlot (Apte).

**ପୁଂଶ୍ଚିହ୍ନ**—ସଂ ବି. (ପୁଂ ଜ୍ଞାପକ ଚିହ୍ନ, ମଧ୍ୟ ପଦ ଲୋପୀ କର୍ମ୍ମ ୬ଷ୍ଠୀ ତତ୍)
Pumśchihna ପୁଂଲିଙ୍ଗ; ଶିଶ୍ନ; ଲିଙ୍ଗ—Penis; male organ.

**ପୁଂସ**—ଦେ. ବି (ସଂ ପୁମସ୍)—୧ । ପୁରୁଷ; ଅଣ୍ଡିରା—1. Male
Pumsa ୨ । ମନୁଷ୍ୟ—2. Man.

**ପୁଂସକାର**—ଦେ.ବି. (ସଂ ପୁମସ୍ + କାର)—୧ । ପୌରୁଷ; ମନୁଷ୍ୟତା—
Pumsakāra 1. Manliness.
୨ । ମନୁଷ୍ୟୋଚିତ ବୀରତ୍ୱ—
2. Bravery; manlike courage.
୩ । ପୁରୁଷକାର, ପ୍ରଶଂସା—3. Praise.

**ପୁଂସତ୍ୱ**—ଦେ. ବି. (ସଂ ପୁଂସ୍ତ୍ୱ)—ପୁରୁଷ ପଣିଆ; ପୁରୁଷତ୍ୱ—
Pumsatwa Potency in man; virility.

**ପୁଂସବନ**—ସଂ ବି (ପୁମସ୍=ପୁରୁଷ + ସୂ ଧାତୁ=ପ୍ରସବ କରିବା + କରଣେ ଅନ)—୧ । ଗର୍ଭିଣୀର ଗର୍ଭଧାରଣର ୨ୟ ବା
Pumsabana ୩ୟ ମାସରେ କର୍ତ୍ତବ୍ୟ ସଂସ୍କାରବିଶେଷ—
1. A domestic festival or ceremoney held on a woman on perceiving the sign of the faetus being quick in the 2nd or 3rd month of pregnancy.

[ଦ୍ର—ଗର୍ଭିଣୀ ନାଳର ଗର୍ଭ ମଧ୍ୟରେ ଭ୍ରୂଣର ଚଳନ ଅନୁଭବ କଲେ ଏ ସଂସ୍କାର କରାଯାଏ ।]

୨ । ପୁତ୍ର ଲାଭାର୍ଥ ସଧବା ସ୍ତ୍ରୀ ମାନଙ୍କର କର୍ତ୍ତବ୍ୟ ବ୍ରତବିଶେଷ—
2 A religious vow observed by wives, with a view to getting sons.
[ ଦ୍ର—ଏ ବ୍ରତକୁ ସ୍ୱାମୀଙ୍କ ଆଦେଶ ଗ୍ରହଣକରି ମାର୍ଗଶିର ମାସ ଶୁକ୍ଳ ପ୍ରତିପଦଠାରୁ ଆରମ୍ଭ କରାଯାଏ ।]

୩ । ଦୁଗ୍ଧ—3. Milk
୪ । ପୁରୁଷ ଶିଶୁକୁ ଜନ୍ମ କରାଇବା–
4. Causing the birth of a male child (Apte).
୫ । ଭ୍ରୂଣ—5 Foetus (Apte).

**ପୁଂସ୍କାମା**—ସଂ ବିଣ. ସ୍ତ୍ରୀ (ପୁଂ+କାମ+ଆ)—ପୁଂଶ୍ଚଳୀ, ବ୍ୟଭିଚାରିଣୀ—
Pumskāmā Adulteress.
ସଂ ବି.—ପୁରୁଷ ସହବାସ ଇଚ୍ଛୁକା ସ୍ତ୍ରୀ—A woman who hankers after cohabitation.

**ପୁଂସ୍କୋକିଲ**—ସଂ ବି. (ପୁଂ=ପୁରୁଷ+କୋକିଳ)—ଅଣ୍ଡିରାକୋକିଳ—
Pumskokila Male cuckoo.

**ପୁଂସ୍ତ୍ୱ**—ସଂ ବି. (ପୁମସ୍+ତ୍ୱ)—୧ । ପୁରୁଷତ୍ୱ—
Pumstwa 1. Manliness; manhood.
୨ । ପୁରୁଷ ପଣିଆ, ସ୍ତ୍ରୀ ସଙ୍ଗମ କରିବାର ସାମର୍ଥ୍ୟ–
2, Virility; potency,
୩ । ଶୁକ୍ର, ବୀର୍ଯ୍ୟ—3. Semen; virile.
୪ । ( ବ୍ୟାକରଣ ) ପୁଂଲିଙ୍ଗ—
4. The masculine gender (Apte).

**ପୁଃ**—ଦେ ( ସାଙ୍କେତିକ)—। ପୁ । (ଦେଖ)
Puh । Pu । (See)

**ପୁଁ**—ଦେ. ଅ (ଧ୍ୱନ୍ୟନୁକରଣ)—୧ । ବାତକର୍ମର କ୍ଷୀଣ ଶବ୍ଦ—
Puṅ 1. A low sound of passing wind.
ପୁଁ ପୁଁ ୨ । ଧୀରଭାବରେ ତୁରୀ ଆଦି ବଜାଇବାର ଧ୍ୱନି—
(ପୁଁପୁଁ—ଅନ୍ୟରୂପ) 2. A low sound of trumpet.
[ ଦ୍ର—ପେଁ ପେଁ ଅପେକ୍ଷା ଫଁ ଫଁ ଧ୍ୱନି କ୍ଷୀଣତର; ଫଁ ଫଁ ଅପେକ୍ଷା ଫିଁ ଫିଁ ଧ୍ୱନି କ୍ଷୀଣତର ଏବଂ ଫିଁ ଫିଁ ଅପେକ୍ଷା ପୁଁ ପୁଁ ଧ୍ୱନି ଅଧିକତର କ୍ଷୀଣତର ।]

**ପୁଁଟି**—ଦେ. ବି—ପୁଟି (ଦେଖ)
Punṭi Puṭi (See)
ପ୍ରାଦେ (ବାଲେଶ୍ୱର) ବି ( ତୁଳ. ବ. ପୁଁଟି; ସ. ପ୍ରୋଷ୍ଠୀ)—କେଉଣ୍ଡି ମାଛ—A small carp fish.

**ପୁଁଟି ଚିଙ୍ଗୁଡ଼ି**—ପ୍ରାଦେ (ବାଲେଶ୍ୱର)ବି—ଏକପ୍ରକାର ଛୋଟ ଚିଙ୍ଗୁଡ଼ିମାଛ–
Punṭi chingurḍi A kind of small shrimp.

**ପୁକ୍‌ପୁକ୍**—ଦେ. ଅ (ଧ୍ୱନ୍ୟନୁକରଣ)—ପାଟି ଓ ଗୁହ୍ୟଦ୍ୱାରାଦି ଉପର୍ଯ୍ୟୁପରି
Puk-puk ସଙ୍କୋଚନ ଓ ପ୍ରସାରଣ ଦ୍ୱାରା ପାକୁ ପାକୁ କରିବା—To alternately open and contract the mouth or the anus.
ପୁକ୍ ପୁକ୍, ପୁକ୍, ପୁକୁ, ପକୁ, ପୁକୁପୁକୁ } ଅନ୍ୟରୂପ
[ ଦ୍ର—ପାକୁପାକୁ ଅପେକ୍ଷା ପକୁପକୁ ଛୋଟ ପଦାର୍ଥର ସୂଚନା କରେ । ]

**ପୁକୁ**—ଦେ. ବିଣ—ପୁକ୍କୁ (ଦେଖ)
Puku Pukku (See)

**ପୁକୁଲି**—ଦେ. ବି—କୋକଲି ମାଛ, ସାମୁଦ୍ରିକ ଚେପଟା କ୍ଷୁଦ୍ର ମାଛ—
Pukuli A kind of small and flat sea-fish.
ପୋକଲି, ପୋକୁଲି, ପୁକ୍କୁଲି } ଅନ୍ୟରୂପ [ ଦ୍ର—ଏହା ୧୦ । ୧୨ ଅଙ୍ଗୁଳ ପର୍ଯ୍ୟନ୍ତ ଲମ୍ବ ହୁଏ । ]

**ପୁକୁଲି ଶୁଖୁଆ**—ଦେ. ବି—କୋକଲି ନାମକ ଛୋଟ ସାମୁଦ୍ରିକ ମାଛ
Pukuli sukhuā ଶୁଖାଯାଇ କରା ଯାଇଥିବା ଶୁଖୁଆ—
Dried small salt sea fry (fish).

**ପୁକ୍କଶ (ସ) (ଷ)**—ସ. ବି. ପୁଂ ( ପୁକ୍=କୁତ୍ସିତ+କଶ୍ ଧାତୁ+କର୍ତ୍ତୃ
Pukkaśa(sa)(sha) ଅ)—୧ । ଚଣ୍ଡାଳ, ନୀଚଜାତୀୟ ବ୍ୟକ୍ତି—
ପୁକ୍କଶା(ସା)(ଷା), ପୁକ୍କଶୀ(ସୀ)(ଷୀ) } ସ୍ତ୍ରୀ
1 A pariah, a low caste people, a person of untouchable caste.
୨ । ( +ଅଧି. ଅ ) ଶବରାଳୟ; ଚଣ୍ଡାଳାଦି ଛୋଟ ଜାତିଙ୍କ ବାସସ୍ଥାନ—2 A house of people of depressed classes.
୩ । ଶବର—3. A fowler.
ସ. ବିଣ—ଅଧମ, ନୀଚ—Vile; low; mean; ignoble.

**ପୁକ୍କଶୀ(ସୀ)**—ସ. ବି. ସ୍ତ୍ରୀ ( ପୁକ୍କଶ+ସ୍ତ୍ରୀ ଈ )—୧ । ନୀଳ ଗୁଳ୍ମ—
Pukkaśī(sī) 1. Indigo plant.
୨ । କଣା, କଣିକା—2. Particle.
୩ । ମୁକୁଳ; କଢ଼ି—3. Blossom; bud.
୪ । ଚଣ୍ଡାଳୀ; ଚଣ୍ଡାଳ ପତ୍ନୀ—4. A pariah woman; a woman of the lowest caste.
୫ । ଶବର ପତ୍ନୀ—5 Woman of the fowler caste.
୬ । କାଳିକା—6 Goddess Kāli.
୭ । କାଳିମା ( ହ. ଶ. )—
7. Darkness; blackness

**ପୁକ୍କିବା**—ଦେ. କ୍ରି—ଶରୀରର ପାଟି ଆଦି ଛିଦ୍ରକୁ ପେଶୀ ଚାଳନ
Pukkibā ଦ୍ୱାରା ଚେଷ୍ଟାପୂର୍ବକ ସଙ୍କୁଚିତ କରିବା—
ପୁକ୍କୁ କରିବା, ପୁକିବା } ଅନ୍ୟରୂପ To contract the mouth or other orifice of the body by muscular effort.

**ପୁକ୍କୁ**—ଦେ. ବିଣ—ଚେଷ୍ଟାପୂର୍ବକ ସଙ୍କୁଚିତ କରାଯାଇ ଥିବା (ଶରୀର
Pukku ରନ୍ଧ୍ର)—Contracted (orifice of the body) with muscular effort.
(ପୁକୁ—ଅନ୍ୟରୂପ)

**ପୁଖରାଜ**—ଦେ. ବି. (ସ. ପୁଷ୍ପରାଗ)—ପୋଖରାଜ; ପୁଷ୍ପରାଗମଣି—
Pukh-rāja Topaz.

**ପୁଗୁଳି**—ପ୍ରାଦେ (ସମ୍ବଲପୁର ଓ ଗଡ଼ଜାତ) ବି—
Puguḷi ସ୍ତ୍ରୀ-ସମ୍ପତ୍ତି, ସ୍ୱାମୀଙ୍କ ଭାଇ ଯହିଁରୁ ଭାଗ ପାଇବେ ନାହିଁ—
A wife's property from which the husband's brothers get no share.

**ପୁଘା**—ପ୍ରାଦେ ( ଗଞ୍ଜାମ ) ବି—କଞ୍ଚା ହାଣ୍ଡି—
Pughā Unburnt earthen pot.

**ପୁଙ୍ଖ**—ସଂ ବି. (ପୁମସ୍=ପୁରୁଷ+ଖନ ଧାତୁ=ଖୋଳିବା+କର୍ତ୍ତୃ.ଅ)—
Puṅkha ୧ । ବାଣର ପକ୍ଷଯୁକ୍ତ ଅଂଶ—
1. The feathered part of an arrow.
୨ । ଶରର ପକ୍ଷଯୁକ୍ତ ଶେଷଭାଗ—
2. The feathered end of an arrow,
୩ । ବାଣମୂଳ, କାଣ୍ଡ —3. The root of an arrow.
୪ । ସମୂହ—4. Collection.
୫ । ବାଜପକ୍ଷୀ—5. Falcon (Apte).

**ପୁଙ୍ଖାନୁପୁଙ୍ଖ**—ସଂ.ବିଣ. (ପୁଙ୍ଖ=ବାଣମୂଳ ଠାରୁ+ଅନୁପୁଙ୍ଖ=ପୁଙ୍ଖଠାରୁ
Puṅkhānupuṅkha ଅତି ସୂକ୍ଷ୍ମ )—୧ । ସୂକ୍ଷ୍ମାନୁସୂକ୍ଷ୍ମ, ଅତି ସୂକ୍ଷ୍ମ—
1. Minutest.
୨ । ତନ୍ନ ତନ୍ନ—2. Very accurate or thorough.
୩ । ଗବେଷଣାଯୁକ୍ତ, ଆଲୋଚନାମୂଳକ—3. Critical.
୪ । ଉତ୍ସୁକ—4. Eager.
କ୍ରି. ବିଣ.—୧ । ଅତି ସୂକ୍ଷ୍ମ ଭାବରେ—
1. Very minutely.
୨ । କୌଣସି ବିଷୟର ମୂଳରୁ ଶେଷ ପର୍ଯ୍ୟନ୍ତ—2. From the beginning to the end of a matter.
୩ । ତନ୍ନ ତନ୍ନ କରି—3. Thoroughly; accurately.
୪ । ଉତ୍ତମରୂପେ ପରୀକ୍ଷା ବା ବିଚାର ପୂର୍ବକ—4. After a thorough examination; on mature consideration.
୫ । ଉତ୍ସୁକ ଭାବରେ· 5. Eagerly.
୬ । ଗବେଷଣା ବା ସମାଲୋଚନା ପୂର୍ବକ—6. Critically.

**ପୁଙ୍ଖିତ**—ସଂ. ବିଣ. (ପୁଙ୍ଖ+ଯୁକ୍ତାର୍ଥେ. ଇତ)—ପକ୍ଷଯୁକ୍ତ (ଶର)—
Puṅkhita (an arrow) Furnished with feathers.

**ପୁଞ୍ଜ**—ସଂ. ବି. (ପୁମସ୍=ମନୁଷ୍ୟ+ଗମ୍ ଧାତୁ+କର୍ତ୍ତୃ. ଅ)—୧ । ସମୂହ—
Puñga 1. Collection; multitude.
୨ । ଗାଦି, ରାଶି; ଗଦା—2. Heap; mass.
୩ । ପରିମାଣ—3. Quantity.

**ପୁଙ୍ଗବ**—ସଂ. ବି. ପୁଂ—(ପୁମସ୍=ଅଣ୍ଡିରା+ଗୋ=ଗୋରୁ+ଅ)—
Puṅgaba ୧ । ବୃଷ; ଷଣ୍ଢ—1. A bull.
୨ । ମହୋକ୍ଷ; ବଡ଼ ଷଣ୍ଢ—2. A big bull.
୩ । ଋଷଭ ନାମକ ଔଷଧ—
3. Name of a rare herb.
୪ । (ଲକ୍ଷଣାର୍ଥ) (ଗୋରୁ ପଲ ମଧ୍ୟରେ ବୃଷଭ ଯେଉଁପରି ପ୍ରଧାନ ଶ୍ରେଷ୍ଠପରି) ପ୍ରଧାନ ବ୍ୟକ୍ତି ବା ଶ୍ରେଷ୍ଠ ବ୍ୟକ୍ତି—
4. (figurative) A chief person (like a bull amongst a herd).
[ଦ୍ର—ଏହି ଅର୍ଥରେ ଏହି ଶବ୍ଦ ଅନ୍ୟ ଶବ୍ଦ ପରେ ବ୍ୟବହୃତ ହୁଏ —ଯଥା ନରପୁଙ୍ଗବ=ମନୁଷ୍ୟ ଶ୍ରେଷ୍ଠ; ମୁନିପୁଙ୍ଗବ=ମୁନିଶ୍ରେଷ୍ଠ; ରାଜପୁଙ୍ଗବ=ପ୍ରଧାନ ରାଜା ।]

**ପୁଙ୍ଗବ କେତୁ**—ସଂ. ବି. (ବହୁବ୍ରୀହି; ପୁଙ୍ଗବ+କେତୁ)—ବୃଷଧ୍ୱଜ,
Puṅgaba ketu ମହାଦେବ—Siba (who has the figure of a bull painted on his ensign)

**ପୁଙ୍ଗି**—ଦେ. ବି—ନାଗେଶ୍ୱରୀ, କେଳାମାନେ ଲାଉରେ ତିଆର କରିଥିବା
Puṅgi ସରୁ ମୁହାଁ ଓ ଚଉଡ଼ା ପେଟଥିବା ମହୁରୀ—
A pipe or flute made of bottle gourd used by gypsies or snake charmers.

**ପୁଚ୍‌କୁନା**—ପ୍ରାଦେ. ( ସମ୍ବଲପୁର ) ବି—
Puch-kunā ଘରର ମଇଳା ପାଣି ବୋହି ଯାଇ ଜମାହେବା ସ୍ଥାନ—
(ପୁଚୁକୁନା—ଅନ୍ୟରୂପ) A place where the foul water of the house is collected.

**ପୁଚ୍‌କୁନି**—ପ୍ରାଦେ. (ସମ୍ବଲପୁର) ବି—ଅଳିଆ ଗଦା—
Puch-kuni A heap of refuse.

**ପୁଚ୍ ପୁଚ୍**—ଦେ. ବିଣ—୧ । ( ବ୍ରଣ ବା ଫଳ) ସଢ଼ି ପଚି ଯାଇ ଲହଲହ
Puch puch ହୋଇଥିବା; ଲହର୍—
ପୁଚ୍ ପୁଚ୍ 1 Flabby ( like a rotten fruit or
पिलपिला ripe boil.
(ପୁଚୁପୁଚୁ—ଅନ୍ୟରୂପ) ୨ । ଭୀତ ତ୍ରସ୍ତ—
2. Very much frightened.
[ ଦ୍ର—ଯଥା—ଆମ୍ବଟି ପୁଚ୍ ପୁଚ୍ ହୋଇଗଲା=ପାଚିଲା ଆମ୍ବଟି ସଢ଼ି ପଚି ନଷ୍ଟ ହୋଇଗଲା ।
ଗାଣ୍ଡି ପୁଚ୍ ପୁଚ୍ ଡାକିବା ବା ହେବା=ହାଡ଼କମ୍ପ ହେବା; ଭୟରେ ତ୍ରସ୍ତ ହେବା ।]

**ପୁଚକା**—ଦେ. ବିଣ. ( ସଂ. ଚେପଟ )—
Puchakā ୧ । ଚେପଟା—1. Flat.
(ପୁଚୁକା—ଅନ୍ୟରୂପ) ୨ । ଚେପା କରାଯାଇଥିବା—2. Flattened.
ପୁଚକୀ } ସ୍ତ୍ରୀ ୩ । ଫୁଲିକା—3 Leavened; puffed up
ପୁଚୁକୀ }
फूलका ୪ । (ଖାଦ୍ୟ) ପୋଚକା; ପୋଚରା; ବାସି ହୋଇ ସଢ଼ି
पचा ଯାଇଥିବା—4. (food) Spoiled by long keeping; stale.
୫ । ପର୍ଯ୍ୟୁଷିତ, ପଚା; ସଢ଼ା—5. Rotten.

**ପୁଚକା ଗାଲ**—ଦେ. ବି—ଫୁଲି କରି ଅସୁନ୍ଦର ଦେଖାଯିବା ଗାଲ;
Puchakā gāla ଫୁଲୁକା ଗାଲ—Leavened cheek,
फुलागाल, टाभागाल swollen cheek.

**ପୁଚ(ଚୁ)କା ଗାଲ(ଲୁ)ଆ**—ଦେ.ବିଣ. ପୁଂ—୧ । ଯେଉଁ ଲୋକର ଗାଲ
Pucha(chu)kā gāli(lu)ā ଫୁଲୁକା ଥିବାରୁ ତା ମୁହଁ ଅସୁନ୍ଦର
[ପୁଚ(ଚୁ)କା ଗାଲ—ଅନ୍ୟରୂପ) ଦେଖାଯାଏ—
टाभागाल, टेभोगाल(पुं), 1. A person with puffed
टेभोगाली स्त्री, up cheeks.
୨ । ପେଚା ପରି ଚେପଟା ମୁହାଁ—
2. Flat-faced; owl-faced.
[ପୁଚ(ଚୁ)କା (କା)ଗାଲୀ, ପୁଚ(ଚୁ)କା(କି) ଗାଲେଇ—ସ୍ତ୍ରୀ ]

**ପୁଚକିବା**—ପ୍ରାଦେ. (ସିଂହଭୂମ) କ୍ରି—ଖସିଯିବା—
Puchakibā To slip away.

**ପୁଚ(ଗ୍ରା)ଗ୍ର**—ଦେ. ବି. ( ସ. କୁର୍ଚ୍ଚ ? )—
Pucha(chā)rā ୧ । ଚୂନ ପାଣିରେ ଓଦା ହୋଇଥିବା କନା ବା
କୁଁଚୀ **पुचारा** ଝୋଟରେ କାନ୍ଥରେ କାନ୍ଥ ଆଦି ଲେପିବା—
1 Smearing walls with rag moistened with quicklime water
୨ । କାନ୍ଥ ଆଦି ଧଉଳିବା ପାଇଁ ବ୍ୟବହୃତ କନା ବା ଝୋଟର ପୁଳା—2 A wisp of jute or rag used in whitewashing walls
୩ । ଶଗଡର ପହିଆ ଓ ହାମା ମଧ୍ୟରେ ଦେଖାଯିବା ସନ୍ଧରେ ମରାଯିବା ପତଳା ଖିଲ—3 Thin wedges driven into the space appearing between the rim and arcs of a cart-wheel

**ପୁଚି**—ଦେ. ବି—(ସ. ଶ୍ୱୀଚ=ପିଚ୍ଚୁ, ଏଥିରେ ନୃତ୍ୟକାରିଣୀଙ୍କ ନିତମ୍ବ
Puchi ଚଳନ୍ତ ହେଉଥିବାରୁ )—ବାଳକାମାନଙ୍କର ଉଠି ବସି
(ପୁଞ୍ଚି—ଅନ୍ୟରୂପ) ଆଗକୁ ପଛକୁ କୁଦି ନାଚିବା ରୂପ ଏକପ୍ରକାର ଖେଳ—A kind of play amongst girls consisting of frisking dance.
[ ଦ୍ର—ଏଥିରେ ବାଳକା ଓ ଯୁବତୀମାନେ ନାନାପ୍ରକାରର ଅଙ୍ଗ ଭଙ୍ଗୀ ଓ ପାଦ ଚଳନା କରି ଉଠୁଥାଆନ୍ତି, ବସୁଥାଆନ୍ତି ଓ ନାଚୁଥାଆନ୍ତି । ଏହା ସେମାନଙ୍କ ପକ୍ଷରେ ଗୋଟିଏ କୌତୁକପ୍ରଦ ବ୍ୟାୟାମ ।]
ପ୍ରାଦେ (ଗଞ୍ଜାମ) ବି—ଦାୟିତ୍ୱ— Responsibility.

**ପୁଚିଆ** ଦେ. ବିଣ—ପୁଚୁରା (ଦେଖ)
Puchiā Puchurā (See)

**ପୁଚି ଖାତା**—ପ୍ରାଦେ (ଗଞ୍ଜାମ) ବି. (ତେଲୁଗୁ)—କଚେରୀରେ ନିର୍ଦ୍ଦିଷ୍ଟ
Puchi khātā ତାରିଖରେ ହାଜର ହେବା ପାଇଁ ସାକ୍ଷୀମାନେ
मुचालिका ନଜେ ଯେଉଁ ମୁଚୁଲିକା ଲେଖି ଦିଅନ୍ତି- Personal recognizance executed by a witness to appear in court on the fixed date of hearing.

**ପୁଚି ଖେଳ**—ଦେ. ବି—ପୁଚି (ଦେଖ)
Puchi khela Puchi (See)

**ପୁଚି ଖେଳିବା**—ଦେ. କ୍ରି—୧ । (ବାଳକା ଓ ଯୁବତୀମାନେ) ପୁଚି ଗୀତ
Puchi khelibā ବୋଲି ନାଚିବା—1. To make a frisking dance accompanied with singing.
୨ । ପୁଚି ଖେଳବାପରି ଉପରକୁ ତଳକୁ ଉଠିବା ପଡ଼ିବା—
2. To move up and down like girls in a Puchi play

**ପୁଚି ଗୀତ**—ଦେ. ବି—ବାଳକାମାନେ ପୁଚି ଖେଳ ସମୟରେ ବୋଲିବା
Puchi gita ଗୀତ—Songs sung by girls while making the Puchi dance.
[ ଦ୍ର—ପୁଚି ଗୀତ—ପୁଚଲୋ ! ସାଆ ସାଆ ପୁଚିଲୋ !
ଗହୀର ବିଲରେ ମଇଁଷି, ଧାନ କେଉଁ କେଉଁ ଖାଉଛି;
ଅଡ଼େଇ ଦେବରେ ଭାଇ ବେଢ଼େଇ ।]

**ପୁଚୁ**—ପ୍ରାଦେ (ସମ୍ବଲପୁର) ବିଣ—ଅତି ସାମାନ୍ୟ ସାମାନ୍ୟ କଥାରେ ପ୍ରଶ୍ନ
Puchu କରି ଉତ୍ତରଦାତାକୁ ବିରକ୍ତ କରୁଥିବା (ଲୋକ)—
(a person) Teasing by repeated questions

**ପୁଚୁରା**—ଦେ. ବିଣ —(ସ. ପୂତି, ପୂୟ)—୧ । ଯୋଚରା, ସଢ଼ା, ବାସି ଓ
Puchurā ଗନ୍ଧିଆ (ଫଳ ଓ ଖାଦ୍ୟାଦି)—1 Rotten to the core, stale.
ପଚା [ପୁଚ(ଚ୍ଚା)କା, ପୁଚୁରା—ଅନ୍ୟରୂପ]
ପଚା ୨ । ପୂଯ ହୋଇ ସଢ଼ି ପଚି ଦୁର୍ଗନ୍ଧଯୁକ୍ତ (ବ୍ରଣାଦି)—
2 Gangrened or mortified (boil etc)
ଦେ. ବି. (ସ ପୁଚ୍ଛ)—୧ । ଘୋଚରା, କୋଠାର କାନ୍ଥ ଆଦି
(ପୁଚ୍ଚୁରା—ଅନ୍ୟରୂପ) ଚୂନାରେ ଧଉଳେଇବା କାମରେ ବ୍ୟବହୃତ
କୁଞ୍ଚୀ ଝୋଟର ଗୁଚ୍ଛ—1 A tuft made of flax or
**पुचारा** jute or rag used in whitewashing walls, a whitewashing brush or mop
୨ । ପାଣି ଭଳିଆ ତରଳ ଲେପ କୌଣସି ବସ୍ତୁ ଉପରେ ଦେବା—
2 Putting a layer of a liquid on something

**ପୁଚୁରା ମାରିବା**—ଦେ କ୍ରି—୧ । ଘୋଚରା ମାରିବା; ପୁଚୁରା ଦ୍ୱାରା ଚୂନ
Puchurā māribā ପାଣି ଲଗାଇ କାନ୍ଥ ଆଦି ସଫେଦ କରିବା—
ପୁଚୁରା ଦେବା
ପୁଚୁରାଫେରା(ରେ ଇବା) } ଅନ୍ୟରୂପ 1. To whitewash walls with a mop.
**कलिफेरना; पुचारा मारना**
୨ । ସାମୟିକ ଓ ଅସ୍ଥାୟୀଭାବରେ କୌଣସି କାର୍ଯ୍ୟ କରିବା—
कलिफिरन 2. To make a patch work; to patch up a thing.

**ପୁଚ୍ଛ**—ସ. ବି. (ପିଚ୍ଛି ଧାତୁ=ପୀଡ଼ନ କରିବା + କର୍ତ୍ତୃ ଅ, ନିପାତନ)—
Puchchha ୧ । ଲାଞ୍ଜ, ଲାଙ୍ଗୁଡ଼ —1. Tail.
୨ । ପକ୍ଷୀର ଲାଞ୍ଜ, ଲଞ୍ଜା, ପଙ୍ଖ—
2 Tail feather of a bird.
୩ । ଲାଞ୍ଜ, କୌଣସି ଲମ୍ବ ପଦାର୍ଥର ଶେଷ ଭାଗ—
3. The end or extremity of a long thing.
୪ । ଶେଷ ମୁଣ୍ଡ ବା ପାଖ—
4 Tail-end of a thing.
୫ । ପଶ୍ଚାଦ୍ଭାଗ —5. Hind part.
୬ଦେ. ବି.—ଶରୀରର ମଧ୍ୟଭାଗ—The middle of the body.
କେ ଚିଂତ ଏ ଦୁ ଉଳେ ଦଧା ଘା
ଉଲ ଆଇଛ କଟକ-ପାଣୀ ଘା.
ଗୀତ୍ୟାଦ ପୁଚ୍ଛେ: ଏହା ଉପନିଷଦ୍ର ମଧ୍ୟ ଦେଖା ଯାଉଛି ।
—ଛେ.ଶ୍ରୀବୃନ୍ଦାଶ ଦ୍ରଦୟ.

**ପୁଚ୍ଛ କଣ୍ଟକ**—ସ. ବି—୧ । ( ପୁଚ୍ଛରେ କଣ୍ଟକ ପରି ପଦାର୍ଥ ) (ବିଛା;
Puchchha kantaka ମହୁମାଛି; ବିରୁଡ଼ି ଆଦିଙ୍କ ) ନାହୁଡ଼—
1. Sting ( of a bee or scorpion ).
୨ । ( ବହୁବ୍ରୀହି ) ବିଛା—2. Centipede; scorpion.
ସ. ବିଣ—ଯେଉଁ ଜୀବର ଲାଙ୍ଗୁଡ଼ରେ ନାହୁଡ଼ ଥାଏ—
Stinged ( animal ).

**ପୁଚ୍ଛଟି**—ସ. ବି. ( ପୁଚ୍ଛ + ଟି )—୧ । ଅଙ୍ଗୁଠିଦ୍ୱାରା ଫୁଟୁକି ମାରିବା—
Puchchhaṭi 1. Snapping of the fingers.

୨ । ଆଙ୍ଗୁଠି ଫୁଟେଇବା—
2. Cracking of the finger joints.
୩ । ଛୋଟ ପୁଚ୍ଛ—3. Small tail
୪ । ନାହୁଡ଼—4. Sting.

**ପୁଚ୍ଛଣ୍ଡକ**—ସଂ. ବି. ( ପୁଚ୍ଛ + ଅଣ୍ଡକ; ଯାହା ଲାଞ୍ଜରେ ଅଣ୍ଡାକାର ଅସ୍ଥି-
Puchchhandaka ଖଣ୍ଡମାନ ଥାଏ )—ଉସ୍ତକଜାତୀୟ ନାଗ-
ବିଶେଷ—A kind of venomous snake
( probably like rattle snake ).

**ପୁଚ୍ଛ ଫଳ**—ସଂ. ବି. ( ବହୁବ୍ରୀହି, ପୁଚ୍ଛ + ଫଳ )—ବରକୋଳି ଗଛ ( ହି.
Puchchha phala ଶ )—The jejube tree.

**ପୁଚ୍ଛା(ଚ୍ଛା)**—ଦେ. ବି. ( ସଂ. ପୃଚ୍ଛା )—୧ । ପ୍ରଶ୍ନ; ଜିଜ୍ଞାସା—
Puchchhā(chhā) 1. Questioning.
ପୁଛା ୨ । କହିବା—2. Speaking
**ପୃଚ୍ଛ** ୩ । ଅନୁସନ୍ଧାନ—3. Enquiry.
[ ଦ୍ର—'କୁହା' ଶବ୍ଦ ସଙ୍ଗେ ସହଚର ଶବ୍ଦରୂପେ ବ୍ୟବହୃତ ହୁଏ । ]
ପୁଁଛ **ପୌଁଛା** ୪ । ( ସଂ. ପ୍ରୋଞ୍ଛନ ) ପୋଛିବା—
4. Wiping out.
ପ୍ରାଦେ. (ସମ୍ବଲପୁର) ବି—ସାନ ଗାମୁଛା—A small napkin.
ପ୍ରାଦେ. (ବାଲେଶ୍ୱର ଓ ସମ୍ବଲପୁର ) କ୍ରି. ( ସଂ. ପ୍ରୋଞ୍ଛନ )—
ପୋଛିବା—To wipe off.

**ପୁଚ୍ଛା କରିବା**—ଦେ କ୍ରି. ( ସଂ. ପୃଚ୍ଛା )—ପ୍ରଶ୍ନ କରିବା; ପଚାରିବା—
Puchchhā karibā To ask.
ପୁଛା
**ପୁଚ୍ଛନା** ପୁଚ୍ଛା କଲେ କେହି ବ୍ୟାକୁଳ ହୋଇ ଭୁଲେ ବାଞ୍ଛା ପୂର୍ଣ୍ଣ କରିବ— ଭଞ୍ଜ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।

**ପୁଚ୍ଛା(ଚ୍ଛା) କୁହା**—ଦେ. ବି. ( ସଂ. ପୃଚ୍ଛା + କଥନ )—୧ । ପ୍ରାର୍ଥନା—
Puchchhā(chhā) kuhā 1. Prayer.
ବଳାକହା ୨ । ଖୋସାମତ; ବିନୟ, ବାରମ୍ବାର ଅନୁରୋଧ—
**ପୃଚ୍ଛତାଛ, ପୁଚ୍ଛପାଚ** 2. Supplication; entreaty.
କୁହାପଚ୍ଛା } ଅନ୍ୟରୂପ ୨ । ପଚରାଉଚରା; କୁହାବୋଲା—
କୁହାପୋଛ } 3. Talk; conversation.

**ପୁଚ୍ଛା(ଚ୍ଛା) ପଚରା**—ଦେ. ବି. ( ସହଚର ଶବ୍ଦ )—୧ । କୁହାବୋଲା;
Puchchhā(chhā) pacharā ବାକ୍ୟାଳାପ—
ବଳାକହା 1. Talk; conversation.
୨ । ବାରମ୍ବାର ଜିଜ୍ଞାସା—2. Repeated questioning.

**ପୁଚ୍ଛାପୁଚ୍ଛି**—ଦେ. ବି. ଓ ବିଣ (ସଂ. ପୃଚ୍ଛା)—୧ । ଅନ୍ୟୋନ୍ୟ ପ୍ରଶ୍ନ କରିବା,
Puchchhāpuchchhi ପଚରାପଚରି—1 Mutual question-
ପୁଛାପୁଛି **ପୁଚ୍ଛପାଚ** ing or enquiring.
(ପୁଚ୍ଛପୁଚ୍ଛି—ଅନ୍ୟରୂପ ) ଅନ୍ୟୋନ୍ୟରେ ମଙ୍ଗଳ ପୁଚ୍ଛାପୁଚ୍ଛି ହେଲେ— ବ୍ରଜବିହାରୀ, ମହାଭାରତ. ଅଦ ।
୨ । କୁହାକୁହି ହେବା—
2. Talking with each other.
ଏବେ ଭଲ ପୁଚ୍ଛାପୁଚ୍ଛି କେ କାହିଁ ଗମିଚି—ଭଞ୍ଜ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।

**ପୁଚ୍ଛି(ଚ୍ଛି)ବା**—ଦେ. କ୍ରି. ( ସଂ. ପ୍ରଚ୍ଛ ଧାତୁ )—ପଚାରିବା; ପ୍ରଶ୍ନ କରିବା—
Puchchhi(chhi)bā To ask; to question.
ପୁଛା **ପୁଚ୍ଛନା** ଏହିକ୍ଷେ ଲକ୍ଷେକ ଅର୍ଜ୍ଜୁନ ଜଣାଇଁ—ବ୍ରଜବିହାରୀ ମହାଭାରତ ବନ ।
[ ଦ୍ର—ଏହା 'କହିବା' ଶବ୍ଦର ଏକାର୍ଥ ସହଚର ଶବ୍ଦରୂପେ ବ୍ୟବହୃତ ହୁଏ । ]

**ପୁଚ୍ଛୀ**—ସଂ. ବିଣ. ପୁଂ. ( ପୁଚ୍ଛ + ଅସ୍ତ୍ୟର୍ଥରେ ଇନ୍; ପୁଚ୍ଛିନ୍ ଶବ୍ଦର ୧ମା.
Puchchhī ୧ବ. )—ପୁଚ୍ଛଯୁକ୍ତ—Having a tail.
( ପୁଚ୍ଛୀନୀ—ସ୍ତ୍ରୀ ) ସଂ. ବି—୧ । କୁକ୍କୁଟ—1. Cock.
୨ । ମୟୂର—2 Peacock.
୩ । ଅରଖ ଗଛ—3. Calatropis Gigantea.
୪ । ନିମ୍ବ ଗଛ—4. Neem tree.
୫ । ନକ୍ଷତ୍ରଲଙ୍ଗା—5. Comet.

**ପୁଛିବା**—ପ୍ରାଦେ ( ସମ୍ବଲପୁର ) କ୍ରି. ( ସଂ. ପୃଚ୍ଛ ଧାତୁ )—ପଚାରିବା—
Puchh-bā To ask; to question.

**ପୁଛ**—ଦେ. ବି. ( ସଂ. ପୁଚ୍ଛ )—ପୁଚ୍ଛ ( ଦେଖ )
Puchha Puchchha ( See )

**ପୁଛା କନା**—ପ୍ରାଦେ. (ସମ୍ବଲପୁର) ବି—ଝାଡ଼ଣ—Duster; cleaning
Puchhā kanā towel or rag.

**ପୁଜ(ଜା)** ( ଇତ୍ୟାଦି )—ଦେ. ବି—ପୂଜ(ଜା) ଇତ୍ୟାଦି ( ଦେଖ )
Puja(jā) (etc) Pūja(jā) etc ( See )

**ପୁଞ୍ଜ**—ସଂ. ବି. ( ପୁମସ୍ + ଜନ୍ ଧାତୁ + କର୍ତ୍ତୃ. ଅ )—୧ । ସମୂହ—
Punja 1. Collection.
୨ । ରାଶି—2 Heap
୩ । ପଙ୍କ୍ତି—3. Crowd; herd.
୪ । ଗୁଚ୍ଛ; ଗୋଛା—4. Cluster

**ପୁଞ୍ଜ ଦଳ**—ସଂ. ବି. ( ବହୁବ୍ରୀହି; ପୁଞ୍ଜ + ଦଳ; ଏଥିର ପତ୍ରମାନ ପୁଞ୍ଜ
Punja dala ଥିବାରୁ )—ସୁନୁସୁନିଆ ଶାଗ (ହି. ଶ.) (ଦେଖ)
Sunusuniā sāga ( See )

**ପୁଞ୍ଜଶଃ**—ସଂ. ବି. ( ପୁଞ୍ଜ + ଶସ୍ )—ଦଳ ଦଳ ହୋଇ—
Punjasah In herds; in clusters.

**ପୁଞ୍ଜା**—ଦେ. ବି. ( ସଂ. ପୁଞ୍ଜ )—
Punjā ୧ । ପୁଞ୍ଜ; ସମୂହ—1. Collection.
ପୁଞ୍ଜି **ପୁଂଜା** ୨ । ୪ଗୋଟି; ଗଣ୍ଡା—2. Four in number
୩ । ଚାରିଟି ବସ୍ତୁର ସମାହାର—
3. An aggregate of four.

**ପୁଞ୍ଜାଏ**—ଦେ. ବି. ଓ ବିଣ—୧ । ଚାରି ଗୋଟା ବା ଗଣ୍ଡାଏ—
Punjāe 1. Four only.
ଏକଗଣ୍ଡା ଏକା ବଦ୍ଧିବେ ଅଛି ପୁଞ୍ଜେ ଲେଖା ବାଛ—ପ୍ରାଚୀ ବ୍ରହ୍ମାଣ୍ଡପୁରାଣଗୀତା
ପୁଞ୍ଜିଏ } ଅନ୍ୟରୂପ ୨ । ଅଳ୍ପ; ସାମାନ୍ୟମାତ୍ର—
ପୁଞ୍ଜେ } 2. A little.
( ଯଥା—ମୁଁ ପୁଞ୍ଜାଏ ଭାତ ଖାଇ ଦେଇ ଚାଲି ଆସିଲି । )

**ପୁଞ୍ଜାକିଆ**—ଦେ. ବିଣ.—୧ । ଚାରିଗୋଟି ଲେଖାଏଁ ଏକତ୍ର ହୋଇ
Punjākiā 1 Arranged or set in clusters of four.
(ପୁଞ୍ଜିକିଆ—ଅନ୍ୟରୂପ) ୨ । ଏକ ଟଙ୍କାକୁ ବା ଏକ ପଇସାକୁ ପୁଞ୍ଜାଏ
ବା ଚାରି ଗୋଟି ମିଳୁଥିବା (ଦ୍ରବ୍ୟ)—2. (article)
Available at 4 for one rupee or pice.

ପୁଞ୍ଜି — ଦେ. ବି. (ସ. ପୁଞ୍ଜ)—୧ । ଗୁଚ୍ଛ; ଥୋପା, ଗୋଞ୍ଚ—
Puñji 1. Cluster
पूँजी पुञ्ज पुंजी
୨ । ପାଣ୍ଠି; ବ୍ୟବସାୟର ମୂଳଧନ—
2. Stock in trade; capital in trade.
୩ । ସଞ୍ଚିତ ଧନ—3. Stock; fund; stored cash.
୪ । ପୁଞ୍ଜା, ଏକ ଗଣ୍ଡା—
4. An aggregate or collection of four
୫ । ପୁଞ୍ଜାର ଆଦରାର୍ଥକ ଆକାର—5. The form of Puñja used in endearment.
୬ । ଜଳପୂର୍ଣ୍ଣ ବିଲରେ ୪ ଗୋଟି କମ୍ବା ପୁଞ୍ଜି ପୁଞ୍ଜି ଧାନ ମଞ୍ଜି ଏକ ଏକ ସ୍ଥାନରେ ବୁଣା ଯିବା—6. Planting or sowing 4 seeds of paddy at one spot at a time in water-logged fields.
୭ । ଘୋଡ଼ା ଆଦି ଏକ ସମୟରେ ଚାରି ଗୋଡ଼ ଉଠାଇ ଦଉଡ଼ିବା
7. A full gallop of a horse etc; a horse's running on all fours.
୮ । ଗଦା—8 Heap.
୯ । ଭଣ୍ଡାର—9 Store.

ପୁଞ୍ଜି ଉଠା(ଠେ)ଇବା—ଦେ. କି.—(ଘୋଡ଼ା) ଚାରି ଗୋଡ଼ ଉଠାଇ
Puñji uṭhā (ṭhe)ibā ଦଉଡ଼ିବା; ଖୁବ୍ ଜୋରରେ ଦଉଡ଼ିବା—
चारपाँउठिये दौड (a horse) To run on all fours;
सरपट दौड़ना to gallop at full speed.
[ପୁଞ୍ଜି ପକା(କେ)ଇବା—ଅନ୍ୟରୂପ]

ପୁଞ୍ଜି କିଆରି—ଦେ. ବି. (ସ. ପୁଞ୍ଜ ଓ କେଦାର)—ଯେଉଁ ଧାନ
Puñji kiāri କିଆରିରେ ଜଳ ଅଧିକ ହେବାରୁ ଗୋଛକରା ଧାନ
(ପୁଞ୍ଜି ବିଲ—ଅନ୍ୟରୂପ) ଗଛ ବଞ୍ଚି ପାରିବ ନାହିଁ ଓ ସେଥିଯୋଗୁଁ ଯେଉଁ କିଆରିରେ ପୁଞ୍ଜି ପୁଞ୍ଜି ହୋଇ ଧାନ ବୁଣା ଯାଏ—
ବା ରୁଆଯାଏ—A water-logged field where paddy is sown or planted in clusters.

ପୁଞ୍ଜିତ—ସ. ବିଣ. (ପୁଞ୍ଜ+ଇତ)—୧ । ରାଶୀକୃତ; ଗଦା କରାଯାଇ
Puñjita ଥିବା—1. Heaped together; gathered into a heap.
୨ । ଗଚ୍ଛିତ, ସଞ୍ଚିତ—2. Stored; funded; hoarded.
୩ । ଗୋଛ କରାଯାଇ ଥିବା—
3. Gathered into a bunch or cluster.

ପୁଞ୍ଜି ଧାନ—ଦେ. ବି.—ଯେଉଁ ମୋଟ ଧାନ ଜଳ ଜମିରେ ବୁଣା
Puñji dhāna ଯାଏ ବା ରୁଆଯାଏ—Coarse paddy fit to be raised in water-logged fields.

ପୁଞ୍ଜି ପଟ—ପ୍ରାଦେ. (ଯାଜପୁର) ବି.—ଅଳ ମୁଣି—
Puñji paṭa Gunny bag.

ପୁଞ୍ଜି ପଟା—ଦେ. ବି. (ସହଚର ଶବ୍ଦ; ପୁଞ୍ଜି=ସଞ୍ଚିତ ଧନ; ପଟା+ଭୂମି
Puñji paṭā ଅଧିକାର ପଟ୍ଟା) —୧ । ନଗଦ ଧନ ଓ ଭୂସମ୍ପତ୍ତି—
पूँजि पाटा 1. Cash and landed property.
पुंजी उंजी ୨ । ସଞ୍ଚିତ ଧନ ବା ଭୂସମ୍ପତ୍ତି—
(ପୁଞ୍ଜିପଟର; ପୁଞ୍ଜିପତ୍ର—ଅନ୍ୟରୂପ) 2 Cash or land.
୩ । କୌଣସି ବ୍ୟକ୍ତିର ସମସ୍ତ ଧନ—
3. All the riches or wealth of a person.
୪ । ବ୍ୟବସାୟ ପାଇଁ ଆବଶ୍ୟକ ମୂଳଧନ—
4. The capital necessary for a business.

ପୁଞ୍ଜି ପାଣ୍ଠି—ଦେ. ବି. (ଏକାର୍ଥ ବୋଧକ ସହଚର ଶବ୍ଦ)—୧ । ସଞ୍ଚିତ
Puñji pāṇṭhi ଧନ; ନଗଦ ଧନ—1 Cash; store;
पूँजिपाटा hoard.
୨ । ବ୍ୟବସାୟର ମୂଳଧନ—2. Capital in trade; cash invested in a business.

ପୁଞ୍ଜିବାଲା—ଦେ. ବି. ୧ । ଯେଉଁ ବ୍ୟକ୍ତି ନିକଟରେ ବେଶି ପରିମାଣରେ
Puñji bālā ଧନ ଅଛି—1. A person who has a large hoard with him.
(ପୁଞ୍ଜିଦାର, ପୁଞ୍ଜିବୁଆଲା—ଅନ୍ୟରୂପ)
पूँजिदार, पुंजिवाला ୨ । ବ୍ୟବସାୟରେ ଯେଉଁ ବ୍ୟକ୍ତି ମୂଳଧନ
पुंजिदार, पुंजीवाला ଯୋଗାଇ ଥାଏ—2. Capitalist.

ପୁଞ୍ଜି ମହିପାଳ—ଦେ. ବି.—ପୁଞ୍ଜି କିଆରିରେ ଆବାଦ କରାଯିବା ଏକ
Puñji mahipāla ପ୍ରକାର ମୋଟ ଧାନ—A kind of coarse paddy grown in water-logged fields.

ପୁଞ୍ଜିଷ୍ଠ—ସ. ବିଣ. (ପୁଞ୍ଜ+ସ୍ଥା ଧାତୁ+କର୍ତ୍ତୃ. ଅ) – ପୁଞ୍ଜୀଭୂତ; ରାଶୀକୃତ—
Puñjishṭha Heaped up; accumulated.

ପୁଞ୍ଜୀକୃତ—ସ. ବିଣ. (ପୁଞ୍ଜ+ଅଭୂତ ତଦ୍ଭାବେ ଚ୍ୱି+କୃତ)—
Puñjīkṛuta ଏକତ୍ର ଗଦା କରାଯାଇ ଥିବା; ଯାହା ପୂର୍ବରୁ ଇତସ୍ତତଃ
(ପୁଞ୍ଜୀକରଣ—ବି) ବିକ୍ଷିପ୍ତ ହୋଇଥିଲା ବର୍ତ୍ତମାନ ଗଦା କରାଯାଇ ଅଛି—
Gathered together; made into a heap.

ପୁଞ୍ଜୀଭୂତ—ସ. ବିଣ. (ପୁଞ୍ଜ+ଅଭୂତ ତଦ୍ଭାବେ ଚ୍ୱି+ଭୂତ)—
Puñjībhūta ଯାହା ଏକ ସ୍ଥାନରେ ଗଦା ହୋଇଅଛି—
Heaped up.

ପୁଟ୍ (ଧାତୁ)—ସ—୧ । ସଲଗ୍ନ ହେବା—
Puṭ 1. To stick to; to adhere to.
୨ । ଆଲିଙ୍ଗନ କରିବା—2. To clasp; to embrace (Apte).
୩ । ଗୁନ୍ଥେଇ ହେବା—3. To intertwine.

ପୁଟ୍‌କା—ପ୍ରାଦେ. (ସମ୍ବଲପୁର) ବି—ଗାମୁଛା—
Puṭ-ka Napkin; towel.

ପୁଟ୍ ପୁଟ୍—ପ୍ରାଦେ. (ସମ୍ବଲପୁର ଅ—ଛଟପଟ (ଜୀବନ) —
Puṭ puṭ Struggling for life

ପୁଟ୍‌ଲାଇବା—ପ୍ରାଦେ. (ସମ୍ବଲପୁର) କି. (ସ. ପୁଟ୍ ଧାତୁ=ସଲଗ୍ନହେବା) -
Puṭ-lāibā ଆଲିଙ୍ଗନ କରିବା; କୁଣ୍ଢାଇବା; ପୋଟାଳିବା—
To embrace; to hug.

ପୁଟ—ସ. ବି. (ପୁଟ୍ ଧାତୁ=ସଲଗ୍ନ ହେବା+କର୍ମ ଅ)—
Puṭa ୧ । ଲୁଗାଆଦିର ଭାଙ୍ଗ ବା ସ୍ତର—1. Fold; layer.
୨ । ପୃଷ୍ଠା; ପୁସ୍ତକର ପୃଷ୍ଠା—2. Page of a book.

୩ । ଆବରଣ; ଘୋଡ଼ଣୀ, ଢାଙ୍କୁଣି—
3. Cover; covering; lid,

୪ । ଗୋଲ ଓ ଗଭୀର ପାତ୍ର—
4. A round and deep cup

୫ । ଖୋଳ, ଖାପ—5 Sheath.

୬ । ଥଳି—6. Bag

୭ । ପତ୍ର ନିର୍ମିତ ଚଉପଦା, ଠୋଲା, ଠୋଙ୍ଗା, ଦନା—
7. A cup made of leaves,

୮ । ପିଣ୍ଡୁଳା—8 A ball, lump.

୯ । ଗଣ୍ଠିରି, ପୁଡ଼ା; ପୁଡ଼ିଆ, ପୋଟଳା, ବୋଜକ—
9. Packet; capsule; bundle.

୧୦ । କରତଳକୃତ ଆଧାର, ପୋଷ—
10. The hollow of the palm.

୧୧ । କରପୁଟ, କରଯୋଡ଼, ଅଞ୍ଜୁଳା—11. The palms folded together into a cup; doubling of the palms.

୧୨ । ଖାଲ, ଗର୍ତ୍ତ—12. Cavity.

୧୩ । ପାକପାତ୍ର—13. Cooking pot.

୧୪ । କୋଇ; ଧାତୁ ଆଉଟିବା ପାତ୍ର—
14. Crucible; melting pot

୧୫ । ପେଡ଼ା, ଡବା, ଫରୁଆ; ବାକସ, ସମ୍ପୁଟ; ଦୁଇଫାଳ ଏକାଠି ଯୋଡ଼ା ହୋଇ ବନ୍ଦ କରାଯିବା ପାତ୍ର—15. A closed receptacle; a casket; a closed cup made of 2 halves fitting to each other.
ଦୃଷ୍ଟରଣି ଏମା ସୁଦ ପୁଟ: ଥିଲା ପ୍ରମୋଦ । କବିସୂର୍ଯ୍ୟ, ହଗୀତ ।

୧୬ । ପାତ୍ର—16 Vessel.

୧୭ । ଅଗଭୀର ପାତ୍ର—17. A shallow cup (Apte).

୧୮ । କୌଣସି ପତଳା ପଦାର୍ଥ (ଯଥା—ଲୁଗା, ପତ୍ର)କୁ ଭାଙ୍ଗିକରି କରାଯିବା ପାତ୍ର—18. The folding or doubling up of a thin thing to form a cup or hollow (Apte).

୧୯ । ଯୁଗ୍ମ; ଯୋଡ଼ା—19. A pair; couple.

୨୦ । ଘୋଡ଼ାର ଖୁରା; ଟାପୁ—20. The hoof of a horse.

୨୧ । ପରସ୍ପର ଆଲିଙ୍ଗନ—21. Mutual embrace.

୨୨ । ଓଷ୍ଠ ପୁଟ; ଓଠର ପୁଡ଼ା—22. The lips.
ତ ଲଙ୍କର ପୁରଙ୍କ ଅଧରପୁଟକାତ
ବାଇରେ ଅଗ୍ନି ଦେବ ହେଲେ ଦୁହିତ । କୃଷ୍ଣସିଂହ, ନବାଭରଣ ସର୍ଗ ।

୨୩ । ମୁକୁଟ—23. Crown.

୨୪ । ଟୋପି—24. Cap.

୨୫ । ପଗଡ଼ି—25. Turban.

୨୬ । କର୍ଣ୍ଣପୁଟ; କାନର ପୁଡ଼ା—26 The flap of the ear.

୨୭ । ନାସିକାପୁଟ; ନାକପୁଡ଼ା—
27. The skin covering the nostril; the nostril.

୨୮ । ଗୁହ୍ୟଦେଶ ଆବରକ ବସ୍ତ୍ର; କୌପୀନ—
28. A strip of rag put on over the privities,

୨୯ । ସଙ୍କୋଚନ—29 Contracting of anything.

୩୦ । ଆକ୍ଷିପତ୍ର—30. Eyelid (Apte).

୩୧ । ଜାଇ ଫଳ—31 Nutmeg (Apte)

୩୨ । ମୁହାଁମୁହିଁ ସଲଗ୍ନ ଅର୍ଦ୍ଧବୃତ୍ତାକାର ପାତ୍ରଦ୍ୱୟବିଶିଷ୍ଟ ଔଷଧ ପାକ ପାତ୍ର—32. Two hemispherical vessels joined together, the upper one made to tally into the mouth of the other, for the sublimation of medicaments.

୩୩ । କୌଣସି ଦ୍ରବ୍ୟକୁ ପୋଡ଼ିବା ପାଇଁ ବା ଶୁଖାଇବା ପାଇ ଅଗ୍ନିର ବା ସୂର୍ଯ୍ୟର ତାପର ଏକଥର ପ୍ରୟୋଗ—
33 A single application of fire to bake or of the sun's rays to dry a thing (Ganguly).

୩୪ । ଖାଲ, ଖାଲୁଆ ପାତ୍ର—
34. A hollow, concavity (Apte).

୩୫ । କୋମଳ ନୂଆଗଜା ବା ପତ୍ରଉପରର ଆବରଣ—
35. The pod or capsule which envelops young shoots (Apte).

ଦେ. ବି. (ସ. ପୁଟ=ସ୍ତର)—୧ । କୌଣସି ପଦାର୍ଥର ଉପରେ ବୋଳାଯିବା ରଙ୍ଗର ପତଳା ସ୍ତର—1, A thin layer of paint laid on the surface of a thing.
ଯେତେଲେ ହେଲେ ସେତେ ବୋଉ ପୁଟ
ଧଉଳକୁଟ କେଭୁ ଦେବ ପୁଟ । କବିସୂର୍ଯ୍ୟ, କଳାବକଲ୍ଲୋଳ ।

୨ । ଧାତୁ ଆଉଟିବା ନିମନ୍ତେ ବ୍ୟବହୃତ ପଦାର୍ଥ; ଦ୍ରାବକ—
2, Flux, a solvent,

ପ୍ରାଦେ. (କଳାମାଳ ଓ ଅନୁଗୁଳ) ବି.—ଦୁଧିଆଳୀ ଗାଈ, ମଇଁଷି, ବଳଦ ବା ଘୋଡ଼ାକୁ ନିର୍ଦ୍ଦିଷ୍ଟ କେତେ ବର୍ଷ ବା ମାସ ପାଇଁ ଅନ୍ୟ ବ୍ୟକ୍ତି ନିକଟରେ ବନ୍ଧକ ଦେଇ ଟଙ୍କା ଆଣିବା—
Borrowing money by pledging a milch-cow or working bullock or buffalo
[ଦ୍ର—ଏ ବ୍ୟବସ୍ଥାରେ ନିର୍ଦ୍ଦିଷ୍ଟ ସମୟ ପାଇଁ ମହାଜନ ଗାଈ ବା ମଇଁଷିର ଦୁଧ ଖାଇବା ବଳଦ ବା ଘୋଡ଼ାକୁ ହଳ ଓ ଶଗଡ଼ରେ ଲଗାଇ ତା ଟଙ୍କା ସୁଝିଗଲା ପରେ ଉକ୍ତ ଜୀବକୁ ମାଲିକକୁ ଫେରାଇ ଦିଏ ।]

ପ୍ରାଦେ (ଗଡ଼ଜାତ) ବି—ବର୍ଷକ ସକାଶେ ଭଡ଼ା ଦେଇ ଅନ୍ୟର ବଳଦକୁ ହଳ ଆଦି କାର୍ଯ୍ୟ ପାଇଁ ଆଣିବା ପ୍ରଥା—
The custom of bringing another person's plough-bullocks on hire for a fixed period of one year

**ପୁଟକ**—ସ. ବି—(ପୁଟ ଧାତୁ + ଅକ) —୧ । ପଦ୍ମ—
Puṭaka 1. Lotus,

୨ । ପତ୍ର ନିର୍ମିତ ଠୋଲା; ଦନ; ଚଉପଦା—
2. A cup made of leaves.

୩ । ନ୍ୟୁବ୍ଜ ଗର୍ଭ ପାତ୍ର ବା ବସ୍ତୁ—3. Concave cup.

୪ । ଅଗଭୀର ପାତ୍ର—4. Shallow cup.

୫ । ଖୋଳ—5 Sheath.

୬ । ପୁଡ଼ା—6. Packet

୭ । ଜାଇଫଳ—7. Nutmeg.

୮ । ଭାଙ୍ଗ—8. Fold (Apte).

**ପୁଟକିତ**—ସ. ବଣ (ପୁଟକ+ଇତ)—୧ । ଆବୃତ—
Puṭakita 1. Covered

୨ । ଭାଙ୍ଗ କରି ଯାଇଥିବା—2 Folded.

**ପୁଟକିନୀ**—ସ. ବି—(ପୁଟକ+ଇନ୍+ସ୍ତ୍ରୀ ଈ)—୧ । ପଦ୍ମିନୀ, ପଦ୍ମ
Puṭakinī ସମୂହ—1 A collection of lotus flowers

୨ । ପଦ୍ମଲତା, ପଦ୍ମନାଡ଼—
2 The stem of lotus plant.

**ପୁଟଗ୍ରୀବ**—ସ. ବି—( ବହୁବ୍ରୀହି, ପୁଟ+ଗ୍ରୀବା, ଯାହାର ଗ୍ରୀବାଦେଶ
Puṭagrība ଯୋଡ଼ା ହୋଇଅଛି—୧ । ଗରି (ହ୍ର ଷ)—
1. Metal jar, pitcher (Apte).

୨ । ତମ୍ବା ଗରି—2 A copper jar (Apte).

୩ । ଗଡ଼ୁ—3 A spouted water-jug.

**ପୁଟ ପତ୍ର**—ଦେ. ବି—ଏକପ୍ରକାର ବନ୍ୟ ଗଛ—
Puṭa patra (ପୁଟିପତ୍ରୀ—ଅନ୍ୟରୂପ) A kind of tree.
(ଗଞ୍ଜାମ—ଘୋଡ଼ାପଡ଼ୀ) [ଦ୍ର—ଏହାର ପତ୍ରର କ୍ୱାଥ ସେବନ କରିଗଲେ ସ୍ତ୍ରୀମାନଙ୍କର ପ୍ରସବ ନନ୍ତର ଜନ୍ମିବା ବିକାର, ଅର୍ଥାତ୍ ଜ୍ୱର, ଦାହ ଓ ଭ୍ରମ ପ୍ରଭୃତି ନବାରିତ ହୁଏ—ଦ୍ରବ୍ୟଗୁଣ କଳ୍ପଦ୍ରୁମ ।]

**ପୁଟପାକ**—ସ. ବି—୧ । ଦୁଇଟି ହାଣ୍ଡିର ମୁହଁକୁ ପରସ୍ପର ଯୋଗ କରି
Puṭa pāka ଅଗ୍ନି ସାହାଯ୍ୟରେ ତହିଁରେ କରାଯିବା ଔଷଧର ପାକ କ୍ରିୟା—1. The process of sublimation done by heating a thing in a closed vessel made of 2 vessels, one turned over the other.

୨ । ମାଟି ବା ଗୋବର ମିଶ୍ରିତ ମଧ୍ୟରେ ଔଷଧ ପୂରାଇ ତାହା ନିଆଁରେ ପୋଡ଼ିବା ପ୍ରକ୍ରିୟା—2. The process of roasting a drug inside a ball of clay or cow-dung.

[ ଦ୍ର—ଯେଉଁ ଦ୍ରବ୍ୟର ପୁଟପାକ କରିବାକୁ ହେବ, ତାହା ଜଳରେ ଧୌତ କରି ଅଳ୍ପ ପେଷଣ କରିବ । ପରେ ଏହା ଉପରେ ଜାମୁ, ଗମ୍ଭାରି ଓ ବଟ ପତ୍ର ବେଷ୍ଟନ କରି ତହିଁ ଉପରେ ୧।୨ ଅଙ୍ଗୁଳ ପ୍ରମାଣ ମାଟି ଲେପ ଦେବ । ଏହି ମାଟି ମିଶ୍ରିର ଉପରଭାଗ ରକ୍ତ ବର୍ଣ୍ଣ ହେବା ପର୍ଯ୍ୟନ୍ତ ଏହାକୁ ଘସି ନିଆଁରେ ପୋଡ଼ିବ । ଅନନ୍ତର ଅଗ୍ନିରୁ ବାହାର କରି ଭିତରେ ଥିବା ଔଷଧର ରସ ନିଗାଡ଼ିବ । ଏହାର ନାମ ପୁଟପାକ । ଦ୍ରବ୍ୟଗୁଣ କଳ୍ପଦ୍ରୁମ ।]

୩ । ( ବୈଦ୍ୟକ ) ମୁହଁ ବନ୍ଦ ହୋଇଥିବା ପାତ୍ରରେ କୌଣସି ଦ୍ରବ୍ୟକୁ ପୂରାଇ ଅଗ୍ନିମୟ ଗର୍ତ୍ତ ମଧ୍ୟରେ ତାହାକୁ ପାକ କରିବା ପ୍ରଣାଳୀ—3 A mode of roasting a thing in a pit of fire after putting it inside a closed casket.

[ ଦ୍ର—ଏହି କ୍ରିୟାରେ ଧାତୁ ଅବରି ଭସ୍ମ ଆୟୁର୍ବେଦ ମତରେ ତିଆରି କରାଯାଏ । ]

୪ । ପୁଟ ପାକ ଦ୍ୱାରା ସିଦ୍ଧ ଔଷଧ ( ହ୍ର. ଶ. )—
4. Any medicine got after sublimation.

୫ । ଜୀର୍ଣ୍ଣକରଣ—5. Digesting (Apte).

**ପୁଟ ଭେଦ**—ସ. ବି. ( ୬ଷ୍ଠୀ ତତ୍, ପୁଟ=ପରସ୍ପର ସଂଯୋଜନ+
Puṭa bheda ଭେଦ=ଭେଦନ )—
୧ । ନଦୀର ବକ୍ରଗତି—1. The zigzag course of a river.

୨ । ନଗର—2. City

୩ । ବୀଣା—3 Harp

**ପୁଟ ଭେଦନ**—ସ. ବି—୧ । ନଗର, ସହର—
Puṭa bhedana 1. Town, city.

କେଉଁ ... ପୁଟଭେଦନେ ... ହୋଇ ... । ଋକ୍ମଣୀ ସ୍ୱୟମ୍ବର, ସଙ୍ଗୀତ ।

୩ । ଆତୋଦ୍ୟ, ଏକ ପ୍ରକାର ବାଜା—1. A kind of musical instrument (Apte)

୩ । ( ଆଖି ପତା ) ମେଲା କରିବା—
3 The parting of the eyelids, opening (Apte)

୪ । ଜଳାବର୍ତ୍ତ—4 Whirlpool; eddy (Apte)

**ପୁଟା**—ଦେ. ବି. ( ସ. ପୁଟ ଧାତୁ, ସ. ପୁଟ=ଥଳ, ପେଟ
Puṭā ଭିତରର ଥଳ )—
ନାଡ଼ୀଭୁଡ଼ି ୧ । ଅନ୍ତ୍ରନ୍ତୁଳା; ଗର୍ଭସ୍ଥ ଅନ୍ତ୍ରାଦ—
ପୋଟୀ 1 Bowels; intestine, entrails; viscera.

ବାହାର ହାଣ ଗୋଡ଼ ସାଙ୍ଗରେ ପୁଟା ।
... ଫଇତି ... ।

୨ । ଫୁସ୍ ଫୁସ୍ ଯନ୍ତ୍ର—2. Lungs.

ପ୍ରାଦେ. (କଟକ) ବି ( ସ. ପୁଟ )—ବାଉଁଶିଆ—
A small basket.

**ପୁଟାଡ଼ି(ଳି)ବା**—ପ୍ରାଦେ. (ଯାଜପୁର) କ୍ରି ( ସ. ପୁଟ ଧାତୁ )—
Puṭārdi li,bā ଆଲିଙ୍ଗନ କରିବା; କୁଣ୍ଢାଇ ଧରିବା—
To embrace, to clasp.

**ପୁଟାରି**—ପ୍ରାଦେ. (ସମ୍ବଲପୁର) ବି—ପରିଛା, ଦେଉଳର ତତ୍ତ୍ୱ ନେବା
Puṭāri କର୍ମଚାରୀ—The supervising officer of a temple.

**ପୁଟାଳୁ** ସ. ବି (ପୁଟ+ଆଳୁ)—କୋଳ କନ୍ଦ (ହ୍ର. ଶ.); ବାରାହୀକନ୍ଦ
Puṭālu (ଦେଖ)—Bārāhikanda (See)

**ପୁଟାସ୍** ବୈଦେ. ବି (ଇଂ)—ପୋଟାସ୍ (ଦେଖ)
Puṭās Potās (See)

**ପୁଟି**—ଦେ. ବି. (ସ ପୁଟ—ଥଳ)—୧ । ଅନ୍ତ୍ର ନୁଳା—
Puṭi 1 Entrails, viscera.

ନାଡ଼ୀଭୁଡ଼ୀ ୨ । ଫୁସ୍ ଫୁସ୍ ଯନ୍ତ୍ର—2. Lungs

ପୋଟୀ ୩ । ପଇଟି; ତୋଳିଏ ଗଉଣି (ଶସ୍ୟ)
(ପୁଟି—ଅନ୍ୟରୂପ) 3. A measure of corn equal to 20 Gaunis.

୪ । ସ୍ଥୂଳକାୟ ବ୍ୟକ୍ତିର ଶରୀରରୁ ଝୁଲୁଥିବା ମାଂସ ପିଣ୍ଡ ଚମ—
4, Folds of skin hanging or bulging out from the body of a fat man,

ପୁଟିଆ ୫ । (ସ. ପୃଷ୍ଠ) ଶଗଡ଼ ଚକର ପରିଧିରେ ଯୋଡ଼ା ହୋଇ-
ପୁଟି ଥିବା ବୃତ୍ତଖଣ୍ଡାକାର କାଷ୍ଠଖଣ୍ଡମାନ; ଶକଟ ଚକର କଧ୍ୟା—5. The arcs forming the rim of a cart-wheel.

ପୁଁଠି ୬ । (ସଂ.ପ୍ରୋଷ୍ଠୀ)କେର୍ଣ୍ଣୀମାଛ—
**पुठीया, सौरी** 6. A carp (fish)
ପ୍ରାଦେ (ସମ୍ବଲପୁର). ବି.—ପଇ, ପହି, ଶଗଡ଼ ଚକର ପରିଧିର କାଠ—The wooden rim of cart-wheel.
ପ୍ରାଦେ (ଗଞ୍ଜାମ). ବି.— କଣ୍ଟକା ୮ ସେରଅ ନଉଛରେ ୫ କୌଡ଼ି ମାପର ପରିମାଣ—A measure of 5 pots of the capacity 8 standard seers.

ପୁଟିଆ—ଦେ. ବି.—୧ । ପିଚ୍ଛ ବା ଜଙ୍ଘର ମାଂସଳ ସ୍ଥାନକୁ ଆଙ୍ଗୁଠିଦ୍ୱାରା
Putiā ଚିମୁଟିବା—1. Pinching the fleshy part of
**पूटी** the thigh or buttocks with the fingers.
୨ । ମାଂସଳ ଚର୍ମବଳି—
2. Fleshy or flabby folds of skin.
ପ୍ରାଦେ. (ସମ୍ବଲପୁର). ବି—୧ । ନଳଗୋଡ଼ର ପଛ ପାଖର ମାଂସଳ ଅଂଶ, ଗୋଡ଼ ପେଣ୍ଡୁ—1. The back fleshy part of the leg; calf of the leg.
୨ । ଅନ୍ତ୍ରପୁଟା, ଅନ୍ତ ବୁଜୁଳା—2. Entrails.
ପ୍ରାଦେ (ଗଡ଼ଜାତ) ବି—ଶଗଡ଼ ଚକର ପହି—
The wooden rim of a cart-wheel.

ପୁଟିକା—ସଂ. ବି (ପୁଟ+କ+ସ୍ତ୍ରୀ ଆ)—୧ । ପୁଡ଼ିଆ—
Puṭikā 1. Packet.
୨ । ଅଳେଇଚ—2 Cardamom.
ଦେ. ବି—୧ । ଜଙ୍ଘ—1 Thigh.
(ଶ୍ରୀକୃଷ୍ଣଙ୍କର) ଛାବା ପୁଟିକାଟୋପ ସେନ ଗଙ୍ଗ ଅଛନ୍ତି ଅଙ୍ଗ ଛଳ ।
ଶ୍ରାଚୀ ପୂର୍ଣ୍ଣଚମ୍ପକୋଦ୍ୟ ।
୨ । ନଳ ଗୋଡ଼ର ପଛର ମାଂସଳ ଅଂଶ—
2. Calf of the leg.

ପୁଟିଙ୍ଗ୍(ଣ୍, ନ୍)—ବୈଦେ. ବି ( ଇଂ. ପୁଟ୍ଟି )—ଚକ୍ ଖଡ଼ିର ଚୂନା
Puṭing(ṇ, n) ସଙ୍ଗରେ ଝୁଣା ଓ ଗର୍ଜନ ତେଲ ମିଶାଇ ତିଆର
ପୁଟିଙ୍ଗି, ପୁଟିଣି, ପୁଟିନ, ପୁଟିଣି, ପୁଟିଂ } ଅନ୍ୟରୂପ କରାଯିବା କାଦୁଅ ଅଠା—
Thick paste made of powdered chalk compounded with linseed oil; putty.
**पुटिंग पुटिन**
[ ଦ୍ର—ଏହାଦ୍ୱାରା କାଚଫଳକକୁ ଆଲମାରିର କାଠଫର୍ମରେ ଲଗାଯାଏ ଓ ଏହା କାଠ କାମର ଫାଟରେ ଭର୍ତ୍ତି କରାଯାଏ । ]

ପୁଟିତ—ସଂ. ବିଣ (ପୁଟ+ସଙ୍କୋଚାର୍ଥେ.ଇତ; ବଦ୍ଧ ପୁଟ୍ ଧାତୁ+କର୍ମ.ତ)-
Puṭita ୧ । ଗ୍ରଥିତ—1. Sewn; stitched.
୨ । ବିଦାର୍ଣ୍ଣ—2. Rented; pierced.
୩ । ମର୍ଦ୍ଦିତ—3. Rubbed; ground.
୪ । ସଙ୍କୁଚିତ—4 Contracted.
୫ । ଆଚ୍ଛାଦିତ; ଆବୃତ—
5. Covered over; enveloped.
୬ । ଆଦ୍ୟ ଓ ଅନ୍ତରେ ମନ୍ତ୍ର ବା ଶ୍ଳୋକବିଶେଷ ଦ୍ୱାରା ଯୁକ୍ତ ହୋଇ ବୋଲାଯିବା (ଶ୍ଳୋକ ବା ମନ୍ତ୍ର —6. (sloka or mystic formula) Preceded by and followed by a specific formula or sloka at the utterance of every couplet or formula.
[ ଦ୍ର—ମନ୍ତ୍ରସିଦ୍ଧି ନିମନ୍ତେ କୌଣସି ଗ୍ରନ୍ଥ ( ଯଥା—ଚଣ୍ଡୀ-ପୁରାଣ ) ର ପ୍ରତ୍ୟେକ ଶ୍ଳୋକ ଆଦ୍ୟରେ ଓ ଶେଷରେ ସେହି ନିର୍ଦ୍ଦିଷ୍ଟ ମନ୍ତ୍ର ପ୍ରଣବ (ଓଁ) ସହିତ ଆବୃତ୍ତି କରାଯାଏ, ଏପରି ପୁଟିତ କରି ଚଣ୍ଡୀ ପାଠ କଲେ ଦୁର୍ଗା ବରପ୍ରଦା ହୁଅନ୍ତି । ]
୭ । ଅଗ୍ନି ଦ୍ୱାରା ପୁଟପାକକ୍ରିୟାରେ ସିଦ୍ଧ—
7. Roasted inside a closed cup.
୮ । ଅବରୁଦ୍ଧ—8. Closed up; sealed.
ସଂ. ବି —କରପୁଟ, ଅଞ୍ଜଳି—The hollow of the hand; folded palms enclosing a cup-like space.

ପୁଟୀ—ସଂ ବି ( ପୁଟ+ସ୍ତ୍ରୀ ଈ )—୧ । କୌପୀନ—
Puṭi 1. A strip of cloth covering the privities.
୨ । ଘୋଡ଼ଣୀ—2. Covering.
୩ । ଢାଙ୍କୁଣୀ—3. Lid, cover.
୪ । ଓଢଣା—4. A veil
୫ । ଚଉପତ୍ରା – 5. A cup made of leaves.
୬ । ସୀମାବଦ୍ଧ ଖାଲି ସ୍ଥାନ—
6. A hollow space enclosed on all sides.

ପୁଟୁ—ପ୍ରାଦେ (ସମ୍ବଲପୁର) ବି—ବର୍ଷାଦିନରେ ଫୁଟିବା ଏକପ୍ରକାର ଛତୁ—
Puṭu A kind of mushroom bursting out during the rains.

ପୁଟୁକା – ପ୍ରାଦେ ( ସମ୍ବଲପୁର ଓ ଗଡ଼ଜାତ ) ବିଣ—ବେଣ୍ଟି
Puṭukā ଲମ୍ବା ନୁହେଁ କିନ୍ତୁ ମୋଟା—Small and stout.

ପୁଟୁଳା ଦେ. ବି (ସଂ. ପୋଟଳିକା)—ପୋଟଳା; ପୁଡ଼ା—
Puṭuḷā Packet.
पुटलि **पुड़िया; पोटली**
(ପୁଟୁଳା--ଅନ୍ୟରୂପ)

ପୁଟୁଳି—ଦେ. ବି. ( ସଂ. ପୋଟଳିକା )—ଛୋଟ ପୁଡ଼ା—
Puṭuḷi Small packet.
**पुटली पोटली**
ସେହି ମୁହୂର୍ତ୍ତରେ ମା ସାନ୍ତାଣୀ ବସାଣୀ ପୋଇଲା ସାଥୀ ଅଛି ଚୋଟ୍ଟବ
ପୁଟୁଳି ଥିବ ସବୁ କାହାର ଗଲେ – ଫକୀ ଲମୋହନ, ଗଳ୍ପସ୍ୱଳ୍ପ ।
( ପୁଟୁଳି—ଅନ୍ୟରୂପ )

ପୁଟୁଳି ବଣିଆ--ଦେ ବି—ପୋଟଳି ବଣିଆ; ଗନ୍ଧବଣିକ (ଜାତି)—
Puṭuḷi baṇiā A caste of Baisya dealing with drugs; the druggist caste.
**पंसारी**

ପୁଟୋଟଜ - ସଂ. ବି. ( ପୁଟ =ଆବରଣ+ଉଟଜ=ଗୃହ )—
Puṭoṭaja ୧ । କନାଛତା—1. Cloth umbrella.
୨ । ଶ୍ୱେତ ଛତ୍ର—2. White parasol.

ପୁଟୋଦକ—ସଂ. ବି. (ବହୁବ୍ରୀହି; ପୁଟ ମଧ୍ୟରେ ଥାଏ ଉଦକ ଯାହାର)—
Puṭodaka (ପୁଟୋଦକ—ଅନ୍ୟରୂପ) ନଡ଼ିଆ—Cocoanut.

ପୁଠି—ପ୍ରାଦେ. ( ସମ୍ବଲପୁର ) ବି—୧ । (ସଂ. ପୃଷ୍ଠ) ଶଗଡ଼ର ପୁଟ (ଭୁଲ
Puṭhi ହି. ପୁଟ୍ଠୀ )—1. The arcs of the rim of wheel.
୨ । ( ସଂ. ପ୍ରୋଷ୍ଠୀ ) କେର୍ଣ୍ଣୀମାଛ ( ଭୁଲ. ହି. ପୁଠିୟା )—
2. The carp fish.

**ପୁଡ଼୍‌ପୁଡ଼୍**—ଦେ. ଅ. ( ଧ୍ୱନ୍ୟନୁକରଣ )—ବାରଂବାର ଅଧୋବାୟୁ
Purd-purd  କରିବାର ଅନୁଚ୍ଚ ପଡ଼ପଡ଼ ଶବ୍ଦ—Low repeated
ପଡ଼ପଡ  **पड़पड़**  cracking sounds of passing wind.
ପୁଡ଼, ପୁଡ଼୍ } ଅନ୍ୟରୂପ  [ ଦ୍ର—ପୁଡ଼ୁପୁଡ଼ ଶବ୍ଦ ପଡ଼ପଡ଼ଠାରୁ
ପୁଡ଼ୁପୁଡ଼ୁ }  ଅନୁଚ୍ଚ । ]

**ପୁଡ଼ା**—ଦେ. ବି. ( ସ. ପୁଟ )—୧ । ନାକର ଦୁଇ ପାଖର ଛିଦ୍ର,
Purdā  ନାସାପୁଟ—1 The nostrils.
ପୁଡ଼ିଯା  **पुड़ा**  ୨ । ପୋଟଳା—2 Packet.
ନାନା ବ୍ୟଞ୍ଜନ ଗୁଡ ଦଧି
ପଡା ପୋଟୁଏ ଦେଲେ ବାନ୍ଧ—ଜଗନ୍ନାଥ. ଭାଗବତ ।
୩ । ( ସ ପୃଷ୍ଠା )—ପୁସ୍ତକର ପୃଷ୍ଠା—
3. Page of a book
୪ । କାଣ୍ଡୀଲ କବାଟର ବା ପଞ୍ଜରର ଏକ ପଟ ବା ଫାଳ—
4 Door-leaf.
କେଉଁ ମାନେ ଘର କୋଣ ପୁଡା ପେଲ—ଜଗନ୍ନାଥ. ବୋଇତ. ଆଦି ।
୫ । ଫରକଟା ହୋଇ ଠିଆ ହେବା ମନୁଷ୍ୟର ଦୁଇ ଗୋଡ଼ର ମଧ୍ୟବର୍ତ୍ତୀ ତ୍ରିକୋଣ ଆକୃତି ସ୍ଥାନ —5. The arch made by the legs extended by a person while standing astrides.
୬ । ଧାନ ଆଦିର ଛୋଟ ଓଳଆ— 6. A small round packet of grains enclosed inside straw.
୭ । ଠାକୁରଙ୍କୁ ଦିଆଯିବା ଖାଦ୍ୟ ସାମଗ୍ରୀର ସଜ୍ଜା—
7. A present of victuals made to a Deity.
୮ । ଦୁଇପାଖ ବା ମୁଣ୍ଡ ଥିବା ବସ୍ତୁର ଏକପାଖ ବା ମୁଣ୍ଡ—
8. One end or face of a double-faced thing.
ମୃଦଙ୍ଗ ପୁଡା ବେନି ପଟରେ ପିଟିଲେ—କୃଷ୍ଣସିଂହ. ମହାଭାରତ. ବନ ।
ପ୍ରାଦେ. ( ସିଂହଭୂମ ଓ ମେଦିନୀପୁର ) ବି—୧ । ଓଳଆ—
1. A packet of grains enclosed inside crushed straw.
୨ । (ବାଲେଶ୍ୱର) ପୋଡ଼ା । ( ଦେଖ )—2 Pordā ( See )

**ପୁଡ଼ା(ଡ଼େ)ଇବା**—ପ୍ରାଦେ. (ସମ୍ବଲପୁର ଓ ବାଲେଶ୍ୱର) କ୍ରି—
Purdā(rde)ibā  ପୋଡ଼ାଇବା (ଦେଖ)—Pordāibā (See)
[ ଦ୍ର—ସମ୍ବଲପୁର ଓ ବାଲେଶ୍ୱରରେ 'ପୋ' ସ୍ଥାନରେ 'ପୁ' ଉଚ୍ଚାରଣ ହୁଏ । ]

**ପୁଡ଼ା ଟିଙ୍କ**—ଦେ. ବି—ଏକପ୍ରକାର ଟିଙ୍କ—
Purdā ṭinka  A kind of tick.

**ପୁଡ଼ା ମାଂସ** - ପ୍ରାଦେ. ( ଗଡ଼ଜାତ ) ବି—ପତ୍ର ପୁଡ଼ା ମଧ୍ୟରେ ବନ୍ଧା ହୋଇ
Purdā māmsa  ଦହକ ନିଆଁରେ ପୋଡ଼ା ଯାଇଥିବା ମାଂସ—
(ପୁଡ଼ା ମାଉଁସ—ଅନ୍ୟରୂପ)  Meat cooked in burning charcoal fire while enclosed inside a think packet of leaves.

**ପୁଡ଼ି**—ଦେ. ବି. (ସ. ପୁଟୀ; ପୁଡ଼ାର ଅଳ୍ପାର୍ଥକ ଓ କ୍ଷୁଦ୍ରାର୍ଥକ ଆକାର)—
Purdi  ୧ । ଛୋଟ ପୁଡ଼ା—1. A small packet.
ମୋଡ଼କ  ୨ । ନାସା ପୁଟ—2. The nostrils.
**पुड़िया**  କ କର ଫୁଲଇ ସେ ନାସିକା ପୁଡ଼ି—ଲକ୍ଷ. ସୁବର୍ଣ୍ଣରେଖା ।
୩ । ଦୂବ, ଘାସ ପ୍ରଭୃତିର ସାନ ବିଡ଼ା—
3. A small bunch of grass.
ପ୍ରାଦେ. (ସମ୍ବଲପୁର) ବି—ଚକୁଳି ପିଠା—
Fried thin wheat-meal cake.
ପ୍ରାଦେ. ( ଗଡ଼ଜାତ ) ବି—୧ । ଶସ୍ୟାଦିର ପରିମାଣବିଶେଷ; ପଉଟି; ୨୦ ଗୌଣୀ—1 A measure of corn
୨ । କଚିଭର ବା ଦାଆର ଦାନ୍ତ—
2. The teeth of a sickle or saw (Howells).

**ପୁଡ଼ିଆ**—ଦେ. ବି.—(ସ. ପୁଟିକା, ପ୍ରା ପୁଡ଼ିଆ)—୧ । ପୁଡ଼ି (ଦେଖ)—
Purdiā  1. Purdi (See)
ପୁରିଯା; ପୁଡ଼ିୟା  ୨ । ଏକ ମାତ୍ରା ଔଷଧ ଚୂର୍ଣ୍ଣାଦି ପୂର୍ଣ୍ଣ କାଗଜର ସାନ
**पुड़िया**  ପୁଡ଼ା—2. A small packet of paper enclosing one dose of a medicinal powder.

**ପୁଡ଼ିଙ୍ଗ୍**—ବୈଦେ ବି. ( ଇଂ. ପୁଡ୍ଡିଙ୍ଗ୍ )—ମଇଦା, ଦୁଧ, ଚିନି ଓ
Puding  ଡିମ୍ବରେ ପ୍ରସ୍ତୁତ ପିଠା—
ପୁଡିং  **पुडिंग**  Pudding.
(ପୁଡିଂ, ପୁଡଙ୍ଗି, ପୁଡନ୍—ଅନ୍ୟରୂପ)

**ପୁଡ଼ିବା**—ପ୍ରାଦେ. (ବାଲେଶ୍ୱର, ସମ୍ବଲପୁର ଓ ସିଂହଭୂମ) କ୍ରି.—
Purdibā  ପୋଡିବା (ଦେଖ—Pordibā (See)

**ପୁଡ଼ୁଅ**- ପ୍ରାଦେ. (ଗଡ଼ଜାତ) ବି —ପୋଡ଼ୁଅ; ଅଣ୍ଡିରା ମଇଁଷି—
Purdua  (ପୁଡ଼ୁହ —ଅନ୍ୟରୂପ)  He-buffalo.

**ପୁଡ଼ୁକା**—ପ୍ରାଦେ. (ଗଞ୍ଜାମ ଓ ଜୟପୁର) ବି.—ଛତୁ, ଚୁନା ମାଛ, କଖାରୁ
Purdukā  ଡଙ୍କ ଆଦି ତେଲ ମସଲା ଲୁଣ ଗୋଳା ଯାଇ ଦହକ ନିଆଁରେ ପୋଡ଼ା ଯିବା ପତର ପୁଡ଼ା; ପତର ପୋଡ଼ା—
A small quantity of small fishes, tender leaves of some creepers, and mushroom dressed in red hot charcoal while enclosed in a packet of leaves.

**ପୁଡ଼ୁଗ**—ପ୍ରାଦେ. (ଗଞ୍ଜାମ, ସମ୍ବଲପୁର)—ବି.—(ସ. ପୁଟକ)—
Purduga  ୧ । ଶସ୍ୟାଦିର ଓଳଆ—1. A round packet
(ପୁଡ଼ୁଗ—ଅନ୍ୟରୂପ)  made of crushed straw for storing grains.
୨ । ଧାନର ବଡ଼ ଓଳଆ—
2 Big round packet of straw containing paddy.
ମାଛ ବନା ଅଳଙ୍କାରେ ମେଢ଼ ପେଟାଟା,
ବେଢ଼ିଛ ହୋଇ ୬ଦ ପୁଡୁଗ ପରାୟ । କୃଷ୍ଣସିଂହ, ମହାଭାରତ, ଉଦ୍ୟୋଗ ।
ପ୍ରାଦେ. ( ଗଡ଼ଜାତ ) ବି—
ଶସ୍ୟାଦିର ପରିମାଣ ବିଶେଷ; ପୌଟି, ୨୦ ଖଣ୍ଡି—
A measure of corn.
[ ଦ୍ର—ମାଣ = ୪୨ ତୋଳା ଓଜନର ପରିମାଣ ପାତ୍ର; ଖଣ୍ଡି = ୨୦ ମାଣ; ପୁଡ଼ୁଗ = ୨୦ ଖଣ୍ଡି । ]
ପ୍ରାଦେ. ( ସମ୍ବଲପୁର ଓ ଗଡ଼ଜାତ ) ବି—
୧ । ୧୬୦ ତାମ୍ବି ପରିମାଣ —1. A measure of corn equal to 160 Tāmbis.

**ପୁଡ଼୍‌ଗା** — ପ୍ରାଦେ. ( ସମ୍ବଲପୁର ) ବି—
Purdugā ପୋଡ଼ା ହୋଇଥିବା ବାଇଗଣ ଆଦି ଫଳ—
1. Burnt fruit ( used as curry ); fruit dressed in burning fire.
୨ । ପୋଡ଼ା ବାଇଗଣ ଆଦିର ଭରତା—
2. A food-paste made of burnt fruit ( brinjals etc ).

**ପୁଡ଼୍‌ଙ୍ଗା**—ପ୍ରାଦେ. ( ଗଞ୍ଜାମ ) ବି—ପତ୍ର ପୋଡ଼ା—
Purdungā Tender shoots, small fishes, mushroom cooked in burning charcoal, while enclosed in a packet of leaves.

**ପୁଡ଼୍‌ରା**—ପ୍ରାଦେ. ( ସମ୍ବଲପୁର) ବି—ମଇଁଷି ଛୁଆ—
Purdurā Young buffalo

**ପୁଡ଼େଇବା**—ପ୍ରାଦେ. (ସମ୍ବଲପୁର ଓ ବାଲେଶ୍ୱର) କ୍ରି(ଭୁଲ.ବ. ପୁଡ଼ାନ)—
Purdeibā ପୋଡ଼ି ଦେବା—To burn; to set fire to.
(ପୁଡ଼େଇଦେବା—ଅନ୍ୟରୂପ)

**ପୁଡ୍ଡା**—ପ୍ରାଦେ. (ଗଞ୍ଜାମ) ବି—ପୋଡ଼ ପିଠା ( ଦେଖ )
Puddā Pordā pithā ( See )

**ପୁଢ଼**—ପ୍ରାଦେ. (ସମ୍ବଲପୁର) ବି—ଯୋଡ଼ିହ, ଅଣ୍ଡିରା ମଇଁଷି—
Purdha Male buffalo.

**ପୁଢ଼ା**—ପ୍ରାଦେ. ( ସମ୍ବଲପୁର ) ବି—
Purdhā ୧ । ପୋଡ଼ା—1. Burning.
୨ । ପୁଢ଼ (ଦେଖ)—2. Purdha ( See )

**ପୁଢ଼ା ଘା** ପ୍ରାଦେ. ( ସମ୍ବଲପୁର ) ବି—ପୋଡ଼ା ଘା—
Purdhā ghā A burn.
ପୁଢ଼ା ଘାଏ ଝାଉଲ ଦେବା = ପୋଡା ଘାଅରେ ବାଇଷେକ ଦେବା ।
ସମ୍ବଲପୁର. ପ୍ରବଚନ ।

**ପୁଣ (ଧାତୁ)**—ସଂ—ସତ୍କର୍ମ କରିବା—
Puna (root) To do good acts.

**ପୁଣ**—ଦେ ଅ. ( ସଂ. ପୁନଃ )—
Puna ୧ । ପୁନର୍ବାର—1. Again.
ପୁନି ୨ । ଏବଂ—2. And.
**फिर, पुनि, फीर** ୩ । ଅଧିକନ୍ତୁ; ଆହୁରି—3 Also; moreover
୪ । ମଧ୍ୟ—4. Too; also
୫ । ପରେ—5. After.
୬ । ତତ୍ପରେ—6. Then; thereafter.
୭ । କିନ୍ତୁ—7. But.
୮ । ପରନ୍ତୁ; ପକ୍ଷାନ୍ତରେ—8. On the other hand.
୯ । ସୁଦ୍ଧା—9. Even

**ପୁଣ ପୁଣ**—ଦେ. ଅ. ( ସଂ. ପୁନଃ ପୁନଃ )—
Puna puna ୧ । ପୁନଃ ପୁନଃ—1. Repeatedly.
বারবার ଛିଚ ଧୁଲେ ଉଡ଼େ, ଉଠଇ ଦୁରନ୍ତ ଶ
**पुनिपुनि, बारबार** ବନ୍ଧୁଣ ନନ୍ଦସ୍ଥାଇ କ ଲ ପୁଣ ପୁଣ ।
କୃଷ୍ଣସିଂହ, ମହାଭାରତ, ବନ ।
୨ । ଉପର୍ଯ୍ୟୁପରି — 2. Over and over.
୩ । ଥରକୁ ଥର— 3 Again and again; several times.

**ପୁଣ ପୁଣି**—ଦେ. ଅ. (ସଂ. ପୁନଃପୁନଃ)—ପୁଣପୁଣ (ଦେଖ )
Puna puni Punapuna ( See )
ପାଞ୍ଚ ଜନ୍ୟ ଶଙ୍ଖ ଧରିଣ ଉଲ୍ଲାସେ
ବଜାଇଲେ ମୁଖରେ ଭରି ପୁଣି ପୁଣି । କୃଷ୍ଣସିଂହ, ମହାଭାରତ, ଗ୍ରହ୍ମ ।

**ପୁଣ ପୁଣେ**—ଦେ କ୍ରି. (ସଂ ପୁନଃପୁନଃ)—ପୁଣପୁଣ ( ଦେଖ )
Puna pune Punapuna ( See )
କେମନ୍ତେ ପ୍ରଭୁଙ୍କର ଗୁଣେ
ନୃକ୍ଷି ସଞ୍ଚାରେ ପୁଣ ପୁଣେ — ଜଗନ୍ନାଥ ଭାଗବତ ।

**ପୁଣି**—ଦେ ଅ—(ସ. ପୁନଃ)—ପୁଣ (ଦେଖ)
Puni Puna (See)
ତୋଟ ସ୍ୱଚରାଜ ଶିରେ ମନି ତୋ ପଦ କନ୍ତ ଚୁମ୍ବିଲ ପୁଣି
ଭୁଜେ ଧରି ଭୁ ସେ ହୃଦେଶାକ୍ଷ'ନ ଭରିଲୁ ଉଚ୍ଚରେ — କବିସୂର୍ଯ୍ୟ — ସଙ୍ଗୀତ ।

**ପୁଣି ପୁଣି**—ଦେ. ଅ—(ସଂ. ପୁନଃ ପୁନଃ)—ପୁଣ ପୁଣ (ଦେଖ)
Puni puni Puna puna (See)
ସନତୋଷେ ପାଟି ପାଣିରେ ବୁଲେ କ ଗୁଣି ଗୁଣି ହେଲେ ଶ୍ରବଣକୁ ପୁଣି ପୁଣି ।
ଭକ୍ତ—ପ୍ରେମସୁଧାନିଧି ।

**ପୁଣିହି ପୁଣି**—ଦେ. ଅ—ପୁଣ ପୁଣ (ଦେଖ)
Punihiṅ puni Puna puna (See)
ବୃକ୍ଷେ କ ଛୁଲେ ବନେ । ପୁଣିହିଁ ପୁଣି ଅଲଙ୍ଗନ । ଜଗନ୍ନାଥ, ଭାଗବତ ।

**ପୁଣ୍ଡ (ଧାତୁ)**—ସଂ—୧ । ପୀଡ଼ନ କରିବା—
Punda (root) 1. To press.
୨ । ଶୋଭନ କରିବା, ଭୂଷିତ କରିବା—2. To adorn.

**ପୁଣ୍ଡ୍ର**—ସଂ. ବି—(ପୁଣ୍ଡ ଧାତୁ + କର୍ତ୍ତୃ. ଅ, ଯାହା କପାଳକୁ ଶୋଭିତ
Punda କରେ)—କପାଳରେ ଓ ଭ୍ରୁଲତା ମଧ୍ୟରେ କଟାଯିବା ତିଳକ ବା ଚନ୍ଦନର ଚିତା—Mark of sandal paste painted on the forehead and between the eyebrows.

**ପୁଣ୍ଡରିଆ କାଠ**—ପ୍ରାଦେ (ଗଞ୍ଜାମ) ବି—ପଦ୍ମ କାଷ୍ଠ (ଦେଖ)
Pundariyā kāthа Padma kāshtha (See)

**ପୁଣ୍ଡରୀ**—ସଂ. ବି—(ପୁଣ୍ଡରିନ୍ ଶବ୍ଦ, ୧ମା. ୧ବ)—ସୁବାସିତପତ୍ର ଗୁଳ୍ମ
Pundari ବିଶେଷ—A plant with scented leaves.
ସଂ. ନାମ —ପୁଣ୍ଡରୀ, ପ୍ରପୌଣ୍ଡରୀକ, ଶୀତ, ପୁଣ୍ଡର୍ଯ୍ୟ, ପୁଣ୍ଡରୀୟକ, ଗୃଧ୍ରସ୍ୟ, ଚଳପୁଷ୍ପକ, ସାଲ ପୁଷ୍ପ, ସ୍ଥଳପଦ୍ମ,] [ଦ୍ର - ଏହାର ପତ୍ର ଶାଲପର୍ଣ୍ଣୀର ପତ୍ର ପରି ଆକାରବିଶିଷ୍ଟ; ଏ ପତ୍ରମାନ ଈଷତ୍ ସୁଗନ୍ଧ । ପତ୍ରର ରସ ଚକ୍ଷୁରୋଗରେ ହିତକର, ବୈଦ୍ୟକମତରେ ପୁଣ୍ଡରୀ ମିଠା, କଷା, ବୀର୍ଯ୍ୟବର୍ଦ୍ଧକ, ଶୀତଳ ଓ ନେତ୍ରହିତକର—ହି. ଶ. ।]
ସାକୁଳ, ଅନ୍ତକ ।
**पुंडरिया**

**ପୁଣ୍ଡରୀକ**—ସଂ. ବି—(ପୁଣ୍ଡ ଧାତୁ ପୀଡ଼ନ କରିବା, ଶୋଭନ କରିବା +
Pundarika କର୍ତ୍ତୃ. ଅରୀକ)—୧ । ଶ୍ୱେତ ପଦ୍ମ—1. White lotus; Nelumbium Speciosum.
୨ । ଅଗ୍ନିକୋଣର ଦିଗ୍‌ଗଜ—
2. The elephant guarding the S. E. quarter.
୩ । ନାଗ ବିଶେଷ—
3. Name of a mythological serpent.

୪ । ବ୍ୟାଘ୍ର, ଚିତାବାଘ—4 Leopard.
୫ । ଏକପ୍ରକାର ଆଖୁ, ଧଳା ଆଖୁ—
5. A kind of white sugarcane.
୬ । ଗୋଟି ପୋକ, ପାଟ ପୋକ—
6. A silk coccoon.
୭ । ଗଜ ଜ୍ୱର, ହାତୀର ଜ୍ୱର ରୋଗ—
7. Fever affecting an elephant.
୮ । ସହକାର, ଆମ୍ବ—8 Mango.
୯ । ଶିକ୍ଷକ—9. Teacher
୧୦ । ବଡ଼ ଶିଷ୍ୟ; ଶ୍ରେଣୀ ଧର—
10. Monitor of a class.
୧୧ । ଧଳା ରଙ୍ଗ—11 White colour
୧୨ । କମଣ୍ଡଳୁ—
12. A mendicant's water bowl.
୧୩ । କୁଷ୍ଠ ରୋଗ—13. Leprosy
୧୪ । ଦମନକ ବା ଦୟଣା ଗଛ—
14. A fragrant plant
୧୫ । ମେଦିନୀପୁରର ପ୍ରାଚୀନ ନାମ—
15 The ancient name of Midnapur.
୧୬ । ଶ୍ୱେତ ଛତ୍ର—16. A white umbrella.
୧୭ । ଯଜ୍ଞବିଶେଷ—
17. A kind of vedic oblation.
ଅଶ୍ୱମେଧ ସହସ୍ରସ୍ୟ ଯେ ପୁଣ୍ଡରୀକ
ତୋ ଏବ ଅତ ଯାଗ ଅଛନ୍ତି ଯେତେକ
ଭକ୍ତିରେ ହୋଇଅଛ—ଜଗ ।
୧୮ । କମଳ; ପଦ୍ମ (ହି. ଶ.)—18. Lotus.
୧୯ । ତିଳକ (ହି. ଶ.)—19. Mark of sandal or other paste drawn on the forehead.
୨୦ । ଧାନ୍ୟବିଶେଷ (ହି. ଶ.)—
20. A kind of paddy.
୨୧ । ଧଳା ହାତୀ (ହି. ଶ.)—21. White elephant.
୨୨ । ଏକପ୍ରକାର ଶ୍ୟେନ ପକ୍ଷୀ (ହି. ଶ.)—
22. A kind of hawk.
୨୩ । ଶ୍ୱେତ କୁଷ୍ଠ (ହି. ଶ.)—23. Leucoderma.
୨୪ । ଚିନି (ହି. ଶ.)—24. White sugar.
୨୫ । ଧଳା ସାପ (ହି. ଶ.)—25. White serpent.
୨୬ । ଚିତ୍ତ ସାପ—26. A kind of snake with white rings; Amphisbaena
୨୭ । କ୍ରୌଞ୍ଚ ଦ୍ୱୀପର ପର୍ବତବିଶେଷ—27. Name of a mountain of the mythological Krauñcha island.
୨୮ । ଅଗ୍ନି (ହି. ଶ.)—21. Fire.
୨୯ । ବାଣ, ଶର (ହି. ଶ.)—29. Arrow.
୩୦ । ଆକାଶ (ହି. ଶ.)—30. The sky.
୩୧ । (ନାମ) ରଘୁ ବଂଶର ଏକ ରାଜା (ହି. ଶ.)—
31. Name of a king of the Raghu dynasty.

୩୨ । ମହାଭାରତୋକ୍ତ ତୀର୍ଥ ବିଶେଷ (ହି. ଶ.)—32. Name of a place of Hindu pilgrimage

**ପୁଣ୍ଡରୀକ କାଠ**—ଦେ. ବି—୧ । ପୁଣ୍ଡରୀ (ଦେଖ)—
Puṇḍarīka kāṭha 1. Puṇḍarī (See)
୨ । ପଦ୍ମ କାଷ୍ଠ (ଦେଖ)—
2. Padma kāshṭha (See).
ହରେକୃଷ୍ଣ—ଚନ୍ଦ୍ରଗୁଣ ।

**ପୁଣ୍ଡରୀକ ବାସୁଦେବ**—ସ. ବି.—ପୁଣ୍ଡରୀକ ନାମଧାରୀ ଜଣେ ପୌରାଣିକ ରାଜା—Name of a king who wanted to be as famous as Bishṇu but failed.
Puṇḍarīka bāsudeba
[ଦ୍ର—ଏ ବିଷ୍ଣୁଙ୍କ ସଦୃଶ ବେଶଭୂଷା ଧରି ବିଷ୍ଣୁଙ୍କ ପରି ବିଖ୍ୟାତ ହେବାକୁ ଚେଷ୍ଟା କରି ହାସ୍ୟାସ୍ପଦ ହୋଇଥିଲେ । ଏହାଙ୍କର ଅନ୍ୟ ନାମ ପୌଣ୍ଡ୍ରିକ ଓ ପୁଣ୍ଡରୀକ ରାଜା ।]

**ପୁଣ୍ଡରୀକାକ୍ଷ**—ସ ବିଣ. (ପୁଣ୍ଡରୀକ=ଶ୍ୱେତପଦ୍ମ+ଅକ୍ଷି=ଚକ୍ଷୁ; ବହୁବ୍ରୀହି)
Puṇḍarīkāksha ଶ୍ୱେତପଦ୍ମ ପରି ସୁନ୍ଦର ଚକ୍ଷୁବିଶିଷ୍ଟ—
Lotus-eyed; having eyes as graceful as the white lotus.
ସ ବି.—ବିଷ୍ଣୁଙ୍କ ନାମ—A name of Bishṇu.
[ଦ୍ର—ମହାଭାରତରେ ଲେଖା ଅଛି 'ପୁଣ୍ଡରୀକ' ଅର୍ଥ ପରମ ସ୍ଥାନ ଓ 'ଅକ୍ଷ' ଅର୍ଥ ଅବ୍ୟୟ; ବାସୁଦେବ ପରମ ସ୍ଥାନରେ ବାସ କରନ୍ତି ଓ ତାହାଙ୍କର କ୍ଷୟ ନାହିଁ, ତେଣୁ ସେ ପୁଣ୍ଡରୀକାକ୍ଷ ନାମରେ ଅଭିହିତ ।]

**ପୁଣ୍ଡରୀକାୟତାକ୍ଷ**—ସ. ବିଣ. ପୁଂ.—(ପୁଣ୍ଡରୀକ ପରି ଆୟତ ଅର୍ଥାତ ବିସ୍ତୃତ ଅକ୍ଷି ଯାହାର)—ଶ୍ୱେତପଦ୍ମ ପରି
Puṇḍarīkāyatāksha
ବିସ୍ତୃତ ଚକ୍ଷୁ ବିଶିଷ୍ଟ (ବ୍ୟକ୍ତି)—(a person) Having eyes as large as the white lotus.

**ପୁଣ୍ଡରୀୟକ**—ସ. ବି. (ପୁଣ୍ଡ ଧାତୁ+ଅରୀୟକ)—୧ । ସ୍ଥଳପଦ୍ମ—
Puṇḍarīyaka 1. Hibiscus Mutabilis (flower and bushy tree.)
୨ । ପୁଣ୍ଡରୀ (ଦେଖ)—2 Puṇḍarī (See)

**ପୁଣ୍ଡର୍ଯ୍ୟ**—ସ. ବି. (ପୁଣ୍ଡ ଧାତୁ+ଅର୍ଯ୍ୟ)—୧ । ପୁଣ୍ଡରୀ (ଦେଖ)
Puṇḍarjya 1. Puṇḍarī (See)
୨ । ନେତ୍ର ରୋଗ ହରାଉଥିବା ଭୈଷଜ୍ୟ ଲତାବିଶେଷ—
2. A medicinal creeper used in curing eye-diseases.

**ପୁଣ୍ଡା**—ପ୍ରାଦେ. (କଟକ) ବିଣ—ହୃଷ୍ଟପୁଷ୍ଟ; ମୋଟା; ଫାମ୍ପୁଲ—
Puṇḍā Fat, corpulent.
ପ୍ରାଦେ. (ଗଡ଼ଜାତ)—ବି.—ଗାଈ, ମଇଁଷି ଆଦିଙ୍କ ପଲ ବା ଦଳ-
A herd of cows or buffaloes.

**ପୁଣ୍ଡୁକା**—ପ୍ରାଦେ. (ଯାଜପୁର) ବିଣ.ପୁଂ ଓ ସ୍ତ୍ରୀ--ଯାହାର ଗାଲ ଓ ଦେହ ହୃଷ୍ଟପୁଷ୍ଟ ଓ ଫୁଲୁକା—(A person) Having a stout body and swollen cheeks.
Puṇḍukā
(ପୁଣ୍ଡୁକୀ—ସ୍ତ୍ରୀ)

**ପୁଣ୍ଡ୍ର**—ସ. ବି. (ପୁଣ୍ଡ ଧାତୁ+ର)—୧ । ଏକ ପ୍ରକାର ଫିକା ରଙ୍ଗର ଆଖୁ—1. A kind of grey sugar cane;
Puṇḍra
(ପୁଣ୍ଡ୍ରକ—ଅନ୍ୟରୂପ) Saccharum Officinarum.

୨ । ବଳିର ଏକ ପୁତ୍ର, ଦୈତ୍ୟବିଶେଷ—
2. Name of a demon, a son of Bali.
[ଦ୍ର—ଏହାଙ୍କ ନାମ ଅନୁସାରେ ପୁଣ୍ଡ୍ର ଦେଶର ନାମ ହୋଇଥିଲା ।]
୩ । କପାଳର ଚିତା, ତିଳକ—3 Mark of sandal-paste put on the forehead.
[ଦ୍ର—ଉପରକୁ କଟା ଯିବା ଚିତା=ଊର୍ଦ୍ଧ୍ୱପୁଣ୍ଡ୍ର, ୩ ଶାଖା ବିଶିଷ୍ଟ ଚିତା=ତ୍ରିପୁଣ୍ଡ୍ର ।]
୪ । ଚିତ୍ର; ଅଙ୍କିତ ଚିତ୍ର—4 Painting; a drawing.
୫ । କୃମି—5. Worm.
୬ । ମାଧବୀ ଲତା—6. A flowering creeper; Gaert-near Racemosa.
୭ । ପୁଣ୍ଡରୀକ; ଶ୍ୱେତ ପଦ୍ମ—7 White lotus.
୮ । ଗୌଡ଼ ଦେଶ, ଗଙ୍ଗାକୂଳରୁ ବିହାର ପ୍ରଦେଶର ଦକ୍ଷିଣ ପର୍ଯ୍ୟନ୍ତ ଦେଶ—8. The country of Gaurda (Rajsahi and part of Bihar)
[ଦ୍ର—ମହାଭାରତ ଅନୁସାରେ ବଳି ରାଜାଙ୍କର ୫ ପୁତ୍ର ଅଙ୍ଗ, ବଙ୍ଗ, କଳିଙ୍ଗ, ପୁଣ୍ଡ୍ର ଓ ସୁହ୍ମଙ୍କ ନାମ ଅନୁସାରେ ଭାରତର ୫ଟି ପ୍ରଦେଶର ନାମ ହୋଇଥିଲା (ହି ଶ.) ।]
୯ । ତିଳକ ବୃକ୍ଷ—9. Name of a tree.
୧୦ । ଗୌଡ଼ୀୟ ବ୍ୟକ୍ତି—
10. A man of the Gaurda country
୧୧ । ତିନିଶ ଗଛ (ହି. ଶ)—11 Tinisa tree (See)
୧୨ । କ୍ଷୁଦ୍ରପ୍ଲକ୍ଷ; ନନ୍ଦୀଗଛ (ହି. ଶ)—
12. Waved-leafed fig tree.
୧୩ । ପୁରାଣୋକ୍ତ ଭାରତର ପ୍ରାଚୀନ ଜାତିବିଶେଷ (ହି. ଶ)—
12. Name of an ancient Indian caste mentioned in the Hindu mythologies
[ଦ୍ର—ବ୍ରହ୍ମାଣ୍ଡ ପୁରାଣ ଓ ମତ୍ସ୍ୟପୁରାଣ ମତରେ ଏମାନେ ପୂର୍ବ-ଭାରତରେ ବାସ କରୁଥିଲେ; ବିଷ୍ଣୁପୁରାଣ ଓ ମାର୍କଣ୍ଡେୟ ପୁରାଣରେ ଏମାନେ ଦାକ୍ଷିଣାତ୍ୟବାସୀ ଥିବାର ବୋଲା ଯାଇଅଛି । ଐତରେୟ ବ୍ରାହ୍ମଣରେ ଏମାନେ ବିଶ୍ୱାମିତ୍ରଙ୍କଠାରୁ ଶାପ ପ୍ରାପ୍ତ ବିଶ୍ୱାମିତ୍ରଙ୍କର କେତେକ ପୁତ୍ରଙ୍କ ବଂଶଧର ଥିବାର ଓ ଶାପ ଯୋଗୁଁ ଏମାନେ ଦସ୍ୟୁ ଓ ଅନ୍ତ୍ୟଜ ହୋଇଥିବାର ବର୍ଣ୍ଣିତ ହୋଇଅଛି—ହି. ଶ ।]
୧୪ । ଘୋଡ଼ା ଦେହରେ ଲୋମରାଜିର ଭଙ୍ଗୀ ଅନୁସାରେ ହେବା ଶଙ୍ଖ, ଚକ୍ର, ଗଦା, ପଦ୍ମ, ଖଡ୍ଗ, ଅଙ୍କୁଶଆଦିର ଚିହ୍ନ (ହି. ଶ)—
14. Certain marks on the body of a horse made by its hair

**ପୁଣ୍ଡ୍ରବର୍ଦ୍ଧନ**—ସଂ. ବି. (ନାମ)—ପୁଣ୍ଡ୍ରଦେଶର ପ୍ରାଚୀନ ରାଜଧାନୀ—
**Pundra bardhana** Name of the capital of the ancient Pundra Desa.
[ଦ୍ର—ଏହା ହିନ୍ଦୁ ଓ ବୌଦ୍ଧମାନଙ୍କର ତୀର୍ଥରୂପେ ପରିଗଣିତ, ଏଠାରେ ସତୀଙ୍କର ଅଙ୍ଗ ପଡ଼ିଥିବାରୁ ଏହା ପୀଠରୂପେ ପରି-ଗଣିତ । କେହି କେହି ଏହାକୁ ଆଧୁନିକ ରଙ୍ଗପୁର, କେହି ପାବନା ଓ କେହି ମାଲଦହ ପାଖେ ଥିବାର କହନ୍ତି—ହି. ଶ ।]

**ପୁଣ୍ୟ**—ସଂ ବି. (ପୁଣ ଧାତୁ+ଭାବ ବା କର୍ମ ଯ; କିମ୍ବା ପୂ ଧାତୁ=ଶୁଦ୍ଧ କରିବା+କର୍ତ୍ତୃ. ଯ; ଣ ଆଗମ)—୧ । ଧର୍ମ; ସଦାଚାର ଅନୁଷ୍ଠାନ—1. Doing good acts.
**Punya**
୨ । ସୁକୃତ—2. Meritorious act; piety; virtuous act
୩ । ଧର୍ମ ବା ନୀତି ସଙ୍ଗତ ଉତ୍କର୍ଷ—
3. Moral or religious merit.
୪ । ଶୁଦ୍ଧତା, ପବିତ୍ରତା—4. Purity.
୫ । ଶୁଦ୍ଧୀକରଣ—5. Purification
୬ । ପରୋପକାର—6. Works benificial to others.
ସ ବିଣ—୧ । ପୂତ, ପବିତ୍ର—1. Pure; holy.
୨ । ନିର୍ମଳ—2 Clear.
୩ । ଶୁଭସୂଚକ—3 Auspicious.
୪ । ଧର୍ମାନୁମୋଦିତ, ଧାର୍ମିକ—
4. Righteous; pious; meritorious.
୫ । ଆନନ୍ଦପ୍ରଦ—5 Pleasant; delightful
୬ । ସତ୍—6. Virtuous; honest.
୭ । ମନୋଜ୍ଞ, ସୁନ୍ଦର—7. Beautiful; graceful.
୮ । ନୈତିକ—8. Moral.
୯ । ସୁଗନ୍ଧ—9. Fragrant; odorous.
୧୦ । ନିଷ୍ପାପ—10. Sinless.
ଦେ. ବି—୧ । ଧର୍ମୋତ୍ସବ—
1. Religious ceremony or festival.
୨ । ପୁଣ୍ୟାର୍ଥ, ଧର୍ମାର୍ଥ ବ୍ରତ ସାଧନ—
2. Observance of religious fasts.
୩ । (ସଂ. ପୂର୍ଣ୍ଣିମା)—ପୂର୍ଣ୍ଣିମା—3. Full moon.

**ପୁଣ୍ୟ ଅରଜିବା**—ଦେ. କ୍ରି—ସତ୍କାର୍ଯ୍ୟଦ୍ୱାରା ଧର୍ମ ସଞ୍ଚୟ କରିବା—
**Punya arajiba** To store religious merit by doing pious acts.
ପୁନ୍ୟଅରଜା ପୁଣ୍ୟଅରଜନା
[ପୁଣ୍ୟଅର୍ଜିବା, ପୁଣ୍ୟକମା(ମେ)ଇବା—ଅନ୍ୟରୂପ]

**ପୁଣ୍ୟକ**—ସଂ. ବି. (ପୁଣ୍ୟ+କୈ ଧାତୁ=ବିସ୍ତାର କରିବା+ଅ)—
**Punyaka** ୧ । ପୁଣ୍ୟ ନିମନ୍ତେ କରାଯିବା ବ୍ରତ ଉପବାସାଦି—
1 Religious observances.
୨ । ବିଷ୍ଣୁ—2 Bishnu.
୩ । ନିଜପୁତ୍ରର କଲ୍ୟାଣ କାମନାରେ ପୁତ୍ରବତୀ ସ୍ତ୍ରୀର ଆଚରିତ ବ୍ରତ (ହି. ଶ)—3 Religious fast observed by a woman for the good of her own son

**ପୁଣ୍ୟକ ବ୍ରତ**—ସଂ. ବି—ସନ୍ତାନ ଲାଭାର୍ଥ ସଧବାମାନଙ୍କର ନାନାପ୍ରକାର
**Punyaka brata** ବିଧି ସହିତ ଏକବର୍ଷକାଳ ବିଷ୍ଣୁପୂଜା—
A religious vow observed by women for the period of a year by worshipping Bishnu for being blessed with offsprings.

**ପୁଣ୍ୟକର୍ମୀ**—ସଂ. ବିଣ. ପୁଂ. (ବହୁବ୍ରୀହି; ପୁଣ୍ୟ+କର୍ମନ୍; ସ୍ତ୍ରୀ. ୧ବ)—
**Punyakarma** ୧ । ଧାର୍ମିକ—1. Pious.

୨ । ସତ୍—2. Virtuous; upright

୩ । ସତ୍‌କ୍ରିୟ—3. Meritorious; doing good acts.

ପୁଣ୍ୟ କାଳ—ସ. ବି. (କର୍ମଧା)—ଗ୍ରହମାନଙ୍କର କାଦିଷ୍ଟସ୍ଥାନରେ ଉପସ୍ଥାନ
Punya kala ଯୋଗୁଁ ଯେଉଁ ପବିତ୍ର ବା ଶୁଭକାଳ ଉପସ୍ଥିତ ହୁଏ—
Holy time; astrologically auspicious time.
[ ଦ୍ର—ଏହି ସମୟରେ ହୋମ, ଦାନଆଦି କର୍ମ ବିଶେଷ ପୁଣ୍ୟପ୍ରଦ । ]

ପୁଣ୍ୟ କୀର୍ତ୍ତନ—ସ. ବି. ୧। (ମ ପ. ଲୋ)—ପୁଣ୍ୟ ବାକ୍ୟର କଥନ—
Punya kirttana 1 Uttering holy sayings.
୨ । (ବହୁବ୍ରୀହି, ଯାହାଙ୍କ ନାମ କୀର୍ତ୍ତନ କଲେ ପୁଣ୍ୟ ହୁଏ)—
ବିଷ୍ଣୁ—2 A name of Bishnu.

ପୁଣ୍ୟ କୀର୍ତ୍ତି—ସ. ବି. (ମ. ପ. ଲୋ)—ପୁଣ୍ୟକାର୍ଯ୍ୟ ଜନିତ ଯଶଃ—
Punya kirtti Fame arising out of pious deeds.
୨ । ବିଷ୍ଣୁଙ୍କ ନାମ—2 Name of Bishnu.
ସ. ବିଣ—୧ । ପୁଣ୍ୟବାନ୍—1. Pious
୨ । ପୁଣ୍ୟଜନିତ କୀର୍ତ୍ତିବିଶିଷ୍ଟ—2. Famous for piety.

ପୁଣ୍ୟକୃତ୍—ସ. ବିଣ. ପୁଂ. (ପୁଣ୍ୟ+କୃ ଧାତୁ+କର୍ତ୍ତୃ. କ୍ୱିପ୍)—
Punyakrut ପୁଣ୍ୟକର୍ମା (ଦେଖ)—Punyakarma (See)

ପୁଣ୍ୟ କ୍ଷୟ—ସ. ବି. (୬ଷ୍ଠୀ ତତ୍)—ଆପଣାର ସଞ୍ଚିତ ପୁଣ୍ୟର ଫଳର
Punya kshaya ବିନାଶ—Decay of the religious
merit already acquired by a man.

ପୁଣ୍ୟ କ୍ଷେତ୍ର—ସ. ବି—୧ । ଆର୍ଯ୍ୟାବର୍ତ୍ତ; ହିମାଳୟ ଓ ବିନ୍ଧ୍ୟାଚଳର
Punya kshetra ମଧ୍ୟବର୍ତ୍ତୀ ଦେଶ—1. Northern India.
(ପୁଣ୍ୟଧାମ—ଅନ୍ୟରୂପ) ୨ । ପବିତ୍ରଧାମ, ତୀର୍ଥ; ପୀଠ—2 Holy
land; a place of pilgrimage.

ପୁଣ୍ୟ ଗନ୍ଧ—ସ. ବି ୧ । (କର୍ମଧା)—ମନୋହର ଗନ୍ଧ—
Punya gandha 1. Pure smell; sweet scent.
୨ । (ବହୁବ୍ରୀହି) ଚମ୍ପା ଗଛ—
2. The Champaka tree; Michelia Champaka.

ପୁଣ୍ୟଗନ୍ଧି—ସ. ବିଣ (ପୁଣ୍ୟ+ଗନ୍ଧ+ଇ)—ମନୋହରଗନ୍ଧଯୁକ୍ତ—
Punyagandhi Sweet scented

ପୁଣ୍ୟ ଜନ—ସ. ବି (କର୍ମଧା)—୧ । ପବିତ୍ର ବା ଧାର୍ମିକ ବ୍ୟକ୍ତି—
Punya jana 1 Holy man.
୨ । ଯକ୍ଷ—2 A class of aereal beings.
୩ । (ପୁନ୍=ପବିତ୍ରତା+ଅଜନ=ଯେ ଜାତ କରେ ନାହିଁ) —
ରାକ୍ଷସ—3. Demon; fend.

ବାହାର ପୁଣ୍ୟଜନେ (୩) ହୋଇଲେ ହୋଇ ପୁଣ୍ୟଜନେ (୧) ଜହୁଲେ ରକ୍ଷକ ପୁଣ୍ୟଜନ(୨)
ହୁବେନ ମୋ ସଙ୍ଗ ମାନ—ଭକ୍ତ. ବୈଦେହୀଶବିଳାସ ।

ପୁଣ୍ୟ ଜନକ—ସ. ବି)—ପୁଣ୍ୟ+ଜନ ଧାତୁ ଣିଚ ଜନ ଧାତୁ+କର୍ତ୍ତୃ.
Punya janaka ଅକ)--ପୁଣ୍ୟପ୍ରଦ (ଦେଖ)
Punyaprada (See)

ପୁଣ୍ୟଜନ ପତି—ସ. ବି (୬ଷ୍ଠୀ ତତ୍)—୧ । ଯକ୍ଷପତି; କୁବେର—
Punyajana pati 1. The God of wealth.
(ପୁଣ୍ୟଜନେଶ୍ୱର—ଅନ୍ୟରୂପ) ୨ । ଧାର୍ମିକ ଶ୍ରେଷ୍ଠ—
2. An eminent person amongst the pious.

ବସ ଯେନୁ ସଙ୍ଗେ ପୁଣ୍ୟଜନପତି (୧) ଭର୍ଗ ପଣ୍ୟଜନପତି (୨) ସେ
ଭକ୍ତ ବୈଦେହୀଶବିଳାସ ।

ପୁଣ୍ୟତୋୟା—ସ. ବିଣ. ସ୍ତ୍ରୀ (ବହୁବ୍ରୀହି)—ଯେଉଁ ନଦୀର ଜଳ ପବିତ୍ର--
Punyatoya (river) With holy water.
ସ ବି—ଗଙ୍ଗା ନଦୀ—The river Ganges.

ପୁଣ୍ୟଦ—ସ. ବିଣ (ପୁଣ୍ୟ+ଦା ଧାତୁ+କର୍ତ୍ତୃ ଅ)—ପୁଣ୍ୟପ୍ରଦ (ଦେଖ)
Punyada (ପୁଣ୍ୟଦା—ସ୍ତ୍ରୀ) Punyaprada (See)

ପୁଣ୍ୟ ଦର୍ଶନ—ସ. ବିଣ. ପୁଂ (ବହୁବ୍ରୀହି ପୁଣ୍ୟ+ଦର୍ଶନ)—
Punya darsana ଯାହାଙ୍କୁ ଦେଖିଲେ ପୁଣ୍ୟଲାଭ ହୁଏ—
(ପୁଣ୍ୟ ଦର୍ଶନା—ସ୍ତ୍ରୀ) Whose mere sight
makes a person holy.
ସ. ବି—ଶ୍ୟେନପକ୍ଷୀ, ଉଦରଦଳଳଥ ପକ୍ଷୀ—
The blue jay; the fairy blue bird
[ ଦ୍ର—ବିଜୟା ଦଶମୀ ଦିନ ଏ ପକ୍ଷୀକୁ ଦର୍ଶନ କରିବା
ପୁଣ୍ୟଜନକ ବୋଲି ଲୋକେ ବିଶ୍ୱାସ କରନ୍ତି । ସମ୍ବଲପୁରବାସୀ-
ମାନେ ସେ ଦିନ ଏ ପକ୍ଷୀର ଦର୍ଶନଲାଭ କରିବା ପାଇଁ ନାନାସ୍ଥାନ
ଓ ବନ ଜଙ୍ଗଲ ଅନ୍ୱେଷଣ କରନ୍ତି । ]

ପୁଣ୍ୟ ଦାୟକ—ସ. ବିଣ—ପୁଣ୍ୟପ୍ରଦ (ଦେଖ)
Punya dayaka (ପୁଣ୍ୟଦାୟିକା—ସ୍ତ୍ରୀ)--Punyaprada (See)

ପୁଣ୍ୟଦେହା—ଦେ. ବିଣ (ସ. ପୁଣ୍ୟ+ଦେହ)—ପବିତ୍ରଶରୀରବିଶିଷ୍ଟ—
Punyadeha Having a holy body.
ଭଲେ ଜାଣିଛୁ ଅମ୍ଭେ ଏହା
ତୁମ୍ଭେ ସ୍ୱଭାବେ ପୁଣ୍ୟଦେହା—ଜଗନ୍ନାଥ, ଭାଗବତ ।

ପୁଣ୍ୟ ପର୍ବ—ଦେ ବି ( ସନ୍ଧିର ଶବ୍ଦ ) (ସ. ପୁଣ୍ୟ ଓ ପର୍ବ )—
Punya parba ବ୍ରତ ଓ ଉତ୍ସବାଦି—Religious fasts and
पर्वतौहार,पुण्यपर्व (ପୁଣ୍ୟପରବ—ଅନ୍ୟରୂପ) festivals.

ପୁଣ୍ୟ ପ୍ରଦ—ସ. ବିଣ—( ପୁଣ୍ୟ+ପ୍ର+ଦା ଧାତୁ+କର୍ତ୍ତୃ. ଅ )
Punya prada ଯାହା ପବିତ୍ରତା ପ୍ରଦାନ କରେ—
(ପୁଣ୍ୟପ୍ରଦା—ସ୍ତ୍ରୀ) Conferring religious merit.

ପୁଣ୍ୟ ଫଳ—ସ. ବି. ( ୬ଷ୍ଠୀ ତତ୍ )—୧ । ସତ୍‌କାର୍ଯ୍ୟର ଫଳ—
Punya phala 1 Fruits of piety.
୨ । ସତ୍‌କାର୍ଯ୍ୟର ପୁରସ୍କାର—
2. The reward for pious acts.
୩ । ଲୁଞ୍ଜବନ, ଆଶ୍ରମ, ଉପବନ—
3 Pleasure-garden; grove.

ପୁଣ୍ୟ ଫଳ ଭାଗୀ—ସ. ବିଣ. ପୁଂ (ପୁଣ୍ୟ+ଫଳ+ଭାଗିନ୍)—
Punya phala bhagi ପୁଣ୍ୟ ଭାଗୀ ( ଦେଖ )
(ପୁଣ୍ୟଫଳଭାଗିନୀ—ସ୍ତ୍ରୀ) Punya bhagi ( See )

ପୁଣ୍ୟବନ୍ତ—ଦେ. ବିଣ. ପୁଂ (ସ. ପୁଣ୍ୟବତ୍ ଶବ୍ଦ)—ପୁଣ୍ୟବାନ୍—
Punyabanta Pious; religious,
पुण्यवन्त ଧର୍ମ ପୁତ୍ର ହୋଇଲେ ପୁଣ୍ୟବନ୍ତ ଲୋକ
पुण्यवंत ପାଇବ ଯାଇ ଅହେ ଅବଶ୍ୟ ନାୟକ ।
(ପୁଣ୍ୟବନ୍ତା—ଅନ୍ୟରୂପ) କୃଷ୍ଣସିଂହ, ମହାଭାରତ, ଅନ୍ତ ।

**ପୁଣ୍ୟବନ୍ତୀ**—ଦେ. ବଣ. ସ୍ତ୍ରୀ (ସ. ପୁଣ୍ୟବତୀ)—ପୁଣ୍ୟବନ୍ତର ସ୍ତ୍ରୀ ଲିଙ୍ଗ—
Puṇyabanti   Feminine of Puṇyabanta.

ଯଶୋଦା ପୁଣ୍ୟବନ୍ତୀ ନାରୀ
ତାହାଙ୍କ ପ୍ରସନ୍ନ ଗହରୀ । ଭୂପତି. ପ୍ରେମପଞ୍ଚାମୃତ ।

**ପୁଣ୍ୟବାନ୍**—ସ. ବଣ ପୁଂ ( ପୁଣ୍ୟ + ବତ୍, ୧ମା ୧ବ )—
Puṇyabān   ୧ । ଧାର୍ମିକ—1. Pious; righteous;
(ପୁଣ୍ୟବତୀ—ସ୍ତ୍ରୀ)   religious.
୨ । ଭାଗ୍ୟବାନ୍—2 Fortunate, blessed; prosperous.
୩ । ସୁନ୍ଦର,ମନୋଜ୍ଞ—3 Pleasing; beautiful (Apte).

**ପୁଣ୍ୟ ଭାକ୍**—ସ. ବଣ. ( ପୁଣ୍ୟ + ଭଜ୍ ଧାତୁ + କ୍ୱିପ୍, ପୁଣ୍ୟଭାଜ୍,
Puṇya bhāk   ୧ମା. ୧ବ. )—
୧ । ପୁଣ୍ୟଶୀଳ; ଧାର୍ମିକ—1. Pious.
୨ । ପୁଣ୍ୟ ଭାଗୀ (ଦେଖ)—2. Puṇya bhāgī (See)

**ପୁଣ୍ୟ ଭାଗୀ**—ସ. ବଣ. ପୁଂ (ପୁଣ୍ୟ + ଭାଗିନ୍, ୧ମା. ୧ବ)—
Puṇya bhāgī   ପୁଣ୍ୟ କାର୍ଯ୍ୟରେ ବା ଫଳରେ ଯାହାର ଭାଗ ଅଛି—
(ପୁଣ୍ୟଭାଗିନୀ—ସ୍ତ୍ରୀ)   Sharing in the merit due to a pious act.

**ପୁଣ୍ୟ ଭୂ**—ସ. ( କର୍ମଧା )—୧ । ଆର୍ଯ୍ୟାବର୍ତ୍ତ, ହିମାଳୟ ଓ ବିନ୍ଧ୍ୟାଚଳର
Puṇya bhū   ମଧ୍ୟବର୍ତ୍ତୀ ଦେଶ—1 The country north
(ପୁଣ୍ୟଭୂମି—ଅନ୍ୟରୂପ)   of the Bindhya hills and south of the Himalayas.
୨ । ପୀଠ; ତୀର୍ଥ—2. Holy land.
୩ । ପୁତ୍ରବତୀ ସ୍ତ୍ରୀ ( ହି. ଶ. )—
3. A woman blessed with a son or sons.

**ପୁଣ୍ୟ ଲାଭ**—ସ. ବ. ( ୬ଷ୍ଠୀ ତତ୍ )—ସୁକୃତର ଅର୍ଜନ—
Puṇya lābha   Attainment of religious merit.

**ପୁଣ୍ୟ ଲୋକ**—ସଂ. ବ. ( କର୍ମଧା )—୧ । ସ୍ୱର୍ଗ—
Puṇya loka   1. Heaven.
୨ । ଦେବଲୋକ; ବୈକୁଣ୍ଠ—2. Paradise.
୩ । ସାଧୁ ବ୍ୟକ୍ତି—3 Pious person.

**ପୁଣ୍ୟଶାଳୀ**—ସଂ. ବଣ. ପୁଂ —ପୁଣ୍ୟବାନ୍ ( ଦେଖ )
Puṇyaśālī (ପୁଣ୍ୟଶାଳିନୀ ସ୍ତ୍ରୀ)   Puṇyabān (See)

**ପୁଣ୍ୟଶୀଳ**—ସଂ. ବଣ. ପୁଂ. ( ବହୁବ୍ରୀହି; ପୁଣ୍ୟ ଅଛି ଶୀଳ=ସ୍ୱଭାବ
Puṇyaśīla   ଯାହାର )—ଧର୍ମଶୀଳ; ଧାର୍ମିକ—Virtuous;
(ପୁଣ୍ୟଶୀଳା—ସ୍ତ୍ରୀ; ପୁଣ୍ୟଶୀଳତା—ବ)   pious.

**ପୁଣ୍ୟ ଶ୍ଳୋକ**—ସ. ବଣ. ପୁଂ. ( ବହୁବ୍ରୀହି; ପୁଣ୍ୟ=ପବିତ୍ର ଅଛି
Puṇya śloka   ଶ୍ଳୋକ=ଯଶ ଯାହାର )—୧ । ପୂତଚରିତ,
( ପୁଣ୍ୟଶ୍ଳୋକା—ସ୍ତ୍ରୀ )   ଧାର୍ମିକ—1. Pious; righteous

ତତ୍ପରେତେ ପୁଣ୍ୟଶ୍ଳୋକ ସେହି ଭାଇମାନ
ସିଂହ କ ଅଗ୍ରକୁ ଗଲେ—ସ୍ୱର୍ଗାରୋ. ମହାଭାରତ ।

୨ । ପବିତ୍ରତା ଯୋଗୁଁ ଜଗଦ୍ବିଖ୍ୟାତ—
2. Celebrated for piety.
ସ. ବ—୧ । ଜନାର୍ଦ୍ଦନ, ବିଷ୍ଣୁ—1. Bishnu.
୨ । ନଳ ରାଜା—2. King Naḷa
୩ । ଯୁଧିଷ୍ଠିର—3 The eldest Pāṇḍaba brother

**ପୁଣ୍ୟଶ୍ଳୋକା**—ସ. ବଣ. ସ୍ତ୍ରୀ ( ପୁଣ୍ୟଶ୍ଳୋକ + ଆ )—ପୁଣ୍ୟଶ୍ଳୋକର
Puṇyaśloka   ସ୍ତ୍ରୀଲିଙ୍ଗ—Feminine of Puṇyaśloka.
ସ. ବ—୧ । ଦ୍ରୌପଦୀ—
1. The queen of the Pāṇḍaba brothers
୨ । ସୀତା—2, Sitā
[ ଦ୍ର—ପ୍ରାତଃକାଳରୁ ଉଠି ପୁଣ୍ୟଶ୍ଳୋକ ଓ ପୁଣ୍ୟଶ୍ଳୋକା ମାନଙ୍କ ନାମ ଉଚ୍ଚାରଣ କଲେ ମଙ୍ଗଳ ଓ ପୁଣ୍ୟଲାଭ ହୁଏ ବୋଲି ପୁରାଣର ଉପଦେଶ ଅଛି । ]

**ପୁଣ୍ୟ ସଞ୍ଚୟ**—ସଂ. ବ. (୬ଷ୍ଠୀ ତତ୍ ପୁଣ୍ୟ+ସଂଚୟ)—୧ । ଧର୍ମାନୁଷ୍ଠାନ
Puṇya sañchaya   1. Earning of religious merit by doing pious acts.
୨ । ଧର୍ମାନୁଷ୍ଠାନଜନିତ ପୁଣ୍ୟ ରାଶି—2. Accumulation of religious merit earned by piety.

**ପୁଣ୍ୟ ସ୍ଥାନ**—ସଂ. ବ. (କର୍ମଧା)—୧ । ତୀର୍ଥ—
Puṇya sthāna   1. Sacred place, holy spot.
୨ । (ଫଳିତ ଜ୍ୟୋତିଷ) ଜାତକରେ ଲଗ୍ନର ନବମସ୍ଥାନ—
2. (Astrology) The 9th place counted from one's logna in the horoscope
[ ଦ୍ର—ଏହି ସ୍ଥାନରେ ଥିବା ଗ୍ରହମାନଙ୍କ ଦ୍ୱାରା ଜାତ ବ୍ୟକ୍ତିର ପୁଣ୍ୟ ବା ପାପର ବିଚାର କରାଯାଏ ]

**ପୁଣ୍ୟହା**—ସଂ. ବଣ. (ପୁଣ୍ୟ+ହନ୍ ଧାତୁ + କର୍ତ୍ତୃ କ୍ୱିପ୍)—ଯାହା ପୁଣ୍ୟ
Puṇyahā   ନାଶ କରେ—Destructive of one's religious merit.

**ପୁଣ୍ୟା**—ସ. ବ. ସ୍ତ୍ରୀ (ପୁଣ୍ୟ + ସ୍ତ୍ରୀ ଆ )—୧ । ତୁଳସୀଗଛ—
Puṇyā   1, The holy Basil plant; Ocymum Sanctum.
[ଦ୍ର—ପୁରାଣ ଅନୁସାରେ 'ତୁଳସୀ' ବିଷ୍ଣୁଙ୍କର ପ୍ରିୟା ବୃନ୍ଦାବତୀଙ୍କର ଅବତାର ଓ ଏହାର ସେବା କଲେ ମନୁଷ୍ୟ ପୁଣ୍ୟଲାଭ କରେ ।]
୨ । ପୁନଃ ପୁନା ନଦୀ (ଦେଖ)—2. The river Punaḥ punā (See)
ସଂ. ବଣ. ସ୍ତ୍ରୀ—( ପୁଣ୍ୟ + ଆ )
ପୁଣ୍ୟର ସ୍ତ୍ରୀଲିଙ୍ଗ—Feminine of Puṇya.

**ପୁଣ୍ୟାକାଙ୍କ୍ଷା**—ସ. ବ—୧ । (କର୍ମଧା) ପବିତ୍ର ଇଚ୍ଛା—
Puṇyākāṅkshā   1. A holy wish.
୨ । (୬ଷ୍ଠୀ ତତ୍) ସତ୍କାର୍ଯ୍ୟ କରିବାର ଇଚ୍ଛା—
2. Intention to do pious acts.
୩ । ପୁଣ୍ୟଲାଭ କରିବାର ଇଚ୍ଛା—
3. Desire of attaining holiness or piety.

**ପୁଣ୍ୟାତ୍ମା**—ସ ବି. (ବହୁବ୍ରୀହି; ପୁଣ୍ୟାତ୍ମନ୍ ଶବ୍ଦ, ୧ମା. ୧ବ)—
Punyātmā ଧାର୍ମିକ—Holy, pious.

**ପୁଣ୍ୟା ବାଚନ** -ଦେ. ବି. ( ସ ପୁଣ୍ୟାହ ବାଚନ )—ପୁଣ୍ୟାହବାଚନ
Punyā bāchana (ଦେଖ)—Punyāha bāchana (See)

**ପୁଣ୍ୟାର୍ଥୀ** -ସ. ବିଣ. ପୁଂ (ପୁଣ୍ୟ+ଅର୍ଥ+ଇନ୍, ୧ମା. ୧ବ.)—
Punyārthi ପୁଣ୍ୟଲାଭେଚ୍ଛୁ—Desirous of attaining
(ପୁଣ୍ୟାର୍ଥିନୀ—ସ୍ତ୍ରୀ) holiness or religious merit.

**ପୁଣ୍ୟାହ**—ସ ବି (ପୁଣ୍ୟ+ଅହନ୍, ୧ମା. ୧ବ)- ୧ । ପବିତ୍ର ଦିବସ-
Punyāha 1. Sacred day; holy time
୨ । ଶୁଭ ଦିବସ—2. Auspicious day; good day
ସ. ବିଣ — କୌଣସି ବ୍ୟକ୍ତିଙ୍କର ଶୁଭ ଦିବସ କାମନାକାରୀ—
Wishing any one a good day (Howells).
ଦେ. ବି.—ଜମିଦାରମାନଙ୍କ ପୁଣ୍ୟାହ ବା ନବ ବର୍ଷର ପ୍ରଥମ
ଅନୁକୂଳ ଦିନ—The zamindars' new year's
day

ଦେ. ଅ.—ଆପଣଙ୍କର ଆଜି ଶୁଭଦିନ ହେଉ, (ଭେଟବା ବ୍ୟକ୍ତିଙ୍କୁ
ଅଭିବାଦନ)—(Lit. good morning. Good morning,
good day)

**ପୁଣ୍ୟାହ ବାଚନ**—ସ ବି.— (୬ଷ୍ଠୀ ତତ୍, ପୁଣ୍ୟାହ+ବାଚନ) -ବୈଦିକ
Punyāha bāchana କର୍ମ ଓ ମାଙ୍ଗଳିକ କର୍ମର ଆରମ୍ଭରେ
ସ୍ୱସ୍ତିବାଚନ ବା ସଙ୍କଳ୍ପ—[illegible] ... pro-
logue uttered before a Vedic ceremony
is begun.

[ଦ୍ର—ବୈଦିକ କର୍ମାଦି ଆରମ୍ଭ କରିବା ପୂର୍ବରୁ 'ସ୍ୱସ୍ତି ପୁଣ୍ୟାହଂ, ସ୍ୱସ୍ତି ପୁଣ୍ୟାହଂ, ସ୍ୱସ୍ତି ପୁଣ୍ୟାହଂ', ଅର୍ଥାତ୍ 'ଆଜି ପବିତ୍ର ଦିବସ ମଙ୍ଗଳମୟ ହେଉ' ଏହି ବାକ୍ୟ ୩ ଥର ବୋଲି ଅନୁଷ୍ଠେୟ କର୍ମର ସଙ୍କଳ୍ପ ବାକ୍ୟ ବୋଲା ଯାଏ ।]

**ପୁଣ୍ୟୋଦକା**—ଦେ ବିଣ. ସ୍ତ୍ରୀ (ପୁଣ୍ୟ+ଉଦକ+ଆ; ବହୁବ୍ରୀହି; ପୁଣ୍ୟ
Punyodakā ଅଟେ ଉଦକ ଯାହାର)—ପୁଣ୍ୟ ତୋୟା (ଦେଖ)
Punyatoyā (See)
ସ ବି.—ଗଙ୍ଗା, ଯମୁନା, ଗୋଦାବରୀ, ସରସ୍ୱତୀ, ନର୍ମଦା, ସିନ୍ଧୁ
ଓ କାବେରୀ, ଏହି ସାତ ନଦୀ—The names of seven
holy rivers of India
[ଦ୍ର—ଏମାନଙ୍କ ନାମ ଉଚ୍ଚାରଣ କରି ଦୈବ କର୍ମାଦିରେ ବ୍ୟବହୃତ ଜଳକୁ ଶୁଦ୍ଧ କରାଯାଏ ।]

**ପୁଣ୍ୟୋଦୟ** - ସ. ବି. (୬ଷ୍ଠୀ ତତ୍, ପୁଣ୍ୟ+ଉଦୟ)—୧ ।ପୁଣ୍ୟ କର୍ମର
Punyodaya ଫଳ ସ୍ୱରୂପ ସୌଭାଗ୍ୟର ଉଦୟ ବା ଆରମ୍ଭ—
1. The dawning of good fortune as the
result of one's holy action in the past
life.
୨ । ମନୁଷ୍ୟଠାରେ ପବିତ୍ରତାର ପ୍ରଥମ ଆବିର୍ଭାବ—2. The
first appearance of holiness or piety.
୩ । ସୌଭାଗ୍ୟ—3. Good fortune.

**ପୁତ୍**—ସ ବି. (ପୁ ଧାତୁ=ପବିତ୍ର କରିବା+କର୍ତ୍ତୃ. କ୍ୱିପ୍ —ଅପୁତ୍ରକ
Put ବ୍ୟକ୍ତି ପାଇଁ କଳ୍ପିତ ନରକବିଶେଷ—A particular
division of hell for the punishment of
sonless persons

[ଦ୍ର—ପୁତ୍ର ଜନ୍ମ ହେଲେ ମନୁଷ୍ୟ ଏହି ନରକରୁ ପାର ପାଏ ।]
ସ. ବିଣ. - କୁତ୍ସିତ—Nasty.

**ପୁଡ଼୍ କୋଳି**—ପ୍ରାଦେ. (ମୟୂରଭଞ୍ଜ) - ବି.—
Pur-koli ଝୁମ୍ପୁଡ଼ି (ଦେଖ) Jhumpurdi (See)

**ପୁଡ଼୍ ପୁଡ଼** ଦେ. ଅ —ପୁଚ୍ ପୁଚ୍ ଦେଖ
Pur put Puch puch (See
(ପୁଡ଼ୁ ପୁଡ଼ୁ—ଅନ୍ୟରୂପ)

**ପୁଡ଼ୁଲି**—ପ୍ରାଦେ. (ସମ୍ବଲପୁର) ବି - ସ. ପୁଟ୍ଟଲୀ, ହିନ୍ଦୀ. ହି. ପୁଟ୍ଟଲୀ;
Puruli ୧ । ପୋଟୁଳି, ପୁଟୁଳି—1. A bundle
(ପୁଡ଼ୁଲି—ଅନ୍ୟରୂପ) ୨ । କୁଣ୍ଢେଇ - - 2. Doll
୩ । (ସ. ପାତଲୀ) ପତୁଲି, ଚଉଡ଼ା ମୁହାଁ ଛୋଟ ହାଣ୍ଡି —
3. A small wide-mouthed earthen pot

**ପୁତ**—ଦେ. ବି. (ସ ପୁତ୍ର) ପୁତ୍ର, ପୁଅ—
Puta पुत पुत Son.
ଅବସ୍ଥାପନ୍ନ ବ୍ୟକ୍ତିମାନଙ୍କର ବାଳକମାନଙ୍କୁ ସମ୍ବୋଧନ କରିବା ଶବ୍ଦ),
ଅରେ ପୁଅ !—(A term used by elderly
persons in addressing others much
younger than themselves) Oh Son!

**ପୁତ**—ଦେ ବି. ସ. ପୁତ୍ତିକା)—ପକ୍ଷଯୁକ୍ତ କ୍ଷୁଦ୍ର ପୋକ, କ୍ଷୁଦ୍ରପତଙ୍ଗ—
Putaka Small winged insect.
ପୁଂ, ফাতিঙ্গা

**ପୁତଖାଇ**—ଦେ. ବିଣ. ସ୍ତ୍ରୀ ( ସ. ପୁତ୍ର ଓ ଖାଦକା, ସ. ପୁତ୍ରଭକ୍ଷୀ,
Putakhāi ସ୍ତ୍ରୀଲୋକଙ୍କର ସ୍ତ୍ରୀଲୋକଙ୍କୁ ଦିଅଯିବା ଗାଳି) —
୧ । ପୁତ୍ରହା, ଯେ ଆପଣା ପୁଅକୁ ଖାଏ —
पुत खाकी(गी) (a term of abuse) 1. A woman who
(ପୁତୁଖାଇ—ଅନ୍ୟରୂପ) devours her own son.
୨ । ଡାହାଣୀ—2. A witch.
୩ । ଯାହାର ପୁଅ ମରି ଥାଏ—
3. A woman who has lost her son.

**ପୁତଖାଇ ପ(ପୋ)**—ଦେ. ବି. ପୁଂ (ସ. ପୁତ୍ର+ଖାଦକା+ପୁତ୍ର)—
Putakhāi pa(po) (ପୁରୁଷଙ୍କୁ ଗାଳି ଦେବାରେ ବ୍ୟବହୃତ)
(ପୁତୁଖାଇପ (ପୋ) — ଅନ୍ୟରୂପ) ] ଡାହାଣୀର ପୁତ୍ର—
(a term of abuse to males) The son of a witch.

**ପୁତମୁଣ୍ଡ ଖାଇ**—ଦେ. ବିଣ. ସ୍ତ୍ରୀ (ସଂ. ପୁତ୍ର+ମୁଣ୍ଡ+ଖାଦକା)—
Putamunda khāi (ସ୍ତ୍ରୀଙ୍କୁ ଗାଳି ବିଶେଷ) ଯେ ଆପଣା ପୁଅର
(ପୁତୁମୁଣ୍ଡ ଖାଇ—ଅନ୍ୟରୂପ) ମୁଣ୍ଡକୁ ଖାଏ; ଡାହାଣୀ—(a term of
abuse) A veritable witch who devours
the head of her own son.

**ପୁତା**—ଦେ. ଅ.—(ସ. ପୁତ୍ର,—ପୁତ (ଦେଖ)
Putā Puta (See).

ସ୍ଵଙ୍କ ବଚନ ଶୁଣି ପେତା, ବୋଇଲେ ଶୁଣ ଅଟେ ପୁତା ।
ପ୍ରାଚୀ ସର୍ଗ ମାହାତ୍ମ୍ୟ ।

ପ୍ରାଦେ. (ବାଲେଶ୍ୱର ଓ ସମ୍ବଲପୁର) ବି ଓ ବିଣ—
ପୋତା ( ଦେଖ )—Potā ( See )

**ପୁତା(ତେ)ଇବା**—ପ୍ରାଦେ. ( ବାଲେଶ୍ୱର, ସମ୍ବଲପୁର ଓ ଗଡ଼ଜାତ )
Putā(te)ibā ( ଭୁଲ. ବ. ପୁତାନ, ପୌତାନ )—
ପୁତିବା କ୍ରିୟାର ଣିଜନ୍ତ ରୂପ—
Causative of Putibā.

**ପୁତି**—ଦେ. ବି. ( ସ. ପ୍ରୋତ=ଗ୍ରଥିତ )—
Puti ପଥର ମାଳି; ଅଟେଲି ମାଳି; ଛୋଟ ଛୋଟ କାଚ ଦାନାର
पुति ମାଳି—A necklace of small glass or
पोत stone beads.

କତାଇଲି ବସ୍ତୁଅଛ ଅଙ୍ଗେ, ମୋର ତେଣେ ନେଳୁଥିଲି ପୁତି ଯେନ ।
ଜଣାମଣି, ବନ୍ଦନାପଦ୍ୟ ।

**ପୁତିବା**—ପ୍ରାଦେ. ( ବାଲେଶ୍ୱର, ସମ୍ବଲପୁର ଓ ଗଡ଼ଜାତ ) କ୍ରି.
Putibā (ଭୁଲ. ବ. ପୁତା)—ପୋତିବା ( ଦେଖ )
Potibā ( See )

**ପୁତନା(ନୀ)**—ଗ୍ରା. ବି. ସ୍ତ୍ରୀ (ସ. ପୂତନା)—ପୂତନା ( ଦେଖ )
Putanā(ni) Pūtanā ( See )

**ପୁତୁରା**—ଦେ. ବି. ପୁଂ ( ସ. ପୁତ୍ରକ )—ଭାଇ ପୁଅ—
Puturā Brother's son; nephew.
भाईपो କହୁଲେ ତା ଶୁଣି, ପିଇସୀ ପୁତୁରାକୁ
भतीजा ନ ଦେନିମି ମୋ ପୁଅ କଲେ ଅତ୍ୟାଗ୍ରଥିଲୁ ।
(ସ୍ତ୍ରୀଆଗ୍—ବିପରୀତ ଲିଙ୍ଗ) କୃଷ୍ଣସିଂହ, ମହାଭାରତ ବିରା ।

**ପୁତୁରା ବୋହୂ**—ଦେ. ବି. ସ୍ତ୍ରୀ. ( ସ. ପୁତ୍ରକ ଓ ବଧୂ )—
Puturā bohū ଭ୍ରାତୃଷ୍ପୁତ୍ରର ସ୍ତ୍ରୀ—Brother's daughter-in-law.

**ପୁତୁଳା(ଳି)**—ଦେ. ବି—ପୁତ୍ତଳି ( ଦେଖ )
Putulā(li) Puttali ( See )

**ପୁତ୍ତଳ (ଇତ୍ୟାଦି)**—ସ. ବି. ( ପ୍ରା. ପୁତ୍ତଳିକା )—
Puttala (etc) ପୁତ୍ତଳି ଇତ୍ୟାଦି ( ଦେଖ )
(ପୁତ୍ତଳକ—ଅନ୍ୟରୂପ) Puttali etc. ( See )

**ପୁତ୍ତଳି(ଳୀ)**—ସ. ବି. ( ସ. ପୁତ୍ରିକା ଶବ୍ଦର ପ୍ରାକୃତ ରୂପ; ଏ ଶବ୍ଦ
Puttali(lī) ସଂସ୍କୃତ ଗ୍ରନ୍ଥମାନଙ୍କରେ ଦେଖାଯାଏ )—
(ପୁତ୍ତଳିକା—ଅନ୍ୟରୂପ) ୧ । ପ୍ରତିମୂର୍ତ୍ତି; ପ୍ରତିମା—1. Image.
୨ । କଣ୍ଢେଇ—2. Doll; puppet.
୩ । ଆତ୍ମୀୟମାନଙ୍କଠାରୁ ବହୁ ଦୂରରେ ମୃତ ଯେଉଁ ବ୍ୟକ୍ତିର ଶବ ମିଳେ ନାହିଁ, ଶବ ଦାହ କରିବା ପାଇଁ ପତ୍ରାଦିରେ ରଚିତ ଉକ୍ତ ବ୍ୟକ୍ତିର ମୂର୍ତ୍ତି—
3. An effigy of leaves made of a person whose corpse is not available or traceable for cremation.

**ପୁତ୍ତଳି(ଳୀ) ଦାହ**—ସ. ବି. ( ୬ଷ୍ଠୀ ତତ୍ )—
Puttali(lī) dāha ୧ । ବହୁ ଦୂରରେ ମୃତ ବ୍ୟକ୍ତିର ବା
ପୁତ୍ତଳି(ଳୀ)ଦହନ } ଅନ୍ୟରୂପ ଯାହାର ଶବ ଦାହାର୍ଥ ଆତ୍ମୀୟମାନଙ୍କୁ
ପୁତ୍ତଳି(ଳୀ)ବିଧି } ମିଳି ପାରେ ନାହିଁ, ପଳାଶ ଆଦି
ପତ୍ରରେ ତାହାର ମୂର୍ତ୍ତି ନିର୍ମାଣ କରି ତାକୁ ଦାହ କରିବା ବିଧି, ପର୍ଣ୍ଣଦାହ—1 The burning of the effigy of a person in the place of the actual corpse when the person has died abroad or whose corpse in not available for cremation (Apte).
୨ । (ଆଧୁନିକ ବ୍ୟବହାର) କୌଣସି ଜୀବିତ ବ୍ୟକ୍ତିଙ୍କୁ ଅପଦସ୍ଥ କରିବା ଉଦ୍ଦେଶ୍ୟରେ ତାହାର ମୂର୍ତ୍ତିକୁ ଦାହ କରିବା—
2 (modern practice) The burning of the effigy of a living person for the purpose of humiliating him in the eyes of the public.

**ପୁତ୍ତଳି(ଳୀ) ପୂଜକ**—ସ ବି. ( ୬ଷ୍ଠୀ ତତ୍ )—ପ୍ରତିମା ପୂଜକ—
Puttali(lī) pūjaka Idolator

**ପୁତ୍ତଳି(ଳୀ) ପୂଜା**—ସ. ବି. ( ୬ଷ୍ଠୀ ତତ୍, ପୁତ୍ତଳି+ପୂଜା )—
Puttali(lī) pūjā ୧ । ଈଶ୍ୱରଙ୍କୁ ମୂର୍ତ୍ତି ରୂପରେ ପୂଜା କରିବା—
1. Image worship.
୨ । ପୌତ୍ତଳିକତା—2 Idolatory.

**ପୁତ୍ତିକା**—ସ. ବି. ( ପୁତ୍ = ଅନୁକରଣ ଶବ୍ଦ + ତନ୍ ଧାତୁ = ବିସ୍ତାର
Puttikā କରିବା + ଅ + ସ୍ୱାର୍ଥେ. କ + ସ୍ତ୍ରୀ. ଆ )—
୧ । ଛୋଟ ମହୁମାଛି; କଳଟ ମହୁମାଛି—
1. An humble bee; a small bee.
୨ । ପୋତକ; ପକ୍ଷ ଥିବା ସୂକ୍ଷ୍ମ ଛୋଟ ପୋକ—
2. Tiny flying insect
୩ । ଉଇ—3 White ant.

**ପୁତ୍ତୋମ ଗୁଣ୍ଡି ଖାଇ**—ପ୍ରାଦେ (ଗଞ୍ଜାମ). ବି.—(ସ୍ତ୍ରୀମାନଙ୍କୁ ଗାଳିଦେବାରେ
Puttoma gurdi khāi ବ୍ୟବହୃତ)—ପୁତଖାଇ (ଦେଖ)—
( A term of abuse amongst women)—
Putakhai (See)
[ ଦ୍ର—ସ୍ତ୍ରୀମାନେ କଳି କଜିଆ ସମୟରେ 'ପୁତ୍ତୋମ ଗୁଣ୍ଡି ଖାଇ' ବୋଲି ପରସ୍ପର ମଧ୍ୟରେ ଗାଳି ଦିଆ ଦେଇ ଥାଆନ୍ତି । ]

**ପୁତ୍ର(ତ୍ତ୍ର)**—ସ ବି. ପୁଂ (ପୂ ଧାତୁ=ପବିତ୍ର କରିବା+କର୍ତ୍ତୃ ତ୍ର ବା ପୁତ୍=
Putra(ttra) ନରକ ବିଶେଷରୁ + ତ୍ରୈ ଧାତୁ=ତ୍ରାଣ କରିବା + କର୍ତ୍ତୃ ଅ; ଯେ ପିତାମାତାଙ୍କୁ ପବିତ୍ର କରେ ବା ପୁତ୍ ନାମକ ନରକରୁ ଉଦ୍ଧାର କରେ । ]
୧ । ଆତ୍ମଜ; ତନୟ; ପୁଅ, ନନ୍ଦନ—1. Son.
[ ଦ୍ର—ମନୁ ସଂହିତା ଶାସ୍ତ୍ର ଅନୁସାରେ ପୁତ୍ର ୧୨ ପ୍ରକାର ଯଥା—
୧ । ଔରସ=ଆପଣାଦ୍ୱାରା ଆପଣା ସ୍ତ୍ରୀ ଗର୍ଭରେ ଉତ୍ପନ୍ନ ସନ୍ତାନ—
1. One's begotten son on his wife.
୨ । କ୍ଷେତ୍ରଜ=ମୃତ, ବ୍ୟାଧିଗ୍ରସ୍ତ, କ୍ଲୀବ ବା ଅସମର୍ଥ ବ୍ୟକ୍ତିର ଅନୁମତି କ୍ରମେ ତାହା ସ୍ତ୍ରୀ ଗର୍ଭରୁ ଧର୍ମବିଧି ଅନୁସାରେ ଦେବରାଦି ଅନ୍ୟ ପୁରୁଷର ଔରସ ଉତ୍ପନ୍ନ ପୁତ୍ର—

2 A son begotten on the wife of an impotent or deceased person by a near kinsman.

୩ । ଦତ୍ତ୍ରିମ ବା ଦତ୍ତକ=ଜନ୍ମଦାତା ପିତାମାତାଙ୍କ ନିକଟରୁ ସ୍ୱେଚ୍ଛାରେ ବା ଦୁର୍ଭିକ୍ଷାଦି ବିପତ୍କାଳରେ ଦାନ ରୂପେ ପ୍ରାପ୍ତ ବାଳକ, ପୋଷ୍ୟ ପୁତ୍ର—3 An adopted son.

୪ । କୃତ୍ରିମ ପୁତ୍ର ବା ପାଳିତ ପୁତ୍ର=ଅନ୍ୟର ଗୁଣବନ୍ତ ପୁତ୍ରକୁ ପୁତ୍ର ରୂପେ ଗ୍ରହଣ କରି ପାଳିଥିବା ପୁତ୍ର—4 A made son, another person's son affiliated to a person who becomes attached to him for his good qualities.

୫ । ଗୂଢ଼ୋତ୍ପନ୍ନ ବା ଗୂଢ଼ଜ=ଭର୍ତ୍ତୃଗୃହରେ ପର ପୁରୁଷ ସଂସର୍ଗରେ ସ୍ତ୍ରୀ ଗର୍ଭରେ ଗୁପ୍ତ ଭାବରେ ଉତ୍ପନ୍ନ ବାଳକ—A son of concealed parentage

୬ । ଅପବିଦ୍ଧ=ଜନ୍ମଦାତା ମାତାପିତାଙ୍କଦ୍ୱାରା ପରିତ୍ୟକ୍ତ ଓ ଅନ୍ୟ ବ୍ୟକ୍ତି ଦ୍ୱାରା ଗୃହୀତ ଓ ପାଳିତ ପୁତ୍ର—6. A son abandoned by his parents and brought up by a third person.

୭ । କାନୀନ=ଅବିବାହିତା କନ୍ୟାର ଗର୍ଭଜାତ ପୁତ୍ର—
7 A maid's son; a son born out of wedlock.

୮ । ସହୋଢ଼=ବିବାହ ପୂର୍ବରୁ କନ୍ୟା ଗର୍ଭବତୀ ହୋଇ ବିବାହ ପରେ ଜନ୍ମ କରିଥିବା ସନ୍ତାନ—8. A son conceived before but born after marriage.

୯ । କ୍ରୀତକ=ମାତାପିତାଙ୍କଠାରୁ କିଣି ନେଇ ପାଳିଥିବା ପୁତ୍ର—
9. Purchased son.

୧୦ । ପୌନର୍ଭବ=ସ୍ୱାମୀଦ୍ୱାରା ପରିତ୍ୟକ୍ତା ବା ବିଧବା ସ୍ତ୍ରୀର ଗର୍ଭରେ ଦ୍ୱିତୀୟ ବ୍ୟକ୍ତି ଔରସରେ ଜାତ ପୁତ୍ର—10. Widow's son; a son of a widow or an abandoned wife,

୧୧ । ସ୍ୱୟଂ ଦତ୍ତ=ଯେ ନିଜେ ପିତାମାତାଙ୍କ ବିନାନୁମତିରେ ବା ଅବିଦ୍ୟମାନରେ ଅନ୍ୟବ୍ୟକ୍ତିଙ୍କ ହାତରେ ଆପଣାକୁ ପୁତ୍ରରୂପେ ସମର୍ପଣ କରେ—11. Self-given son; a son who affiliates himself to a stranger.

୧୨ । ପାରଶବ, ଶୌଦ୍ର ବା ଦାସୀପୁତ୍ର=ଦ୍ୱିଜାତି ପିତାଙ୍କ ଔରସରେ ଶୂଦ୍ରାମାତା ଗର୍ଭରୁ ଉତ୍ପନ୍ନ ପୁତ୍ର—12. Concubine's son, a son of one's Śūdra mistress.

କଳି ଯୁଗରେ ୧ମ (ଔରସ) ଓ ୩ୟ (ଦତ୍ତକ) ପୁତ୍ର ପିଣ୍ଡଦ ଓ ଧନାଧିକାରୀ ଅଟନ୍ତି । ]

୨ । ପୁଂ ସନ୍ତାନ—2. Male child.

୩ । (ଜ୍ୟୋତିଷ) ଲଗ୍ନଠାରୁ ଗଣିକରି ପଞ୍ଚମ ସ୍ଥାନ—
3. (Astrology) The 5th mansion counted from the lagna in a persons horoscope.

୪ । ଜୀବ ଶାବକ; ଛୁଆ—
4. The young one of an animal (Apte) ,

୫ । ସ୍ନେହ ସମ୍ବୋଧନ; ଆପଣାଠାରୁ ବୟସରେ ଅତି ସାନ ବ୍ୟକ୍ତି ବା ସାଧାରଣ ବାଳକ ପ୍ରତି ବୟୋଜ୍ୟେଷ୍ଠ ବ୍ୟକ୍ତିଙ୍କର ସମ୍ବୋଧନ—4. A term of endearment used in addressing a person much younger than oneself (Apte).

୬ । (ସମାସରେ ଅନ୍ୟଶବ୍ଦ ପରେ ବ୍ୟବହୃତ, ଯଥା ଶିଳାପୁତ୍ର; ଅସିପୁତ୍ର) କୌଣସି ଶ୍ରେଣୀର କ୍ଷୁଦ୍ରାବୟବ ବସ୍ତୁ—
6. Anything little or small of its kind (Apte).

**ପୁତ୍ରଂଜୀବ** – ସଂ. ବି—(ପୁତ୍ରଂ=ପୁତ୍ରକୁ+ଜୀବ ଧାତୁ+ଅ; ଏହା ସେବନ Putramjiba କଲେ ଗର୍ଭସଂସ୍କାର ହେବାରୁ ଏହି ନାମ)—ପୁତ୍ରଜୀବ (ପୁତ୍ରଞ୍ଜୀବ—ଅନ୍ୟରୂପ) (ଦେଖ)—Putrajiba (See).

**ପୁତ୍ରକ**—ସଂ. ବି. ପୁଂ —(ପୁତ୍ର+ସ୍ୱାର୍ଥେ. କ)—୧ । ପୁତ୍ର—
Putraka 1. Son.

ପୁତ୍ରକା } ସ୍ତ୍ରୀ
ପୁତ୍ରିକା }

୨ । (ସମ୍ବୋଧନ) ପୁତ୍ରପରି ସ୍ନେହର ପାତ୍ର—
2. A term of endearment used in respect of a person whom one looks upon as his son.

୩ । ଧୂର୍ତ୍ତ ବା ଶଠ ବ୍ୟକ୍ତି—
3. A rogue; a cheat (Apte).

୪ । ପତଙ୍ଗକ; ଝିଣ୍ଟିକା—
4. Grass hopper; locust (Apte).

୫ । କଣ୍ଢେଇ—5. A doll; puppet (Apte).

୬ । ଶରଭ, ଅଷ୍ଟପଦୀ କାଳ୍ପନିକ ଜୀବବିଶେଷ—
6 A fabulous animal with 8 feet (Apte).

୭ । ଦୟା ବା କରୁଣାର ପାତ୍ର—
7 A pitiable person (Apte).

୮ । ଅଳକ୍ତକ ପଟ୍ଟିକା (କ୍ଷୀରସ୍ୱାମୀ) —8. A beaten cotton pad saturated with lac-dye.

**ପୁତ୍ର କଷ୍ଟ**—ସଂ. ବି—(ମ. ପ. ଲୋ)—୧ । ପୁତ୍ରର ମରଣଜନିତ ଦୁଃଖ—
Putra kashta 1. Agony or sorrow due to the death of one's son.

> ବାର ବରଷର ଭିତରେ ଥିଲେ ସୁତ
> ଉଜାଡ଼ି ଗଲ ଯାଇ ଦେବା ପୁତ୍ରକଷ୍ଟ—କୃଷ୍ଣସିଂହ-ମହାଭାରତ ବନ ।

୨ । ଅପୁତ୍ରକ ହେବାରୁ ମନରେ ଜାତ କଷ୍ଟ—
2. Grief due to a person being sonless.

୩ । ପୁତ୍ର ବିଚ୍ଛେଦ ଦୁଃଖ—
3. Pangs of separation from one's son.

> ରଜା ବୋଲନ୍ତି ମନଶ୍ରେଷ୍ଠ
> ମୋର ହୋଇଛି ପୁତ୍ରକଷ୍ଟ—ଜଗନ୍ନାଥ ଭାଗବତ । .

**ପୁତ୍ରକଷ୍ଟି**—ଦେ. ବିଣ—(ପୁଂ ଓ ସ୍ତ୍ରୀ) (ସଂ. ପୁତ୍ର କଷ୍ଟ+ଇନ୍)— .
Putrakashti ଅପୁତ୍ରକ ହେବାରୁ ଦୁଃଖଭୋଗ କରୁଥିବା—
Grieved for want of a son.

> ନିନ୍ଦା କରୁଣ ଅର୍ଥେ ଉକ୍ତ
> ଅନ୍ୟ ନିଜ ପୁତ୍ରକଷ୍ଟି—ଜଗନ୍ନାଥ ଭାଗବତ ।

**ପୁତ୍ରକା**—ସଂ. ବି. ସ୍ତ୍ରୀ—(ପୁତ୍ରକ+ସ୍ତ୍ରୀ. ଆ)—୧ । କନ୍ୟା—
Putrakā 2. Daughter.
୨ । ପୁତ୍ତଳିକା, ପିତୁଳା; କଣ୍ଢେଇ—
2. Image; doll; idol.
୩ । ଅଳତା ପତ୍ର—
3. A sheet of lac-cotton.

**ପୁତ୍ର କାମ(ମୀ)**—ସଂ. ବିଣ. ପୁଂ. (ବ ବ୍ରୀହି; ପୁତ୍ର+କାମ, ପୁତ୍ର+କାମ, Putra kāma(mi) +ଇନ୍; ୧ମା.୧ବ)—ପୁତ୍ରାଭିଳାଷୀ; ପୁତ୍ରଟିଏ
ପୁତ୍ରକାମା / ପୁତ୍ରକାମିନୀ } ସ୍ତ୍ରୀ ହେବା ପାଇଁ ଯେ କାମନା କରେ—
Wishing to be blessed with a son; desirous of having a son born to him

**ପୁତ୍ର କାମନା**—ସଂ. ବି—(ମ. ପ. ଲୋ)—ଆପଣାର ପୁଅ ଜନ୍ମିବା ପାଇଁ
Putra kāmanā ମନରେ ଜନ୍ମିବା ଇଚ୍ଛା—A desire to be
(ପୁତ୍ରକାମ୍ୟା—ଅନ୍ୟରୂପ) blessed with a son.

**ପୁତ୍ରକୃତ**—ସଂ. ବି—ପୋଷ୍ୟପୁତ୍ର—
Putrakṛut An adopted son (Apte).
(ପୁତ୍ରକୃତକ - ଅନ୍ୟରୂପ)

**ପୁତ୍ରଜଗ୍ଧୀ**—ସଂ. ବି. ସ୍ତ୍ରୀ—(ପୁତ୍ର+ଅଦ ଧାତୁ+କର୍ତ୍ତୃ. ତ+ସ୍ତ୍ରୀ. ଈ)—
Putrajagdhī ପୁତ୍ରଖାଈ, ଯେ ଆପଣା ପିଲାଙ୍କୁ ଖାଇଯାଏ—An
(ପୁତ୍ରଦ୍ଵେଷୀ—ଅନ୍ୟରୂପ) unnatural mother who devours her own children (Apte).

**ପୁତ୍ରଜୀବ**—ସଂ ବି—(ପୁତ୍ର+ଜୀବ ଧାତୁ+ଅ. ଯାହା ଦ୍ଵାରା ପୁଅ ଜିଏଁ)-
Putrajība (ଆୟୁର୍ବେଦ ମତେ ଏହା ଗର୍ଭଧାରକ ବା ପୁତ୍ରଜୀବ
ସଂ. ନାମ—ଗର୍ଭକର, ଯଷ୍ଟିପୁଷ୍ପ, ଜନମନ୍ତେ ବିଶେଷ ଉପକାରୀ ଔଷଧ
ଅର୍ଥସାଧକ, ପୁତ୍ରଜୀବକ, ଥିବାରୁ )—ପୋଇଗୁନ୍ଦିଆ ଗଛ,
ପୁତ୍ରଜୀବ, ପୁତ୍ରଂଜୀବ ବକୁଳ ପତ୍ରପରି ପତ୍ରବିଶିଷ୍ଟ ଇଙ୍ଗୁଦୀ
ଜିୟାପୁତା, ଜିୟାପୋତା ଜାତୀୟ ପାର୍ବତ୍ୟ ବୃକ୍ଷବିଶେଷ—
पितौजिया, जातापुत्रज, पुतजीव Callicarpa Arboria;
ମ. ଜୀବନ୍ ପୁତ୍ରର Putranjiva Roxburghii,
ତେ. କବର ଜୁବ୍ବି, ଗର୍ଭସ୍ତ Nagera Putranjiba.
ଗୁ. ପୁତ୍ରଜୀବ [ବି—ଏହାର କ୍ଷୁଦ୍ର ପୁଷ୍ପ ଓ
ଫଳ ହୁଏ । ଫଳ ପେଡ଼ିଲେ ତେଲ ବାହାରେ ଓ ଏ ତେଲରେ ଦୀପ ଜଳାଯାଏ । କୋଳ ପାଚ ଶୁଖିଗଲେ କଳା ଓ ଟାଣ ହୁଏ ଏବଂ ଲୋକେ ଏହାକୁ ମାଳା ଗୁନ୍ଥି ବ୍ୟବହାର କରନ୍ତି । ଚୈତ୍ର ଓ ବୈଶାଖରେ ଏ ଗଛ ଫୁଲ ଧରେ। ଏ ଗଛର ଛାଲ, ପତ୍ର ଓ ମଞ୍ଜି ଔଷଧରେ ଲାଗେ ।
ଅମରକୋଷରେ ଇଙ୍ଗୁଦୀ ଓ ପୁତ୍ରଜୀବ ଗଛ ଏକ ବୋଲି ଲେଖା ଅଛି । ବୈଦ୍ୟକମତରେ ଏହା ଗୁରୁ, ଶୁକ୍ରବର୍ଦ୍ଧକ, ଗର୍ଭପ୍ରଦ, କଫଘ୍ନ, ବାତନାଶକ, ମଳମୂତ୍ର ନିଃସାରକ, ରୁକ୍ଷ ଓ ଶୀତବୀର୍ଯ୍ୟ ।]

**ପୁତ୍ରଦା**—ସଂ. ବି ସ୍ତ୍ରୀ—( ପୁତ୍ର+ଦା ଧାତୁ+କର୍ତ୍ତୃ. ଅ+ସ୍ତ୍ରୀ. ଆ)—
Putrada ୧ । ବନ୍ଧ୍ୟାକର୍କୋଟିକା (ହି. ଶ.) ଅଶାରୁଆ (ଲତା ଓ ଫଳ)—1. Memordica Dioicicamale (creeper and fruit).
୨ । ଲକ୍ଷ୍ମଣା କନ୍ଦ (ହି. ଶ.) (ଦେଖ)—
2. Lakshmanā kanda (See).
୩ । ଶ୍ଵେତ କଣ୍ଟକାରୀ (ହି. ଶ.)—
3. The white flowered Barleria (plant)
୪ । ଜୀବନ୍ତୀ (ହି. ଶ.) (ଦେଖ)—
4. Jībanti (See) (plant)

**ପୁତ୍ର ଦାତା**—ସଂ. ବିଣ. ପୁଂ. (ପୁତ୍ର+ଦାତୃ, ୧ମା. ୧ବ)—ଯେଉଁ
Putradātā ଦେବତା ବା ମହାପୁରୁଷ ବରଦାନ ପୂର୍ବକ ଅପୁତ୍ରକ
(ପୁତ୍ରଦ, ପୁତ୍ରପ୍ରଦ—ଅନ୍ୟରୂପ) ବ୍ୟକ୍ତିଙ୍କୁ ପୁତ୍ର ଦିଅନ୍ତି—
(ପୁତ୍ରଦାତ୍ରୀ, ପୁତ୍ରଦା, ପୁତ୍ରପ୍ରଦା—ସ୍ତ୍ରୀ) Bestowing a person with a son by one's boons

**ପୁତ୍ର ଦାତ୍ରୀ** ସଂ. ବି— ଶ୍ଵେତ କଣ୍ଟକାରୀ—
Putra dātri The white flowered Barleria.
ସଂ. ବିଣ. ସ୍ତ୍ରୀ—ପୁତ୍ରଦାତାର ସ୍ତ୍ରୀଲିଙ୍ଗ- -
Feminine of Putradatā

**ପୁତ୍ର ଧର୍ମ**—ସଂ. ବି. (୬ଷ୍ଠୀ ତତ୍, ପୁତ୍ର+ଧର୍ମ)—ପିତା ମାତାଙ୍କ ପ୍ରତି
Putra dharma ପୁତ୍ରର କର୍ତ୍ତବ୍ୟ କର୍ମ - Filial duty (Apte).

**ପୁତ୍ର ପୌତ୍ରାଦି କ୍ରମ**—ସଂ. ବି—ବଂଶରେ ପୁଅ, ନାତି, ଅଣନାତି ଓ
Putrapautrādi krama ପଣନାତିଆଦି ଜନ୍ମିବାରୂପ ଧାରା—
Successive generations of sons, grandsons and great grandsons in a family.

**ପୁତ୍ରପୌତ୍ରାଦି କ୍ରମେ**—ଦେ. କ୍ରି. ବିଣ. (କବାଲାରେ ଲେଖାଯିବା ଭାଷା,
Putrapautrādi krame ସଂ. ପୁତ୍ରପୌତ୍ରାଦି କ୍ରମେଣ)—
ବାପ ପରେ ପୁଅ, ପୁଅ ପରେ ନାତି ଓ ନାତି ପରେ ଅଣନାତି ଏହିପରି କ୍ରମରେ (ସମ୍ପତ୍ତି ଭୋଗ କରିବା)—
By heriditary succession
(ଯଥା—ବିକ୍ରେତୃ ସମ୍ପତ୍ତିରେ ଆପଣ ମୁସ୍ତରର ପୁତ୍ରପୌତ୍ରାଦି କ୍ରମେ ମାଲିକ ଓ ଦଖଲକାର ହେଲ, ହେବ, ହେଲେ ଓ ହେବେ ।)

**ପୁତ୍ରପୌତ୍ରୀୟ**—ସଂ. ବିଣ. (ପୁତ୍ର+ପୌତ୍ର+ଈୟ)—
Putrapautriya ବଂଶାନୁକ୍ରମରେ ପ୍ରାପ୍ତ ବା ଚଳିଥିବା—
Transmitted from father to son and from son to grandson and so forth, heriditary (Apte).

**ପୁତ୍ର ବଧୂ**—ସଂ ବି. ସ୍ତ୍ରୀ. (୬ଷ୍ଠୀ ତତ୍)—ପୁଅର ସ୍ତ୍ରୀ; ବୋହୂ—
Putra badhū Daughter-in-law.

**ପୁତ୍ରବାନ୍**—ସଂ. ବିଣ. ପୁଂ. (ପୁତ୍ର+ଅସ୍ତି ଅର୍ଥରେ ବତ୍, ୧ମା. ୧ବ)—
Putrabān ଯାହାର ପୁଅଥାଏ—Having a son.
(ପୁତ୍ରବତୀ—ସ୍ତ୍ରୀ)

**ପୁତ୍ର ଲାଭ**—ସଂ. ବି. (୬ଷ୍ଠୀ ତତ୍)—ନିଜର ପୁଅ ଜନ୍ମହେବା—
Putra lābha Being blessed with a son.

**ପୁତ୍ର ଶୋକ**—ସଂ. ବି. (ମ. ପ. ଲୋ) - ୧ । ପୁତ୍ରର ମୃତ୍ୟୁଜନିତ ଶୋକ—
Putra śoka 1. Grief due to the death of one's son.
୨ । ପୁତ୍ରର ବିଚ୍ଛେଦ ଜନିତ ଶୋକ—2. Grief due to the separation from one's son.
(ଯଥା—ଦଶରଥ ପୁତ୍ର ଶୋକରେ ପ୍ରାଣତ୍ୟାଗ କଲେ ।)

**ପୁତ୍ରଶୋକୀ**—ଦେ. ବିଣ. (ପୁଂ ଓ ସ୍ତ୍ରୀ, ସଂ. ପୁତ୍ର ଶୋକ+ଇନ୍)—
Putraśokī ପୁତ୍ରର ମୃତ୍ୟୁ ବା ବିଚ୍ଛେଦଜନିତ ଶୋକଦ୍ୱାରା ସନ୍ତପ୍ତ—Sorrowing for the death of or separation from one's son

ସେ ଅର୍ଜୁନ ଏବେ ପୁତ୍ରଶୋକୀ ହୋଇ
ମାରିବ ମୋତେ ଯେ ପୁତ୍ରଙ୍କ ଅଛି ନାହିଁ । କୃଷ୍ଣଦାସ ମହାଭାରତ ଦ୍ରୋଣ

**ପୁତ୍ରିକ**—ସଂ. ବିଣ ପୁଂ (ପୁତ୍ର+ଅଛି ଅର୍ଥରେ. କ, ଇ ଆଗମ)—
Putrika ପୁତ୍ରଯୁକ୍ତ, ଯାହାର ପୁତ୍ର ହୋଇଅଛି, ପୁତ୍ରବାନ୍, ସପୁତ୍ର—
(ପୁତ୍ରିକା—ସ୍ତ୍ରୀ) (ଅପୁତ୍ରିକ—ବିପରୀତ) Having a son

**ପୁତ୍ରିକା**—ସଂ. ବି. ସ୍ତ୍ରୀ. (ପୁତ୍ରକ+ସ୍ତ୍ରୀ ଆ)—୧ । କନ୍ୟା, ଝିଅ—
Putrikā 1. Daughter.

ମୋହନ ଜ ପୁତ୍ର ପୁତ୍ରିକା କିଛି ନାହିଁ । କୃଷ୍ଣଦାସ, ମହାଭାରତ ସଭା ।

୨ । ଅପୁତ୍ରିକ ପିତାଙ୍କ ଉତ୍ତରାଧିକାରୀ ଜନ୍ମ କରିବା ଉଦ୍ଦେଶ୍ୟରେ ବିବାହରେ ଦତ୍ତ କନ୍ୟା—2 A daughter appointed by a sonless father to raise a male issue for him and given in marriage with that end in view

[ ଦ୍ର—ଅପୁତ୍ରକ ପିତା ଆପଣା କନ୍ୟାର ପୁତ୍ର ଜନ୍ମିଲେ ସେ ଆପଣାର ଉତ୍ତରାଧିକାରୀ ହେବ ବୋଲି ସଂକଳ୍ପ କରି ଯେଉଁ କନ୍ୟାକୁ ବିବାହ ଦେଇ ଥାଆନ୍ତି ତାକୁ ପୁତ୍ରିକା ବୋଲାଯାଏ ଓ ଉକ୍ତରୂପେ ମାତାମହଙ୍କ ସମ୍ପତ୍ତିର ଅଧିକାରୀ ସନ୍ତାନକୁ ପୁତ୍ରିକାପୁତ୍ର ବୋଲାଯାଏ—ହିନ୍ଦୁସ୍ମୃତି । ]

୩ । ପିତୁଳା; କଣ୍ଢେଇ—3 A doll; puppet.

୪ । ବାଲ୍ୟକାଳରୁ ପରିବାର ମଧ୍ୟରେ ଲାଳିତାପାଳିତା ଦାସୀ—
4. A maid servant brought up in a harem from childhood and used as a concubine by the master.

୫ । କ୍ଷୁଦ୍ର ମହୁମାଛି; ପୁତ୍ତିକା—5. A small bee.

୬ । ଝାଉଁଗଛର କୋମଳ ଲୋମବତ୍ ତନ୍ତୁ—6 The cotton or down of the Tamarisk (Apte).

୭ । ଆଖିର ପିତୁଳା (ହି. ଶ)—
7. The pupil of the eye (Apte).

୮ । ସ୍ତ୍ରୀଲୋକର ଚିତ୍ର (ହି ଶ)—
8. A picture or photo of a woman.

୯ । (ସମାସରେ ଶବ୍ଦ ପରେ ବ୍ୟବହୃତ, ଯଥା—ଖଡ୍ଗ ପୁତ୍ରିକା, ଅସିପୁତ୍ରିକା)—କୌଣସି ଶ୍ରେଣୀର କ୍ଷୁଦ୍ର ବସ୍ତୁ—
9 Any thing small or little of its kind (Apte).

**ପୁତ୍ରିକା ପୁତ୍ର**—ସଂ ବି. (ଷଷ୍ଠୀ ତତ; ପୁତ୍ରିକା+ପୁତ୍ର)—
Putrikā putra ୧ । (ପୁଂ (ହିନ୍ଦୁସ୍ମୃତି)ଏହି କନ୍ୟାର ପୁତ୍ର ଜାତ (ପୁତ୍ରିକାସୁତ—ଅନ୍ୟରୂପ) ହେଲେ ସେ ମୋର ଉତ୍ତରାଧିକାରୀ ହେବ ବୋଲି ସଂକଳ୍ପ କରି ପିତା ଯେଉଁ କନ୍ୟାକୁ ବିବାହ ଦେଇ ଥାଆନ୍ତି ସେହି କନ୍ୟାଠାରୁ ଉତ୍ପନ୍ନ ସନ୍ତାନ (ମନୁ. ୯।୧୨୭)—1. (Hindu law) The son of one's appointed daughter; a daughter's son who, by previous appointment, becomes the son of the sonless grandfather

୨ । (ସ୍ତ୍ରୀ) (ମ. ପ ଲୋ) (ହିନ୍ଦୁସ୍ମୃତି, ମିତାକ୍ଷରା, ଯାଜ୍ଞବଲ୍କ୍ୟ ୨।୧୨୮) ଅପୁତ୍ରକ ପିତାର ପୁତ୍ରରୂପେ ଯେଉଁ କନ୍ୟା ବିବାହ ପରେ ପିତୃଗୃହକୁ ଫେରି ଆସେ—2. A daughter who, being regarded as a son, returns to her father's house after her marriage. (Apte)

୩ । (ପୁଂ) ଦୌହିତ୍ର, କନ୍ୟାର ପୁତ୍ର—
3 Grandson; one's daughter's son (Apte)

**ପୁତ୍ରିକା ପ୍ରସୂ**—ସଂ. ବି. ସ୍ତ୍ରୀ. (ପୁତ୍ରିକା+ପ୍ର+ସୂ ଧାତୁ+କର୍ତ୍ତ୍ତୃ. କ୍ୱିପ୍)—
Putrikā prasū ଯେଉଁ ସ୍ତ୍ରୀ କେବଳ କନ୍ୟା ଜନ୍ମ କରେ; ଝିଅ-ବିଆଣୀ ସ୍ତ୍ରୀ—A mother of daughters only (Apte)

**ପୁତ୍ରିଣୀ**—ସଂ. ବିଣ. ସ୍ତ୍ରୀ. (ପୁତ୍ରିନ୍+ଈ)—ପୁତ୍ରୀର ସ୍ତ୍ରୀଲିଙ୍ଗ—
Putriṇī Feminine of Putrī.

ସ. ବି. ସ୍ତ୍ରୀ—୧ । ପୁତ୍ରବତୀ ସ୍ତ୍ରୀ; ପୁଅଥିବା ସ୍ତ୍ରୀ; ପୁଅର ମା—
1. A woman who is the mother of a son or sons.

୨ । ମଲ୍ଲାଙ୍ଗ, ପରବୃକ୍ଷପ୍ରିୟ ଲତା—
2. A parasitic plant

**ପୁତ୍ରୀ**—ସଂ. ବି. ପୁଂ (ପୁତ୍ର+ଇନ୍,୧ମା; ୧ବ)—୧ । ପୁତ୍ରବାନ୍ ବ୍ୟକ୍ତି—
Putrī 1. A person having a son

୨ । ପିତା—2 Father

ସ୍ତ୍ରୀ—( ପୁତ୍ର+ଈ )—୩ । କନ୍ୟା, ଝିଅ—
3. Daughter.

୪ । ଦୁର୍ଗା—4. A name of Durgā (Apte).

**ପୁତ୍ରି(ତ୍ରୀ)ୟ**—ସଂ. ବିଣ (ପୁତ୍ର+ଇୟ, ଈୟ)—ପୁତ୍ରସମ୍ବନ୍ଧୀୟ—
Putri(trī)ya Relating to a son; filial

**ପୁତ୍ରେଷ୍ଟି**—ସଂ. ବି (ପୁତ୍ର+ଇଷ୍ଟି=ଯାଗ)—ପୁତ୍ରକାମନା ପୂର୍ବକ ଅନୁଷ୍ଠିତ ଯଜ୍ଞ—A vedic sacrifice performed for being blessed with a son or sons
Putreshṭi
( ପୁତ୍ରେଷ୍ଟିକା—ଅନ୍ୟରୂପ )

**ପୁତ୍ର୍ୟ**—ସଂ. ବିଣ (ପୁତ୍ର+ସମ୍ବନ୍ଧାର୍ଥେ. ଯ)—ପୁତ୍ରସମ୍ବନ୍ଧୀୟ—
Putrya Filial.

**ପୁଥି**—ପ୍ରାଦେ ( ବାଲେଶ୍ୱର ଓ ସମ୍ବଲପୁର ) ବି ( ସଂ. ପୁସ୍ତକ; ତୁଳ. ବ. ପୁଁଥି)—୧ । ପୁସ୍ତକ—1 Book
Puthi

୨ । ପୋଥି—2 Palmleaf manuscript

**ପୁଦ(ଦି)ନା**—ଦେ. ବି (ସଂ. ପୁତନା;ପୁଦିନ, ଫା. ପୋଦନାହ୍)—ପୋଦନା ଶାଗ, ପୋଦନାଶାଗ; ତୁଳସ୍ୟାଦିବର୍ଗର ସୁଗନ୍ଧ କ୍ଷୁଦ୍ର ଶାକବିଶେଷ—Marsh mint, Mentha Viridis; Mentha Arvenis; Mentha Sativa.
Puda(di)nā

ସଂ. ବହ୍ନିଜନନୀ, ରୋଚନୀ, ପୁଦିନ, ପୂତନା, ଶାକଶୋଭନ, ବାନ୍ତିହାରୀ, ସୁଗନ୍ଧପତ୍ର, ଅଗ୍ନିଦୀପକ
ହି. पुदिना, पुदिनाशाक
ମ. पौदिनाह, पुदिना, पादिना
ଗୁ. ଫୋଦିନା
ତେ. ପୁଦିନା

[ ଦ୍ର—ଏହାର ଚଟୁଣି ହୁଏ ଓ ଏଥିର ପତ୍ରରୁ ପିପରମେଣ୍ଟ

ମ. ପୁଦ୍ନା
ଫା. ପୋଓ୍ନା, ଅ. ଫବା
ପୋଦ୍ନା
ପୋଦନା
ପୁଦ୍ନା
ପୋଦନା } ଅନ୍ୟରୂପ

( peppermint ) ଅର୍କ ତିଆର ହୁଏ । ଏହା ଅରୁଚି ଓ ଅଜୀର୍ଣ୍ଣନାଶକ ।

ଆଉ ଏକପ୍ରକାର ଶାକ ଅଛି ତାହାକୁ ପେପରମେଣ୍ଟ ପୁଦନା (ହି ପୁଦୀନାକାସତ୍= Peppermint or Mentha Piperita) ବୋଲଯାଏ । ପୁଦ୍ନାଜାତୀୟ ଛୋଟପତ୍ରବିଶିଷ୍ଟ ଶାଗକୁ ରୁଦନା ବୋଲଯାଏ । ] ପୁଦ୍ନା ଲଠାଳଆ ଗୁଳ୍ମ, ଭୂଇଁରେ ୧ ହାତ ପର୍ଯ୍ୟନ୍ତ ମାଡେ । ଏହାର ପତ୍ର ୨ ଅଙ୍ଗୁଳ ଲମ୍ବ ଓ ଦେଢ ଅଙ୍ଗୁଳ ଚଉଡ଼ା ହୁଏ । ପତ୍ରର ଅଗ ଦନ୍ତୁର ଓ ଦେହ ରୁକ୍ଷ । ଡାଳ ପୋତି ଲୋକେ ପୁଦ୍ନା ଗଛ ଉଠାଅନ୍ତି । ପୁଦନାର ଫଲ ଫଳ ହୁଏ ନାହିଁ; ପେପରମେଣ୍ଟ ପୋଦନାର ଶ୍ୱେତାଭ ଫୁଲ ହୁଏ ମାତ୍ର । ଏହା ରୁଚିକର, ଅଜୀର୍ଣ୍ଣନାଶକ, ମୁଖର ଜଡ଼ତାନାଶକ, କଫବାୟୁନିବାରକ, ବଳକର ଓ ବମନ ନିବାରକ । ଏହା ଏ ଦେଶର ଗଛ ନୁହେ । ]

**ପୁଦ୍ଗଲ**—ସଂ. ବି (ପୁତ୍=କୁତ୍ସିତ+ଗଲ୍ ଧାତୁ=ଗଳିତ ହେବା+କର୍ତ୍ତୃ. ଅ) - ୧ । ଆତ୍ମା—1. Soul.
Pudgala
୨ । ଦେହ—2. Body.
୩ । ପରମାଣୁ—3 Atom; molecule.
୪ । ଶିବ—4. Siba (Apte).
୫ । ଗନ୍ଧତୃଣ ( ହି. ଶ. )—
5. Scented grass.
ସଂ ବିଣ—୧ । ସୁନ୍ଦର—1 Beautiful.
୨ । ସୁଶ୍ରୀକ—2 Handsome; lovely; elegant.

**ପୁନ**—ଦେ. ବି. ପୁଂ —ପୂର୍ଣ୍ଣଚନ୍ଦ୍ରର ଡାକ ନାମ—
Puna Name for calling Pūrnnachandra.
ଦେ. ଅ.—(ସଂ. ପୁନଃ) ପୁନଃ (ଦେଖ) Punah (See)
କଳ ଯାହାକୁ ସଙ୍ଗତା ନାହିଁ, ହୀପ ପ୍ରସନ୍ନ କରିତା ସେହି,
ପୁନ ଛ ଧର୍ମ ସ୍ୱରୂପ ଗ୍ରାହ୍ୟ, କ ସୁଦ ତହିଁ ଯେ । ଲକ୍ଷ୍ମୀ. ବୈଦେହୀଶବିଳାସ,

**ପୁନ ଉତ୍ପତ୍ତି**—ଦେ. ବି.(ସ ପୁନଃ+ଉତ୍ପତ୍ତି=ପୁନରୁତ୍ପତ୍ତି) —ପୁନରୁଦ୍ଭବ (ଦେଖ) Punarudbhaba (See).
Puna utpatti

**ପୁନଃ**—ସଂ. ଅ.—୧ । ପୁନର୍ବାର; ପୁନରପି—
Punah 1. Again.
୨ । ଆଉ ଥରେ—2. Anew, once more.
୩ । ଏବଂ—3. And.
୪ । ପକ୍ଷାନ୍ତରରେ—4. On the other hand.
୫ । ମଧ୍ୟ—5. Also.
୬ । କିନ୍ତୁ—6. But (Apte).
୭ । ଯାହାହେଉ—7. However (Apte).
୮ । ତଥାପି; ତେବେ ମୁଦ୍ଧା—
8. Still; nevertheless (Apte).
୯ । ଅଧିକନ୍ତୁ—9. Further; further more (Apte).
୧୦ । ଏହା ଛଡ଼ା—10. Besides (Apte).
୧୧ । ଅନନ୍ତର; ପରେ (ହି. ଶ)—11. Afterwards; then.

**ପୁନଃ ପାକ**—ସ ବି.—ପୁନର୍ବାର ସିଦ୍ଧ କରିବା—
Punah pāka Repeated or second time boiling

**ପୁନଃ ପୁନଃ**—ସଂ. ଅ—ବାରମ୍ବାର, ଥରକୁ ଥର—
Punah punah Repeatedly; again and again, frequently.

**ପୁନଃ ପୁନା**—ସ. ବି ସ୍ତ୍ରୀ—ବିହାର ଅନ୍ତର୍ଗତ ଗୟାର ତୀର୍ଥ ନଦୀ ବିଶେଷ—
Punah punā Name of a sacred river in Bihar near Gaya.
[ଦ୍ର—ଏ ନଦୀ ଗୟା ପାଖେ ବହି ଯାଇଅଛି । ଏହା କୂଳରେ ହିନ୍ଦୁମାନେ ପିଣ୍ଡଦାନ କରନ୍ତି । ବର୍ଷାଋତୁ ଛଡ଼ା ଅନ୍ୟ ଋତୁରେ ଏହାର ଗର୍ଭରେ ଜଳ ରହେ ନାହିଁ—ହି. ଶ) ।

**ପୁନଃ ସଂସ୍କାର**—ସ. ବି—୧ । ଦ୍ୱିତୀୟବାର ଶୋଧନ ବା ସଂସ୍କାର, ମରାମତି—1. Repair; renovation.
Punah saṁskāra
୨ । ପତିତ ବ୍ୟକ୍ତିକୁ ପ୍ରାୟଶ୍ଚିତ୍ତ କରାଇବା—
2. Conservation or purification of an ostracised person.
୩ । ପୁନର୍ବାର କରାଯିବା ଉପନୟନାଦି ସଂସ୍କାର (ହି. ଶ)
3 Sacraments performed for a second time.

**ପୁନଃ ସଙ୍ଗମ**—ସ. ବି—୧ । ଆଉଥରେ ମିଳନ—
Punah sangama 1. Reunion.
(ପୁନଃ ସନ୍ଧାନ—ଅନ୍ୟରୂପ) ୨ । ଲିଭି ଯାଇଥିବା ହୋମାଗ୍ନିକୁ ପୁଣି ଜଳାଇବା—2 Rekindling the sacred fire, when it has been extinguished (Apte)

**ପୁନଃ ସମ୍ଭବ**—ସ. ବି.—ପୁନର୍ଜନ୍ମ; ମୃତ୍ୟୁପରେ ସଂସାରରେ ଜନ୍ମ ଗ୍ରହଣ—
Punah sambhaba Being born again; metempsychosis (Apte).

**ପୁନ ପୁନ**—ଗ୍ରା. ଅ. ( ସ ପୁନଃ ପୁନଃ )—ବାରମ୍ବାର—
Puna puna Again and again.
ତୃଷ୍ଣା କହନ୍ତି କର ଯୋଡି
ଚରଣେ ପୁନ ପୁନ ପଡ଼ି । ଜଗନ୍ନାଥ. ଭାଗବତ ।

**ପୁନମୀ**—ଗ୍ରା. ବି. ( ସ. ପୂର୍ଣ୍ଣିମା )—ପୂର୍ଣ୍ଣିମା—
Punamī Full moon day.
**पुनवाँसो** (ପୁନମୀ, ପୁର୍ନମୀ—ଅନ୍ୟରୂପ)

**ପୁନର ଜନମ**—ଗ୍ରା. ବି. ( ପଦ୍ୟ ) ( ସ. ପୁନର୍ଜନ୍ମ )—
Punara janama ପୁନର୍ଜନ୍ମ ( ଦେଖ ) Punarjanma ( See )

**ପୁନରପି**—ସଂ. ଅ. (ପୁନଃ+ଅପି)—୧ । ପୁନର୍ବାର; ଆଉ ଥରେ—
Punarapi 1. Again; once more.
୨ । ପୁନଶ୍ଚ; ମଧ୍ୟ, ପୁଣି—2. Also.
୩ । ଏବଂ ମଧ୍ୟ—3. And also.
୪ । ପକ୍ଷାନ୍ତରରେ—4. On the other hand (Apte).
୫ । ଏବଂ ଆଉଥରେ—5. And again

**ପୁନରବାର** – ଗ୍ରା. ଅ – ପୁନର୍ବାର ( ଦେଖ )
Punarabāra Punarbāra ( See )

**ପୁନର ବିଚାର**– ଗ୍ରା.ବି. (କଥିତଆ)(ସଂ ପୁନର୍ବିଚାର)—ପୁନର୍ବିଚାର (ଦେଖ)
Punara bichāra Punarbichāra ( See )

**ପୁନରାଏ**—ଗ୍ରା ଅ. (ସଂ. ପୁନର୍ବାର)—ପୁନରାୟ (ଦେଖ)
Punarāe Punarāya (See).

**ପୁନରାଗତ**—ସଂ. ବିଣ (ପୁନଃ+ଆଗତ)—୧ । ଫେର ଆସିଥିବା, ପ୍ରତ୍ୟାଗତ—1 Returned; come back.
Punarāgata
(ପୁନରାଗତା—ସ୍ତ୍ରୀ) ୨ । ଆଉଥରେ ଆସିଥିବା— 2 Coming again.

**ପୁନରାଗମନ**—ସଂ. ବି. (ପୁନଃ+ଆଗମନ)—୧ । ପ୍ରତ୍ୟାଗମନ, ପ୍ରତ୍ୟାବର୍ତ୍ତନ, ଲେଉଟା—1. Return; coming back.
Punarāgamana
(ପୁନରାଗମ—ଅନ୍ୟରୂପ)
୨ । ପୁନର୍ବାର ଘଟିବା—2. Recurrence
୩ । ଥରେ ମୃତ ହୋଇ ଆଉ ଥରେ ଜନ୍ମ ହେବା, ପୁନର୍ଜନ୍ମ— 3 Rebirth.

**ପୁନରାଧାନ**—ସଂ.ବି.(ପୁନଃ+ ଆଧାନ)—ସ୍ଥାପିତ ହୋମାଗ୍ନିର ପୁନଃ ସ୍ଥାପନ
Punarādhāna Renewing the consecrated fire (Apte).
(ପୁନରାଧେୟ, ପୁନରାହିତ—ବିଣ)

**ପୁନରାବର୍ତ୍ତନ**—ସଂ. ବି. (ପୁନଃ+ଆବର୍ତ୍ତନ)—ପୁନରାଗମନ (ଦେଖ)
Punarābarttana Punarāgamana (See)
(ପୁନରାବର୍ତ୍ତ—ଅନ୍ୟରୂପ)

**ପୁନରାବର୍ତ୍ତିତ**—ସଂ. ବିଣ. (ପୁନଃ+ଆବର୍ତ୍ତିତ)—୧ । ପୁନରାଗତ; ପ୍ରତ୍ୟାଗତ—1 Returned.
Punarābarttita
(ପୁନରାବର୍ତ୍ତିତା—ସ୍ତ୍ରୀ) ୨ । ଆଉ ଥରେ ଘଟିବା— 2. Recurring

**ପୁନରାବର୍ତ୍ତୀ**—ସଂ. ବିଣ. (ପୁନଃ+ଆ+ବୃତ୍ ଧାତୁ+ଇନ୍, ୧ମା. ୧ବ)
Punarābartti ୧ । ପ୍ରତ୍ୟାଗମନଶୀଳ—1. Returning; reverting.
(ପୁନରାବୃତ୍—ଅନ୍ୟରୂପ)
(ପୁନରାବର୍ତ୍ତିନୀ—ସ୍ତ୍ରୀ) ୨ । ଇହଲୋକକୁ ବାରଂବାର ଆଗମନଶୀଳ— 2. Coming to the world again and again; returning to mundane existence (Apte).

**ପୁନରାବୃତ୍ତ**— ସଂ ବିଣ. (ପୁନଃ+ଆବୃତ୍ତ)—ପୁନରାବର୍ତ୍ତିତ (ଦେଖ)
Punarābrutta Punarābarttita (See)
(ପୁନରାବୃତ୍ତା—ସ୍ତ୍ରୀ)

**ପୁନରାବୃତ୍ତି** —ସଂ. ବି. (ପୁନଃ+ଆବୃତ୍ତି)—୧ । ପ୍ରତ୍ୟାବୃତ୍ତି, ପ୍ରତ୍ୟାଗମନ—
Punarābrutti 1. Return; turning or coming back.
୨ । ଆଉ ଥରେ ପଢ଼ିବା—
2. Reading again.
୩ । (ପାଠ ଆଦି) ଘୋଷିହେବା—2. Getting by heart.
୪ । ପୁନର୍ବାର ବୋଲିବା—4. Recitation; repetition.
୫ । ପୁନର୍ଜନ୍ମ—5. Rebirth (Apte).
୬ । କୌଣସି ଗ୍ରନ୍ଥର ଆଉ ଥରେ ସଂସ୍କରଣ—
6. Another edition of a book (Apte).
୭ । କଥିତ ବା ଲିଖିତ ବା ପଠିତ ବିଷୟର ପୁନର୍ବାର ଆଲୋଚନା
8. Revision (Apte).

**ପୁନରାୟ**—ଦେ ଅ.—(ସଂ. ପୁନର୍ବାର)—୧ । ପୁଣି, ପୁନର୍ବାର; ଫେର—
Punarāya 1 Again.
पुनवाय ୨ । ଅଧିକନ୍ତୁ—2 Moreover
फेर, फोगा ୩ । ଆଉ ଥରେ— 3. Once again.

**ପୁନରାୟାତ**—ସଂ. ବିଣ (ପୁନଃ+ଆୟାତ)—ପୁନରାଗତ (ଦେଖ)
Punarāyāta Punarāgata (See)
(ପୁନରାୟାତା—ସ୍ତ୍ରୀ)

**ପୁନରୁକ୍ତ**—ସଂ. ବିଣ. (ପୁନଃ+ଉକ୍ତ)—୧ । ଆଉ ଥରେ କଥିତ—
Punarukta 1. Spoken again; repeated.
୨ । ଅନାବଶ୍ୟକ ଓ ଅତିରିକ୍ତ—
2. Superfluous; unnecessary (Apte).

**ପୁନରୁକ୍ତ ଜନ୍ମା**—ସଂ. ବି ପୁଂ. (ପୁନଃ+ଉକ୍ତ=କଥିତ+ଜନ୍ମନ୍ ଯାହାର ୧ମା. ୧ବ, ଯେ ଥରେ ଜନ୍ମ ହେଲା ପରେ ଆଉଥରେ ଜନ୍ମ ହେଲା ବୋଲି ବୋଲା ଯାଏ)—
Punarukta janmā
୧ । ଦ୍ୱିଜ, ବ୍ରାହ୍ମଣ—1. A twice-born; Brāhmaṇa
୨ । ଅଣ୍ଡଜ—2. Oviparous animal.
୩ । ସର୍ପ—3 Serpent.
୪ । ସରୀସୃପ—4 Reptile, lizard.
୫ । ପକ୍ଷୀ—5 Bird.
୬ । ଚନ୍ଦ୍ର—6. Moon

**ପୁନରୁକ୍ତତା**—ସଂ. ବି.—(କାବ୍ୟରେ) କଥିତ ବିଷୟକୁ ଆଉ ଥରେ କହିବା ରୂପ ରଚନା-ଦୋଷ—(a defect in composition) Tautology; superfluity in speech or writing
Punaruktatā

[ଦ୍ର—ଏହା ଶବ୍ଦ ଦୋଷରେ ଓ ଅର୍ଥ ଦୋଷରେ ଘଟେ । ]

ଶବ୍ଦଦୋଷର ଉଦାହରଣ—

ଉମାଦେହହର କରତେ ତ୍ରିମୂର୍ତ୍ତି କିଏ ସେହି ଦେ
ଦର୍ପଦଳ୍ପ ହର ଛେମନ ସଂଦ୍ଧ ଶଙ୍କ ସର ଦେ ।
ଜଗନ୍ନାଥ. ଚକ୍ରଭାଗ ।

ଅର୍ଥଦୋଷର ଉଦାହରଣ—

ଜୟ ମହାବୀର କର୍ଣ୍ଣ ଅଶେଷ ନିର୍ଭୀକ
ଜୟ ରଥୀନ୍ଦ୍ର, କୌରବ ଗୌରବ ବର୍ଦ୍ଧନ
ବନାଶ ସମରେ ଅଛ ପାଣ୍ଡବ ନଂଦୁ
ଜୟ ଅରିନ୍ଦମ କର୍ଣ୍ଣ ମହାରଥୀ ଜୟ ।
ନଧୁସୂଦନ କର୍ଣ୍ଣବଧ—ଚୂଡ଼ାମଣି, ଅଳଙ୍କାର ତରଙ୍ଗିଣୀ ।

**ପୁନରୁକ୍ତ ବଦାଭାସ**—ସଂ. ବି. ( ବହୁବ୍ରୀହି; ପୁନରୁକ୍ତବତ୍+ଆଭାସ =ଆପାତତଃ ପ୍ରତୀତ ଯହିଁରେ) -- କାବ୍ୟାଳଙ୍କାରବିଶେଷ; ପୁନରୁକ୍ତ ପରି ଜଣାଯାଉଥିବା କିନ୍ତୁ ପ୍ରକୃତରେ ପୁନରୁକ୍ତ ଦୋଷ ନ ଥିବା ରଚନା-ବିଶେଷ—( Rhetoric ) A figure of speech; seeming tautology.
Punarukta badābhāsa

[ ଦ୍ର—ଏଥିରେ ଉକ୍ତାକାର ଏକାର୍ଥବୋଧକ ଦୁଇ ବା ବହୁ ଶବ୍ଦ ପ୍ରଯୁକ୍ତ ହୋଇଥିବାରୁ ଶ୍ରୋତାଙ୍କ ପ୍ରଥମେ ପୁନରୁକ୍ତ ପରି

ବୋଧ ହୁଏ, କିନ୍ତୁ ପୁନରୁକ୍ତ ପରି ଜଣା ଯାଉଥିବା ବାକ୍ୟର ଗୋଟିଏ ସ୍ୱତନ୍ତ୍ର ଅର୍ଥ ଥାଏ । ]

**ପୁନରୁକ୍ତି**—ସଂ. ବି. ( ପୁନଃ + ଉକ୍ତି )—
Punarukti ୧ । ଦ୍ୱିରୁକ୍ତି, କଥିତ ବିଷୟକୁ ଆଉ ଥରେ କହିବା- 1. Repeating a thing once spoken, repetition.
୨ । କଥିତ ବିଷୟର ଆଉ ଥରେ ଅନାବଶ୍ୟକ କଥନ— 2. Tautology; superfluity.

**ପୁନରୁକ୍ତି କରିବା**—ଦେ କ୍ରି—୧ । କଥିତ ବିଷୟକୁ ଆଉ ଥରେ କହିବା —1. To repeat a matter already spoken
Punarukti kariba
পুনরুক্তি করা
**পুনরুক্তি করা** ୨ । ବକ୍ତାଙ୍କ କଥାରେ (ଶ୍ରୋତା) ଜବାବ ଦେବା ବା ଆପତ୍ତି କରିବା —2 To object to the words spoken by the 1st speaker.

**ପୁନରୁକ୍ତି ଦୋଷ**—ଦେ. ବି—ରଚନାର ଦୋଷବିଶେଷ, ଗୋଟିଏ ବିଷୟକୁ ପୁନର୍ବାର ପ୍ରକାଶ କରିବା ରୂପ ଦୋଷ —A defect in composition; viz, Tautology.
Punarukti dosha

**ପୁନରୁଜ୍ଜୀବନ**—ସଂ. ବି—ମୃତ୍ୟୁ ପରେ ଆଉ ଥରେ ଜୀଇଁ ଉଠିବା—
Punarujjibana Revival after death; resusciation.

**ପୁନରୁଜ୍ଜୀବିତ**—ସଂ. ବିଣ ପୁଂ—ପୁନର୍ବାର ଜୀଇଁ ଉଠିବା—
Punarujjibita Revived after death; resuscitated.
(ପୁନରୁଜ୍ଜୀବିତା —ସ୍ତ୍ରୀ)

**ପୁନରୁତ୍ଥାନ**—ସଂ. ବି—(ପୁନଃ+ ଉତ୍ଥାନ )—୧ । ଆଉ ଥରେ ଉଠିବା—1. Rising again.
Punarutthāna
୨ । ପୁନର୍ବାର ଜୀଇଁବା ବା ଆବିର୍ଭୂତ ହେବା - 2. Resurrection, resusciation.
୩ । ପତନ ପରେ ପୁନର୍ବାର ଉନ୍ନତି— 3. Revival or rise after a fall.

**ପୁନରୁତ୍ଥିତ**—ସଂ. ବିଣ (ପୁନଃ+ ଉତ୍ଥିତ)—ଆଉ ଥରେ ଉଠିଥିବା—
Punarutthita Risen up again; revived after a fall.

**ପୁନରୁତ୍ପତ୍ତି**—ସଂ. ବି ( ପୁନଃ + ଉତ୍ପତ୍ତି )—
Punarutpatti ୧ । ପୁନର୍ଜନ୍ମ—1. Metempsychosis.
(ପୁନରୁତ୍ପନ୍ନ—ଅନ୍ୟରୂପ) ୨ । ପୁନର୍ବାର ଆବିର୍ଭାବ ହେବା— 2. Appering again.

**ପୁନରୁତ୍ପାଦନ**—ସଂ. ବି. (ପୁନଃ + ଉତ୍ପାଦନ)—
Punarutpādana ଆଉ ଥରେ ଜନ୍ମ କରିବା—
(ପୁନରୁତ୍ପାଦିତ—ବିଣ) Reproducing; reproduction.

**ପୁନରୁଦ୍ଦୀପ୍ତତା**—ସଂ. ବି. ( ପୁନଃ + ଉଦ୍ଦୀପ୍ତ + ତା )—ରଚନାରେ ରସଦୋଷବିଶେଷ, ଗୋଟିଏ ରସ ପୁନଃ ପୁନଃ କଥିତ ହେବା ଦୋଷ—
Punaruddiptatā
A defect in composition; repetition of the same sentiment in a composition.

[ ଦ୍ର—ବିଦଗ୍ଧ ଚିନ୍ତାମଣିରେ କୃଷ୍ଣ ଓ ରାଧାଙ୍କର ବିପ୍ରଲମ୍ଭ ଶୃଙ୍ଗାର ବର୍ଣ୍ଣିନା ପୁନଃ ପୁନଃ କରି ଯାଇଅଛି । ତେଣୁ ଏହା ଏହି ଦୋଷରେ ଦୁଷ୍ଟ । ]

**ପୁନରୁଦ୍ଭବ**—ସଂ. ବି. ( ପୁନଃ + ଉଦ୍ଭବ )—୧ । ମୃତ୍ୟୁ ପରେ ସଂସାରରେ ପୁନର୍ବାର ଜନ୍ମ ହେବା—1 Revival; rebirth; regeneration; transmigration; metempsychosis.
Punarudbhaba
(ପୁନରୁଦ୍ଭୂତ—ଅନ୍ୟରୂପ)
୨ । (ଲକ୍ଷଣାର୍ଥ) କୌଣସି କଠିନ ପୀଡ଼ାରୁ ବା ବିପଦଜନିତ ଆସନ୍ନ ମୃତ୍ୟୁରୁ ରକ୍ଷା ପାଇବା—2 Recovery from the brink of death ( e g. from dangerous illness).

**ପୁନରୁପଗମ**—ସଂ ବି (ପୁନଃ + ଉପଗମ)—ଫେରି ଆସିବା—
Punarupagama Return (Apte)
(ପୁନରୁପଗତ—ବିଣ)

**ପୁନରୁପୋଢ଼ା**—ସଂ ବି ସ୍ତ୍ରୀ ( ପୁନଃ+ଉପୋଢ଼ା )—
Punarupordhā ପ୍ରଥମେ ବିବାହିତା ହେବା ପରେ ଯେଉଁ ସ୍ତ୍ରୀର
(ପୁନରୂଢ଼ା—ଅନ୍ୟରୂପ) ଦ୍ୱିତୀୟ ଥର ବିବାହ ହୋଇଅଛି— A woman married again (Apte).

**ପୁନର୍ଗତି**—ସଂ. ବି—୧ । ପୁନର୍ଜନ୍ମ ( ଦେଖ )
Punargati 1 Punarjanma ( See )
(ପୁନର୍ଗମନ — ଅନ୍ୟରୂପ) 'ମୃତ୍ୟୁ' ପୁନଃ ପ୍ରବୃତ୍ତି
(ପୁନର୍ଗତ—ବିଣ) ପହିଁ କ ଗତିଃ ପୁନର୍ଗତିଃ । କଳ୍ୟାଣ. ଭାଗବତ ।
୨ । ଆଉ ଥରେ ଯିବା —2. Going again.

**ପୁନର୍ଜନ୍ମ**—ସଂ ବି—ପୁନରୁଦ୍ଭବ ( ଦେଖ
Punarjanma Punarudbhaba ( See )

**ପୁନର୍ଜାତ**—ସଂ. ବିଣ ପୁଂ (ପୁନଃ + ଜାତ)—ପୁନର୍ଜନ୍ମ ପ୍ରାପ୍ତ—
Punarjāta Born again.

**ପୁନର୍ଦଖଲ**—ଦେ. ବି—(କଚେରିଆ ଭାଷା, ସଂ. ପୁନଃ+ଆ. ଦଖଲ୍)—
Punardakhala ବେଦଖଲ ହୋଇଥିବା ସମ୍ପତ୍ତିରେ ଅଦାଲତଙ୍କ ସାହାଯ୍ୟରେ ମିଳିବା ଦଖଲ— Recovery of possession through a court of a property from which one has been dispossessed.
পুনর্দখল

**ପୁନର୍ଦାରକ୍ରିୟା**—ସଂ. ବି—( ପୁନଃ + ଦାରକ୍ରିୟା )—ପୁରୁଷର ପ୍ରଥମ ବିବାହ ପରେ ପୁନର୍ବାର ବିବାହ—
Punardārakriyā
(ପୁନର୍ଦାର ଗ୍ରହଣ — ଅନ୍ୟରୂପ) Taking a second wife; marrying again in the case of a man.

**ପୁନର୍ନବ**—ସଂ. ବି—( ପୁନଃ+ନବ, ଯାହା କାଟି ପକାଇଲେ ପୁଣି ବଢ଼ିଲେ) - ନଖ—Finger-nail.
Punarnaba
(ପୁନର୍ଣ୍ଣବ—ଅନ୍ୟରୂପ)

**ପୁନର୍ନବା**—ସଂ. ବି—(ପୁନଃ + ନବ + ସ୍ତ୍ରୀ. ଆ, ଯାହାକୁ କାଟି ପକାଇଲେ ପୁଣି ବଢ଼ିଲେ)—ପୁରୁଣିଶାଗ, ଶୋଥନାଶକ ବହୁଶାଖ ଲତାଶାକ— The spreading hogweed; Bœrhagvia Diffusa; Procumbens Andirecta.
Punarnabā
[ ଶ୍ୱେତ ପୁନର୍ନବାର ସଂସ୍କୃତ ପର୍ଯ୍ୟାୟ ] ଶ୍ୱେତ ପୁନର୍ନବା, ଶ୍ୱେତମୂଳା, କଠିଲ୍ଲ, ଚଟିକା, ବୃଶ୍ଚୀର, ସିତ-ବର୍ଷାଭୂ, ବର୍ଷାଙ୍ଗୀ, ବର୍ଷାହ୍ୱା, ବିଶାଖ,

ଶଶିବାଟିକା, ପୃଥ୍ୱୀ, ଘନପତ୍ର,
ଶୋଥଘ୍ନୀ, ଦୀର୍ଘପତ୍ରିକା
ରକ୍ତ ପୁନର୍ନବା :—
ରକ୍ତ ପତ୍ରିକା, ରକ୍ତକାଣ୍ଡା, ବର୍ଷ-
କେତୁ, ବଷାଭୂ, ରକ୍ତପୁଷ୍ପ,
ଲୋହିତା, କୁରୁ, ମଣ୍ଡଳପତ୍ରିକା,
ବିକସ୍ୱର, ବିଷଘ୍ନୀ, ସାରଣୀ, ଶୋଣ-
ପତ୍ର, ଭୌମ, ପୁନର୍ଭବ, ନବ,
ନବ୍ୟ ।
ନୀଳ ପୁନର୍ନବା:—ନୀଳପୁନର୍ନବା,
ନୀଲା, ଶ୍ୟାମା, ନୀଳବର୍ଷାଭୂ, ନୀଳନୀ,
ପୁନ୍ୟା, ପୁନ୍ନେଶାକ୍
**सांठ, गदहपुरनी, बिशखपरा**
ମ ଘେଣ୍ଟୁଲୀ
ତେ. ଅଞ୍ଜକମ ମେସା; ଗାଲଜେରୁ
ତା ମୁକରଚ୍ଚେକରେ
ଗଞ୍ଜାମ. ଅଟ୍ଟକାପୋଡ଼ୀ
ଗୁ. ସାଟୋଡ଼ୀ
ଆ ହଦକୁଲୀ

[ଦ୍ର—ଏହାର ପତ୍ର ଯୋଡ଼ ଯୋଡ଼ ଓ ମୋଟ । ଚେର, ପତ୍ର ଓ ଫୁଲ ଶ୍ୱେତ, ନୀଳ ଓ ରକ୍ତବର୍ଣ୍ଣ ଭେଦରେ ଏହା ତିନପ୍ରକାର ।

ସଂ ଶ୍ୱେତ ପୁନର୍ନବାକୁ ଓଡ଼ିଆରେ ଶ୍ୱେତପୁରୁଣୀ ବା ଛେଟପୁରୁଣୀ ଓ ହିନ୍ଦିରେ ବିସ ଖପରା ବଙ୍ଗଳାରେ ଶ୍ୱେତପୁନ୍ନେ କହନ୍ତି । ସଂ. ରକ୍ତ ପୁନର୍ନବାକୁ ଓଡ଼ିଆରେ ନାଲି ପୁରୁଣୀ ହିନ୍ଦିରେ ସାଠ ଓ ଗଦହ୍ ପୁରନୀ ଓ ବଙ୍ଗଳାରେ ଗାଦାପୁନ୍ନେ କହନ୍ତି । ସଂ. ନୀଳ ବା କୃଷ୍ଣ ପୁନର୍ନବାକୁ ପୁରୁଣୀ କହନ୍ତି । ଏ ଶାଗ ବର୍ଷାଦିନେ ପଡ଼ିଆରେ ବହୁଳ ଭାବରେ ମାଡ଼ିଯାଏ ।

ବୈଦ୍ୟକମତରେ ଶ୍ୱେତ ପୁନର୍ନବା ଶୋଥ, ବାୟୁ, ଗରଳ ଦୋଷ, କଫ, ପାଣ୍ଡୁରୋଗ, ଉଦରରୋଗ ଓ ବ୍ରଣ ନାଶକ । ରକ୍ତ ପୁନର୍ନବା କଫ, ପିତ୍ତ ଓ ରକ୍ତଦୁଷ୍ଟିନାଶକ । କୃଷ୍ଣପୁନର୍ନବା ରସାୟନ ଓ ହୃଦ୍ରୋଗ, ପାଣ୍ଡୁ, ଶୋଥ, ଶ୍ୱାସ, ବାତ ଓ କଫନାଶକ—

ଦ୍ରବ୍ୟଗୁଣ ।

ପୁରୁଣୀର ଚେରକୁ ବାଟି ତହିଁର ରସ ପିଇଲେ ଓ ଅଞ୍ଜନ କରି ବ୍ୟବହାର କଲେ ନେତ୍ର ରୋଗ ଭଲ ହୁଏ । ପୁଷ୍ୟା ନକ୍ଷତ୍ର ଯୁକ୍ତ ତିଥିରେ ଶ୍ୱେତପୁରୁଣୀ ଚେର ଖୋଳିଆଣି ଘରେ ରଖିଲେ ସର୍ପ ଭୟ ନିବାରିତ ହୁଏ ବୋଲି କଥିତ ଅଛି ।]

**ପୁନର୍ବସୁ**—ସଂ. ବି. (ପୁନଃ + ବସ୍ ଧାତୁ + ଉ; ପ୍ରାଣୀମାନେ ପୁନଃ ପୁନଃ
Punarbasu ଯାହାକୁ ଆଶ୍ରୟ କରନ୍ତି)—୧ । (ଜ୍ୟୋତିଷ) ୨୭ ନକ୍ଷତ୍ର ମଧ୍ୟରୁ ୭ମ ନକ୍ଷତ୍ର—1. (astrology) The 7th of the lunar mansions.

[ଦ୍ର—ଏହା ଧନୁସାକୃତି ଓ ପଞ୍ଚତାରକାବିଶିଷ୍ଟ । ଏ ନକ୍ଷତ୍ରର ଅଧିଷ୍ଠାତୃ ଦେବତା ଅଦିତି । ଏ ନକ୍ଷତ୍ରରେ ଜନ୍ମ ଗ୍ରହଣ କରିବା ବ୍ୟକ୍ତି ମିତ୍ରବାନ୍, ଯତ୍ନଶୀଳ, ଦାତା ଓ ପ୍ରତାପଶାଳୀ ହୁଅନ୍ତି ।
ନକ୍ଷତ୍ର ତଳେ ନୋଟ (ଦେଖ) ]

୨ । ବିଷ୍ଣୁ—2 Bishnu
୩ । ଶିବ—Siba
୪ । କାତ୍ୟାୟନ ମୁନିଙ୍କ ନାମାନ୍ତର—
4. A name of sage Kātyāyana.

**ପୁନର୍ବାର**—ଦେ. କ୍ରି. ବିଣ. ( ସଂ. ପୁନଃ + ଓ ବାର ) – ୧ । ପୁନରପି
Punarbāra ପୁନଶ୍ଚ; ଆଉ ଥରେ—1. Once again
୨ । ପୁଣି—2. Again

**ପୁନର୍ବିଚାର**—ସ ବି. (କଚେରୀ)—୧ । ନିଷ୍ପତ୍ତି ହୋଇ ଥିବା ବିଷୟର
Punarbichāra ଆଉ ଥରେ ବିଚାର—1 Review of judgment.
୨ । ସାନ ବିଚାର—2. Revision or revival of a decided case
୩ । ଅପିଲ ବିଚାର—3. Hearing of an appeal.

**ପୁନର୍ବିବାହ**—ସଂ. ବି.—ମୃତଦାରର ବା ବିଧବାର ଦ୍ୱିତୀୟବାର ବିବାହ,
Punarbibāha ଦୁତୀୟ ହେବା—Re-marriage of a widow or widower.
ଦେ. ବି.—ଦ୍ୱିରାଗମନ ରୂପ ସଂସ୍କାର; ପିଲା କନ୍ୟା ଋତୁମତୀ ହେବା ପରେ ସ୍ୱାମୀଙ୍କ ସହିତ ମିଳନରୂପ ଉତ୍ସବ; ଆଶୀର୍ବାଦ ଘର—The ceremony of consummation of marriage of a girl-bride after attaining puberty.

**ପୁନର୍ବିଭା**—ଦେ. ବି. (ସଂ. ପୁନର୍ବିବାହ)—ଗର୍ଭାଧାନ ବା ଦ୍ୱିରାଗମନ
Punarbibhā ରୂପ ସଂସ୍କାର, ପୁନର୍ବିବାହ; ଆଶୀର୍ବାଦ ଘର—
(ପୁନର୍ବିଭାଘର—ଅନ୍ୟରୂପ) The ceremony of consummation of marriage of a girl-wife after puberty.

**ପୁନର୍ଭବ** – ସଂ ବିଣ. (ପୁନଃ + ଭୂ ଧାତୁ = ହେବା; ଜନ୍ମିବା + ଅ)—
Punarbhaba ପୁନର୍ବାର ଜାତ—Reborn.
(ପୁନର୍ଭବା – ସ୍ତ୍ରୀ) ସଂ ବି.—୧ । ପୁନର୍ଜନ୍ମ—1 Rebirth.
୨ । ନଖ—2 The nails.
୩ । ରକ୍ତ ପୁନର୍ନବା —
3 The red variety of hogweed.

**ପୁନର୍ଭବୀ**—ସଂ. ବି.—(ପୁନର୍ଭବ + ଈ)—ଜୀବାତ୍ମା; (ଯାହା ଜୀବର ମୃତ୍ୟୁ
Punarbhabī ପରେ ଅନ୍ୟ ଦେହରେ ଆବିର୍ଭୂତ ହୁଏ)—The sentient soul (existing again after the dissolution of one's body in another form)

**ପୁନର୍ଭୂ**—ସ. ବି. ସ୍ତ୍ରୀ (ପୁନଃ + ଭୂ ଧାତୁ + କ୍ୱିପ୍)—
Punarbhū ଥରେ ବିବାହ ହେବା ପରେ ଆଉ ଥରେ ବିବାହ କରିଥିବା ସ୍ତ୍ରୀ, ଅନ୍ୟପୂର୍ବା ସ୍ତ୍ରୀ, ଦ୍ୱିତୀୟ ବାର ସ୍ୱାମୀ ଗ୍ରହଣ କରିଥିବା ବିଧବା ବା ସ୍ୱାମୀପରିତ୍ୟକ୍ତା ସ୍ତ୍ରୀ, ଦୁତୀୟ ବିଭା ହୋଇଥିବା ସ୍ତ୍ରୀ—A woman married a second time after her first marriage.

[ ଦ୍ର—ଏମାନେ ତିନପ୍ରକାର—୧ । କ୍ଷତଯୋନି—ପତ୍ୟନ୍ତର ଗ୍ରାହିଣୀ (ବିଧବା), ୨ । ଗୁରୁଜନଙ୍କ ଦ୍ୱାରା ପ୍ରଦତ୍ତା ବିବାହ ସମ୍ପୃକ୍ତା ବିଧବା, ୩ । ବିଧବା ହୋଇ ବ୍ୟଭିଚାରିଣୀ ହେଲେ ଗୁରୁଜନମାନେ ଦେବରାଦିଙ୍କୁ ଯେଉଁ ବିଧବାକୁ ଦିଅନ୍ତି ।
ଏପରି ସ୍ତ୍ରୀର ସନ୍ତାନକୁ 'ପୌନର୍ଭବ' ବୋଲାଯାଏ, ପୁତ୍ରତଳେ ନୋଟ ଦେଖ । ]

**ପୁନର୍ଯାତ୍ରା**—ସ. ବି (ପୁନଃ + ଯାତ୍ରା)—୧ । ବାହୁଡ଼ିବା; ପ୍ରତ୍ୟାବର୍ତ୍ତନ—
Punarjātrā 1. Returning.
୨ । ଆଉଥରେ ଯାତ୍ରା କରିବା—2. Restarting.

ସାଧାରଣ ଲୋକେ ଅପର ପୃଷ୍ଠାରେ ଦିଆଯାଇଥିବା ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରଖି କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରା ଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଅଭିଧାନରେ ନ ମିଳେ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଚିହ୍ନର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ବାଟ' ନ ମିଳିଲେ 'ଵାଟ' ଖୋଜିବେ, 'କୃଷ' ନ ମିଳିଲେ 'କୃଷ' ଦେଖିବେ, 'ବଧୂ' ନ ପାଇଲେ 'ବଧୂ' ଦେଖିବେ, ଅର୍ଘ୍ୟ ନ ପାଇଲେ 'ଅର୍ଘ' ଦେଖିବେ; 'ଅଲବତ' ନ ପାଇଲେ 'ଅଲବତ୍' ଦେଖିବେ

୩ । ଜଗନ୍ନାଥଙ୍କର ବାହୁଡ଼ା ଯାତ୍ରା—3 The return journey of Lord Jagannātha in the car.

**ପୁନଶ୍ଚ**—ସଂ. ଅ (ପୁନଃ+ଚ)—୧ । ପୁନରପି, ପୁଣି, ଫେର—
Punaścha 1. Again.
୨ । ଆଉଥରେ, ଦ୍ୱିତୀୟବାର—2. A second time.
୩ । ପୁନଃ ପୁନଃ—3 Repeatedly.
୪ । ଏବଂ ମଧ୍ୟ—4 And also; and again

**ପୁନା**—ଦେ. ବି ୧ । (ପୁଂ) ପୂର୍ଣ୍ଣାନନ୍ଦର ଡାକନାମ—
Punā 1. A name for calling Pūrṇṇānanda
୨ । (ସ୍ତ୍ରୀ) ଅନ୍ନପୂର୍ଣ୍ଣାର ଡାକନାମ—
2 A name for calling Annapūrṇṇā.
୩ । (କ୍ଲୀ) ବମ୍ବେ ପ୍ରେସିଡେନ୍ସିର ପ୍ରସିଦ୍ଧ ନଗର—
3 Poona, a famous city of Bombay.

**ପୁନାଗ(ଙ୍ଗ)**—ଦେ. ବି—ପୁନ୍ନାଗ (ଦେଖ)
Punāga(ṅga) (ପୁନ୍ନାଙ୍ଗ—ଅନ୍ୟରୂପ) Punnāga (See)

**ପୁନାଙ୍ଗ ତେଲ**—ଦେ. ବି—ପୁନ୍ନାଙ୍ଗ ମଞ୍ଜିରୁ ପେଡ଼ି ବାହାର କରାଯିବା
Punāṅga tela ତେଲ—Pinnay oil
ପୁନାଙ୍ଗେର ତେଲ [ ଦ୍ର—ଏ ତେଲ ଘାସ ଜାଳିବାରେ ବ୍ୟବହୃତ ହୁଏ,
(ପୁନାଙ୍ଗମାଲପା—ଅନ୍ୟରୂପ) ଘୋଡ଼ା ଘାଆ ଉପରେ ଏହା ବୋଳିଲେ ଉପକାର ହୁଏ । ]

**ପୁନାଙ୍ଗ ବରିଆ**—ଦେ. ବି—ପୁନାଙ୍ଗ ବଳିତା ୧ (ଦେଖ)
Punāṅga baria Punāṅga balitā 1 (See)

**ପୁନାଙ୍ଗ ବ(ଶ)ଳିତା**—ଦେ. ବି—୧ । ପୁନ୍ନାଙ୍ଗ ମଞ୍ଜି ଭିତରର ଶୁଖିଲା ଶସକୁ
Punāṅga ba(śa)litā କାନ୍ଥ କନାରେ ଗୁଡ଼ାଇ ଆଲୁଅରେ ବ୍ୟବହାର
(ପୁନାଙ୍ଗବନ୍ଧ—ଅନ୍ୟରୂପ) କରାଯିବା ବର୍ତ୍ତିକା—1 A rag containing the kernel of the seed of mast wood rolled into a wick and used for lighting purposes.
୨ । ପୁନ୍ନାଙ୍ଗ ତେଲରେ ବୁଡ଼ା ହୋଇଥିବା ବର୍ତ୍ତିକା—
2 A wick immersed in Pinnay oil.

**ପୁନାଦି**—ପ୍ରାଦେ (ଗଞ୍ଜାମ) ବି (ତେଲୁଗୁ ଶବ୍ଦ)—
Punādi ପାଚେରୀର ମୂଳଦୁଆ—
The foundation of a compound-wall

**ପୁନି(ଣି)**—ଦେ. ବି. ସ୍ତ୍ରୀ—ଅନ୍ନପୂର୍ଣ୍ଣାର ଡାକନାମ—
Puni(ṇi) Name for calling Annapūrṇṇā.
ପ୍ରାଦେ. (ସମ୍ବଲପୁର) ବି (ସଂ. ପୂର୍ଣ୍ଣିମା)—ପୂର୍ଣ୍ଣିମାତିଥି—
Full-moon day.

**ପୁନିଅଁ**—ଦେ. ବି—୧ । (ସଂ. ପୂର୍ଣ୍ଣିମା) ପୁନେଇଁ (ଦେଖ)
Puniañ 1. Puneiñ (See)
ପୁଣ୍ଣୀ ୨ । (ସଂ: ପୁଣ୍ୟ) ପୁଣ୍ୟ—2. Piety.

**ପୁନ୍ନ; ପୁନ୍ୟ** ୩ । ବ୍ରତାଦି ଉତ୍ସବ—3. Festival.
ପୁନିଅ, ପୁନ୍ୟ, ପୁନ୍ୟ } ଅନ୍ୟରୂପ ୪ । (ସଂ. ପୁଣ୍ୟାହ)—ପୁଣ୍ୟଦିବସ—
4 A sacred day; a day of piety.

**ପୁନୀତ**—ସଂ. ବିଣ (ପୁ ଧାତୁ ଣିଚ ପୂନ୍ ଧାତୁ+କର୍ମ. କ୍ତ)—
Punita ପବିତ୍ରୀକୃତ—Hallowed.

**ପୁନେଇଁ**—ଦେ. ବି—୧ । ପୂର୍ଣ୍ଣଚନ୍ଦ୍ର ନାମକ ପୁରୁଷ ଓ ଅନ୍ନପୂର୍ଣ୍ଣା ନାମକ
Puneiñ ସ୍ତ୍ରୀକୁ ଡାକିବା ନାମ—1. Names for calling
ପୁନିମ Pūrṇṇachandra and Annapūrṇṇā.
ପୁନବାଁସୀ ୨ । (ସଂ. ପୂର୍ଣ୍ଣିମା)—ପୂର୍ଣ୍ଣିମା—
2 Fullmoon day
(ପୁନମି, ପୁନେଇ, ପୁନିଅଁ, ପୁନେଁ, ପୁନ୍ନେଇଁ, ପୁନ୍ୟଁ, ପୁନ୍ୟଁ—ଅନ୍ୟରୂପ)

**ପୁନେଇଁ ଖାଇବା**—ଦେ. କ୍ରି—ବିବାହର ପ୍ରଥମ ବର୍ଷମଧ୍ୟରେ ପଡ଼ିବା
Puneiñ khāibā ନିର୍ଦ୍ଦିଷ୍ଟ ଚାରି ଗୋଟି ପୂର୍ଣ୍ଣିମା (ଦୋଳ, କୁମାର, ଗହ୍ମା ଓ ସ୍ନାନ) ରେ ଶ୍ୱଶୁରଘରୁ ନିମନ୍ତ୍ରଣ ପାଇଁ ଜୋଇଁ ଯାଇଁ ଭୋଜନ କରିବା—(a soninlaw) To go to the father-in-law's house on invitation on four particular fullmoon days during the 1st year of marriage.

**ପୁନେଇଁ ଖିଆ**—ଦେ. ବି—ପୁନେଇ ଡାକରାରେ ଶ୍ୱଶୁର ଘରକୁ ଯାଇଁ
Puneiñ khiā ଜୋଇଁଙ୍କ ଭୋଜନ—The dinners given to a son-in-law on four particular full moon days during the 1st year of marriage.

**ପୁନେଇଁ ଚାନ୍ଦ**—ଦେ. (ସଂ. ପୂର୍ଣ୍ଣିମା ଓ ଚନ୍ଦ୍ର)—
Puneiñ chānda ୧ । ପୂର୍ଣ୍ଣିମା ରାତିର ପୂର୍ଣ୍ଣଚନ୍ଦ୍ର—
ପୂର୍ଣିମାରଚାନ୍ଦ 1. The moon in its full on the full-
ବଦ୍ର moon night
୨ । ପୂର୍ଣ୍ଣିମା ଚନ୍ଦ୍ରଙ୍କ ପରି ମନୋହର—
2. (a person) Beautiful like the full moon.

**ପୁନେଇଁ ଡାକରା** ଦେ. ବି—ବିବାହର ପ୍ରଥମ ବର୍ଷ ମଧ୍ୟରେ ପଡ଼ିବା
Puneiñ ḍākarā ଚାରି ପୂର୍ଣ୍ଣିମା (ଦୋଳ, କୁମାର, ଗହ୍ମା ଓ ଦେବସ୍ନାନ)ରେ ଶ୍ୱଶୁର ଘରକୁ ଯିବା ପାଇଁ ଜୋଇଁଙ୍କୁ ନିମନ୍ତ୍ରଣ—Invitation extended to a son-in-law on 4 particular fullmoon-days during
(ପୁନେଇ ଡକରା—ଅନ୍ୟରୂପ) the 1st year of marriage

**ପୁନେଇଁ ପରବ**—ଦେ. ବି (ସହଚର ଶବ୍ଦ; ସଂ. ପୁଣ୍ୟ ଓ ପର୍ବ)—ବ୍ରତ ଓ
Puneiñ paraba ଉତ୍ସବାଦି—Fasts and festivals.
ପୁନ୍ୟାପରବ ପରବତୋହାର (ପୁନେଇଁ ପର୍ବ—ଅନ୍ୟରୂପ)

| ୧ | ଇ | ଢ | ର,ର୍ | ଝ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଜ | ଷ,ସ | କ୍ଷ | ଇଦ୍ଧ | ଭୁ୍ଃ | ଛ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଢ଼ | ଋ | ନ | ପ୍ରେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | କ୍ଷ୍ୟ | ଯ | ସ | ଚ୍ୟ | ଇଅ | ଓ | ନ୍ |

**ପୁନ୍ନ**—ଗ୍ରାମ୍ୟ ବିଣ (ସଂ. ପୂର୍ଣ୍ଣ)—ପୂର୍ଣ୍ଣ—
Punna Full

**ପୁନ୍ନମୀ**—ଗ୍ରା. ବି (ସଂ. ପୂର୍ଣ୍ଣିମା)—ପୂର୍ଣ୍ଣିମା—
Punnamī The full moon day.

**ପୁନ୍ନରକ**—ସଂ ବି (ପୁତ୍+ନରକ)—ପୁତ୍ ନାମକ ନରକ, ଯେଉଁଠାରେ
Punnaraka ଅପୁତ୍ରକ ଲୋକ ଦୁଃଖ ଭୋଗ କରେ—
The part of hell reserved for the punishment of sonless persons.

**ପୁନ୍ନାଗ**—ସଂ. ବି ( ପୁମସ୍=ଅଣ୍ଡିରା+ନାଗ )—୧ । ପୁନାଙ୍ଗ, ପୋଲଙ୍ଗ
Punnāga (ଗଛ ଓ ଫଳ), ନାଗକେଶରବୃକ୍ଷ ବର୍ଗର ସୁନ୍ଦର ତରୁବିଶେଷ—
1. Mast wood; Alexandrian Laurel; Colophyllum Inophyllum; Rottleria Tinctoria.
(ସଂ. ପୁରୁଷ, ଭୁଙ୍ଗ, ପୁରୁଷାଖ୍ୟ, ରକ୍ତବୃକ୍ଷ, କେଶର, କାମ୍ବୋଜ, ନାଗପୁଷ୍ପ, ଶୁଭ୍ରପୁଷ୍ପ, ଦେବବଲ୍ଲଭ
ପୁନାଗ, ସୁଲତାନୀଚାମ୍ପା
**सुलतानाचंपा, सुरपून**
ତା. ପିନ୍ନୟ
ତେ. ପୋନ୍ନଚେଟ୍ଟୁ, ପୋନପୁନାଗମ
ମ. ନାଗଚମ୍ପା, ସୁରଙ୍ଗ
[ଦ୍ର—ଏ ଗଛର କାଠ ଈଷତ୍ ନାଲି, ଭାରି ଟେମଡ଼ା ଓ ଗଣ୍ଠିଆ; ପତ୍ର ଖୁବ୍ ଚିକ୍କଣ ଓ ଶ୍ୟାମଳ; ବକଳ କୃଷ୍ଣାଭ; ଫୁଲ ଗୁରୁପାଖୁଡ଼ିଆ, ଧଳା ଓ ସୁଗନ୍ଧ, ଜ୍ୟେଷ୍ଠ ମାସରେ ଫୁଲ ଫୁଟେ; ଫଳ ପାଚିଲେ ହଳଦିଆ; ଫଳର ମଞ୍ଜି ଗୋଟାଳ ପରି ଗୋଲ ଓ ତାହା ଭାଙ୍ଗିଦେଲେ ତହିଁ ମଧ୍ୟରୁ ଯେଉଁ ଗୋଟାଳପରି ଶସ ବାହାରେ ସେ ଶସକୁ ପେଡ଼ିଲେ ତେଲ ବାହାରେ । ଏ ତେଲ ଗନ୍ଧାଏ ଓ ଏଥିରେ ଦୀପ ଜଳେ । ପୋଡ଼ା ଘାଆରେ ଏ ତେଲ ଲଗାଇଲେ ବିଶେଷ ଉପକାର ହୁଏ । ପୁନ୍ନାଗ ତେଲ ବାତରୋଗ ଓ ମେହରୋଗର ଔଷଧ ଏବଂ ଏଥିର ଛେଲି ପଶୁଘାଆର ଔଷଧରୂପେ ବ୍ୟବହୃତ ହୁଏ । ସଂସ୍କୃତରେ 'ପୁନ୍ନାଗ' ଶବ୍ଦ ମଧ୍ୟ 'ଭୁରଅନା' ଗଛ ପ୍ରତି ପ୍ରଯୁକ୍ତ ହୁଏ ।]
୨ । ପୁରୁଷଶ୍ରେଷ୍ଠ—2 Chief amongst men (compared to an elephant).
ଜନପଦଧହିଁ ସ୍ୱଯୋଗ ନ ହୃତ
ବଶୀକୃତ ପୁନ୍ନାଗକୁ ବନ୍ଧନ ଯିବ—ଭଞ୍ଜ ବୈଦେହୀଶବିଳାସ ।
୩ । ଅଣ୍ଡିରା ସାପ—3. A male serpent.
୪ । ଅଣ୍ଡିରା ହାତୀ—4. A male elephant.
୫ । ନାଗକେଶର (ଦେଖ)
5. Nāgakeśara ( See ).
୬ । ଶ୍ୱେତ କମଳ (ହ୍ଵି. ଶ) —6 White lotus.
୭ । ଜାଇଫଳ (ହ୍ଵି. ଶ.—7 Nutmeg.

**ପୁପ୍ଫୁଟ**—ସଂ. ବି—ଘଣ୍ଟିକା ଏବଂ ଦାନ୍ତମୂଳର ରୋଗବିଶେଷ—
Pupphuṭa Name of a disease of the palate and gums (Apte).

**ପୁପ୍ଫୁଲ**—ସଂ. ବି—ଉଦରସ୍ଥ ବାୟୁ ( ହ୍ଵି. ଶ. )—
Pupphula Wind inside the stomach; flatuncy.

**ପୁପ୍ଫୁସ**—ସଂ. ବି—୧ । ପଦ୍ମବୀଜକୋଷ (ହ୍ଵି. ଶ.)—
Pupphusa 1 The pericarp of lotus.
୨ । ଫୁସ୍ଫୁସ୍ (ହ୍ଵି. ଶ)—2. Lungs.

**ପୁନ୍ନାଟ(ଡ଼)**—ସଂ. ବି—୧ । ଚକ୍ରମର୍ଦ୍ଦ (ହ୍ଵି. ଶ) ଚକୁଣ୍ଡା(ଗଛ)—
Punnāṭa(ṛda) 1. Cassia Tora tree).
୨ । କର୍ଣ୍ଣାଟକ ନିକଟସ୍ଥ ଦେଶବିଶେଷ—
2. Name of a country near the Karnatic
୩ । ଦିଗମ୍ବର ଜୈନ ସଂପ୍ରଦାୟର ସଂଘବିଶେଷ (ହ୍ଵି. ଶ.)—
3. Name of a sect of Digambara Jainas.

**ପୁମାନ୍**—ସଂ. ବି. ପୁଂ ( ପୁମସ୍ ଶବ୍ଦର ୧ମା ବିଭକ୍ତି ୧ ବଚନ; ପା
Pumān ଧାତୁ=ରକ୍ଷାକରିବା+ଡୁମସ୍; ଯେ କୁଳରକ୍ଷା କରେ)
୧ । ନର; ପୁରୁଷ—1. Man.
୨ । ଅଣ୍ଡିରପୁଅ, ପୁଂ, ପୁରୁଷ, ଅଣ୍ଡିରା—2 Male.
୩ । ପୁଂଲିଙ୍ଗ—3, Masculine gender
ସଂ. ବିଣ—ଅଣ୍ଡିରା—3. Masculine; male

**ପୁମାନ**—ଗ୍ରା. (ପଦ୍ୟ) ବି. ପୁଂ. ( ସଂ. ପୁମାନ୍)—ପୁମାନ୍ (ଦେଖ)
Pumāna Pumān (See).
ସେ ବେନି ମତ ୍ୟ ଯେ ପୁମାନ
ହୋଇଲା ସ୍ୱାୟମ୍ଭୁବ ନାମ—ଜଗନ୍ନାଥ, ଭାଗବତ।

**ପୁମ୍ବତ୍**—ସଂ. ଅ—(ପୁଂ+ବତ୍)—ପୁରୁଷ ପରି—
Pumbat Like man; masculine.
ସଂ. ବିଣ. (ପୁଂ ଓ ସ୍ତ୍ରୀ)—ପୁରୁଷର ଶକ୍ତି ବା ପ୍ରକୃତିବିଶିଷ୍ଟ—
Masculine.

**ପୁର୍**—ଦେ. ଅ (ଧ୍ୱନ୍ୟନୁକରଣ)—ଲୁଗା ବା ପତଳା ଓ ନରମ ଜିନିଷ
Pur ଚିରି ଯିବାର ଶବ୍ଦ—The sound resembling that (ପୁରୁର୍, ପୁରୁରୁ, ପୁରୁରୁ—ଅନ୍ୟରୂପ) of tearing up a cloth.
ସଂ. ବି. (ପୃ ଧାତୁ+ଅ) ପୁଃ (ଦେଖ)—Puḥ (See).

**ପୁର୍‌ଥି**—ପ୍ରାଦେ (ସମ୍ବଲପୁର) ଅ. (ସ ପୁରତଃ)—୧ । ପୁରତଃ;
Pur-thi ସାମନାରେ—1. In front.
୨ । ନିକଟକୁ—2. To; near.

**ପୁର୍‌ନି**—ପ୍ରାଦେ (ସମ୍ବଲପୁର). ବି—୧ । ପଦ୍ମଫୁଲ—
Pur-ni 1. Lotus.
୨ । (ସ ପୁନର୍ନବା) ପୁନର୍ନବା ( ଦେଖ )—
2. Punarnabā (See).

**ପୁର୍ ପୁର୍**—ଦେ. ଅ.—୧ । ପୁର୍ (ଦେଖ)
Pur-pur 1. Pur (See).
(ପୁର୍ପୁରୁ—ଅନ୍ୟରୂପ.)
୨ । (ଧ୍ୱନ୍ୟନୁକରଣ) (ଲୁଗା) ଜୀର୍ଣ୍ଣ ଓ ଟିକି ଟିକି ହୋଇ ଚିରି ଯାଇଥିବା—2. Worn out to shreds; ragged; tattered.

ପ୍ରାଦେ. (ସମ୍ବଲପୁର) ଅ.—ବହୁ ପରମାଣରେ—
In great quantity.

**ପୁର୍ ପୁରିଆ**—ପ୍ରାଦେ. (ଗଡ଼ଜାତ). ବଣ.—ଭୁଷୁଆଁ ହୋଇଥିବା ଯେଉଁ
Pur-puriā ଧାନକୁ କୁଟିବା ପୂର୍ବରୁ ଖରାରେ ଶୁଖାଇବା ଅବସ୍ଥାରେ
(ପୁରୁପୁରିଆ—ଅନ୍ୟରୂପ) ଉଚ୍ଛିର ଉପର ପ୍ରସ୍ତ ଅତ୍ୟଧିକ ଭାବରେ
ଶୁଖି ଯାଇଥାଏ—Par-boiled paddy of which
the skin has peeled off.

**ପୁର୍ରା**—ପ୍ରାଦେ (ସମ୍ବଲପୁର) ବି.—ମଇଁଷି ଛୁଆ—
Pur-rā The young of a buffalo.

**ପୁର୍ଲା(ଡ଼ା)**—ପ୍ରାଦେ. (ସମ୍ବଲପୁର. ବି.—ଛଚନ୍ଦା (ଦେଖ)
Pur-lā (ṛdā) Chhachindā (See).

**ପୁର (ଧାତୁ)**—ସଂ.—ଅଗ୍ରସର ହେବା—
Pura (root) To advance.

**ପୁର**—ସଂ ବି. (ପୃ ଧାତୁ=ପୂର୍ଣ୍ଣ କରିବା+ଅ; ଯେଉଁସ୍ଥାନ ନାନାଦି ବସ୍ତୁ
Pura ଦ୍ୱାରା ପୂର୍ଣ୍ଣ ଥାଏ।)—୧। ଅନ୍ତଃପୁର; ଅବରୋଧ—
1. Harem.

୨। ରାଜଧାନୀ; ସହର; ନଗର—2. Town; city.

ଶମ୍ବରପରପୁର ବଳ କି କୁର।
କବିସୂର୍ଯ୍ୟ – ବଶେ ସ ଉମ୍ଭ ଗୀତ।

୩। ଦୁର୍ଗ—3 Castle; stronghold; fortress.

୪। ବାସସ୍ଥାନ, ଆଳୟ, ଭବନ; ଗୃହ—
4. House; habitation; residence.

୫। ରକ୍ଷିତ ନଗର—5. Fortified or walled city.

୬। ଶରୀର—6. Body.

୭। କୋଠରି—7. Room; apartment.

୮। ସ୍ଥାନ—8. Place.

୯। ଆଧାର—9. Receptacle.

୧୦। ପାଟଳି ପୁତ୍ର ନଗର; ଆଧୁନିକ ବିହାର ପ୍ରଦେଶର ରାଜଧାନୀ
ପାଟନାର ପୂର୍ବ ନାମ—10. The ancient name of
the modern town of Patna or Bankipur.

୧୧। ପୁଷ୍ପର ଗର୍ଭ—11. The calyx of a flower.

୧୨। ପତ୍ରର ଠୋଲା; ଡଉପଗା—
12. A cup made of leaves.

୧୩। ଚର୍ମ—13. Skin

୧୪। ଉପର ମହଲାର ଘର, ଗୃହ ଉପରେ ନିର୍ମିତ ଗୃହ—
14. A room on the upper story.

୧୫। ନାଗର ମୁସ୍ତକ; ନାଗର ମୁଥା—
15 A sort of fragrant grass root.

୧୬। ଗୁଗ୍ଗୁଳୁ—16. Bdellium.

୧୭। ଗୁଗ୍ଗୁଳ ଗଛ—
17. The plant exuding bdellium.

ଅଚ୍ଛ ପ୍ରବନ୍ଧକର ସଙ୍ଗତ ସ୍ୱଚ୍ଛନ୍ଦରେ ପୁର ଅଦ୍ୟାବଧି ହୋଇଛ।
ଉଞ୍ଜ ବୈଦେହୀଶବିଳାସ।

୧୮। ଅନ୍ତଃପୁର—
18. The female apartments (Apte)

୧୯। ବେଶ୍ୟାଳୟ—19 A brothel (Apte).

୨୦। ଭଣ୍ଡାର ଘର—20. A store house (Apte).

୨୧। (ଜ୍ୟୋତିଷ) ରାଶି (ହି. ଶ.)—
21. Astrological sign

୨୨। କେଶରୁବୁରୁ (ହି ଶ.); ପୀତଝିଣ୍ଟୀ—
22. Yellow Barleria

୨୩। ଚୁଙ୍ଗା, ନଳ (ହି. ଶ)—23. Tube.

ଦେ· ବି. (ସ. ପୁର)—୧। ଗ୍ରାମ—1. Village.

[ଦ୍ର—ସାଧାରଣତଃ ଗ୍ରାମ ନାମ ପରେ ପୁର ଶବ୍ଦ ବ୍ୟବହୃତ ହୁଏ। ଯଥା—ବିଶ୍ୱନାଥପୁର, ନରସିଂହପୁର, ଗୋପାଳପୁର। ରାଜଧାନୀ ଓ ନଗର ନାମ ପରେ ମଧ୍ୟ ପୁର ବ୍ୟବହୃତ ହୁଏ, ଯଥା—ସୋନପୁର, ସମ୍ବଲପୁର।]

ପୁର ୨। (ସ. ପୂର) ପିଠା ମଧ୍ୟରେ ଦିଆଯିବା ମିଷ୍ଟାନ୍ନ ଚୂର୍ଣ୍ଣ—
ପୁର 2. Stuffing of certain cakes; ground pulse put inside a cake, pudding or sandwich.

[ଦ୍ର—ଶସ୍ୟ ସିଝାର ଚୂନା, ଛେନାଗୁଡ଼, ନଡ଼ିଆକୋରା ଆଦିରେ ପୁର ତିଆର ହୁଏ।]

ପବତ ପର୍ତ ୩। ବେଢ଼; ପରସ୍ତ; ପ୍ରସ୍ତ—3. Fold; layer

ଦଶପୁର ଘେର ଗଳନ୍ତ ବାହୁସ ବଚ୍ଛବ ବାଳକ ଜନ—
କବିସୂର୍ଯ୍ୟ, ସଙ୍ଗୀତ।

୪। ଥର; ବାର—4 Time.
(ଯଥା—ଦି'ପୁର ବନ୍ଧା ହଲଗା।)

ଦେ. ଅ. (ସ. ପୁରତଃ)—ଆଗରେ—In front.

ବାରଣଭୂଷା ଭୂଷାଳ ଶାନପୁରପୁର—ଉଞ୍ଜ. ବୈଦେହୀଶବିଳାସ।

**ପୁର ଏଣ୍ଡୁରି**—ଦେ. ବି—ଯେଉଁ ଇଣ୍ଡୁରି ପିଠା ମଧ୍ୟରେ ପୁର ଦିଆ
Pura enduri ଯାଇଥାଏ—A steam boiled pudding
(ପୁର ଇଣ୍ଡୁରି—ଅନ୍ୟରୂପ) or sandwich with ground
pulse or sweets inside it.

**ପୁରଃ**—ସ. ଅ. (ସ. ପୁରସ୍)—୧। ଅଗ୍ରତଃ ଆଗରେ; ସମ୍ମୁଖରେ—
Puraḥ (ପଶ୍ଚାତ୍—ବିପରୀତ) 1. In front.

୨। ପଶ୍ଚିମଦିଗରେ—2 In the west.

୩। ପ୍ରଥମତଃ—3. Firstly.

୪। ଏଥିପୂର୍ବେ; ପୂର୍ବକାଳରେ—4. Formerly; of old.

୫। ପଛଆଡ଼ରେ—5. Behind.

୬। ଅତିକ୍ରାନ୍ତ—6. Gone beyond; surpassed.

**ପୁରଃଶରଣ**—ଗ୍ରା ବି. (ସ. ପୁରଶ୍ଚରଣର ଅଶୁଦ୍ଧ ଉଚ୍ଚାରଣ)—ପୁରଶ୍ଚରଣ
Puraḥśaraṇa (ଦେଖ)—Puraścharaṇa (See)

**ପୁରଃସର**—ସ. ବିଣ. ପୁଂ (ପୁରଃ=ଆଗରେ+ସୃ ଧାତୁ=ଗମନ କରିବା
Puraḥsara +କର୍ତ୍ତୃ. ଅ)—୧। ଅଗ୍ରସର; ଅଗ୍ରଗାମୀ—
(ପୁରଃସରୀ—ସ୍ତ୍ରୀ) 1. Advancing in front; going before.

୨। ପୂର୍ବବର୍ତ୍ତୀ—2. Preceding.

୩। ଅଗ୍ରଣୀ—3. Foremost; pre-eminent (Apte).

ସ. ବି—୧। ପୂର୍ବେବର୍ତ୍ତୀ ବା ପୂର୍ବଗାମୀ ବ୍ୟକ୍ତି—
1. Fore runner; harbinger.

୨ । ପରିଚାଳକ, ନେତା—2 Leader
୩ । ସଙ୍ଗୀ ବ୍ୟକ୍ତି, ସହଚର ( ହ୍ର. ଶ )—
3. Companion
୪ । ଅଗ୍ରଗମନ ( ହ୍ର. ଶ. )—4. Leading; lead.
୫ । ସଙ୍ଗ; ସାହଚର୍ଯ୍ୟ (ହ୍ର. ଶ )—5. Companionship.
ସଂ. କ୍ରି. ବିଣ—୧ । ପୂର୍ବକ—
1. Preceded by; attended with.
୨ । ସଙ୍ଗେ; ସହିତେ; ସହକାରେ —2 With; by.
( ଯଥା—ମୁଁ ବିନୟ ପୂର୍ବକ ପୁରଃସର ନିବେଦନ କରୁଅଛି । )
୩ । ସମଭିବ୍ୟାହାରରେ—3 Accompanied by

**ପୁରଃସରଣ**—ସଂ. ବି. ( ପୁରଃ+ସରଣ )—ଆଗେ ଆଗେ ଯିବା—
Purahsarana Going before a person.

**ପୁର କରିବା**—ଦେ. କ୍ରି—ଘର କରିବା; ବାସ କରିବା—
Pura kariba To live; to exist
କଟଉ ସମସ୍ତ ଭୁବନେ ପୁର – ଉପେ. ଭଞ୍ଜ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।

**ପୁର କାକ(କେ)ରି**—ଦେ. ବି. ( ସଂ. ପୂରିକା )—ମଝିରେ ପୁର ଦିଆ
Pura kaka(ke)ri ଯାଇଥିବା କାକରପିଠା—A ghee-boiled
ଡାଲପୁରୀ ବେଡ଼ମାଁ, ଡାଲପୁରୀ sandwich.
( ପୁରୁକାକ[କେ]ରି—ଅନ୍ୟରୂପ )

**ପୁରକା ପୁର**—ଦେ. ଅ—୧ । ପ୍ରସ୍ତ ପ୍ରସ୍ତ, ପରସ୍ତକୁ ପରସ୍ତ—
Puraka pura 1. In successive layers, layer after layer
( ପୁରୁକୁପୁର—ଅନ୍ୟରୂପ )
୨ । ଥରକୁଥର; ବାରମ୍ବାର—2 Repeatedly

**ପୁର କୃତ୍ୟ**—ଦେ. ବି—ଘର କାମ, ଗୃହର ନିତ୍ୟକର୍ମ ମାନ—
Pura krutya Domestic duties.
ପୁରନ୍ଧ୍ରୀ ସମାଜ କଲେ ପୁରକୃତ୍ୟ ପ୍ରକଳ୍ପରେ ଅନୁଷ୍ଠାନ—
ନନ୍ଦକିଶୋର. ଶର୍ମିଷ୍ଠା ।

**ପୁର ଜନ**—ସଂ. ବି. ( ମ. ପ. ଲୋ )—ପୁରବାସୀ ବ୍ୟକ୍ତି; ନାଗରିକ;
Pura jana —Townsman; citizen.

**ପୁରଜା**—ବୈଦେ. ବି—ପୁରୁଜା ( ଦେଖ )
Puraja Puruja ( See )

**ପୁରଜିତ୍**—ସଂ. ବି. ( ପୁର=ତ୍ରିପୁରାସୁର+ଜି ଧାତୁ=ଜୟ କରିବା+
Purajit କର୍ତ୍ତୃ. କ୍ୱିପ୍ )—୧ । ତ୍ରିପୁରାରି; ମହାଦେବ —1. Siba.
ପୁରଜିତ୍ } ଅନ୍ୟରୂପ ୨ । ଚନ୍ଦ୍ରବଂଶୀୟ ଜଣେ ରାଜା—
ପୁରଭିଦ୍ } 2 Name of a king of the Lunar race.
୩ । ଜାମ୍ବବତୀଙ୍କ ଗର୍ଭଜାତ କୃଷ୍ଣଙ୍କର ଏକ ପୁତ୍ର—
3 Name of a son of Krushna

**ପୁରଞ୍ଜନ**—ସଂ. ବି. ( ପୁରଂ=ଦେହକୁ+ଜନ୍ ଧାତୁ+କର୍ତ୍ତୃ. ଅ;
Puranjana ଯେ ଦେହକୁ ଜନ୍ମ କରେ )—୧ । ଆତ୍ମା—
1. Soul.
୨ । ଜୀବାତ୍ମା—2. The living principle in an animal.
[ ଦ୍ର—ଭାଗବତରେ ରୂପକ ଛଳରେ ଲେଖାଅଛି ଯେ ଦେହ ପୁର ଅଟେ, ଦେହର ନବଦ୍ୱାର ନବ ଛିଦ୍ର ଅଟେ । ତନ୍ମ ପ୍ରାଣୀର ଅଟେ । ତନ୍ମଧ୍ୟରେ ପୁରଞ୍ଜନ ନାମକ ଜୀବାତ୍ମା ବାସ କରେ—
ହି ଶବ୍ଦସାଗର । ]
୩ । ଜୀବନ—3. Life.
୪ । ଭାଗବତ ବର୍ଣ୍ଣିତ ବ୍ରାହ୍ମଣର ନାମ—4. Name of a celebrated Brahmana described in Bhagabata (Howells).

**ପୁରଞ୍ଜୟ**—ସଂ. ବି—(ପୁରଂ=ତ୍ରିପୁରାସୁରକୁ+ଜି ଧାତୁ+କର୍ତ୍ତୃ. ଅ)—
Puranjaya ୧ । ଶିବ (ତ୍ରିପୁର ନାଶକ)—1. Siba.
୨ । (ପୁରଂ=ନଗରକୁ+ଜି ଧାତୁ+ଅ) ନଗର ବିଜୟୀ ବୀର—
2. A victor who subjugates or conquers a town.
୩ । ସୂର୍ଯ୍ୟବଂଶୀୟ ବିକୁକ୍ଷି ରାଜାଙ୍କ ପୁତ୍ର କାକୁତ୍ସ୍ଥ ରାଜା—
3 Name of a king of the Solar dynasty.
[ଦ୍ର—ବିଷ୍ଣୁପୁରାଣରେ ଲେଖାଅଛି ଯେ ଦେବତାମାନେ ଦୈତ୍ୟମାନଙ୍କ ଦ୍ୱାରା ପରାସ୍ତ ହୋଇ ବିଷ୍ଣୁଙ୍କଠାକୁ ଗଲେ । ବିଷ୍ଣୁ ସେମାନଙ୍କୁ ପୁରଞ୍ଜୟ ରାଜାଙ୍କଠାକୁ ଯିବାକୁ କହିଲେ ଓ ପୁରଞ୍ଜୟଙ୍କ ନିଜର କିଛି ତେଜଃ ଅର୍ପଣ କଲେ । ପୁରଞ୍ଜୟ ଇନ୍ଦ୍ରଙ୍କୁ ଗୋଟିଏ ବୃଷରୂପ ଧାରଣ କରିବାକୁ କହିଲେ । ଇନ୍ଦ୍ର ବୃଷରୂପ ଧାରଣ କରିବାରୁ ପୁରଞ୍ଜୟ ଇନ୍ଦ୍ରଙ୍କ କକୁଦ (କୁଜ) ରେ ବସି ଦୈତ୍ୟମାନଙ୍କ ସଙ୍ଗେ ଯୁଦ୍ଧ କରି ସେମାନଙ୍କୁ ପରାସ୍ତ କଲେ । ଏଥିଯୋଗୁଁ ପୁରଞ୍ଜୟଙ୍କର ଗୋଟିଏ ନାମ କାକୁତ୍ସ୍ଥ ହେଲା ।]

**ପୁରଞ୍ଜର**—ସଂ. ବି—(ପୁରଂ+ଜୃ ଧାତୁ+କର୍ତ୍ତୃ. ଅ)—୧ । କୁକ୍ଷି, କାଖ-
Puranjara ସନ୍ଧି—1. Arm pit.
୨ । ଉପବନ, ବଗିଚା—2. Garden.

**ପୁରଟ**—ସଂ. ବି—ସୁବର୍ଣ୍ଣ; ସୁନା—
Purata Gold.

**ପୁରଣ**—ସଂ. ବି—(ପୃ ଧାତୁ=ପୂର୍ଣ୍ଣ କରିବା+ଅନ) —ସମୁଦ୍ର—
Purana The ocean.
ଦେ. ବି—ପୂର୍ଣ୍ଣଚନ୍ଦ୍ରର ଡାକ ନାମ—
A name for calling Purnnachandra.
ପ୍ରାଦେ (ବସ୍ତର) ବି—ପଦ୍ମ ଫୁଲ—Lotus (flower).

**ପୁରତ**—ଦେ. ଅ—(ସଂ. ପୁରତଃ)—୧ । ଅଗ୍ରରେ; ସମ୍ମୁଖରେ—
Purata 1. In front; before.
୨ । ନିକଟରେ—2. Near.
ନଦର୍ଶି ରାଜ ପ୍ରସୂତା ପୁରତ
କହନ୍ତି ଯେ ପ୍ରଭୁ ଜଗନ୍ନାଥ—ପ୍ରାଚୀ. ରହସ୍ୟମଞ୍ଜରୀ.

**ପୁରତଃ**—ସଂ. କ୍ରି. ବିଣ.—(ପୁର+ତସ୍)—ଅଗ୍ରତଃ; ଆଗରେ—
Puratah In front; before

**ପୁରତଟୀ**—ସଂ. ବି (ପୁର=ନଗର+ତଟ=ପ୍ରାନ୍ତ+ଈପ୍; ଯାହା ନଗରର
Puratati ପ୍ରାନ୍ତରେ ଅବସ୍ଥିତ)—୧ । ହାଟ—1 A fair; a market.
୨ । ଛୋଟ ଗ୍ରାମ; ପଲ୍ଲୀ—2. Hamlet; small village.
୩ । ନଗରୋପକଣ୍ଠସ୍ଥ ଗ୍ରାମ; ସହର ତଳର ଗ୍ରାମ—
3. A village in the outskirts of a town.

**ପୁରତେ**—ଦେ. ଅ. (ସଂ ପୁରତଃ)—ପୁରତଃ, ଆଗରେ; ସମ୍ମୁଖରେ—
Purate In front; before.
କହିଲା ଜଳଧିରେ ବୁଡ଼ିବ ମୁଁ କେହୁ
ରଙ୍ଗ ହେବ ସର୍ବଙ୍କ ପୁରତେ, କବିସୂର୍ଯ୍ୟ ଚଙ୍ଗୀତ.

**ପୁର ତ୍ରାଣ**—ସ. ବ. (ପୁର+ତ୍ରୈ ଧାତୁ+କର୍ତ୍ତୃ. ଅନ)—ନଗରର ପାଚେରି;
Pura trāṇa ଘେରିଥିବା ପାଚେରି—Wall round a city; compound wall.

**ପୁର ଦ୍ୱାର**—ସଂ. ବ. (୬ଷ୍ଠୀ ତତ୍, ପୁର+ଦ୍ୱାର)—୧ । ନଗରର ଦ୍ୱାର,
Pura dwāra ଗୋପୁର—1. A city-gate.
୨ । ଘରର ଦ୍ୱାର—2. The door or entrance of a house.

**ପୁରଦ୍ୱିଟ୍**—ସଂ. ବ.—(ପୁର୍=ତ୍ରିପୁର+ଦ୍ୱିଷ ଧାତୁ=ହିଂସା କରିବା+
Puradwiṭ କର୍ତ୍ତୃ କ୍ୱିପ୍; ପୁରଦ୍ୱିଷ ଶବ୍ଦ, ୧ମା ୧ ବ) ତ୍ରିପୁରାରି,
ଶିବ—Siba.

**ପୁର ନାରୀ**—ସଂ. ବ.—ପୁର ସ୍ତ୍ରୀ (ଦେଖ)
Pura nāri Purastrī (See).

**ପୁରନି**—ପ୍ରାଦେ. (ବସ୍ତର). ବ.—ପୁରୁଣି (ଦେଖ)
Purani Puruṇi (See).

**ପୁର ନିବେଶ**—ସଂ.ବ (୬ଷ୍ଠୀ ତତ୍; ପୁର+ନିବେଶ)—ନଗରର ସ୍ଥାପନ—
Pura nibeśa The founding of a city (Apte).

**ପୁରନ୍ଦର**—ସଂ. ବ. (ପୁରଂ=ଅସୁର ପୁରକୁ+ଦୃ ଧାତୁ=ବିଦାରଣ
Purandara କରିବା+ଅ) ୧ । ଇନ୍ଦ୍ର—1. Indra
୨ । ମହାଦେବ—2. Śiba.
୩ । ବିଷ୍ଣୁ—3. Bishṇu
୪ । (ପୁର=ଗୃହ) ଚୋର—4. Thief; robber.
୫ । ଯେଉଁ ଚୋର ଘରେ ସିନ୍ଧି କାଟି ଚୋରି କରେ—
5. House-breaker.
୬ । ଚବିକା; ଚଇକାଠ—
6. Piper Chaba; a medicinal creeper.
[ଦ୍ର—ଏହା ଏକପ୍ରକାର ଲତା, ଏଥିର ଫଳ ପିପ୍ପଳୀ ପରି ।]
୭ । ମରିଚ (ହି. ଶ.)—1. Black pepper
୮ । ଜ୍ୟେଷ୍ଠା ନକ୍ଷତ୍ର (ହି. ଶବ୍ଦସାଗର)—
8. The 22nd asterism.
ସ. ବଣ.—ବହୁ ଲୋକ ମଧ୍ୟରେ ଶ୍ରେଷ୍ଠ (ବ୍ୟକ୍ତି)—
The best amongst many.
(ଯଥା—ରସିକ ପୁରନ୍ଦର ।)
ଦେ. ବ.—(ଇନ୍ଦ୍ରଙ୍କ ସଙ୍ଗେ ତୁଳନୀୟ) ରାଜା—King.

**ପୁରନ୍ଦର ଧର**—ଦେ. ବ.—ଉଦୟାଚଳ (ଦେଖ)
Purandara dhara Udayāchaḷa (See)
ପୁରନ୍ଦର ଧର ଶିଖର ସୁପ୍ତ । ଅଭିମନ୍ୟୁ, ବିଦଗ୍ଧ ଚିନ୍ତାମଣି ।

**ପୁରନ୍ଦର ନୀଳ**—ସ. ବ.—ଇନ୍ଦ୍ରନୀଳମଣି—
Purandara niḷa Sapphire.
ଶିରି ବେଶ ପୁରନ୍ଦର ନୀଳ କର କାନ୍ତିକାମସ୍ପୃ କରିରେ ।
କବିସୂର୍ଯ୍ୟ: କଳୋପରତ୍ନ, ଗ, ଗୀତ ।

**ପୁରନ୍ଦରା**—ସଂ. ବ. ସ୍ତ୍ରୀ—(ପୁରନ୍ଦର+ଆ)—ଗଙ୍ଗା—
Purandarā The Ganges.

**ପୁରନ୍ଦରୀ**—ଦେ. ବଣ—ପୁରନ୍ଦରର ସ୍ତ୍ରୀଲିଙ୍ଗ—
Purandarī Feminine of Purandara.
ବଧି ସୁନ୍ଦରୀ ସେ ପୁରନ୍ଦରୀ ତାହାକୁ ବୋଲାଉଥାରୁ—ଉଞ୍ଜ. ବୈଦେହୀଶବିଳାସ ।

**ପୁରନ୍ଧ୍ରି (ନ୍ଧ୍ରୀ)**—ସ. ବ. ସ୍ତ୍ରୀ (ପୁରଂ=ଗୃହକୁ+ଧୃ ଧାତୁ=ଧାରଣକରିବା
Purandhri(ndrī) +କର୍ତ୍ତୃ. ଅ+ସ୍ତ୍ରୀ. ଈ)—୧ । କୁଳବତୀ
ସ୍ତ୍ରୀ—1. A respectable lady.
୨ । ପତିପୁତ୍ରବତୀ ସ୍ତ୍ରୀ—2. A woman having her husband and children living.
୩ । ଗୃହକର୍ତ୍ତ୍ରୀ, ଗୃହିଣୀ; ଘରଣୀ—
2. House wife; mistress of the house.
୪ । ମାଇପିଲୋକ, ସ୍ତ୍ରୀଜାତି; ସ୍ତ୍ରୀମାତ୍ର—
4. A woman in geneaal; a female.

**ପୁରପାଳ**—ସ. ବ (ପୁର=ନଗର+ପାଳ ଧାତୁ=ରକ୍ଷାକରିବା+ଅ)—
Purapāḷa ୧ । ନଗରପାଳ, ନଗରରକ୍ଷକ—
1. A superintendent of the town police.
୨ । ଗ୍ରାମରକ୍ଷକ, ଚଉକିଦାର—
2. A village watchman.
୩ । (ପୁର=ଦେହ+ପାଳ)—ଜୀବନ—Life.

**ପୁର ପିଠା**—ଦେ. ବ ( ସ. ପୁର+ପିଷ୍ଟକ )—ଯେଉଁ ପିଠା ମଧ୍ୟରେ
Pura piṭhā ପୁର ଦିଆ ଯାଇଥାଏ—
Sandwich containing layers of ground pulse or sweets.

**ପୁର ବଧୂ**—ସ ବ—ପୁରସ୍ତ୍ରୀ (ଦେଖ)
Pura badhū Purastrī (See)

**ପୁରବାସୀ**—ସ. ବ. ପୁଂ ( ପୁର+ବାସିନ୍; ୧ମା. ୧ବ )—
Purabāsī ୧ । ନଗରବାସୀ ବ୍ୟକ୍ତି; ନାଗରିକ—
(ପୁରବାସିନୀ—ସ୍ତ୍ରୀ) 1. Townsman; citizen.
୨ । ଗ୍ରାମବାସୀ—2 Villager.
୩ । ଗୃହସ୍ଥ—3. Householder.

**ପୁରଭିତ୍**—ସ. ବ ( ପୁର+ଭିଦ୍ ଧାତୁ+କର୍ତ୍ତୃ. କ୍ୱିପ୍; ପୁରଭିଦ୍, ୧ମା.
Purabhit ୧ବ )—ତ୍ରିପୁରାରି; ପୁରଞ୍ଜୟ; ମହାଦେବ—Śiba

**ପୁର ମାର୍ଗ**—ସ. ବ ( ୬ଷ୍ଠୀ ତତ୍ )—ନଗରମଧ୍ୟସ୍ଥ ରାସ୍ତା ବା ଗଳି—
Pura mārga The road or street of a town; city road.

**ପୁରରକ୍ଷ**—ସ. ବ ( ପୁର+ରକ୍ଷ ଧାତୁ+ଅ )—
Puraraksha ପୁରପାଳ ( ଦେଖ )
Purapāḷa (See)
ପୁରରକ୍ଷକ }
ପୁରରକ୍ଷୀ } ଅନ୍ୟରୂପ

**ପୁରରା**—ପ୍ରାଦେ ( ସମ୍ବଲପୁର ଓ ଗଡ଼ଜାତ ) ବ—
Purarā ମଇଁଷିର ଅଣ୍ଡିରା ଛୁଆ—
He-calf of a buffalo.

**ପୁର ଶାସନ**—ସ.ବ (ପୁର+ଶାସନ)—ପୁରଞ୍ଜୟ; ତ୍ରିପୁରାରି; ମହାଦେବ—
Puraśāsana Śiba.

**ପୁରଶ୍ଚରଣ**—ସ. ବ (ପୁରସ୍=ଆଗେ+ଚର୍ ଧାତୁ—ଆଚରଣ କରିବା+
Puraścharaṇa ଭାବ. ଅନ)—ପୂର୍ବକ୍ରିୟା; ସ୍ୱୀୟ ଇଷ୍ଟଦେବତାଙ୍କ

ମନ୍ତ୍ରରେ ସିଦ୍ଧିଲାଭ କରିବାପାଇଁ ଇଷ୍ଟଦେବତାଙ୍କୁ ପୂଜା କରି ମନ୍ତ୍ରଜପ, ହୋମ, ତର୍ପଣ, ଅଭିଷେକ ଓ ବ୍ରାହ୍ମଣ-ଭୋଜନ ଏହି ପଞ୍ଚାଙ୍ଗଯୁକ୍ତ ସାଧନା— Fivefold worship of one's supreme Deity in order to attain perfection.

୨ । ମନ୍ତ୍ରସିଦ୍ଧି ନିମନ୍ତେ ନିର୍ଦ୍ଦିଷ୍ଟ ବାର ଇଷ୍ଟମନ୍ତ୍ରର ଜପ— 2. Repetition of a special mystic formula to attain perfection.

**ପୁରଶ୍ଛଦ**—ସଂ. ବି. (ପୁରଃ+ଛଦ୍ ଧାତୁ=ଘୋଡ଼ାଇବା+କର୍ତ୍ତୃ. ଅ)— Puraśchhada ୧ । ଦର୍ଭ, କୁଶ—1. The holy grass; Saccharum Cylindricum.

୨ । ସ୍ତନାଗ୍ର, ଚୂଚୁକ— 2. The nipple of the female breast.

**ପୁରସ୍**—ସ. ଅ—ପୁରଃ (ଦେଖ) Puras Puraḥ (See)

**ପୁର ସଂସ୍କାର**—ସଂ. ବି. (୬ଷ୍ଠୀ ତତ୍; ପୁର+ସଂସ୍କାର)— Pura saṁskāra ଦୁର୍ଗର ମରାମତି— The repairing of a fort.

**ପୁରସ୍କରଣ**—ସଂ. ବି. (ପୁରଃ+କରଣ)—୧ । ପୂଜା କରିବା— Puraskaraṇa 1. Worshipping.

୨ । ସମ୍ପୂର୍ଣ୍ଣୀକରଣ—2. Perfecting.

୩ । ଆଗରେ ବା ସମ୍ମୁଖରେ ରଖିବା— 3. Placing in front.

**ପୁରସ୍କରଣୀୟ**—ସଂ. ବିଣ. (ପୁରସ୍+କରଣୀୟ)—୧ । ସମ୍ମାନ ବା ଭକ୍ତି କରିବାର ଉପଯୁକ୍ତ; ସମ୍ମାନନୀୟ; ପୂଜନୀୟ—1 Deserving reverence or respect. Puraskaraṇiya

୨ । ପୁରସ୍କୃତ ହେବାର ଉପଯୁକ୍ତ— 2. Fit to be rewarded.

**ପୁରସ୍କର୍ତ୍ତବ୍ୟ**—ସଂ. ବିଣ. (ପୁରଃ+କର୍ତ୍ତବ୍ୟ)—୧ । ସମ୍ମାନାନ୍ୱିତ ହେବାର ଉପଯୁକ୍ତ—1. Fit to be respected or treated with deference. Puraskarttabya

୨ । ସମ୍ପୂର୍ଣ୍ଣ କରିବାର ଉପଯୁକ୍ତ— 2. Fit to be completed.

୩ । ଆଗରେ ସ୍ଥାପିତ ହେବାର ଉପଯୁକ୍ତ— 3. Fit to be placed in front.

୪ । ପ୍ରସ୍ତୁତ ହେବାର ଉପଯୁକ୍ତ— 4. Fit to be prepared or fitted out.

**ପୁରସ୍କର୍ତ୍ତା**—ସ. ବିଣ. (ପୁରସ୍+କର୍ତ୍ତୃ. ୧ମା, ୧ବ.)—ଯେ ସମ୍ମାନ କରେ—One who honours or respects another. Puraskarttā (ପୁରସ୍କର୍ତ୍ତ୍ରୀ—ସ୍ତ୍ରୀ)

**ପୁରସ୍କାର**—ସ. ବି. (ପୁରସ୍=ପ୍ରଥମେ; ସମ୍ମୁଖରେ+କାର)— Puraskāra ୧ । ମାନ୍ୟ କରିବା; ସମ୍ମାନ ଦେଖାଇବା; ସମାଦର— 1. Honour, respecting; treating with honour.

୨ । ଆଦର; ଅଭ୍ୟର୍ଥନା—2. Receiving with honour; welcoming; an address.

୩ । ପୂଜନ; ପୂଜା—3. Worshipping.

୪ । ବହୁ ମଧ୍ୟରୁ ଏକକୁ ଆଗେ ସମ୍ମାନ ଦେଖାଇବା— 4. Giving preference.

୫ । ଭେଟି ଦେବା—5. Act of presenting.

୬ । ଉପଢୌକନ, ଉପହାର—6. Present.

୭ । ଆଗରେ ଥୋଇବା—7. Laying before.

୮ । ଭରସା କରିବା; ଆଶା କରିବା— 8. Expecting; anticipating.

୯ । ଶତ୍ରୁକୁ ଆକ୍ରମଣ—9. Attacking; assailing.

୧୦ । ସାଙ୍ଗ ବା ସମ୍ପୂର୍ଣ୍ଣ କରିବା—10. Perfecting.

୧୧ । ସମାଧା କରିବା; ସମ୍ପନ୍ନ କରିବା— 11. Accomplishing; completing.

୧୨ । ପାଲିସ୍ ବା ମର୍ଦ୍ଦନ କରିବା—12. Polishing.

୧୩ । ତୟାର ବା ପ୍ରସ୍ତୁତ ହେବା—13. Getting ready.

୧୪ । ସଜ୍ଜିତ କରିବା; ସଜାଇବା— 14. Arraying; arranging; putting in order.

୧୫ । ଅଭିଷେକ— 15. Installation; inauguration; initiation.

୧୬ । ବକସିସ୍; ପାରିତୋଷିକ— 16. Reward; honorarium; prize.

୧୭ । ପବିତ୍ର ଜଳ ଛିଞ୍ଚିବା— 17 Sprinkling with holy water.

୧୮ । ପାରିତୋଷିକ ଦେବା— 18. Rewarding; distributing a prize.

୧୯ । ସ୍ୱୀକାର—19. Promise; vow.

୨୦ । ଅଙ୍ଗୀକାର—20 Acknowledgment.

୨୧ । ସମ୍ମତି—21. Agreement; consenting.

୨୨ । ଅପବାଦ; ଦୋଷାରୋପ— 22. Accusation, calumny; vilification.

୨୩ । ଅଭିଯୋଗ—23. Charge.

୨୪ । ଅଭିଶାପ—24. Curse.

୨୫ । ରାଜକୀୟ ଦାନ—25 Royal gift; gratuity.

୨୬ । ଦାନ—26 Donation; gift.

୨୭ । ପଦବୃଦ୍ଧି, ଉନ୍ନତି— 27. Promotion; advancement.

୨୮ । ଆକ୍ରମଣ—28. Attacking (Apte).

୨୯ । ପବିତ୍ରୀକରଣ—29. Consecrating (Apte).

୩୦ । ସାଙ୍ଗରେ ଯିବା— 30. Accompanying; attending (Apte).

୩୧ । ଗ୍ରହଣ—31. Acceptance.

**ପୁରସ୍କାର ବିତରଣ**—ସ. ବି—ପାରିତୋଷିକ ଦେବା, ପ୍ରାଇଜ୍ ବାଣ୍ଟିବା— Puraskāra bitaraṇa Distribution of prizes.

**ପୁରସ୍କାରେ**—ଦେ. କ୍ରି. ବିଣ—ଆଦରରେ—
Puraskāre With much respect.
ପୁରସ୍କାରେ ନେଇ ବେଢଗତ—ଭଞ୍ଜ. ପ୍ରେମସୁଧାନିଧି ।

**ପୁରସ୍କାର୍ଯ୍ୟ**—ସ. ବିଣ. ( ପୁରଃ+କାର୍ଯ୍ୟ )—ପୁରସ୍କର୍ତ୍ତବ୍ୟ (ଦେଖ)
Puraskārjya Puraskarttabya (See)

**ପୁରସ୍କୃ (ଧାତୁ)**—ସ—୧ । ଆଗରେ ରଖିବା—
Puraskṛu(root) To place before or in front (Apte).
୨ । ନେତା କରିବା—2. To make one's leader; to put at the head (Apte).
୩ । ସମ୍ମାନିତ କରିବା, ସମାଦର କରିବା—3. To honour.
୪ । ସମ୍ବର୍ଦ୍ଧନା କରିବା—
4. To hospitably receive; to welcome.
୫ । ଉପହାର ଦେବା; ପାରିତୋଷିକ ଦେବା—
5. To give a present or reward.
୬ । ଛଳନାରୂପେ ବ୍ୟବହାର କରିବା—
6. To use as a pretext (Apte).

**ପୁରସ୍କୃତ**—ସ. ବିଣ. ( ପୁରସ୍+କୃତ )—୧ । ସମାନିତ—
Puraskṛuta 1. Honoured; respected; revered.
( ପୁରସ୍କୃତା—ସ୍ତ୍ରୀ ) ୨ । ପୂଜିତ—2. Worshipped; adored.
୩ । ସମ୍ପାଦିତ; ସମ୍ପନ୍ନ—3. Accomplished.
୪ । ପ୍ରସ୍ତୁତ—4. Prepared; gotready.
୫ । ସମ୍ମୁଖରେ ସ୍ଥାପିତ - 5. Placed or laid before; presented; placed in front.
୬ । ସମ୍ମାର୍ଜିତ—6. Polished.
୭ । ଅଭିଷିକ୍ତ—
7 Sprinkled with holy water.
୮ । ଦୀକ୍ଷାପ୍ରାପ୍ତ—8. Initiated.
୯ । ପୁରସ୍କାରପ୍ରାପ୍ତ—9. Rewarded.
୧୦ । ଅଙ୍ଗୀକୃତ—10. Promised.
୧୧ । ସମ୍ମତ; ସ୍ୱୀକୃତ—11. Agreed.
୧୨ । ଅପବାଦିତ—12. Calumniated.
୧୩ । ଅଭିଯୁକ୍ତ—13. Accused; charged.
୧୪ । ଶତ୍ରୁଦ୍ୱାରା ପ୍ରପୀଡ଼ିତ—
14. Distressed or harassed by the enemy.
୧୫ । ପୂର୍ବରୁ ଚିନ୍ତିତ—15. Anticipated.
୧୬ । ଗୃହୀତ—16. Taken; accepted.
୧୭ । ଅବଲମ୍ବିତ—
17. Supported by; depending upon.
୧୮ । ଯାହାକୁ ବକ୍ଷିସ ଦିଆ ଯାଇଥାଏ—18. Rewarded
୧୯ । ପବିତ୍ରୀକୃତ—19. Consecrated (Apte).
୨୦ । ସମାପ୍ତ; ସମ୍ପୂର୍ଣ୍ଣୀକୃତ—20. Finished; made perfect or complete (Apte).
୨୧ । ନିଯୁକ୍ତ—21. Appointed (Apte).

**ପୁରସ୍କ୍ରିୟା**—ସ. ବି. (ପୁରସ୍+କ୍ରିୟା)—ପୁରସ୍କାର ( ଦେଖ )
Puraskriyā Puraskāra ( See )

**ପୁରସ୍ତମ**—ଗ୍ରା. ବି. (ସ. ପୁରୁଷୋତ୍ତମର ଅଶୁଦ୍ଧ ଉଚ୍ଚାରଣ)—
Purastama ୧ । ଶ୍ରୀ କ୍ଷେତ୍ର; ପୁରୀ ସହର—
**परसोतम** 1. The town of Puri
ଯାଉଛ ଅଛି ପୁରସ୍ତମକୁ ହେ । ଅଛି ସୁଆଙ୍ଗ ଗୀତ ।
୨ । ପୁରୁଷୋତ୍ତମ ନାମକ ବ୍ୟକ୍ତିର ଡାକ ନାମ—
2 Name of calling a person named Purushottama

**ପୁରସ୍ତମି**—ଗ୍ରା. ବିଣ—୧ । ପୁରିଆ, ପୁରୀ ସମ୍ବନ୍ଧୀୟ, ପୁରୁଷୋତ୍ତମ
Purastami ସମ୍ବନ୍ଧୀୟ—1 Pertaining to the town of Puri.
ପୁରସ୍ତମିଆ(ୟା)—ଅନ୍ୟରୂପ
ପୁରସ୍ତମାଣୀ / ପୁରସ୍ତମିଆଣୀ / ପୁରସ୍ତମିୟାଣୀ } ସ୍ତ୍ରୀ ପୁଂ—୨ । ପୁରୀର ଅଧିବାସୀ—
2. Resident of Puri.

**ପୁରସ୍ତାତ୍**—ସ. ଅ (ପୁରସ୍+ତାତ)—୧ । ପୂର୍ବ ଦିଗରେ—
Purastāt 1 East-ward; in the east.
୨ । ପୂର୍ବେ; ପୂର୍ବ କାଳରେ, ଏଥି ପୂର୍ବେ—
2. Formerly, before; previously.
୩ । ପୂର୍ବ କାଳରେ—
3 In old times, in times gone by
୪ । ପ୍ରଥମେ—
4. Originally, at first; in the beginning.
୫ । ଅଗ୍ର ଦେଶରେ; ଆଗେ; ସମ୍ମୁଖରେ—5. In front.

**ପୁରସ୍ତ୍ରୀ**—ସ. ବି. (ଷଷ୍ଠୀ ତତ୍)—୧ । ନଗର ବାସିନୀ ସ୍ତ୍ରୀ—
Purastrī 1. A citizeness; a woman dwelling in a town.
୨ । ଗୃହିଣୀ—2 A dame; a matron; house-wife.
୩ । କୁଳ ନାରୀ; ପତିବ୍ରତା ସ୍ତ୍ରୀ—
3 A caste woman
୪ । ଅନ୍ତଃପୁର ବାସିନୀ ନାରୀ; କୁଳବଧୂ; ବୋହୂ ଭୁଆସୁଣୀ—
4. A woman of the harem; a woman who does not come out of the public.

**ପୁରସ୍ଥ**—ସ. ବିଣ. ପୁଂ (ପୁର+ସ୍ଥା ଧାତୁ+କର୍ତ୍ତୃ. ଅ)—
Purastha ୧ । ସମ୍ମୁଖସ୍ଥ—1. Situated in front; standing in front.
(ପୁରସ୍ଥା—ସ୍ତ୍ରୀ)
୨ । ଗୃହ ମଧ୍ୟସ୍ଥ—2. Situate inside the house.
୩ । ଘରେ ସର୍ବଦା ରହୁଥିବା—3. Staying at home.

**ପୁରସ୍ଥାନୀ**—ଦେ. ବିଣ. ( ସ ପୁର ଓ ସ୍ଥାନ )—
Purasthānī ପୁର ବା ରାଜଧାନୀରେ ସ୍ଥିତ ବା ଘଟିତ—
Happening or situated in a town or capital.
ବେଦ ଧ୍ୱନି ଦାନ ଧ୍ୱନିଟ ଧନୁ ଟଙ୍କ
ହୋଇଥିଲା ଯେ ବଳାପକ ପୁରସ୍ଥାନୀ । କୃଷ୍ଣସିଂହ, ମହାଭାରତ, ଦ୍ରୋଣ ।

**ପୁରସ୍ଥାୟୀ**—ସ. ବିଣ. ପୁଂ. (ପୁର+ସ୍ଥା ଧାତୁ+କର୍ତ୍ତୃ. ଇନ୍; ୧ମା.୧ବ)-
Purasthāyī ପୁରସ୍ଥ (ଦେଖ)—Purastha (See)
(ପୁରସ୍ଥାୟିନୀ—ସ୍ତ୍ରୀ)

ପୁରହର—ସଂ. ବି. (ପୁର=ତ୍ରିପୁରାସୁର+ହର=ସଂହାର)—କ
Purahara ମହାଦେବ —Siba.

ପୁରହା—ସଂ. ବି. ( ପୁର=ତ୍ରିପୁର+ହା ଧାତୁ+କ୍ୱିପ୍; ପୁରହନ୍ ଶବ୍ଦ
Purahā ୧ମା. ୧ବ )—୧ । ମହାଦେବ—1. Siba.
୨ । ବିଷ୍ଣୁ—2. Bishṇu

ପୁରା—ସଂ. ଅ. ( ପୁର୍ ଧାତୁ=ଅଗ୍ରସର ହେବା+ଅ+ଆ )—
Purā ୧ । ବହୁକାଳ ପୂର୍ବେ—1. Long ago; in ancient times.
୨ । ଏଥିପୂର୍ବେ, ପୂର୍ବକାଳରେ, ଆଗେ—
2 Formerly; once upon a time.
୩ । ଅଳ୍ପ ଦିନ ପୂର୍ବେ—3. Lately; recently.
୪ । ଅଗ୍ରେ, ପ୍ରଥମେ—
4 At first; in the beginning.
୫ । ପରେ, ପଶ୍ଚାତ୍—5 Afterwards
୬ । ପ୍ରଥମେ; ପହିଲେ—
6 At first; in the first place (Apte)
୭ । ଆଜି ପର୍ଯ୍ୟନ୍ତ—
7. Hitherto; up to the present time (Apte).
୮ । ଅନତିବିଳମ୍ବେ—
8. In a short time; soon; ere long (Apte).
ସଂ. ବି—୧ । ପୁରାଣ —1. Ancient history; legend.
୨ । ପୁରାବୃତ୍ତ, ଇତିହାସ—2. Annals, history.
୩ । ପୂର୍ବଦିଗ —3. The east
୪ । ଗଙ୍ଗା ନଦୀ —
4. The river Ganges ( Apte ).
୫ । ଦୁର୍ଗ—5. Castle (Apte).
୬ । ସୁଗନ୍ଧିବିଶେଷ—
7 A kind of perfume ( Apte ).
ସଂ. ବିଣ—୧ । ପ୍ରାଚୀନ, ଚିରନ୍ତନ—
1. Old; ancient, long past.
୨ । ଅତୀତ—2 Past, former.
୩ । ଅତି ଅଳ୍ପ ଦିନ ପୂର୍ବେ ଘଟିଥିବା—
3. Recent; late.
୪ । ଚିର, ଚିରନ୍ତନ—4 Long standing.
୫ । ନିକଟ, ସନ୍ନିହିତ—
5 Adjacent, near; proximate.
୬ । ଅନାଗତ—6. Future.
୭ । ଭୀରୁ—7. Timid.
୮ । ନିକଟ ଭବିଷ୍ୟତ—8 Near future.

ପୁରାକଥା—ସଂ. ବି.—(ପୁରା+କଥା)—୧ । ପ୍ରାଚୀନ କାହାଣୀ—
Purākathā 1. An old legend (Apte)
୨ । ପୁରାବୃତ୍ତ; ଇତିହାସ—2. History.

ପୁରାକଳ୍ପ—ସଂ. ବି (ପୁରା+କଳ୍ପ)—୧ । ପୂର୍ବବର୍ତ୍ତୀ ସୃଷ୍ଟି—
Purā kalpa 1. A former creation (Apte).
୨ । ଅତୀତ ସମୟର କାହାଣୀ—
2. A story of the past (Apte).
୩ । ଅତୀତ ଯୁଗ—3. A former age (Apte)

ପୁରାକାଳ—ଦେ ବି —୧ । ପୁରାତନ କାଳ, ପ୍ରାଚୀନ ସମୟ—
Purākāla 1. Ancient times; old days; yore.
୨ । ଅତୀତ କାଳ—2. Past

ପୁରାକୃତ—ସଂ. ବିଣ.—ପୂର୍ବେ କରା ଯାଇଥିବା—
Purākṛuta Formerly done
ସଂ. ବି.—ପୂର୍ବଜନ୍ମକୃତ କର୍ମଫଳ—
Actions done in a former life (Apte).

ପୁରାଗତ—ସଂ ବିଣ (ପୁରା+ଆଗତ)—୧ । ପୂର୍ବକାଳୀନ—
Purāgata 1 Of ancient times.
୨ । ପୂର୍ବକାଳରୁ ଆଗତ, ଅବହମାନ କାଳରୁ ଚଳି ଆସୁଥିବା—
2. Obtaining or continuing from old times.

ପୁରାଣ - ସଂ. ବିଣ (ପୁରା+ଭୂବେ. ଣ, ଯାହା ପୁରାକାଳରେ ଘଟିଥିଲା)
Purāṇa ୧ । ପୁରୁଣା, ଅତି ପ୍ରାଚୀନ; ପୁରାତନ—
1. Ancient, very old.
୨ । ଅନାଦି—2 Having no traceable beginning.
୩ । କ୍ଷୟ ପ୍ରାପ୍ତ; ଜୀର୍ଣ୍ଣ—
3. Decayed; worn out (Apte)
ସଂ. ବି —୧ । କାର୍ଷାପଣ, କାହାଣ, ୧୬ ପଣ କଉଡ଼ି ପରିମିତ ରୁପା ବା ମୁଦ୍ରା—1 One kāhāṇa or 16 pans or 1280 cowries; a coin or silver equal to one kahan or 1280 cowries
୨ । ଅତୀତ ଘଟଣା—
2. A past event or occurrence (Apte)
୩ । ଅତି ପ୍ରାଚୀନ କାଳର ବିବରଣ—3. A tale of the past; legendary history (Apte).
୪ । (ପୁରା=ପ୍ରାଚୀନ କାଳରେ+ସଂଘଟିତ ବା ଜାତ ଅର୍ଥେ. ନ; ସଂ ପୁରାତନର ପ୍ରାକୃତ ଆକାର ପୁରାଣ)—ଅତି ପ୍ରାଚୀନ କାଳରେ ପ୍ରସିଦ୍ଧ ବ୍ୟକ୍ତି, ସମାଜ, ଧର୍ମ ଓ ଦେବତା ଆଦିଙ୍କ ଜନ୍ମ ଓ କ୍ରିୟା କଳାପାଦି ଅବଲମ୍ବନରେ ରଚିତ ଆଖ୍ୟାୟିକା; ବ୍ୟାସାଦି ମୁନିଗଣ ରଚିତ ସର୍ଗ (ସୃଷ୍ଟି), ପ୍ରତିସର୍ଗ (ପ୍ରଳୟ), ବଂଶ (ବଂଶ ବିସ୍ତାର), ମନ୍ୱନ୍ତର (ଯୁଗାଂଶ ବିସ୍ତାର) ଓ ବଂଶାନୁଚରିତ (ବଂଶର ଇତିହାସ)—ଏହି ପାଞ୍ଚ ଗୋଟି ଲକ୍ଷଣାକ୍ରାନ୍ତ ଗ୍ରନ୍ଥବିଶେଷ, ପ୍ରାଚୀନ ଆଖ୍ୟାନ—
4. Mythology; Hindu legendary work by Byāsa and other sages dealing with creation, destruction, genealogy, the different ages and family history of ancient times.

[ଦ୍ର—ବେଦର ସଂହିତା ଓ ବ୍ରାହ୍ମଣ ନାମକ ଭାଗରେ ଅନେକ ରାଜା ଓ ଅପରାପର ବ୍ୟକ୍ତିମାନଙ୍କର ନାମ ଓ ଆଖ୍ୟାୟିକା ଦେଖିବାକୁ ମିଳେ । ଏହାକୁ ପୁରାଣ କୋହାଯାଏ । ଏତଦ୍ଭିନ୍ନ ବୈଦିକ ଯୁଗରେ

ସ୍ୱତନ୍ତ୍ର ପୁରାଣ ନ ଥିଲା । କିନ୍ତୁ ବୈଦିକ ଯୁଗର ପରେ ବ୍ୟାସାଦି ମୁନିମାନେ ପୁରାଣମାନ ରଚନା କରିଥିଲେ । ଏହି ଗ୍ରନ୍ଥମାନଙ୍କରେ ବେଦାର୍ଥ ସବିଶେଷରୂପେ ବର୍ଣ୍ଣିତ ହୋଇଅଛି । ପୁରାଣରେ ସ୍ଥାବର, ଜଙ୍ଗମ, ଦେବତା, ଅସୁର, ଗନ୍ଧର୍ବ, ଯକ୍ଷ, ରାକ୍ଷସ ଓ ମନୁଷ୍ୟାଦିଙ୍କ ବୃତ୍ତାନ୍ତ, ସୃଷ୍ଟି ବିବରଣ, ବ୍ରହ୍ମର ସାକାରତା ଓ ନିରାକାରତା ବର୍ଣ୍ଣନ, କ୍ରିୟାଯୋଗ, ଆୟୁତତ୍ତ୍ୱନିର୍ଣ୍ଣୟ, ଜ୍ୟୋତିର୍ବିଜ୍ଞାନ, ପୂର୍ବକାଳର ରାଜାମାନଙ୍କ ବଂଶାବଳୀ ଓ କାର୍ଯ୍ୟକଳାପ ଆଦି ନାନା ବିଷୟ ବିଶେଷରୂପେ ବର୍ଣ୍ଣିତ ହୋଇଅଛି । ଏହା ପାଠ କଲେ ଭୂତ, ଭବିଷ୍ୟତ୍ ଓ ବର୍ତ୍ତମାନ ଅବସ୍ଥା ପରିଜ୍ଞାନ, ଜ୍ଞାନର ନିର୍ମଳତା ଓ ବୁଦ୍ଧିର ପ୍ରାଖର୍ଯ୍ୟ ଜନ୍ମେ ।

ପୁରାଣମାନ ସାଧାରଣତଃ ୨ ଶ୍ରେଣୀରେ ବିଭକ୍ତ । ଯଥା—

(କ) ମହାପୁରାଣ ଓ (ଖ) ଉପପୁରାଣ ।

(କ) ମହାପୁରାଣର ସଂଖ୍ୟା ୧୮ ଗୋଟି ଯଥା—

| ନାମ | ଶ୍ଳୋକ ସଂଖ୍ୟା | ପ୍ରବକ୍ତା ମୁନି | ପ୍ରଧାନ ବିଷୟ |
|---|---|---|---|
| ୧—ବ୍ରହ୍ମ | ୧୦୦୦୦ | ବ୍ୟାସଶିଷ୍ୟ ଲୋମହର୍ଷଣ | ସୂର୍ଯ୍ୟଦେବ |
| ୨—ପଦ୍ମ | ୫୫୦୦୦ | ଲୋମହର୍ଷଣ ସୁତ ଉଗ୍ରଶ୍ରବା | ସୃଷ୍ଟି ବର୍ଣ୍ଣନା |
| ୩—ବିଷ୍ଣୁ | ୨୩୦୦୦ | ପରାଶର | ସୃଷ୍ଟିବୃତ୍ତାନ୍ତ ଓ ଇତିହାସ |
| ୪—ଶିବ (ମତାନ୍ତରରେ ବାୟୁ) | ୨୪୦୦୦ | ସୁତ | ମହାଦେବ |
| ୫—ଭାଗବତ | ୧୮୦୦୦ | ଶୁକ | ବିଷ୍ଣୁ |
| ୬—ନାରଦୀୟ | ୨୫୦୦୦ | ନାରଦ | ବିଷ୍ଣୁ |
| ୭—ମାର୍କଣ୍ଡେୟ | ୯୦୦୦ | ମାର୍କଣ୍ଡେୟ | ଦୁର୍ଗା |
| ୮—ଅଗ୍ନି | ୧୫୦୦୦ | ବ୍ୟାସଶିଷ୍ୟ ସୁତ | ଅବତାର ଓ ରାଜବଂଶାବଳୀ |
| ୯—ଭବିଷ୍ୟ | ୧୪୫୦୦ | ବ୍ୟାସ | ଭବିଷ୍ୟତ୍ ଘଟଣାବଳୀ |
| ୧୦—ବ୍ରହ୍ମବୈବର୍ତ୍ତ | ୧୮୦୦୦ | ସୁତ | ଶ୍ରୀକୃଷ୍ଣ |
| ୧୧—ଲିଙ୍ଗ | ୧୧୦୦୦ | ସୁତ | ମହାଦେବ |
| ୧୨—ବରାହ | ୨୪୦୦୦ | ବ୍ୟାସ | ବରାହ ଅବତାର |
| ୧୩—ସ୍କନ୍ଦ | ୮୧୧୦୦ | ବ୍ୟାସ | ମହାଦେବ |
| ୧୪—ବାମନ | ୧୦୦୦୦ | ବ୍ୟାସଶିଷ୍ୟ ଲୋମହର୍ଷଣ | ତ୍ରିବିକ୍ରମ ଓ ବାମନ ଅବତାର |
| ୧୫—କୂର୍ମ | ୧୭୦୦୦ | ବ୍ୟାସ | ଚତୁର୍ବର୍ଗ |
| ୧୬—ମତ୍ସ୍ୟ | ୧୪୦୦୦ | ବ୍ୟାସ | ସୃଷ୍ଟି ବର୍ଣ୍ଣନ |
| ୧୭—ଗରୁଡ଼ | ୧୯୦୦୦ | ବ୍ୟାସ | ଗରୁଡ଼ |
| ୧୮—ବ୍ରହ୍ମାଣ୍ଡ | ୧୨୦୦୦ | ବ୍ୟାସ | ସୃଷ୍ଟିଠାରୁ ପ୍ରଳୟ ପର୍ଯ୍ୟନ୍ତ |

ଅଷ୍ଟାଦଶ ପୁରାଣର ନାମ ଉଲ୍ଲେଖ କରିବା ନିମନ୍ତେ ପଣ୍ଡିତମାନେ ନିମ୍ନଲିଖିତ ଶ୍ଳୋକଟି ପଢ଼ନ୍ତି । 'ମ' ଦ୍ୱୟଂ'ଭ' ଦ୍ୱୟଂ ଚୈବ 'ବ୍ର' ତ୍ରୟଂ 'ବ' ଚତୁଷ୍ଟୟଂ 'ଅ' 'ନା' 'କୃ' 'ସ୍କ' 'ପ' 'ଲି' 'ଗ' 'ବି' ପୁରାଣାନି ବିଦୁର୍ବୁଧାଃ ।

ପ୍ରତ୍ନତତ୍ତ୍ୱବିତ୍‌ମାନେ ଗବେଷଣାଦ୍ୱାରା ସ୍ଥିର କରିଅଛନ୍ତି ଯେ, ବାୟୁ ପୁରାଣ (ଅନ୍ୟନାମ ବ୍ରହ୍ମାଣ୍ଡ ପୁରାଣ) ଓ ମତ୍ସ୍ୟ ପୁରାଣ ସମସ୍ତ ପୁରାଣ ମଧ୍ୟରେ ପୁରାତନ । ବିଷ୍ଣୁପୁରାଣ ତତ୍ପରେ ରଚିତ ଏବଂ ଭାଗବତ ସର୍ବଶେଷରେ ରଚିତ ।

(ଖ) ଉପପୁରାଣ ମଧ୍ୟ ୧୮ ଗୋଟି । ଯଥା—

(୧) ସନତ୍‌କୁମାର, (୨) ନରସିଂହ, (୩) ନାରଦ, (୪) ଶୈବଧର୍ମ, (୫) ଦୁର୍ବାସା, (୬) ନାରଦୀୟ, (୭) କପିଳ, (୮) ମାନବ, (୯) ଔଶନସ, (୧୦) ବ୍ରହ୍ମାଣ୍ଡ (୧୧) ବାରୁଣ, (୧୨) କାଳିକା, (୧୩) ମାହେଶ୍ୱର, (୧୪) ଶାମ୍ବ, (୧୫) ସୌର, (୧୬) ପରାଶର, (୧୭) ମାରୀଚ ଓ (୧୮) ଭାର୍ଗବ (ମତାନ୍ତରରେ ଦେବୀ ଭାଗବତ) ଏମାନଙ୍କ ଛଡ଼ା ଅନେକ ଗୁଡ଼ିଏ ଅତିରିକ୍ତ ପୁରାଣ ମିଳେ । ଯଥା— ନନ୍ଦିକେଶ୍ୱର, ଶୁକ, ବଶିଷ୍ଠ, ଭାର୍ଗବ, ମନୁ, ବାୟୁ, ମାହେଶ, କଲ୍କି, ଶୈବ, ଆଦିତ୍ୟ, ଆଦି, ଶମ୍ଭୁ, ବଶିଷ୍ଠ ବୃହଲିଙ୍ଗ, ବିଷ୍ଣୁଧର୍ମୋତ୍ତର ବୃହଦ୍ଧର୍ମ, ଧର୍ମ, ଗୌରୀ, ନୀଳ, ଗଣେଶ, ଆତ୍ମ, ବିଷ୍ଣୁକେଶରୀ, ଭାଗବତଭୂଷଣ, ଭାଗବତାମୃତ, ଭାଗବତାମୃତସାର, ମହାଭାଗବତ, କାଳୀ, ଦେବୀ ଓ ଭାସ୍ୱର, ପୁରୁଷୋତ୍ତମପ୍ରସାଦ ।

ପଦ୍ମପୁରାଣ ମତରେ ପୁରାଣସକଳ ତ୍ରିବିଧ—

୧ । ସାତ୍ତ୍ୱିକ ବା ମୋକ୍ଷଦ । ଯଥା—ବିଷ୍ଣୁ, ନାରଦ, ଭାଗବତ, ଗରୁଡ଼, ପଦ୍ମ ଓ ବରାହ ।

୨ । ରାଜସ ବା ସ୍ୱର୍ଗଦ । ଯଥା । ବ୍ରହ୍ମାଣ୍ଡ, ବ୍ରହ୍ମବୈବର୍ତ୍ତ, ମାର୍କଣ୍ଡ, ଭବିଷ୍ୟ, ବାମନ ଓ ବ୍ରହ୍ମ ।

୩ । ତାମସ ବା ନିରୟ ପ୍ରାପ୍ତି ହେତୁ । ଯଥା—ମତ୍ସ୍ୟ, କୂର୍ମ, ଲିଙ୍ଗ, ଶିବ, ସ୍କନ୍ଦ ଓ ଅଗ୍ନି ।

ବ୍ରହ୍ମପୁରାଣରେ କୋଣାର୍କ, ପୁରୀ ଓ ଭୁବନେଶ୍ୱର ତୀର୍ଥମାନଙ୍କ ବିଷୟ ଅଛି । ସ୍କନ୍ଦପୁରାଣାନ୍ତର୍ଗତ ଉତ୍କଳଖଣ୍ଡରେ ଉତ୍କଳର ତୀର୍ଥମାନଙ୍କ ଉଲ୍ଲେଖ ଅଛି । ଗରୁଡ଼ ପୁରାଣରେ ଚିକିତ୍ସାବିଦ୍ୟା, ଜ୍ୟୋତିଷ, ସାମୁଦ୍ରିକ ଓ ଔଷଧ ବିଷୟ ଅଛି ।

ଭାଗବତ ମତରେ ପୁରାଣର ୧୦ ଟି ଲକ୍ଷଣ, ଯଥା—

> ସର୍ଗ ସେର୍ଗ ବୃତ୍ତିରକ୍ଷା, ହେତୁ ଯେ ମନ୍ୱନ୍ତର ସଂଖ୍ୟା
> ବଂଶାନୁଚରିତ ଯେ ସଖା, ଆଶ୍ରୟ ବଂଶର ବ୍ୟବସ୍ଥା
> ଏ ଦଶ ଲକ୍ଷଣରେ ଯୁକ୍ତ, ବଡ଼ ପୁରାଣ ନାମେ ଖ୍ୟାତ ।
>
> ଜଗନ୍ନାଥ ଭାଗବତ ।

[ ଦ୍ର—ଶ୍ରୁତି (ବେଦ) ସ୍ମୃତି (ମନୁସଂହିତା ଆଦି) ଓ ପୁରାଣ ମଧ୍ୟରେ ଶ୍ରୁତି ପ୍ରାଚୀନ ଓ ପୁରାଣ ତତ୍ପରବର୍ତ୍ତୀ କାଳରେ ରଚିତ ହୋଇଥିବାର ଜଣାପଡ଼େ । ଶ୍ରୁତି, ସ୍ମୃତି ଓ ପୁରାଣରେ କୌଣସି ବିଷୟରେ ମତଭେଦ ଲକ୍ଷିତ ହେଲେ ଶ୍ରୁତି ଓ ସ୍ମୃତିରେ ଲକ୍ଷିତ ବିଷୟ ଗ୍ରହଣୀୟ ଓ ଶ୍ରୁତି ଏବଂ ସ୍ମୃତିରେ କୌଣସି ବିଷୟରେ ମତଭେଦ ଲକ୍ଷିତ ହେଲେ ଶ୍ରୁତିଲିଖିତ ବିଷୟ ଗ୍ରହଣୀୟ ବୋଲି ପଣ୍ଡିତମାନେ ସିଦ୍ଧାନ୍ତ କରିଅଛନ୍ତି । ଖ୍ରୀଷ୍ଟ ୫ମ ଶତାବ୍ଦୀରେ ଭାରତୀୟ ହିନ୍ଦୁମାନେ ଜାଭା ଓ ବାଲୀ ଦ୍ୱୀପରେ ଉପନିବେଶ ସ୍ଥାପନ କରିଥିଲେ । ସେଠାରେ ବ୍ରହ୍ମାଣ୍ଡପୁରାଣ ଗ୍ରନ୍ଥ ମିଳିଅଛି—

ହିନ୍ଦୁମାନଙ୍କ ଅନୁକରଣରେ ଜୈନମାନେ ମଧ୍ୟ ଅନେକ ପୁରାଣ ରଚନା କରିଥିଲେ । ଜୈନତୀର୍ଥଙ୍କରଙ୍କ ରଚିତ ୨୪ଟି ଜୈନ ପୁରାଣ ମିଳୁଅଛି । ବୌଦ୍ଧ ଗ୍ରନ୍ଥମାନଙ୍କରେ ପୁରାଣର ଉଲ୍ଲେଖ ନାହିଁ; କିନ୍ତୁ

ତିବ୍ବତ ଓ ନେପାଳର ବୌଦ୍ଧମାନେ ୯ଟି ପୁରାଣ ବା ନବଗ୍ରନ୍ଥକୁ ସ୍ୱୀକାର କରନ୍ତି ଯଥା—୧. ପ୍ରଜ୍ଞାପାରମିତା, ୨. ଗଣ୍ଡବ୍ୟୂହ, ୩. ସମାଧିରାଜ, ୪. ଲଙ୍କାବତାର, ୫. ତଥାଗତ ଗୁହ୍ୟକ, ୬. ସଦ୍ଧର୍ମ ପୁଣ୍ଡରୀକ, ୭. ଲଳିତବିସ୍ତର, ୮. ସୁବର୍ଣ୍ଣପ୍ରଭା; ଓ ୯. ଦଶଭୂମୀଶ୍ୱର— ହି. ଶ. ।]

୫ । ଅଠର ସଂଖ୍ୟା (ହି. ଶ.)—5. The number 18.

୬ । ଶିବ (ହି. ଶ)—6. Siba.

ଦେ. ବି—(ବ୍ୟଙ୍ଗାର୍ଥ)—୧ । ମନୁଷ୍ୟର ପାରିବାରିକ କଳଙ୍କାଦି ବା ଗୁପ୍ତ କଥା—1 Family secrets or scandal of a person.

୨ । ଗାଳି ମନ୍ଦ—
2. Calling of evil names.

**ପୁରାଣଗ**—ସଂ. ବି—(ପୁରାଣ+ଗମ୍ ଧାତୁ+ଅ)—୧ । ବ୍ରହ୍ମା (ହି. ଶ)—
Purāṇaga 1 Brahmā.

୨ । ପୁରାଣ କଥକ ବ୍ୟକ୍ତି (ହି. ଶ)—
2. A reader of the Purāṇas.

**ପୁରାଣ ଘୃତ**—ସଂ. ବି—ପୁରୁଣା ଘିଅ (ଦେଖ)—
Purāṇa ghṛuta Puruṇā ghia (See)

**ପୁରାଣ ପଣ୍ଡା**—ଦେ. ବି—ଶ୍ରୋତାଙ୍କ ଆଗରେ ଯେ ପୁରାଣ ପାଠ କରନ୍ତି—
Purāṇa paṇḍā A reader of Purāṇas.
(ଯଥା—ଘୋଡ଼ା ଘାସ ନ ଖାଇଲେ ପୁରାଣ ପଣ୍ଡାର ଦୋଷ ।)

**ପୁରାଣ ପୁରୁଷ**—ସଂ. ବି—(କର୍ମଧା)—୧ । ବିଷ୍ଣୁ—
Purāṇa purusha 1. Bishṇu.

୨ । ପରଂବ୍ରହ୍ମ—2. God.

୩ । ବୃଦ୍ଧ ବ୍ୟକ୍ତି—3. An old man (Apte).

**ପୁରାଣ ପ୍ରସିଦ୍ଧ**—ସଂ. ବିଣ—ପୁରାଣ ଆଦିରେ ବର୍ଣ୍ଣିତ ବା ଖ୍ୟାତ—
Purāṇa prasiddha Celebrated in the legends

**ପୁରାଣ ଫିଟା(ଟେ)ଇବା**—ଦେ. କ୍ରି—୧ । ପୁରାଣ ପାଠ କରିବା ନିମନ୍ତେ
Purāṇa phiṭā(ṭe)ibā ପୋଥିକୁ ଫିଟାଇବା—1. To open
(ପୁରାଣ ଫିଟିବା—ବିଶେଷରୂପ) the Purāṇas to read.

୨ । ପ୍ରାୟଶ୍ଚିତ୍ତାଦିର ବ୍ୟବସ୍ଥା ଦେବା ନିମନ୍ତେ ପୁରାଣ ପୋଥି ଖୋଲିବା—2. To open the Purāṇa to give prescriptions or opinions for expiations.

୩ । (ଲକ୍ଷଣାର୍ଥ) କୁବାକ୍ୟରେ ଗାଳି ଦେବା—
3. (fig) To call names.

୪ । କୌଣସି ବ୍ୟକ୍ତିର ପାରିବାରିକ ବହୁ ଛିଦ୍ର ପ୍ରକାଶ କରିବା—
4. To speak out the family secrets of a person.

**ପୁରାଣ ବୈରାଗ୍ୟ**—ଦେ. ବି—(ବ୍ୟଙ୍ଗାର୍ଥ) (ତୁଳ. ପୋଖରି ବୈରାଗ୍ୟ ଓ
Purāṇa bairāgya ଶ୍ମଶାନ ବୈରାଗ୍ୟ)—ପୁରାଣ ଶ୍ରବଣ କରିବା ପରେ କିଛିକାଳ ପାଇଁ ମନରେ ଯେଉଁ ବୈରାଗ୍ୟ ଉଦୟ ହୁଏ—
Distaste for wordly vanities while listening to a Purāṇa recitation.

**ପୁରାଣାନ୍ତ**—ସଂ ବି ଯମ—
Purāṇānta An epithet of Jama, the Hindu God of death (Apte)

**ପୁରାଣୋକ୍ତ**—ସଂ. ବିଣ—(୩ୟା ବା ୭ମୀ ତତ୍, ପୁରାଣ+ଉକ୍ତ)—
Purāṇokta ପୁରାଣରେ ଲେଖାଯାଇଥିବା—Laid down or described in the mythologies.

**ପୁରା ତତ୍ତ୍ୱ**—ସଂ. ବି—୧ । ଇତିହାସ—
Purā tattwa 1. History.
(ପୁରାତଥ୍ୟ—ଅନ୍ୟରୂପ) ୨ । ପୁରାଣ—
2 The Purāṇas legends.

୩ । ପ୍ରାଚୀନ କାଳର ଘଟଣାବଳୀ ସମ୍ବନ୍ଧୀୟ ଜ୍ଞାନ, ପ୍ରତ୍ନତତ୍ତ୍ୱ—
3. Knowledge about the events of the past; archaeology.

**ପୁରା ତତ୍ତ୍ୱବିତ୍**—ସଂ. ବିଣ—ପୁରାବିତ୍ (ଦେଖ)—
Purātattwabit Purābit (See)

**ପୁରାତନ**—ସଂ ବିଣ—(ପୁରା+ଭବାର୍ଥେ. ତନ)—୧ । ପ୍ରାଚୀନ, ବୃଦ୍ଧ—
Purātana 1. Old; aged.
(ପୁରାତନୀ—ସ୍ତ୍ରୀ) ୨ । ବହୁ ପ୍ରାଚୀନ—2 Ancient.

୩ । ଅନାଦି—
3 Existing from time immemorial.

ସଂ ବି—୧ । ବିଷ୍ଣୁ (ହି. ଶ)—1 Bishṇu.

୨ । ପ୍ରାଚୀନ କାହାଣୀ—
2 An ancient story (Apte)

**ପୁରାଧ୍ୟକ୍ଷ**—ସଂ. ବି—(୬ଷ୍ଠୀ ତତ୍)—୧ । ନଗର ରକ୍ଷକ—
Purādhyaksha 1. Governor of a city; mayor.

୨ । କଞ୍ଚୁକୀ, ଅନ୍ତଃପୁର ରକ୍ଷକ—
2. A watchman of the harem.

**ପୁରାନ୍**—ପ୍ରାଦେ (ସମ୍ବଲପୁର)—ବି—(ତୁଳ. ହି. ପୁରାନ୍)—ପୁରାଣ
Purān (ଦେଖ)—Purāṇa (See)

**ପୁରାନ୍ତକ**—ସଂ. ବି—(୬ଷ୍ଠୀ ତତ୍, ପୁର=ତ୍ରିପୁର+ଅନ୍ତକ)—ଶିବ—
Purāntaka Siba.

**ପୁରାବିତ୍**—ସଂ. ବିଣ. ପୁଂ—(ପୁରା+ବିଦ୍ ଧାତୁ=ଜାଣିବା+କ୍ୱିପ୍; ପୁରା-
Purābit ବିଦ୍ ଶବ୍ଦ ୧ମା. ୧ବ)—୧ । ପୁରାତତ୍ତ୍ୱବିତ୍; ପ୍ରାଚୀନ କାଳର ତଥ୍ୟ ଜାଣିଥିବା (ବ୍ୟକ୍ତି)—1. Archaeologist.

୨ । ଇତିହାସବେତ୍ତା ବ୍ୟକ୍ତି—2 A historian.

**ପୁରାବିଦ**—ଦେ ବି. (ସଂ. ପୁରାବିଦ୍)—ପୁରାବିତ୍ (ଦେଖ)
Purābida Purābit (See)

କଳ ପୁରାବେତ୍ତ ଉତକ୍ଷଣେ
ବୋଲନ୍ତି ପୁରାବିଦ ଜନେ । ଜଟଲାଯ—ଭାଗବତ ।

**ପୁରାବୃତ୍ତ**—ସଂ. ବି. (ପୁରା+ବୃତ୍ ଧାତୁ=ଘଟିବା+ତ)—
Purābṛutta ୧ । ପ୍ରାଚୀନକାଳର ବୃତ୍ତାନ୍ତ, ଇତିହାସ—
1. History.

୨ । ପୁରାଣ—2. Legend; mythology; an account of past events.

ସଂ. ବିଣ—୧ । ପ୍ରାଚୀନକାଳରେ ଘଟିଥିବା—
1. Occurring in ancient times (Apte).

୨ । ପ୍ରାଚୀନ କାଳ ସମ୍ବନ୍ଧୀୟ—
2. Relating to the past (Apte).

୩ । ପ୍ରାଚୀ, ପୁରାତନ—3. Ancient; old (Apte).

**ପୁରାରି**—ସ. ବି. (୬ଷ୍ଠୀ ତତ୍)—ତ୍ରିପୁରାରି, ମହାଦେବ—
Purāri Śiba.

**ପୁରାସାହ**—ସ. ବି. (ପୁର=ଶତ୍ରୁପୁର+ସହ୍ ଧାତୁ=ପରାଭବ କରିବା+
Purāsāha ଅ)—ଇନ୍ଦ୍ର—Indra.

**ପୁରି**—ଦେ· ବି. (ସ. ପୂରିକା)—୧ । ଲୁଚି; ଘିଅରେ ଛଣା ହୋଇଥିବା
Puri ଅଟାର ପିଠା—1. A roll of flour fried in ghee.
୨ । (ଆଦରାର୍ଥକ) ପୁରୁଷୋତ୍ତମ ନାମକ ବ୍ୟକ୍ତିଙ୍କୁ ଡାକିବା
ନାମ—2. Name for calling a person named Purushottama.
୩ । ଦଶନାମୀ ସନ୍ନ୍ୟାସୀଙ୍କ ଉପାଧିବିଶେଷ—
3. A title added to the names of a sect of Dasanāmi Sannyāsis.
ପ୍ରାଦେ. (ବସ୍ତର) ବି—କାକରା ପିଠା—
A kind of sweet fried cake.
ସ. ବି—୧ । ସହର; ନଗର—1. Town; city (Apte).
୨ । ନଦୀ—2. River (Apte).
୩ । ରାଜା—3. A King (Apte).

**ପୁରିଆ**—ଦେ. ବି—(ଅନାଦରାର୍ଥ) ପୁରୁଷୋତ୍ତମ ନାମକ ବ୍ୟକ୍ତିଙ୍କୁ
Puriā ଡାକିବା ନାମ—Name for calling a person named Purushottama.
ଦେ. ବିଣ—୧ । ପୁରୀ ସହର ବା ଜିଲ୍ଲାର ଅଧିବାସୀ—
1 Inhabitant of Puri District or town.
୨ । ପୋରିଆ (ଦେଖ)—2. Poriā (See).

**ପୁରି ତରକାରି**—ଦେ. ବି. (ସହରର) (ସ. ପୂରିକା+ଫା. ତରକାରୀ)—
Puri tarakāri ପୁରି ସଙ୍ଗେ ଖିଆଯିବା ତିଅଣ—
लूचीतवकारी पूरीशाग Flour-roll and curry.

**ପୁରି ମିଠେଇ**—ଦେ. ବି. (ସହରର ଶବ୍ଦ) (ସ. ପୂରିକା ଓ ମିଷ୍ଟାନ୍ନ)—
Puri mithei (ସାଧାରଣତଃ) ମିଷ୍ଟାନ୍ନ—Sweetmeats.
लूचीसन्देश पूरीमठाई (ପୁରିଲଡୁ(ଡ୍ଡୁ)—ଅନ୍ୟରୂପ)

**ପୁରିହା**—ଦେ. ବିଣ—ପୋରିଆ (ଦେଖ)
Purihā Poriā (See)

**ପୁରୀ**—ସ. ବି. (ପୁର+ସ୍ତ୍ରୀ. ଈ)—୧ । ନଗର; ନଗରୀ—.
Puri 1 Town.
୨ । ବାସସ୍ଥାନ; ଭବନ; ଗୃହ—2. House; habitation.
୩ । ଦେହ; ଶରୀର—3. Body.
୪ । ପ୍ରାସାଦ—4. Palace; building.
୫ । ଦୁର୍ଗ—5. Stronghold (Apte).
ଦେ. ବି—୧ । (ସ. ଜଗନ୍ନାଥ ପୁରୀ) ପୁରୁଷୋତ୍ତମ କ୍ଷେତ୍ର;
ପୁରୀ ସହର ଓ ଜିଲ୍ଲା—1. The district and town of Puri on the Orissa coast.
୨ । ଦଶନାମୀ ସନ୍ନ୍ୟାସୀମାନଙ୍କର ଉପାଧିବିଶେଷ—
2. A title of Daśanāmi Sannyāsis.
୩ । ପୁରି ( ଦେଖ )—3. Puri (See)

**ପୁରୀ ନଷ୍ଟ କରିବା**—ଦେ. କ୍ରି. (ସ. ପୁରୀ ଓ ନଷ୍ଟରୁ)—
Puri nashta kariba ୧ । ଆପଣାର ଅସଦାଚରଣ ବା
पुरी नष्टकरना ପାପାଚରଣଦ୍ୱାରା କୌଣସି ସ୍ଥାନକୁ ଅପବିତ୍ର କରିବା -
पुरी बिगाड़ना 1. To defile a place; to desecrate a place by one's sins.
ପୁରୀ ନାଶ କରିବା } ଅନ୍ୟରୂପ
ପୁରୀ ବିଗାଡ଼ିବା }
୨ । ମନ୍ଦ ଆଚରଣ ବା ଉଦାହରଣ-
ଦ୍ୱାରା କୌଣସି ସ୍ଥାନର ସମସ୍ତ ବ୍ୟକ୍ତିଙ୍କୁ ମନ୍ଦ ପଥଆଡ଼କୁ ନେବା—2. To spoil a whole locality by one's bad example
ପୁରୀ ନଷ୍ଟ ହେବା }
ପୁରୀ ନାଶ ହେବା } ବିଶେଷ୍ୟରୂପ
ପୁରୀ ବିଗିଡ଼ିବା }

**ପୁରୀପାଣ୍ଡା**—ପ୍ରାଦେ· (ଗଞ୍ଜାମ) ବି—୨।୩ ଶତାବ୍ଦୀ ପୂର୍ବେ ପୁରୀରୁ ଯାଇ
Puripāṇḍa ବିଶାଖାପାଟଣା ଅଞ୍ଚଳରେ ବାସ କରୁଥିବା କେତେକ
ବ୍ରାହ୍ମଣ—A name by which some Brāhmaṇas who have settled in the Vizag district for 2 or 3 centuries after migrating from Puri, are known.
[ଦ୍ର—ଏମାନେ ପ୍ରାୟ ୨୦୦ ବର୍ଷ ତଳେ ବିଶାଖାପାଟଣା ଅଞ୍ଚଳକୁ ଆସିଥିଲେ । ବୋଧ ହୁଏ ଏହି ଅଞ୍ଚଳର ତତ୍କାଳୀନ ରାଜା ଏହି କେତେକ ବ୍ରାହ୍ମଣଙ୍କୁ ଡକାଇ ନେଇଥିଲେ । ସେପରି ବ୍ରାହ୍ମଣମାନେ ବର୍ତ୍ତମାନ ସେଠାରେ ପ୍ରାୟ ୨୦।୨୫ ଘର ଅଛନ୍ତି । ଏବେ ସେମାନେ ଅବଶ୍ୟ ଆଦୌ ଓଡ଼ିଆ ଭାଷା ଜାଣନ୍ତି ନାହିଁ, କେବଳ କେତେକ ସ୍ତ୍ରୀଲୋକ ଭଙ୍ଗା ଭଙ୍ଗା ଓଡ଼ିଆ ଭାଷାରେ କଥା କହନ୍ତି । ସ୍ତ୍ରୀ ଓ ପୁରୁଷଙ୍କ ବେଶଭୂଷା ଠିକ୍ ତେଲୁଗୁମାନଙ୍କ ବେଶ ଭୂଷା ପରି, ତଥାପି ସେମାନଙ୍କୁ ବିଶାଖାପାଟଣାର ସ୍ଥାନୀୟ ଲୋକ ପୁରୀପାଣ୍ଡା ବୋଲି କହୁଛନ୍ତି । ଏମାନଙ୍କ ଅବସ୍ଥା ଭଲ, ନିଜ ନିଜ ପରିବାରର ବିବାହ, ବ୍ରତ ଓ ଶ୍ରାଦ୍ଧ କ୍ରିୟାଗୁଡ଼ିକ ଏମାନେ ସେ ଅଞ୍ଚଳର କମା ବ୍ରାହ୍ମଣ ପୁରୋହିତମାନଙ୍କ ଦ୍ୱାରା କରନ୍ତି ।]

**ପୁରୀ ମୋହ**—ସ. ବି·—(ବହୁବ୍ରୀହି; ପୁରୀ=ଶରୀରର ମୋହ ଜନ୍ମେ
Puri moha ଯାହାଦ୍ୱାରା)—ଧାତୁରା (ହି. ଶ.)—
The Dhatura plant (Apte).

**ପୁରୀଷ**—ସଂ. ବି. (ପୃ ଧାତୁ=ପାଳନ କରିବା+ଈଷ; ଯାହା ସାର ରୂପେ
Purisha ବୃକ୍ଷାଦିର ମୂଳକୁ ପାଳନ କରେ)—୧ । ଝାଡ଼ା; ଗୁହ,
(ପୁରୀଷଣ—ଅନ୍ୟରୂପ) ମଳ, ବିଷ୍ଠା—1. Ordure; dung; faecus; excrement
୨ । ଜଳ—2. Water
୩ । ମଇଳା; ଅଳିଆ—3. Rubbish; dirt (Apte).

**ପୁରୀଷଣ**—ସଂ. ବି—୧ । ପୁରୀଷ ( ଦେଖ )
Purishaṇa 1. Purisha (See)
୨ । ପୁରୀଷତ୍ୟାଗ; ଝାଡ଼ା ଫେରିବା—
2. Evacuation of the bowels (Apte).

**ପୁରୀଷ ତ୍ୟାଗ**—ସଂ. ବି. (୬ଷ୍ଠୀ ତତ୍, ପୁରୀଷ+ତ୍ୟାଗ)—
Purisha tyāga ମଳତ୍ୟାଗ; ଝାଡ଼ା ଫେରିବା, ହଗିବା—
(ପୁରୀଷୋତ୍ସର୍ଗ—ଅନ୍ୟରୂପ) Voiding excrement; evacuating the bowels.

**ପୁରୀଷମ**—ସଂ. ବି. (ପୁରୀଷ=ବିଷ୍ଠା+ମା ଧାତୁ=ପରିମାଣ କରିବା+ଅ; ଯାହାର ପିଠାଆଦି ଖାଇଲେ ମଳର ପରିମାଣ ଅଧିକ ହୁଏ)—ମାଷ; ବିରି—Black-pulse bean Phaseolus Mas
Purishama

**ପୁରୀଷାଧାନ**—ସଂ. ବି (୬ଷ୍ଠୀ ତତ୍; ପୁରୀଷ+ଆଧାନ)—୧ । ବିଷ୍ଠାକୁଣ୍ଡ—
Purishādhāna 1, A receptacle or pot for ordure.
୨ । ଶରୀରସ୍ଥ ମଳଭାଣ୍ଡ—
2. The intestines of the body.

**ପୁରୁ**—ସଂ. ବି.—୧ । ଦେବଲୋକ; ସ୍ୱର୍ଗ—
Puru 1 The heaven.
୨ । ପୁଷ୍ପ ପରାଗ—2. The farina of flower; pollen
(ପୂରୁ—ଅନ୍ୟରୂପ) ୩ । ଦେହ, ଶରୀର - 3. Body.
୪ । (ନାମ) ରାଜା ଯଯାତିଙ୍କ ଔରସରେ ଦୈତ୍ୟରାଜ ବୃଷପର୍ବାଙ୍କ ଗର୍ଭରେ ଜାତ କନିଷ୍ଠ କୁମାର, ପାଣ୍ଡବମାନଙ୍କର ଆଦି ପୁରୁଷ—4. Name of a king, the progenitor of the Pāṇḍabas.

[ଦ୍ର—ଏ ଚନ୍ଦ୍ରବଂଶର ୭ଷ୍ଠ ରାଜା ଓ ଯଯାତିଙ୍କ କନିଷ୍ଠ ପୁତ୍ର ଥିଲେ; ଏ ପିତାଙ୍କ ଜରାକୁ ଗ୍ରହଣ କରିବାରୁ ପିତା ସନ୍ତୁଷ୍ଟ ହୋଇ ଜ୍ୟେଷ୍ଠ ପୁତ୍ରମାନଙ୍କୁ ରାଜ୍ୟଭାର ନ ଦେଇ ଏହାଙ୍କୁ ରାଜ୍ୟଭାର ଦେଇଥିଲେ। ଏ କୌରବ ଓ ପାଣ୍ଡବମାନଙ୍କର ପୂର୍ବ ପୁରୁଷ ତଥା ଦୁଷ୍ମନ୍ତ ଓ ଭରତଙ୍କର ପୂର୍ବପୁରୁଷ ଥିଲେ । ]

୫ । ଗ୍ରୀକ ବୀର ସିକନ୍ଦର (ଅଲେକଜାଣ୍ଡର) ଭାରତକୁ ଆକ୍ରମଣ କରିବା (ଖ୍ରୀ. ପୂ. ୩୨୭) ସମୟରେ ତାଙ୍କୁ ସିନ୍ଧୁ ନଦ ତଟରେ ବାଧା ଦେଇ ପରେ ତାଙ୍କ ସଙ୍ଗେ ସନ୍ଧି କରିଥିବା ରାଜାବିଶେଷ—5. King Porus of India with whom Alexander had to fight before crossing the Indus and with whom he was obliged to make a treaty.
୬ । ଦୈତ୍ୟବିଶେଷ—6. Name of a demon
( ଯଥା—ଏହାକୁ ଇନ୍ଦ୍ର ବଧ କରିଥିଲେ—Apte ).
୭ । ସରସ୍ୱତୀ ନଦୀର ଉତ୍ତର ପଶ୍ଚିମସ୍ଥ ନଦୀବିଶେଷ—
7 Name of a river in India.
୮ । ବୃହତ୍ ସଂହିତା ବର୍ଣ୍ଣିତ ଦେଶବିଶେଷ ( ହି. ଶ. )—
8. Name of an ancient country of India.
(ପୁର୍ବୀ—ସ୍ତ୍ରୀ) ସଂ. ବିଣ. ( ପୃ ଧାତୁ=ପୂରଣ କରିବା+ଉ )—
ପ୍ରଚୁର; ଅଧିକ—Too much; excessive, abundant; plentiful.

[ ଦ୍ର—ଏ ଶବ୍ଦ ଅନ୍ୟ ବିଶେଷ୍ୟ ଓ ବିଶେଷଣ ପୂର୍ବେ ସମାସରେ ଯୁକ୍ତ ହେଲେ ପ୍ରଚୁର, ବହୁ, ଅତ୍ୟନ୍ତ ଅର୍ଥ ବୁଝାଏ । ଯଥା—ପୁରୁଲମ୍ପଟ, ପୁରୁଦୃଢ । ]

ଦେ. ବି ବେଧ; ମୋଟା—Thickness.
ଦେ. ବିଣ—ମୋଟ; ବହଳ—Thick; coarse.

**ପୁରୁକୁତ୍ସ**—ସଂ. ବି—ମାନ୍ଧାତାଙ୍କ ପୁତ୍ର—
Purukutsa Name of a king; son of Māndhātā.

[ ଦ୍ର—ଏହାଙ୍କର ମାନସୀ କନ୍ୟା ନର୍ମଦା ଋଷିଶାପଗ୍ରସ୍ତା ହୋଇ ନଦୀତ୍ୱ ପ୍ରାପ୍ତ ହୋଇଥିଲେ । ହରିବଂଶ ଋଗ୍ବେଦରେ ଅଛି ଯେ ଦସ୍ୟୁ ନଗର ଧ୍ୱଂସ କରିବା ବିଷୟରେ ଇନ୍ଦ୍ର ଏହାଙ୍କ ସହାୟତା କରିଥିଲେ ହି ଶବ୍ଦସାଗର । ]

**ପୁରୁଖା**—ଦେ. ବିଣ. ( ସଂ. ପୂର୍ବତନ ବା ପ୍ରାକ୍ତନ )—୧ । ପୁରୁଣା—
Purukhā 1. Old.
ପୁର୍ଖା ୨ । ପ୍ରାଚୀନ—2. Ancient.
ପୁରଖା; ପୁରୁଖା ୩ । ବୃଦ୍ଧ—3 Old; aged.
ପୁର୍ଖା, ପୋରଖା } ଅନ୍ୟରୂପ — ପୁରୁଖା ପୁରୁଖା ଲୋକମାନେ କହନ୍ତି, ଏ ସତ୍ୟଯୁଗର ଠାକୁରାଣୀ ଅଛି—ଫକୀରମୋହନ, ଛମାଣ ଅଠଗୁଣ୍ଠ ।
(ପୁରୁଖୀ—ସ୍ତ୍ରୀ) ୪ । ଅନୁଭବୀ; ପ୍ରବୀଣ—4. Experienced.
୫ । ସୁପକ୍ୱ; ପୋଖତ—5. Matured.
୬ । ଜୀର୍ଣ୍ଣ—6. Decayed; worn out.
ଦେ. ବି—୧ । ପ୍ରବୀଣ ଓ ବୃଦ୍ଧ ବ୍ୟକ୍ତି—1. The elders; an old person of experience.
୨ । ବୃଦ୍ଧ ଲୋକ—2. Elderly person

**ପୁରୁଖା କଥା**—ଦେ ବି—୧ । ବୃଦ୍ଧ ପ୍ରବୀଣ ବ୍ୟକ୍ତିଙ୍କ ମୁଖନିଃସୃତ ଉପଦେଶ—1. The advice or words uttered by the elders
Purukhā kathā
୨ । ମରହଟ୍ଟିଆ ବିଷୟ—2. Obsolete matters.
୩ । ବହୁ ଦିନର ପୁରୁଣା ଖବର—3. Stale news.
୪ । ପ୍ରାଚୀନ ବିଷୟ—4 Ancient matters.
୫ । ଆଗକାର କଥା—
5. Thing and association of the past.
୬ । ପ୍ରବଚନ; ପ୍ରବାଦ ବାକ୍ୟ—6. Proverbs.

**ପୁରୁଖା ପୁରୁଖି**—ଦେ. ବିଣ. ( ବହୁବଚନାର୍ଥରେ ଦ୍ୱିତ୍ୱ )—
Purukhā purukhi ପ୍ରାଚୀନ ବ୍ୟକ୍ତି ବା ବସ୍ତୁଗଣ—
(ପୁର୍ଖାପୁର୍ଖି—ଅନ୍ୟରୂପ) Old persons or things.

**ପୁରୁଜା**—ବୈଦେ. ବି. ( ଫା. ପୁର୍ଜା )—
Purujā ୧ । ମାରୁଆଡ଼ିମାନଙ୍କ ବ୍ୟବସାୟରେ ପ୍ରଚଳିତ ହେଣ୍ଡନୋଟ—1. Handnote current amongst the Marwari business-men.
ପୁର୍ଜା
ପୁରଜା
ପୁରଜା, ପୁର୍ଜା } ଅନ୍ୟରୂପ ୨ । ଖତ; ଋଣ ପତ୍ର—2. A slip of paper indicating a loan.

**ପୁରୁଜିତ୍**—ସଂ. ବି—୧ । ପାଣ୍ଡବଙ୍କ ମାମୁ, କୁନ୍ତୀଙ୍କ ଭାଇ—
Purujit 1. The maternal uncle of the Pāṇḍaba brothers
[ ଦ୍ର—ଏ କୁନ୍ତି ଭୋଜଙ୍କ ପୁତ୍ର ଓ କୁନ୍ତୀଙ୍କ ଭାଇ । ]
୨ । ବିଷ୍ଣୁ—2. A name of Bishṇu.
୩ । (ଭାଗବତ) ଶଶବିନ୍ଦୁ ବଂଶୀୟ ରୁଚକ ରାଜାଙ୍କ ପୁତ୍ର—
3. Name of a prince mentioned in the Bhāgabata.

**ପୁରୁଡ଼ା**—ପ୍ରାଦେ. (ଗଞ୍ଜାମ) କ୍ରି—୧ । ଖାଲ ପୋତିବା—
Puruḍā 1. Filling up a ditch.

୨ । ଖାଲକୁ ପୋତି ସମତଳ କରିବା—
2 To level up a ditch.

**ପୁରୁଡ଼(ଢ଼ି)**—ଗ୍ରାମ୍ୟ. ବି (ସଂ. ପ୍ରୌଢ଼ି) ଧୃଷ୍ଟତା)—ପ୍ରୌଢ଼ି, ମୁହଁ
Purur̤di(r̤dhi) ବାଲିଙ୍ଗି, ଅସ୍ଫାଳନ—Bragging;
ବାହାଦୁରୀ ବାନଗୀ braggadocio.
(ଯଥା—ଏ ଟୋକାଟା କେତେ ପୁରୁଡ଼ି କରି କଥା କହୁଛି ମ !)

**ପୁରୁଢ଼ିବା**—ପ୍ରାଦେ (ଗଞ୍ଜାମ) କ୍ରି (ସଂ. ପୂ୍ ଧାତୁ)—୧ । ଖାଲ ଆଦିକୁ
Purur̤diba ମାଟିରେ ପୂର୍ଣ୍ଣ କରିବା, ଭରୋଟ କରିବା—
1. To fill up a ditch

୨ । (ଲକ୍ଷଣାର୍ଥ) ପୂର୍ଣ୍ଣ ହେବା—
2 (fig) To be filled up with any thing.
(ଯଥା—ବର୍ଷା ପାଣିରେ ପୋଖରୀ କୂଅ ପୁରୁଢ଼ି ହୋଇ ଯାଇଛି ।)

**ପୁରୁଢ଼ି ହେବା**--ପ୍ରାଦେ. (ଗଞ୍ଜାମ) କ୍ରି—(ଖାଲ ଜମି) ପୋତା ହୋଇ
Purur̤di heba ସମତୁଲ ହେବା—(a hole) To be levelled up or filled up.

**ପୁରୁଣା**—ଦେ. ବିଣ. (ସଂ. ପୁରାଣ; ପୁରାତନ)—୧ । ପ୍ରାଚୀନ,
Puruṇa ପୁରାତନ—1. Old; ancient
(ନୂଆ—ବିପରୀତ) ୨ । ପୁରୁଖା, ପ୍ରବୀଣ—2. Experienced.
୩ । ବହୁକାଳରୁ ଥିବା—3. Of long standing.
୪ । ବହୁକାଳ ହେଲା ସଞ୍ଚିତ—
4 Stored for a long time
୫ । ଅତୀତ; ପୂର୍ବତନ—5. Former; late; past.
୬ । ବଂଶ ପୁରୁଷାଗତ—6. Handed down from generation to ganeration
୭ । ଜୀର୍ଣ୍ଣ—7. Worn out; decayed.
୮ । ବୃଦ୍ଧ, ବୟସ୍କ—8. Aged.
୯ । ଯାହା ପୂର୍ବେ ଚଳୁ ଥିଲା କିନ୍ତୁ ବର୍ତ୍ତମାନ ଚଳୁ ନାହିଁ—
9. Obsolete
ଦେ. ବିଣର ବିଣ.—(ଲକ୍ଷଣାର୍ଥ; ମନ୍ଦ ଅର୍ଥରେ ବ୍ୟବହୃତ)—
ଅତ୍ୟନ୍ତ—Very; very much; excessive.
(ଯଥା—ପୁରୁଣା ମାଡ଼ୁଆ; ପୁରୁଣା ପାପୀ ।)
ଦେ ବି.—ପୁରାତନ ବିଷୟ ବା ଦୂର୍ବର ସଙ୍ଗୀ—
Former things or past associations; former companion or friend.

ଅରେ କହୁଣା ! ନୂଆ ଦେଖି ପାଶୋରିଲୁ ପୁରୁଣା—ଭଗ.

**ପୁରୁଣା କଥା**—ଦେ. ବି.—୧ । ପ୍ରାଚୀନ ବିଷୟ—
Puruṇakatha 1. Ancient matter.
ପୁରାନାକଥା ପୁରାନୀବାତ ୨ । ପ୍ରବଚନ—
2. Proverb; ancient sayings.

**ପୁରୁଣା କାଳ**- ଦେ. ବି.—ଅତୀତକାଳ—
Puruṇa kala The past; old times.
ପୁରାণা কাল পুরাণাজমানা

**ପୁରୁଣା କାଳିଆ**—ଦେ. ବିଣ.—୧ । ପ୍ରାଚୀନ କାଳ ସମ୍ବନ୍ଧୀୟ;ମରହଟ୍ଟୀୟ-
Puruṇa kalia 1. Of old times.

ସେକାଲେର ପୁରାନାକାଲକା ୨ । ଯାହା ପୂର୍ବେ ଚଳୁଥିଲା; କିନ୍ତୁ ବର୍ତ୍ତମାନ ଚଳୁନାହିଁ—Obsolete.

**ପୁରୁଣା ଗୁଡ଼**—ଦେ. ବି.—(ସ ପୁରାତନ ଗୁଡ଼)—ଏକ ବର୍ଷରୁ ଊର୍ଦ୍ଧ୍ୱକାଳ
Puruṇa gur̤da ସଞ୍ଚିତ ଗୁଡ଼—Molasses preserved
ପুরাণাগুড পুরানাগুড় for more than a year and used as medicine.

[ଦ୍ର—ଏହା ପାଣ୍ଡୁ ଚିତ୍ର ଓ ବାୟୁ ରୋଗରେ ବିଶେଷ ଉପକାରୀ, ଏହା ତିକ୍ତ ସ୍ୱାଦବିଶିଷ୍ଟ ।]

**ପୁରୁଣା ଘିଅ**—ଦେ. ବି.—(ସଂ. ପୁରାଣଘୃତ)—ଦଶବର୍ଷରୁ ଊର୍ଦ୍ଧ୍ୱକାଳ
Puruṇa ghia ସଞ୍ଚିତ ଘୃତ, ବହୁକାଳ ସଞ୍ଚିତ ଘୃତ—
পুরাণা ঘি পুরানা ঘি Ghee which has been stored for years.

[ଦ୍ର—ଏହା ମାଲିସ କଲେ ଛାତିର ବେଦନା କମିଯାଏ; ଏହା ବାତ ରୋଗ, ଶିରରୋଗ, କର୍ଣ୍ଣରୋଗ ଓ ଅପସ୍ମାର ଆଦି ରୋଗରେ ବିଶେଷ ଉପକାରୀ ।]

**ପୁରୁଣା ଚାଉଳ** ଦେ. ବି.—ପୁରୁଣା ଧାନର ଚାଉଳ—
Puruṇachaula Rice, got from paddy more
পুরাণোচাল পুরানাচাবল one year old.

**ପୁରୁଣା ଧାନ**—ଦେ. ବି—ଏ ବର୍ଷର ପୂର୍ବବର୍ତ୍ତୀ ବର୍ଷମାନଙ୍କରେ ଉତ୍ପନ୍ନ
Puruṇa dhana ଓ ସଞ୍ଚିତ ଧାନ୍ୟ—Paddy more than
পুরাণাধান পুরানাধান one year old.

**ପୁରୁଣା ପାପୀ**—ଦେ. ବି—୧ । ମହା ପାପୀ—
Puruṇa papi 1. A great sinner.
পুরাণোপাপী ୨ । ଯେ ବହୁକାଳ ହେଲା ପାପ କରିଆସୁଅଛି—
পুরানাপাপী পুরানাপাপ 2. Old sinner; a confirmed sinner; an old Adam.
୩ । ବହୁଦିନ ଅନୁଭବ ଦ୍ୱାରା ପ୍ରବୀଣ ବ୍ୟକ୍ତି—
3. A person of ripe experience.

**ପୁରୁଣା ପୁରୁଣି**—ଦେ. ବିଣ—(କଥା ଓ ତହିଁର ଅନର୍ଥକ ସହଚର
Puruṇa puruṇi ଶବ୍ଦ)—ଜୀର୍ଣ୍ଣ ଓ ପୁରାତନ (ଲୁଗା)—
পুরানাপুরানা Old and worn out (cloth)
(ପୁରୁଣୀ ପୁରୁଣି—ଅନ୍ୟରୂପ)

ଘରେ ଯେତେ ଥିଲା ପୁରୁଣା ପୁରୁଣି ସବି ଦେ ଆଭ ଥରେ ।
ଉକାଦ—ସାବୁଆ ବାଡ଼ା ।

**ପୁରୁଣା ପୁଲିସ୍**—ଦେ. ବି—(ବ୍ୟଙ୍ଗାର୍ଥ)—ଭାରତ ବର୍ଷକୁ ପ୍ରଥମେ
Puruṇa pulis ଇଂରେଜମାନେ ଆସିବା ସମୟରେ କାୟକ୍ତ ପୁଲିସ-
পুরাণাপুলিস The Police which were formerly maintained by the Government in the early age of British occupation of India.

[ଦ୍ର—ପୂର୍ବେ ଅପରାଧୀ ବା ସନ୍ଦେହୀ ଆସାମୀଠାରୁ ଅପରାଧ ସ୍ୱୀକାରୋକ୍ତି ବାହାର କରିବା ନିମନ୍ତେ ପୁଲିସ କର୍ମଚାରୀମାନେ ଅସାମୀଙ୍କୁ ନାନାପ୍ରକାର ଅତ୍ୟାଚାର ଓ ଉତ୍ପୀଡ଼ନ କରୁଥିଲେ । ଦେଶର ଶିକ୍ଷାବୃଦ୍ଧି ସଙ୍ଗେ ସଙ୍ଗେ ସରକାର ତାହା ନ ହେବା ପାଇଁ ତୀକ୍ଷ୍ଣ ଦୃଷ୍ଟି ଓ କଟକଣା କରି ଅଛନ୍ତି । ଅତଏବ ପୂର୍ବକାଳର ପୁଲିସ ଅତ୍ୟାଚାରର ବିଷୟର ପ୍ରସଙ୍ଗରେ ଲୋକେ ଏହି ଶବ୍ଦ ବ୍ୟବହାର କରିଥାଆନ୍ତି ।]

**ପୁରୁଣାବନ୍ଧୁ**—ଦେ. ବି—୧ । ଆପଣା ବଂଶ ସଙ୍ଗେ ଯାହାଙ୍କର ଅନେକ
Purunābandhu ପୁରୁଷ ହେଲା ବୈବାହିକ ସୂତ୍ରରେ ବନ୍ଧୁତା ଅଛି-
ପୁରାଣୋବନ୍ଧୁ **पुरानादोस्त** 1. A person whose family is related to one's family by ties of marriage for generations.

୨ । କୌଣସି ବ୍ୟକ୍ତି ପୂର୍ବତନ ବନ୍ଧୁ—
2. An old friend

**ପୁରୁଣି**—ଦେ. ବି—ପୁନର୍ନବା (ଦେଖ)
Puruṇi Punarnabā (See)

**ପୁରୁଦ**—ସଂ. ବି (ପୁରୁ=ପ୍ରଚୁର+ଦା ଧାତୁ=ଦେବା+କର୍ତ୍ତୃ. ଅ)—
Puruda ସ୍ୱର୍ଣ୍ଣ—Gold

**ପୁରୁଦଂଶକ**—ସଂ. ବି (ପୁରୁ=ଅଧିକ+ଦଂଶକ)—୧ । ହଂସ—
Purudaṁśaka 1. Swan.

୨ । ବତକ, ପାତିହଂସ—2. Goose; gander,

**ପୁରୁଦ୍ରୁହ**—ସଂ. ବି (ପୁରୁ=ଅଧିକ+ଦ୍ରୁହ୍ ଧାତୁ=ଅନିଷ୍ଟ କରିବା+କର୍ତ୍ତୃ.
Purudruha ଅ)—ଇନ୍ଦ୍ର—Indra

ସଂ. ବିଣ—ବିଶେଷ ହିଂସାକାରୀ—
Very revengeful; malicious; malignant

**ପୁରୁଧା**—ସଂ. କ୍ରି. ବିଣ (ପୁରୁ=ବହୁ+ପ୍ରକାରାର୍ଥେ ଧା)—ବହୁଧା,
Purudhā ବହୁପ୍ରକାରରେ—In various ways or kinds.

**ପୁରୁଭୁଜ**—ସଂ. ବି (ଅଧୁନାକ ବ୍ୟବହାର ପୁରୁ=ବହୁ; ଭୁଜ ଯାହାର)—
Purubhuja ୧ । ଏକପ୍ରକାର ସାମୁଦ୍ରିକ କୀଟ—1. The Polyp; a sea animal of the coral kind resembling boughs of a tree.

[ଦ୍ର—ଏମାନେ ପ୍ରବାଳଶ୍ରେଣୀସ୍ଥ ଓ ଡାଳପରି ଦେଖାଯାନ୍ତି ।]

୨ । ବହୁଭୁଜବିଶିଷ୍ଟ ଏକପ୍ରକାର ସାମୁଦ୍ରିକ ଜୀବ—
2 The devil fish; Octopus; the cuttle fish.

**ପୁରୁଭୋଜା**—ସଂ. ବିଣ. ପୁଂ (ପୁରୁ=ଅଧିକ+ଭୁଜ ଧାତୁ=ଖାଇବା+
Purubhojā ଅସ୍, ପୁରୁଭୋଜସ୍ ଶବ୍ଦ ୧ମା ୧ବ)—
ଯେ ଖୁବ ଖାଇ ପାରେ, ପେଟୁ—
Gluttonous; greedy.

ସଂ. ବି—ମେଷ; ମେଣ୍ଢା (ହି. ଶ.)—Sheep

**ପୁରୁଷ**—ସଂ. ବି. (ପୃ ଧାତୁ=ପୂରଣ କରିବା+କର୍ତ୍ତୃ. ଅ, ଯେ ଅନ୍ୟର
Purusha ଅଭାବକୁ ବା ଶରୀରକୁ ପୂର୍ଣ୍ଣ କରେ କିମ୍ବା ପୁର=
ଦେହରେ+ଶୀ ଧାତୁ+କର୍ତ୍ତୃ. ଅ; ଅର୍ଥାତ୍ ଯେ ଦେହରେ ଶୟନ କରେ ବା ଥାଏ, ଅନ୍ୟ ସଂ. ଆକାର ପୂରୁଷ)—

୧ । ମନୁଷ୍ୟ; ନର—1. Man; person

୨ । ପୁମାନ; ପୁଂଜାତି; ନରଜାତି—
2. Human being; mankind

[ଦ୍ର—ନରଜାତି ନର ଓ ନାରୀମାନଙ୍କର ସମଷ୍ଟି, ଅର୍ଥାତ୍ ଓ ମାଈ ଉଭୟଙ୍କଦ୍ୱାରା ନରଜାତି ଗଠିତ । ହିନ୍ଦୁଶାସ୍ତ୍ର ଅନୁସାରେ ପୁରୁଷଙ୍କୁ ଚାରିଜାତିରେ ଓ ନାରୀଙ୍କୁ ଚାରିଜାତିରେ ବିଭକ୍ତ କରାଯାଇଅଛି । ଯଥା—ନରଜାତି :—୧. ଶଶ=ମୃଦୁସ୍ୱଭାବ, ରମଣୀୟ, ଗୁଣବାନ୍ ଓ ଧାର୍ମିକ । ୨. ମୃଗ=ମଧୁରଭାଷୀ, ସୁଦେହ, ଭୀରୁ, ଗୁଣବାନ୍ ଓ ସତ୍ୟବାଦୀ । ୩. ବୃଷ=ନତାଙ୍ଗ, ଶୀଘ୍ରକାମ ଓ ବଳବାନ୍ । ୪. ଅଶ୍ୱ=ଦୀର୍ଘାଙ୍ଗ ଓ ପରାକ୍ରମୀ ।

ନାରୀଜାତି :—୧. ପଦ୍ମିନୀ=ପଦ୍ମଗନ୍ଧା, ସୁଲୋମାଙ୍ଗୀ, ପ୍ରେମଶୀଳା, କୋମଳଭାଷିଣୀ, କ୍ଷୀଣଦେହା, ଧାର୍ମିକା ଓ ସ୍ୱାମୀଭକ୍ତା । ୨. ଚିତ୍ରିଣୀ=ସୁନ୍ଦରୀ, ତରଳମତି ଓ ସ୍ନେହଶୀଳା । ୩. ଶଙ୍ଖିନୀ=ଦୀର୍ଘକାୟା, ଦୀର୍ଘକେଶା, କାନ୍ତିସ୍ଥୂଳା, କାନ୍ତିକୃଶା, ଚଞ୍ଚଳମତି, କ୍ରୋଧସ୍ୱଭାବା ଓ ରତିସମ୍ପୃକ୍ତା । ୪. ହସ୍ତିନୀ=ବୃହଦ୍ଦେହା, କଷ୍ଟସ୍ୱଭାବା ଓ କାମୁକା ।

ନରଜାତିର ୧ମ, ୨ୟ, ୩ୟ ଓ ୪ର୍ଥ ଜାତି ଯଥାକ୍ରମେ ନାରୀଜାତିର ୧ମା, ୨ୟା, ୩ୟା ଓ ୪ର୍ଥା ଶ୍ରେଣୀର ସ୍ତ୍ରୀ ପ୍ରତି ଯୋଗ୍ୟ ବର ବୋଲି ଶାସ୍ତ୍ରରେ ବର୍ଣ୍ଣିତ ।]

୩ । ଅଣ୍ଡିରପୁଅ, ଅଣ୍ଡିରା ଜୀବ—3. Male being.

୪ । ଜଣ; ବ୍ୟକ୍ତି—4. Individual.

୫ । ପରମାଣୁ—5 Atom.

୬ । (ପୁର=ଶରୀର+ବସ୍ ଧାତୁ=ବାସ କରିବା+ଅ) ଆତ୍ମା—
6. The soul.

୭ । ବିଷ୍ଣୁ; ଈଶ୍ୱର, ଆଦିପୁରୁଷ—7. God Bishṇu.

୮ । ବ୍ରହ୍ମା—8 Brahmā.

୯ । ଜୀବନ—9. Life.

୧୦ । ପରଂବ୍ରହ୍ମ; ପରମାତ୍ମା—10. The Universal Soul; the divine spirit or essence of the universe.

୧୧ । ବନ୍ଧୁ—11. Friend.

୧୨ । (ବ୍ୟାକରଣ) କ୍ରିୟା ବା ବିଶେଷ୍ୟ ପଦର ବ୍ୟକ୍ତିତ୍ୱ ପରିଚୟ—
12. ( grammar ) The person; the distinguishing quality of a noun or verb.

[ଦ୍ର—ଓଡ଼ିଆ ବ୍ୟାକରଣରେ ଇଂରାଜୀ ବ୍ୟାକରଣ ଅନୁକରଣରେ ପ୍ରଥମ ପୁରୁଷ 'ମୁଁ', ଦ୍ୱିତୀୟ ପୁରୁଷ 'ତୁମ୍ଭେ' ଓ ତୃତୀୟ ପୁରୁଷ 'ସେ'; ସଂସ୍କୃତ ବ୍ୟାକରଣରେ 'ଅମ୍ଭେ' ଉତ୍ତମ ପୁରୁଷ, 'ତୁମ୍ଭେ' ମଧ୍ୟମ ପୁରୁଷ ଓ 'ସେ' ପ୍ରଥମ ପୁରୁଷ ଅଟେ ।]

ଦେ. ବି—୧ । ପୁନ୍ନାଗ (ଦେଖ)—1. Punnāga (See)

ବସ୍ତ୍ରରଣ କଇସଙ୍ଗ ପୟୋଧର ଫଳଭୂଙ୍ଗ ପୁରୁଷ ପ୍ରକାଶି ରଙ୍ଗନକୁ—
ଉପେ. ବୈଦେହୀଶବିଳାସ ।

**ପୁରୁଷ ପୀଢ଼ୀ** ୨ । ଜଣେ ମନୁଷ୍ୟର ଜୀବନକାଳ—
2 The life-time of a man.

ଚଣ୍ଡୀ ଭୁଞ୍ଜିଲେ ଏଇସେ, ମଣିଷ ବୃଦ୍ଧିରେ ପୁରୁଷେ । ଉଗ ।

୩ । କ୍ରମାଗତ ବଂଶଧର ମଧ୍ୟରୁ ଜଣେ—3. Generation; successive generation in a family.

ତୃତୀୟର ଚତୁର୍ଥ ପୁରୁଷ ମୁଁ ଏଇ ଉତ୍ତମ ତା କରେ—
ଉପେ. ବୈଦେହୀଶବିଳାସ ।

୪ । ଉପରକୁ ହାତ ଟେକି ଠିଆ ହେବା ପୁରୁଷର ଉଚ୍ଚତା ପ୍ରମାଣ; ୪୨ ହାତ—4. A height of one person

with the arms raised up; about seven feet

( ଯଥା—ଏ ପୋଖରୀରେ ଶୃଭ ପୁରୁଷ ପାଣି ଅଛି । )

**ପୁରୁଷକ**—ସଂ. ବି ( ପୁରୁଷ+ତୁଲ୍ୟାର୍ଥେ. କ )—ଅଶ୍ୱାଦି ପଶୁଙ୍କର ଦୁଇଟି
Purushaka ଆଗ ଗୋଡ଼କୁ ଟେକି ଦେଇ ଦୁଇଟି ପଛ ଗୋଡ଼ରେ ଠିଆ ହେବାର ଭଙ୍ଗୀ—The rearing of a horse; the standing posture of a beast on its hind legs with the fore legs in the air; rampant posture of a beast.

**ପୁରୁଷକାର**—ସଂ. ବି. (ପୁରୁଷ+କାର=କରଣ)—୧ । ପୁରୁଷତ୍ୱ—
Purushakāra 1 Manliness.
୨ । ପୁରୁଷର ଚେଷ୍ଟା, ଯତ୍ନ ବା ପୌରୁଷ—
2. Human activity; manly spirit; valour; prowess; energy.
୩ । ବ୍ୟକ୍ତିଗତ ଉଦ୍ୟମ ବା ଚେଷ୍ଟା—
3. Individual exertion; manly effort.
୪ । ଉତ୍ସାହ—4. Vigour.

**ପୁରୁଷ କୁଞ୍ଜର**—ସଂ. ବି—ଶ୍ରେଷ୍ଠ ପୁରୁଷ—
Purusha kuñjara An ancient person.
(ପୁରୁଷ ପୁଙ୍ଗବ, ପୁରୁଷ ପୁଣ୍ଡରୀକ, ପୁରୁଷ ବ୍ୟାଘ୍ର, ପୁରୁଷର୍ଷଭ, ପୁରୁଷ ସିଂହ, ପୁରୁଷ କେଶରୀ, ପୁରୁଷ ନାଗ—ସମାର୍ଥକ ଶବ୍ଦ)

**ପୁରୁଷ କେଳି**—ସଂ. ବି—ପୁରୁଷାଇତ ( ଦେଖ )
Purusha keli Purushāita ( See )

ବିରସ୍ତଇଲ ଯେ ରମଣୀ ରତିକେ ଯତନେ ପୁରୁଷକେଳି ।
ଭଞ୍ଜ. ବୈଦେହୀଶବିଳାସ ।

**ପୁରୁଷ ଗ୍ରହ**—ସଂ. ବି ( ମ. ପ. ଲୋ; ପୁରୁଷାକୃତି ଗ୍ରହ )—
Purusha graha (ଜ୍ୟୋତିଷ ସୂର୍ଯ୍ୟ, ମଙ୍ଗଳ ଓ ବୃହସ୍ପତି ଗ୍ରହ—(astrology) The planets Sun, Mars and Jupiter.

**ପୁରୁଷତା(ତ୍ୱ)**—ସଂ. ବି. ( ପୁରୁଷ+ଭାବାର୍ଥେ ତା. ତ୍ୱ )—
Purushatā(twa) ୧ । ମନୁଷ୍ୟତ୍ୱ; ମନୁଷ୍ୟର ଧର୍ମ—
1 Manliness; manhood.
୨ । ପୌରୁଷ; ଉତ୍ସାହ; ଉଦ୍ୟମ—
2. Manly vigour; energy.
୩ । ପୁଂସ୍ତ୍ୱ; ଅଣ୍ଡିରପଣିଆ; ସ୍ତ୍ରୀସଙ୍ଗମସାମର୍ଥ୍ୟ—
3. Virility; potency; ability to cohabit with a woman.
୪ । ମନୁଷ୍ୟୋଚିତ ଶୌର୍ଯ୍ୟ; ବୀର୍ଯ୍ୟ; ବିକ୍ରମ—
4. Manly valour; prowess
୫ । ବୀରତ୍ୱ; ସାହସ—
5. Heroism; valour, courage
୬ । ବଳ; ପରାକ୍ରମ—6. Might; prowess.

**ପୁରୁଷତ୍ୱ ନାଶ**—ସଂ. ବି. ( ୬ଷ୍ଠୀ ତତ୍; ପୁରୁଷତ୍ୱ+ନାଶ )—
Purushatwa nāśa ପୁଂସ୍ତ୍ୱ ଲୋପ; ପୁରୁଷ ପଣିଆର ବିନାଶ; ସ୍ତ୍ରୀ ସଙ୍ଗମରେ ଅପାରଗତା; ନପୁଂସକତା—
Impotence; loss of manhood.
(ପୁରୁଷତ୍ୱ ଲୋପ, ପୁରୁଷତ୍ୱ ହାନି—ଅନ୍ୟରୂପ)

**ପୁରୁଷତ୍ୱ ପ୍ରକାଶ**—ସଂ. ବି. ( ୬ଷ୍ଠୀ ତତ୍ )—
Purushatwa prakāśa ବୀରତ୍ୱ ବା ବିକ୍ରମ ଦେଖାଇବା—
Display of manliness

**ପୁରୁଷତ୍ୱ ବର୍ଜିତ**—ସଂ ବିଣ. ପୁଂ—୧ । ପୁଂସ୍ତ୍ୱହୀନ, ସ୍ତ୍ରୀ ସଙ୍ଗମରେ
Purushatwa barjita ଅସମର୍ଥ—1 Impotent.
୨ । ଶୌର୍ଯ୍ୟହୀନ—2 Devoid of courage.
(ପୁରୁଷତ୍ୱବିହୀନ, ପୁରୁଷତ୍ୱହୀନ, ପୁରୁଷତ୍ୱଶୂନ୍ୟ—ଅନ୍ୟରୂପ)

**ପୁରୁଷତ୍ୱ ବିଶିଷ୍ଟ**—ସଂ. ବିଣ. ପୁଂ—ସ୍ତ୍ରୀସଙ୍ଗମ ଶକ୍ତିବିଶିଷ୍ଟ—
Purushatwa biśishṭa Potent; virile.
(ପୁରୁଷତ୍ୱବାନ୍, ପୁରୁଷତ୍ୱଯୁକ୍ତ—ଅନ୍ୟରୂପ)

**ପୁରୁଷ ଦଘ୍ନ**—ସଂ ବିଣ. ( ପୁରୁଷ+ପରମାଣାର୍ଥେ. ଦଘ୍ନ )—
Purusha daghna ୧ । ଉଚ୍ଚରେ ଏକ ପୁରୁଷ ପରିମିତ, ପୁରୁଷେ ଉଚ୍ଚ—
(ପୁରୁଷ ଦ୍ୱୟସ—ଅନ୍ୟରୂପ)
1 As high as a man.
୨ । ପ୍ରାୟ ୩ୟ ହାତ ଉଚ୍ଚ—2 5½ feet high.

**ପୁରୁଷ ଦ୍ୱେଷୀ**—ସଂ. ବିଣ. ପୁଂ. ( ପୁରୁଷ+ଦ୍ୱିଷ୍ ଧାତୁ=ଦ୍ୱେଷ କରିବା +ଇନ୍ )—ମନୁଷ୍ୟଘୃଣାକାରୀ.
Purusha dweshī
(ପୁରୁଷ ଦ୍ୱେଷିଣୀ—ସ୍ତ୍ରୀ) ଯାହାକୁ ମନୁଷ୍ୟ ଗନ୍ଧାନ୍ତ—
Misanthrope; man-hater.

**ପୁରୁଷ ଧର୍ମ**—ସଂ. ବି. ( ୬ଷ୍ଠୀ ତତ୍; ପୁରୁଷ+ଧର୍ମ )—
Purusha dharma ପୌରୁଷ, ମନୁଷ୍ୟତା—Manliness.

**ପୁରୁଷ ନକ୍ଷତ୍ର**—ସଂ. ବି—ହସ୍ତା, ମୂଳା, ଶ୍ରବଣା, ପୁନର୍ବସୁ, ମୃଗଶିରା ଓ
Purusha nakshatra ପୁଷ୍ୟା ନକ୍ଷତ୍ର, ଜ୍ୟୋତିଷୋକ୍ତ ୨୭ ନକ୍ଷତ୍ର ମଧ୍ୟରୁ ୧୩ଶ, ୧୯ଶ, ୨୨ଶ, ୭ମ, ୫ମ ଓ ୮ମ ନକ୍ଷତ୍ର—
The 13th, 19th, 22nd, 7th, 5th and 8th asterism in Hindu astrology.

**ପୁରୁଷ ପରମ୍ପରା**—ସଂ. ବି. ( ୬ଷ୍ଠୀ ତତ୍ )—
Purusha paramparā ବଂଶ ପରମ୍ପରା; ବଂଶାନୁକ୍ରମ, ପୁରୁଷାନୁକ୍ରମ; ବଂଶର ଏକ ପୁରୁଷଠାରୁ ଅନ୍ୟ ପୁରୁଷଙ୍କ ପର୍ଯ୍ୟନ୍ତ ଏହିପରି କ୍ରମ— Successive generations.
ଦେ. କ୍ରି. ବିଣ— ପୁରୁଷପରମ୍ପରାକ୍ରମେ ( ଦେଖ )
Purusha paramparā krame ( See )

**ପୁରୁଷ ପରମ୍ପରା କ୍ରମେ**— ଦେ. କ୍ରି. ବିଣ—ବାପ ପରେ ପୁଅ ଓ ପୁଅ
Purusha paramparā krame ପରେ ନାତି ଏହିପରି କ୍ରମରେ—
From generation to generation; for successive generations.

**ପୁରୁଷ ପରମ୍ପରା ଗତ**—ସଂ ବିଣ. ( ୫ମୀ ତତ୍, ପୁରୁଷ ପରମ୍ପରା+
Purusha paramparā gata ଗତ=ଆଗତ )—
ବହୁ ପୁରୁଷରୁ ଚଳି ଆସୁଥିବା— Transmitted through successive generation; traditional; hereditary.

**ପୁରୁଷ ପଶୁ**—ସଂ. ବି—ପଶୁ ପରି ଆଚରଣକାରୀ ପୁରୁଷ—
Purusha paśu A beastly man; a brutish person.

ପୁରୁଷ ପୁର—ସଂ. ବି. (ନାମ)—ପ୍ରାଚୀନ ଗାନ୍ଧାର ରାଜ୍ୟର ରାଜଧାନୀ, ଆଧୁନିକ ପେଶୱାର—
Purusha pura
The ancient name of Peshawar.

ପୁରୁଷ ପ୍ରକୃତିକା ନାରୀ—ସଂ. ବି. ସ୍ତ୍ରୀ—ପୁରୁଷର ସ୍ୱଭାବବିଶିଷ୍ଟ ନାରୀ, ଅଣ୍ଡିରାଚଣ୍ଡୀ—
Purusha prakrutikā nāri
A virago, an amazon

ପୁରୁଷ ପ୍ରଧାନ—ସଂ ବି—ଶ୍ରେଷ୍ଠ ବ୍ୟକ୍ତି—
Purusha pradhāna An eminent person.
(ପୁରୁଷ ଶ୍ରେଷ୍ଠ—ଅନ୍ୟରୂପ)

ପୁରୁଷବାର—ସଂ. ବି—(ହିନ୍ଦୁ ଜ୍ୟୋତିଷ ମତରେ) ରବି, ମଙ୍ଗଳ, ବୃହସ୍ପତି ଓ ଶନିବାର (ହି. ଶବ୍ଦସାଗର)—
Purushabāra
Sunday, Tuesday, Wednesday and Saturday of the week.

ପୁରୁଷ ବିହାର—ଦେ. ବି—ପୁରୁଷାଇତ (ଦେଖ)
Purusha bihāra Purushāita (See)

ପୁରୁଷ ବିହାର ନାଚ କଣେ ରୁଚି କଲ କରି ନୋଳି କଲ ସେ ବାହାର ହାର । ଭଞ୍ଜ, ପ୍ରେମସୁଧାନିଧି ।

ପୁରୁଷ ମେଧ—ସଂ. ବି—ନରମେଧ; ଯେଉଁ ଯଜ୍ଞରେ ନର ବଳି ଦିଆ ଯାଉଥିଲା—A vedic sacrifice in
Purusha medha
which a man was offered as a sacrifice.

[ଦ୍ର—ଏ ବୈଦିକ ଯଜ୍ଞ କରିବାକୁ କେବଳ ବ୍ରାହ୍ମଣ ଓ କ୍ଷତ୍ରିୟମାନେ ଅଧିକାରୀ ଥିଲେ । ଏ ଯଜ୍ଞ ଚୈତ୍ର ଶୁକ୍ଳ ଦଶମୀ ଦିନ ଆରମ୍ଭ ହୋଇ ୪୦ ଦିନରେ ସମାପ୍ତ ହେଉଥିଲା । ଯଜ୍ଞର ସମାପ୍ତି ପରେ ଯଜ୍ଞକର୍ତ୍ତା ବାନପ୍ରସ୍ଥାଶ୍ରମ ଗ୍ରହଣ କରୁଥିଲେ । ଏ ଯଜ୍ଞର ବିଧାନ ଶୁକ୍ଳ ଯଜୁର୍ବେଦର ୨୩ଶ ଅଧ୍ୟାୟରେ ଓ ଶତପଥ ବ୍ରାହ୍ମଣରେ ଅଛି । (ହି. ଶ.) ।]

ପୁରୁଷ ମେଧି—ଦେ. ବି—ପୁରୁଷ ମେଧ (ଦେଖ)
Purusha medhi Purushamedha (See)

ପୁରୁଷ ମେଧି ଯଜ୍ଞ କଲ,
ତା ଶୁଣି ବୋଲେ ଦ୍ୱିଜବର । ଜଗନ୍ନାଥ. ଭାଗବତ ।

ପୁରୁଷ ରତି—ସଂ. ବି.—ପୁରୁଷାଇତ (ଦେଖ)
Purusha rati Purushāita (See)

ପୁରୁଷ ରାଶି—ସଂ. ବି—(ଜ୍ୟୋତିଷ) ମେଷ, ମିଥୁନ, ସିଂହ, ତୁଳା, ଧନୁ ଓ କୁମ୍ଭ—The 6 signs of zodiac, viz—
Purusha rāsi
the ram (Aries); the twins (Gemini); the lion (Leo); the balance (Libra), the bow man (Sagitarius) and the pitcher (Aquarius.)

ପୁରୁଷ ଶାର୍ଦ୍ଦୂଳ—ସଂ. ବି.—ପୁରୁଷମାନଙ୍କ ମଧ୍ୟରେ ଶ୍ରେଷ୍ଠ; ଶ୍ରେଷ୍ଠପୁରୁଷ, ପ୍ରଧାନ ଲୋକ—A distinguished
Purusha sārddula
man; a superior person; a lord amongst men; an excellent man.

[ଦ୍ର—ଶ୍ରେଷ୍ଠ ଅର୍ଥରେ କୁଞ୍ଜର, ପୁଙ୍ଗବ, ବ୍ୟାଘ୍ର, ସିଂହ, ନାଗ, ବୃଷଭ, କେଶରୀ ଆଦି ଉକ୍ତ ଉକ୍ତ ପ୍ରଧାନ ପଶୁ ଓ ପୁଣ୍ଡରୀକ (ପଦ୍ମ) ଶବ୍ଦ ଆଦି ନର ଓ ପୁରୁଷାଦି ଶବ୍ଦ ସଙ୍ଗରେ ବ୍ୟବହୃତ ହୁଏ ।]

ପୁରୁଷ ଶ୍ରେଷ୍ଠ—ସଂ. ବି.—(୭ମୀ ତତ୍, ପୁରୁଷ+ଶ୍ରେଷ୍ଠ)—ପୁରୁଷ ଶାର୍ଦ୍ଦୂଳ (ଦେଖ)—Purusha sārddula (See)
Purusha sreshtha

ପୁରୁଷସୂକ୍ତ—ସଂ. ବି (ଋଗ୍ବେଦ ୧୦ମ ମଣ୍ଡଳର ନବତିତମ ସୂକ୍ତ)—ବେଦୋକ୍ତ ଷୋଳ ଗୋଟି ମନ୍ତ୍ର—
Purusha sūkta
16 mantras of the Vedas.

[ଦ୍ର—ଏହା ବିଶ୍ୱରୂପୀ ପରମ ପୁରୁଷଙ୍କର ସ୍ତବ ଅଟେ ।]

ପୁରୁଷା—ଦେ. ବି.—(ସଂ. ପୁରୁଷ ସ୍ଥଳରେ ଓଡ଼ିଆ ପଦ୍ୟ ଓ ଗୀତାଦିରେ ବ୍ୟବହୃତ)—ମନୁଷ୍ୟ—Man.
Purushā

ଜନମ ମରଣ ତେଣୁ, ଏହା ନ ଜାଣେ ପୁରୁଷା—ହରିବନ୍ଦନ ।

ପୁରୁଷାଇତ—ଦେ. ବି. (ସଂ. ପୁରୁଷାୟିତ)—ବିପରୀତ ରତି (ଯହିଁରେ ସ୍ତ୍ରୀ ପୁରୁଷ ଉପରେ ଉପବିଷ୍ଟା ହୁଏ)—Inverted
Purushāita
sexual intercourse; a pose in copulation in which the woman plays the man.

ପୁରୁଷାଙ୍ଗ—ସଂ. ବି. (ମ. ପ. ଲୋ; ପୁରୁଷତା ଜ୍ଞାପକ ଅଙ୍ଗ)—ପୁଂ. ଚିହ୍ନ; ଲିଙ୍ଗ—The male organ, the penis.
Purushānga

ପୁରୁଷାଦ—ସଂ ବି. (ପୁରୁଷ+ଅଦ୍ ଧାତୁ=ଖାଇବା+କର୍ତ୍ତୃ. ଅ)—
Purushāda ୧ । ନରମାଂସଭୋଜୀ ବ୍ୟକ୍ତି—1. Cannibal.
୨ । ରାକ୍ଷସ—2. A demon

ପୁରୁଷାଦ୍ୟ—ସଂ. ବି (୬ଷ୍ଠୀ ତତ୍, ପୁରୁଷ+ଆଦ୍ୟ)—୧ । ଆଦି ପୁରୁଷ, ବିଷ୍ଣୁ—1. Bishnu.
Purushādya
୨ । ଆଦିନାଥ ନାମକ ଜୈନବିଶେଷ—
2. The name of a Jaina saint.
୩ । ରାକ୍ଷସ (ହି. ଶ.)—3 Demon

ପୁରୁଷାଧମ—ସଂ. ବିଣ. (୭ମୀ ତତ୍; ପୁରୁଷ+ଅଧମ)—ନରାଧମ; ଅତି ଘୃଣ୍ୟ (ବ୍ୟକ୍ତି)—Vile; base (person).
Purushādhama

ପୁରୁଷାନୁକ୍ରମ—ସଂ. ବି.—ପୁରୁଷ ପରମ୍ପରା (ଦେଖ)
Purushānukrama Purusha paramparā (See)

ପୁରୁଷାନୁକ୍ରମେ—ଦେ. କ୍ରି. ବିଣ.—ପୁରୁଷପରମ୍ପରାକ୍ରମେ (ଦେଖ)
Purushānukrame Purusha paramparā kramo (See)

ପୁରୁଷାୟିତ—ସଂ.ବି. (ପୁରୁଷ+ଆୟ୍+ଇତ୍)—୧ । ପୁରୁଷାଇତ (ଦେଖ)
Purushāyita 1. Purushāita (See)

ବିରେ ଯେ ସୁକେ ପୁରୁଷାୟିତ । ଭଞ୍ଜ ବୈଦେହୀଶବିଳାସ ।

୨ । ପୁରୁଷ ପରି କର୍ମ କରିବା—
2, Acting like a man (Apte).
୩ । ମନୁଷ୍ୟୋଚିତ ଆଚରଣ—
3 Manly conduct (Apte).

ପୁରୁଷାୟିତା—ସଂ ବିଣ. ସ୍ତ୍ରୀ. (ପୁରୁଷ+ଆୟ୍+ଇତ୍; ଯେ ପୁରୁଷ ନୁହେଁ ସେ ପୁରୁଷ ପରିଣତା)—ରତି କାଳରେ ପୁରୁଷର ସ୍ଥାନ ଅଧିକାର କରିଥିବା (ସ୍ତ୍ରୀ)—(a woman)
Purushāyitā
Playing the man during coitus,

ପୁରୁଷାୟୁଷ—ସଂ. ବି. (ପୁରୁଷ+ଆୟୁସ୍+ଅ)—ମନୁଷ୍ୟର ପୂର୍ଣ୍ଣ ପରମାୟୁ ଶତେ ବର୍ଷ (ହି. ଶ.)—A period of 100 years.
Purushāyusha

**ପୁରୁଷାର୍ଥ**—ସଂ. ବି. (ପୁରୁଷର ଅର୍ଥ=ପ୍ରୟୋଜନ)—୧ । ପୁରୁଷର
Purushārtha ପ୍ରୟୋଜନ ସାଧକ ବର୍ଗ ଚତୁଷ୍ଟୟ ଧର୍ମ, ଅର୍ଥ, କାମ ଓ ମୋକ୍ଷ—1. The 4 aims of human existence viz duty; riches; desire and final beatitude.

୨ । ମନୁଷ୍ୟ ଜୀବନର ଲକ୍ଷ—2 The summum bonum of human existence.

୩ । ସୁଖ—3. Happiness.

୪ । ମୁକ୍ତି—4 Salvation.

୫ । ସଂସାର—5. The world.

[ ଦ୍ର—ସାଂଖ୍ୟ ମତରେ ତ୍ରିବିଧ ଦୁଃଖର ଅତ୍ୟନ୍ତ ନିବୃତ୍ତି (ମୋକ୍ଷ) ହିଁ ପରମ ପୁରୁଷାର୍ଥ । ପ୍ରକୃତି ପୁରୁଷାର୍ଥ ପାଇଁ ନିରନ୍ତର ଯତ୍ନ କରୁଛି, କିନ୍ତୁ ପୁରୁଷ ପ୍ରକୃତିର ଧର୍ମକୁ ଆପଣାର ଧର୍ମ ବୋଲି ବିଚାରି ଆପଣା ସ୍ୱରୂପକୁ ଭୁଲିଯାଉଛି । ପୁରୁଷର ସ୍ୱରୂପ ଜ୍ଞାନ ନ ହେବା ପର୍ଯ୍ୟନ୍ତ ପୁରୁଷ ପ୍ରକୃତିକୁ ଛାଡ଼ି ପାରେ ନାହିଁ । ପୁରାଣ ମତରେ ଧର୍ମ, ଅର୍ଥ, କାମ ଓ ମୋକ୍ଷ ପୁରୁଷାର୍ଥ ଅଟେ । ଚାର୍ବାକ ମତରେ କାମିନୀ ସଙ୍ଗଜନିତ ସୁଖହିଁ ପୁରୁଷାର୍ଥ ଅଟେ—ହି. ଶ ]

୬ । ପୁରୁଷକାର; ପୌରୁଷ, ଉଦ୍ୟମ (ହି. ଶ) 6 Manly exertion.

ତଦବା ପୁରୁଷାର୍ଥ ପାଇଲ ନ୍ୟାଇଁ ।
କୃଷ୍ଣସିଂହ ମହାଭାରତ ବନ.

୭ । ବଳ, ଶକ୍ତି, ସାମର୍ଥ୍ୟ (ହି. ଶ)
7 Strength; potency.

ଦେ. ବି.—୧ । ବାହାଦୁରି, ପ୍ରଶଂସା—1. Credit; praise;

ଗୋଡାଇଲେ ପୁରୁଷାର୍ଥ ଅଟଳିବା ପାଇଁ
କୃଷ୍ଣସିଂହ. ମହାଭାରତ. ଉଦ୍‌ଯୋଗ ।

୩ । ପରିଶ୍ରମ—3. Labour.

**ପୁରୁଷାର୍ଥୀ**—ସଂ. ବିଣ. (ପୁରୁଷାର୍ଥ+ଇନ୍; ୧ମା ୧ବ) ୧ । ଉଦ୍‌ଯୋଗୀ;
Purushārthī ଉଦ୍ୟମୀ—1. Exerting.

୨ । ପରିଶ୍ରମୀ—2. Laborious.

୩ । ବଳୀ; ସାମର୍ଥ୍ୟବାନ୍—3 Strong; powerful.

**ପୁରୁଷାଶୀ**—ସଂ. ବି. ପୁଂ (ପୁରୁଷ+ଅଶ୍ ଧାତୁ+କର୍ତ୍ତୃ ଇନ୍, ୧ମା ୧ବ)
Purushāsī ୧ । ନରମାଂସ ଭକ୍ଷକ ବ୍ୟକ୍ତି—1. Cannibal
(ପୁରୁଷାଶିନୀ—ସ୍ତ୍ରୀ) ୨ । ରାକ୍ଷସ—2. Demon.

**ପୁରୁଷେ**—ଦେ. ବିଣ.—ପୁରୁଷର ଉଚ୍ଚତାଠାରୁ ଏକ ହାତ ଉଚ୍ଚ ବା
Purushe ଗଭୀର—As high or deep as a man.
ଏକପୁରଷ ऐकपुरूसा with his arms and fingers raised up.

(ଯଥା—ଏ ପୋଖରୀରେ ପୁରୁଷେ ପାଣି ଅଛି ।)

ଦେ. ବି.—ବଂଶର ଏକ ପୁରୁଷର ଜୀବିତ କାଳ—
Life-time of one generation.

(ଯଥା—ମିଶ୍ରବଂଶ ଜମିଦାରୀ ପୁରୁଷେ ମାତ୍ର ଭୋଗ କଲେ ।)

**ପୁରୁଷୋତ୍ତମ**—ସଂ. ବି. (ପୁରୁଷମାନଙ୍କ ମଧ୍ୟରେ ଉତ୍ତମ ବା ଶ୍ରେଷ୍ଠ)—
Purushottama ୧ । ପୁରୁଷଶ୍ରେଷ୍ଠ; ନରପୁଙ୍ଗବ—
1. Best of men; chief among men; an eminent man.

୨ । ଭଗବାନ୍, ବିଷ୍ଣୁ—2 Bishnu.

୩ । ଜୈନ ବିଶେଷ—3 Name of a Jaina Saint.

୪ । ଜଗନ୍ନାଥ କ୍ଷେତ୍ର; ଶ୍ରୀକ୍ଷେତ୍ର, ନୀଳାଚଳ ଧାମ, ପୁରୀ—
4 The town of Puri, the seat of Lord Jagannath.

କହିଲି ମୋ ପୁରୁଷୋତ୍ତମ
ନଡ଼ିଂ ସହାସ ଆନୁଗାମ. ପରୋବନ୍ତ୍ର—ପେମେଇଙ୍କ ବ୍ରହ୍ମଗୀତା.

୫ । ଶତ୍ରୁ ମିତ୍ର ଆଦିଙ୍କ ପ୍ରତି ସର୍ବଦା ଉଦାସୀନ; ନିଷ୍ପାପ ପୁରୁଷ (ହି.ଶ)
6. A sinless person who is indifferent alike to a friend or foe.

୬ । ମଳମାସ, ଅଧିମାସ (ହି. ଶ)
6. An intercalary month.

**ପୁରୁଷୋତ୍ତମ ଦାସ**—ଦେ ବି.—(ନାମ)—ଜନୈକ ଓଡ଼ିଆ କବି—
Purushottama dāsa An Oriya poet.

[ ଦ୍ର—ଏ କବି ଗଉଡ଼ କୁଳରେ ଜାତ ହୋଇଥିଲେ । 'ଗଙ୍ଗା-ମାହାତ୍ମ୍ୟ' ଏହାଙ୍କ ରଚିତ ପ୍ରଧାନ ଗ୍ରନ୍ଥ ଅଟେ । ]

**ପୁରୁଷୋତ୍ତମ ଦେବ**—ଦେ. ବି. (ନାମ)—ଉତ୍କଳର ସ୍ୱାଧୀନ ନରପତି—
Purushottama deba An independent king of Utkal.

[ ଦ୍ର—(ଖ୍ରୀ ୧୪୭୫—୧୪୯୪) କପିଳେନ୍ଦ୍ର ଦେବଙ୍କ ଉପପତ୍ନୀଙ୍କ ପୁତ୍ର । କପିଳେନ୍ଦ୍ରଙ୍କର ରାଣୀମାନଙ୍କ ଗର୍ଭରୁ ୧୮ ପୁତ୍ର ଜାତ ହୋଇଥିଲେହେଁ ଏହାଙ୍କ ଗୁଣରେ ମୁଗ୍ଧ ହୋଇ କପିଳେନ୍ଦ୍ର ଏହାଙ୍କୁ ଉପଯୁକ୍ତ ଉତ୍ତରାଧିକାରୀ ରୂପେ ମନୋନୀତ କରିଥିଲେ । କପିଳେନ୍ଦ୍ରଙ୍କ ପୁତ୍ରମାନେ ଏହାଙ୍କ ସଙ୍ଗେ ବିଦ୍ରୋହାଚରଣ କଲେ କିନ୍ତୁ ପୁରୁଷୋତ୍ତମ ଦେବ ସେମାନଙ୍କୁ ଦମନ କରିଥିଲେ ଓ ସେମାନଙ୍କୁ ଖଣ୍ଡିଏ ଖଣ୍ଡିଏ ରାଜ୍ୟ ଦେଇ ରାଜ୍ୟ ମଧ୍ୟରେ ସାମନ୍ତ ରାଜାରୂପେ ରଖାଇଦେଲେ । ସେ କାଞ୍ଚିରାଜ୍ୟ ଜୟ କରି କାଞ୍ଚିରାଜାଙ୍କ କନ୍ୟା ପଦ୍ମାବତୀଙ୍କ ପାଣି ଗ୍ରହଣ କଲେ । ପୁରୁଷୋତ୍ତମ ଦେବ କର୍ଣ୍ଣାଟ ଜୟ କରିଥିଲେ; ବିଶେଷ ବିଦ୍ୟାନୁରାଗୀଥିଲେ । ଏ ନିଜେ ସଂସ୍କୃତରେ ପଣ୍ଡିତ ଥାଇ 'ତ୍ରିକାଣ୍ଡ ଶେଷ' ନାମକ ସଂସ୍କୃତ ଅଭିଧାନ ରଚନା କରିଥିଲେ ଓ ତାଙ୍କର ସଭାପଣ୍ଡିତ ବିଶ୍ୱନାଥ ମହାପାତ୍ର 'ସାହିତ୍ୟ-ଦର୍ପଣ' ନାମକ ସଂସ୍କୃତ ଅଳଙ୍କାର ସମ୍ବନ୍ଧରେ ପ୍ରାମାଣିକ ଗ୍ରନ୍ଥ ରଚନା କରିଥିଲେ । ଏ ପୁରୀଜିଲ୍ଲାରେ ଶ୍ରୀପୁରୁଷୋତ୍ତମପୁର ଓ ବୀର-ପୁରୁଷୋତ୍ତମପୁର ଶାସନମାନ ବସାଇଥିଲେ ।

କୃପାସିନ୍ଧୁ—ଉତ୍କଳ ସାହିତ୍ୟ ଇତିହାସ ।]

**ପୁରୁଷୋତ୍ତମ ପାଢ଼ୀ**—ଦେ. ବି. (ନାମ)—ଜନୈକ ସଂସ୍କୃତ ଟୀକାକାର—
Purushottama pāṛhi Name of an Oriya Commentator.

[ ଦ୍ର—'ଅନାର୍ଘ୍ୟରାଘବ ଟୀକା' ଏହାଙ୍କ ରଚିତ ଗ୍ରନ୍ଥ—ଭାରତୀ, ଉତ୍କଳ ସାହିତ୍ୟ ଇତିହାସ । ]

**ପୁରୁଷୋତ୍ତମ ମାନଧାତା**—ଦେ. ବି. (ନାମ)—ଜନୈକ ଉତ୍କଳୀୟ କବି—
Purushottama mānadhātā Name of an Oriya Raja and poet.

[ ଦ୍ର—ଏ କବି ନବଦୁର୍ଗ ରାଜ୍ୟର ରାଜାଥିଲେ । 'ଶୋଭାବତୀ' କାବ୍ୟର ପ୍ରଣେତା । ଭାରତୀ. ଉତ୍କଳ ସାହିତ୍ୟ ଇତିହାସ ।]

**ପୁରୁଷୋତ୍ତମ ମିଶ୍ର**—ଦେ. ବି —(ନାମ)—ଜଣେକ ଓଡ଼ିଆ କବି —
Purushottama misra — An Oriya poet.

[ ଦ୍ର— ପଞ୍ଚଦଶ ଶତାବ୍ଦୀର ମଧ୍ୟଭାଗର କବି । 'ସଙ୍ଗୀତ ନାରାୟଣ' ପ୍ରଭୃତି ଗ୍ରନ୍ଥ ପ୍ରଣୟନ କରିଥିଲେ । ଜଗବନ୍ଧୁ—ପ୍ରାଚୀନ ଉତ୍କଳ ।]

**ପୁରୁଷ୍କାର**—ଦେ. ବି (ପ୍ରାଚୀନ ପଦ୍ୟ)—ପୁରୁଷକାର (ଦେଖ)
Puruskāra — Purushakāra (See)

ନାଶିଲା ନାହିଁ ପୁରୁଷ୍କାର
ଛାଡେ ନେ କହୁ ଅହଙ୍କାର । ଜଗନ୍ନାଥ—ଭାଗବତ ।

**ପୁରୁଷ୍ଠା(ଷ୍ଠୀ)**—ଗ୍ରା. ବି. (ସଂ. ପୃଷ୍ଠ)—ପୃଷ୍ଠା (ଦେଖ)
Purushṭā(shṭhī) (ପୃଷ୍ଠା—ଅନ୍ୟରୂପ) Prushṭhā (See)

**ପୁରୁହୂତ**—ସଂ. ବିଣ. (ପୁରୁ+ହୂତ; ଯାହାଙ୍କ ଉଦ୍ଦେଶ୍ୟରେ ବହୁଲୋକ ଯଜ୍ଞ କରନ୍ତି)—ପରମେଶ୍ୱର, ବିଷ୍ଣୁ—
Puruhuta — Bishṇu, God.

ଯେ ବସ୍ତୁକାମ୍ୟ ପୁରୁହୂତ
ବସ୍ତୁ ସର୍ବ୍ବନେ ଉପଚତ । ଜଗନ୍ନାଥ. ଭାଗବତ ।

**ପୁରୁହୂତ**—ସଂ. ବି. ( ପୁରୁ=ଦୈତ୍ୟବିଶେଷ କର୍ତ୍ତୃକ+ହୂତ=ଯୁଦ୍ଧାର୍ଥ ଆହୂତ)—ଇନ୍ଦ୍ର—Indra
Puruhūta

**ପୁରୁହୂତା**—ସଂ. ବି—୧ । (ସ୍ତ୍ରୀ) ଦାକ୍ଷାୟଣୀ (ହି. ଶ) (ଦେଖ)
Puruhūti — 1. Dākshāyaṇi (See)

୨ । (ପୁଂ) ବିଷ୍ଣୁ (ହି. ଶ)—2. Bishṇu.

—ସଂ. ବିଣ—ପୁରୁ (ଦେଖ)
Purū — Puru (See)

**ପୁରୁବସୁ**—ସଂ. ବିଣ. (ପୁରୁ+ବସୁ ଯାହାର, ବହୁବ୍ରୀହି)—
Purūbasu — ମହାଧନୀ; ବହୁଧନଶାଳୀ— Very rich; rolling in riches.

**ପୁରୁରବା**—ସଂ. ବିଣ (ପୁରୁ+ରୁ ଧାତୁ=ଶବ୍ଦ କରିବା, ଫଳ ଦେବା+ଅସ୍)—ପୁରୁରବସ୍ ଶବ୍ଦ ୧ମା. ୧ବ.)—ବହୁ ଫଳଦାତା, ବରଦାତା—Granting manifold boons or blessings.
Purūrabā (ପୁରୋରବା—ଅନ୍ୟରୂପ)

ସଂ. ବି.—୧ । କୁବେର—1 Kubera.

୨ । ବୁଧପୁତ୍ର ଚନ୍ଦ୍ରବଂଶୀୟ ରାଜା—2. A king of the lunar dynasty; the hero of Kālidas's play Bikramorbasī.

ତାହାଙ୍କୁ ଦେଖି ଗୁଣ ଧାମ,
ଦେଲେ ସେ ପୁରୁରବା ନାମ । ଜଗନ୍ନାଥ. ଭାଗବତ ।

[ ଦ୍ର—ଏ ଉର୍ବଶୀ ଅପ୍ସରାଙ୍କ ସଙ୍ଗେ ବହୁକାଳ ସୁଖରେ ବିହାର କରିବା ପରେ ମୁନଙ୍କ ଶାପରୁ ତାଙ୍କର ପ୍ରିୟାବିଚ୍ଛେଦ ଘଟିଥିଲା । ଏ କାଳିଦାସଙ୍କର 'ବିକ୍ରମୋର୍ବଶୀ' ନାଟକର ପ୍ରଧାନ ବୀର । ଚନ୍ଦ୍ରଙ୍କ ଔରସରେ ବୃହସ୍ପତିଙ୍କ ସ୍ତ୍ରୀ ତାରାଙ୍କ ଗର୍ଭରୁ ବୁଧ ଜନ୍ମିଥିଲେ ଓ ବୁଧ ଚନ୍ଦ୍ରବଂଶର ଆଦି ପୁରୁଷ ଥିଲେ । ବୁଧଙ୍କର ଇଳାଙ୍କ ସଙ୍ଗେ ବିବାହ ହେଲା ଓ ଇଳାଙ୍କ ଗର୍ଭରୁ ପୁରୁରବା ଜନ୍ମିଲେ । ପୁରୁରବା ଅତି ରୂପବାନ୍, ବୁଦ୍ଧିମାନ୍ ଓ ପରାକ୍ରମୀ ଥିଲେ । ଶାପବଶତଃ ଉର୍ବଶୀ ଭୂଲୋକକୁ ଆସିଥିବା ଅବସ୍ଥାରେ ପୁରୁରବା ଉର୍ବଶୀଙ୍କ ରୂପରେ ମୋହିତ ହୋଇ ତାଙ୍କୁ ବିବାହ କରିବାକୁ କହିଲେ । ଉର୍ବଶୀ ତିନି ସର୍ତ୍ତରେ ତାଙ୍କୁ ବିବାହ କଲେ, ଯଥା—୧ । ପୁରୁରବାଙ୍କୁ ଉର୍ବଶୀ କେବେହେଲେ ନଗ୍ନ ଅବସ୍ଥାରେ ଦେଖିବେ ନାହିଁ, ୨ । ଉର୍ବଶୀ କାମାସକ୍ତା ନ ହେଲେ ପୁରୁରବା ତାଙ୍କୁ ସଙ୍ଗମ କରିବେ ନାହିଁ, ୩ । ଉର୍ବଶୀଙ୍କ ପଲଙ୍କ ପାଖରେ ସର୍ବଦା ୨ଟି ମେଣ୍ଢା ବନ୍ଧା ରହିବେ । ଉର୍ବଶୀଙ୍କ ଶାପ ମୋଚନ ଲାଗି ଜଣେ ଗନ୍ଧର୍ବ ଆସି ରାଜା ଓ ଉର୍ବଶୀ ଶୋଇଥିଲା ବେଳେ ମେଣ୍ଢା ଦୁଇଟିଙ୍କୁ ବଳପୂର୍ବକ ନେଇ ଗଲେ । ରାଜା ସେହି ସମୟରେ ନଗ୍ନ ଅବସ୍ଥାରେ ଶୋଇଥିଲେ, ଗନ୍ଧର୍ବ ହଠାତ୍ ମେଣ୍ଢା ନେଇ ଯିବାରୁ ରାଜା ଲୁଗା ପିନ୍ଧିବାକୁ ସମୟ ନ ପାଇ ମେଣ୍ଢାଙ୍କୁ ଉଦ୍ଧାର କରିବାକୁ ଧାଇଁଲେ ଓ ତାଙ୍କ ନଗ୍ନଶରୀର ଉର୍ବଶୀଙ୍କ ଦୃଷ୍ଟିଗୋଚର ହେଲା ଓ ଉର୍ବଶୀ ରାଜାଙ୍କୁ ଛାଡ଼ି ସ୍ୱର୍ଗକୁ ଚାଲିଗଲେ । ରାଜା ବହୁତ ବିଳାପ କରି ଉର୍ବଶୀଙ୍କୁ ଖୋଜିଲେ କିନ୍ତୁ ପାଇଲେ ନାହିଁ । ଦିନେ ରାଜା ବୁଲୁ ବୁଲୁ କୁରୁକ୍ଷେତ୍ର ନିକଟରେ ଉର୍ବଶୀଙ୍କୁ ଦେଖିଲେ । ଉର୍ବଶୀ ରାଜାଙ୍କ ଔରସରେ ଗର୍ଭବତୀ ହୋଇଥିବାର ପ୍ରକାଶ କରି ପୁତ୍ରମାନେ ଜନ୍ମ ହେଲେ । ପୁତ୍ରମାନଙ୍କୁ ଘେନି ରାଜାଙ୍କ ନିକଟକୁ ଆସି ଏକରାତ୍ରି ମାତ୍ର ତାଙ୍କ ସଙ୍ଗେ ରହିବାର କହି ଚାଲିଗଲେ । ଉର୍ବଶୀ କାଳକ୍ରମେ ୭ଟି ପୁତ୍ର ଜନ୍ମ କରି ଏକରାତ୍ର ମାତ୍ର ରାଜାଙ୍କ ନିକଟ ଆସି ପୁଣି ସ୍ୱର୍ଗକୁ ଚାଲିଗଲେ । ଗନ୍ଧର୍ବ ପୁରୁରବାଙ୍କୁ ଗୋଟିଏ ଅଗ୍ନିପୂର୍ଣ୍ଣ ସ୍ଥାଲୀ ଦେଲେ । ସେହି ଅଗ୍ନିରେ ରାଜା ବହୁ ଯଜ୍ଞ କଲେ । ପୁରୁରବାଙ୍କ ରାଜଧାନୀ ଗଙ୍ଗାତଟବର୍ତ୍ତୀ ପ୍ରୟାଗରେ ଥିଲା । ଉକ୍ତ ରାଜଧାନୀର ନାମ ପ୍ରତିଷ୍ଠାନପୁର ଥିଲା—ହି. ଶ. । ]

୩ । ବିଶ୍ୱଦେବ ( ହି. ଶବ୍ଦସାଗର )— 3. Biswadeba Deity.

୪ । ପାର୍ବଣ ଶ୍ରାଦ୍ଧରେ ଅର୍ଚ୍ଚିତ ଦେବବିଶେଷ—4. Name of a Deity worshipped in the Pārbaṇa śrāddha.

**ପୁରେ**—ପ୍ରାଦେ (ଭକ୍ତିଭାଷା) ଅ—ସମ୍ମୁଖରେ, ନିକଟରେ—
Pure — Before.

**ପୁରେଇ(ହି)ତ** (ଇତ୍ୟାଦି)—ଗ୍ରା. ବି—ପୁରୋହିତ ଇତ୍ୟାଦି (ଦେଖ)
Purei(hi)ta (etc) — Purohita etc (See)

**ପୁରେ ପୁରେ**—ଦେ. (ପଦ୍ୟ) କ୍ରି. ବିଣ—ପ୍ରତିଘରରେ; ପ୍ରତିଗୃହରେ—
Pure pure — In every house.

ବେ କହୁ ଇତ ତାହାଙ୍କର
ଅନନ୍ଦ କଲେ ପୁରେପୁର । ଜଗନ୍ନାଥ. ଭାଗବତ ।

**ପୁରେନ୍**—ପ୍ରାଦେ. (ସମ୍ବଲପୁର) ବି. (ଭୁଲ ହି. ପୁରଇନ୍; ପୁରୈନ=ପଦ୍ମ, ସଂ. ପୁଟକିନୀ)—ପଦ୍ମଫୁଲ—Lotus.
Puren

**ପୁରେଲେ**—ପ୍ରାଦେ. (ଭକ୍ତିଭାଷା) ଅ—ଆଗରେ; ସମ୍ମୁଖରେ—
Purele — In front.

**ପୁରୋଇବା**—ଦେ. (ପ୍ରାଚୀନ ପଦ୍ୟ) କ୍ରି. (ସଂ. ପୂ ଧାତୁ)—
Puroibā — ପୂରାଇବା (ଦେଖ)—Purāibā (See)

ରଣ ଭୁ ମନରେ ପୁରୋଇ । ଯଶୋବନ୍ତ. ପ୍ରେମଭକ୍ତିଗୀତା ।

**ପୁରୋଗ**—ସଂ. ବିଣ. (ପୁରସ୍=ଆଗରେ+ଗମ୍ ଧାତୁ+ଅ)—
Puroga — ୧ । ଅଗ୍ରଗାମୀ; ବାଟ କଢ଼ାଉଥିବା— 1 Going in front; leading.

ପୁରୋଗମ, ପୁରୋଗାମୀ } ଅନ୍ୟରୂପ

୨ । ପ୍ରଧାନ, ଶ୍ରେଷ୍ଠ; ସର୍ବୋତ୍କୃଷ୍ଟ— 2. Chief; best, pre-eminent.

୩ । ଆଗରୁ ଯାଉଥିବା—3. Going before, preceeding.

**ପୁରୋଗତ**—ସଂ. ବଣ (ପୁରସ୍+ଗତ)—
Purogata ୧ । ଅଗ୍ରଗତ, ଯେ ଆଗରେ ଯାଇଅଛି—
(ପୁରୋଗତ—ଅନ୍ୟରୂପ) 1. Gone before; preceded.
(ପୁରୋଗତା—ସ୍ତ୍ରୀ) ୨ । ପ୍ରଧାନ—2. Chief.
୩ । ବାଟ କଢାଉଥିବା —3. Leading.

**ପୁରୋଗମନ**—ସଂ. ବି. (କର୍ମଧା, ପୁରସ୍+ଗମନ)—୧ । ଆଗରେ ଯିବା—
Purogamana 1. Precedence.
(ପୁରୋଗତ—ଅନ୍ୟରୂପ) ୨ । ନେତୃତ୍ୱ—2 Lead.
୩ । (ବହୁବ୍ରୀହି) କୁକ୍କୁର—3. The Dog.

**ପୁରୋଚନ**—ସଂ. ବି. (ନାମ)—୧ । ଜତୁ ଗୃହରେ ପାଣ୍ଡବମାନଙ୍କୁ ଦହନ
Purochana କରିବା ପାଇଁ ଦୁର୍ଯ୍ୟୋଧନଙ୍କ ନିଯୁକ୍ତ ଯବନ ମନ୍ତ୍ରୀ—
1. Name of a minister engaged by Durjyodhana to have the Pāndabas burnt in the lac house (but in which he was himself burnt).

[ଦ୍ର—ପାଣ୍ଡବମାନଙ୍କ ଜତୁଗୃହରେ ନିଆଁ ଲଗାଇବା ପାଇଁ ଦୁର୍ଯ୍ୟୋଧନ ପୁରୋଚନଙ୍କୁ ନିଯୁକ୍ତ କରିଥିଲେ । କିନ୍ତୁ ଭୀମସେନ ଭାଇମାନଙ୍କୁ ଓ ମାତାଙ୍କୁ ସଙ୍ଗେ ନେଇ ନିଆଁ ଲଗିବା ପୂର୍ବରୁ ଜତୁଗୃହରୁ ଚାଲିଗଲେ ଏବଂ ପୁରୋଚନର ବାସ ଗୃହରେ ନିଆଁ ଲଗାଇ ଦେଲେ । ପୁରୋଚନ ଆପଣା ଘରେ ନିଆଁରେ ପୋଡ଼ି ମରିଥିଲା—ହି ଶ ।]

୨ । ବଳି ବା ଉତ୍ସର୍ଗବିଶେଷ—
2. Name of a certain offering or oblation.
୩ । ହୋମମନ୍ତ୍ରବିଶେଷ — 2. Name of a certain mystic formula recited while offering oblations to fire.

**ପୁରୋଜନ୍ମା**—ସଂ. ବି. (ବହୁବ୍ରୀହି, ପୁରସ୍+ଜନ୍ମନ୍, ପୁରୋଜନ୍ମନ୍ ଶବ୍ଦ
Purojanmā ୧ମା. ୧ବ)—ଅଗ୍ରଜ; ବଡ଼ଭାଇ—
Elder brother.

**ପୁରୋଡ଼ା**—ସଂ. ବି. (ପୁରସ୍=ଅଗ୍ରେ+ଦାଶ୍ ଧାତୁ=ଦାନ କରିବା
Purorḍā +କର୍ମ. ଅସ୍, ଯାହା ପ୍ରଥମେ ଯଜ୍ଞରେ ଦିଆଯାଏ)—
ପୁରୋଡ଼ାଶ୍ } ଅନ୍ୟରୂପ ୧ । ହବି, ଘୃତ; ଯଜ୍ଞୀୟ ଘୃତ—
ପୁରୋଡ଼ାଶ } 1. Ghee; clarified butter offered to fire.
୨ । ହବିର୍ଭାଗ; ଚରୁ; ଘିଅ ସଙ୍ଗେ ହୋମାଗ୍ନିରେ ଦିଆଯିବା ମିଷ୍ଟାନ୍ନ—2 Sweetmeat offered with ghee unto the fire.

ଦଣ୍ଡୀମାନେ କପାଳ ମୁଣ୍ଡ ପୁରୋଡ଼ାଶ
ଚ୍ୟୁତ ଭୁଜ ଶିଖେ ହୋଇବେ ସେ ସଦସ୍ୟ ।
କୃଷ୍ଣସିଂ. ମହାଭାରତ, ଉଦ୍‌ଯୋଗ ।

୩ । ଯବଚୂର୍ଣ୍ଣ ନିର୍ମିତ ରୁଟି—
3. Roll of bread made of barley flour.
୪ । ମାଲପୁଆ—4. A pastry cake fried in ghee.
୫ । ପିଷ୍ଟକ ଚମଚି; ଜାଲି ଚଟୁ—
5. A sort of ladle used in frying cakes.
୬ । ହୁତଶେଷ—
6. The orts or leavings of a sacrifice.
୭ । ଯଜ୍ଞରେ ବଳି ଦିଆଯିବା ପଶୁର ଅବୟବ—
7 The limbs of a victim offered in sacrifice
୮ । ଯଜ୍ଞପାଇଁ ପୁରୋଡ଼ା ପ୍ରସ୍ତୁତ କରିବା ସମୟରେ ଉଚ୍ଚାରିତ ମନ୍ତ୍ର (ହି. ଶ)—1. Vedic formula recited while preparing the sweetmeat for a sacrifice.

**ପୁରୋଡ଼ାଶ୍ୟ**—ସଂ ବଣ—(ପୁରୋଡ଼ାଶ+ଯ)—ହବିର୍ଯୋଗ୍ୟ, ହବି ସହିତ
Purorḍāsya ଅଗ୍ନିରେ ଦିଆଯିବା ଯୋଗ୍ୟ—Fit to be offered into the sacrificial fire.

**ପୁରୋଦ୍ଭବ**—ସଂ. ବିଣ. ପୁଂ—(ପୁରସ୍=ଅଗ୍ରେ+ଉଦ୍ଭବ)—ପୂର୍ବେ ଜାତ—
Purodbhaba Born before; of prior orgine.
(ପୁରୋଦ୍ଭବ—ଅନ୍ୟରୂପ) (ପୁରୋଦ୍ଭବା—ସ୍ତ୍ରୀ)

**ପୁରୋଧା**—ସଂ. ବି—(ପୁରସ୍=ପ୍ରଥମେ+ଧା ଧାତୁ=ଧାରଣ କରିବା+
Purodhā ଅସ୍, ପୁରୋଧସ୍ ଶବ୍ଦ, ୧ମା. ୧ବ)—ପୁରୋହିତ
ପୁରୋଧ } ଅନ୍ୟରୂପ ଯଜ୍ଞାଦିରେ ମନ୍ତ୍ରାଦି ଉଚ୍ଚାରଣ କରିବା
ପୁରୋଧାମାସ୍ } ବ୍ରାହ୍ମଣ—A priest officiating at sacrifices.

**ପୁରୋବର୍ତ୍ତୀ**—ସଂ ବଣ. ପୁଂ—(ପୁରସ୍+ବୃତ୍ ଧାତୁ+ଇନ୍, ୧ମା. ୧ବ)-
Purobarttī ଅଗ୍ରବର୍ତ୍ତୀ, ସମ୍ମୁଖେ ସ୍ଥିତ—Placed before or in front
(ପୁରୋବର୍ତ୍ତିନୀ—ସ୍ତ୍ରୀ)

**ପୁରୋଭାଗ**—ସଂ ବି—(ପୁରସ୍+ଭାଗ)—ସାମନା ଅଂଶ—
Purobhāga Front part.

**ପୁରୋଭାଗୀ**—ସଂ ବଣ—(ପୁରସ୍+ଭଜ୍ ଧାତୁ=ସେବା କରିବା+ଇନ୍)-
Purobhāgī ୧ । କେବଳ ଦୋଷଦର୍ଶୀ, ଦୋଷଗ୍ରାହୀ—
(ପୁରୋଭାଗିନୀ—ସ୍ତ୍ରୀ) 1. Censorious; fault-finding.
୨ । ପ୍ରଥମେ ଅଂଶ ପାଇବାର ଯୋଗ୍ୟ—
2. Fit to get the first share

**ପୁରୋହିତ**—ସଂ. ବି—(ପୁରସ୍=ପ୍ରଥମେ+ଧା ଧାତୁ=ଧାରଣ କରିବା+
Purohita ତ)—୧ । ଋତ୍ୱିକ, ପୁରୋଧା; ଯେଉଁ ବ୍ୟକ୍ତି ଯଜମାନଙ୍କ ଯଜ୍ଞ କର୍ମ କରାଇବାକୁ ନିଯୁକ୍ତ ହୁଅନ୍ତି; ପ୍ରଧାନ ଯାଜକ—1. Priest; a priest who is apppointed to officiate at ceremonies.
୨ । ଗୃହସ୍ଥର ଗାର୍ହସ୍ଥ୍ୟ ଦୈନିକ ଅନୁଷ୍ଠାନରେ ନିଯୁକ୍ତ ବ୍ରାହ୍ମଣ—
2. Domestic chaplain
ଦେ. ବି—ବ୍ରାହ୍ମଣମାନଙ୍କ ଉପାଧି ବିଶେଷ—
A family title of Brāhmana.

**ପୁରୋହିତ ଦକ୍ଷିଣା**—ସଂ. ବି—(ମ. ପ. ଲୋ, ପୁରୋହିତ+ଦକ୍ଷିଣା)—
Purohita dakshiṇā ପୁରୋହିତ ବିଦାକି (ଦେଖ)—
Purohita bidāki (See)

**ପୁରୋହିତ(ତ)ପିନ୍ଧା**—ଦେ. ବି—(ସଂ. ପୁରୋହିତ ଓ ପରିଧାନ)—
Purohita(ti)pindhā ହୋମାଦି କାର୍ଯ୍ୟରେ ପୁରୋହିତଙ୍କୁ ଦିଆଯିବା ନୂତନ ବସ୍ତ୍ର—New cloth presented to the officiating priest at a ceremony.

**ପୁରୋହିତ ବିଦାକି**—ଦେ ବି—ହୋମାଦି କାର୍ଯ୍ୟରେ ପୁରୋହିତଙ୍କୁ ଦିଆ-
Purohita bidāki ଯିବା ପାରଶ୍ରମିକ ବା ଉପହାର—
Remuneration or gift made to the officiating priest.

**ପୁରୋହିତ**—ଦେ. ବି—(ସଂ ପୌରୋହିତ୍ୟ)—୧ । ପୌରହିତ୍ୟ—
Purohiti 1 The state of being the officiating priest.
ପୁରୋହିତି पिरोहिताइ
୨ । ପୁରୋହିତଙ୍କ କାର୍ଯ୍ୟ—
2. Priestly function; priesthood.

**ପୁରୋହିତିଆ**—ଦେ. ବିଣ—୧ । ପୁରୋହିତ ସମ୍ବନ୍ଧୀୟ—
Purohitiā 1 Priestly.
ପୁରୁତିଆ ୨ । ପୁରୋହିତଙ୍କୁ ଦିଆଯିବା ଯୋଗ୍ୟ—
पिरोहितिया 2 Fit to be given away to a priest.
[ଦ୍ର—ଆଜକାଲି ଦେଖାଯାଏ ଯେ ଉତ୍ସବ ଆଦିରେ ପୁରୋହିତଙ୍କୁ ଯାହା ଦିଆଯିବାର ବ୍ୟବସ୍ଥା ଥାଏ ଲୋକେ ନୀରସ ଜିନିଷ ଦିଅନ୍ତି, ଯଥା—ଲୁଗା ସ୍ଥଳରେ କରଥା, ସ୍ୱର୍ଣ୍ଣ ସ୍ଥଳରେ ଦୁଇ ଚାରି ଅଣା ମୂଲ୍ୟର ଝକଏ ସୁନା ; ଏଥିପାଇଁ ଲୋକେ କହନ୍ତି ଏହା ପୁରୋହିତିଆ ବା ପୁରୋହିତଙ୍କୁ ଦାନ ଦିଆଯିବା ଉପଯୁକ୍ତ ଜିନିଷ ହୋଇଅଛି ।]

**ପୁରୋହିତିଆଣୀ**—ଦେ. ବି—ପୁରୋହିତଙ୍କ ସ୍ତ୍ରୀ—
Purohitiāṇi The wife of a Purohita.
ପୁରୁତାନୀ पुरोहितानी

**ପୁର୍ଜା**—ବୈଦେ. ବି—ପରୁଜା (ଦେଖ)—
Purjā Purujā (See)

**ପୁର୍ଥି**—ପ୍ରାଦେ (ସମ୍ବଲପୁର) ଅ—ଦୃର୍ଥି (ଦେଖ)
Purthi Purthi (See)
ଗ୍ରା. ବି (ସଂ. ପୃଥ୍ୱୀ)—ପୃଥିବୀ—The earth.

**ପୁର୍ନି**—ପ୍ରାଦେ (ମେଦିନୀପୁର) ବି—ପୁନର୍ନବା (ଦେଖ)—
Purni Punarnabā (See)

**ପୁର୍ରା**—ପ୍ରାଦେ (ସମ୍ବଲପୁର) ବି—ମଇଁଷି ଛୁଆ—
Purrā A young buffalo.

**ପୁର୍ଷ**—ଗ୍ରା. ବି—(ପ୍ରାଚୀନ ପ୍ରୟୋଗ)—ପୁରୁଷ—
Pursha Purusha.
ଭବ୍ୟମାନଙ୍କେ ବୃତ୍ତିବଦ୍ଧ୍ୟ ସାର
ଅସ୍ପାପୁର୍ଷ ଏ ଦଶ ଅବତାର—ମ୍ରାଠୀ, ପରଜେ ଗୀତା ।

**ପୁଲ୍ଟିସ୍**—ବୈଦେ. ବି—(ଇଂ)—ବ୍ରଣ ବା ଘା ଆଦି ଉପରେ ଦିଆଯିବା
Pultis ପଟ୍ଟ ବା ପ୍ରଲେପ—Poultice.
(ପୁଲ୍ଟିସ୍—ଅନ୍ୟରୂପ) ପୁଲ୍‌ଟିସ पुलटीस

**ପୁଲ୍‌ଟିସ୍ ଚଢ଼ା(ଢ଼େ)ଇବା**—ଦେ. କ୍ରି—ବ୍ରଣ ଆଦି ଉପରେ ମେଥି ଆଦି
Pultis chardhā(rdhe)ibā ବାଟି ଉଷୁମ କରି ମୋଟ ପିଠାପରି
(ପୁଲ୍ଟିସ୍ ଦେବା—ଅନ୍ୟରୂପ) କରି ଲଦି ଦେବା—
ପୁଲ୍‌ଟିସ ଚଢ଼ାନ पुलटीस चढ़ाना To poultice.

**ପୁଲ(ଲ)** (ଧାତୁ)—ସଂ—୧ । ଉନ୍ନତ ହେବା—
Pula(la)(root) 1. To be high.
୨ । ବୃଦ୍ଧି ପାଇବା—2 To increase.
୩ । ଠିଆ ହେବା—3. Stand up.
୪ । ଏକତ୍ର ବା ସଂଗୃହୀତ ହେବା—4. To be gathered or collected together.
୫ । ଟାଣିବା—5 To draw or pull out.

**ପୁଲ**—ସଂ. ବି.—(ପୁଲ୍ ଧାତୁ+ଅ)—୧ । ପୁଲକ, ରୋମାଞ୍ଚ—
Pula 1. The hairs of the body standing on end; horripilation.
୨ । ଗଦା, ରାଶି; (ହି. ଶ.)—2 Mass.
ବିଣ.—୧ । ବିପୁଳ, ବୃହତ୍—
1. Vast; grand.
୨ । ବିସ୍ତୃତ—2. Extensive.
ପ୍ରାଦେ. (ବାଲେଶ୍ୱର ବି—ପୋଲ (ଦେଖ) Pola (See)

**ପୁଲକ**—ସଂ. ବି—(ପୁଲ୍ ଧାତୁ+ଭାବ. ଅକ)—୧ । ରୋମାଞ୍ଚ;
Pulaka ରୋମୋଦ୍ଗମ, ବିଶେଷ ଆନନ୍ଦ ହେତୁ ରୋମ ଟାଙ୍କୁରି ଉଠିବା—1. Horripilation; the hairs of one's body standing on the ends (through delight or sudden thrill of joy), the bristling of furs of the body symptomatic of extreme delight or thrill.
୨ । ବିଶେଷ ଆନନ୍ଦ, ହର୍ଷ—2 Thrill of joy
୩ । ମଣିବିଶେଷ—3. A kind of gem.
[ଦ୍ର—ଏ ମଣି ଭାରତର କେତେକ ସ୍ଥାନରେ ଖଣିରେ ମିଳେ । ହିମାଳୟ ପର୍ବତରୁ ମିଳିବା ମଣି ଉତ୍କୃଷ୍ଟ ବିବେଚିତ ହୁଏ । ଦାକ୍ଷିଣାତ୍ୟର ବିଶାଖାପଟ୍ଟଣା, ଗୋବର୍ଦ୍ଧନ, କ୍ରିଚନାପଲ୍ଲୀ ଓ ତଞ୍ଜାବାଲି ଜିଲ୍ଲାମାନଙ୍କରେ ଏହା ମିଳେ । ଏହା ଅନେକ ବର୍ଣ୍ଣର ମିଳେ, ଯଥା—ଧଳା, ସାବଜା, ହଳଦିଆ, ନାଲି, କଳା ଓ ଛିପଛିପକିଆ । ଏ ମଣିଦ୍ୱାରା ମାଳିକ ଓ ମାଳା କଟାଯାଇ ପାରେ—ହି. ଶ. ।]
୪ । ଜୀବଙ୍କ ଦେହରେ ଲାଗିବା ପୋକ—
4. Worms attacking the body of animals.
୫ । ଗଜାନ୍ନପିଣ୍ଡ, ହାତୀଙ୍କୁ ଖାଇବାକୁ ଦିଆଯିବା ଗୁଡ଼ରେ ବନ୍ଧା ହୋଇଥିବା ଶସ୍ୟାଦିର ପିଣ୍ଡୁଳା—5. A rolled ball of grain or sweets with which an elephant is fed.
୬ । ହରିତାଳ—6. Yellow orpiment
୭ । ପାନପାତ୍ର—7. Goblet; drinking cup; wine glass.
୮ । ଗନ୍ଧର୍ବବିଶେଷ—8. Name of a heavenly chorister or musician.
୯ । କବାଟ ପଟାରେ ମରାଯିବା ଉଚ୍ଚିବାଲା କଣ୍ଟା—
9. Iron knobs struck on a door leaf.
୧୦ । କଙ୍କୁଷ୍ଠ; ପାର୍ବତୀୟ ମୃତ୍ତିକାବିଶେଷ (ଧଳା ବା ହଳଦିଆ ରଙ୍ଗର)—10 Name of a mountainous soil of silvery or golden colour.
୧୧ । ରତ୍ନର ଦୋଷବିଶେଷ (ହି. ଶ.)—
11. A particular defect in gems.

୧୨ । ମଦ୍ୟପାତ୍ରବିଶେଷ (ହି. ଶ)—
12. A kind of wine cup.
୧୩ । ଏକପ୍ରକାର ଗେରୁ (ହି. ଶ)—
13. A kind of red chalk.
୧୪ । ଏକପ୍ରକାର ସୋରଷ (ହି. ଶ)—
14. A kind of mustard (Apte)
ଦେ. ବି—ସମୂହ—Multitude.

> ବାମ ଲୋଚନ ସ୍ଫୁରିତା ବାମ ମୋଚନ କଥାଚ।
> ପାଣ୍ଡୁ ପୁଲକ ପୁଲକ କପୋଲେ ବଣି । ଭଞ୍ଜ. ବୈଦେହୀଶବିଳାସ ।

ବିଣ—ପୁଲକିତ (ଦେଖ)—Pulakita (See)

> ପୁଲକ ହୋନ୍ତି ବୃଷ ପନ୍ତି
> ସ୍ବର୍ଗେ ଦେବତା କଲେ ସ୍ତୁତି । ଜଗନ୍ନାଥ. ଭଗବତ ।

**ପୁଲକ ଜାଲକ**—ସଂ. ବି. (୬ଷ୍ଠୀ ତତ୍; ପୁଲକ+ଜାଲକ)—
Pulaka jālaka ବହୁରୋମୋଦ୍ଗମ; ଦେହର ନାନାସ୍ଥାନରେ ପୁଲକୋଦ୍ଗମ—Horripilation throughout the body

> ପୁଲକଜାଳକ ଗୃହୁଁ ଯେ ଆଦ୍ୟା କହୁଲ ବେଗେ ।
> ଭଞ୍ଜ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।

**ପୁଲକା(କେ)ଇବା**—ଦେ. କ୍ରି—୧ । ପୁଲକିବା କ୍ରିୟାର ଣିଜନ୍ତରୂପ—
Pulakā(ke)ibā 1. The causative form of Pulakibā.
[ପୁଲୁକା(କେ)ଇବା—ଅନ୍ୟରୂପ] ୨ । ଅନ୍ୟର ଦେହରେ ପୁଲକ ବା ରୋମୋଦ୍ଗମ କରାଇବା—2. To cause horripilation.
୩ । ଅତ୍ୟନ୍ତ ପୁଲକିତ ବା ହର୍ଷୋତ୍ଫୁଲ୍ଲ କରିବା—
2. To cause a thrill of joy.
୪ । ପୁଲକିତ ହେବା—4. To have a thrill of joy; to have horripilation.

**ପୁଲକାଙ୍ଗ**—ସଂ. ବି. (ବହୁବ୍ରୀହି, ଯାହା ଅଙ୍ଗରେ ପୁଲକ ଜନ୍ମାଏ)—
Pulakāṅga ବରୁଣ ଦେବତାଙ୍କ ପାଶାସ୍ତ୍ର—
The noose of God Baruṇa.

**ପୁଲକିତ**—ସଂ. ବିଣ. (ପୁଲକ+ଇତ)—୧ । ରୋମାଞ୍ଚିତ; ପୁଲକଯୁକ୍ତ—
Pulakita 1. With hairs standing on end or bristling.
(ପୁଲକିତା—ସ୍ତ୍ରୀ)
(ପୁଲୁକିତ—ଅନ୍ୟରୂପ) ୨ । ଆହ୍ଲାଦିତ, ପରମାନନ୍ଦିତ—
2. Filled with joy; extremely delighted; feeling a thrill of joy; enraptured.
୩ । (ପୁଷ୍ପାଦି)—ପ୍ରସ୍ଫୁଟିତ—3. Full blown (flower).

**ପୁଲ(ଲୁ)କିବା**—ଦେ. କ୍ରି. (ସଂ. ପୁଲକ)—୧ । ଦେହ ରୋମାଞ୍ଚିତ ହେବା, ରୁମ ଟାଙ୍କୁର ଉଠିବା; ପୁଲକିତ ହେବା—
Pula(lu)kibā
ପୁଲକା, ପୁଲକାନ 1. To have one's hairs standing on ends.
ପୁଲକନ୍ତା (ପୁଲ[ଲୁ]କ ଉଠିବା—ଅନ୍ୟରୂପ)

> ପୁଲକିତ ପୁଲ ବଜାଳେ ଅନାଇ ପୁଲକ ଉଠଇ ହୃଥ—
> ଦୀନକୃଷ୍ଣ. ଜଗନ୍ମୋହନ ।

୨ । ହର୍ଷୋତ୍ଫୁଲ୍ଲ ହେବା; ଆନନ୍ଦିତ ହେବା; ଆହ୍ଲାଦିତ ହେବା—
2. To be thrilled with joy.
୩ । (ଫୁଲ) ପ୍ରସ୍ଫୁଟିତ ହେବା—3. To be blown (said of flowers); to become full blown

**ପୁଲକୀ**—ସଂ. ବିଣ. ପୁଂ. (ପୁଲକ+ଇନ୍, ୧ମା. ୧ବ.)—ପୁଲକିତ
Pulakī (ଦେଖ)—Pulakita (See)
(ପୁଲକିନୀ—ସ୍ତ୍ରୀ) [ଦ୍ର—କଦମ୍ବ ଫୁଲର କେଶରଗୁଡ଼ିକ ଠିଆ ହୋଇଥିବାରୁ ତାହାକୁ ପୁଲକୀ କୁହାଯାଏ । ]

**ପୁଲସ୍ତି(ସ୍ତ୍ୟ)**—ସଂ. ବି. (ପୁଲ=ମହତ୍+ସ୍ତ୍ୟୈ ଧାତୁ=ଏକତ୍ର କରିବା
Pulasti(stya) +ଅ)—୧ । ବ୍ରହ୍ମାଙ୍କ ମାନସପୁତ୍ର, ସପ୍ତ ମହର୍ଷିଙ୍କ ମଧ୍ୟରୁ ଜଣେ—1. Name of one of the seven sages.
[ଦ୍ର—ଏ ବିଶ୍ରବାଙ୍କ ପିତା ଓ କୁବେର ଏବଂ ରାବଣଙ୍କର ପିତାମହ ଥିଲେ ।
୨ । ସପ୍ତର୍ଷିମଣ୍ଡଳର ଗୋଟିଏ ନକ୍ଷତ୍ର—
2 One of the stars of the constellation, the great Bear; Phecda.
[ଦ୍ର—ନକ୍ଷତ୍ର ତଳେ ନୋଟ ଦେଖ ।]
୩ । ଶିବ (ହି ଶ)—3. Śiba.

**ପୁଲହ**—ସଂ. ବି. (ପୁଲ=ବିଶେଷ, ଅନେକ+ହା ଧାତୁ=ତ୍ୟାଗ
Pulaha କରିବା+ଅ)—୧ । ବ୍ରହ୍ମାଙ୍କ ମାନସପୁତ୍ର; ସପ୍ତର୍ଷିଙ୍କ ମଧ୍ୟରୁ ଜଣେ—1. Name of one of the seven sages.
୨ । ସପ୍ତର୍ଷିମଣ୍ଡଳର ଗୋଟିଏ ନକ୍ଷତ୍ର—
2. One of the stars of the constellation the great Bear; Merak
[ଦ୍ର—କ୍ରତୁ, ପୁଲହ, ପୁଲସ୍ତ୍ୟ, ଅତ୍ରି, ଅଙ୍ଗିରା, ବଶିଷ୍ଠ ଓ ମରୀଚି ଏହି ସାତଗୋଟି ଋଷି ତାରାରୂପେ କଳ୍ପିତ ହୋଇଅଛନ୍ତି ଓ ଏମାନଙ୍କ ତର୍ପଣ କରାଯାଏ । ନକ୍ଷତ୍ର ତଳେ ନୋଟ ଦେଖ । ]

**ପୁଲା**—ସଂ. ବି. (ପୁଲ୍ ଧାତୁ+ଆ)—୧ । ପୁଲାୟିତ (ଦେଖ)
Pulā 1. Pulāyita (See)
ପୁଳା ୨ । ଘଣ୍ଟିକା—2. The soft palate; uvula (Apte).
**ଥୋଡ଼ା** ଦେ. ବି. (ସଂ. ପୁଲ)—୧ । ମେଞ୍ଚା; ହାତର ମୁଠା ଥିବା ପାଟିରେ ଏକାଥରକେ ଯେତେ ପରିମିତ ବସ୍ତୁ ସମ୍ଭାଏ—
1. A quantity of some thing which can be grasped at a time by the mouth or hand.
୨ । ଥରେ କାମୁଡ଼ି କରି ଯେତେ ପରିମିତ ବସ୍ତୁ ନିଆଯାଇ ପାରେ—
2 The quantity which can be taken or bitten at one bite.
୩ । ଏକ କବଳ ପରିମାଣ—
3. One mouthful of a thing.
୪ । ଏକମୁଠା ପରିମାଣ—4. One handful.
୫ । ଏକକୁଣ୍ଢ ପରିମାଣ—5. One armful.
୬ । ଭାଡ଼ା; ଗୋଛ; ବିଡ଼ା—
6. Cluster, bundle; sheaf.
୭ । ମେଞ୍ଚା—7. Lump.

**ପୁଲା**—ପ୍ରାଦେ. (ସମ୍ବଲପୁର ଓ ଗଡ଼ଜାତ)—ବିଣ—ପୋଲା, ଫମ୍ପା—
ulā Hollow.

ପୁଳା(ଳେ)ଇବା—ଦେ. କ୍ରି—(ସଂ. ପୁଳ୍ ଧାତୁ)—୧ । ପୃଥକ୍ ପୃଥକ୍
Puḻā(ḻe)ibā ପୁଳାରେ ରଖିବା—1. To divide and put in separate bundles.

୨ । ହାତରେ ଏକ ଏକ ମୁଠା କରି ଛଣ୍ଡାଇବା—
2. To pluck or pull a thing by successive clasps of the palm.

ପୁଳାଏ—ଦେ. ବି. ଓ ବିଣ—୧ । ଏକପୁଳା ମାତ୍ର—
Puḻāe 1 One mouthful or handful only.
(ପୂଳେଏ—ଅନ୍ୟରୂପ)

୨ । ମେଣ୍ଟାଏ—2. A lump of.

୩ । ଏକ ଗୋଛା—3. A bunch of.

୪ । ଥୋଡ଼ାଏ, ପର୍ଯ୍ୟାପ୍ତ—
4. A big quantity or lump of.
(ଯଥା—ତା ହାତରେ ପୁଳାଏ ଧନ ପଡ଼ିଗଲାରୁ ସେ ଏବେ ବାଲିଙ୍ଗି ବାହାର କରୁଅଛି ।)

ପୁଳାକ—ସଂ. ବି. (ପୂଳ୍ ଧାତୁ + ଅକ)—୧ । ଶସ୍ୟଶୂନ୍ୟ ଧାନ; ଅଗାଡ଼ି-
Puḻāka 1. Shrivelled grain; empty grain; grainless paddy; chaff.

୨ । ଭାତର ପିଣ୍ଡୁଳା, ଭକ୍ତ ପୁଳକା—
2. A ball of boiled rice.

୩ । ସଂକ୍ଷେପ—3. Abridgement; abbreviation; compendium.

୪ । ଦ୍ରୁତତ୍ୱ; କ୍ଷିପ୍ରତା—4 Celerity; despatch.

୫ । ଚାଉଳଧୁଆ ପାଣି—5. Rice water.

୬ । ଅଳ୍ପତ୍ୱ—6. Smallness.

୭ । ପେଜ (ହି. ଶ.)—
7 Water sifted from boiled rice.

୮ । ଭାତ (ହି. ଶ.)—8 Boiled rice.

୯ । ମାଂସୋଦନ, ପଲାଉ (ହି. ଶ.)—
9. Rice boiled with meat.

(ପୂଳକ—ଅନ୍ୟରୂପ) ଦେ. ବି. ଓ ବିଣ—ପୁଳାଏ (ଦେଖ) Puḻāe (See).

ପୁଳାକୀ—ସଂ. ବି. (ପୂଳାକ + ଇନ୍; ୧ମା ୧ବ.)—ବୃକ୍ଷ; ଗଛ (ହି. ଶ)
Puḻāki A tree (Apte).

ପୁଳାଙ୍ଗ—ଦେ. ବି.—ପୁନ୍ନାଗ (ଦେଖ)
Puḻāṅga Punnāga (See)
(ପୋଲାଙ୍ଗ—ଅନ୍ୟରୂପ)

ପୁଳାଙ୍ଗ ଗଡ଼ି ଖେଳ—ଦେ. ବି.—ବାଳକମାନେ ପୁନ୍ନାଙ୍ଗ ଫଳରେ
Puḻāṅga gaṛi kheḻa ଖେଳିବା ଏକ ପ୍ରକାର ଖେଳ—
A kind of out door game played by the children with "Punnāga" or 'puḻāṅga fruits.

[ଦ୍ର—ପୁଳାଙ୍ଗ ଫଳ ତିନ ଗୋଟି ତ୍ରିକୋଣାକାରରେ ରଖି ତା ଉପରେ ଗୋଟିଏ ପୁଳାଙ୍ଗ ରଖନ୍ତି । ଗୋଟିଏ ଚାରିକୋଣିଆ କ୍ଷେତ୍ରର ଚାରିକୋଣରେ ଏହିପରି ଚାରି ଗଦା ପୁଳାଙ୍ଗ ରଖନ୍ତି । ଦୂରରେ ଠିଆ ହୋଇ ଖେଳାଳୀମାନେ ଜଣ ଜଣ ହୋଇ ତା ଉପରକୁ ଗୋଟିଏ ପୁଳାଙ୍ଗ ଲକ୍ଷ୍ୟ କରି ପକାନ୍ତି । ଯେଉଁ ଖେଳାଳୀ ସେ ଗଦାକୁ ଲାକ୍ଷରେ ଭାଙ୍ଗେ ସେ ସେହି ଭଙ୍ଗା ଗଦାର ପୁଳାଙ୍ଗ-ଗୁଡ଼ିକ ଜିତି ନିଏ । ଯେଉଁ ପୁଳାଙ୍ଗଟାକୁ ଧରି ଫୋପାଡ଼ି ଲାକ୍ଷ କରନ୍ତି ତାକୁ ବାଟ୍ଟ କୁହା ଯାଏ ।]

ପୁଳା ପୁଳା—ଦେ. ଅ—୧ । ଉପର୍ଯ୍ୟୁପରି ଥରକୁଥର କାମୁଡ଼ିବା ପ୍ରକାରେ—
Puḻā puḻā 1. By successive bites.
ପୁଳାକୁପୁଳା } ଅନ୍ୟରୂପ
ପୁଳାପୁଳା କରି }
୨ । ଏକାଥରକେ ହାତରେ ଯେତେ ନେଇ ହେବ ଏହିପରି ବଣ୍ଟିବାର—
2. By handfuls.

୩ । ଗୋଛା ଗୋଛା କରି—3 By sheaves.

୪ । କଳ କଳ କରି—4. By mouthfuls.

୫ । ଗଦା ଗଦା କରି—5 In lumps.

ପୁଳା ପୁଳା କରିବା—ଦେ. କ୍ରି—ଉପର୍ଯ୍ୟୁପରି କାମୁଡ଼ି କରି ବା ଖୁଣ୍ଟି
Puḻā puḻā karibā କରି କେଚା କେଚା କରିବା—
To tear into shreds by repeated bites or scratching with finger nails.

ପୁଳାୟିତ—ସଂ. ବି—(ପୁଳ୍ ଧାତୁ. ଅ + ତ)—୧ । ଘୋଡ଼ାର ମନ୍ଦ
Puḻāyita ଦଉଡ଼, ଦୁଲ୍କୀ—1 Canter or trot of a horse; a horse's gallop.

୨ । ଘାସ ବା ଶସ୍ୟର ଗୋଛା—
2. A sheaf of corn or grass.

ପୁଳି—ଦେ. ବି—୧ । ଛୋଟ ପୁଳା ବା ମେଣ୍ଟା—
Puḻi 1. A small lump or sheaf.

୨ । (ସଂ. ପୂଳିକା) ପୂଳି (ଦେଖ)—
2. Pūḻi (See)

ପୁଲି—ବୈଦେ. ବି (ଇଂ)—ଶଗଡ଼, ଭାରି ଜିନଷ ଦଉଡ଼ିରେ ଉଠାଇବା
Puli ପାଇଁ ଲଗାଯିବା ଚକ—Pulley.

ପୁଲିକେଶି—ସଂ. ବି. (ନାମ)—ଦକ୍ଷିଣଭାରତରେ ରାଜତ୍ୱ କରୁଥିବା
Pulikesi ଚାଲୁକ୍ୟ ବଂଶୀୟ ଦୁଇ ଜଣ ରାଜା—Name of two kings of the Chālukya dynasty ruling the Southern India.

[ଦ୍ର—ପ୍ରଥମ ପୁଲିକେଶି ଖ୍ରୀଷ୍ଟ ୬ଷ୍ଠ ଶତାବ୍ଦିରେ ପଲ୍ଲବମାନଙ୍କ ରାଜଧାନୀ ବାତାପିପୁରୀକୁ ଜିତି ଦକ୍ଷିଣରେ ଚାଲୁକ୍ୟ ରାଜ୍ୟ ସ୍ଥାପନ କରିଥିଲେ । ଦ୍ୱିତୀୟ ପୁଲିକେଶି ଖ୍ରୀଷ୍ଟ ୬୧୦ ରେ ସମଗ୍ର ଦାକ୍ଷିଣାତ୍ୟକୁ ଓ ମହାରାଷ୍ଟ୍ର ଦେଶକୁ ଆପଣା ରାଜ୍ୟଭୁକ୍ତ କରିଥିଲେ । ବାଣଭଟ୍ଟ ଏହାଙ୍କ ରାଜସଭାର ପଣ୍ଡିତ ଥିଲେ । ଏହାଙ୍କ ରାଜତ୍ୱ କାଳରେ ଚୀନପରିବ୍ରାଜକ ଭାରତକୁ ଆସିଥିଲେ । ରାଜା ହର୍ଷବର୍ଦ୍ଧନ ସମଗ୍ର ଉତ୍ତରଭାରତର ଅଧିକାର କରି ଦକ୍ଷିଣ ଭାରତକୁ ଆକ୍ରମଣ କରିବାକୁ ଯାଇ ଏହାଙ୍କ ଦ୍ୱାରା ପରାସ୍ତ ହୋଇଥିଲେ—ହି. ଶ]

ପୁଲିଙ୍ଗ—ଗ୍ରା. ବି—(ସଂ. ପୁଂଲିଙ୍ଗର ଅଶୁଦ୍ଧ ଉଚ୍ଚାରଣ)—ପୁଂଲିଙ୍ଗ
Puliṅga ପୁଲିଙ୍ଗ (ଦେଖ)—Puṁliṅga (See)

**ପୁଲ(ଲି)ନ**—ସଂ. ବି—(ପୁଲ୍ ଧାତୁ+କର୍ତ୍ତୃ. ଇନ୍)—୧ । ନଦୀ ଓ
Pulı(lı)na ଜଳାଶୟ ଆଦିର ଅନୁଚ୍ଚ ତଟ—1. The low shore of a river or lake; the beech; the bank

୨ । ନଦୀ ଗର୍ଭସ୍ଥ କ୍ଷୁଦ୍ର ଦ୍ୱୀପ—
2. Islet in the bed of a river.

୩ । ନଈ ମଝିରେ ପଡ଼ିବା ଚିପ, ବାଲି କୁଦ, ପଠା, ଚଡ଼ା—
3 A sand-bank; alluvial formation in a river, a raised plot in the bed of a river.

୪ । ନଦୀ ତଟସ୍ଥ ବାଲି—4. The sand bank formed on the bank of a river.

ଯେକ ଉରୁଯୁଗୁ ଯାଇବ ସ୍ୱଚ୍ଛ ଦେଖାଇ ଦେଇ ପୁଲିନ ସେ—
ଉପେନ୍ଦ୍ର. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।

**ପୁଲି(ଲି)ନ୍ଦ**—ସଂ. ବି—( ପୁଲ୍ ଧାତୁ+ଇନ୍ଦ )—୧ । ମ୍ଲେଚ୍ଛ ଜାତି
Pulı(lı)nda ବିଶେଷ; ଚୁଆଡ଼—1. Barbarian, a caste
(ପୁଳିନ୍ଦକ—ଅନ୍ୟରୂପ) of aborigines or wild tribes.

[ ଦ୍ର—ରାମାୟଣ, ମହାଭାରତ, ପୁରାଣ ଓ କାବ୍ୟରେ ଏ ଜାତିର ଉଲ୍ଲେଖ ଅଛି । ବିଶ୍ୱାମିତ୍ରଙ୍କ ଅଭିଶାପରେ ତାଙ୍କର କେତେକ ପୁତ୍ରଙ୍କଠାରୁ ପୁଳିନ୍ଦ, ଶବର ଆଦି ବର୍ବର ଜାତି ଉତ୍ପନ୍ନ ହୋଇଥିଲେ । କେହି କେହି ଏ ପ୍ରାଚୀନ ଜାତି ସିନ୍ଧୁ ପ୍ରଦେଶ ନିକଟରେ, କେହି କେହି ଗୁଜରାଟ ଓ ରାଜପୁତାନା ମଧ୍ୟରେ ବାସ କରୁଥିବାର କହନ୍ତି—ହି. ଶ ।]

୨ । କନ୍ଧ ଜାତି—
2. The Khonds of central India.

ଶୁଣା ଲାଗି ହୁଡ ହୋଇ ପୁଳିନ୍ଦ କୁଟାରେ—
ରଘୁନାଥ—ମହାଯାତ୍ରା ।

୩ । ଅବୋଧ୍ୟ ଭାଷା ବ୍ୟବହାର କରିବା ବଣୁଆ ଜାତି—
3. A wild tribe using a jargon dialect

୪ । କେଳା—4. The fowler.

୫ । ପୁଳିନ୍ଦ ଜାତିଙ୍କ ଦେଶ—
5. The country inhabited by aborigines.

୬ । କନ୍ଧମାଳ—6. The Khondmahals of Orissa.

**ପୁଲିନ୍ଦା**—ଦେ. ବି. ( ସଂ. ପୁଲ=ଗଦା; ସ୍ତ୍ରୀ )—୧ । ବନ୍ଧା ହୋଇ
Pulinda ମୁଦା ହୋଇଥିବା କାଗଜର ତାଡ଼ା—1. A packet
ପୁଲିନ୍ଦା of papers bound into a bundle; bundle;
ପୁଲିନ୍ଦା parcel.

ତାରେଟା ଏବଂ ମନ୍ତ୍ରୀଙ୍କ ଯେମନ ସହିତ ରିପୋର୍ଟ ପୁଲିନ୍ଦା
ଆଜାକୁ ପଠାଗଲା—ଫକୀରମୋହନ. ଛମାଣ ଅଠଗୁଣ୍ଠ ।

୨ । ଲଫାପା; କାଗଜର ଖୋଳ—2. An envelope.

୩ । ବୋଝକ; ଗଣ୍ଠିଲି—3. Bale; package.

ସଂ. ବି—ତାପ୍ତୀ ନଦୀର ଉପନଦୀବିଶେଷ (ବୃ. ଷ.)—
Name of tributary of the Taptı river.

**ପୁଲିଶ**—ସଂ. ବି. (ନାମ)—ପୌଲିଶ ସିଦ୍ଧାନ୍ତ ନାମକ ଜ୍ୟୋତିଷ ଗ୍ରନ୍ଥକର୍ତ୍ତା
Pulisa ଋଷି—Name of a sage who was the author of an astronomical work.

[ ଦ୍ର—ବରାହମିହିରଙ୍କ ପଞ୍ଚ ସିଦ୍ଧାନ୍ତରୁ ଏକତମ । କେହି କେହି ପୁଲିଶଙ୍କୁ ୟୁନାନୀ (ଯବନ), କେହି କେହି ମିଶ୍ର ଦେଶବାସୀ ବୋଲି ଅନୁମାନ କରନ୍ତି—ହି ଶ । ]

ବୈଦେ. ବି. (ଇଂ)—ପୁଲିସ (ଦେଖ)—Pulisa (See)

**ପୁଲିସ୍**—ବୈଦେ. ବି. (ଇଂ)—ପୋଲିସ୍, ସାଧାରଣ ସମୟରେ ରାଜ୍ୟରେ
Pulis ଶାନ୍ତିରକ୍ଷା, ଅପରାଧ ନିବାରଣ ଓ ଅପରାଧୀଙ୍କୁ ଧରିବା ନିମନ୍ତେ
ପୁଲିସ ନିଯୁକ୍ତ ରାଜକର୍ମଚାରୀ ଓ ସେମାନଙ୍କ ବିଭାଗ—
**পুলিস** Police (force, department and official.)
(ପୁଲିସି—ଅନ୍ୟରୂପ) ଆଜ ବୋଲେ ମୁହିଁ ଅଟଇ ପୁଲିସ—ରାଧାନାଥ. ଦରବାର ।

[ ଦ୍ର—ଯେଉଁ ଯେଉଁ ଇଲାକାରେ ଯେଉଁ ଯେଉଁ ପୁଲିସ୍ ନିଯୁକ୍ତ ହୁଅନ୍ତି ସେହି ସେହି ଇଲାକା ଅନୁସାରେ ତାଙ୍କର ନାମ ହୁଏ, ଯଥା—ଷ୍ଟେଟ ବା ଗଡ଼ଜାତ ପୁଲିସ୍, ମନ୍ଦିର ପୁଲିସ୍, ଅବକାରୀ ପୁଲିସ୍, ନିମକୀ ପୁଲିସ୍, ରେଲୱେ ପୁଲିସ, ମିଲିଟେରି ପୁଲିସ୍, ଟାଉନ ପୁଲିସ ।

ବିଶେଷ ବିଶେଷ କାର୍ଯ୍ୟ ଉପଲକ୍ଷରେ ନିଯୁକ୍ତ ପୁଲିସ୍‌ଙ୍କର ଭିନ୍ନ ଭିନ୍ନ ନାମ ଅଛି । ଯଥା—ସାଧାରଣ ପୁଲିସ୍, ମିଲିଟାରୀ ପୁଲିସ ବା ଆର୍ମ୍‌ଡ ପୁଲିସ୍, ସହର ପୁଲିସ୍, ଗ୍ରାମ୍ୟ ପୁଲିସ୍, ରାପର ପୁଲିସ୍, ରିଜର୍ଭ ପୁଲିସ୍, କୋର୍ଟ ପୁଲିସ୍, ପିଭ୍ନାଟିଭ୍ ପୁଲିସ୍, ଅତିରିକ୍ତ ବା ବାହ୍ୟ ପୁଲିସ୍, ସ୍ପେଶାଲ ପୁଲିସ୍ । ]

**ପୁଲିସ୍ ଅଫିସ୍**—ବୈଦେ. ବି. ( ଇଂ )—ପୁଲିସ ବିଭାଗର ଅଫିସ—
Pulıs aphis Police office.
পুলিস অফিস **পুলিস আফিস**

**ପୁଲିସ୍ ଅଫିସର୍**—ବୈଦେ. ବି. (ଇଂ)—ପୁଲିସ କନଷ୍ଟେବଲଙ୍କ ଅପେକ୍ଷା
Pulis aphisar ଉଚ୍ଚତର ପୁଲିସ୍ କର୍ମଚାରୀ—Police officer.
পুলিস অফিসব **पुलिस अफसर**

**ପୁଲିସ୍ ଆଉଟ୍ ପୋଷ୍ଟ**—ବୈଦେ. ବି (ଇଂ)—ପୁଲିସ୍ ଫାଣ୍ଡି (ଦେଖ)
Pulis āut posht Pulis phāṇḍi ( See)

**ପୁଲିସ୍ ଇଜାହାର୍**—ବୈଦେ. ବି. ( ଇଂ. ପୁଲିସ୍+ଫା. ଏଜହାର୍ )—
Pulis ıjāhār ଅପରାଧ ସମ୍ପର୍କେ ପୁଲିସ୍‌କୁ ଦିଆଯିବା ସମ୍ବାଦ—
First information given to the police; formal information given to the police of the commission of an offence.

ପୁଲିସ ଇଜ୍ହାର
ପୁଲିସ ଏତଲା
ପୁଲିସ ଏଜାହାର
ପୁଲିସ ଏତଲା(ଲେ)ଇ
} ଅନ୍ୟରୂପ

**ପୁଲିସ୍ ଇନ୍‌ସ୍‌ପେକ୍ଟର୍**—ବୈଦେ. ବି (ଇଂ)—ପୁଲିସ ସବଇନ୍‌ସ୍‌ପେକ୍ଟରଙ୍କ
Pulıs inspekta r ଉପରସ୍ଥ କର୍ମଚାରୀ—Police Inspector.
পুলিস ইনিস পেকটর **पुलिस इंसपेक्टर**
( ପୁଲିସ୍ ଇନସି ପେକ୍ଟର, ପୁଲିସ ଦାରୁ[ ଗୋ ]ଗା—ଅନ୍ୟରୂପ )

**ପୁଲିସ୍ ଇନ୍‌ସ୍‌ପେକ୍ଟର୍ ଜେନେରଲ୍**—ବୈଦେ. ବି.(ଇଂ)—ପୁଲିସ୍ ବିଭାଗର
Pulis inspektar jenaral ପ୍ରାଦେଶିକ ସର୍ବୋଚ୍ଚ ହାକିମ—
পুলিস ইনিপেকর জেনবল Inspector general of
**पुलिस इंसपेक्टर जनरल** police in a province.

[ ଦ୍ର—ପ୍ରାଦେଶିକ ସର୍ବୋଚ୍ଚ ପୁଲିସ ହାକିମ ଇନ୍‌ସ୍‌ପେକ୍ଟର୍ ଜେନେରଲ । ତାଙ୍କ ତଳେ ବିଭାଗୀୟ ହାକିମ, ଡେପୁଟୀ ଇନ୍‌ସ-

ପେକ୍ଟର ଜେନରଲ । ତାଙ୍କ ତଳେ ଜିଲ୍ଲା ହାକମ, ସୁପରଣ୍ଟେଣ୍ଡେଣ୍ଟ୍ ବା ପୁଲିସ ସାହେବ । ତାଙ୍କ ତଳେ ହାକମ, ଡେପୁଟୀ ସୁପରିଣ୍ଟେଣ୍ଡେଣ୍ଟ୍ । ତାଙ୍କ ତଳେ ଇନ୍‌ସପେକ୍ଟର ବା ଦାରୋଗା । ତାଙ୍କ ତଳେ ସବଇନ୍‌ସପେକ୍ଟର୍ ବା ମୁନସି । ତାଙ୍କ ତଳେ ହେଡ୍ କନେଷ୍ଟବଲ୍ ବା ଜମାଦର । ତାଙ୍କ ତଳେ ରାଇଟର ବା ଲିଟରେଟ କନେଷ୍ଟବଲ । ସମସ୍ତଙ୍କ ତଳେ କନେଷ୍ଟବଲ୍ ବା ସିପାହି । ]

**ପୁଲିସ୍ କନଷ୍ଟବଲ**—ବୈଦେ ବି. (ଇଂ,—ପୁଲିସ ବିଭାଗର ସିଥିଆ ବା ସିପାହି—Police constable; policeman.
Pulis kanashtabala
ପୁଲିସ କନେଷ୍ଟବଲ **ପଲିସ କାଂସ୍ଟେବଲ**
(ପୁଲିସ ସିପାହି, ପୁଲିସ୍‌ମାନ୍—ଅନ୍ୟରୂପ)

**ପୁଲିସ୍ କମିସନର**—ବୈଦେ. ବି. (ଇଂ)— ବଡ଼ ବଡ଼ ସହରର ଉଚ୍ଚତମ ପୁଲିସ କର୍ମଚାରୀ—The commissioner of police in presidency towns.
Pulis kamisanara
ପୁଲିସ କମିସନର
**ପଲିସ କମିଶନର**
[ଦ୍ର— କଲିକତା, ବମ୍ବେ, ମାନ୍ଦ୍ରାଜ ଓ ରେଙ୍ଗୁନ ଆଦି ସହରରେ ପୋଲିସ କମିସନର ଥାଆନ୍ତି । ]

**ପୁଲିସ୍ କେଶ୍**—ବୈଦେ ବି. (ଇଂ)— ୧ । ଯେଉଁ ମକଦ୍ଦମାକୁ ପୁଲିସ ଚାଲେ ବିଚାର ନିମନ୍ତେ ହାକମଙ୍କ ନିକଟକୁ ପଠାଇ ଥାଆନ୍ତି—1. Police case
Pulis kes
ପୁଲିସ କେସ **ପଲିସକେଶ**
୨ । ଯେଉଁ ମକଦ୍ଦମାରେ ମାଜିଷ୍ଟ୍ରେଟଙ୍କ ହୁକୁମ ନ ପାଇ କରି ମଧ୍ୟ ପୁଲିସ ଆସାମୀଙ୍କୁ ଗିରଫଦାର କରି ବିଚାର ନିମନ୍ତେ ପଠାଇ ପାରନ୍ତି—2 Warrant case; case cognisable by the police

**ପୁଲିସ୍‌କୋର୍ଟ**— ବୈଦେ. ବି. ( ଇଂ ପୁଲିସ୍ କୋର୍ଟ )—ବଡ଼ ବଡ଼ ସହର ( କଲିକତା, ମାନ୍ଦ୍ରାଜ, ବମ୍ବେ ପ୍ରଭୃତି ) ବା ପ୍ରାଦେଶିକ ରାଜଧାନୀରେ ପୁଲିସ ଚାଲାଣି ଆସାମୀମାନଙ୍କ ବିଚାରାର୍ଥ ପ୍ରତିଷ୍ଠିତ ଅଦାଲତ—Police court.
Pulis kot
ପୁଲିସକୋର୍ଟ
**ପଲିସକୋରଟ**
( ପୁଲିସକୋର୍ଟ—ଅନ୍ୟରୂପ )

**ପୁଲିସ୍ ଗାର୍ଡ୍**—ବୈଦେ. ବି. (ଇଂ)—ସରକାରୀ ତହବିଲ ବା ଅପରାଧୀ ବା କଏଦୀମାନଙ୍କୁ ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ନେବା ଆଣିବା ସମୟରେ ତାଙ୍କୁ ରକ୍ଷା କରିବାକୁ ନିଯୁକ୍ତ ପୁଲିସ ଦଳ—Police guard; a posse of constables.
Pulis gād
ପୁଲିସ ଗାର୍ଡ୍ } ଅନ୍ୟରୂପ
ପୁଲିସ ଗାର୍ଡ
ପୁଲିସ ଗାର୍ଡ
**ପୁଲିସ ଗାର୍ଟ**

**ପୁଲିସ୍ ଗୁ(ଗୋ)ଇନ୍ଦା**— ବୈଦେ. ବି. (ଇଂ. ପୁଲିସ୍+ଫା. ଗୋଇନ୍ଦା)—ଅପରାଧ ସମ୍ବନ୍ଧେ ପୁଲିସଙ୍କୁ ସାହାଯ୍ୟ କରିବା ନିମନ୍ତେ ଗୁପ୍ତଚର—Police spy; Police informer.
Pulis gu(go)indā
ପୁଲିସ ଗୁ(ଗୋ)ଏନ୍ଦା—ଅନ୍ୟରୂପ)
ପୁଲିସ ଗୋୟେନ୍ଦା
**ପୁଲିସ ଗୋଇନ୍ଦା**

**ପୁଲିସ୍ ଗେଜେଟ**—ବୈଦେ. ବି. ( ଇଂ )—ପୁଲିସ ବିଭାଗର ସମ୍ବାଦ ସଙ୍କଳିତ ହୋଇଥିବା ସରକାରୀ ଖବର କାଗଜ—Police Gazettee.
Pulis gejet
ପୁଲିସଗେଜେଟ
**ପୁଲିସ ଗଜେଟ**

**ପୁଲିସ୍ ଚାଲାଣ**—ଦେ. ବି. (ଇଂ. ପୁଲିସ୍+ସଂ ଚାଲନ)—ପୁଲିସ ଦ୍ୱାରା ଅସାମୀ ଗିରଫଦାର ହୋଇ ମାଜିଷ୍ଟ୍ରେଟଙ୍କ କୋର୍ଟକୁ ପଠା ଯାଇଥିବା (case or accused) Chalanned or sent up by the police
Pulisa chālāna
(ପୁଲିସ ଚାଲାଣି— ଅନ୍ୟରୂପ)
ପୁଲିସ ଚାଲାଣ
**ପୁଲିସ ଚାଲାଣ**

**ପୁଲିସ୍ ଜମାଦାର**—ବୈଦେ. ବି. ( ଇଂ. ଫା )—ପୁଲିସ କନଷ୍ଟବଲମାନଙ୍କ ଉପରସ୍ଥ କର୍ମଚାରୀ—Police Head Constable.
Pulis jamādāra
ପୁଲିସ ଜମାଦାର
**ପୁଲିସ ଜମାଦାର**

**ପୁଲିସ୍ ଟ୍ରେନିଙ୍ଗ**—ବୈଦେ ବି ( ଇଂ )—ପୁଲିସ ଚାକିରିରେ ନିଯୁକ୍ତ ହେବା ନିମନ୍ତେ ମନୋନୀତ ବ୍ୟକ୍ତିମାନଙ୍କୁ ତାଲିମ କରାଯିବା— Police training.
Pulis trening
ପୁଲିସ ଟ୍ରେନିଙ୍ଗ
**ପୁଲିସ ଟ୍ରେନିଙ୍ଗ**

**ପୁଲିସ୍ ଠେଙ୍ଗିଣୀ**—ଦେ. ବି—ସାଧାରଣ ସମୟରେ ପୁଲିସ କନଷ୍ଟବଲ ବ୍ୟବହାର କରୁଥିବା ଏକ ହାତ ଦେଢହାତ ଲମ୍ବର ଛୋଟ ଠେଙ୍ଗା— Police baton.
Pulis thengini
ପୁଲିସେର ଲାଠୀ
**ପଲିସ ଲାଠୀ**

**ପୁଲିସ୍ ଡାଇରି**—ବୈଦେ. ବି (ଇଂ)—ପୁଲିସ କର୍ମଚାରୀମାନେ ଥାନାରେ ଜମା ମକଦ୍ଦମା ତଦାରଖ ସମୟରେ ପ୍ରତିଦିନ କରାଯିବା କର୍ମମାନ ଲିପିବଦ୍ଧ କରୁଥିବା ପତ୍ରିକା— Police diary.
Pulis dāiri
ପୁଲିସ ଡାଇରି
**ପୁଲିସ ଡାଇରି**

**ପୁଲିସ୍ ତଦନ୍ତ**—ଦେ. ବି. (ଇଂ. ପୁଲିସ+ସଂ. ତଦନ୍ତ)—କୌଣସି ଅପରାଧ ବିଷୟ ପୁଲିସ କର୍ମଚାରୀମାନଙ୍କ ଦ୍ୱାରା ଅନୁସନ୍ଧାନ—Investigation by the Police.
Pulis tadanta
(ପୁଲିସ ତଦାରଖ—ଅନ୍ୟରୂପ)
ପୁଲିସ ତଦନ୍ତ
**ପୁଲିସ ତଦାରଖ**

**ପୁଲିସ ତଲାସ(ସି)**—ବୈଦେ. ବି. (ଇଂରାଜ ପୁଲିସ+ତୁର୍କୀ ତଲ୍ଲାସ)—ପୁଲିସ କର୍ମଚାରୀଙ୍କଦ୍ୱାରା ଅପରାଧଘଟିତ ବସ୍ତୁ ବା ବ୍ୟକ୍ତି ପାଇଁ କୌଣସି ଗୃହ ଖୋଜାଯିବା— House-search by the Police.
Pulis talāsa(si)
ପୁଲିସ ତାଲାସ
**ପୁଲିସ ତଲାସ**

**ପୁଲିସ୍ ଥାନା**—ଦେ. ବି— ପୁଲିସ ସବଇନ୍‌ସପେକ୍ଟର ଓ ତାଙ୍କ ଅଧୀନରେ କେତେଗୁଡ଼ିଏ ଜମାଦାର ଓ କନଷ୍ଟବଲ ଅବସ୍ଥାନ କରୁଥିବା ଗୃହ— Police Station.
Pulis thānā
(ପୁଲିସ ଷ୍ଟେସନ—ଅନ୍ୟରୂପ)
ପୁଲିସ ଥାନା
**ପୁଲିସ ଥାନା ,କତବାଲି**

**ପୁଲିସ୍ ଦରସ୍**—ବୈଦେ. ବି. (ଇଂ. ପୁଲିସ+ଡ୍ରେସ)—ପୁଲିସ କର୍ମଚାରୀଙ୍କ ପାଇଁ ନିର୍ଦ୍ଧାରିତ ପରିଧେୟ ବସ୍ତ୍ର— Police dress.
Pulis daras
ପୁଲିସ ଦରେସ } ଅନ୍ୟରୂପ
ପୁଲିସ ପୋଷାକ
ପୁଲିସ ଦରେସ **ପୁଲିସ ଡ୍ରେସ**
[ ଦ୍ର—ଆମ ଦେଶରେ କଳା କୁର୍ତ୍ତି, ନାଲି ପଗଡ଼ି ରୋଲବାନ୍ଧ ଓ ଥଳିଆ ପୁଲିସମାନଙ୍କର ପୋଷାକ ଅଟେ । ]

**ପୁଲିସ୍ ନଜରବନ୍ଦ**—ବୈଦେ. ବି. ( ଇ+ଫା )—ଅପରାଧୀ ବ୍ୟକ୍ତି ଓ ସମାଜ ବିଦ୍ୱେଷୀ
Pulis najarabandi

ପୁଲିସ ନଜର | ଅନ୍ୟରୂପ ଆସାମୀର ଗତିବିଧି ପ୍ରତି ପୁଲିସର
ପୁଲିସ ନଜର ବନ୍ଦ | ତୀକ୍ଷ୍ଣ ଦୃଷ୍ଟି ରହିବାର ବିଧାନ—
পুলিস নজরবন্দ Police surveillance.
पुलिस नज़रबन्द

ବିଣ—ପୁଲିସର ତୀକ୍ଷ୍ଣ ଦୃଷ୍ଟିରେ ରହିଥିବା—
Kept under Police surveillance

**ପୁଲିସ୍ ପରେଟ୍(ଡ୍)**— ବୈଦେ. ବି. (ଇଂ ପୁଲିସ୍+ପାରେଡ୍)—
Pulis paret(d) ପୁଲିସ କନଷ୍ଟବଲମାନେ ଯୁଦ୍ଧବିଦ୍ୟା ଶିକ୍ଷାର୍ଥ
পুলিস পারেড ক୍ରୀଡ଼ା—Police parade.
पुलिस परेड

**ପୁଲିସ୍ ପହରା**—ଦେ. ବି. (ଇଂ ପୁଲିସ+ଫ. ପ୍ରହରୀ)—
Pulis paharā ପୁଲିସଙ୍କ ଦ୍ୱାରା କୌଣସି ସ୍ଥାନ ବା ବ୍ୟକ୍ତିକୁ
পুলিস পাহারা ଜଗାଇବା—Guarding of a place or
पुलिस पहरा person by Police

**ପୁଲିସ ପହରା ବାଲା**—ବୈଦେ. ବି—ପୁଲିସ ମନ୍ତ୍ରୀ ( ଦେଖ )
Pulisa pahara bala Pulisa mantri ( See )

**ପୁଲିସ୍ ଫଉଜ(ଦ)**—ବୈଦେ.ବି. (ଫା. ଇଂ. ପୁଲିସ+ଫା. ଫୌଜ)—
Pulis phauja(da) ଏକ ସ୍ଥାନରେ ରକ୍ଷିତ ପୁଲିସ କର୍ମଚାରୀଙ୍କ
(ପୁଲିସ ପଲଟଣ—ଅନ୍ୟରୂପ) ଦଳ—The Police force; a
পুলিস ফৌজ plattoon of Police.
पुलिस फउज

**ପୁଲିସ୍ ଫାଣ୍ଡି**—ଦେ. ବି. (ଇଂ. ପୁଲିସ+ଫା. ଫାଣ୍ଡି)—
Pulis phāndi ଅଳ୍ପ ସଂଖ୍ୟକ ପୁଲିସ ଥିବା କାର୍ଯ୍ୟାଳୟ—
(ପୁଲିସ ଚଉକୀ—ଅନ୍ୟରୂପ) Police out post
পুলিস আউট পোষ্ট पुलिस चौकी

**ପୁଲିସ୍ ବାଲା**—ବୈଦେ. ବି. (ଫା. ଇଂ. ପୁଲିସ+ଫା. ପ୍ରତ୍ୟୟ ବାଲା)—
Pulis bālā ପୁଲିସ କର୍ମଚାରୀ—Police officer
পুলিস ওয়ালা पुलिसवाले

**ପୁଲିସ୍ ମଦତ(ଦ୍)**—ବୈଦେ. ବି. ( ଇଂ. ପୁଲିସ+ଫା. ମଦଦ୍ )—
Pulis madat(d) କୌଣସି କାର୍ଯ୍ୟ ବା ଶାନ୍ତି ରକ୍ଷା ନିମନ୍ତେ
ପୁଲିସ ତଇନାତ | ଅନ୍ୟରୂପ ହାକିମଙ୍କ ଆଦେଶରେ ପୁଲିସ ପଠାଯିବା-
ପୁଲିସ ମୁତଏନ | Deputation of Police to a
পুলিস মদদ certain place to prevent breach of
पुलिस मदद the peace.

**ପୁଲିସ ମାଜିଷ୍ଟ୍ରେଟ୍**—ବୈଦେ. ବି. (ଇଂ.—ବଡ଼ ବଡ଼ ସହରର ପୁଲିସ
Pulis mājishtret ଦ୍ୱାରା ଗୃହୀତ ହୋଇଥିବା ମକଦ୍ଦମାମାନ
পুলিস মাজিষ্ট্রেট বিଚାର କରିବା ନିମନ୍ତେ ନିଯୁକ୍ତ ବିଚାରପତି—
पुलिस मेजिष्ट्रेट Police magistrate; city magistrate;
ପୁଲିସ୍ ମାଜିଷ୍ଟର | ଅନ୍ୟରୂପ Presidency magistrate.
ପୁଲିସ୍ ମେଜେଷ୍ଟର |

**ପୁଲିସ୍ମା (ମେ)ନ୍**—ବୈଦେ. ବି. (ଇଂ)—୧ । କୌଣସି ପୁଲିସ୍
Pulis mā (me)n କର୍ମଚାରୀ—1. Policeman.
পুলিস ম্যান ୨ । ପୁଲିସ କନଷ୍ଟବଲ—
पुलिस मॅन 2. Police constable

**ପୁଲିସ୍ ମୁନସି**—ବୈଦେ. ବି. (ଅ)—ପୁଲିସ୍ ସବଇନସପେକ୍ଟର (ଦେଖ)
Pulis munasi Pulis sabanisapektar (See)

**ପୁଲିସ ରାଇଟର**—ବୈଦେ. ବି (ଇଂ)—ରାଇଟର କନଷ୍ଟବଲ, ଲେଖା
Pulis rāitar ପଢ଼ା ଜାଣି ଥିବା କନଷ୍ଟବଲ ଉପରେ ଥାନାର
পুলিস রাইটর କାଗଜପତ୍ର ଲେଖିବାର ଭାର ଥାଏ—Writer or
पुलिस राइटर literate constable

**ପୁଲିସ ରିପୋଟ**—ବୈଦେ. ବି. (ଇଂ)—ପୁଲିସ କର୍ମଚାରୀ କୌଣସି
Pulisa ripot ମକଦ୍ଦମା ତଦନ୍ତ କରି ତଦନ୍ତର ଫଳ କର୍ତ୍ତୃପକ୍ଷଙ୍କୁ
ପୁଲିସ୍ ରପୋର୍ଟ } ଅନ୍ୟରୂପ ଜଣାଇବା ପାଇଁ ପ୍ରେରିତ ଲେଖା
ପୁଲିସି ରିପୋର୍ଟ } Police report.

**ପୁଲିସ୍ ରୁ (ରୋ) ଲ(ଲା)**—ବୈଦେ. ବି. (ଇଂ) ପୁଲିସ୍+ରୋଲର୍)—
Pulis ru (ro) la(lā) ପୋଲିସ୍ ଠେଙ୍ଗିଣୀ (ଦେଖ)
পুলিসকা Polis thengini (See

**ପୁଲିସ ଲାଇନ**—ବୈଦେ. ବି. (ଇଂ)—ପୁଲିସ୍ ଫଉଜ ଥିବା ସ୍ଥାନ ବା
Pulis lāina ଛାଉଣୀ—Police line; police barracks.
(ପୁଲିସ୍ ନାଇନ୍, ପୁଲିସ୍ ନସୁନ୍—ଅନ୍ୟରୂପ)
পুলিস লাইন पुलिस लाइन

**ପୁଲିସ୍ ଷ୍ଟେଶନ**—ବୈଦେ. ବି (ଇଂ)—ପୁଲିସ୍ ଥାନା (ଦେଖ)
Pulis shtesan Pulis thānā (See)

**ପୁଲିସ ମନ୍ତ୍ରୀ**—ବୈଦେ. ବି. (ଇଂ)—ପହରା ଦେବାବାଲା ପୁଲିସ୍ କନଷ୍ଟବଲ
Pulis mantri Police sentry; police sentinal.

**ପୁଲିସ୍ ସବଇନସ୍‌ପେକ୍ଟର**—ବୈଦେ. ବି. (ଇଂ)—ଜମାଦାରଙ୍କ ଉପରସ୍ଥ
Pulis subanis pektara କର୍ମଚାରୀ—
Police Sub-Inspector.

**ପୁଲିସ୍ ସର୍ଜନ୍ (ଣ୍ଟ)**—ବୈଦେ. ବି. (ଇଂ. ପୁଲିସ୍+ସର୍ଜେଣ୍ଟ)—
Pulis sarjan(nt) ୧ । ଇଉରୋପୀୟ କନଷ୍ଟବଲ—
পুলিস সার্জন पुलिस सार्जेंट 1. Police sarjeant.
ପୁଲିସ୍ ସର୍ଜଣ୍ଟ, ପୁଲିସ୍ ସର୍ଜେଣ୍ଟ } ଅନ୍ୟରୂପ ୨ । (ଇଂ ପୁଲିସ+
ପୁଲିସ୍ ସାର୍ଜେଣ୍ଟ } ସର୍ଜନ)—ଯେଉଁ
পুলিস মার্জন ଡାକ୍ତର ପୁଲିସ ଚାଲାଣି ମକଦ୍ଦମାର ଆହତ ବ୍ୟକ୍ତିକୁ
पुलिस डाक्तर ବା ଶବକୁ ପରୀକ୍ଷା କରନ୍ତି —
(ପୁଲିସ୍ ଡାକ୍ତର—ଅନ୍ୟରୂପ) 2. Police surgeon.

**ପୁଲିସ ସୁପରିଣ୍ଟେଣ୍ଡେଣ୍ଟ**—ବୈଦେ. ବି (ଇ)—ଜିଲ୍ଲାର ଭାରପ୍ରାପ୍ତ
Pulis suparintendenta ସର୍ବୋଚ୍ଚ ପୁଲିସ୍ ହାକିମ—
পুলিস সাহেব District superintendent of police.
पुलिससाहेब (ପୁଲିସ୍ ସାହେବ—ଅନ୍ୟରୂପ)

**ପୁଲିସ୍ ହୁଲିଆ**—ବୈଦେ. ବି. (ଇଂ. ପୁଲିସ୍+ଇ. ହାଲୋ, ଭୁଲ. ଫ.
Pulis huliā କୋଳାହଳ)—ନିରୁଦ୍ଦିଷ୍ଟ ବ୍ୟକ୍ତି ବା ଅପରାଧୀ ବା
পুলিস হুলিআ ବସ୍ତୁକୁ ଖୋଜି ପାଇବା ନିମନ୍ତେ ତାହାର ପରିଚୟସୂଚକ
पुलिस हुल्ला ବିବରଣ ବର୍ଣ୍ଣନା ପୂର୍ବକ ପୁଲିସରେ ଦିଆଯିବା
ବିଜ୍ଞାପନ—Police Halloo; the detailed description of a missing thing or person given to the police to enable the police to trace the same.

**ପୁଲିସି**—ବୈଦେ. ବି. (ଇଂ)—ପୁଲିସ (ଦେଖ)
Pulisi Pulisa (See)

ପୁଲିସୀ ଦେ ବିଣ.—ପୁଲିସ ସମ୍ବନ୍ଧୀୟ—
**ପୁଲିସୀ** Relating to police.
(ଯଥା—ପୁଲିସ ଚାକର ।)

ପୁଲୋମ—ସଂ. ବି. ପୁଂ (ପୁଲୋମନ୍ ଶବ୍ଦ ୧ମା. ୧ବ.)—୧ । ଇନ୍ଦ୍ରଙ୍କ
Puloma ଶ୍ୱଶୁର ଓ ଶଚୀଙ୍କ ପିତା, ଦୈତ୍ୟବିଶେଷ—
1. Name of the father in-law of Indra.
[ଦ୍ର—ଏହାଙ୍କୁ ଇନ୍ଦ୍ର ବଧ କରି ଶଚୀଙ୍କୁ ପତ୍ନୀରୂପେ ଆଣିଥିଲେ।
୨ । ବଚ—2. Achorus calamus (M. W )

ପୁଲୋମଜା—ସଂ. ବି. ସ୍ତ୍ରୀ—(ପୁଲୋମନ+ଜନ୍ ଧାତୁ+ଅ+ସ୍ତ୍ରୀ. ଆ)—
Pulomaja ଶଚୀ, ପୁଲୋମ ନାମକ ଦୈତ୍ୟର କନ୍ୟା, ଇନ୍ଦ୍ରପତ୍ନୀ—
Sachi (the official and traditional) wife of God Indra.

ପୁଲୋମଜିତ୍—ସଂ. ବି—( ପୁଲୋମନ୍+ଜି ଧାତୁ+କର୍ତ୍ତୃ. କ୍ୱିପ୍, ଏ
Pulomajit ପୁଲୋମା ନାମକ ଦୈତ୍ୟଙ୍କୁ ପରାଜିତ ଓ ବଧ କରି
ପୁଲୋମ ଦ୍ୱିଟ୍ } ତାହାର କନ୍ୟା ଶଚୀ ଦେବୀଙ୍କୁ ହରଣ
ପୁଲୋମ ଭିତ୍ } ଅନ୍ୟରୂପ କରି ଆଣିଥିବାରୁ)—ଇନ୍ଦ୍ର—
ପୁଲୋମାରି } God Indra.

ପୁଲୋମସ୍ତି—ସଂ. ବି—ଅହିଫେନ, ଅଫିମ (ହି. ଶ)—
Pulomahi Opium (M. W).

ପୁଲୋମା—ସଂ. ବି. ସ୍ତ୍ରୀ (ନାମ)—ଭୃଗୁଙ୍କ ପତ୍ନୀ ଓ ଚ୍ୟବନ ଋଷିଙ୍କ
Puloma ମାତା—The wife of sage Bhrugu and mother of Chyabana.
[ଦ୍ର—ଏ ବୈଶ୍ୱାନର ନାମକ ଦୈତ୍ୟର କନ୍ୟା ଥିଲେ ।]

ପୁଲ୍ଲ—ସଂ. ବିଣ—(ପୁଲ୍ ଧାତୁ+ତ)—୧ । ବିସ୍ତୃତ—
Pulla 1. Expanded; spread.
୨ । ସମ୍ପୂର୍ଣ୍ଣ ପ୍ରସ୍ଫୁଟିତ—
2 Full blown (flower).
ବି—ଫୁଲ, ପୁଷ୍ପ—Flower

ପୁଷ୍ (ଧାତୁ)—ସଂ—୧ । ପୋଷିବା—
Push (root) 1. To maintain.
୨ । ପାଳିବା—2 To bring up; to rear.

ପୁସ୍—ଦେ (ଧ୍ୱନ୍ୟନୁକରଣ)ଅ—(ତୁଳ. ଆଇରଶ ଓ ଗେଲକ୍ ପୁସ୍=
Push ବିରାଡ଼ି, ଡଚ୍ ପୋଏସ୍)—ବିରାଡ଼ିକୁ ଡାକିବାର ସମ୍ବୋଧନ—
Interjection used in calling the pussy
(ଯଥା—ଆସ୍ ପୁସ୍ ।)

ପୁଷ୍ ପୁଷ୍—ବୈଦେ. ବି ( ଇଂ. ପୁସ୍-ଠେଲିବାରୁ )—ଏକପ୍ରକାର
Push push ଠେଲା ଗାଡ଼ି—A kind of pushing cart;
পুষ পুস্ **पुसपुस्** push-push

ପୁଷ୍ ପୂନି—ପ୍ରାଦେ (ସମ୍ବଲପୁର) ବି—ପୌଷ ପୂର୍ଣ୍ଣିମା (ଦେଖ)—
Push pūni Pausha pūrṇṇimā (See)

ପୁଷ—ଦେ. ବି—(ସଂ. ପୌଷ)—ମାର୍ଗଶିର ମାସର ପରବର୍ତ୍ତୀ ଚାନ୍ଦ୍ରମାସ;
Pusha ପୌଷ ମାସ—The lunar month of Pausha
পৌষ following the month of Mārgasira
**पुस** (December and January).

ପୁଷର ଅନ୍ତରେ ସଙ୍କାଳର ପ୍ରତ୍ୟୟ—
ଶ୍ରୀଗୀ—ରତ୍ନସ୍ୟମଞ୍ଜରୀ ।

ପୁଷ କରଣୀ—ଗ୍ରା. (ପଦ୍ୟ) ବି—ପୁଷ୍କରଣୀ (ଦେଖ)—
Pusha karaṇi Pushkaraṇi (See)
ପୁଷ୍କରଣୀର ଗର୍ଭ୍ଭେ ବୋଲେଣ ଶାପ ହଅଇ ।
ପ୍ରତାପ ଶଶିରେଖା ।

ପୁଷକା କାଁ)ଅ(ଆଁ)ଳ—(ସଂ. ପୌଷ+କାମଲ)—ପୁଷ ମାସରେ କରିବା
Pushakā(kāṅ,ā(āṅ)la ଓ ସମୟ ସମୟରେ ଦେଖାଯିବା ମେଘୁଆ
ପୁଷ କାହା(ହାଁ)ଳ } ବା କୁହୁଡ଼ିଆ ପାଗ—
ପୁଷ କା(କାଁ)ଅ(ଆଁ)ଳ } ଅନ୍ୟରୂପ Cloudy or foggy
ପୁଷି କାହା(ହାଁ)ଳ } weather sometimes
appearing in the month of Pous.

ପୁଷ ପୂର୍ଣ୍ଣମୀ—ଦେ. ବି—(ସଂ. ପୌଷ ଓ ପୂର୍ଣ୍ଣିମା)—ପୌଷ ପୂର୍ଣ୍ଣିମା
Pusha pūrṇṇamī (ଦେଖ)—Pausha Pūrṇṇimā
ପୁଷ ପୂନ୍ଥଅଁ, ପୁଷ ପୂନମୀ, ପୁଷ ପୂନ୍ଥଅଁ } ଅନ୍ୟରୂପ (See)—
ପୁଷ୍ପୁ ପୂର୍ଣ୍ଣିମୀ, ପୁଷ(ଷୁ) ପୂନେଇଁ }

ପୁଷ ମାସ—ଦେ ବି (ସଂ. ପୌଷ+ମାସ)—୧ । ପୌଷ ମାସ, ମାର୍ଗଶିର
Pusha māsa ମାସର ପରବର୍ତ୍ତୀ ଚାନ୍ଦ୍ର ମାସ—1. The
(ପୁଷ୍ପମାସ—ଅନ୍ୟରୂପ) month of Pausha (December-
পৌষমাস **पुसमहिना** Jauary)
୨ । (ଲକ୍ଷଣାର୍ଥ) ଆନନ୍ଦର ସମୟ—
2 Time of merriment and plenty.
[ଦ୍ର—ପୁଷ ମାସରେ ଧାନ ଫସଲ କଟା ହେବାରୁ ଧାନ ପାଇଁ ଚାଷୀ ଓ ମୂଲିଆମାନେ ଆନନ୍ଦରେ ଦିନ କାଟନ୍ତି । ପୁଷ ମାସରେ ଆମ ଦେଶରେ ଅତି ଗରୀବ ମୂଲିଆ ଲୋକ ମଧ୍ୟ ଘରର ଧାନ କାଟି ତହିଁ ପାଇଁ ଧାନ ମୂଲ ପାଏ । ଏଥିପାଇଁ ଆନନ୍ଦ ଓ ଖାଦ୍ୟ ପ୍ରାଚୁର୍ଯ୍ୟର ସମୟ ଅର୍ଥରେ ପୁଷ ମାସ ବ୍ୟବହୃତ ହୁଏ ଯଥା—କାହାର ପୁଷମାସ, କାହାର ସର୍ବନାଶ—ତଗ ।]

ପୁଷ ରବିବାର ଓଷା—ଦେ. ବି—(ସଂ. ପୌଷ ରବିବାର ଉପବାସ)—
Pusha rabibāra oshā ପୁଷ ମାସର ପ୍ରତି ରବିବାର ଦିନ
ପୁଷ ରବିବାର ଓଷା } ଅନ୍ୟରୂପ ସ୍ତ୍ରୀମାନଙ୍କର କରାଯିବା ଓଷା—
ପୁଷ୍ପୁ ରବିବାର ଓଷା } The festival observed
on every Sunday of the month of Pausha by females.

ପୁଷା—ସଂ. ବି—(ପୁଷ୍ ଧାତୁ+ଭାବ. ଅ+ଆ)—୧ । ପୋଷଣ, ପାଳନ-
Pushā 1. Cherising; bringing up,
୨ । ଲଙ୍ଗଳଙ୍ଗୀ ଗଛ; ଲଙ୍ଗଲଙ୍ଗଳିଆ ଗୁଳ୍ମ—
2 A poisionous plant; wolfs bane; Aconitum Napellus.
ପ୍ରାଦେ (ସମ୍ବଲପୁର ଓ ବାଲେଶ୍ୱର ) ବି—ପୁଷା ପୁଅ (ଦେଖ)-
Pushā pua (See).
ବିଣ—ପୋଷା; ପାଳିତ—Brought up.

ପୁଷା ପୁଅ—ପ୍ରାଦେ (ସମ୍ବଲପୁର ଓ ବାଲେଶ୍ୱର) ବି—(ସଂ. ପୋଷ୍ୟପୁତ୍ର)-
Pushā pua ପୋଷ୍ୟପୁତ୍ର—Adopted son.

**ପୁଷି**—ଦେ. ବ—(ବିରାଡ଼ିକୁ ଡାକିବା ସମୟରେ କରାଯିବା ଶିଷ୍ଟ ଧ୍ୱନିର
Pushi ଅନୁକରଣରେ ନିଷ୍ପନ୍ନ ଶବ୍ଦ, ତୁଲ. ଇଂ. ପୁସି; ଆଇରସ୍ ଓ ଗେଲିକ୍ ପୁସ୍, ଡଚ୍—ପୋଏସ୍, ଡା. ପୁସ୍ସେଇ)—
୧। ବିରାଡ଼ି—1. Cat.
୨। ପ୍ରିୟ ବିରାଡ଼ି—2. A pet cat.
ଅ—ପୋଷା ବିରାଡ଼ିକୁ ସ୍ନେହରେ ଡାକିବାର ଶବ୍ଦ—
A term of endearment for calling a pet cat

**ପୁଷିଆଁ**—ପ୍ରାଦେ (ବାଲେଶ୍ୱର; ସମ୍ବଲପୁର ଓ ଗଡ଼ଜାତ)—ବିଣ (ଅମୁକ
Pushiañ ଦ୍ୱାରା) ପୋଷ୍ୟ, ଅନୁଜୀବୀ—Dependent on; maintained by.

**ପୁଷିଆଁ ପୁଅ**—ପ୍ରାଦେ (ବାଲେଶ୍ୱର, ସମ୍ବଲପୁର, ଗଡ଼ଜାତ) ବି—
Pushiañ pua ପୋଷ୍ୟପୁତ୍ର—Adopted son

**ପୁଷିତ**—ସଂ. ବିଣ ପୁଂ. (ପୁଷ୍ ଧାତୁ+କର୍ମ. ତ)—ପୁଷ୍ଟ; ପାଳିତ—
Pushita Maintained; brought up.
(ପୁଷିତା—ସ୍ତ୍ରୀ)

**ପୁଷି ଫୁଟ୍ ଜନସନ୍**—ବେଦେ. ବି. (ଇଂ. ପୁଷିଫୁଟ୍=ବିରାଡ଼ି ଖୋଜ ପରି
Pushi phut janasan ଚାଲିବା ବେଳେ ଯାହାର ପଦଶବ୍ଦ ଶୁଣାଯାଏ ନାହିଁ+ଇଂ. ନାମ ଜନ୍‌ସନ୍)—
Pussyfoot Johnson; the celebrated American leader of temprance movement.

**ପୁଷିବା**—ପ୍ରାଦେ. (ବାଲେଶ୍ୱର) କ୍ରି. (ସଂ ପୁଷ୍ ଧାତୁ, ତୁଲ ବଂ. ପୁଷା)—
Pushibā ପାଳିବା; ପୋଷିବା—To bring up; to maintain.

**ପୁଷି ବିରାଡ଼ି**—ଦେ. ବି—ପୁଷି (ଦେଖ)—Pushi (See)
Pushi birāḍi (ପୁଷିବିଲେଇ—ଅନ୍ୟରୂପ)

**ପୁଷ୍କର**—ସଂ. ବି. (ପୁଷ୍ ଧାତୁ+ସଂଜ୍ଞାର୍ଥେ କର)—
Pushkara ୧। ଆକାଶ; ବ୍ୟୋମ; ଶୂନ୍ୟ—
1. The sky; heaven; atmosphere; the air.
୨। ଜଳ—2. Water.
୩। ପଦ୍ମ—3. Lotus.
୪। ପଦ୍ମ କୋଷ—4. The cupola or the inner disk of the lotus flower; the pistil of the lotus (like an inverted cone).
[ ଦ୍ର—ଏହା ପାଳଙ୍କଅ ଗିନା ବା ଲୁଣ୍ଡ ପରି, ଏହା ମଧ୍ୟରେ ପଦ୍ମମଞ୍ଜି ଥାଏ ଓ ଏହାକୁ କେଶରମାନ ବେଢ଼ିଥାଏ । ]
୫। ହସ୍ତୀ ଶୁଣ୍ଡାଗ୍ର; ହାତୀ ଶୁଣ୍ଢର ଅଗ—
5. The tip of the elephant's trunk.
୬। ମୃଦଙ୍ଗାଦି ବାଦ୍ୟ ଭାଣ୍ଡର ମୁଖ (ଯହିଁ ଉପରେ ଚମଡ଼ା ମଡ଼ାଯାଏ)—6. The head of a drum.
୭। ପୁଷ୍କର ତୀର୍ଥ (ଦେଖ)—7. Pushkara tirtha (See)
"ପୁଷ୍କରେ ଜନ୍ମେ ସ୍ନାନ କଲେ ସେହି ଫଳ
ସେହି ଜନ୍ମରେ ହୁଅଇ ସେହି ଫଳ । କୃଷ୍ଣସିଂହ, ମହାଭାରତ, ଅବ ।
୮। ସପ୍ତ ପ୍ରକାର ମେଘ ମଧ୍ୟରୁ ଏକପ୍ରକାର ମେଘ—
8. Name of a cloud
[ ଦ୍ର—ହିନ୍ଦୁ ଜ୍ୟୋତିଷ ଗଣନାକ୍ରମେ ଯେଉଁ ବର୍ଷ ପୁଷ୍କର ମେଘ ପୃଥିବୀରେ ଆବିର୍ଭୂତ ହୁଏ ସେ ବର୍ଷ ଶସ୍ୟହାନି, ଦୁର୍ଭିକ୍ଷ ଓ ଅନାବୃଷ୍ଟି ହୁଏ । ଏହାକୁ 'ବାଇଗଣକୋଡ଼ା' ବା 'ମଳାମଳା' ମେଘ କହନ୍ତି । ଏ ମେଘ ଉଠାଇଲେ ନିକଟରେ ବେଶି ବର୍ଷା ହେବାର ସମ୍ଭାବନା ନ ଥାଏ ଓ ଏହା ଦୁର୍ଭିକ୍ଷର ସୂଚନା କରେ । ଏଥିର ଡାକ ବଚନ ଅଛି—ଦେଖିଲୁ ମଳାମଳା, ଘରଭିଁ କର୍ମିଲା, ଡାକ-ବୋଲେ ପୁଛାରେ ରାଜ୍ୟ ଛାଡ଼ି ପଳା । ]
୯। କାଣ୍ଡ, ଶର—9 Arrow.
୧୦। ପୃଥିବୀର ପୌରାଣିକ ସପ୍ତଦ୍ୱୀପ ମଧ୍ୟରୁ ଗୋଟିଏ ଦ୍ୱୀପ—
10 One of the 7 mythological islands forming the universe.
[ ଦ୍ର—ଏ ଦଧି ସମୁଦ୍ରର ଆଗରେ ଅବସ୍ଥିତ ଓ ଏହାର ବିସ୍ତାର ଶାକଦ୍ୱୀପର ଦ୍ୱିଗୁଣ ଥିବାର କଥିତ—ହି ଶ । ]
୧୧। ପୁଷ୍କର ଦ୍ୱୀପସ୍ଥ ପର୍ବତବିଶେଷ—11 One of a mythological mountain in the island of Pushkara.
୧୨। ବରୁଣଙ୍କ ପୁତ୍ର—12 Name of the son of the ocean God.
[ ଦ୍ର—ଏ ପୁଷ୍କର ଦ୍ୱୀପରେ ବାସ କରୁଥିଲେ—ହି. ଶ । ]
୧୩। ନଳରାଜାଙ୍କ ଭ୍ରାତା—
13. Name of the brother of King Nala
[ ଦ୍ର—ଏ ନଳରାଜାଙ୍କୁ ପଶାଖେଳରେ ହରାଇ ନଳଙ୍କଠାରୁ ନିଷଧ ରାଜ୍ୟ ନେଇଥିଲେ, ପରେ ନଳ ଋତୁପର୍ଣ୍ଣଙ୍କଠାରୁ ପଶାଖେଳ ଶିଖି ଏହାଙ୍କୁ ହରାଇ ଏହାଙ୍କଠାରୁ ନିଜରାଜ୍ୟ ଉଦ୍ଧାର କଲେ । ]
୧୪। ଖଣ୍ଡାର ପତ୍ର; ଖଡ୍ଗଫଳକ—14 Sword blade
୧୫। ଖଡ୍ଗକୋଷ; ଖଣ୍ଡାର ଖାପ—
15 The sheath of a sword.
୧୬। ଯୁଦ୍ଧ; ସଂଗ୍ରାମ—16, War; battle; fighting.
୧୭। କୁଷ୍ଠରୋଗବିଶେଷ—17. A kind of leprosy
୧୮। କୁଷ୍ଠନାମକ ଔଷଧ, କୁଡ଼ ନାମକ ଔଷଧ—
18. A medicinal herb; (Costus Speciosus).
୧୯। ନୃତ୍ୟ ଶାସ୍ତ୍ର; ନୃତ୍ୟ କଳା—
19. The science or art of dancing.
୨୦। ଅଂଶ; ଭାଗ—20. Part.
୨୧। ମତ୍ତତା; ନିଶା—21. Intoxication.
୨୨। ସଂଯୋଗ; ମିଳନ—22. Union; conjunction.
୨୩। ନାଗବିଶେଷ; ପଦ୍ମ ନାଗ—
23. A reddish cobra.
୨୪। ହ୍ରଦ; ପୋଖରୀ—24. Lake; tank; pond.
୨୫। ମୁର୍ଦ୍ଦାର; ମଢ଼—25. Dead-body (Howells).
୨୬। ସାରସ ପକ୍ଷୀ—26. Indian crane.
୨୭। ନୀଳ ପଦ୍ମ—27. Blue lotus flower (Howells).
୨୮। ଏକପ୍ରକାର ଢୋଲ—28. A kind of drum.
୨୯। (ଜ୍ୟୋତିଷ) ପୁଷ୍କର ଦୋଷ (ଦେଖ)
29. (Astrology) Pushkara dosha (See)

୩୦ । (ଜ୍ୟୋତିଷ) ଯୋଗବିଶେଷ—
30. (Astrology) An auspicious astrological conjunction.

[ଦ୍ର—ଏଥିରେ ଗଙ୍ଗା, ଗୋଦାବରୀ, କୃଷ୍ଣା ଓ କାବେରୀ ନଦୀମାନଙ୍କରେ ସ୍ନାନଯୋଗ ପଡ଼େ । ରବି ଓ ବୃହସ୍ପତି ମକର ରାଶିରେ ଥିବା ସମୟରେ ରବିବାର ଦିନ ପୂର୍ଣ୍ଣିମା ପଡ଼ିଲେ ଗଙ୍ଗାରେ ପୁଷ୍କର ଯୋଗ, ସିଂହ ରାଶିରେ ଥାଇ ରବି ଯଦି ଗୁରୁସଂଯୁକ୍ତ ହୁଅନ୍ତି ଓ ଗୁରୁବାରରେ ପୂର୍ଣ୍ଣିମା ହେଲେ ଗୋଦାବରୀରେ ପୁଷ୍କର, ରବି ମେଷ ରାଶିରେ ବୃହସ୍ପତିଙ୍କ ସଙ୍ଗେ ସଂଯୁକ୍ତ ହେଲେ ଓ ସୋମବାର ଦିନ ଶୁକ୍ଳାଷ୍ଟମୀ ହେଲେ କାବେରୀରେ ପୁଷ୍କର, ରବି କର୍କଟ ରାଶିରେ ରାହୁ ସହିତ ମିଳିତ ହେଲେ ଯଦି ସୋମବାର ଦିନ ପୂର୍ଣ୍ଣିମା ବା ଅମାବାସ୍ୟା ହୁଏ ତେବେ କୃଷ୍ଣାରେ ପୁଷ୍କର ଯୋଗ ପଡ଼େ ।)

୩୧ । ସୂର୍ଯ୍ୟ (ହି. ଶ)—31 The sun.

୩୨ । ପିଞ୍ଜରା; ପଞ୍ଜୁରୀ (ହି. ଶ)—32. Bird's cage

୩୩ । ପୁଷ୍କର ମୂଳ (ହି. ଶବ୍ଦସାଗର ) (ଦେଖ)
33. Pushkara mūḷa (See)

୩୪ । ଦିଗ୍ଗଜବିଶେଷ (ହି. ଶ )
34 Name of one of the mythological elephants guarding the quarters of globe.

୩୫ । ବିଷ୍ଣୁଙ୍କର ଏକ ନାମ—25. A name of Bishnu.

[ଦ୍ର— ପ୍ରଳୟ ପରେ ବିଷ୍ଣୁଙ୍କ ନାଭିରୁ ଯେଉଁ ପଦ୍ମ ବାହାରିଥିଲା ଓ ଯେଉଁ ପଦ୍ମରୁ ବ୍ରହ୍ମା ଜନ୍ମିଥିଲେ ତାହା ବିଷ୍ଣୁଙ୍କର ଗୋଟିଏ ଅଙ୍ଗ ଥିବାର ହରିବଂଶରେ ଅଛି—ହି. ଶ । ]

୩୬ । ଶିବ (ହି. ଶ)—36. Siba.

୩୭ । (ନାମ) କୃଷ୍ଣଙ୍କର ଏକପୁତ୍ର (ହି. ଶ)—
37. Name of a son of Krushṇa.

୩୮ । (ନାମ) ଭରତଙ୍କର ଏକ ପୁତ୍ର (ହି. ଶ)—
38. Name of a son of king Bharata.

୩୯ । (ନାମ) ଅସୁରବିଶେଷ (ହି. ଶ)—
39 Name of a demon.

୪୦ । କରଚୁଲର କଟୋରୀ ( ହି. ଶବ୍ଦସାଗର )—40. The cupshaped part of a spoon or ladle.

୪୧ । ସର୍ପ (ହି. ଶ )—41. Serpent

୪୨ । ପଦ୍ମକନ୍ଦ (ହି. ଶବ୍ଦସାଗର)—
42. The root of the lotus plant.

୪୩ । ବୁଦ୍ଧଙ୍କର ଏକ ନାମ (ହି. ଶବ୍ଦସାଗର)—
43 A name of the Buddha.

ଦେ. ବି—୧ । ପଦ୍ମବୀଜ; ପଦ୍ମଫୁଲ ମଧ୍ୟରେ ଥିବା କୋଷ ମଧ୍ୟରେ ଯେଉଁ ମଞ୍ଜି ଥାଏ—1. The seeds found inside the inner disk of a lotus.

[ ଦ୍ର—ପଦ୍ମଫୁଲ ଶୁଖିଗଲେ ପାଖୁଡ଼ାଯାକ ଝଡ଼ିବା ପରେ ସେ କୋଷଟି ରହେ ଓ ତହିଁ ମଧ୍ୟସ୍ଥ ମଞ୍ଜିଗୁଡ଼ିକ ପକ୍ୱତା ଲାଭ କରି ଟାଣୁଆ ଓ କୃଷ୍ଣବର୍ଣ୍ଣ ହୁଏ । ତାକୁ ଫୋଡ଼ି ଲୋକେ ଜପମାଳା କରନ୍ତି । ]

୨ । ସାତଗାତି ଖେଳ ( ଦେଖ )—
2. Sātagāti kheḷa ( See )

**ପୁଷ୍କର କର୍ଣ୍ଣିକା** - ସଂ. ବି. (ପୁଷ୍କର + କର୍ଣ୍ଣ + କ + ସ୍ତ୍ରୀ. ଆ)—ସ୍ଥଳପଦ୍ମ—
Pushkara karṇṇikā Habiscus Mutabilis (flower and plant.)
(ପୁଷ୍କରନାଡ଼ୀ—ଅନ୍ୟରୂପ)

**ପୁଷ୍କରଣୀ**—ଗ୍ରା. ବି.—(ସଂ. ପୁଷ୍କରିଣୀର ଅଶୁଦ୍ଧ ଉଚ୍ଚାରଣ)—ପୋଖରୀ--
Pushkaraṇi Tank; pond.

**ପୁଷ୍କର ତିଥି**—ସଂ. ବି.— ପୁଷ୍କର ଦୋଷ (ଦେଖ)
Pushkara tithi Pushkara dosha (See)
(ପୁଷ୍କର ନକ୍ଷତ୍ର, ପୁଷ୍କର ବାର—ଅନ୍ୟରୂପ)

**ପୁଷ୍କର ତୀର୍ଥ** —ଦେ. ବି.— ହିନ୍ଦୁ ତୀର୍ଥବିଶେଷ; ହ୍ରଦବିଶେଷ—
Pushkara tirtha A place of pilgrimage of the Hindus near Ajmere; a lake

[ ଦ୍ର—ଏହି କ୍ଷୁଦ୍ର ହ୍ରଦ ଆଜମିରଠାରୁ ୭ ମାଇଲ ଦୂରରେ ବାଲୁକାସ୍ତୂପବେଷ୍ଟିତ ଉପତ୍ୟକା ମଧ୍ୟରେ ଅବସ୍ଥିତ । ହ୍ରଦଟି ବୃତ୍ତାଭାସ ଆକୃତିବିଶିଷ୍ଟ । ଏହାର ଚାରି ପାଖରେ ଦେବମନ୍ଦିର ଓ ସମାଧିମନ୍ଦିରମାନ ଅଛି । ଏଠାରେ ବ୍ରହ୍ମାଙ୍କ ମନ୍ଦିର ଅଛି ଓ ବ୍ରହ୍ମାଙ୍କ ମୂର୍ତ୍ତି ପୂଜିତ ହୁଅନ୍ତି । ଏହାର ସ୍ଥାନୀୟ ଡାକ ନାମ ପୋକର । କାର୍ତ୍ତିକ ପୂର୍ଣ୍ଣିମାରେ ଲକ୍ଷାଧିକ ହିନ୍ଦୁ ଯାତ୍ରୀ ଏଠାରେ ସ୍ନାନ କରନ୍ତି । ବ୍ରହ୍ମା ଏଠାରେ ସାବିତ୍ରୀଙ୍କ ଅନୁପସ୍ଥିତିରେ ଅନ୍ୟ ଗୋଟିଏ ସ୍ତ୍ରୀକୁ ସାବିତ୍ରୀ କଳ୍ପନା କରି ତାଙ୍କୁ ସାବିତ୍ରୀଙ୍କ ପ୍ରତିନିଧି କରି ଯଜ୍ଞ କରିଥିଲେ । ଏଠାରେ ବ୍ରହ୍ମାଙ୍କ ମୂର୍ତ୍ତି ଓ ମନ୍ଦିର ଅଛି । କଥିତ ଅଛି ଯେ, ଭାରତବର୍ଷରେ କେବଳ ଏହିଠାରେହିଁ ବ୍ରହ୍ମାଙ୍କର ମୂର୍ତ୍ତି ପୂଜା ହେଉଛନ୍ତି । ଏଠାରେ ମଧ୍ୟ ସାବିତ୍ରୀ, ବଦରୀନାରାୟଣ ଓ ବରାହଜୀଙ୍କ ମନ୍ଦିର ଅଛି । ଏହି ସମୟରେ ଏଠାରେ ଏକ ସପ୍ତାହବ୍ୟାପି ବଡ଼ ମେଳା ହୁଏ । ଗୋରୁ, ଘୋଡ଼ା ଓ ଓଟ ବିକି ହୁଏ । ବର୍ଷେ ବର୍ଷେ ହଜାର ହଜାର ଓଟ ମେଳାରେ ବିକି ହୁଅନ୍ତି । କବିବର ରାଧାନାଥ କହିଛନ୍ତି—

"ସୁରୂପା ଅଂଶୁପା ଲୋକେ ଅଗୋଚର
ପୂଜାସ୍ପଦ ହେଲା ଗୋଷ୍ପଦ ପୁଷ୍କର ।"

ପଦ୍ମପୁରାଣରେ ଲେଖା ଅଛି ଯେ ଏହିଠାରେ ଯଜ୍ଞ କରିବା ପୂର୍ବରୁ ବ୍ରହ୍ମାଙ୍କ ହାତରୁ ଗୋଟିଏ ପଦ୍ମ ଭୂମିରେ ଖସି ପଡ଼ିଥିଲା ଓ ଏହି ପଦ୍ମ ପଡ଼ିବାରୁ ରସାତଳରେ ତପସ୍ୟା କରୁଥିବା ଦେବଦ୍ରୋହୀ ବଜ୍ରନାଭ ନାମକ ଅସୁରର ମୃତ୍ୟୁ ଘଟିଲା । ବ୍ରହ୍ମାଙ୍କ ହାତରୁ ପୁଷ୍କର (ପଦ୍ମ) ଏଠାରେ ଖସି ପଡ଼ିବାରୁ ଏ ତୀର୍ଥର ନାମ ପୁଷ୍କର ହେଲା । ହି. ଶ.]

**ପୁଷ୍କର ଦୋଷ**—ସଂ. ବି. (ଜ୍ୟୋତିଷ)—ଜ୍ୟୋତିଷୋକ୍ତ ଛଅଟି ନକ୍ଷତ୍ର ତିନିଟି ବାର ଓ ତିନିଟି ତିଥିରେ ମୃତ୍ୟୁ ଘଟିବା ଜନିତ ଅମଙ୍ଗଳ—(astrology) Certain inauspicious periods in which a person's death forebodes disaster to his family.
Pushkara dosha

[ ଦ୍ର—ପୁନର୍ବସୁ, ଉତ୍ତରାଷାଢ଼ା, କୃତ୍ତିକା, ଉତ୍ତରଫାଲ୍ଗୁନୀ ପୂର୍ବଭାଦ୍ରପଦ ଓ ବିଶାଖା ଏହି ଛଅଟି ନକ୍ଷତ୍ର; ଦ୍ୱିତୀୟା, ସପ୍ତମୀ ଓ ଦ୍ୱାଦଶୀ ଏହି ତିନି ଗୋଟି ତିଥି; ରବି, ମଙ୍ଗଳ ଓ ଶନି ଏହି ତିନି ଗୋଟି ବାରରେ ମନୁଷ୍ୟର ମୃତ୍ୟୁ ହେଲେ ପୁଷ୍କରଦୋଷ ଲାଗେ ।

ଏହି ଛଅ ଗୋଟି ଦୋଷ ମଧ୍ୟରୁ ଯେତେ ଗୋଟି ଦୋଷ ଲାଗେ ତାକୁ ସେତେ ପାଦ (୧, ୨ ବା ୩) ପାଦ ଦୋଷ ଲାଗିବାର କହନ୍ତି ।
ବାରଦୋଷରେ କୃଷିନାଶ, ତିଥି ଦୋଷରେ ଗୋଧନ ନାଶ, ନକ୍ଷତ୍ରରେ ବଂଶନାଶ ଓ ତ୍ରିଦୋଷରେ ସମ୍ପଦନାଶ ଘଟେ । ଶାସ୍ତ୍ରରେ ବାରଦୋଷ ପାଇଁ ଭୂମିଦାନ, ତିଥିଦୋଷ ଶାନ୍ତି ପାଇଁ ଅନ୍ନଦାନ, ନକ୍ଷତ୍ରଦୋଷ ଶାନ୍ତି ପାଇଁ ତିଳକାଞ୍ଚନ ଦାନର ବ୍ୟବସ୍ଥା ଅଛି । ]

**ପୁଷ୍କର ନାଭ**—ସଂ. ବି. (ବହୁବ୍ରୀହି; ପୁଷ୍କର+ନାଭ)—ପଦ୍ମନାଭ; ବିଷ୍ଣୁ—
Pushkara nābha Bishṇu.

**ପୁଷ୍କର ମାଳା**—ସଂ. ବି—ପଦ୍ମ ଫୁଲର ମାଳ—
Pushkara mālā A garland made of lotus.
ଦେ. ବି—ପୁଷ୍କର ମାଳି (ଦେଖ)
Pushkara māli (See)

**ପୁଷ୍କର ମାଳି**—ଦେ. ବି (ସଂ. ପୁଷ୍କର ଓ ମାଳ)—ପୋଖରି ପଦ୍ମବୀଜ
Pushkara māli ଗୁନ୍ଥା ହୋଇଥିବା ଜପମାଳା—
ପୁଷ୍କର ମାଳ } ଅନ୍ୟରୂପ A string of beads made of
ପୁଷ୍କର ମାଳା } lotus seeds sewn through.

**ପୁଷ୍କର ମୂଳ**—ସଂ. ବି. (ବୈଦ୍ୟଶାସ୍ତ୍ର)—ପୁଷ୍କର ଦେଶୀୟ ଔଷଧିବିଶେଷ;
Pushkara mūla କାଶ୍ମୀର ଦେଶ ପ୍ରସିଦ୍ଧ ପାତାଳ ପଦ୍ମିନୀ—
ପୁଷ୍କରମୂଳ The root of Alpotaxis Auriculata.
पोहोकर मूली [ ଦ୍ର—ବାୟୁ, କଫ, ଶ୍ୱାସ, ଶୋଥ, ଅରୁଚି
ଗୁ. ପୋକର ମୂଳ ବାତଶ୍ଳେଷ୍ମିକଜ୍ୱର ଓ ପାଣ୍ଡୁରୋଗରେ ଏହା
ମ. ପୁଷ୍କର ମୂଳ ଉପକାରୀ । ଏହାର ଅଭାବରେ କୁଡ଼ ବ୍ୟବହାର କରାଯାଏ । ]
(ପୁଷ୍କର ଜଟା, ପୁଷ୍କର ଶିଫା, ପୁଷ୍କରାଗ୍ୟ, ପୁଷ୍କରାହ୍ୱୟ, ପୌଷ୍କର, ପଦ୍ମପତ୍ର, କାଶ୍ମୀର, ପୁଷ୍କର ସାଗର—ଅନ୍ୟ ସଂ. ନାମ)

**ପୁଷ୍କର ଯୋଗ**—ସଂ. ବି. (ଜ୍ୟୋତିଷ)—ପୁଷ୍କର ୩୦ (ଦେଖ)
Pushkara joga Pushkara 30 (See)

**ପୁଷ୍କର ହ୍ରଦ**—ଦେ. ବି—ପୁଷ୍କର ତୀର୍ଥ (ଦେଖ)
Pushkara hrada Pushkara tirtha (See)

**ପୁଷ୍କରା**—ସଂ. ବି. (ପୁଷ୍କର+ଅ)—ପଦ୍ମର ବୀଜକୋଷ—
Pushkarā The seed-vessel of the lotus.

**ପୁଷ୍କରାକ୍ଷ**—ସଂ. ବି. ପୁଂ. (ବହୁବ୍ରୀହି; ପୁଷ୍କର+ଅକ୍ଷ)—
Pushkarāksha ପଦ୍ମଲୋଚନ; ପୁଣ୍ଡରୀକାକ୍ଷ; ବିଷ୍ଣୁ—
Name of Bishṇu.

**ପୁଷ୍କରାଖ୍ୟ**—ସଂ. ବି. (ବହୁବ୍ରୀହି; ପୁଷ୍କର+ଆଖ୍ୟା+ଅ)—
Pushkarākhya ୧ । ସାରସ ପକ୍ଷୀ—1. Indian crane.
(ପୁଷ୍କରାହ୍ୱ—ଅନ୍ୟରୂପ) ୨ । କୁଡ଼ ଔଷଧି—
2. A medicinal herb.
୩ । ପୁଷ୍କର ମୂଳ (ଦେଖ)—3. Pushkara mūla (See)

**ପୁଷ୍କରିକା**—ସଂ. ବି—ଲିଙ୍ଗର ଅଗ୍ରଭାଗରେ ଛୋଟ ଛୋଟ ବ୍ରଣ ବାହାରିବା
Pushkarikā ରୋଗବିଶେଷ (ସୁ. ଶ)—A disease in which small eruptions appear on the extremity of the male organ.

**ପୁଷ୍କରିଣୀ**—ସଂ. ବି. ସ୍ତ୍ରୀ. (ପୁଷ୍କର=ପଦ୍ମ, ଜଳ ଆଦି+ଇନ୍+ସ୍ତ୍ରୀ ଈ)—
Pushkariṇi ୧ । ପୋଖରୀ, ସରୋବର, ଜଳାଶୟ—
1. Tank; pond.
୨ । ଶତଧନୁ ବା ୪୦୦ ହାତ ପରିମିତ ସମଚତୁରସ୍ର ଜଳାଶୟ—
2. A square tank measuing 200 yards each side.
[ ଦ୍ର—ପୁଷ୍କରିଣୀର ପାଞ୍ଚଗୁଣ ଆକାରବିଶିଷ୍ଟ ଜଳାଶୟକୁ ତଡ଼ାଗ ବୋଲାଯାଏ । ]
୩ । ହ୍ରଦ; ଅକୃତ୍ରିମ ଜଳାଶୟ—3. A lake.
୪ । ସରୋଜିନୀ; ପଦ୍ମପୋଖରୀ—
4. A tank full of lotuses
୫ । ହସ୍ତିନୀ, ହାତୁଣୀ—5. A she-elephant
୬ । ସ୍ଥଳପଦ୍ମ—6. Habiscus mutabilis (flower).
୭ । ପଦ୍ମିନୀ, ପଦ୍ମନାଡ଼—7. The stalk of lotus.
୮ । ପୁଷ୍କର ମୂଳ ଔଷଧି—8. A medicinal root.
୯ । କୁଡ଼ ନାମକ ଔଷଧି—9 Costus speciotus.

**ପୁଷ୍କରୀ**—ସଂ. ବି. ପୁଂ. ( ପୁଷ୍କର=ହସ୍ତୀଶୁଣ୍ଡାଗ୍ର+ଇନ୍, ୧ମା. ୧ବ. )—
Pushkari ହସ୍ତୀ—Elephant.

**ପୁଷ୍କଳ**—ସଂ. ବିଣ. ପୁଂ. ( ପୁଷ୍ ଧାତୁ+କଳ )—୧ । ଉତ୍କୃଷ୍ଟ; ଶ୍ରେଷ୍ଠ—
Pushkala 1. Excellent, chief; eminent; principal.
(ପୁଷ୍କଳା—ସ୍ତ୍ରୀ) ୨ । ପ୍ରଚୁର; ପର୍ଯ୍ୟାପ୍ତ—
2. Plentiful; plenteous; abundant.
୩ । ପରିପୂର୍ଣ୍ଣ—3. Full; filled; rich; complete.
୪ । ଶୁଭ, ହିତ—4. Good; beneficial; salutary.
୫ । ସଦ୍‌ଗୁଣବିଶିଷ୍ଟ—5. Possed of good qualities.
୬ । ବହୁ—6. Many; much.
୭ । ଉପସ୍ଥିତ; ବର୍ତ୍ତମାନ (ହୁ. ଶ.)—7. Present.
୮ । ପବିତ୍ର (ହ୍ର. ଶ )—8. Pure.
ବି—୧ । ଶସ୍ୟ ପରିମାଣବିଶେଷ, ପସୁରୀ; ପାଞ୍ଚସେର ପରିମିତ; ୬୪ ପୋଷ ବା ୮ମୁଷ୍ଟି ପରିମାଣ—1. A neasure of corn; 64 handfuls or 5 seers.
୨ । ଗ୍ରାସ ଚତୁଷ୍ଟୟମିତ ଭିକ୍ଷା; ଯେତିକରେ ମନୁଷ୍ୟ ଚାରିଗ୍ରାସ ଭାତ ଖାଇ ପାରିବ ସେତିକି ପରିମାଣ ଭିକ୍ଷାନ୍ନ—
2. A quantity of alms to the extent of four mouthfuls of food.
୩ । ମେରୁପର୍ବତ—3. The mythological mountain holding up the universe.
୪ । ପୁଷ୍କରତୀର୍ଥ (ଦେଖ)—4 Pushkara tirtha (See)
୫ । ବରୁଣଙ୍କର ଏକ ପୁତ୍ର—
5. One of the sons of God Baruṇa.
୬ । ଭରତ ରାଜାଙ୍କ ଦୁଇ ପୁତ୍ର ମଧ୍ୟରୁ ଏକତର—6. Name of one of the two sons of king Bharata.
ତକ୍ଷ ପୁଷ୍କଳ ଜନ୍ମ ହୋଇ
ଭରତ ପତ୍ନୀ ଗର୍ଭେ ହୋଇ—ଜଗନ୍ନାଥ. ଭାଗବତ ।

୭ । ଅସୁରବିଶେଷ ( ହି. ଶ. )—
7. Name of a demon.
୮ । ଏକପ୍ରକାର ଢୋଲ ( ହି. ଶ. )—
8 A kind of drum.
୯ । ଏକପ୍ରକାର ବୀଣା (ହି. ଶ.)—9. A kind of harp.
୧୦ । ଶିବ (ହି. ଶ.)—10 Siba.

**ପୁଷ୍କଳାବତୀ**— ସଂ. ବି —ଭରତ ରାଜାଙ୍କ ପୁତ୍ର ପୁଷ୍କଳଙ୍କଦ୍ୱାରା ସ୍ଥାପିତ ପଞ୍ଜାବ ଅନ୍ତର୍ଗତ ପ୍ରାଚୀନ ନଗରୀ—Name of an ancient town in Punjab founded by Pushkala the son of king Bharata
Pushkalābati

[ ଦ୍ର—ଏହା ଗାନ୍ଧାର ଦେଶର ପ୍ରାଚୀନ ରାଜଧାନୀ । ବିଷ୍ଣୁ ପୁରାଣରେ ଲେଖା ଅଛି ଯେ ଏହାକୁ ଭରତଙ୍କ ପୁତ୍ର ପୁଷ୍କଳ ସ୍ଥାପନ କରିଥିଲେ । ସିକନ୍ଦରଙ୍କ ଭାରତ ଆକ୍ରମଣ ସମୟରେ ଏ ନଗରୀ ଥିଲା । ଏରିଅନ ଆଦି ଗ୍ରୀକ୍ ଲେଖକମାନେ ପେଉକେଲ, ପ୍ୟୁକୋଲିଷ୍ଟିସ୍ ନାମରେ ଏହାକୁ ଉଲ୍ଲେଖ କରିଅଛନ୍ତି । ଏହାକୁ ଖ୍ରୀଷ୍ଟୀୟ ୭ମ ଶତାବ୍ଦୀରେ ଭାରତକୁ ଆସିଥିବା ଚୀନ ପରିବ୍ରାଜକ ହୁଏନ୍‌ସାଂ ଦେଖିଥିଲେ ଓ ଏଠାରେ ଗୋଟିଏ ହିନ୍ଦୁ ଦେବମନ୍ଦିର ଓ ବୌଦ୍ଧସ୍ତୂପ ଥିବାର ଲେଖିଅଛନ୍ତି । ପେଶବାରର ୯ କୋଶ ଉତ୍ତରରେ ସ୍ୱାତ ଓ କାବୁଲ ନଦୀର ସଙ୍ଗମସ୍ଥଳରେ ଥିବା ଆଧୁନିକ ହସ୍ତନଗର ଗ୍ରାମର ସ୍ଥାନରେ ଏ ନଗର ଥିଲା—ହି. ଶ. । ]

**ପୁଷ୍ଟ**—ସଂ. ବିଣ. ( ପୁଷ୍ ଧାତୁ+କର୍ମ. ତ )—୧ । ପ୍ରତିପାଳିତ—
Pushta 1. Brought up; maintained; nourished; cherished; supported.
(ପୁଷ୍ଟା—ସ୍ତ୍ରୀ)
(ପୁଷ୍ଟତା, ପୁଷ୍ଟି—ବି) ୨ । ସ୍ଥୂଳ; ମୋଟା—2 Fat; corpulent.
୩ । ଯାହାକୁ ଖାଦ୍ୟଦ୍ୱାରା ସ୍ଥୂଳକାୟ କରାଯାଇଥାଏ—
3. Fattened.
୪ । ବୃଦ୍ଧିଯୁକ୍ତ—4. Thrived.
୫ । ଦଗ୍ଧ—5. Burnt.
୬ । ପରିପୁଷ୍ଟ; ସୁପରିଣତ—Well developed.
[ ଦ୍ର—ଏହି ଶବ୍ଦ ଅନ୍ୟ କେତେକ ଶବ୍ଦ ପରେ ବ୍ୟବହୃତ ହୁଏ; ଯଥା—ଅଳ୍ପପୁଷ୍ଟ, କାକପୁଷ୍ଟ; ପରପୁଷ୍ଟ, ହୃଷ୍ଟପୁଷ୍ଟ, ପରାନ୍ନପୁଷ୍ଟ ଇତ୍ୟାଦି । ]
୭ । (କର୍ତ୍ତୃ. ତ) ବଳବର୍ଦ୍ଧକ, ପୋଷଣକାରୀ (ହି. ଶ) —
7. Nourishing.
ଗ୍ରା. ବି—.ସଂ. ପୃଷ୍ଠର ଅଶୁଦ୍ଧ ଉଚ୍ଚାରଣ) ପିଠି ପାଖ—
Back; back side.
ଗ୍ରା. ବିଣ—(ସଂ. ସ୍ପଷ୍ଟର ଅଶୁଦ୍ଧ ଉଚ୍ଚାରଣ)— ୧ । ସ୍ପଷ୍ଟ—
1. Clear.
୨ । ଭଲ; ଉତ୍ତମ—2. Good.

୧୦୨—ଶୁଣ ହେ ରାଜାରେ କହୁଛ ଧୂର୍ତ୍ତଙ୍କୁ,
ଉତ୍ତାଳି ପଚାରିବା ଟିକଏ କଥା ପୁଷ୍ଟ ।
କୃଷ୍ଣସିଂହ ମହାଭାରତ ଶଲ୍ୟ ।

ସଂ. ବି. ବିଷ୍ଣୁ (ହି. ଶ)—Bishnu.

**ପୁଷ୍ଟ ତାଡ଼ିତ**—ଦେ. ବି—( ଆଧୁନିକ ବିଜ୍ଞାନପରିଭାଷା )—ତାଡ଼ିତ ଶକ୍ତି ବିଶେଷ, ତାଡ଼ିତର ସଯୋଜନୀ ଶକ୍ତି—
Pushta tārdita
Positive electricity.

**ପୁଷ୍ଟଦା**—ଦେ. ବିଣ—(ସଂ. ପୁଷ୍ଟିଦ)—ଉନ୍ନତିପ୍ରଦ; ଶୁଭପ୍ରଦ—
Pushtadā Having prosperity.

ଆଉ ସବୁ କାମେ ବାମନାଭି ସେ ପୁଷ୍ଟଦା—ଶିବ ସ୍ୱରୋଦୟ ।

**ପୁଷ୍ଟାଙ୍ଗ**—ସଂ. ବି. ପୁଂ—(ବହୁବ୍ରୀହି; ପୁଷ୍ଟ+ଅଙ୍ଗ)—ସ୍ଥୂଳ, ମୋଟା; ସ୍ଥୂଳକାୟ—Fat; corpulent
Pushtānga
( ପୁଷ୍ଟାଙ୍ଗୀ – ସ୍ତ୍ରୀ )

**ପୁଷ୍ଟି**—ସଂ. ବି—(ପୁଷ୍ ଧାତୁ+ଭାବ. ତି)—୧ । ପୋଷଣ; ପ୍ରତିପାଳନ—
Pushti 1. Nourishment.
୨ । ପରିଣତି—2 Development
୩ । ବୃଦ୍ଧି, ଉନ୍ନତି—3. Thriving; flourishing; increase; prosperity; growth.
୪ । ପ୍ରଚୁରତା, ପର୍ଯ୍ୟାପ୍ତି—4. Abundance.
୫ । ପୂର୍ଣ୍ଣତା—5. Fullness.
୬ । ଅଶ୍ୱଗନ୍ଧା ଗଛ—
6. Physalis Flexuosa (plant)
୭ । ଷୋଡ଼ଶ ମାତୃକାରୁ ଏକତମା—7. One of the 16 nourishing she-Deities of the creation
ଦେ. ବି—ବଣିଆ, ତେଲି ପ୍ରଭୃତି ବ୍ୟବସାୟ ବୃତ୍ତିଜୀବୀ ଜାତିଙ୍କ ବଂଶୋପାଧିବିଶେଷ—A family title of goldsmith or oilman cast among Hindus.
[ଦ୍ର—ଏହି ଶବ୍ଦ ଅଶୁଦ୍ଧରୂପେ 'ପୃଷ୍ଟି' ବା 'ପୃଷ୍ଠି' ବୋଲି କେତେକ ଲେଖନ୍ତି ।]

**ପୁଷ୍ଟିକର**—ସଂ. ବିଣ—(ପୁଷ୍ଟି+କୃ ଧାତୁ+କର୍ତ୍ତୃ. ଅ)—୧ । ବୃଦ୍ଧିକାରକ, ବଳପ୍ରଦ, ଯାହା ଶରୀରକୁ ପୁଷ୍ଟ କରଏ—
Pushtikara
1. Nourishing; nutritious; causing growth.

ପୁଷ୍ଟିକାରକ, ପୁଷ୍ଟିଦ, ପୁଷ୍ଟିଦାତା, ପୁଷ୍ଟି ପ୍ରଦ } ଅନ୍ୟରୂପ

୨ । ଉନ୍ନତିକାରକ—
2. Producing prosperity.

**ପୁଷ୍ଟି କର୍ମ**—ଦେ· ବି—ଶୁଭ କର୍ମ—
Pushti karma Auspicious ceremonies.

ଶାନ୍ତ ବୋଲି ଗ୍ରହଶାନ୍ତି ପୁଷ୍ଟିକର୍ମ ଯେତେ
କରିବ ପୂର୍ବାଦି ବସି ଦକ୍ଷ ଚାନ ବୃତେ—ଶିବସ୍ୱରୋଦୟ ।

**ପୁଷ୍ଟିକା**—ସଂ. ବି—(ପୁଷ୍ଟି+ସଜ୍ଞାର୍ଥେ. କ+ସ୍ତ୍ରୀ. ଆ)—ଗେଣ୍ଡା ଶାମୁକା; ଜଳଶୁକ୍ତି—Oyster.
Pushtikā

**ପୁଷ୍ଟେ**—ଦେ. କ୍ରି. ବିଶ—ଗୁରୁତର ଭାବରେ—
Pushte Seriously.

ବସୁମତୀରେ ଭାର ହେଲେ ପୁଷ୍ଟେ
ବସୁ ମଠରେ ଏହି କଥା ପୁଷ୍ଟେ ।
ଭକ୍ତ. ବୈଦେହୀଶବିଳାସ ।

**ପୁଷ୍ପ (ଧାତୁ)**—ସଂ—ବିକସିତ ହେବା; ଫୁଟିବା—
Pushp (root) To blossom forth, to flower.

**ପୁଷ୍ପ**—ସଂ. ବି. (ପୁଷ୍ପ୍ ଧାତୁ+କର୍ତ୍ତୃ. ଅ)—୧ । ଫୁଲ—
Pushpa 1. Flower.

୨ । ସ୍ତ୍ରୀରଜଃ—2. Menses; menstrual flux.

୩ । (+ଭ୍ବ. ଅ) ବିକାଶ, ପ୍ରକାଶ—
3, Expansion; exhibition.

୪ । ନେତ୍ରରୋଗବିଶେଷ, ଆଖିର ଫୁଲ, ପଇଲ—
4. A disease of the eye; albugo; lencoma.

୫ । ପୁଷ୍ପକ ୧ (ଦେଖ)—5 Pushpaka 1. (See)

**ପୁଷ୍ପକ**—ସ. ବି.— (ପୁଷ୍ପ+କ)—୧ । କୁବେରଙ୍କ ରଥ—
Pushpaka 1. The chariot of God Kubera.

୨ । ଆଖିର ଫୁଲ ରୋଗ—2. Leucoma

୩ । ସୀସା—Lead.

୪ । ସ୍ଥାଗ୍‌କଶ—4. Green vitriol; iron sulphate.

୫ । ସୁରୁମା; ରସାଞ୍ଜନ—
5. Antimony; collyrium.

୬ । ରତ୍ନ ନିର୍ମିତ କଙ୍କଣ—7. A bracelet of jewels.
ବଳ ଶ୍ରବଣକୁ ଛାଡ଼ିବେ ପୁଷ୍ପକ ମଣ୍ଡନେ ହୋଇ ସବ୍ଜଣ୍ଡା ।
ଉପ୍ତ, ବୈଦେହୀଶବିଳାସ ।

୭ । ପିତ୍ତଳ—7. Brass.

୮ । ମାଟି ଭୁମ୍ବେଇ—
8. An earthen fire-pan.

ଦେ. ବି—ଫୁଲ—Flower.
ବୋଲେ ବୋଲଇ ଏ ପୁଷ୍ପକ ପୁଷ୍ପକ ତୋଳ ପିଙ୍ଗିବ ସାଗରେ
ଉପ୍ତ. ବୈଦେହୀଶବିଳାସ ।

ବିଣ— ମୃତ; ବିନାଶ ପ୍ରାପ୍ତ—
ବସାଇଣ ଅମ୍ଭକେ ଭୁଞ୍ଜିବ ପୁଷ୍ପକ
ବିମାନେ ପୁଷ୍ପକ ହେବା ର ମନେ ଅଜର ସୁଜିବ—
ଉପ୍ତ. ବୈଦେହୀଶବିଳାସ ।

**ପୁଷ୍ପକ ବିମାନ**—ସ. ବି (ନାମ)—କୁବେରଙ୍କ ରଥର ନାମ—
Pushpaka bimāna Name of the chariot of god Kubera.
ପୁଷ୍ପ ଯାନ, ପୁଷ୍ପକ ଯାନ, ପୁଷ୍ପକ ରଥ, ପୁଷ୍ପ ରଥ } ଅନ୍ୟରୂପ

**ପୁଷ୍ପ କରଣ୍ଡକ**—ସ. ବି—(ମ. ପ. ଲୋ; ପୁଷ୍ପ ରଖିବା ପାଇଁ ବ୍ୟବହୃତ କରଣ୍ଡକ)—୧ । ଫୁଲ ଗୁଣ୍ଡେଡ଼ା, ଫୁଲ ଡାଲା—
Pushpa karaṇḍaka 1. A tray of flowers, a basket of flowers.

। ଅବନ୍ତୀ ବା ଉଜ୍ଜୟିନୀ ନଗରସ୍ଥ ମହାକାଳ ନାମକ ଶିବଲିଙ୍ଗଙ୍କର ପ୍ରସିଦ୍ଧ ଉଦ୍ୟାନ—2. The garden belonging to the Deity Mahākāla in Ujjayini (N. W. India)

**ପୁଷ୍ପ କାଳ**—ବେ. ବି—୧ । ରାତ୍ରିକାଳ—
Pushpa kāla 1. Night.
ବର୍ଜୀବା ଅନ୍ତମେ ପୁଷ୍ପକାଳ ଶେଷ କରି ଅଶେଷ ତୋଷରଇ—
ଉପ୍ତ. ବୈଦେହୀଶବିଳାସ ।

୨ । ବସନ୍ତ ସମୟ—2. Time of spring.

୩ । (ସ୍ତ୍ରୀମାନଙ୍କର) ଋତୁକାଳ—
ବେଲେ ପୁଷ୍ପକାଳ ହେବାକୁ ମୋଣିବ ଶିବ ମନ୍ତ୍ରର ଜପାଇବ—
ଉପ୍ତ. ପ୍ରେମସୁଧାନିଧି ।

**ପୁଷ୍ପ କାସୀଶ**—ସ. ବି—ନୟନୌଷଧ; କଷ୍ଟିତ ପୀତବର୍ଣ୍ଣ ସ୍ଥାଗ୍‌କଶ ବିଶେଷ—
Pushpa kāsīśa Green vitriol or sulphate of iron
ପୁଷ୍ପ କାଲିଶ, ପୁଷ୍ପ କାଶୀଶ } ଅନ୍ୟରୂପ

**ପୁଷ୍ପ କୀଟ**—ସ. ବି—(ମ. ପ. ଲୋ, ପୁଷ୍ପ+କୀଟ)—୧ । ଭ୍ରମର—
Pushpa kīṭa 1. The black bee.

୨ । ଫୁଲକୁ ଆକ୍ରମଣ କରିବା ପୋକ—
2. Any insect attacking flowers

**ପୁଷ୍ପ କେତନ**—ସ. ବି (ବହୁବ୍ରୀହି; ପୁଷ୍ପ+କେତନ=ଚିହ୍ନ)—
Pushpa ketana ୧ । କାମଦେବ, କନ୍ଦର୍ପ, ପୁଷ୍ପଧନ୍ୱା—
1. Cupid (personified as a Deity)

୨ । କାଳକେତୁ ନାମକ ବ୍ୟାଧର ପୁତ୍ର—2. Name of the son of a flower named Kāḷaketu.

**ପୁଷ୍ପ ଗର୍ଭକ**—ସ. ବି— ଫୁଲର ତୋଡ଼ା ବା କେଣ୍ଡା—
Pushpa garbhaka A nosegay; a bouquet, a posy.

**ପୁଷ୍ପ ଗିରି**—ସ. ବି—ବରୁଣାଧିଷ୍ଠିତ ମାଲ୍ୟବାନ ପର୍ବତ—
Pushpa giri A fabulous mountain said to be the abode of the Sea-God.

**ପୁଷ୍ପ ଗୁଚ୍ଛ**—ସ. ବି—ଫୁଲର ଗୋଛା—
Pushpa guchchha A bunch of flowers.

**ପୁଷ୍ପ ଘାତକ**—ସ. ବି—(ବହୁବ୍ରୀହି; ପୁଷ୍ପ+ଘାତକ=ବିନାଶକ; ଫୁଲ ଫୁଟିଲେ ଯେଉଁ ଗଛ ମରିଯାଏ)—ବାଉଁଶ,
Pushpa ghātaka ବଂଶ—Bamboo.

**ପୁଷ୍ପ ଚୟନ**—ସ. ବି—(ଷଷ୍ଠୀ ତତ୍; ପୁଷ୍ପ+ଚୟନ)—ଫୁଲ ତୋଳିବା—
Pushpa chayana The plucking of flowers.
(ପୁଷ୍ପ ପ୍ରଚୟ; ପୁଷ୍ପ ପ୍ରଚୟ—ଅନ୍ୟରୂପ)

**ପୁଷ୍ପ ଚାପ**—ସ. ବି—(ବହୁବ୍ରୀହି; ପୁଷ୍ପ+ଚାପ)—୧ । ମଦନ; କନ୍ଦର୍ପ—
Pushpa chāpa 1. Cupid.
ପୁଷ୍ପ ଧନୁଃ, ପୁଷ୍ପ ଶରାସନ } ଅନ୍ୟରୂପ

୨ । (ମ. ପ. କର୍ମଧା) କନ୍ଦର୍ପଙ୍କ କର-ଧୃତ ଧନୁ—2. The bow of cupid.

[ ଦ୍ର—ଏହା ପାଞ୍ଚଗୋଟି ଫୁଲରେ ପ୍ରସ୍ତୁତ ଯଥା—ଅରବିନ୍ଦ, ଅଶୋକ, ଚୂତ, ନବମଲ୍ଲିକା ଓ ନୀଳୋତ୍ପଳ ।]

**ପୁଷ୍ପଚାମର**—ସ. ବି. (ବହୁବ୍ରୀହି; ପୁଷ୍ପ ଅଟେ ଚାମର ପରି ଯାହାର)—
Pushpa chāmara ୧ । ଦମନକ ବା ଦଅଣା ଗଛ—
1. Artemesia; a fragrant plant.

୨ । କେତକ ବୃକ୍ଷ; କିଆ ଓ କେତକୀ ଗଛ—
2. Pandenus; odoratissinus; Indian screwpine.

**ପୁଷ୍ପଜ**—ସ. ବିଣ. (ପୁଷ୍ପ+ଜନ୍ ଧାତୁ ଜାତ ହେବା+କର୍ତ୍ତୃ. ଅ)—
Pushpaja ପୁଷ୍ପରୁ ଜାତ—Born of flowers.
ବି.—ମଧୁ—Honey

**ପୁଷ୍ପ ଜୀବୀ**—ସ. ବି. ପୁଂ (ପୁଷ୍ପ+ଜୀବଧାତୁ+ଇନ୍; ୧ମା. ୧ବ.)—
Pushpa jībi ପୁଷ୍ପବ୍ୟବସାୟୀ; ଫୁଲୁରି; ମାଳୀ—
(ପୁଷ୍ପଜୀବିନୀ—ସ୍ତ୍ରୀ) A flower gardener.

ପୁଷ୍ପଦ—ସଂ. ବିଣ. (ପୁଷ୍ପ+ଦା ଧାତୁ+କର୍ତ୍ତୃ ଅ)—ଯେ ଫୁଲ ଦିଏ—
Pushpada Supplying flowers; giving or producing flower.
ବି.—ଫୁଲ ଧରିବା ଗଛ—Flowering plants.

ପୁଷ୍ପଦନ୍ତ—ସଂ. ବି. (ନାମ)—୧ । ବାୟୁକୋଣସ୍ଥ ଦିଗ୍‌ଗଜ—
Pushpadanta 1. The legendary elephant guarding the N W. quarters.
୨ । ଶିବଙ୍କର 'ମହିମ୍ନଃ ସ୍ତବ' ରଚୟିତା ଗନ୍ଧର୍ବବିଶେଷ—
2 Name of an aerial being who is the author of a famous hymn addressed to Siba
[ ଦ୍ର—ଶିବାନୁଚର ଗନ୍ଧର୍ବରାଜ ଦିନେ ଲୁଚି କରି ମହାଦେବ ଓ ପାର୍ବତୀଙ୍କ ବିଶ୍ରମ୍ଭାଳାପ ଶୁଣୁଥିବା ଅପରାଧରୁ ମହାଦେବଙ୍କ ଅଭିଶାପରେ ମର୍ତ୍ତ୍ୟରେ କବି ବରରୁଚି ରୂପରେ ଜନ୍ମଗ୍ରହଣ କଲେ । ଦୁର୍ଗାଙ୍କ ସଖୀ ଜୟା ଏହାଙ୍କ ସ୍ତ୍ରୀ । ଏ ଶିବନିର୍ମାଲ୍ୟ ଲଙ୍ଘନ କରିବା ଦୋଷରୁ ଗନ୍ଧର୍ବତ୍ୱ ହରାଇଥିଲେ ଏବଂ ମହିମ୍ନଃ ସ୍ତବ ରଚନାପୂର୍ବକ ତାହା ଗାନ କରି ମହାଦେବଙ୍କୁ ପ୍ରସନ୍ନ କରାଇ ପୁଣି ଗନ୍ଧର୍ବ ଶରୀର ପ୍ରାପ୍ତ ହେଲେ । ଏହି ସ୍ତବ ଓଡ଼ିଶାରେ ମହିମ୍ନ ନାମରେ ପ୍ରସିଦ୍ଧ । ଏହି ସ୍ତବର ପ୍ରଥମ ଶ୍ଳୋକର ଆଦ୍ୟ ଶବ୍ଦ 'ମହିମ୍ନଃ ପାରଂ ତେ' । ]
୩ । ନାଗବିଶେଷ—3. Name of a legendary serpent.

ପୁଷ୍ପ ଦାମ—ସଂ. ବି. ( ପୁଷ୍ପ+ଦାମନ୍=ମାଳ )—୧ । ଫୁଲର ମାଳା—
Pushpa dāma 1 A garland or wreath of flowers
୨ । ୧୯ ଅକ୍ଷର ପାଦବିଶିଷ୍ଟ ଛନ୍ଦୋବିଶେଷ—
2. A metre consisting of lines of 19 letters.
[ ଦ୍ର—ଶିବ ମହିମ୍ନଃ ସ୍ତବ ଏହି ଛନ୍ଦରେ ରଚିତ । ]

ପୁଷ୍ପ ଦ୍ରବ—ସଂ. ବି. ( ୬ଷ୍ଠୀ ତତ୍, ପୁଷ୍ପ+ଦ୍ରବ )—୧ । ପୁଷ୍ପସାର—
Pushpa draba 1. Essence of flowers.
( ପୁଷ୍ପନିର୍ଯ୍ୟାସ—ଅନ୍ୟରୂପ ) ୨ । ମଧୁ, ମକରନ୍ଦ; ମହୁ—
2. Honey.

ପୁଷ୍ପଧ—ସଂ. ବି. (ପୁଷ୍ପ+ଧା. ଧାତୁ+ଅ)—ପତିତ ବ୍ରାହ୍ମଣର ସନ୍ତାନ—
Pushpadha The offspring of an outcasted Brāhmaṇa.

ପୁଷ୍ପଧନ୍ୱା—ସଂ. ବି. (ପୁଷ୍ପ ଧନ୍ୱନ୍ ଶବ୍ଦ, ୧ମା. ୧ବ, ପୁଷ୍ପ+ଧନୁସ୍, ଧନୁସ୍=ଧନ୍ୱନ୍, ପୁଷ୍ପରେ ନିର୍ମିତ ଧନୁ ଯାହାର )—
Puspadhanwā
ମଦନ; ପୁଷ୍ପଚାପ—God Cupid.

ପୁଷ୍ପ ପତ୍ର—ସଂ. ବି ( ୬ଷ୍ଠୀ ତତ୍, ପୁଷ୍ପ+ପତ୍ର )—୧ । ଫୁଲର ପାଖୁଡ଼ା—
Pushpa patra 1. The petals of a flower.
୨ । ( ଦ୍ୱନ୍ଦ୍ୱ ) ଫୁଲ ଓ ପତ୍ର—
2. The flower and the leaf.

ପୁଷ୍ପପଥ—ସଂ. ବି. ( ୬ଷ୍ଠୀ ତତ୍, ପୁଷ୍ପ=ସ୍ତ୍ରୀ ରଜଃର+ପଥିନ୍=ପଥ )—
Pushpa patha ଯୋନି; ସ୍ତ୍ରୀଜନନେନ୍ଦ୍ରିୟ—Vagina; the vulva; the female generative organ.

ପୁଷ୍ପ ପରାଗ—ସଂ. ବି—ଫୁଲର ରେଣୁ—
Pushpa parāga The pollen of flowers.

ପୁଷ୍ପ ପାଳକ—ଦେ. ବି—ପଶୁପାଳକ ( ଦେଖ )
Pushpa pālaka Pasupālaka ( See.)

ପୁଷ୍ପ ପୁର—ସଂ ବି. (ନାମ)—ପାଟଳୀପୁତ୍ର ନଗର, ( ଆଧୁନିକ ) ପାଟନା—
Pushpa pura The ancient name of modern town of Patna in Bihar.

ପୁଷ୍ପ ଫଳ—ସଂ ବି. ( ବହୁବ୍ରୀହି, ପୁଷ୍ପ+ଫଳ )—୧ । କଇଥ, କପିତ୍ଥ—
Pushpa phala 1 The wood apple.
୨ । ପାଣିକଖାରୁ, ବୋଇତି କଖାରୁ ଓ ଲାଉ, କୁଷ୍ମାଣ୍ଡ ଲତା—
2 The pumpkin and gourd (creepers); Benin Cassa; Cerifera.
୩ । (ଦ୍ୱନ୍ଦ୍ୱ) ଫୁଲ ଓ ଫଳ—Flower and fruit.

ପୁଷ୍ପବତୀ—ସଂ. ବିଣ. ସ୍ତ୍ରୀ—ରଜସ୍ୱଳା, ଋତୋବତୀ—
Pushpabatī Menstruated.

ପୁଷ୍ପବନ୍ତ—ଦେ. ବି (ସଂ. ପୁଷ୍ପ+ଅନ୍ତ ଅର୍ଥରେ ବନ୍ତ)—ଚନ୍ଦ୍ର ଓ ସୂର୍ଯ୍ୟ—
Pushpa banta The sun and the moon.

ରୂପମ-ମାଡଙ୍ଗ ସେହି ଯେ
ଏଣୁ ପୁଷ୍ପବନ୍ତେ ଯୁକ୍ତ ହୋଇବାରେ ସମସ୍ତେ ଧାଇଁଲୁ ଧାଇସେ
ଉପେ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।

ପୁଷ୍ପ ବାଟିକା—ସଂ. ବି. ( ପୁଷ୍ପ+ବାଟିକା )—ଫୁଲ ବଗିଚା, ଫୁଲ ବାଡ଼ି;
Pushpa bāṭikā ବିହାରୋଦ୍ୟାନ—Flower garden;
(ପୁଷ୍ପବାଟୀ—ଅନ୍ୟରୂପ) pleasure garden.

ପୁଷ୍ପବାଣ—ସଂ. ବି ( ମ ପ. ଲୋ, କର୍ମଧା, ପୁଷ୍ପ+ବାଣ )—
Pushpa bāṇa ୧ । ମଦନର ପୁଷ୍ପ ନିର୍ମିତ ଶର—
ପୁଷ୍ପେଷୁ, ପୁଷ୍ପଶର, ପୁଷ୍ପଶାୟକ } ଅନ୍ୟରୂପ
1. The flowery arrows of God Cupid
୨ । ( ବହୁବ୍ରୀହି ) କାମଦେବ—
2 The God cupid.

ପୁଷ୍ପବାନ୍—ସଂ. ବିଣ. ( ପୁଷ୍ପବତ୍ ଶବ୍ଦ; ୧ମା. ୧ବ. )—ପୁଷ୍ପିତ—
Pushpabān (ପୁଷ୍ପବତୀ—ସ୍ତ୍ରୀ) Flowering.

ପୁଷ୍ପ ବାସ—ସଂ ବି (୬ଷ୍ଠୀ ତତ୍—ଫୁଲର ବାସନା—
Pushpa bāsa The scent of flowers

ପୁଷ୍ପବାସ ବଟିକା—ସଂ. ବି. (ବୈଦ୍ୟକ)—ସର୍ଦ୍ଦି ଓ ଶ୍ୱାସ ଆଦିର ଔଷଧ
Pushpabāsa baṭikā ବଟିକାବିଶେଷ—A medicinal pill prescribed in Āyurbeda for cold and asthma.

ପୁଷ୍ପବିଲଗ—ଦେ. ବିଣ—ପୁଷ୍ପବତୀ—
Pushpabilaga Menstruated.
ଉବେ ଉଲ ଶେଷ ତରୁ ହେଲ ପୁଷ୍ପବିଲଗରୁ—କବିସୂର୍ଯ୍ୟ. ସଙ୍ଗୀତ ।

ପୁଷ୍ପ ବିଷ—ସଂ. ବି (ବୈଦ୍ୟକ)—ଆୟୁର୍ବେଦୋକ୍ତ ପାଞ୍ଚ ପ୍ରକାର ବିଷାକ୍ତ
Pushpa bisha ଫୁଲ (ଜ୍ଞାନେନ୍ଦ୍ର)—Five poisonous flowers, mentioned in the Āyurbeda.
[ ଦ୍ର—ବେତ, କଦମ୍ବ, ବଲ୍ଲିଜ, କରମ୍ଭ ଓ ମହାକରମ୍ଭ ଏମାନଙ୍କର ଫୁଲ ବିଷାକ୍ତ ଅଟେ ଓ ଏହା ଖାଇଲେ ପେଟ ଫାମ୍ପି ବାନ୍ତି ଓ ମୂର୍ଚ୍ଛା ହୁଏ । ]

ପୁଷ୍ପ ବୃଷ୍ଟି—ସଂ. ବି. ( ୬ଷ୍ଠୀ ତତ୍, ପୁଷ୍ପ+ବୃଷ୍ଟି )—ଶୂନ୍ୟରୁ ବା ଉପରୁ
Pushpa brushṭi ବର୍ଷିଲି ପରି ଫୁଲ ପଡ଼ିବା—The raining
(ପୁଷ୍ପବର୍ଷଣ—ଅନ୍ୟରୂପ) or showering of flowers on a person from above or the sky.

[ ଦ୍ର— ପୂର୍ବେ ଦେବତାମାନେ କୌଣସି ବ୍ୟକ୍ତି ଉପରେ ସନ୍ତୁଷ୍ଟ ହେଲେ ତା ଉପରେ ଆକାଶରୁ ପୁଷ୍ପବୃଷ୍ଟି କରୁଥିଲେ । ଏବେ କୋଠା ଉପରେ ଉଠି ଲୋକେ ତଳେ ଯାଉଥିବା ବ୍ୟକ୍ତି ଉପରେ ଫୁଲ ପକାଉ ଅଛନ୍ତି । ]

**ପୁଷ୍ପ ଭୂଷଣ**—ସ. ବ ( ତୃତୀୟା ତତ୍, ପୁଷ୍ପ+ଭୂଷଣ )—୧ । ଫୁଲରେ ମଣ୍ଡିତ ହେବା—1. Flower decoration; bedecking one-self with flowers; adorning the body with flowers.
Pushpa bhūshana
(ପୁଷ୍ପମଣ୍ଡନ—ଅନ୍ୟରୂପ)
୨ । (୬ଷ୍ଠୀତତ୍)ପୁଷ୍ପଦ୍ୱାରା ରଚିତ ଅଳଙ୍କାର—2. Ornaments made of flowers instead of gold and jewellery

**ପୁଷ୍ପ ଭେଦ**—ଦେ. ବ—ପ୍ରଥମ ରଜୋ ଦର୍ଶନ—First menstruation
Pushpa bheda

ଭୁସୁମ ସମୟ କାଳେ ଅବଳାମଣି
ପୁଷ୍ପଭେଦ ପାଇଲା ଉପିକା ରମଣୀ—
ଶିଶୁଶଙ୍କର ଉଷା ଅଭିଳାଷ ।

**ପୁଷ୍ପ ମଞ୍ଜରିକା**—ସ. ବ—ନୀଳ ପଦ୍ମ—The blue lotus.
Pushpa mañjarikā

**ପୁଷ୍ପମୟ**—ସ ବ—୧ । ଫୁଲ ନିର୍ମିତ—1. Made of flowers, floral
Pushpamaya
୨ । ଫୁଲରେ ପୂର୍ଣ୍ଣ—2. Flowery.

**ପୁଷ୍ପ ମାସ**—ସ. ବ—(ମ. ପ. ଲୋ; ପୁଷ୍ପୋଦ୍ଗମ ହେବା ମାସ)—
Pushpa māsa ୧ । ମଧୁ ମାସ; ଚୈତ୍ର ମାସ—1. The month of Chaitra.
୨ । ବସନ୍ତ କାଳ—2. The spring time

**ପୁଷ୍ପମିତ୍ର**—ଦେ. ବ (ନାମ)—ମିତ୍ର ବଂଶର ସ୍ଥାପନକର୍ତ୍ତା -The founder of the Mitra dynasty.
Pushpa mitra
[ଦ୍ର—ଏ ମୌର୍ଯ୍ୟବଂଶର ଶେଷ ରାଜାଙ୍କୁ ବଧ କରି ମୌର୍ଯ୍ୟ ସିଂହାସନ ଅଧିକାର କରିଥିଲେ ଓ ସମଗ୍ର ଆର୍ଯ୍ୟାବର୍ତ୍ତରେ ଏକେଶ୍ୱର ସମ୍ରାଟ ହୋଇଥିଲେ । ସେ ବ୍ରାହ୍ମଣ ଥିବାରୁ ତାଙ୍କ ରାଜତ୍ୱରେ ବୌଦ୍ଧ ଧର୍ମ ପରିବର୍ତ୍ତରେ ବ୍ରାହ୍ମଣ ଧର୍ମ ପୁଣି ପ୍ରସାର ପାଇଥିଲା—
କୃପାସିନ୍ଧୁ ଇତିହାସ ।]

**ପୁଷ୍ପ ରଜଃ**—ସ. ବ—(୬ଷ୍ଠୀ ତତ୍; ପୁଷ୍ପ+ରଜଃ)—କୁସୁମ ପରାଗ; ଫୁଲର ରେଣୁ—The pollen or farina of flowers.
Pushpa rajaḥ
(ପୁଷ୍ପରେଣୁ—ଅନ୍ୟରୂପ)

**ପୁଷ୍ପ ରସ**—ସ. ବ—(୬ଷ୍ଠୀ ତତ୍; ପୁଷ୍ପ+ରସ)—ମକରନ୍ଦ, ମଧୁ; ମଧୁ—Honey from flowers.
Pushpa rasa
(ପୁଷ୍ପରସାହ୍ୱ—ଅନ୍ୟରୂପ)

**ପୁଷ୍ପ ରାଗ**—ସ. ବ—(ବହୁବ୍ରୀହି; ପୁଷ୍ପର ରାଗପରି ରାଗ = ବର୍ଣ୍ଣ ଯାହାର)
Pushpa rāga ପଦ୍ମରାଗ ମଣି; ପୋଖରାଜ, ପୀତ ସ୍ଫଟିକ—Topaz (gem).

**ପୁଷ୍ପ ଲିହ**—ସ. ବ—(ପୁଷ୍ପ+ଲିହ୍ ଧାତୁ+କର୍ତ୍ତୃ. ଅ)—ଭ୍ରମର—The black bee.
Pushpa liha

**ପୁଷ୍ପ ଶକଟୀ**—ସ. ବ—୧ । ଆକାଶବାଣୀ, ଦୈବବାଣୀ—1. A voice from heaven.
Pushpa śakaṭi

୨ । ପୁଷ୍ପ ବୃଷ୍ଟି—2 A shower of flowers falling from the sky.

**ପୁଷ୍ପ ଶୂନ୍ୟ**—ସ. ବଣ—ଯହିଁରେ ଫୁଲ ଧରେ ନାହିଁ—Flowerless
Pushpa śūnya ବ—ଡମ୍ବିର ଗଛ—The fig tree.

**ପୁଷ୍ପ ଶୂନ୍ୟା**—ସ. ବ. ସ୍ତ୍ରୀ—ଯେଉଁ ସ୍ତ୍ରୀର ଆଦୌ ଋତୁ ହୁଏ ନାହିଁ; ହେଡ୍ଗେଲୀ, ଅପୁଷ୍ପୀ ମାଇକିନିଆ—A woman who has had never any mens.
Puspa śūnyā

**ପୁଷ୍ପ ଶ୍ରୀ**—ସ. ବ (ମ ପ. ଲୋ)—ଅନେକ ଗୁଡ଼ିଏ ସୁନ୍ଦର ଫୁଲ ଫୁଟିଥିବାରୁ ତଜ୍ଜନିତ ସୌନ୍ଦର୍ଯ୍ୟ—The beauty of flowers abounding at a place
Pushpa śri

**ପୁଷ୍ପ ସମୟ**—ସ. ବ—୧ । ବସନ୍ତ କାଳ—1. The spring.
Pushpa samaya ୨ । ସ୍ତ୍ରୀର ଋତୁକାଳ—2. Menstrual period.

**ପୁଷ୍ପ ସାର**—(୬ଷ୍ଠୀ ତତ୍, ପୁଷ୍ପ+ସାର)—୧ । ଫୁଲର ମଧୁ—
Pushpa sāra 1. Nectar or honey of flowers.
ପୁଷ୍ପ ସ୍ୱେଦ } ଅନ୍ୟରୂପ
ପୁଷ୍ପ ସତ୍ତ୍ୱ
୨ । ଫୁଲର ନିର୍ଯ୍ୟାସ—2 Essence of flowers.
୩ । (ବହୁବ୍ରୀହି) ତୁଳସୀ—3. The holy Basil.

**ପୁଷ୍ପ ହାସ**—ସ. ବ—(ବହୁବ୍ରୀହି, ପୁଷ୍ପର ବିକାଶ ପରି ବିକାଶ ଯାହାଙ୍କର)—
Pushpa hāsa ୧ । ବିଷ୍ଣୁ—1. Bishṇu.
୨ । (୬ଷ୍ଠୀ ତତ୍) ଫୁଲ ଫୁଟିବା—
2. The blooming of flowers.

**ପୁଷ୍ପହାସା**—ସ. ବ. ସ୍ତ୍ରୀ—ରଜସ୍ୱଳା, ଋତୁମତୀ ସ୍ତ୍ରୀ—
Pushpahāsā A woman during her menses.

**ପୁଷ୍ପ ହୀନ**—ସ. ବଣ—(୩ୟା ତତ୍; ପୁଷ୍ପ+ହୀନ)—୧ । ପୁଷ୍ପବର୍ଜିତ—
Pushpa hina 1. Flowerless; destitute of flowers.
୨ । ଅପୁଷ୍ପକ ଯହିଁରେ ଫୁଲ ଫୁଟେ ନାହିଁ—2. Having no flowers, which does not bear flowers; not flowering.
(ପୁଷ୍ପହୀନା—ସ୍ତ୍ରୀ)
ବ—ଡମ୍ବିର—Ficus Hispida; the fig tree.

**ପୁଷ୍ପ ହୀନା**—ସ. ବ. ସ୍ତ୍ରୀ—୧ । ନିବୃତ୍ତରଜସ୍କା ସ୍ତ୍ରୀ—
Pushpa hinā 1. A woman past her menses
୨ । ବନ୍ଧ୍ୟା ସ୍ତ୍ରୀ—2 Barren woman.
୩ । ଡମ୍ବିର ଗଛ—3 The fig tree.

**ପୁଷ୍ପା**—ସ. ବ—(ନାମ)—କର୍ଣ୍ଣପୁରୀ; ଭାଗଲପୁର—The ancient name of the modern Bhagalpur.
Pushpā

**ପୁଷ୍ପାଜୀବ**—ସ ବ. ପୁଂ—(ବହୁବ୍ରୀହି; ପୁଷ୍ପ+ଆଜୀବ=ଜୀବିକା)—
Pushyājiba ଫୁଲର ମାଳୀ—A flower gardener; flower-man; florist.
(ପୁଷ୍ପାଜୀବୀ—ଅନ୍ୟରୂପ) [ପୁଷ୍ପାଜୀବା—ସ୍ତ୍ରୀ]

**ପୁଷ୍ପାଞ୍ଜନ**—ସ. ବ (ବୈଦ୍ୟକ)—ଦାରୁ ହରିଦ୍ରା ପ୍ରଭୃତିରେ ପ୍ରସ୍ତୁତ ଏକ ପ୍ରକାର ଅଞ୍ଜନ—A collyrium made from turmeric.
Pushpāñjana
[ ଦ୍ର- ଏହା ନେତ୍ର ରୋଗରେ ବିଶେଷ ଉପକାରୀ ।]

**ପୁଷ୍ପାଞ୍ଜଳି**—ସ. ବି—(୬ଷ୍ଠୀ ତତ୍; ପୁଷ୍ପ+ଅଞ୍ଜଳ) —ଦେବତାଙ୍କ ଉପରକୁ
Pushpāñjali ଫୋପଡ଼ା ଯିବା ଫୁଲର ଅଞ୍ଜୁଳା, ଅଞ୍ଜଳଏ ଫୁଲ—
A handful of flowers to be presented to a Deity; flowers contained inside the hollow or cup made by folding the two palms together.

**ପୁଷ୍ପାବଚୟ**—ସ. ବି. ( ୬ଷ୍ଠୀ ତତ୍, ପୁଷ୍ପ+ଅବଚୟ )— ଫୁଲତୋଳା—
Pushpābachāya Gathering of flowers

**ପୁଷ୍ପାବଚୟୀ**—ସ. ବି. ପୁଂ. ( ପୁଷ୍ପ+ଅବଚୟିନ୍, ୧ମା ୧ବ. )—
Pushpābachāyi ପୁଷ୍ପାଜୀବ (ଦେଖ)—Pushpājiba(See)
(ପୁଷ୍ପାବଚୟିନୀ—ସ୍ତ୍ରୀ)

**ପୁଷ୍ପାୟୁଧ**—ସ ବି—୧ । (ବହୁବ୍ରୀହି) କାମଦେବ—1 God Cupid
Pushpāyudha ୨ । ( ମ. ପ. ଲୋ. କର୍ମଧା ) କାମଦେବଙ୍କ
(ପୁଷ୍ପାସ୍ତ୍ର—ଅନ୍ୟରୂପ) ଧନୁ ଓ ଶର—2. The bow and the arrows of God Cupid.

**ପୁଷ୍ପାର୍କ**— ସ. ବି (ବୈଦ୍ୟକ'—ଫୁଲରୁ କଢ଼ା ହେବା ଅରଖ—Essence
Pushpārka distilled from certain flowers by putting them inside the petals of screwpine.
[ ଦ୍ର— ସେବତୀ, ପଦ୍ମ, ବାସନ୍ତୀ, ଗୋଲାପ, ଚମେଲି, ଯୂଇ, ଚମ୍ପା, ବଉଳ, କଦମ୍ବ ପ୍ରଭୃତି ଫୁଲର ପାଖୁଡ଼ାକୁ କେତକୀ ଫୁଲର ପାଖୁଡ଼ା ମଧ୍ୟରେ ପୂରାଇ ଯଥାବିଧି ଅରଖ ବା ନିର୍ଯ୍ୟାସ ବାହାର କରାଯାଏ ।
ଏହା ଧ୍ୱଜଭଙ୍ଗ, ଯକ୍ଷ୍ମା ଆଦି ରୋଗରେ ବିଶେଷ ଉପକାରୀ । ]

**ପୁଷ୍ପାସବ**—ସ. ବି. ( ୬ଷ୍ଠୀ ତତ୍; ପୁଷ୍ପ+ଆସବ )—ମକରନ୍ଦ, ଫୁଲର
Pushpāsaba ମଧୁ—Flower honey.

**ପୁଷ୍ପାହ୍ୱା**—ସ. ବି ସ୍ତ୍ରୀ. ( ପୁଷ୍ପ+ଆଙ୍ଗ୍ ଧାତୁ+ଅ+ସ୍ତ୍ରୀ. ଆ )—ଶତପୁଷ୍ପା,
Pushpāhwā ସଉପ—A sort of fennel; Anethum Sowa

**ପୁଷ୍ପିକା**—ସ. ବି. (ପୁଷ୍ପକ+ସ୍ତ୍ରୀ. ଆ )—୧ । ଦନ୍ତମଳ—
Pushpikā 1 The tartar of the teeth.
୨ । ଲିଙ୍ଗମଳ, ଗେହା —2. The mucous of the glans penis or urethra.
୩ । ଝିଙ୍କାରୀ ବା ଝିଣ୍ଟିକାବିଶେଷ—
3. A kind of cricket or grasshopper.
୪ । ଗ୍ରନ୍ଥର ଅଧ୍ୟାୟ ଶେଷରେ ବା ଗୀତ ଶେଷରେ ଗ୍ରନ୍ଥକାରଙ୍କ ନିଜର ପରିଚୟସୂଚକ ବାକ୍ୟ; ଭଣିତା—4. The peroration or concluding portion of an essay or song containing biographical allusion of the author himself.

**ପୁଷ୍ପିତ**—ସ. ବିଣ—(ପୁଷ୍ପ+ସଞ୍ଜାତ ଅର୍ଥେ ଇତ)—୧ । କୁସୁମିତ;
Pushpita ଜାତପୁଷ୍ପ—1. Flowering; in flower; flowered.
(ପୁଷ୍ପିତା—ସ୍ତ୍ରୀ)
୨ । ପ୍ରସ୍ଫୁଟିତ—2. Blossommed.
୩ । ପ୍ରକାଶିତ—3 Expanded; manifested.

**ପୁଷ୍ପିତା**—ସ ବିଣ ସ୍ତ୍ରୀ—ଋତୁମତୀ (ସ୍ତ୍ରୀ)—
Pushpita Menstruated

**ପୁଷ୍ପିତାଗ୍ରା**—ସ. ବି—ସଂସ୍କୃତ ଛନ୍ଦୋବିଶେଷ—
Pushpitāgrā Name of a Sanskrit metre.
[ଦ୍ର—ଏଥିର ୧ମ ଓ ୩ୟ ଚରଣରେ ୧୨ ଅକ୍ଷର ଓ ୨ୟ ଓ ୪ର୍ଥ ଚରଣରେ ୧୩ ଅକ୍ଷର ଥାଏ । ଲକ୍ଷଣ ଯଥା—
ଅଯୁଜି ନଯୁଗ ରେଫତୋ ଯକାରୋ
ଯୁଜି ଚ ନଜୌ ଜରଗାଶ୍ଚ ପୁଷ୍ପିତାଗ୍ରା—
ଛନ୍ଦୋମଞ୍ଜରୀ ।]

**ପୁଷ୍ପୀ**—ସ ବି—(ପୁଷ୍ପ+ଅସ୍ତି ଅର୍ଥରେ ଇନ୍; ୧ମା. ୧ବ)—ପୁଷ୍ପଯୁକ୍ତ;
Pushpi ପୁଷ୍ପିତ—Flowering; bearing flowers.
(ପୁଷ୍ପିଣୀ —ସ୍ତ୍ରୀ)

**ପୁଷ୍ପେଷୁ**—ସ. ବି—[ବହୁବ୍ରୀହି, ପୁଷ୍ପନିର୍ମିତ ଇଷୁ (ବାଣ) ଯାହାର]—
Pushpeshu କାମଦେବ; ପୁଷ୍ପଧନ୍ୱା—The God of love, Cupid.

**ପୁଷ୍ପୋତ୍ସବ**—ସ. ବି—(ମ. ପ. ଲୋ, ପୁଷ୍ପଦର୍ଶନୋପଲକ୍ଷେ ଉତ୍ସବ)—
Pushpotsaba ୧ । ବାଳିକାର ପ୍ରଥମ ରଜୋଦର୍ଶନ ଉପଲକ୍ଷରେ କରାଯିବା ଉତ୍ସବବିଶେଷ—1 A ceremony observed at the first menstruation of a girl.
୨ । ଫୁଲଦ୍ୱାରା କ୍ରୀଡ଼ା ବା ଉତ୍ସବ—
2 A sporting with flowers; a flower-show.
୩ । ଆଶୀର୍ବାଦ ଘର—3 Remarriage ceremony; consummation of marriage.
ସେ ବଧୂ ପୁଷ୍ପୋତ୍ସବ ଅନ୍ତେ
ପତ୍ନୀ ଅଣାଇ ଗୃହ ବାସେ । ଜଗନ୍ନାଥ ଭାଗବତ ।

**ପୁଷ୍ପୋଦ୍ୟାନ**—ସ. ବି. ( ମ. ପ. ଲୋ. କର୍ମଧା; ପୁଷ୍ପ + ଉଦ୍ୟାନ )—
Pushpodyāna ଫୁଲ ବଗିଚା—A flower garden.

**ପୁଷ୍ୟ**—ସ. ବି. ( ପୁଷ୍ ଧାତୁ+କର୍ତ୍ତୃ. ଯ )—୧ । ୨୭ ଗୋଟି ନକ୍ଷତ୍ର
Pushya ମଧ୍ୟରୁ ୮ମ ନକ୍ଷତ୍ର, ସମକାନ୍ତି ବିଭୁଜ ପରି ୩ଟି ତାରାର
(ପୁଷ୍ୟା—ଅନ୍ୟରୂପ) ମଝିରେ ଥିବା କ୍ଷୀଣ ନକ୍ଷତ୍ରପୁଞ୍ଜ —
1. The 8th lunar astrerism; the Asses and the Manger.
[ ଦ୍ର—ନକ୍ଷତ୍ର ତଳେ କୋଠି ଦେଖ । ]
୨ । ପୌଷମାସ—2. The lunar month of pausha ( December and January ).
୩ । କଳିଯୁଗ—3. The Kali or fourth age of the world.

**ପୁଷ୍ପ** ଗ୍ରା. ବି. ( ସ. ପୁଷ୍ପ )—୧ । ଫୁଲ—1. Flower.
୨ । ସ୍ତ୍ରୀ ରଜଃ—2, The menses of females.
ପ୍ରାଦେ. ( ବାଲେଶ୍ୱର ) ବିଣ—ପୋଷ୍ୟ ( ପୁତ୍ର )—
Adopted ( son )

**ପୁଷ୍ୟପାଳକ**—ଗ୍ରା. ବି. (ସ. ପୁଷ୍ପ ଓ ପାଳକ)—ପଶୁପାଳକ (ଦେଖ)
Pushyapālaka Pasupālaka (See)

**ପୁଷ୍ୟବତୀ**—ଗ୍ରା. ବିଣ. ସ୍ତ୍ରୀ·—ପୁଷ୍ପବତୀ (ଦେଖ)
Pushyabati Pushpabati (See)

**ପୁଷ୍ୟରଥ**—ସ. ବି.—୧ । ଚକ୍ର ଯାନ—
Pushya ratha 1 A wheeled conveyance.
୨ । କ୍ରୀଡ଼ା ରଥ—2 A pleasure car.

**ପୁଷ୍ୟଲକ**—ସ. ବି.—(ପୁଷ୍ ଧାତୁ+ଇ=ପୁଷି=ପୁଷ୍ଟି ନିମିତ୍ତ+ଅଲ୍ ଧାତୁ
Pushyalaka =ପର୍ଯ୍ୟାପ୍ତ ହେବା+କର୍ତ୍ତୃ. ଅ, ପୁଷ୍ୟଲ+କ)—
୧ । ଗନ୍ଧମୃଗ, କସ୍ତୁରୀ ମୃଗ—1. Musk deer.
୨ । କ୍ଷପଣକ—2. A naked mendicant
୩ । ଖିଲା, ଗୋଞ୍ଜ—3. A pin; peg; bolt; stake.

**ପୁଷ୍ୟ ସ୍ନାନ**—ସ. ବି. (ଜ୍ୟୋତିଷ)—ପୌଷ ପୂର୍ଣ୍ଣିମା, ପୌଷ ମାସରେ ଚନ୍ଦ୍ର
Pushya snāna ପୁଷ୍ୟା ନକ୍ଷତ୍ରକୁ ଗମନ କଲେ ଯେଉଁ ଯୋଗ
ହୁଏ ତହିଁରେ ରାଜା ଓ ଦେବତାଙ୍କର ସ୍ନାନ, ପୁଷ୍ୟାଭିଷେକ—
A sacred bath taken at the conjunction of the moon with the 'Pushyā' asterism; fullmoon day of the month of 'Pausha'.

**ପୁଷ୍ୟାଧୀନ**—ଗ୍ରା. ବିଣ. (କଟକିଆ) (ସ. ପୋଷ୍ୟ+ଅଧୀନ)—ଅନ୍ୟଦ୍ୱାରା
Pushyādhīna ପ୍ରତିପାଳିତ ବା ପୋଷା ଯାଉଥିବା—
Maintained by another.
(ଯଥା—ସେ ପିଲାଟି ଆମ୍ଭର ପୁଷ୍ୟାଧୀନରେ ଥିଲା ।)

**ପୁଷ୍ୟାଭିଷେକ**—ସ. ବି.—୧ । ପୁଷ୍ୟସ୍ନାନ ଯୋଗରେ ରାଜାମାନଙ୍କର
Pushyābhisheka ସିଂହାସନରେ ଅଭିଷେକ—1. The ceremonial investiture of kings during the 'Pushya snāna' conjunction.
୨ । ପୁଷ ମାସ ପୂର୍ଣ୍ଣିମା ଦିନ ଜଗନ୍ନାଥ ଓ ଲିଙ୍ଗରାଜଙ୍କର ଅଭିଷେକ ଓ ତତ୍ସମ୍ବନ୍ଧୀୟ ସମ୍ବନ୍ଧିତ ଯାତ୍ରା—2. Festival of the Deities Jagannātha and Lingarāja on the fullmoon day of the month of Pausha.

**ପୁସ୍ତ୍** (ଧାତୁ)—ସ.—୧ । ବନ୍ଧନ କରିବା—
Pust (root) 1. To bind; to tie.
୨ । ଲେପନ କରିବା—2 To smear.
୩ । ସମ୍ମାନ କରିବା—3. To respect

**ପୁସ୍ତ**—ସ. ବି. (ପୁସ୍ତ୍ ଧାତୁ+କର୍ମ.ଅ, ଯାହା ବାନ୍ଧି କରି ରଖିବାକୁ
Pusta ହୁଏ)—୧ । ଗ୍ରନ୍ଥ; ବହି; ପୋଥି; ବନ୍ଧାଇ, ଖାତା—
(ପୁସ୍ତକ—ଅନ୍ୟରୂପ) 1. Book; manuscript.
(ପୁସ୍ତୀ,—ସ୍ତ୍ରୀ) ୨ । (+ଭାବ. ଅ) ଲେପନ ପ୍ରଭୃତି ଶିଳ୍ପ କର୍ମ—
2. Artistic smearing.
୩ । ଚିତ୍ର କର୍ମ—3. Painting.
୪ । ଲେପନ, ଲିପାପୋଛା—4. Plastering; besmearing; whitewashing.
୫ । ଧାତୁ ବା କାଷ୍ଠ ବା ମୃତ୍ତିକା ନିର୍ମିତ ବସ୍ତୁ—5. Any thing made of metal, wood or clay; any work of manual art.
ବିଣ.—୧ । ବଦ୍ଧ, ବନ୍ଧା ହୋଇଥିବା—1. Bound, tied.
୨ । ଆଚ୍ଛାଦିତ—2. Covered.
୩ । ପରିପୂର୍ଣ୍ଣ—3. Filled up.
ଦେ. ବି.—(ସ. ପୃଷ୍ଠ)—୧ । କାଗଜର ପିଠି ପାଖ—
1. Back side of a paper.
୨ । ପୃଷ୍ଠା—2. Page.
୩ । ବହିର ମଲାଟ—3. The outer cover or binding of a book.

**ପୁସ୍ତକ**—ସ. ବି. ( ପୁସ୍ତ+ସ୍ୱାର୍ଥେ. କ )—ପୁସ୍ତ ( ଦେଖ )
Pustaka ( ପୁସ୍ତିକା—ସ୍ତ୍ରୀ ) Pusta ( See )

**ପୁସ୍ତକ ଦାନା**—ଦେ. ବି.—ପୋସ୍ତକ ଦାନା (ଦେଖ)
Pustaka dānā Postaka dānā (See)
(ପୁସ୍ତଦାନା—ଅନ୍ୟରୂପ)

**ପୁସ୍ତ କର୍ମ**—ସ. ବି.—୧ । ଲେପନ କର୍ମ—
Pusta karma 1. Annointing, besmearing.
୨ । ଚିତ୍ର କର୍ମ—2 Painting.
୩ । ଶିଳ୍ପ କର୍ମ—3 Any work of art.

**ପୁସ୍ତକର୍ମା**—ସ. ବି. (ପୁସ୍ତ=ଲେପନ+କର୍ମନ୍; ପୁସ୍ତକର୍ମନ୍ ଶବ୍ଦ ୧ମା.
Pustakarmā ୧ବ)—୧ । ଶିଳ୍ପୀ—1. An artist; artisan; artificer.
୨ । ଚିତ୍ରକାର—2. A painter.

**ପୁସ୍ତକାଗାର**—ସ. ବି. (୬ଷ୍ଠୀ ତତ୍, ପୁସ୍ତକ+ଆଗାର)—ଲାଇବ୍ରେରୀ,
Pustakāgāra ଗ୍ରନ୍ଥମାନ ସଞ୍ଚିତ ହେବାର ସ୍ଥାନ—
(ପୁସ୍ତକାଳୟ—ଅନ୍ୟରୂପ) Library.

**ପୁସ୍ତକାଚାର୍ଯ୍ୟ**—ସ. ବି. ( ପୁସ୍ତକ+ଆଚାର୍ଯ୍ୟ )—ଯେଉଁ ବ୍ୟକ୍ତି ବୈଦିକ
Pustakāchārjya ଅନୁଷ୍ଠାନରେ ପୁସ୍ତକ ପାଠ କରି ପୁରୋହିତଙ୍କୁ
ସାହାଯ୍ୟ କରନ୍ତି—A person who reads the book during the performance of a rite.

**ପୁସ୍ତକାଧାର**—ସ.ବି. (୬ଷ୍ଠୀ ତତ୍; ପୁସ୍ତକ+ଆଧାର)—୧ । ବହି ରଖିବା
Pustakādhāra ବାକ୍ସ ବା ଆଲମାରୀ—Book shelf.
୨ । ବ୍ୟାସାସନ ( ଦେଖ )—2. Byāsāsana ( See )

**ପୁସ୍ତା**—ବୈଦେ. ବି. (ଫା ପୁସ୍ତାହ୍ )—୧ । ଉଚ୍ଚ ପକ୍କା କାନ୍ଥକୁ ମଜଭୁତ
Pustā କରିବା ପାଇଁ ତାହା ପଛରେ ଦିଆଯିବା ଠେସ କାନ୍ଥ—
1. A buttress added to strengthen a high wall; a bulwark.
୨ । ବନ୍ଧା ହେବା ବହି ବାନ୍ଧିବା ସମୟରେ ବହିର ପିଠି ପାଖରେ ଆଡ଼ ବାଗରେ ଯେଉଁ ସୂତା ବା କନା ଦିଆଯାଏ ଓ ବହିର ଫର୍ମାମାନ ସିଲାଇ ହୋଇଥିବା ସୂତାମାନଙ୍କୁ ଯେ ଟାଣି ରଖେ ଏବଂ ଯାହା ମଲାଟରେ ସଂଯୁକ୍ତ ହୁଏ (କବାଟର କବଜାଦ୍ୱାରା ଯେଉଁ କାର୍ଯ୍ୟ ହୁଏ ପୁସ୍ତାଦ୍ୱାରା ବନ୍ଧା ବହିର ସେହି କାମ ହୁଏ)—
2. A backing put at the back of a bound book through the threads of the different forms comprising the bound volume.

**ପୁସ୍ତାନ୍**—ବୈଦେ. ବ—(ଫା) —୧ । ପୁସ୍ତା (ଦେଖ)—
Pustān 1. Pustā (See)
(ପୋସ୍ତାନ୍—ଅନ୍ୟରୂପ) ୨ । ପୁସ୍ତାନି (ଦେଖ)—
2. Pustāni (See)

**ପୁସ୍ତାନି**—ବୈଦେ. ବ—(ଫା. ପୁସ୍ତାନ୍)—୧ । ମୂଳଦୁଆ—
Pustāni 1. Foundation.
(ପୋସ୍ତାନି—ଅନ୍ୟରୂପ) ୨ । ବଂଶର ଏକ ପୁରୁଷ –
1. One generation of a family.
୩ । ପୂର୍ବ ପୁରୁଷ—3. Ancestors
[ ଦ୍ର—ଇସ୍ତାନି ପରେ ପୁସ୍ତାନି ସହଚର ଶବ୍ଦରୂପେ ବ୍ୟବହୃତ ହୁଏ । ]

**ପୁସ୍ତିକା**—ସ. ବ—(ପୁସ୍ତକ+ସ୍ୱଳ୍ପାର୍ଥେ. ଆ)—ଛୋଟ ବହି; ଚଟି ବହି—
Pustikā Booklet; pamphlet.
( ପୁସ୍ତୀ—ଅନ୍ୟରୂପ )

**ପୁଷ୍ପୁସ**—ସ. ବ—ଫୁସ୍ ଫୁସ୍; ଶରୀରାଭ୍ୟନ୍ତରସ୍ଥ ନିଶ୍ୱାସ କୋଷ—
Pusphusa Lungs.

**ପୁଷ୍ପୁସ ଶ୍ୱାସକ**—ସ. ବଣ—( ପ୍ରାଣୀ-ବିଜ୍ଞାନ ପରିଭାଷା )—ଫୁସ୍‌ଫୁସ୍‌ଦ୍ୱାରା
Pusphusa śwāsaka ଯେଉଁ ପ୍ରାଣୀ ସ୍ଥଳଭାଗରେ ଶ୍ୱାସ ଗ୍ରହଣ କରେ, (ଯେଉଁ ଗେଣ୍ଡାମାନେ ସ୍ଥଳିରେ ଚଳନ୍ତି —
Pulmonate (snails).
ବ—ସ୍ଥଳଜ ଶମ୍ବୁକ; ଗେଣ୍ଡା—The land snail; the pulmonate; the garden snail.

**ପୁହର୍**—ପ୍ରାଦେ (ସମ୍ବଲପୁର) ବ— ମଳ; ମଇଳା—
Puhar Dirt; filth.
ବଣ—ମଇଳା; ମଳଆ—Dirty; filthy; foul

**ପୁହା(ହେ)ଇବା**—ଦେ. କ୍ରି—(ସ. ପ୍ରଭାତ)—୧ । ସାରାରାତି ଚେଇଁ
Puhā(he)ibā ରହିବା-1. To remain awake through-
(ପୋହାଇବା—ଅନ୍ୟରୂପ) out the night.
୨ । ପୁଆଇବା, ରାତି ପ୍ରଭାତ ହେବା ପର୍ଯ୍ୟନ୍ତ ସମସ୍ତ ଅତିବାହିତ କରିବା—2. To pass the night till dawn; to let the night dawn.

କାମିନୀ ସଙ୍ଗ ସେନ ପୁହାଇ ତୁ ଯଦି—
କୃଷ୍ଣସିଂହ, ମହାଭାରତ, ସଭା ।

୩ । ଅତିବାହିତ କରିବା; ସମୟ କ୍ଷେପଣ ବା ନଷ୍ଟ କରିବା—
3. To while away the time

ଦୁଃଖେ ରଜନୀ ପୁହାଇଲା
ନିଜ ସଭାରେ ବସେ ଜଗ—ଜଗନ୍ନାଥ, ଭାଗବତ ।

**ପୁହାଁରା**—ପ୍ରାଦେ. (ବାଲେଶ୍ୱର) ବ—ଧାନ ଗଛର କେଣ୍ଡାକୁ ନଷ୍ଟ
Puhāṅrā କରିବା ଏକ ପ୍ରକାର ପୋକ—A kind of insect that destroys the ears of paddy plants.

**ପୁହାଣ**—ପ୍ରାଦେ (ଜୟପୁର)—ବ—୧ । ପୁଆଳ (ଦେଖ)
Puhāṇa 1. Puāla (See)
୨ । ଖଣ୍ଡାଏତଙ୍କ ବଂଶୋପାଧିବିଶେଷ—
2. The family title of some Khaṇḍāetas.

**ପୁହୁଣା(ଣି)**—ପ୍ରାଦେ (ବାଲେଶ୍ୱର) ବ(ଭୁଲ ବ. ପୋନା)—ମାଛ ସାଆଁଳ—
Pahuṇā(ni) The young spawn or offspring of
[ପୋହଣା(ଣି)—ଅନ୍ୟରୂପ] fishes moving in shoals.

**ପୁହୁରା**—ପ୍ରାଦେ (ସମ୍ବଲପୁର) ବଣ—ଅପରିଷ୍କାର; ଅପରିଚ୍ଛନ୍ନ (ବ୍ୟକ୍ତି) —
Puhurā [ପହୁରୀ – ସ୍ତ୍ରୀ] Unclean (person); slovenly.

**ପୁହୁରି**—ପ୍ରାଦେ (ସମ୍ବଲପୁର) ବଣ. ସ୍ତ୍ରୀ—ଅନିଚ୍ଛୁକ—
Puhuri Unwilling.
(ପୁହୁରିଆ—ପୁଂ) ବ ସ୍ତ୍ରୀ.—ପୁହୁରାର ସ୍ତ୍ରୀଲିଙ୍ଗ—
The feminine of puhurā.

**ପୂ (ଧାତୁ)**—ସ—୧ । ପବିତ୍ର କରିବା—
Pū (root) 1. To purify.
୨ । ସଫା କରିବା—2. To cleanse.
୩ । ପବିତ୍ର ହେବା—
3 To become pure

**ପୂଗ**—ସ ବ –(ପୂ. ଧାତୁ+ଗ, କିମ୍ବା ପୂଜ୍ ଧାତୁ+କରଣ. ଅ)—
Pūga ୧ । ଗୁବାକ, ଗୁଆ—1 The areca nut (tree and fruit); Areca Catechu.
୨ । ସମାଜ—
2. Society; corporation.
୩ । ପଣସ ଗଛ—3 Jack fruit tree.
୪ । ସମୂହ; ରାଶି, ପୁଞ୍ଜ—
4. Multitude; collection; heap; quantity.
୫ । ଛନ୍ଦଃ—5 Metre

**ପୂଗ କୃତ**—ସ ବଣ –(ପୂଗ=ପୁଞ୍ଜ+କୃତ)—ପୁଞ୍ଜୀକୃତ; ରାଶୀକୃତ—
Pūga kṛuta Amassed; gathered into a heap; heaped up.

**ପୂଗ ପାତ୍ର**—ସ. ବ. ( ପୂଗ=ଗୁବାକ, ଅର୍ଥାତ୍ ଗୁବାକଯୁକ୍ତ ଚର୍ବିତ
Pūga pātra ତାମ୍ବୂଳ+ପାତ୍ର )—
(ପୂଗ ପୀଠ – ଅନ୍ୟରୂପ) ୧ । ଟିକିଦାନୀ—1 Spittoon used by betel-chewers.
୨ । ନିଷ୍ଠୀବନ ପାତ୍ର—2. A spittle pot.

**ପୂଗ ପୋତ**—ସ. ବ—ଛୋଟ ଗୁଆ ଗଛ—
Pūga pota Small areca nut tree.

କଦଳୀ ଦ୍ରୁମ ପୂଗପୋତେ
ତରୁ ପଲ୍ଲବ ମାଳ ଯୁତେ । ଜଗନ୍ନାଥ, ଭାଗବତ ।

**ପୂଗ ରୋଟ**—ସ. ବ. ( ପୂଗ=ଗୁଆ ଗଛ+ରୁଟ୍ ଧାତୁ=ଦୀପ୍ତି ପାଇବା
Pūga rota +ଅ, ଯାହା ଗୁଆ ଗଛ ପରି ଦେଖାଯାଏ )—
(ପୂଗ ରୋଟକ – ଅନ୍ୟରୂପ) ହିନ୍ତାଳ ଗଛ—The marshy date tree; Phœnix Paludosa.

**ପୂଙ୍ଗ**—ଦେ. ବ. ( ସ ପୁଙ୍ଗ )- ସମୂହ—
Pūṅga Collection.

ବଧୂ ଯାଉଛନ୍ତି ସଙ୍ଗେ, ବଡ ମାଦ୍ଦାଳୀ ବଜାଇ ପୂଙ୍ଗେ ।
ଭକ୍ତ ବୈଦେହୀଶବିଳାସ ।

**ପୂଜ୍ (ଧାତୁ)**—ସ—୧ । ପୂଜା କରିବା—
Pūj (root) 1. To worship; to adore.

୨ । ସମ୍ମାନ କରିବା—2 To respect.

**ପୂଜ**—ଦେ. ବି ( ସଂ. ପୂୟ ) —ପୂଯ, କ୍ଳେଦ—
Pūja Pus
ପୂଜ ଧଳ ପୂରୁଳ ଦଶ ଦଶେ
ପୂଂଜ କୁତ୍ସିତ ପୂଜ ଗନ୍ଧ ବାସେ । ନଟଲ୍ଲାଥ, ଘାଗରେ ।

**ପୂଜକ**—ସଂ. ବିଣ. ପୁଂ (ପୂଜ୍ ଧାତୁ+କର୍ତ୍ତୃ. ଅକ)—
Pūjaka ଯେ ପୂଜା କରେ—Worshipping
(ପୂଜିକା—ସ୍ତ୍ରୀ) ବି—୧ । ଉପାସକ—1. A worshipper.
୨ । ଦେବତାଙ୍କ ପୂଜାହାରୀ—2 A priest of a Deity.

**ପୂଜନ**—ସଂ. ବି. ( ପୂଜ ଧାତୁ+ଭାବ. ଅନ )—
Pūjana ବନ୍ଦନା, ପୂଜା, ଅର୍ଚ୍ଚନା—Worshipping.

**ପୂଜନୀ** ସଂ. ବି. ( ପୂଜନ+ଈ ) —ଘରଚଟିଆ ପକ୍ଷୀ—
Pūjani A sparrow.

**ପୂଜନୀୟ**—ସଂ. ବିଣ. ପୁଂ (ପୂଜ୍ ଧାତୁ+କର୍ମ. ଅନୀୟ )—
Pūjaniya ବନ୍ଦନୀୟ, ଆରାଧ୍ୟ; ପୂଜିତ ହେବାର ଯୋଗ୍ୟ—
(ପୂଜନୀୟା—ସ୍ତ୍ରୀ) Fit to be worshipped or revered; adorable; reverend.

**ପୂଜୟିତବ୍ୟ**—ସଂ. ବିଣ. ପୁଂ (ପୂଜ୍ ଧାତୁ+କର୍ମ ତବ୍ୟ )—
Pūjayitabya ଆରାଧ୍ୟ—Fit to be revered.
(ପୂଜିତବ୍ୟ—ଅନ୍ୟରୂପ) (ପୂଜୟିତବ୍ୟା—ସ୍ତ୍ରୀ)

**ପୂଜୟିତା**—ସଂ. ବିଣ. ପୁଂ ( ପୂଜ୍ ଧାତୁ+କର୍ତ୍ତୃ. ତୃ; ପୂଜୟିତୃ ଶବ୍ଦ
Pūjayitā ୧ମା. ୧ବ )—
(ପୂଜୟିତ୍ରୀ—ସ୍ତ୍ରୀ) ପୂଜକ – Worshipping.
ବି—ଦେବତାଙ୍କ ପୂଜାହାରୀ—A priest.

**ପୂଜା**—ସଂ. ବି. ( ପୂଜ୍ ଧାତୁ+ଭାବ. ଅ+ଆ )—
Pūjā ୧ । ଅର୍ଚ୍ଚନା; ଆରାଧନା; ଉପାସନା—
1. Worship; homage; adoration.
[ଦ୍ର—ତନ୍ତ୍ର ମତରେ ଶକ୍ତି ବା ଦେବୀ ପୂଜାର ୬୪ ଗୋଟି ଉପଚାର ବା ଅଙ୍ଗ (ତନ୍ତ୍ରସାର ଶିବ ଯାମଳ) ଯଥା;—
୧. ଆସନାରୋପଣ—ଆସନରେ ବସାଇବା ।
୨. ସୁଗନ୍ଧ ତୈଳାଭ୍ୟଙ୍ଗ—ଫୁଲର ତେଲ ମାଲିସ୍ ।
୩. ମଜ୍ଜନଶାଳା ପ୍ରବେଶନ—ଗାଧୁଆ ଘରକୁ ନେବା ।
୪. ମଜ୍ଜନମଣିପୀଠୋପବେଶନ—ଗାଧୁଆ ଘରେ ପୀଢ଼ିରେ ବସାଇବା ।
୫. ଦିବ୍ୟ ସ୍ନାନୀୟ —ବଟା ଗନ୍ଧଦ୍ରବ୍ୟ ବୋଳିବା ।
୬. ଉଦ୍ୱର୍ତ୍ତନ—ଗାତ୍ରମାର୍ଜ୍ଜନ; ଦେହ ଘଷିବା ।
୭. ଉଷ୍ଣୋଦକ ସ୍ନାନ—ଗରମ ପାଣିରେ ଗାଧୋଇ ଦେବା ।
୮. କନକ କଳସ ସ୍ଥିତ ସକଳ ତୀର୍ଥ ଜଳାଭିଷେକ—ସୁନା କଳସରେ ଥିବା ତୀର୍ଥ ଜଳରେ ସ୍ନାନ କରାଇବା ।
୯. ଧୌତ ବସ୍ତ୍ର ପରିମାର୍ଜ୍ଜନ—ପାଛିଆ ଲୁଗା କାଢ଼ିବା ।
୧୦. ଅରୁଣ ଦୁକୂଳ ପରିଧାନ—ନାଲି ପାଟଶାଢ଼ୀ ପିନ୍ଧାଇବା ।
୧୧. ଅରୁଣ ଦୁକୂଳୋତ୍ତରୀୟ—ନାଲି ପାଟ ଓଢ଼ଣୀ ପକାଇବା ।
୧୨. ଆଲେପ ମଣ୍ଡପ ପ୍ରବେଶନ—ଚନ୍ଦନ ଘେନିବା ନିମିତ୍ତ ମନ୍ଦିରକୁ ନେବା ।
୧୩. ଆଲେପ ମଣିପୀଠୋପବେଶନ—ଚନ୍ଦନ ଘେନିବା ପାଇଁ ମନ୍ଦିରରେ ପୀଢ଼ିରେ ବସାଇବା ।
୧୪. ଚନ୍ଦନାଗୁରୁ କୁଙ୍କୁମ କର୍ପୂର କସ୍ତୁରୀ ଗୋରୋଚନା ଦିବ୍ୟଗନ୍ଧ ସର୍ବାଙ୍ଗାନୁଲେପନ—ଚନ୍ଦନ ଆଦି ସୁଗନ୍ଧ ଦ୍ରବ୍ୟ ଦେହରେ ବୋଳିବା ।
୧୫ କେଶଭାର କାଳାଗୁରୁ ଧୂପ ଓ ମଲ୍ଲିକା ମାଳତୀ ଚମ୍ପକାଦି ସର୍ବର୍ତ୍ତୁ କୁସୁମମାଳା ଭୂଷଣ—କେଶକୁ ଧୂପଦ୍ୱାରା ସୁଗନ୍ଧିତ କରିବା ଓ ସବୁ ଋତୁର ଫୁଲର ମାଳ ପିନ୍ଧାଇବା ।
୧୬. ଭୂଷଣ ମଣ୍ଡପ ପ୍ରବେଶନ—ଅଳଙ୍କାର ପିନ୍ଧିବା ମଣ୍ଡପକୁ ନେବା ।
୧୭. ଭୂଷଣ ମଣିପୀଠୋପବେଶନ—ଭୂଷଣ ମଣ୍ଡପର ପୀଢ଼ିରେ ବସାଇବା ।
୧୮. ନବମଣି ମୁକୁଟ—ନବରତ୍ନ ଖଚିତ ମୁକୁଟ ପିନ୍ଧାଇବା ।
୧୯. ଚନ୍ଦ୍ର ଶକଳ—ମୁଣ୍ଡରେ ଚନ୍ଦ୍ର ପଗଡ଼ୀ ପିନ୍ଧାଇବା ।
୨୦. ସୀମନ୍ତ ସିନ୍ଦୂର—ସୀଁଥିରେ ସିନ୍ଦୂର ଦେବା ।
୨୧. ତିଳକ ରତ୍ନ—କପାଳରେ ତିଳକ ଦେବା ।
୨୨. କାଳାଞ୍ଜନ—ଆଖିରେ କଜ୍ଜଳ ଦେବା ।
୨୩. କର୍ଣ୍ଣପାଳୀ ଯୁଗଳ - କର୍ଣ୍ଣରେ କୁଣ୍ଡଳ ବା କାପ ଦେବା ।
୨୪. ନାସାଭରଣ—ନାକରେ ଅଳଙ୍କାର ପିନ୍ଧାଇବା ।
୨୫. ଅଧର ଯାବକ—ଓଠରେ ଅଳତା ବୋଳିବା ।
୨୬. ଗ୍ରଥନ ଭୂଷଣ—(ବେକରେ) କଣ୍ଠି ଦେବା ।
୨୭. କନକ ଚିତ୍ର ପଦକ—(ବେକରେ) ସୁନା ପଦକ ଦେବା ।
୨୮. ମହା ପଦକ—(ବେକରେ) ବଡ଼ ପଦକ ଦେବା ।
୨୯ ମୁକ୍ତାବଳୀ—(ବେକରେ) ମୁକ୍ତାହାର ଦେବା ।
୩୦. ଏକାବଳୀ—(ବେକରେ) ଏକସରିଆ ହାର ଦେବା ।
୩୧. ଦେବଚ୍ଛନ୍ଦକ—(ବେକରେ) ବଡ଼ ହାର ଦେବା ।
୩୨. କେୟୂର ଯୁଗଳ ଚତୁଷ୍ଟୟ—ଚାରି ବାହୁରେ ଦୁଇସରିଆ ବାଜୁ
୩୩ ବଳୟାବଳୀ—ହାତରେ ଖଡ଼ୁମାନ ।
୩୪. ଊର୍ମିକାବଳୀ—ଏକ ପ୍ରକାର ଖଡ଼ୁ ।
୩୫. କାଞ୍ଚୀଦାମ – ଗୋଠ ।
୩୬. କଟିସୂତ୍ର—ଅଣ୍ଟା ସୂତା ।
୩୭. ଶୋଭାଖ୍ୟାଭରଣ—ନଳୀ ଗୋଡ଼ର ଅଳଙ୍କାର ।
୩୮. ପାଦ କଟକ –ଗୋଡ଼ ଖଡ଼ୁ ବା ପାହୁଡ଼ ।
୩୯. ରତ୍ନ ନୂପୁର—ଘାଗୁଡ଼ି ବା ବାଜେଣୀ ବା ବଳା ।
୪୦. ପଦାଙ୍ଗୁରୀୟକ—ଗୋଡ଼ ମୁଦି ।
୪୧. ଏକ କରେ ପାଶ
୪୨. ଅନ୍ୟ କରେ ଅଙ୍କୁଶ
୪୩. ଇତର କରେ ପୁଣ୍ଡ୍ରେକ୍ଷୁଚାପ
୪୪. ଅପର କରେ ପୁଷ୍ପବାଣ
} ଚାରି ହାତରେ ଚାରିଗୋଟି ଶସ୍ତ୍ର ।
୪୫. ଶ୍ରୀମନ୍ମାଣିକ୍ୟ ପାଦୁକା—ରତ୍ନ କଠାଉ ।
୪୬. ସ୍ୱସମାନ ବେଶାଭରଣ ଭୂଷିତ ଦେବତାମାନଙ୍କ ସହ ସିଂହାସନାରୋହଣ—
ନାନାପ୍ରକାର ବେଶଭୂଷାରେ ସଜ୍ଜିତ ହୋଇଥିବା ଦେବତାମାନଙ୍କ ସଙ୍ଗେ ସିଂହାସନରେ ବସାଇବା ।
୪୭. କାମେଶ୍ୱର ପର୍ଯ୍ୟଙ୍କୋପବେଶନ—ପଲଙ୍କରେ ବସାଇବା ।

୪୮. ଅମୃତାଶନ ଚଷକ—ଅମୃତ ପାନପାତ୍ର ।
୪୯. ଆଚମନୀୟ—ଭୋଜନ ପୂର୍ବରୁ ଚଳୁପାଇଁ ଜଳ ।
୫୦ କର୍ପୂର ବର୍ତ୍ତିକା—କର୍ପୂରର ଗୁଳା ।
୫୧. ଆନନ୍ଦୋଲ୍ଲାସ ବିଲାସହାସ—ପ୍ରେମହାସ୍ୟ ।
୫୨. ମଙ୍ଗଳାରାତ୍ରିକ—ମଙ୍ଗଳ ଆଳତି ।
୫୩. ଶ୍ୱେତଛତ୍ର—ଧଳା ଛତା ।
୫୪. ଚାମର ଯୁଗଳ—ଦୁଇଟି ଚଅଁର ।
୫୫. ଦର୍ପଣ—ଆରସୀ ।
୫୬. ତାଳବୃନ୍ତ—ବିଞ୍ଚଣା ।
୫୭. ଗନ୍ଧ- ଚନ୍ଦନ ।
୫୮. ପୁଷ୍ପ—ଫୁଲ ।
୫୯. ଧୂପ—ଝୁଣାଆଦିର ଧୂପ
୬୦. ଦୀପ—ଘିଅର ପ୍ରଦୀପ
୬୧. ନୈବେଦ୍ୟ—ଭୋଗ; ଖାଦ୍ୟ ଦ୍ରବ୍ୟ ଅର୍ପଣ ।
୬୨. ପୁନରାଚମନୀୟ—ଆଞ୍ଚୁଆ ପାଣି ।
୬୩. ତାମ୍ବୂଳ—ପାନ ।
୬୪. ବନ୍ଦନ—ସ୍ତୁତି ।

ସର୍ବଦେବତା ପୂଜାର ୩୬ ଉପଚାର ଯଥା—(ଏକାଦଶୀ ତତ୍ତ୍ୱ ଲିଖିତ)

୧ । ଆସନ, ୨ । ଅଭ୍ୟଞ୍ଜନ ( ତେଲ ଲଗାଇଦେବା ), ୩ । ଉଦ୍ୱର୍ତ୍ତନ, ୪ । ନିରୁକ୍ଷଣ, ୫। ସମ୍ମାର୍ଜନ, ୬ । ସର୍ପି, ୭ । ସ୍ନାପନ, ୮ । ଆବାହନ, ୯ । ପାଦ୍ୟ, ୧୦ । ଅର୍ଘ୍ୟ, ୧୧ । ଆଚମନୀୟ, ୧୨ । ବସ୍ତ୍ର, ୧୩ । ଯଜ୍ଞୋପବୀତ, ୧୪ । ଅଳଙ୍କାର, ୧୫ । ଗନ୍ଧ, ୧୬ । ପୁଷ୍ପ, ୧୭ । ଧୂପ, ୧୮ । ଦୀପ ୧୯ । ତାମ୍ବୂଳ, ୨୦ । ନୈବେଦ୍ୟ, ୨୧ । ପୁଷ୍ପମାଳ, ୨୨ । ଅନୁଲେପନ, ୨୩ । ଶଯ୍ୟା, ୨୪ । ଚାମର, ୨୫ । ବ୍ୟଜନ, ୨୬ । ଆଦର୍ଶ ଦର୍ଶନ, ୨୭ । ନମସ୍କାର, ୨୮ । ନର୍ତ୍ତନ, ୨୯ । ଗୀତ, ୩୦ । ବାଦ୍ୟ, ୩୧ । ଦାନ, ୩୨ । ସ୍ତୁତି, ୩୩ । ହୋମ, ୩୪ । ପ୍ରଦକ୍ଷିଣ, ୩୫ । ଦନ୍ତକାଷ୍ଠ (ଦାନ୍ତଘଷା) ପ୍ରଦାନ, ୩୬ । ଦେବବିସର୍ଜନ ।

ଅଷ୍ଟାଦଶୋପଚାର ଯଥା—

୧ । ଆସନ, ୨ । ସ୍ୱାଗତ, ୩ । ପାଦ୍ୟ ଓ ଅର୍ଘ୍ୟ, ୪ । ଆଚମନୀୟକ, ୫ । ସ୍ନାନ, ୬ । ବସ୍ତ୍ର, ୭ । ଉପବୀତ, ୮ । ଭୂଷଣ, ୯ । ଗନ୍ଧ, ୧୦ । ପୁଷ୍ପ, ୧୧ । ଧୂପ, ୧୨ । ଦୀପ, ୧୩ । ଅନ୍ନ ବା ନୈବେଦ୍ୟ, ୧୪ । ଦର୍ପଣ, ୧୫ । ମାଲ୍ୟ, ୧୬ । ଅନୁଲେପନ, ୧୭ । ନମସ୍କାର, ୧୮ । ବିସର୍ଜନ ।

ଷୋଡ଼ଶୋପଚାର ଯଥା—(ତନ୍ତ୍ରସାର ମତରେ)

୧ । ପାଦ୍ୟ, ୨ । ଅର୍ଘ୍ୟ, ୩ । ଆଚମ ବା ପ୍ରଥମେ ମୁହଁ ଧୋଇବା ପାଣି, ୪ । ସ୍ନାନ, ୫ । ବସନ. ୬ । ଭୂଷଣ, ୭ । ଗନ୍ଧ, ୮ । ପୁଷ୍ପ, ୯ । ଧୂପ, ୧୦ । ଦୀପ, ୧୧ । ନୈବେଦ୍ୟ, ୧୨ । ତାମ୍ବୂଳ, ୧୩ । ଅର୍ଚ୍ଚନା, ୧୪ । ସ୍ତୋତ୍ର, ୧୫ । ତର୍ପଣ, ୧୬ । ନମସ୍କ୍ରିୟା ।

ଦଶୋପଚାର ଯଥା—

୧ । ପାଦ୍ୟ, ୨ । ଅର୍ଘ୍ୟ, ୩ । ଆଚମ, ୪ । ମଧୁପର୍କ, ୫ । ଆଚମନ, ୬ । ଗନ୍ଧ, ୭ । ପୁଷ୍ପ, ୮ । ଧୂପ, ୯ । ଦୀପ, ୧୦ । ନୈବେଦ୍ୟ ।

ପଞ୍ଚୋପଚାର ଯଥା—

୧ । ଗନ୍ଧ, ୨ । ପୁଷ୍ପ, ୩ । ଧୂପ, ୪ । ଦୀପ, ୫ । ନୈବେଦ୍ୟ ।

ସାଧାରଣତଃ ଷୋଡ଼ଶୋପଚାର ଓ ପଞ୍ଚୋପଚାରରେ ପୂଜାବିଧି କରାଯାଇ ଥାଏ ଓ ବିଶେଷ ବିଶେଷ ପୂଜା ଉପଲକ୍ଷରେ ୧୮ ଓ ୩୬ ଉପଚାର ଦ୍ୱାରା ପୂଜା କରାଯାଇ ଥାଏ । ତାନ୍ତ୍ରିକମାନେ ୬୪ ଉପଚାରରେ ଦେବୀଙ୍କୁ ପୂଜା କରଥାଆନ୍ତି । ]

୨ । ସମ୍ମାନନା—2. Showing respect.

୩ । ଗୁଣ କୀର୍ତ୍ତନ, ପ୍ରଶଂସା, ଗୁଣଗାନ—
3. Praising; chanting hymns of praise.

ଦେ. ବି—୧ । ଦେବ ପୂଜା; ଦେବାର୍ଚ୍ଚନ—1. Worship of a Deity.

୨ । ପାଳି (ଦେଖ)—2. Pālā (See)
(ଯଥା—ଠିଆପୂଜା, ପୋଥିପୂଜା, ଜାଣ୍ଟିଲପୂଜା, ବାଦପୂଜା, ଆଠପୂଜା, ଷୋଳପୂଜା ଇତ୍ୟାଦି ।)

୩ । ଦେବତାଙ୍କୁ ନୈବେଦ୍ୟ ଅର୍ପଣକରିବା—
3. Offering of food to a Deity.

୪ । ଦୈନିକ ସନ୍ଧ୍ୟାବନ୍ଦନାଦି—
4 Daily prayers of a person; daily worship.

୫ । ମାନ; ସମ୍ମାନ—5. Respect; honour.

୬ । ନୈବେଦ୍ୟ—6 Offering to a Deity.

୭ । (ବ୍ୟଙ୍ଗାର୍ଥ)—ଶୋଧନ, ଗାଳିଦେବା—
7. (ironical) Rebuking.

୮ । ଦଶହରା; ଶରତ୍‌କାଳୀନ ଦୁର୍ଗାପୂଜା—
8 The autumnal Durgā Pūjā.

[ ଦ୍ର—ପୂର୍ବେ ଆମ ଦେଶରେ ଶରତ୍‌କାଳୀନ ପୂଜା ସମୟରେ ଗୃହ ପ୍ରତିଷ୍ଠିତା ମହିଷାସୁରମର୍ଦ୍ଦିନୀ ଦଶଭୂଜା ବନଦୁର୍ଗା ପ୍ରତିମାଙ୍କର ପୂଜା, ଗ୍ରାମଦେବତାମାନଙ୍କର ପୂଜା, ଚଣ୍ଡୀ ଆଦି ପାଠ ଓ ବଳିଦାନ କରାଯାଉଥିଲା । ମୃଣ୍ମୟୀ ପ୍ରତିମା ତିଆରି କରି ଶାରଦୀୟ ପୂଜା କରିବାର ପ୍ରଥା ବଙ୍ଗଦେଶରୁ ଆମ ଦେଶରେ ଚଳୁଅଛି । ଏବେ ଆମ ଦେଶରେ ଉପନିବେଶ କରିଥିବା· ବଙ୍ଗାଳୀମାନଙ୍କ ଘରେ ଓ ଗ୍ରାମରେ ମୃଣ୍ମୟୀ ପ୍ରତିମାଙ୍କ ପୂଜା ଖୁବ୍ ସମାରୋହ ସହିତ ସମ୍ପାଦିତ ହୁଏ । ଆମ ଦେଶରେ ପୂର୍ବେ ଦୋଳ ଯାତ୍ରା ପ୍ରଧାନ ଉତ୍ସବ ଥିଲା । ବର୍ତ୍ତମାନ ଦୋଳ ଓ ଦଶହରା ଦୁଇଟି ପ୍ରଧାନ ପର୍ବ ରୂପେ ଗଣିତ ହୋଇଅଛି ।]

**ପୂଜା ଅର୍ଚ୍ଚନା**—ଦେ. ବି—(ଏକାର୍ଥକ ସହଚର ଶବ୍ଦ—୧ । ଦେବତାଙ୍କ Pūjā archchanā ଆରାଧନା—1. Worship of a Deity. (ପୂଜା ବନ୍ଦନା—ଅନ୍ୟରୂପ) ୨ । ଦେବତାଙ୍କ ଆରାଧନାଦି କର୍ମ—
2. Devotional acts performed for a Deity.

**ପୂଜା ଆହ୍ନିକ**—ଦେ. ବି—ନିତ୍ୟ କରଣୀୟ ପାରମାର୍ଥିକ କର୍ମ—
Pūjā āhnika Religious rites done or prescribed to be done by a person every day.

**ପୂଜା(ଜେ)ଇବା**—ଦେ. କ୍ରି—୧ । ପୂଜା କରାଇବା—
Pūjā(je)ibā To make or offer offerings.
ବନ୍ଧୁର ସ୍ଥାନେ ପୂଜାଇ ଲବଣୀଙ୍କୁ ମନେ—ଉତ୍ତ. ବୈଦେହୀଶବିଳାସ ।

୨ । ପୂଜିବା କ୍ରିୟାର ଣିଜନ୍ତରୂପ—
2. The causative form of Pūjibā.

**ପୂଜା କରିବା**—ଦେ. କ୍ରି. ( ସ. ପୂଜ୍ ଧାତୁ )—୧ । ସମ୍ମାନ ଦେବା—
**Pūjā karibā** 1. To pay respects or homage,
୨ । ସେବା କରିବା—
2. To serve or tend a person.
୩ । ଦେବତାଙ୍କୁ ନୈବେଦ୍ୟ ଅର୍ପଣ କରିବା ଓ ବନ୍ଦନା କରିବା—
3. To offer offerings to a Deity and to worship.
୪ । ସତ୍ୟନାରାୟଣ ପାଲାର ଗୀତ ବା ନାଚ କରିବା—
4 To perform Pālā (song or dancing).
୫ । ଦୈନିକ ପୂଜା ଆହ୍ନିକାଦି କରିବା—
5 To perform one's daily religious rites
(ଯଥା—ଦେବପୂଜା, ସ୍ତୁତିପାଠ, ସନ୍ଧ୍ୟା ବନ୍ଦନା, ମାଳା ଗଡ଼ାଇବା, ସଂକୀର୍ତ୍ତନ କରିବା, ଚିତା ଘେନିବା, ତୁଳସୀ ସେବା କରିବା, ଧର୍ମଶାସ୍ତ୍ର ପଢ଼ିବା ହୋମ କରିବା, ତୁଳସୀ ମୂଳରେ ପାଣି ଦେବା ପ୍ରଭୃତି ଦୈନିକ ପୂଜାର ଅନ୍ତର୍ଗତ ।)
୬ । (ଲକ୍ଷଣାର୍ଥ) କୌଣସି ବ୍ୟକ୍ତିଙ୍କୁ ନାନାବିଧ ସୁଖ ବା ଭୋଗରେ ରଖିବା—6. ( figurative ) To give a person all conceivable comforts of life.
୭ । ବ୍ୟବହାର୍ଯ୍ୟ ବସ୍ତୁକୁ ଅଭିପ୍ରେତ ବ୍ୟବହାରରେ ନ ଲଗାଇ ରଖିଦେବା—
7. Not to use a thing but store it instead of applying it to its intended use.
୮ । (ବ୍ୟଙ୍ଗ) ଶୋଧିବା, ଗାଳିମନ୍ଦ କରିବା—
8. To abuse a person.

**ପୂଜା କୋଥଳି**—ଦେ. ବି—ଯେଉଁ ମୁଣିରେ ମନୁଷ୍ୟର ନିତ୍ୟ ବ୍ୟବହାର୍ଯ୍ୟ ପୂଜାର ସାମଗ୍ରୀ ( ଯଥା—ଜପମାଳା, ଚନ୍ଦନପେଡ଼ି, ଚନ୍ଦନକାଠ, ତୁଳସୀ ଆଦି) ଥାଏ—
**Pūjā kothaḷi**
ପୂଜା ଥୁଥଲି, ପୂଜା କୋଥଲି, ପୂଜା ମୁଣି } ଅନ୍ୟରୂପ
A wallet containing the materials used during one's daily worship.

**ପୂଜା କ୍ରମ**—ସ. ବି—ପୂଜାବିଧି ( ଦେଖ )
**Pūjā krama** Pūjābidhi ( See )

**ପୂଜା ଘଡ଼ି**—ଦେ. ବି—୧ । ଶାରଦୀୟ ଦୁର୍ଗାପୂଜାର ଅବ୍ୟବହିତ ପୂର୍ବ ବା ପରବର୍ତ୍ତୀ ସମୟ—
**Pūjā ghaṛdi**
1. The time of the autumnal Durgāpūjā.
୨ । ପୂଜା ଉପଲକ୍ଷ—
2. The occasion of the Durgāpūjā festival.
[ ଦ୍ର—ପୂଜାଘଡ଼ି ବା ପୂଜା ସମୟରେ ଲୋକେ ନାନା ଭୋଗ୍ୟ ଦ୍ରବ୍ୟ ଓ ନୂତନ ବସ୍ତ୍ର ଆଦି କିଣି ଘରକୁ ନିଅନ୍ତି । ଏଥିପାଇଁ ବଜାର ନାନା ଚିତ୍ତାକର୍ଷକ ପଣ୍ୟଦ୍ରବ୍ୟରେ ପୂର୍ଣ୍ଣ ହୋଇଥାଏ ଓ ପଣ୍ୟଦ୍ରବ୍ୟର ଦରଦାମ ବଢ଼ିଯାଏ । ପୂଜା ଉପଲକ୍ଷରେ ଗୃହସ୍ଥମାନଙ୍କର ଉତ୍ସବାଦିରେ ବହୁ ବ୍ୟୟ ହୁଏ । ଚାକର ଓ ଆଶ୍ରିତ ଲୋକମାନଙ୍କୁ ବକ୍‌ସିସ୍ ଆଦି ମଧ୍ୟ ଦିଆଯାଏ ।]

**ପୂଜା ଛୁଟି**—ଦେ. ବି—ଶାରଦୀୟ ଦୁର୍ଗାପୂଜା ସମୟରେ ସ୍କୁଲ ଓ କଚେରି ଆଦିର ଦୀର୍ଘ ଛୁଟି—The Durgāpūjā holidays.
**Pūjā chhuṭi**
(ପୂଜା ଅବକାଶ, ପୂଜା ବନ୍ଦ—ଅନ୍ୟରୂପ)

**ପୂଜା ଦେବା**—ଦେ. କ୍ରି—ଦେବତାଙ୍କୁ ନୈବେଦ୍ୟ ବସ୍ତୁ ବା ଭୋଗ ମନ୍ତ୍ରାଦିଦ୍ୱାରା ସମର୍ପଣ କରିବା—To make offerings to a Deity by consecrating the food.
**Pūjā debā**
पूजा देना, **पूजा लगाना** (ପୂଜା ଲଗାଇବା—ଅନ୍ୟରୂପ)

**ପୂଜା ପଟଳ**—ସ. ବି—ପୂଜାର ଅଙ୍ଗସମୂହ—
**Pūjā paṭaḷa** The rituals of worship.
ସବୁବେଳେ ପୂଜାପଟଳ ହରି ନାମ ଭଜନରେ ଲାଗିଥାଏ —
ଫକୀରମୋହନ ଗଳ୍ପସ୍ୱଳ୍ପ ।

**ପୂଜା ପଣ୍ଡା**—ଦେ. ବି—ଯେଉଁ ପଣ୍ଡା ମନ୍ତ୍ରପାଠପୂର୍ବକ ଦେବତାଙ୍କୁ ପୂଜା କରନ୍ତି ବା ନୈବେଦ୍ୟ ଲଗାନ୍ତି—A Paṇḍā who offers offerings to the Deity.
**Pūjā paṇḍā**
पूजापाण्डा

**ପୂଜାପାଠ**—ସ. ବି—ଦେବପୂଜା ଓ ଧର୍ମପୁସ୍ତକରୁ ମନ୍ତ୍ରାଦି ପାଠ କରିବା—
**Pūjāpāṭha** To recite the mantras from a book at the time of offering Pūjā.

**ପୂଜା ପାର୍ବଣ**—ଦେ. ବି—ବାର୍ଷିକ ପର୍ବପର୍ବାଣି—The religious festivals of the year.
**Pūjā pārbaṇa**
पूजा पार्वण, **परब तेवहार** ( ପୂଜାପର୍ବ—ଅନ୍ୟରୂପ )

**ପୂଜାପାର୍ବଣୀ**—ଦେ. ବି—ପ୍ରତିବର୍ଷ ଉତ୍ସବାଦି ଉପଲକ୍ଷରେ ଆଶ୍ରିତ ବ୍ୟକ୍ତି ଓ ଭୃତ୍ୟମାନଙ୍କୁ ଖାମିନ୍ଦମାନେ ଅନୁଗ୍ରହପୂର୍ବକ ଦେବା ବକ୍‌ସିସ (ଧନ ଓ ବସ୍ତ୍ରାଦି)—Tips or rewards given to servants etc on the occasions of religious festivals.
**Pūjāpārbaṇi**

**ପୂଜାପୂଜି**—ଦେ. ବି. ( ନିରର୍ଥକ ଦ୍ୱିତ୍ୱଯୁକ୍ତ ଶବ୍ଦ )—ସନ୍ଧ୍ୟା ବନ୍ଦନା ଓ ଦେବାର୍ଚ୍ଚନାଦି ବିଧି—The ceremonies of daily worship and offering.
**Pūjāpūji**

**ପୂଜା ପେଡ଼ି**—ଦେ. ବି (ସ. ପୂଜାପେଟିକା)—ପୂଜାର ସରଞ୍ଜାମ ରଖାଯିବା ବାକ୍‌ସ ବା କୋଥଳି—A box or bag containing the materials used during one's daily worship.
**Pūjā peṛdi**
ପୂଜାପେଡ଼ା, ପୂଜାବାକ୍‌ସ } ଅନ୍ୟରୂପ

**ପୂଜା ବାଢ଼ିବା**—ଦେ. କ୍ରି—ଦେବତାଙ୍କ ଆଗରେ ନୈବେଦ୍ୟ ନେଇ ସ୍ଥାପନ କରିବା—To place offerings before a Deity.
**Pūjā bāṛdhibā**

**ପୂଜାବାଲା**—ଦେ. ବି—ଯେଉଁମାନେ ସତ୍ୟପୀର ପାଲାର ଗୀତ ଓ ନାଚ କରନ୍ତି—The chanters of Pālā.
**Pūjābālā**
पूजावाला ( ପୂଜାବୁଆଲା—ଅନ୍ୟରୂପ )

**ପୂଜା ବିଧି**—ସ. ବି (ଷଷ୍ଠୀ ତତ୍)—ଦେବତାଙ୍କ ପୂଜା କରିବାର ବିଶିଷ୍ଟ ବା କ୍ରମିକ ବିଧାନ—The rules laid down for special and general worshipping of Deities.
**Pūjābidhi**

**ପୂଜା ବୋଲିବା**—ଦେ. କ୍ରି—ପୂଜାର ମନ୍ତ୍ର ଓ ବିଧିଆଦି ମୁହଁରେ ଆବୃତ୍ତି କରିବା—To recite the mantras of Pūjā from memory.
**Pūjā bolibā**

ପୂଜାମନାସ(ସା)—ଦେ. ବ—ଇଷ୍ଟ ସିଦ୍ଧ ହେଲେ ଦେବତାଙ୍କୁ ବିଶିଷ୍ଟ
Pūjāmanāsa(sā) ଭୋଗ ଅର୍ପଣ କରିବାର ସଙ୍କଳ୍ପ—
(ପୂଜାମାନତ, ପୂଜାମାନସିକ—ଅନ୍ୟରୂପ) A vow of offering special offering to a Deity in case one's wishes are fulfilled
पूजामानत
पूजामानत

ପୂଜା ମନାସିବା—ଦେ. କ୍ରି—ଅଭୀଷ୍ଟ ସିଦ୍ଧ ହେଲେ କୌଣସି ଦେବତାଙ୍କୁ
Pūjā manāsibā ବିଶିଷ୍ଟ ଭାବରେ ପୂଜା ଓ ଭୋଗ କରିବାପାଇଁ
ପୂଜା ମାନିବା, ପୂଜା ଯାଚିବା / ପୂଜା ମାନତ କରିବା } ଅନ୍ୟରୂପ — ମନରେ ସଙ୍କଳ୍ପ କରିବା—To vow special offerings and worship to a Deity in future if one's particular desire is fulfilled.
पूजामाना
पूजा मानत करना

ପୂଜାରି—ଦେ. ବ. (ସଂ. ପୂଜାକାରୀ)—୧ । ପୂଜାହାରୀ, ପଣ୍ଡା; ଦେବପୂଜକ
Pūjāri ବ୍ରାହ୍ମଣ, ଦେଉଳିଆ ବ୍ରାହ୍ମଣ—1. A Brāhmaṇa who serves and worships a Deity.
ପୂଜାହାରୀ / ପୂଜାରୀ } ଅନ୍ୟରୂପ
पूजारी କଥା ଯଥା ନଗ୍ନାଗର ଦେବତା ପୂଜାରୀ
पूजारी ପ୍ରାଣତ୍ରିଂସ୍ ଇଷ୍ଟଦେବତାର ଗୌରକୃତ ଅପମାନ—ଉନ୍ମାଦନୀ, ସତ୍ୟନାରାୟଣ

[ଦ୍ର—ଏମାନେ ଅଶ୍ରୋତ୍ରିୟ ବ୍ରାହ୍ମଣ । ଦେବସେବା ଏମାନଙ୍କର ପ୍ରଧାନ କାର୍ଯ୍ୟ । ଶ୍ରୋତ୍ରିୟ ବ୍ରାହ୍ମଣମାନେ ଏମାନଙ୍କ ସହିତ ବୈବାହିକ ସମ୍ବନ୍ଧ କରନ୍ତି ନାହିଁ—କୃପାସିନ୍ଧୁ ।]

୨ । ନୀଚଶ୍ରେଣୀସ୍ଥ ପଣ୍ଡା ବ୍ରାହ୍ମଣ—
2. A lower class of Brāhmaṇas who are professional servants of Deities

୩ । ପାଚକ ବ୍ରାହ୍ମଣ; ସନ୍ଧୁଣିଆ ବ୍ରାହ୍ମଣ—
3 A Brāhmaṇa cook.

ପ୍ରାଦେ. ( ସମ୍ବଲପୁର ) ବ—ସମ୍ବଲପୁରରେ ବ୍ରାହ୍ମଣମାନଙ୍କ ବଂଶୋପାଧିବିଶେଷ—A family-title of certain Brāhmaṇas of Sambalpur.

ପୂଜାର୍ହ—ସଂ. ବିଣ. ପୁଂ. (ପୂଜା+ଅର୍ହ୍ ଧାତୁ = ଯୋଗ୍ୟ ହେବା+କର୍ତ୍ତୃ.
Pūjārha ଅ)—ପୂଜିତ ହେବାର ଯୋଗ୍ୟ, ପୂଜ୍ୟ; ସମ୍ମାନଭାଜନ—
(ପୂଜାର୍ହା—ସ୍ତ୍ରୀ) Respectable, worshipable; deserving homage.

ପୂଜା ସାମଗ୍ରୀ—ସଂ. ବ—୧ । ଦେବପୂଜାର ଉପକରଣ—
Pūjā sāmagrī 1. Materials required for the
(ପୂଜା ସମ୍ଭାର—ଅନ୍ୟରୂପ) performance of the rites.

୨ । ପୂଜାଦ୍ରବ୍ୟ, ନୈବେଦ୍ୟ—2 Offerings intended to be given to a Deity

୩ । ଯେଉଁ ଯେଉଁ ବସ୍ତୁ ବା ପାତ୍ରାଦି ମନୁଷ୍ୟର ନିତ୍ୟ ପୂଜାହ୍ନିକ ସମୟରେ ଦରକାର ହୁଏ ( ଯଥା—ପଞ୍ଚପାତ୍ରୀ, ମାଳା, ଚନ୍ଦନକାଠ, ଚନ୍ଦନପେଡ଼ି )—3. The articles required during a person's daily worship.

ପୂଜାହ୍ନିକ—ସଂ. ବ. ( ସମାସ ଶବ୍ଦ, ପୂଜା+ଆହ୍ନିକ )—ବୈଦିକ
Pūjāhnika ପୂଜାବନ୍ଦନାଦି— Daily worship.

ପୂଜିତ—ସଂ. ବିଣ. ପୁଂ. (ପୂଜ୍ ଧାତୁ+କର୍ମ. ତ)—୧ । ଯାହାଙ୍କୁ ପୂଜା
Pūjita କରାଯାଇ ଅଛି; ଅର୍ଚ୍ଚିତ—
(ପୂଜିତା—ସ୍ତ୍ରୀ) 1. Worshipped; adored

୨ । ସତ୍କୃତ, ସେବିତ—2. Entertained.

୩ । ସମ୍ମାନିତ—3. Respected, revered.

୪ । ପ୍ରଶଂସିତ—4. Praised; eulogised.

ପୂଜିତବ୍ୟ—ସଂ. ବିଣ.—(ପୂଜ୍ ଧାତୁ+କର୍ମ ତବ୍ୟ)—ପୂଜନୀୟ, ପୂଜିତବ୍ୟ;
Pūjitabya ପୂଜନୀୟ—Worshipable, respectable;
(ପୂଜିତବ୍ୟା—ସ୍ତ୍ରୀ) adorable

ପୂଜିବା—ଦେ କ୍ରି.—(ସଂ. ପୂଜ୍ ଧାତୁ)—୧ । (ଦେବତାଙ୍କୁ) ପୂଜା
Pūjibā କରିବା—1. To offer worship (to a Deity).
पूजा पूजना ଯାହା ପାଇଁ ଶିବ ପୂଜୁ ଥାଇ । କବିସୂର୍ଯ୍ୟ, ଦର୍ଶିତ ।

୨ । ସମ୍ମାନ କରିବା—2. To pay homage.

ପ୍ରାଦେ. (କଳାହାଣ୍ଡି ଓ ଯାଗପୁର) କ୍ରି.—ହାଣିବା, କାଟିବା—To cut.

ପୂଜେଇ—ପ୍ରାଦେ. (ସମ୍ବଲପୁର)—ଦେ ପୂଜା (ଦେଖ)
Pūjei De pūjā (See)

ପୂଜୋପକରଣ—ସଂ. ବ. (୬ଷ୍ଠୀ ତତ୍, ପୂଜା+ଉପକରଣ)—
Pūjopakaraṇa ୧ । ପୂଜା ସାମଗ୍ରୀ—1. The materials for service or worship of a Deity.

୨ । ପୂଜାର ଅଙ୍ଗ—2. The different parts or stages in the ritual of worshipping a Deity.

ପୂଜ୍ୟ—ସଂ. ବିଣ. ପୁଂ (ପୂଜ୍ ଧାତୁ+କର୍ମ ଯ)—ପୂଜନୀୟ, ଆରାଧ୍ୟ—
Pūjya Venerable; adorable.
(ପୂଜ୍ୟା—ସ୍ତ୍ରୀ) ବ. ପୁଂ—ଶ୍ୱଶୁର—Father-in-law.

ପୂଜ୍ୟପଦ—ସଂ. ବିଣ. ପୁଂ (ବହୁବ୍ରୀହି, ପୂଜ୍ୟ ଅଟେ ପଦ ଯାହାଙ୍କର)—
Pūjya pada ପରମ ପୂଜନୀୟ, ଯାହାଙ୍କ ଚରଣ ବନ୍ଦନୀୟ;
(ପୂଜ୍ୟପାଦ—ଅନ୍ୟରୂପ) ପରମାରାଧ୍ୟ—Much revered; very venerable

ପୂଜ୍ୟମାନ—ସଂ. ବିଣ. ପୁଂ. (ପୂଜ୍ ଧାତୁ+କର୍ମ. ମାନ)—୧ । ପୂଜ୍ୟ—
Pūjyamāna 1. Venerable.
(ପୂଜ୍ୟମାନା—ସ୍ତ୍ରୀ) ୨ । ସେବ୍ୟମାନ, ଯାହାଙ୍କୁ ପୂଜା କରାଯାଉଛି—
2. Being worshipped; revered; venerated.

ପୂଣ୍ (ଧାତୁ)—ସଂ.—ଏକତ୍ର କରିବା; ସ୍ତୂପୀକୃତ କରିବା—
Pūṇa (root) To heap up; to amass

ପୂତ୍ (ଧାତୁ)—ସଂ.—ପବିତ୍ର ହେବା—
Pūt (root) To become pure.

ପୂତ—ସଂ. ବିଣ—(ପୂ ଧାତୁ+କର୍ମ. ତ)—୧ । ଶୁଦ୍ଧ; ପବିତ୍ର—
Pūta 1. Pure; sacred; holy.
(ପୂତା—ସ୍ତ୍ରୀ) ୨ । ନିର୍ମଳ—2. Clean; dirtless.

୩ । ପବିତ୍ରୀକୃତ—3 Purified, consecrated.

୩ । ପରିଷ୍କୃତ—3. Cleaned; cleansed

୪ । ତୁଷଶୂନ୍ୟୀକୃତ—4. Winnowed; threshed.

୫ । ସତ୍ୟ; ପ୍ରକୃତ—5. True.

୬ । ସରଳ; ସାଧୁ—6 Honest; sincere.
୭ । ରକ୍ଷିତ—7. Guarded; defended.
୮ । (ପୂୟ୍ ଧାତୁ+ଗନ୍ଧାଇବା=କର୍ତ୍ତୃ. ତ) ଦୁର୍ଗନ୍ଧଯୁକ୍ତ—
8 Bad-smelling; stinking.
ବି.—୧ । ପାଛୁଡ଼ା ଧାନ ବା ଚାଉଳ—
1. Winnowed paddy or rice.
୨ । ଶଙ୍ଖ—2 Conch shell.
୩ । କୁଶ—3. Kuśa grass

**ପୂତ କ୍ରତାୟୀ**—ସଂ. ବି ସ୍ତ୍ରୀ (ପୂତକ୍ରତୁ+ସ୍ତ୍ରୀ. ଅର୍ଥରେ ଈ; ନିପାତନ)—
Pūta kratāyi ଇନ୍ଦ୍ରପତ୍ନୀ, ଶଚୀ—
Śachi, the consort of Indra.

**ପୂତକ୍ରତୁ**—ସଂ. ବି. ପୁଂ (ବହୁବ୍ରୀହି, ପୂତ=ପବିତ୍ର, କ୍ରତୁ=ଯଜ୍ଞ
Pūta kratu ଯାହାଙ୍କର)—ଦେବରାଜ, ଇନ୍ଦ୍ର—
Indra, the king of the Hindu Gods.

**ପୂତଗନ୍ଧ**—ସଂ. ବିଣ —(ବହୁବ୍ରୀହି, ପୂତ+ଗନ୍ଧ)—ଦୁର୍ଗନ୍ଧଯୁକ୍ତ—
Pūta gandha Foul-smelling; foetid.
ବି.—ତୁଳସୀ; ବବ୍ବର (ଗୁଳ୍ମ)—
Ocymum Pilosum (plant).

**ପୂତତୃଣ**—ସଂ ବି.—ଶ୍ୱେତ କୁଶ—
Pūta truṇa White Kuśa grass.

**ପୂତ ଦ୍ରୁ**—ସଂ. ବି.—ପଳାଶ ଗଛ—
Pūta dru A tree; Butea Frondosa.
(ପୂତ ଦ୍ରୁମ—ଅନ୍ୟରୂପ)

**ପୂତ ଧାନ୍ୟ**—ସ. ବି—ଖସା; ତିଳ, ରାଶି—
Pūta dhānya Sesamum.

**ପୂତନା**—ସ. ବି. ସ୍ତ୍ରୀ. (ପୂତ୍ ଧାତୁ. ଣିଚ୍; ପୂତ୍ ଧାତୁ=ପବିତ୍ର କରିବା
Pūtanā +କର୍ତ୍ତୃ. ଅନ+ଆ)—୧ । ହରିତକୀ, ହରିଡ଼ା—
1. Yellow myrobalan.
୨ । ବକାସୁରର ଭଉଣୀ; ରାକ୍ଷସୀବିଶେଷ—
2. A demoness, sister of Bakāsura, whose life was sucked out of her by Śrikrushṇa when he was a mere suckling.
[ଦ୍ର—ଏ ଅସୁରୁଣୀ କଂସର ଆଦେଶରେ ଆପଣା ସ୍ତନରେ ବିଷ ବୋଳି ଶ୍ରୀକୃଷ୍ଣଙ୍କୁ ସ୍ତନ୍ୟପାନ କରାଇଲା । କିନ୍ତୁ ଅନ୍ତର୍ଯ୍ୟାମୀ ତାହାର ଉଦ୍ଦେଶ୍ୟ ଜାଣି ପାରି ଏକା ଶୋଷାକେ ତା ସ୍ତନରୁ ସ୍ତନ୍ୟ ସଙ୍ଗେ ପ୍ରାଣକୁ ଶୋଷି ନେଲେ ଓ ରାକ୍ଷସୀ ସେହିଠାରେ ପ୍ରାଣତ୍ୟାଗ କଲା । ]
୩ । ଶିଶୁମାନଙ୍କର ଯୁଅ ରୋଗ—
3. Infantile marasmus.
[ ଦ୍ର—ଏହା ପୂତନା ରାକ୍ଷସୀର ଆକ୍ରମଣର ଫଳ ବୋଲି ଲୋକେ ବିଶ୍ୱାସ କରନ୍ତି । ]
୪ । ଗନ୍ଧମାଂସୀ; ଜଟାମାଂସୀ—
4. Indian spikenard; Racemosa, Nardostachys Jatamansi.
୫ । ଖାଳଆ ପତଙ୍ଗ (ହରେକୃଷ୍ଣ ଦ୍ରବ୍ୟଗୁଣ)—
5 The civet cat; Viverra Gunda.

**ପୂତନା ବାଡ଼ି**—ପ୍ରାଦେ. ( ଗଞ୍ଜାମ ) ବି—
Pūtanā bārdi ବାଳକ ବାଳିକାମାନଙ୍କର ଝାଡ଼ା ବାନ୍ତି ରୋଗ—
The diarrhea which attacks infants at the time of teething; infantile diarrhœa.

**ପୂତନାରି**—ସ. ବି. ( ୬ଷ୍ଠୀ ତତ୍; ପୂତନା+ଅରି )—
Pūtanāri ପୂତନା ବଧକାରୀ ଶ୍ରୀକୃଷ୍ଣ—
(ପୂତନା ସୂଦନ—ଅନ୍ୟରୂପ) A name of Śrikrushṇa

**ପୂତନୀ**—ସ. ବି. (ପୂତ୍ ଧାତୁ ଣିଚ୍ ପୂତ୍ ଧାତୁ+ଅନ+ସ୍ତ୍ରୀ. ଈ)—
Pūtani ପୁଦିନା ( ଦେଖ )—Pudinā ( See )
ଦେ. ବି—୧ । ପୂତନା ୨ ( ଦେଖ )
1 Putanā ( See )
୨ । ଦୁଷ୍ଟା ସ୍ତ୍ରୀ—2. A wicked woman

**ପୂତ ପାପ**—ସ. ବିଣ. ପୁଂ ( ପୂତ=ପବିତ୍ରୀକୃତ ହୋଇଅଛି ପାପ
Pūta pāpa ଯାହାର )—ପାପ ମୁକ୍ତ—Purified; freed from sin.
(ପୂତ ପାପ୍ମା—ଅନ୍ୟରୂପ) (ପୂତ ପାପା—ସ୍ତ୍ରୀ)

**ପୂତ ଫଳ**—ସ ବି—ପଣସ ( ଗଛ ଓ ଫଳ )—
Pūta phala Jack fruit (tree and fruit).

**ପୂତା**—ସ. ବିଣ. ସ୍ତ୍ରୀ (ପୂତ+ସ୍ତ୍ରୀ. ଆ)—ପବିତ୍ରା—
Pūtā Pure (female).
ବି—ଦୂବା; ଦୂବ—Dūba grass.

**ପୂତାତ୍ମା**—ସ. ବିଣ. ପୁଂ ଓ ସ୍ତ୍ରୀ. ( ପୂତ+ଆତ୍ମନ୍; ପୂତାତ୍ମନ୍ ଶବ୍ଦ;
Pūtātmā ୧ମା. ୧ବ )—୧ । ପବିତ୍ରାତ୍ମା—
1. Pure-souled; pure-minded.
୨ । ପୁଣ୍ୟାତ୍ମା—2. Pious, virtuous.

**ପୂତି**—ସ. ବି. ( ପୂତ୍ ଧାତୁ=ପବିତ୍ର କରିବା+ଭାବ. ତି )—
Pūti ୧ । ପବିତ୍ରତା—1. Purity; sanctity.
୨ । ପବିତ୍ରୀକରଣ; ପ୍ରତିଷ୍ଠା—2. Purification.
୩ । (ପୂୟ୍ ଧାତୁ=ଦୁର୍ଗନ୍ଧ ହେବା+ଭାବ ତି)—
ଦୁର୍ଗନ୍ଧ—3. Stink.
୪ । ମଡ଼ାର ଗନ୍ଧ—4. Stench of dead body.
୫ । ଖଟ୍ଟାଶ ମୁଷ, ଖାଳଆ ପତଙ୍ଗର କୋଷ—
5. The testicle of the civest cat or pole cat, Putorius Fœtidus.
ବିଣ—ଦୁର୍ଗନ୍ଧମୟ—Stinking; foetid.

**ପୂତିକ**—ସ. ବି. ( ପୂତି=ଦୁର୍ଗନ୍ଧ+କୈ ଧାତୁ=ପ୍ରକାଶ କରିବା+
Pūtika କର୍ତ୍ତୃ. ଅ )—୧ । ବିଷ୍ଠା, ଗୁହ, ମଳ—
1. Ordure; excrement.
୨ । ପୂତି କରଞ୍ଜ ( ଦେଖ )
2. Pūti karañja ( See )
୩ । ପୂତିକା ୧ ( ଦେଖ )—1. Pūtikā 1 ( See )

ପୂତି କରଞ୍ଜ—ସଂ. ବି—ଲଟା କରଞ୍ଜ ବା ଗିରିପୋଲ ଗଛ—
Pūti karañja Caesalpina Bonducella; the grey Bonduc.
ପଉ କରଜ, ପୂତି କଣ୍ଟିକା, ପୂତୀ କରଜ, ପୂତୀ କରଞ୍ଜ—ଅନ୍ୟରୂପ)
[ ଦ୍ର—ଏହା ଗିଲଜାତୀୟ କଣ୍ଟାଯୁକ୍ତ ଲଟାଣିଆ ଗଛ । ଏହା ଜଙ୍ଗଲରେ ଓ ପାଣିକୂଳରେ ହୁଏ । ଫଳ ମଧ୍ୟ ଗିଲ ଫଳ ପରି କଣ୍ଟକଯୁକ୍ତ । ତା ମଧ୍ୟରେ ଗୋଟାଳ ପରି ଛାଣୁଆ ମଞ୍ଜି ଥାଏ । ]

ପୂତି କର୍ଣ୍ଣ—ସ. ବି—(ପୂତି+କର୍ଣ୍ଣ)—କାନ ପଚା ରୋଗ—
Pūtikarṇṇa Foetid ulceration of the ear; purulent otorrhoea
(ପୂତି କର୍ଣ୍ଣକ—ଅନ୍ୟରୂପ)

ପୂତିକା—ସ. ବି—(ପୂୟ୍ ଧାତୁ=ଦୁର୍ଗନ୍ଧ ହେବା+ତି+ସ୍ୱାର୍ଥେ କ+
Pūtikā ସ୍ତ୍ରୀ. ଆ, ଅନ୍ୟ ସଂ. ନାମ ଉପୋଦକୀ)—୧ । ପୋଇ ଶାଗ-
1. The Basella creeper (pot herb.
୨ । କଟାସ, ଗନ୍ଧମାର୍ଜାର, ଶାଳଆପତନୀ—
2. Pole cat; civet cat.
୩ । ପୂତି କରଞ୍ଜ (ଦେଖ)—
3 Pūti karañja ( See ).

ପୂତିକା ମୁଖ—ସ.ବି—( ବହୁବ୍ରୀହି, ପୂତିକା=ପୋଇଶାଗ ପରି ମୁଖ=
Pūtikā mukha ଅଗ୍ରଭାଗ ଯାହାର)—ଶାମୁକା—Bivalve shell; oyster.

ପୂତି କାଷ୍ଠ—ସ. ବି—( ପୂତି=ପବିତ୍ର+କାଷ୍ଠ )—ସରଳ ବା
Pūti kāshtha ଦେବଦାରୁ ଗଛ—A sort of pine; Pinus Devadāru.
(ପୂତି କାଷ୍ଠକ—ଅନ୍ୟରୂପ)

ପୂତି କୀଟ—ସ. ବି (କର୍ମଧା)—ପାଡ଼ୁରା ପୋକ (ଦେଖ)
Pūti kīṭa Pārdurā poka (See)

ପୂତି ଗନ୍ଧ—ସ. ବି—୧ । ଅତି ଦୁର୍ଗନ୍ଧ; ବଦବୋଇ—
Pūti gandha 1. Foetid smell; stench
୨ । ଗନ୍ଧକ—2. Sulpher.
୩ । ଇଙ୍ଗୁଦ ବୃକ୍ଷ—3. Balanites Roxburghii; a tree bearing acorns which produce oil when pressed
୪ । ରଙ୍ଗ—4. Tin
୫ । ଶାଳଆ ପତନୀ (ହରେକୃଷ୍ଣ ଦ୍ରବ୍ୟଗୁଣ)—5. Civet cat.
ବିଣ—ପୂତିଗନ୍ଧ (ଦେଖ)—
Pūti gandhi (See)

ପୂତି ଗନ୍ଧ—ସ. ବିଣ (ପୂତି+ଗନ୍ଧ+ଇ)—ଦୁର୍ଗନ୍ଧ ଯୁକ୍ତ; ଗନ୍ଧିଆ—
Pūti gandhi Foetid; foul-smelling.
(ପୂତି ଗନ୍ଧକ—ଅନ୍ୟରୂପ)

ପୂତି ଗନ୍ଧିକା—ସଂ. ବି—ଔଷଧ ବୃକ୍ଷବିଶେଷ, ବାକୁଚୀ—
Pūti gandhikā A medicinal plant; Psoralea Corylifolia; Serratula Anthelmintica.

ପୂତିତୈଳା—ସଂ. ବି—ଜ୍ୟୋତିଷ୍ମତୀ ଲତା; ଲତା କଟଣି, ବନ୍ୟପ୍ରଭାମୀ
Pūtitailā ଲତାବିଶେଷ; ଫୁଟ ଫୁଟକା ଲତା—A wild creeper Heart-seed; Heart pea; Cardiospermum Helicacabum.

ପୂତିନସ୍ୟ—ସଂ. ବି—(ପୂତି=ଦୁର୍ଗନ୍ଧମୟ+ନସ୍ୟ=ନାସାରନ୍ଧ୍ର)—
Pūtinasya ନାସିକାରୋଗବିଶେଷ, ନାକରୁ ଦୁର୍ଗନ୍ଧ ବାହାରିବା ରୋଗ—A disease in which there are foetid exhalations from the nostril, oyoena

ପୂତି ବକ୍ତ୍ର—ସଂ. ବିଣ. ପୁଂ—(ବହୁବ୍ରୀହି, ପୂତି+ବକ୍ତ୍ର)—ଯାହା ମୁହଁରୁ
Pūti baktra ସର୍ବଦା ଦୁର୍ଗନ୍ଧ ବାହାରେ, ବାସୁଆମୁହାଁ—
(ପୂତିବକ୍ତ୍ରା—ସ୍ତ୍ରୀ) A person whose mouth emits a foetid smell

ପୂତି ବାତ—ସଂ. ବି—୧ । ଶ୍ରୀଫଳ, ବେଲ ଗଛ—
Pūti bāta 1. The Bel tree; Aegle Marmelos
୨ । ଦୁର୍ଗନ୍ଧ—2. Stench, foul smell.

ପୂତି ବାଷ୍ପ—ସଂ. ବି—( କର୍ମଧା; ପୂତି+ବାଷ୍ପ)—ପଚା ନର୍ଦ୍ଦମା ଆଦିରୁ
Pūti bāshpa ବାହାରିବା ଦୁର୍ଗନ୍ଧ ବାଷ୍ପ—Offensive vapour coming out of putrid drains
(ପୂତି ବାଷ୍ପ—ଅନ୍ୟରୂପ)

ପୂତି ମାଂସ—ସଂ. ବି—(କର୍ମଧା)—ସଢ଼ା ବା ପଚା ମାଂସ—
Pūti māṁsa Rotten flesh, putrid meat

ପୂତିକ—ସଂ. ବି—୧ । ପୂତି କରଞ୍ଜ (ଦେଖ)
Pūtika 1. Pūti karañja (See)
୨ । ଗନ୍ଧ ମାର୍ଜାର; ଶାଳଆପତନୀ—2. Civet cat

ପୂତୁନ(ନା, ନୀ)—ଗ୍ରା.ବି—(ସଂ. ପୂତନା)—୧ । ପୂତନା ୨ (ଦେଖ)—
Pūtuna(nā, nī) 1. Pūtanā 2 (See)
(ପୁତୁନୀ—ଅନ୍ୟରୂପ) ୨ । ଦୁଷ୍ଟା ସ୍ତ୍ରୀ—2. Vile woman.

ପୂତ୍ୟଣ୍ଡ—ସ. ବି. ( ବହୁବ୍ରୀହି, ପୂତି+ଅଣ୍ଡ=ମୁଷ୍କ ବା ଡିମ୍ବ )—
Pūtyaṇḍa ୧ । ପାଡ଼ୁରା ପୋକ ( ଦେଖ )
1. Pārdurā poka (See)
୨ । କସ୍ତୁରୀ ମୃଗ—2 Musk deer.
୩ । ଶାଳଆପତନୀ—3. Civet cat.
୪ । ଖଟ୍ଟାସ; କଟାଶ—4. Pole cat; wild cat.

ପୂନେଇ(ଇଁ) ଶାଗ—ପ୍ରାଦେ. (ବାଲେଶ୍ୱର)—ପୁନର୍ନବା (ଦେଖ)
Pūnei(iñ) sāga Punarnabā ( See)
(ପୁଣ୍ଡିମା ଶାଗ, ପୁନମା ଶାଗ—ଅନ୍ୟରୂପ)

ପୂପ—ସ. ବି. (ପୂ ଧାତୁ=ପବିତ୍ର କରିବା+ସଂଜ୍ଞାର୍ଥେ. ପ)—୧ । ପିଠା—
Pūpa 1. Cake.
୨ । ରୋଟିକା; ରୁଟୀ—2 Bread; pastry cake.

ପୂପଲା—ସ. ବି. (ପୂପ+ଲା ଧାତୁ=ଗ୍ରହଣ କରିବା+କର୍ତ୍ତୃ. ଅ+ଆ)—
Pūpalā ଘୃତପକ୍ୱ ପିଷ୍ଟକ; ଘିଅ ପିଠା—
A cake roasted in ghee.

ପୂପାଲୀ—ସ. ବି. ( ପୂପ+ଆଳୀ )—ପୁଳି ପିଠା ( ଦେଖ )
Pūpāli Puḷi piṭhā (See)

ପୂପାଷ୍ଟକା—ସ. ବି. ( ପୂପ=ପିଠା+ଅଷ୍ଟକା=ଅଷ୍ଟମୀ ତିଥିରେ କୃତ୍ୟ
Pūpāshṭakā ଶ୍ରାଦ୍ଧ )—ପିଷ୍ଟକଦ୍ୱାରା ପୌଷ କୃଷ୍ଣ ଅଷ୍ଟମୀ ଦିନ କରାଯିବା ଶ୍ରାଦ୍ଧ—A srāddha performed with cakes on the 8th day of the dark fortnight of the month of Paushа.

ପୂପିକା—ସ. ବି. ( ପୂପ+କ+ସ୍ତ୍ରୀ. ଆ )—ପୂପଲା (ଦେଖ)
Pūpikā Pūpalā ( See )

ପୂବା—ଗ୍ରା. ବିଣ. ( ସ. ପୂର୍ବ୍ୟ )—୧ । ପୂରୁବା, ପୂର୍ବସମ୍ବନ୍ଧୀୟ—
Pūbā 1. Eastern.
পূর্বের **পুরবা; পুরবাঽ** ୨ । ପୂର୍ବଦିଗରୁ ଆସୁଥିବା—
(ଦ୍ଧିକ—ଅନ୍ୟରୂପ) 2. Coming from the east.

ପୂବାଇ(ଲ)—ଗ୍ରା. ବିଣ.—ପୂବା ( ଦେଖ )
Pūbāi(li) Pūbā ( See )
ପୂବାଳ ଗୋଷ୍ଠଏ ଘର ଦମକା ପବନ ବାଡେଇ ଦେଲ—
ଫକୀରମୋହନ, ଗଳ୍ପସ୍ୱଳ୍ପ ।

ପୂବେଇ—ଦେ. ବିଣ. ( ସ. ପୂର୍ବୀୟ )—ପୂବା ( ଦେଖ )
Pūbei (ପୂବେଇ—ଅନ୍ୟରୂପ) Pūbā ( See )

ପୂବେଇ ପବନ—ଦେ. ବି—ପୂର୍ବରୁ ବହୁଥିବା ପବନ—The east
Pūbei pabana wind; the wind blowing from the east.
ପୂବେଇ ବତାସ } ଅନ୍ୟରୂପ
ପୂବେଇ ବାଆ }
[ ଦ୍ର—ପୂବେଇ ପବନ ବହୁକାଳ ବହୁକାଳ ପର୍ଯ୍ୟନ୍ତ ଶୀଘ୍ର ବର୍ଷିବାର ସୂଚନା କରେ । ]

ପୂବେଇ ପାଣି—ଦେ. ବି—ପୂର୍ବ ଦିଗରୁ ହେଉଥିବା ବର୍ଷା—
Pūbei pāṇi Rain coming from clouds blowing from the east.
(ପୂବେଇ ବରଷା—ଅନ୍ୟରୂପ)

ପୂବେଇ ବଢ଼ି—ଦେ. ବି—ପୂବେଇ ପବନ ବା ବର୍ଷା ପରେ ନଦୀର ବନ୍ୟା—Flood of a river after east-wind.
Pūbei barḍhi

ପୂବେଇ ମେଘ—ଦେ. ବି—ଯେଉଁ ମେଘ ପୂର୍ବ ଦିଗରୁ ଉଠାଇ ଥାଏ—
Pūbei megha Clouds rising in the east

ପୂଯ୍(ୟ୍) (ଧାତୁ)—ସ.—ଦୁର୍ଗନ୍ଧ ହେବା—
Pūj(y) (root) To emit bad small.

ପୂଯ—ସ. ବି. ( ପୂୟ୍ ଧାତୁ+କର୍ତ୍ତୃ. ଅ )—ପୂଜ; ଘନୀଭୂତ ଶୁକ୍ଳବର୍ଣ୍ଣ ବିକୃତ ରକ୍ତ—Ichor; pus; offensive matter discharged from gangrened wounds and ulcers.
Pūja

ପୂଯ ପାଣି—ଦେ. ବି. ( ସ. ପୂୟ+ପାନୀୟ )—୧ । ଜଳୀୟ ପୂୟ;
Pūja pāṇi ପାଣିଆଁ ପୂଜ—1. Watery pus; purulent discharge
পুঁজপানী **পুঁজপানী**
ପୂଯ ରକତ } ଅନ୍ୟରୂପ
ପୂଯ କାଲ }
୨ । ସଢ଼ା ଘାଆ ଆଦିରୁ ବାହାରିବା ପୂଜ ଓ ଜଳୀୟ ସ୍ରାବ—
2. Pus and other matters coming out from rotten sores.

ପୂଯ ରକତ ବିଆଣି—ଦେ. ବି—୧ । ସ୍ତ୍ରୀଲୋକମାନଙ୍କ ଜନ୍ମ କରିବା ପ୍ରକ୍ରିୟା (ଯହିଁରେ ରକ୍ତାଦି ସ୍ରାବ ହୁଏ)—
Pūja rakata biāṇa
1. The act of giving birth; delivery ( in which there is copious discharge of blood and pus )
୨ । ମନୁଷ୍ୟ (ଯେ ପୂଜ ରକ୍ତରୁ ଜନ୍ମିଥାଏ)—2. Man ( born from pools of pus and blood ).

ପୂଯ ରକତିଆ—ଦେ. ବିଣ—ପୂଜ ଓ ରକ୍ତାକ୍ତ—
Pūja rakatiā Reeking with pus and blood.

ପୂଯ ରକ୍ତ—ସ. ବି—୧ । ନାସାରୋଗବିଶେଷ—1. A disease of the nose in which there is discharge of blood and pus from the nostrils.
Pūja rakta
୨ । ପୂଯ ଓ ରକ୍ତ—2. Pus and blood.
୩ । ପୂଯ ମିଶ୍ରିତ ରକ୍ତ—3. Bloody pus

ପୂଯ ସରସର—ଦେ. ବିଣ—ପୂୟାକ୍ତ; ପୂୟରେ ବୁଡ଼ିଥିବା—
Pūju sarasara Reeking with pus; purulent.
(ପୂଯ ଲଟପଟ, ପୂଯ ଘଟଘଟ—ଅନ୍ୟରୂପ)

ପୂଯା(ଯେ)ଇବା—ଦେ. କ୍ରି. ( ସ. ପୂୟ )—୧ । ( ବ୍ରଣାଦି ) ଘାଉବା ପୂୟରେ ପୂର୍ଣ୍ଣ ହେବା—1. ( Boil etc ) To become full of pus, to suppurate.
Pūjā(je)ibā
ପୂଯ ଦେବା } ଅନ୍ୟରୂପ
ପୂଯ ହେବା }
୨ । ବ୍ରଣାଦିରୁ ପୂୟର ଧାର ନିର୍ଗତ ହେବା—
2. ( a sore ) To emit pus.

ପୂଯାରି—ସ. ବି. ( ୭ମୀ ତତ୍; ପୂୟ+ଅରି, ଏହାର ପତ୍ର ପୂୟ ନାଶ କରେ ବୋଲି )—ନିମ୍ବ ଗଛ—
Pūjāri The Nim tree.

ପୂଯିଆ—ଦେ. ବିଣ. ପୁଂ—୧ । ଘାଆ ବା କାଛୁ କୁଣ୍ଡିଆ ଯୋଗୁ ପୂଜ ସରସର ହୋଇଥିବା ( ବ୍ୟକ୍ତି )—
Pūjiā
( ପୂଯେଇ—ସ୍ତ୍ରୀ ) 1. ( a person ) Whose body is full of purulent wounds or itches etc.
୨ । ପୂଜାକ୍ତ—2 Full of pus; purulent.

ପୂଯୋଦ—ସ. ବି. ( ପୂୟ+ଉଦକ, ଏ ସ୍ଥାନରେ ପାପୀମାନେ ପୂୟ-ପାଣିରେ ବୁଡ଼ନ୍ତି )—ନରକବିଶେଷ—
Pūjoda
(ପୂଯୋଦକ—ଅନ୍ୟରୂପ) A particular part of hell.

ପୂର୍ (ଧାତୁ)—ସ—୧ । ପୂର୍ଣ୍ଣ କରିବା—
Pūr (root) 1. To fill up.
୨ । ପୂର୍ଣ୍ଣ ହେବା—2. To be full.
୩ । ସନ୍ତୁଷ୍ଟ କରିବା—3. To satisfy.
୪ । ସନ୍ତୁଷ୍ଟ ହେବା—4 To be satisfied.

ପୂର—ସ. ବି. ( ପୂର୍ ଧାତୁ+କରଣ. ଅ )—
Pūra ୧ । ବାରିରାଶି; ଜଳରାଶି—
1. A mass of water.
୨ । ଜଳ ସ୍ରୋତଃ; ପ୍ରବାହ—2. Current of water.
୩ । ନଦୀ ବଢ଼ି—
3. Swelling or flood of a river.
୪ । ହ୍ରଦ—4. Lake.
୫ । ପୁଷ୍କରଣୀ; ପୋଖରୀ—5. Tank
୬ । ବ୍ରଣ ବା ଘାଆର ପୂରିଯିବା ଅବସ୍ଥା—
6. Healing of an ulcer or wound.
୭ । ଅତ୍ୟାଧିକ୍ୟ—7. Superabundance.
୮ । ପୁରୀ; ଲୁଚି—
8. Unleavened cake fried in ghee.

୯ । ପିଠା ମଧ୍ୟରେ ପୂର୍ଣ୍ଣ କରାଯିବା ମିଷ୍ଟ ଚୂର୍ଣ୍ଣ ବା ସିଦ୍ଧ ଶସ୍ୟ—
9. Ground sweets or boiled pulse put inside sandwiches; stuffing put inside cakes.
୧୦ । ପରିପୂରଣ—10. Fulfilment; filling up.
୧୧ । ଗୁଗ୍ଗୁଳ; ଦାହାଗୁରୁ— 11. A kind of sandal used as incense; frankincense.
ବିଣ. ( ଅନ୍ୟ ଶବ୍ଦ ସହିତ ସମାସରେ ଯୁକ୍ତ )—
ଅମୁକ ଦ୍ୱାରା ପୂର୍ଣ୍ଣ—Full of; filled with

**ପୂରକ**—ସଂ. ବିଣ. ( ପୂର ଧାତୁ + କର୍ତ୍ତୃ ଅକ )—
Pūraka ପରିପୂର୍ଣ୍ଣ କାରକ—That which fills up, filling up.
ସଂ. ବି. ୧ । (ଗଣିତ)—ଗୁଣକ ସଂଖ୍ୟା; ଯେଉଁ ସଂଖ୍ୟା ଦ୍ୱାରା ମୂଳ ସଂଖ୍ୟାକୁ ଗୁଣନ କରାଯାଏ—
1. ( Arithmetic ) The multiplier.
୨ । ( ଯୋଗ ) ପ୍ରାଣାୟାମର ଅଙ୍ଗବିଶେଷ, ବହିର୍ଦେଶରୁ ବାମ ନାସା ଦ୍ୱାରା ବାୟୁକୁ ଅନ୍ତରକୁ ନେବା—
2. (joga) Slow inspiration, taking in air through the left nostril
[ ଦ୍ର—ପୂରକ ଦ୍ୱାରା ବାୟୁକୁ ବାମ ପାଖ ନାକପୁଡ଼ା ଭିତରକୁ ନେବାକୁ ହୁଏ ଓ ଭିତରକୁ ଯାଇଥିବା ପବନକୁ କୁମ୍ଭକ ଦ୍ୱାରା ଅଟକାଇବାକୁ ହୁଏ । ରେଚକ ଦ୍ୱାରା ବାୟୁକୁ ଡାହାଣ ନାକ ପୁଡ଼ା ଦ୍ୱାରା ବାହାର କରିବାକୁ ହୁଏ । ଏହି ୩ ପ୍ରକ୍ରିୟା କଲେ ପ୍ରାଣାୟାମ ସାଧିତ ହୁଏ । ]
୪ । ବାଜପୂର; ଲେମ୍ବୁ—4 Citron.
୫ । ମୃତାଶୌଚ କାଳରେ ପ୍ରେତୋଦ୍ଦେଶରେ ଦେୟ ଦଶପିଣ୍ଡ—
5. The ten funeral cakes offered to the ghost of the deceased during the funeral rites
[ ଦ୍ର—ଏହି ପୂରକ ପିଣ୍ଡ ଦ୍ୱାରା ମୃତ ବ୍ୟକ୍ତିର ଆତିବାହିକ ଦେହର ନିବୃତ୍ତି ହୁଏ ଓ ସେ ପ୍ରେତ ଦେହ ପ୍ରାପ୍ତ ହୁଏ । ]

**ପୂର କୃତ**—ସଂ. ବିଣ—ପରିପୂର୍ଣ୍ଣ—
Pūra kṛuta Filled up.

**ପୂରଣ**—ସଂ. ବିଣ. ( ପୂର ଧାତୁ + କର୍ତ୍ତୃ. ଅନ )—
Pūraṇa ପୂରକ—Filling up.
ବି—୧ । ( ଗଣିତ ) ପୂରକ, ଗୁଣକ—
1. (arithmetic) Multiplier.
୨ । (+ଭାବ. ଅନ) ପୂର୍ଣ୍ଣ କରିବା—
2. Act of filling up or completing.
୩ । ପୂରକ ପିଣ୍ଡ—3 Obsequal cakes.
୪ । ( ପୂର ଧାତୁ + ଭାବ. ଅନ ) ଗୁଣନ—
4. Multiplication
୫ । ବର୍ଷଣ—5 Raining
୬ । ବୃଷ୍ଟି—6. Rain.
୭ । ଲୁଗାର ଆଡ଼ ସୂତା; ବାପଡନ୍ତୁ; ଭରଣୀ ସୂତା—
7. The woof or cross-thread of a cloth.
୮ । ସେତୁ; ପୋଲ—8. Bridge.
୯ । ବନ୍ଧ—9. Embankment; dyke.
୧୦ । ସମୁଦ୍ର—10. Ocean

**ପୂରଣୀ**—ସଂ. ବି. ( ପୂରଣ + ସ୍ତ୍ରୀ. ଈ )—
Pūraṇī ୧ । ଶାଲ୍ମଳୀ ବୃକ୍ଷ, ଶିମିଳି ଗଛ—
1. The silk cotton tree.
୨ । ବାପଡନ୍ତୁ, ଭରଣୀ ସୂତା—
3. The woof of cloth.

**ପୂରନ୍ତା**—ଦେ. ବିଣ. ( ସଂ. ପୂର ଧାତୁ )—
Pūrantā ୧ । ଲୋକ ପୂର୍ଣ୍ଣ—1. Full of people.
୨ । ପୂର୍ଣ୍ଣ—2. Full.

ପ୍ରଫୁଲ୍ଲ ଫୁଲ ବାସେ ପୂରନ୍ତା ଛନ୍ତି ।
ଜନପୂର୍ଣ୍ଣ, ଉଦ୍ଧ କର ତଣ୍ଡୁ ଦ ଗୀତ ।

୩ । ( ସଂ. ପୁରାତନ ) ପୁରାତନ, ପ୍ରାଚୀନ—
3 Old; ancient.

**ପୂରନ୍ତା କାଳ**—ଦେ. ବି—୧ । ପ୍ରାଚୀନକାଳ—
Pūrantā kāḷa 1. Ancient times.
( ଯଥା—ଏ ଘର ବହୁତ ପୂରନ୍ତା କାଳର । )
୨ । ବୃଦ୍ଧ ବୟସ—2. Old age.

**ପୂରନ୍ତା ଘର**—ଦେ ବି—୧ । ଯେଉଁ ଘରେ ଧନ ଓ ଜନ ପୂର୍ଣ୍ଣ ରହିଅଛି—
Pūrantā ghara 1. A house full of people and wealth.
୨ । ଲୋକ ପୂର୍ଣ୍ଣ ଗୃହ—2. House full of people.
୩ । ଲକ୍ଷ୍ମୀ ପୂର୍ଣ୍ଣ ଗୃହ—3. House full of riches.

**ପୂରନ୍ତା ନଈ**—ଦେ. ବି—ଜଳ ପୂର୍ଣ୍ଣ ନଦୀ—
Pūrantā naī River full of water.
(ପୂରନ୍ତା ନଦୀ—ଅନ୍ୟରୂପ) (ଦ୍ର—ଏହିପରି ପୂରନ୍ତା ପୋଖରୀ, ପୂରନ୍ତା ଗଡ଼ିଆ ଆଦି ହୁଏ । )

**ପୂରବୀ**—ଦେ. ବି—(ସଂ. ପୂର୍ବୀ)—ମାଳବ ଗୌଡ଼ା ରାଗର ମିଶ୍ରଣରେ
Pūrabi ଉତ୍ପନ୍ନ ସଙ୍ଗୀତର ରାଗିଣୀ ବିଶେଷ—Name of a
पूरबी पूरबी mixed musical air or tune.
(ପୂରୁବୀ—ଅନ୍ୟରୂପ) [ଦ୍ର—ଏହା ଦିବସର ୪ର୍ଥ ପ୍ରହରରେ ଗାଇବାକୁ ହୁଏ । ଏହାର ଥାଏ 'ରେ' ୨ୟ 'ଧା' (ଷଷ୍ଠ) ଓ ଦୁଇ 'ମ' (୪ର୍ଥ) ଥାଏ । ]

**ପୂରୟିତା**—ସଂ. ବିଣ (ପୂର ଧାତୁ ଣିଚ=ପୂରି ଧାତୁ + କର୍ତ୍ତୃ. ତୃ=
Pūrayitā ପୂରୟିତୃ ଶବ୍ଦ ୧ମା. ୧ବ.)—ପୂରକ; ପରିପୂର୍ଣ୍ଣ
(ପୂରୟିତ୍ରୀ—ସ୍ତ୍ରୀ) କାରକ—Filling up; that which fills up.

**ପୂରା**—ଦେ. ବିଣ. (ସଂ. ପୂର ଧାତୁ)—୧ । ସମାପ୍ତ—
Pūrā 1. Finished; completed.
पूरा पूरा ୨ । ସମାହିତ—2. Accomplished.
୩ । ସମ୍ପୂର୍ଣ୍ଣ; ଅଖଣ୍ଡ—3. Complete; whole.
୪ । ପ୍ରଚୁର—4. Copious.

୫ । ପରିପୂର୍ଣ୍ଣ—5 Filled up
୬ । ପୂର୍ଣ୍ଣ—6. Full
୭ । ଅତ୍ୟନ୍ତ—7, Excessive.
ବି.—ପୂର୍ଣ୍ଣ କରିବା, ପୂରଣ କରିବା—Filling up
ପ୍ରାଦେ. (ସମ୍ବଲପୁର) ବି.—ପୂରା ମୁଠି (ଦେଖ)
Pūrā muṭhi (See)
କ୍ରିଣ୍ ବିଣ.—୧ । ପୂର୍ଣ୍ଣ ରୂପେ—1 Fully; completely.
୨ । ଅତ୍ୟନ୍ତ—Very much.
(ଯଥା—ପୂରା ଦୁଷ୍ଟ, ପୂରା ବଗୁଲିଆ) ।

**ପୂରା(ରେ)ଇ ଦେବା**—ଦେ. କ୍ରି—୧ । ହଠାତ୍ ଭର୍ତ୍ତି କରିବା—
Pūrā(re)i debā 1. To suddenly thrust
ପୂବିଯେ ଦେଓଯା ୨ । କୌଣସି ସ୍ଥାନକୁ ପ୍ରବେଶ କରିବାକୁ ସମର୍ଥ
**ঘুসাইনা** କରିବା—2. To enable one to enter a place; to admit.
(ଯଥା—ସାଆନ୍ତଙ୍କ ଭାବାଲ କୁତା ଖଞ୍ଜା ଭିତରକୁ କାହାରିକୁ ପୂରାଇ ଦେଉ ନାହିଁ ।)

**ପୂରା(ରେ)ଇବା**—ଦେ. କ୍ରି. (ସ. ପୂର ଧାତୁ=ପୂର୍ଣ୍ଣ କରିବା; ପୂରିବାର
Pūrā(re)ibā ସକର୍ମକ ରୂପ)—୧ । ପୂର୍ଣ୍ଣ କରିବା—1. To fill.
ମୋଦେ ମୋଦେ ବୁଡି ଯିବ ଭୁଞ୍ଜେ ଖର୍ଗ ମୋ ଦେହ ପୂରାଇ କରନ୍ତ କ୍ଷଣେ ।
କଳ୍ପଦ୍ରୁମ୍. ସର୍ଗ ।
ପୂବାନ ୨ । ସମ୍ପୂର୍ଣ୍ଣ କରିବା—
**ঢকেলনা; পূরান্ন** 2 To complete; to bring to completion
୩ । ସମାଧା କରିବା—3. To accomplish.
୪ । ସବୁଠାରେ ବ୍ୟାପିଯିବା ପରି କରିବା—
4. To cause to spread everywhere.
ମହିମାରେ ପୂରାଇଛନ୍ତି ତିନି ଲୋକ ।
କୃଷ୍ଣସିଂହ ମହାଭାରତ ସଭା ।
୫ । ଭର୍ତ୍ତି କରିବା, ଭିତରକୁ ପ୍ରବେଶ କରାଇବା—
5. To thrust.
୬ । ପୂରଣ କରିବା; ସଫଳ କରି ରଖିବା—6. To fulfil.
କଡଃରେ ଶକୁନ ଏସ କଥା କହିଲେ
କରଣ ପୂରାଇଲ ସୁଯୋଧନ କାମ । କୃଷ୍ଣସିଂହ. ମହାଭାରତ ବନ.
୭ । (କୌଣସି ସ୍ଥାନରେ) ପ୍ରବିଷ୍ଟ କରାଇବା; କୌଣସି ସ୍ଥାନ ଭିତରକୁ ଛାଡ଼ି ଦେବା—7. To allow to enter; to admit.
୮ । ନିଜର ଦେହରେ ପୂର୍ଣ୍ଣ କରି ରଖିବା—8. To keep a thing filled up within one's self.
(ଯଥା—ପେଟରେ ସେ କେତେ ବିଦ୍ୟା ପୂରାଇଛି ।)
୯ । (କାମନା, ଲାଳସା) ପରିତୃପ୍ତ କରିବା—
9 To gratify.
ଏହାଜାଣି ଅନେ ଜେକ, ମଙ୍କ ପ୍ରେମ ରସେ ପୂରାଅ ସ୍ପୃହା ।
ରାଧାନାଥ. ମହାଯାତ୍ରା ।
୧୦ । ହଳଦି ଆଦିକୁ ଏକପୁର ବା ଏକଥର ବାଟିବା—
10. To bruise (turmeric etc) once with the pestle.
୧୧ । ମିଶାଇବା; ଦୋଷ ବା ଅପୂର୍ଣ୍ଣ ସ୍ଥାନକୁ ପୂର୍ଣ୍ଣ କରିବା—
11. To include; to supplement.
ଶୁଦ୍ଧ ଅଶୁଦ୍ଧ ପୂରାଇ କହିବା ଅଭ୍ୟାସେ ।
ଗ୍ରା.ଗୀ. ବୃନ୍ଦାବନ ଭୂଷଣ ଗୀତା
୧୨ । ପୂରିବା କ୍ରିୟାର ଣିଜନ୍ତ ରୂପ—
12. The causative form of pūribā.
[ଦ୍ର—ଏ କ୍ରିୟାର ଅସମାପିକା ରୂପ ସଙ୍ଗେ ଦେବା, ନେବା କ୍ରିୟାର ସମାପିକା ରୂପ ଯୁକ୍ତ ହୁଏ ।]

**ପୂରା କରିବା**—ଦେ. କ୍ରି. (ସ. ପୂର୍ଣ୍ଣ)—୧ । ପୂର୍ଣ୍ଣ କରିବା—
Pūrā karibā 1. To fill up.
ପୂବାକବା ୨ । ସମାପ୍ତ କରିବା—
**पूरा करना** 2. To finish.
୩ । ସମ୍ପୂର୍ଣ୍ଣ କରିବା—3. To bring to a close.
୪ । ସମାଧା କରିବା—
4. To accomplish, to bring round.

**ପୂରା ପଟା(ଟେ)ଇବା**—ଦେ. କ୍ରି.—୧ । ପୂରା କରିବା, ଶେଷ କରିବା,
Pūrā paṭā(ṭe) ibā ସମାପ୍ତ କରିବା—1. To finish; to complete.
ପূবা পটান
**पूरा करना** ୨ । ପୂର୍ଣ୍ଣ କରିବା; ସମ୍ପୂର୍ଣ୍ଣ କରିବା—
2. To fill up.
୩ । ସମାହିତ କରିବା—3. To accomplish.

**ପୂରା ପଟିବା**—ଦେ. କ୍ରି—୧ । ସମ୍ପୂର୍ଣ୍ଣ ହେବା—
Pūrā paṭibā 1. To be completed.
(ପୂରା ପଡ଼ିବା, ପୂରା ହେବା—ଅନ୍ୟରୂପ) ୨ । ସମାପ୍ତ ହେବା—
পূবা হওয়া 2. To be finished.
**पूरा होना** ୩ । ସମାହିତ ହେବା—3. To be accomplished.

**ପୂରା ପଡ଼ିବା**—ଦେ. କ୍ରି—୧ । ପୂରା ପଟିବା (ଦେଖ)
Pūrā paṛibā 1 Pūrā paṭibā (See).
୨ । କୌଣସି କୃତ ଅଙ୍ଗୀକାରକୁ ରକ୍ଷାକରି ପାରିବା—
2. To be able to keep one's promise.
୩ । ନିଜର କର୍ତ୍ତବ୍ୟ କରିବା—3. To do one's duty.

**ପୂରା ପୂରି**—ଦେ. ବି—୧ । ଅନ୍ୟୋନ୍ୟରେ ପୂର୍ଣ୍ଣ କରିବା—
Pūrā pūri 1. Filling each other.
পুরোপূবী ୨ । ପଶା ପଶି; ଅନ୍ୟୋନ୍ୟରେ ପ୍ରବେଶ କରାଇବା—
**भरपूर** 2 Mutual thrusting.
ବିଣ—୧ । ପରିପୂର୍ଣ୍ଣ—1. Filled up.
୨ । ସମାପ୍ତ—2. Finished.
୩ । ସମ୍ପୂର୍ଣ୍ଣ—3. Complete.
୪ । (କୌଣସି ପାତ୍ରର) ମୁଖ ପର୍ଯ୍ୟନ୍ତ ପୂର୍ଣ୍ଣ—
4. Full to the brim.
କ୍ରି. ବିଣ—ସମ୍ପୂର୍ଣ୍ଣରୂପେ—Completely; fully.

**ପୂରା ପେଟ**—ଦେ. ବି—୧ । ଭୋଜନରେ ପୂରିତ ଉଦର—
Pūrā peṭa 1 Belly filled up with food.
୨ । ସ୍ତ୍ରୀର ପୂର୍ଣ୍ଣ ଗର୍ଭାବସ୍ଥା—
2. Advanced state of pregnancy.

ପୂର୍ଣ୍ଣ ମାସ—ଦେ. ବି— (ସଂ. ପୂର୍ଣ୍ଣ+ମାସ)—୧ । ଗର୍ଭଧାରଣର ପୂର୍ଣ୍ଣ ମାସ
Pūrā māsa (୯ ବା ୧୦ ମାସ) ସମୟ, ଆସନ୍ନପ୍ରସବ ସମୟ—
1. Ninth or tenth month of pregnancy.
୨ । ସମ୍ପୂର୍ଣ୍ଣ ଏକ ମାସ—2 One whole month

ପୂରା ମୁଠି—ପ୍ରାଦେ (ସମ୍ବଲପୁର)—ବି—ଗୁରଜଣ ଖେଳବା ଏକପ୍ରକାର
Pūrā muṭhi କଉଡ଼ି ଖେଳ—A kind of game with sea-shells.
[ଦ୍ର—ଏଥିରେ ଭୂଇଁରେ ଗୋଟିଏ ଯୁକ୍ତ ଚନ୍ଦ୍ର ବା ଛକ ଗାର କଟାଯାଏ ।]

ପୂରାମ୍ଳ—ସଂ. ବି—ଆମ୍ରାତକ; ଅମ୍ବଡ଼ା—
Pūrāmḻa 1. Hog plum; Spondias Magnifera.
୨ । ବୃକ୍ଷାମ୍ଳ; ତେନ୍ତୁଳି—2 Tamarind.

ପୂରା ଯିବା—ଦେ. କ୍ରି—(ପୂରିବାର କର୍ମବାଚ୍ୟ ରୂପ)—ଭିତରକୁ ଭରତି
Pūrā jibā କରାଯିବା—To be thrust in.
(ପୂରାହେବା—ଅନ୍ୟରୂପ) ପୁରାଯାଓୟା **पूराजाना**

ପୂରା ଶାଳ—ଦେ. ବିଣ—୧ । ପୂର୍ଣ୍ଣାଙ୍ଗ; ସମ୍ପୂର୍ଣ୍ଣରୂପେ ପରିପୁଷ୍ଟ—
Pūrā sāḻa 1 Fully developed.
(ପୂରାଶାଳଆ—ଅନ୍ୟରୂପ) ୨ । ହୃଷ୍ଟପୁଷ୍ଟ, ମୋଟା ସୋଟା; ସ୍ଥୂଳକାୟ—
2. Corpulent; fat,

ପୂରି—ଦେ. ବି—୧ । ପୂରିକା ୧ (ଦେଖ)
Pūri 1. Pūrikā 1 (See)
ପୂରୀ ୨ । ମୃଦଙ୍ଗ ଆଦିର ମୁହଁରେ ମଡ଼ାଯିବା ଚମଡ଼ା—
**पूरी** 2. Circuar bit of leather put on the mouth of a drum.

ପୂରିକା—ସଂ. ବି. ସ୍ତ୍ରୀ (ପୂରି+ସଜ୍ଞାର୍ଥେ. କ+ସ୍ତ୍ରୀ. ଆ)—୧ । ପୁରି;
Pūrikā ଘୃତପକ୍ୱ ଗୋଧୂମ ପିଷ୍ଟକ—1. Unleavened bread fried in ghee.
୨ । କଚୁରି; ପୁରପିଠା—2. Sandwich.

ପୂରିତ—ସଂ. ବିଣ—(ପୂର୍ ଧାତୁ+କର୍ମ. ତ)—୧ । ପୂର୍ଣ୍ଣ କରାଯାଇଥିବା
Pūrita 1 Filled.
୨ । ପରିପୂର୍ଣ୍ଣ—2. Filled up; full.
୩ । ଗୁଣିତ—3 Multiplied.

ପୂରିବା—ଦେ. କ୍ରି—(ପୂର୍ ଧାତୁ=ପୂର୍ଣ୍ଣ କରିବା)—୧ । ପୂର୍ଣ୍ଣ ହେବା,
Pūribā ପୂର୍ଣ୍ଣ ହେବା—1. To become full, to be filled.
[ପୁରି(ରେ)ଇବା—ଣିଜନ୍ତ] ପୂର୍ଣହଓୟା **पूराहोना,पूरना** up.
୨ । (ମନୋବାଞ୍ଛା) ଫଳବତୀ ହେବା, ସିଦ୍ଧ ହେବା; ସଫଳ ହେବା—
2. (a desire) To bear fruit; to be fulfilled.
ତୋହର ପ୍ରସାଦେ ସକଳ କାମନା ଯାଉଥିଛି ମାଗେ ପୂରି—
ମଧୁସୂଦନ. ଭଜନମାଳା ।
୩ । ସମ୍ପୂର୍ଣ୍ଣ ହେବା, ସମାପ୍ତ ହେବା—
3. To be completed; to be finished.
୪ । (ସମୟର ମିଆଦ) ଅତିକ୍ରାନ୍ତ ହେବା, କାଳ ଶେଷ ହେବା—
4. (time limit) To expire or pass.
ଅଶୀ ଲକ୍ଷ ଥରେ ପୂରିଲେ କାଳ ଖଣ୍ଡ ପଛେ ଧାଇଁ ମଲ ଶୃଗାଳ—
ଭଜ ।
୫ । ବ୍ୟାପିବା; ବ୍ୟାପ୍ତ ହେବା—5 To spread over; to pervade; to be immanent.
ଜଗତରେ ପୂରି ରହିଛ ଯଶ—ଭୂପତି ପ୍ରେମପଞ୍ଚାମୃତ ।
୬ । ସମାହିତ ହେବା—6. To be accomplished.
୭ । ଅଣ୍ଟିବା; ଯଥେଷ୍ଟ ହେବା—
7. To suffice; to be sufficient.
୮ । ନିର୍ଦ୍ଦିଷ୍ଟ କାର୍ଯ୍ୟରେ ନିର୍ଦ୍ଦିଷ୍ଟ ସମୟରେ ଦଶ ଜଣଙ୍କ ସଙ୍ଗେ ଯୋଗ ଦେବା—8 To join with others in a specified matter in a specified time.
(ଯଥା—ଗ୍ରାମ ଭେଦାରେ ଅମୁକ ଲୋକ ପୂରି ପାରିଲା ନାହିଁ ।)
୯ । (ଲକ୍ଷଣାର୍ଥ) ସନ୍ତୁଷ୍ଟ ହେବା—
9 (figurative) To be satisfied or satiated.
(ଯଥା—ତା ରୂପ ଦେଖି ମୋ ପେଟ ପୂରିଗଲା ।)
୧୦ । ଦେହସାରା ବ୍ୟାପିବା—
10 To spread or appear throughout the body.
ଗାତ୍ର ଗୋଟିସାରା ପୂରିଲା ପୁଲକ—
କବିସୂର୍ଯ୍ୟ କଣୋଇ ଚଣ୍ଡୁ ଗ ଗୀତ ।
୧୧ । ପଶିବା; ପ୍ରବେଶ କରିବା—
11. To enter; to be thrust.
ଶୁଣି କର୍ଣ୍ଣିଲେ ବଗପାଳେ
ପୂରିଲ ଭୂମି ଅନ୍ତରାଳେ । ଜଗନ୍ନାଥ. ଭାଗବତ ।
୧୨ । (ଗର୍ବରେ) ଉଦ୍‌ଫୁଲ୍ଲ ହେବା—12. To be bloated or puffed up with (pride).

ପୂରି ଯିବା—ଦେ. କ୍ରି—୧ । ଅଣ୍ଟିବା; ଯଥେଷ୍ଟ ହେବା—
Pūri jibā 1. To suffice.
୨ । ପୂରିବା (ଦେଖ)—2. Pūribā (See)

ପୂରୁ—ସଂ. ବି. (ପୂର୍ ଧାତୁ+ଉ)—୧ । ବୈରାଜ ମନୁଙ୍କ ପୁତ୍ର—
Pūru 1. The son of Bairāja Manu.
୨ । ଜହ୍ନୁ ମୁନିଙ୍କ ପୁତ୍ର—
2. A son of sage Jahnu.
୩ । ରାକ୍ଷସବିଶେଷ—3. Name of a demon.
୪ । ଶର୍ମିଷ୍ଠାଙ୍କ ଗର୍ଭରୁ ଜାତ ଯଯାତିଙ୍କ ପୁତ୍ର—
4. Name of a son of Jajāti
୫ । ମନୁଷ୍ୟ (ହି ଶ)—5 Man.

ପୂରୁବ—ଦେ. ବି. (ସଂ. ପୂର୍ବ)—୧ । ପୂର୍ବଦିଗ—
Pūruba 1. The east.
ପୂବ୍ବ ୨ । ପୂର୍ବ କାଳ—2. Old times.
**पूरब** ୩ । ଅତୀତ—3. The past.
ବିଣ—୧ । ପୂର୍ବଦିଗସ୍ଥ—1. Eastern
୨ । ପ୍ରାଚୀନ—2. Ancient
୩ । ଅତୀତ—3. Past
୪ । ଆଗକାର, ପୂର୍ବତନ—4. Former.
ପୂରୁବ ମାଧୁଅ କି ? ମାଧୁଅ ହୋଇଲେ ଟଙ୍କା ତୋଳିବ
ମାଧୁଅ ନଣିଷ ତଉଣ କି ? ଭଜ ।

**ପୂରୁବ ଦୁଆର**—ଦେ. ବି—୧ । ହତା ବା ଘରର ପୂର୍ବଦିଗରେ ଥିବା
Pūruba duāra ଦୁଆର—1. The eastern door of a
पूर्वद्वार house or compound.
**पूरबदरवाजा** ୨ । କୌଣସି ଦେଉଳର ବେଢାରେ ଥିବା ପୂର୍ବ ପାଖର ଦୁଆର, ସିଂହଦ୍ୱାର—2 The lions gate or the eastern gate of the compound of a temple.

**ପୂରୁବ ଦୁଆରି**—ଦେ. ବିଣ—ପୂର୍ବଦିଗରେ ଦ୍ୱାରଥିବା (ଘର)—
Pūruba duāri (House) Having its door to the east.
(ପୂରୁବ ଦୁଆରିଆ—ଅନ୍ୟରୂପ)

**ପୂରୁବ ମୁହାଁ**—ଦେ. ବିଣ (ସଂ. ପୂର୍ବମୁଖ)—ପୂର୍ବଦିଗକୁ ମୁହଁ କୁଲାଇଥିବା; ଯାହାର ମୁହଁ ପୂର୍ବକୁ ଥାଏ—Facing east.
Pūruba muhāṅ
(ପୂରୁବ ମୁଖା—ଅନ୍ୟରୂପ)

**ପୂରୁବା**—ଦେ. ବିଣ. (ସଂ. ପୂର୍ବୀୟ)—ପୂର୍ବଦିଗ ସମ୍ବନ୍ଧୀୟ—
Pūrubā पूरबा **पूरबा** Eastern.

**ପୂରୁବା ପୂରୁଷା**—ଦେ. ବିଣ—୧ । ବହୁକାଳରୁ ପ୍ରଚଳିତ—
Pūrubā pūrubi 1. Obtaining since a long time
ପୂରବା ପୂରବୀ } ଅନ୍ୟରୂପ ୨ । ଅତି ପ୍ରାଚୀନ—
ପୂରବା ପୂରୁଷୀ } 2. Very old; ancient.
୩ । ପିତୃପୈତାମହିକ; ପୈତୃକ—3. Ancestral.
ବି—ପୂର୍ବପୁରୁଷ ଗଣ; ବଡ଼ବଡ଼ୁଆ—
One's ancestors; forefathers.
କ୍ରି. ବିଣ—୧ । ପୁରୁଷାନୁକ୍ରମେ —1 For generations.
୨ । ଅବହମାନ କାଳରୁ—2. From time immemorial.

**ପୂରୁଷ**—ସଂ. ବି. [ପୂର୍ ଧାତୁ=(ପୂର୍ଣ୍ଣକରିବା) ପୂର୍ଣ୍ଣ କରିବା + କର୍ତ୍ତୃ. ଉଷ]—୧ । ପୁରୁଷ (ଦେଖ)
Pūrusha 1. Purusha (See)
୨ । ଆତ୍ମା (ହ୍ରି, ଶ)—2. The soul.

**ପୂରୋଇବା**—ଗ୍ରା. (ପଦ୍ୟ) କ୍ରି—ପୂରାଇବା (ଦେଖ)
Pūroibā Purāibā (See)
ବାଣସବେ ଉପୂର ପୂରୋଇ ଥୋଇ ଶର
ମୋତ ଅର୍ଦ୍ଧ ଶୁଚନ୍ତି ଯେ । ଉଞ୍ଜ. କୋଟବ୍ରହ୍ମାଣ୍ଡସୁନ୍ଦରୀ ।

**ପୂର୍ଣ୍ଣ**—ସଂ. ବିଣ. (ପୂର୍ ଧାତୁ + କର୍ମ. ତ)—୧ । ପରିପୂର୍ଣ୍ଣ—
Pūrṇṇa 1. Filled up.
(ପୂର୍ଣ୍ଣା—ସ୍ତ୍ରୀ) ୨ । ସମ୍ପୂର୍ଣ୍ଣ—2. Complete, full.
ପୂର୍ଣ୍ଣତା } ବି. ୩ । ସମାପ୍ତ—3. Finished; completed.
ପୂର୍ଣ୍ଣତ୍ୱ } ୪ । ସମସ୍ତ; ସମୁଦାୟ—4. Whole; entire.
୫ । ସମର୍ଥ—5. Able.
୬ । ସିଦ୍ଧ; ସଫଳ—6. Successful; fulfilled.
୭ । ଶକ୍ତ—7. Strong; powerful.
୮ । ସର୍ବାଙ୍ଗ ସମ୍ପନ୍ନ—8. Fully developed.
୯ । ସ୍ୱାଧୀନ, ଅପେକ୍ଷାଶୂନ୍ୟ—9. Independent.
୧୦ । ଦୋଷ ଶୂନ୍ୟ—10. Flawless.
୧୧ । ଆପ୍ତକାମ—11. Having one's desire fulfilled.
୧୨ । ଅଭାବଶୂନ୍ୟ (ହ୍ରି ଶ)—12. Having no want.
ବି. (ପୂର୍ ଧାତୁ + କର୍ତ୍ତୃ. ତ)—ଜଳ—Water.
ଦେ. ବି—ପୂର୍ଣ୍ଣଚନ୍ଦ୍ରର ଡାକ ନାମ—
Name for calling Pūrṇṇachandra.

**ପୂର୍ଣ୍ଣକ**—ସଂ. ବି. (ପୂର୍ଣ୍ଣ + କ)—ସ୍ୱର୍ଣ୍ଣଚୂଡ଼ ପକ୍ଷୀ, କୁକୁଡ଼ା—
Pūrṇṇaka Cock.

**ପୂର୍ଣ୍ଣ କକୁଦ୍**—ସଂ. ବି. ( ବହୁବ୍ରୀହି, ପୂର୍ଣ୍ଣ ହୋଇଅଛି କକୁଦ୍=ଚୂଳ ଯାହାର )—ତରୁଣ ବୟସ୍କ ବୃଷ—
Pūrṇṇa kakud A full-grown bull,

**ପୂର୍ଣ୍ଣ କରି**—ଦେ. କ୍ରି. ବିଣ—୧ । ସମ୍ପୂର୍ଣ୍ଣରୂପେ—
Pūrṇṇa kari 1. Fully.
୨ । ପୂର୍ଣ୍ଣ ମାତ୍ରାରେ—2. In large dozes.
ଚୂର୍ଣ୍ଣ ପତର ଘୂର୍ଣ୍ଣି କରି, ନାର ଦଉଥା ପୂର୍ଣ୍ଣ କରି । ଚଗ ।

**ପୂର୍ଣ୍ଣ କରିବା**—ଦେ. କ୍ରି. (ସଂ ପୂର୍ ଧାତୁ)—୧ । ପୂରାଇବା, ସମ୍ପୂର୍ଣ୍ଣ କରିବା—1. To complete.
Pūrṇṇa karibā
पूर्णकरना ୨ । ଭରିଦେବା—2. To fill up; to thrust.
**पूरन करना** ୩ । ସମାପ୍ତ କରିବା—3. To finish.
୪ । ସଫଳ କରିବା—4. To fulfil.

**ପୂର୍ଣ୍ଣ କଳସ**—ସଂ. ବି—ପୂର୍ଣ୍ଣ କୁମ୍ଭ (ଦେଖ)
Pūrṇṇa kaḷasa Pūrṇṇa kumbha (See)

**ପୂର୍ଣ୍ଣ କାମ**—ସଂ ବିଣ. ପୁଂ. (ବହୁବ୍ରୀହି; ପୂର୍ଣ୍ଣ ହୋଇଅଛି କାମ=ମନୋରଥ ଯାହାର)—୧ । ଯାହାର ଅଭୀଷ୍ଟ ସିଦ୍ଧ ହୋଇଅଛି—1. Having one's wishes fulfilled,
Pūrṇṇa kāma
(ପୂର୍ଣ୍ଣକାମା—ସ୍ତ୍ରୀ)
(ପୂର୍ଣ୍ଣକାମକ—ଅନ୍ୟରୂପ)
କେବେ ହୋଇ ନ ପରଇ ସେ ପୂର୍ଣ୍ଣକାମ—କୃଷ୍ଣସିଂହ. ମହାଭାରତ. ସଭ
୨ । ତୃପ୍ତ; ସନ୍ତୁଷ୍ଟ—2. Satisfied; satiated.

**ପୂର୍ଣ୍ଣ କୁମ୍ଭ**—ସଂ. ବି—୧ । ଜଳପୂର୍ଣ୍ଣ ଘଟ, ଭରା ମାଠିଆ—
Pūrṇṇa kumbha 1. A jar filled up with water.
୨ । ଭଦ୍ରକୁମ୍ଭ; ପୂଜା, ଶ୍ରାଦ୍ଧ ଓ ଉତ୍ସବାଦି କର୍ମରେ ପ୍ରଥମ ଅନୁକୂଳ ସ୍ୱରୂପ ସ୍ଥାପିତ ହେବା ପବିତ୍ର ଜଳପୂର୍ଣ୍ଣ ଘଟ—
2. A jar filled with holy water kept on occasions of ceremonies.

**ପୂର୍ଣ୍ଣକୁମ୍ଭ ମେଳା**—ଦେ. ବି—ହରିଦ୍ୱାରରେ ଫଗୁଣ ମାସରେ ହେବା ବାର୍ଷିକ ମେଳା—
Pūrṇṇakumbha meḷā
A religious fair which takes place at Hardwar every year.
[ ବଙ୍ଗଳା ସ୍ୱାମୀ ରାମାନନ୍ଦ ୧୬୩ ପୃଷ୍ଠା ଦ୍ରଷ୍ଟବ୍ୟ । ]

**ପୂର୍ଣ୍ଣ ଗର୍ଭ**—ସଂ. ବି—ଗର୍ଭସ୍ଥ ସନ୍ତାନ ପୂର୍ଣ୍ଣାଙ୍ଗ ପ୍ରାପ୍ତ ହୋଇଥିବା ଗର୍ଭାବସ୍ଥା—
Pūrṇṇa garbha Full pregnancy; advanced stage of pregnancy.

**ପୂର୍ଣ୍ଣଗର୍ଭା**—ସଂ. ବିଣ. ସ୍ତ୍ରୀ ( ବହୁବ୍ରୀହି, ପୂର୍ଣ୍ଣଗର୍ଭ ହୋଇଅଛି ଯାହାର )—ଯେଉଁ ଗର୍ଭିଣୀର ଗର୍ଭସ୍ଥ ସନ୍ତାନ ପୂର୍ଣ୍ଣାଙ୍ଗ ପ୍ରାପ୍ତ ହୋଇଅଛି ଓ ଯେଉଁ ସ୍ତ୍ରୀ ଶୀଘ୍ର ସନ୍ତାନ ପ୍ରସବ କରିବ,
Pūrṇṇagarb

ଆସନ୍ନପ୍ରସବା—1. ( a woman ) In an advanced stage of pregnancy

୨ । ପୂର ଦିଠା ( ହି. ଶ. )—2. Sandwich.

ପୂର୍ଣ୍ଣ ଚନ୍ଦ୍ର— ସଂ. ବି—ପୂର୍ଣ୍ଣିମାର ୧୬ କଳାବିଶିଷ୍ଟ ଚନ୍ଦ୍ର—
Pūrṇṇa chandra Full moon.

ଦେ. ବି. ପୁଂ— ଲୋକଙ୍କୁ ଦିଆଯିବା ନାମ—
A name given to males.

ପୂର୍ଣ୍ଣଚ୍ଛେଦ - ସଂ. ବି ( ପୂର୍ଣ୍ଣ+ଛେଦ; ସନ୍ଧିହ୍ରାସ ଛ )—କୌଣସି
Pūrṇṇachchheda ଲେଖାକୁ ପାଠ କଲା ବେଳେ ପଦା ଦୀର୍ଘକାଳ
( ପୂର୍ଣ୍ଣବିରାମ— ଅନ୍ୟରୂପ ) ସ୍ଥଗିତ ରଖାଯିବାର ସୂଚକ ଚିହ୍ନ, '।'—
( ପୂର୍ଣ୍ଣଚ୍ଛେଦ—ଦେଶଜ ରୂପ ) Fullstop; '.'

[ ଦ୍ର—ଏ ଚିହ୍ନ ଇଂରାଜୀରେ ଗୋଟିଏ ବିନ୍ଦୁ ଓ ଓଡ଼ିଆରେ ଗୋଟିଏ ବାଡ଼ିପରି ଆକାର । ]

ପୂର୍ଣ୍ଣତଃ—ସଂ. କ୍ରି ବିଣ ( ପୂର୍ଣ୍ଣ+ତସ୍ )—ପୂର୍ଣ୍ଣରୂପେ—
Pūrṇṇataḥ Completely; fully

ପୂର୍ଣ୍ଣତୟା—ସଂ. କ୍ରି. ବିଣ ( ପୂର୍ଣ୍ଣତା ଶବ୍ଦର ୩ୟା ଏକବଚନ )—ପୂର୍ଣ୍ଣ-
Pūrṇṇatayā ଭାବରେ—Completely.

ପୂର୍ଣ୍ଣତମ(ର)— ସଂ. ବିଣ. (ପୂର୍ଣ୍ଣ+ତମ; ତର)—ପରିପୂର୍ଣ୍ଣ—
Pūrṇṇatama(ra) Full.

ମୃଗ ସିଂହ ବ୍ୟାଘ୍ର ଯେ ଅନ ବନଚର
ମାନଙ୍କରେ ସେ ବନ ହୋଇଛି ପୂର୍ଣ୍ଣତର –
କୃଷ୍ଣସିଂହ, ମହାଭାରତ ବନ ।

ପୂର୍ଣ୍ଣ ପରିବର୍ତ୍ତକ—ସଂ. ବି. ( ଜୀବ ବିଜ୍ଞାନ ପରିଭାଷା )— ଯେଉଁ ପ୍ରାଣୀ-
Pūrṇṇa paribarttaka ମାନେ ବାରମ୍ବାର ସମ୍ୟକ୍‌ରୂପେ ଦେହ ପରିବର୍ତ୍ତନ କରନ୍ତି—The metamorphosis animals; animals which undergo various successive transformations or developments

( ଯଥା—ପ୍ରଜାପତି, ଭଇଁ, ପିମ୍ପୁଡ଼ି । ]

ପୂର୍ଣ୍ଣ ପାତ୍ର—ସଂ. ବି —୧ । କୌଣସି ପଦାର୍ଥରେ ପୂର୍ଣ୍ଣ ହୋଇଥିବା ପାତ୍ର—
Pūrṇṇa pātra 1. A cup or vessel filled with some matter.

୨ । ହୋମାନ୍ତେ ବ୍ରାହ୍ମଣଙ୍କୁ ଦକ୍ଷିଣାରୂପେ ଦେୟ ତଣ୍ଡୁଳପୂର୍ଣ୍ଣ ପାତ୍ର—2. A pot filled with rice given to a Brāhmaṇa at the end of a 'homa' or sacrifice.

୩ । ଜଳପୂର୍ଣ୍ଣ ପାତ୍ର—3. A jar filled up with water.

୪ । ପୁତ୍ର ଜନ୍ମାଦି ଉତ୍ସବରେ ପାରିତୋଷିକରୂପେ ଆଶ୍ରିତ ଓ ଭୃତ୍ୟାଦିଙ୍କୁ ଦିଆଯିବା ବସ୍ତ୍ରାଲଙ୍କାରାଦି ( ହି. ଶ. )—
4. Presents or gifts given to servants etc on the occasions of festivities.

ପୂର୍ଣ୍ଣ ପ୍ରଜ୍ଞ—ସଂ. ବିଣ. ପୁଂ —ପୂର୍ଣ୍ଣଜ୍ଞାନୀ, ଯାହାର ଜ୍ଞାନ ପୂର୍ଣ୍ଣତା ପ୍ରାପ୍ତ
Pūrṇṇa prajña ହୋଇଅଛି—Very wise; of mature
(ପୂର୍ଣ୍ଣପ୍ରଜ୍ଞା—ସ୍ତ୍ରୀ) understanding.
(ପୂର୍ଣ୍ଣପ୍ରଜ୍ଞତା—ବି) ବି —ପୂର୍ଣ୍ଣପ୍ରଜ୍ଞ ଦର୍ଶନର ପ୍ରଣେତା ମାଧ୍ୱାଚାର୍ଯ୍ୟ—
A name of Mādhwāchārjya.

ପୂର୍ଣ୍ଣପ୍ରଜ୍ଞ ଦର୍ଶନ—ସଂ. ବି—ବେଦାନ୍ତ ସୂତ୍ର ଓ ତହିଁ ଉପରେ ରାମାନୁଜଙ୍କ
Pūrṇṇaprajña darśana ଭାଷ୍ୟ ଅବଲମ୍ବନରେ ସଙ୍କଳିତ ଦର୍ଶନ ଶାସ୍ତ୍ର ( ହି. ଶବ୍ଦସାଗର )—
Name of a system of Hindu philosophy based on the Bedānta Sūtra as expounded by Rāmānuja

ପୂର୍ଣ୍ଣ ବୟସ୍କ—ସଂ. ବିଣ. ପୁଂ ( ବହୁବ୍ରୀହି; ପୂର୍ଣ୍ଣ+ବୟସ୍+କ )—
Pūrṇṇa bayaska ୧ । ସାବାଳକ, ପ୍ରାପ୍ତ ବୟସ୍କ—
(ପୂର୍ଣ୍ଣ ବୟସ୍କା—ସ୍ତ୍ରୀ) 1. Adult; one who has attained majority, major.

୨ । ପରିଣତ ବୟସ୍କ—2 One who has attained the age of mature understanding.

ପୂର୍ଣ୍ଣ ବିକାଶ—ସଂ. ବି (କର୍ମଧା)—ସମ୍ପୂର୍ଣ୍ଣ ରୂପେ ବିକସିତ ହେବା ଅବସ୍ଥା—
Pūrṇṇa bikāśa Full-blown condition.

ପୂର୍ଣ୍ଣ ବୀଜ—ସଂ. ବି. (ବହୁବ୍ରୀହି)—ଟଭ ଲେମ୍ବୁ—
Pūrṇṇa bīja A kind of lemon.

ପୂର୍ଣ୍ଣ ବ୍ରହ୍ମ—ସଂ. ବି—ପରଂ ବ୍ରହ୍ମ, ଅଖଣ୍ଡ ବ୍ରହ୍ମ; ପରମେଶ୍ୱର—
Pūrṇṇa brahma God; the Essence pervading the universe.

ପୂର୍ଣ୍ଣମା—ସଂ. ବି. ( ବହୁବ୍ରୀହି, ପୂର୍ଣ୍ଣ+ମା=ଚନ୍ଦ୍ର )—
Pūrṇṇamā ପୂର୍ଣ୍ଣିମା ତିଥି—The fullmoon day of a lunar month.

ପୂର୍ଣ୍ଣ ମାତ୍ରା—ସଂ. ବି—୧ । ସମ୍ପୂର୍ଣ୍ଣ ପରିମାଣ—
Pūrṇṇa mātrā 1 Full quantity or measure.

୨ । ଔଷଧର ସମ୍ପୂର୍ଣ୍ଣ ଏକ ଦାନ—.
2. A full dose of a medicine.

୩ । ଅଖଣ୍ଡିତ ଅବସ୍ଥା—3 Entirety

ପୂର୍ଣ୍ଣ ମାସ—ସଂ. ବି. ( ପୂର୍ଣ୍ଣ+ମାସ )—୧ । ପୂର୍ଣ୍ଣିମା ( ଦେଖ )
Pūrṇṇa māsa 1 Pūrṇṇamā ( See )

୨ । ପୂର୍ଣ୍ଣିମା ତିଥିରେ କର୍ତ୍ତବ୍ୟ ଯାଗବିଶେଷ—
2. A sacrifice performable on the fullmoon day.

ପୂର୍ଣ୍ଣମାସୀ—ସଂ. ବି. ( ପୂର୍ଣ୍ଣ+ମାସ+ସ୍ତ୍ରୀ ଈ )—
Pūrṇṇamāsi ୧ । ପୂର୍ଣ୍ଣିମା ତିଥି—1. Full moon day.

୨ । ଗୋପପୁରବାସିନୀ ସନ୍ନ୍ୟାସିନୀବିଶେଷ—
2. Name of a female anchorite mentioned in the Bhāgabata.

[ ଦ୍ର—ଏ ଯୋଗମାୟାଙ୍କ ଅବତାର ଥିଲେ । ଏ ମାୟା ବିସ୍ତାର କରି ରାଧା କୃଷ୍ଣଙ୍କ ମିଳନ କରାଇଥିଲେ ଓ ସମସ୍ତଙ୍କୁ ମାୟାରେ ବଶୀଭୂତ କରି ରଖିଥିଲେ । ଏହାଙ୍କ ହେତୁରୁ ରାଧାଙ୍କ ଶାଶୁ ଜଟିଳା ରାଧା କୃଷ୍ଣଙ୍କ ପ୍ରଣୟ ସମ୍ବନ୍ଧରେ କିଛି ମାତ୍ର ଜାଣି ପାରି ନ ଥିଲେ । ]

ପୂର୍ଣ୍ଣମୀ—ଦେ ବି. ( ସଂ. ପୂର୍ଣ୍ଣିମା )—ପୂର୍ଣ୍ଣିମା ( ଦେଖ )
Pūrṇṇamī Pūrṇṇimā ( See )

ପୂର୍ଣ୍ଣ ମିତାକ୍ଷର—ସଂ. ବି—ଯେଉଁ ପଦ୍ୟରେ ପ୍ରଥମ ପାଦର ଅନ୍ତ୍ୟବର୍ଣ୍ଣ ଓ
Pūrṇṇa mitrākshara ଉପାନ୍ତ୍ୟ ସ୍ୱର ସହିତ ପରବର୍ତ୍ତୀ ପାଦର

ଅନ୍ତ୍ୟ ବର୍ଣ୍ଣ ଓ ଉପାନ୍ତ୍ୟ ସ୍ୱରର ମିଳନ ଥାଏ—
A poetical composition in which the ultimate letter and the penultimate vowel of the lines tally with each other.
(ଉଦାହରଣ ଯଥା—ଏକାଳେ ରବିଙ୍କି ନେଲା ବିଯାମା ଆକର୍ଷି, ଅରୁନ୍ଧତୀ ସହ ଶୋଭା ବହିଲେ ସପ୍ତର୍ଷି । )

[ଦ୍ର—ଓଡ଼ିଆର ପ୍ରାଚୀନ କବିମାନେ ପୂର୍ଣ୍ଣମିତ୍ରାକ୍ଷରରେ ପଦ୍ୟ ରଚନା ନ କରି ଅପୂର୍ଣ୍ଣ ମିତ୍ରାକ୍ଷରରେ ପଦ୍ୟ ରଚନା କରୁଥିଲେ । ଇଂରାଜୀ, ବଙ୍ଗଳା ଓ ହିନ୍ଦିରେ ଶବ୍ଦର ଶେଷ ବର୍ଣ୍ଣ ହଲନ୍ତରୂପେ (ଯଥା, ପାନ ସ୍ଥଳରେ ପାନ୍) ଉଚ୍ଚାରିତ ହେଉ ଥିବାରୁ ତତ୍ତତ୍ ଭାଷାର ପଦ୍ୟମାନଙ୍କରେ ପୂର୍ଣ୍ଣମିତ୍ରାକ୍ଷର ନ ହେଲେ ରଚନା କର୍ଣ୍ଣକଟୁ ହୁଏ । ଏଥିପାଇଁ ବଙ୍ଗଳାରେ ଓ ହିନ୍ଦିରେ ପ୍ରଥମ ପାଦର ପାନ୍‌କୁ ମିଳାଇବା ପାଇଁ ୨ୟ ପାଦରେ 'କାନ୍' ଶବ୍ଦ ରଚନା କରିବାକୁ ପଡ଼େ । କିନ୍ତୁ ଓଡ଼ିଆରେ ଶେଷ ବର୍ଣ୍ଣର ଉଚ୍ଚାରଣ ହଲନ୍ତ ହେଉ ନ ଥିବାରୁ ପ୍ରଥମ ଧାଡ଼ିର କେବଳ ଶେଷ ବର୍ଣ୍ଣ ସଙ୍ଗେ ୨ୟ ଧାଡ଼ିର କେବଳ ଶେଷ ବର୍ଣ୍ଣ ମିଳିଲେ କର୍ଣ୍ଣକଟୁ ହୁଏ ନାହିଁ । ଆଧୁନିକ ଓଡ଼ିଆ କବିମାନେ (ରାଧାନାଥଙ୍କ ଯୁଗରୁ ଆରମ୍ଭ କରି) ଓଡ଼ିଆରେ ଅପୂର୍ଣ୍ଣ ମିତ୍ରାକ୍ଷର ପରିବର୍ତ୍ତେ ପୂର୍ଣ୍ଣ ମିତ୍ରାକ୍ଷର ଚଳାଇ ଥିବାର ଦେଖାଯାଏ । ଓଡ଼ିଆର ପ୍ରାୟ ସମସ୍ତ ପ୍ରାଚୀନ କାବ୍ୟ ଓ କବିତା ଅପୂର୍ଣ୍ଣ ମିତ୍ରାକ୍ଷରରେ ରଚିତ । ]

**ପୂର୍ଣ୍ଣ ଯୋଗ**—ସଂ ବି(କର୍ମଧା)—ବାହୁ ଯୁଦ୍ଧବିଶେଷ—
Pūrṇṇa joga — A kind of wrestling.

**ପୂର୍ଣ୍ଣ ହୋମ**—ସଂ. ବି—(ବହୁବ୍ରୀହି, ପୂର୍ଣ୍ଣ ହୁଏ ହୋମ ଯାହାଦ୍ୱାରା)—
Pūrṇṇa homa — ପୂର୍ଣ୍ଣାହୁତି; ହୋମ ଶେଷରେ ଦିଆଯିବା ଆହୁତି—
The final oblation given to the fire at the end of a 'homa'.

**ପୂର୍ଣ୍ଣା**—ସଂ. ବି—( ପୂର୍ଣ୍ଣ + ଆ )—୧ । ପଞ୍ଚମୀ, ଦଶମୀ, ପୂର୍ଣ୍ଣିମା ଓ
Pūrṇṇā — ଅମାବାସ୍ୟା ତିଥି—1. The 5th, 10th and the 15th days of a lunar fortnight.
୨ । ଦକ୍ଷିଣ ଭାରତର ଏକ ନଦୀ (ହି. ଶ)—
2. A river of South India.
ବିଣ — ପୂର୍ଣ୍ଣର ସ୍ତ୍ରୀଲିଙ୍ଗ—
Feminine of Pūrṇṇa.

**ପୂର୍ଣ୍ଣା ତିଥି**—ସଂ. ବି—୧ । ପୂର୍ଣ୍ଣା ୧ (ଦେଖ) .
Pūrṇṇā tithi — 1. Pūrṇṇā 1 (See)
୨ । ପୂର୍ଣ୍ଣିମା (. ଦେଖ )—
2. Pūrṇṇimā ( See ).

**ପୂର୍ଣ୍ଣାନନ୍ଦ**—ସଂ. ବି (କର୍ମଧା)—୧ । ପରମାନନ୍ଦ, ଅତ୍ୟନ୍ତ ଆନନ୍ଦ—
Pūrṇṇānanda — 1 Greatest happiness.
୨ । (ବହୁବ୍ରୀହି) ଆନନ୍ଦମୟ ପରମେଶ୍ୱର; ପରଂବ୍ରହ୍ମ—
2. The supreme God.
୩ । ଜନୈକ ତନ୍ତ୍ରଶାସ୍ତ୍ର ସଙ୍କଳୟିତା ପଣ୍ଡିତ—
3. Name of a compiler of Tantra lore.

ଦେ. ବି. ପୁଂ—ଲୋକଙ୍କୁ ଦିଆଯିବା ନାମ—
A name given to males.

**ପୂର୍ଣ୍ଣାନ୍ତରେ**—ଦେ. କ୍ରି. ବିଣ—(ସଂ. ପୂର୍ଣ୍ଣତଃ)—ପୂର୍ଣ୍ଣ ଭାବରେ—
Pūrṇṇāntare — Fully; completely.
ଦଉ ସ୍ୱର ପୂର୍ଣ୍ଣାନ୍ତରେ କହୁଥାଉ ଯେବେ—
ଗ୍ରା—ଣିବସ୍ୱରୋଦୟ ।

**ପୂର୍ଣ୍ଣାବତାର**—ସଂ. ବି (କର୍ମଧା)—ଦେବତାଙ୍କର ସମ୍ପୂର୍ଣ୍ଣ ଅବତାର—
Pūrṇṇābatāra — Full incarnation of a Deity.
(ଅଂଶାବତାର—ବିପରୀତ)
[ନୃସିଂହ, ରାମ ଓ ଶ୍ରୀକୃଷ୍ଣ ଓ ମତାନ୍ତରରେ କେବଳ ଶ୍ରୀକୃଷ୍ଣ ବିଷ୍ଣୁଙ୍କର ପୂର୍ଣ୍ଣାବତାର ବୋଲି କଥିତ ।]

**ପୂର୍ଣ୍ଣାଭିଷେକ**—ସଂ. ବି—ତନ୍ତ୍ରୋକ୍ତ ବାମ ମାର୍ଗୀୟର ଅଭିଷେକ-
Pūrṇṇābhisheka — ବିଶେଷ—Name of a ceremonial bath prescribed in the Tantras.
[ଦ୍ର—ସାଧକ ଗୁରୁଙ୍କଦ୍ୱାରା ଦୀକ୍ଷିତ ହେଲାବେଳେ ଏ ଅଭିଷେକ କରାଯାଏ ।]

**ପୂର୍ଣ୍ଣାୟୁଃ**—ସଂ. ବି—(କର୍ମଧା; ପୂର୍ଣ୍ଣ+ଆୟୁଃ)—୧ । (କଳି ଯୁଗରେ)
Pūrṇṇāyuḥ — ଅଷ୍ଟୋତ୍ତରଶତବର୍ଷ ଜୀବିତ କାଳ ବା ପରମାୟୁ—
(ପୂର୍ଣ୍ଣାୟୁ—ଦେଶଜରୂପ) 1. Full longevity of 108 years in the Kāli age
୨ । (ବହୁବ୍ରୀହି)—ଶତାୟୁଃ ବ୍ୟକ୍ତି—
2. A man living for 100 years.
[ଦ୍ର—ସତ୍ୟଯୁଗରେ ମନୁଷ୍ୟମାନଙ୍କର ପରମାୟୁ ଏକ ଲକ୍ଷ ବର୍ଷ । ତ୍ରେତାରେ ଦଶହଜାର ବର୍ଷ, ଦ୍ୱାପରରେ ଏକ ହଜାର ବର୍ଷ ଓ କଳି ଯୁଗରେ ୧୨୦, ମତାନ୍ତରରେ ୧୦୮, ମତାନ୍ତରରେ ୧୦୦ ବର୍ଷ । ସାଧାରଣତଃ କଳିଯୁଗରେ ମନୁଷ୍ୟଙ୍କ ପରମାୟୁ 'କଳି ଷଠୀ' ୬୦ ଠାରୁ ୮୦ ବର୍ଷ ପର୍ଯ୍ୟନ୍ତ ଥିବାର ଲୋକେ କହି ଥାଆନ୍ତି । ଉପନିଷଦରେ ଅଛି 'ଜିଜୀବିଷେତ୍ ଶତଂ ସମାଃ' ଅର୍ଥାତ୍ ଲୋକେ ଶହେ ବର୍ଷ ବଞ୍ଚିବାକୁ ଇଚ୍ଛା କରିବେ । ଦ୍ୱିଜାତିଙ୍କ ସନ୍ଧ୍ୟାରେ 'ଓଁ ଜୀବେମଃ ଶରଦଶତଂ, ଶୃଣୁୟାମଃ ଶରଦଶତଂ' (ଅର୍ଥାତ୍ ଆମ୍ଭେମାନେ ଶହେଟି ଶରତ୍‌କାଳ ଭୋଗ କରିବାକୁ ବଞ୍ଚିବା ) ବୋଲି ସ୍ତବ ଅଛି । ]
ବିଣ.— (ବହୁବ୍ରୀହି)—୧ । ଶତାୟୁଷ୍କ; ଶତବର୍ଷଜୀବୀ—
1. Living for a hundred years.
୨ । ଅଷ୍ଟୋତ୍ତରଶତ ବର୍ଷ ଜୀବୀ—
2. Living for 108 years.

**ପୂର୍ଣ୍ଣାହୁତି**—ସଂ. ବି.—୧ । ହୋମ ସମ୍ପୂର୍ଣ୍ଣ ହେବା ପୂର୍ବରୁ ଦିଆଯିବା
Pūrṇṇāhuti — ଆହୁତି—1. Final offering of ghee etc made unto the fire just at the end of a 'Homa'.
୨ । (ଲକ୍ଷଣାର୍ଥ) କୌଣସି କର୍ମର ପରିସମାପ୍ତି—
2. (figurative) The completion of anything

**ପୂର୍ତ୍ତି**—ସଂ. ବି. (ପୂ ଧାତୁ—ପୂର୍ଣ୍ଣ କରିବା+ଭାବ. ତି)—୧ । ପୂର୍ତ୍ତି;
Pūrṇni — ପୂରଣ—Act of filling up; completing.
୨ । ପୂର୍ଣ୍ଣିମା (ହି. ଷ.)—2. The full moonday.

ପୂର୍ଣ୍ଣିମା—ସଂ. ବି (ପୂର୍ଣ୍ଣି + ମା ଧାତୁ=(ଚନ୍ଦ୍ରଙ୍କୁ) ପରିମାଣ କରିବା+କର୍ତ୍ତୃ.
Pūrṇṇimā ଅ + ସ୍ତ୍ରୀ. ଆ)—ଶୁକ୍ଳପକ୍ଷର ପଞ୍ଚଦଶୀ ତିଥି—
The fullmoon day.

[ସ ନାମ, ପୂର୍ଣ୍ଣିମା, ପୂର୍ଣ୍ଣମାସୀ, ସିତ୍ତ୍ୱା, ଶୁକ୍ରୀ, ଅନନ୍ତା, ଚନ୍ଦ୍ରମାତା, କରଂଜନା, ଜ୍ୟୋତ୍ସ୍ନୀ, ଇନ୍ଦୁମତୀ, ସିତା, ରାକା, ଅନୁମତୀ ।]

ପୂର୍ଣ୍ଣେନ୍ଦୁ—ସଂ. ବି.— (କର୍ମଧା; ପୂର୍ଣ୍ଣ+ଇନ୍ଦୁ)—ପୂର୍ଣ୍ଣ ଚନ୍ଦ୍ର—
Pūrṇṇendu The full moon

ପୂର୍ଣ୍ଣୋପମା—ସଂ. ବି.—ଉପମାଲଂକାରବିଶେଷ—
Pūrṇṇopamā A kind of simile in rhetoric.

[ଦ୍ର—ଯେଉଁ ଉପମାଲଂକାରରେ ଉପମାନ, ଉପମେୟ, ସାଧାରଣ ଧର୍ମ ଓ ଉପମାସୂଚକ ଶବ୍ଦମାନଙ୍କର ସ୍ପଷ୍ଟ ଉଲ୍ଲେଖ ଥାଏ ସେଠାରେ ପୂର୍ଣ୍ଣୋପମା ହୁଏ । ଉଦାହରଣ ଯଥା—

'ଖଣ୍ଡ ଖଣ୍ଡ ଧଳା ମେଘ ସୁନୀଳ ଅମ୍ବରେ,
ଭାସଇ ବୋଇତ ଯଥା ନୀଳ ସମୁଦ୍ରରେ—ମଧୁସୂଦନ, ଛନ୍ଦମାଳା ।

ଏଠାରେ ଉପମାନ—ବୋଇତ, ଉପମେୟ—ମେଘ, ସାଧାରଣ ଧର୍ମ—ଧଳା ଓ ଭାସିବା ଏବଂ ଉପମାସୂଚକ ଶବ୍ଦ, ଯଥା—ଏହି ସମସ୍ତଙ୍କର ସ୍ପଷ୍ଟ ଉଲ୍ଲେଖ ଅଛି ।]

ପୂର୍ତ୍ତ—ସଂ.ବିଣ(ପୃ ଧାତୁ=ପୂରଣ କରିବା+କର୍ମ. ତ)—୧ । ପରିପୂରିତ-
Pūrtta 1. Filled up.
(ପୂର୍ତ୍ତି—ଅନ୍ୟରୂପ) ୨ । ସମ୍ପୂର୍ଣ୍ଣ—2. Complete; full.
୩ । ଆଚ୍ଛାଦିତ—3. Covered.
୪ । ଆଚ୍ଛନ୍ନ; ଲୁକ୍କାୟିତ—4 Concealed.
୫ । ସମାପିତ—5. Completed; finished.
ବି.—(+ଭାବ. ତ)—୧ । ସାଧାରଣଙ୍କ ଉପକାରାର୍ଥ ପୁଷ୍କରିଣୀ ଓ କୂପ ଖନନାଦି ରୂପ କାର୍ଯ୍ୟ—1. Public works; acts of public utility; such as digging of wells and tanks, building of temples, planting of groves etc.
୨ । ପାଳନ—2 Nourishing; cherishing.
୩ । ପୂରଣ—3. Filling up.

ପୂର୍ତ୍ତ କର୍ମ—ସ.ବିଣ—ସାଧାରଣଙ୍କ ହିତାର୍ଥ ରାଜମାର୍ଗ, ପୁଷ୍କରିଣୀ ଓ କୂପାଦି
Pūrtt karma ନିର୍ମାଣ କର୍ମ— Public works; works of public utility.

ପୂର୍ତ୍ତ ବିଭାଗ—ଦେ. ବି. (ଆଧୁନିକ ବ୍ୟବହାର)—
Pūrtta bibhāga ସରକାରଙ୍କର ବାରିକମିସ୍ତିରି ମହକୁମା—
(ପୂର୍ତ୍ତିବିଭାଗ—ଅନ୍ୟରୂପ) The Public Works Department; the Engineering Department of the Government; P. W. D.

ପୂର୍ତ୍ତି—ସ. ବି. (ପୃ ଧାତୁ+ଭାବ ତି)—୧ । ପୂର୍ଣ୍ଣ କରିବା—
Pūrtti 1. Act of filling up.
୨ । ପୂର୍ଣ୍ଣତା କର୍ମ—2. Fulfilment; perfection; fullness.
୩ । ସନ୍ତୋଷ—3. Satisfaction; satiety.
୪ । ସମାପ୍ତି; ସମ୍ପୂର୍ଣ୍ଣତା—4 Completion.
୫ । କୌଣସି କାର୍ଯ୍ୟ ପାଇଁ ଲୋଡ଼ା ହେବା ବସ୍ତୁମାନଙ୍କ ମଧ୍ୟରୁ ଯାହା କମିଥାଏ ତାହା ପୂରଣ କରିବା କର୍ମ (ହି. ଶ)—
5 The act of filling up the things wanting for a certain work; supplementing.
୬ । (ଗଣିତ) ଗୁଣନ (ହି. ଶ) —
6. (arithmetic) Multiplication.

ପୂର୍ତ୍ତୀ—ସଂ. ବିଣ. ପୁଂ. (ପୂର୍ତ୍ତି+ଇନ୍, ୧ମା. ୧ବ)—୧ । ତୃପ୍ତିଦାୟକ—
Pūrtti 1. Satisfying.
(ପୂର୍ତ୍ତିମା—ସ୍ତ୍ରୀ) ୨ । ଇଚ୍ଛାପୂର୍ଣ୍ଣକାରକ—
2. Fulfilling one's desire.
୩ । ପୂରିତ (ହି. ଶ)—3. Filled up.

ପୂର୍ବ୍ (ଧାତୁ)—ସ—ପୂରଣ କରିବା—
Pūrb (root) To fill up.

ପୂର୍ବ—ସଂ. ସର୍ବ (ପୂର୍ବ ଧାତୁ+କର୍ତ୍ତୃ. ଅ, ପୂର୍ବେ ସର୍ବ ପ୍ରଥମେ ଦେବତା-
Pūrba ମାନେ ଏହି ଦିଗରେ ବାସ କରିଥିଲେ ବୋଲି ଏହାର ନାମ ପୂର୍ବ ହୋଇଥିବା ବିଷୟ ପୁରାଣରେ ଅଛି)—
୧ । ଆଦ୍ୟ; ପ୍ରଥମ—1. First; original.
୨ । ପ୍ରଥମେ ବା ଆଗେ ଘଟିଥିବା—
2 Preceding; foregoing.
୩ । ଅତୀତ, ପ୍ରାଚୀନ; ପଶ୍ଚାଦ୍‌ବର୍ତ୍ତୀ, ପୂର୍ବକାଳୀନ—
3. Former; prior; past; ancient; previous.
୪ । ପ୍ରଥମେ ବୋଲାଯାଇ ଥିବା; ପୂର୍ବୋକ୍ତ—
4. Aforesaid; previously mentioned.
୫ । ସମଗ୍ର—5. Whole; entire.
୬ । ଅଗ୍ର—6. Situated before; placed in front.
୭ । ଊର୍ଦ୍ଧ୍ୱସ୍ଥ (ଯଥା—ପୂର୍ବକାୟ)—7. Upper; fore.
୮ । ପ୍ରାଚ୍ୟ ଦେଶୀୟ—8 Eastern; oriental.
୯ । ଜ୍ୟେଷ୍ଠ—9 Elder.
୧୦ । ସୂର୍ଯ୍ୟ ଯେଉଁ ଦିଗରୁ ଉଦିତ ହୁଅନ୍ତି—
10. The east.
ସ ବି—୧ । (ବହୁବଚନ) ବଡ଼ବଡ଼ୁଆ; ପୂର୍ବ ପୁରୁଷ ଗଣ—
1. Ancestors; forefathers.
୨ । (ବହୁବଚନ) ଅତୀତକାଳର ବ୍ୟକ୍ତିମାନେ—
2. The ancients.
୩ । କାରଣ—3. Reason; cause.
୪ । ଇତିବୃତ୍ତ—4. History; legend; annals.
ବିଣ— (ଅନ୍ୟ ଶବ୍ଦ ପରେ ଘଟିଥିବା ଆଦି ଅର୍ଥରେ ବ୍ୟବହୃତ)—
ପୂର୍ବେ ହୋଇଥିବା—Happened before.
(ଯଥା—ଅଶ୍ରୁତପୂର୍ବ=ପୂର୍ବେ ଯାହା ଶୁଣା ନ ଥିଲା; ଅଦୃଷ୍ଟପୂର୍ବ=ପୂର୍ବେ ଯାହା ଦେଖା ନ ଥିଲା, ଅଭୂତପୂର୍ବ=ପୂର୍ବେ ଯାହା ହୋଇ ନ ଥିଲା , ଭୂତପୂର୍ବ=ପୂର୍ବେ ଯାହା ହୋଇଥିଲା ।)

ପୂର୍ବକ—ସ. ବିଣ. (ଅନ୍ୟ ଶବ୍ଦ ପରେ ଯୁକ୍ତ) ପୁରଃସର; ଯାହାର ପୂର୍ବରେ
Pūrbaka ଅମୁକ ବିଷୟ ଥାଏ —Preceding; prior

(ଯଥା—ବିନୟ ପୂର୍ବକ ନିବେଦନ, କର ମର୍ଦ୍ଦନ ପୂର୍ବକ ଅଭ୍ୟର୍ଥନା ।)

ଅ—୧ । ପୁରଃସର—1 Following; preceded; by

(ଯଥା—ମୁଁ ନମସ୍କାର ପୂର୍ବକ ନିବେଦନ କରୁଅଛି ।)

୨ । ସହିତ, ସହକାରେ—2. With.

(ଯଥା—ଆପଣ କୃପାପୂର୍ବକ ଏ କାର୍ଯ୍ୟ କରିବେ ।)

୩ । ଦ୍ୱାରା, କ୍ରମେ—3. By

(ଯଥା—ବଳପୂର୍ବକ ଅପହରଣ କରିବା ।)

**ପୂର୍ବ କଥିତ**—ସ. ବିଣ—ପ୍ରାଗୁକ୍ତ, ପ୍ରଥମୋକ୍ତ, ପୂର୍ବୋକ୍ତ, ଉପର୍ଯ୍ୟୁକ୍ତ—
Pūrba kathita Aforesaid; abovesaid.

**ପୂର୍ବ କରି**—ସ. ବି. (ପୂର୍ବ+କରିନ୍)—ଐରାବତ ହସ୍ତୀ, ପୂର୍ବଦିଗର ହସ୍ତୀ—Pūrba kari The elephant guarding the east.

ପୂର୍ବକରି ପୂର୍ବ ଦିଗର ଦନ୍ତୀରୁ ବାହାର କରିବେ ।
ଭଞ୍ଜ, କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ।

**ପୂର୍ବ କାୟ**—ସ. ବି—୧ । (ମନୁଷ୍ୟର) ନାଭିର ଉପରେ ଥିବା ଶରୀରାଂଶ-
Pūrba kāya 1. The upper part of the body; the part above the navel ( of man ).

୨ । (ପଶୁ ଆଦିଙ୍କ) ଦେହର ଆଗ ପାଖ—2 The fore part of the body ( of beasts ).

**ପୂର୍ବକାର**—ଦେ. ବିଣ—ଆଗକାର; ପୂର୍ବକାଳର—
Purbakāra Former; previous; olden.

(ପୂର୍ବକା—ଅନ୍ୟରୂପ) আগেকার पहलेका

**ପୂର୍ବ କାଳ**—ସ. ବି. ( କର୍ମଧା, ପୂର୍ବ+କାଳ )—
Purba kāla ୧ । ( ବ୍ୟାକରଣ ) ଅତୀତକାଳ—
1. Past tense.

୨ । ଅତୀତ; ଗତ ସମୟ—
2. The past; past time.

୩ । ପ୍ରାଚୀନକାଳ; ପୁରାକାଳ—
3. The old; the ancient days.

**ପୂର୍ବ କାଳିଆ**—ଦେ. ବିଣ. ( ସ. ପୂର୍ବ କାଳିକ )—
Pūrba kāliā ୧ । ଆଗେକାର, ପୂର୍ବ କାଳିକ—1. Olden.
পূর্ব কালের ୨ । ମରିହଟିଆ—2 Obsolete.
पुरानी चालका

**ପୂର୍ବ କାଳିକ**—ସ. ବିଣ. ( ପୂର୍ବକାଳ+ଇକ )—
Pūrba kālika ୧ । ଆଗକାର—1. Former.

(ପୂର୍ବକାଳୀନ—ଅନ୍ୟରୂପ) ୨ । ପ୍ରାଚୀନ କାଳର—
2. The olden times.

**ପୂର୍ବ କୃତ**—ସ. ବିଣ—୧ । ଗତ କାଳରେ କରା ଯାଇଥିବା—
Pūrba kruta 1. Done before; previously committed.

୨ । ପୂର୍ବ ଜନ୍ମରେ ଅନୁଷ୍ଠିତ—2. Done during one's previous existence.

**ପୂର୍ବ ଗଙ୍ଗା**—ସ. ବି—ନର୍ମଦା ନଦୀ (ହ୍ର. ଶ.)—
Pūrba gangā The river Nerbudda.

**ପୂର୍ବ ଗୋଲା(ଳା)ର୍ଦ୍ଧ**—ସ. ବି. (ଆଧୁନିକ ବ୍ୟବହାର, ଭୂଗୋଳ ପରିଭାଷା)-
Pūrba golā(lā) rddha ପୃଥିବୀ ଗୋଲକର ପୂର୍ବାର୍ଦ୍ଧ—
The eastern hemisphere of the globe.

[ ଦ୍ର—ଏଥିରେ ଆସିଆ, ଇଉରୋପ, ଆଫ୍ରିକା ଓ ଅଷ୍ଟ୍ରେଲିଆ ମହାଦେଶମାନ ଅଛନ୍ତି । ପଶ୍ଚିମ ଗୋଲାର୍ଦ୍ଧରେ ଦକ୍ଷିଣ ଆମେରିକା ଓ ଉତ୍ତର ଆମେରିକା ଏହି ଦୁଇଟି ମହାଦେଶ ଅଛି । ]

**ପୂର୍ବ ଚିତ୍ତି**—ସ.ବି. ସ୍ତ୍ରୀ—ଜମ୍ବୁଦ୍ୱୀପର ରାଜା ଅଗ୍ନୀଧ୍ରଙ୍କ ପତ୍ନୀ ଅପ୍ସରାବିଶେଷ-
Pūrba chitti The wife of Agnidhra, the king of Jambudwipa said to be a heavenly nymph.

**ପୂର୍ବଜ**—ସ ବିଣ. ପୁଂ. (ବହୁବ୍ରୀହି, ପୂର୍ବ+ଜନ୍ ଧାତୁ+କର୍ତ୍ତୃ. ଅ)—
Purbaja ୧ । ପିତୃ ପିତାମହାଦି—1. Forefathers.

(ପୂର୍ବ ଜନ୍ମା—ଅନ୍ୟରୂପ) ୨ । ଜ୍ୟେଷ୍ଠ ପୁତ୍ର—2. Eldest son.

୩ । ଜ୍ୟେଷ୍ଠ ଭ୍ରାତା, ଅଗ୍ରଜ—3. Elder brother.

୪ । ଚନ୍ଦ୍ରଲୋକବାସୀ ପିତୃ ଲୋକ ( ହ୍ର. ଶବ୍ଦସାଗର )—
4. The spiritual bodies of the deceased ancestors moving in the Chandraloka.

ସ. ବିଣ. ପୁଂ—ଜ୍ୟେଷ୍ଠ; ଅଗ୍ରଜ—
Elder; eldest; first born.

(ପୂର୍ବଜା, ପୂର୍ବଜନ୍ମା—ସ୍ତ୍ରୀ)

**ପୂର୍ବ ଜନ୍ମ**—ସ. ବି. ( କର୍ମଧା, ପୂର୍ବ+ଜନ୍ମନ୍ )—
Pūrba janma ବର୍ତ୍ତମାନ ଜନ୍ମର ପୂର୍ବେ ଆଉ ଥରେ ମନୁଷ୍ୟର ଜନ୍ମ—Previous state of one's existence.

**ପୂର୍ବଜନ୍ମ ଲବ୍ଧ**—ସ. ବି. ( ୭ମୀ ତତ୍, ପୂର୍ବଜନ୍ମ+ଲବ୍ଧ )—
Pūrbajanma labdha ପୂର୍ବ ଜନ୍ମରେ ମିଳିଥିବା—

(ପୂର୍ବ ଜନ୍ମାର୍ଜିତ—ଅନ୍ୟରୂପ) Earned or acquired in

(ପୂର୍ବଜନ୍ମଲବ୍ଧା—ସ୍ତ୍ରୀ) one's former existence.

**ପୂର୍ବଜା**—ସ. ବି. ସ୍ତ୍ରୀ. ( ପୂର୍ବଜ+ସ୍ତ୍ରୀ. ଆ )—ବଡ଼ ଭଉଣୀ—
Pūrbajā Elder sister.

**ପୂର୍ବ ଜିନ**—ସ. ବି. ( କର୍ମଧା, ପୂର୍ବ=ପ୍ରଥମ+ଜିନ=ଜୈନଗୁରୁ )—
Pūrba jina ୧ । ମଞ୍ଜୁଘୋଷ ନାମକ ସର୍ବ ପ୍ରଥମ ଜୈନଗୁରୁ—
1. Name of an ancient per-Buddhist teacher.

୨ । ପୂର୍ବାବଧିର ଜୈନ ଧର୍ମ ପ୍ରବର୍ତ୍ତକ ୨୪ ଜଣ ଗୁରୁ—
2. Twentyfour Jaina saints of a former era.

**ପୂର୍ବ ଜୀବନ**—ସ. ବି. ( କର୍ମଧା, ପୂର୍ବ+ଜୀବନ )—
Pūrba jībana ୧ । ମନୁଷ୍ୟ ଜୀବନର ଅତୀତ କାଳ—
1. One's past life; the past of a man's life

୨ । ପୂର୍ବ ଜନ୍ମ—2. Previous existence before one was born in this world.

**ପୂର୍ବ ଜ୍ଞାନ**—ସ. ବି—୧ । ପୂର୍ବ ଜନ୍ମାର୍ଜିତ ଜ୍ଞାନ—
Pūrba jnyāna 1. Knowledge derived in one's previous existence.

୨ । ଏଥିପୂର୍ବେ ଅର୍ଜିତ ଜ୍ଞାନ—2. Previous knowledge.

**ପୂର୍ବତନ**—ସଂ. ବିଣ. ( ପୂର୍ବ+ଘଟିଥିବା ଅର୍ଥରେ ତନ )—
Pūrbatana ୧ । ଆଗକାର—2. Former; previous.
(ପୂର୍ବତନୀ—ସ୍ତ୍ରୀ) ୨ । ପୂର୍ବକାଳୀନ—2 Of ancient times.

**ପୂର୍ବ ଦକ୍ଷିଣ**—ଦେ. ବି ( ସଂ. ପୂର୍ବ ଦକ୍ଷିଣା )—ଅଗ୍ନି କୋଣ—
Pūrba dakshina The south east.
পূর্ব দক্ষিণ पूरब दक्खन

**ପୂର୍ବ ଦକ୍ଷିଣା**—ସଂ. ବି (ପୂର୍ବ+ଦକ୍ଷିଣ+ଆ)—ଅଗ୍ନି କୋଣ—
Pūrba dakshinā The south east

**ପୂର୍ବ ଦଶା**—ସଂ. ବି—ପୂର୍ବତନ ଅବସ୍ଥା—
Pūrba dasā Former condition

**ପୂର୍ବ ଦିକ୍**—ସଂ. ବି—ପ୍ରାଚୀ— The east.
Pūrba dik [ ଦ୍ର—ପୂର୍ବ ଦିଗରୁ ସୂର୍ଯ୍ୟ, ଚନ୍ଦ୍ର ଓ ନକ୍ଷତ୍ରମାନେ ଉଦିତ ହୁଅନ୍ତି, ଏଥିର ଦିକ୍‌ପାଳ ବା ଦିକ୍‌ପତି ଇନ୍ଦ୍ର ଓ ଏଥିର ଦିଗ୍ଗଜ ଐରାବତ ।]

**ପୂର୍ବ ଦିଗ**—ଦେ. ବି. (ସଂ. ପୂର୍ବଦିକ୍)—ପୂର୍ବଦିକ୍ (ଦେଖ)
Pūrba diga Pūrba dik (See)
পূর্বদিগ पश्चिम्दिग

**ପୂର୍ବ ଘାଟ**—ଦେ. ବି — ଦକ୍ଷିଣ ଭାରତର ପୂର୍ବ ଉପକୂଳ ପାଖେ ପାଖେ
Pūrbaghāta ଅବସ୍ଥିତ ପର୍ବତଶ୍ରେଣୀ—The Eastern Ghats mountain-range.
পূর্বঘাট पूरबीघाट

**ପୂର୍ବ ଦେବ**—ସଂ. ବି. (ଦେବତାମାନଙ୍କ ପୂର୍ବରେ ଜନ୍ମଗ୍ରହଣ କରିଥିବାରୁ)
Pūrba deba ୧ । ଦୈତ୍ୟ; ଦାନବ; ଅସୁର—
1 The demons.

[ଦ୍ର—ଦୈତ୍ୟମାନେ କଶ୍ୟପଙ୍କ ପ୍ରଥମା ସ୍ତ୍ରୀ ଦିତିଙ୍କ ପୁତ୍ର । ଏମାନେ ଦେବତାମାନଙ୍କର ବୈମାତ୍ରେୟ ବଡ଼ଭାଇ । ଏମାନେ ପ୍ରଥମେ ଦେବତା ଥିଲେ, କିନ୍ତୁ ମନ୍ଦ ପ୍ରକୃତି ଓ ଅସଦାଚରଣଦ୍ୱାରା ପରେ ସୁରବିରୋଧୀ ବା ଅସୁର ହେଲେ । ଖ୍ରୀଷ୍ଟାନ୍‌ମାନଙ୍କ ଧର୍ମଶାସ୍ତ୍ରରେ ମଧ୍ୟ ସଇତାନ୍ (Satan) ପ୍ରଥମେ ଦେବଦୂତ (Angel) ଥିଲା, କିନ୍ତୁ ପରେ ଈଶ୍ୱରଙ୍କ ବିରୋଧରେ ବିଦ୍ରୋହୀ ହୋଇ ସ୍ୱର୍ଗ ଭ୍ରଷ୍ଟ ହେଲା ।]

୨ । ପିତୃଲୋକ—2 The forefathers.
୩ । ନର ଓ ନାରାୟଣ (ହି ଶବ୍ଦସାଗର)—
3. The incarnation of Bishnu as Nara and Nārāyana.

**ପୂର୍ବ ଦେଶ**—ସଂ ବି.—ପୂର୍ବଦିଗରେ ଅବସ୍ଥିତ ଭୂଭାଗ—
Pūrba desa The eastern regions; the east

**ପୂର୍ବ ନିପାତ**—ସଂ. ବି. (ବ୍ୟାକରଣ)—ଯେଉଁ ସମସ୍ତ ବା ସମାସନିଷ୍ପନ୍ନ
Pūrba nipāta ପଦରେ ପରବର୍ତ୍ତୀ ପଦ ପ୍ରଥମେ ନ୍ୟସ୍ତ ହୁଏ ଓ ପୂର୍ବବର୍ତ୍ତୀ ପଦ ପରେ ନ୍ୟସ୍ତ ହୁଏ—
The irregular priority of a word in a compound.
( ଯଥା—ପୂର୍ବରେ+ଶ୍ରୁତ=ଶ୍ରୁତପୂର୍ବ, ଆହିତ+ଅଗ୍ନି= ଅଗ୍ନ୍ୟାହିତ । )

**ପୂର୍ବ ନିରୂପଣ**—ସଂ. ବି.—ଭାଗ୍ୟ (ହି. ଶବ୍ଦସାଗର)—
Pūrba nirūpana Luck.

**ପୂର୍ବ ପକ୍ଷ**—ସଂ. ବି.—୧ । ଶୁକ୍ଳପକ୍ଷ, ଚନ୍ଦ୍ର ପକ୍ଷ (କ୍ଲାଲେଣ୍ଡର)—
Pūrba paksha 1. The bright fortnight of a lunar month.
୨ । (ତର୍କ ଶାସ୍ତ୍ର) ବିଚାରାର୍ଥ ଉତ୍ଥାପିତ କୌଣସି ପ୍ରଶ୍ନ—
2. (logic) A question for decision.
୩ । (ହିନ୍ଦୁ ସ୍ମୃତି) ମକଦ୍ଦମାରେ ବାଦୀ ବା ମୁଦେଇ—
3. A complaint or plaintiff in a case.
୪ । (ହିନ୍ଦୁ ସ୍ମୃତି) ମକଦ୍ଦମାରେ ଅଭିଯୋଗ ପତ୍ର ବା ଆରଜି—
4 The petition of complaint or plaint in a case.
୫ । କୃଷ୍ଣ ପକ୍ଷ (ହି. ଶ) —
5. The dark fortnight of a lunar month.

**ପୂର୍ବ ପକ୍ଷ ପାଦ**—ସଂ. ବି. —(ହିନ୍ଦୁ ସ୍ମୃତି —ଧର୍ମାଧିକରଣରେ ପ୍ରତିକାର
Pūrba paksha pāda ପ୍ରାର୍ଥନା ସମ୍ବନ୍ଧୀୟ ଚାରିପାଦ ବା ଉପଖଣ୍ଡ
(ପୂର୍ବ ବାଦ—ଅନ୍ୟରୂପ) ମଧ୍ୟରୁ ସର୍ବ ପ୍ରଥମ ବା ଭାଷା ପାଦ, ଆରଜି ବା ଦରଖାସ୍ତ—(Hindu law: The first step in litigation, viz complaint or plaint.
[ଦ୍ର—ପାଦ ତଳ ନୋଟ୍ ଦ୍ରଷ୍ଟବ୍ୟ ।]

**ପୂର୍ବ ପର୍ବତ**—ସଂ. ବି. ( ମ. ପ. ଲେ; ପୂର୍ବ=ପୂର୍ବ ଦିଗରେ ଅବସ୍ଥିତ
Pūrba parbata +ପର୍ବତ )—ଉଦୟାଚଳ—
ପୂର୍ବ ଶୈଳ, ପୂର୍ବ ଗିରି } ଅନ୍ୟରୂପ The legendary range of mountains in the east over which the sun is said to rise.

**ପୂର୍ବ ପିତାମହ**—ସଂ. ବି. ପୁଂ —ପ୍ରପିତାମହ, ପିତାଙ୍କ ପିତାମହ (ହି. ଶ)—
Pūrba pitāmaha Great grandfather.
(ପୂର୍ବ ପିତାମହୀ—ସ୍ତ୍ରୀ) ( ଦ୍ର—ସେହିପରି ପୂର୍ବ ମାତାମହ, ପୂର୍ବ ମାତାମହୀ ଆଦି ଶବ୍ଦ ହୁଏ । )

**ପୂର୍ବ ପୁରୁଷ**—ସଂ. ବି—୧ । ବଂଶର ଆଦି ପୁରୁଷ —
Pūrba purusha 1. The progenitor or lineal ancestor of a family.
(ପୂର୍ବ ପୁରୁଷୀୟ—ବିଣ)
୨ । ପିତୃ ପିତାମହାଦି—2 Forefathers; ancestors.

**ପୂର୍ବ ପ୍ରଚଳିତ**—ସଂ. ବିଣ—୧ । ବହୁ ପୂର୍ବରୁ ଯାହା ଚଳି ଆସୁଅଛି —
Pūrba prachalita 1 Current for a long time past.
(ପୂର୍ବ ପ୍ରବର୍ତ୍ତିତ—ଅନ୍ୟରୂପ)
୨ । ପୂର୍ବ କାଳରେ ଯାହା ପ୍ରଚଳିତ ଥିଲା—
2 Current long ago.
୩ । ମରହଟ୍ଟିଆ —2. Old fashioned; obsolete.

**ପୂର୍ବ ପ୍ରଥା**—ସଂ. ବି—୧ । ପର୍ବ କାଳରୁ ଚଳି ଆସୁଥିବା ପ୍ରଥା ବା ଆଚାର-
Pūrba prathā 1. Custom obtaining from time immemorial.
(ପୂର୍ବ ସ୍ୱତ୍ତ—ଅନ୍ୟରୂପ)
୨ । ଆଗକାର ଚଙ୍ଗ—2 Previous custom.
୩ । ମରହଟ୍ଟୀ ଚଙ୍ଗ—3. Obsolete custom.

**ପୂର୍ବ ଫଲ୍ଗୁନୀ**— ସଂ. ବି. (ପୂର୍ବ=ପ୍ରଥମ+ଫଲ୍ଗୁନୀ=ନକ୍ଷତ୍ରବିଶେଷ)— Pūrba phālguni (ଜ୍ୟୋତିଷ) ୨୭ ଗୋଟି ନକ୍ଷତ୍ର ମଧ୍ୟରୁ ୨ଟି ତାରାବିଶିଷ୍ଟ ଶଯ୍ୟାକୃତି ଏକାଦଶ ନକ୍ଷତ୍ର— The 11th asterism consisting of two stars.

ପୂର୍ବ ଫାଲ୍ଗୁନୀ } ସ୍ତ୍ରୀ
ପୂର୍ବା ଫାଲ୍ଗୁନୀ }

[ ଦ୍ର—ନକ୍ଷତ୍ର ତଳ ନୋଟ୍ ଦ୍ରଷ୍ଟବ୍ୟ । ]

**ପୂର୍ବବଙ୍ଗ**— ସଂ. ବି—ବଙ୍ଗ ଦେଶର ପୂର୍ବାଂଶ— Pūrba banga East Bengal.

**ପୂର୍ବବତ୍**—ସଂ. ଅ—୧ । ଆଗପରି, ପୂର୍ବେ ଯେଉଁ ପରି ଥିଲା ସେହିପରି— Pūrbabat 1 As before.
୨ । ପୂର୍ବୋକ୍ତ ପ୍ରକାରେ— 2 As aforesaid; in the above manner.

**ପୂର୍ବ ବୟଃ**—ସଂ. ବି. (କର୍ମଧା, ପୂର୍ବ+ବୟଃ)— ବାଲ୍ୟକାଳ— Pūrba bayah Boyhood; young age.

**ପୂର୍ବବର୍ତ୍ତୀ**—ସଂ. ବିଣ. (ପୂର୍ବ+ବୃତ୍ ଧାତୁ+କର୍ତ୍ତୃ. ଇନ୍, ୧ମା, ୧ବ)— Pūrbabartti ୧ । ଅଗ୍ରଗାମୀ—1. Going in front.
(ପୂର୍ବ ବର୍ତ୍ତିନୀ—ସ୍ତ୍ରୀ) ୨ । ଅଗ୍ରସର—2. Advancing.
(ପୂର୍ବ ବର୍ତ୍ତିତା—ବି) ୩ । ପୂର୍ବଦିଗରେ ସ୍ଥିତ—3. Situate in the east
୪ । ଏଥିପୂର୍ବେ ଘଟିଥିବା—4. Previous; preceding.

**ପୂର୍ବ ବାଦ**—ସଂ. ବି— ୧ । ପ୍ରଥମେ ଉଚ୍ଚାରିତ ବାକ୍ୟ— Pūrba bāda 1. First uttered word.
୨ । (ହିନ୍ଦୁସ୍ମୃତି) ପ୍ରଥମ ଅଭିଯୋଗ ବା ନାଲିସ; ପ୍ରଥମ ଏତଲାଇ— 2. First complaint, first information.

**ପୂର୍ବବାଦୀ**—ସଂ. ବି (ହିନ୍ଦୁସ୍ମୃତି)—୧ । ମକଦ୍ଦମାରେ ବାଦୀ— Pūrbabādi 1. Plaintiff.
୨ । ଫେରାଦୀ; ମୁଦେଇ—2. One who lodges the first information; complainant.

**ପୂର୍ବ ବୃତ୍ତ**—ସଂ. ବି (କର୍ମଧା)—ପୁରାବୃତ୍ତ, ଇତିହାସ— Pūrba brutta History.

**ପୂର୍ବ ଭକ୍ଷିକା**—ସଂ. ବି—୧ । ପ୍ରାତର୍ଭୋଜନ (ହି.ଶ)— Pūrba bhakshikā 1. Breakfast.
୨ । ଜଳଖିଆ ( ହି. ଶବ୍ଦସାଗର )— 2, Light refreshment; tiffen.

**ପୂର୍ବ ଭାଦ୍ର**—ଦେ. ବି. ( ସଂ. ପୂର୍ବଭାଦ୍ରପଦ )— Pūrba bhādra ପୂର୍ବ ଭାଦ୍ରପଦ ( ଦେଖ ) Pūrba bhādrapada (See)

ପୂର୍ବ ଭାଦ୍ରବ } ଅନ୍ୟରୂପ
ପୂର୍ବ ଭାଦୁଅ }

**ପୂର୍ବ ଭାଦ୍ରପଦ**—ସଂ. ବି. ( ଜ୍ୟୋତିଷ )—୨୭ ନକ୍ଷତ୍ର ମଧ୍ୟରୁ ପଞ୍ଚବିଂଶ ନକ୍ଷତ୍ର—The 25th asterism or lunar mansion. Pūrba bhādrapada
(ପୂର୍ବଭାଦ୍ରପଦୀ—ଦେଶଜରୂପ)
(ପୂର୍ବଭାଦ୍ରପଦା—ଅନ୍ୟରୂପ) [ ଦ୍ର—ନକ୍ଷତ୍ର ତଳ ନୋଟ୍ ଦ୍ରଷ୍ଟବ୍ୟ ]

**ପୂର୍ବ ମୀମାଂସା**—ସଂ. ବି—୧ । ଜୈମିନୀ ପ୍ରବର୍ତ୍ତିତ ହିନ୍ଦୁ ଦର୍ଶନ ଶାସ୍ତ୍ର-ବିଶେଷ—1. The system of Hindu philosophy propounded by Jaimini. Pūrba mimāmsā
୨ । ବେଦର କର୍ମକାଣ୍ଡ ବିଷୟକ ତର୍କଶାସ୍ତ୍ର—2 Enquiry into the 1st or ritual portion of the Bedas.

**ପୂର୍ବ ଯକ୍ଷ**—ସଂ. ବି—ଜୈନବିଶେଷ, ବୁଦ୍ଧଦେବଙ୍କ ଜନ୍ମ ପୂର୍ବରେ ଆବିର୍ଭୂତ ମହାତ୍ମାବିଶେଷ—Name of a Jaina saint. Pūrba jaksha

**ପୂର୍ବ ଯୋଗିନୀ**—ସଂ ବି. ( ପୂର୍ବ=ପୂର୍ବଦିଗରେ ଅବସ୍ଥିତା+ଯୋଗିନୀ= ପାର୍ବତୀ )—( ଜ୍ୟୋତିଷ ) ଯେଉଁ ସମୟରେ ଯୋଗିନୀ ବା ପାର୍ବତୀ ପୂର୍ବଦିଗରେ ବା ଉତ୍ତରପୂର୍ବ (ଐଶାନ୍ୟ) କିମ୍ବା ଦକ୍ଷିଣପୂର୍ବ (ଅଗ୍ନି) କୋଣରେ ଥାଆନ୍ତି, ପ୍ରତିପଦ ଓ ନବମୀ ତିଥି—( astrology ) The time during which the astrological Jogini or Pārbati is said to be on the eastern or N. W. or S. W. quarter of the globe. Pūrba jogini

[ ଦ୍ର—ଜ୍ୟୋତିଷ ମତରେ ଯୋଗିନୀ ଯେଉଁ ଦିଗରେ ଯେତେବେଳେ ଥାଆନ୍ତି, ସେ ଯାତ୍ରାକାରୀର ବାମପାଖରେ ବା ପୃଷ୍ଠରେ ଥିବା ସମୟରେ ଯାତ୍ରା କଲେ ଶୁଭ ଓ ଡାହାଣରେ ବା ସମ୍ମୁଖରେ ଥିବା ସମୟରେ ଯାତ୍ରା କଲେ ଅଶୁଭ ଘଟେ । ପୂର୍ବ ଯୋଗିନୀ ସମୟରେ ପଶ୍ଚିମକୁ ଓ ଦକ୍ଷିଣ ଆଡ଼କୁ ଯାତ୍ରା କରାଯାଇ ପାରେ । ]

**ପୂର୍ବ ରଙ୍ଗ**—ସଂ. ବି—୧ । ନାଟ୍ୟାଭିନୟର ଉପକ୍ରମ; ପ୍ରସ୍ତାବନା— Pūrba ranga 1, Prelude to a play; prologue of a drama.
୨ । ନାଟ୍ୟଶାଳା, ରଙ୍ଗାଳୟ—2. Theatre.
୩ । ଶ୍ରୀକୃଷ୍ଣଙ୍କ ମନରେ ପ୍ରଥମେ ସଞ୍ଚାରିତ ହୋଇଥିବା ପ୍ରେମାନୁରାଗ— 2. First attachment which attracted Srikrushna.

**ପୂର୍ବ ରାଗ**—ସଂ. ବି. ( କର୍ମଧା, ପୂର୍ବ=ପ୍ରଥମ+ରାଗ=ଅନୁରାଗ )— Pūrba rāga ପରସ୍ପରଙ୍କ ବିଷୟ ଶ୍ରବଣ ବା ପରସ୍ପର ଦର୍ଶନାଦିଦ୍ୱାରା ନାୟକ ନାୟିକାଙ୍କମନରେ ସଂଜାତ ପ୍ରଥମ ପ୍ରଣୟ; ପ୍ରଣୟାଙ୍କୁର— Incipient love; the first seeds of attachment between the would-be lovers; love at first sight or hearing.

[ ଦ୍ର—କେହି କେହି କହନ୍ତି ଯେ ପୂର୍ବରାଗ କେବଳ ନାୟିକାଙ୍କଠାରେ ଜାତ ହୁଏ । ଏଥିରେ ନାୟକଙ୍କ ସଙ୍ଗେ ମିଳିତ ହେବାର ଅଭିଳାଷ, ନାୟକ ସମ୍ବନ୍ଧୀୟ ଚିନ୍ତା, ନାୟକ ବିଷୟ ସ୍ମରଣ, ସଖୀମାନଙ୍କ ନିକଟରେ ନାୟକ ବିଷୟରେ ଚର୍ଚ୍ଚା, ନାୟକ ସଙ୍ଗେ ମିଳିତ ହେବା ପାଇଁ ଉଦ୍‌ବିଗ୍ନତା, ପ୍ରଳାପ, ଉନ୍ମାଦ, ରୋଗ, ମୂର୍ଚ୍ଛା ଓ ମୃତ୍ୟୁ ଏପରି ଦଶଟି ଅବସ୍ଥା ନାୟିକାର ଘଟେ । ନାୟକଙ୍କ ସଙ୍ଗେ ମିଳିତ ନ ହେବା ପର୍ଯ୍ୟନ୍ତ ନାୟିକାର ପୂର୍ବରାଗ ହୁଏ । ମିଳିତ ହେବା ପରେ ଉଭୟଙ୍କ ମନରେ ଜାତ ହେବା ଭାବକୁ ପ୍ରେମ ବା ପ୍ରୀତି ବୋଲାଯାଏ—ହି. ଶବ୍ଦସାଗର । ]

ପূর্বের রাগ ଦେ. ବି—( ଅନ୍ୟଠାରେ ) ପୂର୍ବରୁ ଥିବା କ୍ରୋଧ,
**पुरुबकी रञ्ज** ଅଦଉତି—Malice; grudge; spite.

ସେ ତ ହୋଇଅଛନ୍ତି ରଣ ବାଞ୍ଛାରେ ଆଗ
ସାହେବ କି ଥିଲା କହରେ ପୂର୍ବରାଗ—କୃଷ୍ଣସିଂହ. ମହାଭାରତ. ଭୀଷ୍ମ ।

**ପୂର୍ବରାତ୍ର**—ସଂ. ବି (ଷଷ୍ଠୀ ତତ୍, ପୂର୍ବନିପାତ; ରାତ୍ରିର ପୂର୍ବ = ପ୍ରଥମାଂଶ)—
Pūrbarātra ରାତ୍ରିର ପ୍ରଥମ ଭାଗ; ସନ୍ଧ୍ୟାଠାରୁ ଅର୍ଦ୍ଧରାତ୍ରି ପର୍ଯ୍ୟନ୍ତ—The first part of the night; evening.

ପୂର୍ବରାତ୍ରେ ଅପରରାତ୍ରେ ଜ୍ଞାନଜନେ
ମନକୁ ସଂଯତ କରନ୍ତି ଦୃଢ଼ମନେ—କୃଷ୍ଣସିଂହ. ମହାଭାରତ, ବନ ।

**ପୂର୍ବ ରାତ୍ରି**—ସଂ. ବି. ( କର୍ମଧା, ପୂର୍ବ + ରାତ୍ରି )—
Pūrba rātri ପୂର୍ବ ଦିବସର ରଜନୀ, ଗତ ରାତ୍ରି—Previous night; preceding night.

**ପୂର୍ବରୁ**—ଦେ. ଅ ( ସ. ପୂର୍ବାତ୍ )—
Pūrbaru ୧ । ପୂର୍ବ ଦିଗରୁ—1 From the east.
পূর্বথেকে, আগেথেকে ୨ । ପ୍ରଥମ ଆରମ୍ଭରୁ—
**पहिलेसे** 2. From the beginning.
୩ । ଅତୀତ କାଳରୁ—3. From before.
୪ । ଏଥିର ଆଗେ—4 Previously.
୫ । ଆଗରୁ—5. Beforehand.

**ପୂର୍ବ ରୂପ**—ସଂ. ବି. ( କର୍ମଧା, ପୂର୍ବ + ରୂପ )—
Pūrba rūpa ୧ । ପ୍ରଥମେ ବା ଆଗେ ଥିବା ଆକାର—1. Previous appearance or shape.
୨ । ପୂର୍ବ ଲକ୍ଷଣ (ଦେଖ)—2. Pūrba lakshaṇa (See)

**ପୂର୍ବ ଲକ୍ଷଣ**—ସଂ. ବି. ( କର୍ମଧା, ପୂର୍ବ + ଲକ୍ଷଣ )—
Pūrba lakshaṇa ୧ । ରୋଗାଦି ଘଟିବାର ପୂର୍ବରୁ ପ୍ରକାଶିତ ଚିହ୍ନ—1. Previous symtoms of a disease; premonitory signs of an approaching illness.
୨ । ଶକୁନ—2. Omen; premonition; augury.
୩ । କୌଣସି ବିଷୟ ଘଟିବା ପୂର୍ବରୁ ଲକ୍ଷିତ ଚିହ୍ନ—3. Previous indication of something which is going to happen.

**ପୂର୍ବ ଷୋଡ଼ଶ**—ସଂ. ବି—ଅନ୍ତ୍ୟେଷ୍ଟି କ୍ରିୟାର ପ୍ରଥମ ଦିବସଠାରୁ ଦଶମ
Pūrba shordasa ଦିବସ ପର୍ଯ୍ୟନ୍ତ ଅନୁଷ୍ଠିତ କର୍ମ—The funeral rites performed during the period extending from the 1st to the 10th day of a person's death.

ସେଠାରେ ଗଙ୍ଗାଙ୍କର ସହ ସୁଖୁ ପତି
କଲ ପୂର୍ବଷୋଡ଼ଶ ସମ୍ପନ୍ନ ମୁହିଁ । କୃଷ୍ଣସିଂହ, ମହାଭାରତ, ଅନୁଶାସନ

[ ଦ୍ର—ଏକାଦଶାହ ଦିନ ଅନୁଷ୍ଠିତ କର୍ମକୁ ଉତ୍ତର ଷୋଡ଼ଶ ବୋଲାଯାଏ । ]

**ପୂର୍ବ ସଂସ୍କାର**—ସଂ. ବି—୧ । ପୂର୍ବ ଜନ୍ମାର୍ଜିତ ପ୍ରକୃତି ବା ଧାରଣା—
Pūrba saṁskāra 1. Nature or inclination or associations earned as the result of one's previous existence.
୨ । ପ୍ରଥମେ ମନୁଷ୍ୟର ମନରେ ହୋଇଥିବା ଧାରଣା—2. Past opinion; first impression.

**ପୂର୍ବ ସନ୍ଧ୍ୟା**—ବି—୧ । ପୂର୍ବ ଦିନର ସନ୍ଧ୍ୟା—
Pūrba sandhyā 1. The evening of the previous day.
୨ । ସନ୍ଧ୍ୟାର ପୂର୍ବ ସମୟ—2 The time before evening
୩ । ପ୍ରାତଃକାଳ (ଗ୍ରା. ଶ)—3. Morning.

**ପୂର୍ବା**—ସ. ବିଣ. ସ୍ତ୍ରୀ. (ପୂର୍ବ + ଆ; ପୂର୍ବର ସ୍ତ୍ରୀଲିଙ୍ଗ)—୧ । ପ୍ରଥମା—
Pūrbā 1. First (feminine).
୨ । ପୂର୍ବ କାଳୀନା—2 Earlier.
୩ । ପୂର୍ବ ଦିକ୍‌ସ୍ଥିତା—3. Eastern.
ସ. ବି—୧ । ପୂର୍ବଦିକ୍ (ଗ୍ରା. ଶ)—1. The east.
୨ । ପୂର୍ବ ଫାଲ୍‌ଗୁନୀ ନକ୍ଷତ୍ର (ଗ୍ରା. ଶ)—2. The 11th asterism.

**ପୂର୍ବାଚରିତ**—ସ. ବିଣ. (ପୂର୍ବ + ଆଚରିତ)—ପୂର୍ବକୃତ; ପ୍ରଥମେ କରା-
Pūrbācharita ଯାଇଥିବା—Done before.

**ପୂର୍ବାଚଳ**—ସ. ବି. (କର୍ମଧା, ପୂର୍ବ + ଅଚଳ)—ଉଦୟାଚଳ—
Pūrbāchala The eastern range of mountains from which the sun is said to rise.
(ପୂର୍ବାଦ୍ରି—ଅନ୍ୟରୂପ)
(ପଶ୍ଚିମାଚଳ—ବିପରୀତ)

**ପୂର୍ବାନୁକ୍ରମ**—ଦେ ବି—ପୂର୍ବେ ପ୍ରକାଶିତ ପ୍ରବନ୍ଧର ପରବର୍ତ୍ତୀ ଅଂଶର ବିବୃତି-
Pūrbānukrama Continuation of the portion of an essay already published, written or spoken.
(ପୂର୍ବାନୁବୃତ୍ତି—ଅନ୍ୟରୂପ)

**ପୂର୍ବାନୁରାଗ**—ସ. ବି. (କର୍ମଧା, ପୂର୍ବ + ଅନୁରାଗ)—
Pūrbānurāga ୧ । ପ୍ରେମର ପ୍ରଥମ ସଞ୍ଚାର—1. The early indication of love or attachment.
୨ । ପୂର୍ବକାଳର ସୁହାଗ ବା ପ୍ରେମ—2. Former attachment or love.
୩ । ପୂର୍ବରାଗ (ଦେଖ)—3. Pūrbarāga (See)

**ପୂର୍ବାପର**—ସ. ବି. (ଦ୍ୱନ୍ଦ୍ୱ, ପୂର୍ବ + ଅପର)—
Pūrbāpara ୧ । ଆଗ ଗୋଡ଼ା; ଆରମ୍ଭ ଓ ଶେଷ—1. The beginning and the end.
୨ । ଅନୁପୂର୍ବ—2. Sequence.
୩ । ପ୍ରଥମ ବିଷୟ ଓ ଅନ୍ତିମ ବିଷୟ—3. The first and the last things; preceding and following matters.
୪ । ପୂର୍ବ ଓ ପଶ୍ଚିମ—4. East and west.
୫ । ଆଗ ଓ ପଛ—5. Front side and back side.
ବିଣ—୧ । ଆନୁପୂର୍ବିକ—1. Connected; coherent.
୨ । ଧାରାବାହିକ—2 Successive; serial.
୩ । ଆଗିଲା ଓ ପିଛିଲା, ପୂର୍ବବର୍ତ୍ତୀ ଓ ପରବର୍ତ୍ତୀ—3. Prior and subsequent; former and latter.

୪ । ଆଗରେ ଥିବା ଓ ପଛରେ ଥିବା—
4 Situated in front and behind,
କ୍ରି. ବିଣ—୧ । ମୂଳଠାରୁ ଶେଷ ପର୍ଯ୍ୟନ୍ତ—
1. From the beginning to the end.
୨ । ଆନୁପୂର୍ବିକ ରୂପେ—2 In a connected manner; coherently; in due sequence.

**ପୂର୍ବାପର ସମ୍ବନ୍ଧ**—ସଂ. ବି —କଏ ଆଗ କଏ ପଛ, ଏବଂଭୂତ ସମ୍ପର୍କ—
Pūrbāpara sambandha Sequence; coherent relation.
(ପୂର୍ବାପର ସମ୍ପର୍କ—ଅନନ୍ୟରୂପ)

**ପୂର୍ବାପର୍ଯ୍ୟ**—ସଂ. ବି. (ପୂର୍ବାପର + ଭାବାର୍ଥ ଯ)—
Pūrbāparjya ପୂର୍ବାପର ହେବାର ଅବସ୍ଥା—
Sequence; priority and subsequence.

**ପୂର୍ବା ପୂର୍ବୀ**—ଦେ. ଅ—୧ । ବହୁକାଳରୁ (ଘଟି ଆସୁଥିବା)—
Pūrbā pūrbi 1, From former times.
୨ । ବହୁକାଳରୁ ଧାରାବାହିକରୂପେ—
2. In succession for a long time,

**ପୂର୍ବାପେକ୍ଷା**—ସଂ. ବି—ପୂର୍ବ ବିଷୟ ବା ପ୍ରସଙ୍ଗ ପ୍ରତି ଦୃଷ୍ଟି—
Pūrbāpekshā Reference to what has preceded,
ଦେ. କ୍ରି. ବିଣ—୧ । ପୂର୍ବଠାରୁ; ପୂର୍ବ ଅପେକ୍ଷା—
पूर्वापेक्षा 1. Than before.
୨ । ପୂର୍ବ ବିଷୟ ସଙ୍ଗେ ତୁଳନା କରି ଯିବାରେ—
2. In comparison with what has preceded; with reference to the past.
पहिलेसे

**ପୂର୍ବାବଧି**—ସଂ. କ୍ରି. ବିଣ.—(ପୂର୍ବ+ଅବଧି)—୧ । ପୂର୍ବକାଳ ଠାରୁ; ଆଗରୁ—1 From former times; from before; since the past.
Pūrbābadhi
୨ । ଆଦ୍ୟରୁ; ପ୍ରଥମରୁ—2. From the beginning.

**ପୂର୍ବାବସ୍ଥା**—ସଂ. ବି.—ଆଗକାଳର ଅବସ୍ଥା—Former or past condition; previous state.
Pūrbābasthā

**ପୂର୍ବାବେଦକ**—ସଂ. ବି. (ହିନ୍ଦୁ ସ୍ମୃତି)—ମୁଦେଇ, ବାଦୀ (ହି. ଶା.)
Pūrbābedaka (Hindu law) Complainant; plaintiff.

**ପୂର୍ବାଭାଦ୍ରପଦ(ଦା)**—ସଂ. ବି.—ପୂର୍ବଭାଦ୍ରପଦ (ଦେଖ)
Pūrbā bhādrapada (dā) Pūrba bhādrapada (See)

**ପୂର୍ବାଭାଷ**—ସଂ. ବି. (ପୂର୍ବ+ଆଭାଷ)—କୌଣସି ବିଷୟ ଘଟିବାର ପୂର୍ବ ସୂଚନା—Previous indication.
Pūrbābhāsha

**ପୂର୍ବାଭ୍ୟାସ**—ସଂ. ବି.—(ପୂର୍ବ+ଅଭ୍ୟାସ)—୧ । ପୂର୍ବ ଜନ୍ମରେ ଗଠିତ ହୋଇଥିବା ଅଭ୍ୟାସ—1. The habits or associations formed by a man as a result of his existence in a past life.
Pūrbābhyāsa
୨ । ଆଗକାଳର ଅଭ୍ୟାସ—2. Previous habit.
୩ । ପୂର୍ବ ପ୍ରଥା—3. Previous or old custom

**ପୂର୍ବାର୍ଜିତ**—ସଂ. ବିଣ—୧ । ପୂର୍ବଜନ୍ମର କାର୍ଯ୍ୟର ଫଳ ସ୍ୱରୂପ—
Pūrbārjita 1. Resulting from one's actions in a previous existence.
(ପୂର୍ବାର୍ଜିତା—ସ୍ତ୍ରୀ)
୨ । ପୂର୍ବ ଜନ୍ମର କାର୍ଯ୍ୟଦ୍ୱାରା ମିଳିଥିବା, ପୂର୍ବଜନ୍ମାର୍ଜିତ -
2. Earned by one's actions in a previous existence.
(ଯଥା—ପୂର୍ବାର୍ଜିତ ବିଦ୍ୟା, ପୂର୍ବାର୍ଜିତ ପୁଣ୍ୟ ଇତ୍ୟାଦି ।)
୩ । ଏଥିପୂର୍ବେ ବା ପ୍ରଥମେ ରୋଜଗାର କରି ପାଇଥିବା; ପ୍ରଥମାର୍ଜିତ—3. Earned previously

**ପୂର୍ବାର୍ଦ୍ଧ**—ସଂ. ବି—୧ । ପ୍ରଥମାର୍ଦ୍ଧ, କୌଣସି ବସ୍ତୁର, ବିଷୟର ବା ସମୟର ପହିଲି ଅଧିକ—
Pūrbārddha
ପଶ୍ଚାର୍ଦ୍ଧ } ବିପରୀତ
ପଶ୍ଚିମାର୍ଦ୍ଧ }
1. The first half of a thing or matter or time,
୨ । ଦୁଇ ଭାଗବିଶିଷ୍ଟ ଗ୍ରନ୍ଥର ପ୍ରଥମ ଭାଗ—
2. The first part or volume of a book consisting of 2 parts or volumes.
୩ । ମନୁଷ୍ୟ ଦେହର ନାଭିର ଉପରସ୍ଥ ଅଂଶ—
3. The upper half of a man's body.
୪ । ପଶୁଦେହର ଆଗ ଅଂଶ—
4. The fore part of the body of a beast.
ଦେ. ବି—ପୂର୍ବଗୋଲାର୍ଦ୍ଧ, ଭୂଗୋଳକର ପୂର୍ବ ପାଶ୍ୱରେ ଅବସ୍ଥିତ ଫାଳ—The eastern hemisphere of the globe.
[ ଦ୍ର—ଏଥିରେ ଆସିଆ, ଇଉରୋପ, ଆଫ୍ରିକା ଓ ଅଷ୍ଟ୍ରେଲିଆ ମହାଦେଶମାନ ଅଛି । ]

**ପୂର୍ବାର୍ଦ୍ଧ୍ୟ**—ସଂ. ବିଣ. (ପୂର୍ବାର୍ଦ୍ଧ+ଯ)—ପୂର୍ବାର୍ଦ୍ଧ ସମ୍ବନ୍ଧୀୟ—
Pūrbārddhya Relating to the first or eastern half

**ପୂର୍ବାଳାପ**—ସଂ. ବି—୧ । କୌଣସି କାର୍ଯ୍ୟ ସମ୍ବନ୍ଧେ ପୂର୍ବରୁ କରାଯିବା କଥାବାର୍ତ୍ତା—1, Preliminary talk or discussion about a matter.
Pūrbālāpa
୨ । (ଆଧୁନିକ) ବରକନ୍ୟାଙ୍କର ବିବାହ ପୂର୍ବରୁ ଆଳାପ ପରିଚୟ, ରଙ୍ଗରସ, ଦେଖାଗୁହାଁ ବା ବସିବା—2. Courtship.
ବିବାହିତ ହେଲେ ବର କନ୍ୟାଙ୍କ ମଧ୍ୟରେ ପୂର୍ବାଳାପ ଅର୍ଥାତ୍ courtship ଚାଲିଛି—ଫକୀରମୋହନ, ଗଳ୍ପସ୍ୱଳ୍ପ ।

**ପୂର୍ବାଶା**—ସଂ. ବି. ( ପୂର୍ବ + ଆଶା = ଦିଗ )—ପ୍ରାଚୀ, ପୂର୍ବଦିଗ —
Pūrbāsā The east.

**ପୂର୍ବାଷାଢ**—ଦେ. ବି—ପୂର୍ବାଷାଢ଼ା ( ଦେଖ )
Pūrbāshārdha Pūrbāshārdhā ( See )
पूर्वाषाढ़ पूर्वाषाढ़

**ପୂର୍ବାଷାଢ଼ା**—ସଂ. ବି· ( ପୂର୍ବ = ପ୍ରଥମ + ଆଷାଢ଼ା = ନକ୍ଷତ୍ରବିଶେଷ)—
Pūrbāshārdhā ( ଜ୍ୟୋତିଷ ) ୨୭ ନକ୍ଷତ୍ର ମଧ୍ୟରୁ ବିଂଶତିତମ ନକ୍ଷତ୍ର—(astrology) The 20th asterism or lunar mansion.
[ ଦ୍ର—ନକ୍ଷତ୍ର ତଳ କୋଠି ଦେଖ । ]

**ପୂର୍ବାହ୍ନ**—ସଂ. ବି. ( ୬ଷ୍ଠୀ ତତ୍, ପୂର୍ବ+ଅହନ, ଅହର ପୂର୍ବ )—
Pūrbāhna ୧ । ଦିବସର ପ୍ରଥମାର୍ଦ୍ଧ; ସକାଳଓଳ, ସକାଳରୁ ଦ୍ୱି ପ୍ରହର ପର୍ଯ୍ୟନ୍ତ ସମୟ—1. The first half of the day, forenoon; A. M; Ante meridian.
(ପରାହ୍ନ—ବିପରୀତ)

୨ । ଦିବସର ୩ଭାଗ ( ୩୦ ଦଣ୍ଡ ବା ୧୨ ଘଣ୍ଟା) ମଧ୍ୟରୁ ପ୍ରଥମ ଭାଗ (୧୦ ଦଣ୍ଡ ବା ୪ ଘଣ୍ଟା), ସକାଳରୁ କଅଁଳ ଗାଧୁଆ-ବେଳ ପର୍ଯ୍ୟନ୍ତ ସମୟ—2. The first four hours of the day; 6 to 10 A. M.

[ ଦ୍ର—ଦିବସର ପ୍ରଥମ ୧୦ ଦଣ୍ଡ ବା ୪ ଘଣ୍ଟାକୁ ପୂର୍ବାହ୍ନ, ( ୬ଟା ଠାରୁ ୧୦ଟା ); ଦ୍ୱିତୀୟ ୧୦ ଦଣ୍ଡ ବା ୪ ଘଣ୍ଟାକୁ ( ୧୦ଟାରୁ ୨ଟା) ମଧ୍ୟାହ୍ନ, ଏବଂ ତୃତୀୟ ବା ଶେଷ ୧୦ ଦଣ୍ଡକୁ ( ୨ଟାରୁ ୬ଟା) ଅପରାହ୍ନ ବୋଲାଯାଏ । ]

**ପୂର୍ବାହ୍ଣକ**—ସଂ. ବିଣ—୧ । ପୂର୍ବାହ୍ନ ସମ୍ବନ୍ଧୀୟ (ହି ଶ)—
Pūrbāhṇaka 1 Relating to the forenoon.
୨ । ପୂର୍ବାହ୍ନରେ କରଣୀୟ (ହି.ଶ) — 2. Performable during the forenoon.
ସଂ. ବି—ପୂର୍ବାହ୍ନ (ଦେଖ)—Pūrbāhṇa (See)

**ପୂର୍ବାହ୍ଣିକ**—ସଂ ବିଣ ( ପୂର୍ବାହ୍ନ+ଇକ )—୧ । ପୂର୍ବାହ୍ନ ସମ୍ବନ୍ଧୀୟ—
Pūrbāhnika 1. Relating to the forenoon.
୨ । ପୂର୍ବାହ୍ନରେ କର୍ତ୍ତବ୍ୟ— 2 Performable during the forenoon.
ସଂ. ବି—ପୂର୍ବାହ୍ନରେ କୃତ୍ୟ କର୍ମ ( ଯଥା—ଦନ୍ତଧାବନ, ସ୍ନାନ, ଦେବପୂଜା )—Any act which is to be performed in the forenoon.

**ପୂର୍ବାହ୍ଣ**—ଦେ. ବି. ( ସଂ. ପୂର୍ବାହ୍ନର ଅଶୁଦ୍ଧ ବର୍ଣ୍ଣବିନ୍ୟାସ )—ପୂର୍ବାହ୍ନ
Pūrbāhna (ଦେଖ)—Pūrbāhṇa (See)

**ପୂର୍ବୀୟ**—ସଂ. ବିଣ. ( ପୂର୍ବ+ଈୟ )—୧ । ପୂର୍ବଦିଗ ସମ୍ବନ୍ଧୀୟ,
Pūrbiya ପୂର୍ବେଇ—1. Eastern; easterly.
୨ । ଅତୀତକାଳ ସମ୍ବନ୍ଧୀୟ— 2. Relating to the past time.

**ପୂର୍ବେ**—ଦେ. ଅ—୧ । ଆଗେ; ପୂର୍ବରେ; ପୂର୍ବକାଳରେ—
Pūrbe 1. In former times; formerly.
ପୂର୍ବେ ୨ । ଏଥିର ଆଗେ —2. Before this.
**ପହିଲେ** ୩ । ପ୍ରାଚୀନ କାଳରେ — 3. In days of yore; in old time.
ପୂର୍ବେ **ପୂର୍ବମେ** ୪ । ସର୍ବପ୍ରଥମେ—4 First; at first.
୫ । ପୂର୍ବଦିଗରେ—5. In the east.
[ ଦ୍ର—ଏହାର ସାଙ୍କେତିକ । ପୂ । ]

**ପୂର୍ବେଦ୍ୟୁଃ**—ସଂ. ଅ. (ପୂର୍ବ= ବିଗତ+ଦିବସାର୍ଥେ ଏଦ୍ୟୁସ୍ )—
Pūrbedyuh ୧ । ଗତକାଲି—1. Yesterday, previous day.
୨ । ପ୍ରାତଃକାଳ—2. Morning or the prime of the day.
୩ । ଧର୍ମବାସର—3. Festival day; holiday.

**ପୂର୍ବୋକ୍ତ**—ସଂ. ବିଣ (ପୂର୍ବ+ଉକ୍ତ)—ଏଥିପୂର୍ବେ କଥିତ ହୋଇଥିବା,
Pūrbokta ପ୍ରାଗୁକ୍ତ— Aforesaid; before mentioned
( ପୂର୍ବୋଦିତ—ଅନ୍ୟରୂପ )

**ପୂର୍ବୋତ୍ତର**—ସଂ. ବି (ପୂର୍ବ+ଉତ୍ତର) —ପୂର୍ବ ଓ ଉତ୍ତର ଦିଗମାନଙ୍କ
Pūrbottara ମଧ୍ୟବର୍ତ୍ତୀ କୋଣ, ଉତ୍ତର ପୂର୍ବ କୋଣ; ଈଶାନ
( ପୂର୍ବୋତ୍ତରା—ଅନ୍ୟରୂପ ) କୋଣ— The north-east quarter.

**ପୂର୍ବୋଦିତ**—ସଂ. ବିଣ ( ପୂର୍ବ+ଉଦିତ)—୧ । ପୂର୍ବଦିଗରେ ଉଠିଥିବା—
Pūrbodita 1. Risen in the east.
୨ । ପୂର୍ବୋକ୍ତ; ପୂର୍ବକଥିତ—2. Afore-said.

**ପୂର୍ବୋଦ୍ଧୃତ**—ସଂ. ବିଣ. (ପୂର୍ବ+ଉଦ୍ଧୃତ)—୧ । ଅନ୍ୟଠାରୁ ସଂଗୃହୀତ
Pūrboddhṛuta ହୋଇ ଏଥିପୂର୍ବରୁ ଲେଖା ଯାଇଥିବା (ବିଷୟ)—
1 Previously quoted (matter ).
୨ । ଆଗରୁ ସଂଗୃହୀତ—2. Gathered before

**ପୂଳ୍** (ଧାତୁ)—ସଂ—୧ । ଏକତ୍ର କରିବା; ସଂଗ୍ରହ କରିବା; ଗୋଟାଇବା—
Pūḷ (root) 1. To collect; to gather.
୨ । ଗଦା କରିବା; ଗଦା କରିବା — 2. To heap together; to heap up

**ପୂଳକ**—ସଂ. ବି. (ପୂଳ ଧାତୁ+କର୍ମ. ଅକ)—୧ । ପୋଟଳା, ପୁଡ଼ା—
Pūḷaka 1. Packet.
୨ । ପୂଳି ( ଦେଖ )—2 Pūḷi ( See )

**ପୂଳି**—ସଂ. ବି. (ପୂଳ ଧାତୁ+କର୍ମ. ଇ)—୧ । ପୁଳିପିଠା; ଘିଅରେ ପୁଆ
Pūli ହୋଇଥିବା ମିଠା ପିଠା—
ପୂଳିକା } ଅନ୍ୟରୂପ 1. Sweet cake fried in ghee.
ପୂଳୀ }
୨ । ପିଠାର ଏକପ୍ରକାର ବାମ୍ପସିଦ୍ଧ ଛୋଟ ପିଠା; ନଡ଼ିଆ ଇଣ୍ଡୁରି—2. A kind of cake boiled in steam.
[ ଦ୍ର—ପୂଳି ନାନାପ୍ରକାରର; ଯଥା—ସରପୁଳି, ଛେନାପୁଳି ଇତ୍ୟାଦି । ଏହା ଘିଅରେ ପୁଆଯାଏ କିମ୍ବା ବାମ୍ପସିଦ୍ଧ ହୁଏ । କେତେକ ପୂଳିରେ ମିଠା ଦିଆଯାଏ ଓ ଅନ୍ୟ କେତେକରେ ମିଠା ଦିଅଯାଏ ନାହିଁ । ଶସ୍ୟ ଚୂନାରେ ପାଣି ମିଶାଇ କିମ୍ବା ବଟୁରା ଶସ୍ୟକୁ ବାଟି ପୁଳି ପ୍ରସ୍ତୁତ କରାଯାଏ । ]

**ପୂଷ୍** (ଧାତୁ)—ସଂ—୧ । ପୋଷଣ କରିବା; ପାଳିବା—
Pūsh (root) 1. To nourish; to bring up.
୨ । ବୃଦ୍ଧି କରିବା—2. To increase; to enhance.
୩ । ବୃଦ୍ଧି ପାଇବା—3. To grow.

**ପୂଷ**—ସଂ. ବି. ( ପୂଷ୍ ଧାତୁ+କର୍ତ୍ତୃ. ଅ )—
Pūsha ୧ । ତୁନ୍ଥବାରୁ ବା ତୁଁତ ଗଛ—
(ପୂଷ୍ମ—ଅନ୍ୟରୂପ) 1. The mulberry; Morus Indica.
[ ଦ୍ର—ଏହାର ପତ୍ର ଖାଇ ପାଟ ପୋକମାନେ ଗୋଷ୍ଠ ବାନ୍ଧନ୍ତି । ]
୨ । ପୌଷ ମାସ ( ହି. ଶବ୍ଦସାଗର )— 2 The lunar month of Pausha.

**ପୂଷକ**—ସଂ. ବି. ( ପୂଷ ଧାତୁ+ଅକ )—
Pūshaka ୧ । ତୁଁତ ଗଛ—1. The mulberry plant.
୨ । ତୁଁତ ଫଳ (ହି. ଶ.)—2. Mulberry.

ପୂଷଣ(ଣ)—ସଂ ବ (ପୁଷ୍ ଧାତୁ + କର୍ତ୍ତୃ ଅନ୍, ଅନ) — ୧ । ସୂର୍ଯ୍ୟ—
Pūshaṇ(ṇi) 1 The sun.
୨ । ବାର ଆଦିତ୍ୟ ଦେବତା ମଧ୍ୟରୁ ଏକ—
2. One of the 12 Āditya Deities

ପୂଷା—ସଂ. ବ. ପୁଂ. ( ପୁଷ ଧାତୁ + କର୍ତ୍ତୃ ଅନ୍, ପୂଷନ୍ ଶବ୍ଦ, ୧ମା. ୧ବ;
Pūshā ଯେ ସଂସାର ଜୀବଗଣଙ୍କୁ ପାଳନ କରନ୍ତି )—
୧ । ସୂର୍ଯ୍ୟ—1. The sun.
କରୁ ଏହି ଝଙ୍କାଳ, ନନ୍ଦ ଦେଲକ କାଳ, ପୂର୍ବାହ୍ନ ପଦ୍ମଜଲୁ ପୂଷାରେ ।
—କବିସୂର୍ଯ୍ୟ. ସଙ୍ଗୀତ ।
୨ । ( ପୂଷ ଧାତୁ ଅ + ସ୍ତ୍ରୀ. ଆ )—ପୃଥିବୀ—
2. The earth
୩ । ଶରୀରସ୍ଥ ପ୍ରଧାନ ଦଶ ନାଡ଼ୀ ମଧ୍ୟରୁ ଗୋଟିଏ ନାଡ଼ୀ—
3. One of the 10 chief veins of the body.
[ ଦ୍ର—ଦଶ ନାଡ଼ି ଉଲେ ନୋହ୍ ଦେଖ, ଏହା ଡାହାଣ କାନର ଗୋଟିଏ ନାଡ଼ୀ । ହି. ଶ. ]

ପୂଷାତ୍ମଜ—ସଂ. ବ. ( ୬ଷ୍ଠୀ ତତ୍, ପୂଷା + ଆତ୍ମଜ )—
Pūshātmaja ୧ । ମେଘ—1. The clouds.
୨ । ଇନ୍ଦ୍ର—2 Indra.

ପୃ (ଧାତୁ)—ସଂ—୧ । ପାଳନ କରିବା—
Pṛu (root) 1. To nourish.
୨ । ରକ୍ଷା କରିବା—2. To protect.
୩ । ପରିପୂର୍ଣ୍ଣ କରିବା—3. To fill up.
୪ । ଆନନ୍ଦିତ କରିବା—4 To please.
୫ । ଯୋଗ କରିବା—5. To join.
୬ । ଚେଷ୍ଟା କରିବା—6. To exert.
୭ । ମିଶାଇବା—7. To mix together.

ପୃକ୍କା—ସଂ. ବ. ସ୍ତ୍ରୀ. ( ସୃକ୍ ଧାତୁ + କ + ସ୍ତ୍ରୀ. ଆ, ଅନ୍ୟ ସଂ. ନାମ
Pṛukkā ସ୍ପୃକ୍କା, ଲଙ୍କାପିକା )—
ମିଡ଼ିଂଶାଗ ପିଡ଼ଙ୍ଗ ଶାଗ—Trigonslla Corniculata
ଅସବରଗ (pot herb).

ପୃକ୍ତ—ସଂ ବିଣ. ( ପୃଚ୍ ଧାତୁ + କର୍ତ୍ତୃ ତ )—
Pṛukta ୧ । ସଂଲଗ୍ନ—1. Attached; touching.
୨ । ମିଶ୍ରିତ—2 Mixed.
୩ । ଯୁକ୍ତ—3. Joined; combined, connected.

ପୃକ୍ତି—ସଂ ବ. ( ପୃଚ୍ ଧାତୁ + ଭାବ. ତି )—
Pṛukti ୧ । ମିଶ୍ରଣ—1 Mixing.
୨ । ସଂଯୋଗ—2. Contact; junction.
୩ । ସଂସ୍ପର୍ଶ—3. Connection; touch.

ପୃକ୍ଷ—ସଂ. ବ—ଅନ୍ନ ( ହି. ଶ. )—
Pṛuksha Food.

ପୃଚ୍ (ଧାତୁ)—ସଂ—୧ । ସଂଲଗ୍ନ ହେବା—
Pṛuch (root) 1. To be attached to.
୨ । ସ୍ପର୍ଶ କରିବା; ଛୁଇଁବା—
2. To touch; to come in contact with.

୩ । ଦମନ କରିବା—
3. To check; to control; to subdue.
୪ । ବାଧା ଦେବା—
4. To restrain; to hinder.

ପୃଚ୍ଛକ—ସଂ. ବିଣ. ପୁଂ (ପ୍ରଚ୍ଛ ଧାତୁ = ପଚାରିବା + କର୍ତ୍ତୃ. ଅକ )—
Pṛuchchhaka ୧ । ଅନୁସନ୍ଧାନକାରୀ, ଜିଜ୍ଞାସୁ—
(ପୃଚ୍ଛିକା—ସ୍ତ୍ରୀ) 1. Inquisitive; investigating; enquiring.
୨ । ପ୍ରଶ୍ନକାରୀ—2 Questioning.

ପୃଚ୍ଛଣ(ନ, ନା)—ସଂ. ବ. (ପ୍ରଚ୍ଛ ଧାତୁ + ଭାବ. ଅନ + ଆ )—
Pṛuchchhaṇa(na, nā) ପଚାରିବା; ଅନୁସନ୍ଧାନ—Asking, enquiring.

ପୃଚ୍ଛା—ସଂ. ବ. (ପ୍ରଚ୍ଛ ଧାତୁ + ଭାବ ଅ + ଆ)—
Pṛuchchhā ୧ । ପ୍ରଶ୍ନ—1. Question.
ପୃଷ୍ଟ } ବିଣ ୨ । ଜିଜ୍ଞାସା—2 Desire to know; curiosity.
ପୃଚ୍ଛ୍ୟ

ପୃଜ୍ (ଧାତୁ)—ସଂ—ସ୍ପର୍ଶ କରିବା—
Pṛuj (root) To touch.

ପୃଡ଼୍ (ଧାତୁ)—ସଂ—ଆନନ୍ଦିତ କରିବା—
Pṛurd (root) To delight.

ପୃଣ୍ (ଧାତୁ) — ସଂ—ସନ୍ତୁଷ୍ଟ କରିବା—To satisfy; to please; to
Pṛuṇ (root) gratify.

ପୃତନା—ସଂ. ବ. ( ପୃ ଧାତୁ = ପୂର୍ଣ୍ଣ କରିବା + କର୍ତ୍ତୃ. ତନ + ଆ )—
Pṛutanā ୧ । ସୈନ୍ୟ; ସେନାଦଳ—1. Army.
ବଙ୍ଗଦେଶୀ ରଣରଙ୍ଗ ରସିକ ପୃତନା । ରଘୁନାଥ—ନୃହାସାହା ।
୨ । ଯୁଦ୍ଧ (ହି. ଶ)—3. Battle; fight, war.
୩ । ବାହିନୀ ତ୍ରୟ, ଯେଉଁ ସୈନ୍ୟ ଦଳରେ ୨୪୩ ଗଜାରୋହୀ, ୨୪୩ ରଥାରୋହୀ, ୭୨୯ ଅଶ୍ୱାରୋହୀ ଓ ୧୨୧୫ ଜଣ ପଦାତି, ଅର୍ଥାତ୍ ମୋଟରେ ୨୪୩୦ ଜଣ ସିପାହୀ ଥାଆନ୍ତି—
3, A division consisting of 243 elephanteers, 243 charioteers, 729 horsemen and 1215 infantry, total 2430 soldiers.

[ ଦ୍ର—ମହାଭାରତ ଅନୁସାରେ ବିଭିନ୍ନ ସୈନ୍ୟଦଳମାନଙ୍କ ନାମ ଓ ସଂଖ୍ୟା ।

ପତ୍ତି = ୧ ରଥ, ୧ ଗଜ, ୩ ଅଶ୍ୱ, ୫ ପଦାତି = ୧୦ ସୈନିକ । ପତ୍ତି × ୩ ସେନାମୁଖ = ୩ ରଥ + ୩ ଗଜ + ୯ ଅଶ୍ୱ + ୧୫ ପଦାତି = ୩୦ ସୈନିକ । ସେନାମୁଖ × ୩ = ଗୁଳ୍ମ = ୯ ରଥ + ୯ ଗଜ + ୨୭ ଅଶ୍ୱ + ୪୫ ପଦାତି = ୯୦ ସୈନିକ । ଗୁଳ୍ମ × ୩ = ଗଣ = ୨୭ ରଥ + ୨୭ ଗଜ + ୮୧ ଅଶ୍ୱ + ୧୩୫ ପଦାତି = ୨୭୦ ସୈନିକ । ଗଣ × ୩ = ବାହିନୀ = ୮୧ ରଥ + ୮୧ ଗଜ + ୨୪୩ ଅଶ୍ୱ + ୪୦୫ ପଦାତି = ୮୧୦ ସୈନିକ । ବାହିନୀ × ୩ = ପୃତନା = ୨୪୩ ରଥ + ୨୪୩ ଗଜ + ୭୨୯ ଅଶ୍ୱ + ୧୨୧୫ ପଦାତି = ୨୪୩୦ ସେନିକ । ପୃତନା × ୩ = ଚମୂ = ୭୨୯ ରଥ + ୭୨୯ ଗଜ + ୨୧୮୭ ଅଶ୍ୱ + ୩୬୪୫ ପଦାତି = ୭୨୯୦ ସୈନିକ । ଚମୂ ×

ତ = ଅନୀକିନୀ = ୨୧୮୭ ରଥ + ୨୧୮୭ ଗଜ + ୬୫୬୧ ଅଶ୍ୱ + ୧୦୯୩୫ ପଦାତି = ୨୧୮୭୦ ସୈନିକ । ଅନୀକିନୀ × ୧୦ = ଅକ୍ଷୌହିଣୀ = ୨୧୮୭୦ ରଥ + ୨୧୮୭୦ ଗଜ + ୬୫୬୧୦ ଅଶ୍ୱ + ୧୦୯୩୫୦ ପଦାତି = ୨୧୮୭୦୦ ସୈନିକ । ]

**ପୃତନାମ୍ନୀ**—ସ. ବି. ( ପୃତନା + ଅମ୍ନୀ, ଭୂଲ ସେନାମ୍ନୀ ) - ପୃତନା Prutanāni ନାମକ ସୈନ୍ୟଦଳର ସେନାପତି— The commander of a Prutanā.

(ପୃତନାପତି—ଅନ୍ୟରୂପ)

**ପୃଥ୍** (ଧାତୁ)—ସ.—୧ । କ୍ଷେପଣ କରିବା; କ୍ଷେପ କରିବା— Pruth (root) 1. To throw, to cast.
୨ । ପଠାଇବା—2. To send; to direct.

**ପୃଥକ୍**—ସ. ଅ.—(ପୃଥ୍ ଧାତୁ + କର୍ମି. ଅକ୍)—୧ । ଅଲଗା, ସ୍ୱତନ୍ତ୍ର, ଭିନ୍ନ Pruthak 1. Separate.
୨ । ଇତର—2. Vulgar.
୩ । ନୀଚ—3. Low, mean.
୪ । ଛଡ଼ା, ବିନା—4 Without; besides, except.
୫ । ନାନା—5 Various; several.
ବିଣ.—୧ । ଭିନ୍ନ, ସ୍ୱତନ୍ତ୍ର—1. Separate, distinct.
୨ । ଅନ୍ୟ—2. Different.
କ୍ରି. ବିଣ.—ସ୍ୱତନ୍ତ୍ର ଭାବରେ—Separately; apart; distinctly; differently.

**ପୃଥକ୍କରଣ**—ସ. ବି.—ଅଲଗା କରିବା କାର୍ଯ୍ୟ— Pruthak-karana The act of separating.
(ପୃଥକ୍କରଣ—ଅନ୍ୟରୂପ) (ପୃଥକ୍କୃତ—ବିଣ)

**ପୃଥକ୍କ୍ଷେତ୍ର**—ସ. ବି. ପୁଂ—(ପୃଥକ୍ = ଭିନ୍ନ ଭିନ୍ନ + କ୍ଷେତ୍ର = ଉତ୍ପତ୍ତିସ୍ଥାନ; Pruthak-kshetra ବହୁବଚନ )—ଏକପିତୃକ କିନ୍ତୁ ଭିନ୍ନ- (ପୃଥକ୍ କ୍ଷେତ୍ରଜ—ଅନ୍ୟରୂପ) ମାତୃକ ସନ୍ତାନଗଣ; ଏକ ପିତାଙ୍କ (ପୃଥକ୍ କ୍ଷେତ୍ରା—ସ୍ତ୍ରୀ) ଔରସରେ ଭିନ୍ନ ଭିନ୍ନ ମାତାଙ୍କ ଗର୍ଭରୁ ଜାତ ସନ୍ତାନଗଣ, ବୈମାତ୍ରେୟ ଭ୍ରାତୃଗଣ—Children born of the same father but from different mothers; step-brothers.

**ପୃଥକ୍ତା**—ସ. ବି.—୧ । ପାର୍ଥକ୍ୟ; ପ୍ରଭେଦ— Pruthaktā 1. Difference; distinction.
(ପୃଥକ୍ତ୍ୱ, ପୃଥକ୍ତ୍ୱା, ପୃଥକ୍ତ୍ୱ—ଅନ୍ୟରୂପ) ୨ । ସ୍ୱାତନ୍ତ୍ର୍ୟ— 2. Individuality.
୩ । ଅଲଗା ଅଲଗା ହେବା ଅବସ୍ଥା—3. Separateness; the state of being separate.
୪ । ନାନାଭାବ; ଅନେକତା—4. Severalty.
୫ । (ବୈଶେଷିକ ଦର୍ଶନ) ଭେଦ ବୁଦ୍ଧି ପ୍ରତିପାଦକ ଗୁଣବିଶେଷ- 5. (Hindu philosophy) The quality which establishes distinction.

**ପୃଥକ୍ତ୍ୱଚା**—ସ. ବି. (ପୃଥକ୍ + ତ୍ୱଚ୍ = ବକ୍କଲ + ସ୍ତ୍ରୀ. ଆ)— Pruthak-twachā ମୂର୍ବା (ଦେଖ)—Mūrbā (See)

**ପୃଥକ୍ପର୍ଣ୍ଣୀ**—ସ. ବି. (ପୃଥକ୍ + ପର୍ଣ୍ଣ = ପତ୍ର + ସ୍ତ୍ରୀ. ଈ)— Pruthak-parnni ପୃଶ୍ନିପର୍ଣ୍ଣୀ (ଦେଖ) Prusni parnni (See)

**ପୃଥକ୍ପିଣ୍ଡ**—ସ. ବି. ପୁଂ—( ବହୁବ୍ରୀହି, ପୃଥକ୍ + ପିଣ୍ଡ )—ଅସପିଣ୍ଡ, Pruthak pinda ଯେଉଁ ବ୍ୟକ୍ତିଙ୍କୁ ପିଣ୍ଡ ଦିଆଯାଇ ପାରିବ ନାହିଁ, (ପୃଥକ୍ ପିଣ୍ଡା—ସ୍ତ୍ରୀ) ଯେଉଁ ଦୂର ସମ୍ପର୍କୀୟ ବ୍ୟକ୍ତିଙ୍କ ମୃତକାଶୌଚ ପାଳିବାକୁ ହୁଏ ନାହିଁ—Distant agnate and cognate relations not connected by oblations of rice cakes with a person.

{ ଦ୍ର—ପିତୃକୁଳର ୩ ପୁରୁଷ ଓ ମାତୃକୁଳର ୩ ପୁରୁଷ [ (ସଗୋତ୍ର) ପିତୃ, ପିତାମହ ଓ ପ୍ରପିତାମହ, (ଅସଗୋତ୍ର) ମାତାମହ, ପ୍ରମାତାମହ ଓ ବୃଦ୍ଧ ପ୍ରମାତାମହ ଓ ଏମାନଙ୍କର ସ୍ତ୍ରୀମାନେ] ଆପଣାର ସପିଣ୍ଡ ଅଟନ୍ତି । ଏହାଙ୍କ ଉପରର ୩ ପୁରୁଷ ପର୍ଯ୍ୟନ୍ତ ଅସପିଣ୍ଡ, କିନ୍ତୁ ସମାନୋଦକ ଅଟନ୍ତି । ଏମାନେ ଓ ତାଙ୍କ ଉପରର ଜ୍ଞାତିମାନେ ପୃଥକ୍ ପିଣ୍ଡ ଅଟନ୍ତି ଓ ଏମାନଙ୍କ ପାଇଁ ଅଶୌଚ ପାଳିବାକୁ ହୁଏ ନାହିଁ ।}

**ପୃଥକ୍ ପୃଥକ୍**—ସ.ଅ.—(ବିଭିନ୍ନ ଲୋକ ବା ପଦାର୍ଥ ବା ବିଷୟ) ସ୍ୱତନ୍ତ୍ରରୂପେ, Pruthak pruthak ଭିନ୍ନ ଭିନ୍ନ ହୋଇ, ଅଲଗା ଅଲଗା ହୋଇ— Separately; severally.

**ପୃଥକ**—ଦେ. ବିଣ (ସ. ପୃଥକ୍)—୧ । ପୃଥକ୍— Pruthaka 1 Separate.
ପৃথক ୨ । ପୃଥଗନ୍ନ (ଦେଖ) 2. Pruthaganna (See)
अलग ୩ । ପୃଥଗ୍‌ବାସ (ଦେଖ)—3. Pruthag-bāsa (See)

**ପୃଥକ କରିବା**—ଦେ. କ୍ରି.—ଅଲଗା କରିବା— Pruthaka karibā To separate; to set apart.
পৃথক করা अलग करना

**ପୃଥକ ହେବା**—ଦେ. କ୍ରି.—୧ । ଭିନ୍ନ ହେବା; ଭିନ୍ନେ ହେବା— Pruthaka hebā 1 To be separated
পৃথক হওয়া ୨ । ପରସ୍ପର ଠାରୁ ପୃଥଗନ୍ନ ପୃଥଗ୍‌ବାସ ହେବା— अलग होना 2. To be separated from each other in mess and lodging.

**ପୃଥକାନ୍ନ**—ଦେ. ବିଣ. ଓ ବି. (କଟକିଆ)—ପୃଥଗନ୍ନ (ଦେଖ) Pruthakānna Pruthaganna (See)
(ପୃଥକ ଅନ୍ନ—ଅନ୍ୟରୂପ) পৃথকান্ন

**ପୃଥକାନ୍ନବର୍ତ୍ତୀ**—ଦେ. ବିଣ.—(କଟକିଆ ଭାଷା)—ଅଲଗା ହେଣ୍ଡେଇ Pruthakānna bartti କରି ବାସ କରୁଥିବା— Separate in mess.

**ପୃଥକାନ୍ନବାସ**—ଦେ. ବି (କଟକିଆ)—ପୃଥଗନ୍ନ ବାସ (ଦେଖ) Pruthakānnabāsa Pruthaganna bāsa (See).
পৃথকান্ন বাস

**ପୃଥକାନ୍ନ ହେବା**—ଦେ. କ୍ରି—ଭିନ୍ନେ ହେବା, ହାଣ୍ଡି ପୃଥକ୍ କରିନେବା; Pruthakānna hebā ଅଲଗା ଅଲଗା ହେଣ୍ଡେଇ କରିବା - To separte in mess.
পৃথকান্ন হওয়া

**ପୃଥକୀକରଣ**—ସଂ. ବି—(ପୃଥକ୍ + ଅଭୂତ ତଦ୍ଭାବେ ଚ୍ୱି + କରଣ)—
Pruthakīkaraṇa ମିଳିତ ବସ୍ତୁକୁ ଭିନ୍ନ ଭିନ୍ନ କରିବା;
(ପୃଥକ୍କରଣ—ଅନ୍ୟରୂପ) ବିଚ୍ଛିନ୍ନ କରିବା (କ୍ରିୟାନେକ୍ର)—
Act of separating.

**ପୃଥକୀକୃତ**—ସଂ. ବିଣ—(ପୃଥକ୍ + ଅଭୂତ ତଦ୍ଭାବେ ଚ୍ୱି + କୃତ)—
Pruthakī kruta ବିଚ୍ଛିନ୍ନ (କ୍ରିୟାନେକ୍ର)—Separated.
(ପୃଥକ୍କୃତ—ଅନ୍ୟରୂପ)

**ପୃଥଗ୍‌ଜନ**—ସଂ. ବି—(କର୍ମଧା, ପୃଥକ୍ + ଜନ, ସନ୍ଧିହେତୁ କ୍ ସ୍ଥାନରେ
Pruthag-jana ଗ୍)—୧ । ଇତର ଲୋକ—1. Vulgar
(ପୃଥକ୍ ଜନ—ଅନ୍ୟରୂପ) person; one of the common people· one of the mass.
୨ । ମୂର୍ଖ—2 An ignorant person.
୩ । ନୀଚ ଲୋକ—3. A low person.
୪ । ପାପୀ—4. A sinner; vicious person.
୫ । ଦୁଷ୍ଟବୁଦ୍ଧି ବ୍ୟକ୍ତି—5. A wicked person.
୬ । ଭିନ୍ନ ବ୍ୟକ୍ତି—
6. A different person.
୭ । ବାହାର ଲୋକ, ବହିରଙ୍ଗ ବ୍ୟକ୍ତି—
7. An outsider.
୮ । (ବହୁବଚନ) ପୃଥକ୍ କ୍ଷେତ୍ରଜ—
8. (plural) Uterine brothers.

**ପୃଥଗ୍ ବାସ**—ସଂ. ବିଣ (ପୃଥକ୍ + ବାସ)—ପୃଥକ୍ ପୃଥକ୍ ଘରେ ରହୁଥିବା;
Pruthag-bāsa ଭିନ୍ନ ହୋଇଥିବା (ଏକା ପରିବାରସ୍ଥ ବ୍ୟକ୍ତି)—
Separate in lodging; living in separate houses.
(ପୃଥଗ୍ବାସ—ଅନ୍ୟରୂପ)

**ପୃଥଗ୍ ବୀଜ**—ସଂ. ବି + (ବହୁବ୍ରୀହି)—ଭଲିଆ (ବୃ. ଶ)—
Pruthag-bija Marking nut; Semicarpus Anacardium.
(ପୃଥଗ୍ବୀଜ—ଅନ୍ୟରୂପ)

**ପୃଥଗ୍‌ଭାବ**—ସଂ. ବି—(କର୍ମଧା, ପୃଥକ୍ + ଭାବ)—୧ । ସ୍ୱାତନ୍ତ୍ର୍ୟ—
Pruthag-bhāba 1. Individuality.
୨ । ବିଶେଷତ୍ୱ—2. Peculiarity·
୩ । ଭିନ୍ନ ମନୋଭାବ—3. A different thought.

**ପୃଥଗନ୍ନ**—ସଂ. ବିଣ—(ବହୁବ୍ରୀହି; ପୃଥକ୍ + ଅନ୍ନ)—ହାଣ୍ଡି ଅଲଗା କରିଥିବା; ଅଲଗା ରୋଷେଇ କରି ଖାଉଥିବା (ଏକ
Pruthaganna ପରିବାରର ବ୍ୟକ୍ତିଗଣ); ଯେ ଏକାନ୍ନବର୍ତ୍ତୀ ନୁହନ୍ତି—
Separated in mess, having separate cooking.
ବି—(ଏକାଧିକ ବ୍ୟକ୍ତି) ନିଜନିଜର ପୃଥକ୍ ରୋଷେଇ କରି ଖାଇବାର ବ୍ୟବସ୍ଥା—Separation in mess; separte cooking arrangement for one anothtr.

**ପୃଥଗନ୍ନବର୍ତ୍ତୀ**—ସଂ. ବିଣ—(ପୃଥଗନ୍ନ + ବର୍ତ୍ତିନ୍; ୧ମା. ୧ବ—
Pruthaganna bartti ପୃଥକାନ୍ନବର୍ତ୍ତୀ (ଦେଖ)—
Pruthakānnabartti (See)

**ପୃଥଗନ୍ନବାସ**—ସଂ. ବିଣ—ପୃଥଗନ୍ନ ଓ ପୃଥଗ୍‌ବାସ, ହାଣ୍ଡି ଓ ଘର
Pruthagannabāsa ଅଲଗା କରି ନେଇ ବାସ କରୁଥିବା (ଏକ ପରିବାରସ୍ଥ ବ୍ୟକ୍ତିଗଣ)—(persons of the same family) Who are separate in mess and lodging from one another.

**ପୃଥଗାତ୍ମତା**—ସଂ. ବି—(ପୃଥକ୍ + ଆତ୍ମନ୍ = ସ୍ୱଭାବ + ତା)—
Pruthagātmatā ୧ । ଆପଣାର ସ୍ୱାତନ୍ତ୍ର୍ୟ ବା ବ୍ୟକ୍ତିତ୍ୱ ସମ୍ବନ୍ଧେ
(ପୃଥଗାତ୍ମତ୍ୱ—ଅନ୍ୟରୂପ) ବିବେକ—1. Consciousness of one's individuality.
୨ । ବିରକ୍ତି, ବିରାଗ—2 Aversion.
୩ । ସ୍ୱାତନ୍ତ୍ର୍ୟ—3. Individuality.
୪ । ଇତରବିଶେଷ ବିବେଚନା ବା ବୋଧ—
4 Discrimination; judgment

**ପୃଥଗାତ୍ମା**—ସଂ ବି (ପୃଥଗାତ୍ମନ୍ ଶବ୍ଦ; ପୃଥକ୍ + ଆତ୍ମନ୍)—ପରମାତ୍ମାଠାରୁ
Pruthagātmā ପୃଥକ୍‌କୃତ ଆତ୍ମା—The spirit of an individual as detached or distinct from the Universal Soul.
ବିଣ.—୧ । ସ୍ୱତନ୍ତ୍ରତାବିଶିଷ୍ଟ—
1. Having an individuality
୨ । ଭିନ୍ନସ୍ୱଭାବବିଶିଷ୍ଟ—2. Of a different nature

**ପୃଥଗାତ୍ମିକା**—ସଂ. ବି ସ୍ତ୍ରୀ. (ପୃଥକ୍ + ଆତ୍ମନ + ଅକ + ସ୍ତ୍ରୀ. ଆ)—
Pruthagātmikā ୧ । ସ୍ୱାତନ୍ତ୍ର୍ୟ, ବ୍ୟକ୍ତିତ୍ୱ, ବିଶେଷତ୍ୱ—
1. Individuality
୨ । ନିଜର ସ୍ୱତନ୍ତ୍ର ଅବସ୍ଥାନ—2. Separate existence; individual or separate state of being.

**ପୃଥଗ୍ଗୁଣ**—ସଂ. ବି. (କର୍ମଧା; ପୃଥକ୍ + ଗୁଣ)—ବିଭିନ୍ନ ଗୁଣ—
Pruthagguṇa Separate attribute or property.
ବିଣ—ପୃଥକ୍ ପୃଥକ୍ ଗୁଣବିଶିଷ୍ଟ, ବିଭିନ୍ନ ଗୁଣବିଶିଷ୍ଟ (ବସ୍ତୁ)—
Having different qualities or properties.

**ପୃଥଗ୍ବିଧ**—ସଂ. ବିଣ. (ବହୁବ୍ରୀହି; ପୃଥକ୍ + ବିଧା = ପ୍ରକାର ଯାହାର)—
Pruthagbidha ୧ । ବିଭିନ୍ନ ପ୍ରକାରର, ନାନାବିଧ—
(ପୃଥଗ୍ବିଧା—ସ୍ତ୍ରୀ) 1. Multifarious; of various
[ପୃଥଗ୍ବିଧତା(ତ୍ୱ)—ବି] kinds; diverse; multiform
୨ । ଭିନ୍ନପ୍ରକାରର, ଅନ୍ୟବିଧ—
2. Of a different kind.

**ପୃଥବୀ**—ସଂ. ବି. (ପ୍ରଥ ଧାତୁ = ବିଖ୍ୟାତ ହେବା, ବିସ୍ତୃତ ହେବା + କର୍ତ୍ତୃ
Pruthabi ବା, ପୃଥୁନାମକ ରାଜା + ଦୁହିତାର୍ଥେ. ଈ)—
ପୃଥିବୀ (ଦେଖ)—Pruthibi (See)

**ପୃଥା**—ସଂ. ବି. ସ୍ତ୍ରୀ. (ପ୍ରଥ ଧାତୁ = ବିଖ୍ୟାତ ହେବା + କର୍ତ୍ତୃ. ଅ + ସ୍ତ୍ରୀ.
Pruthā ଆ)—ଯଦୁବଂଶୀୟ ବସୁଦେବଙ୍କ ଭଉଣୀ ଶୂରସେନଙ୍କ କନ୍ୟା ଓ ପାଣ୍ଡୁରାଜାଙ୍କ ପ୍ରଥମା ସ୍ତ୍ରୀ, କୁନ୍ତୀଦେବୀ; ଯୁଧିଷ୍ଠିର, ଭୀମ ଓ ଅର୍ଜୁନଙ୍କ ମାତା, କୋଇନ୍ତା—The first wife of king Pāṇḍu and mother of the three elder Pāṇḍaba brothers.

[ ଦ୍ର—ଶୂରସେନ ଆପଣାର ଅନପତ୍ୟ ପିଉସୀପୁଅ ଭାଇ କୁନ୍ତିଭୋଜଙ୍କ ନିକଟେ ସତ୍ୟ କରିଥିଲେ ଯେ ତାଙ୍କର ପ୍ରଥମ ସନ୍ତାନକୁ ସେ ତାଙ୍କୁ ପାଳିବାକୁ ଦେବେ । ସେହି ସତ୍ୟ ଅନୁସାରେ ଶୂରସେନ ଆପଣା କନ୍ୟା ପୃଥାଙ୍କୁ କୁନ୍ତିଭୋଜଙ୍କ ହସ୍ତରେ ସମର୍ପଣ କରିଥିଲେ ଓ ଉକ୍ତ କନ୍ୟା ବାଲ୍ୟକାଳରୁ କୁନ୍ତିଭୋଜଙ୍କ ଦ୍ୱାରା ପାଳିତା ହୋଇ କୁନ୍ତୀ ନାମ ପାଇଥିଲେ । ]

**ପୃଥାଜ**—ସଂ. ବି. ପୁଂ—୧ । କୁନ୍ତୀଙ୍କ ପୁତ୍ର ଯୁଧିଷ୍ଠିର, ଭୀମ ଓ ଅର୍ଜୁନ—
Pruthāja 1 The first three Pāṇdaba brothers.

ପୃଥା ନନ୍ଦନ, ପୃଥା ପୁତ୍ର, ପୃଥା ସୁତ } ଅନ୍ୟରୂପ

[ ଦ୍ର – କର୍ଣ୍ଣ ମଧ୍ୟ କୁନ୍ତୀଙ୍କର କାନୀନ ପୁତ୍ର ଥିଲେ । ]
୨ । ଅର୍ଜୁନ ବୃକ୍ଷ—2. Arjuna tree.

**ପୃଥା ପତି**—ସଂ. ବି. (୬ଷ୍ଠୀ ତତ୍; ପୃଥା + ପତି)—ପାଣ୍ଡୁ ରାଜା—
Pruthā pati King Pāṇdu, the nominal husband of Kunti.

[ ଦ୍ର—ଏ ନାମମାତ୍ର କୁନ୍ତୀଙ୍କର ପତି ଥିଲେ । କାରଣ କୁନ୍ତୀ ବିବାହ ପୂର୍ବରୁ ସୂର୍ଯ୍ୟଙ୍କ ଔରସରେ କର୍ଣ୍ଣଙ୍କୁ ଓ ବିବାହ ପରେ ଧର୍ମଦେବତାଙ୍କ ଔରସରେ ଯୁଧିଷ୍ଠିରଙ୍କୁ, ପବନ ଦେବତାଙ୍କ ଔରସରେ ଭୀମଙ୍କୁ ଓ ଇନ୍ଦ୍ରଙ୍କ ଔରସରେ ଅର୍ଜୁନଙ୍କୁ ଜନ୍ମ କରିଥିଲେ । ]

**ପୃଥିବୀ**—ସଂ. ବି. (ପ୍ରଥ୍ ଧାତୁ = ବିଖ୍ୟାତ ହେବା, ବିସ୍ତୃତ ହେବା + କର୍ତ୍ତୃ. ଇବ + ସ୍ତ୍ରୀ ଈ; କିମ୍ବା ପୃଥୁ = ରାଜାବିଶେଷ + ଅପତ୍ୟାର୍ଥେ ଈ)—୧ । ଭୂମଣ୍ଡଳ, ମହୀ, ଅବନୀ, ଧରା—
Pruthibi 1 The globe, the world.

[ ଦ୍ର—ପୁରାଣରେ ବର୍ଣ୍ଣିତ ହୋଇଅଛି ଯେ ପୃଥିବୀ ପୃଥୁ ନାମକ ରାଜାଙ୍କ ଧର୍ମକନ୍ୟା ଅଟନ୍ତି । ବେଣ ରାଜାଙ୍କ ପୁତ୍ର ପୃଥୁ ପ୍ରଜାପାଳନାର୍ଥ ପୃଥିବୀକୁ ଗାଭୀ କରି ଏହାଠାରୁ ଶସ୍ୟାଦି ଦୋହନ କଲେ ଓ ଏହାକୁ ଆପଣାର କନ୍ୟା ବୋଲି କଳ୍ପନା କଲେ ।

ଏ ମୋର ଦୁହିତା ହୋଇବ
ଏଣେ ବଞ୍ଚିଲେ ସର୍ବ ଜୀବ ।
ଜୀବର ଜୀବଦାତା ଯେଣୁ
ଏହାର ପୃଥ୍ୱୀ ନାମ ତେଣୁ । ଜଗନ୍ନାଥ-ଭାଗବତ ।

ଆହୁରି ମଧ୍ୟ ପୁରାଣରେ ବର୍ଣ୍ଣିତ ହୋଇଅଛି ଯେ ପୃଥିବୀ ତ୍ରିକୋଣିଆ ଏବଂ ଏହାର ମଧ୍ୟରେଖା ନର୍ମଦା । ନର୍ମଦା ନଦୀ ଭାରତର ମଧ୍ୟସ୍ଥଳରେ ବିନ୍ଧ୍ୟାଚଳରୁ ବାହାରି ଭାରତକୁ ଆର୍ଯ୍ୟାବର୍ତ୍ତ ଓ ଦକ୍ଷିଣାପଥରୂପେ ଦୁଇଭାଗ କରିଅଛି । ଏଥିପାଇଁ ଅନୁମାନ କରାଯାଏ ଯେ ପୌରାଣିକ ଭୂଗୋଳରେ ଏକା ଭାରତବର୍ଷହିଁ ପୃଥିବୀ ନାମରେ ଖ୍ୟାତ ଥିଲା । ଆହୁରି ମଧ୍ୟ ପୁରାଣରେ ଅଛି ଯେ ପୃଥିବୀରେ ୭ଟି ସମୁଦ୍ର ଓ ସପ୍ତ ସମୁଦ୍ର ମଧ୍ୟରେ ୭ ଗୋଟି ଦ୍ୱୀପ ଥିଲା । ତହିଁମଧ୍ୟରୁ ଜମ୍ବୁଦ୍ୱୀପର ଏକାଂଶରେ ଭାରତ ଅବସ୍ଥିତ ଥିଲା । ( ଜ୍ଞାନେନ୍ଦ୍ର )

ପୃଥିବୀର ଅନ୍ୟ ସଂ ନାମ ଅଚଳା, ଅଦ୍ରିତି, ଅନନ୍ତା, ଅବନୀ, ଆଦ୍ୟା, ଇଡ଼ା, ଇରା, ଇଳା, ଉର୍ବରା, ଉର୍ବୀ, କୁ, କ୍ଷମା, କ୍ଷାମା, କ୍ଷିତି, କ୍ଷୋଣୀ, ଗୋ, ଗୋତ୍ରା, ଜଗତୀ, ଜଗତୀ, ଜ୍ୟା, ଧରଣୀ, ଧରିତ୍ରୀ, ଧରା, ଧରିତ୍ରୀ, ଧାତ୍ରୀ, ନିଶ୍ଚଳା, ପାରୀ, ଭୂ, ଭୂମି, ମହି, ମହୀ, ମେଦିନୀ, ରତ୍ନଗର୍ଭା, ରତ୍ନାବତୀ, ରସା, ବସୁନ୍ଧରା, ବସୁଧା, ବସୁମତୀ, ବିପୁଳା, ଶ୍ୟାମା, ଭୁବନ, ସହା, ସ୍ଥିରା, ସାଗରମେଖଳା । ଆଧୁନିକ ଜ୍ୟୋତିଷୀମାନଙ୍କ ଗଣନାକ୍ରମେ ସୌରଜଗତରେ ଦୂରତ୍ୱ ହିସାବରେ ପୃଥିବୀ ତୃତୀୟ ଗ୍ରହ, (ସୂର୍ଯ୍ୟ ଓ ପୃଥିବୀ ମଧ୍ୟରେ ବୁଧ ଓ ଶୁକ୍ର ଅଛନ୍ତି) । ପୃଥିବୀର ପରିଧି ପ୍ରାୟ ୨୫୦୦୦ ମାଇଲ ଓ ବ୍ୟାସ ପ୍ରାୟ ୮୦୦୦ ମାଇଲ ଅଟେ । ପୃଥିବୀର ଆକାର ନାରଙ୍ଗ ପରି ଗୋଲ ଓ ଏଥିର ଉତ୍ତର ଓ ଦକ୍ଷିଣ ଅଂଶ ଚେପଟା । ପୃଥିବୀ ଏକ ଅହୋରାତ୍ରରେ ଥରେ ଆପଣା ଅକ୍ଷଦଣ୍ଡ ଉପରେ ଘୂରେ ଓ ୩୬୫ ଦିନ ୬ ଘଣ୍ଟା ୯ ମିନିଟରେ ଥରେ ସୂର୍ଯ୍ୟର ଚାରିପାଖେ ବୁଲି ଆସେ । ସୂର୍ଯ୍ୟଠାରୁ ପୃଥିବୀ ୩୦ ଲକ୍ଷ ମାଇଲ ଦୂରରେ ଅଛି । ଜଳର ଗୁରୁତ୍ୱ ତୁଳନାରେ ପୃଥିବୀର ଗୁରୁତ୍ୱ ୫.୬ ଅଟେ । ପୃଥିବୀର ଜଳଭାଗ ସ୍ଥଳଭାଗର ପ୍ରାୟ ତିନିଗୁଣ ।

ଆଧୁନିକ ବୈଜ୍ଞାନିକମାନେ କହନ୍ତି ଯେ ଘୂର୍ଣ୍ଣାୟମାନ ନିହାରିକା ମଣ୍ଡଳରୁ ଖଣ୍ଡିଏ ଜ୍ୱଳନ୍ତ ଅଂଶ ଛିଡ଼ିକି ଯାଇ ତାହା କ୍ରମଶଃ ଥଣ୍ଡା ହୋଇ ବାଷ୍ପୀୟ ରୂପରୁ ତରଳ ରୂପ ଓ ତରଳ ରୂପରୁ ଘନ ରୂପ ଧାରଣ କରି ପୃଥିବୀରେ ପରିଣତ ହୋଇଅଛି । ପୃଥିବୀର ଉପର ଅଂଶ ଥଣ୍ଡା ହୋଇଅଛି, କିନ୍ତୁ ଏଥିର ଗର୍ଭରେ ଗରମ ତରଳ ବସ୍ତୁ ବର୍ତ୍ତମାନ ପର୍ଯ୍ୟନ୍ତ ଅଛି । ହିନ୍ଦୁ ପୁରାଣ ମତରେ ପ୍ରଳୟ ଜଳରେ ଜନ୍ମିଥିବା ଦୁଇଟି ରାକ୍ଷସ ମଧୁ କୈଟଭଙ୍କୁ ବିଷ୍ଣୁ ବଧ କରିବାରୁ ତାଙ୍କ ମେଦରୁ ପୃଥିବୀ ଜାତ ହୋଇଅଛି । ଉପନିଷଦରେ ଲେଖାଅଛି ଯେ ପରମାତ୍ମାଙ୍କ ଠାରୁ ପ୍ରଥମେ ଆକାଶ, ଆକାଶରୁ ବାୟୁ, ବାୟୁରୁ ଅଗ୍ନି, ଅଗ୍ନିରୁ ଜଳ ଓ ଜଳରୁ ପୃଥିବୀ ଉତ୍ପନ୍ନ ହେଲା—ହି. ଶ ।]
୨ । ଭୂମି—2. Earth; soil.

**ପୃଥିବୀ ତଳ**—ସଂ. ବି—( ୬ଷ୍ଠୀ ତତ୍; ପୃଥିବୀ + ତଳ )—ଧରାତଳ; ପୃଥିବୀର ଉପରିଭାଗ—The surface of the earth
Pruthibi tala
(ପୃଥିବୀ ପୃଷ୍ଠ—ଅନ୍ୟରୂପ)

**ପୃଥିବୀ ତୀର୍ଥ** - ସଂ. ବି – ମହାଭାରତୋକ୍ତ ହିନ୍ଦୁମାନଙ୍କର ତୀର୍ଥବିଶେଷ—
Pruthibi tirtha Name of a sacred place of Hindu pilgrimage

ପୃଥିବୀ ତୀର୍ଥେ ଯାଇ ସ୍ନାନେ, ଦେବୀ ଦାନ
ଫଳ ହୁଏ କରିବା ମାତ୍ରକେ ଗମନ – କୃଷ୍ଣସିଂହ ମହାଭାରତ, ବନ ।

**ପୃଥିବୀ ପତି**—ସଂ. ବି - ( ୬ଷ୍ଠୀ ତତ୍, ପୃଥିବୀ + ପତି )—୧ । ଭୂପତି; ନୃପତି; ରାଜା—1. A king
Pruthibi pati

ପୃଥିବୀ କ୍ଷିତ୍, ପୃଥିବୀ ପାଳ, ପୃଥିବୀ ଭୁକ୍; ପୃଥିବୀଶ } ଅନ୍ୟରୂପ

୨ । ସମ୍ରାଟ୍—2. Sovereign; emperor.

**ପୃଥିବୀ ମଣ୍ଡଳ**—ସଂ. ବି—୧ । ମହୀତଳ; ଭୂମଣ୍ଡଳ, ସମଗ୍ର ପୃଥିବୀ—
Pruthibi mandala 1. The whole world
୨ । ଭୂଗୋଳକ—2. The terrestrial globe.

**ପୃଥିବୀ ରୁହ**—ସଂ. ବି—(ପୃଥିବୀ + ରୁହ୍ ଧାତୁ = ଜନ୍ମିବା + କର୍ତ୍ତୃ. ଅ)—
Pruthibi ruha ୧ । ମହୀରୁହ; ଗଛ—1. Tree; plant.
୨ । ଉଦ୍ଭିଦ ଜଗତ୍—2. The vegetable world.

**ପୃଥୀ**—ଗ୍ରା ବି—(ସଂ ପୃଥ୍ୱୀ, ପୃଥିବୀ)—ପୃଥିବୀ—The world
Pruthi ଯେବେ ପୃଥୀରେ ଭୂପ ହୋଇ
ତେବେଠୁ ବ୍ରାହ୍ମଣେ କର୍ଣ୍ଣ—ଗ୍ରାମୀ ଯଶୋବନ୍ତ ପ୍ରେମ ଭକ୍ତି ଗୀତା ।

**ପୃଥୁ**—ସଂ. ବି. ପୁଂ—(ପ୍ରଥ୍ ଧାତୁ=ଖ୍ୟାତ ହେବା+ଉ)—
Pruthu ୧ । ତ୍ରେତା ଯୁଗରେ ସୂର୍ଯ୍ୟବଂଶୀୟ ପଞ୍ଚମ ନୃପତି—
1 Name of an ancient king of the Tretā age.
ତା ଦେହୁ ପୃଥୁ ନାମେ ହୁଇ
ଜନ୍ମ ଲେ ଧନ୍ୟ ଅତୁ । ଜଗନ୍ନାଥ ଦାସଙ୍କ ।

[ଦ୍ର—ପୃଥିବୀର ସମସ୍ତ ଧାରଙ୍କୁ ସମସ୍ତ କରବାରୁ ଏହାଙ୍କର ଯଶଃ ପୃଥିବୀରେ ବିଖ୍ୟାତ ହୋଇଥିଲା ଓ ଏ ପୃଥିବୀର ପ୍ରଥମ ରାଜା ବୋଲି ପରିଗଣିତ ହେବାରୁ ପୃଥିବୀ ଏହାଙ୍କ କନ୍ୟାରୂପେ କଳ୍ପିତ ହୋଇଥିଲେ । ଏହାଙ୍କର ଚରିତ୍ର ଜନ୍ମବୃତ୍ତାନ୍ତ ଭାଗବତ ୪ର୍ଥ ସ୍କନ୍ଧ ୧୫ଶ ଅଧ୍ୟାୟରେ ବର୍ଣ୍ଣିତ ଅଛି । ବେଣ ରାଜା ଅତ୍ୟନ୍ତ ଦୁଷ୍ଟ ଥିଲେ ଓ ବ୍ରାହ୍ମଣଙ୍କ ଶାପରେ ନଷ୍ଟ ହେଲେ । ବେଣଙ୍କ ମୃତ୍ୟୁ ପରେ ପୃଥିବୀ ଅରାଜକ ହେବାରୁ ବ୍ରାହ୍ମଣମାନେ ବେଣଙ୍କ ମୃତପିଣ୍ଡର ଉରୁଦେଶକୁ ମନ୍ଥନ କରବାରୁ ଏକ ଭୟଙ୍କର ପୁରୁଷ ଉତ୍ପନ୍ନ ହେଲା; ଏହାର ବଂଶ ନିଷାଦ ହେଲେ । ପୁଣି ବ୍ରାହ୍ମଣମାନେ ବେଣଙ୍କ ଶବର ବାହୁଯୁଗ୍ମ ମନ୍ଥନ କରବାରୁ ସ୍ତ୍ରୀ ଓ ପୁରୁଷ ଦୁଇଟି ଜାତ ହେଲେ । ପୁରୁଷ ପୃଥୁ ଓ ସ୍ତ୍ରୀ ଅର୍ଚ୍ଚି । ପ୍ରଜାମାନେ ପୃଥୁଙ୍କୁ ରାଜା ଓ ଅର୍ଚ୍ଚିଙ୍କୁ ତାଙ୍କ ରାଣୀ କଲେ । ପୃଥିବୀ ଶସ୍ୟହୀନ ହୋଇଥିବାରୁ ପୃଥୁ ପୃଥିବୀକୁ ଗାଭୀରୂପେ କଳ୍ପନା କରି ତାକୁ ଦୁହିଁବାରୁ ପୃଥିବୀଠାରୁ ଶସ୍ୟାଦି ଉତ୍ପନ୍ନ ହେଲା ।]

୨ । ଅଗ୍ନି—2 The Fire-God.
୩ । କୃଷ୍ଣଜୀରକ; କଳାଜୀରା—3. A pungent seed; Nigella Indica; black cumin seed.
୪ । ଅହିଫେନ; ଅଫିମ—4. Opium.
୫ । ଭୂକପର୍ଣ୍ଣୀ, ହିଙ୍ଗୁପତ୍ରୀ, ବାଉଁଶ ପତ୍ରିଆ ଘାସ—
5. A kind of grass; Balanites Roxburghii.
ବିଣ—୧ । ସ୍ଥୂଳ, ମୋଟା—1. Fat; corpulent.
(ପୃଥୁତା; ପୃଥୁତ୍ୱ—ବି) ୨ । ବହୁଦୂର ବିସ୍ତୃତ; ବିଶାଳ—
2. Wide, spacious; expansive; extensive.
୩ । ମହତ୍; ବଡ଼—3. Great; large.
ଜନ୍ମିବେ ଶ୍ରେଷ୍ଠ କୁଳେ ଏହୁ କ୍ଷିତିପୁରେ
ଛାଡିବେଁ ଗାଁପୁଷ ପ୍ରାୟେ ପୃଥୁ ପୃଥୁଯଶା—ରାଧାନାଥ ମହା ଯାତ୍ରା ।
୪ । ନିପୁଣ, ଚତୁର—4 Smart; clever.
୫ । ପ୍ରଚୁର—5. Abundant.
୬ । ଅସଂଖ୍ୟ (ହି. ଶ)—6. Countless
୭ । ପ୍ରବୀଣ (ହି. ଶ)—7. Experienced

**ପୃଥୁକ**—ସଂ. ବି—(ପ୍ରଥ୍ ଧାତୁ=ଖ୍ୟାତ ହେବା+ଉକ କର୍ମ୍ମ ପୃଥୁ=
Pruthuka ମୋଟା+କ)—୧ । ପ୍ରାଣିଶିଶୁ, ଶାବକ; ଛୁଆ—
1. The young of an animal; infant; child.
୨ । ଚିପିଟକ; ଚୂଡ଼ା—2. Flattened rice used as food without cooking.
ପୃଥୁକ ଦେଲେ ଉପାସ୍ୟ
ବିପ୍ର ଦ୍ୱାରକା ଆଗମନ—ଜଗନ୍ନାଥ ଭାଗବତ ।

ଗ୍ରା. ଅ. ବିଣ ଓ କ୍ରି. ବିଣ (ପୃଥକ୍‌ର ଅଶୁଦ୍ଧ ଉଚ୍ଚାରଣ)—
ପୃଥକ୍ (ଦେଖ)—Pruthak (S. )

**ପୃଥୁକା**—ସଂ. ବି—ଭୂକପର୍ଣ୍ଣୀ, ହିଙ୍ଗୁପତ୍ରୀ, ବାଉଁଶପତ୍ରିଆ ଘାସ—
Pruthukā A kind of grass, Balanites Roxburghii.
(ପୃଥୁଲା, ପୃଥ୍ୱୀକା—ଅନ୍ୟରୂପ)

**ପୃଥୁଗ୍ରୀବ**—ସଂ. ବିଣ ପୁଂ. (ବହୁବ୍ରୀହି, ପୃଥୁ+ଗ୍ରୀବା)—
Pruthugriba ମୋଟା ବେକ ଥିବା (ବ୍ୟକ୍ତି)—
(ପୃଥୁଗ୍ରୀବା—ସ୍ତ୍ରୀ) Having a stout or fat neck

**ପୃଥୁଚ୍ଛଦ**—ସଂ. ବିଣ (ବହୁବ୍ରୀହି; ପୃଥୁ+ଛଦ, ସନ୍ଧି ଯୋଗୁଁ ଛ ସ୍ଥାନରେ ଚ୍ଛ)
Pruthuchchhada ୧ । ମୋଟା ପତ୍ରବିଶିଷ୍ଟ—
1. Having thick leaves
୨ । ବଡ଼ ପତ୍ରବିଶିଷ୍ଟ—2. Having large leaves.
ସଂ. ବି.—୧ । ଏକପ୍ରକାର ଘାସ—1. A kind of grass.
୨ । ହସ୍ତିକନ୍ଦ (ହି. ଶ)—2. A kind of bulbous root.

**ପୃଥୁ ତଣ୍ଡୁଳ**—ସଂ.ବି.—ଚୂଡ଼ା ବା ମୁଢ଼ି—Flattened or fried rice.
Pruthu tandula ବହୁ ଘରଣୀ ଯୁକ୍ତା କରି,
ପୃଥୁ ତଣ୍ଡୁଳ ମୁଷ୍ଟି ଭରି । ଜଗନ୍ନାଥ ଭାଗବତ ।

**ପୃଥୁ ନିତମ୍ବ**—ସଂ. ବିଣ ପୁଂ (ବହୁବ୍ରୀହି, ପୃଥୁ+ନିତମ୍ବ)—ବଡ଼ ବଡ଼
Pruthu nitamba ପିଚ୍ଛ ଥିବା (ବ୍ୟକ୍ତି); ଓଳିଆ ଗାଣ୍ଡିଆ—
(ପୃଥୁନିତମ୍ବୀ—ଅନ୍ୟରୂପ) Having fat or large buttocks.
(ପୃଥୁ ନିତମ୍ବା; ପୃଥୁ ନିତମ୍ବିନୀ—ସ୍ତ୍ରୀ)

**ପୃଥୁ ପତ୍ର**—ସଂ. ବି. (ବହୁବ୍ରୀହି; ପୃଥୁ+ପତ୍ର)—(ବୈଦ୍ୟକ)—
Pruthu patra ୧ । ନାଲି ରସୁଣ—
1. A kind of red garlic.
୨ । ହସ୍ତିକନ୍ଦ (ହି. ଶ)—2. A kind of bulbous root.

**ପୃଥୁ ପଲାଶିକା**—ସଂ ବି.—(ବୈଦ୍ୟକ) ପାଳୁଅ ଗଛ—
Pruthu palāsikā The Zeodary; the Curcuma, ସଟୀ କଚୁର Indian arrowroot.

**ପୃଥୁ ପାଣି**—ସଂ. ବିଣ. (ବହୁବ୍ରୀହି, ପୃଥୁ+ପାଣି)—ଆଜାନୁଲମ୍ବିତ ବାହୁ
Pruthu pāni (ହି ଶ.)—Having long hands extending to the knees

**ପୃଥୁ ବକ୍ତ୍ର**—ସଂ. ବିଣ. ପୁଂ (ବହୁବ୍ରୀହି, ପୃଥୁ+ବକ୍ତ୍ର)—ବଡ଼ ମୁହାଁ,
Pruthu baktra ଯାହାର ମୁହଁ ବଡ଼—Big-faced.
(ପୃଥୁବକ୍ତ୍ରା—ସ୍ତ୍ରୀ)

**ପୃଥୁ ରୋମା**—ସଂ. ବିଣ.—(ବହୁବ୍ରୀହି; ପୃଥୁ+ରୋମନ୍, ୧ମା. ୧ବ.—
Pruthu romā ୧ । ଘନ ଲୋମଯୁକ୍ତ—
(ପୃଥୁଲୋମା—ଅନ୍ୟରୂପ) 1. Having thick fur.
୨ । ଟାଆଁସା ବାଳୁଆ—2 Wiry-haired.
୩ । ବଡ଼ ବଡ଼ କାତିବିଶିଷ୍ଟ—3. Having large scales.
[ଦ୍ର—କାତି ମାଛମାନଙ୍କର ଲୋମ ଅଟେ ।]
୪ । ଦୀର୍ଘ କେଶଯୁକ୍ତ—4. Having long hair.
ସଂ. ବି.—୧ । ମତ୍ସ୍ୟ; ମାଛ—1. Fish.

୨ । (ଜ୍ୟୋତିଷ) ମୀନ ରାଶି (ହି. ଶବ୍ଦସାଗର)
2 The astronomical sign, Pisces.

**ପୃଥୁଳ**—ସଂ. ବିଣ. (ପୃଥୁ+ସ୍ୱାର୍ଥେ ଲ)—୧ । ସ୍ଥୂଳ, ମୋଟା—1. Fat.
Pṛuthula ୨ । ବିଶାଳ—2. Extensive, large; broad.
(ପୃଥୁଳା—ସ୍ତ୍ରୀ) [ପୃଥୁଳତା(ଭ୍ୱ)—ବି]

**ପୃଥୁଳାକ୍ଷ**—ସଂ ବିଣ. ପୁଂ. (ବହୁବ୍ରୀହି. ପୃଥୁଳ+ଅକ୍ଷି)—
Pṛuthulāksha ବିଶାଳନେତ୍ରବିଶିଷ୍ଟ—
(ପୃଥୁଲୋଚନ—ଅନ୍ୟରୂପ) Having big eyes; big-eyed

ପୃଥୁଳାକ୍ଷୀ } ସ୍ତ୍ରୀ ସଂ ବି—ପୁରୁବଂଶୀୟ ନୃପତିବିଶେଷ—
ପୃଥୁଲୋଚନା } Name of a king of the Pūru dynasty

**ପୃଥୁ ଶେଖର**—ସଂ. ବିଣ. (ବହୁବ୍ରୀହି, ପୃଥୁ+ଶେଖର)—ଉଚ୍ଚ ଶୃଙ୍ଗ-
Pṛuthu śekhara ଯୁକ୍ତ—Having a lofty summit.
ବି.—ପର୍ବତ—Mountain

**ପୃଥୁଶ୍ରବାଃ**—ସଂ. ବିଣ. ପୁଂ—(ପୃଥୁ+ଶ୍ରବସ୍, ୧ମା. ୧ବ.)—ବଡ଼ ବଡ଼
Pṛuthu śrabāh କାନଯୁକ୍ତ, ଦୀର୍ଘକର୍ଣ୍ଣ—Big-eared.
ସଂ. ବି.—୧ । ସ୍କନ୍ଦଙ୍କ ଅନୁଚରବିଶେଷ—
1. Name of an attendant of Skanda.
୨ । ଶଶବିନ୍ଦୁ ରାଜାଙ୍କ ପୁତ୍ରବିଶେଷ—
2. Name of a son of king Śaśabindu

**ପୃଥୁ ସ୍କନ୍ଧ**—ସଂ. ବିଣ. ପୁଂ (ବହୁବ୍ରୀହି; ପୃଥୁ+ସ୍କନ୍ଧ)—ସ୍ଥୂଳସ୍କନ୍ଧବିଶିଷ୍ଟ—
Pṛuthu skandha Having broad shoulders
ବି.—ଶୂକର—Swine; hog.

**ପୃଥୂଦକ**—ସଂ. ବି. (ନାମ)—ସରସ୍ୱତୀ ନଦୀର ଦକ୍ଷିଣ ତଟସ୍ଥ ପ୍ରସିଦ୍ଧ
Pṛuthūdaka ପ୍ରାଚୀନ ତୀର୍ଥ (ଆଧୁନିକ ନାମ ପୋହୋଆ)—
[ଦ୍ର—ଏଠାରେ ରାଜା ପୃଥୁ ଆପଣାର ପିତା ବେଣଙ୍କର ଅନ୍ତ୍ୟେଷ୍ଟି-କ୍ରିୟା କରିଥିଲେ ଓ ୧୨ ଦିନ କାଳ ଅଭ୍ୟାଗତମାନଙ୍କୁ ଜଳ ପିଆଇ ଥିଲେ ବୋଲି ପୁରାଣମାନଙ୍କରେ ଲେଖାଅଛି—ହି. ଶ । ]

**ପୃଥୂଦର**—ସଂ. ବିଣ. ପୁଂ (ବହୁବ୍ରୀହି, ପୃଥୁ+ଉଦର)—
Pṛuthūdara ୧ । ସ୍ଥୂଳୋଦର—1. Big-bellied.
(ପୃଥୂଦରୀ—ସ୍ତ୍ରୀ) ୨ । ଥଲ୍ଲଲ ପେଟୁଆ—2. Pot-bellied
ସଂ. ବି—ମେଣ୍ଢା, ମେଷ (ହି ଶ)—Sheep.

**ପୃଥ୍ୱୀ**—ସଂ. ବି. ସ୍ତ୍ରୀ. ( ପୃଥୁ=ରାଜା+କନ୍ୟାର୍ଥେ ଈ )—
Pṛuthwī ୧ । ପୃଥିବୀ ଇତ୍ୟାଦି (ଦେଖ)
1. Pṛuthibī etc (See)
୨ । କଳାଜୀରା—2. Black cumin seed.
୩ । ହିଙ୍ଗୁ ପତ୍ରୀ; ବାଈଁଶ ପତ୍ରିଆ ଘାସ—
3. A kind of grass.
୪ । ୧୭ ଅକ୍ଷରଥା ଛନ୍ଦୋବିଶେଷ—
4. A metre of 17 letters
୫ । ପୁନର୍ନବା, ପୁରୁଣୀ ଶାଗ—5. The hog weed
୬ । ମାଟି; ମୃତ୍ତିକା—6. The soil.
୭ । ବଡ଼ ଅଲେଇଚ (ହି. ଶ)—7. Cardamom.

**ପୃଥ୍ୱୀକା**—ସଂ. ବି. (ପୃଥ୍ୱୀ+କ+ସ୍ତ୍ରୀ. ଆ)—୧ । ( ବୈଦ୍ୟକ ) ବଡ଼
Pṛuthwikā ଅଲେଇଚ—1. Cardamom
୨ । କଳାଜୀରା—2 Black cumin seed
୩ । ହିଙ୍ଗପତ୍ରୀ ଘାସ—3. A kind of grass.

**ପୃଥ୍ୱୀ ଚକ୍ରବାଳ**—ସଂ. ବି—ଦିଗନ୍ତବ୍ୟାପୀ ସମଗ୍ର ଭୂଖଣ୍ଡ—
Pṛuthwī chakrabāla The earth encircled on all sides by the horizon.
ପୃଥ୍ୱୀ ଚକ୍ରବାଳ ପରିବୃତ ବାଲୁକେଶ ସ୍ତବନରେ ଏ ଭଗ ଗୋ ।
କବିସୂର୍ଯ୍ୟ, କଣୋଶ ଭଞ୍ଜ ପ. ଗୀତ ।

**ପୃଥ୍ୱୀଧର**—ସ. ବି. (ପୃଥ୍ୱୀ+ଧୃ ଧାତୁ+କର୍ତ୍ତୃ. ଅ)—ପର୍ବତ—
Pṛuthwidhara Mountain.

**ପୃଥ୍ୱୀ ପତି**—ସ. ବି. (୬ଷ୍ଠୀ ତତ୍, ପୃଥ୍ୱୀ+ପତି)—ରାଜା—
Pṛuthwī pati King.
(ପୃଥ୍ୱୀନାଥ, ପୃଥ୍ୱୀପାଳ, ପୃଥ୍ୱୀଶ—ଅନ୍ୟରୂପ)

**ପୃଥ୍ୱୀ ପୁତ୍ର**—ସଂ. ବି. (୬ଷ୍ଠୀ ତତ୍)—ମଙ୍ଗଳଗ୍ରହ—
Pṛuthwī putra The planet Mars.

**ପୃଥ୍ୱୀରାଜ**—ସଂ. ବି (୬ଷ୍ଠୀ ତତ୍, ପୃଥ୍ୱୀ+ରାଜନ୍)—ନରପତି—
Pṛuthwīrāja King.
ଦେ ବି (ନାମ)—ଭାରତର ଶେଷ ସ୍ୱାଧୀନ ହିନ୍ଦୁ ରାଜା—
The last independent king of North India.
[ ଦ୍ର—ଏହାଙ୍କ ସଙ୍ଗେ ଜୟଚନ୍ଦ୍ରଙ୍କର ବିବାଦ ହେବାରୁ ଜୟଚନ୍ଦ୍ରଙ୍କ ଆହ୍ୱାନକ୍ରମେ ଯବନମାନେ ଭାରତ ଆକ୍ରମଣ କରି ଭାରତର ସ୍ୱାଧୀନତା ଲୋପ କଲେ । ]

**ପୃଦାକୁ**—ସଂ. ବି—୧ । ସର୍ପ (ହି. ଶ)—1. Serpent.
Pṛudāku ୨ । ବିଛା (ହି. ଶ)—2. Scorpion
୩ । ଚିତାବାଘ (ହି. ଶ)—3. Leopard.
୪ । ହାତୀ (ହି. ଶ)—4. Elephant.
୫ । ବୃକ୍ଷ (ହି. ଶ)—5. Tree.

**ପୃଶ୍ନି**—ସଂ. ବିଣ. (ସ୍ପୃଶ୍ ଧାତୁ=ସ୍ପର୍ଶ କରିବା+କର୍ମ ନି, ଯାହାକୁ
Pṛuśni ଅନାୟାସରେ ସ୍ପର୍ଶ କରାଯାଇ ପାରେ)—
୧ । ଖର୍ବାକାର; ବାମନ ଅପେକ୍ଷା ଈଷତ୍ ଲମ୍ବକାୟ—
1 Dwarfish; of short stature.
୨ । ଦୁର୍ବଳ—2. Weak; feeble.
୩ । ସୂକ୍ଷ୍ମ; ପତଳା—3. Thin; delicate.
୪ । ଧଳା; ଶ୍ୱେତ (ହି ଶ)—4. White.
୫ । ଚିତ୍ରିତା, କର୍ବୂର (ହି. ଶ)—
5. Multicoloured; variegated.
୬ । ସାଧାରଣ ହି. ଶ)—6. Ordinary.
ବି—୧ । କିରଣ—1. Ray of light.
୨ । ବିଲ; ବୋରୁଝାଞ୍ଜି—
2. An aquatic weed which spreads over water; Pistia Stratiotes.
୩ । ପୃଥ୍ୱୀ—3. The earth.
୪ । ସୁତପା ରାଜାଙ୍କ ମହଷୀ ( ଯେ ପର ଜନ୍ମରେ ବସୁଦେବଙ୍କ ସ୍ତ୍ରୀ ଦେବକୀ ହୋଇଥିଲେ )—4. The queen of king

Sutapā who in a succeeding birth became Debakī, the mother of Śrīkrushṇa.

୫ । ଛଉକ୍ରା ଗାଇ ( ହି. ଶ. )—
5. A cow of variegated colour,

୬ । ଅମୃତ (ହି. ଶ.)—6. Nectar.

୭ । ବେଦ ( ହି. ଶ )—7. The Bedas.

୮ । ପ୍ରାଚୀନ ଋଷିବିଶେଷ ( ହି. ଶ. )—
8, Name of a sage.

୯ । (ବୈଦିକ) ଜଳ—9 Water.

୧୦ । ଘୃତ—10. Ghee.

୧୧ । ଅନ୍ନ—11. Food.

**ପୃଶ୍ନି ଗର୍ଭ**—(ବୈଦିକ) ସ. ବ. ( ବହୁବ୍ରୀହି, ପୃଶ୍ନି=ଜଳ, ଘୃତ, ଅନ୍ନ ଅଛି ଗର୍ଭରେ ଯାହାର )—
Pṛuśni garbha
ଭଗବାନ; ବିଷ୍ଣୁ—Bishṇu.

ପୃଶ୍ନି ଯେ ଅର୍ଥ ଜଳ ଘିଅ ଅନ୍ନ
ବେଦେ ପ୍ରବର୍ତ୍ତଇ ହେ ଜାଣ ଅନୁଜ୍ଞ।
ଏମାନେ ତ ମୋହର ଗର୍ଭରେ ଅଛନ୍ତି
ତେଣୁ ପୃଶ୍ନି ଗର୍ଭ ବୋଲି ମୋତେ କହନ୍ତି ।
କୃଷ୍ଣସିଂହ. ମହାଭାରତ ଶାନ୍ତି ।

**ପୃଶ୍ନିପର୍ଣ୍ଣୀ**— ସ. ବ. (ପୃଶ୍ନି=ବୋଇଝାଙ୍କିଦଳ+ପର୍ଣ୍ଣ=ପତ୍ର+ଇନ୍)—
Pṛuśni parṇṇī କୃଷ୍ଣପର୍ଣ୍ଣୀ କ୍ଷୁପ—Hemionites Cordifolia; Uraria Lagopoides; Herpestis Monniera (Kirtikar).

ଅନ୍ୟ ସ. ନାମ—ପୃଥକ୍‌ପର୍ଣ୍ଣୀ, ଚିତ୍ରପର୍ଣ୍ଣୀ, ମେଖଳା, ଅଙ୍ଘ୍ରିବଲ୍ଲିକା, କ୍ରୋଷ୍ଟୁବିନ୍ନା; ସିଂହପୁଚ୍ଛୀ, ଧମନୀ, କଲଶି, ଧାବନୀ, ଗୁହା, ସିଂହଲାଙ୍ଗୁଲୀ, ଚକ୍ରପର୍ଣ୍ଣୀ, ପିଷ୍ଟପର୍ଣ୍ଣୀ, ଚନ୍ଦ୍ରୀ, ଲାଙ୍ଗୁଲୀ, କ୍ରୋଷ୍ଟୁକପୁଚ୍ଛିକା, ଚକ୍ରକୁଲ୍ୟା, ପୂର୍ଣ୍ଣପର୍ଣ୍ଣୀ, କଲଶୀ, କ୍ରୋଷ୍ଟୁକ ମେଖଳା, ଚନ୍ଦ୍ରୀ, ଶୃଗାଲବୃନ୍ତା, ବୃଷ୍ଟିପର୍ଣ୍ଣୀ, ଘଣ୍ଟିଳା, ବ୍ୟାଘ୍ରକମେଖଳା, କଙ୍କଶତ୍ରୁ, ଦୀର୍ଘା, ଶୃଗାଲବୃନ୍ତା, ତ୍ରିପର୍ଣ୍ଣୀ, କଦଳା, ଦୀର୍ଘପତ୍ରା, ଅତିଗୁହା, ଚିତ୍ରପର୍ଣ୍ଣିକା, ସିଂହପୁଚ୍ଛୀ, କଲସୀ, କ୍ରୋଷ୍ଟୁପୁଚ୍ଛୀ, ଶୀର୍ଣ୍ଣମାଳା, ମହାଗୁହା, ଶୃଗାଲବିନ୍ନା, ଲାଙ୍ଗୁଲିକା, ବୃଦ୍ଧପର୍ଣ୍ଣୀ, ପୃଷ୍ଠିପର୍ଣ୍ଣୀ, ଅଙ୍ଘ୍ରିପର୍ଣ୍ଣୀ
ଚାକୁଳେ, ଜଳନିମ, ଶେତଚମ୍ପି
**ପୀଠବନ, ପିଠୌନୀ,**
**ଅଥବିଦନୀ, ତ୍ରାୟନ୍ତା, ଦୌଲା**
ସୁ. ସେନ୍‌ବର, ପୀଠବନ

[ ଦ୍ର—ଏହା ଶିମ୍ବାଦି ବର୍ଗର ଲତାଣିଆ କ୍ଷୁପ । ପତ୍ର ଗୋଟିକିଆ ଓ ତିନି ଗୋଟିଆ ଥାଏ । ପତ୍ର ପ୍ରାୟ ଗୋଲ ଓ ଲୋମଶ । ଫୁଲ ଅନେକ ଓ ଧଳା ଓ ଆରକ୍ତ ବର୍ଣ୍ଣ । ଛୁଇଁଲେ ୬ଟି ପତ୍ର । ଛୁଇଁ ମଞ୍ଜିରୁ ଭାଙ୍ଗି ଯାଇ ଦୁଇଟି ଯାକ ପତ୍ର ଲାଗିଥାଏ । ଗଛ ଲଟେଇ କରି ଯିବା ସମୟରେ ଗଣ୍ଠିମାନଙ୍କରୁ ଚେର ବାହାରେ । ଏହାର ପତ୍ର ଦଳ ବା ବୋଇଝାଙ୍କିର ପତ୍ର ପରି । ଏହା ଔଷଧରେ ବ୍ୟବହୃତ ହୁଏ । ଏହା ତ୍ରିଦୋଷନାଶକ । ଏହାକୁ ଦେହରେ ବାନ୍ଧିଲେ ପାଳଜ୍ୱର ଭଲ ହୁଏ । ବୈଦ୍ୟକ ମତରେ ଏହା ଶୁକ୍ରବର୍ଦ୍ଧକ, ଉଷ୍ଣବୀର୍ଯ୍ୟ, ମଧୁରରସ ଓ ସାରକ; ଦାହ, ଜ୍ୱର, ଶ୍ୱାସ, ରକ୍ତାତିସାର, ତୃଷ୍ଣା ଓ ବମନନିବାରକ । ଏ ଲତା ପଶ୍ଚିମ ଭାରତରେ ଓ ବଙ୍ଗଦେଶରେ ... ଛନ୍ତି, କନ୍ତୁ

ତେ. କୋଲାକୁପୋନ୍ନା ଦାକ୍ଷିଣାତ୍ୟରେ ଦେଖାଯାଏ ନାହିଁ ।
ଗୁ. ପୃଷ୍ଠିପର୍ଣ୍ଣୀ

**ପୃଶ୍ନୀ**—ସ ବ. ସ୍ତ୍ରୀ. ( ପୃଶ୍ନି+ସ୍ତ୍ରୀ. ଈ )—ପୃଶ୍ନି; ବାଉପର୍ଣ୍ଣୀ, ଦଳ; ବୋଇଝାଙ୍କି—An aquatic weed which spreads over water; Pistia Stratiotes.
Pṛuśni

**ପୃଷ୍** (ଧାତୁ)—ସ— ୧ । ସେଚନ କରିବା—
Pṛush (root) 1 To sprinkle.

୨ । କ୍ଳାନ୍ତ ହେବା—2, To become tired.

୩ । ଆଘାତ କରିବା—3 To hurt; to strike.

୪ । ଦେବା—4. To give

**ପୃଷତ୍**—ସ. ବ. (ପୃଷ୍ ଧାତୁ+କର୍ମ ଅତ୍ )—୧ । ତରଳ ବା ଦ୍ରବପଦାର୍ଥର ଟୋପା—1. Drop of a liquid.
Pṛushat

୨ । ମଣ୍ଡଳାକାର ଦାଗ—2. Spot; circular mark.

୩ । ମଣ୍ଡଳାକାର ଚିତା, ଚିତାର ଟୋପା—3 A tip of painting put on the body

୪ । ଶ୍ୱେତ ବିନ୍ଦୁଯୁକ୍ତ ହରିଣ; ବାଳୁଟିଆ, ଋକ୍ଷମୃଗ—
4 White-spotted deer; the Aris; the hog deer.
ବିଣ—ସିକ୍ତ—Sprinkled.

**ପୃଷତ**—ସ. ବ. ପୁଂ (ପୃଷ୍ ଧାତୁ+କର୍ମ ଅତ)—୧ । ଜଳାଦିର ବିନ୍ଦୁ—
Pṛushata 1. Drop of liquid.

୨ । ବାଳୁଟିଆ, ଶ୍ୱେତ ବିନ୍ଦୁଯୁକ୍ତ ମୃଗ; ଚିତ୍ରମୃଗ—
2. The white-spotted deer

୩ । ଭରଦ୍ୱାଜ ମୁନିଙ୍କ ପୁତ୍ର—
3. The son of sage Bharadwāja,

୪ । ଦ୍ରୁପଦ ରାଜାଙ୍କ ପିତା—
4. The father of king Drupada.

୫ । ସର୍ପବିଶେଷ ( ହି. ଶବ୍ଦସାଗର )—
5 A kind of snake.

୬ । ରୋହିମାଛ (ହି. ଶ)—6 Rohi fish.

**ପୃଷତାମ୍ପତି**—ସ. ବ. ( ପୃଷତାଂ=ହରିଣମାନଙ୍କର+ପତି=ପ୍ରଭୁ )—
Pṛushatāmpati ମୃଗବାହନ, ଅନିଳ; ବାୟୁ—
The wind God; air.

**ପୃଷତାଶ୍ୱ**—ସ. ବ. ( ପୃଷତ=ମୃଗମାନେ ଅଟନ୍ତି+ଅଶ୍ୱ=ବାହନ ଯାହାଙ୍କର ) - ପୃଷତାମ୍ପତି ( ଦେଖ )
Pṛushatāśwa
(ପୃଷଦଶ୍ୱ; ପୃଷଦଂଶ—ଅନ୍ୟରୂପ) Pṛushatāmpati (See)

**ପୃଷତୀ**—ସ. ବ. ସ୍ତ୍ରୀ. (ପୃଷତ୍+ସ୍ତ୍ରୀ. ଈ)—୧ । ଶ୍ୱେତବିନ୍ଦୁଯୁକ୍ତା ମୃଗୀ, ହରିଣୀ—1. The female spotted deer.
Pṛushatī

୨ । ଅଞ୍ଜନ ଶଳାକା; ଆଖିରେ କଜଳ ଲଗାଇବା କାଠି—
2. A pencil for applying collyrium to the eyes.

**ପୃଷତ୍କ**—ସ. ବ ( ପୃଷ ଧାତୁ=ଆଘାତ କରିବା+କର୍ତ୍ତୃ.ଅକ )—ବାଣ
Pṛushatka ( ହି. ଶବ୍ଦସାଗର )—Arrow.

**ପୃଷଦାଜ୍ୟ**—ସଂ. ବ (ପୃଷତ୍+ଆଜ୍ୟ)—ଦଧି ମିଶ୍ରିତ ଘୃତ (ହି. ଶ)—
Pṛushadājya 'Ghee mixed with curd.

ପ୍ରୃଷନ୍ତି—ସଂ. ବି. ସ୍ତ୍ରୀ. ( ପୃଷତ୍+ଅନ୍ତି )—ବିନ୍ଦୁ, କଣା—
Pṛushanti Drop.

ପ୍ରୃଷାକର—ସଂ. ବି—ବଟକରା (ହି. ଶ.)—
Pṛushākarā Standard bits used for weighing.

ପ୍ରୃଷାର୍ଥ—ଗ୍ରା. ବି. ( ସଂ. ପୁରୁଷାର୍ଥ )—ଗୌରବ, ପୌରୁଷ, ବାହାଦୁରୀ;
Prushārtha ପ୍ରଶଂସା—Credit; praise.
( ପ୍ରୁଷାର୍ଥ—ଅନ୍ୟରୂପ )

ପ୍ରୃଷୋଦର—ସଂ. ବିଣ. (ବହୁବ୍ରୀହି, ପୃଷତ୍+ଉଦର; ନିପାତନସିଦ୍ଧ)—
Pṛushodara ଯାହାର ପେଟରେ ବିନ୍ଦୁ ବିନ୍ଦୁ ଚିହ୍ନ ଥାଏ—
Having the belly marked with spots.
[ ଦ୍ର—ସଂସ୍କୃତ ବ୍ୟାକରଣରେ ନିପାତନସିଦ୍ଧ ପଦର ଉଦାହରଣସ୍ୱରୂପ 'ପୃଷୋଦର' ଲେଖା ଯାଇଅଛି । ]
ସଂ. ବି—ବାୟୁ ( ହି ଶ )—Wind.

ପ୍ରୃଷୋଦ୍ୟାନ—ସଂ. ବି. ( ପୃଷତ=ସିଞ୍ଚିତ+ଉଦ୍ୟାନ; ନିପାତନସିଦ୍ଧ,
Pṛushodyāna ଯହିଁରେ ଜଳ ସେଚନ କରି ଗଛ ବଢ଼ାଯାଏ )—
ଛୋଟ ବଗିଚା—A small garden

ପ୍ରୃଷ୍ଟ—ସଂ. ବିଣ. ପୁଂ. ( ପ୍ରଚ୍ଛ ଧାତୁ=ପଚାରିବା+କର୍ମ. ତ )—
Pṛushṭa ଜିଜ୍ଞାସିତ—Asked; questioned.
(ପ୍ରୃଷ୍ଟା—ସ୍ତ୍ରୀ) ବି. (+ଭାବ. ତ)—ଜିଜ୍ଞାସା—
Questioning; interrogation.
ଗ୍ରା. ବିଣ. ( ସଂ. ସ୍ପଷ୍ଟ )—ସ୍ପଷ୍ଟ—
Clear; unambiguous.
ବି. ( ସଂ. ପୃଷ୍ଠର ଅଶୁଦ୍ଧ ଉଚ୍ଚାରଣ )—ପୃଷ୍ଠ ( ଦେଖ )
Pṛushṭha ( See ).

ପ୍ରୃଷ୍ଟା—ଗ୍ରା. ବି. ( ସଂ. ପୃଷ୍ଠାର ଅଶୁଦ୍ଧ ଉଚ୍ଚାରଣ )—ପୃଷ୍ଠା (ଦେଖ)
Pṛushṭā Pṛushṭhā (See)

ପ୍ରୃଷ୍ଟି—ସଂ. ବି. ( ସ୍ପୃଶ୍ ଧାତୁ+ଭାବ. ତି )—୧ । ରଶ୍ମି; କିରଣ—
Pṛushṭi 1. Ray of light.
୨ । ସ୍ପର୍ଶ—2. Touch
୩ । ( ପ୍ରଚ୍ଛ ଧାତୁ+ଭାବ. ତି ) ପଚାରିବା, ଜିଜ୍ଞାସା ( ହି. ଶ )—
3. Questioning.
୪ । ପଛ ଅଂଶ (ହି. ଶ)—4. Back part.
ଦେ. ବି (ସ ପୃଷ୍ଠି)—ପାଟବସ୍ତ୍ର ଓ ବଣିଆ ଆଦିଙ୍କ ବଂଶୋପାଧି—
Family-title of certain goldsmiths, cloth-dealers and some other Śūdras.

ପ୍ରୃଷ୍ଟି ପର୍ଣ୍ଣୀ—ଗ୍ରା. ବି—ପୃଶ୍ନିପର୍ଣ୍ଣୀ ( ଦେଖ )
Pṛushṭi parṇṇī Pṛusniparṇṇī ( See )
[ପୃଷ୍ଟିଂ ପର୍ଣ୍ଣୀ, ପୃଷ୍ଟି ପର୍ଣ୍ଣୀ, ପୃଷ୍ଟ ପର୍ଣ୍ଣୀ(ର୍ଣ୍ଣୀ), ପୃଷ୍ଟି(ଷ୍ଟିଁ)ପର୍ଣ୍ଣୀ—ଅନ୍ୟରୂପ]

ପ୍ରୃଷ୍ଠ—ସ. ବି. ( ପୃଷ୍ ଧାତୁ=କ୍ଳାନ୍ତ ହେବା+ଥ )—
Pṛushṭha ୧ । ପିଠି—1. The back.
(ପୃଷ୍ଠକ—ଅନ୍ୟରୂପ) ୨ । ପଛଆଡ଼ —2. Back side.
୩ । ବସ୍ତୁର ଉପର ପାଖ—
3. Upper side.
୪ । ବାହାର ପାଖ—
4. Outside; outer surface.
୫ । ପର୍ବତ ଆଦିର ମଥାନ—5 Ridge.
୬ । ପଛ; ଶେଷ ଭାଗ—6. The rear.
୭ । ଏକ ପାଖ; ତଳ—7 Surface.
୮ । ପତ୍ରର ପିଠି ପାଖ, ପତ୍ରର ଯେଉଁ ପାଖ ଭୂମି ଅଡ଼କୁ ଥାଏ—
8. The back of a leaf.
୯ । ଦେଉଳର ଅଂଶବିଶେଷ—
9. A part of a temple.
[ ଦ୍ର—ଦେଉଳ ତଳେ କୋଠ ଦେଖ । ]
୧୦ । ପୁସ୍ତକର ପତ୍ରର ଏକ ପାଖ—
10. Page of a book.
୧୧ । ପୁସ୍ତକର ପତ୍ର ( ହି. ଶବ୍ଦସାଗର )—
11. A leaf of a book.

ପୃଷ୍ଠ ଗୋପ—ସ. ବି. ( ପୃଷ୍ଠ=ପଛ ପାଖ+ଗୁପ୍ ଧାତୁ=ଜଗିବା+
Pṛushṭha gopa କର୍ତ୍ତୃ. ଅ )—ପୃଷ୍ଠ ରକ୍ଷୀ ( ଦେଖ )
(ପୃଷ୍ଠ ଗୋପ୍ତା—ଅନ୍ୟରୂପ) Pṛushṭha rakshī ( See )

ପୃଷ୍ଠ ଗ୍ରନ୍ଥି—ସ. ବି. (୬ଷ୍ଠୀ ତତ୍, ପୃଷ୍ଠ+ଗ୍ରନ୍ଥି)—ପିଠିର କୁଜ; ଚଲ—
Pṛushṭha granthi Hump on the back.

ପୃଷ୍ଠ ଚକ୍ଷୁଃ—ସ. ବି. ( ବହୁବ୍ରୀହି, ପୃଷ୍ଠ+ଚକ୍ଷୁସ୍, ପୃଷ୍ଠ ଦେଶରେ
Pṛushṭha chakshuḥ ଚକ୍ଷୁ ଯାହାର )—
୧ । କର୍କଟ; କଙ୍କଡ଼ା—1. A crab.
୨ । ଭଲ୍ଲୁକ; ଭାଲୁ—2. Bear.

ପୃଷ୍ଠ ଚର—ସ. ବି. ( ପୃଷ୍ଠ=ପଛ ଅଡ଼େ+ଚର ଧାତୁ=ଯିବା+
Pṛushṭha chara କର୍ତ୍ତୃ. ଅ. )—୧ । ପଶ୍ଚାଦ୍ ଭାଗରେ ସ୍ଥିତ—
1 Situated on the back; being in the rear.
୨ । ପଶ୍ଚାତ୍ ଅନୁସରଣକାରୀ, ଅନୁଗାମୀ—
2 Following, going after.

ପୃଷ୍ଠଜ—ସ. ବିଣ ( ପୃଷ୍ଠ+ଜନ୍ ଧାତୁ+କର୍ତ୍ତୃ. ଅ )—
Pṛushṭhaja ୧ । ପିଠିରେ ଜନ୍ମିବା—1. Appearing on the back.
୨ । ପରେ ଜନ୍ମିବା—2. Born after.

ପୃଷ୍ଠତଃ—ସ. ଅ. ( ପୃଷ୍ଠ+୫ମୀ ଓ ୭ମୀ ବିଭକ୍ତିରେ ତସ୍ )—
Prushthatah ୧ । ପଛ ଅଡ଼େ; ପଶ୍ଚାଦ୍ ଭାଗରେ—
(ଅଗ୍ରତଃ—ବିପରୀତ) 1 Behind the back; behind; on the back of.
୨ । ପଛ ଅଡ଼ରୁ—2. From behind.
୩ । ପିଠି ଅଡ଼ରେ—3. On the back side.

ପୃଷ୍ଠ ଦଣ୍ଡ—ସ. ବି. ( ମ. ପ. ଲୋ; ପୃଷ୍ଠରେ ଅବସ୍ଥିତ ଦଣ୍ଡ )—
Pṛushṭha daṇḍa ୧ । ମେରୁ ହାଡ଼—1. The spine; backbone.
୨ । ବେକଁଶିରା—2. Spinal cord.

ପୃଷ୍ଠ ଦୃଷ୍ଟି—ସ. ବି ( ବହୁବ୍ରୀହି, ପୃଷ୍ଠ+ଦୃଷ୍ଟି )—ଭଲ୍ଲୁକ, ଭାଲୁ—
Pṛushṭha drushṭi The bear.

ବିଣ—ଯେ ପଛ ଆଡ଼କୁ ଚାହିଁ ପାରେ—
Capable of looking behind.

**ପୃଷ୍ଠ ଦେଶ**—ସଂ. ବି—୧ । ପିଠି—
Prushtha desa 1. The back.
୨ । ଉପର ଅଂଶ—2 The upper part.
୩ । ତଳ—3. The surface.

**ପୃଷ୍ଠପର୍ଣ୍ଣୀ**—ସଂ. ବି—ପୃଶ୍ନିପର୍ଣ୍ଣୀ ( ଦେଖ )
Prushthaparnni Prusniparnni ( See )

**ପୃଷ୍ଠ ପୋଷକ**—ସଂ. ବିଣ. ପୁଂ—ସହାୟକ—
Prushtha poshaka Patronizing; supporting.
(ପୃଷ୍ଠ ପୋଷିକା—ସ୍ତ୍ରୀ) ବି—ସହାୟକ ବ୍ୟକ୍ତି—
Patron; supporter.

**ପୃଷ୍ଠ ପୋଷଣ**—ସଂ. ବି—୧ । ପଛଆଡ଼େ ଥାଇ ସହାୟ କରିବା—
Prushtha poshana 1. Supporting from behind.
୨ । ଆନୁକୂଲ୍ୟ, ସାହାଯ୍ୟ—2. Patronage; support.

**ପୃଷ୍ଠ ପୋଷିତ**—ସଂ. ବିଣ—ଅନ୍ୟ ଦ୍ୱାରା ପଛଆଡୁ ସାହାଯ୍ୟ ପ୍ରାପ୍ତ, ଇତ୍ୟାଦି-
Prushtha poshita ଦ୍ୱାରା ସାହାଯ୍ୟ ପ୍ରାପ୍ତ—Supported
(ପୃଷ୍ଠ ପୋଷିତା—ସ୍ତ୍ରୀ) from behind; patronized.

**ପୃଷ୍ଠ ପ୍ରଦର୍ଶନ**—ସଂ. ବି. (ପଳାଇବା ବ୍ୟକ୍ତିର ପିଠି ଦେଖା ଯିବାରୁ)—
Prushtha pradarsana ୧ । ପଳାଇବା—1. Fleeing away; backsliding.
ପୃଷ୍ଠ ଦାନ, ପୃଷ୍ଠ ଭଙ୍ଗ } ଅନ୍ୟରୂପ
୨ । ରଣରେ ଭଙ୍ଗ ଦେବା, ଯୁଦ୍ଧ ଭୂମିରୁ ପଳାୟନ, ରଣଭଙ୍ଗ—2 Fleeing away from the battle field; precipitate flight.

**ପୃଷ୍ଠ ଫଳ**—ଦେ. ବି. ( ୬ଷ୍ଠୀ ତତ୍, ପୃଷ୍ଠ+ଫଳ )—
Prushtha phala କ୍ଷେତ୍ରର ବର୍ଗ ଫଳ—The square measure or area of the surface.

**ପୃଷ୍ଠ ବଂଶ**—ସଂ. ବି. ( ମ. ପ ଲୋ; ପୃଷ୍ଠ+ବଂଶ )—
Prushtha bamsa ମେରୁଦଣ୍ଡ, ପିଠି ହାଡ଼, ବେଁଶିରି ହାଡ଼—
Spine: backbone

**ପୃଷ୍ଠ ବାସ୍ତୁ**—ସଂ ବି—ଏକ ଘର ଉପରେ ତିଆରି ହେବା ଘର (ହି.ଶ)—
Prushtha bāstu A house built on the roof of another house.

**ପୃଷ୍ଠ ବାହ**—ସଂ. ବି. ( ପୃଷ୍ଠ+ବହ୍ ଧାତୁ+ଅ; ଯେ ପିଠିରେ ବୋଝ ବହେ )—୧ । ଗାଡ଼ି ବଳଦ; ଥୋଡ଼ି ବଳଦ—
Prushtha bāha
ପୃଷ୍ଠ ବାହ୍(ଡ଼୍), ପୃଷ୍ଠ ବାହ୍ୟ } ଅନ୍ୟରୂପ 1. A pack bullock; an ox of burden
୨ । ଯେଉଁ ପଶୁର ପିଠିରେ ବୋଝ ଲଦାଯାଏ—
2. An animal carrying loads on the back.

**ପୃଷ୍ଠ ବ୍ରଣ**—ସଂ. ବି—ପଠା; ପିଠିରେ ହେବା ସାଂଘାତିକ ବଥ—
Prushtha brana Carbuncle.

**ପୃଷ୍ଠଭାଗ**—ସଂ. ବି.—୧ । ପିଠି (ହି. ଶ)—
Prushtha bhāga 1. Back.
୨ । ପଛ ଆଡ଼—2. Back side; rear.

**ପୃଷ୍ଠ ମର୍ମ**—ସଂ. ବି—ସୁଶ୍ରୁତ ଅନୁସାରେ ମନୁଷ୍ୟର ପିଠିରେ ମେରୁଦଣ୍ଡର
Prushtha marma ଦୁଇ ପାଖରେ ଥିବା ୧୪ ଟି ମର୍ମସ୍ଥାନ—
Fourteen vulnerable points on the back on both sides of the human spine.
[ଦ୍ର—ଏଥି ମଧ୍ୟରୁ କୌଣସି ମର୍ମ ସ୍ଥାନରେ ଆଘାତ ଲାଗିଲେ ମନୁଷ୍ୟ ମରି ଯାଇ ପାରେ କିମ୍ବା ଆଜୀବନ ଅକର୍ମଣ୍ୟ ହୋଇ ପାରି ପାରେ । (ହି. ଶ.) ]

**ପୃଷ୍ଠ ମାଂସାଦ**—ସଂ. ବି.—(ପୃଷ୍ଠ+ମାଂସ+ଅଦ୍ ଧାତୁ+କର୍ତ୍ତୃ. ଅ)—
Prushtha māmsada ପଶ୍ଚାତ୍ କୁତ୍ସାକାରୀ, ଚୁଗୁଲିଆ (ହି. ଶ.)-
A backbiter.

**ପୃଷ୍ଠ ମାଂସାଦନ**—ସଂ. ବି. (ପୃଷ୍ଠ+ମାଂସ+ଅଦ୍ ଧାତୁ+ଭାବ. ଅନ )—
Prushtha māmsādana ଚୁଗୁଲି (ହି. ଶ)—Backbiting.

**ପୃଷ୍ଠ ରକ୍ଷକ**—ସଂ. ବିଣ.—ପଛଆଡ଼େ ଥାଇ ସାହାଯ୍ୟ କରିବା (ବ୍ୟକ୍ତି)—
Prushtha rakshaka Helping from the rear.
ବି.—ପୃଷ୍ଠ ଭାଗରେ ରହି ରକ୍ଷା କରିବା ସୈନିକ—Rear guard.

**ପୃଷ୍ଠ ରକ୍ଷା**—ସଂ. ବି.—ପଛଆଡ଼େ ରହି ସୈନ୍ୟଙ୍କୁ ରକ୍ଷା କରିବା—
Prushtha rakshā Helping an army from the rear
ବିଣ.—ପୃଷ୍ଠରକ୍ଷକ (ଦେଖ)
Prushtha rakshaka (See)

**ପୃଷ୍ଠ ରକ୍ଷୀ**—ସଂ. ବି. (ପୃଷ୍ଠ+ରକ୍ଷ ଧାତୁ+ଇନ୍)- ଯେଉଁ ଯୋଦ୍ଧାମାନେ
Prushtha rakshi ସୈନ୍ୟର ପିଠିଆଡ଼ ଜଗିଥାଆନ୍ତି—
The rear guard of an army.

**ପୃଷ୍ଠରେ**—ଦେ. ଅ.—ପଛଆଡ଼ରେ—
Prushthar On the back side.
ହନୁ ପଳାଇ ତାହାଙ୍କ ପୃଷ୍ଠରେ ଶରଣ ପଶିଲେ ।
ବିଶ୍ୱନାଥ ବଡ଼ଜେନା-ବିଚିତ୍ର ରାମାୟଣ ।

**ପୃଷ୍ଠଶୟ୍ୟ**—ସଂ. ବିଣ. ପୁଂ—(ପୃଷ୍ଠ=ପିଠି+ଶୀ ଧାତୁ=ଶୋଇବା+କର୍ତ୍ତୃ.
Prushthasaya ଅ)—ଉତ୍ତାନଶାୟୀ; ଯେ ଚିତ୍ ହୋଇ ଶୁଏ--
(ପୃଷ୍ଠଶୟ୍ୟା—ସ୍ତ୍ରୀ) Sleeping on the back.

**ପୃଷ୍ଠ ଶୃଙ୍ଗ**—ସଂ. ବି. (ବହୁବ୍ରୀହି; ପୃଷ୍ଠ+ଶୃଙ୍ଗ; ଯାହାର ଶିଙ୍ଗ ପିଠିଆଡ଼କୁ
Prushtha srunga ବଙ୍କେଇଁ ଥାଏ)—ବନ୍ୟ ଛାଗଳ; ବଣୁଆ ଛେଳି— Wild goat; the ibex

**ପୃଷ୍ଠ ଶୃଙ୍ଗୀ**—ସଂ. ବି. (ବହୁବ୍ରୀହି, ପୃଷ୍ଠ+ଶୃଙ୍ଗ+ଇନ୍; ୧ମା. ଏକ.)—
Prushtha srungi ୧ । ଭୀମସେନ (ହି.ଶ.)—1 Bhimasena.
୨ । ମେଣ୍ଢା—2 A ram.
୩ । କ୍ଲୀବ; ନପୁଂସକ—3. An eunoch.
୪ । ମଇଁଷି—4 Buffalo.

**ପୃଷ୍ଠା**—ସଂ. ବି. (ପୃଷ୍ଠ+ଆ)—୧ । ପୁସ୍ତକାଦିର ପତ୍ର—
Prushthā 1 Page or leaf of a book.
୨ । ପୀଢ଼ା—2. A wooden seat.

**ପୃଷ୍ଠା ଫିସ୍**—ଦେ. ବି. (କଚେରୀଆ) (ସଂ. ପୃଷ୍ଠା ଓ ଇଂ. ଫିସ୍)—ରେଜିଷ୍ଟ୍ରାରୀ
Prushthā phis କରାଯିବା ଦଲିଲକୁ ସରକାରୀ ରେଜିଷ୍ଟ୍ରାରୀ ବହିରେ ନକଲ କରିବା ନିମନ୍ତେ ରେଜିଷ୍ଟ୍ରାରୀ ଅଫିସର

କର୍ମଚାରୀ ପକ୍ଷମାନଙ୍କଠାରୁ ଦଲିଲର ପୃଷ୍ଠାର ସଂଖ୍ୟାନୁସାରେ ଯେଉଁ ଫିସ୍ ବା ରେସମ ନିଅନ୍ତି—Page fee charged by the Registration officer according to the number of pages of a registered deed
( ପୃଷ୍ଠାଫୀ; ପୃଷ୍ଠାଫିସ୍—ଅନ୍ୟରୂପ )

**ପୃଷ୍ଠାସ୍ଥି**—ସଂ. ବି. (୬ଷ୍ଠୀ ତତ୍, ପୃଷ୍ଠ + ଅସ୍ଥି)—ମେରୁ ହାଡ଼—
Prushṭāsthi Spine

**ପୃଷ୍ଠି**—ଦେ. ବି.—ପୃଷ୍ଟି (ଦେଖ)
Prushṭhi Prushṭi (See)
(ପୁରୁଷ୍ଠି, ପୁରୁଷ୍ଟି, ପୃଷ୍ଟି, ପୁଷ୍ଠି—ଅନ୍ୟରୂପ)

**ପୃଷ୍ଠୋଦୟ**—ସଂ ବି (ଏ ରାଶିମାନଙ୍କ କଳ୍ପିତ ଆକାରମାନ ପ୍ରଥମେ ପୃଷ୍ଠ
Prushṭhodaya ଭାଗରୁ ଉଦିତ ହେବାରୁ)—(ଜ୍ୟୋତିଷ) ମେଷ, ବୃଷ, କଙ୍କଡ଼ା, ଧନୁ, ମକର ଓ ମୀନ ରାଶୀ ମାନ—
(Astrology) The zodiacal signs of Aries, Taurus, Cancar, Sagitarius, Capricorn and Piscus.

**ପୃଷ୍ଠୋପରି**—ସଂ. କ୍ରି. ବିଣ—ପିଠି ଉପରେ—
Prushṭhopari On the back

**ପୃଷ୍ଠ୍ୟ**—ସଂ. ବିଣ—(ପୃଷ୍ଠ+ସମ୍ବନ୍ଧାର୍ଥେ ଯ)—ପୃଷ୍ଠ ସମ୍ବନ୍ଧୀୟ—
Prushṭhya Relating to the back.
ବି—୧ । ପିଠିରେ ଲଦନ ବୋହୁବା ଘୋଡ଼ା—
1. A pack-horse.
୨ । ପିଠିରେ ଲଦନ ବୋହୁବା ପଶୁ—
2. A pack-animal.

**ପୃଷ୍ଣି**—ସଂ ବି.—୧ । ପୃଶ୍ନି (ଦେଖ)
Prushṇi 1. Pruśni (See)
୨ । (ପୃଷ ଧାତୁ+ନି) ଗୋଇଠି; ପାର୍ଷ୍ଣି—2. The heel.
୩ । କିରଣ; ରଶ୍ମି—3. Ray of light.

**ପୃଷ୍ଣିପର୍ଣ୍ଣୀ**—ସଂ. ବି.—ପୃଶ୍ନିପର୍ଣ୍ଣୀ (ଦେଖ)
Prushṇi parṇṇi Pruśni parṇṇi (See)

**ପୄ** (ଧାତୁ)—ସଂ—୧ । ପାଳନ କରିବା—
Pṛru (root) 1. To nourish.
୨ । ରକ୍ଷା କରିବା—2. To protect.
୩ । ପୂର୍ଣ୍ଣ କରିବା—3. To fill up.

**ପେ**—ବୈଦେ. ବି. (ଇଂ)—ଦରମା, ଉଦ୍ୟୟର ମାସିକ ପାରଶ୍ରମିକ—
Pe पे पे Pay; salary.

**ପେ ଅର୍ଡର୍**—ବୈଦେ. ବି (ଇଂ)—କୌଣସି ଲୋକଙ୍କୁ ଟଙ୍କା ଦେବା-
Pe arḍar ପାଇଁ ସରକାରୀ ବା ବ୍ୟାବହାରିକ ଆଦେଶ—
पे आर्डर; पे आर्डर Pay order; an official or business order for payment of money to a specified person.

**ପେଇ**—ବୈଦେ. ବି. (ଇଂ)—ଯାହାକୁ ଟଙ୍କା ଦିଆଯାଏ—
Pei Payee.
ଦେ. ବି. (ସଂ. ପା ଧାତୁ)—ପେହୁ (ଦେଖ)—Pehi (See)

**ପେଇଁ**—ଗ୍ରା. ଅ—ପାଇଁ, ନିମନ୍ତେ—
Peiñ जन्ये वास्ते For; on account of.

**ପେଇବା**—ଦେ କ୍ରି. (ପିଇବାର ଗ୍ରାମ୍ୟରୂପ)—ପିଆଇବା (ଦେଖ)
Peibā (ପିଆଇବା—ଅନ୍ୟରୂପ) Piāibā (See)

**ପେଉଡ଼ି**—ପ୍ରାଦେ. (ମେଦିନୀପୁର) ବି—ପେଡୁଡ଼ି (ଦେଖ)
Peuṛdi Peduṛdi (See)

**ପେଏଁକାଳ**—ଦେ. ବି. (ଧ୍ୱନ୍ୟନୁକରଣ)—ହାତୀର ରଡ଼ି ବା ଶବ୍ଦ—
Pe-eñkāḷa The braying of an elephant.
ପେହେଁକାଳ } ଅନ୍ୟରୂପ
ପେଙ୍କାଳ }
ପଥର ଗଡ଼ିଗିବା ପରି ଭଲେ ଶବ୍ଦ
ଶୁଭିଲେ ଅହର୍ନିଶି ପେହେଁକାଳ ରଡ଼ । 
କୃଷ୍ଣସିଂହ, ମହାଭାରତ- ବନ୍ଦିତ ।

**ପେଏଁକାଳି**—ଦେ. ବି (ଧ୍ୱନ୍ୟନୁକରଣ, ଏହାକୁ ଫୁଙ୍କିଲେ ପେଁପେଁ ଶବ୍ଦ
Pe-eñkāḷi ଉତ୍ପନ୍ନ ହେବାରୁ)—୧ । ମହୁରୀ, ଭୁଙ୍ଗ, କାହାଳୀ—
ପେଁକାଳ }
ପେହେଁକାଳ } ଅନ୍ୟରୂପ
ପେଙ୍କାଳ }
1. A pipe; a small clarion; cone-shaped musical pipe
୨ । ପିଲାମାନେ ବଜାଇ ଖେଳିବା ବାଦ୍ୟ-
बाँसुरी; तुरही ଯନ୍ତ୍ରବିଶେଷ—2. A kind of trumpet or pipe used by children.
[ ଦ୍ର—ସାଧାରଣତଃ ନଡ଼ିଆ ବା ତାଳପତ୍ରର ଗୋଟିଏ ଫାଳକୁ କୁଣ୍ଡଳୀ କରି ଗୁଡ଼ାଇ ଏହା ତିଆରି କରାଯାଏ । ]
୩ । ଆମ୍ବର ଗଜୁରିଥିବା ଟାକୁଆ ମଧ୍ୟରେ ଥିବା ଦୁଇଫାଳିଆ କୋଇଲିର ଗୋଟିଏ ଫାଳକୁ ଘେରଣ୍ଟ କରି ଘଷି ଶିଶୁମାନେ କରିବା ମହୁରୀ (ହି. ଶ)—3. A whistle made by children by whetting one side of the kernel of a sprouting mango-stone.
ହାତୀ କେ । ଘୋଡା କେ । ମୋ ପେଏଁକାଳ ବଜେଇ ଦେ ।
ସାପଥିଲେ ବାହାର ଯା । ବେଙ୍ଗଥିଲେ କଟର କଟର ହୁଅଥା ।
ଶିଶୁଗୀତ ।
୪ । ହାତୀଙ୍କର ଉଚ୍ଚ ରଡ଼ି (ଏହା ପେଁପେଁ ଶବ୍ଦ ଥିବାରୁ)—
4. The braying sound made by an elephant

**ପେଏଁକାଳିଆ**—ଦେ. ବି—୧ । ଧାନଗଛର ରୋଗବିଶେଷ—
Pe-eñkāḷiā 1. A kind of disease affecting paddy plants.
ପେଙ୍କାଳିଆ } ଅନ୍ୟରୂପ
ପେହେଁକାଳିଆ }
[ ଦ୍ର—ଶାରଦଧାନ ଗଛରୁ କେଣ୍ଡା ବାହାରିବା ଦିନରୁ ଭାଦ୍ରବମାସରେ ଖର୍ ଖରା ହୋଇ ଘଡ଼ଘଡ଼ି ମାରିଲେ ଧାନଗଛର ଗର୍ଭରୁ କାହାଳି ପରି ଗୋଟାଏ ଲମ୍ବ ଶଣ୍ଢା ବା କଡ଼ା ବାହାରେ ଓ ତହିଁରେ ଧାନ ଫଳେ ନାହିଁ । ]
୨ । ପେହେଁକାଳ ବଜାଇବା ବ୍ୟକ୍ତି—
2. A person who blows a pipe.
୩ । ପେଏଁକାଳ (ଦେଖ)—3. Pe-eñkāḷa (See)

**ପେଏଁ କାଳିଆ ମାରିବା**—ଦେ. ବି—ପେଏଁ କାଳିଆ ୧ (ଦେଖ)
Pe-eñ kāḷiā māribā Pe-eñ kāḷiā 1 (See)

**ପେଏଁକାଳିବା**—ଦେ. କ୍ରି—(ହାତୀ) ବୋବେଇବା ବା ଗର୍ଜନ କରିବା-
Pe-eñkāḷibā To bray (said of an elephant).
(ପେହେଁକାଳବା, ପେଙ୍କାଳବା—ଅନ୍ୟରୂପ)

ପେଁ—ଦେ. (ଧ୍ୱନ୍ୟନୁକରଣ) ଅ—ଭୁଙ୍ଗା ଭେର ଆଦର ଧ୍ୱନି—
Peñ पीँ पें The sound of a musical pipe.
(ପେଁ ପାଁ, ପେଁ ପେଁ, ପେଁଏଁ ପେଁଏଁ—ଅନ୍ୟରୂପ)

ପେଁପେଁୟା(ୟାଁ) ବେତ—ଦେ. ବ—ଖୁବ୍ ସରୁ ବେତ—
Peñpeñyā(yāñ) beta A very slender ratan.
(ପେଏଁପେୟାଁ ବେତ—ଅନ୍ୟରୂପ)

ପେକମ—ପ୍ରାଦେ. (ଗଞ୍ଜାମ) ବ. (ସଂ ପକ୍ଷମ୍)—ମୟୂର ପୁଚ୍ଛ—
Pekama (ପେଖମ—ଅନ୍ୟରୂପ) Peacock tail.

ପେକିଂ (ଇତ୍ୟାଦି)—ବୈଦେ. ବ (ଇଂ. ପାକିଙ୍ଗ୍)—
Pekiṁ (etc) ପାକିଙ୍ଗ୍ ଇତ୍ୟାଦି (ଦେଖ)
(ପେକିଙ୍ଗ୍—ଅନ୍ୟରୂପ) Paking etc (See)

ପେକିନ୍—ଦେ. ବ—(ନାମ) ଚୀନଦେଶର ଉତ୍ତର ପଶ୍ଚିମରେ ଥିବା
Pekin ନଗର—The town of Peking in China.
(ପିକିନ୍, ପେକିଙ୍ଗ୍, ପିକିଙ୍ଗ୍—ଅନ୍ୟରୂପ)

ପେକ୍ଷିବା—ଦେ. (ପଦ୍ୟ) କ୍ରି. (ସଂ ଉପେକ୍ଷା)—ତ୍ୟାଗ କରିବା—
Pekshibā To abandon; to give up,
ମୋର ଜୀବନ ବନ୍ଧୁ ଭୁଖଣ୍ଡୀ
ସ୍ନାନ ଭୋଜନ ଦୂରେ ପେକ୍ଷି । ଜଗନ୍ନାଥ. ଭାଗବତ ।

ପେଖନା - ଦେ. ବ. (ସଂ ପ୍ରେକ୍ଷଣ)—୧ । ଛଳନା; ବାହାନା; ଭାନ—
Pekhanā 1, Pretence; deceit; feigning; excuse.
भान "ମୁଁ" ଭାବେ କରିବ ଅମର ଚରିତ୍ରଣ
बहाना ଦେଖାଉଛ ଭବେ ଅଶେଷ ପେଖନା । ରଘୁନାଥ. ଦରବାର ।
ପେଖନ, ପେଖାନା, ପେଖଣ୍ଡି, ପେଖିନ } ଅନ୍ୟରୂପ
୨ । କପଟ ବ୍ୟବହାର—2, Hypocricy.
୩ । ଛଇ, ଥଟ୍ଟା—3. Joking; jest.
୪ । ଦୁଷ୍ଟାମୀ—4. Wickedness.

ପେଖନା କାଢ଼ିବା—ଦେ. କ୍ରି—୧ । ଛଟା ଗାଳିବା—
Pekhanā kāṛhibā 1, To pretend; to feign.
ପେଖନା ଖେଳିବା, ପେଖନା ଦେଖା(ଖେ)ଇବା, ପେଖନା ବାହାର କରିବା, ପେଖନା କରିବା } ଅନ୍ୟରୂପ
୨ । ଛଇ ବାହାର କରିବା—2, To exhibit queer ways,
୩ । ଥଟ୍ଟା ଖେଳିବା—3, To play jokes.
भानकरा बहानाकरा

ପେଗ୍—ବୈଦେ. ବ. (ଇଂ)—୧ । କାଠର ପିନ୍; ଖିଲ—
Peg 1. A wooden pin.
পেগ ୨ । ମଦ ପିଇବା ପିଆଲା—
पेग 2 A peg of wine.

ପେଗମ୍ବର—ବୈଦେ. ବ. (ଫା. ପୟଗମ୍ବର)—ପୟଗମ୍ବର (ଦେଖ)
Pegambar Payagambara (See)

ପେଗୁ—ଦେ. ବ (ନାମ)—୧ । ବ୍ରହ୍ମଦେଶର ବିଭାଗ ଓ ସହର—
Pegu 1. The division and town Pegu in Lower Burma.
পেগু
पयगु [ଦ୍ର—ଏହି ନଗର ରେଙ୍ଗୁନର ଉତ୍ତର ପୂର୍ବରେ ଓ
(ପଗୁ—ଅନ୍ୟରୂପ) ସିତାଙ୍ଗ ନଦୀ କୂଳରେ ଅବସ୍ଥିତ ।]
୨ । ବ୍ରହ୍ମଦେଶୀୟ ଉତ୍କୃଷ୍ଟ ଘୋଡ଼ା ବା ଟାଙ୍ଗୁ—
2. A Pegu pony; Burmese pony.

ପେଙ୍ଗ—ଦେ. ବ—କଉଁଣୀ, ବନ୍ୟ ବୃକ୍ଷବିଶେଷ—
Penga Celastrus Paniculata (tree).
কবষণী मालकङ्गनी

ପେଙ୍ଗା—ଦେ. ବଣ—(ସଂ ପଙ୍ଗୁ)—୧ । ଛୋଟା, ଲେଙ୍ଗଡ଼ା—
Pengā 1 Cripple; lame.
ପେଙ୍ଗେଇ, ପେଙ୍ଗୀ } ସ୍ତ୍ରୀ
୨ । ଛୋଟେଇ କରି ଚାଲୁଥିବା—
2 Limping; halt.
ବ—୧ । ଛୋଟେଇ କରି ଚାଲିବା—1. Limping
୨ । ଦୋଳି ଖେଳିବା ବେଳେ ନିଜର ବାହୁ ଓ ଗୋଡ଼ର ବଳ ଦ୍ୱାରା ଦୋଳିକୁ ଏକ ପାଖରୁ ଅନ୍ୟପାଖକୁ ଚଳାଇବା କର୍ମ—
2. The act of giving a push to a swing with one's own arms and legs.
पेङ्ग পেঙ্গা

ପେଙ୍ଗା(ଙ୍ଗେ)ଇବା—ଦେ. କ୍ରି—(ସଂ ପଙ୍ଗୁଳ=ଛୋଟା; Beams)—
Peṅgā(ṅge)ibā ଛୋଟେଇବା; ଛୋଟେଇ କରି ଚାଲିବା—
লেঙ্গড়ান To walk in a halting or limping manner; to limp).
लङ्गड़ाना

ପେଙ୍ଗାଣ—ଦେ. କ୍ରି.—ଛଳନା; ଠକାମି—
Peṅgāṇa Feigning.

ପେଙ୍ଗା ପେଙ୍ଗି—ଦେ. ବ—ପେଙ୍ଗେଇ କରି ଚାଲିବା ଗତି—
Peṅgā peṅgi Limping gait.

ପେଙ୍ଗା ମାରିବା—ଦେ. ବ—ଗୋଡ଼ ଓ ବାହୁଦ୍ୱାରା ବଳ ପ୍ରୟୋଗ କରି ନିଜେ ଦୋଳି ପହଞ୍ଚାଇ ଦେବା—
Peṅgā māribā
फेंगमारना To apply force to a swing with one's
পেংগামারবা own legs or arms so as to cause the swing to move to and fro.

ପେଙ୍ଗୁ—ଦେ. ବ—ବନ୍ୟଗୁଳ୍ମବିଶେଷ—
Peṅgu A kind of wild plant.
[ଦ୍ର—ଏହାର ଫୁଲ ସରୁ ଓ ଧଳା ଏବଂ କୋଳ ପେଙ୍ଗା ପେଙ୍ଗା; ଏହି ଫଳକୁ ଦୁଇ ମୁହଁ ମେଲା ବାଉଁଶ ନଳରେ ପୁରାଇ ଖଣ୍ଡିଏ କାଠିରେ ପଛଆଡ଼ୁ ଠେଲି ଦେଲେ ଶବ୍ଦ କରି ଫୁଟେ । ପିଲାମାନେ ଏଥିରେ ଖେଳନ୍ତି ।]

ପେଙ୍ଗୁ ନଳି—ଦେ. ବ—ଶିଶୁମାନେ କ୍ରୀଡ଼ାର୍ଥ ପେଙ୍ଗୁ କୋଳ ପୂରାଇ
Peṅgu naḷi ଫୁଟାଇବା ପାଇଁ ବ୍ୟବହୃତ ଦୁଇମୁହଁ ମେଲା ବାଉଁଶ ନଳ—A bamboo tube open at both ends with which children play by putting a Peṅgu berry in it and ramming the berry with a slender rod.

ପେଚ(ଞ୍ଚ) ପାଚ(ଞ୍ଚ)—ଦେ. ବ—(ଫା. ପେଚ୍+ଧ୍ୱନ୍ୟନୁକାରୀ ଅନର୍ଥକ
Pech(ñch) pāch(ñch) ସହଚର)—୧ । କଳ କଉଶଳ—
পেঁচ প্যাঁচ पेंचपाँच 1. Intricacies.
୨ । ମଲ୍ଲଦ୍ୱାରା ପ୍ରଯୁକ୍ତ କୌଶଳ—2. A tactful movement of the limbs of an athlete.
୩ । କୂଟ ନୀତି ପ୍ରୟୋଗ—3. The application of a crooked policy or tactics.
୪ । କୌଶଳ—4. Trick.

୫ । କୂଟ ନୀତି—5. Policy; tactics.

୬ । ଗୋଲକ ଧନ୍ଦା; ବିଷମ ସମସ୍ୟା—
6. Maze; dilemma.

୭ । ଗୃହଚ୍ଛିଦ୍ର, ବଂଶର ଗୁପ୍ତ ଦୋଷ—
7. The secrets of a family; family-scandal.

**ପେଚ(ଞ୍ଚ)**—ବୈଦେ॰ ବି—(ଫା. ପେଚ୍=କୁଣ୍ଡଳୀକୃତ ମୋଡ଼, ଭୁଲ.ସଂ. ପୁର୍ ଧାତୁ)—୧ । ଯେଉଁ ଲୁହା କଣ୍ଟାର ଅଗପାଖ ମୋଡ଼ ମୋଡ଼ ହୋଇଥାଏ ଓ ଯାହାକୁ କାଠ ମଧ୍ୟରେ ଘୂରାଇ କରି ପୂରାଯାଏ; ଇସ୍କ୍ରୁ; ପେଚକଣ୍ଟା, ଭଉଁରି;ସ୍କ୍ରୁ—
Pecha (ñcha) ପ୍ୟାଁଚ, ପେଁଚ **पेच, पेंच**
1. Screw.

୨ । ଚକ୍ରାକାରରେ ମୋଡ଼ ମୋଡ଼ ହୋଇଥିବା ଦଉଡ଼ି, କୁଣ୍ଡଳୀକୃତ ରଜ୍ଜୁ—2 Spiral rope, coil.

୩ । ଦଉଡ଼ିକୁ ଗୁଡ଼ାଇବାର ଥର ବା ମୋଡ଼—
3. A coil of a rope; a twist of a rope.

୪ । କୂଟ କୌଶଳ; ଗୂଢ଼ ଉପାୟ, ଜଟିଳ କୌଶଳ—
4. A deep-laid scheme; a plot, secret or covert plan.

୫ । ଗୋଲକ ଧନ୍ଦା, ସଙ୍କଟାପନ୍ନ ଅବସ୍ଥା; ଗୋଳମାଳଥିବା କଥା; ଧନ୍ଦକା, ବିଷମ ସମସ୍ୟା—5. Intricacy; a critical predicament; maze; dilemma; a fix; perplexity.

୬ । ବିପଦ୍; ଦାଉ; ଦୁଃଖ; କ୍ଲେଶ, ସଙ୍କଟ, ଘୋର ବିପଦ—
6. Trouble; botheration; inextricable danger.

୭ । କପଟାଚରଣ—7. Hypocricy.

୮ । ଛଳବାଜି; ଫନ୍ଦିବାଜି—
8. Policy; trick; tactics.

୯ । ପ୍ରତିଦ୍ୱନ୍ଦ୍ୱୀକୁ ତଳେ ପକାଇ ଦେବା କମନ୍ତେ ମଲ୍ଲର ହସ୍ତପଦାଦିର କୌଶଳଯୁକ୍ତ ଚାଳନ—2. A clever trick or turn performed by an athlete to bring down his opponent.

୧୦ । ପେଚ ପରି ମୋଡ଼ିମୋଡ଼ିକଆ ଗତି—
10. Spiral motion.

୧୧ । ଆବର୍ତ୍ତ; ଭଉଁରି—
11. Eddy; whirlpool.

୧୨ । ପେଚ ଘୂରିବାର ଆବର୍ତ୍ତ ବା ଥର—
12 One round of a screw.

୧୩ । ମୋଡ଼ିମୋଡ଼ି ହୋଇଥିବା ଘଣ୍ଟାର କୁଣ୍ଡଳୀକୃତ ପାତିଆ—
13. The spring of a clock.

୧୪ । ଶିର୍‌ପେଚ୍; ଟୋପି ବା ପଗଡ଼ିର ସାମନା ପାଖରେ ଖୋସାଯିବା ଏକପ୍ରକାର ଅଳଙ୍କାର—14. A kind of tuft set with gems put on the front side of a cap or turban.

**ପେଚକ**—ସଂ. ବି. (ପିଚ୍ ଧାତୁ=ବ୍ୟକ୍ତ କରିବା, ଶୁଣିବା+ଅକ)—
Pechaka ୧ । (ପୁ) ପେଚ୍ଚା (ଦେଖ)
(ପେଚକା—ସ୍ତ୍ରୀ) 1. Pechā (See)

୨ । ହସ୍ତୀର ପୁଚ୍ଛର ମୂଳ ବା ଅଗ୍ର—2. The root or tip of an elephant's tail

୩ । ଗୁହ୍ୟଦେଶାଚ୍ଛାଦକ ମାଂସ ପିଣ୍ଡ; ପଦ୍ମ—
3 A lump of flesh covering the mouth of the anus.

୪ । ପର୍ଯ୍ୟଙ୍କ, ପଲଙ୍କ—4. Bedstead; sofa.

୫ । ମେଘ—5. Cloud.

୬ । ଉକୁଣି—6. Louse.

**ପେଚ(ଞ୍ଚ) କଣ୍ଟା**—ଦେ.ବି—ଅଗ ପାଖ ମୋଡ଼ ମୋଡ଼ ହୋଇଥିବା ଲୁହା କଣ୍ଟା, ଇସ୍କ୍ରୁ; ଇସ୍କ୍ରୁପ୍,ସ୍କ୍ରୁ—A screw.
Pecha(ñcha) kanṭā ପେଁଚ କାଁଟା **पेच**

**ପେଚକ ଧ୍ୱନି**—ସ. ବି॰ ( ୬ଷ୍ଠୀ ତତ୍; ପେଚକ+ଧ୍ୱନି )—
Pechaka dhwani ପେଚ୍ଚାର କୁଁ କୁଁ ରବ, ପେଚ୍ଚାର ରବ—
(ପେଚକ ରାବ—ଅନ୍ୟରୂପ) The screech of an owl.

**ପେଚ(ଞ୍ଚ) କଶ୍**—ଦେ ବି. (ଫା)—୧ । ଯେଉଁ ହତିଆରକୁ ପେଚକଣ୍ଟାର ମୁଣ୍ଡରେ ଥିବା ଘରୁ ଘର ଗାର ମଧ୍ୟରେ ପୂରାଇ ପେଚ କଣ୍ଟାକୁ ଆଣିବାକୁ ବା କାଢ଼ିବାକୁ ହୁଏ—1. A screw-driver.
Pecha(ñcha) kash ପେଁଚକଷ **पेचकश**

**ପେଚ(ଞ୍ଚ) କଷିବା**—ଦେ. କ୍ରି—୧ । ପେଚ କଣ୍ଟାକୁ ବୁଲାଇ କ୍ରମଶଃ ଛିଦ୍ର ଭିତରକୁ ପ୍ରବେଶ କରାଇବା—
Pecha(ñcha) kashibā
ପେଚ(ଞ୍ଚ) ଅଣ୍ଟା(ଣ୍ଟେ)ଇବା / ପେଚ(ଞ୍ଚ) ଅଣ୍ଟିବା / ପେଚ(ଞ୍ଚ) କସା(ସେ)ଇବା / ପେଚ(ଞ୍ଚ) ମୋଡ଼ିବା } ଅନ୍ୟରୂପ
To drive a screw into a hole.

୨ । ଘଣ୍ଟାର ସ୍ପ୍ରିଙ୍ଗକୁ ଗୁଡ଼ାଇବାପାଇଁ ଘଣ୍ଟାରେ ଚାବି ଦେବା—
ପେଁଚ ଅଁଟା **पेच कसना**
2. To wind up the spring of a clock or watch.

୩ । (ଲକ୍ଷଣାର୍ଥ) ଚତୁରତା ବା କୌଶଳ ପ୍ରୟୋଗ କରି ମନୁଷ୍ୟକୁ ବଶ କରିବା—3. (figurative) To bring a person under control by tactics.

**ପେଚକା**—ଦେ. ବିଣ.—୧ । ସ. ( ପେଚକ ଶବ୍ଦରୁ ) ପେଚ୍ଚା ପରି—
Pechakā 1. Owlish; owl-like.
(ପେଚକୀ—ସ୍ତ୍ରୀ) ୨ । (ସ. ଚପିଟ) ଚେପା; ଚେପଟା; ଚଟକା—
2 Flat; flattened.

୩ । ହାତ ଗୋଡ଼ ଯାକ ଯୁକ୍ତ ମାଂସ ପିଣ୍ଡୁଲା ପରି ହୋଇ ପେଚ୍ଚା ପରି ବସିଥିବା—2. Sitting by contracting or bringing together one's limbs like a lump of flesh ( as an owl ).

**ପେଚ କାଟିବା**—ଦେ. କ୍ରି—ଯନ୍ତ୍ର ସାହାଯ୍ୟରେ ସାଧା କଣ୍ଟାରେ ଘର କରି ତାକୁ ପେଚରେ ପରିଣତ କରିବା—
Pecha kāṭibā ପେଁଚକାଟା **पेचकाटना** To turn a nail into a screw.

**ପେଚ(ଞ୍ଚ) କାଢ଼ିବା**—ଦେ. କ୍ରି—ପେଚକଶ୍ ଦ୍ୱାରା ପେଚ କଣ୍ଟାକୁ ଛିଦ୍ର ଭିତରୁ ଉପରକୁ ଆଣିବା—
Pecha(ñcha) kāṛhibā ପେଁଚ ଖୁଲା **पेच खोलना** To unscrew.
[ପେଚ(ଞ୍ଚ) ଢ଼ୁଗାଇବା, ପେଚ(ଞ୍ଚ) ଖୋଲିବା, ପେଚ(ଞ୍ଚ) ଢ଼ିଲା(ଲେ)ଇବା—ଅନ୍ୟରୂପ]

ପେଚକା ମୁହଁ—ଦେ. ବ—ପେଚୁ ପରି ଚେପଟା ଓ ଚକା ଅସୁନ୍ଦର ମୁହଁ—
Pechakā muhaṅ Flat and round owl-like face.
(ପେଚୁ ମୁହଁ—ଅନ୍ୟରୂପ)

ପେଚକା ମୁହାଁ—ଦେ. ବଣ. ପୁଂ—୧ । ଚଟକା ମୁହଁ ଯୁକ୍ତ, ପେଚୁ ପରି
Pechakā muhāṅ ଚେପଟା ମୁଖ ଯୁକ୍ତ—1. Owl-faced;
(ପେଚୁ ମୁହାଁ—ଅନ୍ୟରୂପ) with face like an owl; flat-faced.
ପେଚକା ମୁହାଁ, ପେଚୁମୁହାଁ } ସ୍ତ୍ରୀଲିଙ୍ଗ
ପେଚକୀ ମୁହାଁ, ପେଚୀମୁହାଁ }
୨ । ଫୁଲକା ମୁହାଁ; ଫୁଲୁକାମୁହାଁ—2. Having a puffed up or bloated face.
ଚେପ୍‌ଟା ମୁଖୋ
**चपटा मुहँ वाला**

ପେଚକୀ—ସ. ବ. ପୁଂ. ( ପେଚକ+ଇନ୍ )—
Pechakī ହସ୍ତୀ—Elephant.
(ପେଚକିନୀ—ସ୍ତ୍ରୀ) ସ୍ତ୍ରୀ. (ପେଚକ+ଈ)—ମାଈ ପେଚୁ, ପେଚୀ—
A she-owl.

ପେଚ ଜନ୍ତା—ଦେ. ବ. ( ବଣିଆ ଶବ୍ଦ )—ଅଳଙ୍କାରର କାଡ଼ରେ ବା
Pecha jantā ସାଧା କଣ୍ଟାରେ ପେଚର ଘର କରିବା ପାଇଁ ଛିଦ୍ର
ଚେପ୍‌ଟା ମୁହାଁ ଥିବା ଇସ୍ପାତ ଦଣ୍ଡରେ ବା ଚକ୍ରରେ ଭିଆରି
পেঁচের যান্তা ହୋଇଥାଏ—An instrument of steel for
**पेचका यांता** turning nails or pins into screws.
[ ଦ୍ର—ଏହି ଜନ୍ତାରେ ଥିବା ଛିଦ୍ରକୁ ପେଚର ଅଭିପ୍ରେତ ଆକାର ଅନୁସାରେ ବଡ଼ ଓ ସାନ କରାଯାଇ ପାରେ । କଣ୍ଟାର ମୁନକୁ ଉକ୍ତ ଜନ୍ତାର ଛିଦ୍ର ମଧ୍ୟରେ ପୂରାଇ ଜନ୍ତାକୁ ଘୂରାଇଲେ କଣ୍ଟାର ଦେହରେ ପେଚର ଘର କାଟି ହୋଇଯାଏ । ]

ପେଚ(ଞ୍ଚ)ଦାର୍—ବୈଦେ. ବଣ.—୧ । ପେଚ ପରି କୁଣ୍ଡଳମୟ——
Pecha(ñcha)dār 1. Spiral.
পেঁচদার ୨ । (ଲକ୍ଷଣାର୍ଥ) ଜଟିଳ (ବିଷୟ)—2. (figurative)
**पेचदार; पेचीदा** (a matter) Full of intricacies.

ପେଚ(ଞ୍ଚ)ବାଜ୍—ଦେ. ବଣ.—୧ । କୂଟ ମାଡ଼ବଶାରଦ; ପଲିସିବାଜ୍—
Pecha(ñcha)bāj 1. Tactician; politic.
পেঁচবাজ, পেঁচাও ୨ । କୌଶଳୀ, ଫନ୍ଦିବାଜ୍, ଫିକରବାଜ୍—
**पेचदार** 2 Artful; full of stratagems.
୩ । କପଟାଚାରୀ—3. Hypocritical.
୪ । ଯେ ପ୍ରତିଦ୍ୱନ୍ଦୀ ମଲ୍ଲକୁ ପରାସ୍ତ କରିବାର ନାନାବିଧ ଫିକର ଜାଣେ—4. Proficient in the art of throw-
[ପେଚ(ଞ୍ଚ)ବାଜୀ—ବି] ing down the opponent athlete.

ପେଚବାନ୍—ବୈଦେ. ବ.(ଫା)—୧ । ଅଲବଲ୍ଲା ହୁକ୍କାରେ ଲଗାଯିବା ବଡ଼
Pechabān ନଳ—1 A long tube attached to an
পেচবান **पेचवान** Alaballā hubble-bubble.
୨ । ବଡ଼ ହୁକ୍କା; ଅଲବଲ୍ଲା ହୁକା—
2. A hubble-bubble with pedestal.

ପେଚ(ଞ୍ଚ) ବୁଲା(ଲେ)ଇବା—ଦେ. କ୍ରି.—୧ । ପେଚ କଣ୍ଟାକୁ ଆଣିବା
Pecha(ñcha)bulā(le)ibā ବା କାଢ଼ିବା ନିମନ୍ତେ ତାକୁ ବାମ
[ପେଚ(ଞ୍ଚ)ମୋଡ଼ିବା—ଅନ୍ୟରୂପ] ବା ଡାହାଣ ଆଡ଼କୁ ଘୂରାଇବା—
পেঁচ ঘুমানো 1. To turn a screw; to twist the head
**पेच घुमाना** of a screw in order to screw it in or unscrew it.
୨ । (ଲକ୍ଷଣାର୍ଥ) କୌଶଳ ବା ଗୁରୁଯୁକ୍ତି ପ୍ରୟୋଗ କରିବା—
2. (figurative) To apply a policy or stratagem.

ପେଚ(ଞ୍ଚ) ମାରିବା—ଦେ. କ୍ରି.—୧ । ପ୍ରତିଦ୍ୱନ୍ଦୀ ମଲ୍ଲକୁ ଭୂମିରେ ପକାଇ
Pecha(ñcha) māribā ଦେବାପାଇଁ ବା ଚିତ୍ କରିବାପାଇଁ
পেঁচ মারা କୌଶଳଯୁକ୍ତ ଅଙ୍ଗ ସଞ୍ଚାଳନ କରିବା—
1. To perform a trick of
**पेच मारना** the hands or legs to throw down one's rival athlete or opponent wrestler.

ପେଚ(ଞ୍ଚ)ରେ ପକା(କେ)ଇବା—ଦେ. କ୍ରି.—କୌଣସି ବ୍ୟକ୍ତିକୁ ବିପଦ
Pecha(ñcha)re pakā(ke)ibā ବା ସଙ୍କଟରେ ପକାଇବା—
প্যাঁচেফেলা **पेचमे फसाना** To put a person in an
[ପେଚ(ଞ୍ଚ)ରେ ଗିରା(ରେ)ଇବା—ଅନ୍ୟରୂପ] awkward predicament or in danger.

ପେଚ(ଞ୍ଚ)ରେ ପଡ଼ିବା—ଦେ. କ୍ରି.—୧ । ସଙ୍କଟାପନ୍ନ ଅବସ୍ଥାରେ ପଡ଼ିବା
Pecha (ñcha)re paṛibā ହେବା—1. To be in a fix
প্যাঁচে পড়া **पेचमे फसना** or dangr; to come to grief.
୨ । ବିଷମ ସମସ୍ୟାରେ ପଡ଼ିବା—
2. To be in the horns of a dilemma.
୩ । କୂଟ ମାଡ଼ର ଆବର୍ତ୍ତରେ ପତିତ ହେବା—3. To be the victim of a plot or conspiracy.

ପେଚୁ—ଦେ. ବ. ପୁଂ—(ସ. ପେଚକ)—ପେଚକ; ଉଲୂକ—
Pechā The owl.
(ପେଚ—ଅନ୍ୟରୂପ) [ଦ୍ର—ଏ ଶବ୍ଦକୁ ଇତର ଲୋକମାନେ
[ପେଚୀ—ସ୍ତ୍ରୀ] ପେଚା ବୋଲି ଉଚ୍ଚାରଣ କରିଥାଆନ୍ତି ।
পেঁচা ଏହା ଗୃଦ୍ଧଜାତିର ପ୍ରସଦବର୍ଗ ପକ୍ଷିବିଶେଷ । ଏହାର ଆଖି
**उल्लू, पेचा** ଉବାଉବା ଅର୍ଥାତ୍ ଗୋଲ, ମୁହଁ ଚକା, ଅର୍ଥାତ୍ ମନୁଷ୍ୟର ମୁହଁ ପରି ଗୋଲ ଓ ଚଟକା; ଥଣ୍ଟ ଛୋଟ, ଓ ଉପର ଥଣ୍ଟର ଅଗ ବଙ୍କା; ଗୋଡ଼ରେ ଦାଢ଼ୁଆ ନଖ ଅଛି; ଏହାର ଆଖି ଖୁରପାଖରେ ପର ବେଢ଼ି ଥିବାରୁ ଏହାର ମୁହଁ ଗମ୍ଭୀର ଦେଖାଯାଏ । ଏହାର ଡେଣା ଖଇରା ବା ପାଚିଲିଆ ଏବଂ ଧଳା ଟୋପିଟୋପିକିଆ । ଏ ଗୃଦ୍ଧଜାତିର ପକ୍ଷୀ । ଏହାକୁ ଦିନରେ ଦେଖାଯାଏ ନାହିଁ । ପେଚୁ ଦିନଯାକ ଅନ୍ଧାରରେ ବା ଗଛକୋରଡ଼ରେ ଲୁଚିଥାଏ । ରାତି ହେଲାରୁ ଉଡ଼ି କରି ଛୋଟ ଛୋଟ ପକ୍ଷୀମାନଙ୍କ ବସାରେ ଆକ୍ରମଣ କରି ଖାଏ । ଏ ଦୀର୍ଘ ହୁଁ ହୁଁ ରାବ କରେ ଓ ଏହାର ଶବ୍ଦ ଭୟ ବ୍ୟଞ୍ଜକ । ସାଧାରଣତଃ ପେଚୁ ୧୬ରୁ୧୭ ଅଙ୍ଗୁଳ ଲମ୍ବ ହୁଏ । ଏହାର ଗୋଡ଼ ଛୋଟ ଥିବାରୁ ଏ ବସିଲା ବେଳେ ଏହାର ଗୋଡ଼ ପେଟର ପକ୍ଷତଳେ ଲୁଚିଯାଏ ଓ ଏହା ମେଣ୍ଢାଏ ମାଂସ ଭଳି ଦେଖାଯାଏ । ଏ ପକ୍ଷୀ ଲକ୍ଷ୍ମୀଙ୍କର ବାହନ । କିନ୍ତୁ ଏହାକୁ ଲୋକେ ଅଶୁଭର ଶକୁନ ବୋଲି ବିଶ୍ୱାସ କରନ୍ତି । ରାତିରେ ଏ ପକ୍ଷୀ ଯାହାର ଘର ଉପରେ ବା ବାଡ଼ିରେ ରାବ କରେ

ତାହାର ଆସନ୍ନ ବିପଦ ଘଟିବ ବୋଲି ଲୋକେ ବିଶ୍ୱାସ କରନ୍ତି ଓ ଏଥିର ପ୍ରତିକାର ପାଇଁ ଗୃହ ପ୍ରତିଷ୍ଠା ଓ ହୋମାଦି କରନ୍ତି । ଯେଉଁ ସ୍ତ୍ରୀ ସୁନା ଗ୍ରେଇ କରେ (ମତାନ୍ତରରେ ଲୁହା ଗ୍ରେଇ କରେ) କିମ୍ବା ଦେବଶ୍ୱଶୁରର ଅଇଣ୍ଠା ଖାଏ ସେ ପରଜନ୍ମରେ ପେଚ୍ଚ ହୋଇ ଜନ୍ମ ହୁଏ ବୋଲି ସ୍ତ୍ରୀଲୋକଙ୍କ ମଧ୍ୟରେ ପ୍ରବାଦ ଅଛି ।

ରଙ୍ଗ ଭେଦରେ, ସ୍ୱର ଭେଦରେ, ଆକାର ଭେଦରେ ନାନା-ଜାତିର ପେଚ୍ଚ ଅଛନ୍ତି, କିନ୍ତୁ ଆମ ଦେଶରେ ସେମାନଙ୍କର ପୃଥକ୍ ନାମ ନାହିଁ । ବଙ୍ଗଳା ଓ ଇଂରାଜୀରେ ସେମାନଙ୍କର ପୃଥକ୍ ନାମ ଅଛି । ଯଥା—কালপেঁচা—Hawk owl (Ninox Scutulatei); ছোটপেঁচা—Jungle owlet (Glancidium Radiatum); কোটবিষা পেঁচা—Spotted owlet (Athene Brama); লক্ষীপেঁচা—Barn owl (Stryx Flammia); হুতুমপেঁচা—Brown fish-owl (Ketupa Ceylomensis) । ଇଂରାଜୀରେ ଏହା ଛଡ଼ା—Spotted owl, barred owl, eared owl, flammulated owl, horned owl, screech owl, snowy owl, burrowing owl, ଇତ୍ୟାଦି ଜାତୀୟ ପେଚ୍ଚଙ୍କର ନାମ ଅଛି । ତାହାର ଆସନ୍ନ ବିପଦ ଘଟିବାର ସୂଚିତ ହେଲେ ଲୋକେ କହିଥାନ୍ତି ତା ମୁଣ୍ଡରେ ପେଚ୍ଚ ବସିଲାଣି ବା ତା ଉପରେ ପେଚ୍ଚ ଉଡ଼ିଲାଣି ।

ପେଚ୍ଚ ବସିବାବେଳେ ମାଉଁସ ମେଞ୍ଚା ପରି ଦେଖା ଯିବାରୁ ଯେଉଁ ଲୋକ ହାତ ଗୋଡ଼ ସାଙ୍କୁଡ଼ି ହୋଇ ବସିଥାଏ ତାକୁ କହନ୍ତି ସେ ପେଚ୍ଚଟି ପରି ବସିଛି ।

ଯେଉଁ ପୁରୁଷର ବା ସ୍ତ୍ରୀର ମୁହଁ ପେଚ୍ଚପରି ଗୋଲ ଓ ଚେପ୍ଟା (ଅତଏବ ଅସୁନ୍ଦର) ତାକୁ ପେଚ୍ଚମୁହାଁ ବା ପେଚ୍ଚମୁହାଁ କହନ୍ତି ।

ଯେଉଁ ଲୋକ ହଜିଯାଇ କୌଣସି ସ୍ଥାନରେ ଘରଭିତରେ ରହିଥାଏ ଓ ବାହାରକୁ ନ ଆସେ, ଲୋକେ କହନ୍ତି 'ପେଚ୍ଚ କୋରଡ଼ରେ ପଶିଲା ଭଳି ସେ ଘର ଭିତରେ ପଶିଛି' ।

ବାଇବଲରେ ପେଚ୍ଚ ଅଶୁଭ-ସୂଚକ ଓ ବେଶକ୍ଷୟକର ଶକୁନ ଥିବାର କଥିତ ହୋଇଅଛି । ପାଶ୍ଚାତ୍ୟ କବି ଓ ଗଳ୍ପକାରମାନେ ପେଚ୍ଚକୁ ଅଶୁଭ ଶକୁନ ମଧ୍ୟରେ ପରିଗଣିତ କରନ୍ତି ।

ପ୍ରାଚୀନ ଗ୍ରୀକ୍ ଓ ରୋମକମାନେ ଏ ପକ୍ଷୀକୁ ମିନର୍ଭା (ସରସ୍ୱତୀ) ଙ୍କର ବାହାନ ଓ ଜ୍ଞାନର ଚିହ୍ନ ସ୍ୱରୂପ ବିବେଚନା କରୁଥିଲେ । ]

ବିଣ—ପେଚକୀ (ଦେଖ)—Pechakā (See).

**ପେଚ୍ଚ ଆଖିଆ**—ଦେ. ବିଣ. ପୁଂ—ପେଚ୍ଚ ପରି ଗୋଲ ଆଖିଯୁକ୍ତ—
Pechā ākhiā — Owl-eyed.
(ପେଚ୍ଚ ଆଖେଇ—ସ୍ତ୍ରୀ) ପ୍ରାଦେ (ଯାଜପୁର) ବିଣ.—୧ । କୌଣସି କାର୍ଯ୍ୟ ଯେଉଁ ରୂପରେ ଆରମ୍ଭ ହୋଇଥିଲା ତାହା ଛଡ଼ା ଅନ୍ୟ ଏକ ରୂପ ଧାରଣ କରିବା (ଅବସ୍ଥା)—1. (a matter) Taking a form or turn different from the original plan or form towards which it had been progressing.
୨ । ବିଗିଡ଼ିଯିବା (କାର୍ଯ୍ୟ); ଫାଙ୍କିଆ ହୋଇଯିବା (ଉଦ୍ୟମ)— 2. Spoiled; frustrated.
(ଯଥା—ମୋ ଗୃହର ଉଦ୍ୟମଟା ପେଚ୍ଚ ଆଖିଆ ହୋଇଗଲା ।)

**ପେଚ୍ଚ ଡାକିବା**—ଦେ. କ୍ରି—(ଲକ୍ଷଣାର୍ଥ)—୧ । ଆସନ୍ନ ବିପଦ ବା ଅମଙ୍ଗଳର ସୂଚନା ଜଣାଯିବା—
Pechā ḍākibā — 1. (figurative) Forebodings of an impending calamity.
୨ । ପେଚ୍ଚ ରାବିବା (ଦେଖ)— 2 Pechā rābibā ( See ).

**ପେଚ୍ଚ ନାକା**—ଦେ. ବିଣ—ଚେପଟା ନାସିକାବିଶିଷ୍ଟ—
Pechā nākā — Flat-nosed.
চেপ্টানাকওয়ালা चिपटानाकवाला
(ପେଚ୍ଚ ନାକିଆ—ଅନ୍ୟରୂପ) (ପେଚ୍ଚ ନାକୀ, ପେଚ୍ଚ ନାକେଇ—ସ୍ତ୍ରୀ)

**ପେଚ୍ଚ ବସିବା**—ଦେ. କ୍ରି—ଅମଙ୍ଗଳ ସୂଚକ ଶକୁନ ଦେଖାଯିବା—
Pechā basibā — Forebodings of impending evil.
(ପେଚ୍ଚ ଉଡ଼ିବା—ଅନ୍ୟରୂପ) (ଯଥା—ତା ମୁଣ୍ଡରେ ବା ଘରେ ପେଚ୍ଚ ବସିଲାଣି, ତା ମୁଣ୍ଡ ଉପରେ ପେଚ୍ଚ ଉଡ଼ିଲାଣି ।)

**ପେଚ୍ଚ ମୁହାଁ**—ଦେ. ବିଣ. ପୁଂ—ଯାହାର ପେଚ୍ଚ ପରି ଚଟକା ଓ ଅସୁନ୍ଦର ମୁହଁ—
Pechā muhāñ — Owl-faced; flat-faced; ugly-faced.
(ପେଚ୍ଚମୁହାଁ, ପେଚୀମୁହାଁ—ସ୍ତ୍ରୀ)

**ପେଚ୍ଚ ରାବିବା**—ଦେ. କ୍ରି—ପେଚକର ଭୟବ୍ୟଞ୍ଜକ ଧ୍ୱନି
Pechā rābibā — The screech of an owl.
[ପେଚ୍ଚଡାକ, ପେଚ୍ଚ ବୋବାଳ, ପେଚ୍ଚ ବୋବା(ବେ)ଇବା, ପେଚ୍ଚରାବ—ଅନ୍ୟରୂପ]

**ପେଚ୍ଚ ହେବା**—ଦେ. କ୍ରି—ମାଂସ ପିଣ୍ଡୁଳା ପରି ସାଙ୍କୁ ଯୁକ୍ତ ହୋଇଯିବା—
Pechā hebā — To be contracted into a lump or mass.

**ପେଚିଲ**—ସଂ. ବି. ( ପେଚ + ଇଲ )—ହସ୍ତୀ—
Pechila — Elephant.

**ପେଚୀ**—ଦେ. ବିଣ. ସ୍ତ୍ରୀ—୧ । ପେଚ୍ଚ ପରି ସାଙ୍କୁ ଯୁକ୍ତ ହୋଇ ବସିଥିବା ( ବାଳିକା ବା ସ୍ତ୍ରୀ ଲୋକ )—
Pechī — ( a woman ) Who sits by contracting her limbs like an owl.
୨ । ପେଚ୍ଚମୁହାଁ—2. Owl-faced; flat faced ( girl or woman ).

**ପେଚୁ**—ସଂ. ବି. (ପିଚ୍ ଧାତୁ=ଆଘାତ କରିବା + ଉ)—କଚୁଶାକ; ସାରୁ—
Pechu — Arum; Arum Colocasia; colocacia.
(ପେଚୁଲ, ପେଚୁଲୀ—ଅନ୍ୟରୂପ)

**ପେଚୁ(ଞ୍ଚୁ)ଆ**—ଦେ. ବିଣ—୧ । ପେଚ ପରି ବଙ୍କା—1. Coiled or
Pechu(ñchu)ā — twisted like a screw.
পেঁচবাণা पेचीला ୨ । ପେଁଚବାଜ୍—2. Artful; politic; full of stratagems.

**ପେଜ୍**—ବୈଦେ. ବି. (ଇଂ)—୧ । ପୁସ୍ତକର ପୃଷ୍ଠା—
Pej পেজ पेज — 1. Page of a book.
୨ । ପୃଷ୍ଠାଙ୍କ—2. The figures written on every page of a book.
୩ । ରାଜା ଅଧିକ ଅନୁଚର ବାଳକ ଭୃତ୍ୟ—
3. A page or boy attendant of a king.
ପ୍ରାଦେ. (ସମ୍ବଲପୁର, ଶେଷବର୍ଣ୍ଣର ହଳନ୍ତ ଉଚ୍ଚାରଣ) ବି—ପେଜ, ଭାତର ମଣ୍ଡ—Rice gruel.

**ପେଜ୍ ଓହ୍ଲାଇବା**—ପ୍ରାଦେ. (ସମ୍ବଲପୁର) କ୍ରି—ଭାତରୁ ପେଜ ଗାଳିବା—
Pej ohlāibā To let out the scum-water from boiled rice.

**ପେଜ୍ ଦେବା**—ଦେ. କ୍ରି. ( ଇଂ. ପେଜ୍ + ସ. ଦା ଧାତୁ )—ପୁସ୍ତକାଦିର
Pej debā ପ୍ରତ୍ୟେକ ପୃଷ୍ଠାରେ ପୃଷ୍ଠାଙ୍କ ଲେଖିବା—
ପେଜ ଦେଓଆ **पेज देना** To page a book.

**ପେଜ୍ ପ୍ରୁଫ୍**—ବୈଦେ. ବି. ( ଇଂ )—ଛପା ହେବା ବିଷୟ ଶେଷଥର
Pej pruph ସଂଶୋଧିତ ହୋଇ ଛପା ହେବାକୁ ଦିଆଯିବା ମୁଦ୍ରିତ
ପେଜପ୍ରୁଫ **पेजप्रूफ** ଫର୍ଦ୍ଦ—Page proof; final proof of a printed matter.

[ କ୍ର—କୌଣସି ପାଣ୍ଡୁଲିପି ଛପା ହେବା ପାଇଁ ଛପାଖାନାକୁ ଦିଆ ଗଲେ କମ୍ପୋଜିଟରମାନେ ପ୍ରଥମେ ପାଣ୍ଡୁଲିପିରେ ଥିବା ଅକ୍ଷରମାନଙ୍କୁ ଯୋଡ଼ି ଷ୍ଟିକ୍‌ରେ ବସାନ୍ତି । ସେହି ଯୋଡ଼ା ଷ୍ଟିକ୍‌ରୁ ଯେଉଁ ମୁଦ୍ରଣ ବା ଛାପ ନିଆଯାଏ ତାକୁ ଗାଲିପ୍ରୁଫ୍ ( galley-proof ) ବୋଲାଯାଏ । ପ୍ରୁଫ୍‌ରିଡର୍ ( ପ୍ରୁଫ୍ ସଂଶୋଧନକାରୀ ବ୍ୟକ୍ତି ) ଉକ୍ତ ଗାଲୀ ପ୍ରୁଫ୍‌କୁ ଦେଖି ସେଥିରେ ଥିବା ଭୁଲମାନ ସଂଶୋଧନ କରନ୍ତି ଓ କମ୍ପୋଜିଟରମାନେ ଉକ୍ତ ସଂଶୋଧନମାନଙ୍କ ଅନୁସାରେ ଗାଲି ପ୍ରୁଫ୍‌କୁ ସଂଶୋଧନ କରନ୍ତି । ମୁଦ୍ରିତ ପୁସ୍ତକ ଯେଉଁ ଆକାରରେ (ଅର୍ଥାତ୍ କ୍ୱାର୍ଟୋ [ଚଉପେଜି], ଅକ୍ଟେଭୋ [ଆଠପେଜି],ବାରପେଜି, ଷୋଳପେଜୀ ଆଦି ଆକାରରେ ) ଛପା ହେବାର ବିଧି ଥାଏ ସେହି ଆକାରରେ କମ୍ପୋଜିଟର ସଂଶୋଧିତ ଗାଲିପ୍ରୁଫ୍‌ମାନଙ୍କୁ ପୃଷ୍ଠା ପୃଷ୍ଠା କରି ସଜାନ୍ତି । ତା ପରେ ପୃଷ୍ଠା ଅନୁସାରେ ସଜ୍ଜିତ ବିଷୟର ଛାପା ନିଆ ଯାଏ । ଏହାକୁ ପେଜ୍‌ପ୍ରୁଫ୍ ବୋଲାଯାଏ । ଏ ପେଜ୍‌ପ୍ରୁଫ୍‌କୁ ପ୍ରୁଫ୍‌ରିଡର୍ ଶେଷଥର ସଂଶୋଧନ କରନ୍ତି ଓ କମ୍ପୋଜିଟରମାନେ ପେଜ୍‌ପ୍ରୁଫ୍‌ରେ ପରିଲକ୍ଷିତ ଭ୍ରମମାନଙ୍କୁ ସଂଶୋଧନ କଲା ପରେ ଉକ୍ତ ପେଜ୍‌ପ୍ରୁଫ୍‌ରୁ ଅନ୍ତିମ ମୁଦ୍ରଣ କରାଯାଏ । ]

**ପେଜ**—ଦେ. ବି. ( ସ. ପେୟ )—ରନ୍ଧା ଭାତର ଫେଣ; ଭାତ ରାନ୍ଧିଲେ
Peja ଯେଉଁ ଫେନମୟ ଜଳ ବାହାରେ— Water let down
ফেন, মাঁড় from a pot of boiling rice; foam-broth
**पीच, माँड़** of boiling rice; scum of boiled rice.
ପ୍ରାଦେ. (ଜୟପୁର) ବି—ଭାତ; ପକ୍ୱାନ୍ନ—Boiled rice
(ବସ୍ତର ଓ ଜୟପୁର) —ଜାଉ—Rice-gruel.
(ସମ୍ବଲପୁର ଓ ଲରିଆ ଭାଷା)—ପଖାଳ—Moistened boiled rice.
(ଯଥା—ତଇଁ ପେଜ୍ ଖାଓନ୍‌କା ?=ତୁମ୍ଭେ ପଖାଳ ଖାଇଲଣି କି ?)

**ପେଜ ଖାଇଯିବା**—ପ୍ରାଦେ. (ଯାଜପୁର) କ୍ରି—ଘଟ ଘଟ ହେବା (ଦେଖ)
Peja khāijibā Ghata ghata hebā (See)

**ପେଜ ନଳା**— ଦେ. ବି— ଯେଉଁ ନଳାବାଟେ ରୋଷେଇ ଘରୁ ବାହାର
Peja nalā ଆଡ଼କୁ ପେଜ ଗଳି ହୋଇ ବୋହିଯାଏ—
The pipe or drain which conveys the scum of boiled rice from the cook-room.

**ପେଜ ପାଣି**—ଦେ. ବି—ପେଜ ମିଶ୍ରିତ ଜଳ, ତୋରାଣି ·
Peja pāni Water mixed with scum.
[ ଦ୍ର—ପେଜ ପାଣି ସଙ୍ଗେ କୁଣ୍ଡାଗୋଳାଇ ଗୋରୁଙ୍କୁ ଖାଇବାକୁ ଦିଆଯାଏ । ]

**ପେଜ ପାଣି ହାଣ୍ଡି**—ଯେଉଁ ହାଣ୍ଡିରେ ଗୋରୁମାନଙ୍କ ଖୋଇବା ନିମନ୍ତେ
Peja pāni hāndi ଭାତରୁ ଗଳା ହେବା ପେଜ ତଳା ହୋଇ ରଖା ଯାଇଥାଏ—The pot in which the scum of boiled rice is kept for feeding cattle.

**ପେଜ ଭାତ**—ପ୍ରାଦେ. (କଳାହାଣ୍ଡି) ବି—ପଖାଳ ଭାତ—
Peja bhāta Moistened rice.

**ପେଜି**—ବୈଦେ. ବିଣ. (ଇଂ. ପେଜ୍ ସଙ୍ଗେ ଦେଶୀ ଈ ପ୍ରତ୍ୟୟ; ଏହା
Peji ଅନ୍ୟ ସଂଖ୍ୟାବାଚକ ଶବ୍ଦ ସହିତ ଯୁକ୍ତ ହୁଏ, ଯଥା—
পেজী ବାରପେଜୀ, ଆଠପେଜୀ ଇତ୍ୟାଦି)—୧ । (ଏତେ) ପୃଷ୍ଠାଯୁକ୍ତ—
**पेजी** 1. Having (so many) pages.
୨ । ଯେଉଁ କାଗଜର ଏକ ଫରଦ୍‌କୁ ଭାଙ୍ଗ କଲେ ଏତେ (୪।୮।୧୨।୧୬।୩୨ ଇତ୍ୟାଦି) ସଂଖ୍ୟକ ପୃଷ୍ଠା ହୁଏ—
2. (equivalent to 'paged' in the words eight-paged, twelve-paged) Having so many pages to each sheet.

**ପେଜୁଆ**– ଦେ. ବିଣ — ୧ । ପେଜ ମିଶ୍ରିତ—
Pejuā 1. Mixed with froth or scum of boiled rice.
୨ । ପେଜପରି ତଳ ତଳ ଦେଖାଯିବା; ଫେନିଳ—
2. With a frothy or scummy appearance.
୩ । ଅଧିକରୁ ରୂପେ ସିଦ୍ଧ ହେବାରୁ ପେଜମିଶା (ଅନ୍ନ)—
3. Over boiled (rice).
୪ । ଜାଉପରି କାଠୁଆ—4. Gruelly; thick like gruel.

**ପେଟ୍‌ନା**—ପ୍ରାଦେ. (ଭଦ୍ରିଭାଷା) କ୍ରି—ପିଟିବା—
Pet-nā (ପେଟ୍‌ବା—ଅନ୍ୟରୂପ) To beat.

**ପେଟ**—ସ. ବି. (ପିଟ୍ ଧାତୁ=ସହିତ ହେବା+ଅ, ଯହିଁରେ ପଦାର୍ଥ ସବୁ
Peṭa ସଂଗୃହୀତ ହୋଇ ରକ୍ଷିତ ହୁଏ)—୧ । ପେଟରା—
1. A box or trunk with a moving lid.
୨ । ପେଡ଼ା; ପେଡ଼ୀ—
2. A basket with a removeable lid.
୩ । ସମୂହ—3 Multitude.
୪ । ଜୀବିକା; ଉଦର ପୂରଣ—4, Livelihood.
୫ । ହସ୍ତର ବିସ୍ତୃତ; ଚପେଟ—5. The open palm with the fingers extended
୬ । ଥଳି—6. Bag.
ଦେ. ବି. (ପ୍ରା. ପୋଟ୍ଟ=ଉଦର, ତୁଳ. ମ. ପୋଟ, ପୋଡ଼, ସଂ. ପେଟ=ଥଳି)—୧ । ଜଠର; ଉଦର—
2. Belly; stomach.

ତଜ-ଜଗରୁ ପେଟ ହେବାକାଳେ ଶବ୍ଦ ହେଲାଟି ଯାହା ସେ ବଲେଇ ମୁହୁଁ
ନ ଥିଲା କିଛି ଜଣା ଏବେ ଯାଉଛି ଶୁଣା ତୁ ପୁଣି ଚମ୍ପି ଉଚ୍ଚେ ସୁନେ ଲବୁ—
– କବିସୂର୍ଯ୍ୟ, ସଙ୍ଗୀତ ।

[ଦ୍ର—ମନୁଷ୍ୟ ଦେହର ନାଭିର ଉପରସ୍ଥ ଓ ଖଳିର ତଳ ଅଂଶକୁ ସାଧାରଣତଃ ପେଟ ବା ଉପର ପେଟ ଓ ନାଭିତଳର ଅଂଶକୁ ତଳ ପେଟ ବୋଲଯାଏ । ]

୨ । ସ୍ତ୍ରୀର ଗର୍ଭ—2. Womb.

ବହୁତ ଦେଲୁ ଦୁଃଖ କଷ୍ଟ
ପୋଡ଼ୁ ନର୍ଲଜ୍ଜ ମୋର ପେଟ – ଜଗନ୍ନାଥ, ଭାଗବତ ।

[ ଦ୍ର—ପେଟର ଉପର ଚମଡ଼ା, ପେଟର ଅନ୍ତର୍ଦେଶ, ସ୍ତ୍ରୀମାନଙ୍କ ଗର୍ଭ, ସ୍ଥୂଳୋଦର ଇତ୍ୟାଦି ଅର୍ଥରେ ଏ ଶବ୍ଦ ବ୍ୟବହୃତ ହୁଏ । ]

୩ । ଗର୍ଭାବସ୍ଥା—3. Pregnancy.

୪ । (ଲକ୍ଷଣାର୍ଥ) କୌଣସି ବସ୍ତୁର ମଧ୍ୟଭାଗ—
4 The middle portion of a thing.
( ଯଥା— ଗଛର ପେଟରେ ବହୁତ ପାଣି ଜମା ହୋଇଛି । )

୫ । ଅନ୍ତର୍ଭାଗ—5. The interior of a thing.

୬ । କୌଣସି ଗୋଲାକାର ବସ୍ତୁର ବୃତ୍ତ ମଧ୍ୟସ୍ଥ ପାଖ—
6. The concave side of a circular thing.

୭ । ମନ, ଅନ୍ତର; ହୃଦୟ, ମସ୍ତିଷ୍କ—
7. Mind; heart; brain.

ଚମତ୍କାର କଥା ଦେଖି ପେଟରେ କଥାଟ ରଖି
ଛୋଟେ ନକ୍କ ନ ବହନ୍ତି ସେକ ରେ – କବିସୂର୍ଯ୍ୟ, କଶୋ ସତମ୍ବ, ବ-ଗୀତ ।

୮ । ଫାମ୍ପା ବସ୍ତୁର ଅନ୍ତର୍ଦେଶ—
8. The inside of a hollow thing.

୯ । ଜୀବିକା—6. Livelihood.

୧୦ । ବନ୍ଧୁକ ତୋପ ଆଦିର ଗର୍ଭ—
10. The barrel of a gun or cannon.

୧୨ । ପରିବାରରେ ପୋଷା ହେବା ବ୍ୟକ୍ତି—
11. Member of a family.
( ଯଥା—ମୁଁ କଅଣ ୩ଟା ପେଟ ପୋଷି ପାରିବି ନାହିଁ ? )

**ପେଟ ଆଉଟି ହେବା**—ଦେ. କ୍ରି—ଭୋକରେ ପେଟର ଭିତର ଘାଣ୍ଟି ହେବା—Agitation inside the belly due to fasting.
Peṭa āuṭi hebā
পেট ঢক ঢক করা

**ପେଟ ଉ(ଓ)ଲଟିବା**—ଦେ. କ୍ରି—୧ । ଅଜୀର୍ଣ୍ଣ ଯୋଗୁଁ ହଠାତ୍ ଝାଡ଼ା ବା ବାନ୍ତିର ବେଗ ଜଣାଯିବା—1. A tendency to vomit or pass stools as a result of indigestion.
Peṭa u(o)laṭibā
পেট উলটা, পেট চলা
**पेटचलना**
( ପେଟ ଲେଉଟିବା—ଅନ୍ୟରୂପ ) ୨ । ଅଜୀର୍ଣ୍ଣ ଯୋଗୁଁ ଖୁବ୍ ଝାଡ଼ା ହେବା—2. Passing of copious stools owing to indigestion.

**ପେଟ ଉଶ୍ୱାସ ଲାଗିବା**—୧ । (ଝାଡ଼ା ବା ଅଧୋବାୟୁ ହେବାଦ୍ୱାରା) ଗର୍ଭରେ ଅନୁଭୂତ ଅସ୍ୱସ୍ତି ବା ଯନ୍ତ୍ରଣା କମିବା—1. Feeling of easiness after the subsidence of stomach troubles, or after a good evacuation.
Peṭa uśwāsa lāgibā
পেট হালকা হওয়া
**पेट हलका होना**
(ପେଟ ଉଶ୍ୱାସ ହେବା—ଅନ୍ୟରୂପ)

୨ । ପ୍ରସବଦ୍ୱାରା ଗର୍ଭର ଭାର କମିବା —
2. Feeling of easiness after child birth.

**ପେଟକ**—ସ. ବି ( ପେଟ+ସ୍ୱାର୍ଥେ. କ )—୧ । ଗୋଲ ପାତ୍ର, କୁମ୍ଭା; ବୋତଲ—1. A bottle or a round pot.
Peṭaka

୨ । ମୁହଁରେ ଢାଙ୍କ ଥିବା ଛୋଟ ପେଡ଼ା; ପେଡ଼ୀ—
2. Basket with a lid; casket.

୩ । ପେଡ଼ା, ପେଟେରି—
3. An enclosed receptacle.

୪ । ବାକ୍ସ—4 Box.

ଦେ. ବି—ଉଦର ପୂର୍ତ୍ତି ଏକଥର ଭୋଜନ—
A bellyful of food.

**ପେଟ କଅଣ ହେବା**—ଦେ. କ୍ରି—୧ । ପେଟରେ ବ୍ୟଥା ହେବା, ପେଟକୁ ମାରିବା—1. Colic pain
Peṭa ka-aṇa hebā
পেট খুঁচান, পেট কেমন কেমন করা
୨ । ଅଜୀର୍ଣ୍ଣ ବା ବାୟୁ ଯୋଗୁଁ ପେଟରେ ଦୁଃଖାନୁଭୂତି—2 Stomachic trouble due to indigestion or wind.
**पेट दुखना**
ପେଟ ଖୋଷିବା, ପେଟ ବଥା(ଥୋ)ଇବା, ପେଟ ଖୋଷି ହେବା, ପେଟ ଦୁଖା(ଖୋ)ଇବା ପେଟ ଦୁଖ ହେବା } ଅନ୍ୟରୂପ

**ପେଟ କାଁ କାଁ ହେବା**—ଦେ. କ୍ରି—୧ । କ୍ଷୁଧା ସମୟରେ ନ ଖାଇବା ଯୋଗୁଁ ପେଟରେ କାଁ କାଁ ଶବ୍ଦ ହେବା—
Peṭa kān̐ kān̐ hebā
পেট চুঁই চুঁই করা 1. A sound in the belly due to hunger.
( ପେଟ କଅଁ କଅଁ ହେବା—ଅନ୍ୟରୂପ )

୨ । ଅନ୍ତ୍ରକୋଷଜନିତ ପେଟ ମଧ୍ୟରେ ଶବ୍ଦ—
2. The sound of the intestines descending to and going out of the testicles in Hernia.

**ପେଟ କଟା**—ଦେ. ବି—ପେଟ ଚିରା ବନ୍ଧୁକ—Breach loader.
Peṭa kaṭā

ପେଟ କଟା ସାଙ୍ଗ ହାତ ବନ୍ଧୁକ । ଗରନାଳ ବାଣ ସବୁଠୁଁ ଟେକ—
( ପେଟ କଟା ନଳ—ଅନ୍ୟରୂପ ) ବୃନ୍ଦାବନ, ସମରତରଙ୍ଗ ।

**ପେଟ କପଟୀ**—ଦେ. ବିଣ—ଅନ୍ତ କପଟୀ ( ଦେଖ )
Peṭa kapaṭī — Anta kapaṭī ( See ).
( ପେଟ କପଟିଆ—ଅନ୍ୟରୂପ )

**ପେଟ କରିବା**—ଦେ. କ୍ରି—୧ । ପେଟ କାଢ଼ିବା ( ଦେଖ )
Peṭa karibā — 1. Peṭa kāṛhibā (See)

୨ । ପେଟରେ କରିବା ( ଦେଖ )—
2 Peṭare karibā ( See )

ବନକୁ ଏକାକୀ କେବେଁ ନ ସିବୁ ଅନ୍ଧିକା
ବନେ ମିଶି ପେଟ କରି ଦେବେ ଋଷି ଲୋକା—
କୃଷ୍ଣସିଂହ, ମହାଭାରତ, ମଧ୍ୟ ।

**ପେଟ କଲ କଲ ହେବା**—ଅଜୀର୍ଣ୍ଣ ଓ ବାୟୁ ଯୋଗୁଁ ପେଟମଧ୍ୟରେ ଶବ୍ଦ ହେବା—Sounds inside the stomach due to wind and indigestion.
Peṭa kaḷa kaḷa hebā
পেট কল কল করা **पेट गुड़गुड़ाना**
ପେଟ ଗୁ ଗୁ ହେବା, ପେଟ ଡାକ ଦେବା, ପେଟ ଡାକିବା; ପେଟ ଘୁ ଘୁ ହେବା, ପେଟ ଘୁ ଘୁ ଡାକିବା } ଅନ୍ୟରୂପ

**ପେଟ କଷ୍ଟ**—ଦେ. ବି—୧ । ପେଟର ଜ୍ୱାଳା; କ୍ଷୁଧାର ଜ୍ୱାଳା—
Peṭa kashṭa — 1. Pangs of hunger.

পেটের কষ্ট  ୨ । ପର୍ଯ୍ୟାପ୍ତ ଭୋଜନ ନ ମିଳିବାର ଦୁଃଖ—
**पेटकी मार**  2. Lack of enough food; malnutrition.

**ପେଟ କାଟ**—ଦେ. ବି—୧ । ଖାଦ୍ୟ ବନ୍ଦ କରିବା—
Peṭa kāṭa  1. Stopping of one's food.
পেট কাটা  ପେଟ କାଟ ମଣ୍ଡ କାଟ ଏକା କଥା—ଢଗ ।
**पेट काटना**  ୨ । ପୂର୍ଣ୍ଣ ଭୋଜନ ନ କରି ଅଳ୍ପ ଅଳ୍ପ ଖାଇବା—
2 Taking less than one's usual meal.
୩ । ବ୍ୟୟ ଲାଘବ କରଣାର୍ଥ ଅଳ୍ପ ଖାଇବା—
3 Eating less than what is necessary with a view to retrenchment.

**ପେଟ କାଟି କାଟି ହେବା**—ଦେ. ବି—ପେଟରେ ଶୂଳ ହେବା—
Peṭa kāṭi kāṭi hebā  Colic pain.
পেট কামড়ান  **पेटका पाड़ा होना**
[ପେଟ କାଟ ହେବା, ପେଟ କାମୁଡ଼ିବା (କାମୁଡ଼ା ହେବା), ପେଟ ଟାଣିବା, ପେଟ ଟାଣି ହେବା, ପେଟକୁ ମାରିବା,ପେଟ ମୋଡ଼ି ହେବା—ଅନ୍ୟରୂପ]

**ପେଟ କାଟିବା**—ଦେ. କ୍ରି—ଖାଦ୍ୟ ଦ୍ରବ୍ୟର ପରିମାଣ କମ କରିବା—
Peṭa kāṭibā  To lessen one's usual quantity of meal.
পেট কাটা  **पेट काटना** (ପେଟ ମାରିବା—ଅନ୍ୟରୂପ)

**ପେଟ କାଢ଼ିବା**—ଦେ. କ୍ରି—୧ । ସ୍ଥୂଳୋଦରଯୁକ୍ତ ହେବା—
Peṭa kāṛhibā  1. To be pot-bellied.
(ପେଟ ବାହାର କରିବା—ଅନ୍ୟରୂପ)  ୨ । ସ୍ଫୀତଗର୍ଭଯୁକ୍ତ ହେବା—
পেট বাহির করা  2. To exhibit a swollen belly (due to
**पेट निकालना**  corpulence or advancad pregnancy).

**ପେଟ କାବୁରା**—ଦେ. ବି. ପୁଂ—ପେଟୁ; ଉଦରମ୍ଭରି—
Peṭa kāburā  Greedy; gluttonous.
(ପେଟ କାବୁରୀ—ସ୍ତ୍ରୀ)  পেট সর্বস্ব  **पेटार्थु**

**ପେଟ କାମୁଡ଼ା**—ଦେ. ବି—୧ । ଉଦର ପୀଡ଼ା; ଶୂଳ ରୋଗ—
Peṭa kāmuṛā  1. Colic pain; belly-ache.
পেট কামড়া  ୨ । ଉଦର ବଥାଇବା—
**पेट गड़ना**  2. Pain in the bowels
(ପେଟ ଖୋଞ୍ଚା, ପେଟ ଠେଣା, ପେଟ ଟାଣିବା, ପେଟ ବଥା, ପେଟ ବିନ୍ଧା, ପେଟ କାମୁଡ଼ି ହେବା, ପେଟ ମରି—ଅନ୍ୟରୂପ)

**ପେଟକୁ ଖାଇବା**—ଦେ. କ୍ରି—୧ । ଉଦର ପୂରଣ କରିବା—
Peṭaku khāibā  1. To take food.
୨ । କୌଣସି ରୋଗର ପ୍ରତିକାର ପାଇଁ ଭକ୍ଷ୍ୟ ଔଷଧ ବ୍ୟବହାର କରିବା—2. To take or eat a medicine.

**ପେଟକୁ ଦାନା ଯିବା**—ଦେ. ବି—୧ । ଖାଦ୍ୟ ଦ୍ରବ୍ୟ ଉଦରସ୍ଥ ହେବା—
Peṭaku dānā jibā  1. Eating of food.
পেটে অন্ন যাওয়া  ୨ । ଖାଦ୍ୟ ରୁଚିବା—2. Eating with relish
[ପେଟକୁ ଅ(ଆ)ଧାର ଯିବା—ଅନ୍ୟରୂପ]
( ଯଥା—ଦୁଇ ମାସ ଜ୍ୱରରେ ଯିବୁ ମୋ ପେଟକୁ ଦାନା ଯାଉ ନାହିଁ । )

**ପେଟକୁ ଦେଇ ପିଠିକି ମାରିବା**—ଦେ.କ୍ରି—କୌଣସି ବ୍ୟକ୍ତିକୁ ଖାଇବାକୁ ଦେଇ ତାକୁ ପ୍ରହାର କରିବା-
Peṭaku dei piṭhiki māribā
পেটে দিয়ে পিঠে মারা  To give a person food and then beat him.
(ପେଟରେ ଦେଇ ପିଠିରେ ମାରିବା—ଅନ୍ୟରୂପ)

**ପେଟକୁ ମାରିବା**—ଦେ. ବି—୧ । ଶୂଳ ରୋଗ—
Peṭaku māribā  1. Colic pain.
କ୍ରି—ଝାଡ଼ା ପରିଷ୍କାର ହେବା ବିଶ୍ୱାସରେ ପେଟରେ ହାତ ଦ୍ୱାରା ଥୁଟୁକି ମାରିବା—To pat on the belly ( with a belief that thus there will be a cleansing of the bowels ).

**ପେଟକୁ ଯିବା**—ଦେ. କ୍ରି—(ଖାଦ୍ୟ) ଉଦରସାତ୍ ହେବା, ଖିଆ ହେବା-
Peṭaku jibā  To be eaten.
(ପେଟରେ ପଡ଼ିବା—ଅନ୍ୟରୂପ)  পেটে পড়া  **पेटमे जाना**

**ପେଟ ଖଙ୍କାରି(ଳି)ବା**—ଦେ. କ୍ରି—ପେଶୀକୁ ଗ୍ଳନ କରିବା ଦ୍ୱାରା ପେଟକୁ ଗହ୍ୱରାକୃତି କରିବା—
Peṭa khankāri(li)bā
(ପେଟ (ଖ)ଖାଙ୍କିବା—ଅନ୍ୟରୂପ)  To make the belly recede towards the back by muscular effort.

**ପେଟ ଖସା**—ଦେ. ବି—ଗର୍ଭପାତ—
Peṭa khasā  Abortion; miscarriage.

**ପେଟ ଖସା(ସେ)ଇବା**—ଦେ. କ୍ରି—୧ । ହାତ ଦ୍ୱାରା ପେଟରେ ତେଲ ମର୍ଦ୍ଦନ କରି ଉପରୁ ତଳକୁ ଓ ତଳୁ ଉପରକୁ ହାତ ଚଳାଇବା—
Peṭa khasā(se)ibā
পেট খসা
1. To massage the outside of the stomach.
୨ । ସ୍ତ୍ରୀର ଗର୍ଭସ୍ରାବ ବା ଗର୍ଭପାତ କରିବା; ପେଟ ଭଙ୍ଗାଇବା—
2 To cause abortion; to bring about miscarriage.

**ପେଟ ଖସିବା**—ଦେ. ବି—୧ । ପେଟ ଖସା ( ଦେଖ )
Peṭa khasibā  1. Peṭa khasā ( See )
পেট খসা  ୨ । ଜନ୍ମ କରିବା ସମୟ ନିକଟବର୍ତ୍ତୀ ବା ଆସନ୍ନ ହେବାରୁ ଗର୍ଭର ଫୁଲା ତଳପେଟକୁ ଖସି ଆସିବା—
2 The swelling of the belly descending to the abdomen just before a woman is confined.

**ପେଟ ଖୁଞ୍ଚି ହେବା**—ଦେ. ବି—ଉଦର ମଧ୍ୟରେ କଣ୍ଟା ଫୋଡ଼ିବା ପରି ଯନ୍ତ୍ରଣା ହେବା; ପେଟକୁ ମାରିବା—
Peṭa khunchi hebā
পেট খুঁচা  Stinging sensation inside the
**पेटकी पीड़ा होना**  stomach; colic pain.
[ପେଟ କଣ୍ଟା ମାଇ(ରି)ଲା ଭଳି ହେବା—ଅନ୍ୟରୂପ)

**ପେଟ ଗଡ଼ ଗଡ଼ ହେବା**—ଦେ. ବି—ଅଜୀର୍ଣ୍ଣ ବା ବାୟୁଯୋଗୁଁ ପେଟ ମଧ୍ୟରେ ଶବ୍ଦ—Noise in
Peṭa gaṛa gaṛa hebā
পেট গড় গড় করা  the stomach due to indiges-
**पेट गुड़गुड़ाना**  tion or bowel complaints.
(ପେଟ ଖରାପ ହେବା, ପେଟ ଗଡ଼ବଡ଼ ହେବା, ପେଟ ଗଡ଼ଚଢ ହେବା, ପେଟ ଡାଡ଼ ହେବା, ପେଟ ଗୁଡ଼ୁଗୁଡ଼ୁ ହେବା, ପେଟ ଫୁଟୁ ଫୁଟୁ ହେବା —ଅନ୍ୟରୂପ)

**ପେଟ ଗଡ଼ବଡ଼(ଡ଼)**—ଦେ. ବ—ଉଦରସ୍ଥ ପାକ ଯନ୍ତ୍ରର କ୍ରିୟା ଖରାପ ହେବା—Derangement of the stomach
Peta gardabarda(rdi)
পেট খারাপ **पेटकी गड़बड़ी**
(ପେଟ ବିଗିଡ଼ିବା, ପେଟ ବିଗିଡ଼ିବା—ଅନ୍ୟରୂପ)

**ପେଟ ଘୁ ଘୁ ହେବା**— ଦେ. ବ.—ବହୁକାଳ ନ ଖାଇଲେ ଖାଲି ପେଟରେ ଘୁ ଘୁ ଶବ୍ଦ ଶୁଣା ଯିବା—A sound heard inside the stomach of a person who has been fasting.
Peta ghu ghu hebā
পেট হড় হড় করা
(ପେଟ ଘୁଉ ଘୁଉ ହେବା—ଅନ୍ୟରୂପ)

**ପେଟ ଘାଣ୍ଟି ହେବା**—ଦେ. ବ.—୧ । ଅଜୀର୍ଣ୍ଣ ବା ବାୟୁ ଯୋଗୁଁ ଉଦର ମଧ୍ୟରେ ଆନ୍ଦୋଳନ ଓ ଶବ୍ଦର ଅନୁଭୂତି ହେବା —1 Agitation inside the stomach due to indigestion or wind.
Peta ghāṇṭi hebā
ପେଟ ଘାଣ୍ଟି ଚକଟ ହେବା, ପେଟ ଚକଟ ହେବା, ପେଟ ଗୁଗୁଣ୍ଡି ହେବା } ଅନ୍ୟରୂପ
**पेटमें खलबली पड़ना**
୨ । ଘୋର ଚିନ୍ତା—2. Great anxiety.

**ପେଟ ଚିରିବା**—ଦେ. କ୍ରି—୧ । ଗର୍ଭିଣୀର ପେଟକୁ ଅସ୍ତ୍ରଦ୍ୱାରା ଚିରି ଶିଶୁକୁ ବାହାର କରିବା—1 To rip open the stomach of a pregnant woman and bring out the child from it.
Peta chiribā
পেট হাসান
**पे चीरना**
[ଦ୍ର—ପ୍ରସବ କରି ନ ଥିବା ପୂର୍ଣ୍ଣଗର୍ଭା ସ୍ତ୍ରୀ ମୃତା ହେଲେ ଶ୍ମଶାନରେ ତାହାର ଗର୍ଭ ଚିରି ହୋଇ ତା ପେଟରୁ ଭ୍ରୂଣ କଢ଼ା ହେବା ପରେ ମାତାର ଶବକୁ ଓ ଭ୍ରୂଣକୁ ଦାହ କରାଯାଏ । ଏଥିପାଇଁ ସ୍ତ୍ରୀମାନଙ୍କ ମଧ୍ୟରେ ଗୋଟିଏ ଗାଳି ଅଛି 'ତୋ ପେଟ ଚିରି ହେଉ' ଅର୍ଥାତ୍ ତୁ ପ୍ରସବ କରି ନ ପାରି ମରୁ ।]
୨ । ଉଦର ମଧ୍ୟସ୍ଥ ଅର୍ବୁଦ , ଆଦିକୁ ଚିକିତ୍ସା କରିବା ପାଇଁ ପେଟରେ ଅସ୍ତ୍ରୋପଚାର କରିବା—2. To perform an operation in the stomach.

**ପେଟ ଛପା(ପେ)ଇବା**—ଦେ. କ୍ରି.—ନିଜର ଗର୍ଭାବସ୍ଥା ଗୋପନ କରିବା—To conceal one's pregnancy.
Peta chhapā(pe)ibā
[ପେଟ ଲୁ(ଲୁ)ଚ୍(ଚୋ)ଇବା—ଅନ୍ୟରୂପ]
(ଯଥା—ଧାଇକୁ ପେଟ ଛପାଇବା ନ୍ୟାଯ୍ୟ ।)

**ପେଟ ଜଳିବା**—ଦେ. ବ.—ଜଠରାଗ୍ନି ପ୍ରଜ୍ୱଳିତ ହେବା, କ୍ଷୁଧାରେ ଅସ୍ଥିର ହେବା—Acute hunger; pangs of hunger.
Peta jalibā
পেট জলা **पेट जलना**
(ପେଟ ପୋଡ଼ିବା; ପେଟ ପୋଡ଼ିଯିବା—ଅନ୍ୟରୂପ)

**ପେଟ ଜାଳା**—ଦେ. ବ.—୧ । ଅନ୍ନ ଚିନ୍ତା—
Peta jālā 1. Anxiety for getting one's meal
(ପେଟ ଜ୍ୱାଳା—ଅନ୍ୟରୂପ) ୨ । କ୍ଷୁଧାର ଜ୍ୱାଳା—
পেটের জ্বালা **पेटकी पीड़ा** 2, The pangs of hunger.
୩ । ଉପର୍ଯ୍ୟୁପରି ଗର୍ଭବତୀ ହେବାର ଯନ୍ତ୍ରଣା—2. The pangs due to repeated pregnancy.

**ପେଟ ଟାଣି ବସିବା**—ଦେ. କ୍ରି.—ପୂର୍ଣ୍ଣ ଭୋଜନ ପରେ ଉଚ୍ଚ ପେଟଟି ଦେଖାଇ କରି ବସିବା—To sit with a protruding belly after a full meal.
Peta ṭāṇi basibā
পেট দেখান
**पेट दिखाना**
ଭୋଜନ କରି ସୁଖେ ବସେ ପେଟ ଟାଣି ।
କୃଷ୍ଣସିଂହ. ମହାଭାରତ. ସଭା ।

**ପେଟ ଟାଣିବା**—ଦେ. କ୍ରି.—ପେଟକୁ ମାରିବା—
Peta ṭānibā Colic pain.

**ପେଟ ଥଣ୍ଡା ହେବା**—ଦେ. ବ.—୧ । ଖାଦ୍ୟଦ୍ୱାରା ଜଠରାଗ୍ନିର ଶାନ୍ତି, ଭୋଜନଦ୍ୱାରା ପରିତୃପ୍ତି —
Peta thaṇḍā hebā
পেট ঠাণ্ডা হওয়া 1. Satiety on taking food.
**पेट थण्ढा होना** ୨ । ଔଷଧାଦି ପ୍ରୟୋଗରେ ଉଦର ମଧ୍ୟରେ ଅନୁଭୂତ ଦାହର ନିବୃତ୍ତି—2. Allevation of burning sensation inside the stomach by medicine

**ପେଟ ଦରଜ(ଦ) ହେବା**—ଦେ. ବ.—୧ । ପେଟରେ ଦରଜ ବୋଧ ହେବା—Pain in the stomach.
Peta daraja (da) hebā
পেটের দর্দ **पेटकी दर्द** **पेटमे बल पड़ना**
ପେଟ ଧରିବା, ପେଟ ପଗ୍ରଶ ହେବା, ପେଟ ପ୍ରାଣ ହେବା } ଅନ୍ୟରୂପ
୨ । ବହୁତ ହସିବା ଯୋଗୁଁ ପେଟରେ ବ୍ୟଥା ଜନ୍ମିବା—2. A feeling of distress in the belly due to laughing too much

**ପେଟ ଦୁଃଖ**—ଦେ. ବ.—୧ । ପାକ ଯନ୍ତ୍ରର ବିକ୍ରିୟା—
Peta duhkha 1. Derangement of the stomach; digestive troubles.
পেটের দুখ **पेट दुखना**
(ପେଟ ଦୁଖ, ପେଟର ଦୁଃଖ—ଅନ୍ୟରୂପ)
୨ । ମନୋଗତ ବେଦନା—2. Internal trouble.
ସେ ପର ତପେଇ ପେଟର ଦୁଃଖ ଜାଣି ପାରେ – ଉଗ ।
୩ । ପେଟ ମଧ୍ୟରେ ହେଉଥିବା ବେଦନା—
3. The pangs felt inside the belly.
ପେଟ ଦୁଖ କିଠି କାହୁଁ ଜାଣିବ ?—ଉଗ

**ପେଟ ଦେଖା(ଖେ)ଇବା**—ଦେ. କ୍ରି.—୧ । ଗର୍ଭଧାରଣ ହେବା ନ ହେବା ବିଷୟ ପରୀକ୍ଷା କରିବା ପାଇଁ ଧାଈକୁ ପେଟ ଦେଖାଇବା—1. To have one's belly examined by a midwife to find out if one is pregnant.
Peta dekhā (khe)ibā
পেট দেখান
**पेट दिखाना**
୨ । ନିଜର ଖାଦ୍ୟାଭାବ ମୋଚନାର୍ଥ ଦାତା ଆଗକୁ ଆପଣା ଅବସ୍ଥା ଜଣାଇବା—1. To express one's want before a doner.

**ପେଟ ଧନ୍ଦା**—ଦେ. ବ.—୧ । ଜୀବିକା ନିର୍ବାହର ଉପାୟ—
Peta dhandā 1 Means of livelihood.
(ପେଟର ଧନ୍ଦା—ଅନ୍ୟରୂପ) ୨ । ନିଜର ଭୋଜନାର୍ଥ ପାକ କ୍ରିୟାର ଉଦ୍ୟୋଗ—2. Preparation for cooking one's meal.
পেটের ধাঁধা
**पेटका धंधा**

**ପେଟନ**—ସ. ବ—(ପିଟ୍ ଧାତୁ + ଅନ)—ମାରିବା; ପିଟିବା—
Peṭana Striking; beating.

**ପେଟ ପାଟଣା**—ଦେ. ବ—ଜୀବିକା—
Peta pāṭaṇā (one's) Living; means for living; livelihood,

**ପେଟ ପାରି**—ଦେ. ବି—ଡଙ୍ଗାର ପେଟରେ ବା ତଳରେ ଆଡ଼ ଭାଗରେ ଦିଆଯାଇଥିବା ଠେଁସ କାଠ—A cross-piece of wood given at the bottom of a country boat.
Peṭa pāri
[ପେଟ ପାରି(ରେ)ଣୀ—ଅନ୍ୟରୂପ]
[ଦ୍ର—ଏହା ଡଙ୍ଗାର କାନ୍ଥ ଦ୍ୱୟର ମୂଳକୁ ଠେଁସି କରି ରଖେ ।]

**ପେଟ ପିଲା**—ଦେ. ବି—୧ । ଗର୍ଭସ୍ଥ ଭ୍ରୂଣ—1. Fœtus; embryo.
Peṭa pilā
পেটেরবাছা **पेटकीबच्चा**
ଗଣ୍ଡଦଙ୍କ ମାତା ଯେ ପେଟ ପିଲାଙ୍କୁ ଥାନ୍ତି ନ ପକାଇ ରକତ ଟୋପାଙ୍କ—କୃଷ୍ଣସିଂହ. ମହାଭାରତ ବନ ।
୨ । ମାତୃଗର୍ଭରୁ ଉତ୍ପନ୍ନ ସନ୍ତାନ—2. Offspring.

**ପେଟ ପୀଡ଼ା**—ପ୍ରାଦେ (କଟକ) ବି—ପେଟ ମରୁ—Colic pain
Peṭa pirḍā

**ପେଟ ପୁଅ**—ଦେ. ବି—ଗର୍ଭସ୍ଥ ସନ୍ତାନ—Offspring.
Pēṭa pua পেটেরছেলে **पेटकालड़का**
ତୁମ୍ଭେ ଏକା ମୋହର ପେଟ ପୁଅ ସୁତ
ତୁମ୍ଭ ସେନ ମୁହିଁ ପାଇବ ସେ ଅନନ୍ତ—କୃଷ୍ଣସିଂହ. ମହାଭାରତ, ବନ ।

**ପେଟ ପୂର**—ଦେ. ବି—( ଦ. ପେଟ ଓ ପୂର୍ଣ୍ଣ)—ପୂରା ପେଟକରି ଖାଇବା; ପୂର୍ଣ୍ଣ ଭୋଜନଜନିତ ସନ୍ତୋଷ—Satisfaction due to a full meal; eating to the fill.
Peṭa pūrā
(ପେଟ ଭରା—ଅନ୍ୟରୂପ)
পেটভরা **पेटभर**
ବିଣ—ପୂର୍ଣ୍ଣ ଭୋଜନ କରିଥିବା—Having one's bellyful.
ନହି ଚଳେ ଅଙ୍ଗପତ୍ତ, ପେଟ ପୂର ବହୁ ଟରେ ଖାଅନ୍ତି, କାଳି ହବ ସଙ୍କଟନ୍ତ—ଭଗ ।
କ୍ରି. ବିଣ—୧ । ପୂର୍ଣ୍ଣ ସନ୍ତୋଷ ସହିତ—2. With full satisfaction.
୨ । ସମ୍ପୂର୍ଣ୍ଣ ସନ୍ତୋଷ ହେବା ପର୍ଯ୍ୟନ୍ତ—2. To satiety.

**ପେଟ ପୂର(ରେ)ଇବା**—ଦେ. କ୍ରି—୧ । ଭୋଜନ କରିବା—1. To eat.
Peṭa pūrā(re)ibā
পেটটালা, পেটপোবা **पेटपालना**
୨ । ସତ୍ ବା ଅସତ୍ ଉପାୟରେ ଖାଦ୍ୟ ବା ଅଖାଦ୍ୟ ଦ୍ୱାରା ଯେନ ତେନ ଉଦର ଭର୍ତ୍ତି କରିବା—2. To fill up one's stomach anyhow.

**ପେଟ ପୂର କରି ଖାଇବା**—ଦେ. କ୍ରି—ପୂର୍ଣ୍ଣ ଭୋଜନ କରିବା—To eat one's fill.
Peṭa pūrā kari khāibā
(ପେଟ ପୂର(ରେ)ଇ ଖାଇବା; ପେଟେ ଖାଇବା—ଅନ୍ୟରୂପ)
পেটপোরাখাওয়া **पेटभरखाना**

**ପେଟ ପୂରିବା**—ଦେ. ବି—୧ । ଖାଦ୍ୟ ଦ୍ୱାରା ଉଦରର ପୂର୍ତ୍ତି—1. Having a full meal.
Peṭa pūribā
পেটভরা **पेटभरजाना**
ଏତେ ଖାଇ ନ ପୂରିବ ପେଟ,
କର ଓଳିରେ ମାଗିବୁଁ ଭାତ—ଭଗ ।
୨ । (ଲକ୍ଷଣାର୍ଥ) ସନ୍ତୁଷ୍ଟ ହେବା; ଆଶାର ତୃପ୍ତି—2. (figurative) Fulfilment of one's wish or hope.
ଗହିଁ ଏବ ବିଳା ଖାଇରୁ ନାହିଁ. ମୁଁ ଭାବି ଗସ୍ତ ଶୋଭେଇ ପୂରିଥିବ .
ତବେ ପବେ କଥା କହୁନ୍ ନାହିଁ—ଭଗ ।

**ପେଟ ପୋକ**—ପ୍ରାଦେ (ବାଲେଶ୍ୱର) ବି—ଗର୍ଭସ୍ଥ ସନ୍ତାନ—Embryo; foetus
Peṭa poka

**ପେଟପୋଛା**—ପ୍ରାଦେ (ସମ୍ବଲପୁର) ବିଣ—(ଭୁଲ.ହି.ପେଟ ପୋଛନା=ଅନ୍ତିମ ସନ୍ତାନ)—କୋଡ଼ପୋଛା; ଯେଉଁ ସନ୍ତାନ ପରେ ମାତାଙ୍କର ଆଉ ସନ୍ତାନ ଜନ୍ମେ ନାହିଁ—Last (offspring).
Peṭapochhā
ବି—କୋଡ଼ ପୋଛା ପିଲା, ଅନ୍ତିମ ସନ୍ତାନ—A mother's last or ultimate child.
[ଦ୍ର—ଯେଉଁ ଘର କୌଣସି ପାତ୍ରର ଉଦର ନିଃଶେଷରୂପେ ପୋଛା ଅଣିବା ପରେ ପାତ୍ରରେ ଆଉ କଛି ଜନିଷ ନ ଥାଏ, ସେହି ଉପମାରେ କୋଡ଼ପୋଛା, ପେଟପୋଛା ଶବ୍ଦମାନ ବ୍ୟବହୃତ ହୋଇ ଅଛି । ଅର୍ଥାତ୍ ଯେଉଁ ସନ୍ତାନ ଜନ୍ମ ହେଲା ପରେ ମାଆଙ୍କ ପେଟ ନିଃଶେଷରୂପେ ପୋଛା ହୋଇଯାଏ ଓ ତତ୍ପରେ ଆଉ କୌଣସି ସନ୍ତାନ ଜନ୍ମେ ନାହିଁ ।]

**ପେଟ ପୋଡ଼ା**—ଦେ. ବି—ସ୍ତ୍ରୀମାନେ ଗର୍ଭ ନ ହେବାର ଔଷଧବିଶେଷ—Medicine used to prevent conception; centraceptive medicine
Peṭa porḍā
(ପେଟପଡ଼ା—ଅନ୍ୟରୂପ)
পেটিপোড়া

**ପେଟ ପୋଷା**—ଦେ. ବି—୧ । ଜୀବିକା ନିର୍ବାହ, ଉଦର ପୋଷଣ—1. Earning one's livelihood.
Peṭa poshā পেটপোষা
୨ । ଯଦ୍ଦ୍ୱାରା ମନୁଷ୍ୟର ଜୀବିକା ନିର୍ବାହ ହୁଏ—2 Means of subsistence.

**ପେଟ ପୋଷିବା**—ଦେ. କ୍ରି—ଉଦର ପୋଷଣ କରିବା—To maintain one's self
Peṭa poshibā
(ପେଟ ପାଳିବା—ଅନ୍ୟରୂପ)
ପେଟ ପୋଷ ନାହିଁ ଦୋଷ—ଭଗ
পেটপোষা **पेटपालना**

**ପେଟ ଫଟା**—ଦେ. ବିଣ—ପୂର୍ଣ୍ଣ ( ଭୋଜନ); ପେଟ ଫାଟି ଯିବାପରି (ଭୋଜନ)—Full (meal).
Peṭa phaṭā পেটফাট্টা

**ପେଟ ଫମ୍ପା**—ଦେ. ବି—୧ । ଗର୍ଭଷ୍ଫୀତି; ବାୟୁର ପ୍ରକୋପରୁ ଗର୍ଭ ଷ୍ଫୀତ ହେବା—Tympanites; flatulency; swelling of the belly (due to wind in the bowels).
Peṭa phampā
ପେଟଫମ୍ପା(ମ୍ପେ)ଇବା, ପେଟଫାମ୍ପିବା, ପେଟଫୁଲା, ପେଟଫୁଲି(ଲେ)ଇବା—ଅନ୍ୟରୂପ
পেটফুলা পেটফাম্পা **पेटफूलना**
୨ । (ପେଟ ଫୁଲିଲେ ମନୁଷ୍ୟ ଯେପରି ଅସ୍ଥିର ହୁଏ ସେହିପରି) କୌଣସି ଗୁପ୍ତକଥା ପ୍ରକାଶ ନ କରିବା ପର୍ଯ୍ୟନ୍ତ ଅସ୍ଥିର ହେବା—2 Uneasy feeling till one gives out a secret entrusted to him.

**ପେଟ ଫାଟିଯିବା**—ଦେ ବି—୧ । ବହୁ ଭୋଜନ ଯୋଗୁଁ ଗର୍ଭଷ୍ଫୀତି; ବାୟୁ ଯୋଗୁଁ ପେଟ ଫାଟିବା ପରି ବୋଧ ହେବା—1. A feeling of bursting of the stomach due to excessive eating or wind.
Peṭa phāṭijibā
(ପେଟ ଫାଟିପଡ଼ିବା—ଅନ୍ୟରୂପ)
পেট ফেটে যাওআ
**पेट फटजाना**
୨ । ଗର୍ଭପାତ—2. Abortion.

୩ । ଗର୍ଭସ୍ଥ ଶିଶୁର ଅବୟବ ବା ଆକାର ଅସାଧାରଣରୂପେ ପୁଷ୍ଟ ହେବା ଯୋଗୁଁ ଗର୍ଭିଣୀର ଉଦର ବିଶେଷ ଭାବରେ ଫୁଲି ହୋଇ ଗର୍ଭିଣୀକୁ ଅସ୍ୱସ୍ତି ବୋଧ ହେବା—3. Very uneasy feeling of the mother owing to an unusually large growth of the child in the womb.

**ପେଟ ଫୁଟିବା**—ଦେ. କ୍ରି—ଅଜୀର୍ଣ୍ଣ ବା ବାୟୁ ଯୋଗୁଁ ପେଟ ଭିତରେ
Peṭa phuṭibā ଭୁଡ ଭୁଡ ଶବ୍ଦ ହେବା—
(ପେଟ ଟକ ଟକ ହେବା—ଅନ୍ୟରୂପ) Sounds in the belly
पेट फूटफूट करना due to indigestion or wind.
**पेट गुड़ गुड़ाना**

**ପେଟ ଫୁଲ(ଲେ)ଇବା**—ଦେ କ୍ରି—୧ । ଅଜୀର୍ଣ୍ଣଜନିତ ବା ବାୟୁରୋଗ
Peṭa phulā(le)ibā ଜନିତ ଉଦର ଫୁଲି, ପେଟ ଫାମ୍ପିବା—
पेटफुला 1 Swelling of the abdomen due to
**पेटफुलना** indigestion or wind in the stomach.
୨ । (ଲକ୍ଷଣାର୍ଥ) ବିମର୍ଷତା—2. (figurative) Sullenness.

ଦେଖିଲେ କଥା ନ କହି
ନ ଦେଖିଲେ ପେଟ ଫୁଲାଇ ଥାଏ । ଧଃ ।

**ପେଟଫୁଲା ଶାଗ**—ପ୍ରାଦେ. (ବାଲେଶ୍ୱର) ବି—ପାଣିକୂଳରେ ଜନ୍ମୁଥିବା
Peṭaphulā śāga ଶ୍ୱେତବର୍ଣ୍ଣ ପତ୍ରଯୁକ୍ତ କ୍ଷୁଦ୍ର ଶାକବିଶେଷ—
A kind of aquatic pot herb
[ ଦ୍ର—ଏହାକୁ ଖାଇଲେ ପେଟ ଫୁଲିବ ବୋଲି ଲୋକେ ଭୟରେ ଖାଆନ୍ତି ନାହିଁ । ଏହା ଦେଖିବାକୁ ପିତାଶାଗ ପରି । ]

**ପେଟ ଫୁଲିବା**—ଦେ. କ୍ରି—୧ । ପେଟ ଫୁଲାଇବା (ଦେଖ)
Peṭa phulibā 1. Peṭa phulāibā (See)
पेटफूला ୨ । ଜନ୍ମ କରିବାର ଅବ୍ୟବହିତ ପରେ ପ୍ରସୂତିର
**पेटफुलना** ଗର୍ଭର ଚାରିପାଖେ ଲୁଗା ନ ବାନ୍ଧିବା ଯୋଗୁଁ ଗର୍ଭର ଫୁଲିବା—2. Swelling of the abdomen of a newly delivered mother unless it is immediately tied with a bandage.

**ପେଟ ବଥା**—ଦେ. ବି—୧ । ଶୂଳ ରୋଗ—
Peṭa bathā 1. Colic
ପେଟମରା } ଅନ୍ୟରୂପ ୨ । ଗର୍ଭିଣୀର ପ୍ରସବ ବେଦନା—
ପେଟବିନ୍ଧା } 2 Pangs of child-birth.
पेटेंव व्यथा **पेटको पीड़ा**

**ପେଟ ବଥା(ଥେ)ଇବା**—ଦେ. କ୍ରି—୧ । ପେଟକୁ ମାରିବା—
Peṭa bathā(the)ibā 1. Colic pain.
पेटबथान ୨ । ପ୍ରସବ କରିବା ପୂର୍ବରୁ ବେଦନା ଅନୁଭବ କରିବା,
**पेटकी पीड़ा होना** ପ୍ରସବଶୂଳ—2. Undergoing pangs before childbirth.

**ପେଟ ବନ୍ଧ(ନ୍ଧ)ନ କରିବା**—ଦେ. କ୍ରି—୧ । ମନ୍ତ୍ର ଯନ୍ତ୍ର ପ୍ରୟୋଗଦ୍ୱାରା ପୂର୍ଣ୍ଣ
Peṭa banda(ndha)na karibā ଗର୍ଭବତୀର ପ୍ରସବ କ୍ରିୟାକୁ
(ପେଟ ବାନ୍ଧିବା—ଅନ୍ୟରୂପ) ବିଳମ୍ବିତ କରିବା—1. To cause delay in delivery by the use of charms or black magic

୨ । ମନ୍ତ୍ର ଯନ୍ତ୍ରଦ୍ୱାରା ବନ୍ଧ୍ୟା କରାଇବା—
2 To cause sterility in a woman by applying charms.

**ପେଟ ବାନ୍ଧିବା**—ଦେ. କ୍ରି—ପ୍ରସୂତିର ଗର୍ଭ ଫୁଲି ନ ଯିବ ବୋଲି ଜନ୍ମ
Peṭa bāndhibā କରିବାର ଅବ୍ୟବହିତ ପରେ ପେଟ ଚାରିପାଖେ
(ପେଟ ଭିଡିବା—ଅନ୍ୟରୂପ) ଲୁଗା ଭିଡିବା—To tie a cloth
पेट बाँधा round the waist of a woman who has
**पेट बाँधना** been newly delivered of a child, so as the belly will not become swollen afterwards.

**ପେଟ ବାହାର କରିବା**—ଦେ. କ୍ରି—ସ୍ଥୂଳୋଦର ଯୁକ୍ତ ହେବା—
Peṭa bāhāra karibā To have a pot-belly.
पेटबाहिव करना **पेट निकालना**

**ପେଟ ବାହାରିବା**—ଦେ. କ୍ରି—୧ । ଉଦରର ଫୁଲିବା—
Peṭa bāhāriba 1. The swelling of the
पेट उठा, पेट ओठा belly or abdomen; being
**पेट निकलना** pot-bellied.
୨ । ଗର୍ଭାବସ୍ଥା ଯୋଗୁଁ ଉଦରର ଫୁଲିବା—
2. Swelling of the belly due to pregnancy.

**ପେଟ ବିକଳ**—ଦେ. ବି—କ୍ଷୁଧାର ଜ୍ୱାଳା—
Peṭa bikaḷa The pangs of hunger.
पेटेंव जाला(दाय) ପେଟ ବିକଳରେ ମଧ୍ୟା ଯୋଗୀ । ଧଗ ।
**पेटको ज्वाला**

**ପେଟ ବିକଳା**—ଦେ ବିଣ. ପୁଂ—କ୍ଷୁଧାରେ ବା ଅନ୍ନାଭାବରୁ ଯେ
Peṭa bikaḷā ଚଳବଳ ବା ଛଟପଟ ହୁଏ—
(ପେଟ ବିକଳିଆ—ଅନ୍ୟରୂପ) Restless through hunger.
(ପେଟ ବିକଳୀ, ପେଟ ବିକଳେଇ—ସ୍ତ୍ରୀ)

ଏହି ଭଗ୍ନରେ କୌଣସି ପେଟବିକଳିଆ ବ୍ରାହ୍ମଣ ଜଳପାନ ମାଗି ବସିଲେ ସାଥୀରେ ଚିନି ଆଙ୍ଗୁଳିଆ ପୋଖରା ପୁଡ଼ା ଚୁଡ଼ା ଥିବ ପଥିକୁ ଯୋଗାଉ ଥାନ୍ତି ।
ଫକୀରମୋହନ, ଭ୍ରମଣ ଆଠଗଡ଼ ।

**ପେଟ ଭଗାରି ହେବା**—ଦେ. କ୍ରି. ( ଭାଇ ଭଗାରି ଯେଉଁପରି ବିବାଦ
Peṭa bhagāri hebā ଲଗାଇ ମନୁଷ୍ୟକୁ ଅସ୍ଥିର କରି ପକାନ୍ତି ସେହିପରି ପେଟ ମନୁଷ୍ୟକୁ ଅସ୍ଥିର କରିବା)—
୧ । ଉଦର ଜ୍ୱାଳାରୁ ମନୁଷ୍ୟର ଅସ୍ଥିର ହେବା ଅବସ୍ଥା—
1. Restlessness on account of hunger
୨ । (ସ୍ତ୍ରୀ) ଅସମୟରେ ବା ବାରମ୍ବାର ଗର୍ଭବତୀ ହେବା ହେତୁ କଷ୍ଟଭୋଗ କରିବା ଅବସ୍ଥା—2 Suffering much inconvenience on account of repeated pregnancy.
୩ । (ସ୍ତ୍ରୀ) ଅସମୟରେ ବା ଅତ୍ୟଳ୍ପ କାଳ ବ୍ୟବଧାନରେ ରଜସ୍ୱଳା ହେବା ଯୋଗୁଁ ଅସୁବିଧା ଭୋଗ କରିବା ଅବସ୍ଥା—
3. Suffering inconvenience on account of being menstruated out of time or at short intervals.

**ପେଟ ଭଙ୍ଗା**—ଦେ. ବି—୧ । ଗର୍ଭପାତ କରାଇବା—
Peṭa bhaṅgā 1, Causing of abortion.

ପେଟଫେଲା ୨ । ଗର୍ଭପାତ—2. Abortion; miscarriage.
पेट गिराना ବି ଣ. ପୁଂ—ଅନ୍ୟର ଗର୍ଭପାତକାରୀ—
[ପେଟ ଭଙ୍ଗା(ଙ୍ଗେ)ଇ—ସ୍ତ୍ରୀ] Causing of abortion of another; abortifacient

ପେଟ ଭଙ୍ଗା(ଙ୍ଗେ)ଇବା—ଦେ. କ୍ରି—୧ । କୌଣସି ସ୍ତ୍ରୀର ଗର୍ଭପାତ କରାଇବା—1. To cause abortion of a woman.
Peta bhangā(nge)ibā
ପେଟ ভাঙ্গান
पेट गिराना ୨ । (ସ୍ତ୍ରୀ ନିଜେ) ଆପଣା ଗର୍ଭପାତ କରାଇବା—2. To cause one's own abortion or miscarriage.

ପେଟ ଭାଙ୍ଗିବା—ଦେ. କ୍ରି—ଅନ୍ୟ ସ୍ତ୍ରୀର ଗର୍ଭପାତ କରାଇବା—
Peta bhāngibā To cause another's abortion; to bring on a miscarriage
পেটভাঁগা
पेट गिराना ଦେ ବି—ଗର୍ଭପାତ ବା ଗର୍ଭସ୍ରାବ—
Miscarriage or abortion

ପେଟ ଭାତ—ଦେ. ବି—ଉଦରାନ୍ନ ମାତ୍ର, ଚାକର ଯୋଗୁଁ କୌଣସି ନଗଦ ଦରମା ନ ମିଳି କେବଳ ମୁଠାଏ ଖୋରାକ ମିଳିବା—Only fooding given as wages to a servant.
Peta bhāta
(ପେଟମୁଠାକ; ପେଟମୁଠାଏ—ଅନ୍ୟରୂପ)
পেটভাতা
(ଯଥା—ସେ ପେଟଭାତ ଖାଇ ସେଠେଇଁ ଚାକର କରୁଛି ।)

ପେଟ ମାଡ଼ିବା—ଦେ. କ୍ରି—୧ । ଭଲଅଡ଼କୁ ପେଟ ଲଗାଇ ମୁହଁମାଡ଼ି ଶୋଇବା—1 To lie with one's belly to the ground.
Peta mārdibā
(ପେଟ ମାଡ଼ି ଶୋଇବା—ଅନ୍ୟରୂପ)
୨ । ପେଟକୁ ତକିଆରେ ଠେସ ଲଗାଇବା—
2. To have one's belly propped up by a pillow.

ପେଟ ମାରିବା—ଦେ କ୍ରି—୧ । (ଲକ୍ଷଣାର୍ଥ) ଭୋକ ହେଲା ବେଳେ ନ ଖାଇବା—1. Not to eat when hungry.
Peta māribā
୨ । ପେଟ କାଟିବା (ଦେଖ)—2. Peta kātibā (See)

ପେଟ ମୋଡ଼ା—ଦେ. ବି—ଉଦର ବଥାଇବା—
Peta mordā Pain in the bowels; colic pain.
(ପେଟ ମୋଡ଼ି ହେବା, ପେଟ ମୋଡ଼ ମୋଡ଼ ହେବା—ଅନ୍ୟରୂପ)

ପେଟର କଥା—ଦେ. ବି. —ମନୋଗତ ଭାବ—
Petara kathā One's inmost thoughts.
পেটের কথা पेटकी बात

ପେଟର ଜାଳା—ଦେ. ବି.—କ୍ଷୁଧାର ଉଦ୍ରୀଡ଼ନ—
Petara jālā The pangs of hunger
পেটে জ্বালা पेटकि जाला (ପେଟର ଜଳା – ଅନ୍ୟରୂପ)

ପେଟର ଦାଏ(ୟ)—ଦେ. ବି.—୧ । କ୍ଷୁଧାର ଜ୍ୱାଳା, ବୁଭୁକ୍ଷାର ଉଦ୍ରୀଡ଼ନ—
Petara dāe (ya) 1 The pangs of hunger.
পেটের দায় ୨ । ଉଦରାନ୍ନ ସଂସ୍ଥାନ ପାଇଁ ଚିନ୍ତା—
पेटकीजाला 2. Anxiety for earning one's livelihood.

ପେଟର ପିଲା—ଦେ. ବି.—୧ । ଆପଣା ଗର୍ଭଜାତ ସନ୍ତାନ—
Petara pilā 1.The child of one's womb.

ପେଟର ଛୁଆ, ପେଟର ବଛ } ଅନ୍ୟରୂପ ୨ । ସ୍ତନ୍ୟପାୟୀ ଶିଶୁ—2. A suckling.
পেটের ছেলে; পেটের বাচ্চা ୩ । ମାତୃ ଗର୍ଭ ମଧ୍ୟସ୍ଥ ଜୀବନ୍ତ ଭ୍ରୂଣ—
पेटका बच्चा 3. A quick foetus in the mother's womb.

ପେଟର ବେଦନା—ଦେ. ବି.—୧ । ମନୋଗତ ଦୁଃଖ, ଶୂଳ—
Petara bedanā 1. Mental sorrow
पेटकी वेदना ୨ । ଗର୍ଭ ବେଦନା, ଗର୍ଭିଣୀର ସନ୍ତାନଧାରଣଜନିତ କଷ୍ଟ, ଗର୍ଭର ଭାର—2 The difficulties experienced by a woman during pregnancy
୩ । ପ୍ରସବ ବେଦନା, ଝିଅଣର ଦୁଃଖ, ଶୂଳ—
3 The pangs of childbirth, labour pain, pangs of labour.
୪ । ପେଟର ରୋଗ—4 Bowel complaints
୫ । କ୍ଷୁଧାର ଉତ୍ପୀଡ଼ନ—5 The pangs of hunger

ପେଟର ଭାର—ଦେ. ବି—ଗର୍ଭସ୍ଥ ସନ୍ତାନ ବହନ ରୂପ ଭାର—
Petara bhāra The load borne in the womb by a pregnant woman.
পেটেবে বোঝা पेटका बोझा
(ପେଟର ଭର, ପେଟର ଭାର—ଅନ୍ୟରୂପ)

ପେଟ (ଟେ)ରା—ଦେ. ବି.—(ସଂ. ପେଟକ; ପିଟକ)—୧ । ପେଡ଼ି, ପେଡ଼ା; ବାଉଁଶ ବା ବେତନିର୍ମିତ ଆବରଣଯୁକ୍ତ ପେଡ଼ା—1. A basket with a moving cover.
Peta(te)rā
পেটরা; পাটরা; পেটারা
पिटारा; पटेरिआ
୨ । ସିନ୍ଦୁକ, ବାକ୍ସ—2 A trunk; a box.
ଦେ. ବିଣ.—ପେଟୁଆ (ଦେଖ)—Petuā (See)

ପେଟରୀ(ଲୀ)—ଦେ. ବିଣ.—ସ୍ତ୍ରୀ—ଗର୍ଭବତୀ (ସ୍ତ୍ରୀ)—
Petarī(lī) Pregnant (woman),
(ପେଟରୀ, ପେଟଲୀ, ପେଟୁରୀ, ପେଟୁଲୀ—ଅନ୍ୟରୂପ) पेटवालि

ପେଟରୁ କାଢ଼ିବା—ଦେ. କ୍ରି.—(ଲକ୍ଷଣାର୍ଥ) ଆପଣା ମନରୁ ଗୋଟାଏ ବୁଦ୍ଧି ବା କୌଶଳ ଉଦ୍ଭାବନ କରିବା—
Petaru kārdhibā
পেটথেকে বাহির করা (figurative) To devise a plan out of one's wits
पेटसे निकालना

ପେଟରୁ ପଡ଼ିବା—ଦେ. କ୍ରି.—୧ ଗର୍ଭରୁ ଜାତ ହେବା—
Petaru pardibā 1. To be born from the mother's womb.
পেটথেকে পড়া ୨ । ଉଦରରୁ ଖସି ପଡ଼ିବା (ଭ୍ରୂଣ ବା କାଟଛୁ)—
पेटसे गीरना 2. To come out of the stomach.

ପେଟରେ ଓଦାକନା ପକା(କେ)ଇବା—ଦେ. କ୍ରି.—୧ । ନଖାଇ ନ ପିଇ ଓପାସ ଭୋକରେ କାମ କରିବା—1 To work without taking any food.
Petare odākanā pakā(ke)ibā
୨ । ଦରମା ବା ଖୋରାକ ନ ପାଇ ଚାକର ବା କାମ କରିବା—
2. To work without getting any salary or maintenance.

**ପେଟରେ କରିବା**—ଦେ. କ୍ରି—(ସଙ୍ଗମଦ୍ୱାରା) ସ୍ତ୍ରୀର ଗର୍ଭ ସଞ୍ଚାର କରି-
Peṭare kariba ଇବା, ଗର୍ଭାଧାନ କରିବା—
ପେଟ କରা **पेट करना** To impregnate a woman.

**ପେଟରେ ଧରିବା**—ଦେ. କ୍ରି—୧ । ଭ୍ରୂଣକୁ ଗର୍ଭରେ ଧାରଣ କରିବା—
Peṭare dhariba 1 To bear a fœtus in the womb.
ପେଟେ ধরা ୨ । ଆପଣାର ଉଦରରେ ବିଦ୍ୟା ବା ବୁଦ୍ଧି ଧାରଣ କରିବା—
**पेटमें धारन करना** 2. To have learning in one's stomach; to have one's stomach full of knowledge, to know many a thing.

**ପେଟରେ ପକା(କେ)ଇବା**—ଦେ. କ୍ରି—୧ । ( ଲକ୍ଷଣାର୍ଥ ) ଅନ୍ୟାଯ୍ୟ
Peṭare paka(ke)iba ଭାବରେ ଆତ୍ମସାତ୍ କରିବା—
ପেটে ফেলা 1. (figurative ) To misappropriate.
**पेटमे डालना** ୨ । ଖାଇବା, ଉଦରସାତ୍ କରିବା —2. To eat
୩ । ଅନ୍ୟକୁ ଖାଇବାକୁ ଦେବା—
3. To give food to a person; to feed another.

**ପେଟରେ ପଡ଼ିବା**— ଦେ. କ୍ରି.— ପେଟରେ ପଶିବା ୩ (ଦେଖ)
Peṭare paḍiba Peṭare pasiba 3 (See)

**ପେଟରେ ପଶିବା**—ଦେ. କ୍ରି—୧ । ଅନ୍ୟର ଖାଦ୍ୟ ଦ୍ରବ୍ୟରେ ଦୃଷ୍ଟି
Peṭare pasiba ପକାଇବା—1. To cast sinful or
ପেটে ঢুকা covetuous eyes an another's food
**पेटमें घूसना, पेटमें पैठना** [ ଦ୍ର—ସାଧାରଣ ଲୋକଙ୍କର ବିଶ୍ୱାସ ଯେ ଜଣେ ଲୋକ ଖାଉଥିବା ପଦାର୍ଥରେ ବା ଖାଇବା ନିମନ୍ତେ ଅଭିପ୍ରେତ ବସ୍ତୁରେ ଅନ୍ୟର ଲୋଭ ଦୃଷ୍ଟି ବା 'ଦୃଷ୍ଟି' ପଡ଼ିଲେ ସେ ଖାଦ୍ୟ ଦ୍ରବ୍ୟକୁ ଯେ ଖାଏ ତା ପେଟ ଟାଣେ । ବିଶେଷତଃ ଏପରି ପୁରୁଷ ( ଡାହାଣା ) ଓ ସ୍ତ୍ରୀ (ଡାହାଣୀ) ଅଛନ୍ତି ଯେ, ସେମାନେ ଅନ୍ୟର ଖାଦ୍ୟ ପ୍ରତି ଦୃଷ୍ଟି ପକାଇଲେ ସେ ଖାଦ୍ୟ ଦ୍ରବ୍ୟକୁ ଯେ ଖାଇବ ତାହା ପେଟରେ ସେ ଖାଦ୍ୟ ହଜମ ହେବ ନାହିଁ ଓ ତା ପେଟ କଷ୍ଟେ ଟାଣିବ । ]
୨ । ଗୋପନରେ ବିପକ୍ଷର ବା ଶତ୍ରୁର ପକ୍ଷ ଅବଲମ୍ବନ କରି ତାଙ୍କୁ ଏ ପକ୍ଷର ସବୁ ଗୁପ୍ତ କଥା କହିବା—2 To be in secret league with the enemy.
୩ । ( ଖାଦ୍ୟ ଦ୍ରବ୍ୟ ) ଉଦରସ୍ଥ ହେବା; ଭୁକ୍ତ ହେବା—
3. To be eaten.
୪ । ( ଶିଶୁ ) ମାତୃଗର୍ଭରେ ରହିବା—
4. (child) To be in the mother's womb.
୫ । କୌଣସି ବ୍ୟକ୍ତିର ଗୁପ୍ତ କଥା ବା ରହସ୍ୟ ଜାଣିବା ପାଇଁ ତାହା ସଙ୍ଗେ ଘନିଷ୍ଠତା ସ୍ଥାପନ କରିବା—
5. To establish intimacy with a person with a view to knowing his secrets.

**ପେଟରେ ଭୋକ ମୁହଁରେ ଲାଜ**—ଦେ. (ନ୍ୟାୟ)—୧ । କ୍ଷୁଧାର୍ତ୍ତ ବ୍ୟକ୍ତି
Peṭare bhoka muhanre laja ଖାଦ୍ୟ ପ୍ରାର୍ଥନା କରିବା ପାଇଁ
ପেটে খিদে মুখে লাজ ଲଜ୍ଜା ବୋଧ କରିବା ନ୍ୟାୟ—
(ପେଟେ ଭୋକ ମୁହେଁ ଲାଜ—ଅନ୍ୟରୂପ) 1. ( analogy ) A person's feeling of delicacy to beg foo while he is hungry.
[ ଦ୍ର—ଏପରି 'ମୁହଁରେ ଲାଜ' କରିବାଦ୍ୱାରା ଫଳତଃ ତାହାର କ୍ଷୁଧା ନିବୃତ୍ତି ହୁଏ ନାହିଁ । ]
୨ । (କୌଣସି ବିଷୟରେ) ଅନ୍ତରରେ ଅନୁଭୂତ ଅଭାବକୁ ଲଜ୍ଜା ବା ସଙ୍କୋଚବଶତଃ ପ୍ରକାଶ କରିବା—
2. Not expressing one's mind in shyness.

**ପେଟରେ ମାରିବା**—ଦେ. କ୍ରି—୧ । ଝାଡ଼ା ଫେରିବାକୁ ଯିବାବେଳେ
Peṭare mariba ଦସ୍ତ ଖୋଲାସା ହେବା ପାଇଁ ପେଟରେ କର-
ପেটে মারা ତଳଦ୍ୱାରା ଫୁଙ୍କି ମାରିବା—1. To pat on one's
**पेटमारना** abdomen with a belief that there will be clean evacuation by this process.
୨ । କୌଣସି ବ୍ୟକ୍ତିକୁ ଖାଇବାକୁ ନ ଦେବା, କୌଣସି ବ୍ୟକ୍ତିକୁ ଉପାସ ରଖାଇବା—2. To starve a person, to keep a person starving.
୩ । କ୍ଷୁଧା ହେଲାବେଳେ ନ ଖାଇବା—
3 Not to eat when hungry.
୪ । (ଲକ୍ଷଣାର୍ଥ) ମନୋଗତ କୌଣସି ଦୁଃଖକୁ ବାହାରେ ପ୍ରକାଶ ନ କରିବା —4. (figurative) Not to give vent to one's mental agony

**ପେଟରେ ଯିବା**—ଦେ. କ୍ରି—କୌଣସି ଖାଦ୍ୟ ଦ୍ରବ୍ୟ ଆପଣା ଶରୀରରେ
Peṭare jiba ସହ୍ୟ ହେବା ବା ଜୀର୍ଣ୍ଣ ହେବା—
ପেটে যাওয়া, ( any food ) To agree with one's
ପেটে সওয়া stomach; to be digested by a person.
**अनुकूल होना**

**ପେଟରେ ରଖିବା**—ଦେ. କ୍ରି — ୧ । ପେଟରେ ଧରିବା ( ଦେଖ )
Peṭare rakhiba 1. Peṭare dhariba ( See )
ପেটে রাখা ୨ । କୌଣସି ଗୁପ୍ତ କଥା ଅନ୍ୟ ବ୍ୟକ୍ତି ଆଗେ ପ୍ରକାଶ
**पेटमे रखना** ନ କରିବା—2. To keep a matter into one's self; not to disclose a secret.

**ପେଟରେ ରହିବା**—ଦେ. କ୍ରି—(କୌଣସି କଥା) ବାହାରେ ପ୍ରକାଶିତ ନ
Petare rahiba ହୋଇ ମନ ମଧ୍ୟରେ ରହିବା—
ପেটে থাকা (any matter) Not to be given out or
**पेटमे रहना** divulged.
( ଯଥା—ମୋ ପେଟ କଥା ପେଟରେ ରହିଲାଣି । )
(ପେଟରେ କୋଳପ ପଡ଼ି ରହିବା, ପେଟରେ ଗୁଡ଼ି ପଡ଼ି ରହିବା, ପେଟରେ ମୁଦମରି ରହିବା —ଅନ୍ୟରୂପ)

**ପେଟରେ ହେବା** —ଦେ. କ୍ରି—ଗର୍ଭବତୀ ବା ଅନ୍ତଃସତ୍ତ୍ୱା ହେବା—
Peṭare heba To become pregnant; to conceive.
ପেট হওয়া **पेटसे होना** ୨ । ପେଟମରି—2. Colic

**ପେଟ ରୋଗ** —ଦେ ବି—୧ । ପେଟର ଅସୁସ୍ଥ;ପେଟ ମଧ୍ୟରେ ଜାତ ରୋଗ—
Peta roga 1. A disorder of the bowels.
ପেটের ব্যামো **पेटकी बिमारी**

**ପେଟ ଲାଗିଯିବା**—ଦେ. କ୍ରି—କିଛି ନ ଖାଇବାରୁ ଲମ୍ବା ଦୀର୍ଘ ଉପବାସ
Peṭa lagijiba ଯୋଗୁଁ ପେଟ ଉପରର ଚମଡ଼ା ପିଠି ଆଡ଼କୁ
ପେଟ ପଶିଯିବା, ପେଟ ପିଠି ଲାଗିଯିବା } ଅନ୍ୟରୂପ ଲାଗିଯିବା; ପେଟର ଗହ୍ୱର ପିଠିରେ ସଲଗ୍ନ ହେବା —

पेट पीठसे लगजाना The stomach becoming depressed or sunken owing to fasting.

**ପେଟ ଲଣ୍ଡିଆ**--ପ୍ରାଦେ. (ଗ୍ରା) ବଣ. ପୁଂ ଓ ସ୍ତ୍ରୀ—ମାତା ଗର୍ଭବତୀ ଥାଇ ମୃତ୍ୟୁର ଘଟିବା ପରେ ଜାତ (ସନ୍ତାନ)—
Peṭa lāṇḍiā Posthumous (child).

**ପେଟ ଶୁଖା(ଖୋ)ଇବା**—ଦେ. କ୍ରି.—୧ । ଉପବାସ କରିବା—
Peṭa śukhā (kho)ibā 1. To fast
ପେଠିପିଠେ ଲାଗ୍ନା ୨ । ଖରାକୁ ପେଟ ଦେଖାଇ ଶୋଇବା—
2. To bask in the sun with one's belly up.

**ପେଟ ଶୁଖିବା**—ଦେ. ବି—ଖାଦ୍ୟାଭାବ ଘଟିବା—
Peṭa śukhibā Want of food.
ଠକଣକୁ ଗୃହ ଶୁଖିଲ ପେଟ
ଜୀବନ ବଞ୍ଚିବା ହେଲ ସଙ୍କଟ । ଭକାରି, ଶୀତଳଦାସ ।

**ପେଟ ଶୂଳା**—ଦେ. ବି—୧ । ପେଟକୁ ମାରିବା; ଶୂଳ ବେଗ—
Peṭa śūlā 1. Colic pain.
ପେଟ ଶୂଳା(ଲେ)ଇବା } ଅନ୍ୟରୂପ
ପେଟ ଶୂଳା(ଲେ)ଇ ହେବା }
ପେଟେ ବେଦନା ୨ । ଗର୍ଭିଣୀର ଶୂଳ, ପ୍ରସବ ପୂର୍ବରୁ ଗର୍ଭିଣୀର
पेट दुखना ପେଟରେ ଅନୁଭୂତ ବେଦନା—2. The pangs before childbirth; labour pains.

**ପେଟ ସଫା ହେବା**—ଦେ. ବି—୧ । ପରିଷ୍କାର ଝାଡ଼ା ହେଲୁ ପେଟ ଭିତରର ମଇଳା ବାହାରି ଯିବା—
Peṭa saphā hebā 1. A copious discharge of stools;
ପେଟ ସାଫ ହওয়া a clean evacuation
पेट झड़ना
୨ । କୌଣସି ଗୁପ୍ତ କଥାର ପ୍ରକାଶ—
2. (figurative) Publication or divulging of any secret.
୩ । ପ୍ରସବାନ୍ତେ ଗର୍ଭରୁ ଫୁଲ, ନାଡ଼ ଓ ରକ୍ତାଦି ନିଃଶେଷ ହୋଇ ବାହାରି ଯିବା—3 The coming out of the placenta and blood etc from the womb after childbirth.

**ପେଟ ସର୍ବସ୍ୱ**—ଦେ. ବଣ—ପେଟୁ; ଯାହାର ଭୋଜନ କରିବା ଛଡ଼ା ଅନ୍ୟ ଅଭିଳାଷ ନ ଥାଏ—Greedy;
Peṭa sarbaswa gluttonous.
ପେଟ ସର୍ବস্ব पेटार्थी(थुं)

**ପେଟ ସାନ ଆଖି ବଡ଼**—ଦେ ( ନ୍ୟାସ୍ତ )—ବେଶି ପରିମାଣରେ ଖାଦ୍ୟ ଖାଇବାର ଶକ୍ତି ନ ଥିବା ସ୍ଥଳେ ପ୍ରଚୁରରେ ବେଶି ଗୁଡ଼ାଏ ଖାଦ୍ୟ ବଢ଼ା ହେବା ପାଇଁ ଆଗ୍ରହ ପ୍ରକାଶ କରିବା—Wishing to have a large quantity of food served to a person while he is incapable of eating so much.
Peṭa sāna ākhi barḍa
ପେটছোট চোখবড

**ପେଟ ହେବା**—ଦେ. ବି—ଗର୍ଭାଧାନ—
Peṭa hebā Being pregnant; conception.
ପେটহওয়া କ୍ରି—ପେଟରେ ହେବା (ଦେଖ)—
पेटसे होना Peṭare hebā (See)

**ପେଟା**—ଦେ. ବଣ. ପୁଂ—୧ । ସ୍ଥୂଳୋଦର—
Peṭā Pot-bellied
(ପେଟୀ, ପେଟେଇ—ସ୍ତ୍ରୀ) ୨ । କୁକ୍ଷିମ୍ଭରି; ଉଦରମ୍ଭରି—
হাঁদাপেটা पेटल 2. Greedy; gluttonous
পেটুক पेटू ୩ । ଉଦର ଯୁକ୍ତ—
পেট ওয়ালা पेटवाला 3. Bellied (as in big-bellied).
[ଦ୍ର—ଏହି ଶବ୍ଦ ଅନ୍ୟ ଶବ୍ଦ ପରେ ବ୍ୟବହୃତ ହୁଏ, ଯଥା—ପଲମ ପେଟା, ଥଳ୍ଲ ପେଟା, ଲଉ ପେଟା ଇତ୍ୟାଦି ।]
ପ୍ରାଦେ (ସମ୍ବଲପୁର) ବି—କଟରା, ପାଚିଲା ଧାନଗଛକୁ ଦାଆରେ କାଟି କ୍ଷେତରେ ସାରି ସାରି କରି ରଖିବା—Laying of the ripe paddy plants cut from the roots on the field in rows.
ପ୍ରାଦେ (ବାଲେଶ୍ୱର) ବି—୧ । କାଗଜର ଗୁଡ଼ି ଦେହରେ ଆଡ଼ ଭାବରେ ବନ୍ଧା ହୋଇ ବସିଥିବା କାଠି ବା ବାଉଁଶର ପାଉଁଆ—
1. A thin twig laid crosswise in a paper-kite.
୨ । ଗୁଡ଼ି ଦେହରେ ତ୍ରିକୋଣାକାର ହୋଇ ବନ୍ଧା ହୋଇଥିବା ଦୁଇ ଖଣ୍ଡ ସୂତା—Two bits of thread attached to a paper-kite and forming a triangle with the body of the kite.

**ପେଟା(ଟେ)ଇ ପଡ଼ିବା**—ଦେ. କ୍ରି—ପେଟକୁ ଭୂମିରେ ଲଗାଇ ଶୋଇବା-
Peṭā(ṭe)i parḍibā To lie with one's stomach touching the ground.

**ପେଟା(ଟେ)ଇବା**—ଦେ. କ୍ରି—(ପେଟ ଶବ୍ଦରୁ ଓଡ଼ିଆ ନାମ ଧାତୁ)—
Peṭā(ṭe)ibā ଭୂମିରେ ପେଟ ଲଗାଇ (କୁମ୍ଭୀର ପରି) ହାତ ଗୋଡ଼କୁ
(ପଟେଇଆଇବା—ଅନ୍ୟରୂପ) ଚଳାଇବା ଦ୍ୱାରା ଗତି କରିବା—
পেটেলো To move with the hands and legs by
रेंगना having the belly grovelling on the ground; to creep on one's belly; to crawl.
[ଦ୍ର—ଶିଶୁମାନେ ପ୍ରଥମେ ପେଟାନ୍ତି, ତା ପରେ ଗୁରୁଣ୍ଡନ୍ତି, ତା ପରେ ଚାଲନ୍ତି ।]

**ପେଟାକ**—ସଂ. ବି—ପେଟକ, ପେଡ଼ା, ପେଟରା—
Peṭāka A basket with a lid; a box.

**ପେଟା କାଠି**—ପ୍ରାଦେ. (ବାଲେଶ୍ୱର) ବି.—ପେଟା ପ୍ରାଦେ ୧ (ଦେଖ)
Peṭā kāṭhi Peṭā 1. (See)

**ପେଟି**—ଦେ. ବି—୧ । ପେଟରେ ବନ୍ଧାଯିବା ମେଖଳା; କମରବନ୍ଧ—
Peṭi 1. A belt
পেটি पेटी ୨ । ଗୋଷା ଗୋବର ଚଢ଼େଇଙ୍କ ଲାଞ୍ଜ ପାଖେ ପେଟରେ ବନ୍ଧା ଥିବା, ଅଗରେ ଫୁଲ ବା କଉଡ଼ି ଲାଗିଥିବା ସୁତୁଲି—
2. A string tied round the belly of a Gobarā bird.
୩ । ଘୋଡ଼ାଙ୍କ ପିଠି ଉପରେ ପଡ଼ିଥିବା ଜିନ୍ ବା ଗୁରଜାମାର ଦୁଇ ପାଖକୁ ଘୋଡ଼ାର ପେଟ ବାଟେ ଯେଉଁ ଫିତାଦ୍ୱାରା ବନ୍ଧା ଯାଏ—3. Strap which keeps the saddle tight on the back of a horse.

୪ । ବାକ୍ସ, ଖଟ ଆଦିର ମଧ୍ୟ ଭାଗରେ ଚଉଡ଼ା ବାଗରେ ଲଗାଯିବା କାଠ ବା ଧାତୁର ଲମ୍ବା ପଟି ବା ଦଣ୍ଡ—A small bar of metal or wood laid crosswise in the frame of a bedstead or box; a cross bar.

୫ । ଚିଲିକାରେ ମିଳୁଥିବା ଏକ ପ୍ରକାର ଚିଙ୍ଗୁଡ଼ି ମାଛ—5. A kind of shrimps found in the Chilka lake.

୬ । ବଡ଼ ମାଛର ପେଟ ଭାଗ—
6. The belly portion of a fish.

[ଦ୍ର—ବଡ଼ ମାଛର ପେଟରେ କଣ୍ଟା ନ ଥିବାରୁ ଓ ତାହା ମାଂସଳ ଥିବାରୁ ତାହା ଲୋକେ ଭାଜି କରି ଖାଇବାକୁ ପସନ୍ଦ କରନ୍ତି ।]

୭ । ଭଣ୍ଡାରୀର ମୁଠି; ଯେଉଁ ଥଳୀରେ ଭଣ୍ଡାରୀ ଖୁର, କଇଁଚି, ନଖକାଟୁଣୀ ଆଦି ରଖେ—7. A barber's wallet.

ପ୍ରାଦେ (ଗଞ୍ଜାମ) ବି—ପେଟ—Stomach.

ବୈଦେ ବିଣ (ଇଂ. ପେଟ୍ଟି)—୧ । କ୍ଷୁଦ୍ର, ଛୋଟ—
1. Small, petty.

(ଯଥା—ପେଟି କାଣ୍ଟ୍ରାକ୍ଟ ।)

୨ । ପ୍ରଜାର ଅଧୀନ (ପ୍ରଜା); ସିକମୀ ରଇତ—
2. Subordinate holding; an under-tenure.

(ଯଥା—ପେଟି ପ୍ରଜା, ପେଟି ମକଦମୀ ।)

**ପେଟିଆ**—ଦେ. ବିଣ. ପୁଂ. (ଅନ୍ୟ ଶବ୍ଦ ସଙ୍ଗେ ବ୍ୟବହୃତ)—ଉଦର-
Petiā ଯୁକ୍ତ—(used with other words)—Bellied.
(ପେଟେଇ—ସ୍ତ୍ରୀ) (ଯଥା—ଥଲ୍ଲିପେଟିଆ 'ଥ'—ବହୁବଚନ ବାଚକ 'ଦ'—ଶିଶୁବଚନ; ମୃଦଙ୍ଗପେଟିଆ ଇତ୍ୟାଦି ।)

**ପେଟି କଟା**—ଦେ. ବି—ଯେଉଁ ଗୋବରା ଚଢ଼େଇ ଅନ୍ୟ ଚଢ଼େଇ
Peti katā ସଙ୍ଗେ ଲଢ଼େଇ କରି ହାରି ଯିବାରୁ ତା ପେଟରେ ବନ୍ଧା ହୋଇଥିବା ପେଟିକୁ କାଟି ପକ୍ଷିସ୍ୱାମୀ ତାକୁ ଉଡ଼ାଇ ଦିଏ—A Gobarā bird which is let loose after its belt is cut when it is defeated by its rival.

**ପେଟିକା**—ସଂ. ବି—୧ । ପେଟାକ (ଦେଖ)
Petikā 1. Petāka (See)

୨ । ପେଡ଼ି ପେଡ଼ିକଆ (ଦେଖ)
2. Perdi perdikiā (See)

୩ । ସମୂହ; ସମୁଚ୍ଚୟ; ରାଶି—
3 Collection; multitude.

**ପେଟି କାଣ୍ଟରାଟ(ଟି)**—ବୈଦେ. ବି. (ଇଂ. ପେଟି କଣ୍ଟ୍ରାକ୍ଟର)—
Peti kāntarāta,ti) କୌଣସି ପୂର୍ତ୍ତ କାର୍ଯ୍ୟରେ ବଡ଼ କଣ୍ଟ୍ରାକ୍ଟରର ଅଧୀନ ଛୋଟ କଣ୍ଟ୍ରାକ୍ଟର—A sub-contractor; petty contractor.
ପେଟି କ(କା)ଣ୍ଟରାଟ(ଟି). } ଅନ୍ୟରୂପ
ପେଟି କଣ୍ଟରାଟଦାର
ପେଟୀ କାନ୍ତରାଟ ପେଟୀ କାନ୍ତରାଟକାର

**ପେଟି ଗଣ୍ଠି**—ପ୍ରାଦେ. (ଗଡ଼ଜାତ) ବି—ଗୁଡ଼ାଏ ଲମ୍ବ ବାଉଁଶ ଶଗଡ଼ରେ
Peti ganthi ବୋଝାଇ କରି ନିଆଯିବା ଅବସ୍ଥାରେ ଶଗଡ଼ର ଦଣ୍ଡା ପାଖରେ ବାଉଁଶର ଯେଉଁ ଅଗମାନ ଦଣ୍ଡାର ବାହାରକୁ ବାହାରି ରହିଥାଏ ସେହି ଅଗମାନଙ୍କୁ ଯେଉଁ ଲଇଗଣ୍ଠି ଦ୍ୱାରା ଏକତ୍ର ବନ୍ଧା କରି ବନ୍ଧାଯାଏ—A knot of some tenacious creeper with which the bulging out ends of a cartload of bamboos are tied together.

[ଦ୍ର—ଦଣ୍ଡାରୁ ବାହାର ଥିବା ବାଉଁଶମାନଙ୍କ ଅଗ ମଧ୍ୟରୁ ୨ଟି ଅଗ ବନ୍ଧା ଯାଏ ନାହିଁ । ସେହି ୨ଟି ଅଗ ଶଗଡ଼ର ଦଣ୍ଡାର କାର୍ଯ୍ୟ କରେ ।]

**ପେଟି ବତା**—ଦେ. ବି—ଘରର ଚାଳ କାମୁଡ଼ାରେ ଲାଗିବା ତଳ ପାଖର
Peti batā ବତା—The split bamboos which are put on the inner side of the bamboo frame-work of a thatch.

ପ୍ରାଦେ. (ଗଡ଼ଜାତ) ବି—ଟୋକେଇ, ମୁଗୁରା, ଖଇଞ୍ଚ ଓ ପୋଲୁହର ଭିତର ପାଖେ ବନ୍ଧାଯିବା ବତା—Bamboo laths attached to the inner side of ordinary baskets and fishing baskets.

**ପେଟି ବନ୍ଧ**—ଦେ. ବି—ନଈ ଆଦିରେ ଚଉଡ଼ା ବାଗରେ ପକା ଯିବା
Peti bandha ବନ୍ଧ, ଆଡ଼ବନ୍ଧ—An embankment laid across a river or field; a cross-dam.

**ପେଟି ମାଛ**—ପ୍ରାଦେ. (ବାଲେଶ୍ୱର) ବି—ମାଛର ପେଟ ନିକଟରୁ କଟା
Peti māchha ଯାଇଥିବା ଅଂଶ ବା ଖଣ୍ଡ—Bits cut from
(ପେଟ ମାଛ—ଅନ୍ୟରୂପ) the belly of a large fish.

[ଦ୍ର—ଏଥିରେ ମାଛର ଅନ୍ୟ ଅଂଶ ଅପେକ୍ଷା କମ କଣ୍ଟା ଥାଏ ଓ ଏହା ତେଲିଆ ଓ କୋମଳ ଥିବାରୁ ରନ୍ଧା ବା ଭଜା ହେଲେ ଖାଇବାକୁ ଭଲ ଲାଗେ ।]

**ପେଟି ଲଇ**—ଦେ. ବି—ପେଟି ବତାକୁ ଉଠି ବାନ୍ଧିବା ପାଇଁ ବ୍ୟବହୃତ
Peti lai ଲଇ—Tenacious fibres of creepers used in tying the split bamboo laths inside the surface of a thatch-frame.

ପ୍ରାଦେ. (ଗଡ଼ଜାତ)—ଶଗଡ଼ରେ ବାଉଁଶ ଗୋଛ ଆଣିବା ବେଳେ ପେଟି ଗଣ୍ଠି ବାନ୍ଧିବାରେ ବ୍ୟବହୃତ ଲଇ—Tenacious fibres of creepers used in tying the bulging ends of long bamboos carried on carts

**ପେଟି ଶେଣୀ**—ଦେ. ବି—ଚାଳ ଘରର ଉରାକୁ ଲଗାଇ କରି ଦିଆଯିବା
Peti śeni ଲମ୍ବା ଶେଣୀ—The long wall-plate put over the Urā of a thatched house.

[ଦ୍ର—ଏହା ଯୋଗୁଁ ଉରା ଦମ୍ଭ ହୁଏ । ବାହାରିଆଡ଼ି ଚାଳର ବାଉଁଶର ଅଗମାନ ଏହି ଶେଣୀରେ କଣ୍ଟାଦ୍ୱାରା ମରାଯାଏ ।]

**ପେଟୀ**—ସଂ. ବି—ପେଟାକ (ଦେଖ)
Peti Petāka (See)

ବୈଦେ. ବିଣ—ପେଟି (ଦେଖ)—Peti (See)

ଦେ. ବିଣ—ପେଟାର ସ୍ତ୍ରୀଲିଙ୍ଗ—
The feminine of Petā.

**ପେଟୁ**—ଦେ. ବିଣ—ଉଦରମ୍ଭରୀ—
Petu ପେଟୁକ ପେଟୂ Greedy; gluttonous.

**ପେଟୁଆ**—ଦେ. ବଣ. ପୁଂ—ଯାହାର ବଡ଼ ପେଟ—Big-bellied.
Peṭuā
(ପେଟେଇ, ପେଟୋଇ—ସ୍ତ୍ରୀ)

**ପେଟୁକ**—ଦେ. ବଣ—ଉଦରମ୍ଭରୀ—
Peṭuka  পেটুক  पेटू  Greedy; gluttonous.

**ପେଟୁରା(ଲା)**—ଦେ. ବଣ—ସ୍ଥୂଳୋଦର—
Peṭurā(lā)  (ପେଟୁରୀ(ଲୀ)—ସ୍ତ୍ରୀ)  Pot-bellied.

**ପେଟୁଲି**—ଦେ ବଣ. ସ୍ତ୍ରୀ.—୧ । ଗର୍ଭବତୀ—
Peṭuli  1. Pregnant.
୨ । ବୃହତ୍ ଗର୍ଭ ବା ଉଦରବିଶିଷ୍ଟା (ସ୍ତ୍ରୀ)—
2. Big-bellied (woman).

**ପେଟେ**—ଦେ. ବଣ. ଓ କ୍ରି. ବଣ—୧ । ଉଦରପୂର୍ଣ୍ଣରୂପେ (ଭୋଜନ)—
Peṭe  1 Belly-ful of (meal).
( ଯଥା—ସେ ଅନ୍ନକ ମୋର ପେଟେ ହେଲ । )
୨ । ପେଟ ପର୍ଯ୍ୟନ୍ତ ଲାଗିବା ଗଭୀର (ଜଳ)—
2. Of a depth (of water) reaching one's belly.
( ଯଥା—ଏ ଗଣିଗାଡ ପେଟେ ଖୋଲା ହେଲାଣି । )

**ପେଟେ ଖାଇବା**—ଦେ. କ୍ରି—ଉଦର ପୂର୍ଣ୍ଣ କରି ଭୋଜନ କରିବା—
Peṭe khāibā  To eat one's fill; to take a full meal.
এক পেট খাওযা  पेटभर खाना
(ପେଟେଟୁ ଖାଇବା—ଅନ୍ୟରୂପ)

**ପେଟେ ଗିଳିବା**—ଦେ କ୍ରି. ( ବ୍ୟଙ୍ଗାର୍ଥ )—
Peṭe gilibā  ପେଟେ ଖାଇବା ( ଦେଖ )
এক পেট ঠুঁকা  (ironical) Peṭe khāibā (See)
पेटभर ठुँसना
(ପେଟେ ଠକିବା, ପେଟେ ମାରିବା, ପେଟେ ଠୁଁସିବା—ଅନ୍ୟରୂପ)

**ପେଟେଣ୍ଟ**—ବୈଦେ ବ (ଇଂ)—କୌଣସି ବ୍ୟକ୍ତିର ଉଦ୍ଭାବିତ ଦ୍ରବ୍ୟକୁ
Peṭenṭ  କେବଳ ମାତ୍ର ଜଣେ ନିର୍ଦ୍ଦିଷ୍ଟ ବ୍ୟକ୍ତି ପ୍ରସ୍ତୁତ କରିବା ବା
পেটেন্ট  ବିକ୍ରି କରିବା ନିମନ୍ତେ ଉକ୍ତ ବ୍ୟକ୍ତିଙ୍କୁ ଦିଆଯିବା ରାଜ-
पेटेंट  ପ୍ରଦତ୍ତ ଅଧିକାର, ଏକଚାଟିଆ ଅଧିକାରନିର୍ଦ୍ଦେଶକ ସନନ୍ଦ-
Patent; monopoly for the manufacture or sale of a certain article.

[ ଦ୍ର—କୌଣସି ବ୍ୟକ୍ତି ଗୋଟିଏ ନୂଆ ଯନ୍ତ୍ର ବା ପ୍ରଣାଳୀ ଆବିଷ୍କାର କଲେ ତାହା ସରକାରରେ ରେଜିଷ୍ଟର କରିବାକୁ ହୁଏ । ତାହା ହେଲେ ଉକ୍ତ ପଦାର୍ଥ 'ପେଟେଣ୍ଟ' ହେଲା, ଏପରି ରେଜିଷ୍ଟର ହେବା ପରେ 'ପେଟେଣ୍ଟୀ'ର ବିନା ଅନୁମତିରେ ଅନ୍ୟ କେହି ବ୍ୟକ୍ତି ଉକ୍ତ ବସ୍ତୁ ତିଆରି କଲେ ବା ବିକଲେ ତାକୁ ଦଣ୍ଡ ଦିଆଯାଏ ଓ ପେଟେଣ୍ଟୀକୁ ସେ କ୍ଷତି ପୂରଣ ଦେବାକୁ ବାଧ୍ୟ ହୁଏ । ]

ବଣ—ଯେଉଁ ଦ୍ରବ୍ୟର ବା ଔଷଧର ବା ଆବିଷ୍କୃତ କଳର ଏକଚାଟିଆ ଅଧିକାର ଗଭର୍ଣ୍ଣମେଣ୍ଟଙ୍କ ଦ୍ୱାରା ନିର୍ଦ୍ଦିଷ୍ଟ ବ୍ୟକ୍ତିଠାରେ ଅର୍ପିତ ହୋଇଥାଏ—Patent (medicine); patented (article).

**ପେଟେଣ୍ଟ ଓ(ଔ)ଷଧ**—ଦେ ବ. ( ଇଂ ପେଟେଣ୍ଟ + ସଂ. ଔଷଧ )—
Peṭenṭ o(au)shadha)  ପେଟେଣ୍ଟ ମେଡିସିନ୍ ( ଦେଖ )
পেটেন্ট ঔষুদ  Peṭenṭ medisin ( See )
पेटेंट दवा

**ପେଟେଣ୍ଟ ମେଡିସିନ୍**—ବୈଦେ. ବ. (ଇଂ)—
Peṭenṭ medisin  ସରକାରଙ୍କ ଦ୍ୱାରା ମାର୍କା ମରା ହୋଇ ତାହା
(ପେଟେଣ୍ଟ ମେଡସନ—ଅନ୍ୟରୂପ)  ତିଆରି ଓ ବିକିରି ନିର୍ଦ୍ଦିଷ୍ଟ
পেটেন্ট মেডিসিন  ଅଧିକାର ଜଣକଠାରେ ଅର୍ପିତ ହୋଇଥିବା
पेटेंटमेडिसिन  ଔଷଧ—Patent medicine.

**ପେଟେଣ୍ଟ ଭଙ୍ଗ କରିବା**—ଦେ. କ୍ରି—ସରକାରରେ ରେଜିଷ୍ଟରୀ ହୋଇ-
Peṭenṭ bhanga karibā  ଥିବା କୌଣସି ପେଟେଣ୍ଟ ଦ୍ରବ୍ୟକୁ
(ପେଟେଣ୍ଟ ଲଙ୍ଘନ କରିବା—ଅନ୍ୟରୂପ)  ଅନ୍ୟଜଣେ ବିକ୍ରି କରିବା ବା
পেটেন্ট ভঙ্গ করা  ପ୍ରସ୍ତୁତ କରିବା—To infringe a patent

**ପେଟେଣ୍ଟୀ**—ବୈଦେ ବ. (ଇଂ)—କୌଣସି ଦ୍ରବ୍ୟର ଆବିଷ୍କାରକରୂପେ
Peṭenṭi  ଯେଉଁ ବ୍ୟକ୍ତିର ନାମ ସରକାରରେ ରେଜିଷ୍ଟରୀ
পেটেন্টী  କରାଯାଇ ଥାଏ—Patentee
पेटेंटी

**ପେଟେରା**—ଦେ. ବ. (ସଂ. ପେଟକ)—ପେଟରା ( ଦେଖ )
Peṭerā  Peṭarā ( See )
(ପେଟ୍ରା—ଅନ୍ୟରୂପ)  পেটৰা  पिटारा,पेटरिया

**ପେଟେ ହେବା**—ପ୍ରାଦେ. ( ସମ୍ବଲପୁର ) କ୍ର. ( ଭୁଲ. ହି. ପେଟସେ
Peṭe hebā  ହୋନା )—ଗର୍ଭବତୀ ହେବା—
(ପେଟ୍ରୀ ହେବା—ଅନ୍ୟରୂପ)  To become pregnant.

**ପେଟ୍ରୀ**—ପ୍ରାଦେ. (ସମ୍ବଲପୁର) ବଣ. ସ୍ତ୍ରୀ—ଗର୍ଭବତୀ—
Peṭri  Pregnant

**ପେଟ୍ରୋଲ୍**—ବୈଦେ. ବ. (ଇଂ)—୧ । ମଟର ଆଦି ଚଳାଇବାରେ
Petrol  ବ୍ୟବହୃତ ତେଲ—1. Petrol
পেট্রোল  ୨ । ମାର୍ଜିତ କେରୋସିନ୍—
पेट्रोल  2 Purified kerosine oil.

**ପେଟ୍ରୋଲିଅ(ୟ)ମ୍**—ବୈଦେ. ବ. (ଇଂ)—କେରୋସିନ୍ ତେଲ—
Petrolia(ya)m  Petrolium.
পেট্রোলিয়ম  पेट्रोलियम

**ପେଠା**—ଦେ. ବଣ. ପୁଂ—ବାଙ୍ଗର, ବାଙ୍ଗୁର—
Peṭhā  Dwarfish.
নাটা  ପ୍ରାଦେ. (ସମ୍ବଲପୁର) ବଣ—ଉଦରମ୍ଭରୀ, ପେଟୁ—
ठीगना, नाटा  Greedy; gluttonous.
(ପେଠୀ—ସ୍ତ୍ରୀ)

**ପେଡ୍**—ବୈଦେ. ବଣ. (ଇଂ)—୧ । ପ୍ରଦତ୍ତ; ଦିଆ ଯାଇଥିବା (ଧନ)—
Peḍ  1. Paid (amount).
পেড  ୨ । ଯେଉଁ କାରବାର ସମ୍ବନ୍ଧେ ବା ବ୍ୟକ୍ତି ସମ୍ବନ୍ଧେ ଦେୟ
पेड  ଧନ ଦିଆ ସରିଅଛି—2. Paid up ( bill or person
(ଅନ୍‌ପେଡ୍—ବିପରୀତ)
୩ । ଯେଉଁ ଡାକ ଚିଠିର ବା ପୁଳିନ୍ଦାର ମାସୁଲ ପ୍ରେରକ ଡାକ ଟିକଟ

ଆକାରରେ ଦେଇ ଅଛନ୍ତି (ଓ ପଛିଁ ନମନ୍ତେ ଗ୍ରାହକାଙ୍କୁ ଡାକ ମାସୁଲ ଦେବାକୁ ପଡ଼େ ନାହିଁ।)—
3. Paid; prepaid (postal letter or parcel).
୪। ବେତନ ଭୋଗୀ (ଭୃତ୍ୟ); ବୈତନିକ—
4. Paid (servant).

**ପେଡ୍ ଅପ୍ ପଲସୀ**—ବୈଦେ. ବ. (ଇଂ)—ଯେଉଁ ଜୀବନବୀମା ପଲସୀ Ped ap palisi ପାଇଁ ଦେୟ ଧନ ବୀମାକାରୀ ବବାକ୍ ଦେଇ ପେଡ ଅପ ପଲିସୀ ସାର ଥାଆନ୍ତି, ଅର୍ଥାତ୍ ଯାହା ପାଇଁ ଆଉ **ପେଡ ଅପ ପଲିସୀ** ପ୍ରିମିୟମ୍ ଦେବାକୁ ପଡ଼େ ନାହିଁ—
Paid up Life Insurance policy.

**ପେଡ଼ା**—ସ ବ. ସ୍ତ୍ରୀ (ପିଡ୍ ଧାତୁ=ଏକତ୍ରିତ କରିବା+ଅ+ସ୍ତ୍ରୀ. ଆ)— Perdā ୧। ପେଟରା, ବାକ୍ସ—1, Box; basket with a lid, a portmanteau.
୨। ମଇଁଷି ଛୁଆ—
2 The young of a buffalo.
୩। ଆରୋପଣ—3. Imposition
ଦେ ବ. (ସ. ପିଣ୍ଡ, ପେଟକା)—୧। ଏକ ପ୍ରକାର ମିଷ୍ଟାନ୍ନ; ଦୁଧକୁ ନିଆଁରେ ଖୁବ୍ ଗାଢ଼ା କରି ଆଉଟି ତହିଁରେ ଚିନି ପେଡ଼ା ଆଦି ଦେଇ ପେଡ଼ା ଆକାରରେ କରାଯିବା ମିଷ୍ଟାନ୍ନ— **ପେଡା** 1. A sweetmeat made of thickened milk and sugar.
୨। (ସ. ପୀଡ଼୍ ଧାତୁ)—ଆଖୁ ପେଡ଼ିବା ଘଣା—
2. Sugar-mill
୩। ହଳଦୀ ଆଦି ଲମ୍ବ ବସ୍ତୁର ଖଣ୍ଡ—
3. Long pieces of turmeric etc.
ପେଷା ୪। (ସ. (ପୀଡ଼ନ)—ପେଡ଼ିବା କ୍ରିୟା— **ପେଡ଼ନା** 4. The act of squeezing or pressing.
ପେଷା ବିଣ—ଘଣାରେ ପେଷା ହୋଇଥିବା— **ପେଡ଼ାହୁଆ** Squeezed or pressed in a mill.

**ପେଡ଼ା(ଡ଼ି) ଅଡ଼ଖୁର**—ଦେ. ବ. (ସହଚର ଶବ୍ଦ) କାଠର ଓ ବେତର Perdā(rdi) ardakhura ପେଡ଼ିମାନ—Boxes of wood and cane.
[ ଦ୍ର—ଝିଅ ଶାଶୁଘରକୁ ଯିବା ସମୟରେ ତା ସଙ୍ଗେ ପିତୃଗୃହରୁ ପଠାଯିବା (ଖାଦ୍ୟ ଦ୍ରବ୍ୟ ଛଡ଼ା ଅନ୍ୟ) ପଦାର୍ଥମାନ (ଯଥା—ମସଲ୍ଲି-ମସଲ ଓ ଲୁଗାପଟା) ବେତର ପେଡ଼ି ଓ କାଠର ଚିତ୍ରିତ ବାକ୍ସ ବା ଅଡ଼ଖୁରରେ ସଜଡ଼ା ହୁଏ। ]

**ପେଡ଼ା(ଡ଼େ)ଇବା**—ଦେ. କ୍ରି—୧। ପେଡ଼ିବା କ୍ରିୟାର ଣିଜନ୍ତରୂପ— Perdā(rde)ibā 1 The causative form of Perdibā
ପେଷାନ **ପେଡ଼ାନା** ୨। ଅନ୍ୟଦ୍ୱାରା ପେଡ଼ିବା କାର୍ଯ୍ୟ କରାଇବା—
2. To have a thing pressed or squeezed; to cause to be pressed.

**ପେଡ଼ା ନଡ଼ିଆ ତେଲ**—ଦେ. ବ—ଶୁଖିଲା ନଡ଼ିଆ ଘଣାରେ ପେଡ଼ା Perdā nardiā tela ହୋଇ ବାହାର ଥିବା ତେଲ—
Pressed cocoanut oil.
[ ଦ୍ର—ନଡ଼ିଆକୁ କୋର ତହିଁର ରସକୁ ନିଆଁରେ ବସାଇ ଜଳାଇ କରି ଯେଉଁ ତେଲ ପଦାର୍ଥ ବାହାର କରାଯାଏ, ତାହାକୁ ନଡ଼ିଆ ଘିଅ ବା ମରା ନଡ଼ିଆ ତେଲ କହନ୍ତି।
ଶୁଖିଲା ନଡ଼ିଆର ଖଣ୍ଡମାନଙ୍କୁ ଘଣାରେ ପେଡ଼ି ଯେଉଁ ତେଲ ପଦାର୍ଥ ବାହାର କରାଯାଏ ତାକୁ ପେଡ଼ା ନଡ଼ିଆ ତେଲ ବା ନଡ଼ିଆ ମାଲପା କହନ୍ତି। ]

**ପେଡ଼ାଳି**—ଦେ.ବ. (ସ. ପୀଡ଼୍ ଧାତୁ)—ଯେ ତୈଳବୀଜ ଆଦି ପେଡ଼େ— Perdāli One who presses or squeezes (oil-seeds).
ପେଷାଳୀ **ପେରଵା**

**ପେଡ଼ି**—ଦେ. ବ. (ସ. ପେଟିକା, ପେଡ଼ା)—୧। ମଞ୍ଜୁଷା, କାଠର ବା Perdi ବାଉଁଶର ଆବରଣଯୁକ୍ତ ଆଧାର—
ପେଡ଼ି 1. A basket with a lid.
**ପେଟାରା** ୨। (ସ. ପିଣ୍ଡ; ପୀଠ) ଚନ୍ଦନ ପେଡ଼ି—2 A stone slab
ପୀଡ଼ି to grind sandal wood into paste.
**ପୀଢ଼ୀ** ପ୍ରାଦେ (ଗଞ୍ଜାମ) ବ—ବାକ୍ସ—A box.

**ପେଡ଼ି ପେଟରା**—ଦେ. ବ. (ଏକାର୍ଥକ ସହଚର ଶବ୍ଦ)—
Perdi petarā ପେଡ଼ି ଓ ପେଟରା ଆଦି ଆଧାରମାନ—
Diferent sorts of boxes with lids.
[ ଦ୍ର—ପେଡ଼ିର ଘୋଡ଼ଣୀ ପେଡ଼ିର ତଳଖଣ୍ଡଠାରୁ ପୃଥକ୍ ଥାଏ, ପେଟରାର ଘୋଡ଼ଣୀ ତଳଖଣ୍ଡ ସଙ୍ଗେ କବଜାଦ୍ୱାରା ଲାଗି ଥାଏ। ]

**ପେଡ଼ିପେଡ଼ିକଆ**—ଦେ. ବ. (ସ. ପେଟିକା; ପେଟୀ=ପେଡ଼ା, ପେଡ଼ାର Perdiperdikiā ଆକୃତିର ଫଳ ଥିବାରୁ)—ଜବାଦିବର୍ଗର
ପେଡ଼ିପେଡ଼ିଆ } ଅନ୍ୟରୂପ ବନ୍ୟ ଗୁଳ୍ମବିଶେଷ—
ପେଡ଼ିପେଡ଼ିକା Abultilon Indicum; Sida
ସ. ଭୁଲଙ୍ଗାକ୍ଷୀ, ପେଟିକା, Asiatica; Hibiscus Furcatus
ଲୁବେରାକ୍ଷୀ, ପିଣ୍ଡାର (Haines); Trewia Nudiflora.
ପେଟାରି; ପିଟଲୀ; ଝାପିଟାରି [ଦ୍ର—ଏହାର ପତ୍ର ପାନପତ୍ର ପରି
**ପିଟାରୀ, ପେଡ଼ାର** ଓ ପତ୍ରର ଧାର ଦନ୍ତୁର। ... ଗଛ
(ପିଟ—ମେଦିନୀପୁର) ୩ ହାତ ପର୍ଯ୍ୟନ୍ତ ଉଚ୍ଚ। ଫୁଲ ନାରଙ୍ଗୀ ବର୍ଣ୍ଣର। ସନ୍ଧ୍ୟାବେଳେ ଫୁଲ ଫୁଟେ। ଶୀତକାଳରେ ଫଳ ଧାରେ। ଫଳ ଗିନା ପରି ଏକଫାଳକିଆ ଓ ଫଳର ବ୍ୟାସ ଗୋଟିଏ ଅଙ୍ଗୁଳି ପରି। ଫଳର ଦେହରେ ଅବିକଳ ଦହି ଖୁଆ ପରି ୧୭।୧୮ଟା ପଟାଫଟା ଚଉଡ଼ା ବା କରମଙ୍ଗିଆ ଶିରା ଥାଏ। ସ୍ତ୍ରୀଲୋକ-ମାନେ ଏ ଫଳକୁ ପିଠୋଉ ପାଣି ବା ଗାଈ ପାଣିରେ ବୁଡ଼ାଇ କାନ୍ଥରେ ଛାପ ମାରନ୍ତି ଓ ସେ ଛାପା ଗୋଲାକାର ଓ କମ କମ ଦେଖାଯାଏ। ]

**ପେଡ଼ିବା**—ଦେ କ୍ରି (ସ. ପୀଡ଼୍ ଧାତୁ)—୧। ରସ କାଢ଼ିବା ପାଇଁ Perdibā କୌଣସି ବସ୍ତୁକୁ (ଆଖୁ, ତୈଳବୀଜ ଆଦି) ଚିପିବା; ମାଡ଼ା, ପେଷା ଦଳିବା; ପେଷିବା—To press or squeeze a **ପେରନା; ପେଡ଼ନା** thing for juice; to press out the juice; to extract.

ମଠିଅବ ତେଲ ପେଡ଼ଇବେ କାହିଁ,
ଦୁତ୍ରିମ କୋଷରେ ଅଫିଲ କରି ଫସ କରଇ ଦେବ।
ଫକୀରମୋହନ. ଛମାଣ ଆଠଗୁଣ୍ଠ।

୨ । ବିଶେଷ ପୀଡ଼ା ଦେବା—
2. To oppress; to give much trouble.

**ପେଢ଼ ଭୋଗ**—ପ୍ରାଦେ. (ପୁରୀ) ବି—ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା
Perḍi bhoga ରଥରେ ଥିବା ସମୟରେ ଦୂରବର୍ତ୍ତୀ ଗ୍ରାମର ଲୋକମାନେ ପେଢ଼ରେ ଯେଉଁ ମିଷ୍ଟାନ୍ନ ନୈବେଦ୍ୟ ପଦାର୍ଥମାନ ବହି ନେଇ ସେହି ପେଢ଼ ସହିତ ଭୋଗ ଲଗାନ୍ତି—
Sweets carried in cane boxes from a distance and offered to the Deities Jagannātha, which on cars Balabhadra and Subhadrā during the car festival in Puri.

**ପେଢ଼ ଲୁଗା**—ଦେ. ବି—ଉତ୍ସବ ବା ବିଶେଷ ବିଶେଷ ଉପଲକ୍ଷରେ
Perḍi lugā ପିନ୍ଧିବା ପାଇଁ ପେଢ଼ରେ ସାଇତା ହୋଇଥିବା
ତୋଳା କାପଡ଼ ଲୁଗା—Cloth which is stored to be used on special occasions.

**ପେଢ଼ା(ଢ଼ି)**—ଦେ. ବି. (ସ. ପେଡ଼ା)—ପେଡ଼ା(ଡ଼ି) (ଦେଖ)
Perḍhā(ṛḍhi) Perḍa(ṛḍi) (See)

**ପେଣ୍ଟ୍**—ବୈଦେ. ବି—୧ । (ଇଂ. ପାଣ୍ଟ)—ପେଣ୍ଟାଲୁନ୍ (ଦେଖ)
Pent Pentalun (See)
পেন্ট ୨ । (ଇଂ. ପେଣ୍ଟ) ରଙ୍ଗ କରିବା, ରଞ୍ଜିତକରଣ—
पेंट 2. Painting.
୩ । (ଇଂ. ପେଣ୍ଟ) ବସ୍ତୁ ଓ କାଠ ଆଦିରେ ବୋଲାଯିବା ରଙ୍ଗ—
3. Paint; dye.

**ପେଣ୍ଟ୍ କୋଟ୍**—ବୈଦେ. ବି—( ଇଂ. ପାଣ୍ଟ+କୋଟ୍ )—ପାଶ୍ଚାତ୍ୟ
Pent kot ପୋଷାକ ବିଶେଷ; ପାଇଜାମା ଓ କୁର୍ତ୍ତା—Pants and
পেন্ট কোট পতলুন कुर्ता coat.

**ପେଣ୍ଟ**—ପ୍ରାଦେ (ଗଞ୍ଜାମ) ବି—ଶିକାର, ମୃଗୟା—
Penta Chase; hunting.

**ପେଣ୍ଟାଲୁନ୍**—ବୈଦେ. ବି—( ଇଂ. ପାଣ୍ଟାଲୁନ୍ )—ପତଲୁନ୍; ପତଲୁମ୍,
Pentalun ପାଇଜାମା; ଗାଣ୍ଡିମୁଣା—Pants; trousers; pantaloons.
ପେଣ୍ଟାଲନ୍, ପେଣ୍ଟାଲୁନ୍
ପେଣ୍ଟାଲମ୍, ପେଣ୍ଟାଲୁମ୍
ପେଣ୍ଟୁନ୍, ପେଣ୍ଟୁଲୁନ୍ } ଅନ୍ୟରୂପ পেন্টলুন
ପେଣ୍ଟୁଲୁମ୍, ପେଣ୍ଟୁଲେନ୍ पतलून

**ପେଣ୍ଟର୍**—ବୈଦେ. ବି—(ଇଂ) ଚିତ୍ରକର—
Pentar পেন্টার पेंटार Painter.

**ପେଣ୍ଟିଆ**—ପ୍ରାଦେ (ଜୟପୁର) ବି—ଏକଜାତୀୟ ଓଡ଼ିଆ କୃଷକ—
Pentiā A class of Oriya cultivators of Jeypur in Vizag district.
[ଦ୍ର—ଏମାନେ ବସ୍ତର ଅଞ୍ଚଳରୁ ଆସି ଜୟପୁରରେ ବାସ କରିଅଛନ୍ତି ।]

**ପେଣ୍ଟିଙ୍ଗ୍**—ବୈଦେ. ବି—(ଇଂ)—୧ । ରଙ୍ଗ କରିବା—
Penting 1. Painting; dying.
পেটিঙ্গ ୨ । ରଙ୍ଗକରି ଯାଇଥିବା ଚିତ୍ର—
पेंटिंग 2. A painting; painted picture.

**ପେଣ୍ଠ**—ଦେ. ବି—(ସ ପୀଠ ବା ପଣ୍ଡ; ପଣ୍ୟସ୍ଥାନ; ପ୍ରା. ପଣଟ୍ଠ)—
Pentha ୧ । ଗଞ୍ଜ; ହାଟ—1. Market; mart.
পাট, হাট ୨ । ପ୍ରସିଦ୍ଧ ବାଣିଜ୍ୟ କେନ୍ଦ୍ର, ଯେଉଁ ସ୍ଥାନରେ ବହୁ
पैठ, पैंठ ପରିମିତ ପଣ୍ୟ ଦ୍ରବ୍ୟର ବ୍ୟବସାୟ ହୁଏ—
3. Emporium; a centre of trade.
୩ । ପଣ୍ୟଦ୍ରବ୍ୟର ଭଣ୍ଡାର—
3. A store for merchandise; warehouse.
୪ । ଯେଉଁ ସ୍ଥାନରେ କୌଣସି ପଣ୍ୟଦ୍ରବ୍ୟ ( ବସ୍ତ୍ରାଦି ) ବହୁ ପରିମାଣରେ ପ୍ରସ୍ତୁତ ହୁଏ ( ଯଥା, ଚକଟ ପେଣ୍ଠ )—
4 A centre of manufacture of a certain merchandise.
୫ । ଦଳ—5 Group; crowd.
୬ । ବେପାରୀମାନଙ୍କ ଗ୍ରାମ—
6 A village or seat of traders.
୭ । ବହୁଜନସମାଗମ ସ୍ଥାନ—7. A place crowded with many people; a resort of a large number of people.
ଜଗତ୍ୟ ଯେ ନାଲଗ ଚ ପେଣ୍ଠ
ନାମ ବ୍ରତ ବଇକୁଣ୍ଠ—ଗୀତଗୋବିନ୍ଦ. ରସକଲ୍ଲୋଳ ।

**ପେଣ୍ଠା**—ଦେ. ବିଣ. ପୁଂ—ପେଠା (ଦେଖ)
Penthā (ପେଣ୍ଠୀ—ସ୍ତ୍ରୀ) Pethā (See)
পাঁঠা ବି—ଅଣ୍ଡିରା ଛେଳ ବା ମେଣ୍ଢାଛୁଆ; ଛୋଟ ବୋଦା—
A male young of sheep or of goat.

**ପେଣ୍ଠା ନଡ଼ିଆ**—ଦେ. ବି—୧ । ନଡ଼ିଆ ଫଳୁଥିବା ଅଳ୍ପ ବୟସର ବା
Penthā naṛdiā ବାଙ୍ଗର ଗଛ—1. A young or dwarfish cocoanut tree yielding fruits.
୨ । ଛୋଟ ଆକାରର ନଡ଼ିଆ—
2. Small-sized cocoanut.

**ପେଣ୍ଠିଆ**—ଦେ. ବିଣ—ଛୋଟ, ବାଙ୍ଗୁରା—
Penthiā Dwarfish; small; stunted.
ପ୍ରାଦେ (ଗଡ଼ଜାତ) ବି—ଯେଉଁ ବ୍ୟକ୍ତି ଶିକାରୀ ପଛରେ ମଞ୍ଚାରେ ବସିଥାଏ ଓ ଜନ୍ତୁ ଆସିଲେ ଶିକାରୀକୁ ଦେଖାଏ, ବନ୍ଧୁକ ଧରିଥାଏ, କାର୍ତ୍ତୁଜ୍ ଯୋଗାଏ ଓ ଶିକାରୀକୁ କୌଣସି ଜନ୍ତୁ ଆକ୍ରମଣ କଲେ ବୁଦ୍ଧିଦ୍ୱାରା ତାକୁ ଆଘାତ କରେ—
A person who sits behind the hunter on the machan and is always ready at hand to do his bidding and help him.

**ପେଣ୍ଠୀ**—ଦେ. ବିଣ. ସ୍ତ୍ରୀ—୧ । ଗେଡ଼ୀ; ବାଙ୍ଗୁରୀ—
Penthi 1. Dwarfish (woman); stunted.
न्याटा लंगनो ୨ । ଛୋଟ—2. Small; little.
পাঁঠী ବି—୧ । ଛୋଟ ମାଈ ଛେଳ ବା ମେଣ୍ଢା—
1. A young female goat or sheep.
୨ । ଗେଡ଼ୀ ଅଥଚ ପୁଷ୍ଟାଙ୍ଗୀ ସ୍ତ୍ରୀ—
2. A short and sturdy woman.
କୃଷ ବହୁଛନ୍ତି କେଉଁ ପେଣ୍ଠୀକି
ଖୁ ମୋର ସମାନ ଛନ୍ଦ ଗଣ୍ଠି କି—ଅଭିମନ୍ୟୁ. ବିଦଗ୍ଧ ଚିନ୍ତାମଣି ।

୩ । ସାନ ଝୋଟୀ—3. Little girl; lass.
୪ । ଯେଉଁ ଛେଳିର ପ୍ରଥମ ଗର୍ଭ ହୋଇ ନ ଥାଏ—
4 A she-goat which has not yet conceived.

**ପେଣ୍ଡ୍ରା**—ପ୍ରାଦେ (ଗଡ଼ଜାତ) ବି—(ଡା. ପଣ୍ଡା=ଘୁଷୁରୀ)—
Pend-rā ୧ । ହେଣ୍ଟା—1. Wolf.
(ପେଣ୍ଡ୍ରା—ଅନ୍ୟରୂପ) ୨ । ଏକ ପ୍ରକାର ଛୋଟ ବାଘ, ଚିତାବାଘ—
2. Small leopard.

**ପେଣ୍ଡା**—ଦେ. ବିଣ—(ସଂ. ପଣ୍ଡ ବା ପିଣ୍ଡ)—୧ । ସ୍ତବକ, ଗୋଛା,
Pendā ଥୁଲୋ ଥୋପା, ଗୁଚ୍ଛ—1. Cluster.
**पुला, गड्ठा; गुच्छा** ଦେହଁରେ କେତେ ପ୍ରଭେଦ ହେଣ୍ଡା ହୋଇଅଛ
ପେଣ୍ଡା ପେଣ୍ଡା ହେ ଲେଣ ମଞ୍ଜୁରୀ ଲମ୍ବିଛି—
କୃଷ୍ଣସିଂହ ମହାଭାରତ. ଅଦ୍ଧ।
୨ । ବିଡ଼ା—2. Sheaf.
୩ । ଫଳର ପେଣ୍ଡା ବା କାନ୍ଦି—
3 A bunch of fruits coming out of one stem.
୪ । କଦଳୀ ଫଳର ଫେଣା—
4. A cluster of plantain-fruits.
ପାୟେର ଡିମା, ପିଂଡ ବି—(ସଂ. ପିଣ୍ଡି)—ଗୋଡ଼ର ଆଣ୍ଠୁ ତଳଠାରୁ
**पिंडली** ତଳାଗଣ୍ଠି ପର୍ଯ୍ୟନ୍ତ ଅଷ୍ଟର ମାଂସଳ ସ୍ଥାନ, ଭଣ୍ଡା—
The calf of the leg.
ପ୍ରାଦେ (ଯାଜପୁର) ବି—ଧାନର କେଣ୍ଡା—
An ear of paddy.

**ପେଣ୍ଡା ପେଣ୍ଡା**—ଦେ. କ୍ରି. ବିଣ.—ଗୁଚ୍ଛ ଗୁଚ୍ଛ ହୋଇ; ଥୋପା ଥୋପା,
Pendā pendā ପେଞ୍ଚି ପେଞ୍ଚି—In clusters; in tassels.
ଥୁଲୋ ଥୁଲୋ **गुच्छा गुच्छा**

**ପେଣ୍ଡା ବାଳ**—ଦେ. ବି.—ଗୋଛାଏ ଲମ୍ବ ବାଳ; ସ୍ଥୂଳ କେଶଗୁଚ୍ଛ—
Pendā bāla A thick mass of flowing hair,
ପେଣ୍ଡାବାଳ ମଞ୍ଜୁଳାଉ ବସିଅଛ କେହି।
ରାଧାନାଥ, ମହାଯାତ୍ରା।

**ପେଣ୍ଡାଲ୍**—ବୈଦେ. ବି. (ଇଂ. ପାଣ୍ଡାଲ୍‌ର ଅଶୁଦ୍ଧ ଉଚ୍ଚାରଣ)—
Pendāl ପାଣ୍ଡାଲ୍ (ଦେଖ)—Pāndāl (See)
ପ୍ୟାଣ୍ଡାଲ **पंडाल**

**ପେଣ୍ଡାଳିବା**—ଦେ. କ୍ରି—ସମ୍ଭାଳିବା—
Pendāḷibā सामलाना सहना To tolerate.

**ପେଣ୍ଡି**—ଦେ. ବି.—(ପେଣ୍ଡାର ଅଦରାର୍ଥକ ଆକାର)—୧ । ଛୋଟ ଗୁଚ୍ଛ—
Pendi 1. A small cluster.
୨ । ଧାଉଁର ବା ପାଟଫୁଲର ଗୁଚ୍ଛ, ଭୂଷିର ସ୍ତବକ—
2. Tassels; a cluster of pendants.
୩ । ପିଣ୍ଡି; ଛୋଟ ବେଦୀ—
3. A small platform or seat.
୪ । ନୋଥର ତଳରେ ଝୁଲୁଥିବା ଝୁମ୍ପା—5. A cluster of tiny pendants hanging from a circular nose-ring.

**ପେଣ୍ଡିଂ**—ବୈଦେ. ବିଂ. (ଇଂ) (କଚେରୀ)—ଫଇସଲ ହୋଇ ନ ଥିବା;
Pendim ବାକି ରହି ଥିବା—Pending.
(ପେଣ୍ଡିଙ୍ଗ—ଅନ୍ୟରୂପ) (ଯଥା —ପେଣ୍ଡିଙ୍ଗ୍ କାଗ୍ଜ, ପେଣ୍ଡିଙ୍ଗ କେସ୍
ପେଂଡିଙ୍ଗ୍ **पेंडिङ्ग्** ଇତ୍ୟାଦି ।)

**ପେଣ୍ଡି କନିଅର**—ଦେ. ବି.—ଗୁଚ୍ଛ ଗୁଚ୍ଛ ଫୁଲ ଧରିବା ଏକ ପ୍ରକାର
Pendi kaniara **पुष्प गुल्म**—Tecoma

**ପେଣ୍ଡି ଖଜୁର(ରା,ରି)**—ଦେ. ବି.—(ସଂ. ପିଣ୍ଡ ଖର୍ଜୁର)—ଆରବ ଓ
Pendi khajura(rā, ri) ମିଶର ଆଦି ଦେଶଜାତ ଏକ ପ୍ରକାର
ଖଜୁରୀ କୋଳି—Arabian dates.
ପିଂଡି ଖେଜুর **पिंडि खजूर**
[ଦ୍ର—ଏହା ମାଂସଳ ଓ ସୁମିଷ୍ଟ । ପାଚିଲା ଫଳଗୁଡ଼ିଏ ଏକତ୍ର
ରଖାଗଲେ ପିଣ୍ଡ ବା ଗୋଟା ବାନ୍ଧି ଯାଏ ।]

**ପେଣ୍ଡି ଜହ୍ନୀ**—ଦେ. ବି. (ସଂ. ପିଣ୍ଡ ଓ ଜ୍ୟୋତ୍ସ୍ନୀ)—ଏକ ପ୍ରକାର ଜହ୍ନୀ;
Pendi jahni ଗୋଟିଏ ଡେମ୍ଫରେ ଗୁଚ୍ଛ ଗୁଚ୍ଛ ଫଳ ଧରିବା ଜହ୍ନୀ—
A kind of Luffa which bears fruits in
থোক ধুন্দুল clusters.

**ପେଣ୍ଡି ଝ(ଝି)ଞ୍ଜିର(ରି)**—ଦେ. ବି.—ଚଉଁରୀ ଭୂଷିରୁ ବା ଝିଙ୍ଗାକାଠିରୁ
Pendi jha(jhi)ñjira(ri) ଓହଳି ଥିବା ଝଞ୍ଜିରର ଗୁଚ୍ଛ—
A cluster of pendants with chains hanging from the end of a hairpin.

**ପେଣ୍ଡି ଝଲକା**—ଦେ. ବି. (ବଙ୍ଗୀୟ ଶବ୍ଦ)—କାନର ବାଉଳ ଦେହରେ
Pendi jhalakā ପେଣ୍ଡା ପେଣ୍ଡା ହୋଇ ଝୁଲୁ ଥିବା ଝରି,
ବାଉଳ ସହ ଉପର କାନର ଗୋଟିଏ ଅଳଙ୍କାର—
An ear ornament consisting of a bunch of pendants suspended from a ring.

**ପେଣ୍ଡି ବାଇଗଣ**—ଦେ ବି.—ଯେଉଁ ବାଇଗଣ ଗଛରେ ପେଣ୍ଡା ପେଣ୍ଡା
Pendi bāigana ସରୁ ସରୁ ବାଇଗଣ ଫଳେ—
কুলি বেগুন, থুবি কুলি বেগুন A kind of brinjal which appears in clusters in the plant.

**ପେଣ୍ଡୁ**—ଦେ. ବି —(ସଂ. ପିଣ୍ଡ)—୧ । କନ୍ଦୁକ, ବଲ୍—
Pendu গোলা **पिंड, गेंद** 1. Ball.
୨ । ନଟୁ—2. A whirling top.
ପେଣ୍ଡୁ ମୋ କେ ନେଇ ଗଲେ,
ଅଞ୍ଚଳ ଯାଅ ବୋ ଦେଖାଇ । ଉପେନ୍ଦ୍ର. ପ୍ରେମପଞ୍ଚାମୃତ ।

**ପେଣ୍ଡୁରା**—ଦେ. ବି.—ପେଣ୍ଡ୍ରା (ଦେଖ)
Pendurā Pend-rā (See)

**ପେଣ୍ଡୁରାମୁହାଁ**—ଦେ. ବିଣ. (ପୁଂ)—ପୁରୁଷଙ୍କ ପ୍ରତି ଗାଳିବିଶେଷ—
Pendurā muhāṅ A term of abuse to males.

**ପେଣ୍ଡୁଲା(ଳି)**—(ସଂ ପିଣ୍ଡ)—ପିଣ୍ଡୁଲା(ଳି) (ଦେଖ)
Pendulā(li) Pindulā(li) (See)
ଭୁଏର ପେଣ୍ଡୁଳ ପାନ ଅଲ ଚୋଟେ ଡର ଡର ଜଡ ଦେବ ମାନବେ ।
ନନ୍ଦକିଶୋର. କୃଷ୍ଣକୁମାରୀ ।

**ପେତ୍‌ନୀ**—ପ୍ରାଦେ. (ସମ୍ବଲପୁର)—ବି. ସ୍ତ୍ରୀ. (ଭୁଲ. ବଂ. ପେତ୍ନୀ; ହି.
Pet-ni ପ୍ରେତନୀ)—ପେଭୁଣୀ (ଦେଖ)—Petuṇi (See)
(ପେତ୍ନୀ, ପେତେନ୍—ଅନ୍ୟରୂପ)

**ପେଭୁଣୀ**—ଦେ. ବି.ସ୍ତ୍ରୀ (ସଂ. ପ୍ରେତ)—ପିଶାଚୁଣୀ; ନବପ୍ରସୂତ ମୃତା ହେଲେ
Petuṇi ତାହାର ପ୍ରେତ—1. The ghost of a woman
পেত্নী **प्रेतनि** who dies just after child-birth.

ସେହି ବରଗଛରେ ଗୋଟାଏ ବଡ ପେଦୁଣୀ ବସି ଡାଳ ଦୋହଲାଏ ।
ଫକୀରମୋହନ—ଛମାଣ ଅଠଗୁଣ୍ଠ ।

୨ । ସ୍ତ୍ରୀରୂପ ଧାରଣୀ ଭୂତ—2. A female ghost

**ପେଦୁଡ଼(ଡ଼ି,ଡ଼ୁ)**—ଦେ. ବ. ( ସ. ପାରେବତ; ଭୁଲ. ପ୍ରିୟ ଓ ଦୂର; ଏହାର Pedurda rdi,rdu) ପାଚିଲା ଫଳ ପାଇଲେ ଲୋକର ଅନ୍ୟ ପ୍ରିୟ ଫଳ ପ୍ରତି ଲାଳସା ଦୂର ହୁଏ)—ଗୁଆଚିଆ (ପେଦୁର—ଅନ୍ୟରୂପ) ଫଳ—Guava; Ficus Carica. ପିହ୍ରଡ଼; ପେଯ୍ଯାବା अमरूत

**ପେନ୍**—ବୈଦେ. ବ. (ଇଂ)—୧ । କଲମ; ଲେଖନୀ—Pen ପେନ पेन 1. Pen.

୨ । ଲୁହାର କଲମ; ନିବ୍—2. Steel pen; nib.

**ପେନ୍ କଲମ**—ଦେ. ବ. ( ଇଂ. ପେନ୍ + ଫା. କଲମ୍ )—Pen kalama ପେନ୍ ୨ (ଦେଖ)—Pen 2. (See).

**ପେନ୍ସ୍**—ବୈଦେ. ବ. ( ଇଂ. ପେନୀର ବହୁବଚନ )—ଇଂଲଣ୍ଡରେ Pen-s ପ୍ରଚଳିତ ତାମ୍ର ମୁଦ୍ରା; ଏକ ଶିଲିଙ୍ଗର ୧୨ ଭାଗରୁ ଏକ ପେନସ पेन्स (ପେନ୍ସ—ଅନ୍ୟରୂପ) ଭାଗ—Pence. [ ଦ୍ର—ଏହି ଶବ୍ଦ ପେନିର ବହୁବଚନ ଅଟେ । ]

ଦେ. ବ—ପିନସ ( ଦେଖ )—Pinasa (See)

**ପେନ୍ସନ୍**—ବୈଦେ. ବ. ( ଇଂ )—କର୍ମରୁ ଅବସରପ୍ରାପ୍ତ ବୃଦ୍ଧ ଓ Pen-san ଅକ୍ଷମାବସ୍ଥାପନ୍ନ କର୍ମଚାରୀଙ୍କୁ ଦିଆଯିବା ବୃତ୍ତି ପେନସନ पेन्सन ବା ଖୋରାକି—Pension ( ପେନ୍ସିନ୍, ପେନ୍ସେନ୍—ଅନ୍ୟରୂପ )

**ପେନ୍ସନ୍ ପ୍ରାପ୍ତ**—ଦେ. ବଣ—କର୍ମରୁ ଚିରକାଳ ପାଇଁ ଅବସର ଲାଭ କରି Pen-san prāpta ମାସିକ ବୃତ୍ତି ପାଉଥିବା—Pensioned. ପେନସନ ପ୍ରାପ୍ତ पेन्सनप्राप्त retired.

**ପେନ୍ସନର୍**—ବୈଦେ. ବ. (ଇଂ)—ପେନ୍ସନ୍ ପାଉଥିବା କର୍ମଚାରୀ—Pen-sanar ପେନସନାର पेन्सनर Pensioner.

**ପେନ୍ସିଲ୍**—ବୈଦେ. ବ. (ଇଂ)—କାଳୀର ବିନା ସାହାଯ୍ୟରେ ଅସ୍ଥାୟୀ Pen-sil ଭାବରେ ଲେଖିବା ପାଇଁ ବ୍ୟବହୃତ ସୀସାର ବା ଖଡ଼ିର ପେନସିଲ पेन्सिल ଲେଖନୀ—Pencil

ପିନ୍ସିନ୍(ଲ୍), ପିନ(ନ୍)ସୁ(ସି)ଖଡ଼ି, ପେନସିନ୍(କ,ଲ,ଲ), ପେନ୍ସୁନ(କ,ଲ,ଲ), ପେନ(ନ୍)ସିଲ — ଅନ୍ୟରୂପ

[ ଦ୍ର—କାଗଜରେ ଲେଖିବା ପାଇଁ ବ୍ୟବହୃତ ଭିନ୍ନ ପେନ୍ସିଲ୍ ବା ଲେଡ୍ ପେନ୍ସିଲ୍ ଓ ସ୍ଲେଟ ଉପରେ ଲେଖିବା ପେନ୍ସିଲ୍‌କୁ ଖଡ଼ି ପେନ୍ସିଲ୍ ବା ସ୍ଲେଟ୍ ପେନ୍ସିଲ କହନ୍ତି । ଭିନ୍ନ ଭିନ୍ନ ରଙ୍ଗର ପେନ୍ସିଲ୍‌କୁ ସେହି ସେହି ରଙ୍ଗର ନାମରେ ନାମକରଣ କରାଯାଏ, ଯଥା—ନାଲି, ନେଳି, ବାଇଗଣୀ ପେନ୍ସିଲ୍ । ଭିନ୍ନ ଭିନ୍ନ କାର୍ଯ୍ୟ ପାଇଁ ବ୍ୟବହୃତ ପେନ୍ସିଲର ମଧ୍ୟ ଭିନ୍ନ ନାମ ଅଛି, ଯଥା—ଡ୍ରଇଂ ପେନ୍ସିଲ୍, କପିଙ୍ଗ୍ ପେନ୍ସିଲ, ସ୍ଲେଟ୍ ପେନ୍ସିଲ । ]

**ପେନା**—ବୈଦେ. ବ. (ଇଂ. ପିନ୍)—କାଠର ସରୁ ଖିଲ; ଶଲାକା—Penā ପେନା पीना Wooden peg.

**ପେନାଙ୍ଗ**—ଦେ. ବ. ( ନାମ )—ମାଲୟ ଉପଦ୍ୱୀପର ପଶ୍ଚିମରେ ଥିବା Penāng କ୍ଷୁଦ୍ର ଦ୍ୱୀପ—The island of Penang to the ପେନାଙ୍ଗ पेनाङ्ग west of the Malay peninsula. [ ଦ୍ର—ଏହାର ପ୍ରଧାନ ନଗର ଓ ବନ୍ଦର ଜର୍ଜ୍‌ଟାଉନ୍ । ]

**ପେନାଲ୍ କୋଡ୍**—ବୈଦେ. ବ. ( କଚେରୀ )—ଦଣ୍ଡବିଧି ଆଇନ; ଭାରତର Penāl kod ଅପରାଧମାନଙ୍କ ପାଇଁ ଯେଉଁ ଆଇନ୍‌ରେ ଭାରତର ପେନାଲ କୋଡ ଦଣ୍ଡର ବ୍ୟବସ୍ଥା ଅଛି—Penal code. पेनाल कोड

**ପେନାଲ୍‌ଟି**—ବୈଦେ. ବ. ( ଇଂ )—୧ । ଅର୍ଥଦଣ୍ଡ—Penāl-ṭi 1. Fine. ପେନାଲ୍‌ଟୀ ୨ । କୌଣସି ନିର୍ଦ୍ଦିଷ୍ଟ କାର୍ଯ୍ୟ ନ କଲେ ବା ଧନ ନ पेनाल्टी ଦେଲେ ତହିଁ ଉପରେ ପଡ଼ିବା ଅଧିକା ଦଣ୍ଡ—(ପେନାଲ୍ଟୀ, ପିନାଲ୍ଟି—ଅନ୍ୟରୂପ) 2. Penalty.

**ପେନାଲ୍ ସର୍ଭିଚୁଡ୍**—ବୈଦେ. ବ. (ଇଂ)—ସଶ୍ରମ କାରାଦଣ୍ଡ ପରିବର୍ତ୍ତେ Penāl sarbhichud ସେଠାଙ୍କ ଅପରାଧୀଙ୍କୁ ଦିଆଯିବା ନିର୍ବାସନ ଦଣ୍ଡ—Penal servitude.

**ପେନି**—ବୈଦେ. ବ. ( ଇଂ. ପିନାଫୋର୍ )—୧ । ପିଲାମାନେ ପିନ୍ଧିବା Peni ଏକପ୍ରକାର କୁର୍ତ୍ତା ( ଏହା ପଛଆଡ଼ରୁ ଡୋରିରେ ପେନୀ पेनि ବନ୍ଧାଯାଏ )—1. Pinafore.

୨ । (ଇଂ. ଏକବଚନ ପେନ୍ସ)—ବିଲାତ ପ୍ରଚଳିତ ତାମ୍ରମୁଦ୍ରା; ଏକ ଶିଲିଙ୍ଗର $\frac{1}{12}$—2. Penny (ବହୁବଚନ—ପେନ୍ସ)

**ପେନିୱେଟ୍**—ବୈଦେ. ବ. ( ଇଂ )—ବିଲାତି ଓଜନବିଶେଷ ( ପ୍ରାୟ Peniwet ୧୦ ରତି )—Pennyweight; a standard-ପେନୀଓୟେଟ पेनिवेत weight.

**ପେନୁ**—ପ୍ରାଦେ. ( ଗଡ଼ଜାତ ) ବ ( କନ୍ଧଭାଷା )—ଦେବତା—Penu (ପେନ୍ନୁ—ଅନ୍ୟରୂପ) Deity.

[ ଦ୍ର—କନ୍ଧମାନେ ଭିନ୍ନ ଭିନ୍ନ ଉଦ୍ଦେଶ୍ୟରେ ଭିନ୍ନ ଭିନ୍ନ ଦେବତାଙ୍କୁ ପୂଜା କରନ୍ତି; ଯଥା—ବେରା ପେନୁ—ପୃଥିବୀ ଦେବତା; ଲୋହା ପେନୁ—ଯୁଦ୍ଧ ଦେବତା; ନାଦ୍‌ଜୁ ପେନୁ—ଗ୍ରାମ ଦେବତା, ଦାଞ୍ଜୁ ପେନୁ—ଚନ୍ଦ୍ରଦେବତା; ସାଣ୍ଡେ ପେନୁ—ସୀମା ବା ବାସ୍ତୁ ଦେବତା; ଯୁଗ ପେନୁ—ବସନ୍ତ ରୋଗ ଦେବତା; ସୋରୁ ପେନୁ—ପାହାଡ଼ ଦେବତା; ଗସା ପେନୁ—ବନଦେବତା; ମୁଣ୍ଡା ପେନୁ—ଜଳାଶୟ ଦେବତା; ସିଗୁ ଓ ସୁଦ୍ରୋଜୁ ପେନୁ—ଝରଣା ଦେବତା, ପିଦ୍‌ଜୁ ପେନୁ—ବର୍ଷାଦେବତା; ପିଲାମୁ ପେନୁ—ମୃଗୟାଦେବତା, ସିଙ୍ଗା ପେନୁ—ମୃତ୍ୟୁ ବା ପ୍ରଳୟ ଦେବତା । ]

**ପେନ୍ତିଆ**—ପ୍ରାଦେ. ( ଗଞ୍ଜାମ ) ବ—ଗଞ୍ଜାମ ଜିଲ୍ଲାର ଯାତିକ ( ଶୂଦ୍ର ) Pentiā ବିଶେଷ—A class of Śudras in the district of Ganjam.

**ପେନ୍ଥା(ନ୍ଥି)**—ଦେ. ବ. ( ସଂ. ପିଣ୍ଡ )—ଗୁଚ୍ଛ; ପେଣ୍ଡା—Penthā(nthi) ଥୁଲୋ गुच्छा Cluster; bunch.

**ପେନ୍ଦ**—ଦେ. ବ. ( ସ. ପିଣ୍ଡ; ପଦ୍ମ; ପଦ୍ମ କଳିକା ସଦୃଶ ଆକାର ଓ ବର୍ଣ୍ଣ Penda ଥିବାରୁ, ଅନ୍ୟ ସ. ନାମ ଯୋନିକନ୍ଦ )—ପାଁଦ, ପ୍ୟାଦ ୧ । ( ଅଶ୍ଳୀଳ ) ସ୍ତ୍ରୀମାନଙ୍କ ଯୋନିଭ୍ରଂଶ ରୋଗ; आँडिनी, काँच ସ୍ତ୍ରୀ ଲୋକମାନଙ୍କର ଜନନେନ୍ଦ୍ରିୟ ବାଟେ ଖସି ପଡ଼ିଥିବା ଜରାୟୁ ବା ପଦ୍ମ—

1. The fart; strangulated uterus; prolapse of the uterus; polypus of the uterus; Ventris Crepitus.

୨ । ପୁରୁଷମାନଙ୍କ ଗୁହ୍ୟ ଦ୍ୱାର ବାଟେ ବାହାର ପଡ଼ୁଥିବା ମାଂସପିଣ୍ଡ; ଗୁଦଭ୍ରଂଶ ରୋଗ—

2. Prolapse of the rectum.

**ପେନ୍ଦା**—ଦେ. ବଣ—ପେନ୍ଦୁରା ( ଦେଖ )
Pendā Pendurā ( See )

ପେନ୍ଦୀ } ସ୍ତ୍ରୀ ପ୍ରାଦେ. (ସାଜପୁର) ବି. (ଧାନ ପ୍ରଭୃତିର) କେଣ୍ଡା—
ପେନ୍ଦେଇ Ears of corn (paddy etc).

**ପେନ୍ଦା ମୁହାଁ**—ଦେ. ବଣ. ପୁଂ—ବିରସ ମୁହାଁ; ବିମର୍ଷ ମୁଖ ଯୁକ୍ତ;
Pendā muhāñ ଯେ ସବୁବେଳେ ମୁହଁ ଶୁଖାଇ ଥାଏ—
[ପେନ୍ଦ(ନ୍ଦୁ)ରା ମୁହାଁ—ଅନ୍ୟରୂପ) Sad-faced; always
ପେନ୍ଦା ମୁହାଁ wearing a gloomy expression
ପେନ୍ଦୀ ନୁହାଁମୁହାଁ } ସ୍ତ୍ରୀ on the face.
ପେନ୍ଦୀ ମୁହାଁ

**ପେନ୍ଦି**—ଦେ. ବି. ( ସ. ପିଣ୍ଡ )—
Pendi ୧ । ଗେଣ୍ଡୁ; କଂସା, ଗିନା, ବୋତଲ ଆଦିର ତଳେ
पेँदा ଉଭର ପାଖକୁ ଠେଲିଯାଇ ଥିବା ଗାଣ୍ଡି—
पेंदा, पेंदी 1. A hollow or depression at the bottom of a pot, dish or bottle.

୨ । ଛାଞ୍ଚରେ କାଦୁଅ ପୂରାଯାଇ ଗଢ଼ା ହେବା କଞ୍ଚା ଇଟାର ତଳ ପାଖରେ ଲାଗି ରହିଥିବା ବଳକା ମାଟି—
2. The earth bulging out at the bottom side of a brick prepared in the mould.

୩ । କାକୁଡ଼ି ଫଳର ଭୃଣ୍ଟି ପାଖେ ଥିବା ପିତାଳିଆ ଅଂଶ—
3 The part of a cucumber fruit just near its stem, which tastes bitter.
କାକୁଡ଼ି ଖାଇ ପେନ୍ଦିରେ କଡୁଆ ଲାଗେ ।

୪ । ତୁମ୍ବ ବାଣର ଯେଉଁ ସଙ୍କୀର୍ଣ୍ଣ ମୁହଁରେ ନିଆଁ ଧରାଇ ଦିଆଯାଏ—
4. The hole of a Tumba firework which is ignited.

୫ । ପେନ୍ଦ (ଦେଖ)—5. Penda ( See )

୬ । ଗିନା ଆଦିର ବଇଠି—6 The pedestal of a cup.

**ପେନ୍ଦି ଗାତ**—ଦେ. ବି—ପେନ୍ଦି ୪ ( ଦେଖ )
Pendi gāta Pendi 4 ( See )

**ପେନ୍ଦୁରା**—ଦେ. ବଣ. ପୁଂ—୧ । ପେନ୍ଦ ରୋଗାକ୍ରାନ୍ତ ବ୍ୟକ୍ତି—
Pendurā (a person) Suffering from prolapse of
(ପେନ୍ଦରା,ପେନ୍ଦେରା—ଅନ୍ୟରୂପ) the uterus or of the rectum.
(ପେନ୍ଦରୀ, ପେନ୍ଦୂରୀ, ପେନ୍ଦୁରୀ, ପେନ୍ଦେରୀ—ସ୍ତ୍ରୀ)

୨ । ପେନ୍ଦାମୁହାଁ (ଦେଖ)—2. Pendā muhāñ (See).

**ପେପର୍**—ବୈଦେ. ବି. ( ଇଂ )—
Pepar ୧ । କାଗଜ—1. Paper.
ପେପାର ୨ । ଖବର କାଗଜ—2. Newspaper.
पेपर ୩ । ପ୍ରଶ୍ନ ଲେଖାଥିବା କାଗଜ—
3. Question paper.
୪ । (କଚେରିଆ) କୌଣସି ନଥି ସମ୍ପର୍କୀୟ କାଗଜପତ୍ର—
4. A paper connected with a record.

**ପେପର୍ ବୁକ୍**—ବୈଦେ. ବି. (ଇଂ.) (କଚେରିଆ)—
Pepar buk ହାଇକୋର୍ଟରେ ଚାଲୁଥିବା ମକଦ୍ଦମାର ଆବଶ୍ୟକୀୟ
ପେପାର ବୁକ୍ କାଗଜ ପତ୍ରର ଇଂରାଜୀ ନକଲ ଛପା ହୋଇଥିବା
पेपर बुक् ବହି—Paper-book of a case in the High Court.

**ପେପର୍‌ମେଣ୍ଟ**—ବୈଦେ. ବି. (ଇଂ. ପେପର୍‌ମିଣ୍ଟ)—ବିଲାତି ପୁଦିନା—
Peparament Peppermint.
ପେପାରମେଣ୍ଟ [ ଦ୍ର—ପୁଦିନା ତଳେ ନୋଟ୍ ଦେଖ । ]
पेपरमिंट
(ପିପର୍‌ମେଣ୍ଟ, ପେପରମେଣ୍ଟ, ପେପରମିଣ୍ଟ, ପେପର୍‌ମେଣ୍ଟ ପୁଦିନା—ଅନ୍ୟରୂପ)

**ପେପର୍‌ମେଣ୍ଟ ଅର୍କ(ଖ)**—ଦେ. ବି. (ଇଂ ପେପର୍‌ମେଣ୍ଟ+ଫା ଅରକ୍)—
Pepar-ment arka (rkha) ପେପରମେଣ୍ଟରୁ ପ୍ରସ୍ତୁତ ସୁରସାର—
ପେପାରମେଣ୍ଟ ଅରକ Essence of mentha.
पेपरमिंटका अरक [ପେପର୍‌ମେଣ୍ଟ ଅରକ (ଖ)—ଅନ୍ୟରୂପ]

**ପେପର୍‌ମେଣ୍ଟ ତେଲ**—ଦେ. ବି—ପେପରମେଣ୍ଟରୁ ପ୍ରସ୍ତୁତ ତୈଳ—
Pepar ment tela Oil mentha.
(ପେପର୍‌ମେଣ୍ଟ ଅଏଲ୍—ଅନ୍ୟରୂପ)
ପେପାରମେଣ୍ଟ ତେଲ पेपरमिंट तेल

**ପେପର୍‌ମେଣ୍ଟ ଫୁଲ**—ଦେ. ବି—ପେପରମେଣ୍ଟରୁ ପ୍ରସ୍ତୁତ ଲବଣ ଜାତୀୟ
Pepar-ment phula ପଦାର୍ଥ—Crystals or flowers
ପେପାରମେଣ୍ଟ ଫୁଲ पेपरमिंटका फुल of peppermint.

**ପେପର୍‌ମେଣ୍ଟ ମିଠା(ଠେ)ଇ**—ଦେ. ବି. ( ଇଂ. ପେପର୍‌ମେଣ୍ଟ ଓ ସ. ମିଷ୍ଟାନ୍ନ )—
Pepar-ment mithā(the)i
ପେପାରମେଣ୍ଟ ମେଠାଇ ପିପର୍‌ମେଣ୍ଟଦ୍ୱାରା ସୁବାସିତ ମିଠେଇ—
पेपरमिंट मिठाइ Peppermint lozenges.

**ପେପର୍ ୱେଟ୍**—ବୈଦେ. ବି. (ଇଂ)—ଖଣ୍ଡଖଣ୍ଡିଆ କାଗଜ ପବନରେ
Pepar wet ଉଡ଼ି ନ ଯିବା ପାଇଁ ତା ଉପରେ ରଖାଯିବା ସୀସାର
ପେପାର ୱେଟ ବା କାଚର ଗୋଲକ—Paper-weight.
पेपर वेट् (ପେପର ଉଏଟ୍, ପେପର ଓ୍ୱେଟ୍—ଅନ୍ୟରୂପ)

**ପେପେୟା**—ଦେ. ବି—ପପୟା (ଦେଖ)
Pepeyā Papayā (See)
(ପେପୟା, ପେପେ, ପେମ୍ପେ, ପେମ୍ପେୟା—ଅନ୍ୟରୂପ)

**ପେବଲ୍ ଚଶମା**—ଦେ. ବି. (ଇଂ. ପେବ୍‌ଲ୍ + ଫା. ଚଶ୍‌ମା)—
Pebal chashamā ସ୍ୱଚ୍ଛ ପଥର ଘଷା ହୋଇ ତିଆରି ହୋଇ
(ପେବ୍‌ଲ୍ ଚଶମା—ଅନ୍ୟରୂପ) ଥିବା ଚଷମା—Spectacles made
ପେବଲଚସ୍ମା पेबलचशमा from pebbles.

**ପେବଲୀ**—ସ. ବି—ଅଙ୍ଗ ବିକ୍ଷେପ ସହକାରେ ନୃତ୍ୟ (ଶ୍ଳୋକେନ୍ଦ୍ର)—
Pebalī A dance accompanied with violent motion of the limbs;

**ପେ ବଲ୍**—ବୈଦେ. ବି. (ଇଂ)—ଦରମା ପାଇବା ପାଇଁ କର୍ତ୍ତୃପକ୍ଷଙ୍କ ଆଗରେ
Pe bil  ପେବୀଲ **पेबिल** ପେସ୍ ହେବା ବିଲ୍—Pay bill.

**ପେମ**—ଦେ. ବି. (ସ. ପ୍ରେମ ପ୍ରା. ପେମ)—୧ । ପ୍ରଣୟ; ପ୍ରେମ; ସ୍ନେହ, ପ୍ରୀତି—1. Love; attachment; affection, fondness.
Pema
(ପେମ୍ନ—ଅନ୍ୟରୂପ)
ପେମ ୨ । ଆନନ୍ଦ—2. Delight; joy.
**पेम** ୩ । ଉତ୍ସବ—3. Festivity; merriment.
୪ । ଆଦର; ସୁହାଗ—4. Endearment; fondling.
୫ । (ବ୍ୟଙ୍ଗାର୍ଥ) ଗୁପ୍ତ ପ୍ରେମ—5. Secret love.
୬ । ଅବୈଧ ପ୍ରେମ—6 Illicit love.
୭ । ଅତିରକ୍ତ ବା ବେଳାପ୍ ପ୍ରଣୟ—
7. Undue familiarity; infatuated attachment.
୮ । ଅସାଧାରଣ ଘଟଣା ବା ବିଷୟ—8 An unusual or uncommon occurrence or matter.
୯ । କୌତୁକ, ତାମସା, ରଙ୍ଗ; ସୁଆଙ୍ଗ, ଥଟ୍ଟା—
9 Jest; sport
୧୦ । ପଧିବ, ଆଶ୍ଚର୍ଯ୍ୟଜନକ ଘଟଣା; ଅଦ୍ଭୁତ କାଣ୍ଡ—
10. A wonderful thing or feat.
୧୧ । ନୂଆ କଥା; ଅଶ୍ରୁତପୂର୍ବ ବିଷୟ—
11 An unheard of matter.

**ପେମ କାଢ଼ିବା**—ଦେ. କ୍ରି—୧ । ଅଦ୍ଭୁତ ବିଷୟର ପ୍ରସ୍ତାବ ଆଗତ କରିବା—1. To propose an unheard of matter.
Pema kārdhibā
ପେମ ଦେଖା(ଖେ)ଇବା, ପେମ ବାହାର କରିବା, ପେମ ଲଗା(ଗେ)ଇବା } ଅନ୍ୟରୂପ ୨ । ତମସା ଲଗାଇବା—
2. To make a sport
୩ । ସୁହାଗ କରିବା—3. To fondle.

**ପେମା**—ଦେ. ବିଣ. ପୁଂ. (ସ. ପ୍ରେମିକ)—ପ୍ରେମିକ—
Pemā (ପେମୀ—ସ୍ତ୍ରୀ) Lover; sweetheart.

**ପେମେଣ୍ଟ**—ବୈଦେ. ବି. (ଇଂ)—ଧନ ଦେବା କର୍ମ—
Pement ପେମେଣ୍ଟ **पेमेंट** Payment.

**ପେୟ**—ସଂ ବିଣ (ପା ଧାତୁ=ପିଇବା+ଯୋଗ୍ୟାର୍ଥେ ଯ)—
Peya ପାନଯୋଗ୍ୟ, ପାନୀୟ—Drinkable.
(ପେୟା—ସ୍ତ୍ରୀ) ବି—୧ । ପାନୀୟ ବସ୍ତୁ—1. A drink.
୨ । ପାଣିଆ ଜିନିଷ—2. Liquid; fluid.

**ପେୟା**—ସ. ବି. ସ୍ତ୍ରୀ. (ପେୟ+ସ୍ତ୍ରୀ. ଆ)—(ବୈଦ୍ୟକ) ଏକ ପ୍ରକାର ଯବାଗୁ ବା ଯାଉ, ଯାଉପାଣି; ଚାଉଳକୁ ୧୧ ବା ୧୫ ଗୁଣ ଜଳରେ ପାକ କରି ଗୋଳାଇ ପ୍ରସ୍ତୁତ କରିବା ମଣ୍ଡ—
Peyā
A gruel made by boiling rice with 11 or 15 times its own weight of water

**ପେୟୁ**—ସ. ବି. (ପା ଧାତୁ=ପିଇବା+କର୍ତ୍ତୃ. ଉ)—୧ । ସମୁଦ୍ର—
Peyu 1. The sea.
୨ । ଅଗ୍ନି—2. Fire.
୩ । ସୂର୍ଯ୍ୟ—3. The sun (Apte).

**ପେୟୂଷ**—ସ. ବି. (ପୀୟୂଷ+ଅ)—୧ । ପୀୟୂଷ; ଅମୃତ—
Peyusha 1. Nectar.
୨ । ଜନ୍ମ କରିବାର ୭ ଦିନ ମଧ୍ୟରେ ଗାଈ ଠାରୁ ଦୁହାଁଯିବା ଦୁଧ—2. Milk drawn from a cow which has calved within 7 days.
୩ । ଟଟକା ଘିଅ—3 Fresh ghee (Apte).

**ପେରଛା**—ଦେ. ବି—(ଜାହାଜିଆ ଭାଷା)—ଜାହାଜର ବାଡ଼—
Perachhā The railing on the edge of a ship's deck.
ଅମ ଲୋକେ ମାନେ ବ ଦୂର ଜାହାଜ ପେରଛ
ଆଉ କାନ୍ଥରେ ସଙ୍କଡ଼ ଥାନ୍ତି—ଫକୀରମୋହନ ଗଳ୍ପସ୍ବଳ୍ପ ।

**ପେର(ରେ)ଣ୍ଟାଲୁ**—ପ୍ରାଦେ (ଗଞ୍ଜାମ) ବି—(ତେଲଗୁ ଭାଷାରୁ ଅନୁକୃତ)-
Pera(re)ntālu କୌଣସି ରାଜକେମା ବା ଧନୀଗୃହର ସ୍ତ୍ରୀ ମରଗଲେ ତାହାର ପ୍ରଥମ ବାର୍ଷିକ ଶ୍ରାଦ୍ଧଦିନ ପ୍ରତିବେଶିନୀ ଓ ବନ୍ଧୁ ସ୍ତ୍ରୀ ଲୋକମାନଙ୍କୁ ନିମନ୍ତ୍ରଣ କରି ସେମାନଙ୍କୁ ଦିଆଯିବା ଭୋଜି, ବସ୍ତ୍ର ଓ ଅଳଙ୍କାରାଦି—Feast, cloth and ornaments given to female relatives and neighbours invited to the 1st anniversary of the death of a princess or rich lady.

**ପେର(ରେ)ଣ୍ଟାଲୁ ବସିବା**—ପ୍ରାଦେ (ଗଞ୍ଜାମ) କ୍ରି—କୌଣସି ମୃତା ରାଜ-
Pera(re)ntālu basibā କେମା ବା ଧନୀ ସ୍ତ୍ରୀର ପ୍ରଥମ ସାମ୍ବତ୍ସରିକ ଶ୍ରାଦ୍ଧଦିନ ସ୍ତ୍ରୀଲୋକମାନେ ନିମନ୍ତ୍ରିତା ହୋଇ ଭୋଜି, ବସ୍ତ୍ର ଓ ଅଳଙ୍କାର ପାଇବା—To get fooding, cloth and ornaments on the 1st anniversary of a princess or rich lady.

**ପେରଳୀ**—ସଂ ବି—ତାଣ୍ଡବ ନୃତ୍ୟର ଏକ ଭେଦ (ହି. ଶ)—
Peraḷi A kind of male-dance.

**ପେରି**—ଗ୍ରା (ଇତର) ଅ—(ସ. ପ୍ରାୟ)—ପରି; ପ୍ରାୟ—
Peri (ପେରିକା—ଅନ୍ୟରୂପ) Like.

**ପେରୁ**—ସ. ବି—(ପୀ. ଧାତୁ=ପିଇବା+କର୍ତ୍ତୃ. ରୁ)—୧ । ସମୁଦ୍ର—
Peru 1. Ocean.
୨ । ଅଗ୍ନି—2 Fire.
୩ । ସୂର୍ଯ୍ୟ—3; The sun.
୪ । ସ୍ୱର୍ଣ୍ଣାଦ୍ରି, ସ୍ୱର୍ଣ୍ଣଗିରି, ମେରୁଗିରି—
4 The mythological Golden mountain.
ସ. ବିଣ—୧ । ରକ୍ଷାକାରୀ (ହି. ଶ)—
1. Protecting, saving.
୨ । ପୂରଣକାରୀ (ହି. ଶ)—2, Filling up.
ବୈଦେ. ବି. (ଇଂ)—୧ । (ଦକ୍ଷିଣ ଆମେରିକାର ପେରୁଦେଶର
ପେଗ୍ଗ ନାମରୁ; ଭୁଲ. ଫା. ପୀଲ୍=କୁକୁଡ଼ା)—ଆମେରିକାରୁ
**पेरु; पीरु** ପ୍ରଥମେ ଆନୀତ ଗୃହପାଳିତ ବୃହଦାକାର କୁକ୍କୁଟ ବିଶେଷ—
1. A Turkey cock.
୨ । ଦକ୍ଷିଣ ଆମେରିକାର ଦେଶବିଶେଷ—
2. Peru, a country of South America.

ପେରୁଅ(ଆ)—ପ୍ରାଦେ. (ସମ୍ବଲପୁର) ବ—ପାରା; ପାରାବତ—
Perua(ā) Pigeon.

ପେରେକ୍—ବୈଦେ ବ. (ଇଂ. ପ୍ରିକ୍)—ପିରକ୍; ସରୁ ଲୁହାକଣ୍ଟା—
Perek ପେରେକ **पिरिकी** Small iron nail; prick.

ପେରୋଜ(ଜା)—ସ. ବ. (ଫା. ଫୀରୋଜା, ସ. ପେରୋଜମ୍, ହରଭାସ୍କ, ଭୃରଣ୍ଡ ଓ ଭୁରଣ୍ଡମଣି)—ଭୁରଣ୍ଡମଣି; ପାରସ୍ୟ
Peroja(jā) ପେରୋଜ **पीरोजा** ଦେଶୀୟ ନୀଲ ହରିଦ୍ବର୍ଣ୍ଣ ଉପରତ୍ନବିଶେଷ—
Torquois (a minor gem).
[ ଦ୍ର—ଏହା ଦୁଇ ପ୍ରକାରର । ଏକ ପ୍ରକାରର ରଙ୍ଗ ସବୁଜ ଓ ଅନ୍ୟର ରଙ୍ଗ ପାଛୁଆ । ଏହାର ଭସ୍ମ ଔଷଧରେ ଲାଗେ । ]

ପେଲ୍(ଲ୍) (ଧାତୁ)—୧ । ଗତି କରିବା—
Pel(l) (root) 1. To move.
୨ । କମ୍ପିବା—2. To shake or tremble.

ପେଲ୍‌ବା—ପ୍ରାଦେ. (ଉତ୍ତରଭାଗ) କ୍ରି—(ହୁକୁମ) ଅମାନ୍ୟ କରିବା—
Pelbā To disobey (order).

ପେଲ—ସ. ବ (ପେଲ୍ ଧାତୁ + କର୍ତ୍ତୃ ଅ)—
Pela ୧ । ଅଣ୍ଡକୋଷ, ମୁଷ୍କ; ଭୁରୁଣ୍ଡ—1 Testicle
(ପେଲକ—ଅନ୍ୟରୂପ) [ ଦ୍ର—ଏ ଶବ୍ଦ ଓଡ଼ିଆ ଓ ବଙ୍ଗଳାରେ ଅଶିଷ୍ଟ ଭାଷାରେ ବ୍ୟବହୃତ, ହି. ପେଲଡ଼ । ଓଡ଼ିଆରେ ଇତର ଉଚ୍ଚାରଣ-ପେର]
୨ । ଲିଙ୍ଗ, ମେଢ୍ର—2. Penis.
୩ । (+ଭାବ. ଅ)—ଗମନ—3. Going.
୪ । ଗତି—4. Motion.
୫ । କ୍ଷୁଦ୍ରାଂଶ—5. Particle; small part.

ପେଲ୍‌ଘେଇବା—ପ୍ରାଦେ. (ଗଡ଼ଜାତ ଓ ସମ୍ବଲପୁର) କ୍ରି—
Pelagheibā ଠେଲି ଦେବା—To push.

ପେଲଣ—ଦେ. ବ. (ସ. ପୀଡ଼ନ)—୧ । ପେଲିବା କର୍ମ—
Pelaṇa 1. The act of pushing.
୨ । (ଅଶ୍ଳୀଳ) ସ୍ତ୍ରୀ ସଙ୍ଗମ, ମୈଥୁନ—
2. (indecent) Coition with a woman

ପେଲଣା—ଦେ. ବଣ—ପେଲିବା କ୍ରିୟାରେ ବ୍ୟବହୃତ—
Pelaṇā Used in the act of pushing.
ବ—୧ । ପେଲଣ (ଦେଖ)—1 Pelaṇa (See)
୨ । ପେଲଣା ଜାଲ (ଦେଖ)—2. Pelaṇā jāla (See)

ପେଲଣା କାଠି—ଦେ. ବ—୧ । ଧାନ କୁଟାଳୀ ଢିଙ୍କି ଲାଞ୍ଜିରେ ଠିଆ
Pelaṇā kāṭhi ହୋଇ ଧାନ କୁଟୁଥିବା ସମୟରେ ଢିଙ୍କି ମୁଣ୍ଡାରେ
(ପେଲଣାବାଡ଼ି—ଅନ୍ୟରୂପ) ପଣା ହୋଇଥିବା ଧାନକୁ କଳରେ ହାତରେ ଶୁଖାଇ (ଗୋଳାଇ) ଦେବା ପାଇଁ ବ୍ୟବହୃତ ଏକ ପ୍ରକାର ବଙ୍କା ବାଡ଼ି—1. A curved pole used by a person standing at the tail-end of a Ḍhiṅki to stir the corn in the hole (receiver) of the Ḍhiṅki
୨ । ପେଲଣା ଜାଲ ଯେଉଁ ତ୍ରିକୋଣାକାର ବନ୍ଧ ବାଉଁଶରେ ବନ୍ଧା ହୋଇଥାଏ—2. The triangular bamboo frame of a pushing net.

ପେଲଣା ଗୁଞ୍ଜିବା—ଦେ. କ୍ରି—ପେଲଣା ଜାଲଦ୍ୱାରା ମାଛ ଧରିବା—
Pelaṇā guñjibā To fish with a pushing net.

ପେଲଣା ଜାଲ—ଦେ. ବ—ଠେଲା ଜାଲ; ତ୍ରିକୋଣାକାର ୨ଟି
Pelaṇā jāla ବାଉଁଶରେ ଲଗା ଏକପ୍ରକାର ଜାଲ—
କନି, ଫେଟାଜାଲ **ठेलाजाल** A kind of pushing net with a triangular bamboo frame.
[ ଦ୍ର—ଏହାକୁ ତ୍ରିଭୁଜର ଶୀର୍ଷର ଦେଶରୁ ଧରି ପଛ ଆଡ଼ୁ ଆଗକୁ ପେଲାଯାଏ । ]

ପେଲଣା ପଟା—ପ୍ରାଦେ. (ଗଞ୍ଜାମ) ବ—ଧାନ କୁଟିବା ଲୋକ ଉପଶ୍ରିରେ
Pelaṇā paṭā ଧାନକୁ ଆଗେ ଆଗେ ଶୁଖାଇବା ପାଇ ବ୍ୟବହୃତ ଦେଖା ସହିତ କାଠର ପଟା—A long wooden plate used by a person standing at the tail-end of a Ḍhiṅki; to stir the paddy in the hole at the other end.

ପେଲ(ଲ)ବ—ସ. ବଣ. (ପେଲ=କ୍ଷୁଦ୍ରାଂଶ+ବ)—୧ । କୃଶ; କ୍ଷୀଣ—
Pela(la)ba 1. Thin; slim.
୨ । କୋମଳ, ନରମ—2 Soft; tender.
୩ । ମୃଦୁ—3. Slender; delicate.
୪ । ସରୁ, ସୂକ୍ଷ୍ମ—4 Fine, tender.
୫ । ବିରଳ—5. Rare; scarce
୬ । ଭଙ୍ଗୁର—6. Fragile.
୭ । ବକ୍ର—7. Bent; crooked.
୮ । ଲଘୁ; ହାଲୁକା—8. Light.

ପେଲ ମଳା—ଦେ. ବ. ୧ । (ଘୋଡ଼ାକୁ ଅଣ୍ଡା କରିବା ଉପଲକ୍ଷରେ)
Pela malā ଅଣ୍ଡକୋଷକୁ ମଳିବା—
1 Pressing of the scrotum while gelding a horse.
(ପେଲଦଳା, ପେଲ ଅଉଁସା—ଅନ୍ୟରୂପ)
୨ । କୌଣସି ବ୍ୟକ୍ତିର ଅଣ୍ଡକୋଷକୁ ଅଉଁସିବା—
2. Rubbing of the testicles.
୩ । (ଅଶିଷ୍ଟ) (ଲକ୍ଷଣାର୍ଥ) ଚାଟୁ, ଖୋସାମଦ—
3. (figurative) (slang) Flattering; flattery.

ପେଲା—ଦେ. ବଣ. ପୁଂ. ( ସ. ପୀଡ଼ନ )—
Pelā ୧ । ଯେ ଅତ୍ୟଧିକ ବା ହର୍ଦମ୍ ପେଲେ—
ପେଲା **पेलु** 1. Given to too much pushing; pushing too much or too often.
ଅଗ ତଳ, ପର ଗାଇ ଦୁହା, ଗାଣ୍ଡି ପେଲା
ଏ ତିନି ଜଣ କାହିଁ ଆଉ ଆଉଁ ମଲା—ଭଗ ।
(ପେଲେଇ—ସ୍ତ୍ରୀ) ୨ । ଯେ ପେଲେ ବା ଠେଲେ—
2. Pushing.
୩ । (ଅଶ୍ଳୀଳ) ପୁଂ—ଅତି କାମୁକ; ଲମ୍ପଟ—
3. (indecent) Lecherous.
୪ । ଆଦେଶ ଲଙ୍ଘନକାରୀ—4. Disobedient.

ବି—୧ । କଇଞ୍ଚିଆ; ଖୁଲ ଘରେ ଭୁଲଆ ଖୁଣ୍ଟ ଦଆ ନ ଯାଇ ଦୁଇ ପାଖ କାନ୍ଥ ଅଧରୁ ମଥାନ ମଝିକୁ କଣ୍ଠି ବାଗରେ ଯେଉଁ ବାଉଁଶ ବା କାଠଦ୍ୱୟ ଡେସ୍ ଯାଇ ମଝିରେ ଶିଖର ଦେଶରେ ପରସ୍ପର ସହିତ ଲାଗିଥାଏ—1. Two poles in the shape of the handles of scissors which sustain the ridge-plate of a thatched house and are set diogonally on the middle of the side walls.

[ ଦ୍ର—ଏହି ପେଲା ଦ୍ୱୟର ଛକ ଭୁଲଆ ଖୁଣ୍ଟର କାର୍ଯ୍ୟ କରେ ଓ ଏହି ଛକକୁ କଇଁଚ କୁହାଯାଏ । ]

୨ । ପାଣି ନାଳକୁ ବନ୍ଧାଇ ମାଛ ମାରିବା ପାଇଁ ବନ୍ଧରେ ଦଆ-ଯିବା ଆଡ଼ ( ଆଡ଼ କାଠ ) କୁ ସ୍ରୋତ ମାଡ଼ ବା ପେଲି ନ ଦେବ ଏଥିପାଇଁ ସ୍ରୋତର ବିପରୀତ ଆଡ଼ୁ ଲଗାଯିବା ଠିଅ-

2. A prop put behind the cross-beam of a dam to bear the brunt of the forcing current.

୩ । ଠେସ; ଠିଅ—3. A prop

ପେଲା ୪ । ପେଲିବା କର୍ମ—
पेलना 4. The act of pushing

୫ । ଶ୍ୱାସ ରୋଗଜନିତ ଅଙ୍ଗବିକ୍ଷେପ—
5. Spasm; convulsion due to asthma.

ପ୍ରାଦେ. (ପୁରୀ) ବି—ଦଣ୍ଡ ବା କୁସ୍ତି—
Gymnastic exercise; dand.

ଗ୍ରା. ବି. ( ଅଶ୍ଳୀଳ; ପୁରୁଷ ପକ୍ଷରେ ପ୍ରଯୁକ୍ତ )—(indecent) ମୈଥୁନ ଉପଲକ୍ଷରେ ସ୍ତ୍ରୀକୁ ବାରମ୍ବାର ଠେଲିବା କର୍ମ—
Act of giving repeated pushes to a woman. by a male during coition

**ପେଲା(ଲେ)ଇବା**—ଦେ. କ୍ରି. ( ସଂ. ପୀଡ଼୍ ଧାତୁ )—
Pelā(le)ibā ୧ । ପେଲିବା କ୍ରିୟାର ଣିଜନ୍ତ ରୂପ—
ପେଲାନ 1. The causative form of Pelibā.
पेलवाना ୨ । ଅନ୍ୟ ବ୍ୟକ୍ତି ଦ୍ୱାରା ପେଲିବା କାର୍ଯ୍ୟ କରାଇବା—
2. To cause another person to do the pushing.

୩ । ( କବାଟକୁ ) ଅଉଜାଇବା—
3. To turn a door in.

୪ । ମେଲା ହୋଇଥିବା କବାଟକୁ ବନ୍ଦ କରିବା —
4. To shut a door.

୫ । (ଅଶ୍ଳୀଳ, ସ୍ତ୍ରୀ ପକ୍ଷରେ ପ୍ରଯୁକ୍ତ) ପୁରୁଷ ଦ୍ୱାରା ନିଜକୁ ସଙ୍ଗମ କରାଇବା—5. (slang) To submit to sexual intercourse ( said of a woman. )

ପ୍ରାଦେ. (ମେଦିନୀପୁର) କ୍ରି—ଫିଙ୍ଗିବା; ଫୋପାଡ଼ି ଦେବା—
To throw away.

**ପେଲା ପଣ**—ଦେ. ବି—ଦୁଃସାହସିକ କାର୍ଯ୍ୟ କରିବା; ଦୁଃସାହସିକତା—
Pelā paṇa Fool-hardiness; rashness; over-
ଗୋଯାଁବିଗିବୋ उजड़पन [ପେଲାପଣିଆ(ଆଁ)—ଅନ୍ୟରୂପ] daring.

**ପେଲାପେଲି**—ଦେ. ବି. ଓ ବିଣ.—୧ । ଠେଲାଠେଲି, ଅନ୍ୟୋନ୍ୟରେ
Pelā peli ଠେସା ଠେସି—1. Mutual pushing.

ଅନ୍ୟୋନ୍ୟରେ ସେ ରଡ଼ ରଡ଼ ବୋଲି,
ପଳାଇଲେ ସେନାଏ ହୋଇ ପେଲା ପେଲି । କୃଷ୍ଣସିଂହ. ମହାଭାରତ ଦ୍ରୋଣ ।

୨ । ବହୁତ ଠେଲିବା—2. Too much pushing.

ଠେଲାଠେଲି ୩ । ଦୁଇଜଣଙ୍କ ମଧ୍ୟରେ କଳି କଜିଆ; ବାଗ୍‌ବିବାଦ—
रेलपेल 3. Mutual quarrelling or recrimination.

**ପେଲାପେଲି କରି ଦିନ ନେବା**—ଦେ. ବି.—ଦେ. କ୍ରି.—
Pelā peli kari dina nebā ୧ । ଯେନ ତେନ ପ୍ରକାରେଣ

ପେଲା ପେଲି କରି କାମ ଛଡ଼ା(ଡେ)ଇବା } ଅନ୍ୟରୂପ
ପେଲା ପେଲି କରି କାମ ଭୁଲା(ଲେ)ଇବା }

ଅଶକ୍ତ ବ୍ୟକ୍ତିଦ୍ୱାରା କାର୍ଯ୍ୟ ଚଳାଇ ନେବା—1. To have a work done anyhow with the help of an unfit person.

ନସରକୁ ନାରୁଣୀକୋଇ ଘରଚା,
ପେଲା ପେଲି କରି ଦିନ ନଉ ଥା । ଭଗ ।

୨ । ଜନ୍ତୁରମାଙ୍ଗିଆ କରି ଅର୍ଥାତ୍ ଉଥଠଅ କରି କାର୍ଯ୍ୟକୁ ସମାଧା କରିବା—2. To carry a work through anyhow; to do a work slovenly.

**ପେଲାସ୍**—ବୈଦେ. ବି—(ଇଂ. ପ୍ଲାୟାର୍ସ୍)—୧ । ବଢ଼େଇ, ବଣିଆ ଆଦିଙ୍କ
Pelās ବ୍ୟବହୃତ ଏକ ପ୍ରକାର ସଣ୍ଡୁଆସି, ଜମୁରି—1. Pliers;
ପେଲାସ पेलास a kind of sturdy pincers.
(ପିଲାସ୍, ପ୍ଲାସ୍, ପ୍ଲାୟାସ୍(ର୍ଶ୍)—ଅନ୍ୟରୂପ)

୨ । (ଇଂ) ଖ୍ରୀ ୧୮୦୨ ସାଲରେ ଡାକ୍ତର ଆଲ୍‌ବର୍ଜଙ୍କଦ୍ୱାରା ଆବିଷ୍କୃତ ମଙ୍ଗଳ ଓ ବୃହସ୍ପତି ମଧ୍ୟରେ ଅବସ୍ଥିତ ଏକ ଗ୍ରହ (ହି. ଶ.)—2. Pellas; name of a newly discovered planet.

[ଦ୍ର—ଏହା ସୂର୍ଯ୍ୟଙ୍କ ଠାରୁ ୨୮ କୋଟି ମାଇଲ ଦୂରରେ ଅବସ୍ଥିତ । ୪ ବର୍ଷ ୮ ମାସରେ ଏ ଥରେ ସୂର୍ଯ୍ୟଙ୍କୁ ପ୍ରଦକ୍ଷିଣ କରେ । ଆକାରରେ ଏହା ଚନ୍ଦ୍ରଙ୍କ ଅପେକ୍ଷା କ୍ଷୁଦ୍ର (ହି. ଶ.) ।]

**ପେଲି (ଲୀ)**—ସଂ. ବି.—(ପେଲ ଧାତୁ+ଇ)—ଘୋଡ଼ା—
Peli(lī) Horse.

**ପେଲିଆ**—ଦେ. ବିଣ. (ସଂ. ପେଲ)—୧ । ଲୁରୁଣ୍ଡା; ବଡ଼ ଅଣ୍ଡକୋଷ
Peliā ଯୁକ୍ତ, ଅଣ୍ଡିଆ—1. Having big testicles.

୨ । ଅଣ୍ଡକୋଷଯୁକ୍ତ—2. Having testicle.

[ଦ୍ର—ଏହି ଶବ୍ଦ ଅନ୍ୟ ଶବ୍ଦ ପରେ ଯୁକ୍ତ ହୁଏ, ଯଥା—ଷଣ୍ଢ-ପେଲିଆ, କାଣି ପେଲିଆ, ଏକପେଲିଆ, ଯାଦୁରି ପେଲିଆ ।]

**ପେଲି ଆସିବା**—ପ୍ରାଦେ. (ଯାଜପୁର) କ୍ରି—ବଳପୂର୍ବକ ପଶି ଆସିବା—
Peli āsibā To enter a place forcibly; to push one's way into a place.

**ପେଲି ଦେବା**—ଦେ. କ୍ରି.—୧ । ପଛଆଡ଼ୁ କୌଣସି ବ୍ୟକ୍ତିକୁ ଗର୍ତ୍ତକୁ ବା
Peli debā ଖାଲକୁ ଠେଲିଦେବା—1. To push a person
ଠେଲେ ଦେଓଯା पेलदेना from behind to a hole or pits.
(ଯଥା—ସେ ପିଲାଟିକୁ କୂଅକୁ ପେଲି ଦେଲା ।)

୨ । ଡଙ୍ଗାକୁ ପଛ ମଙ୍ଗ ଆଡ଼ୁ ବପଶ୍ରିଭ ଦଗଲୁ ଠେଲିବା—
2. To push a boat from behind.
ଏହୁ କଥାକୁ, କାଥ ପେଲ ଦେଇ କଲ କଡ଼ାକୁ – ଭଗ ।

**ପେଲିବା**—ଦେ. କ୍ରି. (ସ. ପେଲ ଧାତୁ କମ୍ପା ପୀଡ଼୍ ଧାତୁ (Beams); Pelıbā ଭୁଲ. ଡା. ପେଲ) —୧ । (ସକର୍ମକ) ପଛଆଡ଼ୁ ଠେଲିବା; ଠେଲା, ପେଲା **पेलना** ଠେଁସିବା—1. To push from behind; (ପେଲିଦେବା—ଅନ୍ୟରୂପ) to shove, to push forward.
ଛଇଳ ହସି ମୋ ଘଟକ ଉରକେ ଦେଇ ପେଲିଲେ ।
କବସୂର୍ଯ୍ୟ, ସଙ୍ଗୀତ ।

୨ । (ଅଶ୍ଳୀଳ) (ପୁରୁଷ) ସ୍ତ୍ରୀ ସଙ୍ଗମ କରିବା—2. (indecent) To cohabit a woman, to perform the act of coition with a woman (said of a man)

୩ । (ଆଦେଶ) ଲଙ୍ଘିବା, (ବୋଲ) ନ ମାନିବା—
3. To disobey (an order).
ଭଦଲ ଅଦଶ୍ରାସେ ମୋ ପଡ ବୋଲ ପେଲ
ଅଶ୍ଚାଳେ ଏଠାକୁ ଆସି ପରଭୂତା ହେଲ । ଭୂ. ସା. ବନମଗ୍ରମାସ୍ବଣ ଆଦ ।

୪ । ଅବମାନନା କରିବା—4 To show disrespect; to disregard.

୫ । ଅତିକ୍ରମଣ କରିବା; ବଳପୂର୍ବକ ଆଗ ବଢ଼ି ଯିବା—
5. To step over; to overstep; to force one's way forward.
ସବେ ପଟିବା ବନେ ପେଲ.
ହୃଷ୍ଟରେ ଏବା ତୁଳା ଜାଳ – ଭୂପତ. ପ୍ରେମପଞ୍ଚାମୃତ ।

୬ । ଦୀପର ବଳତାକୁ ତେଜିବା—
6. To trim the wick of a lamp.

୭ । ଜବରଦସ୍ତି ଠେଲିବା—7 To push with force.

୮ । (ସ. ପ୍ରେରଣ) ଡଙ୍ଗାକୁ ପଛ ମଙ୍ଗଆଡ଼ୁରୁ ବପଶ୍ରିତ ଦଗଲୁ ଠେଲିବା—8. To push a boat from behind.
[ଦ୍ର—ଏହି କ୍ରିୟାର ଅସମାପିକା ରୂପ ସଙ୍ଗେ ଆଣିବା, ଆସିବା, ଦେବା, ନେବା, ପକା(କୋ)ଇବା, ପଶିବା, ଯିବା ଆଦି କ୍ରିୟାର ସମାପିକାରୂପ ଯୁକ୍ତ ହୁଏ ।]

**ପେଲିବା ଠେଲିବା**—ଦେ. କ୍ରି. (ସହଚର ଶବ୍ଦ)—୧ । ଜୋରରେ Pelıbā ṭhelıbā ଠେଁସିବା—1. To push with force.
ପେଲା ଠେଲା ୨ । (ଗୁରୁଜନ ଆଦିଙ୍କ) ଆଦର ନ କରିବା, ଅମାନ୍ୟ **रेल पेल करना** କରିବା—2. To disregard (one's superiors).
ତାଙ୍କୁ ଯାହା ମୂରଲୀ, ସ୍ବାମୀକୁ ପେଲ ଠେଲ,
ଥାବକ ବପେ ଖସେ କଇନ୍ତ ବାସ । କବସୂର୍ଯ୍ୟ. ସଙ୍ଗୀତ ।

**ପେଲି ଯିବା**—ଦେ. କ୍ରି.—ବାଧାକୁ ଠେଲି ଦେଇ କୌଣସି ସ୍ଥାନକୁ Pelı jibā ପଶି ଯିବା—To push on one's way; to go ଠେଲେ ଯାଓୟା by pushing through obstacles.
**घुसेड़ना** (ପେଲି ପଶିବା—ଅନ୍ୟରୂପ)
ଠେଲ ଦେଇ ପେଲ ଯିବା, ଧକା ଖାଇଲେ ସହିବା,
ଥକା ମନ ଶୁଲ ଯିବୀ—ଭଜନ;

**ପେଲି ହେବା**—ଦେ. କ୍ରି.—ଊର୍ଦ୍ଧ୍ବଶ୍ବାସ ଯୋଗୁଁ ବା ଧଇଁ ଯୋଗୁଁ Peli hebā ଉପର୍ଯ୍ୟୁପରି ଆଗକୁ ପଛକୁ ଖୁବ୍ ଜୋରରେ ଆନ୍ଦୋଳିତ ହେବା, ହାଙ୍କି ହେବା—To be violently ହାଁପା convulsed with severe and repeated **हाँफना** asthmatic spasms.

**ପେଲେଇ ହେବା**—ଦେ. କ୍ରି. (ପେଲିବାର ଣିଜନ୍ତ)—୧ । ପେଲି ହେବା Pelei hebā (ଦେଖ) 1. Peli hebā (See)
୨ । ପେଲାଇବା ୫ (ଦେଖ)—2. Pelāibā 5 (See)

**ପେଲେଇ**—ଦେ. ବିଣ. ସ୍ତ୍ରୀ (ଗାଳିରେ ବ୍ୟବହୃତ) ଅଶ୍ଳୀଳ)—ରତି-Pelei କାମିନୀ (ସ୍ତ୍ରୀ), ଅତି କାମୁକା (ସ୍ତ୍ରୀ)—(indecent) Lecherous (woman); hankering after coition.

**ପେଲେଣା (ଇତ୍ୟାଦି)**—ଦେ ବି.—ପେଲଣା ଇତ୍ୟାଦି (ଦେଖ)
Pelenā (etc) Pelanā etc (See)

**ପେଲେଗ୍**—ବୈଦେ. ବି. (ଇଂ ପ୍ଲେଗ୍)—ପ୍ଲେଗ୍ (ଦେଖ)
Peleg পেলেগ **पेलेग** Pleg (See)

**ପେଲେଣି ବାଡ଼ି**—ପ୍ରାଦେ. (ଗଞ୍ଜାମ)—ବି.—ପେଲଣା ପଟା (ଦେଖ)
Pelenı bārdı Pelanā patā (See)

**ପେଲେନ୍**—ବୈଦେ. ବିଣ (ଇଂ ପ୍ଲେନ୍)—୧ । ଚଉରସ, ସମତଳ—
Pelen পেলেন **चउरस** 1. Plain; level.
୨ । ମସୃଣ—2. Smooth
বান্দা ବି.—୧ । ସମତଳ କ୍ଷେତ୍ର—1. A level field.
**रंदा** ୨ । ବଢ଼େଇଙ୍କ ରନ୍ଦା—2. Carpenter's plane.

**ପେଶ**—ସ. ବି.—(ପଶ୍ ଧାତୁ + ଅ)—ଆକାର—
Pesa Form; shape (Apte).

**ପେଶଲ**—ସ. ବିଣ (ପିଶ୍ ଧାତୁ=ଅଙ୍ଗୀଭୂତ ହେବା + ଅଲ)—୧ । ଦକ୍ଷ—
Pesala 1 Pert; competent; expert.
(ପେସଲ, ପେଷଲ—ଅନ୍ୟରୂପ) ୨ । ଚତୁର—
[ପେଶଲତା(ତ୍ୱ)—ବି] 2. Dexterous; ingenious.
(ପେଶଲା—ସ୍ତ୍ରୀ) ୩ । ଧୂର୍ତ୍ତ—3. Cunning; crafty.
୪ । ସୁନ୍ଦର; ସୁନ୍ଦର; ମନୋହର—
4. Handsome; beautiful.
୫ । କୋମଳ—5. Soft
୬ । ଚିକ୍କଣ—6 Smooth.
ସ. ବି.—ବିଷ୍ଣୁ (ହ୍ର. ଶ.)—A name of Bishnu.

**ପେଶଲେ**—ଦେ. କ୍ରି. ବିଣ (ସ. ପେଶଲ)—ମୃଦୁ ସ୍ବରରେ; ମୃଦୁଭାବରେ;
Pesale କୋମଳତା ସହିତ—Softly; in a soft tone.
ବୋଲେ ପ୍ରସଙ୍ଗେ ସକଳ କୁମାର ପେଶଲେ ।
ଉଞ୍ଜ. ବୈଦେହୀଶବିଳାସ ।

**ପେଶୱା(ବା)**—ବୈଦେ. ବି. (ଫା. ପେଶ୍ୱା=ନେତା)—
Pesawā(bā) ୧ । ମହାରାଷ୍ଟ୍ରୀୟ ସେନାପତି ବା ନାୟକ—
পেশবা **पेशवा** 1. A commander-in-chief or leader (ପେଶୁଆ, ପେଶୋଆ, ପେଶ୍ୱା—ଅନ୍ୟରୂପ) of the Marhattas.
୨ । ପୁରୋହିତ—2 Priest.
୩ । ମହାରାଷ୍ଟ୍ର ସାମ୍ରାଜ୍ୟର ପ୍ରଧାନ ମନ୍ତ୍ରୀଙ୍କ ଉପାଧି—
3. The title of the prime minister of the Marhatta kingdom; Peishwa.

[ ଦ୍ର—ଶିବଜୀଙ୍କ ମୃତ୍ୟୁ ପରେ ଖ୍ରୀଷ୍ଟୀୟ ଅଷ୍ଟାଦଶ ଶତାବ୍ଦୀର ଆଦ୍ୟଭାଗରେ ସତାରାରେ ରାଜତ୍ଵ କରୁଥିବା ଶିବଜୀଙ୍କ ବଂଶଧରମାନଙ୍କ ନାମରେ ଶାସିତ ମରହଟ୍ଟା ରାଜ୍ୟ ୮ ଜଣ ପ୍ରଧାନ ବା ମନ୍ତ୍ରୀଙ୍କ ପରାମର୍ଶରେ ଶାସିତ ହେଉଥିଲା । ଏ ଆଠଜଣଙ୍କ ମଧ୍ୟରେ ମୁଖ୍ୟ-ପ୍ରଧାନ ବା ପ୍ରଧାନ ମନ୍ତ୍ରୀଙ୍କର 'ପେଶୱା' ଉପାଧି ଥିଲା ଓ କାଳକ୍ରମେ ଏ ଉପାଧି ଓ ରାଜକର୍ମ ବଂଶଗତ ହେଲା । ପେଶୱାମାନଙ୍କ ରାଜଧାନୀ ପୁନାରେ ଥିଲା । କୋଙ୍କଣ ଦେଶବାସୀ ଜଣେ ମରହଟ୍ଟୀ ବ୍ରାହ୍ମଣ ବାଲାଜୀ ବିଶ୍ଵନାଥ ପ୍ରଥମେ ପେଶୱା ହେଲେ (ଖ୍ରୀ. ୧୭୧୦-୧୭୨୦) । ଏ ମୋଗଲ ବାଦସାହାଙ୍କ ସଙ୍ଗେ ସନ୍ଧି କରି ଦାକ୍ଷିଣାତ୍ୟର ୬ଟି ସୁବାରୁ ଚଉଥ ଆଦାୟ କରିବାର, ପୁନାରେ ସ୍ଵାଧୀନ ରାଜ୍ୟ କରିବାର ଓ ଏହି ରାଜଗୀ ତାଙ୍କର ବଂଶାନୁଗତ ହେବାର ବ୍ୟବସ୍ଥା କରାଇ ନେଲେ । ବାଲାଜୀଙ୍କ ପୁଅ ବାଜି ରାଓ ତାଙ୍କ ଅନ୍ତେ ପେଶୱା ହେଲେ (ଖ୍ରୀ. ୧୭୨୦-୧୭୪୦) । ଏ ମୋଗଲମାନଙ୍କଠାରୁ ମାଲବଆଦି ସୁବଡ଼ ରାଜ୍ୟ ଜୟ କଲେ ଓ ପର୍ତ୍ତୁଗୀଜ୍‌ମାନଙ୍କଠାରୁ ବେସୀନ୍ ଜୟ କଲେ । ତାଙ୍କ ପୁଅ ବାଲାଜୀ ବାଜୀ ରାଓ ପେଶୱା ହେଲେ (ଖ୍ରୀ. ୧୭୪୦-୧୭୬୧) । ଏହାଙ୍କ ଅମଳରେ ବରୋଦାରେ ଗାଇକୱାଡ଼, ବେରାରରେ ଭୋଁସଲ ମରହଟ୍ଟା ରାଜ୍ୟମାନ ସ୍ଥାପିତ ହେଲା । ୧୭୪୯ ରେ ସତାରାରର ମରହଟ୍ଟା ରାଜା ସାହୁ ନିଜର ଉଇଲ୍‌ଦ୍ଵାରା ବାଲାଜୀ ବାଜି ରାଓଙ୍କୁ ସମସ୍ତ ମରହଟ୍ଟା ରାଜ୍ୟର ରାଜା ମନୋନୀତ କଲେ । ସେହି ଦିନଠାରୁ ପେଶୱାମାନେ ସ୍ଵାଧୀନ ମରହଟ୍ଟା ରାଜା ହେଉଲେ ଓ ପୁନା ତାଙ୍କର ରାଜଧାନୀ ହେଲା । ଏହାଙ୍କ ସୈନ୍ୟମାନେ ୩ୟ ପାଣିପଥ ଯୁଦ୍ଧରେ ଆଫଗାନିସ୍ତାନର ରାଜାଙ୍କ ଦ୍ଵାରା ୧୭୬୧ ଖ୍ରୀଷ୍ଟାବ୍ଦରେ ପରାସ୍ତ ହେଲେ ଏବଂ ଏହି ଦୁଃଖରେ ବାଲାଜୀ ବାଜି ରାଓ ମଲେ । ଏହାଙ୍କ ପରେ ଏହାଙ୍କ ପୁଅ ମଧୁ ରାଓ ପେଶୱା ହେଲେ (ଖ୍ରୀ.୧୭୬୧-୧୭୭୨) । ତାଙ୍କ ପରେ ତାଙ୍କ ଭାଇ ନାରାୟଣ ରାଓ ପେଶୱା ହେଲେ (୧୭୭୨—୭୩) ଓ ପ୍ରାଣଘାତକ ହସ୍ତରେ ତାଙ୍କର ପ୍ରାଣ ଯିବାରୁ ନାରାୟଣଙ୍କ ପୁତ୍ର ମଧୁରାଓ ନାରାୟଣ ଓ ରଘୋବା ନାମକ ଜଣେ ପ୍ରତିଦ୍ଵନ୍ଦ୍ଵୀ ସଙ୍ଗେ ସିଂହାସନ ଯୋଗୁଁ କଳି ହେଲା । ଇଂରାଜମାନେ ରଘୋବାଙ୍କ ପକ୍ଷ ସମର୍ଥନ କଲେ ଓ ପରେ ତାଙ୍କୁ ମଧୁରାଓ ନାରାୟଣ ନାବାଳଗଙ୍କର ମହାଜିସ୍ କଲେ । ମଧୁରାଓ ନାରାୟଣ ୧୭୯୫ରେ ଆତ୍ମହତ୍ୟା କଲେ । ତା ପରେ ରଘୋବାଙ୍କ ପୁଅ ୨ୟ ବାଜି ରାଓ ପେଶୱା ହେଲେ । ଏ ଇଂରେଜମାନଙ୍କ ସଙ୍ଗେ ଖ୍ରୀ: ୧୮୦୨ ରେ ବେସିନ୍‌ରେ ସନ୍ଧିପତ୍ର ସ୍ଵାକ୍ଷର କଲେ ଏବଂ ୧୮୧୭ରେ ଇଂରେଜଙ୍କ ସଙ୍ଗେ ପୁନାରେ ସନ୍ଧି କରି ସମସ୍ତ କ୍ଷମତା ଇଂରେଜଙ୍କୁ ଅର୍ପଣ କଲେ ଓ ଇଂରେଜଙ୍କଠାରୁ ପେନ୍‌ସନ୍ ପାଇ ବିଠୁରରେ ରହିଲେ ଏବଂ ତାଙ୍କ ରାଜ୍ୟ ଇଂରାଜଙ୍କ ବମ୍ବେ ପ୍ରେସିଡେନ୍‌ସୀର ଅନ୍ତର୍ଭୁକ୍ତ ହେଲା — ପ୍ରୋଥେରୋ ସାହେବଙ୍କ ଇଂରାଜ ଭାରତ ଇତିହାସ । ]

**ପେଶୱା(ବା)ଜ୍**—ବୈଦେ. ବି. (ଫା)—ମୁସଲମାନ ସ୍ତ୍ରୀଲୋକେ ଓ ବିଶେଷତଃ ବେଶ୍ୟା ଓ ନାଚବାଲୀମାନଙ୍କ ପିନ୍ଧିବା ପାଇଜାମା—Trousers worn by Muslim females and specially by dancing girls.
Peśawā(bā)j
(ପେଶୁଆଜ୍—ଅନ୍ୟରୂପ)
ପେଶ୍‌ବାଜ
पेशबाज

**ପେଶୱା(ବା)ର୍**—ଦେ. ବି. (ନାମ) (ପ୍ରାଚୀନ ସଂ. ନାମ ପୁରୁଷପୁର)—ଭାରତର ଉତ୍ତର ପଶ୍ଚିମ ସୀମାନ୍ତ ଅଞ୍ଚଳ ଓ ନଗର—Peshwar, name of a district and town on the N. W. frontier of India.
Peśawā(bā)r
[ପେଶାବ(ୱ,ବା,ୱା)ର୍—ଅନ୍ୟରୂପ]
পেশাবব
पेशाबर

**ପେଶୱାରୀ**—ଦେ. ବିଣ—ପେଶୱାର ଦେଶୀୟ—Belonging to Peshwar.
Peśawāri
পেশাববী
पेशाबरी
ବି—ପେଶୱାର ଦେଶୀୟ ବ୍ୟକ୍ତି, କାବୁଲୀ—A Peshwari.

**ପେଶସ୍କାରୀ**—ଦେ. ବି—କୁମ୍ଭାରୀଆ ପୋକ—Mud-wasp.
Peśaskāri
কুমবে পোকা
घिरनी
କୀଟଇ ସେହି ରୂପ ଧରି
ଯେସନେ କୀଟ ପେଶସ୍କାରୀ । ଜଗନ୍ନାଥ. ଭାଗବତ ।

**ପେଶି(ଶୀ)**—ସଂ. ବି. (ପିଶ୍ ଧାତୁ=ଅବୟବୀଭୂତ ହେବା+କର୍ତ୍ତୃ. ଇ)—
Peśi(śī)
୧ । ସ୍ନାୟୁ; ଶରୀରସ୍ଥ ମାଂସ ପିଣ୍ଡ—1 The fleshy parts of the body; lumps of flesh in the body; muscle.
[ଦ୍ର—ଏହି ପେଶୀମାନଙ୍କ ଦ୍ଵାରା ଇଚ୍ଛା ମାତ୍ରେ ଶରୀରର ଅଙ୍ଗ ଆଦିର ସଞ୍ଚାଳନ, ସଙ୍କୋଚନ ଓ ପ୍ରସାରଣ କ୍ରିୟା ସମାଧା ହୁଏ ।]
୨ । ବଜ୍ର, ଚଡ଼କ—2. Thunderbolt
୩ । ଖଡ୍ଗାଦିର କୋଷ—3. Sheaf.
୪ । ଅଣ୍ଡ, ଡିମ୍—4 Egg.
୫ । ରାକ୍ଷସୀବିଶେଷ—5. Name of a demoness.
୬ । ପିଶାଚୀବିଶେଷ—6 Name of a female imp.
୭ । ନଦୀବିଶେଷ —7. Name of a river
୮ । ଫୁଟିଲା କଢ଼ି; ସୁପକ୍ଵ କଳିକା—8. A flowering bud; a bud about to blow.
୯ । ଜଟାମାଂସୀ – 9 Spikenard
୧୦ । ଡାଲି; ରଗଡ଼ା ବିରି, ଦଳିତ ମାଷ—
10 Split peas; husked pulse.

**ପେଶି(ଶୀ) କୋଷ**—ସଂ. ବି—ଅଣ୍ଡକୋଷ—Testicle
Peśi(śī) kosha

**ପେଷ୍ (ଧାତୁ)**—ସଂ—୧ । ଗମନ କରିବା—
Pesh (root) 1. To go.
୨ । ଚଳିବା—2. To move

**ପେଷ**—ସଂ. ବିଣ. ( ପେଷ୍ ଧାତୁ+ଅ )—
Pesha ୧ । ସୁନ୍ଦର—1. Handsome.
ପେଶ } ଅନ୍ୟରୂପ
ପେସ }
୨ । ଦକ୍ଷ—2. Dexterous.

**ପେଷଣ**—ସଂ. ବି. ( ପିଷ୍ ଧାତୁ=ବାଟିବା, ଚୂରିବା+ଭାବ. ଅନ )—
Peshaṇa ୧ । ପେଷିବା, ବାଟିବା, ମର୍ଦ୍ଦନ କରିବା; ଦଳନ—
1. Pestling; crushing.
୨ । ଚୂରିବା; ଚୂର୍ଣ୍ଣନ, ରଗଡ଼ିବା—
2. Grinding; pulverising.

୩ । (+କରଣ. ଅନ) ପେଷଣ କରିବାର ପାତ୍ର; ଖଲ— 3. A mortar.
୪ । ଶିଳ—4. Grinding slab.
୫ । ପେଷଣ କରିବାର ଯନ୍ତ୍ର, ଶିଳ ଓ ଶିଳପୁଆ— 5 A crushing slab and muller.
୬ । ଖଲ ଓ ପୁଆ— 6. A pestle and mortar.
୭ । ଚକି—7. A grinding mill
୮ । ପଟି—8. A bandage.
୯ । ଶଢଗୁପ୍ତା, ଛିକଣ୍ଟା ସିଜ୍—2. Euphorbia.
ଦେ. ବି. ( ସ. ପ୍ରେଷଣ )—୧ । ପଠାଇବା— 1. Sending out.
ପାଣ୍ଡବଙ୍କ ଠାବ୍ କବୁର ପେଷଣ
ଛଡ ଅନ୍ତେ କଲେ ଧୃତରାଷ୍ଟ୍ର, ଭଣ । କୃଷ୍ଣଙ୍କ ତ, ମହାଭାରତ. ଆଦ ।
୨ । କୌଣସି ବ୍ୟକ୍ତିଠାରେ ଭୂତ ପ୍ରେତ ଆଦିଙ୍କୁ ମନ୍ତ୍ର ଦ୍ୱାରା ପ୍ରବେଶ କରାଇବା—2. Causing an evil spirit to possess a person by employing charms

**ପେଷଣ ଦନ୍ତ**—ସ. ବି—କଳ ଦାନ୍ତ, ଚକା ଦାନ୍ତ—
Peshaṇa danta    Molar tooth.

**ପେଷଣ ପାତ୍ର**—ସ. ବି—୧ । ଖଲ—
Peshaṇa pātra    1. Mortar.
୨ । ଶିଳ—2. A slab of stone for crushing.

**ପେଷଣା**—ଦେ. ବି—୧ । ପେଷିବା ପଥର ଖଣ୍ଡ, ଶିଳ—
Peshaṇā    1. Crushing slab of stone.
ଯାଁତା  **यन्ता**    ୨ । ଘୋରଣା, ଚକି— 2. A grinding mill
୩ । ପେଷିବା; ବାଟିବା—3. Crushing.

**ପେଷଣି(ଣୀ)**—ସ. ବି. ( ପିଷ୍ ଧାତୁ+କରଣ ଅନ, +ଇ )—
Peshaṇi(ṇi)    ୧ । ପେଷଣ ଯନ୍ତ୍ର; ଶିଳ ଓ ଶିଳପୁଆ— 1. A crushing slab and muller.
୨ । ଚକି; ଘୋରଣା ଚକି—2 A grinding mill
୩ । ଶିଳପୁଆ—3. A roller, a muller
୪ । ଖଲର ପୁଆ—4 A pestle.

**ପେଷଣୀୟ**—ଦେ. ବିଣ. ( ପିଷ୍ ଧାତୁ+କର୍ମ ଅନୀୟ )—
Peshaṇiya    ୧ । ବାଟିବାର ଯୋଗ୍ୟ—1 Capable of being crushed or bruised
୨ । ଚୂରିବାର ଯୋଗ୍ୟ—2 Capable of being ground into powder.

**ପେଷନ୍**—ପ୍ରାଦେ. (ସମ୍ବଲପୁର) ବି—
Peshan    ୧ । ପେଷିବା; ପଠାଇବା—1. To send.
୨ । (ସ. ପିଷ୍ ଧାତୁ) ଚୂରିବା; ପେଷଣ କ୍ରିୟା— 2. Pounding; grinding.
୩ । ଶସ୍ୟାଦିର ପିଷ୍ଟ ଚୂର୍ଣ୍ଣ—3. Corn flour.

**ପେଷା**—ଦେ. ବିଣ (ସ. ପ୍ରେଷିତ)—୧ । ପ୍ରେଷିତ; ପ୍ରେରିତ—1. Sent.
Peshā    ୨ । ( ସ. ପିଷ୍ ଧାତୁ ) ପିଷ୍ଟ; ଚୂରି ଯାଇଥିବା—
ପେଷା  **पेशा**    2. Pounded.
ବୈଦେ. ବି. ( ଫା )—୧ । ବ୍ୟବସାୟ; ବୃତ୍ତି; ଜୀବିକା; ଜୀବନୋପାୟ—Livelihood; profession.
ପେଶା  **पेसा**    × × × ପେଷା ଗ୍ରାମ ଦେବତା ପୂଜା ଅଛ ଗଣ ।
ଫକୀରମୋହନ· ଛମାଣ ଆଠଗୁଣ୍ଠ ।
୨ । ବେପାର—2. Trade.
ପ୍ରାଦେ. ( ସମ୍ବଲପୁର ) ବି—ବଡ଼ ପେଷଣା; ଯହିଁରେ ଗହମ ଆଦି ଶସ୍ୟ ଚୂନା ହୋଇଯାଏ— A big grinding or powdering mill.

**ପେଷା(ଷେ)ଇବା**—ଦେ. କ୍ରି—ପେଷିବା କ୍ରିୟାର ଣିଜନ୍ତ ରୂପ—
Peshā(she)ibā    The causative form of Peshibā.
ପିଷାନ    ୧ । ଚୂରାଇବା—1. To cause to be ground.
**पषवाना**    ୨ । ଦଳାଇବା—2. To cause to be kneaded.
୩ । ମର୍ଦ୍ଦନ କରାଇବା—3. To cause to be bruised.

**ପେଷାକ**—ସ. ବି. ( ପିଷ୍ ଧାତୁ+କରଣ ଆକ )—
Peshāka    ପେଷଣୀ, ଶିଳ—A small grinding slab of stone.

**ପେଷାଦାର୍**—ବୈଦେ. ବି. ( ଫା )—
Peshādār    ୧ । ବେପାରୀ—1. A trader.
ପେষাদাব    ୨ । ବ୍ୟବସାୟୀ—2 Professional man.
**पेषादार**    ୩ । ମାମଲତକାର— 3. A man of business.

**ପେଷାଦାରି**—ବୈଦେ. ବି. ( ଫା )—
Peshādāri    ୧ । ବ୍ୟବସାୟ କରିବା ବୃତ୍ତି; ପେଶାଦାରର କାର୍ଯ୍ୟ—
ପেষাদাবী    1. The state of following a regular
**पेषादारी**    profession or trade.
୨ । ପେଶାଦାର ଲୋକର ବ୍ୟବହାର—2. The conduct of a professional men.
ବିଣ—ପେଷାଦାରିଆ (ଦେଖ)—Peshādāria (See)

**ପେଷାଦାରିଆ**—ଦେ. ବିଣ—ପେଶାଦାର ସମ୍ବନ୍ଧୀୟ—
Peshādāriā    Relating to a professional man.
ପেষাদাবী  **पेषादारी**

**ପେଷା ଯି(ହେ)ବା**—ଦେ. କ୍ରି—(ପେଷିବାର କର୍ମବାଚ୍ୟରୂପ)—ପିଷ୍ଟ ହେବା—
Peshā ji(he)bā    To be pounded.
ପিসাযাওয়া  **पिसाजाना**

**ପେଷାଳୀ**—ଦେ. ବି—(ସ. ପିଷ୍ ଧାତୁ)—ଚକିରେ ଅଟା ଆଦି ପେଷିବା ଲୋକ—Grinder.
Peshāḷi    পিসনহাবী

**ପେଷି**—ସ. ବି—ବଜ୍ର (ହ୍ର. ଶ)—
Peshi    Thunder.

**ପେଷିବା**—ଦେ. କ୍ରି—(ସ. ପିଷ୍ ଧାତୁ)—୧ । ମର୍ଦ୍ଦନ କରିବା, ବାଟିବା—
Peshibā    পিসা    1. To bruise; to crush or press.
**पिसना**    ୨ । ମଳିବା; ଦଳିବା; ଦଳିବା—2. To knead.
ଉତ୍କଳ ସନ୍ତାନେ, ମୃତ୍ତିକ କଳ୍ପକେ
ବର୍ଷ ବର୍ଷ ପେଷନ୍ତ ଇମାନ୍ ଚୂର୍ଣ୍ଣ—ଲୋକୀସ୍ ଗୀତଲହରୀ ।
୩ । ପେଷିବା; ଚୂରିବା—3. To grind

୪ । (ସ. ପ୍ରେଷ ଧାତୁ ) ପ୍ରେରଣ କରିବା; ପଠାଇବା, ବରଗିବା--
4 To send; to send out.
ଭୃତ୍ୟଙ୍କୁ ଭକ୍ତ, ମୋତେ ଜେବା ପାଇଁ ପେଷି
ଅଇଲେ ଏ ରଥରେ ବସ ଧାଇଁ ଆସି — କୃଷ୍ଣହରି. ମହାଭାରତ ବନ ।

**ପେଷି ହେବା** — ଦେ. କ୍ରି — (ସ. ପିଷ ଧାତୁ, ପେଷିବାର କର୍ମବାଚ୍ୟରୂପ)—
Peshi hebā ୨ । ଚୂନା ହେବା—2. To be pounded.
୩ । ଦଳି ହୋଇଯିବା—3. To be pressed.

**ପେଷୀ**—ସ. ବ—ପିଶାଚୀମା (ସ୍ତ୍ରୀ. ଣ)—
Peshī A female imp.

**ପେସ୍**—ବୈଦେ. ବିଣ (ଫା)—୧ । ସମ୍ମୁଖବର୍ତ୍ତୀ—
Pes পেস पेश 1. Frontal
୨ । ଉପସ୍ଥାପିତ—2 Presented.
ବ—ବିଗ୍ୱାର୍ଥ ବିଚାରକଙ୍କ ନିକଟ ବା ଆଦେଶାର୍ଥ ହାକିମଙ୍କ ନିକଟ କାଗଜ ପତ୍ରର ଉପସ୍ଥାପନ—Putting up of papers before a court or high official for consideration and order.

**ପେସ୍କବଜ୍**— ବୈଦେ. ବ (ଫା)— ଦୁଇଆଡ଼େ ଧାର ଥିବା କଟାରୀ—
Pes-kabaj A double-edged chopper.
(ପେସକବ୍ଜ—ଅନ୍ୟରୂପ) পেশকবজ पेशकब्ज

**ପେସ୍ କରିବା**—ଦେ. କ୍ରି —୧ । ଆଦେଶ ନିମନ୍ତେ କୌଣସି ବିଷୟ
Pes karibā ହାକିମଙ୍କ ନିକଟ ଉପସ୍ଥାପିତ କରିବା—To put
পেসকরা up a matter before a superior officer for
पेश करना order.
୨ । ଜଣାଇବା—2. To lay before; to submit.

**ପେସ୍କସ୍**—ବୈଦେ. ବ (ଫା)—୧ । ସମ୍ରାଟଙ୍କୁ ଦିଆଯିବା ନଗଦ ସଲାମୀ,
Pes kas ନଜରାନା; ଉପଢୌକନ—1. A present in cash
(ପେସ୍କସ୍—ଅନ୍ୟରୂପ) given to an emperor as a show
পেশকস पेशकश of homage or fealty.
୨ । ଜମିଦାର ଓ ରାଜାମାନେ ସରକାରଙ୍କୁ ଦେବା ରାଜସ୍ୱ—
2. Peiskash; tribute: revenue paid by Rajas and Zamindars to Government.
[ ଦ୍ର—ଓଡ଼ିଶାର ଗଡ଼ଜାତର ରାଜାମାନେ ସରକାରଙ୍କୁ ଦେଉଥିବା ପେସ୍କସ୍‌ର ବିବରଣ ଯଥା —

| ଗଡ଼ଜାତର ନାମ | ବର୍ଗମାଇଲ | ରାଜସ୍ୱ ଆଦାୟ (ଟଙ୍କା) | ପେସ୍ କସ୍ (ଟଙ୍କା) |
|---|---|---|---|
| ଅଠଗଡ଼ | ୧୬୮ | ୧୭୧୦୦୦ | ୨୮୦୦ |
| ଅଠମଲ୍ଲିକ | ୭୩୦ | ୨୦୦୦୦୦ | ୪୮୦ |
| ବାମଡ଼ା | ୧୯୮୮ | ୫୯୧୦୦୦ | ୭୫୦୦ |
| ବଡ଼ାମ୍ବା | ୧୩୪ | ୧୦୮୦୦୦ | ୧୩୯୮ |
| ବୌଦ | ୧୨୬୪ | ୨୮୨୦୦୦ | ୮୦୦ |
| ବଣେଇ | ୧୨୯୬ | ୨୩୬୦୦୦ | ୨୭୦୦ |
| ଦଶପଲ୍ଲା | ୫୬୮ | ୧୫୧୦୦୦ | ୬୬୧ |
| ଢେଙ୍କାନାଳ | ୧୪୬୩ | ୫୦୯୦୦୦ | ୫୦୯୯ |
| ଗାଙ୍ଗପୁର | ୨୪୯୨ | ୭୫୫୦୦୦ | ୧୦୦୦୦ |
| ହିନ୍ଦୋଳ | ୩୧୨ | ୧୨୨୦୦୦ | ୫୫୧ |
| କଳାହାଣ୍ଡି | ୩୭୪୫ | ୬୩୨୦୦୦ | ୧୬୦୦୦ |
| କେନ୍ଦୁଝର | ୩୦୯୬ | ୯୪୨୦୦୦ | ୧୭୧୦ |
| ଖଣ୍ଡପଡ଼ା | ୨୪୪ | ୧୩୫୦୦୦ | ୪୨୧୨ |
| ମୟୂରଭଞ୍ଜ | ୪୨୪୩ | ୨୭୩୭୦୦୦ | ୧୦୬୮ |
| ନରସିଂହପୁର | ୧୯୯ | ୧୧୬୦୦୦ | ୧୪୫୬ |
| ନୟାଗଡ଼ | ୫୮୮ | ୩୫୪୦୦୦ | ୫୫୨୫ |
| ନୀଳଗିରି | ୨୭୮ | ୧୯୩୦୦୦ | ୩୯୦୦ |
| ପାଲଲହଡ଼ା | ୪୫୨ | ୮୦୦୦୦ | ୨୬୭ |
| ପାଟଣା | ୨୩୯୯ | ୮୫୫୦୦୦ | ୧୩୫୦୦ |
| ରଣପୁର | ୨୦୩ | ୬୬୦୦୦ | ୧୪୦୧ |
| ରେଢାଖୋଲ | ୮୩୩ | ୮୭୦୦୦ | ୨୦୦୦ |
| ସୋନପୁର | ୯୦୬ | ୩୭୫୦୦୦ | ୧୨୦୦୦ |
| ତାଳଚେର | ୩୯୯ | ୨୭୮୦୦୦ | ୧୦୪୦ |
| ତିଗିରିଆ | ୪୬ | ୩୨୦୦୦ | ୮୮୨ |
| ସରାଇକେଲା | ୪୪୯ | ? | ୦ |
| ଖରସୁଆଁ | ୧୫୩ | ? | ୦ |

ଯୁଙ୍ଗ୍ ଉତ୍କଳ ୧. ୮. ୧୯୩୨ ।]

୩ । କମରବନ୍ଧ—3. A belt.
୪ । ବଙ୍କାକାର କ୍ଷୁଦ୍ର ଅସ୍ତ୍ରବିଶେଷ ( ଏହା କମରବନ୍ଧରେ ଗୁପ୍ତ ଭାବରେ ଲୁକ୍କାୟିତ ଥାଏ)—4. A crooked dagger kept concealed below the belt.

**ପେସ୍କସ୍(ସୀ) ମାହାଲ୍**—ବୈଦେ. ବ—(ଫା)—କରଦ ରାଜ୍ୟ—
Pes-kas(sī) mahāl Tributary state.

**ପେସ୍କାର୍**—ବୈଦେ. ବ (ଫା)—୧ । ହାକିମଙ୍କ ନିକଟ ମକଦ୍ଦମା
Pes-kār ସମ୍ବନ୍ଧୀୟ କାଗଜ ପତ୍ର ଉପସ୍ଥାପିତ କରିବା କର୍ମଚାରୀ; ଷ୍ଟମ୍-
(ପେସ୍କାର—ଅନ୍ୟରୂପ) କରଣ—1, Peshkar; a clerk who
পেশকাব puts up papers before a superior officer.
पेशकार
୨ । କାରପରଦାଜ—2. Agent.

**ପେସ୍କାରୀ**—ବୈଦେ. ବ (ଫା)— ପେସ୍କାରର ପଦ—
Peskarī The post of a peshkar.
পেশকাবী पेशकारी

**ପେସ୍‌ଗୀ** - ବୈଦେ. ବ. (ଫା)—ଅଗ୍ରିମ ଦିଆ ଯିବା ପାରିଶ୍ରମିକ ବା
Pes-gī ବକ୍‌ସିସ୍—Money advanced to a worker
পেশগী पेसगी before the work is taken up.
ବିଣ.—ଅଗ୍ରିମ—Paid in advance.

**ପେସ୍‌ବନ୍ଦ୍**—ବୈଦେ. ବ. (ଫା)—ଘୋଡ଼ାର ପିଠିରେ ପଡ଼ିବା ଗୁର-
Pes-band ଜାମାର ସାମନା ପାଖରୁ ଘୋଡ଼ାର ବେକ ବାଟେ ବୁଲି
পেশবন্দ पेसबन्द ବନାଯାଇ ଥିବା ବନ୍ଧନ (ଏଥିଯୋଗୁଁ ଗୁରଜାମା ଘୋଡ଼ାର ଲାଞ୍ଜ, ଆଡ଼କୁ ଖସି ଯାଏ ନାହିଁ)—A rope which passes by the neck of a horse and keeps the saddle in position.

**ପେସୀ** — ଦେ. ବ. (ସ. ଅତସୀ; ମସୃଣା)—ପେସୁ; ପେସୀ; ମସୀନା;
Pesī ଷୋଉଷ ପର ଶ୍ରେଷ୍ଠ ତୈଳପ୍ରଦ ଶାଜବିଶେଷ —

(ପେସୁ, ପେସୀ, ପେସୂ—ଅନ୍ୟରୂପ) Linseed; Linum
तिसी, मसीना **तिसी, ग्ग्लसी** Usitissimum.
ମ. ଅଳସୀ, ଅଳଶି [ଦ୍ର—ଏହା ତେଷ୍ଟା ଓ ବାଇଗଣ ମଞ୍ଜି ପରି;
ଛା. ଅଲ୍‌ସି, ଉତ୍ତର ଶୀତକାଳର ଫସଲ; ଫୁଲ ପଞ୍ଚଦଳ ଓ ଆକାଶ
ତେ. ଅତସି ପରି ନୀଳବର୍ଣ୍ଣ ।

ପୂର୍ବକାଳରେ ଏ ଗଛର ଛାଲରୁ ଅତି ସୂକ୍ଷ୍ମ ତନ୍ତୁ ବାହାରୁ ଥିଲା ଓ ସେ ସୂତାରେ କ୍ଷୌମବସ୍ତ୍ର ପ୍ରସ୍ତୁତ ହେଉଥିଲା । ବର୍ତ୍ତମାନ ତେଲ ପାଇଁ ଲୋକେ ଏହାର ଚାଷ କରନ୍ତି । ଏହି ମଞ୍ଜିରୁ ନସୁନ-ସୁକ ତେଲ (Linseed oil) ବାହାରେ ଓ ଉକ୍ତ ତେଲ କବାଟ ଆଦିରେ ଦିଆଯିବା ରଙ୍ଗ (paint)ରେ ମିଶାଯାଏ ।

ପେସୀ ମଞ୍ଜିକୁ ବାଟି ବଥ ଉପରେ ପୁଲ୍‌ଟିସ୍ ଦେଲେ ବଥ ପାଚି ଯାଏ ।]

**ପେଶୀ** ବୈଦେ. ବି. (ଫା) ହାକିମଙ୍କ ପାଖେ ନଥି ଆଦି ପେଶ୍ କରିବା
पेशी କାମ—The act of putting up a file before an official.

ବିଣ.—ଯେଉଁ ନଥି ହାକିମଙ୍କ ପାଖେ ପେଶ୍ କରା ଯିବ—
(a record) About to be put up before an official.

**ପେସୀ ତେଲ**—ଦେ. ବି.—ନସୁନସୁକ ତେଲ—
Pesi tela तिसीतेल Linseed oli.
(ପେସୁ ତେଲ—ଅନ୍ୟରୂପ)

**ପେସ୍ତା**—ବୈଦେ. ବି. (ଫା. ପିସ୍ତା)—**ପିସ୍ତା**, କାବୁଲ ଦେଶୀୟ ଖାଦ୍ୟ
Pestā ଫଳବିଶେଷ—Pistachio; pistacia nut;
पेस्ता **पिस्ता** Pistacia Vera
(ପିସ୍ତା—ଅନ୍ୟରୂପ) [ଦ୍ର—ଏହା ଆମ୍ରାଦି ବର୍ଗର ବୃକ୍ଷବିଶେଷର ଫଳ । ଆଫଗାନିସ୍ଥାନର ପଶ୍ଚିମ ବାଲ୍‌କ (Balk) ଦେଶରୁ କାବୁଲିମାନେ ଏ ଫଳକୁ ଆଣି ଭାରତରେ ବିକ୍ରି କରନ୍ତି । ଏଥିର ମଞ୍ଜି ଭିତରର ଶସ ତେଲିଆ ଓ ସ୍ୱାଦଯୁକ୍ତ । ଏହା ପିଠା ଆଦିରେ ପଡ଼େ ଓ ଶସରୁ ବାହାରିବା ତେଲ ଔଷଧରେ ଲାଗେ ।]

**ପେସ୍ୱର**—ସଂ. ବିଣ. (ପିସ୍ ଧାତୁ=ଗମନ କରିବା+ଶୀଲାର୍ଥେ ବର)—
Peswara ୧ । ଜଙ୍ଗମ, ଗତିଶୀଳ—
1. Moving; moveable.
୨ । ବିନାଶ ଯୋଗ୍ୟ—2. Liable to destruction.
୩ । ଶୋଭାଯୁକ୍ତ—3 Splendid; grand.

**ପେହି**—ଗ୍ରା. ବି. (ସଂ. ପା ଧାତୁ, ନୀଚ ଲୋକଙ୍କ ଭାଷା)—ବାଜାବାଲାଙ୍କୁ
Pehi ମଦ୍ୟପାନାର୍ଥ ଦିଆଯିବା ବକ୍‌ସିସ୍—Tip given to
(ପେହି କଉଡ଼ି—ଅନ୍ୟରୂପ) drummers etc for a drink.

**ପୈ** (ଧାତୁ)—ସଂ.—୧ । ଶୁଷ୍କ ହେବା—
Pai (root) 1. To dry up.
୨ । ମଉଳି ଯିବା—
2. To wither; to become pale.

[ଦ୍ର—ଭାଷାରେ 'ପଇ' ଓ 'ପଏ' ଆଦ୍ୟଯୁକ୍ତ ଥିବା ଦେଶଜ ଓ ବୈଦେଶିକ ଶବ୍ଦ ମାନ 'ପୈ' ଯୁକ୍ତ ହୋଇ ମଧ୍ୟ ଉଚ୍ଚାରିତ ଓ ଲିଖିତ ହୁଏ, ଯଥା—ପଇଠ ସ୍ଥାନରେ ପୈଠ, ପଏଗମ୍ବର= ପୈଗମ୍ବର, ପଇକାର ସ୍ଥାନରେ ପୈକାର, ପଇଦଲ୍=ପୈଦଲ ପଇଦା=ପୈଦା ।]

**ପୈତାମହ**—ସଂ. ବିଣ. (ପିତାମହ+ଅ)—
Paitāmaha ୧ । ପିତାମହ ସମ୍ବନ୍ଧୀୟ (ଧନ)—
(ପୈତାମହିକ—ଅନ୍ୟରୂପ) 1. (property) Pertaining to one's paternal grand-father.
୨ । ପିତାମହଙ୍କଠାରୁ ଆଗତ—
2. Inherited from one's paternal grand-father.

**ପୈତି**—ଦେ. ବି—ପଇତି (ଦେଖ)
Paiti Paiti (See)

**ପୈତୃକ**—ସଂ. ବିଣ. (ପିତୃ+ସମ୍ବନ୍ଧାର୍ଥେ. କ)—
Paitṛuka ୧ । ପିତୃସମ୍ବନ୍ଧୀୟ—1. Paternal; relating to one's father.
୨ । ପିତୃପିତାମହାଦି ସମ୍ବନ୍ଧୀୟ—2. Ancestral.

**ପୈତୃଷ୍ୱସ୍ରୀ(ସ୍ରେ)ୟ**—ସଂ. ବି. ପୁଂ. (ପିତୃ ସ୍ୱସୃ+ଅପତ୍ୟାର୍ଥେ. ଇୟ; ଏୟ)—ଆପଣାର ପିଇସୀ ପୁଅ ଭାଇ—
Paitṛushwasri(sre)ya
ପୈତୃଷ୍ୱସ୍ରୀୟା
ପୈତୃଷ୍ୱସ୍ରେୟୀ } ସ୍ତ୍ରୀ One's cousin; son of one's father's sister.

**ପୈତ୍ତ**—ସଂ. ବିଣ. (ପିତ୍ତ+ଅ)—୧ । ପିତ୍ତସମ୍ବନ୍ଧୀୟ; ପିତ୍ତଜନିତ—
Paitta 1. Bilious.
(ପୈତ୍ତିକ—ଅନ୍ୟରୂପ) ୨ । ପିତ୍ତାଧିକ୍ୟରୁ ଜାତ—2. Due to excess of bile in the system.

**ପୈତ୍ର**—ସଂ. ବିଣ. (ପିତୃ+ଅ)—୧ । ପୈତୃକ—
Paitra 1. Paternal.
(ପୈତ୍ର୍ୟ—ଅନ୍ୟରୂପ) ୨ । ପିତୃପୈତାମହିକ—
1. Ancestral; hereditary.
ବି—ତର୍ଜନୀ ଓ ଅଙ୍ଗୁଷ୍ଠର ମଧ୍ୟଭାଗ; ପିତୃତୀର୍ଥ—
The edge of the palm between the index finger and the thumb.

[ଦ୍ର—ତର୍ପଣ କରିବା ସମୟରେ ପିତୃମାନଙ୍କୁ ଏହି ବାଟେ ପାଣି ଦିଆଯାଏ ।]

**ପୈଖାନା**—ବୈଦେ. ବି—ପାଇଖାନା (ଦେଖ)
Paikhānā Pāikhānā (See)

**ପୈଗମ୍ବର**—ବୈଦେ. ବି. (ଫା)—ପୟଗମ୍ବର (ଦେଖ)
Paigambara Payagambara (See)

**ପୈଜ**—ଦେ. ବି. (ପ୍ରାଚୀନ ପଦ୍ୟ) (ସଂ. ପ୍ରତିଜ୍ଞା; ପ୍ରା. ପଡିଣ୍ଣା, ପଇଣ୍ଣା)—
Paija ପହିଜ (ଦେଖ)
पैज Pahija (See)

**ପୈଞ୍ଚାଳିଶ(ଶି)** (ଇତ୍ୟାଦି)—ଦେ. ବି ଓ ବିଣ. (ସଂଖ୍ୟାବାଚକ)—
Painchālisa(si) (etc) ପଇଞ୍ଚାଳିଶ ଇତ୍ୟାଦି (ଦେଖ),
Painchālisa etc (See)

**ପୈଞ୍ଚି**—ଦେ. ବି—ପଇଞ୍ଚି (ଦେଖ)
Painchi पैंछा Painchi (See)

**ପୈଞ୍ଜନା(ମ)**—ଦେ. ବି—ପାଇଁଜମ୍ (ଦେଖ)—
Painjanā(ma) पैंजना(नो) Pāinjam (See)

ପୈଠ (ଇତ୍ୟାଦି)—ଦେ. ବି ଓ ବିଣ—ପଇଠ ଇତ୍ୟାଦି (ଦେଖ)
Paitha (etc) **पैठ** Paitha etc (See)

ପୈଠର—ସଂ. ବିଣ. ( ପିଠର=ହାଣ୍ଡି+ଅ )—ସ୍ଥାଲପକ୍ୱ (ମାଂସାଦି),
Paithara ହାଣ୍ଡିରେ ସିଝା ଯାଇଥିବା (ମାଂସ)—
(flesh or meat) Cooked in an earthen pot.

ପୈଡ଼—ଦେ. ବି—ପଇଡ଼ (ଦେଖ)
Pairda Pairda (See)

ପୈଡ଼ା—ଗ୍ରା. ବି. ପ୍ରାଦେ. (ବାଲେଶ୍ୱର)—ପରଡ଼ା (ଦେଖ)
Pairda Parirda (See)

ପୈତ(ତୁ)କ ପ(ପୋ)ଡ଼ା—ଦେ. ବି—ପଇତକ ପଡ଼ା (ଦେଖ)
Paita(tu)ka pa(po)rda Paitaka parda (See)

ପୈତା (ଇତ୍ୟାଦି)—ଦେ. ବି—ପଇତା ଇତ୍ୟାଦି (ଦେଖ)
Paita (etc) Paita etc (See)

ପୈତ୍ର ଦିବସ—ସଂ.ବି—ମନୁଷ୍ୟ ଗଣନାରେ ଏକ ମାସ ସମୟ ପିତୃଲୋକଙ୍କର
Paitra dibasa ୧ ଦିନ—The period of a month
(ପୈତ୍ର ଦିନ—ଅନ୍ୟରୂପ) according to human calculation which is equal to one day in the world of the deceased ancestors.

ପୈତ୍ରିକ—ପ୍ରାଦେ. ( ମେଦିନୀପୁର ) ବି. ( ଭୁଲ. ପୈତୃକ ଶବ୍ଦର ବଙ୍ଗଳା
Paitrika ଉଚ୍ଚାରଣ ପୈତ୍ରିକ )—ପୈତୃକ ( ଦେଖ )
Paitruka (See)

ପୈନ୍ତରା—ଦେ. ବି. (ସଂ. ପଦାନ୍ତର, ପ୍ରା. ପୟଂତର)—ପଇନ୍ତରା (ଦେଖ)
Paintara Paintara (See)

ପୈନ୍ତିରିଶ(ଶି) (ଇତ୍ୟାଦି)—ଦେ. ବି ଓ ବିଣ (ସଂଖ୍ୟାବାଚକ)—
Paintirisa(si) ପଇନ୍ତିରିଶ ଇତ୍ୟାଦି (ଦେଖ)
(ପୈନ୍ତ୍ରିଶ[ଶି], ପୈଁତିରିଶ[ଶି]—ଅନ୍ୟରୂପ) Paintirisa etc (See)

ପୈଦଲ—ଦେ. ବି. ବିଣ ଓ କ୍ରି. ବିଣ—ପଇଦଲ (ଦେଖ)—
Paidala Paidala (See)

ପୈଦା (ଇତ୍ୟାଦି)—ଦେ. ବି—ପଇଦା ଇତ୍ୟାଦି (ଦେଖ)
Paida (etc) Paida etc (See)

ପୈବସ୍ତ(ସ୍ତି)—ବୈଦେ. ବି—ପଇବସ୍ତ ( ଦେଖ )
Paibasta(sti) Paibasta ( See )

ପୈମାସ(ସି) (ଇତ୍ୟାଦି)—ବୈଦେ. ବି—ପଇମାସ ଇତ୍ୟାଦି (ଦେଖ)
Paimas(si) (etc) Paimasa etc (See)

ପୈରବ(ବୀ)—ବୈଦେ. ବି—ପଇରବ(ବି) ( ଦେଖ )
Pairab(bi) Pairab(bi) (See)

ପୈଲବ—ସଂ. ବିଣ. (ପୀଲୁ+ଅ)—ପୀଲୁବୃକ୍ଷ ସମ୍ବନ୍ଧୀୟ ( ହ. ଶ. )—
Pailaba Relating to the Pilu tree.

ପୈଶଲ୍ୟ—ସଂ. ବି. ( ପେଶଲ+ଯ )—କୋମଳତା—
Paisalya Softness.

ପୈଶାଚ—ସଂ. ବି. ( ପିଶାଚ+ଅ )—ପୈଶାଚିକ ( ଦେଖ )
Paisacha Paisachika (See)
(ପୈଶାଚୀ—ସ୍ତ୍ରୀ) ବି—ପୈଶାଚ ବିବାହ (ଦେଖ)
Paisacha bibaha (See)

ପୈଶାଚ ପଦ୍ଧତି—ସଂ. ବି ( କର୍ମଧା )—ପୈଶାଚିକ ଧାରା ବା
Paisacha paddhati ରୀତି—Devilish custom; diabolical practice.

ପୈଶାଚ ବିବାହ—ସଂ. ବି. ( ହିନ୍ଦୁସ୍ମୃତି )—ବଳପୂର୍ବକ କନ୍ୟାକୁ
Paisacha bibaha ଅପହରଣ କରି ବିବାହ କରିବା ପଦ୍ଧତି; ଛଳବଳ କୌଶଳରେ କନ୍ୟାକୁ ଆଣି ବିବାହ କରିବାର ପଦ୍ଧତି—One of the 8 forms of marriage mentioned in Hindu Law and recognised by the ancient Hindu books, though counted as the basest form of marriage.
[ ଦ୍ର—ହିନ୍ଦୁସ୍ମୃତିମାନଙ୍କରେ ୮ ପ୍ରକାର ବିବାହର ଉଲ୍ଲେଖ ଅଛି । ଛଳ ବଳ କୌଶଳରେ କନ୍ୟାକୁ ଅପହରଣ କରି କିମ୍ବା ସୁପ୍ତା, ମତ୍ତା ବା ପ୍ରମତ୍ତା କନ୍ୟାକୁ ଜବରଦସ୍ତି ବା ଗୋପନରେ ସଙ୍ଗମ କରି ବିବାହ କରିବା ପ୍ରଥାର ନାମ ପୈଶାଚିକ ବିବାହ । ଅନ୍ୟ ୭ ପ୍ରକାର ବିବାହଜାତ ସନ୍ତାନ ନ ଥିଲେ ଏପରି ବିବାହର ସନ୍ତାନ ପିତୃଧନରେ ଅଧିକାରୀ ହେବେ । ]

ପୈଶାଚିକ—ସଂ. ବିଣ. ( ପିଶାଚ+ଇକ )—୧ । ପିଶାଚସମ୍ବନ୍ଧୀୟ—
Paisachika 1. Infernal; demoniac; relating
(ପୈଶାଚିକା—ସ୍ତ୍ରୀ) to the demons.
୨ । ପିଶାଚ ପ୍ରକୃତି ସ୍ୱଭଳ—
2. In conformity with devilish nature.
୩ । ପିଶାଚ ପରିଚାଳିତ—
3. Controlled or conducted by demons.

ପୈଶାଚିକ ଭାଷା—ସଂ. ବି—ସଂସ୍କୃତ ଭାଷାର ବିକୃତରୂପ ଓ ବିକୃତ ଉଚ୍ଚା-
Paisachika bhasha ରଣଯୁକ୍ତ ପ୍ରାକୃତ ଭାଷାବିଶେଷ—
( ପୈଶାଚୀ—ଅନ୍ୟରୂପ) A degraded Prakruta dialect.
[ ଦ୍ର—ପ୍ରାଚୀନ ସଂସ୍କୃତ ନାଟକମାନଙ୍କରେ ( ବିଶେଷତଃ 'ଭାଷ' ବିରଚିତ ଯୌଗନ୍ଧରାୟଣି ଗ୍ରନ୍ଥରେ ) ଏ ଭାଷାର ଉଦାହରଣ ଦ୍ରଷ୍ଟବ୍ୟ । ]

ପୈଶୁନ(ନ୍ୟ)—ସଂ. ବି. ( ପିଶୁନ+ଭାବ. ଅ, ଯ )—୧ । ପିଶୁନର
Paisuna(nya) ଆଚରଣ—1. The conduct of a Pisuna.
୨ । ଧୂର୍ତ୍ତତା; ଶଠତା—2. Roguery; artfulness.
୩ । ଦୁଷ୍ଟାମି—3. Wickedness.
୪ । ନୀଚତା—4. Meanness; depravity.
୫ । ନିଷ୍ଠୁରତା—5. Cruelty.
୬ । ପରନିନ୍ଦା ଘୋଷଣା, ଚୁଗୁଲି—
6. Defaming others; slandering; backbiting.
[ ଦ୍ର—ଏହା ଦଶବିଧ ପାପ ମଧ୍ୟରୁ ବାଙ୍ମୟ ପାପ ଅଟେ । ]
ଦେ. ବି—୧ । ନିନ୍ଦା—1. Blame.
୨ । ଦୁର୍ନାମ—
2. Evil repute; bad name; scandal.
୩ । ଲଜ୍ଜା—3. Shame.

ବିଣ—୧ । ଲଜ୍ଜାଜନକ—1 Shameful.
୨ । ନିନ୍ଦାଜନକ—2. Blameworthy.
୩ । ଲଜ୍ଜିତ—3. Ashamed; abashed.
୪ । ନିନ୍ଦାରେ ମ୍ରିୟମାଣ—4. Humliated.

**ପୈଶୁନ(ନ୍ୟ) ମିଳିବା**—ଦେ. କ୍ରି—କୌଣସି ବ୍ୟକ୍ତି ନାମରେ ନିନ୍ଦା ଉଠିବା
Paiśuna(nya) miḷibā ହେବା, ଦୁର୍ନାମ ବା ଅପବାଦର ରଟନା—Being defamed or slandered; getting a bad name.
୨ । ନିନ୍ଦା ବା ଅପମାନରେ ମ୍ରିୟମାଣ ହେବା—
2. Being humiliated or abashed.

**ପୈଶୁନ(ନ୍ୟ) ଲଗିବା**—ଦେ. କ୍ରି—୧ । ଲଜ୍ଜିତ ହେବା—
Paiśuna(nya) lāgibā 1. Being ashamed.
୨ । ଲଜ୍ଜାରେ ମଲା ପରି ବୋଧ ହେବା—
2. Being utterly humiliated.

**ପୈଶୁନ୍ୟତା**—ଗ୍ରା. ବି. ( ସଂ. ପୈଶୁନ୍ୟ )—ପୈଶୁନ ( ଦେଖ )
Paiśunyatā Paiśuna ( See )

**ପୈଷ୍ଟିକ**—ସଂ. ବିଣ. ( ପିଷ୍ଟ+ଇକ )—ପିଷ୍ଟକ ସମ୍ବନ୍ଧୀୟ—
Paishṭika Relating to cakes.
ବି—୧ । ଯଅ, ଧାନ ବା ଗୁଣ୍ଡଳକୁ ସିଝାଇ ସଢ଼ାଇ ତିଆର କରାଯିବା ମଦ, ଗୁଣ୍ଡଳ ମଦ, ଦେଶୀ ସରାପ—
1. Spirituous liquor or wine made from fermented barley, paddy or rice; country liquor.
[ ଦ୍ର—ବଙ୍ଗଳାରେ ଏହାକୁ ଧେନୋ ମଦ୍ ( ଅର୍ଥାତ୍ ଧାନୁଆ ମଦ) ବୋଲି କହନ୍ତି । କିନ୍ତୁ ପ୍ରକୃତରେ ଏହା ଗୁଣ୍ଡଳ ସିଝାରୁ ପ୍ରସ୍ତୁତ ହୁଏ । ଗୁଣ୍ଡଳକୁ ସିଦ୍ଧ ଭାତକୁ ସଢ଼ାଇ ସେଥିରେ ବାଖର ( Yeast ) ଗୋଳାଇ ପିଠା ପରି କରବାକୁ ହୁଏ ଓ ସେହି ପିଷ୍ଟକ ବା ପିଠାରୁ ବକଯନ୍ତ୍ର ସାହାଯ୍ୟରେ ଅରକ ବାହାର କରାଯାଏ । ମଦ ପାଇଁ ବ୍ୟବହୃତ ଗୁଣ୍ଡଳକୁ ଲୋକେ ବାଛନ୍ତି ନାହିଁ । ଏଥିଯୋଗୁଁ ତହିଁରେ ଧାନ ମିଶିଥାଏ । ଏହି କାରଣରୁ ବଙ୍ଗଳାରେ ତାକୁ ଧାନୁଆ ମଦ କହନ୍ତି ଓ ମଦୁଆମାନେ ଭକ୍ତିପୂର୍ବକ ଏହାକୁ 'ଧାନେଶ୍ୱରୀ' ନାମରେ ସମ୍ବୋଧନ କରନ୍ତି । ]
୨ । ପିଷ୍ଟକସମୂହ—
2. A collection or heap of cakes.

**ପୈଷ୍ଟିକର**—ଗ୍ରା. ବିଣ—('ପଇସାଟିକର'ର ଚଞ୍ଚଳ ଉଚ୍ଚାରଣ)--ପଇସାକର;
Paishṭikara ଏକ ପଇସା ମାତ୍ର ମୂଲ୍ୟର—
Worth one pice only.

**ପୈଷ୍ଟୀ**—ସଂ. ବି—ପୈଷ୍ଟିକ ୧ ( ଦେଖ )
Paishṭī Paishtika 1 ( See );

**ପୈସା** ( ଇତ୍ୟାଦି )—ଦେ. ବି—ପଇସା ଇତ୍ୟାଦି (ଦେଖ)
Paisā ( etc ) Paisā etc ( See )

**ପୋ**—ଗ୍ରା. ବି. ( ସଂ. ପୁତ୍ର )—୧ । ପୁଅ—
Po 1. Son.
ବାପ ଦୋହନ୍ତି ପୋ ପୁଷାନ୍ତି, ଗଣ୍ଡ ମୁଣ୍ଡ ସବୁ ଭୁମର—
ସମ୍ବଲପୁର, ପ୍ରବଚନ ।

୨ । ବଂଶଧର—2. Descendant; progeny

**ପୋଅ**—ଗ୍ରା. ବି—ପୋ ( ଦେଖ )
Po-a Po ( See )
କଲଙ୍କୀ ହବାର କର ତୁମ୍ଭେ ବାରପୋଅ – ପ୍ରତୀ. ଶ୍ରୀଗୁରୁଭକ୍ତିଗୀତା ।

**ପୋଇ**—ଦେ. ବି. ପୁଂ. (ସଂ. ପୁତ୍ରକ)—
Poi ୧ । ଛୋଟପୁଅ, ପିଲା, ଶିଶୁ ବାଳକ—
1. A male child.
କାଳେ ଅରଣ୍ୟକୁ କରେ ପଳାୟନ
ଅବା କେଉଁ ପୋଇ ଆଉଛି ଲଣ । ଅଜସ୍ୱତନ୍ତ୍ର ଶେଷବନ୍ଦୀ ।
୨ । ସ୍ତ୍ରୀ. (ସଂ. ପୁତ୍ରିକା) ଛୋଟ କନ୍ୟା—
2. A small female child.
୩ । (କ୍ଷୁଦ୍ର ଅର୍ଥରେ ବ୍ୟବହୃତ) ଛୋଟ ଚିଙ୍ଗୁଡ଼ି ମାଛ; ଚିଙ୍ଗୁଡ଼ି ପୋଇ—3 A small shrimp.
ଚିଙ୍ଗୁଡ଼ି ପୋଇଲେ ଚିଙ୍ଗୁଡ଼ି ପୋଇ ।
ଛୋଟ ବାଳକେ ଲମ୍ବବାଳ ଦେ ? ଶିଶୁଗୀତ ।
[ ଦ୍ର—ପିଲାମାନଙ୍କ ମୁଣ୍ଡର ବାଳକୁ ମାଆମାନେ ପୋଖରୀରେ ଧୋଉଥିବା ବେଳେ ପିଲାଙ୍କ ମନୋରଞ୍ଜନାର୍ଥ ଛୋଟ ଚିଙ୍ଗୁଡ଼ି ମାଛକୁ ସମ୍ବୋଧନ କରି ଏ ଗୀତ ବୋଲନ୍ତି । ]
୪ । ଧାନ ଛଡ଼ା ଅନ୍ୟ ଶସ୍ୟ, ଯଥା—ମୁଗ, ବିରି, କୋଳଥ, ମାଣ୍ଡିଆ, ଇତ୍ୟାଦିକୁ ଦେଢ଼ି ବା ପାଞ୍ଚଗାହି ସୁଧ କରାରରେ ଦାଦନ ଲଗାଇବା ରୀତି—4. The practice of advancing cereals on loan.
୫ । (ସଂ. ପୋତକୀ, ଉପୋଦକା)—ପୁଇଶାଗ—5. A potherb; Basella Alba; Malabar Nightshade.
ଅନ୍ୟ ସଂ. ନାମ, ମାଳବା, ଅମୃତବଲ୍ଲରୀ, କଲମ୍ବୀ, ପିଚ୍ଛିଲା, ମୋହିନୀ, ବିଶାଳା, ପୂତିକା, ମଦଶାକା
ପୁଇଁ, ପୁଇ
ପୋଇ
ଗୁ. ପୋଥୀ
ମ. ମାୟାଳୁ, ଥେର
୬ । ନାଲିପୋଇ ବା ବଣପୁଇ—
6 Basella Rubra.
[ ଦ୍ର—ଏହା ପିଚ୍ଛିଲରସ, ବହଳ-ପତ୍ରିଆ ଲତା । ଏଥିର ପତ୍ର ଓ ଡାଙ୍ଗ (ଖାଡ଼ି) ଶାଗରୂପେ ବ୍ୟବହୃତ ହୁଏ । ଏଥିର ଫଳ ପାଚିଲେ କଳା ହୁଏ ଓ ତାକୁ ଚିପିଲେ ନାଲି ରସ ବାହାରେ । ପୋଇ ଲତା ଧଳା ଓ ନାଲି ଭେଦରେ ଦୁଇ ପ୍ରକାର । ବୈଦ୍ୟଶାସ୍ତ୍ର ମତରେ ଏହା ଶୀତବୀର୍ଯ୍ୟ ସ୍ନିଗ୍ଧ, ଶ୍ଲେଷ୍ମକର, ବାୟୁ ଓ ପିତ୍ତନାଶକ, କଣ୍ଠର ଅହିତକର, ନିଦ୍ରାଜନକ, ଶୁକ୍ରବର୍ଦ୍ଧକ, ରକ୍ତପିତ୍ତ ନିବାରକ, ବଳକର, ରୁଚପ୍ରଦ, ପୁଷ୍ଟିକର ଓ ତୃପ୍ତିଜନକ । ].
ଯାଗରେ ହିଁକେ ନ ପାଇଲେ ସୋମଲତ
ପ୍ରତିନିଧିରେ ଛଣ୍ଡି ହେତ ପୋଇ । କୃଷ୍ଣସିଂହ. ମହାଭାରତ ବନ ।
୭ । ରାଗବିଶେଷ—7. Name of a musical air.
[ ଦ୍ର—ରାଗ ଶବ୍ଦେ କୋଠି ଦେଖ । ]
ବିଣ. (ସଂ. ପୂତି)—ପଚା; ସଢ଼ା—Rotten.
ଯଥା—ପୋଇ ପଣସ ।
ପ୍ରାଦେ. (ଗଞ୍ଜାମ) ବି. (ସଂ. ପଥ)—ରେଲପଥ; ରେଲଗାଡ଼ି ଯିବାର ଲୌହମାର୍ଗ—Road laid down for railway; railway; rail line.

ମର୍ଜିପୀର ହସର୍ଷରେ ରେଳ ପୋଇରୁ ଜସିଗଲ ।
ଦୈନିକ ଅଣା ୨୪୮।୨୮ ।

ପ୍ରାଦେ. (ସମ୍ବଲପୁର) ବ— ମାଈ କୁକୁଡ଼ା—Hen.

**ପୋଇଁବା**—ଦେ କ୍ରି—ପୁଆଁଇବା (ଦେଖ)
Poiñbā Puāñibā (See)

ଛଡ଼ା ହୋଇଥିଲା ହସନ୍ତୀର ପାଶେ
ଜମାତାର ଅଗ୍ନି ପୋଇଁବା ସକାଶେ । ଜନ୍ମୁଭଜ, ଶେଷବଳୀ ।

**ପୋଇ କେର(ରେ)ଣ୍ଡା**—ଦେ. ବଣ. ପୁଂ—ପୁଇଁ କେରଣ୍ଡି ମାଛ ଭଳି
Poi kera(re)ṇdā ଅତି ହୀନ ବ୍ୟକ୍ତି ( ଘୃଣାବାଚକ, କୁତ୍ସୀ,
(ପୋଇ କେରଣ୍ଡୀ—ସ୍ତ୍ରୀ) ଅଳ୍ପ, କ୍ଷୁଦ୍ର)—A very insignificant person.

ଲଣ୍ଡାମୁଣ୍ଡା ପୋଇକେରେଣ୍ଡା ସିଂହକୁଅରେ ଥାଏ
ଅଉଣ୍ଡା ଭାଇରୁ ଗୁଣ୍ଡିଏ ପାଇଲେ ପାଣି ଛଡେଇ ଖାଏ । ଢଗ ।

**ପୋଇ କେରଣ୍ଡି**—ଦେ ବ—ଶ୍ରେଷ୍ଠ କେରଣ୍ଡି ମାଛ; ଚୂନା କେରଣ୍ଡି—
Poi kerāṇḍi Very small Barb (fish); Barbus Chola.

**ପୋଇ ଖଡ଼ା**—ଦେ. ବ—ପୋଇ ଲତାର ପତ୍ରହୀନ ଡଙ୍କ—
Poi kharḍā The leafless stem of the Basella
(ପୋଇ ଖାଡ଼, ପୋଇ ଡାଙ୍ଗ, ପୋଇ ନାଡ଼—ଅନ୍ୟରୂପ) creeper.
पुईडाँठा

**ପୋଇ ଖରଡ଼ା**—ଦେ. ବ.—ଖରଡ଼ା ହୋଇଥିବା ବା ନିଆଁରେ ସିଝା
Poi khararḍā ଯାଇଥିବା ପୋଇ ଶାଗ—The Basella leaves boiled and used as curry.

**ପୋଇ ଗୁଳି**—ଦେ.ବ. (ସଂ. ପୂତିକା+ଗୋଳକ)—ପୋଇ ଗଛର ପାଚିଲା
Poi guḷi କୋଳି—The ripe berries of the Basella
(ପୋଇ ମିଞ୍ଜୁଡ଼ି, ପୋଇ ମିଞ୍ଜିଡ଼ି, ପୋଇ ମଞ୍ଜି—ଅନ୍ୟରୂପ) creeper
[ଦ୍ର— ଏହି ଫଳମାନ ପୋଇ ଲତାର ନାଡ଼ରେ ଫଳେ । ଏହା କୃଷ୍ଣ ବର୍ଣ୍ଣ ଓ ଏହାକୁ ଚିପି ଦେଲେ ଏଥିରୁ ଫିକା ନାଲି ରସ ବାହାରେ ।]

**ପୋଇ ଚାନ୍ଦି**—ଦେ. ବ. (ସଂ. ଚନ୍ଦ୍ରକ; ଚନ୍ଦ୍ରଗୋଳକା)—ଚନ୍ଦ୍ରିକା; ଚକ୍କା
Poi chāndi ଚାନ୍ଦି ମାଛ; ଏକ ପ୍ରକାର ଶ୍ରେଷ୍ଠ ଚେପଟା ରଜତ
चान्दा, चाँदगुडा, चाँगूड़ा ମୁଦ୍ରାକୃତି ମାଛ—A kind of very
चाँदा small flat circular silvery fish; Ambassia Ranga
[ଦ୍ର— ଏହାର ପରିଧି ଚକ୍କାଠାରୁ ଶ୍ରେଷ୍ଠ; ପିଠିର ପକ୍ଷରେ କଣ୍ଟା ଥାଏ । ଏହାର କାଟି ଅଛି । ଏହା ଧଳା ଓ ଚେପଟା ।]

**ପୋଇ(ଇଁ) ଚାନ୍ଦିଆ**—ଦେ.ବ.—(ସଂ. ପୁତ୍ରଂଜୀବ)—ପୁତ୍ର ଜୀବ (ଦେଖ)
Poi(iṅ) chāndiā Putra jiba (See)
जियापुत, जियापोता ଲକୁଚ, ପୋଇ ଚାନ୍ଦିଅ ଅବ ଖେଳେ ବୃକ୍ଷ ।
पुतजिया କୃଷ୍ଣସିଂହ, ମହାଭାରତ, ବନ ।
୨ । ଇଙ୍ଗୁଦି (ଦେଖ)—2. Iṅgudi (See)
୩ । ପୋଇଚାନ୍ଦି (ଦେଖ)—3. Poichāndi (See)

**ପୋଇଚା ରକ୍ତ**—ଦେ. ବ. ଓ ବଣ – ପୋଇ ରସ ପରି କଳାମିଶା ନାଲି
Poichā rakta Dark red colour.
(ପୋଇଚା ରଙ୍ଗ—ଅନ୍ୟରୂପ)

**ପୋଇ ଚି(ଚୁ)ଙ୍ଗୁଡ଼ି**—ଦେ.ବ.(ସଂ. ପୂତିକା+ଚଙ୍ଗଟ)—୧ । ଶ୍ରେଷ୍ଠ ଚିଙ୍ଗୁଡ଼ି—
Poi chi(chu)ṅgurḍ 1. Small shrimps
୨ । ପୋଇ ଶାଗ ସଙ୍ଗେ ଚିଙ୍ଗୁଡ଼ି ମାଛ ରନ୍ଧା ହୋଇଥିବା ତରକାରୀ—2. Curry consisting of Basella leaves cooked with shrimps.

**ପୋଇ ଡଙ୍କ**—ଦେ. ବ—ପୋଇ ଲତାର କୋମଳ ଅଗ୍ରଭାଗ—
Poi daṅka The tender shoots of Basella creeper.

**ପୋଇ ପଣସ**—ଦେ. ବ—( ସଂ. ପୂତି+ପନସ )—ଯେଉଁ ପଣସକଠା
Poi paṇasa କଷିବେଳରୁ ସଢ଼ିଯାଇ ଗଛରୁ ଝଡ଼ିପଡ଼େ—The young jack fruit which becomes foetid and untimely drops from the tree

**ପୋଇବା**—ଦେ. କ୍ରି.—ପୁଆଇବା (ଦେଖ)
Poibā Puāibā (See)

ଟିହୁଡ଼ା କେଶର ୯ଣି ଗୁଆବୃନ୍ଦେ ପୋଇ
କର୍ପୂର ମଦନ ମେଲ ମିଠା ଦୁଧେ ମୋହି—ପ୍ରାଚୀ ଚନ୍ଦ୍ରସମ୍ପୁଟ ।

**ପୋଇ ମାରିଷ**—ଦେ. ବ. (ସଂ. ପୂତି ଓ ମାରିଷ) ଖଡ଼ା ଜାତୀୟ ଏକ
Poi mārisha ପ୍ରକାର ବନ୍ୟ ଶାଗ—A kind of pot herb growing wild.

**ପୋଇ ମିଚି(ଚୁ)ଡ଼ି**—ପ୍ରାଦେ. (ବାଲେଶ୍ୱର) ବ.—ପୋଇଗଛର ଫଳ—
Poi michi(chu)rdi The berries of Basella creeper.

**ପୋଇ ରକ୍ତ**—ଦେ. ବ.—୧ । ପାଚିଲା ପୋଇ ଫଳର ଫିକା ନାଲି ରସ—
Poi rakta 1. The pink or pale-red coloured
(ପୋଇ ରକତ—ଅନ୍ୟରୂପ) juice pressed from the ripe berries of Basella creeper.
୨ । ଫିକା ରଙ୍ଗର ରକ୍ତ—2. Pink coloured blood; pale coloured blood (of an anemic person)

**ପୋଇଲା**—ଦେ. ବ. ପୁଂ.—(ଗାଳିବିଶେଷ)—୧ । ଦାସୀପୁତ୍ର; ଗୋଲାମ-
Poilā 1. The son of a slave girl or concubine, a born slave.
୨ । କ୍ରୀତଦାସ—2. Slave.
ସ୍ତ୍ରୀ—ପୋଇଲୀ ବା ଦାସୀପରି ଅଧୀନା ବା ବଶମ୍ବଦା ସ୍ତ୍ରୀ—
A woman who is treated as a concubine or slave girl by the master.

**ପୋଇଲା ଶବରୁଣୀ**—ଦେ. ବ. (ମହାଭାରତ)—କୁନ୍ତୀଙ୍କ ସହଚରୀ ଏକ
Poilā śabaruṇi ଶବରସ୍ତ୍ରୀର ନାମ—The name of a Śabara woman who was for some time a companion of Kunti.
[ଦ୍ର— ପାଣ୍ଡୁ, ମାଦ୍ରୀ ଦେବୀଙ୍କ ସଙ୍ଗେ ଶତଶୃଙ୍ଗ ପର୍ବତରେ ରହିଥିବାର ସମ୍ବାଦ ଏ ଆସି କୁନ୍ତୀଙ୍କୁ କହିଥିଲା ।]

**ପୋଇଲୀ**—ଦେ. ବ. ସ୍ତ୍ରୀ—(ସଂ. ପୁଦ୍ରିକା=ଦାସୀ ତମ୍ମା ସଂ. ପୋଷ୍ଟା=
Poili ଦାସୀ)—୧ । ରାଜା ଆଦିଙ୍କ ଉଆସରେ ଥିବା ଘରଝିଅ; ରକ୍ଷିତା ଦାସୀ; ଯେଉଁ ଦାସୀକୁ ସ୍ୱାମୀ ବିବାହ ନ କରି ଆପଣାର ସ୍ତ୍ରୀ ପରି ଘରେ ରଖନ୍ତି—1. Concubine; a maid servant kept as a mistress; a female slave kept as a concubine.

[ଦ୍ର—ଆମ ଦେଶରେ ପୋଇଲୀ ରଖିବା ପ୍ରଥା ରାଜା ଓ କ୍ଷତ୍ରିୟମାନଙ୍କ ଘରେ ଚଳୁ ଥିଲା, ଏବଂ ତାଙ୍କ ଦେଖାଦେଖି କରଣ ସମାଜରେ ମଧ୍ୟ ଚଳଲା, ଏବଂ କରଣ ସମାଜର ଦେଖା ଦେଖି ଓଡ଼ିଶାରେ ଉପନିବେଶ କରିଥିବା ବଙ୍ଗାଳୀ (କେଉଟ)ମାନଙ୍କ ମଧ୍ୟରେ ଏ ପ୍ରଥା ଚଳଲା । ରଜାମାନଙ୍କ ଉଆସର ପୋଇଲୀମାନଙ୍କୁ "ଘର ଝିଅ" ବୋଲଯାଏ । ରାଜାମାନେ ଛେଉଣ୍ଡ ପିଲା-ମାନଙ୍କୁ ରାଜାନ୍ତଃପୁରକୁ ଆଣି ବାଲ୍ୟକାଳରୁ ଲାଳନ ପାଳନ କରି ରଖନ୍ତି ଓ ସେମାନେ ବୟଃପ୍ରାପ୍ତା ହେଲେ ରାଜା ବା ତାଙ୍କ ଉତ୍ତରାଧିକାରୀଙ୍କର ଅଙ୍ଗଲଗା ଦାସୀ ହୁଅନ୍ତି । ପୋଇଲୀଙ୍କ ପୁଅ ମାନଙ୍କୁ ରାଜବଂଶର 'ଅନ୍ଦର ପୁଅ' ବୋଲଯାଏ ଓ କରଣ ସମାଜରେ 'ଗୋଲାମ ବା ଭିତ ଅନ୍ଦର ବୋଲଯାଏ ଓ ଉପନିବେଶୀ ବଙ୍ଗାଳୀଙ୍କ ଘରେ 'ସାଗରପେସା' ବୋଲଯାଏ । ବର୍ତ୍ତମାନ କରଣ ସମାଜରୁ ଓ କେଉଟ ସମାଜରୁ ଏ ପ୍ରଥା କ୍ରମଶଃ କମି ଯାଉଅଛି । ଦାସୀପୁତ୍ରମାନେ ପିତାଙ୍କ ସମାଜରେ ମିଶନ୍ତି ନାହିଁ । କିନ୍ତୁ ବିବାହିତା ସ୍ତ୍ରୀଗର୍ଭଜାତ ସନ୍ତାନର ଅଭାବରେ ଏମାନେ ପିତୃସମ୍ପତ୍ତିର ଅଧିକାରୀ ହୁଅନ୍ତି । ଦାସୀପୁତ୍ରମାନେ ହିନ୍ଦୁଶାସ୍ତ୍ରାନୁସାରେ ପିତୃ-ସମ୍ପତ୍ତିରୁ ଖୋରାକପୋଷାକ ପାଇବାର ଅଧିକାରୀ ଅଟନ୍ତି ।]

୨ । ଦାସୀ; ସେବାକାରିଣୀ, ଭୃତ୍ୟା, ଗୃହକର୍ମିଣୀ—
2. Maid servant.

ଦୈକେୟୀଙ୍କର ମନ୍ଥରା ବୋଲି ଚୋଟ୍ଟଏ ପୋଇଲୀ ଥିଲା ।
ଗୋଲକଚନ୍ଦ୍ର. ତିଲକ ରାମାୟଣ ।

**ପୋଇଲୀ ଅଡ଼ର ପୁଅ**—ଦେ. ବି—ଦାସୀ ପୁତ୍ର—
Poilī ārdara pua  Son of a concubine
(ପୋଇଲି ପୁଅ—ଅନ୍ୟରୂପ)

**ପୋଇଲୀ କଥା**—ଦେ. ବି. ( ବିନମ୍ରୋକ୍ତି )—
Poilī kathā  ଦାସୀପରି ଅନୁଗତା ସ୍ତ୍ରୀର ଅନୁରୋଧ ବା ଉପଦେଶ—
(ପୋଇଲୀ କୁହା, ପୋଇଲୀ ବୋଲ—ଅନ୍ୟରୂପ)  The humble advice of a woman,

**ପୋଇଲୀ ପରିବାରୀ**—ଦେ. ବି. (ଏକାର୍ଥବୋଧକ ସହଚର ଶବ୍ଦ)—
Poilī paribārī  ଦାସୀ ଓ ରକ୍ଷିତା ସ୍ତ୍ରୀ ଆଦି—
दासी चाकरानी  Maid servants and concubines of a
**दासी नौंड़ी**  family.

ପୋଇଲୀ ପରିବାରୀ କୋଉଏ ବ କାଇଣ ।
ଫକୀରମୋହନ. ଛମାଣ ଆଠଗୁଣ୍ଠ ।

**ପୋଇଲୀ ମାଇପ**—ଦେ. ବି—ରଖେଇ ଦାସୀ, ରକ୍ଷିତା ସ୍ତ୍ରୀ; ଉପପତ୍ନୀ—
Poilı māipa  A female servant used as a
ਰਖੈਨੀ **ਰਖੈਲੀਨ**  concubine

**ପୋଏ**—ଦେ ବି. ( ସ. ପୁତ୍ର )—
Poe  ୧ । (ବହୁବଚନ) ପୁଅମାନେ—1. Sons.
(ପୁଏ—ଅନ୍ୟରୂପ)  ପ୍ରଦ୍ୟୁମ୍ନ ପରି ମୋ ପୋଏ ଗ୍ରାମଙ୍ଗୀ ।
କୃଷ୍ଣସିଂହ. ମହାଭାରତ. ବନ ।

୨ । (ବହୁବଚନ) ପିଲାମାନେ—2. Children.

ପୋଏ ବୋଲନ୍ତି ତାର ଅବ
ବାମ ଦକ୍ଷିଣ ଉଭ ଶିବ । ପ୍ରାଚୀ. ନିର୍ଗୁଣ ମାହାତ୍ମ୍ୟ ।

୩ । (ଏକ ବଚନ) ଏକ ପୁତ୍ର—3. A son; one son.

ନନ୍ଦନ ତାର ପୁତ୍ର ହୋଏ
ଦଶାର୍ହ ନାମେ ତାର ପୋଏ । ଜଗନ୍ନାଥ. ଭାଗବତ ।

**ପୋଏଲା**—ଦେ. ବି. (ସ. ପ୍ରବାଳ)—ପୋହଳା ( ଦେଖ )
Poelā  Pohalā ( See )

ମାଣିକ୍ୟ ସଂଯୋଗ ଯେଉେ ପୋଏଲା ଅଛି ।
ପ୍ରାଚୀ. ଶିଶୁଶଙ୍କର ଉଷାଅଭିଳାଷ ।

**ପୋଁ**—ଦେ. ଅ. ( ଧ୍ୱନ୍ୟନୁକରଣ )—
Poṅ  ୧ । ପେଁକାଳର ଶବ୍ଦ—1 The sound of
पौं **पोँ**  blowing a flute.

୨ । ଅଧୋବାୟୁ ବହିର୍ଗମନର ଧ୍ୱନିବିଶେଷ—
2 A sound of passing wind through the anus

(ଦ୍ର—ପୋଁଠାରୁ ପଁ କମ୍ରତର ଓ ପଁ ଠାରୁ ପୁଁ କମ୍ରତର ଶବ୍ଦ ।)

**ପୋକ**—ଦେ. ବି. ( ସ ପୁତ୍ତିକା; ପୁଲକ)—
Poka  ୧ । କୀଟ; କୀଟ ପତଙ୍ଗ—
पोका **कीड़ा, पिल्लु**  1. Insects (generally)

[ ଦ୍ର—ପ୍ରକୃତରେ ପକ୍ଷହୀନ କ୍ଷୁଦ୍ର ଜୀବଙ୍କୁ ପୋକ ବୋଲଯିବା ଉଚିତ, କିନ୍ତୁ ସାଧାରଣତଃ ପକ୍ଷହୀନ ଜୀବ(କୀଟ)ଙ୍କୁ ଓ ପକ୍ଷବିଶିଷ୍ଟ ଜୀବ (ପତଙ୍ଗ)ମାନଙ୍କୁ ମଧ୍ୟ ପୋକ ବୋଲଯାଏ । ]

୨ । ଅଂଶେଇ; କୃମି—2. Moth; worms; maggots.

[ ଦ୍ର—ପୋକ ୨ ଭାଗରେ ବିଭକ୍ତ, ଯଥା—କୃମି ( ପକ୍ଷହୀନ ) ଓ ପତଙ୍ଗ ( ପକ୍ଷଯୁକ୍ତ ) । ଏ ଉଭୟଙ୍କର ସ. ନାମ ପୁଲକ । 'କୀଟ'ର ଅର୍ଥ-ଯେ ଗତି କରେ । ପକ୍ଷହୀନ ଓ ପକ୍ଷବିଶିଷ୍ଟ ପୋକଙ୍କୁ କୀଟପତଙ୍ଗ ବା ପୋକଯୋକ ( ବ. ପୋକାମାକଡ଼, ହି. କୀଡ଼ାମ-କୌଡ଼ା) କୁହାଯାଏ ।

ପୋକ ଅନେକ ଶ୍ରେଣୀର ଅଛନ୍ତି । କେତେକ ପୋକ ଡିମ୍ବରୁ ଜନ୍ମି କୃମି ପରି କିଛିକାଳ ରହନ୍ତି, ତତ୍ପରେ ସେମାନଙ୍କର ଗୋଡ଼ ଜନ୍ମେ ଓ ତଦୁପରେ ପକ୍ଷ ଜନ୍ମେ ।

ଖାଦ୍ୟ ଓ ଆକ୍ରାନ୍ତ ବସ୍ତୁ ଭେଦରେ ପୋକମାନଙ୍କର ଭିନ୍ନ ଭିନ୍ନ ନାମକରଣ ହୋଇଅଛି, ଯଥା —( ଆକ୍ରାନ୍ତ ବସ୍ତୁଭେଦରେ ) ଆଖୁ ପୋକ, ଶୁଖୁଲ ପୋକ, କାନଖୁଣ୍ଟୁଲୀ, ଲୁଗୁରମାଛି ।

( ସାଦୃଶ୍ୟ ଭେଦରେ ) ଉକୁଣିଆ ପୋକ, ଘୋଡ଼ା(ମୁହାଁ) ପୋକ, ସାଧବଘର ବୋହୂ (ପାଟ ପୋକ) ।

( ଗୁଣ ଭେଦରେ )—ଫାରୁଡ଼ା ପୋକ, ଶଙ୍କୀ ପୋକ, ଜଳୁ-ଜଳୁଆ ପୋକ, କେଉଟିଆ ପୋକ ।

( ବାସସ୍ଥାନ ଭେଦରେ )—ପାଣିଉଅଁର, ଗୋଷ୍ଠୀପୋକ, ବାଲି ଉଅଁର, ମାଟିବିରୁଡ଼ି, ଗୋବର ପୋକ ।

କେତେକ ପକ୍ଷହୀନ ଓ ପଦହୀନ ପୋକଙ୍କର ନାମ—ଦସୀ-ପୋକ, କୃମି ବା କୁରୁମି—(ଏମାନେ ମନୁଷ୍ୟର ପେଟ ଭିତରେ ଓ ମଳରେ ଥାଆନ୍ତି ଓ ଅତି କ୍ଷୁଦ୍ର, ଓ ସୂତା ପରି ଦେଖାଯାନ୍ତି), ଅଂଶେଇ—(ପଚ, ଘାଆ ପ୍ରଭୃତିରେ ମାଛି ବସିଲେ ମାଛିଠାରୁ ଏମାନେ ଜନ୍ମ ହୁଅନ୍ତି) ।

ପଦବିଶିଷ୍ଟ ଓ ପକ୍ଷହୀନ ପୋକ; ଯଥା—ମାକଡ଼ସା ବା ବୁଢ଼ିଆଣୀ, ଝିଙ୍କ, ବିଛା, ଉଇଲୁଣୀ, ତେଲୁଣୀ ପୋକ, ଗଉଡୁଣୀ ପୋକ ।

ପଦ ଓ ପକ୍ଷବିଶିଷ୍ଟ ପୋକ; ଯଥା—ମାଛି, ଅସରପା, ଝିଣ୍ଟିକା, ଭଅଁର, କୁକୁରମାଛି, ପ୍ରଜାପତି ।

ପକ୍ଷବିଶିଷ୍ଟ ପଦହୀନ ପୋକ ନାହାନ୍ତି ।

ପକ୍ଷଯୁକ୍ତ ପୋକମାନେ ଅଣ୍ଡଜ । ଏମାନେ ସାଧାରଣତଃ ଡିମ୍ବଠାରୁ ପୂର୍ଣ୍ଣାଙ୍ଗ ପର୍ଯ୍ୟନ୍ତ ଚାରିଗୋଟି ଅବସ୍ଥା ମଧ୍ୟ ଦେଇ ଜୀବନ ଯାପନ କରନ୍ତି । ଯଥା—୧. ଅଣ୍ଡ ବା ଡିମ୍ବ—Egg, ୨. ଅବସ୍ଥବିଶୂନ୍ୟ କୃମି—Larva stage, ୩. ପୁଲକ, କୋଷ ବା ଗୋଣ୍ଠି—Pupa stage, ୪. ପକ୍ଷ ଲାଗିବା ଅବସ୍ଥା ବା ପୂର୍ଣ୍ଣାଙ୍ଗ—Winged stage or adult stage

ସମସ୍ତ ପ୍ରକାର ଅଣ୍ଡଜ ପୋକଙ୍କର ପକ୍ଷ ହୁଏ ନାହିଁ । ଯେଉଁମାନଙ୍କର ପକ୍ଷ ହୁଏ ସେମାନେ ସାଧାରଣତଃ ଷଟ୍‌ପଦ ( ଯଥା—ପ୍ରଜାପତି, ପିମ୍ପୁଡ଼ି, ମାଛି ଇତ୍ୟାଦି ) ସେଥିମଧ୍ୟରୁ କାହାର କାହାର ୪ ପକ୍ଷ (ଯଥା, ପିମ୍ପୁଡ଼ି, କଙ୍କି) ଓ କାହାର ୨ ପକ୍ଷ ଥାଏ(ଯଥା--ମଶା; ମାଛି) । କୌଣସି କୌଣସି ପୋକ ଡିମ୍ବରୁ ଫୁଟି ପୂର୍ଣ୍ଣାଙ୍ଗ ହୁଅନ୍ତି (ଯଥା—ଉଇଲୁଣୀ, ଅସରପୋକ, ଝିଙ୍କ) । କେତେକ ପୋକଙ୍କ ଉପରେ ଖୁବ ଛୋଟିଆ ପକ୍ଷ ଥାଏ ( ଯଥା—ଗୋବର ପୋକ, କଳାଭଅଁର, ଗୁଞ୍ଜର ପୋକ ) । ଏମାନଙ୍କୁ ଦୃଢପକ୍ଷୀ କୁହାଯାଏ । କେତେକ ପୋକ ସେମାନଙ୍କର ଦୀର୍ଘପଦ ସାହାଯ୍ୟରେ ବହୁଦୂରକୁ ଡେଇଁ ପାରନ୍ତି (ଯଥା—ପତଙ୍ଗ, ଝିଣ୍ଟିକା) । ଫଳାକୁଆ ବା ଶୁଅଁ ବାଳ ପୋକମାନେ ବଡ଼ି କରି ପ୍ରଜାପତି ହୁଅନ୍ତି । ]

**ପୋକ ଉଠିବା**—ଦେ ବି.—( କୌଣସି ବ୍ୟକ୍ତି ) କ୍ରୋଧାନ୍ଧ ହେବା
Poka uṭhibā ବା ଗର୍ବରେ ଉନ୍ମତ୍ତ ହେବା—The state of
(ପୋକ ଚଢ଼ିବା—ଅନ୍ୟରୂପ) a person being excessively
**मगज (दिमाक)मे कीड़ा काटना** angry or excited.
[ଦ୍ର—କ୍ରୋଧୋନ୍ମତ୍ତ ବା ଗର୍ବୋନ୍ମତ୍ତ ଲୋକକୁ ଦେଖି ଲୋକମାନେ କହନ୍ତି ତା ମୁଣ୍ଡକୁ ବା ମଗଜକୁ ପୋକ ଉଠିଲାଣି ।]

**ପୋକ କାଟିବା**—ଦେ. ବି —୧ । କୌଣସି ବସ୍ତୁକୁ ପୋକ ଆକ୍ରମଣ
Poka kāṭibā କରି ନଷ୍ଟ କରିବା—1. A thing being
(ପୋକ ଖାଇବା—ଅନ୍ୟରୂପ) eaten or damaged by
পোকায় খাওয়া **कीड़ा काटना** worms.
୨ । ଦାନ୍ତ ଭିତରେ ପୋକ ଲାଗିବାରୁ ଦାନ୍ତରେ ତୀବ୍ର ବେଦନା ଅନୁଭୂତ ହେବା—2. Extreme pain felt inside the teeth, said to be due to the presence of some insects.

**ପୋକ ଖିଆ**—ଦେ. ବିଣ.—କାଠ ଦଣ୍ଡି, କାଠହାଡ଼ି ନଷ୍ଟ ହୋଇଥିବା—
Poka khiā Worm-eaten; moth-eaten.
(ପୋକକଟା, ପୋକଲଗା—ଅନ୍ୟରୂପ)
পোকা কাটা **कीड़ासे काटा हुआ**

**ପୋକ ଝିଞ୍ଜାରିବା**—ଦେ. ବି.—ପୋକମାନେ କୌଣସି ପଦାର୍ଥକୁ ଝିଙ୍କ
Poka jhiñjāribā ଝିଙ୍କ କରି ଖାଇ ନଷ୍ଟ କରିବା—
**कोड़ा घुन घुनी करना** Being moth-eaten and reduced to shreds.

(ପୋକ ଘଣିବା, ପୋକ ଘଣା ଘଣା କରିବା—ଅନ୍ୟରୂପ)

**ପୋକଡ଼ା**—ପ୍ରାଦେ. (ଗଡ଼ଜାତ) ବିଣ.—ପୋକଖିଆ (ଦେଖ)
Pokaṛā Poka khiā (See)

**ପୋକ ଡାଉଁ ଡାଉଁ**—ପ୍ରାଦେ. (ଗଡ଼ଜାତ) ବିଣ —ପୋକ ସାଲୁ ସାଲୁ
Poka ḍāuñ ḍāuñ (ଦେଖ)—Poka sālu sālu (See)

**ପୋକ(ଖ)ତ(ତା)**—ବୈଦେ. ବିଣ. (ଫା. ପୋଖ୍ତ) ଭୁଲ. ହି. ପକ୍ୱ)—
Poka(kha,ta(tā) ୧ । ଦୃଢ଼; କଠିନ—1. Hard.
[ପୋଖତ୍(ତା), ପୋକ୍ତ(କ୍ତା)] ୨ । ମଜବୁତ୍; ପକ୍କା—
পোক্ত(ক্তা) **पोक्त** 2. Strong.
୩ । ପାକଲ—3. Mature.
୪ । ସୁପରିଣତ—4. Well developed.
୫ । ସୁପରିପକ୍ୱ—5. Well ripened
୬ । ଅନୁଭବୀ; ପ୍ରବୀଣ—6 Experienced.
୭ । ବୃଦ୍ଧ; ବୟସ୍କ—7. Old; of ripe age.

**ପୋକ(ଖ)ତାନ୍(ନ)**—ବୈଦେ. ବି. (ଫା. ପୋଖ୍ତାନ୍)—ଲୁଣ ମାରିବା
Poka(ka)tān(ni) ପ୍ରକ୍ରିୟା; ସମୁଦ୍ର ପାଣିରୁ ଲୁଣ ତିଆରି କରିବା-
পোক্তান **पोक्तान** Manufacture of salt from sea-
(ପୋକ୍ତାନ, ପୋକ୍ତାନି—ଅନ୍ୟରୂପ) water.
ଦେଶୀୟଙ୍କାର ସମୟରୁ (ଲୁଣ) ପୋକ୍ତାନ କାର୍ଯ୍ୟ
ସାକ୍ଷାତ୍ ସମ୍ବନ୍ଧରେ ବନ୍ଦୋବସ୍ତ କରି ଥିଲେ । ଫକିରମୋହନ, ଗଳ୍ପ ସ୍ୱଳ୍ପ ।

**ପୋକତି** (ଇତ୍ୟାଦି)—ଦେ. ବି ଓ ବିଣ—ପୋଖତି ଇତ୍ୟାଦି (ଦେଖ)—
Pokati (etc) Pokhati etc (See)

**ପୋକ ଧରିବା**—ଦେ. ବି.—କୌଣସି ବସ୍ତୁକୁ ପୋକ ଆକ୍ରମଣ କରିବାକୁ
Poka dharibā ଆରମ୍ଭ କରି ସମ୍ପୂର୍ଣ୍ଣଭାବରେ ନଷ୍ଟ ନ କରି ଥିବା
(ପୋକ ଲାଗିବା—ଅନ୍ୟରୂପ) ଅବସ୍ଥା—A thing being
পোকায় ধরা **कीड़ा लगना** attacked with worms.

**ପୋକ ପଡ଼ିବା**—ଦେ. ବି.—ମାଛି ବସିବା; ଅଂଶେଇ ପଡ଼ିବା, ଦେହରୁ
Poka paṛibā ବ୍ରଣାଦି ଦୂଷିତ ହେଲେ ତହିଁରେ କୀଟ ଜନ୍ମିବା—
পোকপড়া **कीड़ा पड़ना** The growing of maggots in a festering sore.
[ଦ୍ର—କୌଣସି ମନୁଷ୍ୟ ଦେହରେ ଘାଆରେ ପୋକ ପଡ଼ିଲେ ସେ ବ୍ୟକ୍ତି ଅଶୁଚି ବିବେଚିତ ହୁଏ ଓ ତାହାକୁ 'ମାଛିଆ ପାତକ' ଦୋଷ ଲାଗେ । ଶାସ୍ତ୍ରନିର୍ଦ୍ଦିଷ୍ଟ ପ୍ରାୟଶ୍ଚିତ୍ତ, ଦାନ ଓ ବ୍ରାହ୍ମଣ-ଭୋଜନ କରାଇଲେ ସେ ଉକ୍ତ ପାତକରୁ ମୁକ୍ତ ହୁଏ ।]

**ପୋକ ଫୁଟିବା**—ଦେ. ବି.—କୌଣସି ସଢ଼ା ପଦାର୍ଥ ବା ଘାଆରେ ବହୁ
Poka phuṭibā ପରିମାଣରେ ପୋକ ଜନ୍ମିବା—A thing or
**पिल्लू फलजाना** a sore becoming infested with maggots on account of its being putrified or rotton.

**ପୋକ ବିନ୍ଧା**—ଦେ. ବିଣ.—ଯେଉଁ ପଦାର୍ଥକୁ ପୋକ କଣା କରି ପକାଇ
Poka bindhā ଥାଆନ୍ତି—Bored by worms.
পোকায় ছাঁদাকরা **कीड़ाका काटा हुआ**

**ପୋକ ଯୋକ**—ଦେ. ବି. ( ଏକାର୍ଥକ ସହଚର ଶବ୍ଦ, ହି. ପୁଲକ+
Poka joka ଜଳୌକା) ପୋକ ଆଦି—Insects; maggots
পোকা মাকড **कीड़ा मकौड़ा** and worms.

**ପୋକର୍**—ବୈଦେ. ବି. (ଇଂ)—ଚୁଲୀର ନିଆଁକୁ ଉଖାଳିବା ପାଇଁ
Pokar ବ୍ୟବହୃତ ଲୁହାର ଗେଞ୍ଜଣା କାଠି— Iron poker.
ପୋକାର **खोंचो; खोंचोठी**

**ପୋକରା**—ଦେ. ବିଣ.—ପୋକଖିଆ (ଦେଖ)
Pokarā Poka khiā (See)

ଯେ ଧନୁ ଦେଖି ମଳାଇ ଅର୍ଜିଲ ତାହାକୁ
ଅମ୍ଭେ ଉର୍କିଲକୁ ଗଲୁ ସେ ପୋକରା ହୋଇ ହେ—ବିଶ୍ୱନାଥ ବିଚିତ୍ରରାମାୟଣ ।

**ପୋକ ଶୁଂଘା**—ଦେ. ବି—୧ । ସୋମରାଜ୍ୟାଦି ବର୍ଗର ବର୍ଷାୟୁଃ ଶାକ
Poka sumghā ବିଶେଷ; ବଡ଼ ପୋକଶୁଂଘା—Blumea

ସ. କୁକୁନ୍ଦର, ପୀତପୁଷ୍ପ, କୁକୁରଦ୍ରୁ, କୁକୁରଦ୍ରୁମ, ମୃଦୁଚ୍ଛଦ, ଅଲମ୍ବୁଷା, ଭୂମାପ, ଭୂକଦମ୍ବ, ଗୋଣ୍ଡଲ, ତାମ୍ରଚୂଡ଼—
Lacerena; Blumea Odorata; Coryza Lacera; Coryza Terebinthina; a herbarious plant.

**कुकशिमा, कुकशिमे. कुकुरशोंका, कुकुरमुता, कुकुरशुङ्गा, बुढ़ाशुङ्गा कुकुरौंधा, कुकुरछेदि, कुकुरसुवा, चौंदोर, तमाकु**

ଆ. ସନୌବରୁଲ୍, ଅଜ୍
ଫା. କମାଦରୁସ୍
ମ. କୁକୁରବନ୍ଦା
ଗୁ. କୋକରୁନା

[ଦ୍ର—ଏହି ଗୁଳ୍ମ ଏକ ଫୁଟ ପର୍ଯ୍ୟନ୍ତ ଉଚ୍ଚ ଓ ଗୁଦାଳଥା; ପତ୍ର ଲୋମଶ ଓ ଧୂଆଁପତ୍ର ପରି, ମୂଳରୁ ପତ୍ର ବାହାରେ; ଫୁଲ ହଳଦିଆ ଓ ନାଲି; ଶୀତଦିନେ ଫୁଟେ । ଏହାର ପତ୍ରରେ ତାର୍ପିନ୍ ତେଲର ଗନ୍ଧ ଅଛି । ଏହା ଔଷଧରେ ବ୍ୟବହୃତ ହୁଏ । ବୈଦ୍ୟକ ମତରେ ଏହା କଟୁତିକ୍ତ ରସ ଏବଂ ଜ୍ୱର, ରକ୍ତ ଦୋଷ ଓ କଫନାଶକ । ଏହାଦ୍ୱାରା ରକ୍ତପିତ୍ତ, ଅତିସାର ଓ ଘୋରଦାହ ପ୍ରଶମିତ ହୁଏ । ଏହାର କାଣ୍ଡମୂଳକୁ ଜଳରେ ଯାକିଲେ ମୁଖଶୋଷ ନିବାରିତ ହୁଏ— କୁକୁରମାନେ ଏ ଗଛକୁ ଶୁଂଘିବା ପରେ ଏ ଗଛ ଆଡ଼କୁ ଲକ୍ଷ୍ୟ କରି ମୂତନ୍ତି । (ମଳାଥର୍ ଉଇଲିୟମ୍) ।]

୨ । ବାଡ଼ ପୋକଶୁଂଘା—2. Vernonia Cinerera; Pogostemon Plectranthoides (Haines); Ageratum Conyzoids (Haines); Celsia Coromandelina (Kirtikar).

[ଦ୍ର—ଏହାର ପତ୍ର ପୋକଶୁଂଘା ପତ୍ର ପରି କିନ୍ତୁ ଛୋଟ; ଏ ଗଛ ଉଚ୍ଚତାରେ ୨।୩ ହାତ ପର୍ଯ୍ୟନ୍ତ ହୁଏ । ଏଥିରେ ତାଳ ଅଛି । ଏହା ବଡ଼ ପୋକଶୁଂଘାଠାରୁ ଭିନ୍ନ ଜାତୀୟ ଗଛ ।]

**ପୋକ ସାଲୁ ସାଲୁ**—ଦେ. ବିଣ—କାଠ ପୂର୍ଣ୍ଣ, ଯହିଁରେ ବହୁତ କୀଟ
Poka sālu sālu ଏକଡ଼ରୁ ସେକଡ଼କୁ ଯିବା ଆସିବା କରୁଥାଆନ୍ତି—
ପୋକ ସାଉଁ ସାଉଁ } ଅନ୍ୟରୂପ
ପୋକ ହଲ ହଲ }
Copiously infested with worms or maggots.
**कोड़ाखदबद**

**ପୋକା**—ଦେ. ବିଣ—ପୋକସ; କୀଟଦଷ୍ଟ—Worm eaten.
Pokā ପୋକାକାଟା **काड़खौक, कीड़कट्ट**

**ପୋଖଡ଼ା**—ପ୍ରାଦେ (ଗଡ଼ଜାତ) ବିଣ—ପୋକଖିଆ (ଦେଖ)
Pokharḍā Pokakhiā (See).

**ପୋଖତ(ତା)**—ବୈଦେ. ବିଣ—ପୋକତ୍ (ଦେଖ)—
Pokhat(tā) Pokat (See.

ସତ୍ୱରେଦ ଏତୁପର କଦ୍ରୁ ସତ୍ୟ ବାଣୀ
ପଣ୍ଡିତ ଥାଅ ପୋଖତ ହେଲ ସେହିକ୍ଷଣୀ—ସାରଳା ମହାଭାରତ ବନ ।

ପ୍ରାଦେ (ବାଲେଶ୍ୱର) ବି ଓ ବିଣ—ପୋଖତି (ଦେଖ)—
Pokhati (See)

**ପୋଖତା ଘର**—ପ୍ରାଦେ (ବାଲେଶ୍ୱର) ବି—୧ । ସ୍ତ୍ରୀର ସନ୍ତାନ ଜନ୍ମ
Pokhatā ghara ହେବା—1. Delivery of a child.

୨ । ପୋଖତି ଶାଳ (ଦେଖ)—
2 Pokhati sāla (See).

୩ । କୌଣସି ପରିବାରରେ ସନ୍ତାନ ଜନ୍ମ ହେବା ସମୟ ବା ଉତ୍ସବ (ତୁଳନା କର—ବିଭାଘର, ବ୍ରତଘର, ଆଶୀର୍ବାଦ ଘର)—
3. The state of or the cermonies performed in connection with a birth in a family.

**ପୋଖତାନି**—ଦେ. ବିଣ—୧ । ପୁରୁଷାନୁକ୍ରମିକ, ପାରଂପରିକ—
Pokhatāni 1. Traditional; ancestral.

୨ । ଅତି ପ୍ରାଚୀନ ଓ ଭଦ୍ର (ପରିବାର)—
2. Ancient and respectable (family),

ବୈଦେ. ବି—ପୋକତାନ୍ (ଦେଖ)—Pokatān (See),

**ପୋଖତି**—ଦେ. ବି—(ସ. ପ୍ରସୂତି)—୧ । ସନ୍ତାନ ପ୍ରସବ—
Pokhati 1. A woman's confinement; child-bearing.

ପୋକତି, ପୋଖ୍ତି, ପୁଖତି, ପୁଖ୍ତି } ଅନ୍ୟରୂପ
पोयाती
**जच्चा, परसौती**

୨ । ନବ ପ୍ରସୂତି ଅବସ୍ଥା—
The condition of being recently delivered of a child.

୩ । ପ୍ରସୂତି; ସଦ୍ୟ ପ୍ରସୂତା ସ୍ତ୍ରୀ; ଜାତାପତ୍ୟା ସ୍ତ୍ରୀ—
3. A woman who has been newly delivered of a chilp.

[ଦ୍ର—ଜନ୍ମ କରିବାର ୧୨ ଦିନ, ୨୧ ଦିନ ବା ୩୦ ଦିନ ପର୍ଯ୍ୟନ୍ତ ପ୍ରସୂତିକି ପୋଖତି ବୋଲଯାଏ ।]

ବିଣ—ସଦ୍ୟଃ ପ୍ରସୂତା—Recently confined (woman).

**ପୋଖତିଆଲୀ**—ଦେ. ବି. ସ୍ତ୍ରୀ-ଯେଉଁ ସ୍ତ୍ରୀଲୋକମାନେ ପ୍ରସବ କାଳରେ
Pokhatiāli ପ୍ରସୂତିର ହେପାଜତ ଓ ସାହାଯ୍ୟ କରନ୍ତି—
ଧାଈ Women who attend a woman during and after delivery; midwife.
**दाइजनाइ, दगरिन**

**ପୋଖତି ଛାଲି**—ପ୍ରାଦେ (ଗଞ୍ଜାମ) ବି—ଭେରୁ (ଦେଖ)—
Pokhati chhāli Bheru (See).

**ପୋଖତି ବୈରାଗ୍ୟ**—ଦେ. ବି—( ଲକ୍ଷଣାର୍ଥ )—ଅଳ୍ପକାଳ ସ୍ଥାୟୀ
Pokhati bairāgya ବୈରାଗ୍ୟ—Any short-lived aversion, (like the aversion to co-habitation born in the mind of a woman who is recently confined.)

[ଦ୍ର—ପ୍ରସବ ବେଦନା ଅନୁଭବ କରିବା ହେତୁ ପ୍ରସୂତିର ମନରେ ସ୍ୱାମିସହବାସ ପ୍ରତି ଯେଉଁ ବୈରାଗ୍ୟ ଜନ୍ମେ ତାହା ଅଳ୍ପକାଳ ସ୍ଥାୟୀ ଅଟେ । ତେଣୁ କୌଣସି ଅଳ୍ପକାଳସ୍ଥାୟୀ ବୈରାଗ୍ୟ

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରା ଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଅଭିଧାନରେ ନ ମିଳେ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ' ନ ମିଳିଲେ 'ଗାଢ଼' ଖୋଜିବେ, କୁଅ ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; ଅର୍ଘ୍ୟ ନ ପାଇଲେ 'ଅର୍ଘ' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ

ପ୍ରଭୃ ଏ ଶବ୍ଦ ବ୍ୟବହୃତ ହୁଏ, ଯଥା—ଶ୍ମଶାନ ବୈରାଗ୍ୟ, ପୁରାଣ ବୈରାଗ୍ୟ, ପ୍ରସୂତି ବୈରାଗ୍ୟ ଇତ୍ୟାଦି ।]

**ପୋଖଡ଼ ଶାଳ**—(ସ.ପ୍ରସୂତିଶାଳା) ଅନ୍ତୁଡ଼ିଶାଳ; ଯେଉଁ ଘରେ ପ୍ରସୂତି ସନ୍ତାନ ପ୍ରସବ କରେ—Lying-in room.
Pokhati sāla ଆଁତୁଡ଼ଘର
(ପୋଖଡ଼ ଘର—ଅନ୍ୟରୂପ) ଆଁତୁଡ଼ ଘର **जच्चाखाना, सौड़ीघर**

**ପୋଖଡ଼ ହାଣ୍ଡି**—ଦେ. ବ—ଯେଉଁ ହାଣ୍ଡିରେ ଅନ୍ତୁଡ଼ିଶାଳର ପାଉଁଶ ଆଦି ଭର୍ତ୍ତି ହୋଇ ପ୍ରସବର ୬ଷ୍ଠ ଦିବସରେ (ଅର୍ଥାତ୍ ଛଠିଆର ଦିନ) ଫୋପଡ଼ା ଯାଏ—The earthen pot containing the ashes of the lying-in room which is thrown away on the 6th day after child-birth.
Pokhati hāṇḍi
ଆଁତୁଡ଼ହାଁଡି
**सोईड़ीबरतन**

**ପୋଖଡ଼ ହେବା**—ଦେ. କ୍ରି—ସନ୍ତାନ ପ୍ରସବ କରିବା—
Pokhati hebā To be delivered of a child.
**बच्चा जनना**
ଅଲେ ମୁଲିର । ଅଛି ପଖକେ ଲୁହ ପୋଖଡ଼ । ତଗ ।

**ପୋଖର**—ଦେ. ବ—ଗଛ ମଧ୍ୟରେ ଥିବା ଫମ୍ପା ଗର୍ତ୍ତ; କୋରଡ଼—
Pokhara A hollow in the trunk of a tree
ଖୌଡ଼ଲ **खोखर**

**ପୋଖରା**—ପ୍ରାଦେ. (ସମ୍ବଲପୁର ଓ ଗଡ଼ଜାତ) ବ. (ସ. ପ୍ରଖରା) (ସ୍ତ୍ରୀଲୋକମାନଙ୍କ ଗାଳି ବିଶେଷ)—ଦୁଷ୍ଟା ସ୍ତ୍ରୀ—
Pokharā (a term of abuse) A wicked woman; vixen.

**ପୋଖରାଜ**—ଦେ. ବ. (ସ. ପୁଷ୍ପରାଗ)—ପୁଷ୍ପରାଗ ମଣି—
Pokharāja ପୋଖବାଜ **पुखराज** Topaz.

**ପୋଖରିଆ**—ଦେ. ବ—୧ । ଦେଉଳ ମଧ୍ୟସ୍ଥ ଚତୁରସ୍ର ଗହ୍ୱର—
Pokhariā 1. The pit inside a temple (resembling a square tank).
୨ । ଚତୁରସ୍ର ଗର୍ତ୍ତ—2 A square pit.
ଦେ. ବଣ—ପୋଖରୀ ପରି ଚତୁରସ୍ର—
Square like a tank.

**ପୋଖରୀ**—ଦେ. ବ. (ସ. ପୁଷ୍କରୀ, ପୁଷ୍କରିଣୀ, ପୁଷ୍କର (Beams) ପ୍ରା. ପୁକ୍ଖରୀ)—୧ । ପୁଷ୍କରିଣୀ—1 Tank
Pokharī
पुकुर ବରଷା ଋତୁରେ ବରଷେ ଅପାର
**पोखर(रा)(री)** ପୂରଇ ଜଳ ପୋଖରୀ । ନନ୍ଦକିଶୋର ଶର୍ମା ।
ବାହ୍ୟି; **दास्त** ୨ । ଝାଡ଼ା—2. Faecundation; passing of stools; evacuation of the bowels.
**दस्त, झाड़ा**
୩ । ହଇଜା—3. Cholera
୪ । ଆମାଶୟ ବା ଅତିସାର ଯୋଗୁଁ ବହୁ ପରିମାଣରେ ମଳସ୍ରାବ—
4. Profuse evacuation due to diarrhoea or dysentery.

**ପୋଖରୀ ଅଡ଼(ଡ଼େ)**—ଦେ. ର୍ଣ—ପୋଖରୀ ପାଣି ୨ (ଦେଖ)
Pokharī arḍa(rḍe) Pokharī pāṇi 2 (See)

**ପୋଖରୀ ଓ(ଔ)ଷଧ**—ଦେ.ବ—ଝାଡ଼ା କରାଇବାର ଔଷଧ; ଜୋଲାପ୍—
Pokharī o(au)shadha A purgative; cathartic medicine.
ବାହ୍ୟି. ଉଷୁଦ; **जुलाप जुल्लाब**

**ପୋଖରୀ କରା(ରେ)ଇବା**—ଦେ. କ୍ରି—ଔଷଧ ପ୍ରୟୋଗଦ୍ୱାରା କୋଷ୍ଠବଦ୍ଧତା ଦୂର କରି ଝାଡ଼ା କରାଇବା—
Pokharī karā(re)ibā
ବାହ୍ୟି କବାନ To cause evacuation of the bowels
**दस्त कराना** by the use of a purgative.

**ପୋଖରୀ ଛୁଆଁ**—ଦେ. ବ—ଝାଡ଼ା ଫେରି ଆସିବା ପରେ ଲୁଗା ନ ଧୋଇବା ଯୋଗୁଁ ଅଶୁଚି —
Pokharī chhuāṅ
Uncleanness of the cloth worn by a person while passing stools and remaining unwashed.
ବଣ—୧ । ଯେଉଁ ବ୍ୟକ୍ତି ଝାଡ଼ା ଫେରି ଆସିବା ପରେ ଶୌଚ ହୋଇ ନ ଥାଏ ବା ଲୁଗା ଧୋଇ ନ ଥାଏ—
1 A person who has not washed after passing stools.
୨ । ଝାଡ଼ା ଫେରି ଆସିଥିବା ବ୍ୟକ୍ତିର ପରିହିତ ଲୁଗା, ଯାହା ଧୂଆ ହୋଇ ନ ଥାଏ—2. (a cloth) Not yet washed after the wearer passes stools.
୩ । (ଲକ୍ଷଣାର୍ଥ) ଏସ୍ତ—3. (figurative) Terrified.

**ପୋଖରୀ ଛୁଆଁ ହେବା**—ଦେ. କ୍ରି—ଝାଡ଼ା ଫେରିବା ପରେ ଲୁଗା ଧୋଇ ନ ଥିବା—1. To remain unwashed after easing.
Pokharī chhuāṅ hebā
୨ । (ଲକ୍ଷଣାର୍ଥ) ଭୟଭୀତ ହେବା —2. (figurative) To be frightened; to be terrified.

**ପୋଖରୀ ପାଣି**—ଦେ. ବ—୧ । ପୁଷ୍କରିଣୀର ଜଳ—
Pokharī pāṇi 1. Tank-water.
ବାହ୍ୟି ୨ । ଝାଡ଼ା ଫେରିବା—
**दिशा; पोखर दिशा** 2. Easing one's self.
ପଣ୍ଡିତେ ମାଣ ସୁର୍ଦ ସୁର୍ଦ ଚାଁ ହାଟରେ ଚାଲନ୍ତେ
ଧରି ପୋଖରୀ ପାଣି କାହାର ଅଛନ୍ତି ।
ଫକୀରମୋହନ — ଛମାଣ ଆଠଗୁଣ୍ଠ ।

[ଦ୍ର—ମଫସଲରେ ଲୋକେ ସାଧାରଣତଃ ଗାଆଁ ମୁଣ୍ଡରେ ଥିବା ପୋଖରୀ କୂଳରେ କମ୍ବା ତାହା ନିକଟରେ ଥିବା ପଡ଼ିଆରେ ବା ବାଡ଼ିରେ ଝାଡ଼ା ଫେରିବାକୁ ଯାଆନ୍ତି ଓ ସେହି ପୋଖରୀର ପାଣିଦ୍ୱାରା ଶୌଚାଦି କ୍ରିୟା କରନ୍ତି । ଏଥିଯୋଗୁଁ ଝାଡ଼ା ଫେରିବା ଅର୍ଥରେ ପୋଖରୀ ଓ ପୋଖରୀ ପାଣି, ବାହାରକୁ, ବାଡ଼ିକି ଇତ୍ୟାଦି ଶବ୍ଦମାନ ବ୍ୟବହୃତ ହୋଇଅଛି । ସଂସ୍କୃତରେ ମଧ୍ୟ 'ବହିର୍ଦେଶ ଗମନ'ର ବ୍ୟବହାର ଅଛି । ଗଡ଼ଜାତ ଓ ଗଞ୍ଜାମରେ ପୋଖରୀକୁ ବନ୍ଧ ବୋଲି ଯାଉଥିବାରୁ ଝାଡ଼ା ଫେରିବା ଅର୍ଥରେ ବନ୍ଧକୁ ଯିବା ଶବ୍ଦ ବ୍ୟବହୃତ ହୁଏ ।]

**ପୋଖରୀ ପାଣି ବସିବା**—ଦେ. କ୍ରି—ଝାଡ଼ା ଫେରିବା; ମଳୋତ୍ସର୍ଗ କରିବା—
Pokharī pāṇi basibā to evacuate; to ease one's self.
(ପୋଖରୀ ପାଣି କରିବା—ଅନ୍ୟରୂପ)
ବାହ୍ୟକରା; ବାହ୍ୟିକରା **दिशाफिरना**

| ୧ | ଇ | ଡ | ଋ,ଋ | ଝ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ୍ଯ | ଜ | ଘ,ଷ | ଙ୍କ | ଇଯ୍ଯ | ଉଅ | ଢ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଉ | ରୁ | ଲ୍ | ଯ୍ୟ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ଯ | ଙ୍ଘ | ଇଅ | ଢ଼ | ନ |

**ପୋଖରୀ ପାଣି ମାଡ଼ିବା**—ଦେ. ବି—ମଳୋଦ୍ବେଗ ହେବା—
Pokharī pāṇi mārḍibā Having a strong tendency to ease one's self.
[ପୋଖରୀ ପାଣି ଦେଖା(ଖେ)ଇବା, ପୋଖରୀ ପାଣି ଉଲଟ ହେ(ଦେ)ବା, ପୋଖରୀ ମାଡ଼ିବା, ପୋଖରୀ ଦେଖା(ଖେ)ଇବା, ପୋଖରୀ ଉଲଟ ହେବା, ପୋଖରୀ ଉଲଟ ଦେବା—ଅନ୍ୟରୂପ] বাহ্যে পাওয়া **दिशा लगना**

**ପୋଖରୀ ପାଣି ଯିବା**—ଦେ. କ୍ରି—୧ । ଝାଡ଼ା ଫେରିବାକୁ ବାହାରକୁ ଯିବା—1. To go out to ease one's self.
Pokharī pāṇi jibā

ପୋଖରୀ ଯିବା
ପୋଖରୀ ଆଡ଼ ଯିବା } ଅନ୍ୟରୂପ
ପୋଖରୀ ଆଡ଼େ ଯିବା

୨ । ପୋଖରୀ ପାଣି ବସିବା(ଦେଖ)
2. Pokharī pāṇi basibā (See)
বাহ্যে যাওয়া **दस्त जाना**

**ପୋଖରୀ ବନ୍ଦ**—ଦେ. ବି—କୋଷ୍ଠ ବଦ୍ଧତା—
Pokharī banda বাহ্যিবন্দ **कब्जियत** Constipation.

**ପୋଖରୀ ସଫା**—ଦେ. ବି—ପରିଷ୍କାରରୂପେ ଝାଡ଼ା ହେବା—
Pokharī saphā Clean evacuation of the bowels; a free evacuation.
বাহ্যি পরিস্কার **झाड़ा खुलासा**
[ପୋଖରୀ ଖୋଲସା, ପୋଖରୀ ଦୁ(ଖୋ)ଲସା—ଅନ୍ୟରୂପ]

**ପୋଖରୀ ହୁଡ଼ା**—ଦେ. ବି—ପୋଖରୀ ଚାରିପାଖର ବନ୍ଧ—
Pokharī hurḍā The raised banks round a tank.
পুকুরের পাড় **तलावका पाड़** (ପୋଖରୀ ଆଡ଼ି—ଅନ୍ୟରୂପ)

**ପୋଖରୀ ହେବା**—ଦେ. ବି—୧ । ଝାଡ଼ା ହେବା—
Pokharī hebā 1. Evacuation of the bowels
বাহ্যি হওয়া
୨ । ଝାଡ଼ା ବାନ୍ତି ବା ଅଜୀର୍ଣ୍ଣ ଯୋଗୁଁ ଅଧିକରୁ ମଳସ୍ରାବ—2. Profuse evacuation due to dysentery or diarrhoea.
**दस्त होना**

ଦେ. କ୍ରି—ଝାଡ଼ା ବାନ୍ତି ରୋଗରେ ଆକ୍ରାନ୍ତ ହେବା—
To be attacked with diarrhoea.

**ପୋଗଣ୍ଡ**—ସଂ. ବିଣ. ( ଅପ=[ନ୍ୟୁନ, ଅପକୃଷ୍ଟ]+ଗମ ଧାତୁ=ଗମନ କରିବା+ଡ ନିପାତନ; ଅପୋଗଣ୍ଡ )—
Poganḍa
(ପୌଗଣ୍ଡ—ବି) ୧ । ବିକଳାଙ୍ଗ—1. Deformed; having a defective or deficient limb or limbs.
୨ । ଯେଉଁ ବ୍ୟକ୍ତିର ହାତରେ ଓ ଗୋଡ଼ରେ ସାଧାରଣ ଅଙ୍ଗୁଳି ସଂଖ୍ୟା ଅପେକ୍ଷା ବେଶି ବା କମି ଅଙ୍ଗୁଳି ଥାଏ—
2 Having fingers more or less than ordinary
୩ । ନ୍ୟୁନାଧିକାଙ୍ଗ—3. Having a redundant or defective member of the body.
୪ । ପାଞ୍ଚରୁ ପନ୍ଦର ବର୍ଷ ମଧ୍ୟରେ ଯେଉଁ ଶିଶୁର ବୟସ—
4. Aged between five and fifteen years.
ବି—୧ । ବିକଳାଙ୍ଗ ବ୍ୟକ୍ତି—
1. A deformed person.
୨ । ଯେଉଁ ବ୍ୟକ୍ତିର କୌଣସି ଅଧିକା ଅଙ୍ଗ ଥାଏ—
2 A person with a redundant limb.
୩ । ପାଞ୍ଚ ବର୍ଷରୁ ବଡ଼ ଓ ଷୋଳ ବର୍ଷରୁ ସାନ ପିଲା—
3. A boy between five and sixteen years of age.
[ ଦ୍ର—କେହି କେହି ୫ ବର୍ଷଠାରୁ ୧୦ ବର୍ଷ ପର୍ଯ୍ୟନ୍ତ ବୟସର ବାଳକକୁ ପୋଗଣ୍ଡ କହନ୍ତି । ]

**ପୋଙ୍ଗା**—ଦେ. ବି. (ସଂ. ପୁଟକ=ଫମ୍ପା ପାତ୍ର)—ବାଉଁଶର ସରୁ ନଳ—
Pongā A tube cut from slender bomboo.
পোঁগা **पोंगा** [ ଦ୍ର—ସରୁ ବାଉଁଶର ୨ଟି ଗଣ୍ଠିକୁ ଦୁଇଆଡ଼ୁ କାଟି ଦେଲେ ଯେଉଁ ଫୋପଡ଼ା ନଳ ରହେ ତାକୁ ପୋଙ୍ଗା ବୋଲନ୍ତି । ଏହାକୁ ବଣିଆ ଫୁଙ୍କନଳ କରନ୍ତି ଓ ହାତ ବାଖଣାର ବେଣ୍ଟରେ ମଧ୍ୟ ଏହା ଲାଗେ । ]

**ପୋଙ୍ଗୀ**—ଦେ. ବି. (ଚୀନ୍ ଦେଶୀୟ ଭାଷା )—୧ । ବୌଦ୍ଧ ସନ୍ନ୍ୟାସୀ—
Pongī 1. Buddhist recluse; Pongi
পোঁগী **पोंगी** [ ଦ୍ର—ଏମାନେ ଗୃହତ୍ୟାଗୀ, ଗେରୁଆ ଲୁଗା (ଫୁଙ୍ଗୀ—ଅନ୍ୟରୂପ) ପିନ୍ଧନ୍ତି ଓ ମସ୍ତକ ମୁଣ୍ଡନ କରନ୍ତି । ବ୍ରହ୍ମଦେଶରେ ଓ ଆସାମରେ ଏମାନେ ବହୁଳଃ ଦେଖାଯାଆନ୍ତି । ସ୍ଥାନେ ସ୍ଥାନେ ମଧ୍ୟ ଏମାନଙ୍କର ମଠ ଅଛି । ]
୨ । ଚୀନ ଦେଶରେ ବୁଣା ଯିବା ଏକପ୍ରକାର ନରମ ରେଶମ କନା— 2. Pongee; a soft kind of silk woven in China and got from the cocoons of a wild silk worm.

**ପୋଚ**—ଦେ. ବି. ( ସଂ. ପୂତି )—ବଦବୋଇ, ଦୁର୍ଗନ୍ଧ; ତୁଚ୍ଛଗନ୍ଧ—
Pocha Fetid or very offensive smell.
পচাগন্ধ **बदबू** ପ୍ରାଦେ. ( ଗଞ୍ଜାମ ) ବିଣ—ପୋଚିଆ, ସଢ଼ା—
Rotten.

**ପୋଚକା**—ପ୍ରାଦେ. ( ଗଞ୍ଜାମ ) ବିଣ. ( ସଂ. ପୂତି )—ସଢ଼ି ଦୁର୍ଗନ୍ଧମୟ ହୋଇ ଯାଇଥିବା (ଖାଦ୍ୟ)—Rotten and turned fetid; rancid.
Pochakā
(ପୋଚ୍‌କା—ଅନ୍ୟରୂପ)
ଭୁ ବଳୁଅ ହେବ ଭୁ ପୋଚକା ମାଂସ
ଟାଇଚୁ କର କପାଳଣ ଜୀବ ନାଶ—କୃଷ୍ଣସିଂହ, ମହାଭାରତ, ଶାନ୍ତି ।
ବି—ମଇଳା ପାଣି—Refuse or filthy water.

**ପୋଚକା ନାଳ**—ପ୍ରାଦେ. (ଗଞ୍ଜାମ) ବି—ମଇଳା ପାଣି ବୋହିଯିବାର ନାଳ—Drain for foul water.
Pochakā nāla
(ପୋଚନଳା, ପୋଚକାଳ—ଅନ୍ୟରୂପ)

**ପୋଚକା ପାଣି**—ପ୍ରାଦେ. ( ଗଞ୍ଜାମ ) ବି—ଘରର ଧୁଆ ଧୋଇ ମଇଳା ପାଣି—The filthy water cleared out from a room or house.
Pochakā pāṇi
(ବର୍ଷାପାଣି—ବିପରୀତ)

**ପୋଚର୍**—ଦେ. ବିଣ. (ସଂ. ପୂତି; ସଂ. ପଚ ଧାତୁ)—୧ । ସଢ଼ା, ପଚ—
Pocharā 1. Rotten; putrid.

୨ । ମଇଳା—2. Dirty; filthy.

ପଚା ବି—୧ । ଯେଉଁ ଲୋକର ଦେହରେ ସର୍ବଦା ପଚ୍ଚ ଘା ହୋଇ
ସଢ଼ା; ପଚା ଗନ୍ଧ ଛାଡ଼ୁଥାଏ—1. A person whose body is always full of sores and pus.

କୁଁଚୀ ପୋଚାଡ଼ ୨ । (ସଂ. ପୁଚ୍ଛ ବା ପ୍ରୋଞ୍ଛନ) କାନ୍ଥ ଆଦି ଚୂନ ସଫେଦ କରିବା ପାଇଁ ବ୍ୟବହୃତ ବାଉଁଶ କାଠିର ଅଗରେ ବନ୍ଧା ହୋଇଥିବା ପୁଚ୍ଛାକୃତି ଝୋଟର କୁରୁସ୍ ବା ଚଅଁର—2. A tuft of flax tied to the end of a stick and used as a brush to whitewash walls; whitewashing mop.

୩ । ପଚର୍; ଶଗଡ଼ର ପୁଟରେ ଅରମାନଙ୍କୁ ଅଟକାଇ ରଖିବା ଖିଲ୍—3 A peg which tightens the spoke with the rim of a wheel.

୪ । ଶଗଡ଼ର ଚକ ଓ ପଟ୍ଟିର ସନ୍ଧିରେ ମରାଯିବା କାଠ ବା ବାଉଁଶର ପତଳା ଖିଲ—4. Thin wedge of wood or bamboo lath driven into the opening between the iron rim and arc of a cart-wheel.

**ପୋଚର୍ ମାରିବା**—ଦେ. କ୍ରି—୧ । ପଚର୍ ମାରିବା (ଦେଖ)
Pocharā māribā 1. Pacharā māribā (See)

୨ । ପରଦୃଷ୍ଟ ସାମାନ୍ୟ ଦୋଷମାନଙ୍କ ଉତ୍ତମରୂପେ ସଂଶୋଧନ କରିବା—2. To remedy the minute defects found out in a thing.

୩ । ଅସ୍ଥାୟୀରୂପେ କୌଣସି ଛିଦ୍ର ଆଦି ବନ୍ଦ କରିବା—3. To do a patch work; to stop a gap temporarily.

**ପୋଚାଇ**—ପ୍ରାଦେ. (ସିଂହଭୂମ) ବି. (ଭୁଲ. ହି. ପଚବାଇ; ବ. ପଚୁଇ)—
Pochāi ଚାଉଳ, ଯବ ଆଦିକୁ ସଢ଼ାଇ ତାକୁ ଯନ୍ତ୍ର ଚୂଆଇ ଯେଉଁ ମଦ ତିଆର କରାଯାଏ—Spirit destilled from fermented rice or barley.

**ପୋଚିଆ**—ଦେ. ବିଣ—ପୋଚର୍ (ଦେଖ)
Pochiā Pocharā (See)
(ପେଗ୍ଗ—ଅନ୍ୟରୂପ)

**ପୋଛ୍**—ବୈଦେ. ବି. (ଫା. ପୋଶ୍)—ପୋଶ୍ (ଦେଖ)
Pochh Poṡ (See)

**ପୋଛ**—ଦେ. ବି. (ସଂ. ପ୍ରୋଞ୍ଛନ; ସଂ. ପ୍ର+ସ୍ତର)—କୌଣସି ପଦାର୍ଥ
Pochha ଉପରେ ରଙ୍ଗ ଆଦି ପୋଛିବାର ବା ବୋଳିବାର ଥର—
ପୌଛ୍, ପୌଁଛ 1. Time of laying a paint on a thing.

୨ । ସ୍ତର; ଲେପ—୨. Layer.

(ଯଥା—ଏ ସବାସରେ ତିନି ପୋଛ ବାର୍ଣ୍ଣିସ୍ ଲାଗିବ)

୩ । କଟାରୀ ଓ କାତାଣ୍ ଆଦି ଶସ୍ତ୍ରର ଯେଉଁ ଅଂଶ ଶାଣ ଦିଆଯାଇ ପାହାଳିଆ ହୋଇଥାଏ—3. The sloping edge of a chised or other weapon.

୪ । ବିନାଶ; ଧ୍ୱଂଶ, ସର୍ବନାଶ; ମୂଳପୋଛ—
4. Destruction; ruin; extinction.

ଏଥିରୁ ବଂଶଯାକ ହୋଇଯିବ ପୋଛ—କୃଷ୍ଣ ହ. ମହାଭାରତ, ସଭା ।

**ପୋଛଣି**—ପ୍ରାଦେ. (ପୁରୀ) ବି. (ସଂ. ପ୍ରୋଞ୍ଛନ) ନୂଆ ଧରା ଯାଇଥିବା
Pochhaṇi ବିଷଧର ସାପର ଲାଙ୍ଗୁଡ଼କୁ ବାମ ହାତରେ ଧରି ସାପକୁ ଓହୋଳାଇ ଡାହାଣ ହାତକୁ ମୁଠା କରି ସାପର ଲାଙ୍ଗୁଡ଼ଠାରୁ ମୁଣ୍ଡ ଆଡ଼କୁ ମୁଠାକୁ ଚଳାଇବାରୂପ ଗୁଣିଆର କର୍ମ—The act of passing the right hand by a snake-charmar over the body of a newly caught poisonus snake by holding the tail with the left hand and moving the fisted right palm downwards from the tail toward its head.

(ଦ୍ର—ନିପୁଣ ଗୁଣିଆ ପୋଛଣି କରି ବିଷଧର ସର୍ପର ବଳବୀର୍ଯ୍ୟ ହୀନ କରି ଦିଏ ଓ ସର୍ପ ଗରଳଗୁଡ଼ିକ ବାନ୍ତି କରି ପକାଏ । କିନ୍ତୁ ଯେ ନିପୁଣ ଗୁଣିଆ ନୁହେଁ ସେ ପୋଛଣି କଲାବେଳେ ସାପ ଲେଉଟି କରି ତାକୁ ଦଂଶି ଦେଲେ ତାର ମୃତ୍ୟୁ ଘଟେ ।)

**ପୋଛ ମାଟି**—ଦେ. ବି.—କୁମ୍ଭାରମାନେ ହାଣ୍ଡି ଗଢ଼ା ସାର ତା ଉପରେ
Pochha maṭi ଯେଉଁ ମାଟିର ସୂକ୍ଷ୍ମ ପ୍ରଲେପ ଦେଇ ହାଣ୍ଡିକୁ ମସୃଣ
ପୌଁଛା ମାଟି କରନ୍ତି—Clay which is rubbed and thinly laid over an earthen pot to make it smooth before it is put into the oven.

**ପୋଛା**—ଦେ. ବି. (ସଂ. ପ୍ରୋଞ୍ଛନ, ପ୍ରା. ପୋଚ୍ଛଣ)—୧ । ପୋଛିବା—
Pochhā 1 Wiping.
ମୁଛା ୨ । ଲେପିବା, ବୋଳିବା—
ପୌଁଛନ 2. Besmearing; anointing.

[ଦ୍ର—ଏହି ଅର୍ଥରେ ଏ ଶବ୍ଦ ଲିପା ଶବ୍ଦ ସଙ୍ଗେ ସହଚର ରୂପେ ବ୍ୟବହୃତ, ଯଥା—ଲିପାପୋଛା ।]

ପୁଁଛା ପୌଁଛନ, ପୌଁଛ ୩ । (ସଂ. ପୃଚ୍ଛ ଧାତୁ) ପଚାରିବା—
3. Questioning.

(ଦ୍ର—ଏହି ଅର୍ଥରେ ଏହି ଶବ୍ଦ ଅନ୍ୟ ଶବ୍ଦ ସଙ୍ଗେ ସହଚର ରୂପେ ବ୍ୟବହୃତ ହୁଏ, ଯଥା—ଲୁହାପୋଛା; ଗଣାପୋଛା ।)

୪ । ଯେଉଁ ଟୋକାଇରେ ଗୁହାଳ ଆଦିର ପୋଛା ଯାଇଥିବା ଗୋବର ଓ ଅଳିଆ କଢ଼ାଯାଏ—4 A basket used to remove the sweepings of a cattle-shed.

ବିଣ—୧ । ପୋଛା ହୋଇଥିବା—1. Wiped.

୨ । ଲିପା ହୋଇଥିବା; ଲେପିତ—
2. Anointed; besmeared.

୩ । ସ୍ତ୍ରୀ. (ଅନ୍ୟ ଶବ୍ଦ ସଙ୍ଗେ ବ୍ୟବହୃତ; ଯଥା—ଗୁହାଳ ପୋଛା ଟୋକା; ଅଗିଁଠା ପୋଛା ଗୁଡ଼ିକ) ଯେ ପୋଛେ—
(ପୋଛୀ—ସ୍ତ୍ରୀ)
3. Sweeping; wiping.

ବୋଇଲି ରୋଇଲି କୋହଲି କଛ
ଅଧିକାର କଲି ଗୁହାଳ ପୋଛୀ—ଭଗ ।

୪ । (ଅନ୍ୟ ଶବ୍ଦ ସଙ୍ଗେ ବ୍ୟବହୃତ, ଯଥା—ଗୁହାଳ ପୋଛା ଟୋକେଇ) ଯାହା ପୋଛା କାର୍ଯ୍ୟରେ ବ୍ୟବହୃତ ହୁଏ—
4. (any thing) Used in connection with sweeping operation.

୫ । ( ଅନ୍ୟ ଶବ୍ଦ ସଙ୍ଗେ ବ୍ୟବହୃତ, ଯଥା— କୋଡପୋଛ ଚିଲ୍ଲ । ) ଯାହା ନିଃଶେଷ କରେ—
5. Exhausting: emptying.

ପ୍ରାଦେ. (ଗଡ଼ଜାତ ଓ ସମ୍ବଲପୁର) ବି—ଅଙ୍ଗପୋଛା, ଗାମୁଛା—
A napkin or rubbing towel.

**ପୋଛା(ଛେ)ଇବା**—ଦେ. କ୍ରି.—୧ । ପୋଛିବା କ୍ରିୟାର ଣିଜନ୍ତରୂପ—
Pochhā(chhe)ibā 1. The causative form of
ମୁଛାନ **पोँछवाना** Pochhibā).

୨ । ଅନ୍ୟଦ୍ୱାରା ପୋଛିବା କ୍ରିୟା କରାଇବା—
2 To cause another person to sweep or wipe out.

ଦ୍ରୌପଦୀ ବାଳ ଧରି ମୋ ଆଗରେ ଅଜ
କେ ଥାନ୍ତା ଯମ ହାତେ ନ ପୋଛାଇ ପାଞ୍ଜି—
କୃଷ୍ଣସିଂହ, ମହାଭାରତ, ସଭା ।

**ପୋଛା ପୋଛ**—ଦେ. ବିଣ—ପରିଷ୍କୃତ ହୋଇଥିବା—
Pochhā pochha Cleansed

ପୋଛ ପୋଛ ହେଜ ଥିଲେଟ ଦେହ ଜ୍ୟୋତି,
ଦିନକୁ ଦିନ ଶୋଭ ଦିଶୁଥାଏ ଅତି—କୃଷ୍ଣସିଂହ, ମହାଭାରତ, ଉଦ୍‌ଯୋଗ ।

ବି.—ପୋଛା ପୋଛି (ଦେଖ)—Pochhā pochhi (See)

**ପୋଛା ପୋଛି**—ଦେ. ବି.—୧ । ପରସ୍ପର ଦେହକୁ ପୋଛିବା ବା ପରସ୍ପର
Pochhā pochhi ଆଖିରୁ ଲୁହ ପୋଛିବା—1. Rubbing of
ମୌଛାମୌଛି, ମୁଛାମୁଛି each other's body or wiping of
**पोंछा पोंछि** the tears from one another's eyes.
(ପୋଛା ପାଛି—ଅନ୍ୟରୂପ) ୨ । ଗାଧୋଇ ସାରି ବା ମୁହଁ ହାତ ଧୋଇ ସାରି ଦେହରୁ ପାଣି ଆଦି ଗାମୁଛାଦ୍ୱାରା ଉତ୍ତମରୂପେ ପୋଛିବା କର୍ମ—2. The act of wiping out water etc from the body after a wash or bath.

ଗାଧୋଇ ପୋଛା ପୋଛି ହୋନ୍ତେ କୂଳେ ଆସି;
ହେଲେ ଉତ୍ତମ ସୁନ୍ଦରୀ ସେହି ଗୁରୁ କେଶୀ—କୃଷ୍ଣସିଂହ ମହାଭାରତ, ଶାନ୍ତି ।

୩ । କୌଣସି ପାତ୍ରରେ ଥିବା ଦ୍ରବ୍ୟକୁ ସମ୍ପୂର୍ଣ୍ଣରୂପେ ନିଃଶେଷ କରି ପାତ୍ରର ଗାତ୍ରକୁ ପୋଛି ଆଣିବା—3. Emptying a receptacle by wiping out all its contents.

୪ । ଓଦା ଗାମୁଛାରେ ଦେହକୁ ପୋଛିବା—4. Rubbing of one's body with a wet towel.

ବିଣ.—ପୋଛା ପୋଛ (ଦେଖ)—
Pochhā pochha (See)

ଅ.—ପାତ୍ରରୁ ଖାଦ୍ୟ ଆଦି ନିଃଶେଷ କରି ପୋଛିବା ପ୍ରକାରେ—
By wiping out a thing completely from a receptacle.

**ପୋଛା ଲଗି**—ପ୍ରାଦେ. (ଗଡ଼ଜାତ) ବି.—ରାଜାମାନଙ୍କର ଗାଧୁଆ ପରେ
Pochhā lāgi ଗାମୁଛା ଦ୍ୱାରା ଦେହ ପୋଛି ହେବା କର୍ମ—
The act of rubbing the body with a napkin after bath (said of Rajas).

**ପୋଛି ପାଛି**—ଦେ. କ୍ରି. ବିଣ. (ପୋଛିବା ଓ ସମଧ୍ୱନିକ ଅନର୍ଥକ ପାଛିବା
Pochhi pāchhi କ୍ରିୟାଦ୍ୱୟର ଅସମାପିକା ରୂପ, କ୍ରି. ବିଣ.

ପୋଛିପାଛି କରି } ଅନ୍ୟରୂପ ରୂପେ ବ୍ୟବହୃତ)—
ପୋଛପୋଛି କରି }
୧ । ଉତ୍ତମରୂପେ ପୋଛିକରି—
1. By wiping well.

୨ । ସମ୍ପୂର୍ଣ୍ଣରୂପେ ନିଃଶେଷ କରି—
2 By exhausting completely.

୩ । ସମ୍ପୂର୍ଣ୍ଣରୂପେ ପରିଷ୍କୃତ କରି—
3 By cleansing well.

**ପୋଛିବା**—ଦେ. କ୍ରି. (ସଂ. ପ୍ରୋଞ୍ଛନ ପ୍ରା. ପୋଛଣ)—୧ । ବସ୍ତ୍ର ବା ହସ୍ତ
Pochhibā ଦ୍ୱାରା ଶରୀରରୁ ମଳ ଆଦି ପରିଷ୍କାର କରିବା—
ମୁଛା, ପୁଁଛା 1. To wipe the dirt of the body by
**पोछना, पोँछना** rubbing with a cloth or with the
[ପୋଛା(ଛେ)ଇବା—ଣିଜନ୍ତରୂପ] palm.

ଅତି ମଳିନ ମୋ ଅଙ୍ଗ ଧୂଳି ଧୂସରିତ ହେ । ପୋଛଣ ଶ୍ରୀକରେ ।
ମଧୁସୂଦନ, ଛନ୍ଦମାଳା ।

୨ । ପ୍ରଲେପ କରିବା, ଲିପିବା, ବୋଳିବା—
2 To plaster; to besmear; to anoint.

୩ । ମାର୍ଜନା କରିବା, ଭୂମିରେ ପଡ଼ିଥିବା ଅଇଁଠା ଉଠାଇ ନେଇ ଉକ୍ତ ଭୂମିକୁ ପରିଷ୍କାର କରି ଲିପିବା—
3. To sweep a place clean
(ଯଥା—ଘର ତଳ ପୋଛିବା, ଗୁହାଳ ପୋଛିବା)—

୪ । ନିଃଶେଷ କରିବା—4. To exhaust.

୫ । ଅଦୃଶ୍ୟ କରାଇବା, ଲୋପ କରିବା—
4 To cause to disappear; to destroy.

କହିବ ମାତାକୁ ସୁତାକୁ ନ ଶୋଚ
ମୃତ୍ୟୁପତ୍ରୁଁ ତାକୁ ପକାଇବ ପୋଛି । ରାଧାନାଥ—ଜନ୍ଦେଇକଣ୍ଢସ ।

୫ । କୌଣସି ସ୍ଥାନରେ ବା ଅଙ୍ଗରେ ଲାଗିଥିବା କୌଣସି ପଦାର୍ଥକୁ ଉଠାଇ ନେଇ ଉକ୍ତ ସ୍ଥାନରେ ଲୁଗା ବା ହାତ ଘଷି ପରିଷ୍କୃତ କରିବା—5. To take away something adhering to a place or the body and cleansing it by rubbing or wiping it with cloth or hand.

ଯଥା—(ଲୁହ ପୋଛିବା, ଝାଳ ପୋଛିବା, ଗୁହ ପୋଛିବା, ଅଇଁଠା ପୋଛିବା, ଶିଂଘାଣି ପୋଛିବା, କଟା ଘାଆରୁ ରକ୍ତ ପୋଛିବା । )

୬ । କୌଣସି ଲେଖାକୁ ହାତ ବା ଲୁଗା ଆଦିଦ୍ୱାରା ଲିଭାଇବା—
6 To wipe out a writing.

ଲେଖିଲୁ ମୋ ଲେଖିଲ ପୋଛି
ତୋ ଉକ୍ତି ରସିକ କେ ଅଛି । ଉପେନ୍ଦ୍ର, ପ୍ରେମପଞ୍ଚାମୃତ ।

୭ । ଓଦା ହୋଇଥିବା ଅଙ୍ଗରେ ବା ସ୍ଥାନରେ ବା ପଦାର୍ଥରେ ବସ୍ତ୍ର ଆଦି ଘୂଳିତ କରି ଜଳକୁ ଶୁଖାଇବା—7. To rub cloth on a wet limb or place and make it dry.

ଦିବ୍ୟ ବସନେ ପୋଛି ପାଦ
ଆନନ୍ଦେ ରାଜା ଗଦ ଗଦ । ଉପେନ୍ଦ୍ର, ପ୍ରେମପଞ୍ଚାମୃତ

୮ । କୌଣସି ଉଚ୍ଚ ସ୍ଥାନକୁ ବା ବୃକ୍ଷାଦିର ଗଣ୍ଡିକୁ କାଟି ଭୂମି ସଙ୍ଗେ ସମତଳ କରିବା—8 To cut a high land or standing tree and make it level with the ground.

(ଯଥା—ଏ ଗଛରୁ ମୂଳ ପୋଛି କାଟିଦିଆ ।
[ ଦ୍ର—ଦ୍ୱିକର୍ମକ ପୋଛିବା କ୍ରିୟାର କର୍ମରୂପେ ପୋଛି ହେବା ପଦାର୍ଥ (ଯଥା—ଗୋବର ପୋଛିବା) ଓ ପୋଛି ହେବା ସ୍ଥାନ (ଯଥା—ଗୁହାଳ ପୋଛିବା) ବ୍ୟବହୃତ ହୁଏ । ଯେବେ ଦୁଇଟିଯାକ କର୍ମ ଏକ ସ୍ଥାନରେ ବ୍ୟବହୃତ ହୁଏ ତେବେ ଗୌଣକର୍ମଟି ୫ମୀ ବିଭକ୍ତି ହୁଏ । ଯଥା—ମୁହଁ ପୋଛିବା, ଝାଳ ପୋଛିବା, ମୁହଁରୁ ଝାଳ ପୋଛିବା ' ଗୁହାଳ ପୋଛିବା, ଗୋବର ପୋଛିବା, ଗୁହାଳରୁ ଗୋବର ପୋଛିବା । ପୋଛିବା କ୍ରିୟାର ଅସମାପିକାରୂପ ସଙ୍ଗେ ଦେବା, ନେବା, ପକା(କେ)ଇବା, ଆଣିବା କ୍ରିୟାର ସମାପିକା ରୂପ ଯୁକ୍ତ ହୁଏ ଯଥା—ପୋଛିଦେବା, ପୋଛିନେବା । ]
୧୦ । (ସଂ. ପ୍ରଚ୍ଛ ଧାତୁ, କହିବା କ୍ରିୟା ସଙ୍ଗେ ସହଚର ରୂପେ ବ୍ୟବହୃତ, କହିବା ପୋଛିବା)—ପଚାରିବା, କହିବା—
10. To ask, to speak.

**ପୋଛି ହୋଇ ଯିବା**—ଦେ. କ୍ରି—୧ । ଲିଭିଯିବା—
Pochhi hoi jiba 1 To be effaced.
୨ । ମନରୁ ବିସ୍ମୃତ ହେବା—2. To be forgotten.

**ପୋଛୁଣୀ**—ଦେ. ବି (ସଂ. ପ୍ରୋଞ୍ଛନୀ)—ପୋଛିବା କନା—Duster; a
Pochhuni rag with which something is wiped.
(ପୋଛଣୀ—ଅନ୍ୟରୂପ) ଲଜ୍ଜାଣୀ ପୋଛୁଣୀ ପ୍ରାୟ ହୋଇଛି ଚକ୍ଷୁଣ ।
ପ୍ରତୀ. ବ୍ରହ୍ମାଣ୍ଡଭୂଗୋଳ ଗୀତା ।

**ପୋଟ୍** (ଇତ୍ୟାଦି)—ବୈଦେ. ବି—ପୋର୍ଟ୍ ଇତ୍ୟାଦି (ଦେଖ)
Pot (etc) Port etc (See)

ଦେ. ବି. (ସଂ. ପୃଷ୍ଠ)—ବହି ବହିର ପୃଷ୍ଠା ... ପଛଆଡ଼,
ପୋଟ ଯେଉଁ ଅଂଶରେ ସୂତା ଗଳା ଯାଇ ପୃଷ୍ଠାମାନ ପରସ୍ପର ସହିତ
**पोट** ସିଲେଇ ହୁଏ—The back of the pages of a bound book in which the pages are sewn to one another.

**ପୋଟ**—ସଂ. ବି. (ପୁଟ୍ ଧାତୁ=ସଂଯୁକ୍ତ ହେବା+ଭାବ. ଅ)—
Pota ୧ । ଯୋଗ; ସଂଯୋଗ—1. Joining; connection
୨ । ଘରର ମୂଳଭୂଅ—2. Foundation of a house.
୩ । ମିଳନ—3. Mixing; meeting.
୪ । ସଦ୍ଭାବ; ମନର ମେଳ—4. Friendship; agreement.
୫ । ସ୍ପର୍ଶ—5. Touch (Apte)
ଦେ. ବି—ପୁଟ (ଦେଖ)—Puta (See)

**ପୋଟକ**—ସଂ. ବି. ପୁଂ (ପୁଟ୍ ଧାତୁ+ଅକ)—ଚାକର; ଭୃତ୍ୟ—
Potaka (ପୋଟିକା—ସ୍ତ୍ରୀ) Servant.

**ପୋଟଗଳ**—ସଂ. ବି. (ପୋଟ=ମିଳନ+ଗଲ୍ ଧାତୁ=ଗମନ କରିବା+
Potagala ଅ)—୧ । ନଳ ତୃଣ; କାଣ୍ଡଶର ଘାସ—
(ପୋଟଗଳକ—ଅନ୍ୟରୂପ) 1. A sort of reed; Arunda Tabialis.
୨ । କାଶ ତୃଣ—2. A sort of grass; Saccharum Spontanium.
୩ । ମତ୍ସ୍ୟ—3. Fish

୪ । ଏକପ୍ରକାର ସାପ (ହି. ଶ)—4. A kind of serpent.

**ପୋଟଳ**—ସଂ. ବି—(ପୁଟ୍ ଧାତୁ=ସଂଶ୍ଳିଷ୍ଟ ହେବା+ଅଲ)—୧ । ମିଳନ,
Potala ସଂଶ୍ଳେଷ, ଯୋଗକରଣ—1. Mixing; joining.
୨ । ଆଲିଙ୍ଗନ—3. Embrace.
୩ । ମୂଳଭୂଅ, ଭିତ୍ତି—3. Foundation.
୪ । ପୋଟଳା; ପୁଡ଼ା—4. Packet; bundle.

ପୋଟଳକ } ଅନ୍ୟରୂପ ଦେ. ବି—ପଟୋଳ (ଦେଖ)—
ପୋଟଳିକା } Patola (See)

**ପୋଟଳ ଚକୁଳୀ**—ଦେ. ବି—(ସଂ.ପୁଟ ଓ ଶଷ୍କୁଲୀ)—ଯେଉଁ ସରୁ ଚକୁଳୀ
Potala chakuli ପିଠାର ମଝିରେ ମିଷ୍ଟାନ୍ନ ବା ପୂର ରଖାଯାଇ ଧଡ଼ମାନଙ୍କୁ ଲେଉଟାଇ ଆଣି ଚୌକୋଣିଆ ଭାଙ୍ଗ କରାଯାଇଥାଏ—A thin pastry cake folded into a square after spreading sweets in the middle, a folded sandwich.

**ପୋଟଳା**—ଦେ. ବି—(ସଂ. ପୋଟଳିକା)—ପୁଡ଼ା—
Potala A packet; bundle, package
পোঁটলা **पोटला**

**ପୋଟଳା ପୋଟଳି**—ଦେ. ବି—(ସଂ. ପୋଟଳ)—୧ । ପରସ୍ପର ପ୍ରେମରେ
Potala potali ଆଲିଙ୍ଗନ କରିବା—1. Mutual
পোঁটলা পুঁটলী **पोटलापोटली** embracing
୨ । ବଡ଼ ଓ ସାନ ପୋଟଳାମାନ, ସବୁ ଲୁଗାପଟା—
2. Small and big packets, bag and baggage.
ଦେ. ବିଣ—ପ୍ରେମାଲିଙ୍ଗନରେ ପରସ୍ପର ଜଡ଼ିତ—
Embracing each other.
ଏରୂପେ କହୁଁ କହୁଁ ଆନନ୍ଦ ଲହରୀ
ଭେଟନ୍ତେ ସେ ହୋଇଲେ ପୋଟଳା ପୋଟଳି—କୃଷ୍ଣସିଂହ ମହାଭାରତ ଆଦି ।

**ପୋଟଳି**—ଦେ. ବି—୧ । (ସଂ. ପୋଟଳିକା) ଛୋଟ ପୋଟଳା, ଛୋଟ
Potali ପୁଡ଼ା—1. A small packet or package.
পুঁটলী ୨ । (ସଂ. ପଟ୍ଟଲ) ପଟି—2 Bandage.
**पोटली** (ଯଥା—ଅଣ୍ଟ ପୋଟଳି ।)
୩ । (ସଂ. ପୋଟଳ) ମିଳନ ବା ସ୍ନେହାଲିଙ୍ଗନ ଉପଲକ୍ଷେ ବନ୍ଧୁର ପ୍ରଦତ୍ତ ଉପଢୌକନ—A present given when a person meets a friend.
(ଯଥା—ନଣନ୍ଦ ପୋଟଳି ।)

**ପୋଟଳିକା**—ସଂ. ବି—(ପୁଟ୍ ଧାତୁ+ଅଲ+କ+ସ୍ତ୍ରୀ. ଆ)—ପୋଟଳା-
Potalika A packet.

**ପୋଟଳି ବଣିଆ(ଆଁ)**—ଦେ. ବି—(ସଂ. ପୋଟଳକ+ବଣିକ, ଏମାନେ
Potali bania(an) ମସଲା ଆଦିର ପୋଟଳା ବାନ୍ଧି ଗରାଖଙ୍କୁ
ଗନ୍ଧବେନେ ଦିଅନ୍ତି—ଗନ୍ଧ ବଣିକ; ଯେଉଁ ବଣିଆମାନେ ମସଲା
**पंसारी** ଆଦି ବିକନ୍ତି—A caste of druggists or traders in spices and condiments.

**ପୋଟା**—ସଂ. ବି—(ସଂ. ପୁଟ୍ ଧାତୁ=ସଂଯୁକ୍ତ ହେବା+କର୍ତ୍ତୃ. ଅ+ସ୍ତ୍ରୀ.
Pota ଆ)—୧ । ପୁରୁଷଲକ୍ଷଣଯୁକ୍ତା ସ୍ତ୍ରୀ, ପୁଂସଲକ୍ଷଣା ସ୍ତ୍ରୀ; ଯେଉଁ ସ୍ତ୍ରୀର ସ୍ତନ ନ ଥାଇ ଦାଢ଼ି ଆଦି ଥାଏ—1 A woman with the signs of a male ( such as mustache) a masculine woman; amazon.

ସଙ୍ଗତରେ ଆସନ୍ତ ତା ପୋଟା ପୋଟାଏ
ଆର ସର୍ଲିକ୍ତ ହୋଇ ପ୍ରକଟ ହୁଏ – ଭଞ୍ଜ କୋଟ୍ରବ୍ରହ୍ମାଣ୍ଡସୁନ୍ଦରୀ ।

୨ । ସ୍ତ୍ରୀଲକ୍ଷଣଯୁକ୍ତ ପୁରୁଷ—2. Hermaphrodite; a male with decidedly female characteristics.

୩ । ପୋଇଲୀ; ଦାସୀ—
3. Female servant; a maid servant.

ଦେ. ବ. (ସଂ. ପୁଟ=ଥଳି)—୧ । ମାଛର ପୁଟ—
1. The bladder of fish.

୨ । ମାଛର ବା ଛେଳିର ଅନ୍ତ୍ରବୁଜୁଳା—
2. The viscera of an animal; entrails.

ଦେ ବଣ.(ପୁଂ)—ଯେଉଁ ବ୍ୟକ୍ତିର ପେଟ ଆଦିର ମାଂସର ପୁଟ ଝୁଲୁଥାଏ–
(ପୋଠୀ, ପୋଟେଇ—ସ୍ତ୍ରୀ) (a person) Whose fleshy folds bulge out from the belly

**ପୋଟା(ଟା)ଳିବା**—ପ୍ରାଦେ.(ସମ୍ବଲପୁର ଓ ଗଞ୍ଜାମ) କ୍ରି.—(ସଂ. ପୋଟଳ)—
Poṭā(ṭa)libā ଆଲିଙ୍ଗନ କରିବା; କୁଣ୍ଢାଇବା—To embrace.
ତବନ୍ତେ କୃଷ୍ଣ ଅର୍ଜୁନକୁ ପୋଟାଳିଲେ ।
କୃଷ୍ଣସିଂହ. ମହାଭାରତ । ସଭା ।

[ ଦ୍ର—ବୋହୂ ଶାଶୁଘରକୁ ପହିଲିପାଳି ଯିବା ସମୟରେ ନଣନ୍ଦ ପାଇଁ ଖଣ୍ଡିଏ ଶାଢୀ, ଓ ପାନିଆ, ଫରୁଆ ଆଦି ଗୋଟିଏ ପେଡ଼ିରେ ନେଇ ଥାଏ, ତାକୁ ନଣନ୍ଦ ପୋଟଳ କୁହାଯାଏ । ପ୍ରଥମେ ଶାଶୁଘରେ ପାଦ ଦେବା ମାତ୍ରେ ନଣନ୍ଦ ଦେହଲୀଠାକୁ ଆସି ନୂଆ ବୋହୂକୁ ଅଭିନନ୍ଦନ ଓ ଆଲିଙ୍ଗନ କରି ଘରକୁ ନିଏ । ସେହି ସମୟରେ ବୋହୂ ନଣନ୍ଦଙ୍କୁ ଉକ୍ତ ନଣନ୍ଦ ପୋଟଳ ଉପଢୌକନ ଦିଏ । ବୋହୂ ଓ ନଣନ୍ଦଙ୍କ ପ୍ରଥମ ମିଳନ ବା ସ୍ନେହାଲିଙ୍ଗନର ଉପହାର ସ୍ୱରୂପ ଏହା ଦିଆ ଯିବାରୁ ଏହାର ନାମ ନଣନ୍ଦ ପୋଟଳ ହୋଇ ଥିବାର ସମ୍ଭବ । ପୁରୀ କଟକ ଆଦି ଅଞ୍ଚଳରେ ଆଲିଙ୍ଗନ ଅର୍ଥରେ 'ପୋଟଳିବା' ଶବ୍ଦର ଏହିଠାରେ ମାତ୍ର ବ୍ୟବହାର ଦେଖାଯାଏ, ଅନ୍ୟତ୍ର ଦେଖାଯାଏ ନାହିଁ । କିନ୍ତୁ ଗଞ୍ଜାମ ଓ ସମ୍ବଲପୁରରେ ପୋଟଳିବା, ପୋଟାଳିବା ଆଲିଙ୍ଗନ କରିବା ଅର୍ଥରେ ବ୍ୟବହୃତ ହୁଏ । କୃଷ୍ଣସିଂହ ମହାଭାରତରେ ମଧ୍ୟ ଏ ଶବ୍ଦ ଅନେକ ଥର ବ୍ୟବହୃତ ହୋଇ ଅଛି । 'ପୋଟାଳିବାର' ଆଲିଙ୍ଗନ କରିବା ଅର୍ଥ ଗଞ୍ଜାମ ଓ ସମ୍ବଲପୁର ଅଞ୍ଚଳରେ ଚଳେ କିନ୍ତୁ ଏ ଦୁଇ ଅଞ୍ଚଳର ମଧ୍ୟବର୍ତ୍ତୀ ପୁରୀ କଟକ ଅଞ୍ଚଳରେ ଚଳେ ନାହିଁ କାହିଁକି ? ]

**ପୋଟାସ୍**—ବୈଦେ. ବ. (ଇଂ. ପୋଟାଶ୍)—ବୃକ୍ଷ ଆଦିର ପାଉଁଶକୁ
Potāsh ପାଣିରେ ଗୋଳାଇ ଛାଣିଲେ ପାତ୍ରର ତଳେ ଯେଉଁ ଲୁଣ
पोटास **पोटास** ପରି ବସ୍ତୁ ବସି ଯାଏ—Potash.

**ପୋଟିକ**—ସଂ. ବ. (ପୁଟ୍ ଧାତୁ+ଇକ)—୧ । ବସ୍ଫୋଟକ—
Poṭika 1 Eruption.
୨ । ବଥ—2. A boil.

**ପୋଟୀ**—ସଂ. ବ. (ପୋଟ+ଈ.—ବୃହତ୍ କୁମ୍ଭୀର—
Poṭī A large alligator.
ଦେ. ବ. ସ୍ତ୍ରୀ.—ପୋଟେଇ—(ଦେଖ)—Poṭei (See)

**ପୋଟେଇ**—ଦେ. ବଣ.ସ୍ତ୍ରୀ—୧ । ନିୟମିତରୂପେ ଯେଉଁ ସ୍ତ୍ରୀର ଋତୁ ମାସକୁ
Poṭei ମାସ ହେଉ ନ ଥାଏ—1. (a woman) Whose monthly course is not regular.

୨ । ଯେଉଁ ସ୍ତ୍ରୀର ମାଂସବଳି ପେଟ ଆଦିରୁ ଓହୋଳ ପଡ଼ି ଥାଏ, ସ୍ଥୂଳକାୟା ସ୍ତ୍ରୀ—2. (a woman) Whose flesh bulges out of the belly in folds; fat.

**ପୋଟ୍ଟଳିକା**—ସଂ. ବ. (ପୁଟ୍ ଧାତୁ+ଅଲ+କ+ସ୍ତ୍ରୀ. ଆ)—ପୋଟଳା,
Poṭṭalikā ପୁଡ଼ା—Bundle; packet; a parcel.
(ପୋଟ୍ଟଲୀ—ଅନ୍ୟରୂପ)

**ପୋଡ**—ଦେ. ବ. (ସଂ. ପୁଟ ଧାତୁ)—୧ । ପୋଡ଼ିବା; ଦାହ—
Porḍa पोड़ **ताव** 1. Burning.
୨ । ତତାଇବା, ଉତ୍ତପନ—2.Heating a thing in fire.
୩ । ଇଟା ବା ହାଣ୍ଡି ଆଦି ନିଆଁରେ ପୋଡ଼ା ହେବାର ପ୍ରକାର–
3 The quality of a brick or earthen pot after it is burnt.
(ଯଥା—ଏ ଇଟାର ଭଲ ପୋଡ଼ ହୋଇଛି ।)
ପ୍ରାଦେ. (ସମ୍ବଲପୁର) ବ.—ପୋଡ଼; ଅଣ୍ଡିରା ମଇଁଷି—
A male buffalo.
ବଣ.—ବଡ଼—Great.

**ପୋଡନ୍ତା**—ଦେ. ବଣ.—୧ । ଜଳୁ ଥିବା, ପୋଡ଼ିଯାଉ ଥିବା—
Porḍantā 1. Burning; blazing.

**ପୋଡ଼ ପତ୍ରୀ**—ପ୍ରାଦେ. (ଗଞ୍ଜାମ) ବ.—ପୁଟପତ୍ରୀ (ଦେଖ)
Porḍa patrī Puṭa patrī (See)

**ପୋଡ଼ ପାଡ**—ଗ୍ରା. ବଣ. (ପୁଂ ଓ ସ୍ତ୍ରୀ)—୧ । (ଗାଳିରେ ବ୍ୟବହୃତ) ଅତି
Porḍa pārḍa ମନ୍ଦ ବା ହୀନ (ବ୍ୟକ୍ତି), ପୋଡ଼ାମୁହାଁ—
पोड़ामुये 1. Very bad (person); vile.
୨ । ସମ୍ପୂର୍ଣ୍ଣରୂପେ ଦଗ୍ଧ—2. Completely burnt.

**ପୋଡ଼ ପିଠା**—ଦେ. ବ. (ସଂ. ପୁଟ ଓ ପିଷ୍ଟକ)—ଚାଉଳ ଓ ବିରି ବଟାରେ
Porḍa piṭhā ପିଠା ଓ ମସଲା ଆଦି ଗୋଳ ତାକୁ
(ପୁଡ଼ପିଠା—ଅନ୍ୟରୂପ) କଦଳୀ ପତ୍ରରେ ପିଣ୍ଡୁଳା କରି ବାନ୍ଧ ପାଉଁଶ
पोड़ा पिठा ମଧ୍ୟରେ ପୋତି ଉପରେ ଓ ତଳେ ଦହକ ନିଆଁର
**ତିହ୍ନୀ; दाल पोठा** ଉତ୍ତାପରେ ସିଦ୍ଧ କରି ପ୍ରସ୍ତୁତ କରିବା ପିଠା—
A cake made of a packet containing kneaded and sweetened flour-paste baked inside a heap of live charcoal and hot ashes.

**ପୋଡ ପୋଡ଼**—ଦେ. ବଣ.—ଉତ୍ତମରୂପେ ପୋଡ଼ି ଯାଇଥିବା (ପିଠା
Porḍa porḍa ଆଦି)—Well-burnt (cake etc).

**ପୋଡ଼ା**—ଦେ. ବ. (ସଂ. ପୁଟ୍ ଧାତୁ)—୧ । ଦଗ୍ଧ କରିବା, ଦହନ—
Porḍā 1. Burning.
पोड़ान ୨ । ଶରୀରର ଦାହ, ଜ୍ୱାଳା—2. Inflammation;
**दहन** burning pain.
୩ । ନିଆଁରେ ପକାଇ ସିଦ୍ଧ କରାଯିବା ଫଳ ଆଦି—
3. A thing dressed by being put into fire.
( ଯଥା—ବାଇଗଣ ପୋଡ଼ା, ମାଛ ପୋଡ଼ା ଇତ୍ୟାଦି । )
୪ । ନିଆଁ ଲଗାଯିବା—4. Being set on fire.
ଦଶ ବାଣୀ ଦଳ ଦେବ ମୂର୍ଦ୍ଧ ପୋଡା—ତଗ ।

ବିଣ—୧ । ଦଗ୍ଧ—1. Burnt ;scorched; charred; parched.
ପୋଡ଼ା **जलाहुआ**
୨ । ଭସ୍ମୀଭୂତ—2. Reduced to ashes.
୩ । ତାପିତ, ସନ୍ତପ୍ତ—3. Sorrowing; afflicted with sorrow.

ଏ ଦାରୁଣ ବଚନରେ ମୋ ମୋର ପୋଡ଼ା ପ୍ରାଣ ରହୁଅଛି ।
ରଧାନାଥ. ପାର୍ବତୀ କାବ୍ୟର ଉପସଂହାର ।

୪ । ତୁଚ୍ଛ, ମ୍ଳାନ—4 Despised; despicable; vile.
୫ । ବ୍ୟର୍ଥ—5. Useless; fruitless.
୬ । ଅତି ମନ୍ଦ—5. Very bad; worst.
୭ । ( ଅନ୍ୟ ଶବ୍ଦ ସଙ୍ଗେ ବ୍ୟବହୃତ, ଯଥା—ଲଙ୍କାପୋଡ଼ା ବାନର ) ଯେ ପୋଡ଼ି ଦିଏ—
(ପୋଡ଼ୀ—ସ୍ତ୍ରୀ)
7. One who sets fire to; incendiary.
୮ । ଯାହା ପୋଡ଼ି ଯାଇଥାଏ—8 Burnt.
( ଯଥା—ପୋଡ଼ା ତିଅଣ । )

**ପୋଡ଼ା(ଡ଼େ)ଇବା**—ଦେ. କ୍ରି—୧ । ପୋଡ଼ିବା କ୍ରିୟାର ଣିଜନ୍ତ ରୂପ—
Pordā(rde)ibā 1. The causative form of Pordibā.
ପୋଡ଼ାନ ୨ । ଅନ୍ୟ ଦ୍ୱାରା ପୋଡ଼ିବା କ୍ରିୟା କରାଇବା—
**जलाना** 2. To cause to be burnt.

ବାସ ଲଙ୍କୁ ନେ ବେଗାର
ବଳ୍କିରେ ଦେଲ ପୋଡ଼ାଇ । ଉଡ଼. ବୈଦେହୀଶବିଳାସ ।

**ପୋଡ଼ା କପାଳ**—ଦେ. ବି—ମନ୍ଦ ଭାଗ୍ୟ—
Pordā kapāla Ill fortune; bad luck.
পোড়া কপাল **जला भाग्य, जला किस्मत**

**ପୋଡ଼ା କପାଳିଆ**—ଦେ. ବିଣ—ମନ୍ଦଭାଗ୍ୟ, ହତଭାଗ୍ୟ—
Pordā kapālia Unfortunate; unlucky.
(ପୋଡ଼ା କପାଳୀ—ସ୍ତ୍ରୀ) পোড়া কপালিয়া **जली किसमत वाला**

**ପୋଡ଼ା ଘା**—ଦେ. ବି—ନିଆଁରେ ପୋଡ଼ିଯିବା ଦ୍ୱାରା ଦେହରେ ଯେଉଁ ଘାଆ ହୋଇ ଥାଏ—A sore produce by fire; burn
Pordā ghā
(ପୋଡ଼ା ଘାଆ—ଅନ୍ୟରୂପ) পোড়া ঘা **जला घाव**

**ପୋଡ଼ା ଘାରେ ଚୂନ ଦେବା**—ଦେ. କ୍ରି—(ଲକ୍ଷଣାର୍ଥ) ବେଦନା ଅନୁଭବ କରୁଥିବା ବ୍ୟକ୍ତିକୁ ଅଧିକ ବେଦନା ଦେବା—
Pordā ghāre chūna debā
পোড়া ঘাযে চূন দেওয়া
**जलेपर नमक छींटना** (figurative) To add to one's misery.
[ପୋଡ଼ା ଘାରେ ଲୁଣ ଦେବା(ମାରିବା), ପୋଡ଼ା ଘାରେ ଚୂନ ମର୍ଦ୍ଦା(ଡ଼େ)ଇବା,ପୋଡ଼ା ଘାରେ ଚୂନ ମାରିବା—ଅନ୍ୟରୂପ]

**ପୋଡ଼ା ତିଅଣ**—ଦେ. ବି—ଯେଉଁ ତିଅଣ ଅତ୍ୟଧିକ ଜାଳ ଯୋଗୁଁ ବିସ୍ୱାଦ ହୋଇଯାଏ—Overburnt curry.
Pordā tiaṇa
পোড়া তরকারী **जली हुइ तरकारी, जला हुआ तीमन**

**ପୋଡ଼ା ତିହୁଡ଼ି**—ପ୍ରାଦେ. (ଗଞ୍ଜାମ)· ବି. (ସ. ତୁବରୀ)—ହରଡ଼—
Pordā tihurdi A pulse; Cayanus Indicus

**ପୋଡ଼ା ନାରଙ୍ଗ(ଙ୍ଗା)**—ଦେ. ବି—ଶିଶୁମାନଙ୍କ ମୁହଁରେ ଓ ଦେହରେ ହେବା ଟେକା ଟେକା ଫୋଟକା ପରି କୁଣ୍ଡ ରୋଗବିଶେଷ—
Pordā nāranga(ngā)
পোড়া নারঙ্গা **अमिया घाव**
A kind of eruption bursting out on the limbs and face of infants
[ ଦ୍ର—ଶିଶୁକାଠର ତେଲ ଲଗାଇଲେ ଏହା ଭଲ ହୁଏ । ]

**ପୋଡ଼ା ପେଟ**—ଦେ. ବି. ( ତୁଳ. ସ. ଦଗ୍ଧୋଦର )—
Pordā peṭa ତୁଚ୍ଛ ଉଦରଜ୍ୱାଳାରେ ଦୁଷ୍ଟ ଉଦର; କ୍ଷୁଧାର ଜ୍ୱାଳା—
পোড়া পেট The ignoble cravings of hunger.
**मुआ पेट**

ଏବେ ଅନେକ ରୂପ କଳନା ଏ ପୋଡ଼ା ପେଟ ହେ ।
ଗୋପାଳକୃଷ୍ଣ, ସେବକ ଟୋଳ ।

**ପୋଡ଼ା ମାଟି**—ଦେ. ବି—ଚୁଲି ଭିତରର ମାଟି ( ଯାହାକି ଅଗ୍ନି ସଂଯୋଗରେ ଉତ୍ତମ ରୂପେ ଦଗ୍ଧ ହୋଇଥାଏ )-
Pordā māṭi
পোড়া মাটি Burnt earth from the walls of an oven.
**पकी मीटी**
[ ଦ୍ର— ଏହାକୁ କେହି କେହି ଗର୍ଭିଣୀ ଖାଇବାକୁ ସ୍ପୃହା ପାଆନ୍ତି ।]

**ପୋଡ଼ା ମୁହାଁ**—ଦେ. ବିଣ. ପୁଂ ( ଗାଳିରେ ବ୍ୟବହୃତ )—
Pordā muhāṅ ୧ । ମୁହଁପୋଡ଼ା, ଯାହାର ମୁହଁ ପୋଡ଼ି ଯାଇଅଛି
( ପୋଡ଼ାପାଡ଼ମୁହାଁ—ଅନ୍ୟରୂପ ) 1. Having a burnt or charred face.
(ପୋଡ଼ାମୁହୀଁ—ସ୍ତ୍ରୀ)
পোড়ায় মুখ, পোড়াব মুখে ୨ । ଅମଙ୍ଗଳିଆ—2. Bringing ill luck.
**मुहँ जला**
୩ । ଅସୁନ୍ଦରମୁହାଁ—3. Having an ugly face.

**ପୋଡ଼ା ମୁଡ଼ି**—ଦେ. ବି—(ପୋଡ଼ା ମୁଡ଼ି ପରି) ଅଖାଦ୍ୟ ମୂଲ୍ୟହୀନ ବସ୍ତୁ—
Pordā murdhi A worthless and valueless thing (as burnt parched rice
[ଯଥା—ମୁଁ ତାଙ୍କ ଘରେ ଦୁଇ ଦିନ ଉପବାସ ରହିଲି ଯେ ମୋତେ ପୋଡ଼ା ମୁଡ଼ି ଗଣ୍ଡାଏ ସୁଦ୍ଧା କେହି ଖାଇବାକୁ ଦେଲେ ନାହିଁ । ]

**ପୋଡ଼ା ମୁହାଁ ବାନ୍ଦର**—ଦେ. ବି. ପୁଂ. ( ଗାଳିବିଶେଷ )—
Pordā muhāṅ bāndara ୧ । ଅସୁନ୍ଦରମୁହାଁ ବ୍ୟକ୍ତି—
মুখ পোড়া বাঁদর 1. A person with a very ugly face.
**काला मुहँका बन्दर** ୨ । ହନୁ ମାଙ୍କଡ଼—1. Black-faced monkey; Entellus.
(ପୋଡ଼ା ମୁହାଁ ବାନ୍ଦରୀ—ସ୍ତ୍ରୀ)
[ ଦ୍ର—ହନୁ ମାଙ୍କଡ଼ ମୁହଁ କଳା ଦେଖା ଯାଉଥିବାରୁ ଲୋକେ କହନ୍ତି ଯେ ହନୁମାନ ଲଙ୍କା ପୋଡ଼ି ସାରି ଉକ୍ତ ପାଉଁଶକୁ କରତଳରେ ମଳି ମୁହଁରେ ବୋଳ ଦେଇଥିବାରୁ ଓ ପାଉଁଶ ଉପରେ ଗୁଲି ଥିବାରୁ ତାହାର ବଂଶଧରମାନଙ୍କ ମୁହଁ, ପାଦ ଓ ଲେଞ୍ଜ କଳା ହୋଇଗଲା ।]

**ପୋଡ଼ା ଶଙ୍କର(ରା)**—ଦେ. ବି—ଚିଲିକାରେ ଦେଖାଯିବା ଏକପ୍ରକାର ପକ୍ଷୀ—A species of birds found in the Chilka lake.
Pordā śankara(rā)

**ପୋଡ଼ି**—ଦେ. ବି—(ଅନ୍ୟ ଶବ୍ଦ ସଙ୍ଗେ ଲାଗେ, ଯଥା—ଘର ପୋଡ଼ି, ବଣ ପୋଡ଼ି)—ଅଗ୍ନି ସଂଯୋଗରେ ଦାହ—Burning.
Pordi
পুড়ী **जली**

**ପୋଡ଼ିଆ**—ଦେ. ବିଣ—(ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ ହୁଏ)—ପୋଡ଼ା ୭ ଓ ୮ (ଦେଖ)—Pordā 7 and 8 (See).
Pordia

**ପୋଡ଼ି ଖାଇବା**—ଦେ. କ୍ରି—୧ । (ଲକ୍ଷଣାର୍ଥ) ସର୍ବଥା ତ୍ୟାଗ କରିବା—
Pordi khāibā 1. (figurative) To give up altogether.
পুড়েখাওয়া

(ଯଥା—ଏବେ ଭୂଆଶୁଣୀମାନେ ଲୋକଙ୍କୁ ପୋଡ଼ି ଖାଇଲେଣି ।)
୨ । (ଲକ୍ଷଣାର୍ଥ) କୌଣସି ବ୍ୟକ୍ତିର ସର୍ବନାଶ ଘଟାଇବା—
2. (figurative) To cause a person's ruin.
୩ । ପାଶୋରି ପକାଇବା—3. To forget.

**ପୋଡ଼ି ଦେବା**—ଦେ. କ୍ରି—୧ । କୌଣସି ବସ୍ତୁକୁ ଅଗ୍ନି ଦ୍ୱାରା ଭସ୍ମୀଭୂତ କରିବା—1 To burn to ashes.
Pordi deba
ପୁଡ଼େଦେଓ୍ୟା ୨ । (ଲକ୍ଷଣାର୍ଥ) ବିନାଶ କରିବା, ନଷ୍ଟ କରିବା—
**जलादेना** 2. (figurative) To destroy.
(ଯଥା—କାଳିର ପଦ୍ମବନକୁ ପୋଡ଼ିଦେଲା ।)
୩ । ନ ମାନିବା—3. To disregard; to ignore
[ପୋଡ଼ି ପକା(କେ)ଇବା—ଅନ୍ୟରୂପ] ତୋ ସ୍ନେହ ସୁଖ ଗାନ କଲି
ବିଧି ନିଷେଧ ପୋଡ଼ି ଦେଲୁ—ଭୂପତି ପ୍ରେମପଞ୍ଚାମୃତ ।
୪ । (ନିଆଁରେ ନଷ୍ଟ କରିବାଭଳି ବା ଅଙ୍ଗାର କରିବା ଭଳି) କୌଣସି ପଦାର୍ଥକୁ ନଷ୍ଟ ବା କଳା କରିଦେବା—
4. To spoil or turn a thing black (as if it were burnt by fire ; to char.
(ଯଥା—କୁହୁଡ଼ି ଆମ୍ବବଉଳସବୁ ପୋଡ଼ି ଦେଲା)

**ପୋଡ଼ପାଡ଼ ଦେବା**—ଦେ. କ୍ରି—(ନିରର୍ଥକ ସହଚର ଶବ୍ଦ)—
Pordipardi deba ୧ । ନିଃଶେଷ ରୂପେ ପୋଡ଼ି ଦେବା—
**जलाकरखाक्करदेना** 1. To burn a thing to ashes
(ଯଥା—ସୈନ୍ୟମାନେ ଗ୍ରାମକୁ ପୋଡ଼ପାଡ଼ ଦେଲେ)
୨ । (ଲକ୍ଷଣାର୍ଥ) ସର୍ବଥା ମନରୁ ପାଶୋରି ଦେବା—
2. (figurative) To forget a thing totally.

**ପୋଡ଼ପାଡ଼ ଯିବା**—ଦେ. କ୍ରି—ସମ୍ପୂର୍ଣ୍ଣରୂପେ ଭସ୍ମୀଭୂତ ହେବା—
Pordipardi jiba To be burnt to ashes.
**मटियामेटहोना; खाकहोजाना**

**ପୋଡ଼ିବା**—ଦେ. କ୍ରି—(ସଂ. ପୁଷ ଧାତୁ)—୧ । (ସକର୍ମକ) ତତାଇବା; ନିଆଁରେ ଉତ୍ତପ୍ତ କରିବା—1. To heat in fire.
Pordiba
ପୁଡ଼ା, ପୋଡ଼ା **जलाना,जलना** (ଯଥା—ସୁନାକୁ ବଣିଆ ପୋଡ଼େ)
୨ । (ସକର୍ମକ) ନିଆଁ ଲଗାଇବା, ଅଗ୍ନି ସଂଯୋଗ କରିବା—
2 To set fire to; to burn
(ଯଥା—ଘର ପୋଡ଼ିବା)
୩ । (ଅକର୍ମକ) ନିଆଁ ଲାଗିଲା ପରି ଜ୍ୱାଳା କରିବା—
3. To have a burning sensation or inflammation of any limb
(ଯଥା—ମୋ ଗୋଡ଼ ହାତ ପୋଡ଼ୁଛି; ଲଙ୍କାମରିଚ ଖାଇ ମୋ ପାଟି ପୋଡ଼ୁଛି)
୪ । (ସକର୍ମକ) ନିଆଁ ଲଗାଇ ଭସ୍ମୀଭୂତ କରିବା—
4 To turn into ashes by setting fire.
(ଯଥା—ଲୁଗାଗଦାକୁ ପୋଡ଼ିବା)
୫ । (ଅକର୍ମକ) (ମନ) ଦୁଃଖରେ ବା ଚିନ୍ତାରେ ସନ୍ତପ୍ତ ହେବା—
5. (one's mind) To be afflicted with grief or anxiety.
ବଣ ପୋଡ଼ିଲେ(୧୫)ଦୁନିଆ ଜାଣେ, ମନ ପୋଡ଼ିଲେ(୫) କେହି ନଜାଣେ—ଢଗ ।
୬ । (ସକର୍ମକ) ବିନାଶ କରିବା—6. To destroy.
୭ । (ଅକର୍ମକ) ବିନଷ୍ଟ ହେବା—7. To be destroyed.
ପୋଡ଼ୁ ଏ ତେବଗା କାଞ୍ଚଣ
କେ ବୋଲେ କର୍ଣ୍ଣେ ଘା ନ ଶୁଣ—ଜଗନ୍ନାଥ. ଭାଗବତ ।
୮ । (ସକର୍ମକ) ଶବଦାହ କରିବା, ଚିତାନଳରେ ଭସ୍ମୀଭୂତ କରିବା—8. To cremate a dead body.
ଅଶ୍ୱକ ବୋଇଲେ ଯେ ହୋଇଥାଏ ମୃତ
ପୋଡନ୍ତୁ ପୋଡନ୍ତୁ ବା ତାହାକୁ ଭୂତ—କୃଷ୍ଣସିଂହ ମହାଭାରତ ଆଦି ।
ପୋଡ଼, ପୋଡ଼, ସକା, ଏ ଉନସେଁ ଏକା—ଢଗ ।
୯ । (ସକର୍ମକ) ଅଳ୍ପ ସନ୍ତପ୍ତ କରିବା, ଉତ୍ତପ୍ତ କରିବା—
9. To scorch.
୧୦ । (ସକର୍ମକ) ଅଗ୍ନି ଉପରେ ପକାଇ ସିଦ୍ଧ କରିବା—
10. To dress or roast a thing in fire.
(ଯଥା—ମାଛ ପୋଡ଼ିବା, ବାଇଗଣ ପୋଡ଼ିବା)
୧୧ । (ସକର୍ମକ) ଅଙ୍ଗାର ବା କୋଇଲା ତିଆରି କରିବା ପାଇଁ କାଠକୁ ନିଆଁରେ ଦଗ୍ଧ କରିବା—
11. To burn wood into charcoal; to char.
୧୨ । (ସକର୍ମକ) ଖାର ଉତ୍ପାଦନ କରିବା ପାଇଁ କଦଳୀ ବାସୁଙ୍ଗାକୁ ଦଗ୍ଧ କରିବା—12. To burn the branches and stems of plantain trees to produce alkali.
୧୩ । (ସକର୍ମକ) ପୋଡ଼ା ଇଟା ଉତ୍ପାଦନ କରିବା ପାଇଁ ବା ପୋଡ଼ା ହାଣ୍ଡି କରିବା ପାଇଁ କଞ୍ଚାଇଟାକୁ ବା କଞ୍ଚାହାଣ୍ଡିକୁ (ଭାଟିରେ ବା ଭିଆରେ) ଦଗ୍ଧ କରିବା—13. To burn bricks and earthen pots in ovens.
୧୪ । (ଲକ୍ଷଣାର୍ଥ) (ସକର୍ମକ) ପାଶୋରି ଦେବା, ଭୁଲିଯିବା—
14. (figurative) To forget; to commit into oblivion.
୧୫ । (ଅକର୍ମକ) ପୋଡ଼ିଯିବା; ଦଗ୍ଧ ହେବା—
15. To be on fire.
[ଦ୍ର—୧ । କୌଣସି ଦ୍ରବ୍ୟକୁ ପୋଡ଼ିଲେ ତାହା ଅଙ୍ଗାର ବା ପାଉଁଶ ହୋଇଯାଏ । ପୋଡ଼ିବା ଦ୍ୱାରା ଯେଉଁ ବସ୍ତୁ ଉତ୍ପନ୍ନ ହୁଏ ସେହି ବସ୍ତୁ ସଙ୍ଗେ ପୋଡ଼ିବା କ୍ରିୟା ଲଗାଯାଏ ଯଥା—ଧୋବା ଖାର ପୋଡ଼ୁଅଛି, କୁମ୍ଭାର ହାଣ୍ଡି ପୋଡ଼ୁଛି, ଶଅର ଅଙ୍ଗାର ପୋଡ଼ୁଛି । ଯଥାର୍ଥରେ ଖାର, ହାଣ୍ଡି ବା ଅଙ୍ଗାରକୁ ପୋଡ଼ାଯାଏ ନାହିଁ, କିନ୍ତୁ କଦଳୀବାସୁଙ୍ଗା, କଞ୍ଚା ହାଣ୍ଡି ବା କଞ୍ଚା କାଠକୁ ପୋଡ଼ି ଯଥାକ୍ରମେ ଖାର, ପୋଡ଼ାହାଣ୍ଡି ଓ ଅଙ୍ଗାର ତିଆରି କରାଯାଏ—
[ଦ୍ର—୨ । ପୋଡ଼ିବା କ୍ରିୟାର ଅସମାପିକା ରୂପ ସଙ୍ଗେ ଦେବା, ପକା(କେ)ଇବା, ଯିବା ଆଦି କ୍ରିୟାର ସମାପିକାରୂପ ଯୁକ୍ତ ହୁଏ ।]

**ପୋଡ଼ିଯା**—ଦେ. ଅ. (ଗାଳି ବା ଅଭିଶାପରେ ବ୍ୟବହୃତ)—
Pordija ତୁ ଭସ୍ମୀଭୂତ ହୋ !—(a curse) Be burnt down ! go to ashes !
ପୁଁଡ଼େଯା **आग लगयाओ**

**ପୋଡ଼ି ଯାଉ**—ଦେ. ଅ. (ଖେଦ ବା ବିରକ୍ତିବ୍ୟଞ୍ଜକ ଉକ୍ତି)—
Pordi jau ୧ । ଛାଡ଼ ସେ କଥା ! ଅମୁକ ବିଷୟରେ ଉଲ୍ଲେଖ କରନି—1. Dont mentaion the subject.
ପୁଡ଼ଯାକ
**आगलगे**
(ଯଥା—ମୋ ବଡ଼ କଥା ପୋଡ଼ି ଯାଉ ! ମୋ ବାବାଙ୍କ ବଡ଼ପଣ ତ ଭଲ ହେବାକୁ ନାହିଁ ।)

୨ । (ଅମୁକ ବସ୍ତୁ ବା ବିଷୟ) ଥିଲେ କେତେ, ଗଲେ କେତେ ?; (ଉକ୍ତ ପ୍ରସଙ୍ଗ ବା ବସ୍ତୁ) ଚୁଲିକି ଯାଉ—2. Damn (the matter)! I care a fig for it। Let it go to dogs

ବୁଢା ନା'ଟଙ୍କରେ ବୁଢା ମାକଡ। (ମେ) ବର କୋଳ ପାଉଛ;
ପୋଡି ଯାଉ ଘୋ ବରକୋଳ, ମୋ ହୃଦ ନାଉଛ।
ବୁଢାମାକଡ କାହାଣୀ।

**ପୋଡ଼ି ଯିବା**—ଦେ. କ୍ରି. (ପୋଡ଼ିବା କ୍ରିୟାର କର୍ମବାଚ୍ୟରୂପ)—
Pordi jibā ୧। ଦଗ୍ଧ ହେବା—1 To be burnt
ପୁଡ଼େ ଯାଓୟା ୨। ଭସ୍ମୀଭୂତ ହେବା ବା ଅଙ୍ଗାରରେ ପରିଣତ
**जल जाना** ହେବା—2. To be burnt to ashes; to be charred.
୩। ନିଆଁ ଲାଗିବା—3. To be on fire.
୪। ଅଳ୍ପ ଉତ୍ତପ୍ତ ହେବା—4. To be scorched.
୫। ଯେତେ ପରିମାଣରେ ଅଗ୍ନିରେ ସିଝିବା ହେବାର କଥା, ତହିଁରୁ ବେଶି ପରିମାଣରେ ଅଗ୍ନି ପ୍ରୟୋଗଦ୍ୱାରା (ଭାତ ବା ତିଅଣ ଆଦି) ନଷ୍ଟ ହେବା—5. To be overboiled or overburnt (said of rice and curry).
ପୋଡ଼ିଗଲା ତିଅଣରେ ଅଛି କି ସ୍ୱାଦ ? ଭଗ।
୬। କୁହୁଡ଼ି ଯୋଗୁଁ ଆମ୍ବ ବଉଳ କଳା ଦେଖାଯିବା ଓ କଷି ନ ଧରି ଝଡ଼ି ପଡ଼ିବା—6 (said of mango-buds) To be spoiled and charred on account of mist.
୭। (ଲକ୍ଷଣାର୍ଥ) ବିନଷ୍ଟ ହେବା—
6. (figurative) To be ruined.
୮। ପାଶୋର ଯିବା—8 To be forgotten.

**ପୋଡ଼ିଶା**—ପ୍ରାଦେ. (ସମ୍ବଲପୁର) ବି—ଭକୁଡ଼ି ମାଛ (ଦେଖ)
Pordisā Bhākurda māchha (See)

**ପୋଡ଼ୁ(ଢୁ)ଅ(ହ)**—ଦେ. ବି—୧। ପୋଢ଼ (ଦେଖ)
Pordu(rdhu)a(ha) 1 Pordha (See)

ପାକ ମାଂସ ଗେହ କେଁ, କୁହାଇଲେ ଦେଉଁତ ଅଣି
ସହସ୍ରେ ପୋଡୁଅ ଛେଳ ପାଂଶ ଛଡ଼ିଲେ। ବିଶ୍ୱନାଥ, ବିଚିତ୍ରରାମାୟଣ।

୨। ମାଛ ଧରିବାର ଯନ୍ତ୍ରବିଶେଷ; ପୋଲୁଅ—
2. An upturned basket-like contrivance with an opening at the top for catching fish.
[ ଦ୍ର—ପୋଲୁଅ ତଳେ ନୋଟ୍ ଦେଖ । ]

**ପୋଡୁଅ(ଆ) ମାହାର**—ପ୍ରାଦେ. (ଗଡ଼ଜାତ) ବି—ଯେଉଁ ପିଲା ହଳେ ମଇଁଷି ଚରାଇବାକୁ ନିଏ—
Pordua(ā) māhāra
ପୋଡୁଅ ମାହାର } ଅନ୍ୟରୂପ A boy who takes out a pair of buffaloes for grazing.
ପୋଡୁଅ ମାହାରଆ }

**ପୋଡୁଆଁ** (ଆଁ, ହିଁ, ହାଁ)(ଇତ୍ୟାଦି)—ପୋଢୁଆଁ ଇତ୍ୟାଦି (ଦେଖ)
Porduañ(āñ, hañ, hāñ) Pordhuāñ etc (See)

**ପୋଢ଼**—ଦେ. ବି—ପୋଢୁଅ; ଅଣ୍ଡିରା ମଇଁଷି—1
Pordha A male buffalo.
ଲକ୍ଷେ ପୋଢ ବୋଦା ବଡ ହୋଇଲେ ସମ୍ପୂର୍ଣ୍ଣ। ପ୍ରତାପ, ଶଶିସେଣା।

**ପୋଢୁଆ**—ଦେ. ବି—କୋଳିଆମାନେ ସମୁଦ୍ରକୁ ମାଛ ମାରିବାକୁ ଯିବା
Pordhuā ନିମନ୍ତେ ବ୍ୟବହାର କରିବା ଖୋଟ ଡଙ୍ଗା; ପଢ଼ଉ—
डिंगी Catamaran of fishermen

**ପୋଢୁଆଁ(ହାଁ)**—ଦେ. ବିଣ. (ସଂ. ପ୍ରଥମ, ପ୍ରା. ପଢ଼ମ)—୧। ପ୍ରଥମ—
Pordhuāñ(hāñ) 1. First.
୨। ପ୍ରଥମଜାତ; ମାତା ଗର୍ଭରୁ ଜାତ ସର୍ବଜ୍ୟେଷ୍ଠ
बड़ (ସନ୍ତାନ)—2. First born; eldest
**जेठा** (child).
(ଯଥା—ପୋଢୁଆଁ ପୁଅ; ପୋଢୁଆଁ ଝିଅ।)
[ ଦ୍ର—ପୋଢୁଆଁ ପିଲାର ପରେ ଜନ୍ମ ହେବା ସନ୍ତାନକୁ ଦୁଅ-ପୋଢୁଆଁ କହନ୍ତି । ]

**ପୋଢୁଆଁ ଅଷ୍ଟମୀ**—ଦେ. ବି—ପ୍ରଥମାଷ୍ଟମୀ; ମାର୍ଗଶିର କୃଷ୍ଣ ଅଷ୍ଟମୀ—
Pordhuāñ ashtamī The 8th day of the dark fort-
প্রথমাষ্টমী night of the month of Mārgasira.
**प्रथमाष्टमी** [ ଦ୍ର—ଓଡ଼ିଶାରେ ଏ ଦିନ ଘରର ଜ୍ୟେଷ୍ଠ ସନ୍ତାନ ନୂଆ ଲୁଗା ପିନ୍ଧେ ଓ ତାର ବନ୍ଦାପନା କରାଯାଏ ଓ ଘରେ ହଳଦିପତ୍ରରେ ସିଝା ପିଠାଆଦି ହୁଏ । ]

**ପୋଢୁଆଁ ଗାଈ**—ଦେ. ବି. (ସଂ. ପ୍ରଥମା ଓ ଗାଭୀ)—
Pordhuāñ gāī ଯେଉଁ ଗାଈ ପ୍ରଥମେ ସନ୍ତାନ ପ୍ରସବ କରିଥାଏ—
প্রথম বিয়ানী A cow which has given birth to
**पहिलठ** a calf for the first time.

**ପୋଢୁଆଁ ଫଳ**—ଦେ. ବି. ପୁଂ ଓ ସ୍ତ୍ରୀ. (ସଂ. ପ୍ରଥମ+ଫଳ)—
Pordhuāñ phala ମାତାର ପ୍ରଥମ ସନ୍ତାନ—
[ପୋଢୁଆଁ ପିଲା (ବିଅଣ)—ଅନ୍ୟରୂପ] The first born
প্রথম সন্তান **प्रथम फल** offspring of a mother.

**ପୋଢୁଆଁ ହେବା**—ଦେ. କ୍ରି—ପ୍ରଥମାଷ୍ଟମୀ ଦିନ—(ପରିବାରର ଜ୍ୟେଷ୍ଠ
Pordhuāñ hebā ସନ୍ତାନ) ନୂଆ ଲୁଗା ପିନ୍ଧି ଚନ୍ଦନ ସିନ୍ଦୁର ଆଦିରେ ଭୂଷିତ ହୋଇ ବନ୍ଦାପନା ହେବା ପରେ ପିଠା ଖାଇବା—(said of the eldest child of a family) To go through some ceremonies after being decked with new cloth etc on the Prathamāshtamī day.

**ପୋଣ୍ଡୁଆ**—ଦେ. ବି—ଭାତପୁଡ଼ା (ଦେଖ)
Pondua (ପଣ୍ଡୁଆ—ଅନ୍ୟରୂପ) Bhātapurda (See)

**ପୋତ**—ସଂ. ବି. (ପୁ ଧାତୁ=ପବିତ୍ର କରିବା+କର୍ମ. ତ)—
Pota ୧। ବୋଇତ; ସମୁଦ୍ରଯାନ; ଜାହାଜ—
1 A ship; a sea-going vessel.
୨। ଜୀବଶିଶୁ, ଶାବକ—
2. The young of an animal.
୩। ଦଶବର୍ଷବୟସ୍କ ହାତୀ ଛୁଆ—
3. A young elephant of 10 years of age.

୪ । ନୌକା—4. Boat.
୫ । ବହିତ୍ର; ଅତୁଳ୍ଲ—5 An oar.
୬ । ଗୃହ ନିର୍ମାଣର ସ୍ଥାନ; ବାସ୍ତୁ ( ମେଦିନୀ )—
6. The site of a house.
୭ । (ପୋତନ୍ ଶବ୍ଦ, ୧ମା. ୧ବ.) ବସ୍ତ୍ର—7. Cloth
୮ । କେରପାଲ୍; ପାଲ୍—1. Paulin
ଦେ· ବ ( ପାନବରଜ )—ତେରଛା ବାଗରେ ପୋତା ଯାଇ ଦୁଆଡ ଓ ମୁଠା ଗଣ୍ଠିରେ ପରସ୍ପର ସଲଗ୍ନ ହୋଇଥିବା ଖୁଣ୍ଟା ଦ୍ୱୟ—Poles put slantingly against each other and tied together at the top to train two opposite betel creepers.

**ପୋତକ**—ସ. ବ. ( ପୋତ+ସ୍ୱାର୍ଥେ. କ )—ପ୍ରାଣୀର ଛୁଆ—
Potaka The young of an animal.
ଦେ. ବ. ( ସଂ. ପୁତ୍ତିକା )—ପକ୍ଷଯୁକ୍ତ ଅତି କ୍ଷୁଦ୍ର କୀଟ—
A tiny winged insect.

**ପୋତକାର**—ଦେ. ବ—୧ । ନାବିକ; ନାହୁର—
Potakāra 1. Sailor; boat-man.
୨ । ଜାହାଜର ମାଲିକ—2. The owner of a ship.

**ପୋତକୀ**—ସ. ବ. ସ୍ତ୍ରୀ. ( ପୁତ୍ ନାମ ଧାତୁ=ଦୁର୍ଗନ୍ଧ ହେବା+କର୍ତ୍ତୃ. ଅକ+ଈ )—୧ । ପୋଇ ଶାଗ, ପୂତିକା—
Potakī 1. Basella (potherb).
୨ । ଶ୍ୟାମା ପକ୍ଷୀ; ଶୁକ୍ଳକାଳକା ଚଢ଼େଇ—2. The pied myna bird; Sturnopaster Centra.

**ପୋତକୁ(କୋ)ଲି**—ଦେ. ବ—ବନ୍ୟ ବୃକ୍ଷବିଶେଷ ଓ ତାହାର ଫଳ—
Potaku(ko)li Ficus Cunia tree and berry(Haines).
ଭୋକାଡୁମ୍ବର [ ଦ୍ର—ଏ ଗଛ ନଇ ଓ ଝର ନିକଟରେ ଜନ୍ମେ ଓ ସନ୍ତସନ୍ତିଆ ଜମିରେ ବଢ଼େ । ଏହାର ପାଚିଲା ଫଳ ଲୋକେ ଖାଆନ୍ତି । ଏହାର ଡାଳରେ ଲାଖ ପୋକ ବସା ବାନ୍ଧନ୍ତି । ]

**ପୋତନ**—ସ. ବଣ. ( ପୂ ଧାତୁ=ପବିତ୍ର କରିବା+ତନ )—
Potana ୧ । ପବିତ୍ରତାକାରକ—1. Purifying.
(ପୋତନୀ—ସ୍ତ୍ରୀ) ୨ । ଶୁଦ୍ଧ; ପବିତ୍ର (ହ୍ର. ଶ )—2. Pure.
୩ । ସ୍ୱଚ୍ଛ ( ହ୍ର. ଶ. )—3. Transparent.

**ପୋତ ନାୟକ**—ସ. ବ—୧ । ଜାହାଜର ମାଲିକ—
Pota nāyaka 1. Ship-owner.
୨ । ଜାହାଜର କାପ୍ତାନ୍—
2. The captain of a ship.

**ପୋତ ପାଳ**—ସ. ବ—ପୋତ ନାୟକ ( ଦେଖ )
Potapāla Pota nāyaka ( See )
( ପୋତ ବାହକ—ଅନ୍ୟରୂପ )

**ପୋତ ପ୍ଳବ**—ସ. ବଣ. ( ପୋତ+ପ୍ଳୁ ଧାତୁ=ପାର ହେବା+ଅ )—
Pota plaba ଯେ ନୌକାଦ୍ୱାରା ନଦୀ ଆଦି ପାର ହୁଏ—
Crossing a river by boat.

**ପୋତ ବଣିକ୍**—ସ. ବ—ବୋଇତଆଳ, ନୌକାଦ୍ୱାରା ବାଣିଜ୍ୟ କରିବା
Pota banik ବ୍ୟକ୍ତି—A merchant who trades by sea; voyaging merchant.

**ପୋତ ବାହ**—ସ. ବ. ( ପୋତ+ବହ୍ ଧାତୁ+କର୍ତ୍ତୃ. ଅ )—
Potabāha ୧ । ନୌକାଚାଳକ—1. The conductor of a boat.
୨ । ନାବିକ, ମାଝୀ—2. Sailor; boatman.

**ପୋତରକ୍ଷ**—ସ. ବ. ( ପୋତ+ରକ୍ଷ୍ ଧାତୁ+କରଣ. ଅ )—ଡଙ୍ଗାର
Potaraksha ସୁକାଣୀ ବା ମଙ୍ଗ—The rudder of a boat.

**ପୋତା**—ସ ବ. ( ପୂ ଧାତୁ+କର୍ତ୍ତୃ. ତୃ; ୧ମା. ୧ବ.)—୧ । ବିଷ୍ଣୁ—
Potā 1. Bishṇu.
୨ । ଯଜ୍ଞାଦି କର୍ମରେ ନିଯୋଜିତ ପୁରୋହିତବିଶେଷ—
2. One of the priests commissioned to officiate at a sacrifice.
ପୁଁତା; ପୋତା ଦେ. ବ. ( ସ. ପ୍ରୋତ୍ଥ )—୧ । ପୋତିବା—
पोतना; तोपना 1. Burying.
ଭିଟା, ପୌତା ୨ । (ସ. ପ୍ରୋତ୍ଥିତ) ଭୂମି ମଧ୍ୟରେ ପୋତା ଥିବା
निव ଘରର, କାନ୍ଥର ବା ଖୁଣ୍ଟର ଅଂଶ; ମୂଳଦୁଆ—
2. Foundation; the part of a wall, pillar etc below the ground level.
ଅଣଗାତେ ଅଣଖସ୍ତ ପକାଇଛ ପୋତା—ସ୍ତ୍ରୀଟୀ, ବୃନ୍ଦାବନଭୂଷଣଗୀତା ।
ବଣ—ଭୂଗର୍ଭରେ ପ୍ରୋଥିତ ( ଧନ )—
Buried; hoarded in a pit ( treasure ).
ପ୍ରାଦେ. ( ବସ୍ତୁର ) ବ—ଅଖା; ବସ୍ତା—Gunny bag.
ପୋତା; ଫୋତା ବୈଦେ. ( ଫା. ଫୋତା )—୧ । ଅଣ୍ଡକୋଷ—
फो(पो)ता 1. Testicle.
୨ । ଅଣ୍ଡକୋଷ ଆଚ୍ଛାଦକ ମାଂସ ଓ ଚର୍ମ—2. Scrotum.

**ପୋତା(ତେ)ଇବା**—ଦେ. କ୍ରି—( ପୋତିବା କ୍ରିୟାର ଣିଜନ୍ତରୂପ—
Potā(te)ibā The causative form of Potibā. )
ପୌତାନ ଅନ୍ୟଦ୍ୱାରା ପୋତିବା କ୍ରିୟା କରାଇବା—
तोपवाना; पोतवाना To cause to be buried or planted.
ନଗରଦ୍ୱାରେ ପୂର୍ଣ୍ଣକୁମ୍ଭ ଥପାଇଲେ
ପୋତାଇ ରମ୍ଭାତରୁ ତୋରଣ ବାନ୍ଧିଲେ—କୃଷ୍ଣସିଂହ, ମହାଭାରତ. ଶାନ୍ତି

**ପୋତା ଦେଶ**—ଦେ. ବ. (ଫା. ଫୋତା+ସ. ଦେଶ)—କୋଡ଼ଗାତ—
Potā desa Groin; hip-joint.
କୁଁଚକୀ କାହାର ପୋତାଦେଶେ ବାଣ ଗୋଡ ହୋଇ
काञ्च ଉରୁରେ ଗୋଡ ତୋଡ ଉଡେ ନ ପଳାଇ—କୃଷ୍ଣସିଂହ. ମହାଭାରତ. କର୍ଣ୍ଣ

**ପୋତାଧାନ**—ସ. ବ. ( ପୋତ+ଆଧାନ )—ମାଛ ଜାଆଁଳଙ୍କ ମଳା
Potādhāna (ହ୍ର. ଶ. )—A shoal of fry of fishes.

**ପୋତାଧିଷ୍ଠାନ**—ସ. ବ. ( ୬ଷ୍ଠୀ ତତ୍; ପୋତ+ଅଧିଷ୍ଠାନ )—ପୋତା-
Potādhishṭhāna ଶ୍ରୟ (ଦେଖ)—Potāśraya ( See )

**ପୋତାଧ୍ୟକ୍ଷ**—ସ. ବ. ( ୬ଷ୍ଠୀ ତତ୍; ପୋତ+ଅଧ୍ୟକ୍ଷ )—ପୋତ ନାୟକ
Potādhyaksha ( ଦେଖ )—Potanāyaka ( See )

**ପୋତା ନୋତା (ଲୋଟା) ନିଧି ନିଖାତ**—ଦେ. ବ. ( ସବୁତର ଶବ୍ଦ,
Potā notā (lotā) nidhi nikhāta କବଲା ଆଦିରେ ବ୍ୟବହୃତ ଶବ୍ଦସମୂହ)—(ବିକ୍ରି ହେଉଥିବା ସମ୍ପତ୍ତିରେ ) ଭୂଗର୍ଭରେ ଥିବା ଓ ଭୂପୃଷ୍ଠରେ ଥିବା ସବୁପ୍ରକାର ଧନ—Every kind of riches found below or above the ground
(ପୋତା ନୋତା—ଅନ୍ୟରୂପ) (of the conveyed property ).

**ପୋତାମୁହାଁ**—ଦେ. ବିଣ. ପୁଂ—ଯେଉଁ ବ୍ୟକ୍ତି ମୁହଁକୁ ସର୍ବଦା ତଳକୁ ନୁଆଇଁ ଥାଏ—Having a down-cast face; one who always turns his face towards the ground.
Potāmuhāṅ
ପୌତାମୁଖୋ
**घोघनमुहँ वाला**
( ପୋତାମୁହାଁ—ସ୍ତ୍ରୀ ) [ ଦ୍ର—ଏମାନେ କପଟୀ ଓ ଧୂର୍ତ୍ତ ଥିବାର ଲୋକଙ୍କର ବିଶ୍ୱାସ । ]

**ପୋତା ଯେତେ ଉଭା ତେ(ସେ)ତେ**—ଦେ. (ପ୍ରବଚନ)—୧ । ଯେଉଁ ଘରର କାନ୍ଥ ବା ଖୁଣ୍ଟ ଭୂମି ଉପରକୁ ଯେତେ ଉଠିଥାଏ ଭୂମି ତଳେ ମୂଳହୁଆ ସେତିକି ଥାଏ—1. A house having its foundation below the ground equal to the structure above it.
Potā jete ubhā te(se)te
**भीतर बाहार एक**
୨ । (ଲକ୍ଷଣାର୍ଥ) ଯେଉଁ ବ୍ୟବସାୟୀ ବ୍ୟକ୍ତି ବାଣିଜ୍ୟରେ ଯେତେ ମୂଳଧନ ବାହାରେ ଲଗାଇ ଥାଏ, ଅସମୟ ପାଇଁ ତାହାର ଘରେ ସେତିକି ପାଣ୍ଠି ମଧ୍ୟ ଜମା ରଖିଥାଏ—
2 (figurative) A trader who has as much cash in reserve (for unforseen contingencies) as he has invested in trade.
[ ଦ୍ର—ଯେଉଁ ଗୃହର ପୋତା ଯେତେ ଉଭା ତେତେ ସେହି ଗୃହ ଖୁବ୍ ମଜବୁତ ଓ ସ୍ଥାୟୀ ହୁଏ । ଅତଏବ ଯେଉଁ ବ୍ୟକ୍ତି ଯେତେ ଟଙ୍କା ବାହାରେ ଖଟାଇଥାଏ, ଘରଭିତରେ ଯେବେ ସେତିକି ଟଙ୍କା ଜମା ରଖିଥାଏ ତେବେ ଏପରି ଉପମା ଦିଆଯାଏ ଓ ସେ ବ୍ୟକ୍ତି ସହଜରେ ବ୍ୟବସାୟରେ ହାରିଯାଏ ନାହିଁ । ]

**ପୋତାରୋହୀ**—ସଂ. ବିଣ. ପୁଂ—ଜାହାଜରେ ଚଢ଼ି ଯାତ୍ରା କରୁଥିବା—Performing journey in a ship.
Potārohi
(ପୋତାରୋହିଣୀ—ସ୍ତ୍ରୀ) ସଂ. ବି.—ଜାହାଜର ଯାତ୍ରୀ—The passenger on board a ship.

**ପୋତାଶ୍ରୟ**—ସଂ. ବି.—(୬ଷ୍ଠୀ ତତ୍, ପୋତ+ଆଶ୍ରୟ, ତୁଳ ଇଂ.ପୋର୍ଟ୍) ଜାହାଜର ଆଶ୍ରୟ ନେବାର ସ୍ଥାନ; ବନ୍ଦର—Port; harbour; haven.
Potāśraya

**ପୋତି**—ଦେ. ବି.—ପୁତି (ଦେଖ)
Poti Puti (See)
ବାଳଙ୍କ ଗଳାରେ ପୋତି
ଯାଉ ହେଲ ଉପହାସରେ—ଉପେନ୍ଦ୍ର. ଗୀତଲହରୀ ।

**ପୋତିବା**—ଦେ. କ୍ରି. ( ସଂ. ପ୍ରୋଥ୍ ଧାତୁ )—୧ । ଭୂଇଁରେ ଗାତ ଖୋଳି ଗାତରେ କୌଣସି ବସ୍ତୁକୁ ରଖି ତହିଁ ଉପରେ ମାଟି ଘୋଡ଼ାଇବା; ଭୂ-ଗର୍ଭରେ ପୁରାଇବା; ପ୍ରୋଥିତ କରିବା, ଭୂଗର୍ଭନିହିତ କରିବା—1. To bury; to inter.
Potibā
ପୁତା, ପୁଁତା
**तोपना, पोतना, गाड़ना**
ଅଷ୍ଟକ ବୋଇଲେ ଯେ ହୋଇଯାଏ ମୃତ
ପେଡିକୁ ପୋତନ୍ତି ବା ତାହାକୁ ଭୂଗତ—କୃଷ୍ଣସିଂହ, ମହାଭାରତ. ଆଦି ।
୨ । ( ମୁହଁ ) ଭୂମି ଆଡ଼କୁ ବୁଲାଇବା, ତଳକୁ କରିବା—
2. To turn towards the ground (said of the face).
ଉଠିବ ଯାଏ ପୁଣି ପୋତିଦେଲେ ମଥା—କୃଷ୍ଣସିଂହ, ମହାଭାରତ. ସଭା ।
୩ । ( କୌଣସି ମନୁଷ୍ୟ ଉପରେ ବାଣ ଆଦି ବୃଷ୍ଟି କରି ତଦ୍ଦ୍ୱାରା ତାକୁ ) ଆଚ୍ଛାଦିତ କରିବା—3. To cover over; to heap up anything over a person
( ଯଥା—ରାମଚନ୍ଦ୍ର ରାକ୍ଷସମାନଙ୍କୁ ବାଣରେ ପୋତି ପକାଇଲେ )
୪ । ଗର୍ତ୍ତ ଆଦିକୁ ମୃତ୍ତିକା ଆଦିଦ୍ୱାରା ପୂର୍ଣ୍ଣ କରି ଭୂମିର ସମତୁଲ କରିବା—4. To fill up ( a hole or tank ).
୫ । (ଲକ୍ଷଣାର୍ଥ) ବହୁ ପରିମାଣରେ କୌଣସି ବସ୍ତୁଦ୍ୱାରା କୌଣସି ବ୍ୟକ୍ତିଙ୍କୁ ଆକ୍ରାନ୍ତ କରିବା—5 ( figurative ) To overwhelm a person ( with too much of anything).
( ଯଥା—ସେ ତାକୁ ମାଡ଼ ଗାଳିରେ ପୋତି ପକାଇଲା । )
୬ । ରୋପଣ କରିବା; ଭୂ-ଗର୍ଭରେ ଗାତ ଖୋଳି ମୂଳକୁ ସେ ଗାତରେ ବସାଇବା (ଯଥା,ଖୁଣ୍ଟ ଓ ଗଛ)—6 To plant.
୭ । ପୋତିବା ପଦାର୍ଥକୁ ଘୋଡ଼ାଇ ପକାଇଲା ଭଳି କୌଣସି କଳଙ୍କ ଆଦିକୁ ପ୍ରକାଶ ନ କରିବା—
7. To hide or hush up a secret.

**ପୋତୁଲି**—ପ୍ରାଦେ. ( ମେଦିନୀପୁର ) ବି—ବେଙ୍ଗଲା—Thrashing of paddy-sheaves by bullocks.
Potuli

**ପୋତେଇଶୁଣୀ**—ଦେ. ବି. ସ୍ତ୍ରୀ. ( ସ୍ତ୍ରୀଲୋକମାନଙ୍କ ଗାଳି )—ଯେଉଁ ସ୍ତ୍ରୀ ଭୂଗର୍ଭରେ ପୋତା ହୋଇଥିବା ଶବକୁ ଖାଏ, ଡାହାଣୀ A witch (who devours dead bodies buried in the ground).
Poteisuṇi
**डायन**
ଡାଇନୀ

**ପୋତ୍ର**—ସଂ. ବି. (ପୂଙ୍ ଧାତୁ—ପବିତ୍ର କରିବା + କରଣ. ତ୍ର)—
Potra ୧ । ଶୂକରର ମୁଖାଗ୍ର; ଘୁଷୁରି ଥୋମଣି—
1. The snout of a hog.
୨ । ହଳମୁଖ; ଲଙ୍ଗଳର ଫାଳ; ଲଙ୍ଗଳ ଲୁହା—
2 Ploughshare; plough-point.
୩ । ବଜ୍ର—3. Thunderbolt.
୪ । କ୍ରୋଡ଼—4. Lap, bosom.
୫ । ବହିତ୍ର; ଆରିଲା—5. Rudder, oar.
୬ । ନାବ (ହ୍ର. ଶ.)—6 Boat.

**ପୋତ୍ରାୟୁଧ**—ସଂ. ବି. (ବହୁବ୍ରୀହି; ପୋତ୍ର+ଆୟୁଧ)—ଘୁଷୁରି, ବାରୁହା—Hog; boar.
Potrāyudha

**ପୋତ୍ରୀ**—ସଂ. ବି. ପୁଂ (ପୋତ୍ର+ଇନ୍, ୧ମା. ୧ବ.)—ଘୁଷୁରି, ଶୂକର—Hog.
Potri

**ପୋଥକୀ**—ସଂ. ବି.—ଶିଶୁମାନଙ୍କର ଆଖିଡୋଳାରେ କଣ୍ଡୂ ଓ ସ୍ରାବଯୁକ୍ତ ରଙ୍ଗ ସୋରିଷ ତୁଲ୍ୟ ଏକପ୍ରକାର କଷ୍ଟପ୍ରଦ ପିଡ଼ିକା ବା ବ୍ରଣ (ଦ୍ରବ୍ୟଗୁଣ କଳ୍ପଦ୍ରୁମ)—An eye-disease of infants.
Pothakī

**ପୋଥା(ଥି)**—ଦେ. ବି. (ସଂ. ପୁସ୍ତୀ, ପ୍ରା. ପୋଥି, ସଂ. ପୁସ୍ତିକା; ପ୍ରା. ପୋତ୍ଥିଆ)—୧ । ପୁସ୍ତକ; ବହି—
Pothā(thi)
ପୁଁଥି, ପୋଥା **पोथा, पोथि** 1. Book; a volume.
୨ । ତାଳ ପତ୍ରରେ ଲେଖା ଗ୍ରନ୍ଥ—
2. Palm-leaf manuscript.

[ଦ୍ର—ତାଳପତ୍ରର ଛୋଟ ପୋଥିକୁ ଖେଦା ଓ ବଡ଼ ପୁସ୍ତକକୁ ଗୋଥା ବା ପୋଥି ବୋଲାଯାଏ । ]

୩ । (ପୋଥିରେ ଲେଖା ହୋଇଥିବାରୁ)—ଶାସ୍ତ୍ର; ଧର୍ମଶାସ୍ତ୍ର—3. Scripture; religious treatise.

ପୃଥ୍ୱୀର ବୋଇଲେ ଜାଣ ସବୁ ପୋଥା,
କହନ୍ତ ପରୁରୁଛ ମୋ କହିବା କଥା । କୃଷ୍ଣହରି ମହାଭାରତ ସଭା ।

୪ । ପୋଥିରେ ଲେଖା ଥିବା ବିଷୟ ପରି ଦୀର୍ଘ ବିଷୟ—4. Any thing long like a narrative in a book.

(ଯଥା— ମୋ ଦୁଃଖ କହିଲେ ଗୋଟାଏ ପୋଥି ହେବ ।)

**ପୋଥି ଗାଦି**—ଦେ. ବି.—୧ । ଭାଗବତ ଗାଦି; ଧର୍ମ ପୁସ୍ତକମାନ ଏକତ୍ର ରଖାଯାଇ ପ୍ରତିଦିନ ପୂଜା କରାଯାଉଥିବା ସ୍ଥାନ—
Pothi gādi
**पोथीकी गद्दी, वेहल** 1 A collection of scriptures put on a seat and worshiped daily.

୨ । ଲାଇବ୍ରେରୀ, ବହୁ ଗ୍ରନ୍ଥ ସଂଗ୍ରହ—2. Library.

**ପୋଥି ଗୋସା(ସେ)ଇଁ**—ଦେ. ବି.—ଦେବତାରୂପେ ପ୍ରତିଦିନ ପୂଜିତ ପୋଥି ଗାଦି, ଭାଗବତ ଗୋସାଇଁ—
Pothi gosā(se)iñ
**पोथि गोसाइँ** A collection of scriptures or palm-leaf manuscripts worshipped as a Deity.

**ପୋଥି ପତ୍ର**—ଦେ. ବି. (ଏକାର୍ଥ ବୋଧକ ସହଚର ଶବ୍ଦ) —
Pothi patra ପୁସ୍ତକ ଆଦି; ବହି ପତ୍ର—Books. etc.
(ପୋଥି ପତର, ପୋଥି ପାଞ୍ଜି—ଅନ୍ୟରୂପ) পুঁথি টুঁথি **पोथिपत्तर**

କାହିଁ ମାହାତ୍ମ୍ୟ ଗାଥା ମାହାତ୍ମ୍ୟ
ପୋଥି ପତର ବୋଲୁ ମାହାତ୍ମ୍ୟ—ଭଗ ।

**ପୋଥି ପାଠ**—ଦେ. ବି.—୧ । ପୁସ୍ତକସ୍ଥ ଅନାୟତ୍ତ ବିଦ୍ୟା—
Pothi pātha 1. Learning contained in books only
পুঁথি বিদ্যা **पोथि पाठ** but not mastered

୨ । ପୁସ୍ତକରେ ଲେଖା ହୋଇଥିବା ବିଷୟ—2. Matters contained in books.

(ପୋଥି ବିଦ୍ୟା—ଅନ୍ୟରୂପ)

**ପୋଥି ପୂଜା**—ଦେ. ବି.—ପୋଥି ବା ପୁସ୍ତକକୁ ସତ୍ୟପୀରଙ୍କ ଆଖ୍ୟାନ ପାଠ କରି ସତ୍ୟନାରାୟଣଙ୍କ ପୂଜା କରିବା ରୀତି—
Pothi pūjā
**पोथि पुजा** Worship of the Satyanārāyaṇa Deity by reciting narratives and songs from a book.

[ଦ୍ର—ପାଲା ତଳେ ନୋଟ୍ ଦେଖ ।]

**ପୋଥି ବିଡ଼ା**—ଦେ. ବି—ବନ୍ଧା ହୋଇଥିବା ତାଳପତ୍ରର ଗୋଛା—
Pothi birḍā A bundle of palmleaf manuscripts
**पोथिका गड्डा** bound together.

**ପୋଦ(ଦି)ନା (ଇତ୍ୟାଦି)**—ଦେ. ବି —ପୁଦିନା ଇତ୍ୟାଦି (ଦେଖ)
Poda(di)nā (etc) Pudanā etc (See)

**ପୋଦା(ଦ୍ଦା)ର**—ବୈଦେ. ବି. (ଫା. ଫୌତା=ଭୁକର, ଖଜଣା; ଫୌତାଦାର=ଯେ ସରକାରୀ ଟଙ୍କା ପରୀକ୍ଷା କରେ)—
Podā(ddā)r
পোদ্দার ୧ । ଟଙ୍କା କୃତ୍ରିମ କି ଭଲ ତାହା ପରୀକ୍ଷା କରିବା ବ୍ୟକ୍ତି—
**पोद्दार** 1. A person who tests coins; poddar.

୨ । ତହବିଲଦାର; କର୍ମଗୃହ—2. A cash keeper; cashier.

୩ । ବଣିଆ; ସ୍ୱର୍ଣ୍ଣ ରୌପ୍ୟ ବ୍ୟବସାୟୀ ବଣିକ—3 Goldsmith; jeweller.

୪ । ମୁଦ୍ରା ବ୍ୟବସାୟୀ; ଅର୍ଥବଣିକ —4 Money-changer; banker.

**ପୋଦା(ଦ୍ଦା)ରି**—ବୈଦେ. ବି. (ଫା)—ପୋଦାରର କର୍ମ—
Podā(ddā)ri The work or post of a Poddār.
পোদ্দারী **पोद्दारी**

**ପୋପ୍**—ବୈଦେ. ବି. (ଇଂ)—ଖ୍ରୀଷ୍ଟିୟାନ୍‌ମାନଙ୍କ ରୋମାନ୍ କାଥଲିକ୍ ସମ୍ପ୍ରଦାୟର ଧର୍ମଗୁରୁ—Pope.
Pop
পোপ [ଦ୍ର—ଏହାଙ୍କ ଆସ୍ଥାନ ଇଉରୋପର ଇଟାଲୀ ଦେଶର ରୋମ୍
**पोप** ନଗରରେ । ଖ୍ରୀଷ୍ଟୀୟ ଚତୁର୍ଦ୍ଦଶ ଶତାବ୍ଦୀ ପର୍ଯ୍ୟନ୍ତ ସଭ୍ୟଜଗତର ସବୁ ଖ୍ରୀଷ୍ଟିୟାନ୍‌ମାନଙ୍କର ଏ ଧର୍ମଗୁରୁ ଥିଲେ, କିନ୍ତୁ ଖ୍ରୀ. ପଞ୍ଚଦଶ ଶତାବ୍ଦୀରେ ଜର୍ମାନୀରେ ଲୁଥର୍ ନାମକ ଜଣେ ଖ୍ରୀଷ୍ଟିୟାନ୍ ଧର୍ମସଂସ୍କାରକଙ୍କ ପ୍ରଚାରିତ ଶିକ୍ଷା ଯୋଗୁଁ କେବଳ ରୋମାନ୍ କାଥଲିକ୍ ସମ୍ପ୍ରଦାୟ ଉପରେ ପୋପଙ୍କର ଆଧିପତ୍ୟ ରହିଲା । ମହାରାଜାମାନଙ୍କ ଅଭିଷେକ ଓ ବୈଦେଶିକ ବନ୍ଧ ପରି ପୋପଙ୍କ କାର୍ଯ୍ୟମାନ ଆଡ଼ମ୍ବର ସହକାରେ ସମାହିତ ହୁଏ ଓ ପୋପ୍‌ଙ୍କ ନଗରକୁ ଭାଟିକାନ୍ ବୋଲାଯାଏ । ]

**ପୋପରା**—ଦେ. ବିଣ. (ସଂ. ପ୍ର+କ୍ଷର ଧାତୁ=କ୍ଷୀଣ ହେବା)—
Poparā ୧ । ଫମ୍ପା; ଶୂନ୍ୟ—1. Hollow.
ফাঁপবা **पोपला** ୨ । ପୋରହା; ଜୀର୍ଣ୍ଣ—2. Worn out.

**ପୋ(ପୌଁ)ପେଇ ଅମାସ୍ୟା**—ପ୍ରାଦେ. (ଗଞ୍ଜାମ) ବି. (ସଂ. ପୁପ ପାପରୁ)—
Po(poñ)pei amāsyā ପିପେଇ ଅମାବାସ୍ୟା (ଦେଖ)
Pipei amābāsyā (See)

[ପୋପେଁ ଅମାସ୍ୟା, ପୋପେଇ ଅମାବାସ୍ୟା, ପୋପେଇ ଅମା(ମେ)ଇସା—ଅନ୍ୟରୂପ].

**ପୋପେୟା**—ବୈଦେ. ବି—ପପୟା (ଦେଖ)
Popeyā Papayā (See)

**ପୋବାର**—ଦେ. ବି—୧ । ପଶାଖେଳର ଦାନବିଶେଷ; ୧୩ ସଂଖ୍ୟକ ଦାନ; ପୁଅବାର—1. A throw of dice resulting in the turning up of points 13.
Pobāra
पबार
**पबारह** [ଦ୍ର—ଗୋଟିଏ କାଠିରେ ୬, ଅନ୍ୟଟିରେ ୬ ଓ ଅନ୍ୟ ଗୋଟିକରେ ୧ ବିନ୍ଦୁ (ବା ପୁଅ) ପଡ଼ିଲେ ଏହି ଦାନ ହୁଏ । ]

୨ । (ଲକ୍ଷଣାର୍ଥ) ସୁଯୋଗ—2. (figurative) Opportunity.

୩ । ଆନନ୍ଦ ବା ମଉଜର ବେଳ—3. Time of cheer or rejoicing.

୪ । ସୌଭାଗ୍ୟ—4. Good luck.

(ପୋ ବାଆର, ପୁଅ ବାଆର, ପଅ ବାଆର—ଅନ୍ୟରୂପ)

**ପୋବୁଆ**—ଦେ. ବି. (ସଂ. ପର୍ବତ)—୧ । ପର୍ବତ ମତ୍ସ୍ୟ; ଏକପ୍ରକାର ବାଲି ନ ଥିବା ସାନ ମାଛ—1. A small fish without scale; butter fish.
Pobuā

୨ । ସାନ ନାଳଆମାଛ ବା ବାଳଅ ପଡ଼କା—
2. Small Boal fish.
[ପବୁଆ, ପୋବା, ପବଡା(ଦା) ପୋବା, ପୋବଦା—ଅନ୍ୟରୂପ]

**ପୋମେଡ୍**—ବୈଦେ. ବ. ( ଇଂ )—ଲହୁଣୀ ପରି କୋମଳ, ତୈଳମୟ ଓ
Pomed କାଠିଆ ଲେପବିଶେଷ— Pomatum; pomade.
(ପୋମେଟମ୍—ଅନ୍ୟରୂପ) पोमोटम **पमेटम**

**ପୋୟ୍(ୟେ)ଲା**—ଦେ. ବ. (ପ୍ରାଚୀନ ପଦ୍ୟ)— ପୋହଲା (ଦେଖ)
Poya(ye)la Pohala (See)
ଦେଖ ଦେଖ ଗୋ ସ୍ୱଜନ ତୋଳା
କ ଏ ମାଣି କ୍ୟଡ ରଙ୍ଗ ପୋୟଲା । ଧ୍ରାଟୀ, ରହସ୍ୟମଞ୍ଜରୀ ।

**ପୋରଆ(ହା)**— ଦେ. ବିଣ ( ସଂ. ପୁରାତନ )—
Poria(ha) ଧଡ଼ଡ଼ା, ଅତି ପୁରୁଣା ହେବାରୁ ଜୀର୍ଣ୍ଣ—
**पुराना** Old and worn out.
( ଯଥା—ପୋରଆ ସୂତା, ପୋରଆ ଲୁଗା ଇତ୍ୟାଦି । )

**ପୋରୁଅ(ହ)**—ଗ୍ରା. (ଇତର) ବି—୧ । ପୋଡୁଅ ( ଦେଖ )
Porua(ha) 1. Pordua ( See )
୨ । ପୋଳୁଅ ( ଦେଖ )—୨ Polua ( See )

**ପୋରୁଆଁ (ହାଁ)**—ଗ୍ରା (ଇତର) ବିଣ—ପୋଢୁଆଁ ( ଦେଖ )
Poruan(han) Pordhuan ( See )

**ପୋର୍ଟ**—ବୈଦେ. ବ. (ଇଂ)—ସମୁଦ୍ର ଉପକୂଳସ୍ଥ ବାଣିଜ୍ୟର କେନ୍ଦ୍ର
Port পোর্ট **पोर्ट** ନଗର, ବନ୍ଦର—Port

**ପୋର୍ଟ ଅଫିସର**—ବୈଦେ· ବ ( ଇଂ )—
Port aphisar ବନ୍ଦରର କର୍ମ ବୁଝାସୁଝା କରିବା ରାଜକର୍ମଚାରୀ—
পোর্ট আফিসর **पोर्ट अफसर** Port officer.

**ପୋର୍ଟ ଟ୍ରଷ୍ଟ**—ବୈଦେ. ବ. ( ଇଂ )—ବନ୍ଦରର ତଦାରଖ ପାଇ ଗଠିତ
Port trasht পোর্টট্রাষ্ট **पोर्टट्रस्ट** ସଙ୍ଘ—Port trust.

**ପୋର୍ଟମାନ୍**—ବୈଦେ. ବ. (ଇଂ ଓ ଫ୍ରେଞ୍ଚ୍. ପୋର୍ଟ ମାଣ୍ଟୋ —
Port man ଚମଡ଼ା ବାକ୍ସ; ଲୁଗା ପଟା ରଖିବା ପାଇଁ ବ୍ୟବହୃତ
পোর্ট মেন ଚମଡ଼ାର ବାକସ—Leathern box; port
**पोर्ट मैन** manteau
[ପୋର୍ଟ ମେନ , ପୋର୍ଟ ମ୍ୟାନ୍ ପୋର୍ଟ ମାଣ୍ଟ(ଣ୍ଟୋ)—ଅନ୍ୟରୂପ]
[ଦ୍ର—ଏ ମଦ ପ୍ରଥମେ ସ୍ପେନ୍ ଦେଶର ପୋର୍ଟୁଗାଲ ଓ ଓପୋର୍ଟୋ
ନଗରମାନଙ୍କରେ ପ୍ରସ୍ତୁତ ହେଉ ଥିବାରୁ ସେହି ନଗରମାନଙ୍କ ନାମ
ଅନୁସାରେ ଏ ମଦର ନାମକରଣ ହୋଇଅଛି ।]

**ପୋର୍ଟ ୱାଇନ୍**—ବୈଦେ· ବ ( ଇଂ )—
Port wain ସ୍ପେନ୍ ଦେଶରେ ପ୍ରସ୍ତୁତ ଉତ୍କୃଷ୍ଟ ମଦ୍ୟ ବିଶେଷ—
পোর্ট ওয়াইন্ **पोर्ट वाइन** Portwine.
(ପୋର୍ଟ ଉଆଇନ୍—ଅନ୍ୟରୂପ)

**ପୋର୍ଟ ହୋଲ୍**— ବୈଦେ. ବ ( ଇଂ )—
Port hol ଜାହାଜର ତଳ ମହଲରେ ଥିବା ଗୋଲାକୃତି ବା ଝରକା—
পোর্ট হোল **पोट होल** Porthole.

**ପୋଲ୍**—ବୈଦେ ବ. (ଇଂ)—୧ । ଭୂମିର ଇଂରାଜି ଦୈର୍ଘ୍ୟ ମାପ-
Pol ବିଶେଷ—1 Pole; a unit of lineal English
পোল **पोल** land meausre.

[ ଦ୍ର—ଇଂରାଜି ପୋଲ୍ ଶବ୍ଦର ଅର୍ଥ ବାଉଁଶ ଦଣ୍ଡ ବା ପଦକା ।
ଇଂରାଜି ପୋଲ୍‌ର ଲମ୍ବ=୫½ ଗଜ । ୧ ବର୍ଗ ପୋଲ=୩୦¼ ବର୍ଗ
ଗଜ । ୪୦ ବର୍ଗ ପୋଲ୍=୧ ରୁଡ୍ । ୪ ରୁଡ୍=୧ ଏକର । ]
୨ । ପୋଲାଣ୍ଡ ଦେଶବାସୀ ବ୍ୟକ୍ତି—
2 A Pole; inhabitant of Poland.
୩ । ପୃଥିବୀର କଳ୍ପିତ ମେରୁ ଦଣ୍ଡର ଅଗ୍ର; ମେରୁ—
3. The pole of the earth

**ପୋଲ**—ସ ବ ଫୁଲୁକା ରୁଟି (ହି. ଶ)—
Pola A kind of puffed up pastry cake
পুল **पूल** ବୈଦେ. ବ (ଫା. ପୁଲ୍)—ପାଣି ଯିବାର ସୁଡ଼ଙ୍ଗ, ଶଙ୍ଖ—
Bridge; culvert; sluice
ଦେ. ବ.(ସଂ. ଫାଁଡ)--୧ । ବାଉଁଶ ବା ନଳ ମଧ୍ୟସ୍ଥ ଲମ୍ବ ଛିଦ୍ର—
1. Long hole in a tube.
( ଯଥା—ଯେଉଁଠେ ବାଉଁଶ ସେଉଁଠେ ପୋଲ । )
୨ । ବଡ଼ କଣା, ବିବର—
2 A big hole or pit; chasm
୩ । ଶୂନ୍ୟ ସ୍ଥାନ—3 Empty space
ফাম্পা, ফাঁপর ବିଣ—୧ । ପୋଲ୍ଲ; ଫମ୍ପା—
**पोला** 1. Empty; hollow.
ନଦାମଣି ଭୂମେ ବନ୍ଧା ନଥ ପୋଲ । ଧ୍ୟାନାଥ. ଦରବାର ।
୨ । ଅନ୍ତଃସାରହୀନ, ନିଃସାର—୨ Hollow inside;
unsubstantial.
ମେ ତେ ଯେତେ ବୋଲୁଥିବ ବୋଲ
ମେ ବଡ଼ପ୍ପା ଯାକଇ ପୋଲ—ଭଗ ।

**ପୋଲ(ଲେ)ଇ**—ଦେ ବ—୧ । ପଲେଇ, ରାଜସେବକ ବିଶେଷ—
Pola(le)i 1 Name of a class of king's servants.
(ପଲେଇ, ପଲ୍ଲଇ—ଅନ୍ୟରୂପ) ୨ । ଶୂଦ୍ରମାନଙ୍କର ବଂଶୋପାଧି-
ବିଶେଷ—2. Family-title of a some Sudras.
[ ଦ୍ର—ପୋଲେଇ ବା ପୁଲେଇ ଶୂଦ୍ରମାନଙ୍କ ବଂଶୋପାଧି
ଅଟେ । ଏମାନେ ଆପଣାର ବଂଶୋପାଧିକୁ ବଦଳାଇ କ୍ରମଶଃ
ମହାପାତ୍ର, ଖଣ୍ଡାଏତ, କରଣ ଓ କ୍ଷତ୍ରିୟ ହେବା ପାଇଁ ଚେଷ୍ଟା
କରିବାର ଦୃଶ୍ୟ ଓଡ଼ିଶାରେ ବିରଳ ନୁହେଁ ।]

**ପୋଲକାଣୁଣୀ**—ଦେ. ବ. ସ୍ତ୍ରୀ—( ସଂ. ପୌଲକାଣିମ )— ଗ୍ରାମଦେବତା
Polakasuni ବିଶେଷ—Name of a villags Goddess.

**ପୋଲା**—ପ୍ରାଦେ (ବାଲେଶ୍ୱର) ବି—ପୁଳାଏ —
Pola A bundle or bunch.

**ପୋଲ୍**—ଦେ. ବିଣ —(ସଂ.ପ୍ର+ସ୍ଫାର ବା ସ୍ଫାୟ ଧାତୁ=ସ୍ଫୀତ ହେବା; ସଂ.
Pola ପୋଲ=ଫୁଲୁକାରୁଟୀ(ହି.ଶ)—୧ ।ଫମ୍ପା—1. Hollow.
(କ୍ୱଚିତ୍—ବିପରୀତ) ୨ । ଅନ୍ତଃସାରଶୂନ୍ୟ—2. Emptied of
ফাঁপা **पोला** the inner substace or kernel
୩ । ଅସାର; ସାରହୀନ—3. Unsubstantial.
୪ । ଯାହା ପାଇଁ ଧନ ଲାଗେ ନାହିଁ, ଫୋକଟ୍; ମାଗଣା; ଅଯତ୍ନ-
ଲବ୍ଧ; ମୋଫତ—4. Gratis; gratuitous; free;
got without labour or trouble.

ग़ैररजिस्टरी, उलफो ୬ । ରେଜେଷ୍ଟ୍ରୀ ହୋଇ ନଥିବା (ଦସ୍ତାବଜ)—
5. Unregistered (document)
(ଯଥା—ପୋଲ୍ ତମସୁକ, ପୋଲ୍ କବ(ବା)ଲା, ପୋଲ୍ ଦଲିଲ, ପୋଲ୍ ଦସ୍ତାବଜ )

**ପୋଲାଉ(ଓ)**—ବୈଦେ. ବ—ଫା. ପୁଲାଓ, ପଲାଓ, ଭୁଲ. ସ. ପୁଲାକ; Polāu(o) ପଲାନ୍ନ)—ପଲାଉ (ଦେଖ)—Palāu (See)
ପୋଲାଓ पुलाव

**ପୋଲ ଖିଆ**—ଦେ. ବଣ—ଯେଉଁ ବ୍ୟକ୍ତି ପର ଉପରେ ପଡ଼ି ମାଗଣା Polā khiā ଭୋଜନ କରେ, ପରାନ୍ନଭୋଜୀ, ମୋଫତଖିଆ, ମୋଫତ (ପୋଲଖାଉଆ—ଅନ୍ୟରୂପ) ଖୋର—Hanger on; dependent मुफतखोर, परमूले फलाहारी on another's bounty for ପରଖାଓ one's food; living at another's expense.

**ପୋଲଣ୍ଡ**—ବୈଦେ. ବ (ଇଂ) (ନାମ)—ୟୁରୋପର ଦକ୍ଷିଣ ପଶ୍ଚିମସ୍ଥ କ୍ଷୁଦ୍ର Poland ରାଜ୍ୟ ବିଶେଷ—Poland; a country of (ପୋଲଣ୍ଡ୍—ଅନ୍ୟରୂପ) ପୋଲାଓ पोलैंड Europe.
[ଦ୍ର—ଏହି ରାଜ୍ୟ ପୂର୍ବେ ରୁଷିଆ ସାମ୍ରାଜ୍ୟର ଅଧୀନ ଥିଲା; କିନ୍ତୁ ସମ୍ପ୍ରତି ସ୍ୱତନ୍ତ୍ର ସାଧାରଣତନ୍ତ୍ର ରାଜ୍ୟ ହୋଇଅଛି ।]

**ପୋଲନ୍ତ**—ପ୍ରଦେ. (ଗଞ୍ଜାମ) ବଣ—ହାଲୁକା ବା ଫସଫୁସିଆ ହୋଇ Polānta ଚଷା ହୋଇଥିବା (ଭୂମି)—(soil) Cultivated in such a manner as to make it light or porous and well pounded; well cultivated.

**ପୋଲ ପଇଠ**—ଦେ. ବ. ( କଚେରୀ )—ଋଣ ବାବଦକୁ କିଛି ନଗଦ Polā paitha ଟଙ୍କା ପଇଠ ଦେବା ପାଇଁ ଖାତକ ଅକ୍ଷମ ଥିବା (ପୋଲ ପୈଠ, ପୋଲ୍ ଅସୁଲ — ଅନ୍ୟରୂପ) ସ୍ଥଳେ ତମସୁକର ମିଆଦ ବଜାଏ ରଖିବାପାଇଁ ଖାତକଠାରୁ ନଗଦ ଧନ खालीवसुलोब्ब ନ ନେଇ ଋଣ ତମସୁକ ପୃଷ୍ଠରେ ଯେଉଁ ଅସୁଲ ପ୍ରସଙ୍ଗ ଲେଖି ଦିଏ—A formal endorsement of payment on the back of a bond to save limitation though no actual payment is made by the debtor

**ପୋଲ ଫାଙ୍କିଆ**—ଦେ, ବଣ—୧ । ଦାୟିତ୍ୱ ଜ୍ଞାନଶୂନ୍ୟ—
Polā phānkiā 1. Irresponsible.
୨ । କର୍ମହୀନ—3. Idle; doing nothing
୩ । ଯେ ମାଗଣାରେ ବା ଆପଣାକୁ ପରିଶ୍ରମ ନ କରାଇ ପରଦ୍ୱାରା କାମ ଉଠାଇ ନିଏ—3. Getting one's work done without personal trouble or expense.

**ପୋଲରି**—ଦେ, ବ-- (ବଣିଆ ଶବ୍ଦ)—କିଲା (ଦେଖ)
Polāri Kilā (See)

**ପୋଲରେ ଖାଇ ମେଲରେ ଶୋଇବା**—ଦେ (ପ୍ରବଚନ)—୧ । ପରାନ୍ନ Polāre khāi melāre śoibā ଭୋଜନ କରି ପର ଘରେ खाना ईरघाट शोना बीरघाट ଶୋଇବା—1. To dine at the table of others and sleep in the house of others.

୨ । (ଲକ୍ଷଣାର୍ଥ) ବେପରୁଆ ହୋଇ ଚଳିବା; କିଛି ଅର୍ଜନ ନ କରି ପୋଲଫାଙ୍କିଆ ହୋଇ ଚଳିବା—2 (figurative) To live at the expense of other people.

**ପୋଲିକା**—ସ. ବ.—୧ । ପୂଲି (ଦେଖ)
Polikā 1. Pūli (See)
(ପୋଲୀ—ଅନ୍ୟରୂପ) ୨ । ପତଳା ରୁଟି—2 Thin bread.

**ପୋଲିଙ୍ଗ**—ବୈଦେ. ବ. (ଇଂ)—ଭୋଟ୍ ନିଆଯିବା କର୍ମ—
Poling Polling; election
(ପୋଲିଂ—ଅନ୍ୟରୂପ) পোলিঙ্গ पोलिङ्ग

**ପୋଲିଙ୍ଗ ଅଫିସର**—ବୈଦେ. ବ. ( ଇଂ )—ଭୋଟ୍ ନିଆଯାଉଥିବା Poling aphisar ସ୍ଥାନର ତତ୍ତ୍ୱାବଧାରକ କର୍ମଚାରୀ—
পোলিঙ্গ আফিসার पोलिङ्ग अफसर Polling officer.

**ପୋଲିଙ୍ଗ ଷ୍ଟେଶନ**—ବୈଦେ. ବ. (ଇଂ)—ଯେଉଁ ସ୍ଥଳରେ କୌଣସି Poling shtesan ସଦସ୍ୟ ନିର୍ବାଚନ ପାଇଁ ଭୋଟ୍ ସଂଗୃହୀତ ହେଉ (ପୋଲିଂ ଷ୍ଟେଶନ୍—ଅନ୍ୟରୂପ) ଥାଏ—Polling station
পোলিঙ্গ ষ্টেসন पोलिङ्ग स्टेशन

**ପୋଲିଟିକାଲ (ଇତ୍ୟାଦି)**—ବୈଦେ. ବ. (ଇଂ)—ପଲିଟିକାଲ ଇତ୍ୟାଦି Politikāl (etc) (ଦେଖ)—Palitikal etc. (See)

**ପୋଲିସ୍ (ଇତ୍ୟାଦି)**—ବୈଦେ. ବ. (ଇଂ. ପୋଲିସ୍)—
Polis (etc) ପୁଲିସ୍ ଇତ୍ୟାଦି (ଦେଖ)—Pulis etc (See)

**ପୋଲିସୁ**—ବୈଦେ. ପ୍ରାଦେ (ଗଞ୍ଜାମ) ବ.—(ଇଂ. ପୋଲିସ୍)—
Polisu ପୋଲିସ୍—Police.

**ପୋଳୁଅ(ହ)**—ଦେ. ବ.—୧ । (ସ. ପଲବ; ଅନ୍ୟ ସ. ନାମ ପଞ୍ଜରୀ-Polua(ha) ଖେଟ )—ମାଛ ଧରିବା ଉପଯୋଗୀ ବଂଶଶଲାକା (ପୋଳୁଅ, ପୋହଳି, ପୋହୁଳ — ଅନ୍ୟରୂପ) ନିର୍ମିତ, ଗୋଟିଏ ମୁଖ ସରୁ ଛିଦ୍ର ବିଶିଷ୍ଟ ଓ ଅପର ମୁଖ ଚୋକେଇ ପରି ମେଲାଥିବା ଯନ୍ତ୍ରବିଶେଷ—A basket-like পোলো, পলো contrivance or coop made of bamboo टापी laths like an upturned tub open at both ends, one end narrower than the other, which is put in shallow water and the fish inside which are caught by groping with the hands.
[ଦ୍ର—ଏହା ଦୁଇ ପ୍ରକାରର ଦେଖା ଯାଏ । ବାଉଁଶ କାଠିଦ୍ୱାରା ନିର୍ମିତ ପୋଳୁଅକୁ କାଠି ପୋଳୁଅ କହନ୍ତି ଓ ଜାଲଦ୍ୱାରା ଘେରା ହୋଇଥିବା ପୋଳୁଅକୁ ଜାଲ ପୋଳୁଅ (ହି. ଝାପ) କହନ୍ତି । ଅଳ୍ପ ପାଣି ଥିବା ସ୍ଥାନରେ ପୋଳୁଅକୁ ମଡ଼ାଇଲେ ତାହା ଦ୍ୱାରା ଅଧିକୃତ ସୀମାରେ ମାଛଙ୍କୁ ହାତରେ ଦରାଣ୍ଡି ଧରିବାକୁ ହୁଏ ।]

**ପୋଳୁଅ(ହ) ଘଣ୍ଟା**—ଦେ. ବ.—ମାଛ ଧରିବା ଲାଗି ପୋଳୁଅ ମଡ଼ାଇ Polua(ha) ghantā ପୋଖରୀର ପାଣିକୁ ଘାଣ୍ଟିବା—Agitating टापसे घोलमट्टा the water of a tank by throwing (ପୋଳୁଅ ଚକଟା—ଅନ୍ୟରୂପ) 'Polua' for fishing.

ଯାଉ ଚକଟା ପୋଳୁଅ ଘଣ୍ଟା,
କଦଳୀ ଭୂଷଣ ଗାଲିସି କଣ୍ଟା,
ଢଳ ତୁଷାଦକୁ ସରଗ ଦେଖିଲ,
ମତେ ଭଉଛ ବନରି କଣ୍ଟା । ଢଗ ।

**ପୋଲୁଅ(ହ) ମଡ଼ା(ଡ଼େ)ଇବା**—ଦେ. କ୍ରି.—ମାଛ ଧରିବା ନିମନ୍ତେ ପୋଲୁହକୁ ପାଣିରେ ବସାଇବା—
Polua(ha) marda(rde)iba
**टाप मढ़ाना** To press the polua in water in order to catch fish.

**ପୋଲୁହା**—ଦେଂ. ବି.—ପୋଲୁହଦ୍ୱାରା ମାଛ ଧରିବା ବ୍ୟକ୍ତି—
Poluha One who fishes with the help of 'polua'.
পোলো অলা **टापी वाला**

**ପୋଲୋ**—ବୈ.ଦେ ବି. (ଇଂ)—ଅଶ୍ୱାରୋହୀମାନଙ୍କର କନ୍ଦୁକ କ୍ରୀଡ଼ା ବିଶେଷ—Polo (game).
Polo পোলো **पोलो**
[ଦ୍ର—ଏ ଖେଳରେ ଭୂମିରେ ଗଡ଼ୁଥିବା ଗୋଟିଏ ସାନ ପେଣ୍ଡୁକୁ ଖେଳାଳୀମାନେ ଘୋଡ଼ା ଚଢ଼ି ଥିବା ଅବସ୍ଥାରେ ଗୋଟିଏ ଅଗବଙ୍କା ଲମ୍ବ ବାଡ଼ି (ବାଡ଼ି) ଦ୍ୱାରା ବାଡ଼ାଇ ଥାଆନ୍ତି ଓ ପେଣ୍ଡୁର ଗତି ଅନୁସାରେ ଘୋଡ଼ାକୁ ଚାଳିତ କରୁ ଥାଆନ୍ତି। ଘୋଡ଼ା ନ ଚଢ଼ି ଖେଳାଳମାନଙ୍କର ଏହି ପ୍ରକାର ପେଣ୍ଡୁବାଡ଼ିଆ ଖେଳକୁ ଗଲ୍ଫ୍ ବୋଲାଯାଏ। ଏ ଖେଳ ଇଂରେଜଙ୍କଠାରୁ ଆସି ଏ ଦେଶରେ ଚଳିଲା। ପେଣ୍ଡୁ ନିର୍ଦ୍ଦିଷ୍ଟ ଖେଳାଳୀଙ୍କ ଦଳର ଆଘାତରେ ଗଡ଼ି ଯାଇ ନିର୍ଦ୍ଦିଷ୍ଟ ଗର୍ତ୍ତମାନଙ୍କରେ ପଡ଼ିଲେ ଏ ଖେଳରେ ବିଜୟ ହୁଏ।]

**ପୋଲ୍‌ଟିସ୍**—ବୈଦେ. ବି. (ଇଂ)—ପୁଲ୍‌ଟିସ୍ (ଦେଖ)
Pol-tis Pul-tis (See)

**ପୋଶ୍**—ବୈଦେ. ବି.—୧। (ଫା. ପୋଶ୍=ଯହିଁରେ ପାଦ ଅବା ସ୍ଥାପିତ ହୁଏ=ପାଦୁକା; ଅନ୍ୟ ଶବ୍ଦ ସଙ୍ଗେ ବ୍ୟବହୃତ, ଯଥା ପାଇଁପୋଶ୍)—କାତୁଅ ବା ଧୂଳି ଲାଗି ଥିବା ଜୋତା ବା ଗୋଡ଼ ତଳପାଖ ପୋଛିବା ନିମନ୍ତେ ବ୍ୟବହୃତ ଅଖାର ବା କନାର ଆସନ—1. A door-mat used as a brush or cushion for rubbing the soles on.
Pos
পোস
**पोश**
(ଯଥା—ପାଁପୋଶ, ପାଇଁପୋଶ୍।)
୨। (ଫା. ପୋଶ୍=ପରିଚ୍ଛଦ; ପୋଷାକ, ଅନ୍ୟ ଶବ୍ଦ ସଙ୍ଗେ ଲାଗେ ଯଥା ଗରମ ପୋଶ୍; ଖୋଲ୍‌ପୋଶ୍)—ପୋଷାକ; ପରିଚ୍ଛଦ—2. Dress; raiment.
[ଦ୍ର—ପରିଚ୍ଛଦ ଅର୍ଥରେ ପୋଶ୍ ଶବ୍ଦ ଫାରସୀ ଭାଷାରୁ ଆସି ନାହିଁ; ଏ ଶବ୍ଦ ଭାରତ ବର୍ଷରେ ପ୍ରଥମେ ବ୍ୟବହୃତ ହୋଇ ପରେ ଫାରସୀ ଭାଷାରେ ଚଳିଅଛି। ହି. ଶ.]

**ପୋଷ**—ସଂ. ବି. ( ପୁଷ ଧାତୁ=ପୋଷିବା+ଭାବ. ଅ )—
Posha ୧। ପୋଷଣ; ପାଳନ, ବର୍ଦ୍ଧନ—1. Nourishing; rearing, bringing up.
୨। ପୁଷ୍ଟି—2. Nourishment.
୩। ଆଧିକ୍ୟ; ବୃଦ୍ଧି ( ହି. ଶବ୍ଦସାଗର )—
3. Increase; increment.
୪। ତୁଷ୍ଟି; ସନ୍ତୋଷ ( ହି. ଶବ୍ଦସାଗର )—
4 Satisfaction; contentment.
ଦେ. ବି. ( ସଂ. ପ୍ରସୃତି, କୋଷ )—
୧। ଗଣ୍ଡୂଷ; ଗୋକର୍ଣ୍ଣୀକୃତ କରତଳ, ଅର୍ଦ୍ଧାଞ୍ଜଳି—
1. The palm of one hand formed into a cup.
୨। ଏକ ହାତର କରତଳକୁ ପାତ୍ରାକୃତି କଲେ ତହିଁରେ ସମ୍ଭାଇବା ବସ୍ତୁର ପରିମାଣ, ଅର୍ଦ୍ଧାଞ୍ଜଳି ପରିମାଣ—
2. A quantity of anything contained inside the palm of one hand concavely bent into the shape of a cup.
লোট **लप, चुल्लु**
[ଦ୍ର—ଦୁଇ କରତଳର କାଣି ଆଙ୍ଗୁଠି ପାଖକୁ ପାତ୍ରାକୃତି କଲେ ଅଞ୍ଜୁଳା (ସଂ. ଅଞ୍ଜଳି) ଓ ଏକ ଏକ କରତଳକୁ ମୁଦ୍ରିତ କଲେ ମୁଠା (ସଂ. ମୁଷ୍ଟି ହୁଏ); ସଂଯୁକ୍ତ କରି କରତଳ ଓ ଆଙ୍ଗୁଠିମାନଙ୍କୁ ଘାଞ୍ଚ ପରି କଲେ ତାହା ପୋଷ ହୁଏ, ବିସ୍ତାରିତ ଏକ କରତଳକୁ ପାତ୍ରାକୃତି କଲେ ଆଙ୍ଗୁଠିକୁ ଛାଡ଼ି ଦେଲେ କେବଳ ଲେଉଟ ମଝିରେ ଯେଉଁ ପାତ୍ରାକୃତି ଖାଲ ହୁଏ ତାକୁ ଗଣ୍ଡୂଷ ବୋଲାଯାଏ। 'ପୋଷ' ଶବ୍ଦ ପାତ୍ରୀକୃତ ସାଙ୍ଗୁଳ ଏକ କରତଳରେ ସମ୍ଭାଇବା ତରଳ ଓ ଘନ ପଦାର୍ଥ ପ୍ରତି ପ୍ରଯୁଜ୍ୟ ହୁଏ ଓ 'ଚଳ' ଶବ୍ଦ କେବଳ ତରଳ ପଦାର୍ଥ ପ୍ରତି ପ୍ରଯୁଜ୍ୟ ହୁଏ। ଯଥା—ପୋଷେ ଚାଉଳ, ପୋଷେ ଘିଅ; ଚଳେ ପାଣି।]
୩। (ସଂ. ପୋଷଣ) (ଗୃହ ପାଳିତ ଜୀବ) ପାଳକର ଅଜ୍ଞାନୁବର୍ତ୍ତୀ ହେବା ଅବସ୍ଥା; ପାଳିତ ଜୀବର ପାଳନକାରୀ ପ୍ରତି ପ୍ରଦର୍ଶିତ ଅଜ୍ଞାନୁବର୍ତ୍ତିତା—3. Becoming domesticated or tamed.
পোস, **पोस**
( ଯଥା—ଏ ନେଉଳଟି ମାସକ ଭିତରେ ଖୁବ୍ ପୋଷ ମାନିଲାଣି। )

**ପୋଷକ**—ସଂ. ବିଣ, ପୁଂ. (ପୁଷ ଧାତୁ+କର୍ତ୍ତୃ. ଅକ)—
Poshaka ୧। ପ୍ରତିପାଳନକାରୀ—Nourishing; cherishing; maintaining.
(ପୋଷିକା—ସ୍ତ୍ରୀ)
୨। ଯେ ଅଣି ଘରେ ପାଳଥାଏ—2 Rearing.
୩। (ଆଇନ୍) (କୌଣସି ଦାବୀ ବା ଉକ୍ତିର) ସମର୍ଥନକାରୀ—
3 (law) Supporting (a claim or statement).
୪। ସହାୟକ—4. Helping.
୫। ବର୍ଦ୍ଧକ (ହି. ଶ.)—5. Increasing.
ବି—ପ୍ରତିପାଳକ ବ୍ୟକ୍ତି—Supporter; maintainer

**ପୋଷକତା**—ସଂ. ବି. ( ପୋଷକ+ତା )—
Poshakata ପୋଷଣ କରିବାର ଭାବ—
পোষকতা The act or state of nourishing.
ଦେ. ବି. (କଚେରୀ) ଦାବୀର ସମର୍ଥନ କରିବା ଅବସ୍ଥା—
The state of an evidence supporting a claim.

**ପୋଷକ ପ୍ରମାଣ**—ଦେ. ବି. ( କଚେରୀ )—
Poshaka pramana ଯେଉଁ ପ୍ରମାଣ ଦ୍ୱାରା ଦାବୀ ସମର୍ଥିତ ହୁଏ·
পোষক প্রমাণ Evidence in support of a claim or statement.
**पोषक प्रमाण**

**ପୋଷକତା କରିବା**—ଦେ. କ୍ରି. ( କଚେରୀ )—
Poshakata kariba କୌଣସି ଦାବୀକୁ ବା ଉକ୍ତିକୁ ପ୍ରମାଣାଦି ଦ୍ୱାରା ସମର୍ଥନ କରିବା—
পোষকতা করা
To support or substantiate a claim or statement by some proof.

**ପୋଷ କରିବା**—ଦେ. କ୍ରି—କରତଳକୁ ଗୋକର୍ଣ୍ଣୀକୃତ କରିବା—
Posha karibā — To make the palm of the hand into a cup.
ଲୋଟ କବା
**हात पसारना**

**ପୋଷଣ**—ଦେ. ବି. ( ପୁଷ୍ ଧାତୁ+ଭାବ. ଅନ )—
Poshaṇa ୧। ପାଳନ, ବର୍ଦ୍ଧନ—1. Nourishing; cherishing; rearing.
ପୋଷିତ, ପୁଷ୍ଟ }
ପୋଷଣୀୟ, ପୋଷ୍ୟ } ବିଣ
୨। ପୁଷ୍ଟି—2. Nourishment
୩। ଖାଦ୍ୟାଦି ଦ୍ୱାରା ଆଶ୍ରୟ ପ୍ରଦାନ—
3. Maintaining; supporting.
୪। ସ୍ୱମର୍ଯ୍ୟାଦାସ୍ଥିତ ନିଜ ଭକ୍ତ ପ୍ରତି ଭଗବାନଙ୍କର ଅନୁଗ୍ରହ-
4. God's grace or favour to a god-fearing devotee
ବସ୍ତୁ ଦକସ୍ୱ 'ସ୍ଥିତ' ନାମ
ତା ଅନୁଗ୍ରହ ସେ ପୋଷଣ । ଜଗନ୍ନାଥ. ଭାଗବତ ।
୫। ସହାୟତା (ହି. ଶ.)—5. Help; support.

**ପୋଷଣାହାରୀ**—ଦେ ବିଣ—ପୋଷଣକାରକ, ଯେ ପୋଷେ, ପରପାଳକ-
Poshaṇāhāri — Maintaining; supporting others by one's earning.
**पोषनेवाला**
(ପୋଷଣାହାରଥା—ଅନ୍ୟରୂପ) ( ଯଥା—ତାର ୨୫ ବରଷର ପୋଷଣାହାରୀ ପୁଅ ମରିଗଲା । )

**ପୋଷଣୀୟ**—ସଂ. ବିଣ. ( ପୁଷ୍ ଧାତୁ+କର୍ମ. ଅନୀୟ )—
Poshaṇiya ୧। ପାଳନୀୟ—1. Maintainable.
(ପୋଷଣୀୟା—ସ୍ତ୍ରୀ) ୨। ପୋଷିବାର ଯୋଗ୍ୟ—
2. Deserving to be maintained.

**ପୋଷନ୍ତା**—ଦେ. ବିଣ. (ପୋଷିବା କ୍ରିୟାର ଏକ ଆକାର ବିଣ, ରୂପେ ବ୍ୟବହୃତ )—ପୋଷଣାହାରୀ ( ଦେଖ )
Poshantā — Poshaṇāhāri ( See )
ପୋଷିଲା }
ପୋଷିବା } ଅନ୍ୟରୂପ

**ପୋଷ ମନା(ନେ)ଇବା**—ଦେ. କ୍ରି. ( ସକର୍ମକ )—କୌଣସି ଜନ୍ତୁକୁ ଆଣି ଘରେ ପୋଷି ଆପଣାର ଆୟତ୍ତ କରିବା—To domesticate and tame an animal.
Posha manā ne)ibā
ପୋଷ ମାନାନ
**जन्तु बनाना, पोष मनाना**

**ପୋଷ ମାନିବା**—ଦେ. କ୍ରି. ( ଅକର୍ମକ )—( କୌଣସି ବନ୍ୟ ଜନ୍ତୁ ) ମନୁଷ୍ୟର ଆୟତ୍ତ ହେବା—
Posha mānibā — ( a wild animal ) To become domesticated or tame.
ପୋଷ ମାନା
**पोष माना**
(ପୋଷା ମାନିବା—ଅନ୍ୟରୂପ)

**ପୋଷୟିତ୍ନୁ**—ସଂ ବି. (ପୁଷ୍ ଧାତୁ. ଣିଚ୍=ପୋଷି ଧାତୁ=ପରଦ୍ୱାରା ପୋଷାଇବା+କର୍ତ୍ତୃ. ଇତ୍ନୁ)—୧। କୋକିଳ—
Poshayitnu — 1 Indian cuckoo.
୨। (ପୁଷ୍ ଧାତୁ+ଇତ୍ନୁ) ଭର୍ତ୍ତା, ସ୍ୱାମୀ—2. Husband.
ବିଣ.—୧। ପୋଷଣକାରୀ—
1. Supporting; maintaining.
୨। ପୁଷ୍ଟିକର—2. Nourishing.

**ପୋଷା**—ଦେ. ବି—(ସଂ. ପୁଷ୍ ଧାତୁଜ ପୋଷଣ)—୧। ପୋଷିବା, ପାଳନ କରିବା; ପୋଷଣ—1. Maintaining.
Poshā
ପୋଷା ୨। କୌଣସି ଜୀବକୁ ଆଣି ଘରେ ପାଳିବା—
**पोषान** 2. Domesticating.
୩। ପୋଷ ୩ (ଦେଖ)—3. Posha 3 (See).
ପୋଷା ବିଣ—୧। ପାଳିତ—
**पालतु, पोषाहुआ** 1. Maintained; brought up; adopted.
(ଯଥା—ପୋଷା ପୁଅ)
୨। ଗୃହପାଳିତ—2. Domesticated.
୩। ବଶୀଭୂତ, ପୋଷ ମାନିଥିବା—
3. Tame; tamed.
ପୋଷା ଶାରୀକ ନୋ କଏ ସେ ନେଲ
ଅରଣ୍ୟରେ ସ୍ୱର ଦେଉ—ତର।
୪। ଯାହା ଦ୍ୱାରା କୁଟୁମ୍ବ ଆଦିଙ୍କୁ ପୋଷିବାକୁ ହୁଏ—
4. Affording maintenance.
(ଯଥା—କୁଟୁମ୍ବ ପୋଷା ବୃତ୍ତି)
୫। ଯେ ପାଳେ—5. Maintaining
(ଯଥା—ଲକ୍ଷ ପୋଷା ଲୋକ)

**ପୋଷା(ଷେ)ଇବା**—ଦେ. କ୍ରି—୧। ପୋଷିବା କ୍ରିୟାର ଣିଜନ୍ତରୂପ—
Poshā(she)ibā ୧। ଅନ୍ୟ ଦ୍ୱାରା ପୋଷଣ କ୍ରିୟା କରାଇବା—
ପୋଷାନ 1 To cause to be reared or maintained.
**पूसाना** ୨। ପଟିବା; ମନୋମତ ହେବା, ଭଲ ଲାଗିବା, ସୁଖକର ଜଣାଯିବା—2 To suit; to be to one's liking or fancy.
(ଯଥା - ମତେ ଦଣ୍ଡ ହାକମଙ୍କ ମନ ଯୋଗାଇବା ଗୃହସ୍ଥ ପୋଷାଇବ ନାହିଁ ।)
୩। ପ୍ରତିପୋଷଣ ନିମନ୍ତେ ଯଥେଷ୍ଟ ହେବା; ଅଣ୍ଟିବା—
3. To suffice for one's maintenance.
(ଯଥା—ମତେ ମାସକୁ ୫ ୩ ୧ ଦରମା ପୋଷାଇବ ନାହିଁ)
୪। ଲାଭଜନକ ହେବା—4. To be profitable.
(ଯଥା—ଏ ବେପାର ମତେ ପୋଷାଇବ ନାହିଁ)

**ପୋଷାକ**—ବୈଦେ. ବି—(ଫା. ଭୂଲ. ସଂ. ବେଶଭୂଷା)—୧। ପରିଚ୍ଛଦ, ବେଶ—1. Dress; clothing.
Poshāka ପୋଷାକ
**पोशाक** କ ଭଲ ପୋଷାକ ଲେଡା ହେବ ଉଚ୍ଚ—ଭାଧାନାଥ ଦରବାର
୨। ସଭ୍ୟ ସମାଜରେ ଅନୁମୋଦିତ ପରିଚ୍ଛଦ, ଫେସନର ଅନୁକୂଳ ବେଶଭୂଷା—3. Dress approved for social functions; fashionable dress.
୩। କୌଣସି ପଦରେ ପ୍ରତିଷ୍ଠିତ ବ୍ୟକ୍ତିଙ୍କ ପରିଧାନାର୍ଥ ନିର୍ଦ୍ଦିଷ୍ଟ ପରିଚ୍ଛଦ—3. Particular dress laid down to be worn by a person holding a particular office.
(ଯଥା—ପୁଲିସ୍ ପୋଷାକ; ଦରବାର ପୋଷାକ)
[ଦ୍ର—ଏହି ଶବ୍ଦ ଅନ୍ୟ ଶବ୍ଦର ସହିତ ରୂପେ ମଧ୍ୟ ବ୍ୟବହୃତ ହୁଏ, ଯଥା—ଶୋକ ପୋଷାକ ।]

**ପୋଷାକଧାରୀ**—ଦେ. ବିଣ. ପୁଂ—(ଫ. ପରିଚ୍ଛଦଧାରୀ ଶବ୍ଦ ଦୃଷ୍ଟିରେ Poshākadhārī ଫା ପୋଷାକ୍ ଓ ସ. ଧାରୀ ଶବ୍ଦଦ୍ୱୟ ସମନ୍ୱୟ)—(ପୋଷାକ ଧାରିଣୀ – ସ୍ତ୍ରୀ) ପରିଚ୍ଛଦଧାରୀ—Wearing a dress; পোষাকধারী **पोषाकधारी** dressed.

**ପୋଷାକ ପତ୍ର** – ଦେ ବି—(ନିରର୍ଥକ ଦ୍ୱିତୀୟ ସହଚର ଶବ୍ଦ)—Poshāka patra ପାଗ ପଟୁକା; ଲୁଗାପଟା, ଜାମାଜୋଡ଼ା—Clothes; full dress.

ପୋଷାକ ପତ୍ରଣ } ଅନ୍ୟରୂପ
ପୋଷାକ ପରିଚ୍ଛଦ }

পোষাকটোষাক **पोशाकइसाक**

**ପୋଷାକିଆ**—ଦେ. ବିଣ—ପୋଷାକୀ (ଦେଖ)
Poshākiā Poshākī (See)

**ପୋଷାକୀ**—ବୈଦେ. ବିଣ – (ଫା. ପୋଷାକୀ)—୧ । ପୋଷାକ ସମ୍ବନ୍ଧୀୟ-Poshākī পোষাকী **पोशाकी** 1. Relating to dress.

୨ । ପୋଷାକ ବା ପରିଚ୍ଛଦର ବ୍ୟୟ ନିମନ୍ତେ ଦିଆଯିବା—
2. (allowance) Given for one's raiment.

୩ । ପୋଷାକରୂପେ ବ୍ୟବହୃତ—
3 Used as a dress suit.

୪ । ପୋଷାକର ଉପଯୁକ୍ତ—
4. Fit to be used as dress.

୫ । ପୋଷାକ ଦ୍ୱାରା ସୁସଜ୍ଜିତ—5. Dressed up

୬ । ଯାହା ବହୁକାଳ ପିନ୍ଧାଯାଇ ପାରେ—
6. Which can be worn for a long time.

୭ । ସଉକୀ, ସୌଖୀନ ପୋଷାକ ପିନ୍ଧିବାକୁ ଯେ ସୁଖ ପାଏ—
7. Fond of fashionable dress; foppish.

୮ । ସୌଖୀନ୍ ପରିଚ୍ଛଦଧାରୀ—8. Wearing fashionable dress; fashionably dressed.

୯ । ସୌଖୀନ; ସଭ୍ୟଶିଷ୍ଟ ଅନୁମୋଦିତ—
9. Elegant, fashionable; approved by the custom of elegant society.

ବି—୧ । ହେପାଜତ; ପାଳନ ବିଷୟରେ ଯତ୍ନ; ଗୃହିତା—
**पोशाक्** 1. Care in bringing up
ଯଥା—ଆମ ସାଆନ୍ତାଣୀ ତାଙ୍କ ପୋଷିଅଁ ପୁଅକୁ ଖୁବ୍ ପୋଷାକୀରେ ପାଳନ୍ତି ।

୨ । ସୁଖ ସ୍ୱାଚ୍ଛନ୍ଦ୍ୟର ଅତିଶଯ୍ୟ ବା ଚରମ ଭୋଗ—
2. Luxury; lap of luxury.
ଯଥା—ପିଲାଦିନୁ ଜଗବନ୍ଧୁ ପୋଷାକୀରେ ବଢ଼ି ଆସିଛି ।

୩ । ଫେସନ୍; ସଭ୍ୟ ବା ଧନୀସମାଜାନୁମୋଦିତ ବେଶଭୂଷାଆଦିର ପଦ୍ଧତି—3. Fashion in dress; fashionable style; gaudiness in dress

ଦେ. ବି. (ସଂ. ପୁଷ୍ ଧାତୁ)—ପୋଷଣ କରିବା ପଦାର୍ଥ—Material for maintenance.

**ପୋଷାକୀ ପିନ୍ଧା**—ଦେ. ବି—୧ । ଯେଉଁ ଲୁଗାକୁ ପିନ୍ଧି ସଭା ସମିତି, Poshākī pindhā କଚେରି ଦରବାର, ଉତ୍ସବ ଓ ବନ୍ଧୁବାନ୍ଧବଙ୍କ (ପୋଷାକୀ ଲୁଗା—ଅନ୍ୟରୂପ) ଘରକୁ ଯିବାକୁ ହୁଏ—1. The

পোষী কাপড় cloth which a man uses to
**पोशाकी कपड़ा; घराउ कपड़ा** wear on remonial and festive occasions

୨ । ପେଡ଼ିଲୁଗା; ଯେଉଁ ପୋଷାକକୁ ବା ଲୁଗାକୁ ବିଶେଷ ଉପଲକ୍ଷ ଛଡ଼ା ଅନ୍ୟ ସମୟରେ ସାଇତି ରଖିବାକୁ ହୁଏ—
2. Stored valuable dress.

**ପୋଷାକୀ ଭାଷା**—ଦେ. ବି—୧ । ଯେଉଁ ଭାଷାକୁ ବିଶେଷ ଅଳଙ୍କାର Poshākī bhāshā ଦ୍ୱାରା ସଜ୍ଜିତ କରାଯାଇ ଥାଏ, ଅଳଙ୍କୃତ ଭାଷା–
**लच्छेदार भाषा** 1. Ornamental language

୨ । ସାଧୁଭାଷା, ସଭ୍ୟଜନ ବ୍ୟବହୃତ ଭାଷା—
2 The language used in refined society

**ପୋଷା(ଷାଁ)ପୁଅ**—ଦେ.ବି.(ସ.ପୋଷ୍ୟ ପୁତ୍ର)—ପାଳିତପୁତ୍ର; ପୋଷ୍ୟପୁତ୍ର—Poshā(shān) pua Adopted son.

ପୋଷିଅଁ ପୁଅ } ଅନ୍ୟରୂପ
ପୁଷିଅଁ ପୁଅ }
ପୋଷାପୁଅ ଗୁଣ୍ଡାଠୁଅ, କାମ ପଡ଼ିଲେ ନ କରନ୍ତି କଥ । ଢଗ ।

পোস্যিপুত্তুর **पोसपुत**

**ପୋଷାଳୀ**—ଦେ. ବିଣ—୧ । ପଶୁ ପ୍ରଭୃତି ଜୀବମାନଙ୍କୁ ପୋଷି ରଖିଥିବା Poshāli ବ୍ୟକ୍ତି—1. One who tames beasts

୨ । ପୋଷଣାହାରୀ (ଦେଖ)—2. Poshaṇāhārī (See)

**ପୋଷିବା**—ଦେ କ୍ରି. (ସ. ପୁଷ୍ ଧାତୁ)—୧ । ପୋଷଣ କରିବା, ପାଳିବା, Poshibā ପ୍ରତିପାଳନ କରିବା—1. To maintain.
পোষা ପଡ଼ି ତ ରହିଛି ପୋଷିଉ ସବୁକାଳେ ।
**पोषना** କୃଷ୍ଣସିଂହ. ମହାଭାରତ. ବନ ।

୨ । ଲାଳନପାଳନ କରିବା—
2. To rear; to bring up.

୩ । (ହୃଦୟରେ ଆଶା)—ଜାଗ୍ରତ କରି ରଖିବା—
3. To cherish (hope).
ପୋଷିଥିଲେ ଆଶା ଅବା ଫେରିବେ ପାଣ୍ଡବେ, କୁରୁପୁରେ ।
ରାଧାନାଥ—ମହାଯାତ୍ରା ।

୪ । ସହାୟ ହେବା; ଆଶ୍ରୟ ହେବା—4. To help; to support; to patronise; to be of help.
ଯଥା—ବାବାରେ ! ତୁ ଏ ବୁଢ଼ାକୁ ବାଡ଼ି ଖଣ୍ଡିଏ ଦେଇ ପୋଷିଲୁ !

୫ । ଅନ୍ୟବ୍ୟକ୍ତିର ଜୀବିକା ନିର୍ବାହରେ ସହାୟ ହେବା—
5. To provide means for maintenance.
ପେଟ ପୋଷ, ନାହିଁ ଦୋଷ । ଢଗ ।

୬ । ଗ୍ରାସାଚ୍ଛାଦନ ଯୋଗାଇବା—
6. To give food and raiment.
ଯଥା—ତାକୁ ପୋଷିଲେ ଯେ, ହାତୀଟିଏ ପୋଷିଲେ ସେ ।

୭ । ବନ୍ୟଜୀବକୁ ଆଣି ଗୃହରେ ରଖି ଖୁଆଇ ପିଆଇ ପୋଷା ମନାଇବା—7. To domesticate or tame a wild animal.

**ପୋଷିବା ପାଳିବା**—ଦେ. କ୍ରି. (ଏକାର୍ଥ ବୋଧକ ସହଚର ଶବ୍ଦ)—Poshibā pālibā ୧ । ଲାଳନ ପାଳନ କରିବା—
পোষা পালা 1. To bring up.

**ପୋସନା ପାଲना** ୨ । ଯତ୍ନ ସହିତ ପାଳନ କରିବା —
2. To bring up with care.

ପୋଷିଲ୍ ପାଳିଲ୍ ମୋହିଲ୍ କହ୍ନ
ଅଧିକାର କଲ୍ ଗୃହାଳ ପୋଛ । ଉ ।

**ପୋଷୀ**—ଦେ. ବିଣ. (ସ. ପୋଷକ, ଅନ୍ୟ ଶବ୍ଦ ସଙ୍ଗେ ଲାଗେ, ଯଥା— Poshi ଲକ୍ଷପୋଷୀ)—ଯେ ପୋଷେ, ପ୍ରତିପାଳକ—Maintaining.

ବୋଲନ୍ତ ଜଗତେ ସିନା ଲକ୍ଷ ପୋଷୀ । ରଥାଶାଅ – ଦଇବାଦ ।

**ପୋଷୁକ**—ସଂ. ବିଣ **ପୁଂ (ପୁଷ୍ ଧାତୁ + ଶୀଳାର୍ଥେ ଉକ)**— Poshuka ପୋଷଣକାରୀ—Supporting; maintainig.

**ପୋଷେ**—ଦେ. ବି ଓ ବିଣ – ହାତର କରତଳ ପୃଷ୍ଠରେ ଏକ ଥରକେ Poshe ସମ୍ଭାଇବା ପରିମାଣ, ଏକ ପୋଷମାତ୍ର— ଏକଲୋଟ **एकलप** A handful; a handful of.

**ପୋଷ୍ଟ**—ବୈଦେ. ବି. (ଇଂ)—୧ । ଡାକ, ଚିଠିପତ୍ରାଦି ପ୍ରେରଣର Posht ସରକାରୀ ବ୍ୟବସ୍ଥା—1. Post. ପୋଷ୍ଟ **पोष्ट** [ ଦ୍ର—ଏହି ଇଂରାଜୀ ଶବ୍ଦ ଅନ୍ୟ ଇଂରାଜୀ ଶବ୍ଦମାନଙ୍କ ପରେ ଓ ପୂର୍ବେ ବ୍ୟବହୃତ ହୁଏ, ଯଥା—ଭି. ପି. ପୋଷ୍ଟ, ପାର୍ସେଲ୍ ପୋଷ୍ଟ, ବୁକ୍ ପୋଷ୍ଟ, ବେରିଙ୍ଗ୍ ପୋଷ୍ଟ , ଅର୍ଡ଼ିନ୍ ପୋଷ୍ଟ , ପୋଷ୍ଟ ମାଷ୍ଟର, ପୋଷ୍ଟ ପିଅନ୍ । ]
୨ । ଗୁଳ୍ଦର—2. Post
ଗ୍ରା. ବିଣ. (ସଂ ସ୍ପଷ୍ଟର ଅଶୁଦ୍ଧ ଉଚ୍ଚାରଣ)—ସ୍ପଷ୍ଟ—Clear.
କ୍ରି. ବିଣ – ୧ । ସ୍ପଷ୍ଟରୂପେ—1. Clearly.
୨ । ନିଃସନ୍ଦେହରୂପେ—2. Undoubtedly.

**ପୋଷ୍ଟ ଅଫିସ୍**—ବୈଦେ. ବି. ( ଇଂ )—ଡାକଘର— Posht aphis Post office ପୋଷ୍ଟ ଆପିସ **पोष्टआफिस**
[ ପୋଷ୍ଟାଫିସ୍, ପୋଷ୍ଟ ଅଫି(ଫେ)ସ – ଅନ୍ୟରୂପ ]

**ପୋଷ୍ଟ ଇଲକା**—ବୈଦେ. ବି. ( ଇଂ. ପୋଷ୍ଟ + ଫା. ଏଲାକା )— Posht ilaka ପୋଷ୍ଟାଲ ଡିପାର୍ଟମେଣ୍ଟ ( ଦେଖ ) ପୋଷ୍ଟ ଏଲାକା **पोष्ट एलाका** Poshtal dipartment(See)

ପୋଷ୍ଟ ବିଭାଗ, ପୋଷ୍ଟାଲ୍ ଇଲାକା, ପୋଷ୍ଟାଲ୍ ବିଭାଗ } ଅନ୍ୟରୂପ

[ଦ୍ର— ଆଧୁନିକ କଥାବାର୍ତ୍ତା ଓ ଲେଖାରେ ପୋଷ୍ଟ (post) ପୋଷ୍ଟାଲ୍ (postal) ପୋଷ୍ଟ ଅଫିସ୍ (post office) ଶବ୍ଦମାନଙ୍କ ସଙ୍ଗେ ଅନେକ ପ୍ରଚଳିତ ଇଂରାଜୀଶବ୍ଦମାନ ଲାଗି ବିକୃତ ଓ ଅବିକୃତ ହୋଇ ଓଡ଼ିଆରେ ବ୍ୟବହୃତ ହେଉଅଛି; ଯଥା–ପୋଷ୍ଟାଲ୍ ଇନ୍ସପେକ୍ଟର୍ (postal inspector) ପୋଷ୍ଟାଲ୍ ସାର୍ଟିଫିକେଟ୍ ( postal certificate ) ପୋଷ୍ଟାଲ୍ ଅର୍ଡ଼ର୍ (postal order) ପୋଷ୍ଟାଲ୍ ସୁପରିଣ୍ଟେଣ୍ଡେଣ୍ଟ (postal superintendent) ପୋଷ୍ଟାଲ ରସିଦ୍ ( postal receipt ) ପୋଷ୍ଟ ମାଷ୍ଟର ଜେନେରଲ ( post master general ) ପୋଷ୍ଟାଲ ଭ୍ୟାନ୍ (postal van) ପୋଷ୍ଟାଲ୍ ରନର୍ ( postal runner) ପୋଷ୍ଟାଲ୍ ମନିଅର୍ଡ଼ର୍ ( postal money order) । ଡାକବିଭାଗ ସମ୍ବନ୍ଧୀୟ ଅନେକ ଶବ୍ଦ ମଧ୍ୟ ବିକୃତ ଓ ଅବିକୃତ ହୋଇ ଚଳୁଅଛି; ଯଥା- ସେଭିଙ୍ଗସ୍ ବ୍ୟାଙ୍କ୍ ( savings bank ), ମନିଅର୍ଡ଼ର ( moneyorder ), ରସିଦ୍ (receipt ), ଇନ୍ସିଓର ( insure ), ଭାଲ୍ୟୁ ପେବ୍ଲ ପାର୍ସେଲ ( V. P. parcel ), ପୋଷ୍ଟେଜ୍ ( postage ), ରେଜିଷ୍ଟ୍ରେସନ୍ ( registration ), ଏନ୍‌ଭଲପ୍ (envelope), ସର୍ଭିସ୍ ପୋଷ୍ଟ । (service post), ସବ୍ ପୋଷ୍ଟମାଷ୍ଟର୍ (sub postmaster ), ଡେପୁଟୀ ପୋଷ୍ଟ ମାଷ୍ଟର ( deputy post master ), ଏଆର୍ ପୋଷ୍ଟ Air post ) । ]

**ପୋଷ୍ଟ କାର୍ଡ୍(ଡ୍)**—ବୈଦେ ବି (ଇଂ)—ଏକ ପାଖରେ ଚିଠି ଲେଖିବାର Posht kard(rd) ପୋଷ୍ଟକାର୍ଡ **पोष्टकार्ड** ପତ୍ର—Post card.
[ ଦ୍ର—ସରକାରୀ କର୍ମଚାରୀମାନେ ସରକାରୀ କାର୍ଯ୍ୟରେ ଯେଉଁ କାର୍ଡ଼ ବ୍ୟବହାର କରନ୍ତି ଓ ଯହିଁରେ ଅନ୍ ହିଜ୍ ମେଜେଷ୍ଟିଜ୍ ସର୍ଭିସ୍ (on His Majesty's service) ମାର୍କା ମାରିଥାଏ ତାକୁ ସର୍ଭିସ୍ କାର୍ଡ଼ ( service card ) ବୋଲା-ଯାଏ । ]

**ପୋଷ୍ଟ ଗ୍ରାଜୁଏଟ୍**—ବୈଦେ. ବି. ( ଇଂ )—ବି. ଏ. ପାଶ କରିବା ପରେ Posht grajuet ସାଧାରଣ ଜ୍ଞାନ ବୃଦ୍ଧି ସକାଶେ ଅଗାଧ ଅଧ୍ୟୟନ ପୋଷ୍ଟ ଗ୍ରାଜୁଏଟ ଓ ଗବେଷଣାରେ ନିଯୁକ୍ତ ଛାତ୍ର — **पोष्ट ग्राजुएट** Post graduate scholar.

**ପୋଷ୍ଟ ବକ୍ସ**—ବୈଦେ. ବି. (ଇଂ)—୧ । ଯେଉଁ ବାକ୍ସରେ ସାଧାରଣ Posht baks ଲୋକେ ଡାକରେ ଚିଠିପତ୍ର ଗଳାଇ ପକାନ୍ତି— ପୋଷ୍ଟବାକସ **पोष्टबक्स** 1. Post box.

ପୋଷ୍ଟ ବାକସ, ପୋଷ୍ଟ ବାକ୍ସ } ଅନ୍ୟରୂପ

୨ । ଡାକଘରେ ଭିନ୍ନ ଭିନ୍ନ ଲୋକଙ୍କ ନାମରେ ଆସିବା ଚିଠିମାନଙ୍କୁ ଡାକ ପିଅନ ଯେଉଁ ବାକ୍ସରେ ପକାଏ—2 Post boxes of different persons kept at the post office.

[ ଦ୍ର—ଏ ବାକ୍ସର ଗୋଟିଏ ଚାବି ମାଲିକ ପାଖରେ ଏବଂ ଆଉ ଗୋଟିଏ ଚାବି ପିଅନ୍ ହାତରେ ଥାଏ । ପିଅନ ସେ ବାକ୍ସରେ ଚିଠି ରଖି ଦେଇ ଗଲା ପରେ ମାଲିକର ଲୋକ ଆସି ବାକ୍ସ ଫିଟାଇ ଚିଠିମାନ ନେଇଯାଏ । ]

**ପୋଷ୍ଟ ବାଗ୍**—ବୈଦେ. ବି ( ଇଂ )—ଯେଉଁ ମୁଣି ବା କୋଥଳିରେ Posht bag ଡାକରେ ବୁହାଯିବା କାଗଜପତ୍ରମାନ ଭରିକି କରି-ପୋଷ୍ଟବେଗ ଯାଇ ଏକ ଡାକଘରୁ ଅନ୍ୟସ୍ଥାନକୁ ପ୍ରେରିତ **पोष्टबेग** ହୁଏ—Post bag.
( ପୋଷ୍ଟ ବ୍ୟା[ବେ]ଗ୍—ଅନ୍ୟରୂପ )

**ପୋଷ୍ଟ ମର୍ଟ(ର୍ଟେ)ମ୍**—ବୈଦେ. ବି. ( ଇଂ. ପୋଷ୍ଟ ମର୍ଟେମ୍ )—ମୃତ୍ୟୁର Posht marta(rte)m କାରଣ ସ୍ଥିର କରିବା ପାଇଁ ଶବର ପୋଷ୍ଟମାଟମ **पोष्टमार्टम** ବ୍ୟବଚ୍ଛେଦ—Post mortem examination.

**ପୋଷ୍ଟ ମାଷ୍ଟର**—ବୈଦେ. ବି. ( ଇଂ )—ଡାକ ମୁନସୀ, ଡାକବାବୁ, Posht mashtar ଡାକଘରର ଅଧ୍ୟକ୍ଷ —Post master. ପୋଷ୍ଟମାଷ୍ଟର **पोष्टमाष्टर**

**ପୋଷ୍ଟ୍ ମାଷ୍ଟର ଜେନ(ନେ)ରଲ୍**—ବୈଦେ. ବି. (ଇଂ)—ପ୍ରଦେଶର ଡାକ ବିଭାଗର ଉଚ୍ଚତମ ଦାୟିତ୍ୱ—Post master general.
Posht māshtar jena(ne)ral
ପୋষ্টমাষ্টর জেনেরাল
**पोस्टमास्टर जनरल**

**ପୋଷ୍ଟ୍ ମାନ୍**—ବୈଦେ. ବି. (ଇଂ)—ଡାକପିଅନ; ଡାକବାଲା; ଯେଉଁ ପିଅଦା ଚିଠିପତ୍ର ବାଣ୍ଟେ—Postman, postal peon.
Posht-man
পোষ্টম্যান **पोस्टमैन**
[ପୋଷ୍ଟମ୍ୟା(ମେ)ନ୍, ପୋଷ୍ଟ ପିଅ(ଉ)ନ୍—ଅନ୍ୟରୂପ ]

**ପୋଷ୍ଟା**—ସଂ. ବିଣ. ପୁଂ. ( ପୁଷ ଧାତୁ+କର୍ତ୍ତୃ. ତୃ=ପୋଷ୍ଟୃ ଶବ୍ଦ; ୧ମା ୧ବ. )—ପୋଷଣକାରୀ—Maintaining; supporting.
Poshtā
(ପୋଷ୍ଟ୍ରୀ – ସ୍ତ୍ରୀ)
ବି—୧ । ପୋଷଣ କର୍ତ୍ତା ବ୍ୟକ୍ତି—1 Supporter
୨ । ପୂତିକ; ପୂତିକରଞ୍ଜ, ବରଗୋଲ, କଣ୍ଟାକରଞ୍ଜ—
2. Grey Bonduc ( a thorny creeper ).

**ପୋଷ୍ଟାପି(ଫି)ସ୍**—ବୈଦେ. ବି. (ଇଂ. ପୋଷ୍ଟ ଅଫିସ୍)—ପୋଷ୍ଟ ଅଫିସ୍, ଡାକଘର—Post office.
Poshtāpi(phi)s
পোষ্টঅফিস **पोष्टाफिस**

**ପୋଷ୍ଟାଲ୍**—ବୈଦେ. ବିଣ. (ଇଂ)—ଡାକସମ୍ବନ୍ଧୀୟ—Postal.
Poshtāl পোষ্টাল **पोष्टाल**
[ ଦ୍ର—ଇଂରାଜି ପୋଷ୍ଟ ବିଶେଷ୍ୟ ପଦରୁ ନିଷ୍ପନ୍ନ ବିଶେଷଣ ଇଂ. ପୋଷ୍ଟାଲ୍ (ପୋଷ୍ଟ ବା ଡାକସମ୍ବନ୍ଧୀୟ) ଶବ୍ଦ ସଙ୍ଗେ ବ୍ୟବହୃତ ଅନ୍ୟ ଇଂରେଜି ଶବ୍ଦମାନ ମଧ୍ୟ ଭାଷାରେ ଚଳନ୍ତାଣି, ଯଥା— ପୋଷ୍ଟାଲ୍ ଗାଇଡ୍, ପୋଷ୍ଟାଲ୍ ଅର୍ଡର୍, ପୋଷ୍ଟାଲ୍ ଷ୍ଟାମ୍ପ୍, ପୋଷ୍ଟାଲ୍ ମନିଅର୍ଡର୍, ପୋଷ୍ଟାଲ୍ ସେଭିଙ୍ଗସ୍ ବ୍ୟାଙ୍କ, ପୋଷ୍ଟାଲ୍ ସାର୍ଟିଫିକେଟ୍ । ]

**ପୋଷ୍ଟାଲ୍ ଗାଇଡ୍**—ବୈଦେ. ବି. ( ଇଂ )—ଡାକବିଭାଗଦ୍ୱାରା ପ୍ରକାଶିତ ଡାକବିଭାଗର ନିୟମାବଳୀ ସଙ୍କଳିତ ପୁସ୍ତକ—Postal guide.
Poshtāl gāid
পোষ্টাল গাইড **पोष्टल गाइड**

**ପୋଷ୍ଟେଜ୍**—ବୈଦେ. ବି. ( ଇଂ )—୧ । ଡାକ ମାସୁଲ—1. Postage.
Poshtej
পোষ্টেজ ୨ । ଡାକ ଟିକଟ—2 Postal stamp.
**पोष्टेज** [ ଦ୍ର—ସରକାରୀ କର୍ମଚାରୀମାନେ ସରକାରୀ ଚିଠି ପାଇଁ ବ୍ୟବହାର କରିବା ଡାକ ଟିକଟ ଉପରେ ଅନ୍ ହିଜ୍ ମେଜେଷ୍ଟିଜ୍ ସର୍ଭିସ୍ ଓନ୍ଲି ( On His Majesty's service only ) 'ସମ୍ରାଟଙ୍କ ଖାସ୍ କାର୍ଯ୍ୟରେ; ବ୍ୟବହାର୍ଯ୍ୟ ମାତ୍ର' ଛାପା ମରାଯାଇଥିବା ଡାକ ଟିକଟକୁ ସର୍ଭିସ୍ ପୋଷ୍ଟେଜ୍ ( service postage ) ବା ସର୍ଭିସ୍ ଷ୍ଟାମ୍ପ୍ ( Service stamp ) କହନ୍ତି । ]

**ପୋଷ୍ୟ**—ସଂ. ବିଣ. ପୁଂ. ( ପୁଷ ଧାତୁ+କର୍ମ. ଯ )—୧ । ଯାହାକୁ ମନୁଷ୍ୟର ପୋଷିବା ଉଚିତ; ପୋଷଣ ଯୋଗ୍ୟ; ପ୍ରତିପାଲ୍ୟ—1. Deserving to be maintained or taken care of.
Poshya
(ପୋଷ୍ୟା—ସ୍ତ୍ରୀ)
୨ । ଯାହାକୁ ପୋଷାଯାଏ—
2. Maintained; cherished.
ବି—୧ । ପରିବାର—1. Family.
୨ । ଭୃତ୍ୟ—2. Dependent; servant.

**ପୋଷ୍ୟ ପୁତ୍ର**—ସଂ. ବି. ( କର୍ମଧା, ପୋଷ୍ୟ+ପୁତ୍ର )—ପୋଷିଥିବା ପୁଅ, ଦତ୍ତକ ପୁତ୍ର—Adopted son.
Poshya putra
[ ଦ୍ର—ପୁତ୍ର ତଳେ ନୋଟ୍ ଦେଖ । ]

**ପୋଷ୍ୟ ବର୍ଗ**—ସଂ. ବି. ( ୬ଷ୍ଠୀ ତତ୍, ପୋଷ୍ୟ+ବର୍ଗ )—
Poshya barga ୧ । ଆପଣାର ପରିବାରଭୁକ୍ତ ବ୍ୟକ୍ତିଗଣ—
1. One's dependents; the members of one's family.
୨ । ଭୃତ୍ୟବର୍ଗ—2. The body of one's attendants and followers.
୩ । ହିନ୍ଦୁଶାସ୍ତ୍ର ଅନୁସାରେ ଯେଉଁ ଯେଉଁ ବ୍ୟକ୍ତିମାନଙ୍କୁ ମନୁଷ୍ୟ ପୋଷିବାର କର୍ତ୍ତବ୍ୟ ଓ ଯାହାଙ୍କୁ ନ ପୋଷିଲେ ପାପ ହୁଏ—
3. A class of persons or dependents whom every householder is enjoined by the Hindu codes to maintain.
[ ଦ୍ର—ପିତା, ମାତା, ଗୁରୁ, ସନ୍ତାନ, ଭ୍ରାତା, ଅତିଥି, ଅଗ୍ନି ଦେବତା ଓ ଆଶ୍ରିତ ବ୍ୟକ୍ତିମାନେ ମନୁଷ୍ୟର ପୋଷ୍ୟବର୍ଗ ଅଟନ୍ତି । ]

**ପୋସ୍ତ**—ବୈଦେ. ବି (ଫା) ( ସଂ. ନାମ ଖସଖସ; ଖସଖାଜ, ଖାଖସ )—
Posta ୧ । ଅଫିମ ଗଛ—1. The poppy plant; Papaver Somniferum.
পোস্ত **पोस्त**
(ପୋସ୍ତକ—ଅନ୍ୟରୂପ) [ ଦ୍ର—ଏହା ପ୍ରାୟ ୩ ମାସ ବଞ୍ଚିବା ଶାକ-ଗୁଳ୍ମବିଶେଷ । ଫୁଲର ୪ ପାଖୁଡ଼ା, କେଉଁ ଫୁଲ ଧଳା, କେହି ନାଲି ଓ କେହି ଛିପଛିପକିଆ । ଫଳ କୋଳ ପରି, କଞ୍ଚା ଫଳକୁ ଛୁରିରେ ଚିରଲେ ତହିଁରୁ ଯେଉଁ ଅଠାଳିଆ ରସ ବାହାରେ ତାହା ଶୁଖିଗଲେ ଅଫିମ ହୁଏ । ପାଚିଲା ଫଳ ଶୁଖି ଗଲେ ତାହା ମଧ୍ୟରୁ ସୋରିଷ-ଠାରୁ ଛୋଟ ଛୋଟ ଧଳା ମଞ୍ଜି ବାହାରେ ତାକୁ ପୋସ୍ତଦାନା କହନ୍ତି । ]
୨ । ଅଫିମ ଗଛର ଫଳ, ଅଫିମ ଗଛର ବକଡ଼ା—
2. Poppy-berries; poppy-head or capsule.
୩ । ଅଫିମ ଫଳ ଭିତରେ ଥିବା ମଞ୍ଜି—
3. Poppy seeds
୪ । ଛାଲି; ଚମଡ଼ା—4. Hide; skin.
୫ । ବଲ୍କଲ—5. Bark.
୬ । ବହି ବନ୍ଧା ହେବା ଚମଡ଼ା—
6. Leather for binding books.

**ପୋସ୍ତକ ଦାନା**—ବୈଦେ. ବି. ( ଫା. ପୋସ୍ତ ଦାନା )—ଅଫିମ ଫଳ ମଧ୍ୟରେ ଥିବା ଶ୍ୱେତବର୍ଣ୍ଣ ଅତି କ୍ଷୁଦ୍ର ସର୍ଷପାକାର ମଞ୍ଜି—Poppy seeds; Papaver Rhœas; Papaver Dubium.
Postaka dānā
( ପୋସ୍ତଦାନା—ଅନ୍ୟରୂପ )
ସଂ. ସୁଖାଜ, ସୁକ୍ଷ୍ମବୀଜ, ଖସ୍‌ଖସ୍; ଖସବୀଜ, ଖାଖସବୀଜ
পোস্তদানা, লালপোস্তা
**खसखसदाना; पोस्तदाना, लालपोस्ता, सफेदखसखसदाना**
ଗଞ୍ଜାମ. ଅଁପୁମଞ୍ଜି
ତେ. ଏବ୍ରିଗା ଶାଗାଯାଲି;
[ ଦ୍ର—ଏହା ବଟା ହୋଇ ତରକାରୀରେ ମିଶାଯାଏ ଓ ତରକାରୀରେ ମସଲାରୂପେ ଓ ନାନା ଔଷଧରେ ବ୍ୟବହୃତ ହୁଏ; ବୈଦ୍ୟଶାସ୍ତ୍ର ମତରେ ପୋସ୍ତଦାନାରୁ ବାହାରିବା ତେଲ

ଏବଂପୋସ୍ତକଯ୍ଯା, ଗସଗସାଲୁ ବଳଜନକ, ଶୁକ୍ରକାରକ, ଗୁରୁ, ବାୟୁ-
ତା. ଗିଗ୍ରପ୍ପ, ଗାଶାଚେଦ ନାଶକ, କଫଦ୍ନ, ଶୀତବୀର୍ଯ୍ୟ, ମଧୁରରସ
ମ. ଖସଖସ, ଗୁ. ଖସଖସ ଓ ମଧୁରବିପାକ—ଦ୍ରବ୍ୟଗୁଣ । ]
ଫା. ତୁଖମେ କୋକ୍‌ନାର, ଆ. ହବୁଲ୍ କୋକନାର୍

**ପୋସ୍ତ ବନ୍ଧ**—ବୈଦେ. ବ—୧ । (ଫା ପୁସ୍ତାବନ୍ଦୀ)—କାନ୍ଥଆଦର ପଛ-
Posta bandi ଆଡ଼େ ମୂଳପାଖେ ଇଟା, ମାଟି, ପଥରଆଦ ଗଢ଼ି
ପୋସ୍ତାବନ୍ଦୀ କାନ୍ଥକୁ ଅଟଳ କରବାର ପ୍ରଣାଳୀ—1. The
**पुस्तावन्दी** building of a buttress to support a wall
ପୋସ୍ତବନ୍ଦୀ ୨ । (ଫା. ପୋସ୍ତବନ୍ଦୀ) ବହିକୁ ଚମଡ଼ା ମଲାଟଦ୍ୱାର
**पोस्तबन्दी** ବାନ୍ଧିବା—2 Binding of a book with
(ପୋସ୍ତାବନ୍ଧ—ଅନ୍ୟରୂପ) leather, leather-binding.

**ପୋସ୍ତା**—ବୈଦେ. ବ—୧ । (ଫା. ପୋସ୍ତ)—ପୋସ୍ତ ୧।୨।୩ (ଦେଖ)
Postā Posta 1,2,3 (See)
ପୋସ୍ତା ୨ । (ଫା ପୁସ୍ତା)—କାନ୍ଥକୁ ମଜବୁତ କରବା ପାଇଁ
**पोस्ता** ତାହାର ମୂଳରେ ଗଢ଼ାଯିବା ବା ଗଦା କରାଯିବା ଇଟା;
ପୁସ୍ତା ପଥର, ଚୂନ ବା ମାଟିର ରାଶି—2. Buttress built
**पोस्ता** to support a wall

**ପୋସ୍ତାନ୍(ନି)**—ବୈଦେ. ବ. (ଫା. ପୁସ୍ତାନୀ)—ପୁସ୍ତାନି (ଦେଖ)
Postān(ni) **पुस्तानी पुस्तैनी** Pustāni (See)

**ପୋହଣା**—ପ୍ରାଦେ. (ସିଂହଭୂମ) ବ (ସଂ. ପୋତାଧାନ=ମାଛଜାଆଁଳଙ୍କ
Pohanā ମନା, ତୁଳ ବ. ପୋନା)—୧ । ମାଛର ଜାଁଅଳ,
ଡିମ୍ବଜାତ ମତ୍ସ୍ୟ ଶିଶୁ—1. Fish fry.
୨ । ମାଛ ଜାଆଁଳଙ୍କ ମନା—2. A shoal of young fishes.

**ପୋହଳ**—ପ୍ରାଦେ. (ବାଲେଶ୍ୱର) ବ—ପୋଳୁଅ (ଦେଖ)
Pohala Polua (See)
(ପୋହୁଲ—ଅନ୍ୟରୂପ) ପ୍ରାଦେ. (ଗଡ଼ଜାତ) ବ—ଶଗଡ଼ ଦଣ୍ଡାର
ସର୍ବଶେଷ ଫଳ—The hindmost cross-piece in the body-frame of a cart.

**ପୋହଳ କଳା**—ପ୍ରାଦେ. (ଗଡ଼ଜାତ) ବ—ଶଗଡ଼ ଦଣ୍ଡାର ଶେଷ ଫଳର
Pohala kilā ଦୁଇ ମୁଣ୍ଡରେ ବାଆ ଯାଇଥିବା ଖିଲ—
The pins put into the two ends of the hindmost cross-piece attached to the body-frame of a cart.

**ପୋହଳ ଚାପିବା**—ପ୍ରାଦେ. (ବାଲେଶ୍ୱର) କ୍ରି—ପୋଳୁଅ ସାହାଯ୍ୟରେ
Pohala chāpibā ମାଛ ମାରବା, ପୋଳୁଅ ମଡ଼ାଇବା—
(ପୋହଳ ମାଡ଼ିବା—ଅନ୍ୟରୂପ) To press the Polua in water to catch fish.

**ପୋହ(ହୋ)ଳା**—ଦେ. ବ. (ସଂ. ପ୍ରବାଳ)—ସାମୁଦ୍ରିକ ଉପରତ୍ନବିଶେଷ—
Poha(ho)lā Coral; Corallium Rubrum,
**पला** [ ଦ୍ର—ଏହା ବୃକ୍ଷାକୃତ ସାମୁଦ୍ରିକ ଜୀବର ଅସ୍ଥି ।
**मुंगा** ଏହା ଖଣ୍ଡଖଣ୍ଡ ହୋଇ କଟାଯାଇ ବିକା ହୁଏ,
ସଂ. ଅଙ୍ଗାରମଣୀ ଏଥିରେ ମାଳ ଗୁନ୍ଥି ସ୍ତ୍ରୀଲୋକମାନେ ପିନ୍ଧନ୍ତି ଓ
ଲତାମଣୀ, ଏହାର ଭସ୍ମ ଔଷଧରେ ବ୍ୟବହୃତ ହୁଏ । ରତ୍ନ ଚଳେ
ବିଦ୍ରୁମ, କୋଷ୍ଟ୍ ଦେଖ । ]
ରକ୍ତକନ୍ଦକ, ୨ । ପୋହଳା ମାଛ (ଦେଖ)
ରକ୍ତାଙ୍ଗ 2. Pohalā māchha (See)
୩ । ପିହୁଳା (ଦେଖ)—3. Pihulā (See)

**ପୋହଳା ଏଣ୍ଡା**—ପ୍ରାଦେ. (ଗଞ୍ଜାମ) ବ—ପୋହଳା ଏଣ୍ଡୁଅ (ଦେଖ)
Pohalā endā Pohalā endua (See)

**ପୋହଳା ଏଣ୍ଡୁଅ**—ଦେ ବ. ( ସ. ପ୍ରବାଳ+ଓ. ଏଣ୍ଡୁଅ )—
Pohalā endua ଏକ ପ୍ରକାର ନାଲି ମୁଣ୍ଡିଆ ଏଣ୍ଡୁଅ—
A kind of chameleon; the horned Iguana; Iguana Tuberculata.
[ ଦ୍ର—ଏମାନଙ୍କ ବହୁରୂପୀ ଏଣ୍ଡୁଅ କୁହାଯାଏ । ଏମାନଙ୍କ ମୁଣ୍ଡ ଓ ବେକ ପୋହଳା ପରି ନାଲି ଦେଖାଯାଏ । ଏମାନେ ବୃକ୍ଷଧର ଅଟନ୍ତି । ଏମାନଙ୍କ ଶରୀରର ରଙ୍ଗ ଏମାନଙ୍କ ବସିବା ସ୍ଥାନ ଓ ପଦାର୍ଥର ରଙ୍ଗ ଅନୁସାରେ ବଦଳୁ ଥାଏ । ]

**ପୋହଳା ମାଛ**—ଦେ. ବ. ( ସ. ନାମ. ଭଙ୍ଗାନ )—
Pohalā māchha ପୋଖରୀ ଓ ନଦୀ ଆଦରେ ଥିବା ଏକପ୍ରକାର
(ପୋହୋଲା ମାଛ—ଅନ୍ୟରୂପ) ଛୋଟ କାତିଯୁକ୍ତ ମାଛ—
ବାଟା A small freshwater fish allied to the minnow or chub, minny; Cirrhina Reba.
[ ଦ୍ର—ଏମାନେ ଲମ୍ବରେ ୧ ଚାଖଣ୍ଡ ପର୍ଯ୍ୟନ୍ତ ବଢନ୍ତି । ଛୋଟ ଛୋଟ ସରୁଆ ପୋହଳାମାଛଙ୍କୁ କାଠି ପୋହଳା (ବ. ଖଡ଼କେ ବାଟା) ବୋଲାଯାଏ । ବଡ଼ ଆକାରର ପୋହଳା ମାଛମାନଙ୍କୁ ବଡ଼ ପୋହଳା (ବ. ଭାଙ୍ଗନ୍‌ବାଟା କହନ୍ତି । ]

**ପୋହଳା ମାଳ**—ଦେ. ବ—ପ୍ରବାଳ ଗୁନ୍ଥା ହୋଇଥିବା ହାର—
Pohalā māla A necklace of corals strung to-
ପଳାକାଠି **मुंगाकीमाला** gether; a string of corals.
(ପୋହଳା କଣ୍ଠି, ପୋହଳା ହାର—ଅନ୍ୟରୂପ)

**ପୌଂଶ୍ଚଲେୟ**—ସ. ବ. ପୁଂ. (ପୁଂଶ୍ଚଳୀ=ଅସତୀ+ଅପତ୍ୟାର୍ଥେ ଏୟ)—
Paumschaleya ଅସତୀତନୟ, ବେଶ୍ୟାପୁତ୍ର—
ପୌଂଶ୍ଚଲେୟୀ } ସ୍ତ୍ରୀ The son of an adulteress;
ପୌଂଶ୍ଚଲେୟୀ } whoreson.

**ପୌଂସବନ**—ସ. ବ. (ପୁଂସବନ+ଅ)—ପୁଂସବନ (ଦେଖ)
Paumsabana Pumsabana (See)
ବଣ—ପୁଂସବନ ସମ୍ବନ୍ଧୀୟ—Relating to Pumsabana.

**ପୌଗଣ୍ଡ**—ସଂ. ବ. (ପୋଗଣ୍ଡ+ଭାବ. ଅ)—୧ । ପୋଗଣ୍ଡ ଅବସ୍ଥା;
Pauganda ୫ ବର୍ଷଠାରୁ ୧୦ ବର୍ଷ (ମତାନ୍ତରରେ ୧୫ ବର୍ଷ)
ପର୍ଯ୍ୟନ୍ତ ବାଲ୍ୟାବସ୍ଥା—1. Boyhood between 5 to 10 years of age.
[ ଦ୍ର—କେହି କେହି ବାଲ୍ୟାବସ୍ଥାକୁ ୩ ଭାଗରେ ବିଭକ୍ତ କରନ୍ତି, ଯଥା—
୫ ବର୍ଷ ପର୍ଯ୍ୟନ୍ତ—କୌମାର ବା କୁମାର ବା ଶୈଶବ ବା ଶିଶୁ,
୧୦ ବର୍ଷ ପର୍ଯ୍ୟନ୍ତ—ପୌଗଣ୍ଡ ବା ପୋଗଣ୍ଡ,
୧୫ ବର୍ଷ ପର୍ଯ୍ୟନ୍ତ—କୈଶୋର ବା କଶୋର । ]

୨ । ଦଶବର୍ଷରୁ ଅଳ୍ପ ବୟସ୍କ ଛୋଟ ବାଳକ—
2. A boy below 10 years of age
୩ । ବିକଳାଙ୍ଗ—3. A person deficient in some limbs.
୪ । ଅପ୍ରାପ୍ତବୟସ୍କ ବାଳକ, ନାବାଳକ—4. A minor.

**ପୌଟି**—ଦେ. ବି—ପଉଟି (ଦେଖ)—Pauṭi (See)
Pauṭi ପ୍ରାଦେ. (ସିଂହଭୂମ) ବି—୧୦ ମହଣ ପରିମାଣ—
A measure of 10 maunds.

**ପୌଣ୍ଡରୀକ**—ସ. ବି—ପ୍ରପୌଣ୍ଡରୀକ (ଦେଖ)
Pauṇḍarīka Prapauṇḍarīka (See)
(ପୌଣ୍ଡର୍ଯ୍ୟ—ଅନ୍ୟରୂପ)

**ପୌଣ୍ଡ୍ର**—ସ. ବି. (ପୁଣ୍ଡ୍ର+ଅ)—୧ । ପୁଣ୍ଡ୍ରଦେଶ; ପ୍ରାଚୀନ ଗୌଡ଼
Pauṇḍra ଦେଶ, ଆଧୁନିକ ବିହାରର ଦକ୍ଷିଣାଂଶ—
1. The ancient name of the country extending from the Ganges along the south of Bihar.
୨ । ପୁଣ୍ଡ୍ରଦେଶବାସୀ ବ୍ୟକ୍ତି—
2. Inhabitant of Puṇḍra country.
୩ । ଭୀମସେନଙ୍କ ଶଙ୍ଖର ନାମ—
3. Name of the conch blown by Bhīma.
ପୁଂଡ଼ୀ ଆକ ପୌଁଡ଼ା ୪ । ପୁଣ୍ଡ୍ର ଆଖୁ—4. A kind of pale straw-coloured sugarcane.

**ପୌଣ୍ଡ୍ରକ**—ସ. ବି—୧ । ପୌଣ୍ଡ୍ର ୪ (ଦେଖ)
Pauṇḍraka 1 Pauṇḍra 4 (See)
୨ । ବର୍ଣ୍ଣସଙ୍କର ଜାତିବିଶେଷ; ବୈଶ୍ୟ ଔରସରେ ଶୌଣ୍ଡିକା ଗର୍ଭଜାତ ସନ୍ତାନ—2. A mixed caste begotton by a Baiśya father on a destiller caste woman.
[ ଦ୍ର—ଏମାନେ ଆଖୁରୁ ଗୁଡ଼ ତିଆର କରୁଥିଲେ । ]
୩ । କରୁଷ ବା ପୁଣ୍ଡ୍ରଦେଶର ରାଜା—3 A king who tried to set himself up as Śrikrushṇa and was ultimately killed by him.
[ ଦ୍ର—ଏ ଜରାସନ୍ଧର ଶଳା ଥିଲେ । ଏହାଙ୍କ ପିତାଙ୍କ ନାମ ବସୁଦେବ, ଏଥିପାଇଁ ଏ ଆପଣାକୁ ବାସୁଦେବ ନାମରେ ଡାକୁଥିଲେ । ପାଣ୍ଡବମାନଙ୍କ ରାଜସୂୟ ଯଜ୍ଞରେ ଭୀମ ଏହାଙ୍କୁ ହରାଇଥିଲେ । ଏ ଶ୍ରୀକୃଷ୍ଣଙ୍କ ପରି ରୂପ ଓ ବେଶ ଧାରଣ କରିଥାଆନ୍ତି । ଏ ନାରଦଙ୍କଠାରୁ ଶ୍ରୀକୃଷ୍ଣଙ୍କ ମହିମା ଶୁଣି କ୍ରୁଦ୍ଧ ହୋଇ ଓ ଏକଲବ୍ୟ ଆଦିଙ୍କୁ ନେଇ ଶ୍ରୀକୃଷ୍ଣଙ୍କ ରାଜଧାନୀ ଦ୍ୱାରକାକୁ ଆକ୍ରମଣ କଲେ ଓ ସେଠାରେ ଶ୍ରୀକୃଷ୍ଣଙ୍କ ଦ୍ୱାରା ହତ ହୋଇଲେ—ହି. ଶ । ]

**ପୌଣ୍ଡ୍ର ବର୍ଦ୍ଧନ**—ସ. ବି—ପୁଣ୍ଡ୍ର ବର୍ଦ୍ଧନ (ଦେଖ)
Pauṇḍra barddhana Puṇḍra barddhana (See)

**ପୌଣ୍ଡ୍ରିକ**—ସ. ବି. (ପୁଣ୍ଡ୍ର+ଇକ)—୧ । ପୁଣ୍ଡ୍ର ଆଖୁ—
Pauṇḍrika 1. A variety of sugarcane.
୨ । ବର୍ଣ୍ଣସଙ୍କର ଜାତିବିଶେଷ; ଶୌଣ୍ଡିକ—
2. A mixed caste.

୩ । ପୌଣ୍ଡ୍ରକ ରାଜା—3 Name of a king
୪ । ପୁଣ୍ଡ୍ର ୮ (ଦେଖ)—4. Puṇḍra 8 (See)
୫ । ଋଷିବିଶେଷ (ହି. ଶ)—5. Name of a sage
୬ । ତିତିର ଜାତୀୟ ପକ୍ଷିବିଶେଷ (ହି. ଶ)—
6. A kind of partridge (bird).

**ପୌଣ୍ୟ**—ସ. ବିଣ. (ପୁଣ୍ୟ+ଅ)—ପୁଣ୍ୟକର୍ମକାରକ (ହି. ଶ)—
Pauṇya (ପୌଣ୍ୟା—ସ୍ତ୍ରୀ) Doing pious acts.

**ପୌତିକ**—ସ. ବି. (ପୁତିକା+ଅ)—ପୌତ୍ରିକ (ଦେଖ).
Pautika Pautrika (See)

**ପୌତି ନାସିକ୍ୟ**—ସ. ବି. (ପୂତି ନାସିକା+ଭବାର୍ଥେ. ଯ)—
Pauti nāsikya ୧ । ସିଂଘାଣୀ, ନାସିକାମଳ, ନାକର ବଙ୍ଗୁଳି—
1 The slimy exudation form the nostril.
୨ । ପୀନସ ରୋଗ (ହି. ଶ)—2 Polypus of the nose.

**ପୌତ୍ତଳିକ**—ସ. ବିଣ. ପୁଂ. (ପୁତ୍ତଳ+ଇକ)—ପ୍ରତିମା ପୂଜକ—
Pauttalika Idolatrous; worshipping God in the shaps of idols
(ପୌତ୍ତଳିକା—ସ୍ତ୍ରୀ)

**ପୌତ୍ତଳିକତା**—ସ. ବି. (ପୌତ୍ତଳିକ+ଭାବ. ତା)—
Pauttalikatā ପ୍ରତିମା ପୂଜା, ସାକାର ଉପାସନା—
Idolatory; idol worship.

**ପୌତ୍ତିକ**—ସ. ବି. (ପୁତ୍ତିକ=କଳାକଟ ମହୁମାଛି+ଅ)—
Pauttika ପୌତ୍ରିକ (ଦେଖ)—Pautrika (See)

**ପୌତ୍ର**—ସ. ବି· ପୁଂ. (ପୁତ୍ର+ଅପତ୍ୟାର୍ଥେ. ଅ)—ପୁଅର ପୁଅ, ନାତି—
Pautra Son's son; grandson.
(ପୌତ୍ରୀ—ସ୍ତ୍ରୀ) (ଦୌହିତ୍ର—ବିପରୀତ)

**ପୌତ୍ରିକ**—ସ. ବି. (ପୁତ୍ରିକା=କଳାକଟ ମହୁମାଛି+ଅ)—
Pautrika ପୌତ୍ତିକ, କଳୁଟିମହୁ—A kind of pale-coloured honey gathered by small bees.
[ ଦ୍ର—ଏ ମହୁ ଦେଖିବାକୁ ଘୃତ ପରି ପିଙ୍ଗଳ ବର୍ଣ୍ଣ । ଏ ମହୁମାଛିମାନେ ସାଧାରଣତଃ ଗଛର କୋରଡ଼ରେ ଓ ଘର କାନ୍ଥର କଣାରେ ଫେଣା କରନ୍ତି । ]
ବିଣ (ପୁତ୍ର+ଇକ)—୧ । ପୁତ୍ର ସମ୍ବନ୍ଧୀୟ—
1. Relating to the son.
୨ । (ପୌତ୍ର+ଇକ) ପୌତ୍ର ସମ୍ବନ୍ଧୀୟ—
2. Relating to the grandson.

**ପୌତ୍ରିକେୟ**—ସ. ବି. ପୁଂ. (ପୁତ୍ରିକା+ଅପତ୍ୟାର୍ଥେ. ଏୟ)—
Pautrikeya ୧ । ଦୌହିତ୍ର; ଝିଅର ପୁଅ ନାତି—
ପୌତ୍ରିକେୟା, ପୌତ୍ରିକେୟୀ } ସ୍ତ୍ରୀ 1. Daughter's son; grandson.
୨ । ପୁତ୍ରିକା ପୁତ୍ର (ଦେଖ)
2. Putrikā putra (See)

**ପୌତ୍ରୀ**—ସ. ବି. ସ୍ତ୍ରୀ. (ପୌତ୍ର+ସ୍ତ୍ରୀ. ଈ)—
Pautrī ପୁଅର ଝିଅ; ନପ୍ତ୍ରୀ; ନାତୁଣୀ—
(ପୌତ୍ରିଣୀ—ସ୍ତ୍ରୀ) Son's daughter.
ବିଣ. ପୁଂ. (ପୌତ୍ର+ଇନ୍)—ଯାହାର ନାତି ହୋଇଥାଏ—
(ପୌତ୍ରିଣୀ—ସ୍ତ୍ରୀ) Having a son's son.

**ପୌଦ୍ଗଲିକ**—ସଂ. ବିଣ. ( ପୁଦ୍ଗଲ+ଇକ )—
Paudgalika ୧ । ଦେହ ସମ୍ବନ୍ଧୀୟ—
1. Relating to the body.
୨ । ଆତ୍ମା ସମ୍ବନ୍ଧୀୟ—2. Relating to the soul.
୩ । ପରମାଣୁ ସମ୍ବନ୍ଧୀୟ—3. Atomic; molecular
୪ । ବିଷୟାନୁରକ୍ତ ( ହି. ଶବ୍ଦସାଗର )—
4 Devoted to worldly affairs.

**ପୌନଃପୁନିକ**—ସଂ. ବିଣ. (ପୁନଃ ପୁନଃ+ଭବ ଅର୍ଥରେ ଇକ)—
Paunahpunika ପୁନଃ ପୁନଃ ଘଟୁଥିବା—Recurring.
ବି (ଗଣିତ)—ଏକ ପ୍ରକାର ଦଶମିକ ଭଗ୍ନାଂଶ, ଯହିଁରେ ଦଶମିକର ପରବର୍ତ୍ତୀ ସଂଖ୍ୟା ପୁନଃ ପୁନଃ ଆବୃତ୍ତ ହେଉଥାଏ—(mathematics) Recurring decimal, recurring traction

**ପୌନଃପୁନିକତା**—ସଂ. ବି. ( ପୁନଃପୁନିକ+ଭାବ ତା )—
Paunahpunikatā ୧ । ପୁନଃ ପୁନଃ ଘଟୁଥିବା ଅବସ୍ଥା—
(ପୌନଃ ପୁନ୍ୟ—ଅନ୍ୟରୂପ) 1 Reiteration, repetition.
୨ । ପୁନଃ ପୁନଃ ଉଲ୍ଲେଖ ବା ଉଚ୍ଚାରଣ ବା କଥନ—
2. Frequent repetition of a matter.

**ପୌନଃପୌନିକ**—ଦେ. ବିଣ. ( ସଂ. ପୌନଃପୁନିକର ଅଶୁଦ୍ଧ
Paunahpaunika ଉଚ୍ଚାରଣ )—ପୌନଃପୁନିକ ଭଗ୍ନାଂଶ—
Recurring decimal.

**ପୌନରୁକ୍ତ**—ସଂ. ବି. ( ପୁନରୁକ୍ତ+ଭାବ. ଅ )—
Paunarukta ପୁନରୁକ୍ତି, ପୁନଃ ପୁନଃ କଥନ—
(ପୌନରୁକ୍ତ୍ୟ—ଅନ୍ୟରୂପ) Repetition; tautology.

**ପୌନର୍ଭବ**—ସଂ. ବି. ପୁଂ (ପୁନର୍ଭୂ+ଅପତ୍ୟାର୍ଥେ. ଅ)—
Paunarbhaba ପୁନର୍ଭୂର ପୁତ୍ର; ବିଧବାର ଗର୍ଭରେ ପୁନର୍ବିବାହିତ
(ପୌନର୍ଭବା—ସ୍ତ୍ରୀ) ସ୍ୱାମୀଙ୍କ ଔରସଜାତ ସନ୍ତାନ—
1. Son of a remarried widow, the son of a widow by her second marriage.
[ ଦ୍ର—ଏହି ପୁତ୍ର ହିନ୍ଦୁ ସ୍ମୃତି ଲିଖିତ ୧୨ ପ୍ରକାର ପୁତ୍ର ମଧ୍ୟରୁ ଏକତମ । ]
୨ । ବିଧବା ବିବାହ କରିଥିବା ପୁରୁଷ ( ହି. ଶବ୍ଦସାଗର )—
2 A male who has married a widow.
ବିଣ—୧ । ପୁନର୍ବିବାହିତା ବିଧବା ସମ୍ବନ୍ଧୀୟ—
1. Relating to or connected with a remarried widow.
୨ । ପୁନର୍ବାର ଜାତ—2. Born again.
୩ । ପୁନର୍ବାର ଘଟିବା, ଅଧିକା—
3. Additional; repeated, recurring.

**ପୌନର୍ଭବା**—ସଂ. ବି. ସ୍ତ୍ରୀ. ( ପୁନର୍ଭୂ+ଅ+ସ୍ତ୍ରୀ. ଆ )—
Paunarbhabā ୧ । ବରପୂର୍ବା କନ୍ୟା, ଯେଉଁ କନ୍ୟା ଥରେ ଜଣେ ସ୍ୱାମୀଙ୍କୁ ଅର୍ପିତ ହୋଇଥାଏ—
1. A girl who has once been formally betrothed or joined to a husband by words or by ceremonial rites.
[ ଦ୍ର—କାଶ୍ୟପଙ୍କ ମତରେ ୧. ବାଗ୍‌ଦତ୍ତା, ୨. ମନୋଦତ୍ତା, ୩. କୃତକୌତୁକମଙ୍ଗଳା ( ଯାହା ହାତରେ କୌତୁକସୂତ୍ର ବନ୍ଧା ହୋଇ ସାରି ଥାଏ ), ୪. ଉଦକସ୍ପର୍ଶିତା (ଯାହା ଉପରେ କୋଇଲି ବୁଡ଼ା ପାଣି ଛିଞ୍ଚା ହୋଇ ସାରି ଥାଏ), ୫. ପାଣିଗୃହୀତିକା ( ଯାହାର ପାଣିଗ୍ରହଣ ବା ହାତଗଣ୍ଠି ବନ୍ଧା ବେଦୀ ଉପରେ ସରି ଯାଇଥାଏ), ୬. ଅଗ୍ନିପରିଗତା (ଯାହାର ବେଦୀ ଉପରେ ସ୍ୱାମୀ ସଙ୍ଗେ ହୋମ ସରି ଯାଇଥାଏ), ଓ ୭. ପୁନର୍ଭୂପ୍ରଭବା; ଏପରି ୭ ପ୍ରକାର କନ୍ୟାଙ୍କୁ ପୌନର୍ଭବା କନ୍ୟା ବୋଲାଯାଏ । ହି. ଶ. ]
୨ । ପୁନର୍ଭୂର କନ୍ୟା—2. Daughter of a remarried widow.

**ପୌନେ**—ଦେ. ବିଣ—ପଉନେ ( ଦେଖ )
Paune Paune ( See )

**ପୌର**—ସଂ. ବିଣ. ପୁଂ ( ପୁର+ଭବାର୍ଥେ. ଅ )—
Paura ୧ । ପୁରବାସୀ, ନାଗରିକ, ସହରିଆ; ନଗରବାସୀ—
(ପୌରୀ—ସ୍ତ୍ରୀ) 1 Living in a town or city
୨ । ନଗର ସମ୍ବନ୍ଧୀୟ—2. Relating to a town or city, civic; municipal.
୩ । ପୁରସ୍ଥିତ—3. Situate in a town.
୪ । ପୁର ଜାତ; ନଗରରେ ଉତ୍ପନ୍ନ—
4 Produced in a town; city-bred.
୫ । ଉଦର ପୂରକ—5. Filling up the belly
୬ । ପୂର୍ବ ଦେଶୀୟ—6 Belonging to the East
୭ । ପୂର୍ବକାଳରେ ଜାତ—7. Born in the past.
୮ । ପେଟୁ, ଉଦରମ୍ଭରି—8. Gluttonous.
ବି—୧ । ସହରର ବାସିନ୍ଦା—
1 A citizen, townsman.
୨ । ଧନ୍ୱନ୍ତରୀ ଘାସ, ରୋହିଷ ତୃଣ, ଗ୍ରାମକର୍ପୂର—
2, A kind of fragrant grass.

**ପୌରକ**—ସଂ. ବି. ( ପୌର+କ )—
Pauraka ୧ । ବାହ୍ୟାରାମ; ଗୃହର ବାହାରେ ଥିବା ବଗିଚା—
1. A garden outside a house.
[ ଦ୍ର—ଘରର ଉତ୍ତର ପାର୍ଶ୍ୱରେ ଥିବା ବଗିଚାକୁ ନିଷ୍କୁଟ ବୋଲାଯାଏ । ]
୨ । ସହରର ବାହାରେ ଥିବା ଆରାମ—
2 A garden or park in the neighbourhood of a city. ( M. W )

**ପୌରାଗୀୟ**—ସଂ. ବିଣ—ପୂର୍ବ ଜନ୍ମ ସମ୍ବନ୍ଧୀୟ ( ହି. ଶବ୍ଦସାଗର )—
Pauragiya Relating to one's previous existence.

**ପୌରଜନ**—ସଂ. ବି ( କର୍ମଧା, ପୌର+ଜନ )—
Paurajana ପୁରବାସୀ; ନାଗରିକ—
Citizen; townsman.

**ପୌର ଜାନପଦ**—ସଂ. ବି ( ଦ୍ୱନ୍ଦ୍ୱ, ପୌର+ଜାନପଦ )—
Paura jānapada ନଗରବାସୀ ଓ ଜନପଦବାସୀ ବ୍ୟକ୍ତିଗଣ, ସହରିଆ ଓ ମଫସଲିଆ ଲୋକମାନେ—Townspeople and village folks.

**ପୌରନ୍ଦର**— ସଂ. ବିଣ. (ପୁରନ୍ଦର+ଅ)—ଇନ୍ଦ୍ରଙ୍କ ସମ୍ବନ୍ଧୀୟ—
Paurandara Relating to Indra.
ବି.— ଜ୍ୟେଷ୍ଠା ନକ୍ଷତ୍ର (ଏଥିର ଅଧିପତି ଇନ୍ଦ୍ର)—
The 18th lunar mansion.

**ପୌରନ୍ଦରୀ**— ସଂ. ବି. ସ୍ତ୍ରୀ. (ପୁରନ୍ଦର+ଅ, ସ୍ତ୍ରୀ. ଈ)—(ଇନ୍ଦ୍ରାଧିଷ୍ଠିତ)
Paurandarī ପୂର୍ବ ଦିଗ—The East.
ବାଳ ଜ୍ୟୋସ୍ନା ଯୋଗେ ଶୋଭି ପୌରନ୍ଦରୀ ।
ରାଧାନାଥ. ଚିଲିକା ।

**ପୌରବ**— ସଂ. ବିଣ. ପୁ. (ପୂରୁ+ଅପତ୍ୟାର୍ଥେ. ଅ)—ଯଯାତିଙ୍କ ପୁତ୍ର
Pauraba ପୂରୁଙ୍କର ବଂଶୀୟ—Descended from the race
(ପୌରବୀୟ—ଅନ୍ୟରୂପ) of king Pūru.
[ଦ୍ର—ଶର୍ମିଷ୍ଠା ଗର୍ଭଜାତ ଯଯାତିଙ୍କ କନିଷ୍ଠ ପୁତ୍ର ପୂରୁ ଆପଣା ପିତାଙ୍କର ଜରା ଗ୍ରହଣ କରି ସ୍ୱାର୍ଥତ୍ୟାଗର ଜ୍ୱଳନ୍ତ ଉଦାହରଣ ଦେଖାଇ ଥିବାରୁ ତାଙ୍କର ନାମ ଅନୁସାରେ ତାଙ୍କ ବଂଶର ନାମକରଣ ହୋଇଥିଲା ।]
ବି.— ୧ । ପୂରୁ ରାଜାଙ୍କ ବଂଶ—
1 The race of king Pūru.
୨ । ପୂରୁ ରାଜାଙ୍କ ବଂଶଧର—
2. The descendant of king Pūru.
୩ । ଭାରତର ଉତ୍ତର ପଶ୍ଚିମସ୍ଥ ପ୍ରାଚୀନ ଦେଶବିଶେଷ—
3. An ancient country in Northwestern India.
୪ । ପୁରାଣୋକ୍ତ ଜଣେ ହିନ୍ଦୁ ରାଜା—
4. Name of an ancient king of India.
[ଦ୍ର—ଏ ଛଅ ଲକ୍ଷ ଶ୍ୱେତାଶ୍ୱ ଦାନ ଓ ଅଶ୍ୱମେଧ ଯଜ୍ଞ କରି ସ୍ୱର୍ଗକୁ ଯାଇଥିଲେ । ହି. ଶ.]
୫ । ମୂର୍ଚ୍ଛନା ବା ରାଗିଣୀବିଶେଷ— 5. Name of a tune or modulation in music (M. W.)

**ପୌରବୀ** - ସଂ. ବି. ସ୍ତ୍ରୀ (ପୂରୁ+ଅପତ୍ୟାର୍ଥେ. ଅ. ସ୍ତ୍ରୀ. ଈ)—
Paurabī ୧ । ବସୁଦେବଙ୍କର ଏକ ପତ୍ନୀ—One of the wives of king Basudeba.
[ଦ୍ର—ଏହାଙ୍କର ପ୍ରକୃତ ନାମ ରୋହିଣୀ, କିନ୍ତୁ କାଳେ ବଳରାମଙ୍କ ଜନନୀ ରୋହିଣୀଙ୍କ ନାମ ସଙ୍ଗେ ଏହାଙ୍କ ନାମର ଗଣ୍ଡଗୋଳ ହେବ, ଏଥିପାଇଁ ଏହାଙ୍କୁ ଏହି ନାମ ଦିଆ ଯାଇଥିଲା ।]
୨ । ଦେଶ ଓ ମଲ୍ଲାର ରାଗର ମିଶ୍ରଣରେ ଉତ୍ପନ୍ନ ରାଗିଣୀ —
2. A mixed tune

**ପୌରଷ**—ଗ୍ରା. ବି. (ସଂ. ପୌରୁଷ)—ପୌରୁଷ (ଦେଖ)
Paurasha Paurusha (See)

**ପୌର ସଖ୍ୟ**—ସଂ ବି. (ପୁର+ସଖି+ଯ)—ଏକ ନଗରରେ ବା
Paura sakhya ଗ୍ରାମରେ ବାସ କରୁଥିବା ଯୋଗୁଁ ପରସ୍ପର ବନ୍ଧୁତା—Fellowcitizenship; mutual friendship between co-townsmen or co-villagers.

**ପୌରସ୍ତ୍ୟ**—ସଂ. ବିଣ. (ପୁରସ୍+ଭବ. ତ୍ୟ)—୧ । ପ୍ରାଚ୍ୟ, ପୂର୍ବ
Paurastya ଦେଶୀୟ—1. Eastern; oriental.
୨ । ସମ୍ମୁଖରେ ଅବସ୍ଥିତ—2. Situated in front.
୩ । ଅଗ୍ରେଭବ, ପ୍ରଥମ—
3. First; prior; foremost; initial
ବି —ପ୍ରାଚ୍ୟ ଗୌଡ଼ ଦେଶବାସିଗଣ—
The people in the East Gaurda (M W.)

**ପୌରସ୍ତ୍ରୀ**— ସଂ. ବି. (କର୍ମଧା, ପୌର=ପୁରବାସିନୀ+ସ୍ତ୍ରୀ)—
Paurastrī ୧ । ପୁରନାରୀ; ପୁରାଙ୍ଗନା, ଘରଣୀ—
(ପୌରନାରୀ, ପୌରାଙ୍ଗନା—ଅନ୍ୟରୂପ) 1. A housewife
୨ ଅନ୍ତଃପୁରବାସିନୀ ସ୍ତ୍ରୀ—
2. A woman of the harem
୩ । ନଗରବାସିନୀ ସ୍ତ୍ରୀ—
3. A woman residing in a town.
୪ । ସହରର ବେଶ୍ୟା—4. A prostitute of the town.

**ପୌରାଣ**— ସଂ. ବିଣ. (ପୁରାଣ+ସମ୍ବନ୍ଧାର୍ଥେ. ଅ)—୧ । ପୁରାଣ
Paurāṇa ସମ୍ବନ୍ଧୀୟ—1. Pauranic; relating to the
(ପୌରାଣୀ – ସ୍ତ୍ରୀ) Purāṇas; mythological.
୨ । ପୁରାଣ ବିତ୍—2. Versed in the mythological lore or the ancient legends.
୩ । ପୁରାଣ କଥିତ—3. Mentioned in the Purāṇas.
୪ । ପୁରାତନ; ପ୍ରାଚୀନ—
4. Ancient; relating to the past age.
୫ । ପୁରାଣ ବା ଏକ କାହାଣ କଉଡ଼ି ମୂଲ୍ୟର ( ବସ୍ତୁ )—
5 Of the value of 16 Paṇas of shell money

**ପୌରାଣିକ**— ସଂ. ବିଣ. (ପୁରାଣ+ସମ୍ବନ୍ଧାର୍ଥେ. ଇକ)—ପୌରାଣ (ଦେଖ)
Paurāṇika Paurāṇa (See)
(ପୌରାଣିକୀ—ସ୍ତ୍ରୀ) ବି - ୧ । ପୁରାଣବିତ୍ ବ୍ରାହ୍ମଣ —
1. A Brāhmaṇa well versed in the ancient legends; a mythologist.
୨ । ଯେଉଁ ବ୍ୟକ୍ତି ସମବେତ ଶ୍ରୋତୃବର୍ଗଙ୍କ ଆଗରେ ପୁରାଣ ପାଠ ବା ପୁରାଣ କଥା ବକ୍ତୃତା କରନ୍ତି—
2. A person who reads or recites mythology and legends before an audience.

**ପୌରିକ**— ସ. ବିଣ. ଓ ବି. (ପୁର+ଭବାର୍ଥେ. ଇକ)—ପୌର (ଦେଖ).
Paurika Paura (See).

**ପୌରୁଷ**—ସଂ. ବି. ( ପୁରୁଷ+ଭାବ. ବା କର୍ମ ଅର୍ଥରେ ଅ )—
Paurusha ୧ । ପୁରୁଷତ୍ୱ—1. Manliness.
୨ । ପୁରୁଷକାର—2. Manly exertion.
୩ । ସାହସ—3. Courage; valour; manhood.
୪ । ଅଣ୍ଡିରାପଣିଆ, ପୁଂସ୍ତ୍ୱ—4. Virility.
୫ । ରେତଃ; ଶୁକ୍ର—5. Semen; virile.
୬ । ଉଦ୍ୟମ; ଉଦ୍ଯୋଗ—6. Strenuous affort.
୭ । ତେଜ—7. Vigour.
୮ । ପରାକ୍ରମ—
2. Strength; power; might; prowess.

୯ । ପୁରୁଷ ପ୍ରମାଣ ଉଚ୍ଚତା, ଉର୍ଦ୍ଧ୍ୱବାହୁ ହୋଇ ଠିଆ ହେଲେ ଗୋଡ଼ର ତଳପାଦାରୁ ହାତର ମଝି ଅଙ୍ଗୁଠିର ଅଗ ପର୍ଯ୍ୟନ୍ତ ଉଚ୍ଚତା—9. The height of a man standing with the arms lifted up.

୧୦ । ଗୌରବ, ମାହାତ୍ମ୍ୟ—10. Greatness.

୧୧ । ଏକ ମନୁଷ୍ୟ ନେଇ ପାରିବା ବୋଝ—
11. A load or weight which can be lifted by one man; one man's load.

ବିଣ—୧ । ପୁରୁଷ ସମ୍ବନ୍ଧୀୟ, ମାନସିକ—
1. Manly; human.

୨ । ପୁରୁଷ ପ୍ରମାଣ ଉଚ୍ଚ; ପ୍ରାୟ ୪ ହାତ ଉଚ୍ଚ—
2. Of the height of a man standing with hands lifted up.

୩ । ଜଣେ ମନୁଷ୍ୟ ବହି ପାରିବା ଭଳି (ବୋଝ)—3 (load) Which can be carried by one person.

ଦେ. ବି—୧ । ପ୍ରଶଂସା—1. Praise; eulogy.

୨ । ବାହାଦୁର—2. Excellence.

୩ । ବାହାବା—3. Applause; credit.

**ପୌରୁଷ କରିବା**—ଦେ. କ୍ରି—୧ । ପ୍ରଶଂସା କରିବା—
Paurusha kariba 1. To eulogise
পৌরুষকরা ୨ । ବାହାଦୁର କରିବା, ଧନ୍ୟ ଧନ୍ୟ କରିବା—
**पौरुष करना** 2. To speak highly of a person; to give credit to a person; to applaud.

**ପୌରୁଷତା**—ସଂ. ବି. ( ପୌରୁଷ+ତା )—୧ । ସାହସିକତା—
Paurushatā 1. Courageousness; vigorousness.
( ପୌରୁଷତ୍ୱ; ପୌରୁଷ୍ୟ—ଅନ୍ୟରୂପ ) ୨ । ସାର୍ମ୍ଥ୍ୟବନ୍ତ—
2. Powerfulness; might.

**ପୌରୁଷାଦ**—ସଂ. ବିଣ. (ପୁରୁଷାଦ+ଅ)—ନରମାଂସ ଭକ୍ଷକ ସମ୍ବନ୍ଧୀୟ—
Paurushāda Relating to cannibals; peculiar to man-eaters.

**ପୌରୁଷେୟ**—ସଂ. ବିଣ ( ପୁରୁଷ+ଏୟ )—୧ । ପୁରୁଷ ସମ୍ବନ୍ଧୀୟ—1. Manly; human.
Paurusheya

୨ । ମନୁଷ୍ୟକୃତ—2 Made by man.

୩ । ପୁରୁଷର ପ୍ରକୃତିଗତ—
3. Relating to human nature.

୪ । ଆତ୍ମାରୁ ଜାତ—
4. Derived from the soul or spirit.

୫ । ଆଧ୍ୟାତ୍ମିକ—5. Spiritual.

ବି—୧ । ମନୁଷ୍ୟ ହତ୍ୟା; ମଣିଷ ମାରୁ—
1 Manslaughter.

୨ । ପୁରୁଷସମୂହ—2. A number of men.

୩ । ବ୍ୟକ୍ତିଗତ ଆଇନ—3. Personal law; law relating to human conduct.

୪ । ବ୍ୟକ୍ତିଗତ ଚେଷ୍ଟା—4 Personal effort.

୫ । ଦିନ ମୂଲିଆ—
5. A day-labourer; hireling (M. W).

**ପୌରେୟ**—ସଂ. ବିଣ. ( ପୌର+ଏୟ )—ପୌର ( ଦେଖ )
Paureya Paura ( See )
( ପୌରେୟୀ—ସ୍ତ୍ରୀ ) ସଂ. ବି—ନଗରର ସୀମାସ୍ଥ ଦେଶ ବା ଗ୍ରାମାଦି—Suburb, villages or country in the outskirts of a town.

**ପୌରୋଗବ**—ସଂ ବି. ପୁଂ. ( ପୁରସ୍=ଅଗ୍ରେ+ଗୋ=ନେତ୍ର ଯାହାର,
Paurogaba ପୁରୋଗୁ, ଅର୍ଥାତ୍ ଖାଦ୍ୟ ବସ୍ତୁ ପ୍ରତି ଯାହାର ପ୍ରଥମେ ଦୃଷ୍ଟି ପଡ଼ିଥାଏ; ପୁରୋଗୁ+ଅ )—
୧ । ରନ୍ଧନଶାଳାଧ୍ୟକ୍ଷ; ହେଡ୍ ଖାନ୍‌ସାମା—1 The superintendent of a kitchen; hotel-overseer; head cook.
୨ । ରାଜାଙ୍କ ମହାସୁଆର—
2. Inspector of the Royal kitchen (M W.).

**ପୌରୋଧାସ୍ୟ**—ସଂ. ବି. ଓ ବିଣ. ( ପୁରୋଧସ୍+ଯ )—ପୌରୋହିତ୍ୟ
Paurodhāsya (ଦେଖ)—Paurohitya (See)

**ପୌରୋଭାଗ୍ୟ**—ସଂ. ବି. ( ପୁରୋଭାଗିନ୍+ଭାବ. ଯ )—ଗୁଣଭାଗ
Paurobhāgya ପରିତ୍ୟାଗ କରି ଦୋଷଭାଗ ମାତ୍ର ଦର୍ଶନ—
Fault-finding, cavilling.

**ପୌରୋହିତ**—ସଂ. ବିଣ. ( ପୁରୋହିତ+ଅ )—ପୁରୋହିତ ସମ୍ବନ୍ଧୀୟ—
Paurohita Relating to a priest; priestly.

**ପୌରୋହିତ୍ୟ**—ସଂ. ବି. ( ପୁରୋହିତ+ଯ )—ପୁରୋହିତି (ଦେଖ)
Paurohitya Purohiti (See)
ବିଣ—ପୁରୋହିତବଂଶୀୟ—
Belonging to the family of a priest ( M. W, ).

**ପୌର୍ଣ୍ଣମାସ**—ସଂ. ବି. ( ପୂର୍ଣ୍ଣମାସୀ+ଭାବାର୍ଥେ. ଅ )—ପୂର୍ଣ୍ଣିମାରେ କୃତ୍ୟ ଯାଗବିଶେଷ—
Paurṇṇamāsa
A sacrifice done on the fullmoon day.

**ପୌର୍ଣ୍ଣମାସୀ**—ସଂ. ବି. ( ପୂର୍ଣ୍ଣମାସ+ଅ+ସ୍ତ୍ରୀ. ଈ )—୧ । ପୂର୍ଣ୍ଣିମା—
Paurṇṇamāsi 1. Fullmoon day.
( ପୌର୍ଣ୍ଣମାସ୍ୟ—ବିଣ ) ୨ । ପୂର୍ଣ୍ଣମାସୀ ( ଦେଖ )—
2. Pūrṇṇamāsi ( See )

**ପୌର୍ଣ୍ଣମୀ**—ସଂ. ବି—ପୂର୍ଣ୍ଣିମା ( ଦେଖ )—
Paurṇṇami Pūrṇṇimā ( See )

**ପୌର୍ଣ୍ଣିମ**—ସଂ. ବି. ( ପୂର୍ଣ୍ଣିମା+ଅ )—୧ । ସନ୍ନ୍ୟାସୀ—
Paurṇṇima 1. An ascetic.
୨ । ଯୋଗୀ; ତପସ୍ୱୀ—2. An anchorite; a sage.

**ପୌର୍ଣ୍ଣିମା**—ସଂ. ବି. ( ପୂର୍ଣ୍ଣିମା+ଅ+ଆ )—ପୂର୍ଣ୍ଣିମା—
Paurṇṇimā The fullmoon day.

**ପୌର୍ତ୍ତ**—ସଂ. ବି. ( ପୂର୍ତ୍ତ+ଅ )—ପୂର୍ତ୍ତ କର୍ମ ( କୂପ ଖନନ, ବ୍ରାହ୍ମଣ
Paurtta ଭୋଜନ ଆଦି )—A meritorious act, e. g. feeding of Brāhmaṇas, digging of wells etc ( M.W. )

ପୌର୍ତ୍ତିକ—ସଂ. ବିଣ. ( ପୂର୍ତ୍ତ+ଇକ )—ପୂର୍ତ୍ତ କର୍ମସମ୍ବନ୍ଧୀୟ—
Paurttika Relating to charitable or meritorious works (M. W.)

ପୌର୍ବ(ର୍ବ)—ସଂ. ବିଣ. ( ପୂର୍ବ+ଅ )—୧ । ପ୍ରାଚ୍ୟ; ପୂର୍ବସମ୍ବନ୍ଧୀୟ—
Paurba(rbba) 1. Relating to the east; eastern
( ପୌର୍ବୀ; ପୌର୍ବ୍ବୀ—ସ୍ତ୍ରୀ ) ୨ । ପ୍ରାଚୀନ; ଅତୀତକାଳସମ୍ବନ୍ଧୀୟ—
2. Relating to the past.
୩ । ପ୍ରାଥମିକ—3. Prior; first.

ପୌର୍ବକାଳିକ—ସଂ. ବିଣ. ( ପୂର୍ବକାଳ+ଇକ )—ପୂର୍ବକାଳସମ୍ବନ୍ଧୀୟ—
Paurbakālika Relating to the past.

ପୌର୍ବକାଲ୍ୟ—ସଂ. ବି. ( ପୂର୍ବକାଳ+ଯ )—ପୂର୍ବେ ଘଟିଥିବା ଅବସ୍ଥା—
Paurbakālya Priority of time ( M. W. ).

ପୌର୍ବଦେହିକ—ସଂ. ବିଣ—୧ । ପୂର୍ବଦେହସମ୍ବନ୍ଧୀୟ—
Paurba dehika 1 Relating to a past form
୨ । ପୂର୍ବଜନ୍ମସମ୍ବନ୍ଧୀୟ—
2 Relating to one's past life or birth.

ପୌର୍ବପଦିକ—ସଂ. ବିଣ—୧ । ପୂର୍ବପଦ ସମ୍ବନ୍ଧୀୟ—1 Relating
Paurbapadika to the previous word or sentence.
୨ । ( ବ୍ୟାକରଣ ) ସମାସସିଦ୍ଧ ପଦର ପୂର୍ବପଦ ସମ୍ବନ୍ଧୀୟ—
2. Relating to the 1st member of a compound word.

ପୌର୍ବବାର୍ଷିକ—ସଂ. ବିଣ. ( ପୂର୍ବବର୍ଷ+ଇକ )—ପୂର୍ବ ବର୍ଷରେ
Paurbabārshika ବା ବର୍ଷମାନଙ୍କରେ ଘଟିଥିବା—Done or happened in the previous year or years.

ପୌର୍ବଭକ୍ତିକ—ସଂ. ବିଣ. ( ପୂର୍ବଭକ୍ତ+ଇକ )—ଭାତ ଖାଇବା
Paurbabhaktika ପୂର୍ବରୁ ଖିଆଯିବା—
Taken before eating rice. (M.W.)

ପୌର୍ବାପର୍ଯ୍ୟ—ସଂ. ବି. ( ପୂର୍ବାପର+ଭାବ ଯ )—୧ । ଆନୁପୂର୍ବିକତା—
Paurbāparjya 1. Succession.
୨ । ଧାରାବାହିକତା—2. Continuity.
୩ । ଅନୁକ୍ରମ—3. Sequence
୪ । କାର୍ଯ୍ୟ ଓ କାରଣସମ୍ବନ୍ଧ —
4. The relationship of cause and effect
୫ । କାରଣ, ହେତୁ—5. Cause.
୬ । ଉତ୍ପତ୍ତି ଓ ପରିଣାମ—
6. Beginning and end; birth and effect.

ପୌର୍ବାର୍ଦ୍ଧିକ—ସଂ. ବିଣ. ( ପୂର୍ବାର୍ଦ୍ଧ+ଇକ )—୧ । ପୂର୍ବାର୍ଦ୍ଧ ସମ୍ବନ୍ଧୀୟ—
Paurbārddhika 1. Relating to the eastern or
( ପୌର୍ବାର୍ଦ୍ଧ୍ୟ—ଅନ୍ୟରୂପ ) first half.
୨ । ପୂର୍ବାର୍ଦ୍ଧରେ ଅବସ୍ଥିତ—2. Situated in the eastern half or portion.

ପୌର୍ବାହ୍ଣିକ—ସଂ. ବିଣ.—(ପୂର୍ବାହ୍ଣ+ଇକ)—ପୂର୍ବାହ୍ଣ ସମ୍ବନ୍ଧୀୟ—
Paurbāhnika Relating to the forenoon.
(ପୌର୍ବାହ୍ଣିକୀ—ସ୍ତ୍ରୀ)

ପୌର୍ବି(ର୍ବ୍ବି)କ—ସଂ. ବିଣ.—ପୌର୍ବ (ଦେଖ)
Paurbi(rbbi)ka [ପୌର୍ବି(ର୍ବ୍ବି)କୀ—ସ୍ତ୍ରୀ] Paurba (See)

ପୌଲସ୍ତ୍ୟ—ସଂ. ବି. ପୁଂ (ପୁଲସ୍ତ୍ୟ+ଅପତ୍ୟାର୍ଥେ. ଅ)—
Paulastya ୧ । ପୁଲସ୍ତ୍ୟ ମୁନିଙ୍କ ସନ୍ତାନ—
1. The son of Pulastya sage.
୨ । କୁବେର—2 Kubera; the God of wealth.
୩ । ରାବଣ—3. Rābaṇa; the demon king of Lankā.
୪ । କୁମ୍ଭକର୍ଣ୍ଣ—
4. Kumbhakarṇna, a brother of Rābaṇa.
୬ । ଚନ୍ଦ୍ର—6. The moon (M. W.)
୫ । ବିଭୀଷଣ—
5. Bibhīshaṇa; a brother of Rābaṇa.

ପୌଲସ୍ତ୍ୟୀ—ସଂ. ବି. ସ୍ତ୍ରୀ—(ପୌଲସ୍ତ୍ୟ+ଈ)—ସୂର୍ପଣଖା; କୁମ୍ଭୀନସୀ,
Paulastyī ରାବଣ ଭଗିନୀ—Sūrpaṇakhā; the sister of Rābaṇa.

ପୌଲି—ସଂ. ବି. (ପୋଲ+ଇ)—୧ । ସ୍ଥୂଳ ପିଠା—
Pauli 1. A kind of cake.
(ପୌଲିକା, ପୋଲି—ଅନ୍ୟରୂପ) ୨ । ଈଷତ୍ ପକ୍ୱ ରୁଟି—
2 A sort of thin half-baked bread.
୩ । ସାମାନ୍ୟ ଭଜା ହୋଇଥିବା ଶସ୍ୟ (ହ. ଶ.)—
3. Half-fried grain.

ପୌଲିଶ ସିଦ୍ଧାନ୍ତ—ସଂ. ବି. (ପୁଲିଶ+ଅ+ସିଦ୍ଧାନ୍ତ)—ପ୍ରାଚୀନ ହିନ୍ଦୁ
Paulisa siddhānta ଜ୍ୟୋତିଷ ଗ୍ରନ୍ଥବିଶେଷ—
Name of an ancient astronomical work based on the system of Paulus Alexandrinus.
[ଦ୍ର—ବରାହମିହିରଙ୍କ ପଞ୍ଚ ସିଦ୍ଧାନ୍ତ ମଧ୍ୟରୁ ପୌଲିଶ ସିଦ୍ଧାନ୍ତ ଏକତମ; ଏଥିର ଗ୍ରନ୍ଥକାରଙ୍କ ନାମ ସଂସ୍କୃତରେ 'ପୁଲିଶ' ବୋଲି ଲେଖା ଯାଇଅଛି । ପୁଲିଶଙ୍କର ଗ୍ରୀକ୍ ନାମ ପଲସ୍ ଆଲେକ୍ଜାଣ୍ଡ୍ରାଇନସ୍ (Paulus Alexandrinus) ଥିଲା । କେହି କେହି ଏହାଙ୍କୁ ଗ୍ରୀସ୍‌ବାସୀ, କେହି କେହି ମିଶରବାସୀ ବୋଲି କଳ୍ପନା କରନ୍ତି ।]

ପୌଲୋମୀ—ସଂ. ବି. ସ୍ତ୍ରୀ (ପୁଲୋମନ୍+ଅପତ୍ୟାର୍ଥେ ଅ+ସ୍ତ୍ରୀ. ଈ)—
Paulomī ୧ । ପୁଲୋମା ଦୈତ୍ୟର କନ୍ୟା, ଇନ୍ଦ୍ର ପତ୍ନୀ, ଶଚୀ—
1. Sachī; the consort of Indra.
୨ । ଭୃଗୁ ଋଷିଙ୍କ ପତ୍ନୀ—2. Wife of sage Bhṛugu.

ପୌଷ—ସଂ. ବି. (ପୌଷୀ=ପୁଷ୍ୟା ନକ୍ଷତ୍ର ଯୁକ୍ତା ପୂର୍ଣ୍ଣିମା+ଯୁକ୍ତାର୍ଥେ. ଅ,
Pausha ଏହି ମାସର ପୂର୍ଣ୍ଣିମାରେ ଚନ୍ଦ୍ର ପୁଷ୍ୟା ନକ୍ଷତ୍ର ଯୁକ୍ତ ଥିବାରୁ)—
୧ । ପୁଷ ମାସ; ମାର୍ଗଶିରର ପରବର୍ତ୍ତୀ ଓ ମାଘର ପୂର୍ବବର୍ତ୍ତୀ ଚାନ୍ଦ୍ର ମାସ—1. The lunar month of Pausha (December and January)
[ଦ୍ର—ଜ୍ୟୋତିଷ ମତରେ ଏହି ମାସରେ ଜନ୍ମ ଗ୍ରହଣ କଲେ ମନୁଷ୍ୟ କୃଶ, ପରୋପକାରୀ, ପିତୃଧନହୀନ, କଷ୍ଟାନ୍ୱିତ, ବ୍ୟୟଶୀଳ, ବକ୍ତା ଓ ସୁଧୀର ହୁଏ ।]

୨ । (ଜ୍ୟୋତିଷ) ବାର୍ହସ୍ପତ୍ୟ ୧୨ ବର୍ଷ ମଧ୍ୟରୁ ତୃତୀୟ ବର୍ଷର ନାମ—
2. (Astrology) Name of the 3rd year in the 12 years' cycle of Jupiter (M. W.)

**ପୌଷ ପୂର୍ଣ୍ଣିମା**—ସଂ. ବି.—ପୌଷ ମାସର ପୂର୍ଣ୍ଣିମା—
Pausha pūrṇimā The fullmoon day of the month of Pausha.
[ଦ୍ର—ଏ ଦିନ ଶ୍ରୀ ଜଗନ୍ନାଥଙ୍କର ଓ ରାଜାମାନଙ୍କର ପୁଷ୍ୟାଭିଷେକ ଉତ୍ସବ କରାଯାଏ ।]

**ପୌଷ ମାସ**—ସଂ. ବି.—ପୌଷ (ଦେଖ)
Pausha māsa Pausha (See)
ଦେ. ବି.—(ଲକ୍ଷଣାର୍ଥ) ସୁଖ ଓ ଆନନ୍ଦର ସମୟ—
(figurative) A time of merriment.
କାର ପୌଷ ମାସ କାର ସର୍ବନାଶ—ନନ୍ଦକିଶୋର. ନିର୍ବାଣୀ ।
[ଦ୍ର—ଏ ସମୟରେ ଧାନ କଟା ହେଉ ଥିବାରୁ ଜମିବାଡ଼ି ଥିବା ଲୋକ ଓ ଯାହାର ଜମିବାଡ଼ି ନାହିଁ ଏପରି ଗରିବ ଧାନ-କଟାଳି ମଧ୍ୟ ଧାନ କଟାକଟି ଯୋଗୁଁ କିଛି ଧାନ ହାତରେ ପାଇ ଆନନ୍ଦରେ ଥାଆନ୍ତି । ]

**ପୌଷୀ**—ସଂ. ବି (ପୁଷ୍ୟା+ଅ+ଈ)—ପୁଷ୍ୟା ନକ୍ଷତ୍ରଯୁକ୍ତ ପୂର୍ଣ୍ଣିମା—
Paushī The fullmoon day of the lunar month of Pausha.

**ପୌଷୀୟ**—ସଂ. ବିଣ. (ପୌଷ+ଜାତାର୍ଥେ· ଏୟ)—ପୌଷ ମାସରେ
Paushīya ଜାତ ବା ପ୍ରସ୍ତୁତ—Made or produced in the month of Pausha.

**ପୌଷ୍କର**—ସଂ. ବି. ( ପୁଷ୍କର+ ଅ)—
Paushkara ୧ । ପୁଷ୍କର ମୂଳ (ହି. ଶ.) ( ଦେଖ )
1. Pushkara mūla ( See )
୨ । ପଦ୍ମଲତାର ମୂଳ ( ହି. ଶବ୍ଦସାଗର )—
2. The root of lotus plant
୩ । ଏରଣ୍ଡ ମୂଳ ( ହି. ଶବ୍ଦସାଗର )—
3. The root of castor seed tree.
୪ । ସ୍ଥଳ ପଦ୍ମ ( ଦେଖ ) ( ହି. ଶବ୍ଦସାଗର )—
4. Sthala padma ( See )

**ପୌଷ୍କରିଣୀ**—ସଂ. ବି. ( ପୁଷ୍କରିଣୀ+ଅ+ଈ )—
Paushkariṇī ଛୋଟ ପୋଖରୀ ( ହି. ଶବ୍ଦସାଗର )—
Small tank; pool.

**ପୌଷ୍କଲ୍ୟ**—ସଂ. ବି. ( ପୁଷ୍କଳ+ଯ )—ସମ୍ପୂର୍ଣ୍ଣତା (ହି. ଶ.)—
Paushkalya Completeness.

**ପୌଷ୍ଟିକ**—ସଂ. ବିଣ. ( ପୁଷ୍ଟି+ଇକ )—ପୁଷ୍ଟିକର—
Paushtika Nourishing; nutritious.
ବି—୧ । ପୁଷ୍ଟି ସାଧନ କର୍ମ—
1. Any operation of nutrition
୨ । ଚୂଡ଼ାକର୍ମ ସମୟରେ ପିନ୍ଧାଯିବା ଲୁଗା—
2. A cloth put on during the ceremony of tonsure ( M. W. )
୩ । କ୍ଷୌର ସମୟରେ ଦେହରେ ପଡ଼ାବା ବସ୍ତ୍ରବିଶେଷ—
3. An apron put over the body during shaving.
୪ । ଯେଉଁ କର୍ମ ଦ୍ୱାରା ଧନ ଜନ ଆଦିର ବୃଦ୍ଧି ହୁଏ—
4. Any work which increases fortune and family

**ପୌଷ୍ପ**—ସଂ. ବିଣ. ( ପୁଷ୍ପ+ଅ )—୧ । ପୁଷ୍ପ ସମ୍ବନ୍ଧୀୟ—
Paushpa 1. Floral; flowery.
୨ । ପୁଷ୍ପ ନିର୍ମିତ—2. Made of flowers.
ବି—୧ । ପୁଷ୍ପପୁରୀ, ପାଟଳିପୁତ୍ର—
1. A name of the city Pāṭaliputra.
୨ । ପୁଷ୍ପ ପରାଗ ( ହି. ଶବ୍ଦସାଗର )—
2. The pollen of flowers.
୩ । ପୁଷ୍ପରୁ ପ୍ରସ୍ତୁତ ମଦ୍ୟ (ହି. ଶବ୍ଦସାଗର)—
3. Wine destilled from flowers.

**ପୌଷ୍ପୀ**—ସଂ. ବି. ସ୍ତ୍ରୀ—ପୁଷ୍ପ ନଗର; ପାଟଳିପୁତ୍ର ନଗରର ନାମାନ୍ତର—
Paushpī A name of the ancient town of Pāṭaliputra (the modern Patna).

**ପୌଷ୍ୟ**—ସଂ. ବିଣ ( ପୁଷ୍ୟା+ଯ )—
Paushya ପୁଷ୍ୟା ନକ୍ଷତ୍ର ସମ୍ବନ୍ଧୀୟ—
Relating to the 8th asterism.
ବି. (ପୁଷନ୍+ଅପତ୍ୟାର୍ଥେ. ଯ)—ମହାଭାରତୋକ୍ତ ଜଣେ ରାଜା—
Name of a king mentioned in the Mahābhārata. ( M. W. )
[ ଦ୍ର—ଏ କରବୀରପୁରର ପୁଷନ୍ ରାଜାଙ୍କ ପୁତ୍ର ଥିଲେ । ]

**ପ୍ୱର୍ (ଇତ୍ୟାଦି)**—ବୈଦେ. ବିଣ. ( ଇଂ. ପୁଅର୍ )—
Pwar (etc) ପୁଅର୍ ଇତ୍ୟାଦି ( ଦେଖ )
Puar etc ( See )

**ପ୍ୟାକିଙ୍ଗ୍**- ବୈଦେ. ବି. (ଇଂ. ପାକିଙ୍ଗ୍ )—୧ । ଗଣ୍ଠିଲି—
Pyāking 1. Packing.
পেকিঙ্গ ୨ । ପେକିନ୍ (ଦେଖ)—2. Pekin (See)
पैकिङ्ग [ ଦ୍ର—ଇଂରାଜୀରେ P ଅକ୍ଷର ଓ a ଅକ୍ଷର ପରେ ଯୁକ୍ତ (ପାକିଙ୍ଗ୍, ପେକିଙ୍ଗ୍—ଅନ୍ୟରୂପ) ହେବା ଶବ୍ଦମାନ ଯଥା—ପାକ୍; ପାକେଟ୍, ପାଲ୍, ପାଷ୍, ପାସ୍, ପାସେଞ୍ଜର୍, ପାମ୍ଫ୍ଲେଟ୍, ପାନେଲ୍ଆଦି ଶବ୍ଦ ଉଚ୍ଚାରେ ଭିନ୍ନ ଭିନ୍ନ ଲେଖକ ପା, ପ୍ୟା ଓ ପେ ପୂର୍ବକ କରି ଲେଖନ୍ତି । ]

**ପ୍ୟାକିଙ୍ଗ୍ କରିବା**—ଦେ. କ୍ରି. (ଇଂ· ପାକିଙ୍ଗ୍; ପାକ୍)—
Pyāking karibā କୌଣସି ବସ୍ତୁକୁ ଏକସୂତ୍ରୀ କରି ବାନ୍ଧିବା—
(ପ୍ୟାକ୍ କରିବା—ଅନ୍ୟରୂପ) To pack a thing

**ପ୍ୟାକିଙ୍ଗ୍ ଚାର୍ଯି**—ବୈଦେ. ବି. (ଇଂ. ପାକିଙ୍ଗ୍ ଚାର୍ଯ)—
Pyāking chārja କୌଣସି ଜିନିଷ ପ୍ୟାକ୍ କରିବାର ଖରଚ୍—
পেকিঙ্গ চার্য पैकिङ्ग चार्ज Packing charge.

**ପ୍ୟାକେଟ୍**—ବୈଦେ. ବି. (ଇଂ. ପାକେଟ୍) —ପୁଳିନା; ଛୋଟ ମୁଦା ବିଡ଼ା—
Pyāket প্যাকেট पैकेट Packet.

ପ୍ୟାଟ୍—ସଂ. ଅ—ଡାକିବାରେ ବ୍ୟବହୃତ ଧ୍ୱନି, ହେ ! ଅହେ !—
Pyāt A particle used in calling (M. W.).

ପ୍ୟାତ(ନ)—ସଂ. ବିଣ. (ପ୍ୟାୟ୍ ଧାତୁ + ତ; ତୁଳ ଇଂ. ଫାଟ୍)—
Pyāta(na) ମୋଟ, ସ୍ଥୂଳ, ପୀନ—Fat; swollen.

ପ୍ୟାଦା—ବୈଦେ. ବି. (ଫା)—ପିଆଦା (ଦେଖ)
Pyādā Piādā (See)

ପ୍ୟାନ୍ ଫୋଟେ—ପ୍ରାଦେ. (କଳାହାଣ୍ଡି) ବି. (ସଂ. ପାନୀୟ ସ୍ତୋକ)—
Pyān phote ପାଣି ଟୋପା; ଜଳବିନ୍ଦୁ—Drop of water.

ପ୍ୟାମ୍ଫ୍ଲେଟ୍—ବୈଦେ. ବି. (ଇଂ. ପାମ୍ଫ୍ଲେଟ୍)—କ୍ଷୁଦ୍ର ପୁସ୍ତକ; ପୁସ୍ତିକା—
Pyāmphlet ପ୍ୟାମ୍ଫ୍ଲେଟ ਪੈਮਫਲੇਟ Pamphlet.
(ପାମ୍ଫ୍ଲେଟ୍; ପେମ୍ଫ୍ଲେଟ—ଅନ୍ୟରୂପ)

ପ୍ୟାୟ୍ (ଧାତୁ)—ସଂ—୧ । ବୃଦ୍ଧି ପାଇବା—1. To grow.
Pyāya (root) ୨ । ବଢ଼ାଇବା—2. To increase; to augment.
୩ । ସ୍ଫୀତ ହେବା—3. To swell; to be enlarged.

ପ୍ୟାୟନ—ସଂ. ବିଣ. (ପ୍ୟାୟ୍ ଧାତୁ + ଅନ)—
Pyāyana ୧ । (+କର୍ମ. ଅନ) ଯାହାକୁ ସ୍ଥୂଳ କରାଯାଏ—
(ପ୍ୟାୟିତ—ବି) 1. Caused to swell.
୨ । (କର୍ତ୍ତୃ. ଅନ) ବର୍ଦ୍ଧନକାରକ—
2. Causing to grow or thrive.
ବି. (ଭାବ. ଅନ) ବର୍ଦ୍ଧନ, ବୃଦ୍ଧି—Growth; increase.

ପ୍ୟାୟିତ—ସଂ. ବିଣ. (ପ୍ୟାୟ୍ ଧାତୁ + କର୍ମ. ତ)—୧ । ସ୍ଥୂଳୀକୃତ—
Pyāyita 1. Fattened.
୨ । ବର୍ଦ୍ଧିତ—2. Increased.

ପ୍ୟାରା—ଦେ. ବି ଓ ବିଣ—ପିଆରା (ଦେଖ)
Pyārā Piārā (See)
ବୈଦେ. ବି. (ଇଂ. ପାରା)—ପାରା (ଦେଖ)—Pārā (See)

ପ୍ୟାରୀ (ଇତ୍ୟାଦି)—ପିଆରୀ ଇତ୍ୟାଦି (ଦେଖ)
Pyārī (etc) Piārī etc (See)

ପ୍ୟାଲା—ବୈଦେ. ବି—ପିଆଲା (ଦେଖ)
Pyālā Piālā (See)

ପ୍ୟାସ୍—ପ୍ରାଦେ. (ସମ୍ବଲପୁର ଓ ଲରିଆ) ବି. (ତୁଳ. ହି. ପ୍ୟାସ; ସଂ. ପିପାସା)—ଶୋଷ; ତୃଷା—Thirst.
Pyās

ପ୍ୟାସେଞ୍ଜର (ଇତ୍ୟାଦି)—ବୈଦେ. ବି. (ଇଂ. ପାସେଞ୍ଜର୍)—
Pyāsenjar (etc) ପାସେଞ୍ଜର ଇତ୍ୟାଦି (ଦେଖ)
Pāsenjar etc (See)

ପ୍ୟୁନ୍—ବୈଦେ. ବି. (ଇଂ. ପିଅନ୍)—ପିଅନ୍ (ଦେଖ)
Pyun पिउन ਪ੍ਯੂਨ Pian (See)

ପ୍ୟୁନଟିଭ୍ (ଇତ୍ୟାଦି)—ବୈଦେ. ବିଣ—ପିଉନିଟିଭ୍ ଇତ୍ୟାଦି (ଦେଖ)
Pyunitibh (etc) Piunitibh etc (See)

ପ୍ୟୁଳ(ଡ଼)—ଦେ. ବି ଓ ବିଣ. (ସଂ. ପୀତ, ପିଙ୍ଗଳ)—ପିଉଳ (ଦେଖ)
Pyuli (rdi) Piuli (See)

ପ୍ୟୁଷ୍ (ଧାତୁ)—ସଂ—୧ । ଦଗ୍ଧ କରିବା—1. To burn.
Pyush (root) ୨ । ଭାଗ କରିବା—2. To divide.
୩ । ପରିତ୍ୟାଗ କରିବା—3. To relinquish; to part with.

ପ୍ୟୁସ୍(ଧାତୁ)—ସଂ.—ଭାଗ କରିବା—
Pyus (root) To divide.

ପ୍ୟୈ(ଧାତୁ)—ସଂ—୧ । ବୃଦ୍ଧି କରିବା—
Pyai (root) 1. To increase.
୨ । ବୃଦ୍ଧି ପାଇବା—2 To grow.
୩ । ଫୁଲିବା—3 To swell.

ପ୍ର—ସଂ. ଅ—(ଉପସର୍ଗ) (ପ୍ରଥ୍ ଧାତୁ=ବିଖ୍ୟାତ ହେବା+ଅ, ତୁଳ. ଲାଟିନ୍ ଉପସର୍ଗ ପ୍ରୋ=ସମ୍ମୁଖରେ, କମନ୍ଦେ ଓ ପ୍ରି=ପୂର୍ବେ, ପ୍ରଥମେ ଓ ଇଂ. ଉପସର୍ଗ ଫୋର୍=ପୂର୍ବରୁ, ପ୍ରଥମରୁ)—
Pra ସଂସ୍କୃତ ଉପସର୍ଗ ମଧ୍ୟରୁ ଏକତମ, ଯାହା ନିମ୍ନଲିଖିତ ଅର୍ଥରେ ଧାତୁ ପୂର୍ବେ ବ୍ୟବହୃତ ହୁଏ—A prefix implying:—
୧ । ଖ୍ୟାତି (ଯଥା ପ୍ରଥିତ)—1 Fame; renown.
୨ । ଉତ୍କର୍ଷ; ପ୍ରକର୍ଷ (ଯଥା—ପ୍ରକର୍ଷ, ପ୍ରଗୁଣ)—
2 Excellence.
୩ । ଆଧିକ୍ୟ, ବିଶେଷ, ଅତିଶୟ (ଯଥା—ପ୍ରମତ୍ତ ଓ ପ୍ରବାଦ)—
3. Excess; very much; intensity.
୪ । ସର୍ବତୋଭାବ, ସମ୍ପୂର୍ଣ୍ଣତା (ଯଥା—ପ୍ରଭୁକ୍ତ)—
4. Fullness; completeness.
୫ । ଆରମ୍ଭ—5. Beginning.
୬ । ଉଦ୍ଭବ; ଉତ୍ପତ୍ତି (ଯଥା—ପ୍ରଭବ)—
6. Birth; source.
୭ । ପ୍ରଥମର ଭାବ; ପ୍ରାଥମ୍ୟ (ଯଥା—ପ୍ରାହ୍ଣ)—
7 Priority.
୮ । ଆଚରଣ; ବ୍ୟବହାର—
8. Conduct; treatment.
୯ । ଗତି (ଯଥା—ପ୍ରସ୍ଥାନ)—2. Motion; forth; out (as in go forth; set out).
୧୦ । ଖ୍ୟାତି—10 Usage.
(ଯଥା—ବିଶେଷ୍ୟ ଓ ବିଶେଷଣ ପୂର୍ବେ ଏ ଉପସର୍ଗ ନିମ୍ନଲିଖିତ ଅର୍ଥରେ ବ୍ୟବହୃତ ହୁଏ—ମନିଅର୍. ଉଇଲିୟମ୍)—
୧୧ । କ୍ଷମତା (ଯଥା—ପ୍ରଭୁ)—11. Power (Apte).
୧୨ । ଅଭାବ; ବିଚ୍ଛେଦ (ଯଥା—ପ୍ରୋଷିତ, ପ୍ରପର୍ଣ୍ଣ)—
12. Destitution; separation (Apte).
୧୩ । ନିର୍ମଳତା (ଯଥା—ପ୍ରସନ୍ନ)—
13. Purity (Apte).
୧୪ । ଇଚ୍ଛା (ଯଥା—ପ୍ରାର୍ଥନା)—14. Wish (Apte).
୧୫ । ନିବୃତ୍ତି (ଯଥା—ପ୍ରଶମ)—
15. Cessation (Apte)
୧୬ । ସମ୍ମାନ (ଯଥା—ପ୍ରାଞ୍ଜଳ)—
16. Adoration; respect (Apte).
୧୭ । ଅଗ୍ରତଃ; ଅଗ୍ରେ (ଯଥା—ପ୍ରସ୍ଥାନ)—
17. Before; forward; forth.

୧୮ । ଅତ୍ୟନ୍ତ (ଯଥା—ପ୍ରଚଣ୍ଡ)—
18. Too much; excessively.

୧୯ । ଅଧିକ ଦୂରବର୍ତ୍ତୀ (ଯଥା—ପ୍ରପିତାମହ, ପ୍ରପୌତ୍ର)— More distant.

୨୦ । ସମ୍ୟକ୍‌ରୂପେ (ଯଥା—ପ୍ରଦାନ)—
20. Out and out; completely.

୨୧ । ପ୍ରଶସ୍ତ (ଯଥା—ପ୍ରଗ୍ରୀବ)—21. Broad

(ପ୍ର—ଉପସର୍ଗଯୁକ୍ତ ସଂସ୍କୃତ ଶବ୍ଦମାନ କବିତାରେ ଓ ଗ୍ରାମ୍ୟ ବ୍ୟବହାରରେ ସମୟେ ସମୟେ 'ପର' ରୂପେ ବ୍ୟବହୃତ ହୁଏ ଯଥା—ପ୍ରକାଶ=ପରକାଶ, ପ୍ରମାଦ-ପରମାଦ; ପ୍ରମତ୍ତ=ପରମତ୍ତ ଇତ୍ୟାଦି ।)

**ପ୍ରଉଗ**—ସଂ. ବି.—ରଥ ଦଣ୍ଡାର ସାମନା ପାଖର ଚିଭୁଜାକାର ଅଗ୍ର, Prauga ଶଗଡ଼ର ଝୁଲମୁଣ୍ଡି—The fore part of the shafts of a chariot or bullock cart. (M W.)

**। ପ୍ରଃ ।**—ଦେ.—ସାଙ୍କେତିକ ଚିହ୍ନ (କଚେରୀ)—ଅ.—୧ ।'ପ୍ରଗନ୍ନା ଶବ୍ଦର ।Prah। ସାଙ୍କେତିକ ରୂପେ ଲେଖାରେ ବ୍ୟବହୃତ (ଯଥା—। ପ୍ର । (।ପ୍ର।—ଅନ୍ୟରୂପ) କୋଦଣ୍ଡା ଅର୍ଥାତ୍ କୋଦଣ୍ଡା ପ୍ରଗନ୍ନା)—
1. An abbreviation for the word 'Pergunna' (this abbreviation is also used in writing the same passage in English, as Pr. Kodinda.

୨ । 'ପ୍ରତି' ବା ପ୍ରସ୍ଥର ସାଙ୍କେତିକ ଚିହ୍ନ—
2 Abbreviation of 'prati or width.
(ଯଥା—। ସା । ୫ କାହାଣ, । ପ୍ର । ୪ କାହାଣର ଖଣ୍ଡେ ଜମି ।)

**ପ୍ରକଟ**—ସଂ. ବିଣ. (ପ୍ର=ସର୍ବତୋଭାବରେ+କଟ୍ ଧାତୁ=ଗମନ କରିବା Prakata +ଅ)—୧ । ବ୍ୟକ୍ତ—1. Unfolded; clear.
୨ । ପ୍ରକାଶିତ; ଦେଖାଯାଉଥିବା; ପ୍ରତ୍ୟକ୍ଷ—
2. Displayed; becoming manifest.
୩ । ପ୍ରକାଶ୍ୟ—
3. Apparent; evident; open; visible.
୪ । ସ୍ପଷ୍ଟ—4 Clear.
୫ । ଶ୍ରେଷ୍ଠ—5. Excellent.
୬ । ପ୍ରଚାରିତ—6. Published; proclaimed.
୭ । ଉଦ୍ଭୂତ; ଆବିର୍ଭୂତ (ହି. ଶ)—7. Appearing.
ଦେ· କ୍ରି ବିଣ—ସ୍ପଷ୍ଟରୂପେ—Clearly.

ଚଇତନ୍ୟ ଗୀତ ଗାଇବାକୁ
ଚୈତନ୍ୟ ପ୍ରକାଶ ପ୍ରକଟ—ଉପେନ୍ଦ୍ର. ପ୍ରେମପଞ୍ଚାମୃତ ।

**ପ୍ରକଟକ**—ସଂ. ବିଣ. ପୁଂ—(ପ୍ର+କଟ୍ ଧାତୁ+କର୍ତ୍ତୃ. ଅକ)-ଯାହା Prakataka ପ୍ରକଟ କରେ, ପ୍ରକାଶକ—Exhibiting; (ପ୍ରକଟିକା—ସ୍ତ୍ରୀ) publishing.

ଲକ୍ଷ୍ୟ ପ୍ରବନ୍ଧ ବର୍ଣ୍ଣନ ଚତୁର ପ୍ରକଟକ ଗଣ ଦଶ ମଙ୍ଗଳ—
ଭକ୍ତ· ପ୍ରେମସୁଧାନିଧି ।

**ପ୍ରକଟନ**—ସଂ. ବି—(ପ୍ର+କଟ୍ ଧାତୁ+ଭାବ. ଅନ)—୧ । ପ୍ରକାଶ Prakatana କରିବା—1. Publication.
୨ । ବ୍ୟକ୍ତିକରଣ—2. Making manifest.
୩ । ସ୍ପଷ୍ଟରୂପେ ବୁଝାଇବା—
3. Making clear exposition; expounding.

**ପ୍ରକଟା(ଟେ)ଇବା**—ଦେ. (ପଦ୍ୟ) କ୍ରି—(ପ୍ରକଟିବାର ଣିଜନ୍ତ ରୂପ)— Prakaṭā(ṭe)ibā ଅନ୍ୟ ଦ୍ୱାରା ପ୍ରକଟିତ କରାଇବା—
प्रकटाना 1. To cause to be manifested.
প্রকাটানো or published.
୨ । ପ୍ରକଟିତ କରିବା—
2. To unfold; to manifest; to exhibit.

ସୁଗ୍ରସ୍ତର୍ଭଂଶିଷା ଫଳେ ସେ ଛଇଳା କେତେ ଛଳ ପ୍ରକଟାଇ ।
ବିଶ୍ୱନାଥ. ସମାଜ ।

**ପ୍ରକଟିତ**—ସଂ. ବିଣ. (ପ୍ର+କଟ୍ ଧାତୁ+କର୍ମ. ତ)— Prakaṭita ୧ । ପ୍ରକାଶିତ—1. Published.
୨ । ବ୍ୟକ୍ତ—3. Manifest; apparent.
୩ । ପ୍ରଦର୍ଶିତ—3. Displayed; shown.
୪ । ବିକସିତ, ପ୍ରସ୍ଫୁଟିତ—4. Opened; expanded.

**ପ୍ରକଟିବା**—ଦେ. (ପଦ୍ୟ) କ୍ରି—୧ । ପ୍ରକଟିତ ବା ବ୍ୟକ୍ତ ହେବା— Prakaṭibā 1. To be manifested.
प्रकटा କଟୁସନ୍ଧି ଭେକ ପ୍ରକଟ ରହିଲେ ପାଚି ପୟୋଧର ।
প্রকটনা କବିସୂର୍ଯ୍ୟ. ସଙ୍ଗୀତ ।
୨ । ପ୍ରକଟ ବା ପ୍ରକାଶ କରିବା; ଦେଖାଇବା—
2. To manifest; to show.

ଶଙ୍ଖ ଭେରି ତୁହି ସେ ରୂପେ ଚଳିଲା
ପ୍ରକଟି ପ୍ରଚ୍ଛନ୍ନ ଶକ୍ତି ମାରାଯିବା । ରାଧାନାଥ. ଚଲିକା ।

୩ । ବ୍ୟକ୍ତ କରିବା—
3. To express, to give vent to.

ଅହା ମୋର ପଡ ଦେବେ ଦୟାଳୁ ଗମ୍ଭୀର
କୁର୍ଣ୍ଣିତ ପ୍ରକଟିବାକୁ ଅପରାଧ ମୋର । ତୁଳସୀ ବଳମଭଜନାମୃତ, ଅବ ।

**ପ୍ରକଟୀକରଣ**—ସଂ ବି. (ପ୍ରକଟ+ଅଭୂତ ତଦ୍ଭାବେ. ଚ୍ୱି+କରଣ)— Prakaṭīkaraṇa ୧ । ଅବ୍ୟକ୍ତ ବିଷୟକୁ ବ୍ୟକ୍ତ କରିବା—
1. Making visible.
୨ । ପ୍ରକାଶ କରଣ—2. Promulgation; publishing.
୩ । ସ୍ପଷ୍ଟ କରିବା—3. Making clear.

**ପ୍ରକଟୀକୃତ**—ସଂ. ବିଣ· (ପ୍ରକଟ+ଅଭୂତ ତଦ୍ଭାବେ. ଚ୍ୱି+କୃତ)— Prakaṭīkṛuta ୧ । ବ୍ୟକ୍ତୀକୃତ—1. Made visible or apparent.
୨ । ବିଶଦୀକୃତ; ବିସ୍ତାରିତ—2. Amplified.
୩ । ପ୍ରକାଶିତ, ଘୋଷିତ—3 Promulgated.

**ପ୍ରକଟୀ ଭୂତ**—ସଂ. ବିଣ. (ପ୍ରକଟ+ଅଭୂତ ତଦ୍ଭାବେ. ଚ୍ୱି+ଭୂତ)— Prakaṭī bhūta ବର୍ତ୍ତମାନ ସ୍ପଷ୍ଟ ରୂପେ ପ୍ରକାଶିତ— Become manifest.

**ପ୍ରକଥନ**—ସଂ. ବି. (ପ୍ର+କଥନ)— Prakathana ଉଚ୍ଚୈଃସ୍ୱରରେ ପ୍ରଚାର କରଣ—Announcing; publishing loudly; proclaiming.

**ପ୍ରକମ୍ପ**—ସଂ. ବି. (ପ୍ର+କମ୍ପ ଧାତୁ=କମ୍ପିବା+ଭାବ. ଅ)—
Prakampa ୧ । ଅତିଶୟ କମ୍ପ, ବେପଥୁ—1. Shivering; vibration; trembling; quaking; tremor.
୨ । ପ୍ରଭଞ୍ଜନ; ବାୟୁ—2. Air; wind.
୩ । ସ୍ଥିତିସ୍ଥାପକ ବସ୍ତୁ—3. An elastic thing
୪ । ନରକବିଶେଷ—
4. Name of a part of hell.
୫ । ରାବଣର ସେନାପତିବିଶେଷ—
5. Name of a general of Rābaṇa.
ବିଣ. (+କର୍ତ୍ତି. ଅ)—୧ । ଅତିଶୟ କମ୍ପମାନ—
1. Shivering; trembling violently.
୨ । କମ୍ପନ କାରକ—2 Shaking; causing shiver

**ପ୍ରକମ୍ପନ**—ସଂ. ବି. (ପ୍ର+କମ୍ପ ଧାତୁ+ଭାବ. ଅନ)—ପ୍ରକମ୍ପ, ବିଶେଷ
Prakampna କମ୍ପ—Shivering; violent trembling; vibration.
(ପ୍ରକମ୍ପିତ; ପ୍ରକମ୍ପମାନ—ବିଣ)

**ପ୍ରକମ୍ପମାନ**—ସଂ. ବିଣ.—(ପ୍ର+କମ୍ପ ଧାତୁ+କର୍ତ୍ତି. ଆନ)—କମ୍ପମାନ;
Prakampamāna ଅତ୍ୟନ୍ତ କମ୍ପୁଥିବା—Shivering; vibrating.
(ପ୍ରକମ୍ପମାନା—ସ୍ତ୍ରୀ)

**ପ୍ରକର**—ସଂ. ବି. (ପ୍ର+କୃ ଧାତୁ=ବିକ୍ଷେପ କରିବା+କର୍ମ. ଅ)—
Prakara ୧ । ବିକୀର୍ଣ୍ଣ କୁସୁମାଦି—1. Scattered flowers.
୨ । ପୁଷ୍ପାଦିର ସ୍ତବକ—2. Bunch.
୩ । ଗୋଛା—3 Sheaf; bundle
୪ । ରାଶି; ସମୂହ—4. Collection; heap; quantity.
୫ । ଅଗୁରୁ (ହି. ଶ.)—5 Aloe wood; agallochia.
୬ । (ପ୍ର+କୃ ଧାତୁ=କରିବା+ଭାବ. ଅ)—ବନ୍ଧୁତା—
6 Friendship.
୭ । ସହାୟତା, ସାହାଯ୍ୟ—
7. Co-operation; aid; assistance.
୮ । ଅଧିକାର—8. Authority; possession.
୯ । ସମ୍ମାନ—9 Respect
୧୦ । ରୀତିନୀତି; ବ୍ୟବହାର—10 Usage; custom.
୧୧ । ନଟ ନଟୀଙ୍କ ପୋଷାକ—
11 Theatrical dress or disguise.
୧୨ । ସ୍ତ୍ରୀଲୋକକୁ ଭୁଲାଇ କରି ସତୀତ୍ୱ ହରଣ କରିବା; ଫୁସୁଲାଇ କରି ସ୍ତ୍ରୀଲୋକକୁ ଘରୁ ବାହାର କରି ନେବା—
12. Seduction of a woman.
ବିଣ.—(ପ୍ର+କୃ ଧାତୁ+କର୍ତ୍ତି. ଅ)—ବୃଦ୍ଧ—
1 Old; aged.

ପ୍ରକର ବଉଳ ଲୁଲ୍ଲସ ଗନ୍ଧିକା ଭବେ ସୁବାସ ହରିବାରେ ।
ଉଦ୍ଧ କୋଟିବ୍ରହ୍ମାଣ୍ଡସୁନ୍ଦରୀ ।

୨ । କର୍ମଠ; କାର୍ଯ୍ୟପଟୁ—2. Able; pert; skilful.
୩ । ହୁସିଆର (ହି. ଶ.)—3. Cautious.

**ପ୍ରକରଣ**—ସଂ. ବି. (ପ୍ର+କୃ ଧାତୁ+ଭାବ. ଅନ)—୧ । ସମ୍ୟକ୍‌ରୂପେ
Prakaraṇa କରଣ—1. Doing a thing excellently.
୨ । ସର୍ଜନ, ନିର୍ମାଣ, ଉତ୍ପାଦନ—
2 Creation; production
୩ । କାର୍ଯ୍ୟ—3. Act.
୪ । ଘଟନା; କାଣ୍ଡ, ବ୍ୟାପାର—
4. Affair; event; matter.
୫ । ପ୍ରଭେଦ—5. Difference; distinction.
୬ । ଉପାୟ, କୌଶଳ—6. Means; artifices.
୭ । ପ୍ରକାର—7 Kind; species.
୮ । ବିଷୟ; ପ୍ରସଙ୍ଗ—8. Topic; subject-matter.
୯ । ପ୍ରବନ୍ଧ—9. Essay.
୧୦ । ପ୍ରସ୍ତାବ—10. Proposal; discourse.
୧୧ । ସମ୍ମାନକରଣ—11. Showing respect.
୧୨ । ଭୂମିକା; ଅବତରଣିକା—12. Introduction.
୧୩ । ନାଟକର ପୂର୍ବାଭାଷ—
13. Prologue to a drama; prelude.
୧୪ । ଗ୍ରନ୍ଥାଂଶ; ଅଧ୍ୟାୟ; ପରିଚ୍ଛେଦ—
14. Chapter; section of a book.
୧୫ । କୌଣସି ଗୋଟିଏ ପ୍ରସଙ୍ଗ ବିଷୟକ ଗ୍ରନ୍ଥ—
15. A monologue; treatise; monograph.
୧୬ । ପାଦ; ରଚନାର ଅଂଶ ବା ବିଭାଗ—16. Paragraph.
୧୭ । ନାଟକର ପ୍ରକାରଭେଦ, ଯେଉଁ ନାଟକରେ ସାମାଜିକ ପ୍ରକୃତି ଏବଂ ପ୍ରେମ ବିଷୟକ ବର୍ଣ୍ଣନା ଥାଏ—
17. A society-and-love-drama.

[ଦ୍ର—ପ୍ରକରଣ ନାଟକ ଶ୍ରେଣୀୟ, କିନ୍ତୁ ନାଟକଠାରୁ ଭିନ୍ନ । ଏହା ସାମାଜିକ ଆଚାର ବ୍ୟବହାର ଓ ପ୍ରେମ ବର୍ଣ୍ଣନା ବିଷୟ ଅବଲମ୍ବନରେ ଲିଖିତ ହୋଇଥାଏ । ପ୍ରକରଣ ନାଟକରେ ପ୍ରେମବିଷୟକ ସାମାଜିକ ଚିତ୍ର ଥାଏ । ଏହା ଶୁଦ୍ଧ ଓ ସଙ୍କୀର୍ଣ୍ଣ ଭେଦରେ ୨ ପ୍ରକାର, ଶୁଦ୍ଧ ପ୍ରକରଣରେ ନାୟକ ଉଚ୍ଚ ବଂଶୀୟ ବ୍ରାହ୍ମଣ ଓ ନାୟିକା ବେଶ୍ୟା; ସଙ୍କୀର୍ଣ୍ଣ ପ୍ରକରଣରେ ନାୟକ ମନ୍ତ୍ରୀ, ବ୍ରାହ୍ମଣ ବା ବଣିକ ଓ ନାୟିକା ଭଦ୍ରପରିବାରପାଳିତା ସ୍ତ୍ରୀ ବା ସହଚରୀ । ପ୍ରକରଣ କବିକଳ୍ପିତ ଲୌକିକ ଗଳ୍ପ । ସାମାଜିକ ପ୍ରକୃତି ଓ ପ୍ରେମ ବର୍ଣ୍ଣନା ଏବଂ ଶୃଙ୍ଗାର ରସ ଏହାର ପ୍ରଧାନ ଅଙ୍ଗ । ମୃଚ୍ଛକଟିକ, ମାଳତୀମାଧବ ଆଦି ଗ୍ରନ୍ଥ ଏହି ଶ୍ରେଣୀର ଅନ୍ତର୍ଗତ ।]

**ପ୍ରକରଣ ଗ୍ରନ୍ଥ**—ସଂ. ବି—ଗୋଟିଏ ବିଷୟକୁ ଅବଲମ୍ବନ କରି ଲେଖାଯିବା
Prakaraṇa grantha କ୍ଷୁଦ୍ର ଗ୍ରନ୍ଥ—A small treatise on a particular subject; a monologue.

**ପ୍ରକରଣ ଜ୍ଞାନ**—ସଂ. ବି—(୬ଷ୍ଠୀ ତତ୍, ପ୍ରକରଣ+ଜ୍ଞାନ)—ଆଲୋଚ୍ୟ
Prakaraṇa jnāna ବିଷୟର ପ୍ରସଙ୍ଗ ବୋଧ—
Comprehension of the subject matter of a treatise or discourse.

**ପ୍ରକରଣିକା**—ସଂ. ବି. ସ୍ତ୍ରୀ—(ପ୍ରକରଣ+କ୍ଷୁଦ୍ରାର୍ଥେ. କ+ସ୍ତ୍ରୀ. ଆ)—
Prakaraṇikā କ୍ଷୁଦ୍ର ପ୍ରକରଣ, କ୍ଷୁଦ୍ର ନାଟକବିଶେଷ—
(ପ୍ରକରଣୀ—ଅନ୍ୟରୂପ) A small love drama; a minor love drama.

**ପ୍ରକରଣୀୟ**—ସଂ. ବିଣ—(ପ୍ରକରଣ + ସମ୍ବନ୍ଧାର୍ଥେ, ଈୟ)—୧ । ପରିଚ୍ଛେଦ
Prakaraṇiya ସମ୍ବନ୍ଧୀୟ—1. Relating to a chapter or section.
୨ । ପ୍ରବନ୍ଧ ବିଷୟକ—2 Relating to the subject matter of a treatise or discourse.

**ପ୍ରକରୀ**—ସଂ. ବି. ସ୍ତ୍ରୀ—(ପ୍ର+କୃ. ଧାତୁ+ଅଧି. ଅ+ସ୍ତ୍ରୀ. ଈ)—
Prakarī ୧ । ଅଭିନୟର ସାଜସଜ୍ଜା—1. Theatre dress
୨ । ନାଟିକା—2. A small drama.
୩ । ଅନାବୃତ ସ୍ଥାନ—3. An open space.
୪ । ଚତ୍ୱର, ଅଗଣା—4 A court-yard.
୫ । ଛକ; ଚୌରାସ୍ତା ରାସ୍ତାର ମିଳନ ସ୍ଥାନ—
5. A meeting place of cross roads
୬ । ନାଟକରେ ପ୍ରୟୋଜନସିଦ୍ଧି ପାଇଁ ଆବଶ୍ୟକ ୫ଟି ସାଧନ ମଧ୍ୟରୁ ଏକତମ, ଯହିଁରେ କୌଣସି ଏକଦେଶବ୍ୟାପୀ ଚରିତ୍ରର ବର୍ଣ୍ଣନ ଥାଏ (ହି. ଶ)—6. One of the essential parts of a drama in which a character relating to a particular matter is treated.

**ପ୍ରକର୍ଷ**—ସଂ. ବି—(ପ୍ର+କୃଷ୍. ଧାତୁ=ଆକର୍ଷଣ କରିବା+ଭାବ. ଅ)—
Prakarsha ୧ । ଉନ୍ନତି—1 Improvement.
୨ । ଶ୍ରେଷ୍ଠତା; ଉତ୍କର୍ଷ; ଉତ୍କୃଷ୍ଟତା; ଉତ୍ତମତା—
2. Excellence; preeminence; superiority; goodness.
(ପ୍ରକୃଷ୍ଟ—ବିଣ)
୩ । ବିଶେଷତ୍ୱ—
3. Peculiarity; specialty; distinction
୪ । ଆଧିକ୍ୟ—4. Intensity; excess.
୫ । ବିଶ୍ୱଜନୀନତ୍ୱ; ସର୍ବସାଧାରଣତ୍ୱ—
5. Universality.
୬ । ନିଶ୍ଚୟତା—6. Absoluteness; certainty.

**ପ୍ରକର୍ଷକ**—ସଂ. ବିଣ—(ପ୍ର+କୃଷ୍ ଧାତୁ+କର୍ତ୍ତୃ. ଅକ)—ଉତ୍କର୍ଷ
Prakarshaka ସମ୍ପାଦକ (ହି. ଶ)—Causing preeminence.
(ପ୍ରକର୍ଷିକା—ସ୍ତ୍ରୀ)

**ପ୍ରକର୍ଷଣ**—ସଂ. ବି—(ପ୍ର+କୃଷ୍ ଧାତୁ+ଭାବ. ଅନ)—୧ । ବିଶେଷ
Prakarshaṇa ଭାବରେ କର୍ଷଣ—1. Thorough ploughing.
(ପ୍ରକର୍ଷିତ, ପ୍ରକର୍ଷଣୀୟ—ବିଣ)
୨ । ଆଗକୁ ଠେଲା—2. Pushing forth (M. W).
୩ । ଟାଣି ଆଣିବା; ଆକର୍ଷଣ—
3. Attracting; drawing.
୪ । ଆଧିକ୍ୟ—4. Intensity.
୫ । ପ୍ରାଧାନ୍ୟ; ଉତ୍କର୍ଷ; ଶ୍ରେଷ୍ଠତା—
5. Excellence; superiority.
୬ । କଷ୍ଟ ଦେବା—6. Harassing; distracting.
୭ । ସର୍ବସାଧାରଣତ୍ୱ—7 Universality.
୮ । କ୍ଷେତ୍ରରେ ଅଗ୍ର ବା ଓଡ଼ା ଦେବା; ହଳ କରିବା—
8. Drawing furrows, ploughing (M. W).
୯ । ବନ୍ଧକୀ ଦ୍ରବ୍ୟକୁ ବ୍ୟବହାର କରିବା ଦ୍ୱାରା ମୂଳ ଟଙ୍କାର ନ୍ୟାଯ୍ୟ ସୁଧ ଅପେକ୍ଷା ଅଧିକ ଆଦାୟ ପାଇବା—
9. Realisation in excess of the interest due on a loan by the use of the pledged article; enjoyment of the surplus income after setting off the interest in full by the use of the pledged article.

**ପ୍ରକର୍ଷିତ**—ସଂ. ବିଣ—(ପ୍ର+କୃଷ୍ ଧାତୁ ଣିଚ୍=କର୍ଷି ଧାତୁ+କର୍ମ. ତ)-
Prakarshita ୧ । ଆକର୍ଷିତ—1. Attracted; drawn.
୨ । ଉତ୍ତମରୂପେ ଚଷା ହୋଇଥିବା—
2 Ploughed thoroughly.
ବି—ବନ୍ଧକୀ ଜିନିଷର ବ୍ୟବହାର ଦ୍ୱାରା ପ୍ରାପ୍ୟ ସୁଧଠାରୁ ବେଶି ଲାଭ—
Surplus profit on a pledge over and above the interest due.
[ଦ୍ର—ବୃହସ୍ପତି ଅନୁସାରେ ମହାଜନ ଏହି ଅଧିକା ଲାଭକୁ ଖାତକକୁ ଫେରାଇ ଦେବାକୁ ବାଧ୍ୟ । ହି. ଶ]

**ପ୍ରକଳା**—ସଂ. ବି—(ପ୍ର+କଳା)—ଏକ କଳା ସମୟର ୬୦ ଭାଗର ଏକ
Prakalā ଭାଗ (ହି. ଶ)—One sixtieth of one Kalā of time.

**ପ୍ରକଳ୍ପନ(ନା)**—ସଂ. ବି—(ପ୍ର+କଳ୍ପି ଧାତୁ+ଅନ+ଆ)—ସ୍ଥିରୀକରଣ
Prakalpana(nā) (ହି. ଶ)—Ascertainment.

**ପ୍ରକଳ୍ପିତ**—ସଂ. ବିଣ—(ପ୍ର+କଳ୍ପି ଧାତୁ+କର୍ମ. ତ)—୧ । ଅନୁଭାବିତ-
Prakalpita 1. Thought beforehand; contemplated.
୨ । ସଂକଳ୍ପିତ—2; Resolved; determined.
୩ । ଉଦ୍ଭାବିତ—3. Invented; devised.
୪ । ପାତିତ (ଯଥା—ଅଶ୍ରୁ)—4. Shed (as tears).
୫ । ସ୍ଥିରୀକୃତ; ନିଶ୍ଚିତ (ହି. ଶ)—5. Ascertained.

**ପ୍ରକଶ**—ସଂ. ବି—(ପ୍ର+କଶ୍ ଧାତୁ+ଭାବ. ଅ)—୧ । କୋରଡ଼ା ମାରିବା
Prakaśa (ହି. ଶ)—2. Whipping.
୨ । ପୀଡ଼ା ଦେବା, କଷ୍ଟ ଦେବା (ହି. ଶ)—
2. Afflicting; oppressing.

**ପ୍ରକଶୀ**—ସଂ. ବି—ଶୂକ ନାମକ ରୋଗ, ଯହିଁରେ ପୁରୁଷର ମୂତ୍ରେନ୍ଦ୍ରିୟ
Prakaśī ଫୁଲିଯାଏ ଓ ଯାହା ଇନ୍ଦ୍ରିୟକୁ ବଢ଼ାଇବା ପାଇଁ ଔଷଧ ପ୍ରୟୋଗ କରିବାରୁ ଜାତ ହୁଏ (ହି. ଶ.)—
A disease accompanied by the swelling of the penis.

**ପ୍ରକାଙ୍କ୍ଷା**—ସଂ. ବି. (ପ୍ର+କାଙ୍କ୍ଷ ଧାତୁ+ଭାବ.ଅ+ଆ)—କ୍ଷୁଧା, ଭୋକ—
Prakāṅkshā Appetite; desire for food.

**ପ୍ରକାଣ୍ଡ**—ସଂ. ବି. (ପ୍ର+କାଣ୍ଡ)—୧ । ମୂଳଠାରୁ ସ୍କନ୍ଧ ବା ଶାଖାମୂଳ
Prakāṇḍa ପର୍ଯ୍ୟନ୍ତ ବୃକ୍ଷାଂଶ; ବୃକ୍ଷର କାଣ୍ଡ, ଗଛର ଗଣ୍ଡି—
1. The trunk of a tree; stem of a tree
୨ । ଶାଖା; ଡାଳ—2 Branch; a shoot.
୩ । ପ୍ରଗଣ୍ଡ; ବାହୁର ଉପର ଅଂଶ, ଢେଣା—
3. The upper part of the arm (M W.).
୪ । ବୃକ୍ଷ (ହି. ଶ)—4. Tree.

ବଣ—୧ । ଉତ୍କୃଷ୍ଟ—1. Excellent; preeminent
୨ । ପ୍ରଶସ୍ତ, ବହୁ ବିସ୍ତୃତ—2. Very wide, extensive
୩ । ଖୁବ୍ ବଡ଼; ଅତି ବୃହତ୍—
3. Very great; very large; enormous; gigantic.
୪ । ସୁଖୀ—4 Happy.
୫ । ବୃହତ୍କାୟ, ମୋଟା—5. Stout; stupenduous, corpulent.
୬ । ଅତ୍ୟୁଚ୍ଚ; ଢେଙ୍ଗା—6 Tall; very high.

**ପ୍ରକାମ**—ସ. ଅ ଓ କ୍ରି. ବଣ. (ପ୍ର+କମ୍ ଧାତୁ=ବାଞ୍ଛା କରିବା+କର୍ମ.ଅ
Prakāma ୧ । ପ୍ରଚୁରରୂପେ; ଯଥେଷ୍ଟରୂପେ; ପର୍ଯ୍ୟାପ୍ତରୂପେ—
1. Sufficiently; enough.
୨ । ସ୍ୱେଚ୍ଛାକ୍ରମେ—2 Voluntarily; willingly.
୩ । ଅତ୍ୟନ୍ତ—3. Very much; excessive.
୪ । ଆନନ୍ଦ ସହକାରେ—4. With pleasure; with delight; gladly (M. W.).
ବ—୧ । ଆନନ୍ଦ—1 Joy; delight; pleasure (M. W.).
୨ । ପର୍ଯ୍ୟାପ୍ତି—2. Plenty (Howells).
୩ । କାମାତୁରତା—3. Voluptuousness (Howells).
୪ । କାମନା; ଇଚ୍ଛା (ବ୍ରୁ. ଶ)—4 Desire; wish.
ବଣ—ଯଥେଷ୍ଟ (ବ୍ରୁ. ଶ)—Sufficient.

**ପ୍ରକାମଭୁକ୍**—ସ. ବଣ. ପୁ°. (ପ୍ରକାମ+ଭୁଜ ଧାତୁ+କର୍ତ୍ତୃ. କ୍ୱିପ୍; ୧ମା
Prakāmabhuk ୧ବ)—ପେଟ ପୂରିବା ବା ରୁଚିବା ପର୍ଯ୍ୟନ୍ତ ଖାଉଥିବା (ବ୍ୟକ୍ତି)—Eating till satisfied; eating enough (M. W.).

**ପ୍ରକାର**—ସ. ବ. (ପ୍ର+କୃ ଧାତୁ+ଭାବ. ଅ)—୧ । ରୀତି; ଧାରା; ଢଙ୍ଗ-
Prakāra 1. Manner, fashion; mode; way; peculiarity.
୨ । ରକମ—2 Sort; kind.
୩ । ସାଦୃଶ୍ୟ—3. Similarity; resemblance.
୪ । ପ୍ରଭେଦ—4. Variety; difference.
୫ । ଶ୍ରେଣୀ; ବର୍ଗ; ଜାତି—5 Species; class.
୬ । ଭିନ୍ନ ଶ୍ରେଣୀ—6. Different class.
୭ । ଉପାୟ; କୌଶଳ— 7. Means.
୮ । ଗୁଣଜନିତ ଭେଦ—8. Variety due to quality.
ଦେ. ବ—୧ । ଢଙ୍ଗଢାଙ୍ଗ—1. A peculiar mode.
୨ । ଛଇ—2. Pranks.
(ଯଥା—ଏ ଟୋକାଟା ଗୋଟାଏ ପ୍ରକାର ଜାଣିଛି ।)
୩ । ବିଶିଷ୍ଟ ଭଙ୍ଗି—3. A display of one's individuality.
[ ଦ୍ର—ଏହି ଶବ୍ଦ ଆକାର ଶବ୍ଦ ପରେ ସହଚରରୂପେ ବ୍ୟବହୃତ ହୁଏ । ]

**ପ୍ରକାର ଗତ**—ସ. ବଣ. (ବିଜ୍ଞାନ ପରିଭାଷା)—ଗୁଣ ସମ୍ବନ୍ଧୀୟ—
Prakāra gata Qualitative.

**ପ୍ରକାର ବିଶେଷ**—ସ°. ବ—ଅନେକ ପ୍ରକାର ବା ଶ୍ରେଣୀ ମଧ୍ୟରୁ
Prakara bisesha ଏକ ଢମ, ଏକପ୍ରକାର—One of the
(ପ୍ରକାରଭେଦ—ଅନ୍ୟରୂପ) peculiar modes or classes; a peculiar sort.

**ପ୍ରକାରାନ୍ତର**—ସ°. ବ—ଅନ୍ୟ ପ୍ରକାର; ଭିନ୍ନ ପ୍ରକାର—
Prakārāntara Another kind or sort; a different manner.

**ପ୍ରକାରାନ୍ତରରେ**—ଦେ. କ୍ରି. ବଣ—୧ । ଅନ୍ୟଥା, ପରନ୍ତୁ—
Prakārāntarare 1 Otherwise; on the otherhand.
(ପ୍ରକାରାନ୍ତରେ—ଅନ୍ୟରୂପ) ୨ । ଅନ୍ୟରୂପେ—
প্রকারান্তরে 2. In another way.
୩ । ଅପ୍ରକାଶ୍ୟ ରୂପରେ—3 Indirectly.

**ପ୍ରକାଶ**—ସ°. ବ. (ପ୍ର+କାଶ୍ ଧାତୁ=ଦୀପ୍ତି ପାଇବା+ଭାବ. ଅ)—
Prakāsa ୧ । ତେଜଃ; ଦୀପ୍ତି; ଆଲୋକ; ଜ୍ୟୋତିଃ—
1. Light; lustre.
୨ । ଚକଚକ୍ୟ—2. Splendour; brilliance;
[ପ୍ରକାଶତା(ତ୍ୱ)—ବ] dazzle.
୩ । ଉଜ୍ଜ୍ୱଳତା—3. Brightness
୪ । ଶୋଭା—4. Beauty; elegance.
୫ । ସ୍ପଷ୍ଟତା; ବ୍ୟକ୍ତତା—5. Clearness.
୬ । ବିକାଶ; ଜାହିର; ଜାଗ୍ରତ; ଅଭିବ୍ୟକ୍ତି—
6. Manifestation; display; appearance.
୭ । ପ୍ରସାରଣ; ବିସ୍ତାର—7. Expansion; diffusion.
୮ । ପ୍ରସିଦ୍ଧି; ପ୍ରଚାର—8. Publicity, publication; promulgation.
୯ । ପ୍ରକଟନ; ବ୍ୟକ୍ତ କରଣ—
9. Displaying; revelation.
୧୦ । ପ୍ରସ୍ଫୁଟନ; (ଫୁଲର) ଫୁଟିବା—
10. Blowing (e. g of a flower).
୧୧ । ଯଶଃ, ଖ୍ୟାତି—11. Renown; fame.
୧୨ । ଆବିଷ୍କାର—12 Discovery.
୧୩ । ରୌଦ୍ର; ଖରା—13. Sunshine.
୧୪ । ସାଦୃଶ୍ୟ—14. Similitude.
୧୫ । ଜ୍ଞାନ—15. Sense; knowledge.
୧୬ । ବୈବସ୍ୱତ ମନୁଙ୍କ ପୁତ୍ରବିଶେଷ—
16. Name of a son of Baibaswata Manu.
୧୭ । ହାସ୍ୟ—17. Laughter (M W.).
୧୮ । କଂସା; କାଂସ୍ୟ—18. Bell metal.
ବଣ—୧ । ସଦୃଶ—1. Like.
୨ । ବିକସିତ—2. Blown; expanded.
୩ । ପରିଦୃଷ୍ଟ—0. Visible; seen.
୪ । ପ୍ରକଟିତ—
4. Published; divulged; promulgated.
୫ । ଉଜ୍ଜ୍ୱଳ—5 Bright; shining.

୬ । ପ୍ରସିଦ୍ଧ—
6 Famous; renowned; celebrated.
୭ । ଉଦ୍ଭାବିତ—7. Discovered; invented.
୮ । ସ୍ପଷ୍ଟ—8. Manifest; apparent; evident; clear.
୯ । ଗୋଚର; ପ୍ରତ୍ୟକ୍ଷ (ହି. ଶ.)—9 Known; realised.
ଅ. (ନାଟକୀୟ ଭାଷା)—୧ । ସର୍ବଜନ ସମକ୍ଷରେ—
1. Before the eyes of all; openly; in public.
୨ । ସମସ୍ତେ ଶୁଣି ପାରିଲା ଭଳି, ଉଚ୍ଚୈଃସ୍ୱରରେ—
2. Loudly; aloud; audibly.
[ ଦ୍ର—ଅଭିନୟ ସମୟରେ ନଟ ବା ନଟୀ ନିକଟସ୍ଥ ଅନ୍ୟ ନଟନଟୀ ଶୁଣି ନ ପାରିବା ଭଳି ମନେ ମନେ ଆନ୍ଦୋଳନ କରୁଥିବା କଥାକୁ ଗୋପନରେ (aside) କହି, ତା ପରେ ସମସ୍ତଙ୍କୁ ଶୁଣାଇ ଯେଉଁ କଥା କହେ ତାକୁ 'ପ୍ରକାଶ' ( aloud ) ବୋଲାଯାଏ । ଏହାର ବିପରୀତ ସ୍ୱଗତ ବା ଆତ୍ମଗତ ଅଟେ । ]

ଦେ. (ବାକ୍ୟାର୍ଥକ ଶବ୍ଦ)—ଏହା ଆମ୍ଭ ନିକଟରେ ପ୍ରକାଶିତ ହୋଇଅଛି—It appears to me.
( ଯଥା—ପ୍ରକାଶ ଯେ ଅମୁକ ଲୋକ ଚୋରି କରିଅଛି । ]
প্রকাশ ଦେ. ବି—୧ । (ଆଧୁନିକ) ଗ୍ରନ୍ଥର ସଂସ୍କରଣ ବା ପ୍ରଚାର—
प्रकाश 1. Publication of a book.
୨ । ରାତି ଭୋର ହେବା—2. Dawning.

**ପ୍ରକାଶକ**—ସଂ. ବିଣ. ପୁଂ. ( ପ୍ର+କାଶ୍ ଧାତୁ+କର୍ତ୍ତୃ. ଅକ )—
Prakāśaka ୧ । ବ୍ୟକ୍ତକାରକ—1. Making clear or
(ପ୍ରକାଶିକା—ସ୍ତ୍ରୀ) manifest.
୨ । ଯେ ପ୍ରକାଶ କରେ; ପ୍ରକଟନକାରୀ—
2. One who divulges or publishes.
୩ । ବ୍ୟାଖ୍ୟାକାରୀ—3. Explaining; illustrating,
୪ । ପ୍ରଦର୍ଶକ—4. Manifesting, displaying.
୫ । ଉଜ୍ଜ୍ୱଳ—
5. Bright; shining; brilliant ( M. W ).
ବି—୧ । ଗ୍ରନ୍ଥାଦିର ପ୍ରଚାରକର୍ତ୍ତା—
1, Publisher of a book
୨ । ବ୍ୟାଖ୍ୟା କରିବା ବ୍ୟକ୍ତି—2. Expounder.
୩ । ମହାଦେବ (ହି. ଶ)—2. Mahādeba.

**ପ୍ରକାଶ କରିବା**—ଦେ କ୍ରି—୧ । ପ୍ରକଟନ କରିବା—
Prakāśa karibā 1. To publish; to unfold.
প্রকাশ করা ୨ । ସାଧାରଣଙ୍କ ନିକଟରେ କହିବା—
प्रकाश करना 2. To speak out; to give out.
୩ । ଗୁପ୍ତ ରହସ୍ୟ ଆଦି କହିଦେବା—
3 To divulge a secret.
୪ । ଖୋଲି କରି ଦେଖାଇବା—4. To display.
୫ । କୌଣସି ରାଜା ଆଦିଙ୍କ ଉପରେ ଚାମର ଶଙ୍ଖ ଆଦି ଇତସ୍ତତଃ ସଞ୍ଚାଳନ କରିବା—5. To wave a chowrie or cloth over a person.

ବେଗେ ଅମ୍ବର ପ୍ରକାଶ କରନ୍ତି କହନ୍ତି—ଉଷ୍ଣ. ବେ୍ଦେଶ୍ୱରୀବିଳାସ ।
୬ । ବ୍ୟକ୍ତ କରିବା—
6 To exhibit; to manifest.
୭ । ଗ୍ରନ୍ଥକୁ ମୁଦ୍ରଣଦ୍ୱାରା ପ୍ରଚାର କରିବା—
7. To publish a book.

**ପ୍ରକାଶ କାମ**—ସଂ. ବିଣ. ପୁଂ. ( ବହୁବ୍ରୀହି, ପ୍ରକାଶ+କାମ )—ଯଶଇଚ୍ଛୁ,
Prakāśa kāma ଯେ ଯଶଃ କାମନା କରେ—
( ପ୍ରକାଶକାମା—ସ୍ତ୍ରୀ ) Wishing for renown (M. W.).

**ପ୍ରକାଶଜ୍ଞାତା**—ସଂ. ବି. ( ପ୍ରକାଶ+ଜ୍ଞା ଧାତୁ+କର୍ତ୍ତୃ. ତୃ; ୧ମା. ୧ବ)—
Prakāśajñātā ( ଯେ ସୂର୍ଯ୍ୟଙ୍କର ବା ଦିବସର ପ୍ରକାଶକୁ ଜାଣି ପାରେ ) କୁକ୍କୁଟ, କୁକୁଡ଼ା—The cock.

**ପ୍ରକାଶତଃ**—ସଂ. କ୍ରି. ବିଣ. ( ପ୍ରକାଶ+ତଃ )—ପ୍ରକାଶ୍ୟ ଭାବରେ—
Prakāśatah Openly.

**ପ୍ରକାଶତା**—ସଂ. ବି. ( ପ୍ରକାଶ+ଭାବ. ତା )—୧ । ପ୍ରତ୍ୟକ୍ଷୀଭୂତ
Prakāśatā କରଣ, ପ୍ରକଟନ—1. Manifestation;
(ପ୍ରକାଶତ୍ୱ—ଅନ୍ୟରୂପ) publication.
୨ । ଦର୍ଶନୀୟତା—2. Visibility.
୩ । ଉଜ୍ଜ୍ୱଳତା; ଦୀପ୍ତି—3. Brightness, luminousity.
୪ । ସ୍ପଷ୍ଟତା—4. Clearness.

**ପ୍ରକାଶ ଥାଉ କି**—ଦେ. ( ବାକ୍ୟ )—ଏଥିପ୍ରତି ପାଠକଙ୍କ ଦୃଷ୍ଟି ଆକର୍ଷଣ
Prakāśa thāu ki କରାଯାଉଅଛି—A phrase meaning
প্রকাশ থাকে কি 'Be it known'.
[ ଦ୍ର—କୌଣସି ପତ୍ର ଲେଖି ସାରି ପୁନର୍ବାର ଅନ୍ୟ କୌଣସି ବିଷୟ ପ୍ରତି ପାଠକଙ୍କ ଦୃଷ୍ଟି ଆକର୍ଷଣ କରିବା ନିମନ୍ତେ କେତେକ ବାକ୍ୟ ଯୋଗ କରିବାକୁ ହେଲେ ଏ ବାକ୍ୟ ଲେଖାଯାଏ । ଏହା ଇଂରାଜୀରେ Post script ବା P.S. ର ସ୍ଥଳରେ ବ୍ୟବହୃତ ହୁଏ ।]

**ପ୍ରକାଶନ**—ସଂ. ବି. ( ପ୍ର+କାଶ୍ ଧାତୁ+ଭାବ. ଅନ )—
Prakāśana ୧ । ପ୍ରକାଶକରଣ; ପ୍ରକଟୀକରଣ—
1. Publishing, manifesting; divulging.
୨ । ଦେଖାଇବା—2. Exhibiting.
୩ । ଆଲୋକିତ କରିବା—3. Illuminating
୪ । ସୁସ୍ପଷ୍ଟ କରିବା—4. Making clear.
୫ । ଗ୍ରହନକ୍ଷତ୍ରାଦିର ଉଦୟ—5 Appearing; rising.
୬ । (+କର୍ତ୍ତୃ. ଅନ) ବିଷ୍ଣୁ (ହି. ଶ.)—
6. A name of Bishṇu.
ସଂ. ବିଣ—ଉଜ୍ଜ୍ୱଳ; ଦୀପ୍ତିମାନ୍ (ହି. ଶ)—Bright.

**ପ୍ରକାଶ ନାରୀ**—ସଂ. ବି. ସ୍ତ୍ରୀ—ବାରନାରୀ, ବେଶ୍ୟା—
Prakāśa nāri Prostitute; public woman (M.W ).

**ପ୍ରକାଶନୀୟ**—ସଂ. ବିଣ. (ପ୍ର+କାଶ୍ ଧାତୁ+କର୍ମ. ଅନୀୟ)—୧ । ଦର୍ଶନୀୟ—
Prakāśaniya 1 Visible.
୨ । ଦେଖାଇବାର ଯୋଗ୍ୟ—
2. Capable of being displayed or manifested.
୩ । ପ୍ରଚାର ଯୋଗ୍ୟ; ପ୍ରକଟନ ଯୋଗ୍ୟ—
3. Worth publishing.

**ପ୍ରକାଶ ପାଇବା**—ଦେ. କ୍ରି—୧ । ପ୍ରକାଶିତ ହେବା—2. To
Prakāśa pāibā become manifest; to be apparent.
প্রকাশ হওয়া ୨ । ସ୍ପଷ୍ଟରୂପେ ଜଣା ହେବା—2. To become
**प्रकाश होना** well known; to become clear.
( ପ୍ରକାଶ ହେବା—ଅନ୍ୟରୂପ ) ୩ । ଗୋଚରୀଭୂତ ହେବା; ଦେଖା-
ଯିବା—3. To appear; to come to light; to transpire.

**ପ୍ରକାଶମାନ**—ସଂ. ବିଣ. ( ପ୍ର+କାଶ୍ ଧାତୁ+କର୍ତ୍ତୃ. ଆନ )—
Prakāśamāna ୧ । ଦୀପ୍ତିମାନ୍—
( ପ୍ରକାଶମାନା—ସ୍ତ୍ରୀ ) 1. Dazzling; brilliant.
୨ । ଉଜ୍ଜ୍ୱଳ—2 Bright; shining.
୩ । ସ୍ପଷ୍ଟ—3. Clear; evident.

**ପ୍ରକାଶାତ୍ମା**—ସଂ. ବିଣ. (ବହୁବ୍ରୀହି; ପ୍ରକାଶ+ଆତ୍ମନ୍, ୧ମା. ୧ବ. )—
Prakāśātmā ୧ । ଯାହାର ଆଚରଣ ବା ପ୍ରକୃତି ଅତି ଉଜ୍ଜ୍ୱଳ—
1. Of brilliant character or nature.
୨ । ବ୍ୟକ୍ତସ୍ୱଭାବ—
2 Whose self is manifest, self-evident
୩ । ସ୍ୱୟଂଦୀପ୍ତ—3 Self-illuminated.
୪ । ଅତି ଉଜ୍ଜ୍ୱଳ—4. Very bright.
ବି—୧ । ଈଶ୍ୱର; ଭଗବାନ୍—1. God.
୨ । ସୂର୍ଯ୍ୟ—2. The sun.

**ପ୍ରକାଶିତ**—ସଂ. ବିଣ. ( ପ୍ର+କାଶ୍ ଧାତୁ+କର୍ମ. ତ )—୧ । ଉଦ୍ଭାସିତ,
Prakāśita ଦୀପ୍ତ—1. Glittering.
୨ । ପ୍ରସ୍ଫୁଟିତ—2. Blown.
୩ । ବ୍ୟକ୍ତ—3. Manifest; displayed.
୪ । ଜ୍ଞାନଗମ୍ୟ; ପ୍ରକଟ—
4. Evident; apparent
୫ । ଶୋଭିତ—5. Beautified.
୬ । ପ୍ରସ୍ତାରିତ, ଘୋଷିତ, ପ୍ରଚାରିତ—6. Disclosed; published; revealed; promulgated; divulged.
୭ । ଆବିଷ୍କୃତ—7. Invented; discovered.
୮ । ( ଆଧୁନିକ ) ମୁଦ୍ରଣଦ୍ୱାରା ପ୍ରକଟିତ ( ପୁସ୍ତକ )—
8. Published ( book ).

**ପ୍ରକାଶିତ ବିରୁଦ୍ଧତା**—ସଂ. ବି ( ଅର୍ଥଦୋଷବିଶେଷ )—ଯେଉଁ ସ୍ଥଳରେ
Prakāśita biruddhatā ଉକ୍ତିର ବିରୁଦ୍ଧାର୍ଥ ପ୍ରକାଶିତ ହୁଏ—
A defect in composition where an apparently innocent expression conveys a totally different sinister meaning.
[ ଯଥା—ଆଶୀର୍ବାଦ କରେଁ ତବ ତନୟେ ରାଜନ । ରାଜ୍ୟଶ୍ରୀ କରନ୍ତୁ ତାଙ୍କୁ ଶୀଘ୍ର ଆଲିଙ୍ଗନ—ଏଠାରେ ରାଜାଙ୍କୁ ଆଶୀର୍ବାଦ କରିବାକୁ ଯାଇ ରାଜାଙ୍କର ମୃତ୍ୟୁ ହେଲେ ତାଙ୍କ ପୁଅ ରାଜା ହେବାର ସୂଚନା କରି ପ୍ରକୃତରେ ତାଙ୍କର ମୃତ୍ୟୁ କାମନା କରାଯାଇ ଥିବାରୁ ପ୍ରକାଶିତ ବିରୁଦ୍ଧତା ଦୋଷ ହୋଇଅଛି—ଚୁଳାମଣି. ଅଳଙ୍କାର ତରଙ୍ଗିଣୀ । ]

**ପ୍ରକାଶିତବ୍ୟ**—ସଂ. ବିଣ (ପ୍ର+କାଶ୍ ଧାତୁ+କର୍ମ. ତବ୍ୟ )—ପ୍ରକାଶିତ
Prakāśitabya ହେବାର ଯୋଗ୍ୟ—
Fit to be published or divulged.

**ପ୍ରକାଶିବା**—ଦେ. କ୍ରି (ପଦ୍ୟ)—୧ । ପ୍ରକାଶିତ ହେବା—
Prakāśibā 1 To become visible; to appear.
প্রকাশা ୨ । ପ୍ରକାଶିତ କରିବା; ଦର୍ଶାଇବା, ବ୍ୟକ୍ତ କରିବା—
**प्रकाशना, प्रगसना** 2. To exhibit, to give vent to.
କାମିନୀ ପ୍ରକାଶନ୍ତି ଭାବ ସଙ୍କେତେ—ରାଧାନାଥ, ମେଘଦୂତ ।
୩ । କହିବା—3. To say.
କଳକଣ୍ଠ କଳ କାକଳୀ ଶୁଣିଲେ ପ୍ରକାଶେ ପ୍ରିୟ ମନୋରମ—
ଭଞ୍ଜ, ପ୍ରେମସୁଧାନିଧି ।
୪ । (ରାତ୍ରି) ପାହିବା—4. (the night) To dawn.
ଏମନ୍ତେ ପ୍ରକାଶିଲା ନିଶି
ଏବେ ଦ୍ୱାରକାପୁରେ ପଶି—ଜଗନ୍ନାଥ, ଭାଗବତ ।
୫ । ପ୍ରସ୍ଫୁଟିତ ହେବା, ଫୁଟିବା—
5. To be blown; to expand.
ଦମୟନ୍ତୀ ହୃଦକମଳ ପ୍ରକାଶିଲା—କୃଷ୍ଣସିଂହ. ମହାଭାରତ. ବନ ।
୬ । ପ୍ରଚାର କରିବା, ପ୍ରକଟିତ କରିବା—6. To publish.

**ପ୍ରକାଶୀ**—ସଂ ବିଣ. ପୁଂ ( ପ୍ରକାଶ+କର୍ତ୍ତୃ ଇନ୍; ୧ମା. ୧ବ. )—
Prakāśi ଦୀପ୍ତିମାନ୍—Shining; radiant.
( ପ୍ରକାଶିନୀ—ସ୍ତ୍ରୀ )

**ପ୍ରକାଶ୍ୟ**—ସଂ. ବିଣ. ( ପ୍ର+କାଶ୍ ଧାତୁ+କର୍ମ. ଯ )—୧ । ପ୍ରକାଶ
Prakāśya କରିବାର ଯୋଗ୍ୟ—1. Fit to be published or brought to light; publishable.
୨ । ଯାହା ପରେ ପ୍ରକାଶିତ ହେବ—2. Which will be published; to be published.
୩ । ସର୍ବସାଧାରଣଙ୍କ ପାଇଁ ଉନ୍ମୁକ୍ତ—
3. Opened to the public.
୪ । ଦୃଶ୍ୟ—4. Visible.
୫ । ଯାହା ଗୋପନୀୟ ନୁହେଁ—5. Not private; public.

**ପ୍ରକାଶ୍ୟତଃ**—ଦେ. କ୍ରି. ବିଂ. ( ସଂ. ପ୍ରକାଶତଃ)—ସର୍ବସାଧାରଣ ଦେଖି
Prakāśyataḥ ପାରିବା ପ୍ରକାରେ—1. Openly; publicly.
୨ । ଗୋପନ ନ କରି—2. Without concealment.

**ପ୍ରକାଶ୍ୟ ସ୍ଥାନ**—ଦେ. ବି.—ଯେଉଁ ସ୍ଥାନକୁ ସର୍ବସାଧାରଣ ଯାଇ ପାରନ୍ତି
Prakāśya sthāna ବା ସମସ୍ତେ ଦେଖି ପାରନ୍ତି—
A public place; a place open to the public.

**ପ୍ରକାଶ୍ୟ ସ୍ଥାନ ମଇଳା (ଳା) କରିବା**—ଦେ. ବି.—ସର୍ବସାଧାରଣଙ୍କ
Prakāśya sthāna maiḷā(lā) karibā ଦୃଷ୍ଟିରେ ପଡ଼ିବା ସ୍ଥାନକୁ ଅପରିଷ୍କାର କରିବା (ଏହା ଭାରତୀୟ ଦଣ୍ଡବିଧି ଆଇନରେ ଅପରାଧ ରୂପେ ଗଣିତ)—Public nuisance (an offence under the Indian Penal Code.)

**ପ୍ରକ୍ରୀୟା**—ଗ୍ରା. ବି. (ପଦ୍ୟ)—ପରକୀୟା (ଦେଖ)
Prakriyā Parakiyā (See)
ପ୍ରକ୍ରୀୟା ରସ ଭେଦ ହୁଇ,
କଞ୍ଚପା ଶୁଦ୍ଧପ୍ରେମା ହୋଇ । ଭୂପତି. ପ୍ରେମପଞ୍ଚାମୃତ ।

**ପ୍ରକୀର୍ଣ୍ଣ**—ସଂ. ବିଣ. (ପ୍ର+କୃ ଧାତୁ=ବିକ୍ଷେପ କରିବା+କର୍ମ. ତ)—
Prakirnna ୧ । ବିକ୍ଷିପ୍ତ, ବୁଣା ଯାଇଥିବା—1. Strewn; diffused; scattered; spread about; broadcast.
୨ । ପ୍ରଚାରିତ; ପ୍ରକଟିତ—
2. Published; divulged; promulgated.
୩ । ପ୍ରସ୍ଫୁଟିତ, ବିକସିତ—
3. Opened; expanded; full-blown.
୪ । ବିବିଧ, ଅନେକ ପ୍ରକାରର—
4 Miscellaneous; of various kinds
୫ । ଅସମ୍ବଦ୍ଧ—5 Incoherent; loose.
୬ । ଉନ୍ମାର୍ଗ, ଉଚ୍ଛୃଙ୍ଖଳ—
6. Irregular; wild; desultory.
୭ । ବିଚଳିତ, ଆନ୍ଦୋଳିତ—7. Agitated; excited.
୮ । ତରଙ୍ଗିତ—8. Wavy; billowy.
୯ । ମିଳିତ, ମିଶ୍ରିତ (ବ୍ୟ. ଶ.)—1, Mixed up.
ବି.—୧ । ପୁସ୍ତକର ଅଧ୍ୟାୟ—
1 A section of a book, a chapter.
୨ । ପୂତି କରଞ୍ଜ—2. Caesalpina Bonducella.
୩ । ବ୍ୟଜନବିଶେଷ, ଚାମର—
2. A chowrie, a tail used as a fan
୪ । ବିବିଧ ନୀତିବଚନସଂଗ୍ରହ—4. A collection of miscellaneous moral rules; a miscellany.

**ପ୍ରକୀର୍ଣ୍ଣକ**—ସଂ. ବି. (ପ୍ରକୀର୍ଣ୍ଣ+ସ୍ୱାର୍ଥେ. କ)—୧ । ଚାମର; ଚାମର—
Prakirnnaka 1, A chowrie, a tail used as a fan.
୨ । ପୁସ୍ତକର ଅଧ୍ୟାୟ—2. Chapter or section of a book.
୩ । ବିସ୍ତାର—3. Extension; extent.
୪ । ନାନା ବିଷୟ ସଂଗ୍ରହ ପୁସ୍ତକ—4 A miscellany; a book of miscellaneous collections
୫ । ଅଶ୍ୱ, ଘୋଡ଼ା—5. Horse.
୬ । ଶାସ୍ତ୍ରରେ ବା ଆଇନ୍‌ରେ ଅନୁକ୍ତ ବିଷୟ, ବିଚାରପତି ଦୋଷର ଗୁରୁତା ବା ଲଘୁତା ଦୃଷ୍ଟିରେ ଯହିଁର ଶାସ୍ତି ଦେବେ—6. A case not provided for in the law books but left to the discretion of the judge to decide according to the gravity of the matter.
୭ । ଯେଉଁ କ୍ଷୁଦ୍ର ପାପମାନଙ୍କ ପ୍ରାୟଶ୍ଚିତ୍ତ ଗ୍ରନ୍ଥମାନଙ୍କରେ ଉଲ୍ଲେଖ ନାହିଁ (ବ୍ୟ. ଶ)—7. Minor sins not mentioned in the books which lay down expiations.

**ପ୍ରକୀର୍ତ୍ତନ**—ସ.ବି. (ପ୍ର+କୃତ୍ ଧାତୁ=କୀର୍ତ୍ତନ କରିବା+ଭାବ. ଅନ)—
Prakirttana ୧ । କଥନ—1 Mention.
୨ । ଘୋଷଣା କରିବା—2. Proclaiming.
୩ । ଜୋରରେ କହିବା—3. Speaking loudly.

**ପ୍ରକୀର୍ତ୍ତି**—ସ. ବି. (ପ୍ର+କୃତ୍ ଧାତୁ=କୀର୍ତ୍ତନ କରିବା+ଭାବ. ତି)—
Prakirtti ୧ । ପ୍ରସିଦ୍ଧି; ଖ୍ୟାତି—1. Fame; renown; celebrity.
୨ । ପ୍ରଚାର, ଘୋଷଣା—2 Declaration; publication.

**ପ୍ରକୀର୍ତ୍ତିତ**—ସ. ବିଣ. (ପ୍ର+କୃତ୍ ଧାତୁ=କୀର୍ତ୍ତନ କରିବା+କର୍ମ. ତ)—
Prakirttita ୧ । ବର୍ଣ୍ଣିତ—1. Mentioned; described.
୨ । ଉଚ୍ଚୈଃସ୍ୱରରେ ପ୍ରକଟିତ—
2 Proclaimed aloud; announced.
୩ । ପ୍ରଚାରିତ—3. Published; declared
୪ । ବିଶଦୀକୃତ—4. Explained.
୫ । ବିଖ୍ୟାତ; ପ୍ରସିଦ୍ଧ—5. Celebrated; renowned.

**ପ୍ରକୀର୍ଯ୍ୟ**—ସଂ. ବି. (ପ୍ର+କୃ ଧାତୁ=ବିକ୍ଷେପ କରିବା+କର୍ମ. ଯ)—
Prakirjya ପୂତି କରଞ୍ଜ—Caesalpina Bonducella (a plant).
ବିଣ—୧ । ବିସ୍ତାରଯୋଗ୍ୟ—
1. To be spread about or expanded.
୨ । ପ୍ରକାଶ ଯୋଗ୍ୟ—2. To be published or promulgated or diffused.

**ପ୍ରକୁପିତ**—ସଂ. ବିଣ. (ପ୍ର+କୁପ୍ ଧାତୁ+କର୍ତ୍ତୃ. ତ)—
Prakupita ୧ । ଅତିଶୟ କ୍ରୁଦ୍ଧ—
(ପ୍ରକୁପିତା—ସ୍ତ୍ରୀ) 1. Enraged; incensed; agitated.
୨ । ବିଶୃଙ୍ଖଳ—2. Disordered; deranged.
୩ । ଯାହାକୁ ରାଗେଇ ଦିଆଯାଇ ଅଛି—
3. Provoked to anger.
୪ । ଯାହାର ପ୍ରଭାବ ଅତି ବଢ଼ିଯାଇଛି (ବ୍ୟ. ଶ)—
4 Whose influence has increased much.

**ପ୍ରକୃତ**—ସଂ. ବିଣ (ପ୍ର+କୃ ଧାତୁ=କରିବା+କର୍ତ୍ତୃ ଓ କର୍ମ. ତ)—
Prakruta ୧ । ସମାହୃତ; ସମ୍ପୂର୍ଣ୍ଣୀକୃତ—
(ବିକୃତ—ବିପରୀତ) 1. Accomplished; completed.
୨ । ରଚିତ, ନିର୍ମିତ—2. Made; composed; prepared.
୩ । ଅବିକୃତ—3 Not deteriorated; not disordered.
୪ । ଯେଉଁ ବିଷୟ ନେଇ ବିବାଦ ବା ତର୍କ ଚାଲୁଥାଏ—
4. In question; under discussion.
୫ । ପ୍ରସ୍ତାବିତ—5. Proposed.
୬ । ଠିକ୍—6. Accurate; right.
୭ । ବାଞ୍ଛିତ, ଅଭିଲଷିତ—
7. Desired; expected, cherished.
୮ । ଅଧିକୃତ—8. Possessed.
୯ । ଦରକାରୀ; ପ୍ରୟୋଜନୀୟ—
9. Important; necessary.
୧୦ । ବାସ୍ତବିକ, ଯଥାର୍ଥ—10. Actual; real.
୧୧ । ଅସଲ; ଖାଣ୍ଟି—11. Genuine.
୧୨ । ସତ୍ୟ—12 True.

୧୩ । ଅମିଶ୍ରିତ; ବିଶୁଦ୍ଧ—13. Unadulterated.

**ପ୍ରକୃତତା(ତ୍ୱ)**—ସଂ. ବି—୧ । ପ୍ରକୃତ ଅବସ୍ଥା—
Prakṛutatā(twa) 1. Actual state.
୨ । ସତ୍ୟତା—2. Truth.
୩ । ବାସ୍ତବତା—3. Actuality; reality.

**ପ୍ରକୃତାର୍ଥ**—ସଂ. ବିଣ—(ବହୁବ୍ରୀହି)—୧ । ଯଥାର୍ଥ; ଠିକ୍—
Prakṛutārtha 1. Right; accurate; real; genuine.
୨ । ସତ୍ୟ—2. True.
ବି—ନାଲିସ କରିବାର ଯଥାର୍ଥ କାରଣ—The true object of a suit; the cause of action of a suit.

**ପ୍ରକୃତ ପ୍ରସ୍ତାବରେ**—ଦେ. କ୍ରି. ବିଣ—୧ । ଠିକ୍ କହିବାକୁ ଗଲେ, ସତ୍ୟ କଥା ଏହି କି—1. In point of fact, to speak the truth.
Prakṛuta prastābare
( ପ୍ରକୃତ ପ୍ରସ୍ତାବେ—ଅନ୍ୟରୂପ )
ପ୍ରକୃତପ୍ରস্তাবে **सचमुच**
୨ । ଠିକ୍ ରୂପରେ; ଯଥାର୍ଥରେ—
2. Rightly; truly.
୩ । ସତେ ସତେ—3. Actually.

**ପ୍ରକୃତ ବିବରଣ**—ଦେ. ବି—(କଚିରିଆ)—ସତ୍ୟ କଥା, ପ୍ରକୃତ ଘଟଣା—
Prakṛuta bibaraṇa Actual facts, the true facts; facts as they are.
ପ୍ରକୃତ ଘଟଣା } ଅନ୍ୟରୂପ
ପ୍ରକୃତ ହାଲ }
প্রকৃতবিবরণ **अस्लहाल**
[ଦ୍ର—ପ୍ରତିବାଦୀ ନିଜର ଲିଖିତ ଜବାବରେ ବାଦୀର ଆରଜି ଲିଖିତ ବିଷୟମାନ ଖଣ୍ଡନ କରିସାରି ଶେଷରେ ମକଦ୍ଦମାର ପ୍ରକୃତ ହାଲ ବା ବିବରଣ ବୋଲି କି କାରଣରୁ ବାଦୀ ତା ( ପ୍ରତିବାଦୀର ) ନାମରେ ମିଥ୍ୟା ମକଦ୍ଦମା କରିଅଛି ତାହାର ବିଷୟ ବିବୃତ କରେ ।]

**ପ୍ରକୃତି**—ସଂ. ବି—( ପ୍ର+କୃ ଧାତୁ+କରଣ. ତି)—୧ । ଭଗବାନଙ୍କର ମାୟାଖ୍ୟା ଶକ୍ତି, ଯାହାଦ୍ୱାରା ବିଶ୍ୱ ବ୍ରହ୍ମାଣ୍ଡର ଯାବତୀୟ ପଦାର୍ଥ ସୃଷ୍ଟି ହୋଇଅଛି; ସଂସାରର ବା ଜଡ଼ ଜଗତର ମୌଳିକ ପ୍ରଧାନ କାରଣ—1. The Nature as distinguished from the Spirit, Nature, the personified will or the creative energy of the Supreme Being.
Prakṛuti
[ଦ୍ର—ଭଗବାନଙ୍କର ଯେଉଁ ମାୟାଖ୍ୟା ଶକ୍ତି ଦ୍ୱାରା ଏ ବିଶ୍ୱର ସୃଷ୍ଟି ହୋଇଅଛି ତାକୁ ପ୍ରକୃତି ବୋଲାଯାଏ । ଏହା ଦ୍ୱିବିଧ, ଯଥା—ପର ଓ ଅପର । ପର (ଶ୍ରେଷ୍ଠା) ଜୀବ ସ୍ୱରୂପ ଚେତନାମୟୀ ପ୍ରକୃତି । ଏହା ଜଗତକୁ ରକ୍ଷା କରୁଅଛି । ଏହାହିଁ ଜୀବର ପ୍ରାଣ । ଅପର (ନିକୃଷ୍ଟା) କ୍ଷିତି, ଅପ୍, ତେଜଃ, ମରୁତ୍, ବ୍ୟୋମ, (ପଞ୍ଚଭୂତ) ମନ, ବୁଦ୍ଧି ଓ ଅହଙ୍କାର ।

ହିନ୍ଦୁ ଦର୍ଶନ ମତରେ—ଆତ୍ମା ଛଡ଼ା ଜଗତରେ ଅନ୍ୟ ସମସ୍ତ ବସ୍ତୁର ମୂଳକାରଣ 'ପ୍ରକୃତି' ଅଟେ । ପ୍ରକୃତି ଅନାଦି ଅନନ୍ତ ଉତ୍ପାଦିକା-ଶକ୍ତିବିଶିଷ୍ଟ । ପୁରୁଷ (Spirit) ଓ ପ୍ରକୃତି (Nature) ଏହି ଉଭୟର ମିଳନରେ ଏ ଜଗତର ସୃଷ୍ଟି । ପୁରୁଷ ସ୍ୱୟଂ କିଛି କାର୍ଯ୍ୟ କରେ ନାହିଁ; କେବଳ ଦର୍ଶକ ମାତ୍ର । ପ୍ରକୃତି ଓ ପୁରୁଷର ସଂଯୋଗ ହେଲେ ସୃଷ୍ଟି କାର୍ଯ୍ୟର ଆରମ୍ଭ ହୁଏ । ପ୍ରକୃତିରୁ ସତ୍ତ୍ୱ, ରଜଃ ଓ ତମଃ ଏହି ତିନି ଗୁଣ ଉତ୍ପନ୍ନ ହୁଅନ୍ତି । ଏହି ତିନି ଗୁଣ ସାମ୍ୟାବସ୍ଥାରେ ଥିଲେ ପ୍ରକୃତି ନିରୁପାଧିକ ରୂପେ ଅବସ୍ଥାନ କରୁଥାଏ; କିନ୍ତୁ ଉକ୍ତ ଗୁଣତ୍ରୟର ଅସାମ୍ୟାବସ୍ଥା ଘଟିଲେ ସୃଷ୍ଟି କାର୍ଯ୍ୟ ଆରବ୍ଧ ହୁଏ । ]

୨ । (ସାଂଖ୍ୟଦର୍ଶନ) ସତ୍ତ୍ୱ, ରଜଃ ଓ ତମଃ, ଜଡ଼ ଜଗତର ଏହି ତ୍ରିଗୁଣାତ୍ମକ ଆଦିକାରଣ, ନିରାକାର ଓ ଜ୍ଞାନମୟ ଈଶ୍ୱରଙ୍କର ସାକାର ଓ ଜଡ଼ରୂପେ ଜଗତରେ ପ୍ରକାଶମାନ ଗୁଣ—
2. ( Sāmkhya philosophy ) The material attributes of the Creator.
୩ । ଯାବତୀୟ ସୃଷ୍ଟ ପଦାର୍ଥ; ନିସର୍ଗ—2 The creation.
୪ । ସୃଷ୍ଟ ପଦାର୍ଥର ୫ ଗୋଟି ଉପାଦାନ; ପଞ୍ଚ ମହାଭୂତ (କ୍ଷିତି, ଅପ୍, ତେଜ; ମରୁତ ଓ ବ୍ୟୋମ)—4. The five primordial elements of creation, the elements.
୫ । ବସ୍ତୁର ପ୍ରଥମାବସ୍ଥା—
5. The natural stage of a thing.
୬ । ଅଜ୍ଞାନ; ମାୟା, ଅବିଦ୍ୟା—
6. Spiritual ignorance; illusion.
୭ । ଆଦି କାରଣ—7. Prime cause; origin.
୮ । ସ୍ତ୍ରୀ; ଯୋଷିତ୍, ନାରୀ—
8. Woman; a female; woman kind
୯ । ଦେବୀ, ଠାକୁରାଣୀ—9 A Goddess.
[ଦ୍ର—ସାବିତ୍ରୀ, ରାଧିକା, ଦୁର୍ଗା, ଷଷ୍ଠୀ, ଲକ୍ଷ୍ମୀ ଓ ଗଙ୍ଗା ପ୍ରଭୃତି ପ୍ରକୃତି ଅଟନ୍ତି ।]
୧୦ । ସୃଷ୍ଟିର ଆଦ୍ୟାଶକ୍ତି—10. The original creative energy of the universe.
୧୧ । ପଞ୍ଚଭୂତାତ୍ମକ ଦେହ—11. The body composed of the 5 prime elements.
୧୨ । ଶକ୍ତି—
12. Power; energy; potency; strength.
୧୩ । ଜୀବାତ୍ମା; ଆତ୍ମା—13. Soul.
୧୪ । ପରମାତ୍ମା; ବିଶ୍ୱାତ୍ମା—14 The soul of the universe, God.
୧୫ । ଜନନୀ—15. Mother.
୧୬ । ଯୋନି—16. Female organ.
୧୭ । ଲିଙ୍ଗ, ଶିଶ୍ନ—17. Male organ; penis.
୧୮ । ଗୁହ୍ୟ ଦ୍ୱାର—18. The anus.
୧୯ । ଜନ୍ତୁ ଜଗତ୍—19. The animal world.
୨୦ । ଅମାତ୍ୟ—20. Minister.
୨୧ । ବାସିନ୍ଦା—21. An inhabitant.
୨୨ । (ବହୁବଚନ) ସପ୍ତବିଧ ରାଜ୍ୟାଙ୍ଗ (ଯଥା—୧ ସ୍ୱାମୀ, ୨ ମନ୍ତ୍ରୀ ୩ ସହାୟ, ୪ ଧନ, ୫ ଦେଶ ୬ ଦୁର୍ଗ ଓ ୭ ସୈନ୍ୟ, ଏବଂ ମତାନ୍ତରରେ, ୮ ପ୍ରଜା)—22. The 7 requisites

for a kingdom (viz-1 the head, 2 minister, 3 allies, 4 treasure, 5 kingdom 6. castle, 7 army and according to some, 8 the subjects).

୨୩ । (ବହୁବଚନ) ରାଜ୍ୟର ପ୍ରଜାମଣ୍ଡଳ— 23. The subjects of a kingdom.

୨୪ । (ବହୁବଚନ) ରାଜାଙ୍କର ଦଶବିଧ ସହାୟକ—( ଯଥା— ପୁରୋହିତ, ପ୍ରତିନିଧି, ପ୍ରଧାନ, ସଚିବ, ମନ୍ତ୍ରୀ, ପ୍ରାଡ୍‌ବିବାକ, ପଣ୍ଡିତ, ସୁମନ୍ତ୍ରକ, ଅମାତ୍ୟ ଓ ଦୂତ)—24. The 10 assistants to a king; the body of a king's ministers.

୨୫ । ମନର ଭାବ ବା ଗତି; ମିଜାଜ୍, ମତି ଗତି— 25. Disposition; temperament.

୨୬ । ସ୍ୱଭାବ; ଚରିତ୍ର—26. Individual nature.

୨୭ । (ବୈଦ୍ୟକ) ଜନ୍ମ କାଳରେ ଶରୀରସ୍ଥ କଫ, ବାତ ପିତ୍ତ ଏହି ତିନି ରସ ମଧ୍ୟରୁ ଗୋଟିକର ପ୍ରାବଲ୍ୟ—27. The predominance of one of the humours of the body at the time of a person's birth.

୨୮ । (ଅଳଙ୍କାର ଶାସ୍ତ୍ର) ଏକବିଂଶତ୍ୟକ୍ଷର ବୃତ୍ତି, ସଂସ୍କୃତ ଛନ୍ଦୋ-ବିଶେଷ—22. (prosody) Name of a Sanscrit metre of 21 syllables.

୨୯ । (ବ୍ୟାକରଣ) ଧାତୁ ବା ଶବ୍ଦମୂଳ—29. (grammar) The root; the crude or elementary form of a word or verb before it takes an inflection.

[ଦ୍ର—ଗତ ଶବ୍ଦର ପ୍ରକୃତି ଗମ ଧାତୁ ଓ ପ୍ରତ୍ୟୟ ତ; ରାଜକୀୟ ଶବ୍ଦର ପ୍ରକୃତି ରାଜନ୍ ।]

୩୦ । (ଗଣିତ) ଗୁଣକ— 30. (mathematics) Coefficient; multiplier.

ଦେ. ବି.—୧ । ବଦ୍ଧମୂଳ ଅଭ୍ୟାସ—Confirmed habit.

**ପ୍ରକୃତି ଖଣ୍ଡ**—ସଂ. ବି.—ବ୍ରହ୍ମବୈବର୍ତ୍ତ ପୁରାଣର ଦ୍ୱିତୀୟ ଖଣ୍ଡ—
Prakṛuti khaṇḍa Name of the 2nd part of Brahmabaibartta Purāṇa.

**ପ୍ରକୃତିଗତ**—ସଂ. ବିଣ.—( ୨ୟା ତତ୍ )—ସ୍ୱଭାବସୁଲଭ, ସ୍ୱଭାବସିଦ୍ଧ—
Prakṛutigata Natural; innate.

**ପ୍ରକୃତି ଛଡ଼ା**—ଦେ. ବିଣ.—୧ । ଅମାନୁଷିକ—
Prakṛuti chhaṛā 1. Inhuman.
୨ । ପ୍ରକୃତି ବିରୁଦ୍ଧ—2. Unnatural.
୩ । ଅମଙ୍ଗଳକର—3. Bringing evil.
୪ । ମନ୍ଦ ପ୍ରକୃତିବିଶିଷ୍ଟ— 4. Having an evil nature.

**ପ୍ରକୃତି ଛାଡ଼ିବା**—ଦେ. କ୍ରି.—ନିଜର ପ୍ରକୃତି ବା ସ୍ୱଭାବବିରୁଦ୍ଧ କାର୍ଯ୍ୟ
Prakṛuti chhāṛibā କରିବା ବା କଥା କହିବା— Doing or saying of an unnatural thing.

[ଦ୍ର—ଲୋକଙ୍କର ବିଶ୍ୱାସ ଯେ ମନୁଷ୍ୟ ମରିବାର କିଛି ଦିନ ପୂର୍ବରୁ ତାକୁ (ବା ତାର) ପ୍ରକୃତି ଛାଡ଼ି ଯାଏ । ଅର୍ଥାତ୍ ଭଲ ପ୍ରକୃତିର ଲୋକ ମନ୍ଦ କାର୍ଯ୍ୟ କରେ ଓ ମନ୍ଦ ପ୍ରକୃତିର ଲୋକ ଭଲ କାର୍ଯ୍ୟ କରେ । ଏଥିପାଇଁ ପ୍ରକୃତିଛଡ଼ା କାର୍ଯ୍ୟ ଦେଖିଲେ ଲୋକେ କହନ୍ତି ଏ ଲୋକକୁ (ବା ଏ ଲୋକର) ପ୍ରକୃତି ଛାଡ଼ିଲାଣି; ଅର୍ଥାତ୍ ଏହାର ମରଣ ନିକଟ ହେଲାଣି । ]

**ପ୍ରକୃତିଜ**—ସଂ. ବିଣ. ( ପ୍ରକୃତି + ଜନ୍ ଧାତୁ + କର୍ତ୍ତୃ ଅ )—
Prakṛutija ୧ । ସ୍ୱଭାବଜାତ—1. Inborn; innate; produced from nature
୨ । ପ୍ରାକୃତିକ—2. Natural
ବି—ପ୍ରକୃତିଠାରୁ ଉତ୍ପନ୍ନ ସତ୍ତ୍ୱ, ରଜଃ ଓ ତମଃ ଗୁଣତ୍ରୟ— The 3 prime qualities of matter.

**ପ୍ରକୃତି ଜନ**—ସଂ. ବି. (ଏକ ବଚନ)—ରାଜ୍ୟର ପ୍ରଜା—
Prakṛuti jana A subject of a king.

**ପ୍ରକୃତି ତତ୍ତ୍ୱ**—ସଂ. ବି. ( ୬ଷ୍ଠୀ ତତ୍, ପ୍ରକୃତି + ତତ୍ତ୍ୱ )—
Prakṛuti tattwa ୧ । ପ୍ରକୃତି ସମ୍ବନ୍ଧୀୟ ଗୂଢ଼ ସତ୍ୟ— 1. The truths or secrets of nature.
୨ । ପଦାର୍ଥ ବିଦ୍ୟା—2. Physical science; physics; natural philosophy.

**ପ୍ରକୃତି ତରଳ**—ସଂ. ବିଣ. ( ତୃତୀୟା ତତ୍; ପ୍ରକୃତି + ତରଳ )—
Prakṛuti taraḷa ଯାହାର ସ୍ୱଭାବ ଅବ୍ୟବସ୍ଥିତ ବା ଚପଳ—
(ପ୍ରକୃତି ତରଳା—ସ୍ତ୍ରୀ) Fickle; dissolute; changeful by
(ପ୍ରକୃତି ତରଳତା—ବି) nature.

**ପ୍ରକୃତି ପୁଞ୍ଜ**—ସଂ. ବି—୧ । ରାଜ୍ୟର ପ୍ରଜା ସମୂହ—
Prakṛuti puñja 1. The subjects of a king.
୨ । ପ୍ରାଣିଗଣ—2. The animal kingdom.

**ପ୍ରକୃତି ପୁରୁଷ**—ସଂ. ବି—୧ । ମନ୍ତ୍ରୀ—
Prakṛuti purusha 1. Minister.
୨ । ଭୃତ୍ୟ—2. Servant.
୩ । ପ୍ରକୃତି ଓ ପୁରୁଷ—3. Nature and spirit.

**ପ୍ରକୃତି ପୂଜା**—ସଂ ବି. ( ୬ଷ୍ଠୀ ତତ୍; ପ୍ରକୃତି + ପୂଜା )—
Prakṛuti pūjā ୧ । ଜଡ଼ ପୂଜା—1. The worship of nature; nature-worship.
୨ । ଶିବ ଲିଙ୍ଗ ପୂଜା; ଈଶ୍ୱରଙ୍କୁ ଶିବ ଲିଙ୍ଗ ରୂପେ କଳ୍ପନା କରି ପୂଜା କରିବା—2. Phallism; the worship of the phallic emblem as God.

**ପ୍ରକୃତି ବତ୍ସଳ**—ସଂ. ବିଣ. ପୁଂ. ( ୭ମୀ ତତ୍ )—
Prakṛuti batsaḷa ପ୍ରଜାଙ୍କ ପ୍ରତି ସ୍ନେହପୂର୍ଣ୍ଣ—
(ପ୍ରକୃତି ବତ୍ସଳା—ସ୍ତ୍ରୀ) Loving one's subject.
(ପ୍ରକୃତି ବତ୍ସଳତା, ପ୍ରକୃତି ବାତ୍ସଲ୍ୟ—ବି)

**ପ୍ରକୃତି ବାଦ**—ସଂ. ବି—୧ । ପ୍ରକୃତି ତତ୍ତ୍ୱ; ପ୍ରାକୃତ ଦର୍ଶନ—
Prakṛuti bāda 1. Natural philosophy;
(ପ୍ରକୃତିବାଦୀ—ବିଣ ପୁଂ) naturalism.

୨ । ଧାତୁବାଦ; ଶବ୍ଦର ମୂଳ ନିର୍ଣ୍ଣୟ ବା ପ୍ରକୃତାର୍ଥ ବିଗ୍ରହ—
2 The ascertainment of the root and literal meaning of words

[ ଦ୍ର—'ପ୍ରକୃତିବାଦ ଅଭିଧାନ' ନାମରେ ଗୋଟିଏ ପ୍ରାମାଣିକ ବଙ୍ଗଳା ଅଭିଧାନ ସ୍ୱର୍ଗୀୟ ବଙ୍ଗୀୟ ପଣ୍ଡିତ ଶ୍ରୀ ରାମକମଳ ବିଦ୍ୟାଲଙ୍କାର ସଙ୍କଳନ କରିଥିଲେ ଓ ତାହା ବଙ୍ଗ ଓ ଉତ୍କଳରେ ବିଶେଷ ଆଦୃତ ହୋଇ ତହିଁର ବହୁ ସଂସ୍କରଣ ପ୍ରକାଶିତ ହୋଇଅଛି । ଏହି ଭାଷାକୋଷରେ ଅନେକ ଶବ୍ଦର ପ୍ରକୃତିବାଦ ଉକ୍ତ ପ୍ରକୃତିବାଦ ଅଭିଧାନର ଅବଲମ୍ବନରେ ଲିଖିତ ହୋଇଅଛି ଓ ଅଧିକାଂଶ ସ୍ଥଳରେ ଉକ୍ତ ସ୍ଥାନମାନଙ୍କରେ 'ପ୍ରକୃତିବାଦ' ସଙ୍କେତ ଲେଖା ଯାଇଅଛି । ]

୪ । ଜଡ଼ବାଦ—4. Materialism.

**ପ୍ରକୃତି ବିକୃତି**—ସ. ବି ( ପ୍ରକୃତି+ବିକୃତି; ବିପରୀତାର୍ଥକ ଶବ୍ଦଦ୍ୱୟ )—
Prakruti bikruti ୧ । ( ୬ଷ୍ଠୀ ତତ୍ ) ସ୍ୱାଭାବିକ ଅବସ୍ଥାର ପରିବର୍ତ୍ତନ—1. Mutation of the natural or original state.

୨ । (ବିପରୀତାର୍ଥ ଦ୍ୱନ୍ଦ୍ୱ) ସ୍ୱାଭାବିକ ଅବସ୍ଥା ଓ ପରିବର୍ତ୍ତିତ ଅବସ୍ଥା—
2. Natural state and changed condition; nature and art.

**ପ୍ରକୃତି ବିଜ୍ଞାନ**—ସ. ବି. ( ଆଧୁନିକ ପ୍ରୟୋଗ )—
Prakruti bijnana ପଦାର୍ଥ ବିଜ୍ଞାନ; ପ୍ରକୃତି ତତ୍ତ୍ୱ ବିଷୟକ ଶାସ୍ତ୍ର-
(ପ୍ରକୃତି ବିଦ୍ୟା, ପ୍ରକୃତି ଶାସ୍ତ୍ର—ବି) Natural philosophy; physics; natural science

[ଦ୍ର—ଏ ଶବ୍ଦ ସାହାଯ୍ୟରେ ପ୍ରକୃତିବିଜ୍ଞାନବିତ୍ (ପୁଂ ଓ ସ୍ତ୍ରୀ ), ପ୍ରକୃତିବିଜ୍ଞାନବେତ୍ତା (ପୁଂ) ଓ ପ୍ରକୃତି ବିଜ୍ଞାନବେତ୍ତ୍ରୀ (ସ୍ତ୍ରୀ) ଶବ୍ଦମାନ ସିଦ୍ଧ ହୁଏ । ]

**ପ୍ରକୃତି ବିପର୍ଯ୍ୟୟ**—ସ ବି—ରଚନାଗତ ରସଦୋଷବିଶେଷ—
Prakruti biparjyaya A rhetorical defect in which a personage is made to say things or act in a way contrary to his nature

[ ଦ୍ର— କାବ୍ୟରେ ବର୍ଣ୍ଣିତ ନାୟକ ନାୟିକା ପ୍ରଭୃତିଙ୍କର ପ୍ରକୃତି-ସିଦ୍ଧ ଗୁଣ ବା ସ୍ୱଭାବର ଅନ୍ୟଥା ବର୍ଣ୍ଣନ ହେଲେ ଏହି ଦୋଷ ହୁଏ, ଯଥା—ରାମାୟଣରେ ରାମଚନ୍ଦ୍ର ଧୀରୋଦାତ୍ତ ନାୟକ । ଧୀରୋଦାତ୍ତ ନାୟକ ପର ଗୋପନରେ ବାଳୀକୁ ବଧ କରିବା ତାଙ୍କ ପ୍ରକୃତିର ଅନୁରୂପ ନୁହେଁ, ଅତଏବ ଏଠାରେ ପ୍ରକୃତି ବିପର୍ଯ୍ୟୟ ଦୋଷ ହେଲା । ଭୁଲମଣି ଅଲଙ୍କାର ତରଙ୍ଗିଣୀ । ]

**ପ୍ରକୃତି ବିରୁଦ୍ଧ**—ସ. ବିଣ ( ୬ଷ୍ଠୀ ତତ୍, ପ୍ରକୃତି+ବିରୁଦ୍ଧ )—
Prakruti biruddha ସ୍ୱଭାବର ବିପରୀତ; ନିଜର ପ୍ରକୃତିର ପ୍ରତିକୂଳ—Against nature; contrary to one's nature

**ପ୍ରକୃତି ମଣ୍ଡଳ**—ସ. ବି—୧ । ସ୍ୱାମୀ ଅମାତ୍ୟାଦି ରାଜାଙ୍କ ସହିତ ପ୍ରଜା ମଣ୍ଡଳ;
Prakruti mandala ରାଜ୍ୟର ସମସ୍ତ ଅଙ୍ଗପ୍ରତ୍ୟଙ୍ଗ—
1. All the 8 requisites of a kingdom.

[ ଦ୍ର—ସ୍ୱାମୀ, ଅମାତ୍ୟ, ସହାୟ, ଧନ, ଦେଶ, ଦୁର୍ଗ, ସୈନ୍ୟ ଓ ପ୍ରଜା ଏମାନେ ପ୍ରକୃତି ମଣ୍ଡଳ ଅଟନ୍ତି । ]

୨ । ପ୍ରଜା ସମୂହ—2. The whole body of the subjects of a kingdom.

**ପ୍ରକୃତି ମେଣ୍ଟ(ଣ୍ଟା)ଣ**—ଦେ. ବି—୧ । ନିଜର ପ୍ରକୃତିର ଅନୁକୂଳ
Prakruti menta(nta)na କୌଣସି କାର୍ଯ୍ୟ କରିବା,
ପ୍ରକୃତି ମେଣ୍ଟା, ପ୍ରକୃତି ମେଣ୍ଟିବା } ଅନ୍ୟରୂପ
প্রকৃতি মেটান
ପ୍ରକୃତିର ଆନୁକୂଲ୍ୟ ସାଧନ—
1. Satisfaction of the cravings of one's nature.

**प्रकृति मिटना** ୨ । ନିଜର ଅଭ୍ୟାସଗତ କୌଣସି କାର୍ଯ୍ୟ କରିବା ଦ୍ୱାରା ନିଜର ମନର ତୃପ୍ତି ସାଧନ—1. Satisfaction of the cravings due to one's habits.

**ପ୍ରକୃତି ମେଣ୍ଟା(ଣ୍ଟେ)ଇବା**—ଦେ କ୍ରି—୧ । ନିଜର ପ୍ରକୃତିର ଅନୁକୂଳ
Prakruti menta(nte)iba କୌଣସି କାର୍ଯ୍ୟ କରି ନିଜର
প্রকৃতি মেটান ମନକୁ ତୃପ୍ତ କରିବା—1 To satisfy the
**प्रकृति मिटाना** cravings of one's nature.

୨ । ନିଜର ଅଭ୍ୟାସଗତ କୌଣସି କାର୍ଯ୍ୟ କରି ନିଜର ମନକୁ ତୃପ୍ତ କରିବା—1. To satisfy the cravings due to one's habits.

୩ । ନିଜର ପାଶବ ବୃତ୍ତିକୁ ଚରିତାର୍ଥ କରିବା—
3 To satisfy the cravings of one's animal propensities.

୪ । ମନର ସାଧ ମେଣ୍ଟାଇବା—
4. To satisfy one's are desires.

**ପ୍ରକୃତି ରଞ୍ଜକ**—ସ. ବିଣ. ପୁଂ—(୬ଷ୍ଠୀ ତତ୍, ପ୍ରକୃତି + ରଞ୍ଜକ)—ପ୍ରଜା-
Prakruti ranjaka ରଞ୍ଜକ, ପ୍ରଜାବତ୍ସଳ—( a king ) Who
(ପ୍ରକୃତିରଞ୍ଜିକା—ସ୍ତ୍ରୀ) gives contentment or satisfaction to his subjects.

**ପ୍ରକୃତି ରଞ୍ଜନ**—ସଂ ବି—(୬ଷ୍ଠୀ ତତ୍, ପ୍ରକୃତି + ରଞ୍ଜନ)—
Prakruti ranjana ନ୍ୟାୟ ଓ ଦୟାପୂର୍ଣ୍ଣ ଶାସନ ଦ୍ୱାରା ପ୍ରଜା-ମାନଙ୍କର ସନ୍ତୋଷ ବିଧାନ—Satisfying the subjects by just and merciful administration.

[ଦ୍ର—ରାଜା ଶବ୍ଦର ପ୍ରକୃତିଗତ ଅର୍ଥ 'ଯେ ପ୍ରଜାଙ୍କୁ ରଞ୍ଜନ କରନ୍ତି' । ପ୍ରକୃତି ପୁଞ୍ଜଙ୍କୁ ସନ୍ତୁଷ୍ଟ କରିବା ଯୋଗୁଁ ରାଜାଙ୍କୁ 'ରାଜା' ବୋଲାଯାଏ । ]

**ପ୍ରକୃତି ସିଦ୍ଧ**—ସ. ବିଣ—(ତୃତୀୟା ତତ୍; ପ୍ରକୃତି+ସିଦ୍ଧ)—୧ । ସ୍ୱଭାବ-
Prakruti siddha ସିଦ୍ଧ; ସ୍ୱାଭାବିକ, ନୈସର୍ଗିକ; ପ୍ରାକୃତିକ—
1. Natural; effected by nature.

୨ । ସ୍ୱଭାବଜ, ସହଜ—2. Inborn; innate.

**ପ୍ରକୃତି ସୁଭଗ**—ସ. ବିଣ. ପୁଂ—(ତୃତୀୟା ତତ୍; ପ୍ରକୃତି+ସୁଭଗ)—
Prakruti subhaga ପ୍ରକୃତିର ଗୁଣରେ ସୁନ୍ଦର ବା ମନୋରମ—
(ପ୍ରକୃତି ସୁଭଗା—ସ୍ତ୍ରୀ) Pleasant or agreeable by nature.

**ପ୍ରକୃତି ସୁଲଭ**—ସ. ବିଣ—ନିଜର ପ୍ରକୃତିର ଅନୁକୂଳ—
Prakruti sulabha Agreeable or favourable to one's nature or disposition.

**ପ୍ରକୃତିସ୍ଥ**—ସ. ବିଣ. ପୁଂ—୧ । ସ୍ୱାଭାବିକ ଅବସ୍ଥା ପ୍ରାପ୍ତ—
Prakrutistha 1 Restored to one's original condition.
(ପ୍ରକୃତିସ୍ଥା—ସ୍ତ୍ରୀ) ୨ । ସ୍ୱାଭାବିକ—
2. Natural; incidental to nature
୩ । ସ୍ୱାଭାବିକ ସୁସ୍ଥତାଯୁକ୍ତ—
3 Normal; healthy.
୪ । କୋପ ପରେ ଶାନ୍ତ ଅବସ୍ଥା ପ୍ରାପ୍ତ—4 In the state when one's anger has abated.
୫ । ନିଜର ପ୍ରାକୃତିକ ଅବସ୍ଥାରେ ଅବସ୍ଥିତ—
5. Situate or standing in one's natural state.
୬ । ସ୍ୱଭାବଜ—
6. Inherent; innate ( Apte )
୭ । ଆରୋଗ୍ୟ ପ୍ରାପ୍ତ—7. Recovered (Apte).
୮ । (ଜ୍ୟୋତିଷ) ଉତ୍ତରାୟଣ ଉଲ୍ଲଂଘନ ପୂର୍ବକ ପ୍ରତ୍ୟାଗତ (ସୂର୍ଯ୍ୟ) [ହି. ଶ]—8. (Astronomy ) The sun's returning after the summer solstice.
୯ । ନିଜର ମିଂଜାସ୍‌ର ଥଣ୍ଡା ଅବସ୍ଥାକୁ ପ୍ରାପ୍ତ—
9. Come to one's self (Apte).
୧୦ । ନଗ୍ନ—10. Striped bare of every thing (Apte).

**ପ୍ରକୃତିସ୍ଥ ହେବା**—ଦେ. କ୍ରି—୧ । ଆପଣାର ମିଂଜାସ୍ ଥଣ୍ଡା ହେବା
Prakrutistha heba ଅବସ୍ଥାକୁ ପ୍ରାପ୍ତ ହେବା—1. To be
প্রকৃতিস্থ হওয়া one's self again; to come to one's
प्रकृतिस्थ होना senses again
୨ । ଆପଣାର ପୂର୍ବ ସୁସ୍ଥତା ବା ଦେହର ସୁଧାରପଣ ଲାଭ କରିବା-
2. To come back to one's health.

**ପ୍ରକୃତୋତ୍ତର**—ସ. ବି—(କର୍ମଧା, ପ୍ରକୃତ + ଉତ୍ତର)—୧ । ସଦୁତ୍ତର—
Prakrutottara 1 A right reply.
୨ । ଠିକ୍ ଜବାବ—
2. A well deserved reply; a fitting answer.

**ପ୍ରକୃଷ୍ଟ**—ସ. ବିଣ—( ପ୍ର+କୃଷ୍ ଧାତୁ+କର୍ମ. ତ )—୧ । ଉତ୍କୃଷ୍ଟ;
Prakrushta ଉତ୍ତମ—1. Excellent; superior; pre-eminent.
୨ । ପ୍ରଶଂସନୀୟ—2. Praiseworthy
୩ । ଟଣା ଯାଇଥିବା, ଆକର୍ଷିତ, ଆକୃଷ୍ଟ—
3. Attracted; drawn forth.
୪ । ବହୁକାଳବ୍ୟାପୀ—4 Long, protracted.
୫ । ବହୁଦୂରବ୍ୟାପୀ—5. Long in space.
୬ । ଅତ୍ୟାଚରିତ—6. Harassed.
୭ । ବେଦନା ପ୍ରାପ୍ତ—7 Distracted.
୮ । ମୁଖ୍ୟ; ପ୍ରଧାନ (ହି. ଶ)—
8. Chief; principal.
୯ । ପ୍ରଶସ୍ତ (ଜ୍ଞାନେନ୍ଦ୍ର)—9. Extensive; wide.

**ପ୍ରକୃଷ୍ଟତା**—ସ. ବି—ଉତ୍କର୍ଷ; ଉତ୍କୃଷ୍ଟତା—
Prakrushtatā Superiority; excellence;
(ପ୍ରକୃଷ୍ଟତ୍ୱ—ଅନ୍ୟରୂପ) pre-eminence.

**ପ୍ରକୃପ୍ତ**—ସ. ବିଣ—(ପ୍ର+କୃପ୍ତ)—୧ । ରଚିତ; ଗ୍ରଥିତ—
Prakrupta 1. Constructed.
୨ । ଉଦ୍ଭୂତ, ସଂଭୂତ, ଜାତ (ଜ୍ଞାନେନ୍ଦ୍ର)—
2. Borns; produced.
୩ । କୃତ (ଜ୍ଞାନେନ୍ଦ୍ର)—3. Done.

**ପ୍ରକେତ**—ସ. ବିଣ—(ପ୍ର+କିତ୍ ଧାତୁ ଣିଚ୍ କେତ ଧାତୁ=ଜଣାଇବା+
Praketa କର୍ତ୍ତୃ. ଅ)—ବିଶେଷ ରୂପେ ଜ୍ଞାପକ (ଜ୍ଞାନେନ୍ଦ୍ର)—
Particularly indicative.
ସ. ବି—ପ୍ରକୃଷ୍ଟ ସୁଖ ସାଧନ (ଜ୍ଞାନେନ୍ଦ୍ର)—
The attainment or accomplishment of supreme good.

**ପ୍ରକୋଠ**—ସ. ବି—(ପ୍ର+କୋଠ)—୧ । ପରିଖା—
Prakota 1 Moat.
୨ । ମାଟି ଆଦିର ଗଦା (ହି. ଶ), ସ୍ତୂପ—
2. A heap of earth or rubbish; mound.

**ପ୍ରକୋପ**—ସ. ବି—(ପ୍ର+କୁପ୍ ଧାତୁ+ଭାବ. ଅ)—୧ । ଅତିଶୟ
Prakopa କୋପ—1. Turbulence; irritation; provocation,
୨ । ଆଧିକ୍ୟ—
2, Inclemency; fury; excess,
(ଯଥା—କଫ ପିତ୍ତାଦିର ପ୍ରକୋପ; ଶୀତର ପ୍ରକୋପ)
୩ । କଠୋରତା; ଉତ୍କଟତା; (ରୋଗର) ଆଧିକ୍ୟ—
3, Severity (of a disease); rage (of a disease),
(ଯଥା—ଜ୍ୱରର ପ୍ରକୋପ)
୪ । ଶରୀରରେ ବାତ, ପିତ୍ତ ବା କଫାଦିର ବୃଦ୍ଧି—
4. Vitiation or excess of the humours in the system.
୫ । ଭୟଙ୍କର ରାଗ; କ୍ରୋଧାନ୍ଧତା—5. Violence of anger; exasperation.

**ପ୍ରକୋପନ**—ସ. ବିଣ. (ପ୍ର+କୁପ୍ ଧାତୁ, ଣିଚ କୋପି ଧାତୁ+କର୍ତ୍ତୃ.
Prakopana ଅନ,—ଉତ୍ତେଜକ—
Provocating, irritating.
ବି. (+ଭାବ. ଅନ)—୧ । ଉତ୍ତେଜନ—Provocation.
(ପ୍ରକୋପକ—ବିଣ) ୨ । ବର୍ଦ୍ଧନ—2. Increasing.
୩ । ଅଗ୍ନି ପ୍ରଜ୍ୱଳିତ କରିବା (ଜ୍ଞାନେନ୍ଦ୍ର)—
3 Stimulation or trimming of fire etc.

**ପ୍ରକୋପିତ**—ସ. ବିଣ. (ପ୍ରକୋପ+ସଞ୍ଜାତ ଅର୍ଥେ. ଇତ)—
Prakopita ୧ । ଅତିକ୍ରୁଦ୍ଧ—1, Incensed; irritated; exasperated; enraged.
୨ । ଉତ୍ତେଜିତ—2. Provoked; stimulated.

**ପ୍ରକୋଷ୍ଠ**—ସ. ବି. (ପ୍ର+କୁଷ୍ ଧାତୁ=ସଲଗ୍ନ ହେବା+ସଜ୍ଞାର୍ଥେ ଠ)—
Prakoshṭha ୧ । କହୁଣି ଠାରୁ ହାତ ଗଣ୍ଠି ପର୍ଯ୍ୟନ୍ତ ହସ୍ତାଂଶ; ନଳହାତ—1. The part of the hand between the elbow and the wrist; the forearm.
୨ । ରାଜପ୍ରାସାଦର ସଦର ଫାଟକ ପାଖରେ ଥିବା କୋଠରୀ—2 A room adjoining the main gate of a palace (M. W.).
୩ । କକ୍ଷ; ଗୃହ; କୋଠରୀ—3. Room; compartment
୪ । ଚଉକାଠ—4 The frame of a door.
୫ । ଦ୍ୱାରର ପାର୍ଶ୍ୱସ୍ଥ ଗୃହ—5 Side room; a room by the side of a door.
୬ । ଚତ୍ୱର; ଚତୁଃଶାଳ, ଅଗଣା, ଘର ପାଖରେ କୋଠାଥିବା ଅଗଣା, ମହଲ—6. A courtyard; quadrangle; a courtyard having houses on all sides.

**ପ୍ରକ୍ୱ(କ୍ୱା, କ୍ୱ, କ୍ୱା)ଣ**—ସ. ବି. (ପ୍ର+କ୍ୱଣ୍ ଧାତୁ=ଶବ୍ଦ କରିବା+ଭାବ. ଅ)—
Prakka(kkā, kwa, kwā)ṇa ୧ । ଧ୍ୱନି, ଶବ୍ଦ—1. Sound; noise.
୨ । ବୀଣାର ଧ୍ୱନି—2. The sound or tune of a harp

**ପ୍ରକ୍ରମ(ମା)**—ସ. ବି. (ପ୍ର+କ୍ରମ ଧାତୁ=ଯିବା+ଭାବ. ଅ;+ଆ)—
Prakrama(mā) ୧ । ଗମନ—1. Going; proceeding.
୨ । ପାଦକ୍ଷେପଣ—2. Stepping; pacing.
୩ । ପରିଭ୍ରମଣ—3. Roaming; wandering; revolving.
୪ । ପାହୁଣ୍ଡ—4. Step; stride.
୫ । ଅତିକ୍ରମ; ଉଲ୍ଲଂଘନ—5. Overcoming; surpassing.
୬ । ସମ୍ବନ୍ଧ—6. Relation.
୭ । ଉପକ୍ରମ; ପ୍ରଥମାରମ୍ଭ; ସୂଚନା—7. Beginning; commencement; indication.
୮ । ରୀତି; ଢଙ୍ଗ—8. Method; manner.
୯ । ଅବକାଶ; ଅବସର—9. Leisure; occasion.
୧୦ । ହାର, ଅନୁପାତ—10 Proportion; ratis.
୧୧ । ନିୟମ—11. Regularity.
୧୨ । କ୍ରମ (ହ. ଶ)—12. Arrangement; method; regular succession.

**ପ୍ରକ୍ରମଣ**—ସ. ବି. (ପ୍ର+କ୍ରମ୍ ଧାତୁ+ଭାବ. ଅନ)—
Prakramaṇa ୧ । ପ୍ରକ୍ରମ (ଦେଖ)—1. Prakrama (See)
୨ । ଆଗକୁ ଯିବା (ହ. ଶ)—2. Advancing.
୩ । (ପ୍ର+କ୍ରମ୍ ଧାତୁ ଣିଚ୍+ଭାବ. ଅନ)—ପାର କରିବା (ହ. ଶ)—3. Taking across; ferrying across.
୪ । ଆରମ୍ଭ କରିବା (ହ. ଶ)—4. Commencing.

**ପ୍ରକ୍ରମ ଭଙ୍ଗ**—ସ. ବି. (୬ଷ୍ଠୀ ତତ୍; ପ୍ରକ୍ରମ+ଭଙ୍ଗ)—ରଚନାର ବା
Prakrama bhaṅga ବର୍ଣ୍ଣନାର ଦୋଷବିଶେଷ, ଆରମ୍ଭ କରାଯାଇଥିବା କ୍ରମ ପରେ ପାଳିତ ନ ହେବା ଦୋଷ (ହ. ଶ)—A defect in composition; breach of continuity in a narrative or description

**ପ୍ରକ୍ରାନ୍ତ**—ସ ବିଣ. (ପ୍ର+କ୍ରମ୍ ଧାତୁ+କର୍ମ. କ୍ତ)—
Prakrānta ୧ । ଅପସାରିତ, ଦୂରୀକୃତ—1 Removed.
(ପ୍ରକ୍ରାନ୍ତା—ସ୍ତ୍ରୀ) ୨ । (+କର୍ତ୍ତୃ.କ୍ତ) ଗତ, ତିରୋହିତ—2. Gone away; retired: disappeared.
୩ । ଆରବ୍ଧ; କୃତାରମ୍ଭ—3 Commenced.
୪ । ପ୍ରସ୍ତାବିତ—4. Proposed.
୫ । ଅତିକ୍ରାନ୍ତ—5. Surpassed.

**ପ୍ରକ୍ରିୟା**—ସଂ. ବି. (ପ୍ର+କୃ ଧାତୁ+ଭାବ. ଯ+ଆ)—୧ । ଅନୁଷ୍ଠାନ—
Prakriyā 1, Engagement; ceremony.
୨ । କାର୍ଯ୍ୟ ପ୍ରଣାଳୀ—2. Process; procedure.
୩ । ପ୍ରୟୋଗ—3. Application.
୪ । ଗ୍ରନ୍ଥପ୍ରକରଣ; ପରିଚ୍ଛେଦ—4. Chapter.
୫ । ବ୍ୟବହାର—5. Use.
୬ । ବିଶିଷ୍ଟ ଅଧିକାର—6. Privilege.
୭ । ନୃପମାନଙ୍କର ଚାମର ଛତ୍ରାଦି ରାଜଚିହ୍ନର ଧାରଣ—7. Bearing of the insignia of royalty.
୮ । ଉତ୍କୃଷ୍ଟ କାର୍ଯ୍ୟ—8. Good act; excellent work.
୯ । ଔଷଧାଦିର ଫଳ—2. The actiou of a remedy on the system.
୧୦ । ପ୍ରଣାଳୀ; ଢଙ୍ଗ—10. Method; system.

**ପ୍ରକ୍ଲିନ୍ନ**—ସ. ବିଣ. (ପ୍ର+କ୍ଲିଦ୍ ଧାତୁ=ଆର୍ଦ୍ର ହେବା+କର୍ତ୍ତୃ.କ୍ତ)—
Praklinna ୧ । ସିକ୍ତ; ଆର୍ଦ୍ର—1 Wet; moistened.
୨ । ପ୍ରଚୁର କ୍ଲେଦଯୁକ୍ତ—2. Full of dirty matter.
୩ । ପରିତୁଷ୍ଟ; ସନ୍ତୁଷ୍ଟ—5 Satisfied; pleased.

**ପ୍ରକ୍ଷାତ**—ଦେ. ବିଣ. (ସଂ. ପ୍ରଖ୍ୟାତ)—ପ୍ରସିଦ୍ଧ; ବିଖ୍ୟାତ—
Prakshāta Celebrated.
ବଳସିତ ହୋଇଲା ସୁକାନ୍ତ ଅଙ୍ଗକରେ
ବହୁକରେ ଅଶ୍ୱ ମିଳେ ପ୍ରକ୍ଷାତ ଶୁଭରେ—ଭଞ୍ଜ ବୈଦେହୀଶବିଳାସ ।

**ପ୍ରକ୍ଷାଳକ**—ସଂ. ବିଣ. (ପ୍ର+କ୍ଷାଳ ଧାତୁ ଣିଚ୍=କ୍ଷାଳ ଧାତୁ=ଧୋଇବା
Prakshālaka +କର୍ତ୍ତୃ. ଅକ)—ଯେ ଧୌତ କରେ—
(ପ୍ରକ୍ଷାଳକା—ସ୍ତ୍ରୀ) Washing.

**ପ୍ରକ୍ଷାଳନ**—ସଂ. ବି. (ପ୍ର+କ୍ଷାଳ ଧାତୁ+ଭାବ. ଅନ)—୧ । ପଖାଳିବା,
Prakshālana ଧୋଇବା—1. Washing; rinsing.
୨ । ପରିଷ୍କରଣ—2. Cleansing.
୩ । ପ୍ରାୟଶ୍ଚିତ୍ତ—3. Expiation.
ବିଣ. (+କର୍ତ୍ତୃ. ଅନ)—୧ । ଯେ ସର୍ବଦା ଗାଧୁଏ—1. Performing frequent ablutions (M. W).
୨ । ଯେ ଧୁଆଧୋଇ କରେ—2. Washing; cleansing (M. W).

**ପ୍ରକ୍ଷାଳନୀୟ**—ସଂ. ବିଣ—ଧୌତ ହେବାର ଯୋଗ୍ୟ—
Prakshālaniya Fit to be washed or rinsed
( ପ୍ରକ୍ଷାଲ୍ୟ—ଅନ୍ୟରୂପ )

**ପ୍ରକ୍ଷାଳିତ**—ସଂ. ବିଣ. ( ପ୍ର+କ୍ଷାଳିତ )—ଧୌତ—
Prakshālita Washed.

**ପ୍ରକ୍ଷାଳିବା**—ଦେ. (ପଦ୍ୟ) କ୍ରି ( ସଂ. ପ୍ର+କ୍ଷାଳ ଧାତୁ )—୧ । ପ୍ରକ୍ଷାଳନ କରିବା, ପଖାଳିବା—1 To wash.
Prakshāliba
ପ୍ରକ୍ଷାଳି ପଦ୍ମହସ୍ତ କଳ ଇଚ୍ଛା ପ୍ରକ୍ଷାଳନ୍ତ ଦେନ ଶୌଚ ଦେବ—
ଜଗନ୍ନାଥ. ମହାଭାରତ ।

୨ । (ଲକ୍ଷଣାର୍ଥ) (ନଦୀ) ନିକଟ ଦେଇ ବୋହିବା—
2. (figurative) (river) To flow by.
ପ୍ରକ୍ଷାଳନ୍ତ ଜାହ୍ନବୀ ତ୍ରିବେଣୀ ପାଦ ଯାର ଜଳକଲେ—
ଜଗନ୍ନାଥ, ଗୀତା ।

**ପ୍ରକ୍ଷିପ୍ତ**—ସଂ. ବିଣ. ( ପ୍ର+କ୍ଷିପ୍ ଧାତୁ+କର୍ମ. ତ )—୧ । ଫୋପଡ଼ା ଯାଇଥିବା, ନିକ୍ଷିପ୍ତ—
Prakshipta
1, Thrown, cast; propelled; hurled.
୨ । ବିନ୍ୟସ୍ତ—2. Deposited; placed.
୩ । ଅନ୍ତର୍ନିବେଶିତ, ଅନ୍ତର୍ନିହିତ—
3. Inserted; put in; intercalated, injected.
୪ । ମୂଳ ଗ୍ରନ୍ଥକାର ଲେଖିବା ପରେ ଅନ୍ୟ ବ୍ୟକ୍ତିଦ୍ୱାରା ଗୋପନରେ ଗ୍ରନ୍ଥରେ ଯୋଗ କରାଯାଇଥିବା (ବିଷୟ)—
4. Interpolate ( passage ).
୫ । ଏଣେ ତେଣେ ବିଞ୍ଚା ଯାଇଥିବା—
5. Scattered about; strewn.

**ପ୍ରକ୍ଷେଦନ**—ସଂ. ବି. (ପ୍ର+କ୍ଷିଦ୍ ଧାତୁ=ମୁକ୍ତ କରିବା+କରଣ. ଅନ)—
Prakshedana ଲୌହମୟ ବାଣ; ନାରାଚ—An iron arrow.

**ପ୍ରକ୍ଷେପ**—ସଂ. ବି ( ପ୍ର+କ୍ଷିପ୍ ଧାତୁ+ଭାବ. ଅ )—୧ । ନିକ୍ଷେପ; ଫୋପାଡ଼ିବା—1. Throwing; hurling.
Prakshepa
( ପ୍ରକ୍ଷେପଣ—ଅନ୍ୟରୂପ ) ୨ । ରଚନା; ବିନ୍ୟାସ—
(ପ୍ରକ୍ଷେପକ, ପ୍ରକ୍ଷେପଣୀୟ—ବିଣ) 2. Deposit; arrangement
୩ । ଏକତ୍ର ବ୍ୟବସାୟ କରିବା ପାଇଁ ପ୍ରତ୍ୟେକ ଅଂଶୀଦାର ମୂଳଧନସ୍ୱରୂପ ଯେଉଁ ଟଙ୍କା ଜମା କରନ୍ତି—
3. Capital put by each member of a firm into the common stock.
୪ । ରଥ ବା ଗାଡ଼ିରେ ଚାଳକର ବସିବା ଆସନ—
4. Box of a carriage; coach box (M. W).
୫ । (ସଙ୍ଗୀତ) ସିତାରଆଦି ଯନ୍ତ୍ରରେ କୌଣସି ସ୍ୱର ଆଳାପ କରିବା ସମୟରେ ସେହି ସ୍ୱରର ଏକ ବା ଏକାଧିକ ସ୍ୱର ବ୍ୟବଧାନରେ ନିମ୍ନ ପରଦାରେ ବାଆଁ ହାତର ଅଙ୍ଗୁଠିକୁ ଘଷି ଅବଚ୍ଛେଦରେ ଅଧୋଗତିକୁ ଯିବା—5 Act of descending to lower scales by moving the left fingers while playing on a stringed instrument with the right fingers.
୬ । ପାଚନ ବା ତୈଳ ଔଷଧ ହେଉଥିବା ବେଳେ ପାକ ପାତ୍ରରେ ଯାହା ପକାଇବାକୁ ହୁଏ—
6. Ingredients thrown into the cooking pot in the course of preparing a decoction or medicinal oil.
୭ । ମୂଳ ଗ୍ରନ୍ଥରେ ପରେ ଯୁକ୍ତ କରାଯାଇଥିବା ବିଷୟ—
7 Interpolation
୮ । ଅନ୍ତର୍ନିବେଶନ—8 Injection; insertion
୯ । ଏଣେ ତେଣେ ବିଞ୍ଚିବା—
8 Scattering, strewing.
୧୦ । ଜାହାଜ ଆଦି ଚଳାଇବା (ହି ଶ)—
10. Plying of a boat or ship.
୧୧ । ନିଶ୍ଚିତକରଣ (ହି. ଶ)—11 Ascertainment.

**ପ୍ରକ୍ଷୋଭଣ(ନ)**—ସଂ ବି ( ପ୍ର+କ୍ଷୋଭନ )—ଘାବର୍ତ୍ତ ହେବା, ଅସ୍ଥିରତା—Restlessness; alarm.
Prakshobhana(na)

**ପ୍ରକ୍ଷ୍ୱେଡନ**—ସଂ. ବି ( ପ୍ର+କ୍ଷ୍ୱିଡ୍ ଧାତୁ=ମୁକ୍ତ କରିବା+କରଣ.ଅନ)—
Prakshwerdana ୧ । ଲୌହମୟ ବାଣ, ନାରାଚ—
1. An iron arrow.
ଭୃତ ଭୃଷା ଦପଗ ପ୍ରକ୍ଷ୍ୱେଡନରୁ ଗାଥ—ବଳଦ୍ରବ୍ୟ,କଣୋଗଚନ୍ଦ୍ର, ଭ-ଗୀତ
୨ । (+କର୍ମ. ଅନ) ଚିତ୍କାର, ଗୋଳଗୋଳ—
2. Hue and cry; clamour; shout.
୩ । (+ଭାବ. ଅନ) ବାଣ ଆଦି ଗତି କରିବାର ସାଇଁସାଇଁ ଶବ୍ଦ—
3. Hissing; whizzing (M. W).

**ପ୍ରଖର**—ସଂ. ବିଣ. ( ପ୍ର+ଖର )—୧ । ଅତି ତୀବ୍ର—
Prakhara 1. Very keen.
( ପ୍ରଖରା—ସ୍ତ୍ରୀ ) ୨ । ଅତି କଠୋର ବା କଠିନ—
(ପ୍ରଖରତା, ପ୍ରଖରତ୍ୱ—ବି) 2. Very hard or tough.
୩ । ଶାଣିତ; ଅତି ତୀକ୍ଷ୍ଣ—3. Very sharp.
୪ । ପ୍ରଚଣ୍ଡ—4. Smart; acute.
୫ । ଅତିଶୟ ଉଷ୍ଣ—5. Very hot; scorching.
୬ । ଖର ସ୍ୱାଦ—9. Very pungent or acrid.
ବି—(ପ୍ର+ଖନ୍ ଧାତୁ=ଖୋଳିବା+କର୍ମ. ର )—
୧ । ହାତୀର ବା ଘୋଡ଼ାର ସାଞ୍ଜୁ—
1. Mail armour for a horse or elephant.
୨ । ଅଶ୍ୱତର; ଖଚର—2. A mule.
୩ । କୁକ୍କୁର—3. A dog.

**ପ୍ରଖର ବୁଦ୍ଧି**—ସଂ. ବି. ( କର୍ମଧା, ପ୍ରଖର+ବୁଦ୍ଧି )—୧ । ତୀକ୍ଷ୍ଣବୁଦ୍ଧି—
Prakhara buddhi 1. Acuteness of understanding.
୨ । ସୂକ୍ଷ୍ମ ବୁଦ୍ଧି—2. Penetration.
ବିଣ. ( ବହୁବ୍ରୀହି )—ତୀକ୍ଷ୍ଣବୁଦ୍ଧିବିଶିଷ୍ଟ—
Penetrating, of keen intelligence.

**ପ୍ରଖଳ**—ସଂ. ବିଣ. ପୁଂ. ( ପ୍ର+ଖଳ )—ଅତ୍ୟନ୍ତ ଦୁଷ୍ଟ (ହି. ଶ)—
Prakhala ( ପ୍ରଖଳା—ସ୍ତ୍ରୀ ) Very wicked; wanton.

**ପ୍ରଖ୍ୟ**—ସଂ. ବିଣ. ପୁଂ. ( ପ୍ର+ଖ୍ୟା ଧାତୁ=କହିବା+କର୍ମ. ଅ )—ତୁଲ୍ୟ; ସଦୃଶ—Like; resembling.
Prakhya (ପ୍ରଖ୍ୟା—ସ୍ତ୍ରୀ)
[ ଦ୍ର—ସମାସରେ ଏହି ଶବ୍ଦ ଅନ୍ୟ ଶବ୍ଦ ପରେ ଯୁକ୍ତ ହୁଏ; ଯଥା—ଗୁରୁପ୍ରଖ୍ୟ, ସୂର୍ଯ୍ୟପ୍ରଖ୍ୟ । ]

**ପ୍ରଖ୍ୟା**—ସଂ. ବି. (ପ୍ର+ଖ୍ୟା ଧାତୁ+କର୍ମ. ଅ+ସ୍ତ୍ରୀ. ଆ)—୧ । ସାଦୃଶ୍ୟ—
Prakhyā 1. Resemblance; similarity; likeness.
୨ । ଉଜ୍ଜ୍ୱଳତା—2. Lustre; effulgence.
୩ । ଖ୍ୟାତି, ପ୍ରସିଦ୍ଧି; ଯଶଃ—
3 Fame; celebrity
୪ । ସମତା—4. Sameness.
୫ । ଉପମା (ହି. ଶ)—5. Comparision.
୬ । ନାମ ( ଜ୍ଞାନେନ୍ଦ୍ର )—6 Name.
୭ । ସଂଜ୍ଞା ( ଜ୍ଞାନେନ୍ଦ୍ର )—7. Definition, title.
ବିଶ. ସ୍ତ୍ରୀ—ସ୍ପଷ୍ଟରୂପେ ପ୍ରତୀୟମାନ—
Visible; clear ( M. W. ).

**ପ୍ରଖ୍ୟାତ**—ସଂ. ବିଶ. ( ପ୍ର+ଖ୍ୟାତ )—୧ । ବିଖ୍ୟାତ; ପ୍ରସିଦ୍ଧ—
Prakhyāta 1. Celebrated; famous.
୨ । ଜଣା—2 Well known; recognised.
୩ । ସନ୍ତୁଷ୍ଟ—3. Pleased; contented.
୪ । ସୁଖୀ—4. Happy; pleased.
୫ । ପୂର୍ବେ କଥିତ—5. Spoken before.
୬ । ଅଗ୍ରେ ନିର୍ଦ୍ଧାରିତ—
6. Forestalled, fore-ordained.
୭ । ( ସ୍ମୃତି ) ଅନ୍ୟ ଖରିଦଦାରଙ୍କୁ ବିଧି ନ ଯାଇ ପ୍ରାର୍ଥୀଙ୍କୁ ବିକ୍ରି କରାଯିବା ପାଇଁ ଆଇନ୍ ଅନୁସାରେ ଦାବୀ କରାଯିବା ସମ୍ପତ୍ତି—7 Property claimed by right of pre-emption (M. W.).

**ପ୍ରଖ୍ୟାତି**—ସଂ. ବି. (ପ୍ର+ଖ୍ୟା ଧାତୁ+ଭାବ. ତି )—୧ । ସୁଖ୍ୟାତି—
Prakhāti 1. Publicity; celebrity.
୨ । ଯଶଃ—2. Fame.
୩ । ପ୍ରଶଂସା—3. Eulogium; praise.

**ପ୍ରଗ**—ସଂ. ଅ—ପ୍ରାତଃକାଳ; ସକାଳ—
Praga Morning; dawn.

**ପ୍ରଗଣା(ଣା, ନ୍ନା)**—ଦେଶଜ. ବି. (ଫା. ପରଗନା)—ପରଗଣା (ଦେଖ)
Pragaṇā(nā, nnā) प्रगन्ना परगना Paragaṇā (See)

**ପ୍ରଗଣେ(ନେ, ନ୍ନେ)**—ଦେଶଜ. ବିଶ. (ବିଚାରଅ) (ଫା. ପରଗନେ)—
Pragaṇe(ne, nne) (ଏଥିର ସାଙ୍କେତିକ । ପ୍ର ।)—ଅମୁକ ପ୍ରଗଣାର प्रगन्ने परगने ଅନ୍ତର୍ଗତ—Within the jurisdiction of the Perguhna of.
[ଦ୍ର—ଯେଉଁ ପ୍ରଗଣାର ନାମ ଏ ଶବ୍ଦ ପରେ ବ୍ୟବହୃତ ହୁଏ ସେହି ପ୍ରଗଣାର ଅନ୍ତର୍ଗତ ଯଥା—। ମୌ । (ମୌଜେ) ସିଦ୍ଧେଶ୍ୱର ପୁର । ପ୍ର । (ପ୍ରଗଣେ) କୋଦଣ୍ଡା, ଅର୍ଥାତ୍ କୋଦଣ୍ଡା ପ୍ରଗଣାର ଅନ୍ତର୍ଗତ ସିଦ୍ଧେଶ୍ୱରପୁର ମୌଜା ।]

**ପ୍ରଗଣ୍ଡ**—ସଂ ବି. (ପ୍ର+ଗଣ୍ଡ)—କନୁଇଠାରୁ ସ୍କନ୍ଧ ପର୍ଯ୍ୟନ୍ତ ବାହୁଭାଗ,
Pragaṇda ଡେଣା—The upper arm

**ପ୍ରଗଣ୍ଡୀ**—ସଂ. ବି.—ଦୁର୍ଗର ଉଚ୍ଚ ପ୍ରାଚୀର, ଯାହାଁ ଉପରେ ବସି ଦୂରସ୍ଥ
Pragaṇḍī ବସ୍ତୁମାନ ଦେଖା ଯାଏ (ହି. ଶ)—Rampart; high wall of a fort

**ପ୍ରଗତ**—ସଂ. ବିଶ. (ପ୍ର+ଗତ)—୧ । ପୃଥଗ୍‌ଭୂତ—
Pragata 1. Separated, apart.
୨ । ଅଗ୍ରସର ହୋଇଥିବା—
2 Advanced; gone forward.
୩ । ଦୂରୀଭୂତ—3. Gone away.
୪ । ମୃତ—4. Deceased; dead
୫ । ବିଯୁକ୍ତ—5. Subtracted.

**ପ୍ରଗତ ଜାନୁ**—ସଂ. ବିଶ. ପୁଂ (ବହୁବ୍ରୀହି; ପ୍ରଗତ+ଜାନୁ)—ବକ୍ରପାଦ-
Pragata jānu ବିଶିଷ୍ଟ; ଯାହାର ଦୁଇ ଆଣ୍ଠୁ ଫାରକାଣ ହୋଇ (ପ୍ରଗତ ଜାନୁକ—ଅନ୍ୟରୂପ) ଯାଇଅଛି—Bandy-legged; having the knees wide apart.

**ପ୍ରଗତି**—ସଂ. ବି. (ପ୍ର+ଗତି)—୧ । ଉନ୍ନତି—
Pragati 1. Improvement.
୨ । ପ୍ରସ୍ଥାନ—2. Going away.

**ପ୍ରଗନ୍ଧ**—ସଂ. ବିଶ. (ପ୍ର+ଗନ୍ଧ)—ପ୍ରକୃଷ୍ଟ ଗନ୍ଧଯୁକ୍ତ (ଜ୍ଞାନେନ୍ଦ୍ର)—
Pragandha Having an excellent smell
ସଂ. ବି.—ଘରପୋଡ଼ିଆ (ହି. ଶ.) (ଦେଖ)
Gharapoṛdiā (See)

**ପ୍ରଗମନ**—ସଂ. ବି.—(ପ୍ର+ଗମନ)—୧ । ଆଗ ବଢ଼ିବା (ହି. ଶ.);
Pragamana ଅଗ୍ରସର ହେବା—1. Advancing.
୨ । ଉନ୍ନତି (ହି. ଶ.)—2. Improvement.
୩ । କଳି, ଝଗଡ଼ା (ହି. ଶ.)—3. Quarrel; dispute.
୪ । ଯୁଦ୍ଧ, ଲଢ଼ାଇ (ହି. ଶ.)—4. Fighting.
୫ । ଉତ୍ତମ ବା ଉପଯୁକ୍ତ ଉତ୍ତର (ହି. ଶ.)—
5. A fitting or proper reply.

**ପ୍ରଗଲ୍ଭ**—ସଂ. ବିଶ. ପୁଂ ( ପ୍ର+ଗଲ୍ଭ ଧାତୁ=ଅହଙ୍କାରୀ ହେବା+
Pragalbha କର୍ତ୍ତୃ. ଅ)—୧ । ଅହଙ୍କାରୀ; ଦାମ୍ଭିକ—
(ପ୍ରଗଲ୍ଭା—ସ୍ତ୍ରୀ) 1 Vain; proud; arrogant; over-
(ପ୍ରଗଲ୍ଭତା, ପ୍ରଗଲ୍ଭତ୍ୱ—ବି) brearing.
୨ । ଆପଣା ଶକ୍ତି ଉପରେ ଆସ୍ଥାବାନ୍—
2. Confident on one's powers.
୩ । ଉତ୍ସାହୀ; ସାହସୀ—3. Bold; courageous.
୪ । ନିର୍ଲଜ୍ଜ—4 Shameless.
୫ । ସ୍ଥିରପ୍ରତିଜ୍ଞ, ଦୃଢ଼—5. Resolute; firm.
୬ । ଉଦ୍ଧତ; ଧୃଷ୍ଟ—6 Audacious; insolent.
୭ । ଧାରଗ; ସମର୍ଥ—
7. Able; competent.
୮ । ନିର୍ଭୀକ; ନିର୍ଭୟ—8. Fearless; intrepid.
୯ । ଦୁଷ୍ଟ, ଦୁର୍ଜନ—9. Wicked.
୧୦ । ଅବିନୀତ—
10. Disobedient; arrogant; impudent.
୧୧ । ଅବିଚଳିତ, ନିଷ୍କମ୍ପ—
11. Undisturbed, unshaken.
୧୨ । ପ୍ରଧାନ; ମୁଖ୍ୟ—12. Chief; principal, supreme.

୧୩ । ଉତ୍ସାହିତ— 13. Encouraged.
୧୪ । ଉଦ୍ୟୋଗୀ— 14. Prompt; ready; energetic.
୧୫ । ବିଖ୍ୟାତ – 15. Celebrated; illustrious.
୧୬ । ପ୍ରତିଭାନ୍ୱିତ—16. Talented.
୧୭ । ଏକଜିଦିଆ—17. Preverse, wilful.
୧୮ । ପ୍ରତ୍ୟୁତ୍ପନ୍ନମତିଯୁକ୍ତ— 18 Having presence of mind, ready-witted.
୧୯ । ପ୍ରଚୁର—19. Abundant.
୨୦ । ପ୍ରମଥନକାରୀ—20 Overpowering
୨୧ । ଚତୁର (ହି. ଶ)—21. Cunning.
୨୨ । ଯେ କହିବା ବିଷୟରେ ସଙ୍କୋଚ ରଖେ ନାହିଁ (ହି. ଶ)— 22. Impertinent; pert; presumptious.
୨୩ । ଅଭିମାନୀ (ହି. ଶ)—23 Cavlling; prone to take offence at petty matters.
୨୪ । ପୁଷ୍ଟ (ହି. ଶ)—24. Developed
୨୫ । ଗମ୍ଭୀର (ହି. ଶ)—25. Grave; sullen.
୨୬ । ବାଗ୍ମୀ; ବାକ୍‌ଚତୁର, ଯେ ବୃଥା ଗୁଡ଼ାଏ ଗପେ— 26. Talkative; babbling.
ବି ( +ଭାବ. ଅ )—ଗର୍ବ—Vanity

**ପ୍ରଗଲ୍ଭ ବଚନୀ**—ସ.ବି.ସ୍ତ୍ରୀ—ମଧ୍ୟା ନାୟିକାର ଏକ ଭେଦ, ଯେଉଁ ନାୟିକା Pragalbha bachanī ନିଜର ଦୁଃଖ ବା କ୍ରୋଧ ଓ ଈର୍ଷାକୁ ପ୍ରକଟିତ କରେ ( ହି. ଶବ୍ଦସାଗର )— A woman who is very passionate and cannot suppress her grief, anger or jealously.

**ପ୍ରଗଲ୍ଭା**—ସ. ବିଣ. ସ୍ତ୍ରୀ. ( ପ୍ରଗଲ୍ଭ+ଆ )—ପ୍ରଗଲ୍ଭର ସ୍ତ୍ରୀଲିଙ୍ଗ— Pragalbhā Feminine of Pragalbha.
ବି. ସ୍ତ୍ରୀ—୧ । ନାୟିକାବିଶେଷ, ପତିମାତ୍ର ବିଷୟରେ କେଳି-କଳାପକୋବିଦା ସ୍ତ୍ରୀ—1. A lady who counts her husband's caresses and is almost in a swoon at the consumnation.
[ ଦ୍ର—ଏହି ଶ୍ରେଣୀର ନାୟିକାର ରତିପ୍ରୀତି ଆକାଙ୍କ୍ଷଣୀୟ ଓ ରତିବିବନ ଆନନ୍ଦରେ ତାହାର ମୋହ ଉପସ୍ଥିତ ହୁଏ । ମାନ ଅବସ୍ଥାରେ ଏ ନାୟିକା ୩ ଶ୍ରେଣୀରେ ବିଭକ୍ତ । ଯଥା—ଧୀରା,ଅଧୀରା ଓ ଧୀରାଧୀରା । ]
୨ । କାମାସକ୍ତା ସ୍ତ୍ରୀ—2. A lustful lady.
୩ । ନିର୍ଲଜ୍ଜା ସ୍ତ୍ରୀ—3. An immodest or shameless woman.
୪ । ପ୍ରୌଢ଼ା ( ନାୟିକା ) (ହି. ଶ) ( ଦେଖ ) 4. Praurdhā ( See )

**ପ୍ରଗାଢ଼**—ସ. ବିଣ. ( ପ୍ର+ଗାଢ଼ )— Pragārdha ୧ । ସାତିଶୟ; ଅତ୍ୟନ୍ତ; ଅତିଶୟ; ଅତ୍ୟଧିକ— 1. Much; excessive.
୨ । ଶକ୍ତ, କଠିନ; ଦୃଢ଼— 2. Hard; firm; difficult.
୩ । ନିବିଡ଼; ଘନ—3. Very thick; dense.
୪ । ଅଗାଧ, ଘୋର, ଗମ୍ଭୀର—4 Deep; profound.
୫ । କଷ୍ଟସାଧ୍ୟ—5. Difficult.
ବି—୧ । କ୍ଲେଶ, ଯାତନା, ବେଦନା— 1. Pangs, pain; privation
୨ । କଷ୍ଟ—2. Difficulty; trouble
କ୍ରି. ବିଣ—୧ । ଦୃଢ଼ରୂପେ—1. Firmly, tightly.
୨ । ଅତ୍ୟନ୍ତ—2. Very much; exceedingly

**ପ୍ରଗାଢ଼ ବିଦ୍ୟା**—ସ. ବିଣ. ( କର୍ମଧା, ପ୍ରଗାଢ଼+ବିଦ୍ୟା )— Pragārdha bidyā ଅଗାଧ ବିଦ୍ୟା, ଗମ୍ଭୀର ଜ୍ଞାନ— Deep learning.

**ପ୍ରଗାତା**—ସ. ବିଣ. ପୁଂ. (ପ୍ର+ଗାତୃ, ୧ମା. ୧ବ)—ଉତ୍କୃଷ୍ଟ ଗାୟକ— Pragātā An excellent singer.
(ପ୍ରଗାତ୍ରୀ, ପ୍ରଗାୟିନୀ—ସ୍ତ୍ରୀ) (ପ୍ରଗାୟୀ—ଅନ୍ୟରୂପ)
ସଂ. ବିଣ ପୁଂ—ସଙ୍ଗୀତନିପୁଣ, ଗାନନିପୁଣ— Skilful in singing.

**ପ୍ରଗୁଣ**—ସଂ. ବିଣ. ( ପ୍ର+ଗୁଣ )—୧ । ପ୍ରକୃଷ୍ଟ ଗୁଣସମ୍ପନ୍ନ— Praguṇa 1. Having excellent qualities.
(ପ୍ରଗୁଣା—ସ୍ତ୍ରୀ) ୨ । ସୁଦକ୍ଷ; ସୁନିପୁଣ— 2 Skilful; dexterous.
୩ । ସତ୍—3. Honest; upright.
୪ । ସରଳ; କପଟହୀନ— 4. Straight; frank; sincere.
୫ । ଅନୁକୂଳ— 5 Favourably disposed; well disposed.

**ପ୍ରଗ୍ରହ**—ସଂ. ବି. ( ପ୍ର+ଗ୍ରହ୍ ଧାତୁ=ଗ୍ରହଣ କରିବା+କର୍ମ. ଅ, ଏଥିର Pragraha ଅପଭ୍ରଂଶ ପଘା )—
(ପ୍ରଗ୍ରାହ—ଅନ୍ୟରୂପ) ୧ । ଘୋଡ଼ାର ଲଗାମ; ରଶ୍ମି— 1 Rein of a horse.
୨ । ଘୋଡ଼ା ଓ ଗୋରୁ ଆଦିଙ୍କୁ ବାନ୍ଧିବାର ପଘା— 2. A halter or rope for tying cattle.
୩ । ଡୋର; ରଜ୍ଜୁ; ଦଉଡ଼ି—3. Rope, string.
୪ । ରଶ୍ମି; କିରଣ—4. Ray.
୫ । ତୁଳାସୂତ୍ର; ନିକିତିର ଦଉଡ଼ି—5. String of a balance.
୬ । (+କରଣ. ଅ)—ଭୁଜ; ହାତ, ବାହୁ— 6 Arm; hand.
୭ । ଅନୁଗ୍ରହ, କୃପା—7 Favour; kindness.
୮ । (+ଭାବ ଅ)—ଗ୍ରହଣ—8. Taking; seizing.
୯ । (+କର୍ମ. ଅ)—ବନ୍ଦୀ; କଏଦୀ— 9. A prisoner; a captive
୧୦ । (+ଭାବ. ଅ)—ବନ୍ଧନ— 10. Confinement; captivity.

୧୧ । କନାଅର ଗଛ—11. A sort of flowering plant; Thevetia Nerifloria.

୧୨ । ଇନ୍ଦ୍ରିୟନିଗ୍ରହ (ହି ଶ)—12. Self control; controlling of one's passions.

୧୩ । (+କର୍ମ.ଅ)— ନେତା (ହି. ଶ)—13. Leader.

୧୪ । (+କର୍ମ ଅ)—ସୁନା (ହି. ଶ) —14. Gold.

୧୫ । (+କର୍ତ୍ତୃ. ଅ) ବିଷ୍ଣୁ (ହି ଶ)—15. Bishnu.

୧୬ । (+ଭାବ. ଅ)—ଘୋଡ଼ାଆଦି ପଶୁଙ୍କୁ ମଣ କରିବା (ହି.ଶ)-- 16 Breaking or training of horses and other beasts.

**ପ୍ରଗ୍ରୀବ**—ସଂ. ବିଣ. ପୁଂ. (ବହୁବ୍ରୀହି, ପ୍ର+ଗ୍ରୀବା)—
Pragriba ୧ । ପ୍ରଶସ୍ତଗ୍ରୀବା ବିଶିଷ୍ଟ—1. Broad necked.
(ପ୍ରଗ୍ରୀବା—ସ୍ତ୍ରୀ) ୨ । ଯାହାର ବେକ ଲମ୍ବ—
2. Long necked (Howells).

ବି—୧ । ଦ୍ରୁମଶୀର୍ଷକ; ବୃକ୍ଷର ଅଗ୍ରଭାଗ—
1. The top of a tree.

୨ । ବାତାୟନ; ଗବାକ୍ଷ—2. Latticed window.

୩ । ବିଶ୍ରାମାର୍ଥ ଗୃହ—3. A rest house.

୪ । ପ୍ରାସାଦୋପରିସ୍ଥ ଗମ୍ବୁଜ—4 A turret or room on the top of a building.

୫ । ବାରଣ୍ଡା—5 Balcony (Howells).

୬ । ଗୃହାଦିର ପ୍ରାନ୍ତ ଭାଗରେ ଦିଆଯିବା କାଷ୍ଠନିର୍ମିତ ବାଡ଼—
6. A wooden railing on the edge of a building.

୭ । ଆମୋଦ ପ୍ରମୋଦର ଗୃହ (ହି. ଶ)—
7. A house of amusements

**ପ୍ରଗ୍ରେସ୍** (ଇତ୍ୟାଦି)—ବୈଦେ. ବି—ପ୍ରୋଗ୍ରେସ୍ ଇତ୍ୟାଦି (ଦେଖ)
Pragres (etc) Progres etc (See)

**ପ୍ରଘଟ**—ଦେ. ବିଣ. (ସଂ. ପ୍ରକଟ)— ୧ । ପ୍ରସ୍ଫୁରିତ; ପ୍ରକଟିତ—
Praghata ପ୍ରଗଟ प्रकट 1. Published.

ଶ୍ରବଣେ ଶୁଣି ମଉନ ସେନ,
ପ୍ରଘଟ ନୁହିଇ ପ୍ରଶନ—ଯଶୋବନ୍ତ ପ୍ରେମଭକ୍ତି ବ୍ରହ୍ମଗୀତା।

୨ । ସର୍ବସାଧାରଣରେ ପ୍ରକାଶିତ—2 Made public.

୩ । ପ୍ରଖ୍ୟାତ—3. Celebrated.

ସଂ. ବି—୧ । ପ୍ରଖ୍ୟାତି—1. Celebrity.

୨ । ପ୍ରଚାର, ପ୍ରକଟନ—2. Publication.

**ପ୍ରଘଟ କରିବା**—ଦେ କ୍ରି.—(ସଂ. ପ୍ରକଟ)—ସାଧାରଣରେ ପ୍ରକାଶ
Pragata kariba କରିବା—To publish a matter.
प्रगटाना; प्रघटाना

**ପ୍ରଘଟ ହେବା**—ଦେ କ୍ରି. ( ସଂ. ପ୍ରକଟ )—ସାଧାରଣରେ ପ୍ରକାଶିତ
Praghata heba ହେବା—To be published broad cast.
প্রগটনা, प्रघटना

**ପ୍ରଘଣ(ନ)**—ସଂ. ବି. ( ପ୍ର+ହନ୍ ଧାତୁ=ଆଘାତ କରିବା+କର୍ମ. ଅ;
Praghana(na) ଯାହାକୁ ଆଘାତ କରାଯାଏ ବା ଯାହା-
(ପ୍ରଘାଣ—ଅନ୍ୟରୂପ) ଦ୍ୱାରା ଆଘାତ କରାଯାଏ) —୧ । ବହିର୍ଦ୍ୱାର ପ୍ରକୋଷ୍ଠକ; ଅଳନ୍ଦ—1. A covered terrace in front of a house; corrider.

୨ । ତାମ୍ର କୁଣ୍ଡ—2. A copper pot.

୩ । ଲୌହ ମୁଦ୍ଗର—3 Iron club.

୪ । ବାରଣ୍ଡା (ହି. ଶ.)—4. Veranda.

**ପ୍ରଘସ**—ସଂ. ବି. (ପ୍ର+ଅଦ୍ ଧାତୁ=ଭକ୍ଷଣ କରିବା+ଭାବ. ଅ; ଅଦ୍=
Praghasa ଘସ୍)—୧ । ପ୍ରକୃଷ୍ଟ ଭୋଜନ—
(ପ୍ରଘସା—ସ୍ତ୍ରୀ) Excellent meal

୨ । ଭୂରି ଭୋଜନ—2. Full meal.

୩ । (+କର୍ତ୍ତୃ. ଅ) ରାକ୍ଷସ, ଅସୁର, ଦୈତ୍ୟ—3 Demon.

ସଂ. ବିଣ.—ପେଟୁ, ଭୋଜନପ୍ରିୟ—Gluttonous.

**ପ୍ରଘାତ**—ସଂ. ବି. (ପ୍ର+ଘାତ)—୧ । ଯୁଦ୍ଧ—
Praghata 1. Combat.

୨ । ମାରଣ—2. Killing; slaughter.

**ପ୍ରଘୋଷକ**—ସଂ. ବି. (ପ୍ର+ଘୋଷ+କ)—୧ । ଘୋଷା; ଗୋଳମାଳ—
Praghoshaka 1. Noise.

୨ । ଶବ୍ଦ; ଧ୍ୱନି—2 Sound (Howells).

**ପ୍ରଚକ୍ର**—ସଂ. ବି. (ପ୍ର+ଚକ୍ର)—ଗମନଶୀଳ ସୈନ୍ୟଦଳ—
Prachakra An army in motion.

**ପ୍ରଚଣ୍ଡ**—ସଂ. ବିଣ. (ପ୍ର+ଚଣ୍ଡ)—୧ । ତୀବ୍ର; ପ୍ରଖର; ଉଗ୍ର—
Prachanda 1. Sharp; bitter.
(ପ୍ରଚଣ୍ଡା—ସ୍ତ୍ରୀ) ୨ । ଏକଜିଦିଆ—
[ପ୍ରଚଣ୍ଡତା(ତ୍ୱ)—ବି] 2. Obstinate; head-strong.

୩ । ଦୁଃସହ; ଅସହ୍ୟ—3. Intolerable.

୪ । ଦୁର୍ଦ୍ଧର୍ଷ—4. Indomitable.

୫ । ପ୍ରବଳ, ପ୍ରତାପୀ—5. Mighty.

୬ । ଅତ୍ୟନ୍ତ କୋପଯୁକ୍ତ—6. Impetuous; very angry; violent; passionate.

୭ । ଅତ୍ୟୁଷ୍ଣ—7. Very hot.

୮ । ଭୟଙ୍କର, ଭୀଷଣ—8. Ferocious.

୯ । କଠିନ, କଠୋର (ହି. ଶ.)—9. Harsh; hard.

ସଂ. ବି.—୧ । ଶିବଙ୍କ ଗଣବିଶେଷ—
1. Name of an attendant of Siba.

୨ । ଧଳା କରବୀ ଫୁଲ (ହି. ଶ.)—
2. White oleander (flower).

**ପ୍ରଚଣ୍ଡ ନନ୍ଦନ**—ଦେ. ବି.—ଭୁଷଣ୍ଡ (ଦେଖ)
Prachanda nandana Bhusanda (See)

ଚିତ୍ତ ଗଣପତି ବଟ ମୂଳେ,
ଚିତ୍ତ ପ୍ରଚଣ୍ଡ ନନ୍ଦନ ବସେ ଡାଳେ—ପ୍ରାଚୀ. ରହସ୍ୟମଞ୍ଜରୀ।

**ପ୍ରଚଣ୍ଡା**—ସଂ. ବିଣ. ସ୍ତ୍ରୀ—(ପ୍ରଚଣ୍ଡ+ଆ)—ପ୍ରଚଣ୍ଡର ସ୍ତ୍ରୀଲିଙ୍ଗ—
Prachanda Feminine of Prachanda.

ସଂ. ବି. ସ୍ତ୍ରୀ.—୧ । ଦୁର୍ଗା; ଚଣ୍ଡୀ—1. Goddes chandi.

୨ । ଦୁର୍ଗାଙ୍କର ଏକ ସଖୀ—
2. Name of a companion of Durga.

୩ । ଶ୍ୱେତଦୂବା—
3. The pleached variety of Duba grass.

ଣ୍ଡେ—ଦେ. ଧ୍ୱ. ବଣ—ଅତି ଶୀଘ୍ର ବା ବେଗ ସହିତ—
Prachande With great velocity.

ବହନ୍ତ ଦଣ ଅଦୃଶ୍ୟ ଶଲକା ମଣ୍ଡଳ ବନ୍ତ,
ଖାଞ୍ଜ ଖାଞ୍ଜ କ ରଭସ ଗତ ପ୍ରଚଣ୍ଡେ । ଭଞ୍ଜ. ବୈଦେହୀଶବିଳାସ ।

**ପ୍ରଚୟ**—ସ ବ. (ପ୍ର+ଚି ଧାତୁ=ଛୁଣ୍ଡାଇବା+ଭାବ. ଅ)—୧ । ଚୟନ, ସଂଗ୍ରହ, ଗୋଟାଇବା—1. Collection; gathering, picking up.
Prachaya

୨ । (+କର୍ମ ଅ) ରାଶି, ସ୍ତୂପ, ପୁଞ୍ଜ—2. Mass; heap.

୩ । ଗୋଷ୍ଠୀ ବାନ୍ଧିବା, ଜମାଟ—
3. Union; aggregation

୪ । ଉପଚୟ, ବୃଦ୍ଧି—4 Growth, increase.

୫ । ଦଳ, ସମୂହ (ହି. ଶ.)—5. Herd; flock.

୬ । ଲଗି ଆଦି ଦ୍ୱାରା ଗଛରୁ ଫୁଲ ଫଳ ସଂଗ୍ରହ କରିବା (ହି. ଶ)—
6. Picking up of flowers and fruits with the help of a pole.

**ପ୍ରଚୟକ**—ସ. ବି. ପୁଂ.—(ପ୍ର+ଚି ଧାତୁ+କର୍ତ୍ତୃ. ଅକ)—ଫୁଲ-ତୋଳାଳି—A person who is plucking flowers.
Prachayaka
(ପ୍ରଚୟିକା—ସ୍ତ୍ରୀ)

**ପ୍ରଚର**—ସ. ବ. (ପ୍ର+ଚର ଧାତୁ=ଯିବା+ଅଧିକରଣେ. ଅ)—
Prachara ୧ । ପଥ, ବର୍ତ୍ମ; ମାର୍ଗ—1. Path, road.

୨ । (+ଭାବ. ଅ) ବ୍ୟବହାର, ରୀତି—
2. Custom; usage.

୩ । ପ୍ରଚଳନ—3. Currency.

୪ । ବିସ୍ତୃତ ହେବା—4. Spreading, diffusion.

୫ । ପ୍ରସିଦ୍ଧି—5 Publicity.

**ପ୍ରଚରଣ**—ସଂ. ବ. (ପ୍ର+ଚର ଧାତୁ+ଭାବ. ଅନ)—ବିଚରଣ; ଏଣେ ତେଣେ ବୁଲିବା—Roving.
Pracharana

**ପ୍ରଚରଦ୍ରୂପ**—ସଂ. ବଣ. (ବହୁବ୍ରୀହି; ପ୍ରଚରତ୍=ପ୍ରଚରିତ ହେଉଥିବା; ଚଳୁ ଥିବା (ରୂପ) ବସ୍ତୁ ବ୍ୟବହୃତ; ଭୂରି ପ୍ରଚଳିତ (ଜ୍ଞାନେନ୍ଦ୍ର)—In extensive use; widely prevalent.
Pracharadrūpa

**ପ୍ରଚରିତ**—ଦେ. ବଣ—ପ୍ରଚଳିତ, ବ୍ୟବହୃତ—
Pracharita Used.

କଳାସ ବଶରେ ଘନସାର ପ୍ରଚରିତ ।
ଭଞ୍ଜ. ବୈଦେହୀଶବିଳାସ ।

**ପ୍ରଚରିବା**—ଦେ. କ୍ରି. ( ସ. ପ୍ରଚର, ପ୍ରଚାର )—
Pracharibā ୧ । ପ୍ରଚାର କରିବା; କହିବା—
প্রচবা প্রচারনা 1. To say; to declare

ଲବେଙ୍କ ପ୍ରଚଣ୍ଡ ପଣ୍ଡୁ ବନଗୃଷ
ବାଇ ପଶୁ ପରୁ ଏ ବୃଷମ ଟୋ । ଭଞ୍ଜ. ବୈଦେହୀଶବିଳାସ ।

୨ । ପ୍ରସାରିତ ହେବା, ବିସ୍ତୃତ ହେବା, ବ୍ୟାପି ଯିବା—
2. To be spread; to pervade.

ସେ ହରି ମାୟା ଏ ସଂସାରେ
ମୋହନୀ ରୂପରେ ପ୍ରଚରେ । ଜଗନ୍ନାଥ. ଭାଗବତ ।

୩ । ଚଳାଚଳ ହେବା—
3. To move about; to go on.

କ ରୂପେ ପ୍ରଚରଇ ଜନେ
ଆସନେ ଶୟନେ ଗମନେ । ଜଗନ୍ନାଥ. ଭାଗବତ ।

୪ । ପ୍ରଚାରିତ ହେବା—4 To be published.

**ପ୍ରଚଳ**—ସ. ବଣ. ( ପ୍ର+ଚଳ୍ ଧାତୁ=ଯିବା+କର୍ତ୍ତୃ. ଅ )—
Prachala ୧ । ପ୍ରକୃଷ୍ଟ ଚଳନଯୁକ୍ତ, ଚଞ୍ଚଳ ଗତିବିଶିଷ୍ଟ—
1. Going fast; fleet

୨ । ପ୍ରବଳ—2. Prevalent.

୩ । ପ୍ରଚଳିତ; ପ୍ରାଦୁର୍ଭୂତ—3 Current; prevailing.

୪ । ଅଭ୍ୟସ୍ତ—4. Customary.

୫ । ସର୍ବତ୍ର ପ୍ରଚାରିତ—5. Published; circulated.

୬ । ଚଞ୍ଚଳ—6. Brisk, restless.

୭ । କମ୍ପିତ—
7. Trembling; tremulous ( Apte )

ସ. ବ—ମୟୂର (ହି. ଶ)—Peacock.

ଦେ. ବ—୧ । ଯିବା ଆସିବା, ଚଳବା—
1. Going and coming; movement.

ଗେହକୁଳ ପର ତତ ନ ହାଗକୁଳ
ହୋଇଛି ଭୂଣା ସତାଙ୍କର ପ୍ରଚଳ । କୃଷ୍ଣସିଂହ. ମହାଭାରତ. କର୍ଣ୍ଣ ।

୨ । ଚଳାଚଳ ହେବା—2. Getting on.

୩ । ପ୍ରଚଳନ—3. Currency.

୪ । ଗତି—4. Movement.

୫ । ପ୍ରାବଲ୍ୟ—5. Prevalence.

**ପ୍ରଚଳନ**—ସ. ବ. ( ପ୍ର+ଚଳ୍ ଧାତୁ+ଭାବ. ଅନ )—
Prachalana ୧ । ପ୍ରାଦୁର୍ଭାବ—1. Prevalence.

୨ । ପ୍ରବର୍ତ୍ତନ—2. Vogue; currency.

୩ । ସାଧାରଣରେ ପ୍ରକାଶିତ ହେବା, ପ୍ରଚାର—
3. Publication; circulation.

୪ । ଗତି—4 Movement.

୫ । ଅନାଳସ୍ୟ—5. Activity.

**ପ୍ରଚଳା**—ସ. ବ. ( ପ୍ର+ଚଳ୍ ଧାତୁ+ଭାବ. ଅ+ଆ )—
Prachalā ୧ । ବସିଥିବା ବା ଠିଆ ହୋଇଥିବା ବ୍ୟକ୍ତିକୁ ଯେଉଁ ନିଦ୍ରା ଘଟେ ( ହି. ଶବ୍ଦସାଗର )—
1 Sleep which overtakes a person while sitting or standing.

୨ । ଯେଉଁ ପାପ କର୍ମର ଉଦୟରେ ନିଦ୍ରା ଘୋଟେ (ହି. ଶ)—
2. Any sinful act which makes a person sleepy.

**ପ୍ରଚଳାକ**—ସ. ବ. ( ପ୍ର+ଚଳ୍ ଧାତୁ+କର୍ତ୍ତୃ. ଆକ; ଯାହା ସ୍ୱତଃ ଚଳିତ ହୁଏ )—୧ । ମୟୂରପୁଚ୍ଛ—
Prachalāka
1. The fan-like tail of a peacock.

୨ । ସାପ ଫଣା—2. The hood of a serpent.

୩ । ଭୁଜଙ୍ଗମ, ସର୍ପ—3. Serpent.

୪ । ( + ଭାବ. ଅକ ) ଶରାଘାତ—
4. The stroke of an arrow.

**ପ୍ରଚଲାକୀ**—ସ. ବି. ପୁଂ (ପ୍ରଚଲାକ + ଅସ୍ତ୍ୟର୍ଥରେ ଇନ୍; ୧ମା.୧ବ)—
Prachalāki ୧ । ମୟୂର—1. Peacock.
(ପ୍ରଚଲାକିନୀ—ସ୍ତ୍ରୀ) ୨ । ସର୍ପ—2. Snake.

**ପ୍ରଚଳିତ**—ସ. ବିଣ. ( ପ୍ର+ଚଲ୍ ଧାତୁ+କର୍ତ୍ତୃ. ତ )—
Prachalita ୧ । ପ୍ରଚାରିତ—1. Published; circulated.
୨ । ପ୍ରବଳ—2. Prevalent.
୩ । ଯାହା ସର୍ବତ୍ର ଚଳୁଅଛି, ସର୍ବତ୍ର ବ୍ୟବହୃତ—
3. In vogue; everywhere; prevailing.
୪ । ସ୍ୱୀକୃତ—4. Recognised.
୫ । ଦୂରକୁ ଗତ—5. Gone away.
୬ । ଘୂର୍ଣ୍ଣିତ—6. Rolling; revolving.
୭ । ଭ୍ରମଣଶୀଳ—7. Wandering; roving.
୮ । ଗତିଯୁକ୍ତ—8 Moving, set in motion.
୯ । ବିଚଳିତ; କମ୍ପିତ—
9. Moved; shaken, trembling.
୧୦ । ପ୍ରସିଦ୍ଧ—10. Famous.
୧୧ । ଯାହା ବର୍ତ୍ତମାନ ବ୍ୟବହୃତ ହେଉଅଛି—
11. In use; current.
୧୨ । ବ୍ୟବହାରସିଦ୍ଧ—12. Customary.
୧୩ । ଯାହାକୁ ସମସ୍ତେ ମାନୁଛନ୍ତି —
13. Universally admitted
ସ. ବି. (+ଭାବ. ତ) ଗତି—Movement.

ଅଛ ପାଦକୁ କବା ଦେବା ସର
ଯାହା ପ୍ରଚଳିତ ଗତି କର, ହସ୍ତ ଟେକ ଓଲଟଇ କର ।
ଉକ୍ତ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।

**ପ୍ରଚାୟ**—ସ. ବି. ( ପ୍ର+ଚି ଧାତୁ=ଚୟନ କରିବା+ଭାବ. ଅ )—
Prachāya ୧ । ହସ୍ତଦ୍ୱାରା ଦ୍ରବ୍ୟାଦିର ସଂଗ୍ରହ (ପ୍ରକୃତିବାଦ)—
1. Collection with the hands; heaping up with the hands.
୨ । ( +କର୍ମ. ଅ ) ସମୂହ; ରାଶି; ଗଦା—
2. Heap; multitude ( Apte ).
୩ । ବୃଦ୍ଧି; ଉପଚୟ—
3. Growth; increase ( Apte ).
୪ । ସାମାନ୍ୟ ମିଳନ—4. Slight union (Apte).
୫ । ସମାହାର, ଜମାଟ (ପ୍ରକୃତିବାଦ)—5. Conglomeration.
୬ । ( ବ୍ୟାକରଣ ) ମଧ୍ୟସ୍ଥାନ ସ୍ୱର—
6. (grammar) The neutral accentless tone.
୭ । ( ଗଣିତ ) ଓଡ଼ାଙ୍କରେ ଦୁଇ ସଂଖ୍ୟାର ମଧ୍ୟରେ ଥିବା ବ୍ୟବହୃତ ସଂଖ୍ୟା—7. ( arithmetic ) The common difference of terms in a progression ( Apte ).

୮ । ଲଗି ଆଦିଦ୍ୱାରା ଉଚ୍ଚ ବୃକ୍ଷାଦିରୁ ଫୁଲ ଫଳ ତୋଳିବା, ପାରିବା—8. Plucking of flowers and fruits from a high tree with the help of a pole

**ପ୍ରଚାୟକ**—ସ. ବି. ପୁଂ. (ପ୍ର + ଚି ଧାତୁ+ କର୍ତ୍ତୃ. ଅକ)—୧ । ଫଳ ଫୁଲ
Prachāyaka ତୋଳାଳ ବ୍ୟକ୍ତି—1. A person who
( ପ୍ରଚାୟିକା—ସ୍ତ୍ରୀ ) gathers or plucks fruits and flowers.
୨ । ଯେ ଗଦା କରେ—
2. A person who gathers things into a heap.

**ପ୍ରଚାର**—ସ. ବି ( ପ୍ର + ଚର୍ ଧାତୁ=ଯିବା+ଭାବ. ଅ )—
Prachāra ୧ । ଚଳନ, ଗମନ—1. Proceeding; going.
୨ । ଏଣେତେଣେ ବୁଲିବା—2. Walking about.
୩ । ପ୍ରାବଲ୍ୟ, ପ୍ରଚଳନ—3. Currency; prevalence.
୪ । ସର୍ବତ୍ର ପ୍ରକାଶ—4. Publication; circulation.
୫ । ରୀତି, ବ୍ୟବହାର—5. Custom; usage.
୬ । ପ୍ରସିଦ୍ଧି—6. Celebrity; notoriety.
୭ । ବିସ୍ତାର; ପ୍ରସାର—7. Expansion; spreading.
୮ । ପ୍ରକାଶ; ଅଭିବ୍ୟକ୍ତି—
8. Appearance; manifestation.
୯ । ବକ୍ତୃତାଦ୍ୱାରା ପ୍ରକାଶ—9 Preaching.
୧୦ । ଆଚରଣ—10. Conduct.
୧୧ । ଗୋ ମେଷାଦି ଚରାଇବା; ଚାରଣ—
11. Tending cattle.
୧୨ । ଧର୍ମମତର ଘୋଷଣା—
12. Preaching of religious doctrines.
୧୩ । ଗୋଚର; ଗୋଚାରଣ ଭୂମି—13. Pasture ground.
୧୪ । ଘୋଷଣା—
14. Proclamation, declaration, propaganda.
୧୫ । ନିରନ୍ତର ବ୍ୟବହାର ( ହି. ଶବ୍ଦସାଗର )—
15. Constant use
୧୬ । ( +କର୍ତ୍ତୃ. ଅ ) ଘୋଡ଼ାର ଆଖିର ରୋଗବିଶେଷ, ଯହିଁରେ ଆଖି ପାଖର ମାଂସ ବଢ଼ିଯାଇ ଆଖିକୁ ଘୋଡ଼ାଇ ପକାଏ (ହି. ଶ.)—16. An eye disease of the horse in which the flesh round the eye grows and gradually hides the eye.
ଦେ. ବି—୧ । ସ୍ଥିତି; ଅସ୍ତିତ୍ୱ—1. Existence.
୨ । ଦେଖାଯିବା ଅବସ୍ଥା—2. Visibility.

ଅବର ନୁହେଁ ଅନ୍ଧକାର
ଦିବସେ କୋହି ତା ପ୍ରଚାର—ଭାରତୀ. ପୂର୍ଣ୍ଣତମ ଚନ୍ଦ୍ରୋଦୟ ।

୩ । ପଠାଇବା; ପ୍ରେରଣ—3. Sending.

ଚନ୍ଦ୍ରେ କହୁରେ କମଳେ ଘରେ ଏଥି ପ୍ରଚାରେ ଅବା — ଉକ୍ତ. ପ୍ରେମସୁଧାନିଧି ।

**ପ୍ରଚାରକ**—ସ. ବିଣ. ପୁଂ—(ପ୍ର+ଚର୍ ଧାତୁ ଣିଚ୍+କର୍ତ୍ତୃ. ଅକ)—
Pracāraka ୧ । ପ୍ରଚାରକାରୀ; ଯେ ପ୍ରଚାର କରେ—
(ପ୍ରଚାରିକା—ସ୍ତ୍ରୀ) 1. Preaching; circulating.

୨ । ପ୍ରକାଶକାରୀ—
2. Publishing; propagating.
୩ । କୌଣସି ବସ୍ତୁର ପ୍ରଚଳନ ବୃଦ୍ଧିକାରୀ (ସ୍ତ୍ରୀ. ଣୀ)—
3 Increasing the circulation of anything.
ସଂ. ବି. ପୁଂ—୧ । ପ୍ରଚାର କରିବା ବ୍ୟକ୍ତି—
1. Preacher; circulator,
୨ । ରଖିଆଳ, ଗୋମେଷାଦିଙ୍କ ଜଗୁଆଳ—
2. Tender of cattle; pastor.
୩ । ଧର୍ମମତକୁ ସର୍ବସାଧାରଣରେ ପ୍ରକାଶ କରିବା ବ୍ୟକ୍ତି—
3. A missionary; a religious preacher.
୪ । ଯଜ୍ଞ, ହୋମ ଆଦି ସମୟରେ ଯେଉଁ ବ୍ରାହ୍ମଣ ପୋଥି ଧରି ପୁରୋହିତଙ୍କୁ ମନ୍ତ୍ରାଦି ପଢ଼ି ବତାଇବାପାଇଁ ନିଯୁକ୍ତ ହୋଇ ଥାଆନ୍ତି, ପୁସ୍ତକାଚାର୍ଯ୍ୟ—4. A Brāhmaṇa who is commissioned to read aloud the mantras from the book and direct the details of the rites performed during a sacrifice by the priest

**ପ୍ରଚାର କରିବା**—ଦେ. କ୍ରି—୧ । ଘୋଷଣା କରିବା—
Prachāra kariba 1. To preach; to propagate.
প্রচারকরা प्रचारकरना ୨ । ବିସ୍ତାର କରିବା—
2. To spread; to diffuse.
୩ । ସାଧାରଣରେ ପ୍ରକାଶ କରିବା—
3. To publish.
୪ । ପଠାଇବା—4 To send.
ଗୁରୁ ପ୍ରଚାର ଏ ଚୋର ବର୍ଣ୍ଣି କରି ସେ ନାହିଁ—ଭଞ୍ଜ ।
୫ । ପ୍ରୟୋଗ କରିବା—To apply.
ନାନା ଉପଚାର ପ୍ରଚାର କଲେ—ଅଭିମନ୍ୟୁ. ଛଦଗ୍ରଥନଗ୍ରନ୍ଥାନି ।
୬ । (ଅଦାଲତ) କୌଣସି ବ୍ୟକ୍ତିର କୌଣସି ବିଷୟରେ ସ୍ୱତ୍ୱ ବା ଅଧିକାର ଥିବା ବିଷୟ ବିଚାରପୂର୍ବକ ସିଦ୍ଧାନ୍ତ କରି ଉକ୍ତ ସ୍ୱତ୍ୱ ବା ଅଧିକାର ବିଷୟ ରାୟ ଓ ଫଏସଲା ଘୋଷଣା କରିବା—
6. (a court) To declare the right or title of a party to a property in a declaratory suit.

**ପ୍ରଚାରଣ**—ସଂ. ବି—(ପ୍ର+ଚର୍ ଧାତୁ ଣିଚ୍=ଚାର ଧାତୁ=ଗତ କରାଇବା+ଭାବ. ଅନ)—୧ । ପ୍ରକଟନ—
Prachāraṇa
1. Publication; circulation.
୨ । ଧର୍ମମତାଦିର ପ୍ରଚାରକରଣ—2. Preaching.

**ପ୍ରଚାରୟିତା**—ସଂ. ବିଣ. ପୁଂ—(ପ୍ର+ଚର୍ ଧାତୁ ଣିଚ୍+କର୍ତ୍ତୃ. ତୃ; ୧ମା. ୧ବ)—ପ୍ରଚାରକ (ଦେଖ)—
Prachārayitā
(ପ୍ରଚାରୟିତ୍ରୀ—ସ୍ତ୍ରୀ) Prachāraka (See)

**ପ୍ରଚାରିତ**—ସଂ. ବିଣ—(ପ୍ର+ଚର୍ ଧାତୁ ଣିଚ୍+କର୍ମ. ତ)—
Prachārita ୧ । ପ୍ରକାଶିତ; ସର୍ବତ୍ର ଘୋଷିତ—1. Published; preached; spread; propagated.
୨ । କୃତଚାରଣ, ପଶୁ ଆଦି ଚରିଥିବା (ସ୍ଥାନ)—2. Grazed.
୩ । ବିସ୍ତାରିତ—3, Spread, diffused.

**ପ୍ରଚାରିବା**—ଦେ. କ୍ରି (ପଦ୍ୟ)—(ସଂ. ପ୍ରଚାରଣ)—ପ୍ରଚାର କରିବା
Prachāriba (ଦେଖ)—Prachāra kariba (See)
প্রচাব प्रचारना
ଚୈତନ୍ୟାଦି ମହାତ୍ମାଙ୍କନେ, ପ୍ରଚାରିଲେ ହରିନାମ ଅଜକ ମନେ
ମଧୁସୂଦନ. ଛନ୍ଦମାଳା ।

**ପ୍ରଚାଲ**—ସଂ. ବି—(ପ୍ର+ଚଲ୍ ଧାତୁ+ ଅଧିକରଣ. ଅ)—ବୀଣାଯନ୍ତ୍ରର କଣ୍ଠ
Prachāla ଦେଶ—The neck of the Indian lute (Apte)

**ପ୍ରଚାଳିତ**—ସଂ. ବିଣ—(ପ୍ର+ଚାଳିତ)—୧ । ପ୍ରଚାରିତ; ସର୍ବତ୍ର ପ୍ରକାଶିତ—
Prachālita 1. Published; promulgated.
୨ । ଭଲ ଭାବରେ ଚାଳିତ—2. Well moved.

**ପ୍ରଚିତ**—ସଂ. ବିଣ. (ପ୍ର+ଚି ଧାତୁ=ଚୟନ କରିବା+କର୍ମ. ତ)—
Prachita ୧ । ଚୟିତ, ତୋଳାଯାଇଥିବା—1. Plucked
୨ । ସଂଗୃହୀତ—2. Collected; gathered; amassed.
୩ । ଆଚ୍ଛାଦିତ—3. Covered; filled.
୪ । ଅନୁଦାତ୍ତ—4. Accentless.

**ପ୍ରଚୀୟମାନ**—ସଂ. ବିଣ. (ପ୍ର+ଚି ଧାତୁ=ଚୟନ କରିବା+କର୍ମକର୍ତ୍ତୃ.
Prachīyamāna ଆନ)—ବର୍ଦ୍ଧମାନ, ବୃଦ୍ଧିଶୀଳ—
Increasing.

**ପ୍ରଚୁର**—ସଂ. ବିଣ. (ପ୍ର+ଚୁର୍ ଧାତୁଜ ଚୋର ଧାତୁ=ବୃଦ୍ଧି ପାଇବା
Prachura +ଭାବ. ଅ)—୧ । ବହୁତ, ବହୁଳ—
(ପ୍ରଚୁରତା, ପ୍ରାଚୁର୍ଯ୍ୟ—ବି) 1. Much; many.
୨ । ପ୍ରଭୂତ, ପର୍ଯ୍ୟାପ୍ତ—2. Plentiful; excessive; abundant.
୩ । ଯଥେଷ୍ଟ—2. Ample; enough; sufficient.
ସଂ. ବି. ପୁଂ—ତସ୍କର; ଚୋର—Thief.

**ପ୍ରଚେତସ**—ଦେ. ବି. (ସଂ. ପ୍ରଚେତସ୍)—ପ୍ରଚେତାଃ ୨ (ଦେଖ)
Prachetasa Prachetāḥ 2 (See)
ସେ ଧର୍ମଶୀଳ ପ୍ରଚେତସ
ଯଜ୍ଞେ ବିଷ୍ଣୁକୁ କରି ତୋଷ । ଜଗନ୍ନାଥ, ଭାଗବତ ।

**ପ୍ରଚେତସୀ**—ସଂ. ବି. (ପ୍ରଚେତସ୍+ଈ)—୧ । ପ୍ରଚେତାଃଙ୍କ କନ୍ୟା
Prachetasī (ସ୍ତ୍ରୀ. ଣୀ)—1. The daughter of Prachetāḥ.
୨ । କାପର୍ଦ୍ଦ (ସ୍ତ୍ରୀ. ଣୀ) (ଦେଖ)—2. Kāpharda (See)

**ପ୍ରଚେତା**—ଦେ. ବି. (ସଂ. ପ୍ରଚେତାଃ)—ପ୍ରଚେତା (ଦେଖ)
Prachetā Prachetāḥ (See)
ଦକ୍ଷଙ୍କେ ପିତା ଅଛି ପାଠ
ସେ ଯେ ପ୍ରଚେତା ଦଶ ଭାଇ । ଜଗନ୍ନାଥ, ଭାଗବତ ।
ସଂ. ବି. (ପ୍ର+ଚତ୍ ଧାତୁ=ଚେଷ୍ଟିବା+କର୍ତ୍ତୃ. ତୃ, ୧ମା. ୧ବ)—
ସାରଥି—Charioteer; coachman.
ସଂ. ବିଣ—ସଂଗ୍ରହକାରୀ—Collecting; gathering; compiling.

**ପ୍ରଚେତାଃ**—ସଂ. ବି. (ବହୁବ୍ରୀହି; ପ୍ର=ଉତ୍କୃଷ୍ଟ+ଚେତସ୍+ମନ,
Prachetāḥ ପ୍ରଚେତସ୍ ୧ମା. ୧ବ)—୧ । ବରୁଣ—
1. The God of water.

୨ । ରାଜା ପ୍ରାଚୀନବର୍ହିଙ୍କର ପୁତ୍ରମାନେ—
2. Name of the sons of king Prāchīna Barhi
[ ଦ୍ର—ରାଜା ପୃଥୁଙ୍କର ନାତି ପ୍ରାଚୀନବର୍ହିଙ୍କର ୧୦ ଟି ପୁତ୍ର । ପ୍ରତ୍ୟେକଙ୍କର ନାମ ପ୍ରଚେତାଃ ଥିଲା । ଏମାନେ ଦଶହଜାର ବର୍ଷ କାଳ ସମୁଦ୍ର ଭିତରେ ଥାଇ କଠିନ ତପସ୍ୟା କରି ବିଷ୍ଣୁଙ୍କଠାରୁ ପ୍ରଜାସୃଷ୍ଟି କରିବାକୁ ବର ପାଇଥିଲେ । ଦକ୍ଷ ଏମାନଙ୍କର ପୁତ୍ର ଥିଲେ—ହି. ଶ । ]
୩ । ପ୍ରାଚୀନ ଋଷିବିଶେଷ (ହି. ଶ)—
3. Name of a sage.
୪ । ଦ୍ୱାଦଶ ପ୍ରଜାପତିଙ୍କ ନାମ (ହି. ଶ)—4. Name of the 12th Progenitor of mankind.
ସଂ. ବିଣ —ଆହ୍ଲାଦିତ; ତୁଷ୍ଟ—Pleased; gladdened.

**ପ୍ରଚେତିତ**—ସଂ. ବିଣ. (ପ୍ର+ଚିତ୍ ଧାତୁ+କର୍ମ. ତ)—ଜ୍ଞାତ—
Prachetita Known.

**ପ୍ରଚେୟ**—ସଂ. ବିଣ. (ପ୍ର+ଚି ଧାତୁ+କର୍ମ. ଯ)—୧ । ବର୍ଦ୍ଧନୀୟ—
Pracheya 1. Capable of being augmented
୨ । ଯାହା ଚୟନ କରାଯାଇ ପାରେ, ଚୟନୀୟ—
2 Fit to be plucked or collected
୩ । ଗ୍ରହଣୀୟ—3. Fit to be taken.

**ପ୍ରଚେଲ**—ସଂ. ବି—ହଳଦିଆ ଚନ୍ଦନକାଠ ପୀତଚନ୍ଦନ—
Prachela Yellow sandal wood (Apte).

**ପ୍ରଚେଲକ**—ସଂ ବି—ଘୋଡ଼ା—A horse (Apte).
Prachelaka ସଂ ବିଣ—ଯେ ବହୁତ ଚାଲେ (ହି. ଶ)—
Moving or walking too much.

**ପ୍ରଚୋଦକ**—ସଂ. ବିଣ. ପୁଂ. ( ପ୍ର+ଚୁଦ୍ ଧାତୁ=ପ୍ରେରଣ କରିବା+
Prachodaka କର୍ତ୍ତୃ. ଅକ)—୧ । ପ୍ରେରଣକାରୀ—
(ପ୍ରଚୋଦିକା—ସ୍ତ୍ରୀ) 1. Sending.
୨ । ଉତ୍ତେଜକ—2. Inciting, stimulating; stimulant.

**ପ୍ରଚୋଦନ(ନା)**—ସଂ. ବି. (ପ୍ର+ଚୁଦ୍ ଧାତୁ=ପ୍ରେରଣ କରିବା+ଭାବ.
Prachodana(nā) ଅନ+ଆ)—୧ । ପ୍ରେରଣ—
(ପ୍ରଚୋଦ—ଅନ୍ୟରୂପ) 1. Sending; deputing.
୨ । ନିର୍ଦ୍ଦେଶ—2. Directing, enjoining.
୩ । ଆଦେଶ—3. Prescribing; command, order
୪ । ନିୟମ; ଆଇନ—4. Rule law.
୫ । ଉତ୍ତେଜନ—5. Inciting stimulating.

**ପ୍ରଚୋଦିତ**—ସଂ. ବିଣ. (ପ୍ର+ଚୁଦ୍ ଧାତୁ+କର୍ମ. ତ)—୧ । ନିୟୋଜିତ—
Prachodita 1. Engaged.
(ପ୍ରଚୋଦନ—ଦ୍ର) ୨ । ପ୍ରେରିତ—2 Sent; diputed.
୩ । ପ୍ରଣୋଦିତ—3 Prescribed.
୪ । ଆଦିଷ୍ଟ—4 Directed.
୫ । ଉତ୍ତେଜିତ—5 Incited; stimulated.

**ପ୍ରଚ୍ଛ୍ (ଧାତୁ)**—ସଂ—୧ । ପଚାରିବା—
Prachchh (root) 1 To ask; to question; to enquire,
୨ । ଜାଣିବାକୁ ଇଚ୍ଛା କରିବା—
2. To desire to know.

**ପ୍ରଚ୍ଛକ**—ସ. ବିଣ. ପୁଂ ( ପ୍ରଚ୍ଛ୍ ଧାତୁ+କର୍ତ୍ତୃ. ଅକ )—
Prachchhaka ପ୍ରଶ୍ନକାରୀ— Questioning
( ପ୍ରଚ୍ଛିକା—ସ୍ତ୍ରୀ )

**ପ୍ରଚ୍ଛଦ**—ସ. ବି. (ପ୍ର+ଛଦ୍ ଧାତୁ=ଆବରଣ କରିବା+କରଣ. ଅ, ସନ୍ଧି
Prachchhada ଯୋଗୁଁ 'ଛ' ସ୍ଥାନରେ 'ଚ୍ଛ', 'ପାଛୁଡ଼ା' ଏହାର
ପ୍ରଚ୍ଛାଦ, ପ୍ରଚ୍ଛାଦନ } ଅନ୍ୟରୂପ ଅପଭ୍ରଂଶ )—୧ । ଆଚ୍ଛାଦନ—
1. A cover.
ପ୍ରଚ୍ଛନ୍ନ, ପ୍ରଚ୍ଛାଦିତ } ବିଣ ୨ । ଆବରଣ ବସ୍ତ୍ର—
2. A wrapper; a cloak.
୩ । ବିଛଣା ଚଦର—3. Bed-cover.
୪ । କମ୍ବଳ (ହି. ଶ.)—4 Blanket.
୫ । ଚୋଗା ( ହି. ଶ.)—5. Chogah.
୬ । ( +ଭାବ. ଅ ) ଆଚ୍ଛାଦନ—
6. The act of covering

**ପ୍ରଚ୍ଛଦପଟ**—ସ. ବି ( ମ. ପ. ଲୋ. କର୍ମଧା; ପ୍ରଚ୍ଛଦରୂପେ ବ୍ୟବହୃତ
Prachchhadapata ବସ୍ତ୍ର )—୧ । ଆବରଣ ବସ୍ତ୍ର—
1. A cloak; a wrapper.
୨ । ପାଛୁଡ଼ା—2. An upper sheet.
୩ । ଓଢ଼ଣା—3. A veil.
୪ । ପରଦା—4. A curtain.
୫ । ବହିର ମଲାଟ—5. The cover of a book.

**ପ୍ରଚ୍ଛନା**—ସ. ବି. ( ପ୍ରଚ୍ଛ୍ ଧାତୁ+ଭାବ. ଅନ+ଆ )—ପ୍ରଶ୍ନ; ଜିଜ୍ଞାସା
Prachchhanā ( କ୍ୱଚିତ୍ )—Questioning.

**ପ୍ରଚ୍ଛନ୍ନ**—ସଂ. ବିଣ. ( ପ୍ର+ଛଦ୍ ଧାତୁ+କର୍ମ. ତ, ସନ୍ଧି ଯୋଗୁଁ 'ଛ'
Prachchhanna ସ୍ଥାନରେ 'ଚ୍ଛ' )—୧ । ଲୁକ୍କାୟିତ; ଗୁପ୍ତ—
1. Concealed; hidden; secret; covert.
୨ । ଆବୃତ—2. Covered.
ସ. ବି—ଗୁପ୍ତଦ୍ୱାର, ଚୋର କବାଟ—
A loop-hole; a trap-door, a secret door.

**ପ୍ରଚ୍ଛନ୍ନଚାରୀ**—ସ. ବିଣ. ପୁଂ—୧ । ଗୁପ୍ତଭାବରେ ବିଚରଣକାରୀ—
Prachchhannachārī 1. Moving in disguise.
ପ୍ରଚ୍ଛନ୍ନଚର—ଅନ୍ୟରୂପ ୨ । ଅଲକ୍ଷିତ; ଗୁପ୍ତ—
(ପ୍ରଚ୍ଛନ୍ନଚାରିଣୀ—ସ୍ତ୍ରୀ) 2. Secret; latent.
ସଂ ବି. ପୁଂ—ଗୁପ୍ତଚର—Spy; secret emissary.

**ପ୍ରଚ୍ଛନ୍ନତାପ**—ସଂ. ବି. ( ବିଜ୍ଞାନପରିଭାଷା )—ଯେଉଁ ତାପ କୌଣସି
Prachchhannatāpa ବସ୍ତୁରେ ଅପ୍ରକାଶ୍ୟଭାବରେ ଥାଏ ମାତ୍ର ତାପମାନ ଯନ୍ତ୍ର ବା ଅନ୍ୟ ପଦାର୍ଥରେ ତାହାର କାର୍ଯ୍ୟ ସ୍ପଷ୍ଟ-ଭାବରେ ପ୍ରକାଶ ପାଏ—Latent heat.

**ପ୍ରଚ୍ଛନ୍ନବେଶ**—ସଂ. ବି ( କର୍ମଧା, ପ୍ରଚ୍ଛନ୍ନ+ବେଶ )—ଯେଉଁ ବେଶଦ୍ୱାରା
Prachchhannabesa ନିଜର ସ୍ୱରୂପକୁ ଗୋପନ କରାଯାଏ—
(ପ୍ରଚ୍ଛନ୍ନବେଶା—ସ୍ତ୍ରୀ ) Mask; a disguise.

ସଂ. ବଣ. ପୁଂ ( ବହୁବ୍ରୀହି )—ବେଶଦ୍ୱାରା ନିଜର ସ୍ୱରୂପକୁ ଗୋପନ କରିଥିବା (ବ୍ୟକ୍ତି) —
( a person ) Wearing a mask, disguised.

**ପ୍ରଚ୍ଛନ୍ନବେଶୀ**—ସଂ. ବଣ. ପୁଂ ( ପ୍ରଚ୍ଛନ୍ନବେଶ+ଇନ୍; ୧ମା ୧ବ )—
Prachchhannabesi ପ୍ରଚ୍ଛନ୍ନବେଶଧାରୀ, ଗୁପ୍ତବେଶ ଧରିଥିବା—
( ପ୍ରଚ୍ଛନ୍ନବେଶିନୀ—ସ୍ତ୍ରୀ ) Wearing a mask.

**ପ୍ରଚ୍ଛର୍ଦ(ର୍ଦ୍ଦ)ନ**—ସଂ. ବି. (ପ୍ର+ଛର୍ଦ୍ ଧାତୁ+ଭାବ ଅନ)—୧ । ରେଚନ;
Prachchharda(rdda)na ଶ୍ୱାସକୁ ନାକବାଟେ ଛାଡ଼ିବା—
1. Exhalation.
୨ । ବମନ—2 Vomiting

**ପ୍ରଚ୍ଛର୍ଦି(ର୍ଦ୍ଦି)କା**—ସଂ. ବି (ପ୍ର+ଛର୍ଦ୍ ଧାତୁ+କର୍ତ୍ତୃ ଅ+ଆ )—
Prachchhardi(rddi)kā ୧ । ବମନକାରକ ଔଷଧ (ହି ଶ)—
1. A medicine which causes vomiting; a nauseating medicine.
୨ । ବମନ, ବେଁ, ବାନ୍ତି ( ହି. ଶବ୍ଦସାଗର )—
2 Vomiting.

**ପ୍ରଚ୍ଛାଦକ**—ସଂ. ବି. ( ପ୍ର+ଛଦ୍ ଧାତୁ ଣିଚ୍+କର୍ତ୍ତୃ ଅକ )—ସ୍ୱାମି-
Prachchhādaka ପରିତ୍ୟକ୍ତା ସ୍ତ୍ରୀର ବିଳାପସୂଚକ ଗୀତ—
The wailing song of a wife deserted by her husband.

**ପ୍ରଚ୍ଛାଦନ**—ସଂ. ବି (ପ୍ର+ଛଦ୍ ଧାତୁ ଣିଚ୍+କର୍ମ. ଅନ)—୧ । ଉପରେ
Prachchhādana ଘୋଡ଼ାଇବା—1 Covering over.
(ପ୍ରଚ୍ଛାଦିତ—ବଣ) ୨ । ଲୁଚାଇବା—2 The act of hiding
୩ । ପ୍ରଚ୍ଛଦ (ଦେଖ)—3. Prachchhada (See)

**ପ୍ରଚ୍ଛାୟ**—ସଂ. ବି ( ପ୍ର+ଛାୟା )—ପ୍ରକୃଷ୍ଟ ଛାୟା—
Prachchhāya Deep shade; umbra.

**ପ୍ରଚ୍ଛିନ୍ନ**—ଗ୍ରା. ବଣ. (ପ୍ରାଚୀନ ପଦ୍ୟ) ( ସଂ. ପ୍ରଚ୍ଛନ୍ନ )—୧ । ପ୍ରଚ୍ଛନ୍ନ, ଗୁପ୍ତ;
Prachhinna ଲୁକ୍କାୟିତ—1 Hidden; concealed.
ସେ ପରେ ମନ୍ତ୍ର ଯନ୍ତ୍ର ପୁଣ, ସକଳ ପ୍ରଚ୍ଛିନ୍ନ ପ୍ରମାଣ —
ଯଶୋବନ୍ତ. ପ୍ରେମଭକ୍ତି ବ୍ରହ୍ମଗୀତା ।
୨ । ଆବୃତ—2. Covered.
୩ । ( ସଂ. ପରିଚ୍ଛିନ୍ନ=ନିର୍ଣ୍ଣୀତ ) ସୁସ୍ପଷ୍ଟ, ବ୍ୟକ୍ତ—
3. Very clear; apparent.
ନିର୍ଗୁଣଙ୍କର ଏ ପ୍ରଚ୍ଛିନ୍ନ; ସୁଧୀଜନରେ ଭୁମ୍ଭେ ଶୁଣ —
ଚୈତନ୍ୟ. ନିର୍ଗୁଣମାହାତ୍ମ୍ୟ ।

**ପ୍ରଜ**—ସଂ ବି. ( ପ୍ର+ଜନ୍ ଧାତୁ=ଜାତ ହେବା+କର୍ତ୍ତୃ. ଅ, ଯେ
Praja. ଜାୟାଠାରେ ପ୍ରବେଶ କରି ପୁନର୍ବାର ସନ୍ତାନରୂପ ଧରି ଜନ୍ମଗ୍ରହଣ କରେ )—ସ୍ୱାମୀ; ପତି—Husband.

**ପ୍ରଜଂଘ**—ସଂ. ବି. (ନାମ) (ପ୍ର=ପ୍ରକୃଷ୍ଟ+ଜଂଘା ଯାହାର)—ରାବଣର
Prajangha ସେନାପତି ରାକ୍ଷସବିଶେଷ—
Name of a demon commander of Rābaṇa.

**ପ୍ରଜନ**—ସଂ. ବି. ( ପ୍ର+ଜନ୍ ଧାତୁ+ଣିଚ୍+ଭାବ. ଅ )—
Prajana ୧ । ଗର୍ଭ କରାଇବା ଉତ୍ପାଦନ କରିବା; ସ୍ତ୍ରୀଗର୍ଭରେ ସନ୍ତାନ ଉତ୍ପାଦନ କରିବା—1 Impregnating; begetting.
୨ । ଗବାଦିଙ୍କର ମୈଥୁନାଦିଯୋଗ, ପଶୁମାନଙ୍କର ଯୋଡ଼ ଖାଇବା—2 Impregnation of cattle; mating of beasts.
୩ । ପଶୁମାନଙ୍କର ଗର୍ଭଗ୍ରହଣ କାଳ, ପଶୁମାନଙ୍କର ବଏ ଯିବା—
3. The season of a cow taking a bull; heat; the periodic time of sexual excitement of female animals.
୪ । (+କର୍ତ୍ତୃ. ଅ)—ପୂର୍ବପୁରୁଷ—4. Ancestor.
୫ । ଜନ୍ମଦାତା, ଜନକ—5 Progenitor, father, begetter.
୭ । (+କରଣ. ଅ)—ଲିଙ୍ଗ, ପୁରୁଷେନ୍ଦ୍ରିୟ (ହି. ଶ)—
7. Penis; male organ

**ପ୍ରଜନନ**—ସଂ. ବି. (ପ୍ର+ଜନ୍ ଧାତୁ ଣିଚ୍+ଭାବ. ଅନ)—
Prajanana ୧ । ଗର୍ଭ ଉତ୍ପାଦନ, ସ୍ତ୍ରୀଗର୍ଭରେ ସନ୍ତାନ ଆଧାନ—
1. Impregnation; procreation.
୨ । ଯୋନି—2. Vulva; female organ
୩ । ଜନ୍ମ—3. Birth; production; generation.
୪ । (ସୁଶ୍ରୁତ) ଧାତ୍ରୀକର୍ମ (ହି ଶ)—4. Mid-wifery.

**ପ୍ରଜନନ ବିଦ୍ୟା**—(ଆଧୁନିକ ପ୍ରୟୋଗ) - ଯେଉଁ ଶାସ୍ତ୍ରରେ ଜନ୍ମବିଷୟକ
Prajanana bidyā ତଥ୍ୟମାନଙ୍କର ଅନୁଶୀଳନ କରାଯାଏ—
(ପ୍ରଜନନ ବିଜ୍ଞାନ—ଅନ୍ୟରୂପ) The science of eugenics; the science of mid-wifery; obstetrics.

**ପ୍ରଜନିକା**—ସଂ. ବି. ସ୍ତ୍ରୀ (ପ୍ର+ଜନ ଧାତୁ+କର୍ତ୍ତୃ ଅକ) – ଜନନୀ;ମାତା–
Prajanikā Mother.

**ପ୍ରଜନିଷ୍ଣୁ**—ସଂ ବଣ. (ପ୍ର+ଜନ୍ ଧାତୁ+କର୍ତ୍ତୃ. ଇଷ୍ଣୁ)—ଜନନଶୀଳ—
Prajanishnu Prolific; productive; generative.

**ପ୍ରଜଳ୍ପ**—ସଂ ବି.—(ପ୍ର+ଜଳ୍ପ୍ ଧାତୁ+ଅ)—୧ । ଗପସପ; ବ୍ୟର୍ଥଗଳ୍ପ–
Prajalpa 1. Prattle; gossip.
(ପ୍ରଜଳ୍ପନ—ଅନ୍ୟରୂପ) ୨ । ଆପଣାର ପ୍ରିୟ ବ୍ୟକ୍ତିର ପ୍ରସନ୍ନତା ଉତ୍ପାଦନାର୍ଥ କଥିତ ବାକ୍ୟ— (ହି. ଶବ୍ଦସାଗର)—
2. Words uttered to please one's dear ones.

**ପ୍ରଜା**—ସଂ. ବି. (ପ୍ର+ଜନ୍ ଧାତୁ+କର୍ତ୍ତୃ. ଅ+ସ୍ତ୍ରୀ. ଆ)—୧ । ରାଜ୍ୟ-
Prajā ବାସୀ ଲୋକ—1. The people of a kingdom; the subjects.
୨ । ରଇତ—2. Tenant.
୩ । ଜନ; ନର—3. Person; individual
୪ । ପ୍ରାଣୀ—4. Animal; living being.
୫ । ସନ୍ତାନସନ୍ତତି; ଅପତ୍ୟ—
5. Offspring; progeny.
ଦେ. ବି. – ଯେ ଜମିଦାର ଅଧୀନରେ ଜମି ଚାଷ କରେ—
A raiyat; a person cultivating land under a landlord; tenant.

[ଦ୍ର—ପୂର୍ବକାଳରେ ରାଜ୍ୟର ସମସ୍ତ ଜମି ରାଜାଙ୍କର ଥିଲା ଏବଂ ପ୍ରଜାମାନେ ଜମି ଚାଷ କରି ଉତ୍ପନ୍ନ ଶସ୍ୟର ଅଂଶ ବା ତତ୍ପରିମିତ ଧନ ରାଜାଙ୍କୁ କରରୂପେ ଦେଉଥିଲେ । ବର୍ତ୍ତମାନ ପ୍ରଜାଙ୍କଠାରୁ ରାଜକର ଆଦାୟ କରିବା ପାଇଁ ଇଂରାଜ ସରକାର 'ଜମିଦାର' ଓ 'ମଧ୍ୟସ୍ୱତ୍ତ୍ୱାଧିକାରୀ' ଶ୍ରେଣୀ ସୃଷ୍ଟି କରିଅଛନ୍ତି । ଜମିଦାର ବା ମଧ୍ୟସ୍ୱତ୍ତ୍ୱାଧିକାରୀମାନେ ପ୍ରଜାଙ୍କଠାରୁ କର ଆଦାୟ କରି ତହିଁରୁ ଆପଣାର ନିର୍ଦ୍ଦିଷ୍ଟ ପାରଶ୍ରମିକ ବା ମାଲିକାନା କାଟି ରଖି ବାକି ଟଙ୍କା ସରକାରରେ ଦାଖଲ କରନ୍ତି ବା ମଧ୍ୟସ୍ୱତ୍ତ୍ୱାଧିକାରୀମାନେ ତାଙ୍କ ପ୍ରଜାମାନଙ୍କଠାରୁ ଖଜଣା ଆଦାୟ କରି ଆପଣାର ପାରଶ୍ରମିକ କାଟି ରଖି ଜମିଦାରଙ୍କୁ ଦିଅନ୍ତି । ଜମିଦାର ଏ କାର୍ଯ୍ୟ ପାଇଁ ତାଙ୍କର ପାରଶ୍ରମିକ ମଧ୍ୟ କାଟି ରଖନ୍ତି । ଜମିଦାର ଓ ପ୍ରଜାଙ୍କ ମଧ୍ୟରେ ଚଳାଚଳର ସୁବିଧା ପାଇଁ ସରକାର ପ୍ରଜାସ୍ୱତ୍ୱ ଆଇନ କରିଅଛନ୍ତି । ଏ ଆଇନଦ୍ୱାରା ପ୍ରଜାମାନଙ୍କୁ ଭିନ୍ନ ଭିନ୍ନ ଶ୍ରେଣୀରେ ବିଭକ୍ତ କରାଯାଇ ଅଛି—ସ୍ଥିତିବାନ, ଦଖଲସତ୍ତ୍ୱଶୂନ୍ୟ, ସିକମି, ଶୃଦ୍ଧନା, ଭାଗଦାର, ନାଗଦ ଓ ଉଠିବାଟି । ମଝିରେ ମଝିରେ ସରକାର ସେଟଲମେଣ୍ଟ କରି ପ୍ରତ୍ୟେକ ଜମି, ଜମା ଓ ସ୍ୱତ୍ୱ ତଦନ୍ତ କରି ସ୍ୱତ୍ୱଲିପି ପ୍ରସ୍ତୁତ କରନ୍ତି ଓ ତାହାର ନକଲ ଜମିଦାର ବା ମଧ୍ୟସ୍ୱତ୍ତ୍ୱାଧିକାରୀ ଓ ପ୍ରଜା ଉଭୟଙ୍କୁ ଦିଅନ୍ତି । ଜମିଦାରମାନେ ସରକାରରେ ନିୟମିତରୂପେ ରାଜସ୍ୱ ଦାଖଲ କରିବା ପାଇଁ ସରକାରଙ୍କ ସପକ୍ଷରେ କେତେକ ସର୍ତ୍ତସମ୍ବଳିତ କବୁଲିୟତ ସମ୍ପାଦନ କରି ଦିଅନ୍ତି । ]

**ପ୍ରଜାକାମ**—ସ. ବିଣ. ପୁ. (ବହୁବ୍ରୀହି, ପ୍ରଜା+କାମ=କାମନା)—
Prajā kāma ସନ୍ତାନାର୍ଥୀ, ଆପଣାର ସନ୍ତାନ ହେବା ପାଇଁ ଯେ (ପ୍ରଜାକାମା - ସ୍ତ୍ରୀ) କାମନା କରେ—Desirous of getting an offspring

**ପ୍ରଜାକାମନା**—ସ. ବି (୪ର୍ଥୀ ତତ୍; ପ୍ରଜା+କାମନା)—ସନ୍ତାନଲାଭେଚ୍ଛା—
Prajā kāmanā Desire for having an offspring.

**ପ୍ରଜାକାମୀ**—ସ. ବିଣ ପୁଂ (ପ୍ରଜାକାମ+ଇନ୍; ୧ମା, ୧ବ)—
Prajā kāmi ପ୍ରଜାକାମ (ଦେଖ)—Prajā kāma (See) (ପ୍ରଜାକାମିନୀ—ସ୍ତ୍ରୀ)

**ପ୍ରଜାଗର**—ସଂ ବି.—୧ । (ପ୍ର+ଜାଗୃ ଧାତୁ=ଚେଇଁବା+ଭାବ. ଅ)—
Prajāgara ୧ । ଜାଗରଣ—1. Waking.
୨ । (+କର୍ତ୍ତୃ. ଅ) ବିଷ୍ଣୁ—2. Bishnu.
ସ. ବିଣ—୧ । ଯେ ଚେଇଁ ଥାଏ; ଜାଗରୁକ—
1. Watching; wakeful.
୨ । ସତର୍କ—2. Cautious; watchful.

**ପ୍ରଜାତନ୍ତୁ**—ସ. ବି. (ମ. ପ. ଲୋ. କର୍ମଧା; ପ୍ରଜା+ତନ୍ତୁ)—
Prajātantu ୧ । ବଂଶ; କୁଳ 1. Line of descendants; lineage.
୨ । ସନ୍ତାନ—2. Offspring.

**ପ୍ରଜାତନ୍ତ୍ର**—ସ. ବି (ମ. ପ. ଲୋ. କର୍ମଧା; ପ୍ରଜା+ତନ୍ତ୍ର; ପ୍ରଜାପରିଚାଳିତ
Prajātantra ତନ୍ତ୍ର)—ପ୍ରଜାମାନଙ୍କଦ୍ୱାରା ପରିଚାଳିତ ରାଜ୍ୟଶାସନ ପ୍ରଣାଳୀ—Republicanism; democracy; commonwealth; democratic form of government.
ସ. ବିଣ. (ବହୁବ୍ରୀହି)—ପ୍ରଜାମାନଙ୍କଦ୍ୱାରା କରାଯିବା ଶାସନସମ୍ବନ୍ଧୀୟ—Democratic; republican.

**ପ୍ରଜାତା**—ସ. ବି.—ଗର୍ଭବତୀ ସ୍ତ୍ରୀ—
Prajātā A woman big with a child.

**ପ୍ରଜାତୀର୍ଥ**—ସ. ବି.—ଜାତକର୍ମ ଉତ୍ସବକାଳ—The auspicious
Prajā tirtha moment of celebrating a birth.
ଧର୍ମ ନନ୍ଦନ ସ୍ୱସ୍ଥ ଚିତ୍ତେ, ଦକ୍ଷିଣା ଦେଲେ ପ୍ରଜାତୀର୍ଥେ ।
ଜଗନ୍ନାଥ, ଭାଗବତ ।

**ପ୍ରଜାଦ**—ସ. ବିଣ. (ପ୍ରଜା+ଦା ଧାତୁ+ଅ)—
Prajāda ୧ । ସନ୍ତାନଦାତା—1. Granting progeny.
(ପ୍ରଜାଦା—ସ୍ତ୍ରୀ) ୨ । ବନ୍ଧ୍ୟାତ୍ୱନିବାରକ—
2. Removing barrenness.
୩ । ଗର୍ଭଦ—3 Bringing about conception.

**ପ୍ରଜାଦାନ**—ସ. ବି. (୬ଷ୍ଠୀ ତତ୍; ପ୍ରଜା+ଦାନ)—ରୌପ୍ୟ—
Prajādāna Silver.

**ପ୍ରଜାଧର୍ମ**—ସ. ବି (୬ଷ୍ଠୀ ତତ୍; ପ୍ରଜା+ଧର୍ମ)—
Prajādharma ୧ । ପିତାମାତାଙ୍କ ପ୍ରତି ସନ୍ତାନର କର୍ତ୍ତବ୍ୟ—
1. The duties of children towards their parents.
୨ । ରାଜାଙ୍କ ପ୍ରତି ପ୍ରଜାମାନଙ୍କର କର୍ତ୍ତବ୍ୟ—
2. The duties of subjects towards their king.

**ପ୍ରଜାନାଥ**—ସ. ବି. (୬ଷ୍ଠୀ ତତ୍; ପ୍ରଜା+ନାଥ)—
Prajānātha ୧ । ରାଜା—1. King.
୨ । ବ୍ରହ୍ମା—2. Brahmā.
୩ । ମନୁ—3 Manu.
୪ । ଦକ୍ଷ—4 Daksha.

**ପ୍ରଜାନ୍ତକ**—ସ. ବି. (୬ଷ୍ଠୀ ତତ୍; ପ୍ରଜା+ଅନ୍ତକ)—
Prajāntaka ୧ । ଅତ୍ୟାଚାରୀ ରାଜା—
1. An oppressive king; tyrant.
୨ । ଯମ—2. The God of death.
ସ. ବିଣ—ପ୍ରଜାପୀଡ଼କ—Oppressive; tyranical.

**ପ୍ରଜାପତି**—ସ. ବି. (୬ଷ୍ଠୀ ତତ୍; ପ୍ରଜା=ଲୋକସକଳ+ପତି)—
Prajāpati ୧ । ସ୍ରଷ୍ଟା, ବ୍ରହ୍ମା—1. Brahmā; the creator of men.
୨ । ବ୍ରହ୍ମାଙ୍କର ୧୦ ଜଣ ମାନସ ପୁତ୍ର (ଯେଉଁମାନେ ପୃଥିବୀର ଜୀବଜଗତର ଆଦିପୁରୁଷ)—
2 The progenitors of the animal kingdom.
[ଦ୍ର—ମରୀଚି, ଅତ୍ରି, ଅଙ୍ଗିରା, ପୁଲସ୍ତ୍ୟ, ପୁଲହ, କ୍ରତୁ, ବଶିଷ୍ଠ, ଭୃଗୁ, ଦକ୍ଷ (ମତାନ୍ତରରେ ପ୍ରଚେତାଃ) ଓ ନାରଦ ଏହି ୧୦ ଜଣ ଋଷି ବ୍ରହ୍ମାଙ୍କର ମାନସ ପୁତ୍ର । ]
୩ । ରାଜା—3 King.
୪ । ପିତା; ଜନକ—4 Father.
୫ । ଜାମାତା—5. Son-in-law.
୬ । ଦିବାକର, ସୂର୍ଯ୍ୟ—6. The sun.

୭ । ଅଗ୍ନି—7 Fire
୮ । ବିଶ୍ୱକର୍ମା—8. The divine architect.
୯ । ବିଷ୍ଣୁ—9. Bishnu
୧୦ । ଲିଙ୍ଗ—10. Penis
୧୧ । ଯଜ୍ଞ—11. Sacrifice.
୧୨ । ମନୁ (ହି. ଶ)—12. Manu.
୧୩ । ଗୃହକର୍ତ୍ତା ( ହି. ଶ )—
13. The head or master of a family.
୧୪ । ନକ୍ଷତ୍ରବିଶେଷ ( ହି. ଶବ୍ଦସାଗର )—
14. Name of a star.
୧୫ । ପ୍ରାଜାପତ୍ୟ ବିବାହ (ହି. ଶ)—
15. Prājāpatya marriage

ପ୍ରଜାପତି ଦେ. ବି. ( ସ. ପ୍ରଜାପାଳ )—
**पाँका, बाँका, तितली** ୧ । କେଶପ୍ରକୃତି, ଷଟ୍‌ପଦୀ ପତଙ୍ଗବିଶେଷ—
1. Butter-fly; moth.

[ ଦ୍ର—ପ୍ରଜାପତିର ପ୍ରଥମ ଅବସ୍ଥା ଡିମ୍ବ; ତା ପରେ ଫୁଟି କୀଟ ଏବଂ ତତ୍ପରେ ଉକ୍ତ କୀଟ ଗୋଟିଏ ଖୋଳ ବା ଗୋଟି ବାନ୍ଧି ସେ ଗୋଟିରେ କିଛି ଦିନ ରହିବା ପରେ ତାକୁ ଫୁଟାଇ ତହିଁ ମଧ୍ୟରୁ ପକ୍ଷ ଯୁକ୍ତ ହୋଇ ପ୍ରଜାପତିରୂପେ ବାହାରେ । ଭିନ୍ନ ଭିନ୍ନ ଜାତୀୟ ପ୍ରଜାପତିଙ୍କ ଗୋଟିରୁ ରେସମ, ତସର, ଏଣ୍ଡି, ମୁଗା ଆଦର ତନ୍ତୁ ବାହାରେ ।

ଏହାର ପକ୍ଷ ନାନା ବର୍ଣ୍ଣ; ଅଙ୍ଗ ପୁଷ୍ପପରାଗବତ୍ ରେଣୁମୟ । ଏହାର ରେଙ୍ଗ ବା ନଶ ଅଛି । ]

୨ । (କଣିଆ ଶବ୍ଦ) ପ୍ରଜାପତି ଆକୃତିର ସୁନା ବା ରୁପାର ଅଳଙ୍କାର ବିଶେଷ ( ଯାହାକୁ ସ୍ତ୍ରୀ ଲୋକେ ମୁଣ୍ଡରେ ପିନ୍ଧନ୍ତି )—
2. A butterfly-shaped ornament for the hair.

**ପ୍ରଜାପାଳ**—ସଂ. ବି. (ଉପପଦ ତତ୍ ପୁରୁଷ, ପ୍ରଜା+ପାଲ୍ ଧାତୁ )—
Prajāpāla ୧ । ନ୍ୟାଯ୍ୟମାର୍ଗରେ ପ୍ରଜାଙ୍କୁ ପାଳିବା ରାଜା—
(ପ୍ରଜାପାଳକ—ଅନ୍ୟରୂପ) 1. Just and righteous king; a real protector of the people.
୨ । ପ୍ରଜାପତି—2 Butterfly.
ସଂ. ବିଣ—ନ୍ୟାଯ୍ୟମାର୍ଗରେ ପ୍ରଜାପାଳନ କରୁଥିବା (ରାଜା)—
( a king ) Protecting one's subjects righteously.

**ପ୍ରଜାପାଳନ**—ସଂ. ବି. ( ୬ଷ୍ଠୀ ତତ୍; ପ୍ରଜା+ପାଳନ )—
Prajāpālana ୧ । ସନ୍ତାନପାଳନ; ଶିଶୁଙ୍କୁ ଯତ୍ନପୂର୍ବକ ବଢ଼ାଇବା—1. The bringing up of the children
୨ । ରାଜ୍ୟର ପ୍ରଜାମାନଙ୍କୁ ରକ୍ଷା କରିବା—
2. Protecting one's subjects.

**ପ୍ରଜାପୀଡ଼କ**—ସଂ. ବି. ( ଉପପଦ ତତ୍ପୁରୁଷ; ପ୍ରଜା+ପୀଡ଼କ )—
Prajāpirdaka ୧ ଅତ୍ୟାଚାରୀ ରାଜା—A tyrant; an oppressive king.
ସଂ. ବିଣ—ଅତ୍ୟାଚାରୀ ( ରାଜା ), ଯେ ପ୍ରଜାମାନଙ୍କ ଉପରେ ନାନାପ୍ରକାର ଜୁଲମ କରେ—Oppressive; tyranical.

**ପ୍ରଜାପୀଡ଼ା**—ସଂ. ବି ( ୬ଷ୍ଠୀ ତତ୍; ପ୍ରଜା+ପୀଡ଼ା )—
Prajāpirdā ପ୍ରଜାଙ୍କ ଉପରେ ରାଜାଙ୍କ ଅତ୍ୟାଚାର—
(ପ୍ରଜାପୀଡ଼ନ—ଅନ୍ୟରୂପ) Oppression of the subjects by a king or ruler

**ପ୍ରଜାପୁଞ୍ଜ**—ସଂ. ବି ( ପ୍ରଜା+ପୁଞ୍ଜ, ୬ଷ୍ଠୀ ତତ୍ ) – ପ୍ରଜାସମୂହ—
Prajā punja The body of subjects of a kingdom.
[ପ୍ରଜାବୃନ୍ଦ, ପ୍ରଜାମଣ୍ଡଳ(ଳୀ)—ଅନ୍ୟରୂପ]

**ପ୍ରଜାଫୁଟ୍**—ପ୍ରାଦେ ( ଯାଜପୁର ) ବି—
Prajāphut ଅତି ଗୁପ୍ତ କଥାର ସର୍ବତ୍ର ପ୍ରକାଶ—
Publication of a secret.
( ଯଥା—ଏ କଥାଟା ଅଳ୍ପ ଦିନେ ପ୍ରଜାଫୁଟ୍ ହୋଇଯିବ । )

**ପ୍ରଜାବତୀ**—ସ. ବି. ସ୍ତ୍ରୀ—( ପ୍ରଜା+ଅଛି ଅର୍ଥରେ ବତ୍+ଈ ଙ)—
Prajābati ୧ । ଭ୍ରାତୃଜାୟା—1 Brother's wife.
୨ । ଜ୍ୟେଷ୍ଠଭ୍ରାତୃଜାୟା, ଭାଉଜ—
2. An elder brother's wife.
୩ । ସନ୍ତାନବତୀ, ପୁଅଝିଅ ଥିବା ମାଆ—3. A mother of children, a woman blessed with children.
୪ । ଗର୍ଭବତୀ ସ୍ତ୍ରୀ—
4. A pregnant woman.
୫ । (ନାମ) ପ୍ରିୟବ୍ରତ ରାଜାଙ୍କ ସ୍ତ୍ରୀ (ହି. ଶ)—
4. Name of the wife of king Priyabrata.
ସ ବିଣ. ସ୍ତ୍ରୀ—୧ । ଗର୍ଭବତୀ—
1. Pregnant (Howells)
୨ । ସନ୍ତାନସନ୍ତତିସମ୍ପନ୍ନା (ମାତା)—
2 (a woman) Blessed with children.

**ପ୍ରଜାବତ୍ସଳ**—ସ. ବିଣ. ପୁଂ—ପ୍ରଜାଙ୍କୁ ପୁତ୍ରନିର୍ବିଶେଷରେ ପାଳନ
Prajābatsala କରୁଥିବା (ରାଜା)—(a king) Who looks
(ପ୍ରଜାବତ୍ସଳା—ସ୍ତ୍ରୀ upon the subjects as his sons.
(ପ୍ରଜାବତ୍ସଳତା, ପ୍ରଜାବାତ୍ସଲ୍ୟ—ବି)

**ପ୍ରଜା ବସା(ସେ)ଇବା**—ଦେ. କ୍ରି—୧ । ଖଜଣା ନେଇ କୌଣସି
Prajā basā(se)ibā ଜମିକୁ ପ୍ରଜା ଚାଷ କରିବା ସକାଶେ ପ୍ରଜା
(ପ୍ରଜାବିଲି କରିବା—ଅନ୍ୟରୂପ) ସଙ୍ଗେ ବନ୍ଦୋବସ୍ତ କରିବା—
প্রজাবসান, প্রজাবিলিকবা 1. To settle lands with
**प्रजाबिलिकरना** tenants, to let out lands to rayats.
୨ । ପତିତ ଜମିକୁ ଆବାଦ କରିବା ପାଇଁ ଓ ତହିଁରେ ଘରଦ୍ୱାର କରି ରହିବା ପାଇଁ ଅନ୍ୟ ଅଞ୍ଚଳରୁ ପ୍ରଜାଙ୍କୁ ଆଣାଇ କୌଣସି ଜମିରେ ରଖାଇବା—2 To settle tenants on waste lands.

**ପ୍ରଜାବିଲି**—ଦେ. ବି—ଖଜଣା ନେଇ କୌଣସି ଜମିକୁ ପ୍ରଜା ଚାଷ
Prajābili କରିବେ ବୋଲି ପ୍ରଜା ସଙ୍ଗେ ଜମିଦାରର ବନ୍ଦୋବସ୍ତ-
প্রজাবিলি Settling of any land with tenants;
**प्रजाबिलि** letting out lands to raiyats.

**ପ୍ରଜାବୃଦ୍ଧି**—ସ. ବ—(୬ଷ୍ଠୀ ତତ୍, ପ୍ରଜା+ବୃଦ୍ଧି)—୧ । ସନ୍ତାନବୃଦ୍ଧି—
Prajābruddhi 1. Increase of offspring.
୨ । ରାଜ୍ୟର ଲୋକସଂଖ୍ୟାର ବୃଦ୍ଧି—

**ପ୍ରଜାମେଳି**—ଦେ. ବ—ଜମିଦାରଙ୍କ ବିରୋଧରେ ପ୍ରଜାମାନଙ୍କର ଏକ
Prajāmeḷi ବିଦ୍ରୋହରେ ଦଳଗଠନ—A rising of the
ପ୍ରଜାମେଳି raiyats against a Zamindar or ruler
**ବନ୍ଧଣା** (ପ୍ରଜାବିଦ୍ରୋହ—ଅନ୍ୟରୂପ)

**ପ୍ରଜାୟିନୀ**—ସ. ବ. ସ୍ତ୍ରୀ—(ପ୍ର+ଜନ୍ ଧାତୁ=ଉତ୍ପନ୍ନ ହେବା+କର୍ତ୍ତୃ.
Prajāyini ଇନ୍+ସ୍ତ୍ରୀ. ଈ)—ସନ୍ତାନଜନନୀ; ମାତା, ପ୍ରସୂତା—
Mother; one who has recently given birth to a child

**ପ୍ରଜାରଞ୍ଜକ**—ସ ବିଣ. ପୁଂ--(ଉପପଦ ତତ୍ପୁରୁଷ, ପ୍ରଜା+ରଞ୍ଜକ)—
Prajārañjaka ରାଜ୍ୟର ପ୍ରଜାଙ୍କ ମନୋରଞ୍ଜନକାରୀ, ପ୍ରଜାଙ୍କର
(ପ୍ରଜାରଞ୍ଜିକା—ସ୍ତ୍ରୀ) ସୁଖ, ଶାନ୍ତି ଓ ଆନନ୍ଦବିଧାୟକ—
Keeping the subjects contented.

**ପ୍ରଜାରଞ୍ଜନ**—ସ. ବ—(୬ଷ୍ଠୀ ତତ୍, ପ୍ରଜା+ରଞ୍ଜନ)—ରାଜ୍ୟର
Prajārañjana ପ୍ରଜାମାନଙ୍କର ସୁଖ, ଶାନ୍ତି ଓ ଆନନ୍ଦ-ବିଧାନ—
Satisfying one's subjects by establishing peace, order and happiness.

**ପ୍ରଜାଲୋକ**—ସ. ବ—(ବହୁବଚନ; ପ୍ରଜା+ଲୋକ)—ରାଜ୍ୟର
Prajāloka ପ୍ରଜାମାନେ—The subjects; the people.

**ପ୍ରଜାଶ୍ରମ**—ସ. ବ—(ପ୍ରଜା+ଆଶ୍ରମ)—ଗୃହସ୍ଥାଶ୍ରମ (ଦେଖ)—
Prajāśrama Gruhasthāśrama (See)
ଯେ ପ୍ରଜାଶ୍ରମେ ଧର୍ମ ଅଛନ୍ତି
ନ ଲୋକେ ଭୂମେ ଚୋରରେ—ଜଗନ୍ନାଥ. ଭାଗବତ ।

**ପ୍ରଜାସତ୍ବ** (ଇତ୍ୟାଦି)—ଗ୍ରା. ବ—(ସ. ପ୍ରଜା+ସ୍ୱତ୍ୱ)—ପ୍ରଜାସ୍ୱତ୍ୱ ଇତ୍ୟାଦି
Prajāsatwa (etc) (ଦେଖ)—Prajāswatwa etc (See)

**ପ୍ରଜାସୃକ୍**—ସ. ବ. ପୁଂ—(ପ୍ରଜା+ସୃଜ୍ ଧାତୁ=ସୃଷ୍ଟିକରିବା+କର୍ତ୍ତୃ.
Prajāsṛuk କ୍ୱିପ୍; ପ୍ରଜାସୃକ୍; ୧ମା. ୧ବ)—୧ । ବ୍ରହ୍ମା—
1. Brahmā.
୨ । ଜନକ, ପିତା—2 Father.

**ପ୍ରଜାସ୍ୱତ୍ୱ**—ଦେ. ବ—(ସ. ପ୍ରଜା+ସ୍ୱତ୍ୱ)—ରଇତ ଜମିକୁ ବାର
Prajāswatwa ବର୍ଷରୁ ଊର୍ଦ୍ଧ୍ୱ ଭୋଗ କରିବା ପ୍ରଜାର ଉକ୍ତ ଭୂମି
(ପ୍ରଜାସ୍ୱ—ଅନ୍ୟରୂପ) ଉପରେ ଆଇନ ଅନୁସାରେ ପ୍ରବର୍ତ୍ତିବା ସ୍ୱତ୍ୱ—
ପ୍ରଜାସ୍ୱତ୍ୱ ବା ଅଧିକାର; ସ୍ଥିତିବାନ୍ ସ୍ୱତ୍ୱ—Tenancy right;
ପ୍ରଜାସ୍ୱତ୍ୱ occupancy right.
[ଦ୍ର—ଜମିର ପ୍ରକାର, ବ୍ୟବହାର ଓ ଜମି ଦଖଲ କରିବାର ସମୟ ଅନୁସାରେ ପ୍ରଜାର ଜମିରେ ଆଇନାନୁଯାୟୀ ଭିନ୍ନ ଭିନ୍ନ ସ୍ୱତ୍ୱ ପ୍ରବର୍ତ୍ତେ ।]

**ପ୍ରଜାସ୍ୱତ୍ୱ ଆଇନ୍**—ଦେ. ବ—ଯେଉଁ ଆଇନରେ ସରକାର, ଜମିଦାର ଓ
Prajāswatwa āin ପ୍ରଜାଙ୍କର ପରସ୍ପର ସମ୍ପର୍କ ଓ ସ୍ୱତ୍ୱ ଆଦି ଲିପିବଦ୍ଧ କରିଥାଆନ୍ତି—Tenancy Act; law governing the relationship between a landlord and his tenants.

[ଦ୍ର—ବର୍ତ୍ତମାନ ୧୯୧୩ ସାଲର ୩ ଆଇନକୁ ଓଡ଼ିଶାର ପ୍ରଜାସ୍ୱତ୍ୱ ଆଇନ ବୋଲାଯାଏ । ଏଥିରେ ପ୍ରଜାମାନଙ୍କ ଶ୍ରେଣୀବିଭାଗ ଜମିଦାରଙ୍କୁ ଖଜଣା ଦେବାର ନିୟମ, ଖଜଣା ନ ଦେବା ପ୍ରଜାନାମରେ ମକଦ୍ଦମା, ପ୍ରଜାମାନଙ୍କର ବାଉନ୍ଦ ସ୍ୱତ୍ୱ, ପ୍ରଜାର ଜମିର ଖରିଦ ବିକ୍ରି, ମଧ୍ୟସ୍ୱତ୍ୱ, ରଇତି, ଶିକ୍‌ମି ଆଦି କୋଟରେ ପ୍ରଜାର ଭିନ୍ନ ଭିନ୍ନ ଅଧିକାର, ପ୍ରଜାଙ୍କୁ ଜମିରୁ ବେଦଖଲ କରିବା, ଜମିର ଉନ୍ନତିବିଧାନ କରିବା, ଜମି ଛାଡ଼ି ଦେବା, ପ୍ରଜାଙ୍କୁ ପାଉତି ଦେବା ଆଦି ବିଷୟରେ ନିୟମ ଓ କଟକଣାମାନ ଲିପିବଦ୍ଧ ହୋଇଅଛି ।]

**ପ୍ରଜାହିତ**—ସ. ବ. (ପ୍ରଜା+ହିତ)—୧ । ପ୍ରଜାମାନଙ୍କର କଲ୍ୟାଣ ବା
Prajāhita ମଙ୍ଗଳ—1. Benefit of the subjects
୨ । ସନ୍ତାନମାନଙ୍କର ମଙ୍ଗଳ—
2. Benefit of the children.
୩ । (ବହୁବ୍ରୀହି)—ଜଳ—3. Water.
ସ. ବି—୧ । ପ୍ରଜାଙ୍କ ପକ୍ଷେ କଲ୍ୟାଣଦାୟକ, ପ୍ରଜାମାନଙ୍କର ହିତକର—1 Beneficial to the subjects.
୨ । ପ୍ରଜାମାନଙ୍କର ମଙ୍ଗଳକାମୀ—
2. Wishing good to the subjects or tenants.

**ପ୍ରଜିତ୍**—ସ. ବ—ବିଜେତା (ହି. ଶ)—
Prajit Victor.

**ପ୍ରଜୀବନ**—ସ. ବ—ଜୀବିକା (ହି. ଶ)—
Prajibana Livelihood.

**ପ୍ରଜୁଷ୍ଟ**—ସ. ବିଣ. ପୁଂ. (ପ୍ର+ଜୁଷ୍ ଧାତୁ=ସେବା କରିବା+କର୍ତ୍ତୃ.
Prajushṭa ତ)—(କୌଣସି ବ୍ୟକ୍ତି ବା ବିଷୟ ପ୍ରତି) ଅତ୍ୟନ୍ତ
(ପ୍ରଜୁଷ୍ଟା—ସ୍ତ୍ରୀ) ଆସକ୍ତ ବା ଅନୁରକ୍ତ—Devoted to, much attached.

**ପ୍ରଜେଶ**—ସ. ବ. (୬ଷ୍ଠୀ ତତ୍; ପ୍ରଜା+ଈଶ)—
Prajeśa ପ୍ରଜାପତି (ଦେଖ)—Prajāpati (See)
(ପ୍ରଜେଶ୍ୱର—ଅନ୍ୟରୂପ)

**ପ୍ରଜ୍ଝଟିକା**—ସ. ବ—ପଜ୍ଝଟିକା (ଦେଖ)
Prajjhaṭikā Pajjhaṭikā (See)

**ପ୍ରଜ୍ଞ**—ସ. ବିଣ. ପୁଂ (ପ୍ର+ଜ୍ଞା ଧାତୁ=ଜାଣିବା+କର୍ତ୍ତୃ. ଅ)—
Prajña ୧ । ଜ୍ଞାନୀ—1. Wise.
(ପ୍ରଜ୍ଞା—ସ୍ତ୍ରୀ) ୨ । ବିଚକ୍ଷଣ—2 Sharp; clever.
[ପ୍ରଜ୍ଞତା(ତ୍ୱ)—ବି] ୩ । ପଣ୍ଡିତ, ବିଦ୍ୱାନ୍—3. Learned.
୪ । (ପ୍ର+ଜାନୁ+କ, ନିପାତନ)—ପ୍ରଣତଜାନୁକ—
4. Having bent knees; bandy-legged.
୫ । (ଅନ୍ୟ ସଙ୍ଗେ)—ପରିଚିତ—
5 Acquainted with (another).

**ପ୍ରଜ୍ଞପ୍ତି**—ସ. ବ (ପ୍ର+ଜ୍ଞପ୍ତି)—୧ । ଉତ୍ତମରୂପେ ଜଣାଇବା—
Prajñapti 1. Giving of information.
୨ । ସୂଚନା—2. Indicating.
୩ । ସଙ୍କେତ—3. Hint.

**ପ୍ରଜ୍ଞା**—ସ. ବ. (ପ୍ର+ଜ୍ଞା ଧାତୁ+ଭାବ. ଅ+ସ୍ତ୍ରୀ. ଆ)—୧ । ବୁଦ୍ଧି—
Prajñā 1. Understanding; intellect.

୨ । ଜ୍ଞାନ—2. Wisdom; knowledge.
୩ । ଭଲମନ୍ଦ ବିଚାର, ବିବେଚନା—
3. Judgment, discrimination.
୪ । ମନ୍ତ୍ରଣା—4. Advice; counsel; consultation.
୫ । ଚତୁରତା—5. Cleverness; shrewdness.
୬ । ପ୍ରାଜ୍ଞୀ ସ୍ତ୍ରୀ, ବୁଦ୍ଧିମତୀ ସ୍ତ୍ରୀ—
6. A learned or wise lady.
୭ । ସରସ୍ୱତୀ—7. The Hindu Goddess of learning
୮ । ମନର ଏକାଗ୍ରତା (ବି. ଶ)—
8 Intentness; close attention.
୯ । ସଙ୍କେତ (ଜ୍ଞାନେନ୍ଦ୍ର)—9 Hint; indication.
ସଂ ବିଣ—ପ୍ରଜ୍ଞର ସ୍ତ୍ରୀଲିଙ୍ଗ—Feminine of Prajña.

**ପ୍ରଜ୍ଞାଚକ୍ଷୁଃ**—ସଂ. ବି—୧ । (ରୂପକ; ପ୍ରଜ୍ଞା+ଚକ୍ଷୁ)—
Prajñāchakshuh ଚକ୍ଷୁ ସଙ୍ଗେ ତୁଳନୀୟ ବୁଦ୍ଧି—
1. Intelligence compared to the eye; the eye of understanding.
୨ । (ବହୁବ୍ରୀହି)—ଧୃତରାଷ୍ଟ୍ରଙ୍କ ନାମ—2. An epithet of the blind king Dhrutarāshtra.
ସଂ. ବିଣ. (ବହୁବ୍ରୀହି)—୧ । ଯେ ପ୍ରଜ୍ଞାରୂପ ଚକ୍ଷୁଦ୍ୱାରା ବିଷୟମାନ ଦେଖେ; ଜ୍ଞାନୀ—1. Seeing with the eye of understanding or wisdom; wise.
୨ । (ବ୍ୟଙ୍ଗ)—ଅନ୍ଧ (ବି. ଶ)—2. (ironical) Blind.

**ପ୍ରଜ୍ଞାନ**—ସଂ. ବି. (ପ୍ର+ଜ୍ଞାନ)—୧ । ବୁଦ୍ଧି—
Prajñāna 1. Intellect.
୨ । ଜ୍ଞାନ—2. Wisdom.
୩ । ଚିହ୍ନ, ସଂକେତ—3 Sign; token.
୪ । ଚୈତନ୍ୟ—4. Inner consciousness.
ସଂ. ବିଣ. ପୁଂ—ଜ୍ଞାନୀ—Wise.

**ପ୍ରଜ୍ଞା ବାଦ**—ସ.ବି. (ମ.ପ.ଲୋ.କର୍ମଧା)—୧ । ଜ୍ଞାନ କଥା, ପ୍ରାଜ୍ଞ ବାକ୍ୟ—
Prajña bāda 1. A wise saying.
୨ । ଜ୍ଞାନୀ ବ୍ୟକ୍ତିର କଥାପରି ଅନୁମିତ ବାକ୍ୟ—
2. Seemingly wise saying.

**ପ୍ରଜ୍ଞାବାନ୍**—ସ. ବିଣ. ପୁଂ (ପ୍ରଜ୍ଞା+ବତ୍)—
Prajñābān ୧ । ପଣ୍ଡିତ; ବିଦ୍ୱାନ୍—1. Learned.
(ପ୍ରଜ୍ଞାମୟ—ଅନ୍ୟରୂପ) ୨ । ଜ୍ଞାନୀ—2 Wise.
ପ୍ରଜ୍ଞାବତୀ / ପ୍ରଜ୍ଞାମୟୀ } ଅନ୍ୟରୂପ ୨ । ବୁଦ୍ଧିମାନ୍—2. Intelligent.
୪ । ଚତୁର—3. Shrewd.

**ପ୍ରଜ୍ଞା ବୃଦ୍ଧ**—ସ. ବିଣ. ପୁଂ (ଷଷ୍ଠୀ ତତ୍; ପ୍ରଜ୍ଞା+ବୃଦ୍ଧ)—
Prajña bruddha (ବୟସରେ ନୁହେଁ) ଜ୍ଞାନରେ ବଡ଼—
(ପ୍ରଜ୍ଞାବୃଦ୍ଧା—ସ୍ତ୍ରୀ) Old in wisdom (not in years).

**ପ୍ରଜ୍ଞୀ**—ସଂ. ବିଣ. ପୁଂ. (ପ୍ରଜ୍ଞା+ଇନ୍; ୫ମୀ. ୧ବ)—
Prajñi ପ୍ରଜ୍ଞାବାନ୍ (ଦେଖ)
(ପ୍ରଜ୍ଞିନୀ—ସ୍ତ୍ରୀ) Prajñābān (See)

**ପ୍ରଜ୍ଞୁ**—ସଂ. ବିଣ. ପୁଂ. (ପ୍ର+ଜାନୁ, ନ୍ୟାୟତ)—ପ୍ରଶସ୍ତଜାନୁକ—
Prajñu Bandy-legged.

**ପ୍ରଜ୍ୱଳନ**—ସଂ. ବିଣ. (ପ୍ର+ଜ୍ୱଳନ)—
Prajwalana ୧ । ଧୁ ଧୁ ଜଳିବା; ଅତ୍ୟନ୍ତ ଦହନ—
1. Intense burning, blazing.
୨ । ନିଆଁରୁ ଶିଖା ଉଠି ଜଳିବା—
2. Flaming up of fire; burning.
୩ । ପ୍ରଦୀପନ—
3. Setting fire; lighting; kindling.
୪ । ନିଆଁ ଲାଗିବା—4. Being on fire.

**ପ୍ରଜ୍ୱଳନୀୟ**—ସଂ. ବିଣ. (ପ୍ର+ଜ୍ୱଳନୀୟ)—
Prajwaliniya ଜ୍ୱଳନୋପଯୁକ୍ତ; ଦାହ୍ୟ—
Combustible, inflammable

**ପ୍ରଜ୍ୱଳିତ**—ସଂ. ବିଣ. (ପ୍ର+ଜ୍ୱଳିତ)—
Prajwalita ଜ୍ୱଳନ ଯୁକ୍ତ, ଜଳୁଥିବା; ପ୍ରଦୀପ୍ତ—
Inflamed; burning; blazing.

**ପ୍ରଜ୍ୱଳିବା**—ଦେ. କ୍ରି. (ସଂ. ପ୍ରଜ୍ୱଳନ)—
Prajwaliba ଅତ୍ୟନ୍ତ ଜଳିବା; ପ୍ରଦୀପ୍ତ ହେବା—
ପ୍ରଜ୍ଜ୍ୱଳା प्रजलना To blaze; to burn intensely.
ବିରହ ଜଳେ ମନେ ପ୍ରଜ୍ୱଳ । ତ୍ୟାଗୀ, ପରତେ ଗୀତା ।

**ପ୍ରଜ୍ୱଳେ**—ଦେ. କ୍ରି. ବିଣ. (ସଂ. ପ୍ରଜ୍ୱଳିତ)—
Prajwale ପ୍ରବଳ ଭାବରେ (ଜଳିବା)—
(burning) Violently.
କଲେ ପ୍ରଜ୍ୱଳେ ଆର୍ତ୍ତ, ଭାବୁ କଲେ ପୂର୍ଣ୍ଣିମା ଏବେ ।
ଭକ୍ତ. କୋଡ଼ିଆଣ୍ଡ ସୁନ୍ଦର ।

**ପ୍ରଜ୍ୱାଳନ**—ସଂ. ବି. (ପ୍ର+ଜ୍ୱାଳନ)—ଜଳାଇବା; ନିଆଁ ଲଗାଇବା—
Prajwālana Kindling; setting fire to;
(ପ୍ରଜ୍ୱାଳିତ—ବିଣ) igniting.

**ପ୍ରଜ୍ୱାଳିତ**—ସଂ. ବିଣ. (ପ୍ର+ଜ୍ୱାଳିତ)—
Prajwālita ଯହିଁରେ ନିଆଁ ଲଗାଇ ଦିଆଯାଇ ଥାଏ; ପ୍ରଦୀପିତ—
Enkindled; set fire to; ignited.

**ପ୍ରଡୀନ**—ସଂ. ବିଣ. (ପ୍ର+ଡୀନ)—ପକ୍ଷୀମାନଙ୍କର ତିର୍ଯ୍ୟକ୍ ଗତି—
Pradina Oblique flight of birds.

**ପ୍ରଣତ**—ସଂ. ବିଣ. ପୁଂ. (ପ୍ର+ନମ୍ ଧାତୁ+କର୍ତ୍ତୃ. ତ, ଣତ୍ୱ ବିଧାନ)—
Pranata ୧ । କୃତ ପ୍ରଣାମ, ଯେ ନମସ୍କାର କରିଅଛି—
(ପ୍ରଣତା—ସ୍ତ୍ରୀ) 1 Having made obeisance; obeisant.
(ପ୍ରଣତି—ବି) ୨ । ନତ; ଆଗକୁ ନଇଁ ପଡ଼ିଥିବା—
2. Bent; bowed down; prostrate.
୩ । ବକ୍ର—3. Curved; crooked; oblique.
୪ । ପଟୁ—4. Skilful; competent.
୫ । ନମ୍ର—5. Humble.
୬ । ଅନୁଗତ; ଆଜ୍ଞାନୁବର୍ତ୍ତୀ—6. Obedient.
ସ. ବି—୧ । ଭକ୍ତ (ବି. ଶ)—1. Devotee.
୨ । ଉପାସକ (ବି. ଶ)—2. Worshipper.

**ପ୍ରଣତପାଳ**—ସ.ବଣ.ପୁଂ. (୬ଷ୍ଠୀ ତତ ; ପ୍ରଣତ+ପାଳ ଧାତୁ+କର୍ତ୍ତୃ. ଅ)—
Praṇatapāla ଭକ୍ତମାନଙ୍କର ରକ୍ଷକ—Protecting one's devotees
(ପ୍ରଣତପାଳକ—ଅନ୍ୟରୂପ)
( ପ୍ରଣତପାଳୀ, ପ୍ରଣତ ପାଳକୀ)—ସ୍ତ୍ରୀ )

**ପ୍ରଣତାର୍ତ୍ତିହର**—ସ. ବଣ ପୁଂ. (ପ୍ରଣତ+ଆର୍ତ୍ତି+ହର)—
Praṇatārttihara ଯେ ଭକ୍ତର ଦୁଃଖକୁ ହରଣ କରେ—
(ପ୍ରଣତାର୍ତ୍ତିହର୍ତ୍ତ୍ରୀ—ସ୍ତ୍ରୀ) Removing the hardship or misery of one's devotees.

**ପ୍ରଣତି**—ସ. ବ. (ପ୍ର+ନମ୍ ଧାତୁ+ଭାବ. ତି, ଶବ୍ଦ ବଧାନ)—
Praṇati ୧ । ପ୍ରଣିପାତ, ପ୍ରଣାମ, ଦଣ୍ଡବତ—
1. Obeisance; bow; salutation.
୨ । ନମ୍ରଭାବ; ନମ୍ରତା—2. Humility.
୩ । ଶିଷ୍ଟାଚାର—3 Courtesy; etiquitte.

**ପ୍ରଣପତ**—ଗ୍ରା. ବ. (ସ. ପ୍ରଣିପାତ)—ପ୍ରଣିପାତ (ଦେଖ)
Praṇapata Praṇipāta (See)
প্রণতি
प्रणाम
ଅଚ୍ୟୁତ ସେ ପ୍ରଣପତେ ହୋଇ ବନ୍ଦିଲେ ।
ପ୍ରାଚୀ ଶ୍ରୀ ଗୁରୁଭକ୍ତି ଗୀତା ।

**ପ୍ରଣପତ୍ୟ**—ଦେ. ବ. (ସ. ପ୍ରଣିପାତ)—ନମସ୍କାର, ଦଣ୍ଡବତ—
Praṇapatya Obeisance; salutation.
ଦେ. ବଣ—ପ୍ରଣମିତ (ଦେଖ)—Praṇamita (See)

**ପ୍ରଣପତ୍ୟ ହେବା**—ଦେ. କ୍ରି—ନମସ୍କାର କରିବା—
Praṇapatya hebā To bow down in reverence.
প্রণতি হওয়া प्रणवना

**ପ୍ରଣବ**—ସଂ. ବ. (ପ୍ର+ନୁ ଧାତୁ=ସ୍ତବ କରିବା+କରଣ ଅ; ଶବ୍ଦବଧାନ,
Praṇaba ଯାହାଦ୍ୱାରା ସ୍ତବ କରାଯାଏ)—୧ । ଓଁକାର—
1. The mystical and sacred syllable 'om' uttered in the beginning of a Mantra.

**ପ୍ରଣାୟକ**—ସଂ. ବ. ପୁଂ (ପ୍ର+ନୀ ଧାତୁ+କର୍ତ୍ତୃ. ଅକ)—
Praṇāyaka ୧ । ସୈନ୍ୟାଧ୍ୟକ୍ଷ—1. A commander of an army.
୨ । ପ୍ରଧାନ ପରିଚାଳକ—2. Chief guide; a head; a chief,
୩ । ବିଷ୍ଣୁ—3. Bishṇu.
୪ । ଈଶ୍ୱର—4. God.
୫ । ଏକପ୍ରକାର ଢକ୍କା—5. A kind of drum.

**ପ୍ରଣବରୁ ଅଶୁଦ୍ଧ**—ଦେ. ବଣ—ପ୍ରଥମରୁ ବିଗିଡ଼ିବା (କର୍ମ)—
Praṇabaru aśuddha (a work) Spoilt from the beginning.
প্রণবথেকে অশুদ্ধ अव्वलसे बिगड़ा
[ ଦ୍ର—ପ୍ରଥମେ ପ୍ରଣବ ବା 'ଓଁ' ଉଚ୍ଚାରଣ ନ କରି ବା ଅଶୁଦ୍ଧ ଭାବରେ ଉଚ୍ଚାରଣ କରି କୌଣସି ମନ୍ତ୍ର ପଢ଼ିଲେ ତାହା ନିଷ୍ଫଳ ହୁଏ ବୋଲି ଶାସ୍ତ୍ରରେ ଅଛି । ସେହିପରି କୌଣସି କାର୍ଯ୍ୟ ଆରମ୍ଭରୁ ବିଗିଡ଼ିଲେ ତାହା ଫଳଦାୟକ ହୁଏ ନାହିଁ ଓ ତାହାକୁ ପ୍ରଣବରୁ ଅଶୁଦ୍ଧ ବୋଲାଯାଏ । ]

**ପ୍ରଣମିତ**—ସଂ. ବଣ. (ପ୍ର+ନମିତ, ଶବ୍ଦ ବଧାନ)—
Praṇamita ୧ । ନମସ୍କାର କରିଥିବା—1 Bowed down; having made obeisance.
(ପ୍ରଣମିତା—ସ୍ତ୍ରୀ)
୨ । ନତ—2. Bent.
୩ । ସମ୍ମାନ ସହକାରେ ପ୍ରଦତ୍ତ—
3. Offered or given respectfully.
ଦେ. ବ—ପ୍ରଣାମ; ନମସ୍କାର—Obeisance; salutation.
ଶୁଣି ପ୍ରଣମିତ କଲେ ଅଶ୍ରୁଜ ଜେମା ।
ଶ୍ରୀଶୁଣକର. ଉଷା ଅଭିଳାଷ ।

**ପ୍ରଣମିତ ହେବା**—ଦେ. କ୍ରି (ସ. ପ୍ରଣମିତ)—ପ୍ରଣାମ କରିବା—
Praṇamita hebā To make obeisance.
প্রণামকরা प्रणवना
ପାଖେଟ ଖଣ୍ଡେଦୂର ଯାଇ, ସାଙ୍ଗାଙ୍କୁ ପ୍ରଣମିତ ହୋଇ ।
ଭୂପତି. ପ୍ରେମ ପଞ୍ଚାମୃତ ।

**ପ୍ରଣମିବା**—ଦେ. କ୍ରି. (ପଦ୍ୟ) (ସ. ପ୍ରଣାମ)—ପ୍ରଣାମ କରିବା—
Praṇamibā To make obeisance; to fall prostrate at another's feet.
প্রনমা प्रणवना
ସାଙ୍ଗାଙ୍କୁ ପ୍ରଣମି କରଯୋଡ଼ି ଭଲ ହୋଇ ଅଛନ୍ତି ।
ରଘୁନାଥ—ଉଷା ।

**ପ୍ରଣମ୍ୟ**—ଦେ. ବ.—(ସ. ପ୍ରଣାମ)—ପ୍ରଣାମ, ନମସ୍କାର—
Praṇamya প্রণাম प्रनाम Obeisance.
ପ୍ରଣମ୍ୟ କରି ଜଣ ଜଣ—ଜଗନ୍ନାଥ. ଭାଗବତ ।

**ପ୍ରଣୟ**—ସ. ବ.(ପ୍ର+ନୀ ଧାତୁ=ପ୍ରାପ୍ତ ହେବା+ଭାବ. ଅ, ଶବ୍ଦବଧାନ)—
Praṇaya ୧ । ପ୍ରେମ, ପ୍ରୀତି—1 Love.
୨ । ବନ୍ଧୁତା; ବନ୍ଧୁସ୍ନେହ—
2 Friendly regard; friendship.
୩ । ଅନୁରାଗ, ସ୍ନେହ—3. Affection; fondness.
୪ । ଆସକ୍ତି; ମନର ମେଳ; ଭାବ, ଘନିଷ୍ଠତା—
4 Attachment; intimacy; familiarity.
୫ । ପ୍ରାର୍ଥନା; ଯାଚଞ୍ଚା—
5. Asking; begging; beseeching; praying.
୬ । ଆଳାପ—6. Acquaintance; acquaintance due to mutual conversation.
୭ । ଶ୍ରଦ୍ଧା; ଭକ୍ତି—
7. Regard; devotion; reverence.
୮ । ବିଶ୍ୱାସ—8. Trust; confidence.
୯ । ପ୍ରସବ; ସନ୍ତାନ ଉତ୍ପାଦନ—
9. Giving birth to; bringing forth children.
୧୦ । ନିର୍ବାଣ; ମୁକ୍ତି; ମୋକ୍ଷ—
10. Final emancipation.
୧୧ । ପ୍ରୀତିପୂର୍ବକ ପ୍ରାର୍ଥନା—
11. Affectionate solicitation.
୧୨ । (+କର୍ତ୍ତୃ. ଅ) ନେତା—12. A leader; a guide.
୧୩ । (+ଭାବ. ଅ) ନେତୃତ୍ୱ—
13. Guidance; leadership.

**ପ୍ରଣୟ କଳହ**—ସ. ବ. (ମ. ପ. ଲୋ. କର୍ମଧା, ପ୍ରଣୟ+କଳହ)—
Praṇaya kalaha ୧ । ପ୍ରେମିକ ପ୍ରେମିକାଙ୍କ ମଧ୍ୟରେ ଅଳ୍ପକାଳସ୍ଥାୟୀ କଳି—1 Love-quarrels (usually ending in speedy reconciliation).
୨ । ଥଟ୍ଟାରେ ଥଟ୍ଟାରେ କଳି —
2 (figurative) A mock quarrel.

**ପ୍ରଣୟ ଗୀତ**—ସ. ବ—ପ୍ରେମୋଦ୍ଦୀପକ ଗାନ—
Praṇaya gīta Love song; amatory song.
(ପ୍ରଣୟଗୀତିକା, ପ୍ରଣୟଗୀତି, ପ୍ରଣୟ ସଙ୍ଗୀତ, ପ୍ରଣୟଗାଥା—ଅନ୍ୟରୂପ)

**ପ୍ରଣୟନ**—ସ. ବ. (ପ୍ର+ନୀ ଧାତୁ+ଭାବ ଅନ, ଣତ୍ୱ ବିଧାନ)—
Praṇayana ୧ । ନିର୍ମାଣ, ସର୍ଜନ—1. Making; creating; constructing, building.
୨ । ସମ୍ପାଦନ—2 Performance; execution; carrying out; accomplishment.
୩ । ରଚନା—3. Composing; arranging, compiling.
୪ । ଉଦ୍ଭାବନ—4. Inventing.
୫ । (+କରଣ. ଅନ)—ଅଗ୍ନି ସମିନ୍ଧନ କରିବା ମନ୍ତ୍ର, ଯେଉଁ ମନ୍ତ୍ର ପାଠ କରି ହୋମାଗ୍ନି ଜାଳିବାକୁ ହୁଏ—
5. Vedic formula recited before kindling a sacrificial fire.
୬ । (+ଭାବ. ଅନ)—ଚଳାଇବା—6 Conducting.
୭ । ବାଣ୍ଟିବା—7. Distributing.
୮ । ପୁରସ୍କାରଦାନ, ପୁରସ୍କୃତ—8, Rewarding.
୯ । ଦଣ୍ଡର ଆଦେଶ—9. Ordering or awarding of punishment; sentencing.
୧୦ । କୌଣସି କାର୍ଯ୍ୟର ସୂତ୍ରପାତ କରଣ—
10 Founding; starting.
୧୧ । ସ୍ଥାପନ; ପ୍ରତିଷ୍ଠା—
11 Placing; establishing; setting up

**ପ୍ରଣୟ ପତ୍ର**—ସ. ବ. (ମ. ପ. ଲୋ. କର୍ମଧା; ପ୍ରଣୟ+ପତ୍ର)—
Praṇaya patra ପ୍ରଣୟୀ ଓ ପ୍ରଣୟିନୀଙ୍କ ମଧ୍ୟରେ ଦିଆନିଆ ହେବା ପତ୍ର; ପ୍ରେମଲିପି—Love letter.
ପ୍ରଣୟ ପତ୍ରିକା, ପ୍ରଣୟ ଲେଖ, ପ୍ରଣୟ ଲିପି } ଅନ୍ୟରୂପ

**ପ୍ରଣୟ ପାଶ**—ସ. ବ. (ରୂପକ, ପ୍ରଣୟ+ପାଶ)—ପାଶ ବା ଜାଲରୂପେ
Praṇaya pāśa କଳ୍ପିତ ପ୍ରଣୟ; ପରସ୍ପର ପ୍ରତି ସୁଦୃଢ଼ ଅନୁରାଗ—
(ପ୍ରଣୟବନ୍ଧନ—ଅନ୍ୟରୂପ) Tie of love or affection; intense love; attachment

**ପ୍ରଣୟ ଭାଜନ**—ସ. ବଣ. (୬ଷ୍ଠୀ ତତ୍, ପ୍ରଣୟ+ଭାଜନ)—
Praṇaya bhājana ପ୍ରୀତିପାତ୍ର; ଯାହାଙ୍କୁ ପ୍ରେମ କରିବା ଉଚିତ,
(ପ୍ରଣୟ ପାତ୍ର; ପ୍ରଣୟାସ୍ପଦ—ଅନ୍ୟରୂପ) ପ୍ରିୟ; ପ୍ରୀତିଭାଜନ—
Beloved, dear.

**ପ୍ରଣୟ ସମ୍ଭାଷଣ**—ସ. ବ. (ମ. ପ. ଲୋ; କର୍ମଧା; ପ୍ରଣୟ+ସମ୍ଭାଷଣ)—
Praṇaya sambhāshaṇa ୧ । ପ୍ରେମାଳାପ; ପ୍ରଣୟୀ ଓ ପ୍ରଣୟିନୀ
(ପ୍ରଣୟସମ୍ବୋଧନ—ଅନ୍ୟରୂପ) ବା ୨ଜଣ ପ୍ରଣୟୀଙ୍କ ମଧ୍ୟରେ ହେବା ଆଳାପ—1. Talk between lovers or friends.
୨ । ନାୟିକା ଓ ନାୟକଙ୍କର ପରସ୍ପର ପ୍ରତି ଅନୁରାଗବ୍ୟଞ୍ଜକ ଡାକ—2 Term of endearment used by lovers to each other.

**ପ୍ରଣୟାକାଂକ୍ଷୀ**—ସଂ. ବଣ. ପୁଂ. (୬ଷ୍ଠୀ ତତ୍)—
Praṇayākānkshī କୌଣସି ବ୍ୟକ୍ତିର ପ୍ରଣୟଲାଭାର୍ଥ ଉତ୍ସୁକ—
(ପ୍ରଣୟାକାଂକ୍ଷିଣୀ—ସ୍ତ୍ରୀ) Desirous of gaining the love or
(ପ୍ରଣୟାକାଂକ୍ଷା—ବି) attachment of a person

**ପ୍ରଣୟାଭିମାନ**—ସଂ. ବ. (ମ. ପ. ଲୋ, ପ୍ରଣୟ+ଅଭିମାନ)—
Praṇayābhimāna ପ୍ରଣୟ ବ୍ୟାପାର ସମ୍ପର୍କରେ ପ୍ରଣୟୀ ଓ ପ୍ରଣୟିନୀଙ୍କ ମଧ୍ୟରେ ଜାତ ଅଭିମାନ—
ପ୍ରଣୟାଭିମାନୀ—ପୁଂ, ପ୍ରଣୟାଭିମାନିନୀ—ସ୍ତ୍ରୀ } ବଣ
Sullenness arising out of love matter between two lovers.

**ପ୍ରଣୟାଳାପ**—ସ. ବ. (ମ. ପ. ଲୋ. କର୍ମଧା, ପ୍ରଣୟ+ଆଳାପ)—
Praṇayālāpa ପ୍ରେମ ସମ୍ଭାଷଣ, ନାୟକ ନାୟିକାଙ୍କ ମଧ୍ୟରେ ହେବା ସ୍ନେହାଳାପ—Love talk.
[ ଦ୍ର—ଏହିପରି ସମାସରେ ପ୍ରଣୟ ଶବ୍ଦ ସଙ୍ଗେ ଅନେକ ଶବ୍ଦ ଯୁକ୍ତ ହୁଏ, ଯଥା—ପ୍ରଣୟଗର୍ବିତ, ପ୍ରଣୟଜନିତ, ପ୍ରଣୟପାତ୍ର, ପ୍ରଣୟରକ୍ତ, ପ୍ରଣୟବନ୍ଧନ, ପ୍ରଣୟଗାଥା, ପ୍ରଣୟବଚନ, ପ୍ରଣୟଲିପି, ପ୍ରଣୟଭଙ୍ଗ, ପ୍ରଣୟଶୀଳ, ପ୍ରଣୟଶାଳୀ, ପ୍ରଣୟାଭିଳାଷ, ପ୍ରଣୟାନୁରାଗ, ପ୍ରଣୟାଦର, ପ୍ରଣୟାତ୍ମକ, ପ୍ରଣୟସଞ୍ଚାର, ପ୍ରଣୟାନୁରାଗ, ପ୍ରଣୟାସକ୍ତ, ପ୍ରଣୟାହ୍ୱାନ, ପ୍ରଣୟ ସମ୍ବୋଧନ, ପ୍ରଣୟ ବ୍ୟଞ୍ଜକ ଇତ୍ୟାଦି ।]

**ପ୍ରଣୟିନୀ**—ସ. ବଣ. ସ୍ତ୍ରୀ. ( ପ୍ରଣୟିନ୍+ସ୍ତ୍ରୀ. ଈ )—
Praṇayinī 'ପ୍ରଣୟୀର' ସ୍ତ୍ରୀ ଲିଙ୍ଗ—
Feminine of Praṇayī.
ସ. ବି—୧ । ପ୍ରେମପାତ୍ର ସ୍ତ୍ରୀ—
1. Mistress; a man's sweet heart.
୨ । ସ୍ତ୍ରୀ; ଭାର୍ଯ୍ୟା—2. Wife.

**ପ୍ରଣୟୀ**—ସ. ବ. ପୁଂ. ( ପ୍ରଣୟ+ଅସ୍ତି ଅର୍ଥରେ ଇନ୍, ୧ମା. ୧ବ )—
Praṇayī ୧ । ଯେ ସ୍ନେହ କରେ; ପ୍ରେମିକ—
(ପ୍ରଣୟିନୀ—ସ୍ତ୍ରୀ) 1. Lover.
୨ । ଯାହାଙ୍କୁ ସ୍ନେହ କରାଯାଏ, ପ୍ରୀତିପାତ୍ର—
2 Sweet heart; one's beloved person.
୩ । ସ୍ୱାମୀ—2. Husband.
ସ. ବଣ. ପୁଂ—ଅନୁରକ୍ତ; ଅନୁରାଗୀ—
Attached; devoted; loving.
୨ । ପ୍ରେମାସ୍ପଦ—2. Beloved

**ପ୍ରଣସ**—ସ. ବଣ. ପୁଂ. ( ବହୁବ୍ରୀହି, ପ୍ର=ପ୍ରଗତ ବା ବିଗତ+ନାସିକା,
Praṇasa ନାସିକା ସ୍ଥାନରେ ନସ୍ ଆଦେଶ ଓ ଣତ୍ୱ ବିଧାନ )—
(ପ୍ରଣସା—ସ୍ତ୍ରୀ) ରୋଗାଦିରେ ଯାହାର ନାକ ନଷ୍ଟ ହୋଇଅଛି—
One who has lost one's nose; noseless.

**ପ୍ରଣାଦ**—ସଂ. ବ. ( ପ୍ର+ନାଦ, ଶବ୍ଦ ସାଧନ )—
Praṇāda ୧ । ହର୍ଷ କୋଳାହଳ, ଆନନ୍ଦ ଧ୍ୱନି—
1. Shout of joy.
୨ । ଅତି ଉଚ୍ଚ ଶବ୍ଦ—2. Halloo; loud shout.
୩ । କର୍ଣ୍ଣନାଦ ରୋଗ, କାନରେ ଭଁ ଭଁ ଶବ୍ଦ ଅନୁଭୂତ ହେବା ରୋଗ—3. A disease in which various sounds are felt inside the ears.

**ପ୍ରଣାମ**—ସଂ. ବ. ( ପ୍ର+ନମ୍ ଧାତୁ=ନଇଁବା; ନମସ୍କାର କରିବା+ଭାବ. ଅ; ଶବ୍ଦ ସାଧନ )—
Praṇāma
୧ । ପ୍ରଣତି, ଭକ୍ତି ପୂର୍ବକ ନମସ୍କାର—
1. Obeisance; reverential salutation
୨ । ଜ୍ୟେଷ୍ଠ, ଶ୍ରେଷ୍ଠ ଓ ଗରିଷ୍ଠ ବ୍ୟକ୍ତିମାନଙ୍କ ସମ୍ମୁଖରେ ବା ଦେବପ୍ରତିମା ସମ୍ମୁଖରେ ବା ଈଶ୍ୱରଙ୍କୁ ଲକ୍ଷ୍ୟ କରି ମସ୍ତକକୁ ବା ଦେହକୁ ନତ କରି ହାତ ଯୋଡ଼ି ବା ଚରଣ ତଳେ ମୁଣ୍ଡ ଲଗାଇ ଅଭିବାଦନ କରିବା—
2. Reverential salutation made to one's elder or respectable people or to God or to a Deity by bowing down one's body.

[ ଦ୍ର—ପ୍ରଣାମ ସ୍ୱାପକର୍ଷିକ ବ୍ୟାପାର ଏବଂ ସାଧାରଣତଃ ୪ ପ୍ରକାର ଯଥା—ଅଭିବାଦନ, ପଞ୍ଚାଙ୍ଗ, ଅଷ୍ଟାଙ୍ଗ ଓ କରଶିରଃସଂଯୋଗ ।

ଅଭିବାଦନ—ନାମୋଚ୍ଚାରଣ ପୂର୍ବକ କ୍ଷମା ନମ୍ର ବଚନ ଉଚ୍ଚାରଣ ପୂର୍ବକ ନମସ୍କାର ।

ପଞ୍ଚାଙ୍ଗ ପ୍ରଣାମ—ବାହୁଦ୍ୱୟ, ଜାନୁଦ୍ୱୟ, ମସ୍ତକ, ବାକ୍ୟ ଓ ଦର୍ଶନେନ୍ଦ୍ରିୟ ଏହି ୫ଟିର ସଂଯୋଗରେ ନମସ୍କାର ।

ଅଷ୍ଟାଙ୍ଗ ବା ସାଷ୍ଟାଙ୍ଗ ପ୍ରଣାମ—ପଦଦ୍ୱୟ, ଜାନୁଦ୍ୱୟ, କରଦ୍ୱୟ, ବକ୍ଷଃସ୍ଥଳ, ମସ୍ତକ, ଦର୍ଶନେନ୍ଦ୍ରିୟ, ବାକ୍ୟ ଓ ମନ ଏହି ଆଠ ଗୋଟିର ସଂଯୋଗରେ ନମସ୍କାର ।

କରଶିରଃ ସଂଯୋଗ ପ୍ରଣାମ—ହସ୍ତ ଦ୍ୱୟକୁ ମୁଣ୍ଡରେ ଲଗାଇ କରିବା ନମସ୍କାର ।

କାୟିକ, ବାଚିକ ଓ ମାନସିକ ଭେଦରେ ମଧ୍ୟ ପ୍ରଣାମ ୩ ପ୍ରକାର । ]

**ପ୍ରଣାମି**—ଦେ. ବ. ( ସଂ. ପ୍ରଣାମ; ପ୍ରଣାମ ବେଳେ ଦେୟ ହେବାରୁ )—
Praṇāmi ଠାକୁରଙ୍କୁ ବା ଗୁରୁଜନମାନଙ୍କୁ ନମସ୍କାର କରିବା
ପ୍ରଣାମୀ ସମୟରେ ଦିଆଯିବା ଭେଟି, ସଲାମି, ନଜରନା—
परनामी A present given by one to a Deity or a respectable person while making obeisance.

ଦେହୁ ଭକ୍ତ ଦେବତାଙ୍କୁ ବହୁ ପ୍ରଣାମି ହେଲେ
ଟଙ୍କା ପଇସା ସେହିଠାରେ ପଡ଼ି ରହୁଥାଏ । ଫକୀରମୋହନ, ଗଳ୍ପସ୍ୱଳ୍ପ ।

**ପ୍ରଣାମୀ**—ସଂ. ବଣ. ପୁଂ (ପ୍ରଣାମ+ଇନ୍; ୧ମା. ୧ବ.)—ପ୍ରଣାମକାରୀ;
Praṇāmi ଯେ ନମସ୍କାର କରୁଥାଏ—Bowing down;
(ପ୍ରଣାମିନୀ—ସ୍ତ୍ରୀ) making obeisance.

**ପ୍ରଣାୟକ**—ସଂ.ବଣ. ପୁଂ (ପ୍ର+ନାୟକ; ଶବ୍ଦ ସାଧନ)—ପଥ ଦେଖାଉଥିବା—Leading; guiding.
Praṇāyaka
(ପ୍ରଣାୟିକା—ସ୍ତ୍ରୀ)
ସଂ. ବ. ପୁଂ—୧ । ନେତା ବ୍ୟକ୍ତି—1 Leader.
୨ । ସେନାପତି—2. Leader or commander of an army.

**ପ୍ରଣାଲ(ଳୀ)**—ସଂ. ବ. ( ପ୍ର+ନଲ୍ ଧାତୁ=ବାନ୍ଧିବା+କରଣ. ଅ, +ସ୍ତ୍ରୀ. ଈ; ଶବ୍ଦ ସାଧନ )—
Praṇāla(lī)
ପ୍ରଣାଲକ, ପ୍ରଣାଲିକା } ସ୍ତ୍ରୀ ୧ । ଜଳ ବାହାରିଯିବାର ବାଟ, ପାଣି ନାଳ; ନଳା, ନର୍ଦ୍ଦମା—
1. Channel; watercourse; drain.
୨ । ଧାଡ଼ି, ଶ୍ରେଣୀ—2. Row; line.
୩ । କାର୍ଯ୍ୟ ସାଧନର ବାଟ, ଉପାୟ—
3 Means; mediation.
୪ । ରୀତି—4. Custom; practice.
୫ । ନିୟମ—5 Rule
୬ । ପଦ୍ଧତି—6 Method.
୭ । ଦେଶାଚାର—7. Usage.
୮ । ଧାରା—8. Succession; series.
୯ । ( ଭୂଗୋଳ ) ଦୁଇ ବୃହତ୍ ଜଳ ଭାଗକୁ ସଂଯୋଗ କରିଥିବା ସଂକୀର୍ଣ୍ଣ ଜଳ ଭାଗ—9. ( geography ) Straits; a narrow channel connecting two wide expanses of water.
ଦେ. ବ.—ଶିବଲିଙ୍ଗର ଶକ୍ତି, ଶିବ ଲିଙ୍ଗର ଚତୁଃପାଖରେ ଥିବା ନାଳ—The channel round the phallic image of Śiba.

**ପ୍ରଣାଶ**—ସଂ. ବ—(ପ୍ର+ନଶ୍ ଧାତୁ+ଭାବ ଅ; ଶବ୍ଦ ସାଧନ)
Praṇāśa ୧ । ମୃତ୍ୟୁ—1. Death; decease.
(ପ୍ରନଷ୍ଟ—ବଣ.) ୨ । ବିନାଶ; ଧ୍ୱଂସ—2. Destruction; perdition; ruin.
୩ । ପଳାୟନ—3. Fleeing away.
୪ । ଲୋପ—4. Extinction.

**ପ୍ରଣିଧାନ**—ସଂ ବ (ପ୍ର+ନି+ଧା ଧାତୁ+ଭାବ.ଅନ, ଶବ୍ଦ ସାଧନ)
Praṇidhāna ୧ । ଚିତ୍ତର ଏକାଗ୍ରତା—
1. Concentration of mind.
୨ । ଅଭିନିବେଶ, ମନୋଯୋଗ—2. Attention.
୩ । ଧ୍ୟାନ—3. Contemplation; profound meditation.
୪ । ଚେଷ୍ଟା; ପ୍ରଯତ୍ନ; ପ୍ରୟାସ—
4. Great effort; exertion; endeavour.
୫ । ଯୋଗ; ସମାଧି—5 Concentrated meditation.
୬ । ପ୍ରବେଶ—6. Access; entrance.
୭ । ଅର୍ପଣ; ନ୍ୟାସ—7. Delivering; entrusting.
୮ । ଭକ୍ତିବିଶେଷ—8. A kind of devotion.

୯ । କର୍ମର ଫଳ ତ୍ୟାଗ—9. The renunciation of the fruit of one's action.

୧୦ । ଭାବୀ ଜନ୍ମ ସମ୍ବନ୍ଧେ କୌଣସି ପ୍ରକାର ପ୍ରାର୍ଥନା (ହି. ଶ) 10. A prayer about one's future birth.

**ପ୍ରଣିଧି**—ସଂ. ବ ( ପ୍ର+ନି+ଧା ଧାତୁ+କର୍ତ୍ତୃ. ଇ, ଣତ୍ୱବିଧି)—
Pranidhi ୧ । ଚର; ଦୂତ—1. Messenger, emissary.
୨ । କୌଣସି ବିଷୟ ଗୁପ୍ତଭାବରେ ଲକ୍ଷ୍ୟ କରିବା—2. Spying.
୩ । ଗୁପ୍ତଚର—3. Spy; secret emissary.
୪ । ଅନୁଚର, ସଙ୍ଗୀ—4. Companion, attendant; follower.
୫ । (+ଭାବ. ଇ) ପ୍ରାର୍ଥନା—5. Solicitation; entreaty.
୬ । ଅବଧାନ, ମନୋଯୋଗ—6. Attention.
୭ । ଅଙ୍ଗୀକାର; ପ୍ରତିଶ୍ରୁତି—7. Promise.
୮ । ନିୟୋଗ—8. Engagement.
୯ । ପଦ, ସ୍ଥାନ—9. Situation.
୧୦ । ତତ୍ପରତା (ଗ୍ଲାଡେନ୍)—10. Readiness.

**ପ୍ରଣିନାଦ**—ସଂ. ବ (ପ୍ର+ନିନାଦ, ଣତ୍ୱ ବିଧାନ)—୧ । ଗମ୍ଭୀର ଶବ୍ଦ—
Praninada 1. Deep rumbling sound.
୨ । ବଜ୍ରନିନାଦ—2. Thundering sound.

**ପ୍ରଣିପତନ**—ସଂ. ବ (ପ୍ର+ନି+ପତ୍ ଧାତୁ+ଭାବ ଅନ, ଣତ୍ୱବିଧି)—
Pranipatana ୧ । ନଇଁକରି କରିବା ନମସ୍କାର; ପ୍ରଣାମ, ପ୍ରଣତି—1. Reverent salutation; obeisance; salutation by bowing down
୨ । ନଇଁ ପଡ଼ିବା—2. Prostration; bowing down.

**ପ୍ରଣିପତ୍ୟ**—ସଂ. ଅ. (ସଂ. 'ପ୍ରଣିପତ୍ୟ' ଅସମାପିକା ରୂପର ଅର୍ଥ ନମସ୍କାର
Pranipatya କରି)—ପ୍ରଣାମ ପୂର୍ବକ; ନମସ୍କାର ସହ; ପ୍ରଣିପାତ ପୂର୍ବକ—Having saluted; after salutation.
(ଯଥା—ମୋର ପ୍ରଣିପତ୍ୟ ନିବେଦନ ଏହି କି... ।)
ଦେ ବ—ପ୍ରଣିପାତ, ନମସ୍କାର—Obeisance.
ବସାଇ ପ୍ରଣିପତ୍ୟ କଲେ, ବଧୂ ସମ ସେ ସବୁ ନାଦେ—
ଭକ୍ତ. ବୈଦେହୀଶବିଳାସ ।

**ପ୍ରଣିପତ୍ୟ ହେବା**—ଦେ. କ୍ରି.—ନମସ୍କାର କରିବା—To make
Pranipatya heba obeisance; to bow down
ପ୍ରଣାମକରିବା **ପ୍ରଜବନା** (ପ୍ରଣିପତ୍ୟ କରିବା—ଅନ୍ୟରୂପ)

**ପ୍ରଣିପାତ**—ସଂ. ବ (ପ୍ର+ନି+ପତ୍ ଧାତୁ+ଭାବ.ଅ)-ପ୍ରଣିପତନ (ଦେଖ)—
Pranipata Pranipatana (See)

**ପ୍ରଣିହିତ**—ସଂ. ବଣ (ପ୍ର+ନି+ଧା ଧାତୁ+କର୍ମ. ତ, ଣତ୍ୱ ବିଧାନ)—
Pranihita ୧ । ଅର୍ପିତ—1. Entrusted; delivered; consigned.
୨ । ସ୍ଥାପିତ—2. Placed: deposited.
୩ । ପ୍ରାପ୍ତ—3 Obtained; acquired.
୪ । ସ୍ୱୀକୃତ—4. Acknowledged, admitted.
୫ । ସ୍ଥିରୀକୃତ—5. Ascertained; decided; settled.
୬ । ମନୋଯୋଗୀ—6. Attentive.
୭ । ସମାହିତ—7. Engaged in meditation.
୮ । ବିସ୍ତୃତ, ପ୍ରସାରିତ—8 Spread; extended.
୯ । ମିଶ୍ରିତ—9. Mixed with.
୧୦ । ନିଯୁକ୍ତ—10. Applied; directed; employed.
୧୧ । ଗୁପ୍ତଚର ବା ଅନୁସନ୍ଧାନ ସାହାଯ୍ୟରେ ପ୍ରାପ୍ତ ହୋଇଥିବା—11. Spied out.
୧୨ । (+କର୍ତ୍ତୃ. ତ) ଯତ୍ନଶୀଳ—12. Careful
୧୩ । ହୁସିଆର—13. Cautious.

**ପ୍ରଣୀ**—ସଂ. ବ.—( ପ୍ର+ନୀ ଧାତୁ+କର୍ତ୍ତୃ. କ୍ୱିପ୍ )—ଈଶ୍ୱର (ହି. ଶ)
Prani God.

**ପ୍ରଣୀତ**—ସଂ. ବଣ (ପ୍ର+ନୀ ଧାତୁ+କର୍ମ. ତ) ୧ । କୃତ, ରଚିତ—
Pranita 1. Composed; made; done.
୨ । ଲିଖିତ—2. Written.
୩ । ନିର୍ମିତ—3. Built; constructed.
୪ । ପ୍ରସ୍ତୁତ—4. Prepared.
୫ । କଥିତ—5. Said; declared.
୬ । ପ୍ରତିଷ୍ଠିତ—6 Established.
୭ । ପ୍ରବେଶିତ—7. Introduced or thrust into.
୮ । ସଂଗୃହୀତ—8. Compiled.
୯ । ପ୍ରେରିତ—9. Sent; emitted; deputed.
୧୦ । ନିକ୍ଷିପ୍ତ—10. Thrown; cast.
୧୧ । ଉପଯୁକ୍ତ—11. Proper; fit.
୧୨ । ଅର୍ପିତ; ଦତ୍ତ—12 Delivered; given; handed over.
୧୩ । ଅଦାଲତରେ ନିଷ୍ପନ୍ନ, ଫଏସଲ କରି ଯାଇଥିବା—13. Decreed, disposed of
୧୪ । ସଂସ୍କୃତ (ହି. ଶ)—14. Repaired; reformed;
୧୫ । ଉତ୍ସୃଷ୍ଟ ( ହି. ଶବ୍ଦସାଗର )—15. Offered up; abandoned.
ସଂ. ବ—୧ । ମନ୍ତ୍ରାଦି ଦ୍ୱାରା ସଂସ୍କୃତ ଯଜ୍ଞୀୟ ଅଗ୍ନି—1. Sacrificial fire consecrated by mystical formulas.
୨ । ମନ୍ତ୍ର-ସଂସ୍କୃତ ଜଳ—2 Consecrated water.

**ପ୍ରଣୀତା**—ସଂ. ବ. ସ୍ତ୍ରୀ (ପ୍ରଣୀତ+ସ୍ତ୍ରୀ. ଆ)—ହୋମରେ ବ୍ୟବହୃତ
Pranita ଚଉକୋଣ ଜଳପାତ୍ରବିଶେଷ—A sort of rectangular cup used for keeping water at a Homa or vedic sacrifice.

**ପ୍ରଣୀତି**—ସଂ. ବ. (ପ୍ର+ନୀ ଧାତୁ+ଭାବ. ତି)—୧ । ନେତୃତ୍ୱ—
Praniti 1. Guidance; conduct
୨ । ଅନୁଗ୍ରହ—2. Favour.

**ପ୍ରଣୀୟ**—ସଂ. ବ (ପ୍ର+ନୀ ଧାତୁ+କରଣ. ଯ)—ଯଜ୍ଞ ପାତ୍ର, କ୍ଷୀର ଓ
Praniya ଅଗ୍ନି ଆଦି ସଂସ୍କାର କରିବାର ବୈଦିକ ମନ୍ତ୍ର (ହି. ଶ)—Vedic formula for consecrating anything.

**ପ୍ରଣୂତ**—ସଂ ବିଣ. (ପ୍ର+ନୂ ଧାତୁ=ସ୍ତୁତି କରିବା+କର୍ମ. ତ)—
Praṇūta ୧ । ଯାହାଙ୍କୁ ସ୍ତବ କରାଯାଇ ଅଛି—
1. One to whom a prayer has been offered.
୨ । ପ୍ରଶଂସିତ—2. Praised; eulogised.

**ପ୍ରଣେତା**—ସଂ. ବି ପୁଂ (ପ୍ର+ଣୀ ଧାତୁ+କର୍ତ୍ତୃ. ତୃ; ପ୍ରଣେତୃ. ୧ମା.
Praṇetā ୧ବ. ଶବ୍ଦରୂପ)—୧ । ରଚୟିତା—
(ପ୍ରଣେତ୍ରୀ—ସ୍ତ୍ରୀ) 1. Author; composer.
୨ । ନିର୍ମାତା—2. Builder; maker; constructor; creator.
୩ । ନେତା—3. A leader.
୪ । ଧର୍ମମତ ପ୍ରବର୍ତ୍ତକ—4. The promulgator of a religious doctrine; a teacher of religious tenets.

**ପ୍ରଣେୟ**—ସଂ. ବିଣ. (ପ୍ର+ଣୀ ଧାତୁ+କର୍ମ. ଯ)—୧ । ଅଧୀନ, ବଶୀଭୂତ,
Praṇeya ଅନୁଗତ—1. Docile, submissive; amenable; yielding.
୨ । ସୁନ୍ଦର, ରମଣୀୟ—2. Agreeable.
୩ । ପ୍ରାପଣୀୟ—3 Obtainable.
୪ । କୃତଲୌକିକସଂସ୍କାର—4. One on whom customary rites have been performed.

**ପ୍ରଣୋଦିତ**—ସଂ. ବିଣ. (ପ୍ର+ନୁଦ୍ ଧାତୁ ଣିଚ୍. ନୋଦି ଧାତୁ=ପ୍ରେରଣ
Praṇodita କରାଇବା+କର୍ମ. ତ; ଶବ୍ଦରୂପ)—୧ । ପ୍ରେରିତ—
1. Sent; deputed.
୨ । ନିଯୋଜିତ—2. Directed; engaged; employed.
୩ । ଚାଳିତ—3. Guided; driven; set in motion.

**ପ୍ରତକ୍ଷ**—ଗ୍ରା. ବିଣ. (ସଂ. ପ୍ରତ୍ୟକ୍ଷ)—ପ୍ରତ୍ୟକ୍ଷ (ଦେଖ)
Prataksha Pratyaksha (See)

ସେ ବୃକ୍ଷମୂଳେ ଥିବା ନିଜ
ପଥ ଚାଲିବାଃ ପ୍ରତକ୍ଷ—ଭୂପତି; ଚେ,ମଣଞାସୁଠ ।

**ପ୍ରତତ**—ସଂ. ବିଣ (ପ୍ର+ତନ୍ ଧାତୁ+କର୍ତ୍ତୃ. ତ.)—୧ । ବିସ୍ତୃତ—
Pratata 1. Spread.
୨ । ଖୁବ ଲମ୍ବା ଓ ଚୌଡ଼ା—2. Extensive.

**ପ୍ରତତି(ତୀ)**—ସ. ବି.—୧ । (ପ୍ର+ତନ୍ ଧାତୁ=ବିସ୍ତୃତ ହେବା+କର୍ତ୍ତୃ.
Pratati(tī) ତି,+ଈ)—ବ୍ରତତୀ; ବିସ୍ତାରିତ ଲତା—
1. A spreading creeper.
୨ । (+ଭାବ. ତି)—ବ୍ୟାପ୍ତି, ବିସ୍ତୃତି—
2. Expansion; spreading; extension.

**ପ୍ରତନ**—ସଂ. ବିଣ. (ପ୍ର=ପୂର୍ବ୍ବ+ଭବାର୍ଥରେ ତନ, ନିପାତନ)—
Pratana ପୁରାତନ; ପ୍ରାଚୀନ—Old; ancient.

**ପ୍ରତନୁ**—ସଂ. ବିଣ. (ପ୍ର+ତନୁ)—୧ । ସୂକ୍ଷ୍ମ, ସରୁ; ପତଳା—
Pratanu 1. Thin; delicate; minute.
୨ । କ୍ଷୁଦ୍ର; ସଂକୀର୍ଣ୍ଣ—2. Very small; narrow.
୩ । ଅତି ସାମାନ୍ୟ—3 Insignificant; trifling.

**ପ୍ରତପନ**—ସଂ. ବି. (ପ୍ର+ତପ ଧାତୁ=ତତାଇବା+ଭାବ ଅନ)—
Pratapana ୧ । ତତାଇବା—1. Heating.
୨ । ଗରମି, ଉତ୍ତାପ—2. Heat.

**ପ୍ରତପ୍ତ**—ସଂ ବିଣ. (ପ୍ର+ତପ୍ ଧାତୁ=ତତାଇବା+କର୍ମ. ତ)—
Pratapta ୧ । ଉତ୍ତପ୍ତ, ଗରମ, ଉଷ୍ଣ—1. Hot.
୨ । ତାପିତ—2. Heated.
୩ । ଅତ୍ୟୁଗ୍ର—3. Ardent.
୪ । ତେଜସ୍ୱୀ—4. Spirited; mettled.
୫ । କଥିତ—5. Said.
୬ । ଘୋଷିତ—6. Declared.
୭ । ଦୁଃଖିତ—7. Pained.

**ପ୍ରତର୍କ**—ସଂ. ବି. (ପ୍ର+ତର୍କ)—୧ । ସଂଶୟ, ସନ୍ଦେହ—
Pratarka 1 Doubt.
୨ । ଅନୁମାନ—2. Conjecture; guess; supposition.
୩ । ତର୍କ, ବାଦବିବାଦ—3. Argument.

**ପ୍ରତର୍ଦ(ର୍ଦ୍ଦ)ନ**—ସଂ. ବି. (ପ୍ର+ତର୍ଦ ଧାତୁ+କର୍ତ୍ତୃ. ଅନ)—
Pratarda(rdda)na ୧ । ଦିବୋଦାସଙ୍କ ପୁତ୍ର, ମଦାଳସାଙ୍କ ସ୍ୱାମୀ ଓ ରାମଚନ୍ଦ୍ରଙ୍କ ସମସାମୟିକ କାଶୀର ରାଜା—
1. Name of a king of Benares who was a contemporary of Rāmachandra
୨ । ଋଷିବିଶେଷ—2. Name of a sage.
୩ । ବିଷ୍ଣୁ—3. A name of Bishṇu.
୪ । ତାଡ଼ନକାରୀ—4. Beating, chastising.
୫ । (+ଭାବ+ଅନ) ତାଡ଼ନ—5. Beating.

**ପ୍ରତଳ**—ସଂ. ବି. (ପ୍ର+ତଳ)—୧ । ବିସ୍ତୃତାଙ୍ଗୁଳି କରତଳ—
Pratala Palm of the hand with the fingers extended.
୨ । ପାତାଳପୁରର ଏକ ବିଭାଗ—2 One of the divisions of the lower world. (Apte)

**ପ୍ରତାନ**—ସ. ବି. ୧ । (ପ୍ର+ତନ୍ ଧାତୁ=ବିସ୍ତୃତ ହେବା+ଭାବ ଅ)
Pratāna ବିସ୍ତାର—1. Expansion.
୨ । (+କର୍ତ୍ତୃ. ଅ) ଲତାତନ୍ତୁ—
2. The fibre of a creeper; tendril.
୩ । ବାୟୁରୋଗବିଶେଷ; ବାତରୋଗ; ମୂର୍ଚ୍ଛା—
3. Epilepsy; fainting.
୪ । ଲତା (ହି. ଶ.)—4. Creeper.
୫ । ତନ୍ତୁ (ହି. ଶ.)—5 Fibre.
ସ. ବିଣ—୧ । ତନ୍ତୁମୟ (ହି. ଶ.)—1. Fibrous.
୨ । ବିସ୍ତୃତ (ହି. ଶ.)—2. Extensive; spreading

**ପ୍ରତାନିନୀ**—ସଂ. ବି—(ପ୍ର+ତନ୍ ଧାତୁ=ବିସ୍ତୃତ ହେବା+କର୍ତ୍ତୃ ଇନ୍
Pratānini +ସ୍ତ୍ରୀ. ଈ)—୧ । ଲତା—1. Creeper.
(ପ୍ରତାନୀ [ପୁଂ.])—୨ । ବିସ୍ତୃତ ଲତା—
2. A spreading creeper.

**ପ୍ରତାପ**—ସଂ. ବି. (ପ୍ର+ତପ୍ ଧାତୁ=ତତାଇବା+ଭାବ. ଅ)—
Pratāpa ୧ । ମହତ୍ତ୍ୱ, ପ୍ରଭାବ—1. Dignity; greatness.
୨ । ଐଶ୍ୱର୍ଯ୍ୟ—2 Majesty.
୩ । ପ୍ରଭୁଶକ୍ତି, ପ୍ରଭୁତ୍ୱ—3. Mastery.
୪ । ବଳ, ପରାକ୍ରମ, କ୍ଷମତା—4. Might; power
୫ । ରାଜାଙ୍କର ଧନ, ଦଣ୍ଡ ଓ ସୈନ୍ୟାଦିଜନିତ ଶକ୍ତି—
5 Regal majesty or dignity.
୬ । ତେଜଃ —6. Spirit; energy; vigour.
୮ । ସାହସ, ଶୌର୍ଯ୍ୟ, ବୀରତ୍ୱ—8 Heroism; valour.
୯ । ଔଜ୍ଜ୍ୱଲ୍ୟ, ଦୀପ୍ତି—9 Splendour; radiance.
୧୦ । ଆତପ, ଖରା—10. Sunshine.
୧୧ । ତାପ, ଗରମି—11. Heat.
୧୨ । ସନ୍ତାପ—12. Burning heat.
୧୩ । ଅର୍କଗଛ—13. The swallow wart (plant); Calotropis Gigantea.
୧୪ । ମନସ୍ତାପ—14 Regret; sorrow.
୧୫ । ଯୁବରାଜଙ୍କ ଛତ୍ର (ହି. ଶ.)—15. The regal umbrella held over the head of the crown-prince,
୧୬ । (ନାମ+କର୍ତ୍ତୃ. ଅ)—ରାମଚନ୍ଦ୍ରଙ୍କର ଜଣେ ସଖା—
16. Name of a friend of Rāmachandra.
ଦେ. ବି—(ନାମ)—ସମ୍ରାଟ୍ ଆକବରଙ୍କ ଅମଳରେ ରାଜପୁତାନା ଅନ୍ତର୍ଗତ ମିବାର ରାଜ୍ୟରେ ରାଜତ୍ୱ କରୁଥିବା ଜନୈକ ପ୍ରସିଦ୍ଧ ରାଣା—A king of Mewar who was a cotemporary of Akbar the Great
[ଦ୍ର—ଏ ବଡ଼ ପ୍ରତାପଶାଳୀ ରାଜା ଥିଲେ । ଏ ଆକବରଙ୍କ ବଶ୍ୟତା ସ୍ୱୀକାର ନ କରି ତାହାଙ୍କ ସଙ୍ଗେ ବାରମ୍ବାର ଯୁଦ୍ଧ କରିଥିଲେ । ]

**ପ୍ରତାପନ**—ସ. ବି.—୧ । (ପ୍ର+ତପ୍ ଧାତୁ ଣିଚ୍+ଭାବ.ଅନ) ପୀଡ଼ନ—
Pratāpana 1. Oppression; torture.
୨ । (+ଅଧିକରଣ. ଅନ) କୁମ୍ଭୀପାକ ନରକ—
2. Name of a part of the hell where sinners are tortured.
୩ । (+କର୍ତ୍ତୃ. 'ଅନ) ବିଷ୍ଣୁଙ୍କର ଏକ ନାମ—
3. A name of Bishṇu.
ସ. ବିଣ—୧ । (+କର୍ତ୍ତୃ. ଅନ) ସନ୍ତାପଜନକ—
1. Oppressive; causing pain.
୨ । ତାପଜନକ—2 Heating; heat-producing.

**ପ୍ରତାପ ପୁରୁଷୋତ୍ତମ ଦେବ**—ଦେ. ବି. (ନାମ)—ସ୍ୱାଧୀନ ଉତ୍କଳର
Pratāpa purushottama deba ଜନୈକ ରାଜା—
Name of a king of Orissa.

**ପ୍ରତାପବାନ୍**—ସ. ବିଣ. ପୁଂ. (ପ୍ରତାପ+ଅସ୍ତି ଅର୍ଥରେ ବତୁ; ୧ମା.୧ବ)-
Pratāpabān ୧ । ପ୍ରତାପବିଶିଷ୍ଟ; ପରାକ୍ରମଶୀଳ—
(ପ୍ରତାପଶାଳୀ—ଅନ୍ୟରୂପ) 1. Powerful; mighty.

ପ୍ରତାପବତୀ } ସ୍ତ୍ରୀ ୨ । ଐଶ୍ୱର୍ଯ୍ୟଶାଳୀ, ପ୍ରଭାବଶାଳୀ—
ପ୍ରତାପଶାଳିନୀ } 2. Majestic; magnificent.
୩ । ଉତ୍ପୀଡ଼କ—3. Oppressive.
୪ । ତେଜୋମୟ—4. Glorious; grand
୫ । ଉଜ୍ଜ୍ୱଳ—5. Splendid; radiant; shining.

**ପ୍ରତାପ ରାମଚନ୍ଦ୍ର ଦେବ**—ଦେ. ବି. (ନାମ)—ସ୍ୱାଧୀନ ଉତ୍କଳର ଜଣେ
Pratāpa rāmachandra deba ରାଜା—Name of a king of Orissa

**ପ୍ରତାପ ରାୟ**—ଦେ. ବି. (ନାମ)—ଜନୈକ ପ୍ରାଚୀନ ଉତ୍କଳୀୟ କବି—
Pratāpa rāya An ancient poet of Orissa.
[ଦ୍ର—ଏ ଭଞ୍ଜଙ୍କ ପୂର୍ବ ଯୁଗର କବି । 'ଶଶିସେଣା' ଏହାଙ୍କ ପ୍ରଣୀତ ଗ୍ରନ୍ଥ ।]

**ପ୍ରତାପରୁଦ୍ର ଦେବ**—ଦେ. ବି. (ନାମ)—ସ୍ୱାଧୀନ ଉତ୍କଳର ଜନୈକ
Pratāparudra deba ପ୍ରସିଦ୍ଧ ରାଜା—A famous king of Orissa.
[ଦ୍ର—ଏ କାଞ୍ଚିବିଜୟୀ ପୁରୁଷୋତ୍ତମ ଦେବଙ୍କ ଔରସରେ ତାଙ୍କ ପତ୍ନୀ କାଞ୍ଚନମାଳା ପଦ୍ମାବତୀଙ୍କ ଗର୍ଭଜାତ ସନ୍ତାନ । ଏହାଙ୍କ ରାଜତ୍ୱକାଳରେ ବଙ୍ଗଦେଶର ପଠାଣମାନେ ଏକାଧିକବାର ଉତ୍କଳ ଆକ୍ରମଣ କରି ପରାସ୍ତ ହୋଇଥିଲେ । ଏ ଦାକ୍ଷିଣାତ୍ୟରେ ବହୁକାଳ ଯୁଦ୍ଧରେ ଲିପ୍ତ ଥିଲେ । ଏହାଙ୍କ ରାଜତ୍ୱରେ ଖେମଣ୍ଡିର ରାଜାମାନେ ବିଦ୍ରୋହୀ ହୋଇଥିଲେ ଓ ପ୍ରଥମେ ଉତ୍କଳର ଗଜପତି ରାଜାଙ୍କର ପ୍ରଭୁତ୍ୱ କୃଷ୍ଣା ନଦୀର ଦକ୍ଷିଣରୁ ଅପସାରିତ ହେଲା । ଏ ବିଜୟନଗରର ରାଜା କୃଷ୍ଣରାୟଙ୍କ ସଙ୍ଗେ ସନ୍ଧି କରି ତାଙ୍କୁ ନିଜର କନ୍ୟା ପ୍ରଦାନ କରିଥିଲେ । ପରେ ଏ କୃଷ୍ଣା ଓ ଗୋଦାବରୀ ମଧ୍ୟସ୍ଥ ରାଜ୍ୟ ଗୋଲକୁଣ୍ଡାକୁ ମଧ୍ୟ ସନ୍ଧିଦ୍ୱାରା ଛାଡ଼ି ଦେଇଥିଲେ । ଏହାଙ୍କ ଅମଳରେ ଶ୍ରୀ ଚୈତନ୍ୟଦେବ ଓଡ଼ିଶାକୁ ଆସି ପୁରୀଠାରେ ଅବସ୍ଥାନ କରି ଉତ୍କଳରେ ବୈଷ୍ଣବଧର୍ମ ପ୍ରଚାର କରିଥିଲେ; ରାଜା ନିଜେ ଶ୍ରୀଚୈତନ୍ୟଙ୍କର ଜଣେ ଭକ୍ତ ହୋଇଥିଲେ । ଯାଜପୁରରେ ବରାହନାଥଙ୍କ ମନ୍ଦିର ଓ ବୃହତ୍ ଦଶାଶ୍ୱମେଧ ଘାଟ ଏହାଙ୍କ କୀର୍ତ୍ତି । ଏ ପୁରୀ ଜିଲ୍ଲାରେ ବୀରପ୍ରତାପପୁର ପ୍ରଭୃତି ବ୍ରାହ୍ମଣ ଶାସନମାନ ବସାଇଥିଲେ । ଏହାଙ୍କ ସମୟରେ ଜଗନ୍ନାଥ ଦାସଙ୍କ ଭାଗବତ ଓ ବଳରାମ ଦାସଙ୍କ ରାମାୟଣ ରଚିତ ହୋଇଥିଲା । ଏହାଙ୍କ ରାଜତ୍ୱରେ ଉତ୍କଳ ସାହିତ୍ୟ ଓ ସଂସ୍କୃତ-ସାହିତ୍ୟ ଚର୍ଚ୍ଚାର ଆଦର ବଢ଼ିଥିଲା । ପର୍ତ୍ତୁଗୀଜ୍ ବଣିକମାନେ ଏହି ସମୟରେ ଉତ୍କଳରେ ବାଣିଜ୍ୟର ସୂତ୍ରପାତ କରିଥିଲେ; ଏହାଙ୍କ ପରେ ଉତ୍କଳର ସ୍ୱାଧୀନତା ଲୋପ ହେଲା । ଏ ୧୪୯୫ ଖ୍ରୀଷ୍ଟାବ୍ଦରୁ ୧୫୩୨ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ ।]

**ପ୍ରତାପାଦିତ୍ୟ**—ଦେ. ବି. (ନାମ)—ବଙ୍ଗଦେଶର ଜନୈକ ସ୍ୱାଧୀନ ରାଜା-
Pratāpāditya Name of king of Bengal.
[ଦ୍ର—ଏ ଯଶୋହର ଦେଶର ରାଜା ଥିଲେ । ସମ୍ରାଟ୍ ଜାହାଙ୍ଗିରଙ୍କ ଆଦେଶ ଅନୁସାରେ ମାନସିଂହ ଏହାଙ୍କୁ ଯୁଦ୍ଧରେ ପରାସ୍ତ କରି ବନ୍ଦୀ କରିଥିଲେ । ଏ ବନ୍ଦୀ ଅବସ୍ଥାରେ ଜଗନ୍ନାଥ କ୍ଷେତ୍ରରେ ପ୍ରାଣତ୍ୟାଗ କଲେ । ]

**ପ୍ରତାପାନ୍ୱିତ**—ସଂ. ବିଣ. ପୁଂ. (ତୃତୀ ତତ୍, ପ୍ରତାପ+ଅନ୍ୱିତ)—
Pratāpānwita ପ୍ରତାପବାନ୍ ( ଦେଖ )
(ପ୍ରତାପାନ୍ୱିତା—ସ୍ତ୍ରୀ) Pratāpabān ( See )

**ପ୍ରତାପିବା**—ଦେ. କ୍ରି. (ପଦ୍ୟ) (ସଂ ପ୍ରତାପ)—ଉତ୍ତପ୍ତ କରିବା—
Pratāpibā ପ୍ରତାପା **तापना** To heat
ଯାହାର ମଣ୍ଡି ଅଗ୍ନି ଜାତ
ତେଜେ ପ୍ରତାପଇ ଜଗତ । ଜଗନ୍ନାଥ, ଭାଗବତ ।

**ପ୍ରତାପୀ**—ସଂ. ବିଣ. ପୁଂ. ( ପ୍ରତାପ+ଅସ୍ତି ଅର୍ଥରେ ଇନ୍, ୧ମା. ୧ବ)—
Pratāpi ପ୍ରତାପବାନ୍ ( ଦେଖ )
(ପ୍ରତାପିନୀ—ସ୍ତ୍ରୀ) Pratāpabān ( See )
ସଂ ବି—ଶ୍ରୀରାମଚନ୍ଦ୍ରଙ୍କର ଏକ ସଖା ( ହି . ଶ· )—
Name of a friend of Rāmachandra.

**ପ୍ରତାରକ**—ସଂ. ବିଣ ( ପ୍ର+ତୃ ଧାତୁ=ଠକିବା+କର୍ତ୍ତୃ. ଅକ )—
Pratāraka ୧ । ପ୍ରତାରଣାକାରୀ; ବଞ୍ଚନାକାରୀ—
(ପ୍ରତାରିକା—ସ୍ତ୍ରୀ) 1 Cheating; perfidious.
୨ । ଧୂର୍ତ୍ତ—2 Sly; cunning.
ସଂ. ବି—ବଞ୍ଚକ; ଶଠ ବ୍ୟକ୍ତି—
A knave; a cheat.

**ପ୍ରତାରଣ(ଣା)**—ସଂ. ବି. (ପ୍ର+ତୃ ଧାତୁ+ଭାବ. ଅନ,+ଆ )—
Pratārana(nā) ୧ । ପ୍ରବଞ୍ଚନା; ଛଳନା—1. Fraud
୨ । ଠକାମି—2. Cheating; deceit
୩ । ଧୂର୍ତ୍ତତା; ଶଠତା—3. Cunning.

**ପ୍ରତାରଣ ଶୀଳ**—ସଂ. ବିଣ. ପୁଂ. ( ବହୁବ୍ରୀହି, ପ୍ରତାରଣ+ଶୀଳ= ପ୍ରକୃତି )—ବଞ୍ଚନାକାରୀ, ପ୍ରବଞ୍ଚକ (ବ୍ୟକ୍ତି)—
Pratārana sīla
(ପ୍ରତାରଣଶୀଳା—ସ୍ତ୍ରୀ) Deceitful; perfidious.

**ପ୍ରତାରଣାମୟ**—ସଂ, ବିଣ. (ପ୍ରତାରଣା+ମୟ)—ଛଳନା ପୂର୍ଣ୍ଣ—
Pratāranāmaya Full of deceit
(ପ୍ରତାରଣା ମୂଳକ—ଅନ୍ୟରୂପ)

**ପ୍ରତାରିତ**—ସଂ. ବିଣ. (ପ୍ର+ତୃ ଧାତୁ ଣିଜନ୍ତ ତାରି ଧାତୁ+କର୍ମ.ତ)—
Pratārita ପ୍ରବଞ୍ଚିତ, ଯେ ଅନ୍ୟ ଦ୍ୱାରା ଠକା ଯାଇଥାଏ—
Deceived; cheated.
ସଂ. ବି (+ଭାବ. ତ)—ବଞ୍ଚନା—Deceit

**ପ୍ରତାଲ**—ଦେ. ବି. ( ସେଟଲମେଣ୍ଟରେ ବ୍ୟବହୃତ ଶବ୍ଦ; ସଂ. ପରତୋଳନ
Pratāla ହି. ଶବ୍ଦସାଗର )—୧ । ତନଖିବା; ଚେକ୍ କରିବା—
ପ୍ରତାଳ **परताल, पड़ताल** 1. Checking.
୨ । ପୁନଃ ପରୀକ୍ଷା—2. Re-examination.
୩ । କୌଣସି ବିଷୟକୁ ତନ୍ନ ତନ୍ନ କରି ଦେଖିବା—
3. Examining minutely.
୪ । ପୁନର୍ବାର ମାପିବା—4. Re-measurement.

**ପ୍ରତାଲିବା**—ଦେ. କ୍ରି—୧ । ପରିତାଳିବା; କୌଣସି ବିଷୟ ଠିକ୍ ଅଛି କି ନାହିଁ ଏହା ତନଖି ବୁଝି ନେବା;
Pratāliba
(ପ୍ରତାଲ କରିବା—ଅନ୍ୟରୂପ) ପଡ଼ଖିବା—1 To check;
ପ୍ରତାଳକରା **पड़तालना** to examine.
୨ । ପୁନର୍ବାର ପରୀକ୍ଷା କରିବା—
2. To re-examine a thing to see if it is correct or is as stated to be.
୩ । ପୁନର୍ବାର ମାପିବା—3 To re-measure.
[ଦ୍ର—ଓଡ଼ିଶା ସେଟଲମେଣ୍ଟରେ କାନୁନ୍ଗୋ ହିନ୍ଦୁସ୍ଥାନୀ ଅମିନମାନଙ୍କ ଦ୍ୱାରା ଏ ଦେଶରେ ପ୍ରଥମେ ଏ ଶବ୍ଦ ବ୍ୟବହୃତ ହେଲା । ଯେଉଁ ଜମିକୁ ଅମିନ ଥରେ ମାପି ଖସଡ଼ାରେ ନୋଟ୍ କରିଥାଏ ଉପରସ୍ଥ କର୍ମଚାରୀ ଉକ୍ତ ଅମିନର ନୋଟ୍ ଠିକ୍ କି ନାଁ ଏହା ଦେଖିବା ପାଇଁ ସରଜମିନକୁ ଆସି ସ୍ଥଳବିଶେଷରେ ମାପ କରି ଦେଖନ୍ତି, ଏହାକୁ ପ୍ରତାଲ କୁହାଯାଏ । ]

**ପ୍ରତି**—ସଂ. ଉପସର୍ଗ (ପ୍ରଥ୍ ଧାତୁ=ବିଖ୍ୟାତ ହେବା+ଭାବ ଅତି)—
Prati ଉପପଦ ବିଶେଷ (ନିମ୍ନଲିଖିତ ଅର୍ଥମାନ ସୂଚନାକର)—
A prefix indicating the following senses.
୧ । ପ୍ରଶସ୍ତି; ବିସ୍ତାର—1. Width; breadth.
୨ । ଦୁଇଥର—2 Twice.
୩ । ପୁନଃ ପୁନଃ; ପୁନର୍ବାର—3. Repeatedly; again.
( ଯଥା—ପ୍ରତିଧ୍ୱନି; ପ୍ରତିଗତ )
୪ । ବଦଳ; ପରିବର୍ତ୍ତେ—
4. Instead of; in lieu of; exchange; barter.
(ଯଥା—ପ୍ରତିହିଂସା, ପ୍ରତିଦାନ; ପ୍ରତିଭୂ.)
୫ । ଦିଗରେ, ଅଭିମୁଖରେ—5 Towards.
(ଯଥା—ପ୍ରତିମୁଖ)
୬ । ଅନ୍ୟର ସ୍ଥାନରେ କାର୍ଯ୍ୟ କରିବା ପ୍ରତିନିଧି—
6 Substitute; representative.
୭ । ଦିଗକୁ, ଆଡ଼କୁ—7. To; towards.
୮ । ଏକ ଏକ, ପ୍ରତ୍ୟେକ—
8. Each; successive; every; one by one.
(ଯଥା - ପ୍ରତିଦିନ; ପ୍ରତିପଦ, ପ୍ରତିଦିଗ.)
୯ । ପରସ୍ପର—9. Each other.
(ଯଥା—ପ୍ରତିଘାତ)
୧୦ । ସମୀପ; ନିକଟ—10 Near.
(ଯଥା—ପ୍ରତିବାସୀ, ପ୍ରତିକଣ୍ଠ)
୧୧ । ଅଭିମୁଖ୍ୟ—11. In front.
(ଯଥା—ପ୍ରତିମୁଖ)
୧୨ । ସମ୍ବନ୍ଧ; ସମ୍ପର୍କ—12. Connection.
୧୩ । ସମାନତ୍ୱ, ସମତା—13 Equality; similarity.
(ଯଥା—ପ୍ରତିବିମ୍ବ, ପ୍ରତିବଳ; ପ୍ରତିଯୋଗିତା.)
୧୪ । ଅଗ୍ରଭାଗ—14. Top; fore part.
(ଯଥା—ପ୍ରତିଜଙ୍ଘା)
୧୫ । ଅଂଶ—15 Part.
୧୬ । ଅନୁସାରେ—16. According to.
୧୭ । ଅଳ୍ପ; ଛୋଟ—17. Little.
(ଯଥା—ପ୍ରତିଜିହ୍ୱା; ପ୍ରତିକୂପ)

୧୮ । ନକଲ୍—18. Copy.
(ଯଥା—ପ୍ରତିଲିପି)
୧୯ । ପ୍ରତିକୂଳତା, ବୈପରୀତ୍ୟ—19. Opposition.
(ଯଥା—ପ୍ରତିକ୍ରିୟା, ପ୍ରତିବାଦୀ)
୨୦ । ସମ୍ବନ୍ଧରେ—20 About.
୨୧ । ଉଦ୍ଦେଶ୍ୟ, ଲକ୍ଷ୍ୟ—21. Aim.
(ଯଥା—ପ୍ରତିବର୍ତ୍ତନ)
୨୨ । ଉପଯୋଗୀ—22 Fit; fitting.
(ଯଥା—ପ୍ରତିଭାଳୀ)
୨୩ । ସାଦୃଶ୍ୟ; ଅନୁରୂପ—
23. Resemblance; similarity.
(ଯଥା—ପ୍ରତିମା; ପ୍ରତିମୂର୍ତ୍ତି; ପ୍ରତିକାଶ; ପ୍ରତିକୃତି)
୨୪ । ସଜ୍ଜା—24. Dress; adornment.
(ଯଥା—ପ୍ରତିକର୍ମ)
୨୫ । ବିରୋଧ—25 Contrariety; contradiction.
(ଯଥା—ପ୍ରତିକାର)
୨୬ । ବିରୋଧରେ—26 Against.
(ଯଥା—ପ୍ରତିଦ୍ୱନ୍ଦୀ, ପ୍ରତିକୂଳ)
୨୭ । ନିଶ୍ଚୟ—27. Certainly
(ଯଥା—ପ୍ରତିଗ୍ରହ; ପ୍ରତିଜ୍ଞା)
୨୮ । ନିନ୍ଦା—28 Censure; blame.
(ଯଥା· ପ୍ରତିକ୍ଷିପ୍ତ)
୨୯ । ମନ୍ଦ; ନିକୃଷ୍ଟ—29. Inferior; bad.
(ଯଥା—ପ୍ରତିକୃଷ୍ଟ)
୩୦ । ସ୍ୱଭାବ—30 Nature.
୩୧ । ସମାଧି—31. Meditation.
୩୨ । ପଶ୍ଚାତ୍—32 Behind.
(ଯଥା—ପ୍ରତୀଚୀ)
୩୩ । ଶରୀର, ଦେହ—33. Body.
(ଯଥା—ପ୍ରତିକର୍ମ)
୩୪ । ବିଶିଷ୍ଟରୂପେ—34. Particularly.
(ଯଥା—ପ୍ରତିନନ୍ଦନ; ପ୍ରତିବୋଧ; ପ୍ରତିଶପୂଜନ)
୩୫ । ସମ୍ପର୍କରେ ଦୂରତର—
35 More distant in relationship.
(ଯଥା—ପ୍ରତିନପ୍ତା)
୩୬ । ପ୍ରଥମ—36. First.
(ଯଥା—ପ୍ରତିପଦ୍)
୩୭ । ଲେଉଟରେ; ପ୍ରତିବଦଳରେ—37 In return.
(ଯଥା—ପ୍ରତିବାକ୍ୟ; ପ୍ରତିଧ୍ୱନି, ପ୍ରତ୍ୟୁପକାର)
୩୮ । ସର୍ବଦା—38 Always.
(ଯଥା—ପ୍ରତିଶଙ୍କା)
୩୯ । ସର୍ବତୋଭାବରେ—39. In all respects.
୪୦ । ଉତ୍ତରରେ—40. In reply.
(ଯଥା—ପ୍ରତ୍ୟୁତ୍ତର, ପ୍ରତିବାକ୍ୟ)
୪୧ । (ଉପପଦ) (ଅନ୍ୟ ଶବ୍ଦ ପରେ ସ୍ୱତନ୍ତ୍ର ବ୍ୟବହାର)—
ଅମୁକକୁ ଲକ୍ଷ କରି—41. Aiming at.
(ଯଥା—ଶ୍ରୀମ ଢଳ ପ୍ରତି ଶର ନିକ୍ଷେପ କଲେ)
୪୨ । (ଉପପଦ) ଅମୁକ ଆଡ଼କୁ; ଅଭିମୁଖରେ—
42 Towards.
୪୩ । (ଉପପଦ)କୁ; ନିକଟକୁ—43. To; near.
(ଯଥା—ଗୁରୁଙ୍କ ପ୍ରତି ଶ୍ରଦ୍ଧା କରିବ)

ଦେ· ବି. (ସ· ପ୍ରତି ଉପସର୍ଗ=ପ୍ରଶସ୍ତି)—୧ । ପ୍ରସ୍ଥ; ଓସାର; ଚଉଡ଼ା—1. Width; breadth.
ଯାର୍ଯ ପ୍ରତି ଯୋଜନ ପଞ୍ଚ ପ୍ରଜାପତି
ବେଶୀ ଏଥି ଅନ୍ତ ଦେଖ ହେ ନରପତି । କୃଷ୍ଣସିଂହ, ମହାଭାରତ ବନ ।
୨ । ପରସ୍ତ, ସ୍ତର—2. Layer; fold.
ଚନ୍ଦ ପ୍ରତି କରି ବନ୍ଧ ଉପରେ,
ବାନ୍ଧନ୍ତ ବନ୍ଧ ବାନ୍ଧ ପିଣ୍ଡାରେ । ୦ ପ୍ରାଚୀ—ପରବେ ଗୀତା ।
ଦେ. ଅ.—୧ । ଠାରୁ; ଅପେକ୍ଷା—
1. From; than.
ବୃକ୍ଷହତ୍ୟା ପ୍ରତି ଶରଣାଗତ ଲୋକେ
ଶତ ବେଳେ ପାପଟି ହୁଅଇ ଅଧିକେ । କୃଷ୍ଣସିଂହ. ମହାଭାରତ । ବନ ।
କହ ଯା କରେ ମୃତ୍ୟୁକୁ ସ୍ତୁତ, ଏଥିରୁ ବଳ କାହିଁ କପଟ;
ଏଥିକି ପ୍ରତି ଜଗତରେ କାହିଁ ମାଦିବା ଭଲ ଯେ । ସାଳକୃଷ୍ଣ. ଭସକଲ୍ଲୋଳ ।
୨ । (ସ. ପ୍ରତ୍ୟହ)—ପ୍ରତିଦିନ; ନିତି—2. Everyday.
(ଯଥା—ନିତିପ୍ରତି=ପ୍ରତିଦିନ ।)
[ ଦ୍ର—ଏହି ଅର୍ଥରେ ଏହା 'ନିତି' ଶବ୍ଦ ସଙ୍ଗେ ଏକାର୍ଥକ ସହଚର ଶବ୍ଦରୂପେ ବ୍ୟବହୃତ ହୁଏ । ]
ପ୍ରାଦେ. (ଗଞ୍ଜାମ) ଅ—ଅନୁସାରେ, ଅନୁଯାୟୀ—
According to.
[ ଦ୍ର—ନବରଚିତ ସଙ୍ଗୀତାଦିର ଶିରୋନାମାରେ ଏହା ବ୍ୟବହୃତ ହୁଏ । କୌଣସି ପୁରାତନ ସଙ୍ଗୀତ ବା ରାଗ ବା ବୃତ୍ତ ଲେଖି ତାହା ପରେ ଏହି 'ପ୍ରତି' ଶବ୍ଦ ଲେଖିଲେ ବୁଝାଯାଏ ଯେ ନବରଚିତ ସଙ୍ଗୀତଟି ଉକ୍ତ ପୁରାତନ ଗୀତ ବା ରାଗ ଅନୁସାରେ ଗାଇବାକୁ ହେବ । ]

**ପ୍ରତି ଆଶା**—ଦେ. (ପଦ୍ୟ) ବି. (ସ. ପ୍ରତ୍ୟାଶା)—ପ୍ରତ୍ୟାଶା; ବିଶେଷ ଆଶା—Hope.
Prati āśā ପ୍ରତିআশা
ପ୍ରତି ଆଶାରେ ସେ ସମା ରୂପ ଧରି ଗଲେ ।
ଭକ୍ତ· କୋଟଚ୍ଚ୍ରବ୍ରଜସୁନ୍ଦର ।

**ପ୍ରତି ଉତ୍ତର**—ଦେ. (ପଦ୍ୟ) ବି. (ସ. ପ୍ରତ୍ୟୁତ୍ତର)—ପ୍ରତ୍ୟୁତ୍ତର—Reply.
Prati uttara
ପ୍ରତିଉତ୍ତର, କାଲି କି ହେବ ସତ ହୋଇ ।
ଭକ୍ତ· କୋଟଚ୍ଚ୍ରବ୍ରଜସୁନ୍ଦର ।

**ପ୍ରତି ଉପକାର**—ଦେ. (ପଦ୍ୟ) ବି.—(ସ. ପ୍ରତ୍ୟୁପକାର) ପ୍ରତ୍ୟୁପକାର—A return for kindness.
Prati upakāra
ପ୍ରତି ଉପକାର ଏହାଙ୍କୁ କରିବାର,
କାଳରେ ନଥି ଶୀଘ୍ର ହୋଇବ ସସାର । କୃଷ୍ଣସିଂହ· ମହାଭାରତ· ଅବ ।

**ପ୍ରତି ଓଜେ(ଝେ)**—ଦେ. କ୍ରି ବିଣ—ପ୍ରତିବଦଳରେ; ପରିବର୍ତ୍ତରେ—In lieu of; in exchange for.
Prati oje (jhe)

ପ୍ରତିକ—ସଂ. ବିଣ. (କାର୍ଷାପଣ+ଇକ; ପ୍ରକୃତିବାଦ; ନିପାତନ)—ଷୋଳ
Pratika ପଣ ବା କାହାଣେ କଉଡ଼ିଦ୍ୱାରା କ୍ରୀତ—Purchased with one kāhāṇa or 1280 cowries (shell).

ପ୍ରତି କଚ୍ଛ(ଛ,କ୍ଷ)—ଦେ. ବିଣ. (ସଂ. ପ୍ରତି ଓ କକ୍ଷ; ତୁଳ. ସମକକ୍ଷ)—
Prati kachha (chchha, ksha) ୧ । ପ୍ରତିଯୋଗୀ—1 Rival.
୨ । ସମକକ୍ଷ—2. Equal.
ଏହି ପ୍ରକାରେ କର ପ୍ରତିକଚ୍ଛ ।
ତ୍ୟାଗୀ. ରହସ୍ୟମଞ୍ଜରୀ ।

ପ୍ରତି କଞ୍ଚୁକ—ସଂ. ବି.—ଶତ୍ରୁ (ହି. ଶ.)—
Prati kañchuka Adversary (Apte).

ପ୍ରତି କଣ୍ଠ—ସଂ. ଅ—(ଅବ୍ୟୟୀଭାବ, କଣ୍ଠର ପ୍ରତି=ସମୀପ)—କଣ୍ଠ
Prati kaṇṭha ନିକଟରେ; ଗଳା ପାଖରେ—Near the neck.

ପ୍ରତିକରଣୀୟ—ସଂ ବି. (ପ୍ରତି+କରଣୀୟ)—ପ୍ରତିକାର୍ଯ୍ୟ (ଦେଖ)
Pratikaraṇiya Pratikārjya (See)

ପ୍ରତିକର୍ମ—ସଂ. ବି.—୧ । (ପ୍ରତି=ବିରୋଧରେ+କର୍ମ)—ପ୍ରତିକ୍ରିୟା—
Prati karma 1. Reaction.
୨ । ପ୍ରତିକାର—2. Remedy.
୩ । (ପ୍ରତି=ଦେହ ସଜ୍ଜା+କର୍ମ) ଦେହର ବେଶଭୂଷା; ପ୍ରସାଧନ—3. Decoration; dressing; toilet; personal embellishment.

ପ୍ରତି(ତୀ)କାର—ସଂ. ବି. (ପ୍ରତି=ବିରୁଦ୍ଧ+କୃ ଧାତୁ+ଭାବ. ଅ ବା ସଂସ୍କୃତ
Prati(tī)kāra 'ଘଞ୍' ପ୍ରତ୍ୟୟ; ଘଞ ପ୍ରତ୍ୟୟ ହେଲେ ପୂର୍ବବର୍ତ୍ତୀ ଉପସର୍ଗର ଶେଷ ସ୍ୱର ବିକଳ୍ପେ ଦୀର୍ଘ ହୁଏ; ତୁଳନାକର ପ୍ରତୀକାଶ, ନୀକାଶ ଇତ୍ୟାଦି)—୧ । ପ୍ରତିକ୍ରିୟା; ପ୍ରତିବିଧାନ—1. Remedy; counter-action.
୨ । ପ୍ରତିଶୋଧ; ବୈର ନିର୍ଯାତନ; ପ୍ରତିହିଂସା—2. Revenge; retaliation.
୩ । ପ୍ରତିଫଳ—3. Requital.
୪ । କ୍ଷତିପୂରଣ—4. Compensation.
୫ । ଉପଚାର; ଉପାୟ—5. Measure; means.
୬ । ଚିକିତ୍ସା—6. Medical treatment.
୭ । ଉପଶମ—7. Recovery; improvement; alleviation.
୮ । ପ୍ରତିକୂଳାଚରଣ—8. Acting in opposition.
୯ । ଋଣାଦିର ପରିଶୋଧ—9. Discharge of a debt or obligation.

ପ୍ରତି(ତୀ)କାରକ—ସଂ. ବିଣ. ପୁଂ. (ପ୍ରତି+କୃ ଧାତୁ+କର୍ତ୍ତୃ. ଅକ)—
Prati(tī)kāraka ଯେ ପ୍ରତିକାର ବା ପ୍ରତିବିଧାନ ଆଦି କରେ—
(ପ୍ରତିକାରିକା—ସ୍ତ୍ରୀ) Counteracting; remedying; retaliating.

ପ୍ରତି(ତୀ)କାର୍ଯ୍ୟ—ସଂ. ବିଣ. (ପ୍ରତି+କୃ ଧାତୁ+କର୍ମ. ଯ) [illegible]
Prati(tī)kārjya କରିବା ଯୋଗ୍ୟ—Remediable.

ପ୍ରତି(ତୀ)କାଶ—ସଂ. ବିଣ (ପ୍ରତି=ସାଦୃଶ୍ୟ+କାଶ ଧାତୁ=ଦୀପ୍ତି ପାଇବା
Prati(tī)kāśa +ଭାବ. ଅ)—ସଦୃଶ; ତୁଲ୍ୟ ଦେଖାଯିବା—Resembling; having the appearance of.

ପ୍ରତିକି(କୁ,ରେ)—ଦେ. ଅ.—ଠାରୁ; ଅପେକ୍ଷା—From; than.
Pratiki(ku,re) ସବୁ ଧର୍ମ ପ୍ରତିକ ସତ୍ୟ ଅଟେ ସାର ।
କୃଷ୍ଣସିଂହ—ମହାଭାରତ. ବନ ।

ପ୍ରତିକୂପ—ସଂ. ବି. (ପ୍ରତି=କ୍ଷୁଦ୍ର+କୂପ)—ଗଡ଼ଖାଇ; ପରିଖା—
Pratikūpa A moat; ditch.

ପ୍ରତିକୂଳ—ସଂ. ବିଣ. (ପ୍ରତି=ବିରୁଦ୍ଧ+କୂଳ)—୧ । ବିପକ୍ଷ; ବିପରୀତ—
Pratikūla 1. Contrary; opposite.
[ପ୍ରତିକୂଳତା(ତ୍ୱ)—ବି] ୨ । ବିରୋଧୀ—2. Adverse; opposing.
୩ । ଶତ୍ରୁଭାବାପନ୍ନ—3. Inimical; hostile.
୪ । ଓଲଟା—4. Inverse.
୫ । ଅପ୍ରସନ୍ନ, ବାମ—5. Unfavourable.

ପ୍ରତିକୃତି—ସଂ. ବି. (ପ୍ରତି=ପୁନର୍ବାର+କୃ ଧାତୁ+କରଣ. ତି)—
Pratikṛuti ୧ । ପ୍ରତିମୂର୍ତ୍ତି—1. Effigy; statue.
୨ । ନକଲ—2. Copy; counterfoil.
୩ । ପ୍ରତିବିମ୍ବ—3. Image; reflection.
୪ । ପ୍ରତିନିଧି—4. Substitute, deputy.
୫ । (+ଭାବ. ତି) ପ୍ରତିବିଧାନ; ପ୍ରତିକାର—5. Remedy.
୬ । ସାଦୃଶ୍ୟ—6. Resemblance; likeness.
୭ । ପ୍ରତିହିଂସା—7. Revenge.
୮ । ପ୍ରତିଶୋଧ —8 Retaliation.

ପ୍ରତିକୃଷ୍ଟ – ସଂ ବି. (ପ୍ରତି+କୃଷ୍ଟ)—୧ । ନିକୃଷ୍ଟ—
Pratikṛushṭa 1. Inferior; mean
୨ । ଦୁଇବାର କର୍ଷିତ ହୋଇଥିବା; ଦୁଇ ଥର ଚାଷ କରାଯାଇ ଥିବା (ଜମି)—2. Tilled twice.

ପ୍ରତିକ୍ରିୟା—ସଂ. ବି. ( ପ୍ରତି+କ୍ରିୟା )—୧ । ପ୍ରତିଶୋଧ—
Pratikriyā 1, Requital; retaliation.
୨ । ପ୍ରତିବିଧାନ; ପ୍ରତିକାର—2. Counteraction.
୩ । ପ୍ରସାଧନ; ଭୂଷଣ—3 Decoration; dressing.
୪ । ଶୋଭା—4. Embellishment.
୫ । ବିପରୀତ କ୍ରିୟା—5. Reaction.

ପ୍ରତିକ୍ଷଣ—ସଂ. କ୍ରି. ବିଣ. (ବୀପ୍ସାର୍ଥେ ଅବ୍ୟୟୀଭାବ; କ୍ଷଣକ୍ଷଣ)—
Pratikshaṇa ୧ । ପ୍ରତି ମୁହୂର୍ତ୍ତରେ—
(ପ୍ରତିକ୍ଷଣେ—ଦେଶଜରୂପ) 1. Every movement.
୨ । ସର୍ବଦା—2. Constantly.
୩ । ପୁନଃ ପୁନଃ—3. Repeatedly.

ପ୍ରତିକ୍ଷିପ୍ତ—ସଂ. ବିଣ. ( ପ୍ରତି+କ୍ଷିପ୍ତ )—
Pratikshipta ୧ । ପ୍ରେରିତ —1. Sent; dispatched;
(ପ୍ରତିକ୍ଷେପ—ବି) deputed.
୨ । ନିନ୍ଦିତ—2. Calumniated; blamed.

୩ । ତିରସ୍କୃତ, ଭର୍ତ୍ସିତ—3. Censured; reviled.
୪ । ଅସ୍ୱୀକୃତ—4. Repudiated.
୫ । ନିବାରିତ—5 Prohibited; resisted.
୬ । ପଦଚ୍ୟୁତ—6 Dismissed.
୭ । ନାମଞ୍ଜୁର କରି ଯାଇଥିବା; ବର୍ଜିତ—
7. Refused; rejected.
୮ । ବାଧିତ—8 Obliged.

**ପ୍ରତିକ୍ଷେପ**—ସ. ବି. ( ପ୍ରତି+କ୍ଷେପ )—
Pratikshepa ୧ । ନିରାଶା—1. Hopelessness; desperation
(ପ୍ରତିକ୍ଷିପ୍ତ—ବିଣ)
୨ । ତିରସ୍କାର—2 Rebuke.
୩ । ନିବାରଣ—3. Prohibition.
୪ । ତ୍ୟାଗ—4 Abandonment.
୫ । ପ୍ରେରଣ—5. Deputation; despatching.
୬ । ପଦଚ୍ୟୁତି—6. Dismissal.

**ପ୍ରତିଗମ**—ଦେ. ବି—ପାଛୋଟି ଆଣିବା—
Pratigama Going in advance for some distance to receive a coming person.
ପ୍ରତିଗମ ଭବେ ମୂର୍ଚ୍ଛା, ସ୍ୱଭବେ କେବେ ଛିଡ଼ା
କରିଡ଼ ଅଛାର ପ୍ରଷ୍ଠେ ଚକ୍ଷୁକ୍ଷେ ବସି । ପ୍ରାଚୀ. ରସବାରିଧି ।

**ପ୍ରତିଗର୍ଜନ**—ସ. ବି. ( ପ୍ରତି+ଗର୍ଜନ )—
Pratigarjana ୧ । ଏକ ଗର୍ଜନର ପ୍ରତ୍ୟୁତ୍ତରରେ କରାଯିବା ଗର୍ଜନ—
1. An answering roar.
୨ । ଗର୍ଜନର ପ୍ରତିଧ୍ୱନି—2. Echo of a roar.

**ପ୍ରତିଗିର**—ଦେ. ବି. ( ସ. ପ୍ରତି+ଗିର୍)—ପ୍ରତିବଚନ, ପ୍ରତ୍ୟୁତ୍ତର—
Pratigira Rejoinder.

**ପ୍ରତିଗିରି**—ସ. ବି. ( ପ୍ରତି+ଗିରି )—
Pratigiri ୧ । ଏକ ପର୍ବତର ଉପସ୍ଥିତ ଢଗରେ ବା ସମ୍ମୁଖରେ ଥିବା ପର୍ବତ—1. A mountain standing opposite to another mountain.
୨ । ନିକୃଷ୍ଟ ବା କ୍ଷୁଦ୍ର ପର୍ବତ; ପାହାଡ଼—2. Small or inferior mountain; hill.
୩ । ପର୍ବତ ପରି ଦେଖା ଯାଉଥିବା ସ୍ଥାନ ବା ବସ୍ତୁ—
3. Anything appearing like a mountain ( Howells ).

**ପ୍ରତିଗୃହୀତ**—ସ. ବିଣ ( ପ୍ରତି+ଗ୍ରହ୍ ଧାତୁ+କର୍ମ. ତ )—
Pratigrubita ୧ । ସ୍ୱକୀୟ ବୋଲି ଗୃହୀତ—
(ପ୍ରତିଗୃହୀତା—ସ୍ତ୍ରୀ) 1 Acknowledged.
୨ । ସ୍ୱୀକୃତ—2. Assented to; affiliated.
୩ । ଗୃହୀତ—3. Received; accepted.

**ପ୍ରତିଗ୍ର(ଗ୍ରା)ହ**—ସ. ବି. ( ପ୍ରତି+ଗ୍ରହ୍ ଧାତୁ+ଭାବ. ଅ )—
Pratigra(grā)ha ୧ । ଦାନ ଗ୍ରହଣ—1. Accepting a gift; acceptance of a gift.
(ପ୍ରତିଗ୍ରହଣ—ଅନ୍ୟରୂପ)
୨ । ଦାନ ଗ୍ରହଣ କରିବାର ଅଧିକାର—
2 Right to receive a gift.

[ ଦ୍ର—ଶାସ୍ତ୍ର ଅନୁସାରେ ବ୍ରାହ୍ମଣର ଷଟ୍‌କର୍ମ ମଧ୍ୟରୁ ଏହା ଏକତମ । ]
୩ । ଅଙ୍ଗୀକାର—3. Acknowledgement.
୪ । ସ୍ୱୀକାର—4. Assent; agreement.
୫ । ପ୍ରତ୍ୟଭିଯୋଗ; ନାଲିସ ବିରୋଧରେ ନାଲିସ—
5. Counter-charge.
୬ । ଅପିଲ୍—6. Appeal.
୭ । ପ୍ରତିକୂଳ ଗ୍ରହ—7. Unfavourable planet; a malignant planet.
୮ । ଅନୁଗ୍ରହ—8. Favour.
୯ । ଦେୟ ବସ୍ତୁ—9. Gift; donation.
୧୦ । ପତଦ୍‌ଗ୍ରହ; ପିକଦାନ—
10. A spitting pot; spittoon.
୧୧ । ବନ୍ଧୁଭର୍ଯ୍ୟା; ବନ୍ଧୁର ସମାଦର—
11. Friendly reception ( Howells ).
୧୨ । ସୈନ୍ୟ ରକ୍ଷା, ସୈନ୍ୟ ପାଳନ—12. Defence or maintenance of an army.
୧୩ । (+କର୍ମ. ଅ) ସୈନ୍ୟ ପୃଷ୍ଠ; ଶାନ୍ତ୍ର ସୈନ୍ୟଙ୍କ ସ୍ଥାନ ପୂରଣ କରିବା କ୍ରମରେ ସୈନ୍ୟସନ୍ନିବେଶର ପଛକୁ ୮୦୦ ହାତ ଦୂରରେ ରକ୍ଷିତ ସୈନ୍ୟ ଦଳ—
13. The reserve of an army.

**ପ୍ରତିଗ୍ରାହୀ**—ସ. ବିଣ. ପୁଂ (ପ୍ରତି+ଗ୍ରହ୍ ଧାତୁ+କର୍ତ୍ତୃ. ଇନ୍; ୧ମା.୧ବ)—
Pratigrāhi ଯେ ପ୍ରତିଗ୍ରହ ବା ଦାନ ଗ୍ରହଣ କରେ—
(ପ୍ରତିଗ୍ରାହିଣୀ ସ୍ତ୍ରୀ) Accepting gift.
ସ. ବି. ପୁଂ—ଦାନ ଗ୍ରହଣକାରୀ ବ୍ୟକ୍ତି—Donee.

**ପ୍ରତିଘ**—ସ. ବି. ( ପ୍ରତି+ହନ୍ ଧାତୁ+କରଣ ଅ )—
Pratigha ୧ । କ୍ରୋଧ—1. Wrath; rage.
୨ । (+ଭାବ. ଅ) ପ୍ରତିଘାତ—2. Return blow.
୩ । ପରସ୍ପର ସଂଗ୍ରାମ—3. Mutual fighting.
୪ । (+କର୍ମ. ଅ) ଶତ୍ରୁ—4. Enemy.
୫ । ମୂର୍ଚ୍ଛା—5. Fainting.
୬ । (+କର୍ତ୍ତୃ. ଅ) ପ୍ରତିବନ୍ଧକ—6. Obstacle.
ସ. ବିଣ. (+କର୍ତ୍ତୃ. ଅ) ପ୍ରତିକୂଳ—
Adverse; unfavourable.

**ପ୍ରତି(ତୀ)ଘାତ**—ସ. ବି. ( ପ୍ରତି+ହନ ଧାତୁ+ଭାବ. ଅ)—
Prati(tī)ghāta ୧ । ଆହତ ବସ୍ତୁ ଆଘାତ କରିବା ପଦାର୍ଥକୁ ଯେଉଁ ଲେଉଟ ଆଘାତ କରେ—1. Counter-stroke; a blow in return.
୨ । କୌଣସି ଆଘାତକୁ ସମ୍ଭାଳିବା ବା ଠେଲିବା ପାଇଁ ବ୍ୟବହୃତ ବଳ—2. Repulsion.
୩ । ଟକ୍କର; ଠୋକର—3. Repulse; rebound.
୪ । ବ୍ୟାଘାତ; ବାଧା—5. Obstruction; hinderance.
୫ । ବିରୋଧ—5. Opposition.
୬ । ଶତ୍ରୁତା—6. Enmity.

୭ । କ୍ଷେପ—7. Throwing; casting.

୮ । କ୍ଷୟ; ନିରାକରଣ—

8. Warding off; rebuff.

**ପ୍ରତିଘାତନ**—ସ. ବି. ( ପ୍ରତି+ଘାତନ )—୧ । ମାରଣ; ହତ୍ୟା; ବଧ, Pratighātana ପ୍ରାଣସଂହାର—1. Killing; slaughter.

୨ । ପ୍ରତିଘାତକରଣ—

2. Repelling; striking in return.

୩ । ବିଘ୍ନ; ବାଧା—3. Obstruction.

**ପ୍ରତିଚକ୍ଷୁଃ**—ସ. ବି. (ପ୍ରତି+ଚକ୍ଷୁସ୍)—ଚଷମା; ପ୍ରତିଚକ୍ଷୁ—

Pratichakshuh Spectacles

(ପ୍ରତିଚକ୍ଷୁ—ଦେଶଜରୂପ)

ବହି ନ ହେବ ନେତ୍ର ମଦେ ମୂର୍ଚ୍ଛିତ ପ୍ରତିଚକ୍ଷୁଠାରେ ।

ଉକ୍ତ. ବୈଦେହୀଶବିଳାସ ।

**ପ୍ରତିଚ୍ଛାୟା**—ସ. ବି. (ପ୍ରତି+ଛାୟା; ସନ୍ଧିଯୋଗୁଁ 'ଛ' ସ୍ଥାନରେ 'ଚ୍ଛ')—

Pratichchhāyā ୧ । ପ୍ରତିମୂର୍ତ୍ତି; ପ୍ରତିକୃତି—

1. A statue; image.

୨ । ଚିତ୍ର, ଛବି—2. A picture.

୩ । ଫଟୋ—3. Photo.

୪ । ସାଦୃଶ୍ୟ—4. Resemblance.

୫ । ପ୍ରତିବିମ୍ବ—5. Reflected image

୬ । ଛାୟା—6. Shadow.

**ପ୍ରତିଜଂଘା**—ସ. ବି. (ପ୍ରତି=ଅଗ୍ରଭାଗ+ଜଂଘା)—ଅଗ୍ରଜଙ୍ଘା; ଜଙ୍ଘର

Pratijamghā ଅଗ୍ରଭାଗ—The fore part of the thigh.

**ପ୍ରତିଜିହ୍ୱା**—ସ. ବି. (ପ୍ରତି=କ୍ଷୁଦ୍ର+ଜିହ୍ୱା)—ତାଳୁଜନକଟସ୍ଥ କ୍ଷୁଦ୍ର ଜିହ୍ୱା; Partijihwā ଘଣ୍ଟିକା—Uvula, soft palate.

**ପ୍ରତିଜ୍ଞା**—ସ. ବି. (ପ୍ରତି+ଜ୍ଞା ଧାତୁ+ଭାବ ଅ+ସ୍ତ୍ରୀ. ଆ)—

Partijnā ୧ । ଶପଥ; ପଣ—1. Vow; oath.

୨ । ସ୍ୱୀକାର—

2. Assent; admission; acknowledgement.

୩ । ବାଗ୍‌ଦାନ; ପ୍ରତିଶ୍ରୁତି, ଅଙ୍ଗୀକାର—

3. Promise; agreement.

୪ । ଘୋଷଣା—4. Declaration.

୫ । କର୍ତ୍ତବ୍ୟାବଧାରଣ; ଉଦ୍ଦେଶ୍ୟସାଧନ ନିମନ୍ତେ ଦୃଢ଼ସଂକଳ୍ପ—

5. Determination; resolution.

୬ । ପ୍ରସ୍ତାବ—6. A proposal.

୭ । (ନ୍ୟାୟ) ନ୍ୟାୟର ପ୍ରତିପାଦ୍ୟ-ନିର୍ଦ୍ଦେଶକ ବାକ୍ୟ—

7. (Logic) Proposition; assertion.

୮ । (ଗଣିତ) ଅଙ୍କଶାସ୍ତ୍ରର ସମ୍ପାଦ୍ୟ ବିଷୟ—

8. A mathematical proposition.

୯ । (ଜ୍ୟାମିତି) ପ୍ରସ୍ତାବ; ଜ୍ୟାମିତିର ଉପପାଦ୍ୟ ବିଷୟ ଅର୍ଥାତ୍ ଯେଉଁ ପ୍ରସ୍ତାବକୁ ପ୍ରମାଣ କରିବାକୁ ହୁଏ—

9. Geometrical proposition; theorem.

୧୦ । ଅଭିଯୋଗ; ମକଦ୍ଦମାର ଅର୍ଜି—

10. Plaint; complaint

୧୧ । ମକଦ୍ଦମାରେ ପ୍ରମାଣିତ ହେବା ବିଷୟ; ଇସୁ—

11, The points to be proved in a suit; issue

**বাহাদুরী, ডীংগ** ଦେ. ବି—୧ । ପରାକ୍ରମ; ବିକ୍ରମ—

1. Might; power; prowess.

୨ । ଆପଣାର କ୍ଷମତାର ବଡ଼ାଇ; ଆତ୍ମପ୍ରଶଂସା—

2. Declaration of one's prowess.

କେତେ କରୁଣରେ ତହୁଁ କଲେ ପ୍ରତିଜ୍ଞା କହୁ—ଉକ୍ତ. ବୈଦେହୀଶବିଳାସ ।

ଗ୍ରା. ବିଣ—ପରାକ୍ରମୀ—Mighty.

(ଯଥା—ଆମ ଗାଁଆର ନୀଳକଣ୍ଠ ନାଥେ ଭାରି ପ୍ରତିଜ୍ଞା ଦେଉଛନ୍ତି)

**ପ୍ରତିଜ୍ଞା କରିବା**—ଦେ. କ୍ରି—୧ । ଆପଣାର ବିକ୍ରମ ବା ପରାକ୍ରମ

Pratijnā kariba ବିଷୟରେ ବଡ଼ାଇ କରିବା; ବାହାଦୁରୀ (ପ୍ରତିଜ୍ଞା କହିବା; ପ୍ରତିଜ୍ଞା ଛାଡ଼ିବା—ଅନ୍ୟରୂପ) କରିବା—

প্রতিজ্ঞা করা **বাহাদুরী করা** 1. To brag or boast of one's prowess

୨ । (କଥିତ)—ଶପଥପୂର୍ବକ କହିବା—

2. To declare solemnly.

**ପ୍ରତିଜ୍ଞାତ**—ସ. ବିଣ. (ପ୍ରତି+ଜ୍ଞା ଧାତୁ+କର୍ମ ତ)—୧ । ଅବଧାରିତ—

Pratijnāta 1. Determined; resolved.

୨ । ସ୍ୱୀକୃତ—2. Agreed; admitted

୩ । ଅଙ୍ଗୀକୃତ— 3 Promised; vowed.

୪ । ପ୍ରକାଶିତ; ବ୍ୟକ୍ତ, ଘୋଷିତ—4. Propounded.

୫ । ପ୍ରସ୍ତାବିତ—5. Proposed.

ସ. ବି—(+ଭାବ.ତ) ପ୍ରତିଜ୍ଞା—Proposal; vow; promise.

**ପ୍ରତିଜ୍ଞା ପତ୍ର**—ସ. ବି (ମ. ପ. ଲୋ. କର୍ମଧା; ପ୍ରତିଜ୍ଞା+ପତ୍ର)—

Pratijnā patra ୧ । ଅଙ୍ଗୀକାର ଲିପି; ଯେଉଁ ଲିପିରେ କୌଣସି ବ୍ୟକ୍ତି କୌଣସି ବିଷୟ ଘୋଷଣା କରେ—

1 Affidavit; solemn statement in writing.

୨ । ଏକରାରନାମା; ଚୁକ୍ତିପତ୍ର—

2 Written agreement; a deed of contract.

୩ । ଘୋଷଣାପତ୍ର— 3 A written declaration.

୪ । ହାଣ୍ଡନୋଟ୍, ପରେ ଟଙ୍କା ଦେବାପାଇଁ କରାଯିବା ସ୍ୱୀକାରପତ୍ର—

4 A promissory note; a handnote.

**ପ୍ରତିଜ୍ଞାବଦ୍ଧ**—ସ ବିଣ. ପୁଂ ( ୩ୟା ତତ୍; ପ୍ରତିଜ୍ଞା+ଆବଦ୍ଧ)—କୌଣସି

Pratijnābaddha କର୍ମ କରିବାକୁ ଅଙ୍ଗୀକାର ଦ୍ୱାରା ବାଧ୍ୟ ଥିବା—

(ପ୍ରତିଜ୍ଞାବଦ୍ଧା—ସ୍ତ୍ରୀ) Promise-bound; bound to do a certain act by virtue of a solemn promise.

**ପ୍ରତିଜ୍ଞା ଭଙ୍ଗ**—ସ. ବି (୬ଷ୍ଠୀ ତତ୍; ପ୍ରତିଜ୍ଞା+ଭଙ୍ଗ)—ଆପେ କରିଥିବା

Pratijnā bhanga ସତ୍ୟକୁ ଲଙ୍ଘନ କରିବା—Breach of promise.

**ପ୍ରତିଜ୍ଞେୟ**—ସ. ବିଣ. (ପ୍ରତି+ଜ୍ଞା ଧାତୁ+କର୍ମ. ଯ)—

Pratijneya ୧ । ପ୍ରତିଜ୍ଞାତ ହେବା ଯୋଗ୍ୟ, ଯେଉଁ ବିଷୟ ପ୍ରତିଜ୍ଞାତ ହେବା ଉଚିତ—1. Fit to be promised.

୨ । ସ୍ୱୀକରଣୀୟ; ଅଙ୍ଗୀକାର୍ଯ୍ୟ—

2. Deserving to be assented to.

ସଂ. ବି. ପୁଂ—(+ କର୍ତ୍ତୃ. ଯ) ସ୍ତୁତିପାଠକ, ବନ୍ଦୀ, ଭାଟ; ଯେ (ପ୍ରତିକ୍ଷେପ୍ତ୍ରୀ—ସ୍ତ୍ରୀ) ରାଜଦରବାରୀମାନଙ୍କ ପଦ ଓ ବଂଶମର୍ଯ୍ୟାଦା ଆଦି ଘୋଷଣା କରେ—A herald, a bard, a panegyrist, a proclaimer of the ranks and titles of courtiers in a king's court.

**ପ୍ରତତନ୍ତ୍ର**—ସଂ. ବି—ଆପଣାର ଶାସ୍ତ୍ରର ମତର ବିରୁଦ୍ଧ ମତର ପ୍ରଖ୍ୟାପକ ଶାସ୍ତ୍ର
Pratitantra (ହ୍ର ଶ)—Any scripture which propounds doctrines opposed to the doctrines propounded in one's scriptures

**ପ୍ରତତର**—ସଂ. ବି (ପ୍ରତି + ତୃ ଧାତୁ + କରଣ ଅ)—ନୌଗ୍ଭଳନଦଣ୍ଡ,
Pratitara କାତ (ହ୍ର ଶ)—A pole with which a boat is propelled.

**ପ୍ରତତାଲୀ**—ସଂ. ବି (ପ୍ରତି=ଉପଯୋଗୀ + ତାଲ=ତାଲା + ଈ)—
Pratitāli ତାଲା ଖୋଲିବାର ଚାବି, କୁଞ୍ଚିକାଠି—
[ପ୍ରତିତାଳକ(କା)—ଅନ୍ୟରୂପ] Key of a padlock; a key which fits into a padlock.

**ପ୍ରତତୁଲ୍ୟ**—ଦେ. ବିଣ.—ସମ; ସଦୃଶ—
Pratitulya Similar.
ତା' ପ୍ରତତୁଲ୍ୟ ଏ ଜଗତେ
ନ ଦେଖି ସ୍ୱର୍ଗ ମର୍ତ୍ତ୍ୟ ଗତେ—ଜଗନ୍ନାଥ, ଭାଗବତ।

**ପ୍ରତଦାନ**—ସଂ. ବି (ପ୍ରତି=ବିପରୀତ + ଦାନ)—୧। ଗୃହୀତ ଦ୍ରବ୍ୟର
Pratidāna ପ୍ରତ୍ୟର୍ପଣ—1. Restoration or return
(ପ୍ରତିଦତ୍ତ, ପ୍ରତିଦେୟ—ବିଣ.) of a thing taken; restitution.
୨। ବିନିମୟ, ବଦଳ—2 Exchange; barter.
୩। ଗୃହୀତ ବସ୍ତୁର ବିନିମୟରେ ଦିଆଯିବା ପଦାର୍ଥ—
3 Requital; a gift in return; a return present.

**ପ୍ରତଦଗ**—ଦେ. ଅ (ସଂ. ପ୍ରତି ଓ ଦିକ୍)—ପ୍ରତିଦିଶ (ଦେଖ)—
Pratidiga Pratidisa (See).

**ପ୍ରତଦନ**—ସଂ. ଅ. କ୍ରି. ବିଣ (ଅବ୍ୟୟୀଭାବ, ଭୁଲ. ପ୍ରତିଷଣ)—
Pratidina ୧। ପ୍ରତ୍ୟହ; ନିତି—1. Everyday; daily.
୨। ଦିନକୁ ଦିନ—2. From day to day.

**ପ୍ରତଦବା**—ସଂ. ବି. ୧। (ପ୍ରତ + ଦିବ୍ ଧାତୁ=ଦୀପ୍ତି ପାଇବା + କର୍ତ୍ତୃ. ଅନ୍
Pratidibā ପ୍ରତିଦିବନ୍, ୧ମା. ୧ବ)—ସୂର୍ଯ୍ୟ (ପ୍ର.କୃ.ତିବାଦ)—
1. The sun (M. W.)
୨। ଦିବସ—2 A day (M. W.)
ସଂ. ଅ. (ଅବ୍ୟୟୀଭାବ; ପ୍ରତି + ଦିବା=ଦିବସ)—ପ୍ରତିଦିନ—
Everyday.

**ପ୍ରତଦଶ**—ସଂ. ଅ. (ଅବ୍ୟୟୀଭାବ; ପ୍ରତି + ଦିଶ୍)—୧। ପ୍ରତିଦିଗରେ—
Pratidisa 1. In every direction or quarter.
୨। ଚାରିଆଡ଼େ—2. All round; on all sides.

**ପ୍ରତଦଶି**—ସଂ. ଅ. (ପ୍ରତି=ପ୍ରତ୍ୟେକ + ଦିଶି= ଦିଗରେ)—
Pratidisi ପ୍ରତିଦିଶ (ଦେଖ)—Pratidisa (See)

**ପ୍ରତଦେୟ**—ସଂ. ବିଣ. (ପ୍ରତି + ଦେୟ)—୧। ପ୍ରତିଦାନର ଉପଯୁକ୍ତ—
Pratideya 1. Fit to be given as a return-gift.
୨। ପ୍ରତ୍ୟର୍ପଣ କରିବାର ଯୋଗ୍ୟ—
2. Returnable; restorable

**ପ୍ରତଦ୍ୱନ୍ଦୀ**—ଦେ. ବିଣ (ସଂ. ପ୍ରତିଦ୍ୱନ୍ଦ୍ୱୀର ଅଶୁଦ୍ଧ ବ୍ୟବହାର)—
Pratidwandi ପ୍ରତିଦ୍ୱନ୍ଦ୍ୱୀ (ଦେଖ)
(ପ୍ରତିଦ୍ୱନ୍ଦତା—ବି) Pratidwandwi (See)

**ପ୍ରତଦ୍ୱନ୍ଦ୍ୱୀ**—ସଂ. ବିଣ ପୁଂ (ପ୍ରତିଦ୍ୱନ୍ଦ୍ୱ + ଇନ୍, ପ୍ରତିଦ୍ୱନ୍ଦ୍ୱିନ୍ ୧ମା ୧ବ)—
Pratidwandwi ୧। ଶତ୍ରୁପକ୍ଷ—1. Inimical.
(ପ୍ରତିଦ୍ୱନ୍ଦ୍ୱିନୀ—ସ୍ତ୍ରୀ) ୨। ବିପକ୍ଷୀୟ; ବିରୋଧୀ—
(ପ୍ରତିଦ୍ୱନ୍ଦ୍ୱିତା—ବି) 2 Opposing; adverse
୩। ସମକକ୍ଷ, ପ୍ରତିଯୋଗୀ—
3 Rival; vying with.
ସଂ. ବି—୧। ବିପକ୍ଷ, ଶତ୍ରୁ, ପ୍ରତିପକ୍ଷ—
1. An adversary; opponent
୨। ଯେ ଅନ୍ୟ ସାଙ୍ଗେ ପଣ ପକାଏ, ଅନ୍ୟ ସହ ପ୍ରତିଯୋଗିତା କରିବା ବ୍ୟକ୍ତି—2. A rival.

**ପ୍ରତଧ୍ୱନ**—ସଂ. ବି. (ପ୍ରତି=ବଦଳ + ଧ୍ୱନି)—ଗୋଟିଏ ଧ୍ୱନି କୌଣସି
Pratidhwani ସ୍ଥାନରେ ବାଜିଲେ ତହିଁର ଯେଉଁ ଲେଉଟି ଶବ୍ଦ
ପ୍ରତିନାଦ
ପ୍ରତିକ୍ୱାନ(ନା)ଦ } ଅନ୍ୟରୂପ ଶୁଣାଯାଏ—An echo; reverberation.

**ପ୍ରତଧ୍ୱନତ**—ସଂ. ବିଣ. (ପ୍ରତି + ଧ୍ୱନିତ)—
Pratidhwanita ୧। ପ୍ରତିଧ୍ୱନିରୂପେ ଶୁଣାଯିବା (ଶବ୍ଦ)—
(ପ୍ରତିନାଦିତ—ଅନ୍ୟରୂପ) 1. Reverberated; echoed.
୨। ପ୍ରତିଧ୍ୱନିଦ୍ୱାରା ପୂର୍ଣ୍ଣ (ସ୍ଥାନ)—
2. Reverberating with a sound or echo.
ସଂ. ବି—ପ୍ରତିଧ୍ୱନି—Echo.

**ପ୍ରତନନ୍ଦନ**—ସଂ. ବି. (ପ୍ରତି=ବିଶିଷ୍ଟ + ନନ୍ଦନ)—୧। ଅଭିନନ୍ଦନ—
Pratinandana 1 Commendation; congratulation.
୨। ପ୍ରଶଂସା—2. Praise.
୩। ଆଶୀର୍ବାଦଦ୍ୱାରା ସମ୍ଭାଷଣ—3. Welcoming.

**ପ୍ରତନପ୍ତା**—ସଂ. ବି. ପୁଂ. (ପ୍ରତ + ନପ୍ତୃ=ପ୍ରତିନପ୍ତୃ, ୧ମା. ୧ବ)—
Pratinaptā ପ୍ରପୌତ୍ର; ପୁଅର ନାତି; ଅଣନାତି—
(ପ୍ରତିନପ୍ତ୍ରୀ—ସ୍ତ୍ରୀ) Great grandson; son's grandson.

**ପ୍ରତନାୟକ**—ସଂ. ବି. ପୁଂ. (ପ୍ରତି + ନାୟକ)—(କାବ୍ୟାଦିରେ) ଯେଉଁ
Pratināyaka ବ୍ୟକ୍ତି ନାୟକର ପ୍ରତିଦ୍ୱନ୍ଦ୍ୱୀ ବା ବିରୋଧୀ—
(ପ୍ରତିନାୟିକା—ସ୍ତ୍ରୀ) (in fiction) A person who is represented as the adversary or rival of the hero.

**ପ୍ରତନଧି**—ସଂ. ବି. (ପ୍ରତି=ପରବର୍ତ୍ତିରେ + ନି + ଧା ଧାତୁ=ଧାରଣ
Pratinidhi କରିବା + କର୍ମ. ଇ)—୧। ବଦଳିଆ; ଏକ ବ୍ୟକ୍ତିଙ୍କ ପରିବର୍ତ୍ତରେ କାର୍ଯ୍ୟ କରିବା ବ୍ୟକ୍ତି—1. A deputy; proxy; a substitute; a locum tenens.
୨। ଯେ କୌଣସି ଅନୁପସ୍ଥିତ ବ୍ୟକ୍ତିର ସ୍ଥାନ ଅଧିକାର କରିବାକୁ କ୍ଷମତା ପାଇଥାଏ—2. A representative; a person authorised to represent an absent person.

୩ । ଜାମିନଦାର—3. Surety.
୪ । ପ୍ରତିକୃତି—4. Likeness.

**ପ୍ରତିନିଧି ସଭା**—ଦେ. ବି—ପ୍ରଜା ସମ୍ପ୍ରଦାୟଦ୍ୱାରା ନିର୍ବାଚିତ ପ୍ରତିନିଧିମାନଙ୍କ
Pratinidhi sabhā ଦ୍ୱାରା ଗଠିତ ସଭା—An assembly of representatives of the people.

**ପ୍ରତିନିବର୍ତ୍ତନ**—ସଂ. ବି. (ପ୍ରତି=ଉଦ୍ଦେଶ୍ୟ ବା ଲକ୍ଷ୍ୟକୁ+ନିବର୍ତ୍ତନ)—
Pratinibarttana ୧ । ଅଭୀଷ୍ଟ ବିଷୟରୁ ନିବୃତ୍ତି, ଲକ୍ଷ୍ୟ ପ୍ରତି
ପ୍ରତିନିବୃତ୍ତ } ବିଣ ଅଗ୍ରସର ନ ହୋଇ ନିବର୍ତ୍ତିବା—
ପ୍ରତିନିବର୍ତ୍ତିତ } 1. Withdrawing from a desired object; desisting from one's aim.
୨ । ପ୍ରତ୍ୟାବର୍ତ୍ତନ; ଫେରିବା, ପ୍ରତ୍ୟାଗମନ—2. Returning.
୩ । ନିବାରଣ—3. Prevention.
୪ । କୌଣସି ବ୍ୟକ୍ତିକୁ ଅଭୀଷ୍ଟ କାର୍ଯ୍ୟରୁ ନିବର୍ତ୍ତାଇବା—
4. Causing a person to desist from his aim.

**ପ୍ରତିନିବୃତ୍ତ**—ସଂ. ବିଣ. (ପ୍ରତି=ଲକ୍ଷ୍ୟରୁ+ନିବୃତ୍ତ)—
Pratinibrutta ୧ । ପ୍ରତ୍ୟାଗତ; ଫେରି ଆସିଥିବା—
(ପ୍ରତିନିବର୍ତ୍ତନ, ପ୍ରତିନିବୃତ୍ତି—ବି) 1. Come back; returned.
୨ । ବିରତ; ଶାନ୍ତ—2 Desisting from; turned away from; withdrawing from (one's aim).

**ପ୍ରତିନିୟତ**—ଦେ. କ୍ରି. ବିଣ—୧ । ପ୍ରତିକ୍ଷଣ, ପ୍ରତିମୁହୂର୍ତ୍ତରେ—
Pratiniyata 1. Every moment.
ପ୍ରତିନିୟତ हरहमेसा ୨ । ସର୍ବଦା—2. Always.

**ପ୍ରତିନିଶ**—ସଂ. କ୍ରି. ବିଣ (ଅବ୍ୟୟୀଭାବ; ପ୍ରତି+ନିଶା)—
Pratiniśa ପ୍ରତିରାତ୍ରିରେ, ରାତିରାତିରେ—
[ପ୍ରତିନିଶା ଶି)—ଦେଶଜରୂପ] Nightly; every night.

**ପ୍ରତି(ତୀ)ପ**—ସଂ. ବି. (ପ୍ରତି=ବିଶେଷ ଭାବରେ+ପା ଧାତୁ=ପାଳନ
Prati(tī)pa କରିବା+ଅ)—ଚନ୍ଦ୍ରବଂଶୀୟ ଜଣେ ରାଜା, ଭୀଷ୍ମଙ୍କ ପିତାମହ ଓ ଶାନ୍ତନୁଙ୍କ ପିତା—A king of the Lunar race.
ସଂ. ବିଣ. (ପ୍ରତି=ବିପରୀତ+ପା ଧାତୁ=ପାଳନ କରିବା+
[ପ୍ରତି(ତୀ)ପା—ସ୍ତ୍ରୀ] ଭାବ. ଅ)—୧ । ବିପରୀତ; ବିରୁଦ୍ଧ—
[ପ୍ରତି(ତୀ)ପତା—ବି] 1. Opposed; opposite.
୨ । ପ୍ରତିକୂଳ—2. Unfavourable.
ଗ୍ରା. ବି. (ସଂ. ପ୍ରତିପଦ୍)—ପ୍ରତିପତ୍ ୧ (ଦେଖ)
Pratipat 1 (See)
ସେ ଦିନୁ ସେ ପଞ୍ଚ ପ୍ରତପ ଶଶି ପରି (ବଢ଼ିଲ) ।
କୃଷ୍ଣସିଂହ, ମହାଭାରତ ବନ ।

**ପ୍ରତିପକ୍ଷ**—ସଂ. ବି. (ପ୍ରତି=ବିରୁଦ୍ଧ+ପକ୍ଷ)—୧ । ବିପକ୍ଷ; ବିପକ୍ଷୀୟ ବ୍ୟକ୍ତି—
Pratipaksha 1. Adversary; opponent.
୨ । ଶତ୍ରୁ—2. Enemy; foe.
୩ । ଶତ୍ରୁପକ୍ଷ—3. Hostile party.
୪ । ଅପର ପକ୍ଷ—4. Opposite party.
୫ । ପ୍ରତିଦ୍ୱନ୍ଦ୍ୱୀ—5 Rival.

୬ । (ଦେବାନୀ ମକଦ୍ଦମାରେ) ପ୍ରତିବାଦୀ, ବିବାଦୀ—
6. A defendant in a civil suit.
୭ । (ଫଉଜଦାରି ମକଦ୍ଦମାରେ) ଆସାମୀ, ମୁଦାଲା—
7 An accused in a criminal case.
୮ । ସାଦୃଶ୍ୟ—8. Likeness; resemblance; similarity.

**ପ୍ରତିପଚ୍ଚନ୍ଦ୍ର**—ସଂ. ବି. (ପ୍ରତିପଦ୍+ଚନ୍ଦ୍ର; ପ୍ରତିପଦା ଦିନର ଅତି କ୍ଷୀଣ
Pratipachchandra ଚନ୍ଦ୍ର ଲୋକଙ୍କ ଆଖିକୁ ଦେଖା ନ ଯିବାରୁ; ତୁଳ. ଆକାଶ କୁସୁମ; ଲେଢ଼ ବାଳ)—
ଅଦୃଶ୍ୟ ବିଷୟ—An invisible thing.

**ପ୍ରତିପତ୍(ଦ୍)**—ସଂ. ବି (ପ୍ରତି=ପ୍ରଥମ+ପଦ୍ ଧାତୁ=ଯିବା, ଘଟିବା+
Pratipat d) କ୍ୱିପ୍. ପ୍ରତିପଦ୍ ୧ମା. ୧ବ)—୧ । ଶୁକ୍ଳପକ୍ଷ ବା କୃଷ୍ଣପକ୍ଷର ପ୍ରଥମ ତିଥି; ପୂର୍ଣ୍ଣିମା ଓ ଅମାବାସ୍ୟାର ପରଦିନ (ଶୁକ୍ଳ ଓ କୃଷ୍ଣଭେଦରେ ପ୍ରତିପଦ୍ ୨ଟ, ଶୁକ୍ଳ ପ୍ରତିପତ୍ ଓ କୃଷ୍ଣ ପ୍ରତିପତ୍)—1. The first day of the lunar fortnight; the 1st day of the moon's increase or wane.
୨ । ବୃଦ୍ଧି—2 Increase.
୩ । ବୁଦ୍ଧି—3. Understanding.
୪ । ପଦବୀ—4. Rank; title.
୫ । ଫଳାଫଳ—5. Consequence.

**ପ୍ରତିପତ୍ତି**—ସଂ. ବି (ପ୍ରତି+ପଦ୍ ଧାତୁ+ଭାବ. ତି)—୧ । ଗୌରବ;
Pratipatti ସୁଖ୍ୟାତି; ପ୍ରତିଷ୍ଠା—1. Fame; reputation.
୨ । ମାନ; ସମ୍ମାନ - 2. Respect.
୩ । ପ୍ରାପ୍ତି—3. Gaining; obtaining; acquisition.
୪ । ପଦପ୍ରାପ୍ତି—4. Acquirement of a position or title.
୫ । ଉନ୍ନତି—5 Elevation; advancement; promotion.
୬ । ପ୍ରବୃତ୍ତି; ସାଂସାରିକ କାର୍ଯ୍ୟ—
6. Worldly practice or activity.
୭ । କୌଣସି ବିଷୟ ସମ୍ପୂର୍ଣ୍ଣରୂପେ ବୁଝିପାରିବା; ପ୍ରବୋଧ, ଜ୍ଞାନ—
7. Wisdom; comprehension.
୮ । କର୍ତ୍ତବ୍ୟଜ୍ଞାନ—8 Sense of duty.
୯ । ଅବଧାରଣ; ସ୍ଥିରୀକରଣ—
9. Determination; settlement.
୧୦ । ଅଭିମାନ; ଗର୍ବ—
10. Pride; haughtiness; sullennese.
୧୧ । ପ୍ରଗଲ୍ଭତା—11. Arrogance; audacity.
୧୨ । ଅଭିଯୋଗ—12. Complaint; charge.
୧୩ । ବିଶ୍ୱାସ; ପ୍ରତ୍ୟୟ—
13 Trust, confidence.
୧୪ । ସ୍ୱୀକାର; ଅଙ୍ଗୀକାର—
14. Acknowledgement; promise.
୧୫ । ଦାନ—15 Giving; presentation.

୧୬ । ପ୍ରୟୋଗ, ବ୍ୟବହାର—16 Application; use.
୧୭ । ଉପକାର—17. Benefit; profit.
୧୮ । ଉପାୟ—18. Means; expedient.
୧୯ । ପ୍ରମାଣଦ୍ୱାରା ଦର୍ଶାଇବା—
19. Proving; establishing by evidence.
୨୦ । ବ୍ୟବସ୍ଥା—20. Disposal; arrangement.
୨୧ । ବିତରଣ—21. Distribution.
୨୨ । ପ୍ରମାଣ, ସାକ୍ଷ—22. Evidence; testimony.
୨୩ । ଅଭିପ୍ରାୟ; ମତଲବ—
23. Purpose; design.
୨୪ । ଇଚ୍ଛା; ଅଭିଳାଷ—24. Desire; wish.
୨୫ । ପ୍ରବଞ୍ଚନା; ପ୍ରତାରଣ—
25. Fraud; deception
୨୬ । ସ୍ଥିରତା—26 Certainty.
୨୭ । ଭକ୍ତି ବା ସ୍ନେହପୂର୍ଣ୍ଣ ଆଚରଣ—
27. Respectful or affectionate behaviour.
୨୮ । ସନ୍ତୋଷ ଉତ୍ପାଦନ—28. Satisfying.

**ପ୍ରତିପଦ**—ଦେ. ବି—(ସ. ପ୍ରତିପଦ୍)—ପ୍ରତିପତ୍ (୧) (ଦେଖ)
Pratipada Pratipat (1) (See)
୨ । (ସ. ପ୍ରତି+ପଦ) ପ୍ରତ୍ୟେକ ପଦକ୍ଷେପ ବା ପଦକ୍ଷେପ—
ପ୍ରତିପଦ 2. Every step.
(ଯଥା—ମୁଁ ଏ ପାହାଡ଼ିଆ ଭୂଇଁରେ ପ୍ରତିପଦରେ ଝୁଣ୍ଟୁଛି ।)
୩ । ପ୍ରତ୍ୟେକ ବାକ୍ୟ ବା କଥା—3. Every word.
(ଯଥା—ତାଙ୍କରି ଲିଖିତ ଖଳା ପ୍ରତିପଦରେ ଖଳଉଛି ।)
ଦେ. କ୍ରି.ବିଣ. (ସ. ପ୍ରତିପଦଂ)—୧ । ପଦେ ପଦେ —
ପ୍ରତିପଦେ 1. At every step.
୨ । ଉପର୍ଯ୍ୟୁପରି—2. Repeatedly.
୩ । ସର୍ବଦା—3. Always; constantly.

**ପ୍ରତିପଦା**—ଦେ. ବି.—ପ୍ରତିପତ୍ (୧) (ଦେଖ)
Pratipadā Pratipat (1) (See)

**ପ୍ରତିପନ୍ନ**—ସ. ବିଣ. (ପ୍ରତି+ପଦ୍ ଧାତୁ+କର୍ମ. ତ)—୧ । ଅବଧାରିତ,
Pratipanna ସ୍ଥିରୀକୃତ—1. Settled; determined; established; ascertained.
୨ । ପ୍ରମାଣିତ—2. Proved; testified; demonstrated.
୩ । ପ୍ରମାଣ ଓ ତର୍କାଦିଦ୍ୱାରା ସ୍ଥିରୀକୃତ—
3. Ascertained after evidence, enquiry or discussion.
୪ । ବିଦିତ; ଜ୍ଞାତ—4 Known; understood
୫ । ଅଙ୍ଗୀକୃତ—5. Promised; acknowledged.
୬ । ସ୍ୱୀକୃତ—6. Assented to, agreed to.
୭ । ଗୃହୀତ—7. Accepted.
୮ । ପ୍ରାପ୍ତ—8 Obtained; acquired; gained.
୯ । ସମ୍ପାଦିତ; କୃତ 9. Effected; accomplished.
୧୦ । ଅଭିଯୁକ୍ତ—10. Charged.
୧୧ । ଅନୁମତ, ଅନୁମତିପ୍ରାପ୍ତ—11. Permitted; approved
୧୨ । ସମ୍ମାନିତ—12. Respected.

**ପ୍ରତିପାଦକ**—ସ. ବିଣ. ପୁଂ (ପ୍ରତି+ପଦ୍ ଧାତୁ ଣିଚ୍+କର୍ତ୍ତୃ. ଅକ)—
Pratipādaka ୧ । ବୋଧକ—1. Explanatory.
(ପ୍ରତିପାଦିକା—ସ୍ତ୍ରୀ) ୨ । ନିଷ୍ପାଦକ—2. Accomplishing
୩ । ଯେ ପ୍ରମାଣ ଦ୍ୱାରା କୌଣସି ବିଷୟ ସ୍ଥିର କରି ଦେଖାଇଦିଏ—
3. Demonstrating.
୪ । ନିର୍ଣ୍ଣାୟକ—4. Ascertaining; establishing.
୫ । କାର୍ଯ୍ୟର ସୂତ୍ରପାତକାରୀ—5. Inaugurating.
୬ । ଉତ୍ପାଦକ—6. Producing; bringing about; causing.
୭ । କୌଣସି ପ୍ରସ୍ତାବର ବା ବିଷୟର ଉପସ୍ଥାପକ—
7. Propounding any matter.

**ପ୍ରତିପାଦନ**—ସ. ବି. (ପ୍ରତି+ପଦ୍ ଧାତୁ ଣିଚ୍+ଭାବ. ଅନ)—
Pratipādana ୧ । ଦାନ—1. Gift; donation.
(ପ୍ରତିପାଦିତ, ପ୍ରତିପନ୍ନ—ବିଣ) ୨ । ଉତ୍ପାଦନ—2. Producing.
୩ । ସମ୍ପାଦନ; ନିଷ୍ପାଦ—3. Accomplishing.
୪ । ପ୍ରମାଣଦ୍ୱାରା ଦେଖାଇବା—
4. Demonstrating; proving.
୫ । ସ୍ଥିରୀକରଣ—
5. Establishing; ascertaining; determining.
୬ । ସରଳ ବା ବୋଧଗମ୍ୟ କରାଇବା—
6. Rendering clear or intelligible.
୭ । ବୁଝାଇଦେବା—7. Explaining.
୮ । ଜ୍ଞାପନ; ବୋଧନ
8. Apprising; informing; making known.
୯ । ପ୍ରତିପତ୍ତି ( ଦେଖ )
9. Pratipatti ( See )

**ପ୍ରତିପାଦିତ**—ସ. ବିଣ ( ପ୍ରତି+ପାଦ ଧାତୁ+କର୍ମ. ତ )—
Pratipādita ୧ । ଦତ୍ତ, ଅର୍ପିତ—1. Given; delivered.
( ପ୍ରତିପାଦନ—ବି )
୨ । ସମ୍ପାଦିତ—2. Accomplished.
୩ । ପ୍ରମାଣିତ—3. Proved; demonstrated.
୪ । ସ୍ଥିରୀକୃତ; ନିର୍ଣ୍ଣୀତ—4. Ascertained; settled.
୫ । ଉତ୍ପନ୍ନ—5. Caused; produced.
୬ । ବିଜ୍ଞାପିତ—6 Informed; notified.
୭ । ବୋଧିତ; ବୁଝାଇ ଦିଆ ଯାଇଥିବା—
7. Explained, instructed.

**ପ୍ରତିପାଦ୍ୟ**—ସ. ବିଣ. (ପ୍ରତି+ପଦ୍ ଧାତୁ=ଗମନ କରିବା+କର୍ମ. ଯ)-
Pratipādya ୧ । ପ୍ରମାଣସାଧ୍ୟ—1. Demonstrable.
୨ । ଅଭିଧେୟ—2. Fit to be mentioned.
୩ । ଯାହା ବୁଝାଇ ଦିଆ ଯିବା ଯୋଗ୍ୟ—
3. Fit to be explained.

୪ । ବୋଧ୍ୟ—4. Fit to be understood.
୫ । ବର୍ଣ୍ଣନୀୟ ବିଷୟ ସମ୍ବନ୍ଧୀୟ—5. Describable; predicable; relevant to the matter to be described
୬ । ସ୍ଥିରୀକୃତ ହେବା ଯୋଗ୍ୟ—6. Ascertainable.

**ପ୍ରତିପାଳ**—ଦେ. ବି (ସଂ. ପ୍ରତିପାଳନ)—ପ୍ରତିପାଳନ (ଦେଖ)
Pratipāla Pratipālana (See)
ଗୁରୁ ଦକ୍ଷିଣାକୁ ବୋଲି ପ୍ରତିପାଳ କର ।
ଯ୍ୟାତୀ. ଉପ ଶର୍ମିଷ୍ଠା ।

**ପ୍ରତିପାଳକ**—ସଂ ବିଣ. (ପ୍ରତି+ପାଳ ଧାତୁ=ରକ୍ଷା କରିବା+କର୍ତ୍ତୃ. ଅକ)
Prati pālaka ଯେ ପ୍ରତିପାଳନ କରେ; ଯେ ପୋଷେ—
(ପ୍ରତିପାଳିକା—ସ୍ତ୍ରୀ) Supporting; bringing up; maintaining.
ସଂ. ବି.—୧ । ରାଜା—1. King.
୨ । ପାଳନକାରୀ ବ୍ୟକ୍ତି—2. Protector; supporter.

**ପ୍ରତିପାଳନ(ନା)**—ସଂ. ବି. (ପ୍ରତି+ପାଳ ଧାତୁ+ଭାବ. ଅନ;+ଆ)—
Pratipālana(nā) ୧ । ରକ୍ଷଣ—1. Watching; guarding.
(ପ୍ରତିପାଳିତ—ବିଣ) ୨ । ପାଳିବା; ଅନ୍ନବସ୍ତ୍ରାଦି ଦ୍ୱାରା ପୋଷଣ—
2 Supporting; maintaining.
୩ । (ନିୟମ) ପାଳନ କରିବା, ମାନିବା, ଅନୁସରଣ କରିବା—
3. Observance; obeying; following (a rule).
୪ । ଆଜ୍ଞାପାଳନ—4. Obeying of an order.

**ପ୍ରତିପାଳନୀୟ**—ସଂ. ବି. (ପ୍ରତି+ପାଳ ଧାତୁ+କର୍ମ. ଅନୀୟ)—
Pratipālaniya ୧ । ପୋଷଣୀୟ—1. Cherishable.
(ପ୍ରତିପାଳୟିତବ୍ୟ—ଅନ୍ୟରୂପ) ୨ । ରକ୍ଷଣୀୟ—
2. To be observed or protected or kept.
୨ । ଯାହାକୁ ପୋଷିବା ଉଚିତ—
3. Deserving to be maintained.

**ପ୍ରତିପାଳିତ**—ସଂ. ବିଣ. (ପ୍ରତି+ପାଳ ଧାତୁ+କର୍ମ. ତ)—
Pratipālita ୧ । ପୋଷିତ—1. Maintained
(ପ୍ରତିପାଳନ ବି) cherished; provided for.
୨ । ପାଳିତ; ଅନୁଷ୍ଠିତ—2. Observed, practised.
୩ । ରକ୍ଷିତ—3. Protected; obeyed.

**ପ୍ରତିପାଳିବା**—ଦେ. (ପଦ୍ୟ) (ସଂ. ପ୍ରତିପାଳନ)—
Pratipāliba ୧ । ପ୍ରତିପାଳନ କରିବା; ପୋଷିବା—
প্রতিপালা 1. To maintain.
प्रतिपालना ୨ । (ଆଜ୍ଞା ଆଦି) ପାଳନ କରିବା—
2. To obey (an order).
ଭକ୍ତ ବଚନ ପ୍ରତିପାଳି,
ଗୋପ୍ତୁ ଚାଲକ ବନମାଳୀ । ରୂପଙ୍କ. ମେଘଦୂତ ।
୩ । ଯତ୍ନପୂର୍ବକ ରକ୍ଷା କରିବା
3. To keep with care; to protect.
ପର କହାରୁ କ ହେବ ...
ସେ ଯାହାକୁ ଦୃଢ଼ ସେ ଧାହାକୁ ପ୍ରତିପାଳ୍ଭା ... ବୋଲୁନ୍ତି...

**ପ୍ରତିପାଲ୍ୟ**—ସଂ. ବିଣ. (ପ୍ରତି+ପାଳ ଧାତୁ+କର୍ମ. ଯ)—
Pratipālya ପୋଷ୍ୟ; ପ୍ରତିପାଳନୀୟ—
Maintainable; cherishable; observable.

**ପ୍ରତିପୁରୁଷ**—ସଂ ବି—୧ । (ପ୍ରତି=ବଦଳରେ+ପୁରୁଷ)—ପ୍ରତିନିଧି—
Pratipurusha 1. Proxy, deputy
୨ । ପ୍ରତ୍ୟେକ ମନୁଷ୍ୟ—2. Every man.

**ପ୍ରତିପୂଜନ**—ସଂ. ବି. (ପ୍ରତି+ପୂଜନ)—ଅଭିବାଦନ, ସାଦର ସମ୍ଭାଷଣ—
Pratipūjana Welcoming; congratulating.
(ପ୍ରତିପୂଜା—ଅନ୍ୟରୂପ) (ପ୍ରତିପୂଜିତ, ପ୍ରତିପୂଜ୍ୟ—ବିଣ)

**ପ୍ରତିପୋଷକ**—ସଂ. ବିଣ. ପୁଂ. (ପ୍ରତି+ପୋଷକ)—୧ । ସହାୟକ—
Pratiposhaka 1. Assisting; helping.
(ପ୍ରତିପୋଷିକା—ସ୍ତ୍ରୀ) ୨ । ପ୍ରତିପାଳକ—2. Maintaining.

**ପ୍ରତିପୋଷଣ**—ସଂ. ବି. (ପ୍ରତି+ପୋଷଣ)—ପ୍ରତିପାଳନ, ଜୀବିକାନିର୍ବାହ-
Pratiposhaṇa Maintaining.
ପ୍ରତିପୋଷିତ, ପ୍ରତିପୋଷଣୀୟ—ବିଣ,
ଦେ. ବିଣ—ପ୍ରତିପୋଷିତ—Maintained; cherished.

**ପ୍ରତିପୋଷଣ ହେବା**—ଦେ. କ୍ରି—ନିଜର ଜୀବିକା ନିର୍ବାହ କରିବା;
Pratiposhaṇa hebā ପୋଷି ହେବା—
প্রতিপালন হওযা To get one's maintenance or
पतिपोषन होना support, to maintain one's self.
(ଯଥା—ମୁଁ ଓକାଲତି ବ୍ୟବସାୟ ଦ୍ୱାରା ପ୍ରତିପୋଷଣ ହେଉଥିଲି ।)

**ପ୍ରତିପୋଷିତ**—ସଂ. ବିଣ. (ପ୍ରତି+ପୋଷିତ)—ପ୍ରତିପାଳିତ (ଦେଖ)—
Pratiposhita Pratipālita (See)

**ପ୍ରତି ପ୍ରତି**—ଦେ ଅବ୍ୟୟ—୧ । ପ୍ରତ୍ୟେକ—1. Each.
Prati prati ୨ । ପ୍ରତିଦିନ—2. Everyday.
୩ । ସର୍ବଦା—3. Always.
୪ । ବାରମ୍ବାର—4. Again and again.

**ପ୍ରତିପ୍ରତିମା**—ସଂ ବି. (ପ୍ରତି+ପ୍ରତିମା)—ଫଟୋ—
Pratipratimā Photo
ସନ୍ନ୍ୟାସୀ ଛବି ଯାହା ପ୍ରତିପ୍ରତିମା ଅଣିଛୁ ଦର୍ଶକ ଦେବାକୁ—ଭକ୍ତ. ଲବଣ୍ୟବତୀ ।

**ପ୍ରତିଫଳ**—ସଂ. ବି. (ପ୍ରତି=ବଦଳରେ+ଫଳ)—୧ । ପ୍ରତିଶୋଧ—
Pratiphala 1. Revenge; retribution.
୨ । କୌଣସି କାର୍ଯ୍ୟ ପାଇଁ ଦିଆଯାଉଥିବା ପୁରସ୍କାର ବା ଦଣ୍ଡ—
2 Reward or punishment meted out for an action.
୩ । ପ୍ରତ୍ୟୁପକାର—
3 A good turn, requital; recompense.
୪ । କାର୍ଯ୍ୟର ଶେଷଫଳ—
4 The consequence of an action
୫ । ପ୍ରତିବିମ୍ବ—5 Reflected image, shadow.

**ପ୍ରତିଫଳନ**—ସଂ ବି. (ପ୍ରତି+ଫଳ ଧାତୁ+ଭାବ. ଅନ)—
Pratiphalana ୧ । ପ୍ରତିବିମ୍ବପାତ—1. Reflection.
୨ । ଜଳାଦିରେ ପ୍ରତିବିମ୍ବିତ କୌଣସି ବସ୍ତୁର ଛାୟା—
2. Reflected image.

**ପ୍ରତିଫଳିତ**—ସଂ. ବିଣ. (ପ୍ରତି+ଫଳିତ)—୧ । ପ୍ରତିବିମ୍ବିତ—
Pratiphalita 1. Reflected.
୨ । ପ୍ରତିଶୋଧ କରାଯାଇଥିବା—
2. Retaliated; recompensed.

**ପ୍ରତିଫଳିବା**—ଦେ. (ପଦ୍ୟ) କ୍ରି—(ସଂ. ପ୍ରତିଫଳ)—ପ୍ରତିବିମ୍ବିତ ହେବା—
Pratiphalibā To be reflected.
ପ୍ରତିଫଳା ଶୋଭନ୍ତି ଫୁଟି ଅନୁସାରେ ସ୍ଥଳେ
ତହିଁ ଚୋ ଉଦକ ବକ୍ଷେ ପ୍ରତିଫଳେ—ରାଧାନାଥ. ଚିଲିକା ।

**ପ୍ରତିବଚନ**—ସଂ. ବି (ପ୍ରତି+ବଚନ)—୧ । ପ୍ରତ୍ୟୁତ୍ତର—
Pratibachana 1. Reply; answer; rejoinder.
୨ । ପ୍ରତିଧ୍ୱନି—2 Echo.
(ପ୍ରତିବାକ୍ୟ, ପ୍ରତିବାଣୀ—ଅନ୍ୟରୂପ) ୩ । ପ୍ରତିକୂଳ ଉକ୍ତି—
3 Adverse saying.
୪ । ତୁଲ୍ୟାର୍ଥ-ବିଶିଷ୍ଟ ବାକ୍ୟ—4 Synonym
୫ । କଥାର ଜବାବ—5 Response.

**ପ୍ରତିବଦ୍ଧ**—ସଂ. ବିଣ ( ପ୍ରତି=ବିରୁଦ୍ଧ+ବଦ୍ଧ=ବନ୍ଧା )—
Pratibaddha ୧ । ବନ୍ଧା ଯାଇଥିବା, ଆବଦ୍ଧ—1. Bound.
୨ । ବାଧାପ୍ରାପ୍ତ—
2 Impeded; obstructed, thwarted.
୩ । ନିବାରିତ—3. Prevented.

**ପ୍ରତିବଧ**—ସଂ. ବି. (ପ୍ରତି + ବଧ୍ ଧାତୁ=ବିନାଶ କରିବା + ଅ)—
Pratibadha ପ୍ରତିହିଂସାମୂଳକ ହତ୍ୟା—
Killing in revenge.
ବାଳକ ପ୍ରତିବଧେ ହେବ,
ଅପଣା ତନୁ ତ୍ୟାଗ କରୁ । ଭୂପତି. ପ୍ରେମପଞ୍ଚାମୃତ ।

**ପ୍ରତିବନ୍ଧ**—ସଂ. ବି (ପ୍ରତି+ବନ୍ଧ୍ ଧାତୁ=ବାନ୍ଧିବା+ଭାବ. ଅ)—
Pratibandha ୧ । ବନ୍ଧନ—1. Binding
୨ । ସମ୍ବନ୍ଧ—2. Connection.
୩ । ବାଧା, ବିଘ୍ନ—3. Obstacle; impediment.
୪ । ନିରାଶା—4. Disappointment.
ସଂ. ବିଣ (+କର୍ମ. ଅ)—୧ । ନିବାରିତ—1. Prevented.
୨ । ବାଧାପ୍ରାପ୍ତ—2. Impeded; thwarted.

**ପ୍ରତିବନ୍ଧକ**—ସଂ. ବିଣ (ପ୍ରତି+ବନ୍ଧ୍ ଧାତୁ+କର୍ତ୍ତୃ. ଅକ)—ବାଧାଜନକ,
Pratibandhaka ପ୍ରତିରୋଧକ—
Obstructing; impeding.
ସଂ. ବି. (+ଭାବ. ଅ) ୧ । ବାଧା, ବ୍ୟାଘାତ—
1. Impediment; obstacle.
୨ । ବାନ୍ଧିବା; ବନ୍ଧନ—2. Binding.
୩ । ବୃକ୍ଷର ଶାଖା—3. Branch; a shoot.

**ପ୍ରତିବନ୍ଧୁ**—ସଂ. ବି. (ପ୍ରତି=ସମାନ+ବନ୍ଧୁ)—ବନ୍ଧୁର ସମାନ ବ୍ୟକ୍ତି
Pratibandhu (ହୁ. ଶ.)—A person who is considered as a relative though not actually so.

**ପ୍ରତିବଳ**—ସଂ. ବିଣ. (ପ୍ରତି=ସମାନ+ବଳ)—୧ । ସମବଳଶାଳୀ—
Pratibala 1. Having equal strength.
୨ । ଯାହାସଙ୍ଗେ ଲଢ଼ିବାକୁ ସମବଳଶାଳୀ ବା ସମକକ୍ଷ ଯୋଦ୍ଧା ଥାଏ—2. Equally matched.
ସଂ. ବି—ସମକକ୍ଷ ଯୋଦ୍ଧା—
Well-matched adversary.

**ପ୍ରତିବସ୍ତୂପମା**—ସଂ. ବି. (ପ୍ରତି+ବସ୍ତୁ+ଉପମା)—ଅର୍ଥାଲଙ୍କାରବିଶେଷ
Pratibastūpamā (ଉପମାନ ଓ ଉପମେୟରୂପେ ପ୍ରଯୁକ୍ତ ହୋଇ ଥିବା ଦୁଇଟି ବାକ୍ୟର ସାଧାରଣ ଧର୍ମ ଭିନ୍ନ ଭିନ୍ନ ପଦ ଦ୍ୱାରା କଥିତ ହେଲେ 'ପ୍ରତିବସ୍ତୂପମା' ଅଳଙ୍କାର ହୁଏ—
ଲୁଲମଣି. (ଅଳଙ୍କାରତରଙ୍ଗିଣୀ)—
A figure of speech; a kind of expressed simile.
[ଦ୍ର—ଉଦାହରଣ—
କିନ୍ତୁ ରୂପ ଥିଲେ ପ୍ରଜନ୍ମେ କେବେ ରସିକ ଛାଡ଼େ,
ମଧୁ ଥିଲେ ଯତନେ ଯତନେ ଖୋଜି ମଧୁପ କାଢ଼େ—
ରାଧାନାଥ. ଚନ୍ଦ୍ରଭାଗା ।]

**ପ୍ରତିବାତ**—ସଂ. କ୍ରି. ବିଣ (ପ୍ରତି+ବାତ)—୧ । ବାୟୁର ବିପରୀତ
Pratibāta ଦିଗରେ; ଯେଉଁ ଆଡ଼ୁ ବାୟୁ ବହୁଛି ସେହି ଆଡ଼କୁ—
(ଅନୁବାତ—ବିପରୀତ) To leeward; against the wind.

**ପ୍ରତି(ତୀ)ବାଦ**—ସଂ. ବି. (ପ୍ରତି + ବଦ୍ ଧାତୁ + ଅ)-୧ । ପ୍ରତିକୂଳ ଉକ୍ତି-
Prati(tī)bāda 1. Contradiction.
୨ । ମକଦ୍ଦମାରେ ପ୍ରତିବାଦୀର ପ୍ରଦତ୍ତ ଜବାବ—
2 Pleading in reply; defendant's statement.
୩ । ଆପତ୍ତି—3 Objection
୪ । ବିବାଦ— . Contention; dispute.
୫ । ପ୍ରତ୍ୟୁତ୍ତର—5. Reply.
୬ । ଅଭିଯୋଗ, ମାଲିମକଦ୍ଦମା—6. Litigation.
୭ । ଆରୋପିତ ଅଭିଯୋଗ ବିରୋଧରେ ଆପତ୍ତି—
7 Protest against a charge.

**ପ୍ରତିବାଦି**—ଦେ. ବି. (କଥିତ ଭାଷା; ସଂ ପ୍ରତିବାଦୀ)—
Pratibadi ୧ । ପ୍ରତିବାଦୀ (ଦେଖ)—1. Pratibādī (See).
୨ । ବିବାଦ—2. Dispute.
(ଯଥା—ତାର ମୋର ପ୍ରତିବାଦି ଅଛି ।)
୩ । ମନୋମାଳିନ୍ୟ—3. Ill feeling.
୪ । ଅହିତ୍ୱ—4. Grudge; spite.
(ଯଥା—ସେ ପ୍ରତିବାଦିରେ ମୋ ନାଆଁରେ ମିଛ ମକଦ୍ଦମା କରିଛି)
ଦେ ବିଣ—ଶତ୍ରୁଭାପନ୍ନ—Inimical.

**ପ୍ରତି(ତୀ)ବାଦୀ**—ସଂ. ବି ପୁଂ. (ପ୍ରତି+ବାଦିନ; ୧ମା. ୧ବ)—
Prati(tī)badi ୧.। ବାଦୀର ବିପକ୍ଷୀୟ ବ୍ୟକ୍ତି, ବିବାଦୀ, ପ୍ରତ୍ୟର୍ଥୀ-
(ପ୍ରତିବାଦିନୀ—ସ୍ତ୍ରୀ) 1 A defendant; a respondent.
୨ । ଆସାମୀ, ମୁଦାଲି—2. An accused.
୩ । ବିପକ୍ଷ ପକ୍ଷ—3. Opposite party; opponent.

**ପ୍ରତିବାପ**—ସଂ. ବି. (ପ୍ରତି + ବପ୍ ଧାତୁ + କର୍ମ. ଅ)—୧ । ଚୂର୍ଣ୍ଣ, ଚୂନା
Pratibāpa (ହୁ. ଶ)—1. Powder.
୨ । କଲ୍କ; ସିଠା (ହୁ. ଶ )—
2. Sediment; refuse or dirt of a fluid.
୩ । (+ଭାବ. ଅ) ଧାତୁର ଭସ୍ମକରଣ (ହୁ. ଶ)
3. Oxidisation of metals.

୪ । ପାଚନ ଅବରେ ପକାଯିବା ଔଷଧ ଚୂର୍ଣ୍ଣ (ହି. ଶ)
4. Medicinal powder which is put into a decoction

**ପ୍ରତିବାର୍ତ୍ତା**—ସଂ. ବି (ପ୍ରତି+ବାର୍ତ୍ତା)—ଲେଉଟ ଖବର; ପ୍ରେରିତ ବାର୍ତ୍ତାର ଉତ୍ତର—News in return.
Pratibārttā

**ପ୍ରତିବାସର**—ସଂ. କ୍ରି. ବିଣ (ପ୍ରତି+ବାସର)—ପ୍ରତିଦିନ; ପ୍ରତ୍ୟହ—Every day; daily.
Pratibāsara

**ପ୍ରତିବାସ**—ସଂ. ବି. (ପ୍ରତି=ଉତ୍ତମ+ବାସ)—୧ । ସୁଗନ୍ଧ (ହି. ଶ)—1 Sweet scent.
Pratibāsa
୨ । ନିକଟରେ ବାସ କରିବା (ହି. ଶ)—
2 Living near; neighbourhood

**ପ୍ରତିବାସୀ**-ସଂ. ବି ପୁଂ (ପ୍ରତି+ବସ୍ ଧାତୁ+ଇନ୍, ୧ମା. ୧ବ)
Pratibāsi ପଡ଼ୋଶୀ; ନିକଟସ୍ଥ ଗୃହସ୍ଥ—Neighbour.
(ପ୍ରତିବାସିନୀ—ସ୍ତ୍ରୀ)
(ପ୍ରତିବାସିତା—ବି) ସଂ ବିଣ—ସନ୍ନିକଟରେ ବାସ କରୁଥିବା—Neighbouring; living near by.

**ପ୍ରତିବାହୁ**—ସଂ. ବି (ପ୍ରତି+ବାହୁ)—୧ । ବାହୁର ଅଗ୍ରଭାଗ (ହି. ଶ)
Pratibāhu 1. The fore part of the arm.
୨ । (ନାମ) ଶଫଲ୍କଙ୍କର ଏକପୁତ୍ର ଓ ଅକ୍ରୂରଙ୍କର ଭାଇ (ହି. ଶ.)—2. Name of a brother of Akrūra.

**ପ୍ରତିବିଧାନ**—ସଂ. ବି (ପ୍ରତି+ବିଧାନ)—୧ । ପ୍ରତିକାର—1. Remedy.
Pratibidhāna
(ପ୍ରତିବିହିତ—ବିଣ) ୨ । ଲେଉଟ ଉପାୟ—
2. Counteraction; remedial means.
୩ । ଉପାୟ—3. Means.
୪ । ନିବାରଣ—4. Prevention.
୫ । ପ୍ରତିଶୋଧ—5 Revenge; retaliation.
୬ । ହୁସିଆର; ସତର୍କତା—6. Precaution.
୭ । ଉପଶମ—7 Alleviation: relief; abatement.

**ପ୍ରତିବିଧିତ୍ସା**—ସଂ. ବି (ପ୍ରତି+ବି+ଧା ଧାତୁ ଇଚ୍ଛାର୍ଥରେ ସନ୍+ଅ)—
Pratibidhitsā ପ୍ରତିବିଧାନ କରିବାର ଇଚ୍ଛା—Desire for remedying a thing.
(ପ୍ରତିବିଧିତ୍ସୁ—ବିଣ.)

**ପ୍ରତିବିମ୍ବ**—ସଂ. ବି (ପ୍ରତି=ତୁଲ୍ୟ+ବିମ୍ବ=ମୂର୍ତ୍ତି)—୧ । (ଅବ୍ୟୟୀଭାବ)
Pratibimba ସମାନ ଆକୃତି—1. Similar figure.
୨ । ପ୍ରତିଛାୟା; ଦର୍ପଣ ଓ ପାଣି ଆଦିରେ ଦେଖାଯିବା କୌଣସି ବସ୍ତୁର ରୂପ—2 Reflected image; shadow.
୩ । (ବିକୃତାର୍ଥ) ଦର୍ପଣ, ଆରସୀ—3. Glass; mirror.
୪ । ମୂର୍ତ୍ତି, ପ୍ରତିମା (ହି. ଶ)—4. Image.

**ପ୍ରତିବିମ୍ବ ବାଦ**—ବେଦାନ୍ତର ସିଦ୍ଧାନ୍ତବିଶେଷ, ଯହିଁରେ ଜୀବକୁ ଈଶ୍ୱରଙ୍କ
Pratibimba bāda ପ୍ରତିବିମ୍ବ ଥିବାର ସ୍ୱୀକାର କରାଯାଏ (ହି.ଶ)
A vedantic theory in which the animal is regarded as the image of God.

**ପ୍ରତିବିମ୍ବିତ**—ସଂ ବିଣ (ପ୍ରତି+ବିମ୍ବ ଧାତୁ+କର୍ମ. ତ)—ଯାହାର ଛାୟା
Pratibimbita ପାଣି ଓ ଦର୍ପଣ ଆଦିରେ ପଡ଼ିଥାଏ—Reflected.

**ପ୍ରତିବିମ୍ବିବା**—ଦେ (ପଦ୍ୟ) କ୍ରି. (ସଂ ପ୍ରତିବିମ୍ବିତ)—ପ୍ରତିବିମ୍ବିତ ବା
Pratibimbibā ପ୍ରତିଫଳିତ ହେବା—
ପ୍ରତିବିମ୍ବିବା To be reflected

ଜବା କୁସୁମ ପ୍ରତିବିମ୍ବ ଅଛି କି ନିର୍ମଳ ମୁକୁର ଖଣ୍ଡେ
ଉପେନ୍ଦ୍ର—କୋଟୀବ୍ରହ୍ମାଣ୍ଡସୁନ୍ଦରୀ ।

**ପ୍ରତିବିହିତ**—ସଂ ବିଣ. ( ପ୍ରତି+ବିହିତ )—
Pratibihita ୧ । ପ୍ରତିବିଧାନୀକୃତ; ଯାହାର ପ୍ରତିବିଧାନ କରା ଯାଇଅଛି—1. Remedied.
୨ । ଶୋଧିତ, ସଜ୍ଜିତ—2. Arranged.
୩ । ନିବାରିତ—3. Prevented.
୪ । ଉପଶମିତ—4. Alleviated.

**ପ୍ରତିବୀଜ**—ସଂ. ବିଣ—୧ । ଯାହାର ବୀଜ ନଷ୍ଟ ହୋଇଅଛି—
Pratibija 1. Of which the seed is lost.
୨ । ଯହିଁର ଉତ୍ପାଦିକା ଶକ୍ତି ନଷ୍ଟ ହୋଇଅଛି (ହି. ଶ)—
2. Of which the productive power is lost.

**ପ୍ରତିବୁଦ୍ଧ**—ସଂ. ବିଣ. ପୁଂ ( ପ୍ରତି+ବୁଦ୍ଧ )—
Pratibuddha ୧ । ପ୍ରସିଦ୍ଧ—1. Well known.
(ପ୍ରତିବୁଦ୍ଧା—ସ୍ତ୍ରୀ) ୨ । ଉନ୍ନତ—2. Elevated.
୩ । ଯେ ସ୍ୱୟଂ ନିଦରୁ ଉଠିଛି—
3. Risen from sleep.
[ଦ୍ର—ଯାହାକୁ କେହି ନିଦରୁ ଉଠାଇଥାଏ ତାକୁ ପ୍ରତିବୋଧିତ ବୋଲାଯାଏ, ଯେ ଆପଣା ମନକୁ ନିଦରୁ ଉଠିଥାଏ ତାକୁ ପ୍ରତିବୁଦ୍ଧ ବୋଲାଯାଏ । ]

**ପ୍ରତିବୁଦ୍ଧି**—ସଂ. ବି. ( ପ୍ରତି+ବୁଦ୍ଧି )—
Pratibuddhi ବିପରୀତ ବୁଦ୍ଧି ( ହି. ଶବ୍ଦସାଗର )—
Opposite or contrary intelligence.

**ପ୍ରତି(ତୀ)ବେଶ**—ସଂ. ବି. ( ପ୍ରତି+ବିଶ୍ ଧାତୁ=ପ୍ରବେଶ କରିବା +ଅଧିକରଣ. ଅ )—
Prati(tī)besa
୧ । ପଡ଼ଶା ଘର—1 Neighbouring house.
୨ । ସନ୍ନିକଟସ୍ଥ ଅଞ୍ଚଳ—2. Neighbourhood.

**ପ୍ରତି(ତୀ)ବେଶୀ**—ସଂ. ବି. ପୁଂ. ( ପ୍ରତି+ବିଶ ଧାତୁ+କର୍ତ୍ତୃ. ଇନ୍, ୧ମା. ୧ବ )—
Prati(tī)besi
ପ୍ରତିବେଶିନୀ } ସ୍ତ୍ରୀ ପଡ଼ୋଶୀ—Neighbour.
ପ୍ରତିବେଶ ବାସିନୀ
(ପ୍ରତିବେଶବାସୀ—ଅନ୍ୟରୂପ)
ସଂ. ବିଣ. ପୁଂ—ନିକଟରେ ବାସ କରୁଥିବା—
Neighbouring; living near by.

**ପ୍ରତିବୋଧ**—ସଂ. ବି. ( ପ୍ରତି=ବିଶିଷ୍ଟ+ବୋଧ )—
Pratibodha ୧ । ବିଶିଷ୍ଟ ଜ୍ଞାନ—1. Understanding; special knowledge.
୨ । ନିଦ୍ରା ଭାଙ୍ଗିବା; ଜାଗରଣ—
2 Waking; awaking.
୩ । କୌଣସି ଭାବ ଦ୍ୱାରା ମନରେ ଜାତ ହେବା ଲେଉଟ ଭାବ—
3. Reflected idea.

୪ । (ଫୁଲର) ଫୁଟିବା—4. Opening; blowing (of flower).

୫ । ସ୍ମରଣ—5. Recollection.

**ପ୍ରତିବୋଧକ**—ସଂ. ବି ଓ ବିଣ. ପୁଂ—୧ । ନିଦ୍ରା ଭଙ୍ଗକାରୀ—
Pratibodhaka 1. One who rouses a person from sleep.
(ପ୍ରତିବୋଧିକା—ସ୍ତ୍ରୀ)

୨ । ଜ୍ଞାନ ଉତ୍ପନ୍ନ କରାଇବା ବ୍ୟକ୍ତି—
2. One who generates knowledge or wisdom.

୩ । ତିରସ୍କାରକ—3. Reprimander.

୪ । ଶିକ୍ଷକ—4. Teacher.

**ପ୍ରତିବୋଧନ**—ସଂ. ବି. ( ପ୍ରତି+ବୋଧନ )—
Pratibodhana ୧ । ନିଦରୁ ଉଠାଇବା—1. Awakening; rousing up.

୨ । ଜ୍ଞାନ ଉଦ୍ଭାବନ କରଣ—
2 Generating knowledge.

**ପ୍ରତିବୋଧିତ**—ସଂ. ବିଣ. ( ପ୍ରତି+ବୋଧିତ )—
Pratibodhita ୧ । ଜାଗରିତ, ଯାହାକୁ କେହି ବ୍ୟକ୍ତି ନିଦରୁ ଉଠାଇଅଛି—1 Awakened.

୨ । ବିକଶିତ; ପ୍ରସ୍ଫୁଟିତ – 2 Opened; full blown.

୩ । ଯାହାକୁ କୌଣସି ବିଷୟ ସ୍ମରଣ କରାଇ ଦିଆ ଯାଇଅଛି—
3. Reminded; made to recollect.

**ପ୍ରତିଭ**—ଦେ. ବି. ( ସଂ. ପ୍ରତିଭା )—ସାଦୃଶ୍ୟ—
Pratibha Similarity.

କାମ ମୂର୍ତ୍ତି ଜାତ ଧାଳବା ରହିତ ଅର୍ଥେ ରଖିଲେ ପ୍ରତିଭ।
ଯାଳକୃଷ୍ଣ॰ ରସକଲ୍ଲୋଳ ।

ସଂ. ବିଣ. ପୁଂ. (ଅନ୍ୟ ଶବ୍ଦ ସଙ୍ଗେ ସମାସରେ ବ୍ୟବହୃତ ଯଥା—ସୂର୍ଯ୍ୟପ୍ରତିଭ ) ଅମୁକ ପରି ପ୍ରଭା ଯୁକ୍ତ—
(ପ୍ରତିଭା—ସ୍ତ୍ରୀ) Shining like

**ପ୍ରତିଭଟ**—ଦେ. ବିଣ – ସଦୃଶ, ସମାନ –
Pratibhata Similar.

ବଦନ ସୁଧାସାର ପ୍ରତିଭଟ, ଦେହ ହୁରାକ ନିପଟ କପଟ ।
କବିସୂର୍ଯ୍ୟ. କଟୋ ।

ସଂ. ବି. (ପ୍ରତି +ଭଟ)—୧ । ସମକକ୍ଷ ଯୋଦ୍ଧା (ହ୍ୱ. ଶ)—
1. An equal warrior; a match.

୨ । ଶତ୍ରୁ (ହ୍ୱ. ଶ.)—2. Enemy.

୩ । ପ୍ରତିଦ୍ୱନ୍ଦ୍ୱୀ ଯୋଦ୍ଧା ( ହ୍ୱ. ଶବ୍ଦସାଗର )—
3. Adversary; rival warrior.

**ପ୍ରତିଭୟ**—ସଂ. ବି. ( ପ୍ରତି+ଭୟ )—୧ । ଅତ୍ୟନ୍ତ ଭୟ—
Pratibhaya 1. Great fear; terror.

୨ । ବିପଦ—2. Danger (Howells).

ସଂ. ବିଣ—ଅତି ଭୟଙ୍କର—
Terrible; formidable ( Howells ).

**ପ୍ରତିଭା** – ସଂ. ବି. (ପ୍ରତି+ଭା ଧାତୁ=ଦୀପ୍ତି ପାଇବା+କର୍ତ୍ତୃ. ଅ +ସ୍ତ୍ରୀ. ଆ )—
Pratibhā

୧ । ପ୍ରଜ୍ଞା; ଅସାଧାରଣ ବୁଦ୍ଧି—
1. Extraordinary intelligence.

୨ । ପ୍ରତ୍ୟୁତ୍ପନ୍ନ ମତି, ଉପସ୍ଥିତ ବୁଦ୍ଧି—
3. Presence of mind.

୩ । ନବନବୋନ୍ମେଷଶାଳିନୀ ବୁଦ୍ଧି—3. Creative genius.

୪ । ପ୍ରଭା; ଦୀପ୍ତି; ଔଜ୍ଜ୍ୱଲ୍ୟ—
4. Splendour, brilliancy

୫ । ସାଦୃଶ୍ୟ—5. Similarity.

୬ । ପ୍ରତିବିମ୍ବିତ ଆଲୋକ ବା ଉଜ୍ଜ୍ୱଳତା—
6. Reflected light or lustre.

୭ । ସାହସିକତା—7. Boldness.

୮ । ପ୍ରଗଲ୍ଭତା—
8 Audacity, pertness; forwardness

୯ । ପ୍ରଖର ବୁଦ୍ଧି, ତୀକ୍ଷ୍ଣ ବୁଦ୍ଧି—
9. Sharp wit; brilliant intellect.

ଦେ. ବି. ( ସଂ. ପ୍ରଭାବ )—ଶକ୍ତି, ସାମର୍ଥ୍ୟ; କ୍ଷମତା—
Power.

ପ୍ରଭ ଅବସ୍ଥରେ ଅଛ ଯେଉଁ ଶୋଭା,
କହିବାକୁ କାହାର ହୋଇବ ପ୍ରତିଭା । କୃଷ୍ଣସିଂହ ମହାଭାରତ ବନ ।

**ପ୍ରତିଭାତ**—ସଂ. ବିଣ. (ପ୍ରତି+ଭା ଧାତୁ=ଦୀପ୍ତି ପାଇବା+କର୍ମ. ତ)—
Pratibhāta ୧ । ପ୍ରଦୀପ୍ତ—1 Lighted.

୨ । (+କର୍ତ୍ତୃ. ତ) ଉଦିତ—2. Risen

୩ । ପ୍ରକାଶିତ—3. Appearing; manifested.

୪ । ପ୍ରତୀତ—4 Believed.

**ପ୍ରତିଭା ଦେବୀ**—ଦେ. ବି. (ନାମ)—ଜନୈକ ଉତ୍କଳୀୟା ଲେଖିକା—
Pratibhā debi Name of a living Oria female writer.

[ଦ୍ରି—ଏ ସରଳ ସୁନ୍ଦର ଓଡ଼ିଆ ଭାଷାରେ 'ସ୍ୱଦେଶୀ' ନାମକ ଖଣ୍ଡିଏ ପୁସ୍ତକ ଲେଖି ଅଛନ୍ତି । (ଭାରଣୀ. ଉ. ସା. ଇତିହାସ ।)]

**ପ୍ରତିଭାନ**—ସଂ ବି. (ପ୍ରତି+ଭା ଧାତୁ+ଭାବ. ଅନ)—୧ । ପ୍ରଜ୍ଞା—
Pratibhāna 1. Intellect.

୨ । ଜ୍ଞାନ—2 Knowledge.

୩ । ବୁଦ୍ଧି—3 Intelligence.

୪ । ପ୍ରଭା—4 Brilliance; lustre.

**ପ୍ରତିଭାନ୍ୱିତ**—ସଂ. ବିଣ. ପୁଂ. (ଅସ୍ତ୍ୟର୍ଥେ; ପ୍ରତିଭା+ଅନ୍ୱିତ)—
Pratibhānwita ୧ । ତୀକ୍ଷ୍ଣଧୀସମ୍ପନ୍ନ—1 Quick-witted; having sharp intellect.

ପ୍ରତିଭାପନ୍ନ, ପ୍ରତିଭାବାନ୍ }
ପ୍ରତିଭାଶାଳୀ, ପ୍ରତିଭାସମ୍ପନ୍ନ } ଅନ୍ୟରୂପ

ପ୍ରତିଭାନ୍ୱିତା }
ପ୍ରତିଭାପନ୍ନା }
ପ୍ରତିଭାବତୀ } ସ୍ତ୍ରୀ
ପ୍ରତିଭାଶାଳିନୀ }
ପ୍ରତିଭାସମ୍ପନ୍ନା }

୨ । ଉପସ୍ଥିତ ବୁଦ୍ଧିସମ୍ପନ୍ନ—
2. Having presence of mind.

୩ । ନବନବୋନ୍ମେଷଶାଳିନୀ ବୁଦ୍ଧିଯୁକ୍ତ
3. Having creative genius; resourceful.

୪ । ବୁଦ୍ଧିଶାଳୀ, ବୁଦ୍ଧିମାନ୍—4. Intelligent.

୫ । ପ୍ରଗଲ୍ଭ—5 Audacious, bold; forward.

୬ । ପ୍ରଭାବଶିଷ୍ଟ—6. Brilliant.

**ପ୍ରତିଭାଷ**—ସଂ. ବି —(ପ୍ରତି + ଭାଷ)—ପ୍ରତିବାକ୍ୟ, ପ୍ରତ୍ୟୁତ୍ତର— Pratibhāsha (ପ୍ରତିଭାଷଣ—ଅନ୍ୟରୂପ) Reply; response.

**ପ୍ରତିଭାଷ କରିବା**—ଦେ. କ୍ରି. (ସଂ ପ୍ରତିଭାଷ)—ଉତ୍ତର ଦେବା— Pratibhāsha kariba To reply.

ଦଶାନନ ଶ୍ରବଣରେ କଲେ ପ୍ରତିଭାଷ,
କଳାଶ ଚହିଁ ଉପୁଡ଼ି ଯହିଁରୁ ନ ଦେଖ । ଭଞ୍ଜ, ବୈଦେହୀଶବିଳାସ ।

**ପ୍ରତିଭାଷା**—ଦେ. ବି. (ସଂ. ପ୍ରତିଭାଷ)—ପ୍ରତ୍ୟୁତ୍ତର— Pratibhāshā Reply, rejoinder.

ଭାଷାକୁ ପ୍ରତିଭାଷାମାନ, ଛଳ କହନ୍ତି ଅନ ଅନ ।
ତ୍ୟାଗୀ, ଗଦ୍ଧମ ଚନ୍ଦ୍ରୋଦୟ ।

**ପ୍ରତିଭାଷିତ**—ସଂ. ବିଣ. (ପ୍ରତି+ଭାଷିତ)—ପ୍ରତ୍ୟୁତ୍ତରରୂପେ କଥିତ— Pratibhāshita Replied; spoken in reply.

ସଂ. ବି.—ପ୍ରତ୍ୟୁତ୍ତର—Reply.

**ପ୍ରତିଭାସ**—ସଂ. ବି. (ପ୍ରତି+ଭାସ)—୧ । ଆଲୋକ ଯୋଗୁଁ ଦୀପ୍ତି ବା ପ୍ରକାଶ—1. Illumination. Pratibhāsa

୨ । ଅଳଙ୍କରଣ—2 Adornment, decoration.

୩ । ଭ୍ରମ (ହ୍ୱ. ଶ.)—3. Illusion; mistake.

**ପ୍ରତିଭାସିତ**—ସଂ. ବିଣ. (ପ୍ରତି + ଭାସିତ)—୧ । ଆଲୋକଦ୍ୱାରା ଦୀପ୍ତ— Pratibhāsita 1 Illuminated.

୨ । ଅଳଙ୍କୃତ—
2. Adorned; decorated ( Howells ).

**ପ୍ରତିଭୂ**—ସଂ. ବି. (ପ୍ରତି + ଭୂ ଧାତୁ=ହେବା + କର୍ତ୍ତୃ. କ୍ୱିପ୍)— Pratibhū ୧ । ଯାମିନ୍‌ଦାର, ଯେ କରଣ ଅବଦରେ ଅନ୍ୟ ବ୍ୟକ୍ତି ପାଇଁ ଦାୟିତ୍ୱ ଗ୍ରହଣ କରିବାକୁ ସ୍ୱୀକାର କରେ; ପରର ଦାୟିତ୍ୱ ଗ୍ରହଣକାରୀ ବ୍ୟକ୍ତି—1. A person standing as a surety for another; a security; bondsman.

୨ । ଯାମିନ୍—2. Bail; security.

**ପ୍ରତିଭୂଲିପି**—ସଂ. ବି (୬ଷ୍ଠୀ ତତ୍, ପ୍ରତିଭୂ + ଲିପି)—ଯାମିନ୍‌ନାମା— Pratibhū lipi Bail-bond; surety-bond. (ପ୍ରତିଭୂ ଲେଖ, ପ୍ରତିଭୂପତ୍ର—ଅନ୍ୟରୂପ)

**ପ୍ରତିମ**—ସଂ. ବିଣ. ପୁଂ ( ପ୍ରତି+ମା ଧାତୁ + କର୍ମ. ଅ )—ସମାନ; ସଦୃଶ; ତୁଲ୍ୟ—Like; similar; resembling Pratima (ପ୍ରତିମା—ସ୍ତ୍ରୀ) [ଦ୍ର—ଏହା ବହୁବ୍ରୀହି ସମାସରେ ଅନ୍ୟ ଶବ୍ଦ ପରେ ବସେ; ଯଥା—ସୋଦର ପ୍ରତିମ; ପୁତ୍ର ପ୍ରତିମ, ଭଗିନୀ ପ୍ରତିମା ।]

**ପ୍ରତିମଣ୍ଡଳ**—ସଂ. ବି. (ପ୍ରତି+ମଣ୍ଡଳ)—ସୂର୍ଯ୍ୟ ଆଦି ଉଜ୍ଜ୍ୱଳ ଗ୍ରହଙ୍କ ମଣ୍ଡଳ, Pratimandala ପରିବେଶ (ହ୍ୱ. ଶ.)—
The halo round the sun and other luminaries.

**ପ୍ରତିମା**—ସଂ. ବି. (ପ୍ରତି + ମା ଧାତୁ=ପରିମାଣ କରିବା + କର୍ମ. ଅ; + ଆ) Pratimā ୧ । ପିତୁଳା; ପ୍ରତିମୂର୍ତ୍ତି—1. Idol; image.

୨ । ରୂପ—2. Figure.

୩ । ସାଦୃଶ୍ୟ; ପ୍ରତିକୃତି—
3. Likeness; similarity; resemblance.

୪ ଛବି—4 Picture.

୫ । ଦେବ ବିଗ୍ରହ, ଦେବମୂର୍ତ୍ତି—
5. Image of a Deity; idol.

୬ । ଚିହ୍ନ—6. Symbol.

୭ । ପ୍ରତିବିମ୍ବ—7. Reflected image.

୮ । ଗଜର ଦନ୍ତଦ୍ୱୟର ମଧ୍ୟଭାଗରେ ଶୁଣ୍ଢର ଉପରିଅଂଶ—
8. The part of an elephant's trunk between the tusks.

୯ । (+କରଣ. ଅ+ଆ)—ବଟକରି—
9 Standard pieces used in weighing.

୧୦ । ସାହିତ୍ୟର ଅଳଙ୍କାରବିଶେଷ (ହ୍ୱ. ଶ.)—
1. A figure of speech.
[ଦ୍ର—ଏଥିରେ ମୁଖ୍ୟ ବ୍ୟକ୍ତିର ବା ପଦାର୍ଥର ଅଭାବରେ ତତ୍ସଦୃଶ କୌଣସି ବ୍ୟକ୍ତିର ବା ପଦାର୍ଥର ସ୍ଥାପନାର ବର୍ଣ୍ଣନ କରାଯାଏ— (ହ୍ୱ. ଶ.)।]

ସଂ. ବିଣ. (ସମାସରେ) ପ୍ରତିମର ସ୍ତ୍ରୀଲିଙ୍ଗ—
Feminine of Pratima.

**ପ୍ରତିମା ଗୃହ**—ଦେ. ବି. (ଆଧୁନିକ ବ୍ୟବହାର)—ଯେଉଁ ଗୃହରେ ପ୍ରାଚୀନ କାଳର ପ୍ରତିମାଦି ଦ୍ରବ୍ୟସମୂହ ସାଧାରଣଙ୍କ ଦର୍ଶନାର୍ଥ ରକ୍ଷିତ ହୁଏ, ଯାଦୁଘର— Pratimā gṛuha (ପ୍ରତିମା ମନ୍ଦିର—ଅନ୍ୟରୂପ) A museum.

**ପ୍ରତିମା ତତ୍ତ୍ୱ**—ଦେ. ବି. (ଆଧୁନିକ ବ୍ୟବହାର)—ମୂର୍ତ୍ତିବିଜ୍ଞାନ— Pratimā tattwa Iconology; science of images. (ପ୍ରତିମାବିଜ୍ଞାନ, ପ୍ରତିମାଶାସ୍ତ୍ର, ପ୍ରତିମା ବିଦ୍ୟା—ଅନ୍ୟରୂପ)

**ପ୍ରତିମାନ**—ସଂ. ବି.(ପ୍ରତି+ମା ଧାତୁ + କର୍ମ.ଅନ —୧ । ପ୍ରତିମା (ଦେଖ) Pratimāna 1. Pratimā (See)

୨ । ସମାନତା (ହ୍ୱ. ଶ)—2. Equality.

୩ । ଦୃଷ୍ଟାନ୍ତ; ଉଦାହରଣ (ହ୍ୱ. ଶ)—3. Example.

୪ । ପ୍ରତିନିଧି (ହ୍ୱ. ଶ)—4. Representative.

**ପ୍ରତିମାନନା**—ସଂ. ବି. (ପ୍ରତି + ମାନନା)—ସମ୍ମାନ— Pratimānanā Respect; veneration; homage (Howells).

**ପ୍ରତିମା ପୂଜକ**—ସଂ. ବିଣ. ପୁଂ. (ଆଧୁନିକ ବ୍ୟବହାର)— Pratimā pūjaka ଯେ ଦେବମୂର୍ତ୍ତିଙ୍କୁ ଈଶ୍ୱରଜ୍ଞାନରେ ପୂଜା କରେ—Idolatrous. (ପ୍ରତିମା ପୂଜକା—ସ୍ତ୍ରୀ)

ସଂ. ବି ପୁଂ – ପ୍ରତିମାଙ୍କୁ ଦେବତାରୂପେ ପୂଜା କରିବା ବ୍ୟକ୍ତି— Idolator.

**ପ୍ରତିମା ପୂଜା**—ସଂ. ବି—ଈଶ୍ୱର ଜ୍ଞାନରେ ଦେବମୂର୍ତ୍ତିର ପୂଜା— Pratimā pūjā Image worship; idolatry.

**ପ୍ରତିମା ବିସର୍ଜନ**—ସଂ. ବି. (୬ଷ୍ଠୀ ତତ୍; ପ୍ରତିମା + ବିସର୍ଜନ)— Pratimā bisarjana ଜୀବନ୍ୟାସ ଓ ଆବାହନ ପୂର୍ବକ ଦେବତାରୂପେ ପୂଜିତ ଦେବମୂର୍ତ୍ତିଙ୍କୁ ପୂଜା ଶେଷରେ ମନ୍ତ୍ରପାଠ ପୂର୍ବକ

ବିଦାୟ ଦେଇ ପାଣିରେ ଫିଙ୍ଗିବା—Consigning an Idol to the water after it is worshipped and formally relinquished.

**ପ୍ରତିମାଳା**—ସଂ. ବି—ସ୍ମରଣ ଶକ୍ତିର ପରିଚୟ ଦେବା ବା ପରୀକ୍ଷା କରିବା
Pratimālā ପାଇଁ ଏକାଧିକ ବ୍ୟକ୍ତିଙ୍କର ଏକାନୁକ୍ରମେ ଶ୍ଳୋକ ବା କବିତାଦିର ଆବୃତ୍ତି—Recitation of slokas or couplets by several persons, one after the other, to test their memory.

**ପ୍ରତିମାସ**—ସଂ. ଅ. (ପ୍ରତି+ମାସ)—ପ୍ରତ୍ୟେକ ମାସରେ—
Pratimāsa Monthly; every month.

**ପ୍ରତିମାସୀୟ**—ସଂ. ବିଣ. (ପ୍ରତିମାସ+ଈୟ)—ପ୍ରତିମାସରେ ଘଟୁଥିବା—
Pratimāsiya Monthly; recurring every month
(ପ୍ରତିମାସିକ—ଅନ୍ୟରୂପ)

**ପ୍ରତିମୁଖ**—ସଂ. ବିଣ (ପ୍ରତି=ସାମନା ଦିଗରେ+ମୁଖ)—
Pratimukha ୧ । ସାମନାରେ ଥିବା; ଆଡ଼କୁ ମୁହଁ କରିବା—
1. Facing; opposite; confronting.
୨ । ଅଭିମୁଖ, ସମ୍ମୁଖବର୍ତ୍ତୀ—2 Situate in front.
ସଂ. ବି—୧ । ନାଟକ ବା ଅଭିନୟର ଅଂଶବିଶେଷ (ଯେଉଁଠାରେ ନାଟକୀୟ ବିଷୟ କ୍ରମଶଃ ଗାଢତର ହୁଏ)—
1. Part of a play in which the plot thickens; epitasis (Howells), the main action of a drama leading to the catastrophe (Chambers English Dictionary).
[ଦ୍ର—ନାଟକର ୫ ଅଙ୍ଗସନ୍ଧି ମଧ୍ୟରୁ ଏହା ଏକ, ଏଥିରେ ବିଳାସ, ପରିସର୍ପ, ନର୍ମ, ପ୍ରଗମନ, ବିରୋଧ, ପର୍ଯ୍ୟୁପାସନ, ପୁଷ୍ପ, ବଜ୍ର, ଉପନ୍ୟାସ ଓ ବର୍ଣ୍ଣସଂହାର ଆଦିର ବର୍ଣ୍ଣନ ହୋଇଥାଏ (ହି° ଶ । ]
୨ । କୌଣସି ବସ୍ତୁର ପଛ ଭାଗ (ହି. ଶ)—
2 The rear or back part of a thing.

**ପ୍ରତିମୂର୍ତ୍ତି**—ସଂ. ବି. (ପ୍ରତି+ମୂର୍ତ୍ତି)—୧ । ପ୍ରତିକୃତି—
Pratimūrtti 1 A statue.
୨ । ପ୍ରତିମା—2. Image.
୩ । ସାଦୃଶ୍ୟ—3. Likeness; resemblance.
୪ । ଗୋଟିଏ ବସ୍ତୁର ବା ଜୀବର ସାଦୃଶ୍ୟରେ ନିର୍ମିତ ପ୍ରତିମା—
4. An image formed in the shape of an animal or thing.

**ପ୍ରତିଯତ୍ନ**—ସଂ. ବି. (ପ୍ରତି=ବିଶିଷ୍ଟ+ଯତ୍ନ)—
Pratijatna ୧ । ବିଶିଷ୍ଟ ଯତ୍ନ ବା ଚେଷ୍ଟା; ପ୍ରଯତ୍ନ—
1. Strenuous endeavour.
୨ । ଯୋଗାଡ଼—2 Preparation (Howells).
୩ । ଅତ୍ୟନ୍ତ ଆଦର—3. Excessive fondling.
୪ । ଲାଳସା (ହି° ଶ)—
4. Hankering after anything.
୫ । ଉପଗ୍ରହ (ହି. ଶ)—5. Satellite.
୬ । କୈଦୀ (ହି. ଶ); ବନ୍ଦୀ—6. Prisoner.
୭ । ସଂସ୍କାର (ହି. ଶ)—7. Repair; renovation.

**ପ୍ରତିଯୋଗ**—ସଂ. ବି. (ପ୍ରତି+ଯୋଗ)—
Pratijoga ୧ । ବିପକ୍ଷତା; ବିରୋଧ; ଶତ୍ରୁତା—
1. Opposition; resistance; enmity.
୨ । ସହଯୋଗ—2. Co-operation; partnership; association.
୩ । ପ୍ରତିଦ୍ୱନ୍ଦ୍ୱିତା, ସମକକ୍ଷତା—3. Rivalry; competition.

**ପ୍ରତିଯୋଗୀ**—ସଂ. ବି ଓ ବିଣ. ପୁଂ. (ପ୍ରତି+ଯୁଜ୍ ଧାତୁ+ଇନ୍; ୧ମା. ୧ବ)—୧ । ପ୍ରତିଦ୍ୱନ୍ଦ୍ୱୀ—1. Rival.
Pratijogi
(ପ୍ରତିଯୋଗିତା—ବି) ୨ । ବିପକ୍ଷ—2 Opponent.
(ପ୍ରତିଯୋଗିନୀ—ସ୍ତ୍ରୀ) ୩ । ଅଂଶୀଦାର, ସରିକ୍‌ଦାର—
3. Co-sharer; partner.
୪ । ସହଯୋଗୀ—4. Associate, co-operator.

**ପ୍ରତିଯୋଦ୍ଧା**—ସଂ. ବି. ପୁଂ. (ପ୍ରତି+ଯୋଦ୍ଧୃ, ୧ମା. ୧ବ)—
Pratijoddhā ୧ । କୌଣସି ଯୋଦ୍ଧାର ବିପକ୍ଷରେ ପଡ଼ି
(ପ୍ରତିଯୋଦ୍ଧ୍ରୀ—ସ୍ତ୍ରୀ) ପକାଇ ଯୁଦ୍ଧ କରିବା ଯୋଦ୍ଧା—
1. Concombatant; antagonist.
୨ । ଶତ୍ରୁ—2. Enemy.

**ପ୍ରତିଯୋଧ**—ସଂ. ବି. ପୁଂ. (ପ୍ରତି=ବିପକ୍ଷ+ଯୁଧ୍ ଧାତୁ+କର୍ତ୍ତୃ. ଅ)—
Pratijodha ପ୍ରତିଯୋଦ୍ଧା (ଦେଖ)
(ପ୍ରତିଯୋଧା—ସ୍ତ୍ରୀ) Pratijoddhā (See)

**ପ୍ରତିଯୋଧୀ**—ଦେ. ବି. (ସଂ. ପ୍ରତିଯୋଦ୍ଧା)—ପ୍ରତିଯୋଦ୍ଧା (ଦେଖ)
Pratijodhi Pratijoddhā (See)

**ପ୍ରତିରଥ**—ସଂ. ବି. (ବହୁବ୍ରୀହି, ପ୍ରତି=ବିପକ୍ଷ+ରଥ)—
Pratiratha ବିପକ୍ଷୀୟ ଯୋଦ୍ଧା—An opponent; adversary; an antagonist in a battle.

**ପ୍ରତିରବ**—ସଂ. ବି. (ପ୍ରତି+ରବ)—୧ । ପ୍ରତିଧ୍ୱନି—
Pratiraba 1. Echo.
(ପ୍ରତିରାବ—ଅନ୍ୟରୂପ) ୨ । କୌଣସି ରବ ବା ଧ୍ୱନିର ଜବାବରେ କରାଯିବା ଧ୍ୱନି—2. A shout made in response to another.

**ପ୍ରତିରାତ୍ର**—ସଂ. କ୍ରି. ବିଣ. (ପ୍ରତି+ରାତ୍ରି)—ପ୍ରତି ରାତିରେ—
Pratirātra Nightly; every night.

**ପ୍ରତିରୁଦ୍ଧ**—ସଂ. ବିଣ. (ପ୍ରତି+ରୁଦ୍ଧ)—୧ । ଅବରୁଦ୍ଧ—
Pratiruddha 1. Confined.
(ପ୍ରତିରୋଧ—ବି) ୨ । ଘେରାଉ କରାଯାଇ ଥିବା, ଶତ୍ରୁ ସୈନ୍ୟଦ୍ୱାରା ଅବରୁଦ୍ଧ—2. Surrounded; besieged; blockaded.
୩ । ନିବାରିତ; ବାଧାପ୍ରାପ୍ତ—3. Prevented; hindered; impeded; restrained; obstructed.

**ପ୍ରତିରୂପ**—ସଂ. ବି. (ପ୍ରତି=ସଦୃଶ+ରୂପ)—୧ । ସାଦୃଶ୍ୟ—
Pratirūpa 1. Resemblance; likeness.
୨ । ପ୍ରତିମୂର୍ତ୍ତି; ପ୍ରତିମା—2. Portrait; image.

୩ । ପ୍ରତିଲିପି—3. Counterpart, a duplicate; a copy

୪ । ନକଲ; ଜାଲ୍—4. Counterfeit.

୫ । ପ୍ରତିବିମ୍ବ—5. Reflected shadow; image.

୬ । ନମୁନା—6. Pattern; specimen.

୭ । ବସ୍ତୁର ବା ବ୍ୟକ୍ତିର ଅନୁରୂପ ଛବି—
7. A picture drawn to resemble a person or thing

୮ । ପ୍ରତିନିଧି (ହ୍ୱ. ଶ)—8. Representative.

(ପ୍ରତିରୂପା—ସ୍ତ୍ରୀ) ସଂ. ବିଣ—ସଦୃଶ—
Resembling; corresponding.

**ପ୍ରତିରୂପୀ**—ଦେ ବି ଓ ବିଣ. (ସଂ ପ୍ରତିରୂପ)—ପ୍ରତିରୂପ (ଦେଖ)
Pratirūpi Pratirūpa (See)

**ପ୍ରତିରୋଧ**—ସଂ. ବି. (ପ୍ରତି+ରୋଧ)—୧ । ପ୍ରତିବନ୍ଧକ; ବାଧା—
Pratirodha 1. Obstruction; hinderance; resistance.

ପ୍ରତିରୁଦ୍ଧ, ପ୍ରତିରୋଧିତ } ବିଣ ୨ । ନିବାରଣ, ନିଷେଧ—
2. Prevention.

୩ । ଅଟକ—3. Restraint.

୪ । ବିପକ୍ଷତା, ପ୍ରତିକୂଳତା—4. Opposition.

୫ । ଘେରାଉ; ଅବରୋଧ—5 Siege; blockade.

**ପ୍ରତିରୋଧକ**—ସଂ. ବିଣ ପୁଂ (ପ୍ରତି+ରୁଧ୍ ଧାତୁ+କର୍ତ୍ତୃ. ଅକ)—
Pratirodhaka ୧ । ବାଧା ଦେଉଥିବା—1. Obstructing.
(ପ୍ରତିରୋଧୀ—ଅନ୍ୟରୂପ) ୨ । ଅଟକ କରୁଥିବା—
(ପ୍ରତିରୋଧିକା, ପ୍ରତିରୋଧିନୀ—ସ୍ତ୍ରୀ) 2. Restraining.
(ପ୍ରତିରୋଧନ—ବି) ୩ । ଅବରୋଧକାରୀ—
3. Besieging; blockading.

୪ । ଯେ ଅଟକ କରି ଲୁଟାଇଥି କରେ—
4. Robbing (Howells)

ସଂ. ବି.—୧ । ଡକାଏତ—1. Robber

୨ । ବାଧା ଦେବା ବ୍ୟକ୍ତି—2 Obstructor (Howells).

**ପ୍ରତିଲକ୍ଷ(କ୍ଷ୍ୟ)**—ଦେ. ବି (ସଂ. ଲକ୍ଷ; ଲକ୍ଷ୍ୟ)—୧ । ଉପମା, ତୁଳନା—
Pratilaksha (kshya) 1. Comparison

ଏଥକୁ ପ୍ରତିଲକ୍ଷ ଦେବା;
ତୋ ନୃପ ଦେଖାଇ କହିବା—ଜଗନ୍ନାଥ. ଭାଗବତ ।

୨ । ଉପମା ବା ତୁଳନା ଦ୍ୱାରା ଅନୁମିତ ସାଦୃଶ୍ୟ—
2. Similarity found out on comparision.

ଦେ. ବିଣ—୧ । ଉପମାଯୋଗ୍ୟ—1. Comparable.

୨ । ଉପମାଦ୍ୱାରା ସମାନ ଥିବାର ପ୍ରତିପାଦିତ—
2. Found to be similar in comparision.

**ପ୍ରତିଲିପି**—ସଂ. ବି. (ପ୍ରତି+ଲିପି)—୧ । ନକଲ—
Pratilipi 1. A copy.

୨ । କୌଣସି ଲେଖାକୁ ଦେଖି ତହିଁର ଅନୁରୂପ ଅବିକଳ ଲେଖିବା ଲେଖା—2. A transcript; the counterpart of a writing.

**ପ୍ରତିଲେଖ**—ସଂ. ବି. (ପ୍ରତି+ଲେଖ)—କୌଣସି ପତ୍ରର ଲିଖିତ
Pratilekha ପ୍ରତ୍ୟୁତ୍ତର—A written reply to a letter

**ପ୍ରତିଲୋମ**—ସଂ. ବିଣ. (ପ୍ରତି=ବିପରୀତ+ଲୋମ=ଶରୀରର ରୁମ)—
Pratiloma ୧ । ପ୍ରତିକୂଳ; ବାମ, ବିରୁଦ୍ଧ—
(ଅନୁଲୋମ—ବିପରୀତ) 1. Contrary; opposite

୨ । ଓଲଟା, ବିପରୀତ—2. Inverse; inverted.

୩ । ଦେହର ଲୋମର ବିପରୀତ ଦିଗରେ ଗଳିତ—
3. Moved against the hair or grain.

୪ । ନୀଚ—4 Low; vile; base; depraved.

୫ । ନିର୍ଦ୍ଧାରିତ ନିୟମ ବା ଶୃଙ୍ଖଳାବିରୁଦ୍ଧ—
5 Contrary to the prescribed rule or order.

୬ । ନୀଚତର ଜାତୀୟ—6 Of a lower caste

୭ । ବର୍ଣ୍ଣଗତ ନିୟମବିରୁଦ୍ଧ—
7. Contrary to the rules of caste

ବି କ୍ରି. ବିଣ—ଲୋମର ବିପରୀତ ଦିଗରେ—
Against the hair or grain.

**ପ୍ରତିଲୋମଜ**—ସଂ. ବିଣ. ପୁଂ (ପ୍ରତିଲୋମ+ଜନ ଧାତୁ+କର୍ତ୍ତୃ. ଅ)—
Pratilomaja ପ୍ରତିଲୋମ ବିବାହରୁ ଉତ୍ପନ୍ନ; ନୀଚ ବର୍ଣ୍ଣର
(ପ୍ରତିଲୋମଜାତ—ଅନ୍ୟରୂପ) ପୁରୁଷର ଔରସରେ ଉଚ୍ଚ ବର୍ଣ୍ଣର
ପ୍ରତିଲୋମଜା, ପ୍ରତିଲୋମଜାତା } ସ୍ତ୍ରୀ. ସ୍ତ୍ରୀ ଗର୍ଭରୁ ଜାତ (ସନ୍ତାନ)—Born of a 'Pratiloma' marriage.

[ଦ୍ର—କ୍ଷତ୍ରିୟ ପୁରୁଷ ଔରସରେ ବ୍ରାହ୍ମଣୀଗର୍ଭରୁ, ବୈଶ୍ୟ ଔରସରେ କ୍ଷତ୍ରିୟା ଗର୍ଭରୁ ଓ ଶୂଦ୍ର ଔରସରେ ବୈଶ୍ୟାଗର୍ଭରୁ ଜାତ ସନ୍ତାନକୁ ପ୍ରତିଲୋମଜ ବୋଲାଯାଏ । କ୍ଷତ୍ରିୟ ପିତା ଓ ବ୍ରାହ୍ମଣୀ ମାତାଠାରୁ ଉତ୍ପନ୍ନ ସନ୍ତାନ ସୂତ; ବୈଶ୍ୟ ପିତା ଓ ବ୍ରାହ୍ମଣୀ ମାତାଠାରୁ ଉତ୍ପନ୍ନ ବୈଦେହିକ, ଶୂଦ୍ରପିତା ଓ ବ୍ରାହ୍ମଣୀ ମାତାଠାରୁ ଉତ୍ପନ୍ନ ଚଣ୍ଡାଳ; ବୈଶ୍ୟ ପିତା ଓ କ୍ଷତ୍ରିୟା ମାତାଠାରୁ ଉତ୍ପନ୍ନ ମାଗଧ; ଶୂଦ୍ର ପିତା ଓ କ୍ଷତ୍ରିୟା ମାତାଠାରୁ ଉତ୍ପନ୍ନ କ୍ଷତ୍ତା; ଶୂଦ୍ର ପିତା ଓ ବୈଶ୍ୟା ମାତାଠାରୁ ଉତ୍ପନ୍ନ ଅୟୋଗବ, ଏମାନେ ପ୍ରତିଲୋମଜ ଅଟନ୍ତି (ହ୍ୱ. ଶ) । ଏବଂ ଉଚ୍ଚ ବର୍ଣ୍ଣର ପୁରୁଷ ଔରସରେ ନୀଚତର ବର୍ଣ୍ଣର ସ୍ତ୍ରୀ ଗର୍ଭରୁ ଜାତ ସନ୍ତାନକୁ ଅନୁଲୋମଜ ବୋଲାଯାଏ ।]

**ପ୍ରତିଲୋମ ବିବାହ**—ସଂ. ବି. (କର୍ମଧା, ପ୍ରତିଲୋମ+ବିବାହ)—ଉଚ୍ଚ-
Pratiloma bibāha ତର ବର୍ଣ୍ଣର କନ୍ୟା ସଙ୍ଗେ ନୀଚତର
(ଅନୁଲୋମ ବିବାହ—ବିପରୀତ) ବର୍ଣ୍ଣର ପୁରୁଷର ବିବାହ—
Marriage of a girl of a higher caste with a man of a lower caste; morganatic or exogamous marriage.

**ପ୍ରତିଶଙ୍କନୀୟ**—ସଂ. ବିଣ. ପୁଂ. (ପ୍ରତି+ଶଙ୍କନୀୟ)—୧ । ଯାହାକୁ
Pratiśaṅkaniya ସର୍ବଦା ସର୍ବତୋଭାବରେ ଭୟ ବା ସନ୍ଦେହ
(ପ୍ରତିଶଙ୍କନୀୟା—ସ୍ତ୍ରୀ) କରାଯାଏ; ପରିଶଙ୍କନୀୟ—1. Always regarded with fear or suspicion.

୨ । ସର୍ବଥା ଶଙ୍କା ଉତ୍ପାଦକ—
2. Causing fear in every way.

**ପ୍ରତିଶଙ୍କା**—ସଂ. ବି (ପ୍ରତି=ସତତ+ଶଙ୍କା=ଭୟ)—୧ । ସତତ ଭୟ—
Pratiśaṅkā 1. Constant fear.
୨ । ସର୍ବତୋଭାବରେ ଭୟ—2. Extreme fear.
୩ । ଗୁରୁତର ସନ୍ଦେହ—3. Grave suspicion.

**ପ୍ରତିଶତ**—ସଂ. ଅ (ପ୍ରତି+ଶତ)—ଶତକଡ଼ା; ପ୍ରତି ଶହ, ପ୍ରତି ଶହ
Pratiśata ହିସାବରେ—Per cent

**ପ୍ରତିଶବ୍ଦ**—ସଂ. ବି (ପ୍ରତି=ସମାନ+ଶବ୍ଦ)—୧ । ପ୍ରତିଧ୍ୱନି—
Pratiśabda 1. Echo, reverberation.
୨ । ସମାନାର୍ଥକ ଅନ୍ୟ ଶବ୍ଦ, ଗୋଟିଏ ଶବ୍ଦର ତୁଲ୍ୟାର୍ଥବୋଧକ ଅନ୍ୟ ଶବ୍ଦ—2. Synonym

**ପ୍ରତିଶୟ**—ସଂ. ବି ( ପ୍ରତି+ଶୀ ଧାତୁ=ଶୋଇବା+ଭାବ. ଅ )—
Pratiśaya (ପ୍ରତିଶୟନ—ଅନ୍ୟରୂପ) ଅଭୀଷ୍ଟ-ସିଦ୍ଧି ପାଇଁ ଦେବତାଙ୍କଠାରୁ ଆଦେଶଲାଭ କରିବା ସଙ୍କଳ୍ପରେ ସାନଭୋଜନାଦି ତ୍ୟାଗ କରି ଦେବତାଙ୍କ ନିକଟରେ ପଡ଼ିରହିବା, ଧାରଣା ପଡ଼ିବା; ଅଧିଆ ପଡ଼ିବା—Lying Dhārnā before a Deity; lying prostrate before a Deity for days together without any food till one's prayers are answered by the Deity.

**ପ୍ରତିଶାପ**—ଦେ. ବି—ଅଭିଶାପ ଦେଇଥିବା ବ୍ୟକ୍ତିକୁ ଅଭିଶପ୍ତ ବ୍ୟକ୍ତିର
Pratiśāpa ଦେବା ଅଭିଶାପ—A curse uttered in return for a curse.
ଦକ୍ଷକୁ ପ୍ରତିଶାପ ଦେଇ
କୋଲଇ ସଙ୍ଗଲ ନେ ଗୃହ୍ଣୁ—ଜଗନ୍ନାଥ ଭାଗବତ ।

**ପ୍ରତିଶାୟିତ**—ସଂ. ବିଶ. ପୁଂ ( ପ୍ରତି+ଶୀ ଧାତୁ+କର୍ତ୍ତୃ. ତ )—
Pratiśāyita (ପ୍ରତିଶାୟିତା—ସ୍ତ୍ରୀ). ଯେ ଦେବତାଙ୍କ ପାଖେ ଧାରଣା ପଡ଼ୁଥାଏ—Lying prostrate before a Deity till one's prayers are attended to.

**ପ୍ରତିଶାସନ**—ସଂ. ବି (ପ୍ରତି+ଶାସନ)—୧ । ବିଶିଷ୍ଟ ଆଦେଶ—
Pratiśāsana 1. Special order.
ପ୍ରତିଶାସକ, ପ୍ରତିଶାସିତ, ପ୍ରତିଶାସ୍ତା—ପୁଂ ବିଶ; ପ୍ରତିଶାସିକା, ପ୍ରତିଶାସିତା, ପ୍ରତିଶାସ୍ତ୍ରୀ—ସ୍ତ୍ରୀ
୨ । କୌଣସି କାର୍ଯ୍ୟ ପାଇଁ ଦୂତ ବା ଭୃତ୍ୟ-ପ୍ରେରଣ—2. Sending or deputing a messenger on a certain mission.
୩ । ପ୍ରଥମ ଆଦେଶକୁ ରହିତ କରିବା ହୁକୁମ—3. Counter order, countermanding order

**ପ୍ରତିଶିଷ୍ୟ**—ସଂ. ବି. ପୁଂ—ଶିଷ୍ୟର ଶିଷ୍ୟ; ନାତି ଚେଲା—
Pratiśishya The disciple of one's disciple.
(ପ୍ରତିଶିଷ୍ୟା—ସ୍ତ୍ରୀ)

**ପ୍ରତିଶୋଧ**—ସଂ. ବି (ପ୍ରତି+ଶୋଧ)—୧ । ପ୍ରତିହିଂସା—
Pratiśodha 1. Revenge.
୨ । ପ୍ରତିବିଧାନ—2. Remedy; requital.

**ପ୍ରତିଶୋଧ ଦେବା**—ଦେ. କ୍ରି—ପ୍ରତିହିଂସା କରିବା—
Pratiśodha debā To be avenged; to take revenge.
ପ୍ରତିଶୋଧକରିବା, ପ୍ରତିଶୋଧନେବା } ଅନ୍ୟରୂପ
प्रतिशोधलेना बदलालेना

**ପ୍ରତିଶ୍ୟା(ଶ୍ୟା)ୟ**—ସଂ. ବି—୧ । ସର୍ଦ୍ଦି (ହି. ଶ)—
Pratiśyā(syā)ya 1. Cold.
୨ । ପୀନସ ରୋଗ—2. Atrophic rhinites.

**ପ୍ରତିଶ୍ରବ**—ସଂ. ବି (ପ୍ରତି+ଶ୍ରୁ ଧାତୁ+କର୍ମ. ଅ)—୧ । ପ୍ରତ୍ୟୁତ୍ତର—
Pratiśraba 1. Reply; answer.
୨ । ପ୍ରତିଶ୍ରୁତି, ଅଙ୍ଗୀକାର—2. Promise.
୩ । ସ୍ୱୀକାର—3. Assent, agreement.

**ପ୍ରତିଶ୍ରୟ**—ସଂ. ବି (ପ୍ରତି+ଶ୍ରି ଧାତୁ=ସେବା କରିବା, ଆଶ୍ରୟ କରିବା+କର୍ମ. ଅ )—୧ । ଆଶ୍ରୟ; ଯେଉଁଠାରେ ଆଶ୍ରୟ ନିଆଯାଏ—1. Shelter; refuge.
Pratiśraya
୨ । ବାସସ୍ଥାନ—2. Abode.
୩ । କୌଣସି ଦ୍ରବ୍ୟ ରଖାଯିବା ସ୍ଥାନ ବା ଆଧାର—3. Repository; receptacle

**ପ୍ରତିଶ୍ରୁତ**—ସଂ. ବିଶ. ପୁଂ ( ପ୍ରତି+ଶ୍ରୁ ଧାତୁ+କର୍ମ. ତ )—
Pratiśruta ୧ । ଅଙ୍ଗୀକୃତ—1. Promised.
୨ । ସ୍ୱୀକୃତ—2. Agreed to; assented to.
(ପ୍ରତିଶ୍ରୁତା—ସ୍ତ୍ରୀ) ୩ । ପୁଂ ( +କର୍ତ୍ତୃ. ତ ) ଯେ ଅଙ୍ଗୀକାର କରିଥାଏ—Promising; agreeing to.

**ପ୍ରତିଶ୍ରୁତ ହେବା**—ଦେ. କ୍ରି—କୌଣସି ବିଷୟ କରିବା ପାଇଁ ଅଙ୍ଗୀକାର କରିବା—To bind one's self by a promise; to make a promise.
Pratiśruta hebā
প্রতিশ্রুত হওয়া
प्रतिश्रुत होना

**ପ୍ରତିଶ୍ରୁତି**—ସଂ. ବି. ( ପ୍ରତି+ଶ୍ରୁ ଧାତୁ+ଭାବ. ତି )—
Pratiśruti ୧ । ଅଙ୍ଗୀକାର—1. Promise.
୨ । ସ୍ୱୀକାର—2. Assent; agreement.
୩ । ପ୍ରତିଧ୍ୱନି—3. Echo.

**ପ୍ରତିଷିଦ୍ଧ**—ସଂ. ବିଶ ( ପ୍ରତି+ସିଧ୍ ଧାତୁ=ଗମନ କରିବା+କର୍ମ. ତ, ଷତ୍ୱ ବିଧାନ )—ନିଷିଦ୍ଧ; ନିବାରିତ—
Pratishiddha (ପ୍ରତିଷେଧ—ବି) Prohibited; forbidden.

**ପ୍ରତିଷେଦ୍ଧା**—ସଂ. ବିଶ. ପୁଂ ( ପ୍ରତି+ସିଧ୍ ଧାତୁ+କର୍ତ୍ତୃ. ତୃ; ୧ମା. ୧ବ, ଷତ୍ୱ ବିଧାନ )—ପ୍ରତିଷେଧକ ( ଦେଖ )
Pratisheddhā (ପ୍ରତିଷେଦ୍ଧ୍ରୀ—ସ୍ତ୍ରୀ) Pratishedhaka ( See )

**ପ୍ରତିଷେଧ**—ସଂ. ବି. ( ପ୍ରତି+ସିଧ୍ ଧାତୁ+ଭାବ. ଅ; ଷତ୍ୱ ବିଧାନ )—
Pratishedha ୧ । ନିବାରଣ; ନିଷେଧ—1. Prohibition.
ପ୍ରତିଷିଦ୍ଧ, ପ୍ରତିଷେଧିତ } ବିଶ
୨ । ଅସ୍ୱୀକାର—2. A denial.
୩ । ବିରୋଧ, ପ୍ରତିବାଦ—3. Contradiction; opposition.
୪ । ଅଟକାଇବା—4. Restraining.
୫ । ବର୍ଜନ; ପରିହାର; ତ୍ୟାଗ—5. Abandonment.
୬ । ନିୟମର ବ୍ୟତିକ୍ରମ—6. An exception to a rule.
୭ । କାବ୍ୟାଲଙ୍କାରବିଶେଷ—7. A figure of rhetoric.

**ପ୍ରତିଷେଧକ**—ସଂ. ବିଣ ପୁଂ (ପ୍ରତି + ସିଧ୍ ଧାତୁ + କର୍ତ୍ତୃ. ଅକ; ଷଷ୍ଠୀବିଧାନ) —
Pratishedhaka ୧ । ନିବାରକ—1 Preventive.
(ପ୍ରତିଷେଧିକା—ସ୍ତ୍ରୀ) ୨ । ନିଷେଧକାରୀ—2 Prohibiting
୩ । ପ୍ରତିକାରକାରୀ—3. Counteracting; remedying.

**ପ୍ରତିଷେଧକ ଔଷଧ**—ସଂ ବି. (କର୍ମଧା; ପ୍ରତିଷେଧକ+ଔଷଧ)—
Pratishedhaka aushadha ରୋଗନିବାରକ ଔଷଧ, ଯେଉଁ ଔଷଧ ବ୍ୟବହାର କଲେ ରୋଗ ପ୍ରଥମରୁ ଆକ୍ରମଣ କରେ ନାହିଁ—An antidote; preventive.

**ପ୍ରତିଷ୍ଠ**—ସଂ. ବି. (ପ୍ରତି+ସ୍ଥା ଧାତୁ+ଅ, ଷଷ୍ଠୀ ବିଧାନ)—
Pratishtha ପ୍ରତିଷ୍ଠାଯୁକ୍ତ, ଗୌରବାନ୍ୱିତ—Renowned,
(ପ୍ରତିଷ୍ଠା—ସ୍ତ୍ରୀ) famous; celebrated.

**ପ୍ରତିଷ୍ଠା**—ସଂ. ବି. (ପ୍ରତି+ସ୍ଥା ଧାତୁ+ଭାବ. ଅ+ସ୍ତ୍ରୀ. ଆ, ଷଷ୍ଠୀବିଧାନ)—
Pratishthā ୧ । ସୁଖ୍ୟାତି; ସୁନାମ, ପ୍ରସିଦ୍ଧି—
1. Celebrity; fame; reputation.
୨ । ଗୌରବ; ମର୍ଯ୍ୟାଦା—2. Glory; honour.
୩ । (+ଅଧିକରଣ. ଅ) କ୍ଷିତି, ପୃଥିବୀ—3. The earth.
୪ । (+ଭାବ. ଅ) ଉଚ୍ଚ ପଦସ୍ଥିତି—4 High position.
୫ । ବ୍ରତାଦିର ଉଦ୍‌ଯାପନ—5. Accomplishment or ceremonial conclusion of a religious rite or vow.
୬ । ସମାପ୍ତି—6. Completion; accomplishment.
୭ । ଚତୁରକ୍ଷର ଛନ୍ଦୋବିଶେଷ—7. Name of a metre of 4 lines consisting of 4 syllables each.
୮ । ଅବସ୍ଥାନ; ସ୍ଥିତି—8. Staying; fixation.
୯ । ଅବଲମ୍ବନ; ଆଶ୍ରୟ—
9. Assylum; refuge; shelter.
୧୦ । ସ୍ଥାନ; ଆସ୍ପଦ—
10. Place; position; station; site.
୧୧ । ସୀମା—11 Boundary.
୧୨ । ସ୍ଥିରତା—12. Steadfastness; fixity
୧୩ । ଅଧ୍ୟବସାୟ—13. Perseverance.
୧୪ । ମନ୍ଦିର, ଦେବତା, ଜଳାଶୟ ଓ ଗୃହ ଆଦି ପ୍ରସ୍ତୁତ ହେବାପରେ ସେମାନଙ୍କୁ ମନ୍ତ୍ରାଦିଦ୍ୱାରା ପବିତ୍ର କରି ବ୍ୟବହାରଯୋଗ୍ୟ କରିବା—14. An opening ceremony; consecration of a temple, image, tank, house etc after its completion.
୧୫ । ସଂସ୍ଥାପନ—15. Establishment; opening
୧୬ । ମୂଳଦୁଆ; ମୂଳଭିତ୍ତି—16 Foundation.
୧୭ । ଦ୍ୱିଜାତିଙ୍କର ଗର୍ଭାଧାନଠାରୁ ବିବାହ ପର୍ଯ୍ୟନ୍ତ କର୍ତ୍ତବ୍ୟ ସଂସ୍କାରମାନ—17. Ceremonial rites performed on a person of the twice-born caste.
୧୮ । ଦେବବ୍ରାହ୍ମଣାଦିଙ୍କର ବା ସର୍ବସାଧାରଣଙ୍କ ଉଦ୍ଦେଶ୍ୟରେ ଉତ୍ସର୍ଗ—18. Consecration of a thing for the use or benefit of an idol or Brāhmaṇas or the public; formal endowment of a temple or charitable institution.
୧୯ । କନ୍ୟାଦାନ—19. The giving away of a daughter in marriage
ଦେ. ବିଣ—ପବିତ୍ରୀକୃତ; ପବିତ୍ରିତ—Consecrated.

**ପ୍ରତିଷ୍ଠା କରିବା**—ଦେ. କ୍ରି—୧ । ନୂତନ ଘର, ପୁଷ୍କରିଣୀ, କୂପ, Pratishthā karibā ଦେବାଳୟ, ଦେବତାଆଦିଙ୍କୁ ମନ୍ତ୍ରାଦିଦ୍ୱାରା ପ୍ରତିଷ୍ଠା କବା ପବିତ୍ର କରି ଉଦ୍ଦିଷ୍ଟ କାର୍ଯ୍ୟ ପାଇଁ ଉତ୍ସର୍ଗ କରିବା—
**प्रतिष्ठा करना** 1. To consecrate a new house, tank or other institution to the intended use.
୨ । ସଂସ୍ଥାପନ କରିବା—
2. To install; to establish; to open; to start
୩ । ପ୍ରଶଂସା କରିବା—3 To praise

**ପ୍ରତିଷ୍ଠାତା**—ସଂ. ବି. ପୁଂ. (ପ୍ରତି+ସ୍ଥା ଧାତୁ+କର୍ତ୍ତୃ. ତୃ; ୧ମା, ୧ବ.)—
Pratishthātā ୧ । ଯେ ପ୍ରତିଷ୍ଠା କରେ; ସଂସ୍ଥାପକ—
(ପ୍ରତିଷ୍ଠାତ୍ରୀ—ସ୍ତ୍ରୀ) 1. A founder; a consecrator.
[ଦ୍ର—ପ୍ରତି ଉପସର୍ଗ ସ୍ଥା ଧାତୁରୁ ପ୍ରତିଷ୍ଠାକାରୀ, ପ୍ରତିଷ୍ଠାଜନକ, ପ୍ରତିଷ୍ଠିତ, ପ୍ରତିଷ୍ଠମାନ, ପ୍ରତିଷ୍ଠାନ୍ୱିତ, ପ୍ରତିଷ୍ଠାଶାଳୀ, ପ୍ରତିଷ୍ଠାଭାଜନ ପ୍ରତିଷ୍ଠାଣୀ, ପ୍ରତିଷ୍ଠାସୂ ଓ ପ୍ରତିଷ୍ଠାଦାୟକ ଆଦି ଶବ୍ଦ ନିଷ୍ପନ୍ନ ହୁଏ । ]

**ପ୍ରତିଷ୍ଠାନ**—ସଂ. ବି. (ପ୍ରତି+ସ୍ଥା ଧାତୁ+ଭାବ. ଅନ)—୧ । ଭାରତର Pratishthāna ପ୍ରାଚୀନ ନଗରବିଶେଷ—1. Name of an ancient town in India.
୨ । ଆଲ୍ଲାହାବାଦର ପ୍ରାଚୀନ ନାମ—
2. The ancient name of Allahabad.
୩ । ଦାକ୍ଷିଣାତ୍ୟର ଅଧିପତି ଶାଳିବାହନଙ୍କ ରାଜଧାନୀ—
3. The ancient capital of king Sāli-bāhana in South India.
[ଦ୍ର—ଏହାର ଆଧୁନିକ ନାମ ପଇଠାନ । ଏହା ଗୋଦାବରୀ ତୀରରେ ଅବସ୍ଥିତ । ହୃ. ଶ ]
୪ । ପ୍ରସିଦ୍ଧି; ଖ୍ୟାତି—4. Celebrity.
୫ । ଅବସ୍ଥାନ—5. Position; site.
୬ । ବ୍ରତାଦିର ଉଦ୍‌ଯାପନ ସମୟରେ ଅନୁଷ୍ଠେୟ କର୍ମ—
6. Ceremony performable at the conclusion
(ପ୍ରତିଷ୍ଠିତ—ବିଣ) of a vow or religious fast.
୭ । ଅନୁଷ୍ଠାନ—7. Institution.

**ପ୍ରତିଷ୍ଠାପନ**—ସଂ. ବି. (ପ୍ରତି+ସ୍ଥାପନ; ଷଷ୍ଠୀବିଧାନ)—୧ । ପ୍ରତିଷ୍ଠାକରଣ-
Pratishthāpana 1. Establishing; consecrating.
୨ । ଅବସ୍ଥାପନ; ସ୍ଥାପନ କରିବା—
2 Putting; placing.
୩ । ନିର୍ମାଣ—3. Erecting; building.
୪ । ସମାପନ—4. Accomplishment.

**ପ୍ରତିଷ୍ଠାପିତ**—ସଂ. ବିଣ. (ପ୍ରତି + ସ୍ଥାପିତ, ଷଷ୍ଠୀବିଧାନ)—୧ । ଅବସ୍ଥାପିତ-
Pratishthāpita 1. Placed; put.

(ପ୍ରତିଷ୍ଠାପନ—ବ) ୨ । ପ୍ରତିଷ୍ଠା କରା ଯାଇଥିବା—
2. Established; opened.
୩ । ନିର୍ମିତ—3 Erected.
୪ । ସମାପିତ—4. Accomplished

**ପ୍ରତିଷ୍ଠିତ**—ସଂ. ବିଣ (ପ୍ରତି+ସ୍ଥିତ, ଷତ୍ୱବିଧାନ)—୧ । ପ୍ରତିଷ୍ଠାଯୁକ୍ତ
Pratishthita ଗୌରବାନ୍ୱିତ; ସମ୍ମାନିତ, ବିଖ୍ୟାତ—
1 Respectable; famous; celebrated.
୨ । ଉତ୍ସୃଷ୍ଟ; ଉତ୍ସର୍ଗୀକୃତ—2 Offered; dedicated
୩ । ସଂସ୍କୃତ; ମନ୍ତ୍ରାଦିଦ୍ୱାରା ପରିଶୋଧିତ—3. Consecrated.
୪ । ସମାହିତ, ସମାପିତ—4 Accomplished
୫ । ସ୍ଥାପିତ, ଅବସ୍ଥାପିତ—5 Situated, placed; established; fixed; founded.
୬ । ଆରବ୍ଧ—6. Started, opened.

**ପ୍ରତିସଂହାର**—ସଂ. ବ (ପ୍ରତି+ସଂହାର)—୧ । ସଂବରଣ, ପ୍ରତ୍ୟାହାର—
Pratisamhāra 1 Retraction; withdrawal.
(ପ୍ରତିସଂହୃତ—ବିଣ) ୨ । ଗୁଟିବା—2. Compression.
୩ । ପ୍ରତ୍ୟାକର୍ଷଣ—3. Drawing back.
୪ । ଫେରାଇ ନେବା—4. Taking back.

**ପ୍ରତିସମ୍ପତ୍ତି**—ଗ୍ରା. ବ.—ବହୁମୂଲ୍ୟ ଧନ—
Pratisampatti Valuable property.
ଜୟଦେବ ବଞ୍ଚିଲେ ମୋହନ ମୂରତି,
ହରି ପାଦ ପଦ୍ମ ମୁଁ ପ୍ରତିସମ୍ପତ୍ତି—ପ୍ରାଚୀ. ରସକଲ୍ଲୋଳ ।

**ପ୍ରତିସର**—ସଂ ବ. (ପ୍ରତି+ସୃ ଧାତୁ+କର୍ତ୍ତୃ. ଅ)—୧ । ସୈନ୍ୟପୃଷ୍ଠ—
Pratisara 1 The rear of an army.
୨ । ଆଶ୍ରିତ ବ୍ୟକ୍ତି—2. Dependant.
୩ । ଭୃତ୍ୟ; କିଙ୍କର—3. Servant; attendant.
୪ । ପ୍ରଜା—4. Subject.
୫ । ମାଲ୍ୟ; ହାର—5. Garland; wreath.
୬ । ବଳୟ; କଙ୍କଣ—6. Bracelet.
୭ । ପ୍ରାତଃକାଳ—7. Daybreak.
୮ । ବିବାହ କାଳରେ ପିନ୍ଧାଯିବା ଦଉଳଡ଼ିତ ସୂତ୍ର, କରସୂତ୍ର; ବାଡ଼ୁଅ ସୂତା, କୌତୁକ ସୂତ୍ର—8. A consecrated string tied round the wrist at nuptials.
୯ । (+ଭାବ. ଅ)—କ୍ଷତାଦିର ଆରୋଗ୍ୟକରଣ—
9. Healing a sore.
ସଂ. ବିଣ. ପୁଂ (ସମାସରେ)—୧ । ଆଶ୍ରିତ—
1. Dependent on
୨ । ଆଡ଼କୁ ଯାଉଥିବା—2. Going towards.
୩ । ଅବଲମ୍ବନକାରୀ—3. Having recourse to.

**ପ୍ରତିସର୍ଗ**—ସ. ବ. (ପ୍ରତି+ସର୍ଗ)—ସୃଷ୍ଟବସ୍ତୁରୁ ଉପାଦାନମାନ ସଂଗ୍ରହପୂର୍ବକ କୌଣସି ବସ୍ତୁର ସର୍ଜନ—
Pratisarga
Secondary or continued creation out of primeval matters or materials.

**ପ୍ରତିସା(ସୀ)ରା**—ସଂ. ବ.—ଯବନିକା, ପରଦା; ପଟ—
Pratisā(sī)rā Screen; curtain.

**ପ୍ରତିସୂର୍ଯ୍ୟ**—ସଂ. ବ. (ପ୍ରତି+ସୂର୍ଯ୍ୟ)—୧ । ସୂର୍ଯ୍ୟମଣ୍ଡଳ—
Pratisūrjya 1. The sun's orb
୨ । ଆକାଶରେ ଦେଖାଯିବା ଉତ୍ପାତବିଶେଷ, ଯହିଁରେ ସୂର୍ଯ୍ୟଙ୍କ ସାମନାରେ ଆଉ ଏକ ସୂର୍ଯ୍ୟ ଦେଖା ଯାଆନ୍ତି (ହି. ଶ )
2. An ominous phenomenon of the sky in which an image of the sun is seen in front of the sun.
୩ । ଏଣ୍ଡୁଅ (ହି. ଶ.)—3. Chameleon.

**ପ୍ରତିସେନା**—ସଂ ବ. (ପ୍ରତି+ସେନା)—ଶତ୍ରୁର ସେନା—
Pratisenā The army of an enemy.

**ପ୍ରତିସ୍ପନ୍ଦନ**—ସଂ ବ (ଆଧୁନିକ ବିଜ୍ଞାନ ପରିଭାଷା)—ଆଘାତର ଫଳରେ ହେବା ସ୍ପନ୍ଦନ—Vibration or excitement due to a stroke.
Pratispandana

**ପ୍ରତିସ୍ପନ୍ଦନଶୀଳ**—ସଂ. ବିଣ ( ଆଧୁନିକ ବିଜ୍ଞାନ ପରିଭାଷା )—
Pratispandanasīla ଆଘାତର ଫଳରେ ଯାହା ସ୍ପନ୍ଦିତ ହୁଏ—
Excitable; prone to vibrate after a stroke.

**ପ୍ରତିସ୍ୱନ**—ସଂ. ବ. ( ପ୍ରତି+ସ୍ୱନ )—ପ୍ରତିଧ୍ୱନି—
Pratiswana Echo.

**ପ୍ରତିହତ**—ସଂ. ବିଣ. ( ପ୍ରତି+ହତ )—
Pratihata ୧ । ନିରାଶ—1. Disappointed.
୨ । ପ୍ରତିବନ୍ଧ, ବାଧା ପ୍ରାପ୍ତ—
2 Opposed; obstructed; resisted.
୩ । ଆହତ—3. Struck; hurt.
୪ । ପ୍ରତିଘାତ ପ୍ରାପ୍ତ—
4 Beaten back; struck in return.
୫ । ସ୍ଖଳିତ; ଚ୍ୟୁତ—5. Fallen; overthrown
୬ । ପ୍ରତିହିଂସାର୍ଥ ହତ—6. Killed in revenge.
୭ । ଢାଲ ଆଦି ଦ୍ୱାରା ସମ୍ଭାଳା ଯିବା (ଆଘାତ)—
7. Warded off; repelled.
୮ । ପ୍ରେରିତ—8. Sent; emitted; despatched.
୯ । ଘୃଣିତ—9. Hated.
୧୦ । ଅନ୍ୟ ଆଡ଼କୁ ବୁଲି ହୋଇଥିବା—
10. Averted; turned away.
୧୧ । ଦୂରୀକୃତ—11. Expelled; driven out.
୧୨ । ପ୍ରତିବିମ୍ବିତ—12. Reflected.
୧୩ । ନିରସ୍ତ; ଶାନ୍ତ—13. Ceased.

**ପ୍ରତିହତ-ପ୍ରତିକ୍ରିୟା**—ସଂ. ବ. ( ଆଧୁନିକ ବିଜ୍ଞାନ ପରିଭାଷା )—
Pratihata-pratikriyā ଆଘାତ ଯୋଗୁଁ ସମ୍ପୃକ୍ତ ବସ୍ତୁରେ ଲକ୍ଷିତ ପ୍ରତିକ୍ରିୟା—Reflex action.

**ପ୍ରତିହତି**—ସଂ ବ. ( ପ୍ରତି+ହନ୍ ଧାତୁ+ତି )—
Pratihati ୧ । ପ୍ରତିଘାତ—1. Return blow.
୨ । ଠକ୍କର (ହି. ଶ), ଠୋକର—2. Collision.
୩ । କ୍ରୋଧ (ହି. ଶ) —3. Anger; rage.

**ପ୍ରତିହନ୍ତା**—ସ. ବିଶ. ପୁଂ. (ପ୍ରତି+ହନ୍ ଧାତୁ+ତୃ; ୧ମା. ୧ବ)—
Pratihantā ୧ । ଯେ ଆଘାତ ଆଦିକୁ ସମ୍ମୁଖ ହୁଏ—
(ପ୍ରତିହନ୍ତ୍ରୀ—ସ୍ତ୍ରୀ) 1 Warding off a blow.
୨ । ପ୍ରତିଘାତକାରୀ—
2. Repelling, opposing; resisting.

**ପ୍ରତିହସ୍ତ**—ସ. ବି. (ପ୍ରତି+ହସ୍ତ)—ପ୍ରତିନିଧି—
Pratihasta Proxy; deputy; substitute.
(ପ୍ରତିହସ୍ତକ—ଅନ୍ୟରୂପ)

**ପ୍ରତି(ତୀ)ହାର**—ସ. ବି. (ପ୍ରତି+ହୃ ଧାତୁ+କର୍ମ ଅ)—
Prati(tī)hāra ୧ । ଦ୍ୱାର—1. Door.
୨ । ଫାଟକ—2. Gate.
୩ । (+କର୍ତ୍ତୃ. ଅ) ଦ୍ୱାରପାଳ—
3. Doorkeeper; porter; janitor.
[ ଦ୍ର—ହିନ୍ଦୁ ଶାସ୍ତ୍ର ମତେ ଇଙ୍ଗିତାକାରତତ୍ତ୍ୱଜ୍ଞ, ଦକ୍ଷ, ପ୍ରିୟ-ଦର୍ଶନ, ବଳବାନ୍, ପ୍ରିୟବାଦୀ, ଅନୁବ୍ରତ ଓ ଶିଷ୍ଟସ୍ୱଭାବ ଦ୍ୱାରପାଳକୁ ପ୍ରତିହାର ବୋଲାଯାଏ । ]
୪ । (+କରଣ. ଅ) ପ୍ରତ୍ୟୁପକାର ରୂପ ଅଭିସନ୍ଧିଯୁକ୍ତ ସନ୍ଧିପତ୍ର—
4. An alliance of confederacy; a tready between two powers for return of benefits.
୫ । (+ଭାବ. ଅ) ମାୟା; କପଟତା, ଛଳ—
5. Trick; disguise.
୬ । (+କର୍ତ୍ତୃ. ଅ) ବାଜୀଗର; ଭୁଆସୀ—
6. Juggler; magician.
୭ । (+ଭାବ. ଅ) ପରିହାର; ତ୍ୟାଗ—
7. Abandonment; shunning.
୮ । ପ୍ରତାରଣା—8. Cheating.
ଦେ. ବି—ରାଜପୁତମାନଙ୍କର ଶାଖାବିଶେଷ—
A branch of the Rajpoots.
ପ୍ରତିହାର, ଚନ୍ଦ୍ରାରକ, ରାଠୋର, ଶେଖାବ । ରଘୁନାଥ. ମହାଯାତ୍ରା ।

**ପ୍ରତିହାରକ**—ସ. ବି. ପୁଂ (ପ୍ରତି+ହୃ ଧାତୁ+କର୍ତ୍ତୃ. ଅକ)—
Pratihāraka ୧ । ମାୟାକାର; ବାଜୀଗର—1 Juggler.
(ପ୍ରତାରକା—ସ୍ତ୍ରୀ) ୨ । ପ୍ରତାରକ ବ୍ୟକ୍ତି—2. A cheat.
ସ. ବିଶ. ସ୍ତ୍ରୀ—୧ । ମାୟାବୀ—1. Illusive.
୨ । ପ୍ରତାରକ—2. Deceptive.

**ପ୍ରତିହାରଣ**—ସ. ବି. (ପ୍ରତି+ହୃ ଧାତୁ ଣିଚ୍+କରଣ. ଅନ; ଣତ୍ୱ ବିଧାନ—୧ । ପ୍ରବେଶ ଦ୍ୱାର—
Pratihāraṇa
1. Door; entrance.
୨ । (ପ୍ରତି+ହୃ ଧାତୁ ଣିଚ୍ ହାର ଧାତୁ+ଭାବ. ଅନ)—
ପ୍ରବେଶନ; ଦ୍ୱାର ପ୍ରବେଶର ଅନୁମତି—
2. Permission to enter a door.

**ପ୍ରତି(ତୀ)ହାରୀ**—ସ. ବି. ପୁଂ (ପ୍ରତି+ହୃ ଧାତୁ+ଇନ୍; ୧ମା. ୧ବ)—
Prati(tī)hāri ୧ । ପଡ଼ିହାରୀ; ଦ୍ୱାରରକ୍ଷକ—1. Door-
[ପ୍ରତି(ତୀ)ହାରଣୀ—ସ୍ତ୍ରୀଲିଙ୍ଗ] keeper; porter; janitor.
୨ । ରାଜାନ୍ତଃପୁରର ବହିର୍ଦ୍ୱାରର ରକ୍ଷକ—2. The keeper of the outer gate of a Raja's harem.
ସ. ବି. ସ୍ତ୍ରୀ. (ପ୍ରତିହାର+ସ୍ତ୍ରୀ. ଈ) ଦ୍ୱାରପାଳିକା—
A female door keeper.

**ପ୍ରତିହାର୍ଯ୍ୟ**—ସ. ବିଶ (ପ୍ରତି+ହୃ ଧାତୁ+କର୍ମ. ଯ)—
Pratihārjya ପରିହାର୍ଯ୍ୟ, ତ୍ୟାଜ୍ୟ—Avoidable; to be
[ପ୍ରତିହର୍ତ୍ତ(ର୍ତ୍ତ)ବ୍ୟ—ଅନ୍ୟରୂପ] shunned or avoided.

**ପ୍ରତି(ତୀ)ହାସ**—ସ. ବି (ପ୍ରତି+ହସ୍ ଧାତୁ+କର୍ତ୍ତୃ. ଅ)—
Prati(tī)hāsa ୧ । କରବୀ (ଦେଖ)—1. Karabī (See)
୨ । ଉପହାସକାରୀ ପ୍ରତି ହାସ୍ୟ—2. Returning a laugh; a returning sneer.

**ପ୍ରତିହିଂସକ**—ସ. ବିଶ. ପୁଂ (ପ୍ରତି+ହିଂସ୍ ଧାତୁ+କର୍ତ୍ତୃ. ଅକ)—
Pratihiṃsaka ଯେ ଦାଉ ସାଧେ; ଯେ ପ୍ରତିହିଂସା ନିଏ;
(ପ୍ରତିହିଂସିକା—ସ୍ତ୍ରୀ) ପ୍ରତିହିଂସାପରାୟଣ—Revengeful.

**ପ୍ରତିହିଂସା**—ସ. ବି (ପ୍ରତି+ହିଂସା)—
Pratihiṃsā ବୈରଶୁଦ୍ଧି; ବୈର ନିର୍ଯ୍ୟାତନ; ଦାଉ ସାଧିବା; ବୈର-ପ୍ରତିଶୋଧ—Retation; revenge.

**ପ୍ରତୀକ**—ସ. ବିଶ (ପ୍ରତି+ଇ ଧାତୁ=ଗମନ କରିବା+କର୍ତ୍ତୃ. ଇକ)—
Pratīka ୧ । ବିରୁଦ୍ଧ; ପ୍ରତିକୂଳ, ବିପରୀତ—
1. Opposite; contrary.
୨ । ଆଡ଼କୁ ଯାଉଥିବା—2. Going towards.
୩ । ଉପରକୁ ଉଠୁଥିବା—3. Going uphill.
ସଂ. ବି—୧ । ପ୍ରତ୍ୟଙ୍ଗ—1. Limbs
୨ । ଦେହର ଅଂଶ—2. Part of the body.
୩ । ଚିହ୍ନ; ଚିହ୍ନ (ହି)—3. Trace; sign.
୪ । କୌଣସି ପଦ୍ୟର ବା ଗଦ୍ୟର ଆଦ୍ୟର ବା ଅନ୍ତର କିଛି ଅଂଶ ଦେଖି ବା ପଢ଼ି ପୂର୍ଣ୍ଣବାକ୍ୟର ପତା ଲଗାଇବା (ହି. ଶ)—
4. Finding out the full sentence or sloka after knowing a part thereof.
୫ । ମୁଖ; ମୁହଁ (ହି. ଶ)—5. Face.
୬ । ଆକୃତି, ରୂପ (ହି. ଶ)—6. Shape.
୭ । ପ୍ରତିରୂପ (ହି. ଶ)—7. Image.
୮ । ପୋଟଳ (ହି. ଶ) (ଦେଖ)—8 Poṭaḷa (See)

**ପ୍ରତୀକ୍ଷ**—ସଂ. ବିଶ (ପ୍ରତି+ଈକ୍ଷ୍ ଧାତୁ+କର୍ମ. ଅ)—୧ । ସମ୍ମାନନୀୟ—
Pratīksha 1. Worthy to be treated with consideration or respect.
୨ । ପୂଜନୀୟ—2. Venerable; worshipable.
୩ । ପାଳନୀୟ—3. Worthy to be fulfilled or observed (Howells).

**ପ୍ରତୀକ୍ଷଣ**—ସଂ. ବି (ପ୍ରତି+ଈକ୍ଷଣ)—୧ । ଅବଲୋକନ—
Pratīkshaṇa 1. Seeing; perceiving.
(ପ୍ରତୀକ୍ଷିତ, ପ୍ରତୀକ୍ଷକ-ବିଶ) ୨ । ବିବେଚନା—
1. Consideration; regard.

୩ । ଅପେକ୍ଷା କରିବା—3 Awaiting; expectation.
୪ । ପରିପୋଷଣ; ପାଳନ —
1. Maintaining; bringing up.
୫ । ସଫଳତା—5 Fulfilment.
୬ । ପୂଜା—6. Worship; adoration; veneration.
୭ । ପ୍ରଣିଧାନ, ଅଭିନିବେଶ —7. Attention.

**ପ୍ରତୀକ୍ଷା**— ସଂ. ବି (ପ୍ରତି+ଈକ୍ଷ୍ ଧାତୁ=ଦେଖିବା+ଭାବ. ଅ+ସ୍ତ୍ରୀ. ଆ)--
Pratiksha ୧ । ଅପେକ୍ଷା, ଆଶା—1. Waiting, expectation.
୨ । ଆକାଙ୍କ୍ଷା—2. Desire
୩ । ପୂଜା, ସମ୍ମାନ—3. Respect; worship; adoration.
୪ । ପ୍ରତିପାଳନ—
4. Protecting; cherishing; fulfilling.
୫ । ନିରୀକ୍ଷଣ—5. Seeing.
୬ । ଅନୁଯୋଗ—6 Reference.
୭ । ପ୍ରଣିଧାନ—7. Consideration.

**ପ୍ରତୀଚୀ**— ସଂ ବି (ପ୍ରତି=ପଶ୍ଚାତ୍+ଅନଚ୍ ଧାତୁ=ଯିବା+ଅଧିକରଣ.
Pratichi କ୍ୱିପ୍, ପଶ୍ଚାତ୍ ବା ଦିନାନ୍ତେ ସୂର୍ଯ୍ୟ ଏହି ଦିଗକୁ ଯାଉଥିବାରୁ)-ପଶ୍ଚିମଦିଗ—The western quarter.

**ପ୍ରତୀଚୀନ**— ସଂ. ବିଣ (ପ୍ରତୀଚୀ+ସମ୍ବନ୍ଧାର୍ଥେ ଈନ, ଭୁଲ· ପ୍ରାଚୀନ;
Pratichina ତଦ୍ଭିନ୍ନ)—୧ । ପଶ୍ଚିମ ସମ୍ବନ୍ଧୀୟ; ପଶ୍ଚିମ ଦେଶୀୟ,
(ପ୍ରତୀଚୀନା—ସ୍ତ୍ରୀ) ପଶ୍ଚିମ ଦେଶ ଜାତ—1. Western.
୨ । ପଛଆଡ଼େ ଥିବା—2. Being behind; situated in the rear.

**ପ୍ରତୀଚୀରେ**—ଦେ. ଅ (ସଂ. ପ୍ରତି+ଚର)—ପ୍ରତି ବିଷୟରେ ଓ
Pratichire ଚିରକାଳ—For ever and in every matter.

ବିଧି ପୂର୍ବରେ ଦକ୍ଷିଣ ପ୍ରତୀଚୀରେ ଭଳ
ବନ୍ଧିତ ଚିର ଭ୍ରାତାର ଉତ୍ତରେ ସହଜ—ଭଞ୍ଜ ବୈଦେହୀଶବିଳାସ ।

**ପ୍ରତୀଚୀଶ**—ସଂ ବି (ଷଷ୍ଠୀ ତତ୍; ପ୍ରତୀଚୀ+ଈଶ) ବରୁଣ—
Pratichisa The Hindu sea-god.

**ପ୍ରତୀଚ୍ୟ**—ସଂ. ବିଣ (ପ୍ରତୀଚୀ+ସମ୍ବନ୍ଧାର୍ଥେ ଯ)—ପ୍ରତୀଚୀନ (ଦେଖ)
Pratichya Pratichina (See)
(ପ୍ରତୀଚ୍ୟା—ସ୍ତ୍ରୀ)

**ପ୍ରତୀତ**—ସଂ ବିଣ (ପ୍ରତି+ଇ ଧାତୁ=ଯିବା, ବୋଧକରିବା+କର୍ମ. ତ)—
Pratita ୧ । ବିଖ୍ୟାତ; ପ୍ରସିଦ୍ଧ—1. Celebrated; renowned.
(ପ୍ରତୀତି—ବି)
୨ । ଜ୍ଞାତ; ଅନୁଭୂତ—2. Known; realised.
୩ । ତୁଷ୍ଟ; ପ୍ରୀତ—3. Delighted; pleased.
୪ । ସମ୍ମାନିତ—4. Respected.
୫ । ଅତୀତ—5 Past.
୬ । ବିଶ୍ୱସ୍ତ—6. Trusted; believed.
୭ । ଜ୍ଞାନବାନ୍; ଜ୍ଞାନୀ—7 Wise.

**ପ୍ରତୀତି**— ସଂ. ବି (ପ୍ରତି+ଇ ଧାତୁ+ଭାବ. ତି)—
Pratiti ୧ । ପ୍ରସିଦ୍ଧି, ଖ୍ୟାତି—1 Fame; renown; celebrity.
୨ । ବୋଧ; ଜ୍ଞାନ—2. Knowledge; understanding.
୩ । ବିଶ୍ୱାସ—3. Belief; trust; confidence.
୪ । ଦୃଢ ବିଶ୍ୱାସ—4. Conviction; firm belief.
୫ । ସମ୍ମାନ—5 Respect.
୬ । ହର୍ଷ, ପ୍ରୀତି—6. Joy, delight.
୭ । ସନ୍ତୋଷ—7. Satisfaction
୮ । ଅନୁଭୂତି—8. Experience.

**ପ୍ରତୀପ**—ସଂ. ବିଣ (ପ୍ରତି=ବିରୁଦ୍ଧ+ଅପ୍=ଜଳ+ଅ, ନିପାତନ, ଯାହା
Pratipa ସ୍ରୋତର ବିପରୀତ ଦିଗକୁ ଯାଏ)—୧ । ବିରୁଦ୍ଧ; ପ୍ରତିକୂଳ, ବିପରୀତ—1. Opposite, contrary.
୨ । ପଶ୍ଚାଦ୍‌ଗାମୀ—2. Retrograde.
୩ । ପରାଙ୍ମୁଖ—
3. Having one's face averted from a thing.
୪ । ପଶ୍ଚିମ ଦେଶୀୟ—4. Western.
୫ । ଧୃଷ୍ଟ; ଅବାଧ୍ୟ—
5. Disobedient; refractory; perverse; cross; impertinent.
୬ । ସ୍ୱାଭାବିକ ବା ପ୍ରାକୃତିକ ନିୟମର ବିରୁଦ୍ଧାଚାରୀ—
6. Following a course against nature.
(lit. against the grain or stream)
ସଂ ବି—୧ । ପଶ୍ଚିମ ଦିଗ—1 The west.
୨ । ଚନ୍ଦ୍ରବଂଶୀୟ ଶାନ୍ତନୁରାଜାଙ୍କ ପିତା—
2. Name of a king of the Lunar dynasty.
୩ । ବିରୋଧ; ପ୍ରତିକୂଳତା—3 Opposition.
୪ । ଅର୍ଥାଲଙ୍କାରବିଶେଷ [ ପ୍ରସିଦ୍ଧ ବସ୍ତୁ (ଯଥା—ଚନ୍ଦ୍ର) ସଙ୍ଗେ ଅନ୍ୟ କୌଣସି ନୂତନ ବା ନିକୃଷ୍ଟ ବସ୍ତୁ (ଯଥା—ଥାଳି)କୁ ତୁଳନା କରିବା]—4. A figure in rhetoric (comparing a thing to an inferior object).

**ପ୍ରତୀପଗାମୀ**—ସ. ବିଣ. ପୁଂ. (ପ୍ରତୀପ+ଗାମିନ୍; ୧ମା. ୧ବ)—
Pratipagami ୧ । ବିପରୀତ ଦିଗରେ ଗମନକାରୀ—
(ପ୍ରତୀପଗାମିନୀ—ସ୍ତ୍ରୀ) 1. Going in an opposite direction.
(ପ୍ରତୀପଗମନ —ବି) ୨ । ପ୍ରତିକୂଳାଚାରୀ—2. Acting in a contrary direction; acting in opposition.
୩ । ଅମାନିଆ—3. Refractory.

**ପ୍ରତୀପଦର୍ଶୀ**—ସ. ବିଣ. ପୁଂ. (ପ୍ରତୀପ+ଦର୍ଶିନ୍; ୧ମା. ୧ବ)—
Pratipadarsi ୧ । ବିପରୀତଦର୍ଶୀ; ଯେ ଭଲ କଥାକୁ ମନ୍ଦରୂପେ ବା ମନ୍ଦ କଥାକୁ ଭଲରୂପେ ଦେଖେ—1. Seeing things from an opposite or contrary point of view.
୨ । ଦେଖିଲା ବେଳକୁ ଯେ ଦର୍ଶକଆଡ଼ୁ ମୁହଁ ଫେରାଇ ନିଏ—
2. Averting the face from the person who looks at him.

**ପ୍ରତୀପଦର୍ଶିନୀ**—ସଂ. ବିଣ. ସ୍ତ୍ରୀ—'ପ୍ରତୀପଦର୍ଶୀ'ର ସ୍ତ୍ରୀଲିଙ୍ଗ—
Pratīpadarśinī Feminine of 'Pratīpadarśī'
ସ. ବି. ସ୍ତ୍ରୀ—୧ । ନାରୀ; ସ୍ତ୍ରୀ—1. Woman.
୨ । ନବସ୍ତ୍ରୀ ବା ନବବଧୂ (ଯେ ଦର୍ଶକ ଆଡ଼୍ଡ଼ୁ ମୁହଁକୁ ବୁଲାଇନିଏ)-
2. A new wife or a new bride.

**ପ୍ରତୀପ ବଚନ**—ସଂ. ବି. (କର୍ମଧା; ପ୍ରତୀପ + ବଚନ)—
Pratīpa bachana ୧ । ପ୍ରତିବାଦ; ବିରୁଦ୍ଧବାଦ—
(ପ୍ରତୀପବାଦ—ଅନ୍ୟରୂପ) 1. Contradiction.
୨ । ଅପ୍ରକୃତ ଉତ୍ତର—2. A perverse or evasive reply.
୩ । ପୂର୍ବବର୍ତ୍ତୀ ବକ୍ତାଙ୍କ ଯୁକ୍ତିର ପ୍ରକୃତ ଉତ୍ତର ନ ଦେଇ ତୃତୀୟ ବ୍ୟକ୍ତିଙ୍କୁ କହିବା—3. A speech made to a third person without giving a direct reply to the previous speaker.

**ପ୍ରତୀବାପ**—ସଂ. ବି. (ପ୍ରତି=ପୁନର୍ବାର+ବପ୍ ଧାତୁ=ବୁଣିବା + ଭାବ.ଅ)-
Pratībāpa ୧ । ଗଳିତ ଧାତୁ ସଙ୍ଗେ ଦ୍ରବ୍ୟାନ୍ତରର ମିଶ୍ରଣ—
1. Fluxing of metals.
୨ । ନ୍ୟାସ—2 Casting; depositing; entrusting.
୩ । କୌଣସି ବସ୍ତୁର ଆକୃତି, ଅବସ୍ଥା ବା ଗୁଣର ବୈଲକ୍ଷଣ୍ୟ ଉତ୍ପାଦନାର୍ଥ ସେଥିରେ ଦ୍ରବ୍ୟାନ୍ତର-ନିକ୍ଷେପ—
3. Adding or throwing a substance into a thing in order to change it.
୪ । ରାଜ୍ୟରେ ଘଟିବା ଉପଦ୍ରବ—4. A public calamity.
୫ । ପାନୀୟ ଔଷଧରେ ମିଶାଯିବା ଔଷଧବିଶେଷ—
5. A thing mixed with a medicinal draught.
୬ । ସିଦ୍ଧ ହେଉଥିବା ସମୟରେ ବା ପରେ ଔଷଧ ସଙ୍ଗେ କୌଣସି ଉପକରଣ ମିଶାଇବା—6. Adding something to a medicine during or after decoction.
୭ । ଦୈବୀ ଉପଦ୍ରବ (ହି. ଶ.)—
7. A natural calamity; a divine visitation

**ପ୍ରତୀୟମାନ**—ସଂ. ବିଣ. (ପ୍ରତି + ଇ ଧାତୁ+କର୍ମ. ଆନ)—ବିଶ୍ୱାସକୃତ;
Pratīyamāna ଯାହା ବିଶ୍ୱାସ କରାଯାଉଅଛି; ଯାହା ଜଣାଯାଉ ଅଛି ବା ବୋଧ ହେଉଅଛି—Being trusted or believed; perceptible; apparent.

**ପ୍ରତୀୟମାନୋତ୍ପ୍ରେକ୍ଷା**—ସ. ବି—ଅର୍ଥାଲଙ୍କାରବିଶେଷ (ଯହିଁରେ
Pratīyamānotprekshā ଉତ୍ପ୍ରେକ୍ଷାସୂଚକ ଶବ୍ଦ, ଯଥା—ଯେପରି, କି,ପରି, ତୁଲ୍ୟ ଉଲ୍ଲେଖ ହୋଇ ନ ଥାଏ, ଅଥଚ ତାହା ଉତ୍ପ୍ରେକ୍ଷା ବୋଲି ଜଣାପଡ଼େ)—A kind of implied simile.
[ଦ୍ର— ପ୍ରତୀୟମାନୋତ୍ପ୍ରେକ୍ଷା—'ତାଙ୍କ ଚନ୍ଦ୍ରବଦନରୁ ହାସ୍ୟସୁଧା ନିର୍ଗତ ହେଉଅଛି ।' ଯେଉଁ ଉତ୍ପ୍ରେକ୍ଷାରେ ଉତ୍ପ୍ରେକ୍ଷାସୂଚକ ଶବ୍ଦର ପ୍ରୟୋଗ ହୋଇଥାଏ ତାହାକୁ ବାଚ୍ୟୋତ୍ପ୍ରେକ୍ଷା ବୋଲାଯାଏ, ଯଥା—ତାଙ୍କ ମୁଖ ଚନ୍ଦ୍ର ତୁଲ୍ୟ ଏବଂ ତହିଁରୁ ସୁଧାପରି ହାସ୍ୟ ନିର୍ଗତ ହେଉଅଛି ।]

**ପ୍ରତୁଦ**—ସଂ. ବି—(ପ୍ର + ତୁଦ୍ ଧାତୁ=ବ୍ୟଥିତ କରିବା + କର୍ତ୍ତୃ. ଅ)—
Pratuda ଯେଉଁ ପକ୍ଷୀ ଆପଣା ଶିକାରକୁ ଥଣ୍ଟରେ ଚିରିକରି ଖାଏ--
(ଯଥା—ଗୃଧ୍ର, ଶ୍ୟେନ, ପେଚକଆଦି ହିଂସ୍ରପକ୍ଷୀ)—
A bird of prey which feeds on the prey by tearing with the beak

**ପ୍ରତୁଳ**—ସଂ. ବି (ପ୍ର + ତୁଲ ଧାତୁ+କର୍ମ ଅ)—୧ । ଅଚଳାଚଳ ସମ୍ପତ୍ତି,
Pratula ଐଶ୍ୱର୍ଯ୍ୟ; ବିଭବ—
1 Immense wealth, prosperity.
୨ । ସୌଭାଗ୍ୟ—2 Good fortune.
୩ । ପ୍ରାଚୁର୍ଯ୍ୟ, ଆଧିକ୍ୟ—3 Abundance.
୪ । ଯଥେଷ୍ଟତା—4. Sufficiency.
୫ । ମଙ୍ଗଳ, ଉପକାର—5 Benefit.
୬ । ବାହୁଲ୍ୟ; ବୃଦ୍ଧି—6 Excess.
ସଂ. ବିଣ—୧ । ବିଷମ; ଭୟାନକ—1. Fierce.
(ପ୍ରତୁଳା—ସ୍ତ୍ରୀ) ୨ । ପ୍ରଚୁର—2. Abundant.
(ପ୍ରତୁଳତା—ବି) ୩ । ଯଥେଷ୍ଟ—3 Sufficient.
୪ । ଅତୁଳନୀୟ—4 Incomparable.

**ପ୍ରତୁଲ୍ୟ**—ଦେ. ବିଣ. (ସଂ. ପ୍ର+ତୁଲ୍ୟ)—ସଦୃଶ, ସମାନ—
Pratulya Similar.

ସମେ ପ୍ରତୁଲ୍ୟ କେହି ନାହିଁ,
ସର୍ବେ ନେ ହୁଳେ ବ୍ରହ୍ମା ସେହି । ଜଗନ୍ନାଥ, ଭାଗବତ ।

**ପ୍ରତୁଲ୍ୟେ**—ଦେ. ଅ. (ସଂ· ତୁଲ୍ୟ)—ପରି; ସଦୃଶ—
Pratulye Like.

ଦୁହିତା ପ୍ରତୁଲ୍ୟେ ଧରଣୀ,
ପୁଣେ ନବେଶି ନୃପମଣି । ଜଗନ୍ନାଥ, ଭାଗବତ ।

**ପ୍ରତେ**—ଦେ. ବି. (ସଂ. ପ୍ରତ୍ୟୟ)—୧ । ପରତେ; ବିଶ୍ୱାସ—
Prate 1. Faith; reliance; trust; confidence; belief.
୨ । ନିଶ୍ଚିତ ଜ୍ଞାନ—2. Conviction; a definite knowledge,
প্রত্যয় पत्यारा
ଦେ. ବିଣ—୧ । ଯାହାକୁ ବିଶ୍ୱାସ କରାଯାଏ, ବିଶ୍ୱାସଦ୍ୱାରା ଗୃହୀତ-
1, Believed; trusted; accepted on trust.
୨ । ବିଶ୍ୱସନୀୟ—2, Believable.

**ପ୍ରତେ ଆସିବା**—ଦେ. କ୍ରି—୧ । ବିଶ୍ୱାସନୀୟ ବୋଲି ଗୃହୀତ ହେବା,
Prate āsibā ବିଶ୍ୱାସ କରାଯିବା—1. To be believed; to be trusted.
ପ୍ରତେ ଲାଗିବା } ଅନ୍ୟରୂପ
ପ୍ରତେ ହେବା }
প্রত্যয় হওয়া
पतयारो होना ୨ । ଜଣାଯିବା—2. To be felt; to seem, to appear.

ଏ ଅଦ୍ଭୁତ କଥା ନଜେ ନ ଦେଖିଲେ
କେମନ୍ତେ ବା ହେବ ପ୍ରତେ ? ରାଧାନାଥ. ପାର୍ବତୀ ।

ନାର ଦେଖି ପ୍ରତେ ଅସେ କି ପୂଜିତ
କି ଭ୍ରିକର୍ଣ ପୁଣ୍ୟବର୍ଣ । ରାଧାନାଥ. ଯଯାତି ।

**ପ୍ରତେ କରିବା**—ଦେ. କ୍ରି—ପରତେ ଯିବା; ବିଶ୍ୱାସ କରିବା—
Prate karibā To believe; to trust, to rely upon.
(ପ୍ରତେ ଯିବା—ଅନ୍ୟରୂପ)

প্রত্যয যাওয়া ଅଗେ ଅନ୍ତ ସପ୍ତଶାଲରୁ ଶାଳେ ଲସ୍ତେ
পতযাযা করনো ବନ୍ଧରେ ଦେଖେ ଅବା ପ୍ରତେ ସିନ୍ଧ ଅସ୍ତେ ।
କୃଷ୍ଣସିଂହ. ମହାଭାରତ ବନ ।

**ପ୍ରତେଜନ**—ସଂ ବ (ପ୍ର+ତିଜ୍ ଧାତୁ+ଭାବ. ଅନ)—ଉତ୍ତେଜନ—
Pratejana Inciting; exciting.
(ପ୍ରତେଜକ, ପ୍ରତେଜିତ, ପ୍ରତେଜନୀୟ—ବିଣ)

**ପ୍ରତେଜିବା**—ଦେ. (ପଦ୍ୟ) କ୍ରି. (ସଂ.ପ୍ରତେଜନ)—୧ । ଉତ୍ତେଜିତ କରିବା--
Pratejibā To irritate; to excite.
ସେ ନାଗ ସ୍ୱରୂପ ଧରଇ ପୁରୁଷ ଅଙ୍ଗ ପ୍ରତେଜଇ । ଜଗନ୍ନାଥ. ଭାଗବତ ।
(ପ୍ରତେ୍ୟଜିବା, ପ୍ରତ୍ୟଜିବା, ପ୍ରତ୍ୟାଜିବା—ଅନ୍ୟରୂପ)
୨ । (ସଂ. ତ୍ୟଜ୍ ଧାତୁ)—ତ୍ୟାଗ କରିବା—
2. To give up.
କପିଳ ବଚନ ଶୁଣିମେ, ମୋହ ପଟଳ ପ୍ରତେଜିଲେ ।
ଜଗନ୍ନାଥ. ଭାଗବତ ।

**ପ୍ରତୋଦ**—ସଂ. ବ. (ପ୍ର+ତୁଦ୍ ଧାତୁ=ପୀଡ଼ନ କରିବା+କରଣ. ଅ)—
Pratoda ୧ । ଅଶ୍ୱାଦିତାଡ଼ନଦଣ୍ଡ, ଚାବୁକ; କୋରଡ଼ା; ଚୋଟ—
1 A whip.
୨ । ହାତୀଅଙ୍କୁଶ—2. A hook or goad for taming elephants.
୩ । ପାଞ୍ଚଣ; ଗବାଦିଚାଳନାର୍ଥ ସୂକ୍ଷ୍ମଲୌହାଗ୍ରଦଣ୍ଡ—
3. A goad for driving cattle, an iron-pointed stick to drive cattle.

**ପ୍ରତୋଲ**—ସଂ. ବ. ସ୍ତ୍ରୀ. (ପ୍ର+ତୁଲ୍ ଧାତୁ=ଗମନ କରିବା+ଅଧିକରଣ.
Pratola ଅ)—୧ । ଓସାରିଆ ରାସ୍ତା; ବଡ଼ଦାଣ୍ଡ—
1. High road; broad street.
୨ । ଅଭ୍ୟନ୍ତର ମାର୍ଗ; ଗଳି—
2. A path; a bye-path; lane; street
୩ । ଦୁର୍ଗର ଯେଉଁ ଦ୍ୱାର ନଗର ଆଡ଼କୁ ଥାଏ (ହି. ଶ)—
3. The gate of a fort facing the city.
୪ । ବଥଆଦିରେ ବନ୍ଧାଯିବା ପଟି (ହି. ଶ)—
4 Bandage tied over boils etc.

**ପ୍ରତୋଷିବା**—ଦେ. କ୍ରି. (ସଂ. ତୁଷ୍ ଧାତୁ)—ସନ୍ତୁଷ୍ଟ କରିବା—
Pratoshibā To satisfy.
ଭବେ ପ୍ରତୋଷି ତାଙ୍କ ମନ
କହନ୍ତୁ ମଧୁର ବଚନ—ଜଗନ୍ନାଥ. ଭାଗବତ ।

**ପ୍ରତ୍ନ**—ସଂ. ବିଣ. (ପ୍ରାକ୍=ପୂର୍ବକାଳ+ଘଟିବା ଅର୍ଥରେ ତ୍ନ; ନିପାତନ)--
Pratna ପ୍ରାଚୀନ; ପୁରାତନ—Old; ancient.

**ପ୍ରତ୍ନ ତତ୍ତ୍ୱ(ତ୍ତ୍ୱ)**—ସଂ. ବ. [ କର୍ମଧା; ପ୍ରତ୍ନ+ତତ୍ତ୍ୱ (ତ୍ତ୍ୱ) ]—
Pratna tatwa(ttwa) ୧ । ପୁରାତତ୍ତ୍ୱ; ପ୍ରାଚୀନକାଳର ଇତିହାସ--
1 Antiquity; history of ancient times.
୨ । ଯେଉଁ ଶାସ୍ତ୍ର ବା ଗ୍ରନ୍ଥଦ୍ୱାରା ପୁରାକାଳର ଅବସ୍ଥା ଉତ୍ତମରୂପେ ଜଣା ପଡ଼େ—2 A work or treatise on antiquity; archeology.

**ପ୍ରତ୍ନତତ୍ତ୍ୱ(ତ୍ତ୍ୱ)ବିତ୍**—ସଂ. ବ. ପୁଂ. (ପ୍ରତ୍ନତତ୍ତ୍ୱ+ବିଦ୍ ଧାତୁ+କର୍ତ୍ତୃ. କ୍ୱିପ୍;
Pratnatatwa(ttwa)bit ୧ମା. ୧ବ)—ପୁରାଣବେତ୍ତା,
ପ୍ରତ୍ନତତ୍ତ୍ୱବେତ୍ତା / ପ୍ରତ୍ନତତ୍ତ୍ୱ ବିଶାରଦ } ଅନ୍ୟରୂପ ପୁରାତତ୍ତ୍ୱବିତ୍—An antiquarian; an archeologist.
ସଂ. ବିଣ—ପ୍ରତ୍ନତତ୍ତ୍ୱରେ ପାରଙ୍ଗମ—
Versed in archeology.

**ପ୍ରତ୍ନତତ୍ତ୍ୱାନୁସନ୍ଧାନ**—ସଂ. ବ (କର୍ମଧା; ୬ଷ୍ଠୀ ତତ୍)—
Pratnatattwānusandhāna ପ୍ରାଚୀନ ତତ୍ତ୍ୱସମ୍ବନ୍ଧେ ଗବେଷଣା—
Antiquarian research.

**ପ୍ରତ୍ନତତ୍ତ୍ୱାନୁସନ୍ଧିତ୍ସୁ**—ସଂ. ବ—ପ୍ରାଚୀନ ତତ୍ତ୍ୱାନୁସନ୍ଧାନ ବିଷୟରେ ଦତ୍ତଚିତ୍ତ—
Pratnatattwānusandhitsu Bent on antiquarian research.

**ପ୍ରତ୍ୟଆହାର**—ଗ୍ରା. (ପଦ୍ୟ) ବ. (ସଂ. ପ୍ରତ୍ୟାହାର)—ପ୍ରତ୍ୟାହାର (ଦେଖ)
Pratya-āhāra Pratyāhāra (See)
ଯମ ନିୟମ ଆସନ ପ୍ରାଣାୟାମ
ପ୍ରତ୍ୟ ଆହାର ଧ୍ୟାନକ ଧାରଣ । ଚୈତନ୍ୟ. ରହସ୍ୟମଞ୍ଜରୀ ।

**ପ୍ରତ୍ୟକ୍**—ସଂ. ଅ. (ପ୍ରତି+ଅନ୍ଚ୍ ଧାତୁ=ଯିବା+କ୍ୱିପ୍; ପ୍ରତ୍ୟଚ୍--୧ମା.
Pratyak ୧ବ)—୧ । ପଶ୍ଚାତ୍—1. Behind; rear; subsequent.
୨ । ପୂର୍ବବର୍ତ୍ତୀ—2 Prior.
୩ । ପଶ୍ଚାଦ୍‌ବର୍ତ୍ତୀ କାଳ, ପୂର୍ବକାଳ—3. Former times.
୪ । ପଶ୍ଚିମଦେଶୀୟ—4 Western.
୫ । ପଶ୍ଚିମ ଦିଗ—5 The west.
୬ । ଅନ୍ତର୍ନିହିତ—6. Internal; inner
୭ । ପଛଆଡ଼କୁ—7. Backwards.
୮ । ପଶ୍ଚିମଆଡ଼କୁ—8. Westwards.

**ପ୍ରତ୍ୟକ୍ ଚୈତନ୍ୟ**—ସଂ. ବ. (ପ୍ରତ୍ୟକ୍=ଅନ୍ତର୍ନିହିତ+ଚୈତନ୍ୟ)—
Pratyak-chaitanya ୧ । ଅନ୍ତରାତ୍ମା—1. The inner Soul.
(ପ୍ରତ୍ୟକ୍ ଚେତନ—ଅନ୍ୟରୂପ)
୨ । ପ୍ରତ୍ୟେକ ବ୍ୟକ୍ତିର ଅନ୍ତର୍ନିହିତ ବ୍ୟକ୍ତିତ୍ୱ; ଜୀବାତ୍ମା—
2. The individual Soul existing in every person.
୩ । ପରମେଶ୍ୱର; ପରଂବ୍ରହ୍ମ, ପରମାତ୍ମା—
3. The Universal Soul, God.
୪ । ଆତ୍ମଜ୍ଞାନପ୍ରାପ୍ତ ଯୋଗୀ (ହି. ଶ)—4. A person who has attained spiritual wisdom.

**ପ୍ରତ୍ୟକ୍ଷ**—ସଂ. ବିଣ. (ପ୍ରତି=ଲକ୍ଷ୍ୟ+ଅକ୍ଷ=ଇନ୍ଦ୍ରିୟ, ଅଥବା ପ୍ରତି=
Pratyaksha ସମ୍ମୁଖରେ+ଅକ୍ଷି=ଚକ୍ଷୁ)—୧ । ଆଖି ଆଗରେ
(ପରୋକ୍ଷ—ବିପରୀତ) ଥିବା; ସ୍ପଷ୍ଟ, ସାକ୍ଷାତ୍—1. Being before the eyes; clear; evident.
୨ । ଇନ୍ଦ୍ରିୟଗ୍ରାହ୍ୟ; ଇନ୍ଦ୍ରିୟଗୋଚର; ଇନ୍ଦ୍ରିୟଦ୍ୱାରା ଅନୁଭୂତ ହେବା ଯୋଗ୍ୟ—2. Cognisable by any of the senses; perceptible.
୩ । ଦେଖା ଯାଉଥିବା, ଦୃଶ୍ୟମାନ—
3. Visible; manifest.
୪ । ସାକ୍ଷାତ୍ ସଂପର୍କରେ ସଂବଦ୍ଧ—
4. Direct; immediate.

ସଂ. ବି—ଇନ୍ଦ୍ରିୟ ଯୋଗୁଁ ହେବା ଜ୍ଞାନ, ଯେଉଁ ଜ୍ଞାନ ଇନ୍ଦ୍ରିୟଦ୍ୱାରା ଗମ୍ୟ ହୁଏ—Perception; knowledge from sense-perception

ଦେ. ବିଣ—୧ । ଅନୁଭୂତ, ଅନୁଭବଦ୍ୱାରା ଜ୍ଞାତ—1. Experienced; realised; known by experience.

ଅନଙ୍ଗ ସକାଶରୁ ସୁଖ ଅଙ୍ଗ ଦୁଃଖ
ଭୁଞ୍ଜୁଛ ସବୁଟ ହୋଇଛ ପ୍ରତ୍ୟକ୍ଷ । କୃଷ୍ଣସିଂହ. ମହାଭାରତ. ଆଦି ।

୨ । ନିଶ୍ଚିତ; ସତ—2. True; real.

ଏକଥା ଅଟଇ ପ୍ରତ୍ୟକ୍ଷ
ଅଶ୍ୱତ୍ଥ ଦେହ ଟଳ ବୃକ୍ଷ । ଜଗନ୍ନାଥ. ଭାଗବତ ।

ଦେ. ଅ—ନିଶ୍ଚୟ—Certainly.

ମନୁଷ୍ୟ ସାଥିରେ ଲେଖା ପ୍ରତ୍ୟକ୍ଷ ହୋଇବୁ ତୁହି ।
ଭକ୍ତ. ବୈଦେହୀଶବିଳାସ ।

**ପ୍ରତ୍ୟକ୍ଷ କରିବା**—ଦେ. କ୍ରି—୧ । ନିଜେ ଚକ୍ଷୁ ବା ଇନ୍ଦ୍ରିୟଦ୍ୱାରା ଅନୁଭବ କରିବା—1. To have direct knowledge or perception; to perceive; to realise; to see with one's own eyes or to feel with one's own senses.
Pratyaksha kariba
প্রত্যক্ষ করা
**प्रत्यक्ष करना**

୨ । ଅଙ୍ଗେ ନିଭେଇବା—2. To experience.

**ପ୍ରତ୍ୟକ୍ଷକାରୀ**—ସ. ବିଣ. ପୁଂ—ଯେ ନିଜେ ଦେଖି ବା ଇନ୍ଦ୍ରିୟଦ୍ୱାରା ଅନୁଭବ କରି କୌଣସି କଥା ଜାଣି ଥାଏ; ସ୍ୱୟଂ ଦ୍ରଷ୍ଟା—Having personal or direct knowledge.
Pratyakshakari
(ପ୍ରତ୍ୟକ୍ଷକାରିଣୀ—ସ୍ତ୍ରୀ)

**ପ୍ରତ୍ୟକ୍ଷ ଗୋଚର**—ସ. ବିଣ.—ଦୃଷ୍ଟିଗୋଚର; ନେତ୍ରପଥବର୍ତ୍ତୀ, ଚକ୍ଷୁଗ୍ରାହ୍ୟ—Visible.
Pratyaksha gochara

**ପ୍ରତ୍ୟକ୍ଷତଃ**—ସ. କ୍ରି. ବିଣ (ପ୍ରତ୍ୟକ୍ଷ+ତସ୍)—୧ । ସ୍ପଷ୍ଟରୂପେ—1. Clearly; evidently
Pratyakshatah

୨ । ଇନ୍ଦ୍ରିୟଦ୍ୱାରା ଅନୁଭୂତ ହେବା ପ୍ରକାରେ—2. Perceptibly.

୩ । ସାକ୍ଷାତ୍—3. Directly; before one's eyes.

**ପ୍ରତ୍ୟକ୍ଷ ଦର୍ଶନ**—ସ. ବି. (କର୍ମଧା; ପ୍ରତ୍ୟକ୍ଷ+ଦର୍ଶନ)—୧ । ସାକ୍ଷାତ୍ଦର୍ଶନ 1. Seeing with one's own eyes; personal interview.
Pratyaksha darsana

୨ । (ବହୁବ୍ରୀହି)—ସାକ୍ଷୀ, ନିଜେ ଆଖିରେ ଦେଖିଥିବା ସାକ୍ଷୀ—2. An eye-witness.

(ପ୍ରତ୍ୟକ୍ଷଦର୍ଶନା—ସ୍ତ୍ରୀ) ସ. ବିଣ. ପୁଂ (ବହୁବ୍ରୀହି)—ସାକ୍ଷାଦ୍ଦର୍ଶୀ; ସ୍ୱୟଂ ଦ୍ରଷ୍ଟା—Having witnessed a thing with one's own eyes.

**ପ୍ରତ୍ୟକ୍ଷ ଦର୍ଶୀ**—ସ. ବିଣ. ପୁଂ (ପ୍ରତ୍ୟକ୍ଷ+ଦୃଶ୍ ଧାତୁ+କର୍ତ୍ତୃ. ଇନ୍; ୧ମା ୧ବ.)—ସାକ୍ଷାଦ୍ଦର୍ଶୀ, ସ୍ୱୟଂ ଦ୍ରଷ୍ଟା; ଯେ ନିଜେ ଦେଖି ଥାଏ—Seeing with one's own eyes; having seen anything with one's own eyes.
Pratyaksha darsi
(ପ୍ରତ୍ୟକ୍ଷଦର୍ଶିନୀ—ସ୍ତ୍ରୀ)

ସ. ବି. ପୁଂ—ସାକ୍ଷାତ୍ ଦେଖିଥିବା ବ୍ୟକ୍ତି—Eye-witness

**ପ୍ରତ୍ୟକ୍ଷ ଦେବତା**—ଦେ ବି.—ଯେଉଁ ଦେବତାଙ୍କର ଶକ୍ତି ବା କ୍ଷମତା ଲୋକେ ସାଙ୍ଗେ ସାଙ୍ଗେ ଜାଣି ପାରନ୍ତି—A Deity whose power is immediately experienced or perceived by the people
Pratyaksha debata

ଠାକୁରାଣୀ ବଡ଼ ପ୍ରତ୍ୟକ୍ଷ ଦେବତା ।
ଫକୀରମୋହନ. ଛମାଣ ଆଠଗୁଣ୍ଠ ।

**ପ୍ରତ୍ୟକ୍ଷ ପ୍ରମାଣ**—ସଂ. ବି. (କର୍ମଧା; ପ୍ରତ୍ୟକ୍ଷ+ପ୍ରମାଣ)—୧ । ଚାକ୍ଷୁଷ ପ୍ରମାଣ—1. Ocular demonstration
Pratyaksha pramana

୨ । ସାକ୍ଷାତ୍ ପ୍ରମାଣ; ନିଜେ ଜାଣିଥିବା ବା ଅନୁଭବ କରିଥିବା ରୂପ ପ୍ରମାଣ—2. Direct evidence

୩ । ଇନ୍ଦ୍ରିୟଦ୍ୱାରା ଅନୁଭୂତ ପ୍ରମାଣ—3. Evidence of one's senses.

**ପ୍ରତ୍ୟକ୍ଷ ଫଳ**—ସଂ.ବି. (କର୍ମଧା, ପ୍ରତ୍ୟକ୍ଷ+ଫଳ)—୧ । ସାକ୍ଷାତ୍ ପରିଣାମ—Direct effect.
Pratyaksha phala

୨ । ହାତେ ହାତେ ବା ସାଙ୍ଗେ ସାଙ୍ଗେ ଘଟିବା ଫଳ—2. Immediate result.

**ପ୍ରତ୍ୟକ୍ଷ ବାଦ**—ସଂ. ବି. (କର୍ମଧା, ପ୍ରତ୍ୟକ୍ଷ+ବାଦ)—୧ । ସମ୍ମୁଖରେ କହିବା—1. Speaking to one's face.
Pratyaksha bada

୨ । ଜଡ଼ବାଦ, ପ୍ରକୃତିତତ୍ତ୍ୱ, ଦେହାତ୍ମବାଦ—2. The theory of materialism.

୩ । ପ୍ରତ୍ୟକ୍ଷ ପ୍ରମାଣ ଛଡ଼ା ଅନ୍ୟ ପ୍ରମାଣ ସ୍ୱୀକାର ନ କରିବା ରୂପକ ମତ—3. The theory of believing in nothing except what one perceives directly through one's senses.

**ପ୍ରତ୍ୟକ୍ଷବାଦୀ**—ସ. ବିଣ. ପୁଂ (ପ୍ରତ୍ୟକ୍ଷ+ବଦ୍ ଧାତୁ+କର୍ତ୍ତୃ. ଇନ, ୧ମା. ୧ବ.)—
Pratyakshabadi
(ପ୍ରତ୍ୟକ୍ଷବାଦିନୀ—ସ୍ତ୍ରୀ) ୧ । ଯେ ପ୍ରତ୍ୟକ୍ଷ ପ୍ରମାଣ ଛଡ଼ା ଅନ୍ୟ ପ୍ରମାଣ ସ୍ୱୀକାର କରେ ନାହିଁ, ଯେ ଇନ୍ଦ୍ରିୟଗ୍ରାହ୍ୟ ବିଷୟ ଛଡ଼ା ଅନ୍ୟ ପ୍ରମାଣକୁ ବା ଯୁକ୍ତିକୁ ପ୍ରମାଣରୂପେ ଗ୍ରହଣ କରେ ନାହିଁ, ଜଡ଼ବାଦୀ—1. Materialistic, admitting of no other evidence than what is perceived by the senses.

୨ । ବୌଦ୍ଧ—2. Buddhistic.

ସ. ବି—ବୌଦ୍ଧଧର୍ମାବଲମ୍ବୀ ବ୍ୟକ୍ତି—1. A Buddhist.

୨ । ଜଡ଼ବାଦୀ ବ୍ୟକ୍ତି—2 A materialist.

**ପ୍ରତ୍ୟକ୍ଷ ଭୂତ**—ସ. ବିଣ. ( ପ୍ରତ୍ୟକ୍ଷ+ଭୂତ )—ଇନ୍ଦ୍ରିୟଗୋଚରୀଭୂତ; ଇନ୍ଦ୍ରିୟ ଦ୍ୱାରା ଅନୁଭୂତ—Directly perceived by one's senses.
Pratyaksha bhuta

**ପ୍ରତ୍ୟକ୍ଷର**—ସ. କ୍ରି. ବିଣ. ( ପ୍ରତି+ଅକ୍ଷର )—୧ । ଗୋଟିଏ ଗୋଟିଏ ଅକ୍ଷରକୁ ଧରି ଧରି (ପଢ଼ିବା)—1. (reading) Letter by letter.
Pratyakshara

୨ । ଅକ୍ଷରକରୂପେ—2 Literally

**ପ୍ରତ୍ୟକ୍ଷ ସିଦ୍ଧ**—ସଂ. ବିଣ.—ପ୍ରତ୍ୟକ୍ଷ ପ୍ରମାଣ ଦ୍ୱାରା ପ୍ରମାଣୀକୃତ—
Pratyaksha siddha Proved by direct evidence; proved before one's eyes

**ପ୍ରତ୍ୟକ୍ଷୀ**—ସଂ. ବିଣ. ପୁଂ. ( ପ୍ରତ୍ୟକ୍ଷ+ଇନ୍, ୧ମା. ୧ବ. )—
Pratyakshi ଯେ କଳେ ଇନ୍ଦ୍ରିୟ ଦ୍ୱାରା ଅନୁଭବ କରିଅଛି;
ପ୍ରତ୍ୟକ୍ଷିଣୀ } ସ୍ତ୍ରୀ ସାକ୍ଷାଦ୍‌ଦର୍ଶୀ, ସ୍ୱୟଂଦ୍ରଷ୍ଟା—Having perceived a thing by the senses.

**ପ୍ରତ୍ୟକ୍ଷୀକରଣ**—ସଂ. ବିଣ. (ପ୍ରତ୍ୟକ୍ଷ+ଅଭୂତ ତଦ୍ଭାବେ ଚ୍ୱି+କରଣ)—
Pratyakshīkarana ୧ । ଏଥିପୂର୍ବେ ଅପ୍ରତ୍ୟକ୍ଷ ବିଷୟକୁ (ପ୍ରତ୍ୟକ୍ଷୀକୃତ—ବିଣ) ପ୍ରତ୍ୟକ୍ଷ କରିବା—1. Perception of a thing previously imperceptible.

୨ । ଅପ୍ରତ୍ୟକ୍ଷ ବିଷୟ ପ୍ରତ୍ୟକ୍ଷ ବା ସ୍ପଷ୍ଟ ହେବାର ଉପାୟ କରିବା—
2. Making a thing manifest or preceptible

**ପ୍ରତ୍ୟକ୍ଷୀଭୂତ**—ସଂ. ବିଣ. (ପ୍ରତ୍ୟକ୍ଷ+ଅଭୂତ ତଦ୍ଭାବେ ଚ୍ୱି+ଭୂତ)—
Pratyakshībhūta ଯାହା ପୂର୍ବେ ପ୍ରତ୍ୟକ୍ଷ ହୋଇ ନ ଥିଲା (ପ୍ରତ୍ୟକ୍ଷୀଭାବ—ବି) କିନ୍ତୁ ବର୍ତ୍ତମାନ ପ୍ରତ୍ୟକ୍ଷ ହୋଇଅଛି—
Made manifest or evident (said of a thing not perceptible before).

**ପ୍ରତ୍ୟାଗାତ୍ମା**—ସଂ. ବି. (ପ୍ରତ୍ୟକ୍+ଆତ୍ମନ୍, ୧ମା. ୧ବ)—
Pratyagātmā ପ୍ରତ୍ୟକ୍ ଚୈତନ୍ୟ (ଦେଖ)
Pratyak chaitanya (See)

**ପ୍ରତ୍ୟଗାଶା**—ସଂ. ବି. (କର୍ମଧା, ପ୍ରତ୍ୟକ୍=ପଶ୍ଚାତ୍+ଆଶା=ଦିଗ)—
Pratyagāsā ପଶ୍ଚିମଦିଗ—The west.
( ପ୍ରତ୍ୟଗ୍‌ଦିକ୍—ଅନ୍ୟରୂପ)

**ପ୍ରତ୍ୟଗ୍ର**—ସଂ. ବିଣ. (ପ୍ରତି+ଅଗ୍ର)—୧ । ନବୀନ; ନୂତନ—
Pratyagra 1. New.

୨ । ତଟକା—2 Fresh; young

୩ । ଶୋଧିତ—3. Purified; refined

୪ । ଉଜ୍ଜ୍ୱଳ; ଅମ୍ଳାନ—4. Bright; clear.

୫ । ଅଳ୍ପକାଳ ହେଲା ଘଟିଥିବା—5. Recent.

ସଂ. ବି—ରାଜା ବୃହଦ୍ରଥଙ୍କ ପୁତ୍ର—
Name of a prince of ancient India.

**ପ୍ରତ୍ୟଙ୍ଗ**—ସଂ ବି. (ପ୍ରତି+ଅଙ୍ଗ)—୧ । ପ୍ରଧାନ ଅଙ୍ଗର ଅଂଶ;
Pratyanga ଅଙ୍ଗାବୟବ; ଶରୀରର କ୍ଷୁଦ୍ର କ୍ଷୁଦ୍ର ବା ଅପ୍ରଧାନ ଅଙ୍ଗ—
1. Limb; a minor member of the body.

[ ଦ୍ର—ଅଙ୍ଗ; ଯଥା—ହସ୍ତ, ପଦ, ମୁଖ । ପ୍ରତ୍ୟଙ୍ଗ; ଯଥା—ଅଙ୍ଗୁଳି, ନାସିକା, କାନ, ଓଠ, କପାଳ । ]

୨ । ଉପକରଣ—2. Element; material.

୩ । ଅସ୍ତ୍ରଶସ୍ତ୍ର; ହତିଆର—
3. Weapon; instrument (Howells).

୪ । ଅଂଶ—4. Part; division (Howells).

[ ଦ୍ର—ଏହି 'ପ୍ରତ୍ୟଙ୍ଗ' ଶବ୍ଦ 'ଅଙ୍ଗ' ଶବ୍ଦ ପରେ ସହଚରରୂପେ ବ୍ୟବହୃତ ହୁଏ । ]

**ପ୍ରତ୍ୟଙ୍ମୁଖ**—ସଂ. ବିଣ. (ବହୁବ୍ରୀହି; ପ୍ରତ୍ୟକ୍+ମୁଖ, ସନ୍ଧିଦ୍ୱାରା କ୍+ମୁ=
Pratyanmukha ଙ୍ମୁ)—୧ । ପଶ୍ଚିମଆଡ଼କୁ ମୁହଁ କରିବା—
(ପ୍ରାଙ୍ମୁଖ—ବିପରୀତ) 1. Facing the west.

୨ । ପଛଆଡ଼କୁ ମୁହଁ କରିବା—
2 Having turned the face backwards.

**ପ୍ରତ୍ୟନୀକ**—ସଂ. ବି. (ପ୍ରତି=ବିରୁଦ୍ଧ, ବିପକ୍ଷ+ଅନୀକ=ସୈନ୍ୟ)—
Pratyanika ୧ । ପ୍ରତିପକ୍ଷ, ବିପକ୍ଷଦଳ—
1. Opposite party.

୨ । ଶତ୍ରୁ—2. Enemy; antagonist.

୩ । ଦେବାନି ମକଦ୍ଦମାରେ ପ୍ରତିବାଦୀ—
3. A defendant in a civil suit.

୪ । ଫଉଜଦାରୀ ମକଦ୍ଦମାରେ ଆସାମୀ—
4. An accused in a criminal case

୫ । ବିଘ୍ନ—5. Obstacle.

୬ । କାବ୍ୟାଲଙ୍କାରବିଶେଷ—
6. A figure of speech in rhetoric.

[ ଦ୍ର—ଏ ଅଲଙ୍କାରରେ ବର୍ଣ୍ଣିତ ବସ୍ତୁ ପ୍ରତି ଅନ୍ୟ ବସ୍ତୁ ହିତକର ବା ଅହିତକର ଥିବାର ବର୍ଣ୍ଣିତ ହୁଏ—ହ. ଶ । ]

୭ । ପ୍ରତିଶୋଧ ନେବାକୁ ଅସମର୍ଥ ବ୍ୟକ୍ତିର ହାନି କରିବା; ମଲା ଉପରେ ଖଣ୍ଡା ଚଳାଇବା—7. Injuring a person incapable of retaliating; hurting a fallen person; flogging a dead horse

ସଂ. ବିଣ—୧ । ଶତ୍ରୁଭାପନ୍ନ—1. Inimical; hostile.

୨ । ବିରୋଧକାରୀ, ବିପକ୍ଷ; ପ୍ରତିବାଦୀ—
2. Opposing; contradicting; antagonistic.

**ପ୍ରତ୍ୟନୁମାନ**—ସଂ. ବି. ( ପ୍ରତି=ବିରୁଦ୍ଧ+ଅନୁମାନ )—
Pratyanumāna କୌଣସି ଅନୁମାନର ବିରୁଦ୍ଧ ଅନୁମାନ—
A supposition against another supposition.

**ପ୍ରତ୍ୟନ୍ତ**—ସଂ. ବିଣ. ( ପ୍ରତି=ପ୍ରାୟ+ଅନ୍ତ=ଶେଷ)—୧ । ପ୍ରାନ୍ତବର୍ତ୍ତୀ—
Pratyanta 1. Bordering on; situated on the border or in the outskirts; skirting.

୨ । ସୀମାନ୍ତସ୍ଥିତ—2. Situated beyond the boundary.

୩ । ସନ୍ନିହିତ; ସଂଲଗ୍ନ—3 Contiguous; adjacent.

୪ । ନିକଟବର୍ତ୍ତୀ—4 Near; neighbouring.

ସଂ. ବି—୧ । ସୀମା; ପ୍ରାନ୍ତ—
1. Limit; boundary; extremity.

୨ । ମ୍ଲେଚ୍ଛ ଦେଶ, ଅସଭ୍ୟ ବ୍ୟକ୍ତିମାନଙ୍କ ଅଧ୍ୟୁଷିତ ଦେଶ—
2 A country inhabited by unclean, uncivilised or savage people.

**ପ୍ରତ୍ୟନ୍ତ ପର୍ବତ**—ସଂ. ବି. (କର୍ମଧା; ପ୍ରତ୍ୟନ୍ତ+ପର୍ବତ)—ବଡ଼ ପର୍ବତର
Pratyanta parbata ପାଖକୁ ଲାଗିଥିବା କ୍ଷୁଦ୍ର ପର୍ବତ—

**ପ୍ରତ୍ୟପକାର**— ସଂ. ବି. (ପ୍ରତି + ଅପକାର)—ଅପକାରର ପ୍ରତିଶୋଧାର୍ଥ
Pratyapakāra କୃତ ଅପକାର—A bad deed done in return for a bad deed.

**ପ୍ରତ୍ୟପରାଧ**— ସଂ. ବି. (ପ୍ରତି + ଅପରାଧ)— ୧ । ପ୍ରତ୍ୟଭିଯୋଗ (ଦେଖ)
Pratyaparādha 1. Pratyabhijoga (See)
୨ । ଅପରାଧୀ ବ୍ୟକ୍ତି ପ୍ରତି କରାଯିବା ଅପରାଧ—
2. An offence committed on provocation.

**ପ୍ରତ୍ୟବସାନ**— ସଂ. ବି. (ପ୍ରତି+ଅବସାନ)—ଭୋଜନ (ହି. ଶ)—
Pratyabasāna Eating; meal.

**ପ୍ରତ୍ୟବାୟ**— ସଂ. ବି. (ପ୍ରତି + ଅବ + ଇ ଧାତୁ + ଭାବ. ଅ)—
Pratyabāya ୧ । ପାପ—1. Sin.
୨ । ବାଧା—2. Obstruction; restraint.
୩ । ବିରୋଧାଚରଣ, ବିପକ୍ଷତା—3. Opposition.
୪ । ନୈରାଶ୍ୟ—4. Hopelessness.
୫ । ବିଘ୍ନ—5. Impediment.
୬ । ଆଶାର ବିଫଳତା—6. Disappointment.
୭ । ବିପରୀତ ଘଟଣା—7. Reverse.
୮ । ଶାସ୍ତ୍ରବିହିତ ନିତ୍ୟକର୍ମ ନ କରିବା ଯୋଗୁଁ ପାପ (ହି. ଶ) — 8 Sin of omission due to the non-performance of daily duties and ritual enjoined in the Śāstras.

**ପ୍ରତ୍ୟବେକ୍ଷଣ**— ସଂ. ବି. (ପ୍ରତି + ଅବେକ୍ଷଣ) — ୧ । ପର୍ଯ୍ୟବେକ୍ଷଣ—
Pratyabekshana 1. Observation.
(ପ୍ରତ୍ୟବେକ୍ଷା—ଅନ୍ୟରୂପ) ୨ । ଅନୁସନ୍ଧାନ—
2. Investigation.
୩ । ସତର୍କତା—3. Caution.
୪ । ବିଚାର—4. Consideration.

**ପ୍ରତ୍ୟଭିଜ୍ଞା**— ସଂ. ବି. ( ପ୍ରତି + ଅଭିଜ୍ଞା )— ୧ । ଚିହ୍ନିପାରିବା, ସ୍ମୃତି ସାହାଯ୍ୟରେ ଉତ୍ପନ୍ନ ଜ୍ଞାନ—
Pratyabhijnā 1 Recognition; knowing with the help of one's memory.
(ପ୍ରତ୍ୟଭିଜ୍ଞାନ—ଅନ୍ୟରୂପ)
ପ୍ରତ୍ୟଭିଜ୍ଞାତ, ପ୍ରତ୍ୟଭିଜ୍ଞାତା } ବିଣ
୨ । ଚିହ୍ନଟ—2 Identification
୩ । (ଦର୍ଶନ ଶାସ୍ତ୍ର) ଏହା ସେହି ଇତ୍ୟାକାର ଜ୍ଞାନ—
3. (philosophy) Consciousness of the identity of a thing.
୪ । ପରମାତ୍ମା (ଈଶ୍ୱର) ଓ ଜୀବାତ୍ମା ଏକ ଥିବା ବିଷୟ ଯେଉଁ ଜ୍ଞାନଦ୍ୱାରା ଜାଣିବାକୁ ହୁଏ (ହି. ଶ)—4. The knowledge of the identity of man's soul with God.

**ପ୍ରତ୍ୟଭିବାଦ**— ସଂ. ବି. ( ପ୍ରତି + ଅଭିବାଦ)—ପ୍ରତିନମସ୍କାର; ପ୍ରଣାମ କରିବା ବ୍ୟକ୍ତିଙ୍କୁ ପୂଜ୍ୟ ବ୍ୟକ୍ତିଙ୍କର ଆଶୀର୍ବାଦ ବଚନ ବା ଅଭିବାଦନ—
Pratyabhibāda
(ପ୍ରତ୍ୟଭିବାଦନ—ଅନ୍ୟରୂପ)
Salutation in return; counter-greeting; return salutation; blessing uttered by a person to whom a person salutes.

**ପ୍ରତ୍ୟଭିଯୋଗ**— ସଂ. ବି. (ପ୍ରତି + ଅଭିଯୋଗ)— ୧ । ଅଭିଯୁକ୍ତ ବ୍ୟକ୍ତି ଅଭିଯୋକ୍ତା ବିରୋଧରେ କରିବା ଅଭିଯୋଗ —
Pratyabhijoga 1. A counter-charge, a counter-accusation.
୨ । ବାଦୀ ବା ଅଭିଯୁକ୍ତ ବିରୋଧରେ କରାଯିବା ମକଦ୍ଦମା—
2. A counter-case; cross-appeal.
୩ । ପ୍ରଥମ ନିଷ୍ପତ୍ତିର ବିରୋଧରେ ଅଭିଯୋଗ; ଅପିଲ୍—
3. An appeal.

**ପ୍ରତ୍ୟୟ**— ସଂ. ବି. (ପ୍ରତି + ଇ ଧାତୁ=ଯିବା + ଭାବ. ଅ)— ୧ । ଆସ୍ଥା, ବିଶ୍ୱାସ—1. Trust; faith, belief; reliance; confidence.
Pratyaya
୨ । ଦୃଢ ବିଶ୍ୱାସ; ନିଶ୍ଚୟାତ୍ମକ ଜ୍ଞାନ; ପ୍ରତୀତି—
2. Conviction, firm faith.
୩ । ମନରେ ଜନ୍ମିବା ଭାବ—3 Idea.
୪ । ନିଶ୍ଚୟ; ନିଃସନ୍ଦେହତା—4. Certainty.
୫ । ସ୍ଥିରୀକରଣ—5. Ascertainment.
୬ । ଶପଥ — 6. Oath.
୭ । ପାରମାର୍ଥିକ ଚିନ୍ତା, ଧର୍ମସମ୍ବନ୍ଧୀୟ ଚିନ୍ତା—
7. Religious or spiritual contemplation.
୮ । ତପ୍ତ ଲୌହ, ଅଗ୍ନି ଆଦି ଦ୍ୱାରା ପରୀକ୍ଷା, ମାଣ୍ଡୁ—
8. An ordeal by fire, hot iron etc.
୯ । ରନ୍ଧ୍ର; ଛିଦ୍ର—9. Hole.
୧୦ । ଜ୍ଞାନ—10. Knowledge.
୧୧ । ରୀତି; ଆଚାର, ପଦ୍ଧତି—
11. Custom; practice; mode; usage.
୧୨ । ସ୍ୱାଦୁତ୍ୱ, ମିଷ୍ଟତ୍ୱ—12. Sweetness.
୧୩ । ପ୍ରତିପତ୍ତି; ପ୍ରଖ୍ୟାତି, ପ୍ରସିଦ୍ଧି—
13. Celebrity; credit.
୧୪ । କାରଣ; ହେତୁ—14. Cause; reason.
୧୫ । ବିବେଚନା—
15. Appreciation; consideration.
୧୬ । ସହକାରୀ ବ୍ୟକ୍ତି—16 An assistant
୧୭ । (ବ୍ୟାକରଣ) ଶବ୍ଦ ବା ଧାତୁ ପରେ ଯୋଗ କରାଯିବା ବିଭକ୍ତି ବା ଚିହ୍ନ—17. ( Grammar ) An affix or inflexion added to a root or word; suffix.

**ପ୍ରତ୍ୟୟ କରିବା**— ଦେ. କ୍ରି.—ବିଶ୍ୱାସ କରିବା—
Pratyaya kariba To trust; to believe.

প্রত্যয়কবা **পত্যারা করনা**

**ପ୍ରତ୍ୟୟକାରୀ**— ସଂ. ବିଣ. ପୁଂ. (ପ୍ରତ୍ୟୟ+କୃ ଧାତୁ + ଇନ୍; ୧ମା. ୧ବ.)
Pratyayakāri ୧ । ଯାହା ଅନ୍ୟର ମନରେ ବିଶ୍ୱାସ ଜନ୍ମାଏ—
(ପ୍ରତ୍ୟୟକାରିଣୀ— ସ୍ତ୍ରୀ) 1. That which makes one believe; inducing belief
୨ । ଯେ ଜଣକେ ବିଶ୍ୱାସ କରେ—2. Trusting.
ସଂ. ବି.— ମୋହର, ଛାପ—A seal; a signet.

**ପ୍ରତ୍ୟୟ ଜନକ**—ସଂ.ବିଣ. (୬ଷ୍ଠୀ ତତ୍; ପ୍ରତ୍ୟୟ+ଜନକ)—୧ । ଯାହା ବିଶ୍ୱାସ ଜନ୍ମାଏ—1. Trustworthy; generating belief.
Pratyaya janaka
୨ । ଯାହା ଉପରେ ବିଶ୍ୱାସ ଜନ୍ମିଥାଏ, ବିଶ୍ୱସ୍ତ—
2. Faithful; trusted.

**ପ୍ରତ୍ୟୟ ଭାଜନ**—ସଂ. ବିଣ. (୬ଷ୍ଠୀ ତତ୍, ପ୍ରତ୍ୟୟ+ଭାଜନ)—ବିଶ୍ୱାସର ପାତ୍ର; ଯାହାକୁ ବିଶ୍ୱାସ କରାଯାଏ—
Pratyaya bhājana
Trustworthy.

**ପ୍ରତ୍ୟୟାତୀତ**—ସଂ. ବିଣ. (ପ୍ରତ୍ୟୟ+ଅତୀତ)—ବିଶ୍ୱାସର ଅଯୋଗ୍ୟ—
Pratyayātīta Unbelievable, beyond belie

**ପ୍ରତ୍ୟୟିତ**—ସଂ. ବିଣ. (ପ୍ରତ୍ୟୟ+ଜାତାର୍ଥେ. ଇତ)—ବିଶ୍ୱସ୍ତ—
Pratyayita Relied upon.

**ପ୍ରତ୍ୟୟୀ**—ସଂ.ବିଣ. (ପ୍ରତ୍ୟୟ+ଇନ୍, ୧ମା.୧ବ)—୧ । ବିଶ୍ୱାସକାରୀ—
Pratyayī 1. Trusting, believing.
(ପ୍ରତ୍ୟୟିନୀ—ସ୍ତ୍ରୀ) ୨ । ଯାହାକୁ ବିଶ୍ୱାସ କରାଯାଏ; ବିଶ୍ୱସନୀୟ—
2 Trustworthy, faithful.

**ପ୍ରତ୍ୟରି**—ସଂ. ବି (ପ୍ରତି=ବିରୁଦ୍ଧଭାବରେ+ଋ ଧାତୁ=ପ୍ରାପ୍ତ ହେବା+ଇ)—୧ । ଶତ୍ରୁ—1. Enemy.
Pratyari
୨ । (ଜ୍ୟୋତିଷ) ଜନ୍ମନକ୍ଷତ୍ରଠାରୁ ୫ମ, ୧୪ ଶ ଓ ୨୩ଶ ତାରା
2. The 5th, 14th and 23rd lunar asterisms counted from the natal star of a person.

**ପ୍ରତ୍ୟର୍ଥ**—ସଂ. ବି. (ପ୍ରତି+ଅର୍ଥ)—୧ । ପ୍ରତ୍ୟୁତ୍ତର—
Pratyartha 1. Reply.
୨ । ଶତ୍ରୁତା—2. Enmity; hostility
୩ । ପ୍ରତିସୂର୍ଯ୍ୟ (ଦେଖ)—3. Pratisūrjya (See)

**ପ୍ରତ୍ୟର୍ଥୀ**—ସଂ. ବି. ପୁଂ (ପ୍ରତି+ଅର୍ଥ+ଇନ୍, ୧ମା ୧ବ)—୧ । ବିପକ୍ଷ; ଶତ୍ରୁ—1. Adversary.
Pratyarthī
୨ । ମକଦ୍ଦମାରେ ପ୍ରତିବାଦୀ—
(ପ୍ରତ୍ୟର୍ଥିନୀ—ସ୍ତ୍ରୀ) 2. A defendant in a case.
୩ । ମକଦ୍ଦମାରେ ଅପର ପକ୍ଷ—
3. The opposite party in a case.
ସଂ. ବିଣ—ପ୍ରତିକୂଳ—Opposing, hostile.

**ପ୍ରତ୍ୟର୍ପଣ**—ସଂ. ବି. ( ପ୍ରତି+ଅର୍ପଣ )—
Pratyarpaṇa ୧ । ପ୍ରତିଦାନ; ଦତ୍ତ ବସ୍ତୁକୁ ଦାତାକୁ ଫେରାଇ ଦେବା—1. Returning to the giver of a thing given.
ପ୍ରତ୍ୟର୍ପକ, ପ୍ରତ୍ୟର୍ପିତ } ବିଣ
୨ । ନେଇଥିବା ପଦାର୍ଥକୁ ଲେଉଟାଇବା—
2. Restoration of a thing taken.

**ପ୍ରତ୍ୟହ**—ଦେ. ଅ. ( ପ୍ରତି+ଅହନ୍, ସଂ. ପ୍ରତ୍ୟହଂ )—
Pratyaha ୧ । ନିତି; ପ୍ରତିଦିନ—
1. Daily; every day.
୨ । ସକାଳେ; ପ୍ରାତଃକାଳରେ—
2. In the morning; at daybreak.

**ପ୍ରତ୍ୟାକର୍ଷଣ**—ସଂ ବି. ( ପ୍ରତି+ଆକର୍ଷଣ )—
Pratyākarshaṇa ଟଣାଯିବା ବ୍ୟକ୍ତି ଦ୍ୱାରା ବା ବସ୍ତୁ ଦ୍ୱାରା ଟାଣୁଥିବା ବ୍ୟକ୍ତି ବା ବସ୍ତୁ ପ୍ରତି କରାଯିବା ଆକର୍ଷଣ; ଲେଉଟ ଓଟରା—
ପ୍ରତ୍ୟାକର୍ଷିତ, ପ୍ରତ୍ୟାକୃଷ୍ଟ } ବିଣ
Counter-attraction.

**ପ୍ରତ୍ୟାକ୍ରମଣ**—ସଂ. ବି. ( ପ୍ରତି+ଆକ୍ରମଣ )—
Pratyākramaṇa ଆକ୍ରମଣକାରୀ ପ୍ରତି କରାଯିବା ଆକ୍ରମଣ—
(ପ୍ରତ୍ୟାକ୍ରାନ୍ତ—ବିଣ) Counter-attack.

**ପ୍ରତ୍ୟାଖ୍ୟାତ**—ସଂ ବିଣ. ( ପ୍ରତି+ଆଖ୍ୟାତ )—
Pratyākhyāta ୧ । ନିରାକୃତ—1. Rejected; disallowed.
(ପ୍ରତ୍ୟାଖ୍ୟାନ—ବି)
୨ । ତିରସ୍କୃତ—2. Reproached.
୩ । ନାମଞ୍ଜୁର କରା ଯାଇଥିବା; ରଦ୍ କରା ଯାଇଥିବା—
3. Set aside, nullified.
୪ । ଅସ୍ୱୀକୃତ—4 Impugned; refused; denied; disowned.
୫ । ନିବାରିତ—5. Forbidden; prohibited
୬ । ବିଜ୍ଞାପିତ—6. Informed; notified.
୭ । ବିଖ୍ୟାତ—7. Celebrated.

**ପ୍ରତ୍ୟାଖ୍ୟାନ**—ସଂ. ବି. ( ପ୍ରତି+ଆଖ୍ୟାନ )—
Pratyākhyāna ୧ । ନିରାକରଣ—1. Rejection
(ପ୍ରତ୍ୟାଖ୍ୟାତ—ବିଣ) ୨ । ରଦ୍ କରିବା; ନାମଞ୍ଜୁର କରିବା—
2. Setting aside; nullification.
୩ । ଅସ୍ୱୀକାର—
3. Denial; refusal; disowning.
୪ । ତିରସ୍କାର—4. Reproach; reprimand.
୫ । କହୁଥିବା କଥାକୁ ନ ମାନିବା—
5. Disavowal; impugnment.
୬ । ନିଜର କଥିତ ବାକ୍ୟର ପ୍ରତ୍ୟାହାର—
6. Withdrawal of one's statement.

**ପ୍ରତ୍ୟାଗତ**—ସଂ ବିଣ. ( ପ୍ରତି+ଆଗତ )—
Pratyāgata ୧ । ଫେରି ଆସିଥିବା; ପ୍ରତିନିବୃତ୍ତ—
(ପ୍ରତ୍ୟାଗତି—ବି) 1. Returned; reverted; come back.
୨ । ପୁନରାଗତ—2. Come again.

**ପ୍ରତ୍ୟାଗମ**—ସଂ. ବି. ( ପ୍ରତି+ଆଗମ )—
Pratyāgama ୧ । ଫେରି ଆସିବା; ଲେଉଟିବା—
(ପ୍ରତ୍ୟାଗମନ—ଅନ୍ୟରୂପ) 1. Returning; coming back.
୨ । ଆଉ ଥରେ ଆସିବା—2. Coming again

**ପ୍ରତ୍ୟାଦିଷ୍ଟ**—ସଂ. ବିଣ. ( ପ୍ରତି+ଆଦିଷ୍ଟ )—
Pratyādishṭa ୧ । ପ୍ରତ୍ୟାଖ୍ୟାତ, ନିରାକୃତ—1. Set aside, refused; rejected.
(ପ୍ରତ୍ୟାଦେଶ—ବି)
୨ । ଅନ୍ୟ ଦ୍ୱାରା ସାବଧାନ ବା ହୁସିଆର କରାଇ ଦିଆ ଯାଇଥିବା—
2. Warned; cautioned.

୩ । ଦୈବବାଣୀ ରୂପେ ପ୍ରକାଶିତ (ବିଷୟ)—3. Revealed by heaven; spoken as oracle or revelation.

୪ । ଦୈବବାଣୀ ଦ୍ୱାରା ଆଦେଶ ପ୍ରାପ୍ତ ( ବ୍ୟକ୍ତି )—4. Enjoined by Heaven; inspired by God.

୫ । ପ୍ରଚାରିତ, ପ୍ରକାଶିତ—5. Published.

**ପ୍ରତ୍ୟାଦେଶ**—ସ. ବି. ( ପ୍ରତି + ଆଦେଶ )—୧ । ପ୍ରତ୍ୟାଖ୍ୟାନ—
Pratyādesa 1. Rejection; disavowal.
(ପ୍ରତ୍ୟାଦିଷ୍ଟ—ବିଣ) ୨ । ସାବଧାନତାସୂଚକ ଦୈବବାଣୀ—
2. Oracular warning.
୩ । ଦୈବବାଣୀ, ଦେବାଜ୍ଞା—
3. Divine command; revelation.
୪ । ଈଶ୍ୱର ପ୍ରେରଣାରେ ମନରେ ଜନ୍ମିବା ଭାବ—
4 Inspiration.
୫ । ବିଘ୍ନ, ବାଧା—5. Obstacle.
୬ । ପରିତ୍ୟାଗ—6. Abandonment
୭ । ନିଷେଧାଜ୍ଞା—7. Injunction.
୮ । ଆଦେଶକୁ ରଦ୍ଦ କରିବା ଆଦେଶ—
7. Countermand, nullifying order.

**ପ୍ରତ୍ୟାଧାନ**—ସ. ବି. ( ପ୍ରତି + ଆ + ଧା ଧାତୁ + କର୍ମ ଅନ)—ମସ୍ତକ—
Pratyādhāna Head.

**ପ୍ରତ୍ୟାନୟନ**—ସ ବି. ( ପ୍ରତି + ଆନୟନ )—
Pratyānayana ୧ । ପୁନର୍ବାନୟନ; ଫେରାଇ ଆଣିବା—
(ପ୍ରତ୍ୟାନୀତ—ବିଣ) 1. Bringing back.
୨ । ବନ୍ଧକ ଜିନିଷର ପୁନରୁଦ୍ଧାର—2. Redemption of a pledge or mortgage.

**ପ୍ରତ୍ୟାନୀତ**—ସ. ବିଣ. ( ପ୍ରତି + ଆନୀତ )—
Pratyānita ଫେରାଇ ଅଣା ଯାଇଥିବା; ବନ୍ଧକରୁ ମୁକୁଳା ଯାଇଥିବା—Brought back; redeemed.

**ପ୍ରତ୍ୟାବର୍ତ୍ତନ**—ସ. ବି. ( ପ୍ରତି + ଆବର୍ତ୍ତନ )—
Pratyābarttana ପ୍ରତ୍ୟାଗମ ( ଦେଖ )
(ପ୍ରତ୍ୟାବୃତ୍ତି—ଅନ୍ୟରୂପ) Pratyāgama ( See )
(ପ୍ରତ୍ୟାବର୍ତ୍ତିତ, ପ୍ରତ୍ୟାବୃତ୍ତ—ବିଣ)

**ପ୍ରତ୍ୟାବୃତ୍ତ**—ସ. ବିଣ. (ପ୍ରତି+ଆବୃତ୍ତ)— ପ୍ରତ୍ୟାଗତ ( ଦେଖ )
Pratyābrutta Pratyāgata ( See )
[ ଦ୍ର—ପ୍ରତ୍ୟାବୃତ୍ତର ଅର୍ଥ ଯେ ନିଜେ ଫେରି ଆସିଅଛି, ପ୍ରତ୍ୟାବର୍ତ୍ତିତର ଅର୍ଥ ଯାହାକୁ ଫେରାଇ ଅଣା ଯାଇଅଛି । ]

**ପ୍ରତ୍ୟାରମ୍ଭ**—ସ. ବି. ( ପ୍ରତି + ଆରମ୍ଭ )—
Pratyārambha ୧ । ବିଗିଡ଼ି ଯାଇଥିବା କାର୍ଯ୍ୟର ପୁନର୍ବାରମ୍ଭ—
(ପ୍ରତ୍ୟାରବ୍ଧ—ବିଣ) 1. Recommencement of a work which has been spoiled.
୨ । ରଦ୍ଦ କରିବା—2 Annulment.

**ପ୍ରତ୍ୟାଲୀଢ଼**—ସ. ବି. ( ପ୍ରତି + ଆ + ଲିହ୍ ଧାତୁ + ଭାବ. ତ)—
Pratyālirdha ଶରସନ୍ଧାନ ସମୟରେ ବାମପାଦକୁ ପ୍ରସାରଣ ଓ ଦକ୍ଷିଣପାଦକୁ ସଙ୍କୋଚନ କରି ବସିବା—An attitude of extending the left leg and contracting the right one while shooting with a bow.
ସ. ବିଣ—୧ । ଭକ୍ଷିତ; ଭୁକ୍ତ—1. Eaten.
୨ । ଆସ୍ୱାଦିତ—2. Tasted
୩ । ଚଟା ହୋଇଥିବା—3. Licked up.

**ପ୍ରତ୍ୟାଶା**—ସଂ. ବି— (ପ୍ରତି+ଆଶା)—୧ । ଆଶା; ପ୍ରତୀକ୍ଷା—
Pratyāsā 1. Hope; expectation.
୨ । ପ୍ରତ୍ୟୟ, ବିଶ୍ୱାସ; ଆସ୍ଥା—
2. Confidence; faith; trust.
୩ । ଆକାଂକ୍ଷା—3. Desire.
୪ । ଅର୍ଥ ଲାଭର ବା ଫଳପ୍ରାପ୍ତିର ଆଶା—
4. Hope of gain or favourable consequence.
୫ । କାର୍ଯ୍ୟସିଦ୍ଧିର ଆଶା—
5 The hope of attainment of success.

**ପ୍ରତ୍ୟାଶୀ**—ସଂ ବିଣ. ପୁଂ (ପ୍ରତ୍ୟାଶା + ଇନ୍; ୧ମା. ୧ବ)—
Pratyāsi ୧ । ପ୍ରତ୍ୟାଶାଯୁକ୍ତ; ଯେ ପ୍ରତ୍ୟାଶା କରେ—
(ପ୍ରତ୍ୟାଶିନୀ—ସ୍ତ୍ରୀ) 1 Hoping; expecting; desiring.
୨ । ଫଳପ୍ରାପ୍ତି ପାଇଁ ଆଶାନ୍ୱିତ—
2 Expectant for the result

**ପ୍ରତ୍ୟାସତ୍ତି**—ସଂ. ବି (ପ୍ରତି + ଆ + ସଦ୍ ଧାତୁ + ଭାବ. ତି)—ନୈକଟ୍ୟ—
Pratyāsatti Nearness; proximity.

**ପ୍ରତ୍ୟାସନ୍ନ**—ସଂ. ବିଣ ପୁଂ ଓ କ୍ଲୀ. (ପ୍ରତି + ଆସନ୍ନ)—୧ । ନିକଟବର୍ତ୍ତୀ—
Pratyāsanna 1. Proximate; contiguous.
(ପ୍ରତ୍ୟାସନ୍ନା—ସ୍ତ୍ରୀ) ୨ । ଦେହକୁ ଲାଗିଥିବା—
2. Adjacent; leaning to; attached to
୩ । ପରସ୍ପରକୁ ଲଗାଲଗି—
3. Close to each other; touching each other.

**ପ୍ରତ୍ୟାହତ**—ସଂ. ବିଣ (ପ୍ରତି+ଆହତ)—୧ । ପ୍ରତିହତ—
Pratyāhata 1. Repulsed; repelled.
୨ । ବ୍ୟାହତ, ବାଧାପ୍ରାପ୍ତ—2. Resisted; obstructed.
ସଂକୁଚିତ—3 Contracted; shrunk.

**ପ୍ରତ୍ୟାହାର**—ସଂ. ବି (ପ୍ରତି + ଆ + ହୃ ଧାତୁ + ଭାବ. ଅ)—
Pratyāhāra ୧ । ଫେରାଇ ନେବା—1. Taking back;
(ପ୍ରତ୍ୟାହରଣ—ଅନ୍ୟରୂପ) withdrawing.
(ପ୍ରତ୍ୟାହୃତ, ପ୍ରତ୍ୟାହାର୍ଯ୍ୟ—ବିଣ) ୨ । ଯୋଗାଙ୍ଗବିଶେଷ, ସ୍ୱସ୍ୱ ବିଷୟରୁ ଇନ୍ଦ୍ରିୟମାନଙ୍କୁ ନିବୃତ୍ତ କରାଇ ଈଶ୍ୱରଙ୍କଠାରେ ମନୋନିବେଶ କରିବା; ଇନ୍ଦ୍ରିୟଦମନ—2. Abstraction; withdrawing one's self from sensual perception and concentrating one's mind on the abstract or the Supreme Being.
୩ । ସଂକୋଚନ—3. Contracting.
୪ । ସାରସଙ୍କଳନ—4. Abridgement; compendium
୫ । କହିଥିବା କଥାକୁ ଲେଉଟାଇନେବା—
5. Withdrawal of a statement already made.

ପ୍ରତ୍ୟୁକ୍ତ(କ୍ତି)—ସଂ. ବ [ ପ୍ରତି + ଉକ୍ତ (କ୍ତି) ]—୧ । ପ୍ରତ୍ୟୁତ୍ତର—
Pratyukta (kti) 1. Reply; response.
୨ । କୌଣସି ଉକ୍ତିର ଉତ୍ତରରେ ପ୍ରଦତ୍ତ ଉତ୍ତର—
2 Rejoinder given to a verbal statement.

ପ୍ରତ୍ୟୁତ—ସଂ ଅ—ବରଂ, ପରନ୍ତୁ—
Pratyuta On the other hand; otherwise.

ପ୍ରତ୍ୟୁତ୍ତର—ସଂ ବ (ପ୍ରତି + ଉତ୍ତର)—ଉତ୍ତରର ଉତ୍ତର—
Pratyuttara Rejoinder; reply to an answer.

ପ୍ରତ୍ୟୁତ୍ଥାନ—ସଂ ବ (ପ୍ରତି + ଉତ୍ଥାନ)—ମାନ୍ୟବ୍ୟକ୍ତିଙ୍କ ଅଭିବାଦନ
Pratyutthāna କରିବାକୁ ଠିଆ ହେବା—Standing up
(ପ୍ରତ୍ୟୁତ୍ଥିତ—ବଣ) to show respect to a superior,

ପ୍ରତ୍ୟୁତ୍ପନ୍ନ—ସଂ. ବଣ (ପ୍ରତି + ଉତ୍ପନ୍ନ)—୧ । ପୁନରୁତ୍ପନ୍ନ—
Pratyutpanna 1. Reborn; reproduced·
(ପ୍ରତ୍ୟୁତ୍ପତ୍ତି, ପ୍ରତ୍ୟୁତ୍ପାଦନ—ବ) ୨ । (ଗଣିତ) ଗୁଣିତ—
2 (mathematics) Multiplied
୩ । ଉପସ୍ଥିତ—3 Arrived; present.
୪ । ସତ୍ୱର—4. Prompt, hurried.
ସ. ବ—୧ । (ଗଣିତ) ଗୁଣନ—1. (mathematics) Multiplication
୨ । କେତେକ ରାଶିର ଗୁଣଫଳ—2. The product of a multiplication.

ପ୍ରତ୍ୟୁତ୍ପନ୍ନ ମତି—ସଂ ବ. (କର୍ମଧା, ପ୍ରତ୍ୟୁତ୍ପନ୍ନ + ମତି)—ଉପସ୍ଥିତ ବୁଦ୍ଧି,
Pratyutpanna mati କାର୍ଯ୍ୟକାଳରେ ଝଟିତି ଉପସ୍ଥିତ ହେବା ବୁଦ୍ଧି—Presence of mind; quickness of perception.
ସଂ. ବଣ (ବହୁବ୍ରୀହି—ଉପସ୍ଥିତ ବୁଦ୍ଧିଯୁକ୍ତ; ହଠାତ୍ ଘଟିବା ଅବସ୍ଥାର ପ୍ରତିକାର ପାଇଁ ଯାହାଙ୍କୁ ବୁଦ୍ଧି ସ୍ଫୁରେ—Having presence of mind; resourceful.

ପ୍ରତ୍ୟୁଦ୍ଗତ—ସ. ବଣ (ପ୍ରତି + ଉଦ୍ଗତ)—୧ । ଯାହାକୁ ଊର୍ଦ୍ଧ୍ୱକୁ ଗତି
Pratyudgata କରାଇ ଦିଆ ଯାଇଅଛି—1. Caused to go up; raised up.
୨ । ଅଭ୍ୟର୍ଥନା ସହିତ ବିଦାୟପ୍ରାପ୍ତ—
2. Sent off with acclamations ( said of a guest).
୩ । ଉତ୍ଥିତ—3. Risen up; ascended.

ପ୍ରତ୍ୟୁଦ୍ଗମ—ସଂ. ବ ( ପ୍ରତି + ଉଦ୍ଗମ)—ଆଗମନକାରୀଙ୍କ ଅଭ୍ୟର୍ଥନା କରି
Pratyudgama ଆଣିବା ନିମନ୍ତେ ବାହାରିବା, ଆଗନ୍ତୁକକୁ
(ପ୍ରତ୍ୟୁଦ୍ଗମନ—ଅନ୍ୟରୂପ) ପାଛୋଟି ଆଣିବାପାଇଁ ଯିବା—
Setting out to welcome a coming guest,

ପ୍ରତ୍ୟୁପକାର—ସଂ. ବ (ପ୍ରତି + ଉପକାର)—ଉପକାରୀର ଉପକାର
Pratyupakāra ସାଧନ—A return for kindness; a favour in requital.
[ପ୍ରତ୍ୟୁପକୃତ (ପୁଂ , ପ୍ରତ୍ୟୁପକୃତା (ସ୍ତ୍ରୀ), ପ୍ରତ୍ୟୁପକାରୀ (ପୁଂ), ପ୍ରତ୍ୟୁପକାରିଣୀ (ସ୍ତ୍ରୀ), ପ୍ରତ୍ୟୁପକର୍ତ୍ତା (ପୁଂ), ପ୍ରତ୍ୟୁପକର୍ତ୍ତ୍ରୀ (ସ୍ତ୍ରୀ)—ବଣ. ]

ପ୍ରତ୍ୟୁପଦେଶ—ସଂ. ବ (ପ୍ରତି + ଉପଦେଶ)—୧ । ଉପଦେଶକାରୀ କୃତ
Pratyupadeśa ଉପଦେଶ—1 Admonition; advice given in return for an advice.
ପ୍ରତ୍ୟୁପଦଷ୍ଟା; ପ୍ରତ୍ୟୁପଦେଶକ (ପୁଂ) ପ୍ରତ୍ୟୁପଦେଶିକା (ସ୍ତ୍ରୀ) ପ୍ରତ୍ୟୁପଦେଷ୍ଟା (ପୁଂ)ଷ୍ଟ୍ରୀ—(ସ୍ତ୍ରୀ) } ବଣ ]
୨ । ନିର୍ଦ୍ଦିଷ୍ଟ ବିଧାନାନୁଯାୟୀ ଉପଦେଶ ଦାନ—
2. Giving advice according to rules laid down

ପ୍ରତ୍ୟୁ(ତ୍ୟୂ)ଷ(ସ)—ସଂ. ବ. (ପ୍ରତି + ଉଷ ଧାତୁ = ଭସ୍ମ କରିବା + ଅସ୍ )—୧ । ପ୍ରଭାତ; ପ୍ରାତଃକାଳ—
Pratyu(tyū)sha(sa) 1. Dawn; daybreak.
୨ । ବଡ଼ି ଭୋର—2. Early morning.

ପ୍ରତ୍ୟୂହ—ସଂ. ବ. ( ପ୍ରତି + ଊହ ଧାତୁ = ତର୍କ କରିବା + ଭାବ. ଅ)—
Pratyūha ୧ । ବିରୁଦ୍ଧ ତର୍କ—1. Opposing argument; counter-argument.
୨ । ଅନ୍ତରାୟ; ବାଧା, ବିଘ୍ନ—
2. Obstacle; impediment.

ପ୍ରତ୍ୟେକ—ସ. ସର୍ବନାମ ଓ କ୍ରି ବଣ—୧ । ଏକ ଏକକରି ସମସ୍ତ; ଜଣ
Pratyeka ଜଣ କରି, ଜଣକଣକେ—1. Each; one and all; one by one.
୨ । ଜଣେ ଜଣେ—2. Every one.

ପ୍ରତ୍ୟେକେ—ଦେ. ସର୍ବନାମ; କ୍ରି. ବଣ (ସ. ପ୍ରତ୍ୟେକ)-ପ୍ରତ୍ୟେକ (ଦେଖ)
Pratyeka Pratyeka (See).
প্রত্যেকে प्रत्येक

ପ୍ରତ୍ୟେତା—ସ. ବଣ. ପୁଂ (ପ୍ରତି + ଇ ଧାତୁ + କର୍ତ୍ତୃ. ତୃ; ପ୍ରତ୍ୟେତୃ, ୧ମା.
Pratyetā ୧ବ)—ପ୍ରତ୍ୟୟକାରୀ; ବିଶ୍ୱାସକାରୀ—
(ପ୍ରତ୍ୟେତ୍ରୀ—ସ୍ତ୍ରୀ) Trusting; believing.

ପ୍ରଥ୍ (ଧାତୁ)—ସ—୧ । ବିଖ୍ୟାତ ହେବା—
Prath (root) 1. To be famous.
୨ । ଜ୍ଞାତ ହେବା—2. To be known.
୩ । ନିକ୍ଷେପ କରିବା—3. To throw.
୪ । ବୁଣିଦେବା—4 To scatter; to sow.
୫ । ବିସ୍ତାର କରିବା—5. To spread.
୬ । ପ୍ରସିଦ୍ଧ କରିବା—6. To celebrate.
୭ । ପ୍ରଶଂସା କରିବା—7. To praise.

ପ୍ରଥମ—ସ. ବଣ. ପୁଂ (ପ୍ରଥ୍ ଧାତୁ + ଅମ)—୧ । ଆଦ୍ୟ; ଆଦ୍ୟ—
Prathama 1. First; primary.
(ପ୍ରଥମା—ସ୍ତ୍ରୀ) ୨ । ଆଦିମ, ମୌଳିକ—2. Original.
୩ । ସମସ୍ତଙ୍କ ଅପେକ୍ଷା ପୂର୍ବରେ ହୋଇଥିବା—
3. Earliest; primitive.
୪ । ଜ୍ୟେଷ୍ଠ—4. Eldest.
୫ । ମୁଖ୍ୟ; ପ୍ରଧାନ, ଶ୍ରେଷ୍ଠ—
5. Chief; principal.

୬ । ପୂର୍ବବର୍ତ୍ତୀ—6. Prior; previous; former.
୭ । ଅଗ୍ରଜ—7. Elder.
୮ । ଯୋଗ୍ୟତା ବିଷୟରେ ଶ୍ରେଷ୍ଠ—
8 First in proficiency.
ଦେ. ଅ—ପ୍ରଥମତଃ (ଦେଖ)
ପ୍ରଥମ ପହିଲି Prathamatah (See).
ଦେ. ବି—ସଂସ୍କୃତ ବିଦ୍ୟାଳୟରେ କାବ୍ୟ, ବ୍ୟାକରଣ ଆଦି ବିଷୟରେ ଛାତ୍ରମାନଙ୍କର ନିର୍ଦ୍ଦିଷ୍ଟ ପ୍ରଥମ ପରୀକ୍ଷା—
The first examination in Kābya, Byākaraṇa and other fixed subjects in Sanscrit schools.
(ଯଥା—ମିଶ୍ରେ ଏ ବର୍ଷ କାବ୍ୟ ପ୍ରଥମ ଦେବେ)

**ପ୍ରଥମଜ**—ସ ବିଣ. ପୁଂ (ପ୍ରଥମ+ଜନ ଧାତୁ+କର୍ତ୍ତୃ. ଅ)—
Prathamaja ପୋଢ଼ୁଆଁ; ପ୍ରଥମୋତ୍ପନ୍ନ; ଜ୍ୟେଷ୍ଠ (ସନ୍ତାନ)—
(ପ୍ରଥମଜା—ସ୍ତ୍ରୀ) First born; eldest (offspring).

**ପ୍ରଥମଜଂଘା**—ଦେ. ବି—ଦେବାଳୟର ଅଂଶବିଶେଷ ('ଦେଉଳ' ତଳେ
Prathamajamghā ନୋଟ୍ ଦେଖ)—Part of a temple (See notes under 'Deuḷa')

**ପ୍ରଥମତ**—ଗ୍ରା. ବିଣ (ସ. ପ୍ରଥମତଃ)—ପ୍ରଥମତଃ (ଦେଖ)
Prathamata Prathamatah (See).
ପ୍ରଥମତଃ ପହିଲେ
ଭଗୁ ବୋଇଲେ ହେ ମନସ ପ୍ରଥମତ
ବିବିଧ ପୂଜା କଲେ ମନରୁ ସଜାତ ।
କୃଷ୍ଣଦାସ. ମହାଭାରତ. ଶାନ୍ତି ।

**ପ୍ରଥମତଃ**—ସ. କ୍ରି. ବିଣ (ପ୍ରଥମ+ତସ୍)—୧ । ପ୍ରଥମରେ—
Prathamatah 1 At first; firstly.
୨ । ପହିଲୁଁ; ଆରମ୍ଭରୁ—
2 From the beginning
୩ । ପୂର୍ବେ—3. Formerly; previously.

**ପ୍ରଥମ ପୁରୁଷ**—ସଂ. ବି (ସଂସ୍କୃତ ବ୍ୟାକରଣ)—ତୃତୀୟ ବ୍ୟକ୍ତି ସମ୍ବନ୍ଧେ
Prathama purusha ବ୍ୟବହୃତ ପୁରୁଷ (ଯାହାର ଚିହ୍ନ 'ସେ', 'ସେମାନେ' ଇତ୍ୟାଦି)—
(Sanscrit grammar) The third person.
ଦେ. ବି (ଓଡ଼ିଆ ବ୍ୟାକରଣ)—କହିବା ବ୍ୟକ୍ତି ନିଜକୁ ଲକ୍ଷ୍ୟକରିବା ପୁରୁଷ (ଏହାର ଚିହ୍ନ 'ମୁଁ', 'ଆମ୍ଭେ' ଇତ୍ୟାଦି)—
(Oria grammar) The 1st person.
[ଦ୍ର—ସଂସ୍କୃତରେ 'ସେ' ପ୍ରଥମ ପୁରୁଷ, 'ତୁମ୍ଭେ' ମଧ୍ୟମ ପୁରୁଷ ଓ 'ମୁଁ' ଉତ୍ତମ ପୁରୁଷ; ମାତ୍ର ଓଡ଼ିଆରେ ଓ ଇଂରାଜୀରେ 'ସେ' ୩ୟ ପୁରୁଷ, 'ତୁମ୍ଭେ' ୨ୟ ପୁରୁଷ ଓ 'ମୁଁ' ୧ମ ପୁରୁଷ । ]

**ପ୍ରଥମ ବୟଃ**—ସ. ବି. (କର୍ମଧା)—ବାଲ୍ୟକାଳ—
Prathama bayah Childhood.

**ପ୍ରଥମ ବୟସ**—ଦେ ବି—ବାଲ୍ୟକାଳ—
Prathama bayasa Childhood.
ଉଦରଅନ୍ତରେ କଲି ବାସ;
ଭ୍ରମିଲି ପ୍ରଥମ ବୟସ । ଜଗନ୍ନାଥ. ଭାଗବତ ।

**ପ୍ରଥମ ବରଣ**—ସ. ବି—ବିବାହବେଦୀରେ ହାତଗଣ୍ଠି ବା କନ୍ୟାଦାନ-
Prathama baraṇa ବିଧି ପୂର୍ବରୁ ବରଙ୍କୁ କନ୍ୟାଦାତାଙ୍କର ବିଧି ଅନୁସାରେ କରିବା ବରଣକର୍ମବିଶେଷ—
The rites of formal invitation performed in respect of bridegroom by the bride's father before the marriage tie is bound.

**ପ୍ରଥମବରଣ୍ଡୀ**—ଦେ. ବି—ଦେଉଳର ଅଂଶବିଶେଷ ('ଦେଉଳ' ତଳେ
Prathamabaraṇḍī ନୋଟ୍ ଦେଖ)—
Part of a temple (See notes under Deuḷa).

**ପ୍ରଥମ ବିବାହ**—ସ. ବି—ଏକାଧିକ ବିବାହ କରିଥିବା ବ୍ୟକ୍ତିର ପହିଲିଥର
Prathama bibāha ହୋଇଥିବା ବିବାହ—The first marriage of a person married more than once

**ପ୍ରଥମ ଭାର୍ଯ୍ୟା**—ଦେ. ବି. ସ୍ତ୍ରୀ—(ସ. ପ୍ରଥମା+ଭାର୍ଯ୍ୟା)—ବହୁବିବାହିତ
Prathama bhārjyā ପୁରୁଷର ପ୍ରଥମ ବିବାହର ସ୍ତ୍ରୀ—
ପ୍ରଥମ ସ୍ତ୍ରୀ, ପ୍ରଥମ ଭାରିଯା } ଅନ୍ୟରୂପ — The first wife of a person married more than once.
(ଏହିପରି ସ୍ତ୍ରୀ ପକ୍ଷରେ ପ୍ରଥମ ସ୍ୱାମୀ ଶବ୍ଦର ମଧ୍ୟ ବ୍ୟବହାର ହୁଏ)

**ପ୍ରଥମାଙ୍ଗୁଳି**—ସ. ବି. (କର୍ମଧା, ପ୍ରଥମ+ଅଙ୍ଗୁଳି)—ବୃଦ୍ଧାଙ୍ଗୁଷ୍ଠ, ବୁଢ଼ା
Prathamānguli ଅଙ୍ଗୁଠି—The thumb.

**ପ୍ରଥମାପଦା**—ଦେ. ବି—ବାଲେଶ୍ୱରର ସ୍ଥାନବିଶେଷ; ପୋଢ଼ୁଆଁପଦା—
Prathamāpadā Name of a place in Balasore.
ନାନାବର୍ଗ ହେଲେ ଲେଖେ ଲେକାଙ୍ଗଣ ପ୍ରଥମାପଦା—ରଘୁନାଥ. ଉଷା ।
[ଦ୍ର—ଏହାର ପ୍ରଚଳିତ ନାମ ପଢ଼ୁଆପଦା ।]

**ପ୍ରଥମା ବିଭକ୍ତି**—ସ. ବି. (ବ୍ୟାକରଣ)—କର୍ତ୍ତୃକାରକର ବିଭକ୍ତି—
Prathamā bibhakti (Grammar) The 1st case or nominative case.

**ପ୍ରଥମାଶ୍ରମ**—ସଂ. ବି. (କର୍ମଧା; ପ୍ରଥମ+ଆଶ୍ରମ)—ଦ୍ୱିଜାତିମାନଙ୍କର
Prathamāśrama ଜୀବନର ଚତୁର୍ବିଧ ଆଶ୍ରମ ମଧ୍ୟରୁ ପ୍ରଥମ ବା ବ୍ରହ୍ମଚର୍ଯ୍ୟ ଆଶ୍ରମବିଶେଷ—The first of the 4 stages prescribed in the life of a twice born; the life of a celebate or continent student.

**ପ୍ରଥମାଷ୍ଟମୀ**—ସଂ ବି. (କର୍ମଧା; ପ୍ରଥମ+ଅଷ୍ଟମୀ)—ମାର୍ଗଶିର ମାସର
Prathamāshtamī କୃଷ୍ଣ ଅଷ୍ଟମୀ; ପଢ଼ୁଆଁ ଅଷ୍ଟମୀ—
The 8th day of the dark fortnight of the month of Mārgaśira.
[ଦ୍ର—ଏ ଦିନ ବଂଶର ପ୍ରଥମଜାତ ସନ୍ତାନ ବା ଜ୍ୟେଷ୍ଠପୁତ୍ରମାନଙ୍କର ନବବସ୍ତ୍ର ପରିଧାନ, ବନ୍ଦାପନା ଓ ମିଷ୍ଟାନ୍ନ ଭକ୍ଷଣାଦି ହୁଏ । ଏହା ଭୁବନେଶ୍ୱର ଲିଙ୍ଗରାଜ ମହାପ୍ରଭୁଙ୍କର ଗୋଟିଏ ଯାତ୍ରାଦିବସ ।]

**ପ୍ରଥମେ**—ସଂ. ଅ—୧ । ପ୍ରଥମତଃ, ପହିଲେ—
Prathame 1 At first; firstly.
୨ । ଆଗେ, ପୂର୍ବେ—2. Previously; formerly.

**ପ୍ରଥମୋତ୍ପନ୍ନ**—ସଂ ବିଣ. ପୁଂ. (ପ୍ରଥମ+ଉତ୍ପନ୍ନ)—ଜ୍ୟେଷ୍ଠ, ପଢ଼ୁଆଁ—
Prathamotpanna First born.
(ପ୍ରଥମୋତ୍ପନ୍ନା—ସ୍ତ୍ରୀ)

**ପ୍ରଥସୁର**—ବେ. ବଣ—( ସଂ ପୃଥୁ ଶବ୍ଦରୁ ଅତ୍ୟର୍ଥେ ନିଷ୍ପନ୍ନ ପ୍ରଥିଷ୍ଠ )—
Prathasura ଅତି ମହତ୍—Very great.

ଯୋଗ ସିଦ୍ଧ ହୋଇ ଜପ ସଂଯମକୁ ପାଇ,
ପବନ ସ୍ତମ୍ଭିତ ରହି ପୃଥସୁର ହୋଇ । ପ୍ରାଚୀ. ଶିବସ୍ୱରୋଦୟ ।

**ପ୍ରଥା**—ସଂ. ବି—( ପ୍ରଥ୍ ଧାତୁ+କର୍ତ୍ତୃ. ଅ+ସ୍ତ୍ରୀ. ଆ )—୧ । ପଦ୍ଧତି; Prathā ରୀତି; ଧାରା—1. Custom; usage.
୨ । ଢଙ୍ଗ—2. Mode; manner.
୩ । (+ଭାବ. ଅ) ବିସ୍ତାର, ବିସ୍ତୃତି—
3, Extension; spreading out.
୪ । ଖ୍ୟାତି; ପ୍ରସିଦ୍ଧି—4. Celebrity, fame.

**ପ୍ରଥିତ**—ସଂ. ବିଣ. (ପ୍ରଥ୍ ଧାତୁ+କର୍ମ. ତ)—୧ । ପ୍ରସିଦ୍ଧ; ଖ୍ୟାତ—
Prathita 1. Famous; celebrated.
(ପ୍ରଥିତି—ବି) ୨ । ବିସ୍ତୃତ—
2. Spread; extended; stretched.
୩ । ପ୍ରକଟିତ; ପ୍ରକାଶିତ—3. Published; manifest.
୪ । କ୍ଷିପ୍ତ—4. Thrown; cast.
୫ । ଅତି ଦରକାରୀ—5 Important.
୬ । ପ୍ରଶଂସିତ—6. Praised; eulogised.
ସଂ. ବି—୧ । ବିଷ୍ଣୁ—1. Bishṇu
୨ । ସ୍ୱରୋଚିଷ ମନୁଙ୍କର ପୁତ୍ରବିଶେଷ—
2, Name of a son of Swarochisha Manu.

**ପ୍ରଥିତ ନାମା**—ସଂ ବିଣ ପୁଂ.(ବହୁବ୍ରୀହି, ପ୍ରଥିତ+ନାମନ୍ ୧ମା.୧ବ.)
Prathita nāmā —ପ୍ରଖ୍ୟାତନାମା; ଯଶସ୍ୱୀ; ସୁପ୍ରସିଦ୍ଧ—
ପ୍ରଥିତଯଶାଃ } ଅନ୍ୟରୂପ Celebrated; famous;
ପ୍ରଥିତକୀର୍ତ୍ତି } wellknown.

**ପ୍ରଥିମା**—ସଂ. ବି (ପୃଥୁ=ବୃହତ୍,ସ୍ଥୂଳ+ଭାବାର୍ଥରେ ଇମନ୍ ୧ମା. ୧ବ.)—
Prathimā ୧ । ପୃଥୁତ୍ୱ, ସ୍ଥୂଳତ୍ୱ—
1 Greatness; magnitude.
୨ । ବିସ୍ତାର—2. Extent.
୩ । ଘନତା; ବେଧ—3. Thickness.
୪ । ଓସାରିଆ; ଓସାର—4. Breadth

**ପ୍ରଥିଷ୍ଠ**—ସଂ. ବିଣ. ପୁଂ( ପୃଥୁ+ଅତିଶୟାର୍ଥରେ ଇଷ୍ଠ)—୧ । ଖୁବ୍ ମୋଟା
Prathishṭha ଅତିଶୟ ସ୍ଥୂଳ—1. Very fat; very
(ପ୍ରଥିଷ୍ଠା—ସ୍ତ୍ରୀ) thick.
୨ । ଅତି ବଡ଼—2 Very large, very great.
୩ । ଖୁବ୍ ଓସାରିଆ—3. Very broad

**ପ୍ରଥୀୟାନ୍**—ସଂ. ବିଣ. ପୁଂ (ପୃଥୁ+ଅତିଶୟାର୍ଥରେ ଈୟସ୍; ପ୍ରଥୀୟସ୍
Prathīyān ୧ମା. ୧ବ.)—(ପ୍ରଥିଷ୍ଠ ଦେଖ)—
(ପ୍ରଥୀୟସୀ—ସ୍ତ୍ରୀ) Prathishṭha (See).

**ପ୍ରଥୁଶ୍ରବା**—ଗ୍ରା. ବି.—(ସଂ. ପୃଥୁଶ୍ରବସ୍ ଶବ୍ଦର ୧ମା. ୧ବ. ପୃଥୁଶ୍ରବାଃ)—
Prathusrabā ଜଣେକ ଋଷି—Name of a sage.

ପ୍ରଥୁଶ୍ରବା ଯେ ଲୁତଦେଖା ଇନ୍ଦ୍ରଦ୍ୟୁମ୍ନ ।
କୃଷ୍ଣସିଂ. ମହାଭାରତ. ବନ ।

**ପ୍ରଦ**—ସଂ. ବିଣ. ପୁଂ (ପ୍ର+ଦା ଧାତୁ+କର୍ତ୍ତୃ. ଅ, ସମାସରେ ଅନ୍ୟ ଶବ୍ଦ
Pradha ସଙ୍ଗେ ଯୁକ୍ତ ହୁଏ ଯଥା—ଶାନ୍ତିପ୍ରଦ, ଫଳପ୍ରଦ)—
(ପ୍ରଦା—ସ୍ତ୍ରୀ) ଯାହା ଦାନ କରେ, ପ୍ରଦାୟକ, ଦାତା—
That which gives; giving.

**ପ୍ରଦକ୍ଷିଣ**—ସଂ. ବି—ପ୍ରଦକ୍ଷିଣା (ଦେଖ)
Pradakshina Pradakshinā (See)
(ପ୍ରଦକ୍ଷିଣା—ସ୍ତ୍ରୀ) ସଂ. ବିଣ. (ପ୍ର+ଦକ୍ଷିଣ=ଅନୁକୂଳ)—
୧ । ଅନୁକୂଳ—1. Favourable; friendly; well-disposed.
୨ । ଶୁଭସୂଚକ—2. Auspicious.

**ପ୍ରଦକ୍ଷିଣା**—ସଂ. ବି. (ପ୍ର+ଦକ୍ଷିଣ+ଆ)—୧ । ଆପଣାର ଡାହାଣଆଡ଼କୁ
Pradakshinā ବୁଲି ଗତି କରିବା—1 Moving to the right.
୨ । ପରିକ୍ରମା; ପରିକ୍ରମଣ; ଦେବତା ବା ପୂଜ୍ୟ ବ୍ୟକ୍ତିଙ୍କର ଡାହାଣ ପାଖରୁ ଆରମ୍ଭ କରି ଓ ତାଙ୍କ ଆଡ଼କୁ ଆପଣାର ଡାହାଣ ପାଖ ରଖି ତାଙ୍କ ଚାରିଆଡ଼େ ବୁଲି ଆସିବା—
2. Circumambulation from left to right; walking round a sacred person or Deity keeping one's right side towards him.
୩ । ଉପାସନା; ବନ୍ଦନା—3. Worshipping.
୪ । ନମସ୍କାର—4. Salutation; obeisance.

**ପ୍ରଦତ୍ତ**—ସଂ. ବିଣ. (ପ୍ର+ଦତ୍ତ)—୧ । ସମର୍ପିତ, ଦତ୍ତ—
Pradatta 1. Given; bestowed; presented.
(ପ୍ରଦାନ—ବି) (ପ୍ରଦତ୍ତା—ସ୍ତ୍ରୀ) ୨ । ନ୍ୟସ୍ତ; ଅର୍ପିତ—
2. Conferred; entrusted.

**ପ୍ରଦର**—ସଂ. ବି. (ପ୍ର+ଦୃ ଧାତୁ+ଭାବ. ଅ)—୧ । ଫାଡ଼ିବା; ବିଦାରଣ—
Pradara 1. Tearing; rending.
୨ । ଭଙ୍ଗ—2. Breaking; fracture.
୩ । (+କରଣ. ଅ) ବାଣ—3. An arrow; shaft.
୪ । (+କର୍ମ. ଅ) ଫାଟ—4. Fissure; cleft.
୫ । (+କର୍ତ୍ତୃ. ଅ) ଅସୃଗ୍ଦର; ସ୍ତ୍ରୀଲୋକଙ୍କର ଜନନେନ୍ଦ୍ରିୟ ବାଟେ ଅତ୍ୟଧିକ ପରିମାଣରେ ନିର୍ଗତ ହେବା ଶ୍ୱେତ ରସ ବା ରକ୍ତସ୍ରାବ ରୂପ ରୋଗବିଶେଷ—5. A female disease; menorrhagia; leucorrhoea.

[ଦ୍ର—ଏହା ଶ୍ୱେତ ଓ ରକ୍ତ ସ୍ରାବ ଭେଦରେ ୨ ପ୍ରକାର ଯଥା—ଶ୍ୱେତପ୍ରଦର (Leucorrhoea) ଓ ରକ୍ତପ୍ରଦର (metrorrhagia).

**ପ୍ରଦର୍ଶକ**—ସଂ. ବିଣ. ପୁଂ (ପ୍ର+ଦର୍ଶକ)—୧ । ଯେ କୌଣସି ବିଷୟ
Pradarśaka ଦେଖାଏ—1. Exhibiting; producing
(ପ୍ରଦର୍ଶିକା—ସ୍ତ୍ରୀ) before the eyes.
୨ ବ୍ୟାଖ୍ୟାକାରୀ—2 Propounding.
୩ । ଯେ ଶିକ୍ଷା ଦିଏ—3. Teaching.
୪ । (ପଥ) କଢ଼ାଇବା (ବ୍ୟକ୍ତି)—
4. Leading (the way.)

୫ । ଯେ କୌଣସି ବିଷୟ ଦେଖାଇଦିଏ—
5. Pointing out, showing.
୬ । ଯେ ଦେଖେ—6. Seeing.
ସଂ ବି.—୧ । ଶିକ୍ଷକ; ଗୁରୁ—1. Teacher.
୨ । ବ୍ୟାଖ୍ୟାକାରୀ ବ୍ୟକ୍ତି—2 Expounder; propounder.
୩ । ଭବିଷ୍ୟଦ୍ ବକ୍ତା—3 Seer; prophet.
୪ । ଦର୍ଶକ—4. Spectator.

**ପ୍ରଦର୍ଶନ**—ସଂ. ବି. (ପ୍ର+ଦୃଶ୍ ଧାତୁ ଣିଚ ଦର୍ଶି ଧାତୁ+ଭାବ. ଅନ)—
Pradarsana ୧ । ଦେଖାଇବା—
1. Showing, exhibiting
୨ । ବର୍ଣ୍ଣନା, ଉଲ୍ଲେଖ—2 Describing; narrating; mentioning.
୩ । ସୂଚନା—3. Indication.
୪ । ବ୍ୟାଖ୍ୟା କରିବା—
4. Expounding; propounding; explaining.
୫ । ଭବିଷ୍ୟତ୍ ବିଷୟର କଥନ—5. Prophesying.

**ପ୍ରଦର୍ଶନୀ**—ସଂ. ବି. ସ୍ତ୍ରୀ ( ପ୍ରଦର୍ଶନ+ସ୍ତ୍ରୀ. ଈ )—
Pradarsani ମେଳା, ଯେଉଁଠାରେ ନାନା ସ୍ଥାନରୁ ସଂଗୃହୀତ ଦ୍ରବ୍ୟ ସମୂହ ସାଧାରଣଙ୍କୁ ପ୍ରଦର୍ଶିତ ହୁଏ—A show; an exhibition; a fair.
[ ଦ୍ର—ଯେଉଁ ଯେଉଁ ବିଷୟକ ଦ୍ରବ୍ୟମାନ ପ୍ରଦର୍ଶନୀରେ ପ୍ରଦର୍ଶିତ ହୁଏ ସେହି ସେହି ବିଷୟ ବା ଦ୍ରବ୍ୟର ନାମରେ ପ୍ରଦର୍ଶନୀର ନାମକରଣ ହୁଏ, ଯଥା—ଶିଳ୍ପ ପ୍ରଦର୍ଶନୀ, ଶିଳ୍ପ ପ୍ରଦର୍ଶନୀ, କୃଷି ପ୍ରଦର୍ଶନୀ, ପଶୁ ପ୍ରଦର୍ଶନୀ । ]

**ପ୍ରଦର୍ଶନୀୟ**—ସଂ. ବିଣ. ( ପ୍ର+ଦର୍ଶନୀୟ )—
Pradarsaniya ପ୍ରଦର୍ଶିତ ହେବା ଯୋଗ୍ୟ; ଯାହା ସମସ୍ତଙ୍କୁ ଦେଖାହେବା ଯୋଗ୍ୟ—Fit to be exhibited.

**ପ୍ରଦର୍ଶିତ**—ସଂ. ବିଣ. ( ପ୍ର+ଦର୍ଶିତ )—
Pradarsita ୧ । ଦେଖାଇ ଦିଆ ଯାଇଥିବା—1 Shown; exhibited; displayed.
(ପ୍ରଦର୍ଶନ—ଦ୍ର)
୨ । ଉଲ୍ଲିଖିତ—2 Mentioned.
୩ । ସୂଚିତ—3 Indicated
୪ । ପ୍ରକାଶିତ—4 Published; declared.
୫ । ବ୍ୟାଖ୍ୟାତ—5. Explained; expounded.

**ପ୍ରଦଳ**—ସଂ. ବି. (ପ୍ର+ଦଳ)—ବାଣ, ଶର (ହ. ଶ)—
Pradala Arrow.

**ପ୍ରଦଲି**—ଦେ. ବି—୧ । ଗୋଳମାଳ—
Pradali 1. Noise.
୨ । ବଡ଼ ପାଟି; ଉଚ୍ଚ ସ୍ୱର—2. Loud voice.

**ପ୍ରଦହି**—ସଂ. ବି—ଭୁଣ୍ଡ ଘୋଡ଼ା ( ତୁଣ୍ଡା ) (ହରେକୃଷ୍ଣ. ଦ୍ରବ୍ୟଗୁଣ)—
Pradahi Tunda porda ( See )

**ପ୍ରଦାତବ୍ୟ**—ସଂ. ବିଣ. ( ପ୍ର+ଦାତବ୍ୟ )—
Pradatabya ପ୍ରଦତ୍ତ ହେବା ଯୋଗ୍ୟ; ପ୍ରଦେୟ—
Fit to be given away or bestowed.

**ପ୍ରଦାତା**—ସଂ. ବିଣ ପୁଂ. (ପ୍ର+ଦାତୃ, ଅନ୍ୟ ଶବ୍ଦ ସଙ୍ଗେ ପ୍ରଯୁକ୍ତ ହୁଏ)—
Pradātā ୧ । ପ୍ରଦ, ଯେ ଦିଏ, ଦାନକର୍ତ୍ତା—
ପ୍ରଦାୟକ } ଅନ୍ୟରୂପ 1. Giving: bestowing
ପ୍ରଦାୟୀ }
୨ । ଅତ୍ୟନ୍ତ ପ୍ରଦାନଶୀଳ—
(ପ୍ରଦାତ୍ରୀ, ପ୍ରଦାୟିକା, ପ୍ରଦାୟିନୀ—ସ୍ତ୍ରୀ) 1. Very liberal.

**ପ୍ରଦାନ**—ସଂ. ବି. ( ପ୍ର+ଦାନ )—
Pradāna ୧ । ବିତରଣ, ଅର୍ପଣ, ଦେବା—1 Imparting, giving; bestowing
(ପ୍ରଦତ୍ତ, ପ୍ରଦେୟ—ବିଣ)
୨ । ଆରୋପଣ—2 Conferring.
୩ । ବଖଶିସ୍ ଦାନ—3 Donation, gift.
୪ । ଭେଟି, ଉପହାର—4 Present
୫ । ଗଜାଙ୍କୁଶ—
5. A goad or hook for driving elephants.
୬ । ପ୍ରେରଣ—6. Sending.
୭ । ପାଞ୍ଚଣ—7. A rod for driving cattle.
୮ । ବିବାହ (ହ. ଶ)—8. Marriage.
[ ଦ୍ର—ଏହା ପ୍ରଥମ ଅର୍ଥରେ ଆଦାନ ଶବ୍ଦ ପରେ ସହଚର ରୂପେ ବ୍ୟବହୃତ ହୁଏ । ]

**ପ୍ରଦାନ କରିବା**—ଦେ. କ୍ରି—ଦେବା—
Pradāna kariba To give; to bestow.
প্রদান করা प्रदान करना

**ପ୍ରଦାନିବା**—ଦେ. (ପଦ୍ୟ) କ୍ରି (ସଂ. ପ୍ରଦାନ)—ପ୍ରଦାନ କରିବା—
Pradāniba প্রদানো To impart; to give.
ଏମନ୍ତ ସୁଅଶିଷ ମନ୍ତ୍ର ପ୍ରଦାନି—
ମଧୁସୂଦନ, କବିତାବଳୀ

**ପ୍ରଦାବ**—ସଂ. ବି (ପ୍ର+ଦାବ)—ଦାବାଗ୍ନି—
Pradāba Forest conflagration.

**ପ୍ରଦାହ**—ସଂ. ବି (ପ୍ର+ଦାହ)—୧ । ଜ୍ୱର ଯୋଗୁଁ ବା ଅନ୍ୟ କାରଣରୁ
Pradāha ଶରୀରରେ ଅନୁଭୂତ ପୋଡ଼ା ଜଳା—
1. Inflammation of the body
୨ । ଶରୀରର ତାପବୃଦ୍ଧି—
2. Rise of temperature in the body; high temperature of the body.

**ପ୍ରଦିକ୍**—ସଂ. ବି ( ପ୍ର+ଦିଶ୍; ପ୍ରଦିଶ୍ ଶବ୍ଦ ୧ମା. ୧ବ)—ବିଦିକ୍,
Pradik ଦୁଇ ପ୍ରଧାନ ଦିଗର ମଧ୍ୟବର୍ତ୍ତୀ କୋଣ (ଯଥା—ଅଗ୍ନି, ବାୟୁ, ନୈର୍‌ଋତ)—A corner between two cardinal points of the compass.

**ପ୍ରଦିଗ୍ଧ**—ସଂ. ବିଣ (ପ୍ର+ଦିହ୍ ଧାତୁ+କର୍ମ. ତ)—୧ । ବୋଳା
Pradigdha ହୋଇଥିବା; ଲିପ୍ତ—1. Smeared; daubed; annointed.
୨ । ସ୍ନିଗ୍ଧ; ତେଲରେ ବା ଘିଅରେ ସିକ୍ତ (ହ.ଶ)—
2. Besmeared with oil or ghee.
ସଂ. ବି—ମାଂସ ବ୍ୟଞ୍ଜନବିଶେଷ; ବହୁ ପରିମାଣରେ ମସଲା ଗୋଳାଥା ହୋଇ ଘିଅର ଓ ଦହିର ଛିଟା ଦିଆଯାଇ

ସିଝା ହୋଇଥିବା ମାଂସ ତରକାରୀ—A kind of meat-curry; curry prepared by frying meat with ghee and curd

ପ୍ରଦିଷ୍ଟ—ସଂ ବିଣ (ପ୍ର+ଦିଶ୍ ଧାତୁ+କର୍ମ. ତ)—୧ । ନିର୍ଦ୍ଧାରିତ, ନିର୍ଦ୍ଦିଷ୍ଟ—1. Appointed; specified
Pradishta
୨ । ଉପଦିଷ୍ଟ—2. Instructed
୩ । ଦତ୍ତ—3 Given; bestowed.

ପ୍ରଦୀପ—ସଂ ବି (ପ୍ର+ଦୀପ) ୧ । ଦୀପ—
Pradīpa 1. A lamp.
୨ । ବର୍ତ୍ତିସ୍ଥ ଜ୍ୱଳନ୍ତ ଅଗ୍ନିଶିଖା—
2 A flame issuing from a burning wick.
୩ । ଦୀପ୍ତି, ପ୍ରଭା—3. Dazzling; brilliance.
୪ । (ଲକ୍ଷଣାର୍ଥ) ଆଲୋକ ବା ଜ୍ଞାନପ୍ରଦ ବସ୍ତୁ—
4 (Figurative) Anything which gives knowledge or light.
(ଯଥା—ଜ୍ଞାନ ପ୍ରଦୀପ, ନୀତି ପ୍ରଦୀପ ।)
୫ । ପ୍ରଦୀପ ବସ୍ତୁ ମାନଙ୍କୁ ପ୍ରକାଶିତ କରିବା ପରି କୌଣସି ଗ୍ରନ୍ଥକୁ ସମୁଜ୍ଜ୍ୱଳ ବ୍ୟାଖ୍ୟା କରିବା ଗ୍ରନ୍ଥ—
5 A commentary
୬ । ଦୀପକ ରାଗର ପୁତ୍ର, ରାଗିଣୀବିଶେଷ (ହି. ଶ)—
6. Name of a secondary musical air.
ସଂ. ବିଣ—(ଲକ୍ଷଣାର୍ଥ) ଗୌରବପ୍ରଦ—
(figurative) Shedding glory; glorious
(ଯଥା—କୁଳ ପ୍ରଦୀପ ।)

ପ୍ରଦୀପକ—ସଂ. ବିଣ. ପୁଂ (ପ୍ର+ଦୀପକ)—୧ । ପ୍ରଦୀପନକାରକ, ଯାହା ଉଦ୍ଦୀପନ କରେ—1. Kindling; igniting.
Pradīpaka
(ପ୍ରଦୀପିକା—ସ୍ତ୍ରୀ)
୨ । ଉତ୍ତେଜକ—2 Exciting; stimulating.
୩ । ଯାହା ଆଲୋକିତ କରେ—
3. Shedding light; illuminating
୪ । ଯାହା ଗୌରବ ବୃଦ୍ଧି କରେ—
4. Glorious; glorifying
ସଂ. ବି—୧ । ଏକପ୍ରକାର ଉଦ୍ଭିଜ୍ଜ ମାରାତ୍ମକ ଉଦ୍ଭିଜ୍ଜ ବିଷ—
1. A kind of fatal vegetable poison.
[ ଦ୍ର—ଏହା ଖର୍ଜୁର ଗଛର ପତ୍ରପରି ପତ୍ରଥିବା ଗୋଟିଏ ଗଛର ମୂଳ ଓ ଏହା ସମୁଦ୍ର ଉପକୂଳରେ ଜନ୍ମେ—ହି. ଶ । ]
୨ । ଲଣ୍ଠନ—2. Lantern.

ପ୍ରଦୀପନ—ସଂ. ବି. (ପ୍ର+ଦୀପନ)—୧ । ଉଦ୍ଦୀପନ, ଜଳାଇବା; ନିଆଁ ଲଗାଇବା—1. Kindling, inflaming; igniting; setting fire to.
Pradīpana
୨ । ଉତ୍ତେଜନ—2. Exciting; stimulating.
୩ । ପ୍ରକାଶକରଣ; ପ୍ରକାଶନ; ଉଦ୍ଭାସନ—
3. Exhibiting; illuminating.
୪ । ଅଗ୍ନିପରି ଉଜ୍ଜ୍ୱଳବର୍ଣ୍ଣ ସ୍ଥାବର ବିଷବିଶେଷ—
1. A mineral poison of red colour (probably phosphorus)
୫ । ଗୌରବ ବର୍ଦ୍ଧନ—5 Glorification.

ପ୍ରଦୀପାମାବାସ୍ୟା—ସଂ. ବି. ( ପ୍ରଦୀପ+ଅମାବାସ୍ୟା )—
Pradīpāmābāsyā ଦିପେଇ ଅମାବାସ୍ୟା (ଦେଖ)
Pipei amābāsyā (See)

ପ୍ରଦୀପିକା—ସଂ ବି. (ପ୍ରଦୀପକ+ଆ)—୧ । ଛୋଟ ଲଣ୍ଠନ (ହି ଶ)—
Pradīpikā 1 Small lantern.
୨ । ଦୀପକ ରାଗର ସ୍ତ୍ରୀ, ରାଗିଣୀବିଶେଷ (ହି. ଶ)—
2. Name of a secondary musical air.
ସଂ. ବିଣ. ସ୍ତ୍ରୀ—ପ୍ରଦୀପକର ସ୍ତ୍ରୀଲିଙ୍ଗ—
Feminine of Pradīpaka.

ପ୍ରଦୀପ୍ତ—ସଂ. ବିଣ. (ପ୍ର+ଦୀପ୍ତ)—୧ । ପ୍ରଜ୍ୱଳିତ—
Pradīpta 1. Kindled; lighted up, inflamed.
(ପ୍ରଦୀପ୍ତି—ବି) ୨ । ପ୍ରକାଶିତ—2. Manifested.
୩ । ଦାଉ ଦାଉ ଜଳୁଥିବା—3 Blazing; burning.
୪ । ଉତ୍ତେଜିତ—4. Excited; stimulated.
୫ । ଖୁବ ଉଜ୍ଜ୍ୱଳ—5 Very bright; dazzlingly bright.

ପ୍ରଦୀପ୍ତତେଜାଃ—ସଂ. ବିଣ. (ବହୁବ୍ରୀହି, ପ୍ରଦୀପ୍ତ+ତେଜସ୍, ୧ମା. ୧ବ)-
Pradīptatejāḥ ଯାହାର ତେଜ ନିଆଁପରି ଜଳୁଛି—
Of brilliant lustre, dazzling.

ପ୍ରଦୀପ୍ତ ହୁତାଶ—ସଂ. ବି. (କର୍ମଧା, ପ୍ରଦୀପ୍ତ+ହୁତାଶ)—
Pradīpta hutāśa ଦାଉ ଦାଉ ଜଳୁଥିବା ନିଆଁ—
(ପ୍ରଦୀପ୍ତହୁତାଶନ—ଅନ୍ୟରୂପ) A blazing fire; a fire in flames.

ପ୍ରଦୃପ୍ତ—ସଂ. ବିଣ. ପୁଂ (ପ୍ର+ଦୃପ୍ତ)—ଅତି ଗର୍ବିତ—
Pradṛupta Very much elated; puffed up with arrogance.
(ପ୍ରଦୃପ୍ତା—ସ୍ତ୍ରୀ)

ପ୍ରଦେୟ—ସଂ. ବିଣ ପୁଂ. (ପ୍ର+ଦେୟ)—
Pradeya ପ୍ରଦାନଯୋଗ୍ୟ, ପ୍ରଦତ୍ତ ହେବା ଯୋଗ୍ୟ—
(ପ୍ରଦେୟା—ସ୍ତ୍ରୀ) Bestowable; conferrable; fit to be given away.
ସଂ. ବି—ଭେଟି, ନଜରାନା (ହି. ଶ)—Present.

ପ୍ରଦେୟା—ସଂ. ବିଣ. ସ୍ତ୍ରୀ. (ପ୍ରଦେୟ+ସ୍ତ୍ରୀ. ଆ)—
Pradeyā ୧ । 'ପ୍ରଦେୟ'ର ସ୍ତ୍ରୀଲିଙ୍ଗ—
1. Feminine of Pradeya.
୨ । ଯେଉଁ କନ୍ୟା ବରକୁ ପ୍ରଦତ୍ତ ହେବାର ଉପଯୁକ୍ତା ହୋଇଅଛି; ବିବାହଯୋଗ୍ୟା—2. Marriageable (girl); fit to be given away in marriage,

ପ୍ରଦେଶ—ସଂ. ବି. (ପ୍ର+ଦେଶ)—୧ । ଦେଶର ଏକାଂଶ; ଦେଶାଂଶ—
Pradeśa 1, Part of a country; province,
[ ଦ୍ର—ଦେଶର ଯେଉଁ ଏକ ବିସ୍ତୃତ ଅଂଶର ଭାଷା, ରୀତିନୀତି, ଶାସନପଦ୍ଧତି ଓ ଜଳବାୟୁ ଦେଶର ଅନ୍ୟ ଅଂଶମାନଙ୍କ ଅପେକ୍ଷା ଭିନ୍ନ ତାକୁ ପ୍ରଦେଶ ବୋଲାଯାଏ । ]

୨ । ଅଞ୍ଚଳ; ଜିଲ୍ଲା—2. Division of a country; district.
୩ । ସ୍ଥାନ, ଦେଶ—3. Region; place; tract; spot.
୪ । ଅଂଶ—4. Part.
୫ । ବିସ୍ତାରିତ କରତଳର ବୁଢ଼ାଆଙ୍ଗୁଠିର ଅଗରୁ ତର୍ଜନୀଆଙ୍ଗୁଠିର ଅଗ ପର୍ଯ୍ୟନ୍ତ ଦୂରତ୍ୱର ପରିମାଣ; ତର୍ଜନୀ ଓ ଅଙ୍ଗୁଷ୍ଠ ସମ୍ମିତ ଦୈର୍ଘ୍ୟ—5. A span measured from the tip of the thumb to that of the forefinger.
୬ । ଭିତ୍ତି, କାନ୍ଥ — 6. Wall.
୭ । ଅଙ୍ଗ–(ସ୍ମୃ. ଶ)—7. Limb.
୮ । ନିଷ୍ପତ୍ତି—8. Decision (Apte).
୯ । (ବ୍ୟାକରଣ) ଉଦାହରଣ—9. An example (in grammar) (Apte).
ଦେ. ବି ( ସଂ. ପରଦେଶ )—୧ । ପ୍ରବାସ—1. Sojourn.
୨ । ବିଦେଶ—2. Foreign country.

**ପ୍ରଦେଶନ**—ସଂ. ବି (ପ୍ର+ଦିଶ୍ ଧାତୁ+ଭାବ. ଅନ)—୧ । ଦାନ—
Pradeśana 1 Gift; donation.
୨ । ଉପଢୌକନ, ଉପହାର; ଭେଟି—2. A present; offering.
୩ । ଭେଟି ଦେବା—3. Presentation.
୪ । ଉତ୍କୋଚ, ଘୁଷ—4. Bribe.
୫ । ଦେବୋଦ୍ଦେଶରେ ପ୍ରଦତ୍ତ ବଳି—5. A victim offered to a Deity.
୬ । ଆଦେଶ—6. Command.
୭ । ଉପାୟ—7. Means.
୮ । (ପ୍ର+ଦିଶ୍ ଧାତୁ ଣିଚ +ଭାବ ଅନ) ଦେଖାଇ ଦେବା—8. Pointing out (Apte).
୯ । (+କର୍ମ. ଅନ)—ପରାମର୍ଶ; ଉପଦେଶ—9. Advice; instruction (Apte).

**ପ୍ରଦେଶ(ଶି)ନୀ**—ସ. ବି. ( ପ୍ର+ଦିଶ୍ ଧାତୁ=ଦେଖାଇବା+ଅନ(ଇନ)
Pradeśa(śi)nī +ସ୍ତ୍ରୀ. ଈ, ଯାହା ସାହାଯ୍ୟରେ କୌଣସି ବସ୍ତୁକୁ ଦେଖାଇ ଦିଆଯାଏ )—ତର୍ଜନୀ; ବଣି ଅଙ୍ଗୁଠି—The fore finger; the index finger.

**ପ୍ରଦେଶୀ**—ଦେ. ବିଣ. ( ସ. ପରଦେଶୀୟ )—
Pradeśī ୧ । ବିଦେଶୀୟ—1. Belonging to a
परदेशी परदेशी (ପ୍ରଦେଶିଆ—ଅନ୍ୟରୂପ) foreign country;
୨ । ପ୍ରବାସୀ—1. Sojourning; living abroad.
ଦେ. ବି—୧ । ବିଦେଶୀୟ ବ୍ୟକ୍ତି—1. Foreigner.
୨ । ପ୍ରବାସୀ ଲୋକ—2. Sajourner.
ସ. ବିଣ. ( ପ୍ରଦେଶ+ଈ ) ପ୍ରଦେଶ ସମ୍ବନ୍ଧୀୟ—Provincial.

**ପ୍ରଦେଶୀୟ**—ସ. ବିଣ. (ପ୍ରଦେଶ+ସମ୍ବନ୍ଧାର୍ଥରେ. ଈୟ)—
Pradeśīya ୧ । ପ୍ରଦେଶ ସମ୍ବନ୍ଧୀୟ; ପ୍ରାଦେଶିକ—
(ପ୍ରାଦେଶିକ—ଅନ୍ୟରୂପ) 1. Provincial; relating to a province.
୨ । ( ଅମୁକ ) ପ୍ରଦେଶବାସୀ—2. Belonging to or residing in ( such and such ) a province.
୩ । (ଅମୁକ) ପ୍ରଦେଶରେ ପ୍ରଚଳିତ—3. Current in a particular province.
୪ । ଦେଶାଂଶ ବିଶେଷ ପ୍ରଚଳିତ (ବାକ୍ୟ)—4 Provincial (word).

**ପ୍ରଦେଶୀୟ ଭାଷା**—ଦେ ବି—ଦେଶାଂଶ ପ୍ରଚଳିତ ଭାଷା ବା ବୋଲି—
Pradeśīya bhāshā Provincial language;
প্রদেশীয় ভাষা प्रदेशी भाषा dialect.
[ପ୍ରଦେଶୀୟ ଭାକା(ଖା)—ଅନ୍ୟରୂପ]

**ପ୍ରଦେଶୀୟ କର**—ଦେ ବି—୧ । ଇଂରେଜ ସରକାର ଜମିଦାରଙ୍କଠାରୁ
Pradeśīya kara ରାଜସ୍ୱ ଛଡ଼ା ଆଦାୟ କରିବା ଶୁଳ୍କ
প্রদেশীয় কর ବିଶେଷ—1. A kind of cess realised by Government from Zamindars besides land-revenue.
୨ । ପ୍ରଦେଶବାସୀଙ୍କଠାରୁ ଆଦାୟ ହେବା ରାଜସ୍ୱ—2 Provincial rate

**ପ୍ରଦେହ**—ସ. ବି ( ପ୍ର+ଦିହ୍ ଧାତୁ+ଭାବ. ଅ )—
Pradeha ୧ । ପ୍ରଲେପନ; ଲେପିବା—1. Smearing; anointing.
୨ । (+କର୍ମ. ଅ) ମଲମ; ପ୍ରଲେପ—2. An unguent, unction; ointment.
୩ । ସୁଶ୍ରୁତୋକ୍ତ ବ୍ୟଞ୍ଜନବିଶେଷ (ସୃ. ଶ)—3. A kind of curry.

**ପ୍ରଦୋଷ**—ସ. ବି. ( ପ୍ର=ଆରମ୍ଭ+ଦୋଷା=ରାତ୍ରି+ଅ; କିମ୍ବା ପ୍ର+
Pradosha ଦୋଷ, ଯେଉଁ ସମୟରେ ଦୁଷ୍ଟ ଲୋକେ ଅପରାଧ
(ପ୍ରଦୋଷା—ସ୍ତ୍ରୀ) କରନ୍ତି )—୧ । ସାୟଂକାଳ; ସନ୍ଧ୍ୟା, ରଜନୀମୁଖ—
1. Nightfall; evening.
୨ । ( ପ୍ର+ଦୋଷ )—ଗୁରୁତର ଦୋଷ—2. Grave fault
ସ. ବିଣ. ପୁଂ ( ପ୍ର+ଦୋଷ )—୧ । ମନ୍ଦ, ଦୁଷ୍ଟ —1. Wicked; bad.
୨ । ପାପିଷ୍ଠ—2. Sinful.
୩ । ବିଶେଷ ଦୋଷଯୁକ୍ତ—3. Vitiated; very defective.

**ପ୍ରଦୋଷକ**—ସ. ବିଣ ( ପ୍ରଦୋଷ+କ )—
Pradoshaka ସନ୍ଧ୍ୟାକାଳରେ ଜାତ ବା ଘଟୁଥିବା—
(ପ୍ରଦୋଷଜ—ଅନ୍ୟରୂପ) Produced or happening in the evening.

**ପ୍ରଦ୍ୱେଷ**—ସଂ. ବିଣ. ( ପ୍ର+ଦ୍ୱେଷ )—
Pradwesha ୧ । ଶତ୍ରୁତା, ବୈର—1. Enmity.
୨ । ଘୃଣା (ହ୍ର. ଶ)—2 Hatred

**ପ୍ରଦ୍ୱେଷ୍ଟା**—ସଂ. ବିଣ. ପୁଂ (ପ୍ର+ଦ୍ୱେଷ୍ଟୃ; ୧ମା. ୧ବ)—
Pradweshṭā ୧ । ଶତ୍ରୁଭାପନ୍ନ—1. Hostile.
(ପ୍ରଦ୍ୱେଷ୍ଟ୍ରୀ—ସ୍ତ୍ରୀ) ୨ । ହିଂସାକାରୀ, ହିଂସ୍ର—
2. Revengeful; malicious.
୩ । ଦ୍ୱେଷ କ୍ଷାନକାରୀ—3 Hating; disliking.

**ପ୍ରଦ୍ୟୁତିତ**—ସଂ. ବିଣ. ( ପ୍ର+ଦ୍ୟୁତିତ )—୧ । ପ୍ରଜ୍ୱଳିତ—
Pradyutita 1. Ignited, illuminated.
୨ । ପ୍ରକାଶିତ—2. Manifested.

**ପ୍ରଦ୍ୟୁମ୍ନ**—ସଂ. ବି ( ପ୍ର=ପ୍ରସିଦ୍ଧ+ଦ୍ୟୁମ୍ନ=ଶକ୍ତି; ପ୍ରକୃଷ୍ଟ ଶକ୍ତି
Pradyumna ଥିବାରୁ )—୧ । କନ୍ଦର୍ପ, କାମ, ମଦନ—
1 Cupid.
୨ । (ନାମ) ଶ୍ରୀକୃଷ୍ଣଙ୍କ ଜ୍ୟେଷ୍ଠ ପୁତ୍ର—2. The name of the eldest son of Śrikṛushṇa.
[ଦ୍ର—ଏ ଶ୍ରୀକୃଷ୍ଣଙ୍କ ଔରସରେ ରୁକ୍ମିଣୀଙ୍କ ଗର୍ଭରୁ ଜାତ ହୋଇ ଥିଲେ । ଏ ବିଷ୍ଣୁଙ୍କର ଅର୍ଦ୍ଧ ଅଂଶଜ । ]

**ପ୍ରଦ୍ୟୋତ**—ସଂ. ବି. (ପ୍ର+ଦ୍ୟୁତ୍ ଧାତୁ+କର୍ତ୍ତୃ. ଅ)—
Pradyota ୧ । କିରଣ; ରଶ୍ମି—1. Ray of light.
୨ । ଆଭା, ଦୀପ୍ତି; ଆଲୁଅ—
2. Light; lustre; radiance.
୩ । (ନାମ) ନୃପବିଶେଷ—3. Name of a king.
୪ । (ନାମ) ଯକ୍ଷବିଶେଷ—4. Name of a Jaksha.

**ପ୍ରଦ୍ୟୋତନ**—ସଂ. ବିଣ. (ପ୍ର+ଦ୍ୟୁତ୍ ଧାତୁ+କର୍ତ୍ତୃ. ଅନ)—
Pradyotana ୧ । ଦ୍ୟୋତନଶୀଳ; ଉଜ୍ଜ୍ୱଳ; ଜଳୁଥିବା—
(ପ୍ରଦ୍ୟୋତିତ, ପ୍ରଦ୍ୟୋତକ—ବିଣ) 1. Blazing; radiant.
୩ । ( ପ୍ର+ଦ୍ୟୁତ୍ ଧାତୁ ଣିଚ୍+କର୍ତ୍ତୃ. ଅନ )—
ଯାହା ଉଜ୍ଜ୍ୱଳ ବା ଆଭାମୟ କରେ—
3. Illuminating; brightening
ସଂ. ବି—୧ । (+ଭାବ ଅନ) ଆଭା; ଔଜ୍ଜ୍ୱଲ୍ୟ—
1. Lustre; radiance; blaze.
୨ । (+କର୍ତ୍ତୃ. ଅନ) ସୂର୍ଯ୍ୟ—2. The sun

**ପ୍ରଦ୍ର(ଦ୍ରା)ବ**—ସଂ. ବି. (ପ୍ର+ଦ୍ରୁ ଧାତୁ=ଯିବା+ଭାବ. ଅ)—
Pradra(drā)ba ୧ । ପ୍ରସ୍ଥାନ; ପଳାୟନ—1. Flight;
(ପ୍ରଦ୍ରୁତ—ବିଣ) retreat; fleeing away.
୨ । ଦଉଡ଼ିବା—2. Running
୩ । ଦ୍ରୁତ ଗତି—3 Speed; quick motion.

**ପ୍ରଧନ**—ସଂ. ବି—ଯୁଦ୍ଧ ( ହ୍ର. ଶବ୍ଦସାଗର )—
Pradhana Fight; battle.
ସଂ. ବିଣ (ବହୁବ୍ରୀହି)—ଖୁବ୍ ଧନୀ (ହ୍ର. ଶ)—Very rich.

**ପ୍ରଧମନ**—ସଂ ବି. ( ପ୍ର+ଧ୍ମା ଧାତୁ+ଭାବ. ଅନ )—୧ । ନାକଦ୍ୱାର
Pradhamana ଔଷଧାର୍ଥ ନସ୍ୟାଦି ଶୁଙ୍ଘିବା କ୍ରିୟା ( ହ୍ର. ଶ. )—
1. The act of taking something through the nose for a medicinal purpose
୨ । (+କର୍ମ. ଅନ) ଔଷଧାର୍ଥେ ବ୍ୟବହୃତ ନସ୍ୟ—
2. Medicinal snuff

**ପ୍ରଧା**—ସଂ. ବି—ଦକ୍ଷ ପ୍ରଜାପତିଙ୍କର ଏକ କନ୍ୟା ଓ କଶ୍ୟପଙ୍କର ଏକ
Pradhā ସ୍ତ୍ରୀ—Name of a daughter of Daksha Prajāpati.

**ପ୍ରଧାନ**—ସଂ. ବି. ( ପ୍ର+ଧା ଧାତୁ=ଧାରଣ କରିବା+କର୍ତ୍ତୃ. ଅନ )—
Pradhāna ୧ । (ସାକାର ଜଗତର ଆଦ୍ୟ ବୀଜ) ପରମେଶ୍ୱର—
1 God (the seed of the material world).
୨ । ପରମାତ୍ମା—2. The Universal Soul.
୩ । ପ୍ରକୃତି, ଜଗତର ମୂଳକାରଣ—
3. Nature; the creative energy.
୪ । ଆଦ୍ୟାପ୍ରକୃତି, ସୃଷ୍ଟି ବା ବିକାଶପୂର୍ବରୁ ବିଦ୍ୟମାନ ପ୍ରକୃତି—
4 Unevolved Nature.
୫ । ବୁଦ୍ଧି—5. Intellect; understanding.
୬ । ଶ୍ରେଷ୍ଠ ବିଷୟ—
6. Chief or principal matter.
୭ । ଶ୍ରେଷ୍ଠ ବ୍ୟକ୍ତି—7. Principal person.
୮ । ଶ୍ରେଷ୍ଠ ବସ୍ତୁ—
8. Principal object or thing.
୯ । ରାଜାଙ୍କର ଅମାତ୍ୟ; ମନ୍ତ୍ରୀ—9 Minister.
୧୦ । ରାଜାଙ୍କ ସହଚର—10. A courtier.
୧୧ । ରାଜାଙ୍କ ସେନାପତି—
11. General of a king.
୧୨ । ହସ୍ତୀପକ; ମାହୁନ୍ତ—
12. The driver of an elephant
(ପ୍ରଧାନା—ସ୍ତ୍ରୀ) ସଂ. ବିଣ—୧ । ମୁଖ୍ୟ; ଶ୍ରେଷ୍ଠ—
1. Chief; principal.
୨ । ସର୍ବୋତ୍ତମ; ସର୍ବୋତ୍କୃଷ୍ଟ—
2. Best; foremost; most excellent.
୩ । ଆଦ୍ୟ—2. Original.
୪ । ( ଅନ୍ୟ ଶବ୍ଦ ସହିତ ସମାସରେ ଯୁକ୍ତ ହେଲେ; ଯଥା—ଶାନ୍ତପ୍ରଧାନ, ଗ୍ରୀଷ୍ମପ୍ରଧାନ ) ଯେଉଁଠାରେ ଅମୁକ ବିଷୟ ପ୍ରାଧାନ୍ୟ ଲାଭ କରିଥାଏ—4. Where any matter or thing is predominant or prevailing.
ଦେ. ବି—୧ । କ୍ଷତ୍ରିୟ ଓ ଶୂଦ୍ରଙ୍କ ବଂଶୋପାଧିବିଶେଷ—
1. A family title of the Kshatriya and Śūdras.
୨ । ଗ୍ରାମର ରାଜସ୍ୱ ଆଦାୟକାରୀ ରାଜକର୍ମଚାରୀ—
2. The collecting agent of a village.
୩ । ଗ୍ରାମର ମୁଖ୍ୟ ବ୍ୟକ୍ତି—
3. The head-man of a village.

୪ । ଉତ୍କଳର ସ୍ୱାଧୀନ ରାଜାଙ୍କ ସମୟରେ ଗ୍ରାମଶାସନ ପାଇଁ ଗଠିତ ଗ୍ରାମପଞ୍ଚର ବା ଗ୍ରାମ ସଭାର ସଭ୍ୟପତିଙ୍କ ଉପାଧିବିଶେଷ—
4. The generic title of the headman of the administrative assembly of a village in the reign of the independent kings of Orissa

**ପ୍ରଧାନ କାରଣ**—ସଂ. ବି. ( କର୍ମଧା; ପ୍ରଧାନ+କାରଣ )—ମୁଖ୍ୟ ବା ମୂଳକାରଣ—Original cause
Pradhāna kārana

**ପ୍ରଧାନ କାରଣବାଦ**—ସଂ. ବି—ସାଙ୍ଖ୍ୟବାଦ; ଯେଉଁ ମତରେ ପ୍ରଧାନ। ବା ଆଦ୍ୟା ପ୍ରକୃତି ଜଗତର କାରଣ ବୋଲି କଥିତ—The theory or doctrine that the unevolved Nature is the primary cause of the world
Pradhāna kāranabāda

**ପ୍ରଧାନତଃ**—ସଂ କ୍ରି ବିଣ. (ପ୍ରଧାନ+ତସ୍)—୧ । ଶ୍ରେଷ୍ଠତାନୁସାରେ
Pradhānatah 1. According to eminence.
୨ । ଅଗ୍ରେ—2 Firstly.
୩ । ପ୍ରାଧାନ୍ୟତଃ—3. Chiefly.
[ ଦ୍ର—ବିଶେଷ୍ୟ ଓ ସର୍ବନାମ ପରେ ତସ୍ ପ୍ରତ୍ୟୟ ହେବା ସଂସ୍କୃତ ବ୍ୟାକରଣର ନିୟମ ଅଟେ; କିନ୍ତୁ ଓଡ଼ିଆ ଲେଖକମାନେ ବିଶେଷଣ ସଙ୍ଗେ ମଧ୍ୟ ତସ୍ ପ୍ରତ୍ୟୟ କରି ସ୍ଥଳତଃ ଆଦି ପ୍ରୟୋଗ କରନ୍ତି, କିନ୍ତୁ ଏ ପ୍ରୟୋଗ ଠିକ୍ ନୁହେଁ । 'ପ୍ରଧାନତଃ' ଶବ୍ଦରେ ପ୍ରଧାନ ଶବ୍ଦ ବିଶେଷ୍ୟରୂପେ ବ୍ୟବହୃତ ।]

**ପ୍ରଧାନତା(ତ୍ୱ)**—ସଂ. ବି. ( ପ୍ରଧାନ+ତା[ତ୍ୱ] )—୧ । ପ୍ରାଧାନ୍ୟ—
Pradhānatā(twa) 1. Excellence.
୨ । ଶ୍ରେଷ୍ଠତା—2 Pre-eminence.
୩ । ଉତ୍କର୍ଷ—3. Superiority.

**ପ୍ରଧାନ ଧାତୁ**—ସଂ. ବି. (କର୍ମଧା, ପ୍ରଧାନ+ଧାତୁ )—(ଶରୀରସ୍ଥ ସର୍ବଶ୍ରେଷ୍ଠ ଧାତୁ) ଶୁକ୍ର, ବୀର୍ଯ୍ୟ—Semen
Pradhāna dhātu

**ପ୍ରଧାନ ନଗର**—ଦେ. ବି—ରାଜ୍ୟର ରାଜଧାନୀ—
Pradhāna nagara The capital of a country.

**ପ୍ରଧାନ ପାଟ**—ଦେ. ବି. (ନାମ)—ବାମଣ୍ଡା ରାଜ୍ୟର ରାଜଧାନୀ ଦେବଗଡ଼ର ସନ୍ନିକଟସ୍ଥ ଗୋଟିଏ ଝର—
Pradhāna pāta
Name of a mountain-spring in the State of Bamra in Orissa.

ପ୍ରଧାନ ପାଟର ପ୍ରପାତ ଶ୍ରୀଭଣ—ପ୍ରଧାନାଥ, ନନ୍ଦକେଶରୀ ।

[ ଦ୍ର—ଏହିଠାରୁ ଯନ୍ତ୍ରଦ୍ୱାରା ଜଳ କଢ଼ାଯାଇ ଦେବଗଡ଼ବାସୀଙ୍କୁ ଜଳପାଣି ଯୋଗାଯାଏ । ବାମଣ୍ଡାର ରାଜା ସ୍ୱର୍ଗୀୟ ସୁବଳ ଦେବ ଏ ପ୍ରପାତର ଧାରେ ଧାରେ ପାହାଡ଼ର ଉପରକୁ ଉଠିବା ପାଇଁ ପକ୍କା ସିଡ଼ି କରିଥିବାରୁ, ସେହି ସିଡ଼ି ବାଟେ ଏ ଝରଣାର ମୂଳଦେଶରୁ ପାହାଡ଼ ଉପରକୁ ଉଠି ହୁଏ । ଏହାର ଶୋଭା ଅତି ମନୋହର ।]

**ପ୍ରଧାନ ମନ୍ତ୍ରୀ**—ଦେ. ବି—ରାଜାଙ୍କର ଶ୍ରେଷ୍ଠ ମନ୍ତ୍ରୀ—
Pradhāna mantri Prime minister.

**ପ୍ରଧାନ ଯାଜକ**—ଦେ. ବି. ( ବାଇବଲ୍ ଅନୁବାଦ ଭାଷା )—ଖ୍ରୀଷ୍ଟିଆନ୍ ସମ୍ପ୍ରଦାୟର ପ୍ରଧାନ ଯାଜକଗୁରୁ—
Pradhāna jājaka
High priest; bishop; lord bishop.

**ପ୍ରଧାନାଙ୍ଗ**—ସଂ. ବି. (କର୍ମଧା; ପ୍ରଧାନ+ଅଙ୍ଗ)—୧ । ଉତ୍ତମାଙ୍ଗ; ମସ୍ତକ
Pradhānānga 1 The head
୨ । ସମାଜର ମୁଖ୍ୟ ସଭ୍ୟ—2. A pre-eminet member of an assembly
୩ । ରାଜ୍ୟର ପ୍ରଧାନ ବ୍ୟକ୍ତି—
3. The chief personage in a kingdom
୪ । ଶ୍ରେଷ୍ଠ ଅବୟବ—4. Chief limb.
୫ । ପ୍ରଧାନ ଉପକରଣ—5 Chief material.
୬ । ଉତ୍ତମାଙ୍ଗ ବା କାର୍ଯ୍ୟକାରୀ—6. A serviceable limb.

**ପ୍ରଧି**—ସଂ. ବି. ( ପ୍ର+ଧା ଧାତୁ=ଧାରଣ କରିବା+କର୍ତ୍ତୃ. ଇ, ଯାହା ଚକ୍ରକୁ ଧାରଣ କରେ)—ଚକର ଧାର; ନେମି; ପହି—
Pradhi
The rim or periphiry of a wheel.

**ପ୍ରଧି ମଣ୍ଡଳ**—ସଂ.ବି. ( ୬ଷ୍ଠୀ ତତ୍; ପ୍ରଧି+ମଣ୍ଡଳ )—ଚକର ପରିଧି ବା ବେଢ଼; ପହିଆ—The circumfernce of a wheel.
Pradhi mandala

**ପ୍ରଧୀ**—ସଂ. ବିଣ. ପୁଂ ଓ ସ୍ତ୍ରୀ (ବହୁବ୍ରୀହି; ପ୍ର=ପ୍ରକୃଷ୍ଟ+ଧୀ=ବୁଦ୍ଧି )—ତୀକ୍ଷ୍ଣବୁଦ୍ଧିବିଶିଷ୍ଟ—Having sharp intellect, clever; shrewd; acute.
Pradhi
ସଂ. ବି.—( ପ୍ର=ପ୍ରକୃଷ୍ଟା+ଧୀ )—ତୀକ୍ଷ୍ଣ ବୁଦ୍ଧି—Sharp intellect; clear understanding.

**ପ୍ରଧୂନିତ**—ସଂ. ବିଣ (ପ୍ର+ଧୂନିତ)—ଯାହାକୁ ବିଶେଷ ଭାବରେ ବା ଜୋରରେ କମ୍ପିତ କରି ଯାଉଥାଏ—
Pradhūnita
(ପ୍ରଧୂନନ—ବି) Greatly shaken.

**ପ୍ରଧୂପିତ**—ସଂ. ବିଣ (ପ୍ର+ଧୂପ୍ ଧାତୁ=ସନ୍ତପ୍ତ କରିବା+କର୍ମ. ତ)—
Pradhūpita ୧ । ସନ୍ତାପିତ—1. Afflicted.
୨ । ଉତ୍ତପ୍ତ—2. Heated.
୩ । ପ୍ରଦୀପ୍ତ—3. Inflamed
୪ । ଉତ୍ତେଜିତ—4 Excited.

**ପ୍ରଧୂମିତ**—ସଂ. ବିଣ. (ପ୍ର+ଧୂମ+ଯୁକ୍ତାର୍ଥେ. ଇତ)—୧ । ଧୂମାୟିତ; ଧୂଆଁ ହେଉଥିବା, କୁହୁଳୁ ଥିବା, ଯହିଁରୁ ଧୂଆଁ ବାହାରୁ ଥାଏ—1. Smoking; smouldering.
Pradhūmita
୨ । ଜ୍ୱଳନୋନ୍ମୁଖ—2. About to burn.

**ପ୍ରଧୃଷ୍ଟ**—ସଂ. ବିଣ. ପୁଂ (ପ୍ର+ଧୃଷ୍ଟ)—ଅତ୍ୟନ୍ତ ଗର୍ବିତ—
Pradhrushta Arrogant.
(ପ୍ରଧୃଷ୍ଟା—ସ୍ତ୍ରୀ) (ପ୍ରଧୃଷ୍ଟତା—ବି)

**ପ୍ରଧୃଷ୍ୟ**—(ପ୍ର+ଧୃଷ୍ ଧାତୁ+କର୍ମ. ଯ)—ଯାହାର ଗର୍ବକୁ ଖର୍ବୀକୃତ କରି ଯାଇ ପାରେ—One whose spirit or pride can be suppressed.
Pradhrushya

**ପ୍ରଧ୍ୱଂସ**—ସଂ. ବି. (ପ୍ର+ଧ୍ୱଂସ)—୧ । ବିନାଶ—
Pradhwamsa 1 Ruin; destruction.
(ପ୍ରଧ୍ୱଂସକ, ପ୍ରଧ୍ୱଂସୀ, ପ୍ରଧ୍ୱସ୍ତ—ବିଣ) ୨ । (ସାଂଖ୍ୟ) କୌଣସି ବସ୍ତୁର ଅତୀତ ଅବସ୍ଥା (ହି. ଶ.)—2. (Sāmkhya philosophy) The past condition of a thing

**ପ୍ରଧ୍ମାତ**—ସଂ. ବିଣ. (ପ୍ର+ଧ୍ମା ଧାତୁ=ଶବ୍ଦ କରିବା; ଜାଳି ଲଗାଇବା+ କର୍ମି. ତ)—୧ । ଧ୍ୱନିତ, ମୁଖରିତ; ଶବ୍ଦାୟମାନ—
Pradhmāta 1. Resounded; resonant.
୨ । ବାୟୁପୂରିତ, ଯହିଁରେ ଫୁଙ୍କି କରି ପବନ ପୂରି ଯାଇଥାଏ—2. Filled with wind blown; inflated with wind.
୩ । ସନ୍ଧୁକ୍ଷିତ; ପ୍ରଜ୍ୱଳିତ—3. Inflamed; ignited; kindled.
୪ । ପ୍ରତିଧ୍ୱନିରେ ପୂର୍ଣ୍ଣ—4. Reverberated; filled with echoes.

**ପ୍ରନ(ଣ)ଷ୍ଟ**—ସ. ବିଣ. (ପ୍ର+ନଷ୍ଟ)—୧ । ସମ୍ପୂର୍ଣ୍ଣରୂପେ ନଷ୍ଟ, ବିନଷ୍ଟ—
Prana(ṇa)shta 1. Destroyed; ruined
୨ । ମୃତ—2. Dead.

**ପ୍ରନାଳୀ**—ଗ୍ରା. ବି. (ସଂ. ପ୍ରଣାଳୀର ଅଶୁଦ୍ଧ ଉଚ୍ଚାରଣ)--ପ୍ରଣାଳୀ (ଦେଖ)--
Pranāli Praṇāli (See)

**ପ୍ରପଞ୍ଚ**—ସଂ. ବି.—୧ । (ପ୍ର+ପଂଚ ଧାତୁ=ବିସ୍ତୃତ ହେବା+ଭାବ. ଅ)
Prapañcha ୧ । ବିସ୍ତାର, ପରିସର—1. Extent; expanse.
୨ । ବିସ୍ତୃତି—2. Expansion; extension.
୩ । ସମୂହ, ବିସ୍ତର; ରାଶି—3. Abundance; heap.
୪ । ପ୍ରକାଶ—4. Manifestation.
୫ । ବୈପରୀତ୍ୟ—5. Opposition; reversion; inversion.
୬ । ମାୟା; ଭ୍ରମ; ଭ୍ରାନ୍ତି—6 Error; illusion.
୭ । (+କର୍ତ୍ତି. ଅ) ଜଗତ୍; ସଂସାର—7. The world; the creation
୮ । ପରିଦୃଶ୍ୟମାନ ଘଟନା—8. Phenomenon.
୯ । ପ୍ରବଞ୍ଚନା; ପ୍ରତାରଣା—9. Delusion; deceit; trick; fraud,
୧୦ । ପରିଦୃଶ୍ୟମାନ ଜଗତ୍· ସଂସାର—10. The phenomenal world; the world round us.
୧୧ । ଥଟ୍ଟା, ତାମସା—11. Jest, joke.
୧୨ । ଧୂର୍ତ୍ତତା—12. Wickedness; wantoness.
୧୩ । ରଚନାର ପ୍ରାଚୁର୍ଯ୍ୟ ବା ବାହୁଲତା—13. Copiousness or prolixity in composition.
ଦେ. ବିଣ.—୧ । ପ୍ରବଞ୍ଚନା ପୂର୍ଣ୍ଣ; ଶଠ—1. Deceitful, fraudulent.
୨ । ମାୟାପୂର୍ଣ୍ଣ—2. Full of illusion
୩ । ଦୁଷ୍ଟ—3. Wicked.
୪ । ଧୂର୍ତ୍ତ; ଚତୁର—4. Cunning.
୫ । ପରପଞ୍ଚ; ଅସୁନ୍ଦର—5. Awkward; ugly.
୬ । ମନ୍ଦ ପ୍ରକୃତିକ—6. Evil-natured.

**ପ୍ରପଞ୍ଚ ବୁଦ୍ଧି**—ଦେ. ବି—୧ । ଧୂର୍ତ୍ତତା—1. Cunning.
Prapañcha buddhi ୨ । ମନ୍ଦ ବୁଦ୍ଧି, ଦୁଷ୍ଟ ବୁଦ୍ଧି—2. Wantonness; wickedness.

**ପ୍ରପଞ୍ଚମୟ**—ସ ବିଣ. (ପ୍ରପଞ୍ଚ+ମୟ)—ପ୍ରତାରଣା ପୂର୍ଣ୍ଣ—
Prapañchamaya Deceitful.

**ପ୍ରପଞ୍ଚିତ**—ସ. ବିଣ. (ପ୍ର+ପଂଚ ଧାତୁ+କର୍ମି ତ)—୧ । ବିସ୍ତୃତ—
Prapañchita 1. Expanded; diffused.
୨ । ମାୟାପୂର୍ଣ୍ଣ—2. Full of illusion; illusive
୩ । ଭ୍ରମଯୁକ୍ତ; ଭ୍ରାନ୍ତିପୂର୍ଣ୍ଣ—3. Erring; mistaken.
୪ । ପ୍ରବଞ୍ଚିତ—4. Deceived; beguiled.
୫ । ବିସ୍ତାରିତରୂପେ ପ୍ରକାଶିତ; ବ୍ୟାଖ୍ୟାତ—5. Fully explained; dilated; manifested.

**ପ୍ରପଞ୍ଚୀ**—ସ. ବିଣ. ପୁଂ—(ପ୍ରପଞ୍ଚ+ଇନ୍, ୧ମା. ୧ବ)—ଦୁଷ୍ଟ—
Prapañchi Wicked.
(ପ୍ରପଞ୍ଚିନୀ—ସ୍ତ୍ରୀ) କନ୍ଦର୍ପ ପ୍ରପଞ୍ଚୀ, କନ୍ଦର୍ପଭ୍ରମେ ସିବ ଅବା ଧୂଷ୍ଟ ।
(ପ୍ରପଞ୍ଚିଆ—ଦେଶଜରୂପ) ଅଭିମନ୍ୟୁ, ବଦଗ୍ଧଚନ୍ତାମଣି ।

**ପ୍ରପତ୍ତି**—ସ. ବି—ଅନନ୍ୟ ଭକ୍ତି; ଏକାନ୍ତ ଭକ୍ତି—
Prapatti Concentrated devotion

**ପ୍ରପଦ**—ସ. ବି (ପ୍ର=ଅଗ୍ର+ପଦ)—୧ । ଗୋଡ଼ର ଅଗ—
Prapada 1. The tip of the foot.
୨ । ଗୋଡ଼ ଅଙ୍ଗୁଠି—2. Finger of the leg.
ବାଳା ପ୍ରପଦେ ଝୁଣ୍ଟିଆ—ଉକ୍ତ. ବୈଦେହୀଶବିଳାସ ।

**ପ୍ରପନ୍ନ**—ସ. ବିଣ ପୁଂ. (ପ୍ର+ପଦ୍ ଧାତୁ=ଗମନ କରିବା, ପାଇବା+ କର୍ତ୍ତି. ତ)—୧ । ଶରଣାଗତ; ଆଶ୍ରିତ—
Prapanna
(ପ୍ରପନ୍ନା—ସ୍ତ୍ରୀ) 1. Taking refuge with.
୨ । ଅବଲମ୍ବନ କରିଥିବା—2 Resorting to.
୩ । ପ୍ରାପ୍ତ, ଅଧିଗତ—3. Attained; obtained; got; received.
୪ । ରକ୍ଷିତ—4. Sheltered; protected.
୫ । ସ୍ୱୀକୃତ, ଅଙ୍ଗୀକୃତ—5. Agreed to; promised.
୬ । ଦରିଦ୍ର; ଗରିବ—6 Poor; needy.
୭ । ପୀଡ଼ିତ—7. Afflicted; distressed.
୮ । ଆସକ୍ତ; ସଂସକ୍ତ—8. Adhering to, attached to.
୯ । କୃତାନ୍ୱେଷଣ—9 Seeking.
୧୦ । ସମାଗତ; ଉପସ୍ଥିତ—10. Arrived; reached.

**ପ୍ରପର୍ଣ୍ଣ**—ସ. ବିଣ. (ବହୁବ୍ରୀହି; ପ୍ର=ଗତ+ପର୍ଣ୍ଣ=ପତ୍ର)—
Praparṇṇa ଯେଉଁ ବୃକ୍ଷରୁ ପତ୍ର ଝଡ଼ି ପଡ଼ିଅଛି—(tree) Devoid of leaves (Apte)
ସ. ବି—ଝଡ଼ି ପଡ଼ିଥିବା ପତ୍ର—Fallen leaf (Apte).

**ପ୍ରପା**—ସ. ବି. (ପ୍ର+ପା ଧାତୁ+ଅପାଦାନ ଅ+ସ୍ତ୍ରୀ. ଆ)—
Prapā ୧ । ଜଳସତ୍ର; ପାନୀୟଶାଳା—1. A place where drinking water is distributed.
୨ । ବିଶ୍ରାମ ସ୍ଥଳ—2. A place of refreshment; resting place.

୩ । ଗୋରୁମାନଙ୍କ ପାଣିକୁଣ୍ଡ—
3. A cistern for watering cattle.
୪ । ଜଳାଶୟ; ବଡ଼ ପୋଖରୀ—4 Tank.
୫ । କୂପ—5. Well.
୬ । ପାଣିକୁଣ୍ଡ; ଜଳାଧାର—
6. Cistern; reservoir of water.
୭ । (+କର୍ମ. ଅ) ଢୋକ—7. Draught.
୮ । (+ଅଧିକରଣ. ଅ)—ଯଜ୍ଞଶାଳା—
8. Sacrificial room.

**ପ୍ରପାକ**—ସଂ. ବି. (ପ୍ର+ପଚ୍ ଧାତୁ+ଭାବ. ଅ)—୧ । ବଥ ପାଚିବା—
Prapāka 1. The ripening of boil (Apte).
୨ । ଅଙ୍ଗର ଫୁଲା ଓ ପୋଡ଼ାଜଳା—
2. Inflammation (Apte).

**ପ୍ରପାଣି**—ସଂ. ବି. (ପ୍ର+ପାଣି)—୧ । କରତଳ, ହାତର ଲେଉଟ—
Prapāni 1. Palm of the hand.
୨ । ହାତର ଅଗ—2. The fore part of the hand.

**ପ୍ରପାତ**—ସଂ. ବିଣ. (ପ୍ର+ପତ୍ ଧାତୁ+କର୍ତ୍ତୃ. ଅ)—
Prapāta ଆଗକୁ ଲୁହୁଥିବା ବା ଡେଇଁଥିବା—
Leaping forward (Howells).
(ସଂ. ବି+ଅପାଦାନ ଅ)—୧ । ପର୍ବତର ଭୃଗୁଦେଶ; ପର୍ବତର ଉଚ୍ଚସ୍ଥାନ ବା ଅତଡ଼—1. Precipice; cliff of a hill; steep declivity.
୨ । ତୀର; କୂଳ—2. Bank; shore.
୩ । (+କର୍ତ୍ତୃ.ଅ) ନିର୍ଝର; ଝରଣା-3. Waterfall; cascade.
୪ । (+ଭାବ. ଅ)—ପତନ—4. Fall.

**ପ୍ରପାଥ**—ସଂ. ବି. (ତୁଳ. ଇଂ. ପାଥ୍)—ପଥ ରାସ୍ତା—
Prapātha A roadway (Apte).

**ପ୍ରପାଦିକ**—ସଂ. ବି—ମୟୂର—Peacock (Apte).
Prapādika

**ପ୍ରପାନ**—ସଂ. ବି. (ପ୍ର+ପାନ)—୧ । ପ୍ରପା (ଦେଖ)
Prapāna 1. Prapā (See)
୨ । ଘୋଡ଼ାର ଉପର ଓଠମାଣିର ନିମ୍ନଭାଗ—
2. The under part of a horse's upper lip (Apte).
୩ । ପଣା, ସରବତ୍—3. A sort of sweet drink.

**ପ୍ରପାନକ**—ସଂ. ବି. (ପ୍ରପାନ+ସ୍ୱାର୍ଥେ. କ)—ଖଣ୍ଡମସଲାଦି ମିଶ୍ରିତ
Prapānaka ପାନୀୟବିଶେଷ; ପଣା; ସରବତ୍—
A sort of sweet drink made of sugar and spices.

**ପ୍ରପିତାମହ**—ସଂ. ବି. ପୁଂ. (ପ୍ର+ପିତାମହ)—୧ । ପିତାମହଙ୍କ ପିତା—
Prapitāmaha 1. Paternal great grandfather.
(ପ୍ରପିତାମହୀ—ସ୍ତ୍ରୀ) ୨ । ସର୍ବଲୋକପିତାମହ; ବ୍ରହ୍ମା—
2. Brahmā.
୩ । ପରବ୍ରହ୍ମ—3. The Supreme Spirit (Apte).

୪ । କୃଷ୍ଣ—4 Krushna (Apte).

**ପ୍ରପିତୃବ୍ୟ**—ସଂ. ବି. ପୁଂ. (ପ୍ର+ପିତୃବ୍ୟ)—ପିତାଙ୍କ ପିତୃବ୍ୟ—
Prapitrubya Paternal grand uncle (Apte).

**ପ୍ରପୀଡ଼ନ**—ସଂ. ବି. (ପ୍ର+ପୀଡ଼ନ)—୧ । ଚିପା, ଚିପିବା—
Prapirdana 1. Pressing; squeezing
ପ୍ରପୀଡ଼ିତ } ବିଣ ୨ । ଉତ୍ପୀଡ଼ନ—
ପ୍ରପୀଡ଼କ } 2 Oppression; torture

**ପ୍ରପୀତ(ନ)**—ସଂ. ବିଣ. [ପ୍ର+ପୀତ (ନ)]—ଫୁଲିଥିବା—
Prapita(na) Swollen up; distended (Apte).

**ପ୍ରପୁତ୍ର**—ସଂ. ବି. ପୁଂ. (ପ୍ର+ପୁତ୍ର)—ପୌତ୍ର—
praputra One's son's son; grandson (Apte).
(ପ୍ରପୁତ୍ରୀ—ବିପରୀତ ଲିଙ୍ଗ, ପ୍ରପୁତ୍ରବଧୂ—ସ୍ତ୍ରୀ)

**ପ୍ରପୁନା(ନ୍ନା)ଟ(ଡ଼; ଲ)**—ସଂ. ବି—ଚକୁଣ୍ଡା (ଦେଖ)—
Prapunā(nnā)ta(rda; la) Chakundā (See) (Apte)

**ପ୍ରପୌଣ୍ଡରୀକ**—ସଂ. ବି. (ପ୍ର+ପୁଣ୍ଡରୀକ+ଅ)—୧ । ଔଷଧବୃକ୍ଷବିଶେଷ
Prapaundarika 1. A kind of medicinal plant
[ସ.ପର୍ଯ୍ୟାୟ—ଶୀତ,ଶ୍ରୀପୁଷ୍ପ, ପୁଣ୍ଡରୀ, ପୁଣ୍ଡର୍ଯ୍ୟ, ପୌଣ୍ଡରୀକ, ସୁପୁଷ୍ପ, ସାନୁଜ ଓ ଅନୁଜ] [ଦ୍ର—ଏହାର ମୂଳ ଔଷଧରେ ବ୍ୟବହୃତ । ଏହା ତିକ୍ତମଧୁର ରସ, ମଧୁରବିପାକ, ଶୀତଳ, ବର୍ଣ୍ଣକାରକ, ଶୁକ୍ରବର୍ଦ୍ଧକ, ନୟନ ହିତକାରକ ଏବଂ ପିତ୍ତ,ରକ୍ତ, ବ୍ରଣ, ଦାହ, ପିପାସା, ଜ୍ୱର ଓ ରକ୍ତପିତ୍ତରୋଗରେ ଉପକାରୀ ।]
ପୁଣ୍ଡରିଷା; ପୁଂଡରୀ
ପୁଂଡେରୀ
ମ—ପୁଣ୍ଡରୀକ
ତେ—ପୁଁଡ଼ରୀକମନ୍ନ, ଗେଦଧ୍ୟାନମ୍
୨ । ପଦ୍ମମୂଳ—2. Root stock of Nymphaea lotus.

**ପ୍ରପୌତ୍ର**—ସଂ. ବି ପୁଂ. (ପ୍ର+ପୌତ୍ର)—ପୁତ୍ରର ନାତି; ପୌତ୍ରର ପୁତ୍ର,
Prapautra ଅଣନାତି—Son's grandson; one's
(ପ୍ରପୌତ୍ରୀ—ବିପରୀତଲିଙ୍ଗ) agnatic great grandson.

**ପ୍ରଫୁଲ୍ତ**—ସଂ. ବିଣ. (ପ୍ର+ଫୁଲ୍ଲ ଧାତୁ+କର୍ତ୍ତୃ. ତ)—ପ୍ରଫୁଲ୍ଲ (ଦେଖ)—
Praphulta (ପ୍ରଫୁଲ୍ତି—ବି) Praphulla (See) (Apte).

**ପ୍ରଫୁଲ୍ଲ**—ସଂ. ବିଣ. (ପ୍ର+ଫୁଲ୍ଲ ଧାତୁ=ବିକଶିତ ହେବା+କର୍ତ୍ତୃ. ତ)—
Praphulla ୧ । ପ୍ରସ୍ଫୁଟିତ; ବିକଶିତ; ଫୁଟିଥିବା (ଫୁଲ)—
(ପ୍ରଫୁଲ୍ଲତା—ବିଶେଷ୍ୟ) 1. Full blown (as a flower); expanded; blooming.
୨ । ହସୁଥିବା; ହାସ୍ୟମୟ—2. Smiling; laughing.
୩ । ଉଜ୍ଜ୍ୱଳ—3. Shining; radiant.
୪ । ପ୍ରସନ୍ନ; ଆନନ୍ଦିତ—4. Pleased; gladdened; cheerful.
ଦେ. ବି—୧ । ପ୍ରଫୁଲ୍ଲତା (ଦେଖ)—
1. Praphullatā (See).
୨ । (ପୁଂ) ଲୋକଙ୍କୁ ଦିଆଯିବା ନାମ—
2 Name given to males.

**ପ୍ରଫୁଲ୍ଲ ଚିତ୍ତ**—ସଂ. ବି. (କର୍ମଧା. ପ୍ରଫୁଲ୍ଲ+ଚିତ୍ତ)—୧ । ହୃଷ୍ଟ ଚିତ୍ତ;
Praphulla chitta ଆନନ୍ଦିତ ମନ—[illegible]

ପ୍ରଫୁଲ୍ଲାନ୍ତଃକରଣ, ପ୍ରଫୁଲ୍ଲଚେତାଃ, ପ୍ରଫୁଲ୍ଲମନାଃ } ଅନ୍ୟରୂପ ୨ । ସନ୍ତୁଷ୍ଟ ମନ— 1. Glad heart; cheerful mind 2 Contented mind.

ସଂ. ବଣ. ପୁଂ. (ବହୁବ୍ରୀହି)—୧ । ସନ୍ତୁଷ୍ଟହୃଦୟ— 1. Contented.

ପ୍ରଫୁଲ୍ଲଚିତ୍ତା, ପ୍ରଫୁଲ୍ଲାନ୍ତଃକରଣା } —ସ୍ତ୍ରୀ ୨ । ହୃଷ୍ଟ, ଆନନ୍ଦିତ— 2 Cheerful, glad.

**ପ୍ରଫୁଲ୍ଲତା(ତ୍ୱ)**— ସଂ. ବ. [ ପ୍ରଫୁଲ୍ଲ+ଭାବାର୍ଥରେ ତା (ତ୍ୱ) ] Praphullatā(twa) ୧ । ବିକାଶ, ବିସ୍ତୃତି, ବିସ୍ତାର— (ପ୍ରଫୁଲ୍ଲ - ବଣ) 1. Expansion.

୨ । ଆହ୍ଲାଦ, ଉଲ୍ଲାସ, ହର୍ଷ— 2. Cheerfulness; gaiety, gladness.

**ପ୍ରଫୁଲ୍ଲ ନୟନ**- —ସଂ. ବ. (କର୍ମଧା, ପ୍ରଫୁଲ୍ଲ+ନୟନ) ହର୍ଷୋତ୍ଫୁଲ୍ଲ ଚକ୍ଷୁ Praphullanayana Beaming eyes; eyes sparkling (ପ୍ରଫୁଲ୍ଲନେତ୍ର, ପ୍ରଫୁଲ୍ଲଲୋଚନ - ଅନ୍ୟରୂପ) with gladness.

ପ୍ରଫୁଲ୍ଲନୟନା, ପ୍ରଫୁଲ୍ଲନେତ୍ରୀ, ପ୍ରଫୁଲ୍ଲଲୋଚନା } —ସ୍ତ୍ରୀ ସଂ. ବଣ. ପୁଂ– (ବହୁବ୍ରୀହି)— ହର୍ଷୋତ୍ଫୁଲ୍ଲ ନୟନଯୁକ୍ତ— With sparkling eyes.

**ପ୍ରଫୁଲ୍ଲବଦନ**— ସଂ ବ. (କର୍ମଧା; ପ୍ରଫୁଲ୍ଲ+ବଦନ)—ସହାସ୍ୟ ବା ପ୍ରସନ୍ନ ମୁଖ — Praphulla badana Beaming countenance, (ପ୍ରଫୁଲ୍ଲମୁଖ— ଅନ୍ୟରୂପ) smiling face.

ପ୍ରଫୁଲ୍ଲ ବଦନା, ପ୍ରଫୁଲ୍ଲମୁଖୀ } — ସ୍ତ୍ରୀ ସଂ. ବଣ. ପୁଂ (ବହୁବ୍ରୀହି) ସହାସ୍ୟମୁଖ— Smiling.

**ପ୍ରଫୁଲ୍ଲିତ**— ଗ୍ରା. ବଣ.(ସ. ପ୍ରଫୁଲ୍ଲ) —ପ୍ରଫୁଲ୍ଲ (ଦେଖ) Praphullita Praphulla (See).

**ପ୍ରଫେସର୍**—ବୈଦେ. ବ (ଇଂ ପ୍ରୋଫେସର୍) — ପ୍ରୋଫେସର୍; Praphesar କଲେଜର ଅଧ୍ୟାପକ— ପ୍ରୋଫେସାର୍ प्रोफेसार Professor.

**ପ୍ରବକ୍ତା**— ସ. ବ. ପୁଂ (ପ୍ର+ବକ୍ତୃ, ୧ମା. ୧ବ.)—୧ । ପ୍ରଗଲ୍ଭ ବକ୍ତା— Prabaktā 1. Orator.

(ପ୍ରବକ୍ତ୍ରୀ—ସ୍ତ୍ରୀ)— ୨ । ଶିକ୍ଷକ; ଗୁରୁ—2. Teacher.

୩ । ବ୍ୟାଖ୍ୟାକାରକ ବ୍ୟକ୍ତି—3. Propounder; annotator.

୪ । ଗଳ୍ପର ଉଦ୍ଭାବକ— 4. Originator of a story. (Howells)

୫ । ବେଦାଦିର ଉପଦେଶକ— 4. A person who devliers discourses on the Bedas.

ସଂ. ବଣ. ପୁଂ—ବକ୍ତୃତାକାରୀ—Lecturing.

**ପ୍ରବଗ**—ସଂ. ବ — ପକ୍ଷୀ (ହ୍ର. ଶ) (ଭୁଲ.ପ୍ଲବଗ) Prabaga Bird.

**ପ୍ରବଚନ**—ସଂ. ବ (ପ୍ର=ଉତ୍କୃଷ୍ଟ + ବଚନ)— ୧ । ସାଂସାରିକ ଅଭିଜ୍ଞତା- Prabachana ପୂର୍ଣ୍ଣ ଦେଶପ୍ରଚଳିତ ଆପ୍ତବଚନ; ପ୍ରବାଦ; ଜନଶ୍ରୁତି— 1. Tradition; wise sayings; proverbs; elegant sayings.

୨ । ଶାସ୍ତ୍ରବଚନ— 2. Sayings from scriptures; scriptural doctrines.

୩ । ନୀତିବାକ୍ୟ—3 Moral precepts.

୪ । ବ୍ୟାଖ୍ୟା କରି ଯାଇଥିବା ଧର୍ମବାଦ— 4. Propounded religious doctrine.

୫ । ବେଦାଦି ଈଶ୍ୱରମୁଖନିଃସୃତ ଶାସ୍ତ୍ର— 5. Holy treatise ( such as the Bedas ); the scriptures.

୬ । ଅଧ୍ୟାପନା—6. Instruction; teaching profession.

୭ । ଉତ୍କୃଷ୍ଟ ବକ୍ତୃତା—7 Excellent speech

୮ । ବାଗ୍ମିତା—8 Eloquence; oratory.

୯ । ବ୍ୟାଖ୍ୟାନ (ହ୍ର. ଶ)—9 Expounding; explaining.

୧୦ । ବେଦାଙ୍ଗ (ହ୍ର. ଶ) (ଦେଖ)—10 Bedānga (See)

**ପ୍ରବଚନ ପଟୁ**—ସ. ବଣ (୭ମୀ ତତ୍; ପ୍ରବଚନ+ପଟୁ)—୧ । ବାଗ୍ମୀ— Prabachana paṭu 1 Eloquent, elegant in (ପ୍ରବଚନ ପଟୁତା —ବ) speech.

୨ । ଆବଶ୍ୟକବେଳେ ଯେଉଁ ବ୍ୟକ୍ତି ପ୍ରବଚନମାନ ଉଦ୍ଧାର କରି ପାରନ୍ତି — 2 Expert in quoting proverbs.

**ପ୍ରବଞ୍ଚକ**—ସଂ. ବଣ ପୁଂ ( ପ୍ର+ବଞ୍ଚ୍ ଧାତୁ+କର୍ତ୍ତୃ ଅକ. )—ପ୍ରତାରକ, Prabañchaka ଶଠ, ଧୂର୍ତ୍ତ—Cheating; sly; deceitful, fraudulent. (ପ୍ରବଞ୍ଚିକା—ସ୍ତ୍ରୀ)

**ପ୍ରବଞ୍ଚନ(ନା)**—ସଂ. ବ [ ପ୍ର + ବଞ୍ଚନ (ନା)]—ପ୍ରତାରଣା, ଠକାମି— Prabañchana (nā) Cheating; deceit; fraud. (ପ୍ରବଞ୍ଚିତ—ବଣ)

**ପ୍ରବଞ୍ଚିତ**—ସଂ. ବଣ. ପୁଂ (ପ୍ର + ବଞ୍ଚିତ)— ପ୍ରତାରିତ, ଯେ ଠକାମିରେ Prabañchita ପଡ଼ିଥାଏ—Cheated; defrauded; (ପ୍ରବଞ୍ଚିତା— ସ୍ତ୍ରୀ) imposed upon.

**ପ୍ରବଞ୍ଚିବା** — ଦେ. କ୍ରି (ପଦ୍ୟ) (ସଂ. ପ୍ରବଞ୍ଚନ) — ପ୍ରତାରଣା କରିବା; Prabañchibā ଠକିବା—To cheat.

প্রবংচা ଯେ ଯାହା ଲୋଡେ ଭ.ବ ନ ମଁ ଲେ ଧାଡ଼ା
धोकादेना ପ୍ରବଞ୍ଚେ ପ୍ରାଣ ତାର ଅଶାର ମାୟା—ଉ. ସା

**ପ୍ରବଟ**—ସଂ. ବ— (ପ୍ର + ବଟ୍ ଧାତୁ= ବିଭାଗ କରିବା + କର୍ମ. ଅ,— Prabaṭa ଗୋଧୂମ, ଗହମ— Wheat.

**ପ୍ରବଣ** —ସଂ. ବଣ — (ପ୍ର+ବଣ୍ ଧାତୁ=ଶବ୍ଦ କରିବା: ନତ ହେବା+ Prabaṇa କର୍ତ୍ତୃ. ଅ)—୧ । ବକ୍ର—1. Curved.

(ପ୍ରବଣତା(ତ୍ୱ) —ବ ୨ । ନତ—2. Bowed; bent.

୩ । ବିନୀତ; ନମ୍ର—3. Humble; modest.

୪ । ଆସକ୍ତ; ରତ; ପ୍ରବୃତ୍ତ— 4. Attached to; devoted to; engaged in,

୫ । (ସମାସରେ) ପ୍ରକୃତି ବା ଅଭ୍ୟାସ ଅନୁସାରେ ଅସକ୍ତ— 5. Inclined; disposed to; prone to; habituated to.

[ଦ୍ର—ସମାସରେ ଏହି ଶବ୍ଦ ଅନ୍ୟ ଶବ୍ଦ ପରେ ବସି ବିଶେଷଣ ପଦ ସିଦ୍ଧ ହୁଏ ଯଥା—କ୍ରୋଧପ୍ରବଣ, ସ୍ନେହପ୍ରବଣ, ରଙ୍ଗପ୍ରବଣ ।]

୬ । ପୂର୍ଣ୍ଣ, ଯୁକ୍ତାଧିକାର—
6. Filled with; possessed of

୭ । କ୍ରମନମ୍ର; ଗଡ଼ାଣିଆ; ଢାଲୁ—7. Sloping.

୮ । ଅନୁକୂଳ—8 Favourable.

୯ । ପ୍ଲୁତ—9. Jumped; leaped; long

୧୦ । ଦୁର୍ବଳ, କୃଶ; କ୍ଷୀଣ—10. Weak; thin.

୧୧ । ତ୍ୱରିତ—11 Swift.

୧୨ । ଅଗ୍ରମୁଖ—12. Standing in front of or near.

୧୩ । ଶକ୍ତ; ପାରଗ—13. Able; powerful.

୧୪ । ନିପୁଣ—14 Skilful.

୧୫ । ଆୟତ୍ତ—15 Brought under control.

୧୬ । ପ୍ରଗୁଣ; ସରଳ—16. Straight.

୧୭ । ଉର୍ଦ୍ଧ୍ୱଦୃଷ୍ଟ—17 Looking upwards.

୧୮ । ଆହିତ; ନ୍ୟସ୍ତ, ସ୍ଥାପିତ—18. Placed; deposited,

୧୯ । ସ୍ନିଗ୍ଧ—19. Smooth.

୨୦ । ଅଧୀନ—20. Dependent.

୨୧ । ବଦାନ୍ୟ—21 Generous.

୨୨ । ବିନଷ୍ଟ—22. Decayed.

୨୩ । (ସ୍ନେହ ଆଦି ଦ୍ୱାରା) ପ୍ଲାବିତ—
23. Flooded with; steeped in.

୨୪ । ଉଦାର (ହି. ଶ)—24. Liberal-minded.

ସଂ. ବି—୧ । ଚତୁଷ୍ପଥ; ଚାରିଆଡ଼କୁ ବାଟଥିବା ଛକ—
1 A meeting of 4 roads.

୨ । ଉଦର—2 Belly.

୩ । ଢାଲୁ (ହି. ଶ)—3 A slope.

୪ । ପାହାଡ଼ର ପାଖ (ହି. ଶ)—
4. The side of a hill.

୫ । କ୍ଷଣ (ହି. ଶ)—5. Moment.

୬ । ଆହୁତି (ହି. ଶ)—
6. Oblation of ghee unto the fire,

୭ । ପର୍ବତର ଭୃଗୁ—7. Cliff.

**ପ୍ରବଣତା(ତ୍ୱ)**—[ପ୍ରବଣ+ଭାବାର୍ଥରେ ତା (ତ୍ୱ)]—୧ । ଅନୁକୂଳତା—
Prabanatā(twa) 1, Tendency.
(ପ୍ରବଣ—ଦେଖ) ୨ । କୌଣସି ବିଷୟ ପ୍ରତି ମନ ଢଳିବା; ଆସକ୍ତି; ଝୁଙ୍କ—2. Inclination; propensity; proneness.

୩ । ଅନୁରକ୍ତି—3. Attachment; devotion.

୪ । ନମ୍ରତା—4. Modest; humility.

୫ । ପୂର୍ଣ୍ଣତା—5 Saturity; fullness (Apte).

**ପ୍ରବତ୍ସ୍ୟତ୍ପତିକା**—ସଂ. ବି. ସ୍ତ୍ରୀ—ଯେଉଁ ନାୟିକାର ପତି ବା ନାଗର
Prabat-syat-patikā ବିଦେଶଙ୍କୁ ଯିବାର ଅଛି (ହି. ଶ)—
ପ୍ରବତ୍ସ୍ୟତ୍ପ୍ରେୟସୀ } —ଅନ୍ୟରୂପ A heroine (in fiction) whose
ପ୍ରବତ୍ସ୍ୟତ୍ଭର୍ତ୍ତୃକା } lover is shortly to go on a sojourn.

**ପ୍ରବଦନ**—ସଂ. ବି. (ପ୍ର+ବଦ୍ ଧାତୁ+ଭାବ. ଅନ)—ଘୋଷଣା(ହି.ଶ)—
Prabadana Publication; announcement.

**ପ୍ରବନ୍ଧ**—ସଂ. ବି (ପ୍ର+ବନ୍ଧ୍ ଧାତୁ=ବାନ୍ଧିବା; ରଚନା କରିବା+କର୍ମ. ଅ)—୧ । ସନ୍ଦର୍ଭ; ରଚନା—
Prabandha 1. Composition; essay.

୨ । ଧାରାବାହିକ ଉପାଖ୍ୟାନ—
2. A connected narrative; treatise.

୩ । ପରସ୍ପର ଅନ୍ୱୟଯୁକ୍ତ ବାକ୍ୟାବଳୀ—
3. Essay; words connected with each other.

୪ । ପ୍ରକୃଷ୍ଟ ବନ୍ଧନ—4. A close bond.

୫ । କୌଶଳ—5. Contrivance.

୬ । ଆରମ୍ଭ—6. Beginning.

୭ । କ୍ରମିକତା—7 Continuance; succession.

୮ । ପୂର୍ବାପର ସଙ୍ଗତି—9. Sequence.

୯ । ଯୋଜନା—9 Joining; uniting.

୧୦ । ଆୟୋଜନ—
10. Preparation; collection of meterials.

୧୧ । ବ୍ୟବସ୍ଥା, ବନ୍ଦୋବସ୍ତ—
11. Arrangement; settlement; disposition.

ଦେ. ବି—୧ । ଆଲୋଚନା—1. Discussion.

୨ । ସମ୍ବନ୍ଧ, ସମ୍ପର୍କ—2. Relation.

**ପ୍ରବନ୍ଧକାର**—ସଂ. ବି (ପ୍ରବନ୍ଧ+କୃ ଧାତୁ+କର୍ତ୍ତୃ. ଅ)—ରଚକ;
Prabandhakāra ସନ୍ଦର୍ଭର ରଚୟିତା—
Composer; essayist.

**ପ୍ରବନ୍ଧ ନୃତ୍ୟ**—ଦେ. ବି—ଅଙ୍ଗାଦିର ସୁକୌଶଳପୂର୍ଣ୍ଣ ଚାଳନା ସହ ନୃତ୍ୟ-
Prabandha nrutya ବିଶେଷ—A kind of dancing accompanied with tactful and graceful movements of the limbs.

ଗୀତ ରୁହାଇ କରନ୍ତାଥେ ବୋଇଲେ ନୋହିଲ ପ୍ରବନ୍ଧନୃତ୍ୟ—
ପ୍ରାଚୀ, ରହସ୍ୟମଞ୍ଜରୀ ।

**ପ୍ରବନ୍ଧ ମାଳା**—ସଂ. ବି. (୬ଷ୍ଠୀ ତତ, ପ୍ରବନ୍ଧ+ମାଳା)—ଏକତ୍ର ସନ୍ନି-
Prabandha mālā ବେଶିତ ପ୍ରବନ୍ଧସମୂହ—
A collection of essays,

ଦେ. ବି—ସ୍ୱର୍ଗୀୟ ମଧୁସୂଦନ ରାଓଙ୍କ କୃତ ଓଡ଼ିଆ ସାହିତ୍ୟର ଗଦ୍ୟ ପାଠ୍ୟପୁସ୍ତକବିଶେଷ—Name of an Oriya prose text book by the late Madhusudan Rao

**ପ୍ରବର**—ସଂ. ବି. (ପ୍ର+ବୃ ଧାତୁ=ବରଣ କରିବା+କର୍ମ. ଅ)—
Prabara ୧ । ଗୋତ୍ର ପ୍ରବର୍ତ୍ତକାଖ୍ୟ ମୁନି—
1. A sage who contributes to the continuance of a family or tribe.

୨ । ବଂଶଧର; ସନ୍ତତି—
2 Offspring; descendant.

୩ । ଗୋତ୍ର—3. Family; race; kindred.

୪ । ଏକପ୍ରକାର କଳାମୁଗ, ବରଗୁଡ଼ି—
4. A kind of black pulse.
୫ । ଆବରଣ ପାତ୍ର—5. A covering; lid.
୬ । ଅଗୁରୁ ଚନ୍ଦନ—
6. A fragrant wood; the aloe wood.
(ପ୍ରବରା—ସ୍ତ୍ରୀ) ସଂ. ବଣ—୧ । ଅତ୍ୟୁତ୍କୃଷ୍ଟ; ଶ୍ରେଷ୍ଠ—
1. Best; excellent; pre-eminent.
୨ । ମୁଖ୍ୟ; ପ୍ରଧାନ—2. Chief; principal

**ପ୍ରବରଣ**—ସଂ. ବ (ପ୍ର+ବରଣ)—ଦେବତାଙ୍କର ଆବାହନ (ହ୍ରି ଶ)—
Prabaraṇa Formal invokation or invitation extended to a Deity.

**ପ୍ରବରା**—ସଂ. ବଣ. ସ୍ତ୍ରୀ ( ପ୍ରବର+ଆ )—ପ୍ରବରର ସ୍ତ୍ରୀଲିଙ୍ଗ—
Prabarā Feminine of Prabara.
ସଂ. ବ—୧ । ଅଗୁରୁ ଚନ୍ଦନ (ହ୍ରି. ଶ.)—1. Aloe wood.
୨ । ଗୋଦାବରୀର ଉପନଦୀବିଶେଷ—
2. Name of tributary of the Godābarī river.
[ ଦ୍ର—ଏହାର ଅନ୍ୟ ନାମ ପଯ୍ୟୋଧରା । (ହ୍ରି. ଶ) ]

**ପ୍ରବର୍ତ୍ତ**—ସଂ. ବ. ( ପ୍ର+ବୃତ୍ ଧାତୁ+ଭାବ. ଅ )—୧ । ଆରମ୍ଭ—
Prabartta 1. Commencement.
୨ । କାର୍ଯ୍ୟରେ ହାତ ଦେବା—
2. Undertaking a work.

**ପ୍ରବର୍ତ୍ତକ**—ସଂ. ବଣ. ପୁଂ. ( ପ୍ର+ବୃତ୍ ଧାତୁ+କର୍ତ୍ତୃ. ଅକ )—
Prabarttaka ୧ । ପ୍ରବର୍ତ୍ତନକାରୀ; ଯେ ପ୍ରବର୍ତ୍ତାଏ—
(ପ୍ରବର୍ତ୍ତିକା—ସ୍ତ୍ରୀ) 1. Inducing; inciting.
୨ । ପ୍ରଦର୍ଶକ—
2 Indicating; leading; showing.
୩ । ପ୍ରଣେତା—
3. Composing, constructing.
୪ । ଯେ କୌଣସି ନୂତନ କର୍ମର ବା ବିଧିର ସୂତ୍ରପାତ କରେ—
4. Founding; starting; introducing a new institution or system.
ସଂ. ବ—୧ । ପ୍ରତିଷ୍ଠାତା ବ୍ୟକ୍ତି—1. Founder
୨ । ଉତ୍ତେଜକ ବ୍ୟକ୍ତି—2. Instigator.
୩ । ରଚକ—3. Composer; author.

**ପ୍ରବର୍ତ୍ତକ ଭେଦୁଆ**—ଦେ. ବ. ( ଆଧୁନିକ ବ୍ୟବହାର; ତୁଳ. ଇଂ. ଏଜେଣ୍ଟ ପ୍ରୋଭୋକେଟର )—
Prabarttaka bheduā
ଯେଉଁ ଭେଦୁଆ ଅପରାଧୀ ସଙ୍ଗେ ମିଶି ଅପରାଧୀକୁ ଅପରାଧ କରିବାକୁ ପ୍ରବର୍ତ୍ତାଏ—Agent provocator; a spy engaged to incite a person to commit some offence and then give the clue to the authorities

**ପ୍ରବର୍ତ୍ତନ(ନା)**—ସ. ବ. [ ପ୍ର+ବୃତ୍ ଧାତୁ ଣିଚ୍ ବର୍ତ୍ତି ଧାତୁ+ଭାବ. ଅନ+(ଆ) ]—୧ । ନିୟୋଜନ—
Prabarttana(nā)
1. Engaging; directing.
୨ । କୌଣସି କାର୍ଯ୍ୟ କରିବାକୁ କୌଣସି ବ୍ୟକ୍ତିକୁ ଉତ୍ତେଜିତ କରିବା; ପ୍ରେରଣା; ମତାଇବା—
2. Inducing; inciting; exciting; urging; stimulating; instigating.
୩ । ଆରମ୍ଭ; ସୂତ୍ରପାତ—
3 Beginning, starting; commencement.
୪ । ଚାଳନ—4 Setting in motion.

**ପ୍ରବର୍ତ୍ତୟିତା**—ସ. ବଣ. ପୁଂ. ( ପ୍ର+ବୃତ୍ ଧାତୁ ଣିଚ୍=ବର୍ତ୍ତି ଧାତୁ+ +କର୍ତ୍ତୃ. ତୃ; ୧ମା. ୧ବ )—
Prabarttayitā
(ପ୍ରବର୍ତ୍ତୟିତ୍ରୀ—ସ୍ତ୍ରୀ) ଯେ କୌଣସି ବିଷୟରେ ପ୍ରବୃତ୍ତ କରାଏ; ନିୟୋଜକ—Engaging; inciting; exciting; instigating.

**ପ୍ରବର୍ତ୍ତା(ର୍ତ୍ତେ)ଇବା**—ଦେ. କ୍ରି—('ପ୍ରବର୍ତ୍ତିବା'ର ଣିଜନ୍ତ ରୂପ)—
Prabarttā(rtte)ibā ୧ । କୌଣସି କାର୍ଯ୍ୟ କରିବାକୁ
प्रवर्त्तान **प्रवर्त्ताना** ଉତ୍ତେଜିତ କରାଇବା; ମତାଇବା—
(ବିପରୀତ—ନିବର୍ତ୍ତାଇବା) 1. To urge; to induce; to incite.

ପ୍ରଥମ ଯୁଗେ ଶୁକ୍ଳ ବର୍ଣ୍ଣେ
ମୁହିଁ ପ୍ରବର୍ତ୍ତାଇଲି ଜନେ । ଜଗନ୍ନାଥ, ଭାଗବତ ।

୨ । ନିୟୋଜିତ କରିବା—2 To cause to be engaged in a work; to employ.
୩ । କୌଣସି ନୂତନ କାର୍ଯ୍ୟ ପ୍ରଥମେ ଆରମ୍ଭ କରିବା—
3. To introduce a new matter or thing.
୪ । ଫୁସୁଲାଇବା—4. To inveigle

**ପ୍ରବର୍ତ୍ତା ପ୍ରବର୍ତ୍ତି**—ଦେ. ବ. ( ସଂ. ପ୍ରବର୍ତ୍ତନ )—
Prabarttā prabartti ୧ । ମତାମତି; କୌଣସି ବ୍ୟକ୍ତିକୁ
प्रवर्त्ताप्रवर्त्ति କୌଣସି କାର୍ଯ୍ୟ କରିବାକୁ ମତାଇବା—
1. Instigating; influencing.
୨ । ଫୁସୁଲାଇବା—2. Inveigling.
୩ । ରାଜି କରାଇବା—
3. Successfully inducing.

**ପ୍ରବର୍ତ୍ତିତ**—ସ. ବଣ. ( ପ୍ର+ବୃତ୍ ଧାତୁ ଣିଚ୍ ବର୍ତ୍ତି ଧାତୁ+କର୍ମ. ତ )—
Prabarttita ୧ । ଉତ୍ତେଜିତ—1. Incited; instigated; influenced.
(ପ୍ରବର୍ତ୍ତନ—ବ)
୨ । ଉତ୍ସାହିତ—2. Encouraged; stimulated.
୩ । ନିୟୋଜିତ—
3. Engaged; deputed; commissioned.
୪ । ଜ୍ଞାପିତ—4 Informed; apprised.
୫ । ପ୍ରେରିତ; ପରିଚାଳିତ—
5. Guided; led; driven.
୬ । ଆରବ୍ଧ—6 Commenced; begun.
୭ । ଚାଳିତ—7. Set in motion; started.
୮ । ପ୍ରତ୍ୟାବର୍ତ୍ତିତ—8. Caused to return.
୯ । ଉତ୍ପାଦିତ; ଜାତ—9. Generated.

**ପ୍ରବର୍ତ୍ତିବା**—ଦେ. କ୍ରି. ( ସଂ. ପ୍ରବର୍ତ୍ତନ )—
Prabarttibā ୧ । କୌଣସି କାର୍ଯ୍ୟ କରିବାକୁ ପ୍ରବୃତ୍ତ ହେବା
**ପ୍ରବର୍ତ୍ତା ପ୍ରବର୍ତ୍ତନା** ବା ମାତିବା—1 To be engaged in doing a work.
(ନବର୍ତ୍ତିବା—ବିପରୀତ)

ରତ ଉପରେ ଅତ ଅସକତ ହେଲେ
ତାଙ୍କ ସଙ୍ଗେ ପ୍ରବର୍ତ୍ତି ପ୍ରାଣ ହରାଇଲେ । କୃଷ୍ଣସିଂହ. ମହାଭାରତ. ଅଦ ।

୨ । କୌଣସି କାର୍ଯ୍ୟରେ ମନ ଲଗାଇବା—
2 To set one's mind on a work; to be bent on.

କ୍ରମେ ପ୍ରବର୍ତ୍ତି ହେଲୁ ଶ୍ରମୀ । ପ୍ରାଚୀ ନର୍ଗୁଣମାହାତ୍ମ୍ୟ ।

୩ । ଲାଗିବା, ଖଟିବା—3. To apply
( ଯଥା—ଏ ବିଷୟରେ ମୋଟାରେ ଦୋଷ ପ୍ରବର୍ତ୍ତିବ ନାହିଁ । )

୪ । ଜନ୍ମିବା, ଉତ୍ପାଦିତ ହେବା—
4. To be born; to be created or produced.

୫ । ଘଟିବା—5 To happen.

ଯାହାଙ୍କଠାରୁ କାର୍ଯ୍ୟ କାରଣ ଏ ଦୃଶ
ବିସ୍ତାର ଜନ୍ମ ମୃତ୍ୟୁ ପ୍ରବର୍ତ୍ତି ଅଛି ନସ୍ତ । କୃଷ୍ଣସିଂହ. ମହାଭାରତ ଅଦ ।

୬ । କୌଣସି କାର୍ଯ୍ୟ ଆରମ୍ଭ କରିବା; କାମରେ ହାତ ଦେବା—
6. To undertake or start a work

୭ । ଆରବ୍ଧ ହେବା—7. To be commenced or begun; to be introduced, to begin.

ଏ ରୂପେ ଯଜ୍ଞନେ ରଜା ପ୍ରବର୍ତ୍ତିଲ । କୃଷ୍ଣସିଂହ. ମହାଭାରତ ବନ ।

୮ । ବୃଦ୍ଧି କରିବା; ବଢ଼ାଇବା—8. To increase.

ତା ଦେଖି ଦେବତାଏ ଦନ୍ତେ ନବର୍ତ୍ତାଇ
କହୁଲେ ବଡିଲ ସେ ତେଜ ପ୍ରବର୍ତ୍ତଇ । କୃଷ୍ଣସିଂହ. ମହାଭାରତ ବନ ।

୯ । ବିଦିତ ହେବା; ପ୍ରକାଶିତ ହେବା, ଖ୍ୟାତ ହେବା—
9. To be published; to be known.

ହଂସ ହୋଇଣ ଯାହା ପ୍ରଶସ୍ତି ଅଛି ପ୍ରବର୍ତ୍ତି । ଉପେ. ବୈଦେହୀଶବିଳାସ ।

**ପ୍ରବର୍ତ୍ତେଇ ଦେବା**—ଗ୍ରାଦେ. (ଯାଜପୁର) କ୍ରି—ବାଣ୍ଟି ଦେବା—
Prabarttei debā To distribute.
( ଯଥା—ଏ ସଭାରେ ପାନ ପ୍ରବର୍ତ୍ତେଇ ଦିଅ । )
ଦେ. କ୍ରି—ପ୍ରବର୍ତ୍ତାଇବା ( ଦେଖ )
Prabarttāibā ( See )

**ପ୍ରବର୍ଦ୍ଧକ**—ସଂ. ବିଣ. ପୁଂ ( ପ୍ର+ବୃଧ୍ ଧାତୁ+କର୍ତ୍ତୃ. ଅକ )—
Prabarddhaka ଯେ ବଢ଼ାଏ—Increasing.
(ପ୍ରବର୍ଦ୍ଧିକା—ସ୍ତ୍ରୀ)

**ପ୍ରବର୍ଦ୍ଧନ**—ସଂ. ବି. ( ପ୍ର+ବର୍ଦ୍ଧନ )—୧ । ପ୍ରତିପାଳନ—
Prabardhana 1. Bringing up
(ପ୍ରବର୍ଦ୍ଧିତ—ବିଣ) ୨ । ବଢ଼ାଇବା—2. Augmenting; enlargement.
ସଂ. ବିଣ ପୁ—ଯେ ବଢ଼ାଏ—Augmenting; increasing.

**ପ୍ରବର୍ଦ୍ଧମାନ**—ସଂ ବିଣ. (ପ୍ର+ବର୍ଦ୍ଧମାନ)—ବିଶେଷରୂପେ ବଢ଼ୁଥିବା—
Prabarddhamāna Increasing rapidly.

**ପ୍ରବର୍ଦ୍ଧିତ**—ସଂ ବିଣ. (ପ୍ର+ବର୍ଦ୍ଧିତ; ପ୍ରବୃଦ୍ଧିର ଣିଜନ୍ତରୂପ)—
Prabarddhita ୧ । ବିଶେଷରୂପେ ବର୍ଦ୍ଧିତ—
(ପ୍ରବର୍ଦ୍ଧନ—ବି) 1 Much increased; augmented.
୨ । ପ୍ରତିପାଳିତ; ଯାହାକୁ ଅନ୍ୟ ଲୋକ ଯତ୍ନପୂର୍ବକ ପାଳି ବଢ଼ାଇ ଥାଏ—2. Brought up with care.

**ପ୍ରବର୍ଷଣ**—ସଂ. ବି. (ପ୍ର+ବର୍ଷଣ)—୧ । ବୃଷ୍ଟି; ବର୍ଷା—
Prabarshana 1. Rain.
୨ । ଶ୍ରୀରାମ ଓ ଲକ୍ଷ୍ମଣ ବାସ କରିଥିବା କିଷ୍କିନ୍ଧ୍ୟା ନିକଟସ୍ଥ ପର୍ବତ—
2. Name of a mountain near Kishkindhyā

**ପ୍ରବଳ**—ସଂ. ବିଣ. (ବହୁବ୍ରୀହି, ପ୍ର=ପ୍ରଚୁର+ବଳ)—୧ । ଅତି
Prabaḷa ବଳବାନ୍; ପ୍ରଭୂତ ବିକ୍ରମଶାଳୀ, ବଳୁଆ—
(ପ୍ରବଳା—ସ୍ତ୍ରୀ) (ପ୍ରବଳତା,ପ୍ରାବଲ୍ୟ—ବି) 1. Mighty; very strong.
୨ । ଅତ୍ୟନ୍ତ କ୍ଷମତାଶାଳୀ—2. Very influential.
୩ । ଯୁକ୍ତିଯୁକ୍ତ; ଯୁକ୍ତିସଙ୍ଗତ—3. Valid, cogent.
୪ । ପୂର୍ଣ୍ଣରୂପେ କ୍ଷମତା ବା ଆଧିପତ୍ୟ ବିସ୍ତାର କରୁଥିବା—
4. Predominant; preponderating; getting the upper hand; having mastery.
୫ । ଭୟାନକ, ଉଗ୍ର—5. Frightful; violent.
୬ । ଅତ୍ୟଧିକ; ପ୍ରଭୂତ—6. Excessive; very great.
୭ । ଘୋଟିଥିବା—7. Prevalent, pervading
୮ । ଅକାଟ୍ୟ (ଯୁକ୍ତି)—
8. Unanswerable, unrebuttable.

**ପ୍ରବଳତା(ତ୍ୱ)**—ସଂ. ବି. (ପ୍ରବଳ+ତା)—୧ । ଶକ୍ତିମତ୍ତ୍ୱ, ବଳଶାଳିତା
Prabaḷatā(twa) 1. Mightiness; powerfulness
୨ । କୌଣସି ସ୍ଥାନରେ ରୋଗ ଆଦି ଘୋଟିଯିବା ଅବସ୍ଥା—
2. Predominance; prevalence.
୩ । ଏକାଧିପତ୍ୟ—Mastery.
୪ । ଅତ୍ୟାଧିକ୍ୟ—4. Excess.

**ପ୍ରବଳ ପରାକ୍ରମ**—ସଂ. ବି (କର୍ମଧା, ପ୍ରବଳ+ପରାକ୍ରମ)—
Prabaḷa parākrama ଅତ୍ୟନ୍ତ କ୍ଷମତା—Great power.
(ପ୍ରବଳ ପ୍ରତାପ, ପ୍ରବଳ ବିକ୍ରମ—ଅନ୍ୟରୂପ)
ସଂ. ବିଣ. ପୁଂ (ବହୁବ୍ରୀହି)—ବିଶେଷ ବିକ୍ରମଶାଳୀ—
Very mighty or powerful
(ପ୍ରବଳ ପରାକ୍ରମା; ପ୍ରବଳ ପ୍ରତାପା, ପ୍ରବଳବିକ୍ରମା—ସ୍ତ୍ରୀ)

**ପ୍ରବଳ ପରାକ୍ରମୀ**—ସଂ. ବିଣ. ପୁଂ—ବିଶେଷ କ୍ଷମତାଶୀଳ; ଅତ୍ୟନ୍ତ ଶକ୍ତିଶାଳୀ—Very powerful; mightiest.
Prabaḷa parākramī
ପ୍ରବଳ ପରାକ୍ରାନ୍ତ, ପ୍ରବଳ ପ୍ରତାପାନ୍ୱିତ ପ୍ରବଳ ପ୍ରତାପୀ, ପ୍ରବଳ ବିକ୍ରମୀ } ଅନ୍ୟରୂପ

**ପ୍ରବଳ ହେବା**—ଦେ. କ୍ରି.—ଘୋଟିଯିବା—
Prabaḷa hebā 1. To predominate; to prevail.
୨ । ନିଜର ଆଧିପତ୍ୟ ବା ଶକ୍ତି ବିସ୍ତାର କରିବା—
2. To preponderate; to spread one's power or influence.

**ପ୍ରବଳା(ଳେ)ଇବା**—ଦେ. (ପଦ୍ୟ) କ୍ରି. (ସଂ. ପ୍ରବଳ ଶବ୍ଦରୁ ଓଡ଼ିଆ ନାମ
Prabaḷā(ḷe)ibā ଧାତୁ; ଣିଜନ୍ତ)—ବିଶେଷ ଗର୍ବରେ ବା ଉଦ୍ଧତ୍ୟପୂର୍ବକ ଅନୁରୋଧ କରିବା; ଜିଦ୍ କରିବା, ବଳାଇବା—
To insist.

ଭୃତ୍ୟେ ତପାଇଁ ମତେ ଏବେ ପ୍ରବଳାଇ,
କରୁଛ ବଳିଯିବା କାଳ ହୋଇ ନାହିଁ । କୃଷ୍ଣସିଂହ ମହାଭାରତ ବନ ।

**ପ୍ରବଲାକ୍ଷୀ**—ସଂ. ବି. ପୁଂ—୧ । ମୟୂର (ହି. ଶ)—
Prabalāki 1. Peacock.
(ପ୍ରବଲାକ୍ଷୀ—ସ୍ତ୍ରୀ) ୨ । ସର୍ପ (ହି. ଶ.)—2. Serpent.

**ପ୍ରବଲାନୁରାଗ**—ସଂ. ବି. (କର୍ମଧା, ପ୍ରବଲ+ଅନୁରାଗ)—ଅତ୍ୟନ୍ତ ସ୍ନେହ
Prabalānurāga ବା ଆସକ୍ତି—Excessive attachment

**ପ୍ରବଳିବା**—ଦେ. (ପଦ୍ୟ) କ୍ରି. (ସଂ. ପ୍ରବଲ ଶବ୍ଦରୁ ଓଡ଼ିଆ ନାମ ଧାତୁ)—
Prabalibā ୧ । ପ୍ରବୃତ୍ତ ହେବା—1. To be engaged
ସର ପର୍ଯ୍ୟନ୍ତ ଯାହାକୁ ମିଳଇ,
ଯେ ସୁଖେ ତା ଭୋଜନେ ପ୍ରବଳଇ । କବିସୂର୍ଯ୍ୟ, କଳାକଲ୍ଲୋଳ ।
୨ । ପ୍ରବଳ ହେବା; ବୃଦ୍ଧି ପାଇବା—
2. To increase.
୩ । ଘୋଟିବା, ଏକାଧିପତ୍ୟ ବିସ୍ତାର କରିବା—
3. To predominate; to have mastery.
ବିବେକ ତ ଟଳୁଥିବ, ଲଜ୍ଜ ତ ପ୍ରବଳୁଥିବ ।
କବିସୂର୍ଯ୍ୟ ସଙ୍ଗୀତ ।

**ପ୍ରବସଥ**—ସଂ. ବି. (ପ୍ର+ବସ୍ ଧାତୁ+ଭାବ. ଅଥ)—୧ । ପ୍ରସ୍ଥାନ(ହି. ଶ)
Prabasatha 1. Going away.
୨ । ପ୍ରବାସ (ହି. ଶ.)—Sojourn.

**ପ୍ରବସନ**—ସଂ. ବି. (ପ୍ର+ବସ୍ ଧାତୁ+ଭାବ. ଅନ)—୧ । ବିଦେଶରେ
Prabasana ବାସ କରିବା (ହି. ଶବ୍ଦସାଗର)—
1. Living abroad; sojourning.
୨ । ବାହାରକୁ ଯିବା—2. Going out; issuing forth.

**ପ୍ରବହ**—ସଂ. ବି. (ପ୍ର+ବହ୍ ଧାତୁ+କର୍ତ୍ତୃ. ଅ)—୧ । ସ୍ରୋତ, ପ୍ରବାହ—
Prabaha 1. Current.
୨ । ସପ୍ତ ବାୟୁର ଅନ୍ତର୍ଗତ ବାୟୁବିଶେଷ—2. One of the seven winds spread over the universe.
[ଦ୍ର—ଏ ବାୟୁ ଆବହ ବାୟୁର ଉପରେ ଅବସ୍ଥିତ ଓ ଜ୍ୟୋତିଷ୍କ ଏ ବାୟୁରେ ଚଳୁ ଅଛନ୍ତି (ହି. ଶ.) ।]
୩ । (+ଭାବ. ଅ) ଗୃହନଗରାଦିରୁ ବହିର୍ଗମନ—
3 Going out of a house or town.
୪ । (+କର୍ତ୍ତୃ. ଅ) ଅଗ୍ନିର ସପ୍ତ ଜିହ୍ୱା ମଧ୍ୟରୁ ଏକ (ହି. ଶ)—
4. One of the seven tongues of fire.
୫ । (+ଅଧିକରଣ ବା କର୍ମ. ଅ) ଯେଉଁକୁଣ୍ଡ ମଧ୍ୟକୁ ନାଳ ଆଦି ଦ୍ୱାରା ଜଳ ଯାଏ (ହି. ଶ)—5. A cistern which is filled up by water flowing through a drain.
୬ । (ପ୍ର+ବହ) ପ୍ରଖର ସ୍ରୋତ—6. Strong current.

**ପ୍ରବହଣ**—ସଂ. ବି (ପ୍ର+ବହ୍ ଧାତୁ+କରଣ. ଅନ)—୧ । ଜଳଯାନ—
Prabahana 1 A conveyance over water.
୨ । ଆଚ୍ଛାଦନ ବା ପରଦାଯୁକ୍ତ ଯାନ; ଖଟିଆ, ଡୋଲି—
2. A covered conveyance; a litter with hangings.
୩ । (+ଭାବ. ଅନ) ସ୍ରୋତ; ପ୍ରବାହ—3. Current
୪ । ନେଇ ଚାଲିଯିବା (ହି. ଶ)—4. Carrying away.
୫ । (+କର୍ତ୍ତୃ. ଅନ, ନାବ; ଡଙ୍ଗା (ହି. ଶ)—5. Boat.
୬ । (+ଅଧିକରଣ. ଅନ) କନ୍ୟାକୁ ବିବାହ ଦେବା (ହି. ଶ)—
6. Giving a daughter in marriage.

**ପ୍ରବହ୍ଲି(ହ୍ଲୀ)**—ସଂ. ବି (ପ୍ର+ବହ୍ଲ ଧାତୁ=କହିବା+କର୍ମ. ଇ,+ସ୍ତ୍ରୀ.
Prabahli (hli) ଈ)—ପ୍ର[illegible]ଳିକା; ପହଲୀ, ଗାଁଢ଼ଆ—
(ପ୍ରବହ୍ଲିକା—ଅନ୍ୟରୂପ) A riddle; an enigma; a conundrum

**ପ୍ରବାଚ**—ସଂ ବି (ପ୍ର+ବଚ୍ ଧାତୁ+କର୍ମ. ଅ)—୧ । ଘୋଷଣା—
Prabācha 1. Declaration; announcement;
(ପ୍ରବାଚ୍ୟ—ବିଣ) proclamation (Howells);
(ପ୍ରବାଚନ—ଅନ୍ୟରୂପ) ୨ । ଉତ୍ତମରୂପେ କହିବା—
2. Speaking excellently, oratory.
୩ । ଉତ୍କୃଷ୍ଟ ବକ୍ତୃତା—3. An excellent speech; oration.

**ପ୍ରବାଚକ**—ସଂ. ବିଣ. ପୁଂ (ପ୍ର+ବାଚକ)—ଘୋଷଣାକାରୀ—
Prabāchaka Announcing; proclaiming
(ପ୍ରବାଚିକା—ସ୍ତ୍ରୀ) (Howells).
(ପ୍ରବାକ—ଅନ୍ୟରୂପ) ସଂ ବି. ପୁଂ—୧ । ଘୋଷଣାକାରୀ ବ୍ୟକ୍ତି—
1. Proclaimer.
୨ । ଶ୍ରେଷ୍ଠ ବକ୍ତା । (ହି.ଶ)—2. An excellent preacher, orator.

**ପ୍ରବାଣି(ଣୀ)**—ସଂ. ବି (ପ୍ର+ବେ ଧାତୁ=ଲୁଗା ବୁଣିବା+କରଣ. ଅନ+ଇ (ଈ)—ତନ୍ତୀର ମାକୁ ବା କଣ୍ଡା, ତନ୍ତ ଶଲାକା—A weaver's shuttle.
Prabāni (nī)

**ପ୍ରବାତ**—ସଂ. ବି (ପ୍ର+ବା ଧାତୁ+କର୍ତ୍ତୃ. ତ)—୧ । ପ୍ରବଳ ବାୟୁ—
Prabāta 1. Strong wind.
୨ । (+ଭାବ. ତ) ପବନର ଝୁଙ୍କ (ହି. ଶ)—2. Gust of wind.
୩ । (+ଅଧିକରଣ. ତ) ଯେଉଁଠାରେ ଖୁବ୍ ପବନ ବହୁଥାଏ (ହି.ଶ)
3. A place where the wind blows strongly; a windy place.
୪ । ଢାଲୁ; ପ୍ରବଣ—(ହି.ଶ)—4. A slope.
ସଂ. ବିଣ—(ପ୍ର+ବାତ) ବାୟୁଦ୍ୱାରା ଆନ୍ଦୋଳିତ (ହି.ଶ)—
Shaken or rocked by wind.

**ପ୍ରବାଦ**—ସଂ. ବି (ପ୍ର+ବଦ୍ ଧାତୁ+କର୍ମ. ଅ)—୧ । ପରମ୍ପରାଗତ
Prabāda ବାକ୍ୟ; ଜନଶ୍ରୁତି—1. Tradition.
୨ । ପ୍ରବଚନ—2. Proverb.
୩ । ଉଡ଼ାକଥା; ଜନରବ—3. A rumour; a report.
୪ । ନିନ୍ଦା; ଦୁର୍ନାମ, ଅପବାଦ—4. Defamation.
୫ । ପରସ୍ପର କଥୋପକଥନ, କଥାବାର୍ତ୍ତା—
5. Discourse; conversation; dialogue.

**ପ୍ରବାଦ ବଚନ**—ସଂ. ବି—ପ୍ରବଚନ, ଢଗ—
Prabāda bachana A proverb; a traditional saying.
(ପ୍ରବାଦ ବାକ୍ୟ—ଅନ୍ୟରୂପ)

ସାଧାରଣ ଲେଖେ ଅପର ପୃଷ୍ଠାରେ ପୃଥକ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତ ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରା ଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ସ୍ଥାନାନ୍ତରରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଉକ୍ତ ସ୍ଥାନରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ' ନ ମିଳିଲେ 'ଗାଢ଼' ଖୋଜିବେ, କୃଅ ନ ମିଳିଲେ 'କୂଅ' ଦେଖିବେ, 'ବଥ୍' ନ ପାଇଲେ 'ବଝ' ଦେଖିବେ, ଅର୍ଘ୍ୟ ନ ପାଇଲେ 'ଅର୍ଘ' ଦେଖିବେ; 'ଅଲବଟ' ନ ପାଇଲେ 'ଅଲ୍‌ବଟ' ଦେଖିବେ

**ପ୍ରବାର**—ସଂ. ବି. (ପ୍ର+ବୃ ଧାତୁ+କର୍ତ୍ତୃ. ଅ) ୧ । ପ୍ରବର (ଦେଖ)—
Prabāra 1. Prabara (See)
୨ । (+କରଣ. ଅ) ବସ୍ତ୍ର, ଲୁଗା—2. Cloth.
୩ । ଉତ୍ତରୀୟ—(ହି ଶ)—3 Sheet.
୪ । ଆଚ୍ଛାଦନ; ଘୋଡ଼ଣୀ (ହି. ଶ)—4. Covering.

**ପ୍ରବାରଣ**—ସଂ. ବି. (ପ୍ର+ବାରଣ)—୧ । ନିଷେଧ (ହି ଶ)—
Prabāraṇa 1. Prohibition
୨ । କାମ୍ୟ ଦାନ; କୌଣସି ଫଳ କାମନାରେ କରାଯିବା ଦାନ (ହି.ଶ)—2. A gift made with some end in view.
୩ । ବର୍ଷାଋତୁ ଅନ୍ତେ ଅନୁଷ୍ଠିତ ବୌଦ୍ଧମାନଙ୍କ ଉତ୍ସବବିଶେଷ (ହି.ଶ)—3 A Buddhist festival observed after the rains.

**ପ୍ରବାଳ**—ସଂ. ବି (ପ୍ର+ବଲ୍ ଧାତୁ+କର୍ତ୍ତୃ. ଅ)—୧ । ଉପରତ୍ନବିଶେଷ;
Prabāḷa ବିଦ୍ରୁମ; ପୋହଳା ('ପୋହଳା' ତଳେ ନୋଟ୍ ଦେଖ)—1. Coral.
୨ । ଅଙ୍କୁର; ବୃକ୍ଷର ନବୀନ ପଲ୍ଲବ ବା ଶାଖା; ନୂଆ ହୋଇ ବାହାରି ଆସୁଥିବା ଡାଳ ବା ପତ୍ର—
ପ୍ରବାଳ ପଟୋଳ ଅଧର ବିମ୍ବ ଜିତ ଦେଖ ଠାବେ ଠାବେ ।
ରାଧାନାଥ. ଚାନ୍ଦୀ ।
2. Young shoot or leaves of a tree; a sprout.
୩ । ବୀଣାଦଣ୍ଡ—3. The body or shaft of a harp.

**ପ୍ରବାଳ କୀଟ**—ସଂ. ବି—ଯେଉଁ କୀଟମାନଙ୍କ କଙ୍କାଳ ପୋହଳା ଅଟେ—
Prabāḷa kīṭa Coral insect.

**ପ୍ରବାଳ ଦ୍ୱୀପ**—ଦେ. ବି—ପ୍ରବାଳ କୀଟମାନଙ୍କର କଙ୍କାଳ ସ୍ତୂପଦ୍ୱାରା
Prabāḷa dwipa ରଚିତ ଦ୍ୱୀପ—Coral island.

**ପ୍ରବାସ**—ସଂ. ବି—(ପ୍ର+ବାସ)—୧ । ନିଜ ଦେଶ ଛଡ଼ା ଅନ୍ୟ
Prabāsa ଦେଶରେ ବହୁକାଳ ଅବସ୍ଥାନ—1. Staying abroad; sojourn; temporary residence in a foreign land.
୨ । ବିଦେଶ—
2. A foreign country; a strange place.

**ପ୍ରବାସ କରିବା**—ଦେ. କ୍ରି—ବିଦେଶରେ ଯାଇ ରହିବା—
Prabāsa karibā To stay abroad.
ପ୍ରବାସକରନା परदेश करना

**ପ୍ରବାସନ**—ସଂ. ବି—୧ । (ପ୍ର+ବସ୍ ଧାତୁ. ଣିଚ୍=ବାସି ଧାତୁ+ଭାବ.
Prabāsana ଅନ)—ନିର୍ବାସନ, କୌଣସି ବ୍ୟକ୍ତିକୁ ବିଦେଶକୁ ପଠାଇବା—1. Sending a person abroad; exiling a person.
ପ୍ରବାସିତ } ବିଣ
ପ୍ରବାସ୍ୟ }
୨ । (ପ୍ର+ବସ୍ ଧାତୁ+ଭାବ. ଅ) ବିଦେଶରେ ବାସ କରିବା—
2. Living in a foreign land; sojourning.
୩ । ମାରଣ; ବଧ; ହତ୍ୟା—
3. Killing; slaughter.

**ପ୍ରବାସିଆ**—ଦେ. ବିଣ—(ସଂ. ପ୍ରବାସୀ)—ପ୍ରବାସୀ (ଦେଖ)—
Prabāsiā Prabāsī (See).
ପରଦେଶୀ परदेशी

**ପ୍ରବାସିତ**—ସଂ. ବିଣ—(ପ୍ର+ବସ୍ ଧାତୁ ଣିଜନ୍ତ ବାସି ଧାତୁ+କର୍ମ.
Prabāsita ତ)—୧ । ନିର୍ବାସିତ—
1. Exiled; expatriated.
୨ । ହତ—2. Slaughtered

**ପ୍ରବାସୀ**—ସଂ ବିଣ. ପୁଂ—(ପ୍ରବାସ+ଇନ୍, ଅଥବା ପ୍ର+ବସ୍ ଧାତୁ+
Prabāsī କର୍ତ୍ତୃ. ଇନ୍; ୧ମା. ୧ବ)—ଯେ ପ୍ରବାସରେ ଥାଏ;
(ପ୍ରବାସିନୀ—ସ୍ତ୍ରୀ) ପ୍ରୋଷିତ—Sojourning; living abroad.
ପରଦେଶୀ ଦେ. ବି—୧ । ପ୍ରବାସୀ ବ୍ୟକ୍ତି—
परदेशी 1. A sojourner
୨ । ବିଦେଶରୁ ଆସି ବାସ କରିଥିବା ବ୍ୟକ୍ତି—
2. A stranger.
୩ । ଯେଉଁ ବ୍ୟକ୍ତି ଅନ୍ୟ ଲୋକର ଘରେ ବସା କରିଥାଏ—
3. A lodger.

**ପ୍ରବାସ ପତ୍ନୀ**—ଦେ. ବି.—(ରସିକତାମୟ ବ୍ୟଙ୍ଗବଚନ; ନିଜ ଘରେ
Prabāsa patnī ଥିବା ସମୟରେ ସ୍ତ୍ରୀ ପାକ କରୁଥିବାରୁ)—ପ୍ରବାସ ବାସ ସମୟରେ ନିଯୁକ୍ତ ପାଚକ, ସୁଆର—
A cook who cooks for a person in sojourn.

**ପ୍ରବାସ୍ୟ**—ସଂ. ବିଣ. ପୁଂ—(ପ୍ର+ବସ ଧାତୁ ଣିଚ୍+କର୍ମ. ଯ)—
Prabāsya ୧ । ଯାହାକୁ ନିର୍ବାସିତ କରିବା ଉଚିତ—
(ପ୍ରବାସ୍ୟା—ସ୍ତ୍ରୀ) 1 Deserving to be exiled.
୨ । ଯାହାକୁ ନିର୍ବାସିତ କରାଯିବ—
2. About to be exiled.

**ପ୍ରବାହ**—ସଂ ବି—(ପ୍ର+ବହ୍ ଧାତୁ+କର୍ତ୍ତୃ. ଅ)—୧ । ସ୍ରୋତଃ;
Prabāha ଜଳଧାରା—1. Current; stream; flow.
୨ । ଧାରା; ଶ୍ରେଣୀ—
2. Series; continuous line.
୩ । ଅବିଚ୍ଛେଦ ଗତି—
3. Continuous motion.
୪ । ଚିନ୍ତାସ୍ରୋତଃ—
4. Continuous train of thought (Howells).
୫ । ପ୍ରବୃତ୍ତି—
5. Activity; engagement; action.
୬ । ବିସ୍ତାର—
6. Circulation; promulgation; extent.
୭ । ପରମ୍ପରାଗତ ବ୍ୟବହାର, ପରମ୍ପରା ରୀତି—
7. Usage; traditional custom.
୮ । ଅବିଚ୍ଛିନ୍ନତା; ଧାରାବାହିକତା—
8. Continuity; unbroken succession.

| ୯ | ଇ | ଡ | ର,ହ | ଝ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | କ | ଶ,ସ | କ୍ଷ | ଇସ୍ | ଉଅ | ଉ |
|---|---|---|---|---|---|---|---|---|---|---|---|---|---|---|
| ୬ | ଈ | ଡ଼ | ଋ | ଳ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ୟ | ଙ୍ | ଇଅ | ୱ | ନ୍ତ |

୯ । ଦ୍ରୁତଗାମୀ ଘୋଟକ—9. A swift horse.
୧୦ । ପୁଷ୍କରିଣୀ—10. A pond; tank.

**ପ୍ରବାହକ**—ସଂ. ବି—୧ । (ବିଜ୍ଞାନ ପରିଭାଷା; ପ୍ର+ବହ୍ ଧାତୁ ଣିଚ୍+ କର୍ତ୍ତୃ. ଅକ)—ଯାହା ତାପ ବା ବିଦ୍ୟୁତ୍‌କୁ ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ଚଳିବାରେ ବାଧା ଦିଏ ନାହିଁ—
Prabāhaka
1 Conductor (of heat or electricity).
୨ । ରାକ୍ଷସ (ହି. ଶ)—2 Demon, fiend.
(ପ୍ରବାହିକା—ସ୍ତ୍ରୀ) ସଂ. ବିଣ. ପୁଂ—ଯାହା ଉତ୍ତମରୂପେ ବହନ କରିପାରେ—Able to carry well

**ପ୍ରବାହିକା**—ସଂ. ବି—(ପ୍ର+ବହ୍ ଧାତୁ ଣିଜନ୍ତ ବାହି ଧାତୁ+କର୍ତ୍ତୃ. ଅକ+ସ୍ତ୍ରୀ. ଆ)—ଗ୍ରହଣୀ ରୋଗ, ଉଦରାମୟ; ଶୂଳା ଝାଡ଼ା—Diarrhœa
Prabāhikā
ସଂ. ବିଣ. ସ୍ତ୍ରୀ—ପ୍ରବାହକର ସ୍ତ୍ରୀଲିଙ୍ଗ—
Feminine of Prabāhaka

**ପ୍ରବାହିତ**—ସଂ. ବିଣ—(ପ୍ରବାହ+ଇତ)—୧ । ଧାରାବାହିକ—
Prabāhita 1. Successive.
୨ । ଧାରରେ ବହିଯାଉ ଥିବା—
2. Flowing; running.
୩ । ପ୍ରବାହବିଶିଷ୍ଟ; ସ୍ରୋତୋବିଶିଷ୍ଟ—
3. Having a current.
୪ । ଯାହାକୁ ବୁହାଇ ନିଆଯାଇ ଅଛି—
4. Carried; borne.
୫ । ସ୍ରୋତଃ ଦ୍ୱାରା ବାହିତ (ଜଳାଦି)—
5. (water) Made to flow in a current,

**ପ୍ରବାହିନୀ**—ସଂ. ବିଣ. ସ୍ତ୍ରୀ—(ପ୍ର+ବହ୍ ଧାତୁ+କର୍ତ୍ତୃ. ଇନ୍+ସ୍ତ୍ରୀ. ଈ)—
Prabāhinī ପ୍ରବାହୀର ସ୍ତ୍ରୀଲିଙ୍ଗ—Feminine of Prabāhī.
ସଂ. ବି. ସ୍ତ୍ରୀ—ସ୍ରୋତସ୍ୱିନୀ; ନଦୀ—River.

**ପ୍ରବାହୀ**—ସଂ. ବିଣ—(ପ୍ରବାହ+ଇନ୍; ୧ମା. ୧ବ)—୧ । ଯାହା ବହିଯାଉଥାଏ—1. Flowing.
Prabāhī
(ପ୍ରବାହିନୀ—ସ୍ତ୍ରୀ) ୨ । ପ୍ରବାହବିଶିଷ୍ଟ; ସ୍ରୋତସ୍ୱାନ୍—
2. Having a current
୩ । ଯେ ବୋହି ନିଏ—3 Carrying away.
୪ । ତରଳ (ହି. ଶ)—4. Liquid.
୫ । (ସ୍ତ୍ରୀ) ( ପ୍ରବାହ+ଈ )—ବାଲୁକା (ହି. ଶ.)—
5. Sand,

**ପ୍ରବାହୁ**—ସଂ. ବି. (ପ୍ର+ବାହୁ)—କହୁଣିର ନିମ୍ନଭାଗ—
Prabāhu The lower part of the elbow.

**ପ୍ରବିଗ୍ରହ**—ସଂ. ବି. (ପ୍ର+ବିଗ୍ରହ)—ସନ୍ଧିଭଙ୍ଗ (ହି. ଶ)—
Prabigraha Infringement of a treaty,

**ପ୍ରବିଚୟ**—ସଂ. ବି. (ପ୍ର+ବି+ଚି ଧାତୁ+ଭାବ. ଅ)—
Prabichaya ୧ । ଅନୁସନ୍ଧାନ (ହି. ଶ)—
1. Inquiry; quest.
୨ । ପରୀକ୍ଷା (ହି. ଶ)—2. Test; examination.

**ପ୍ରବିଦାରଣ**—ସଂ. ବି. (ପ୍ର+ବିଦାରଣ)—୧ । ପୂର୍ଣ୍ଣରୂପେ ବିଦାରଣ—
Prabidārana 1. A complete tearing.
୨ । ଯୁଦ୍ଧ (ହି. ଶ)—2. Fight; war.

**ପ୍ରବିଭକ୍ତ**—ସଂ. ବିଣ. (ପ୍ର+ବିଭକ୍ତ)—୧ । ବହୁଧା ବିଭକ୍ତ—
Prabibhakta 1. Divided into many parts.
(ପ୍ରବିଭକ୍ତିତ—ଣିଜନ୍ତ ନିଷ୍ପନ୍ନ ରୂପ) ୨ । ବଣ୍ଟାଯାଇ ଥିବା—
2. Partitioned.

**ପ୍ରବିର**—ସଂ. ବି—ପୀତକାଷ୍ଠ; ଏକପ୍ରକାର ଚନ୍ଦନ (ହି. ଶ)—
Prabira A kind of yellow sandal wood.

**ପ୍ରବିଲସିବା**—ଦେ. (ପଦ୍ୟ) କ୍ରି (ସଂ. ପ୍ର+ବି+ଲସ ଧାତୁ)—
Prabilasibā ୧ । ଶୋଭା ପାଇବା; ସୁନ୍ଦର ଦିଶିବା—
ପ୍ରବିଲାସା 1. To look beautiful.
୨ । ଝକଝକ ଦିଶିବା—2. To shine
ଗୁରୁତଳକ ପ୍ରବଳସେ ଅଳକ ମୃଗ କି ରଜନୀକର । ପ୍ରାଚୀ. ଇସବାରିଧା

**ପ୍ରବିଷା**—ସଂ. ବି—ମନ୍ଦୁରା; ଅତିବିଷା (ଦେଖ) (ହି. ଶ)—
Prabishā (ପ୍ରତିବିଷା—ଅନ୍ୟରୂପ) Aconite.

**ପ୍ରବିଷ୍ଟ**—ସଂ. ବିଣ. (ପ୍ର+ବିଶ୍ ଧାତୁ+କର୍ତ୍ତୃ. ତ)—
Prabishta ୧ । ଯାହା ଭିତରକୁ ପ୍ରବେଶ କରିଅଛି—
(ପ୍ରବେଶିତ—ଣିଜନ୍ତନିଷ୍ପନ୍ନ ରୂପ) 1. Entered into; gone into.
୨ । ନିଯୁକ୍ତ; ଅଭିନିବିଷ୍ଟ—
2. Engaged in; occupied with.
୩ । ଅନ୍ତର୍ଗତ—3 Internal.

**ପ୍ରବୀଣ**—ସଂ. ବିଣ. (ପ୍ର+ବୀଣ୍ ଧାତୁ ଣିଚ୍=ବୀଣି ଧାତୁ=ବୀଣା ବଜାଇବା +ଅ)—୧ । ଅଭିଜ୍ଞ, ବିଜ୍ଞ; ବହୁଦର୍ଶୀ—
Prabina
(ପ୍ରବୀଣା—ସ୍ତ୍ରୀ) 1. Experienced.
ପ୍ରବୀଣତା, ପ୍ରବୀଣତ୍ୱ, ପ୍ରବୀଣ୍ୟ } ବି
୨ । ଦକ୍ଷ; ନିପୁଣ; କୁଶଳ—
2. Skilful; versed in; proficient.
୩ । ପଟୁ, ବିଶେଷଜ୍ଞ—3. Expert.
୪ । ପ୍ରାଚୀନ—4. Old.
୫ । ସୁପକ୍ୱ—5. Ripe; matured.
୬ । ଚତୁର—6. Clever
୭ । ବାକ୍‌ପଟୁ; ବାଗ୍ମୀ—7. Eloquent.
୮ । କୃତୀ; ବିଦ୍ୱାନ୍—8. Learned; well versed.
୯ । ଆନନ୍ଦିତ—9. Delighted.
୧୦ । ସୁଖୀ—10. Happy.
ସଂ. ବି—ଉତ୍ତମ ଗାୟକ ବା ବାଦକ (ହି. ଶ)—
An excellent singer or musician.

**ପ୍ରବୀର**—ସଂ. ବି. (ପ୍ର+ବୀର)—୧ । ଶ୍ରେଷ୍ଠ ବୀର—
Prabira 1. Great hero.
୨ । (ନାମ) ଭୌତ୍ୟମନୁଙ୍କର ଏକ ପୁତ୍ର (ହ୍ରି. ଶ)—
2. Name of a son of Bhautya Manu
୩ । (ନାମ) ମାହିଷ୍ମତୀ ରାଜ୍ୟର ରାଜା ନୀଳଧ୍ୱଜ ଓ ରାଣୀ ଜ୍ୱାଳାଙ୍କ ପୁତ୍ର—3. Name of a prince of Māhishmati
[ ଦ୍ର—ଏହାଙ୍କ ବିଷୟ ଜୈମିନି ମହାଭାରତରେ ଉଲ୍ଲିଖିତ ହୋଇଅଛି କିନ୍ତୁ ବ୍ୟାସଦେବଙ୍କ ମହାଭାରତରେ ନାହିଁ । ଯୁଧିଷ୍ଠିରଙ୍କ ଅଶ୍ୱମେଧ ଯଜ୍ଞଘୋଟକ ମାହିଷ୍ମତୀ ନଗରୀରେ ପହଞ୍ଚିବା ବେଳେ ପ୍ରବୀର ବନ୍ଧୁ ସ୍ତ୍ରୀଙ୍କ ସହିତ ଉପବନରେ କ୍ରୀଡ଼ା କରୁଥିଲେ । ଜଣେ ପ୍ରେୟସୀ ମଦନମଞ୍ଜରୀର ଅନୁରୋଧରେ ରାଜକୁମାର ଉକ୍ତ ଘୋଡ଼ାକୁ ଧରି ରଖିଲେ । ଏଥିରେ ଅର୍ଜୁନଙ୍କ ସଙ୍ଗେ ନୀଳଧ୍ୱଜ ରାଜାଙ୍କର ଘୋର ଯୁଦ୍ଧ ହେଲା । ନୀଳଧ୍ୱଜ ହାରିଲେ । ସୂର୍ଯ୍ୟଦେବ ନୀଳଧ୍ୱଜଙ୍କ ଜାମାତା ଥିଲେ । ସୂର୍ଯ୍ୟଙ୍କ ପରାମର୍ଶରେ ନୀଳଧ୍ୱଜ ଉକ୍ତ ଘୋଡ଼ାକୁ ଅର୍ଜୁନଙ୍କୁ ଫେରାଇ ଦେବାକୁ ଉଦ୍ୟତ ହେବାରୁ ରାଣୀ ଜ୍ୱାଳା ତାଙ୍କୁ ବହୁତ ଧିକ୍କାରିଲେ ଓ ଅର୍ଜୁନଙ୍କ ସଙ୍ଗେ ଯୁଦ୍ଧ କରିବାକୁ ସ୍ୱାମୀଙ୍କୁ ଉତ୍ତେଜିତ କଲେ । ଯୁଦ୍ଧରେ ପ୍ରବୀର ହତ ହେଲେ ଓ ନୀଳଧ୍ୱଜ ଅର୍ଜୁନଙ୍କୁ ଘୋଡ଼ା ଲେଉଟାଇ ଦେଲେ । ଏଥିରେ ଜ୍ୱାଳା କ୍ରୁଦ୍ଧା ହୋଇ ସ୍ୱାମୀଙ୍କ ଗୃହ ତ୍ୟାଗ କରି ନିଜ ଭାଇଙ୍କ ଘରକୁ ଗଲେ । ଭାଇମାନେ ତାଙ୍କୁ ତଡ଼ିଦେବାରୁ ଜ୍ୱାଳା ନୌକାରେ ଗଙ୍ଗା ପାରି ହୋଇ ଗଙ୍ଗାକୂଳରେ ରହିଲେ ଓ ଗଙ୍ଗାଙ୍କୁ କହିଲେ;--ଅର୍ଜୁନ ତୁମ ପୁଅ ଭୀଷ୍ମଙ୍କୁ ମାରିପକାଇଲେ, ଏଥିରେ ତୁମର ପ୍ରତିହିଂସା ହେଲା ନାହିଁ । ଗଙ୍ଗା ଦେବୀ ଏହା ଶୁଣି ଅର୍ଜୁନଙ୍କ ପ୍ରତି କ୍ରୁଦ୍ଧା ହୋଇ ଅଭିଶାପ ଦେଲେ ଯେ, ୬ ମାସ ମଧ୍ୟରେ ଅର୍ଜୁନଙ୍କ ମୁଣ୍ଡକାଟି ହେବ । ଏହା ଶୁଣି ଜ୍ୱାଳା ପ୍ରସନ୍ନା ହେଲେ ଓ ସେ ଅଗ୍ନିରେ ଝାସ ଦେଲେ ଏବଂ ଅର୍ଜୁନଙ୍କ ବଧାର୍ଥ ତୀକ୍ଷ୍ଣବାଣର ରୂପ ଧାରଣ କରି ବଭ୍ରୁବାହନଙ୍କ ତୂଣୀରରେ ଯାଇ ରହିଲେ—ହ୍ରି. ଶ । ]
ସଂ. ବିଣ. ପୁଂ. (ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ ହେଲେ; ଯଥା—ଭୁରୁ ପ୍ରବୀର)—ବୀରମାନଙ୍କ ମଧ୍ୟରେ ଶ୍ରେଷ୍ଠ—Very heroic; distinguished amongst warriors.

**ପ୍ରବୁଦ୍ଧ**—ସଂ. ବିଣ. (ପ୍ର+ବୁଧ୍ ଧାତୁ+କର୍ତ୍ତୃ. ତ)—
Prabuddha ୧ । ଜ୍ଞାନବାନ୍; ଜ୍ଞାନୀ—1. Wise
(ପ୍ରବୋଧିତ—ଣିଜନ୍ତ ବିଶେଷ ରୂପ) ୨ । ପ୍ରଫୁଲ୍ଲ; ପ୍ରସ୍ଫୁଟିତ; ବିକସିତ—
2. Expanded; full blown.
୩ । ଜାଗରିତ; ଚେଇଁଉଠିଥିବା—
3. Wakened; awake.
୪ । ସାବଧାନ—4. Wary; cautious.
ସଂ. ବି. ପୁଂ. (ନାମ)—ଭାଗବତୋକ୍ତ ଋଷଭଦେବଙ୍କର ଏକପୁତ୍ର—Name of a son of Rushabha deba.

**ପ୍ରବୃତ୍ତ**—ସଂ. ବିଣ. (ପ୍ର+ବୃତ୍ ଧାତୁ+କର୍ତ୍ତୃ. ତ)—୧ । ନିଯୁକ୍ତ—
Prabrutta 1. Engaged in; occupied with.
(ପ୍ରବୃତ୍ତି—ବି) ୨ । କୌଣସି କାର୍ଯ୍ୟରେ ବ୍ୟାପୃତ—
(ପ୍ରବର୍ତ୍ତିତ—ଣିଜନ୍ତ ବିଶେଷ ରୂପ) 2. Busy (with any work.
୩ । ରତ—3. Addicted to.
୪ । (କୌଣସି କର୍ମ) ଆରମ୍ଭ କରିଥିବା (ବ୍ୟକ୍ତି)—
(ପ୍ରବୃତ୍ତା—ସ୍ତ୍ରୀ) 4. Setting about (to do an act)
୫ । (+କର୍ମ. ତ) ଆରବ୍ଧ—
5. Commenced; undertaken; begun.
୬ । ଉତ୍ପନ୍ନ—6. Produced.
୭ । ପ୍ରଚଳିତ—7 Made current; promulgated.
୮ । ପ୍ରବୃତ୍ତିବିଶିଷ୍ଟ—8. Having inclination; eager.
୯ । ପ୍ରକୃଷ୍ଟ ପଥବିଶିଷ୍ଟ—9. Having excellent roads; well furnished with roads.
୧୦ । ନିର୍ଦ୍ଧାରିତ—10. Settled.
୧୧ । (+କର୍ତ୍ତୃ. ତ) ଉଦ୍ୟତ—
11. Ready; preparad to do any act.

**ପ୍ରବୃତ୍ତ ହେବା**—ଦେ. କ୍ରି (ସ. ପ୍ରବୃତ୍ତ)—୧ । କୌଣସି କାର୍ଯ୍ୟ କରିବାକୁ
Prabrutta heba ମନ ବଳାଇବା—1. To be bent on
(ନିବୃତ୍ତହେବା—ବିପରୀତ) doing a work.
ପ୍ରବୃତ୍ତହଓୟା **प्रवृत्तहोना** ୨ । କୌଣସି କାର୍ଯ୍ୟ କରିବାକୁ ଆରମ୍ଭ କରିବା—2 To set about doing something.
୩ । ଉଦ୍ୟତ ହେବା—3 To be ready to do something.

**ପ୍ରବୃତ୍ତି**—ସ. ବି (ପ୍ର+ବୃତ୍ ଧାତୁ+ଭାବ. ତି)—୧ । ଇଚ୍ଛା—
Prabrutti 1. Desire; wish.
( ନିବୃତ୍ତି—ବିପରୀତ ) ୨ । ଝୁଙ୍କ; ପ୍ରବଣତା—
2. Inclination.
୩ । କୌଣସି ବିଷୟ ପ୍ରତି ଅତ୍ୟଧିକ ଅନୁରକ୍ତି—
3. Addiction (to any thing).
୪ । କୌଣସି କାର୍ଯ୍ୟ ପ୍ରତି ଅନୁରାଗ; ଝୁଙ୍କୀ—
4. Tendency; predilection; propensity.
୫ । ( ନ୍ୟାୟ ) କାର୍ଯ୍ୟ କରିବାକୁ ଯତ୍ନ—
5. Activity or occupation ( as opposed to contemplation).
୬ । ଅଧ୍ୟବସାୟ ସହକାରେ ଅନୁଧାବନ—
6. Prosecution of an object with perseverance.
୭ । ଅଧ୍ୟବସାୟ—7. Perseverance.
୮ । ବ୍ୟାପାର—8, Any operation; any matter.
୯ । ଉଦନ୍ତ; ବାର୍ତ୍ତା; ସମ୍ବାଦ—
9. Tidings; news; intelligence.
୧୦ । ସ୍ରୋତ, ପ୍ରବାହ—10 Current; flow.
୧୧ । କାର୍ଯ୍ୟାରମ୍ଭ—11. Commencement of a work; undertaking.
[ଦ୍ର—ବାକ୍ୟ, ବୁଦ୍ଧି ଓ ଶରୀର ଦ୍ୱାରା କୌଣସି କାର୍ଯ୍ୟର ଆରମ୍ଭକୁ ପ୍ରବୃତ୍ତି ବୋଲାଯାଏ; ରାଗ ଦ୍ୱେଷାଦି ଷଡ୍‌ରିପୁ ମନୁଷ୍ୟ ମନରେ

କାର୍ଯ୍ୟରେ ପ୍ରବୃତ୍ତି ଜନ୍ମାନ୍ତି । ଯେଉଁ କାଯ୍ୟ ଦ୍ୱାରା ମନୁଷ୍ୟର ଇଷ୍ଟ ସାଧନ ହୁଏ ତାହା କରିବାକୁ ମନୁଷ୍ୟ ମନରେ ପ୍ରବୃତ୍ତି ଜନ୍ମେ ଓ ଯଦ୍ଦ୍ୱାରା ଦ୍ୱିଷ୍ଟ ସାଧନ ହୁଏ ତହିଁରୁ ମନୁଷ୍ୟ ମନରେ ନିବୃତ୍ତି ଜନ୍ମେ । ]

୧୨ । ( +କର୍ତ୍ତୃ. ତି ) ହସ୍ତିମଦ—
12, The juice exuded from elephant's temples.

୧୩ । ଗତି—13. Speed; motion; course.

୧୪ । ଉତ୍ପତ୍ତି—14. Production; birth.

୧୫ । ଉତ୍ତେଜନା—15. Excitement.

୧୬ । ଆଚରଣ; ବ୍ୟବହାର—
16. Practice; conduct.

୧୭ । ( ଗଣିତ ) ଗୁଣକ—
17 ( arithmetic) The multiplier.

ଗ୍ରା. ବି—ହାଇଜା; ବିସୂଚିକା—Cholera.
( ଯଥା— ସେ ଗାଁରେ ୪ ଜଣ ହେଲା ପ୍ରବୃତ୍ତି ପଡ଼ିଛି । )

**ପ୍ରବୃତ୍ତିଜ୍ଞ**—ସଂ. ବିଣ. ପୁଂ ( ପ୍ରବୃତ୍ତି+ଜ୍ଞା ଧାତୁ+କର୍ତ୍ତୃ. ଅ)—
Prabruttijna ଖବର ଜାଣିଥିବା ( ବ୍ୟକ୍ତି )—
( ପ୍ରବୃତ୍ତିଜ୍ଞା—ସ୍ତ୍ରୀ ) Knowing the news (Howells)

ସଂ. ବି. ପୁଂ—୧ । ସମ୍ବାଦବାହକ; ଦୂତ—
1. Messenger; emissary.

୨ । ଚର—2. Spy ( Howells ).

**ପ୍ରବୃତ୍ତି ମାର୍ଗ**—ସଂ., ବି. (୬ଷ୍ଠୀ ତତ୍; ପ୍ରବୃତ୍ତି+ମାର୍ଗ)—୧ । ସଂସାରର
Prabrutti marga ପଥ, ସାଂସାରିକ କାର୍ଯ୍ୟର ମାର୍ଗ—
(ନିବୃତ୍ତିମାର୍ଗ—ବିପରୀତ) 1. The ways of the world; attachment to worldly concerns.

୨ । ସାଂସାରିକ କାର୍ଯ୍ୟ କରିବାଦ୍ୱାରା ଯୋଗସାଧନ ବା ମୁକ୍ତିଲାଭର ପ୍ରଣାଳୀ—2. Mode of attaining salvation by doing worldly acts.

**ପ୍ରବୃଦ୍ଧ**—ସଂ. ବିଣ. (ପ୍ର+ବୃଧ୍ ଧାତୁ=ବୃଦ୍ଧି ପାଇବା+କର୍ତ୍ତୃ. ତ)—
Prabruddha ୧ । ବିଶେଷରୂପେ ବୃଦ୍ଧି ପ୍ରାପ୍ତ—
(ପ୍ରବୃଦ୍ଧି, ପ୍ରବର୍ଦ୍ଧନ—ବି) 1. Enlarged; greatly
(ପ୍ରବର୍ଦ୍ଧିତ—ଣିଜନ୍ତସମ୍ପନ୍ନ ରୂପ) increased; augmented.

୨ । ବଢ଼ି ଥିବା (ନଦୀ; ଜଳ ଆଦି)—
2. Inundated; flooded.

ବନ୍ଧ ଲଙ୍ଘ ପ୍ରବୃଦ୍ଧ ସଲିଳ ସଦୃଶ ରହି ।
ଉକ୍ତ. ବୈଦେହୀଶବିଳାସ ।

୩ । ଫୁଲି ଥିବା—3. Swollen.

୪ । ବହୁ ବିସ୍ତୃତ—4. Spread out over a large extent; expanded.

୫ । ଗର୍ବିଷ୍ଠିତ—5. Arrogant; haughty (Apte).

୬ । ଖୁବ୍ ବଡ଼—6. Very large; gigantic.

୭ । ଭୟଙ୍କର—7. Violent (Apte)

୮ । ପୂର୍ଣ୍ଣତାପ୍ରାପ୍ତ—8 Full grown (Apte).

୯ । ଗଭୀର—9 Deep (Apte).

ସଂ. ବି.—୧ । ତରବାରିର ଏକ କସରତ୍ (ହି ଶ.)—
1. A kind of sword-play

[ଦ୍ର—ଏଥିରେ ତରବାରିର ମୁନଦ୍ୱାରା ଶତ୍ରୁର ଶରୀର ସ୍ପର୍ଶ କରାଯାଏ—(ହି. ଶ.) ।]

୨ । (ନାମ) ରାଜା ରଘୁଙ୍କର ଏକ ପୁତ୍ର—
2, Name of a son of king Raghu.

[ଦ୍ର—ଏ ଗୁରୁଙ୍କ ଅଭିଶାପରେ ୧୨ ବର୍ଷ କାଳ ରାକ୍ଷସ ହୋଇଥିଲେ (ହି. ଶ.) ।]

**ପ୍ରବେକ**—ସଂ. ବିଣ.—୧ । ଅତି ଉତ୍କୃଷ୍ଟ —
Prabeka 1 Most excellent (Apte).

୨ । ପ୍ରଧାନ (ହି. ଶ.)—2. Chief

୩ । ଅତି ଉତ୍ତମ—3. Best; choicest (Apte).

**ପ୍ରବେଟ**—ସଂ. ବି (ପ୍ର+ବିଟ୍ ଧାତୁ=ଶବ୍ଦ କରିବା+କର୍ତ୍ତୃ. ଅ)—
Prabeta ଯବ—Barley.

**ପ୍ରବେଣି(ଣୀ)**—ସଂ. ବି (ପ୍ର+ବେଣ୍ ଧାତୁ+ଗମନ କରିବା+କର୍ତ୍ତୃ.ଇ)-
Prabeni(ni) ୧ । କେଶର ବେଣୀ; କେଶବିନ୍ୟାସ—
1. Braid of hair.

୨ । ହସ୍ତୀପୃଷ୍ଠର ରଙ୍ଗିନ୍ ଆସ୍ତରଣ —
2 A coloured covering laid over the back of an elephant.

୩ । (ନାମ) ମହାଭାରତୋକ୍ତ ନଦୀବିଶେଷ—
3. Name of a river of ancient India.

**ପ୍ରବେତା**—ସଂ. ବି. ପୁଂ. (ପ୍ରବେତୃଶବ୍ଦ ୧ମା. ୧ବ)—ସାରଥୀ—
Prabeta Charioteer, driver of a car.

**ପ୍ରବେଲ**—ସଂ. ବି—ହଳଦିଆ ମୁଗ, ସୁନା ମୁଗ—
Prabela A kind of yellow cereals

**ପ୍ରବେଶ**—ସଂ ବି. (ପ୍ର+ବିଶ୍ ଧାତୁ=ଭିତରକୁ ଯିବା+ଭାବ. ଅ)—
Prabesa ୧ । ଅନ୍ତର୍ନିବେଶ, ଭିତରକୁ ଯିବା—1. Entry;
ପ୍ରବିଷ୍ଟ } ବିଣ going inside; entrance; ingress;
ପ୍ରବେଶ୍ୟ } admission; introduction.

୨ । ଭିତରକୁ ଗଳିଯିବା, ପଶିଯିବା—2. Penetration.

୩ । କୌଣସି ବିଷୟରେ ବିଶେଷରୂପେ ନିବିଷ୍ଟ ହେବା—
3. Deep engagement in any matter.

୪ । ଶାସ୍ତ୍ରାଦିରେ ଅଧିକାର ବା ପଟୁତା—
4 Proficiency in any branch of learning.

୫ । (+କରଣ. ଅ) ବାଟ; ପଥ—5. Way; path.

ଦେ. ବି—ଭୂତ ଓ ଦେବତାଆଦିଙ୍କର ମନୁଷ୍ୟଠାରେ ଆବେଶ-
Being possessed by a spirit or Deity.

ଗ୍ରା. ବିଣ— (ସଂ. ପ୍ରବିଷ୍ଟ)—ପ୍ରବିଷ୍ଟ (ଦେଖ)—
Prabishta (See).

**ପ୍ରବେଶକ**—ସଂ. ବିଣ. (ପ୍ର+ବିଶ୍ ଧାତୁ+କର୍ତ୍ତୃ. ଅକ)—
Prabesaka ୧ । ପ୍ରବେଶକାରୀ; ଅଭ୍ୟନ୍ତରଗାମୀ—
(ପ୍ରବେଶିକା—ସ୍ତ୍ରୀ) 1. Going inside; entering; penetrating.

୨ । ଯାହା ପୂର୍ବରୁ ସୂଚନା ଦିଏ—2. Introductory.
୩ । ପ୍ରଥମ—3. First.
୦ । ଯାହା ପ୍ରବିଷ୍ଟ କରାଏ—
4. Causing to enter; thrusting.
ସଂ. ବି— ନାଟକରେ ପରବର୍ତ୍ତୀ ଅଙ୍କର ପ୍ରସ୍ତାବନାସ୍ୱରୂପ ପାତ୍ର ଦ୍ୱାରା କଥିତ ଅଂଶବିଶେଷ, ବିଷ୍କମ୍ଭକ—
An introductory monologue introducing the subject of the next act or scene in a play.

**ପ୍ରବେଶ କରିବା**—ଦେ. କ୍ରି— ୧ । ଭିତରକୁ ଯିବା—
Prabesa kariba 1. To enter into.
୨ । ଉପସ୍ଥିତ ହେବା—2. To arrive at.
(ପ୍ରବେଶ ହେବା—ଅନ୍ୟରୂପ) ୩ । ଅଭିନିବେଶପୂର୍ବକ ବିଚାର କରିବା—3. To consider with attention.
୪ । ଉତ୍ତମରୂପେ ବୁଝିବା—4 To understand well.

**ପ୍ରବେଶନ**—ସଂ. ବି— ୧ । (ପ୍ର+ବିଶ୍ ଧାତୁ+କରଣ. ଅନ)—
Prabesana ପ୍ରଧାନ ଦ୍ୱାର; ସିଂହଦ୍ୱାର—
ପ୍ରବେଶିତ } ବିଣ 1. Chief entrance, lion's gate.
ପ୍ରବେଶନୀୟ
୨ । (+ଭାବ. ଅନ) ପ୍ରବେଶ କରିବା—2 Entering.
୩ । (ପ୍ର+ବିଶ୍ ଧାତୁ ଣିଚ୍+ଭାବ. ଅନ)—ପ୍ରବିଷ୍ଟ କରାଇବା, ପୂରାଇବା—3 Thrusting; causing to enter.

**ପ୍ରବେଶ ଦ୍ୱାର**— ସଂ. ବି—କୌଣସି ସ୍ଥାନକୁ ଯିବାର ଦ୍ୱାର—
Prabesa dwāra An inlet.

**ପ୍ରବେଶ ମାର୍ଗ**—ସଂ. ବି—କୌଣସି ସ୍ଥାନକୁ ଯିବାର ବାଟ—
Prabesa mārga A road leading to a place.
(ପ୍ରବେଶ ପଥ—ଅନ୍ୟରୂପ)

**ପ୍ରବେଶାଧିକାର**—ସଂ. ବି. (୬ଷ୍ଠୀ ତତ୍, ପ୍ରବେଶ+ଅଧିକାର)—
Prabesādhikāra ଭିତରକୁ ପଶିବାର ସ୍ୱତ୍ୱ ବା ଦାବି—
The right of entry; right of admittance to a place.

**ପ୍ରବେଶିକା**—ସଂ. ବି. (ପ୍ର+ବିଶ ଧାତୁ+କରଣ ଅକ+ସ୍ତ୍ରୀ ଆ)—
Prabesikā ୧ । ପରିଚୟ ପତ୍ର—1 Introduction letter.
୨ । କୌଣସି ସ୍ଥାନକୁ ପ୍ରବେଶ କରିବାର ଟିକଟ୍—
2. Ticket of admission.
୩ । କୌଣସି ସ୍ଥାନକୁ ପ୍ରବେଶ କରିବାପାଇଁ ଦିଆଯିବା ଧନ(ହ୍ୱି. ଉ.)
3. Fee for admission.
ଦେ. ବିଣ— ଯାହାଦ୍ୱାରା କୌଣସି ସ୍ଥାନକୁ ପ୍ରବେଶ କରିବା ଅଧିକାର ପ୍ରବୃତ୍ତି ବା ସୂଚିତ ହୁଏ—Giving admission to; giving a right to enter; entitling a person to admission.

**ପ୍ରବେଶିକା ପରୀକ୍ଷା**—ଦେ. ବି—ମାଟ୍ରିକୁଲେସନ୍ ପରୀକ୍ଷା; ବିଶ୍ୱବିଦ୍ୟା-
Prabesikā pariksha ଳୟରେ ପ୍ରବେଶ କରିବା ପୂର୍ବରୁ
ପ୍ରବେଶିକା ପରୀକ୍ଷା ବିଦ୍ୟାର୍ଥୀଠାରୁ ଗୃହୀତ ପରୀକ୍ଷାବିଶେଷ—
The Entrance or Matriculation examination.
[ଦ୍ର—ଏ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ ବିଦ୍ୟାର୍ଥୀ କଲେଜ୍‌ରେ ପଢ଼ିପାରନ୍ତି, ଅର୍ଥାତ୍ ବିଶ୍ୱବିଦ୍ୟାଳୟରେ ପ୍ରବେଶାଧିକାର ପାଆନ୍ତି ।]

**ପ୍ରବେଶିକା ପୁସ୍ତକ**— ଦେ. ବି. (ଆଧୁନିକ ପ୍ରୟୋଗ)—ଛାତ୍ରର
Prabesikā pustaka ବିଦ୍ୟାଳୟରେ ନାମ ଲେଖାଇବା
ପ୍ରବେଶିକା ରେଜିଷ୍ଟ୍ରାର(ରି) } ଅନ୍ୟରୂପ ସମୟରେ ଜାଣିବାକୁ ସମ୍ବାଦ
ପ୍ରବେଶିକା ବହି ସବୁ ଯେଉଁ ପୁସ୍ତକରେ ପୂରଣ କରାଯାଏ—Admission Register of a school.

**ପ୍ରବେଶିତ**—ସଂ. ବିଣ (ପ୍ର+ବିଶ୍ ଧାତୁ ଣିଚ୍+କର୍ମ. ତ)—
Prabesita ଯାହାକୁ ଭିତରକୁ ପୂରାଇ ଦିଆଯାଇ ଅଛି, ଭିତରକୁ ଭରତି କରାଯାଇଥିବା—Introduced into; caused to enter; thrust; admitted.

**ପ୍ରବେଶିବା**—ଦେ. କ୍ରି (ପଦ୍ୟ) (ସଂ. ପ୍ରବେଶ)—ପ୍ରବେଶ କରିବା;
Prabesibā ପହଞ୍ଚିବା—To reach.
ପ୍ରବେଶିବୁ ଗୋଟିଏ ପରମାତଲେ—ସାଧାକାଥ. ମେଘଦୂତ ।

**ପ୍ରବେଶୀ**—ସଂ. ବିଣ. ପୁଂ. (ପ୍ରବେଶ+ଇନ୍, ୧ମା. ୧ବ)—
Prabesi ପ୍ରବେଶ କରୁଥିବା—Entering in (Howells).
(ପ୍ରବେଶିନୀ—ସ୍ତ୍ରୀ)

**ପ୍ରବେଷ୍ଟ**— ସଂ. ବି. (ପ୍ର+ବେଷ୍ଟଧାତୁ=ବେଢ଼ିବା+କରଣ. ଅ)—
Prabeshta ୧ । ବାହୁ—1 Arm.
(ପ୍ରବେଷ୍ଟକ—ଅନ୍ୟରୂପ) ୨ । ବାହୁର ନୀଚଭାଗ—
2 Lower arm.
୩ । ଦକ୍ଷିଣ ବାହୁ—3 Right arm.
୪ । ହସ୍ତୀର ଦନ୍ତ ମୂଳର ମାଂସ—
4. An elephant's gum.
୫ । ଗଜପୃଷ୍ଠର ଆସ୍ତରଣ—
5. A covering for the back of an elephant.

**ପ୍ରବେଷ୍ଟା**—ସଂ. ବିଣ—(ପ୍ର+ବିଶ ଧାତୁ+କର୍ତ୍ତୃ. ତୃ, ୧ମା ୧ବ)—
Prabeshtā ପ୍ରବେଶକାରୀ; ଯେ ପଶେ—
(ପ୍ରବେଷ୍ଟ୍ରୀ—ସ୍ତ୍ରୀ) Entering.

**ପ୍ରବୋଧ**—ସଂ. ବି. (ପ୍ର+ବୁଧ୍ ଧାତୁ+ଭାବ. ଅ)—୧ । ଜାଗରଣ,
Prabodha ନିଦରୁ ଉଠିବା—1. Awaking (from sleep or ignorance).
୨ । ଚେଇଁ ରହିବା, ଚଅଁ—2 Wakefulness.
୩ । ଜ୍ଞାନ—3. Consciousness.
୪ । ପ୍ରକୃଷ୍ଟ ଜ୍ଞାନ—
4. Wisdom, understanding.
୫ । ବୁଦ୍ଧି—5. Intellect; intelligence.
୬ । ସାନ୍ତ୍ୱନା—6. Consolation; soothing.
୭ । ହୁସିଆର; ସତର୍କତା—7. Vigilance.
୮ । ବିକାଶ—8. Expanding.
୯ । ଉପଦେଶ—9. Instruction.
୧୦ । ଉତ୍ତେଜନା—10. Excitement.
୧୧ । ଜ୍ଞାନର ବିକାଶ—11. The awakening of consciousness; the dawning of knowledge.

୧୨ । ସ୍ୱାଚ୍ଛନ୍ଦ୍ୟ—12. Comfort.

**ପ୍ରବୋଧକ**—ସଂ. ବିଣ. ପୁଂ (ପ୍ର+ବୁଧ୍ ଧାତୁ ଣିଚ୍+କର୍ତ୍ତୃ. ଅକ)—
Prabodhaka ୧ । ଜାଗରଣକାରୀ; ଯେ ନିଦରୁ ଉଠାଏ—
(ପ୍ରବୋଧିକା—ସ୍ତ୍ରୀ) 1. Awakening.
୨ । ଜ୍ଞାନୋଦ୍ଦୀପକ—2. Convincing; awakening consciousness or knowledge.
୩ । ସାନ୍ତ୍ୱନାକାରୀ—3 Consoling.
୪ । ଉତ୍ତେଜକ—4. Exciting, stimulating.
୫ । ଯେ ଚେତାଇ ଦିଏ—5. Cautioning.
୬ । ଉପଦେଶକ—6. Advising.

**ପ୍ରବୋଧନ(ନା)**—ସଂ. ବି (ପ୍ର+ବୁଧ୍ ଧାତୁ ଣିଚ୍=ବୋଧି ଧାତୁ+ଭାବ.
Prabodhana(nā) ଅନ; +ଆ)—୧ । କୌଣସି ବ୍ୟକ୍ତିକୁ ନିଦରୁ ଉଠାଇବା; ଜାଗରିତକରଣ—1. Awakening, arousing.
୨ । ଉତ୍ତେଜନ; ଉଦ୍ଦୀପନ—2. Exciting; reviving
୩ । ସାନ୍ତ୍ୱନାଦାନ, ଆଶ୍ୱାସନ—. Consoling, soothing.
ବଳୀଷଣ ସହିତରେ ସର୍ବେ ନାରୀ କଲେକ ଚଣ ସ୍ନାନ,
ସମସ୍ତ ନାରୀଙ୍କି ପ୍ରବୋଧନା କରି ନେଲେକ ସଦନ ।
ଜଗନ୍ନାଥ. ବଳରାମଦାସ ରାମାୟଣ ।
୪ । ଜ୍ଞାପନ—4. Informing.
୫ । ବୁଝାଇବା—5. Convincing; instruction.
୬ । ସୁଗନ୍ଧି ଦ୍ରବ୍ୟର ପୂର୍ବଗନ୍ଧର ପୁନରୁଦ୍ଧାରନ—
6. Reviving the original fragrance of a thing.
୭ । କୌଣସି ବ୍ୟକ୍ତିକୁ ଜ୍ଞାନ ଦେବା—7. Infusing knowledge or wisdom into a person
୮ । ଜାଗରଣ (ହି. ଶ.)—8. Waking up.

**ପ୍ରବୋଧନୀ**—ସଂ. ବି. (ପ୍ରବୋଧନ+ଈ.)—୧ । ଦୁରାଲଭା—
Prabodhanī 1. A prickly plant; Hedysarum Alhagi.
୨ । ହରିଙ୍କର ଉତ୍ଥାନ ଏକାଦଶୀ, କାର୍ତ୍ତିକ ଶୁକ୍ଳ ଏକାଦଶୀ—
2. The 11th day of the bright fortnight of the month of Kārttika.

**ପ୍ରବୋଧିତ**—ସଂ. ବିଣ. (ପ୍ର+ବୁଧ୍ ଧାତୁ ଣିଚ୍+କର୍ମ. ତ)—
Prabodhita ୧ । ଜାଗରିତ—1 Awakened; aroused.
୨ । ଉତ୍ତେଜିତ, ଉଦ୍ଦୀପିତ—
2. Excited; revived; stimulated.
୩ । ବିକସିତ—3. Full blown; expanded.
୪ । ଯାହାର ମନକୁ ଅନ୍ୟ ଲୋକ ବୁଝାଇ ଅଛି—
4 Convinced.
୫ । ଜ୍ଞାପିତ—5. Informed.
୬ । ସାନ୍ତ୍ୱନାପ୍ରାପ୍ତ—6. Consoled; soothed.
୭ । ଜ୍ଞାନପ୍ରାପ୍ତ—
7. Infused with wisdom or knowledge.

**ପ୍ରବୋଧିବା**—ଦେ. (ପଦ୍ୟ) କ୍ରି—(ସଂ. ପ୍ରବୋଧ)—ପ୍ରବୋଧ ଦେବା;
Prabodhibā ସାନ୍ତ୍ୱନା ଦେବା—To console.
ଯଉନେ ପ୍ରବୋଧି ଜନନୀ ପ୍ରାଣ—ମଧୁସୂଦନ. ରାମବନବାସ

**ପ୍ରବ୍ରଜନ**—ସଂ. ବି.—ଗୃହ ତ୍ୟାଗ ପୂର୍ବକ ସନ୍ନ୍ୟାସ ଅବଲମ୍ବନ—
Prabrajana Taking up the life of an ascetic by renouncing the world.

**ପ୍ରବ୍ରଜିତ**—ସଂ. ବିଣ. ପୁଂ. (ପ୍ର+ବ୍ରଜ୍ ଧାତୁ=ଯିବା+କର୍ତ୍ତୃ. ତ)—
Prabrajita ୧ । ପ୍ରବାସଗତ—1. Gone abroad.
(ପ୍ରବ୍ରଜିତା—ସ୍ତ୍ରୀ) ୨ । ଭ୍ରମଣକାରୀ; ପରିବ୍ରାଜକ—
2 Wandering; itinerant.
ସଂ. ବି. ପୁଂ—୧ । ବୌଦ୍ଧ ଭିକ୍ଷୁ—
1 A Buddhist mendicant
୨ । ପ୍ରବ୍ରଜ୍ୟା ଗ୍ରହଣକାରୀ ସନ୍ନ୍ୟାସୀ—2. An ascetic.

**ପ୍ରବ୍ରଜିତା**—ସଂ ବି. ସ୍ତ୍ରୀ (ପ୍ରବ୍ରଜିତ+ସ୍ତ୍ରୀ. ଆ)—୧ । ତାପସୀ, ମାତାଜୀ—
Prabrajitā 1. A female mendicant.
୨ । ଜଟାମାଂସୀ (ହି. ଶବ୍ଦସାଗର) (ଦେଖ)—
2. Jaṭāmaṁsī (See)
୩ । ଗୋରଖମୁଣ୍ଡୀ (ହି. ଶବ୍ଦସାଗର) (ଦେଖ)
3. Gorakha muṇḍī (See)
ସଂ. ବିଣ. ସ୍ତ୍ରୀ—ପ୍ରବ୍ରଜିତର ସ୍ତ୍ରୀଲିଙ୍ଗ—
Feminine of Prabrajita.

**ପ୍ରବ୍ରଜ୍ୟା**—ସଂ. ବି. (ପ୍ର+ବ୍ରଜ ଧାତୁ+ଭାବ. ଯ+ସ୍ତ୍ରୀ. ଆ)—
Prabrajyā ୧ । ସନ୍ନ୍ୟାସଧର୍ମ—1. Religious mendicancy; renunciation of the world, asceticism.
୨ । ପ୍ରବାସ, ଦେଶାନ୍ତରରେ ବାସ—
2 Sojourning; living abroad.

**ପ୍ରବ୍ରଜ୍ୟାବସିତ**—ସଂ. ବିଣ. ପୁଂ (୫ମୀ ତତ; ପ୍ରବ୍ରଜ୍ୟା+ଅବସିତ=
Prabrajyābasita ନିଃଶେଷିତ)—ସନ୍ନ୍ୟାସ ଧର୍ମରୁ ଭ୍ରଷ୍ଟ;
ସନ୍ନ୍ୟାସ ଧର୍ମ ଗ୍ରହଣ କରିବା ପରେ ତହିଁରୁ ଚ୍ୟୁତ (ବ୍ୟକ୍ତି)—
(an ascetic) Having infringed his vows of renunciation.

**ପ୍ରବ୍ରାଜ**—ସଂ. ବି. (ପ୍ର+ବ୍ରଜ୍ ଧାତୁ+ଅଧିକରଣ. ଅ)—
Prabrāja ୧ । ଅତ୍ୟନ୍ତ ନିମ୍ନ ଦେଶ—
1. Very low country
୨ । (+ଭାବ. ଅ) ସନ୍ନ୍ୟାସ—2. Renunciation of worldly concerns; asceticism.

**ପ୍ରବ୍ରାଜନ**—ସଂ. ବି. (ପ୍ର+ବ୍ରଜ୍ ଧାତୁ ଣିଚ୍+ଭାବ. ଅନ)—ନିର୍ବାସନ—
Prabrājana Exiling; banishment.
(ପ୍ରବ୍ରାଜିତ—ବିଣ)

**ପ୍ରବ୍ରାଜିତ**—ସଂ. ବିଣ. (ପ୍ର+ବ୍ରଜ୍ ଧାତୁ ଣିଚ୍+କର୍ମ. ତ)—
Prabrājita ନିର୍ବାସିତ—Exiled; banished.
(ପ୍ରବ୍ରାଜନ—ବି)

**ପ୍ରଭ**—ସଂ. ବିଣ. ପୁଂ. ( ବହୁବ୍ରୀହି ସମାସରେ ପୁଂଲିଙ୍ଗର ବିଶେଷଣ ହେଲେ
Prabha ପରବର୍ତ୍ତୀ 'ପ୍ରଭା' ଶବ୍ଦର ଆକାର ଲୋପ ହୋଇ 'ପ୍ରଭ'
(ପ୍ରଭା—ସ୍ତ୍ରୀ) ହୁଏ, ଯଥା—ସୂର୍ଯ୍ୟପ୍ରଭ, ବିଦ୍ୟୁତ୍ ପ୍ରଭ )—
(ଅମୁକପରି)ପ୍ରଭାଯୁକ୍ତ—Having radiance like; radiant like.

ଦେ. ବି. ( ସଂ. ପ୍ରଭା )—ପ୍ରଭା; କାନ୍ତି—
Lustre; splendour.

ବିଥର୍ଥ ହେଲ ତମ୍ଭ ନମାଳା ନାହିଁ ଝଲକ ପ୍ରଭ ।
ଉକ୍ତ. ବୈଦେହୀଶବିଳାସ ।

**ପ୍ରଭଞ୍ଜନ**—ସଂ ବି. ( ପ୍ର+ଭଂଜ୍ ଧାତୁ=ଭାଙ୍ଗିବା+କର୍ତ୍ତୃ. ଅନ )—
Prabhañjana ୧ । ପ୍ରଚଣ୍ଡ ବାୟୁ, ଝଡ଼—1. Tempest.
୨ । ବାୟୁ—2. Air; wind.
୩ । (+ଭାବ. ଅନ) ବିନାଶ (ହି. ଶ)—
3. Destruction; ruin.
୪ । ( ନାମ ) ମହାଭାରତୋକ୍ତ ମଣିପୁରର ରାଜା—
4. Name of a king of ancient Maṇipura.
ସଂ. ବିଣ—ଭଞ୍ଜନକାରୀ, ଯେ ଭାଙ୍ଗି ପକାଏ—
Breaking.
ଦେ. ବିଣ. (ପ୍ର+ଭଗ୍ନ )—ଭଗ୍ନ—Broken.
ପ୍ରଭଞ୍ଜନ – ପଥ ପ୍ରଭଞ୍ଜନ ହୋଇବ । ଉକ୍ତ. ବୈଦେହୀଶବିଳାସ ।

**ପ୍ରଭଞ୍ଜନ ପଥ**—ସଂ. ବି. ( ୬ଷ୍ଠୀ ତତ୍, ପ୍ରଭଞ୍ଜନ+ପଥ )—
Prabhañjana patha ବାତାୟନ; ଝରକା—Window.
ପ୍ରଭଞ୍ଜନ-ପଥ ପ୍ରଭଞ୍ଜନ ହୋଇବ । ଉକ୍ତ. ବୈଦେହୀଶବିଳାସ ।

**ପ୍ରଭଦ୍ର**—ସଂ. ବି—ନିମ୍ବ ( ଦେଖ ) (ହି. ଶ)—
Prabhadra Nimba ( See )

**ପ୍ରଭବ**—ସଂ. ବି. ( ପ୍ର+ଭୂ ଧାତୁ+ଭାବ. ଅ )—
Prabhaba ୧ । ଜନ୍ମ, ଉତ୍ପତ୍ତି—1. Birth.
୨ । (+ଅଧିକରଣ. ଅ) ଜନ୍ମ ସ୍ଥାନ; ଉତ୍ପତ୍ତି ସ୍ଥାନ—
2. Birth-place.
୩ । ବିକ୍ରମ, ପ୍ରଭାବ; ପରାକ୍ରମ—
3. Power; might; strength.
୪ । (+ଅପାଦାନ ଅ) ଉତ୍ପତ୍ତି କାରଣ; ନିମିତ୍ତ କାରଣ; ମୂଳ କାରଣ—4. Cause; origin; basis; source; generative cause.
୫ । ଆଲୋକ—5. Light.
୬ । ଆକର (ହି. ଶ)—6. Mine.
୭ । ସୃଷ୍ଟି; ସଂସାର ( ହି. ଶବ୍ଦସାଗର )—
7. Creation; the world
୮ । ନଦୀର ଉତ୍ପତ୍ତି ସ୍ଥାନ (ହି. ଶବ୍ଦସାଗର)—
8. The source of a river.
ସଂ. ବିଣ. ପୁଂ. ( ଅନ୍ୟ ଶବ୍ଦ ସଙ୍ଗେ ସମାସରେ ଯୁକ୍ତ ହେଲେ,
(ପ୍ରଭବା—ସ୍ତ୍ରୀ) ଯଥା—ରତ୍ନ ପ୍ରଭବ )—୧ । ଉତ୍ପାଦନକାରୀ—
1. Generating; giving birth to; producing.
୨ । ପ୍ରଭାବଶାଳୀ—2. Mighty; powerful.

**ପ୍ରଭବନ**—ସଂ. ବି. ( ପ୍ର+ଭୂ ଧାତୁ+ଭାବ ଅନ )—
Prabhabana ୧ । ଉତ୍ପତ୍ତି; ଜନ୍ମ—1 Birth.
୨ । ( +ଅପାଦାନ ଅନ ) ଆକର; ଖଣି ( ହି. ଶ )—
2. Mine.
୩ । ମୂଳ (ହି. ଶ)—3. Origin, root
୪ । (+ଅଧିକରଣ. ଅନ) ଅଧିଷ୍ଠାନ (ହି. ଶ)—
4. Abode; residence.

**ପ୍ରଭବିଷ୍ଣୁ**—ଦେ. (ପଦ୍ୟ) ବିଣ—ପ୍ରଭବିଷ୍ଣୁ ( ଦେଖ )—
Prabhabishṇu Prabhabishṇu ( See)
ପ୍ରଭବ ବିଷ୍ଣୁ ଭୂ ଇଶ୍ୱର
ମହାମହିମ ଯୋଗେଶ୍ୱର । ଜଗନ୍ନାଥ. ଭାଗବତ ।

**ପ୍ରଭବିବା**—ଦେ କ୍ରି. (ପଦ୍ୟ) (ସଂ. ପ୍ରଭବ)—ଜନ୍ମିବା, ଜାତ ହେବା—
Prabhabibā To be born; to be produced.
ଯେସନେ ଉଠିବାରୁ ଜଳ
ପ୍ରଭବ ପ୍ରକାଶ ଶର୍ମଳ । ଜଗନ୍ନାଥ ଭାଗବତ ।

**ପ୍ରଭବିଷ୍ଣୁ**—ସଂ. ବିଣ. ପୁଂ. (ପ୍ର+ଭୂ ଧାତୁ+ଶୀଳାର୍ଥରେ ଇଷ୍ଣୁ)—
Prabhabishṇu ପ୍ରଭାବଶୀଳ; ଶକ୍ତିଶାଳୀ—
Mighty; supreme; potent.
ସଂ. ବି—୧ । ପ୍ରଭୁ (ହି. ଶ)—1 Lord; master.
୨ । ବିଷ୍ଣୁ (ହି. ଶ)—2. Bishṇu.

**ପ୍ରଭା**—ସଂ. ବି. (ପ୍ର+ଭା ଧାତୁ=ଦୀପ୍ତି ପାଇବା+ଭାବ. ଅ+ସ୍ତ୍ରୀ. ଆ)—
Prabhā ୧ । କିରଣ—1. Ray
୨ । ତେଜଃ, ଉଜ୍ଜ୍ୱଳତା—2. Brightness; radiance; brilliancy; glory.
୩ । ଦୀପ୍ତି, ଜ୍ୟୋତିଃ—3. Splendour; lustre.
୪ । ଆଲୋକ—4. Light.
୫ । ପ୍ରକାଶ—5. Display, manifestation.
୬ । ସୂର୍ଯ୍ୟଙ୍କର ଏକ ପତ୍ନୀ—6 Name of a wife of the Sun-god.
୭ । କୁବେରପୁରୀ—7. The palace of the Hindu God of riches.
୮ । ଦୁର୍ଗା—8. Durgā.
୯ । ଗୋପୀବିଶେଷ—9. Name of one of the Gopis or consorts of Śrikṛushṇa.
୧୦ । ସୂର୍ଯ୍ୟବିମ୍ବ (ହି. ଶ), ସୂର୍ଯ୍ୟମଣ୍ଡଳ—
13. The sun's disc.
୧୧ । (ନାମ) ଅପ୍ସରାବିଶେଷ (ହି. ଶ)—
11. Name of a heavenly nymph.
୧୨ । ଦ୍ୱାଦଶାକ୍ଷର ସଂସ୍କୃତ ବୃତ୍ତବିଶେଷ; ମନ୍ଦାକିନୀ (ହି. ଶ)—
12. Name of a Sanscrit metre of 12 syllables.
ଦେ. ବି—୧ । ଦେବମୂର୍ତ୍ତିଙ୍କ ପଛଆଡ଼େ ମୁଣ୍ଡଠାରୁ ଗୋଡ଼ପାଖ ବେଢ଼ି ଲଗାଯାଇଥିବା ଧାତୁ ଅବା କାରୁକାର୍ଯ୍ୟଖଚିତ ଆଡ଼ା ବା ବାଡ଼ା, ମେଢ଼ (ଯାହା ଦେହକୁ ଦେବମୂର୍ତ୍ତିଙ୍କୁ ଆଉଜାଇ ବସାଇ ବାନ୍ଧି ଦିଆଯାଏ)—1. The hold of the image of a Deity; the framework attached to the back of an image.

୨ । (ସ୍ତ୍ରୀ) ପ୍ରଭାବତୀ ନାମ୍ନୀ ସ୍ତ୍ରୀର ଡାକନାମ—
2. A name for calling Prabhābati.

**ପ୍ରଭାକର**—ସଂ. ବିଣ (ପ୍ରଭା + କୃ ଧାତୁ + କର୍ତ୍ତୃ. ଅ)—ଅତ୍ୟନ୍ତ ଦୀପ୍ତିକର; Prabhākara ତେଜୋମୟ, ସମୁଜ୍ଜ୍ୱଳ—Dazzling; glaring; radiant; brilliant; shining; luminous.
ସଂ. ବି—୧ । ତେଜୋମୟ ବସ୍ତୁ; ଜ୍ୟୋତିଷ୍କ—1. A luminary.
୨ । ସୂର୍ଯ୍ୟ—2. The sun
୩ । ଚନ୍ଦ୍ର—3. The moon.
୪ । ଅଗ୍ନି—4. Fire
୫ । ସାଗର; ସମୁଦ୍ର—5. Ocean.
୬ । ଅର୍କବୃକ୍ଷ—6. The swallow wart (plant); Calotropis Gigantea.
୭ । ଅତ୍ରିବଂଶୀୟ ମୁନିବିଶେଷ—7. Name of a sage.
୮ । କୁଶଦ୍ୱୀପସ୍ଥ ବର୍ଷ ବା ଦେଶବିଶେଷ—
8. Name of a tract of country in the ancient geography of the Hindus.
୯ । ମାର୍କଣ୍ଡେୟପୁରାଣ ଅନୁସାରେ ଅଷ୍ଟମ ମନ୍ୱନ୍ତରର ଏକ ଦେବତାଙ୍କ ନାମ (ହି ଶ)—9. Name of a Deity worshipped during the 8th Manwantara.
ଦେ. ବି. ପୁଂ—୧ । ଲୋକଙ୍କ ନାମ—
1. A name given to males.
୨ । ଏକ ପ୍ରସିଦ୍ଧ ମୀମାଂସକଙ୍କ ନାମ (ହି.ଶ)—
2. Name of an author of a treatise on Mimāṁsā.

**ପ୍ରଭାକର ବର୍ଦ୍ଧନ**—ଦେ. ବି. (ନାମ) ସ୍ଥାଣ୍ୱୀଶ୍ୱର ବା ଥାନେଶ୍ୱରର ଜଣେ Prabhākara barddhana ପ୍ରାଚୀନ ରଜା—Name of a king of Thāneswara.
[ ଦ୍ର—ଏ ଖ୍ରୀଷ୍ଟାବ୍ଦ ୬୦୦ ପୂର୍ବେ ରାଜତ୍ୱ କରୁଥିଲେ । ଏହାଙ୍କ ପୁତ୍ର ମହାପ୍ରତାପୀ ହର୍ଷବର୍ଦ୍ଧନଙ୍କ ରାଜଧାନୀ କାନ୍ୟକୁବ୍ଜରେ ଥିଲା । ଏ ସୂର୍ଯ୍ୟୋପାସକ ଥିଲେ (ହି.ଶ)]

**ପ୍ରଭା କୀଟ**—ସଂ. ବି (ମ. ପ. ଲୋ. କର୍ମଧା, ପ୍ରଭାଯୁକ୍ତ କୀଟ)—Prabhā kīṭa ଜ୍ୟୋତିରିଙ୍ଗଣ; ଜୁଳୁଜୁଳିଆ ପୋକ—Firefly.

**ପ୍ରଭାଞ୍ଜନ**—ସଂ. ବି (ପ୍ରଭା + ଅଞ୍ଜନ)—ଶୋଭାଞ୍ଜନ, ସଜନାଗଛ—Prabhānjana A tree; Hyperanthera Moringa (M. W).

**ପ୍ରଭାତ**—ସଂ. ବି—(ପ୍ର + ଭା ଧାତୁ + କର୍ତ୍ତୃ. ତ)—୧ । ପ୍ରାତଃକାଳ, Prabhāta ଉଷା; ପାହାନ୍ତା; ପାହାନ୍ତିଆ—Morning; dawn; day-break.
୨ । ସୂର୍ଯ୍ୟଙ୍କ ଔରସରେ ପ୍ରଭାଙ୍କ ଗର୍ଭରେ ଜାତ ଦେବତା (ହି.ଶ)
2. Name of a Deity said to be the son of the Sun-god through his wife Prabhā.
ସଂ. ବିଣ - ପ୍ରଭାଯୁକ୍ତ—Dazzling; brilliant.
ଦେ. ବି (ସଂ. ପ୍ରଭା)—ପ୍ରଭା, ଦୀପ୍ତି—Lustre.
ସନ୍ଧ କରିବାର ପାଣେ ଯୋଟଥିବ ବସୁ ଯେଉଁ ପ୍ରଭାତରେ
ପ୍ରଭାତରେ ନେଇ ପଦକ କରଇ ତେଣି କାହା ଅନନ୍ତରେ—ଭକ୍ତ ପ୍ରେମସୁଧାନିଧି ।

**ପ୍ରଭାତ ଅବକାଶ**—ଦେ. ବି (ମ. ପ. ଲୋ. କର୍ମଧା; ପ୍ରଭାତ + ଅବକାଶ)—Prabhāta abakāsa ୧ । ପାହାନ୍ତାରୁ ଉଠି ବୋଲିବା ସ୍ତବ ବିଶେଷ, ପାହାନ୍ତି ଅବକାଶ—(ଅବକାଶ ୧୧ ଦେଖ)—
प्रभाती 1 Hymns recited at daybreak (See
प्रभाती Abakāsa).
୨ । ପ୍ରତ୍ୟୁଷରେ ପାଇବା ଅବସର, ଦିବସର କର୍ମମୟ ଜୀବନ ଆରମ୍ଭ ପୂର୍ବରୁ ପ୍ରଭାତରେ ମନୁଷ୍ୟ ସ୍ଥିରଚିତ୍ତରେ ଯେଉଁ ଅବସର ଭୋଗକରେ—2. Early morning when a man's mind is at ease.

**ପ୍ରଭାତ ବସନ**—ଦେ. ବି—ରାତିପିନ୍ଧା; ଯେଉଁ ଲୁଗା ରାତିରେ ପିନ୍ଧା Prabhāta basan ହୋଇଥାଏ ମାତ୍ର ସକାଳେ ଯାହାକୁ ପାଲଟିବାକୁ ହୁଏ—Cloth for night wear; cloth which is worn at night but changed at day-break.
ପ୍ରାଣ ପ୍ରାୟେ କରି ଯେବେ ଥାଉଛ ଯାହାକୁ
ସନ୍ଧ୍ୟାନକ ପ୍ରଭାତ ବସନ ପ୍ରାୟେ ତାକୁ—ଭକ୍ତ ପ୍ରେମ ସୁଧାନିଧି ।

**ପ୍ରଭାତ(ତୀ)ତା(ତ)ରା**—(ସଂ. ପ୍ରଭାତ + ତାରା) ଶୁକ୍ରତାରା, ସକାଳ ହେବା Prabhāti(tī)tā(ta)rā ପୂର୍ବେ ପୂର୍ବ ଦିଗରେ ଦେଖାଯିବା ଉଜ୍ଜ୍ୱଳ
प्रभातीतारा ଶୁକ୍ର ଗ୍ରହ ('ଶୁକ୍ର' ତଳେ ନୋଟ୍ ଦେଖ)—The morning star.
ଦେଖଇ ନାଭ ଲକ୍ଷି ଏ ଗିରିଶିରେ
ପ୍ରଭାତ ତାର ମୁଖ ଗୋଦାବରୀରେ । ରାଧାନାଥ ଚୁଲ୍‌ସୀସ୍ତବକ

**ପ୍ରଭାତିବା**—ଦେ. (ପଦ୍ୟ) କ୍ରି. (ସ. ପ୍ରଭାତ)—ପ୍ରଭାତ ହେବା; ସକାଳ Prabhātibā ହେବା; (ରାତି)ପାହିବା—To dawn.
प्रभात ପ୍ରଭାତଇ ଶଭାବସା ହର୍ଷଲେ ଉତ୍କଳେ
पो फटना ପଙ୍କଜ ବଦନୀ ଉଷା ଉଦୟ ଅଚଳେ—ରାଧାନାଥ ବେଣୀସଂହାର ।

**ପ୍ରଭାତୀ**—ଦେ. ବିଣ.. (ସଂ. ପ୍ରଭାତୀୟ)—୧ । ପ୍ରଭାତ କାଳୀନ—Prabhāti 1. Relating to dawn.
୨ । ପ୍ରାତଃକାଳରେ ଗେୟ—
2. Proper to be sung in the morning
୩ । ପ୍ରାତଃକାଳର ଉପଯୁକ୍ତ—
3. Fit for the morning.
ସଂ. ବି,—୧ । ପ୍ରଭାତ ଅବକାଶ; ପ୍ରାତଃକାଳରେ ଗେୟ ସ୍ତବ—
1, A hymn sung at dawn,
୨ । ଦନ୍ତ ଧାବନ, ଦାନ୍ତଘଷା (ହି.ଶ)
2. Brushing of the teeth (at dawn).

**ପ୍ରଭାତୀ ରାଗ**—ଦେ. ବି. (ଏହା ସକାଳେ ବୋଲାଯିବାର ଉପଯୁକ୍ତ Prabhātī rāga ଥିବାରୁ)—ରାଗବିଶେଷ; ଭୈରବୀ ରାଗ—
प्रभातीराग Name of a musical note fit to be set
प्रभातीराग to music in the morning.

**ପ୍ରଭା ତୀର୍ଥ**—ସଂ. ବି—ଶିବ ପୁରାଣୋକ୍ତ ତୀର୍ଥବିଶେଷ—Prabhā tīrtha Name of a sacred place (M. W).

**ପ୍ରଭାନ**—ସଂ. ବି. (ପ୍ର + ଭା ଧାତୁ + ଭାବ. ଅନ)—
Prabhāna ୧। ଆଲୋକ, ଜ୍ୟୋତିଃ—1. Light.
୨। ଦୀପ୍ତି—2. Radiance; lustre (M. W.)

**ପ୍ରଭାନୁ**—ସଂ. ବି. (ପ୍ର + ଭାନୁ)—ଶ୍ରୀକୃଷ୍ଣଙ୍କର ଜଣେକ ପୁତ୍ର—
Prabhānu Name of a son of Śrikrushna (M. W.)

**ପ୍ରଭାବ**—ସଂ ବି. (ପ୍ର + ଭୂ ଧାତୁ + ଭାବ. ଅ)—
Prabhāba ୧। ସାମର୍ଥ୍ୟ, ଶକ୍ତି, କ୍ଷମତା—1. Power; strength; might; influence; potency.
୨। ପ୍ରାଦୁର୍ଭାବ—2. Manifestation; prevalence.
୩। (+କରଣ. ଅ)—ପ୍ରଭୁଶକ୍ତି; ପ୍ରତାପ, ରାଜାଙ୍କର କୋଷ-ଦଣ୍ଡଜ ତେଜଃ—3. Majesty; kingly dignity.
୪। ସାହସ—4. Valour, courage.
୫। ତେଜଃ—5. Radiance; spirit; glamour; splendour
୬। ମହିମା—6. Greatness; magnificence; glory.
୭। (+ଭାବ. ଅ) ଉଦ୍ଭବ; ଉତ୍ପତ୍ତି—
7. Birth; production.
୮। (+କର୍ତ୍ତୃ. ଅ) (ନାମ) ସ୍ୱାରୋଚିଷ ମନୁଙ୍କ ପୁତ୍ରବିଶେଷ—
8 Name of one of the sons of Swarochisha Manu.
୯। (ନାମ) ପ୍ରଭାଗର୍ଭଜାତ ସୂର୍ଯ୍ୟପୁତ୍ର—9. Name of one of the sons of the Sun-god.
୧୦। (ନାମ) ଅଷ୍ଟାବସୁଙ୍କ ମଧ୍ୟରୁ ଜଣେ—
10. One of the eight Basu gods.
୧୧। (+ଭାବ. ଅ) ପ୍ରାବଲ୍ୟ—
11. Predominance; outbreak.

**ପ୍ରଭାବଜ**—ସଂ. ବିଣ. (ପ୍ରଭାବ + ଜନ୍ ଧାତୁ + କର୍ତ୍ତୃ. ଅ)—
Prabhābaja ପ୍ରଭାବରୁ ଉତ୍ପନ୍ନ—Born of or due to Prabhāba.

**ପ୍ରଭାବତୀ**—ସଂ. ବିଣ ସ୍ତ୍ରୀ. ( ପ୍ରଭାବତ୍ + ଈ )—'ପ୍ରଭାବାନ୍' ଶବ୍ଦର
Prabhābati ସ୍ତ୍ରୀଲିଙ୍ଗ—Feminine of Prabhāban.
ସଂ. ବି. ସ୍ତ୍ରୀ—୧। ( ନାମ ) ସୂର୍ଯ୍ୟପତ୍ନୀ—1. Name of a wife of the Sun-god (M. W.)
୨। (ନାମ) ଜୈନ ତାପସୀବିଶେଷ—
2. Name of a female Jaina saint
୩। (ନାମ) ବଜ୍ରନାମକ ଅସୁରର କନ୍ୟା—
3. Name of the daughter of a demon Bajra.
୪। (ନାମ) ଅପ୍ସରାବିଶେଷ—4. Name of a heavenly nymph (M. W).
୫। (ନାମ) ଅଙ୍ଗ ଦେଶର ରାଜା ଚିତ୍ରରଥଙ୍କର ସ୍ତ୍ରୀ—
5. Name of the wife of a king of Aṅga (M. W.)
୬। (ନାମ) କୁମାରାନୁଚର ମାତୃକାବିଶେଷ—6. Name of a female attendant of Kārttikeya.
୭। (ନାମ) ପ୍ରଦ୍ୟୁମ୍ନଙ୍କ ସ୍ତ୍ରୀ, ରାଜା ବଜ୍ରନାଭଙ୍କ କନ୍ୟା—
7. Name of the wife of Pradyumna. (M. W )
୮। (ନାମ) ମହାଦେବଙ୍କର ଅନୁଚର ଗଣଦେବତାଙ୍କ ବୀଣା—
8 The lute of the attendants of Śiba.
୯। (ନାମ) ମହାଭାରତୋକ୍ତ ତାପସୀବିଶେଷ—9. Name of a female sage (M. W )
୧୦। ତ୍ରୟୋଦଶାକ୍ଷର ଛନ୍ଦୋବିଶେଷ, ରୁଚିରା—
10. Name of a Sanscrit metre of 13 syllables.
୧୧। ପ୍ରଭାତ ରାଗ ବା ଗୀତ (ହି. ଶ)—
11. A musical tune or song suitable for the morning.
ଦେ. ବି. ସ୍ତ୍ରୀ—ସ୍ତ୍ରୀଲୋକଙ୍କ ନାମ—
A name given to females.

**ପ୍ରଭାବନା**—ସଂ. ବି. (ପ୍ର + ଭାବନା)—ଉଦ୍ଭାବନା; ପ୍ରକାଶ (ହି. ଶ)—
Prabhābanā Manifestation; invention

**ପ୍ରଭାବନ୍ତ**—ଦେ. ବିଣ. (ସଂ. ପ୍ରଭାବାନ୍)—ପ୍ରଭାବାନ୍ (ଦେଖ)
Prabhābanta Prabhābān (See)
ତହୁଁ ସେ ତୀର୍ଥେ ସ୍ନାନ କରି ପ୍ରଭାବନ୍ତ
ହେବାରୁ ତ ପ୍ରଭାସ ନାମ ତାଙ୍କ ଖ୍ୟାତ। କୃଷ୍ଣସିଂହ. ମହାଭାରତ ଶଲ୍ୟ

**ପ୍ରଭାବାନ୍**—ସଂ. ବିଣ. ପୁଂ. (ପ୍ରଭା + ଅସ୍ତି ଅର୍ଥରେ ବତ୍; ୧ମା. ୧ବ)—
Prabhābān ୧। ପ୍ରଭାଯୁକ୍ତ; ଦୀପ୍ତିଶାଳୀ, ତେଜୋମୟ—
(ପ୍ରଭାବତୀ—ସ୍ତ୍ରୀ) 1. Luminous; lustrous; radiant; glorious; splendid.
୨। କ୍ଷମତାଶାଳୀ—2. Powerful; mighty.

**ପ୍ରଭାଷ**—ସଂ. ବି. (ପ୍ର + ଭାଷ୍ ଧାତୁ = କହିବା + ଭାବ. ଅ)—
Prabhāsha ୧। ପ୍ରକୃଷ୍ଟ କଥନ—1. Excellent saying or speech.
୨। (+କର୍ତ୍ତୃ. ଅ)—ଅଷ୍ଟାବସୁ ମଧ୍ୟରୁ ଏକତମ—
2. One of the eight Basu gods.

**ପ୍ରଭାସ**—ସଂ. ବିଣ. (ପ୍ର + ଭାସ୍ ଧାତୁ = ଦୀପ୍ତି ପାଇବା + କର୍ତ୍ତୃ. ଅ)—
Prabhāsa ପ୍ରଖର ଦୀପ୍ତିଶାଳୀ—Radiant; refulgent; very bright.
ସଂ. ବି—୧। (ନାମ) ପଶ୍ଚିମ ଭାରତର ତୀର୍ଥବିଶେଷ, ସୋମତୀର୍ଥ—
1. Name of a place of pilgrimage in W. India.
[ ଦ୍ର—ଚନ୍ଦ୍ର ଦକ୍ଷକନ୍ୟା ସପ୍ତବିଂଶତି ନକ୍ଷତ୍ରଙ୍କର ପାଣିଗ୍ରହଣ କରିଥିଲେ, କିନ୍ତୁ ସେ ସମସ୍ତଙ୍କ ପ୍ରତି ସମବ୍ୟବହାର ନ କରି ରୋହିଣୀଙ୍କଠାରେ ଅତ୍ୟନ୍ତ ଆସକ୍ତ ହେବାରୁ ଅପର କନ୍ୟାମାନଙ୍କ ନିବେଦନ ଶୁଣି ଦକ୍ଷପ୍ରଜାପତି କ୍ରୋଧାନ୍ୱିତ ହୋଇ ତାହାଙ୍କୁ ଅଭିଶାପ ଦେଇଥିଲେ। ଚନ୍ଦ୍ର ଯକ୍ଷ୍ମା ରୋଗରେ ଆକ୍ରାନ୍ତ ଓ ପ୍ରଭାହୀନ ହୋଇ ଏହି ପୁଣ୍ୟ କ୍ଷେତ୍ରରେ ବହୁକାଳ ତପସ୍ୟା କରି ରୋଗମୁକ୍ତ ହେଲେ ଏବଂ ନିଜର ପୂର୍ବ ପ୍ରଭା ଲାଭ କଲେ। ତେଣୁ ଏହି କ୍ଷେତ୍ରର ନାମ 'ପ୍ରଭାସ' ହେଲା। ଏହି ତୀର୍ଥରେ ଶ୍ରୀକୃଷ୍ଣ ଏକ ସହସ୍ର ବର୍ଷ ତପସ୍ୟା କରିଥିଲେ। (ମଦନମୋହନ. ତୀର୍ଥଦର୍ଶନ)। ]

୨ । (ନାମ) ଜୈନମାନଙ୍କର ଅଧିପତି ବିଶେଷ —
2. Name of a Jaina saint.
୩ । (ନାମ) କୁମାରଙ୍କ ଅନୁଚରବିଶେଷ—
3. Name of an attendant of Kārttikeya.
୪ । (ନାମ) ଅଷ୍ଟାବସୁ ମଧ୍ୟରୁ ଏକତମ—
4. One of the 8 Basu-gods.
୫ । (ନାମ) ଅଷ୍ଟମ ମନ୍ୱନ୍ତରର ଏକ ଦେବଗଣ—5. Name of a class of Deities of the 8th cycle of the creation.
୬ । (+ଭାବ. ଅ)—ଦୀପ୍ତି, ଜ୍ୟୋତିଃ (ହ୍ର. ଶ.)—
6. Radiance; lustre.

**ପ୍ରଭାସିବା**—ଦେ. (ପଦ୍ୟ) କ୍ରି (ସଂ. ପ୍ରଭାସ)—୧ । ପ୍ରକାଶିତ ହେବା—
Prabhāsibā 1. To be manifest
ପ୍ରଭାସା ୨ । ଦୀପ୍ତି ପାଇବା
**ପ୍ରଭାସନା** 2 To shine.

**ପ୍ରଭିନ୍ନ**—ସଂ. ବିଣ—(ପ୍ର+ଭିଦ୍ ଧାତୁ+କର୍ତ୍ତୃ. ତ)—୧ । ପ୍ରସ୍ଫୁଟିତ—
Prabhinna 1. Full blown; expanded; opened.
୨ । ପ୍ରକାଶିତ—2. Manifest.
୩ । (+କର୍ମ.ତ) ବିଶେଷ ଭେଦଯୁକ୍ତ, ଛିନ୍ନ—
3 Severed; separated.
୪ । ଦଳିତ—4. Trampled; ground.
୫ । ମଦସ୍ରାବୀ (ହସ୍ତୀ)—5. (elephant) Having juice coming out of its temple.
ସଂ. ବି—ମତ୍ତହସ୍ତୀ—A must elephant; an elephant in rut.

**ପ୍ରଭୁ**—ସଂ. ବି—(ପ୍ର+ଭୂ ଧାତୁ+କର୍ତ୍ତୃ. ଡୁ)—୧ । ବିଷ୍ଣୁ; ଭଗବାନ୍; ଈଶ୍ୱର—1. Bishṇu; God.
Prabhu
୨ । ରାଜା—2. King; sovereign.
୩ । ପତି; ଭର୍ତ୍ତା—3. Husband.
୪ । ଅଧିପତି, ସ୍ୱାମୀ—4. Lord; master.
[ଦ୍ର—ଅନୁଗ୍ରହ ନିଗ୍ରହ କରିବାକୁ ସମର୍ଥ, ଯାହାଙ୍କ ହାତରେ କାହାର ରକ୍ଷା, ଦଣ୍ଡ ଓ ପୁରସ୍କାର ବିଧାନର ଭାର ଥାଏ ସେହି ତାହାର ପ୍ରଭୁ ଅଟନ୍ତି ।]
୫ । ମାଲିକ; ଅଧିକାରୀ—5. Owner; proprietor.
୬ । ଶବ୍ଦ—6 Sound.
୭ । ପାରଦ—7. Mercury.
୮ । (ନାମ) ଅଷ୍ଟମ ମନ୍ୱନ୍ତରର ଏକ ଦେବଗଣ—
8 A class of Deities of the 8th cycle of the creation.
ସଂ. ବିଣ—୧ । ସମର୍ଥ—1. Able, capable.
୨ । ଶକ୍ତ—2. Strong.
୩ । ନିତ୍ୟ; ଚିରନ୍ତନ—3. Eternal.
୪ । ପ୍ରଧାନ, ଶ୍ରେଷ୍ଠ—
4. Chief; eminent; great.
୫ । ଅନୁଗ୍ରହ ଓ ନିଗ୍ରହକ୍ଷମ—
5. Having power to reward and punish.
୬ । ଯାହାଙ୍କ ଆଶ୍ରୟରେ ଜଣକର ଜୀବିକା ନିର୍ବାହ ହୁଏ—
6. Providing subsistence to a person
ଦେ. ଅ—(ସଂ. ପ୍ରଭୋ)—ପ୍ରଭୋ ( ଦେଖ )—
Prabho (See).

**ପ୍ରଭୁତା(ତ୍ୱ)**—ସଂ. ବି—[ପ୍ରଭୁ+ଭାବ. ତା (ତ୍ୱ)]—୧ । ଆଧିପତ୍ୟ—
Prabhutā(twa) 1 Supremacy; mastery; ownership.
୨ । କ୍ଷମତା; ଅଧିକାର—2. Dominion; power.
୩ । ପ୍ରାଧାନ୍ୟ, ମହତ୍ତ୍ୱ— . Greatness.
୪ । ରାଜତ୍ୱ; ରାଜ୍ୟଶାସନ—
4. Sovereignty; kingship; government.
୫ । ଶାସନାଧିକାର ( ହ୍ର. ଶ )—
5. Right of ruling.

**ପ୍ରଭୁ ପାଦ**—ସଂ. ବିଣ—(ଗୁରୁ ବା ବଶିଷ୍ଟ ମାନ୍ୟବ୍ୟକ୍ତିଙ୍କ ପ୍ରତି ପ୍ରଯୁଜ୍ୟ)—
Prabhu pāda ସମ୍ମାନନୀୟ; ସମ୍ମାନାସ୍ପଦ—Respectable.

**ପ୍ରଭୁ ଭକ୍ତ**—ସଂ. ବିଣ. ପୁଂ—( ୭ମୀ ତତ୍; ପ୍ରଭୁ+ଭକ୍ତ )—ପ୍ରଭୁ ବା
Prabhu bhakta ସ୍ୱାମୀଙ୍କଠାରେ ଅନୁରକ୍ତ—Devoted to
(ପ୍ରଭୁଭକ୍ତା—ସ୍ତ୍ରୀ) one's master; loyal; faithful.

**ପ୍ରଭୁ ଭକ୍ତି**—ସଂ. ବି—(୭ମୀ ତତ୍, ପ୍ରଭୁ+ଭକ୍ତି)—ପ୍ରଭୁଙ୍କଠାରେ ଏକାନ୍ତ
Prabhu bhakti ଭକ୍ତି—Devotion to one's master fidelity; loyalty.

**ପ୍ରଭୂତ**—ସଂ. ବିଣ. ( ପ୍ର+ଭୂ ଧାତୁ+କର୍ତ୍ତୃ. ତ )—୧ । ପ୍ରଚୁର;
Prabhūta ଅତ୍ୟନ୍ତ; ଅଧିକ—1. Plentiful; various;
(ପ୍ରଭୂତି—ବି) much; excessive; abundant; multifarious.
୨ । ଅତ୍ୟନ୍ତ ପ୍ରୟୋଜନୀୟ—
2. Very important.
୩ । ଉଚ୍ଚ; ଉନ୍ନତ—3. Lofty; high.
୪ । ଉତ୍ପନ୍ନ—4. Born; produced
୫ । ଶାସିତ—5. Governed.
୬ । ପରିପକ୍ୱ—6. Matured.
୭ । ଅସାମାନ୍ୟ—
7. Extraordinary; uncommon.
୮ । ଉଦ୍ଭୂତ (ହ୍ର. ଶ)—8. Common.

**ପ୍ରଭୃତ**—ଗ୍ରା. ( ପ୍ରାଚୀନ ପଦ୍ୟ ) ବି. ( ସଂ. ପରଭୃତ )—
Prabhṛuta ୧ । ପରଭୃତ; କୋକିଳ—1. Cuckoo.
୨ । ପର ବା ଶତ୍ରୁମାନେ ଧୃତ ହେବା—
2. Catching of enmies.
ବ୍ୟ,ଞ୍ଜନ ଶିଖିରେ ଶୀର୍ଣ୍ଣ ସାରସ ପ୍ରଭୃତ (୧ ଓ ୨) ସ୍ୱନ
ମଧୁମତ୍ତ ସେତୁ ଉପବନେ—ଉଞ୍ଜ. ବୈଦେହୀଶବିଳାସ ।

**ପ୍ରଭୃତି**—ସଂ. ଅ. ( ପ୍ର+ଭୃ ଧାତୁ=ପୋଷଣ କରିବା+ଭାବ. ତି, ଅନ୍ୟ
Parbhṛuti ଶବ୍ଦ ସଙ୍ଗେ ପ୍ରଯୁଜ୍ୟ )—

୧ । ଆଦି, ଇତ୍ୟାଦି, ଆଦିକରି, ଏବଂ ଅନ୍ୟମାନେ; ଓଗେରେ—
1 Etcetera ( etc ); and others.
୨ । ଅବଧି, ରୁ; ଠାରୁ—
2. From; after, forth; forward.
( ଯଥା—ଅଦ୍ୟ ପ୍ରଭୃତି ମୁଁ ଆପଣଙ୍କର ଦାସ ହେଲି । )
୩ । ରକମ—3. Kind.
[ ଦ୍ର—ପ୍ରଭୃତି ଶବ୍ଦ ସଂସ୍କୃତରେ ଅନ୍ୟ ଶବ୍ଦ ପରେ ବିଶେଷଣ-ରୂପେ ବ୍ୟବହୃତ ହୁଏ; ଯଥା — ଗ୍ରାମ ପ୍ରଭୃତୟଃ ସର୍ବେ=ଗ୍ରାମ ଆଦି ସମସ୍ତେ । ]

**ପ୍ରଭେଦ**—ସଂ. ବି. ( ପ୍ର+ଭିଦ୍ ଧାତୁ=ଭେଦ କରିବା+ଭାବ. ଅ )—
Prabheda ୧ । ପାର୍ଥକ୍ୟ; ବୈଲକ୍ଷଣ୍ୟ; ବିଭିନ୍ନତା; ବିଶେଷତ୍ୱ—
1. Difference; distinction.
୨ । ବିକାଶ; ପ୍ରସ୍ଫୁଟନ; ଫୁଟିବା—
2. Blowing; opening.
୩ । ବିଧି, ପ୍ରକାର, ରକମ—
3. Kind; sort; manner.
୪ । ଭେଦ କରି ବାହାରିବା —4. Coming out of a thing by piercing through it

**ପ୍ରଭେଦକ**—ସଂ. ବିଣ. ( ପ୍ର+ଭିଦ୍ ଧାତୁ+କର୍ତ୍ତୃ. ଅକ )—
Prabhedaka ୧ । ଯେ ଭେଦ କରେ—
(ପ୍ରଭେଦିକା—ସ୍ତ୍ରୀ) 1. Distinguishing.
୨ । ପାର୍ଥକ୍ୟସାଧକ—2. Separating.
୩ । ଯାହା ବିଦ୍ଧ କରେ ବା ଫୁଟାଇ ଦିଏ—3 Piercing.

**ପ୍ରଭେଦ କରିବା**—ଦେ. କ୍ରି—୧ । ପାର୍ଥକ୍ୟ ବିଚାର କରିବା—
Prabheda kariba 1. To make distinction; to treat separately.
প্রভেদ করা (বাংলা)
प्रभेद करना (हिन्दी) ୨ । ଭିନ୍ନ କରିବା—2. To separate.
( ପ୍ରଭେଦ ରଖିବା—ଅନ୍ୟରୂପ )

**ପ୍ରଭେଦନୀ**—ସଂ. ବି. ସ୍ତ୍ରୀ. ( ପ୍ରଭେଦନ+ସ୍ତ୍ରୀ. ଈ )—ଭେଦନାସ୍ତ୍ରବିଶେଷ;
Prabhedani ଫୋଡ଼ଣୀ; ଭଅଁରି—A piercing instrument; a bodkin; awl.
(ପ୍ରଭେଦିକା—ଅନ୍ୟରୂପ)

**ପ୍ରଭୋ**—ସଂ. ସମ୍ବୋଧନ ( ପ୍ରଭୁ ଶବ୍ଦର ସମ୍ବୋଧନ; ଈଶ୍ୱର ଓ ରାଜା
Prabho ଆଦିଙ୍କଠାରେ ପ୍ରଯୁଜ୍ୟ )—ପ୍ରଭୁ ହେ !—Oh Lord.

**ପ୍ରଭ୍ରଂଶଥୁ**—ସଂ. ବି. ( ପ୍ର+ଭ୍ରଂଶ ଧାତୁ+କର୍ତ୍ତୃ. ଅଥୁ )—ପୀନସ ରୋଗ
Prabhramsathu ( ବୈ. ଶ )—Atrophic rhinites.

**ପ୍ରଭ୍ରଷ୍ଟ**—ସଂ. ବି. ( ପ୍ର+ଭ୍ରଂଶ୍ ଧାତୁ+କର୍ମ. ତ )—୧ । ଧ୍ୱଂସପ୍ରାପ୍ତ;
Prabhrashta ବିନଷ୍ଟ—1. Ruined; destroyed.
୨ । (+କର୍ତ୍ତୃ.ତ) ଚ୍ୟୁତ; ପତିତ—2. Fallen.
୩ । ଭଗ୍ନ—3. Broken.

**ପ୍ରଭ୍ରଷ୍ଟକ**—ସଂ. ବି. (ପ୍ରଭ୍ରଷ୍ଟ+କ)—୧ । ଶିଖାବଲମ୍ବିନୀ ମାଳା (ବୈ. ଶ.)—
Prabhrashtaka 1. A garland put round the head; chaplet.
୨ । ମୁଣ୍ଡରୁ ତଳକୁ ଝୁଲୁ ଥିବା ମାଳା (ବୈ. ଶ.)—
2. A garland hanging from the head.

**ପ୍ରମତ୍ତ**—ସଂ. ବିଣ. ପୁଂ (ପ୍ର+ମତ୍ତ) —୧ । ପ୍ରମାଦଯୁକ୍ତ, ଅସାବଧାନ;
Pramatta ଗର୍ ହୁସିଆର୍—1 Negligent; careless.
(ପ୍ରମତ୍ତା—ସ୍ତ୍ରୀ) [ପ୍ରମତ୍ତତା(ତ୍ୱ)—ବିଶେଷ୍ୟ]
୨ । ଉନ୍ମତ୍ତ; ମତୁଆଲ; ପାଗଳ, ମସ୍ତ—
2. Maddened; turned insane.
୩ । ଅତି ଆସକ୍ତ—3. Addicted to.
୪ । ନିଶାରେ ଚୂର; ମତୁଆଲା —
4. Intoxicated; inebriated.

**ପ୍ରମଥ**—ସଂ. ବି.—୧ । (ପ୍ର+ମଥ୍ ଧାତୁ=ମନ୍ଥିବା+କର୍ତ୍ତୃ. ଅ)—
Pramatha ମହାଦେବଙ୍କ ପାରିଷଦଗଣ—
1. The attendants of Mahādeba.
[ ଦ୍ର—ଏମାନେ ୩୬ କୋଟି ସଂଖ୍ୟକ, ନୃତ୍ୟଗୀତାଦିବିଶାରଦ, ମାୟାବୀ ଓ ନାନା ରୂପଧାରୀ ଅଟନ୍ତି । କାଳିକା ପୁରାଣ ମତରେ ଏମାନଙ୍କ ମଧ୍ୟରୁ କେତେକ ଭୋଗବିମୁଖ, ଯୋଗୀ ଓ ତ୍ୟାଗୀ ଅଟନ୍ତି, କେତେକ ଭୋଗପରାୟଣ ଓ କାମୁକ ଅଟନ୍ତି । ଶିବଙ୍କ କ୍ରୀଡ଼ାରେ ଏମାନେ ସହାୟକ ଅଟନ୍ତି (ବୈ. ଶ.) ।]
୨ । ଘୋଟକ; ଘୋଡ଼ା—2. Horse.
୩ । (ନାମ) ଧୃତରାଷ୍ଟ୍ରଙ୍କର ଏକ ପୁତ୍ର—
3. Name of a son of Dhṛutarāshṭra.
୪ । (+ଭାବ. ଅ)—ପ୍ରମଥନ (ଦେଖ)
4. Pramathana (See)
୫ । ରାମାୟଣୋକ୍ତ ରାକ୍ଷସବିଶେଷ—5 Name of a demon described in the Rāmāyaṇa.
ବୈଶାଖ ଋଷଭଚ ଦଧି ସ୍ତ ଥ ପ୍ରମଥକ ବଣେ ରଙ୍ଗୀ ।
ଭଞ୍ଜ, ବୈଦେହୀଶବିଳାସ ।

**ପ୍ରମଥନ**—ସଂ. ବି. (ପ୍ର+ମଥନ)—୧ । ହତ୍ୟା; ବଧ—
Pramathana 1. Killing; slaughter.
୨ । ଉତ୍ପୀଡ଼ନ, ଯନ୍ତ୍ରଣା ଦେବା—
2. Distressing; oppressing; torturing.
୩ । ଉନ୍ମୂଳନ—3. Uprooting.
୪ । ବିଲୋଡ଼ନ; ମନ୍ଥିବା—
4. Depredation; agitation; churning.
୫ । ତ୍ୟାଗ—5. Abandonment.
୬ । ପରାଭବ; ଅବମାନନା—6. Insult.
୭ । ମର୍ଦ୍ଦନ—7. Rubbing.
୮ । ଚକଟିବା—8. Kneading.
୯ । ଚୂରିବା—9. Pounding.

**ପ୍ରମଥ ନାଥ**—ସଂ. ବି. (୬ଷ୍ଠୀ ତତ୍; ପ୍ରମଥ+ନାଥ)—
Pramatha nātha ମହାଦେବ; ଶିବ—Siba.
(ପ୍ରମଥାଧିପ, ପ୍ରମଥେଶ, ପ୍ରମଥାଧୀଶ, ପ୍ରମଥାଧୀଶ୍ୱର—ଅନ୍ୟରୂପ)

**ପ୍ରମଥା**—ସଂ. ବି. (ପ୍ର+ମଥ୍ ଧାତୁ+ଭାବ. ଅ+ଆ)—୧ । ପୀଡ଼ା—
Pramathā 1. Torture.
୨ । (+କର୍ତ୍ତୃ. ଅ+ଆ) ହରିଡ଼ା (ବୈ. ଶ.)—2. Myrobalan.

**ପ୍ରମଥାଳୟ**—ସଂ ବି. (୬ଷ୍ଠୀ ତତ୍; ପ୍ରମଥ+ଆଳୟ)—୧ । ଦୁଃଖ ବା
Pramathālaya ଯନ୍ତ୍ରଣା ଦିଆଯିବାର ସ୍ଥାନ—
1 A place of torture.
୨ । ନରକ (ହି. ଶ.)—2. Hell.

**ପ୍ରମଥିତ**—ସଂ. ବିଣ (ପ୍ର+ମଥିତ)—୧ । ବିଲୋଡ଼ିତ—
Pramathita 1 Churned; kneaded; agitated.
୨ । କ୍ଲେଶିତ, ଉତ୍ପୀଡ଼ିତ—2. Oppressed.
୩ । ମର୍ଦ୍ଦିତ—3 Rubbed; bruised
୪ । ଚୂର୍ଣ୍ଣିତ—4. Pounded.
ସଂ. ବି—ନିର୍ଜଳ ଘୋଳଦହି (ହି.ଶ)—
Unwatered churned curd.

**ପ୍ରମଦ**—ସଂ. ବି—୧ । [ପ୍ର+ମଦ୍ ଧାତୁ=ହୃଷ୍ଟ ହେବା, ମତ୍ତ ହେବା+
Pramada ଅ]—୧ । (+କରଣ. ଅ) ଧାତୁର ଫୁଲ—
1. The Dhāturā flower.
୨ । (+କର୍ତ୍ତୃ. ଅ) ଦୈତ୍ୟବିଶେଷ—
2. Name of a demon.
୩ । (+ଭାବ. ଅ) ଆନନ୍ଦ; ହର୍ଷ—
3. Delight; rapture; joy.
୪ । ମତ୍ତତା—4. Madness; intoxication.
୫ । (ନାମ) ବଶିଷ୍ଠଙ୍କର ଏକ ପୁତ୍ର (ହି. ଶବ୍ଦସାଗର)—
5 Name of a son of Basishtha
(ପ୍ରମଦା—ସ୍ତ୍ରୀ) ସଂ. ବିଣ. ପୁଂ. ( +କର୍ତ୍ତୃ. ଅ )—
୧ । ମତ୍ତ; ଉନ୍ମତ୍ତ - 1 Maddened.
୨ । ନିଶାରେ ଭୋଳ; ମଭୁଆଲ—2. Intoxicated.
୩ । ଆନନ୍ଦରେ ମତ୍ତ—3. Maddened with joy.

**ପ୍ରମଦକ**—ସଂ. ବି. ( ପ୍ର+ମଦ୍ ଧାତୁ+କର୍ତ୍ତୃ. ଅକ )—
Pramadaka ପରଲୋକ ଅସ୍ୱୀକାରକାରୀ ବ୍ୟକ୍ତି; ନାସ୍ତିକ—
Atheist; one who has no faith in the life after.

**ପ୍ରମଦ କାନନ**—ସଂ. ବି. ( ୬ଷ୍ଠୀ ତତ୍; ପ୍ରମଦ+କାନନ )—
Pramada kānana ୧ । ରାଜାଙ୍କ ଅନ୍ତଃପୁରସ୍ଥ ଉଦ୍ୟାନ—
1. A pleasure-garden attached to a harem.
(ପ୍ରମଦ ବନ, ପ୍ରମଦାରାମ, ପ୍ରମଦୋଦ୍ୟାନ — ଅନ୍ୟରୂପ)
୨ । କ୍ରୀଡ଼ାବଗିଚା—2. Pleasure garden.

**ପ୍ରମଦା**—ସଂ. ବି. ସ୍ତ୍ରୀ. (ବହୁବ୍ରୀହି; ପ୍ର=ଉତ୍କୃଷ୍ଟ+ମଦ=ରୂପ, ଯୌବନ,
Pramadā ସୌଭାଗ୍ୟାଦି ଜନିତ ଗର୍ବ+ସ୍ତ୍ରୀ. ଆ )—
୧ । ମନୋହାରିଣୀ ସ୍ତ୍ରୀ; ସୁନ୍ଦରୀ ନାରୀ—
1. A graceful or charming lady.
୨ । ଯୁବତୀ ସ୍ତ୍ରୀ—2. A youthful woman.
୩ । ଯୌବନୋତ୍ଫୁଲ୍ଲା ସ୍ତ୍ରୀ—3. A buxom lady.
୪ । ଚତୁର୍ଦ୍ଦଶାକ୍ଷର ଛନ୍ଦୋବିଶେଷ—
4. A metre of 14 syllables.
୫ । ପ୍ରିୟଙ୍ଗୁ ( ହି. ଶ ) ( ଦେଖ )
5. Priyangu ( See )

**ପ୍ରମଦ୍ୱର**—ସଂ. ବିଣ. ପୁଂ—ଅମନୋଯୋଗୀ—
Pramadbara (ପ୍ରମଦ୍ୱରା—ସ୍ତ୍ରୀ) Inattentive (Apte).

**ପ୍ରମନାଃ**—ସଂ ବିଣ. ( ପ୍ର+ମନସ୍ )—ପ୍ରସନ୍ନ; ହର୍ଷଯୁକ୍ତ (ହି. ଶ)—
Pramanāh Delighted; jolly.

**ପ୍ରମନ୍ୟୁ**—ସଂ ବିଣ. ( ପ୍ର+ମନ୍ୟୁ )—
Pramanyu ଅତି କ୍ରୁଦ୍ଧ (ହି. ଶ)—Enraged.
ସଂ. ବି—ଅତ୍ୟନ୍ତ କ୍ରୋଧ (ହି ଶ)—Rage.

**ପ୍ରମର୍ଦ୍ଦ(ର୍ଦ୍ଦ)ନ**—ସଂ ବି (ପ୍ର+ମୃଦ ଧାତୁ+ଭାବ ଅନ)—
Pramarda(rdda)na ୧ । ଖୁବ ମଳିବା—
1. Rubbing much
୨ । ଅଚ୍ଛା କରି ଚକଟିବା—2. Thorough kneading.
୩ । ଦଳନ, ବିନଷ୍ଟ କରିବା—3. Crushing.
୪ । (+କର୍ତ୍ତୃ ଅନ, ଏ ରାକ୍ଷସଙ୍କୁ ଓ ଦୁଷ୍ଟଙ୍କୁ ମର୍ଦ୍ଦନ କରିବାରୁ) ବିଷ୍ଣୁ—4. Bishnu
ସଂ. ବିଣ. ପୁଂ--୧ । ଦଳନକାରୀ—1. Crushing.
୨ । ଚକଟୁଥିବା —2. Kneading.

**ପ୍ରମଲୋଟ୍**—ପ୍ରାଦେ. (ଗଞ୍ଜାମ) ବୈଦେ. (ଇଂ. ପ୍ରମିସରୀ ନୋଟ୍) ବି—
Pramalot ଋଣ ପତ୍ର; ହାଣ୍ଡ୍ ନୋଟ୍—Hand note.
(ପ୍ରମିଲୋଟ, ପ୍ରଲୋଟ —ଅନ୍ୟରୂପ)

**ପ୍ରମା**—ସଂ. ବି. (ପ୍ର+ମା ଧାତୁ+ଭାବ ଅ+ସ୍ତ୍ରୀ. ଆ)—
Pramā ୧ । ନିଶ୍ଚୟବୋଧ ବା ଜ୍ଞାନ—1. Conviction.
୨ । (ନ୍ୟାୟ) ସତ୍ୟ ଜ୍ଞାନ—2. (logic) Knowledge free from error; true knowledge.
୩ । ନିଅଁ, ମୂଳଦୁଆ (ହି. ଶ) —3. Foundation.
୪ । ମାପ (ହି. ଶ)—4. Measurement.

**ପ୍ରମାଇ**—ଗ୍ରା. ବି—(ସଂ. ପରମାୟୁଃ)—ପରମାୟୁଃ—
Pramāi Life-time; the entire period of the life of a being.
(ପ୍ରମାଇଶ, ପ୍ରମାୟୁ, ପ୍ରମେଇଶ—ଅନ୍ୟରୂପ)

**ପ୍ରମାଣ**—ସଂ. ବି—(ପ୍ର+ମା ଧାତୁ+ଭାବ. ଅନ)—୧ । ଯଥାର୍ଥ ଜ୍ଞାନ—
Pramāna 1. True knowledge.
୨ । ସାକ୍ଷୀ—2. Witness.
୩ । ଯାହା ଦ୍ୱାରା କୌଣସି ବିଷୟର ସତ୍ୟତା ନିରୂପିତ ହୁଏ—
3. Evidence; proof; testimony
୪ । ସୀମା—
4. Limit; mark; boundary.
୫ । ପରିମାଣ—5. Measure; capacity
୬ । ଶାସ୍ତ୍ର, ଧର୍ମଗ୍ରନ୍ଥ—
6. Scripture; religious authority.
୭ । ନଜିର, ପ୍ରାମାଣିକ ବାକ୍ୟ ବା ବିଷୟ—
7. Ruling; authority.
୮ । ଲେଖ୍ୟ; ପାଣ୍ଡୁଲିପି, ଦଲିଲ—
8. Manuscript; document; a deed.
୯ । ଜ୍ଞାନସାଧନ ଇନ୍ଦ୍ରିୟ—
9. Organ of sense.

୧୦ । ନିଶ୍ଚୟ—10. Certainty
୧୧ । ବିଶ୍ୱାସ; ଦୃଢ଼ ଧାରଣା; ପ୍ରତ୍ୟୟ—
11. Faith; confidence; trust; conviction
୧୨ । (ନ୍ୟାୟ) ପ୍ରତ୍ୟକ୍ଷ, ଅନୁମାନ, ଉପମାନ ଓ ଶାବ୍ଦ ଏହି ଚାରି ପ୍ରକାରର ଜ୍ଞାନର ସୋପାନ—12 (Logic) The four materials (preception, inference, comparison and words) on which a judgment is formed

[ଦ୍ରି—ପ୍ରମାଣ ନ୍ୟାୟଶାସ୍ତ୍ରର ମୁଖ୍ୟ ବିଷୟ ଅଟେ । ଗୌତମ ଚାରି ପ୍ରକାର ପ୍ରମାଣ ସ୍ୱୀକାର କରିଅଛନ୍ତି:—ପ୍ରତ୍ୟକ୍ଷ, ଅନୁମାନ, ଉପମାନ ଓ ଶାବ୍ଦ । ଇନ୍ଦ୍ରିୟଦ୍ୱାରା ଅନୁଭୂତ ପ୍ରମାଣର ନାମ ପ୍ରତ୍ୟକ୍ଷ, ଲିଙ୍ଗ ଓ ଲିଙ୍ଗୀ ଏ ଦୁହିଙ୍କର ପ୍ରତ୍ୟକ୍ଷ ଜ୍ଞାନରୁ ଉତ୍ପନ୍ନ ପ୍ରମାଣର ନାମ ଅନୁମାନ, ଜ୍ଞାତ ବସ୍ତୁର ସାଦୃଶ୍ୟଦ୍ୱାରା ଅନ୍ୟ ବସ୍ତୁର ଜ୍ଞାନକୁ ଉପମାନ, ଆପ୍ତ ବା ବିଶ୍ୱାସପାତ୍ର ବ୍ୟକ୍ତିର ବାକ୍ୟକୁ ଶାବ୍ଦ ପ୍ରମାଣ ବୋଲାଯାଏ । ମୀମାଂସା ଦର୍ଶନ ଏହି ଚାରି ପ୍ରମାଣ ଛଡ଼ା ଆଉ ଚାରିଗୋଟି ପ୍ରମାଣ ସ୍ୱୀକାର କରେ :–ଐତିହ୍ୟ, ଅର୍ଥାପତ୍ତି, ସମ୍ଭବ ଓ ଅଭାବ । ଯାହା ପରମ୍ପରାକ୍ରମେ ପ୍ରସିଦ୍ଧ ତାହା ଐତିହ୍ୟ, ଯାହାକୁ ନ ଶୁଣି ବା ନ ଦେଖି ସ୍ୱୀକାର ନ କଲେ ଦେଖା ବା ଶୁଣା କଥାର ଅର୍ଥରେ ଆପତ୍ତି ହୋଇ ପାରେ ତାହା ଅର୍ଥାପତ୍ତି, ଯେଉଁ ପ୍ରମାଣଦ୍ୱାରା ଅଙ୍ଗୀ ମଧ୍ୟରେ ଅଙ୍ଗ ଥିବାର, ବ୍ୟାପକରେ ବ୍ୟାପ୍ୟ ଥିବାର, ସର୍ଜକର ସୃଷ୍ଟ ବସ୍ତୁ ସ୍ୱୀକାର କରାଯାଏ, ତାକୁ ସମ୍ଭବ ଓ କୌଣସି ବସ୍ତୁର ବା ବିଷୟର ଅନୁପସ୍ଥିତି ଯହିଁଦ୍ୱାରା ସିଦ୍ଧ ହୁଏ, ତାକୁ ଅଭାବ ବୋଲାଯାଏ । ନୈୟାୟିକମାନେ ଶେଷୋକ୍ତ ଚାରି ପ୍ରମାଣକୁ ସ୍ୱତନ୍ତ୍ରପ୍ରମାଣ ବୋଲି ମାନନ୍ତି ନାହିଁ ଓ ଏ ଚାରିଗୋଟି ପ୍ରଥମୋକ୍ତ ଚାରିଗୋଟିର ଅନ୍ତର୍ଗତ ଥିବାର କହନ୍ତି । ଚାର୍ବାକ ଦର୍ଶନରେ କେବଳ ପ୍ରତ୍ୟକ୍ଷ ପ୍ରମାଣ, ବୌଦ୍ଧ ଦର୍ଶନରେ ପ୍ରତ୍ୟକ୍ଷ ଓ ଅନୁମାନ ପ୍ରମାଣ, ସାଂଖ୍ୟରେ ପ୍ରତ୍ୟକ୍ଷ, ଅନୁମାନ ଓ ଆଗମ, ବୈଶେଷିକରେ ପ୍ରତ୍ୟକ୍ଷ ଓ ଅନୁମାନ ପ୍ରମାଣ ଗୃହୀତ ହୋଇଅଛି । ଧର୍ମଶାସ୍ତ୍ର (ଆଇନ)ରେ ପ୍ରମାଣକୁ ଚାରି ଶ୍ରେଣୀରେ ବିଭକ୍ତ କରାଯାଇଅଛି – ୧. ଲିଖିତ (ଦଲିଲ); ୨. ଭୁକ୍ତି (ଦଖଲ), ୩. ସାକ୍ଷ (ଗୁହା) ଓ ୪. ଦିବ୍ୟ (ଶପଥ)—ହି. ଶ ।]

୧୩ । ହେତୁ—13. Cause; motive; reason
୧୪ । ଇୟତ୍ତା; ଅନ୍ଦାଜ; ଅଟକଳ (ହି. ଶ)—
14. Measure; estimate.
୧୫ । ମୂଳଧନ ( ହି. ଶ )—
15. Capital in business.
୧୬ । ଆଦେଶପତ୍ର ( ହି. ଶ. )—
16. Writ; a written order.

ପ୍ରମାଣ ଦେ. ବି—୧ । ହଲଫ; ଶପଥ—1. Oath.
ପ୍ରମାନ ୨ । (ସଂ. ପରମାଣ) ପରିମାଣ; ମାପ—1. Measure
ପ୍ରମାଣ ଦେ. ବିଣ—୧ । ସୁପ୍ରମାଣିତ—
ପ୍ରମାଣ 1. Well proved.
୨ । ଠିକ୍; ନିଃସନ୍ଦେହ—2. Undoubted.
ଜଣାଇଲେ ସତ୍ୟ, ଥିଉ ସେ ଭୂଜଙ୍ଗପକ୍ଷ ନାହିଁତ ପ୍ରମାଣ ଟିଗୋ—
ଅବସର୍ବାସ ସଙ୍ଗୀତ ।

୩ । (କଚେରୀ ଓ ଦଲିଲରେ ବ୍ୟବହୃତ) ସ୍ୱୀକୃତ—
3. Agreed to.
(ଯଥା—ଏ ତମସୁକ୍ ଲିଖିତ ବିଷୟମାନ ମୋର ପ୍ରମାଣ).
ଦେ. ଅ—୧ । ନିଶ୍ଚୟ, ଅବଶ୍ୟ—
1. Certainly; must.
(ଯଥା—ମୁଁ ଆଜ ସେଠାକୁ ଯିବା ପ୍ରମାଣ)
୨ । ପର୍ଯ୍ୟନ୍ତ—2. Upto; till
କଣ୍ଠ ପ୍ରମାଣ ଜଳେ ଥାଇ, ଅନ୍ତିମ କୃଷ୍ଣ ମୁଖ ଚାହିଁ ।
ଜଗନ୍ନାଥ, ଭାଗବତ ।
୩ । ଅନୁସାରେ, ଅନୁଯାୟୀ—
3. According to; in pursuance of
( ଯଥା—ମୁଁ ତାଙ୍କ ଆଜ୍ଞା ପ୍ରମାଣ ସେଠାକୁ ଯିବି । )
୪ । (କଚେରୀ ଓ ଦଲିଲରେ ବ୍ୟବହୃତ) ଏହା ମୋର ସମ୍ମତ ଅଟେ, ସହି—4. This is agreed to by me.
(ଯଥା—ଏ ଦୁଇ ଶହ ଟଙ୍କାର ତମସୁକ ରାମ ସାହୁଙ୍କର ପ୍ରମାଣ ।)
୫ । (କଚେରୀ)—ଯଥାର୍ଥରେ; ଏହା ଠିକ୍ ଅଟେ—
5 This is actually so.
(ଯଥା—ଏ କରମାଳା ସନ୍ତକ କମଳା ଦେଈଙ୍କର ପ୍ରମାଣ । )
୬ । (କଚେରୀ)—ପୂର୍ବକ, ଗ୍ରହଣ ପୂର୍ବକ—
6. By taking, on
( ଯଥା—ମୁଁ ହଲପ ପ୍ରମାଣ ଏ କଥା କହୁଛି । )
୭ । ବଳେ, ମୁଁ ସନ୍ତୁଷ୍ଟ ହେବି—7. I will be satisfied.
(ଯଥା—ଏ ଦୁଷ୍ଟ ଲୋକକୁ ଏ ସହରରୁ ତଡ଼ିଲେ ଯାଇ ପ୍ରମାଣ ।)
ପ୍ରାଦେ. (ଗଞ୍ଜାମ) ବି.—୧ । ସ୍ୱାକ୍ଷର—1. Signature
୨ । ଅଶିକ୍ଷିତ ବ୍ୟକ୍ତିର ସନ୍ତକ—2. Mark put on a document by an unlettered person

**ପ୍ରମାଣ କରିବା**—ଦେ. କ୍ରି—୧ । ପ୍ରମାଣିତ କରିବା—
Pramāṇa kariba 1 To prove.
প্রমাণকরা ୨ । ହଲପ ବା ଶପଥ କରିବା—
प्रमाण करना; प्रमानना 2 To take oath.

**ପ୍ରମାଣ କୁଶଳ**—ସଂ. ବିଣ. ପୁଂ—ଯେ ଭଲ ତର୍କ କରିପାରେ (ହି. ଶ)—
Pramāṇa kusaḷa Able to argue well.
(ପ୍ରମାଣକୁଶଳା—ସ୍ତ୍ରୀ) (ପ୍ରମାଣକୁଶଳତା—ବି)

**ପ୍ରମାଣ କୋଟି**—ସଂ. ବି. (୬ଷ୍ଠୀ ତତ୍; ପ୍ରମାଣ+କୋଟି)—
Pramāṇa koṭi କୌଣସି ବିଷୟର ପ୍ରମାଣ ପାଇଁ ପ୍ରୟୋଜନୀୟ ବିଷୟ ସକଳ (ହି. ଶ)—The scope or aggregate of matters required to prove a matter.

**ପ୍ରମାଣ ଦେବା**—ଦେ. କ୍ରି—୧ । ବିଚାରକଙ୍କ ଆଗେ ପ୍ରମାଣ ଉପସ୍ଥାପିତ କରିବା—1. To adduce evidence before a judge.
Pramāṇa debā
প্রমাণ দেওয়া
प्रमाण देना ୨ । ସାକ୍ଷ୍ୟ ଦେବା—2. To give evidence.

**ପ୍ରମାଣ ପତ୍ର**—ସଂ. ବି—୧ । ନିଦର୍ଶନପତ୍ର—
Pramāṇa patra 1. A letter of authority.
୨ । ରସିଦ୍; ପ୍ରାପ୍ତିସ୍ୱୀକାର ପତ୍ର—
2. Voucher; receipt.

୩ । ଲିଖିତ ପ୍ରମାଣ—3. Written testimony; documentary proof

୪ । ସାର୍ଟିଫିକେଟ୍—4. A certificate.

**ପ୍ରମାଣ ପୁରୁଷ**—ସଂ ବି. (ମ. ପ. ଲୋ, କର୍ମଧା, ପ୍ରମାଣ+ପୁରୁଷ)—
Pramāṇa purusha ୧ । ବିଚାରକର୍ତ୍ତା—1. Judge.

୨ । ମଧ୍ୟସ୍ଥ; ପଞ୍ଚାଏତ୍; ସାଲିସ; ଯେଉଁ ବ୍ୟକ୍ତିଙ୍କ ମୀମାଂସାକୁ ଉଭୟ ପକ୍ଷ ଗ୍ରାହ୍ୟ କରନ୍ତି—2. An umpire; an arbitrator.

**ପ୍ରମାଣ ବାକ୍ୟ**—ସଂ. ବି. (ପ୍ରମାଣ+ବାକ୍ୟ)—ଯେଉଁ ବାକ୍ୟକୁ
Pramāṇa bākya ପ୍ରମାଣରୂପେ ଗ୍ରହଣ କରାଯାଏ—
Authoritative statement.

**ପ୍ରମାଣ ସଇ(ହି)**—ଦେ. ବିଣ. (ସଂ ପରିମାଣାନୁସାରୀ)—
Pramāṇa sai(hi) ୧ । ପୂର୍ଣ୍ଣ ପରିମାଣାନୁସାରୀ—
प्रमाणसंई 1 Of full measure.
पूरा नापका ୨ । ପରିମାଣାନୁଯାୟୀ—
2 Up to the mark

୩ । ପୂର୍ଣ୍ଣବୟସ୍କ ବା ପୂର୍ଣ୍ଣାକୃତି ବ୍ୟକ୍ତିର କଣ୍ଠରେ ନିର୍ମିତ—
3. Constructed to suit an adult of full size.

**ପ୍ରମାଣ ସିଦ୍ଧ**—ସଂ. ବିଣ. (୩ୟା ତତ୍, ପ୍ରମାଣ+ସିଦ୍ଧ)—ପ୍ରମାଣଦ୍ୱାରା
Pramāṇa siddha ପ୍ରତିଷ୍ଠିତ—Established by evidence.

**ପ୍ରମାଣାଭାବ**—ସଂ. ବି (୬ଷ୍ଠୀ ତତ୍, ପ୍ରମାଣ+ଅଭାବ)—
Pramāṇābhāba ପ୍ରମାଣର ଅନୁପସ୍ଥିତି, ପ୍ରମାଣସ୍ୱଳ୍ପତା—
Want of evidence.

**ପ୍ରମାଣିକା**—ସଂ. ବି.( ପ୍ରମାଣ+କ+ଆ)—ଅଷ୍ଟାକ୍ଷର ଚରଣଚତୁଷ୍ଟୟଯୁକ୍ତ
Pramāṇikā ଛନ୍ଦୋବିଶେଷ—
(ପ୍ରମାଣୀ—ଅନ୍ୟରୂପ) A metre of 8 syllables
[ଦ୍ର—ଏଥିର ପ୍ରତି ଚରଣରେ ଏକ ଜଗଣ, ଏକ ରଗଣ, ଏକ ଲଘୁ ଓ ଏକ ଗୁରୁ ବର୍ଣ୍ଣ ଥାଏ, ଏ ବୃତ୍ତର ଅନ୍ୟ ନାମ ନଗସ୍ୱରୂପିଣୀ, ଏଥିର ଉଦାହରଣ—ନମାମି ଭକ୍ତବତ୍ସଳଂ, କୃପାଳୁଶୀଳକୋମଳଂ, ଭଜାମି ତେ ପଦାମ୍ବୁଜଂ, ଅକାମିନାଂ ସ୍ୱଧାମଦଂ—ହି. ଶ ।]

**ପ୍ରମାଣିତ**—ସଂ. ବିଣ. (ପ୍ରମାଣ+ଇତ)—ପ୍ରମାଣଦ୍ୱାରା ସିଦ୍ଧ; ସାବ୍ୟସ୍ତ—
Pramāṇita Proved.

**ପ୍ରମାଣିବା**—ଦେ. (ପଦ୍ୟ) କ୍ରି. (ସଂ. ପ୍ରମାଣ)—୧ । ପ୍ରମାଣିତ କରିବା—
Pramāṇibā 1. To prove
प्रमाणना ନୟନେ ମୁଁ ଦେଖିଛି ସୀତା ଅଭୂତ ପ୍ରକାରେ
प्रमानना ସତୀତ୍ୱ ପ୍ରମାଣିବାକୁ ଅଗ୍ନି-ପରୀକ୍ଷାରେ ।
ନନ୍ଦକିଶୋର. ସୀତାବନବାସ ।

୨ । ନିରୂପଣ କରିବା; ସ୍ଥିର କରିବା—
2. To ascertain.
ସେମାନଙ୍କ ଅପୂର୍ବ ପ୍ରମାଣିବା କେତେ
ତା ଶୁଣିବା ଇଚ୍ଛା ହେଉଛି ମୋର ଚିତ୍ତେ । କୃଷ୍ଣସିଂହ. ମହାଭାରତ ଆଦି ।

୩ । ଆଶ୍ରୟ କରିବା; ଅବଲମ୍ବନ କରିବା—
3. To have resort to.
ସ୍ୱଧର୍ମେ ଥାଇ ସେବା ପ୍ରାଣୀ
ହରି ଭଜନ ନ ପ୍ରମାଣି । ଜଗନ୍ନାଥ. ଭାଗବତ ।

୪ । ଦେଖିବା—4. To see.
ସପତ୍ନୀ ଦୁଃଖେ କି ନ ଜାଣୁ
ଦୁ ନାଥ ଅନ୍ତର ପ୍ରମାଣୁ । ଜଗନ୍ନାଥ, ଭାଗବତ ।

**ପ୍ରମାଣୀକୃତ**—ସଂ. ବିଣ. (ପ୍ରମାଣ+ଅଭୂତ ତଦ୍ଭାବେ ଚ୍ୱି+କୃତ)—
Pramāṇikṛuta ୧ । ପ୍ରମାଣଦ୍ୱାରା ସ୍ଥିରୀକୃତ—
1. Established by proof; proved beyond doubt.

୨ । ପ୍ରାମାଣିକରୂପେ ଗୃହୀତ; ଆଦୃତ—2. Regarded or accepted as an authority (Apte).

୩ । ବିଶ୍ୱସିତ—3 Believed; confided in (Apte).

**ପ୍ରମାଣୁ**—ଦେ. ଅ. (ସଂ. ପରିମାଣ)—ପରି, ସଦୃଶ; ସମାନ—
Pramāṇu Like; as
କୋମଳ ନବୀନ ପ୍ରମାଣୁ ତନୁ ତଣୁ ଲ ଯେ ।
ଦୀନ କୋଟିବ୍ରହ୍ମାଣ୍ଡସୁନ୍ଦରୀ ।

**ପ୍ରମାଣେ**—ଦେ. ଅ. (ସଂ ପରିମାଣ)—୧ । ଅନୁସାରେ; ମୁତାବକ—
Pramāṇe 1. According to; in compliance with.
प्रमाणे मुताबिक, माफ़ो
ତୁମ୍ଭ ଉପଦେଶ ପ୍ରମାଣେ ପ୍ରତ୍ୟକ୍ଷେ ଦେଖିଲି ଲୋଚନେ ।
ଭୂପତି. ପ୍ରେମପଞ୍ଚାମୃତ ।

୨ । ସଦୃଶ, ତୁଲ୍ୟ—2 Like; as.
ତୃଣୀ ପ୍ରମାଣେ ଫଳ ତାଳ,
ରସ ସେ ଗଳଇ ଅପାର । ଜଗନ୍ନାଥ, ଭାଗବତ ।

୩ । (କେତେକ) ସହକାରେ; (ଶପଥ) ପୂର୍ବକ, ଗ୍ରହଣପୂର୍ବକ—
3. On (oath); on taking.
(ଯଥା—ମୁଁ ହଲପ ପ୍ରମାଣେ ଏ କଥା କହୁଛି ।)

୪ । ମାପ ମୁତାବକ; ଅମୁକର ସଙ୍ଗେ ମେଳ ଖାଇବା ଭଳି—
4. According to the measure of; to fit in with.
(ଯଥା—ଏ ଜୋତା ମୋର ଗୋଡ଼ପ୍ରମାଣେ ତିଆରି ହୋଇଛି ।)

**ପ୍ରମାତବ୍ୟ**—ସଂ. ବିଣ—(ପ୍ର+ମା ଧାତୁ+କର୍ମ. ତବ୍ୟ)—
Pramātabya ୧ । ପ୍ରମାଣିତ ହେବାର ଯୋଗ୍ୟ—
2. Demonstrable.

୨ । ବଧ୍ୟ (ହି. ଶ.)—2 Deserving to be killed.

**ପ୍ରମାତା**—ସଂ. ବିଣ. ପୁଂ. (ପ୍ର.+ମା ଧାତୁ+କର୍ତ୍ତୃ. ତୃ, ୧ମା. ୧ବ.)—
Pramātā ୧ । ବିଚାର ବା ସ୍ଥିର କରିବାକୁ ସମର୍ଥ—
(ପ୍ରମାତ୍ରୀ—ସ୍ତ୍ରୀ) 1. Competent to judge or ascertain. (Apte)

୨ । ପ୍ରମାଣକାରକ—2 Proving; demonstrating.

୩ । ଯେ ପ୍ରମାଣ ବା ସତ୍ୟଜ୍ଞାନ ଲାଭ କରିଅଛି (ହି. ଶ.)—
3. One who has acquired true or correct knowledge or right notion.

ସଂ. ବି.—୧ । ପ୍ରତ୍ୟକ୍ଷ ପ୍ରମାଣ—1. Direct evidence.

୨ । ପ୍ରକୃତ ସାକ୍ଷୀ—2. A true witness.

୩ । ପ୍ରତିଫଳିତ ମନୋବୃତ୍ତି—3. Reflected emotion.

୪ । ନଜିର—4. Authority (Apte).

**ପ୍ରମାତାମହ**—ସଂ. ବି. ପୁଂ—(ପ୍ର=ଦୂରତର+ମାତାମହ)—ମାତାମହଙ୍କ ପିତା— Pramātāmaha The father of one's maternal grand-father.
(ପ୍ରମାତାମହୀ—ସ୍ତ୍ରୀ)

**ପ୍ରମାତ୍ର**—ସଂ. ବି.—ନିର୍ଦ୍ଦିଷ୍ଟ ସଂଖ୍ୟା (ହି. ଶ.)— Pramātra A fixed number.

**ପ୍ରମାଥ**—ସଂ. ବି. (ପ୍ର+ମଥ୍ ଧାତୁ=ମନ୍ଥନ କରିବା+ଭାବ. ଅ)— Pramātha ୧। ମଥନ, ବିଲୋଡ଼ନ— 1. Agitating; churning.
୨। ହତ୍ୟା—7 Slaughter.
୩। ମର୍ଦ୍ଦନ—3 Pressing; squeezing.
୪। ନିର୍ଯ୍ୟାତନ; ନିପୀଡ଼ନ—4. Oppression.
୫। ଯନ୍ତ୍ରଣା ଦେବା—5. Tormenting.
୬। (+କର୍ତ୍ତୃ. ଅ)—ପ୍ରମଥଗଣ, ଶିବାନୁଚରବିଶେଷ— 6. A class of attendants of Śiba.
୭। (ନାମ) ଧୃତରାଷ୍ଟ୍ରଙ୍କ ପୁତ୍ରବିଶେଷ— 7. Name of a son of Dhrutarāshtra.
୮। (ନାମ) କୁମାରାନୁଚରବିଶେଷ— 8. A companion of Kārttikeya.
୯। (+ଭାବ. ଅ) ବଳପୂର୍ବକ ହରଣ— 3. Snatching away.
୧୦। ସ୍ତ୍ରୀକୁ ବଳାତ୍କାରରେ ସଂଭୋଗ (ହି. ଶବ୍ଦସାଗର)— 10. Rape.
୧୧। (ମଲ୍ଲଯୁଦ୍ଧ) ପ୍ରତିଦ୍ୱନ୍ଦ୍ୱୀକୁ ଭୂମିରେ ଚିତ୍ କରି ପକାଇ ଦେଇ ତା ଉପରେ ବସିବା (ହି. ଶବ୍ଦସାଗର)— 11. (wrestling) Felling the adversary on the ground and sitting over him.
୧୨। ବିନାଶକରଣ—12. Destruction; ruining.

**ପ୍ରମାଥୀ**—ସଂ. ବିଣ. ପୁଂ. (ପ୍ର+ମଥ୍ ଧାତୁ+କର୍ତ୍ତୃ. ଇନ୍; ୧ମା. ୧ବ.)- Pramāthī ୧। ଉତ୍ପୀଡ଼କ—1. Oppressive.
(ପ୍ରମାଥିନୀ—ସ୍ତ୍ରୀ) ୨। କ୍ଳେଶଦାୟକ— 2. Afflicting; distressing.
୩। ବିନାଶକ—3. Destroying; ruining; killing.
୪। କ୍ଷୋଭଦାୟକ —5. Tormenting.
୫। ଅଲୋଡ଼ନକାରୀ—5 Agitating; churning.
ସଂ. ବି. ପୁଂ (ନାମ)— ୧। ରାମଚନ୍ଦ୍ରଙ୍କ ବାନର ସେନାର ଏକ ଯୂଥପତି (ହି. ଶ.)—1. Name of a monkey-captain in the monkey army of Rāma.
୨। ଖରର ସହଚର ରାକ୍ଷସବିଶେଷ (ହି. ଶ.)— 2. Name of a demon.
୩। ଧୃତରାଷ୍ଟ୍ରଙ୍କର ଏକ ପୁତ୍ର (ହି. ଶ.)— 3. Name of a son of Dhrutarāshtra.
୪। ମୁଖ, ଆଖି, କାନ ଆଦିରେ ସଞ୍ଚିତ କଫର ନିବାରକ ଔଷଧ (ହି. ଶ.)—4 A medicine which clears the deposit of phlegm in the mouth, eye, ear etc; an expectorant.

**ପ୍ରମାଦ**—ସଂ. ବି. (ପ୍ର+ମଦ୍ ଧାତୁ+ଭାବ. ଅ)—୧। ଅସାବଧାନତା, Pramāda 1 Negligence; carelessness; inadvertence.
୨। ବିପଦ, ଦୁର୍ଘଟନା—2. Danger; calamity; mishap.
୩। ଭ୍ରାନ୍ତି; ଭ୍ରମ— 3 Mistake; error; oversight; blunder.
୪। ବିସ୍ମୃତି—4 Forgetfulness.
୫। ମାନସିକ ଦୌର୍ବଲ୍ୟ— 5. Mental weakness, mental debility
୬। ପ୍ରମତ୍ତତା, ନିଶା—6. Intoxication
୭। ବାତୁଳତା—7. Insanity; madness
୮। (ଯୋଗଶାସ୍ତ୍ର) ସାଧକର ଚିତ୍ତବିକ୍ଷେପ ଜନ୍ମାଇବା ସମାଧିର ଅନ୍ତରାୟବିଶେଷ (ହି. ଶ.)—8. Absence of concentration during Joga exercise.
[ଦ୍ର—ସମାଧିର ୯ଟି ଅନ୍ତରାୟ ମଧ୍ୟରୁ ଏହା ଚତୁର୍ଥ, ଏଥିଯୋଗୁଁ ସାଧକ ସମାଧି ପାଇଁ ସାଧନାର ଭାବନା ଭୁଲିଯାଏ—ହି. ଶ.।]
୯। ମୂର୍ଚ୍ଛା— 9. Fainting; swoon (Apte).
୧୦। ଅମନୋଯୋଗ—10. Inattention (Apte).
ଦେ. ବି—୧। ଦୁର୍ନାମ—1. Defamation.
୨। ଦୌରାତ୍ମ୍ୟ; ଉପଦ୍ରବ—2. Outrage.
ଦେ.ଲିଭ କୃଷ୍ଣ। ସାଧୁ ସାଧୁ.
ହେଲେ ମାଳଙ୍କ ପ୍ରମାଦ—ଜଗନ୍ନାଥ ଭାଗବତ।
୩। ଦୁଃଖର ବିଷୟ— 3. A matter of regret or sorrow.
ଦେ. ବିଣ—ଦୁଃଖଦାୟକ— Painful; afflicting.
[ଦ୍ର—ଏ ଶବ୍ଦ 'ଭ୍ରମ' ଶବ୍ଦ ସଙ୍ଗେ ଏକାର୍ଥବୋଧକ ସହଚରରୂପେ ବ୍ୟବହୃତ ହୁଏ।]

**ପ୍ରମାଦ ବଧ**—ସଂ. ବି—(ମ. ପ. ଲୋ. କର୍ମଧା; ପ୍ରମାଦ+ବଧ, ଆଧୁନିକ ପ୍ରୟୋଗ)—ଅଜ୍ଞାତସାରେ କୃତ ବା ଅସାବଧାନତାଜନିତ ନରହତ୍ୟା—Killing a person through carelessness or error; culpable homicide not amounting to murder.
Pramāda badha

**ପ୍ରମାଦ ଶୂନ୍ୟ**—ସଂ. ବିଣ—(ତତ୍ପୁ. ତତ୍; ପ୍ରମାଦ+ଶୂନ୍ୟ)— Pramāda śūnya ଭ୍ରାନ୍ତିହୀନ; ଅଭ୍ରାନ୍ତ— Free from error.
(ପ୍ରମାଦହୀନ—ଅନ୍ୟରୂପ)

**ପ୍ରମାଦିକା**—ସଂ. ବି. ସ୍ତ୍ରୀ—(ପ୍ର+ମଦ୍ ଧାତୁ=ଅସାବଧାନ ହେବା+କର୍ତ୍ତୃ. ଅକ+ସ୍ତ୍ରୀ. ଆ)—୧। ପ୍ରଗଲ୍ଭା କନ୍ୟା; ଅଣ୍ଡିରଚଣ୍ଡୀ—1. An impudent girl.
Pramādikā
୨। ଦୂଷିତା କନ୍ୟା, ଯେଉଁ କୁମାରୀର ପୁରୁଷସମ୍ଭୋଗ ଘଟିଅଛି— 2. A deflowered girl; a ravished maiden.
୩। ଅସାବଧାନା ସ୍ତ୍ରୀ— 3. A careless woman (Apte).

**ପ୍ରମାଦିତ**—ସ. ବିଣ. ପୁଂ—(ପ୍ରମାଦ+ଇତ)—ଉପହସିତ—
Pramādita Rediculed; mocked; scoffed at (Apte).
(ପ୍ରମାଦିତା—ସ୍ତ୍ରୀ)

**ପ୍ରମାଦୀ**—ସ ବିଣ ପୁଂ—(ପ୍ରମାଦ+ସ୍ୱାର୍ଥରେ ଇନ୍; ୧ମା. ୧ବ.)—
Pramādī ୧ । ପ୍ରମାଦଯୁକ୍ତ, ଅସାବଧାନ, ଅମନୋଯୋଗୀ—
(ପ୍ରମାଦବାନ୍—ଅନ୍ୟରୂପ) 1. Careless, negligent;
(ପ୍ରମାଦିନୀ, ପ୍ରମାଦବତୀ—ସ୍ତ୍ରୀ) inattentive,
୨ । ପ୍ରମତ୍ତ; ନିଶାରେ ଚୂର, ମତୁଆଲ—
2. Maddened; intoxicated.
୩ । ବାଉଳ—3 Insane, mad

**ପ୍ରମାପକ**—ସ. ବିଣ—(ପ୍ର+ମା ଧାତୁ ଣିଚ+କର୍ତ୍ତୃ. ଅକ)—
Pramāpaka ଯାହା ପ୍ରମାଣ ଉପସ୍ଥାପିତ କରେ—
Furnishing authority or proof (Apte).
ସ ବି—ନଜୀର—Authority (Apte).

**ପ୍ରମାପଣ(ନ)**—ସ. ବି—୧ । ମାରଣ (ହି. ଶ)—
Pramāpaṇa(na) 1. Slaughter; killing (Apte).
୨ । ନାଶ (ହି. ଶ.)—
2. Ruin; destruction,

**ପ୍ରମାପୟିତା**—ସ. ବିଣ. ପୁଂ—(ପ୍ର+ମା ଧାତୁ ଣିଚ+ତୃ, ୧ମା. ୧ବ)-
Pramāpayitā ୧ । ଘାତକ (ହି. ଶ)—1. Killing
(ପ୍ରମାପୟିତ୍ରୀ—ସ୍ତ୍ରୀ) ୨ । ନାଶକ—2. Destructive.
୩ । ଅନିଷ୍ଟକାରକ—3. Injurious.
ସ. ବି. ପୁଂ—ଘାତକ ବ୍ୟକ୍ତି—
A murderer (Apte)

**ପ୍ରମାୟୁ**—ସ. ବିଣ—(ପ୍ର+ମା ଧାତୁ+ଉ)—ନାଶଶୀଳ; ଷର,
Pramāyu ଧ୍ୱଂସଶୀଳ (ହି. ଶ)—Liable to decay.
(ପ୍ରମାୟୁକ—ଅନ୍ୟରୂପ ଗ୍ରା. ବି—(ସ. ପରମାୟୁଃର ଅଶୁଦ୍ଧ ଉଚ୍ଚାରଣ)—ପରମାୟୁଃ—The period of one's life.

**ପ୍ରମାରକ**—ଦେ. ବି—ରାଜପୁତମାନଙ୍କର ଶାଖାବିଶେଷ—
Pramāraka A branch of the Rajputs.
ଚନ୍ଦ୍ରହାର ପ୍ରମାରକ ସଟୋର ରେହାନ
ନାମଧାସ ଗୃହ କୃତା ଜଣ ନହାକାରେ—ରଥ ନାଥ ମହାରାଜା ।

**ପ୍ରମିତ**—ସ. ବିଣ—(ପ୍ର+ମା ଧାତୁ+କର୍ମ. ତ)—୧ । ପରମିତ—
Pramita 1. Measured.
(ପ୍ରମିତି—ବି) ୨ । ପରମାଣ ଦ୍ୱାରା ଜ୍ଞାତ—
2. Known by measurement.
୩ । ପ୍ରମାଣିତ—3. Proved.
୪ । ପୂର୍ବରୁ ନିର୍ଦ୍ଧାରିତ—
4. Preordained; predetermined.
୫ । ପ୍ରାମାଣିକ—5. Authoritaive.
୬ । ଜ୍ଞାତ—6. Known; understood.
୭ । ଅଳ୍ପ; ସାମାନ୍ୟ (ହି. ଶ.)—
7. Little; small.
୮ । ଅବଧାରିତ; ନିଶ୍ଚିତ—8 Ascertained.
୯ । (+କର୍ତ୍ତୃ. ତ)—ଯେ ପ୍ରମା ବା ଯଥାର୍ଥ ଜ୍ଞାନ ଲାଭ କରିଅଛି (ହି. ଶ)—One who has attained true or perfect knowledge

**ପ୍ରମିତି**—ସ. ବି—(ପ୍ର+ମା ଧାତୁ+ଭାବ. ତି)—୧ । ନିଶ୍ଚୟାତ୍ମକ ଜ୍ଞାନ—
Pramiti 1. Positive knowledge; conviction.
୨ । ପ୍ରମାଣିତ ହେବା ଅବସ୍ଥା—2. Condition of being proved or established.
୩ । ପ୍ରମାଣଦ୍ୱାରା ଲବ୍ଧ ଯଥାର୍ଥ ଜ୍ଞାନ—3. True knowledge acquired by means of evidence.

**ପ୍ରମୀଢ଼**—ସ. ବିଣ.—(ପ୍ର+ମିହ ଧାତୁ+କର୍ତ୍ତୃ. ତ) ୧ । ଗାଢ଼ା; ଘନ;
Pramīḍha (ହି. ଶବ୍ଦସାଗର)— 1. Thick; dense.
୨ । ମୂତ୍ରରୂପେ ବହିର୍ଗତ (ହି. ଶ)—
2. Issued from the body in the shape of urine; passed as urine (Apte)

**ପ୍ରମୀତ**—ସ. ବିଣ. (ପ୍ର+ମୀ ଧାତୁ=ବିନାଶ କରିବା; ବଧ କରିବା+
Pramīta କର୍ମ. ତ)—୧ । ହତ—1. Killed.
(ପ୍ରମୀତି—ବି) ୨ । ଯଜ୍ଞରେ ବଧ କରି ଯାଇଥିବା (ପଶୁ)—
2 (a victim) Killed at a vedic sacrifice.
୩ । ମୃତ (ହି. ଶ.)—3. Dead.
ସ. ବି.—ଯଜ୍ଞରେ ବଳି ଦିଆ ଯିବା ଜୀବ—
1 An animal killed at a sacrifice.

**ପ୍ରମୀଳନ**—ସ. ବି.—(ପ୍ର+ମୀଲ ଧାତୁ+ଭାବ. ଅନ)—ନିମୀଳନ;
Pramīlana (ଆଖି) ମୁଦିବା—Closing (of the eyelids).

**ପ୍ରମୀଳା**—ସ. ବି. (ପ୍ର+ମୀଲ ଧାତୁ=ଚକ୍ଷୁ ମୁଦ୍ରିତ ହେବା+ଭାବ ଅ
Pramīlā +ସ୍ତ୍ରୀ. ଆ)—୧ । ତନ୍ଦ୍ରା; ନିଦ୍ରାବେଶ—
(ପ୍ରମୀଳିତ, ପ୍ରମୀଳୀ—ବିଣ) 1. Dozing; nap, sleepiness
୨ । ଚକ୍ଷୁର୍ନିମୀଳନ; ଆଖି ବୁଜିବା—
2. Shutting or closing of the eyes.
୩ । ଅବସାଦ; ଗ୍ଳାନି—3. Lassitude; exhaustion.
୪ । (ନାମ) ରାବଣର ପୁତ୍ରବଧୂ; ଇନ୍ଦ୍ରଜିତ ବା ମେଘନାଦର ସ୍ତ୍ରୀ—
4. The wife of Rabaṇa's son Indrajita.
୫ । (ନାମ) ଅର୍ଜ୍ଜୁନଙ୍କର ଏକ ସ୍ତ୍ରୀ—
5 A wife of Arjuna.
[ଦ୍ର—ଯୁଧିଷ୍ଠିରଙ୍କ ଯଜ୍ଞାଶ୍ୱ ଏହାଙ୍କ ରାଜ୍ୟ ବାଟେ ଯିବା ବେଳେ ଏ ତାକୁ ଧରି ରଖିବାରୁ ଅର୍ଜ୍ଜୁନଙ୍କ ସଙ୍ଗେ ଏହାଙ୍କର ଯୁଦ୍ଧ ହେଲା ଓ ଏ ପରାସ୍ତ ହୋଇ ଅର୍ଜ୍ଜୁନଙ୍କୁ ବିବାହ କଲେ । ଏହାଙ୍କ ରାଜ୍ୟରେ କେବଳ ସ୍ତ୍ରୀମାନେ ବାସ କରୁଥିଲେ—ଆପ୍ଟେ ।]

**ପ୍ରମୁକ୍ତ**—ସ. ବିଣ. (ପ୍ର+ମୁକ୍ତ)—୧ । ମୁକୁଳା କରି ଯାଇଥିବା—
Pramukta 1. Loosened; dishevelled.
(ପ୍ରମୁକ୍ତି, ପ୍ରମୋଚନ—ବି) ୨ । ବନ୍ଧନରୁ ମୁକ୍ତ—
2. Liberated; set free.
୩ । ପରିତ୍ୟକ୍ତ—3. Abandoned; renounced.
୪ । କ୍ଷିପ୍ତ—4. Cast; hurled.
୫ । ନିର୍ବାସିତ—5.Exiled.

**ପ୍ରମୁଖ**—ସଂ. ବଣ. (ପ୍ର+ମୁଖ) - ୧ । ପ୍ରଥମ—
Pramukha 1 First; foremost.
୨ । ଶ୍ରେଷ୍ଠ; ପ୍ରଧାନ—2 Chief; principal.
୩ । (ଅମୁକ ଯେଉଁମାନଙ୍କ ଅଗ୍ରରେ ଅଛନ୍ତି, ପୁରଃସର, (ଅମୁକଙ୍କ) ନେତୃତ୍ୱରେ ଚାଳିତ—3 Led by, under the leadership of; headed by.
[ଦ୍ର—ଏହି ଅର୍ଥରେ ଏ ଶବ୍ଦ ଅନ୍ୟ ଶବ୍ଦ ସହିତ ସମାସରେ ଯୁକ୍ତ ହୁଏ, ଯଥା ଇନ୍ଦ୍ରପ୍ରମୁଖ ଦେବଗଣ ।]
୪ । ଅମୁକଙ୍କ ସହିତ—4 Accompanied with.
୫ । ମାନନୀୟ 5. Respectable; honourable.
୬ । (ଅମୁକଙ୍କ) ଆଡ଼କୁ ମୁହଁ ବୁଲାଇଥିବା —
6 Facing; turning the face towards.
ସଂ ବ —୧ । ଆଦି, ଆରମ୍ଭ—1 Beginning.
୨ । ମାନନୀୟ ବ୍ୟକ୍ତି —2. A respectable person.
୩ । ସମୂହ—3. Heap; collection; multitude.
୪ । ପୁନ୍ନାଗ (ବୃକ୍ଷ) (ଦେଖ) —
4. Punnāga (tree) (See)
୫ । ମୁଖ, ପାଟି—5 The mouth (Apte).
୬ । ଅଧ୍ୟାୟର ବା ପରିଚ୍ଛେଦର ଆରମ୍ଭ—6. The beginning of a chapter or section (Apte)
୭ । ତତ୍କାଳ, ଉପସ୍ଥିତ ସମୟ; ବର୍ତ୍ତମାନ କାଳ—
7 The time being, the present.
ସଂ. ଅ.—୧ । ଆଦି, ଇତ୍ୟାଦି—1. Etcetera.
୨ । (ଅମୁକ) ଆଡ଼କୁ ମୁହଁ କରି—2. Towards; facing.
୩ । ସମ୍ମୁଖରେ—3. In front.
୪ । ସେହି ସମୟରେ; ତତ୍କାଳେ—4. Presently.
ଦେ. ବ. (ସଂ. ପ୍ରମୁଖତଃ)—ସାମ୍ମୁଖ୍ୟ—Front.
ଅନମ୍ରେ ସାଧୁଙ୍କ ପ୍ରମୁଖରେ ଯାଇ,
ବୋଇଲେ ଜଣା ଯିବ ଯୁଝିଲେ ହେ ତାଙ୍କ କ୍ରିଷ୍ଣଙ୍କ ହି, ମହାଭାରତ, ଗ୍ରନ୍ଥ ।

**ପ୍ରମୁଖତଃ**—ସଂ. କ୍ରି. ବଂ. (ପ୍ରମୁଖ+୫ମୀ ଓ ୭ମୀ ବିଭକ୍ତି ତସ୍)—
Pramukhataḥ ୧ । ପ୍ରମୁଖାତ୍ (ଦେଖ)
1, Pramukhāt (See)
୨ । ସାମନାରେ—2. In front (Apte); before.

**ପ୍ରମୁଖାତ୍**—ସଂ. ଅ. (ପ୍ରମୁଖର ୫ମୀ ବିଭକ୍ତି)—୧ । ମୁଖରୁ (ଶୁଣାଯିବା ବିଷୟ)—(heard) From the mouth of.
Pramukhāt
(ଯଥା—ଦୂତ ପ୍ରମୁଖାତ୍ ଏ ସଂବାଦ ଅବଗତ ହୋଇ ରାଜା ଦୁଃଖିତ ହେଲେ ।)
୨ । ମୌଖିକଭାବରେ—2. Orally.

**ପ୍ରମୁଦ୍**—ସଂ. ବ. ସ୍ତ୍ରୀ. (ପ୍ର+ମୁଦ୍ ଧାତୁ+ଭାବ କ୍ୱିପ୍)—ଅତ୍ୟନ୍ତ ଆନନ୍ଦ—
Pramud Extreme joy.

**ପ୍ରମୁଦିତ**—ସଂ. ବଣ. (ପ୍ର+ମୁଦିତ)—୧ । ପ୍ରଫୁଲ୍ଲ; ହୃଷ୍ଟ; ଆହ୍ଲାଦିତ; ହର୍ଷୋତ୍ଫୁଲ୍ଲ—1. Elated; pleased; delighted; overjoyed.
Pramudita
(ପ୍ରମୋଦ—ବ)
୨ । ସୁଖୀ—2 Happy.
୩ । ବିକଶିତ; ପ୍ରସ୍ଫୁଟିତ—
3. Opened; full blown, blooming.

**ପ୍ରମୁଦିତ ବଦନ**—ସଂ. ବଣ. ପୁଂ. (ବହୁବ୍ରୀହି, ପ୍ରମୁଦିତ+ବଦନ)—
Pramudita badana ପ୍ରଫୁଲ୍ଲମୁଖବିଶିଷ୍ଟ (ବ୍ୟକ୍ତି)—
(ପ୍ରମୁଦିତାନନ—ଅନ୍ୟରୂପ) Having a delighted countenance.
ପ୍ରମୁଦିତବଦନା ।
ପ୍ରମୁଦିତାନନା } ସ୍ତ୍ରୀ
[ ଦ୍ର—ଏହିପରି ମଧ୍ୟ ପ୍ରମୁଦିତହୃଦୟ, ପ୍ରମୁଦିତଚେତାଃ, ପ୍ରମୁଦିତମନାଃ ଶବ୍ଦମାନ ନିଷ୍ପନ୍ନ ହୁଏ ।

**ପ୍ରମୁଦିତ ବଦନା**—ସଂ. ବଣ. ସ୍ତ୍ରୀ—ଦ୍ୱାଦଶାକ୍ଷର ଛନ୍ଦୋବିଶେଷ—
Pramudita badanā A metre of 12 syllables
ସଂ. ବ. ସ୍ତ୍ରୀ—'ପ୍ରମୁଦିତ ବଦନ'ର ସ୍ତ୍ରୀଲିଙ୍ଗ—
Feminine of Pramudita badana.

**ପ୍ରମୁଷିତ**—ସଂ. (ପ୍ର+ମୁଷ୍ ଧାତୁ=ଚୋରି କରିବା+କର୍ମ. କ୍ତ)—
Pramushita ୧ । ଅପହୃତ—1. Stolen; taken away (Apte).
୨ । ଚେତନା ବିରହିତ—2. Unconscious (Apte).
୩ । ବ୍ୟଥିତ—3 Distracted (Apte).

**ପ୍ରମୃତ**—ସଂ. ବ (ବହୁବ୍ରୀହି, ପ୍ର=ବହୁ+ମୃତ; ଯଦ୍ୱାରା ବହୁଜୀବ ମୃତ ହୁଅନ୍ତି । ଭୂମି ଚାଷ କରିବା ଦ୍ୱାରା ଭୂପୃଷ୍ଠସ୍ଥ ଓ ଭୂଗର୍ଭସ୍ଥ ବହୁ କ୍ଷୁଦ୍ର କୀଟାଦି ମୃତ ହୁଅନ୍ତି)—ଚାଷଦ୍ୱାରା ଜୀବିକାନିର୍ବାହ; କୃଷି (ହି. ଶ)—Agriculture; husbandry.
Pramṛuta

**ପ୍ରମୃଷ୍ଟ**—ସଂ. ବଣ. (ପ୍ର+ମୃଜ୍ ଧାତୁ+କର୍ମ. କ୍ତ)—୧ । ନିରସ୍ତ—
Pramṛushṭa 1. Ceased.
ପ୍ରମୃଷ୍ଟି
ପ୍ରମାର୍ଜନ } ବ ୨ । ମାର୍ଜିତ—2. Cleansed; polished; scoured.
୩ । ମର୍ଦ୍ଦିତ—3 Rubbed; kneaded; bruised.

**ପ୍ରମେୟ**—ସଂ. ବଣ (ପ୍ର+ମା ଧାତୁ+କର୍ମ. ଯ)—
Prameya ୧ । ପରିମେୟ; ଯାହାକୁ ମାପ କରାଯାଇ ପାରେ—
1. Measurable.
୨ । ଜ୍ଞେୟ—2. Knowable.
୩ । ଅବଧାର୍ଯ୍ୟ—3 Ascertainable.
୪ । ଯାହା ପ୍ରମାଣିତ ହୋଇପାରେ; ପ୍ରମାଣଯୋଗ୍ୟ—
4 Proveable; demonstrable.
୫ । ସସୀମ—5. Finite.
ସଂ. ବ—୧ । ପ୍ରମାଣଯୋଗ୍ୟ ବିଷୟ—
1 A thing to be proved.
୨ । ଅନୁସନ୍ଧେୟ ବିଷୟ—2. Object of enquiry.
୩ । (ବେଦାନ୍ତ) ଆତ୍ମା ଓ ଜ୍ଞାନସାଧନ ଇନ୍ଦ୍ରିୟାଦି—
3. The soul and the sense-organs.
୪ । (ନ୍ୟାୟ) ଶୁଦ୍ଧ ଚୈତନ୍ୟ—
4. (Nyāya) The soul; the spirit.
[ ଦ୍ର—ବହୁବସ୍ତୁ ଜ୍ଞାନର ବିଷୟ ବା ପ୍ରମେୟ ହୋଇପାରେ; କିନ୍ତୁ ଯେଉଁ ବସ୍ତୁମାନଙ୍କ ଜ୍ଞାନଦ୍ୱାରା ମୋକ୍ଷ ବା ଅପବର୍ଗର ପ୍ରାପ୍ତି ହୁଏ ତାହାକୁ ଗୌତମ ତାଙ୍କ ନ୍ୟାୟଦର୍ଶନରେ ପ୍ରମେୟ ନାମ ଦେଇ-

ଅଛନ୍ତି । ଏହା ସଂଖ୍ୟାରେ ୧୨ଟି —ଆତ୍ମା, ଶରୀର, ଇନ୍ଦ୍ରିୟ, ଅର୍ଥ, ବୁଦ୍ଧି, ମନଃ, ପ୍ରବୃତ୍ତି, ଦୋଷ, ପ୍ରେତ୍ୟଭାବ, ଫଳ, ଦୁଃଖ ଓ ଅପବର୍ଗ । ବୈଶେଷିକ ଦର୍ଶନକାର ଦ୍ରବ୍ୟ, ଗୁଣ, କର୍ମ, ସାମାନ୍ୟ, ବିଶେଷ ଓ ସମବାୟକୁ ପ୍ରମେୟ ବୋଲି ଉଲ୍ଲେଖ କରିଅଛନ୍ତି—ହି. ଶ । ]

୫ । ପରିଚ୍ଛେଦ (ହି. ଶ)—5 Chapter ;section.

୬ । ବିଷୟ, ଚରିତ; ଆଲୋଚ୍ୟ ବିଷୟ—

6. Matter; subject-matter.

ଅତି ଉତ୍ତମୟ ବାନ୍ତ ସମସ୍ତ ବଚନ ପ୍ରମେୟ ତାହାର ।

ଇଞ୍ଚ. କୋଶୀବ୍ରହ୍ମାଣ୍ଡଭୂଗ ।

**ପ୍ରମେହ**—ସଂ ବି (ପ୍ର+ମିହ୍ ଧାତୁ=ସାଜସେକ କରିବା+ଅଧିକରଣ. ଅ)

Prameha — ମୂତ୍ରମାର୍ଗରେ ଶୁକ୍ର ଓ ପୂଜଆଦି ପଡ଼ିବା ଯନ୍ତ୍ରଣାଦାୟକ ରୋଗ, ଧାତୁ ପଡ଼ିବା ରୋଗ; ମୂତ୍ର ପୀଡ଼ାରୋଗ ବିଶେଷ—Gonerrhoea; urinary affectation.

[ ଦ୍ର—ହିନ୍ଦୁ ବୈଦ୍ୟଶାସ୍ତ୍ର ମତେ ପ୍ରମେହ ବିଂଶତି ପ୍ରକାର— ୧ । ଉଦକମେହ—ଗୋଳିଆ ପ୍ରସ୍ରାବ, ୨ । ସାନ୍ଦ୍ରମେହ—ମୂତ୍ରକୁ କିଛିସମୟ ରଖିଲେ ତାହା ଗାଢ଼ା ବା ଫେଜପରି ହୁଏ, ୩ । ଇକ୍ଷୁମେହ—ପ୍ରସ୍ରାବର ମିଠା ସ୍ୱାଦ ହୁଏ, ୪ । ସୁରାମେହ-ପ୍ରସ୍ରାବ କୌଣସି ପାତ୍ରରେ ରଖିଲେ ଉପରଦେଶ ସ୍ୱଚ୍ଛ ଓ ତଳଦେଶ ଘନ, ୫ । ପିଷ୍ଟମେହ—ପ୍ରସ୍ରାବ ପିଠଉ ପରି କାଠୁଆ ହୁଏ, ୬ । ଶୁକ୍ରମେହ—ପ୍ରସ୍ରାବରେ ଶୁକ୍ର ମିଶିଥାଏ, ୭ । ଶନୈଃମେହ—ଧୀରେ ଧୀରେ ପ୍ରସ୍ରାବ ହୁଏ, ୮ । ଶୀତମେହ—ଥଣ୍ଡା ପ୍ରସ୍ରାବ, ୯ । ଶୀତେତା ବା ସିକତାମେହ—ପ୍ରସ୍ରାବ ସଙ୍ଗେ ବାଲୁକାକଣା ପରି କ୍ଷୁଦ୍ର କ୍ଷୁଦ୍ର ପଦାର୍ଥ ବାହାରେ, ୧୦ । ଲାଲାମେହ—ପ୍ରସ୍ରାବ ନାଳୁଆ ହୁଏ, ୧୧ । ହରିଦ୍ରାମେହ—ପ୍ରସ୍ରାବ ହଳଦିଆ, ୧୨ । ନୀଳମେହ—ପ୍ରସ୍ରାବ ନୀଳବର୍ଣ୍ଣ, ୧୩ । ମଞ୍ଜିଷ୍ଠାମେହ—ପ୍ରସ୍ରାବ ନାଲି ଓ ମତ୍ସ୍ୟଗନ୍ଧ, ୧୪ । ରକ୍ତମେହ—ପ୍ରସ୍ରାବ ଫିକା ନାଲି, ଉଷ୍ଣ ଓ ଲବଣାକ୍ତ, ୧୫ । ବସା ବା ସର୍ପିମେହ—ପ୍ରସ୍ରାବ ଚର୍ବିମିଶ୍ରିତ, ୧୬ । ମଜ୍ଜାମେହ—ପ୍ରସ୍ରାବ ମଜ୍ଜା ବା ହାଡ଼ରସା ମିଶ୍ରିତ, ୧୭ । କ୍ଷୌଦ୍ରମେହ—ପ୍ରସ୍ରାବ କଷାୟ ଓ ମଧୁର ରସ, ୧୮ । ହସ୍ତିମେହ—ଅଧିକ ପ୍ରସ୍ରାବ, ୧୯ । କ୍ଷାରମେହ-ପ୍ରସ୍ରାବ କ୍ଷାର ଜଳପରି ଗୋଳିଆ, ୨୦ । କାଳମେହ—ପ୍ରସ୍ରାବ ସଙ୍ଗେ କୃଷ୍ଣାଭ ଧାତୁ ପଡ଼େ । ସବୁ ପ୍ରକାରର ମେହର ଚିକିତ୍ସା ନ ହେଲେ ମଧୁମେହରେ ପରିଣତ ହୁଏ ଓ ଏଥିରେ ମହୁପରି ଗାଢ଼ା ଧାତୁ ନିର୍ଗତ ହୁଏ ଓ ପ୍ରସ୍ରାବନଳ ମଧ୍ୟରେ ଘାଆ ଓ ଅସହ୍ୟ ବେଦନା ହୁଏ । ଏ ରୋଗ ସଂକ୍ରାମକ ଅଟେ । ରୋଗୀର ମୂତ୍ର, ରେତଃ ଓ ବ୍ୟବହୃତ ବସ୍ତ୍ରଆଦି ଅନ୍ୟ ବ୍ୟକ୍ତିର ସଂସ୍ରବରେ ଆସିଲେ ସେହିସେହି ବ୍ୟକ୍ତିଙ୍କୁ ଏ ରୋଗ ହୁଏ । ]

**ପ୍ରମେହୀ**—ସଂ. ବିଣ. ପୁଂ. (ପ୍ରମେହ+ଇନ୍, ୧ମା. ୧ବ)—

Pramehi ପ୍ରମେହ ରୋଗାକ୍ରାନ୍ତ—Suffering from gonerrhoea

(ପ୍ରମେହିଣୀ—ସ୍ତ୍ରୀ)

**ପ୍ରମୋକ୍ଷ**—ସଂ. ବି. ( ପ୍ର+ମୋକ୍ଷ )—

Pramoksha ୧ । ମୁକ୍ତି—1. Liberation.

୨ । ମୋକ୍ଷ ଗତି—2. Salvation

୩ । ତ୍ୟାଗ—3 Abandonment.

୪ । ନିକ୍ଷେପ—4 Throwing.

୫ । ତଳେ ପକାଇ ଦେବା—

5 Dropping, letting fall.

**ପ୍ରମୋଚନ**—ସଂ. ବି. ( ପ୍ର+ମୋଚନ )—

Pramochana ୧ । ମୁକୁଳାଇବା—1 Liberating.

୨ । ନିକ୍ଷେପ କରଣ—2 Shedding; emitting.

୩ । ବଳପୂର୍ବକ ଛଡ଼ାଇ ନେବା—

3 Robbing, snatching away.

**ପ୍ରମୋଦ**—ସଂ. ବି. ( ପ୍ର+ମୁଦ୍ ଧାତୁ+ଭାବ. ଅ )—

Pramoda ୧ । ଆନନ୍ଦ, ଆହ୍ଲାଦ, ହର୍ଷ; ଆମୋଦ—

(ପ୍ରମୋଦିତ—ବିଣ) 1. Delight; joy; pleasure; gaiety

୨ । ସାଂଖ୍ୟ ଦର୍ଶନ ମତରେ ଅଷ୍ଟ ସିଦ୍ଧି ମଧ୍ୟରୁ ଗୋଟିଏ—

2. One of the 8 perfection according to the Sāṁkhya philosophy (Apte).

୩ । (ନାମ) କୁମାରଙ୍କ ଅନୁଚରବିଶେଷ (ହି. ଶ)—

3. Name of an attendant of Kumāra.

୪ । (ନାମ) ନାଗବିଶେଷ (ହି. ଶ)—

4. Name of a mythological serpent.

୫ । ଉଗ୍ର ଗନ୍ଧ—5. A strong perfume (Apte)

ଦେ. ବି. ପୁଂ—ପୁରୁଷଙ୍କୁ ଦିଆଯିବା ନାମ—

A name given to males.

ଦେ. ବିଣ. ( ସଂ. ପ୍ରମୋଦିତ )—

ମୋଦିତ; ଆନନ୍ଦିତ—Glad.

ଏହା ଶୁଣି କୃଷ୍ଣ ହୋଇଲେ ପ୍ରମୋଦ । କୃଷ୍ଣସିଂହ. ମହାଭାରତ ଅଦି ।

[ ଦ୍ର—ଏହା 'ଆମୋଦ' ଶବ୍ଦ ସଙ୍ଗେ ସହଚର ରୂପେ ବ୍ୟବହୃତ ହୁଏ । ]

**ପ୍ରମୋଦ କାନନ**—ସଂ. ବି. ( ପ୍ରମୋଦ+କାନନ )—

Pramoda kānana ଖୁସ୍ ବଗିଚ୍ଚ; ଆମୋଦ ପ୍ରମୋଦ ନିମନ୍ତେ ଉଦ୍ଦିଷ୍ଟ ଉଦ୍ୟାନ—A pleasure-garden.

(ପ୍ରମୋଦ ବନ, ପ୍ରମୋଦାରାମ; ପ୍ରମୋଦୋଦ୍ୟାନ; ପ୍ରମୋଦୋପବନ—ଅନ୍ୟରୂପ)

**ପ୍ରମୋଦନ**—ସଂ. ବି. ( ପ୍ର+ମୁଦ୍ ଧାତୁ ଣିଚ୍=ମୋଦ ଧାତୁ+ଭାବ. ଅନ )—୧ । ଆମୋଦ ପ୍ରଦାନ—

Pramodana

1. Causing delight; gladdening.

୨ । ବିଷ୍ଣୁଙ୍କର ଏକ ନାମ—

2. A name of Bishṇu.

୩ । ( ପ୍ର+ମୁଦ ଧାତୁ+ଭାବ ଅନ ) ଆନନ୍ଦ; ହର୍ଷ—

3. Deligt (Apte).

ସଂ. ବିଣ—ପ୍ରୀତି ଦାୟକ—Delightful

**ପ୍ରମୋଦ ନଦ**—ସଂ. ବି. ( ରୂପକ କର୍ମଧା; ପ୍ରମୋଦ+ନଦ )—

Pramoda nada ଆନନ୍ଦ ସାଗର—Ocean of joy; boundless joy.

(ପ୍ରମୋଦସାଗର, ପ୍ରମୋଦାବ୍ଧି—ଅନ୍ୟରୂପ)

ଙ୍ଗିଣ ଅଦରେ ପ୍ରମୋଦନଦରେ ମଜ୍ଜି ସେନ ଗଲେ କର ଧରି ।

ବଳଦୂର୍ଦ୍ଧ, କୋଷେଳକ୍ଷ୍ମ ।

**ପ୍ରମୋଦ ଭବନ**—ସଂ. ବି—ବିଳାସ ଗୃହ—
Pramoda bhabana A house of pleasure; a house (ପ୍ରମୋଦ ଗୃହ, ପ୍ରମୋଦାଗାର—ଅନ୍ୟରୂପ) for amusement.

**ପ୍ରମୋଦ ଭୂମି**—ସଂ.ବି—କ୍ରୀଡ଼ା ଭୂମି—
Pramoda bhūmi Play ground.

**ପ୍ରମୋଦ ସଟ୍ଟକ**—ସଂ. ବି—ଶ୍ରାନ୍ତି ଓ ପିପାସା ଦୂରକାରୀ ପାନୀୟବିଶେଷ—
Pramoda saṭṭaka A kind of drink which expels lassitude.

[ ଦ୍ର—ଦହିସାରକୁ ସଙ୍ଗେ ଚିନି, ମରିଚ, ପିପ୍ପଳି, ଲବଙ୍ଗ, କର୍ପୂର ଗୁଣ୍ଡ ଓ ଗାଈଘିଅ ଡାଳିମ୍ବ ମଞ୍ଜି ମିଶା ଯାଇ ଏହା ପ୍ରସ୍ତୁତ ହୁଏ । ହି. ଶ ]

**ପ୍ରମୋଦିତ**—ସ ବିଣ. (ପ୍ର+ମୁଦ୍ ଧାତୁ ଣିଚ୍+କର୍ମ ତ)—ଆନନ୍ଦିତ—
Pramodita Delighted; overjoyed.

ସଂ ବି—କୁବେରଙ୍କ ନାମ—
A name of Kubera (Apte).

**ପ୍ରମୋଦିବା**—ଦେ. (ପଦ୍ୟ) କ୍ରି. ( ସଂ. ପ୍ରମୋଦ )—
Pramodibā ପ୍ରମୋଦିତ କରିବା; ଆନନ୍ଦିତ କରିବା—
To gladden; to cause delight.

ବାର୍ତ୍ତ କହି ଦେଲ ମୁହି
ବାଳକାମଣି ପ୍ରମୋଦ । ଉପେ. ବୈଦେହୀଶବିଳାସ ।

**ପ୍ରମୋଦୀ**—ସଂ. ବିଣ. ପୁଂ. ( ପ୍ରମୋଦ+ଇନ୍; ୧ମା. ୧ବ. )—
Pramodi ୧ । ପ୍ରମୋଦକାରୀ; ଆନନ୍ଦଦାୟକ—
(ପ୍ରମୋଦିନୀ - ସ୍ତ୍ରୀ) 1. Delighting; gladdening.
୨ । ପ୍ରମୋଦିତ; ଆନନ୍ଦିତ—
2. Delighted; happy (Apte)

**ପ୍ରମୋହ**—ସଂ. ବିଣ. ( ପ୍ର+ମୋହ )—୧ । ମୋହ; ମୂର୍ଚ୍ଛା—
Pramoha 1 Swoon.
୨ । ଭ୍ରାନ୍ତି—2. Error; mistake; delusion.
୩ । ବିମୋହିତ ହେବା ଅବସ୍ଥା—3 Fascination.

**ପ୍ରମୋହନ**—ସଂ. ବି. (ପ୍ର+ମୁହ ଧାତୁ ଣିଚ ମୋହ ଧାତୁ+ଭାବ.ଅନ)-
Pramohana ୧ । ମୋହିତ କରିବା—1. Fascinating
ପ୍ରମୋହିତ, ପ୍ରମୋହୀ } ବିଣ ୨ । (+କର୍ତ୍ତୃ. ଅନ) ଶତ୍ରୁଦଳକୁ ମୋହ ଯୁକ୍ତ କରିବା ଅସ୍ତ୍ରବିଶେଷ (ହି ଶ)-
2 A kind of weapon which causes swooning amongst the enemy

**ପ୍ରମ୍ଳାନ**—ସଂ. ବିଣ. ( ପ୍ର+ମ୍ଲୈ ଧାତୁ+କର୍ତ୍ତୃ ତ )—
Pramlāna ୧ । ଅତ୍ୟନ୍ତ ମ୍ଳାନ—1 Faded; withered away
(ପ୍ରମ୍ଳାନା ସ୍ତ୍ରୀ)
(ପ୍ରମ୍ଳାନତା—ବି) ୨ । ଅତି ମଳଅ—2. Very dirty; soiled.

**ପ୍ରମ୍ଳୋଚା**—ସଂ ବି. ସ୍ତ୍ରୀ. (ନାମ)—ଅପ୍ସରାବିଶେଷ—
Pramlochā Name of a heavenly nymph.

**ପ୍ରଯତ**—ସଂ.ବିଣ. (ପ୍ର+ଯମ୍ ଧାତୁ=ବିଷୟ ବିରତ ହେବା+କର୍ତ୍ତୃ ତ)—
Prajata ୧ । ସଂଯତ; ଜିତେନ୍ଦ୍ରିୟ—
1. Controlled; regulated; restrained.
୨ । ଶୁଦ୍ଧ; ପବିତ୍ର—3, Holy; pious; pure.
୩ । ବିଷୟବିରତ—3. Withdrawn from worldly concerns.
୪ । ପ୍ରଯତ୍ନଶୀଳ—4 Very careful, exerting, persevering.

**ପ୍ରଯତାତ୍ମା**—ସ. ବିଣ—( ବହୁବ୍ରୀହି, ପ୍ରଯତ+ଆତ୍ମନ୍ )—ସଂଯମୀ,
Prajatātmā ଜିତେନ୍ଦ୍ରିୟ—Self-restrained; self-subdued.

**ପ୍ରଯତ୍ନ**—ସ. ବି—(ପ୍ର+ଯତ୍)—ପ୍ରଚୁର ଚେଷ୍ଟା, ବିଶେଷ ଯତ୍ନ—
Prajatna 1. Endeavour; exertion; utmost care
[ ଦ୍ର—କୌଣସି କାର୍ଯ୍ୟ ଓ ବିଶେଷତଃ କଠିନ କାର୍ଯ୍ୟ ବା ଉଦ୍ଦେଶ୍ୟକୁ ପୂର୍ଣ୍ଣ କରିବା ପାଇଁ ଯେଉଁ କ୍ରିୟା କରାଯାଏ ତାକୁ ପ୍ରଯତ୍ନ ବୋଲାଯାଏ ।]
୨ । ମନର ସଙ୍କଳ୍ପ—2 Exertion of will; resolve.
୩ । ଅଧ୍ୟବସାୟ; ଉପର୍ଯ୍ୟୁପରି ଚେଷ୍ଟା—3. Perseverance; assiduity, continuous effort.
୪ । ଖୁବ୍ ସାବଧାନତା—
4 Caution; great care.
୫ । (ନ୍ୟାୟ ଦର୍ଶନ) ପ୍ରବୃତ୍ତି ନିବୃତ୍ତି ଓ ଜୀବନ କାରଣ—
5. (Nyāya philosophy) Engaging in any act, prosecuting it and completing it, sustained activity
୬ । ପରିଶ୍ରମ—6, Labour.
୭ । (ବ୍ୟାକରଣ) ଶବ୍ଦ ବା ଧ୍ୱନି ଉଚ୍ଚାରଣ କରିବା ଯୋଗୁଁ ମୁଖ, ଗଳାଆଦିଦ୍ୱାରା କୃତ ପରିଶ୍ରମ (ହି. ଶ —
7 (Grammar) Effort of the mouth, throat etc in the production of articulate sounds (Apte).

[ଦ୍ର—ଧ୍ୱନି ଉତ୍ପନ୍ନ କରିବା ପାଇଁ ଯେଉଁ ପ୍ରଯତ୍ନ କରାଯାଏ ତାହା ଦୁଇ ପ୍ରକାର । ଆଭ୍ୟନ୍ତର ଓ ବାହ୍ୟ-ଧ୍ୱନି ଉତ୍ପନ୍ନ ହେବା ପୂର୍ବରୁ ବାଗ୍‌ଯନ୍ତ୍ରର କ୍ରିୟାକୁ ଆଭ୍ୟନ୍ତର ପ୍ରଯତ୍ନ ଓ ଧ୍ୱନି ଉଚ୍ଚାରଣର ଅନ୍ତ୍ୟ କ୍ରିୟାକୁ ବାହ୍ୟ ପ୍ରଯତ୍ନ ବୋଲାଯାଏ । ଆଭ୍ୟନ୍ତର ପ୍ରଯତ୍ନ ଅନୁସାରେ ବର୍ଣ୍ଣମାନଙ୍କୁ ୪ ଶ୍ରେଣୀରେ ବିଭକ୍ତ କରା ଯାଇଅଛି— ୧. ବିବୃତ (ଯହିଁର ଉଚ୍ଚାରଣରେ ମୁହ ବା ବାଗିନ୍ଦ୍ରିୟ ଖୋଲା ରହେ, ଯଥା ସ୍ୱରବର୍ଣ୍ଣରେ ; ୨. ସ୍ପୃଷ୍ଟ (ଯହିଁର ଉଚ୍ଚାରଣରେ ବାଗିନ୍ଦ୍ରିୟର ଦ୍ୱାର ବନ୍ଦ ଥାଏ, ଯଥା—କ ଠାରୁ ମ ପର୍ଯ୍ୟନ୍ତ ୨୫ ଗୋଟି ବର୍ଗୀୟ ବର୍ଣ୍ଣ); ୩. ଈଷତ୍ ବିବୃତ (ଯହିଁର ଉଚ୍ଚାରଣରେ ବାଗିନ୍ଦ୍ରିୟ ଈଷତ୍ ଖୋଲା ଥାଏ, ଯଥା —ଯ ର ଲ ବ), ୪. ଈଷତ୍ ସ୍ପୃଷ୍ଟ (ଯଥା—ଶ ଷ ସ ହ) । ବାହ୍ୟ ପ୍ରଯତ୍ନ ଅନୁସାରେ ବର୍ଣ୍ଣମାନଙ୍କୁ ୨ ଶ୍ରେଣୀ କରା ଯାଇଅଛି । ୧. ଅଘୋଷ (ଯହିଁର ଉଚ୍ଚାରଣରେ ଶ୍ୱାସ ଆବଶ୍ୟକ ହୁଏ କିନ୍ତୁ ନାଦ ହୁଏ ନାହିଁ ଯଥା—ବର୍ଗର ୧ମ ଓ ୨ୟ ବର୍ଣ୍ଣ, ଶ, ଷ, ସ) ଓ ଘୋଷ (ଯହିଁର ଉଚ୍ଚାରଣରେ ନାଦ ହୁଏ, ଯଥା—ବର୍ଗର ୩ୟ, ୪ର୍ଥ, ୫ମ ବର୍ଣ୍ଣ ଓ ସ୍ୱରବର୍ଣ୍ଣ)—ହି° ଶ ।]

**ପ୍ରଯତ୍ନତଃ**—ସ. କ୍ରି. ବିଣ— (ପ୍ରଯତ୍ନ+ତସ୍)—ଅତ୍ୟନ୍ତ ଯତ୍ନସହକାରେ-
Prajatnatah Assiduously; with utmost care and caution.

**ପ୍ରଯ(ୟ)ସ୍ତ**—ସଂ ବିଣ— ପ୍ର+ଯସ୍ ଧାତୁ+କର୍ମ. ତ)—ପଡ଼ୀରେ ମସଲା Praja(ya)sta ଆଦି ଦିଆଯାଇ ରନ୍ଧା ହୋଇଥାଏ—Seasoned, dressed with condiments (Apte)

**ପ୍ରଯା(ୟା)ଗ**—ସଂ. ବି—ବହୁବ୍ରୀହି[ପ୍ର+ଯାଗ]—୧ । ଶତକ୍ରତୁ; ଇନ୍ଦ୍ର—Prajā yā ga 1. Indra.

୨ । (ପ୍ର+ଯା ଧାତୁ+କର୍ତ୍ତୃ. ଅ+ ଗ)—ଅଶ୍ୱ —2. Horse.

୩ । (ପ୍ର+ଯାଗ) ଯଜ୍ଞ—3 A sacrifice

୪ । (ପ୍ର+ଯାଗ) ଯେଉଁଠାରେ ଯାଗ କରାଯାଏ, ଯଜ୍ଞଭୂମି —4. A place of sacrifice

୫ । (ପ୍ର+ଯାଗ) ଗଙ୍ଗା, ଯମୁନା ଓ (ଗୁପ୍ତ) ସରସ୍ୱତୀ ନଦୀମାନଙ୍କ ସଙ୍ଗମସ୍ଥଳ, ଅଲ୍ଲାହାବାଦ—5. Allahabad at the confluence of the Ganges and the Jumuna.

[ଦ୍ର—ଏଠାରେ ଗଙ୍ଗା ଓ ଯମୁନା ମିଳିତ ହୋଇଅଛନ୍ତି । ସରସ୍ୱତୀ ଏଠାରେ ମିଳିତ ହୋଇ ଥିବାର ବୋଲାଯାଏ । କିନ୍ତୁ ବର୍ତ୍ତମାନ ସରସ୍ୱତୀ ନଦୀର କୌଣସି ଚିହ୍ନ ଏଠାରେ ଦେଖାଯାଏ ନାହିଁ । ଗଙ୍ଗା ଓ ଯମୁନାର ସଙ୍ଗମ ସ୍ଥଳରେ ପୂର୍ବେ ବହୁ ଯାଗ ହୋଇଥିବାରୁ ଏହାର ନାମ ପ୍ରୟାଗ ହୋଇଅଛି । ଏହା ହିନ୍ଦୁ ତୀର୍ଥରୂପେ ବହୁ ପ୍ରାଚୀନ କାଳରୁ ପ୍ରସିଦ୍ଧ । ରାମାୟଣରେ ଉଲ୍ଲେଖ ଅଛି ଯେ ରାଜାମାନଙ୍କ ଅଭିଷେକପାଇଁ ଏଠାରୁ ଜଳ ଯାଉଥିଲା । ରାମଚନ୍ଦ୍ର ବନଗମନ କାଳରେ ପ୍ରୟାଗରେ ଭରଦ୍ୱାଜ ମୁନିଙ୍କ ଆଶ୍ରମବାଟେ ଯାଇଥିଲେ । ପ୍ରୟାଗ ବହୁକାଳ କୋଶଳ ରାଜ୍ୟର ଅନ୍ତର୍ଗତ ଥିଲା । ଅଶୋକ ଆଦି ବୌଦ୍ଧ ରାଜାମାନଙ୍କ ସମୟରେ ଏଠାରେ ଅନେକ ବୌଦ୍ଧ ବିହାର ଥିଲା । ଅଶୋକଙ୍କ ସ୍ତମ୍ଭ ଅଦ୍ୟାପି କେଲ୍ଲା ମଧ୍ୟରେ ଅଛି । ଏ ସ୍ତମ୍ଭରେ ସମୁଦ୍ରଗୁପ୍ତଙ୍କ ପ୍ରଶସ୍ତି ଖୋଳା ହୋଇଅଛି । ଖ୍ରୀଷ୍ଟ ୫ମ ଶତାବ୍ଦିର ପ୍ରାରମ୍ଭରେ ଚୀନ ପରିବ୍ରାଜକ ଫାହିଆନ୍ ଏଠାକୁ ଆସିଥିଲେ ଓ ସେ ସମୟରେ ଏହା କୋଶଳ ରାଜ୍ୟର ଅନ୍ତର୍ଗତ ଥିଲା । ଖ୍ରୀଷ୍ଟ ସପ୍ତମ ଶତାବ୍ଦିରେ ଚୀନ ପରିବ୍ରାଜକ ହୁଏନ୍ସାଂ ଏଠାକୁ ଆସି ଏଠାରେ ଅକ୍ଷୟବଟକୁ ଦେଖିଥିଲେ । ବର୍ତ୍ତମାନ ପର୍ଯ୍ୟନ୍ତ ଇଂରାଜଙ୍କ କେଲ୍ଲା ମଧ୍ୟରେ ଅକ୍ଷୟବଟ ବିଦ୍ୟମାନ । ପୁରାଣମାନଙ୍କ ମଧ୍ୟରେ ପ୍ରାଚୀନତମ ମତ୍ସ୍ୟପୁରାଣରେ ଏ ତୀର୍ଥର ମାହାତ୍ମ୍ୟ ବର୍ଣ୍ଣିତ ହୋଇଅଛି । ଏହା ପ୍ରଜାପତିଙ୍କ କ୍ଷେତ୍ର ବୋଲି ଉକ୍ତ ପୁରାଣରେ ଲେଖାଅଛି । ମାଘ ମାସରେ ଏଠାରେ ସବୁ ତୀର୍ଥମାନେ ବାସ କରନ୍ତି । ଏଥିପାଇଁ ମାଘ (ମକର) ମାସରେ ଏଠାରେ ତ୍ରିବେଣୀ ସଙ୍ଗମରେ ସ୍ନାନ ବହୁପୁଣ୍ୟପ୍ରଦ । ମତ୍ସ୍ୟ ପୁରାଣରେ ଗଙ୍ଗା ଯମୁନାର ଏଠାରେ ସଙ୍ଗମ ହୋଇଥିବାର ଲେଖା ଅଛି, କିନ୍ତୁ ସରସ୍ୱତୀର ସଙ୍ଗମ ବିଷୟ ଲେଖା ନାହିଁ । ସମ୍ଭବତଃ ଗଙ୍ଗା ଓ ଯମୁନା ଦୁଇଟି ବେଣୀ ଓ ସମ୍ମିଳିତ ନଦୀ ଦ୍ୱୟର ଧାର ଗୋଟିଏ, ଏପରି ତ୍ରିବେଣୀ ଥିବାରୁ ଏହାର ତ୍ରିବେଣୀ ନାମ ହୋଇଅଛି । ପ୍ରୟାଗର ଆଧୁନିକ ନାମ ଅଲ୍ଲାହାବାଦ (ଫା. ଇଲ୍ଲାହାବାଦ୍=ଈଶ୍ୱରଙ୍କ ନଗର) (ହି. ଶ), ମୋଗଲ ସମ୍ରାଟଙ୍କ ସମୟରେ ଏହାର ଏହି ନାମ ହୋଇ ଅଛି । ବର୍ତ୍ତମାନ ଏହା ଯୁକ୍ତପ୍ରଦେଶର ରାଜଧାନୀ; ଏଠାରେ ହାଇକୋର୍ଟ, ବିଶ୍ୱବିଦ୍ୟାଳୟ, ଲାଟଭବନ, କଲେଜ ଓ ସଙ୍ଗମ ସ୍ଥଳରେ ନଦୀତୀରରେ ଗୋଟିଏ ବଡ଼ କେଲ୍ଲା ଅଛି । ଏଠାରେ ୧୨ ବର୍ଷରେ ଥରେ କୁମ୍ଭମେଳା ହୁଏ । ତ୍ରିବେଣୀରେ ସ୍ନାନ କରି ହିନ୍ଦୁମାନେ ମାଳମାଧବ ବିଗ୍ରହଙ୍କୁ ଦର୍ଶନ କରନ୍ତି । ବର୍ତ୍ତମାନ ମଧ୍ୟ ଏଠାରେ ଗୋଟିଏ ରମଣୀୟ ସ୍ଥାନ ଭରଦ୍ୱାଜ ଆଶ୍ରମ ନାମରେ କଥିତ। ଏଠାର ନଦୀରେ ବହୁ ସଂଖ୍ୟକ ବଡ଼ କଚ୍ଛପ ଦେଖା ଯାଆନ୍ତି । ମୋତିଲାଲ ନେହେରୁ ଓ ଜହରଲାଲ ନେହେରୁଙ୍କ ପ୍ରାସାଦ ଓ ବସ୍ତି ହତା ଏଠାରେ ଅବସ୍ଥିତ ।]

**ପ୍ରୟାଗ ମେଳା**—ଦେ ବି—୧ । କୁମ୍ଭମେଳା (ଦେଖ) Prayāga melā 1. Kumbhamelā (See).

୨ । ପ୍ରତି ବର୍ଷ ମକର ମାସରେ ପ୍ରୟାଗରେ ସ୍ନାନଯୋଗ ସମୟରେ ହେବା ମେଳା—2. A fair held at Allahabad in the month of Māgha every year.

**ପ୍ରୟାଗ ରାଜ୍**—ବୈଦେ.ବି (ହିନ୍ଦିରୁ ଅନୁକୃତ)-ପ୍ରୟାଗତୀର୍ଥ, ଅଲ୍ଲାହାବାଦ—Prayāga rāj Allahabad.

**ପ୍ରୟାଣ**—ସଂ. ବି (ପ୍ର+ଯା ଧାତୁ=ଯିବା+ଭାବ. ଅନ)—୧ । ଯାତ୍ରା—Prayāṇa 1 March; journey.

(ପ୍ରୟାପଣ—ଣିଜନ୍ତସିଦ୍ଧ ରୂପ) ୨ । ଯୁଦ୍ଧଯାତ୍ରା—
(ପ୍ରୟାତ—ବିଣ) 2. Invasion; expedition.

୩ । ପରଲୋକଯାତ୍ରା; ମୃତ୍ୟୁ—3. Death.

୪ । ପ୍ରସ୍ଥାନ—4. Departure.

୫ । ଗମନ—5 Going forth.

୬ । ଗତି—6. Motion.

୭ । ଯାତ୍ରାର ଆରମ୍ଭ, ଭ୍ରମଣପାଇଁ ବାହାରିବା—7 Setting out; starting on a journey (Apte).

୮ । ଆରମ୍ଭ—8. Commencement; beginning(Apte)

୯ । (+କରଣ. ଅନ) —ଘୋଡ଼ାର ପିଠି—9 The back of a horse (Apte).

୧୦ । କୌଣସି ଜନ୍ତୁର ପଛଭାଗ—10 The hinder part of an animal (Apte)

**ପ୍ରୟାଣ କାଳ**—ସଂ. ବି (୬ଷ୍ଠୀ ତତ୍, ପ୍ରୟାଣ+କାଳ)—୧ । ଯାତ୍ରା କରିବା Prayāṇa kāla ସମୟ, କୌଣସି ସ୍ଥାନକୁ ଯିବାପାଇଁ ଅନୁକୂଳ (ପ୍ରୟାଣ ସମୟ—ଅନ୍ୟରୂପ) କରିବା ବେଳ—1. The time of starting; the time of departure.

୨ । ମୃତ୍ୟୁକାଳ, ମରିବାବେଳ—2 The moment of death

**ପ୍ରୟାଣ ଭଙ୍ଗ**—ସଂ. ବି (୬ଷ୍ଠୀତତ୍; ପ୍ରୟାଣଭଙ୍ଗ)—୧ । ଯାତ୍ରା ସମୟରେ Prayāṇa bhanga ଅନନୁକୂଳ ହୋଇବା—1. An obstacle at one's starting.

୨ । ଯାତ୍ରା ବନ୍ଦହେବା; ବାଟରେ ରହିବା—2. Break of journey; halt (Apte).

**ପ୍ରୟାତ**—ସଂ. ବିଣ. ପୁଂ (ପ୍ର+ଯା ଧାତୁ+କର୍ତ୍ତୃ. ତ)—୧ । ପ୍ରସ୍ଥିତ, Prayāta ଗତ—1. Gone forth.

(ପ୍ରୟାତା—ସ୍ତ୍ରୀ) ୨ । ମୃତ—2. Dead.

୩ । ସୁପ୍ତ (ହି.ଶ)—3. Asleep.

ସଂ. ବି — ୧ । ଅତଡ଼; ଭୃଗୁ—1. Precipice (Apte).
୨ ।(+ଭାବ. ତ) ଦେଶ ଆକ୍ରମଣ—2. Invasion (Apte).

**ପ୍ରୟାସ**—ସଂ. ବି ( ପ୍ର+ଯସ୍ ଧାତୁ=ଯତ୍ନ କରିବା+ଭାବ. ଅ)—
Prayāsa ୧ । ଯତ୍ନ—1. Care.
୨ । ଅଭିଳାଷ, ଇଚ୍ଛା—2. Desire, inclination
୩ । ଚେଷ୍ଟା—3. Effort.
୪ । ଶ୍ରମ, କ୍ଲେଶ; ଆୟାସ—
4 Trouble; labour; exertion.
୫ । କ୍ଲମ, କ୍ଲାନ୍ତି—5. Fatigue.
୬ । କଷ୍ଟ—6. Difficulty (Apte)

**ପ୍ରଯୁକ୍ତ**—ସଂ. ବିଣ (ପ୍ର+ଯୁକ୍ତ)—୧ । ବ୍ୟବହୃତ—
Prajukta 1. Used, employed.
(ପ୍ରଯୁକ୍ତା—ସ୍ତ୍ରୀ) ୨ । ଦୃଢ଼ସଂଯୋଗବିଶିଷ୍ଟ—
2. Intimately connected or mixed up; closely united with or joined to
୩ । ନିଦ୍ରିତ—3 Asleep.
୪ । ଋଣ ଦିଆଯାଇଥିବା; ସୁଧରେ ଲଗା ଯାଇଥିବା, ବେପାରରେ ଖଟା ଯାଇଥିବା, ପ୍ରୟୋଗ କରାଯାଇଥିବା (ଧନାଦି)—
4. Lent; invested; applied.
୫ । ନିନ୍ଦିତ—5. Scandalous; infamous.
୬ । ସଂଯମବିଶିଷ୍ଟ—6. Restrained; controlled.
୭ । ଅର୍ପିତ—7. Endowed.
୮ । ଉତ୍ପନ୍ନ, ଜାତ—8. Produced by, resulting from; caused by.
୯ । ନିଯୁକ୍ତ—1 Appointed; commissioned; employed.
୧୦ । ପ୍ରେରିତ—10 Sent; despatched.
୧୧ । ଉଲ୍ଲିଖିତ—11 Mentioned above.
୧୨ । ଉଚ୍ଚାରିତ—12 Pronounced, uttered.
୧୩ । ଉଦାହୃତ—13 Quoted, illustrated, examplified.
୧୪ । ବିଖ୍ୟାତ—14. Celebrated.
୧୫ । ସଂଯୁକ୍ତ—
15. Associeted; joined; connected.
୧୬ । ଅନୁଷ୍ଠିତ—16. Performed.
୧୭ । ଗ୍ରଥିତ, ରଚିତ—17. Constructed; made.
୧୮ । ରଥ ଆଦିରେ ଯୋଗ୍ନ ଯାଇଥିବା—
18 Yoked; harnessed (Apte).
୧୯ । (ସମାସରେ) (ଅମୁକର) ଫଳରେ ଘଟିଥିବା—
19. Resulting from; consequent upon (Apte).
୨୦ । ଉତ୍ତେଜିତ—20. Instigated; prompted; urged (Apte).
୨୧ । (ଅମୁକ ଆଡ଼କୁ) କ୍ଷିପ୍ତ—
21. Hurled at, directed to (Apte).

ସଂ ବି—କାରଣ, ହେତୁ—
Cause, motive; reason.
ଦେ. କ୍ରି. ବିଣ. ( ସଂ. ପ୍ରଯୁକ୍ତ=କାରଣ )—
କାରଣରୁ, ନିବନ୍ଧନ, ହେତୁରୁ—Arising from; due to; on account of, owing to,
( ଯଥା - ମୁଁ ରୋଗପ୍ରଯୁକ୍ତ କାର୍ଯ୍ୟାଳୟରେ ଅନୁପସ୍ଥିତ ଥିଲି ।)

**ପ୍ରଯୁକ୍ତି**—ସଂ. ବି ( ପ୍ର+ଯୁଜ୍ ଧାତୁ+ଭାବ. ତି )—
Prajukti ୧ । ପ୍ରୟୋଜନ—1. Necessity; occasion.
୨ । ମୁଖ୍ୟ ଉଦ୍ଦେଶ୍ୟ—2. Main reason; main object; end; motive.
୩ । ହେତୁ; କାରଣ—3. Reason; cause.
୪ । ବ୍ୟବହାର; ପ୍ରୟୋଗ—4 Application; employment; use; investment.
୫ । ପ୍ରେରଣ—5 Sending; commission.
୬ । ଶବ୍ଦର ଉଚ୍ଚାରଣବିଶେଷ—6. A peculiar pronunciation of words.
୭ । ପ୍ରକୃଷ୍ଟ ଯୁକ୍ତି—7. Excellent reasoning.
୮ । ପ୍ରଯତ୍ନ—8. Exertion; effort (Apte),
୯ । ମତାଇବା, ଉତ୍ତେଜନ—
9. Incitement; instigation
୧୦ । ଫଳ—10 Consequence

**ପ୍ରଯୁଜ୍ୟ**—ସଂ. ବିଣ. ( ପ୍ର+ଯୁଜ୍ ଧାତୁ+କର୍ମ. ଯ )—
Prajujya ୧ । ପ୍ରୟୋଗ କରିବାର ଯୋଗ୍ୟ—
1. Applicable; susceptible.

**ପ୍ରଯୁଜ୍ୟମାନ**—ସଂ. ବିଣ. (ପ୍ର+ଯୁଜ୍ ଧାତୁ+କର୍ମ. ଶାନଚ୍)—
Prajujyamāna ଯାହାକୁ ପ୍ରୟୋଗ କରା ଯାଉଅଛି—
Being applied or used; being employed.

**ପ୍ରଯୁତ**—ସଂ. ବିଣ ( ପ୍ର+ଯୁତ )—
Prajuta ୧ । ସଂଯୁକ୍ତ—1 Connected; joined.
୨ । ସମ୍ମିଳିତ—2. Mixed up
ସଂ. ବି — ନିଯୁତ, ଦଶ ଲକ୍ଷ—One million.

**ପ୍ରଯୁତ୍ସୁ**—ସଂ. ବିଣ. ପୁଂ (ପ୍ର+ଯୁଧ୍ ଧାତୁ+କର୍ତ୍ତୃ.ସୁ)—
Prajutsu ୧ । ଯୋଦ୍ଧା (ହ ଶ)—1. Warrior.
୨ । ମେଣ୍ଢା (ହ. ଶ)—2. Ram
୩ । ସନ୍ନ୍ୟାସୀ—3. An ascetic.
୪ । ଇନ୍ଦ୍ର—4 Indra
୫ । ବାୟୁ—5. Air; wind.

**ପ୍ରଯୋକ୍ତା**—ସଂ. ବିଣ. ପୁଂ—(ପ୍ର+ଯୁଜ୍ ଧାତୁ+କର୍ତ୍ତୃ. ତୃ, ୧ମା. ୧ବ)
Prajoktā ୧ । ପ୍ରୟୋଗକାରୀ—1. Applying; employing.
(ପ୍ରଯୋକ୍ତ୍ରୀ—ସ୍ତ୍ରୀ) ୨ । ଉତ୍ତେଜକ, ଯେ ମତାଏ ବା ପ୍ରବର୍ତ୍ତାଏ—
2. Intoxicating; stimulating; inciting.
୩ । ଯେ ବାଣ ଆଦି ମାରେ—
3. Shooting an arrow.

ସଂ. ବି. ପୁଂ —୧ । ଉତ୍ତମର୍ଣ୍ଣ, ଋଣଦାତା; ମହାଜନ— 1 Creditor; capitalist.

୨ । ନାଟକର ସୂତ୍ରଧାର— 2 Chief actor, leading actor.

**ପ୍ରୟୋ(ଯୋ)ଗ**—ସ. ବି.—୧ । (ପ୍ର+ଯୁଜ୍ ଧାତୁ+କର୍ମ. ଅ)—
Prayo(jo)ga ଦୃଷ୍ଟାନ୍ତ; ଉଦାହରଣ—1. Example.

୨ । (+ଭାବ. ଅ) ଅଭିନୟ— 2. Dramatic performance.

୩ । ପ୍ରଦର୍ଶନ—3. Exhibition

୪ । ବଶୀକରଣ—4 Subduing; subjugating.

୫ । ଭୌତିକ ବିଦ୍ୟା, ଇନ୍ଦ୍ରଜାଲ—5 Magic.

୬ । ପ୍ରଥା, ବ୍ୟବହାର—6 Usage; practice.

୭ । ନିୟୋଜନ; ପ୍ରଯୁକ୍ତି. କାର୍ଯ୍ୟରେ ଲଗାଇବା— 7. Application; engagement; employment.

୮ । (ଅର୍ଥାଦି) ସୁଧରେ ଲଗାଇବା; ମହାଜନୀ, ଋଣଦାନ— 8 Investment of money; usury; lending money.

୯ । ଲାଭ ପାଇଁ ଅର୍ଥାଦି ଖଟାଇବା, ବେପାର, ବେଉସା— 9. Business; trade.

୧୦ । ହେତୁ; କାରଣ, ପ୍ରୟୋଜନ; ମତଲବ— 10 Reason; cause; motive

୧୧ । ପ୍ରତିକାର ବା ଔଷଧ ବିନିଯୋଗ— 11. Employment of remedies.

୧୨ । ଉଦ୍ଦେଶ୍ୟ—12. Aim, object.

୧୩ । ଉପାୟ—13. Device; contrivance.

୧୪ । ନିଯୋଗ—14. Appointing.

୧୫ । କାର୍ଯ୍ୟ—15. Action; act.

୧୬ । ବିଷୟ; ବ୍ୟାପାର— 16 Affair; matter; concern.

୧୭ । ଉଲ୍ଲେଖ—17. Mentioning.

୧୮ । ନିଦର୍ଶନ; ଚିହ୍ନ—18. Sign; indication.

୧୯ । ନମୁନା—19. Sample; specimen.

୨୦ । ବ୍ୟବସାୟରେ ଖଟାଯିବା ମୂଳଧନ— 20. Capital invested in business.

୨୧ । ଆରମ୍ଭ—21. Beginning

୨୨ । ଯନ୍ତ୍ର, ଉପାୟ—22. Instrument; means (Apte).

୨୩ । ଅନୁଷ୍ଠାନ—23. Proceeding; performance.

୨୪ । ପ୍ରବର୍ତ୍ତନ—24. Setting in action.

୨୫ । ଗ୍ରନ୍ଥାଦିରେ ଥିବା ମୂଳ ବଚନ (ଯାହା ଉପରେ ଟୀକା କରି-ଯାଏ)—25. Context; original text of a work.

୨୬ । ମହାଜନକଥିତ ବା ବ୍ୟବହୃତ ବଚନ, ନଜିର— 26. Authority; authotitative precedent; words or passages used by previous authors.

୨୭ । (ବାଣ ଆଦି) ଲକ୍ଷ୍ୟ ଆଡ଼କୁ ଫୋପାଡ଼ିବା ବା ପ୍ରେରଣ କରିବା—27. Throwing or sending forth (e. g. an arrow) towards the target

୨୮ । ଦୃଷ୍ଟାନ୍ତ (ହି. ଶ.)—ଉଦାହରଣ—28. Example

୨୯ । ତାନ୍ତ୍ରିକ ଉପଚାର (ହି ଶ)—29. Application of tantric rites; black magic.

(ଯଥା—ଏହା ସଂଖ୍ୟାରେ ୧୨ ଟି ଯଥା, ମାରଣ, ମୋହନ, ଉଚ୍ଚାଟନ, କୀଳନ, ବିଦ୍ୱେଷଣ, କାମନାଶନ, ସ୍ତମ୍ଭନ, ବଶୀକରଣ, ଆକର୍ଷଣ, ବନ୍ଦମୋଚନ, କାମପୂରଣ ଓ ବାକ୍‌ପ୍ରସାରଣ—ହି ଶ ।)

୩୦ । ଯଜ୍ଞାଦି କର୍ମର ଅନୁଷ୍ଠାନବିଧି, ପଦ୍ଧତି (ହି. ଶ)— 30. Course; procedure; ceremonial form (Apte).

**ପ୍ରୟୋଗ କରିବା**—ଦେ. କ୍ରି—ଲଗାଇବା—
Prayoga karibā 1. To apply or employ.
ପ୍ରୟୋଗକରା ୨ । ଖଟାଇବା, ନିୟୋଜିତ କରିବା—
**प्रयोग करना** 2 To employ.

୩ । ବ୍ୟବସାୟରେ ଲଗାଇବା—3. To invest

୪ । (ବାକ୍ୟ ଆଦି) ବ୍ୟବହାର କରିବା — 4 To use (words).

**ପ୍ରୟୋଗତଃ**—ସ. କ୍ରି. ବିଣ - ( ପ୍ରୟୋଗ+ତସ୍ )—୧ । ପ୍ରୟୋଗ
Prayogatah ଅନୁସାରେ—1. According to use

୨ । ଫଳରେ, କାର୍ଯ୍ୟତଃ— 2. Actually; in fact.

୩ । ଅନୁସାରେ—3. According to (Apte)

୪ । ବ୍ୟବହାରତଃ— 4 In practice; practically.

**ପ୍ରୟୋଗ ନିପୁଣ**—ସ. ବିଣ. ପୁଂ—( ୭ମୀ ତତ୍ )—୧ । ପ୍ରୟୋଗ
Prayoga nipuṇa ବିଷୟରେ ପଟୁ—1 Skilled in
(ପ୍ରୟୋଗ ନିପୁଣା—ସ୍ତ୍ରୀ) practice (Apte).

୨ । ପ୍ରୟୋଗ ବିଷୟରେ ଅନୁଭବୀ — 2. Practically experienced (Apte).

ପ୍ରୟୋଗ ଚତୁର } ଅନ୍ୟରୂପ
ପ୍ରୟୋଗାଭିଜ୍ଞ }
(ପ୍ରୟୋଗ ନୈପୁଣ୍ୟ – ବି)

**ପ୍ରୟୋଗାତିଶୟ**—ସ ବି—(ପ୍ରୟୋଗ+ଅତିଶୟ)—ନାଟକର ପ୍ରସ୍ତାବନା
Prayogātisaya ବିଶେଷ—( ନାଟକାରମ୍ଭରେ ଯେବେ ଏକ ପ୍ରକାର ପ୍ରୟୋଗ କରୁ କରୁ ସଙ୍ଗେ ସଙ୍ଗେ ଅନ୍ୟ ପ୍ରକାର ପ୍ରୟୋଗ ପ୍ରଯୁକ୍ତ ହୁଏ ଏବଂ ସେହି ପ୍ରୟୋଗକୁ ଅବଲମ୍ବନ କରି ନାଟକୀୟ ବ୍ୟକ୍ତିର ରଙ୍ଗମଞ୍ଚରେ ପ୍ରବେଶ ସମ୍ପନ୍ନ ହୁଏ ତେବେ 'ପ୍ରୟୋଗାତିଶୟ' ନାମକ ପ୍ରସ୍ତାବନା ହୁଏ)— One of the 5 kinds of prologue in which a part or performance is superceded by another in such a manner that a character is suddenly brought on the stage; i e, where the Sūtradhāra goes out hinting

the entrance of a character and thus performs a part superceding that which he had apparently intended for his own, viz dancing (Apte)

[ଦ୍ର—ସଙ୍ଗୀତ ଦାମୋଦରରେ ଏଥିର ବର୍ଣ୍ଣନା ଅଛି । ଯହିଁ ଏକ ପ୍ରୟୋଗରେ ଅନ୍ୟ ପ୍ରୟୋଗ କପୋଳକଳ୍ପିତ ହୋଇ ପାତ୍ର ରଙ୍ଗମଞ୍ଚରେ ପ୍ରବେଶ କରେ ତାହାହେଲେ ପ୍ରୟୋଗାତିଶୟ ହୁଏ ।]

**ପ୍ରୟୋଗିବା**—ଦେ. କ୍ରି ( ପଦ୍ୟ )—(ସଂ. ପ୍ରୟୋଗ )—
Prayogibā ପ୍ରୟୋଗ କରିବା (ଦେଶୀ)—Prayoga karibā
প্রযোগা प्रयोगना (See).

ଯେଉଁ ଅସ୍ତ୍ର ଅର୍ଜୁନ ମୁଁ ପ୍ରୟୋଗିଲି ଭୃଷି
ଅମର ହେଲେ ହୋନ୍ତା ଯମପୁରବାସୀ – କୃଷ୍ଣସିଂହ. ମହାଭାରତ. ଦ୍ରୋଣ ।

**ପ୍ରୟୋଗୀ**—ସଂ. ବିଣ. ପୁଂ. (ପ୍ର+ଯୁଜ୍ ଧାତୁ+କର୍ତ୍ତୃ. ଇନ୍, ୧ମା.୧ବ)-
Prayogi ୧ । ଯେ ପ୍ରୟୋଗ କରେ; ପ୍ରୟୋଗକାରୀ—
(ପ୍ରୟୋଗିଣୀ—ସ୍ତ୍ରୀ) 1 Applying; employing.

ବୃକ୍ଷ ସୁଜନ ସୁଜନ ପରବୃକ୍ଷ ବୃକ୍ଷରେ ପ୍ରୟୋଗୀ ଏ ସମସ୍ତର ଉର ଉପରେ ।
ଭଞ୍ଜ. ବୈଦେହୀଶବିଳାସ ।

୨ । ଯାହାର କୌଣସି ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ ଥାଏ—
2. Having an object in view (Apte)

**ପ୍ରୟୋ(ଯୋ)ଜକ**—ସଂ. ବିଣ (ପ୍ର+ଯୁଜ୍ ଧାତୁ+କର୍ତ୍ତୃ ଅକ)—
Prayo(jo)jaka ୧ । ପ୍ରୟୋଗକର୍ତ୍ତା—1. Applying.
ପ୍ରୟୋ(ଯୋ)ଜିକା—ସ୍ତ୍ରୀ) ୨ । ବ୍ୟବହାରକାରୀ—2. Using.
୩ । ନିଯୋକ୍ତା; ନିଯୋଗକାରୀ—3. Employing.
୪ । ପ୍ରେରକ—4. Sending.
୫ । ପ୍ରବର୍ତ୍ତକ—
5. Setting in action; inducing.
୬ । ଉତ୍ତେଜକ —6. Instigating; exciting.
୭ । ଅନ୍ୟ ଦ୍ୱାରା କାର୍ଯ୍ୟ କରାଇବା ବା ଅନ୍ୟଙ୍କୁ କାର୍ଯ୍ୟରେ ଲଗାଇବା (ବ୍ୟକ୍ତି)—7. Causing a thing to be done; causing a thing to be done by others.
୮ । (ବ୍ୟାକରଣ) ଅନ୍ୟ ଦ୍ୱାରା କୌଣସି କାର୍ଯ୍ୟ କରାଇବା ଅର୍ଥଯୁକ୍ତ ( କ୍ରିୟା ବା କର୍ତ୍ତା )—7. (grammar) Causative (form of a verb or subject).

ସଂ. ବି—୧ । କାର୍ଯ୍ୟରେ ନିଯୁକ୍ତକାରୀ ବ୍ୟକ୍ତି—
1. An employer (Apte).
୨ । ଗ୍ରନ୍ଥକାର—2. An author (Apte).
୩ । ପ୍ରତିଷ୍ଠାତା ବ୍ୟକ୍ତି—3. A founder (Apte).
୪ । ଋଣଦାତା; ମହାଜନ—
4. A money-lender (Apte)
୫ । ଆଇନକର୍ତ୍ତା; ସ୍ମୃତିକାର—
5. A lawgiver (Apte); legislator.
୬ । ପ୍ରବର୍ତ୍ତକ—6. Instigator.

**ପ୍ରୟୋଜକ କର୍ତ୍ତା**—ସଂ. ବି. ( ବ୍ୟାକରଣ )—
Prayojaka karttā ଅନ୍ୟ ଦ୍ୱାରା କ୍ରିୟା ସାଧନ କରାଇବା କର୍ତ୍ତା (grammar) The principal agent; the subject which causes an act to be done by another

[ ଦ୍ର— ବାକ୍ୟରେ ମୁଖ୍ୟ କର୍ତ୍ତା ଥାଇ, କ୍ରିୟାସାଧନ ପାଇଁ ଅନ୍ୟ କର୍ତ୍ତାର ପ୍ରୟୋଜନ ହେଲେ, ଅର୍ଥାତ୍ ମୁଖ୍ୟକର୍ତ୍ତା ନିଜେ କ୍ରିୟା ସାଧନ ନ କରି ଅନ୍ୟ ଦ୍ୱାରା ତାହା କରାଇଲେ ପ୍ରଥମୋକ୍ତ କର୍ତ୍ତାଙ୍କୁ ପ୍ରଯୋଜକ କର୍ତ୍ତା ବୋଲାଯାଏ । ଯାହା ଦ୍ୱାରା କ୍ରିୟା ସାଧନ କରାଯାଏ ତାଙ୍କୁ ପ୍ରୟୋଜ୍ୟ କର୍ତ୍ତା ବୋଲାଯାଏ । ରାମବାବୁ ତାଙ୍କ ଚପରାସି ଦ୍ୱାରା ଗରବଙ୍କୁ ମରାଇଲେ । ଏ ବାକ୍ୟରେ ରାମବାବୁ ନିଜେ ନ ମାରି ଚପରାସି ଦ୍ୱାରା ମରାଇବାରୁ ରାମବାବୁ ପ୍ରୟୋଜକ କର୍ତ୍ତା ଓ ଚପରାସି ପ୍ରୟୋଜ୍ୟ କର୍ତ୍ତା । ]

**ପ୍ରୟୋଜକ କ୍ରିୟା**—ସଂ. ବି. ( ବ୍ୟାକରଣ )—
Prayojaka kriyā କରାଇବା ଅର୍ଥବୋଧକ କ୍ରିୟା, ଣିଜନ୍ତ କ୍ରିୟା—( grammar ) Causative form of a verb.

[ ଦ୍ର—'କରିବା'ର ପ୍ରୟୋଜକ ରୂପ 'କରାଇବା', 'ଖାଇବା'—'ଖୋଇବା' ବା 'ଖୁଆଇବା', 'ଧରିବା'—'ଧରାଇବା','ଶୋଇବା'—'ଶୁଆଇବା' । ]

**ପ୍ରୟୋଜନ**—ସଂ. ବି. ( ପ୍ର+ଯୁଜ୍ ଧାତୁ ଣିଚ୍=ଯୋଜି ଧାତୁ +ଭାବ. ଅନ )—
Prayojana
୧ । ଚରମ ଉଦ୍ଦେଶ୍ୟ—1. Purpose; ultimate object; motive; end in view.
୨ । ଆବଶ୍ୟକତା—
2. Necessity; importance; need
୩ । ହେତୁ—3 Cause, occasion; reason.
୪ । ଉତ୍ପତ୍ତି; ମୂଳ—4. Origin.
୫ । ମତଲବ; ଅଭିପ୍ରାୟ; ଇଚ୍ଛା—
5. Intention; desire; design.
୬ । ପ୍ରୟୋଗ କରଣ; ବ୍ୟବହାର, ଉପଯୋଗ—
6. Application; employment; engagement; use.
୭ । ଫଳ; ପରିଣାମ—7. Consequence; result; end.

[ ଦ୍ର—ନ୍ୟାୟ ଦର୍ଶନରେ ୧୬ ପ୍ରକାର ବସ୍ତୁ ସ୍ୱୀକୃତ ହୋଇ ଅଛି । ତହିଁ ମଧ୍ୟରୁ ପ୍ରୟୋଜନ ଚତୁର୍ଥ ଅଟେ । ଯେଉଁ ଉଦ୍ଦେଶ୍ୟ ଯୋଗୁଁ କୌଣସି କାର୍ଯ୍ୟରେ ପ୍ରବୃତ୍ତି ଜନ୍ମେ ତାଙ୍କୁ ପ୍ରୟୋଜନ ବୋଲାଯାଏ । ତତ୍ତ୍ୱ ଦୃଷ୍ଟିରେ ଆତ୍ୟନ୍ତିକ ଦୁଃଖ ନିବୃତ୍ତିହିଁ ସଂସାରରେ ମୁଖ୍ୟ ପ୍ରୟୋଜନ ଅଟେ । ସଂସାରରେ ଅନ୍ୟ ସବୁ ଗୌଣ ପ୍ରୟୋଜନ ଅଟେ । ହି. ଶ ]

**ପ୍ରୟୋଜନବତୀ ଲକ୍ଷଣା**—ସଂ. ବି. ( ଅଳଙ୍କାର ଶାସ୍ତ୍ର )—
Prayojanabatī lakshaṇā ପ୍ରୟୋଜନ ଦ୍ୱାରା ବାଚ୍ୟାର୍ଥର ଭିନ୍ନ ଅର୍ଥ ପ୍ରକାଶିତ ହେବା ଲକ୍ଷଣା—
A rhetorical figure in which words are taken in their figurative import.

[ ଦ୍ର—ହଇଜାରେ ସେ ଗ୍ରାମରୁ ଦଶ ମୁଣ୍ଡ ଗଲେ । ଏଠାରେ ଦଶଟ ମୁଣ୍ଡର ଅର୍ଥ ୧୦ଟ ମୁଣ୍ଡଥାଏ ମନୁଷ୍ୟ । ଏହା ପ୍ରୟୋଜନାବଶ ଲକ୍ଷଣା । ଯେଉଁ ଲକ୍ଷଣା ଦ୍ୱାର ଶବ୍ଦର ପ୍ରକୃତିଗତ ଅର୍ଥ କର ନ ଯାଇ ଗୋଟିଏ ବଶିଷ୍ଟ ଅର୍ଥ ହୁଏ ତାକୁ ରୁଢ଼ି ଲକ୍ଷଣା ବୋଲିଯାଏ । କୁଶଳ ଶବ୍ଦର ପ୍ରକୃତିଗତ ଅର୍ଥ 'ଯେ କୁଶ ସବୁ କାଟେ' । କନ୍ତୁ କୁଶଳ ଶବ୍ଦର ଏହ ଅର୍ଥ ନ ହୋଇ ଦକ୍ଷ ବା ନିପୁଣ ଅର୍ଥରେ ଏହା ବ୍ୟବହାର କରଯାଏ । ଏହା ରୁଢ଼ି ଲକ୍ଷଣା—ହ୍ର ଶବ୍ଦସାଗର । ]

**ପ୍ରୟୋଜନାତିରକ୍ତ**—ସ ବଣ. (୫ମୀ ତତ୍, ପ୍ରୟୋଜନ+ଅତିରକ୍ତ)—
Prayojanātirikta ଆବଶ୍ୟକତା ଅପେକ୍ଷା ବେଶି—More than necessary; more than enough.

**ପ୍ରୟୋଜନାନୁରୂପ**—ସ. ବଣ. (୬ଷ୍ଠୀ ତତ୍, ପ୍ରୟୋଜନ+ଅନୁରୂପ)—
Prayojanānurūpa ଯେତିକ ଆବଶ୍ୟକ ସେତିକ, ଯଥେଷ୍ଟ—As much as is necessary, enough.

**ପ୍ରୟୋଜନୀୟ**—ସ. ବଣ. ( ପ୍ର+ଯୁଜ୍ ଧାତୁ+କର୍ମ. ଅନୀୟ)—
Prayojanīya ୧ । ଆବଶ୍ୟକ, ଦରକାର; ଉପକାରୀ—
1. Useful; needful; necessary, important.
୨ । ଉପଯୁକ୍ତ—2 Suitable.
୩ । କାମିକା—3 Serviceable

**ପ୍ରଯୋ(ୟୋ)ଜ୍ୟ**—ସ. ବଣ. (ପ୍ର+ଯୁଜ୍ ଧାତୁ+କର୍ମ. ଯ)—
Prajo(yo)jya ୧ । ପ୍ରୟୋଗ କରିବା ଯୋଗ୍ୟ, ପ୍ରଯୁକ୍ତ ହେବା ଯୋଗ୍ୟ, ବ୍ୟବହାର୍ଯ୍ୟ—1 Fit to be used or employed; applicable; serviceable
୨ । ଯାହା ଦ୍ୱାର କୌଣସି କାର୍ଯ୍ୟ ସାଧିତ ହୁଏ—
2. Instrumental.
୩ । ଯାହାକୁ ପ୍ରୟୋଗ କରଯାଏ—
3. That which is applied.
୪ । ଯାହା ପ୍ରୟୋଗ କରଯିବ—4 To be applied
୫ । ଆଚରଣୀୟ, କର୍ତ୍ତବ୍ୟ (ହ୍ର. ଶ.)—
5. Fit to be done; proper.
ସ. ବ—୧ । ମୂଳଧନ; ବ୍ୟବସାୟାଦରେ ଖଟାଯିବା ଧନ—
1. Capital; money invested in trade.
୨ । ଭୃତ୍ୟ—2. Servant.
୩ । କାର୍ଯ୍ୟସାଧନର ଉପାୟ—3. Instrument or means used to accomplish a work.

**ପ୍ରୟୋଜ୍ୟ କର୍ତ୍ତା**—ସ. ବ. (ବ୍ୟାକରଣ)—ମୁଖ୍ୟ କର୍ତ୍ତା ନିଜେ କାର୍ଯ୍ୟ-
Prayojya karttā ସାଧନ ନ କର ଯେଉଁ କର୍ତ୍ତାଦ୍ୱାର କାର୍ଯ୍ୟ ସାଧନ କରେ—(grammar ) Instrumental agent (as opposed to the principal agent.)

[ଦ୍ର—ରାମ ବାବୁ ତପସ୍ୱିଦ୍ୱାର ଗରବକୁ ମରାଇଲେ ଏଠାରେ ରାମ ବାବୁ ପ୍ରୟୋଜକ କର୍ତ୍ତା ଓ ତପସ୍ୱି ପ୍ରୟୋଜ୍ୟ କର୍ତ୍ତା । କ୍ରିୟାର ଣିଜନ୍ତ ରୂପର ବ୍ୟବହାରରେ ମୁଖ୍ୟକର୍ତ୍ତା ପ୍ରୟୋଜକ କର୍ତ୍ତା ହୁଏ । ସକର୍ମକ କ୍ରିୟାର ଣିଜନ୍ତ ପ୍ରୟୋଗରେ ପ୍ରୟୋଜ୍ୟ କର୍ତ୍ତାଠାରେ ୩ୟା ବଭକ୍ତ ବା ୨ୟା ବଭକ୍ତ ହୁଏ । ଯଥା—ରାମ ତପସ୍ୱିଦ୍ୱାର ଗରବକୁ ମରାଇଲେ । ଏଠାରେ ପ୍ରୟୋଜ୍ୟ କର୍ତ୍ତାର ୩ୟା ବଭକ୍ତ । ମାତା ଶିଶୁକୁ ଭାତ ଖୁଆଇଲେ । ଏଠାରେ ପ୍ରୟୋଜ୍ୟ କର୍ତ୍ତାର ୨ୟା ବଭକ୍ତ । ଅକର୍ମକ କ୍ରିୟାର ଣିଜନ୍ତ ପ୍ରୟୋଗରେ ପ୍ରୟୋଜ୍ୟ କର୍ତ୍ତାଠାରେ ୨ୟା ବଭକ୍ତ ହୁଏ, ଯଥା—ମାତା ଶିଶୁକୁ ଶୁଆଉ ଅଛନ୍ତ ।]

**ପ୍ରରୋଚନ(ନା)**—ସ. ବ. (ପ୍ର+ରୁଚ୍ ଧାତୁ ଣିଚ୍=ରୋଚ ଧାତୁ+
Prarochana(nā ଭାବ. ଅନ+ସ୍ତ୍ରୀ. ଆ) —୧ । ଉତ୍ତେଜନ; (ପ୍ରରୋଚକ, ପ୍ରରୋଚିତ—ବଣ) ମତାଇବା; ଉଦ୍ଦୀପନା; ଉସକେଇବା—
1. Stimulating, exciting; incitement; instigation; prompting.
୨ । ପ୍ରବର୍ତ୍ତାଇବା—2 Persuation.
୩ । ପ୍ରସନ୍ନତା ସମ୍ପାଦନ, ସନ୍ତୋଷ କରାଇବା—
3. Propitiating.
୪ । ଫୁସୁଲାଇବା—4. Seduction, inveigling.
୫ । ପ୍ରେରଣା—5. Causation.
୬ । ପ୍ରସ୍ତାବନାର ଅଙ୍ଗବଶେଷ, ଦର୍ଶକମାନଙ୍କ ଅନୁଗ୍ରହଲାଭ ଆଶାରେ ନାଟକର ପ୍ରସ୍ତାବନାର ଯେଉଁ ଅଂଶରେ ଗ୍ରନ୍ଥକାରଙ୍କର ବା ବର୍ଣ୍ଣିତ ବଷୟର ସୁଯଶଃ ଘୋଷିତ ହୋଇଥାଏ—
6. A prelude extolling the author or the subject matter of a drama; a valedictory introduction to a drama.
୭ । କୌଣସି ବଷୟରେ ରୁଚ ଜନ୍ମାଇବା (ହ୍ର. ଶ.)—
7. Creating a taste for anything.

**ପ୍ରରୋହ**—ସ. ବ. (ପ୍ର+ରୁହ୍ ଧାତୁ+କର୍ତ୍ତୃ. ଅ)—୧ । କଢ଼ି—
Praroha 1. Bud.
୨ । ଅଙ୍କୁର; ଗଜା—2. A shoot; a sprout.
୩ । ମୂଳ—3. Root.
୪ । ବର ଆଦ ଗଛର ଓହଳ—4. Aerial roots of banyan and some other trees.
୫ । ଲତାଙ୍କୁର, ନୂଆ ପତ୍ର ବା ଡାଳ—
5. A new leaf or branch.
୬ । (+ଭାବ. ଅ) ଉତ୍ପତ୍ତ; ମୂଳ—6. Origin.
୭ । ଆରୋହଣ—7. Ascending.
୮ । ତୁନ୍ ଗଛ, ନଂଦୀ ବୃକ୍ଷ (ହ୍ର. ଶବ୍ଦସାଗର)—
8. Tun (tree) (See).

**ପ୍ରରୋହଣ**—ସ. ବ. (ପ୍ର+ରୁହ୍ ଧାତୁ+ଭାବ. ଅନ; ଣତ୍ୱବଧି)—
Prarohaṇa ୧ । ଆରୋହଣ; ଚଢ଼ିବା—1. Ascending.
୨ । ଭୂମିରୁ ବାହାରବା—2. Sprouting up.
୩ । ଉତ୍ପତ୍ତ (ହ୍ର. ଶ )—3. Birth.

**ପ୍ରରୋହ ଭୂମି**—ସ. ବ. (ବହୁବ୍ରୀହ; ପ୍ରରୋହ+ଭୂମି, ଯେଉଁ ଭୂମିରୁ
Praroha bhūmi ବହୁତ ଗଜା ହୁଏ)—ଉର୍ବର ଜମି—
Productive or fertile land.

**ପ୍ରରୋହଶାଖୀ**—ସଂ. ବି. ( ପ୍ରରୋହ+ଶାଖା+ଇନ୍ , ୧ମା. ୧ବ )—
Praroha śākhī ଯେଉଁ ଗଛର ଡାଳକୁ ପୋତିଲେ ତାହା ସ୍ୱତନ୍ତ୍ର ଗଛରେ ପରିଣତ ହୁଏ (ହି. ଶ.)—Trees from which grafts can be made

**ପ୍ରଳପନ**—ସ. ବି. (ପ୍ର+ଲପ୍ ଧାତୁ+ଭାବ. ଅନ)—୧ । ପ୍ରଳାପ, Pra̱lapana ଅନର୍ଥକ ବାକ୍ୟ ପ୍ରୟୋଗ—1. Babbling; incoherent talk.

୨ । ଗପିବା; କଥନ—2. Speaking; talking.

**ପ୍ରଳପିତ**—ସ ବିଣ. (ପ୍ର+ଲପ୍ ଧାତୁ+କର୍ମ. ତ)—୧ । କଥିତ—
Pra̱lapita 1. Spoken; uttered.

୨ । ବୃଥା ଉକ୍ତ—2. Spoken in vain; babbled orth

ସ. ବି. (+ଭାବ. ତ)—ପ୍ରଳାପ—
Incoherent talk; gibberish.

**ପ୍ରଳ(ଲା)ମ୍ବ**—ସ. ବି. (ପ୍ର+ଲମ୍ବ୍ ଧାତୁ=ଲମ୍ବିବା+କର୍ତ୍ତୃ. ଅ)—
Pra̱la(la)mba ୧ । ବୃକ୍ଷ ଶାଖା—1. Branch.

୨ । ଗଛର ଓହଳ—
2. Aerial roots descending from the branch of a tree

୩ । ବଳରାମଙ୍କଦ୍ୱାରା ନିହତ ଦୈତ୍ୟବିଶେଷ—
3 Name of a demon killed by Balarāma.
[ଦ୍ର—ଏକଦା କୃଷ୍ଣ ଓ ବଳରାମ ଗୋପବାଳକଙ୍କ ସଙ୍ଗେ ଖେଳୁ ଥିଲେ । ମାୟାବୀ ପ୍ରଳମ୍ବାସୁର ଗୋପବାଳକ ବେଶ ଧରି ଏମାନଙ୍କ ସଙ୍ଗେ ଖେଳୁ ଥାଏ । ପିଲ୍ଲମାନଙ୍କ ମଧ୍ୟରେ କଥା ହେଲା ଯେ ଯେଉଁ ପିଲା ଖେଳରେ ହାରିବ, ସେ ଜିଣିବା ପିଲାକୁ କାନ୍ଧରେ ବସାଇ ବୁଲାଇବ । ପ୍ରଳମ୍ବାସୁର ହାରିଲା ଓ ବଳରାମ ଜିତିଲେ । ପ୍ରଳମ୍ବାସୁର ବଳରାମଙ୍କୁ କାନ୍ଧରେ ବସାଇ ପଳାଇ ଯିବାକୁ ବସିଥିଲା, କିନ୍ତୁ ବଳରାମ ଆପଣା ଦେହକୁ ଏପରି ଭାରି କରି ଦେଲେ ଯେ ପ୍ରଳମ୍ବାସୁର ଚାପି ହୋଇ ଗଲା । ତା ପରେ ଅସୁର ନିଜ ରୂପ ଧାରଣ କରିବାରୁ ବଳରାମ ତା ସଙ୍ଗେ ଯୁଦ୍ଧ କରି ତାକୁ ମାରି ପକାଇଲେ- ଭାଗବତ (ହି ଶ.) ।]

୪ । ଉଦ୍ଭିଦର ଅଙ୍କୁର—
4. The shoot or sprout of a plant; offshoot.

୫ । ହାର—5. Necklace,

୬ । ପୟୋଧର; ସ୍ତନ—6. The breast of females.

(ପ୍ରଳମ୍ବିତ—ବିଣ) ୭ । ମେଘ—7. Cloud.

୮ । (+ଭାବ. ଅ) ପ୍ରଲମ୍ବନ; ଝୁଲିବା; ଲଟକିବା—
8. Hanging down.

୯ । କାର୍ଯ୍ୟରେ ବୃଥାରେ ବିଳମ୍ବ କରିବା (ହି. ଶବ୍ଦସାଗର)—
9 Tardiness; dilatoriness

ସ. ବିଣ—୧ । (+କର୍ତ୍ତୃ. ଅ) ଲମ୍ବମାନ—
1. Hanging down; pendant; pendulous.

୨ । ନଇଁ ପଡ଼ିଥିବା—2 Stooping.

୩ । ଅଳସ; ଦୀର୍ଘସୂତ୍ରୀ—3. Idle; dilatory.

୪ । ବିଶେଷ ଲମ୍ବ—4. Very long.

ଗାଳ ଦେଖିଲ କୁନ୍ତଳ କୋମଳ,
ପ୍ରଳମ୍ବ ଗହଳ ସୁଗନ୍ଧଶୀଳ । ଉପେ କୋଟିବ୍ରହ୍ମାଣ୍ଡସୁନ୍ଦରୀ ।

ଗ୍ରା. ବି. (ପ୍ରାଚୀନ ପଦ୍ୟ) (ସ. ପ୍ରଣବ) ଓଁକାର—
1. The mystical sound 'om' uttered in the beginning of a Mantra

ସତସ୍ୱରୂପରେ ବାକ୍ୟଦେବୀ
କଣ୍ଠେ ପ୍ରଳମ୍ବ ଅଛନ୍ତି ବାକ୍ୟ ସ୍ତବି । ପ୍ରାଚୀ. ରହସ୍ୟମଞ୍ଜରୀ ।

୨ । (ସ. ପ୍ରଣାମ) ପ୍ରଣାମ—2. Obeisance.

ଗ୍ରା. ବିଣ (ସ. ପ୍ରଣମିତ)—ପ୍ରଣମିତ—
Bowing down; making obeisance.

ଶୁଣି ଅର୍ଜୁନ ପ୍ରଳମ୍ବ ହୋଇ—ପ୍ରାଚୀ. ଗୀତା ।

**ପ୍ରଳମ୍ବ କରିବା**—ଗ୍ରା କ୍ରି—ନମସ୍କାର କରିବା—
Pra̱lamba karibā To bow down in reverence.

ସ୍ୱାମୀର ଚରଣ ଧରି ପ୍ରଳମ୍ବ କରି—ପ୍ରାଚୀ ପ୍ରଭାପ ଶଶିରେଖା ।

**ପ୍ରଳମ୍ବକୁନ୍ତଳା**—ସ. ବିଣ. ସ୍ତ୍ରୀ (ବହୁବ୍ରୀହି; ପ୍ରଳମ୍ବ+କୁନ୍ତଳ+ସ୍ତ୍ରୀ. ଆ)—
Pra̱lambakuntaḻā ସୁଦୀର୍ଘକେଶା (ନାରୀ)—
(Woman) Having long hair.

ବିଳମ୍ବ ଗମନ ପ୍ରଳମ୍ବକୁନ୍ତଳା ଅବଲମ୍ବ ଏହି ମନୋହର ସେ ।
ଉପେ. ବୈଦେହୀଶବିଳାସ ।

**ପ୍ରଳମ୍ବଘ୍ନ**—ସ. ବି. ପୁଂ. (ପ୍ରଳମ୍ବ+ହନ୍ ଧାତୁ+କର୍ତ୍ତୃ ଅ)—
Pra̱lambaghna (ପ୍ରଳମ୍ବାସୁରର ହନ୍ତା) ବଳରାମ—
(ପ୍ରଳମ୍ବଭିତ୍, ପ୍ରଳମ୍ବମର୍ଦ୍ଦନ, ପ୍ରଳମ୍ବାରି—ଅନ୍ୟରୂପ) Balarāma

**ପ୍ରଳମ୍ବିତ**—ସ. ବିଣ. (ପ୍ର+ଲମ୍ବିତ) ଲମ୍ବିଥିବା; ଲମ୍ବମାନ; ତଳକୁ ଲମ୍ବି ଥିବା—
Pra̱lambita
Hanging down; overhanging.

ଗ୍ରା. (ପଦ୍ୟ) ବି—ନମସ୍କାର—Obeisance.

ମାତାଙ୍କର ଶ୍ରୀପଦରେ ପ୍ରଳମ୍ବିତ ବେଗେ କଲେ;
ଓଗ୍ରେରିଲେ ଏହୁ କଥା କହେ ବେଗେଣ । ପ୍ରାଚୀ. ନଳଚରିତ ।

ଗ୍ରା. ବିଣ (ସ. ପ୍ରଣମିତ)—ପ୍ରଣାମ କରିଥିବା—
Making obeisance.

**ପ୍ରଳମ୍ବିବା**—ଗ୍ରା. (ପ୍ରାଚୀନ ପଦ୍ୟ) କ୍ରି (ସ. ପ୍ରଣାମ)—ପ୍ରଣାମ କରିବା—
Pra̱lambibā To make obeisance.

ଭକ୍ତିକି ପ୍ରଳମ୍ବି କଲେ ଚଉଁ ବଖାଣ—ଜଗନ୍ନାଥ. ବଡ଼ଭାଗବତମାହାତ୍ମ୍ୟ ।

**ପ୍ରଳମ୍ଭ**—ସ. ବି. (ପ୍ର+ଲଭ୍ ଧାତୁ=ଲାଭ କରିବା+ଭାବ. ଅ)—
Pralambha ୧ । ବିଶେଷ ଲାଭ—1 Special profit.

୨ । ଛଳନା, ବଞ୍ଚନା—2. Fraud; cheating.

**ପ୍ରଳୟ**—ସଂ. ବି. (ପ୍ର+ଲୀ ଧାତୁ=ଲୀନ ହେବା+ଭାବ. ଅ)—
Pra̱laya ୧ । ବ୍ରହ୍ମାଣ୍ଡର ବିନାଶ; କଳ୍ପାନ୍ତକ୍ଷୟ; ସୃଷ୍ଟିର ଲୋପ—
1. The dissolution of the universe at the end of eve y 'kalpa',
[ ଦ୍ର—ପ୍ରଳୟ ଚାରି ପ୍ରକାର, ଯଥା—ନିତ୍ୟ, ପ୍ରାକୃତିକ, ନୈମିତ୍ତିକ ଓ ଆତ୍ୟନ୍ତିକ ।]

୨ । ମୃତ୍ୟୁ; ମରଣ—2. Death.

୩ । ବିଲୟ; କ୍ଷୟ; ବିନାଶ; ଧ୍ୱଂସ—
3. Total destruction; annihilation.

୪ । ମୋହ; ମୂର୍ଚ୍ଛା—4. Fainting; syncope; loss of sense; swoon.

୫ । (ଲକ୍ଷଣାର୍ଥ) ଭୟାନକ ବିପଦ୍ —
5 (figurative) Imminent danger; calamity.
୬ । ଅଷ୍ଟ ସାତ୍ତ୍ୱିକବିକାର ମଧ୍ୟରୁ ଏକତମ, ସଂଜ୍ଞାହୀନତା—
6. One of 8 Sātwika bikāras; senselessness.

ବଦନରୁ ଅଙ୍ଗ ଉଭଲରୁପେ ପ୍ରଳୟ
ବାଧିବାରୁ ସାତ୍ତ୍ୱିକ ସେ ଶୀଣକାୟ — ଭକ୍ତ. ବୈଦେହୀଶବିଳାସ ।

[ ଦ୍ର—କୂର୍ମପୁରାଣ ଅନୁସାରେ ବ୍ରହ୍ମା ଏ ଜଗତକୁ ସୃଷ୍ଟି କରିବା ପରେ ତାହା ଏକ କଳ୍ପ ବା ଏକ ହଜାର ଚତୁର୍ଯୁଗ ବା ବ୍ରହ୍ମାଙ୍କର ଏକ ଦିବସ ପର୍ଯ୍ୟନ୍ତ ରହେ । ତତ୍ପରେ ବ୍ରହ୍ମା ଶୟନ କରିବାରୁ ବ୍ରହ୍ମାଣ୍ଡର ପ୍ରଳୟ ଉପସ୍ଥିତ ହୁଏ ଓ ଏ ପ୍ରଳୟ ବ୍ରହ୍ମାଙ୍କର ଏକ ରାତ୍ରି ବା ଏକ କଳ୍ପ ପର୍ଯ୍ୟନ୍ତ ରହେ । ଏ ପ୍ରଳୟରେ କେବଳ ବିଷ୍ଣୁ ବା ବ୍ରହ୍ମା ବଞ୍ଚି ରହନ୍ତି । ବ୍ରହ୍ମାଙ୍କର ରାତ୍ରି ପାହିଗଲେ ବ୍ରହ୍ମା ପୁଣି ଜଗତକୁ ସୃଷ୍ଟି କରନ୍ତି । ଏ ପ୍ରଳୟକୁ କଳ୍ପାନ୍ତ ବା ନୈମିତ୍ତିକ ବା ବ୍ରାହ୍ମ ପ୍ରଳୟ ବୋଲାଯାଏ । ବ୍ରହ୍ମାଣ୍ଡ ମହଦାଦି ପ୍ରକୃତିରେ ଲୀନ ହେବାର ନାମ ପ୍ରାକୃତିକ ପ୍ରଳୟ । ପ୍ରାକୃତିକ ପ୍ରଳୟରେ ପୃଥିବୀ ଜଳରେ, ଜଳ ଅଗ୍ନିରେ, ଅଗ୍ନି ବାୟୁରେ, ବାୟୁ ଆକାଶରେ, ଆକାଶ ମହତ୍ତତ୍ତ୍ୱରେ ଓ ମହତ୍ତତ୍ତ୍ୱ ପ୍ରକୃତିରେ ଲୀନ ହୋଇଯାଏ । ବ୍ରହ୍ମଜ୍ଞାନ ଲାଭ ହେଲେ ଯୋଗୀମାନଙ୍କର ପରମାତ୍ମାରେ ଲୀନ ହେବାର ନାମ 'ଆତ୍ୟନ୍ତିକ ପ୍ରଳୟ'। ବ୍ରହ୍ମାଣ୍ଡର ଯାବତୀୟ ସୃଷ୍ଟ ପଦାର୍ଥର ପ୍ରତିକ୍ଷଣ ଯେଉଁ ପରିବର୍ତ୍ତନ ବା ବିନାଶ ଲାଗିଅଛି ତାହା ନିତ୍ୟ ପ୍ରଳୟ—ହି. ଶ ।]

**ପ୍ରଳୟ କାଳ**—ସଂ. ବି—(୬ଷ୍ଠୀ ତତ୍) କଳ୍ପାନ୍ତରେ ବ୍ରହ୍ମାଣ୍ଡର ପ୍ରଳୟ ଘଟିବା ସମୟ—The time of the universal dissolution.
Pralaya kāla

**ପ୍ରଳୟଙ୍କର**—ସଂ. ବିଣ—(ପ୍ରଳୟ+କୃ ଧାତୁ+କର୍ତ୍ତୃ. ଅ; ଅନୁସ୍ୱାର ଆଗମ)—ପ୍ରଳୟକାରୀ; ବିଧ୍ୱଂସୀ, ସଂହାରକାରୀ, ସର୍ବନାଶସମ୍ପାଦକ—1. Destructive; annihilating; causing utter ruin.
Pralayankara
(ପ୍ରଳୟଙ୍କରୀ—ସ୍ତ୍ରୀ)

**ପ୍ରଲାପ**—ସଂ. ବି — ୧ । (ପ୍ର+ଲପ୍ ଧାତୁ+ଭାବ. ଅ)—ନିରର୍ଥକ ବାକ୍ୟ—1. Chatter.
Pralāpa
୨ । ଉନ୍ମତ୍ତ ବ୍ୟକ୍ତିର ନିରର୍ଥକ ବାକ୍ୟ—
2. Delirious talk; ravings of a mad man.
୩ । ଅସାର ବାକ୍ୟ; ଅସମ୍ବଦ୍ଧ ଗଳ୍ପ—
3. Incoherent talk; prattle; gibberish.
୪ । ରୋଗର ଉପସର୍ଗବିଶେଷ, ଯହିଁରେ ରୋଗୀ ଗୁଡ଼ାଏ ବକେ—
4. Delirium.
୫ । ବିଳାପ—5. Wailing; lamentation.

**ପ୍ରଲାପ କରିବା**—ଦେ. କ୍ରି—ଅସମ୍ବଦ୍ଧ ବାକ୍ୟ ଗପିବା—
Pralāpa kariba To talk incoherently; to rave.
ପ୍ରଲାପକରା ପ୍ରଲାପକରେ।

**ପ୍ରଲାପୀ**—ସ. ବିଣ. ପୁଂ—(ପ୍ର+ଲପ୍ ଧାତୁ+କର୍ତ୍ତୃ. ଇନ୍, ୧ମା. ୧ବ)-ଯେ ପ୍ରଲାପ କରେ—Raving; talking incoherently; prattling.
Pralāpi
(ପ୍ରଲାପିନୀ—ସ୍ତ୍ରୀ)

**ପ୍ରଲୀନ**—ସଂ. ବିଣ—(ପ୍ର+ଲୀ ଧାତୁ+କର୍ତ୍ତୃ. ତ)—୧ । ଲୟପ୍ରାପ୍ତ; ମିଳାଇ ଯାଇଥିବା—1 Dissolved; quite absorbed.
Pralina
(ପ୍ରଲୀନା—ସ୍ତ୍ରୀ;
[ପ୍ରଲୀନତା(ଭା)—ବି] ୨ । ମୂର୍ଚ୍ଛିତ—
2 Fainted; swooning.
୩ । ଅନ୍ତର୍ହିତ—3. Disappeared.
୪ । ଚେଷ୍ଟାଶୂନ୍ୟ; ଜଡ଼ବତ୍—4. Inert.

**ପ୍ରଳେ**—ଗ୍ରା. (ପ୍ରାଚୀନ ପଦ୍ୟ) ବି —'ସଂ. ପ୍ରଳୟ)—ପ୍ରଳୟ; ବିନାଶ—Destruction; dissolution.
Prale

ଏ ରୂପେ ଛନ୍ଦରୂପ ଧରି
ଉପନ୍ତି ସ୍ଥିତି ପ୍ରଳେ କରି — ପ୍ରା. ଚୀ. ନିର୍ଗୁଣ ମାହାତ୍ମ୍ୟ ।

**ପ୍ରଲେପ**—ସଂ. ବି—(ପ୍ର+ଲିପ୍ ଧାତୁ+ଭାବ. ଅ)—୧ । ଲିପିବା; ଉପରେ ବୋଳିବା —1. Anointing; smearing; plastering.
Pralepa
(ପ୍ରଲେପନ—ଅନ୍ୟରୂପ)
୨ । (+କରଣ ବା କର୍ମ. ଅ) ମଲମ—
2 Ointment; salve; plaster.
୩ । ପଦାର୍ଥ ଉପରେ ବୋଳାଯିବା ପତଳା ସ୍ତର—
3. A thin layer laid over a thing.

**ପ୍ରଲେପକ**—ସଂ. ବିଣ. ପୁଂ —(ପ୍ର+ଲିପ ଧାତୁ+କର୍ତ୍ତୃ ଅକ)—ଯେ ଲେପନ କରେ ବା ଲିପେ—Smearing, anointing.
Pralepaka
(ପ୍ରଲେପିକା - ସ୍ତ୍ରୀ)
ସଂ. ବି—ବାତ କଫଦୋଷରୁ ଉତ୍ପନ୍ନ ଏକପ୍ରକାର ଜୀର୍ଣ୍ଣ ଜ୍ୱର—A kind of chronic fever accompanied with profuse perspiration.
[ଦ୍ର—ଏଥିରେ ଦେହ ସାମାନ୍ୟ ତାତିଥାଏ ଓ ଦେହ ଝାଳରେ ବୁଡ଼ି ଥାଏ—ହି. ଶ ।]

**ପ୍ରଲାପକ**—ସଂ. ବିଣ ପୁଂ—(ପ୍ର+ଲପ୍ ଧାତୁ+କର୍ତ୍ତୃ. ଅକ)—ଯେ ବୃଥାରେ ଗୁଡ଼ାଏ ଗପେ—Raving; babbling.
Pralāpaka
(ପ୍ରଲାପିକା—ସ୍ତ୍ରୀ)
ସଂ. ବି—ରୋଗୀ ପ୍ରଲାପ କରିବା ସନ୍ନିପାତ ରୋଗ ବିଶେଷ—ହି. ଶ) — A kind of collapse in which the patient becomes delirious.

**ପ୍ରଲାପନ**—ସଂ. ବି—( ପ୍ର+ଲପ୍ ଧାତୁ+ଭାବ-ଅନ ) · ବକ୍ବକ୍‌ଗୁଡ଼ାଏ ବା ନିରର୍ଥକ ଗପିବା—Raving; babbling.
Pralāpana

**ପ୍ରଲୋଭନ**—ସଂ. ବି – (ପ୍ର+ଲୁଭ୍ ଧାତୁ ଣିଚ=ଲୋଭ ଧାତୁ+ଭାବ. ଅନ)—ଲୋଭ ଦେଖାଇବା; ଲାଳସା ଜନ୍ମାଇବା; ଅତିଶୟ ଲୋଭ ଉତ୍ପାଦନ — Allurement, enticement; temptation; seduction.
Pralobhana
ପ୍ରଲୋଭକ } ବିଣ
ପ୍ରଲୋଭିତ }
· ସଂ. ବିଣ—( +କର୍ତ୍ତୃ.ଅନ)—ଲୋଭଜନକ, ଯେ ଲୋଭ ଦେଖାଇ ଅନ୍ୟକୁ ଭୁଲାଏ—Alluring; tempting; seducing.

**ପ୍ରଲୋଭିତ**—ସଂ. ବିଣ—(ପ୍ର+ଲୋଭିତ)—୧ । ପ୍ରଲୋଭନ ଦ୍ୱାରା ଆକୃଷ୍ଟ—1. Seduced; allured; enticed.
Pralobhita

୨ । ଅତ୍ୟନ୍ତ ଆକୃଷ୍ଟ—
2. Very much attracted.

**ପ୍ରଲୋଭୀ**—ସଂ. ବିଣ. ପୁଂ. (ପ୍ର+ଲୋଭ+ଅସ୍ତ୍ୟର୍ଥେ ଇନ୍) Pralobhi —ଅତି ଲୋଭୀ, ଲୁବ୍ଧ—Very covetuous or avaricious.
(ପ୍ରଲୋଭିନୀ—ସ୍ତ୍ରୀ)
ଧାର୍ମିକ ଧର୍ମରେ ନ କରୁ;
ପ୍ରଲୋଭୀ ପ୍ରାଣୀ ଅଟେ ସେହୁ । ଜଗନ୍ନାଥ, ଭାଗବତ ।

**ପ୍ରଲୋଲୁପ**—ସଂ. ବିଣ. ପୁଂ (ପ୍ର+ଯଙ୍ ଲୁଗନ୍ତ ଲୁଭ୍ ଧାତୁ+କର୍ତ୍ତୃ ଅ)—Pralolupa ୧ । ଅତ୍ୟନ୍ତ ଲୋଭୀ—1. Very covetuous.
(ପ୍ରଲୋଲୁପା—ସ୍ତ୍ରୀ) ୨ । କୌଣସି ଦ୍ରବ୍ୟ ପ୍ରତି ଅତ୍ୟନ୍ତ ଲାଳାୟିତ—2. Hankering after any thing.

**ପ୍ରଶଂସନ**—ସଂ. ବି. (ପ୍ର+ଶଂସ୍ ଧାତୁ+ଭାବ. ଅନ)—୧ । ସ୍ତୁତି, Praśamsana ଗୁଣକୀର୍ତ୍ତନ—1. Praising; eulogising.
(ପ୍ରଶଂସକ, ପ୍ରଶଂସୀ, ପ୍ରଶଂସିତ—ବିଣ) ୨ । ଧନ୍ୟବାଦ ଦେବା—2. Giving thanks.

**ପ୍ରଶଂସନୀୟ**—ସଂ. ବିଣ. (ପ୍ର+ଶଂସ୍ ଧାତୁ+କର୍ମ. ଅନୀୟ)—Praśamsaniya ପ୍ରଶଂସିତ ହେବାର ଯୋଗ୍ୟ—
(ପ୍ରଶଂସନୀୟା—ସ୍ତ୍ରୀ) Laudable; praiseworthy; deserving praise; admirable.

**ପ୍ରଶଂସା**—ସଂ. ବି. (ପ୍ର+ଶଂସ୍ ଧାତୁ+ଭାବ. ଅ+ସ୍ତ୍ରୀ. ଆ)—Praśamsā ୧ । ସୁଖ୍ୟାତି; ଗୁଣକୀର୍ତ୍ତନ; ସ୍ତୁତି; ସ୍ତବ—
(ନିନ୍ଦା—ବିପରୀତ) 1. Praise; eulogy, applause.
୨ । ଧନ୍ୟବାଦ—2. Thanks—giving.

**ପ୍ରଶଂସାପତ୍ର**—ଦେ. ବି.—ସାର୍ଟିଫିକେଟ—
Praśamsā patra Testimonial; certificate.

**ପ୍ରଶଂସାବାଦ**—ସଂ. ବି. (୬ଷ୍ଠୀ ତତ୍; ପ୍ରଶଂସା+ବାଦ)—ସ୍ତୁତିବାଦ, Praśamsā bāda ଗୁଣକୀର୍ତ୍ତନ—Eulogy; applause

**ପ୍ରଶଂସାଭାଜନ**—ସଂ. ବିଣ. (ପ୍ରଶଂସା=ଖ୍ୟାତି+ଭାଜନ=ପାତ୍ର;) Praśamsā bhājana ୬ଷ୍ଠୀ ତତ—ପ୍ରଶଂସନୀୟ (ଦେଖ)
ପ୍ରଶଂସାର୍ହ, ପ୍ରଶଂସାପାତ୍ର—ଅନ୍ୟରୂପ) Praśamsaniya (See)
(ପ୍ରଶଂସାର୍ହା—ସ୍ତ୍ରୀ)

**ପ୍ରଶଂସିତ**—ସଂ. ବିଣ. ପୁଂ (ପ୍ର+ଶଂସ୍ ଧାତୁ+କର୍ମ. ତ)—ଯାହାର Praśamsita ଗୁଣ କୀର୍ତ୍ତନ କରାଯାଇ ଅଛି, ଯାହାକୁ ପ୍ରଶଂସା କରା
(ପ୍ରଶଂସିତା—ସ୍ତ୍ରୀ) ଯାଇଅଛି—Eulogised; praised; extolled; applauded.

**ପ୍ରଶଂସିତବ୍ୟ**—ସଂ. ବିଣ. (ପ୍ର+ଶଂସ୍ ଧାତୁ+କର୍ମ. ତବ୍ୟ)—Praśamsitabya ପ୍ରଶଂସା ପାଇବାର ଯୋଗ୍ୟ, ପ୍ରଶଂସିତ ହେବାର
(ପ୍ରଶଂସିତବ୍ୟା—ସ୍ତ୍ରୀ) ଯୋଗ୍ୟ—Praiseworthy; deserving praise.

**ପ୍ରଶଂସିତା**—ଗ୍ରା. (ପ୍ରାଚୀନ ପଦ୍ୟ) ବିଣ (ପୁଂ. ଓ ସ୍ତ୍ରୀ. ରେ ବ୍ୟବହାର)—Praśamsitā ପ୍ରଶଂସିତ (ଦେଖ)—Praśamsita (See)
ବାସବରେ ଯେ ପ୍ରଶଂସିତା ବିଶ୍ୱାସ ତାଙ୍କ ନାମ ତା ।
ଉପେ. ବୈଦେହୀଶବିଳାସ ।

**ପ୍ରଶଂସିବା**—ଦେ. (ପଦ୍ୟ) କ୍ରି.—(ସଂ. ପ୍ରଶଂସା)—ପ୍ରଶଂସା କରିବା—
Praśamsibā To praise.

ଅତି ହୃଷ୍ଟ ହୋଇ କହୁଛ ପ୍ରଶଂସନ୍ତି । କୃଷ୍ଣସିଂ. ମହାଭାରତ ଅଦି ।

**ପ୍ରଶଂସୋପମା**—ସଂ. ବି.—ଏକ ପ୍ରକାର ଉପମାଲଙ୍କାର, ଯହିଁରେ Praśamsopamā ଉପମେୟର ଅଧିକ ପ୍ରଶଂସା କରି ଉପମାନର ପ୍ରଶଂସା ଦେଖାଇତ କରାଯାଏ (ହି. ଶବ୍ଦସାଗର)—
A kind of simile in which the praise of the object of comparision is indicated by praising the thing with which it is compared.

**ପ୍ରଶଂସ୍ୟ**—ସଂ. ବିଣ. (ପ୍ର+ଶଂସ୍ ଧାତୁ+କର୍ମ. ଯ)—ପ୍ରଶଂସନୀୟ, Praśamsya ପ୍ରଶଂସିତ ହେବାର ଯୋଗ୍ୟ—
(ପ୍ରଶଂସ୍ୟା—ସ୍ତ୍ରୀ) Laudable; praiseworthy

**ପ୍ରଶତ୍ୱା**—ସଂ. ବି. (ପ୍ରଶତ୍ୱନ୍ ଶବ୍ଦ ୧ମା ୧ବ.)—ସମୁଦ୍ର (ହି. ଶ)—Praśatwā Ocean.

**ପ୍ରଶନ**—ଗ୍ରା (ଓ ପଦ୍ୟ)—ବି.—ପ୍ରଶ୍ନ (ଦେଖ)
Praśana Praśna (See)
ସଂଯୋଗେ ଅସି ଥିଲେ ମନ୍ତ୍ର,
ପ୍ରଶନ କଲ ନୃପମଣି । ଭୂପତି, ପ୍ରେମପଞ୍ଚାମୃତ ।

**ପ୍ରଶମ**—ସଂ. ବି. (ପ୍ର+ଶମ୍ ଧାତୁ+ଭାବ. ଅ)—୧ । ଶମତା, ଶାନ୍ତି—Praśama 1 Peace, quiesence; appeasement.
୨ । ଉପଶମ—2. Palliation; subsidence; pacification.
୩ । ବୈରାଗ୍ୟ—3. Renunciation.
୪ । ନିର୍ବାଣ; ନାଶ—4 Extinction.
୫ । ଅବସାଦ—5. Lassitude.
୬ । (ନାମ) ରନ୍ତିଦେବଙ୍କ ପୁତ୍ର—
6 Name of a son of king Rantideva.
୭ । ନିବୃତ୍ତି ( ହି, ଶ. )—
7. Cessation.
ସଂ. ବିଣ. ପୁଂ—(+କର୍ତ୍ତୃ. ଅ)—୧ । ଶାନ୍ତ—
1. Pacified; calm.
(ପ୍ରଶମା—ସ୍ତ୍ରୀ) ୨ । ଭଦ୍ର; ନମ୍ର—1. Gentle.

**ପ୍ରଶମନ**—ସଂ. ବି—(ପ୍ର+ଶମ୍ ଧାତୁ=ଶାନ୍ତ ହେବା ଣିଚ୍+ଭାବ. Praśamana ଅନ)—୧ । ଶାନ୍ତ କରିବା—
ପ୍ରଶମିତ, ପ୍ରଶମନୀୟ } ବିଣ 1. Palliation; extenuation; pacification.
୨ । ହନନ; ମାରଣ, ବଧ—
2. Slaughter; killing.
୩ । (ଶମ୍ ଧାତୁ+ଭାବ. ଅନ) ଶାନ୍ତି, କ୍ଷମତା—
3. Peace; calmness, tranquility.
୪ । ଅନୁରଞ୍ଜନ—4. Refreshing.
୫ । ବିଶ୍ରାମ; ବିରାମ—
5. Cessation, quiescence, reposing.
୬ । ନିବାରଣ, ନିବର୍ତ୍ତନ—6. Prevention.
୭ । ସ୍ଥିରୀକରଣ—7 Determiation, settling.
୮ । ଅସ୍ତ୍ରପ୍ରହାର (ହି. ଶ)—
8. Striking with a weapon.

୯ । (ନାମ) ସତ୍ରାଜିତଙ୍କର ଏକ ଭାଇ—
9. Name of a brother of Satrājita

ପ୍ରଶମା—ସଂ. ବି ସ୍ତ୍ରୀ—ଜଣେ ଅପ୍ସରାର ନାମ—
Praśamā   Name of a heavenly nymph.

ପ୍ରଶମିତ—ସଂ. ବିଣ—(ପ୍ର+ଶମ୍ ଧାତୁ ଣିଚ୍=ଶମି ଧାତୁ+କର୍ମ. ତ)—
Praśamita   ୧ । ଶମତାପ୍ରାପ୍ତ; ଯାହାଙ୍କୁ ଅନ୍ୟ କେହି ଶାନ୍ତ କରାଇ ଅଛି—1. Palliated tranquilised
୨ । ନିବାରିତ—2. Prevented.
୩ । ଶାନ୍ତ—3. Appeased, satiated.

ପ୍ରଶସ୍ତ ସଂ. ବିଣ—(ପ୍ର+ଶଂସ୍ ଧାତୁ=ସ୍ତୁତି କରିବା+କର୍ମ ତ)—
Praśasta   ୧ । ପ୍ରଶଂସିତ—1. Praised; commended.
(ପ୍ରଶସ୍ତି—ବି)   ୨ । ମଙ୍ଗଳମୟ—2. Auspicious.
୩ । ନିପୁଣ; ଦକ୍ଷ—3. Skilful.
୪ । ପ୍ରସାରଯୁକ୍ତ, ବିସ୍ତୃତ; ଚଉଡ଼ା -
4. Extensive; broad; wide, spacious.
୫ । ଶ୍ରେଷ୍ଠ, ଉତ୍ତମ—5. Good, excellent
୬ । ଠିକ୍—6. Right.
୭ । ପ୍ରଶଂସନୀୟ—7. Praiseworthy.
ସ. ବି—୧ । (ନାମ) ରାକ୍ଷସବିଶେଷ—
1. Name of a demon.

ଯାହା ବାଣେ ବ୍ରହ୍ମାଣ୍ଡ ଦହି ହୁଏ
ତାଙ୍କୁ ମାଇଲ ପ୍ରଶସ୍ତ ରୁର ହେ ଦଇବ—ବଇକାଅ ବଇଜାସମ୍ପୁଣ ।

ପ୍ରଶସ୍ତାଦ୍ରି—ସ. ବି—ମଧ୍ୟ ପ୍ରଦେଶର ପର୍ବତବିଶେଷ—
Praśastādri   Name of a mountain in central India (Apte).

ପ୍ରଶସ୍ତି—ସ. ବି—(ପ୍ର+ଶଂସ୍ ଧାତୁ+ଭାବ. ତି)—୧ । ପ୍ରଶଂସା—
Praśasti   1. Commendation, praise, eulogy.
୨ । ଶ୍ରେଷ୍ଠତା—2 Excellence. eminence.
୩ । ପଂକ୍ତି—3. Row, line.
୪ । ପତ୍ର ଦେଖିବା ସମୟରେ ପତ୍ରର ଆଦ୍ୟରେ ଲେଖାଯିବା ପ୍ରଶଂସାସୂଚକ ବାକ୍ୟ, ଶିରୋନାମା (ହି. ଶ)—
4. The titles and words of praise used in the beginning of a letter.
୫ । ରାଜବଂଶର ଓ ରାଜାଙ୍କ କୀର୍ତ୍ତି ଆଦିର ବର୍ଣ୍ଣନାତ୍ମକ ଏକପ୍ରକାର ଆଜ୍ଞାପତ୍ର, ଯାହା ପଥର ଉପରେ ବା ତାମ୍ର ପଟ୍ଟ ଆଦିରେ ଖୋଦିତ ହେଉଥିଲା (ହି. ଶବ୍ଦସାଗର)—.
5. A description of the family and exploits of a king engraved on stone or metal plates under the king's orders.
୬ । ପ୍ରାଚୀନ ପୁସ୍ତକର ଆଦ୍ୟରେ ଓ ଅନ୍ତରେ ଲେଖାଥିବା ଗ୍ରନ୍ଥକାରର ନାମ ଓ ପରିଚୟ ଓ ରଚନା ବା ଲେଖାର କାଳ ଓ ପୁସ୍ତକ ଲିଖିତ ବିଷୟର ସଂକ୍ଷିପ୍ତ ସୂଚନା (ହି.ଶ)-
6. A brief indication of the name and particulars of the author; the time of composition or writing and the content given at the beginning and end of old work.
୭ । ବର୍ଣ୍ଣନା—7 Description (Apte).
୮ । ଆଶୀର୍ବାଦ, ମଙ୍ଗଳାଭିବାଦନ—
8 Benediction (Apte).
୯ । କୌଣସି ବ୍ୟକ୍ତିଙ୍କ ପ୍ରଶଂସାସୂଚକ କ୍ଷୁଦ୍ର କବିତା—
9 A panegyric or small poem written in praise of any one (Apte).

ପ୍ରଶସ୍ୟ—ସ. ବି . (ପ୍ର+ଶଂସ୍ ଧାତୁ+କର୍ମ. ଯ)—
Praśasya   ୧ । ପ୍ରଶଂସନୀୟ—1. Praiseworthy;
(ପ୍ରଶସ୍ୟା—ସ୍ତ୍ରୀ)   commendable.
୨ । ଶ୍ରେଷ୍ଠ, ଉତ୍ତମ—2. Excellent; good.

ପ୍ରଶାଖ—ସ. ବିଣ. (ପ୍ର+ଶାଖା)—
Praśākha   ୧ । ବହୁ ଶାଖାଯୁକ୍ତ—1. Having many branches.
୨ । ପ୍ରସାରିତ ଶାଖାବିଶିଷ୍ଟ—
2 Having spreading branches.
୩ । ହାତ ଗୋଡ଼ ଯୁକ୍ତ ହେବା ଅବସ୍ଥା ଯୁକ୍ତ (ଭ୍ରୂଣ)—
2. (the embryo) Being in the stage of the formation of the hands and feet (Apte).

ପ୍ରଶାଖା—ସ. ବି (ପ୍ର+ଶାଖା)—୧ । ଛୋଟ ଡାଳ—
Praśākhā   1. Twig; small branches.
(ପ୍ରଶାଖିକା—ଅନ୍ୟରୂପ)   ୨ । ବଡ଼ ଡାଳରୁ ବାହାରିଥିବା ଛୋଟ ଡାଳ—2. Offshoot of a branch.

ପ୍ରଶାନ୍ତ—ସ. ବି. (ପ୍ର+ଶମ୍ ଧାତୁ+କର୍ତ୍ତୃ. ତ)—
Praśānta   1. Calm; smooth; sedate.
(ପ୍ରଶାନ୍ତା—ସ୍ତ୍ରୀ)   (ପ୍ରଶାନ୍ତି—ବି)   ୨ । ଶମତାପ୍ରାପ୍ତ—
2. Pacified; tranquilised.
୩ । ଅବ୍ୟାକୁଳ—3. Unruffled; serene.
୪ । ନିବୃତ୍ତ, ଶାନ୍ତ—4 Ceased.
୫ । ସମାପ୍ତ—5. Ended.
୬ । ମୁକ୍ତ—6. Relieved; liberated.
୭ । ଅଚଳ—7. Immovable.
୮ । ସ୍ଥିର, ଅଚଳ—8 Still; motionless (Apte).
୯ । ବଶୀଭୂତ—
9. Tamed; subdued; quelled (Apte).
୧୦ । ମୃତ—10. Dead; deceased (Apte).
ଦେ. ବି.—୮ । କୌଣସି ବ୍ୟକ୍ତିଙ୍କୁ ଦିଆଯିବା ନାମ—
8. The name given to a certain male person.

ପ୍ରଶାନ୍ତଚିତ୍ତ—ସ. ବି.—(କର୍ମଧା) ଅବ୍ୟାକୁଳ ଚିତ୍ତ—
Praśāntachitta   Tranquil mind.
(ପ୍ରଶାନ୍ତଚିତ୍ତା—ସ୍ତ୍ରୀ)   ସ. ବିଣ. ପୁଂ (ବହୁବ୍ରୀହି)—ଯାହାର ଚିତ୍ତ (ପ୍ରଶାନ୍ତଚେତାଃ, ପ୍ରଶାନ୍ତମନାଃ, ପ୍ରଶାନ୍ତହୃଦୟ-ଅନ୍ୟରୂପ) ଅବ୍ୟାକୁଳ
Tranquil in mind; at ease.

**ପ୍ରଶାନ୍ତଚେଷ୍ଟ**—ସଂ. ବିଣ. ପୁଂ (ବହୁବ୍ରୀହି, ପ୍ରଶାନ୍ତ+ଚେଷ୍ଟା)—
Prasāntacheshta ୧ । ନିଶ୍ଚେଷ୍ଟ; ସ୍ଥିର
(ପ୍ରଶାନ୍ତଚେଷ୍ଟା—ସ୍ତ୍ରୀ) 1 Calm; motionless.
୨ । କାର୍ଯ୍ୟରୁ କ୍ଷାନ୍ତ—
2. Resting; ceased to work (Apte).

**ପ୍ରଶାନ୍ତବାଧ**—ସଂ. ବିଣ. (ବହୁବ୍ରୀହି, ପ୍ରଶାନ୍ତ+ବାଧା)—ଯାହାର ସମସ୍ତ
Prasāntabādha ବାଧା ଦୂରୀକୃତ ହୋଇଅଛି—
Having all obstacles removed (Apte).

**ପ୍ରଶାନ୍ତ ମହାସାଗର**—ଦେ. ବି. (ନାମ)—ଆସିଆ ମହାଦେଶର ପୂର୍ବ ଓ
Prasānta mahāsāgara ଆମେରିକାର ପଶ୍ଚିମରେ ଅବସ୍ଥିତ
ପ୍ରଶାନ୍ତ ମହାସାଗବ ମହାସମୁଦ୍ରବିଶେଷ—
**प्रशान्त महासागर** The Pacific ocean.
[ଦ୍ର—ଏହାର ଉପରିଭାଗ ଝଡ଼ ଆଦି ଦ୍ୱାରା ବିଶେଷ ଆନ୍ଦୋଳିତ ଓ ତରଙ୍ଗାୟିତ ହୁଏ ନାହିଁ ବୋଲି ଏହାର ଏପରି ନାମ ହୋଇ ଅଛି ।]

**ପ୍ରଶାନ୍ତାତ୍ମା**—ସଂ. ବିଣ. (ବହୁବ୍ରୀହି; ପ୍ରଶାନ୍ତ+ଆତ୍ମା)—ଯାହାର ହୃଦୟ
Prasāntātmā କାମ କ୍ରୋଧ ବା ଦୁଃଖ ଶୋକ ଆଦି ଦ୍ୱାରା ବିଚଳିତ ହୁଏ ନାହିଁ—1. Having peace of mind; tranquil.
୨ । ସ୍ଥିରମନାଃ—2. Having peace mind; composed in mind.

**ପ୍ରଶାନ୍ତି**—ସଂ. ବି. (ପ୍ର+ଶାନ୍ତି)—୧ । ପୂର୍ଣ୍ଣ ଶାନ୍ତି—
Prasānti 1. Absolute peace.
୨ । ସ୍ଥିରତା—2. Calmness; tranquility.

**ପ୍ରଶାସନ**—ସଂ. ବି. (ପ୍ର+ଶାସନ)—୧ । ରାଜବିଧି; ଆଇନ—
Prasāsana 1 Ordinance, law; regulation.
(ପ୍ରଶାସକ, ପ୍ରଶାସ୍ତା, ପ୍ରଶାସିତ—ବିଣ)
୨ । ପ୍ରକୃଷ୍ଟ ଶାସନ—
2. Excellent administration.
୩ । ରାଜ୍ୟ ଶାସନ—3. Government (Apte).
୪ । କର୍ତ୍ତବ୍ୟ ସମ୍ବନ୍ଧେ ଶିକ୍ଷା ଦାନ (ହି. ଶବ୍ଦସାଗର)—
4. Enjoining (Apte).

**ପ୍ରଶାସିତ**—ସଂ. ବିଣ. (ପ୍ର+ଶାସିତ)—୧ । ଉତ୍ତମରୂପେ ଶାସିତ—
Prasāsita 1 Well governed.
୨ । ବ୍ୟବସ୍ଥା ଦ୍ୱାରା ପ୍ରକାଶିତ—
2. Promulgated; ordinated.
୩ । ବିଧିବଦ୍ଧ—3. Enacted.

**ପ୍ରଶାସିତା**—ସଂ. ବି ଓ ବିଣ. ପୁଂ—(ପ୍ର+ଶାସ୍ ଧାତୁ=ଶାସନ
Prasāsitā କରିବା+କର୍ତ୍ତୃ. ତ)—୧ । ଶାସନକର୍ତ୍ତା—
(ପ୍ରଶାସ୍ତା—ଅନ୍ୟରୂପ) 1. Governor; ruler.
ପ୍ରଶାସିତ୍ରୀ / ପ୍ରଶାସ୍ତ୍ରୀ } ସ୍ତ୍ରୀ ୨ । ମିତ୍ର (ହି. ଶ)—2. Friend.
୩ । ପରିଚାଳକ—
3. Superintendent; guide; conductor; director.
୪ । ଋତ୍ୱିକ୍, ପୁରୋହିତ—Priest.
୫ । ରାଜା—5. King (Apte).
୬ । ପରାମର୍ଶଦାତା—6. Adviser (Apte).

**ପ୍ରଶିଷ୍ୟ**—ସଂ. ବି—(ପ୍ର+ଶିଷ୍ୟ)—ଶିଷ୍ୟର ଶିଷ୍ୟ, ନାତିଶିଷ୍ୟ—
Prasishya A disciple of one's disciple; a pupil of one's pupil.

**ପ୍ରଶ୍ନ**—ସଂ. ବି—(ପ୍ରଚ୍ଛ୍ ଧାତୁ=ପଚାରିବା+ଭାବ. ନ)—
Prasna ୧ । ପଚାରିବା, ଜିଜ୍ଞାସା; କୌଣସି ବିଷୟ ଜାଣିବାକୁ ଇଚ୍ଛୁକ ବ୍ୟକ୍ତିର ଅନ୍ୟ ବ୍ୟକ୍ତିକୁ ପଚାରିବା ବାକ୍ୟ—
1. Question; query, interpellation; interogation.
୨ । ଅଭିଯୋଗ—2 Complaint.
୩ । ମକଦ୍ଦମାରେ ପୂର୍ବପକ୍ଷ, ସମାଧାନ ନିମିତ୍ତ ଉପସ୍ଥାପିତ ବିଷୟ—
3. A point at issue; a problem put up for solution; the subject of controversy.
୪ । ଉପନିଷଦ୍ ବିଶେଷ—
4. Name of a Bedānta work.
[ଦ୍ର—ଏଥିରେ ୬ଟି ପ୍ରଶ୍ନ ଓ ୬ଟି ପ୍ରଶ୍ନର ୬ଟି ଉତ୍ତର ଅଛି; ଏହା ଅଥର୍ବବେଦୀୟ । ଏଥିରେ ୬୨୬ଟି ମନ୍ତ୍ର ଅଛି । ଏଥିରେ ପ୍ରଜାପତିଙ୍କଠାରୁ ସୃଷ୍ଟିର ଉତ୍ପତ୍ତି ଓ ଅଦ୍ୱୈତମତ ଅଳଙ୍କାରଦ୍ୱାରା ନିରୂପିତ ହୋଇଅଛି—ହି. ଶ ।]
୫ । ଭବିଷ୍ୟତ୍ ଜାଣିବା ପାଇଁ କରାଯିବା ଜିଜ୍ଞାସା—
5. A question about the future; inquiry about the future (Apte).
୬ । ପରୀକ୍ଷାର୍ଥୀମାନଙ୍କୁ ସମାଧାନାର୍ଥ ଦିଆଯିବା ବିଷୟ—
6. Question put to an examinee.
୭ । ମକଦ୍ଦମାର ତଦନ୍ତ—
7. A judicial inquiry or investigation (Apte).
୮ । ଟୋକେଇ ବୁଣା କାମ—
8 Basket work (Apte).
ଦେ. ବି—(କଚେରୀ)—୧ । ସୱାଲ; ଏକ ପକ୍ଷର ଓକିଲ
**প্রশ্ন, সবাল** ଅପର ପକ୍ଷର ସାକ୍ଷୀକୁ ଅଦାଲତରେ ଯେଉଁ ବିଷୟମାନ
**सवाल** ପଚାରନ୍ତି—1. Questions put in a court by a pleader to a witness.
[ଦ୍ର—ଏହା ୩ ପ୍ରକାର—ମୁଖ୍ୟ ପ୍ରଶ୍ନ—Examination-in-chief; ଜେରା ବା କୂଟ ପ୍ରଶ୍ନ—Cross-examination, ପୁନଃ ପ୍ରଶ୍ନ—Re-examination.]
୨ । ଏକ ପକ୍ଷ ଅପର ପକ୍ଷକୁ ମକଦ୍ଦମା ସମ୍ବନ୍ଧରେ କୌଣସି ସମ୍ବାଦ ଜାଣିବା ପାଇଁ ଯେଉଁ ଲିଖିତ ଜିଜ୍ଞାସା କରେ—
. Interrogatory.

**ପ୍ରଶ୍ନ କରିବା**—ଦେ. କ୍ରି—୧ । ପଚାରିବା—
Prasna karibā 1. To ask.
**প্রশ্নকরা** ୨ । ଜ୍ୟୋତିଷ ଆଦି ଶାସ୍ତ୍ରର ଗଣନା ଦ୍ୱାରା ଭବିଷ୍ୟତ
**प्रश्नकरना** ସମ୍ବନ୍ଧେ କୌଣସି ବିଷୟ ଜାଣିବାପାଇଁ ଜ୍ୟୋତିଷଙ୍କୁ ପଚାରିବା—2. To put a question to an

astrologer regarding the future for solution according to astrological calculations.

୩ । ପ୍ରଶ୍ନକର୍ତ୍ତାଙ୍କ ଦ୍ଵାରା କଥିତ କୌଣସି ଫୁଲ, ଫଳ, ଜୀବ, ନାମ ଆଦିକୁ ମୂଳ କରି ବିଶିଷ୍ଟ ଗଣନାକ୍ରମେ କୌଣସି ଭବିଷ୍ୟତ୍ ଘଟଣା ବିଷୟ କହିବା—3 To foretell some future event by some fortuitous mode of calculation.

ପ୍ରଶ୍ନକର୍ତ୍ତା—ସଂ. ବିଣ. ଓ ବି.—୧ । ଜିଜ୍ଞାସୁ—
Praśna karttā 1. One who asks questions.
(ପ୍ରଶ୍ନକର୍ତ୍ତ୍ରୀ—ସ୍ତ୍ରୀ) ୨ । ପରୀକ୍ଷାର୍ଥୀମାନଙ୍କ ଉତ୍ତର ପ୍ରତୀକ୍ଷାରେ ଯେଉଁ ପରୀକ୍ଷକ ପ୍ରଶ୍ନମାନ ଲିପିବଦ୍ଧ କରନ୍ତି—2. Examiner, a person who puts question to examinees; question-setter

ପ୍ରଶ୍ନକାଗଜ—ଦେ. ବି.—ଯେଉଁ କାଗଜରେ ପରୀକ୍ଷାର୍ଥୀଙ୍କ ଠାରୁ ଉତ୍ତର
Praśna kāgaja ମିଳିବା ନିମନ୍ତେ ନିର୍ଦ୍ଧାରିତ ପ୍ରଶ୍ନମାନ ଲେଖା
(ପ୍ରଶ୍ନପତ୍ର—ଅନ୍ୟରୂପ) ଥାଏ—Question papers for
প্রশ্ন কাগজ प्रश्न कागज examinees

ପ୍ରଶ୍ନଚିହ୍ନ—ଦେ. ବି.—ଯେଉଁ ଚିହ୍ନ ପ୍ରଶ୍ନସୂଚକ ବାକ୍ୟ ପରେ ବ୍ୟବହୃତ
Praśna chihna ହୁଏ (ଏହିପରି ଚିହ୍ନ—?)—
(ପ୍ରଶ୍ନସୂଚକ ଚିହ୍ନ—ଅନ୍ୟରୂପ) Note of interrogation; query mark.
প্রশ্ন চিহ্ন प्रश्नचिह्न

ପ୍ରଶ୍ନ ଦୂତୀ—ସଂ. ବି. ସ୍ତ୍ରୀ (ବହୁବ୍ରୀହି; ପ୍ରଶ୍ନ+ଦୂତୀ=କ୍ରୀଡ଼ନ;)—ପ୍ରଶ୍ନ
Praśna dūtī ଛଳରେ ଯହିଁରେ କ୍ରୀଡ଼ା କରାଯାଏ)—ପ୍ରହେଳିକା-ନାମ୍ନୀ କଥା—A riddle, an enigma.

ପ୍ରଶ୍ନବାଚକ—ସଂ. ବିଣ. (ଉପପଦ ତତ୍ପୁରୁଷ; ପ୍ରଶ୍ନ+ବାଚ୍ ଧାତୁ+କର୍ତ୍ତୃ.
Praśna bāchaka ଅକ)—୧ । ପ୍ରଶ୍ନସମ୍ବନ୍ଧୀୟ—
1. Relating to questions.
(ପ୍ରଶ୍ନବୋଧକ; ପ୍ରଶ୍ନାତ୍ମକ, ପ୍ରଶ୍ନସୂଚକ—ଅନ୍ୟରୂପ)
୨ । ଯେଉଁ ବାକ୍ୟ ପ୍ରଶ୍ନର ସୂଚନା କରେ—
2. Interrogation.

ପ୍ରଶ୍ନ ବିବାକ—ସଂ. ବି.—(ପ୍ରଶ୍ନ+ବି+ବଚ୍ ଧାତୁ+କର୍ତ୍ତୃ. ଅ)—
Praśna bibāka ୧ । ପ୍ରଶ୍ନୋତ୍ତରଦାୟକ ଜ୍ୟୋତିର୍ବିଦ୍ ବିଶେଷ—
1 An astrologer who can solve questions regarding one's future.
୨ । ବିବାଦରେ ମଧ୍ୟସ୍ଥ ବ୍ୟକ୍ତି, ପଞ୍ଚ, ସରପଞ୍ଚ—
2. An arbitrator; an umpire (Apte)

ପ୍ରଶ୍ନ ସମାଧାନ—ସଂ. ବି. (୬ଷ୍ଠୀ ତତ୍; ପ୍ରଶ୍ନ+ସମାଧାନ)—ପ୍ରଶ୍ନର ଉଚିତ
Praśna samādhāna ଉତ୍ତର ଦେବା—Solution of a
(ପ୍ରଶ୍ନସାଧନ—ଅନ୍ୟରୂପ) problem; answering to a question.

ପ୍ରଶ୍ନୋତ୍ତର—ସଂ. ବି.—୧ । (ଦ୍ଵନ୍ଦ୍ଵ; ପ୍ରଶ୍ନ+ଉତ୍ତର)—କୌଣସି ପ୍ରଶ୍ନ ଓ
Praśnottara ତହିଁର ଉତ୍ତର—Question and answer, catechism.
୨ । (୬ଷ୍ଠୀ ତତ୍) ପ୍ରଶ୍ନର ଉତ୍ତର ଦେବା—
Answers given to questions.

ପ୍ରଶ୍ଵା—ସଂ. ବି.—ପୁନର୍ବସୁ ନକ୍ଷତ୍ର ପୁଞ୍ଜର ଉଜ୍ଜ୍ୱଳତମ ତାରା ଏହାର ଅନ୍ୟ
Praśwā ନାମ ଲୁବ୍ଧକ (ନକ୍ଷତ୍ର ତଳେ ନୋଟ ଦେଖ)—
The Dogstar; sirius; Alpha Canis Majoris.

ପ୍ରଶ୍ଵାସ—ସଂ. ବି. (ପ୍ର=ପ୍ରକୃଷ୍ଟ, ସମ୍ୟକ୍+ଶ୍ଵାସ)—୧ । ନାକ ବାଟେ
Praśwāsa ପଦାକୁ ଆସିବା ବାୟୁ, ନାସିକାଗତ ବାୟୁର ନିର୍ଗମ—
(ନିଃଶ୍ଵାସ—ବିପରୀତ) 1. Expiration; exhalation.
[ଦ୍ର—ଏହା 'ଶ୍ଵାସ' ଓ 'ନିଶ୍ଵାସ' ଶବ୍ଦ ପରେ ସହଚରରୂପେ ବ୍ୟବହୃତ ହୁଏ ।]
୨ । ନାକ ବାଟେ ବହିର୍ଗତ ଶ୍ଵାସ (ହି. ଶ.)—
2. Breath exhaled from the nostrils.
୩ । ନାକ ବାଟେ ଶ୍ଵାସ ବାୟୁର ଗମନାଗମନ—
3. Breath; respiration (Apte).

ପ୍ରଶ୍ର(ସ୍ର)ବଣ—ସଂ. ବି. (ପ୍ର+ଶ୍ରୁ ଧାତୁ=ସ୍ରବିବା+ଭାବ. ଅନ)—
Praśra(sra)baṇa ୧ । ଝରଣା, ନିର୍ଝର—
(ପ୍ରଶ୍ର(ସ୍ର)ବତ—ବିଣ) 1. Spring; cascade; water-fall.
୨ । କ୍ଷରଣ; ଝରିବା—2. Oozing; dripping.
୩ । ମାଲ୍ୟବାନ୍ ପର୍ବତ—3. A range of hills in the Western ghats of India.

ପ୍ରଶ୍ରୟ—ସଂ. ବି. (ପ୍ର+ଶ୍ରି ଧାତୁ=ସେବା କରିବା, ଆଶ୍ରୟ କରିବା+ଭାବ.ଅ)-
Praśraya ୧ । ସମ୍ମାନସୂଚକ ଭଙ୍ଗୀ—
(ପ୍ରଶ୍ରୟଣ—ଅନ୍ୟରୂପ) 1. Respectful demeanour.
୨ । ଗେଲ, ଆଦର; ଯତ୍ନ—
2. Fondness, solicitude
୩ । ପ୍ରଣୟ; ସ୍ନେହ—
3. Affection; attachment; love (Apte).
୪ । ବିନୟ—4 Civility; courtesy; politeness.
୫ । ସ୍ନେହଯୁକ୍ତ ସମ୍ମାନ—5 Regard; esteem.
୬ । ବିଶ୍ଵାସ, ଆସ୍ଥା—6. Trust, reliance; confidence.
୭ । (+କର୍ମ. ଅ) ଆଶ୍ରୟ; ଠେକ (ହି. ଶ)—7. Prop.
୮ । ଆଶ୍ରୟ ସ୍ଥାନ (ହି. ଶବ୍ଦସାଗର)—
8. Place of refuge; shelter.

ପ୍ରଶ୍ରୟ ଦେବା—ଦେ. କ୍ରି.—ଗେହ୍ଲା କରିବା; ମୁହଁ ଦେବା, ଆଦର
Praśraya debā କରିବା—To give indulgence; to
প্রশ্রয় দেওয়া show an undue regard; to fondle.
प्रश्रय देना

ପ୍ରଶ୍ରୟ ପାଇବା—ଦେ. କ୍ରି.—ଅତ୍ୟଧିକ ଆଦର ପାଇବା; ଗେହ୍ଲାରେ
Praśraya pāibā ବଢ଼ିବା—To be treated with
প্রশ্রয় পাওয়া indulgence; to be fondled excessively.
प्रश्रय पाना

ପ୍ରଶ୍ରିତ—ସଂ. ବିଣ—(ପ୍ର+ଶ୍ରି ଧାତୁ=ସେବା କରିବା+କର୍ମ. ତ)—
Praśrita ୧ । ଆଦୃତ—1. Respected; esteemed.
(ପ୍ରଶ୍ରିତା—ସ୍ତ୍ରୀ) ୨ । ସ୍ନେହପ୍ରାପ୍ତ—2. Loved.
ପ୍ରଶ୍ରୟୀ } ଅନ୍ୟରୂପ
ପ୍ରଶ୍ରୟିତ }
୩ । ଗେଲବସର; ଗେହ୍ଲା; ମୁହଁ ପାଇଥିବା—
3. Fondled, treated with indulgence

୪ । (କର୍ତ୍ତୃ. ତ)—ବିନୀତ—4. Humble; loyal.
୫ । ଶିଷ୍ଟ, ଭଦ୍ର—
5, Civil; polite; courteous (Apte).

**ପ୍ରଶ୍ଳିଷ୍ଟ**—ସ. ବିଣ. ( ପ୍ର + ଶ୍ଳିଷ୍ ଧାତୁ + କର୍ମ. ତ )—
Praślishṭa ୧ । ଗୁନ୍ଥା ହୋଇଥିବା; ବଳା ଯାଇଥିବା—
(ପ୍ରଶ୍ଳେଷ—ବି) 1 Twisted; entwined (M. W)
୨ । ଯୁକ୍ତିଯୁକ୍ତ—
2. Well argued; well reasoned (Apte).
୩ । ସନ୍ଧିପ୍ରାପ୍ତ ( ହି. ଶବ୍ଦସାଗର ) —
3. Joined together.
ସ. ବି. ( ବ୍ୟାକରଣ )—୧ । ସ୍ୱର ସନ୍ଧି—
1. Grammatical agglutination of two vowels, euphonic coalition or combination of vowels (Apte).
୨ । ସ୍ୱର ସନ୍ଧି ଦ୍ୱାରା ଜାତ ସ୍ୱର—
2. Vowel formed after agglutination.

**ପ୍ରଶ୍ଳେଷ**—ସ. ବି. ( ପ୍ର+ଶ୍ଳିଷ୍ ଧାତୁ+ଭାବ. ଅ )—
Praślesha ୧ । ସଂଯୁକ୍ତ—1. Close contact.
୨ । ସ୍ୱରସନ୍ଧି—
2. Euphonic combination of vowels

**ପ୍ରଷ୍ଟ**—ସ. ବି—୧ । ତିନୋଟି ଘୋଡ଼ା ବା ବଳଦ ଲାଗିଥିବା ଗାଡ଼ିରେ
Prashṭa ଆଗରେ ଲାଗିଥିବା ଘୋଡ଼ା ବା ବଳଦ (ହି. ଶ)—
1. A horse or bullock yoked to a cart in front of two side horses.
୨ । ତିପାଇ ( ହି. ଶବ୍ଦସାଗର )—
2. A teapoy; tripod
ସ. ବିଣ—ପାର୍ଶ୍ୱସ୍ଥ (ହି' ଶ)—Lateral.

**ପ୍ରଷ୍ଟବ୍ୟ**—ସ. ବିଣ. (ପ୍ରଚ୍ଛ୍ ଧାତୁ=ପଚାରିବା + କର୍ମ. ତବ୍ୟ)—
Prashṭabya ଜିଜ୍ଞାସ୍ୟ; ପଚାରିବା ଯୋଗ୍ୟ—Questionable; fit to be asked.

**ପ୍ରଷ୍ଟା** —ସ. ବିଣ. ପୁଂ. (ପ୍ରଚ୍ଛ୍ ଧାତୁ+କର୍ତ୍ତୃ. ତୃ, ୧ମା. ୧ବ)—
Prashṭā ପ୍ରଶ୍ନକର୍ତ୍ତା; ଜିଜ୍ଞାସୁ—Questioning;
(ପ୍ରଷ୍ଟ୍ରୀ—ସ୍ତ୍ରୀ) inquiring.

**ପ୍ରଷ୍ଠ**—ସ. ବିଣ—୧ । ଅଗ୍ରଗାମୀ, ଅଗୁଆ ( ହି· ଶ )—
Prashṭha 1. Standing or being in front
୨ । ପ୍ରଧାନ—2. Chief (Apte).
ସ. ବି—ନେତା—A leader (Apte).

**ପ୍ରଷ୍ଠବାହ୍**—ସ. ବି. ପୁଂ—ହଳରେ ମଣା ହେଉଥିବା ବଳଦ—
Prashṭhabāh A young bull being trained for the plough (Apte).

**ପ୍ରଷ୍ଠୌହୀ**—ସ. ବି. ସ୍ତ୍ରୀ—ପୋଢ଼ୁଅଁ ଗାଈ; ପହିଲି ବିଆଣୀ ଗାଈ—
Prashṭhyauhi A cow for the first time with a calf (Apte).

**ପ୍ରସ୍** (ଧାତୁ)—୧ । ବିସ୍ତାର କରିବା—
Pras (root) 1. To spread out.
୨ । ପ୍ରସବ କରିବା—2. To bring forth young; to give birth to

**ପ୍ରସଂଖ୍ୟା**—ସ. ବି. ( ପ୍ର+ସଂଖ୍ୟା )—
Prasaṁkhyā ୧ । ସବୁ ସଂଖ୍ୟାର ଯୋଗଫଳ (ହି. ଶ)—
1. Total number; sum total.
୨ । ଚିନ୍ତା—2. Reflection (Apte).

**ପ୍ରସଂଖ୍ୟାନ**—ସଂ. ବି. (ପ୍ର + ସମ୍ + ଖ୍ୟା ଧାତୁ=କହିବା+ଭାବ. ଅନ)-
Prasaṁkhyāna ୧ । ଋଣାଦିର ପରିଶୋଧ—
1. Payment; liquidation (Apte).
୨ । ଗଣନ—2. Enumeration (Apte).
୩ । ଆତ୍ମାନୁସନ୍ଧାନ—
3. Self-examination, reflection.
୪ । ଧ୍ୟାନ—4. Meditation.
୫ । ସମ୍ୟକ୍ ଜ୍ଞାନ— 5. Perfect knowledge.
୬ । ପୂର୍ବ ଘଟଣାମାନଙ୍କ ସମ୍ବନ୍ଧେ ମନରେ ଆଲୋଚନା—
6. Retrospection.
୭ । ପ୍ରସିଦ୍ଧି, ଖ୍ୟାତି—
7. Fame; reputation ( Apte ).
ସଂ. ବିଣ — ୧ । ସମ୍ୟକ୍‌ଜ୍ଞାନଯୁକ୍ତ—
1. Having deep knowledge,
୨ । ଅସଂଖ୍ୟ—2. Innumerable.

**ପ୍ରସଂଘ**—ସଂ. ବି— (ପ୍ର + ସଂଘ)—ଭିଡ଼; ବହୁଜନ ସମାଗମ—
Prasaṁgha A great multitude (Apte).

**ପ୍ରସକ୍ତ**—ସ. ବିଣ —(ପ୍ର + ସଂଜ୍ ଧାତୁ=ଲାଗିଯିବା + କର୍ତ୍ତୃ. ତ)—
Prasakta ୧ । ଅବିରତ, ଅନବରତ; ନିତ୍ୟ—
1. Constant; eternal; everlasting; incessant; uninterrupted.
୨ । ପ୍ରାପ୍ତ—2. Obtained; gained.
୩ । ଅନୁରକ୍ତ; ଆସକ୍ତ—3. Attached to; enamoured of; devoted to; fond of.
୪ । ନିଯୁକ୍ତ; ରତ—
4. Engaged in, employed.
୫ । ସ୍ୱଚ୍ଛ; ନିର୍ମଳ—
5. Clear; transparent; pellucid.
୬ । ସଂସୃଷ୍ଟ, ସଲଗ୍ନ; ସଂଶ୍ଳିଷ୍ଟ; ଲାଗିଯାଇଥିବା—
6. Connected with; sticking to; adherering to.
୭ । ପ୍ରସ୍ତାବିତ—7. Proposed.
୮ । ବ୍ୟବହୃତ—8. Applied.
୯ । ବିସ୍ତୃତ—
9 Expanded, spread.
୧୦ । ଉତ୍ସୁକ—10. Zealous.
୧୧ । ସନ୍ନିକଟବର୍ତ୍ତୀ; ଲଗାଲଗି—
11. Contiguous, near.

୧୨ । ପ୍ରାପ୍ତ—
12- Got; obtained ( Apte ).
୧୩ । ବିକଶିତ—13. Expanded, opened (Apte).
ସ. କ୍ରି. ବିଣ —(ସ. ପ୍ରସକ୍ତଂ)—ଅବିରତ—
Incessantly, continuously (Apte).

ପ୍ରସକ୍ତି—ସ. ବି—(ପ୍ର+ସଂଜ୍ ଧାତୁ+ଭାବ. ତି)—୧ । ଅନୁରକ୍ତି,
Prasakti ଆସକ୍ତି—1. Attachment; devotion.
୨ । ପ୍ରଣୟ; ପ୍ରେମ—2 Love; affection.
୩ । ଅନୁମିତି—3. Inference; deduction, conclusion (Apte)
୪ । ପ୍ରସଙ୍ଗ—4 A topic or subject of discourse or controversy.
୫ । ମିଳନ, ସଂଯୋଗ—5. Connection, union; intercourse; association.
୬ । ଉତ୍ସାହ, ଅଧ୍ୟବସାୟ—6 Perseverance, energy (Apte).
୭ । ଉପାର୍ଜନ—7. Acquisition; earning.
୮ । ବ୍ୟାପ୍ତି—1 Spreading; expansion.
୯ । ନିଯୁକ୍ତି, ପ୍ରବୃତ୍ତି—9. Engagement; activity; addiction to; occupation.
୧୦ । ଆପତ୍ତି—10. Objection.
୧୧ । ପ୍ରସନ୍ନତା—11 Favourableness.
୧୨ । ଲାଗିଯାଇ ଥିବା; ସଂଶ୍ଳେଷ—12. Adherence
୧୩ । ପ୍ରାପ୍ତି—13 Acquisition; gain (Apte).

ପ୍ରସଙ୍ଗ—ସଂ. ବି—(ପ୍ର+ସଂଜ୍ ଧାତୁ=ଲାଗିବା+ଭାବ. ଅ)—
Prasanga ୧ । ସମ୍ପର୍କ, ସମ୍ବନ୍ଧ, ସଙ୍ଗତି—1. Connection; association.
(ପ୍ରସଞ୍ଜନ—ଶିଜନ୍ତ ବିଷୟରୂପ)
୨ । ପ୍ରସ୍ତାବ—2. Proposal.
୩ । ବିଚାରାଧୀନ ବିଷୟ—
3. Subject; topic, subject-matter.
୪ । ଆସକ୍ତି; ପ୍ରସକ୍ତି—
4. Attachment; addiction.
୫ । ଅତ୍ୟନୁରାଗ—
5 Devotedness, excessive fondness.
୬ । ଅନ୍ୱିତ ବାକ୍ୟ ବା ପଦ—
6. Connected language, style
୭ । କୌଣସି ବ୍ୟକ୍ତି ବା ବିଷୟ ସମ୍ବନ୍ଧରେ ଉଲ୍ଲେଖ—
7 Mention.
୮ । ଅନ୍ୱିତ ତର୍କ ବା ଯୁକ୍ତି—
8. Connected reasoning; argument.
୯ । ବ୍ୟାପ୍ତି—9. Diffusion; spreading.
୧୦ । ଗୁପ୍ତ ବିଷୟର ପ୍ରକାଶ—
10. Divulging a secret.
୧୧ । ନାଟକର ଅବାନ୍ତର ଘଟନା—
11. A subsidiary incident in a drama.
୧୨ । ସୁବିଧା; ସୁଯୋଗ—
12. Opportunity; conjuncture.
୧୩ । ଆପତ୍ତି—13. Objection.
୧୪ । ମୈଥୁନ; ସଙ୍ଗମ—
14. Copulation; coition
୧୫ । ଉଲ୍ଲେଖ; ଉତ୍ଥାପନ—
15 Introduction, reference.
୧୬ । ଅବୈଧ ସଙ୍ଗମ—
16 Illicit intercourse ( Apte ).
୧୭ । ଘଟଣା—
17. Event; incident; occurrence (Apte).
୧୮ । ପିତା ଓ ମାତାଙ୍କର ନାମୋଲ୍ଲେଖ—
18 Mention of parents (Apte).
୧୯ । ଅବିଚ୍ଛେଦ୍ୟ ସମ୍ପର୍କ—
19 Inseparable connection (Apte)
୨୦ । ଅବତାରଣା—20 Introduction (Apte)

ପ୍ରସଙ୍ଗ କରିବା—ଦେ. କ୍ରି.—(କୌଣସି ବିଷୟ) ଉଲ୍ଲେଖ କରିବା—
Prasanga kraibā To mention (a matter)
প্রসঙ্গ করা ଠିକ୍ ସଇବା ଅବସର, କଲେ ତୁ ପ୍ରସଙ୍ଗ ମୋର।
प्रसङ्ग करना କବିସୂର୍ଯ୍ୟ. କଣୋଇ ୦୫।

ପ୍ରସଙ୍ଗକ୍ରମେ—ଦେ. କ୍ରି. ବିଣ (ସ. ପ୍ରସଙ୍ଗକ୍ରମେଣ)—କୌଣସି କଥା
Prasanga krame ପଡ଼ୁ ପଡ଼ୁ, କୌଣସି ବିଷୟର ଉଲ୍ଲେଖ
প্রসঙ্গক্রমে ହେବା ସମ୍ପର୍କରେ—In the course of dealing
प्रसङ्गक्रमे with a subject; in connection with a topic, by the bye, incidentally.
(ଯଥା—ମୁଁ ଭାଷାକୋଷରେ ଶବ୍ଦମାନଙ୍କ ଅର୍ଥ ସଂଗ୍ରହ କରୁ ଅଛି । ପ୍ରସଙ୍ଗକ୍ରମେ ଶବ୍ଦମାନଙ୍କ ସମ୍ବନ୍ଧେ ବୈଜ୍ଞାନିକ ଓ ଐତିହାସିକ ଟିପ୍ପଣୀ ଦେଇଅଛି ।)

ପ୍ରସଙ୍ଗତଃ—ସ. କ୍ରି ବିଣ. (ପ୍ରସଙ୍ଗ+ତସ୍)—ପ୍ରସଙ୍ଗକ୍ରମେ—
Prasangath Incidentally.
(ପ୍ରସଙ୍ଗରୁ, ପ୍ରସଙ୍ଗରେ—ଅନ୍ୟରୂପ)

ପ୍ରସଙ୍ଗ ନିବାରଣ—ସ. ବି. (୬ଷ୍ଠୀ ତତ୍, ପ୍ରସଙ୍ଗ+ନିବାରଣ)—
Prasanga nibārana ଭବିଷ୍ୟତରେ ଏହିପରି ଘଟନା ନ ଘଟିବା ବିଷୟରେ କଟକଣା—
ପ୍ରସଙ୍ଗ ବାରଣ } ଅନ୍ୟରୂପ
ପ୍ରସଙ୍ଗ ନିରାକରଣ
Prevention or obviation of similar contingencies in future.

ପ୍ରସଙ୍ଗବଶାତ୍—ସ. କ୍ରି. ବିଣ.—ଘଟଣାକ୍ରମେ ବା ପ୍ରସଙ୍ଗକ୍ରମେ—
Prasangabasāt Incidentally; in the cause of events or of conversation.
(ପ୍ରସଙ୍ଗବଶତଃ—ଅନ୍ୟରୂପ)
(ପ୍ରସଙ୍ଗବଶରୁ—ଦେଶଜରୂପ)

ପ୍ରସଙ୍ଗ ବିଧ୍ୱଂସ—ସ. ବି. (୬ଷ୍ଠୀ ତତ୍; ପ୍ରସଙ୍ଗ+ବିଧ୍ୱଂସ)—ମାନମୋଚନର
Prasanga bidhwamsa ୬ଟି ନିର୍ଦ୍ଦିଷ୍ଟ ଉପାୟ ମଧ୍ୟରୁ
(ପ୍ରସଙ୍ଗବିଭ୍ରଂଶ—ଅନ୍ୟରୂପ) ଗୋଟିଏ; ମିଥ୍ୟା ଭୟ ଦେଖାଇ ମାନିନୀର ମନରେ ଭୟ ଉପୁଜାଇ ତାହାର ଅଭିମାନକୁ ଛଡ଼ାଇବା (ହି. ଶ.)—Removing the displeasure from mind of a sullen mistress by infusing in her a false fear.

**ପ୍ରସଙ୍ଗ ବିମ୍ବବୃତ୍ତି**—ସଂ ବି. (୬ଷ୍ଠୀ ତତ୍, ପ୍ରସଙ୍ଗ+ବିମ୍ବବୃତ୍ତି)—
Prasaṅga bimbrutti ଭବିଷ୍ୟତରେ କୌଣସି ଘଟନା ପୁଣି (ପ୍ରସଙ୍ଗ ବିମ୍ବୃତ୍ତି—ଅନ୍ୟରୂପ) ଥରେ ନ ଘଟିବା—Non-recurrence of a contingency (Apte)

**ପ୍ରସଙ୍ଗାନ୍ତର**—ସଂ. ବି.—(କର୍ମଧା, ଅନ୍ୟ+ପ୍ରସଙ୍ଗ)—
Prasaṅgāntara ୧ । ଅନ୍ୟ ବିଷୟ—1. Another matter.
୨ । ଅନ୍ୟ ସମ୍ପର୍କ—2. Another connection.

**ପ୍ରସଙ୍ଗୀ**—ସଂ ବିଣ—(ପ୍ରସଙ୍ଗ+ଇନ୍; ୧ମା ୧ବ)—୧ । ଅନୁରକ୍ତ—
Prasaṅgi 1. Fond of; attached to; devoted to (Apte)
୨ । ଅପ୍ରଧାନ—2 Secondary; subordinate (Apte)
୩ । ସାମୟିକ ଘଟିବା, ଭେଟେବା—
3. Incidental, occasional (Apte).

**ପ୍ରସଙ୍ଗେ**—ଦେ. କ୍ରି. ବିଣ. (ସ. ପ୍ରସଙ୍ଗେଣ)—ପ୍ରସଙ୍ଗକ୍ରମେ—
Prasaṅge In the course of a subject

> କହୁଛ ଯିବା ମୁହିଁ କଥାର ପ୍ରସଙ୍ଗେ ।
> କୃଷ୍ଣସିଂ. ମହାଭାରତ ଉଦ୍‌ଯୋଗ ।

**ପ୍ରସଂଘ**—ସ. ବିଣ. (ପ୍ର+ସଂଘ)—ଶ୍ରେଣୀବଦ୍ଧ (ହି ଶ.)—
Prasaṁgha 1. Arranged in rows or classes.

**ପ୍ରସତ୍ତି**—ସ. ବି. (ପ୍ର+ସଦ୍ ଧାତୁ+ଭାବ. ତି)—୧ । ପ୍ରସନ୍ନତା (ହି.ଶ)
Prasatti 1. Favourableness; graciousness (Apte)
୨ । ନିର୍ମଳତା, ସ୍ୱଚ୍ଛତା—
2. Transparence; clearness (Apte).

**ପ୍ରସନ୍ନ**—ସ. ବିଣ. (ପ୍ର+ସଦ୍ ଧାତୁ=ଯିବା+କର୍ତ୍ତୃ. ତ)—୧ । ତୁଷ୍ଟ;
Prasanna ପ୍ରଫୁଲ୍ଲ; ସନ୍ତୁଷ୍ଟ—1. Pleased; delighted;
(ପ୍ରସନ୍ନା—ସ୍ତ୍ରୀ) cheerful; complacent.
(ପ୍ରସନ୍ନତା(ସ୍ତ୍ରୀ),ପ୍ରସତ୍ତି, ପ୍ରସାଦ—ବି) ୨ । ଅନୁକୂଳ—
2. Favourable; propitious; gracious; kindly disposed towards.
୩ । ନିର୍ମଳ, ପରିଷ୍କୃତ—3. Clear; clean.
୪ । ସ୍ୱଚ୍ଛ—4. Pellucid; transparent.
୫ । ଉଜ୍ଜ୍ୱଳ - 5. Bright.
୬ । ସୁବୋଧଗମ୍ୟ—
6. Plain; easily intelligible (Apte).
୭ । ଶାନ୍ତ—7. Tranquil; soothed (Apte).
୮ । ମନୋହର—8. Pleasing.
୯ । ସତ୍ୟ; ଠିକ୍; ଯଥାର୍ଥ—9. True; correct (Apte).
ଦେ. ବି.—୧ । ପ୍ରଫୁଲ୍ଲତା, ଶୋଭା, ପ୍ରସନ୍ନତା—
1. Grace, beauty.

> କି ରୂପରେ ହେବ ପୁଣି ସେ ରୂପ ଦର୍ଶନ,
> ଅନୁମାନ ଅଗୋଚର ଚନ୍ଦ୍ରରୁ ପ୍ରସନ୍ନ । ଉପେ. କୋଟୀବ୍ରହ୍ମାଣ୍ଡସୁନ୍ଦରୀ ।

୨ । (ପୁଂ) ଲୋକଙ୍କୁ ଦିଆ ଯିବା ନାମ—
2. A name given to males,
[ ଦ୍ର—ପ୍ରସନ୍ନକୁମାର (ପୁଂ) ଓ ପ୍ରସନ୍ନକୁମାରୀ (ସ୍ତ୍ରୀ) ନାମ ଯଥାକ୍ରମେ ପୁରୁଷଙ୍କୁ ଓ ସ୍ତ୍ରୀ ଙ୍କୁ ଦିଆଯାଏ ।]

**ପ୍ରସନ୍ନ ଚିତ୍ତ**—ସ ବିଣ. ପୁଂ. (ବହୁବ୍ରୀହି, ପ୍ରସନ୍ନ+ଚିତ୍ତ)—ପ୍ରଫୁଲ୍ଲମନାଃ,
Prasanna chitta ଯାହାର ମନ ଆନନ୍ଦିତ ହୋଇଅଛି—
(ପ୍ରସନ୍ନଚେତାଃ, ପ୍ରସନ୍ନମନା; Delighted, pleased.
ପ୍ରସନ୍ନ ହୃଦୟ—ଅନ୍ୟରୂପ)
(ପ୍ରସନ୍ନଚିତ୍ତା, ପ୍ରସନ୍ନହୃଦୟା—ସ୍ତ୍ରୀ)

**ପ୍ରସନ୍ନ ବଦନ**—ସ. ବିଣ. ପୁଂ (ବହୁବ୍ରୀହି, ପ୍ରସନ୍ନ+ବଦନ)—ହର୍ଷମୁଖ;
Prasanna badana ଯାହାର ମୁଖ ସର୍ବଦା ପ୍ରଫୁଲ୍ଲ ଥାଏ—
ପ୍ରସନ୍ନମୁଖ / ପ୍ରସନ୍ନମନ } ଅନ୍ୟରୂପ Looking pleased; gracious looking.
(ପ୍ରସନ୍ନବଦନା, ପ୍ରସନ୍ନମୁଖୀ; ପ୍ରସନ୍ନାନନା—ସ୍ତ୍ରୀ)

**ପ୍ରସନ୍ନମୂର୍ତ୍ତି**—ସ. ବିଣ. (ବହୁବ୍ରୀହି, ପ୍ରସନ୍ନ+ମୂର୍ତ୍ତି)—ଯାହାର ଦେହେର
Prasanna mūrtti ପ୍ରଫୁଲ୍ଲ, ସୁନ୍ଦର—Having a graceful figure; having a beautiful appearance.

**ପ୍ରସନ୍ନସଲିଳ**—ସ. ବି. ପୁଂ (ବହୁବ୍ରୀହି, ପ୍ରସନ୍ନ+ସଲିଳ)—ନିର୍ମଳ-
Prasannasalila ଜଳପୂର୍ଣ୍ଣ—Full of clear water.
(ପ୍ରସନ୍ନସଲିଳା—ସ୍ତ୍ରୀ)

**ପ୍ରସନ୍ନା**—ସ. ବିଣ. ସ୍ତ୍ରୀ (ପ୍ରସନ୍ନ+ସ୍ତ୍ରୀ. ଆ)—'ପ୍ରସନ୍ନ'ର ସ୍ତ୍ରୀଲିଙ୍ଗ—
Prasannā Feminine of 'Prasanna'.
ସଂ. ବି. ସ୍ତ୍ରୀ—୧ । ମଦିରା, ମଦ—
1 Spirituous liquor; wine.
୨ । ସନ୍ତୋଷବିଧାନ; ପ୍ରଶମନ—
2 Propitiation; pleasing (Apte).

**ପ୍ରସନ୍ନାତ୍ମା**—ସ. ବିଣ. ପୁଂ ଓ ସ୍ତ୍ରୀ. (ବହୁବ୍ରୀହି, ପ୍ରସନ୍ନ+ଆତ୍ମା; ୧ମା.
Prasannātmā ୧ବ.)—୧ । ପ୍ରଫୁଲ୍ଲ ଚେତାଃ—
1. Delighted; gay
୨ । ନିର୍ମଳହୃଦୟ—2. Pure hearted.
୩ । ଯାହାର ମନ ଅନୁକୂଳ ହୋଇ ଅଛି—
3. Gracious-minded; propitious (Apte).

**ପ୍ରସନ୍ନେ**—ଦେ କ୍ରି. ବିଣ—୧ । ପ୍ରକାଶ୍ୟ ରୂପରେ—
Prasanne ପ୍ରସନେ 1 In an open manner.

> ମୂର୍ଖ ଅଧର ଦରସ ହରଷ ପଦ ହେବ ଅଙ୍ଗ ପ୍ରସନ୍ନେ କାଳିନ୍ଦ ମଧ୍ୟେ ରହୁ
> କୃତ-କେଶ—ଉପେ. ପ୍ରେମସୁଧାନିଧି ।

୨ । ପ୍ରସନ୍ନତା ସହକାରେ, ମନୋହରରୂପେ—
2 Favourably; gracefully.
୩ । ଆନନ୍ଦିତ ହୋଇ—3. With delight; delightedly.

**ପ୍ରସବ**—ସ. ବି. (ପ୍ର+ସୂ ଧାତୁ=ଜନ୍ମ କରିବା+ଭାବ. ଅ)—
Prasaba ୧ । ସନ୍ତାନ ଜନ୍ମ କରିବା କ୍ରିୟା, ଉତ୍ପାଦନ; ଗର୍ଭମୋଚନ
1. Bringing forth; delivery; giving birth to; child birth; confinement; generation, begetting.
୨ । ଜନ୍ମ, ଉତ୍ପତ୍ତି—
2. Birth; production; procreation.

୩ । ବିସ୍ତାର—3 Spreading; extending.
୪ । ସନ୍ତାନ, ଅପତ୍ୟ—
4. Offspring, progeny; children.
୫ । ଫଳ—5 Fruit; product (Apte).
୬ । ଫୁଲ—6 Flower.
୭ । ନିମିତ୍ତ; ହେତୁ; କାରଣ—7. Cause.
୮ । ଆଦିମୂଳ; ଉତ୍ପତ୍ତିସ୍ଥଳ—8. Origin, source.
୯ । ବୃଦ୍ଧି; ବଢ଼ତି (ହି. ଷ.)—9. Increase, affluence.
୧୦ । ବିକାଶ (ହି ଷ.)—10. Expansion.
୧୧ । କଢ଼, କଳିକା—11 Blossom (Apte).

**ପ୍ରସବକ**—ସଂ. ବି. (ପ୍ରସବ + କ)—ପିୟାଳ ବୃକ୍ଷ (ହି. ଶ.) (ଦେଖ)
Prasabaka Piyāla tree (See).

**ପ୍ରସବ କରା(ରେ)ଇବା**—ଦେ କ୍ରି.—ସନ୍ତାନ ଜନ୍ମ କରିବା ସମୟରେ,ଜନନୀକୁ ସାହାଯ୍ୟ ଦେବା—To deliver; to help a woman in delivery.
Prasaba karā(re)ibā
প্রসব করান
प्रसब करना

**ପ୍ରସବ କରିବା**—ଦେ କ୍ରି—ଜନ୍ମ କରିବା—
Prasaba karibā To give birth to; to bring forth; to be delivered of.
প্রসবকরা प्रसबकरना

**ପ୍ରସବ ଗୃହ**—ସ. ବି—ଅନ୍ତୁଡ଼ିଶାଳ; ଯେଉଁ ଘରେ ମାତା ପିଲା ଜନ୍ମ କରିଥାଏ—Lying-in room.
Prasaba gruha
(ପ୍ରସବାଗାର—ଅନ୍ୟରୂପ)

**ପ୍ରସବ ଧର୍ମୀ**—ସ. ବିଣ. ପୁଂ—(ପ୍ରସବ + ଧର୍ମନ୍ + ଇନ୍; ୧ମା. ୧ବ)-
Prasaba dharmī ଯେ ପ୍ରସବ କରେ; ସନ୍ତାନ ଉତ୍ପାଦକ; ଉର୍ବର—Prolific; productive (Apte).
(ପ୍ରସବ ଧର୍ମିଣୀ—ସ୍ତ୍ରୀ)

**ପ୍ରସବନ**—ସ. ବି—(ପ୍ର + ସୂ ଧାତୁ + ଭାବ. ଅନ)—୧ । ଶିଶୁ ଜନ୍ମ କରିବା, ସନ୍ତାନୋତ୍ପାଦନ--1 Giving birth; bearing children.
Prasabana
୨ । ଉତ୍ପାଦିକା ଶକ୍ତି—2. Fecundity (Apte).
୩ । ପ୍ରସବ କରାଇବା, ପ୍ରସବ କଲାବେଳେ ପ୍ରସୂତିକୁ ସାହାଯ୍ୟ କରିବା—3 Helping a woman during delivery

**ପ୍ରସବନ୍ତୀ**—ସ· ବି ସ୍ତ୍ରୀ—ଶୂଳ ଖାଉଥିବା ସ୍ତ୍ରୀ; ପ୍ରସବ ବେଦନା ଭୋଗ କରୁଥିବା ସ୍ତ୍ରୀ—A woman in labour (Apte).
Prasabantī

**ପ୍ରସବ ବନ୍ଧନ**—ସ. ବି—(୬ଷ୍ଠୀ ତତ୍, ପ୍ରସବ + ବନ୍ଧନ)—୧ । ଫୁଲ; ଫଳ ଓ ପତ୍ରାଦିର ଡେମ୍ଫ—
Prasaba bandhana
1. Footstalk of a leaf, fruit or flower; peduncle
୨ । ଫୁଲ ଗଭାର କାଠି (ହି. ଶ)—A splinter or twig to which a nosegay is tied or fixed.

**ପ୍ରସବ ବେଦନା**—ସ. ବି—ସନ୍ତାନ ଜନ୍ମ କରିବା ସମୟରେ ମାତା ଯେଉଁ କଷ୍ଟ ପାଏ, ଶୂଳ ଖାଇବା ଦୁଃଖ—
Prasaba bedanā
(ପ୍ରସବ ବ୍ୟଥା—ଅନ୍ୟରୂପ) Pangs of delivery; the labour pain, travail; throes.

**ପ୍ରସବିତା**—ସ. ବି. ପୁଂ—(ପ୍ର + ସୂ ଧାତୁ + ତୃ, ୧ମା. ୧ବ)—
Prasabitā ୧ । ଜନକ; ପିତା—1. Father.
(ପ୍ରସବ୍ତା - ଅନ୍ୟରୂପ) ୨ । ଉତ୍ପତ୍ତିଦାତା ବ୍ୟକ୍ତି—
2. Begetter, producer; progenitor.
ପ୍ରସବିତ୍ରୀ } ସ୍ତ୍ରୀ
ପ୍ରସବିତ୍ରୀ } ସ. ବିଣ. ପୁଂ—ଉତ୍ପାଦକ—
Producing; begetting.

**ପ୍ରସବିବା**—ଦେ. (ପଦ୍ୟ) କ୍ରି—'ସଂ. ପ୍ରସବ)—(ସନ୍ତାନ) ଜନ୍ମ କରିବା-
Prasabibā To give birth to; to bring forth.
প্রসবা
ଲକ୍ଷ୍ମଣ ଶତ୍ରୁଘ୍ନେ ସୁମିତ୍ରା ପ୍ରସବିଲେ—
प्रसबकरना
କୃଷ୍ଣସିଂହ. ମହାଭାରତ ବନ ।

**ପ୍ରସବ୍ୟ**—ସ. ବିଣ—୧ । (ପ୍ର + ସବ୍ୟ = ବାମ)—ପ୍ରତିକୂଳ, ବିପରୀତ;
Prasabya ଓଲଟା—1 Adverse; inverted; contrary; reverse.
୨ । ବାମ ଆଡ଼ୁ ପ୍ରଦକ୍ଷିଣ କରିବା—
2. Circumambulation from the left side.
୩ । (ପ୍ର + ସୂ ଧାତୁ + କର୍ମ. ଯ) ପ୍ରସବଯୋଗ୍ୟ, ଯାହା ପ୍ରସୂତ ହେବ-
3. About to be born.

**ପ୍ରସଭ**—ସ. ବି—(ବହୁବ୍ରୀହି, ପ୍ର=ଗତ + ସଭା=ସମାଜ ଅର୍ଥାତ୍ ସମାଜ-
Prasabha ସାଧ୍ୟ ବିଚାର ଯହିଁରେ)—ଯବରଦସ୍ତି, ବଳାତ୍କାର; ବଳ ପ୍ରୟୋଗ—Violence; use of force.
ସ. କ୍ରି. ବିଣ—୧ । ବଳପୂର୍ବ—
1. Forcibly; violently.
୨ । ହଠାତ୍—2. Suddenly.
୩ । ଅଧିକ ପରିମାଣରେ—
3. Much; exceedingly.

**ପ୍ରସଭ ହରଣ**—ସ. ବି—(ପ୍ରସଭ + ହରଣ)—
Prasabha haran ୧ । ଜବରଦସ୍ତି କୌଣସି ବସ୍ତୁ ନେଇଯିବା; ବଳାତ୍କାର ପୂର୍ବକ ହରଣ, ଡକାଇତି—1. Dacoity; snatching away anything by force.
୨ । ବଳପୂର୍ବକ ସ୍ତ୍ରୀହରଣ—
2 Kidnapping

**ପ୍ରସଭେ**—ଦେ କ୍ରି ବିଣ—(ସଂ ପ୍ରସଭଂ)—୧ । ହଠାତ୍—
Prasabhe 1. Suddenly.
୨ । ବଳପୂର୍ବକ—2. With force.
ପ୍ରସଭେ ପଶୁଣ ଅଳ୍ପ ତର୍କି-ଉଡ଼ିଦ୍ର—ରାଧାନାଥ ଫୁଲଗଣି ।

**ପ୍ରସମୀକ୍ଷଣ**—ସ ବି—(ପ୍ର + ସମୀକ୍ଷଣ)—୧ । ବିବେଚନା—
Prasamīkshana 1. Consideration.
(ପ୍ରସମୀକ୍ଷା—ଅନ୍ୟରୂପ) ୨ । ଉତ୍ତମରୂପେ ବିଚାର କରିବା—
2. Deliberation
୩ । ତର୍କବିତର୍କ—3 Discussion.

**ପ୍ରସର**—ସଂ. ବି—(ପ୍ର + ସୃ ଧାତୁ = ଯିବା, ବ୍ୟାପିବା + ଭାବ. ଅ)—
Prasara ୧ । ଆଗକୁ ଗତି—1 Advancing.
୨ । ଗମନ; ଚଳନ—2. Going; motion.

୩ । ଘୋଟି ଯିବା—
3. Act of spreading; pervading.
୪ । ବେଗ—4. Velocity; speed; fleetness.
୫ । ସୁବିଧା; ସୁଯୋଗ—
5. Opportunity; occasion.
୬ । ବିସ୍ତାର, ବ୍ୟାପ୍ତି—6 Spreading; extending; extension; expansion.
୭ । ସ୍ଥାନ—7. Space; room.
୮ । ଯଥେଷ୍ଟ ସ୍ଥାନ—8. Ample space.
୯ । ସ୍ୱାର୍ଥ ପ୍ରବୃତ୍ତି—2. Selfish desire.
୧୦ । ପ୍ରକର୍ଷ; ପ୍ରାଧାନ୍ୟ—10. Excellence; eminence.
୧୧ । ଉତ୍ପତ୍ତି—11. Birth; production.
୧୨ । (+କର୍ମ. ଅ) ସମୂହ, ରାଶି—
12. Multitude; heap; collection.
୧୩ । ଯୁଦ୍ଧ—13. Fight; battle.
୧୪ । ପ୍ରଣୟ; ସ୍ନେହ—14. Affection.
୧୫ । ଉପାୟ—15. Process; project.
୧୬ । ନାରାଚ (ହି. ଶ)—16. An iron arrow.
୧୭ । ସାହସ, ସାହସ (ହି. ଶ)—17. Courage; bravery.
୧୮ । ଦୃଷ୍ଟିର ସୀମା—18. Limit of one's vision; range of vision; ken.
୧୯ । (ବୈଦ୍ୟଶାସ୍ତ୍ର) ଶରୀରସ୍ଥ ବାତ ପିତ୍ତ କଫର ବୃଦ୍ଧି ବା କମିଯିବା ବାତ ପିତ୍ତାଦିର ଅଳ୍ପତା ବା ଆଧିକ୍ୟ (ହି. ଶ)—
19. (medical science) Morbid displacement of the bodily humours (Apte); increase or decrease of the humours of the system
୨୦ । ନଦ୍ୟାଦିର ବୃଦ୍ଧି; ବଢ଼ି (ହି. ଶ)—
20. Flood; inundation
୨୧ । ସ୍ରୋତଃ—21. Flow; stream; current (Apte).
୨୨ । ସ୍ୱାଧୀନ ଗତି—22 Free scope; unimpeded motion (Apte).
୨୩ । ଆକାର—23. Dimension; extent (Apte)
୨୪ । ପ୍ରାବଲ୍ୟ—24. Prevalence (Apte).
୨୫ । ସ୍ନେହପୂର୍ଣ୍ଣ ପ୍ରାର୍ଥନା; ଅନୁ—25. Affectionate solicitation (Apte).
୨୬ । ବିନାଶ, ସର୍ବନାଶ—26. Destruction, ruin (Apte).

ସଂ ବିଣ. (+କର୍ତ୍ତୃ ଅ)—ଗମନଶୀଳ—
Moving; proceeding.

**ପ୍ରସରଣ**—ସଂ. ବି. (ପ୍ର+ସୃ ଧାତୁ+ଭାବ. ଅନ)—
Prasarana ୧ । ଆଗକୁ ଗତି କରିବା—1. Advancing.
୨ । ଇତସ୍ତତଃ ଗମନ—2. Going forth, wandering.
୩ । (ବାୟୁଆଦି) ବହିବା—3. Blowing.
୪ । ଶତ୍ରୁସୈନ୍ୟଙ୍କୁ ବେଷ୍ଟନ କରିବା—
4. Surrounding the enemy.

ଶତ ପ୍ରସରଣେ ଏବେ ବେଢ଼ିଲେ ଅରାତି
ଅମର୍ଷିକ, ଅର୍ଜୁନକ ସଥା ଲୁହ ଉମ୍ । ସ୍ୱୟଂନାଥ ମହାଯାତ୍ରା ।

୫ । ବହିର୍ଗତ ହେବା—5. Issuing.
୬ । ରଣକାଷ୍ଠାଦି ସଂଗ୍ରହ ନିମନ୍ତେ ସୈନ୍ୟମାନଙ୍କର ଇତସ୍ତତ ଭ୍ରମଣ—6. Going forth over the country for forage(said of an army).
୭ । ଇତସ୍ତତଃ ବ୍ୟାପିବା—7. Spreading over; diffusion.
୮ । ବ୍ୟାପ୍ତି; ବିସ୍ତାର—8 Spreading; pervading
୯ । ବଢ଼ିବା, ବୃଦ୍ଧି—9 Increasing.
୧୦ । ଉତ୍ପତ୍ତି—10 Birth; production.
୧୧ । ସ୍ୱାର୍ଥପ୍ରବୃତ୍ତି—11. Selfish desire.
୧୨ । ମନୋହାରିତ୍ୱ—12. Amiability (Apte).
୧୩ । ବିକଶନ; ବିକାଶ—13. Expanding (Apte).
୧୪ । ପଳାଇଯିବା—14 Running away (Apte).

**ପ୍ରସରଣି(ଣୀ)**—ସ. ବି—ଶତ୍ରୁକୁ ବେଷ୍ଟନ କରିବା; ଘେରିବା—
Prasarani(ni) Beseiging; investing; surrounding an enemy (Apte).

**ପ୍ରସର ହେବା**—ଦେ. କ୍ରି. (ସଂ. ପ୍ରସର=ବିକାଶ)—ଫରଫାଟିବା—
Prasara heba To dawn

ପଲକ ନ ପଡ଼ୁ ତାରକା ମଳିଲା,
ଆସ ପ୍ରସର ହୋଇଲା ଦେ । ତ୍ୟାଗୀ. ରହସ୍ୟମଞ୍ଜରୀ ।

**ପ୍ରସରାଇବା**—ଦେ. କ୍ରି. (ପ୍ରସରିବାର ଣିଜନ୍ତରୂପ)—
Prasaraiba ୧ । ଇତସ୍ତତଃ ପ୍ରସାରିତ କରିବା—
1. To spread abroad.
୨ । ପ୍ରଚାର କରିବା—2. To publish.

ପୃଥ୍ୱୀରଞ୍ଜନ ଏକ ଆଲ୍ଲୁକେଣ ପ୍ରସରାଇଲେ ଏ ଗୀତ ।
କବିସୂର୍ଯ୍ୟ, କଣୋଗଚନ୍ଦ୍ର ।

**ପ୍ରସରିବା**—ଦେ. କ୍ରି. (ସଂ. ପ୍ରସର)—୧ । ବହିର୍ଗତ ହେବା—
Prasariba 1. To issue forth.
୨ । (ନାଃଶ୍ୱାସାଦି) ବହିବା—2. To blow.

ନାସାନାଳ ଉଚ-ଫୁଲରୁ ଅନିଳ ପ୍ରସରୁଛି ବେଗ ବେଗ ।
କବିସୂର୍ଯ୍ୟ, କଣୋଗଚନ୍ଦ୍ର ।

୩ । ଗୂଢ଼ଆଦେ ବିଖ୍ୟାତ ହେବା; ପ୍ରକଟିତ ହେବା—
3 To be published.

ଚମରୁ କେଶପାଶ, ତେଲଙ୍ଗେର ଗ୍ରୀଡ ବେଲ ପ୍ରସରୁଛି ଯାହା ନାମ
କବିସୂର୍ଯ୍ୟ. ସଙ୍ଗୀତ ।

୪ । ବୃଦ୍ଧି ପାଇବା—4 To increase.

ଦିନକୁ ଦିନ ମାତ ପାପ ପ୍ରସରଇ ।
ପୃଥିବୀ ଦେଖା ଗତି ସମ୍ଭବନା ହେବ । କୃଷ୍ଣସିଂହ. ମହାଭାରତ. ଅନ ।

୫ । ଘୋଟିବା—5 To overspread.

ନେତ୍ର ସଂକେତ ଲକ ପ୍ରସରଇ । ଶିଶୁଶଙ୍କର, ଉଷା ଅଭିଳାଷ ।

୬ । (ଶକ୍ତି) ସଞ୍ଚାରିତ ହେବା—6. To be diffused over.

ଏ ଅଙ୍ଗନ ଯୋଗେ ଭୂମି ଉଦୟ ନକରେ
ତ୍ୟାଗବ ଦ୍ରବ୍ୟ କ୍ରି । ବ୍ରଜ ନାଥ, ମହାଯାତ୍ରା ।

୭ । ଊଣା ହେବା, କମିଯିବା; ଅପସାରିତ ହେବା—
7. To become less; to abate

ଅଚଲ ବସନ୍ତ ପ୍ରସରସ ଶୀତ । ପ୍ରାଚୀନ, ସଙ୍ଗୀତ ।

୮ । ବ୍ୟାପିବା, ବିସ୍ତୃତ ହେବା—
8. To be diffused or spread.

ପ୍ରସର୍ପକ—ସଂ. ବିଣ. ପୁଂ. (ପ୍ର+ସୃପ୍ ଧାତୁ+କର୍ତ୍ତୃ. ଅକ)—
Prasarpaka ୧ । ଅନାହୂତ ହୋଇ ଉପସ୍ଥିତ ହୋଇଥିବା ବ୍ୟକ୍ତି—
(ପ୍ରସର୍ପି—ଅନ୍ୟରୂପ) 1. An intruder, a person who attends a function uninvited
ପ୍ରସର୍ପିକା, ପ୍ରସର୍ପିଣୀ (ସ୍ତ୍ରୀ)
୨ । ଆଗକୁ ଗତି କରୁଥିବା—
2 Advancing.
୩ । ସୁରଅଡ଼େ ବ୍ୟାପି ଥିବା—3. Pervading.
୪ । ଗୁରୁଣ୍ଡି କରି ଯାଉଥିବା—4. Creeping.

ପ୍ରସର୍ପଣ—ସଂ. ବି. (ପ୍ର+ସୃପ୍ ଧାତୁ=ଯିବା+ଭାବ. ଅନ)—
Prasarpaṇa ୧ । ପ୍ରସରଣ, ବିସ୍ତାର, ବ୍ୟାପ୍ତି, ଖୋଟ୍ଟଯିବା—
1. Spreading on all sides; expanding; pervading.
୨ । ଗମନ—2 Going; moving
୩ । ସନ୍ତରଣ—3. Swimming.
୪ । ଅଗ୍ରସର ହେବା—4. Advancing.
୫ । ଗୁରୁଣ୍ଡି କରି ଯିବା—5. Creeping or crawling forth.

ପ୍ରସହ—ସଂ. ବି. (ପ୍ର+ସହ୍ ଧାତୁ=ସହିବା, ପାରଗ ହେବା+କର୍ତ୍ତୃ. ଅ)—
Prasaha ୧ । ଯେଉଁ ପକ୍ଷୀମାନେ ଝାମ୍ପ ମାରି ଶୀକାରକୁ ଧରନ୍ତି; ଶୀକାରୀ ପକ୍ଷୀ (ଯଥା—ଚିଲ, ଶାଗୁଣା, ବାଜ, ପେଚା, ଗୁଆ)—1 A bird of prey; a bird which pounces upon its prey.
[ ଦ୍ର—ବୈଦ୍ୟଶାସ୍ତ୍ରରେ ପକ୍ଷୀମାନଙ୍କ କରାଯାଇ ଥିବା ଶ୍ରେଣୀମାନଙ୍କ ମଧ୍ୟରେ ପ୍ରସହ ଏକଶ୍ରେଣୀର । ଏ ପକ୍ଷୀମାନଙ୍କ ମାଂସ ଉଷ୍ଣବୀର୍ଯ୍ୟ ଓ ଏମାନଙ୍କ ମାଂସ ଖାଇଲେ ଶ୍ଳେଷ୍ମା, ଭଗ୍ନକ ଓ ଶୁକ୍ରକ୍ଷୟ ରୋଗ ହୁଏ—ହି ଶ । ]
୨ । ହିଂସ୍ରଜନ୍ତୁ; ମାଂସାଶୀ ଜନ୍ତୁ—2 Beast of prey. (ଯଥା—ସିଂହ; ବ୍ୟାଘ୍ର ପ୍ରଭୃତି ।)
୩ । (+ଭାବ. ଅ)—ସମ୍ଭାଳିବା, ଖୁବ ସହିବା—
3. Bearing; enduring; withstanding (Apte).
୪ । ବାଧା ଦେବା—4. Resistance (Apte).
୫ । ବିରୋଧ—5. Opposition (Apte).
୬ । ସହନଶୀଳତା ସହିଷ୍ଣୁତା—6. Endurance (Apte).

ପ୍ରସହନ—ସଂ. ବି. (ପ୍ର+ସହ୍ ଧାତୁ+କର୍ତ୍ତୃ ଅନ)—
Prasahana ୧ । ଶୀକାରୀ ପଶୁପକ୍ଷୀ—
1. A beast or bird of prey.
୨ । (ଭାବ. ଅନ)—ଆଲିଙ୍ଗନ—2. Embracing.
୩ । ସହିଷ୍ଣୁତା—3. Endurance.
୪ । ସମ୍ଭାଳିବା, ସହିବା—4 Bearing; enduring.
୫ । ପରାଭବ—5. Defeat.
୬ । ଅନାଦର—6 Disregard.
୭ । ପରାସ୍ତକରଣ—7. Defeating; overcoming (Apte).
୮ । ଆଲିଙ୍ଗନ—8 Embracing, embrace (Apte).
୯ । ବାଧାଦାନ; ପ୍ରତିରୋଧନ—9. Resisting.
ସଂ. ବିଣ - ସମାରହିତ—Relentless; inexorable.

ପ୍ରସହ୍ୟ—ସଂ ଅ. (ପ୍ର+ସହ୍ ଧାତୁ+ଭାବ. ଯ)—୧ । ହଠାତ୍; ସହସା—
Prasahya 1. Suddenly; abruptly.
୨ । ବଳପୂର୍ବକ—2. Violently; forcibly.
୩ । ଅତ୍ୟନ୍ତ—3. Much, exceedingly (Apte).

ପ୍ରସହ୍ୟ ଚୌର—ସଂ ବି—ବଳାତ୍କାରପୂର୍ବକ ଚୋରି କରିବା ବ୍ୟକ୍ତି; ଡକାଏତ—Dacoit; plunderer; highway man.
Prasahya chaura

ପ୍ରସହ୍ୟ ହରଣ—ସଂ. ବି—୧ । ବଳାତ୍କାର ଅପହରଣ, ଲୁଣ୍ଠି, ଡକାଇତି—
Prasahya haraṇa 1. Dacoity; plunder.
୨ । ଯବରଦସ୍ତି ନେଇଯିବା—2. Violent or forcible seizure, snatching away by force.

ପ୍ରସା—ଦେ ବି (ସଂ. ପ୍ରସ୍ରା)—୧ । ମୂତ୍ର—
Prasā 1. Urine
ପିସାବ; ପେଛାବ पेशाब ୨ । ମୂତ୍ରତ୍ୟାଗ—2. Urination.
[ପ୍ରସାପ(ବ), ପ୍ରସ୍ରା, ପ୍ରସ୍ରାପ ବ)—ଅନ୍ୟରୂପ]

ପ୍ରସା କରିବା—ଦେ. କ୍ରି. (ସଂ. ପ୍ରସ୍ରା)—ମୂତ୍ରତ୍ୟାଗ କରିବା, ମୁତିବା—
Prasā karibā To pass urine; to make water.
ପିସାବକର୍‌ନା, ପେଛାବକରା पेशाबकरा
(ପ୍ରସାଫେରିବା—ଅନ୍ୟରୂପ)

ପ୍ରସାଜ(ଜା)ଲା—ଦେ. ବି. (ସଂ. ପ୍ରସ୍ରା ଓ ଜ୍ୱାଳା, ଜ୍ୱଳନ)—
Prasāja(jā)lā ପ୍ରସ୍ରାବ କରିବା ସମୟରେ ପ୍ରସ୍ରାବ ନଳୀରେ ଯନ୍ତ୍ରଣା ଅନୁଭୂତିରୂପକ ରୋଗବିଶେଷ—
ପେଛାବଜାଲା
पेशाबकाजलन Painful urination.
( ପ୍ରସାପୋଡ଼ା—ଅନ୍ୟରୂପ )

ପ୍ରସାତିକା—ସଂ. ବି—ଅଣୁବ୍ରୀହି, ଶୂଅଁ ଶସ୍ୟ (ହି. ଶ)—
Prasātikā A kind of tiny grain

ପ୍ରସାଦ—ସଂ. ବି. (ପ୍ର+ସଦ୍ ଧାତୁ=ତୁଷ୍ଟ ହେବା ପ୍ରସନ୍ନ ହେବା+ଭାବ. ଅ)—୧ । ଦେବକନିବେଦିତ ଦ୍ରବ୍ୟ—
Prasāda 1. Food offered to a Deity.
୨ । ଗୁରୁଜନଙ୍କ ଭୁକ୍ତାବଶିଷ୍ଟ (ଯାହାକୁ ଶିଷ୍ୟାଦି ଭକ୍ତିସହକାରେ ସେବା କରନ୍ତି)—2. Food left by one's elders or preceptors.
୩ । ସ୍ୱଚ୍ଛତା; ନିର୍ମଳତା—
3. Clearness; transparency.
୪ । ଉଜ୍ଜ୍ୱଳତା; ଚକଚକ୍ୟ—4. Brightness; radiance.
୫ । ଦୟା; ଅନୁଗ୍ରହ, କୃପା—
5. Favour; kindness; clemency.

୬ । ସଂଯୋଗ; ପ୍ରସକ୍ତି; ସଙ୍ଗ—6. Association.
୭ । ପ୍ରସନ୍ନତା—7. Grace; approbation; propitiousness; cheerfulness.
୮ । ମନର ଶାନ୍ତି—8 Peace of mind; composure; contentment; calmness; mental tranquility.
୯ । ଥଣ୍ଡା ମିଜାଜ—9. Good temper; cheerfulness of disposition (Apte).
୧୦ । ଦାନ, ବକ୍ସିସ୍—
10. Free gift; gratuity (Apte).
୧୧ । ଦେବତା ଆଦିଙ୍କୁ ପ୍ରସନ୍ନ କରିବା ପାଇଁ ଦିଆଯିବା ଭୋଗ—
11. Any propitiatory offering (Apte).
୧୨ । ଭେଟି (ବ୍ର. ଶ.)—12. A present.
୧୩ । ମଙ୍ଗଳ; କଲ୍ୟାଣ —
13. Prosperity, wellbeing; welfare.
୧୪ । ବାକ୍ୟର ଗୁଣବିଶେଷ—
14. Elegance in composition; perspecuity; clearness of style; poetry written in easy and elegant style.

[ ଦ୍ର—ଯେଉଁ ସ୍ଥଳରେ କାବ୍ୟ ପାଠ ମାତ୍ରେ ଅର୍ଥ ବୋଧହୁଏ, ଅଥଚ ବର୍ଣ୍ଣିତ ବିଷୟ ସମ୍ବନ୍ଧରେ ମନରେ ସ୍ଥାୟୀଭାବ ଅଙ୍କିତ ହୁଏ ଏବଂ ଗ୍ରାମ୍ୟ ଶବ୍ଦ ବ୍ୟବହୃତ ହୁଏ ନାହିଁ ତାହା ପ୍ରସାଦଗୁଣବିଶିଷ୍ଟ ରଚନା । ]

୧୫ । ସୌମ୍ୟତା—15. Gentleness, serenity.
୧୬ । ସ୍ୱାସ୍ଥ୍ୟ—16 Health.

প্রসাদ ଦେ. ବି—୧ । (ସାଧୁଭାଷା ପ୍ରୟୋଗ) ଅନ୍ନ ବ୍ୟଞ୍ଜନାଦି ଖାଦ୍ୟ—
प्रसाद् 1. Food

[ ଦ୍ର—କେତେକ ବ୍ୟକ୍ତି ଗୋଟିଏ କଥାକୁ ସାଧାରଣ ଭାଷାରେ ନ କହି ସାଧୁଭାଷା ବ୍ୟବହାର କରିବାକୁ ସୁଖ ପାଆନ୍ତି । 'ଭାତ ଖାଇବାକୁ ଆସ' ଏ କଥା ନ କହି 'ପ୍ରସାଦ ସେବା କରିବାକୁ ଆସନ୍ତୁ' ବୋଲି କହନ୍ତି । 'ଆପଣ ଖାଇଲେଣି କି ?' ଏ କଥା ନ କହି 'ଆପଣଙ୍କର ଭୋଜନ ହେଲାଣି କି ?' କହନ୍ତି । ସାଧୁଭାଷାବ୍ୟବହାରପ୍ରିୟ ବ୍ୟକ୍ତିମାନଙ୍କ ମୁହଁରୁ ଏହି ଶ୍ରେଣୀର ଅନେକ ବାକ୍ୟ ଶୁଣାଯାଏ । ]

୨ । ଦେବତାଙ୍କଠାରେ ବଳି ଦିଆ ଯାଇଥିବା ପଶୁର ମାଂସ—
2. Meat of a victim slaughtered before an idol.

ପ୍ରସାଦକ—ସଂ. ବିଣ. ପୁଂ. ( ପ୍ର + ସଦ୍ ଧାତୁ ଣିଚ୍ = ସାଦି ଧାତୁ + କର୍ତ୍ତୃ. ଅକ )—୧ । ନିର୍ମଳତାସମ୍ପାଦକ—
Prasādaka
(ପ୍ରସାପ୍ତ—ଅନ୍ୟରୂପ) 1. Bringing about or producing clearness.
(ପ୍ରସାଦିକା, ପ୍ରସାଦିନୀ—ସ୍ତ୍ରୀ)
୨ । ଅନୁଗ୍ରହାକାଂକ୍ଷୀ—2. Solicitous of favour.
୩ । ପ୍ରୀତିକର—3. Pleasing.
୪ । ନିର୍ମଳ—4. Clear.
୫ । ଯେ ପ୍ରସନ୍ନତା ଜନ୍ମାଏ—5 Propitiating

ସଂ. ବି—୧ । ଦେବଧାନ୍ୟ—1. A kind of grain.
୨ । ବାସ୍ତୁକ, ବଥୁଆ ଶାଗ—2. A kind of pot-herb; white goose foot; Chenopodium Album.

ପ୍ରସାଦନ—ସଂ. ବି (ପ୍ର + ସଦ୍ ଧାତୁ ଣିଚ୍ = ସାଦି ଧାତୁ + ଭାବ. ଅନ)—
Prasādana ୧ । ପ୍ରସନ୍ନତାସମ୍ପାଦନ—1. Gratifying; act of pleasing; propitiating.
(ପ୍ରସାଦନୀୟ—ବିଣ)
୨ । ପରିଷ୍କରଣ—
2. Clearing; cleansing; purifying.
୩ । ଅନ୍ନ—3. Boiled rice.
୪ । ରାଜକୀୟ ପଟ୍ଟବାସ—
4. A royal tent ( Apte ).
( ପ୍ରସାଦନା—ସ୍ତ୍ରୀ ) ସଂ. ବିଣ. ପୁଂ—ପ୍ରସନ୍ନତାସମ୍ପାଦନକାରୀ ( ବ୍ର. ଶ )—Propitiating; pleasing.

ପ୍ରସାଦନା—ସଂ. ବି. ( ପ୍ରସାଦନ + ଆ )—୧ । ପୂଜା—
Prasādanā 1. Worship; divine service.
୨ । ପରିଚର୍ଯ୍ୟା; ସେବା—
2. Tending, affectionate service.

ପ୍ରସାଦି—ଗ୍ରା. ବି. ( ସଂ. ପ୍ରସାଦ )—ଦେବନିବେଦିତ ଖାଦ୍ୟ—
Prasādi পেসাদ परसाद् Food offered to a Deity.
প্রসাদী ଦେ. ବିଣ. ( ସଂ. ପ୍ରସାଦିତ )—ଦେବତାଙ୍କଠାରେ ଲାଗି
परसाद्, प्रसादी ହୋଇଥିବା ( ବସ୍ତ୍ର, ମାଳ ଆଦି )—( cloth, garland etc ) Used and then put off by an idol; discarded.

ପ୍ରସାଦିତ—ସଂ. ବି (ପ୍ର + ସଦ୍ ଧାତୁ ଣିଚ୍ + କର୍ମ. ତ)—୧ । ଅନୁଗୃହୀତ—
Prasādita 1. Favoured; treated graciously.
୨ । ସନ୍ତୁଷ୍ଟ—2. Satisfied; pleased.
୩ । ପୂଜିତ—3. Worshipped.
୪ । ପରିଷ୍କୃତ—4. Purified.
୫ । ଅନୁଗ୍ରହଦତ୍ତ—5 Bestowed graciously.
୬ । ଯାହାର ପ୍ରସନ୍ନତା ସମ୍ପାଦନ କରାଯାଇଅଛି—
6. Appeased; propitiated ( Apte ).
୭ । ଶମିତ—7. Calmed; soothed ( Apte ).

ପ୍ରସାଦିବା—ଦେ. ( ପଦ୍ୟ ) କ୍ରି. ( ସଂ. ପ୍ରସାଦ )—ଅନ୍ୟକୁ ପ୍ରସନ୍ନ
Prasādibā କରିବା—To propitiate or please another.
প্রসাদা प्रसादना

ପ୍ରସାଦୀକୃତ—ସଂ. ବିଣ—୧ । ଯେଉଁ ଖାଦ୍ୟ ଦ୍ରବ୍ୟ ଦେବତାଙ୍କୁ ନିବେଦିତ ହୋଇଅଛି—
Prasādikŗuta
1. ( food ) Already offered to a Deity.
୨ । ଉପହାରରୂପେ ପ୍ରଦତ୍ତ—
2. Given as a present (Apte).
୩ । ବକ୍ସିସ ବା ଅନୁଗ୍ରହରୂପେ ପ୍ରଦତ୍ତ—3. Bestowed as a gift or favour ( Apte )

ପ୍ରସାଦ୍ୱାର—ଦେ. ବି ( ସଂ. ପ୍ରସ୍ରାଦ୍ୱାର )—ଜନନେନ୍ଦ୍ରିୟ—
Prasādwāra The urinary organ.
পেছাবদ্বার पेशाबकाद्वार

**ପ୍ରସାଧକ**—ସଂ. ବିଣ. ପୁଂ (ପ୍ର+ସାଧ୍ ଧାତୁ=ସିଦ୍ଧ କରିବା; ଭୂଷିତ କରିବା+କର୍ତ୍ତୃ ଅକ)—୧ । ନିର୍ବାହକ—
Prasādhaka
(ପ୍ରସାଧିକା—ସ୍ତ୍ରୀ) 1. Accomplishing.
୨ । ବେଶକାରୀ—2. Adorning; decorating.
୩ । ପରିଷ୍କାରକ—3. Cleansing; purifying.
ସଂ. ବି—୧ । ଭୃତ୍ୟ—1 Servant.
୨ । ବେଶକାରୀ ଭୃତ୍ୟ; ଖଟଣି ସେବକ—
2. A servant whose duty is to dress the master or mistress; a valet-de-chambre.

**ପ୍ରସାଧନ**—ସଂ. ବି. (ପ୍ର+ସାଧ୍ ଧାତୁ+ଭାବ. ଅନ)—୧ । ଅଳଙ୍କରଣ; ସଜାଇବା; ବେଶ କରିବା—1. Decoration; embellishment.
Prasādhana
(ପ୍ରସାଧିତ, ପ୍ରସାଧନୀୟ—ବିଣ)
୨ । ବନ୍ଦୋବସ୍ତ—2. Arranging.
୩ । ସାଧନ, ସମ୍ପାଦନ—
3. Accomplishing, effecting.
୪ । (+କରଣ. ଅନ) ବେଶ; ସଜ୍ଜାର ଉପକରଣ, ସାଜ—
4. Dress; toilette.
୫ । କଙ୍କତିକା; ପାନିଆ—5. Hair comb.
୬ । ମହାବଳା ଲତା (ହି. ଶ)—
6. A medicinal creeper.

**ପ୍ରସାଧନ ବିଶେଷ**—ସଂ. ବି.—ଅତି ଉତ୍ତମ ଅଳଙ୍କରଣ—
Prasādhana bisesha Highest decoration (Apte)

**ପ୍ରସାଧନୀ**—ସଂ. ବି. (ପ୍ରସାଧନ+ସ୍ତ୍ରୀ. ଈ)—୧ । କଙ୍କତିକା; ପାନିଆ—
Prasādhanī 1. Comb.
୨ । ଭାଙ୍ଗ; ସିଦ୍ଧି—2. An intoxicating drink made with the leaves of hemp.

**ପ୍ରସାଧିକା**—ସଂ. ବିଣ. ସ୍ତ୍ରୀ—(ପ୍ରସାଧକ+ସ୍ତ୍ରୀ. ଆ)—ପ୍ରସାଧକର ସ୍ତ୍ରୀଲିଙ୍ଗ
Prasādhikā Feminine of prasādhaka.
ସଂ. ବି.—୧ । ନୀବାର ଧାନ୍ୟ (ହି. ଶ.)—
1. Paddy growing wild.
୨ । ରାଣୀଙ୍କ ବେଶକାରିଣୀ ଦାସୀ—2. A lady's maid; a female attendant who looks to the toilet of her mistress (Apte).

**ପ୍ରସାଧିତ**—ସଂ. ବିଣ (ପ୍ର+ସାଧିତ)—୧ । ସୁସମ୍ପାଦିତ; ସମାହିତ—
Prasādhita 1. Accomplished; welldone
୨ । ଅଳଙ୍କୃତ; ସଜ୍ଜିତ—2. Decorated; embellished.
୩ । ପ୍ରମାଣିତ—3. Pronounced (Apte).

**ପ୍ରସାର**—ସଂ. ବି. (ପ୍ର+ସୃ ଧାତୁ=ଯିବା+ଭାବ. ଅ)—
Prasāra ୧ । ଇତସ୍ତତଃ ଗମନ—1. Going about.
(ପ୍ରସାରିତ, ପ୍ରସାର୍ଯ୍ୟ—ବିଣ) ୨ । ବ୍ୟାପିବା—
2. Spreading; expanding; diffusion.
୩ । ଗମନ—3 Going; movement.
୪ । ବିସ୍ତାର—4. Extension; extent.
୫ । ଓସାର—5. Width.
୬ । ପ୍ରସରଣ; ତୃଣକାଷ୍ଠାଦି ସଂଗ୍ରହ ନିମନ୍ତେ ସୈନ୍ୟମାନଙ୍କର ଇତସ୍ତତଃ ଭ୍ରମଣ—6. Going out for forage, spreading over the country to forage (Apte).
୭ । ବହିର୍ଗମନ; ନିର୍ଗମ—
7. Going forth; exit; issuing forth.
୮ । (ମୁଖ) ବ୍ୟାଦାନ; ମେଲା କରିବା—
8. Opening (the mouth) (Apte)
୯ । (ହାତ ଆଦି) ବଢ଼ାଇବା—
9. Extending (the hands).
୧୦ । ବିକ୍ରୟ ପାଇଁ ପଣ୍ୟ ଦ୍ରବ୍ୟାଦିର ବିସ୍ତାର; ପସରା ମେଲା ଯିବା—
10. Exhibition or exposure of commodities for sale.

**ପ୍ରସାରଣ**—ସଂ. ବି. (ପ୍ର+ସୃ ଧାତୁ ଣିଚ୍=ସାରି ଧାତୁ+ଭାବ. ଅନ)—
Prasārana ୧ । ବିସ୍ତାର କରିବା, ମେଲାଇବା—
(ସଙ୍କୋଚନ—ବିପରୀତ) 1. Spreading; extending; unfolding.
୨ । ଶତ୍ରୁଙ୍କୁ ବେଷ୍ଟନ କରିବା—
2. Surrounding the enemy.
୩ । ପ୍ରସାର; ପ୍ରସରଣ—3 Going out for forage.
୪ । ମେଲା ହୋଇ ଯିବା—4. Expanding.
୫ । (ବ୍ୟାକରଣ) ସନ୍ଧି ଆଦିର ନିୟମ ଅନୁସାରେ ଉଷ୍ମବର୍ଣ୍ଣମାନଙ୍କ (ଯ, ର, ବ) ସ୍ୱର ବର୍ଣ୍ଣରେ (ଇ, ଋ, ଉ) ପରିବର୍ତ୍ତନ—
5. (grammar) The change of a semi-vowel into a vowel
୬ । ପଣ୍ୟ ଦ୍ରବ୍ୟାଦିକୁ ବିକ୍ରି ନିମନ୍ତେ ମେଲାଇବା; ପସରା ମେଲାଇବା—6. Exhibiting or exposing commodities for sale.

**ପ୍ରସାରଣ କରିବା**—ଦେ. କ୍ରି.—(ସଂ. ପ୍ରସାରଣ), (ହାତ) ବଢ଼ାଇବା ବା ମେଲାଇବା—To stretch one's hand; to expand.
Prasārana karibā

**ପ୍ରସାରି(ରି)ଣୀ**—ସଂ. ବି. (ପ୍ର+ସୃ ଧାତୁ+କର୍ତ୍ତୃ. ଅନ; ଇନ୍+ସ୍ତ୍ରୀ. ଈ)—
Prasāra(ri)ṇi ୧ । ପସାରୁଣୀ (ଦେଖ)
1. Pasāruṇī (See)
୨ । ଲାଜକୁଳୀ (ଲତା) (ଦେଖ)
2. Lājakuḷī (creeper) (See)
୩ । ଲୁଟପାଟ ନିମନ୍ତେ ସୈନ୍ୟମାନଙ୍କର ସର୍ବତୋବ୍ୟାପ୍ତି ବା ଖେଦି ଯିବା—3 The diffusion or dispersion of an army for the purpose of looting.
୪ । ଶତ୍ରୁକୁ ଘେରିଯିବା—4. Surrounding an enemy.

**ପ୍ରସାରିତ**—ସଂ. ବିଣ. (ପ୍ର+ସୃ ଧାତୁ ଣିଚ୍+କର୍ମ. ତ)—୧ । ବିସ୍ତାରିତ—
Prasārita 1. Outstretched; extended.
୨ । ବ୍ୟାପ୍ତ; ବିକ୍ଷିପ୍ତ—2. Diffused.
୩ । ସମ୍ପାଦିତ—3. Completed; accomplished.

୪ । ବିକଶିତ—4. Expanded (Apte).
୫ । ବିକ୍ରି ନିମନ୍ତେ ବିସ୍ତାରିତ (ପଣ୍ୟଦ୍ରବ୍ୟ)—
5 Exhibited; exposed for sale.

ପ୍ରସାରିବା—ଦେ. କ୍ରି. (ସଂ. ପ୍ରସାର)—୧ । ବିସ୍ତାର କରିବା—
Prasāribā 1 To spread.
প্রসারিতকরা
पसारना
ଭଳେ ବସନ ପ୍ରସାରି, ଭୂଷଣ ବଳାକେ ଧରି । କବିସୂର୍ଯ୍ୟ. କଳୋସ୍ଥଳଚନ୍ଦ୍ର ।
୨ । (ଲକ୍ଷଣାର୍ଥ) କହିବା—2. (fig) To speak.
ବୋଧ ଅର୍ଥେ, କଣ୍ଡାଖଣ ପ୍ରସାରେ ଭାରତୀ । ଭଞ୍ଜ. ବୈଦେହୀଶବିଳାସ ।
୩ । ପଣ୍ୟଦ୍ରବ୍ୟାଦିକୁ ବିକ୍ରିପାଇଁ ମେଲାଇ ରଖିବା—
3. To exhibit or expose commodities for sale.

ପ୍ରସାରୀ—ସଂ. ବିଣ. (ପ୍ର+ସୃ ଧାତୁ+କର୍ତ୍ତୃ. ଇନ୍)—
Prasārī ୧ । ମୃଦୁମନ୍ଦଗମନଶୀଳ—1. Proceeding slowly; gliding.
(ପ୍ରସାରିଣୀ—ସ୍ତ୍ରୀ)
୨ । ପ୍ରସରଣଶୀଳ—2. Spreading; expanding.
୩ । ବ୍ୟାପ୍ତ—3. Spreading about.
୪ । ପ୍ରକାଶିତ—4. Unfolded.

ପ୍ରସିତ—ସଂ. ବି—ପୂଜ (ହି. ଶ)—Pus.
Prasita ସଂ. ବିଣ—୧ । ବଦ୍ଧ—
1. Bound; fastened (Apte).
୨ । ଅନୁରକ୍ତ—2 Devoted to (Apte).
୩ । ନିଯୁକ୍ତ—3. Engaged in (Apte).
୪ । ଆସକ୍ତ—4 Intent on; longing for (Apte).
୫ । ଅତି ନିର୍ମଳ—5. Very clear (Apte).

ପ୍ରସିତି—ସଂ. ବି—୧ । ରସି, ଦଉଡ଼ି (ହି. ଶ)—1. Rope.
Prasiti ୨ । ରଶ୍ମି (ହି. ଶ)—2. Rays; rein.
୩ । ଜ୍ୱାଳା (ହି. ଶ)—3. Flame.
୪ । ଜାଲ—4. Net (Apte).
୫ । ବନ୍ଧନ—5. Tie; ligament; fetter (Apte).
୬ । ଆକ୍ରମଣ; ଚଢ଼ାଉ—6. Attack, assault (Apte).
୭ । ନିକ୍ଷେପ—7. Throw; shot (Apte).
୮ । ପ୍ରସାର—8. Reach; extent (Apte).
୯ । ଧାରା; କ୍ରମ—9 Series; succession (Apte).
୧୦ । ଶକ୍ତି, ଅଧିକାର; କ୍ଷମତା—
10. Power; authority; influence (Apte).

ପ୍ରସିଦ୍ଧ—ସଂ. ବିଣ. (ପ୍ର+ସିଧ୍ ଧାତୁ=ସମ୍ପନ୍ନ ହେବା+କର୍ତ୍ତୃ. ତ)—
Prasiddha ୧ । ବିଖ୍ୟାତ—1. Celebrated; famous noted.
ପ୍ରସିଦ୍ଧି } ବି
ପ୍ରସିଦ୍ଧତା }
୨ । ଅଳଙ୍କୃତ; ଭୂଷିତ—
2. Adorned; ornamented.
୩ । ଉନ୍ନତ—3. Enlightened.
ଦେ. ଅ—ନିଶ୍ଚୟ—Certainly.

ଜଳଚନ୍ଦ୍ରେ ପୂର୍ଣ୍ଣଚନ୍ଦ୍ରକଲେ ଅବର ବା ସ୍ୱଚ୍ଛ
ଜାଣିବ ଏ ଗୂଢ଼ କଥା ମିଳିବ ପ୍ରସିଦ୍ଧ । ପ୍ରାଣୀ. ଚିନ୍ତାମଣିନେବେଦ୍ୟ ।

ପ୍ରସିଦ୍ଧି—ସଂ. ବି (ପ୍ର+ସିଧ୍ ଧାତୁ=ଖ୍ୟାତ ହେବା+ଭାବ. ତି)—
Prasiddhi ୧ । ଖ୍ୟାତି; ପ୍ରତିପତ୍ତି—
1. Fame; renown; celebrity.
୨ । ଭୂଷା; ଅଳଙ୍କାର—2. Ornament; decoration.
୩ । ସିଦ୍ଧି—3. Fulfilment; accomplishment.

ପ୍ରସିଦ୍ଧି ତ୍ୟାଗ—ସଂ. ବି. (ଅଳଙ୍କାର)—ଶବ୍ଦଦୋଷବିଶେଷ—
Prasiddhi tyāga A defect in composition.

[ ଦ୍ର—ଯେଉଁଠାରେ ସାଧାରଣ ବ୍ୟବହୃତ ଶବ୍ଦ ବ୍ୟବହୃତ ନ ହୋଇ ଅସାଧାରଣ ଶବ୍ଦର ପ୍ରୟୋଗ କରାଯାଇଥାଏ ସେଠାରେ ଏହି ଦୋଷ ଘଟେ; ଯଥା—

ବୃଥା ହାଣି ଥିଲ ମୃଗୀ ଅଙ୍ଗେ ବାଣରିକା ସୁଜଣ
ବ୍ୟାହାଣୀ ଭଙ୍ଗୀରୁ ଅଂଲ ସେହୁ ଏଣୁ ଅଙ୍ଗରେ ମନ । ଯଥାକାଥ. ଉଷା ।

ଏଠାରେ 'ବାଣ ବିନ୍ଧିବା' ଅର୍ଥରେ 'ବାଣ ହାଣିବା' ପ୍ରୟୋଗ ପ୍ରସିଦ୍ଧି-ତ୍ୟାଗ ଦୋଷଯୁକ୍ତ । ]

ପ୍ରସୁତ—ସଂ. ବିଣ. (ପ୍ର+ସୁ ଧାତୁ+ତ)—ଚିପୁଡ଼ା ଯାଇଥିବା (ହି. ଶ)—
Prasuta Pressed,

ପ୍ରସୁପ୍ତ—ସଂ. ବିଣ. ପୁଂ. (ପ୍ର+ସୁପ୍ତ)—ଗାଢ଼ନିଦ୍ରାଭିଭୂତ—
Prasupta Fast asleep.
(ପ୍ରସୁପ୍ତା—ସ୍ତ୍ରୀ) (ପ୍ରସୁପ୍ତି—ବି)

ପ୍ରସୂ—ସଂ. ବି. ସ୍ତ୍ରୀ. (ପ୍ର+ସୂ ଧାତୁ=ଜନ୍ମ କରିବା+କର୍ତ୍ତୃ. କ୍ୱିପ୍)—
Prasū ୧ । ଜନନୀ, ମାତା—1. Mother.
୨ । ଘୋଟକୀ—2. A mare.
୩ । କଦଳୀ ଗଛ—3. Plantain tree
୪ । ବିରୁତ୍; ମାଡ଼ିବା ଲତା—4. A spreading creeper.
୫ । କୋମଳ ତୃଣ—5 Soft grass (Apte).
୬ । କୁଶ ତୃଣ—6. Kuśa grass (Apte).
ବିଣ. ସ୍ତ୍ରୀ. (ଅନ୍ୟ ଶବ୍ଦ ସଙ୍ଗେ ବ୍ୟବହୃତ; ଯଥା—ବୀରପ୍ରସୂ)—
ଯେ ଜନ୍ମକରେ—Bringing forth; producing.

ପ୍ରସୂକା—ସଂ. ବି—୧ । ଅଶ୍ୱଗନ୍ଧା (ହି. ଶ) (ଦେଖ)
Prasūkā 1. Aśwagandhā (See)
୨ । ଘୋଡ଼ୀ; ଘୋଟକୀ—2 A mare (Apte).

ପ୍ରସୂତ—ସଂ ବି. ପୁଂ. (ପ୍ର+ସୂ ଧାତୁ+କର୍ମ. ତ)—
Prasūta ୧ । ସଂଜାତ, ଉତ୍ପନ୍ନ, ଜନ୍ମଗ୍ରହଣ କରିଥିବା—
(ପ୍ରସୂତା—ସ୍ତ୍ରୀ) 1. Born; produced; engendered.
୨ । (+କର୍ମ. ତ) ଉତ୍ପାଦକ (ହି. ଶ)—
2. Producing; productive.
ସଂ. ବି—୧ । ଫୁଲ—1. Flower.
୨ । ଉତ୍ପାଦକ ବସ୍ତୁ—2. Any productive source (Apte).
୩ । ସୂତିକା ରୋଗ; ପ୍ରସବ ପରେ ସ୍ତ୍ରୀମାନଙ୍କ ହେବା ଜ୍ୱର ଓ ଝାଡ଼ା ( ହି. ଶବ୍ଦସାଗର )—
3. Puerperal fever and dysentery.

**ପ୍ରସୂତା**—ସ. ବଣ. ସ୍ତ୍ରୀ. (ପ୍ର+ସୂ ଧାତୁ+କର୍ତ୍ତୃ. ତ+ସ୍ତ୍ରୀ. ଆ)—
Prasūtā ଯେଉଁ ସ୍ତ୍ରୀ ଅଳ୍ପଦିନ ହେଲା ସନ୍ତାନ ଜନ୍ମ କରଅଛି, (ପ୍ରସୂତ, ପ୍ରସୂତିକା—ଅନ୍ୟରୂପ) ପୋଷଣ୍ଡା ହୋଇଥିବା ସ୍ତ୍ରୀ; ଜାତାପତ୍ୟା—Recently confined; (a woman) who has been recently delivered of a child.

ସ. ବି. ସ୍ତ୍ରୀ—୧ । ମାତା; ଜନନୀ—1. Mother.

୨ । ଘୋଟକୀ—2. Mare (Apte).

**ପ୍ରସୂତି**—ସ. ବି. ସ୍ତ୍ରୀ. (ପ୍ର+ସୂ ଧାତୁ=ପ୍ରସବ କରିବା+କର୍ମ. ତି)—
Prasūti ୧ । ସନ୍ତାନ; ଅପତ୍ୟ—1. Offspring; child.

୨ । ଗର୍ଭ—2. Mother's womb.

୩ । (+ଭାବ. ତି) ପ୍ରସବ—
3. Generation; procreation; begetting.

୪ । ଉଦ୍ଭବ; ଉତ୍ପତ୍ତି; ଜନ୍ମ—4. Birth; production.

୫ । (+ଅପାଦାନ. ତି) କାରଣ—5 Cause.

୬ । ମାତା—6. Mother.

୭ । (ନାମ) ଦକ୍ଷ ପ୍ରଜାପତିଙ୍କ ସ୍ତ୍ରୀ; ସତୀଙ୍କ ମାତା—
7. Name of the wife of Daksha Prajāpati.

୮ । ଜନ୍ମଦାତା—8 Producer; generator; procreator (Apte).

**ପ୍ରସୂତିକା**—ସ ବି. (ପ୍ରସୂତି+କ+ଆ)—୧ । ପୋଷଣ୍ଡାଆଳୀ; ସଦ୍ୟଃ
Prasūtikā ପ୍ରସୂତା ସ୍ତ୍ରୀ—1 A woman recently delivered (Apte).

୨ । ଦୁଃଖ (ହି. ଶ)—2. Pain.

**ପ୍ରସୂତିଜ**—ସ. ବି. (ପ୍ରସୂତି=ପ୍ରସବ+ଜନ୍ ଧାତୁ+କର୍ତ୍ତୃ. ଅ)—
Prasūtija ୧ । ପ୍ରସବ ଜନ୍ୟ ଦୁଃଖ; (ପ୍ରକୃତିବାଦ)—
1. Pain resulting as a necessary consequence of birth (Apte).

୨ । ଦୁଃଖ; କ୍ଲେଶ—2. Pain; agony.

୩ । ଜାରଜ ସନ୍ତାନ—3. Bastard child.

**ପ୍ରସୂନ**—ସ. ବି. (ପ୍ର+ସୂ ଧାତୁ+କର୍ମ. ତ)—୧ । କୁସୁମ; ପୁଷ୍ପ—
Prasūna 1. Flower.

୨ । ମୁକୁଳ, କଢ଼—2. Bud; blossom.

୩ । ଫଳ—3 Fruit.

ସ. ବଣ—ଜାତ, ଉତ୍ପନ୍ନ—Born; produced.

**ପ୍ରସୃତ**—ସ. ବଣ. (ପ୍ର+ସୃ ଧାତୁ+କର୍ତ୍ତୃ. ତ)—୧ । ନିର୍ଗତ—
Prasṛuta 1. Gone forward.

(ପ୍ରସୃତ—ବ) ୨ । ବିସ୍ତୃତ; ବିସ୍ତାରିତ—
2. Stretched out; extended; spread.

୩ । ବ୍ୟାପ୍ତ—3. Diffused.

୪ । ପ୍ରବୃଦ୍ଧ; ବୃଦ୍ଧିପ୍ରାପ୍ତ—4 Increased; lengthened.

୫ । ନିଯୁକ୍ତ—5. Engaged in.

୬ । ସଂଯୁକ୍ତ—6. Attached to.

୭ । ପ୍ରଚଳିତ—7 Used; current.

୮ । ବେଗଗାମୀ—8. Swift, quick.

୯ । ପ୍ରଦର୍ଶିତ—9. Manifested (Apte).

୧୦ । ପ୍ରକାଶିତ—10. Displayed (Apte).

୧୧ । ବିନୀତ—11. Humble; modest (Apte).

୧୨ । ଇନ୍ଦ୍ରିୟ ଲୋଲୁପ; ଲମ୍ପଟ (ହି. ଶ) · 12 Sensual.

ସ. ବି—୧ । ଅର୍ଦ୍ଧାଞ୍ଜଳି, ପୋସ—1. Handful; the palm of the hand stretched out and hollowed (Apte).

୨ । ଦୁଇପଲ ଓଜନ—2 A measure of 2 Palas.

**ପ୍ରସୃତଜ**—ସଂ. ବି—ମହାଭାରତ ଅନୁସାରେ ବ୍ୟଭିଚାରରୁ ଉତ୍ପନ୍ନ ସନ୍ତାନ;
Prasṛutaja କୁଣ୍ଡ ଓ ଗୋଳକ (ହି. ଶ)—A particular class of sons born out of adultery; an adulterine (Apte).

**ପ୍ରସୃତି**—ସ. ବି. (ପ୍ର+ସୃ ଧାତୁ+ଭାବ. ତି)—୧ । ବିସ୍ତାର—
Prasṛuti 1. Extension.

୨ । ବ୍ୟାପ୍ତି—2. Diffusion.

୩ । ସନ୍ତାନ—3. Offspring.

୪ । ପୋସ; ଅର୍ଦ୍ଧାଞ୍ଜଳି—4. A handful.

**ପ୍ରସେକ**—ସ. ବି. (ପ୍ର+ସିଚ୍ ଧାତୁ+ଭାବ. ଅ)—୧ । ସେଚନ;
Praseka ସିଞ୍ଚିବା—1 Sprinkling.

୨ । ଦ୍ରବ ପଦାର୍ଥର ଯେଉଁ ଅଂଶ ଜଗିତ୍ଥ କରି ଟୋପା ଟୋପା ହୋଇ ପଡ଼େ—2 Droppings of a liquid.

୩ । ସୁଶ୍ରୁତୋକ୍ତ ଅସାଧ୍ୟ ରୋଗବିଶେଷ (ହି. ଶ)—
3. A kind of serious disease.

୪ । ଚରକୋକ୍ତ ନାକରୁ ଓ ମୁହଁରୁ ପାଣି ପଡ଼ିବା ରୋଗ (ହି. ଶ)—
4. A disease resulting int he issue of watery substance from the nose and the mouth; watering of the mouth and nose (Apte).

୫ । ଅଣଚର ପାତ୍ର—
5. The bowl of a spoon or ladle (Apte).

**ପ୍ରସେଦିକା**—ସ. ବି. (ପ୍ର+ସଦ୍ ଧାତୁ=ଗମନ କରିବା+କର୍ତ୍ତୃ. ଅକ+
Prasedikā ଆ)—କ୍ଷୁଦ୍ର ଉଦ୍ୟାନ (କ୍ଲାକେନ୍ସ)—
A small garden.

**ପ୍ରସେନଜିତ୍**—ସ. ବି (ନାମ)—ଭାଗବତୋକ୍ତ ସତ୍ରାଜିତଙ୍କର ଏକ ଭାଇ—
Prasenajit Name of a brother of Satrājita.
(ପ୍ରସେନ—ଅନ୍ୟରୂପ) [ ଦ୍ର—ଏ ଯଯାତିଙ୍କ ଜ୍ୟେଷ୍ଠପୁତ୍ର ଯଦୁଙ୍କ ବଂଶଧର ଥିଲେ (କ୍ଲାକେନ୍ସ) । ପ୍ରସେନଜିତ୍ଙ୍କ ନିକଟରେ ସ୍ୟମନ୍ତକ ମଣି ଥିଲା । ସେ ତାକୁ ପିନ୍ଧି ଦିନେ ଶିକାର କରିବାକୁ ଯାଇଥିଲେ । ଅରଣ୍ୟରେ ଗୋଟିଏ ସିଂହ ତାଙ୍କୁ ମାରି ତାଙ୍କଠାରୁ ମଣି ନେଲା । ଉକ୍ତ ସିଂହକୁ ଜାମ୍ବବାନ୍ ମାରି ଉକ୍ତ ମଣି ନେଲେ । ପ୍ରସେନଜିତ୍ଙ୍କୁ ମାରି ତାଙ୍କଠାରୁ ମଣି ଛଡ଼ାଇ ନେଇଛନ୍ତି ବୋଲି ସତ୍ରାଜିତ ଶ୍ରୀକୃଷ୍ଣଙ୍କୁ ଅପବାଦ ଦେବାରୁ ଶ୍ରୀକୃଷ୍ଣ ଏ ଅପବାଦକ୍ଷାଳନାର୍ଥ ବନକୁ ଯାଇ ଜାମ୍ବବାନଙ୍କଠାରେ ଉକ୍ତ ମଣି ଦେଖିଲେ । ଜାମ୍ବବାନ ଉକ୍ତ ମଣି

ସହିତ ଆପଣା କନ୍ୟା ଜାମ୍ବବତୀଙ୍କୁ ଶ୍ରୀକୃଷ୍ଣଙ୍କଠାରେ ଅର୍ପଣ କଲେ । ଶ୍ରୀକୃଷ୍ଣ ଜାମ୍ବବତୀଙ୍କୁ ବିବାହ କଲେ ଓ ସ୍ୟମନ୍ତକ ମଣିକୁ ସତ୍ରାଜିତଙ୍କୁ ଦେଲେ—ହି. ଶ. । ]

**ପ୍ରସେବ**—ସଂ. ବି. ( ପ୍ର+ସିବ୍ ଧାତୁ+ଅ )—୧ । ବୀଣାର ଭୂମି—
Praseba 1. The bowl of a lyre.
୨ । ସୂତାର ଥଳି—2. A cotton bag.

**ପ୍ରସ୍କନ୍ଦ**—ସଂ. ବି. ( ପ୍ର+ସ୍କନ୍ଦ୍ ଧାତୁ+ଭାବ. ଅ )—୧ । ଲୁହା, ଡିଆଁ
Praskanda (ହି. ଶ) —1. Jump; leap.
(ପ୍ରସ୍କନ୍ଦନ—ଅନ୍ୟରୂପ) ୨ । ( +କର୍ତ୍ତୃ ଅ ) ଶିବ ( ହି. ଶ. )—
2. Śiba.
୩ । ଜୁଲାବ, ବିରେଚକ ଔଷଧ—3. Purgative.
୪ । ଅତିସାର—4. Dysentery; diarrhoea.

**ପ୍ରସ୍କନ୍ନ**—ସଂ. ବିଣ. (ପ୍ର+ସ୍କନ୍ଦ୍ ଧାତୁ+କର୍ତ୍ତୃ. ତ)—୧ । ପତିତ(ଜ୍ଞାନେନ୍ଦ୍ର)—
Praskanna 1 Fallen; dropped.
୨ । ଗତ (ଜ୍ଞାନେନ୍ଦ୍ର)—2. Gone.
୩ । ନିଃସୃତ; ବିଗଳିତ (ଜ୍ଞାନେନ୍ଦ୍ର)—3. Issuing
୪ । ଶୁଷ୍କ (ଜ୍ଞାନେନ୍ଦ୍ର)—4 Dry.
୫ । ସମାଜର ନିୟମଭଙ୍ଗକାରୀ (ହି. ଶ)—
5. Infringing the rules of society
୬ । (+କର୍ମ-ତ) ପରାଜିତ—6. Defeated (Apte).
ସଂ. ବି—୧ । ଘୋଡ଼ାର ରୋଗବିଶେଷ—
1. A disease attacking horses.
[ ଦ୍ର—ଏ ରୋଗରେ ଘୋଡ଼ାର ଛାତି ଭାରି ହୁଏ ଓ ଶରୀର ସ୍ତବ୍ଧ ହୁଏ । ଚାଲିଲାବେଳେ ଘୋଡ଼ା ଛୋଟାଏ—ହି. ଶ । ]
୨ । ସମାଜଚ୍ୟୁତ ବ୍ୟକ୍ତି—2. An outcast (Apte).

**ପ୍ରସ୍ତ**—ଦେ. ବି. (ସଂ. ପ୍ରସ୍ଥ)—୧ । ପ୍ରସ୍ଥ, ଚଉଡ଼ା—
Prasta 1. Breadth; width.
চৌড়াই, পরস্ত चवड़ाइ
পরত ୨ । (ସଂ. ପଟଳ; ସ୍ତର) ପରସ୍ତ; ପାଖୁଡ଼ା; ସ୍ତର—
पर्त, परत 2. Layer; fold; plait.
বাব दफा ୩ । ଥର—3. Time.
সাজ, সেট ୪ । ଅଳଙ୍କାର, ବାସନ ଆଦିର ଏକ ସଜ ଓ ସାର—
जथा 4. A set ( of utensils, ornaments etc).
ପ୍ରାଦେ. (ବାଲେଶ୍ୱର) ବି—ଖଞ୍ଜା; ଅଗଣା—Courtyard.

ଭିତର ପ୍ରସ୍ତରେ ମାଇକିନିଅଗୁଡାକଙ୍କର କବରବାଦର ପାଟି ।
ଫକୀରମୋହନ. ଗଳ୍ପସ୍ୱଳ୍ପ ।

**ପ୍ରସ୍ତବ**—ସଂ. ବି (ପ୍ର+ସ୍ତବ)— ୧ । ପ୍ରଶଂସାପୂର୍ଣ୍ଣ ସ୍ତବ—
Prastaba 1. A hymn of praise (Apte); hallelujah.
୨ । ଉପଯୁକ୍ତ ସମୟ; ସୁଯୋଗ —
2. A fit time or opportunity (Apte)

**ପ୍ରସ୍ତର**—ସଂ. ବି ( ପ୍ର+ସ୍ତୃ ଧାତୁ=ଆଚ୍ଛାଦନ କରିବା+କର୍ତ୍ତୃ. ଅ )—
Prastara ୧ । ପାଷାଣ; ପଥର—1. Stone.
୨ । ରତ୍ନ; ମଣି—2. Gem; jewel.
୩ । ପୁଷ୍ପ ପଲ୍ଲବାଦିରଚିତ ଶଯ୍ୟା—
3. A bed made of flowers and leaves.
୪ । ତୃଣ ଆଦିର ଗୋଛା (ହି. ଶ)—
4. A sheaf or handful of grass.
୫ । ଶଯ୍ୟା; ବିଛଣା (ହି. ଶ.)—5. Bed.
୬ । ଚମଡ଼ାର ଥଳି ( ହି. ଶ. )—6. Leathern bag.
୭ । ସମତଳ ( ହି. ଶ. )—
7. A flat surface; plain (Apte).
୮ । ପୁସ୍ତକର ପରିଚ୍ଛେଦ—
8 Section or paragraph of a work (Apte).

**ପ୍ରସ୍ତରଣ(ଣା)**—ସଂ. ବି. ( ପ୍ର+ସ୍ତୃ ଧାତୁ+କର୍ତ୍ତୃ. ଅନ+ଆ )—
Prastaraṇa(ṇā) ୧ । ଶଯ୍ୟା—1. A bed (Apte).
୨ । ଆସନ—2. A seat (Apte).
୩ । (+ଭାବ. ଅନ+ଆ) ବିଛାଇବା, ବିସ୍ତୃତ କରିବା—
3 Act of spreading.

**ପ୍ରସ୍ତରଫଳକ**—ସଂ. ବି ( ୬ଷ୍ଠୀ ତତ୍, ପ୍ରସ୍ତର+ଫଳକ )—୧ । ପଥରର
Prastaraphaḷaka ପଟା—1 A slab of stone.
୨ । ସ୍ଲେଟ୍—2 Slate.

**ପ୍ରସ୍ତରମୟ**—ସଂ. ବିଣ. (ପ୍ରସ୍ତର+ମୟ)—୧ । ପ୍ରସ୍ତର ନିର୍ମିତ—
Prastaramaya 1 Made of stone.
୨ । ପଥୁରିଆ; ପ୍ରସ୍ତରବହୁଳ—2. Stony; full of stones.

**ପ୍ରସ୍ତାବ**—ସଂ. ବି. (ପ୍ର+ସ୍ତୁ ଧାତୁ=ସ୍ତବ କରିବା; ଆରମ୍ଭ କରିବା+
Prastāba ଭାବ. ଅ)—୧ । ପ୍ରସଙ୍ଗ; ବିଷୟ—
ପ୍ରସ୍ତାବିତ, ପ୍ରସ୍ତାବ୍ୟ } ବିଣ 1. Subject; matter, topic.
୨ । ଉଲ୍ଲେଖ—2. Mention of a matter.
୩ । ପ୍ରାକ୍‌କଥନ, ଅବତାରଣା; କଥାରମ୍ଭ—
3. Introduction; preliminary mention of a matter.
୪ । ପରିଚ୍ଛେଦ; ପ୍ରକରଣ—4. Chapter; section.
୫ । ସୁଯୋଗ—5. Opportunity; proper or fit season.
୬ । ଅବସର—6. Occasion.
୭ । ସାମବେଦର ଅଙ୍ଗବିଶେଷ—
7. A part of the Sāma Veda.
୮ । ଆରମ୍ଭ—8. Beginning; commencement (Apte).
୯ । ପ୍ରସ୍ତାବନା; ନାଟକାଦିର ଅବତାରଣା—
9. The prologue of a drama (Apte).
୧୦ । ଚର୍ଚ୍ଚା; ଅବସର ବେଳେ କଥିତ ବାକ୍ୟ (ହି. ଶ)—
10. Discussion.
୧୧ । ପ୍ରସ୍ତୋତା ନାମକ ଋତ୍ୱିକ୍‌ଦ୍ୱାରା ଗୀତ ସାମବେଦର ଗାନ (ହି. ଶ)—11. The prelude or introductory song of the Sāma Veda.

ଦେ. ବି. (ଆଧୁନିକ)—କୌଣସି ସଭାରେ ଆଲୋଚିତ ବା
ପ୍ରস্তাব ଗୃହୀତ ହେବା ପାଇଁ ଉପସ୍ଥାପିତ ବିଷୟ—
**प्रस्ताव** A proposal made at a meeting or assembly.

[ ଦ୍ର—ସଭାରେ ଜଣେ ଗୋଟିଏ ପ୍ରସ୍ତାବ (proposal) ଉପସ୍ଥାପିତ କରେ; ତତ୍ପରେ ତାକୁ ଅନ୍ୟ କେହି ଅନୁମୋଦନ (seconding) ଓ ସମର୍ଥନ (supporting) କରନ୍ତି, ତତ୍ପରେ ସଭାସ୍ଥ ବ୍ୟକ୍ତିମାନଙ୍କ ମତ (vote) ନିଆଯାଇ ତାହା ଗୃହୀତ (passed) ବା ନାମଞ୍ଜୁର (rejected or lost) ହୁଏ । ]

**ପ୍ରସ୍ତାବ ଆଗତ କରିବା**—ଦେ. କ୍ରି—ସଭାସମିତିରେ କୌଣସି ପ୍ରସ୍ତାବ ପ୍ରଥମେ ପକାଇବା; ପ୍ରସ୍ତାବ କରିବା—To put a proposal to a meeting.
Prastāba āgata karibā
ପ୍ରସ୍ତାବ ଉପସ୍ଥାପିତ କରିବା } ଅନ୍ୟରୂପ
ପ୍ରସ୍ତାବ ଆଣିବା }

[ ଦ୍ର—ପ୍ରସ୍ତାବ ସଭାରେ ଉପସ୍ଥାପିତ ହେବାରେ ତାହାକୁ ଅନ୍ୟମାନେ ଅନୁମୋଦନ କରନ୍ତି (to second), ସମର୍ଥନ କରନ୍ତି (to support), କିମ୍ବା କାହାର ଉକ୍ତ ପ୍ରସ୍ତାବରେ ଆପତ୍ତି ଥିଲେ କେହି ଆପତ୍ତି କରେ (to oppose), କିମ୍ବା ସଂଶୋଧକ ପ୍ରସ୍ତାବ ଆଗତ କରେ (to propose an amendment), ତା ପରେ ସଂଶୋଧିତ ପ୍ରସ୍ତାବ ବା ସଂଶୋଧିତ ପ୍ରସ୍ତାବ ନ ଥିଲେ ମୂଳ ପ୍ରସ୍ତାବ ସଭାସ୍ଥ ବ୍ୟକ୍ତିମାନଙ୍କ ମତ ପାଇଁ ସଭାରେ ଉପସ୍ଥାପିତ ହୁଏ (to put to the vote), ସର୍ବଶେଷରେ ପ୍ରସ୍ତାବ ସପକ୍ଷରେ ଅଧିକାଂଶ ବ୍ୟକ୍ତିଙ୍କ ମତ ହେଲେ ତାହା ଗୃହୀତ (passed) ହୁଏ, ଅନ୍ୟଥା ତାହା ନାମଞ୍ଜୁର (lost or defeated) ହୁଏ । ]

**ପ୍ରସ୍ତାବକ**—ସଂ. ବିଂ. ପୁଂ. (ପ୍ର + ସ୍ତୁ ଧାତୁ ଣିଚ୍ + କର୍ତ୍ତୃ. ଅକ)—
Prastābaka
(ପ୍ରସ୍ତାବିକା—ସ୍ତ୍ରୀ)
୧ । ଯେ ପ୍ରସ୍ତାବ ଆଗତ କରେ—1. Proposing.
୨ । (ଆଧୁନିକ) ସଭାରେ କୌଣସି ପ୍ରସ୍ତାବର ଉପସ୍ଥାପକ—2 Making a proposal at a meeting
ସଂ. ବି—ପ୍ରସ୍ତାବ ଉପସ୍ଥାପିତ କରିବା ବ୍ୟକ୍ତି—Proposer.

**ପ୍ରସ୍ତାବ କରିବା**—ଦେ. କ୍ରି—ସଭାଆଦିରେ କୌଣସି ବିଷୟ ଉତ୍ଥାପନ କରିବା—To make a proposal; to propose
Prastāba karibā
(ପ୍ରସ୍ତାବ ବାଢ଼ିବା—ଅନ୍ୟରୂପ)
প্রস্তাব করা **प्रस्ताव करना**

**ପ୍ରସ୍ତାବ ଗ୍ରହଣ**—ସଂ. ବି. (ଆଧୁନିକ, ୬ଷ୍ଠୀ ତତ୍)—ସଭାରେ ଉପସ୍ଥାପିତ ପ୍ରସ୍ତାବର ସଭ୍ୟମାନଙ୍କ ଦ୍ୱାରା ମଞ୍ଜୁର କରାଯିବା—The passing of a proposal.
Prastāba grahaṇa

[ ଦ୍ର—ସଭା ସମିତିରେ ଉପସ୍ଥାପିତ ପ୍ରସ୍ତାବ ସମ୍ପର୍କରେ କେତେଗୁଡ଼ିଏ ଶବ୍ଦ ଭାଷାରେ ବ୍ୟବହୃତ ହୁଏ; ଯଥା—ପ୍ରସ୍ତାବ ଅନୁମୋଦନ, ପ୍ରସ୍ତାବ ସମର୍ଥନ, ପ୍ରସ୍ତାବ ସଂଶୋଧନ, ପ୍ରସ୍ତାବ ନାମଞ୍ଜୁର । ]

**ପ୍ରସ୍ତାବନ**—ସଂ. ବି. (ପ୍ର + ସ୍ତୁ ଧାତୁ + ଭାବ. ଅନ)—
Prastābana
ପ୍ରସ୍ତାବ କରିବା କର୍ମ—The act of proposing.

**ପ୍ରସ୍ତାବନା**—ସଂ. ବି. (ପ୍ର + ସ୍ତୁ ଧାତୁ ଣିଚ୍ = ସ୍ତାବି ଧାତୁ + ଭାବ. ଅନ + ସ୍ତ୍ରୀ. ଆ)—୧ । ଉପକ୍ରମ; ଆରମ୍ଭ; ଉତ୍ଥାପନ—1. Commencement.
Prastābanā
୨ । ଅବତାରଣା—2. Introduction.
୩ । ଗ୍ରନ୍ଥାଦିର ଆରମ୍ଭରେ ଗ୍ରନ୍ଥବିଷୟର ସୂଚନା—3. Preface.
୪ । ନାଟକାଦି ଗ୍ରନ୍ଥରେ ଅଭିନୟ ଆରମ୍ଭରେ ନଟର ଅବତାରଣା ମଙ୍ଗଳାଚରଣ—4. Prologue; prelude.
୫ । ନାଟକାଭିନୟର ଆରମ୍ଭରେ ନଟ, ନଟୀ, ସୂତ୍ରଧାରଆଦିଙ୍କ ମଧ୍ୟରେ କଥୋପକଥନ ଛଳରେ ନାଟକୀୟ ପ୍ରସଙ୍ଗର ବା ଗ୍ରନ୍ଥକାରଙ୍କ ପରିଚୟ ଦେବା—5 An introductory dialogue between the head acter and the actress introducing the audience to the incidents of the drama (Apte).

[ ଦ୍ର—ନାନ୍ଦୀ ପରେ ସୂତ୍ରଧାର କାବ୍ୟାର୍ଥବ୍ୟଞ୍ଜକ ସୁମଧୁର ବଚନ ଦ୍ୱାରା ସାମାଜିକମାନଙ୍କର ଚିତ୍ତରଞ୍ଜନ କରନ୍ତି କିମ୍ବା ଋତୁବିଶେଷକୁ ଅବଲମ୍ବନ କରି ନଟୀମୁଖରେ ଗୋଟିଏ ଗୀତ ବୋଲାନ୍ତି । ତତ୍ପରେ ନଟୀ, ବିଦୂଷକ ଓ ସୂତ୍ରଧାର ମିଳିତ ହୋଇ ପ୍ରକୃତ ପ୍ରସ୍ତାବବିଷୟକ କଥୋପକଥନ ଆରମ୍ଭ କରନ୍ତି । ଏହାକୁ ପ୍ରସ୍ତାବନା ବୋଲାଯାଏ । ନାଟକମାନଙ୍କରେ ୫ ପ୍ରକାର ପ୍ରସ୍ତାବନା ଦେଖାଯାଏ, ଯଥା—ଉଦ୍‌ଘାତକ, କଥୋଦ୍‌ଘାତ, ପ୍ରୟୋଗାତିଶୟ, ପ୍ରବୃତ୍ତକ ଓ ଅବଲଗିତ । ]

**ପ୍ରସ୍ତାବ ଭଙ୍ଗ**—ସଂ. ବି. (ଆଧୁନିକ; ୬ଷ୍ଠୀ ତତ୍)—କୌଣସି ଉତ୍ଥାପିତ ପ୍ରସ୍ତାବର ବିରୋଧାଚରଣ—Vetoing of a proposal; acting contrarily to a proposal.
Prastāba bhaṅga

**ପ୍ରସ୍ତାବିକା**—ସଂ. ବିଣ. ସ୍ତ୍ରୀ (ପ୍ରସ୍ତାବକ + ସ୍ତ୍ରୀ. ଆ)—'ପ୍ରସ୍ତାବକ'ର ସ୍ତ୍ରୀଲିଙ୍ଗ Feminine of 'Prastābaka'.
Prastābikā
ସଂ. ବି. (ଆଧୁନିକ ପ୍ରୟୋଗ)—କୌଣସି ଅନୁଷ୍ଠାନର ପୂର୍ବାଭାସ ପତ୍ର; ଅନୁଷ୍ଠାନ ପତ୍ର—Prospectus.

**ପ୍ରସ୍ତାବିତ**—ସଂ. ବିଣ (ପ୍ରସ୍ତାବ + କୃତାର୍ଥେ. ଇତ)—୧ । ପ୍ରସ୍ତାବ କରାଯାଇ ଥିବା—1. Proposed.
Prastābita
୨ । ଉଲ୍ଲିଖିତ—2. Mentioned.
୩ । ଉତ୍ଥାପିତ—3. Introduced.
୪ । ପ୍ରସଙ୍ଗକ୍ରମେ ଉକ୍ତ—4. Referred to.

**ପ୍ରସ୍ତାର**—ସଂ. ବି. (ପ୍ର + ସ୍ତୃ ଧାତୁ ଣିଚ + ଭାବ. ଅ)—୧ । ବିସ୍ତାର—1. Spreading; diffusion.
Prastāra

ନଳସ୍ୱ ଧରେ ମଳୟ ଧର ଶୋଭ ଚନ୍ଦନ ଗନ୍ଧ ପ୍ରସ୍ତାର ।
ଉଞ୍ଜ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।

୨ । ଆଧିକ୍ୟ; ବୃଦ୍ଧି (ହି. ଶ.)—2, Increase.
୩ । ପତ୍ର, ପୁଷ୍ପ, ତୃଣାଦିରଚିତ ଶଯ୍ୟା (ହି. ଶ.)—3. A bed of grass, leaves or flowers.
୪ । ପରସ୍ତ; ସ୍ତର (ହି. ଶ.)—4. Layer.

୫ । (+କରଣ. ଅ) ସିଢ଼ି (ହି. ଶ.)—
5. Ladder; flight of steps.
୬ । ସମତଳ (ହି. ଶବ୍ଦସାଗର)—
6. A plain; a flat surface.
୭ । ଘାସ ବଣ (ହି. ଶବ୍ଦସାଗର)—
7. A place overgrown with grass
୮ । ବୁଦାଳଆ ଜଙ୍ଗଲ— 8. Thicket wood (Apte).
୯ । (ଛନ୍ଦଃ ଶାସ୍ତ୍ର) ଛନ୍ଦମାନଙ୍କର ବିଭିନ୍ନ ଭେଦ, ରୂପ ଓ ଲଘୁ ଗୁରୁ ବର୍ଣ୍ଣ ସଂଖ୍ୟା ଆଦି ଲେଖା ଥିବା ଫଳକ—9. (prosody) A tabular representation of the long and short vowels of a metre with all possible varieties (Apte).

**ପ୍ରସ୍ତିର**—ସ. ବି.—ପତ୍ର ଓ ଫୁଲ ଆଦିରେ ରଚିତ ଶଯ୍ୟା—
Prastira A bed of leaves and flowers (Apte).

**ପ୍ରସ୍ତୀତ(ମ)**—ସ. ବିଣ.—୧ । ଶବ୍ଦାୟମାନ, ଶବ୍ଦଉତ୍ପାଦକ—
Prastīta(ma) 1. Sounded; making a sound (Apte.)
୨ । ଘନସମାବିଷ୍ଟ—
2. Crowded together; swarming (Apte.)

**ପ୍ରସ୍ତୁତ**—ସ. ବିଣ. (ପ୍ର+ସ୍ତୁ ଧାତୁ+କର୍ମ. ତ)—୧ । ଉପସ୍ଥିତ, ବିଦ୍ୟମାନ—1. Present; impending.
Prastuta
୨ । ଉଲ୍ଲିଖିତ—2. Above-mentioned; above-said.
୩ । ଆଲୋଚିତ ହେଉଥିବା—3. Under discussion.
୪ । ନିର୍ମିତ; ତିଆରି—4 Made; constructed.
୫ । ସଜ୍ଜିତ—5. Furnished.
୬ । ଉନ୍ମୁଖ; ତତ୍ପର—
6. Ready; prepared; prompt.
୭ । ପ୍ରଶଂସିତ—7. Praised; eulogised (Apte).
୮ । ଅଭିଲଷିତ— 8. Desired; expected.
୯ । ପ୍ରତ୍ୟୁତ୍ପନ୍ନ, ପୁନର୍ବାର ଜାତ—9 Reproduced.
୧୦ । ସୁଦକ୍ଷ—10. Expert; skilful.
୧୧ । ଯଥାର୍ଥ, ପ୍ରକୃତ—11. Real; actual.
୧୨ । ପ୍ରାସଙ୍ଗିକ—12 Relating to the subject matter; relevant.
୧୩ । ସମାହିତ; ସମ୍ପାଦିତ, ନିଷ୍ପନ୍ନ—
13. Accomplished; effected; executed.
୧୪ । ଆରବ୍ଧ—14. Commenced; begun (Apte).
୧୫ । ଘଟିଥିବା—15. Happened (Apte).
୧୬ । ଉକ୍ତ; କଥିତ—16 Spoken (Apte).
୧୭ । ପ୍ରସ୍ତାବିତ—17. Proposed (Apte).
୧୮ । ଉଦ୍ୟତ—18. Ready; prepared (Apte).
୧୯ । (ଅଳଙ୍କାର ଶାସ୍ତ୍ର)—ଆଲୋଚିତ, ଯାହାର ଆଲୋଚନା କରାଯାଉଅଛି—19. (rhetoric) Forming the subject of discussion (Apte).
୨୦ । ଉପଯୁକ୍ତ (ହି. ଶ)—20. Fit.
ସଂ. ବି.—ଆଲୋଚିତ ବିଷୟ—The matter in hand; the subject under discussion.

**ପ୍ରସ୍ତୁତ ହେବା**—ଦେ. କ୍ରି.—କୌଣସି ଉପସ୍ଥିତ କାର୍ଯ୍ୟ ନିମନ୍ତେ ତତ୍ପର ହେବା—To get one's self ready for an impending matter; to be prepared for a thing
Prastuta hebā

**ପ୍ରସ୍ତୁତାଙ୍କୁର**—ସଂ. ବି.—କାବ୍ୟାଲଙ୍କାରବିଶେଷ—
Prastutāṅkura A figure of speech in which a reference is made to a passing circumstance to bring out something latent in the hearer's mind

**ପ୍ରସ୍ତୁତାଲଂକାର**—ସଂ. ବି.—ଯେଉଁ ଅଳଙ୍କାରରେ ପ୍ରସ୍ତୁତ (ଉପସ୍ଥିତ) ବସ୍ତୁ ସମ୍ବନ୍ଧେ କେତେକ କଥା କହି ବକ୍ତାର ଅଭିପ୍ରାୟ ଅନ୍ୟ ପ୍ରସ୍ତୁତ ବସ୍ତୁ ପ୍ରତି ଖଟା ଯାଏ—(ହି. ଶ)—A kind of figure of speech, in which a reference is made to the subject in hand which may to applicable to another.
Prastutālaṅkāra

**ପ୍ରସ୍ତୁତି**—ସଂ. ବି. (ପ୍ର+ସ୍ତୁ ଧାତୁ+ଭାବ. ତି)—୧ । ପ୍ରଶଂସା—
Prastuti 1. Praise.
୨ । ପ୍ରସ୍ତାବନା—2 Prelude; prologue.
୩ । ଉପସ୍ଥିତି—3. Presence.
୪ । ନିଷ୍ପତ୍ତି—4 Decision.

**ପ୍ରସ୍ଥ**—ସ. ବି. (ପ୍ର+ସ୍ଥା ଧାତୁ+ଅଧିକରଣ. ଅ)—୧ । ଶସ୍ୟାଦିର ପରିମାଣବିଶେଷ; ୪୮ ଅଞ୍ଜୁଳା; ୩୨ ପଳ—
Prastha 1. A measure of corn; about 48 double handfuls.
[ ଦ୍ର—ଏହି ପରିମାଣ ୨ ପ୍ରକାର; ଓଜନର ପରିମାଣ ଓ ମାପର ପରିମାଣ । ଏ ପରିମାଣରେ ମତଭେଦ ଲକ୍ଷିତ ହୁଏ । କେହି କହନ୍ତି ୪ କୁଡ଼ବ=୧ ପ୍ରସ୍ଥ; କେହି କହନ୍ତି ୨ ଶରାବ=୧ ପ୍ରସ୍ଥ; କେହି କହନ୍ତି ୪ ପ୍ରସ୍ଥ=୧ ଆଢ଼କ । ବମନ ବିରେଚନ ଓ ଶୋଣିତ ମୋକ୍ଷଣରେ କେହି କହନ୍ତି ୧ ପ୍ରସ୍ଥ=୧୩୪ ପଳ; କେହି କହନ୍ତି =୬ ପଳ, କେହି କହନ୍ତି=$\frac{1}{16}$ ଦ୍ରୋଣ ହି. ଶ । ]
୨ । ଅଧିତ୍ୟକା; ପର୍ବତ ଉପରସ୍ଥ ସମତଳ ଭୂମି—
2 Table land on the top of a mountain; plateau.
୩ । ଉପତ୍ୟକା—3. Valley; dale, glen.
୪ । ବିସ୍ତୃତ ସମତଳ ଭୂମି—4. Level expanse.
୫ । ୧୨ ଅଙ୍ଗୁଳ ପରିମିତ ସ୍ଥାନ—
5. A space of 12 fingers.
୬ । ପରିସର, ବିସ୍ତାର—6 Width; expanse.
୭ । ଓସାର—7. Breadth.
୮ । ବାସନର ଏକସାର—8. A set of utensils.
୯ । ପରିଚ୍ଛଦର ଏକସାର—9. A suit of clothes.

୧୦ । ପାହାଡ଼ର ଉଚ୍ଚ ତଟ, ଅତଡ଼ (ହ୍ରି. ଶ)—
10 Precipice.
ଦେ. ବି—ପ୍ରସ୍ତ (ଦେଖ)—Prasta (See)

**ପ୍ରସ୍ଥାନ**—ସଂ. ବି (ପ୍ର+ସ୍ଥା ଧାତୁ+ଭାବ. ଅନ)—୧ । ଗମନ; ଯିବା—
Prasthāna 1. Going, proceeding.
(ପ୍ରସ୍ଥାପନ—ଣିଜନ୍ତରୂପ) ୨ । କୌଣସି ସ୍ଥାନ ତ୍ୟାଗ କରି ଯିବା—
ପ୍ରସ୍ଥିତ, ପ୍ରସ୍ଥାନୀୟ } ବିଣ 2 Departure; exodus.
୩ । ଯାତ୍ରା—3. Starting from a place, procession
୪ । ସୈନ୍ୟମାନଙ୍କର ଯୁଦ୍ଧାର୍ଥ ଗମନ—
4. The march of an army.
୫ । ଶତ୍ରୁର ଅଭିମୁଖରେ ବିଜିଗୀଷୁର ଯାତ୍ରା—
5 The march of an assailant, expedition
୬ । ହୀନବ୍ୟକ୍ତିଙ୍କ ଚରିତବର୍ଣ୍ଣନାତ୍ମକ ୨ ଅଙ୍କଯୁକ୍ତ ନାଟକବିଶେଷ—
6. An inferior kind of drama in 2 acts.
୭ । ଶୈଳୀ; ପଦ୍ଧତି—7. Mode; system.
୮ । ମୃତ୍ୟୁ—8 Death (Apte).
୯ । ପ୍ରେରଣ—9. Sending away; despatching (Apte).
୧୦ । (+ଅଧିକରଣ. ଅନ) ମାର୍ଗ (ହ୍ରି. ଶ)—10. Way, road.

**ପ୍ରସ୍ଥାପନ(ନା)**—ସଂ. ବି. (ପ୍ର+ସ୍ଥା ଧାତୁ ଣିଚ୍+ଭାବ. ଅନ)—
Prasthāpana(nā) ୧ । ପଠାଇବା; ପ୍ରେରଣ—
ପ୍ରସ୍ଥାପିତ, ପ୍ରସ୍ଥାପନୀୟ } ବିଣ 1. Sending away; despatching,
୨ । ରାଜକୀୟ ଦୌତ୍ୟ କାର୍ଯ୍ୟରେ ନିୟୋଗ—
2 Appointment to an embassy.
୩ । ଅନ୍ୟର ଗବାଦି ପଶୁସହି ପଳାୟନ—3. Harrying; cattle-lifting, carrying away of cattle.
୪ । ପ୍ରମାଣିତ କରିବା—4. Proving; demonstrating (Apte).
୫ । ନିୟୋଜନ—5 Using; employing (Apte).

**ପ୍ରସ୍ଥାପିତ**—ସଂ. ବିଣ (ପ୍ର+ସ୍ଥାପିତ)—୧ । ଦୌତ୍ୟ କାର୍ଯ୍ୟରେ ପ୍ରେରିତ—
Prasthāpita 1 Despatched on an errand.
(ପ୍ରସ୍ଥାପନ—ବି) ୨ । ପଠା ଯାଇଥିବା, ପ୍ରେରିତ—2. Sent.

**ପ୍ରସ୍ଥାୟୀ**—ସଂ. ବିଣ. ପୁଂ (ପ୍ର+ସ୍ଥା ଧାତୁ+ଇନ; ୧ମା. ୧ବ)—
Prasthāyi ୧ । ଯେ ଯାତ୍ରା କରୁଅଛି—
(ପ୍ରସ୍ଥାୟିନୀ—ସ୍ତ୍ରୀ) 1 Departing; starting.
୨ । ଭ୍ରମଣକାରୀ—2. Travelling, going (Apte).

**ପ୍ରସ୍ଥିତ**—ସଂ ବିଣ. ପୁଂ (ପ୍ର+ସ୍ଥିତ)—୧ । ଚାଲି ଯାଇଥିବା, ଗତ—
Prasthita 1. Departed, gone; set out.
(ପ୍ରସ୍ଥିତା—ସ୍ତ୍ରୀ) ୨ । ଗମନୋଦ୍ୟତ—2. Ready to depart.
(ପ୍ରସ୍ଥିତ—ବି)

**ପ୍ରସ୍ନ**—ଗ୍ରା. (ପଦ୍ୟ) ବିଣ (ସଂ. ପ୍ରସନ୍ନ)—ପ୍ରସନ୍ନ (ଦେଖ)
Prasna Prasanna (See)
କମଳ ପ୍ରସ୍ନ ଚରଣ । ବିଧାନ ସେ ଅନକ୍ଷଣ—
ଭକ୍ତ- ବୈଦେହୀଶବିଳାସ ।

ସଂ. ବି (ପ୍ର+ସ୍ନା ଧାତୁ+ ଅଧିକରଣ. ଅ)—ସ୍ନାନପାତ୍ର (ହ୍ରି. ଶ)—
A vessel for bathing (Apte).

**ପ୍ରସ୍ନବ**—ସଂ ବି (ପ୍ର+ସ୍ନୁ ଧାତୁ=ବହିବା+ଭାବ. ଅ)—୧ । ଧାର
Prasnaba ବହିବା—1. Flowing (Apte).
୨ । ତରଳ ପଦାର୍ଥର ଧାର—
2. A stream or flow (as of milk) (Apte)
୩ । କ୍ଷରଣ, ସ୍ରାବ—3 Exudation (Apte)

**ପ୍ରସ୍ନୁଷା**—ସଂ. ବି. ସ୍ତ୍ରୀ (ପ୍ର+ସ୍ନୁଷା; ତୁଲ. ପ୍ରମାତାମହ, ପ୍ରପିତାମହ)—
Prasnushā ନାତୁଣୀବୋହୂ, ନାତିର ସ୍ତ୍ରୀ—Grandson's wife; one's grand daughter-in-law.

**ପ୍ରସ୍ପନ୍ଦନ**—ସଂ. ବି (ପ୍ର+ସ୍ପନ୍ଦନ)—ଥରିବା, ଦକଦକ ହେବା, କମ୍ପନ—
Praspandana Palpitating; vibrating; trembling

**ପ୍ରସ୍ପେକ୍ଟସ୍**—ବୈଦେ. ବି (ଇଂ)—କୌଣସି ଅନୁଷ୍ଠାନର ଆରମ୍ଭ ପୂର୍ବରୁ
Praspektas ପ୍ରସ୍ତୁତ ବିବରଣ ପତ୍ର—Prospectus,
ପ୍ରସ୍ପେକ୍ଟସ୍ प्रास्पेक्टस

**ପ୍ରସ୍ଫୁଟ**—ସଂ. ବିଣ (ପ୍ର+ସ୍ଫୁଟ୍ ଧାତୁ=ବିକଶିତ ହେବା+କର୍ତ୍ତୃ ଅ)—
Prasphuta ୧ । ଉତ୍ତମରୂପେ ଫୁଟିଥିବା, ବିକଶିତ; ପ୍ରଫୁଲ୍ଲ—
(ପ୍ରସ୍ଫୁଟିତ—ଅନ୍ୟରୂପ) 1. Full blown; expanded.
୨ । ପ୍ରକାଶିତ; ପ୍ରକଟିତ—
2. Manifest, published; divulged.
୩ । ସୁସ୍ପଷ୍ଟ—3. Plain; clear; evident.

**ପ୍ରସ୍ଫୁରକ**—ସଂ. ବି (ଆଧୁନିକ ବ୍ୟବହାର)—ଦାପକ ପଦାର୍ଥବିଶେଷ,
Prasphuraka ଅମ୍ଳଜାନ ବାଷ୍ପ ଯୋଗେ ଜଳ ଉଠିବା ପଦାର୍ଥ-ବିଶେଷ—Phosphorus.

**ପ୍ରସ୍ଫୁରିତ**—ସଂ. ବିଣ (ପ୍ର+ସ୍ଫୁରିତ)—୧ । ଫୀତ, ଫୁଲି ଉଠିବା—
Prasphurita 1. Swollen.
୨ । ମୁକୁଳିତ—2. Budded
୩ । ବିକଶିତ—3. Full blown
୪ । ଥରୁଥିବା; କମ୍ପିତ—4. Shaking; shivering quivering, trembling.

**ପ୍ରସ୍ଫୁରିତାଧର**—ସଂ. ବିଣ. ପୁଂ (ବହୁବ୍ରୀହି, ପ୍ରସ୍ଫୁରିତ+ଅଧର)—
Prasphuritādhara (କ୍ରୋଧ ଯୋଗୁଁ) ଯାହାର ଓଠ ଥରୁ
(ପ୍ରସ୍ଫୁରିତାଧରା—ସ୍ତ୍ରୀ) ଥାଏ, କମ୍ପିତାଧର—
With quivering lips.

**ପ୍ରସ୍ଫୋଟନ**—ସଂ. ବି (ପ୍ର+ସ୍ଫୁଟ୍ ଧାତୁ+ଭାବ. ଅନ)—୧ । ପୋଛିବା—
Prasphoṭana 1. Wiping away; rubbing out.
୨ । ତାଡ଼ନ—2. Beating; striking.
୩ । ବିଦାରଣ—3. Piercing
୪ । ଫୁଟିବା; ବିକାଶ—
4. Opening; expanding, blooming.
୫ । କୁଲାଦ୍ୱାରା ପାଛୁଡ଼ିବା—
5. Winnowing, threshing.
୬ । ପାଚିବା—6. Ripening.
୭ । ପ୍ରକାଶିତ ହେବା—7. Being manifest.

୮ । ( +କରଣ ଅନ ) କୁଲା—
8 Winnowing basket (Apte)

୯ । ( +କର୍ମ. ଅନ ) କୁଲାରେ ପାଛୁଡ଼ା ହୋଇଥିବା ଶସ୍ୟ—
9. Winnowed corn

୧୦ । ( ଷୁଟ୍ ଧାତୁ ଣିଜନ୍ତ+ଭାବ. ଅନ ) ପ୍ରସ୍ଫୁଟିତ କରାଇବା—
10. Causing to bloom or blow.

୧୧ । ପ୍ରକାଶିତ କରିବା—11. Revealing; making clear or manifest ( Apte ).

**ପ୍ରସ୍ୱ(ସ୍ୱା)ନ**—ସଂ. ବି. ( ପ୍ର+ସ୍ୱନ )—ଉଚ୍ଚଧ୍ୱନି—
Praswa(swā)na Loud noise (Apte).

**ପ୍ରସ୍ୱାପ**—ସଂ. ବି. ( ପ୍ର+ସ୍ୱପ୍ ଧାତୁ=ଶୋଆଇବା+ଭାବ. ଅ )—
Praswāpa ୧ । ଗାଢ଼ନିଦ୍ରା—1. Profound sleep.

୨ । ସ୍ୱପ୍ନ—2 Dream (Apte).

୩ । ( +କର୍ତ୍ତୃ. ଅ ) ନିଦ୍ରା ଉତ୍ପାଦକ ଅସ୍ତ୍ରବିଶେଷ—
3. A missile which induces sleep in the person attacked.

**ପ୍ରସ୍ୱାପକ**—ସଂ. ବିଣ. ପୁଂ ( ପ୍ର+ସ୍ୱପ୍ ଧାତୁ ଣିଚ୍+କର୍ତ୍ତୃ. ଅକ )—
Praswāpaka ୧ । ନିଦ୍ରା ଉତ୍ପାଦକ—
( ପ୍ରସ୍ୱାପିକା—ସ୍ତ୍ରୀ ) 1. Soporific, causing sleep.

୨ । ନିହନ୍ତା—2. Slaying (Apte).

**ପ୍ରସ୍ୱାପନ**—ସଂ. ବି. ( ପ୍ର+ସ୍ୱପ୍ ଧାତୁ ଣିଚ+ଭାବ. ଅନ )—
Praswāpana ୧ । ନିଦ୍ରା ଉତ୍ପାଦନ—
1. Causing or inducing sleep.

୨ । ( +କର୍ତ୍ତୃ. ଅନ ) ପ୍ରସ୍ୱାପ ୩ ( ଦେଖ )
2. Praswāpa 3 ( See )

ଏହି ପ୍ରସ୍ୱାପନ ଅସ୍ତ୍ର ଭୂମେ ନାଥ—କୃଷ୍ଣସିଂହ, ମହାଭାରତ, ବନ ।

ସଂ. ବିଣ—ନିଦ୍ରାଜନକ—
Inducing sleep; soporific

**ପ୍ରସ୍ୱିନ୍ନ**—ସଂ. ବିଣ. ( ପ୍ର+ସ୍ୱିଦ୍ ଧାତୁ=ଝାଳ ବୋହିବା+କର୍ତ୍ତୃ. ତ )—
Praswinna ୧ । ଝାଳରେ ବୁଡ଼ିଥିବା; ଘର୍ମାକ୍ତ—
( ପ୍ରସ୍ୱେଦିତ—ଅନ୍ୟରୂପ ) 1 Perspiring; sweated.

୨ । ଉତ୍ତପ୍ତ—2. Heated.

୩ । ବାମ୍ଫଅଗ୍ନି ଗ୍ରହଣ କରୁଥିବା (ବ୍ୟକ୍ତି)—
3. Having a vapour bath.

**ପ୍ରସ୍ୱେଦ**—ସଂ. ବି. (ପ୍ର+ସ୍ୱେଦ)—ଖୁବ୍‌ବେଶୀ ଝାଳ—
Prasweda Profuse sweating; perspiration.
(ପ୍ରସ୍ୱେଦନ—ଣିଜନ୍ତ ସିଦ୍ଧ ବିଶେଷ୍ୟ)

**ପ୍ରସ୍ରଂଶ**—ସଂ. ବି. (ପ୍ର+ସ୍ରଂଶ୍ ଧାତୁ+ଭାବ ଅ)—୧ । ପତନ—
Prasramśa 1. Falling down

୨ । ଗର୍ଭସ୍ରାବ; ଗର୍ଭପାତ—2. Miscarriage; abortion.

**ପ୍ରସ୍ରବ**—ସଂ. ବି. (ପ୍ର+ସ୍ରୁ ଧାତୁ=ଝରିବା+ଭାବ. ଅ)—୧ । ତରଳିବା-
Prasraba 1. Melting.

୨ । ଝରଣ, ଗଳନ—2. Distillation.

୩ । ଟୋପା ଟୋପା ପଡ଼ିବା—3 Oozing; dropping.

୪ । ଝରିବା; ବହିଯିବା—4. Trickling; running.

୫ । ବୋହିବା—5. Flowing.

୬ । (+କର୍ତ୍ତୃ. ଅ)—ସ୍ତନରୁ ବା ପହ୍ନାରୁ ସ୍ରବିବା ଦୁଗ୍ଧ—
6. Milk flowing from the breast or udder (Apte).

୭ । ପ୍ରସ୍ରାବ, ମୂତ୍ର—7 Urine (Apte).

୮ । ଫେଣ—8 The overflowing scum of boiling rice (Apte).

୯ । ଧାର, ସ୍ରୋତଃ—9 A flow; a stream (Apte).

**ପ୍ରସ୍ରବଣ**—ସଂ ବି. (ପ୍ର+ସ୍ରୁ ଧାତୁ+କର୍ତ୍ତୃ. ଅନ)—୧ । ଉତ୍ସ; ନିର୍ଝର;
Prasrabana ଝରଣା—1 Fountain; spring.

୨ । ଜଳପ୍ରବାହ, ଜଳ ଧାର—2. Flow of water.

୩ । (+ଭାବ. ଅନ) ଟୋପା ଟୋପା ହୋଇ ବହିଯିବା—
3. Oozing; leaking; dropping.

୪ । ସ୍ୱେଦ, ଝାଳ—4. Sweat, perspiration.

୫ । ମୂତ୍ର ତ୍ୟାଗକରଣ—5 Urination; voiding urine; passing water.

୬ । (+ଅପାଦାନ. ଅନ)—ମାଲ୍ୟବାନ ପର୍ବତ; ଜନସ୍ଥାନ ମଧ୍ୟବର୍ତ୍ତୀ ପର୍ବତବିଶେଷ—6. Name of a range of mountains in the Western ghats of India.

୭ । ଜଳପ୍ରପାତ—
7. Waterfall; cascade; cataract (Apte).

୮ । ଜଳର ଫୁଆର—8. A spout (Apte).

**ପ୍ରସ୍ରବଣୀ**—ସଂ. ବି. (ପ୍ରସ୍ରବଣ+ଈ)—(ବୈଦ୍ୟକ) ଯେଉଁ ଯୋନିରୁ
Prasrabanī ସର୍ବଦା ଜଳୀୟ ସ୍ରାବ ହେଉଥାଏ—A female organ always exuding a watery liquid.
[ଦ୍ର—ଏହାର ଅନ୍ୟ ନାମ ଦୁଷ୍ଟଜାବନୀ । ଏପରି ଯୋନିବିଶିଷ୍ଟ ସ୍ତ୍ରୀର ଗର୍ଭୋଦୟ ହେବା କଷ୍ଟକର (ବୃ. ଶ.) ।]

**ପ୍ରସ୍ରବଣୀ ଲେଖନୀ**—ସଂ. ବି. (ଆଧୁନିକ ବ୍ୟଙ୍ଗ୍ୟ ବ୍ୟବହାର)—ଝର
Prasrabanī lekhanī କଲମ, ନିର୍ଝର ଲେଖନୀ; ଯେଉଁ କଲମରେ ସ୍ୟାହି ଭର୍ତ୍ତି ହୋଇ ଥାଏ; ଫାଉଣ୍ଟେନ୍ ପେନ୍—
Fountain pen.

**ପ୍ରସ୍ରା**—ସଂ. ବି. (ପ୍ର+ସ୍ରୁ ଧାତୁ=କ୍ଷରିତ ହେବା+କର୍ମ. ଅ)—
Prasrā ୧ । ମୂତ୍ର; ମୂତ (ପ୍ର କୃତିବାଦ)—1. Urine.

୨ । (+ଭାବ. ଅ)—ପ୍ରକୃଷ୍ଟରୂପେ କ୍ଷରଣ—(ପ୍ରକୃତିବାଦ)—
2. Excessive distillation.

**ପ୍ରସ୍ରା ତଲବ**—ଦେ. ବି. (ସଂ. ପ୍ରସ୍ରାବ+ଆ. ତଲବ୍)—ମୂତ ମାଡ଼ିବା—
Prasrā talaba Having a tendency to urinate.
পেসাব তলব पेसाब तलब

**ପ୍ରସ୍ରାବ**—ସଂ. ବି. (ପ୍ର+ସ୍ରବ)—୧ । ମୂତ୍ର; ପରିଚକ୍ର—
Prasrāba 1. Urine.

୨ । ମୂତିବା—2 Urination.

୩ । ଟୋପା ଟୋପା ହୋଇ ପଡ଼ିବା—
3. Oozing; dropping.

୪ । ଝରଣ; ଝରିବା—4 Flowing.

ପ୍ରସ୍ରାବ (ଇତ୍ୟାଦି)—ଦେ. କ୍ରି.—ପ୍ରସା ଇତ୍ୟାଦି (ଦେଖ)
Prasrāba (etc) Prasā etc (See)

ପ୍ରସ୍ରାବ ଦ୍ୱାର—ସ. ବି.—ଜନନେନ୍ଦ୍ରିୟ—
Prasrāba dwāra The urinary organ.

ପ୍ରସ୍ରୁତ—ସ ବିଣ. (ପ୍ର+ସ୍ରୁ ଧାତୁ+କର୍ତ୍ତୃ. ତ)—ଗଳିତ, କ୍ଷରିତ—
Prasruta Oozing; dropping.

ପ୍ରହଣେ(ନେ)ମି—ସ. ବି.—ଚନ୍ଦ୍ର—
Prahaṇe(ne)mi Moon (Apte)

ପ୍ରହତ—ସ. ବିଣ. (ପ୍ର+ହନ୍ ଧାତୁ+କର୍ମ. ତ)—୧ । ଆହତ,
Prahata ଆଘାତ ପ୍ରାପ୍ତ; ପ୍ରତାଡ଼ିତ—
1. Wounded; struck; smitten.
୨ । ହତ—2 Killed.
୩ । ପରାଜିତ—3. Defeated; overpowered.
୪ । ବିସ୍ତୃତ, ପ୍ରସାରିତ—4 Stretched.
୫ । ନିକଟସ୍ଥ—5 Contiguous.
୬ । ସୀମାବଦ୍ଧ—6. Bounded; limited
୭ । ବିତାଡ଼ିତ—7. Driven; repelled.
୮ । ଗୁଣୀ, ବିଦ୍ୱାନ୍—8. Learned; endowed with good qualities; accomplished.
୯ । । ଗୁଣିତ—9. Multiplied.
୧୦ । ରାଶୀକୃତ, ଏକତ୍ରୀଭୂତ—
1. Gathered together; heaped up.
୧୧ । ଚୂର୍ଣ୍ଣିତ, କ୍ଷୁଣ୍ଣ; ବଟା ବା ଦଳା ହୋଇଥିବା—
11. Pounded; bruised.

ପ୍ରହର—ସ. ବି. (ପ୍ର+ହୃ ଧାତୁ=ହରଣ କରିବା, ଆଘାତ କରିବା+
Prahara ଭାବ. ଅ)—୧ । ଘଣ୍ଟ ଉପରେ ଆଘାତ (ପୂର୍ବେ ରାଜଦ୍ୱାରରେ ପ୍ରତି ପହରରେ ଘଣ୍ଟା ଧ୍ୱନି କରାଯାଉଥିଲା)—
1. Stroke on a gong.
୨ । (+ଅଧିକରଣ. ଅ) ଯାମ, ଦିବାରାତ୍ରିର ୮ ଭାଗରୁ ଏକ ଭାଗ, ପହର; ୩ ଘଣ୍ଟା କାଳ—2. A period of 3 hours; watch.

ପ୍ରହରଣ—ସଂ. ବି.—୧ । (ପ୍ର+ହୃ ଧାତୁ+କରଣ. ଅନ)—
Praharaṇa ଆୟୁଧ; ଅସ୍ତ୍ର—1. Weapon.
୨ । (+ଅଧିକରଣ. ଅନ)—ଯୁଦ୍ଧ—2. War.
୩ । (+କର୍ମ. ଅନ) ସ୍ତ୍ରୀଲୋକଙ୍କ ବହନାର୍ଥେ ଆଚ୍ଛାଦିତ ଯାନ ବା ରଥବିଶେଷ—3. A covered conveyance or litter for ladies.
୪ । (ଭାବ. ଅ) ଆଘାତ; ପ୍ରହାର; ମାଡ଼—
4 Beating, stroke

ପ୍ରହରଣୀୟ—ସ. ବିଣ. (ପ୍ର+ହୃ ଧାତୁ+କର୍ମ. ଅନୀୟ)—
Praharaṇiya ପ୍ରହାର ପାଇବା ଯୋଗ୍ୟ—
Deserving to be beaten.
ସ. ବି. (+କରଣ ଅନୀୟ)—ଆୟୁଧ, ଅସ୍ତ୍ର—Weapon.

ପ୍ରହରା—ଦେ. ବି. ( ସ. ପ୍ରହରୀ )—
Praharā ପହରା, ପ୍ରହରୀର କର୍ମ; ଜାମଗିରି—
ପାହାରା पहरा Watch; guard.
(ରାମଶଙ୍କର ବିବାସିନୀ—୨୧ ଅଧ୍ୟାୟ)

ପ୍ରହରାଜ—ଦେ. ବି. (ସ. ପ୍ରହର ବା ପ୍ରହରୀ ଓ ରାଜନ୍)—
Praharāja ବ୍ରାହ୍ମଣମାନଙ୍କର ରାଜଦତ୍ତ ବଂଶୋପାଧିବିଶେଷ—
A family-title bestowed on Brāhmaṇas.

ପ୍ରହରାଦ—ଗ୍ରା. (ପଦ୍ୟ) ବି. (ସ. ପ୍ରହ୍ଲାଦ)—
Braharāda ପ୍ରହ୍ଲାଦ ୩ ( ଦେଖ )
Prahlāda 3 ( See )
ତାହାଙ୍କ କୁଳେ ପ୍ରହରାଦ, ହରି ବଶସ୍ୟ ଭକ୍ତିରେତ ।
କୃଷ୍ଣସିଂହ. ମହାଭାରତ. ବନ ।

ପ୍ରହରୀ—ସ. ବି. ପୁଂ. (ପ୍ରହର+ଇନ୍; ୧ମା. ୧ବ)—
Prahari ୧ । ପହରାବାଲା; ଚଉକିଦାର, ମନ୍ତ୍ରୀ—
1. A watchman; sentry.
(ପ୍ରହରୀ—ସ୍ତ୍ରୀ—ପ୍ରକୃତିବାଦ)
[ ପ୍ର—ପୂର୍ବେ ରାଜଦ୍ୱାରରେ ୧ ପ୍ରହର ଅନ୍ତରରେ ସମୟ-ନିର୍ଦ୍ଦେଶକ ଘଣ୍ଟା ବାଜୁଥା ହେଉଥିଲା ଏବଂ ପହରାବାଲାମାନେ ବଦଳ ହେଉଥିଲେ ।]
୨ । ଅନ୍ୟ ପାଇଁ ଜାମିନ୍ ହେବା ବ୍ୟକ୍ତି—
2 A surety; a guarantee
୩ । ଘଣ୍ଟାବାଦକ—3. A bellman (Apte).

ପ୍ରହର୍ତ୍ତା—ସ. ବି ଓ ବିଣ. ପୁଂ (ପ୍ର+ହୃ ଧାତୁ+କର୍ତ୍ତୃ. ତୃ; ୧ମା. ୧ବ)—
Praharttā ୧ । ପ୍ରହାର କର୍ତ୍ତା—1. Striking; beating.
(ପ୍ରହର୍ତ୍ତ୍ରୀ—ସ୍ତ୍ରୀ)
୨ । ଯୋଦ୍ଧା—2 Combatant; warrior.
୩ । ଆକ୍ରମଣକାରୀ—3. Assailant.

ପ୍ରହର୍ଷ—ସ. ବି. ( ପ୍ର+ହର୍ଷ )—ଆହ୍ଲାଦ, ବିଶେଷ ଆନନ୍ଦ—
Praharsha Mirth; delight; joy; rapture.
(ପ୍ରହୃଷ୍ଟ—ବିଣ)

ପ୍ରହର୍ଷଣ—ସ. ବି. (ପ୍ର+ହୃଷ୍ ଧାତୁ ଣିଚ୍+କର୍ତ୍ତୃ. ଅନ)—
Praharshaṇa ୧ । ଆନନ୍ଦସାଧକ—1. Delighting; giving joy; enrapturing.
(ପ୍ରହର୍ଷିତ—ବିଣ)
୨ । ବୁଧ ଗ୍ରହ—2. The planet Mercury.
୩ । ତ୍ରୟୋଦଶାକ୍ଷର ପାଦଯୁକ୍ତ ଛନ୍ଦୋବିଶେଷ—
3 A metre of 13 syllables.
(ପ୍ରହର୍ଷଣୀ—ସ୍ତ୍ରୀ) ସ. ବିଣ. (+କର୍ତ୍ତୃ. ଅନ)—
୧ । ଆହ୍ଲାଦଜନକ—1. Delightful; joyful.
୨ । ଆହ୍ଲାଦିତ—2. Over-joyed; delightful; hilarious.

ପ୍ରହର୍ଷ(ର୍ଷି)ଣୀ—ସ. ବି—ହଳଦୀ—
Praharsha(rshi)ṇi Turmeric (Apte).

ପ୍ରହଲା(ଲ୍ଲା)ଦ—ଗ୍ରା. ବି ( ସଂ. ପ୍ରହ୍ଲାଦ )—
Prahalā(llā)da ପ୍ରହ୍ଲାଦ ୩ ( ଦେଖ )
Prahlāda 3 ( See )

ଦୁର୍ବ ପ୍ରହ୍ଲାଦ ଭୃତ୍ୟଙ୍କୁ ଅଗ୍ରେ କରି
ବହସ୍ତ ପାଶ ବର୍ଦ୍ଧ ବୃନ୍ଦେ ଗଲେ ଚଳି । କୃଷ୍ଣର୍ଦ୍ଧ. ମହାଭାରତ. ଆଦି ।

ପ୍ରହସନ—ସ ବି. (ପ୍ର+ହସ୍ ଧାତୁ+ଭାବ. ଅନ)—
Prahasana ୧ । ଉଚ୍ଚ ହାସ୍ୟ—1. Loud laugh; hearty laughter.
୨ । ଉଲ୍ଲାସ; ଆହ୍ଲାଦ—
2. Hilarity; mirth; merriment.
୩ । ବ୍ୟଙ୍ଗୋକ୍ତି; ପରିହାସୋକ୍ତି—
3. Satire; irony; redicule.
୪ । (+କର୍ମ. ଅନ) ପରିହାସ; ଥଟ୍ଟା ତାମସା, ରସିକତା—
4. Jesting; gallantry; buffoonery
୫ । ( +ଅଧିକରଣ. ଅନ )—
ହାସ୍ୟରସୋଦ୍ଦୀପକ କ୍ଷୁଦ୍ର ନାଟ୍ୟ ଗ୍ରନ୍ଥବିଶେଷ—
5. A farce; burlesque.

ପ୍ରହସ୍ତ—ସ. ବି. ( ପ୍ର+ହସ୍ତ )—
Prahasta ୧ । ବିସ୍ତୃତାଙ୍ଗୁଳ କରତଳ—1. Open palm of the hand with the fingers extended.
୨ । ଚାପୁଡ଼ା, ଚପେଟାଘାତ—2 A slap
୩ । ରାବଣର ସେନାପତିବିଶେଷ—
3. Name of one of Rābaṇa's generals.

ପ୍ରହାଣ—ସ. ବି. (ପ୍ର+ହା ଧାତୁ+ଭାବ. ତି)—
Prahāṇa ୧ । ପରିତ୍ୟାଗ—1. Abandonment.
୨ । ଚିତ୍ତର ଏକାଗ୍ରତା—
2. Concentration of mind.

ପ୍ରହାର—ସଂ. ବି. (ପ୍ର+ହୃ ଧାତୁ+ଭାବ. ଅ)—
Prahāra ୧ । ଆଘାତ, ମାଡ଼; କଳହ; ପାହାର—
1 Striking; beating; strife; stroke; a blow.
୨ । ଯୁଦ୍ଧ—2. Fight; battle.
[ ଦ୍ର—'ପ୍ର+ହୃ ଧାତୁରୁ' ପ୍ରହାରକ, ପ୍ରହରଣୀୟ, ପ୍ରହାରଣ, ପ୍ରହାରୀ, ପ୍ରହାର୍ଯ୍ୟ, ପ୍ରହୃତ ଆଦି ଶବ୍ଦ ହୁଏ । ]

ପ୍ରହାର କରିବା—ଦେ. କ୍ରି—୧ । ମାଡ ମାରିବା; ପିଟିବା—
Prahāra kariba 1. To strike; to beat; to strife.
প্রহার করা प्रहार करना
୨ । ଅସ୍ତ୍ର ଶସ୍ତ୍ରାଦି ଦ୍ୱାରା ଆଘାତ କରିବା—
2. To strike with weapons.
ପିଣ୍ଡାର ବଅଇ ଦୃଢକ ପ୍ରହାର କଡାକ୍ଷ-କଚଃ-ବାଣ ତୋ ।
କବିସୂର୍ଯ୍ୟ. ସଙ୍ଗୀତ ।

ପ୍ରହାରିବା—ଦେ. (ପଦ୍ୟ) କ୍ରି (ସ. ପ୍ରହାର)—
Prahāriba ପ୍ରହାର କରିବା ( ଦେଖ )
প্রহারা प्रहारना Prahāra kariba ( See )

ପ୍ରହାସ—ସ. ବି. (ପ୍ର+ହାସ)—୧ । ଅଭିନେତା; ନଟ—
Prahāsa 1. A dancer; an actor.
୨ । ଅଟ୍ଟହାସ; ଉଚ୍ଚହାସ୍ୟ—2. Loud laugh.
୩ । ସୋମ ତୀର୍ଥ; ପ୍ରଭାସ ତୀର୍ଥ—
3. Name of a place of pilgrimage.
୪ । ଶିବ; ମହାଦେବ—4. Siba.
୫ । ନାଗବିଶେଷ—5. Name of a serpent
୬ । ପ୍ରସ୍ଫୋଟନ; ଫୁଟିବା—6. Blooming; expanding.
୭ । ପ୍ରଭାସ ତୀର୍ଥ (ଦେଖ) (ହି.ଶ)—7. Prabhāsa tīrtha. (See)
ସ. ବିଣ—ସମୁଜ୍ଜ୍ୱଳ—Very bright; glittering, dazzling

ପ୍ରହାସୀ—ସ. ବିଣ. ପୁଂ. (ପ୍ର+ହସ୍ ଧାତୁ+କର୍ତ୍ତୃ. ଇନ୍; ୧ମା. ୧ବ)—
Prahāsi ୧ । ଉଚ୍ଚହାସ୍ୟକାରୀ—1, Laughing aloud.
(ପ୍ରହାସିନୀ—ସ୍ତ୍ରୀ) ୨ । ହାସ୍ୟୋତ୍ପାଦକ—
2. Producing laughter
ସ. ବି. ପୁଂ—ଭଣ୍ଡ, ବିଦୂଷକ—
Jester; a clown; a buffoon.

ପ୍ରହିତ—ସ. ବିଣ. (ପ୍ର+ଧା ଧାତୁ=କ୍ଷେପଣ କରିବା+କର୍ମ. ତ)—
Prahita ୧ । ପ୍ରେରିତ—1. Sent; despatched; discharged; emitted.
୨ । ପ୍ରଯୁକ୍ତ; ନିଯୁକ୍ତ—
2. Employed; engaged, commissioned.
୩ । ବିସ୍ତୃତ; ପ୍ରସାରିତ — 3. Stretched; extended.
୪ । ନିରସ୍ତ—4. Suppressed; checked
୫ । ପ୍ରଦତ୍ତ—5. Bestowed; endowed.

ପ୍ରହୀଣ(ନ)—ସ. ବିଣ. (ପ୍ର+ହା ଧାତୁ+କର୍ମ. ତ)—୧ । ବିହୀନ—
Prahīṇa(na) 1. Deprived of.
୨ । ବିଚ୍ୟୁତ—2 Surrendered; separated from.
୩ । ପରିତ୍ୟକ୍ତ—3. Abandoned.

ପ୍ରହୁତ—ସ. ବିଣ. (ପ୍ର+ହୁତ)—ବଳି ବୈଶ୍ୱଦେବ; ଭୂତଯଜ୍ଞ (ହି. ଶ)-
Prahuta A daily offering of boiled rice to the spirits and animals.

ପ୍ରହୃତ—ସ. ବିଣ. (ପ୍ର+ହୃ ଧାତୁ+କର୍ମ. ତ)—
Prahṛuta ୧ । ଆହତ, ଆଘାତପ୍ରାପ୍ତ—
1. Struck; beaten, wounded.
୨ । ନିପୀଡ଼ିତ—2. Oppressed.
୩ । ନିକ୍ଷିପ୍ତ (ହି. ଶ)—3. Thrown.
୪ । ବିସ୍ତାରିତ (ହି. ଶ)—4. Spread out.
ସ. ବି. (+ଭାବ. ତ)—ପ୍ରହାର—Striking.

ପ୍ରହୃଷ୍ଟ—ସ. ବିଣ. (ପ୍ର+ହୃଷ୍ଟ)—ଆହ୍ଲାଦିତ—
Prahṛushṭa Overjoyed; delighted; rejoiced

ପ୍ରହେଣକ—ସ. ବି—୧ । ମହନଭୋଗ, ଯବାଗୁ, ଯାଉ—
Prabeṇaka 1 Gruel; jelly.
୨ । ଏକପ୍ରକାର ପିଷ୍ଟକ—2. A kind of cake (Apte).

ପ୍ରହେତି—ସ. ବି—ରାକ୍ଷସବିଶେଷ—
Praheti Name of a demon.
ରାକ୍ଷସ କୁଳରେ ଜାତ, ହେତି ପ୍ରହେତି ବିଖ୍ୟାତ ।
ବିଶ୍ୱନାଥ. ବିଚିତ୍ରରାମାୟଣ ।

**ପ୍ରହେଳକ**—ସଂ. ବି. (ପ୍ର+ହେଳ ଧାତୁ+ଅକ)—
Prahelaka ୧ । ପ୍ରହେଣକ (ଦେଖ)
1. Prahenaka (See) (Apte).
୨ । ପ୍ରହେଳିକା (ଦେଖ)—2. Prahelikā (See) (Apte)

**ପ୍ରହେଳା**—ସଂ. ବି (ପ୍ର+ହେଳା)—ଅନିୟନ୍ତ୍ରିତ ଆଚରଣ—
Prahelā Loose conduct; unrestrained behaviour (Apte).

**ପ୍ରହେଳିକା**—ସଂ. ବି. (ପ୍ର+ହେଳ୍ ଧାତୁ=ଅଭିପ୍ରାୟ ସୂଚନା କରିବା+ କରଣ. ଅ+କ+ସ୍ତ୍ରୀ. ଆ)—ପହେଳି, କୂଟପ୍ରଶ୍ନ, ନାଆଁ ଦିଅ—Riddle; enigma; a puzzle, conundrum.
Prahelikā
ପ୍ରହେଳୀ } ଅନ୍ୟରୂପ
ପ୍ରହେଳ }
ଉଦାହରଣ —ବଳଦ ନୁହେଁ ସେ ବଳାନ୍ଧମାନ
ସାପ ନୁହେଁ ତାର ଜିଭ ଦୁଇଖଣ୍ଡ
ନୁହେଁ ଦ୍ରୌପଦୀ ପାଞ୍ଚବର ତାର
ବୁଝି କହିବ ହେ ପଣ୍ଡିତବର ।
(ଉତ୍ତର—ଲେଖଣୀ ବା କଲମ)—କୁଳମଣି. ଅଳଙ୍କାର ତରଙ୍ଗିଣୀ ।

**ପ୍ରହ୍ଲା(ହ୍ଲା)ଦ**—ସଂ. ବି. (ପ୍ର+ହ୍ଲାଦ୍ ଧାତୁ=ଆନନ୍ଦିତ ହେବା+ଭାବ. ଅ)—୧ । ହର୍ଷ, ଆହ୍ଲାଦ—
Prahrā(hlā)da
1. Delight; joy; hilarity.
୨ । ଗୋଳମାଳ—2. Noise; uproar.
୩ । ଶବ୍ଦ; ଧ୍ୱନି—3. Sound (Apte)
୪ । (+କର୍ତ୍ତୃ. ଅ) ଦାନବରାଜ ହିରଣ୍ୟକଶିପୁର ପୁତ୍ର—
4. The son of Hiranyakaśipu.
[ ଦ୍ର—ଏ ହିରଣ୍ୟକଶିପୁର ପୁତ୍ର ଥିଲେ । ଏ ପିଲାଦିନୁ ଭଗବଦ୍‌ଭକ୍ତ ଥିଲେ । ହିରଣ୍ୟକଶିପୁ ଏହାଙ୍କୁ ବିଷ୍ଣୁଭକ୍ତିରୁ ବିଚଳିତ କରିବାକୁ ପ୍ରଲୋଭନ ଓ ଭୟ ଦେଖାଇ, ଶେଷରୁ ଦଣ୍ଡ ଦେଲେ, କିନ୍ତୁ ଏ ତହିଁରେ ବିଚଳିତ ହେଲେ ନାହିଁ । ଅବଶେଷରେ ଭଗବାନ୍ ନରସିଂହରୂପରେ ଏକ ସ୍ତମ୍ଭ ମଧ୍ୟରୁ ବାହାରି ହିରଣ୍ୟକଶିପୁଙ୍କୁ ନଖରେ ବିଦାରଣ କଲେ ଓ ପ୍ରହ୍ଲାଦଙ୍କୁ ରକ୍ଷା କଲେ । ପ୍ରହ୍ଲାଦଙ୍କ ପୁତ୍ର ବିରୋଚନ ଓ ପୌତ୍ର ବଳି । ]
୫ । ନାଗବିଶେଷ—
5. Name of a mythological serpent.

**ପ୍ରାଇଜ୍**—ବୈଦେ. ବି ( ଇଂ )—୧ । ପୁରସ୍କାର; ଉପହାର, ସର୍ବୋତ୍କୃଷ୍ଟ ଛାତ୍ରଙ୍କୁ ଦିଆଯିବା ଉପହାର—1. Prize; reward.
Prāij
প্রাইজ ୨ । ବିଦ୍ୟାଳୟର ପୁରସ୍କାର ବିତରଣ ଉତ୍ସବ—
प्राइज 2. The occasion of the prize distribution of a school

**ପ୍ରାଇଜ୍ ବିତରଣ**—ଦେ. ବି. ( ଇଂ. ପ୍ରାଇଜ୍ ଓ ସଂ. ବିତରଣ )—
Prāij bitaraṇa ଛାତ୍ରାଦିଙ୍କୁ ପୁରସ୍କାର ବିତରଣ—
প্রাইজ বিতরণ प्राइज बंटन Prize-distribution.
( ପ୍ରାଇଜ୍ ବଣ୍ଟନ—ଅନ୍ୟରୂପ )

**ପ୍ରାଇଭେଟ୍**—ବୈଦେ. ବିଣ ( ଇଂ )—୧ । ବ୍ୟକ୍ତିଗତ—
Prāibheṭ প্রাইভেট प्राइवेट 1. Personal.
୨ । ଘରୋଇ—2. Private; domestic.
୩ । ଗୁପ୍ତ; ଗୋପନୀୟ—3. Confidential.
୪ । ସାଧାରଣରେ ଅପ୍ରକାଶ୍ୟ—4. Not public.
ବୈଦେ. ବି—ସାଧାରଣ ସୈନିକ—A common soldier.

**ପ୍ରାଇଭେଟ୍ ଟିଉଟର୍**—ବୈଦେ. ବି ( ଇଂ )—ଛାତ୍ରଙ୍କୁ ଘରେ ପଢ଼ାଇବା ଶିକ୍ଷକ—Private tutor.
Prāibheṭ ṭiuṭar
প্রাইভেট টিউটার प्राइवेट ट्यूटर
( ପ୍ରାଇଭେଟ୍ ଟ୍ୟୁଟର୍- ଅନ୍ୟରୂପ )

**ପ୍ରାଇଭେଟ୍ ଟିଉସନ୍**—ବୈଦେ. ବି ( ଇଂ )—ଶିକ୍ଷକର ଛାତ୍ରଙ୍କୁ ଘରେ ପଢ଼ାଇବା କାର୍ଯ୍ୟ—Private tuition.
Prāibheṭ ṭiusan
প্রাইভেট টিউসন प्राइवेट ट्यूसन
( ପ୍ରାଇଭେଟ୍ ଟ୍ୟୁଟେସି, ପ୍ରାଇଭେଟୀ—ଅନ୍ୟରୂପ )

**ପ୍ରାଇମ୍ ମିନିଷ୍ଟ(ଷ୍ଟା)ର୍**—ବୈଦେ. ବି ( ଇଂ )—ପ୍ରଧାନ ମନ୍ତ୍ରୀ—
Prāim minishṭa(shṭā)r Prime minister.
প্রাইম মিনিষ্টার प्राइम मिनिष्टार

**ପ୍ରାଇମର୍**—ବୈଦେ. ବି. ( ଇଂ )—୧ । କୌଣସି ଭାଷାର ବର୍ଣ୍ଣମାଳା ଶିକ୍ଷା ଦେବା ପ୍ରାଥମିକ ପୁସ୍ତକ—1. A first book of reading; alphabet book
Prāimar
প্রাইমর प्राइमर
୨ । କୌଣସି ବିଷୟ ( ଯଥା—ବିଜ୍ଞାନ, ସ୍ୱାସ୍ଥ୍ୟରକ୍ଷା, ଜ୍ୟୋତିଷ, ରସାୟନ )ର ପ୍ରାରମ୍ଭିକ ଜ୍ଞାନ ଯେଉଁ ପୁସ୍ତକରୁ ଲାଭ କରାଯାଏ—2. A primer on any subject.

**ପ୍ରାଇଭେଟ୍ ସେକ୍ରେଟ(ଟେ)ରି**—ବୈଦେ. ବି ( ଇଂ )—ବଡ଼ଲୋକ ଓ ବଡ଼ ହାକିମମାନଙ୍କର ନିଜର ବ୍ୟକ୍ତିଗତ ବା ବେସରକାରୀ ଚିଠିପତ୍ର ଲେଖିବା ପାଇଁ ନିଯୁକ୍ତ କର୍ମଚାରୀ—Private secretary.
Prāibhet sekreṭa(ṭe)ri
প্রাইভেট সেক্রেটরী
प्राइवेट सेक्रेटरी

**ପ୍ରାଇମ(ମେ)ରୀ**—ବୈଦେ. ବିଣ (ଇଂ)—ପ୍ରାଥମିକ—
Prāima(me)ri প্রাইমা(মে)রী प्राइमेरी Primary.

**ପ୍ରାଇମେରୀ ସ୍କୁଲ୍**—ବୈଦେ. ବି. ( ଇଂ )—ଆଧୁନିକ ଧରଣରେ ପ୍ରାଥମିକ ଶିକ୍ଷା ଦିଆଯିବାର ବିଦ୍ୟାଳୟ—Primary school.
Prāimeri skul
প্রাইমেরী স্কুল प्राइमेरी स्कूल
(ପ୍ରାଇମେରୀ ଇସ୍କୁଲ, ପ୍ରାଇମେରୀ ବିଦ୍ୟାଳୟ—ଅନ୍ୟରୂପ)
[ ଦ୍ର—ଭାରତରେ ଦୁଇ ଶ୍ରେଣୀର ପ୍ରାଇମେରୀ ସ୍କୁଲମାନ ଅଛି, ଯଥା—ଅପର୍ ବା ଉଚ୍ଚପ୍ରାଇମେରୀ ସ୍କୁଲ, ଲୋଅର୍ ବା ନିମ୍ନପ୍ରାଇମେରୀ ସ୍କୁଲ । ]

**ପ୍ରାଏ**—ଗ୍ରା. ଅ. ( ସଂ. ପ୍ରାୟ )—୧ । ପରି, ପରା—
Prāe ମତ, ମତନ एकसाँ, बराबर 1. Like.
(ପ୍ରାଏକ—ଅନ୍ୟରୂପ) କୋପ-ଆଗ ପ୍ରାଏ ଦେଖାଇ ନାସାରୁ
ବହିଲ ଖର ପବନ—ରାଧାନାଥ, ପାର୍ବତୀ ।
୨ । ପ୍ରାୟ (ଦେଖ)—2. Prāya (See)

**ପ୍ରାଂଶୁ**—ସଂ. ବିଣ. ( ବହୁବ୍ରୀହି, ପ୍ରା+ଅଂଶୁ=ରେଣୁ; ଯାହାର ଅଂଶୁମାନ ପ୍ରକୃଷ୍ଟ ଅଟେ )—୧ । ଡେଙ୍ଗା; ଉଚ୍ଚ; ଉନ୍ନତ—
Prāṁśu
(ପ୍ରାଂଶୁତା[ତ୍ୱ]—ବି) 1. High; elevated; tall.
୨ । ଦୀର୍ଘ—2. Long; extended (Apte).
ସଂ. ବି—୧ । ବୈବସ୍ୱତମନୁଙ୍କ ପୁତ୍ରବିଶେଷ—
1 A son of Baibaswata Manu.
୨ । ବିଷ୍ଣୁ (ହି. ଶ)—2. Bishṇu

୩ । ଡେଙ୍ଗା ଲୋକ—3. A tall person (Apte).

ପ୍ରାଂଶୁଲଭ୍ୟ—ସ. ବଣ. ( ୩ୟା ତତ୍, ପ୍ରାଂଶୁ+ଲଭ୍ୟ )—ଡେଙ୍ଗା
Prāṁsu labhya ଲୋକ ହାତ ବଢାଇଲେ ଯାହାକୁ ତା ହାତ ପାଏ—Which can be reached by the hands of a tall man; attainable by a tall person.

ପ୍ରାକ୍—ସ. ଅ. (ପ୍ର+ଅନଚ୍ ଧାତୁ=ଯିବା+ଅଧିକରଣେ କ୍ୱିପ୍)—
Prāk ୧ । ସମ୍ମୁଖରେ; ଆଗରେ—1. In front.
୨ । ପ୍ରଥମେ, ଆଦ୍ୟରେ—2. At first
୩ । ଆରମ୍ଭରେ—3. In the beginning.
୪ । ପୂର୍ବେ; ପୂର୍ବକାଳରେ—
4. Before; previously; in the past.
୫ । ପୂର୍ବଦେଶରେ; ପୂର୍ବଦିଗରେ—1. In the east.
୬ । କ୍ରମେ; କ୍ରମଶଃ—6. Gradually.
୭ । ଏଥିପୂର୍ବେ—7. Already.
୮ । ପୂର୍ବଦିଗକୁ—8. To the east of.
୯ । ପ୍ରାତଃକାଳରେ; ପ୍ରତ୍ୟୁଷରେ—
9 At dawn; at daybreak (Apte).
୧୦ । ( ଅମୁକ ) ପର୍ଯ୍ୟନ୍ତ—
10. Up to; as far as ( Apte ).

ପ୍ରାକ୍‌ଚରଣ—ସ. ବ. (ପ୍ରାକ୍+ଚରଣ)—ଯୋନି, ଭଗ (ହ୍ରି. ଶ)—
Prāk-charaṇa The female organ.

ପ୍ରାକ୍‌ଛାୟ—ସ. ବ. (ବହୁବ୍ରୀହି, ପ୍ରାକ୍+ଛାୟା, ଯେଉଁ ସମୟରେ
Prāk-chhāya ଧ୍ରୁବ୍ୟାଦିର ଛାୟା ପୂର୍ବଦିଗକୁ ପଡ଼େ)—ଅପରାହ୍ନ କାଳ (ହ୍ରି. ଶ)—Afternoon.

ପ୍ରାକ୍‌ପଦ—ସ. ବ. ( ପ୍ରାକ୍+ପଦ )—ସମାସଯୁକ୍ତ ବା ସମସ୍ତ ପଦର
Prākpada ପ୍ରଥମ ଶବ୍ଦ—The first member of a
(ପୂର୍ବପଦ—ଅନ୍ୟରୂପ) compound word.
[ ଦ୍ର—ପରବର୍ତ୍ତୀ ପଦକୁ ଉତ୍ତର ପଦ ବୋଲାଯାଏ । ]

ପ୍ରାକ୍‌ଫଳ—ସ. ବ. (ବହୁବ୍ରୀହି; ପ୍ରାକ୍+ଫଳ)—ପଣସ ଫଳ—
Prākphala The jack fruit.

ପ୍ରାକ୍‌ଶିରଃ—ସ. ବଣ. ପୁଂ. ( ବହୁବ୍ରୀହି, ପ୍ରାକ୍=ପୂର୍ବଦିଗକୁ+ଶିରସ୍=
Prākśiraḥ ମୁଣ୍ଡ )—୧ । ପୂର୍ବଦିଗକୁ ମୁଣ୍ଡ କରିଥିବା—
1. Having one's head turned to he east.
୨ । ପୂର୍ବମୁଖୀ—2. Facing east.

ପ୍ରାକ୍‌ସନ୍ଧ୍ୟା—ସ. ବ. ( ପ୍ରାକ୍+ସନ୍ଧ୍ୟା )—ପ୍ରାତଃକାଳ; ସୂର୍ଯ୍ୟୋଦୟ-
Prāksandhyā ପୂର୍ବକାଳୀନ ଦିବସର ସନ୍ଧିକାଳ—
Dawn; daybreak.

ପ୍ରାକରଣିକ—ସ. ବଣ. (ପ୍ରକରଣ+ଇକ)—
Prākaraṇika ପ୍ରକରଣ ବା ପରିଚ୍ଛେଦ ସମ୍ବନ୍ଧୀୟ—
Relating to a chapter or section; sectional.

ପ୍ରାକରମ—ଗ୍ରା. ( ପଦ୍ୟ ) ବ. (ସ. ପରାକ୍ରମ)—ପରାକ୍ରମ (ଦେଖ)
Prākarama Parākrama (See)
(ପ୍ରାକର୍ମ, ପ୍ରାକ୍ରମ—ଅନ୍ୟରୂପ) ଅଧିକ ସେ ସଇଚ୍ଛି ବଳ ପ୍ରାକର୍ମରେ ।
କୃଷ୍ଣସିଂହ, ମହାଭାରତ, ଅଦି ।

ପ୍ରାକର୍ଷିକ—ସ. ବ. ପୁଂ. (ପ୍ରକର୍ଷ+ଅର୍ଥାର୍ଥେ. ଇକ)—
Prākarshika ୧ । ଶିଙ୍ଗ; ଲମ୍ପଟ ବା କାମୁକ ବ୍ୟକ୍ତି—.
1. A lecher.
୨ । ଅସ୍ୱାଭାବିକ ଉପାୟରେ ପୁରୁଷର କାମବୃତ୍ତି ଚରିତାର୍ଥ କରିବା ପାଇଁ ରକ୍ଷିତ ପୁରୁଷ ବା ବାଳକ—
2. A catamite (Apte).
୩ । କୁଟୁଣୀ, ଭଡ଼ୁଆ—3 A man who procures other people's wives for adultery.
୪ । ପରସ୍ତ୍ରୀର ଉପାର୍ଜନଦ୍ୱାରା ଜୀବିକାନିର୍ବାହକାରୀ ବ୍ୟକ୍ତି—
4. A person living on the earnings of adultery of the wives of other people
୫ । ଅନ୍ୟ ବ୍ୟକ୍ତିର ସ୍ତ୍ରୀଦ୍ୱାରା ପ୍ରତିପାଳିତ ବ୍ୟକ୍ତି—5. A man supported by another's wife (Apte).
ସ. ବଣ. ପୁଂ—ଉତ୍କର୍ଷ ପାଇବାର ଯୋଗ୍ୟ—Entitled to
(ପ୍ରାକର୍ଷିକା—ସ୍ତ୍ରୀ) preference or superiority (Apte)

ପ୍ରାକାମ୍ୟ—ସ. ବ. (ପ୍ରକାମ+ଭାବେ. ଯ)—
Prākāmya ୧ । ଯଥେଚ୍ଛାଚାରିତ୍ୱ, ସ୍ୱଚ୍ଛନ୍ଦାନୁବର୍ତ୍ତିତା—
1. Wilfulness; freedom of will; acting according to one's will.
୨ । ଅଦମନୀୟ ମନଃ—2. Irresistible will (Apte).
୩ । ମହାଦେବଙ୍କର ଓ ସାଧକର ଅଷ୍ଟବିଧ ଐଶ୍ୱର୍ଯ୍ୟ ମଧ୍ୟରୁ ଏକତମ, ଯେଉଁ ଶକ୍ତିବଳରେ ସିଦ୍ଧିପ୍ରାପ୍ତ ସାଧକ ଯାହା ଇଚ୍ଛା କରେ ତାହା ପାଏ—3. The irresistible will of a perfect person or of Śiba; the perfection of will-power which enables one to get whatever he wants; (one of the eight divine attributes).
[ ଦ୍ର—ମନୁଷ୍ୟ ତପସ୍ୟାଦ୍ୱାରା ଏହି ଐଶ୍ୱର୍ଯ୍ୟ ପ୍ରାପ୍ତ ହେଲେ ସେ ଯେଉଁ ବସ୍ତୁ ଇଚ୍ଛା କରେ ତାହା ପାଏ; ସେ ଇଚ୍ଛା କଲେ ଭୂମି-ତଳରେ ପୋତି ହୋଇ ରହିପାରେ ବା ଆକାଶରେ ଉଡ଼ିପାରେ । ]

ପ୍ରାକାର—ସଂ ବ. (ପ୍ର+ଆ+କୃ ଧାତୁ=ବିକ୍ଷେପ କରିବା+କର୍ମି. ଅ)—
Prākāra ୧ । ବେଷ୍ଟନ; ବାଡ଼—1. Enclosure; fence.
୨ । ବପ୍ର, ପାଚିରି; ଉଚ୍ଚଦିଆଲ—
2. Compound wall; a surrounding wall.
୩ । ମାଟିବନ୍ଧ ଉପରେ ଦିଆଯାଇ ଥିବା କାନ୍ଥ—
3. A wall raised on a high bank of earth.
୪ । ନଗର ବା କିଲ୍ଲାର ରକ୍ଷା ନିମନ୍ତେ ତହିଁ ଚାରିପାଖେ ଦିଆଯାଇ ଥିବା କାନ୍ଥ—4. Rampart; a wall raised round a city or fort.

ପ୍ରାକାର୍ଷକ—ସଂ. ବ. ପୁଂ—୧ । ସ୍ତ୍ରୀମାନଙ୍କ ମଧ୍ୟରେ ନୃତ୍ୟକାରୀ ପୁରୁଷ
Prākārshaka (ହ୍ରି. ଶ)—1. A male who dances amongst females.
୨ । ପରସ୍ତ୍ରୀର ଜାରକର୍ମର ଉପାର୍ଜନଦ୍ୱାରା ପ୍ରତିପୋଷିତ ପୁରୁଷ (ହ୍ରି. ଶ)—2. A man who lives on the earnings of adultery of the wives of other men.

ପ୍ରାକାଶ—ସଂ. ବି. (ପ୍ରକାଶ + ସ୍ୱାର୍ଥେ ଅ)—ପ୍ରକାଶ (ଦେଖ)
Prākāśa Prakāśa (See)

ପ୍ରାକାଶ୍ୟ(ଶ୍ୟ)—ସଂ. ବି—ପ୍ରଖ୍ୟାତି; ଯଶଃ (ହି. ଶ)—
Prākāśya(śya) Fame; renown (Apte).

ପ୍ରାକୃତ—ସଂ. ବିଣ. (ପ୍ରକୃତି + ଭବାର୍ଥେ ଅ)—୧ । ଅକୃତ୍ରିମ;ନୈସର୍ଗିକ;
Prākṛuta ପ୍ରକୃତିରୁ ଜାତ, ମୌଳିକ; ଅପରିବର୍ତ୍ତିତ, ଅବିକୃତ—
ପ୍ରାକୃତା } ସ୍ତ୍ରୀ 1. Natural; original; unmodified;
ପ୍ରାକୃତୀ } unaltered (Apte).
[ପ୍ରାକୃତତା(ତ୍ୱ)— ବି] ୨ । ପ୍ରକୃତିସମ୍ବନ୍ଧୀୟ, ପ୍ରାକୃତିକ—
2. Relating to nature.

୩ । ସ୍ୱାଭାବିକ, ସହଜ, ସ୍ୱଭାବସିଦ୍ଧ—
3. Inborn; inherent.

୪ । ପ୍ରଜାସମ୍ବନ୍ଧୀୟ—4. Relating to the subjects.

୫ । ସାମାନ୍ୟ, ସାଧାରଣ—
5. Common; usual; ordinary.

୬ । (ପ୍ର + ଅକୃତ=ଅପକାର୍ଯ୍ୟ)—ନୀଚ; ଅଧମ; ଇତର—
6. Low; mean; vulgar.

୭ । ଅଶିଷ୍ଟ; ଅସଭ୍ୟ—7 Uncultured; unrefined (Apte).

୮ । ଅଶିକ୍ଷିତ—8. Illiterate, uneducated (Apte).

୯ । ଭୌତିକ—1. Material; physical.

୧୦ । ମାୟାମୟ—10. Illusory.

୧୧ । (ଦର୍ଶନ ଶାସ୍ତ୍ର)—ମହତତତ୍ତ୍ୱାଦିଦ୍ୱାରା ସୃଷ୍ଟ—
11. (Hindu philosophy) Created by Mahat-tattwa etc.

ପ୍ରାକୃତ ବୈକୃତ ସଂସାର,
ମହତ ଗ୍ଯାନର ସଞ୍ଚାର । ଜଗନ୍ନାଥ. ଭାଗବତ ।

୧୨ । ହେୟ—12 Insignificant; trifling; unimportant (Apte).

୧୩ । ଲୌକିକ; ଜନକଥିତ (ଭାଷା)—13. Vernacular; (language) spoken by ordinary people (Apte).

୧୪ । ପ୍ରାଦେଶିକ; ଦେଶାଂଶବିଶେଷ ପ୍ରଚଳିତ (ଭାଷା, ଶବ୍ଦ)—
14. Provincial; dialectical (Apte).

ସଂ. ବି.—୧ । ଅସଂସ୍କୃତ ଭାଷା, ଯେଉଁ ଭାଷା ଇତର ଲୋକେ ବ୍ୟବହାର କରନ୍ତି—
1. Vulgar language; a vernacular language.

୨ । ଚଳିତ ଭାଷା, କଥୋପକଥନର ଭାଷା—
2. Spoken dialect.

୩ । ପାଲି ବା ମାଗଧୀ ଭାଷା—
3 The Pāli dialect

୪ । ଯେଉଁ ସଂସ୍କୃତମୂଳକ ଅପଭ୍ରଷ୍ଟ ଭାଷା ସାହାଯ୍ୟରେ ସଂସ୍କୃତ ନାଟକରେ ସ୍ତ୍ରୀ ଓ ଇତର ବ୍ୟକ୍ତିମାନେ କଥୋପକଥନ କରନ୍ତି—4. The Prākṛuta dialect derived from and akin to Sanskrit, used by female and vulgar characters in Sanskrit dramas (Apte).

୫ । ଦେଶାଂଶବିଶେଷ ପ୍ରଚଳିତ ଭାଷା; ଭାଷା—5. Dialect.

୬ । ନୀଚ ବ୍ୟବସାୟାବଲମ୍ବୀ ବ୍ୟକ୍ତି—6. Man following a degraded or menial profession.

୭ । ଇତର ଜନ; ସାଧାରଣ ବ୍ୟକ୍ତି—
7. An ordinary or vulgar man.

୮ । ପରାଶରଙ୍କ ମତରେ ସ୍ୱାତୀ, ଭରଣୀ ଓ କୃତ୍ତିକା ନକ୍ଷତ୍ର ବାଟେ ଯିବା ସମୟରେ ବୁଧ ଗ୍ରହର ଗତି (ହି. ଶ.)—
8. The passage of the planet Mercury through the 15th, 2nd, and 3rd asterisms.

[ଦ୍ର—ବୁଧ ଗ୍ରହର ୭ ପ୍ରକାର ଗତି ମଧ୍ୟରୁ ଏହା ପ୍ରଥମ; ଏହା ୪୦ ଦିନ ସ୍ଥାୟୀ ହୁଏ ଓ ଏ ସମୟରେ ପୃଥିବୀରେ ଆରୋଗ୍ୟ, ବୃଷ୍ଟି, ଧାନ୍ୟର ବୃଦ୍ଧି ଓ ମଙ୍ଗଳ ହୁଏ—ହି. ଶ. ।]

[ଦ୍ର—ହେମଚନ୍ଦ୍ର ଆଦି ପଣ୍ଡିତମାନେ କହନ୍ତି ଯେ 'ସଂସ୍କୃତ' ଭାଷାରୁ 'ପ୍ରାକୃତ' ଜନ୍ମି ଅଛି ଏବଂ କେହି କେହି କହନ୍ତି ଯେ 'ପ୍ରାକୃତ' ଭାଷାରୁ 'ସଂସ୍କୃତ' ଭାଷାର ଉଦ୍ଭବ, କିନ୍ତୁ ପ୍ରକୃତିଗତ ଅର୍ଥ ବିଚାର କଲେ ଦେଖା ଯିବ ଯେ 'ପ୍ରାକୃତ' ଭାଷାହିଁ ଜନକଥିତ ଆଦ୍ୟ ଭାଷା ଓ ତାହା ସଂସ୍କୃତ ହୋଇ ତହିଁରୁ ସଂସ୍କୃତ ଭାଷାର ଉତ୍ପତ୍ତି ହୋଇ ଅଛି । ହେମଚନ୍ଦ୍ର ପ୍ରାକୃତ ଭାଷାର ବ୍ୟାକରଣ ଓ ଶବ୍ଦକୋଷ ସଂକଳନ କରିଥିଲେ । ଯାହାହେଉ, ଆଧୁନିକ ପ୍ରାଚ୍ୟ ଓ ପାଶ୍ଚାତ୍ୟ ପଣ୍ଡିତମାନଙ୍କ ମତରେ ଆଦି ଆର୍ଯ୍ୟ ଭାଷା ନିମ୍ନଲିଖିତ ଭାଗରେ ବିଭକ୍ତ କରା ଯାଇ ପାରେ:—




(ଶ୍ରୀଚାରୁଚନ୍ଦ୍ର ବସୁ ଓ ଲଳିତ ମୋହନ କର—ବଙ୍ଗଳା 'ଅଶୋକ ଅନୁଶାସନ' ଗ୍ରନ୍ଥ) ]

[ଦ୍ର—କେତେକ ପଣ୍ଡିତ ଅନୁମାନ କରନ୍ତି ଯେ ଖ୍ରୀଷ୍ଟପୂର୍ବ ୩୦୩ ସାଲର ପୂର୍ବେ ପ୍ରାକୃତ ଭାଷା ପଶ୍ଚିମୀ ଓ ପୂର୍ବୀ ଦୁଇ ରୂପ ଧାରଣ କରିଥିଲା । ପୂର୍ବୀ ପ୍ରାକୃତ ମାଗଧୀ ବା ପାଲୀ ନାମରେ ବିଖ୍ୟାତ ହେଲା । ବୌଦ୍ଧ ଧର୍ମର ପ୍ରଚାର ସଙ୍ଗେ ପାଲୀ ଭାଷାର ଖୁବ୍ ଉନ୍ନତି ହେଲା ଓ ପ୍ରଥମେ ପ୍ରଥମେ ବୌଦ୍ଧ ଧର୍ମର ଗ୍ରନ୍ଥମାନ ପାଲୀ ଭାଷାରେ ଲେଖା ହେଉଥିଲା । ପ୍ରାଚୀନ ପ୍ରାକୃତର ବିକାଶ ଠାରୁ ଖ୍ରୀଷ୍ଟାବ୍ଦ ୧୦୦୦ ସାଲ ପର୍ଯ୍ୟନ୍ତ ସମୟ ମଧ୍ୟରେ ଧୀରେ ଧୀରେ ଆଧୁନିକ ଦେଶଭାଷାମାନଙ୍କର ଜନ୍ମ ହେଲା. । ଯେଉଁପରି ସଂସ୍କୃତ ଭାଷାର ସର୍ବପ୍ରାଚୀନ ରୂପକୁ ବୈଦିକ ସଂସ୍କୃତ ବୋଲାଯାଏ, ସେହିପରି ପ୍ରାକୃତ ଭାଷାର ସର୍ବପ୍ରାଚୀନ ରୂପକୁ ଆର୍ଷ ପ୍ରାକୃତ ବୋଲାଯାଏ । ମାର୍କଣ୍ଡେୟ ପ୍ରାକୃତ ଭାଷାର ନିମ୍ନଲିଖିତ ଶ୍ରେଣୀ-ବିଭାଗ କରି ଅଛନ୍ତି—୧ । ଭାଷା (ମହାରାଷ୍ଟ୍ରୀ, ଶୌରସେନୀ, ପ୍ରାଚ୍ୟା, ଆବନ୍ତୀ, ମାଗଧୀ, ଅର୍ଦ୍ଧମାଗଧୀ); ୨ । ବିଭାଷା, (ଶାକାରୀ, ଚାଣ୍ଡାଳୀ, ଶାବରୀ, ଆଭୀରୀ, ଟାକ୍କୀ, ଔଡ୍ରୀ, ଦ୍ରାବିଡ଼ୀ) । ୩ । ଅପଭ୍ରଂଶ । ୪ । ପୈଶାଚୀ । ଏହା ଛଡ଼ା ଚୂଳିକା ପୈଶାଚୀ ଆଦି କେତେକ ନିମ୍ନ ଶ୍ରେଣୀର ପ୍ରାକୃତ ମଧ୍ୟ ଅଛି । ସର୍ବ ପ୍ରଥମେ ମଗଧର ଭାଷା ପାଲୀ ନାମରେ ସାହିତ୍ୟ ଆଡ଼କୁ ଅଗ୍ରସର ହେଲା । ବୌଦ୍ଧ ଗ୍ରନ୍ଥମାନ ପ୍ରଥମେ ଏହି ଭାଷାରେ ଲେଖା ଯାଇଥିଲା, ପରେ ଜୈନମାନଙ୍କଦ୍ୱାରା ଅର୍ଦ୍ଧ ମାଗଧୀ ଓ ମହାରାଷ୍ଟ୍ରୀ ଭାଷାମାନଙ୍କର ଆଦର ହେଲା । ମହାରାଷ୍ଟ୍ରୀ ସାହିତ୍ୟରୁ ଉଦ୍ଭୂତ ଗୋଟିଏ କୃତ୍ରିମ ପ୍ରାକୃତ ଭାଷା ସଂସ୍କୃତ ନାଟକମାନଙ୍କରେ ବ୍ୟବହୃତ ହେଲା । ଏହି କୃତ୍ରିମ ପ୍ରାକୃତରୁ ଯେଉଁ ଭାଷା ବାହାରିଲା ତାହାକୁ 'ଅପଭ୍ରଂଶ" ବୋଲି ଗଲା । ଏହି ଅପଭ୍ରଂଶରୁ ଭାରତରେ ବର୍ତ୍ତମାନ ପ୍ରଚଳିତ ଆର୍ଯ୍ୟ ଶାଖାର ଦେଶଭାଷା (Aryan vernaculars) ମାନଙ୍କର ଉତ୍ପତ୍ତି ହୋଇଅଛି । ବୌଦ୍ଧ ଗ୍ରନ୍ଥ ଲଳିତବିସ୍ତରରେ ଯେଉଁ ପ୍ରାକୃତ ଭାଷା ମିଳୁ ଅଛି ତାହା ସଙ୍ଗେ ସଂସ୍କୃତ ଭାଷାର ବହୁତ ସାମଞ୍ଜସ୍ୟ ଦେଖାଯାଏ । ପ୍ରାକୃତ ଭାଷାରେ ଦ୍ୱିବଚନ ନାହିଁ; ପ୍ରାକୃତ ବର୍ଣ୍ଣମାଳାରେ ଋ, ଌ, ଙ, ଞ, ଐ, ଔ, ଶ, ଷ, ଓ ବିସର୍ଗ ନାହିଁ—ହି. ଶ. । ]

**ପ୍ରାକୃତ ଇତିବୃତ୍ତ(ତ୍ତି)**—ସଂ. ବି. ( ଆଧୁନିକ ପ୍ରୟୋଗ )—
Prākṛuta itibṛutta(tti) ପ୍ରକୃତି ବା ଜଡ଼ ଜଗତ୍ ସମ୍ବନ୍ଧୀୟ ବିଜ୍ଞାନ; ଜଡ଼ବିଜ୍ଞାନ—Natural History; the science of Nature; Natural Philosophy; Natural Science; Physics.
(ପ୍ରାକୃତିକ ଇତିବୃତ୍ତ, ପ୍ରାକୃତ ଇତିହାସ, ପ୍ରାକୃତ ତତ୍ତ୍ୱ, ପ୍ରାକୃତ ବିଜ୍ଞାନ, ପ୍ରାକୃତ ବିଦ୍ୟା, ପ୍ରାକୃତ ଦର୍ଶନ, ପ୍ରାକୃତିକ ବିଜ୍ଞାନ— ଅନ୍ୟରୂପ)
[ ଦ୍ର—ଜୀବବିଦ୍ୟା, ଧାତୁବିଦ୍ୟା, ଉଦ୍ଭିଦବିଦ୍ୟା ପ୍ରଭୃତି ପ୍ରାକୃତ ଇତିବୃତ୍ତର ଅନ୍ତର୍ଗତ । ]

**ପ୍ରାକୃତ ଜନ**—ସଂ. ବି— ଇତର ଲୋକ—
Prākṛuta jana Vulgar people; the mass.
(ପ୍ରାକୃତ ମାନୁଷ—ଅନ୍ୟରୂପ)

ପ୍ରାକୃତ ଜ୍ୱର—ସଂ. ବି—ଋତୁଭେଦରେ ହେବା ଜର—
Prākṛuta jwara Fever attacking people as the effect of particular seasons.
[ଦ୍ର—ବର୍ଷା, ଶରତ୍ ଓ ହେମନ୍ତରେ ମନୁଷ୍ୟର ଦେହରେ ଯଥାକ୍ରମେ ବାତ, ପିତ୍ତ ଓ କଫର ପ୍ରାଧାନ୍ୟ ହୁଏ ଓ ସେହି ସମୟରେ ତତ୍ତତ୍ ଧାତୁ ପ୍ରଧାନ ଜ୍ୱର ଲୋକଙ୍କୁ ଆକ୍ରମଣ କରେ । ହି. ଶ ]

ପ୍ରାକୃତ ତତ୍ତ୍ୱ ଦର୍ଶନ—ସଂ. ବି. ( ଆଧୁନିକ ପ୍ରୟୋଗ )—
Prākṛuta tattwa darśana ପ୍ରକୃତି ବା ସୃଷ୍ଟି-ସ୍ଥିତ ପଦାର୍ଥ-(ପ୍ରାକୃତ ତତ୍ତ୍ୱ ବିବେକ—ଅନ୍ୟରୂପ) ମାନଙ୍କୁ ଦେଖି ପରମାତ୍ମା ସମ୍ବନ୍ଧେ ଯେଉଁ ଜ୍ଞାନ ଜନ୍ମେ—Natural Theology.

ପ୍ରାକୃତ ତନ୍ତ୍ର—ସଂ. ବି (କର୍ମଧା)—ପ୍ରଜାତନ୍ତ୍ର—
Prakṛuta tantra Democracy.

ପ୍ରାକୃତ ଦୋଷ—ସଂ. ବି. ( କର୍ମଧା )—
Prākṛuta dosha ବର୍ଷା, ଶରତ୍ ଓ ହେମନ୍ତ ଋତୁରେ ହେବା ଜ୍ୱରରେ ଯଥାକ୍ରମେ ବାତ, ପିତ୍ତ ଓ କଫର ଆଧିକ୍ୟ (ହି.ଶ)-The morbidity of wind, bile and phlegm in the fevers which attack people in the rains, autumn and winter respectively.

ପ୍ରାକୃତ ପ୍ରକାଶ—ଦେ. ବି. (ନାମ)—ପୁରୀଜିଲ୍ଲାର ମାର୍କଣ୍ଡ ଦାସଙ୍କ ପ୍ରାକୃତ
Prākṛuta prakāśa ଭାଷାର ଅଭିଧାନ ଗ୍ରନ୍ଥବିଶେଷ—
A Prākṛuta lexicon edited by late Mārkanda Dāsa of the district of Puri.

ପ୍ରାକୃତ ପ୍ରଳୟ—ସଂ. ବି—ବ୍ରହ୍ମାଙ୍କ ଦିବସର ଅବସାନ ହେଲେ
Prākṛuta praḷaya ବ୍ରହ୍ମା ନିଦ୍ରା ଯିବାରୁ ସୃଷ୍ଟିର ଯେଉଁ ବିନାଶ ଘଟେ—The complete dissolution of the universe when Brahmā, the Creator goes to sleep.

ପ୍ରାକୃତ ବନ୍ଧ—ଦେ. ବି. ଦେଶପ୍ରଚଳିତ କଥ୍ୟ ଭାଷାରେ ଛନ୍ଦୋବଦ୍ଧ
Prākṛuta bandha ରଚନା—Poetry or verse in the vernacular language.
ପ୍ରାକୃତ ବନ୍ଧେ ଗୀତ ବାଣୀ
ଶୁଣି ଏଂସାରୁ ତର ପ୍ରାଣୀ । ଭାଗବତ ।

ପ୍ରାକୃତ ଭୂଗୋଳ—ସଂ ବି. (ଆଧୁନିକ ପ୍ରୟୋଗ)—ଯେଉଁ ଭୂଗୋଳ
Prākṛuta bhūgoḷa ଶାସ୍ତ୍ରଦ୍ୱାରା ପୃଥିବୀସ୍ଥ ଦୃଶ୍ୟମାନ (ପ୍ରାକୃତିକ ଭୂଗୋଳ—ଅନ୍ୟରୂପ) ପ୍ରାକୃତିକ ବିଷୟମାନଙ୍କର (ଜଳ ସ୍ଥଳ, ବାୟୁ, ଆକାଶ, ଋତୁ ଆଦିର) ବିବରଣ ଜଣାଯାଏ—
Physical Geography.
[ଦ୍ର—ଯେଉଁ ଶାସ୍ତ୍ରଦ୍ୱାରା ପୃଥିବୀର ଗଠନର ପ୍ରାଚୀନ ତତ୍ତ୍ୱମାନ ଆଲୋଚିତ ହୁଏ ତାହାକୁ ଭୂଗର୍ଭଶାସ୍ତ୍ର Geology ବୋଲାଯାଏ ।]

ପ୍ରାକୃତ ସମାଜ—ସଂ. ବି. (ଆଧୁନିକ ପ୍ରୟୋଗ)—୧ । ସାଧାରଣ
Prākṛuta samāja ଲୋକଙ୍କ ସଭା—1. An assembly of the people; the popular assembly.
୨ । ଇଂଲଣ୍ଡବାସୀ ସାଧାରଣ ପ୍ରଜାଙ୍କ ପ୍ରତିନିଧି ସଭା; ହାଉସ୍ ଅଫ୍ (ପ୍ରାକୃତ ସଭା—ଅନ୍ୟରୂପ) କମନ୍ସ୍—2. The House of Commons.

ପ୍ରାକୃତିକ—ସଂ. ବିଣ. (ପ୍ରକୃତି+ସମ୍ବନ୍ଧାର୍ଥେ. ଇକ)—୧ । ସ୍ୱାଭାବିକ;
Prākṛutika ନୈସର୍ଗିକ; ପ୍ରକୃତି ସମ୍ବନ୍ଧୀୟ—1. Natural.
୨ । ଭୌତିକ—2 Physical; material.
୩ । ଐଶ୍ୱରିକ—3. Divine.
୪ । ଲୌକିକ—4. Popular.
୫ । ସାଂସାରିକ—5. Worldly; mundane.
୬ । ସହଜ; ସହଜାତ—
6. Innate; inborn; instinctive.

ପ୍ରାକୃତିକ ନିୟମ—ଦେ. ବି—ଯେଉଁ ନିୟମଦ୍ୱାରା ସୃଷ୍ଟି ଚାଲୁଅଛି;
Prākṛutika niyama ସ୍ୱାଭାବିକ ନିୟମ—The laws of Nature.

ପ୍ରାକ୍କର୍ମ—ସଂ. ବି. (ପ୍ରାକ୍+କର୍ମ)—୧ । ପୂର୍ବର କାର୍ଯ୍ୟ—
Pākkarma 1. Previous or past act.
୨ । ଅଦୃଷ୍ଟ; ଭାଗ୍ୟ (ହି. ଶ)—2. Luck; fate; destiny.

ପ୍ରାକ୍କାଳ—ସଂ. ବି. (ପ୍ରାକ୍+କାଳ)—୧ । ଅତୀତ, ପୂର୍ବକାଳ—
Prākkāḷa 1. The past.
୨ । ଆଦ୍ୟକାଳ—
2. The beginning (in point of time).

ପ୍ରାକ୍କାଳିକ—ସଂ. ବିଣ. (ପ୍ରାକ୍କାଳ+ଭବାର୍ଥେ. ଇକ)—
Prākkāḷika ୧ । ପୂର୍ବକାଳରେ ଘଟିଥିବା; ପୂର୍ବକାଳୀନ; (ପ୍ରାକ୍କାଳୀନ—ଅନ୍ୟରୂପ) ପ୍ରାଚୀନ—1. Past; ancient.
୨ । ପୂର୍ବତନ, ଏଥିପୂର୍ବେ ଘଟିଥିବା—2. Former; previous.

ପ୍ରାକ୍ଟିସ୍—ବୈଦେ. ବି. (ଇଂ)+୧ । ଓକିଲ ଓ ଡାକ୍ତରଙ୍କ ବ୍ୟବସାୟ—
Prāktis 1 The practice of a pleader or doctor.
(ପ୍ରାକ୍ଟିସ୍, ପ୍ରେକ୍ଟିସ୍—ଅନ୍ୟରୂପ) ୨ । ଅଭ୍ୟାସ—
প্র্যাক্টিস্ प्रैक्टिस 2. Practice.

ପ୍ରାକ୍ତନ—ସଂ. ବିଣ. (ପ୍ରାକ୍+ଭବ· ଅର୍ଥରେ. ତନ)—୧ । ପୂର୍ବକାଳୀନ;
Prāktana ଅତୀତ କାଳର; ପ୍ରାଚୀନ—1. Past; ancient; (ପ୍ରାକ୍ତନୀ—ସ୍ତ୍ରୀ) former; prior.
୨ । ପୂର୍ବଜନ୍ମାର୍ଜିତ—2. Earned by the actions of a previous existence.
୩ । ପୂର୍ବବର୍ତ୍ତୀ—3. Previous; antecedent.
ସଂ. ବି.—ଅଦୃଷ୍ଟ; ଭାଗ୍ୟ; ଦୈବ; ପ୍ରାରବ୍ଧ—
Destiny; fate.
[ଦ୍ର—ହିନ୍ଦୁମାନେ ବିଶ୍ୱାସ କରନ୍ତି ଯେ ମନୁଷ୍ୟ ଇହକାଳରେ ପୂର୍ବଜନ୍ମର କର୍ମର ଫଳ ଭୋଗ କରେ । ଇହକାଳରେ ତପସ୍ୟାଦି ଦ୍ୱାରା ମନୁଷ୍ୟ ପ୍ରାକ୍ତନର ମନ୍ଦ ଫଳକୁ ଏଡ଼ି ପାରେ ଓ ଇହକାଳରେ ଯାହା କରେ ତାହାର ଫଳ ପରକାଳରେ ଭୋଗ କରିବ ।]

ପ୍ରାକ୍ତନ କର୍ମ—ସଂ. ବି. (କର୍ମଧା)—୧ । ପୂର୍ବ ଜନ୍ମରେ ମନୁଷ୍ୟ ଯେଉଁ
Prāktana karma କାର୍ଯ୍ୟ କରିଥାଏ—1. Acts done by a person in a previous existence.
୨ । ଅଦୃଷ୍ଟ; ଭାଗ୍ୟ—2. Destiny; fate; luck.

ପ୍ରାକ୍ତନ ଜନ୍ମ—ସଂ ବି.—ମନୁଷ୍ୟର ଇହ ଜନ୍ମର ପୂର୍ବରେ ଘଟିଥିବା
Prākatana janma ଜନ୍ମ, ପୂର୍ବଜନ୍ମ—Previous existence of a man before his present existence in this world.

**ପ୍ରାକ୍ତନ ସଂସ୍କାର**—ସଂ. ବି.—ପୂର୍ବଜନ୍ମର ଘଟଣା ବା କାର୍ଯ୍ୟଦ୍ୱାରା
Prāktana saṁskāra ଇହଜନ୍ମରେ ମନୁଷ୍ୟର ଆତ୍ମାରେ ଯେଉଁ ଛାପ ଲାଗି ଯାଇ ଥାଏ—The impression left on the soul of a man as a result of the acts or events of his previous existence.

**ପ୍ରାଖର୍ଯ୍ୟ**—ସଂ. ବି.—(ପ୍ରଖର+ଭାବାର୍ଥରେ. ଯ)—
Prākharjya ୧ । ପ୍ରଖରତା; ତୀକ୍ଷ୍ଣତା—
1. Acuteness; sharpness.
୨ । ରାଗ; କଟୁ ସ୍ୱାଦ—2. Pungency; acridity.
୩ । ଦୁଷ୍ଟାମି—3. Wickedness.

**ପ୍ରାଗ୍**—ଗ୍ରା. ବି.—(ସଂ. ପ୍ରୟାଗ)—ପ୍ରୟାଗ ବା ଆଲ୍ଲାହାବାଦ—
Prāg Allahabad or Prayāga.
(ପ୍ରାଗ୍ ରାଜ୍—ଅନ୍ୟରୂପ)

**ପ୍ରାଗ୍‌ଜ୍ୟୋତିଷ**—ସଂ. ବି—୧ । ଆସାମ ଅନ୍ତର୍ଗତ ପ୍ରାଚୀନ କାମରୂପ
Prāg-jyotisha ଦେଶ; କାମାଖ୍ୟା ଦେଶ; କାମାକ୍ଷ୍ୟା ଦେଶ (ଆଧୁନିକ ଗୌହାଟୀ ଜିଲ୍ଲା)—1 An ancient country in Assam; (modern Gouhati).
[ ଦ୍ର—ଏ ଦେଶର ରାଜା ଭଗଦତ୍ତ ଚୀନ ଓ କିରାତ ସେନା ସହ ମହାଭାରତ ଯୁଦ୍ଧରେ ଯୋଗ ଦେଇଥିଲେ । ଏହା ପୂର୍ବେ ନରକାସୁରର ରାଜଧାନୀ ଥିଲା । ଏହା ଦେବୀଙ୍କ ଯୋଗନିଦ୍ରାର ପ୍ରଧାନ ସ୍ଥାନ ବୋଲି କଥିତ । ଏହା ସର୍ବତୋଭଦ୍ରା ନାମ୍ନୀ ଲକ୍ଷ୍ମୀଙ୍କର ନିବାସ ସ୍ଥାନରୂପେ କଳ୍ପିତ—ହି. ଶ । ]
୨ । କାମରୂପ ଦେଶବାସୀ ଲୋକ—
2. A man of the country of Kāmarūpa

**ପ୍ରାଗ୍‌ଜ୍ୟୋତିଷ ପୁର**—ସଂ. ବି—ଆସାମର ପ୍ରାଗ୍‌ଜ୍ୟୋତିଷ ରାଜ୍ୟର
Prāg-jyotisha pura ରାଜଧାନୀ; ଆଧୁନିକ ଗୋହାଟୀର ପ୍ରାଚୀନ ନାମ—The ancient name of the town of Gouhati in Assam.
[ ଦ୍ର—କୁଶଙ୍କ ପୁତ୍ର ଅମୂର୍ତ୍ତରଜଙ୍କଦ୍ୱାରା ଏ ରାଜଧାନୀ ସ୍ଥାପିତ ହୋଇଥିଲା—ହି. ଶ । ]

**ପ୍ରାଗ୍‌ଦକ୍ଷିଣା**—ସଂ. ବି. (ପ୍ରାକ୍+ଦକ୍ଷିଣ+ଆ)—
Prāg-dakshiṇā ଦକ୍ଷିଣ ପୂର୍ବକୋଣ; ଅଗ୍ନି କୋଣ—
The south east quarter.

**ପ୍ରାଗ୍‌ବଂଶ**—ସଂ. ବି. (ପ୍ରାକ୍+ବଂଶ)—୧ । ପୂର୍ବବର୍ତ୍ତୀ ବଂଶ—
Prāg-bamsa 1. Former dynasty; ancient or original family.
୨ । ଯଜ୍ଞଶାଳାର ପୂର୍ବପାଖକୁ ରଚିତ ଶାଳାର ସମ୍ମୁଖସ୍ଥ ଗୃହ—
2. A room in front of the sacrificial room to the east.
[ ଦ୍ର—ଏଥିରେ ଯଜମାନ ରହୁଥିଲେ । ହି. ଶ ]
୩ । ଯଜ୍ଞଶାଳାର ଜାଳେଣୀ କାଠ—
3. The fuel required for a vedic sacrifice.
୪ । ବିଷ୍ଣୁଙ୍କର ନାମ—4. A name of Bishṇu.

**ପ୍ରାଗ୍‌ବତ୍**—ସଂ. କ୍ରି. ବିଣ. (ପ୍ରାକ୍+ବତ୍)—ପୂର୍ବପରି—
Prāg-bat As before.

**ପ୍ରାଗ୍‌ବୈଦିକ**—ଦେ. ବି. (ପ୍ରାକ୍+ବୈଦିକ)—ବୈଦିକଯୁଗର ପୂର୍ବତନ
Prāgbaidika (ସମୟ)—Pre-vedic (times).

**ପ୍ରାଗ୍‌ଭକ୍ତ**—ସଂ. ବି. (ପ୍ରାକ୍+ଭକ୍ତ=ଭାତ)—ଭୋଜନର ଅବ୍ୟବହିତ
Prāg-bhakta ପୂର୍ବବର୍ତ୍ତୀ ସମୟ—The time immediately before meal.
[ ଦ୍ର—ସୁଶ୍ରୁତରେ ଲେଖା ଅଛି ଯେ ବୃଦ୍ଧ, ବାଳକ ଓ ସ୍ତ୍ରୀମାନେ ଏହି ସମୟରେ ଔଷଧ ସେବନ କଲେ ତାହା ବମନଦ୍ୱାରା ବାହାର ପଡ଼େ ନାହିଁ, ଖାଦ୍ୟଦ୍ରବ୍ୟ ଉତ୍ତମରୂପେ ଜୀର୍ଣ୍ଣ ହୁଏ ଓ ବଳବୃଦ୍ଧି ହୁଏ—ହି. ଶ । ]

**ପ୍ରାଗ୍‌ଭବ**—ସଂ. ବିଣ ( ପ୍ରାକ୍+ଭବ)—ପୂର୍ବେ ଘଟିଥିବା ବା ଥିବା—
Prāg-bhaba Pre-existing; previous.
( ପ୍ରାଗ୍‌ଭବା—ସ୍ତ୍ରୀ )

**ପ୍ରାଗ୍‌ଭାବ**—ସଂ. ବି. (ପ୍ରାକ୍=ପ୍ରଥମ+ଭାବ)—୧ । ପ୍ରାଧାନ୍ୟ; ଶ୍ରେଷ୍ଠତା—
Prāg bhāba 1. Superiority; excellence.
୨ । ପର୍ବତର ଶିଖର—2. The top or summit of a mountain.
୩ । ପୂର୍ବଜନ୍ମର ଅବସ୍ଥା—3. Prior existence.
୪ । ପୂର୍ବ ଅବସ୍ଥା—4. Previous condition.

**ପ୍ରାଗଗ୍ର**—ସଂ. ବିଣ. (ବହୁବ୍ରୀହି; ପ୍ରାକ୍=ପୂର୍ବ+ଅଗ୍ର)—
Prāgagra ପୂର୍ବଆଡ଼କୁ ମୁଣ୍ଡ କରିଥିବା, ପୂର୍ବାଭିମୁଖ—
(ପ୍ରାଗଗ୍ରା—ସ୍ତ୍ରୀ) Having the head or top towards the east.

**ପ୍ରାଗଲ୍ଭ୍ୟ**—ସଂ. ବି [ପ୍ରଗଲ୍ଭ+ଭାବେ. ଯ]—୧ । ପ୍ରଗଲ୍ଭତା, ଔଦ୍ଧତ୍ୟ—
Prāgalbhya 1. Arrogance; effrontery; insolence; impudence.
୨ । ସ୍ତ୍ରୀଲୋକମାନଙ୍କର ସହଜ ସ୍ନେହଭାବ ବିଶେଷ—
2. Affectionate propensity or tendency in women.
୩ । ତେଜସ୍ୱିତା—3. Vigour.
୪ । ସାହସ, ନିର୍ଭୟତା—4. Valour, fearlessness.
୫ । ପ୍ରାଧାନ୍ୟ, ପ୍ରାବଲ୍ୟ (ହି. ଶ)—
5. Predominance; prevalence.
୬ । ନୈପୁଣ୍ୟ—6. Proficiency; skill (Apte).
୭ । ପରିପକ୍ୱତା—7. Development; maturity (Apte).
୮ । ପ୍ରକାଶ—8. Manifestation; appearance (Apte).
୯ । ଗର୍ବ—9. Pride.
୧୦ । ବକ୍ତୃତ୍ୱ, ବାଗ୍ମିତା—10. Eloquence (Apte).
୧୧ । ଆଡ଼ମ୍ବର—12. Pomp (Apte).
୧୨ । ଦୃଢ଼ସଂକଳ୍ପତା—12. Resoluteness; determination (Apte).

ପ୍ରାଗାର—ସଂ ବି. (ପ୍ର+ଆଗାର)—ପ୍ରାସାଦ; ଭବନ (ହି. ଶ)—
Prāgāra Building; house.

ପ୍ରାଗୁକ୍ତ—ସଂ. ବିଣ. (ପ୍ରାକ୍+ଉକ୍ତ)—ପୂର୍ବକଥିତ—
Prāgukta Aforesaid.

ପ୍ରାଗୁଦୀଚୀ—ସଂ. ବି. (ପ୍ରାକ୍+ଉଦୀଚୀ)—ପୂର୍ବୋତ୍ତର ବା ଈଶାନ
Prāgudīchi କୋଣ—The north-east quarter of the globe.
(ପ୍ରାଗୁତ୍ତର—ଅନ୍ୟରୂପ)

ପ୍ରାଗୈତିହାସିକ—ସଂ ବିଣ.(ଆଧୁନିକ ପ୍ରୟୋଗ; ପ୍ରାକ୍+ଐତିହାସିକ)—
Prāgaitihāsika ଐତିହାସିକ କାଳର ପୂର୍ବବର୍ତ୍ତୀ (କାଳ)—
Prehistoric (period)

ପ୍ରାଗ୍ର—ସଂ. ବି (ପ୍ର+ଅଗ୍ର)—ସର୍ବୋଚ୍ଚ ସ୍ଥାନ ବା ବିନ୍ଦୁ—
Prāgra The highest point (Apte).

ପ୍ରାଗ୍ରସର—ସଂ ବିଣ. (ପ୍ରାଗ୍ର+ସୃ ଧାତୁ+କର୍ତ୍ତୃ. ଅ)—
Prāgrasara ୧ । ପ୍ରଥମ, ପହିଲି (ହି. ଶ)—1. First.
(ପ୍ରାଗ୍ରସରୀ—ସ୍ତ୍ରୀ) ୨ । ଶ୍ରେଷ୍ଠ; ମୁଖ୍ୟ (ହି. ଶ)—
2. Chief; principal.

ପ୍ରାଗ୍ରହର—ସଂ. ବିଣ. (ପ୍ରାଗ୍ର+ହୃ ଧାତୁ+କର୍ତ୍ତୃ. ଅ)—
Prāgrahara ଶ୍ରେଷ୍ଠ, ମୁଖ୍ୟ (ହି. ଶ)—
(ପ୍ରାଗ୍ରହରୀ—ସ୍ତ୍ରୀ) Chief; principal (Apte).

ପ୍ରାଗ୍ରାଟ—ସଂ. ବି. (ପ୍ରାଗ୍ର+ଅଟ୍ ଧାତୁ+କର୍ତ୍ତୃ. ଅ)—୧ । ବସାଦହି—
Prāgrāṭa 1. Coagulated milk (Apte).
୨ । ଘଣ୍ଟାଦହି, ଘୋଳଦହି (ହି. ଶ)—
2. Churned butter-milk.

ପ୍ରାଗ୍ର୍ୟ—ସଂ. ବିଣ. (ପ୍ର+ଅଗ୍ର+ଭବାର୍ଥେ. ଯ)—ଶ୍ରେଷ୍ଠ; ପ୍ରଧାନ—
Prāgrya Chief; principal (Apte).
(ପ୍ରାଗ୍ର୍ୟା—ସ୍ତ୍ରୀ)

ପ୍ରାଘାତ—ସଂ. ବି. (ପ୍ର+ଆଘାତ)—
Prāghāta ୧ । ଜୋରରେ ଆଘାତ ବା ପ୍ରହାର (ହି. ଶ)—
1 A powerful stroke, a heavy blow.
୨ । ଯୁଦ୍ଧ—2. War, battle (Apte).

ପ୍ରାଘାର—ସଂ. ବି. (ପ୍ର+ଆ+ଘୃ ଧାତୁ+ଭାବ. ଅ)—
Prāghāra ଟୋପା ଟୋପା ହୋଇ ପଡ଼ିବା, ଝରିବା—
Oozing; trickling; dropping (Apte).

ପ୍ରାଘୁ(ଘୂ)ଣ(ର୍ଣ୍ଣ)—ସଂ. ବି. [ପ୍ର+ଆ+ଘୁ(ଘୂ)ଣ ଧାତୁ, ଘୂର୍ଣ୍ଣି ଧାତୁ=
Prāghu ghū)ṇa(rṇṇa) ଭ୍ରମଣ କରିବା+କର୍ତ୍ତୃ. ଅ]—
୧ । ଅଭ୍ୟାଗତ; ଅତିଥି, କୁଟୁମ୍ବ—1 A guest.
୨ । ଆଗନ୍ତୁକ—2. A visitor; stranger.
[ପ୍ରାଘୁ(ଘୂ)ଣୀ(ର୍ଣ୍ଣି)କ, ପ୍ରାଘୁ(ଘୂ)ଣ(ର୍ଣ୍ଣ)କ—ଅନ୍ୟରୂପ]

ପ୍ରାଙ୍—ସଂ. ବି. (ପ୍ର+ଅନ୍ଚ ଧାତୁ=ଗମନ କରିବା+କର୍ତ୍ତୃ. କ୍ୱିପ୍)—
Prāṅ ୧ । ପ୍ରାଚୀ; ପୂର୍ବଦିଗ—1. The east.
୨ । ପୂର୍ବକାଳ—2. The past.
ସଂ. ବିଣ—୧ । ପ୍ରାଚୀନ—1. Ancient
୨ । ପୂର୍ବତନ—2. Former

ପ୍ରାଙ୍ ନ୍ୟାୟ—ସଂ. ବି. (ହିନ୍ଦୁ ସ୍ମୃତି)—
Prāṅ-nyāya ଉପସ୍ଥିତ ମକଦ୍ଦମା ଦାଏର ହେବା ପୂର୍ବରୁ ଅଦାଲତଙ୍କ ଦ୍ୱାରା ଉକ୍ତ ବିଷୟର ମୀମାଂସା—
(Hindu Law) Resjudicata; the decision of the matter at issue by a court of justice before the institution of the present case.
[ଦ୍ର—ବ୍ୟବହାର ଶାସ୍ତ୍ର ଅନୁସାରେ ପ୍ରତିବାଦୀ ବାଦୀର ଦାବି ସମ୍ବନ୍ଧେ 'ପ୍ରାଙ୍ ନ୍ୟାୟ' ଆପତ୍ତି ଉଠାଇଲେ ଓ ତାହା ପ୍ରମାଣିତ ହେଲେ ସେ ମକଦ୍ଦମା ଆଉ ଚଳି ନ ପାରେ—ହି. ଶ]

ପ୍ରାଙ୍ମୁଖ—ସଂ. ବିଣ. ପୁଂ (ବହୁବ୍ରୀହି, ପ୍ରାକ୍=ପୂର୍ବ+ମୁଖ)—
Prāṅ-mukha ୧ । ପୂର୍ବ ଦିଗକୁ ମୁହଁ କରିଥିବା; ପୂର୍ବମୁଖ—
(ପ୍ରାଙ୍ମୁଖୀ—ସ୍ତ୍ରୀ) 1. Facing east.
୨ । ଉନ୍ମୁଖ—2 Inclined towards.

ପ୍ରାଙ୍ଗ—ସଂ. ବି. (ପ୍ର+ଅଙ୍ଗ)—ପଣବ; କ୍ଷୁଦ୍ର ବାଦ୍ୟ—
Prāṅga A small kind of drum (Apte).

ପ୍ରାଙ୍ଗଣ(ନ)—ସଂ. ବି. (ପ୍ର+ଅଙ୍ଗ ଧାତୁ=ଗମନ କରିବା+ଅଧିକରଣ. ଅନ)—
Prāṅgaṇa(na) ୧ । ଅଗଣା—1. Courtyard
୨ । (+କରଣ ଅନ) ବାଦ୍ୟବିଶେଷ; ପଣବ—2. A drum.
୩ । ଘରର ତଳ; ଗୃହ ଭୂମି; ଚଟାଣ—
3. Floor or a house.

ପ୍ରାଚ୍—ସଂ ବି—ପ୍ରାକ୍‌ଦିଗ; ପୂର୍ବଦିଗ—
Prāch The east.

ପ୍ରାଚଣ୍ଡ୍ୟ—ସଂ. ବି. (ପ୍ରଚଣ୍ଡ+ଭାବ. ଯ)—
Prāchaṇḍya ୧ । ପ୍ରଚଣ୍ଡତା; ଉଗ୍ରତା—1. Vehemence.
୨ । ଭୟଙ୍କରତା—2. Fierceness; ferocity.

ପ୍ରାଚିକା—ସଂ. ବି—୧ । ଏକ ପ୍ରକାର ଜଙ୍ଗଲୀ ମାଛି (ହି. ଶ)—
Prāchikā 1. A kind of forest-flea.
୨ । ମଶା—2. Mosquito (Apte).
୩ । ମାଈ ଛଞ୍ଚାଣ—
3. A female falcon (Apte).

ପ୍ରାଚିତ—ଗ୍ରା. ବି. (ସଂ. ପ୍ରାୟଶ୍ଚିତ୍ତ)—
Prāchita ପ୍ରାୟଶ୍ଚିତ୍ତ—Expiation.
[ପ୍ରାଚିତ୍ତ(ତ୍ୟ)—ଅନ୍ୟରୂପ] (ଦ) ପ୍ରାଚିତ୍

ପ୍ରାଚୀ—ସଂ. ବି. ସ୍ତ୍ରୀ. (ପ୍ରାଚ୍+ସ୍ତ୍ରୀ. ଈ)—
Prāchi ୧ । ପୂର୍ବଦିଗ—1. The east.
(ପ୍ରତୀଚୀ ବିପରୀତ)— ୨ । ପୂଜ୍ୟ ଓ ପୂଜକର ମଧ୍ୟବର୍ତ୍ତୀ ସ୍ଥାନ—
2. The space between the worshipper and the worshipped.
ଦେ. ବି. (ନାମ)—ପୁରୀ ଜିଲ୍ଲାର ନଦୀବିଶେଷ—
A river in the district of Puri.
[ଦ୍ର—ଏହି ନଦୀ ପୁରୀ ଜିଲ୍ଲା ବାଲିଅନ୍ତା ନିକଟସ୍ଥ ଖଡ଼ଗପଡ଼ା ଗ୍ରାମର ୨ ମାଇଲ ଦୂରରେ ଜାତ ହୋଇ ନଦୀର ଉ. ପୂ. କୂଳ ବାହାର ଦ. ପୂ. ଦିଗକୁ ପ୍ରବାହିତ ହୋଇ ପୁରୀ ଜିଲ୍ଲା କାକଟପୁର ଥାନାର କେଉଟଜଂଗା ନିକଟରେ ବଙ୍ଗୋପସାଗରରେ ମିଶିଅଛି । ଏହାର

ଦୈର୍ଘ୍ୟ ୩୦ ମାଇଲ ଓ ପ୍ରସ୍ଥ ୪୦।୫୦ ହାତ । ଏହା ତୀରରେ ପୁରାଣପ୍ରସିଦ୍ଧ ତୀର୍ଥସ୍ଥାନ ଓ ଦେବ ମନ୍ଦିରମାନ ବିଦ୍ୟମାନ ରହିଅଛି । ରାମାୟଣବର୍ଣ୍ଣିତ ଦଣ୍ଡକାରଣ୍ୟ ଏହା କୂଳରୁ ଆରମ୍ଭ ହୋଇଥିବାର କଥିତ । ଏହା ତୀରସ୍ଥ କଆଲୀ ଗ୍ରାମ ନିକଟସ୍ଥ ପାଣ୍ଡବ ତୀର୍ଥରେ ପ୍ରତିବର୍ଷ ମକର ଶୁକ୍ଳ ଏକାଦଶୀ ଦିନ ଗୋଟିଏ ମେଲା ହୁଏ । ଏହା ତୀରସ୍ଥ ଭୁଲସୀପୁର ଗ୍ରାମ ପାଖେ ଚଉରାଶୀ ବୋଲି ଗୋଟିଏ ଗ୍ରାମରେ ପ୍ରାଚୀନ ରାଜଧାନୀର ଭଗ୍ନାବଶେଷ ଦେଖାଯାଏ ଏବଂ ଏହା ପ୍ରାଚୀନ ଉତ୍କଳର ରାଜଧାନୀ ତୋଷାଳି ବୋଲି ଅନୁମାନ କରାଯାଏ । ପୂର୍ବେ ଏ ନଦୀ ସ୍ରୋତସ୍ୱତୀ ଥିଲା ଏବଂ ଏଥିରେ ନୌକାଦ୍ୱାରା କୋଣାର୍କ ମନ୍ଦିରର ପଥରମାନ ସୁଦୂର ଖୋରଧା ଓ ନାଲଗିରରୁ ଅଣା ଯାଇଥିଲା । କୋଣାର୍କ ମନ୍ଦିରରେ କାମ କରୁଥିବା ୧୨୦୦ ବଢ଼େଇ ଏହି ନଦୀ ତୀରସ୍ଥ ଭଇଁଚଗରଡ଼ ଗ୍ରାମରେ ରହି କାର୍ଯ୍ୟ କରୁଥିଲେ । ଅଦ୍ୟାପି ଚୈତ୍ର ଦିନ ଏହିଠାରେ ବଢ଼େଇମାନଙ୍କର ବାର୍ଷିକ ମେଲା ହୁଏ—ଡାକ୍ତର ରାଧାଚରଣ ପଣ୍ଡା]

**ପ୍ରାଚୀନ**—ସଂ. ବିଣ. ( ପ୍ରାଚ୍+ଈନ )—
**Prāchina** ୧ । ପୂର୍ବ ଦିଗସ୍ଥ—
[ପ୍ରାଚୀନତା(ତ୍ୱ)—ବି] 1. Eastern.
(ପ୍ରାଚୀନା—ସ୍ତ୍ରୀ) ୨ । ପୂର୍ବକାଳୀନ—2. Past; former.
୩ । ପୁରାତନ—3. Ancient
୪ । ବୃଦ୍ଧ—4. Old.
୫ । ପ୍ରାଚ୍ୟ; ପୂର୍ବ ଦେଶୀୟ—5. Eastern.
୬ । (ପ୍ରାଚୀ+ଈନ. ଭାବାର୍ଥେ) ପୂର୍ବଦିଗ୍ ଭବ—
6. Occurring or produced in the east.

**ପ୍ରାଚୀନ ତିଳକ**—ସଂ. ବି—ଚନ୍ଦ୍ର—
**Prāchina tilaka** The moon (Apte).

**ପ୍ରାଚୀନ ପନସ**—ସଂ. ବି—ବିଲ୍ୱ ଗଛ—
**Prāchina panasa** The Bilwa tree (Apte).

**ପ୍ରାଚୀନ ବର୍ହିଃ**—ସଂ. ବି—୧ । ଇନ୍ଦ୍ର—
**Prāchina barhih** 1. Indra.
୨ । ପ୍ରଚେତାମାନଙ୍କର ପିତା; ପ୍ରାଚୀନ ରାଜବିଶେଷ—
2 Name of an ancient king

**ପ୍ରାଚୀନ ଶାଳ**—ସଂ, ବି.—(ପ୍ରାଚୀନ+ଶାଳା)—୧ । ପୁରାତନ ଗୃହ
**Prāchina sāla** (ହି. ଶ.)—1 An old house.
୨ । ପୂର୍ବ ଦିଗରେ ଥିବା ଗୃହ (ହି. ଶ.)—
2. A house in the eastern side.

**ପ୍ରାଚୀନା**—ସଂ. ବିଣ. ସ୍ତ୍ରୀ. (ପ୍ରାଚୀନ+ଆ)—ପ୍ରାଚୀନର ସ୍ତ୍ରୀଲିଙ୍ଗ—
**Prāchinā** Feminine of Prāchina.
ସଂ. ବି.—୧ । ପାଠା (ଦେଖ) (ହି. ଶବ୍ଦସାଗର)—
1. Pāthā (See)
୨ । ରାସ୍ନା (ଦେଖ) (ହି. ଶ.)—2 Rāsnā (See)

**ପ୍ରାଚୀନାବୀତ**—ସଂ. ବି. (ପ୍ରାଚୀନ+ଆବୀତ)—୧ । ଶ୍ରାଦ୍ଧାଦି ପିତୃକାର୍ଯ୍ୟରେ ବାମସ୍କନ୍ଧ ବାହାରକୁ ରଖି ଡାହାଣ
**Prāchinābita**
(ପ୍ରାଚୀନୋପବୀତ—ଅନ୍ୟରୂପ) କାନ୍ଧରେ ଯଜ୍ଞୋପବୀତ ଧାରଣ କରିବାର ପ୍ରକାର—The wearing of the sacred thread over the right shoulder by passing it towards the left side, as at a śrāddha.
୨ । ଡାହାଣ କାନ୍ଧ ବାଟେ ବାମ ଆଡ଼କୁ ଲମ୍ବି ଥିବା ଉପବୀତ—
2. The sacred thread worn over the right shoulder and passing towards the left side.

**ପ୍ରାଚୀନାବୀତୀ**—ସଂ. ବିଣ. ପୁଂ (ପ୍ରାଚୀନାବୀତ+ଅସ୍ତି ଅର୍ଥରେ ଇନ୍, ୧ମା.
**Prāchinābiti** ଏକ.)—ଶ୍ରାଦ୍ଧାଦି କାଳରେ ଦକ୍ଷିଣ ସ୍କନ୍ଧରେ
(ପ୍ରାଚୀନୋପବୀତୀ—ଅନ୍ୟରୂପ) ଯଜ୍ଞସୂତ୍ର ପିନ୍ଧି ଥିବା (ବ୍ୟକ୍ତି), ସବ୍ୟ—
(a person) Wearing the sacred thread on the right shoulder

**ପ୍ରାଚୀନାମଲକ**—ସଂ. ବି.—ପାଣି ଅଁଲା (ଦେଖ) (ହି. ଶ.)—
**Prāchināmalaka** Pāni a-ṅlā (See)

**ପ୍ରାଚୀ ପତି**—ସଂ. ବି. (୬ଷ୍ଠୀ ତତ୍)—ପୂର୍ବ ଦିକ୍‌ପାଳ, ଇନ୍ଦ୍ର—
**Prāchi pati** Indra.

**ପ୍ରାଚୀ ମାହାତ୍ମ୍ୟ**—ସଂ. ବି.—ସଂସ୍କୃତ ଗ୍ରନ୍ଥବିଶେଷ—The title of a
**Prāchi māhātmya** book in Sanskrit.
[ଦ୍ର—ଏଥିରେ ପ୍ରାଚୀତୀରସ୍ଥ ମନ୍ଦିର ଓ ତୀର୍ଥମାନଙ୍କର ମାହାତ୍ମ୍ୟ ବର୍ଣ୍ଣିତ ହୋଇଅଛି । ୧୦୭ ବର୍ଷ ତଳେ ପୁରୀଜିଲା କାକଟପୁର ନିବାସୀ ନାରାୟଣ ମିଶ୍ର ଏ ପୁସ୍ତକ ପ୍ରଣୟନ କରିଥିଲେ । ଶ୍ରୀଯୁକ୍ତ ତ୍ରିଲୋଚନ ଆଚାର୍ଯ୍ୟ ଏ ସଂସ୍କୃତ ଗ୍ରନ୍ଥର ଓଡ଼ିଆ ପଦ୍ୟ ଅନୁବାଦ କରିଅଛନ୍ତି । ଏ ଗ୍ରନ୍ଥଦ୍ୱୟ ଅଦ୍ୟାବଧି ଅପ୍ରକାଶିତ—ଡାକ୍ତର. ରାଧାଚରଣ ପଣ୍ଡା । ]

**ପ୍ରାଚୀର**—ସଂ. ବି ( ପ୍ର+ଆ+ଚୀ ଧାତୁ=ଏକତ୍ର କରିବା, ଆବରଣ
**Prāchira** କରିବା+କର୍ମ. ର )—୧ । ନଗର ଓ ଦୁର୍ଗ ଆଦିର ପାଚେରି; ପ୍ରାନ୍ତସ୍ଥ ବେଷ୍ଟନ—1 Rampart.
୨ । ଛଡ଼ିଦେବାଲି—2. Compound wall.
୩ । ଘେରବନ୍ଧ, ବାଡ଼—
3. An enclosure; hedge; fencing.

**ପ୍ରାଚୀ ସମିତି**—(ନାମ)—କଟକରେ ପ୍ରତିଷ୍ଠିତ ପ୍ରାଚୀନ ଓଡ଼ିଆ ସାହିତ୍ୟ
**Prāchi samiti** ପ୍ରକାଶକ ସମିତି—Name of a society started at Cuttack for publishing old literary works of Orissa.
[ ଦ୍ର—ଏ ସମିତି ରାୟ ସାହେବ ପ୍ରୋଫେସର ଆର୍ତ୍ତବଲ୍ଲଭ ମହାନ୍ତିଙ୍କଦ୍ୱାରା ପ୍ରଥମେ ପ୍ରତିଷ୍ଠିତ ହୋଇ ରାୟ ବାହାଦୁର ଲୁଣ୍ଡା ଭୃଷ୍ଣଚନ୍ଦ୍ର ମହାପାତ୍ରଙ୍କ ଅର୍ଥାନୁକୂଲ୍ୟରେ ୪୫ ବର୍ଷ ମଧ୍ୟରେ ଅନେକଗୁଡ଼ିଏ ଅପ୍ରକାଶିତ ପ୍ରାଚୀନ ଓଡ଼ିଆ ଗ୍ରନ୍ଥ ଓ ଗୁଡ଼ିଏ ଓଡ଼ିଆ ଗ୍ରନ୍ଥର ଟୀକା ଓ ମହାମାଧର୍ମପ୍ରତିପାଦକ ଗ୍ରନ୍ଥ ପ୍ରକାଶ କରିଅଛନ୍ତି । ଯୁବକ କର୍ମୀ ଶ୍ରୀ ବିଚିତ୍ରନନ୍ଦରଣ ପଟ୍ଟନାୟକଙ୍କ ସମ୍ପାଦକତ୍ୱରେ ଏ ସମିତିରୁ ପ୍ରକାଶିତ ତ୍ରୈମାସିକ 'ପ୍ରାଚୀ' ପତ୍ରିକା ଭାରତରେ ଓ ଇଉରୋପରେ ପ୍ରଚାରିତ ହୋଇଥିଲା । ପ୍ରାଚୀ ସମିତିଦ୍ୱାରା ପ୍ରକାଶିତ ଗ୍ରନ୍ଥମାନଙ୍କରୁ ଅନେକ ପଦ ଓ ବିଷୟମାନ ଏ ଭାଷାକୋଷରେ ଉଦ୍ଧୃତ ହୋଇଅଛି । ତତ୍ତତ୍‌ସ୍ଥଳରେ ଗ୍ରନ୍ଥର ନାମ ଓ ତତ୍ପୂର୍ବେ ପ୍ରାଚୀ ( ଯଥା—ପ୍ରାଚୀ. ଶିବସ୍ୱରୋଦୟ ) ଲେଖା ଯାଇଅଛି । ]

**ପ୍ରାଚୁର୍ଯ୍ୟ**—ସଂ. ବି. ( ପ୍ରଚୁର+ଭାବେ. ଯ )—ପ୍ରଚୁରତା; ଆଧିକ୍ୟ—
**Prāchurjya** Abundance; plenty; sufficience.

**ପ୍ରାଚ୍ୟ**—ସଂ. ବିଣ. ( ପ୍ରାଚ୍=ପୂର୍ବ+ଯ )—୧ । ପୂର୍ବଦେଶୀୟ—
Prāchya 1. Eastern; oriental.
୨ । ପୂର୍ବଦିଗସ୍ଥ—2. Belonging to the east.
୩ । ପୂର୍ବକାଳୀନ; ପ୍ରାଚୀନ—
2. Of ancient times; old; ancient
ସଂ. ବି—୧ । ସରସ୍ୱତୀ ନଦୀର ପୂର୍ବ ଓ ଦକ୍ଷିଣ ଦେଶ ( ପଞ୍ଚାଳ, ବିଦେହ, ଅଙ୍ଗ, ବଙ୍ଗ ଓ ମଗଧ )—1. The country to the south and east of the Saraswati river.
୨ । ପୂର୍ବଦେଶ—2. The eastern country

**ପ୍ରାଜକ**—ସଂ. ବି. ( ପ୍ର+ଅଜ୍ ଧାତୁ ଣିଚ୍=ଗମନ କରାଇବା+କର୍ତ୍ତୃ. Prājaka ଅକ )—୧ । ସାରଥି, ରଥାଦିର ଚାଳକ, କୋଚ୍‌ଆନ—
1. Charioteer; coachman.
୨ । ନିୟନ୍ତା; ଚାଳକ—2. A guide; a driver

**ପ୍ରାଜନ**—ସଂ. ବି. ( ପ୍ର+ଅଜ୍ ଧାତୁ ଣିଚ୍+କରଣ. ଅନ )—
Prājana ୧ । ପଶୁଚାଳନ ଦଣ୍ଡ, ପାଞ୍ଚଣ ବାଡ଼ି—
1. A goad; a driving rod
୨ । (+ଭାବ. ଅନ) ଅଡ଼ାଇବା, ଚାଳନ—2. Driving.

**ପ୍ରାଜହିତ**—ସଂ. ବି—ଗାର୍ହପତ୍ୟ ଅଗ୍ନି—
Prājahita One of the sacrificial fires.

**ପ୍ରାଜାପତ୍ୟ**—ସଂ. ବିଣ ( ପ୍ରଜାପତି+ଯ )—୧ । ପ୍ରଜାପତି ସମ୍ବନ୍ଧୀୟ—
Prājāpatya 1. Relating to Brahmā.
୨ । ପ୍ରଜାପତିଙ୍କଠାରୁ ଉତ୍ପନ୍ନ—
2. Born of Prajāpati.
ସଂ ବି—୧ । ହିନ୍ଦୁଧର୍ମାନୁମତ ବିବାହବିଶେଷ ( ଯହିଁରେ କନ୍ୟାକର୍ତ୍ତା ବରଙ୍କୁ ସମ୍ମାନ ସହକାରେ କନ୍ୟା ପ୍ରଦାନ କରନ୍ତି—
1. A form of marriage
[ ଦ୍ର—ହିନ୍ଦୁଶାସ୍ତ୍ରୋକ୍ତ ଆଠ ପ୍ରକାର ବିବାହରୁ ଏହା ଏକ । ଏଥିରେ କନ୍ୟାକର୍ତ୍ତା ବର ଓ କନ୍ୟାଙ୍କୁ ଏକତ୍ର କରି ସେମାନଙ୍କୁ ନିମ୍ନଲିଖିତ ପ୍ରତିଜ୍ଞାରେ ଆବଦ୍ଧ କରନ୍ତି "ଆମ୍ଭେ ଦୁହେଁ ମିଳିତ ହୋଇ ଗାର୍ହସ୍ଥ୍ୟ ଧର୍ମ ପାଳନ କରିବୁଁ ।" ଦମ୍ପତି ଏ ପ୍ରତିଜ୍ଞାରେ ଆବଦ୍ଧ ହେବା ପରେ କନ୍ୟାକର୍ତ୍ତା ଦୁହିଙ୍କର ପୂଜା କରି ସାଳଙ୍କାର କନ୍ୟାକୁ ବରଙ୍କ ହସ୍ତରେ ସମର୍ପଣ କରନ୍ତି—ହି. ଶ । ]
୨ । ପ୍ରୟାଗ ( ହି. ଶ. )—2. Allahabad.
୩ । ଦ୍ୱାଦଶାହସାଧ୍ୟ ପ୍ରାୟଶ୍ଚିତ୍ତ ବ୍ରତବିଶେଷ ( ପ୍ରଥମ ଦିବସତ୍ରୟ ସନ୍ଧ୍ୟାବେଳେ ୨୨ ଗୁଣ୍ଡା ଅନ୍ନ ଭୋଜନ, ତତ୍ପର ଦିବସତ୍ରୟ ପ୍ରାତଃକାଳରେ ୨୬ ଗୁଣ୍ଡା ଅନ୍ନ ଭୋଜନ, ତତ୍ପର ଦିବସତ୍ରୟ ଅଯାଚିତ ଅନ୍ନ ୨୪ ଗୁଣ୍ଡା ଭୋଜନ ଓ ଶେଷ ଦିବସତ୍ରୟ ଉପବାସ—ହି. ଶ )—3. A kind of penance observed during 12 days.
୪ । ରୋହିଣୀ ନକ୍ଷତ୍ର—4. The 4th asterism.
୫ । ଅପୁତ୍ରକ ବ୍ୟକ୍ତି ଆପଣା କନ୍ୟାର ପୁତ୍ର ହେଲେ ତାକୁ ପୁତ୍ରସ୍ୱରୂପ ଗ୍ରହଣ କରିବେ ଏହି ଉଦ୍ଦେଶ୍ୟରେ କନ୍ୟାକୁ ବିବାହ ଦେବା ପୂର୍ବେ ଯେଉଁ ଯଜ୍ଞ ସମ୍ପାଦନ କରନ୍ତି—
5. A sacrifice performed before appointing one's daughter to raise an issue.
୬ । ସନ୍ନ୍ୟାସାଶ୍ରମରେ ପ୍ରବେଶ କରିବା ପୂର୍ବେ ସର୍ବସ୍ୱ ଦକ୍ଷିଣା ଦେଇ ଯେଉଁ ଯଜ୍ଞ କରାଯାଏ—
6. A vedic sacrifice performed by a person who is going to enter into asceticism by giving away all his worldly belongings to the officiating priests.

**ପ୍ରାଜିକ**—ସଂ. ବି—ବାଜ, ଶ୍ୟେନ ( ହି. ଶବ୍ଦସାଗର )—
Prājika Hawk.

**ପ୍ରାଜିତା**—ସଂ. ବି. ପୁଂ. ( ପ୍ରାଜିତୃ ଶବ୍ଦ; ୧ମା. ୧ବ. )—ସାରଥି—
Prājitā Charioteer.

**ପ୍ରାଜ୍ଞ**—ସଂ. ବିଣ. ପୁଂ. ( ପ୍ର+ଆ+ଜ୍ଞା ଧାତୁ+ଅ, ବା ପ୍ରଜ୍ଞା+ଅ )—
Prājña ୧ । ଜ୍ଞାନୀ, ସୁପଣ୍ଡିତ, ବିଜ୍ଞ—1. Wise; learned.
( ପ୍ରାଜ୍ଞା, ପ୍ରାଜ୍ଞୀ—ସ୍ତ୍ରୀ ) ୨ । ଦକ୍ଷ, ନିପୁଣ; ଚତୁର—
( ପ୍ରାଜ୍ଞତା[ତ୍ୱ]—ବି ) 2. Clever; skilful.
୩ । ( ପ୍ର+ଅଜ୍ଞ ) ମୂର୍ଖ, ନିର୍ବୁଦ୍ଧି ( ହି. ଶ. )—
3. Illiterate, stupid
ସଂ. ବି—୧ । ପଣ୍ଡିତବ୍ୟକ୍ତି—1 A learned man.
୨ । ଜୀବାତ୍ମା ( ହି ଶବ୍ଦସାଗର )—
2 The living soul
୩ । କଳ୍କିଦେବଙ୍କ ବଡ଼ ଭାଇ—3. Name of the elder brother of Kalkideba.

**ପ୍ରାଜ୍ଞମାନୀ**—ସଂ. ବିଣ. ପୁଂ. (ପ୍ରାଜ୍ଞ+ମନ୍ ଧାତୁ+ଇନ୍; ୧ମା. ୧ବ)—
Prājñamānī ପଣ୍ଡିତମ୍ମନ୍ୟ, ପାଣ୍ଡିତ୍ୟାଭିମାନୀ—
(ପ୍ରାଜ୍ଞମାନିନୀ—ସ୍ତ୍ରୀ) Thinking one's self to be a learned man, though not actually so.

**ପ୍ରାଜ୍ଞୀ**—ସଂ. ବିଣ. ସ୍ତ୍ରୀ. (ପ୍ରାଜ୍ଞ+ଈ)—ପ୍ରାଜ୍ଞର ସ୍ତ୍ରୀ ଲିଙ୍ଗ—
Prājñī Feminine of Prājña.
ସଂ. ବି. ସ୍ତ୍ରୀ—ସୂର୍ଯ୍ୟଙ୍କ ସ୍ତ୍ରୀଙ୍କ ନାମ (ହି. ଶ)—
Name of a wife of the Sun-god.

**ପ୍ରାଜ୍ୟ**—ସଂ. ବିଣ. (ପ୍ର+ଅଂଜ୍ ଧାତୁ=ପ୍ରବୃଦ୍ଧ ହେବା+କର୍ତ୍ତୃ. ଯ)—
Prājya ୧ । ପ୍ରଚୁର, ପ୍ରଭୂତ—1 Much; excessive.
୨ । (ବହୁବ୍ରୀହି; ପ୍ର+ଆଜ୍ୟ) ଘୃତବହୁଳ—
2. Full of ghee.
ସଂ. ବି. ( ପ୍ର+ଆଜ୍ୟ )—ପ୍ରକୃଷ୍ଟ ଘୃତ—
Excellent ghee.

**ପ୍ରାଞ୍ଜଳ**—ସଂ. ବିଣ. ( ପ୍ର+ଅଂଜ୍ ଧାତୁ+କର୍ମ. ଅଳ )—
Prāñjala ୧ । ସରଳ; ସହଜ—1 Easy; sincere;
[ପ୍ରାଞ୍ଜଳତା(ତ୍ୱ)—ବି] straightforward.
୨ । ସତ୍—2 Honest; upright; frank.
୩ । ସୁଖବୋଧ୍ୟ—3. Easy to understand; intelligible; plain.
୪ । ସୁଖସେବ୍ୟ; ରୁଚିକର—4. Palatable.

୫ । ନିର୍ମଳ—5 Clear.
୬ । ଉଜ୍ଜ୍ୱଳ—6. Bright.
୭ । ସତ୍ୟ (ହି॰ ଶ)—7 True.
୮ । ସମାନ, ସମତଳ—8. Smooth; level.

**ପ୍ରାଞ୍ଜଳି**—ସଂ ବି॰ ( ବହୁବ୍ରୀହି, ପ୍ର=ପ୍ରକୃଷ୍ଟରୂପେ କୃତ+ଅଞ୍ଜଳି ଯାହା ଦ୍ୱାରା )—
Prānjalı
ବଦ୍ଧାଞ୍ଜଳି; କୃତାଞ୍ଜଳି, ଅଞ୍ଜଳିବଦ୍ଧ—
With folded palms; in a supplicating posture.
ସ. ବି—ଅଞ୍ଜଳି, ଆଞ୍ଜୁଳା (ହି ଶ)—
A double handful.

**ପ୍ରାଡ୍‌ବିବାକ**—ସ. ବି. ( ପ୍ରଚ୍ଛ୍ ଧାତୁ=ପଚାରିବା + କ୍ୱିପ୍=ପ୍ରାଟ୍ + ବିବାକ )—
Prāḍ bibāka
(ପ୍ରାଡ୍ ବିବେକ—ଅନ୍ୟରୂପ) ୧ । ପ୍ରଧାନ ବିଚାରକ; ଜଜ; ନ୍ୟାୟାଧୀଶ—1. A judge; a court of justice; Chief-justice.
୨ । ମାଜିଷ୍ଟ୍ରେଟ୍—2 Magistrate.
୩ । ଓକିଲ (ହି. ଶ)—3. Pleader.

**ପ୍ରାଣ**—ସ. ବି. (ପ୍ର+ଅନ୍ ଧାତୁ=ବଞ୍ଚିବା+କରଣ. ଅ)—
Prāṇa ୧ । ହୃଦୟସ୍ଥ ପଞ୍ଚବାୟୁ ମଧ୍ୟରୁ ଏକତମ—
1. One of the 5 airs in the body.
[ ଦ୍ର—ପ୍ରାଣ, ଅପାନ, ବ୍ୟାନ, ଉଦାନ ଓ ସମାନ ପଞ୍ଚବାୟୁ ନାମରେ ଖ୍ୟାତ । ]
୨ । ନିଃଶ୍ୱାସ—2. Inhaled breath.
୩ । ଜୀବନ; ଚୈତନ୍ୟ—
3. Life; vitality; spirit.
୪ । ପ୍ରାଣର ଅତ୍ୟାବଶ୍ୟକ ଅଙ୍ଗ—
4. A vital organ.
୫ । ବଳ; ଶକ୍ତି—5. Strength; power.
୬ । ସାର—6 Essence; vital element.
୭ । ବ୍ରହ୍ମା—7 Brahmā.
୮ । ବାୟୁ—8. Wind; air.
୯ । ଦୀର୍ଘୋଚ୍ଚାରଣ—9. Aspiration in the articulation of letters.
୧୦ । ଆପଣାର ପ୍ରାଣ ପରି ସ୍ନେହପାତ୍ର—
10. One's beloved object.
୧୧ । ଶରୀରସ୍ଥ ୫ ପ୍ରକାର ପ୍ରାଣବାୟୁ; ପଞ୍ଚପ୍ରାଣ—
11. The five vital airs of the system
( ଯଥା—ପ୍ରାଣ, ଅପାନ, ବ୍ୟାନ, ଉଦାନ ଓ ସମାନ—ହି. ଶ)
୧୨ । ପ୍ରାଣ, ଅପାନ, ବ୍ୟାନ, ଉଦାନ ଓ ସମାନ ଏହି ପଞ୍ଚ ମୁଖ୍ୟ ବାୟୁ ଓ ନାଗ, କୂର୍ମ, କୃକଳ(ବା କୃକର), ଦେବଦତ୍ତ ଓ ଧନଞ୍ଜୟ ଶରୀରସ୍ଥ ଏହି ଦଶ ବାୟୁ (ହି. ଶବ୍ଦସାଗର)—
12. Ten airs existing inside the human body.
୧୩ । ଶ୍ୱାସ—13. Breath; respiration.
୧୪ । (ଜ୍ୟୋତିଷ) ଦଶଟି ଦୀର୍ଘ ମାତ୍ରା ଉଚ୍ଚାରିତ ହେବାର କାଳ (ହି. ଶ)—14 (astronomy) The length of time occupied by the pronunciation of 10 long vowels.
୧୫ । (ଛାନ୍ଦୋଗ୍ୟ ବ୍ରାହ୍ମଣ) ପ୍ରାଣ, ବାକ୍, ଚକ୍ଷୁ, ଶ୍ରୋତ୍ର ଓ ମନଃ (ହି. ଶ)—15 (chhāndogya) Life, speech, eye, ear and mind taken together.
୧୬ । ବିଷ୍ଣୁ—16. Bishṇu.
୧୭ । ଅଗ୍ନି (ହି. ଶ)—17. Fire.
୧୮ । 'ଯ'କାର ବର୍ଣ୍ଣ (ହି. ଶ)—18. The letter 'ya'.
ସ. ବିଣ—ପୂରିତ (ପ୍ରକୃତିବାଦ)—Filled up.
ଦେ. ବି—୧ । ଆନ୍ତରିକତା—1. Heartiness; sincerity.
୨ । ତେଜଃ—2. Vigour.
୩ । ହୃଦୟ, ମନ—3. Heart; mind.

**ପ୍ରାଣ ଉଡ଼ିଯିବା**—ଦେ. ବି—୧ । ପ୍ରାଣ ଛାଡ଼ିଯିବା (ଦେଖ)
Prāṇa urḍijibā 1 Prāṇa chhāṛḍijibā (See)
প্রাণ উড়ে যাওযা ୨ । ଅତ୍ୟନ୍ତ କ୍ଳାନ୍ତ ହେବା—
प्राण उड़जाना 2. Being over-tired.
୩ । ମୂର୍ଚ୍ଛା ଅବସ୍ଥା—3. Dying condition
୪ । ଭୟଭୀତ ଅବସ୍ଥା—4. A state of great alarm

**ପ୍ରାଣ ଉପରେ ପଡ଼ିବା**—ଦେ. ବି—ଜୀବନ ସଙ୍କଟ; ପ୍ରାଣାନ୍ତ କଷ୍ଟ—
Prāṇa upare parḍibā A question of life and death.
প্রাণের উপর পড়া प्राणों पर पड़ना

**ପ୍ରାଣ ଖାଇବା**—ଦେ. କ୍ରି—ଅତି ବ୍ୟସ୍ତ କରିବା—
Prāṇa khāibā To harass much.
প্রাণ খাওযা प्राण खाना

**ପ୍ରାଣକଷ୍ଟ**—ସ. ବି—୧ । ମରଣ ସମୟରେ ଅନୁଭୂତ ଦୁଃଖ—
Prāṇakashṭa 1. The pangs felt at death.
୨ । ପ୍ରାଣାନ୍ତକ କଷ୍ଟ—2. Mortal pain; great pain.

**ପ୍ରାଣକୃଷ୍ଣ**—ଦେ. ବି. ପୁଂ—ପୁରୁଷଙ୍କ ନାମ—
Prāṇakrushṇa A name given to males.

**ପ୍ରାଣ ଘାତ**—ସ. ବି. (୬ଷ୍ଠୀ ତତ୍ ପ୍ରାଣ+ଘାତ)—ହତ୍ୟା; ବଧ—
Prāṇa ghāta Killing; slaughter.

**ପ୍ରାଣ ଘେନିବା**—ଦେ. କ୍ରି—ମାରିବା; ହତ୍ୟା କରିବା—
Prāṇa ghenibā To kill.
প্রাণ লওযা ମୋତେ ଛାଡ଼ ମୋର ଅଗେ ପ୍ରାଣ ନାର
प्राण लेना ଘେନଗଲ ପ୍ରେତସାଇଁ । ଧ୍ୟାନାଥ· ପାବଂଗା ।

**ପ୍ରାଣ ଖୋଲିବା**—ଦେ. କ୍ରି—୧ । ନିଜର ମନୋଭାବକୁ ବ୍ୟକ୍ତ କରିବା—
Prāṇa kholibā 1. To express one's inmost thoughts.
প্রাণ খুলনা
प्राण खुलना ୨ । ସରଳତା ପ୍ରକାଶ କରିବା—
2 To be frank.

(ପଥା—ବହୁଦିନ ପରେ ଆଜ ପ୍ରାଣ ଖୋଲି କଥାବାର୍ତ୍ତା ହେବାକୁ ମୋତେ ଜଣେ ବନ୍ଧୁ ମିଳିଲେ ।)

**ପ୍ରାଣ ଛଡ଼ା**—ଦେ. ବିଣ—ଜୀବନ ମୂଲ୍ୟ; ଯହିଁରେ ଜୀବନ ପର୍ଯ୍ୟନ୍ତ ଦେବାକୁ ପଡ଼େ—Requiring the sacrifice of one's life even.
Prāṇa chharḍā

ପାଞ୍ଚବେ ଯ କହିବେ ପ୍ରାଣଛଡ଼ା ଯୁଦ୍ଧ
କରିବାକୁ କୁରୁମାନଙ୍କୁ ଭଣେ କଥ । କୃଷ୍ଣସିଂହ, ମହାଭାରତ, ଦ୍ରୋଣ ।

ଦେ. ବି—ପ୍ରାଣ ଛାଡ଼ିଯିବା (ଦେଖ)—
Prāṇa chhārḍijibā (See)

**ପ୍ରାଣ ଛାଡ଼ିବା**—ଦେ. କ୍ରି—ମୃତହେବା; ମରିବା—
Prāṇa chhārḍibā To die; to give up life.
প্রাণ ছাড়া ଥିବ ବ ଛାଡ଼ିବ ପ୍ରାଣ । କବିସୂର୍ଯ୍ୟ, ବଳୋଗୋବିନ୍ଦ ।
**प्राण छोड़ना** (ପ୍ରାଣ ତେଜିବା, ପ୍ରାଣ ହରାଇବା, ପ୍ରାଣ ହାରିବା—ଅନ୍ୟରୂପ)

**ପ୍ରାଣ ଛାଡ଼ିଯିବା**—ଦେ. ବି—ପ୍ରାଣତ୍ୟାଗ, ମୃତ୍ୟୁ—
Prāṇa chhārḍijibā Death, dying,
প্রাণ ছেড়ে যাওয়া **प्राण निकलना**
(ପ୍ରାଣ ବାହାରି ଯିବା, ପ୍ରାଣ ଯିବା—ଅନ୍ୟରୂପ)

**ପ୍ରାଣତ୍ୟାଗ**—ସଂ. ବି (୬ଷ୍ଠୀ ତତ୍; ପ୍ରାଣ+ତ୍ୟାଗ)—ମୃତ୍ୟୁ—
Prāṇatyāga Death; demise; dying
(ପ୍ରାଣନାଶ—ଅନ୍ୟରୂପ)

**ପ୍ରାଣଦ**—ସଂ. ବିଣ. (ପ୍ରାଣ+ଦା ଧାତୁ=ଦେବା+କର୍ତ୍ତୃ. ଅ)—
Prāṇada ଯାହା ବଞ୍ଚାଇ ରଖେ, ଜୀବନଦାତା—Life-giving.
(ପ୍ରାଣଦା—ସ୍ତ୍ରୀ) ସଂ. ବି—୧ । ଶୋଣିତ, ରକ୍ତ—1. Blood.
୨ । ଜଳ—2. Water.

**ପ୍ରାଣ ଦଣ୍ଡ**—ସଂ. ବି—ଅପରାଧୀର ପ୍ରାଣନାଶରୂପ ଦଣ୍ଡ; ମୃତ୍ୟୁଦଣ୍ଡ—
Prāṇa daṇḍa Capital punishment; punishment of death; death penalty.

**ପ୍ରାଣଦଣ୍ଡାଜ୍ଞା**—ସଂ. ବି. (ପ୍ରାଣଦଣ୍ଡ+ଆଜ୍ଞା)—ପ୍ରାଣଦଣ୍ଡ ହେବାର ହୁକୁମ—
Prāṇadaṇḍājnā Death sentence.

**ପ୍ରାଣଦା**—ସଂ. ବି. ସ୍ତ୍ରୀ. (ପ୍ରାଣ+ଦା ଧାତୁ+ଅ+ସ୍ତ୍ରୀ. ଆ)—
Prāṇadā ୧ । ହରିତକୀ, ହରଡ଼ା—1. Myrobalan.
୨ । ଋଦ୍ଧି ନାମକ ଔଷଧ—2 A rare herb.

**ପ୍ରାଣଦାତା**—ସଂ. ବିଣ. ପୁଂ. (ପ୍ରାଣ+ଦା ଧାତୁ+କର୍ତ୍ତୃ. ତୃ; ୧ମା. ୧ବ)—ଯେ ବଞ୍ଚାଏ; ଯେ ପ୍ରାଣ ରଖେ—
Prāṇadātā
(ପ୍ରାଣଦାତ୍ରୀ—ସ୍ତ୍ରୀ) Life-saving.

**ପ୍ରାଣଦାନ**—ସଂ. ବି. (୬ଷ୍ଠୀ ତତ୍, ପ୍ରାଣ+ଦାନ)—
Prāṇadāna ୧ । ଅନ୍ୟର ଜୀବନ ରକ୍ଷା—
1. Saving of a person's life.
୨ । ଅନ୍ୟ ପାଇଁ ନିଜର ଜୀବନ ଉତ୍ସର୍ଗ—
2. Sacrifice of one's life for another.

**ପ୍ରାଣଦିତ୍ସା**—ସଂ. ବି. (ପ୍ରାଣ+ଦା ଧାତୁ (ସନ୍)+ଅ+ସ୍ତ୍ରୀ. ଆ)—
Prāṇaditsā ପ୍ରାଣଦାନେଚ୍ଛା—The desire for giving up one's life

ନୃହଇ ୮ କେବେ ପରହିତେ ପ୍ରାଣଦିତ୍ସା ମାନବ ବେଭାର ।
ଚିନ୍ତାମଣି, ବଳମାହାତ୍ମ୍ୟ ।

**ପ୍ରାଣଦ୍ୟୁତ**—ସଂ. ବି—୧ । ପ୍ରାଣପଣ (ଦେଖ)
Prāṇadyuta 1. Prāṇapaṇa (See)
୨ । ଜୀବନର ମାୟା ତ୍ୟାଗପୂର୍ବକ ଯୁଦ୍ଧ—
2. Fight at the risk of one's life.

**ପ୍ରାଣଧନ**—ସଂ. ବିଣ. (୬ଷ୍ଠୀ ତତ୍; ପ୍ରାଣ+ଧନ)—ଜୀବନସର୍ବସ୍ୱ—
Prāṇadhana As dear as one's life; one's beloved.
প্রাণপ্যারা(রী) ଦେ. ବି. (ପୁଂ ଓ ସ୍ତ୍ରୀ)—୧ । ପ୍ରିୟତମ ବ୍ୟକ୍ତି—
**प्राणप्यारा(री)** 1. One's dearest person.
୨ । ପୁଂ—ପୁରୁଷଙ୍କ ନାମ—2. A name given to males.

**ପ୍ରାଣ ଧରିବା**—ଦେ. କ୍ରି.—ବଞ୍ଚି ରହିବା—
Prāṇa dharibā To live, to be alive.

প্রাণ ধরা ଏହା ଶୁଣିବାକୁ ଥାଇବାଏ ମୁହିଁ ଧରିଛି ବ ଛାର ପ୍ରାଣ ?
**प्राणधारण करना** ରାଧାନାଥ, ପାର୍ବତୀ ।

**ପ୍ରାଣ ଧାରଣ**—ସଂ ବି. (୬ଷ୍ଠୀ ତତ୍; ପ୍ରାଣ++ଧାରଣ)—ବଞ୍ଚି ରହିବା-
Prāṇa dhāraṇa Living; being alive; retaining. of one's life.
ପ୍ରାଣଧାରୀ—ପୁଂ } ବିଣ
ପ୍ରାଣଧାରିଣୀ—ସ୍ତ୍ରୀ }

**ପ୍ରାଣନ**—ସଂ. ବି. (ପ୍ର+ଅନ୍ ଧାତୁ=ବଞ୍ଚିବା+ଭାବ. ଅନ)—
Prāṇana ୧ । ଜୀବନଧାରଣ—Living.
୨ । ପ୍ରାଣ; ଜୀବନ—2 Life.
୩ । ଗଳଦେଶ (ପ୍ରକୃଷ୍ଟବାଦ)—3. Throat; neck
୪ । ଜଳ; ପାଣି; (ହ୍ରି. ଶ)—4. Water.
୫ । ବଞ୍ଚିଥିବାର ଚିହ୍ନ ଦେଖାଇବା (ହ୍ରି. ଶ.)—

**ପ୍ରାଣ ନାଥ**—ସଂ. ବି. (୬ଷ୍ଠୀ ତତ୍, ପ୍ରାଣ+ନାଥ)—୧ । ପ୍ରଭୁ—
Prāṇa nātha 1. Lord.
ପ୍ରାଣନାୟକ, } ଅନ୍ୟରୂପ ୨ । ସ୍ୱାମୀ, ପତି—
ପ୍ରାଣପତି } 2. Husband.
୩ । ପ୍ରିୟତମ ବ୍ୟକ୍ତି—
3. One's beloved person.
ଦେ. ବି. ପୁଂ—୧ । ପୁରୁଷଙ୍କ ନାମ—
1. A name given to males.
[ଦ୍ର—ଏ ଜାତିରେ କ୍ଷତ୍ରିୟ ଥିଲେ, ହିନ୍ଦୁ ଓ ମୁସଲମାନ ଧର୍ମର ଏକତା ସମ୍ପାଦନାର୍ଥେ ଏ ଅନେକ ଗ୍ରନ୍ଥ ରଚନା କରିଥିଲେ ଓ ଏ ସମ୍ବନ୍ଧେ ଉପଦେଶ ଦେଉଥିଲେ । କବୀର ଓ ନାନକଙ୍କ ପରି ଏ ଆଜନ୍ମ ସାଧୁ ଥିଲେ । ଏହାଙ୍କ ପ୍ରବର୍ତ୍ତିତ ସମ୍ପ୍ରଦାୟର ନାମ 'ପ୍ରାଣନାଥୀ ।' ଏ ସମ୍ପ୍ରଦାୟାବଲମ୍ବୀ ବୁନ୍ଦେଲଖଣ୍ଡରେ ଅନେକ ଅଛନ୍ତି । ଏମାନେ ମୂର୍ତ୍ତିପୂଜା କରନ୍ତି ନାହିଁ । ଏ ସମ୍ପ୍ରଦାୟରେ ଦୀକ୍ଷିତ ହେବା ବ୍ୟକ୍ତି

ଏହି ସମ୍ପ୍ରଦାୟର ଅନ୍ୟ ବ୍ୟକ୍ତିଙ୍କ ସଙ୍ଗେ ଏକତ୍ର ଭୋଜନ କରିବାର ବାଧା ଅଛି । ହିନ୍ଦୁ ଓ ମୁସଲମାନ ସମ୍ପ୍ରଦାୟର ଲୋକେ ଏ ସମ୍ପ୍ରଦାୟରେ ପ୍ରବେଶ କରି ସୁଦ୍ଧା ଆପଣା ପୂର୍ବଜମାନଙ୍କର ଆଗ୍ରହ ବ୍ୟବହାର ଛାଡ଼ନ୍ତି ନାହିଁ —ହି. ଶ. ।]

୨ । (ନାମ) ସମ୍ରାଟ ଔରଙ୍ଗଜେବଙ୍କ ସମସାମୟିକ 'ପ୍ରାଣନାଥୀ' ସମ୍ପ୍ରଦାୟର ଆଚାର୍ଯ୍ୟ—2. Name of a Hindu reformer who started the Prāṇanāthi sect

**ପ୍ରାଣନାଥୀ**—ଦେ. ବି.—ପ୍ରାଣନାଥଙ୍କ ପ୍ରବର୍ତ୍ତିତ ସମ୍ପ୍ରଦାୟ ଓ ସେ ସମ୍ପ୍ରଦାୟର ବ୍ୟକ୍ତି—The sect started by Prāṇanātha and a member of the sect.
Prāṇanāti
প্রাণনাথী **प्राणनाथी**

**ପ୍ରାଣ ନାଶ**—ସ. ବି.—(୬ଷ୍ଠୀ ତତ୍; ପ୍ରାଣ+ନାଶ)—୧ । ମୃତ୍ୟୁ—1 Death.
Prāṇa nāsa
ପ୍ରାଣନାଶକ, ପ୍ରାଣନାଶୀ—ପୁଂ / ପ୍ରାଣନାଶିକା, ପ୍ରାଣନାଶିନୀ—ସ୍ତ୍ରୀ } ବିଣ
୨ । ହତ୍ୟା—2. Murder.

**ପ୍ରାଣ ନିଗ୍ରହ**—ସ. ବି. (ପ୍ରାଣ+ନି+ଗ୍ରହ୍ ଧାତୁ+କରଣ. ଅ)—ପ୍ରାଣାୟାମ—Controlling one's breath.
Prāṇa nigraha

**ପ୍ରାଣ ନେବା**—ଦେ. କ୍ରି.—ମାରି ପକାଇବା—To kill.
Prāṇa nebā
প্রাণ নেওয়া **प्राण लेना**

**ପ୍ରାଣ ପଙ୍କ**—ସ. ବି. (ଆଧୁନିକ ବିଜ୍ଞାନ ପରିଭାଷା)—ପ୍ରାଣ ବା ଜୀବନଯୁକ୍ତ ମୌଳିକ ରକ୍ତମାଂସ ପିଣ୍ଡ—Protoplasm.
Prāṇa paṅka
(ପ୍ରାଣପିଣ୍ଡ—ଅନ୍ୟରୂପ)
[ଦ୍ର—ଏହା ଜୀବର ମୌଳିକ ଉପାଦାନ ।]

**ପ୍ରାଣ ପଣ**—ସ. ବି. (୬ଷ୍ଠୀ ତତ୍; ପ୍ରାଣ+ପଣ)—ଅନୁଷ୍ଠିତ କର୍ମ ସମ୍ପାଦନ କାମନାରେ ଆପଣା ଜୀବନକୁ ପଣ ରଖିବା—Readiness to sacrifice one's life to attain an object; pledging of one's life.
Prāṇa paṇa

**ପ୍ରାଣ ପଣେ**—ଦେ. କ୍ରି. ବିଣ.—ପାରୁ ପର୍ଯ୍ୟନ୍ତ; ଆପଣା ପ୍ରାଣକୁ ଉତ୍ସର୍ଗ କରି—At the cost of one's life; staking one's life (for an act).
Prāṇa paṇe

ଦେଖାଅ ବିକ୍ରମ ଅରି ସଙ୍ଗେ ରଣ;
ରଙ୍ଗେ ଯୁଝି ପ୍ରାଣ ପଣେ । ରାଧାନାଥ. ପାର୍ବତୀ ।

**ପ୍ରାଣ ପତି**—ସଂ. ବି. ପୁଂ. (୬ଷ୍ଠୀତତ୍; ପ୍ରାଣ+ପତି)—୧ । ଆତ୍ମା—1. The soul.
Prāṇa pati
୨ । ହୃଦୟ (ହି. ଶ.)—2. The heart.
୩ । ସ୍ୱାମୀ, ଭର୍ତ୍ତା (ହି ଶ.)—3. Husband.
୪ । ପ୍ରିୟତମ ପୁରୁଷ—4 One's dearly beloved person.
୫ । ପରମେଶ୍ୱର—5. God.

**ପ୍ରାଣ ପରିଗ୍ରହ**—ସ. ବି. ( ୬ଷ୍ଠୀ ତତ୍; ପ୍ରାଣ+ପରିଗ୍ରହ )—
Prāṇa parigraha
୧ । ପ୍ରାଣଧାରଣ; ବଞ୍ଚି ରହିବା—1. Being alive.
୨ । ଜନ୍ମ ଗ୍ରହଣ କରିବା—2 Being born.

**ପ୍ରାଣ ପରିବର୍ତ୍ତନ**—ସ. ବି. (ଆଧୁନିକ)—କୌଣସି ମୃତବ୍ୟକ୍ତିର ଆତ୍ମାକୁ କୌଣସି ଜୀବିତ ବ୍ୟକ୍ତିର ଶରୀରକୁ ଆହ୍ୱାନ କରି ଆଣିବା—Invoking the spirit of a dead man to the body of a living person
Prāṇa paribarttana

**ପ୍ରାଣପାତ**—ସ. ବି (୬ଷ୍ଠୀ ତତ୍, ପ୍ରାଣ+ପାତ)—ଜୀବନ ତ୍ୟାଗ—Giving up one's life.
Prāṇapāta

**ପ୍ରାଣ ପ୍ରତିମ**—ସ. ବିଣ ପୁଂ. (ପ୍ରାଣ=ଜୀବନ+ପ୍ରତିମ=ତୁଲ୍ୟ)—ପ୍ରାଣସଦୃଶ—Dearest as one's own life; very dear; beloved.
Prāṇa pratima
(ପ୍ରାଣପ୍ରତିମା—ସ୍ତ୍ରୀ)

**ପ୍ରାଣ ପ୍ରତିଷ୍ଠା**—ସ. ବି. (୬ଷ୍ଠୀ ତତ୍, ପ୍ରାଣ+ପ୍ରତିଷ୍ଠା)—ମନ୍ତ୍ରାଦିଦ୍ୱାରା ଜୀବନନ୍ୟାସ; ନବନିର୍ମିତ ଦେବ-ପ୍ରତିମୂର୍ତ୍ତିଙ୍କଠାରେ ମନ୍ତ୍ରାଦିଦ୍ୱାରା ପ୍ରାଣର ଅଧ୍ୟାରୋପଣ—The ceremony of consecrating an image by giving it life.
Prāṇa pratishṭhā
(ପ୍ରାଣନ୍ୟାସ—ଅନ୍ୟରୂପ)
[ ଦ୍ର—ପ୍ରାଣ ପ୍ରତିଷ୍ଠାନ ହେବା ପର୍ଯ୍ୟନ୍ତ ମୂର୍ତ୍ତି ପୂଜାଯୋଗ୍ୟ ହୁଏ ନାହିଁ । ପ୍ରାଣ ପ୍ରତିଷ୍ଠା ହେବା ପରେ ମୂର୍ତ୍ତିରେ ଦେବତ୍ୱା-ରୋପଣ କରାଯାଏ । ]

**ପ୍ରାଣପ୍ରଦ**—ସ. ବିଣ. (ପ୍ରାଣ+ପ୍ର+ଦା ଧାତୁ+କର୍ତ୍ତୃ. ଅ)—
Prāṇaprada
୧ । ଜୀବନରକ୍ଷାକାରୀ—1 Saving one's life; life-giving.
(ପ୍ରାଣ ପ୍ରଦାୟକ—ଅନ୍ୟରୂପ)
(ପ୍ରାଣପ୍ରଦା, ପ୍ରାଣପ୍ରଦାୟିକା—ସ୍ତ୍ରୀ)
୨ । ବଳକର—2. Strength-giving

**ପ୍ରାଣ ପ୍ରୟାଣ**—ସ. ବି. (୬ଷ୍ଠୀ ତତ୍; ପ୍ରାଣ+ପ୍ରୟାଣ)—ଜୀବନଯିବା, ମୃତ୍ୟୁ—Death.
Prāṇa prayāṇa

**ପ୍ରାଣ ପ୍ରିୟ**—ସ. ବିଣ. ପୁଂ – ଜୀବନ ପରି ପ୍ରିୟତମ (ବ୍ୟକ୍ତି)—One's dearest or beloved.
Prāṇa priya
(ପ୍ରାଣପ୍ରିୟା—ସ୍ତ୍ରୀ)

**ପ୍ରାଣ ବଞ୍ଚା(ଞ୍ଚେ)ଇବା**—ଦେ. କ୍ରି—୧ । କୌଣସି ବ୍ୟକ୍ତିକୁ ଜୀବିତ ରଖାଇବା, କୌଣସି ବ୍ୟକ୍ତିକୁ ଆସନ୍ନ ମୃତ୍ୟୁରୁ ରକ୍ଷା କରିବା—To save a person's life; to cause one to live.
Prāṇa bañchā(ñche)ibā
প্রাণ বাঁচান
**प्राण बचाना**

**ପ୍ରାଣବଧ**—ସ. ବି—ହତ୍ୟା—Killing; murder; taking life.
Prāṇabadha

**ପ୍ରାଣବନ୍ଧୁ**—ସଂ. ବି. ପୁଂ. ଓ ସ୍ତ୍ରୀ. (୬ଷ୍ଠୀ ତତ୍)—ପ୍ରିୟତମ ବ୍ୟକ୍ତି—A beloved person; dearest friend.
Prāṇabandhu
ପ୍ରାଣବାନ୍ଧବ—ପୁଂ / ପ୍ରାଣବାନ୍ଧବୀ—ସ୍ତ୍ରୀ } ଅନ୍ୟରୂପ
ଦେ. ବି. (ପୁଂ)—ଲୋକଙ୍କ ନାମ—A name given to males.

**ପ୍ରାଣବନ୍ଧୁଆ**—ଦେ. ବି. ପୁଂ ଓ ସ୍ତ୍ରୀ—ପ୍ରାଣପରି ପ୍ରିୟତମ ବ୍ୟକ୍ତି—Dearest friend.
Prāṇa bandhuā

প্রাণবংধু ଅଜବ ଅନାଇବୁ ନୂଆରେ ପ୍ରାଣବନ୍ଧୁଆ । ସଙ୍ଗୀତ
**प्राणप्यारा (री)**

**ପ୍ରାଣ ବଲ୍ଲଭ**—ସଂ. ବି. ପୁଂ. (୬ଷ୍ଠୀ ତତ୍)—୧ । ପ୍ରିୟତମ ବ୍ୟକ୍ତି—
Prāṇa ballabha 1. One's beloved person.
(ପ୍ରାଣରମଣ, ପ୍ରାଣରଞ୍ଜନ—ଅନ୍ୟରୂପ) ୨ । ସ୍ୱାମୀ; ପତି—
(ପ୍ରାଣବଲ୍ଲଭା—ସ୍ତ୍ରୀ) 2. One's husband.
ଦେ. ବି. ପୁଂ.—ଲୋକଙ୍କ ନାମ—
A name given to males.

**ପ୍ରାଣ ବାୟୁ**—ସଂ. ବି—୧ । ଶରୀରସ୍ଥ ଶ୍ୱାସବାୟୁ—
Prāṇa bāyu 1. Breath of life.
୨ । ଜୀବିତ ଶରୀରମଧ୍ୟରେ ଥିବା ୫ଗୋଟି ବାୟୁମଧ୍ୟରୁ ଏକତମ—
2. One of the five vital airs.
୩ । ଜୀବନ—3 Life.

**ପ୍ରାଣ ବିନାଶ**—ସଂ. ବି. (୬ଷ୍ଠୀ ତତ୍; ପ୍ରାଣ+ବିନାଶ)—
Prāṇa bināśa ଜୀବନ ନାଶ; ମୃତ୍ୟୁ—Death.
(ପ୍ରାଣ ବିନାଶକ ପୁଂ, ପ୍ରାଣବିନାଶିକା ସ୍ତ୍ରୀ, ପ୍ରାଣବିନାଶୀ ପୁଂ ପ୍ରାଣବିନାଶିନୀ ସ୍ତ୍ରୀ—ବିଣ)

**ପ୍ରାଣ ବିୟୋଗ**—ସଂ ବି (୬ଷ୍ଠୀ ତତ୍; ପ୍ରାଣ+ବିୟୋଗ)—
Prāṇa biyoga ପ୍ରାଣତ୍ୟାଗ, ମୃତ୍ୟୁ—Death.
(ପ୍ରାଣବିସର୍ଜନ, ପ୍ରାଣବିୟୁ, ପ୍ରାଣାତ୍ୟୟ—ଅନ୍ୟରୂପ)

**ପ୍ରାଣଭୃତ୍**—ସଂ. ବି. ( ପ୍ରାଣ+ଭୃ ଧାତୁ+କର୍ତ୍ତୃ. କ୍ୱିପ୍ )—
Prāṇabhrut ୧ । ପ୍ରାଣୀ; ଜୀବ—1. Animal.
୨ । ବିଷ୍ଣୁ; ଈଶ୍ୱର—2. God; Bishṇu
ସଂ ବିଣ—୧ । ଚେତନ—1 Sentient.
୨ । ପ୍ରାଣପୋଷକ—2. Sustaining life.

**ପ୍ରାଣମୟ**—ସଂ. ବିଣ. ( ପ୍ରାଣ+ମୟ )—୧ । ପ୍ରାଣବିଶିଷ୍ଟ; ଜୀବନ୍ତ—
Prāṇamaya 1. Living.
୨ । ଚେତନ—2 Sentient.

**ପ୍ରାଣମୟ କୋଷ(ଶ)**—ସଂ. ବି. ( ପ୍ରାଣ+ମୟ+କୋଷ )—(ବେଦାନ୍ତ
Prāṇamaya kosha(śa) ଦର୍ଶନ ) ମନୁଷ୍ୟ ଜୀବନର ପଞ୍ଚପ୍ରାଣ-ବାୟୁ ଓ ପଞ୍ଚ କର୍ମେନ୍ଦ୍ରିୟ—(Bedānta philosophy ) The case covering the life ( viz—the 5 vital airs and the 5 organs of action ); the vesture of the vital airs (Apte).

**ପ୍ରାଣ ଯ(ୟ)ମ**—ସଂ. ବି. ( ପ୍ରାଣ+ଯମ୍ ଧାତୁ ରୋଧ କରିବା+କରଣ.
Prāṇa ja(ya)ma ଅ )—ପ୍ରାଣାୟାମ ( ଦେଖ )
(ପ୍ରାଣସଂଯମ—ଅନ୍ୟରୂପ) Prāṇāyāma (See )

**ପ୍ରାଣ ଯାତ୍ରା**—ସଂ. ବି. ( ୬ଷ୍ଠୀ ତତ୍; ପ୍ରାଣ+ଯାତ୍ରା )—୧ । ଜୀବନ-
Prāṇa jātrā ଯାତ୍ରା; ଜୀବିକାନିର୍ବାହ—1. Subsistence.
୨ । ଶ୍ୱାସ ପ୍ରଶ୍ୱାସ ଯିବା ଆସିବା କ୍ରିୟା ( ହି. ଶବ୍ଦସାଗର )—
2. Breathing; respiration.

**ପ୍ରାଣ ରଖିବା**—ଦେ. କ୍ରି—୧ । ନିଜର ଜୀବନକୁ ମୃତ୍ୟୁମୁଖରୁ ବଞ୍ଚାଇ
Prāṇa rakhibā ରଖିବା—1. To live
प्राण राखी ୨ । ଅନ୍ୟ ବ୍ୟକ୍ତିକୁ ପୋଷିବା—
प्राण रखना 2. To maintain another person.
୩ । ଅନ୍ୟ ବ୍ୟକ୍ତିକୁ ଆସନ୍ନ ମୃତ୍ୟୁରୁ ବଞ୍ଚାଇବା ବା ରକ୍ଷାକରିବା—
3. To save another's life from death.

**ପ୍ରାଣ ରଙ୍କ**—ସଂ. ବିଣ. ପୁଂ ( ୭ମୀ ତତ୍; ପ୍ରାଣ+ରଙ୍କ=କୃପଣ )—
Prāṇa raṅka ୧ । ଜୀବନସର୍ବସ୍ୱ; ପ୍ରାଣ ଲୋଭୀ—
(ପ୍ରାଣରଙ୍କା—ସ୍ତ୍ରୀ) 1. One who values his life most.
ପ୍ରାଣେରଙ୍କା—ପୁଂ } ଦେଶଜରୂପ
ପ୍ରାଣରଙ୍କୁଣୀ—ସ୍ତ୍ରୀ }
ଜନ୍ମଭୂମି ଛେକ ଶୋ ଶକତ ନ କେବେ ଧରଇ, ହେ ପାର୍ଥ ଗ୍ରଣ ପ୍ରାଣରଙ୍କ ପ୍ରାଣୀ ସ୍ୱାଧୀନାଥ. ମହାଭାରତ ।
୨ । ଅତି ସ୍ୱାର୍ଥପର—2. Utterly selfish.

**ପ୍ରାଣ ରନ୍ଧ୍ର**—ସଂ. ବି ( ମ ପ. ଲୋ, ପ୍ରାଣ+ରନ୍ଧ୍ର )—୧ । ନାସିକା;
Prāṇa randhra ନାକ (ହି. ଶ)—1. Nose; nostril.
୨ । ବାୟୁ ( ହି. ଶ. )—2. Wind; air.

**ପ୍ରାଣ ରସ**—ସଂ. ବି. (ଆଧୁନିକ ବିଜ୍ଞାନପରିଭାଷା)—ଜୀବନର ଓ ଚେତନାର
Prāṇa rasa ମୂଳଉତ୍ସରୂପକ ଜୀବିତ ଓ ଥଲଥଲିଆ ମୌଳିକ
(ପ୍ରାଣପିଣ୍ଡ; ପ୍ରାଣପଙ୍କ—ଅନ୍ୟରୂପ) ମାଂସପିଣ୍ଡ—Protoplasm.

**ପ୍ରାଣ ରହିବା**—ଦେ. କ୍ରି—୧ । ବଞ୍ଚି ରହିବା; ଜୀଇଁବା—
Prāṇa rahibā 1. Being alive.
प्राण थाका ୨ । ମୃତ୍ୟୁମୁଖରୁ ରକ୍ଷା ପାଇବା—
प्राण रहना 2. Being saved from imminent death.

**ପ୍ରାଣ ରୋଧ**—ସଂ. ବି (୬ଷ୍ଠୀ ତତ୍; ପ୍ରାଣ+ରୋଧ)—ପ୍ରାଣାୟାମ (ହି. ଶ)—
Prāṇa rodha Control of breathing; breath-exercise.
( ପ୍ରାଣରୋଧନ—ଅନ୍ୟରୂପ )

**ପ୍ରାଣ ଲିଙ୍ଗ**—ସଂ. ବି. (୬ଷ୍ଠୀ ତତ୍; ପ୍ରାଣ+ଲିଙ୍ଗ)—ପ୍ରାଣ ଥିବାର ଚିହ୍ନ—
Prāṇa linga The sign of life.
ଖଣ୍ଡରେ ଭେଦ କରି ପ୍ରବାହ ଉଦ୍‌ବେଗ
ଦେହ ମଧ୍ୟେ ହୋଇଛନ୍ତି ଏହୁ ପ୍ରାଣଲିଙ୍ଗ—ପ୍ରାଚୀ. ଶିବସ୍ୱରୋଦୟ ।

**ପ୍ରାଣ ଶରୀର**—ସଂ. ବି—୧ । ଉପନିଷଦ ଅନୁସାରେ ମନୋମୟ ସୂକ୍ଷ୍ମ
Prāṇa śarira ଶରୀରବିଶେଷ—1. An etherial or subtle body inside the human body.
[ ଦ୍ର—ଏହା ବିଜ୍ଞାନ ଓ କ୍ରିୟାର ହେତୁ ଥିବାର ସ୍ୱୀକୃତ—ହି. ଶବ୍ଦସାଗର । ]
୨ । ପରମେଶ୍ୱର ( ହି. ଶ. )—2. God.

**ପ୍ରାଣ ଶୁଖିଯିବା**—ଦେ. କ୍ରି—ଦୁଃଖଶୋକାଦିରେ ଅଭିଭୂତ ହେବା—
Prāṇa śukhijibā Being overwhelmed with sorrow etc.

**ପ୍ରାଣ ଶୂନ୍ୟ**—ସଂ. ବିଣ (୩ୟା ତତ୍; ପ୍ରାଣ+ଶୂନ୍ୟ )—୧ । ନିର୍ଜୀବ—
Prāṇa śūnya 1. Lifeless.
(ପ୍ରାଣହୀନ—ଅନ୍ୟରୂପ) ୨ । ମୃତ—2. Dead.
ପ୍ରାଣଶୂନ୍ୟା } ସ୍ତ୍ରୀ
ପ୍ରାଣହୀନା }
୩ । ନିଷ୍ଠୁର—3. Cruel.
୪ । ଅନୁଦାର—4. Narrow minded.
ପ୍ରାଣହୀନତା } ବି
ପ୍ରାଣଶୂନ୍ୟତା }
ଦେ. ବିଣ—୧ । ଆନ୍ତରିକତାଶୂନ୍ୟ—
1 Insincere.
୨ । ତେଜୋହୀନ—2 Vigourless.

**ପ୍ରାଣ ଶୋଷଣ**—ସଂ. ବ (ବହୁବ୍ରୀହି)—ବାଣ (ହି. ଶ)—
Prāṇa śoshaṇa Arrow

**ପ୍ରାଣ ସଙ୍ଗତ**—ଦେ. ବ. ସ୍ତ୍ରୀ—ପ୍ରାଣପ୍ରିୟା—
Prāṇa saṁgati One's dearest companion
(ପ୍ରାଣସଙ୍ଗତି, ପ୍ରାଣସଙ୍ଗାତ — ଅନ୍ୟରୂପ)

**ପ୍ରାଣ ସଂଶୟ**—ସଂ. ବ (୬ଷ୍ଠୀ ତତ୍, ପ୍ରାଣ+ସଂଶୟ)—ଜୀବନ ନାଶ ହେବାର ଆଶଙ୍କା—Risk to life; peril of life; apprehension of death; question of life and death.
Prāṇa saṁśaya
(ପ୍ରାଣସଙ୍କଟ, ପ୍ରାଣସନ୍ଦେହ; ପ୍ରାଣାବାଧ — ଅନ୍ୟରୂପ)

**ପ୍ରାଣ ସଂହାର**—ସଂ. ବ. (୬ଷ୍ଠୀ ତତ୍; ପ୍ରାଣ+ସଂହାର)—ହତ୍ୟା—
Prāṇa saṁhāra Killing; murder.

**ପ୍ରାଣ ସଂହାରକ**—ସଂ. ଵଣ. ପୁଂ. (ଉପପଦ; ପ୍ରାଣ+ସଂହାରକ)—ଯେ ପ୍ରାଣ ନିଏ—Killing; causing death
Prāṇa saṁhāraka
(ପ୍ରାଣସଂହାରୀ—ଅନ୍ୟରୂପ)
(ପ୍ରାଣସଂହାରିକା, ପ୍ରାଣସଂହାରଣୀ—ସ୍ତ୍ରୀ)

**ପ୍ରାଣସଖ**—ସଂ. ବ. (୬ଷ୍ଠୀ ତତ୍, ପ୍ରାଣ+ସଖା)—ଜୀବନର ବନ୍ଧୁ, ପ୍ରିୟବନ୍ଧୁ (ପ୍ରକୃତିବାଦ)—Dearest friend.
Prāṇasakha

**ପ୍ରାଣସଖା**—ଦେ. ବ. ପୁଂ. (ସଂ. ପ୍ରାଣ+ସଖି)—୧ । ପ୍ରାଣସମ ପ୍ରିୟବନ୍ଧୁ; ପ୍ରାଣବନ୍ଧୁ; ପ୍ରିୟତମ ସହଚର (ଗ୍ରାମନେତ୍ର)—
Prāṇasakhā 1. Dearest friend or companion.
(ପ୍ରାଣସଖୀ—ସ୍ତ୍ରୀ)
୨ । ପରମେଶ୍ୱର—2. God.

**ପ୍ରାଣସଙ୍ଗୀ**—ଦେ. ବ. ପୁଂ—୧ । ଜୀବନସଙ୍ଗୀ, ଅନ୍ତରଙ୍ଗ ସହଚର—
Prāṇasaṅgi 1. A companion of life; a life-long friend
(ପ୍ରାଣସଙ୍ଗିନୀ—ସ୍ତ୍ରୀ)
୨ । ପ୍ରାଣପ୍ରିୟତମ ବା ପ୍ରିୟତମ ସଙ୍ଗୀ—
2. Dearest companion.
୩ । ଯେଉଁ ବ୍ୟକ୍ତି ମରିବା ପର୍ଯ୍ୟନ୍ତ ସଙ୍ଗେ ଥାଏ—
3. A person who is with one till death.

**ପ୍ରାଣସଜନୀ**—ଦେ. ବ. ସ୍ତ୍ରୀ—ପ୍ରାଣସଙ୍ଗୀ; ପ୍ରିୟତମା ସହଚରୀ—
Prāṇasajani Dearest companion.
প্রাণসজনী
प्राणप्यारी

**ପ୍ରାଣ ସଞ୍ଚାର**—ସଂ. ବ. (୬ଷ୍ଠୀ ତତ୍; ପ୍ରାଣ+ସଞ୍ଚାର)—
Prāṇa sañchāra ମୃତ ଜୀବରେ ବା ଅଚେତନ ବସ୍ତୁରେ ଜୀବନୀ ଶକ୍ତିର ଆବିର୍ଭାବ—The entrance of life into a dead animal or a lifeless thing.

**ପ୍ରାଣ ସମ**—ସଂ. ଵଣ. ପୁଂ—ପ୍ରାଣପରି ପ୍ରିୟ—
Prāṇa sama (ପ୍ରାଣସମା—ସ୍ତ୍ରୀ) Dearest as life.

**ପ୍ରାଣ ସହିବା**—ଦେ. ବ—ପ୍ରାଣରେ ସହ୍ୟ ହେବା ଅବସ୍ଥା—
Prāṇa sahibā The state of a matter being endured by a living person.
প্রাণেসহা
प्राणसहना

**ପ୍ରାଣସାଇଁ**—ଦେ. ବ. (ସଂ. ପ୍ରାଣସ୍ୱାମୀ)—୧ । ଈଶ୍ୱର—
Prāṇasāiṅ 1. God.
୨ । ସ୍ୱାମୀ—2 Husband.

**ପ୍ରାଣ ହନ୍ତା**—ସଂ. ଵଣ. ପୁଂ. (ପ୍ରାଣ+ହନ ଧାତୁ+କର୍ତ୍ତ୍ରି. ତୃ; ୧ମା. ୧ବ)—ପ୍ରାଣନାଶକ—
Prāṇa hantā
(ପ୍ରାଣହନ୍ତ୍ରୀ—ସ୍ତ୍ରୀ) Destroying life; killing.
(ପ୍ରାଣଘାତକ; ପ୍ରାଣଘାତୀ ପୁଂ, ପ୍ରାଣଘାତିକା, ପ୍ରାଣଘାତିନୀ ସ୍ତ୍ରୀ—ଅନ୍ୟରୂପ)

**ପ୍ରାଣହର**—ସଂ. ଵଣ. ପୁଂ (ପ୍ରାଣ+ହୃ ଧାତୁ+ଅ)—୧ । ଜୀବନନାଶକ—
Prāṇahara 1. Killing; causing death.
(ପ୍ରାଣହାରକ—ଅନ୍ୟରୂପ) ୨ । ମାରାତ୍ମକ—
(ପ୍ରାଣହରା, ପ୍ରାଣହାରିକା—ସ୍ତ୍ରୀ) 2 Fatal; mortal.

**ପ୍ରାଣ ହାରିବା**—ଦେ. କ୍ରି—୧ । (ବିଷଆଦି ଖାଇ ବା କୌଣସି ପ୍ରକାର ଅସାବଧାନତା ପ୍ରଯୁକ୍ତ) ନିଜର ମୃତ୍ୟୁର କାରଣ ହେବା, ସ୍ୱଇଚ୍ଛାରେ ପ୍ରାଣ ଛାଡ଼ିବା—
Prāṇa hāribā
প্রাণছড়া
प्राणहारना 1. To bring about one's own death.
୨ । ମରିବା—2. To die.
[ପ୍ରାଣ ହାର(ରେ)ଇବା—ଅନ୍ୟରୂପ]

**ପ୍ରାଣହାରୀ**—ସଂ. ଵଣ. ପୁଂ. (ପ୍ରାଣ+ହୃ ଧାତୁ+କର୍ତ୍ତ୍ରି. ଇନ୍; ୧ମା ୧ବ)—ଯେ ପ୍ରାଣରେ ମାରିଦିଏ; ପ୍ରାଣସଂହାରକ—
Prāṇahāri
(ପ୍ରାଣାଦ—ଅନ୍ୟରୂପ) Killing; causing death.
(ପ୍ରାଣହାରିଣୀ—ସ୍ତ୍ରୀ)

**ପ୍ରାଣାଗ୍ନିହୋତ୍ର**—ସଂ. ବ—ଭୋଜନ ପୂର୍ବରୁ ଦ୍ୱିଜାତିମାନଙ୍କର ପଞ୍ଚ ଗ୍ରାସୀ କ୍ରିୟା; ଓଁ ପ୍ରାଣାୟ ସ୍ୱାହା, ଓଁ ଅପାନାୟ ସ୍ୱାହା, ଓଁ ବ୍ୟାନାୟ ସ୍ୱାହା, ଓଁ ଉଦାନାୟ ସ୍ୱାହା, ଓଁ ସମାନାୟ ସ୍ୱାହା ଏହି ୫ଟି ମନ୍ତ୍ର ଉଚ୍ଚାରଣ ପୂର୍ବକ ପ୍ରଥମେ ଯଥାକ୍ରମେ ୫ ଗୁଣ୍ଡା ଅନ୍ନ ଭୋଜନବିଧି (ହି. ଶ)—The ritual of taking the first 5 morsels of food at the beginning of a meal.
Prāṇāgnihotra
(ପ୍ରାଣାହୁତି—ଅନ୍ୟରୂପ)

**ପ୍ରାଣାଘାତ**—ସଂ. ବ. (ପ୍ରାଣ+ଆଘାତ)—
Prāṇāghāta ୧ । ଅତ୍ୟନ୍ତ ପୀଡ଼ା; କଷ୍ଟ (ହି. ଶ)—
1. Great pain.
୨ । ହତ୍ୟା; ମାରଣ (ହି. ଶ)—
2. Slaughter; killing.

**ପ୍ରାଣାତିପାତ**—ସଂ. ବ. (୬ଷ୍ଠୀ ତତ୍, ପ୍ରାଣ+ଅତିପାତ)—
Prāṇātipāta ମାରଣ; ଜୀବହିଂସା (ହି. ଶ)—
Killing; slaughter

**ପ୍ରାଣାତ୍ୟୟ**—ସଂ. ବ. (୬ଷ୍ଠୀ ତତ୍; ପ୍ରାଣ+ଅତ୍ୟୟ=ନାଶ)—
Prāṇātyaya ୧ । ପ୍ରାଣତ୍ୟାଗ; ମୃତ୍ୟୁ—1. Death.
[ପ୍ରାଣାତ୍ୟ—ଅନ୍ୟରୂପ(ହି. ଶ)] ୨ । ମୃତ୍ୟୁକାଳ—
2. Time of death.

**ପ୍ରାଣାଧିକ**—ସଂ. ବିଣ. ପୁଂ. (୫ମୀ ତତ୍; ପ୍ରାଣ + ଅଧିକ)—
Prāṇādhika ଆପଣାର ପ୍ରାଣ ଅପେକ୍ଷା ପ୍ରିୟତର—
(ପ୍ରାଣାଧିକା—ସ୍ତ୍ରୀ) Dearer than one's life.

**ପ୍ରାଣାନ୍ତ**—ସଂ. ବି. (୬ଷ୍ଠୀ ତତ୍; ପ୍ରାଣ+ଅନ୍ତ)—ମରଣ, ମୃତ୍ୟୁ—
Prāṇānta Death.
(ପ୍ରାଣାବସାନ—ଅନ୍ୟରୂପ)

**ପ୍ରାଣାନ୍ତକ**—ସଂ. ବିଣ. ପୁଂ. (ଉପପଦ; ପ୍ରାଣ+ଅନ୍ତକ)—ଜୀବନ ନାଶକ—
Prāṇāntaka Causing death; fatal
ପ୍ରାଣାନ୍ତକର } ଅନ୍ୟରୂପ
ପ୍ରାଣାନ୍ତକାରୀ }
ସଂ. ବି—ଯମ—
The God of Death.

**ପ୍ରାଣାନ୍ତ ପଣ**—ସଂ. ବି—ପ୍ରାଣପଣ (ଦେଖ)
Prāṇānta pana Prāṇapaṇa (See)

**ପ୍ରାଣାୟତନ**—ସଂ. ବି. (୬ଷ୍ଠୀ ତତ୍; ପ୍ରାଣ + ଆୟତନ)—
Prāṇāyatana ମୃତ୍ୟୁ ସମୟରେ ପ୍ରାଣବାୟୁ ବହିର୍ଗତ ହେବାର ପ୍ରଧାନ ଦ୍ୱାର ବା ଛିଦ୍ରମାନ—The chief holes or orifices through which the last breath goes out at the time of death.
[ ଦ୍ର—ଦୁଇ କାନ, ଦୁଇ ନାସାରନ୍ଧ୍ର, ଦୁଇ ଆଖି, ଗୁହ୍ୟଦ୍ୱାର, ଲିଙ୍ଗ ଓ ମୁଖ ଏହି ନବଦ୍ୱାର ବାଟେ ପ୍ରାଣବାୟୁ ବାହାର ଯାଏ—ଯାଜ୍ଞବଲ୍କ୍ୟ ସଂହିତା (ହି. ଶ) । ]

**ପ୍ରାଣାୟାମ**—ସଂ. ବି. (ପ୍ରାଣ+ଆ+ଯମ ଧାତୁ=ସଂଯତ କରିବା+ ଭାବ. ଅ)—ଯୋଗାଙ୍ଗବିଶେଷ; ମନ୍ତ୍ରଜପ ପୂର୍ବକ
Prāṇāyāma ନାକର ବାମ ପୁଡ଼ାବାଟେ ପବନ ଦେହଭିତରକୁ ନେଇ ଦେହମଧ୍ୟରେ ତାକୁ କିଛିକ୍ଷଣ ରୋଧ କରି ତା ପରେ ଡାହାଣ ପୁଡ଼ାଦ୍ୱାରା ପବନ ଛାଡ଼ିବାରୂପ ଯୋଗସାଧନ କ୍ରିୟା—The exercise of controlling the breath according to Joga-rules, breathing exercise.
[ ଦ୍ର—ଯୋଗଶାସ୍ତ୍ର ଅନୁସାରେ ଯୋଗ ସାଧନର ଆଠ ଅଙ୍ଗ (ଯମ, ନିୟମ, ଆସନ, ପ୍ରାଣାୟାମ, ପ୍ରତ୍ୟାହାର, ଧାରଣା, ଧ୍ୟାନ ଓ ସମାଧି) ମଧ୍ୟରୁ ଏହା ଚତୁର୍ଥ ଅଟେ । ନାକ ବାଟେ ଦେହ ଭିତରକୁ ପବନ ଟାଣିନେବା କ୍ରିୟାକୁ ଶ୍ୱାସ ଓ ଦେହ ଭିତରୁ ବାୟୁକୁ ଛାଡ଼ିଦେବାକୁ ପ୍ରଶ୍ୱାସ ବୋଲାଯାଏ । ଶ୍ୱାସ ଓ ପ୍ରଶ୍ୱାସର ଗତିକୁ ପ୍ରଯତ୍ନ ପୂର୍ବକ ଧୀରେ ଧୀରେ କମାଇବାକୁ ପ୍ରାଣାୟାମ କହନ୍ତି । ପ୍ରାଣାୟାମର ତିନୋଟି ବୃତ୍ତି ଅଛି । ଆଭ୍ୟନ୍ତର (ପୂରକ, ସ୍ତମ୍ଭ (କୁମ୍ଭକ) ଓ ବାହ୍ୟ (ରେଚକ) । ବାହାରୁ ଦେହକୁ ପବନ ଟାଣି ନେବାକୁ ପୂରକ; ଟଣା ହୋଇ ଯାଇଥିବା ବାୟୁକୁ ଦେହ ମଧ୍ୟରେ ଥୟ କରି ରଖିବାକୁ କୁମ୍ଭକ ଓ ଭିତରକୁ ଟଣା ହୋଇ ଯାଇଥିବା ବାୟୁକୁ ନାକ ବାଟେ ଛାଡ଼ିବାକୁ ରେଚକ ବୋଲାଯାଏ । ରେଚକ, ପୂରକ ଓ କୁମ୍ଭକର ନିର୍ଦ୍ଧାରିତ ବ୍ୟାପକ ସମୟ ଅଛି । ଏହା ଗୁରୁପଦେଶଗମ୍ୟ । ପ୍ରାଣାୟାମଦ୍ୱାରା ଚିତ୍ତର ଚଞ୍ଚଳତା ନିବୃତ୍ତ ହୁଏ, ସକଳ ପାପ ନଷ୍ଟ ହୁଏ ଓ ଯୋଗୀ ଇନ୍ଦ୍ରିୟନିରୋଧକ୍ଷମ ହୁଏ । ଡାହାଣ ନାକପୁଡ଼ାକୁ ଡାହାଣ ହାତର ବୁଢ଼ା ଅଙ୍ଗୁଠିଦ୍ୱାରା ଚିପି ରଖି ବାମ ନାକପୁଡ଼ା ଦ୍ୱାରା ପୂରକ କରାଯାଏ । ତତ୍ପରେ ବାମ ନାକପୁଡ଼ାକୁ ଅନାମିକା ଓ କନିଷ୍ଠା ଅଙ୍ଗୁଳିଦ୍ୱୟ ଦ୍ୱାରା ଚିପି ରଖି କୁମ୍ଭକ କରାଯାଏ । ତତ୍ପରେ ବାମ ନାସାପୁଡ଼ା ବନ୍ଦ ଥିବା ଅବସ୍ଥାରେ ଡାହାଣ ନାକପୁଡ଼ାରୁ ବୁଢ଼ା ଅଙ୍ଗୁଠିକୁ କାଢ଼ି ନେଇ ରେଚକ କରାଯାଏ । ସାଧକ ପ୍ରାଣାୟାମ କରିବା କାଳରେ ଭ୍ରୂମଧ୍ୟରେ ଦୃଷ୍ଟି ସ୍ଥାପନ କରିବେ ଓ ସ୍ଥିରମନାଃ ହେବେ—ଜ୍ଞାନେନ୍ଦ୍ର । ]

**ପ୍ରାଣାୟାମୀ**—ସଂ. ବିଣ. ପୁଂ. (ପ୍ରାଣାୟାମ+ଇନ୍; ୧ମା. ୧ବ)—
Prāṇāyāmi ପ୍ରାଣାୟାମ ସାଧନକାରୀ—Making or performing the breath-exercise.

**ପ୍ରାଣାରାମ**—ସଂ. ବିଣ. (ପ୍ରାଣ + ଆ + ରମ୍ ଧାତୁ + ଅଧି. ଅ)—
Prāṇārāma ୧ । ପ୍ରାଣରେ ଶାନ୍ତିଦାୟକ—
1. Giving peace to the mind.

ହେ ଈଶ୍ୱର ପତିତପାବନ, ପ୍ରାଣାରାମ ନିରଞ୍ଜନ ।
ମଧୁସୂଦନ, ଜୀବନଦାତା ।

୨ । ମନୋମୋହକର—2. Charming.

**ପ୍ରାଣିଜଗତ୍**—ସଂ. ବି. (୬ଷ୍ଠୀ ତତ୍; ପ୍ରାଣିନ୍+ଜଗତ୍)—
Prāṇijagat ଜୀବମୟ ସୃଷ୍ଟି—The animal kingdom; animated nature.
(ପ୍ରାଣିରାଜ୍ୟ—ଅନ୍ୟରୂପ)

**ପ୍ରାଣିତତ୍ତ୍ୱ**—ସଂ. ବି. ( ଆଧୁନିକ ପ୍ରୟୋଗ )—
Prāṇitattwa ଜୀବ-ତତ୍ତ୍ୱ ବା ବିଜ୍ଞାନ, ଯେଉଁ ବିଜ୍ଞାନରୁ ପ୍ରାଣୀମାନଙ୍କର ବିଷୟ ଜଣାଯାଏ—Zoology.
(ପ୍ରାଣିବିଦ୍ୟା, ପ୍ରାଣିବିଜ୍ଞାନ—ଅନ୍ୟରୂପ)
(ପ୍ରାଣିତତ୍ତ୍ୱଜ୍ଞ, ପ୍ରାଣିତତ୍ତ୍ୱବିଦ୍—ବିଣ)

**ପ୍ରାଣିଦ୍ୟୂତ**—ସଂ. ବି. (୭ମ୍ମୀ ତତ୍; ପ୍ରାଣିନ୍+ଦ୍ୟୂତ=କ୍ରୀଡ଼ା)—
Prāṇidyūta ପଣ ବା ବାଜି ରଖି ମେଷ, କୁକ୍କୁଟ, ବଳଦ, ଘୋଡ଼ା ପ୍ରଭୃତିଙ୍କର ଯୁଦ୍ଧ ବା ଦଉଡ଼ କରାଇବା—Racing of or fighting between rams, cocks, bulls or horses on wager.
[ ଦ୍ର—ଏହାର ଅନ୍ୟ ସଂସ୍କୃତ ପର୍ଯ୍ୟାୟ—ସମାହ୍ୱୟ; ସାହ୍ୱୟ—ହି. ଶବ୍ଦସାଗର । ]

**ପ୍ରାଣିପୀଡ଼ନ**—ସଂ. ବି. ( ୬ଷ୍ଠୀ ତତ୍ )—
Prāṇipīṛdana ଜୀବମାନଙ୍କ ପ୍ରତି ଅତ୍ୟାଚାର ବା ନିଷ୍ଠୁରତା—Cruelty to animals.
(ପ୍ରାଣି ହିଂସା—ଅନ୍ୟରୂପ)
(ପ୍ରାଣି ପୀଡ଼କ—ବିଣ)

**ପ୍ରାଣିପୀଡ଼ନ ନିବାରଣ(କ) ଆଇନ୍**—ଦେ. ବି. (ଆଧୁନିକ)—
Prāṇipīṛdana nibāraṇa(ka) āin ଜୀବମାନଙ୍କ ପ୍ରତି ନିଷ୍ଠୁରତା ନିବାରଣ କରିବା ପାଇଁ ସରକାରଙ୍କ ପ୍ରବର୍ତ୍ତିତ ଆଇନ୍—The law for preventing cruelty to animals.
[ ଦ୍ର—ଏହି ଆଇନ୍ ଅନୁସାରେ ଗୃହପାଳିତ ଘୋଡ଼ା, ବଳଦ ଆଦିଙ୍କ ପ୍ରତି ଓ ଅନ୍ୟାନ୍ୟ ଜୀବଙ୍କ ପ୍ରତି ନିଷ୍ଠୁରତା ଆଚରଣ କରିବା ବ୍ୟକ୍ତିମାନେ ଦଣ୍ଡିତ ହୁଅନ୍ତି । ନିଷ୍ଠୁରତା ନିବାରଣ କରିବା ଓ ନିଷ୍ଠୁର ବ୍ୟକ୍ତିଙ୍କ ପ୍ରତି କର୍ତ୍ତୃପକ୍ଷଙ୍କ ଦୃଷ୍ଟି ଆକର୍ଷଣ କରିବା ପାଇଁ

ପ୍ରାଣିପୀଡ଼ନ (ନିବାରକ ସଙ୍ଘମାନ) societies for prevention of cruelty to animals ପ୍ରଧାନ ପ୍ରଧାନ ନଗରମାନଙ୍କରେ ପ୍ରତିଷ୍ଠିତ ହୋଇଅଛି ।]

**ପ୍ରାଣିପ୍ରୟାଣ**—ସ. ବି. (ଆଧୁନିକ ଜୀବବିଜ୍ଞାନ ପ୍ରୟୋଗ) — Prāniprayāna କେତେକ ପ୍ରାଣୀଙ୍କର (ବିଶେଷତଃ ପକ୍ଷୀଙ୍କର) ଖାଦ୍ୟ ଅନ୍ୱେଷଣ ବା ସନ୍ତାନୋତ୍ପାଦନ ନିମନ୍ତେ ନିର୍ଦ୍ଦିଷ୍ଟ ଋତୁରେ ଏକ ଅଞ୍ଚଳ ଛାଡ଼ି ଅନ୍ୟ ଅଞ୍ଚଳକୁ ଚାଲିଯିବା ଓ ଉକ୍ତ କାର୍ଯ୍ୟ ଶେଷ କରିବା ପରେ ପୂର୍ବ ଅଞ୍ଚଳକୁ ଫେରି ଆସିବାର ରୀତି— Migration of animals.

[ ଯଥା—କୋଚିଲାଖାଇ, ହଂସବିଳ, ସାରସ, ଶୁଆ, କୋଇଲି ପ୍ରଭୃତି ଏହି ଜାତୀୟ ଜୀବର ଉଦାହରଣ । ]

**ପ୍ରାଣିମାତା**—ସ. ବି.—ଗର୍ଭଦାତ୍ରୀ ନାମକ କ୍ଷୁପ— Prānimātā A medicinal bush.

**ପ୍ରାଣିହିଂସା**—ସ. ବି.—୧ । ଜୀବ ହିଂସା; ପ୍ରାଣୀମାନଙ୍କର ଅନିଷ୍ଟାଚରଣ— Prānihimsā 1. Cruelty to or oppression of animals.

**ପ୍ରାଣିହିତ**—ସ. ବି. (ବହୁବ୍ରୀହି)—୧ । ପାଦୁକା; ଖଡ଼ମ (ହି. ଶ )— Prānihita 1. Wooden sandals

୨ । ଜୋତା (ହି. ଶ)—2. Shoes.

**ପ୍ରାଣୀ**—ସ. ବିଣ. ( ପ୍ରାଣ+ଅଛି ଅର୍ଥରେ ଇନ୍ ବା ପ୍ର+ଅନ୍ ଧାତୁ= Prāni ବଞ୍ଚିବା+କର୍ତ୍ତୃ. ଇନ୍; ୧ମା. ୧ବ. )— ଚେତନ; ପ୍ରାଣବିଶିଷ୍ଟ; ଜୀବିତ— Living; sentient.

ସଂ. ବି.—ଜୀବ; ଜନ୍ତୁ—Animal; living being.

ଦେ. ବି. ( ଲକ୍ଷଣାର୍ଥ )—ବ୍ୟକ୍ତି; ଲୋକ—Person.

ଘରେ ସରେ ସେ ଏକ ପ୍ରାଣୀ ଓପାସ । କୁନ୍ତଳାକୁମାରୀ, ନନ୍ଦରତ୍ନୀ ।

**ପ୍ରାଣେ ପ୍ରାଣେ**—ଦେ. କ୍ରି. ବିଂ—୧ । ପ୍ରାଣ ମାତ୍ର ରକ୍ଷା କରି, ସେ- Prāne prāne କୌଣସି ପ୍ରକାରେ ବଞ୍ଚି ରହି— প্রাণে প্রাণে 1. With one's life intact. प्राणभर (ଯଥା—ମୁଁ ଯୁଦ୍ଧ ଭୂମିରୁ ପ୍ରାଣେ ପ୍ରାଣେ ପଳାଇ ଆସିଲି ।)

୨ । ପ୍ରତି ପ୍ରାଣରେ; ପ୍ରତ୍ୟେକ ବ୍ୟକ୍ତିର ପ୍ରାଣରେ; ପ୍ରତ୍ୟେକ ବ୍ୟକ୍ତିର ବା ସମସ୍ତଙ୍କ ମନରେ ବା ହୃଦୟରେ— 2. In the minds of all; in the heart of every person; in every heart.

(ଯଥା—ତାଙ୍କ ବକ୍ତୃତାର ମାଧୁର୍ଯ୍ୟ ଶ୍ରୋତାମାନେ ପ୍ରାଣେ ପ୍ରାଣେ ଅନୁଭବ କଲେ ।)

୩ । ପରସ୍ପରର ହୃଦୟର ମିଳନ ପୂର୍ବକ— 3. Mind-to-mind; heart-to heart.

(ଯଥା—ସେମାନେ ବହୁଦିନ ପରେ ମିଳିତ ହୋଇ ପ୍ରାଣେ ପ୍ରାଣେ କଥାବାର୍ତ୍ତା ହେଲେ ।)

**ପ୍ରାଣେଶ**—ସ. ବି. ପୁଂ (୬ଷ୍ଠୀ ତତ୍; ପ୍ରାଣ+ଈଶ)—୧ । ସ୍ୱାମୀ; ଭର୍ତ୍ତା— Prānesa 1. Husband.

(ପ୍ରାଣେଶା—ସ୍ତ୍ରୀ) ୨ । ପ୍ରିୟତମ ବ୍ୟକ୍ତି—2. One's beloved.

**ପ୍ରାଣେଶ୍ୱର**—ସ. ବି. ପୁଂ —୧ । ପ୍ରାଣେଶ (ଦେଖ) Prāneswara Prānesa (See)

୨ । (ବୈଦ୍ୟକ) ଶିଶୁମାନଙ୍କ ଶରଦି ରୋଗରେ ବ୍ୟବହୃତ ପାରଦ ଓ ଗନ୍ଧକଘଟିତ ଔଷଧବିଶେଷ—2 A kind of medicine used for infantile catarrh.

**ପ୍ରାଣୋପହାର**—ସ. ବି. (ପ୍ରାଣ+ଉପହାର)—ଭୋଜନ; ଆହାର— Prānopahāra Eating; meal

**ପ୍ରାତ**—ଦେ. ବି. (ସ. ପ୍ରାତଃ) —ପ୍ରଭାତ; ସକାଳ— Prāta প্রাত प्रात ବାହୁଲେସ୍ ହାଏ ହେଲା ପ୍ରାତ ଉପୁଭି । ଭଞ୍ଜ. ବୈଦେହୀଶବିଳାସ ।

**ପ୍ରାତଃ**—ସ. ଅ. (ପ୍ର+ଅତ୍ ଧାତୁ=ଗମନ କରିବା+ଅର୍)— Prātah ୧ । ସକାଳ; ପ୍ରଭାତ—Morning; dawn; day-break.

(ପ୍ରାତର୍—ଅନ୍ୟରୂପ)

୨ । ସକାଳେ—2 At dawn.

**ପ୍ରାତଃକାଳ**—ସ. ବି.—ସକାଳ—Morning; down.

(ପ୍ରାତଃ ସମୟ—ଅନ୍ୟରୂପ) (ପ୍ରାତଃକାଳୀନ—ବିଣ)

**ପ୍ରାତଃକୃତ୍ୟ**—ସ. ବି.—ପ୍ରତିଦିନ ସକାଳେ କରାଯିବା କାର୍ଯ୍ୟ (ଯଥା— Prātahkrutya ଦାନ୍ତଘଷା, ଗାଧୁଆ, ପୂଜାପାଠ ଇତ୍ୟାଦି)—

ପ୍ରାତଃକର୍ମ } ଅନ୍ୟରୂପ Duties performed daily in
ପ୍ରାତଃକ୍ରିୟା } the morning.

**ପ୍ରାତଃ ପ୍ରଣାମ**—ସ. ବି.—ଗୁରୁଜନଙ୍କୁ ପ୍ରାତଃକାଳୀନ ଅଭିବାଦନ— Prātah pranāma Obeisance done to one's elders at dawn.

(ପ୍ରାତରଭିବାଦନ—ଅନ୍ୟରୂପ)

ଦେ. ଅ.—(ବନ୍ଧୁ ଓ ଗୁରୁଜନଙ୍କୁ ଭେଟିବା ସମୟରେ ଅଭିବାଦନ ବାକ୍ୟ) ଅତି ମୋର ସୁପ୍ରଭାତ—Good morning !

**ପ୍ରାତଃ ସନ୍ଧ୍ୟା**—ସ. ବି.—୧ । ପ୍ରାତଃକାଳରେ କରାଯିବା ସନ୍ଧ୍ୟା- Prātah sandhyā ବନ୍ଦନାଦି—1 Morning prayers.

୨ । ପ୍ରାତଃକାଳ; ପ୍ରତ୍ୟୁଷ— 2. Early morning; dawn.

**ପ୍ରାତଃ ସମୀର**—ସ ବି.—ପ୍ରଭାତ ବାୟୁ— Prātah samira Morning air

(ପ୍ରାତଃ ସମୀରଣ—ଅନ୍ୟରୂପ)

**ପ୍ରାତଃ ସୂର୍ଯ୍ୟ**—ସ. ବି.—ନବୋଦିତ ସୂର୍ଯ୍ୟ; ବାଳ ସୂର୍ଯ୍ୟ— Prātah sūrjya The morning sun.

**ପ୍ରାତଃ ସ୍ନାନ**—ସ. ବି.—ସକାଳ ଗାଧୁଆ— Prātah snāna Morning bath.

**ପ୍ରାତଃ ସ୍ନାୟୀ**—ସ. ବିଣ. ପୁଂ (ପ୍ରାତଃ+ସ୍ନା ଧାତୁ+କର୍ତ୍ତୃ. ଇନ୍)—ଯେ Prātah snāyi ପ୍ରତିଦିନ ସକାଳୁ ଗାଧୁଏ—

(ପ୍ରାତଃସ୍ନାୟିନୀ - ସ୍ତ୍ରୀ) One who bathes every morning.

**ପ୍ରାତଃ ସ୍ମରଣ**—ସ. ବି.—ସକାଳୁ ଉଠି ବୋଲିବା ସ୍ତବ ଆଦି— Prātah smarana Morning hymn

**ପ୍ରାତଃ ସ୍ମରଣୀୟ**—ସ. ବିଣ. ପୁଂ—୧ । ସକାଳୁ ଉଠି ଯେଉଁ ମହା- Prātah smaraniya ପୁରୁଷଙ୍କର ନାମ ଧରିଲେ ପୁଣ୍ୟ ହୁଏ;

(ପ୍ରାତଃସ୍ମରଣୀୟା—ସ୍ତ୍ରୀ) ପୁଣ୍ୟବାନ୍ ଓ ଯଶସ୍ୱୀ; ପୁଣ୍ୟଶ୍ଳୋକ— 1. Of hallowed memory; whose name is to be recited every morning.

୨ । ସର୍ବଜନମାନ୍ୟ—
2. Deserving universal homage.
୬ । ଯାହା ସକାଳେ ସ୍ମରଣ କରିବା ଯୋଗ୍ୟ—
3. Fit to be remembered in the morning.

**ପ୍ରାତରାଶ**—ସଂ. ବି. (ପ୍ରାତଃ+ଅଶ୍ ଧାତୁ=ଖାଇବା+ଭାବ ଅ)—
Prātarāśa ପ୍ରାତଃକାଳୀନ ଭୋଜନ, ଦିବସର ପ୍ରଥମ ଭୋଜନ—(ପ୍ରାତର୍ଭୋଜନ—ଅନ୍ୟରୂପ) Morning meal; breakfast.

**ପ୍ରାତରାଶିତ**—ସଂ. ବିଣ ପୁଂ (ପ୍ରାତଃ+ଅଶିତ)—କୃତପ୍ରାତର୍ଭୋଜନ—
Prātarāśita Having had one's breakfast.
(ପ୍ରାତରାଶିତା—ସ୍ତ୍ରୀ)

**ପ୍ରାତରାହ୍ନିକ**—ସଂ. ବି. (ପ୍ରାତଃ+ଆହ୍ନିକ)—ପ୍ରାତଃସନ୍ଧ୍ୟା ୧ (ଦେଖ)
Prātarāhnika Prātaḥsandhyā 1 (See)

**ପ୍ରାତରିନ୍ଦୀବର**—ସଂ. ବି. (ପ୍ରାତଃ+ଇନ୍ଦୀବର)—ସକାଳେ ଫୁଟିଥିବା
Prātarindibara ନୀଳକମଳ—Blue lotus blown in the morning.

**ପ୍ରାତର୍ଭୋକ୍ତା**—ସଂ. ବି. ( ପ୍ରାତଃ+ଭୋକ୍ତୃ; ୧ମା. ୧ବ. )—କୁଆ;
Prātarbhoktā କାକ (ହି. ଶ)—Crow.

**ପ୍ରାତି**—ସଂ. ବି—ଅଙ୍ଗୁଷ୍ଠ ଓ ତର୍ଜନୀର ମଧ୍ୟବର୍ତ୍ତୀ କରତଳାଂଶ; ପିତୃତୀର୍ଥ
Prāti (ହି ଶ)—The part of the edge of the palm between the thumb and the index finger.

**ପ୍ରାତିକାମୀ**—ସଂ. ବି. ( ପ୍ରାତିକାମିନ୍; ୧ମା. ୧ବ. )—୧ । ସେବକ;
Prātikāmi ଭୃତ୍ୟ (ହି. ଶ)—1. Servant; attendant
୨ । ଦୁର୍ଯ୍ୟୋଧନଙ୍କ ଦୂତବିଶେଷ (ହି. ଶ)—
2 Name of a messenger of Durjyodhana.

**ପ୍ରାତିକୂଳିକ**—ସଂ. ବିଣ(ପ୍ରତିକୂଳ+ଇକ)—ପ୍ରତିକୂଳବର୍ତ୍ତୀ (ଜ୍ଞାନେନ୍ଦ୍ର)—
Prātikūlika (ପ୍ରାତିକୂଳିକା—ସ୍ତ୍ରୀ) Opposite.

**ପ୍ରାତିକୂଲ୍ୟ**—ସଂ. ବି. ( ପ୍ରତିକୂଳ+ଭାବ. ଯ )—ପ୍ରତିକୂଳତା; ବୈପ-
Prātikūlya ରୀତ୍ୟ—Opposition, contrariety.

**ପ୍ରାତିପକ୍ଷ**—ସଂ. ବିଣ ( ପ୍ରତିପକ୍ଷ+ଅ )—୧ । ବିପରୀତ ପକ୍ଷାବଲମ୍ବୀ—
Prātipaksha 1. Taking the opposite side.
୨ । ପ୍ରତିକୂଳ; ବିରୋଧୀ—2 Opposing.
୩ । ପ୍ରତିଦ୍ୱନ୍ଦ୍ୱୀ—3. Rival.
ସଂ ବି—୧ । ଶତ୍ରୁ—1. Enemy.
୨ । ବିପକ୍ଷ—2 Adversary.

**ପ୍ରାତିପଥିକ**—ସଂ. ବିଣ. ପୁଂ ( ପ୍ରତିପଥ+ଇକ )—୧ । ବିପରୀତ
Prātipathika ପଥଗାମୀ—1. Going in a contrary road.
( ପ୍ରାତିପଥିକା—ସ୍ତ୍ରୀ )
୨ । ପ୍ରତିକୂଳଗାମୀ—
2. Going in an opposite direction.

**ପ୍ରାତିପଦ**—ସଂ. ବିଣ. ( ପ୍ରତିପଦ୍+ଭବାର୍ଥେ. ଅ )—ପ୍ରତିପଦ୍ ତିଥିରେ
Prātipada ଜାତ—Born or produced on the 1st day of a lunar fortnight.

**ପ୍ରାତିପଦିକ**—ସଂ. ବିଣ ( ପ୍ରତିପଦ୍+ସମ୍ବନ୍ଧାର୍ଥେ. ଇକ )—ପ୍ରତିପଦ୍
Prātipadika ସମ୍ବନ୍ଧୀୟ—Relating to the 1st day of the lunar fortnight.
ସଂ ବି—୧ । (ପ୍ରତିପଦ=ପ୍ରତ୍ୟେକ ପଦ+ଭବାର୍ଥେ ଇକ)—( ବ୍ୟାକରଣ ) ବିଭକ୍ତିହୀନ ବିଶେଷ୍ୟ ବା ବିଶେଷଣ ପଦ, ( ଯଥା—ପିତୃ, ସଖୀ, ବେଧସ୍ )—1. The crude form of a noun or adjective.
୨ । ଅଗ୍ନି—2. Fire.
୩ । ନାମ; ଅଭିଧା (ଜ୍ଞାନେନ୍ଦ୍ର)—3. Name; appellation

**ପ୍ରାତିଫଳିକ**—ସଂ. ବିଣ ( ପ୍ରତିଫଳ+ଇକ )—ପ୍ରତିବିମ୍ବକ; ଯାହା
Prātiphalika ଦ୍ରବ୍ୟର ପ୍ରତିବିମ୍ବ ଗ୍ରହଣ କରେ ( ହି ଶ )—Reflecting.

**ପ୍ରାତିବେଶ୍ୟ**—ସଂ ବିଣ. ( ପ୍ରତିବେଶ+ଯ )—ପ୍ରତିବେଶବାସୀ;
Prātibeśya ପ୍ରତିବେଶୀ—1. Neighbouring
୨ । ପ୍ରତିବେଶ ସମ୍ବନ୍ଧୀୟ—
2 Relating to the neighbourhood.

**ପ୍ରାତିଭ**—ସଂ. ବିଣ. ( ପ୍ରତିଭା+ଅ )—ପ୍ରତିଭାଶାଳୀ; ତୀକ୍ଷ୍ଣବୁଦ୍ଧିବିଶିଷ୍ଟ—
Prātibha Talented; sharp-witted.
ସଂ. ବି—ଯୋଗ ସାଧନାର ବିଘ୍ନକର ଉପସର୍ଗ ବା ଅନୁଷଙ୍ଗ ବିଶେଷ—One of the impediments in Joga-exercise.
[ ଦ୍ର—ଯୋଗ ସାଧନ ମାର୍ଗରେ ୫ ପ୍ରକାର ବିଘ୍ନ ମଧ୍ୟରୁ ଏହା ଏକ । ଯୋଗସାଧନ କରିବାବେଳେ ପ୍ରତିଭାଶାଳୀ ଯୋଗୀଙ୍କ ମନରେ ବେଦ ଓ ଶାସ୍ତ୍ରାଦିର ଅର୍ଥ ଓ ନାନା ବିଦ୍ୟା ଓ କଳା ଆଦିର ଜ୍ଞାନ ଉଦୟ ହୋଇ ଯୋଗସାଧନରେ ବାଧା ଜାତ ହୁଏ—ହି. ଶ ।]

**ପ୍ରାତିଭାବ୍ୟ**—ସଂ. ବି ( ପ୍ରତିଭୂ+ଯ )—ଜାମିନ୍‌ଦାରଙ୍କ ଦତ୍ତ ଜାମିନ୍—
Prātibhābya Security; bail.

**ପ୍ରାତିଲୋମିକ**—ସଂ. ବିଣ. (ପ୍ରତିଲୋମ+ଇକ)—୧ । ପ୍ରତିଲୋମ ବିବାହ
Prātilomika ସମ୍ବନ୍ଧୀୟ—1. Relating to morganatic marriage.
୨ । ପ୍ରତିଲୋମ ବିବାହଜାତ—
2. Born of a morganatic marriage.
୩ । ବିରୁଦ୍ଧ—3. Opposing.
୪ । ଅପ୍ରୀତିକର ( ହି. ଶ )—4. Unpleasant.

**ପ୍ରାତିଲୋମ୍ୟ**—ସଂ. ବି. (ପ୍ରତିଲୋମ+ଭାବେ ଯ)—୧ । ବୈପରୀତ୍ୟ—
Prātilomya 1. Contrariety; inversion.
୨ । ବିରୁଦ୍ଧତା—2. Opposition; inverted order; being against the grain.
୩ । ପ୍ରତିଲୋମ ବିବାହଦ୍ୱାରା ସ୍ତ୍ରୀ ପୁରୁଷଙ୍କ ସଂଯୋଗ—
3 Union of a higher caste woman with a lower caste man by marriage.

**ପ୍ରାତିହାର**—ସଂ. ବି. ( ପ୍ରତିହାର+ଅ )—ପ୍ରତିହାରୀର କର୍ମ—
Prātihāra 1. The act or post of a door-keeper.
୨ । ଦ୍ୱାରପାଳ (ହି. ଶ)—2 Door-keeper.

**ପ୍ରାତିହାର(ରି)କ**—ସଂ. ବି. (ପ୍ରତିହାର+କ; ଇକ)—ଐନ୍ଦ୍ରଜାଲିକ; ବାଜିଗର—A juggler.
Prātihāra(ri)ka

**ପ୍ରାତ୍ୟନ୍ତିକ**—ସଂ. ବି. (ପ୍ରତ୍ୟନ୍ତ+ଇକ)—୧ । ଦୁଇ ରାଜ୍ୟର ସୀମା ମଧ୍ୟରେ ଅବସ୍ଥିତ ରାଜ୍ୟ (ହି. ଶ)—1. A buffer state.
Prātyantika

୨ । ସୀମାନ୍ତର ରକ୍ଷାରେ ନିଯୁକ୍ତ ବ୍ୟକ୍ତି (ହି. ଶ)—2. A person engaged to guard the border.

ସଂ. ବିଣ—ସୀମାନ୍ତରେ ଅବସ୍ଥିତ—Situated in the border.

**ପ୍ରାତ୍ୟୟିକ**—ସଂ. ବିଣ. (ପ୍ରତ୍ୟୟ+ଇକ)—ପ୍ରତ୍ୟୟୀ; ବିଶ୍ୱାସକାରୀ—Trusting.
Prātyayika

ସଂ. ବି ପୁଂ—୧ । ଜାମିନ୍‌ଦାର, ପ୍ରତିଭୂ—1. A person who stands as a surety

୨ । ପକ୍ଷକୁ ଚିହ୍ନଟ ଦେବା ବ୍ୟକ୍ତି (ହି. ଶ)—2. An identifying surety; an identifier.

**ପ୍ରାତ୍ୟହିକ**—ସଂ. ବିଣ (ପ୍ରତ୍ୟହ+ସମ୍ବନ୍ଧାର୍ଥେ ଇକ)—୧ । ଦୈନିକ—1. Daily, diurnal.
Prātyahika
(ପ୍ରାତ୍ୟହିକୀ—ସ୍ତ୍ରୀ) ୨ । ପ୍ରତିଦିନ ଘଟୁଥିବା—2. Occurring daily.

**ପ୍ରାଥମିକ**—ସଂ. ବିଣ. (ପ୍ରଥମ+ସମ୍ବନ୍ଧେ. ଇକ)—୧ । ପ୍ରଥମକାଳୀନ—1. Primary.
Prāthamika

୨ । ପୂର୍ବକାଳୀନ—2. Prior; former.

୩ । ପ୍ରଥମେ ବେଦାଧ୍ୟୟନରେ ପ୍ରବୃତ୍ତ—3. Engaged in studyning the Bedas for the first time.

**ପ୍ରାଥମ୍ୟ**—ସଂ. ବିଣ (ପ୍ରଥମ+ଭାବେ. ଯ)—ପ୍ରଥମତ୍ୱ; ମୁଖ୍ୟତ୍ୱ, ଶ୍ରେଷ୍ଠତା; ପ୍ରାଧାନ୍ୟ—Superiority.
Prāthamya

**ପ୍ରାଦାନିକ**—ସଂ. ବିଣ. (ପ୍ରଦାନ+ଇକ)—ପ୍ରଦତ୍ତ, ଦେବା ଯୋଗ୍ୟ (ହି. ଶ)—Fit to be given away.
Prādānika

**ପ୍ରାଦି**—ସଂ. ବି. (ବହୁବ୍ରୀହି; ପ୍ର+ଆଦି)—ପ୍ର, ପରା, ଅପ, ସମ, ନିରୁ ଆଦି ୨୦ଟି ଉପସର୍ଗ—The 20 prefixes in the Sanscirt language.
Prādi

**ପ୍ରାଦି ସମାସ**—ସଂ. ବି—ଉପସର୍ଗ ଯୋଗେ କୃଷ୍ଣ ସମାସ (ଜ୍ଞାନେନ୍ଦ୍ର)—Compound words formed with the help of prefixes.
Prādi samāsa
(ଯଥା, ବିରସ, ପ୍ରକ୍ରାମ୍ୟ, ସନ୍ତାପ, ନିର୍ଧନ)

**ପ୍ରାଦୁର୍ଭାବ**—ସଂ. ବି. (ପ୍ରାଦୁଃ=ପ୍ରକାଶ+ଭୂ ଧାତୁ+ଭାବ. ଅ)—୧ । ପ୍ରକାଶିତ ହେବା, ପ୍ରକଟିତ ହେବା—1. Manifestation.
Prādurbhāba
(ପ୍ରାଦୁଷ୍ୟ—ଅନ୍ୟରୂପ—ହି. ଶ)

୨ । ଉଦ୍ଭବ; ଆବିର୍ଭାବ—2. Coming into existence; prevalenee.

୩ । ପ୍ରଥମ ପ୍ରକାଶ—3. First appearance; coming to light first.

୪ । ପ୍ରଚଳିତ—4. Outbreak; currency; predominance.

୫ । କ୍ଷମତା—5. Power; influence.

**ପ୍ରାଦୁର୍ଭୂତ**—ସଂ. ବି (ପ୍ରାଦୁଃ+ଭୂତ)—ଆବିର୍ଭୂତ; ପ୍ରକାଶିତ—Appeared; manifest; prevalent; current.
Prādurbhūta
(ପ୍ରାଦୁର୍ଭାବ—ବି)

**ପ୍ରାଦୁଷ୍କରଣ**—ସଂ. ବି. (ପ୍ରାଦୁଃ+କରଣ)—୧ । ଅପ୍ରକଟ ବସ୍ତୁର ପ୍ରକାଶ କରଣ; ପ୍ରକଟୀକରଣ—1. Manifestation; publication.
Prādushkaraṇa
(ପ୍ରାଦୁଷ୍କୃତ, ପ୍ରାଦୁଷ୍କୃତ୍ୟ—ବିଣ)

୨ । ପ୍ରଦର୍ଶନ; ଦେଖାଇବା—2. Showing; exhibition.

**ପ୍ରାଦେଶ**—ସଂ. ବି (ପ୍ର+ଆ+ଦିଶ୍ ଧାତୁ+ଭାବ. ଅ)—ବିଘତ, ବୃଦ୍ଧାଙ୍ଗୁଳିର ଅଗଠାରୁ ତର୍ଜନୀର ଅଗ ପର୍ଯ୍ୟନ୍ତ ବିସ୍ତାର ପରିମାଣ—1. The span of the thumb and the forefinger.
Prādeśa

୨ । (ପ୍ରଦେଶ+ସ୍ୱାର୍ଥେ. ଅ)—ସ୍ଥାନ, ଦେଶ—2. Place; country.

୩ । ପ୍ରଦେଶ—3. Province.

**ପ୍ରାଦେଶିକ**—ସଂ. ବିଣ. (ପ୍ରଦେଶ+ସମ୍ବନ୍ଧେ ଇକ)—୧ । ପ୍ରଦେଶ ସମ୍ବନ୍ଧୀୟ; ପ୍ରଦେଶଗତ—1. Provincial; parochial.
Prādeśika
(ପ୍ରାଦେଶିକତା—ବି)

୨ । ପ୍ରଦେଶ ଜାତ—2 Produced in the country.

୩ । ଦେଶାଂଶ ପ୍ରଚଳିତ (ଭାଷା ବା ଶବ୍ଦ)—3 Dialectical word or language).

[ଦ୍ର—ଏ ଭାଷାକୋଷରେ ପ୍ରାଦେଶିକ ଶବ୍ଦମାନଙ୍କୁ "ପ୍ରାଦେ" ସଙ୍କେତଦ୍ୱାରା ଚିହ୍ନିତ କରାଯାଇ ଅଛି ଓ ବନ୍ଧନୀ ମଧ୍ୟରେ ତତ୍ତତ ଅଞ୍ଚଳର ନାମ ଲେଖାଯାଇ ଅଛି ।]

୪ । ମଫସଲୀ—Rural

**ପ୍ରାଦେଶିକତା**—ସଂ. ବି. (ପ୍ରାଦେଶିକ+ଭାବ. ତା)—୧ । ଭିନ୍ନ ଭିନ୍ନ ଅଞ୍ଚଳରେ କଥିତଭାଷାର ଉଚ୍ଚାରଣ ଓ ବ୍ୟବହାର ସମ୍ବନ୍ଧେ ବିକାର; କଥିତ ଭାଷାର ବିଭିନ୍ନ ପ୍ରଦେଶଗତ ବିକାର—1. Provincialisms of a language; dialectical peculiarities of any language
Prādeśikatā

୨ । ପ୍ରଦେଶଗତ ସଂକୀର୍ଣ୍ଣତା—2. Provincial or parochial narrowness of outlook.

**ପ୍ରାଦେଶିକ ସ୍ୱାତନ୍ତ୍ର୍ୟ**—ଦେ. ବି. (ଆଧୁନିକ ପ୍ରୟୋଗ)—ପ୍ରଦେଶବିଶେଷର ବିଶେଷତ୍ୱ ବା ଅଧିକାର—Provincial autonomy.
Prādeśika swātantrya

**ପ୍ରାଦେଶିନୀ**—ସଂ. ବି. (ପ୍ର+ଆ+ଦିଶ ଧାତୁ ଣିଚ=ଦେଖାଇବା+କରଣ ଅନ+ଈ; ଯାହା ସାହାଯ୍ୟରେ କୌଣସି ବସ୍ତୁକୁ ଦେଖାଇ ଦିଆଯାଏ)—ତର୍ଜନୀ (ହି. ଶ)—Index finger.
Prādeśinī

**ପ୍ରାଦୋଷ**—ସଂ. ବିଣ. (ପ୍ରଦୋଷ+ସମ୍ବନ୍ଧେ. ଅ)—ପ୍ରଦୋଷ ବା ସନ୍ଧ୍ୟା ସମ୍ବନ୍ଧୀୟ; ସାୟଂକାଳୀନ—
Prādosha

(ପ୍ରାଦୋଷିକ—ଅନ୍ୟରୂପ) Vespertine; to relating the evening.

**ପ୍ରାଧନିକ**—ସଂ. ବିଣ. (ପ୍ରଧନ+ଇକ)—ଯୁଦ୍ଧପ୍ରିୟ—
Prādhanika War-loving; martial.
ସଂ. ବି—ଯୁଦ୍ଧର ଉପକରଣ (ହି. ଶ)—
The sinews of war; materials for fighting.

**ପ୍ରାଧା**—ସଂ. ବି (ସ୍ତ୍ରୀ)—(ନାମ) କଶ୍ୟପଙ୍କ ସ୍ତ୍ରୀ, ଦକ୍ଷକନ୍ୟା ଓ ଗନ୍ଧର୍ବ ଏବଂ
Prādhā ଅପ୍ସରାମାନଙ୍କର ମାତା—Name of a wife of sage Kaśyapa.

**ପ୍ରାଧାନ୍ୟ**—ସଂ. ବି. (ପ୍ରଧାନ+ଭାବ. ଯ)—୧ । ପ୍ରଧାନତା, ଶ୍ରେଷ୍ଠତା;
Prādhānya ଉତ୍କର୍ଷ—1. Excellence; supremacy; superiority.
୨ । ପ୍ରଭୁତ୍ୱ—2. Mastery; ascendancy.
୩ । ପ୍ରାବଲ୍ୟ—3. Prevalence.

**ପ୍ରାଧାନ୍ୟତଃ**—ସଂ. କ୍ରି. ବିଣ. (ପ୍ରାଧାନ୍ୟ+ତସ୍)—ପ୍ରଧାନରୂପେ—
Prādhānyatah Chiefly; pre-eminently

**ପ୍ରାଧ୍ୱ**—ସଂ. ବିଣ. (ପ୍ର+ଅଧ୍ୱନ୍)—୧ । ଦୂର—
Prādhwa 1. Remote; distant.
୨ । ନମ୍ର—2. Bent.
୩ । ବିନୀତ—3. Humbled.
ସଂ. ବି—୧ । ପ୍ରକୃଷ୍ଟ ପଥ; ଭଲବାଟ—
1. Excellent road.
୨ । ରଥାଦି ଯାନ—2. Conveyance.
୩ । ଦୂର ପଥ; ଦୀର୍ଘ ପଥ—3. A long road.
୪ । ବିନୟ (ହି. ଶ)—4. Humility.

**ପ୍ରାଧ୍ୱନ**—ସଂ. ବି (ପ୍ରାଧ୍ୱନ୍+ଅ)—୧ । ସଡ଼କ, ରାସ୍ତା (ହି. ଶ)—
Prādhwana 1 Road; highway.
୨ । ନଦୀଗର୍ଭ (ହି. ଶ)—2. The bed of a river.

**ପ୍ରାଧ୍ୱର**—ସଂ. ବି—ବୃକ୍ଷର ଶାଖା; ଡାଳ (ହି. ଶ)—
Prādhwara Branch of a tree.

**ପ୍ରାନ୍ତ**—ସଂ. ବି (ପ୍ର+ଅନ୍ତ)—
Prānta ୧ । ଅନ୍ତ; ଶେଷ ଭାଗ—1. End; extremity.
୨ । ସୀମା—2. Boundary; border.
୩ । ଧାର—3. Edge.
୪ । ଦିଗ; ତରଫ (ହି. ଶବ୍ଦସାଗର)—
4. Direction; quarter.
୫ । (ହିନ୍ଦୀ ଅନୁକରଣରେ ଆଧୁନିକ ପ୍ରୟୋଗ) ପ୍ରଦେଶ—
5. Province.
୬ । (ନାମ) ଋଷିବିଶେଷ (ହି. ଶବ୍ଦସାଗର)—
6. Name of a sage.

**ପ୍ରାନ୍ତ କାଳ**—ଦେ. ବି. (ମ. ପ. ଲେ; ପ୍ରାନ୍ତ+କାଳ)—
Prānta kāla ୧ । ମରଣ-ଘଟିବାର ପ୍ରାକ୍‌କାଳ; ଜୀବନର ଶେଷ ସମୟ—1. The time of one's impending death.
୨ । ମୃତ୍ୟୁର ପରବର୍ତ୍ତୀ କାଳ; ପରକାଳ—
2. The time after death.
ପ୍ରାନ୍ତ କାଳରେ ସ୍ୱର୍ଗ ଲୋକରେ ବସଇ । କୃଷ୍ଣସ ଦ. ମହାଭାରତ ବନ ।
ଗ୍ରା. ବି. (ସ. ପ୍ରାତଃକାଳ)—ସକାଳ; ଭୋର୍—
Dawn; daybreak.

**ପ୍ରାନ୍ତ ଦୁର୍ଗ**—ସ. ବି (ମ. ପ. ଲେ,)—୧ । ନଗର ପ୍ରାଚୀରର ବାହାରେ
Prānta durga ନିର୍ମିତ ଦୁର୍ଗ—1. A fort built outside the wall of a city.
୨ । ରାଜ୍ୟ ସୀମାରେ ନିର୍ମିତ ଦୁର୍ଗ—2. Fort built at the border of a kingdom.

**ପ୍ରାନ୍ତବର୍ତ୍ତୀ**—ସ. ବିଣ. (ପ୍ରାନ୍ତ+ବର୍ତ୍ତିନ୍; ୧ମା. ୧ବ)—
Prāntabarttī ୧ । ସୀମାନ୍ତରେ ଅବସ୍ଥିତ—
1. Situate on the boundary or border.
୨ । ଏକ ପାର୍ଶ୍ୱରେ ସ୍ଥିତ—
2. Placed on one side

**ପ୍ରାନ୍ତ ଭାଗ**—ସ. ବି. (ମ ପ. ଲେ, ପ୍ରାନ୍ତ+ଭାଗ)—ଶେଷ ଭାଗ—
Prānta bhāga Extreme part; extremity.

**ପ୍ରାନ୍ତ ଭିତ୍ତି**—ସ. ବି· (ମ ପ. ଲେ)—କୌଣସି ସ୍ଥାନର ସୀମାରେ ଥିବା
Prānta bhitti ପ୍ରାଚୀର—Compound wall.

**ପ୍ରାନ୍ତ ଭୂମି**—ସ. ବି (ମ. ପ. ଲେ;)—୧ । କୌଣସି ସ୍ଥାନର ସୀମାସ୍ଥ ଭୂମି-
Prānta bhūmi 1. The lands on the border or outskirts of a place.
୨ । (ଯୋଗ ସାଧନର ଅନ୍ତିମ ସୀମା) ସମାଧି—2. Complete abstraction of thought from the outer world and concentration thereof on the Godhead.
୩ । ସିଢ଼ି—3 Ladder.

**ପ୍ରାନ୍ତ ଯମକ**—ସଂ. ବି—ଶବ୍ଦାଳଙ୍କାରବିଶେଷ, ପଦ୍ୟର ପ୍ରାନ୍ତରେ
Prānta jamaka ବିଭିନ୍ନାର୍ଥରେ ପ୍ରଯୁକ୍ତ ଏକ ଶବ୍ଦ—A kind of alliteration at the end of every foot of a verse.
[ଉଦାହରଣ ଯଥା—ଏଣିକି ଦଣ୍ଡର କରେ, ସାବଧାନ କାର୍ତ୍ତିକରେ
ପ୍ରବାସେ ମାନ ମକରେ, ଯେହ୍ନେ ନ କରେ ।
ଚନ୍ଦ୍ରେ କ ସେ ଶ୍ଳୋକରେ, ଉତ୍ତମ ସମା ଅଙ୍କରେ,
ଯେଣେ ବସେ ପଲଙ୍କେ, କି ହୃଦକରେ ।
ପ୍ରେମେ ସେବିଥିଲେ ଶଙ୍କରେ, ସେ ଫଳ ଅବ ଭବେକ
ଶ୍ରୀଫଳ କରେ । ଉଞ୍ଜ. ପ୍ରେମସୁଧାନିଧି ।]

**ପ୍ରାନ୍ତର**—ସଂ. ବି. (ପ୍ର+ଅନ୍ତର)—
Prāntara ୧ । ଅପନ୍ତର; ଛାୟାଜଳାଦିଶୂନ୍ୟ ପ୍ରଦେଶ—
1. A barren tract of country.
୨ । ପନ୍ତାର; ମରୁଭୂମି; ବିସ୍ତୀର୍ଣ୍ଣ ପଡ଼ିଆ—2. Desert; waste; wilderness; prairie.
୩ । ଜନଶୂନ୍ୟ ପ୍ରଦେଶ—
3. Uninhabited or lonely country.
୪ । ଅତି ଦୂର ଓ ଜନସଂଚାରଶୂନ୍ୟ ପଥ—
4. A long and solitary path.
୫ । କ୍ଳାନ୍ତିଜନକ ମାର୍ଗ—5. A tiresome road.
୬ । ଅଗନାଗ୍ନି ବନସ୍ତ; ଜଙ୍ଗଲ; ବନ—
6. A solitary forest; a wild.

**ପ୍ରାନ୍ତିକ**—ସଂ. ବିଣ.—( ପ୍ରାନ୍ତ+ଇକ)—୧ । ପ୍ରାନ୍ତ ସମ୍ବନ୍ଧୀୟ—
Prāntika 1. Relating to Prānta
(ପ୍ରାନ୍ତୀୟ—ଅନ୍ୟରୂପ) ୨ । ପ୍ରାଦେଶିକ—Provincial; dialectical.

**ପ୍ରାନ୍ତେ**—ସଂ. ଅ. ( ପ୍ରାନ୍ତ ଶବ୍ଦର ୭ମୀ. ୧ବ )—ସବୁ ଶେଷରେ—
Prānte At last.
ଶସ୍ତ୍ର ଜଣି ପ୍ରାନ୍ତେ ସମୂଳେ ନାଶ ଯାଏ । କୃଷ୍ଣସିଂହ. ମହାଭାରତ. ବନ ।

**ପ୍ରାପକ**—ସଂ. ବିଣ. ପୁଂ. ( ପ୍ର+ଆପ୍ ଧାତୁ ଣିଜନ୍ତ=ଆପି ଧାତୁ+ କର୍ତ୍ତୃ. ଅକ )—୧ । ଯାହା ପ୍ରାପ୍ତି କରାଏ—
Prāpaka
(ପ୍ରାପିକା—ସ୍ତ୍ରୀ) 1 Procuring; causing to get.
୨ । ( ପ୍ର+ଆପ୍ ଧାତୁ+କର୍ତ୍ତୃ. ଅକ )—ଯେ ପାଏ—
2. Obtaining.

**ପ୍ରାପଣ**—ସଂ. ବି. ( ପ୍ର+ଆପ୍ ଧାତୁ+ଭାବ. ଅନ )—
Prāpaṇa ୧ । ପାଇବା; ପ୍ରାପ୍ତି—1 Obtaining; receipt; acquisition: getting.
୨ । (ପ୍ର+ଆପ୍ ଧାତୁ ଣିଚ୍+ଭାବ. ଅନ) ପ୍ରାପ୍ତି କରାଇବା—
(ପ୍ରାପଣୀୟ, ପ୍ରାପ୍ୟ, ପ୍ରାପିତ, ପ୍ରାପ୍ତ —ବିଣ) 2. Procuring.
୩ । ପ୍ରେରଣ—3. Sending.

**ପ୍ରାପଣିକ**—ସଂ. ବି. ପୁଂ. ( ପ୍ର+ଆପଣିକ )—ମୁଦି, ଦୋକାନୀ—
Prāpaṇika A grocer; a shopkeeper.

**ପ୍ରାପତ**—ଗ୍ରା. (ପଦ୍ୟ) ବିଣ. (ସଂ. ପ୍ରାପ୍ତ)—ପ୍ରାପ୍ତ ( ଦେଖ )
Prāpata প্রাপত प्रापत Prāpta ( See )

**ପ୍ରାପିତ**—ସଂ. ବିଣ. (ପ୍ର+ଆପ୍ ଧାତୁ ଣିଚ୍+କର୍ମ. ତ)—
Prāpita ୧ । ଅଧିଗମିତ; ପ୍ରାପ୍ତ—1. Obtained; got; secured.
୨ । ଗ୍ରାହିତ—2. Caused to be taken.
୩ । ଆନୀତ—3. Brought.
୪ । ସ୍ଥାପିତ—4. Placed.

**ପ୍ରାପ୍ତ**—ସଂ. ବିଣ. (ପ୍ର+ଆପ୍ ଧାତୁ+କର୍ମ. ତ)—୧ । ଲବ୍ଧ; ଲାଭ କରା ଯାଇଥିବା; ମିଳିଥିବା—1. Obtained; got; received; gained; attained.
ଦେ. ବିଣ—ଯେଉଁ ବ୍ୟକ୍ତି ପାଇଥାଏ; ଲାଭ କରିଥିବା—
Having obtained or attained.
୨ । ସ୍ଥାପିତ—2. Placed; fixed.
୩ । ଉପଯୁକ୍ତ—3 Fit; proper.
୪ । (+କର୍ତ୍ତୃ. ତ)—ଉପସ୍ଥିତ—4. Present; arrived.
୫ । ଘଟିଥିବା—5 Happened.
୬ । ଗୃହୀତ—6. Taken; accepted.
୭ । ଉତ୍ପନ୍ନ (ହି. ଶ)—7. Produced.

**ପ୍ରାପ୍ତ କଲ୍ୟାଣ**—ସ. ବିଣ. ପୁଂ. ( ବହୁବ୍ରୀହି; ପ୍ରାପ୍ତ+କଲ୍ୟାଣ )—
Prāpta kalyāṇa ଭାଗ୍ୟବାନ୍; ଲକ୍ଷ୍ମୀବାନ୍—Fortunate;
(ପ୍ରାପ୍ତକଲ୍ୟାଣା[ଣୀ]—ସ୍ତ୍ରୀ) Prosperous; having attained prosperity.

**ପ୍ରାପ୍ତ କାଳ**—ସ. ବିଣ. ( ବହୁବ୍ରୀହି; ପ୍ରାପ୍ତ+କାଳ )—୧ । ଯାହାର
Prāpta kāla ମରଣକାଳ ଉପସ୍ଥିତ ହୋଇଅଛି, ଆସନ୍ନମୃତ୍ୟୁ—
1. Whose death is imminent.
୨ । ପ୍ରାପ୍ତ ଯୌବନ—2. Major; of age.
୩ । ଯେ ଉପଯୁକ୍ତ ଅବକାଶ ପାଇଅଛି; ପ୍ରାପ୍ତାବକାଶ—
3 Having obtained leisure
୪ । ଯାହାର ଉପଯୁକ୍ତ ସମୟ ଘଟିଅଛି—
4. Seasonable; opportune.
ସ. ବି ( କର୍ମଧା )—୧ । ଉପଯୁକ୍ତ ସମୟ—
1 Fit or proper time.
୨ । ମରିବାର ଅବ୍ୟବହିତ ପୂର୍ବକାଳ—
2. Time of impending death.

**ପ୍ରାପ୍ତ ଜୀବନ**—ସ. ବିଣ. ପୁଂ ( ବହୁବ୍ରୀହି; ପ୍ରାପ୍ତ+ଜୀବନ )—ଯେ
Prāpta jibana ମୃତ୍ୟୁମୁଖରୁ ବଞ୍ଚିଅଛି—
( ପ୍ରାପ୍ତ ଜୀବନା—ସ୍ତ୍ରୀ ) Saved from the jaws of death.

**ପ୍ରାପ୍ତ ଦୋଷ**—ସ. ବିଣ. ପୁଂ ( ବହୁବ୍ରୀହି, ପ୍ରାପ୍ତ+ଦୋଷ )—ଯାହା
Prāpta dosha ପ୍ରତି କେହି ଅପରାଧ ବା ଦୋଷ ଘଟାଇଅଛି—
(ପ୍ରାପ୍ତଦୋଷା—ସ୍ତ୍ରୀ) Aggrieved; wronged.

**ପ୍ରାପ୍ତ ଧନ**—ସ. ବିଣ. ପୁଂ ( ବହୁବ୍ରୀହି; ପ୍ରାପ୍ତ+ଧନ )—ଯାହାକୁ ଧନ
Prāpta dhana ମିଳିଅଛି—Having acquired riches,
( ପ୍ରାପ୍ତଧନା—ସ୍ତ୍ରୀ )

**ପ୍ରାପ୍ତ ପଞ୍ଚତ୍ୱ**—ସ. ବିଣ. ପୁଂ. (ବହୁବ୍ରୀହି, ପ୍ରାପ୍ତ+ପଞ୍ଚତ୍ୱ )—ମୃତ—
Prāpta pañchatwa (ପ୍ରାପ୍ତପଞ୍ଚତ୍ୱା—ସ୍ତ୍ରୀ) Dead.

**ପ୍ରାପ୍ତବୟସ୍କ**—ସ. ବିଣ. ପୁଂ (ବହୁବ୍ରୀହି; ପ୍ରାପ୍ତ+ବୟସ୍+କ, ଆଗମ)—
Prāptabayaska ସାବାଳଗ; ପୂର୍ଣ୍ଣବୟସ୍କ—Major,
(ପ୍ରାପ୍ତବୟସ୍କା—ସ୍ତ୍ରୀ) (ଅପ୍ରାପ୍ତବୟସ୍କ—ବିପରୀତ)

**ପ୍ରାପ୍ତବ୍ୟ**—ସ. ବିଣ. ( ପ୍ର+ଆପ୍ ଧାତୁ+କର୍ମ. ତବ୍ୟ )—ପ୍ରାପ୍ତିଯୋଗ୍ୟ;
Prāptabya ଯାହା ମିଳିପାରେ—Obtainable; attainable

**ପ୍ରାପ୍ତ ବ୍ୟବହାର**—ସ. ବିଣ. ପୁଂ ( ବହୁବ୍ରୀହି; ପ୍ରାପ୍ତ+ବ୍ୟବହାର )—
Prāpta byabahāra ୧ । ପ୍ରାପ୍ତବୟସ୍କ—1. Major.
(ପ୍ରାପ୍ତ ବ୍ୟବହାରା—ସ୍ତ୍ରୀ) ୨ । ଯେ ଆପଣା ବିଷୟ ସମ୍ପତ୍ତି ବୁଝାସୁଝା କରିବାର ବୟସ ଓ କ୍ଷମତା ଲାଭ କରିଅଛି—
2. Legally entitled to manage one's own affairs (on attaining legal age).

**ପ୍ରାପ୍ତ ଯୌବନ**—ସ. ବିଣ ପୁଂ ( ବହୁବ୍ରୀହି; ପ୍ରାପ୍ତ+ଯୌବନ )—
Prāpta jaubana ଯାହାର ଯୌବନ ଉପସ୍ଥିତ ହୋଇଅଛି—
(ପ୍ରାପ୍ତ ଯୌବନା—ସ୍ତ୍ରୀ) Having attained maturity or youth.

**ପ୍ରାପ୍ତରୂପ**—ସଂ. ବିଣ. ପୁଂ. (ବହୁବ୍ରୀହି; ପ୍ରାପ୍ତ+ରୂପ)—୧ । ରମଣୀୟ;
Prāptarūpa ସୁନ୍ଦର—1. Beautiful; graceful.
(ପ୍ରାପ୍ତରୂପା—ସ୍ତ୍ରୀ) ୨ । ପଣ୍ଡିତ (ଜ୍ଞାନେନ୍ଦ୍ର)—2. Learned.

**ପ୍ରାପ୍ତାପରାଧ**—ସ. ବିଣ. ପୁଂ ( ବହୁବ୍ରୀହି; ପ୍ରାପ୍ତ+ଅପରାଧ )—ଅପରାଧ-
Prāptāparādha ଗ୍ରସ୍ତ; ଯେ ଅପରାଧଭାଗୀ ହୋଇଅଛି—
(ପ୍ରାପ୍ତାପରାଧା—ସ୍ତ୍ରୀ) Convicted; adjudged guilty.

**ପ୍ରାପ୍ତି**— ସଂ. ବି. ( ପ୍ର+ଆପ୍ ଧାତୁ+ଭାବ. ତି )—୧ । ଲାଭ—
Prāpti 1 Gain; profit.
୨ । ଅର୍ଜନ—2. Earning.
୩ । ଆୟ—3 Income.
୪ । ଉପଲବ୍ଧି; ମିଳିବା; ପାଇବା—
4 Getting; receiving; attaining; acquisition.
୫ । ଧନାଦିର ବୃଦ୍ଧି—5. Increase of wealth.
୬ । ଉନ୍ନତି—6 Improvement; success.
୭ । ଉଦୟ—7 Rise; ascendancy; ascent.
୮ । ସଂହତି—8. Collection; assemblage.
୯ । ଆବିଷ୍କାର—9. Discovery.
୧୦ । ନୈକଟ୍ୟ—10. Proximity.
୧୧ । ଉପସ୍ଥିତି—11. Arrival; presence.
୧୨ । ପହଞ୍ଚିବା—12. Reaching
୧୩ । ସମ୍ପାଦନ—13 Effecting; accomplishment.
୧୪ । ଅନୁମିତି—14. Guessing.
୧୫ । ନାଟକର ବିଷୟ ଜ୍ଞାପନ ବା ବ୍ୟକ୍ତୀକରଣ, ନାଟକର ସୁଖଦ ଉପସଂହାର ( ହି. ଶ )—15. Denouement; the happy conclusion of a drama.
୧୬ । ଅଣିମାଦି ଐଶ୍ୱର୍ଯ୍ୟର ଏକତମ; ଅଭୀପ୍ସିତ ବସ୍ତୁ ମିଳିବାରୂପ ଐଶ୍ୱର୍ଯ୍ୟ—16 One of the 8 forms of super-human success; fulfilment of one's desires.
୧୭ । ଯଥେଚ୍ଛ ଗମନ—17. Power of going anywhere one likes.
୧୮ । (ନାମ) ମଗଧରାଜ ଜରାସନ୍ଧଙ୍କ କନ୍ୟା ଓ କଂସର ଭାର୍ଯ୍ୟା—
18. Name of the wife of Kaṁsa.
୧୯ । କାମଦେବଙ୍କ ପତ୍ନୀ (ହି. ଶ)—19 Wife of Cupid.
୨୦ । (ଫଳିତ ଜ୍ୟୋତିଷ) ଚନ୍ଦ୍ରଠାରୁ ଏକାଦଶ ସ୍ଥାନ (ଯାହା ଲାଭ ସ୍ଥାନ)—20. (astrology) The 11th house computed from the house occupied by the moon in one's horoscope.
୨୧ । ମିଳନ; ସଂଗତି ( ହି. ଶବ୍ଦସାଗର )—
21. Union; junction.
୨୨ । ଭାଗ୍ୟ (ହି. ଶ)—22. Fate.

**ପ୍ରାପ୍ତି ଯୋଗ୍ୟ**—ସ. ବିଣ, (୭ମୀ ତତ୍, ପ୍ରାପ୍ତି+ଯୋଗ୍ୟ)—
Prāpti jogya ପ୍ରାପ୍ତବ୍ୟ; ମିଳିବା ଯୋଗ୍ୟ—Obtainable.

**ପ୍ରାପ୍ତି ସ୍ଥାନ**—ସ. ବି (୭ମୀ ତତ , ପ୍ରାପ୍ତି+ସ୍ଥାନ)—
Prāpti sthāna କୌଣସି ପଦାର୍ଥ ମିଳିବାର ସ୍ଥାନ—
The place where a thing can be obtained

**ପ୍ରାପ୍ତୀଚ୍ଛା**—ସ. ବି. (୭ମୀ ତତ୍; ପ୍ରାପ୍ତି+ଇଚ୍ଛା)—ପାଇବାର ଇଚ୍ଛା—
Prāptichchhā Desire to obtain,

**ପ୍ରାପ୍ତ୍ୟାଶା**—ସ. ବି. (୭ମୀ ତତ୍, ପ୍ରାପ୍ତି+ଆଶା)—କିଛି ପାଇବାର ଆଶା—
Prāptyāsā Hope of acquisition.

**ପ୍ରାପ୍ୟ**—ସ. ବିଣ. (ପ୍ର+ଆପ୍ ଧାତୁ+କର୍ମ. ଯ)—୧ । ଲଭ୍ୟ—
Prāpya 1 Obtainable; attainable.
୨ । ପାଉଣା—2. Due.
୩ । ଗମ୍ୟ—3. Approachable; knowable.
୪ । ଅର୍ଜନୀୟ—4 Acquirable.
ସ. ବି—ପାଉଣା ଧନ—Dues.

**ପ୍ରାଫୁଲ୍ଲ୍ୟ**—ସ. ବି. ( ପ୍ରଫୁଲ୍ଲ+ଭାବ. ଯ )—
Prāphullya ୧ । ପ୍ରଫୁଲ୍ଲତା, ଆହ୍ଲାଦ; ଆନନ୍ଦ—
1. Delight; elation; animation.
୨ । ପୁଷ୍ପର ପ୍ରସ୍ଫୁଟନ; ଫୁଲ ଫୁଟିବା—
2 The blooming of a flower.

**ପ୍ରାବଟ**—ସ. ବି. (ପ୍ର+ଆ+ବଟ୍ ଧାତୁ=ବେଢ଼ିବା+କର୍ମ.ଅ)—ଯବ—
Prābata Barley.

**ପ୍ରାବଣ**—ସ ବି. (ପ୍ର+ଆ+ବନ୍ ଧାତୁ=ସଲଗ୍ନ ହେବା+କରଣ. ଅ)—ଖନିତ୍ର, ଖଣତି—Pickaxe; spud.
Prābaṇa

**ପ୍ରାବର**—ସ. ବି. (ପ୍ର+ଆ+ବୃ ଧାତୁ+କରଣ. ଅ)—ପ୍ରାଚୀର; ବାଡ଼—
Prābara Fencing; compound.

**ପ୍ରାବରଣ**—ସ. ବି. (ପ୍ର+ଆବରଣ)—୧। ପ୍ରକୃଷ୍ଟ ଆବରଣ—
Prābaraṇa 1. Excellent covering.
(ପ୍ରାବାର—ଅନ୍ୟରୂପ) ୨ । ଓଢ଼ଣୀ, ଉତ୍ତରୀୟ ବସ୍ତ୍ର, ଓଢ଼ଣ—
2. The upper garment; sheet put on the upper part of the body; scarf; a cloak.
୩ । ଓଢ଼ଣା—3. A veil.
୪ । ଢାଙ୍କୁଣି (ହି. ଶ)—4. Lid, covering.

**ପ୍ରାବରଣ ଷଷ୍ଠୀ**—ସଂ. ବି—ଓଢ଼ଣଷଷ୍ଠୀ; ମାର୍ଗଶିର ଶୁକ୍ଳଷଷ୍ଠୀ—
Prābaraṇa shashṭhi The 6th day of the bright fortnight of the month of Mārgasira.
[ ଦ୍ର—ଏହା ଗୋଟିଏ ପର୍ବଦିନ, ଏହି ଦିନଠାରୁ ଦେବବିଗ୍ରହମାନଙ୍କୁ ଶୀତବସ୍ତ୍ରରେ ଘୋଡ଼ାଇ ଦିଆଯାଏ । ]

**ପ୍ରାବାର କୀଟ**—ସଂ. ବି—ଲୁଗାକୁ ନଷ୍ଟ କରିବା ଏକପ୍ରକାର ପୋକ—
Prābāra kiṭa A kind of insect attacking clothes.

**ପ୍ରାବାଳିକ**—ସଂ. ବି. ପୁଂ. (ପ୍ରବାଳ+ଇକ)—
Prābāḷika ପୋହଳା ବ୍ୟବସାୟୀ (ହି. ଶ)—
(ପ୍ରାବାଳିକା—ସ୍ତ୍ରୀ) A trader in corals.

**ପ୍ରାବାସିକ**—ସଂ. ବିଣ. (ପ୍ରବାସ+ସମ୍ବନ୍ଧାର୍ଥେ. ଇକ)—
Prābāsika ୧ । ପ୍ରବାସ ସମ୍ବନ୍ଧୀୟ—
1. Relating to sojourn.
୨ । ପ୍ରବାସ ଯୋଗ୍ୟ; ପ୍ରବାସରେ ବ୍ୟବହାରର ଉପଯୋଗୀ—
2. Fit for use during sojourn or in camp.

**ପ୍ରାବୀଣ୍ୟ**—ସଂ. ବି. ( ପ୍ରବୀଣ+ଭାବ. ଯ )—
Prābiṇya ୧ । ପ୍ରବୀଣତା; ନୈପୁଣ୍ୟ—1. Skilfulness.
୨ । ଚତୁରତା; ଦକ୍ଷତା—2. Cleverness; dexterity.

**ପ୍ରାବୃ(ବୂ)ର୍ଷୁ**—ସଂ. ବଣ. ପୁଂ. (ପ୍ର+ଆ+ବୃ ଧାତୁ+ଇଚ୍ଛାର୍ଥରେ ସନ୍ +କର୍ତ୍ତୃ. ଉ)—୧ । ପରିଧାନ କରିବାକୁ ଇଚ୍ଛୁକ—1. Wishing to wear.
Prābu(bū)rshu
ପ୍ରାବୃବୂର୍ଷୁ } ଅନ୍ୟରୂପ
ପ୍ରାବୃଷୁ
୨ । ଆବରଣ କରିବାକୁ ଇଚ୍ଛୁକ—2. Wishing to cover.

**ପ୍ରାବୃଟ୍**—ସଂ. ବି. (ପ୍ର+ଆ+ବୃଷ୍ ଧାତୁ=ବୃଷ୍ଟି କରିବା+କର୍ତ୍ତୃ. କ୍ୱିପ୍, ପ୍ରାବୃଷ୍ ଶବ୍ଦ ୧ମା. ୧ବ)—୧ । ବର୍ଷାକାଳ, ବର୍ଷାଋତୁ—1 The rainy season, the rains.
Prābrut
(ପ୍ରାବୃଷା—ଅନ୍ୟରୂପ)
୨ । ଶ୍ରାବଣ ଓ ଭାଦ୍ରମାସ—2 The months of Śrābaṇa and Bhādra (July-August).
୩ । କଦମ୍ବ ଗଛ—3. The Kadamba tree.

**ପ୍ରାବୃଡତ୍ୟୟ**—ସଂ. ବି. (୬ଷ୍ଠୀ ତତ୍, ପ୍ରାବୃଟ୍+ଅତ୍ୟୟ=ନାଶ)—
Prābrurdatyaya ଶରତ୍‌କାଳ—Autumn.

**ପ୍ରାବୃତ**—ସଂ. ବଣ. (ପ୍ର+ଆ+ବୃ ଧାତୁ+କର୍ମ. ତ)—୧ । ଆଚ୍ଛାଦିତ—1. Covered; screened.
Prābruta
୨ । ବେଷ୍ଟିତ—2. Enclosed.
ସଂ. ବି. (+କରଣ. ତ.—ପ୍ରାବରଣ, ଓଢଣା—
A veil; mantle, cloak.

**ପ୍ରାବୃତି**—ସଂ. ବି. (ପ୍ର+ଆ+ବୃ ଧାତୁ+କରଣ. ତି)—୧ । ପ୍ରାଚୀର, ବାଡ଼—1. Screen; hedge.
Prābruti
୨ । ଆବରଣ; ଘୋଡ଼ଣୀ—2. A covering.

**ପ୍ରାବୃଷ୍**—ସଂ. ବି. (ଷଳ)—(ପ୍ର+ଆ+ବୃଷ୍ ଧାତୁ+କର୍ତ୍ତୃ. କ୍ୱିପ୍)—
Prābrush ପ୍ରାବୃଟ୍ (ଦେଖ)—Prābrut (See)

**ପ୍ରାବୃଷିକ**—ସଂ. ବଣ. (ପ୍ରାବୃଷ୍+ଭବାର୍ଥେ ଇକ)—ପ୍ରାବୃଷ୍ୟ (ଦେଖ)—
Prābrushika Prābrushya (See)
ସଂ. ବି—ମୟୂର—Peacock.

**ପ୍ରାବୃଷିଜ**—ସଂ. ବଣ (ପ୍ରାବୃଷି=ବର୍ଷାଋତୁରେ+ଜନ୍ ଧାତୁ+କର୍ତ୍ତୃ. ଅ)—
Prābrushija ଯାହା ବର୍ଷାକାଳରେ ଜନ୍ମେ—
Growing during the rainy season.
ସଂ. ବି.—୧ । କଦମ୍ବ ଗଛ—
1. The Kadamba tree.
୨ । ଗିରିମଲ୍ଲିକା, କୁଟଜ ଗଛ—2. A medicinal plant; Coraya Echites; Antidysenterica.
୩ । ଧାରା କଦମ୍ବ; କେଳି କଦମ୍ବ—
3. A kind of Kadamba tree.
୪ । ବର୍ଷାକାଳୀନ ତୀକ୍ଷ୍ଣବାୟୁ; ଝଞ୍ଜାବାତ; (ହ୍ର. ଶ.)—
4. Sharp wind blowing in the rainy season.

**ପ୍ରାବୃଷ୍ୟ**—ସଂ. ବଣ. (ପ୍ରାବୃଷ୍+ଭବାର୍ଥେ. ଯ)—ବର୍ଷାକାଳୀନ—
Prābrushya Pertaining to the rainy season.
ପ୍ରାବୃଷେଣ୍ୟ
ପ୍ରାବୃଷୀଣ } ଅନ୍ୟରୂପ
ପ୍ରାବୃଷେୟ
ସଂ. ବି.—୧ । ବୈଦୂର୍ଯ୍ୟ ମଣି—
1. Topaz.
୨ । କୁଟଜ (ଦେଖ)
2. Kutaja (See)
୩ । ଧାରା କଦମ୍ବ (ଦେଖ)—3. Dhārā kadamba (See)

**ପ୍ରାବେଶନ**—ସଂ. ବି. (ପ୍ର+ଆବେଶନ)—୧ । ଶିଳ୍ପଶାଳା; କଳାଭବନ—
Prābesana 1. Factory; art studio.
୨ । (ପ୍ରବେଶନ+ଅ)—ପ୍ରବେଶନ—2. Admittance.

**ପ୍ରାବେଶିକ**—ସଂ. ବଣ.—(ପ୍ରବେଶ+ଇକ)—ପ୍ରବେଶର ସାଧନଭୂତ, ଯାହାଦ୍ୱାରା ପ୍ରବେଶ ଲାଭ ହୁଏ (ହ୍ର. ଶ.)—
Prābesika
Instrumental in procuring admission.

**ପ୍ରାବୋଧିକ**—ସଂ. ବି. (ପ୍ରବୋଧ=ଜାଗରଣ+ଇକ;—ଯେତେବେଳେ ସମସ୍ତେ ନିଦରୁ ଉଠନ୍ତି)—୧ । ଉଷାକାଳ; ସକାଳ—1. Dawn; morning.
Prābodhika
୨ । ମାଗଧ; ଯେଉଁ ଭାଟ ସକାଳୁ ସ୍ତୁତି ପାଠ କରି ରାଜାଙ୍କ ନିଦ ଭଙ୍ଗାଏ—2. A ministrel whose duty is to awaken a king in the morning by reciting panegyrics.
୩ । ମଗଧ ଦେଶୀୟ ସ୍ତୁତିପାଠକ—
3. A ministrel of the Magadha country.

**ପ୍ରାଭବ**—ସଂ. ବି. (ପ୍ରଭୁ+ଭାବ. ଅ)—୧ । ପ୍ରଭୁତା—
Prābhaba 1. Mastery.
[ପ୍ରାଭବତ୍ୟ—ଅନ୍ୟରୂପ (ହ୍ର. ଶ.)] ୨ । ଶ୍ରେଷ୍ଠତା—
2 Superiority.
ଗ୍ରା. ବି.—୧ । (ସଂ. ପରାଭବ)—ପରାଭବ, ଅପମାନ—
1. Insult.
ପାଣ୍ଡବଙ୍କ ପ୍ରାଭବ ଦେଇଥିଲ ମୁହିଁ
ଏବେ ତାଙ୍କ ସେନ ଅଛିଲ ପ୍ରାଣ ପାଇ । କୃଷ୍ଣସିଂ ମହାଭାରତ ବନ ।
୨ । (ସଂ. ପ୍ରଭାବ) ପରାକ୍ରମ, ଶକ୍ତି—2. Power; influence.
ଅମ୍ଭେ ମରିବାର ଯାବେ ସେ କି ପାଇବ,
ମନୁଷ୍ୟ ଜନ୍ମ ସିନା କେତେ ତା ପ୍ରାଭବ । କୃଷ୍ଣସିଂହ ମହାଭାରତ ବନ ।

**ପ୍ରାଭାତିକ**—ସଂ. ବଣ. (ପ୍ରଭାତ+ସମ୍ବନ୍ଧେ. ଇକ)—୧ । ପ୍ରଭାତସମ୍ବନ୍ଧୀୟ—
Prābhātika 1. Pertaining to dawn.
୨ । ପ୍ରଭାତକାଳୀନ—
2. Happening in the morning.

**ପ୍ରାଭୃତ**—ସଂ. ବଣ. (ପ୍ର+ଆ+ଭୃ ଧାତୁ+କର୍ମ. ତ)—୧ । ଭେଟି; ଉପଢୌକନ—Present; gift.
Prābhruta
୨ । ନୈବେଦ୍ୟ—2. An offering.

**ପ୍ରାମାଣିକ**—ସଂ. ବଣ. (ପ୍ରାମାଣ+ନିର୍ବ୍ବୃତ୍ୟର୍ଥେ. ଇକ)—
Prāmāṇika ୧ । ପ୍ରମାଣସିଦ୍ଧ—1. Established by proof.
୨ । ପ୍ରଚଳିତ, ସ୍ୱୀକୃତ—
2. Approved; fashionable.
୩ । ପ୍ରାମାଣସାଧ୍ୟ—3 Provable; credible.
୪ । ଶାସ୍ତ୍ରଜ୍ଞ—4. Versed in the Śāstras.
୫ । ସତ୍ୟ—5 True; authentic.
୬ । ମର୍ଯ୍ୟାଦାର୍ହ—6. Respectable.
୭ । ମାନନୀୟ, ଯାହା ମାନିବାକୁ ହେବ—
7. Authoritative.
୮ । ଶାସ୍ତ୍ରସିଦ୍ଧ—8. Approved by the scriptures or religious books.

୯ । ପ୍ରଧାନ (କ୍ଲୀବେନ୍ଦ୍ର)—9. Chief.

୧୦ । ଦକ୍ଷ (କ୍ଲୀବେନ୍ଦ୍ର)—10. Wise.

ସଂ. ବି.—୧ । ପରମାଣିକ, ଜନନାୟକ—
1. Headman; a chief.

୨ । ସଭାପତି—2. A president.

୩ । ପଣ୍ଡିତ—3. A learned man; a pandit,

୪ । ଭଣ୍ଡାରୀ—4. Barber.

୫ । ପ୍ରମାଣକାରୀବ୍ୟକ୍ତି—5. One who proves a thing.

୬ । ଅଧ୍ୟକ୍ଷ—6. Teacher.

**ପ୍ରାମାଣ୍ୟ**—ସଂ. ବିଣ (ପ୍ରମାଣ+ସମ୍ବନ୍ଧେ. ଯ)—୧ । ପ୍ରମାଣ ସମ୍ବନ୍ଧୀୟ—
Prāmāṇya 1. Relating to proof.

୨ । ପ୍ରମାଣଯୋଗ୍ୟ—2 Provable

୩ । ପ୍ରମାଣସିଦ୍ଧ—3. Established by proof; well authenticated

ସ. ବି ( +ଭାବେ. ଯ )—୧ । ବିଶ୍ୱାସ୍ୟତା—
1. Trustworthiness; authenticity.

୨ । ମାନମର୍ଯ୍ୟାଦା ( ହି ଶବ୍ଦସାଗର )—
2. Etiquette.

**ପ୍ରାମାଣ୍ୟ ବିଧି**—ସ. ବି. ( କର୍ମଧା; ପ୍ରାମାଣ୍ୟ+ବିଧି )—
Prāmāṇya bidhi ୧ । ବିଶିଷ୍ଟ ରୂପେ ପ୍ରମାଣସିଦ୍ଧ ନିୟମ ବା ଆଇନ୍—1. A well-authenticated rule or law.

୨ । ନଜୀର—
2. Ruling; authoritative ruling.

୩ । ପ୍ରମାଣସିଦ୍ଧ ନିୟମ ବା ରୀତି—
3. Well established rule or practice.

**ପ୍ରାମାଦିକ**—ସ. ବିଣ ( ପ୍ରମାଦ+ଭବାର୍ଥେ. ଇକ )—
Pramādika ୧ । ପ୍ରମାଦ ଘଟିତ, ଅନବଧାନ ଘଟିତ—
1. Due to inadvertence or negligence or carelessness.

୨ । ଦୋଷଯୁକ୍ତ—2. Defective.

୩ । ଦୂଷିତ—3. Contaminated; spoiled.

**ପ୍ରାମାଦ୍ୟ**—ସ. ବି. ( ପ୍ରମାଦ୍ୟ+ଭାବ. ଯ )—
Prāmādya ୧ । ପାଗଳପଣ; ଉନ୍ମାଦ—1. Madness.

୨ । ଅଟରୂଷ (ହି. ଶ); ବାସଙ୍ଗ (ଗଛ)—
2. Adhatoda Vasaca (tree).

**ପ୍ରାମିତ୍ୟ**—ସ. ବି—ଋଣ (ହି. ଶବ୍ଦସାଗର)—
Prāmitya Debt.

**ପ୍ରାମୋଦ**—ସ. ବିଣ. ( ପ୍ରମୋଦ+ଅ )—
Prāmoda ମନୋହର (ହି. ଶ)—Lovely.
(ପ୍ରାମୋଦକ—ଅନ୍ୟରୂପ)

**ପ୍ରାୟ**—ସ. ବି. (ପ୍ର+ଇ ଧାତୁ=ଗମନ କରିବା; ମରିବା+ଭାବ. ଅ)-
Prāya ୧ । ଅଉସନ୍ଧି ବା ଇଚ୍ଛାପୂର୍ବକ ଅନଶନଦ୍ୱାରା ମୃତ୍ୟୁ; ମୃତ୍ୟୁ ଇଚ୍ଛା ପୂର୍ବକ ଅନସନ—1. Starving one's self to death; fasting to death.

୨ । ମୃତ୍ୟୁ—2. Death

୩ । ବାହୁଲ୍ୟ—3. Abundance; plenty.

୪ । ଉପବାସ—4. Starvation; fasting

୫ । ବୟସ—5. Age.

୬ । ପାପ—6. Sin.

ସ. ବିଣ. (ଅନ୍ୟ ଶବ୍ଦ ପରେ ବ୍ୟବହୃତ, ଯଥା—ମୃତପ୍ରାୟ)—
ତୁଲ୍ୟ, ପରି, ସମ, କଳ୍ପ—
Like; equal; similar.

ବେ ଅ—୧ । ତୁଲ୍ୟ, ସମ—1. Like; similar to.

୨ । ସମାନ ଭାବରେ—2. Equally.

୩ । ସଚରାଚର; ସାଧାରଣତଃ—
3. Ordinarily; commonly.

୪ । ସର୍ବଦା—4 Constantly, always.

୫ । ଘନଘନ—5. Repeatedly

୬ । ଈଷତ୍; ସାମାନ୍ୟ—6. Little; slightly.

୭ । ପ୍ରାୟଶଃ, ଅମୁକ ସଂଖ୍ୟା ବା ଅବସ୍ଥାର ଲଗାଲଗି—
7. Nearly; about.

୮ । ଅଧିକ ରୂପେ—
8. Mostly; for the most part.

୯ । ମଝିରେ ମଝିରେ; ବେଳେ ବେଳେ—9. Now and then.

**ପ୍ରାୟ ଗତ**—ସ. ବିଣ. ପୁଂ—ମୃତ ପ୍ରାୟ; ମୁମୂର୍ଷୁ; ଆସନ୍ନମୃତ୍ୟୁ (ହି. ଶ)—
Prāya gata Dying; about to die.
(ପ୍ରାୟଗତା—ସ୍ତ୍ରୀ)

**ପ୍ରାୟଣ**—ସ. ବି. (ପ୍ର+ଆ+ଯା ଧାତୁ+ଭାବ. ଅନ)—
Prāyaṇa ୧ । ସ୍ଥାନାନ୍ତର ଗମନ (ହି. ଶବ୍ଦସାଗର)—
(ପ୍ରାୟଣୀୟ—ବିଣ) 1. Going to another place.

୨ । ଏକ ଶରୀର ତ୍ୟାଗ କରି ଅନ୍ୟ ଶରୀରକୁ ଗମନ—
2. Going to one body by leaving another; transmigration.

୩ । ଜନ୍ମାନ୍ତର ( ହି. ଶବ୍ଦସାଗର )—
3. Rebirth after death.

୪ । ପାରଣା; ଉପବାସ ପରେ ଖିଆଯିବା ପଥ୍ୟ—
4. Food taken at the time of breaking a fast.

୫ । ପ୍ରାରମ୍ଭ—5. Commencement.

**ପ୍ରାୟ ଦର୍ଶନ**—ସ. ବି. ( ବହୁବ୍ରୀହି; ପ୍ରାୟ+ଦର୍ଶନ )—
Prāya darśana ସଚରାଚର ଦେଖାଯିବା ବିଷୟ; ସାଧାରଣ ଘଟନା—Common or ordinary event.

**ପ୍ରାୟ ଦ୍ୱୀପ**—ସ. ବି. ( ପ୍ରାୟ+ଦ୍ୱୀପ ) -ଉପଦ୍ୱୀପ—
Prāya dwipa Peninsula.

**ପ୍ରାୟ ବୃତ୍ତ**—ସଂ. ବି. ( ପ୍ରାୟ+ବୃତ୍ତ )—
Prāya brutta ୧ । ଯେ ସମ୍ପୂର୍ଣ୍ଣ ଗୋଲାକାର ନୁହେଁ—
1. Almost circular.

୨ । ଅଣ୍ଡାକାର—2. Elliptical.

**ପ୍ରାୟଶଃ**—ସ. କ୍ରି. ବଣ. ( ପ୍ରାୟ୍+ଶସ୍ )—
Prāyaśaḥ ୧ । ଉପର୍ଯ୍ୟୁପରି, ସର୍ବଦା—
1. Constantly; repeatedly.
୨ । ଲଗାଲଗି; ଅମୁକ ସଂଖ୍ୟା ବା ଅବସ୍ଥାରୁ ସାମାନ୍ୟ ଅଳ୍ପ ବା ବେଶି—2. Almost; nearly; more or less; approximately.
୩ । ସାଧାରଣତଃ, ସଚରାଚର—3. Ordinarily; commonly; usually; generally
୪ । ଅଧିକାଂଶ ଭାବରେ; ବହୁଧା—
4. Mostly; for the most part.

**ପ୍ରାୟଶ୍ଚିତ୍ତ(ତ୍ତି)**—ସଂ. ବି. [ପ୍ରାୟଃ=ତପସ୍ୟା+ଚିତ୍ତ(ତ୍ତି)=ନିଶ୍ଚୟ]—
Prāyaśchitta(tti) ୧ । ପାପକ୍ଷୟସାଧନ କର୍ମ—
(ପ୍ରାୟଶ୍ଚିତ୍ତୀୟ—ବଣ) 1. Expiation for sins; penance.
୨ । କୃତ ଦୋଷର କ୍ଷୟସାଧନ——
2 Atonement; amends
୩ । ଚିତ୍ତର ବିଶୁଦ୍ଧତା-ସାଧନ—
3. Purification of one's heart
[ଦ୍ର—ଶାସ୍ତ୍ରରେ ଭିନ୍ନ ଭିନ୍ନ ଅତିପାତକ, ମହାପାତକ, ଅନୁପାତକ ଓ ଉପପାତକ ଆଦି ନିମନ୍ତେ ବିଭିନ୍ନ ପ୍ରାୟଶ୍ଚିତ୍ତ ବିଧି ନିର୍ଦ୍ଦିଷ୍ଟ ହୋଇଅଛି । ତପସ୍ୟା, ଈଶ୍ୱର ଭଜନ, ହୋମ, ଦାନ ଅନଶନ ଦଣ୍ଡଭୋଗ, ବ୍ରତ ଓ ଉପବାସ ଆଦି ଦ୍ୱାରା ଜ୍ଞାନତଃ ଓ ଅଜ୍ଞାନତଃ କୃତ ପାପର ପ୍ରାୟଶ୍ଚିତ୍ତ କରାଯାଏ । କେତେଗୁଡ଼ିଏ ପାପର ପ୍ରାୟଶ୍ଚିତ୍ତ-ସ୍ୱରୂପ ମୃତ୍ୟୁକୁ ମଧ୍ୟ ବରଣ କରିବାର ବିଧି ଅଛି । ]

**ପ୍ରାୟଶ୍ଚିତ୍ତ କରିବା**—ଦେ. କ୍ରି—ପାତକଜନିତ ପାପକୁ ଶାସ୍ତ୍ରନିର୍ଦ୍ଦିଷ୍ଟ
Prāyaśchitta karibā ଅନୁଷ୍ଠାନାଦି ଦ୍ୱାରା କ୍ଷୟ କରିବା—
প্রায়শ্চিত্ত করা To expiate for one's sins.
প্রায়শ্চিত্তকরণ

**ପ୍ରାୟଶ୍ଚିତ୍ତ ବିଧି**—ସ. ବି—(୬ଷ୍ଠୀ ତତ୍, ପ୍ରାୟଶ୍ଚିତ୍ତ+ବିଧି)—ପ୍ରାୟଶ୍ଚିତ୍ତ
Prāyaśchitta bidhi କରିବାର ନିର୍ଦ୍ଦିଷ୍ଟ ନିୟମ—
Rules for penance or expiation.

**ପ୍ରାୟଶ୍ଚିତ୍ତାର୍ହ**—ସ. ବଣ. ପୁଂ—( ପ୍ରାୟଶ୍ଚିତ୍ତ+ଅର୍ହ )—ପ୍ରାୟଶ୍ଚିତ୍ତ
Prāyaśchittārha କରିବା ଯୋଗ୍ୟ—Expiable;
(ପ୍ରାୟଶ୍ଚିତ୍ତାର୍ହା—ସ୍ତ୍ରୀ) requiring expiation.

**ପ୍ରାୟଶ୍ଚିତ୍ତୀ**—ସ ବଣ. ପୁଂ—(ପ୍ରାୟଶ୍ଚିତ୍ତ+ଅସ୍ତି ଅର୍ଥରେ ଇନ୍; ୧ମା
Prāyaśchittī ୧ବ)—ପ୍ରାୟଶ୍ଚିତ୍ତ କରିବା ଯୋଗ୍ୟ (ବ୍ୟକ୍ତି)—
(ପ୍ରାୟଶ୍ଚିତ୍ତିନୀ—ସ୍ତ୍ରୀ) (person) Fit for expiating; who ought to perform expiation.

**ପ୍ରାୟଶ୍ଚେତନ**—ସ. ବି—(ପ୍ରାୟସ୍+ଚେତନ)—ପ୍ରାୟଶ୍ଚିତ୍ତ—
Prāyaśchetana Expiation.

**ପ୍ରାୟାଣିକ**—ସ. ବଣ—(ପ୍ରୟାଣ+ଇକ)—ଯାତ୍ରା ସମ୍ବନ୍ଧୀୟ—
Prāyāṇika Relating to starting in a journey.
ସ. ବି–ଶଙ୍ଖ ଚାମରାଦି ମଙ୍ଗଳ ଦ୍ରବ୍ୟ, ଯାହା ଯାତ୍ରା କରିବା ସମୟରେ ବ୍ୟବହୃତ ହୁଏ—Conch blown and chowrie waved on the occasion of a person's starting on a mission.

**ପ୍ରାୟିକ**—ସ. ବଣ—(ପ୍ରାୟ+ଭବାର୍ଥେ. ଇକ)—୧ । ସାଧାରଣ—
Prāyika 1. Usual; common.
୨ । ଯାହା ବହୁଳ ଭାବରେ ହୋଇଥାଏ—
2 Abundant.

**ପ୍ରାୟେ**—ଗ୍ରା. ଅ—(ସ. ପ୍ରାୟ)—ପ୍ରାୟ (ଦେଖ)—
Prāye Prāya (See)
(ପ୍ରାୟେକ; ପ୍ରାୟେକ—ଅନ୍ୟରୂପ)
ବହୁ ଇଚ୍ଛା କରନ୍ତି ଚକଡ଼ ଯା' ତା ପ୍ରାୟେ କ୍ରୁର ଅଟଇ—
ରାଧାନାଥ ଗ୍ରନ୍ଥ ।

**ପ୍ରାୟୋଗିକ**—ସ. ବି—(ପ୍ରୟୋଗ+ଇକ)—୧ । ପ୍ରୟୋଗ ସମ୍ବନ୍ଧୀୟ—
Prāyogika 1. Relating to Prayoga.
୨ । ପ୍ରଯୁକ୍ତ ହେବାର ଯୋଗ୍ୟ—
2. Employable.
୩ । ନିତ୍ୟ ପ୍ରୟୋଜନୀୟ—
3. Used daily; which is a daily necessity.

**ପ୍ରାୟୋଦେବତା**—ସ. ବି—(ପ୍ରାୟଃ+ଦେବତା)—ସର୍ବମାନ୍ୟ ଦେବତା;
Prāyodebatā ଯେଉଁ ଦେବତାଙ୍କୁ ସମସ୍ତେ ମାନନ୍ତି (ହି. ଶ)—
The Universal God.

**ପ୍ରାୟୋଦ୍ୱୀପ**—ସ. ବି—(ପ୍ରାୟଃ+ଦ୍ୱୀପ)—ଉପଦ୍ୱୀପ, ପ୍ରାୟ ଚତୁର୍ଦ୍ଦିଗରେ
Prāyodwīpa ଜଳବେଷ୍ଟିତ ଭୂଭାଗ—Peninsula

**ପ୍ରାୟୋପଗମନ**—ସ. ବି—(ପ୍ରାୟ+ଉପଗମନ)—ଆହାର ତ୍ୟାଗପୂର୍ବକ
Prāyopagamana ମରିବାକୁ ପ୍ରଯତ୍ନ (ହି. ଶ)—
(ପ୍ରାୟୋପଗତ—ବଣ) Attempting at fasting to death.

**ପ୍ରାୟୋପବିଷ୍ଟ**—ସ. ବଣ. ପୁଂ—(୭ମୀ ତତ୍; ପ୍ରାୟେ=ମୃତ୍ୟୁ ପର୍ଯ୍ୟନ୍ତ
Prāyopabishṭa ଅନଶନରେ+ଉପବିଷ୍ଟ )—୧ । ଉପବାସ
ପ୍ରାୟୋପେତ, ପ୍ରାୟୋପବେଶୀ } ଅନ୍ୟରୂପ — ପୂର୍ବକ ପ୍ରାଣତ୍ୟାଗ କରିବା ନିମନ୍ତେ ଆସୀନ—1. Fasting to death.
ପ୍ରାୟୋପେତା, ପ୍ରାୟୋପବେଶିନୀ } ସ୍ତ୍ରୀ
୨ । ଯେ ଉପବାସ କରି ମରିଅଛି—
(ପ୍ରାୟୋପବେଶ—ବି) 2. Dead as a result of fasting.

**ପ୍ରାୟୋପବେଶ**—ସ. ବି—(୭ମୀ ତତ୍ ପ୍ରାୟ+ଉପବେଶ)—
Prāyopabeśa ଅନାହାରରେ ମରିବା ପାଇଁ ବସି ରହିବା—
ପ୍ରାୟୋପବେଶନ, ପ୍ରାୟୋପବେଶନିକା, ପ୍ରାୟୋପବେଶିକା } ଅନ୍ୟରୂପ — Fasting one's self to death; a fasting unto death.

**ପ୍ରାରବ୍ଧ**—ସ. ବଣ—(ପ୍ର+ଆରବ୍ଧ)—୧ । କୃତାରମ୍ଭ; ଆରମ୍ଭ କରାଯାଇ
Prārabdha ଥିବା–1. Commenced; begun.
ପ୍ରାରମ୍ଭ, ପ୍ରାରବ୍ଧି } ବି — ୨ । ପୂର୍ବ ଜନ୍ମରେ ଆରମ୍ଭ କରାଯାଇ ଥିବା—
Begun in one's past existence.
ସ. ବି—୧ । ଭାଗ୍ୟ, ଅଦୃଷ୍ଟ—
1. Fate; destiny.
୨ । ପୂର୍ବଜନ୍ମରେ ଆରମ୍ଭ କରାଯାଇ ଥିବା—
2. Merit or demerit earned in a former stage or existence.

**ପ୍ରାରବ୍ଧ କର୍ମ**—ସଂ. ବି—(କର୍ମଧା; ପ୍ରାରବ୍ଧ+କର୍ମ)—୧ । ଆରମ୍ଭ କରି ସାଇଥିବା କାର୍ଯ୍ୟ—1. A work which has once begun.
Prārabdha karma
୨ । ପୂର୍ବଜନ୍ମାର୍ଜିତ କର୍ମ ବା ଅଦୃଷ୍ଟ—2 Fate; destiny; the fruits of deeds done in a past existence.

**ପ୍ରାରବ୍ଧି**—ସଂ. ବି- (ପ୍ର+ଆରବ୍ଧି)—୧ । ପ୍ରାରମ୍ଭ
Prārabdhi 1. Beginning.
୨ । ହାତି ବନ୍ଧାଯିବା ଦଉଡ଼ି—
2 A rope for tying an elephant

**ପ୍ରାରବ୍ଧୀ**—ସ ବିଣ. ପୁଂ (ପ୍ରାରବ୍ଧ+ଇନ୍, ୧ମା. ୧ବ)—ଭାଗ୍ୟବାନ୍—
Prārabdhī (ପ୍ରାରବ୍ଧିନୀ- ସ୍ତ୍ରୀ) Lucky.

**ପ୍ରାରମ୍ଭ**—ସ. ବି ( ପ୍ର+ଆରମ୍ଭ ) – ୧ । ଆରମ୍ଭ; ଉପକ୍ରମ—
Prārambha 1. Commencement; beginning.
୨ । କରିବା କାମରେ ଉପକ୍ରମ କରାଯିବା କାର୍ଯ୍ୟ; ଯେଉଁ କାର୍ଯ୍ୟକୁ କରିବା ସକାଶେ ଆରମ୍ଭ କରାଯାଏ—2 Undertaking; a deed which a person undertakes to do.
ସ. ବିଣ—ସତ୍କର୍ମକାରୀ (ପ୍ରକୃତିବାଦ)—
Performing good acts.

**ପ୍ରାରମ୍ଭ ସୂଚକ**—ସ. ବିଣ· ( ବହୁବ୍ରୀହି; ପ୍ରାରମ୍ଭ+ସୂଚକ )—ଯାହା ପ୍ରାରମ୍ଭ ହେବା ବିଷୟ ସୂଚନା କରେ—
Prārambha sūchaka
Indicating the beginning of a work.

**ପ୍ରାରମ୍ଭିକ**—ସ. ବିଣ (ପ୍ରାରମ୍ଭ+ଭବାର୍ଥେ. ଇକ)—ଆଦ୍ୟ, ପ୍ରାଥମିକ—
Prārambhika Opening; primary.
( ଯଥା—ପ୍ରାରମ୍ଭିକ ସଙ୍ଗୀତ; ପ୍ରାରମ୍ଭିକ ଭାଷଣ । )

**ପ୍ରାର୍ଜୟିତା**—ସ. ବିଣ. ପୁଂ (ପ୍ର+ଅର୍ଜ ଧାତୁ+କର୍ତ୍ତୃ ତୃ, ୧ମା. ୧ବ )—
Prārjayitā ଦାନକାରୀ; ଦାତା ( ହି. ଶ )—
(ପ୍ରାର୍ଜୟିତ୍ରୀ—ସ୍ତ୍ରୀ) Bestowing: giving; generous.

**ପ୍ରାର୍ଥକ**—ସ. ବିଣ. ପୁଂ ( ପ୍ର+ଅର୍ଥ୍ ଧାତୁ=ଅନ୍ୱେଷଣ କରିବା+ କର୍ତ୍ତୃ. ଅକ )—ପ୍ରାର୍ଥୀ; ଯେ ପ୍ରାର୍ଥନା କରେ—
Prārthaka
(ପ୍ରାର୍ଥିକା—ସ୍ତ୍ରୀ) Soliciting; asking; praying.

**ପ୍ରାର୍ଥନ(ନା)**—ସ. ବି. ( ପ୍ର+ଅର୍ଥ୍ ଧାତୁ+ଭାବ ଅନ,+ସ୍ତ୍ରୀ. ଆ )—
Prārthana(nā) ୧ । ଯାଚ୍ଞା—1. Begging; praying.
୧ । (+କରଣ. ଅନ) ସ୍ତବ, ଦେବତାଙ୍କ ଉଦ୍ଦେଶ୍ୟରେ ସ୍ତୁତି—
2. Hymn; prayer.
୩ । (+ଭାବ. ଅନ) ବିନୀତ ନିବେଦନ, ଆବେଦନ—
3 Respectful request; solicitation; application.
୪ । ଅଭିଯାନ—4. March, expedition.
୫ । ଅବରୋଧ—5. Siege.
୬ । ଆକ୍ରମଣ—6. Attack; onslaught.
୭ । ହିଂସା; ଦ୍ୱେଷ—7. Malice; injuring.
୮ । (+କରଣ. ଅନ) ନାଟକର ଗର୍ଭାଙ୍କବିଶେଷ—
8. A kind of scene of a drama.
୯ । (+କର୍ମ. ଅନ) ମୁଦ୍ରାବିଶେଷ—9. A kind of coin.

**ପ୍ରାର୍ଥନା ପତ୍ର**—ସ. ବି—ଆବେଦନପତ୍ର; ଦରଖାସ୍ତ—
Prārthanā patra A petition; written request.

**ପ୍ରାର୍ଥନା ସମାଜ**—ସ. ବି ( ଆଧୁନିକ ପ୍ରୟୋଗ )—ବ୍ରାହ୍ମସମାଜର ପଦ୍ଧତି ଅନୁସାରେ ଏକେଶ୍ୱରଙ୍କୁ ଜାତି ନିର୍ବିଶେଷରେ ବହୁଲୋକ ମିଳି ପ୍ରାର୍ଥନା କରିବା ନବ୍ୟ ସମ୍ପ୍ରଦାୟବିଶେଷ—
Prārthanā samāja
Name of a modern theological society
[ ଦ୍ର—ଏ ସମାଜର ବ୍ୟକ୍ତିମାନେ ମୂର୍ତ୍ତିପୂଜା ଓ ଜାତିଭେଦ ମାନନ୍ତି ନାହିଁ; ବଙ୍ଗଦେଶରେ ବ୍ରହ୍ମସମାଜ ପରି ଦକ୍ଷିଣ ଭାରତରେ ମାନ୍ଦ୍ରାଜ ଓ ବୋମ୍ବେ ଅଞ୍ଚଳରେ ଏହି ସମ୍ପ୍ରଦାୟ ନାନା ସ୍ଥାନରେ ପ୍ରତିଷ୍ଠିତ ହୋଇଅଛି । ]

**ପ୍ରାର୍ଥନୀୟ**—ସ ବିଣ. ( ପ୍ର+ଅର୍ଥ ଧାତୁ+କର୍ମ. ଅନୀୟ )—ଯାଚନୀୟ, ଯାଚିତବ୍ୟ; ମାଗିବାର ଯୋଗ୍ୟ—Fit to be prayed for.
Prārthanīya
( ପ୍ରାର୍ଥୟିତବ୍ୟ; ପ୍ରାର୍ଥ୍ୟ—ଅନ୍ୟରୂପ )

**ପ୍ରାର୍ଥୟିତା**—ସ. ବିଣ. ପୁଂ (ପ୍ର+ଅର୍ଥ୍ ଧାତୁ+କର୍ତ୍ତୃ ତୃ; ୧ମା. ୧ବ)—
Prārthayitā ପ୍ରାର୍ଥନାକାରୀ, ଯେ ମାଗେ; ଯାଚକ—
(ପ୍ରାର୍ଥୟିତ୍ରୀ—ସ୍ତ୍ରୀ) Soliciting; begging; asking.

**ପ୍ରାର୍ଥିତ**—ସଂ. ବିଣ (ପ୍ର+ଅର୍ଥ ଧାତୁ+କର୍ମ· ତ)—୧ । ଯାଚିତ—
Prārthita 1 Begged; prayed for; solicited; sought for.
୨ । ଅଭିଳଷିତ—2. Wished for.
୩ । ଯାହାଙ୍କ ନିକଟରେ ପ୍ରାର୍ଥନା କରାଯାଏ—
3. Approached with a prayer
୪ । ଆକ୍ରାନ୍ତ—4. Attacked; overwhelmed.
୫ । ହତ (ପ୍ରକୃତିବାଦ)—5. Killed.
୬ । ଶତ୍ରୁ ସଂରୁଦ୍ଧ (ପ୍ରକୃତିବାଦ)—
6. Besieged by the enemy; beleaguered.

**ପ୍ରାର୍ଥୀ**—ସଂ. ବିଣ. ପୁଂ (ପ୍ର+ଅର୍ଥିନ୍)—ପ୍ରାର୍ଥନାକାରୀ; ପ୍ରାର୍ଥୟିତା—
Prārthī (ପ୍ରାର୍ଥିନୀ—ସ୍ତ୍ରୀ) Soliciting.
ସଂ. ବି—୧ । ଉମେଦ୍‌ୱାର—
1. Apprentice; candidate.
୨ । ନିବେଦକ—3. Applicant; suitor.
୩ । କୌଣସି ଦ୍ରବ୍ୟ ପାଇବା ପାଇଁ ଇଚ୍ଛୁକ ବ୍ୟକ୍ତି—
3. A person who is desirous of something

**ପ୍ରାଲବ୍ଧ(ଇତ୍ୟାଦି)**—ସଂ. ବିଣ. (ପ୍ର+ଆ+ଲବ୍ଧ)—୧ । ପ୍ରାରବ୍ଧ ଇତ୍ୟାଦି
Prālabdha (etc) (ଦେଖ) Prārabdha etc (See)
୨ । ପୂର୍ବଜନ୍ମାର୍ଜିତ—2 Earned as the result of one's actions in a previous existence.
ସଂ. ବି—ଅଦୃଷ୍ଟ; କପାଳ, ଭାଗ୍ୟ—
Fate; destiny; luck.

**ପ୍ରାଲମ୍ବ**—ସଂ. ବି ( ପ୍ର+ଆ+ଲମ୍ବ ଧାତୁ=ଓହୋଳିବା+କର୍ତ୍ତୃ ଅ )—
Prālamba ୧ । ସରଳ ଲମ୍ବମାନ କଣ୍ଠହାରବିଶେଷ; ଗୋଟ, ବେକରୁ ଛାତି ପର୍ଯ୍ୟନ୍ତ ଲମ୍ବିଥିବା ମାଳା; ଲମ୍ବ ହାର—
ପ୍ରାଲମ୍ବକ, ପ୍ରାଲମ୍ବିକା } ଅନ୍ୟରୂପ

2. A long necklace; garland hanging round the neck up to the breast

୨ । ଦଉଡ଼ି ପରି ଲମ୍ବିଥିବା ବସ୍ତୁ (ହି. ଶ)—
2. Any hanging thing.

**ପ୍ରାଲେୟ**—ସଂ. ବି. (ପ୍ର+ଆ+ଲୀ ଧାତୁ=ଲୀନ ହେବା+କର୍ତ୍ତୃ. ଯ)—
Prāleya ୧ । ହିମ, ଶିଶିର—1. Frost.
୨ । କାକର—2. Dew.
୩ । ବରଫ, ତୁଷାର—3. Snow
୪ । ( ଭୂଗର୍ଭଶାସ୍ତ୍ର ) ଉତ୍ତର ଧ୍ରୁବ ନିକଟବର୍ତ୍ତୀ ସ୍ଥାନରେ ଅସହ୍ୟ ଶୀତର ସମୟ ( ହି. ଶବ୍ଦସାଗର )—
4. ( geology ) The time of intense cold in the north polar regions.

**ପ୍ରାଲେୟାଂଶୁ**—ସ. ବି. (ବହୁବ୍ରୀହି; ପ୍ରାଲେୟ+ଅଂଶୁ)—
Prāleyāmśu ୧ । ହିମାଂଶୁ; ଚନ୍ଦ୍ର—The moon.
(ପ୍ରାଲେୟ ରଶ୍ମି—ଅନ୍ୟରୂପ) ୨ । କର୍ପୂର—2 Camphor.

**ପ୍ରାଲେୟାଦ୍ରି**—ସ. ବି. (ମ ପ. ଲୋ; ପ୍ରାଲେୟ+ଅଦ୍ରି)—
Prāleyādri ହିମାଳୟ ପର୍ବତ—The Himalayas.
(ପ୍ରାଲେୟ ଗିରି; ପ୍ରାଲେୟ ପର୍ବତ, ପ୍ରାଲେୟାଚଳ—ଅନ୍ୟରୂପ)

**ପ୍ରାଶନ**—ସ. ବି. (ପ୍ର+ଅଶ୍ ଧାତୁ=ଖାଇବା+ଭାବ. ଅନ)—
Prāśana ୧ । ଅଶନ; ଭୋଜନ—1 Eating.
୨ । ଚାଖିବା (ହି. ଶ)—2 Tasting.

**ପ୍ରାଶସ୍ତ୍ୟ**—ସ ବି. (ପ୍ରଶସ୍ତ+ଭାବେ. ଯ)—୧ । ଓସାର; ପ୍ରଶସ୍ତତା—
Prāśastya 1 Width; breadth
୨ । ବିସ୍ତାର—2 Extent; extension.
୩ । ଉତ୍କୃଷ୍ଟତା; ବାହାଦୁରୀ—3. Excellence.

**ପ୍ରାଶିତ**—ସ. ବିଣ. (ପ୍ର+ଅଶ୍ ଧାତୁ+କର୍ମ. ତ)—ଭକ୍ଷିତ; ଭୁକ୍ତ;
Prāśita ଖିଆ ଯାଇ ଥିବା—Eaten; partaken.
ସ. ବି.—୧ । (+ଭାବ. ତ) ଭକ୍ଷଣ—
୨ । (+କରଣ ତ) ପିତୃଯଜ୍ଞ; ତର୍ପଣ—2. Offering of oblation of water to one's deceased ancestors.

**ପ୍ରାଶୀ**—ସ. ବିଣ. ପୁଂ—(ପ୍ର+ଅଶ ଧାତୁ+କର୍ତ୍ତୃ. ଇନ୍; ୧ମା. ୧ବ.)
Prāśi (ପ୍ରାଶିନୀ—ସ୍ତ୍ରୀ) ଭକ୍ଷଣକାରୀ (ହି. ଶ)—Eating

**ପ୍ରାଶ୍ଚିତ(ତ୍ତ)**—ଗ୍ରା. ବି. (ସ. ପ୍ରାୟଶ୍ଚିତ୍ତ)—ପ୍ରାୟଶ୍ଚିତ୍ତ—
Prāśchita(tta) Expiation
ପ୍ରାଶ୍ଚିତ୍ତ ସବୁ ପ୍ରାଣିଙ୍କର,
ନାମ ଉଚ୍ଚାରଣ ଦୂରୁ । ଜଗନ୍ନାଥ, ଭାଗବତ ।

**ପ୍ରାଶ୍ଚିତ ଲାଗିବା**—ଦେ.ବି.—କୌଣସି ପାତକ ନିମନ୍ତେ କୌଣସି ବ୍ୟକ୍ତିର
Prāśchita lāgibā ପ୍ରାୟଶ୍ଚିତ୍ତାର୍ହ ବିବେଚିତ ହେବା ଅବସ୍ଥା—
প্রাচিত্তি লাগা The state of a person being consi-
प्रायश्चित्त लगना dered liable to perform expiation for some sin
(ଯଥା—ତାକୁ ଗୋବଧ ପ୍ରାଶ୍ଚିତ ଲାଗିବା ହେତୁ ସେ ବଡ଼ ବିଇସ୍ପଣରେ ପଡ଼ିଛି ।)

**ପ୍ରାଶ୍ନିକ**—ସ. ବିଣ. (ପ୍ରଶ୍ନ+କାରୀ ଅର୍ଥରେ. ଇକ)—୧ । ପ୍ରଶ୍ନକାରୀ—
Prāśnika 1. Questioning.
୨ । ପ୍ରଶ୍ନ ମୀମାଂସକ; ପ୍ରଶ୍ନ ଶ୍ରବଣ ପୂର୍ବକ ମୀମାଂସାକାରୀ—
2. Settling or deciding a matter by hearing questions; solving questions.
ସ. ବି—୧ । ପ୍ରଶ୍ନକର୍ତ୍ତା; ଜିଜ୍ଞାସକ—
1. Interrogator; questioner; enquirer.
୨ । ପରୀକ୍ଷକ—2. Examiner.
୩ । (ନବ୍ୟ ପ୍ରୟୋଗ) ସଭାର ସଭ୍ୟ—
3. Member of an association.
୪ । (ନବ୍ୟ ପ୍ରୟୋଗ) ସଭାର ସହକାରୀ ସଭ୍ୟ—
4 An associate member of an association.

**ପ୍ରାଶ୍ୟ**—ସ. ବି.—ଗ୍ରାମ୍ୟ ପାଳିତ ଜନ୍ତୁ (ହି. ଶ.)
Prāśya Domestic animals.
(ଯଥା—ଗୋରୁ, ମଇଁଷି, ମେଣ୍ଢା, ଛେଳି ।)

**ପ୍ରାସ**—ସ. ବି (ପ୍ର+ଅସ୍ ଧାତୁ=କ୍ଷେପଣ କରିବା+କର୍ମ. ଅ)—
Prāsa ୧ । କ୍ଷେପଣୀୟ ଅସ୍ତ୍ରବିଶେଷ; କୁନ୍ତ, ଭାଲି—1. A dart; a shaft; a bearded dart.
୨ । ବେଞ୍ଚା, ଠେଙ୍ଗା—2. Harpoon; javelin.
୩ । ବର୍ଚ୍ଛାସ୍ତ୍ର, ବର୍ଚ୍ଛା—3. Spear.
୪ । ଅଙ୍କୁଶି ଲାଗିଥିବା ଶର—4. A barbed arrow
[ଦ୍ର—ଏହା ୭ ହାତ ଲମ୍ବା ବାଉଦଣ୍ଡର ଅଗରେ ଲୁହାର ତୀକ୍ଷ୍ଣ ମୁନଥିବା ଫଳକଯୁକ୍ତ ଅସ୍ତ୍ରବିଶେଷ; ଫଳକର ମୂଳରେ ଓ ମୂଳରେ ରେଶମ ସ୍ତବକ ସୁଶୋଭିତ ଥାଏ । ଏହାର ୪ ପ୍ରକାର ବ୍ୟବହାର-କ୍ରିୟା ଅଛି, ଯଥା,—ଆକର୍ଷଣ, ବିକର୍ଷଣ, ଧୂନନ ଓ ପଶ୍ଚାତ୍-ବନ୍ଧୀକରଣ ।]
ଦେ. ବି.—୧ । ଶରୀରର ପରୁସ; ଅଙ୍ଗର ଦରଜ—
1, Bodily pain; tenderness to touch; smarting pain.
୨ । ଦୁଃଖ, କଷ୍ଟ—2. Trouble; pain.
ମୋ ଗାଈଙ୍କ କାହିଁକି ହୋଇ ଏତେ ପ୍ରାସ,
ଭୁମ୍ଭଠାରେ ଅଛେତ କହ କାହିଁ ଦୋଷ । କୃଷ୍ଣସିଂହ. ମହାଭାରତ. ବନ ।
ଦେ. ବି.—ଦରଜ ହୋଇଥିବା, ବେଦନାଯୁକ୍ତ—
Painful; smarting.
ପ୍ରାସ ବାଣ ଯାହାର ଦେହ ହେଲା ପ୍ରାସ ।
କୃଷ୍ଣସିଂହ. ମହାଭାରତ. ବନ ।

**ପ୍ରାସକ**—ସଂ ବି. (ପ୍ରାସ+ସ୍ୱାର୍ଥେ. କ)—୧ । କୁନ୍ତ—
Prāsaka 1, A dart; harpoon.
୨ । ପଶା; ପାଶକ—2. Dice.

**ପ୍ରାସ କରିବା**—ଦେ. କ୍ରି.—୧ । (ଦେହର କୌଣସି ଅଙ୍ଗ) ଦରଜ
Prāsa karibā ହେବା; ଛୁଇଁବା ମାତ୍ରେ କଷ୍ଟାନୁଭୂତିଯୁକ୍ତ
(ପ୍ରାସ ହେବା—ଅନ୍ୟରୂପ) ହେବା—1. (any part of the
দরদ হওয়া body) To become sensitive to touch.
୨ । ଦରଜ ଉତ୍ପାଦନ କରିବା—2. To cause tenderness
दर्द होना of the body; to cause a smart.
କର୍କଶ ପ୍ରଭୁ ଯେ ଅଟନ୍ତି,
ପ୍ରାସ କରିବ ବୋଲି ଡରି—ଜଗନ୍ନାଥ. ଭାଗବତ ।

ପ୍ରାସଙ୍ଗ—ସଂ. ବି. (ପ୍ର+ଆ+ସଂଜ୍ ଧାତୁ=ଲାଗିଯିବା+କର୍ତ୍ତୃ ଅ)—
Prāsanga ୧। ଯୁଗ କାଷ୍ଠ; ଯୁଆଳି—
1. A yoke for cattle.
୨। ବାଛୁରିଙ୍କୁ ମଣ କରିବାରେ ବ୍ୟବହୃତ ହାଲୁକା ଯୁଆଳି (ହି. ଶ)—1. A light yoke used in breaking new bullocks.
୩। ତରାଜୁର ଦଣ୍ଡି (ହି. ଶ)—
3. The beam of a balance
[ଦ୍ର—ଓଡ଼ିଆ ପାସଙ୍ଗ ଶବ୍ଦ ଏହି ଶବ୍ଦର ଅପଭ୍ରଂଶ ]
୪। ତୁଳା ଯନ୍ତ୍ର (ହି. ଶ)—4. Scales, balance; weighing machine.

ପ୍ରାସଙ୍ଗିକ—ସଂ. ବିଣ. (ପ୍ରସଙ୍ଗ+ଉପସ୍ଥିତ ଅର୍ଥରେ ଇକ)—
Prāsangika ୧। ପ୍ରସଙ୍ଗକ୍ରମେ ଉତ୍ଥାପିତ; ପ୍ରସଙ୍ଗାଗତ—
1. Incidental.
୨। ସମ୍ବନ୍ଧଯୁକ୍ତ; ସମ୍ପର୍କୀୟ—2. Related; relevant; topical; closely connected.
୩। ସମୟୋପଯୋଗୀ; ପ୍ରସଙ୍ଗୋପଯୋଗୀ—
3. Seasonable; fit to be discussed
୪। ସ୍ୱାଭାବିକ; ସ୍ୱତଃଜାତ—4 Innate; natural.
୫। ଅଭେଦ୍ୟଭାବରେ ସମ୍ବଦ୍ଧ—
5. Inseparably connected with.
୬। ଘଟଣା ସମ୍ବନ୍ଧୀୟ—6. Accidental; episodical.
୭। ପ୍ରସଙ୍ଗ ସମ୍ବନ୍ଧୀୟ—7. Relating to prasanga.

ପ୍ରାସନ—ସଂ. ବି. (ପ୍ର+ଆ+ଅସ୍ ଧାତୁ+ଭାବ. ଅନ)—
Prāsana ନିକ୍ଷେପ; ଫିଙ୍ଗିବା—
Throwing away; casting

ପ୍ରାସାଦ—ସଂ. ବି. (ପ୍ର+ଆ+ସଦ୍ ଧାତୁ=ଯିବା+ଅଧିକରଣ. ଅ)—
Prāsāda ୧। ବଡ଼ କୋଠା; ହର୍ମ୍ମ୍ୟ, ଅଟ୍ଟାଳିକା—
1. Mansion; big building.
୨। ଦେବମନ୍ଦିର—2. Temple.
୩। ରାଜାଙ୍କ ନହର—3. Palace.
[ ଦ୍ର—ପ୍ରାଚୀନ ବାସ୍ତୁ ବିଦ୍ୟା ଅନୁସାରେ ଖୁବ ଲମ୍ବା, ଚଉଡ଼ା, ଉଚ୍ଚ ଓ ତଳ (ମାହାଲା) ବିଶିଷ୍ଟ ପଥର ବା ଇଟାର ଘରକୁ ପ୍ରାସାଦ ବୋଲାଯାଏ । ଏଥିରେ ଅନେକ ଶୃଙ୍ଗ, ଶୃଙ୍ଖଳ, ଅଣ୍ଡକ, ଦ୍ୱାର ଓ ଗବାକ୍ଷ ଥାଏ ଓ ଏହା ତ୍ରିକୋଣ, ଚତୁଷ୍କୋଣ, ଆୟତ ଓ ବୃତ୍ତାକାର ହୁଏ । ଆକୃତିଭେଦରେ ପ୍ରାସାଦ ୫ ପ୍ରକାର—ଚତୁରସ୍ର, ଚତୁରସ୍ରାୟତ, ବୃତ୍ତ, ବୃତ୍ତାୟତ ଓ ଅଷ୍ଟାସ୍ର । ଏମାନଙ୍କ ନାମ ଯଥାକ୍ରମେ ବୈରାଜ, ପୁଷ୍ପକ, କୈଳାସ, ମାଳକ ଓ ତ୍ରିବିଷ୍ଟପ ଅଟେ । ଭୂମି, ଅଣ୍ଡକ ଓ ଶିଖରାଦିର ନ୍ୟୂନାଧିକତା ଯୋଗୁଁ ଏହି ୫ ପ୍ରକାର ପ୍ରାସାଦର ୪୫ ଲେଖାଏଁ ଭେଦ ଅଛି । ଯଥା—୧। ବୈରାଜର—ମେରୁ, ମନ୍ଦର, ବିମାନ, ଭଦ୍ର, ସର୍ବତୋଭଦ୍ର, ରୁଚକ, ନନ୍ଦନ, ନନ୍ଦିବର୍ଦ୍ଧନ ଓ ଶ୍ରୀବତ୍ସ—୨। ପୁଷ୍ପକର—ବଲଭୀ, ଗୃହରାଜ, ଶାଳାଗୃହ, ମନ୍ଦିର, ବିମାନ, ବ୍ରହ୍ମମନ୍ଦିର, ଭବନ, ଉତ୍ତମ୍ଭ ଓ ଶିବିକାବେଶ୍ମ—୩। କୈଳାସର—ବଳୟ, ଦୁନ୍ଦୁଭି, ପଦ୍ମ, ମହାପଦ୍ମ, ଭଦ୍ରକ, ସର୍ବତୋଭଦ୍ର, ରୁଚକ, ନନ୍ଦନ, ଗୁବାକ୍ଷ ବା ଗୁବାବୃତ—୪। ମାଳକର—ଗଜ, ବୃଷଭ, ହଂସ, ଗରୁଡ଼, ସିଂହ, ଭୂମୁଖ, ଭୂଧର, ଶ୍ରୀଜୟ, ପୃଥ୍ୱୀଧର—୫। ତ୍ରିବିଷ୍ଟପର—ବଜ୍ର, ଚକ୍ର, ମୁଷ୍ଟିକ ବା ବଭ୍ରୁ, ବକ୍ର, ସ୍ୱସ୍ତିକ, ଖଡ୍ଗ, ଗଦା, ଶ୍ରୀବୃକ୍ଷ ଓ ବିଜୟ । କେବଳ ରାଜା ଓ ଦେବତାଙ୍କ ଗୃହକୁ ପୁରାଣରେ ପ୍ରାସାଦ ବୋଲି ଯାଇଅଛି—ହି. ଶ । ]
୪। କୋଠା ଉପରର ଛାତ (ହି. ଶ)—
4. The roof of a building.
୫। ବୌଦ୍ଧ ସଙ୍ଘାରାମରେ ସାଧୁମାନେ ଏକତ୍ର ହେବା ବଡ଼ ଘର (ହି. ଶ)—5. A big hall where Buddhist mendicants congregate.

ପ୍ରାସାଦ କୁକ୍କୁଟ—ସଂ. ବି. (୬ଷ୍ଠୀ ତତ, ପ୍ରାସାଦ+କୁକ୍କୁଟ; ଯେଉଁ
Prāsāda kukkuṭa କୁକ୍କୁଟ ପ୍ରାସାଦରେ ବସା କରି ରହନ୍ତି; ପାର—Pigeon.

ପ୍ରାସାଦ ଚୂଡ଼ା—ସଂ. ବି. (୬ଷ୍ଠୀ ତତ; ପ୍ରାସାଦ+ଚୂଡ଼ା)—
Prāsāda chūrdā ମନ୍ଦିରାଦିର ଅଗ୍ରଭାଗ, ଗମ୍ବୁଜ—
Turret; minaret; spire.
ପ୍ରାସାଦଶିଖର } ଅନ୍ୟରୂପ
ପ୍ରାସାଦଶୃଙ୍ଗ

ପ୍ରାସାଦ ମଣ୍ଡନା—ସଂ. ବି—ପ୍ରାଚୀନକାଳରେ ପ୍ରାସାଦ ଉପରେ ଲେପା
Prāsāda maṇḍanā ଯାଉଥିବା ଏକପ୍ରକାର ସ୍ଥାୟୀ ନାଲି ବା ହଳଦିଆ ରଙ୍ଗ—A kind of permanent red or yellow paint laid over ancient buildings.
[ ଦ୍ର—ଭୁବନେଶ୍ୱରର କେତେକ ମନ୍ଦିର ଗାତ୍ରରେ ଏ ନାଲି ରଙ୍ଗ ମଡ଼ା ହୋଇଥିବା ପଥରର ଦେହରେ ଆଜଯାକେ ମଧ୍ୟ ସେ ରଙ୍ଗ ମଉଳ ନାହିଁ । ହଜାରେ ବର୍ଷ ପରେ ମଧ୍ୟ ସେ ରଙ୍ଗ ଆଜି ତାଜା ଦିଶୁଛି । ]

ପ୍ରାସାଦିକ—ସଂ. ବିଣ. (ପ୍ରସାଦ+ଇକ)—୧। ଦୟାଳୁ (ହି. ଶ)—
Prāsādika 1. Kind.
୨। ସୁନ୍ଦର (ହି. ଶ)—2. Beautiful.
୩। ପ୍ରସାଦ ସମ୍ବନ୍ଧୀୟ (ହି. ଶ)—
3. Relating to prasāda.
୪। (ପ୍ରାସାଦ+ଇକ) ପ୍ରାସାଦ ସମ୍ବନ୍ଧୀୟ—
4 Relating to a mansion.

ପ୍ରାସାଦୀୟ—ସଂ. ବିଣ. (ପ୍ରାସାଦ+ଈୟ)—ପ୍ରାସାଦ ସମ୍ବନ୍ଧୀୟ—
Prāsādiya Palatial; relating to a mansion.

ପ୍ରାସିକ—ସଂ. ବିଣ. ପୁଂ. (ପ୍ରାସ+ଇକ)—
Prāsika ୧। କୁନ୍ତାସ୍ତ୍ର ସମ୍ବନ୍ଧୀୟ—
(ପ୍ରାସିକା—ସ୍ତ୍ରୀ) 1. Relating to a dart or lance.
୨। ପ୍ରାସାସ୍ତ୍ରଧାରୀ—2. Armed with a javelin.
ସଂ. ବି. ପୁଂ—ପ୍ରାସାସ୍ତ୍ରଧାରୀ ଯୋଦ୍ଧା—Lancer; spearman.

ପ୍ରାସୁ—ସଂ. ବି. (ପ୍ର+ଅସ୍ ଧାତୁ=କ୍ଷେପଣ କରିବା+କର୍ମଂ ଉ)—
Prāsu ଦୀର୍ଘଶ୍ୱାସ (ହି. ଶ)—Deep breath; sigh.

ପ୍ରାସ୍ଥାନିକ—ସଂ. ବଣ. (ପ୍ରସ୍ଥାନ+ବହୁତ ଅର୍ଥରେ. ଇକ)—
Prāsthānika ୧ । ପ୍ରସ୍ଥାନ ବା ବିଦାୟ କାଳୀନ—
1. Relating to the time of departure.
୨ । ବିଦାୟକାଳରେ ବ୍ୟବହୃତ ବା ପ୍ରଦର୍ଶିତ (ମଙ୍ଗଳ ଦ୍ରବ୍ୟ) (ଯଥା—ଦହି, ମାଛ, ଶଙ୍ଖ)—2 (any article) Considered auspicious to be seen on the occassion of starting on a mission.
[ଦ୍ର—ମହାଭାରତରେ ପାଣ୍ଡବମାନଙ୍କର ମହା ପ୍ରସ୍ଥାନ ବର୍ଣ୍ଣିତ ହୋଇ ଥିବା ପର୍ବର ନାମ ପ୍ରାସ୍ଥାନିକ ପର୍ବ]

ପ୍ରାହାରିକ—ସ. ବି—( ପ୍ରହର+ ଇକ )—ପହରାବାଲା; ଜଗୁଆଳ
Prāhārika (ହ୍ରି. ଶ)—Watchman
ସ. ବିଣ—(ପ୍ରହାର+ଇକ)—ପ୍ରହାର ସମ୍ବନ୍ଧୀୟ—
Relating to a blow.

ପ୍ରାହୁଣ—ସ. ବି—କୁଟୁମ୍ବ, ଅତିଥି (ହ୍ରି. ଶ)—
Prāhuṇa Guest; a respectable guest

ପ୍ରାହ୍ନ—ସ. ବି— (ପ୍ର+ଅହନ୍=ହନ+ଅ)—ପୂର୍ବାହ୍ନ, ସକାଳ ଓଳି—
Prāhṇa Forenoon.

ପ୍ରାହ୍ଣେତନ—ସ. ବଣ—(ପ୍ରାହ୍ନ+ଘଟିବା ଅର୍ଥରେ ଇତନ)—
Prāhṇetana ପୂର୍ବାହ୍ନରେ ଘଟିବା—Happening in the (ପ୍ରାହ୍ଣେତନୀ—ସ୍ତ୍ରୀ) forenoon.

ପ୍ରାହ୍ଲା(ହ୍ଲା)ଦ—ସ. ବଣ. ପୁଂ—(ପ୍ରହ୍ଲାଦ+ଅପତ୍ୟାର୍ଥେ. ଅ)—ପ୍ରହ୍ଲାଦର
Prāhlā(hrā)da ପୁତ୍ର—Son of Prahlāda.

ପ୍ରିଚ କରିବା—ଦେ. କ୍ରି—(ଇଂ. ପ୍ରୀଚ୍)—ଧର୍ମ ସମ୍ବନ୍ଧେ ବକ୍ତୃତା କରିବା—
Prich kariba ପ୍ରିଚକବା प्रीचकरना To preach.

ପ୍ରିଚ(ଚା)ର—ବୈଦେ. ବି—(ଇଂ.)—୧ । ଧର୍ମ ସମ୍ବନ୍ଧେ ବକ୍ତା—
Pricha(chā)r ପ୍ରିଚାବ प्रीचार 1, Preacher,
୨ । ପାଦ୍ରୀ—2, A Christian preacher;

ପ୍ରିଣ୍ଟର—ବୈଦେ. ବି— (ଇଂ.)—୧ । ମୁଦ୍ରାକର; ଯେ ବହି ଛାପେ—
Printar ପ୍ରିଣ୍ଟାବ प्रिंटर 1. Printer.
୨ । ଛାପାଖାନାରେ ମୁଦ୍ରିତ ପୁସ୍ତକମାନଙ୍କ ପାଇଁ ସରକାରଙ୍କ ପାଖେ ଦାୟିତ୍ୱ ଗ୍ରହଣ କରିଥିବା ବ୍ୟକ୍ତି—2. Printer; a person who takes upon himself the responsibility of all the printed matters in a press.

ପ୍ରିଣ୍ଟିଂ—ବୈଦେ. ବି—(ଇଂ)—୧ । ଛାପାଖାନାରେ ପୁସ୍ତକାଦିର ମୁଦ୍ରଣ-
Printim 1. Printing.
(ପ୍ରିଣ୍ଟିଙ୍ଗ, ପ୍ରିଣ୍ଟ—ଅନ୍ୟରୂପ) ୨ । ଛାପାଖାନାରେ ମୁଦ୍ରିତ ପୁସ୍ତକର ମୁଦ୍ରଣର ଢଙ୍ଗ ବା ଆକାର—2 The mode or appearance of printing; print.
[ଦ୍ର—ଏହି ଇଂରାଜୀ ଶବ୍ଦ ସଙ୍ଗେ ବ୍ୟବହୃତ ଅନେକଗୁଡ଼ିଏ ଇଂରାଜୀଶବ୍ଦଯୁକ୍ତ ପଦ ଓଡ଼ିଆରେ ଚଳନ୍ତି:—ପ୍ରିଣ୍ଟିଂଇଙ୍କ (କାଳୀ), ପ୍ରିଣ୍ଟିଂପ୍ରେସ୍ (ଛାପାଖାନା); ପ୍ରିଣ୍ଟିଂମେସିନ୍ (ମୁଦ୍ରାଯନ୍ତ୍ର) ।]

ପ୍ରିଣ୍ଟିଂ କ(କୋ)ମ୍ପାନୀ—ବୈଦେ. ବି—(ଇଂ.) ୧ । ଛାପାଖାନା ଚଳାଇବା
Printim ka(ko)mpāni ନିମନ୍ତେ ଗଠିତ ଯୌଥ କାରବାର
प्रिन्टिङ् कम्पानी प्रिंटिंगकम्पानी ବିଶେଷ—1. A printing
[ପ୍ରିଣ୍ଟିଙ୍ଗ୍ କ(କୋ)ମ୍ପାନୀ—ଅନ୍ୟରୂପ] Company.
୨ । ସ୍ୱର୍ଗୀୟ ଗୌରୀଶଙ୍କରରାୟ ପ୍ରତିଷ୍ଠିତ କଟକର ଛାପାଖାନା ପରିଚାଳନ ସଂଘର ନାମ—2. The name of the Printing company started at Cuttack by the late Gourisankr Ray

ପ୍ରିଣ୍ଟିଂ ଇଙ୍କ—ବୈଦେ ବି. (ଇଂ.)—ଛାପାଖାନାରେ ବହି ଛାପିବା ପାଇଁ
Printim ink ଟାଇପ୍ ଉପରେ ମଡ଼ାଯିବା ଏକପ୍ରକାର ଚିକଣ
प्रिन्टिंइङ्क् प्रिंटिंगइंक କାଳୀ—Printing ink

ପ୍ରିଣ୍ଟିଂ ପ୍ରେସ୍—ବୈଦେ. ବି—(ଇଂ)—୧ । ଯେଉଁ ଯନ୍ତ୍ରରେ ପୁସ୍ତକାଦି
Printim pres ମୁଦ୍ରିତ ହୁଏ—1, Printing machine.
୨ । ଯେଉଁ ଗୃହରେ ମୁଦ୍ରାଯନ୍ତ୍ର ସାହାଯ୍ୟରେ ପୁସ୍ତକାଦି ମୁଦ୍ରିତ ହୁଏ—2. A press, printing press; the place. where books are printed.

ପ୍ରିଣ୍ଟିଂ ମେସିନ୍—ବୈଦେ. ବି—(ଇଂ)—ଛାପାକଳ; ପୁସ୍ତକାଦି ମୁଦ୍ରିତ
Printim mesin ହେବାର ଯନ୍ତ୍ର—Printing machine.
প্রিন্টিংমেসিন प्रिंटिङ्ग मैशीन

ପ୍ରିନ୍ସ—ବୈଦେ. ବି. (ଇଂ)—ରାଜକୁମାର—
Prins প্রিন্স प्रिंस Prince.

ପ୍ରିନ୍ସ ଅଫ୍ ୱେଲସ୍ ବୈଦେ. ବି—( ଇଂ )—ଇଂରେଜ ସମ୍ରାଟଙ୍କ
Prins aph wels ଯୁବରାଜ—Prince of Wales; the
প্রিন্সঅবউএলস heir apparent to the Crown of
प्रिंसआफवेलस England.

ପ୍ରିନ୍ସିପ(ପା)ଲ୍—ବୈଦେ. ବି—(ଇଂ)—୧ । କଲେଜର ଅଧ୍ୟକ୍ଷ—
Prinsipa(pā)l 1. The Principal of a college.
প্রিন্সিপাল ୨ । କରଜ ଦିଆଯାଇଥିବା ମୂଳ ଟଙ୍କା, ଅସଲ—
प्रिंसिपल 2. The principal of a loan.

ପ୍ରିଭି କାଉନ୍ସିଲ୍—ବୈଦେ. ବି—(ଇଂ)—୧ । ସମ୍ରାଟଙ୍କୁ ଶାସନ ଓ
Pribhi kāunsil ବିଷୟର କାର୍ଯ୍ୟରେ ପରାମର୍ଶ ଦେବା ପାଇଁ ଗଠିତ
প্রিভীকৌন্সিল ସଭା—1. The council of advisors to
प्रिवीकौंसिल the Emperor.
୨ । ସମଗ୍ର ଇଂରାଜ ସାମ୍ରାଜ୍ୟର ବିଭିନ୍ନ ଉଚ୍ଚତମ ଅଦାଲତମାନଙ୍କରୁ ଅପିଲମାନ ବିଚାରର ଯେଉଁ ସର୍ବୋଚ୍ଚ ଅଦାଲତରେ ଶୁଣାଯାଏ—2 Privy Council,
[ଦ୍ର—ଏଥିର ବିଚାରପତିମାନେ ଅପିଲମାନଙ୍କ ଜବାବ ସୱାଲ ଶୁଣିବା ପରେ ନିଜର ମତ ସମ୍ରାଟଙ୍କୁ ଜଣାନ୍ତି ଓ ସମ୍ରାଟଙ୍କ ଦସ୍ତଖତ ଓ ମୋହରରେ ଉକ୍ତ ଅପିଲ ମକଦମାମାନଙ୍କର ରାୟ ପ୍ରକାଶିତ ହୁଏ ।]

ପ୍ରିମିୟମ୍—ବୈଦେ. ବି—(ଇଂ) ଜୀବନାଦି ବୀମା କରିବା ପାଇଁ
Primiyam କମ୍ପାନୀକୁ ବୀମାକାରୀଙ୍କର ନିର୍ଦ୍ଦିଷ୍ଟ ସମୟରେ ଦେୟ
প্রিমিযম নির্ଦ୍ଧାରିତ ଧନ—Premium paid by a policy
प्रिमियम holder for insurance.

ପ୍ରିୟ—ସ. ବଣ. ପୁଂ—(ପ୍ରୀ ଧାତୁ=ତୁଷ୍ଟ କରିବା+କର୍ତ୍ତ୍ରି. ଅ)—
Priya ୧ । ପ୍ରୀତିଭାଜନ; ସ୍ନେହପାତ୍ର—1. Beloved; dear.
(ପ୍ରିୟା—ସ୍ତ୍ରୀ) ୨ । ସ୍ନେହକାରୀ—
2. Fond; loving; affectionate.

୩ । ପ୍ରୀତିଜନକ; ରମଣୀୟ, ରମ୍ୟ; ମନୋହର—
3. Amiable, pleasant; agreeable; pleasing.
ସ ବି—୧ । ସ୍ୱାମୀ; ପତି—1. Husband.
୨ । ମୃଗବିଶେଷ, ଚିତ୍ର ମୃଗ; ବାଳୁଟିଆ—
2. A kind of deer; spotted deer.
୩ । ଜାମାତା; ଜୋଇଁ (ହି. ଶ)—3. Son-in-law.
୪ । କାର୍ତ୍ତିକେୟ (ହି. ଶ)—4. Kārttikeya.
୫ । ଜୀବକ ନାମକ ଔଷଧ (ହି. ଶ)—
5. A kind of rare herb.
୬ । ଋଦ୍ଧି ନାମକ ଔଷଧ (ହି. ଶ)—
6. A kind of rare herb.
୭ । (ଧର୍ମିଷ୍ଠ ଓ ମୁମୁକ୍ଷୁମାନଙ୍କୁ ପ୍ରସନ୍ନ କରିବା ବ୍ୟକ୍ତି)—
ଈଶ୍ୱର (ହି. ଶ)—7. God.
୮ । କାଙ୍ଗୁ ଧାନ (ହି. ଶ)—
8. A kind of minute food-grain.
୯ । ହିତ, ମଙ୍ଗଳ (ହି. ଶ)—9 Benefit
୧୦ । ବେତ (ହି. ଶ)—10. Ratan cane.
୧୧ । ହରିତାଳ (ହି. ଶ)—11. Yellow orpiment.
୧୨ । ଧାରା କଦମ୍ବ (ହି. ଶ)—
12. A species of Kadamba tree.
ଦେ. ବି. ପୁଂ—ପ୍ରିୟନାଥ ନାମକ ବ୍ୟକ୍ତିର ଡାକନାମ—
The name for calling Priyanātha.

**ପ୍ରିୟକ**—ସ. ବି. (ପ୍ରିୟ+କ —୧ । ଅଳି; ଭ୍ରମର—
Priyaka 1. Black bee.
୨ । କୁଙ୍କୁମ, ଜାଫ୍ରାନ—2 Saffron.
୩ । ପ୍ରିୟଙ୍ଗୁ (ଦେଖ)—3. Priyangu (See).
୪ । ଚିତ୍ର ମୃଗ—4. Spotted deer.
୫ । କଦମ୍ବ ବୃକ୍ଷ—5 Kadamba tree.
୬ । ନୀଳ ଅଶୋକ—
6. The blue Asoka tree.
୭ । ପିଆଶାଳ ଗଛ—7. A kind of timber tree; Pentaptera Tomentosa.
୮ । କାଙ୍ଗୁ ଧାନ୍ୟ (ହି. ଶ.)—
8. A kind of minute food grain; Panicum.
୯ । ମହୁମାଛି (ହି. ଶ.)—9. Bee.
ଦେ. ବି.—୧ । କଦମ୍ବ ଫୁଲ—
1. Kadamba flower;
୨ । ପ୍ରୀତିପ୍ରଦ ବିଷୟ—2. Pleasant thing.
(୧+୨) ବର୍ଣ୍ଣ ପୁଲକିତ ବିଗ୍ରହୁ ଏମନ୍ତ ପ୍ରିୟକ ପ୍ରିୟକ ସେକ ।
ଭଞ୍ଜ, ବୈଦେହୀଶବିଳାସ ।
ଦେ. ବିଣ.—ପ୍ରିୟ—Pleasing.
ବିଦ୍ୟ ଲୋକରେ ପ୍ରିୟକ ମାଧବୀ ହସାଇ ।
ଭଞ୍ଜ. ବୈଦେହୀଶବିଳାସ ।

**ପ୍ରିୟକଳତ୍ର**—ସ. ବିଣ. ପୁଂ—ନିଜର ସ୍ତ୍ରୀ ପ୍ରତି ବିଶେଷ ସ୍ନେହୀ (ସ୍ୱାମୀ)—
Priya kalatra (a husband) Very fond of his wife
(ପ୍ରିୟକଳତ୍ରା—ଅନ୍ୟରୂପ)

**ପ୍ରିୟକାଙ୍କ୍ଷୀ**—ସ. ବିଣ ପୁଂ. (ପ୍ରିୟ+କାଙ୍କ୍ଷ୍ ଧାତୁ+ଇନ)—ଅନ୍ୟର
Priyakānkshī ଶୁଭ ଚିନ୍ତକ—
Wishing another's welfare.
(ପ୍ରିୟକାମ, ପ୍ରିୟକାମୀ—ଅନ୍ୟରୂପ)
(ପ୍ରିକାଙ୍କ୍ଷିଣୀ, ପ୍ରିୟକାମା, ପ୍ରିୟକାମିନୀ—ସ୍ତ୍ରୀ)

**ପ୍ରିୟକାରୀ**—ସ. ବିଣ. ପୁଂ (ପ୍ରିୟ+କୃ ଧାତୁ ଣିଚ୍+କର୍ତ୍ତୃ. ଇନ୍; ୧ମା.
Priyakārī ୧ବ.)—ହିତକାରୀ; ଉପକାରୀ—
(ପ୍ରିୟକାରିଣୀ, ପ୍ରିୟକରୀ, ପ୍ରିୟକାରିକା—ସ୍ତ୍ରୀ) Beneficient.
(ପ୍ରିୟକର, ପ୍ରିୟକାରକ—ଅନ୍ୟରୂପ)

**ପ୍ରିୟକୃତ୍**—ସ ବିଣ (ପ୍ରିୟ+କୃ ଧାତୁ+କର୍ତ୍ତୃ. କ୍ୱିପ୍)—
Priyakrut ୧ । ମଙ୍ଗଳକାରୀ, ଉପକାରୀ—
1. Beneficient.
୨ । ବନ୍ଧୁଭାବାପନ୍ନ—2. Friendly.
ସ. ବି.—୧ । ବନ୍ଧୁ—1 Friend.
୨ । ବିଷ୍ଣୁ—2 An epithet of Bishṇu.

**ପ୍ରିୟଙ୍କର**—ସ. ବିଣ. ପୁଂ (ପ୍ରିୟଂ+କୃ ଧାତୁ+କର୍ତ୍ତୃ. ଅ)—
Priyankara ୧ । ଉପକାରୀ—1. Beneficient.
(ପ୍ରିୟଙ୍କରୀ—ସ୍ତ୍ରୀ) ୨ । ଅନୁକୂଳ—2. Favourable
ସ. ବି. (ନାମ) ଏକ ଦାନବର ନାମ (ହି. ଶ.)—
Name of a demon.

**ପ୍ରିୟଙ୍କରଣ**—ସଂ. ବି. (ପ୍ରିୟଂ+କୃ ଧାତୁ+ଭାବ. ଅନ)—ତୁଷ୍ଟିଜନକ
Priyankaraṇa କର୍ମ; ସଦୟ ବ୍ୟବହାର—Pleasing acts; kind treatment; act of kindness or favour.
ସଂ. ବିଣ.—୧ । କୃତଜ୍ଞ—1. Grateful.
୨ । ଦୟା ସହକାରେ ବ୍ୟବହୃତ—2. Treated kindly.

**ପ୍ରିୟଙ୍କରୀ**—ସଂ. ବିଣ. ସ୍ତ୍ରୀ—(ପ୍ରିୟଙ୍କର+ସ୍ତ୍ରୀ. ଈ)—ପ୍ରିୟଙ୍କରର
Priyankarī ସ୍ତ୍ରୀଲିଙ୍ଗ—Feminine of Priyankara.
ସଂ. ବି.—୧ । ଧଳା ଫୁଲ ବାଲ୍ଲ ଝିଣ୍ଟି (ହି. ଶ.)—
1. The white flowered variety of Barleria.
୨ । ଅଶ୍ୱଗନ୍ଧା (ହି. ଶ.) (ଦେଖ)—
2 Aswagandhā (See)
୩ । ବଡ଼ ଜୀବନ୍ତୀ (ହି. ଶ.)—
3 A large variety of Jibantī herb.

**ପ୍ରିୟଙ୍ଗୁ**—ସଂ ବି. (ପ୍ରିୟ+ଅଂଗ ଧାତୁ=ଗମନ କରିବା+କର୍ତ୍ତୃ. ଉ)—
Priyangu ୧ । ଔଷଧରେ ବ୍ୟବହୃତ ସୁଗନ୍ଧ ଲତାବିଶେଷ—
1. A fragrant creeper; Agalia Roxburghiana.
ସଂ. ପର୍ଯ୍ୟାୟ—ଶ୍ୟାମା, ଲତା, ଗୋବନ୍ଦନୀ, ଗୁନ୍ଦ୍ରା, ଫଳନୀ, ବିଷ୍ୱକ୍ସେନା, ଗନ୍ଧଫଳା, କାରମ୍ଭା, ପ୍ରିୟକ, କଙ୍ଗୁ, କାନ୍ତା, କୃଶାଙ୍ଗୀ, କୃଷ୍ଣପୁଷ୍ପୀ, ସୌବର୍ଣ୍ଣଭେଦନୀ, ପ୍ରିୟବଲ୍ଲୀ, ପ୍ରିୟବଲ୍ଲୀ, ଫଳ ପ୍ରିୟା, ଗୌରୀ, ବୃତ୍ତା, କଙ୍ଗୁ, କଙ୍ଗୁନୀ,
୨ । ପିପ୍ପଳୀ—2 Long pepper.
୩ । ଧାନ୍ୟବିଶେଷ, କଙ୍ଗୁ ଧାନ୍ୟ—
3. Panicum Italicum.
୪ । ରାଇ; ରାଜିକା (ହି. ଶ.)—
4. A large grained mustard.

ଭଙ୍ଗୁର, ଗୌରବଲ୍ଲୀ, ସୁଭଗା, ୫ । କୁଟକୀ, (ବୃ. ଶ) କଟୁକା—
ପର୍ଣ୍ଣଭେଦନୀ, ଶୁଭା, ପୀତା, 5, Black Hellebore.
ମଙ୍ଗଲ୍ୟା, ଶ୍ରେୟସୀ, ଏବଂ
ସ୍ତ୍ରୀବାଚକ ସମସ୍ତ ଶବ୍ଦ ।

**ପ୍ରିୟଙ୍ଗୁ ଧାନ୍ୟ**—ସଂ ବ. (ବୈଦ୍ୟକ)—ଧାନ୍ୟବିଶେଷ, କାଙ୍ଗୁ ଧାନ—
Priyangu dhānya
କାମିନୀ ধান, কাঙ্গনী ধান, কাঙ্গনী দানা Panicum
**কুধাধান, কঙ্গনী** Italicum.
ଫା. ଗଲ୍ [ଦ୍ର—ଏହି ଧାନର ଚାଉଳ ସୁବାସଯୁକ୍ତ, ଏଥିରେ ବାଲୁଙ୍ଗା
ମ ବରଗୁ ପର ଶିଙ୍ଘ ଥାଏ । ଏହା ରୋଗୀର ପଥ୍ୟ ।
ତେ. ଚେନ୍ଦ୍ରକଣପଟେଟୁ ବର୍ଣ୍ଣଭେଦରେ ଏହା ୪ ପ୍ରକାର ଯଥା—
(ଅନ୍ୟ ସଂ· ନାମ—କଙ୍ଗୁ) କୃଷ୍ଣ, ରକ୍ତ, ଶ୍ୱେତ ଓ ପୀତ, ତନ୍ମଧ୍ୟରେ କୃଷ୍ଣ
ଅପେକ୍ଷା ରକ୍ତ, ରକ୍ତ ଅପେକ୍ଷା ପୀତ, ପୀତ
ଅପେକ୍ଷା ଶ୍ୱେତ ପ୍ରିୟଙ୍ଗୁର ଗୁଣ ଅଧିକତର ।]

**ପ୍ରିୟଚିକୀର୍ଷା**—ସ. ବ. (ପ୍ରିୟ+ଚିକୀର୍ଷା)—ମଙ୍ଗଳକାମନା, ହିତେଚ୍ଛା—
Priya chikirshā Good wishes; desire to do good

**ପ୍ରିୟ ଚିକୀର୍ଷୁ**—ସ ବଣ. (ପ୍ରିୟ+ଚିକୀର୍ଷୁ)—ହିତେଚ୍ଛୁ, ଶୁଭାକାଙ୍କ୍ଷୀ—
Priya chikirshu Desiring good to another;
wishing good to another

**ପ୍ରିୟ ଜନ**—ସ. ବ. (କର୍ମଧା, ପ୍ରିୟ+ଜନ)—୧ । ଆତ୍ମୀୟ—
Priya jana 1. Relative.
୨ । ସୁହୃଦ୍; ବନ୍ଧୁ—2. Friend.

**ପ୍ରିୟତର**—ସ. ବଣ. ପୁଂ. (ପ୍ରିୟ+ତର)—ଦୁଇଟି ମଧ୍ୟରୁ ବେଶି ପ୍ରିୟ—
Priyatara (ପ୍ରିୟତରା—ସ୍ତ୍ରୀ) Dearer.

**ପ୍ରିୟତମ**—ସ. ବଣ. ପୁଂ. (ପ୍ରିୟ+ତମ)—ସବୁଠାରୁ ଅଧିକ ପ୍ରିୟ—
Priyatama Dearest; most beloved.
(ପ୍ରିୟତମା—ସ୍ତ୍ରୀ) ସ. ବ—୧ । ସ୍ୱାମୀ; ପତି—1. Husband
୨ । ମୟୂରଶିଖା ନାମକ ବୃକ୍ଷ (ବୃ. ଶ)—
2 Celosia Cristata (plant).

**ପ୍ରିୟତା(ତ୍ୱ)**—ସ. ବ. [ପ୍ରିୟ+ଭାବାର୍ଥରେ ତା (ତ୍ୱ)]—
Priyatā(twa) ୧ । ପ୍ରୀତି; ପ୍ରେମ, ସ୍ନେହ—
1. Love; affection; attachment.
୨ । ପ୍ରିୟ ହେବାର ଭାବ—2. The state of being
dear

**ପ୍ରିୟ ତୋଷଣ**—ସ. ବଣ. (୬ଷ୍ଠୀ ତତ୍; ପ୍ରିୟ+ତୋଷଣ)—
Priya toshaṇa ପ୍ରିୟବ୍ୟକ୍ତିର ତୁଷ୍ଟି ସମ୍ପାଦନକାରୀ—
(ପ୍ରିୟରଞ୍ଜନ—ଅନ୍ୟରୂପ) Causing pleasure to one's
beloved person.
ସ. ବ—ରତିବନ୍ଧବିଶେଷ (ବୃ. ଶ)—A kind of pose
during coition; a kind of coitus (Apte).

**ପ୍ରିୟ ଦର୍ଶନ**—ସ. ବଣ. ପୁଂ· (ବହୁବ୍ରୀହି; ପ୍ରିୟ+ଦର୍ଶନ)—
Priya darśana ସୁଦୃଶ୍ୟ; ରମ୍ୟ; ସୁନ୍ଦର—
(ପ୍ରିୟଦର୍ଶନା—ସ୍ତ୍ରୀ) Charming; beautiful; lovely;
(ପ୍ରିୟଦର୍ଶୀ—ଅନ୍ୟରୂପ) handsome; good looking.

ସଂ. ବ—୧ । ଶୁକପକ୍ଷୀ—1. Parrot.
୨ । କ୍ଷୀରକୋଳ ଗଛ—2. A berry-bearing tree;
Mimusopi Kanki.
୩ । ଏକପ୍ରକାର ଖଜୁରୀ ଗଛ—
3. A kind of date tree (Apte).
୪ । ( ନାମ ) ଗନ୍ଧର୍ବକୁମାରବିଶେଷ—4. Name of a
prince of the Gandharbas (Apte).

**ପ୍ରିୟଦର୍ଶୀ**——ସଂ. ବଣ. (ପ୍ରିୟ+ଦୃଶ୍ ଧାତୁ+କର୍ତ୍ତୃ. ଇନ୍)—
Priyadarśi ଯେ ସମସ୍ତଙ୍କୁ ପ୍ରିୟଭାବରେ ଦେଖନ୍ତି—Looking
(ପ୍ରିୟଦର୍ଶିନୀ—ସ୍ତ୍ରୀ) pleasantly upon every one.
ଦେ. ବ—ମହାରାଜ ଅଶୋକଙ୍କର ଗୋଟିଏ ନାମ—A name
of king Aśoka.
[ ଦ୍ର—ପାଲିଭାଷାରେ ସଂସ୍କୃତ ପ୍ରିୟଦର୍ଶୀ ଶବ୍ଦ 'ପିଅଦଶୀ'
ରୂପରେ ବ୍ୟବହୃତ । ମହାରାଜ ଅଶୋକ ଅନୁଶାସନମାନଙ୍କରେ
ଆପଣାକୁ 'ପିଅଦଶୀ' ନାମରେ ଅଭିହିତ କରିଅଛନ୍ତି । ]

**ପ୍ରିୟ ନାଥ**—ସଂ. ବ. (କର୍ମଧା; ପ୍ରିୟ+ନାଥ)—ପ୍ରିୟ ସ୍ୱାମୀ—
Priya nātha One's beloved husband.
ଦେ. ବ. ପୁଂ—ପୁରୁଷଙ୍କୁ ଦିଆଯିବା ନାମ—
A name given to males.

**ପ୍ରିୟପାତ୍ର**—ସଂ. ବଣ. (କର୍ମଧା, ପ୍ରିୟ+ପାତ୍ର, ମାତ୍ର ପ୍ରୀତିପାତ୍ର ଶବ୍ଦ
Priyapātra ଶୁଦ୍ଧତର)—ପ୍ରୀତିଭାଜନ, ଅନୁଗ୍ରହପାତ୍ର—
Favourite.
ସଂ. ବ—ମନ୍ତ୍ରୀ—Minister.

**ପ୍ରିୟ ବଚନ**—ସଂ. ବ. (କର୍ମଧା; ପ୍ରିୟ+ବଚନ)—
Priya bachana ମଧୁରବାକ୍ୟ, ମିଷ୍ଟକଥା—
(ପ୍ରିୟବଚନା—ସ୍ତ୍ରୀ) Sweet or coaxing words.
ସଂ. ବଣ. ପୁଂ—ମଧୁରବାକ୍ୟ ପ୍ରୟୋଗକାରୀ—
Speaking sweet words.

**ପ୍ରିୟବତୀ**—ଦେ. ବଣ. (ସଂ. ପ୍ରିୟ)—ପ୍ରିୟତମା (ସ୍ତ୍ରୀ)—
Priyabati Dearest; most beloved (wife).

**ପ୍ରିୟ ବୟସ୍ୟ**—ସଂ. ବ. ପୁଂ. (ପ୍ରିୟ+ବୟସ୍ୟ)—ପ୍ରିୟ ସୁହୃଦ୍—
Priya bayasya Bosom friend; boon companion.
(ପ୍ରିୟବୟସ୍ୟା—ସ୍ତ୍ରୀ)

**ପ୍ରିୟବର**—ସଂ. ବଣ. ପୁଂ. (୭ମୀ ତତ୍)—ଅତିପ୍ରିୟ; ପ୍ରିୟତମ (ବ୍ୟକ୍ତି)
Priyabara (ବୃ. ଶ)—Dearest; beloved (person).
(ପ୍ରିୟବରା—ସ୍ତ୍ରୀ)

**ପ୍ରିୟବାଦୀ**—ସଂ. ବଣ. ପୁଂ. (ପ୍ରିୟ+ବଦ୍ ଧାତୁ+କର୍ତ୍ତୃ. ଇନ; ୧ମା.
Priyabādi ୧ବ)—୧ । ମିଷ୍ଟଭାଷୀ—
(ପ୍ରିୟବାଦିନୀ—ସ୍ତ୍ରୀ) 1. Speaking sweet words.
(ପ୍ରିୟବକ୍ତା, ପ୍ରିୟବାକ୍—ଅନ୍ୟରୂପ) ୨ । ଖୋସାମଦିଆ; ଚାଟୁକାର—
[ପ୍ରିୟବାଦିତା(ତ୍ୱ)ବ] 2. Flattering.

**ପ୍ରିୟବାଦିନୀ**—ସଂ. ବଣ. ପୁଂ—୧ । କର୍ଣ୍ଣପ୍ରିୟ ଧ୍ୱନିକାରିଣୀ—
Priyabādini 1, Making pleasant sounds.

୨ । ମିଷ୍ଟଭାଷିଣୀ—2. Speaking sweet words.
ଦେ. ବି—ଏକପ୍ରକାର ପକ୍ଷୀ—A kind of bird (Apte).
ଦେ. ବିଣ—ସ୍ୱାମୀର ଇଚ୍ଛାର ବିରୁଦ୍ଧାଚରଣୀ—
Acting opposite to the husband's wishes.

ସଖି, ଏ ଜନିରେ ପ୍ରିୟବାଦକା ହୋଇବ
ସଖି, ଏ ଜନିରେ ପ୍ରିୟବାଦକା ନୋହିବ । ଉତ୍ତ. ପ୍ରେମସୁଧାନିଧି ।

**ପ୍ରିୟ ପ୍ରସାଦନ**—ସଂ. ବି (୬ଷ୍ଠୀ ତତ୍, ପ୍ରିୟ+ପ୍ରସାଦନ)—
Priya prasādana ସ୍ୱାମୀଙ୍କର ସନ୍ତୋଷ ବିଧାନ—
Propitiation of a husband (Apte).

**ପ୍ରିୟପ୍ରାୟ**—ସଂ. ବିଣ. ପୁଂ. (ପ୍ରିୟ+ପ୍ରାୟ)—୧ । ଅତି ସଦୟ—
Priyaprāya 1. Exceedingly kind (Apte).
(ପ୍ରିୟପ୍ରାୟା—ସ୍ତ୍ରୀ) [ପ୍ରିୟ ପ୍ରାୟୁକ୍ତ (ଭୁ)—ବି ]

**ପ୍ରିୟପ୍ରାୟଃ**—ସଂ. ବି—( ପ୍ରିୟ+ପ୍ରାୟସ୍ )—ପ୍ରେମିକା ପ୍ରତି ପ୍ରେମିକର
Priyaprāyah ରମଣୀୟ ବାକ୍ୟ—Very agreeable
speech as of a lover to his mistress (Apte).

**ପ୍ରିୟପ୍ରେପ୍ସୁ**—ସଂ. ବିଣ—(ପ୍ରିୟ+ପ୍ର+ଈପ୍ସ ଧାତୁ+କର୍ତ୍ତୃ. ଉ)—
Priyaprepsu ନିଜର ଅଭିଳଷିତ ବସ୍ତୁ ପାଇବା ପାଇଁ ଇଚ୍ଛୁକ—
Wishing to secure one's desired object
(Apte).

**ପ୍ରିୟ ବିଚ୍ଛେଦ**—ସ. ବି. ( ପ୍ରିୟ+ବିଚ୍ଛେଦ )—
Priya bichchheda ପ୍ରିୟ ଲୋକଠାରୁ ଛଡ଼ାଛଡ଼ି—
(ପ୍ରିୟ ବିରହ—ଅନ୍ୟରୂପ) Séparation from a dear one.

**ପ୍ରିୟ ବିୟୋଗ**—ସ. ବି. ( ପ୍ରିୟ+ବିୟୋଗ )—
Priya biyoga ପ୍ରିୟ ବ୍ୟକ୍ତିର ମୃତ୍ୟୁ—Death of ones
beloved'.

**ପ୍ରିୟ ବ୍ରତ**—ସ. ବିଣ, ପୁଂ. ( ବହୁବ୍ରୀହି, ପ୍ରିୟ+ବ୍ରତ )—
Priya brata ଯେଉଁ ବ୍ୟକ୍ତି ବ୍ରତ ପାଳନ କରିବାକୁ ସୁଖ ପାଏ
(ପ୍ରିୟ ବ୍ରତା—ସ୍ତ୍ରୀ) (ହି. ଶ)—Fond of observing religious vows.

ସ. ବି. (ନାମ)—ସ୍ୱାୟଂଭୁବ ମନୁଙ୍କର ଏକ ପୁତ୍ର ଓ ଉତ୍ତାନପାଦଙ୍କ ଭାଇ—Name of a son of Swāyambhuba Manu.

[ ଦ୍ର—ପୁରାଣ ମତରେ ଏହାଙ୍କ ରଥ ଚାଳନରେ ଭୂମିରେ ଯେଉଁ ଗର୍ତ୍ତ ହୋଇଥିଲା ତାହା ପରେ ସମୁଦ୍ର ପାଲଟି ଗଲା—ହି. ଶବ୍ଦସାଗର ]

ଦେ. ବି. ପୁଂ—ପୁରୁଷଙ୍କ ନାମ—
A name given to males.

**ପ୍ରିୟ ଭାଷଣ**—ସ ବି. ( କର୍ମଧା, ପ୍ରିୟ+ଭାଷଣ )—
Priya bhāshaṇa ମିଷ୍ଟ କଥା କହିବା—Speaking
sweet words.

**ପ୍ରିୟ ଭାଷୀ**—ସ. ବି. ( ପ୍ରିୟ+ଭାଷୀ )—
Priya bhāshi Speaking sweet words.
(ପ୍ରିୟ ଭାଷିଣୀ—ସ୍ତ୍ରୀ)

**ପ୍ରିୟ ମଣ୍ଡନ**—ସ. ବିଣ. ପୁଂ (ବହୁବ୍ରୀହି; ପ୍ରିୟ+ମଣ୍ଡନ)—
Priya maṇḍana ଅଳଙ୍କାର ବା ସାଜସଜ୍ଜାର ପ୍ରିୟ—
(ପ୍ରିୟ ମଣ୍ଡନା—ସ୍ତ୍ରୀ) Fond of ornaments; foppish
( Apte ).

**ପ୍ରିୟ ମଧୁ**—ସ. ବି. ( ବହୁବ୍ରୀହି; ପ୍ରିୟ+ମଧୁ=ମଦ୍ୟ )—
Priya madhu ଶ୍ରୀକୃଷ୍ଣଙ୍କ ବଡ଼ଭାଇ ବଳରାମ—
Balarāma.

ସ. ବିଣ—ମଦ୍ୟ ପାନ ପ୍ରିୟ—Fond of liquor (Apte).

**ପ୍ରିୟମାଣ**—ସ. ବିଣ. ପୁଂ (ପ୍ରୀ ଧାତୁ+କର୍ତ୍ତୃ. ଆନ)—
Priyamāṇa ୧ । ପ୍ରେମ ଯୁକ୍ତ, ସ୍ନେହମୟ—
(ପ୍ରିୟମାଣା—ସ୍ତ୍ରୀ) 1. Affectionate.
୨ । ସନ୍ତୋଷ କାରକ—2. Endearing; pleasing.

**ପ୍ରିୟମ୍ବଦ**—ସ. ବିଣ. ପୁଂ (ପ୍ରିୟଂ+ବଦ୍ ଧାତୁ+କର୍ତ୍ତୃ. ଅ)—
Priyambada ୧ । ପ୍ରିୟ ଭାଷୀ—1. Speaking sweet
(ପ୍ରିୟଂ ବଦ—ଅନ୍ୟରୂପ) words
(ପ୍ରିୟମ୍ବଦା—ସ୍ତ୍ରୀ) ୨ । ଗନ୍ଧର୍ବ ବିଶେଷ—
2. Name of a Gandharba.

[ ଦ୍ର—ସଂସ୍କୃତ ବ୍ୟାକରଣ ନିୟମାନୁସାରେ 'ପ୍ରିୟଂବଦ' ଶବ୍ଦ ଶୁଦ୍ଧ । ପ୍ରକୃତିବାଦ ପ୍ରଭୃତି ଅଭିଧାନରେ ଏହା 'ପ୍ରିୟମ୍ବଦ' ଆକାରରେ ଦେଖାଯାଏ । 'ବଦ୍' ଧାତୁର 'ବ' ଅବର୍ଗ୍ୟ । ଅବର୍ଗ୍ୟ ବର୍ଣ୍ଣ ପରେ ଥିଲେ 'ମ୍' ସ୍ଥାନରେ କେବଳ ଅନୁସ୍ୱାର ହୁଏ । ବର୍ଗ୍ୟ ବର୍ଣ୍ଣ ପରେ ଥିଲେ ଅନୁସ୍ୱାର ଓ ବିକଳ୍ପରେ ପରବର୍ତ୍ତୀ ବର୍ଣ୍ଣର ପଞ୍ଚମ ବର୍ଣ୍ଣ ହୁଏ; ଅତଏବ ପ୍ରିୟମ୍ବଦ ଆକାର ସଂସ୍କୃତ ବ୍ୟାକରଣର ନିୟମବିରୁଦ୍ଧ । ]

**ପ୍ରିୟମ୍ବଦା**—ସଂ. ବି. ସ୍ତ୍ରୀ. ( ପ୍ରିୟମ୍ବଦ+ସ୍ତ୍ରୀ. ଆ )—
Priyambadā ୧ । ପ୍ରିୟ ଭାଷିଣୀ ସ୍ତ୍ରୀ—1 A sweet-
(ପ୍ରିୟଂବଦା—ଅନ୍ୟରୂପ) speaking woman.
୨ । କଣ୍ୱମୁନିପାଳିତା ଶକୁନ୍ତଳାଙ୍କ ସଖୀବିଶେଷ—
2 Name of a female companion of Śakuntalā.
୩ । ଦ୍ୱାଦଶାକ୍ଷରଯୁକ୍ତ ଛନ୍ଦୋବିଶେଷ—
3. A metre having 12 letters in each foot.
ସଂ. ବିଣ. ସ୍ତ୍ରୀ—ପ୍ରିୟମ୍ବଦର ସ୍ତ୍ରୀ ଲିଙ୍ଗ—
Feminine of Priyambada.

**ପ୍ରିୟମ୍ଭବିଷ୍ଣୁ**—ସଂ. ବିଣ. (ପ୍ରିୟଂ+ଭୂ ଧାତୁ+କର୍ତ୍ତୃ. ଇଷ୍ଣୁ)—
Priyambha bishṇu ଯେ ସ୍ନେହର ପାତ୍ର ହୋଇଅଛି—
ପ୍ରିୟମ୍ଭାବୁକ—ପୁଂ } ଅନ୍ୟରୂପ Become an object of
ପ୍ରିୟମ୍ଭାବୁକା—ସ୍ତ୍ରୀ } affection; beloved; dearly
loved (Apte).

**ପ୍ରିୟ ସଖ**—ସଂ. ବିଣ. ପୁଂ. [କର୍ମଧା; ପ୍ରିୟ+ସଖା (ସଖି ଶବ୍ଦଜ)—ବହୁ]
Priya sakha ୧ । ପରମ ମିତ୍ର—1. Fast friend; dear
ପ୍ରିୟ ସହଚର } ଅନ୍ୟରୂପ friend.
ପ୍ରିୟ ସୁହୃତ୍ }
୨ । ଖଦିର ବୃକ୍ଷ—
2 The catechu tree; Mimosa Catechu.

**ପ୍ରିୟ ସଖୀ**—ସଂ ବି. ସ୍ତ୍ରୀ—ସ୍ତ୍ରୀ ବ୍ୟକ୍ତିର ବିଶ୍ୱସ୍ତା ସଙ୍ଗିନୀ—
Priya sakhī Dear female companion; a lady's confidante.
ପ୍ରିୟ ସହଚରୀ } ଅନ୍ୟରୂପ
ପ୍ରିୟ ସଙ୍ଗିନୀ }

**ପ୍ରିୟ ସଙ୍ଗମନ**—ସଂ. ବି—୧ । ଅଭିସାର ସ୍ଥାନ; ପ୍ରିୟ ଓ ପ୍ରିୟାଙ୍କର
Priya saṅgamana ମିଳନ ସ୍ଥାନ; ସଙ୍କେତ ସ୍ଥାନ (ହି. ଶ)—
1. Trysting place; a place where lovers meet by appointment.
୨ । ଅଦିତି ଓ କଶ୍ୟପଙ୍କ ମିଳନ ସ୍ଥାନ (ହି. ଶ)—
2. The place where Aditi and her husband Kaśyapa had met.

**ପ୍ରିୟ ସତ୍ୟ**—ସଂ. ବି. ( ପ୍ରିୟ+ସତ୍ୟ )—
Priya satya ୧ । (ବହୁବ୍ରୀହି) ସତ୍ୟ କଥାର ପ୍ରିୟ ବ୍ୟକ୍ତି—
1. A lover of truth (Apte).
୨ । ( କର୍ମଧା ) ମନୋହର ସତ୍ୟ ବାକ୍ୟ—
2. Pleasant truth

**ପ୍ରିୟ ସନ୍ଦେଶ**—ସଂ. ବି. ( ପ୍ରିୟ+ସନ୍ଦେଶ )—
Priya sandeśa ୧ । (କର୍ମଧା) ବନ୍ଧୁଭାବମୟ ସଂବାଦ—
1. A friendly message.
୨ । (୬ଷ୍ଠୀ ତତ୍) ପ୍ରେମିକ ବ୍ୟକ୍ତି ଦ୍ୱାରା ପ୍ରେରିତ ସଂବାଦ—
2. A message from a lover.
୩ । (ବହୁବ୍ରୀହି) ଚମ୍ପକ ବୃକ୍ଷ—
3. Mitchella Champaka tree (Apte).
ସ. ବିଣ—୧ । (ଦ୍ୱନ୍ଦ୍ୱ) ମନୋହର ଓ ସତ୍ୟ (ବାକ୍ୟ)—
1. Pleasant though true (Apte).
୨ । ( ବହୁବ୍ରୀହି ) ସତ୍ୟ କଥା ଯାହାର ପ୍ରିୟ—
2. Loving truth.

**ପ୍ରିୟ ସମାଗମ**—ସ. ବି. ( ୬ଷ୍ଠୀ ତତ୍; ପ୍ରିୟ+ସମାଗମ )—
Priya samāgama ୧ । ପ୍ରିୟଜନଙ୍କ ସହିତ ମିଳନ—
2. Meeting with one's dear friends.
ପ୍ରିୟ ସହବାସ } ଅନ୍ୟରୂପ
ପ୍ରିୟ ସଙ୍ଗମ }
୨ । ନାୟକ ନାୟିକାଙ୍କର ସାକ୍ଷାତ—
2. Meeting of lovers.

**ପ୍ରିୟ ସା(ଶା)ଲକ**—ସ. ବି—ପିଆସାଳ ଗଛ—
Priya sā(śā)laka A timber tree; Pentaptera Tomentosa.

**ପ୍ରିୟସ୍ୱପ୍ନ**—ସ. ବିଣ. ପୁଂ—ଯେ ଶୋଇବାକୁ ସୁଖ ପାଏ—
Priyaswapna (ପ୍ରିୟସ୍ୱପ୍ନା—ସ୍ତ୍ରୀ) Fond of sleep (Apte).

**ପ୍ରିୟା**—ସ. ବିଣ. ସ୍ତ୍ରୀ—(ପ୍ରିୟ+ସ୍ତ୍ରୀ. ଆ)—ସ୍ନେହଭାଜନ (ସ୍ତ୍ରୀ)—
Priyā Dear (female).
ସ. ବି—୧ । ନାରୀ—1. Woman.
୨ । ପତ୍ନୀ; ସ୍ତ୍ରୀ; ଭାର୍ଯ୍ୟା—2. Wife.
୩ । ପ୍ରଣୟିନୀ—3. One's sweet-heart; one's beloved woman.
୪ । ଅଳାଇଚ—4. Cardamum.
୫ । ମଦିରା—5 Wine; liquor.
୬ । ମଲ୍ଲିକା—6. Jasmine.
୭ । ଛନ୍ଦୋବିଶେଷ, ମୃଗୀ ଛନ୍ଦଃ—
7 Name of a metre.
୮ । କାଙ୍ଗୁଧାନ୍ୟ ( ହି. ଶ )—
8. Panicum Italicum

**ପ୍ରିୟାମ୍ବୁ**—ସ. ବିଣ—(ବହୁବ୍ରୀହି, ପ୍ରିୟ+ଅମ୍ବୁ)—୧ । ଜଳ ଯେଉଁ
Priyāmbu ବ୍ୟକ୍ତିର ଅତି ପ୍ରିୟ—1. Very fond of water
୨ । ଯହିଁର ଜଳ ସୁସ୍ୱାଦୁ—
2. Having sweet water.
ସ. ବି—ଆମ୍ବ ଗଛ ଓ ଫଳ (ହି. ଶ)—
Mango tree and fruit.

**ପ୍ରିୟାଳ**—ସ ବି—(ପ୍ରୀ ଧାତୁ+ଆଲ)—ପିୟାଳ (ଦେଖ)—
Priyāla Piyāla (See).
( ପ୍ରିୟାଳକ, ପ୍ରିୟାଲ—ଅନ୍ୟରୂପ )

**ପ୍ରିୟାଳା**—ସ. ବି—ଦ୍ରାକ୍ଷା; ଅଙ୍ଗୁର—
Priyālā Grape.

**ପ୍ରିୟାଳାପ**—ସ. ବି—(କର୍ମଧା; ପ୍ରିୟ+ଆଳାପ)—୧ । ତୁଷ୍ଟିଜନକ
Priyālāpa କଥୋପକଥନ—1. Pleasant conversation.
୨ । ( ୬ଷ୍ଠୀ ତତ୍ )—ପ୍ରିୟବ୍ୟକ୍ତିଙ୍କ ସଙ୍ଗେ ଆଳାପ—
2. Conversation with a dear person.

**ପ୍ରିୟୋଜନ**—ଗ୍ରା. ବି—(ପ୍ରୟୋଜନର ଅଶୁଦ୍ଧ ଉଚ୍ଚାରଣ)—
Priyojana ପ୍ରୟୋଜନ—Necessity; use.
( ପିଓ୍ୱଜନ—ଅନ୍ୟରୂପ )

**ପ୍ରିୟୋଦିତ**—ସ. ବିଣ—(ପ୍ରିୟ+ଉଦିତ)—ମନୋହରରୂପେ କଥିତ—
Priyodita Pleasantly spoken.
ସ. ବି—ମିଷ୍ଟବାକ୍ୟ—Sweet words.

**ପ୍ରୀ(ଧାତୁ)**—ସ—୧ । ସନ୍ତୁଷ୍ଟ ହେବା—
Prī (root) 1. To be pleased.
୨ । ସନ୍ତୁଷ୍ଟ କରିବା—2. To please.
୩ । ସ୍ନେହ କରିବା—3. To love.
୪ । ଇଚ୍ଛା କରିବା—4 To desire.

**ପ୍ରୀ**—ସ. ବି—(ପ୍ରୀ ଧାତୁ+ଭାବ. କ୍ୱିପ୍)—୧ । ପ୍ରୀତି; ପ୍ରେମ (ହି. ଶ)-
Prī 1. Love, attachment.
୨ । କାନ୍ତି; ଔଜ୍ଜ୍ୱଲ୍ୟ ( ହି. ଶ )—
2 Lustre; radiance.
୩ । ଇଚ୍ଛା (ହି. ଶ)—3. Desire; wish.
୪ । ତୃପ୍ତି; ସନ୍ତୋଷ (ହି. ଶ)—
4. Satisfaction; contentment.
୫ । ତର୍ପଣ (ହି. ଶ)—5. Gratification; oblation of water to the manes of one's deceased ancestors.

**ପ୍ରୀଣ**—ସ. ବିଣ—(ପ୍ରୀ ଧାତୁ+କର୍ତ୍ତୃ. ତ)—୧ । ପୁରାତନ—
Prīṇa 1. Old; ancient.

(ପ୍ରୀଣା—ସ୍ତ୍ରୀ) ୨ । ପ୍ରୀତ, ପ୍ରସନ୍ନ—2. Pleased; gratified.
୩ । ତୃପ୍ତ—3. Satisfied.

**ପ୍ରୀଣନ**—ସଂ. ବି—(ପ୍ରୀ ଧାତୁ ଣିଚ୍+ଭାବ. ଅନ)—ତୃପ୍ତି ଜନ୍ମାଇବା; ଅନ୍ୟର ସନ୍ତୋଷ ସମ୍ପାଦନ—Satisfying; gratifying.
Prīṇana

**ପ୍ରୀଣିତ**—ସଂ. ବଣ—(ପ୍ରୀ ଧାତୁ ଣିଚ୍+କର୍ମ. ତ)—ତର୍ପିତ, ତୋଷିତ—
Prīṇita (ପ୍ରୀଣନ—ବି) Satisfied; gratified.

**ପ୍ରୀତ**—ସଂ. ବଣ. ପୁଂ—(ପ୍ରୀ ଧାତୁ+କର୍ତ୍ତୃ. ତ)—୧ । ଆନନ୍ଦିତ;
Prīta (ପ୍ରୀତା—ସ୍ତ୍ରୀ) ଆହ୍ଲାଦିତ—1. Pleased; glad.
(ପ୍ରୀତି—ବି) ୨ । ସୁଖୀ—2. Happy.
୩ । ସନ୍ତୁଷ୍ଟ, ତୃପ୍ତ—3. Satisfied.
୪ । ପ୍ରିୟ—4. Dear; beloved.
୫ । ପ୍ରୀତିଯୁକ୍ତ; ସ୍ନେହଯୁକ୍ତ—5. Loving; affectionate.

**ପ୍ରୀତି**—ସଂ. ବି—(ପ୍ରୀ ଧାତୁ+ଭାବ. ତି)—୧ । ଆନନ୍ଦ, ତୃପ୍ତି, ଇଷ୍ଟ
Prīti ବସ୍ତୁ ପାଇବା ବା ଦେଖିବାଜନିତ ସୁଖ—
1. Joy; gladness; happiness.
୨ । ସନ୍ତୋଷ—2. Satisfaction; contentment.
୩ । ସୁଖ—3. Happiness
୪ । ପ୍ରେମ; ପ୍ରଣୟ—4. Love
୫ । ଅନୁରାଗ, ସ୍ନେହ—5. Affection.
୬ । କାମଦେବଙ୍କର ପତ୍ନୀବିଶେଷ—
6. One of the wives of God Cupid.
[ଦ୍ର—ଏ ଜନ୍ମାନ୍ତରରେ ଅନଙ୍ଗବତୀ ନାମ୍ନୀ ବେଶ୍ୟା ଥିଲେ ଏବଂ ବିଭୂତି ଦ୍ୱାଦଶୀ ବ୍ରତ କରି ପରଜନ୍ମରେ କାମଦେବଙ୍କ ପତ୍ନୀ ହେଲେ—ହି. ଶ]
୭ । (ଜ୍ୟୋତିଷ) ବିଷ୍କମ୍ଭାଦି ୨୭ ଯୋଗ ମଧ୍ୟରୁ ଦ୍ୱିତୀୟ ଯୋଗ—
7. (astronomy) One of the 27 astronomical conjunctions.
[ଦ୍ର—ଏହା ଏକ ଶୁଭକର ଯୋଗ, ଏଥିରେ ଜନ୍ମ ହେବା ବ୍ୟକ୍ତି ନୀରୋଗ, ସୁଖୀ, ବିଦ୍ୱାନ୍ ଓ ଧନୀ ହୁଏ—ହି. ଶ ।]
ଦେ. ବି—ପରପୁରୁଷ ଓ ପରସ୍ତ୍ରୀ ମଧ୍ୟରେ ଗୁପ୍ତ ପ୍ରେମ—
Secret love between a male and female who are not married to each other.

**ପ୍ରୀତିଆ**—ଦେ ବଣ—ପ୍ରେମିକ—
Prītiā Loving; making love.
ଦେ. ବି—ପ୍ରେମିକ ବ୍ୟକ୍ତି—Lover
ଦେଉଥିଲେ ଚାର, ନ ଥାନ୍ତା ଅଛ ପ୍ରୀତିଆ ସଂସାର—
ଅଭିମନ୍ୟୁ, ବିଦଗ୍ଧ ଚିନ୍ତାମଣି ।

**ପ୍ରୀତି କଉଶଳା**—ଗ୍ରା. (ପଦ୍ୟ) ବଣ. (ସ. ପ୍ରୀତି ଓ କୁଶଳା)—ପ୍ରୀତିରେ
Prīti kauśalā କୁଶଳା ବା ଚତୁରା, ପ୍ରୀତିନିପୁଣା, ଅତ୍ୟନ୍ତ ପ୍ରୀତିଶୀଳା—Expert in loving; very loving (woman).
ଗଜଗମନା ପ୍ରୀତି କଉଶଳାକୁ ଚହାଉ—ଉଛ. ପ୍ରେମସୁଧା ନିଧି ।

**ପ୍ରୀତିକର**—ସ. ବଣ—ଆହ୍ଲାଦଜନକ; ଆନନ୍ଦଦାୟକ—
Prītikara (ପ୍ରୀତିକରୀ—ସ୍ତ୍ରୀ) Pleasing; joyful.
( ପ୍ରୀତିଜନକ, ପ୍ରୀତିକାରକ, ପ୍ରୀତିକାରୀ—ଅନ୍ୟରୂପ )

**ପ୍ରୀତିଜୁଷା**—ସ. ବି. ସ୍ତ୍ରୀ—ଅନିରୁଦ୍ଧର ପତ୍ନୀ ଉଷାର ଏକ ନାମ—
Prītijushā A name of Ushā, the wife of Aniruddha.

**ପ୍ରୀତିଦ**—ସ. ବି. ପୁଂ ( ପ୍ରୀତି+ଦା ଧାତୁ+କର୍ତ୍ତୃ. ଅ )—ବିଦୂଷକ—
Prītida A jester; buffoon.
ପ୍ରୀତିଦା, ପ୍ରୀତିଦାୟିକା, ପ୍ରୀତିଦାୟିନୀ, ପ୍ରୀତିପ୍ରଦା } ସ୍ତ୍ରୀ ସ. ବଣ ପୁଂ—୧ । ଆନନ୍ଦପ୍ରଦ—1. Giving joy.
୨ । ସ୍ନେହଯୁକ୍ତ—2 Affectionate; loving.
( ପ୍ରୀତିଦାୟକ, ପ୍ରୀତିଦାୟୀ, ପ୍ରୀତିପ୍ରଦ—ଅନ୍ୟରୂପ )

**ପ୍ରୀତି ଦତ୍ତ**—ସ. ବଣ ( ୩ୟା ତତ୍, ପ୍ରୀତି+ଦତ୍ତ )—ପ୍ରୀତିପୂର୍ବକ ଦିଆ
Prīti datta ଯାଇଥିବା—Given or presented out of love; presented as a token of affection.

**ପ୍ରୀତି ଦାନ**—ସ. ବି—ପ୍ରୀତିର ନିଦର୍ଶନସ୍ୱରୂପ ଦିଆଯିବା ବସ୍ତୁ—
Prīti dāna A present of love.

**ପ୍ରୀତିପରାୟଣ**—ସ. ବଣ ପୁଂ. (ପ୍ରୀତି+ପରାୟଣ)—ଅତ୍ୟନ୍ତ ପ୍ରେମଯୁକ୍ତ;
Prīti parāyaṇa ସ୍ୱଭାବତଃ ପ୍ରେମୀ—
Very loving; loving by nature.
(ପ୍ରୀତିପରାୟଣା—ସ୍ତ୍ରୀ) (ପ୍ରୀତିପରାୟଣତା—ବି)

**ପ୍ରୀତି ପାତ୍ର**—ସ. ବଣ. (୬ଷ୍ଠୀ ତତ୍; ପ୍ରୀତି+ପାତ୍ର)—ସ୍ନେହାସ୍ପଦ—
Prīti pātra Object of love.
( ପ୍ରୀତିଭାଜନ—ଅନ୍ୟରୂପ )

**ପ୍ରୀତି ବର୍ଦ୍ଧନ**—ସ. ବି—୧ । ( ୬ଷ୍ଠୀ ତତ୍ ) ପ୍ରଣୟର ବୃଦ୍ଧି—
Prīti barddhana 1. Increase of attachment or love.
୨ । ( ବହୁବ୍ରୀହି ) ବିଷ୍ଣୁଙ୍କର ଏକ ନାମ—
2. An epithet of Bishṇu.
ସଂ. ବଣ—ତୃପ୍ତିଦାୟକ—Pleasing.

**ପ୍ରୀତି ଭୋଜ**—ସଂ. ବି—ବନ୍ଧୁମାନଙ୍କ ମଧ୍ୟରେ ଭୋଜି (ହି. ଶ)—
Prīti bhoja A feast; picnic.
(ପ୍ରୀତିଭୋଜନ—ଅନ୍ୟରୂପ) (ପ୍ରୀତିଭୋଜି—ଦେଶଜରୂପ)

**ପ୍ରୀତି ଭୋଜ୍ୟ**—ସଂ. ବଣ(ପ୍ରୀତିଭୋଜ+ଯ)—ପ୍ରୀତିଭୋଜରେ ଭକ୍ଷଣୀୟ—
Prīti bhojya Fit to be partaken of in a picnic.

**ପ୍ରୀତିମାନ୍**—ସଂ. ବଣ. ପୁଂ. ( ପ୍ରୀତି+ମତ୍ )—ପ୍ରେମିକ; ପ୍ରଣୟୀ—
Prītimān (ପ୍ରୀତିମତୀ—ସ୍ତ୍ରୀ) Loving.

**ପ୍ରୀତ୍ୟର୍ଥ**—ଦେ. କ୍ରି. ବଣ ( ସଂ. ପ୍ରୀତ୍ୟର୍ଥଂ )—( ଅମୁକର ) ପ୍ରୀତି
Prityartha ସମ୍ପାଦନାର୍ଥ; ପ୍ରସନ୍ନତା ସମ୍ପାଦନାର୍ଥ—For giving
প্রীত্যর্থ प्रीत्यर्थे pleasure to; for pleasing.
( ପ୍ରୀତ୍ୟର୍ଥେ—ଅନ୍ୟରୂପ )

**ପ୍ରୀତି ରୀତି**—ସ. ବି—୧ । (ମ. ପ. ଲୋ) ପ୍ରଣୟପୂର୍ଣ୍ଣ ବ୍ୟବହାର—
Prīti rīti 1. Affectionate treatment.
୨ । ( ୬ଷ୍ଠୀ ତତ୍ ) ପ୍ରେମିକ ପ୍ରେମିକାଙ୍କ ଢଙ୍ଗ—
2. The manner of lovers.

**ପ୍ରୀତି ସମ୍ଭାଷଣ**—ସ. ବି—୧ । ପ୍ରଣୟସୂଚକ କଥୋପକଥନ—
Prīti sambhāshaṇa 1. Conversation indicating affection or love.

୨ । ବନ୍ଧୁ ବା ପ୍ରେମିକ ଦ୍ୱୟଙ୍କ ମଧ୍ୟରେ କଥୋପକଥନ—
2. Conversation between two lovers or friends.

**ପ୍ରୀତି ସୂଚକ**—ସ. ବଣ—ଯାହା ପ୍ରୀତିର ସୂଚନ ବା ଜ୍ଞାପନ କରେ—
Priti sūchaka Indicating love or attachment.
(ପ୍ରୀତି ଜ୍ଞାପକ—ଅନ୍ୟରୂପ)

**ପ୍ରୀୟମାଣ**—ସ ବଣ. ପୁଂ. ( ପ୍ରୀ ଧାତୁ+କର୍ମ. ଆନ )—
Priyamāṇa ସନ୍ତୁଷ୍ଟ—Satisfied; gladdened.
(ପ୍ରୀୟମାଣା—ସ୍ତ୍ରୀ)

**ପ୍ରୁଫ୍**—ବୈଦେ. ବ. (ଇଂ) (ଛାପାଖାନାରେ ବ୍ୟବହୃତ ଶବ୍ଦ)—
Pruph ଛାପା ହେବା ବିଷୟର ଅନ୍ତିମ ମୁଦ୍ରଣ ପୂର୍ବରୁ କଥାଯିବା
ପ୍ରୁଫ୍ ମ୍ରୁଫ୍ ଛାପ—Proof (in printing).
(ପ୍ରୁଫ୍ କାଗଜ, ପ୍ରୁଫ୍ ଫର୍ଦ୍ଦ; ପ୍ରୁଫ୍ ସିଟ୍—ଅନ୍ୟରୂପ)
[ ଦ୍ର—ପ୍ରୁଫ୍ ତିନି ପ୍ରକାର—ଗାଲୀ ପ୍ରୁଫ୍, ପେଜ ପ୍ରୁଫ୍ ଓ ଫର୍ମୀ ପ୍ରୁଫ୍ । କୌଣସି ଲିଖିତ ବିଷୟ ଛାପିବାକୁ ହେଲେ କମ୍ପୋଜିଟରମାନେ ଲେଖା ଅନୁସାରେ ଟାଇପ୍‌ମାନ ଯୋଡ଼ନ୍ତି; ଏହି ଯୋଡ଼ା ହୋଇଥିବା ଟାଇପ୍‌ମାନଙ୍କୁ ଷ୍ଟିକ୍ ବା ସ୍ତମ୍ଭମାନଙ୍କରେ ସଜାଇ ତହିଁରୁ ପ୍ରଥମେ ଯେଉଁ ଛାପ କଥାନ୍ତି ତାକୁ ଗାଲୀ ପ୍ରୁଫ୍ ବୋଲାଯାଏ । ଗାଲୀ ପ୍ରୁଫ୍‌ରେ ଯେଉଁ ଯେଉଁଠାରେ ଭ୍ରମ ଥାଏ ତାକୁ ପ୍ରୁଫ୍ ରିଡର୍ ସଂଶୋଧନ କରନ୍ତି । ଗାଲୀ ପ୍ରୁଫ୍ ସଂଶୋଧିତ ହେବା ପରେ କମ୍ପୋଜିଟରମାନେ ଦର୍ଶିତ ଭ୍ରମମାନଙ୍କୁ ସଂଶୋଧନ କରି ସେହି ସେହି ସ୍ଥାନରେ ନୂତନ ଟାଇପ୍ ବସାନ୍ତି । ଉକ୍ତ ସଂଶୋଧିତ ପ୍ରୁଫ୍‌କୁ କମ୍ପୋଜିଟରମାନେ ଅଭିପ୍ରେତ ପୁସ୍ତକର ପୃଷ୍ଠାର ଆକାର ଅନୁସାରେ ସଜାନ୍ତି । ଏହାକୁ ପେଜ୍ ପ୍ରୁଫ୍ ବୋଲାଯାଏ । ପେଜ୍ ପ୍ରୁଫ୍‌କୁ ପ୍ରୁଫ୍‌ରିଡର୍ ପୁଣି ସଂଶୋଧନ କରନ୍ତି ଓ ଉକ୍ତ ସଂଶୋଧନ ଅନୁସାରେ କମ୍ପୋଜିଟରମାନେ ନୂତନ ଟାଇପ୍ ବଦଳାଇ ଫର୍ମୀ ଇମ୍ପୋଜ କରି ଛାପା ପୂର୍ବରୁ ଯେଉଁ ପ୍ରୁଫ୍ ଦିଅନ୍ତି ତାହାକୁ ଫର୍ମୀ ପ୍ରୁଫ୍ କହନ୍ତି । ]

**ପ୍ରୁଫ୍ ରିଡର୍**—ବୈଦେ. ବ. (ଇଂ) (ଛାପାଖାନା ବ୍ୟବହୃତ ଶବ୍ଦ)—
Pruph riḍar ଯେଉଁ ବ୍ୟକ୍ତି ପ୍ରୁଫ୍ ସଂଶୋଧନ କରେ—
ପ୍ରୁଫ୍ ରିଡାର ମ୍ରୁଫରିଡୋର Proof reader.
(ପ୍ରୁଫ୍ ଦେଖାଳି, ପ୍ରୁଫ୍ ସଂଶୋଧକ—ଅନ୍ୟରୂପ)

**ପ୍ରୁଫ୍ ରିଡିଙ୍ଗ୍**—ବୈଦେ. ବ. (ଇଂ) (ଛାପାଖାନା ବ୍ୟବହୃତ ଶବ୍ଦ)—
Pruph riḍing ଛାପାଖାନାରେ ଗାଲୀ ପ୍ରୁଫ୍ ଓ ପେଜ୍ ପ୍ରୁଫ୍‌ରେ
ପ୍ରୁଫ୍ ରିଡିଙ୍ଗ୍ ଥିବା ଭ୍ରମମାନଙ୍କ ସଂଶୋଧନ—Proof reading.
ମ୍ରୁଫ୍‌ରିଡିଙ୍ଗ (ପ୍ରୁଫ୍ ଦେଖା, ପ୍ରୁଫ୍ ସଂଶୋଧନ—ଦେଶଜରୂପ)
[ ଦ୍ର—କମ୍ପୋଜିଟରମାନେ ଟାଇପ୍ ଯୋଡ଼ି ସାରିବା ପରେ ସେଥିରୁ ଯେଉଁ ଛାପ ( ପ୍ରୁଫ୍) କଥାଯାଏ, ସେ ପ୍ରୁଫ୍‌ମାନଙ୍କରେ ପ୍ରୁଫ୍ ରିଡର୍ ଯେଉଁ ଭ୍ରମମାନ ଦେଖାନ୍ତି ତାକୁ ଚିହ୍ନଟ କରିବା ପାଇଁ କେତେ ଚିହ୍ନ ବା ଠାରମାନ ଅଛି । ସେହି ଠାରମାନ ଦେଖି କମ୍ପୋଜିଟରମାନେ ଟାଇପ୍‌ମାନ ବଦଳାଇ ଠିକ୍ ଟାଇପ୍ ବସାନ୍ତି । ]

**ପ୍ରୁଷ୍ଟ**—ସ. ବଣ. (ପ୍ରୁଷ୍ ଧାତୁ=ଦଗ୍ଧ କରିବା+ତ) —ଦଗ୍ଧ—
Prushṭa Burnt.

**ପ୍ରେକ୍ଷକ**—ସଂ. ବଣ. ପୁଂ (ପ୍ର+ଈକ୍ଷ ଧାତୁ=ଦେଖିବା+କର୍ତ୍ତୃ. ଅକ)—
Prekshaka ଦର୍ଶକ; ପରିଦର୍ଶକ—Visiting; inspecting; seeing.
(ପ୍ରେକ୍ଷିକା—ସ୍ତ୍ରୀ) ସଂ. ବ. ପୁଂ—ଦର୍ଶକ ବ୍ୟକ୍ତି—Visitor

**ପ୍ରେକ୍ଷଣ(ଣା)**—ସ. ବ. (ପ୍ର+ଈକ୍ଷ ଧାତୁ+ଭାବ ଅନ; (ଆ)—
Prekshaṇa(ṇā) ୧ । ଦର୍ଶନ; ଦେଖିବା—1. Seeing.
(ପ୍ରେକ୍ଷିତ—ବଣ) ୨ । ପରିଦର୍ଶନ—2. Inspecting.
୩ । ପର୍ଯ୍ୟବେକ୍ଷଣ —3. Observation.
୪ । (+କରଣ. ଅନ) ଚକ୍ଷୁ; ଆଖି—4 Eye.

**ପ୍ରେକ୍ଷଣିକ**—ସ. ବ ପୁଂ ( ପ୍ରେକ୍ଷଣ+ଇକ )—ପରିଦର୍ଶକ—
Prekshaṇika (ପ୍ରେକ୍ଷଣିକା—ସ୍ତ୍ରୀ) Inspector; visitor.

**ପ୍ରେକ୍ଷଣୀୟ**—ସଂ. ବଣ. (ପ୍ର+ଈକ୍ଷ୍ ଧାତୁ+କର୍ମ. ଅନୀୟ)—
Prekshaṇiya ୧ । ପରିଦର୍ଶନୀୟ—1. Observable; fit to be inspected.
୨ । ଦର୍ଶନୀୟ; ଦେଖିବାର ଯୋଗ୍ୟ—
2 Visible; fit to be seen

**ପ୍ରେକ୍ଷମାଣ**—ସଂ. ବଣ. ପୁଂ (ପ୍ର+ଈକ୍ଷ ଧାତୁ+କର୍ତ୍ତୃ. ଆନ)—
Prekshamāṇa ୧ । (ପ୍ରେକ୍ଷମାଣା—ସ୍ତ୍ରୀ) ଦେଖୁଥିବା—
1. Seeing: observing.
୨ । ଦେଖା ଯାଉଥିବା—2. Being seen.
୩ । ଦୃଶ୍ୟମାନ—3. Visible.

**ପ୍ରେକ୍ଷା**—ସଂ. ବ. ( ପ୍ର+ଈକ୍ଷ ଧାତୁ+ଭାବ. ଅ+ସ୍ତ୍ରୀ. ଆ )—
Prekshā ୧ । ଦର୍ଶନ; ଦୃଷ୍ଟି—1. Seeing; sight.
୨ । ପର୍ଯ୍ୟବେକ୍ଷଣ—2. Observation.
୩ । ତୀକ୍ଷ୍ଣ ବୁଦ୍ଧି; ପ୍ରଜ୍ଞା—3. Intellect; understanding.
୪ । ବିମୃଶ୍ୟକାରିତା—4. Prudence; foresight.
୫ । ନୃତ୍ୟ ଦର୍ଶନ—5. Seeing a dance.
୬ । ବୃକ୍ଷର ଶାଖା—6. Branch of a tree.
୭ । (+କର୍ମ. ଅ) ଶୋଭା (ହି. ଶ)—
7. Grace; beauty.

**ପ୍ରେକ୍ଷାଗାର**—ସଂ. ବ. (୬ଷ୍ଠୀ ତତ୍; ପ୍ରେକ୍ଷା+ଆଗାର)—
Prekshāgāra ୧ । ରାଜାଙ୍କର ମନ୍ତ୍ରଣାଗାର—
(ପ୍ରେକ୍ଷାଗୃହ —ଅନ୍ୟରୂପ) 1, A king's council chamber.
୨ । ନୃତ୍ୟଶାଳା; ନାଚଖାନା, ନାଟମନ୍ଦିର—
2, Theatre hall; dancing saloon; ball-room,
୩ । ମାନମନ୍ଦିର; ପର୍ଯ୍ୟବେକ୍ଷଣ ଗୃହ—3. Observatory.
୪ । ରଙ୍ଗାଳୟ; ରଙ୍ଗଭୂମି—4. Stage; theatre.
୫ । ଦର୍ଶକମାନେ ବସି ଯାତ୍ରାଆଦି ଦେଖିବା ନିମନ୍ତେ ସ୍ତର ସ୍ତର ହୋଇ ସଜ୍ଜିତ ଆସନ-ପଙ୍କ୍ତି-ଯୁକ୍ତ ଗୃହ; ଗାଲେରି—
5. Amphitheatre; gallery.

**ପ୍ରେକ୍ଷାବାନ୍**—ସ. ବଣ. ପୁଂ. (ପ୍ରେକ୍ଷା+ବତ୍)—
Prekshāban ୧ । ବୁଦ୍ଧିବିଶିଷ୍ଟ; ବୁଦ୍ଧିମାନ୍—
(ପ୍ରେକ୍ଷାବତୀ, ପ୍ରେକ୍ଷିଣୀ } ସ୍ତ୍ରୀ—) 1. Intelligent.
୨ । ବିଜ୍ଞ—2. Wise.
(ପ୍ରେକ୍ଷୀ—ଅନ୍ୟରୂପ) ୩ । ବିବେଚକ; ବିମୃଶ୍ୟକାରୀ—
3. Prudent; considerate.

**ପ୍ରେକ୍ଷିତ**—ସ. ବଣ. (ପ୍ର+ଈକ୍ଷିତ)—୧ । ଦୃଷ୍ଟ—
Prekshita 1. Seen; viewed.

୨ । ପର୍ଯ୍ୟବେକ୍ଷିତ—2 Observed.

**ପ୍ରେଙ୍ଖଣ(ନ)**—ସଂ. ବି. (ପ୍ର+ଇଂଖ୍ ଧାତୁ=ଗମନ କରିବା+ଭାବ. Prenkhana(na) ଅନ)—୧ । ଚଳନ, ଗମନ—
1. Walking; movement.
୨ । ନିରୁଦ୍ଦେଶ୍ୟଭାବରେ ଭ୍ରମଣ କରିବା—2. Wandering.
୩ । ଦୋଳିବା; ଦୋହୋଲିବା—
3. Swinging; rocking.
୪ । ପ୍ରବେଶ କରିବା—4. Entering.
୫ । ମାତଶ୍ରେଣୀସ୍ଥ ନାୟକବର୍ଜିତ ଏକାଙ୍କଯୁକ୍ତ ବୀରରସପ୍ରଧାନ ରୂପକ ନାଟକବିଶେଷ—5. A minor drama in one act.

**ପ୍ରେଙ୍ଖା**—ସଂ. ବି. (ପ୍ର+ଇନ୍ଖ୍ ଧାତୁ+ଭାବ. ଅ+ସ୍ତ୍ରୀ. ଆ)—
Prenkhā ୧ । ଚଳନ; ଗତି—
1 Motion; movement.
୨ । (+କରଣ. ଅ+ଆ)—ଦୋଳା—
2. A swing, a sort of hammock.
୩ । (+ଭାବ.ଅ) ପର୍ଯ୍ୟଟନ—3. Wandering; roaming.
୪ । କମ୍ପନ; ଆନ୍ଦୋଳନ—4. Vibration; agitation.
୫ । ଅଶ୍ୱଗତିବିଶେଷ; ତୁଲ୍କି—5. A kind of motion of the horse; trotting of a horse.
୬ । ଗୃହବିଶେଷ—6. A kind of house.
୭ । ଝୁଲିବା—7. Swinging.
୮ । ନାଚ; ନୃତ୍ୟ (ହି· ଶ)—8. Dancing.

**ପ୍ରେଙ୍ଖିତ**—ସଂ. ବିଣ. (ପ୍ର+ଇଂଖ୍ ଧାତୁ+କର୍ମ. ତ)—
Prenkhita ଦୋଳିତ; କମ୍ପିତ; ଚଳିତ—
Swinging; trembling; vibrating.

**ପ୍ରେଙ୍ଖୋଳା**—ସଂ. ବି. (ପ୍ର+ଇଂଖ୍ ଧାତୁ+କରଣ ଓଳ+ସ୍ତ୍ରୀ. ଆ)—
Prenkholā ଦୋଳା—A swing.
ସିନ୍ଧୁ ଜଳେ ତେଜ ଲହରୀ-ପ୍ରେଙ୍ଖୋଳା । ରଘୁନାଥ. ମହେନ୍ଦ୍ରଗିରି ।

**ପ୍ରେଜେଣ୍ଟ**—ବୈଦେ. ବି. (ଇଂ)—ଉପହାର—
Prejent A present.
ବିଣ. (ଇଂ)—ହାଜର, ଉପସ୍ଥିତ—Present.

**ପ୍ରେଜେଣ୍ଟେସନ୍ କପି**—ବୈଦେ. ବି. (ଇଂ)—ପୁସ୍ତକର ଯେଉଁ ସଂଖ୍ୟା Prejentesan kapi ବିଶିଷ୍ଟ ବ୍ୟକ୍ତିଙ୍କୁ ଉପହାର ଦେବାପାଇଁ ପ୍ରେଜେଂଟେସନକାପୀ ଛପା ହୋଇଥାଏ— Presentation प्रेजेंटेसनकापी copy (of any book).

**ପ୍ରେଣ**—ସଂ. ବି—(ପ୍ର+ଇ ଧାତୁ+ଅନ)—୧ । ଗତି (ହି. ଶ)—
Preṇa 1. Motion.
୨ । ପ୍ରେରଣା (ହି. ଶ)—2 Incitement.

**ପ୍ରେତ**—ସଂ. ବିଣ. (ପ୍ର+ଇ ଧାତୁ=ଯିବା+କର୍ତ୍ତୃ. ତ)—୧ । ଗତ—
Preta 1. Gone; departed.
(ପ୍ରେତା—ସ୍ତ୍ରୀ) ୨ । ମୃତ—2. Dead; deceased.
ବି—୧ । ଯଥାବିହିତ ଶ୍ରାଦ୍ଧ ସମ୍ପନ୍ନ ହୋଇ ନ ଥିବା ମୃତ ବ୍ୟକ୍ତିର ଅମୋକ୍ଷ ଆତ୍ମା—1. The departed soul of a man before his obsequial rites are performed.
୨ । ପିଶାଚ, ଭୂତ—2. Ghost; spectre; spirit; goblin.
୩ । ନରକସ୍ଥ ପ୍ରାଣୀ ବା ଆତ୍ମା—3. The departed souls; spirits of departed persons which are undergoing punishment in hell.
୪ । ମୃତ ପ୍ରାଣୀ (ହି ଶ)—3, Dead being.
୫ । ଶବ—5. Dead body; corpse.

[ ଦ୍ର—ହିନ୍ଦୁପୁରାଣ ମତରେ ମନୁଷ୍ୟ ମଲା ପରେ ତା ଶବର ସତ୍କାର ହେବା ପରେ ତାହାର ଆତ୍ମା ଅତିବାହିକ ବା ଲିଙ୍ଗ-ଶରୀର ଧାରଣ କରେ । ତତ୍ପରେ ତାର ଔର୍ଦ୍ଧ୍ୱଦୈହିକ କ୍ରିୟା (ପିଣ୍ଡଦାନ ଓ ଶ୍ରାଦ୍ଧ) ସମ୍ପାଦିତ ହେବାବେଳେ ସେ ପ୍ରେତ-ଶରୀର ବା ଭୋଗ ଶରୀର ଧାରଣ କରେ । ସପିଣ୍ଡୀକରଣ ପର୍ଯ୍ୟନ୍ତ ଏହି ଶରୀର ରହେ । ସପିଣ୍ଡୀକରଣ କର୍ମ ସମ୍ପାଦିତ ହେଲେ ମନୁଷ୍ୟ ପ୍ରେତତ୍ୱରୁ ମୁକ୍ତ ହୋଇ ନିଜର କର୍ମାନୁସାରେ ସ୍ୱର୍ଗ ବା ନରକକୁ ଯାଏ । ଯେଉଁ ବ୍ୟକ୍ତିର ଶ୍ରାଦ୍ଧ ଔର୍ଦ୍ଧ୍ୱଦୈହିକ କ୍ରିୟା ହୋଇ ନ ଥାଏ ସେ ପ୍ରେତ ହୋଇ ରହେ । ପୁରାଣ ଅନୁସାରେ ପାପୀ, ଅଦାତା, ପରସ୍ତ୍ରୀଗାମୀ, ମିଥ୍ୟାବାଦୀ, କ୍ରୂର, ମାଦକସେବୀ ଓ କୁକର୍ମକାରୀ ବ୍ୟକ୍ତିମାନେ ମୃତ୍ୟୁ ପରେ ପ୍ରେତ ହୋଇ ରହନ୍ତି । ପ୍ରେତମାନଙ୍କ ନିବାସ ମଳମୂତ୍ରାଦିଦୁଷ୍ଟ ଅପରିଷ୍କୃତ ସ୍ଥାନ ଓ ସେମାନଙ୍କ ଖାଦ୍ୟ ଅପବିତ୍ରବସ୍ତୁ ବୋଲି କଥିତ ଅଛି—ହି. ଶ । ]

**ପ୍ରେତ କର୍ମ**—ସଂ. ବି—ମୃତ ବ୍ୟକ୍ତିର ପ୍ରେତ ମୋକ୍ଷ ଲାଭ କରିବା Preta karma ଉଦ୍ଦେଶ୍ୟରେ କରାଯିବା କ୍ରିୟା, ଶବଦାହଠାରୁ ସପିଣ୍ଡୀକରଣ ପର୍ଯ୍ୟନ୍ତ କରାଯିବା କାର୍ଯ୍ୟ,
ପ୍ରେତ କାର୍ଯ୍ୟ, ପ୍ରେତ କୃତ୍ୟ, ପ୍ରେତ କ୍ରିୟା [ଅନ୍ୟରୂପ] ଅନ୍ତ୍ୟେଷ୍ଟି କ୍ରିୟା—Obsequal rites, funeral rites.

**ପ୍ରେତ ଗୃହ**—ସଂ. ବି—୧ । ଶ୍ମଶାନ—1. Cremation ground; Preta gruha burning ground.
ପ୍ରେତନ ବନ, ପ୍ରେତ ଭୂମି [ଅନ୍ୟରୂପ] ୨ । (ଆଧୁନିକ ପ୍ରୟୋଗ) କବର ସ୍ଥାନ—2, Burial ground; cemetery.
୩ । (ଆଧୁନିକ ପ୍ରୟୋଗ) ଶବ ସଂରକ୍ଷଣ ଗୃହ—
3. Sepulchre; a vault for preserving dead bodies.

**ପ୍ରେତ ତର୍ପଣ**—ସଂ. ବି—ମରଣାବଧି ସପିଣ୍ଡୀକରଣ ପର୍ଯ୍ୟନ୍ତ ମୃତବ୍ୟକ୍ତିର Preta tarpaṇa ପ୍ରେତ ଉଦ୍ଦେଶ୍ୟରେ ଜଳଦାନ—Offering oblations of water to the departed soul during the funerals.

**ପ୍ରେତ ତା(ତ୍ୱ)**—ସଂ. ବି—(ପ୍ରେତ+ତା; ତ୍ୱ)—୧ । ପ୍ରେତର ଅବସ୍ଥା—
Preta tā (twa) 1. The state of being a ghost.
୨ । ପ୍ରେତର ଧର୍ମ—2. The acts of a ghost.

**ପ୍ରେତ ଦାହ**—ସଂ. ବି—( ୬ଷ୍ଠୀ ତତ୍, ପ୍ରେତ+ଦାହ )—ଶବଦାହ;
Preta dāha ମୁର୍ଦାର ପୋଡ଼ା (ହି. ଶ)—Cremation; burning of a dead body.

**ପ୍ରେତ ଦେହ**—ସଂ. ବି—(୬ଷ୍ଠୀ ତତ୍)—ମରିବା ପରଠାରୁ ସପିଣ୍ଡୀକରଣ ପର୍ଯ୍ୟନ୍ତ ମୃତବ୍ୟକ୍ତିର ଆତ୍ମା ଧାରଣ କରିବା ରୂପ—
Preta deha — The ghostly form assumed by the soul of a dead person before the completion of his or her obsequal rites.
(ପ୍ରେତ ଶରୀର—ଅନ୍ୟରୂପ)

**ପ୍ରେତ ଧୂମ**—ସଂ. ବି—ଶବଦାହର ଧୂଆଁ, ଚିତାଧୂମ—
Preta dhūma — The smoke rising from a funeral pyre.

**ପ୍ରେତ ନଦୀ**—ସଂ. ବି— ନରକସ୍ଥ ବୈତରଣୀ ନଦୀ—
Preta nadī — The river of hell; styx.
[ଦ୍ର—ଏ ନଦୀକୁ ମୃତବ୍ୟକ୍ତିର ଆତ୍ମା ପାରି ହୁଏ ।]

**ପ୍ରେତ ନିର୍ଯାତକ**—ସଂ. ବି—(ପ୍ରେତ+ନିର୍ଯାତକ)—ଯେଉଁ ଲୋକ ଧନ ଗ୍ରହଣ କରି ମୃତବ୍ୟକ୍ତିର ଶବଦାହାଦି କର୍ମ କରନ୍ତି—
Preta nirjātaka — A person who disposes of or cremates the dead bodies for money.

**ପ୍ରେତ ନିର୍ହାରକ**—ସ. ବି—ମଡ଼ାସାଙ୍ଗିଆ ଲୋକ; ଯେଉଁ ଲୋକ ମୁର୍ଦାରକୁ ଶ୍ମଶାନକୁ ନିଏ—
Preta nirhāraka — Carrier of a dead body to the cremation or burial ground.

**ପ୍ରେତ ପକ୍ଷ**—ସଂ. ବି—ପିତୃପକ୍ଷ; ଆଶ୍ୱିନ କୃଷ୍ଣପକ୍ଷ—
Preta paksha — The dark fortnight of the month of Āswina.
[ଦ୍ର—ଏହି ପକ୍ଷରେ ପ୍ରତିଦିନ ପିତୃଲୋକଙ୍କୁ ତର୍ପଣ କରାଯାଏ ଓ ପାର୍ବଣ ତିଥିରେ ମହାଳୟା ଶ୍ରାଦ୍ଧ କରାଯାଏ ।]

**ପ୍ରେତ ପଟହ**—ମୃତ୍ୟୁକାଳରେ ବାଦନୀୟ ବାଦ୍ୟବିଶେଷ—
Preta paṭaha — Funeral drum.

**ପ୍ରେତ ପତି** - ସଂ. ବି ( ୬ଷ୍ଠୀ ତତ୍ )—ଯମ—
Preta pati — The God of death.
(ପ୍ରେତନାଥ, ପ୍ରେତରାଜ, ପ୍ରେତରାଟ୍—ଅନ୍ୟରୂପ)

**ପ୍ରେତ ପାବକ**—ସଂ. ବି—ଚରଗୁଣୀ ଆଲୁଅ (ହି. ଶ)—
Preta pābaka — Ignis fatuns; will o' the wisp

**ପ୍ରେତ ପିଣ୍ଡ**—ସଂ. ବି— (ମ. ପ. ଲୋ;ପ୍ରେତ ଉଦ୍ଦେଶ୍ୟରେ ପ୍ରଦତ୍ତ ପିଣ୍ଡ)—ମରଣାବଧି ସପିଣ୍ଡୀକରଣ ପର୍ଯ୍ୟନ୍ତ ପ୍ରେତର ଉଦ୍ଦେଶ୍ୟରେ ପ୍ରଦତ୍ତ ପିଣ୍ଡ ବା ଅନ୍ନଗୋଳକ—
Preta piṇḍa — Oblation of boiled rice-balls offered to the ghost of a dead person from the day of death till Sapiṇḍikaraṇa.

**ପ୍ରେତପୁର**—ସ. ବି—ଯମାଳୟ; ଯମପୁର—
Pretapura — The abode of Jama.
ପ୍ରେତପୁରୀ, ପ୍ରେତବାସ, ପ୍ରେତଲୋକ } ଅନ୍ୟରୂପ
[ ଦ୍ର—ମୃତ୍ୟୁର ଏକବର୍ଷ ଅର୍ଥାତ୍ ସପିଣ୍ଡୀକରଣ ପର୍ଯ୍ୟନ୍ତ ମୃତ ବ୍ୟକ୍ତିର ପ୍ରେତ ଏହିଠାରେ ରହେ । ]

**ପ୍ରେତ ରାକ୍ଷସୀ**—ସ. ବି. ( ତୁଳସୀ ଗଛ ଥିବା ସ୍ଥାନରେ ପ୍ରେତ ରହନ୍ତି ନାହିଁ )—ତୁଳସୀବୃକ୍ଷ—
Preta rākshasī — The Holy Basil plant.

**ପ୍ରେତଶିଳା**—ସ. ବି—ପ୍ରେତମାନଙ୍କୁ ପିଣ୍ଡ ଦେବା ନିମନ୍ତେ ଗୟାରେ ସ୍ଥିତ ପ୍ରସ୍ତରଖଣ୍ଡ—
Pretaśilā — A slab of stone at Gayā where oblations are offered to departed souls.

**ପ୍ରେତଶୁଦ୍ଧି**—ସ. ବି—ଜ୍ଞାତିର ମୃତ୍ୟୁର ଦଶାହ ଦିନ ନଖ ବାଳ କଟାଇ ସ୍ନାନ କରି ଶୁଦ୍ଧ ହେବା କ୍ରିୟା—
Pretaśuddhi — Purification done by the kinsmen on the 10th day of a person's death.

**ପ୍ରେତଶ୍ରାଦ୍ଧ**—ସଂ. ବି—ପ୍ରେତ ଉଦ୍ଦେଶ୍ୟରେ କରାଯିବା ଶ୍ରାଦ୍ଧ—
Pretaśrāddha — Funeral oblations made to the departed soul.
( ପ୍ରେତମେଧ—ଅନ୍ୟରୂପ )
[ ଦ୍ର—ଏହା ମୃତ୍ୟୁର ପର ଦିନଠାରୁ ଏକ ବରଷ ମଧ୍ୟରେ ସପିଣ୍ଡୀକରଣ ପର୍ଯ୍ୟନ୍ତ କରବାକୁ ହୁଏ ଓ ଏଥିର ସଂଖ୍ୟା ୧୬ଟି ।]

**ପ୍ରେତସାଇଁ**—ଦେ. ବିଣ ( ସ. ପ୍ରେତସ୍ୱାମୀ )—ପ୍ରେତସ୍ୱାମୀ; ଯମ; ପରେତରାଟ୍—
Pretasāiṅ — The God of death.
ଦେଖାଇବ ଏହାକୁ ଆଜ ପ୍ରେତସାଇଁ—କୃଷ୍ଣସିଂହ, ମହାଭାରତ, ସଭା ।

**ପ୍ରେତହାର**—ସ. ବି—୧ । ମଡ଼ାକଢ଼ା; ଜ୍ଞାତି—
Pretahār — 1. Kinsmen who carry the dead body to the cremation ground.
(ପ୍ରେତହାରକ—ଅନ୍ୟରୂପ)
୨ । ଶବବାହକ—2. Carriers of a corpse.

**ପ୍ରେତା**—ସ. ବିଣ. ସ୍ତ୍ରୀ—ସ୍ତ୍ରୀ ପ୍ରେତ—
Pretā — A female ghost.
ବି—୧ । ନରକର ସୀମାସ୍ଥ ବୈତରଣୀ ନଦୀ—
1 The mythological river on the confines of the hell.
୨ । ଭଗବତୀ କାତ୍ୟାୟନୀ—2. A name of Durgā.

**ପ୍ରେତାଧିପ**—ସ. ବି ( ୬ଷ୍ଠୀ ତତ୍; ପ୍ରେତ+ଅଧିପ )—ଯମରାଜ—
Pretādhipa — The God of Death.
(ପ୍ରେତାଧିପତି, ପ୍ରେତାଧିଶ, ପ୍ରେତାଧୀଶ୍ୱର, ପ୍ରେତେଶ—ଅନ୍ୟରୂପ)

**ପ୍ରେତାନ୍ନ**—ସ. ବି—ପ୍ରେତୋଦ୍ଦେଶ୍ୟରେ ଦିଆଯିବା ଅନ୍ନ—
Pretānna — Food offered to a departed soul.

**ପ୍ରେତି**—ସଂ. ବି—୧ । ମରଣ ( ହି. ଶ )—
Preti — 1. Death.
୨ । ଅନ୍ନ, ଅନାଜ (ହି. ଶ)—2, Food; food lain.

**ପ୍ରେତିକ**—ସଂ. ବି—ପ୍ରେତ ( ହି. ଶ )—
Pretika — The ghost or spirit of a departed person.

**ପ୍ରେତି(ତୁ)ଣୀ**—ଦେ. ବି. ସ୍ତ୍ରୀ ( ସଂ. ପ୍ରେତା )—ପ୍ରେତା; ପ୍ରେତଯୋନି ଧାରଣୀ ସ୍ତ୍ରୀ—
Preti(tu)ṇī — A female spirit or goblin.
ପ୍ରେତିଣୀ **प्रेतनी, प्रेतिनी**

**ପ୍ରେତୋନ୍ମାଦ**—ସଂ. ବି—ଭୂତାଦାଣୀ ଲାଗିବା ରୋଗ; ଉନ୍ମାଦରୋଗବିଶେଷ—
Pretonmāda — Possession by an evil spirit; a kind of insanity.
[ ଦ୍ର—ଏ ରୋଗୀର ଶରୀର କମ୍ପେ, ରୋଗୀ ଖିଆପିଆ ଛାଡ଼ିଦିଏ, ରୋଗୀର ଦୀର୍ଘଶ୍ୱାସ ହୁଏ, ରୋଗୀ ଘରୁ ପଳାଇ ଯାଏ ଓ ଖୁବ୍ ପାଟି କରେ ଓ ଲୋକଙ୍କୁ ଗାଳିଦିଏ—ହି. ଶ । ]

**ପ୍ରେତ୍ୟ**—ସଂ. ବ—ପରଲୋକ; ଲୋକାନ୍ତର (ହି ଶ)—
Pretya Existence after death.

**ପ୍ରେତ୍ୟଭାବ**—ସଂ. ବ. ( ହିନ୍ଦୁ ଦର୍ଶନ )—ବାରମ୍ବାର ସଂସାରରେ
Pretyabhāba ଜନ୍ମଗ୍ରହଣ ଓ ମରଣ ( ହି. ଶ )—
( Hindu philosophy ) Repeated births and deaths of a person in this world.

**ପ୍ରେମ**—ସ. ବ. ( ପ୍ରିୟ+ଭାବେ. ଇମନ୍; ନିପାତନ )—
Prema ୧ । ସ୍ତ୍ରୀ ଓ ପୁରୁଷର ପରସ୍ପର ପ୍ରତି ପ୍ରଣୟ; ପ୍ରୀତି; ଅନୁରାଗ— 1. Love.
୨ । ସ୍ନେହ—2. Affection.
୩ । ଆସକ୍ତି—3 Attachment; fondness
୪ । ଭକ୍ତି—4 Devotion; regard.
୫ । ଆନନ୍ଦ; ଆମୋଦ—5. Pleasure; joy.
୬ । କୌତୁକ; ପରିହାସ—
6. Joke; pastime; sport
୭ । ଦୟା—7. Kindness.
୮ । ମୈତ୍ରୀ; ବନ୍ଧୁତା—
8. Friendship; intimacy
[ ଦ୍ର—ପ୍ରେମ ପଞ୍ଚବିଧ, ଯଥା—ଶାନ୍ତ, ଦାସ୍ୟ, ସଖ୍ୟ, ବାତ୍ସଲ୍ୟ ଓ ମାଧୁର୍ଯ୍ୟ । ମାଧୁର୍ଯ୍ୟ ସର୍ବାପେକ୍ଷା ଶ୍ରେଷ୍ଠ ପ୍ରେମ । ସନକାଦି ମୁନିମାନେ ଭଗବାନଙ୍କୁ ଶାନ୍ତ ଭାବରେ ଉପାସନା କରୁଥିଲେ । ସାଧାରଣ ଭକ୍ତମାନଙ୍କର ଦାସ୍ୟ ଭାବ । ଅର୍ଜୁନ ପ୍ରଭୃତି ସଖ୍ୟ ଭାବରେ ଶ୍ରୀକୃଷ୍ଣଙ୍କୁ ଲାଭ କରିଥିଲେ । ଯଶୋଦା ବାତ୍ସଲ୍ୟ ଭାବରେ ଶ୍ରୀକୃଷ୍ଣଙ୍କୁ ପାଇଥିଲେ । ଶ୍ରୀ ରାଧିକା ମାଧୁର୍ଯ୍ୟ ଭାବ ଦ୍ୱାରା ଶ୍ରୀକୃଷ୍ଣଙ୍କୁ ଲାଭ କରିଥିଲେ ।
ଜଗବନ୍ଧୁ. ପ୍ରାଚୀନ ଉତ୍କଳ । ]

**ପ୍ରେମ କରିବା**—ଦେ. କ୍ରି—୧ । (ସ୍ତ୍ରୀ ପୁରୁଷ ପ୍ରତି ବା ପୁରୁଷ ସ୍ତ୍ରୀ ପ୍ରତି)
Prema karibā ପ୍ରଣୟ କରିବା—1. To love (said of a male or female towards one of the opposite sect
ପ୍ରେମ କରା
प्रेम करना
୨ । ଆନନ୍ଦ ଉପଭୋଗ କରିବା—
2. To make merriment.
୩ । ଭକ୍ତି କରିବା—3. To love with devotion.

**ପ୍ରେମ କଳହ**—ସ. ବ. ( ମ. ପ ଲୋ )—
Prema kalaha ୧ । ପ୍ରେମିକଙ୍କ ମଧ୍ୟରେ କଳହ—
1. Quarrels between lovers.
୨ । ଥଟ୍ଟାରେ କଳକଳଅ—2. Farcical quarrel; a show of quarrelling.

**ପ୍ରେମ ଗର୍ବିତା**—ସ. ବ. ସ୍ତ୍ରୀ —ସାହିତ୍ୟ ବର୍ଣ୍ଣିତା ନାୟିକାବିଶେଷ, ଆପଣା
Prema garbitā ପତିର ଅନୁରାଗ ଯୋଗୁଁ ଗର୍ବ ଅନୁଭବ କରୁଥିବା ସ୍ତ୍ରୀ (ହି. ଶ)—A woman who is proud of her husband's attachment to her.

**ପ୍ରେମ ଜନକ**—ସ. ବଣ—ଯାହା ମନରେ ପ୍ରେମ ଜନ୍ମାଏ—
Prema janaka Producing affection or love.

**ପ୍ରେମ ଜଳ**—ସ. ବ. ( ମ. ପ. ଲୋ )—
Prema jala ୧ । ପ୍ରସ୍ୱେଦ; ଝାଳ ( ହି. ଶବ୍ଦସାଗର ) —
ପ୍ରେମ ନୀର } ଅନ୍ୟରୂପ
ପ୍ରେମ ବାରି }
1. Perspiration; sweat.
୨ । ପ୍ରେମ ଅଶ୍ରୁ; ପ୍ରେମରେ ଆଖିରୁ ବହିବା ଲୁହ; ଆନନ୍ଦାଶ୍ରୁ—2. Tears due to a paroxysm of delight

**ପ୍ରେମଜ୍ଞ**—ଦେ. ବ—ପ୍ରେମ ଜାଣିଥିବା—
Premajña Loving; versed in the mysteries of love.
(ପ୍ରେମଜ୍ଞିଏ—ଗ୍ରାମ୍ୟରୂପ)
ପ୍ରେମଜ୍ଞ ପୁରୁଷ ପାଇବୁ, ଏ ଯୌବନ ଗାରୁ ଦେବୁ ।
ଭୂପତି. ପ୍ରେମପଞ୍ଚାମୃତ ।

**ପ୍ରେମ ତରଙ୍ଗ**—ସଂ. ବ. (ରୂପକ; ପ୍ରେମ+ତରଙ୍ଗ)—
Prema taranga ଢେଉ ପରି ଉଚ୍ଛୁଳୁଥିବା ପ୍ରେମ—
Gushing love.

**ପ୍ରେମ ଡୋର(ରି)**—ଦେ. ବ ( ସଂ. ପ୍ରେମ+ଦୋରକ )—
Prema dora(ri) ପ୍ରେମରୂପ ବନ୍ଧନ; ପ୍ରେମବନ୍ଧନ; ପ୍ରେମପାଶ—
ପ୍ରେମେର ଡୋରୀ प्रेमकी डोरी Tie of love.
(ପ୍ରେମ ଫାଶ—ଅନ୍ୟରୂପ)

**ପ୍ରେମ ପଞ୍ଚାମୃତ**—ଦେ. ବ. ( ନାମ )—ଭୂପତି ପଣ୍ଡିତଙ୍କ ରଚିତ ଓଡ଼ିଆ
Prema panchāmruta ପଦ୍ୟ ଗ୍ରନ୍ଥ—Title of an Oriya poem by Bhūpati Pandit.
[ ଦ୍ର—ଦିବ୍ୟସିଂହ ଦେବଙ୍କ ୮ମ ଅଙ୍କ ବା ଖ୍ରୀ ୧୭୯୪।୯୫ ସାଲରେ ଏ ଗ୍ରନ୍ଥର ରଚନା ସମାପ୍ତ ହୋଇଥିଲା । ଏଥିରେ ରାଧାକୃଷ୍ଣଙ୍କ ଲୀଳା ଓ ଗୋପୀମାନଙ୍କ ଅହେତୁକୀ ଭକ୍ତି ଓ ରାସକ୍ରୀଡ଼ା ବର୍ଣ୍ଣିତ ହୋଇଅଛି । ଏ ଗ୍ରନ୍ଥକୁ ଅରୁଣୋଦୟ ପ୍ରେସ ଓ ପ୍ରାଚୀ ସମିତି ପ୍ରକାଶ କରିଥିଲେ । ]

**ପ୍ରେମ ପାଗଳ (ଲ,ଲା,ଳ)**—ଦେ. ବଣ. ପୁଂ ପ୍ରେମାର୍ତ୍ତ; ପ୍ରେମଯୋଗୁଁ
Prema pāgala (la, lā, ḷa) ଉନ୍ମତ୍ତ—Mad in love.
ପ୍ରେମ ବାଇ, ପ୍ରେମ ବାଉଳ(ଳା) } ଅନ୍ୟରୂପ
ପ୍ରେମ ବାୟା, ପ୍ରେମ ବାଉଳା }
ପ୍ରେମପାଗଳୀ(ଳୀ), ପ୍ରେମବାଇ, ପ୍ରେମ ବାୟାଣୀ, } ସ୍ତ୍ରୀ
ପ୍ରେମ ବାଉଲୀ, ପ୍ରେମ ବାଉଳୀ }

**ପ୍ରେମପାତ୍ର**—ସ. ବ.—ଯାହାକୁ ପ୍ରେମ କରାଯାଏ—
Prema pātra One's beloved person.

**ପ୍ରେମପାଶ**—ସଂ ବ.—(ରୂପକ; ପ୍ରେମ+ପାଶ)—ଜାଲରୂପେ କଳ୍ପିତ
Prema pāsa ପ୍ରେମ; ପ୍ରେମ ବନ୍ଧନ—Tie of love.
(ପ୍ରେମ ଜାଲ—ଅନ୍ୟରୂପ)

**ପ୍ରେମ ପୁତ୍ତଳିକା**—ସ. ବ. (୬ଷ୍ଠୀ ତତ୍)—୧ । ପ୍ରିୟତମା ସ୍ତ୍ରୀ (ହି.ଶ.)—
Prema puttalikā 1. One's beloved woman.
(ପ୍ରେମ ପିତୁଳା(ଳୀ)—ଦେଶଜ ରୂପ) ୨ । ପତ୍ନୀ; ଭାର୍ଯ୍ୟା (ହି ଶ.)—
2 One's wife.

**ପ୍ରେମ ପୁଲକ**—ସ. ବ. (ମ. ପ. ଲୋ)—ପ୍ରେମାଧିକ୍ୟ ଯୋଗୁଁ ହେବା
Prema pulaka ରୋମାଞ୍ଚ—Horripilation or bristling of the down of one's body on account of a paroxysm of love or delight

**ପ୍ରେମ ପ୍ରଦ**—ଦେ. ବଣ.—ପ୍ରେମ ପ୍ରଦାନ କରିବା—
Prema prada Showing or ministering to love.

ଜଗତେ ପ୍ରବୃଷ ଦର ଭାସିଗ କୃଷ ଉଦର,
ଖେଦୀ ସେଖାକ ସୋଦର ପ୍ରେମ ପ୍ରଦର । ଭକ୍ତ• ପ୍ରେମସୁଧାନିଧି ।

**ପ୍ରେମ ବତୀ**—ଦେ. ବିଣ. ସ୍ତ୍ରୀ—ସ୍ନେହଶୀଳା—
Prema bati — Loving.

ସେ ପ୍ରେମବତୀଙ୍କ ସଙ୍ଗରେ, ପ୍ରେମ ଅବେଶ ରସ ରସେ ।
ଭୂପତି. ପ୍ରେମପଞ୍ଚାମୃତ ।

**ପ୍ରେମ ବନ୍ଧନ**—ସ. ବି. (ରୂପକ; ପ୍ରେମ+ବନ୍ଧନ)—ପ୍ରେମରୂପ ଗ୍ରନ୍ଥି—
Prema bandhana — Tie of love.
(ପ୍ରେମ ପାଶ, ପ୍ରେମ ବନ୍ଧ, ପ୍ରେମ ରଜ୍ଜୁ—ଅନ୍ୟରୂପ)

**ପ୍ରେମ ବିଦ୍ୟାଳୟ**—ଦେ. ବି.—ବୃନ୍ଦାବନରେ ବୈଷ୍ଣବମାନଙ୍କ ଶିକ୍ଷା ପାଇଁ
Prema bidyālaya ପ୍ରତିଷ୍ଠିତ ବିଦ୍ୟାଳୟ—A school for the Baishnabas established in Brindaban for devotees.

**ପ୍ରେମ ଭକ୍ତି**—ସ ବି. (ବୈଷ୍ଣବ ସାହିତ୍ୟ; ମ. ପ. ଲୋ;) ଗୋପୀମାନଙ୍କର
Prema bhakti ଶ୍ରୀକୃଷ୍ଣଙ୍କ ପ୍ରତି ଦେଖାଇବା ଭକ୍ତି—
The devotion or attachment practised by the Gopies towards Srikrushna.

**ପ୍ରେମଭକ୍ତି ବ୍ରହ୍ମଗୀତା**—ଦେ. ବି. (ନାମ)—ଓଡ଼ିଆ ପଦ୍ୟ ଭକ୍ତିଗ୍ରନ୍ଥ-
Prema bhakti brahmagitā ବିଶେଷ—Title of a devotional Oria poem.

[ଦ୍ର—ଏହି ଗ୍ରନ୍ଥ ପ୍ରାଚୀନ କବି ଯଶୋବନ୍ତ ଦାସଙ୍କ ଦ୍ୱାରା ରଚିତ ହୋଇଥିଲା । ଏହା ୧୯୧୯ ସାଲ ପର୍ଯ୍ୟନ୍ତ ଅପ୍ରକାଶିତ ଥିଲା ଓ ଉକ୍ତ ସାଲରେ କଟକର ପ୍ରାଚୀ ସମିତିଙ୍କ ଦ୍ୱାରା ପ୍ରକାଶିତ ହୋଇଅଛି ।]

**ପ୍ରେମ ରୂପା**—ସଂ. ବିଣ. ସ୍ତ୍ରୀ—ପ୍ରେମର ଅବତାରରୂପିଣୀ ସ୍ତ୍ରୀ—
Prema rūpā (a woman) Who is an incarnation of love.

**ପ୍ରେମ ଲଗା (ଗେ)ଇବା**—ଦେ. କ୍ରି.—ପ୍ରଣୟ କରିବା—
Prema lagā(ge)ibā — To make love.
প্রেমলাগান প্রেমলগানা

**ପ୍ରେମ ଷୋଡ଼ଶୀ**—ଦେ. ବି—ମନ୍ତ୍ରରାଜ (ଦେଖ)—
Prema shordasi — Mantrarāja (See)

ପ୍ରେମଷୋଡ଼ଶୀ ସେ ଭଜିବ, ଷୋଳ ଅକ୍ଷର ମନ୍ତ୍ର ଯହିଁ ।
ଯଶୋବନ୍ତ ପ୍ରେମଭକ୍ତି ବ୍ରହ୍ମଗୀତା ।

**ପ୍ରେମ ସମୁଦ୍ର**—ସ. ବି. (ରୂପକ; ପ୍ରେମ+ସମୁଦ୍ର)—ଗଭୀର ପ୍ରେମ—
Prema samudra — Deep love; ocean of love.
(ପ୍ରେମ ସାଗର, ପ୍ରେମ ପାରାବାର, ପ୍ରେମାବ୍ଧି—ଅନ୍ୟରୂପ)

**ପ୍ରେମ ହେବା**—ଦେ. କ୍ରି—ଅତି ଆନନ୍ଦିତ ହେବା; ଖୁସିହେବା—
Prema hebā — To be exceedingly glad; to be delighted.
প্রেম হওয়া प्रेम होना

**ପ୍ରେମା**—ସ. ବି. (ପ୍ରିୟ+ଇମନ୍; ପ୍ରେମନ୍ ଶବ୍ଦ)—୧ । ସ୍ନେହ; ପ୍ରଣୟ—
Premā — 1. Love: affection.

ନନ୍ଦ ନନ୍ଦନ ପ୍ରେମା ପ୍ରେମରେ ବୁଡ଼ିଲେ କମା ।
କବିସୂର୍ଯ୍ୟ. ରସୋପନିଷଦ୍, ନ ଗୀତ ।

୨ । ବାସବ; ଇନ୍ଦ୍ର—2. Indra.
୩ । ବାୟୁ—3. Wind.

**ପ୍ରେମାକାଙ୍କ୍ଷୀ**—ସଂ. ବିଣ. ପୁଂ—ଯେ ଅନ୍ୟର ପ୍ରେମ ପାଇବାକୁ ଇଚ୍ଛା-
Premākānkshi କରେ—Having a desire to be
(ପ୍ରେମାକାଙ୍କ୍ଷିଣୀ—ସ୍ତ୍ରୀ) loved; desiring the love of another.

**ପ୍ରେମାତିଶଯ୍ୟ**—ସ. ବି. (ଷଷ୍ଠୀ ତତ୍; ପ୍ରେମ+ଅତିଶୟ+ଭାବ. ଯ)—
Premātisajya ଅତ୍ୟନ୍ତ ପ୍ରେମ—Excessive love;
(ପ୍ରେମାଧିକ୍ୟ—ଅନ୍ୟରୂପ) excess of love.

**ପ୍ରେମାତୁର**—ସ. ବିଣ. ପୁଂ. (ତୃତୀୟା ତତ୍; ପ୍ରେମ+ଆତୁର)—
Premātura ପ୍ରେମ ଯୋଗୁଁ ହିତାହିତ ବିବେଚନାଶୂନ୍ୟ—
(ପ୍ରେମାର୍ତ୍ତ—ଅନ୍ୟରୂପ) Mad in love.
(ପ୍ରେମାତୁରା; ପ୍ରେମାର୍ତ୍ତା—ସ୍ତ୍ରୀ) (ପ୍ରେମାତୁରତା—ବି)

**ପ୍ରେମାନଳ**—ସ. ବି. (ରୂପକ; ପ୍ରେମ+ଅନଳ)—ଅନଳ ସଙ୍ଗେ ତୁଳିତ
Premānala ପ୍ରେମ—The flame of love.

**ପ୍ରେମାନୁରକ୍ତ**—ସ. ବି. (ତୃତୀୟା ତତ୍; ପ୍ରେମ+ଅନୁରକ୍ତ)—
Premānurakta ପ୍ରେମଦ୍ୱାରା ବଶୀଭୂତ—Fallen in love;
(ପ୍ରେମାସକ୍ତ—ଅନ୍ୟରୂପ) affectionately devoted

ପ୍ରେମାନୁରକ୍ତି } ବି
ପ୍ରେମାସକ୍ତି }
[ଦ୍ର—ଏହିପରି ପ୍ରେମାର୍ଣ୍ଣବ, ପ୍ରେମାଭିଳାଷିଣୀ, ପ୍ରେମାନୁରାଗ, ପ୍ରେମାନୁରୂପ ଆଦି ଶବ୍ଦ ହୁଏ ।]

**ପ୍ରେମାଳାପ**—ସ. ବି—୧ । ସ୍ନେହାଳାପ; ପ୍ରେମପୂର୍ଣ୍ଣ କଥୋପକଥନ—
Premālāpa 1. Affectionate conversation.
୨ । ପ୍ରେମିକ ପ୍ରେମିକାଙ୍କ ମଧ୍ୟରେ କଥୋପକଥନ—
2. Love talk.

**ପ୍ରେମାଲିଙ୍ଗନ**—ସ. ବି. (ମ. ପ. ଲୋ; ପ୍ରେମ+ଆଲିଙ୍ଗନ)—
Premālingana ୧ । ସ୍ନେହବଶତଃ ଆଲିଙ୍ଗନ—
ପ୍ରେମାଲିଙ୍ଗିତ-ପୁଂ } ବିଣ 1. Affectionate embrace.
ପ୍ରେମାଲିଙ୍ଗିତା-ସ୍ତ୍ରୀ } ୨ । ପ୍ରେମିକ ପ୍ରେମିକାଙ୍କର ପ୍ରଣୟ ଘଟିତ ଆଲିଙ୍ଗନବିଶେଷ—2. A kind of amatory embrace.

**ପ୍ରେମାଶ୍ରୁ**—ସ ବି. (ମ. ପ. ଲୋ; ପ୍ରେମ+ଅଶ୍ରୁ)—
Premāsru ଆନନ୍ଦାଶ୍ରୁ; ପ୍ରେମର ଆଧିକ୍ୟରୁ ବୋହିବା ଲୋତକ—
Tears of love.

**ପ୍ରେମିକ**—ସ. ବିଣ. ପୁଂ. (ପ୍ରେମ+ଇକ)—୧ । ଅନୁରକ୍ତ; ପ୍ରଣୟୀ—
Premika 1. Loving; attached to.
(ପ୍ରେମୀ—ଅନ୍ୟରୂପ) ୨ । ସ୍ନେହୀ—2 Affectionate.
ପ୍ରେମିକା } ସ୍ତ୍ରୀ ୩ । ଭକ୍ତିଶୀଳ—3 Devoted.
ପ୍ରେମିଣୀ } ୪ । (ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ ଯଥା—ବିଦ୍ୟାପ୍ରେମିକ; ପଣ୍ଡିତପ୍ରେମିକ)—ଯେ ଅମୁକ ବିଷୟ ବା ବ୍ୟକ୍ତିକୁ ଖୁବ ସ୍ନେହ କରେ; ଅନୁରାଗୀ—
3. Having fondness or love for.
ସ. ବି. ପୁଂ—ପ୍ରଣୟୀ ପୁରୁଷ—A male lover

**ପ୍ରେୟ**—ଦେ. ବିଣ.. (ସଂ. ପ୍ରେୟଃ)—ପ୍ରେୟଃ (ଦେଖ)
Preya প্রেয় प्रेय Preyah (See)

**ପ୍ରେୟଃ**—ସଂ. ବିଣ. ପୁଂ. (ପ୍ର+ଇୟସ୍; ପ୍ରେୟସ୍ ଶବ୍ଦ)—
Preyah ଦୟିତ; ପ୍ରିୟ—Dear; loved.

(ପ୍ରେୟାନ୍—ଅନ୍ୟରୂପ) ବ—୧ । ହୃଦୟବଲ୍ଲଭ; କାନ୍ତ; ପ୍ରିୟତମ
(ପ୍ରେୟସୀ—ସ୍ତ୍ରୀ) ପୁରୁଷ—1. One's sweet-heart; lover.
(ପ୍ରେୟଃ—ବହୁବଚନ) ୨ । ପତି; ସ୍ୱାମୀ—2. Husband; lord.

**ପ୍ରେୟଃମାର୍ଗ**—ସଂ. ବ—ଅବଦ୍ୟାମାର୍ଗ;ଯେଉଁ ମାର୍ଗ ସାଂସାରିକ ଜଂଜାଳରେ
Preyaḥ mārga ମନୁଷ୍ୟଙ୍କୁ ପକାଏ—The way of worldly enjoyment.

**ପ୍ରେୟସୀ**—ସ. ବଣ. ସ୍ତ୍ରୀ—(ପ୍ରେୟସ୍ ଶବ୍ଦ +ସ୍ତ୍ରୀ. ଈ)—ପ୍ରିୟତମ (ସ୍ତ୍ରୀ)—
Preyasī Dear or beloved (woman).
ବ—ପ୍ରିୟା; ଦଇତା—The mistress of one's heart.

**ପ୍ରେରକ**—ସ. ବଣ. ପୁଂ—(ପ୍ର+ଈର୍ ଧାତୁ=ଗମନ କରିବା ଣିଚ୍=
Preraka ପ୍ରେର ଧାତୁ+କର୍ତ୍ତୃ. ଅକ)—୧ । ଯେ ପଠାଏ;
(ପ୍ରେରିକା—ସ୍ତ୍ରୀ) ପଠାଇବା ବ୍ୟକ୍ତି—1. Sending.
୨ । ପ୍ରୟୋଜକ; ନିଯୋଗକାରୀ—2. Employing.

**ପ୍ରେରଣ**—ସଂ. ବ—(ପ୍ର+ଈର୍ ଧାତୁ ଣିଚ ପ୍ରେର୍ ଧାତୁ=ପଠାଇବା +
Preraṇa ଭାବ. ଅନ)—୧ । ପଠାଇବା—1. Sending; despatching.
ପ୍ରେରିତ, ପ୍ରେରଣୀୟ, ପ୍ରେରିତବ୍ୟ } ବଣ ୨ । ନିୟୋଗ କରିବା; ନିୟୋଜନ—
2. Engaging; directing.
୩ । ଆଜ୍ଞା କରିବା—3. Ordering.
୪ । ପ୍ରୟୋଜକ—4. Causing.
ପ୍ରାଦେ (ଗଡ଼ଜାତ) ବ—ଭେଟି—Presents.

**ପ୍ରେରଣା**—ସଂ. ବ—(ପ୍ରେରଣ+ସ୍ତ୍ରୀ. ଆ)—୧ । ପଠାଇବା—
Preraṇā 1. Sending.
୨ । ପ୍ରବର୍ତ୍ତାଇବା—2. Urging; inciting.
୩ । ପ୍ରବୃତ୍ତି—3. Impulse.
୪ । ଆଜ୍ଞା—4. Command; precept.

**ପ୍ରେରଣାର୍ଥକ କ୍ରିୟା**—ସଂ. ବ—(ବ୍ୟାକରଣ)—ଅନ୍ୟ ଦ୍ୱାରା କୌଣସି
Preraṇārthaka kriyā କ୍ରିୟା ସାଧନ କରାଇବା କ୍ରିୟା ଯେଉଁ ରୂପ ଦ୍ୱାରା ସୂଚିତ ହୁଏ; ଯଥା—ଲେଖାଇବା; ଦିଆଇବା—
(grammar) Causative form of verbs.

**ପ୍ରେରୟିତା**—ସଂ. ବଣ. ପୁଂ—(ପ୍ର+ଈର୍ ଧାତୁ. ଣିଚ୍+ତୃ)—
Prerayitā ୧ । ଯେ ପଠାଏ—1. Sending.
(ପ୍ରେରୟିତ୍ରୀ—ସ୍ତ୍ରୀ) ୨ । ଯେ ପ୍ରବର୍ତ୍ତାଏ—2. Instigating.
୩ । ଆଦେଶକର୍ତ୍ତା—3. Commanding.
୪ । ନିଯୋଗକାରୀ—4. Employing.

**ପ୍ରେରିତ**—ସ. ବଣ—(ପ୍ର+ଈର୍ ଧାତୁ. ଣିଚ୍+ତ)—
Prerita ୧ । ପଠାଯାଇଥିବା—1. Sent; despatched; directed
୨ । ଆଜ୍ଞପ୍ତ; ଆଦିଷ୍ଟ—2. Commanded; ordered.
୩ । କ୍ଷମତା ପ୍ରାପ୍ତ—
3 Authorised; commissioned.
୪ । ନିଯୋଜିତ—4. Engaged; employed.
୫ । ବିସର୍ଜିତ—5. Abandoned.
୬ । ବିତାଡ଼ିତ; ଧକ୍କା ଦିଆଯାଇଥିବା (ହି. ଗ)—
6. Driven away; pushed away.
ଦେ. ବ—୧ । ଈଶ୍ୱରଦୂତ; ପଏଗମ୍ବର—1. Apostle, Divine messenger, messiah.
୨ । ଦୂତ; ବାର୍ତ୍ତାବହ—
2. A messenger; a news-carrier.
୩ । କ୍ଷମତାପ୍ରାପ୍ତ କାରପରଦାଜ—
3 Attorney; authorised agent.

**ପ୍ରେରିତ ପତ୍ର**—ସଂ. ବ—(ଅଧୁନିକ ପ୍ରୟୋଗ)—ସମ୍ବାଦ ପତ୍ରରେ
Prerita patra ପ୍ରକାଶିତ ସମ୍ବାଦଦାତାମାନଙ୍କ ପତ୍ର—
Letter from a correspondent of a newspaper; a despatch; correspondence.

**ପ୍ରେରିବା**—ଦେ. (ପଦ୍ୟ) କ୍ରି—ପ୍ରେରଣ କରିବା—
Preribā ପ୍ରେରା प्रेरणा करना To send; to despatch.
ନିଜ କୁଶଳବାର୍ତ୍ତା ନିଜ ହସ୍ତରେ
ପ୍ରେରିବ ପ୍ରିୟାପାଶେ ନିଜ କଟରେ—ରାଧାନାଥ, ମେଘଦୂତ।

**ପ୍ରେଷ**—ସଂ. ବ—(ପ୍ର+ଈଷ୍ ଧାତୁ=ଇଚ୍ଛା କରିବା ଣିଚ୍ ପ୍ରେଷି ଧାତୁ+
Presha ଭାବ. ଅ)—୧ । ପ୍ରେରଣ—1. Sending; directing.
୨ । ପୀଡ଼ା; କ୍ଳେଶ—
2. Pang, suffering; pain.
୩ । ମର୍ଦ୍ଦନ—3. Pressing; rubbing.
୪ । ଉନ୍ମାଦ—
4. Phrenzy; intoxication; insanity.

**ପ୍ରେଷକ**—ସ. ବଣ. ପୁଂ (ପ୍ର+ଇଷ୍ ଧାତୁ ଣିଚ୍+କର୍ତ୍ତୃ. ଅକ)—
Preshaka (ପ୍ରେଷିକା—ସ୍ତ୍ରୀ) ୧ । ପ୍ରେରକ—1. Sending.
୨ । ଆଜ୍ଞାଦାତା—2. Commanding.
୩ । ନିୟୋଜନକାରୀ—3. Employing.

**ପ୍ରେଷଣ(ଣା)**—ସ. ବ (ପ୍ର+ଇଷ୍ ଧାତୁ ଣିଚ୍+ଭାବ. ଅନ)—
Preshaṇa(ṇā) ୧ । ପ୍ରେରଣ; ପଠାଇବା—
1. Sending; directing
ପ୍ରେଷିତ, ପ୍ରେଷଣୀୟ, ପ୍ରେଷିତବ୍ୟ } ବଣ ୨ । ଆଜ୍ଞା ଦେବା—
2. Ordering; directing.

**ପ୍ରେଷିତ**—ସ. ବଣ (ପ୍ର+ଇଷ୍ ଧାତୁ+ତ)—ପ୍ରେରିତ (ଦେଖ)
Preshita Prerita (See)
ସ. ବ—ସଙ୍ଗୀତର ସ୍ୱରସାଧନବିଶେଷ (ଯଥା—ସାରେ, ରେଗା, ଗାମା, ମାପା, ପାଧା, ଧାନି, ନିସା; ସାନି, ନିଧା, ଧାପା, ପାମା, ମାଗା, ଗାରେ, ରେସା—ହି. ଶ)—
A kind of musical practice.

**ପ୍ରେଷିତବାନ୍**—ସ. ବଣ ପୁଂ (ପ୍ରେଷିତ+ବତ୍; ୧ମା. ୧ବ)—ଯାହାକୁ
Preshitabān ପ୍ରେରଣ କରାଯାଉଅଛି (ଜ୍ଞାନେନ୍ଦ୍ର)—
(ପ୍ରେଷିତବତୀ—ସ୍ତ୍ରୀ) Who is being despatched.

**ପ୍ରେଷ୍ଠ**—ସ. ବଣ. ପୁଂ (ପ୍ରିୟ+ଅତ୍ୟର୍ଥେ. ଇଷ୍ଠ)—ଅତି ପ୍ରିୟ;
Preshṭha (ପ୍ରେଷ୍ଠା—ସ୍ତ୍ରୀ) ପ୍ରିୟତମ; ପ୍ରେୟାନ୍—Dearest.

**ପ୍ରେଷ୍ଠ୍ୟା**—ସ. ବି. ସ୍ତ୍ରୀ—୧ । ପ୍ରିୟତମା ସ୍ତ୍ରୀ ( ହ୍ର. ଶ )—
Preshthyā 1. Dearest lady.
୨ । ଜଙ୍ଘ ( ହ୍ର. ଶ )—2. Thigh.

**ପ୍ରେଷ୍ୟ**—ସ. ବଣ. ପୁଂ (ପ୍ର+ଇଷ୍ ଧାତୁ+କର୍ମ. ଯ)—୧ । ଆଦିଷ୍ଟ—
Preshya 1. Ordered.
(ପ୍ରେଷ୍ୟା—ସ୍ତ୍ରୀ) ୨ । ନିଯୁକ୍ତ—2 Engaged; employed.
୩ । ପ୍ରେରିତ—3. Sent.
୪ । ପ୍ରେରଣୀୟ—4. Fit to be sent or engaged
ବି—୧ । ଭୃତ୍ୟ; ଦାସ—1. Servant; attendant
୨ । ଦୂତ—2. Messenger.

**ପ୍ରେଷ୍ୟା**—ସ. ବି. ସ୍ତ୍ରୀ—୧ । ଜଙ୍ଘ—
Preshyā 1 Thigh.
୨ । ଦାସୀ—2 Maid servant.

**ପ୍ରେସ୍**—ବୈଦେ. ବି(ଇଂ)—୧ । ପ୍ରିଣ୍ଟିଙ୍ଗ୍ ପ୍ରେସ୍; ଛାପାଯନ୍ତ୍ର; ମୁଦ୍ରାଯନ୍ତ୍ର—
Pres 1. Press; printing machine.
ପ୍ରେସ ୨ । ଛାପାଖାନା; ମୁଦ୍ରାଯନ୍ତ୍ରାଳୟ—
प्रेस 2. The place where printing machine is worked
୩ । ଚାପ ଦେବାର କଳ—3. Press; pressing machine
୪ । (ଇଂ. ପ୍ରେସର) ଚାପ—4 Pressure.

**ପ୍ରେସ୍ ଆକ୍ଟ୍**—ବୈଦେ. ବି ( ଇଂ )—ମୁଦ୍ରାଯନ୍ତ୍ରରେ ମୁଦ୍ରିତ ପୁସ୍ତକ ଓ
Pres ākt ସମ୍ବାଦପତ୍ର ଆଦିର ନିୟନ୍ତ୍ରଣ ଯେଉଁ ଆଇନଦ୍ୱାରା କରା
ପ୍ରେସ ଆକଟ ଯାଇଅଛି—The Press Act; the press law.
प्रेस एक्ट ( ପ୍ରେସ୍ ଆଇନ୍—ଅନ୍ୟରୂପ )

**ପ୍ରେସ୍ କପି**—ବୈଦେ. ବି. ( ଇଂ )—ଛାପା ହେବା ପୁସ୍ତକମାନଙ୍କ ମଧ୍ୟରୁ
Pres kapi ଯେଉଁ ପୁସ୍ତକ ଖଣ୍ଡିକ ଭବିଷ୍ୟତକୁ ଲୋଡ଼ା ହେବା
ପ୍ରେସ କାପୀ ପାଇଁ ଛାପାଖାନାରେ ରଖାଯାଏ—
प्रेस कपी Press copy of a book printed in a press.

**ପ୍ରେସ୍କ୍ରିପ୍‌ସନ୍**—ବୈଦେ. ବି (ଇଂ)—ଡାକ୍ତର ରୋଗୀଙ୍କୁ ଦେବା ଔଷଧ
Preskrip-san ଓ ପଥ୍ୟାଦିର ବ୍ୟବସ୍ଥାପତ୍ର—Doctor's
ପ୍ରେସକ୍ରିପସନ प्रेसक्रिपिसन prescription.

**ପ୍ରେସ୍‌ମ୍ୟାନ୍**—ବୈଦେ. ବି ( ଇଂ )—ମୁଦ୍ରାଯନ୍ତ୍ର ଚାଳକ ବ୍ୟକ୍ତି; ପ୍ରିଣ୍ଟର—
Presmān ପ୍ରେସମେନ प्रेसमैन Pressman; printer.
( ପ୍ରେସ୍‌ମ୍ୟାନ; ପ୍ରେସ୍‌ମେନ—ଅନ୍ୟରୂପ )

**ପ୍ରେସି**—ବୈଦେ. ବି. ( ଇଂ. ଓ ଫ୍ରେଞ୍ଚ )—କୌଣସି ବିଷୟ ବିଷୟକ
Presi ସରକାରୀ ଚିଠିମାନଙ୍କର ସଂକ୍ଷିପ୍ତ ବିବରଣ—
ପ୍ରେସି प्रेसी Precis; a precise statement or summary of the correspondence or a certain subject.

**ପ୍ରେସିଡେଣ୍ଟ୍**—ବୈଦେ. ବି. (ଇଂ)—୧ । ସଭାର ସଭାପତି—
President 1. Chairman of a meeting.
ପ୍ରେସିଡେଣ୍ଟ ୨ । ଫ୍ରାନ୍ସ ଓ ଆମେରିକା ଯୁକ୍ତରାଜ୍ୟ ଆଦି ପ୍ରଜାତନ୍ତ୍ର
प्रेसिडेंट ରାଜ୍ୟର ନିର୍ବାଚିତ ପ୍ରଧାନ ଶାସନକର୍ତ୍ତା—
2. The president of a republic.
୩ । ଗ୍ରାମ୍ୟ ଚଉକିଦାରୀ ଇଉନିଅନର ପଞ୍ଚାୟତମାନଙ୍କର
ସଭାପତି—3. The president panchayet of a Chaukidari union.

**ପ୍ରେସିଡେନ୍ସି**—ବୈଦେ. ବି. (ଇଂ)—୧ । ଇଂରାଜଶାସିତ ଭାରତର
Presidensi ଶାସନ ବିଭାଗର ଭିନ୍ନ ଭିନ୍ନ ପ୍ରଦେଶ—
ପ୍ରେସିଡେନ୍ସୀ 1 Presidency; province.
प्रेसिडेंसी [ ଦ୍ର—ଭାରତରେ ବଙ୍ଗ, ମାନ୍ଦ୍ରାଜ ଓ ବୋମ୍ବେଇ ଏହି ତିନି ପ୍ରଦେଶ ପ୍ରେସିଡେନ୍ସି ନାମରେ ଖ୍ୟାତ । ]
୨ । ପ୍ରେସିଡେଣ୍ଟଙ୍କ ପଦ ବା କର୍ମ—
2. The duties or position of a President.

**ପ୍ରେସିଡେନ୍ସୀ ଜେଲ**—ବୈଦେ. ବି. (ଇଂ)—ପ୍ରାଦେଶିକ ରାଜଧାନୀରେ
Presidensi jel ପ୍ରତିଷ୍ଠିତ ଜେଲଖାନା—Presidency jail.
ପ୍ରେସିଡେନ୍ସୀ ଜେଲ प्रेसिडेंसी जैल

**ପ୍ରେସିଡେନ୍ସି ମାଜିଷ୍ଟ୍ରେଟ୍**—ବୈଦେ ବି. (ଇଂ)—ମାନ୍ଦ୍ରାଜ, ବୋମ୍ବେ ଓ
Presidensi majishtret କଲିକତା ରାଜଧାନୀମାନଙ୍କର ମୌଳିକ
ପ୍ରେସିଡେଂସୀ ମେଜିଷ୍ଟେଟ ଫଉଜଦାରୀ ମକଦମାର ବିଚାରକ
प्रेसिडेंसी मेजिष्टेट ମାଜିଷ୍ଟ୍ରେଟ—Presidency magistrate.

**ପ୍ରୈୟ**—ସ. ବି. (ପ୍ରିୟ+ଭାବ. )—ପ୍ରେମ; ସ୍ନେହ (ହ୍ର. ଶ)—
Praiya Love; affection.

**ପ୍ରୈଷ୍ୟ**—ସ. ବି—୧ । (ପ୍ରେଷ୍ୟ+ସ୍ୱାର୍ଥେ. ଅ) ଦାସ; ସେବକ—
Praishya 1 Servant
୨ । (ପ୍ରେଷ୍ୟ+ଭାବ. ଅ)—ଦାସତ୍ୱ (ହ୍ର. ଶ)—
2. Servitude.

**ପ୍ରୋକ୍ତ**—ସ. ବଣ. (ପ୍ର+ଉକ୍ତ)—୧ । ପୂର୍ବୋକ୍ତ—
Prokta 1. Aforesaid.
୨ । କଥିତ—2 Spoken; declared.
୩ । ଉଚ୍ଚାରିତ—3 Uttered.
ବି—୧ । କଥନ; କହିବା—1. Speaking.
୨ । (ପାଣିନିଙ୍କ ମତରେ) କଳ୍ପସୂତ୍ରାଦି ଶାସ୍ତ୍ର ଯାହାକି ସାକ୍ଷାତ୍ ଈଶ୍ୱର ପ୍ରଣୀତ ନୁହେଁ ବୋଲି ଉକ୍ତ ହୋଇଅଛି; 'ବ୍ରାହ୍ମଣ' ନାମରେ ଖ୍ୟାତ ବେଦାଙ୍ଗବିଶେଷ—2. Part of the Vedas said not to be the direct revelations; the traditional part of the scriptures; canonical part of the scriptures
[ ଦ୍ର—ପାଣିନି ବୈଦିକ ଶାସ୍ତ୍ରକୁ ୨ ଭାଗରେ ବିଭକ୍ତ କରି ଅଛନ୍ତି, ଯଥା—ସାକ୍ଷାତ୍ ଈଶ୍ୱର ପ୍ରଣୀତ ବା ଉକ୍ତ, ମୁନିମାନଙ୍କ ପ୍ରଣୀତ ବା ପ୍ରୋକ୍ତ । ]

**ପ୍ରୋକ୍ଷଣ**—ସ. ବି. (ପ୍ର+ଉକ୍ଷ୍ ଧାତୁ=ସେଚନ କରିବା+ଅନ)—
Prokshana ୧ । ସେଚନ; ଛିଞ୍ଚିବା—1. Sprinkling.
ପ୍ରୋକ୍ଷିତ, ପ୍ରୋକ୍ଷଣୀୟ, ପ୍ରୋକ୍ଷିତବ୍ୟ } ବଣ. ୨ । ଯଜ୍ଞୀୟ ପଶୁ ବା ବଳି ଦିଆଯିବା ଜୀବ ଉପରେ ମନ୍ତ୍ରପାଠପୂର୍ବକ ପାଣି ଛିଞ୍ଚିବା—
2. Sprinkling of water on the victim of a sacrifice by uttering some formulae.

୩ । (+ଅଧିକରଣ. ଅନ)—ପଶୁବଳି—
3. Sacrifice of a victim.

୪ । ବଧ (ହ୍ରି. ଶ)—4. Killing

୫ । ପଶୁବଳି ଦିଆଯିବା ସମୟରେ ଉଚ୍ଚାରିତ ମନ୍ତ୍ର—
5. A text to be repeated at an animal sacrifice (Apte).

ଦେ. ବି—ପୋଛପୋଛି—Rubbing
ସେବକ ନାରିଚ ଲଗାଇ
ମର୍ଦ୍ଦନ ପ୍ରୋକ୍ଷଣ କରଇ । ଭୂପତି, ପ୍ରେମତରଙ୍ଗାମୃତ ।

**ପ୍ରୋକ୍ଷଣି(ଣୀ)**—ସଂ. ବି—୧ । ଜଳସେଚନ ପାତ୍ର—
Prokshaṇi(ṇi) 1. Sprinkling pot.

୨ । ବଳି ଉପରେ ଛିଞ୍ଚାଯିବା ଜଳ—2. Water sprinkled over a victim (Apte).

୩ । ବଳି ଉପରେ ଛିଞ୍ଚାଯିବା ଜଳ ରହିବା ପାତ୍ର—
3. The vessel containing the holy water sprinkled over a victim.

୪ । ହୋମାଦି ସମୟରେ ଅନାମିକା ଅଙ୍ଗୁଠିରେ ପିନ୍ଧା ଯିବା କୁଶର ମୁଦ୍ରିକା—4. A ring made of Kusa grass worn on the ring finger during a Vedic sacrifice.

**ପ୍ରୋକ୍ଷିତ**—ସଂ. ବିଣ. ( ପ୍ର+ଉକ୍ଷ୍ ଧାତୁ+ତ )—
Prokshita ୧ । ଜଳସିକ୍ତ—1. Sprinkled over with water.

୨ । ଯଜ୍ଞରେ ବଳି ଦିଆ ଯାଇଥିବା—
2. Sacrificed as a victim.

୩ । ହତ (ହ୍ରି. ଶ)—3. Killed.

ସଂ. ବି—ଯଜ୍ଞ ପାଇଁ ସଂସ୍କୃତ ମାଂସ (ହ୍ରି. ଶବ୍ଦସାଗର)—
Meat consecrated for a Vedic sacrifice

**ପ୍ରୋଗ୍ରାମ୍**—ବୈଦେ. ବି. ( ଇଂ )—କାର୍ଯ୍ୟର ନିର୍ଘଣ୍ଟ, ସଭା, ନାଟକ ଆଦିର କାର୍ଯ୍ୟକ୍ରମର ଆଗାମୀ ନିର୍ଦ୍ଦେଶ; ବିଜ୍ଞାପିତ କାର୍ଯ୍ୟକ୍ରମସୂଚକ ପତ୍ର—
Program
প্রোগ্রাম
प्रोग्राम
Programme.

**ପ୍ରୋଗ୍ରେସ୍ ରିପୋର୍ଟ**—ବୈଦେ. ବି. ( ଇଂ )—
Progres riport ବିଦ୍ୟାଳୟମାନଙ୍କରେ ଭିନ୍ନ ଭିନ୍ନ ଶ୍ରେଣୀର ବା
প্রোগ্রেস রিপোর্ট ପ୍ରତ୍ୟେକ ଛାତ୍ରର ପାଠୋନ୍ନତି ସୂଚକ ତାଲିକା—
प्रोग्रेस रिपोर्ट Progress-report of a class or student

**ପ୍ରୋଗ୍ରେସିଭ୍ ପାର୍ଟି**—ବୈଦେ. ବି. (ଇଂ. ଆଧୁନିକ ପ୍ରୟୋଗ)—
Progresibh parti ରାଜନୀତି ଓ ସମାଜ ସମ୍ବନ୍ଧେ ଅଗ୍ରଗାମୀ ସଂସ୍କାର-
প্রোগ্রেসিভ পার্টি କାମୀ ଦଳ—Progressive party
प्रोग्रेसिव पार्टी in politics and social matters.
(ପ୍ରୋଗ୍ରେସିଭ୍ ଦଳ—ଦେଶଜରୂପ)

**ପ୍ରୋ ଚାନ୍ସେଲର୍**—ବୈଦେ. ବି. ( ଇଂ )—
Pro chānselar ବିଶ୍ୱବିଦ୍ୟାଳୟର ଉପସଭାପତି—
প্রো চান্সেলার Pro-chancellor of a University.
प्रो चांसेलर

**ପ୍ରୋଚ୍ଚ**—ସଂ. ବିଣ. ( ପ୍ର+ଉଚ୍ଚ )—ଅତ୍ୟୁଚ୍ଚ—
Prochcha Very high.

**ପ୍ରୋଜ୍ଝନ**—ସଂ. ବିଣ. (ପ୍ର+ଉଜ୍ଝ୍ ଧାତୁ+ଭାବ. ଅନ)—ପରିତ୍ୟାଗ—
Projjhana Abandonment.

**ପ୍ରୋଜ୍ଝିତ**—ସଂ. ବିଣ. ( ପ୍ର+ଉଜ୍ଝ୍ ଧାତୁ+ତ)—
Projjhita ପରିତ୍ୟକ୍ତ—Abandoned; given up; relinquished.

**ପ୍ରୋଟେଷ୍ଟ**—ବୈଦେ. ବି. ( ଇଂ )—ଆପତ୍ତି—
Proteshṭ Protest.
প্রোটেষ্ট
प्रोटेस्ट

**ପ୍ରୋଟେଷ୍ଟାଣ୍ଟ**—ବୈଦେ. ବି. ( ଇଂ )—ଖ୍ରୀଷ୍ଟିଆନମାନଙ୍କର ସଂସ୍କୃତ
Proteshṭāṇṭ ସଂପ୍ରଦାୟବିଶେଷ—1. Protestant.
প্রোটেষ্টান্ট [ ଦ୍ର—ଏ ସଂପ୍ରଦାୟ ପ୍ରଥମେ ଜର୍ମାନୀରେ ଲୁଥର
प्रोटेस्टेंट ନାମକ ସଂସ୍କାରକଙ୍କ ଦ୍ୱାରା ଆରବ୍ଧ ହୋଇ ରୋମାନ୍ କାଥଲିକ୍ ସଂପ୍ରଦାୟର କେତେକ ଆପତ୍ତିଜନକ ଆଚାର ଓ ପୋପ୍‌ଙ୍କ ଏକାଧିପତ୍ୟରେ କୁଠାରାଘାତ କରିଥିଲା । ବର୍ତ୍ତମାନ ପୃଥିବୀରେ ଖ୍ରୀଷ୍ଟିଆନ୍‌ମାନଙ୍କ ମଧ୍ୟରେ ଏ ସଂପ୍ରଦାୟର ଲୋକଙ୍କ ସଂଖ୍ୟା ଅନ୍ୟ ସଂପ୍ରଦାୟର ଲୋକଙ୍କ ଅପେକ୍ଷା ବେଶି ଅଧିକ । ]

**ପ୍ରୋଢ଼**—ସଂ. ବିଣ. ପୁଂ ( ପ୍ର+ବହ୍ ଧାତୁ+କର୍ତ୍ତୃ. ତ )—
Prorḍha ପ୍ରୌଢ଼ ( ଦେଖ )
(ପ୍ରୋଢ଼ା—ସ୍ତ୍ରୀ) Praurḍha ( See )

**ପ୍ରୋଢ଼ା**—ସଂ. ବିଣ. ସ୍ତ୍ରୀ—ରଜସ୍ୱଳା; ଯାହାର ରଜୋଦର୍ଶନ ହୋଇଅଛି—
Prorḍha Menstruated; matured (Apte).

**ପ୍ରୋଢ଼ା କନ୍ୟା**—ସଂ. ବି. ସ୍ତ୍ରୀ—୧ । ରଜସ୍ୱଳା ବାଳିକା; ଯେଉଁ ବାଳିକା
Prorḍhā kanyā ଜ୍ଞାନ ପାଇଅଛି—1. Matured girl.

୨ । ଯେଉଁ ବାଳିକା ବିବାହ ପୂର୍ବରୁ ଜ୍ଞାନ ପାଇଅଛି—
2. A matured bride.

**ପ୍ରୋଢ଼ି**—ସଂ. ବି—ପ୍ରୌଢ଼ି (ଦେଖ)—
Prorḍhi Praurḍhi (See) (Apte).

**ପ୍ରୋତ୍ଫୁଲ୍ଲ**—ସଂ. ବିଣ—(ପ୍ର+ଉତ୍ଫୁଲ୍ଲ)—୧ । ଅତିଶୟ ହୃଷ୍ଟ—
Protphulla 1. Very cheerful; gay.

୨ । ପ୍ରସ୍ଫୁଟିତ; ସମ୍ପୂର୍ଣ୍ଣରୂପେ ଫୁଟିଥିବା; ବିକଶିତ—
2. Fullblown.

୩ । ସମ୍ପୂର୍ଣ୍ଣରୂପେ ବିସ୍ତାରିତ—
3. Fully expanded.

**ପ୍ରୋତ**—ସଂ. ବିଣ—(ପ୍ର+ବେ ଧାତୁ=ସିଇଁବା+କର୍ମ. ତ)—
Prota ୧ । ସ୍ୟୁତ; ସିଆଁ ହୋଇଥିବା—1. Sewn; stitched.

୨ । ଗ୍ରଥିତ—2. Strung.

୩ । ଖଚିତ—3. Set; inlaid.

୪ । ଶୃଙ୍ଖଳିତ—4 Placed in order.

୫ । ଶୂଳରେ ବସା ଯାଇଥିବା—
5. Impaled; pierced through.

୬ । ସଂଯୋଜିତ—
6. Joined together; connected.

୭ । ଭୂଗର୍ଭନିହିତ, ପୋତା ଯାଇଥିବା—
7. Buried.
୮ । ଲୁକ୍କାୟିତ ( ହି. ଶ. )—
8. Hidden; concealed.
୯ । (ଓତର ବିପରୀତ) ଏହା ଓତ ଶବ୍ଦ ପରେ ବିପରୀତାର୍ଥକ ସହଚରରୂପେ ବ୍ୟବହୃତ ହୁଏ; ଲମ୍ବ ଭାବରେ ବିସ୍ତାରିତ—
9. Extended lengthwise or perpendicularly (Apte).
୧୦ । ବନ୍ଧା ଯାଇଥିବା—
10. Tied; bound; fastened (Apte)
୧୧ । ଫୋଡ଼ାଯାଇଥିବା; ଅନୁବିଦ୍ଧ—
11 Pierced, transfixed (Apte).

**ପ୍ରୋତ୍ତୁଙ୍ଗ**—ସଂ. ବିଣ—(ପ୍ର+ଉତ୍ତୁଙ୍ଗ)—ଅତ୍ୟୁଚ୍ଚ—
Prottunga Very high; lofty.

**ପ୍ରୋତ୍ଥିତ**—ସଂ. ବିଣ—( ପ୍ର+ଉତ୍ଥିତ )—ଉଚ୍ଚ କରାଯାଇଥିବା
Protthita (ହି. ଶ.) —Raised
ବି—ବସ୍ତ୍ର; ଲୁଗା—Cloth; a garment of women; cloth.

**ପ୍ରୋତ୍ସାଦନ**—ସଂ. ବି—(ପ୍ର+ଉତ୍+ସଦ୍ ଧାତୁ ଣିଚ୍ ସାଦ ଧାତୁ+ ଭାବ. ଅନ)—୧ । ବିଲୋପ—1. Annihilation; extermination.
Protsādana
(ପ୍ରୋତ୍ସାଦିତ—ବିଣ)
୨ । ମନ୍ତ୍ରଣା; ଚକ୍ର; କୌଶଳ—
2. Stratagem.

**ପ୍ରୋତ୍ସାରଣ**—ସଂ. ବି—(ପ୍ର+ଉତ୍ସାରଣ)—୧ । ବହିଷ୍କରଣ—
Protsāraṇa 1. Driving out; expulsion.
(ପ୍ରୋତ୍ସାରିତ—ବିଣ) ୨ । ପରିତ୍ୟାଗ; ପରିବର୍ଜନ—
2 Abandonment; relinquishment; giving up; getting rid of (Apte).
୩ । ଉତ୍ତେଜିତ—3. Urged forward.
୪ । ପ୍ରଦାନ, ଦେବା—4. Granting; giving.

**ପ୍ରୋତ୍ସାହ**—ସଂ. ବି—(ପ୍ର +ଉତ୍ସାହ)—୧ । ଅତ୍ୟନ୍ତ ଉତ୍ସାହ—
Protsāha 1. Ardent zeal; ardour; encouragement.
୨ । ସମ୍ୟକ୍ ଉତ୍ତେଜନ—
2. Stimulus; instigation.

**ପ୍ରୋତ୍ସାହକ**— ସଂ. ବିଣ. ପୁଂ—(ପ୍ର +ଉତ୍ସାହକ)—୧ । ଉତ୍ସାହଦାତା—
Protsāhaka 1. Giving encouragement.
(ପ୍ରୋତ୍ସାହିକା—ସ୍ତ୍ରୀ) ୨ । ଉତ୍ତେଜକ—2. Stimulating; stimulant; infusing zeal.
ସଂ. ବି. ପୁଂ.—ଅପରାଧର ଉତ୍ତେଜକ—
Instigator of a crime; an abettor.

**ପ୍ରୋତ୍ସାହନ**—ସଂ. ବି.—୧ । ଉତ୍ସାହଦାନ—
Protsāhana 1. Giving encouragement.
୨ । ଉତ୍ତେଜନ—
2. Stimulation; incitement; instigation.

**ପ୍ରୋତ୍ସାହିତ**—ସଂ. ବିଣ. (ପ୍ର+ଉତ୍ସାହିତ)—୧ । ସମ୍ୟକ୍ ଉତ୍ତେଜିତ—
Protsāhita 1. Stimulated; incited; instigated
୨ । ଉତ୍ସାହପ୍ରାପ୍ତ—2. Encouraged.

**ପ୍ରୋତ୍ସାହୀ**—ସଂ. ବିଣ. ପୁଂ—(ପ୍ରୋତ୍ସାହ+ଇନ୍)—ବିଶେଷ ଉତ୍ସାହଯୁକ୍ତ
Protsāhi Ardent; zealous; stimulated.
(ପ୍ରୋତ୍ସାହିନୀ—ସ୍ତ୍ରୀ)

**ପ୍ରୋଥ୍ (ଧାତୁ)**—ସଂ.—୧ । ଗମନ କରିବା—
Proth (root) 1. To go.
୨ । ପାରଗ ହେବା—2. To be able.
୩ । ବଶୀଭୂତ କରିବା—3. To subdue.
୪ । ପୋତିବା—
4. To bury; to fix to the ground.
୫ । ପର୍ଯ୍ୟାପ୍ତ ହେବା—5. To suffice.

**ପ୍ରୋଥ**—ସଂ. ବି.—୧ । ଅଶ୍ୱମୁଖ; ଘୋଡ଼ାର ନାକର ଅଗ୍ରଭାଗ—
Protha 1. The mouth or nose of a horse.
୨ । ଶୂକରର ନାସାଗ୍ର, ଥୋମଣି—
2. The snout of a hog.
୩ । ଗର୍ଭସ୍ଥ ଭ୍ରୂଣ—
3. Foetus; embryo in the womb.
୪ । କଟିଦେଶ; ଅଣ୍ଟା—4. Waist, loins.
୫ । ଗର୍ତ୍ତ; ଗାତ —5. Hole; excavation.
୬ । ନିତମ୍ବ, ପିଚା—6 Buttocks; hip.
୭ । ଭୟ—7. Terror; horror.
୮ । ଶାଢ଼ୀ ତଳେ ପିନ୍ଧା ଯିବା ଲୁଗା—
8. Underwear; petticoat.
୯ । ପୋଷାକ—9. A garment (Apte).
୧୦ । ପୁରୁଣା ଲୁଗା—10. Old clothes (Apte).
ବିଣ—୧ । ପ୍ରସିଦ୍ଧ—1. Celebrated.
୨ । ବିସ୍ତୃତ—2. Scattered.
୩ । ଭ୍ରମଣକାରୀ—3. Wandering; wayfaring.
୪ । ସ୍ଥାପିତ – 4. Placed; fixed.

**ପ୍ରୋଥଥ**—ସଂ. ବି—ଅଶ୍ୱର ହ୍ରେଷା (ହି. ଶ)—
Prothatha Neighing of a horse.

**ପ୍ରୋଥିତ**—ସଂ. ବିଣ. (ପ୍ରୋଥ୍ ଧାତୁ+କର୍ମ. ତ)—
Prothita ଭୂଗର୍ଭନିହିତ; ପୋତା ଯାଇଥିବା—
Buried; interred.

**ପ୍ରୋଦ୍ଭିନ୍ନ**—ସଂ. ବିଣ. (ପ୍ର+ଉଦ୍ଭିନ୍ନ)— ଉଦ୍ଗତ; ସମୁଦ୍ଗତ—
Prodbhinna Bursting out.

**ପ୍ରୋ ନୋଟ୍**—ବୈଦେ. ବି. (ଇଂ. ପ୍ରମିସରି ନୋଟର ସାଙ୍କେତିକ)—
Pro not ପ୍ରମିସରି ନୋଟ୍—Pro-note; promissory note.
প্রোনোট
प्रोनोट

**ପ୍ରୋପ୍ରାଇଟର୍**—ବୈଦେ. ବି. (ଇଂ)—୧ । ମାଲିକ; ସ୍ୱତ୍ୱାଧିକାରୀ—
Proprāitar 1. Proprietor.
প্রোপ্রাইটর (ଯଥା—ଉତ୍କଳ ସାହିତ୍ୟ ପ୍ରେସର ପ୍ରୋପ୍ରାଇଟର୍।)

ପ୍ରोप्राइटर ୨ । ଜମିଦାରର ମାଲିକ; ଜମିଦାର—
2. A zamindar.

ପ୍ରୋଫେସର୍—ବୈଦେ. ବି. (ଇଂ)—କଲେଜର ଅଧ୍ୟାପକ—
Prophesar Professor of a College.
প্রোফেসার प्रोफेसर

ପ୍ରୋଫେସରୀ—ଦେ. ବି—ପ୍ରୋଫେସରଙ୍କ ପଦ ବା କାର୍ଯ୍ୟ—
Prophesari The post or work of a professor.
প্রোফেসারী प्रोफेसरी

ପ୍ରୋବେଟ୍—ବୈଦେ. ବି. (ଇଂ. କଚେରୀ)—ଦରଖାସ୍ତକାରୀଙ୍କୁ ଅସଲ
Probet ଉଇଲ ଫେରସ ଦିଆ ନ ଯାଇ ଅଦାଲତଙ୍କ ଦ୍ୱାରା
প্রোবেট ମଞ୍ଜୁର କରାଯାଇ ଥିବା ଉଇଲର ନକଲ—
प्रोबेट Probate; copy of a will granted by the judge.

[ ଦ୍ର—ଏହାର ବଳରେ ଉଇଲର ନିର୍ଦ୍ଦେଶ ଅନୁସାରେ କର୍ମକାରକ ବ୍ୟକ୍ତିର ମୃତ କର୍ମମାନ ମାତବ୍ବର ବିବେଚିତ ହୁଏ । ]

ପ୍ରୋବେଶନ୍—ବୈଦେ. ବି. (ଇଂ)—କୌଣସି କାର୍ଯ୍ୟରେ ନିଯୁକ୍ତ
Probesan ବ୍ୟକ୍ତିଙ୍କୁ ସ୍ଥାୟୀ କରାଯିବା ପୂର୍ବରୁ ତାଙ୍କର କର୍ମ-
প্রোবেসন କାରିତାର ପରୀକ୍ଷାସ୍ୱରୂପ ସେ ଉମ୍ମେଦବାର କର୍ମ କରିବା—
प्रोबेसन Probation.

ପ୍ରୋବେଶନର୍—ବୈଦେ. ବି. (ଇଂ)—ଶିକ୍ଷାନବିସ୍; ଯେଉଁ କର୍ମଚାରୀ
Probesanar କାର୍ଯ୍ୟରେ ସ୍ଥାୟୀ ବା ବାହାଲ ହେବା ପୂର୍ବରୁ
প্রোবেসনার ଉମ୍ମେଦବାର ପରୀକ୍ଷାଧୀନରୂପେ କାର୍ଯ୍ୟ କରନ୍ତି—
प्रोबेशनर Probationer.

ପ୍ରୋବେଶନ(ନା)ରୀ—ବୈଦେ. ବିଣ. (ଇଂ)—୧ । ଶିକ୍ଷାନବିସରୂପେ
Probesana(nā)ri କାର୍ଯ୍ୟ କରୁଥିବା (କର୍ମଚାରୀ)—
প্রোবেসনারী 1. Probationary.
प्रोबेशनरी ୨ । ପ୍ରୋବେଶନ୍ ସମ୍ବନ୍ଧୀୟ—
2. Relating to probation.
( ଯଥା—ପ୍ରୋବେଶନାରୀ ସମୟ । )

ପ୍ରୋଭିଡେଣ୍ଟ ଫଣ୍ଡ୍—ବୈଦେ. ବି. (ଇଂ)—ଚାକିରି ଶେଷରେ ଅବସର
Probhident phand ନେବା ପରେ ଅବସରପ୍ରାପ୍ତ କର୍ମଚାରୀଙ୍କ
প্রোভিডেন্ট ফণ্ড ଜୀବିକାନିର୍ବାହାର୍ଥ ଚାକିରି ସମୟରେ ତାଙ୍କ
प्रोविडेन्ट फन्ड ନାମରେ ଜମା କରାଯାଇ ଥିବା ପାଣ୍ଠି—
Provident fund.

ପ୍ରୋଶେସନ୍—ବୈଦେ. ବି. (ଇଂ)—ଶୋଭାଯାତ୍ରା—Procession.
Prosesan প্রোসেসন प्रोसेसन

ପ୍ରୋଷ—ସଂ. ବି—୧ । ଜ୍ୱଳନ—
Prosha 1. Burning; combustion (Apte.)
୨ । ବହୁତ ଦୁଃଖ ବା କଷ୍ଟ (ହି. ଶ); ସନ୍ତାପ—
2. Excessive pain or trouble

ପ୍ରୋଷିତ—ସଂ. ବିଣ. ( ପ୍ର+ବସ୍ ଧାତୁ=ବାସ କରିବା+କର୍ତ୍ତୃ. ତ )—
Proshita ୧ । ବିଦେଶଗତ; ପ୍ରବାସସ୍ଥ; ପ୍ରବାସଗତ; ପ୍ରବାସୀ—
(ପ୍ରୋଷିତା—ସ୍ତ୍ରୀ) 1. Sojourning; gone abroad.
୨ । ଅବଗତ—2. Informed.
୩ । ନିବୃତ୍ତ—3. Desisting.

ପ୍ରୋଷିତ ପତ୍ନୀକ—ସଂ. ବିଣ. ପୁଂ. (ପ୍ରୋଷିତ+ପତ୍ନୀ+କ)—
Proshita patnika ଯାହାର ସ୍ତ୍ରୀ ପ୍ରବାସକୁ ଯାଇଅଛି—
(ପ୍ରୋଷିତ ଭାର୍ଯ୍ୟ—ଅନ୍ୟରୂପ) (a man) Whose wife is gone abroad.

ପ୍ରୋଷିତ ଭର୍ତ୍ତୃକା—ସଂ. ବିଣ. ସ୍ତ୍ରୀ—ଯାହାର ପତି ପ୍ରବାସରେ ଅଛନ୍ତି—
Proshita bharttṛuka (a woman) Whose husband is gone abroad
(ପ୍ରୋଷିତ ପତିକା, ପ୍ରୋଷିତ ନାୟିକା, ପ୍ରୋଷିତ ପ୍ରେୟସୀ--ଅନ୍ୟରୂପ)
ସଂ. ବି. ସ୍ତ୍ରୀ—ନାୟିକାବିଶେଷ; ପତିଙ୍କ ପ୍ରବାସ ଯୋଗୁଁ କାମାର୍ତ୍ତ ଓ ଦୁଃଖାର୍ତ୍ତ ସ୍ତ୍ରୀ—
A woman who feels amorous and dejected on account of the absence of her husband.

[ ଦ୍ର—କାବ୍ୟରେ ବର୍ଣ୍ଣିତ ନାୟିକାଙ୍କର ଆଠ ପ୍ରକାର ମଧ୍ୟରୁ ଏହା ଏକ । ]

ପ୍ରୋଷିତ ମରଣ—ସଂ. ବି—ବିଦେଶରେ ମୃତ୍ୟୁ—
Proshita marana Dying in a foreign country.

ପ୍ରୋଷ୍ଠ—ସଂ. ବି. ପୁଂ. ( ପ୍ର+ଓଷ୍ଠ )—
Proshtha ୧ । ବଳଦ—1. An ox.
(ପ୍ରୌଷ୍ଠ—ଅନ୍ୟରୂପ) ୨ । କାଷ୍ଠାସନ—2. A bench; a stool.
୩ । କେଉଣ୍ଟି ମାଛ—3. Carp

ପ୍ରୋଷ୍ଠୀ—ସଂ. ବି. ସ୍ତ୍ରୀ. ( ପ୍ର+ଉଷ୍ ଧାତୁ=ପୋଡ଼ିବା+ସଂଜ୍ଞାର୍ଥେ ଠ+
Proshthi ସ୍ତ୍ରୀ. ଈ )—ଯାହା ଖାଇଲେ ପିତ୍ତ ବୃଦ୍ଧି ଯୋଗୁଁ
ଅନ୍ୟ ସ. ନାମ—କରଣ୍ଡୀ, ଶରୀରରେ ଦାହ ଉତ୍ପନ୍ନ ହୁଏ )—
ସଫରୀ, ଶଫରୀ ଶଫରୀ; କେଉଣ୍ଟି ମାଛ—
Carp; Cyprinus Pansinus Barbas; Chola.

ପ୍ରୋସିକ୍ୟୁସନ୍—ବୈଦେ. ବି. (ଇଂ)—ଫଉଜଦାରୀ ମକଦ୍ଦମାର ମୁଦାଲା
Prosikyusan ବିପକ୍ଷରେ ମୁଦେଇରୂପେ ମକଦ୍ଦମା ଚଳାଉଥିବା ପକ୍ଷ—Prosecution.

ପ୍ରୋହ—ସଂ. ବିଣ—୧ । ତାର୍କିକ; ତର୍କକାରୀ—
Proha 1. Disputing; reasoning.
(ପ୍ରୌହ—ଅନ୍ୟରୂପ) ୨ । ଚତୁର—2. Skilful; clever.
ସଂ. ବି—୧ । ତର୍କକାରୀ ବ୍ୟକ୍ତି—1. Reasoner.
୨ । ତର୍କ—2. Reasoning.
୩ । ହାତୀର ଗୋଡ଼—3. An elephant's foot.
୪ । ପର୍ବ; ପବ (ହି. ଶ)—4. Internode.
୫ । ଗଣ୍ଠି—5. Knot; joint (Apte).

ପ୍ରୋହିତ—ଦେ. (ପଦ୍ୟ) (ସଂ. ପୁରୋହିତ)—ପୁରୋହିତ—
Prohita পুরুত प्रोहित Priest.
ଶୁଣି ସୁମିତ୍ରା ସୁତ ଘର ପ୍ରୋହିତ, ମନ୍ତ୍ର କହୁଣ ସମର୍ପିଲେ ସୁଚିତା ।
ବିଶ୍ୱନାଥ. ବଡଚମ୍ପାୟଣ ।

ପ୍ରୌଢ଼—ସଂ. ବଣ. ତ୍ରିଂ. ( ପ୍ର+ବହ୍ ଧାତୁ=ବହନ କରିବା+
Praurdha କର୍ତ୍ତୃ. ତ )—୧ । ସମ୍ପୂର୍ଣ୍ଣରୂପେ ବଢ଼ିତ—
(ପ୍ରୌଢ଼ା—ସ୍ତ୍ରୀ) 1. Full grown; grown up.
ପ୍ରୌଢ଼ତା } ବି. ୨ । ପୂର୍ଣ୍ଣବୟସ୍କ—2. Adult; grown up.
ପ୍ରୌଢ଼ତ୍ୱ } [ ଦ୍ର—ଏହି ଅବସ୍ଥା ୩୦ ଠାରୁ ୫୫ ବର୍ଷ ପର୍ଯ୍ୟନ୍ତ ଅଟେ । ପୁରୁଷର ପ୍ରୌଢ଼ାବସ୍ଥା ୩୦ ଠାରୁ ୪୫ ବର୍ଷ ବୟସ ପର୍ଯ୍ୟନ୍ତ ଓ ସ୍ତ୍ରୀର ପ୍ରୌଢ଼ାବସ୍ଥା ୩୦ ଠାରୁ ୫୫ ବର୍ଷ ପର୍ଯ୍ୟନ୍ତ ଅଟେ । ]

୩ । ପ୍ରବୀଣ; ବୃଦ୍ଧ—3. Old; mature.

୪ । ଯଥେଷ୍ଟ—4. Sufficient; enough.

୫ । ବିଜ୍ଞ—5. Experienced.

୬ । ପରିପୁଷ୍ଟ—6. Developed; matured.

୭ । ବିବାହିତ—7. Married.

୮ । ସାହସୀ—8. Bold.

୧୦ । ନିପୁଣ; ଦକ୍ଷ—10. Expert, skilful, forward.

୧୧ । ଦମ୍ଭଯୁକ୍ତ—11. Confident.

୧୨ । ଦମ୍ଭାଳିଆ; ପ୍ରଗଲ୍ଭ, ଗର୍ବୀ; ଅହଙ୍କାରୀ—
12. Arrogant; proud.

୧୩ । ନିର୍ଲଜ୍ଜ—13. Impudent.

୧୪ । ନିବିଡ଼; ଘୋର—14. Thick; dense.

୧୫ । ଭୀଷଣ—15. Frightening; violent; terrible.

୧୬ । ପ୍ରସାରିତ—16. Extended.

୧୭ । ଉତ୍ତୋଳିତ—17. Raised; lifted up.

୧୮ । ମହତ୍; ପ୍ରବଳ; ବଳବାନ୍—
18. Grand; mighty; strong (Apte ).

୧୯ । ବହୁବର୍ଦ୍ଧିତ—19. Luxuriant (Apte).

୨୦ । (ସମାସରେ ଅନ୍ୟ ଶବ୍ଦ ପରେ ଯୁକ୍ତ) ଅମୁକରେ ପୂର୍ଣ୍ଣ—
20. Full of; filled with (Apte).

୨୧ । ସମ୍ୟକ୍ ଆଲୋଚିତ—
21. Controverted; discussed (Apte)

ପ୍ରୌଢ଼ପାଦ—ସଂ. ବଣ. ପୁଂ—୧ । ଯେଉଁ ବ୍ୟକ୍ତି ଆସନୋପରି ପାଦତଳ
Praurdhapāda ଭୂମିକୁ ରଖି ବସିଥାଏ, ଭେଳ ହୋଇ ବସିଥିବା ଆସନାରୂଢ଼ ପାଦ—1. One who sits with his legs on the seat.

୨ । ବସ୍ତ୍ରାଦିଦ୍ୱାରା ପୃଷ୍ଠ ଓ ଜାନୁ ଓ ଜଙ୍ଘାଦ୍ୱୟକୁ ବାନ୍ଧି କରି ବସିଥିବା; ପର୍ଯ୍ୟଙ୍କ ବନ୍ଧରେ ଆସୀନ—2. Sitting with one's legs, thighs and back wound round with a cloth.

ପ୍ରୌଢ଼ ବୟସ୍କ—ସଂ. ବଣ. ପୁଂ—ପ୍ରୌଢ଼ାବସ୍ଥାପ୍ରାପ୍ତ ( ପୁରୁଷ )—
Praurdha bayaska (a person) Of mature age.
( ପ୍ରୌଢ଼ ବୟସ୍କା—ସ୍ତ୍ରୀ )

ପ୍ରୌଢ଼ା—ସଂ. ବି. ସ୍ତ୍ରୀ—୧ । ୩୦ ଠାରୁ ୫୫ ବର୍ଷ ପର୍ଯ୍ୟନ୍ତ ବୟସ୍କା ସ୍ତ୍ରୀ—
Praurdha 1. A woman between 30 and 55 years of age.

୨ । କାବ୍ୟ ବର୍ଣ୍ଣିତ ନାୟିକାଭେଦ—2. A class of heroines of romance; a woman of violent temper; shrew; a woman of ungovernable passions.
[ ଦ୍ର—ଏ ନାୟିକା ଭକ୍ତା ବା ଲୁବ୍ଧଭାବା ଏବଂ ସ୍ୱାମୀର ବଶୀଭୂତା ନୁହେଁ ।
ଛନ୍ଦଶାସ୍ତ୍ରାନୁସାରେ ପ୍ରୌଢ଼ା ନାୟିକା ଆଠ ଭାଗରେ ବିଭକ୍ତ; ଯଥା—ଖଣ୍ଡିତା, କଳହାନ୍ତରିତା, ଉତ୍କଣ୍ଠିତା, ବାସକସଜ୍ଜା, ଅଭିସାରିକା, ପ୍ରୋଷିତଭର୍ତ୍ତୃକା, ବିପ୍ରଲବ୍ଧା ଓ ସ୍ୱାଧୀନଭର୍ତ୍ତୃକା । ମାନାବସ୍ଥାରେ ଏମାନେ ତ୍ରିବିଧ, ଯଥା—ଧୀରା, ଅଧୀରା ଓ ଧୀରାଧୀରା । ]

ଦେ. ବି. ପୁଂ—୩୦ ବର୍ଷଠାରୁ ୪୫ ବର୍ଷ ବୟସ ପର୍ଯ୍ୟନ୍ତ ବୟସ୍କ ବ୍ୟକ୍ତି—
A man between 30 and 45 years of age.

> ଦୁର୍ଯ୍ୟୋଧନ ଭଗିଣୀ ହୋଇବାରୁ ପ୍ରୌଢ଼ା
> ତ୍ରାସେ ହେଲ ସେଣୁ ହେଲ ମୁଁ ଅଳ ବୁଢ଼ା—
> କୃଷ୍ଣସିଂହ, ମହାଭାରତ, ଉଦ୍ୟୋଗ ।

ବଣ. ସ୍ତ୍ରୀ—ରଜସ୍ୱଳା; ଯେଉଁ ବାଳିକାର ରଜୋଦର୍ଶନ ହୋଇ ଅଛି—Matured girl.

ପ୍ରୌଢ଼ି——ସଂ. ବି (ପ୍ର+ବହ୍ ଧାତୁ+ଭାବ. ତି)—୧ । ଔତ୍ସୁକ୍ୟ—
Praurdhi 1. Zeal.

୨ । ଉଦ୍ଯୋଗ, ଉଦ୍ୟମ—2. Exertion; enterprise.

୩ । ଅଧ୍ୟବସାୟ—3. Perseverance.

୪ । ବାଗ୍ମିତା—4. Bragging.

୫ । ପ୍ରଗଲ୍ଭତା—5. Audacity; arrogance.

୬ । ବାଦାନୁବାଦ, ତର୍କବିତର୍କ—
6. Discussion; controversy.

୭ । ତୀକ୍ଷ୍ଣବୁଦ୍ଧି; ପ୍ରତିଭା—7. Sharp intellect.

୮ । ସାହସ—8. Boldness; courage; forwardness.

୯ । ଉନ୍ନତି—9. Improvement.

୧୦ । ପରିପକ୍ୱତା—
10 Maturity; perfection; full development(Apte)

୧୧ । ମହତ୍ତ୍ୱ—11. Greatness; grandeur; dignity (Apte).

୧୨ । ଗର୍ବ—12. Pride ( Apte ).

ଦେ. ବି—୧ । ବାହାଦୁରୀ—1. Self-edification.

> ପର ଭଲ ସେବେ ସେ ସହିବେ ଶାଇବେ
> ତାହା ପ୍ରୌଢ଼ି ଦେଖାଇ ସଭରେ କହିବେ ।
> କୃଷ୍ଣସିଂହ, ମହାଭାରତ, ବନ ।

୨ । ବାଲିଙ୍ଗି—2. Bragging; boasting.

ପ୍ରୌଢ଼ିବାଦ—ସଂ. ବି—ବାଲିଙ୍ଗି; ପ୍ରଗଲ୍ଭ କଥା—
Praurdhibāda Arrogant speech; bragging; grand eloquent speech (Apte).

ପ୍ରୌଷ୍ଠିକ—ସଂ. ବଣ. ପୁଂ. ( ପ୍ର+ଓଷ୍ଠ+ଇକ )—
Praushthika ଉତ୍ତମ ଓଷ୍ଠଯୁକ୍ତ—Having excellent
(ପ୍ରୌଷ୍ଠିକା—ସ୍ତ୍ରୀ)

ପ୍ଲକ୍ଷ୍ (ଧାତୁ)—ସ—ଭକ୍ଷଣ କରିବା—
Plaksh (root) To eat.

ପ୍ଲକ୍ଷ—ସ. ବି. ( ପ୍ଲକ୍ଷ୍ ଧାତୁ + ସଂଜ୍ଞା. ଅ )—
Plaksha ୧ । ପର୍କଟୀ ବା ଜଟୀ ଗଛ—
1. The waved-leafed fig tree; Ficus Religiosa.
୨ । ସପ୍ତଦ୍ୱୀପା ପୃଥିବୀର ଗୋଟିଏ ଦ୍ୱୀପ—
2. One of the 7 islands of the world in Indian mythology.
୩ । ବାଡ଼ ଦୁଆର—3 Back door.
୪ । ଦୁଆରର ମୁହଁ—
4. The space on the side of a door (Apte).

ପ୍ଲଟ୍—ବୈଦେ. ବି. ( ଇଂ. ପ୍ଲଟ୍ )—
Plat ୧ । (କଚେରୀଆ) ସ୍ୱତନ୍ତ୍ର ନମ୍ବରରେ ଚିହ୍ନିତ ହୋଇଥିବା ଜମିର ଖଣ୍ଡ—1 A plot of land.
ପ୍ଲଟ
ପ୍ଲାଟ ୨ । (କଚେରୀଆ) ଫିଲ୍ଡ ବୁକ୍‌ରେ ଲେଖାଥିବା ଭିନ୍ନ ଭିନ୍ନ ପରିମାଣ ଓ ଉପଦେଶ ଅନୁସାରେ କାଗଜରେ ନକସାର ପ୍ରାଥମିକ ଚିଠା କରିବା—2 Plotting of a map according to the field book.
୩ । ଉପନ୍ୟାସ, ନାଟକ ବା କାବ୍ୟର କଥା ବସ୍ତୁ ବା କଥାଭାଗ -
3. The plot of a drama, novel etc.
୪ । ଷଡ଼ଯନ୍ତ୍ର—4 A plot; a conspiracy.

ପ୍ଲଟିଙ୍ଗ୍—ବୈଦେ. ବି ( ଇଂ. ପ୍ଲଟିଙ୍ଗ୍ )—
Plating ଫିଲ୍ଡ ବୁକ୍‌ରେ ଲିଖିତ ମାପ ଓ ଉପଦେଶ ଅନୁସାରେ
ପ୍ଲଟିଙ୍ଗ୍ କାଗଜରେ ପେନ୍‌ସିଲ ଦ୍ୱାରା ପ୍ରାଥମିକ ନକସା ଚିଠା
ପ୍ଲାଟିଙ୍ଗ୍ କରିବା—Plotting of a map according to the field book

[ ଦ୍ର—କାଗଜରେ ପେନ୍‌ସିଲ ଦ୍ୱାରା ପ୍ଲଟିଙ୍ଗ୍ ହୋଇ ସାରିଲେ ରେଖାମାନଙ୍କ ଉପରେ କାଳି ଚଢ଼ାଇବାକୁ ହୁଏ । ଏହାକୁ ଇଙ୍କିଙ୍ଗ୍ ବୋଲାଯାଏ, ଉକ୍ତରେ ରଙ୍ଗ ଦେବାକୁ ହୁଏ, ଏହାକୁ କଲରିଙ୍ଗ୍ ବୋଲାଯାଏ । ]

ପ୍ଲବ—ସ. ବିଣ. ( ପ୍ଲୁ ଧାତୁ=ପାଣିରେ ଭାସିବା; ଡେଇଁ ଡେଇଁ ଯିବା + କର୍ତ୍ତୃ. ଅ )—
Plaba
୧ । ଡେଇଁ ଡେଇଁ ଗତି କରୁଥିବା—
1. Moving by leaps and bounds.
୨ । ଉତ୍କୃଷ୍ଟ—2. Superior; excellent.
୩ । ପହଁରୁଥିବା—3. Swimming (Apte).
୪ । ଭାସୁଥିବା—4. Floating (Apte).
ବି. ( + ଭାବ. ଅ )—୧ । ଲମ୍ଫନ—
1. Jumping; leaping.
୨ । ମାକଡ଼ଚଢ଼ ମାରିବା – 2. Tumbling.
୩ । ପାଣିରେ ବୁଡ଼ ବୁଡ଼ କରି ଯିବା; ପାଣିରେ ଡୁବ ମାରିବା—
3. Plunging; diving.
୪ । ସନ୍ତରଣ—4. Swimming.
୫ । ଭାସିବା—5. Floating.
୬ । (+କରଣ. ଅ) ଭେଳା—6. A raft; a float.
୭ । (+କର୍ତ୍ତୃ. ଅ) ମାକଡ଼, ବାନର—7. Monkey.
୮ । ମେଷ; ମେଣ୍ଢା—8. Sheep.
୯ । ଭେକ, ବେଙ୍ଗ—9. Frog.
୧୦ । ହଂସାଦି ଜଳଚର ପ୍ରାଣୀ; କାରଣ୍ଡବ ପକ୍ଷୀ—
10. Aquatic fowl.
୧୧ । ପାଣିକୁଆ—11 Cormorant.
୧୨ । ଜଳକୁକ୍କୁଟ—12. Water fowl.
୧୩ । ଶ୍ୱପଚ, ଚଣ୍ଡାଳ—
13. A man of degraded caste.
୧୪ । (+କର୍ମ. ଅ) କ୍ରମନମ୍ର ଭୂମି, ଗଡ଼ାଣି—14. A slope
୧୫ । ଶତ୍ରୁ—15 Enemy; foe.
୧୬ । ପ୍ରେରଣ—16. Sending, directing.
୧୭ । ପର୍କଟୀ ବୃକ୍ଷ—
17. The waved-leafed fig tree.
୧୮ । ଧ୍ୱନି; ଶବ୍ଦ—18. Sound.
୧୯ । ପ୍ଲୁତ ସ୍ୱରର ଉଚ୍ଚାରଣ—19 A lengthened or protracted utterance of a vowel.
୨୦ । ପୋଲୁଦି, ପଲବ—20. A sort of inverted basket for catching fish.
୨୧ । କୈବର୍ତ୍ତ ମୁସ୍ତକ; କେଉଟିଆ ମୁଥା—21. A kind of grass root; Cyperus Rotundus.
୨୨ । ଗନ୍ଧତୃଣବିଶେଷ—
22. A kind of fragrant grass.
୨୩ । ନଈ ବଢ଼ି—
23. Flood; swelling of a river (Apte).
୨୪ । ଛୋଟ ଡଙ୍ଗା—24 Canoe; small boat (Apte).
୨୫ । ମାଛ ଧରିବା ଜାଲ—
25 A net or snare for catching fish (Apte).
୨୬ । ପରସ୍ପର ଅନ୍ୱିତ ୫ ବା ତଦଧିକ ଶ୍ଳୋକ—
26. Five or more stanzas syntactically connected (Apte).
୨୭ । ପ୍ରତ୍ୟାବର୍ତ୍ତନ—27. Returning; return (Apte).
୨୮ । ଉତ୍ତେଜନ—28. Urging on; inciting.

ପ୍ଲବକ—ସ. ବି. ପୁଂ (ପ୍ଲୁ ଧାତୁ+କର୍ତ୍ତୃ. ଅକ)—୧ । ନର୍ତ୍ତକ—
Plabaka 1. Dancer.
୨ । ଯେ ମାକଡ଼ଚଢ଼ ମାରେ—
2. A tumbler; a person who practices somersault.
୩ । ଯେ ଦଉଡ଼ି ବା ଖଣ୍ଡା ଉପରେ ନାଚେ—
3. A rope dancer.
୪ । କେଳକ; କେଳା; ବାଜୀଗର—4. One who shows various artful dances

୫ । ଚଣ୍ଡାଳ—5. A low caste untouchable.
୬ । ବେଙ୍ଗ—6. Frog.
୭ । ପ୍ଲକ୍ଷ ବୃକ୍ଷ—7. The waved leafed fig tree.

ପ୍ଲବଗ—ସ. ବିଣ (ପ୍ଲବ+ଗମ୍ ଧାତୁ+କର୍ତ୍ତୃ. ଅ)—ପ୍ଲୁତ ଗତିବିଶିଷ୍ଟ; Plabaga ଯେ ଡେଇଁ ଡେଇଁ ଚାଲେ—Moving by leaps. (ପ୍ଲବଗତି, ପ୍ଲବଙ୍ଗ, ପ୍ଲବଙ୍ଗମ—ଅନ୍ୟରୂପ) (ପ୍ଲବଗା—ସ୍ତ୍ରୀ) ବି.—୧ । ବାନର; ମାଙ୍କଡ଼—1. Monkey.
୨ । ଭେକ; ବେଙ୍ଗ—2 Frog.
୩ । ହରିଣ—3. Deer.
୪ । ସୂର୍ଯ୍ୟସାରଥି ଅରୁଣ—4. The charioteer of the Sun-god.
୫ । ଜଳଚର ପକ୍ଷୀ—5. Water fowl.
୬ । ସୂର୍ଯ୍ୟ—7. The sun.
୭ । ପ୍ଲକ୍ଷ ବୃକ୍ଷ—7. The fig tree (Apte).
୮ । ଶିରୀଷ ଗଛ—8. The Sirisha (tree) (Apte).

ପ୍ଲବଚର—ସ. ବି—ହଂସାଦି ଜଳଚର ପକ୍ଷୀ—Plabachara Aquatic birds, e. g. swan.

ପ୍ଲବନ—ସ. ବି. (ପ୍ଲୁ ଧାତୁ+ଭାବ. ଅନ)—Plabana ୧ । ଲମ୍ଫନ; ଡ଼ିଆଁ; ଡେଇଁବା—1. Jumping.
୨ । ପହଁରିବା—2 Swimming.
୩ । ପ୍ଲାବନ; ବଢ଼ି—3. Flood; deluge.
୪ । ନିମ୍ନଗାମୀ ଭୂମି—4. A slope.
୫ । ଗାଡ଼—5. Declivity (Apte).
୬ । ଘୋଡ଼ାର ଡ଼ିଆଁ ଚାଲି—6. Capering of a horse (Apte).

ପ୍ଲବମାନ—ସ. ବିଣ. ପୁଂ. (ପ୍ଲୁ ଧାତୁ+କର୍ତ୍ତୃ ଅନ)—୧ । ଭାସମାନ—Plabamāna 1. Floating; swimming. (ପ୍ଲବମାନା—ସ୍ତ୍ରୀ) ୨ । ଲମ୍ଫମାନ—2. Jumping, leaping.

ପ୍ଲବିବା—ଦେ. (ପଦ୍ୟ) କ୍ରି—୧ । ବୁଡ଼ିବା—Plabibā 1. To dive. ପ୍ରବା ୨ । ସନ୍ତରଣ କରିବା—2. To swim.

ତରଙ୍ଗେ ଲଘୁ ଯେତେ ପ୍ଲବେ ସଙ୍କଟରେ
ଭାସେ କ୍ଷୁଦ୍ର ଜୀବ ସେତେ । ଅର୍ଜୁନ୍ୟ· ଦେବକୃଷ୍ଣ ମଣି ।

ପ୍ଲାକ୍ଷ—ସଂ. ବିଣ. (ପ୍ଲକ୍ଷ+ଅ)—ପ୍ଲକ୍ଷ ସମ୍ବନ୍ଧୀୟ—Plāksha Relating to Plaksha.

ପ୍ଲାଞ୍ଚେଟ୍—ବୈଦେ. ବି. (ଇଂ)—ମିଡ଼ିୟମଙ୍କୁ ବେ ବିଶ୍ୱାସ କରିବା ଲୋକଙ୍କ Plānchet ବ୍ୟବହୃତ ପାନପତ୍ର ଆକାରର କାଠିର ଖଣ୍ଡିଏ ତକତା, ପ୍ଲାଞ୍ଚେଟ ଯାହାରେ ତଳକୁଡ଼ା ପାଖର ତଳେ ଦୁଇ ପାଖେ ୨ଟି ପ୍ଲାଞ୍ଚିଟ ଚକ ଲାଗିଥାଏ ଓ ଅଗପାଖରେ ଗୋଟିଏ ଛିଦ୍ର ହୋଇ (ପ୍ଲାନ୍ଚେଟ୍—ଅନ୍ୟରୂପ) ସେଥିରେ ଖଣ୍ଡିଏ ଲେଡ଼ ପେନ୍ସିଲ୍ ପଶିଥାଏ ଓ ଯାହା ଉପରେ ୨ଜଣ ଲୋକ ହାତ ରଖିଲେ ଉକ୍ତ ତକତା ଗତି କରେ ଓ ପେନ୍ସିଲ୍ ମୁନ ତଳେ ଥିବା କାଗଜରେ ପ୍ରଶ୍ନମାନଙ୍କର ଉତ୍ତରମାନ ମନକୁ ଲେଖି ହୋଇ ଯାଏ – Planchette

ପ୍ଲାଟ୍‌ଫର୍ମ—ବୈଦେ. ବି. (ଇଂ)—୧ । ମଞ୍ଚ; ବେଦୀ—Platpharm 1. Platform. প্লাটফর্ম ୨ । ଷ୍ଟେସନରେ ଅଟକି ଥିବା ରେଳଗାଡ଼ି ଉପରକୁ प्लाटफर्म ଯାତ୍ରୀମାନେ ଚଢ଼ିବାପାଇଁ ଷ୍ଟେସନ୍‌ମାନଙ୍କରେ ନିର୍ମିତ ଉଚ୍ଚ ବେଦୀ – 2. Railway platform.
୩ । ରେଳଷ୍ଟେସନରେ ପ୍ଲାଟଫର୍ମ୍ ଯେଉଁ ସୀମାବଦ୍ଧବିଶିଷ୍ଟ ସ୍ଥାନରେ ନିର୍ମିତ ହୋଇଥାଏ—3. An enclosed space in a railway station where there is the (ପ୍ଲାଟଫାରମ୍—ଅନ୍ୟରୂପ) platform.

ପ୍ଲାଟ୍‌ଫର୍ମ ଟିକ(କେ)ଟ୍—ବୈଦେ. ବି. (ଇଂ)—ରେଳଷ୍ଟେସନର Platpharm tika(ke)t ପ୍ଲାଟଫର୍ମ୍ ଉପରକୁ ଗାଡ଼ି ଆସିଲା প্লাটফর্ম টিকেট ବେଳେ ଦରକାର ଥିଲେ ଷ୍ଟେସନର ସୀମା प्लाटफर्म टिकेट ମଧ୍ୟକୁ ପ୍ରବେଶ କରିବା ନିମନ୍ତେ ରେଳ-କର୍ମଚାରୀଙ୍କଠାରୁ କିଣାଯିବା ଟିକଟ—Platform ticket.

ପ୍ଲାଟିନମ୍—ବୈଦେ. ବି. (ଇଂ)—ସିତ କାଞ୍ଚନ, ଧାତୁବିଶେଷ; ରୌପ୍ୟ-Platinam ତୁଲ୍ୟ ଶୁଭ୍ର ଓ ଲୌହଛଡ଼ା ଅନ୍ୟ ସମସ୍ତ ଧାତୁଠାରୁ প্লাটিনম ଦୃଢ଼ତର ଧାତୁ—Platinum. प्लटिनम [ ଦ୍ର—ଏହା ନିଆଁରେ ତରଳେ ନାହିଁ; ଏଥିରେ କଳଙ୍କି ଧରେ ନାହିଁ, ଅମ୍ଳ ଜଳରେ ଏହା ଉଭେଇ ଯାଏ ନାହିଁ । ଏହା ଅନ୍ୟ ଧାତୁ ସଙ୍ଗେ ମିଶି ଦକ୍ଷିଣଆମେରିକା, ଇଉରାଲ୍ ପର୍ବତ ଓ ବୋର୍ଣ୍ଣିଓ ଦ୍ୱୀପରେ ଖଣିରୁ ବାହାରେ—ହି ଶ । ]

ପ୍ଲାନ୍—ବୈଦେ. ବି. (ଇଂ)—୧ । କୌଣସି ଘରର ତଳର ନକ୍ସା—Plān 1. The plan of a building. প্লান ୨ । କୌଣସି କାର୍ଯ୍ୟରେ ଆଗତପାଞ୍ଚ; ଅଟକଳ—प्लान 2. A scheme; a project.

ପ୍ଲାବ—ସଂ ବି. (ପ୍ଲୁ ଧାତୁ+ଭାବ. ଅ)—୧ । ଗୋତା; ଡୁବ; ବୁଡ଼ା Plāba (ହି ଶ)—1. Diving
୨ । ପରିପୂର୍ଣ୍ଣତା (ହି. ଶ)—2. Fullness.

ପ୍ଲାବକ—ସ. ବିଣ. ପୁଂ (ପ୍ଲୁ ଧାତୁ+କର୍ତ୍ତୃ. ଅକ)—ପ୍ଲାବନକାରୀ; ଯାହା Plābaka ଜଳାଦିଦ୍ୱାରା ବୁଡ଼ାଇ ଦିଏ—Overflowing; (ପ୍ଲାବୀ—ଅନ୍ୟରୂପ) (ପ୍ଲାବକା, ପ୍ଲାବକୀ—ସ୍ତ୍ରୀ) inundating.

ପ୍ଲାବନ—ସ. ବି (ପ୍ଲୁ ଧାତୁ ଣିଚ୍=ପ୍ଲାବି ଧାତୁ+ଅନ)—୧ । ନଦୀ Plābana ଆଦିର ବନ୍ୟା; ବଢ଼ି; ଜଳ ଯୋଗୁଁ ପ୍ରଳୟ—(ପ୍ଲାବନୀୟ, ପ୍ଲାବିତ, ପ୍ଲାବ୍ୟ—ବିଣ) 1. Flood; deluge; inundation.
୨ । ତରଳ ଦ୍ରବ୍ୟର ସ୍ଫୀତି—2. Overflowing of a liquid
୩ । ଅଭିଷେକ—3. Sprinkling.
୪ । ଉଠାଅ ଜୁଆର—4. Flow tide; flood tide.
୫ । ପହଁରା; ସନ୍ତରଣ (ହି. ଶ)—5. Swimming.

**ପ୍ଲାବିତ**—ସ. ବିଣ ( ପ୍ଲୁ ଧାତୁ ଣିଚ୍+ତ )—ଜଳଦ୍ୱାରା ବ୍ୟାପ୍ତ; ପାଣିରେ
Plābita ବୁଡ଼ିଥିବା—Overflooded with water; overflooded; inundated.

**ପ୍ଲାବିନୀ**—ଦେ. ବି—ପ୍ରାଚୀନ ଅର୍ଣ୍ଣବପୋତବିଶେଷ ( ଜଗବନ୍ଧୁ ପ୍ରାଚୀନ
Plābini ଉତ୍କଳ )—A kind of ship used in Orissa in ancient times.

**ପ୍ଲାବିବା**—ଦେ. (ପଦ୍ୟ) କ୍ରି (ସ. ପ୍ଲାବନ)—ପ୍ଲାବିତ କରିବା—
Plābibā To cause to overflow; to inundate.
ପ୍ଲାବା ଛଗବଲସ୍ୟ ଠାବ ପ୍ଲାବ ପ୍ଲବସ୍ତୁରେ—ସ୍ଥାନାଥ ମହାପାତ୍ର ।

**ପ୍ଲାଶି**—ସ. ବି—ପୁରୁଷର ମୂତ୍ରେନ୍ଦ୍ରିୟର ମୂଳ ନିକଟସ୍ଥ ନାଡ଼ୀ (ହି. ଶ)—
Plāsi A vein running at the root of the male organ.

**ପ୍ଲାଷ୍ଟର୍**—ବୈଦେ. ବି. ( ଇଂ )—୧ । (ଡାକ୍ତରୀ) ଔଷଧାର୍ଥେ ଦେହରେ
Plāshtar ବୋଳାଯିବା ଲେପ—1. (medicine) Plaster.
প্লাষ্টার প্লাস্টর ୨ । ପଲସ୍ତରା; କାନ୍ଥରେ ଚୂନଆଦିର ସ୍ତରର ଲେପ—
2. Plaster.

**ପ୍ଲାଷ୍ଟର୍ ଅଫ୍ ପାରିସ୍**—ବୈଦେ. ବି ( ଇଂ )—ବିଲାତି ମାଟି; ଧାତୁଦ୍ରବ୍ୟ,
Plāshtar aph pāris ଚିତ୍ରବାସନ ଓ କାଚପାତ୍ର ଜୋଡ଼ିବା,
প্লাষ্টার অফ পারিস ଚଟାଣରେ ଲେପିବା ଓ ମୂର୍ତ୍ତି ତିଆରି କରିବାରେ
प्लास्टर आफ पेरिस ବ୍ୟବହୃତ ଏକପ୍ରକାର ଚୂନ—
Plaster of Paris.

[ ଦ୍ର—ଏଥିରେ ପାଣି ମିଶାଇ ବୋଳ ଦେଲେ ଏହା ଅଳ୍ପକ୍ଷଣ ମଧ୍ୟରେ ଅତିଶୟ ଦୃଢ଼ ହୋଇଯାଏ । ]

**ପ୍ଲାସୀ**—ଦେ. ବି (ନାମ)—ପଲାସି ଯୁଦ୍ଧ ଓ ଯୁଦ୍ଧକ୍ଷେତ୍ର—The battle
Plāsi প্লাসী पलासी and battle-field of Plassey.

**ପ୍ଲିଡର୍**—ବୈଦେ. ( ଇଂ )—ଓକିଲ—
Plidar প্লিডার प्लिडार Pleader.

**ପ୍ଲିଡର୍‌ସିପ୍**—ବୈଦେ. ବିଣ. ( ଇଂ )—୧ । ଓକାଲତି—
Plidar-sip 1. Pleadership.
প্লিডারসিপ; প্লিডারি ୨ । ଓକାଲତି ବ୍ୟବସାୟ—
प्लिडारसीप 2. The profession of a pleader.
( ପ୍ଲିଡରସି—ଅନ୍ୟରୂପ )

**ପ୍ଲି(ପ୍ଲୀ)ହ୍ (ଧାତୁ)**—ସ—୧ । ଗମନ କରିବା—
Pli-plih (root) 1. To go.
୨ । ବୃଦ୍ଧି ପାଇବା—2 To increase.

**ପ୍ଲି(ପ୍ଲୀ)ହ**—ସ. ବି (ପ୍ଲିହ୍ ଧାତୁ+ଅନ୍; ପ୍ଲିହନ୍ ଶବ୍ଦ)—୧ । ପିଳେହି—
Pli(pli)ha 1. Spleen.
(ପ୍ଲିହା, ପ୍ଲୀହା—ଅନ୍ୟରୂପ) ୨ । ପିଳେହି ବଢ଼ିବା ରୋଗ—
2 Enlargement of the spleen ( a disease ).

**ପ୍ଲି(ପ୍ଲୀ)ହଘ୍ନ**—ସଂ. ବିଣ. ( ପ୍ଲିହନ୍+ହନ୍ ଧାତୁ+କର୍ତ୍ତୃ. ଅ )—
Pli(pli)haghna ଯାହା ପ୍ଲୀହାବୃଦ୍ଧି ରୋଗ ନାଶକରେ—
( ପ୍ଲିହଘ୍ନୀ—ସ୍ତ୍ରୀ ) Curing enlargement of spleen.

**ପ୍ଲି(ପ୍ଲୀ)ହାଘ୍ନୀ**—ସ. ବି—ଶରପୁଙ୍ଖ (ଦେଖ) (ହରେକୃଷ୍ଣ . ଦ୍ରବ୍ୟଗୁଣ)—
Pli(pli)haghni Sarapuṅkha ( See )
( ପ୍ଲୀହ[ହା]ଘ୍ନୀ—ଅନ୍ୟରୂପ )

**ପ୍ଲିହା ବୃଦ୍ଧି**—ସ. ବି—ପ୍ଲିହା ବଢ଼ିବା ରୋଗ—
Pliha bruddhi Enlargement of the spleen.
( ପ୍ଲୀହାବୃଦ୍ଧି—ଅନ୍ୟରୂପ )

**ପ୍ଲି(ପ୍ଲୀ)ହାରି**—ସ. ବି—ଅଶ୍ୱତ୍ଥ (ହି. ଶ)—
Pli(pli)hāri The religious fig tree.

**ପ୍ଲି(ପ୍ଲୀ)ହୋଦର**—ସ. ବି. (ମ. ପ. ଲେ)—ପ୍ଲିହାବୃଦ୍ଧି ରୋଗ—
Pli-pli-hodara Enlargement of the spleen.
[ପ୍ଲି(ପ୍ଲୀ)ହୋଦରୀ—ପୁଂ, ପ୍ଲି(ପ୍ଲୀ)ହୋଦରିଣୀ—ସ୍ତ୍ରୀ—ବିଣ]

**ପ୍ଲୀ (ଧାତୁ)**—ସ—ଗମନ କରିବା—
Pli (root) To go.

**ପ୍ଲୁ (ଧାତୁ)**—ସ—୧ । ଗମନ କରିବା—
Plu (root) 1. To go.
୨ । ଡେଇଁ ଡେଇଁ ଯିବା—
2 To move by leaps.
୩ । ଡେଇଁବା—3. To leap; to jump.
୪ । ଭାସିବା—4. To float.
୫ । ପହଁରିବା—5. To swim.
୬ । ପାଣିରେ ବୁଡ଼ିବା—6. To plunge; to dive.

**ପ୍ଲୁତ**—ସ. ବି. ( ପ୍ଲୁ ଧାତୁ+ଭାବ. ତ )—
Pluta ୧ । ଲମ୍ଫ; ଡେଇଁବା—1. Jumping; leaping.
୨ । ସ୍ୱରର ଦୀର୍ଘତମ ଉଚ୍ଚାରଣ—2 The protracted sound of a vowel.

[ ଦ୍ର—ଏହା ଦୂରରୁ ଡାକିବା, ଗୀତ ବୋଲିବା, ରୋଦନ କରିବା ଓ ବେଦୋଚ୍ଚାରଣ କରିବା ବେଳେ ଶୁଣାଯାଏ ।
ସଂସ୍କୃତରେ ସ୍ୱରମାନଙ୍କର ହ୍ରସ୍ୱ, ଦୀର୍ଘ ଓ ପ୍ଲୁତ ଏହି ୩ ପ୍ରକାରର ଉଚ୍ଚାରଣ ଅଛି । ]

୩ । ଅଶ୍ୱର ଗତିବିଶେଷ, ଦୁଲକି ଚାଲି—
3. Gallop; the trot of a horse
୪ । ଭେକର ଗତି—4 The leaping motion of a frog.
୫ । (ସଙ୍ଗୀତ) ତିନି ମାତ୍ରାଯୁକ୍ତ ତାଳ—4. (music) A measure covering 3 periods.

ସ. ବିଣ—୧ । କମ୍ପଗତିଯୁକ୍ତ (ହି. ଶ)—
1. Moving with vibration.
୨ । (+କର୍ମ. ତ) ପ୍ଲାବିତ (ହି. ଶ)—
2. Flooded; inundated.
୩ । ଅତି ଆର୍ଦ୍ର (ହି. ଶ)—3. Very wet.

**ପ୍ଲୁତ ଗତି**—ସ. ବି. ( କର୍ମଧା; ପ୍ଲୁତ+ଗତି )—
Pluta gati ୧ । ଡେଇଁ ଡେଇଁ ଚାଲି—
1. Going by leaps, jumping.
୨ । ଅଶ୍ୱର ଦୁଲକି ଚାଲି—2. Horse's trot
୩ । (ବହୁବ୍ରୀହି) ଠେକୁଆ—3. Rabbit
ବିଣ. (ବହୁବ୍ରୀହି)—ଡେଇଁ ଡେଇଁ ଚାଲୁଥିବା—
Moving by leaps or bounds.

ପ୍ଳୁତ—ସ. ବ. ( ପ୍ଳୁ ଧାତୁ+ଭାବ. ତ )—
Pluti ୧ । ଡେଇଁ ଡେଇଁ ଗମନ—
1. Jumping motion.
୨ । ଜଳପ୍ଳାବନ, ବନ୍ୟା—
2. Flood; deluge; inundation.
୩ । ତିନ ମାତ୍ରାରେ ଉଚ୍ଚାରିତ ବର୍ଣ୍ଣ—3. A letter uttered with a protracted sound.

ପ୍ଳୁଷ୍ (ଧାତୁ)—ସ—୧ । ଦାହ କରିବା—
Plush (root) 1. To burn.
୨ । ପୂର୍ଣ୍ଣ କରିବା—2. To fill.
୩ । ମୁକ୍ତ କରିବା—3. To set free.
୪ । ଛିଞ୍ଚିବା—4. To sprinkle.
୫ । ପ୍ରିୟ ହେବା—5. To be fond.
୬ । ଦୟାଳୁ ହେବା—6 To be kind.
୭ । ସ୍ନିଗ୍ଧ ବା ତେଲିଆ ହେବା—
7 To be oily or smooth.

ପ୍ଳୁଷ—ସ. ବ. ( ପ୍ଳୁଷ୍ ଧାତୁ+ଭାବ. ଅ )—
Plusha ୧ । ଦାହ, ଜ୍ୱଳନ (ହି. ଶ)—1 Burning.
୨ । ପୂର୍ତ୍ତି (ହି. ଶ)—2. Fulfilment.
୩ । ପ୍ରେମ (ହି. ଶ)—3. Love.

ପ୍ଳୁଷ୍ଟ—ସ. ବି. (ପ୍ଳୁଷ୍ ଧାତୁ+କର୍ମ. ତ)—୧ । ଦଗ୍ଧ—
Plushta 1. Burnt
୨ । ପୂରିତ—2. Filled up.

ପ୍ଲେ—ବୈଦେ. ବ. (ଇଂ)—୧ । ଖେଳ; ତାମସା—
Ple 1. Play; sports.
प्ले ୨ । ନାଟ୍ୟାଦିର ଅଭିନୟ—
প্লে 2. Play; dramatic performance.
(ଯଥା—ଏ ଥର ବଡ଼ଦିନ୍ତ ବାଣୀଚରଣଙ୍କର ସାକ୍ଷିଗୋପାଳ ନାଟ୍ୟଦଳ କଟକରେ ୧ମାସ କାଳ ପ୍ଲେ ଦେଖାଇବେ ।)

ପ୍ଲେଅର୍—ବୈଦେ. ବ. (ଇଂ)—ଖେଳାଳି; କ୍ରୀଡ଼ାରତ ବ୍ୟକ୍ତି; କ୍ରୀଡ଼ା-
Plear प्लेयार প্লেয়ার କଉଶଳରତ ବ୍ୟକ୍ତି—Player.

ପ୍ଲେଗ—ବୈଦେ. ବ. (ଇଂ)—ଗିଲ୍ଟି ଫୁଲି ଜ୍ୱର ହୋଇ ମୃତ୍ୟୁ ଘଟାଇବା ପ୍ରକାରକ ବ୍ୟାଧିବିଶେଷ; ମହାମାରୀ ରୋଗ—
Pleg प्लेग প্লেগ The bubonic plague.
[ଦ୍ର—ଏ ରୋଗୀକୁ ପ୍ରଥମେ ଜ୍ୱର ହୁଏ ଓ ତତ୍ପରେ ଅଣ୍ଠାତଳର, ବେକର ଓ କାଖର ଗିଲ୍ଟିମାନ ଫୁଲି ଦରଜ ହୁଏ ଓ ୩।୪ ଦିନେ ରୋଗୀର ମୃତ୍ୟୁ ହୁଏ । ଏହା ଲେଖାଙ୍କୁ ଇଉରୋପକୁ ଆଞ୍ଚ ଶତାବ୍ଦୀରେ ସଙ୍କମିତ ହୋଇ ଇଉରୋପର ବହୁଦେଶରେ ବ୍ୟାପିଥିଲା । କାଳକ୍ରମେ ଏ ରୋଗଦ୍ୱାରା ନଗର ଓ ଗ୍ରାମମାନ ଜନଶୂନ୍ୟ ହୋଇଗଲା । ଏହା ଊନବିଂଶ ଶତାବ୍ଦୀରେ ଭାରତକୁ ସଙ୍କମିତ ହୋଇ ଭାରତର ସମସ୍ତ ଅଞ୍ଚଳରେ ବ୍ୟାପିଥିଲା, ବର୍ତ୍ତମାନ ଭାରତରୁ ପ୍ଲେଗ୍ ରୋଗ ସମ୍ପୂର୍ଣ୍ଣ ନିରସିତ ହୋଇ ନ ଥିଲେହେଁ ପୂର୍ବପରି ତାହାର ଆଉ ବାଡ଼ ନାହିଁ । ଏ ରୋଗୀ ମଧ୍ୟରୁ ଶତକଡ଼ା ୫୦ ଠାରୁ ୯୫ ପର୍ଯ୍ୟନ୍ତ ମୃତ୍ୟୁମୁଖରେ ପଡ଼ନ୍ତି—ହି. ଶ ।]

ପ୍ଲେ ଗ୍ରାଉଣ୍ଡ୍—ବୈଦେ ବ. (ଇଂ)—ଖେଳ ପଡ଼ିଆ—
Ple graund प्लेग्राउण्ड প্লেগ্রাউণ্ড Play ground.

ପ୍ଲେଟ୍—ବୈଦେ. ବ. (ଇଂ)—୧ । ଧାତୁମୟ ଥାଳିଆ—
Plet 1. A plate of metal.
प्लेट ୨ । ଧାତୁ ଫଳକ—2. A flat, long and narrow
প্লেট piece of metal; blade.
୩ । ସୁନା ରୁପାର ବାସନ—
3. Utensils of gold and silver.
୪ । ଘୋଡ଼ଦୌଡ଼, କ୍ରିକେଟ୍ ଆଦି ଖେଳରେ ଜିତିବା ପକ୍ଷକୁ ଦିଆଯିବା ଧାତବ ପାତ୍ର ଉପଢୌକନ—
4. A plate of metal presented to the winning party in a horse-race or other game.

ପ୍ଲେଣ୍ଟ—ବୈଦେ. ପ୍ରାଦେ. (ଗଞ୍ଜାମ) ବ—ଅଦାଲତରେ ବାଦୀ ପକ୍ଷରୁ
Plent ଦାଖଲ କରାଯିବା ଅର୍ଜି—Plaint
(ପ୍ଲେଇଣ୍ଟ—ଅନ୍ୟରୂପ)

ପ୍ଲେନ୍—ବେବଦେ. ବଣ. (ଇଂ)—୧ । ଚିକ୍କଣ; ମସୃଣ—
Plen 1 Smooth.
प्लेन ୨ । ସମତଳ—2 Plane.
প্লেন ୩ । ସାଦା; ଚିତ୍ରବିହୀନ—3. Unadorned.
୪ । ଯାହା ରଙ୍ଗୀନ୍ ନୁହେଁ—4. Uncoloured.
୫ । ସରଳ—5. Simple.
ବ - ବଢ଼େଇର ରନ୍ଦା—Carpenter's plane.

ପ୍ଲେନ୍ ଟେବଲ୍—ବୈଦେ. ବ. (ଇଂ)—ଭୂମିର ସମତଳତା ନିରୂପଣ
Plen tebal କରିବା ନିମନ୍ତେ ବ୍ୟବହୃତ ବୈଜ୍ଞାନିକ ଯନ୍ତ୍ର—
प्लेन टेबुल প্লেন টেবুল The plane-table.

ପ୍ଲେସ୍—ବୈଦେ. ବ. (ଇଂ)—୧ । ସ୍ଥାନ—1. Place
Ples ୨ । କ୍ଲାସରେ ଛାତ୍ରର ଯୋଗ୍ୟତାନୁସାରେ ଅଧିକୃତସ୍ଥାନ—
2. The place occupied by a pupil in the class according to his or her proficiency.

ପ୍ଲେ ହାଉସ୍—ବୈଦେ. ବ. (ଇଂ)—କ୍ରୀଡ଼ା ଗୃହ; ଯେଉଁ ଘରେ ଲୋକେ
Ple haus ଖେଳନ୍ତି—Play house.
प्लेहाउस প্লেহৌস (ପ୍ଲେ ହଉସ୍, ପ୍ଲେହୌସ୍—ଅନ୍ୟରୂପ)

Printed by V. Kar, The Utkal Sahitya Press, Cuttack.

# ଭାଷାକୋଷ ଚତୁର୍ଥ ଖଣ୍ଡ ପରିଶିଷ୍ଟ

## ଦେଉଳର ଚିତ୍ର

[୩୮୫୨ ପୃଷ୍ଠା ଦେଖନ୍ତୁ]



ଭିତ୍ତି

